ଭାଷାକୋଷ ପଞ୍ଚମ ଖଣ୍ଡର

# ଅବତରଣିକା

## ଏ ଖଣ୍ଡର ପ୍ରକାଶରେ ବିଳମ୍ବ ଘଟିବାର କାରଣ

ସର୍ବଶକ୍ତିମାନ୍ ପ୍ରଭୁଙ୍କ ଅପାର କରୁଣା ଓ ମୋ ମଙ୍ଗଳାକାଂକ୍ଷୀଗଣଙ୍କ ଶୁଭାଶୀର୍ବାଦରୁ ଭାଷାକୋଷର ପଞ୍ଚମ ଖଣ୍ଡ ପ୍ରକାଶିତ ହେଲା ।

୧୯୩୪ ମସିହା ଜୁନ୍‌ମାସରେ ଭାଷାକୋଷର ଚତୁର୍ଥ ଖଣ୍ଡ ପ୍ରକାଶିତ ହେଲାବେଳେ ସମଗ୍ର ଗ୍ରନ୍ଥ ଆଉ ଦୁଇଖଣ୍ଡରେ ଶେଷ ହେବା ଓ ପଞ୍ଚମ ଓ ଷଷ୍ଠ ଖଣ୍ଡ ଦଶ ଦଶ ମାସ ବ୍ୟବଧାନରେ ପ୍ରକାଶିତ ହେବା ଅନୁମାନ କରାଯାଇ ଥିଲା; କିନ୍ତୁ ପଞ୍ଚମ ଖଣ୍ଡ ପ୍ରକାଶିତ ହେଉ ହେଉ ଅଟକଳ ସମୟରୁ ୧୧ ମାସ ଅଧିକ ଚାଲିଗଲା ଏବଂ ଏ ଖଣ୍ଡକୁ ବଢ଼ାଇ ବଢ଼ାଇ ୧୬୦୦ ପୃଷ୍ଠା ବିଶିଷ୍ଟ କଲେ ସୁଦ୍ଧା ବାକି ଥିବା ଅକ୍ଷରରୁ 'ପ' 'ବ', 'ଭ' ଓ 'ମ', ଏହି ଚାରିଗୋଟି ମାତ୍ର ଅକ୍ଷର ଏ ଖଣ୍ଡରେ ସନ୍ନିବେଶିତ ହୋଇ ପାରିଲା । ବର୍ଣ୍ଣମାଳାର ଆଉ ଆଠଗୋଟି ଅକ୍ଷର ଅବଶିଷ୍ଟ ରହିଅଛି । ଏ ଖଣ୍ଡରେ କୌଣସିମତେ 'ଲ' ଅକ୍ଷର ଯଦି ସରି ପାରିଥାଆନ୍ତା, ତେବେ ବର୍ଣ୍ଣମାଳାର ଅବଶିଷ୍ଟ ୫ ଗୋଟି ଅକ୍ଷର ଷଷ୍ଠ ଖଣ୍ଡରେ ପ୍ରକାଶିତ ହେବା ସମ୍ଭବ ହୁଅନ୍ତା । କିନ୍ତୁ ପଞ୍ଚମ ଖଣ୍ଡ 'ମ' ଅକ୍ଷରକୁ ଟପି ପାରିଲା ନାହିଁ; ଫଳତଃ ଅବଶିଷ୍ଟ ଆଠଟି ଅକ୍ଷର ନିମିତ୍ତ ଷଷ୍ଠ ଓ ସପ୍ତମ, ଏପରି ଆଉ ଦୁଇଟି ଖଣ୍ଡ ଆବଶ୍ୟକ ହେବ ।

ଚତୁର୍ଥ ଖଣ୍ଡର ପ୍ରକାଶ ପରେ ଭଗବାନ୍ ଏ ଗ୍ରନ୍ଥର ପ୍ରକାଶକ ପୁଣ୍ୟାତ୍ମା ଶ୍ରୀ ବିଶ୍ୱନାଥ କରଙ୍କୁ ୧୯୩୪ ମସିହା ଅକ୍ଟୋବର୍ ମାସରେ ଅପ୍ରତ୍ୟାଶିତଭାବରେ ଆମ୍ଭମାନଙ୍କ ମଧ୍ୟରୁ ନେଇଯାଇ ଆମ୍ଭମାନଙ୍କୁ ଦାରୁଣ ଦୁଃଖରେ ପକାଇଲେ । ତାଙ୍କ ମୃତ୍ୟୁପରେ ମୁଦ୍ରଣାଳୟର ପରିଚାଳନାରେ ବିଶେଷ ବିଶୃଙ୍ଖଳା ଉପସ୍ଥିତ ହେଲା; ତେଣୁ ଏ ଖଣ୍ଡର ମୁଦ୍ରଣ ଆରମ୍ଭ ହେବାରେ ଅଯଥା ବିଳମ୍ବ ଘଟିଲା ।

ମୁଦ୍ରଣୋପଯୋଗୀ କରିବା ନିମନ୍ତେ ପାଣ୍ଡୁଲିପିମାନ ସଂଶୋଧନ ଓ ସମ୍ମାର୍ଜ୍ଜନ କରିବା, ଫଟୋମାନଙ୍କରୁ ହାଫ୍‌ଟୋନ୍ ବ୍ଲକ୍ ପ୍ରସ୍ତୁତ କରାଇବା, କାଗଜ ଓ ଛପାଖର୍ଚ୍ଚ ତୁଳାଇବା, ପ୍ରୁଫ୍ ଦେଖିବା, ଛପା ହେବା ପରେ ଛପା ଫର୍ମାମାନଙ୍କୁ ସଜାଇବା ଓ ବହି ବନ୍ଧାଇବା ଆଦି କାର୍ଯ୍ୟରେ ଭାଷାକୋଷର ପ୍ରତ୍ୟେକ ଖଣ୍ଡପାଇଁ ହାରାହାରି ଟ ୧୬୦୦୦୯ (ଷୋଳ ହଜାର) ଟଙ୍କା ଖର୍ଚ୍ଚ ହେଉଥିବା ଦେଖା ଯାଉଅଛି ।

ଏ ଖଣ୍ଡର ପୃଷ୍ଠପୋଷକ ଜୟପୁରାଧୀଶ୍ୱର ସାହିତ୍ୟସମ୍ରାଟ୍, ବିକ୍ରମାଦିତ୍ୟ, ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍, ମହୋଦୟଙ୍କଠାରୁ ପ୍ରାପ୍ତ ଟ ୧୦,୦୦୦୯ ଦଶହଜାର ଟଙ୍କାରେ ଏ ଖଣ୍ଡର ମୁଦ୍ରଣ ଆରମ୍ଭ କରାଯାଇଥିଲା । ଗ୍ରନ୍ଥର ବାରପଣ ଛପା ଫର୍ମା ଶେଷ ହେଲା ବେଳକୁ ଦେଖାଗଲା ଯେ 'ମ' ଅକ୍ଷରକୁ ଶେଷ କରିବାକୁ ହେଲେ ଏ ଖଣ୍ଡକୁ ୧୬୦୦ ପୃଷ୍ଠା ବିଶିଷ୍ଟ କରିବା ନିତାନ୍ତ ଆବଶ୍ୟକ । ଭାଷାକୋଷର ପୂର୍ବ ପ୍ରକାଶିତ ପ୍ରଥମ ତିନି ଖଣ୍ଡଠାରୁ ଏ ଖଣ୍ଡର ଆକୃତି ୪୦୦ ପୃଷ୍ଠା ଅଧିକ ହୋଇଗଲା । ଆକାରବୃଦ୍ଧି ସଙ୍ଗେ ବ୍ୟୟବୃଦ୍ଧି ଅବଶ୍ୟମ୍ଭାବୀ ହେଲା । କିନ୍ତୁ ଆଶୁ ଅର୍ଥପ୍ରାପ୍ତିର କୌଣସି ସମ୍ଭାବନା ନ ଦେଖି ମୁଦ୍ରଣ ବନ୍ଦ କରି ବହୁ ସମୟ ହାତ ବାନ୍ଧି ବସି ରହିବାକୁ ହେଲା । ଭଗବାନଙ୍କ କରୁଣାରୁ ପାରଳା ରାଜ୍ୟର ଦେୱାନ୍, ଏ ଗ୍ରନ୍ଥର ଆରମ୍ଭରୁ ଅକୃତ୍ରିମ ବନ୍ଧୁ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବି. ଏଲ୍., ଏମ୍. ବି. ଇ, ଭାଷାକୋଷର ଏହି ଆର୍ଥିକ ଦୁଃସ୍ଥିତି ବିଷୟପ୍ରତି ପାରଳାଧୀଶ୍ୱର କାପ୍ଟେନ୍ ମହାରାଜ ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦୃଷ୍ଟି ଆକର୍ଷଣ କଲେ ଓ ମହାରାଜ ଗତ ନଭେମ୍ବର୍ ୧୬ ତାରିଖରେ ଭାଷାକୋଷ ଆଶ୍ରମରେ ପଦାର୍ପଣ କଲେ ଓ ଭାଷାକୋଷର ଅର୍ଥସଂକଟ ଦୂର କରିବା ପାଇଁ ଟ ୫୦୦୦୯ (ପାଞ୍ଚହଜାର) ଟଙ୍କା ଦାନ କଲେ । ଉପଯୁକ୍ତ ସମୟରେ ଏ ଦାନ କରଗତ ହୋଇ ନ ଥିଲେ ଏହି ପଞ୍ଚମ ଖଣ୍ଡର ମୁଦ୍ରଣ ବ୍ୟୟ ତୁଲାଇ ଏହା ବର୍ତ୍ତମାନ ପ୍ରକାଶ କରିବା ମଧ୍ୟ ମୋ ପକ୍ଷରେ ଅସମ୍ଭବ ହୋଇ ଥାଆନ୍ତା । ଏହି ସବୁ କାରଣରୁ ଏ ଖଣ୍ଡ ପ୍ରକାଶରେ ବିଳମ୍ବ ଘଟିଅଛି ।

ଏହି ଖଣ୍ଡର ପ୍ରକାଶରେ ନିମ୍ନଲିଖିତ ସଦାଶୟ ବ୍ୟକ୍ତିମାନଙ୍କର ଦାନ ଯଥେଷ୍ଟ ସହାୟତା କରିଅଛି ।

୧ । ଆଠମଲ୍ଲିକ ରାଜ୍ୟାଧୀଶ ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଦେଓ — ଟ ୫୦୦୯
୨ । ଗଞ୍ଜାମର ଧରାକୋଟ ରାଜ୍ୟାଧିପ — ଟ ୧୦୦୯
୩ । ଏଚ୍, ରହିମ୍ ଖାଁ, କଟକ — ଟ ୨୦୦୯
୪ । ଖଣ୍ଡପଡ଼ା ରାଜ୍ୟେଶ୍ୱର — ଟ ୪୦୯
୫ । ଖଡ଼ିଆଳ ଲାଲ୍ ଶିବନାରାୟଣ ଦେବ — ଟ ୧୦୦୯
୬ । ରାୟ ସାହେବ ନୃସିଂହ ଚରଣ ଚଉଧୁରୀ, ଯାଜପୁର — ଟ ୧୦୦୯
୭ । ଦର୍ପଣ ଜମିଦାର ଶ୍ରୀଯୁକ୍ତ ଏସ. ଏନ. ସୁଠୁ, କଟକ — ଟ ୨୫୯
୮ । କୁମାର ଗୋକୁଳଚନ୍ଦ୍ର ଲାହା, ଜମିଦାର, ହରିଶପୁର, କଟକ — ଟ ୨୫୯

ଶେଷୋକ୍ତ ଦାନ ତିନୋଟି କଟକ ଜିଲ୍ଲାର ଭୂତପୂର୍ବ କଲେକ୍ଟର୍ ଶ୍ରୀଯୁକ୍ତ ବି. ସି. ମୁଖର୍ଜୀ, ଆଇ. ସି. ଏସ୍, ମହୋଦୟଙ୍କ ବ୍ୟକ୍ତିଗତ ଚେଷ୍ଟାର ଫଳ । ସେ ମହୋଦୟ ଭାଷାକୋଷ କାର୍ଯ୍ୟର ଅଗ୍ରଗତି କଲେ ଯଥେଷ୍ଟ ଆଗ୍ରହ ଦେଖାଉ ଥିଲେ ଏବଂ କଟକ ଓ ବାଲେଶ୍ୱରର କେତେକ ବଦାନ୍ୟ ଧନିକମାନଙ୍କୁ ଭାଷାକୋଷପାଇଁ ସାହାଯ୍ୟ ଦାନ କରିବାକୁ ଅନୁରୋଧ କରି ପତ୍ର ଲେଖିଥିଲେ । ଓଡ଼ିଶାର ଏହି ଜାତୀୟ କାର୍ଯ୍ୟରେ ଜଣେ ବଙ୍ଗୀୟ ଜିଲ୍ଲାଧୀଶ୍ୱରଙ୍କର ଏତାଦୃଶ ମମତା ଓ ଆଗ୍ରହ ଦେଖି ମୋ ମନରେ ଯଥେଷ୍ଟ ପ୍ରୀତି ଓ ଆନନ୍ଦ ଲାଭ ହୋଇଅଛି ।

## ଏ ଖଣ୍ଡର ଅନ୍ତର୍ଗତ ବିଷୟ

ପ୍ରଥମ ଖଣ୍ଡରେ ବର୍ଣ୍ଣମାଳାରୁ ସ୍ୱରବର୍ଣ୍ଣ ୧୩ ଟି ଏବଂ ଦ୍ୱିତୀୟ ଓ ତୃତୀୟ ଖଣ୍ଡରେ ଯଥାକ୍ରମେ ୬ଟି ଓ ୧୨ଟି ବ୍ୟଞ୍ଜନ ବର୍ଣ୍ଣ ଶେଷ ହୋଇଥିଲା । ଚତୁର୍ଥ ଖଣ୍ଡରେ ୪ ଗୋଟି ମାତ୍ର ବ୍ୟଞ୍ଜନ ବର୍ଣ୍ଣ ସରିଲା ଓ ଏ ଖଣ୍ଡରେ ଆଉର ଚାରିଟି ବ୍ୟଞ୍ଜନ ବର୍ଣ୍ଣ ଶେଷ

ହେଲା । ଏହାପରେ ପାଞ୍ଚ ଖଣ୍ଡରେ ୩୯ ଟି ଅକ୍ଷର ଶେଷ ହୋଇ ଆଉ ୮ ଗୋଟି ଅକ୍ଷର ବାକି ରହିଅଛି । ଏଥିରୁ ଏକା "ସ" ଅକ୍ଷରଟି ପାଇଁ ପ୍ରାୟ ୧୦୦୦ ପୃଷ୍ଠା ଲୋଡ଼ା ହେବ ବୋଲି ଅନୁମାନ କରାଯାଇ ଅଛି । ତେଣୁ ଏହି ଗ୍ରନ୍ଥ ଓ ଏହି ଗ୍ରନ୍ଥର ସଙ୍କଳନ-କର୍ତ୍ତା ମୋର ଚବିଶ ବର୍ଷବ୍ୟାପୀ ଶ୍ରମ ପରବର୍ତ୍ତୀ ୬ଷ୍ଠ ଓ ୭ମ, ଦୁଇ ଖଣ୍ଡର ପ୍ରକାଶରେ ଯାଇଁ ପୂର୍ତ୍ତିଲାଭ କରିବ । ୧୯୨୯ ମସିହାରେ ମୁଦ୍ରଣକାଳର ବିଶେଷଜ୍ଞମାନେ ଅଟକଳ କରି ଥିଲେ ଯେ ଦୁଇ ଖଣ୍ଡରେ ଗ୍ରନ୍ଥ ସମାପ୍ତିଲାଭ କରିବ । କିନ୍ତୁ ବର୍ତ୍ତମାନ ଗ୍ରନ୍ଥ ୨ ଖଣ୍ଡରୁ ବଢି ବଢି ୭ ଖଣ୍ଡରେ ପହଞ୍ଚିଲାଣି ! !

## ଗ୍ରନ୍ଥର ଆକାର କମାଇବାର ଉପାୟ

ଗ୍ରନ୍ଥର ଆକାର କମାଇବା ପାଇଁ ତୃତୀୟ ଓ ଚତୁର୍ଥ ଖଣ୍ଡରେ ଯେଉଁ ସବୁ ଉପାୟ ଅବଲମ୍ବିତ ହୋଇଥିଲା, ଏ ଖଣ୍ଡରେ ସେ ସବୁ ଅନୁସୃତ ହୋଇଅଛି । ପ୍ରଥମ ୩ ଖଣ୍ଡର ପ୍ରତ୍ୟେକ ପୃଷ୍ଠାର ଶିରୋଦେଶରେ ଓ ୪ର୍ଥ ଖଣ୍ଡରେ ୧୦୦ ପୃଷ୍ଠା ବ୍ୟବଧାନରେ ଦିଆଯାଇ ଥିବା ସଙ୍କେତ ଏ ଖଣ୍ଡର ଆଦ୍ୟରେ, ପ୍ରାନ୍ତରେ ଓ ଓ ମଧ୍ୟରେ ସ୍ଥାନେ ସ୍ଥାନେ ମାତ୍ର ପ୍ରଦତ୍ତ ହୋଇଅଛି । ଶବ୍ଦମାନଙ୍କର ବିଭିନ୍ନ ଅର୍ଥ ଓ ଶିଷ୍ଟପ୍ରୟୋଗମାନଙ୍କୁ ଏକାଦିକ୍ରମେ ଧାଡ଼ିମୂଳରୁ ଲଗାଲଗି କରି ଛାପିବାର ପ୍ରସ୍ତାବ ମୁଁ ଚତୁର୍ଥ ଖଣ୍ଡର ପ୍ରକାଶ ଯାଏ ଗ୍ରହଣ କରି ନ ଥିଲି । କିନ୍ତୁ ଆର୍ଥିକ ପରିସ୍ଥିତି ଓ କଳେବର ବୃଦ୍ଧି ବିଷୟ ଆଲୋଚନା କରି ଏ ଖଣ୍ଡରେ ତାହା ବାଧ୍ୟ ହୋଇ ଗ୍ରହଣ କଲି ।

## ଏ ଖଣ୍ଡର ମୋଟ ଶବ୍ଦ ସଂଖ୍ୟା

ପ୍ରଥମ ଚାରିଖଣ୍ଡରେ ସନ୍ନିବେଶିତ ଶବ୍ଦ ଓ ବାକ୍ୟାଂଶମାନଙ୍କର ସଂଖ୍ୟା ୯୬ହଜାର । ଏହି ପଞ୍ଚମ ଖଣ୍ଡରେ ଶବ୍ଦସଂଖ୍ୟା ୩୯ହଜାର; ତେଣୁ ଏ ଖଣ୍ଡକୁ ମିଶାଇ ମୋଟ ଶବ୍ଦ ସଂଖ୍ୟା ୧ଲକ୍ଷ ୩୫ହଜାର ହେଉଅଛି । ଆଉ ଯେଉଁ ୮ଟି ଅକ୍ଷର ଅବଶିଷ୍ଟ ରହିଅଛି, ତହିଁର ଅନୁମାନିକ ଶବ୍ଦ ସଂଖ୍ୟା ୬୫୦୦୦ ହେଉଥିବା ସ୍ଥଳେ ଓଡ଼ିଆ ଭାଷାରେ ବ୍ୟବହୃତ ମୋଟ ଶବ୍ଦ ସଂଖ୍ୟା ଦୁଇଲକ୍ଷ ଭାଷାକୋଷରେ ସଂଗୃହୀତ ହେବ । କାଶୀର ନାଗରୀପ୍ରଚାରିଣୀ ସଭାକର୍ତ୍ତୃକ ପ୍ରକାଶିତ ଆଠ-ଭାଗବିଶିଷ୍ଟ 'ହିନ୍ଦୀ ଶବ୍ଦସାଗର' ନାମକ ହିନ୍ଦୀ ଶବ୍ଦକୋଷ ଗ୍ରନ୍ଥର ମୋଟ ଶବ୍ଦ ସଂଖ୍ୟା ୯୩ ହଜାର ଅଟେ ଓ ଜ୍ଞାନେନ୍ଦ୍ର ମୋହନଙ୍କ ବଙ୍ଗଳା ଅଭିଧାନରେ ସଂଗୃହୀତ ଶବ୍ଦ ସଂଖ୍ୟା ୭୫୦୦୦ ଅଟେ । ଏଥିରୁ ଓଡ଼ିଆ ଭାଷାର ଶବ୍ଦବିଭବ ସହଜରେ ଅନୁମେୟ ।

## ଅଭିଜ୍ଞାନ ଗ୍ରନ୍ଥାବଳୀ

ପ୍ରକାଶିତ ଖଣ୍ଡମାନଙ୍କ ସଙ୍କଳନରେ ବ୍ୟବହୃତ ଅଭିଜ୍ଞାନ ଗ୍ରନ୍ଥମାନଙ୍କ ଛଡ଼ା ଏ ଖଣ୍ଡର ସଙ୍କଳନରେ ନିମ୍ନଲିଖିତ ଗ୍ରନ୍ଥଦ୍ୱୟ ବ୍ୟବହୃତ ହୋଇଅଛି ।

୧ । ବଙ୍ଗୀୟ ବିଜ୍ଞାନ ପରିଷଦ ସଙ୍କଳିତ ଓ କଲିକତା ଇଞ୍ଜିନୀୟରିଙ୍ଗ୍ କଲେଜ୍ କର୍ତ୍ତୃକ ପ୍ରକାଶିତ "ବୈଜ୍ଞାନିକ ପରିଭାଷା" ।

୨ । ଶ୍ରୀଯୁକ୍ତ ରାଜଶେଖର ବସୁଙ୍କ କୃତ ବଙ୍ଗଭାଷାର ସଂକ୍ଷିପ୍ତ ଅଭିଧାନ "ଚଳନ୍ତିକା" ।

ଏ ଖଣ୍ଡର ଆଦ୍ୟରେ ପ୍ରଦତ୍ତ ହୋଇଥିବା ଅଭିଜ୍ଞାନ ଗ୍ରନ୍ଥ-ତାଲିକାରେ ଏହି ଦୁଇ ପୁସ୍ତକର ନାମ ସନ୍ନିବେଶିତ ହୋଇ-ଅଛି ।

ଏ ଖଣ୍ଡରେ ସନ୍ନିବେଶିତ 'ମହିମା ଗୋସାଇଁ' ଓ 'ମହିମା ଧର୍ମ' ଶୀର୍ଷକ ସନ୍ଦର୍ଭଦ୍ୱୟ ବ୍ରହ୍ମ ଅବଧୂତ ସନ୍ନ୍ୟାସୀ ବିଶ୍ୱନାଥ ବାବାଙ୍କ ଦ୍ୱାରା ଲିଖିତ ହୋଇଅଛି । ମହାରାଜ ବିକ୍ରମଦେବ ବର୍ମା, ବାବୁ ଜଗବନ୍ଧୁ ସିଂହ, ଡାକ୍ତର ରାଧାଚରଣ ପଣ୍ଡା, ପଣ୍ଡିତ ବାଇକୋଳି ମହାପାତ୍ର ଜ୍ୟୋତିଷତତ୍ତ୍ୱବିନୋଦ, ପଣ୍ଡିତ ବଳଭଦ୍ର ଧୀର, ବାବୁ ମନମୋହନ ଘୋଷ, ବି. ଏଲ, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ, ପ୍ରୋଫେସର କପିଳବିହାରୀ ରାୟ ଆଦି ବନ୍ଧୁ ପରବର୍ତ୍ତୀ ଖଣ୍ଡମାନଙ୍କ ପାଇଁ କେତେକ ସନ୍ଦର୍ଭ ଲେଖିବାକୁ ସ୍ୱୀକାର କରିଅଛନ୍ତି ।

## ଶବ୍ଦ ସଂଗ୍ରହର ଅପୂର୍ଣ୍ଣତା ଓ ସଂକଳନରେ ଅନ୍ୟାନ୍ୟ ତ୍ରୁଟୀ

ଓଡ଼ିଆ ଭାଷାରେ ବ୍ୟବହୃତ ଶବ୍ଦ ସମୂହ ଯେ ପୂର୍ଣ୍ଣଭାବରେ ଏ ଗ୍ରନ୍ଥରେ ସଂଗୃହୀତ ହୋଇ ପାରି ନାହିଁ, ଏହା ମୁଁ ନିଜେ ସବୁଠାରୁ ବେଶୀ ହୃଦୟଙ୍ଗମ କରୁଅଛି; କାରଣ, ବହୁ ସହସ୍ର ପ୍ରାଦେଶିକ ବୈଜ୍ଞାନିକ, ପାରିଭାଷିକ, ପ୍ରାଚୀନ ବ୍ୟବହାର ସିଦ୍ଧ ଓ ପୌରାଣିକ ଶବ୍ଦ ମୋ ସଂଗ୍ରହର ଅନ୍ତର୍ଭୁକ୍ତ ହୋଇ ପାରିନାହିଁ ବୋଲି ମୁଁ ବରାବର ସ୍ୱୀକାର କରି ଆସିଅଛି । ତଥାପି ଯେଉଁ ଅକ୍ଷରମାନ ଅଦ୍ୟାବଧି ପ୍ରକାଶିତ ହୋଇନାହିଁ, ତଦ୍ଭୁକ୍ତ ଅକ୍ଷରାଦ୍ୟ ନୂତନ ଶବ୍ଦମାନ ମୋ ଦୃଷ୍ଟିରେ ପଡ଼ିଲେ ତାହା ପାଣ୍ଡୁଲିପିରେ ଯଥାସ୍ଥାନରେ ଯୋଗ କରୁ-ଅଛି । ଯେଉଁ ଅକ୍ଷରମାନଙ୍କର ମୁଦ୍ରଣ ସମାପ୍ତ ହେଲାଣି ତଦ୍ଭୁକ୍ତ ଅକ୍ଷରାଦ୍ୟ ଶବ୍ଦମାନ ଭାଷାକୋଷର ପରିକଳ୍ପିତ ପରିଶିଷ୍ଟ ଖଣ୍ଡ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ପାଣ୍ଡୁଲିପିରେ ଟିପି ରଖୁଅଛି ।

ଅନ୍ୟାନ୍ୟ ତ୍ରୁଟୀମାନଙ୍କ ବିଷୟରେ ମୋର ଏତିକି ମାତ୍ର ବକ୍ତବ୍ୟ ଯେ ମାନବୀୟ ଯେ କୌଣସି ଚେଷ୍ଟା ଭ୍ରମ ପ୍ରମାଦରୁ ଏକାବେଳକେ ମୁକ୍ତ ନୁହେ । ଯେଉଁମାନେ ଦୟା କରି ଏ ଗ୍ରନ୍ଥରେ ଲକ୍ଷିତ ଭ୍ରମ-ପ୍ରମାଦ ପ୍ରତି ମୋ ଦୃଷ୍ଟି ଆକର୍ଷଣ କରି ଅଛନ୍ତି ଓ କରିବେ ସେମାନେ ସମସ୍ତେ ମୋର କୃତଜ୍ଞତାଭାଜନ । ପ୍ରଦର୍ଶିତ ଭ୍ରମ ଯଦି ପ୍ରକୃତ ଭ୍ରମ ହୋଇଥାଏ ଓ ପ୍ରସ୍ତାବିତ ସଂଶୋଧନ ଯଦି ଯୁକ୍ତିସଙ୍ଗତ ମନେ ହୁଏ, ତେବେ ଉକ୍ତ ସଂଶୋଧନ ଗ୍ରହଣ କରି ତଦନୁଯାୟୀ ମୋର ଭ୍ରମ ନିରାକରଣ କରିବାକୁ ମୁଁ ଆଦୌ କୁଣ୍ଠିତ ହେବି ନାହିଁ ।

## ମୋ ସହକର୍ମିଗଣ

ଉତ୍କଳ ସାହିତ୍ୟ ପ୍ରେସର ଅଧ୍ୟକ୍ଷ ଓ ମୋ ଗ୍ରନ୍ଥର ପୂର୍ବତନ ପ୍ରକାଶକ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ମୃତ୍ୟୁରେ ବ୍ୟକ୍ତିଗତ ଭାବରେ ମୋର ଯେଉଁ କ୍ଷତି ହୋଇଅଛି ତାହା ପୂରଣ ହୋଇ ପାରିବ ନାହିଁ ।

ଏ ଗ୍ରନ୍ଥର ସଂଶୋଧନ ଓ ସମ୍ମାର୍ଜନରେ ଏକାଦିକ୍ରମେ ପାଞ୍ଚ ବର୍ଷକାଳ ମୋହର ବିଶିଷ୍ଟ ସହକର୍ମୀ ପୁଣ୍ୟାତ୍ମା ପଣ୍ଡିତ ରାମଚନ୍ଦ୍ର ରଥ ସାମନ୍ତ

**Well-wishers of the work.**

ଏ ଗ୍ରନ୍ଥର ମଙ୍ଗଳକାମିଗଣ ।



**M, Rahim Khan, Merchant, Cuttack**

ଶ୍ରୀଯୁକ୍ତ ମୁନସୀ ରହିମ୍ ଖାଁ, ମହାଜନ, କଟକ



**Khan Bahadur Sayed Abdul Majid B. A.**
**Cuttack.**

ଖାଁ ବାହାଦୁର ସୟଦ ଅବ୍‌ଦୁଲ୍ ମଜିଦ୍ ବି. ଏ.
କଟକ ।



**Rai Saheb Nalinikanta Ghosh, B.Sc. B. L**
**Deputy Magistrate, Puri.**

ରାୟ ସାହେବ ନଳିନୀକାନ୍ତ ଘୋଷ
ବି. ଏସ୍. ସି, ବି. ଏଲ୍
ଡେପୁଟୀ ମାଜିଷ୍ଟ୍ରେଟ୍ ପୁରୀ ।



**Babu Bamdeb Misra, B. A.**
**Dewan, Athmallik State.**

ବାବୁ ବାମଦେବ ମିଶ୍ର ବି. ଏ.
ଦେବାନ୍, ଆଠମଲ୍ଲିକ ଷ୍ଟେଟ୍



**Sj. Amarballabh Dey M. A. B. L.**
**State Judge, Bamra State.**

ଶ୍ରୀଯୁକ୍ତ ଅମରବଲ୍ଲଭ ଦେ ଏମ୍. ଏ., ବି. ଏଲ୍
ଷ୍ଟେଟ୍ ଜଜ୍, ବାମଣ୍ଡା ଷ୍ଟେଟ୍

ନିଜର ଅତୁଳନୀୟ ନିଷ୍ଠାପର ଜୀବନ ସାଙ୍ଗ କରି ଗତ ୧୯୩୬ ମସିହା ଜାନୁଆରୀ ମାସରେ ସ୍ୱର୍ଗାରୋହଣ କଲେ । ତାଙ୍କ ଅକାଳ ବିୟୋଗରେ ଭାଷାକୋଷ ଦାରୁଣ କ୍ଷତିଗ୍ରସ୍ତ ହୋଇଅଛି ।

ବିହାର ଓଡ଼ିଶା ସରକାରଙ୍କ ବୋର୍ଡ୍ ଅଫ୍ ରେଭିନ୍ୟୁର ସଦସ୍ୟ ମାନ୍ୟବର ସି. ଏଲ. ଫିଲିପ୍, ସି. ଆଇ. ଇ., ଆଇ. ସି. ଏସ୍. ଓଡ଼ିଶା ବିଭାଗର କମିସନର ଥିଲା ବେଳେ ଏ ଗ୍ରନ୍ଥର ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ପ୍ରକାଶ ସମୟରେ ମୋହର ଜଣେ ସମ୍ମାନନୀୟ ସହକର୍ମୀ ଥିଲେ । ସେ ବର୍ତ୍ତମାନ ଓଡ଼ିଶାରୁ ଦୂରରେ ଅବସ୍ଥାନ କରୁଥିଲେ ସୁଦ୍ଧା ଭାଷାକୋଷ ପ୍ରତି ତାଙ୍କର ପୂର୍ବ ମମତା ଅକ୍ଷୁଣ୍ଣ ରହିଅଛି ।

ମୋହର ସହକର୍ମିଣୀ ଶ୍ରୀମତୀ ପୀତାମ୍ବରୀ ଦେବୀ ଓ ସହକର୍ମୀ ଶ୍ରୀଯୁକ୍ତ ପଣ୍ଡିତ ନୀଳମଣି ଦାସ କାବ୍ୟତୀର୍ଥ, ବାବୁ ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର ଏମ. ଏ., ବି. ଏଲ, ପଣ୍ଡିତ ନରସିଂହ ମହାପାତ୍ର ସାମନ୍ତ, ବାବୁ ଭୁବନେଶ୍ୱର ମିଶ୍ର, ବାବୁ ଗୋଲୋକ ଚନ୍ଦ୍ର ପ୍ରଧାନ ପୂର୍ବପରି ନିଜ ନିଜର ନିର୍ଦ୍ଦିଷ୍ଟ କର୍ମରେ ଲାଗି ଅଛନ୍ତି । ଶ୍ରୀଯୁକ୍ତ ସତ୍ୟେନ୍ଦ୍ର ନାରାୟଣ ରାୟ ଏମ. ଏ., ବି. ଏଲ. ପୂର୍ବପରି ମୋତେ ବଙ୍ଗଳା ପ୍ରତିଶବ୍ଦମାନ ଯୋଗାଉ ଅଛନ୍ତି, ଫରସ୍ ବୈଶ୍ୟ ବିଦ୍ୟାଳୟ (କଟକର ହିନ୍ଦୀ ମଧ୍ୟ ଇଂରାଜୀ ବିଦ୍ୟାଳୟ)ର ହେଡ୍ ମାଷ୍ଟର ଦ୍ୱାରଭଙ୍ଗା ଜିଲ୍ଲାର ବେହେଟା ଗ୍ରାମନିବାସୀ ଶ୍ରୀଯୁକ୍ତ ଗଣେଶ୍ୱର ଝା ଓ ହେଡ୍ ପଣ୍ଡିତ ମୁଜଫରପୁର ଜିଲ୍ଲାର ଜନାର୍ଦ୍ଦନପୁର ଗ୍ରାମ ନିବାସୀ ଶ୍ରୀଯୁକ୍ତ ଚନ୍ଦ୍ରନାରାୟଣ ଠାକୁର ପୂର୍ବରୁ ମୋତେ ହିନ୍ଦୀ ପ୍ରତିଶବ୍ଦମାନ ଯୋଗାଉଥିଲେ । ଏବେ ପଣ୍ଡିତ ସୁରେଶ ଚନ୍ଦ୍ର ଝା ସେ ଦୁହିଙ୍କ ସଙ୍ଗେ ମୋତେ ଉକ୍ତ କର୍ମରେ ସାହାଯ୍ୟ କରୁଅଛନ୍ତି ।

ପ୍ରାଚୀ ସମିତିର ଓ ଇଂରାଜୀ 'ପ୍ରାଚୀ' ପତ୍ରିକା ଓ 'ବୈତରଣୀ' ପତ୍ରିକାର ଭୂତପୂର୍ବ ସମ୍ପାଦକ ନିଷ୍ଠାପର ତରୁଣ ବାଣୀସେବକ ଶ୍ରୀମାନ୍ ନିତ୍ୟାନନ୍ଦ ପଟ୍ଟନାୟକ ବି. ଏ. (ଅନର୍ସ) ବିଗତ ୨ବର୍ଷ ହେଲା ଭାଷାକୋଷ କାର୍ଯ୍ୟରେ ଯୋଗଦାନ କରିଅଛନ୍ତି । ତାଙ୍କୁ ପାଇବା ଯୋଗୁଁ ପଣ୍ଡିତ ରାମଚନ୍ଦ୍ରଙ୍କ ମୃତ୍ୟୁପରେ ଭାଷାକୋଷ କାର୍ଯ୍ୟାଳୟର ଶକ୍ତିବୃଦ୍ଧି ଘଟିଅଛି ।

ଓଡ଼ିଶାର ସୁପରିଚିତ ସୁଲେଖକଦ୍ୱୟ ଶ୍ରୀମାନ୍ ପଣ୍ଡିତ କୃଷ୍ଣଚନ୍ଦ୍ର କର ଓ ପଣ୍ଡିତ ଭଗବାନ ପତି ଭାଷାକୋଷ ଆଶ୍ରମରେ କର୍ମୀରୂପେ ଯୋଗ ଦେଇଅଛନ୍ତି ।

ବାବୁ ପଦ୍ମଚରଣ ଦାସ କଟକ ଛାଡ଼ିଲା ପରେ ଉତ୍କଳ ସାହିତ୍ୟ ପ୍ରେସର ମେନେଜର୍ ବାବୁ ନୀଳମଣି କର ଭାଷାକୋଷର ପ୍ରୁଫ୍ ସଂଶୋଧନ କର୍ମରେ ନିଯୁକ୍ତ ହୋଇଅଛନ୍ତି ।

କଟକ ଟ୍ରେନିଙ୍ଗ୍ ସ୍କୁଲର ହେଡ୍ ମାଷ୍ଟର୍ ବାବୁ କୃଷ୍ଣଚନ୍ଦ୍ର ସେନ ଗୁପ୍ତ ଏମ. ଏ., ବି. ଇଡ଼ ଭାଷାକୋଷର ପାଣ୍ଡୁଲିପି ସଂଶୋଧନ କାର୍ଯ୍ୟରେ ମୋତେ ବେଳେ ବେଳେ ସାହାଯ୍ୟ କରୁଅଛନ୍ତି ।

ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ତିରୋଧାନ ପରେ ଭାଷାକୋଷର ମୁଦ୍ରଣ କାର୍ଯ୍ୟ ଉତ୍କଳ ସାହିତ୍ୟ ପ୍ରେସରେ ଆଉ ସୁରୁଖୁରୁରେ ଚଳିବ ନାହିଁ ବୋଲି ମୋ ମନରେ ଗୁରୁତର ଆଶଙ୍କା ଜାତ ହୋଇଥିଲା, କିନ୍ତୁ ସ୍ୱର୍ଗତ ଅଧ୍ୟକ୍ଷଙ୍କ ଅଗ୍ରଜ 'ଉତ୍କଳ ସାହିତ୍ୟ' ପତ୍ରିକାର ବର୍ତ୍ତମାନ ସମ୍ପାଦକ ଶ୍ରୀମାନ୍ ସଦାନନ୍ଦ କର ମୋ ମନରୁ ସେ ଆଶଙ୍କା ସମୂଳେ ଦୂରୀଭୂତ କରିଅଛନ୍ତି । ମନପ୍ରାଣ ନିୟୋଗ କରି ଯେଉଁ ନିଷ୍ଠା ସହିତ ସେ ଭାଷାକୋଷ ମୁଦ୍ରଣ କାର୍ଯ୍ୟ କରାଉଅଛନ୍ତି, ତାହା ଅନନ୍ୟସାଧାରଣ ଓ ତଦ୍ଦ୍ୱାରା ଉତ୍କଳ ସାହିତ୍ୟ ପ୍ରେସର ପୂର୍ବ ସୁନାମ ଓ ପୂର୍ବ ଟେକ ଅକ୍ଷୁଣ୍ଣ ରହିଅଛି ।

ବମ୍ବାଇ ଜି. ଆଇ. ପି. ରେଲୱେର ଆସିଷ୍ଟାଣ୍ଟ ଟ୍ରାଫିକ୍ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଲ ବି. ଏସସି., ଆଇ. ଏସ. ଆର. ଏସ., ଡାକ୍ତର ରାଧାଚରଣ ପଣ୍ଡା ଏଲ. ଏମ୍. ପି, ଶ୍ରୀକ୍ଷେତ୍ରବାସିନୀ ଓଡ଼ିଆ ନାଟ୍ୟକର୍ତ୍ତ୍ରୀ ଶ୍ରୀମତୀ ଅପର୍ଣ୍ଣା ଦେବୀ, ଅଠମଲ୍ଲିକ ରାଜ୍ୟର ଦେୱାନ୍ ବାବୁ ବାମଦେବ ମିଶ୍ର ବି. ଏ., ବାମଣ୍ଡା ରାଜ୍ୟର ଷ୍ଟେଟ୍ ଜଜ୍ ଶ୍ରୀଯୁକ୍ତ ଅମରେନ୍ଦ୍ର ବଲ୍ଲଭ ଦେ ଏମ. ଏ., ବି. ଏଲ. ସମ୍ବଲପୁରର ସରକାରୀ ଓକିଲ ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ପୁରୋହିତ, ଭାଷାକୋଷର ପ୍ରଥମ ଖଣ୍ଡର ପ୍ରକାଶଠାରୁ ପ୍ରାଦେଶିକ ଶବ୍ଦଚୟର ନିଷ୍ଠାପର ସଂଗ୍ରାହକ, ପାରଳାଖେମୁଣ୍ଡି ନିବାସୀ, ବଣାଇଗଡ଼ର ଶିକ୍ଷକ 'ହିନ୍ଦୁଭାଷାପ୍ରବୀଣ' ଲେଖକ ବାବୁ ଜଗନ୍ନାଥ ଦାସ, ବାଙ୍କୀ ନିବାସୀ ଉତ୍କଳର ପ୍ରସିଦ୍ଧ ନାଟ୍ୟକାର ଓ ସଙ୍ଗୀତାଚାର୍ଯ୍ୟ ବାବୁ କାଳୀଚରଣ ପଟ୍ଟନାୟକ କବିଚନ୍ଦ୍ର, ଖଲ୍ଲିକୋଟ ନିବାସୀ ଜ୍ୟୋତିସ୍ତତ୍ତ୍ୱବିନୋଦ ପଣ୍ଡିତ ଶ୍ରୀଯୁକ୍ତ ବାଇକୋଳି ମହାପାତ୍ର, ଖଡ଼ିଆଳ ରାଜ୍ୟର ନରସିଂହବଳ ଟିକାୟତ ଶ୍ରୀ ଲାଲ୍ ଶିବନାରାୟଣ ସିଂହ ଦେଓ, କଳାହାଣ୍ଡି ଅନ୍ତର୍ଗତ ମଦନପୁର ରାମପୁରର ରାଜା ଶ୍ରୀ ଦୁର୍ଗାମାଧବ ପ୍ରସାଦ ସିଂହ ଦେବ, ସୁନ୍ଦର ବାବୁ ଜଗବନ୍ଧୁ ସିଂହ ଓ ଆଠଗଡ଼ବାସୀ ପଣ୍ଡିତ ଶ୍ରୀଯୁକ୍ତ ଦୀନବନ୍ଧୁ ରଥ ମୋତେ ଶତ ଶତ ପ୍ରାଦେଶିକ, ପାରିଭାଷିକ ଓ ସଂଗୃହୀତ ଶବ୍ଦ ଯୋଗାଇ ଆସୁଅଛନ୍ତି । କେବଳ ଏତିକି ନୁହେଁ, ଏମାନଙ୍କ ମଧ୍ୟରୁ କେତେଜଣ ଭାଷାକୋଷ ନିମନ୍ତେ ଗ୍ରାହକ ସଂଗ୍ରହ ଓ ଭାଷାକୋଷର ମୁଦ୍ରଣ ଓ ପ୍ରକାଶ କଲ୍ପେ ଦେଶର ବଦାନ୍ୟମଣ୍ଡଳୀଙ୍କ-ଠାରେ ଅର୍ଥ କରିବାରେ ଲାଗିଅଛନ୍ତି ।

## ଭାଷାକୋଷର ସମ୍ମାନନୀୟ ପୃଷ୍ଠପୋଷକ ମଣ୍ଡଳୀ

ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର୍ ଉତ୍କଳବନ୍ଧୁ ମାନ୍ୟବର ମିଷ୍ଟର ଜେ. ଏ. ହବାକ୍, ଏମ. ଏ., ସି. ଏସ. ଆଇ., ଆଇ. ସି. ଏସଙ୍କ କରୁଣାରୁ ଭାଷାକୋଷ ସଦାଶୟ ସରକାରଙ୍କ ବଦାନ୍ୟତା ଲାଭ କରିଥିଲା । ସେ ମହାନୁଭବ ଓଡ଼ିଶା ବିଭାଗର କମିସନର୍ ଥିଲା ସମୟରେ ଭାଷାକୋଷର ପାଣ୍ଡୁଲିପି ପରିଦର୍ଶନ କରି ଭାଷାକୋଷ ପ୍ରକାଶ ନିମନ୍ତେ ମୁକ୍ତହସ୍ତରେ ଟଙ୍କା ମଞ୍ଜୁର କରିବା ନିମନ୍ତେ ସରକାରଙ୍କଠାରେ ଦୃଢ଼ଭାବେ ସୁପାରିସ୍ କରିଥିଲେ । ତାଙ୍କ ଅନୁମତି ସହକାରେ ଭାଷାକୋଷର ପ୍ରଥମ ଖଣ୍ଡ ତାଙ୍କ ନାମରେ ଉତ୍ସର୍ଗୀକୃତ ହୋଇଅଛି । ତାଙ୍କର ସୁପାରିସ୍‌ରେ ଓଡ଼ିଶା ଗଡ଼ଜାତମାନଙ୍କର ପଲିଟିକାଲ୍ ଏଜେଣ୍ଟ ଓ କମିଶନର୍ ଏବଂ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଏଜେନ୍‌ସିର ମହାମାନ୍ୟ ଗଭର୍ଣ୍ଣର ଜେନେରଲ୍‌ଙ୍କ ଏଜେଣ୍ଟ ମହୋଦୟମାନଙ୍କ କୃପାଦୃଷ୍ଟି ଭାଷାକୋଷ ପ୍ରତି ଆକର୍ଷିତ ହୋଇଥିଲା । ଭାଷାକୋଷ ପ୍ରତି ସେ ସର୍ବଦା ଜନକୋଚିତ ବାତ୍ସଲ୍ୟ ପୋଷଣ କରି ଆସିଅଛନ୍ତି ।

ସାହିତ୍ୟ କଳାର ପୋଷକତା ଓ ସମୃଦ୍ଧିର ଦାତୃତ୍ୱ ହେତୁରୁ ଯାହାଙ୍କ ନାମ ଆଜି ଉତ୍କଳ ଓ ଅନ୍ଧ୍ରଦେଶର ଘରେ ଘରେ ସୁପରିଚିତ, ସେହି ଜୟପୁରାଧୀଶ୍ୱର ସାହିତ୍ୟସମ୍ରାଟ୍, ଉତ୍କଳ ବିକ୍ରମାଦିତ୍ୟ, ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା ଡି. ଲିଟ୍, ପାଣ୍ଡୁଲିପି ଲେଖା ଆରମ୍ଭ ହେଲା ଦିନୁଁ ଏ ଗ୍ରନ୍ଥ ସହିତ ଘନିଷ୍ଠଭାବରେ ସଂପୃକ୍ତ। ବିହାର ଓଡ଼ିଶା ସରକାରଙ୍କଦ୍ୱାରା ନିଯୁକ୍ତ ଭର୍ଣ୍ଣାକ୍ୟୁଲର୍ ଡେଭଲପ୍-ମେଣ୍ଟ୍ କମିଟି ଆଗରେ ଓଡ଼ିଆ ଭାଷାର ଖଣ୍ଡେ ସର୍ବାଙ୍ଗସୁନ୍ଦର ଅଭିଧାନ ପ୍ରଣୟନ ପାଇଁ ବ୍ୟବସ୍ଥା ହେବାର ପ୍ରସ୍ତାବ ଅଧ୍ୟାପକ ବିଜୟଚନ୍ଦ୍ର ମଜୁମଦାରଙ୍କ ସଙ୍ଗେ ମହାରାଜ ପ୍ରଥମେ ଉପସ୍ଥାପିତ କରିଥିଲେ। ସେହିଦିନୁ ସେ ମୋତେ ଶତ ଶତ ପ୍ରାଦେଶିକ ଶବ୍ଦ ଯୋଗାଇ ଆସିଅଛନ୍ତି। ଭାଷାକୋଷର ଏହି ଖଣ୍ଡର ମୁଦ୍ରଣ ନିମନ୍ତେ ସେ ଗତ ବର୍ଷ ମୋ ହସ୍ତରେ ୧୦ ହଜାର ସମର୍ପଣ କରିବାରୁ ଏ ଖଣ୍ଡର ମୁଦ୍ରଣ ଆରମ୍ଭ କରିବା ମୋ ପକ୍ଷରେ ସମ୍ଭବପର ହେଲା। ଭାଷାକୋଷ ପାଇଁ ତାଙ୍କ ନିକଟରୁ ଯେତେ ଯେତେ ସହାୟତା ମିଳିଅଛି ତାହା ପୂର୍ବଖଣ୍ଡମାନଙ୍କର ଅବତରଣିକାରେ ଯଥାସ୍ଥାନରେ କୃତଜ୍ଞତା ସହକାରେ ସ୍ୱୀକୃତ ହୋଇଅଛି। ଚତୁର୍ଥ ଖଣ୍ଡ ତାଙ୍କର ନାମରେ ଉତ୍ସୃଷ୍ଟ ହୋଇଅଛି ଓ ତାଙ୍କୁ ଏହି ଖଣ୍ଡର ପୃଷ୍ଠପୋଷକ ବୋଲି ଘୋଷଣା କରିବାକୁ ସେ ମୋତେ ଦୟା କରି ଅନୁମତି ପ୍ରଦାନ କରିଅଛନ୍ତି। ରାଜନୀତି ଓ ସାହିତ୍ୟ କ୍ଷେତ୍ରରେ ମହାରାଜାଙ୍କ ସଙ୍ଗେ ଗତ ୩୩ ବର୍ଷ ହେଲା ଅନ୍ତରଙ୍ଗ ବନ୍ଧୁତା ସୂତ୍ରରେ ଆବଦ୍ଧ ହେବାର ସୌଭାଗ୍ୟ ପାଇ ମୋ ଜୀବନ ଧନ୍ୟ ହୋଇଅଛି।

ଗତ ୩|୨|୩୫ ତାରିଖ ଦିନ ମହାରାଜ ନିଜର ଦୌହିତ୍ର ମହାରାଜକୁମାର ଶ୍ରୀ ରାମକୃଷ୍ଣ ଦେବଙ୍କୁ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କଲେ ଓ ମାନ୍ଦ୍ରାଜ ଗଭର୍ଣ୍ଣରଙ୍କ ଏଜେଣ୍ଟ୍ ମହୋଦୟଙ୍କ ଉପସ୍ଥିତିରେ ସଂପ୍ରଦାନ ଓ ଗ୍ରହଣ ବିଧି ଓ ଦତ୍ତହୋମ ଉତ୍ସବ ସମାହିତ ହୋଇ ମହାରାଜକୁମାରଙ୍କ ନାମରେ ପୋଷ୍ୟପୁତ୍ର ଗ୍ରହଣ-ପତ୍ର ଯଥାବିଧି ରେଜେଷ୍ଟ୍ରି ହେଲା। ଏହି ଶୁଭୋତ୍ସବର ସ୍ମାରକ ରୂପେ ଖୋଦ୍ ମହାରାଜକୁମାରଙ୍କ ନିଜ ଭଣ୍ଡାରରୁ ଏ ଗ୍ରନ୍ଥର ଭଣ୍ଡାରକୁ ପୁଣି ଟ ୨୦୦୦୯ ମିଳିଅଛି। ମହାରାଜଙ୍କ ଅନୁମତି ସହକାରେ ଏ ଖଣ୍ଡରେ ମହାରାଜକୁମାରଙ୍କ ପ୍ରତିକୃତି ସନ୍ନିବେଶିତ ହୋଇଅଛି।

ଉତ୍କଳର ଭବିଷ୍ୟତ୍ ବଂଶଧରଗଣ ନବୀନ ଓଡ଼ିଶା ପ୍ରଦେଶର ସୂତ୍ରଧାର ବୋଲି ଯାହାଙ୍କର ପୁଣ୍ୟ ନାମ ସ୍ମରଣ କରୁଥିବେ ଏବଂ ଯାହାଙ୍କ ଅକ୍ଳାନ୍ତ ଶ୍ରମ ଓ ମହାତ୍ୟାଗ ଫଳରେ ଜୟପୁର ଓ ପାରଳା ଭୂଖଣ୍ଡ ନୂତନ ପ୍ରଦେଶର ଅନ୍ତର୍ଭୁକ୍ତ ହେଲା, ସେହି ପୁଣ୍ୟଶ୍ଳୋକ ପାରଳାଧୀଶ୍ୱର କାପ୍ଟେନ୍ ମହାରାଜ ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଏମ୍. ଏଲ୍. ସି, ଗତ ୧୨|୧୧|୩୫ ତାରିଖରେ ଭାଷାକୋଷ ଆଶ୍ରମରେ ପଦାର୍ପଣ କରି-ଥିଲେ। ମହାରାଜ ପଞ୍ଚମ ଖଣ୍ଡର ମୁଦ୍ରଣ ସମାପ୍ତି ନିମନ୍ତେ ୫ ହଜାର ଟଙ୍କା ଦାନ କରିଅଛନ୍ତି। ଜୟପୁର ମହାରାଜଙ୍କ ବଦାନ୍ୟତା ବଳରେ ଆରବ୍ଧ ଏ ଖଣ୍ଡର ମୁଦ୍ରଣ ଅର୍ଦ୍ଧ ପାରଳାର ମହାରାଜାଙ୍କ ବଦାନ୍ୟତାରେ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେଲା; ତେଣୁ କୃତଜ୍ଞତାର କ୍ଷୀଣ ନିଦର୍ଶନରୂପେ ଭାଷାକୋଷର ଏହି ପଞ୍ଚମଖଣ୍ଡ ତାଙ୍କ ଅନୁମତି ସହକାରେ ମହାରାଜଙ୍କ ମହନୀୟ ନାମରେ ଉତ୍ସୃଷ୍ଟ ହେଲା।

ପାଟଣା ହାଇକୋର୍ଟର ପ୍ରଧାନ ବିଚାରପତି ମାନ୍ୟବର ସର କୋର୍ଟନୀ ଟେରେଲ୍, ଏ ଗ୍ରନ୍ଥର ପ୍ରଥମ ଦୁଇ ଖଣ୍ଡ ପ୍ରକାଶ ହେଲା ଦିନୁ ଏ ଗ୍ରନ୍ଥ ପ୍ରତି ଅସାଧାରଣ ମମତା ପ୍ରଦର୍ଶନ କରି ଆସି ଅଛନ୍ତି। ସେ ମହାନୁଭବ ଗତ ୯|୧|୩୫ ତାରିଖ ଦିନ ଭାଷାକୋଷ ଆଶ୍ରମରେ ଦ୍ୱିତୀୟବାର ଓ ଗତ ୧୨|୧|୩୬ ତାରିଖ ଦିନ ତୃତୀୟ ବାର ପଦାର୍ପଣ କରି ଗ୍ରନ୍ଥକାରଙ୍କୁ ସମୁତ୍ସାହିତ କରିଅଛନ୍ତି। ସେ ମହାନୁଭବଙ୍କୁ ଏ ଗ୍ରନ୍ଥର ଜଣେକ ସମ୍ମାନନୀୟ ପୋଷକରୂପେ ବରଣ କରି ତାଙ୍କର ପ୍ରତିକୃତି ୫ମ ଖଣ୍ଡରେ ସନ୍ନିବେଶିତ କରିବାକୁ ସେ ମୋତେ ଅନୁମତି ପ୍ରଦାନ କରିଥିବାରୁ ମୁଁ ତାଙ୍କ ପାଖରେ କୃତଜ୍ଞତା ପାଶରେ ଆବଦ୍ଧ।

ଇଷ୍ଟର୍ଣ୍ଣ୍ ଷ୍ଟେଟ୍‌ସ୍ ଏଜେନ୍ସିର ମହାମାନ୍ୟ ଗଭର୍ଣ୍ଣର୍ ଜେନେରଲଙ୍କ ଭୂତପୂର୍ବ ଏଜେଣ୍ଟ ମିଷ୍ଟର ଇ. ସି. ଗିବସନ୍, ସି. ଆଇ. ଇ, ଆଇ. ସି. ଏସ୍., ବର୍ତ୍ତମାନ ସୁଦୂର ଗୋୟାଲିୟରରେ ରେସିଡେଣ୍ଟରୂପେ ଅବସ୍ଥିତ ରହି ସୁଦ୍ଧା ଏ ଗ୍ରନ୍ଥ ପ୍ରତି ପୂର୍ବ ମମତା ଅକ୍ଷୁଣ୍ଣ ରଖିଅଛନ୍ତି।

ଇଷ୍ଟର୍ଣ୍ଣ୍ ଷ୍ଟେଟ୍‌ସ୍ ଏଜେନ୍ସି ନିମନ୍ତେ ମହାମାନ୍ୟ ଗଭର୍ଣ୍ଣର୍ ଜେନେରଲଙ୍କ ବର୍ତ୍ତମାନ ଏଜେଣ୍ଟ୍ ଲେଫଟେନେଣ୍ଟ୍ କର୍ଣ୍ଣେଲ ଏ. ଏସ୍. ମୀକ୍, ସି. ଏମ୍. ଜି, ଭାଷାକୋଷକୁ ଓ ଭାଷାକୋଷକାରଙ୍କୁ ସର୍ବଦା କୃପାଦୃଷ୍ଟିରେ ନିରୀକ୍ଷଣ କରୁଅଛନ୍ତି ଓ ଭାଷାକୋଷ ପ୍ରତି ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଅଧୀଶ୍ୱରମାନଙ୍କର କୃପାଦୃଷ୍ଟି ଆକର୍ଷଣ କରି ସେ ମହୋଦୟ ମୋର ଅଶେଷ କୃତଜ୍ଞତାର ଆଧାର ହୋଇଅଛନ୍ତି।

ବିହାର ଓଡ଼ିଶା ପ୍ରଦେଶର ଭୂତପୂର୍ବ ଗଭର୍ଣ୍ଣର୍ ମାନ୍ୟବର ସର୍ ଏଚ୍. ଏଲ୍. ଷ୍ଟିଫେନ୍‌ସନ୍ ଜି. ସି. ଆଇ.ଇ., କେ. ସି.ଏସ୍. ଆଇ., କେ. ସି. ଆଇ. ଇ., ଆଇ. ସି. ଏସ୍. ମହୋଦୟ ଭାଷାକୋଷ ପ୍ରଥମ ଖଣ୍ଡର ପୃଷ୍ଠପୋଷକ ଥିଲେ ଓ ତାଙ୍କ ଅମଳରେ ଗଭର୍ଣ୍ଣମେଣ୍ଟଙ୍କ ଭଣ୍ଡାରରୁ ଭାଷାକୋଷ ପାଇଁ ୧୯୨୦୦ ଟଙ୍କା ସାହାଯ୍ୟ ମଞ୍ଜୁର ହୋଇ-ଥିଲା। ସେ ମହୋଦୟ ଆଜି ଆମ୍ଭମାନଙ୍କଠାରୁ ଦୂରରେ ଥିଲେ ସୁଦ୍ଧା ଏ ଗ୍ରନ୍ଥର ନିର୍ବିଘ୍ନ ପରିସମାପ୍ତି ପାଇଁ ତାଙ୍କର ସଦିଚ୍ଛା ସର୍ବଦା ପୋଷଣ କରୁ ଅଛନ୍ତି।

ମାନ୍ୟବର ସର୍ ଜେ. ଡି. ସିଫ୍ଟନ୍, କେ. ସି. ଏସ୍. ଆଇ., କେ. ସି. ଆଇ. ଇ., ଆଇ. ସି. ଏସ୍. ବିହାର ଓଡ଼ିଶା ସରକାରଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲ୍‌ର ସଦସ୍ୟ ରୂପେ ଓ ବିହାର ଓଡ଼ିଶା ପ୍ରଦେଶର ଗଭର୍ଣ୍ଣର ରୂପେ ଏ ଗ୍ରନ୍ଥ ପାଇଁ ସରକାରଙ୍କ କୃପାଦୃଷ୍ଟି ଆକର୍ଷଣ କରାଇଥିଲେ ଓ ସେ ମହୋଦୟଙ୍କ ଗ୍ରନ୍ଥର ଦ୍ୱିତୀୟ ଖଣ୍ଡର ପୃଷ୍ଠପୋଷକ କରା ଯାଇଥିଲା। ସେ ମହୋଦୟ ଗ୍ରନ୍ଥକାର ପ୍ରତି ତାଙ୍କର ଚିରନ୍ତନ କରୁଣା କେବେ ହେଲେ ଊଣା କରି ନାହାନ୍ତି ଓ ସମ୍ପାଦକ ଯେତେବେଳେ ଯେଉଁ ଅଳି ନେଇ ତାଙ୍କ ପାଖରେ ଉପସ୍ଥିତ ହୋଇଅଛି ସେତେବେଳେ ସେ ତା ଅଳିକୁ ଧୈର୍ଯ୍ୟ ସହକାରେ ଶୁଣି ଅଛନ୍ତି। ସେ ମହୋଦୟ ଗଭର୍ଣ୍ଣର୍ ଥିବା କାଳରେ ଗ୍ରନ୍ଥକାର କାଇସର୍-ଇ-ହିନ୍ଦ୍ ରୌପ୍ୟପଦକ ପ୍ରାପ୍ତ ହୋଇଅଛି। ଏଣିକି ସେ ମହୋଦୟ ପ୍ରଦେଶାନ୍ତରର ଗଭର୍ଣ୍ଣର ହେଲେ ସୁଦ୍ଧା ଏ

## The compiler and his assistants
## ସଂଗ୍ରାହକ ଓ ସହକର୍ମୀଗଣ



The Compiler, G. C. Praharaj
ସଂଗ୍ରାହକ, ଗୋପାଳଚନ୍ଦ୍ର ପ୍ରହରାଜ



Srimati Pitambari Debi
ଶ୍ରୀମତୀ ପୀତାମ୍ବରୀ ଦେବୀ ।



Pundit Kulamani Das Kabyatirtha.
ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ।



Babu Mahananda Kar
Publisher of this volume,
Editor, the Utkal Sahitya.
ଏ ଖଣ୍ଡର ପ୍ରକାଶକ ଶ୍ରୀ ମହାନନ୍ଦ କର,
ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ



Sreejukta S. N. Ray, M. A., B. L.
Advocate, Cuttack.
ଶ୍ରୀଯୁକ୍ତ ସତ୍ତାନ୍ଦ ନାରାୟଣ ରାୟ ଏମ୍. ଏ., ବି. ଏଲ୍.
ଆଡଭୋକେଟ୍, କଟକ ।

ଗ୍ରନ୍ଥ ପ୍ରତି ତାଙ୍କର ପୂର୍ବ ମମତା ଯେ ଅକ୍ଷୁଣ୍ଣ ରଖିଥିବେ, ଏ ଆଶା ଗ୍ରନ୍ଥକାର ପକ୍ଷେ ନିତାନ୍ତ ସ୍ୱାଭାବିକ ।

ବିଗତସ୍ୱର୍ଗ ଚିରକୀର୍ତ୍ତି ମହାରାଜ ମୟୂରଭଞ୍ଜାଧୀଶ୍ୱର ସର୍ ପ୍ରତାପଚନ୍ଦ୍ର ଭଞ୍ଜ ଦେବ, କେ. ସି. ଆଇ. ଇ ଙ୍କ ପ୍ରାଥମିକ ଦାନ ଅଠରହଜାର ଟଙ୍କା ଓ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଦାନକୁ ସମ୍ବଳ କରି ଅକିଞ୍ଚନ ଗ୍ରନ୍ଥକାର ଏ ଗ୍ରନ୍ଥର ପ୍ରଥମ ଓ ଦ୍ୱିତୀୟ ଖଣ୍ଡର ମୁଦ୍ରଣରେ ଅଗ୍ରସର ହୋଇଥିଲା । ତାଙ୍କର ପୁଣ୍ୟଶ୍ଳୋକ ଅଗ୍ରଜ 'ପୂର୍ଣ୍ଣଚନ୍ଦ୍ର'ଙ୍କ ନାମକୁ ଶିରୋଦେଶରେ ଧାରଣ କରି ଭାଷାକୋଷ ଦୁସ୍ତର ପାଞ୍ଚସମୁଦ୍ର ପାରି ହୋଇଅଛି । ଆଉ ଦୁଇ ସମୁଦ୍ର ଲଙ୍ଘି ସାତ ସମୁଦ୍ର ପାରି ହେବା ନିମନ୍ତେ—ଏ ଗ୍ରନ୍ଥର ପରିପୂର୍ତ୍ତି ନିମନ୍ତେ—ସେ ମହାମନା ତାଙ୍କର ଅକ୍ଷୟ ରାଜଭଣ୍ଡାରକୁ ଉନ୍ମୁକ୍ତ ରଖିବେ, ଏହା ଆଶା କରିବା ମୋ ପକ୍ଷରେ ସ୍ୱାଭାବିକ ।

ବୌଦ୍ଧ ରାଜ୍ୟାଧୀଶ ରାଜା ନାରାୟଣ ପ୍ରସାଦ ଦେବ ମହୋଦୟ ଏ ଗ୍ରନ୍ଥର ତୃତୀୟ ଖଣ୍ଡର ପୃଷ୍ଠପୋଷକ ଥିଲେ ଓ ତୃତୀୟ ଖଣ୍ଡ ତାଙ୍କର ନାମରେ ଉତ୍ସୃଷ୍ଟ । ସେ ମଧ୍ୟ ଏ ଗ୍ରନ୍ଥର ନିର୍ବିଘ୍ନ ପରିସମାପ୍ତି କଳ୍ପେ ନିଜର ମମତାମୟ ଉଦ୍‌ବେଗ ଅକ୍ଷୁଣ୍ଣ ରଖିଅଛନ୍ତି ।

ଅଷ୍ଟମଲ୍ଲିକେଶ ରାଜା କିଶୋରଚନ୍ଦ୍ର ଦେଓ ଏ ଗ୍ରନ୍ଥ ପ୍ରତି ତାଙ୍କର ଚିରନ୍ତନ କରୁଣା ପୂର୍ବବତ୍ ବଜାୟ ରଖିଅଛନ୍ତି । ଏହି ପଞ୍ଚମ ଖଣ୍ଡର ମୁଦ୍ରଣ ସମୟରେ ସେ ମହୋଦୟ ପାଞ୍ଚଶତ ଟଙ୍କା ଦାନ କରିଅଛନ୍ତି । ଗତ ୨୬।୧୦।୩୬ ତାରିଖ ଦିନ ସେ ଦୟା କରି ଭାଷାକୋଷ ଆଶ୍ରମରେ ପାଦ ପକାଇ ଯାଇ ଅଛନ୍ତି ।

ବିହାର ଓଡ଼ିଶା ପ୍ରଦେଶର ଶିକ୍ଷାବିଭାଗର ଡାଇରେକ୍ଟର ମହାମତି ଶ୍ରୀଯୁକ୍ତ ଜି. ଇ. ଫକସ୍, ଏମ୍. ଏ, ସି. ଆଇ. ଇ, ଓ. ବି. ଇ, ଇ. ଡି, ଆଇ. ଇ. ଏସ୍ ୧୯୨୯ ମସିହାରେ ଭାଷାକୋଷର ପାଣ୍ଡୁଲିପି ସନ୍ଦର୍ଶନ କରି ଗ୍ରନ୍ଥକାର ପ୍ରତି ଅନନ୍ୟସାଧାରଣ ସହାନୁଭୂତି ଜ୍ଞାପନ କରିଥିଲେ । ସେହିଦିନୁ ଅର୍ଥାତ୍ ବିଗତ ସାତ ବର୍ଷ ହେଲା, ଭାଷାକୋଷର ମୁଦ୍ରଣ ଓ ପ୍ରକାଶ ପାଇଁ ସେ ଜନକୋଚିତ ବାତ୍ସଲ୍ୟ ଓ ମମତା ପ୍ରଦର୍ଶନ କରି ଆସିଅଛନ୍ତି । ତାଙ୍କର ସୁପ୍ରଶସ୍ତ ହୃଦୟରେ ଭାଷାକୋଷ ନିମନ୍ତେ ସେ ଯେ ଗୋଟିଏ ବିଶିଷ୍ଟ ସ୍ନେହାର୍ଦ୍ର ସ୍ଥାନ ମାର୍କା ମାରି ରଖିଅଛନ୍ତି, ଏଥିରେ ମୋର ତିଳାର୍ଦ୍ଧ ମାତ୍ର ସନ୍ଦେହ ନାହିଁ । ତାଙ୍କଠାରୁ ଏଗ୍ରନ୍ଥର ସମୁଚିତ ପ୍ରଶଂସାବାଦ ଶୁଣି ଓଡ଼ିଶାର ବିଭାଗୀୟ କମିଶନର୍ ଭାଷାକୋଷ ନିମନ୍ତେ ସରକାରଙ୍କ ଅନୁଗ୍ରହ ଆକର୍ଷଣ କରିବାରେ କ୍ଷମ ହୋଇଥିଲେ ଓ ତାଙ୍କ ଆନ୍ତରିକ ସହଯୋଗ ଫଳରେ ଭାଷାକୋଷ ପାଇଁ ପାଟଣା ବିଶ୍ୱବିଦ୍ୟାଳୟରୁ ପାଞ୍ଚହଜାର ଟଙ୍କା ମିଳିଲା ଓ ଆଉ ସାହାଯ୍ୟ ମିଳିବ । ଏଣିକି ଆମ୍ଭମାନଙ୍କଠାରୁ ସେ ଦୂରରେ ରହିଲେ ସୁଦ୍ଧା ତାଙ୍କର ସଦିଚ୍ଛା ଓ ଆଶୀର୍ବାଦବଳରୁ ଭାଷାକୋଷ କସ୍ମିନ୍ କାଳେ ବଞ୍ଚିତ ହେବ ନାହିଁ, ଏହା ମୋର ଧ୍ରୁବ ବିଶ୍ୱାସ ।

ଓଡ଼ିଶା ବିଭାଗର ସୁଯୋଗ୍ୟ କମିସନର୍ ମନୀଷୀ ଶ୍ରୀଯୁକ୍ତ ଇ. ଏସ୍. ହର୍ଣ୍ଣେଲ୍, ଆଇ. ସି. ଏସ୍, ଭାଷାକୋଷ ପ୍ରତି ଯଥେଷ୍ଟ ସ୍ନେହ ଓ ମମତା ରଖି ଅଛନ୍ତି । ଏଖଣ୍ଡର ଇଂରାଜି ଅବତରଣିକାରେ ତାଙ୍କର ଥରେ ଆଖି ପଡ଼ିଅଛି ।

ନୂତନ ଓଡ଼ିଶା ପ୍ରଦେଶର ଶିକ୍ଷାବିଭାଗର ଡାଇରେକ୍ଟର ଶ୍ରୀଯୁକ୍ତ ଏଚ୍. ଡିପ୍ପି, ଏମ୍. ଏ, ଡି. ଏସ୍. ଓ, ଆଇ. ଇ. ଏସ୍. ନିଯୁକ୍ତ ହେଲେ ଭାଷାକୋଷ ସହିତ ସୁପରିଚିତ । ସେ ୧୭।୧୧।୩୫ ତାରିଖରେ କଟକରେ ପଦାର୍ପଣ କରିବା ସମୟରେ ଭାଷାକୋଷ ଆଶ୍ରମ ପରିଦର୍ଶନ କରି ଭାଷାକୋଷର ମୁଦ୍ରଣ ଏତେଦୂର ଅଗ୍ରସର ହୋଇଥିବା ଦେଖି ଅତିଶୟ ଆନନ୍ଦିତ ହୋଇଥିଲେ ।

## ଏ ଗ୍ରନ୍ଥର ଭାବୀ ପୃଷ୍ଠପୋଷକବର୍ଗ

ଗତ ୨୭।୧୧।୩୬ ତାରିଖରେ କଲିକତାରେ ନାନା ସଦ୍‌ଗୁଣବିଭୂଷିତ ପାଟଣାରାଜ୍ୟାଧୀଶ ଯୁବକ ମହାରାଜ ଶ୍ରୀ ଶ୍ରୀ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହ ଦେଓ ମହୋଦୟଙ୍କର ସାକ୍ଷାତ୍ ପରିଚୟ ଲାଭ କରିବାର ସୌଭାଗ୍ୟ ପାଇ ମୁଁ କୃତାର୍ଥ ହୋଇଅଛି । ତାଙ୍କର ରାଜ୍ୟ ଶାସନ ପ୍ରଣାଳୀ, ଦକ୍ଷତା, ସୌଜନ୍ୟ, ଧୈର୍ଯ୍ୟ, ଦେଶପ୍ରୀତି ଓ ବହୁତୋମୁଖ ଜ୍ଞାନସମ୍ଭାର ଦେଖି ପୌରାଣିକ ଯୁଗର ରାଜର୍ଷିମାନଙ୍କ କଥା ମୋ ମନରେ ଉଦୟ ହେଲା ଓ ଆମ ଦେଶ ଏପରି ଜଣେ ଆଦର୍ଶ ନରପତିଙ୍କୁ ବକ୍ଷରେ ଧାରଣ କରିଥିବାରୁ ମୁଁ ଅତ୍ୟନ୍ତ ଗର୍ବ ଓ ଗୌରବ ଅନୁଭବ କରୁଅଛି । ଉତ୍କଳର ରାଜନ୍ୟମଣ୍ଡଳରେ ଏହି ଉଦୟମାନ ତରୁଣ ମହାରାଜ ଦିନେ ଯେ ଗୌରବାବହ ସମୁଚ୍ଚ ଆସନର ଅଧିକାରୀ ହେବେ, ଏଥିରେ ସନ୍ଦେହ ନାହିଁ ।

୧୯୨୯ ମସିହାରେ ଯାହାଙ୍କର ପ୍ରଥମ ଦାନବଳରେ ଭାଷାକୋଷ ପାଣ୍ଡୁଲିପିର ସମାର୍ଜନ କାର୍ଯ୍ୟ ଆରମ୍ଭ ହୋଇଥିଲା, ସେହି ଗୁଣଗ୍ରାହୀ କଳାହାଣ୍ଡି ନରେଶ ମହାରାଜ ବ୍ରଜମୋହନ ଦେବ, ଓଡ଼ିଆ ଭାଷାର ଓ ସାହିତ୍ୟର ପରିପାଳକ, ସାହିତ୍ୟସେବକ, ଦାନବୀର ସ୍ୱର୍ଣ୍ଣପୁରାଧୀଶ ମହାରାଜ ବୀରମିତ୍ରୋଦୟ ସିଂହଦେବ ଧର୍ମନିଧି, ଜ୍ଞାନଗୁଣାକର, କେ. ସି. ଆଇ, ଇ. ଏମ୍. ଆର୍. ଏ. ଏସ୍, ପୁରୁଷାନୁକ୍ରମେ ସାହିତ୍ୟସେବକ ନରପତିଗଣଙ୍କ ସୁଯୋଗ୍ୟ ବଂଶଧର ବାମଣ୍ଡାର ତରୁଣ ନୃପତି ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ, ବାମଣ୍ଡାର ପୂଜାସ୍ପଦ ରାଜମାତା ମହୋଦୟା, ଉତ୍କଳର ଗର୍ବ ଓ ଗୌରବାସ୍ପଦ ପ୍ରାଚୀନ ମହାରାଜବଂଶଧର ବୀର ଶ୍ରୀ ଗଜପତି ରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ, ଏ ଗ୍ରନ୍ଥର ସହାୟକ କେନ୍ଦୁଝର ରାଜ୍ୟେଶ୍ୱର ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବ, ଧୀରପ୍ରଶାନ୍ତଚେତା, ସୌଜନ୍ୟ ଓ ସଦାଳାପମଧୁର, ସାହିତ୍ୟରସିକ କଣାଇ ରାଜ୍ୟାଧିପ ଶ୍ରୀ ରାଜା ଇନ୍ଦ୍ର ଦେଓ, ଦଶପଲ୍ଲାଧୀଶ ଯୁବକ ରାଜା କିଶୋରଚନ୍ଦ୍ର ଦେଓ ଭଞ୍ଜ, ତାଳଚେରର ସାହିତ୍ୟସେବକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ, ଏ ଗ୍ରନ୍ଥ ସଙ୍ଗେ ପନ୍ଦର ବର୍ଷ ହେଲା ସୁପରିଚିତ । କନିକା ନରେଶ ରାଜା ସର୍ ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ, ନାଇଟ୍, ଓ. ବି. ଇ, ବଡ଼ାମ୍ବା ରାଜ୍ୟର ଯୁବକ ରୁଲିଙ୍ଗ୍ ଚୀଫ୍ ରାଜା ନାରାୟଣ ଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର, ପାଟଣା ବିଶ୍ୱବିଦ୍ୟାଳୟ ଓ କଲିକତା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷବର୍ଗ, ଗ୍ରନ୍ଥକାରର ଓ ସହକର୍ମିଣୀ ଶ୍ରୀମତୀ ପୀତାମ୍ବରୀଙ୍କ ସହୋଦରପ୍ରତିମ, ରାୟ ବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ପ୍ରମୁଖ ବଦାନ୍ୟ ମହୋଦୟଗଣଙ୍କ ନିକଟରେ ଭାଷାକୋଷର ଆର୍ଥିକ

ପରସ୍ଥିତ ବିଷୟ ଉପସ୍ଥାପିତ କରି ଯାଇଅଛୁ ଏବଂ ଗ୍ରନ୍ଥକାରର ଦୃଢ଼ ଆଶା ଯେ, ଏହିମାନଙ୍କ ବଦାନ୍ୟତାଦ୍ୱାରା ଭାଷାକୋଷର ଅବଶିଷ୍ଟ ଦୁଇଖଣ୍ଡର ମୁଦ୍ରଣ ଓ ପ୍ରକାଶପଥ ସୁଗମ ହେବ ।

ମୁଁ ଆଶା କରେଁ ଯେ, ଖଡ଼ିଆଳ ରାଜ୍ୟାଧୀପ ରାଜା ଆର୍ତ୍ତତ୍ରାଣ ସିଂହ ଦେଓ, ପାଲଲହଡ଼ା ନରେଶ ରାଜା ମୁନିପାଳ, ଏମାର ମଠାଧୀଶ ମହନ୍ତ ମହାରାଜ ଗଦାଧର ରାମାନୁଜ ଦାସ ଆଦି ଦାତୃମଣ୍ଡଳ ଅଚିରେ ନିଜ ନିଜ ପ୍ରତିଶ୍ରୁତି ରକ୍ଷା କରି ଭାଷାକୋଷର ସହାୟତା କରିବେ । ଏଠାରେ କୃତଜ୍ଞତା ସହକାରେ ଉଲ୍ଲେଖ କରୁଅଛୁ କି କଳାହାଣ୍ଡି ମଦନପୁର-ରାମପୁର... ମନ୍ଥଲପାଟଣାର ଜମିଦାର ସାହେବ ରାଜା ଶ୍ରୀ ଭୂମାଶଙ୍କର ପ୍ରସାଦ ସିଂହ ଏ ଖଣ୍ଡର ମୁଦ୍ରଣକର୍ମର ପରିସମାପ୍ତି ପରେ ତାଙ୍କ ପ୍ରତିଶ୍ରୁତ ସାହାଯ୍ୟ ପାଞ୍ଚଶତ ଟଙ୍କା ମଧ୍ୟରୁ ଦୁଇଶତ ଟଙ୍କା ପ୍ରେରଣ କରି ଅଛନ୍ତି । ତାଙ୍କ ଫଟୋ ବିଳମ୍ବରେ ହସ୍ତଗତ ହେବାରୁ ଏ ଖଣ୍ଡରେ ଦିଆଯାଇ ପାରିଲା ନାହିଁ ।

## ଭାଷାକୋଷର ହିତାକାଙ୍କ୍ଷି ବର୍ଗ

ଅତ୍ୟନ୍ତ ଆନନ୍ଦ ସହିତ ପ୍ରକାଶ କରୁଅଛୁ ଯେ, ଏ ଗ୍ରନ୍ଥର ହିତାକାଙ୍କ୍ଷୀ ସ୍ୱର୍ଗତ ସର୍ ସୟଦ୍ ମହମ୍ମଦ୍ ଫକ୍ରୁଦ୍ଦୀନ୍‌ଙ୍କ ପରେ ମୁଁ ଉତ୍କଳୀୟ ମୁସଲମାନ୍ କୁଳପ୍ରଦୀପ ଖାଁ ବାହାଦୁର୍ ସେଖ୍ ଅବ୍‌ଦୁଲ ମଜୀଦ୍ ବି. ଏ ମହୋଦୟଙ୍କ ସହାନୁଭୂତି ଓ ସହାୟତା ଲାଭ କରିବାକୁ ସମର୍ଥ ହୋଇଅଛୁ । ଏ ଗ୍ରନ୍ଥର ସହାୟତା କରିବାକୁ ଗତ ୧୯୨୯ ମସିହାରେ ଯେତେବେଳେ ଉତ୍କଳର ବଦାନ୍ୟ ବ୍ୟକ୍ତିମାନଙ୍କ ପାଖକୁ ମୁଦ୍ରିତ ପ୍ରାର୍ଥନାପତ୍ର ପ୍ରେରିତ ହୋଇଥିଲା, ଖାଁ ବାହାଦୁର୍ ସେତେବେଳେ ସେହି ପ୍ରାର୍ଥନାପତ୍ରରେ ସ୍ୱାକ୍ଷର କରିଥିଲେ । ସେ ବର୍ତ୍ତମାନ ତାଙ୍କ ସମ୍ପ୍ରଦାୟର ବଦାନ୍ୟ ବ୍ୟକ୍ତିମାନଙ୍କ ସଦୟ ଦୃଷ୍ଟି ଏ ଗ୍ରନ୍ଥ ପ୍ରତି ଆକର୍ଷଣ କରିବାରେ ବ୍ରତୀ ହୋଇଅଛନ୍ତି, ଏବଂ ତାଙ୍କର ସୂଚନାକ୍ରମେ କଟକର ବ୍ୟବସାୟୀ ଶ୍ରୀଯୁକ୍ତ ଏମ୍. ରହିମ୍ ଖାଁ ଭାଷାକୋଷର ଜଣେ ସହାୟକ ହୋଇଅଛନ୍ତି ଓ ଭାଷାକୋଷର ପ୍ରକାଶକଙ୍କୁ ଏକ ହଜାର ଟଙ୍କା ଦାନ କରିବାକୁ ପ୍ରତିଶ୍ରୁତ ହୋଇ ଇତିମଧ୍ୟରେ ତହିଁରୁ କିୟଦଂଶ ମଧ୍ୟ ଦାନ କରି ସାରିଅଛନ୍ତି ।

ଗତ ୧୯୩୫ ମହିହା ଅପ୍ରେଲ ମାସରେ କଳାହାଣ୍ଡି ଭବାନୀ-ପାଟଣାଠାରେ ଖଡ଼ିଆଳ ରାଜ୍ୟର ନରପତିଙ୍କ ପିତୃବ୍ୟ ଲାଲ୍ ଶ୍ରୀ ଶିବନାରାୟଣ ସିଂହ ଦେଓଙ୍କ ସହିତ ମୋର ପରିଚୟ ଲାଭର ସୌଭାଗ୍ୟ ଘଟିଥିଲା । ସେ ଅଜନ୍ମ ବାଣୀଭକ୍ତ; ସେ ଇତି-ମଧ୍ୟରେ ଭାଷାକୋଷ ନିମନ୍ତେ ଶତ ଶତ ପ୍ରାଦେଶିକ ଶବ୍ଦ ଯୋଗାଇ ଅଛନ୍ତି ଓ ଖଡ଼ିଆଳର ରାଜା ସାହେବ, ପାଲଲହଡ଼ାର ରାଜାସାହେବ ଓ ଜୟପାଟଣାର ରାଜାସାହେବଙ୍କଠାରୁ ଭାଷାକୋଷ ପ୍ରକାଶ ନିମନ୍ତେ ଟ ୨୫୦୦୧ ଦାନର ପ୍ରତିଶ୍ରୁତିପତ୍ର ସଂଗ୍ରହ କରିଅଛନ୍ତି । ଉତ୍କଳର ସଜ୍ଜନବର୍ଗଙ୍କ ଦୃଷ୍ଟିକୁ ଭାଷାକୋଷର ଆର୍ଥିକ ପରିସ୍ଥିତି ଆକର୍ଷଣ କରିବା ପାଇଁ ଲାଲ୍ ସାହେବ୍ ନାନା ଉଦ୍ୟମ କରୁଅଛନ୍ତି ।

ବହୁ ଭାଗ୍ୟରୁ ମୁଁ ଇତିମଧ୍ୟରେ ବଙ୍ଗଳା ଓ ହିନ୍ଦୀ ବିଶ୍ୱକୋଷ ସଙ୍କଳୟିତା ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ରାୟ ସାହେବ୍ ନଗେନ୍ଦ୍ରନାଥ ବସୁଙ୍କ ସାକ୍ଷାତ୍ ପରିଚୟ ଲାଭର ସୁଯୋଗ ପାଇଅଛୁ । ସେ ମହାଶୟ ଏ ଖଣ୍ଡରେ ସନ୍ନିବେଶିତ ଅଧିକାଂଶ ଫଟୋର ବ୍ଲକ୍‌ମାନ ତାଙ୍କ ନିଜ ଆର୍ଟିଷ୍ଟ (କାରିଗର)ଙ୍କଦ୍ୱାରା ପ୍ରସ୍ତୁତ କରାଇ ଦେଇଅଛନ୍ତି ଓ ଏ ଗ୍ରନ୍ଥ ପ୍ରତି କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍ ଚ୍ୟାନ୍‌ସେଲରଙ୍କ ସଦୟ ଦୃଷ୍ଟି ଆକର୍ଷଣ କରିଅଛନ୍ତି ।

ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ ଆଇ. ଇ. ଏସ୍ ଏ ଗ୍ରନ୍ଥ ପ୍ରତି ପ୍ରଥମେ ମୟୂରଭଞ୍ଜାଧୀଶ ମହାରାଜ ସର୍ ପ୍ରତାପଚନ୍ଦ୍ରଙ୍କ ସଦୟ ଦୃଷ୍ଟି ଆକର୍ଷଣ କରିଥିଲେ ।

ମୟୂରଭଞ୍ଜ ରାଜ୍ୟର ଦେବାନ୍ ସଦାଶୟ ଶ୍ରୀଯୁକ୍ତ କେ. ସି. ନିୟୋଗୀ ଏ ଗ୍ରନ୍ଥ ପ୍ରତି ସହାନୁଭୂତି ଜ୍ଞାପନ କରିଅଛନ୍ତି ।

ରେଭେନ୍ସା କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ଏମ୍. ଏ., ଆଇ. ଇ. ଏସ୍. ଏ ଗ୍ରନ୍ଥର ଜଣେ ଅକୃତ୍ରିମ ବନ୍ଧୁ ଅଟନ୍ତି ।

ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ଡେପୁଟୀ ପ୍ରେସିଡେଣ୍ଟ ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି, ଅଡ଼ଭୋକେଟ୍, ଏମ୍. ଏଲ୍. ସି. ଗତ ୮ବର୍ଷ ହେଲା ଏ ଗ୍ରନ୍ଥର ନିର୍ବିଘ୍ନ ପ୍ରକାଶ ନିମନ୍ତେ ସର୍ବଦା ଅବହିତ ସୁଦୃଷ୍ଟି ରଖିଅଛନ୍ତି ।

ପାରଲାଖେମଣ୍ଡି ରାଜ୍ୟର ଦେବାନ୍ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବି. ଏ., ଏମ୍. ବି. ଇ. ମହୋଦୟ କଟକର ଓଡ଼ିଆ ସାହିତ୍ୟପ୍ରଚାର ସଭାର ସମ୍ପାଦକରୂପେ ଏ ଗ୍ରନ୍ଥର ପାଣ୍ଡୁଲିପିର ସମ୍ମାର୍ଜନକଙ୍କୁ ମୋତେ ପ୍ରଥମେ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ ଏବଂ ଏବେ ପାରଲାଖେମଣ୍ଡି ରାଜ୍ୟର ଦେବାନ୍‌ରୂପେ ଏ ଖଣ୍ଡର ଆର୍ଥିକ ପରିସ୍ଥିତି ପ୍ରତି ମହାରାଜଙ୍କ ସଦୟ ଦୃଷ୍ଟି ଆକର୍ଷଣ କରିଅଛନ୍ତି ।

ବ୍ରହ୍ମପୁର ଇଂରାଜୀ ଦୈନିକ ପତ୍ରିକା 'ଦି ନ୍ୟୁ ଓଡ଼ିଶା'ର ଓ ଓଡ଼ିଆ ଦୈନିକ ଓ ସାପ୍ତାହିକ ପତ୍ରିକା 'ଆଶା'ର ସୁଯୋଗ୍ୟ ସମ୍ପାଦକ ନିରଳସ କର୍ମୀ ମୋର ସୋଦରପ୍ରତିମ ଶ୍ରୀମାନ୍ ଶଶିଭୂଷଣ ରଥ,

ସିଂହଭୂମିର ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ,

ସମଗ୍ର ଉତ୍କଳଭାଷୀ ଭୂଖଣ୍ଡରେ ସୁପରିଚିତନାମା ଲେଖକ ଓ ଗ୍ରନ୍ଥକାର ମୋ ବାଲ୍ୟସହଚର ଓ ସତୀର୍ଥ ଶ୍ରୀଯୁକ୍ତ ଶଶିଭୂଷଣ ରାୟ,

ଓଡ଼ିଆ ଭାଷା ଓ ସାହିତ୍ୟସେବାରେ ଯେଉଁ ମହୋଦୟ ଅନନ୍ୟ-ସୁଲଭ ନିଷ୍ଠା ପ୍ରଦର୍ଶନ କରିଅଛନ୍ତି, କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ସେହି ବିଜୟଚନ୍ଦ୍ର ମଜୁମଦାର ଏମ୍. ଏ., ବି. ଏଲ୍,

ସିଂହଭୂମି ରାଜ୍ୟ ଭୂଖଣ୍ଡର ଅଧିପତିଙ୍କ ଅନୁଜ ଓ ସାହିତ୍ୟସମ୍ରାଟ ମହାରାଜ ବିକ୍ରମଦେବଙ୍କ ଜାମାତା କୁମାର ବିଦ୍ୟାଧର ସିଂହ ଦେଓ ବି. ଏ., ବି. ଏଲ., ଏମ୍. ଆର୍., ଏ. ଏସ୍,

ଜୟପୁର ରାଜ୍ୟର ଭୂତପୂର୍ବ ଦେୱାନ୍ ମିଷ୍ଟର୍ ଓ. ପୁଲ୍ଲା ରେଡ୍ଡି, ଆଇ. ସି. ଏସ୍.,

ଅବସରପ୍ରାପ୍ତ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଦେୱାନ୍ ବାହାଦୁର୍ ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର,

ମିଷ୍ଟର୍ ବି. ଦାସ, ଏ. ଆଇ. ସି. ଆଇ, ଏମ୍. ଏଲ୍. ଏ,

କଟକର ଅଡ଼ଭୋକେଟ୍ "ସ୍ୱାମୀ" ବି. ଏନ୍. ଦାସ,

ଓଡ଼ିଶା ବିଭାଗ କମିଶନରଙ୍କ ପର୍ସନାଲ୍ ଆସିଷ୍ଟାଣ୍ଟ୍ ରାୟ ବାହାଦୁର୍ ଶ୍ରୀ ଉମାଚରଣ ଦାସ,

## Assistants.
## ସହକର୍ମୀଗଣ



Babu Krushna Chandra Misra, M. A., B. L.
ବାବୁ କୃଷ୍ଣଚନ୍ଦ୍ର ମିଶ୍ର, ଏମ୍. ଏ., ବି. ଏଲ୍.



Sriman Bichhanda Charan Patnaik, B. A. (Hons).
ଶ୍ରୀମାନ୍ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏ.



Babu Bhubaneswar Misra.
ଶ୍ରୀମାନ୍ ଭୁବନେଶ୍ୱର ମିଶ୍ର ।



Babu Golok Chandra Pradhan.
ଶ୍ରୀମାନ୍ ଗୋଲୋକଚନ୍ଦ୍ର ପ୍ରଧାନ ।



Pandit Narasingh Mahapatra Samant.
ପଣ୍ଡିତ ଶ୍ରୀ ନରସିଂହ ମହାପାତ୍ର ସାମନ୍ତ ।

କଟକର ସପ୍ରସିଦ୍ଧ ପ୍ରବୀଣ ଆଡ଼୍‌ଭୋକେଟ୍ ଶ୍ରୀଯୁକ୍ତ ବୈକୁଣ୍ଠନାଥ ଦତ୍ତ,

କେନ୍ଦୁଝର ରାଜ୍ୟର ଦେୱାନ୍ ରାୟବାହାଦୁର୍ ଶ୍ରୀଯୁକ୍ତ ଯୁଗଳକିଶୋର ତ୍ରିପାଠୀ, ଏମ୍. ଏ,

ମୋ ନାତି, କଟକର ଆଡ଼୍‌ଭୋକେଟ୍ ଓ ସରକାରୀ ଉକିଲ ଶ୍ରୀମାନ୍ ଚନ୍ଦ୍ରାମଣି ଆଚାର୍ଯ୍ୟ,

ମୋ ଜାମାତା, ପୁରୀର ଆଡ଼୍‌ଭୋକେଟ୍ ଓ ସରକାରୀ ଉକିଲ ଶ୍ରୀମାନ୍ ରାୟବାହାଦୂର୍ ଲୋକନାଥ ମିଶ୍ର,

ସମ୍ବଲପୁରର ଆଡ଼୍‌ଭୋକେଟ୍ ଓ ସରକାରୀ ଉକିଲ ଶ୍ରୀଯୁକ୍ତ ଅଚ୍ୟୁତାନନ୍ଦ ପୁରୋହିତ,

ପୁରୀର ଉକିଲ ବାବୁ ଜଗବନ୍ଧୁ ସିଂହ,

ପୁରୀ ସଦର ସବ୍‌ଡିଭିଜନାଲ୍ ଅଫିସର୍ ରାୟସାହେବ୍ ନଳମୀକାନ୍ତ ଘୋଷ ବି. ଏ,

ପୁରୀର ଡେପୁଟି କଲେକ୍ଟର୍ ବାବୁ ସତୀଶଚନ୍ଦ୍ର ମିତ୍ର ଏମ୍. ଏ. ବି. ଏଲ୍,

ବାଙ୍କୀର ଡେପୁଟିକଲେକ୍ଟର ବାବୁ ନଗେନ୍ଦ୍ରନାଥ ଦତ୍ତ ଏମ୍. ଏ, ବି. ଏଲ,

ବାଙ୍କୀନିବାସୀ ସଙ୍ଗୀତପ୍ରାଣ କବିଚନ୍ଦ୍ର ଶ୍ରୀମାନ୍ କାଳୀଚରଣ ପଟ୍ଟନାୟକ,

ପାଟଣା ରାଜ୍ୟର ସଦର ସବ୍‌ଡିଭିଜନ୍ ଅଫିସର୍ ଶ୍ରୀମାନ୍ ବାବୁ ଦୁର୍ଗାଚରଣ ରାୟ,

ନିରଳସ କର୍ମବୀର ରାୟସାହେବ ଭଗବାନଚରଣ ପଟ୍ଟନାୟକ,

ଅରୁଣୋଦୟ ପ୍ରେସର ମାନେଜର୍ ବାବୁ ନିତ୍ୟାନନ୍ଦ ସାହୁ,

ମୋର କର୍ମଠ ନୂତନ ଯୁବକ ସହକର୍ମୀ ଶ୍ରୀମାନ୍ ପ୍ରଭାତକୁମାର ମୁଖର୍ଜୀ ଏମ୍. ଏ,

ଏହି ବନ୍ଧୁମାନେ ଭାଷାକୋଷପାଇଁ ଶବ୍ଦଚୟ, ଗ୍ରାହକ ଓ ପୃଷ୍ଠପୋଷକ ସଂଗ୍ରହରେ ଓ ନାନା ଉପାୟରେ ନିଜ ନିଜର ଶକ୍ତି ଅନୁରୂପ ସାହାଯ୍ୟ କରୁଅଛନ୍ତି । ଏମାନେ ସମସ୍ତେ ମୋର କୃତଜ୍ଞତାଭାଜନ । ଏମାନେ କେବଳ ଯେ ଭାଷାକୋଷ କାର୍ଯ୍ୟ ଦେଖି ଆନନ୍ଦିତ, ତାହା ନୁହେଁ; ପରନ୍ତୁ ସ୍ଥଳବିଶେଷରେ ଏମାନେ ଭାଷାକୋଷ ନିମନ୍ତେ ସ୍ୱୀୟ ଦାତାମାନଙ୍କ ଦ୍ୱାରସ୍ଥ ହୋଇ ଅର୍ଥିକ ସାହାଯ୍ୟ ଏବଂ ତନ୍ନିମନ୍ତେ ପ୍ରତିଶ୍ରୁତି ସଂଗ୍ରହ କରିବାରେ ଲାଗିଅଛନ୍ତି । ଏମାନଙ୍କ ସାହାଯ୍ୟରେ ଭାଷାକୋଷ ଯେପରି ସାଧାରଣରେ ବିଜ୍ଞାପିତ ହୋଇଅଛି, ଅନ୍ୟ ଉପାୟରେ ସେପରି ହୋଇ ପାରି ନ ଥାନ୍ତା ବୋଲି ମୋର ବିଶ୍ୱାସ । ବସ୍ତୁତଃ ଏପରି ବଳିଷ୍ଠ ଓ କର୍ମଠ ସମର୍ଥକ, ସହାୟକସଙ୍ଘ ଓ ସହକାରିଚୟ ମୋ ପଛକୁ ନ ଥିଲେ ମୁଁ ଏ ଦୁରୂହ କାର୍ଯ୍ୟରେ ଏତେଦୂର ଅଗ୍ରସର ହୋଇ ପାରି ନ ଥାନ୍ତି । ଏହି ସହାୟକମାନଙ୍କ ମଧ୍ୟରୁ ଅନେକଙ୍କ ପ୍ରତିକୃତି ଏ ଖଣ୍ଡରେ ଓ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କରେ ସନ୍ନିବେଶିତ ହୋଇଅଛି ଓ ପରବର୍ତ୍ତୀ ଖଣ୍ଡମାନଙ୍କରେ ହେବ । ଏମାନଙ୍କ ପ୍ରତି ମୋର ଗଭୀର ଆନ୍ତରିକ କୃତଜ୍ଞତା ମୁଁ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ଅବତରଣିକାରେ ଜ୍ଞାପନ କରିଅଛି ଓ ଏ ଖଣ୍ଡରେ ମଧ୍ୟ ଜ୍ଞାପନ କରୁଅଛି ।

## ଏ ଗ୍ରନ୍ଥର ଆଶୀର୍ବାଦକମଣ୍ଡଳୀ

ପୁରୀ ଏମାରମଠର ମହନ୍ତ ମହାରାଜ ଭକ୍ତିଭାଜନ ଶ୍ରୀ ଗଦାଧର ରାମାନୁଜ ଦାସ, କାଇସର-ଇ-ହିନ୍ଦ୍, ଏ ଗ୍ରନ୍ଥର ପ୍ରକାଶ ନିମିତ୍ତ ଅର୍ଥିକ ସାହାଯ୍ୟ ପ୍ରଦାନ କରିବା ଛଡ଼ା ଏ ଗ୍ରନ୍ଥର ନିର୍ବିଘ୍ନ ଖଣ୍ଡପରିସମାପ୍ତି ନିମିତ୍ତ ଆଶୀର୍ବାଦ ଦାନ କରିଅଛନ୍ତି ।

ପୁରୀ ଶଙ୍କରାନନ୍ଦ ଭୋଗବର୍ଦ୍ଧନ ପୀଠାଧୀଶ ଶ୍ରୀ ଶ୍ରୀ ଶ୍ରୀ ଜଗଦ୍‌ଗୁରୁ ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀ ଭାଷାକୋଷ ଆଶ୍ରମରେ ଦୁଇ ତିନି ବାର ପଦାର୍ପଣ କରିଅଛନ୍ତି ଓ ଆଶୀର୍ବାଦ ଦାନ କରିଯାଇଅଛନ୍ତି । ଭୁବନେଶ୍ୱରରେ ବ୍ରହ୍ମଚର୍ଯ୍ୟ ବିଦ୍ୟାଳୟ ସ୍ଥାପନ ଉଦ୍ଦେଶ୍ୟରେ ସେ ସମଗ୍ର ଉତ୍କଳଖଣ୍ଡ ପର୍ଯ୍ୟଟନ କରୁଅଛନ୍ତି ଓ ସର୍ବତ୍ର ଭାଷାକୋଷ ନିମିତ୍ତ ବଦାନ୍ୟ ବ୍ୟକ୍ତିମାନଙ୍କର ସହାନୁଭୂତି ଓ ସହାୟତା ଭିକ୍ଷା କରୁଅଛନ୍ତି ।

ମହାମାଧ୍ୱାଚାର୍ଯ୍ୟ ଅବଧୂତ ଶ୍ରୀ ବିଶ୍ୱନାଥ ବାବା ଏ ଗ୍ରନ୍ଥ ପ୍ରତି ନିଜର ପୂର୍ଣ୍ଣ ମମତା ଅକ୍ଷୁଣ୍ଣ ରଖିଅଛନ୍ତି ଓ ଏ ଗ୍ରନ୍ଥର ନିର୍ବିଘ୍ନ ସମାପ୍ତି ନିମନ୍ତେ ସର୍ବାନ୍ତର୍ଯ୍ୟାମୀ ଅଲେଖ ବ୍ରହ୍ମଙ୍କୁ ପ୍ରାର୍ଥନା କରୁଅଛନ୍ତି ।

କଲିକତା ବାଗବଜାର ଗୌଡ଼ୀୟ ମଠର ଭକ୍ତିସିଦ୍ଧାନ୍ତ ସରସ୍ୱତୀ ସ୍ୱାମୀ ମହାରାଜ ଗତ ୧।୧।୩୫ ତାରିଖରେ ଭାଷାକୋଷ ଆଶ୍ରମରେ ପଦାର୍ପଣ କରି ଏ ଗ୍ରନ୍ଥର ନିର୍ବିଘ୍ନ ସମାପ୍ତି ନିମନ୍ତେ ପ୍ରଭୁଙ୍କ କୃପାଭିକ୍ଷା କରିଥିଲେ ।

## ଭାଷାକୋଷାଶ୍ରମର ବିଶିଷ୍ଟ ପରିଦର୍ଶକବର୍ଗ

ପାଟଣା ହାଇକୋର୍ଟର ପ୍ରଧାନ ବିଚାରପତି ସର୍ କୋର୍ଟ୍‌ନି ଟେରେଲ୍, ଶ୍ରୀଲ ସଚ୍ଚିଦାନନ୍ଦ ସ୍ୱାମୀ, ଶ୍ରୀଲ ବିଶ୍ୱନାଥ ବାବା, ଶ୍ରୀଲ ଭକ୍ତିସିଦ୍ଧାନ୍ତ ସରସ୍ୱତୀ ସ୍ୱାମୀଙ୍କ ଛଡ଼ା ବଙ୍ଗପ୍ରଦେଶର ମନ୍ତ୍ରୀ ମାନ୍ୟବର ସର୍ ବିଜୟପ୍ରସାଦ ସିଂହ ରାୟ ଗତ ୨୭।୧୨।୩୫ ତାରିଖରେ ଓ ନୂତନ ଓଡ଼ିଆ ପ୍ରଦେଶର ଶିକ୍ଷାବିଭାଗୀୟ ଡାଇରେକ୍ଟର୍ ଶ୍ରୀଯୁକ୍ତ ଏଚ୍. ଡାମ୍ପି ଗତ ୧୭।୧୨।୩୫ ରେ ଭାଷାକୋଷ ଆଶ୍ରମ ପରିଦର୍ଶନ କରିଥିଲେ ।

## ଏ ଗ୍ରନ୍ଥର ବିଶିଷ୍ଟ ଗ୍ରାହକଗଣ

| | | |
|---|---|---|
| ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟ୍ | ୧୩୦ | ସାର ଗ୍ରନ୍ଥ |
| କଳାହାଣ୍ଡି ମହାରାଜ | ୨୫ | ,, |
| ଇଂଲଣ୍ଡ ଓ ଇଉରୋପର ବିଦ୍ୱତ୍‌ସମାଜ ଓ ପୁସ୍ତକାଗାରମାନେ | ୨୦ | ,, |
| କେନ୍ଦୁଝର ଅଧୀଶ୍ୱର | ୧୦ | ,, |
| ବୌଦ୍ଧରାଜ୍ୟର ଅଧୀଶ୍ୱର | ୮ | ,, |
| ସୋନପୁର ମହାରାଜ | ୨ | ,, |
| ଧସ୍ପାଳ ରାଜାସାହେବ | ୨ | ,, |
| ମଧୁପୁର ରାଜାସାହେବ | ୨ | ,, |
| ଅଠମଲ୍ଲିକ ଅଧୀଶ୍ୱର | ୫ | ,, |

ପାଇଁ ଅଗ୍ରିମ ଗ୍ରାହକ ହୋଇଅଛନ୍ତି ।

## ଭାଷାକୋଷ ପ୍ରତି ଅପୂର୍ବ ଅନୁରାଗ

ଭାଷାକୋଷର ୩୩୪ ନମ୍ବର ଗ୍ରାହକ ମୌଲବୀ ଶେଖ୍ ଅବଦୁଲ୍ ରସିଦ୍ (କଟକ ବକ୍ସି ବଜାର ସୁଲ୍ତାନିଆ ମାଦ୍ରାସାର ସହକାରୀ ଶିକ୍ଷକ)ଙ୍କର ଭାଷାକୋଷ ପ୍ରତି ଅପୂର୍ବ ଅନୁରାଗର କଥା ଏଠାରେ ଉଲ୍ଲେଖଯୋଗ୍ୟ। ସେ ମହାଶୟ ୧୨ଟି ମାସ ଟଙ୍କା ବେତନ ପାଆନ୍ତି ଓ ତାହାରି ଗୋଟିଏ ବଡ଼ ପରିବାର ପୋଷନ୍ତି। ଏପରି ଆର୍ଥିକ ଅବସ୍ଥାରେ ସୁଦ୍ଧା ସେ ଭାଷାକୋଷର ଗ୍ରାହକ ହେବା ନିମନ୍ତେ ମୋ ନିକଟରେ ପ୍ରାର୍ଥୀ ହେଲେ। ଏକ ସାର ବହି ତାଙ୍କୁ ମୁଁ ଟ ୫୫ଙ୍କାରେ ଦେବା ପାଇଁ ରାଜି ହେଲି ଓ ମାସିକ ତାଙ୍କୁ ଟ ୨୧ କରି ଦେବାକୁ ହେବ ବୋଲି ତାଙ୍କ ସଙ୍ଗେ କଥା କଲି। ସେ ମହାଶୟ କୌଣସିମତେ ତାଙ୍କ ବେତନରୁ ପ୍ରତି ମାସରେ ଟ ୨୧ ଲେଖାଏଁ କାଟି ମୋ ପହିତ ହୋଇଥିବା ତାଙ୍କ ବଚନକୁ ରକ୍ଷା କରୁଅଛନ୍ତି। ଭାଷାକୋଷର ଗ୍ରାହକ ହେବାରେ ସେ ଯେଉଁ ତ୍ୟାଗ ସ୍ୱୀକାର କରୁଅଛନ୍ତି, ତହିଁରେ ମୁଁ ଯେ କେତେ ମୁଗ୍ଧ, ତାହା ବର୍ଣ୍ଣନାତୀତ।

## ଭାଷାକୋଷର ସ୍ୱର୍ଗତ ଆଶୀର୍ବାଦକମଣ୍ଡଳୀ

ସମଗ୍ର ଭାଷାକୋଷ ଗ୍ରନ୍ଥର ପ୍ରକାଶ ପରେ ତାହା ନେଇ ମହାମହିମ ଭାରତ ସମ୍ରାଟ ପଞ୍ଚମ ଜର୍ଜଙ୍କୁ ଭେଟିବାର ବାସନା ମୁଁ ଭାଷାକୋଷ ମୁଦ୍ରଣ ହେଲା ଦିନୁଁ ମନରେ ପୋଷଣ କରିଥିଲି; କିନ୍ତୁ ଦୁର୍ଦ୍ଦୈବ ମୋତେ ସେ ସୌଭାଗ୍ୟରୁ ବଞ୍ଚିତ କଲେ। ତେଣୁ ଆଜ ସ୍ୱର୍ଗତ ସମ୍ରାଟଙ୍କ ପବିତ୍ର ଆତ୍ମାଙ୍କ ଉଦ୍ଦେଶ୍ୟରେ ମୁଁ ମୋର ଗଭୀର ରାଜଭକ୍ତିର କୁସୁମାଞ୍ଜଳି ଅର୍ପଣ କରୁଅଛି।

ଭାଷାକୋଷର ଏହି ଖଣ୍ଡର ସମାପ୍ତି କାଳରେ ମୁଁ ମୋର ସ୍ୱର୍ଗତ ପିତୃଦେବ (ନରସିଂହ ପ୍ରହରାଜ)ଙ୍କୁ ମୋର ଅଖଣ୍ଡ ଭକ୍ତି ଜ୍ଞାପନ କରୁଅଛି। ୧୯୧୪ ଖ୍ରୀଷ୍ଟାବ୍ଦରେ ସେ ନରଦେହ ତ୍ୟାଗ କରିଅଛନ୍ତି। ତାଙ୍କର ସାହିତ୍ୟିକ ପ୍ରବୃତ୍ତି ମୁଁ ଉତ୍ତରାଧିକାରୀ ସୂତ୍ରରେ ତାଙ୍କଠାରୁ ପ୍ରାପ୍ତ ହୋଇଅଛି। ଓଡ଼ିଆ ଭାଷାର ଖଣ୍ଡିଏ ସର୍ବାଙ୍ଗସୁନ୍ଦର ଅଭିଧାନର ଦାରୁଣ ଅଭାବ ସେ ସର୍ବଦା ଅନୁଭବ କରୁଥିଲେ ଓ ସେ ଅଭାବ ପୂରଣ କରିବା ନିମନ୍ତେ ମୋତେ ସବୁବେଳେ ପ୍ରରୋଚନା ଦେଉଥିଲେ; କିନ୍ତୁ ତାଙ୍କର ପ୍ରେରଣାରୁ ଉଦ୍ଭୂତ ଏହି ଭାଷାକୋଷ ଗ୍ରନ୍ଥ ତାଙ୍କ ସ୍ନେହମୟ କରକମଳରେ ସମର୍ପଣ କରିବାର ସୁଯୋଗ ମୋ ଭାଗ୍ୟରେ ଘଟିଲା ନାହିଁ। ମୋର ଦୃଢ଼ ବିଶ୍ୱାସ, ଯେ ଆଜ ସ୍ୱର୍ଗରେ ଥାଇ ସେ ତାଙ୍କର ଏହି ଅଧମ ପୁତ୍ରର ଗ୍ରନ୍ଥ ଉପରେ ଶୁଭାଶୀର୍ବାଦ ବର୍ଷଣ କରୁଛନ୍ତି।

ଉତ୍କଳ ଜନନୀଙ୍କ ଯୋଗ୍ୟତମ ବରେଣ୍ୟ ପୁତ୍ର ପୂଜ୍ୟପାଦ ସ୍ୱର୍ଗତ ଗୁରୁଦେବ ମଧୁସୂଦନ ଦାସ, ସି. ଆଇ. ଇ.ଙ୍କ ନିକଟରେ ମୁଁ ଯେ କି ପରିମାଣରେ ଋଣୀ, ତାହା ଭାଷାକୋଷର ପୂର୍ବବର୍ତ୍ତୀ ଖଣ୍ଡମାନଙ୍କର ଅବତରଣିକାରେ ବର୍ଣ୍ଣନ କରିଅଛି। ଆଜ ସେହି ଅନାମୟ ଧାମରେ ଥାଇ ସେ ତାଙ୍କ ଅଧମ ଶିଷ୍ୟର କୃତି ଉପରେ ସଦୟ ଦୃକ୍‌ପାତ କରୁଅଛନ୍ତି।

ସ୍ୱର୍ଗତ ବିଶ୍ୱନାଥ କର ମଧ୍ୟ ତାଙ୍କର ଅଧମ ସହକର୍ମୀର ଏହି କୃତିକୁ ସ୍ୱର୍ଗ ଉପରୁ ଅମର୍ତ୍ତ୍ୟ ମମତା ସହିତ ଅନାଇ ରହିଅଛନ୍ତି।

ଯାଜପୁରର ପଣ୍ଡିତ ନୀଳମଣି ମିଶ୍ର ୭୩ ବର୍ଷ ବୟସରେ ଗତ ଡିସେମ୍ବର ୧ ତାରିଖ ଦିନ ସ୍ୱର୍ଗାରୋହଣ କଲେ। ଜୀବଦ୍ଦଶାରେ ସେ ମହୋଦୟ କେତେଥର ଭାଷାକୋଷ ଆଶ୍ରମରେ ପଦାର୍ପଣ କରି-ଥିଲେ। ଭାଷାକୋଷ ପାଇଁ ସେ 'ଯାଜପୁର' ଶୀର୍ଷକ ଗୋଟିଏ ସନ୍ଦର୍ଭ ଲେଖି ଯାଇଅଛନ୍ତି। ତାଙ୍କ ସନ୍ଦର୍ଭ ଏ ଗ୍ରନ୍ଥରେ ପ୍ରକାଶିତ ହେବା ଯାଏ ବିଧାତା ତାଙ୍କୁ ଇହ ଧାମରେ ରଖିଲେ ନାହିଁ। ସ୍ୱର୍ଗରେ ଥାଇ ସେ ଜନକସୁଲଭ ମମତା ସହିତ ଭାଷାକୋଷର ଅଗ୍ରଗତି ଅବଶ୍ୟ ଲକ୍ଷ୍ୟ କରୁଅଛନ୍ତି।

ଭାଷାକୋଷର ଏହି ପଞ୍ଚମଖଣ୍ଡର ଉପସଂହାର କାଳରେ ମୋର ପ୍ରାଣୋପମା କନ୍ୟା, ସ୍ୱର୍ଗୀୟ ଅଡ଼ଭୋକେଟ୍ ଓ ସରକାରୀ ଓକିଲ ରାୟ ବାହାଦୁର୍ ଲୋକନାଥ ମିଶ୍ରଙ୍କ ସହଧର୍ମିଣୀ ଶ୍ରୀମତୀ ଲାବଣ୍ୟବତୀ ଦେବୀର ମୃତ୍ୟୁ ମୋତେ ଶୋକରେ ଅଭିଭୂତ କରୁଅଛି। ମୃତ୍ୟୁ ପୂର୍ବରୁ ଲାବଣ୍ୟ ମୋ ନିମନ୍ତେ କେତେକ ଖଣ୍ଡି ଓଡ଼ିଆ ଓ ବଙ୍ଗଳା ଅଭିଧାନ ଗ୍ରନ୍ଥ ସଂଗ୍ରହ କରିଥିଲା; କିନ୍ତୁ ମୋ ଦୁର୍ଭାଗ୍ୟକୁ ସେ ଭାଷାକୋଷର ପ୍ରଥମ ଖଣ୍ଡ ସୁଦ୍ଧା ଦେଖି ଯାଇ ପାରିଲା ନାହିଁ। ପ୍ରଥମ ଖଣ୍ଡର ଅବତରଣିକାରେ ଯଥାସ୍ଥାନରେ ତାର ନାମୋଲ୍ଲେଖ କରିଅଛି।

ସାଧାରଣ ଅବ୍ୟବହୃତ ନାନା ଶବ୍ଦ ଓ ଦୁଷ୍ପ୍ରାପ୍ୟ ଅଭିଧାନ ଗ୍ରନ୍ଥମାନ ଯୋଗାଇ ଭାଷାକୋଷ କାର୍ଯ୍ୟରେ ଅଗ୍ରସର ହେବାପାଇଁ ମୋତେ ସାହସ ଦେବାକୁ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ଓ ରାୟ ବାହାଦୁର ରାମଶଙ୍କର ରାୟ ଆଉ ଇହଧାମରେ ନାହାନ୍ତି। କିନ୍ତୁ ମୋର ଦୃଢ଼ ବିଶ୍ୱାସ, ଏ ଦୁହେଁ ଦିବ୍ୟଧାମରୁ ଭାଷାକୋଷ ଉପରେ ପୂର୍ବ ମମତାସହ ସଦୟ ଦୃକ୍‌ପାତ କରୁଅଛନ୍ତି।

## କ୍ରୀତ ଓ ଉପହୃତ ପୁସ୍ତକର ସଂଖ୍ୟା

ଏ ପର୍ଯ୍ୟନ୍ତ ୩୬୬ ସାର ଗ୍ରନ୍ଥ ନିମନ୍ତେ, ଆଗତୁରା ଗ୍ରାହକ ସଂଗୃହୀତ ହୋଇଅଛନ୍ତି। ପୃଷ୍ଠପୋଷକ, ଶୁଭାକାଙ୍କ୍ଷୀ ଓ ସହକର୍ମୀଙ୍କୁ ୬୮ ସାର ଗ୍ରନ୍ଥ ଉପହାର ଦିଆ ହୋଇଅଛି।

୧୯୩୪ ମସିହା ଜୁନ୍ ମାସରେ ଚତୁର୍ଥଖଣ୍ଡ ପ୍ରକାଶିତ ହେଲା ଦିନଠାରୁ ୧୬ ସାର ଗ୍ରନ୍ଥ ନିମନ୍ତେ ଗ୍ରାହକ ମିଳିଅଛନ୍ତି ଓ ୧୪ ସାର ଗ୍ରନ୍ଥ ଉପହାର ଦିଆ ହୋଇଅଛି।

ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ, ଯେଉଁ ୩୬୬ ସାର ଗ୍ରନ୍ଥ ନିମନ୍ତେ ଅଗ୍ରିମ ମୂଲ୍ୟ ମିଳିଅଛି, ତନ୍ମଧ୍ୟରୁ ପ୍ରାୟ ୩୦୦ ସାର ଗ୍ରନ୍ଥ ପୂର୍ବ ଘୋଷଣା ଅନୁସାରେ ପ୍ରତି ସେଟ୍ ଟ ୬୦ ରୁ ଟ ୩୦ ମୂଲ୍ୟରେ ଗ୍ରାହକମାନଙ୍କୁ ଦିଆ ଯାଉଅଛି; କାରଣ, ସେତେବେଳେ ଗ୍ରନ୍ଥ ଦୁଇ ଖଣ୍ଡରେ ସମାପ୍ତ ହେବ ବୋଲି ଅନୁମିତ ହୋଇଥିଲା।

## ସମ୍ମାନ ଓ ପ୍ରଶଂସାଲାଭ

ଇଟାଲୀର ବିଶ୍ୱବିଦ୍ୟାଳୟର ମୁଖପତ୍ରରେ ମନୀଷିପ୍ରବର ଗୁୟସେପ୍ ଟୁଚ୍ଚୀ ନିମ୍ନଲିଖିତ ମର୍ମରେ ଭାଷାକୋଷର ସମାଲୋଚନା କରିଅଛନ୍ତି। ତାଙ୍କ ସମାଲୋଚନାରୁ କେତେକ ଧାଡ଼ି ଏଠାରେ ଉଦ୍ଧାର କରାଗଲା। କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଶ୍ରୀଯୁକ୍ତ

## Helpers of the work.

## ଏ ଗ୍ରନ୍ଥର ସହାୟକଗଣ



Sj. Jagabandhu Sinha
Pleader, Puri.
ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ
ଓକିଲ, ପୁରୀ ।



Sj. Sashibhusan Rai
Author and writer, Cuttack.
ବାବୁ ଶଶିଭୂଷଣ ରାୟ
ଲେଖକ ଓ ଗ୍ରନ୍ଥକାର, କଟକ



Sreemati Aparnna Debi
Poetess, Puri
ଶ୍ରୀଯୁକ୍ତ ଅପର୍ଣ୍ଣା ଦେବୀ
ନାରୀକବି, ପୁରୀ



Sreeman Chintamoni Acharya, M. A , B. L.
Advocate, Govt. Pleader, Cuttack.
ଶ୍ରୀମାନ୍ ଚିନ୍ତାମଣି ଆଚାର୍ଯ୍ୟ ଏମ୍. ଏ., ବି. ଏଲ୍.
ଗଭର୍ଣ୍ଣମେଣ୍ଟ ପ୍ଲିଡର୍, କଟକ ।



Sreeman Krushna Chandra Sengupta
M. A., B. Ed.
Headmaster, Training School, Cuttack.
ଶ୍ରୀମାନ୍ କୃଷ୍ଣଚନ୍ଦ୍ର ସେନଗୁପ୍ତ, ଏମ୍. ଏ., ବି. ଇଡ.
ହେଡ୍‌ମାଷ୍ଟର୍, ଟ୍ରେନିଙ୍ଗ୍ ସ୍କୁଲ୍, କଟକ ।

ବିଜୟନଗରମ୍‌ର ସରକାର ଅନୁଗ୍ରହ କରି ଇଟାଲୀୟ ଭାଷାର ଇଂରାଜୀ ଅନୁବାଦ ଏହିପରି କରି ଦେଇ ଅଛନ୍ତି ।

× × × "କୋଷ ଗ୍ରନ୍ଥ ଯେଉଁପରି ହେବା ବାଞ୍ଛନୀୟ, ଆକାର ଓ ପ୍ରାମାଣିକତାର ପ୍ରାଚୁର୍ଯ୍ୟ ଯୋଗୁଁ ଏହି ଭାଷାକୋଷ ସର୍ବତୋଭାବେ ପୂର୍ଣ୍ଣାଙ୍ଗତା ଲାଭ କରି ଯଥାର୍ଥରେ ସେହିପରି ହୋଇଅଛି ।

× × × "ଗୋପାଳ ପ୍ରହରାଜ ତାଙ୍କର ଶ୍ରମଦ୍ୱାରା ତାଙ୍କ ଦେଶରେ ପ୍ରାଦେଶିକ ଭାଷାମାନଙ୍କ ଚର୍ଚ୍ଚାକୁ ପୁନରୁଜ୍ଜୀବିତ କରି ଯଥାର୍ଥରେ ଦେଶବାସୀଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି ।

× × × "ଯେଉଁ (ଓଡ଼ିଆ) ଭାଷାର ବଙ୍ଗଭାଷା ସହିତ ଅନେକ ସୌସାଦୃଶ୍ୟ ରହିଅଛି ଓ ଭାରତୀୟ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ଯେଉଁ ଭାଷାର ମାଧୁର୍ଯ୍ୟ ଯଥେଷ୍ଟ ଅଧିକ, ତାହାର ଅନୁଶୀଳନରେ ଏ ଗ୍ରନ୍ଥ ଯଥେଷ୍ଟ ସହାୟତା କରିବ ।"

କଟକର ବୈଶ୍ୟ ଜାତୀୟ ସମିତି ଗତ ୧୦।୩।୩୫ ତାରିଖ ଦିନ ଗୋଟିଏ ବିଶେଷ ଅଧିବେଶନରେ ଗ୍ରନ୍ଥକାରଙ୍କୁ ଅଭିନନ୍ଦନ ବା ମାନପତ୍ର ପ୍ରଦାନ କରି ସମ୍ମାନିତ କରିଅଛନ୍ତି ।

ସ୍ୱର୍ଗତ ମହାମହିମ ସମ୍ରାଟଙ୍କ ରଜତ ଜୟନ୍ତୀ ଉତ୍ସବରେ ଗ୍ରନ୍ଥକାର ସରକାରଙ୍କ ଠାରୁ ରଜତ ଜୟନ୍ତୀ ପଦକ ପ୍ରାପ୍ତ ହୋଇଅଛି ।

ଗତ ୬।୧।୩୬ ତାରିଖ ଦିନ ଗ୍ରନ୍ଥକାର ସମ୍ବଲପୁର ଗଙ୍ଗାଧର ସାହିତ୍ୟ ପରିଷଦର ୬ଷ୍ଠ ଅଧିବେଶନରେ ସଭାପତିତ୍ୱ କର୍ମ ନିର୍ବାହ କରିବାକୁ ବରିତ ହୋଇଥିଲେ ଓ ତହିଁରେ ସ୍ଥାନୀୟ ବକ୍ତାଗଣ ଏକମୁଖରେ ଭାଷାକୋଷର ସାଧୁବାଦ କରିଥିଲେ ।

## ଆର୍ଥିକ ପରିସ୍ଥିତି

### ପ୍ରାପ୍ତ ଧନ ଓ ବର୍ତ୍ତମାନ ପ୍ରୟୋଜନ

ଗ୍ରନ୍ଥର ଅନ୍ତିମ ଆକାର ଓ ବ୍ୟୟ ପୂର୍ବର ସବୁ ଅଟକଳରୁ ବଳିଗଲା । ପୂର୍ବରେ କୁହାଯାଇଅଛି ଯେ, ପ୍ରତ୍ୟେକ ଖଣ୍ଡର ପ୍ରକାଶରେ ହାରାହାରି ଟ୧୬,୦୦୦ (ଷୋଳ ହଜାର ଟଙ୍କା) ଖର୍ଚ୍ଚ ହେଉଅଛି । ବର୍ତ୍ତମାନର ଅଟକଳ ଅନୁସାରେ ଏ ଗ୍ରନ୍ଥ ସର୍ବସୁଦ୍ଧା ୯,୦୦୦ ପୃଷ୍ଠା-ବିଶିଷ୍ଟ ୭ ଖଣ୍ଡରେ ସମାପ୍ତ ହେବ ଓ ସମଗ୍ର ଗ୍ରନ୍ଥର ପ୍ରକାଶରେ ମୋଟ ଟ ୧୧୦,୦୦୦ (ଏକ ଲକ୍ଷ ଦଶ ହଜାର ଟଙ୍କା) ବ୍ୟୟ ହେବ । ଏଥିରୁ ଟ ୨୫,୦୦୦ (ପଚିଶ ହଜାର ଟଙ୍କା) ବିହାର ଓଡ଼ିଶାର ସଦାଶୟ ସରକାର ବାହାଦୁର ଓ ପାଟଣା ବିଶ୍ୱବିଦ୍ୟାଳୟଙ୍କ ଠାରୁ ମିଳିଅଛି; ଟ ୩୯,୦୦୦ (ଅଣଚାଳିଶ ହଜାର ଟଙ୍କା) ରାଜା, ମହାରାଜ ଓ ସାହିତ୍ୟର ପୃଷ୍ଠପୋଷକମାନଙ୍କ ଠାରୁ ମିଳିଅଛି; ଟ ୧୦,୦୦୦ (ଦଶ ହଜାର ଟଙ୍କା) ଗ୍ରନ୍ଥର ଅଗ୍ରିମ ମୂଲ୍ୟ ରୂପେ ଭାରତରୁ ଓ ଭାରତ ବାହାରୁ ମିଳିଅଛି ଓ ଟ ୧୦,୦୦୦ (ଦଶ ହଜାର ଟଙ୍କା) ଗ୍ରନ୍ଥକାର ନିଜର ବାସଗୃହ ବନ୍ଧକ ଦେଇ ଋଣକରିଅଛି । ଏହିରୂପେ ଆଜିସୁଦ୍ଧା ସର୍ବମୋଟ ଟ ୮୩,୦୦୦ (ତେୟାଅଶି ହଜାର ଟଙ୍କା)ର ବ୍ୟବସ୍ଥା କରାଯାଇ ପାରିଅଛି । ଅନ୍ତତଃ ଟ ୨୭,୦୦୦ (ସତେଇଶି ହଜାର ଟଙ୍କା) ର ବ୍ୟବସ୍ଥା ହେଲେ ୬ଷ୍ଠ ଓ ୭ମ ଖଣ୍ଡ ପ୍ରକାଶିତ ହେବ । ଆଗରୁ ଯେଉଁ ବଦାନ୍ୟ ଲକ୍ଷ୍ମୀପୁତ୍ରମାନଙ୍କ ନାମ ଉଲ୍ଲେଖ କରିଅଛି, ଏଥିନିମନ୍ତେ ସେହିମାନଙ୍କ ମୁକ୍ତହସ୍ତତା ଉପରେ ହିଁ ମୋର ଏକାନ୍ତ ଭରସା, ଏହା କହିବା ବାହୁଲ୍ୟ ମାତ୍ର ।

## ଗ୍ରନ୍ଥର ମୂଲ୍ୟ

ମୁଦ୍ରଣ ପୂର୍ବରୁ ଗ୍ରନ୍ଥ ସର୍ବମୋଟ ୩୬୦୦ ପୃଷ୍ଠାବିଶିଷ୍ଟ ୨ଟି ମାତ୍ର ଖଣ୍ଡରେ ସମାପ୍ତ ହୋଇଯିବ ବୋଲି ଅଟକଳ କରାଯାଇଥିଲା ଓ ପ୍ରକାଶବ୍ୟୟ ସର୍ବମୋଟ ଟ୪୦,୦୦୦ (ଚାଳିଶିହଜାର ଟଙ୍କା) ଧରାଯାଇଥିଲା । ତେଣୁ ପ୍ରକାଶ ପୂର୍ବରୁ ଦ୍ୱିଖଣ୍ଡବିଶିଷ୍ଟ ଏକ ସାଇ ଗ୍ରନ୍ଥର ଅଗ୍ରିମ ମୂଲ୍ୟ ଟ ୩୦ (ତିରିଶି ଟଙ୍କା) ବୋଲି ଘୋଷଣା କରାଯାଇଥିଲା । ସେହି ବିଜ୍ଞାପନ ଫଳରେ ପ୍ରାୟ ଶତାଧିକ ସାଇ ଗ୍ରନ୍ଥପାଇଁ ଅର୍ଡର ଓ ଅଗ୍ରିମ ମୂଲ୍ୟ ମିଳିଥିଲା । ବର୍ତ୍ତମାନ ଏହି ଅଗ୍ରିମ ଗ୍ରାହକମାନଙ୍କଠାରୁ ଅଧିକା ଦାମ୍ ନ ନେଇ ସପ୍ତଖଣ୍ଡ-ବିଶିଷ୍ଟ ଏକସାଇ ଲେଖାଏଁ ଭାଷାକୋଷ ପୂର୍ବପ୍ରଦତ୍ତ ସେହି ମୂଲ୍ୟରେହିଁ ସେମାନଙ୍କୁ ଦିଆଯାଉଅଛି । ଗ୍ରନ୍ଥ ମୁଦ୍ରଣ ଆରମ୍ଭ ପରେ ଯେତେବେଳେ ଗ୍ରନ୍ଥର ଆକାର ଅଟକଳ ଅପେକ୍ଷା ବୃହତ୍ତର ହେବାର ଦେଖାଗଲା ଓ ଗ୍ରନ୍ଥର ମୂଲ୍ୟ ଟ ୪୦ ଧାର୍ଯ୍ୟ କରାଗଲା, ବିହାର ଓ ଓଡ଼ିଶା ସରକାର ଅଧା ଦାମ୍‌ରେ ୧୩୦ ସାଇ ଗ୍ରନ୍ଥପାଇଁ ଗ୍ରାହକ ହୋଇ ଥିଲେ; ତେଣୁ ଏକ ସାଇ ଗ୍ରନ୍ଥ କୋଡ଼ିଏ ଟଙ୍କା ହାରରେ ୧୩୦ ସାଇ ଗ୍ରନ୍ଥ ବିହାର-ଓଡ଼ିଶା ସରକାରଙ୍କୁ ଦିଆଯାଉଅଛି । ଏହା ପରେ ଯେଉଁମାନେ ଯେତେ ଯେତେବେଳେ ଗ୍ରାହକ ହୋଇଅଛନ୍ତି, ସେମାନେ ସେହି ସେହି ବେଳର ନିର୍ଦ୍ଧାରିତ ଅଗ୍ରିମ ମୂଲ୍ୟ ଦେଇ ସମଗ୍ର ଗ୍ରନ୍ଥ ପାଉଅଛନ୍ତି ଓ ପାଇବେ । ସେମାନଙ୍କୁ ଆଉ ଅଧିକା ଦାମ୍ ଦେବାକୁ ପଡ଼ୁନାହିଁ ।

ପଞ୍ଚମ ଖଣ୍ଡର ପ୍ରକାଶ ପରେ ବର୍ତ୍ତମାନ ଦେଖାଯାଉଅଛି ଯେ ସମଗ୍ର ଗ୍ରନ୍ଥ ଆଉ ଦୁଇ ଖଣ୍ଡରେ ସମାପ୍ତ ହେବ । ଏତଦୃଷ୍ଟିରେ ୭ଖଣ୍ଡ-ବିଶିଷ୍ଟ ଏକ ସାଇ ଗ୍ରନ୍ଥର ଅଗ୍ରିମ ମୂଲ୍ୟ ଟ ୧୧୫ (ଏକଶତ ପନ୍ଦର ଟଙ୍କା) ଓ ପ୍ରତ୍ୟେକ ଖଣ୍ଡର ନଗଦ ମୂଲ୍ୟ ଟ ୨୦। (କୋଡ଼ିଏ ଟଙ୍କା ଆଠଅଣା) ଧାର୍ଯ୍ୟ କରାଗଲା । ଭାରତରେ ଓ ଭାରତ ବାହାରେ ଗ୍ରନ୍ଥବିକ୍ରେତାମାନଙ୍କ ପ୍ରାପ୍ୟ କମିସନ୍ ଏଥି ଦାନ ଉପରେ ରହିଅଛି ।

## ଗ୍ରନ୍ଥର ପୂର୍ଣ୍ଣ ପ୍ରକାଶର ଆନୁମାନିକ ସମୟ

ଏହି ପଞ୍ଚମ ଖଣ୍ଡ ପ୍ରକାଶ ବେଳେ ଯେପରି ଦୁର୍ଲଙ୍ଘ୍ୟ ଅର୍ଥସଙ୍କଟ ଓ ଅପରାପର ବାଧା ଆସି ପଡ଼ିଲା, ଯଦି ସେପରି କିଛି ନ ଘଟେ, ତେବେ ଦଶ ଦଶ ମାସ ବ୍ୟବଧାନରେ ୬ଷ୍ଠ ଓ ୭ମ ଖଣ୍ଡମାନ ପ୍ରକାଶିତ ହେବ ଓ ସମଗ୍ର ଗ୍ରନ୍ଥର ପ୍ରକାଶ ୧୯୩୭ ସାଲର ଶେଷ ସୁଦ୍ଧା ପୂର୍ଣ୍ଣ ହେବ ।

## ସ୍ୱଳ୍ପ ଆୟ ବିଶିଷ୍ଟ ଗ୍ରନ୍ଥକ୍ରେତାମାନଙ୍କ ପ୍ରତି ସୁବିଧା

ଅନେକ ବନ୍ଧୁ ଆପତ୍ତି କରୁ ଅଛନ୍ତି ଯେ ଭାଷାକୋଷର ମୂଲ୍ୟ ଅତ୍ୟନ୍ତ ଅଧିକ ହୋଇଥିବାରୁ ସ୍ୱଳ୍ପ ଆୟ ବିଶିଷ୍ଟ ଲୋକଙ୍କ ପକ୍ଷରେ ଏହାର କ୍ରୟ ଅସମ୍ଭବ ହୋଇ ପଡ଼ିଅଛି । ସ୍ୱଳ୍ପାୟ ଲୋକମାନଙ୍କ ସୁବିଧା ନିମନ୍ତେ ମାସିଆସି ଆଂଶିକ ମୂଲ୍ୟ ଦେଇ ଗ୍ରନ୍ଥ କ୍ରୟ କରିବାର ବ୍ୟବସ୍ଥା କରା ଯାଉଅଛି । ମାସିକ ଦେୟ ଟଙ୍କା

ନୟମିତ ଭାବେ ଦେବା ନମନ୍ତେ ଗ୍ରନ୍ଥକାରଙ୍କ ବା ପୁସ୍ତକବକ୍ରେତାଙ୍କ ମନରେ ପ୍ରତ୍ୟୟ ଜନ୍ମିବାର ବ୍ୟବସ୍ଥା କର ପାରଲେ କ୍ରେତୃ-ମାନଙ୍କର ଏକ କସ୍ତିରେ ସମୁଦାୟ ଟଙ୍କା ଦେବାର ଅସୁବଧା ଆଉ ରହବ ନାହିଁ । ଉଦାହରଣ ସ୍ୱରୂପ, ମାସିକ ଖକାଟଙ୍କା ହାରରେ ୪୦ କସ୍ତିରେ ବା ମାସିକ ଅଢ଼େଇଟଙ୍କା ହାରରେ ୫୦ ମାସରେ ସମଗ୍ର ଗ୍ରନ୍ଥର ଦାମ୍ ଭୁଟାଇ ଦେବା ନମନ୍ତେ ବ୍ୟବସ୍ଥା ଓ ଚୁକ୍ତି କରଯାଇ ପାରେ ।

ଯେଉଁମାନେ ଏ ମାସିକ କସ୍ତି ବ୍ୟବସ୍ଥାରେ ଗ୍ରନ୍ଥ କ୍ରୟ କରବାକୁ ମଧ୍ୟ ଅକ୍ଷମ, ସେମାନଙ୍କ ନମନ୍ତେ ଏ ଗ୍ରନ୍ଥର ଜନପ୍ରିୟ, ସର୍ବୋପଯୋଗୀ ଓ ପକେଟ୍ ସଂସ୍କରଣାଦ ସୁଲଭ ସଂସ୍କରଣମାନ ପ୍ରକାଶ କରବାର ବାସନା ଅଛି । ସେହି ସୁଲଭ କ୍ଷୁଦ୍ରତର ସଂସ୍କରଣ କଣିବା କାହାର ପକ୍ଷରେ କଷ୍ଟସାଧ ହେବ ନାହିଁ ।

## ଧନ୍ୟବାଦ

ମୋର ସହକାରବର୍ଗ, ସହାୟକବର୍ଗ, ହିତାକାଙ୍କ୍ଷିଗଣ, ସମ୍ପାଦ-ଗ୍ରାହକଗଣ, ସାହାଯ୍ୟଦାତୃବର୍ଗ, ପୃଷ୍ଠପୋଷକବର୍ଗ ଓ ବର୍ତ୍ତମାନ ଏବଂ ଭବିଷ୍ୟତ୍ ସମାଲୋଚକବର୍ଗଙ୍କୁ ମୁଁ ପୁନଶ୍ଚ ଧନ୍ୟବାଦ ଅର୍ପଣ କରୁଅଛି ଓ ଏହି ଜାତୀୟ ଜ୍ଞାନମନ୍ଦିରର ଚୂଡ଼ାମୁଦ୍ରଣ କଲେ ସେ-ମାନଙ୍କ ସହାୟତା, ସାହଚର୍ଯ୍ୟ, ସଦିଚ୍ଛା, ଆଶୀର୍ବାଦ ଓ ପୋଷକତା ଭିକ୍ଷା କରୁଅଛି ।

## ରାଜଭକ୍ତି ଅର୍ପଣ

ମହାମହିମ ନଗାନ ସମ୍ରାଟ୍ ଭାରତାଧୀଶ୍ୱର ଶ୍ରୀ ଶ୍ରୀ ଶ୍ରୀ ଅଷ୍ଟମ ଏଡ୍‌ୱାର୍ଡଙ୍କ ପଦଦେଶରେ ମୁଁ କାୟମନୋବାକ୍ୟଗତ ବଶ୍ୟତା ଓ ଅଖଣ୍ଡ ରାଜଭକ୍ତିର ପୁଷ୍ପାଞ୍ଜଳି ଅର୍ପଣ କରୁଅଛି । ଜଗଦୀଶ୍ୱର ତାଙ୍କ ଉପରେ ଓ ତାଙ୍କର ଅର୍ଦ୍ଧଜଗଦ୍‌ବ୍ୟାପୀ ସାମ୍ରାଜ୍ୟ ଉପରେ କଲ୍ୟାଣ ବର୍ଷଣ କରନ୍ତୁ, ନରନ୍ତର ଏହି ପ୍ରାର୍ଥନା କରୁଅଛି ।

## ଉପସଂହାର

ଯେଉଁ ପରମ କାରୁଣିକ ପରମେଶ୍ୱରଙ୍କ ଅପାର କୃପାରୁ ଓଡ଼ିଆ ଭାଷାକୋଷର ପ୍ରକାଶ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସଂଗଠନ ଏକ ସଙ୍ଗରେ ପାଖାପାଖି ହୋଇ ଏ ପର୍ଯ୍ୟନ୍ତ ଅଗ୍ରସର ହୋଇଅଛି, ସେ ନିଶ୍ଚୟ ଏକର ପୂର୍ତ୍ତି ଓ ଅପରର ଉନ୍ନତ-ସୌକର୍ଯ୍ୟର ବ୍ୟବସ୍ଥା କରବେ ଏବଂ ତାଙ୍କର ସଦୟ ବ୍ୟବସ୍ଥା ଫଳରେ ସଭ୍ୟ-ଜଗତ୍ ସମକ୍ଷରେ ଓଡ଼ିଆ ଭାଷା ଓ ଓଡ଼ିଆ ଜାତି ଅଚିରେ ନଜ ନଜର ପ୍ରାପ୍ୟ ଗୌରବାବହ ସ୍ଥାନ ପ୍ରାପ୍ତ ହେବେ ।

## ଜଗତ୍‌କର୍ତ୍ତାଙ୍କ ପଦଦେଶରେ କୃତଜ୍ଞତା ଅଞ୍ଜଳି

ଶେଷରେ, ଯେଉଁ ମହତୋମହୀୟାନ୍ ମଙ୍ଗଳମୟ ଭଗବାନ୍ ମୋତେ ଓ ମୋର ଏହି ଭାଷାକୋଷକୁ ଏ ପର୍ଯ୍ୟନ୍ତ ଅଗ୍ରସର କରାଇ ଆଣିଅଛନ୍ତି, ଆଜ ତାଙ୍କର ପଦଦେଶରେ ମସ୍ତକ ଅବନତ କର ମୁଁ କୃତଜ୍ଞତା ଲୋତକଧୌତ ଅର୍ଘ୍ୟ ଅର୍ପଣ କର କୃତକୃତ୍ୟ ହେଉଅଛି । ମୋର ଦୁର୍ବଳତାରେ ସେ ମୋର ସହାୟ ହୁଅନ୍ତୁ ଓ ମୋର କ୍ଷୀଣ ବାହୁରେ ଶକ୍ତି ସଞ୍ଚାର କର ଏହି ଭାଷାକୋଷର ପୂର୍ତ୍ତି ସାଧନ କରାନ୍ତୁ । ତାଙ୍କର ଇଚ୍ଛା ପୂର୍ଣ୍ଣ ହେଉ ।

ଓଁ

ଶାନ୍ତିଃ ଶାନ୍ତିଃ ଶାନ୍ତିଃ

ଭାଷାକୋଷ ଆଶ୍ରମ, କଟକ, ଓଡ଼ିଶା, ୧୯୩୭ ଖ୍ରୀଷ୍ଟାବ୍ଦ, ମାର୍ଚ୍ଚ ମାସ

ଗୋପାଳଚନ୍ଦ୍ର ପ୍ରହରାଜ
ସଂଗ୍ରାହକ ଓ ଗ୍ରନ୍ଥକାର ।

## Co-workers.

ସହକର୍ମିଗଣ



Sj. Haris Chandra Baral, B. Sc., I. S. R. S.
Asst. Traffic Supdt. G. I. P. Ry. Bombay.
ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବରାଳ, ବି. ଏସ୍‌ସି.
ଜି. ଆଇ. ପି. ରେଲୱେ, ଆଃ ଟ୍ରାଫିକ୍
ସୁପରିଣ୍ଟେଣ୍ଡେଣ୍ଟ



Pandit Truptanarayan Thakur,
Head Pandit, Fawcus Vaisya Vidyalaya,
ପଣ୍ଡିତ ତୃପ୍ତନାରାୟଣ ଠାକୁର,
ହେଡ୍‌ପଣ୍ଡିତ, ଫକସ୍ ବୈଶ୍ୟ ବିଦ୍ୟାଳୟ, କଟକ ।



Babu Rameswar Jha,
Headmaster, Fawcus Vaisya Vidyalaya,
Cuttack.
ବାବୁ ରମେଶ୍ୱର ଝା,
ହେଡ୍‌ମାଷ୍ଟର, ଫକସ୍ ବୈଶ୍ୟ ବିଦ୍ୟାଳୟ, କଟକ ।



Babu Dinabandhu Rath, Athgarh.
ବାବୁ ଦୀନବନ୍ଧୁ ରଥ, ଅଠଗଡ଼ ।



Pandit Sures Chandra Jha
Teacher, Fawcus Vaisya Vidyalaya, Cuttack.
ପଣ୍ଡିତ ସୁରେଶ ଚନ୍ଦ୍ର ଝା
ଶିକ୍ଷକ, ଫକସ୍ ବୈଶ୍ୟ ବିଦ୍ୟାଳୟ, କଟକ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଧାନ ଗ୍ରନ୍ଥ, ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ :—

M. W.—ମନିଅର୍ ୱିଲିଅମ୍‌ସ୍‌ଙ୍କ କୃତ ସଂସ୍କୃତ-ଇଂରାଜୀ ଶବ୍ଦକୋଷ ।

କୀର୍ତ୍ତିକାର (Kirtikar)—ଡକ୍ଟର୍ କୀର୍ତ୍ତିକରଙ୍କର 'Indian Plants' ( ଭାରତୀୟ ଉଦ୍ଭିଦ ) ନାମକ ଗ୍ରନ୍ଥ ।

ଅପ୍ଟେ (Apte)—ପ୍ରୋଫେସର୍ ଅପ୍ଟେଙ୍କର Practical Sanskrit-English Dictionary, (ସଂସ୍କୃତ-ଇଂରାଜୀ ଅଭିଧାନ) ।

ବିମ୍‌ସ୍ (Beams)—Beams Comparative Grammar of four Indo-Aryan languages. ( ବିମ୍‌ସଙ୍କ ସଙ୍କଳିତ ଗୌଡ଼ ଭାଷାର ବ୍ୟାକରଣ ) ।

ଚେମ୍ବର୍ସ୍ (Chambers)—Chambers's Twentieth Century English Dictionary.

ପ୍ରୋଥେରୋ ( Prothero )—A short primer of Indian History by Mr. M. Prothero.

Haines—ହାଏନ୍‌ସ୍ ସାହେବଙ୍କ Botany of Bihar and Orissa ( ବିହାର-ଓଡ଼ିଶାର ଉଦ୍ଭିଦତତ୍ତ୍ୱ )

Howells—ପାଦ୍ରୀ ହଓ୍ୱେଲ୍‌ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।

Fallon—ଡକ୍ଟର୍ ଫାଲନଙ୍କର ହିନ୍ଦୁସ୍ଥାନୀ-ଇଂରାଜୀ ଶବ୍ଦକୋଷ ।

Sir George Greierson—Linguistic Survey of India. ( ଗ୍ରୀୟରସନ୍‌ଙ୍କ ଭାରତର ଭାଷାତତ୍ତ୍ୱ ) ।

Grundy—ପାଦ୍ରୀ ଗ୍ରଣ୍ଡି ସାହେବଙ୍କର ଓଡ଼ିଆ-ଇଂରାଜୀ ଶବ୍ଦକୋଷ ।

Sutton—ପାଦ୍ରୀ ସଟ୍ଟନ୍‌ଙ୍କ ସଂକଳିତ ଓଡ଼ିଆ ଅଭିଧାନ ।

ଗୋପୀନାଥ ନନ୍ଦ—ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

ବୈଜ୍ଞାନିକ ପରିଭାଷା—ବଙ୍ଗୀୟ ବିଜ୍ଞାନ ପରିଷଦ୍ ସଂକଳିତ ଇଂରାଜୀ-ବଙ୍ଗଳା ଗ୍ରନ୍ଥ ।

ଜଗନ୍ନାଥ ରାଓ—ଉତ୍କଳ ଅଭିଧାନ ।

ରାମନାରାୟଣ ଲାଲ୍—ଇଂରାଜୀ-ହିନ୍ଦୀ ଶବ୍ଦକୋଷ—The Student's practical English-Hindi Dictionary.

ଜ୍ଞାନେନ୍ଦ୍ର—ଜ୍ଞାନେନ୍ଦ୍ରମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନ ।

ବିଶ୍ୱକୋଷ—ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ ବଙ୍ଗଳା ବିଶ୍ୱକୋଷ, ପ୍ରଥମ ସଂସ୍କରଣ ।

ଯୋଗେଶଚନ୍ଦ୍ର—ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ସଂକଳିତ 'ବଙ୍ଗଳା ଶବ୍ଦକୋଷ' ।

ପ୍ରକୃତିବାଦ—ଶ୍ରୀଯୁକ୍ତ ରାମକମଳ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା 'ପ୍ରକୃତିବାଦ ଅଭିଧାନ' ।

ହିନ୍ଦୀ ଶବ୍ଦସାଗର—କାଶୀ ନାଗରୀ ପ୍ରଚାରିଣୀ ସଭାଙ୍କ ପ୍ରକାଶିତ 'ହିନ୍ଦୀ ଶବ୍ଦସାଗର' ବା ହିନ୍ଦୀ ଭାଷାର ବୃହତ୍ କୋଷ ।

ସୁବଳଚନ୍ଦ୍ର—ସୁବଳଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।

ଗାଙ୍ଗୁଲି—The Stundent's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ) ।

ଦ୍ରବ୍ୟଗୁଣ—କବିରାଜ ଦେବେନ୍ଦ୍ରନାଥ ଓ ଉପେନ୍ଦ୍ରନାଥ ସେନ୍ ଗୁପ୍ତଙ୍କ ବଙ୍ଗଳା 'ଦ୍ରବ୍ୟଗୁଣ' ।

ସମର୍ଥକୋଷ—ରାଜା ରାଧାକାନ୍ତ ଦେବଙ୍କଦ୍ୱାରା ପ୍ରକାଶିତ 'ସମର୍ଥକୋଷ' ଅଭିଧାନ ।

ପ୍ରାଚୀନ ଉତ୍କଳ—ଶ୍ରୀ ଜଗବନ୍ଧୁ ସିଂହଙ୍କ ସଂକଳିତ ପ୍ରାଚୀନ ଉତ୍କଳ ।

ଶବ୍ଦକଳ୍ପଦ୍ରୁମ—ବଙ୍ଗାକ୍ଷରରେ ମୁଦ୍ରିତ ସଂସ୍କୃତ ଅଭିଧାନ ।

ଚଳନ୍ତିକା—ଶ୍ରୀଯୁକ୍ତ ରାଜଶେଖର ବସୁଙ୍କ କୃତ ବଙ୍ଗ ଭାଷାର ସଂକ୍ଷିପ୍ତ ଅଭିଧାନ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ଶିଷ୍ଟପ୍ରୟୋଗର ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ ।

( ଦ୍ରଷ୍ଟବ୍ୟ—ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି )

ଅଚ୍ୟୁତ, ଅଚ୍ୟୁତାନନ୍ଦ—କଟକ ଜିଲ୍ଲାର ନେମାଳ ଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ ।

ଅଜୟଚନ୍ଦ୍ର—ସ୍ୱର୍ଗୀୟ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ।

ଅଭିମନ୍ୟୁ—ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର ।

ଅଲଙ୍କାର ତରଙ୍ଗିଣୀ—ପଣ୍ଡିତ କୁଳମଣି ଦାଶଙ୍କ ସଂକଳିତ ଅଲଙ୍କାର ଗ୍ରନ୍ଥ ।

ଆଶା—ଶ୍ରୀ ଶଶିଭୂଷଣ ରଥଙ୍କ ସମ୍ପାଦିତ ସାପ୍ତାହିକ ଓ ଦୈନିକ ପତ୍ରିକା ।

ଉତ୍କଳ-ସାହିତ୍ୟ—ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ପ୍ରତିଷ୍ଠିତ ମାସିକ ପତ୍ରିକା ।

କବିସୂର୍ଯ୍ୟ—ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ ।

କୁନ୍ତଳା; କୁନ୍ତଳାକୁମାରୀ—ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।

କୁଳମଣି—ପଣ୍ଡିତ ଶ୍ରୀ କୁଳମଣି ଦାଶ ।

କୃପାସିନ୍ଧୁ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ।

କୃଷ୍ଣସିଂହ—ଧରାକୋଟର ପ୍ରାଚୀନ ରାଜା ।

ଗଙ୍ଗାଧର—ସ୍ୱର୍ଗୀୟ କବି ଗଙ୍ଗାଧର ମେହେର ।

ଗଡ଼ଜାତବାସିନୀ—ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ରିକା ।

ଗୋପାଳକୃଷ୍ଣ—ଗଞ୍ଜାମର ପ୍ରାଚୀନ କବି ।

ଗୋଲୋକ—ଅଧୁନା ପ୍ରକାଶିତ କାବ୍ୟ ଇନ୍ଦୁଲେଖାର କବି ।

ଚକଡ଼ି—ରାଜାସାହେବ ଚକଡ଼ି ।

ଚନ୍ଦ୍ରମଣି—ଶ୍ରୀଯୁକ୍ତ ଚନ୍ଦ୍ରମଣି ଅଗ୍ରୱାଲ ।

ଚନ୍ଦ୍ରମଣି—କବି ଚନ୍ଦ୍ରମଣି ମହାନ୍ତି ।

ଜଗନ୍ନାଥ—ଓଡ଼ିଆ ଭାଗବତକାର ଭକ୍ତକବି ଜଗନ୍ନାଥ ଦାଶ ।

ଜଗବନ୍ଧୁ—ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।
ତାରଣୀ—ସ୍ୱର୍ଗୀୟ ତାରଣୀଚରଣ ରଥ ।
ତୁଳସୀ-ବିକ୍ରମ—ଜୟପୁରର ମହାରାଜା ବିକ୍ରମଦେବଙ୍କ କୃତ ତୁଳସୀ ଦାସଙ୍କ ହିନ୍ଦୀ ରାମାୟଣ ଅଯୋଧ୍ୟାକାଣ୍ଡର ପଦ୍ୟାନୁବାଦ ।
ଦାଶରଥି—ପ୍ରାଚୀନ କବି ଦାଶରଥି ଦାସ ।
ଦୀନକୃଷ୍ଣ—ଭକ୍ତକବି ଦୀନକୃଷ୍ଣ ଦାସ ।
ଦୈନିକ ଆଶା—ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା ।
ନନ୍ଦକିଶୋର—ସ୍ୱର୍ଗୀୟ କବି ନନ୍ଦକିଶୋର ବଳ ।
ନବଭାରତ—ଶ୍ରୀଯୁକ୍ତ ନୀଳକଣ୍ଠ ଦାସଙ୍କ ପ୍ରତିଷ୍ଠିତ ଓଡ଼ିଆ ମାସିକ ପତ୍ରିକା
ନାରାୟଣ—କବି ନାରାୟଣ ଦାସ ( ହରିବଂଶ ) ।
ନୀଳକଣ୍ଠ—ନୀଳକଣ୍ଠ ଦାସ ( ପିଲାଙ୍କ ରାମାୟଣ ) ।
ନୀଳମଣି—ସ୍ୱର୍ଗୀୟ ପଣ୍ଡିତ ନୀଳମଣି ମିଶ୍ର ।
ପଞ୍ଚାମୃତ—କଟକ ଷ୍ଟ୍ରେଓଟଙ୍ଗ୍ କମ୍ପାନୀଙ୍କ ପ୍ରକାଶିତ ଶିଶୁ ପତ୍ରିକା ।
ପୀତାମ୍ବର—କବି ପୀତାମ୍ବର ଦାସ ( ନୃସିଂହ ପୁରାଣ ) ।
ପୀତାମ୍ବରୀ—ଶ୍ରୀମତୀ ପୀତାମ୍ବରୀ ଦେବୀ ।
ପ୍ରଭାପ—ପ୍ରାଚୀ ସମିତି ପ୍ରକାଶିତ ଶଶିସେଣା ।
ପ୍ରାଚୀ—କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା ।
ପ୍ୟାରୀମୋହନ—ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ (ଇତିହାସ) ।
ଫକୀର; ଫକୀରମୋହନ—ସ୍ୱର୍ଗୀୟ ଫକୀରମୋହନ ସେନାପତି ।
ବଳରାମ—ପ୍ରାଚୀନ କବି ବଳରାମ ଦାସ ( ରାମାୟଣ ) ।
ବି. କେ. ପୁ—ବିଷ୍ଣୁ କେଶରୀ ପୁରାଣ ।
ବାଇବେଲ—ବାଇବେଲ ମହାପାଣ୍ଡ ଜ୍ୟୋତିଷ ତତ୍ତ୍ୱବିନୋଦଙ୍କ ଜ୍ୟୋତିଃସାର ଗ୍ରନ୍ଥାବଳୀ ।
ବିଜୟଚନ୍ଦ୍ର—ପ୍ରୋଫେସର୍ ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ।
ବିନାୟକ—ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ।
ବିଶ୍ୱନାଥ—ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ରରାମାୟଣ) ।
ବିଶ୍ୱନାଥ ବାବା—ମହିମା ଧର୍ମ ପ୍ରତିପାଦକ ଅନେକ ଗ୍ରନ୍ଥର, ରଚୟିତା ମହିମା ଧର୍ମ ପ୍ରଚାରକ ଅବଧୂତ ବିଶ୍ୱନାଥ ବାବା ।
ବିଷ୍ଣୁ କେଶରୀ ପୁରାଣ—ପ୍ରାଚୀ ଗ୍ରନ୍ଥମାଳା ।

ବ୍ରଜନାଥ—ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ ।
ଭକ୍ତଦାସ, ଭକ୍ତଚରଣ—ପ୍ରାଚୀନ କବି ଭକ୍ତଚରଣ ଦାସ ।
ଭଞ୍ଜ—କବି ଉପେନ୍ଦ୍ର ଭଞ୍ଜ ।
ଭୀମଭୋଇ—ନିରାକାର ଭଜନାଦିର ରଚୟିତା ଅନ୍ଧକବି ଭୀମ ।
ଭୀମା—ଭୀମା ଧୀବର (କପଟପାଶା) ।
ଉକାଶଚରଣ—ରାୟ ସାହେବ ଶ୍ରୀ ଉକାଶଚରଣ ପଟ୍ଟନାୟକ ।
ଭୂପତି—ପ୍ରାଚୀ ଗ୍ରନ୍ଥମାଳାର କବି ଭୂପତି ପ୍ରଣୀତ ପ୍ରେମପଞ୍ଚାମୃତ ।
ମଦନମୋହନ—ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ (ତୀର୍ଥଦର୍ଶନ) ।
ମହାଦେବ—ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ) ।
ମଧୁସୂଦନ—ଭକ୍ତକବି ସ୍ୱର୍ଗୀୟ ମଧୁସୂଦନ ରାଓ ।
ଯଶୋବନ୍ତ—ପ୍ରାଚୀନ କବି ଯଶୋବନ୍ତ ସିଂହ ।
( ପ୍ରେମଭକ୍ତି ବ୍ରହ୍ମଗୀତା )
ରାଜକିଶୋର—ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ।
ରାଧାନାଥ—କବିବର ସ୍ୱର୍ଗୀୟ ରାଧାନାଥ ରାୟ ।
ରାଧାମୋହନ—ଟିକିଟର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।
ରାଧାଚରଣ—ଡାକ୍ତର ରାଧାଚରଣ ପଣ୍ଡା ।
ରାମଦାସ—ପ୍ରାଚୀନ କବି ରାମଦାସ (ଦାର୍ଢ୍ୟତାଭକ୍ତି) ।
ରାମଶଙ୍କର—ସ୍ୱର୍ଗୀୟ ରାୟବାହାଦୁର ରାମଶଙ୍କର ରାୟ ।
ଶିଶୁଶଙ୍କର—ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) ।
ସତ୍ୟସମାଚାର—କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।
ସମାଜ—କଟକରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର ।
ସହକାର—ଶ୍ରୀ ବାଳକୃଷ୍ଣ କରଙ୍କ ସମ୍ପାଦିତ ମାସିକ ପତ୍ରିକା ।
ସାରଳା—ପ୍ରାଚୀନ କବି ସାରଳା ଦାସ (ମହାଭାରତ) ।
ସୁବଳ ଦେବ—ବାମଣ୍ଡାର ରାଜା ସ୍ୱର୍ଗୀୟ ରାଜା ସର୍ ବାସୁଦେବ ସୁବଳ ଦେବ ।
ସୋନପୁର—ସୋନପୁର ମହାରାଜା ସର୍ ବୀରମିତ୍ରୋଦୟ ସିଂହ ଦେବ ଧର୍ମନିଧି, ଜ୍ଞାନଗୁଣାକର, K. C. I. E. ।
ହରେକୃଷ୍ଣ—କବିରାଜ ହରେକୃଷ୍ଣ ମିଶ୍ର ।
ହି. ଶ—କାଶୀନାଗରୀପ୍ରଚାରିଣୀ ସଭାସଙ୍କଳିତ ହିନ୍ଦୀ ଶବ୍ଦସାଗର ।

ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ ।

LETTERS & SOUNDS USED IN THE ENGLISH TRANSLITERATION OF THE ORIYA WORDS IN THIS WORK.

| ଓଡ଼ିଆ ଅକ୍ଷର | Capital | Small | ଓଡ଼ିଆ ଅକ୍ଷର | Capital | Small. |
|---|---|---|---|---|---|
| ଅ | A | a | ଋ | Ṛu | ṛu |
| ଆ | Ā | ā | ୠ | Ṛū | ṛū |
| ଇ | I | i | ଌ | Ḷu | ḷu |
| ଈ | Ī | ī | ଏ | E | e |
| ଉ | U | u | ଐ | A̱i | a̱i |
| ଊ | Ū | ū | ଓ | O | o |

## Well-wishers in heaven.

ସ୍ୱର୍ଗତ ମଙ୍ଗଳ କାମିଗଣ ।



The late Visvanath Kar

ସ୍ୱର୍ଗତ ବିଶ୍ୱନାଥ କର ।



The late Pandit Nilamani Misra
of Jajpur

ସ୍ୱର୍ଗତ ନୀଳମଣି ମିଶ୍ର, ଯାଜପୁର ।



My daughter, the late Labanyabati Debi.

ମୋ ସ୍ୱର୍ଗତା କନ୍ୟା, ଶ୍ରୀମତୀ ଲାବଣ୍ୟବତୀ ଦେବୀ ।

| ଓଡ଼ିଆ ଅକ୍ଷର | Capital | Small |
|---|---|---|
| ଔ | Au | au |
| ଂ (ଅନୁସ୍ୱାର) | — | ṁ |
| ଃ (ବିସର୍ଗ) | — | ḥ |
| ଁ (ଚନ୍ଦ୍ରବିନ୍ଦୁ) | — | ñ |
| କ | K | k |
| ଖ | Kh | kh |
| କ୍ଷ | Ksh | ksh |
| ଗ | G | g |
| ଘ | Gh | gh |
| ଙ | Ṅ | ṅ |
| ଚ | Ch | ch |
| ଛ | Chh | chh |
| ଜ | J | j |
| ଝ | Jh | jh |
| ଞ | N̄ | n̄ |
| ଟ | Ṭ | ṭ |
| ଠ | Ṭh | ṭh |
| ଡ | Ḍ | ḍ |
| ଡ଼ | — | rḍ |
| ଢ | Ḍh | ḍh |
| ଢ଼ | — | rḍh |

| ଓଡ଼ିଆ ଅକ୍ଷର | Capital | Small |
|---|---|---|
| ଣ | Ṇ | ṇ |
| ତ | T | t |
| ଥ | Th | th |
| ଦ | D | d |
| ଧ | Dh | dh |
| ନ | N | n |
| ପ | P | p |
| ଫ | Ph | ph |
| ବ | B | b |
| ଭ | Bh | bh |
| ମ | M | m |
| ଯ | J̄ | j̄ |
| ୟ | Y | y |
| ର | R | r |
| ଳ | L̤ | l̤ |
| ଲ | L | l |
| ଅବର୍ଗ୍ୟ ବ ବା ୱ | W | w |
| ଶ | Ś | ś |
| ଷ | Sh | sh |
| ସ | S | s |
| ହ | H | h |

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ ।

## ABBREVIATIONS USED IN THIS WORK WITH THEIR MEANINGS.

ଅ = ଅବ୍ୟୟ ପଦ ।

ଅଦାଲତ = ଅଦାଲତଅଦ୍ଦରେ ବ୍ୟବହୃତ ଶବ୍ଦ ।

+ଅଧିକରଣ = ଅଧିକରଣ ବାଚ୍ୟରେ ପ୍ରତ୍ୟୟ ।

+ଅନ୍ୟରୂପ = ଉପର୍ଯ୍ୟୁକ୍ତ ଶବ୍ଦର ଭିନ୍ନରୂପ ।

+ଅପାଦାନ = ଅପାଦାନ ବାଚ୍ୟରେ ପ୍ରତ୍ୟୟ ।

ଅଶୁଦ୍ଧ = କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ ବା ଉଚ୍ଚାରଣ ।

ଆ = ଆରବୀ ଭାଷା ।

ଆଇନ୍ = ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।

ଇଂ = ଇଂରାଜୀ ଭାଷା ।

ଇତର = ଇତରଜନ ବ୍ୟବହୃତ ଶବ୍ଦ ବା ଭାଷା ।

ଇଟା = ଇଟାଲୀୟ ଭାଷା ।

ଇତ୍ୟାଦି = ପୂର୍ବବର୍ତ୍ତୀ ଶବ୍ଦ ଓ ସେହି ଶବ୍ଦ ସଙ୍ଗେ ବ୍ୟବହୃତ ଅନ୍ୟ ଶବ୍ଦମାନ ।

ଉ; ଉର୍ଦ୍ଦୁ = ଉର୍ଦ୍ଦୁ ଭାଷା ।

ଏକାର୍ଥକ ସହଚର = ପୂର୍ବ ଶବ୍ଦ ସଙ୍ଗେ ଏକାର୍ଥରେ ବା ସମାନାର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।

ଓ = ଓଡ଼ିଆ ଭାଷା ।

କଚେରୀ = କଚେରି ଓ ଜମିଦାରୀ ଓ ମହାଜନୀ ସିରସ୍ତା ଅଦ୍ଦରେ ଓ ଅଶିକ୍ଷିତ ଦଲିଲ ଲେଖାଳିଙ୍କ ବ୍ୟବହୃତ ଶବ୍ଦ ବା ଭାଷା ।

କନ୍ଧ, କୁଇ = କନ୍ଧମାନଙ୍କ ବ୍ୟବହୃତ ଭାଷା ।

+କରଣ = କରଣ ବାଚ୍ୟରେ ପ୍ରତ୍ୟୟ ।

+କର୍ତ୍ତୃ = କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ ।

+କର୍ମ = କର୍ମ ବାଚ୍ୟରେ ପ୍ରତ୍ୟୟ ।

କର୍ମଧା = କର୍ମଧାରୟ ସମାସ ।

କୋହ୍ଲ = କୋହ୍ଲ ଭାଷା ।

କ୍ରି = କ୍ରିୟାପଦ ।

କ୍ରି. ବିଣ = କ୍ରିୟା ବିଶେଷଣ ।

ଖ୍ରୀ = ଖ୍ରୀଷ୍ଟାବ୍ଦ ।

ଖ୍ରୀ. ପୂ = ଖ୍ରୀଷ୍ଟ ଜନ୍ମର ପୂର୍ବାବ୍ଦ ।

ଗଣିତ = ଗଣିତଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଗାଳି = ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ ।
ଗୁ = ଗୁଜରାଟୀ ଭାଷା ।
ଗ୍ରା, ଗ୍ରାମ୍ୟ = ଗ୍ରାମ୍ୟ ବ୍ୟବହାର; ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟ ଶବ୍ଦ ।
ଗ୍ରୀ, ଗ୍ରୀକ୍ = ଗ୍ରୀକ୍‌ଭାଷା ।
ଜର୍ମାନ୍ = ଜର୍ମାନ୍ ଭାଷା ।
ଜ୍ୟୋତିଷ = ଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ତତ୍ = ତତ୍ପୁରୁଷ ସମାସ ।
ତା = ତାମିଲ ଭାଷା ।
ତୁର୍କୀ = ତୁରସ୍କଦେଶୀୟ ଭାଷା ।
ତୁଳ = ଅଲୋଚିତ ବିଷୟକୁ ବା ଶବ୍ଦକୁ ପରବର୍ତ୍ତୀ ବିଷୟ ବା ଶବ୍ଦ, ସଙ୍ଗେ ତୁଳନା କର ।
ତେ = ତେଲଗୁ ଭାଷା ।
ଦର୍ଶନ = ଦର୍ଶନ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଦେ = ଦେଶଜ ଶବ୍ଦ ।
ଦେଖ = ଏ ଭାଷାକୋଷର ଶବ୍ଦକ୍ରମରେ ପୂର୍ବବର୍ତ୍ତୀ ଶବ୍ଦକୁ ଯଥାସ୍ଥାନରେ ଖୋଜ ।
ଦ୍ର = ଦ୍ରଷ୍ଟବ୍ୟ ।
ଦ୍ରା = ଦ୍ରାବିଡ଼ ଭାଷା ।
ଧା; ଧାତୁ = ସଂସ୍କୃତ ଧାତୁ ।
ଧ୍ୱନ୍ୟନୁକରଣ = ଧ୍ୱନିଅନୁକରଣରେ କଥିତ ବା ଉଚ୍ଚାରିତ ବା ଅର୍ଥସୂଚନାକାରୀ ଶବ୍ଦ ।
ଧ୍ୱନ୍ୟନୁକାରୀ ସହଚର = ପୂର୍ବ ଶବ୍ଦର ଧ୍ୱନି ଯୁକ୍ତ ସହଚର ଶବ୍ଦ ବା ଶବ୍ଦାଂଶ ।
ନଞ୍ ତତ୍—ନଞ୍ ତତ୍ପୁରୁଷ ସମାସ ।
ନପୁଂ. = ନପୁଂସକ ଲିଙ୍ଗ ।
ନାଟକ, ନାଟକୀୟ = ନାଟକରେ ବ୍ୟବହୃତ ଭାଷା ବା ଶବ୍ଦ ।
ନାମ = ସ୍ଥାନ ବା ବ୍ୟକ୍ତିବିଶେଷଙ୍କ ନାମ ।
ନିରର୍ଥକ ସହଚର = ପୂର୍ବ ଶବ୍ଦ ସଙ୍ଗେ ବ୍ୟବହୃତ ଅର୍ଥହୀନ ସହଚର ଶବ୍ଦ ।
ନୋଟ୍ = ଅଲୋଚିତ ଶବ୍ଦ ବିଷୟରେ ଟୀକା ।
ନ୍ୟାୟ = ୧. ନ୍ୟାୟଶାସ୍ତ୍ର; ୨. ଦେଶପ୍ରଚଳିତ ନ୍ୟାୟ ବା ଦୃଷ୍ଟାନ୍ତ ବିଷୟିବା ପ୍ରାମାଣିକ ଉକ୍ତି ।
ପଦ୍ୟ = କେବଳ ପଦ୍ୟରେ ବ୍ୟବହୃତ ଆକାର ।
ପର୍ତ୍ତୁ(ର୍ତ୍ତୁ) = ପର୍ତ୍ତୁ(ର୍ତ୍ତୁ)ଗୀଜ୍ ଭାଷା ।
ପା = ପାଲି ଭାଷା ।
ପୁଂ = ପୁଂଲିଙ୍ଗ ।
ପ୍ରା = ପ୍ରାକୃତ ଭାଷା ।
ପ୍ରାଚୀନ = ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ ଶବ୍ଦ ।
ଫା = ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା ।
ବ = ବଚନ; ( ୧ବ = ଏକବଚନ; ୨ବ = ଦୁଇବଚନ; ବହୁ ବ = ବହୁବଚନ । )
ବ = ବଙ୍ଗଳା ଭାଷା
ବି = ବିଶେଷ୍ୟ ପଦ ।

ବିଜ୍ଞାନ ପରିଭାଷା = ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ବିଣ = ବିଶେଷଣ ପଦ ।
ବିଣର ବିଣ = ବିଶେଷଣର ବିଶେଷଣ ।
ବିପରୀତ = ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ ।
ବୈଦେ = ବୈଦେଶିକ ଭାଷା (ଯଥା—ଇଂରାଜୀ, ଆରବୀ, ଫାରସୀ, ଫ୍ରେଞ୍ଚ୍, ଜର୍ମାନ୍)ରୁ ଆଗତ ବା ଗୃହୀତ ଶବ୍ଦ ।
ବୈଦ୍ୟକ = ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ ।
ଭଞ୍ଜ; ଭଞ୍ଜୀ; ଭଞ୍ଜଭୂ = ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ କୋଣ୍ଡଏ ହଜାର କୃଷିଜୀବୀ ଲୋକଙ୍କ କଥିତ ଭାଷା ।
+ଭାବ = ୧. ଭାବାର୍ଥ ପ୍ରତ୍ୟୟ ।
୨. ଭାବ ବାଚ୍ୟରେ ପ୍ରତ୍ୟୟ ।
ଭିନ୍ନାର୍ଥକ ବା ବିପରୀତାର୍ଥ ସହଚର = ପୂର୍ବ ଶବ୍ଦ ସଙ୍ଗେ ପୃଥକ୍ ବା ବିପରୀତ ଅର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।
ମ = ମରହଟ୍ଟୀ ଭାଷା ।
ମ. ପ. ଲୋ = ମଧ୍ୟପଦଲୋପୀ କର୍ମଧାରୟ ।
ଯଥା = ପୂର୍ବୋକ୍ତ ଶବ୍ଦର, ଅର୍ଥର ବା ପ୍ରୟୋଗର ଉଦାହରଣ ।
ଲକ୍ଷଣାର୍ଥ = ଶବ୍ଦର ଆରୋପିତ ଅର୍ଥ ।
ଲରିଆ = ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା ।
ଶିଶୁବଚନ, ଶିଶୁଗୀତ, ଶିଶୁରଞ୍ଜନ = ଶିଶୁମାନଙ୍କ ମନୋରଞ୍ଜନାର୍ଥ ବୋଲାଯିବା ବା ଶିଶୁମାନଙ୍କ ଉଚ୍ଚାରିତ ବଚନ ବା ପଦ ।
ସଂ = ସଂସ୍କୃତ ଭାଷା ।
ସଙ୍ଗୀତ, ପ୍ରାଚୀନ ସଙ୍ଗୀତ—ପ୍ରାଚୀନ ଓଡ଼ିଆ ସଙ୍ଗୀତ ।
+ସଂଜ୍ଞାର୍ଥ = ସଂଜ୍ଞାର୍ଥ ପ୍ରତ୍ୟୟ ।
+ସମ୍ବନ୍ଧ = ସମ୍ବନ୍ଧାର୍ଥ ପ୍ରତ୍ୟୟ ।
ସର୍ବ = ସର୍ବନାମ ପଦ ।
ସହଚର = ମୂଳ ଶବ୍ଦର ସହଚର ଶବ୍ଦରୂପେ ତାହାର ସଙ୍ଗେ ବା ପରେ ବ୍ୟବହୃତ ଶବ୍ଦ ।
ସାନ୍ତାଳୀ = ସାନ୍ତାଳମାନଙ୍କ କଥିତ ଭାଷା ।
ସ୍ତ୍ରୀ = ସ୍ତ୍ରୀଲିଙ୍ଗ ।
+ସ୍ୱାର୍ଥେ = ଶବ୍ଦର ମୌଳିକ ଅର୍ଥରେ ଯୁକ୍ତ ପ୍ରତ୍ୟୟ ।
ହି = ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା ।
ହେବ୍ରୁ = ହେବ୍ରୁ ଭାଷା ।

୧ବ = ଏକବଚନ
୧ମ = ପ୍ରଥମ
୧ମା = ପ୍ରଥମା ବିଭକ୍ତି ।
୨ବ = ଦ୍ୱିବଚନ ।
୨ୟ = ଦ୍ୱିତୀୟ
୨ୟା = ଦ୍ୱିତୀୟା ବିଭକ୍ତି ।
୩ୟ = ତୃତୀୟ
୩ୟା = ତୃତୀୟା ବିଭକ୍ତି ।
୪ର୍ଥ = ଚତୁର୍ଥ
୪ର୍ଥୀ = ଚତୁର୍ଥୀ ବିଭକ୍ତି ।

୫ମୀ = ପଞ୍ଚମୀ ବିଭକ୍ତି ।
୬ଷ୍ଠୀ = ଷଷ୍ଠୀ ବିଭକ୍ତି ।
୭ମୀ = ସପ୍ତମୀ ବିଭକ୍ତି ।
ବହୁବ = ବହୁବଚନ ।
+(ଯୁକ୍ତ) = ପରସ୍ପର ଯୁକ୍ତ ଶବ୍ଦ ବା ଧାତୁ ପ୍ରତ୍ୟୟର ଯୁକ୍ତ ହେବା ଚିହ୍ନ ।
= (ସମାନ) = ଧାତୁ ପ୍ରତ୍ୟୟ ବା ଦୁଇ ପଦ ମିଶି ନିଷ୍ପନ୍ନ ଶବ୍ଦ ।
—(ଡ୍ୟାସ) = ଦୁଇଟି ଶବ୍ଦ ବା ଶବ୍ଦ ଓ ଅର୍ଥ ବା ଦୁଇ ଭାବ ମଧ୍ୟରେ ସମ୍ବନ୍ଧଜ୍ଞାପକ ଚିହ୍ନ ।
Etc. = The words following
Law = Legal term.

## Well-wishers of the work.

ଏ ଗ୍ରନ୍ଥର ମଙ୍ଗଳକାମିଦ୍ୱୟ ।



Rai Sahib Nagendra Nath Vasu, Editor, The Bengalee Viswakosha

ବଙ୍ଗଳା ବିଶ୍ୱକୋଷର ସମ୍ପାଦକ

ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ରାୟ ସାହେବ ଶ୍ରୀ ନଗେନ୍ଦ୍ରନାଥ ବସୁ ।



Srijut Sashibhusan Rath,

Editor, The New Orissa and the Asha, Berhampur.

ଶ୍ରୀଯୁକ୍ତ ଶଶିଭୂଷଣ ରଥ

ସମ୍ପାଦକ, ଆଶା ଓ ନର୍ଥ ଓଡ଼ିଶା, ବ୍ରହ୍ମପୁର ।

# ପୂର୍ଣ୍ଣଚନ୍ଦ୍ର

# ଓଡ଼ିଆ ଭାଷାକୋଷ ।

## ଫ

ଫ—ବ୍ୟଞ୍ଜନ ବର୍ଣ୍ଣମାଳାର ଦ୍ୱାବିଂଶ ବର୍ଣ୍ଣ । ଏଥିର ଉଚ୍ଚାରଣ ସ୍ଥାନ ଓଷ୍ଠ ।
Pha ମିଳିତ ଓଷ୍ଠଦ୍ୱୟ ପ୍ରଶ୍ୱାସର ଶକ୍ତିଦ୍ୱାରା ମେଲା ହେଲେ ଏ ଧ୍ୱନି
फ ଉଚ୍ଚାରିତ ହୁଏ—The 22nd consonant corres-
ফ ponding to 'ph' or 'f'.

ସଂ. ବି—(ସ୍ଫାୟୃ ଧାତୁ=ପ୍ରବଳ ହେବା+ଅ)—

୧ । (+ଭାବ. ଅ) ସ୍ଫୀତି; ଫୁଲି ଉଠିବା—
1. Swelling; expansion

୨ । (+କର୍ତ୍ତୃ. ଅ) ଝଞ୍ଜାବାତ; ଝଟିକା; ଝଡ଼—
2. Tempest; gale.

୩ । (+ଭାବ. ଅ) ଜୃମ୍ଭଣ; ହାଇ—3 Yawning.

୪ । ଫଳବତ୍ତା; ଉର୍ବରତା—
4. Fruitfulness; fertility.

୫ । (ଫକ୍କ୍ ଧାତୁ=ବିକଳ ହେବା+ଭାବ ବା କରଣ, ଅ)—
କଟୁଭାଷଣ; କର୍କଶ ବାକ୍ୟ—5. Harsh speech.

୬ । ଫୁତ୍କାର; ଫୁଙ୍କିବା—
6. Blowing air through the mouth; whiffing.

୭ । ନିଷ୍ଫଳ ବା ନିରର୍ଥକ ବାକ୍ୟ—
7. Nonsensical words.

ଫଇ(ଏ)ଜ(ଜ୍ଜ)ତ(ତି)—ବୈଦେ. ବି (ଅ. ଫଜୀହତ୍)—୧ । କଳଙ୍କ;
Phai(e)ja(jja)ta(ti) ଅପଯଶ—1. Blame; scandal.
फइजत; फैजत ୨ । ଲାଞ୍ଛନା; ଅପମାନ—2. Disgrace.
**फजीहत, फईजत** ୩ । ଝଗଡ଼ା; ବିବାଦ; କଳି—3. Quarrel.

ଫେଜ(ଜ)ତ(ତି) }
ଫଜି(ଜ୍ଜି)ତ(ତି) }
ଫଜିଯୃତ(ତି) }
ଫଜ୍ୟତ(ତି) }
୪ । ଗାଳି; ଶୋଧନ—
4. Rebuke; scolding; reproach.

ବିଣ—୧ । ଗାଳି ଖାଇବାର ଯୋଗ୍ୟ; ନିନ୍ଦ୍ୟ—1. Blameable; deserving rebuke.

୨ । ତିରସ୍କୃତ—2. Rebuked.

ଫଇଜତ(ତି) କରିବା—ଦେ. କ୍ରି—ଗାଳିମନ୍ଦ କରିବା—
Phaijata(ti) kariba To scold; to rebuke.
फइजतकरना **फजीहत करना** (ଫଇଜତ ଦେବା—ଅନ୍ୟରୂପ)

ଫଇଜତ ଖାଇବା—ଦେ. କ୍ରି—ଗାଳି ଖାଇବା—To be rebuked.
Phaijata khāibā (ଫଇଜତ ପାଇବା—ଅନ୍ୟରୂପ)

ଫଇ(ଏ)ଲ୍—ବୈଦେ. ବି—(ଫା. ଫଏଲ୍)—ଦୁଷ୍ଟାମି—
Phai(e)l दुष्टामी **फैल** Wickedness.
ଫଏଲବାଜ } ଅନ୍ୟରୂପ
ଫେଲ୍ }
ପ୍ରାଦେ. (ସମ୍ବଲପୁର) ବିଣ—(ସଂ. ସ୍ଫାୟୃ ଧାତୁ)—ଚତୁର୍ଦ୍ଦିଗରେ ବିସ୍ତୃତ—
Scattered; diffused.

ଫଇଲ୍ କାଢ଼ିବା—ଦେ. କ୍ରି—ଦୁଷ୍ଟାମି କରିବା—
Phail kārdhibā To show wickedness.
दुष्टामीकरना **फैल निकालना**

ଫଇ(ଏ)ଲ୍ ବାଜ୍—ବୈଦେ. ବିଣ. (ଫା)—ଦୁଷ୍ଟ—Wicked;
Pha(e)l bāj दुष्ट **फैलबाज** vicious.
(ଫେଲ୍‌ବାଜ୍—ଅନ୍ୟରୂପ) [ଫଇ(ଏ)ଲ୍ ବାଜୀ—ବି]

ଫଇଲାଟ—ପ୍ରାଦେ. (ସିଂହଭୂମ) ବି. (ତୁଳ. ଏହି ଅର୍ଥରେ ହି. ଫଇଲାଟ୍)-
Phailāṭa ଖୋଲାସ୍ଥାନ; ଫଇସଲା ସ୍ଥାନ—Open; open space.
(ଫେଲାଟ—ଅନ୍ୟରୂପ)

ଫଇ(ଏ)ସଲ(ଲା)—ବୈଦେ. ବି—(ଫା. ଫେସଲ୍)—୧ । ନିଷ୍ପତ୍ତି;
Phai(e)sala(lā) ମୀମାଂସା—1 Decision.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧି' ନ ପାଇଲେ 'ବଧ୍' ଦେଖିବେ; ଆଙ୍ଗିଆ ନ ପାଇଲେ 'ଆଙ୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍ବତ୍' ଦେଖିବେ ।

ଫୟସଲ(ଲା) ୨ । କାର୍ଯ୍ୟ ସମାପ୍ତି—2. Completion of work.
ফৈসলা(লা) ৩ । ମକଦ୍ଦମାର ଚୂଡ଼ାନ୍ତ ଆଦେଶ; ଡିଗ୍ରୀ—
ଫୟସଲ(ଲ୍ଲ) } ଅନ୍ୟରୂପ 3 Decree of a suit.
ଫୈସଲ(ଲ୍ଲ) ୪ । ଅନାବୃତ ସ୍ଥାନ—
4. Open place.

୫ । ମକଦ୍ଦମାର ବିଚାର ଫଳ; ରାୟ—5. Judgment
ବିଣ—୧ । ମୀମାଂସିତ—1. Decided.
୨ । ଅନାବୃତ (ସ୍ଥାନ)—2. Open.
୩ । ଫାଙ୍କା ବା ଶୂନ୍ୟ (ସ୍ଥାନ)— 3. Empty (space).
୪ । ବିସ୍ତୀର୍ଣ୍ଣ; ଲମ୍ବା ଚଉଡ଼ା—4. Spacious.
(ଯଥା— ସେଠାରେ ଫଇସଲ୍ଲ ଜାଗା ନାହିଁ)
ଗ୍ରା. ବି— ବଡ଼ଭୋର; ଫସର ଫାଟିବା ଅବସ୍ଥା—
Day-break.

**ଫଉଜ(ଦ)**—ବୈଦେ. ବି (ଫା) —୧ । ସୈନ୍ୟ—
Phauja(da) 1. Army; host.
[ଫୌଜ(ଦ)—ଅନ୍ୟରୂପ] ଫଉଜ ଭୁଲେ ଲୁଣ୍ଠିବାରେ ରଣାଥ ବେଶବନ୍ଧୀ
ফৌজ फौज ଧାରଣୀଶ — କବିସୂର୍ଯ୍ୟ. କଂସୋପାଖ୍ୟାନ, ପ. ଗୀତ ।
୨ । ଜନସମୂହ; ବହୁ ଲୋକ—2. An assemblage of men; a crowd of people.
୩ । ଦଳ; ପଲ—3. Crowd; herd.
(ଯଥା—ଘୁଷୁରି ଫଉଜ, ଗୋରୁ ଫଉଜ ଇତ୍ୟାଦି) ।

**ଫଉଜଦାର୍**—ବୈଦେ ବି (ଫା. ଫୌଜ୍ଦାର୍)—୧ । ସେନାଧ୍ୟକ୍ଷ—
Phaujadār 1. Commander; general of an army.
ফৌজদার फौजदार ୨ । ଫଉଜଦାରି ମକଦ୍ଦମାର ବିଚାରପତି;
(ଫୌଜଦାର୍—ଅନ୍ୟରୂପ) ମାଜିଷ୍ଟ୍ରେଟ୍—2. Magistrate.
[ ଦ୍ର—ମୁସଲମାନ୍ମାନଙ୍କ ରାଜତ୍ୱରେ କିଲ୍ଲାଦାର୍ ( ଦୁର୍ଗନାୟକ ) ମାନଙ୍କୁ ଫଉଜଦାର୍ ନାମ ଦିଆ ଯାଉଥିଲା । ଦୁର୍ଗରକ୍ଷକମାନଙ୍କ ଅଧୀନ ଗୋଟିଏ ସେନାଦଳ(ଫଉଜ) ରହୁଥିବାରୁ ଏହି ନାମ । ]
୩ । ପୁଲିସ କର୍ମଚାରୀବିଶେଷ—3. Name of a class of Police officials.

**ଫଉଜଦାରି**—ବୈଦେ. ବି ( ଫା. ଫୌଜ୍ଦାରୀ )—୧ । ଅପରାଧଘଟିତ
Phaujadāri ମକଦ୍ଦମା—1. Criminal case.
(ଫଉଦାରି, ଫୌଜଦାରି, ଫୌଦାରି—ଅନ୍ୟରୂପ) ୨ । ଅପରାଧ—
ফৌজদারী फौजदारी 2. Criminal offence.
୩ । ଅପରାଧସଂକ୍ରାନ୍ତ ମକଦ୍ଦମାର ବିଚାର—
3. Trial of criminal cases.
୪ । ଅପରାଧଘଟିତ ମାଡ଼ପିଟ—4. Criminal affray.
[ଦ୍ର—ମୋଗଲ ଶାସନରେ ଶାସନ ବିଭାଗ ୩ ଶ୍ରେଣୀରେ ବିଭକ୍ତ ହୋଇଥିଲା । ଯଥା—୧ । ଅପରାଧସମ୍ବନ୍ଧୀୟ ବା ଫୌଜଦାରୀ—Criminal, ୨ । କ୍ଷତିପୂରଣସମ୍ବନ୍ଧୀୟ ବା ଦେୱାନି—Civil. ଓ ୩ । ରାଜସ୍ୱସମ୍ବନ୍ଧୀୟ ବା ମାଲ୍—Revenue.]
ବିଣ—୧ । ଅପରାଧଘଟିତ ମକଦ୍ଦମାସମ୍ବନ୍ଧୀୟ—
1. Relating to criminal case.
୨ । ମାଜିଷ୍ଟ୍ରେଟସମ୍ବନ୍ଧୀୟ—
2 Relating to the Magistrato.

**ଫଉଜଦାରି ଅଦାଲତ**—ବୈଦେ. ବି ( ଫା )—ଅପରାଧମାନ ବିଚାର
Phaujadāri adālata କରାଯିବା ଅଦାଲତ—
ফৌজদারী আদালত फौजदारी अदालत Criminal Court.
(ଫଉଜଦାରି କୋର୍ଟ୍—ଅନ୍ୟରୂପ)
[ ଦ୍ର—ଯେଉଁ ଅଦାଲତରେ ଅପରାଧପାଇଁ ଅଭିଯୁକ୍ତ ବ୍ୟକ୍ତିର ବିଚାର କରାଯାଏ ତାହାକୁ ଫଉଜଦାରି ଅଦାଲତ, ଯେଉଁ ଅଦାଲତରେ ସ୍ୱତ୍ୱ, କ୍ଷତିପୂରଣ, ଋଣ ଓ ଦେୟ ଟଙ୍କା ଆଦିର ଦାବି ବିଷୟ ବିଚାର କରାଯାଏ ତାହା ଦେୱାନୀ ଅଦାଲତ ଓ ଯେଉଁ ଅଦାଲତରେ ରାଜସ୍ୱ ଓ ଭୂକର ଆଦି ସମ୍ବନ୍ଧୀୟ ବିଷୟ ବିଚାର କରାଯାଏ ତାକୁ ମାଲ୍ ଅଦାଲତ ବୋଲାଯାଏ । ]

**ଫଉଜଦାରି କେଶ୍**—ବୈଦେ. ବି (ଫା. ଫଉଜ୍ଦାରି + ଇଂ. କେଶ୍)—
Phaujadāri keś ଅପରାଧଘଟିତ ମକଦ୍ଦମା—
ফৌজদারী মোকদ্দমা फौजदारी मुकद्दमा Criminal case.
[ଫଉଜଦାରି ମକଦ(ଦ୍ଦ)ମା—ଅନ୍ୟରୂପ]

**ଫଉଜଦାରି ସୁପର୍ଦ୍ଦ**—ବୈଦେ. ବିଣ ( ଫା. ଫଉଜ୍ଦାରୀ+ସୋପର୍ଦ୍ )—
Phaujadāri supardda ମାଜିଷ୍ଟ୍ରେଟଙ୍କ ବିଚାରାଧୀନ (ମକଦ୍ଦମା);
ଫଉଜଦାରି ସମ୍ପର୍ଦ୍ଦ } ଅନ୍ୟରୂପ ବିଚାର ନିମନ୍ତେ ମାଜିଷ୍ଟ୍ରେଟଙ୍କ
ଫଉଜଦାରି ସୋପର୍ଦ୍ଦ ନିକଟକୁ ପୁଲିସଦ୍ୱାରା ପ୍ରେରିତ
ଫୌଜଦାରି ସୁପର୍ଦ୍ଦ (ଅପରାଧୀ ବା ମୁଦାଲା)—
ফৌজদারী সুপর্দ फौजदार सोपर्द (an accused or a case) Committed to the court of a Magistrate for trial.

**ଫଉଜି**—ବୈଦେ. ବିଣ ( ଅ. ଓ ଫା. ଫୌଜୀ )—୧ । ସାମରିକ—
Phauji 1. Military; relating to war.
( ଫୌଜି—ଅନ୍ୟରୂପ ) ୨ । ସୈନିକସମ୍ବନ୍ଧୀୟ—
ফৌজী फौजी 2. Relating to the army.

**ଫଉତ**—ବୈଦେ. ବିଣ ( ଅ. ଫୌତ୍=ମୃତ )—ମୃତ—Dead.
Phauta ବି—ମୃତ୍ୟୁ—Death.
(ଫୌତ—ଅନ୍ୟରୂପ) ফৌৎ फौत्

**ଫଉଦ ବିଗାଡୁ**—ବୈଦେ. ବିଣ ( ଫା. ଫୌଜ୍ + ବିଗାଡ଼ନା )—
Phauda bigārdu ୧ । ଯେଉଁ ବ୍ୟକ୍ତି ସୈନ୍ୟମାନଙ୍କୁ ଉତ୍ତେଜନା
ଫଉଜବିଗା(ଗି)ଡ଼ା } ଅନ୍ୟରୂପ କରି ସେମାନଙ୍କ ମଧ୍ୟରେ
ଫୌଦବିଗାଡୁ ଅସନ୍ତୋଷ ଓ ବିଦ୍ରୋହ ଜାତ
ଫୌଦବିଗ(ଗି)ଡ଼ା କରାଏ—1. Inciting the soldiers to mutine.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତ | ଉଅ | ଭ୍ର |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ନୃ |

୨ । ଯେଉଁ ବ୍ୟକ୍ତି ଦଳସ୍ଥ ଅନ୍ୟ ବ୍ୟକ୍ତିମାନଙ୍କୁ ମନ୍ଦ ପରାମର୍ଶ ବା ମନ୍ଦ ଉଦାହରଣ ଦ୍ୱାରା ବିଗାଡ଼ିଦିଏ—2. Spoiling the whole party by one's evil advice or example.

**ଫଉଲିବା**—ଦେ. କ୍ରି. ( ସ. ଷ୍ଫାୟ ଧାତୁ; ସ୍ଫୀତ)—୧ । ସ୍ଫୀତହେବା; ଫୁଲିଯିବା—1. To be swollen.
Phauliba
ফুলেযাওযা **फुलना** ୨ । ଫମ୍ପା ହୋଇ ଫୁଲିଯିବା—2. To be puffed up with an empty interior.
(ଫଉଲିଯିବା—ଅନ୍ୟରୂପ)

**ଫଏଜି**—ବେଦେ. ବି (ଫା. ନାମ)—ମୋଗଲ ସମ୍ରାଟ୍ ଆକବରଙ୍କ ସଭାର ନବ ରତ୍ନ ମଧ୍ୟରୁ ଏକତମ—One of the nine gems or talented men of the Moghal Emperor Akbar the Great's court.
Phaeji
(ଫୈଜି—ଅନ୍ୟରୂପ)
ফৈজী **फैजी**

**ଫଏର୍**—ବୈଦେ. ବି (ଇଂ. ଫାୟାର୍)—ବନ୍ଧୁକ ମାରିବା; ବନ୍ଧୁକ ଫୁଟିବା—Shooting; firing of a gun.
Phaer
(ଫୈର୍—ଅନ୍ୟରୂପ) ফয়ের **फायर**

**ଫଏର୍ କରିବା**—ଦେ. କ୍ରି—୧ । ବନ୍ଧୁକ ଫୁଟାଇବା; ନଳୀ ଦାଗିବା—1. To shoot; to fire a gun.
Phaer kariba
ফএর করা **फायर करना** ୨ । ତୋପ ବା ବୋମା ଫୁଟାଇବା—2. To fire a bomb or cannon.

**ଫଏରବ**—ବୈଦେ. ବିଣ ( କଟରଆ ) ( ଆ. ଫରେବ୍ )—ଛଳକପଟମୂଳକ; ଛଳନାପୂର୍ଣ୍ଣ—Fraudulent.
Phaeraba
(ଫରେବ—ଅନ୍ୟରୂପ) ফরেব **फरेब**

**ଫଏରବି**—ବୈଦେ. ବି ( କଟରଆ ) ( ଆ )—ଛଳକପଟ—Fraud.
Phaerabi (ଫରେବି—ଅନ୍ୟରୂପ)
ফরেবী **फरेबी** ବିଣ—ଛଳନାପୂର୍ଣ୍ଣ—Fraudulent.

**ଫଏରବି କାଢ଼ିବା**—ଦେ· କ୍ରି—ଛଳନା ସହିତ କାର୍ଯ୍ୟ କରିବା—To act fraudulently.
Phaerabi kārdhiba
ଫରେବି କାଢ଼ିବା } ଅନ୍ୟରୂପ
ଫଏରବି କରିବା }
ফরেবী বাহিরকরা
**फरेबी निकालना**

**ଫଏଲ୍**—ବୈଦେ· ବି—(ଫା) – ଫଇଲ୍ (ଦେଖ)—Phail (See).
Phael
ପ୍ରାଦେ. (ସମ୍ବଲପୁର) ବି (ସ. ଫଳକୀ)—ଫଳି ମାଛ—A kind of flat fresh water fish.
[ ଦ୍ର—ତୁଳନା କର, ନଦୀ ସ୍ଥଳରେ ସମ୍ବଲପୁରରେ ନଏଲ୍ ଉଚ୍ଚାରଣ । ]

**ଫଏଲି ଯିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—(ସ. ଷ୍ଫାୟ ଧାତୁ. ତୁଳ. ହି ଫଏଲ୍ ଜାନା)—ବ୍ୟାପିଯିବା; ମାଡ଼ିଯିବା; ଖେଳେଇ ହୋଇଯିବା—To be diffused.
Phaeli jiba

**ଫଁ**—ଦେ. (ଧ୍ୱନ୍ୟନୁକରଣ) ଅ—ଫଁ ଫଁ (ଦେଖ)
Phañ Phañ phañ (See)

**ଫଁଦା (ଇତ୍ୟାଦି)**—ଦେ. ବି ଓ ବିଣ—ଫନ୍ଦା ଇତ୍ୟାଦି (ଦେଖ)
Phañda (etc) Phanda etc (See)

**ଫଁଦି**—ଦେ ବି—ଫନ୍ଦି (ଦେଖ)—Phandi (See)
Phañdi ପ୍ରାଦେ (ଉତ୍ତରବାଲେଶ୍ୱର) ବିଣ—ଦୁଷ୍ଟ ଶିଆଳି—Ill-intentioned.
(ଫନ୍ଦି—ଅନ୍ୟରୂପ)

**ଫଁଦିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ଦୁଇଟି ପଦାର୍ଥକୁ ଦଉଡ଼ିରେ ବାନ୍ଧିବା—To tie up two things with a rope or string.
Phañdiba
[ଫଁଦା(ଦେ)ଇବା—ଅନ୍ୟରୂପ]

**ଫଁପା**—ଦେ ବି ଓ ବିଣ—ଫମ୍ପା (ଦେଖ)—Phampa (See).
Phañpa ପ୍ରାଦେ. (ସମ୍ବଲପୁର) ବି—ଝିଣ୍ଟିକା; ପଙ୍ଗପାଳ—Grass-hopper; locust.

**ଫଁ ଫଁ**—ଦେ. (ଧ୍ୱନ୍ୟନୁକରଣ) ଅ—୧ । ସର୍ପ ଗର୍ଜ୍ଜନର ଶବ୍ଦ—1 Hissing sound (as of snakes).
Phañ phañ
ଫଁଅଁ } ଅନ୍ୟରୂପ
ଫଁଅଁ ଫଁଅଁ }
ଉଷ୍ଣପ୍ରାୟେ ଫଁ ଫଁ ସ୍ୱନେ ନିଶ୍ୱାସି ସଘନେ ଅସ୍ଥିରଚିତ୍ତ ପଦ୍ମନେ । ରାଧାନାଥ, ମହାଯାତ୍ରା ।
ফোঁস্ ফোঁস্ ୨ । କ୍ରୋଧରେ ଘନ ଘନ ନିଶ୍ୱାସ ମାରିବାର
**फन् फन्; फौं फौं** ଶବ୍ଦ—2. Repeated hissing sound of an enraged person.

**ଫକ୍**—ଦେ. ( ଧ୍ୱନ୍ୟନୁକରଣ ) ଅ—ଫକ ଫକ ( ଦେଖ )
Phak Phaka Phaka ( See )
(ଫକ୍ ଫକ୍; ଫକ୍କନା[ନି]; ଫକ୍କ[କି]ରି; ଫକ୍ ଦ[ଧି]ସ୍—ଅନ୍ୟରୂପ)

**ଫକ୍ନା**—ପ୍ରାଦେ. ( ବାଲେଶ୍ୱର ) ବି—ବଡ଼ମାଛର ପେଟ ଭିତରେ ଥିବା ବାୟୁପୂର୍ଣ୍ଣ ଧଳା ରଙ୍ଗର ଦୁଇ ଅଂଶବିଶିଷ୍ଟ ଥଳି; ମାଛଫଟକା—The air-bladder of a fish.
Phak-na
[ ଦ୍ର—ଏହାକୁ ପିଲାମାନେ ଝଟି ଫୁଟାଇବାକୁ ସୁଖ ପାଆନ୍ତି ଏବଂ ଏହା ଫୁଟିଲାବେଳେ ଫୋ ଶବ୍ଦ କରେ । ]

**ଫକ୍ ଲୋ ଲାଇ**—ପ୍ରାଦେ. ( ଲଡ଼ିଆ )—ଖଇ—Fried paddy.
Phak lo lāi

**ଫକ(କ୍କ)ଡ଼**—ବୈଦେ. ବିଣ. ( ଆ. ଫକ୍କଡ୍=ଶଠ; ଧୂର୍ତ୍ତ )—୧ । ଶଠ; ଧୂର୍ତ୍ତ; ଧଡ଼ିବାଜ—1. Fraudulent.
Phaka(kka)rda
ଫକ(କ୍କ)ଡ଼
ଫକ(କ୍କି)ଡ଼ିଆ
ଫକ(କ୍କି)ଡ଼ବାଜ
ଫକ(କ୍କି)ଡ଼ବାଜ୍ } ଅନ୍ୟରୂପ
୨ । ପ୍ରବଞ୍ଚକ—2. Deceptive; cheating.
୩ । ପ୍ରଗଲ୍ଭ; ବାଗ୍ମୀ—3. Bragging; wagging.
ফক্কড় **फक्कड** ୪ । ନିର୍ଦ୍ଧନ; ଗରିବ; କଙ୍ଗାଳ—4. Poor; destitute.
୫ । ଅପବ୍ୟୟୀ—5. Squandering; spendthrift.
୬ । ଅନ୍ତଃସାରଶୂନ୍ୟ—6. Unsubstantial.

୭ । ତୁଚ୍ଛ; ହେୟ —7. Mean; despicable.

**ଫକ(କ୍କ)ଡ଼**—ଦେଶ. ବି. (ଅ)—୧ । ଶଠତା; ଧୂର୍ତ୍ତତା; ଧନ୍ଦାବାଜୀ—
Phaka(kka)rdi 1. Fraud; deception

ଫକ(କ୍କ)ଡ଼ାମି; ଫକ(କ୍କ)ଡ଼-ବାଜି; ଫକ(କ୍କ)ଡଂବାଜି } ଅନ୍ୟରୂପ ୨ । ଦୁଷ୍ଟାମି—2. Wickedness.

ଫକ୍କଡ଼ୀ ୩ । ଦରିଦ୍ରତା—3. Poverty.

**फक्कडपन** ୪ । ଫାଙ୍କାଳମି—4. Vain-glory.

୫ । ଅନ୍ତଃସାରଶୂନ୍ୟତା—5. Hollowness.

୬ । ପ୍ରଗଲ୍ଭତା; ବାଚାଳତା; ଆତ୍ମପ୍ରାଧାନ୍ୟ ଦେଖାଇହେବା; ବାଲଙ୍ଗି—6. Bragging; wagging; drollery.

୭ । ନୀଚତା—7. Meanness.

(ଫକ୍କଡ଼ିଆ—ଅନ୍ୟରୂପ) ଦେଶ. ବିଣ.—୧ । ଦରିଦ୍ର—
ଫକ୍କଡ଼େ 1. Poor.

୨ ବାଚାଳ—2. Bragging.

**ଫକ(କ୍କ)ଡ଼ ମାରିବା**—ଦେ. କ୍ରି.—ଅନ୍ତଃସାରଶୂନ୍ୟ କଥା କହିବା;
Phaka(kka)rdi māribā ବାଲଙ୍ଗି କରିବା—
ଫକ୍କଡ଼ୀ କରା **डींगहाँकना** To brag; to talk big.

**ଫକତ୍**—ଦେଶ. ଅ. (ଅ. ଫାକତ୍)—୧ । କେବଳ—
Phakat 1. Only; merely; simply.

ଫକତ **फकत** ୨ । ମାତ୍ର; ତଥାପି—2. But.

୩ । ଅପରନ୍ତୁ—3. On the other hand.

**ଫକ ଫକ**—ଦେ. (ଧ୍ୱନ୍ୟନୁକରଣ)—ଅ.—୧ । ଡେଇଁ ଡେଇଁ
Phaka phaka ଖେଳିବା ବା ନାଚିବା ପ୍ରକାରେ—
ଫକ ଫକ 1. In a jumping or frisking manner.

**फुदुक् फुदुक्; फक् फक्** ୨ । ବାଷ୍ପଚାଳିତ ଇଞ୍ଜିନ୍‌ର ନଳରୁ
(ଫକର ଫକର, ଫକ ଫାକ—ଅନ୍ୟରୂପ) ବହୁ ପରିମାଣରେ ଧୂଆଁ ବାହାରିବା ପ୍ରକାରେ—2. Like smoke coming out of an engine in gushes.

[ ଦ୍ର—ଫକ ଫକ ଓ ଫକର୍ ଫକର୍ ଅପେକ୍ଷା ଫୁକ୍ ଫୁକ୍, ଫୁକୁର(ରୁ) ଫୁକୁର(ରୁ) ଶବ୍ଦ ଡେଇଁବା ଜୀବର କ୍ଷୁଦ୍ରତା ସୂଚନା କରେ। ଯଥା, ମାକଡ଼ ଗୁଡ଼ାକ ଗଛରୁ ଫକ ଫକ ଡେଇଁ ପଳେଇଲେ, ଗୁଣ୍ଡୁଚିମୂଷାଯାକ ଗଛ ଡାଳରୁ ଫୁକ୍ ଫୁକ୍ ଡେଇଁ ପଳେଇଲେ; ବଡ଼ ମନୁଷ୍ୟ ଫକ ଫକ ହୋଇ ଡେଉଁଛି, କୁଆପିଲାଟି ଫୁକୁର୍ ଫୁକୁର୍ ହୋଇ ବଢ଼ୁଛି ।]

**ଫକା(କ୍କା)**—ଦେଶ. ବିଣ. (ଅ. ଫକ୍; ଭୁଲ. ସ. ପିଙ୍ଗ)—
Phakā(kkā) ୧ । ପିଙ୍ଗଳ; ଫିକା; ପାଣ୍ଡୁର; ବିବର୍ଣ୍ଣ—
ଫାକାସେ; ଫିକା 1. Ashy; pale, light-coloured.

**फिका** ୨ । ବ୍ୟର୍ଥ—2. Vain.

[ଫକା(କ୍କା)ସିଆ—ଅନ୍ୟରୂପ] ୩ । ଶୂନ୍ୟ; ଫମ୍ପା—3. Empty.

ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି.—ଫିତା—Tape.
(ଯଥା—ସୁନାର ହାତକଡ଼ି ଓ ଚମଡ଼ାର ଫକା)

**ଫକାଶି**—ଦେ. ବି—ଫାକାଶି (ଦେଖ)—Phākāsi (See) Phakāsi (ଫକାଶି—ଅନ୍ୟରୂପ)

**ଫକା ସିନ୍ଦୂର**—ଦେ. ବି—ଯେଉଁ ସିନ୍ଦୂର ଗାଢ଼ ରକ୍ତବର୍ଣ୍ଣ ନୁହେଁ—
Phakā sindūra Pale-coloured vermilion.
ফিকাসিংদূর **फिकासिंदूर**

**ଫକୀର**—ଦେଶ. ବି. ପୁଂ. (ଅ. ଫକୀର୍)—୧ । ମୁସଲମାନ୍ ସନ୍ନ୍ୟାସୀ
Phakira ବା ସାଧୁ—1. A Mahomedan mendicant.

ଫକିରି } ସ୍ତ୍ରୀ ୨ । ଭିକ୍ଷୁକ—2. Beggar.
ଫକିରାଣୀ

ବୁଲୁଛନ୍ତି ବନେ ଫକୀର ବେଶ ହୋଇ ।

(ଅମୀର—ବିପରୀତ) କୃଷ୍ଣସିଂହ, ମହାଭାରତ ବନ ।

ফকীর ୩ । ଅତି ଗରିବ ଲୋକ—
**फकीर** 3. A very poor man.

ଅନ୍ନ ସେ ଖନ୍ଦେଇ୍ଯାଏନେ କାଇ ସେ ଫକୀର । ମଧୁସୂଦନ, କବିତାବଳି ।

୪ । ଅପତ୍ରିଆଣୀ ପୁରୁଷ ଲୋକଙ୍କୁ ଡ଼ାକିବା ନାମ—
4. A name given to males who are born after the death of their elders.

(ଫକୀରୁଣୀ—ସ୍ତ୍ରୀ) ବିଣ—୧ । ଗରିବ—1. Poor.

୨ । ଅଭାବଗ୍ରସ୍ତ—2. Needy; in want.

୩ । ଫକୀର ସମ୍ବନ୍ଧୀୟ—3. Relating to a Mahomedan mendicant.

୪ । ଗରିବ ବ୍ୟକ୍ତିର ଉପଯୁକ୍ତ—
4. Befitting a poor man.

**ଫକୀର ତକିଆ**—ଦେଶ. ବି. (ଅ)—ମୁସଲମାନ ଭିକ୍ଷୁକମାନଙ୍କ ଆଶ୍ରମ—
Phakira takiā A hermitage or shelter for
ফকীর তাকিয়া **फकीरतकीया** Mahomedan mendicants.

**ଫକୀରମୋହନ**—ଦେ. ବି. (ନାମ)—ଉତ୍କଳର ପ୍ରସିଦ୍ଧ ସ୍ୱର୍ଗୀୟ ସାହିତ୍ୟ-
Phakiramohana ସେବକ ଓ କବି—A late poet and literary genius of Orissa.

[ ଦ୍ର—ବାଲେଶ୍ୱର ସହର ନିକଟସ୍ଥ ମଲ୍ଲିକାଶପୁରରେ ବିଖ୍ୟାତ ସେନାପତି ଉପାଧିକ ଖଣ୍ଡାୟତ ବଂଶରେ ୧୮୪୩ ମସୀହା ଜାନୁଏରୀ ମାସ ୧୩ ତାରିଖରେ ଫକୀରମୋହନଙ୍କର ଜନ୍ମ । ଫକୀର-ମୋହନଙ୍କ ପୂର୍ବପୁରୁଷଗଣ ଓଡ଼ିଶାର ସ୍ୱାଧୀନ ନରପତିମାନଙ୍କ ଅଧୀନ ସୈନ୍ୟ ଓ ସେନାପତି ଥାଇ ଦେଶର ମାନଗୌରବ ରକ୍ଷାପାଇଁ ଲଢ଼ିଥିଲେ । ତାଙ୍କର ଯୋଗ୍ୟ ବଂଶଧର ଫକୀରମୋହନ ସେମାନଙ୍କଠାରୁ ଉନ୍ନତି ଓ ଉନ୍ନତିବରେ ଜାତିର ଉନ୍ନତିପାଇଁ ଲଢ଼ି ଜୀବନ ଶେଷ କରି ଯାଇ ଅଛନ୍ତି । ତାଙ୍କର ପିତା ଲକ୍ଷ୍ମଣଚରଣ ସେନାପତି ଗରିବ ଥିଲେ । ସେହି ଗରିବ ଘରେ ବଢ଼ି ଫକୀରମୋହନଙ୍କୁ ଦୁଃଖ ବିପଦର ବହୁ କଶାଘାତ ସହିବାକୁ ପଡ଼ିଥିଲା । ତାଙ୍କର ବୟସ ଅଢ଼େଇ ବର୍ଷ ପୂର୍ଣ୍ଣ ନ ହେଉଣୁ ସେ ପିତୃମାତୃହୀନ ହୋଇପଡ଼ିଲେ ଓ ଆଈଙ୍କ ଘରେ ରହି ପ୍ରତିପାଳିତ ହେଲେ । ସେଠାରେ ମଧ୍ୟ ସେ ନାନାପ୍ରକାର ରୋଗ ଓ କଷ୍ଟ ଭୋଗ କରିଥିଲେ । ନଅ ବର୍ଷ ବୟସରେ ଗାଆଁ ଚାଟଶାଳରେ ତାଙ୍କ ପଢ଼ା ଆରମ୍ଭ ହେଲା । ସେ ସମୟରେ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ଗନ୍ଧ ନ ଥିଲା । ଓଡ଼ିଶା ବଙ୍ଗଦେଶ ସଙ୍ଗେ ମିଶି ରହିଥିବା ଯୋଗୁଁ ବାଲେଶ୍ୱର ଜିଲ୍ଲାରେ ବଙ୍ଗାଳୀ ପ୍ରଭାବ ବେଶି ଥିଲା । ବଙ୍ଗାଳୀମାନେ ଓଡ଼ିଶାରୁ ଓଡ଼ିଆଭାଷା ଉଠାଇ ଦେଇ ବଙ୍ଗଳା

ଚଳାଇବାକୁ ନାନା ଉପାୟ ଅନୁଧାବନ କରୁଥିଲେ । ତେଣୁ ସେ ସମୟରେ ଓଡ଼ିଆ ପିଲା ପଢ଼ିବା ପାଇଁ ଖାଣ୍ଟି ଓଡ଼ିଆ ଅବଧାନେ ମିଳୁ ନ ଥାନ୍ତି ।

ଫକୀରମୋହନ ପିଲାବେଳେ ଭାରି ଚଗଲା ଥିଲେ; ମାତ୍ର ପଢ଼ାରେ ତାଙ୍କର ଖୁବ୍ ମନ ଥିଲା । ବେଶିଦିନ ସେ ପଢ଼ି ପାରି ନ ଥିଲେ । ସେ ସମୟରେ ବାଲେଶ୍ୱରରେ ସରକାରଙ୍କ କଣ୍ଟ୍ରାକ୍ଟରେ ସମୁଦ୍ର ପାଣିରୁ ଲୁଣ ମରା ଯାଉଥିଲା । ଦରିଦ୍ର ଥିବାରୁ ୧୩ ବର୍ଷ ବୟସରେ ଫକୀରମୋହନ ପାଠ ଛାଡ଼ି ଲୁଣ ଠିକାଦାର ମିରସ୍ତାରେ ସାମାନ୍ୟ କିଛି ଦରମାରେ ଚାକିରି କଲେ । କିଛିଦିନ ପରେ ତାଙ୍କ ଭାଗ୍ୟ ଫେରିଲା । ସେ ବାରବାଟୀ ବଙ୍ଗୋଲିଲ ସ୍କୁଲରେ କେତେ-ଦିନ ପଢ଼ି ସେ ସ୍କୁଲରେ ଅଢ଼େଇ ଟଙ୍କା ବେତନରେ ଶିକ୍ଷକତା କଲେ । ସେତେବେଳେ ସମଗ୍ର ଓଡ଼ିଶାରେ ଆଠଗୋଟି ମାତ୍ର ସ୍କୁଲ ଥିଲା । ସେହି ଛୋଟିଆ ସ୍କୁଲଟିରେ ପାଠ ପଢ଼ାଉଥିବା ବେଳେ ସେ ସଂସ୍କୃତ ଭଲ କରି ପଢ଼ିଥିଲେ । ସେହି ସମୟରେ କବିବର ରାଧାନାଥଙ୍କ ସହ ତାଙ୍କର ପରିଚୟ ଘଟିଥିଲା । କେତେ ଦିନ ପରେ ସେ ବାଲେଶ୍ୱର ପାଦ୍ରୀମାନଙ୍କ ପରିଚାଳିତ ସ୍କୁଲରେ ଦଶ ଟଙ୍କା ବେତନରେ ପ୍ରଧାନ ଶିକ୍ଷକ ହେଲେ ।

ଫକୀରମୋହନଙ୍କୁ ୨୩ ବର୍ଷ ବୟସ ହେଲା ବେଳେ ଓଡ଼ିଶାରେ ଭୀଷଣ ନଅଙ୍କ ଦୁର୍ଭିକ୍ଷ (୧୮୬୬ ସାଲରେ) ପଡ଼ିଲା । ସେତେବେଳେ ସେ କଲିକତାର ବିଖ୍ୟାତ ଖବରକାଗଜମାନଙ୍କରେ ଓଡ଼ିଶାର ଦୁର୍ଦ୍ଦଶା ବିଷୟ ଲେଖି ଭାରତର ବିଭିନ୍ନ ପ୍ରଦେଶର ଲୋକଙ୍କର ସାହାଯ୍ୟ ଓ ସହାନୁଭୂତି ପ୍ରାର୍ଥନା କରିଥିଲେ । ଆଗରୁ କୁହାଯାଇଛି, ଓଡ଼ିଶାରୁ ଓଡ଼ିଆଭାଷା ଓ ଓଡ଼ିଆ ସାହିତ୍ୟର ଲୋପ ସାଧନ କରି ବଙ୍ଗ ସାହିତ୍ୟ ପ୍ରଚାର ପାଇଁ ଏବଂ ସେହି ଭାବରେ ବଙ୍ଗଦେଶର କଳେବର ବୃଦ୍ଧି କରିବା ପାଇଁ ଓଡ଼ିଶା ପ୍ରବାସୀ ବଙ୍ଗାଳୀମାନେ ଭାରି କଳ୍ପନା ଜଳ୍ପନା କରୁଥିଲେ । ଫକୀରମୋହନ ସେମାନଙ୍କ ବିପକ୍ଷରେ ଅଣ୍ଟାଭିଡ଼ି ଠିଆ ହେଲେ । ସେ ନିଜେ ବାଲେଶ୍ୱରରେ ବନ୍ଧୁକଷ୍ଟ ସହି ଗୋଟିଏ ଛାପାଖାନା ବସାଇଲେ ଏବଂ ସମ୍ବାଦବାହିକା ଓ ବୋଧଦାୟିନୀ ନାମକ ଦୁଇଟି ଓଡ଼ିଆ ପତ୍ରିକା ପ୍ରକାଶ କଲେ । ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ବଙ୍ଗାଳୀମାନେ ଯେଉଁ ଫନ୍ଦି ଖେଳୁଥିଲେ ଫକୀରମୋହନ ଏବଂ ତାଙ୍କର ସହକର୍ମୀ ଗୌରୀଶଙ୍କର, ରାଧାନାଥ ପ୍ରଭୃତିଙ୍କ ଦ୍ୱାରା ତାହା ପଣ୍ଡ ହୋଇଥିଲା । ଖାଲି ଏତିକି ନୁହେଁ, ଏମାନଙ୍କ ଆନ୍ଦୋଳନ ସାର୍ଥକ ହୋଇଥିଲା । ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ବୋଲି ସରକାର ସ୍ୱୀକାର କଲେ । ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପଢ଼ାଗଲା । ଓଡ଼ିଆ ଜାତିର ଜୀବନ ରହିଲା ।

ଫକୀରମୋହନ ପିଲାଦିନୁ ଉଦାର ମତବାଦୀ ଥିଲେ । ସମାଜର ନାନା ଅନାଚାରକୁ ସେ ସୁଖ ପାଉ ନ ଥିଲେ । ଅସ୍ପୃଶ୍ୟତା ଓ ସ୍ତ୍ରୀ-ଜାତିର ଶିକ୍ଷାହୀନତାରେ ସେ ବ୍ୟଥିତ ହେଉଥିଲେ ।

ଫକୀରମୋହନ ରାଜ କାର୍ଯ୍ୟରେ ବଡ଼ ସୁଦକ୍ଷ ଥିଲେ । ସେ ବହୁ ଗଡ଼ଜାତରେ ଦେବାନୀ କାର୍ଯ୍ୟ କରିଥିଲେ । ୧୮୭୨ ମସିହାରେ ପ୍ରଥମେ ସେ ନୀଳଗିରି ରାଜ୍ୟର ଦେବାନ ହେଲେ । ଦେବାନ ହୋଇ ରାଜ୍ୟର ଉନ୍ନତି ଓ ରାଜବଂଶୀୟ ବ୍ୟକ୍ତିମାନଙ୍କ ଶିକ୍ଷାଲାଭ ଦିଗରେ ସେ ମନପ୍ରାଣ ଲଗାଇ କାର୍ଯ୍ୟ କରୁଥିଲେ । ତାଙ୍କ କାର୍ଯ୍ୟ କୁଶଳତାରେ ସମସ୍ତେ ଖୁସି ଥିଲେ । ନୀଳଗିରି ଦେବାନୀ ପରେ ସେ କଟକଜିଲ୍ଲାର ଡମପଡ଼ାରେ କିଛିଦିନ ଦେବାନୀ କାର୍ଯ୍ୟ କଲେ । ତା ପରେ ଢେଙ୍କାନାଳ ରାଜ୍ୟର ସହକାରୀ ମାନେଜର ହେଲେ । ଢେଙ୍କାନାଳରେ ଥିବାବେଳେ ସେ ସାତକାଣ୍ଡ ବାଲ୍ମୀକି ରାମାୟଣ ଓଡ଼ିଆରେ ଅନୁବାଦ କରିଥିଲେ । ଢେଙ୍କାନାଳ ଛାଡ଼ି ଦଶପଲ୍ଲା ଓ ପାଲଲହଡ଼ାରେ କେତେଦିନ ଲେଖାଏଁ ଦେବାନୀ କାର୍ଯ୍ୟ କରି ଫକୀରମୋହନ କେନ୍ଦୁଝରର ଦେବାନ ହେଲେ । ତାଙ୍କର ଅମଳରେ କେନ୍ଦୁଝରରେ ବିଖ୍ୟାତ ଭୂୟାଁମେଳି ହୋଇଥିଲା । ସେ ଯେପରି ବୁଦ୍ଧି ଖଟାଇ ମେଳିଆମାନଙ୍କ ଅତ୍ୟାଚାରରୁ ରାଜ୍ୟ ଏବଂ ରାଜପରିବାରଙ୍କୁ ରକ୍ଷା କରିଥିଲେ ଓ ନିଜକୁ ଘୋର ବିପଦରେ ପକାଇ ମେଳି ଶାନ୍ତ କରିଥିଲେ ତାହା ବଡ଼ ବିଚିତ୍ର । ସେହିଠାରେ ଥିଲାବେଳେ ଦିନେ ବାଟରେ ବାଲେଶ୍ୱରଠାରୁ ଆନନ୍ଦପୁରକୁ ହାତୀରେ ଯାଉଥିବା ସମୟରେ ଉତ୍କଳଭ୍ରମଣ ପୁସ୍ତକଟି ଲେଖିଥିଲେ । ଫକୀରମୋହନ ଏକେଶ୍ୱରବାଦୀ ଥିଲେ । ଥରେ ମାନ୍ଦ୍ରାଜର ଏକେଶ୍ୱରବାଦ-ସମ୍ମିଳନୀରେ ସେ ଓଡ଼ିଶା ପକ୍ଷରୁ ପ୍ରତିନିଧିରୂପେ ଏକାକୀ ଯାଇ ଯୋଗ ଦେଇଥିଲେ । ଶେଷ ଜୀବନର ସେ ବହୁଦିନ କଟକରେ କଟାଇଥିଲେ । କଟକରେ ଥାଇ ସେ ବୌଦ୍ଧାବତାର କାବ୍ୟ ଏବଂ ପୁଷ୍ପମାଳା ପ୍ରଭୃତି କବିତା ଲେଖିଥିଲେ ।

ଫକୀରମୋହନ ଓଡ଼ିଆ ସାହିତ୍ୟର ଜଣେ ଯୁଗପ୍ରବର୍ତ୍ତକ । ସେ ସର୍ବଜନବୋଧ୍ୟ ଭାଷାରେ ଗଦ୍ୟ ଓ କବିତା ଲେଖୁଥିଲେ । କି ପଦ୍ୟ, କି ଗଦ୍ୟ, କି ଗଳ୍ପ, କି ଉପନ୍ୟାସ, ସବୁଥିରେ ସେ ନୂତନତ୍ୱ ଦେଖାଇ ଅଛନ୍ତି । ତାଙ୍କର ମାମୁଁ, ଲଛମା, ଛମାଣ ଆଠଗୁଣ୍ଠ ଓଡ଼ିଆ-ଭାଷାରେ ମାନବ ଚରିତ୍ର ଚିତ୍ରଣବିଷୟରେ ଅମୂଲ୍ୟ ରତ୍ନ । ଏହା ବ୍ୟତୀତ ସେ ମହାଭାରତ, ଭଗବଦ୍‌ଗୀତା, ଅବସର ବାସରେ, ପ୍ରାୟଶ୍ଚିତ୍ତ, ଗଳ୍ପସ୍ୱଳ୍ପ, ପୂଜାଫୁଲ ପ୍ରଭୃତି ବହୁତ ଓଡ଼ିଆ ଗ୍ରନ୍ଥ ରଚନା କରି ଅଛନ୍ତି ।

ସେ ଜଣେ ପ୍ରକୃତ ରସିକ ଏବଂ ଉଦାରମନା ଥିଲେ । ପର-ଦୁଃଖରେ ତାଙ୍କର ହୃଦୟ ତରଳି ପଡ଼ୁଥିଲା । ତାଙ୍କର ଗୁଣ ଦେଖି ବାମଣ୍ଡାର ରାଜା ତାଙ୍କୁ "ସରସ୍ୱତୀ" ଉପାଧି ଦେଇଥିଲେ । ତାଙ୍କର ଉତ୍କଳଖଣ୍ଡରେ ସୁପରିଚିତ ଆଉ ଗୋଟିଏ ଉପାଧି ଉତ୍କଳର ବ୍ୟାସକବି । ମୃତ୍ୟୁର ତିନି ମାସ ପୂର୍ବରୁ ଫକୀରମୋହନ କଟକରେ ଉତ୍କଳ ସମ୍ମିଳନୀର ସଭାପତି ଆସନ ଅଳଙ୍କୃତ କରିଥିଲେ । ୧୯୧୮ ମସିହା ଜୁନ ମାସ ୧୪ ତାରିଖ ରଜସଂକ୍ରାନ୍ତି ଦିନ ୭୬ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା । ]

**ଫକୀରି**—ବୈଦେ. ବି—୧ । ଫକୀରର ଅବସ୍ଥା ବା ବୃତ୍ତି—
Phakiri 1. Mendicancy.
ଫକୀରୀ ୨ । ଭିକ୍ଷାବୃତ୍ତି—2. Beggary.
ଫକୀରୀ ୩ । ଦରିଦ୍ରତା—3. Poverty.
୪ । (ସ୍ତ୍ରୀ) ନାମ—ଅପର୍ତ୍ତିଆଣୀ ବାଳିକାଙ୍କୁ ଦିଆଯିବା ନାମ—
4. A name given to Aparttiāṇi girls.
ବିଣ—ଫକୀରସମ୍ବନ୍ଧୀୟ—Appertaing to a Phakira.

**ଫକୀରି କଉଡ଼ି**—ଦେ. ବି—ଏକପ୍ରକାର ଚିତ୍ରିତ ବା ଡୋରିଆ କଉଡ଼ି—
Phakiri kaurdi A kind of striped or pictured cowrie or sea-shell.

ଫକିର୍ ସିଂହ - ଗ୍ରା. ବି (ବ୍ୟଙ୍ଗ୍ୟ)—ବିସୂଚିକା ରୋଗ; ହଇଜା—
Phakiri simha Cholera.

ଫକୋଷ—ଦେ· ବି. ( ଭୁଲ· ଇଂ. ଫକ୍ସ୍=କୋକିଶିଆଳ=ଛି. ଫକ୍ସ୍ହିଲ୍ )—ବନ୍ୟଜନ୍ତୁବିଶେଷ—
Phakosha A kind of wild beast.

ମର୍ଦ୍ଦିଷ ଘୋଡ଼ା ଫକୋଷ ବଲେସ୍ୱା—ପ୍ରାଚୀ, ପ୍ରଭାତ ଶଶିରେଖା।

ଫକ୍କ ( ଧାତୁ )—ସ—୧। ଫାଙ୍କି ଦେବା—
Phakka 1. To use unfair means
୨। ଭଣ୍ଡିବା; ଠକିବା—2. To cheat

ଫକ୍କଡ଼ ( ଇତ୍ୟାଦି )—ବୈଦେ. ବିଣ—ଫକଡ଼ ଇତ୍ୟାଦି ( ଦେଖ )
Phakkarda ( etc ) Phakarda etc ( See )

ଫକ୍କଡ଼ି ( ଇତ୍ୟାଦି )—ଫକଡ଼ି ଇତ୍ୟାଦି ( ଦେଖ )
Phakkardi ( etc ) Phakardi etc ( See )

ଫକ୍କିକା—ସ. ବି. ( ଫକ୍କ୍ ଧାତୁ+କର୍ତ୍ତୃ. ଇକ+ସ୍ତ୍ରୀ. ଆ )—
Phakkika ୧। ( ସିଦ୍ଧାନ୍ତ କୌମୁଦୀ ଓ ଭାଷ୍ୟ ଆଦି ବ୍ୟୁତ୍ପତ୍ତିମୂଳକ ଗ୍ରନ୍ଥରେ ବ୍ୟବହୃତ) ଫାଙ୍କି; କୂଟତର୍କ; କୂଟପ୍ରଶ୍ନ—1. Hair-splitting argument; sophistry; sophism ( on topics of Grammar by Pānnini ).
୨। ତତ୍ତ୍ୱ ନିର୍ଦ୍ଧାରଣାର୍ଥ ପୂର୍ବପକ୍ଷ—2. A thesis to be maintained in argument.
୩। ଗୁଡୁଚି—3. Trick.
୪। ମାୟା—4. Illusion.
୫। ପ୍ରତାରଣା—5. Fraud; cheating.

ଫଗୁ—ଦେ· ବି. ( ସ. ଫଲ୍ଗୁ )—୧। ଫଲ୍ଗୁ; ଅବିର—1. Red
Phagu powder (made from the root of wild
ଫାଗ୍; ଫାଉଗ; ଫାଗୁ **अबीर** ginger ).

ଫଗୁ-ବର୍ଣ୍ଣେତକେ ସବାଙ୍ଗ ଲକ୍ଷିତ କହେତନ୍ତି ସୁବାଳଳ—
ରାଧାନାଥ. ପାର୍ବତୀ।

୨। ( ପୁଂ ) ଲୋକଙ୍କୁ ଦିଆଯିବା ନାମ—
2. A name given to males.

ଫଗୁ ଖେଳ—ଦେ. ବି—ଦୋଳ ସମୟରେ ହିନ୍ଦୁମାନଙ୍କର ପରସ୍ପର ଫଗୁ
Phagu khela ଫୋପଡ଼ାଫୋପଡ଼ି ହେବା ଓ ଦେବବିଗ୍ରହଙ୍କୁ
ଫାଗ ଖେଲା ଫଗୁଲଗି କରିବା ଉତ୍ସବ—Mutual throwing
**फाग खेलना** of red powder and sprinkling it on the images of Deities.

ସଖୀ ସଙ୍ଗେ ଖେଳୁଛନ୍ତି ଫଗୁଖେଳ—ରାଧାନାଥ. ନନ୍ଦିକେଶ୍ୱରୀ।

ଫଗୁଣ—ଦେ. ବି. ( ସ. ଫାଲ୍ଗୁନ )—ମାଘର ପରବର୍ତ୍ତୀ ଓ ଚୈତ୍ରର
Phaguna ପୂର୍ବବର୍ତ୍ତୀ ଚାନ୍ଦ୍ରମାସ; ଫାଲ୍ଗୁନ ମାସ—The month
ଫାଗୁନ **फगुवा; फागुन** of Phālguna.
[ ଦ୍ର—ଏ ମାସର ପୂର୍ଣ୍ଣିମୀ ଦିନ ଚନ୍ଦ୍ର ପୂର୍ବଫାଲ୍ଗୁନୀ ନକ୍ଷତ୍ରରେ ଥାଆନ୍ତି। ଏ ମାସର ପୂର୍ଣ୍ଣିମୀରେ ଦୋଲଯାତ୍ରା ହୁଏ, ଏହି ମାସର କୃଷ୍ଣ ଚତୁର୍ଦ୍ଦଶୀ ରାତିରେ ଯାଗର ଯାତ୍ରା ହୁଏ। ]

ଫଗୁଣ ଫୁଟା—ପ୍ରାଦେ. ( ଗଡ଼ଜାତ ) ବି—ଶୂଦ୍ରଜାତିରେ ବଢ଼ିଲା କନ୍ୟା
Phaguna phuta ପ୍ରଥମେ ଶାଶୁଘରୁ ବାପ ଘରକୁ ଫଗୁଣ ମାସରେ ଆସିବା କାର୍ଯ୍ୟ—The act of a Sūdra girl's coming back to her father's house from the house of her father-in-law after attaining puberty.

ଫଗୁ ଦଶମୀ—ଦେ. ବି—ଫାଲ୍ଗୁନ ମାସର ଶୁକ୍ଳ ଦଶମୀ—The 10th
Phagu dasami day of the bright fortnight of the
ଫାଗୁନ ଦଶମୀ **फागुन दसमी** month of Phālguna.
[ ଦ୍ର—ଫଗୁଦଶମୀ ଦିନ ରାଧାକୃଷ୍ଣଙ୍କ ବିଗ୍ରହଙ୍କର 'ଘରର ଫଗୁ' ଉତ୍ସବ ହୁଏ, ଅର୍ଥାତ୍ ସେ ଦିନ ମନ୍ଦିରରେ ଥିବା ଅବସ୍ଥାରେ ରାଧାକୃଷ୍ଣ ବିଗ୍ରହଙ୍କ ଉପରେ ଫଗୁ ପକାଯାଏ ଓ ତହିଁପର ଦିନଠାରୁ ବିଗ୍ରହମାନଙ୍କୁ ବାହାର କରାଯାଇ ୫ ଦିନ ଦୋଲଯାତ୍ରା ଉତ୍ସବ କରାଯାଏ। ]

ଫଙ୍କୁ—ପ୍ରାଦେ· ( ଗଡ଼ଜାତ ) ବି. ( ଭୁଲ. ଇଂ. ଫଙ୍ଗସ୍ )—ଫିମ୍ପି;
Phanku ଛତୁଆ—Mold; mildew.

ଫଜର୍—ବୈଦେ. ବି ( ଆ ଫଜର୍ )—୧। ସକାଳ—
Phajar ଫଜର **फजर** 1. Morning.
(ଫଜର, ଫଜର, ଫଜର—ଅନ୍ୟରୂପ) ୨। ପ୍ରତ୍ୟୁଷ; ବଡ଼ଭୋର—
2. Daybreak; early morning.

ଫଜରି—ବୈଦେ. ବିଣ. ( ଆ )—ପ୍ରାତଃକାଳୀନ—Relating to
Phajari ଫଜରୀ **फजरी** morning.
( ଫଜରି—ଅନ୍ୟରୂପ )

ଫଜରି ଖାନା—ବୈଦେ. ବି. ( ଆ ) —ପ୍ରାତର୍ଭୋଜନ—
Phajari kāna Breakfast; morning meal.
ଫଜରୀ ଖାନା **फजरी खाना**

ଫଜଲି—ବୈଦେ. ବି. ( ଆ. ଫଜଲୀ )—ମାଲଦହଦେଶୀୟ ଉତ୍କୃଷ୍ଟ
Phajali ଆମ୍ବ—A kind of mango from Māldaha
ଫଜଲୀ **फजली** ( ଫଜୁଲି, ଫଜିଲ—ଅନ୍ୟରୂପ ) in Bengal.

ଫଜିତ—ବୈଦେ. ବି. ଓ (ଆ)—ଫଇଜତ (ଦେଖ)
Phajita Phaijata (See)

ଫଜିତ, ଫଜିଅତ(ତି), ଫଜିହତ(ତି) } ଅନ୍ୟରୂପ

ଫଜିତ ହୋଇ ଦୂରରେ ଥିଲେ ଲୋଡେ,
ଉଜିତ ହେବାର ଘଡ଼।
କବିସୂର୍ଯ୍ୟ. ରତ୍ନାକରଚକ୍ଷୁ, ଫ, ଗୀତ।

ଫଜିଲ—ବୈଦେ. ପ୍ରାଦେ. (ଗଡ଼ଜାତ) ବି.—ଫଜର (ଦେଖ)
Phajila Phajara (See)
(ଫଜଲ୍—ଅନ୍ୟରୂପ)

ଫଟ୍—ସ. ଅ. (ସ୍ଫୁଟ୍ ଧାତୁ=ଭେଦ କରିବା+କ୍ୱିପ୍)—ମନ୍ତ୍ର ଶେଷରେ
Phat ତାଳ ମାରି ଉଚ୍ଚାରଣ କରିବା ଶବ୍ଦ; ମନ୍ତ୍ରାଂଶବିଶେଷ—
A sound uttered at the end of a Mantra.
ଦେ. ଅ.—ଫଟ୍ ଫଟ୍ (ଦେଖ)
Phat phat (See)

ଫଟ୍ କରି—ଦେ. କ୍ରି. ବିଣ.—ଫଟ୍ ଶବ୍ଦ ପୂର୍ବକ—
Phat kari Making a popping sound.
ଫଟକରେ **फटसे**
[ଫଟ୍କିନ(ନା), ଫଟ୍କର, ଫଟ୍ଦ(ଧ)ସ୍—ଅନ୍ୟରୂପ]

ଫଟ୍କାର—ଦେ. ବି.—୧। ଫଟ୍ ଶବ୍ଦ (ଯଥା—ଲୁଗା କାଚିବା, ପାଚୁଡ଼ିବା,
Phat-kāra ହାତରେ ତାଳ ମାରିବା)—
1. The sound of 'Phat'.

୨ । ହାତର ତାଳି ଶବ୍ଦ—2. Sound of clapping.

୩ । ଧୂତ୍କାର୍ (ଦେଖ)—3. Dhut-kāra (See)

**ଫଟ୍କାରିବା**—ଦେ. କ୍ରି.—୧ । ତାଳି ମାରିବା—
Phaṭ-kāribā 1. To clap.

**फटकारना** ୨ । ଧିକ୍କାରିବା—2. To fie; to cry shame.

**ଫଟ୍ ଫଟ୍**—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଶୁଖିଲା କାଠ ଭାଙ୍ଗିବାର ଶବ୍ଦ—1. Popping or cracking sound.
Phaṭ phaṭ

ଫଟର ଫଟର } ଅନ୍ୟରୂପ
ଫଟା ଫଟ୍ }

୨ । କୌଣସି ପଦାର୍ଥ ଫାଟି ଯିବାର ଶବ୍ଦ—2. Bursting sound.

फटफट **फटफट** ମୂଳ କାଣ୍ଡିଶ ଗୁଡାକ ଫଟ୍ ଫଟ୍ କରି ଫୁଟୁ ଥିଲା ।
ଫକୀରମୋହନ ଛମାଣ ଆଠଗୁଣ୍ଠ ।

୩ । ଭିଟି ଯୋତା ବା କଠଉ ମାଡ଼ିଲେ ତାହାର ତଳଟିର ଗୋଇଠିର ଭଲପା ଥରକୁ ଥର ବାଜି ଯେଉଁ ଶବ୍ଦ ହୁଏ—
3. Popping sound produced by the heel coming in contact with the sole of the slipper.

**ଫଟ**—ସଂ. ବି.—(ସ୍ଫୁଟ୍ ଧାତୁ+କର୍ତ୍ତୃ. ଅ. ନିପାତନ)—୧ । (ନାଗ ଆଦି) ସର୍ପର ଫଣା—1. The expanded hood of a venomous serpent.
Phaṭa

୨ । ଦନ୍ତ—2. Tooth.

୩ । ପ୍ରତାରଣା; ଶଠତା; ଧୂର୍ତ୍ତତା—
3. Cunning; fraud; deception.

୪ । ପ୍ରତାରକ; ଶଠ—4. A rogue; a cheat.

**ଫଟଇ**—ପ୍ରାଦେ. (ମେଦିନୀପୁର) ବି.—(ଭୁଲ. ବଂ. ଫତୁଇ)—
Phaṭai ୧ । ପୋଷାକ—1. Dress.

୨ । ଫତେଇ; ହାତକଟା ଯାମା—2. Jacket.

**ଫଟକ ବିସିନି**—ଦେ. ବିଣ.—( ସଂ ସ୍ଫୁଟ+ବ୍ୟସନୀ )—ସଜ୍ଜନିଆଁ; ସୌଖୀନ୍ ଶୁଭ୍ର ବେଶଧାରୀ (ବ୍ୟକ୍ତି)—
Phaṭaka bisini
फटिकचाँन्द **अलबेला, रङ्गीला, फटकव्यसनी** Foppish.

ଫଟକ ବିସିନି } ଅନ୍ୟରୂପ
ଫଟା ବିସିନି }

ଦେ. ବି.—ସଜ୍ଜୀନ୍ ଶୁଭ୍ର ବେଶଧାରୀ ବ୍ୟକ୍ତି—Beau; fop; coxcomb.

**ଫଟକା**—ଦେ. ବି.—୧ । ମୂତ୍ରାଧାର—
Phaṭakā 1. Kidney; bladder.
चुटकी **फटका**

୨ । (ସଂ ସ୍ଫୋଟ) ହାତ ବା ଅଙ୍ଗୁଠିର ତାଳି ବା ସ୍ଫୋଟନ ଶବ୍ଦ—
2 Cracking sound of the palms or fingers.

୩ । ଫୋଟକା (ଦେଖ)—3. Phoṭakā (See)

**ଫଟକା(କେ)ଇବା**—ଦେ. କ୍ରି—୧ । ହୁରୁଡ଼ାଇବା; ତାଳି ମାରି ଚଢ଼େଇଙ୍କୁ ହୁରୁଡ଼ାଇ ଦେବା ଭଳି କରିବା; ଫିଙ୍ଗିଦେଇବା—1. To scare away a person (like scaring birds with clapping).
Phaṭakā(ke)ibā
**फटकाना, हडकाना**

୨ । ଫଟ୍ ଫଟ୍ ଶବ୍ଦ କରିବା—
2. To make cracking sounds.

**ଫଟକାରିବା**—ଦେ. କ୍ରି—୧ । ଫଟ୍ ଫଟ୍ ଶବ୍ଦ କରିବା—
Phaṭakāribā 1. To make cracking sounds.

**फटकारना** ୨ । ଧୂତ୍କାରିବା—2. To fie.

**ଫଟକିବା**—ଦେ କ୍ରି—୧ । ଫଡ଼ିକିବା; ହୁରୁଡ଼ିକରି ପଳାଇଯିବା—
Phaṭakibā 1. To fly away being scared.

**हडकना** ୨ । ଦଳ ଛାଡ଼ି ବା ସଙ୍ଗ ଛାଡ଼ି ପଳାଇବା—
2. To flee away from a company.

୩ । ଫାଟିଯିବା—3. To burst.

**ଫଟ ଫଟକା**—ଦେ. ବି—ଫୁଟୁ ଫୁଟୁକା (ଦେଖ)
Phaṭa phaṭakā Phuṭu phuṭukā (See).

**ଫଟ ଫଟିଆ**—ଦେ. ବିଣ—ଫଟ୍ ଫଟ୍ ଶବ୍ଦ କରୁଥିବା—
Phaṭa phaṭiā Making a popping sound.
फटफटिआ **फटफटिया**

**ଫଟରଙ୍ଗ ପୁରାଣ**—ପ୍ରଦେ. (ଯାଜପୁର) ବି—ଖଟାଙ୍ଗ ପୁରାଣ (ଦେଖ)
Phaṭaranga purāṇa Khaṭānga purāṇa (See).

**ଫଟା**—ସଂ. ବି. (ଫଟ+ଆ)—୧ । ନାଗଆଦି ସର୍ପଙ୍କ ଫେଣା—
Phaṭā 1. Expanded hood of venomous snakes.

୨ । ଦନ୍ତ (କ୍ଲୀବେନ୍ଦ୍ର)—2. Tooth; fang.

୩ । ପ୍ରତାରଣା (କ୍ଲୀବେନ୍ଦ୍ର)—3. Deceit.

फाटा ଦେ· ବିଣ—(ସଂ. ସ୍ଫୁଟ୍ ଧାତୁ)—୧ । ଫାଟଯୁକ୍ତ; ଫାଟି ଯାଇଥିବା—1. Cracked.
**फटा, फटहा**

୨ । ଚିରା—2. Torn.

୩ । ଦଦରା; ଭଙ୍ଗା—3. Broken.

୪ । ଅକାମିକା—4. Worthless.

୫ । ହୀନ; ନୀଚ; ହେୟ; ତୁଚ୍ଛ—
5 Despicable; mean; ignoble.

(ଫଟେଇ—ସ୍ତ୍ରୀ) ୬ । (ପୁଂ) ଯେ ଜିଗର କରି ଉପର୍ଯ୍ୟୁପରି ପ୍ରଶ୍ନ କରେ—
6. Pertinacious; asking questions with persistence.

୭ । ବାଚାଳ—7. Talkative.

**ଫଟା(ଟେ)ଇବା**—ଦେ. କ୍ରି—( ସଂ. ସ୍ଫୁଟ୍ ଧାତୁ )—୧ । ଫାଟିବା କ୍ରିୟାର ଣିଜନ୍ତ ରୂପ—The causative form of 'phāṭibā'.
Phaṭā(ṭe)ibā
फाटान **फाडना, फटाना**

୧ । ଫାଡ଼ିବା—1. To split.

୨ । ବିଦାର୍ଣ୍ଣ କରିବା; ଭାଙ୍ଗିବା—
2. To break; to crack.

ଫଟାଇବ ବାଜିଲେ ସବୁ ଜନ ମୁଣ୍ଡ ।
କୃଷ୍ଣସିଂହ· ମହାଭାରତ ବନ ।

୩ । ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଇ ପୃଥକ କରାଇବା—3. To cause two persons to separate by bringing about dissensions.

୪ । ଚିରି ଦେବା—4. To tear.

୫ । ଦୁଇ ବ୍ୟକ୍ତିଙ୍କୁ ବା ବସ୍ତୁକୁ ପୃଥକ କରିଦେବା—
5. To cause two persons or things to separate.

୬ । (ଲକ୍ଷଣାର୍ଥ) ବିନାଶ କରିବା; ଲୋପ କରିବା—
9. (figurative) To destroy.

ଫଟାଇ ବଥଇ ଧୂତକ ପ୍ରହାର କଟାକ୍ଷ କପଟ ବାଣ । କବିସୂର୍ଯ୍ୟ· ସଙ୍ଗୀତ ।

୮ । ଫଟାଇ ହେବା (ଦେଖ)—8. Phaṭāi hebā (See).

**ଫଟା(ଟେ)ଇ ହେବା**—ଦେ. କ୍ରି—(ବ୍ୟଙ୍ଗାର୍ଥ; ସ୍ତ୍ରୀ ଭାଷା; ଫୁଟ୍ ଧାତୁ)—
Phaṭā(ṭe)i hebā ୧। ଗୁଡ଼ାଏ ବୃଥାରେ ବକିବା; ଗପିବା—
**फटहा होना** 1. To prattle; to babble; to talk much.
୨। ଯିଏବି ଜଣ ଉପର୍ଯ୍ୟୁପରି ପ୍ରଶ୍ନ କରିବା—
2. To ask questions with persistence.

**ଫଟା କଉଡ଼ି**—ଦେ. ବି—ଫଟା ପାହୁଲା (ଦେଖ)
Phaṭā kauṛi Phaṭā pāhulā (See)
কানাকড়ি **फुटिकउडि**

**ଫଟା କପାଳ**—ଦେ. ବି.—ହତଭାଗ୍ୟ; ଦୁର୍ଭାଗ୍ୟ; ହୀନ କପାଳ—
Phaṭā kapāḷa हीन कपाल **फटाकपाल** Ill luck.
ଫଟା କପାଳକୁ ବଇଗାଁ ବାଡ ବାଇଗାକ ମୋର ଯାଉ ନାହିଁ,
ଅଗୋ ପ୍ରିୟ ସହି। ଓଡ଼ିଆ ସଙ୍ଗୀତ।

**ଫଟା କପାଳିଆ**—ଦେ. ବିଣ. ପୁଂ.—ହତଭାଗ୍ୟ; ମନ୍ଦ କପାଳିଆ—
Phaṭā kapāḷiā Unfortunate; unlucky.
হীন কপালে **फटाकपालाका**
(ଫଟାକପାଳୀ, ଫଟାକପାଳେଣୀ—ସ୍ତ୍ରୀ)

**ଫଟାକା**—ପ୍ରାଦେ. (ଗଞ୍ଜାମ) ବି.—ତାଳପୋଟକା—
Phaṭākā Crackers made of palm-leaves.

**ଫଟାକି ଉଆଁସ**—ପ୍ରାଦେ. (ଗଞ୍ଜାମ) ବି.—ଦୀପାବଳୀ ଅମାବାସ୍ୟା; କାର୍ତ୍ତିକ
Phaṭāki uā̃sa ଅମାବାସ୍ୟା—The newmoon of the month of 'Kārttika'.
[ଦ୍ର—ଏ ଦିନ ଲୋକେ ଫଟକା ବାଣ ଫୁଟାନ୍ତି।]

**ଫଟା ଗାଲୁଆ**—ଦେ. ବିଣ.—ଅସତ୍ୟଭାଷୀ; ଯେ ଅସମ୍ଭବ ଓ ମିଛ କଥାକୁ
Phaṭā gāluā ସତ ବୋଲି କରି କହେ—
ভাহা মিথ্যাবাদী **गपी, फटहा** Bragging; boastful and lying (person).

**ଫଟା ପାଣି**—ପ୍ରାଦେ. (ପୁରୀ) ବି.—ଅଳ୍ପ ଗଞ୍ଜେଇରେ ନାନା ପ୍ରକାର ମସଲା
Phaṭā pāṇi ପକା ଘୋଟା ହୋଇ କିମ୍ବା ଯାଇ ଥିବା ପାଣୀୟ—
A slightly intoxicating drink made of hemp leaves and spices pasted together.

**ଫଟା ପାହୁଲା**—ଦେ. ବି.—କ୍ଷୁଦ୍ରତମ ଅବ୍ୟବହାର୍ଯ୍ୟ ମୁଦ୍ରାଖଣ୍ଡ; ଅତି
Phaṭā pāhulā ସାମାନ୍ୟ ଧନ—Not even a single
কানাকড়ি **टुटापाइ** cracked pie.
(ଯଥା—ମୋ ପାଖରେ ଫଟା ପାହୁଲାଟିଏ ମଧ୍ୟ ନାହିଁ।)

**ଫଟାଫଟି**—ଦେ. ବିଣ—୧। ଅନ୍ୟୋନ୍ୟରେ ଫଟାଇବା—
Phaṭā phaṭi 1. Mutual breaking.
ফাটাফাটি (ଯଥା—ସେ ଦୁହେଁ କଳି କରି ମୁଣ୍ଡ ଫଟା ଫଟି ହେଲେ)
**फटाफुटी** ୨। ଭଗ୍ନ; ବିଦୀର୍ଣ୍ଣ—2. Broken; cracked.

**ଫଟା ରସିକ**—ଦେ. ବିଣ (ସଂ. ବ୍ୟସନୀ)—ଯାହା ପାଖରେ ପଇସାଏ
Phaṭā bisini ନ ଥାଏ, ଅଥଚ ବାହାରେ ରସିକପଣିଆ ବା
ফটিকচান্দ ରସିକତା ଦେଖାଇ ହୁଏ—1. Penniless yet
**फटकव्यसनी** foppish (person)

**ଫଟିକ୍**—ପ୍ରାଦେ. (ସମ୍ବଲପୁର) ବିଣ (ସଂ. ସ୍ଫଟିକ)—ନିର୍ମଳ; ସ୍ୱଚ୍ଛ—
Phaṭik Transparent.
ফটকিরী ଦେ. ବି. (ସଂ. ସ୍ଫଟିକାରୀ)—ଫିଟିକିରି—
**फीटकरी** Alum.

**ଫଟିକ**—ଦେ. ବି. (ସଂ. ସ୍ଫଟିକ)—ସ୍ଫଟିକ; ଏକ ପ୍ରକାର ଧଳା ସ୍ୱଚ୍ଛ ପଥର-
Phaṭika Crystal; quartz; rock-crystal.
ফটিক **विलोर; फटीक** ଦେ. ବିଣ—ସ୍ୱଚ୍ଛ—Transparent.

**ଫଟିକ ନବାତ**—ପ୍ରାଦେ. (ଜୟପୁର) ବି. (ସଂ. ସ୍ଫଟିକ+ଫା. ନବାତ୍)—
Phaṭika nabāta ମିଶ୍ରି—Sugar candy.

**ଫଟିକାରି**—ସଂ. ବି. (ବୈଦ୍ୟକ)—ଫିଟିକିରି (କ୍ଷାରେଲ୍ସ)—
Phaṭikāri Alum.

**ଫଟୋ**—ବୈଦେ. ବି. (ଇଂ)—୧। ଆଲୋକ ଚିତ୍ର; ଆଲୋକ
Phaṭo ସାହାଯ୍ୟରେ ଉଠୁଥିବା ଛବି—
(ଫଟୋଗ୍ରାଫ୍—ଅନ୍ୟରୂପ) 1. Photo; photograph.
ফটো, ফটোগ্রাফ ୨। ଫଟୋଗ୍ରାଫ୍ ଉଠାଇବା ଯନ୍ତ୍ର—
**फोटो** 2. Camera.

**ଫଟୋ ଉଠା(ଠେ)ଇବା**—ଦେ. କ୍ରି—ଆଲୋକ ଚିତ୍ରଦ୍ୱାରା ଛବି
Phaṭo uṭhā(ṭhe)ibā ଉତାରିବା—To photograph; to
ফটোতুলা **फोटोउठाना** take photo with a camera.
(ଫଟୋ ଉତାରିବା, ଫଟୋ ନେବା—ଅନ୍ୟରୂପ)

**ଫଟୋ ଉଠିବା**—ଦେ. ବି—ଆଲୋକ ଚିତ୍ରଦ୍ୱାରା କୌଣସି ବ୍ୟକ୍ତି ବା
Phaṭo uṭhibā ବସ୍ତୁର ଛବି ଉଠିବା—Being photographed.
ফটোউঠা **फोटोउठना**
(ଫଟୋ ଉତୁରିବା, ଫଟୋ କଢ଼ାଯିବା—ଅନ୍ୟରୂପ)

**ଫଟୋଗ୍ରାଫର୍**—ବୈଦେ. ବି. (ଇଂ)—ଯେଉଁ ବ୍ୟକ୍ତି ଯନ୍ତ୍ର ସାହାଯ୍ୟରେ
Phaṭogrāphar ଆଲୋକଚିତ୍ର ଉତାରେ—Photographer.
ফটোগ্রাফর **फोटोग्राफर**

**ଫଟୋଗ୍ରାଫି**—ବୈଦେ. ବି. (ଇଂ)—ଆଲୋକଚିତ୍ର ଉଠାଇବାର ବିଦ୍ୟା—
Phaṭogrāphi ফটোগ্রাফী **फोटोग्राफी** Photography.

**ଫଟୋ ଫ୍ରେମ୍**—ବୈଦେ. ବି. (ବଣିଆ ଶବ୍ଦ) (ଇଂ)—ଫଟୋଗ୍ରାଫ୍ ରଖିବା
Phato phrem ପାଇଁ ରୁପାର ଭାବକରି ବା ନକାସି କରା ଫ୍ରେମ୍—
ফটোফ্রেম্ A fancy frame inlaid with filagree work
**फोटोफ्रेम्** for keeping a photo.

**ଫଡ଼୍**—ଦେ. (ଧ୍ୱନ୍ୟନୁକରଣ) ଅ—ଫଡ଼୍ ଫଡ଼୍ (ଦେଖ)
Phaṛd Phaṛd phaṛd (See)

**ଫଡ଼୍କା**—ଦେ. ବି—(ଉଡ଼ିବା ସମୟରେ ଫଡ଼୍ ଫଡ଼୍ ଶବ୍ଦ କରିବାରୁ, ସଂ.
Phaṛdkā ପତାକା)—ପତାକା—Flag,
পতাকা, ঝাণ্ডা ବାନ୍ଧି ସେ ପଦେ ଫଡ଼କା ବାନା
**झण्डा, फरहरा** ହେତେ ହୋଇଲେ ଲଡ଼କା ସନା। ବ୍ରଜନାଥ, ସମରତରଙ୍ଗ
ପ୍ରାଦେ (ଗଡ଼ଜାତ) ବି. (ହି. ବାଂଶଫଟକା)—ଫସଲ ନଷ୍ଟ କରୁଥିବା ପଶୁମାନଙ୍କୁ ଘଉଡ଼ାଇବା ନିମନ୍ତେ ବ୍ୟବହୃତ ବାଦ୍ୟବିଶେଷ—A kind of sound-producing contrivance made of bamooo for scaring away wild beasts which ravage crops.

[ଦ୍ର—ଆଠ ଦଶ ହାତ ଲମ୍ବା କଣ୍ଟାବାଉଁଶର ମୂଳ ପଟରୁ ୨।୩ହାତ ପର୍ଯ୍ୟନ୍ତ ଫାଳେଇ ଗୋଟିଏ ଫାଳର ଅଗରେ ଦଉଡ଼ି ଲଗାଇ ସେ ଦଉଡ଼ିକୁ ନିକଟବର୍ତ୍ତୀ ଘୋଡ଼ାଘରେ ଥିବା ଲୋକ ଧରିଥାଏ; ବାଉଁଶଟି ପୋତା ହୋଇଥାଏ । ଦଉଡ଼ିକୁ ଟାଣି ଛାଡ଼ିଦେଲେ ଦଉଡ଼ିବନ୍ଧା ଫାଳଟି ଆର ଫାଳରେ ବାଜି ଖୁବ୍ ଉଚ୍ଚ ଫଟ୍ ଶବ୍ଦ ଉତ୍ପନ୍ନ କରେ । ସେ ଶବ୍ଦ ଶୁଣିଲେ କ୍ଷେତରେ ଫସଲ ଖାଇବାକୁ ଆସିଥିବା ଜନ୍ତୁମାନେ ଛୁଟୁଛୁ କରି ପଳାନ୍ତି । ]

**ଫଡ଼ଫଡ଼**—ଦେ (ଧ୍ୱନ୍ୟନୁକରଣ) ଅ—୧ । ଲୁଗା ଚିରିବାର ଶବ୍ଦ—
Pharda pharda 1. Sound of tearing cloth.
(ଫଡ଼ଫାଡ଼, ଫଡ଼ର ଫଡ଼ର—ଅନ୍ୟରୂପ) ୨ । ପକ୍ଷୀ ପ୍ରଥମେ ଉଡ଼ିବା
ଫଡ଼ଫଡ଼ ସମୟରେ ଡେଣାକୁ ବାଡ଼େଇବାର ଶବ୍ଦ—
**फड़फड़** 2. The sound of flapping of wings; fluttering sound.

୩ । ଆମଦୋଷରୁ ଅଧୋବାୟୁ ସହିତ ମଳ ବାହାରିବାର ଶବ୍ଦ—
3. The sound produced by wind mixed with stool during evacuation.

୪ । ଆଗ ପଛ ନ ବିଚାରି ଅନର୍ଗଳ ଗପିବା—
4. Talking garrulously.

୫ । ପତାକା ପ୍ରଭୃତିର ଉଡ଼ିବାର ଶବ୍ଦ—
5. The fluttering sound of flags.

ଉଡ଼ୁ ସଇନ୍ୟେ ଗଜଶ୍ରେଣୀରେ ପତାକା
ଉଡ଼ି ଉଠେ କରଲେ ଫଡ ଫଡ଼ ଡକା – କୃଷ୍ଣସିଂହ, ମହାଭାରତ ଭୀଷ୍ମ ।

**ଫଡ଼ଫଡ଼ ହେବା**—ଦେ. କ୍ରି (ସଂ. ଫରଫରାୟତେ)—୧ । ପକ୍ଷୀମାନେ
Pharda pharda hebā ଡେଣା ବାଡ଼େଇବାଦ୍ୱାରା ଶବ୍ଦ
ଫଡ଼ଫଡ଼ ହଓୟା କରିବା; ଫଡ଼ ଫଡ଼ ଶବ୍ଦ କରିବା—
**फड़फड़ाना, फड् फड् होना** 1. To flutter; to make a fluttering sound; to flap the wings.

୨ । ବାଜେ କଥା ଗପିବା—
2. To talk irrelevantly.

୩ । ଔତ୍ସୁକ୍ୟ ସହିତ ଗପିବାଦ୍ୱାରା ଆପଣାର ହୃଦୟସ୍ଥ ଲଘୁତା ପ୍ରକାଶ କରିବା—3. To be loquacious or garrulous; to show signs of light-heartedness by one's garrulity.

୪ । ଇତସ୍ତତଃ ହୋଇ ଚଞ୍ଚଳ ଗତି କରିବା; ଫର ଫର ହେବା; ଅସ୍ଥିର ହେବା—4. To move with restlessness; to be restless.

**ଫଡ଼ଫଡ଼ିଆ**—ଦେ. ବିଣ—୧ । ଫଡ଼ ଫଡ଼ ଶବ୍ଦ କରୁଥିବା—
Phardaphardiā 1. Making a fluttering or
ଫଡ଼ଫଡ଼ିଆ **फडफडिया** flapping sound.
(ଫଡ଼ଫଡ଼ୀ, ଫଡ଼ଫଡ଼େଇ—ସ୍ତ୍ରୀ) ୨ । (ପୁଂ) ବାଚାଳ—
2. Loquacious; garrulous.

୩ । (ପୁଂ) ଭୁରୁଭୁରିଆ; ଚଞ୍ଚଳ; ଅସ୍ଥିର—
3. Restless; hasty.

**ଫଡ଼ା**—ଦେ. ବି.—୧ । ବଡ଼ ବସ୍ତୁକୁ ଫାଡ଼ିଲେ ବା ଚିରିଲେ ସେଥିରୁ
Phardā ବାହାରିବା ଲମ୍ବ ଅଂଶ ବା ଖଣ୍ଡ—1. A strip or
ଫାଳି long piece split or separated from the
**फाड़ा** main thing.
(ଯଥା—ଫଡ଼ାଏ କାଠ ।)

୨ । ଏକଖଣ୍ଡ—2. One piece; strip; one slice.
(ଯଥା—ଫଡ଼ାଏ ଅମ୍ବୁଲ ।)

୩ । ମାଂସର ବଡ଼ ଖଣ୍ଡ; ବଡ଼ ଛିଲକା; ଚେଙ୍ଗ—
3. A big lump of meat.

୪ । ଫାଡ଼ିବା କର୍ମ—4. The act of phārdibā (See)
ଫାଡ଼ା ବିଣ.—୧ । ଚିରି ହୋଇଥିବା—1. Split.
**फाडाहुआ** ୨ । ପୃଥକ୍ କୃତ; ବିଭକ୍ତ—2. Separated.

**ଫଡ଼ା ଅମ୍ବୁଲ**—ଦେ. ବି.—ଆମ୍ବକୁ ଦୁଇ ଫାଳ କରି ଚିର ତହିଁ ମଧ୍ୟରେ
Phardā āmbula ଲୁଣ ମସଲା ଆଦି ଦେଇ ଶୁଖାଇ ରଖିଥିବା
ଫାଳା ଆମ୍ବ କରି ଯାଇଥିବା ଅମ୍ବୁଲ—Pickle made of
**फाडाआचार** split-up mangoes.

**ଫଡ଼ା(ଡ଼େ)ଇବା**—ଦେ. କ୍ରି.—(ଫାଡ଼ିବା କ୍ରିୟାର ଣିଜନ୍ତ ରୂପ)—
Phardā(rde)ibā The causative form of phārdibā.
ଫାଡ଼ାନ ୧ । ଅନ୍ୟ ବ୍ୟକ୍ତିଦ୍ୱାରା ଫାଡ଼ିବା କ୍ରିୟା କରାଇବା—
**फड़ाना** 1. To cause to be split.

୨ । ପୃଥକ୍ ବା ବିଭକ୍ତ କରାଇବା—
2. To cause to be separated.

୩ । ଚିରାଇବା—3. To cause to tear.

**ଫଡ଼ା ତଉଜି**—ଦେ. ବି.—(କଚେରିଆ) କଲେକ୍ଟରଙ୍କ ରେଜିଷ୍ଟରରେ
Phardā tauji ଏକ ତଉଜି ଅନ୍ତର୍ଗତ ଜମିଦାରିରୁ ଅଂଶ ପୃଥକ
ବାଁଟା তৌজী କରି ନିଆ ଯାଇଥିବା ହିସାବ; ପୃଥକ୍ ତଉଜି—
**बाँटा तौजी** Separate account opened in the Collector's register in respect of a portion of a zamindary by marking it with a separate serial number.

**ଫଡ଼ି**—ଦେ. ବି.—(ସଂ. ଫଳକ)—୧ । ଖଣ୍ଡା—
Phardi 1. Sword.

୨ । ପାଇକମାନେ ଖେଳିବାର କାଠ ଖଣ୍ଡା—2. A wooden sword used for mimic sword-playing exercises.

୩ । କର୍ପୂର, ଚନ୍ଦନ, ପାନଖିଲ ଆଦି ସଜ୍ଜିତ ଥିବା ଥାଳ—
3. Plate or tray for holding scents and betel.

୪ । ଢାଲ—4. Shield.

**ଫଡ଼ିଆ**—ଦେ. ବି.—(ସଂ. ଫଳକ)—୧ । ଜନ୍ତୁର ଧଡ଼ରୁ ପୃଥକ କରି
Phardiā ଯାଇ ଥିବା ପିଚା ସହିତ ଗୋଡ଼—1. Leg separated from the trunk, the part of the
ঠেঁঠা, ঠাঁগ body consisting of the rump; rump
**रान** and leg.

୨ । ଚକୁଆ; ପିଚା ଓ ଜଙ୍ଘ—
2. Rump; buttock and thigh.

୩ । ପିଚ୍ଛ—3. Buttocks.

ଚଣ୍ଡୀନିଜ ବକ୍ତ୍ରର ମାଂସ ଫଢ଼ୁଅ
ବହୁ ଦଶ ଦେଶେ ଲଂଘାଇ କରି ହସ୍ତା । କୃଷ୍ଣସିଂହ, ମହାଭାରତ ଶାନ୍ତି ।

**ଫଢ଼ୁଆ ଖସିବା**—ଦେ. କ୍ରି—ଆଘାତ ଆଦି ଦ୍ୱାରା ଫଢ଼ୁଆ ବା ପିଚ୍ଛ ତଳର
Phardiā khasibā ହାଡ଼ କଟିହାଡ଼ରୁ ଅଲଗା ହୋଇଯିବା—
ଠେଂଗର୍ଭାଂଗା Dislocation of the thigh bone or femur.
**কাঁহুটুটনা, রান্ টুটনা**

**ଫଢ଼ିକାର**—ଦେ. ବି—୧ । ରାଜାଙ୍କ ଭୃତ୍ୟବିଶେଷ ( ଯେଉଁମାନେ
Phardikāra ଥାଳରେ ସଜ୍ଜିତ କର୍ପୂର, ଚନ୍ଦନ, ପାନଖିଲ ଆଦି
ଧରି ରାଜାଙ୍କ ସଙ୍ଗରେ ଥାଆନ୍ତି)—Servants who bear plates holding betel and scents; tray-bearer.
୨ । ଯେ ଖଣ୍ଡାରେ ଖେଳ ଦେଖାଏ—2. Sword-player.
୩ । ଖଡ୍ଗଧାରୀ ବ୍ୟକ୍ତି (ମାଦଳା ପାଞ୍ଜି)—3. Swordsman.

**ଫଢ଼ି ଖେଳ**—ଦେ. ବି—ଫରି ଖେଳ (ଦେଖ)—
Phardi khela Phari khela (See)

**ଫଢ଼ିଙ୍ଗ**—ପ୍ରାଦେ. (ମେଦିନୀପୁର) ବି (ସଂ. ପତଙ୍ଗ)—୧ । ଝିଣ୍ଟିକା—
Phardinga (ଫଢ଼ଙ୍ଗା—ଅନ୍ୟରୂପ) 1. Locust.
**ফড়িঙ্, ফড়িঙ্গ फतिंगा** ୨ । ଝିଙ୍କାରୀ—2. Cricket.

**ଫଢ଼ୁ**—ପ୍ରାଦେ (ସମ୍ବଲପୁର) ବିଣ—ନିଷ୍ଫଳ—
Phardu Fruitless; vain.

**ଫଢ଼ୁଆ**—ଗ୍ରା. ବି—ଫରୁଆ (ଦେଖ)
Pharduā Pharuā (See)

ଫଢ଼ୁଆ ପାଣ୍ଡା ଘନଘେରେ ଭରି,
ଧାଇବଢ଼ ନିଶାଇଣ ଚଢ଼ାଇ, ସାଥିକୁଆ ବାଡ଼ା ।

**ଫଣ୍ (ଧାତୁ)**—ସଂ—୧ । ଗତି କରିବା; ଗମନ କରିବା—
Phan (root) 1. To go; to move.
୨ । ଗମନ କରାଇବା; ଗତି କରାଇବା—
2. To cause to move.
୩ । ଅନାୟାସରେ ଉତ୍ପନ୍ନ ହେବା—
3 To grow easily.
୪ । ତରଳ କରିବା; ପାଣିଆ କରିବା—
4. To dilute; to liquefy.
୫ । ବିସ୍ତୃତ ହେବା—5 To spread; to expand.
୬ । ଦୀପ୍ତି ପାଇବା—6. To shine.

**ଫଣ(ଣା)**—ସଂ. ବି—(ଫଣ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ+ଆ)—
Phana (nā) ସାପର ବିସ୍ତୃତ ମୁଣ୍ଡ; ସାପର ଫେଣା—
The expanded hood of a snake.

**ଫଣ ଧର**—ସଂ. ବି. ପୁଂ—(ଫଣ+ଧୃ ଧାତୁ+କର୍ତ୍ତୃ. ଅ)—ଫଣୀ; ଫଣା
Phana dhara ଥିବା ସର୍ପ (ନାଗ, ଗୋଖର, ଚନ୍ଦ୍ର)—Hooded snake (e.g cobra de capello).
{ ଫଣକର, ଫଣବାନ୍, ଫଣଭୃତ୍, ଫଣାକର
{ ଫଣାଧର, ଫଣାଭୃତ୍, ଫଣାବାନ୍ } ଅନ୍ୟରୂପ

**ଫଣଧରଧର**—ସଂ. ବି—(ଉପପଦ ତତ୍ପୁରୁଷ; ଫଣଧର=ସର୍ପ+ଧର=
Phanadharadhara ଯେ ଧରେ)—ମହାଦେବ; ଶିବ—
Mahādeba; Siba.

**ଫଣଫଣ**—ଦେ. ବିଣ—୧ । ରକ୍ତବର୍ଣ୍ଣ; ଲାଲବର୍ଣ୍ଣବିଶିଷ୍ଟ—
Phana phana 1. Red coloured.
**ফোলাফোলা सुजाहुआ** ୨ । ଫୁଲିକା—3. Slightly swollen.

କ୍ଷୀର ସକାଶରୁ ମର୍ଦ୍ଦିଲା ଫଣ ଫଣ । ରଙ୍ଗିଣ ହୋଇଲା ସେ ଅଦ୍ଭୁତ ସ୍ତନ ।
କୃଷ୍ଣସିଂହ, ମହାଭାରତ ଶାନ୍ତି ।

**ଫଣଫଣା**—ଦେ. ବି—( ସଂ. ଶ୍ୟୋଣା; ଶ୍ୟୋଣାକ )—ଔଷଧିବୃକ୍ଷ-
Phana phanā ବିଶେଷ—A medicinal plant; Colosanthes Indica; Oroxylum Indicum; Bignonia Indica.

ସଂ. ଶ୍ୟୋଣା, କଟ୍ଵଙ୍ଗ, ଶ୍ୟୋଣାକ, ନଟ, ଶ୍ୟୋନାକ, ଶୋଷଣ, ଟୁଣ୍ଟୁକ, ମଣ୍ଡୂକପର୍ଣ୍ଣୀ, ପତ୍ରୋର୍ଣ୍ଣ, ଶୁକନାଶ, କଟ୍ଟନଟ, ପାର୍ଶ୍ୱକୃନ୍ତ, ଅରଲୁ, ପୃଥୁଶିମ୍ବ, କଟମ୍ଭର, ଭୂତବୃକ୍ଷ, ଶଲକ, ମୟୂରଜଙ୍ଘା, ଡିଣ୍ଡୁକ, ପ୍ରିୟଜୀବ—
শোণা, সোনা, নাসোনা
**सोनापठा, सोन्ना, सन्ना, अलु**
ମ. ଟେଣ୍ଟୁ
ନେପାଳ-କରୁମଦନ
ତା. ପନ
ତେ· ଦୁନ୍ଦିଲପୁ, ପୋଦାମାନୁ
ଗଞ୍ଜାମ. ଫାମ୍ଫୁଣିଆ
ଗୁ. ଅରଡ଼ୁଶୋ, ମରମଟ୍ୟ

[ ବୃ—ପଟଲାଦି ବର୍ଗର ଛୋଟ ତରୁ; ଉଚ୍ଚରେ ୨୦ ଫୁଟ ପର୍ଯ୍ୟନ୍ତ ବଢ଼େ; ପତ୍ର ଦ୍ୱିଧାପର୍ଣ୍ଣ ଓ ୨୲୩ ହାତ ଲମ୍ବ । କାଠ ଲଘୁ । ଫୁଲ ବଡ଼ ବଡ଼ ମାଂସଳ ଓ ନାଲି ବାଇଗଣୀ ମିଶ୍ରିତ ବର୍ଣ୍ଣ । ଫୁଲର ଭେଣ୍ଟ ଦୀର୍ଘ; ୫ ଗୋଟି କେଶର । ଫଳ ଶିମ୍ବ କୁଇଁପରି କିନ୍ତୁ ବଡ଼; ଏହା ୧ ହାତ ୧୲ ହାତ ଲମ୍ବ ଓ ୩୲୪ ଅଙ୍ଗୁଳ ଓସାର । ଶୀତରେ ପକ୍ୱ ଥାଏ । ବୈଦ୍ୟ ଶାସ୍ତ୍ର ମତରେ ଦଶମୂଳର ଏହା ଗୋଟିଏ ଉପାଦାନ । ଏହା କଷାୟ ତିକ୍ତ ରସ, କଟୁ ବିପାକ, ଶୀତବୀର୍ଯ୍ୟ, ଅଗ୍ନି ବର୍ଦ୍ଧକ, ତ୍ରିଦୋଷନାଶକ, ଧାରକ, ପୀଡଶ୍ଳେଷ୍ମଘ୍ନ ଅତିସାର ଓ ସନ୍ଧିପାତ ଜ୍ୱର ନିବାରକ; ଏହାର କଞ୍ଚା ଫଳ କଷାୟ ମଧୁର ଓ କୃମି, କଫ, ବାୟୁ, ଗୁଳ୍ମ, ଅର୍ଶ ରୋଗରେ ଉପକାରକ; ପାଚିଲା ଫଳ ଗୁରୁପାକ ଓ ବାୟୁପ୍ରକୋପକ । ଏହାର ମଞ୍ଜି ବିରେଚକ; ଏ ଗଛ ପାହାଡ଼ତଳେ ଓ ନଦୀକୂଳରେ ବେଶି ଉଠେ ]

**ଫଣମଣି**—ସଂ. ବି—( ମ. ଧ. ଶ୍ଳୋ. )—ଫଣାବିଶିଷ୍ଟ ସର୍ପ (ଯଥା ନାଗ,
Phana mani ଗୋଖର)ର ଫଣା ମଧ୍ୟରେ ଥିବା ମଣି—
A small round jewel found in the hood of cobra and other snakes.

**ଫଣା (ଇତ୍ୟାଦି)**—ସଂ. ବି (ଫଣ+ଆ)—ଫଣ ଇତ୍ୟାଦି (ଦେଖ)
Phanā (etc) Phana etc (See)

**ଫଣୀ କେଶର**—ସଂ. ବି—ନାଗେଶ୍ୱର (ଫୁଲ)—
Phani kesara The Mesua Ferra (flower).

**ଫଣିଜା**—ସଂ. ବି—ନାଗଫେଣିଆ ଗଛ—
Phanijā (ଫଣୀ ମନସା—ଅନ୍ୟରୂପ) The cactus.

**ଫଣୀ ଜିହ୍ୱକ**—ସଂ. ବି—ବଳା (ଦେଖ)
Phani jihwaka Balā (See)

**ଫଣୀ ତଳ୍ପଗ**—ସଂ. ବି—(ଫଣୀ ତଳ୍ପ=ସର୍ପ ଶଯ୍ୟା+ଗମ୍ ଧାତୁ+କର୍ତ୍ତୃ. ଅ)
Phani talpaga —ବିଷ୍ଣୁ (ଅନନ୍ତ ଶୟନ କରିଥିବାରୁ)—
Bishnu.

**ଫଣୀ ପ୍ରିୟ**—ସ. ବି—(୬ଷ୍ଠୀ ତତ୍; ଫଣିନ୍+ପ୍ରିୟ; ସର୍ପମାନେ ବାୟୁ Phaṇi priya ଆହାର କରନ୍ତି ବୋଲି କବିପ୍ରସିଦ୍ଧି ଥିବାରୁ) ବାୟୁ— Air; the wind.

**ଫଣୀ ଭୁକ୍**—ସ. ବି—(ଫଣିନ୍+ଭୁଜ୍ ଧାତୁ+କର୍ତ୍ତୃ.କ୍ୱିପ୍, ୧ମା ୧ବ) Phaṇi bhuk ୧ । ମୟୂର—1. Peacock.

୨ । ଗରୁଡ଼—2. Garurda.

**ଫଣୀ ଭୂଷଣ**—ସ. ବି—୧ । (ବହୁବ୍ରୀହି; ଫଣିନ୍+ଭୂଷଣ) ମହାଦେବ; Phaṇi bhūshaṇa ଶିବ—Siba.

୨ । ( ରୂପକକର୍ମଧା ) ସର୍ପରୂପ ଅଳଙ୍କାର; ଭୂଷଣରୂପେ ବ୍ୟବହୃତ ସର୍ପ—2. Snake put on as an ornament (by Siba).

**ଫଣୀ**—ସ. ବିଣ. ପୁଂ (ଫଣ+ଇନ୍; ଫଣିନ୍ ଶବ୍ଦ, ୧ମା. ୧ବ) Phaṇi ଯାହାର ଫଣା ଥାଏ—Hooded.

(ଫଣିନୀ—ସ୍ତ୍ରୀ) ବି.—ସର୍ପ—Serpent.

**ଫଣୀନ୍ଦ୍ର**—ସ. ବି—(୭ମୀ ତତ୍; ଫଣୀମାନଙ୍କ ମଧ୍ୟରେ ଇନ୍ଦ୍ର=ଶ୍ରେଷ୍ଠ) Phaṇindra ସର୍ପରାଜ; ବାସୁକି; ଅନନ୍ତ— The Great Serpent(Bāsuki); the king amongst serpents.

ଫଣିରାଜ, ଫଣୀଶ୍ୱର } ଅନ୍ୟରୂପ

**ଫଣ୍ଡ୍**—ବୈଦେ. ବି (ଇଂ)—୧ । ତହବିଲ; ଅର୍ଥକୋଷ; ପୁଞ୍ଜି; Phaṇḍ ନଗଦ ଧନ—1. Fund; treasure; cash.

ଫଣ୍ଡ; **फण्ड्** ୨ । କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଗଚ୍ଛିତ ଧନ— 2. Money collected and stored for a particular purpose.

**ଫଣ୍ଡ**—ସ. ବି—( ଫନ୍ ଧାତୁ=ଗମନ କରିବା+ସଜ୍ଞାର୍ଥ. ଡ)—ଜଠର; Phaṇḍa ଉଦର—Belly; stomach.

**ଫଣ୍ଡା**—ପ୍ରାଦେ (ଗଞ୍ଜାମ) ବି—(ତୁଳ. ବଂ. ଫାଁଡ଼ା)—୧ । ମାରାତ୍ମକ ଦଶା; Phaṇḍā ଆସନ୍ନ ମୃତ୍ୟୁ ଅବସ୍ଥା; ମୁମୂର୍ଷୁ ଅବସ୍ଥା— 1. Fatal condition; moribund state.

୨ । ଜ୍ୟୋତିଷ ଗଣନାନୁସାରେ ମୃତ୍ୟୁଯୋଗ; ରିଷ୍ଟ— 2. A conjunction of planets in one's horoscope leading to his death

**ଫତ୍‌ନା**—ଦେ. ବି (ସ. ପ୍ଲୁତ)—ଭରଣ୍ଡିକା; ବନଶୀ ସୂତାରେ ବନ୍ଧା ହୋଇଥିବା ଶୋଲ ବା କାଠି; ଡେରେଣ୍ଡା— Phat-nā A float fastened to an angling line.

ଫାତନା, ଫାତା **कडेरा, तैरक, तरैला**

**ଫତା**—ଦେ. ବି—୧ । ଫତ୍‌ନା (ଦେଖ) Phatā 1. Phat-nā (See)

୨ । ଫେତି (ଦେଖ)—2 Pheti (See)

**ଫତୁଆ**—ଦେ. ବିଣ (ତୁଳନା କର ବିପରୀତାର୍ଥକ ଆରବୀ ଫତହ୍= Phatuā ପରାଜୟ; ଆ. ଫତୁର୍=ଅସାମର୍ଥ୍ୟ)—୧ । ବ୍ୟର୍ଥ- ପତୋ ମନୋରଥ; ଅକୃତ କାର୍ଯ୍ୟ—1. Having one's (ଫତୁ—ଅନ୍ୟରୂପ) aims unfulfilled; unsuccessful.

ଫତୁଆ ନହୁନ୍ତି ବୋଲେ ଜଗଦ୍‌ବନ୍ଧୁ ହରିଚନ୍ଦନ ଏ ଗୀତ
କବିସୂର୍ଯ୍ୟ ବଳରାମ ରଥ, ଫ ଗୀତ

୨ । ବଦନାମ; ଅପବାଦଗ୍ରସ୍ତ; କଳଙ୍କ ଯୁକ୍ତ— 2. Defamed; maligned.

୩ । ପରାସ୍ତ; ପରାଜିତ—3. Defeated; vanquished.

ଫତୁଆ ହେବୁ କି ସେ କାମ ଅମଳ ମଦୁଆଳ ଯୁବା ଭୂଲେ ।
କବିସୂର୍ଯ୍ୟ ସଙ୍ଗୀତ ।

୪ । ଅପ୍ରସ୍ତୁତ—4 Unprepared for any contingency; reduced to an awkward predicament.

୫ । ମିଥ୍ୟାବାଦୀ; ମିଛୁଆ; ଯେ ଆପଣାର କଥା ପାଳି ନ ପାରେ— 5. Liar; unable to carry out one's promise; false to one's promise.

ଦେ. ବି.—ଫତେଇ (ଦେଖ)—Phatei (See)

ବୈଦେ. ବି (ଆ.ଫତ୍‌ୱା)—ମୁସଲମାନ କାଜୀ ବା ମୁଲ୍ଲାଙ୍କର ବ୍ୟବସ୍ଥା ଫତବା ବା ବ୍ୟବସ୍ଥାପତ୍ର—Judgment of a Mohomedan **फतवा** judge or priest; futwa; a religious prescription.

**ଫତୁର**—ବୈଦେ. ବିଣ (ଆ. ଫତୁର୍; ଅସାମର୍ଥ୍ୟ)—ନିଃସ୍ୱ=ଦରିଦ୍ର— Phatura ଫତୁର **फतुर** Poor; penniless.

**ଫତୁରତ୍**—ଦେ. ବିଣ—ଫିକରବାଜ; ଫତୁରିଆ— Phaturat (ଫତୁରାଇ—ବି) Tactician; artful.

**ଫତୁରି**—ବୈଦେ. ବି. (ଆ ଫତୁର୍=ଉପଦ୍ରବ, ହାନି, ବିକାର, ବିଘ୍ନ)— Phaturi ୧ ମିଥ୍ୟା; ମିଛକଥା—1 Falsehood.

(ଫତୁରାମି—ଅନ୍ୟରୂପ) ୨ । ଦାମ୍ଭିକତା; ବାଗାଡ଼ମ୍ବର; ମୁହଁ ବାଲିଗ— 2. Garrulity; boasting; arrogance.

୩ । ବୃଥା ଭାଷଣ—3. Vain talking.

୪ । ଉତ୍ପାତ—4 Outrage; oppression.

୫ । ବିଦ୍ରୋହ; ପ୍ରଜାମେଳି—5. Rebellion.; revolt.

**ଫତୁରିଆ**—ଦେ. ବିଣ—୧ । ଫତୁଆ (ଦେଖ) Phaturiā 1. Phatuā (See)

(ଫତୁରଖୋର—ଅନ୍ୟରୂପ) ୨ । (ପୁଂ ଓ ସ୍ତ୍ରୀ) ବୃଥା ଭାଷୀ; ବକୁଆ; (ଫତୁରେଇ—ସ୍ତ୍ରୀ) ବାଚାଳ; ବାବଦୂକ; ଯେ ବୃଥାରେ ଗୁଡ଼ାଏ ବକେ— **फतुरिया** 2. Garrulous; talkative.

୩ । ଉତ୍ପାତକାରୀ—3. Committing outrages.

୪ । ବିଦ୍ରୋହୀ—4. Rebellious; revolting.

**ଫତୁରିଆ କରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ମିଥ୍ୟାବାଦୀ Phaturiā karibā ବୋଲି ପ୍ରମାଣିତ କରାଇବା—1. To [ଫତୁରିଆ ବନା (କେ) ଇବା—ଅନ୍ୟରୂପ] prove a person to be a liar.

୨ । କୌଣସି ବ୍ୟକ୍ତିର ବାକ୍ୟ ବା କଥାକୁ ନିଷ୍ଫଳ କରାଇଦେବା— **फतुरिया बनाना** 2. To frustrate a person's promise or words.

**ଫତୁରି କରିବା**—ଦେ. କ୍ରି—ଭୁରୁଡ଼ି କାଢ଼ିବା; ଭୁରୁଡ଼ାଇବା— Phaturi karibā To repudiate a matter with arrogance; to deny a matter with brazen-facedness.

ଫତୁରି କାଢ଼ିବା, ଫତୁରି ଖେଳିବା } ଅନ୍ୟରୂପ

**ଫତୁରଖୋର୍**—ଦେ. ବଣ—ଉତୁରୁଡ଼ା; ଯେ ଉତୁରୁଡ଼ୁ କାଢ଼େ—
Phaturi khor **फतुरिया** Brazenfaced.

ଫତୁରଖୋର ଅଖରକୁ ହେବାର ହେବ ସିନା ଏଥୁ ଫଳ
କବିସୂର୍ଯ୍ୟ. କଶୋଗ୍ନ ବଧୁ ଫ ଗୀତ

**ଫତେ (ତ୍ତେ)**—ବୈଦେ. ବ (ଅ. ଫତହ, ଫତେ = ବିଜୟ; କାର୍ଯ୍ୟ ସିଦ୍ଧି)
Phate (tte) ୧ । ଜୟଲାଭ—1. Victory; conquest.
(ଯଥା—ଗଡ଼ ଫତେ କରିବା)
फते **फते** ୨ । କାର୍ଯ୍ୟ ଲାଭ; କୃତକାର୍ଯ୍ୟତା—2. Success.

× × ତୁ ଯେପରି ହୁତ ଦେଲୁ କାମ ଫତେ
ଫକୀର ମୋହନ. ଛ ମାଣ ଅଠଗୁଣ୍ଠ.

୩ । କାର୍ଯ୍ୟସମାଧା—3. Accomplishment.
ବିଣ.—୧ । ସୁସମାହିତ, ସୁସମ୍ପନ୍ନ—1. Accomplished.

ବାମଦେବ ପରପଲ୍ଲି ରଣଜୟୀକାମ କୋହିନ୍ତିକ ଅନ୍ତର ଫତେ ।
କବିସୂର୍ଯ୍ୟ. ସଙ୍ଗୀତ.

୨ । ଜୟୀ—2. Victorious.
୩ । କୃତକାର୍ଯ୍ୟ—3. Successful.
ପ୍ରାଦେ.—(ଗଡ଼ଜାତ) ବି.—ବୀର କ୍ଷତ୍ରିୟମାନଙ୍କୁ ଦିଆ ଯିବା ଉପାଧି—A title given to valorous Khatriyas.

**ଫତେଇ**—ବୈଦେ. ବ.—(ଅ. ଫତୁବା; ଫତୁହି)—ହାତ ନ ଥିବା
Phatei କୁର୍ତ୍ତି; ଜାକେଟ୍—Jacket; waist coat
**फतूहीं, बहकटी** (ଫତୁଇ—ଅନ୍ୟରୂପ)

**ଫତେ କରିବା**—ଦେ. କ୍ରି.—(ଅ. ଫତହ୍ = ବିଜୟ)—୧ । ଜୟ
Phate kariba କରିବା; ଜିଣିବା—1. To win.
फतेकरा ୨ । ସମାଧା କରିବା—
**फतेकरना** 2. To accomplish.
୩ । କାର୍ଯ୍ୟ ସିଦ୍ଧ କରିବା—3. To succeed in doing a work.

ଏକା ରଘୁ ଛତ କାମ ଫତେ କରି ଦେବ—'
ଗୋକର୍ଣ୍ଣ ଦାଟ. ପିଲ୍ଲଙ୍କ ରାମାୟଣ ।

**ଫତେ ଖାଁ**—ବୈଦେ. ବ—(ବ୍ୟଙ୍ଗ)—(ଅ.ଫତହ୍, ଫତେ=ବିଜୟ)—
Phate khān ୧ । ଜୟଲାଭ କରିଥିବା ସେନାପତି—
ଫତେ ନବାବ୍ } ଅନ୍ୟରୂପ A victorious general.
ଫତେ ବାବୁ }

ତନ ଅଲଗା ଫତେଖାଁ—ଚଗ ।

फतेनबाब, फतेबाबू (ଏ ଉଗର ଅର୍ଥ ଏହି ଯେ—ଯେଉଁ କାର୍ଯ୍ୟର
**फतेखाँ** ତନଖିବାର ଭାର ତନ ଜଣ ବ୍ୟକ୍ତିଙ୍କ ଉପରେ ଥାଏ ସେ କାର୍ଯ୍ୟ ବିଗିଡ଼େ)
୨ । ଆଡ଼ମ୍ବର ଯୁକ୍ତ ନାମଧାରୀ ବ୍ୟକ୍ତି—
2 A person with a big-sounding name.
୩ । ପରାନ୍ନପୁଷ୍ଟ ଓ ଆଡ଼ମ୍ବରଯୁକ୍ତ ବ୍ୟକ୍ତି—3. A person who lives on the bounty of another and assumes airs.

**ଫତେ ହେବା**—ଦେ. କ୍ରି—୧ । (ମନୋବାଞ୍ଛା) ସିଦ୍ଧ ହେବା—
Phate hebā 1. (one's wish) To be fulfilled.
फते हओया ୨ । (ମକଦମା) ଡିଗ୍ରୀ ହେବା—
**फते होना** 2 (a case) To be decreed.

× × × × ତା ମାମଲା ଫତେ ହେଲ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

୩ । ବିଜୀତ ହେବା—3. To be won or conquered.
(ଯଥା—ଗଡ଼ ଫତେ ହେବା)
୪ । ସୁସମ୍ପନ୍ନ ହେବା—4. To be accomplished.
(ଯଥା—କାମ ଫତେ ହେବା)

**ଫନ୍ (ଧାତୁ)**—ସଂ—ଗମନ କରିବା; ଗତି କରିବା—
Phan (root) To go; to move.

**ଫନସ**—ପ୍ରାଦେ. (ବସ୍ତର) ବି—ପନସ—
Phanasa Jackfruit.

**ଫନି**—ପ୍ରାଦେ. (ସମ୍ବଲପୁର) ବି—୧ । ତନ୍ତୁ—1. Fibre.
Phani ୨ । ତନ୍ତ—2. Loom.

**ଫନୋଗ୍ରାଫ୍**—ବୈଦେ.ବ.(ଇଂ. ଫୋନୋଗ୍ରାଫ୍)-କୌଣସି ଗାୟକର ଗୀତକୁ
Phanogrāph ଅବିକଳ ଉତ୍ପାଦନ କରିବା ସଙ୍ଗୀତ ଯନ୍ତ୍ର;
फनोग्राफ **फोनोग्राफ** ଗ୍ରାମୋଫୋନ୍—Gramophone; phonograph.
[ଦ୍ର—ଏ କଳରେ ଗୀତ ଦେଲେ ମନୁଷ୍ୟ କଣ୍ଠରୁ ବୋଲାଯିବା ସଙ୍ଗୀତ ପରି ଏ ଯନ୍ତ୍ରରୁ ଶବ୍ଦ ବାହାରେ ।]

**ଫନ୍ଦ**—ବୈଦେ. ବ. (ଅ. ଫନ୍=କୂଟ କୌଶଳ; ତୁଳ, ସଂ. ବନ୍ଧନ)—
Phanda ୧ । ଫାନ୍ଦ; ଜାଲ—1. Snare; net.
फन्दी ୨ । କୌଶଳ; ଚତୁରୀ; କୂଟ; କୌଶଳ—
**फन्द** 2. Cunning; artifice; stratagem.
୩ । ଉପାୟ—3. Means.
୪ । ଜୀବିକା—4. Livelihood.
फाँड़ ଦେ. ବ—ପାତ୍ରର ବା କୂପର ଚଉଡ଼ା ଧାର—
**बाढ** The broad rim or edge of a cup or well.

**ଫନ୍ଦ ଫିକର**—ବୈଦେ. ବ (ଅ. ଫନ୍ଦ+ଫିକର୍)—୧ । କୂଟ କୌଶଳ—
Phanda phikara 1. Artifice; stratagem.
(ଫନ୍ଦ ଫିକର—ଅନ୍ୟରୂପ) ୨ । ଉପାୟ—2. Means.
फन्दिफिकीर ୩ । ଜୀବିକା ନିର୍ବାହର ଉପାୟ; ବୃତ୍ତି—
**फन्दिफिकीर** 3. Means of living, livelihood.
[ଫନ୍ଦ ଫିକରିଆ, ଫନ୍ଦ ଫିକରି—ବ୍ୟକ୍ତିବାଚକ ବିଣ]

**ଫନ୍ଦ(ନେ)ଲ୍**—ବୈଦେ. ବ. (ଇଂ. ଫନେଲ୍)—ସରୁମୁହାଁ ବୋତଲରେ
Phanda(ne)l ତେଲ ଆଦି ପୂରାଇବାପାଇଁ ବ୍ୟବହୃତ ଟିଣ କାହାଳୀ;
फनेल ଚୋଙ୍ଗା (ଏହାର ଉପରି ମୁହଁ ଫରକ୍ ଓ ତଳମୁହଁ କ୍ରମସୂକ୍ଷ୍ମ ହୋଇ
**चोंगा,टीप** ସରୁ ହୋଇଥାଏ)—Funnel for pouring oil into bottle.

**ଫନ୍ଦଲି**—ପ୍ରଦେ. (ବାଲେଶ୍ୱର) ବ—ଫନ୍ଦଲ (ଦେଖ)
Phandali (ଫନ୍ଦଲି—ଅନ୍ୟରୂପ) Phandal (See).

**ଫନ୍ଦା**—ବୈଦେ. ବ—(ଅ. ଫନ୍=କୂଟ କୌଶଳ; ଫନ୍ଦ୍=ଫାନ୍ଦ, ଜାଲ,
Phandā ଚତୁରୀ; ତୁଳ. ସଂ. ବନ୍ଧ)—୧ । ଅବଲମ୍ବନ; ଆଶ୍ରୟ—
फन्द **फँदा** (ଫନ୍ଦ—ଅନ୍ୟରୂପ) 1. Refuge; shelter.

ମୋର ଛଇଳାମଣି ସବୁ ଫନ୍ଦା । ଭଞ୍ଜ. ପ୍ରେମ ସୁଧାନିଧି ।

୨ । ଜୀବିକା—2. Livelihood.
୩ । ଜୀବିକା ନିର୍ବାହର ଉପାୟ, ବୃତ୍ତି—
3. Profession; means of living; occupation.

ରେ କଂଶୋଷ । ଫନ୍ଦାଧନ ଭୂ ଭ ମୋର ' ବଳଦର୍ପ. କଂଶୋଷ ଚମ୍ପୂ ପ. ଗୀତ ।

୪ । ଉପାୟ—4. Means.

୫ । ଯୋଗାଡ଼; ଆୟୋଜନ—5. Preparation.

ହସ୍ତପଷଧୀ ଦୁର୍ଗର ନାୟକ ସଙ୍ଗରେ ମୋତ ପଷ୍ଟଇବ ଏକା କଲେ ଫନ୍ଦା ।
କବିସୂର୍ଯ୍ୟ. ସଙ୍ଗୀତ ।

୬ । ଫିକର; କୌଶଳ —6. Artifice; tact.

୭ । ଜାଲ; ଫାନ୍ଦ—7. Snare; net.

୮ । କୂଟ ନୀତ—8. Policy; diplomacy.

କାହାର ନାହିଁ ଏଥେ କେହୁ ମାୟାର ଫନ୍ଦା ବନ୍ଧ, ଘଇ ।
ପ୍ରାଚୀ. ନର୍ଗଣମାହାତ୍ମ୍ୟ ।

୯ । ଖନ୍ଦ; ଫସଲ—9. Crop.

ଟୋଲୁ ଖଣ୍ଡ ଦେଇ ଫନ୍ଦ, ଉଜାଡ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

୧୦ । ପସରା—10. Shop; an exhibition of the commodities in a shop.

ଘନ ଜଘନାର ଘନ ଜଘନ କ କାମ ବଣିକର ଫନ୍ଦା ।
ରଘୁନାଥ. ଯଯାତ ।

ବିଣ.—ଛନ୍ଦାଛନ୍ଦି—Intertwined.

ସେ ଯୁଦ୍ଧରେ ଦୁଂହିଁ ହାତକୁ ହାତ ଫନ୍ଦା ।
କୃଷ୍ଣସିଂହ. ମହାଭାରତ. ବନ ।

**ଫନ୍ଦା(ନ୍ଦେ)ଇବା**—ଦେ. କ୍ରି.—୧ । ସଂଯୁକ୍ତ କରିବା—
Phandā(nde)ibā 1. To join together.
फाँदा ୨ । ନିୟୋଜିତ କରିବା—
**फँदाना** 2. To engage.

୩ । ଫାନ୍ଦି କରି କଥା କହିବା; କଥାକୁ ଯୋଡ଼ାଯାଡ଼ିକରି ବିଶ୍ୱାସଯୋଗ୍ୟ କରି କହିବା—3. To speak a matter in such a manner that it will be believed or it will seem probable.

୪ । ମଙ୍ଗାଇବା—4. To make one agree to.

ଫେରି ଦାଅନ୍ତି କଣ୍ଠୁ ଏ ମଣି ହାର
ଫନ୍ଦାଇ ପାରିବ କି କିବା ମୈତ୍ରର । କବିସୂର୍ଯ୍ୟ. ରତ୍ନାକର ଚମ୍ପୂ ।

୫ । ଭୁଲାଇବା—5. To inveigle.

ଫନ୍ଦାଇ ନାନା ବଚନେ କହୁ ଦନ୍ତେ ତୃଣ ଧରିବାର ଗଲ ।
କବିସୂର୍ଯ୍ୟ. କଂଶୋଷଚମ୍ପୂ. ପ. ଗୀତ ।

**ଫନ୍ଦା ଯିବା**—ପ୍ରାଦେ. (ସମ୍ବଲପୁର) କ୍ରି.—(ତୁଳ. ହି. ଫନ୍ଦା ଜାନା)
Phandā jibā (କୌଣସି ବସ୍ତୁ) ରଜ୍ଜୁ ଆଦି ଦ୍ୱାରା ବନ୍ଧା ଯିବା—
(ଫନ୍ଦା ହେବା—ଅନ୍ୟରୂପ) To be tied with a rope.

**ଫନ୍ଦି**—ବୈଦେ. ବି. (ଆ. ଫନ୍)—୧ । କୌଶଳ—
Phandi 1. Strategy; contrivance; stratagem.
फन्दि **दाँव** ୨ । ଜୀବିକା—2. Livelihood

୩ । ଗୁଭୁସ୍ତ;—3. Cunning; machination.

୪ । ଫିକର; ଉପାୟ—4. Means; device.

୫ । ଉପସ୍ଥିତ ବୁଦ୍ଧି—5. Presence of mind.

୬ । ବାହାନା – 6. Feigning; excuse; plea.

୭ । ପାଞ୍ଚ; ଉପାୟ; ଚନ୍ତା—7. Scheme; project.

**ଫନ୍ଦି କରିବା**—ଦେ. କ୍ରି.—୧ । ଭୁଲାଇବା—
Phandi karibā 1. To beguile; to inveigle.
फन्दि करा ୨ । କୌଶଳ କରିବା—
**दाँव करना** 2. To employ strategy.

୩ । ଉପାୟ କରିବା—3. To employ means.

**ଫନ୍ଦି କାଢ଼ିବା**—ଦେ. ବି.—କୌଶଳ ବା ଉପାୟ ଉଦ୍ଭାବନ କରିବା—
Phandi kāṛhibā To think out an expedient.
फन्दी बाहिर करा **फन्दी निकालना**

**ଫନ୍ଦି ଫିକର**—ବୈଦେ. ବି. (ଏକାର୍ଥକ ସହଚର)—କୌଶଳପୂର୍ଣ୍ଣ ଉପାୟ—
Phandi phikara फन्दी फिकिर **दाँवपेच** Stratagem.

**ଫନ୍ଦିବାଜ୍**—ଦେ. ବିଣ—୧ । ଯୋଗାଡ଼ିଆ—
Phandibāj 1. One who makes preparations to
फन्दीबाज् **फँदबाज** bring about a result.
(ଫନ୍ଦାବାଜ୍, ଫନ୍ଦୀବାଜ୍—ଅନ୍ୟରୂପ) ୨ । ଫନ୍ଦିସିବାଜ୍; କୌଶଳୀ—
2. Strategic; artful.

୩ । ଉପସ୍ଥିତବୁଦ୍ଧିଶାଳୀ—3. Having presence of mind; resourceful.

୪ । ଯେ ଆପଣାର ଜୀବିକା ନିର୍ବାହ ନିମନ୍ତେ ଉପଯୁକ୍ତ ଉପାୟ ଅବଲମ୍ବନ କରେ—4. One who takes to a suitable occupation.

**ଫପଡ଼ ଦଲାଲ**—ପ୍ରାଦେ. (ବାଲେଶ୍ୱର) ବିଣ.—(ତୁଳ. ବ. ଫୌପର
Phaparda dalāla ଦାଲାଲ୍=ବଲେପଣା ଲୋକ)—ବିଣ.—

୧ । ଯେ କୌଣସି କାର୍ଯ୍ୟ ନ ବୁଝି ବା ତହିଁରେ କୌଣସି ଦାୟିତ୍ୱପୂର୍ଣ୍ଣ ଅଂଶ ବହନ ନ କରି କେବଳ ମୁହଁରେ ଫଡ଼୍ ଫଡ଼୍ କରି କଥା କହୁ ଥାଏ ବା ଉପଦେଶ ଦେଉ ଥାଏ; ବଚନସର୍ବସ୍ୱ—1. An irresponsible talker who gives advice gratis.

୨ । ଯେ ଅଯାଚିତ ଭାବରେ ଅନ୍ୟର କାମ କରେ; ବଲେପଣା—2. Officious

**ଫପଡ଼ ଦଲାଲି**—ପ୍ରାଦେ. (ବାଲେଶ୍ୱର) ବି.—ଫପଡ଼ ଦଲାଲର କର୍ମ—
Phaparda dalāli The act of being an irresponsible talker; officiousness.

**ଫପଣି**—ଦେ. ବି.—ଫଣଫଣା (ଦେଖ)
Phapaṇi Phaṇaphaṇā (See)

**ଫପସା**—ଦେ. ବିଣ. (ସଂ. ସ୍ଫାୟ୍ ଧାତୁ=ଫୁଲିବା)—୧ । ବଳରହିତ
Phapasā ଓ ସ୍ଥୂଳକାୟ—Corpulent and weak.
फोँपरा; फोँपसा ୨ । ପୋଲା (ମାଟି); ଯହିଁରେ କୌଣସି
**फोपी** ଦ୍ରବ୍ୟ ମାଇଲେ ତାହା ଭିତରକୁ ପଶି ଯାଏ; ଶୂନ୍ୟଗର୍ଭ—
2. Porous (earth); hollow.

ଦେ. ବି.—(ସଂ.—ଫୁପ୍ ଫୁସ)—ଫୁସଫୁସ ଯନ୍ତ୍ର
फोँपरा फोँपसा **फेफडा** Lungs.

**ଫବେଇ ହେବା**—ଦେ. କ୍ରି (ତୁଳ. ସଂ. ସ୍ଫାୟ୍ ଧାତୁ=ଫୁଲିବା)—
Phabei hebā ମିଛ କଥା କହିବା; ପ୍ରକୃତ ବା ସତ୍ୟ କଥା ନ
ଫବେଇ କଥା କହିବା } ଅନ୍ୟରୂପ ଜାଣି ଗପିବା—
ଫବେଇ ହୋଇ କଥା କହିବା } To talk of a thing which one does not know personally.

**ଫମ୍ପ(ମ୍ଫ)ଣିଆ**—ଦେ. ବି—ଫଣଫଣା (ଦେଖ)—Phaṇaphaṇā
Phampa(mpha)ṇiā [ଫମ୍ପ(ମ୍ଫ)ଣା—ଅନ୍ୟରୂପ] (See)

**ଫମ୍ପା**—ଦେ. ବିଣ. (ସଂ. ଷ୍ମାପ୍ଧାତୁ=ଷ୍ଫୀତ ହେବା)—
Phampā ୧ । ଫୋପଲ; ଅନ୍ତଃସାରଶୂନ୍ୟ; ଶୂନ୍ୟ—
फाम्पा 1. Hollow; empty.
**फोका, फोकला** ୨ । ଫୁଲୁକା—2. Puffy.
ବି—ଷ୍ଫୀତି; ଫୁଲ—Inflation; swelling.
(ଯଥା—ପେଟଫମ୍ପା)

**ଫମ୍ପା(ମ୍ପେ)ଇବା**—ଦେ. କ୍ରି—୧ । ଫୁଲାଇବା; ଷ୍ଫୀତ କରିବା—
Phampā(mpe)ibā 1. To inflate.
**फँपाना** ୨ । ଭିତରେ ପବନ ଭର୍ତ୍ତି କରାଇବା—
**फुलाना** 2. To blow up a thing with wind.
୩ । ଫୁଲିବା—3. To swell; to be inflated.

**ଫର୍**—ଦେ. (ଧ୍ୱନ୍ୟନୁକରଣ) ଅ—୨ । ଫର୍ ଫର୍ (ଦେଖ)
Phar 1. Phar phar (See)
୨ । ଫର୍ର୍ (ଦେଖ)—1. Pharr (See)

**ଫର୍ଦ୍ଦଓସି**—ବୈଦେ. ବି. (ନାମ)—ମାହ୍ମୁଦ୍ ଗଜନୀଙ୍କର ସଭାକବି—
Phar-diosi The court poet of Mahamud of
ଫର୍ଦୁସୀ } ଅନ୍ୟରୂପ Ghazni.
ଫର୍ଦୌସୀ }
[ ଦ୍ର—ଏ ଏକାଦଶ ଶତାବ୍ଦୀର ଜଣେ ମୁସଲମାନ କବି । ଏ 'ଗଜନବଂଶାନୁଚରିତ' ବା ସାହାନାମା ଗ୍ରନ୍ଥ ରଚନା କରି ପାରିଲେ, ମାମୁଦ୍ ଏହାଙ୍କୁ ଲକ୍ଷେ ଅସରଫି (ସ୍ୱର୍ଣ୍ଣମୁଦ୍ରା) ଦେବେ ବୋଲି କହିଥିଲେ । ଗ୍ରନ୍ଥ ଶେଷ ହେବା ପରେ ମାହ୍ମୁଦ୍ ଏହାଙ୍କୁ ଲକ୍ଷେ ରୌପ୍ୟ ମୁଦ୍ରା ଯାଚବାରୁ ଏ ତାହା ଫେରାଇ ଦେଲେ । ଫର୍ଦ୍ଦଓସିଙ୍କର ମୃତ୍ୟୁପରେ ମାମୁଦ୍ ତାଙ୍କ ଝିଅଙ୍କୁ ଲକ୍ଷେ ଅସରଫି ଦେଲେ । ]

**ଫର୍ ଫର୍**—ଦେ. (ଧ୍ୱନ୍ୟନୁକରଣ) ଅ (ସଂ. ଫର୍ଫର; ପା. ଫର୍ ଫର୍=
Phar phar ସ୍ୱରିତ)—୧ । ପତଳା ଲୁଗାଆଦିର ପବନରେ
(ଫର୍ଫର୍—ଅନ୍ୟରୂପ) ଉଡ଼ିବା ଶବ୍ଦ—1. Flapping sound
फर फर of thin things flowing in the air.
**फर फर** ଚିଙ୍କଳ କେଶ ବେଶ ହୋଇ ଭ୍ରମରେ
ଉଡୁଛନ୍ତି ବେଳେ ଉତ୍ତରୀକୁ ଫରଫରେ । ବୃନ୍ଦାବ. ମହାଭାରତ ବନ ।

୨ । ଅତିଶୟ; ଖୁବ୍‌ବେଶି—2. Very; much.
(ଯଥା—ଧୋବ ଫର୍ ଫର୍)
୩ । ଅତି ଚଞ୍ଚଳ; ତ୍ୱରିତ—3. Hastily.
୪ । ଅଧୀର ରୂପେ—4. Impatiently.

**ଫର୍ର୍**—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଚଢ଼େଇ ଉଡ଼ିଯିବାର ଶବ୍ଦ—
Phar-r 1. The flapping sound of a bird flying in the air.
[ ଦ୍ର—ଛୋଟ ଚଢ଼େଇ ଉଡ଼ିବାର ଶବ୍ଦକୁ ଫୁରୁର୍ ବୋଲାଯାଏ । ]
୨ । ଲୁଗା ଚିରିବାର ଶବ୍ଦ—2. The sound produced when a piece of cloth is torn up.

**ଫର**—ଦେ. ବି. (ସଂ. ଫଲକ)—ଢାଲ—Shield.
Phara ଗ୍ରା. ଇତର (ଶ୍ରେଷ୍ଠ ଜାତୀୟ ଲୋକଙ୍କର ଉଚ୍ଚାରଣ ଦୋଷ; ଲ ସ୍ଥାନରେ ର ଉଚ୍ଚାରଣ)—ଫଳ—Fruit.
ଗ୍ରା. (ବସ୍ତର) ବି—ଫଳ—Fruit.

**ଫରକ**—ବୈଦେ. ବି. (ଆ. ଫର୍କ୍)—୧ । ଦୂରତ୍ୱ—
Pharaka 1. Distance; interval.
फर्क ୨ । ବିଭିନ୍ନତା; ପାର୍ଥକ୍ୟ; ପ୍ରଭେଦ—
**फर्क** 2. Difference; discrepancy.
(ଫର୍କ—ଅନ୍ୟରୂପ) ବିଣ—୧ । ଭିନ୍ନ—
1. Different; discrepant.
୨ । ଅଲଗା; ପୃଥକ୍—2. Separate; distinct.
୩ । ଦୂର—3. Distant.

**ଫରକଟା**—ଦେ. ବିଣ. (ସଂ. ପୃଥକ୍; ଆ. ଫର୍କ୍=ପୃଥକ୍)—
Pharakaṭā ୧ । ପରସ୍ପରଠାରୁ ଅଲଗା ହୋଇଥିବା—
ଫର୍କଟା } ଅନ୍ୟରୂପ 1. Separated; parted from each
ଫର୍କଟିଆ } other.
फर्कटिया ଫରକଟା ଗୋଡ଼େ ତୁଏ ପୁଣ ଠିଆ
**छितराहुआ; फैलाहुआ** ରଘୁନାଥ. ଦରବାର ।
୨ । ଦୁଇ ଶାଖା ବିସ୍ତୃତ ହୋଇ ପୃଥକ ହୋଇ ଯାଇଥିବା—
2. Divergent; with the two ends diverging from each other.

**ଫରକଟା(ଟେ)ଇ ଚାଲିବା**—ଦେ. କ୍ରି.—ଦୁଇ ଗୋଡ଼କୁ ଫାଙ୍କଫାଙ୍କ
Pharakaṭā(ṭe)i chālibā କରି ଚାଲିବା—To straddle;
फर्कटे चलना to walk by keeping the legs diverging
**टाँग फैलाकर चलना** from each other.

**ଫରକଟା(ଟେ)ଇବା**—ଦେ. କ୍ରି—୧ । ଦୁଇ ଶାଖାକୁ ବିସ୍ତୃତ କରି
Pharakaṭā(ṭe)ibā ଅନ୍ୟୋନ୍ୟଠାରୁ ଏକ ମୂଳରେ ପୃଥକ୍
[ଫର୍କଟା(ଟେ)ଇବା—ଅନ୍ୟରୂପ] କରାଇବା—1. To cause to
फर्काना diverge from one another.
**छितराना, फैलाना** ୨ । ବିସ୍ତାର କରିବା; ମେଲା କରିବା—
2. To open; to spread open.
୩ । ଫାଙ୍କ ଫାଙ୍କ କରିବା—3. To separate.

**ଫରକଟା ଗୋଡ଼ା**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ଗୋଡ଼ ଦୁଇଟା
Pharakaṭā goṛdā ଫରକଟା ହୋଇଥାଏ—Having one's
(ଫର୍କଟା ଗୋଡ଼ିଆ—ଅନ୍ୟରୂପ) legs diverging from each other; bandy-legged.
(ଫରକଟୀ ଗୋଡ଼ୀ, ଫରକଟୀ ଗୋଡ଼େଇ, ଫରକଟେଇ ଗୋଡ଼ୀ, ଫର୍କଟୀ ଗୋଡ଼ୀ, ଫର୍କଟୀ ଗୋଡ଼େଇ, ଫର୍କଟେଇ ଗୋଡ଼ୀ—ସ୍ତ୍ରୀ)

**ଫରକା(କ୍କା)**—ବୈଦେ. ବି. (ଆ)—କଣ୍ଢେଇଙ୍କର ଉପକରଣ ଭିଅଁର;
Pharakā(kkā) ଯେଉଁ ଭିଅଁରଦ୍ୱାରା ଛିଦ୍ରର ମୁଖକୁ ବଡ଼
फरंका କରାଯାଏ—A boring instrument for
**फरका** widening the mouth of a hole

ଫରକା ପକା(କେ)ଇବା—ଦେ. କ୍ରି—ସରୁଆ ଭଅଁରରେ କରାଯାଇ ଥିବା ଛିଦ୍ରର ମୁହଁକୁ ଫରକା ସାନ୍ଧ-ଦ୍ୱାରା ଚଉଡ଼ା କରିଦେବା—To widen the mouth of a hole, so that the head of a screw will fit into it.
Pharakā pakā(ke)ibā
[ ଦ୍ର—ଏପରି କଲେ ଉକ୍ତ ଛିଦ୍ରରେ ଅଣ୍ଟାଯିବା ପେଚକଣ୍ଟାର ଛଟ କାଠର ପୃଷ୍ଠସଙ୍ଗେ ସମତଳ ହୋଇ ବସିଯାଏ । ]

ଫରକ୍କାବାଦ ଟଙ୍କା—ଦେ. ବି—ଇଂରାଜ ଅଧିକାର ପୂର୍ବରୁ ଭାରତ ପ୍ରଚଳିତ ରୌପ୍ୟମୁଦ୍ରା—Furukhabad rupee.
Pharakkābāda ṭankā
फरक्काबाद टाका **फरक्काबाद रुपया**

ଫରଚ୍ଛ— ଦେ ବିଣ. [ଫ. ଫର୍‌ଖାର; ସ. ସ୍ପୃଶ୍ୟ; ପ୍ରା.ଫରସ୍ସ (ହି.ଶ.)]—
Pharachā ୧ । ବିସ୍ତୃତ; ପ୍ରଶସ୍ତ; ଚଉଡ଼ା—1. Broad; wide.
(ଫର୍ଚ୍ଛା—ଅନ୍ୟରୂପ)
फरसा ୨ । ସୁନ୍ଦର—2. Fair.
**फरक्का; फरचा** ୩ । ସ୍ପଷ୍ଟ—3. Clear; distinct.

ଅସ୍ତ ଜାଣିଲେ ସେ ହୀର ସାହାର
ଫରଚ୍ଛରେ ନ ବୋଇଲେ ଉତ୍ତର । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

୪ । ନିର୍ମଳ; ପରିଷ୍କୃତ—4. Clean.
୫ । ସୁପ୍ରକାଶିତ—5. Manifest.
୬ । ଆଲୋକିତ—6. Lighted.
୭ । ସାବକାଶ—7. Spacious.
୮ । ଉଜ୍ଜ୍ୱଳ—8. Bright.
ବି—୧ । ପ୍ରକାଶ—1. Manifestation.
୨ । ଆଲୋକ—2. Light.
୩ । ରାତି ପାହୁଥିବା ଅବସ୍ଥା—3. Daybreak.
୪ । ପରିଷ୍କୃତ ହେବା—4. Clearance.
୫ । ଉଜ୍ଜ୍ୱଳତା—5. Brightness.

ଫରଚ୍ଛ(ଚେ)ଇବା—ଦେ. କ୍ରି—୧ । ବିସ୍ତାର କରିବା—1. To spread.
Pharachā(che)ibā
फर्कान ୨ । ମେଲା କରିବା—2. To unjoin; to open.
**फैलाना; फरचाना** ୩ । ଚଉଡ଼ା କରିବା—3. To widen.

ଫରଚ୍ଛ ହେବା—ଦେ· ବି—ଫରଫରାଟ ଯିବା; ସକାଳର ଆଲୁଅ ସ୍ପଷ୍ଟ ହେବା—Dawn; daybreak.
Pharachā hebā
रातपोहान **पौ फटना**

ଫରଦ୍‌ଓସବ୍‌ରିନ୍—ବୈଦେ. ବି. ( ଆ )—ସ୍ୱର୍ଗ ( ମୁସଲମାନମାନଙ୍କ ମତରେ)—The heaven ( of the Mahomedans).
Pharad-osab-rin

ଫରଦ—ବୈଦେ ବି. (ଫା. ଫର୍ଦ୍ =ଏକ ସଂଖ୍ୟା)—
Pharada ୧ । କାଗଜ ବା ଲୁଗାର ଏକ ଖଣ୍ଡ—1. A piece or standard sheet of cloth or paper.
ଫର୍ଦ୍ଦ, ଫର୍ଦ୍ଦ } ଅନ୍ୟରୂପ
फर्द [ଦ୍ର—୨୫ ଫରଦ କାଗଜରେ ୧ ଦିସ୍ତା ଓ ୨୦ ଦିସ୍ତାରେ
**फरद** ୧ ରିମ୍ ହୁଏ, ଏକଖଣ୍ଡ ସାଲକୁ ମଧ୍ୟ ଏକ ଫରଦ ସାଲ ବୋଲାଯାଏ । ]
୨ । ତାଲିକା—2. List; inventory; catalogue.

ଏ ଦରବାରର ଅସବ ଫରଦ
ଛତ୍ରପତ୍ର ପାଣ୍ଡେ କରିଦେବ ରଦ । ରାଧାନାଥ. ଦରବାର ।

ଫରନ୍ଦ—ଦେ. ବି—ପରନ୍ଦ (ଦେଖ)
Pharanda Paranda (See)

ଫର ଫନ୍ଦ—ଦେ. ବିଣ. (ଆ. ଫନ୍ଦ, ଫନ୍=ଜାଲ)—୧ । ଉପାୟ—1. Means.
Phara phanda
फन्दी ୨ । ଆଶ୍ରୟ—2. Shelter; refuge.
**फरफन्द** ୩ । ଜୀବିକା—3. Livelihood.
ଫରଫନ୍ଦା, ଫରଫନ୍ଦ, ଫରଫନ୍ଦ, ଫରଫନ୍ଦା, ଫରଫନ୍ଦ, ଫର୍ଫନ୍ଦ, ଫର୍ଫନ୍ଦା, ଫର୍ଫନ୍ଦ } ଅନ୍ୟରୂପ
୪ । ଚାଲିବାଗିଚ; ଛଳ; କପଟ—4. Deceit.
୫ । କୌଶଳ—5 Stratagem

ଫର ଫର—ଦେ. (ଧ୍ୱନ୍ୟନୁକରଣ) ଅ (ତୁଲ. ସ. ସଫଙ୍କ ଫରଫରାଯ଼ତେ)—
Phara phara ୧ । ଫର୍ ଫର୍ (ଦେଖ) 1. Phar phar (See)
फर फर
**फरफर** ୨ । ସାମାନ୍ୟ ବୃଷ୍ଟି ପଡ଼ନର ଶବ୍ଦ—2. Sound of a light shower of rain.
(ଫର୍ଫର୍—ଅନ୍ୟରୂପ)

ମେଘଃ ଝର ଝର ଫର ଫର କରୁଥିଲା । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ବିଣ—୧ । ଅହଙ୍କାରରେ ଫୀତ; ଯେ ନିଜର ବଡ଼ିମା ଦେଖାଇ ହୁଏ—1. Swollen with pride.
୨ । ଇତସ୍ତତଃ ଗର୍ବସହକାରେ ଯିବା ଆସିବା କରୁଥିବା—2. Moving to and fro with pride; strutting.

ସଭାଜନଙ୍କର ଶଙ୍କଣା କଳର
ବୋଲ ବେହୁ ହେଉଛନ୍ତି ଫରଫର । ରାଧାନାଥ. ଦରବାର ।

ଫର ଫରା—ଦେ. ବି. (ଧ୍ୱନ୍ୟନୁକରଣ)—ସାମାନ୍ୟ ବର୍ଷା; ଲିଫି ଲିଫି—A light shower; drizzle.
Phara pharā
गुँड़िगुँड़ि बृष्टि ଆଠ ଦୂମ୍‌ବାଣି ଖୋଳ ଅସର
**फुआर पडना** ବର୍ଷାଏ ଫରଫର ଚଉଷଠି କୁଣ୍ଡାଏର
ଭେଦେ ଯାଇ ତଷାର ସେତ ହୁଏ ପୂର୍ଣ୍ଣ । କୃଷିବଚନ ।

ଫର ଫରିଆ—ଦେ. ବିଣ. ପୁଂ. (ସ. ଫର୍ଫର=ଚପଳ)—୧ । ଫାଜିଲ୍—1. Light-hearted; braggart.
Phara phariā
(ଫରଫରି, ଫରଫରେଇ—ସ୍ତ୍ରୀ) ୨ । ଚପଳ,—2. Hasty; restless.
(ଫରଫରି, ଫର୍ଫରିଆ—ଅନ୍ୟରୂପ)
फरफरे ୩ । ଖୁବ୍ ପତଳା; ଝିଲ୍‌ମିଲ୍—3. Very thin; of delicate texture.
**फरफराता हुआ**

ଫର(ରେ)ବ୍—ବୈଦେ. ବି.—(କଚରିଆ) (ଫା. ଫରେବ୍)—ଛଳ; କପଟ—Deceit.
Phara(re)b फरेब **फरेब**

ଫର(ରେ)ବ୍‌ବାଜ୍—ବୈଦେ. ବିଣ.(କଚରିଆ)—(ଫା.) (ଫରେବ୍‌ବାଜ୍)
Phara re)b-bāj —୧ । ପ୍ରତାରକ—1. Cheating, deceitful; fraudulent.
फरेबबाज **फरेबबाज**
(ଫରେବ୍‌ବାଜ—ଅନ୍ୟରୂପ) ୨ । ଫନ୍ଦିବାଜ୍—2. Artful.

**ଫର(ରେ)ବି**—ବୈଦେ. ବଣ. (କଟକଅ) (ଆ. ଫରେବୀ)—
Phara(re)bi ୧ । ପ୍ରତାରଣାପୂର୍ଣ୍ଣ—1. Deceitful.
ଫରବ } ୨ । ଢଣ୍ଡକତାପୂର୍ଣ୍ଣ—
ଫରେବ } ଅନ୍ୟରୂପ 2. Fraudulent.
ଫରେବୀ } ବି.—୧ । ଢଣ୍ଡକତା—1. Fraud.
ফরেবী ୨ । ଠକାମି; ପ୍ରତାରଣା—
**फरेबी** 2. Deceit; trick; cheating.

**ଫର(ରେ)ବି କାଢ଼ିବା**—ଦେ. କ୍ରି. (କଟକଅ)—ଢଣ୍ଡକତା କରିବା—
Phara(re)bi kārḍhibā To defraud; to act
ফরেবী করা **फरेबी निकालना** fraudulently.

**ଫରମା**—ବୈଦେ. ବି.— ଫର୍ମା (ଦେଖ)
Pharamā Pharmā (See)

**ଫରମାନ୍**—ବୈଦେ. ବି.—(ଫା. ଫରମାନ୍; ମୂଳ. ସଂ. ପ୍ରମାଣପତ୍ର)—
Pharamān ୧ । ପରୁଆନା; ରାଜକୀୟ ଆଦେଶ ପତ୍ର—
ফরমান 1. King's order; royal mandate.
**फरमान** ୨ । ଭୂମି ଛଡ଼ାଉ; ସନନ୍ଦ—
2. Sanad; firman.

**ଫରମାନ୍ ବରଦାର୍**—ବୈଦେ ବଣ. (ଫା)—୧ । ଆଜ୍ଞାନୁଗତ (ଭୃତ୍ୟ)
Pharaman-baradār 1. Subservient; obedient.
(ଫରମା ବରଦାର୍—ଅନ୍ୟରୂପ) ୨ । ପ୍ରଭୁଙ୍କ ଆଦେଶ ପାଳନକାରୀ-
ଫରମାନ୍ ବରଦାରୀ } —ବି 2. Carrying out the
ଫରମା ବରଦାରୀ } master's orders.

**ଫରମାସ(ସି)**—ବୈଦେ. ବି.—(ଫା. ଫରମାଇସ୍)—୧ । ଆଦେଶ;
Pharamāsa(si) ହୁକୁମ—1. Order.
ଫରମାଇସ(ସି) } ୨ । ନିର୍ଦ୍ଦିଷ୍ଟ ପଦାର୍ଥ ତିଆର କରିବା
ଫରମାଏସ(ସି) } ଅନ୍ୟରୂପ ବା ଯୋଗାଇବା ନିମନ୍ତେ
ଫର୍ମାସ(ସି) } ଆଦେଶ—2. Special
ফরমাস order for the supply of a thing.
**फरमाइश** ହେଳେ ସୁନ୍ଦର ଶ୍ରୀମୁଖ ପରସନ୍ନରୁ ଫରମାସ ।
ବଳଦୃପ୍ତ, ଉପେନ୍ଦ୍ର ଭଞ୍ଜ, ବୈ. ଶୀ ।

ফরমাসী ବଣ.—(ଫା. ଫରମାଇଶୀ)—୧ । ଆଦେଶ ଅନୁସାରେ
**फरमाइशी** ପ୍ରସ୍ତୁତ ବା ଯୋଗା ହୋଇଥିବା—1. Specially
made or supplied to order.
୨ । ଉତ୍କୃଷ୍ଟ—2. Excellent.

**ଫରମାସ କରିବା**—ଦେ. କ୍ରି.—୧ । ଫରମାଦ କରିବା; କୌଣସି ଦ୍ରବ୍ୟ
Pharamāsa karibā ପାଇଁ ବିଶେଷ ଆଦେଶ ଦେବା—
ফরমাস করা **फरमाना** 1. To order a special
ଫରମାସିବା } thing.
ଫରମାସ ଦେବା } ଅନ୍ୟରୂପ ୨ । ବିବେଚନା କରିବା; ବିଚାର
କରିବା—2. To consider.
ବେ ଉପେନ୍ଦ୍ର । ଫରମାସ ମନେ ମନେ ।
ବଳଦୃପ୍ତ, ଉପେନ୍ଦ୍ର ଭଞ୍ଜ, ପ. ଶୀ ।
୩ । ଆଦେଶ କରିବା—3. To order.

**ଫରମାସ ମୁତାବକ**—ବୈଦେ. କ୍ରି. ବଣ.—(ଫା. ଫରମାଇଶ୍ +
Pharamāsa mutābaka ମୋତାବକ୍)—ଆଦେଶ ଅନୁସାରେ-
ফরমাস মোতাবক To order; as per order.
**फरमाइस मोताविक्** ଫରମାସ ମାଫିକ(କେ) } —ଅନ୍ୟରୂପ
ଫରମାସକୁ ଗୁହିଁ }

**ଫରଲ**—ଦେ. ବଣ. (ସଂ. ସ୍ଫାର ଧାତୁ)—ବିସ୍ତୃତ—
Pharala Spreading; wide.
ମଦନ ମଦ ବରଧନ କର, ସକଳ ଫରଲ ତରଳତର—ଭଞ୍ଜ, ପ୍ରେମସୁଧାନିଧି ।

**ଫରଲଙ୍ଗ୍**—ବୈଦେ. ବି. (ଇଂ. ଫର୍ଲଙ୍ଗ୍)—ଇଂରାଜୀ ଦୂରତ୍ୱ ପରିମାଣ
Pharalang ବିଶେଷ; ମାଇଲର ଆଠ ଭାଗରୁ ଏକ ଭାଗ; ୨୨୦
ফর্লঙ্গ **फरलाँग** (ଫର୍ଲଙ୍ଗ୍—ଅନ୍ୟରୂପ) ଗଜ—Furlong.

**ଫରଲୋ**—ବୈଦେ. ବି—(ଇଂ. ଫର୍ଲୋ)—ଫର୍ଲୋ (ଦେଖ)—
Pharalo Pharlo (See).

**ଫରସ**—ଦେ. ବଣ. (ସଂ. ପରୁଷାର)—ନିର୍ମଳ—Clean.
Pharasa କରିତାକୁ ଆକରଷ ଦନ୍ତ ଫରସ । ଭଞ୍ଜ ।
ବୈଦେ.ବି.(ଫା. ଓ ଆ. ଫର୍ଶ୍)—ବଇଠକଖାନାର ଚଟାଣରେ
ফরস ପଡ଼ିଥିବା ସତରଞ୍ଚ ବା ଗାଲିଚା ଆଦି ଉପରେ ବିଛାଯାଇଥିବା
**फरस** ବଡ଼ ଚାଦର—Floor-cloth.
( ଫର୍ଶ—ଅନ୍ୟରୂପ )

**ଫରସା**—ପ୍ରାଦେ. (ସିଂହଭୂମ) ବି. (ସଂ. ପରଶୁ; ମୂଳ. ହି. ଫରସା)—
Pharasā ଫାରସା (ଦେଖ)—Phārasā (See).

**ଫରସି**—ବୈଦେ. ବି—(ବର୍ଣ୍ଣିଆ ଶବ୍ଦ)(ଫା. ଫରଶୀ)—ମେଡାଲ୍, ହୁକା ଓ
Pharasi ଅଳଙ୍କାରରେ ଯେଉଁ ଅଂଶରେ ନଳୀ ଆଦି ଝଳା ଯାଇ
ফর্সী ଥାଏ—The part of a medal, smoking pipe
**फरसी** or ornament to which another
portion is soldered.

**ଫରାକ**—ଦେ. ବି—(ମୂଳ. ଫା. ଫରାମୋଶ୍=ବିସ୍ମୃତ)—ବିସ୍ମରଣ—
Pharāka Forgetting.
ବୈଦେ. ବି—(ଇଂ. ଫ୍ରକ୍) ସ୍ତ୍ରୀଲୋକ ଓ ଶିଶୁଙ୍କ ପରିଧେୟ ଢିଲା
ফ্রক্;ফরাক্ **फराक** କୁର୍ତ୍ତା—Frock.

**ଫରାକତ(ତି)**—ବୈଦେ. ବଣ—(ଆ. ଫରାଖ୍=ବିସ୍ତୃତ)—୧ । ବିସ୍ତୃତ—
Pharākat(ti) 1. Wide; extensive.
[ଫରାଖତ(ତି)—ଅନ୍ୟରୂପ] ୨ । ନିର୍ମଳ—2. Clear.
ফরাকৎ ୩ । ସାବକାଶ—3. Spacious.
**फराकत** ୪ । ପୃଥକ୍ କୃତ—4. Separated.
୫ । ଉନ୍ମୁକ୍ତ; ଖୋଲା—5. Open.
୬ । ସମତଳ—6. Plain.
୭ । ଚଉଡ଼ା—7. Broad.
ବି (ଆ. ଫରାଖତ)—୧ । ମୁକ୍ତି—1. Relief; release.
ফরাকৎ ୨ । ଅବସର; ଅବକାଶ—2. Leisure.
**फराखति** ୩ । ଛୁଟି—3. Leave; vacation.
୪ । ପୃଥକତ୍ୱ; ସ୍ୱତନ୍ତ୍ରତା—
4. Distinctness; separateness.

**ଫର୍‌କତ(ତି)**—ବୈଦେ. ବି. (ଫା. ଫାର୍‌ଖତ୍; ଆ. ଫାରଗ୍‌ଖତ୍=ମୁକ୍ତିପତ୍ର )—୧ । ମୁକ୍ତିପତ୍ର—1. Deed of release.
Pharākata (ti)

ଫର୍‌ଖତ(ତି) } ଅନ୍ୟରୂପ
ଫାରକ(ଖ)ତ(ତି) }

୨ । ବିଶୋଧନ ପାଉତି—2. A receipt in full satisfaction or discharge.
फारखत

୩ । ଖୋଲା ବା ମୁକ୍ତ ସ୍ଥାନ—3. Open space.
**फारखती**

୪ । ସ୍ୱୀକାର ପତ୍ର—4. Deed of acknowledgement.

୫ । ଛାଡ଼ପତ୍ର—5. A deed of divorce.

**ଫର୍‌କତି**—ବୈଦେ. ବିଣ—(ଫା. ଫାରଗ୍)—୧ । ମୁକ୍ତ—1. Released.
Pharākati

ଫର୍‌କତିଆ }
ଫର୍‌ଖତି } ଅନ୍ୟରୂପ
ଫର୍‌ଖତିଆ }

୨ । (ଫା. ଫର୍‌ଖ୍) ଖୋଲା; ଉନ୍ମୁକ୍ତ—2. Opened; open.

୩ । (ଆ. ଫାରଗ୍‌ଖତ୍) ଛାଡ଼ପତ୍ର ଦିଆ ଯାଇଥିବା—3. Divorced.
फराकत्

୪ । (ଆ. ଫର୍‌ଖ୍) ସ୍ଥାନ ବିଶିଷ୍ଟ; ଅପ୍ରଶସ୍ତ—4. Spacious.
**फराखत**

**ଫର୍‌ର୍(ରି)**—ବୈଦେ. ବିଣ. (କଚିତ୍‌ଆ) ( ଆ. ଫର୍‌ରୁ )—ପଳାତକ; ଫେରାର—Fugitive; absconding.
Pharār(ri)
ফোরার **फरार**

**ଫର୍‌ସ**—ବୈଦେ. ବି—୧ । (ଆ. ଫରଶ୍=ବିଛଣା) ଭୂଇଁରେ ବିଛାଯିବା ବଡ଼ ଆସନ; ସତରଞ୍ଜି—1. A floor-mat.
Pharāsa
फरास

୨ । (ଆ. ଫର୍‌ରାସ୍) ଗୃହର ନୀଚ କର୍ମ କରିବା ଚାକର—2 Menial servant.
**फरास**

୩ । (ଫା. ଫର୍‌ସାସ୍; ଇଂ. ଫ୍ରାନ୍ସ) ଫ୍ରାନ୍ସ ଦେଶ—3. France.

**ଫର୍‌ସୀ**—ବୈଦେ. ବିଣ• ( ଇଂ. ଫ୍ରାନ୍ସ=ଦେଶବିଶେଷ; ଫା. ଫର୍‌ସାସ୍=ଫ୍ରାନ୍ସ ଦେଶ)—ଫ୍ରାନ୍ସ ଦେଶୀୟ—French.
Pharāsī
फरासी **फरासीसी** (ଫର୍‌ସିସ୍—ଅନ୍ୟରୂପ)

ଫରାସିସ୍ ଛାଡ଼ର ମିରକେଲେ । ସ୍ୱାଧୀନାଥ• ବଟେଶ୍ୱ ।

ବୈଦେ. ବି.—୧ । ଫ୍ରାନ୍ସ ଦେଶ—1. France.

୨ । ଫ୍ରାନ୍ସ ଦେଶବାସୀ ବ୍ୟକ୍ତି—2. Frenchman.

**ଫର୍‌ସୀ ଡଙ୍ଗା**—ବୈଦେ. ବି. (ଇଂ. ଫ୍ରାନ୍ସ. ଭୁଲ. ଫା. ଫର୍‌ସାସ୍)—୧ । ଫ୍ରାନ୍ସ ଦେଶର ଅଧିକୃତ ରାଜ୍ୟ—1. French territory; French possession.
Pharāsī daṅgā
फरासडाङ्गा
**फरासडिङ्गा**

ଫର୍‌ସ (ଡ, ଡା,ଡ,ଡେ)ଙ୍ଗା } ଅନ୍ୟରୂପ
ଫର୍‌ସୀ (ଡା,ଡ,ଡେ)ଙ୍ଗା }

୨ । (ନାମ) କଲିକତାର ନିକଟବର୍ତ୍ତୀ ଫ୍ରାନ୍ସ-ଅଧିକୃତ ଗଙ୍ଗା ତୀରବର୍ତ୍ତୀ ନଗର; ଚନ୍ଦନ ନଗର—2. Chandernagore (a French town near Calcutta).

୩ । ବାଲେଶ୍ୱର ସହରରେ ଥିବା ଫର୍‌ସୀ ଅଧିକୃତ ଏକ ସ୍ଥାନ—3. Name of a small area in the town of Balasore, which is in possession of the French.

୪ । ଫର୍‌ସୀଡଙ୍ଗା ( କଲିକତା ନିକଟବର୍ତ୍ତୀ ଚନ୍ଦନ ନଗର )ରେ ବୁଣା ହେଉଥିବା ଏକ ପ୍ରକାର ସରୁ ଲୁଗା—4. A kind of fine cloth woven in Chandernagore.

**ଫରି**—ଦେ. ବି.—(ସଂ. ଫଳକ; ଭୁଲ. ଆ. ଫର୍‌କ୍=ସୈନ୍ୟ; ସେନା-ଦଳ)—୧ । ଫର୍ଡ଼ି (ଦେଖ)—1. Phardi (See)
Phari

୨ । ଚର୍ମ ଆଚ୍ଛାଦନୀ; ଢାଲ—2. Shield.

• କାମ ଧନୁ ଚାରସ୍ ଫରି ମଧ୍ୟେ ରଖି ।
କୃଷ୍ଣସିଂହ. ମହାଭାରତ ବନ ।

୩ । ଚର୍କିଙ୍କର ବ୍ୟବହୃତ ନଟେଇର ମଝି ବାଉଁଶ ଦଣ୍ଡିକୁ ଧରିବା ଲାଗି ରହିଥିବା ଛକ—3. A wooden cross which holds up the stick of a spindle.

**ଫରିଆଦ(ଦି)**—ଦେ. (ପଦ୍ୟ) ବି.—ଫେର୍‌ଦ ୧ (ଦେଖ)—Pherāda 1. (See)
Phariāda(di)

ସୃଷ୍ଟିଦେବ କବଚର ସାଙ୍ଗସ୍ତୁ ବୋଲେ କରୁ ଫରିଆଦ ।
କବିସୂର୍ଯ୍ୟ. ସଙ୍ଗୀତ ।

**ଫରିକ**—ଦେ. ବି —ଫରିକାର ୧ (ଦେଖ)—Pharikāra 1 (See)
Pharika

**ଫରି କଚ୍ଛ**—ଦେ ବି.—ପାଲିକଚ୍ଛ; ଫରି ଖେଳିବା ବେଳେ ଲୁଗାର ଓହଳ ଥିବା ଫେରକୁ କଚ୍ଛ ଆଡ଼େ ଖୋସି ପିନ୍ଧିବା—A mode of tucking up the front end of the loin cloth towards the back (like sword-players.)
Phari kachhā

**ଫରିକନା**—ଦେ. ବି.—ଖଣ୍ଡା ପରି ଯୁଦ୍ଧାସ୍ତ୍ରବିଶେଷ—A sword-like weapon.
Pharikanā
(ଫର୍କନା—ଅନ୍ୟରୂପ)

**ଫରିକା**—ପ୍ରାଦେ. (ବାଲେଶ୍ୱର) ବି.—ଫରିକାର (ଦେଖ)—Pharikāra (See)
Pharikā

**ଫରିକାର**—ବୈଦେ. ବି• (ଆ. ଫର୍‌କ୍=ସୈନ୍ୟ)—୧ । ଢାଲ ଓ ଖଣ୍ଡା ଧରିବା ବ୍ୟକ୍ତି—1. Swordsman; a person armed with sword and shield.
Pharikāra
फरिकार, फरिकाल
**सिपाही**

ଫରିକାର ଲେକେ ଧରଣ ଶସ୍ତ୍ରମାନ ।
କୃଷ୍ଣସିଂହ. ମହାଭାରତ. ବନ ।

୨ । ସେନା; ସୈନ୍ୟ ଦଳ—2. Army; a body of soldiers.

୩ । ଫର୍ଡ଼ିକାର (ଦେଖ)—3. Phardikāra (See)

**ଫରି ଖେଳ**—ଦେ. ବି.—ଖଣ୍ଡାଖଣ୍ଡି ଖେଳ—Sword-play.
Phari khela

**ଫରି ଖେଳିବା**—ଦେ. କ୍ରି.—ଖଣ୍ଡାଖଣ୍ଡି ଖେଳିବା—To play with swords.
Phari khelibā

**ଫରି ମାନ**—ଦେ. ବି.—ଖଣ୍ଡାର ଖୋଳ ବା ଖାପ—Scabbard; sheath of a sword.
Phari māna

ପାଉକେ ଫରିମାନ ଅଣ୍ଟରେ କସ୍ତିଲେ ।
କୃଷ୍ଣସିଂହ. ମହାଭାରତ ଅଦି ।

ଫରସ୍ତା—ବୈଦେ. ବ. (ଫା.)—ମୁସଲମାନ ଧର୍ମଶାସ୍ତ୍ର ଅନୁସାରେ
Pharistā କୌଣସି କାର୍ଯ୍ୟ କରିବାପାଇଁ ଈଶ୍ୱର୍ ପ୍ରେରିତ ଦୂତ—
ଫରିସ୍ତା A Divine messenger; angel (of the
फरिशता Mahamedans.)

ଫରୁଆ—ଦେ. ବ.—(ସ. ପୁଟକ; ପରୁବକ=ଗୁଆର ଡବା)—୧ । କାଠ
Pharuā ବା ଧାତୁର ଢୁଙ୍କଣିଯୁକ୍ତ ଗୋଲ ପାତ୍ର; ଡବା—
କୌଟା 1. A gallipot; a small circular box
कटुया, कटोरदान with removeable lid.
ଫରୁଆରେ ପର ଛନ୍ଦେକରେ ତାକୁ ତଳ ସେ ଗାଲନ୍ତିକି ।
କବିସୂର୍ଯ୍ୟ. କଣୋପାଚମ୍ପୁ, ଫ. ଗୀତ ।
୨ । ଗାତ—2. Hole.
୩ । ଖେଦ—3. Wooden pin; peg.
୪ । ଗୋଲମୁଣ୍ଡୀ କଣ୍ଟା; ଛତାବାଲ କଣ୍ଟା—
4. A nail with an umbrella-like top.
କବାଟରେ ଫରୁଆ ହୋଇଛି ପାଣି ଡ୍ରାଡ ।
ପ୍ରାଚୀ. ଚନ୍ଦ୍ରକଳ୍ପରଣ ଗୀତା ।

ଫରେବ୍ (ଇତ୍ୟାଦ)—ବୈଦେ. ବ. (ଫା.)—ଫରବ୍ ଇତ୍ୟାଦ (ଦେଖ)
Phareb (etc). Pharab etc. (See)

ଫରେଷ୍ଟ—ବୈଦେ. ବ. (ଇଂ)—୧ । ବଣ; ଜଙ୍ଗଲ—
Pharesht 1. Forest.
ଫରେଷ୍ଟ फरेष्ट ୨ । ରକ୍ଷିତ ଜଙ୍ଗଲ—2. Protected forest.

ଫରେଷ୍ଟ ଗାଡ଼ (ର୍ଡ)—ବୈଦେ. ବ. (ଇଂ)—ରକ୍ଷିତ ଜଙ୍ଗଲ ଜଗିବା ପାଇଁ
Pharesht gārd(rd) ନିଯୁକ୍ତ ସିପାହୀ; ଜଙ୍ଗଲ ଜଗୁଆଳ—
ଫରେଷ୍ଟଗାଡ଼ फरेष्टगाड Forest guard.

ଫରେଷ୍ଟ ନାକାଘର—ପ୍ରାଦେ. (ସମ୍ବଲପୁର) ବ—ଫରେଷ୍ଟଗାଡ଼ ବା
Pharesht nākāghara ଜଙ୍ଗଲର ଜଗୁଆଳମାନେ ରହିବା-
ବସାଘର (ଯେଉଁଠାରେ ସେମାନେ ଜଙ୍ଗଲରୁ ମାଲ ନେବା
ବ୍ୟକ୍ତିମାନଙ୍କଠାରୁ ଶୁଳ୍କ ଆଦାୟ କରନ୍ତି)—The room
where the forest guards keep watch and
realise tolls for forest produce.
(ଯଥା—ସଦର ତହସିଲଦାର ଓଡ଼ଗାଁ ଅସଲ ଗ୍ରାମରେ ଫରେଷ୍ଟ
ନାକାଘର ରହିବାର ସ୍ଥିର୍ ହୋଇଅଛି—ଦୈନିକଆଶା)

ଫରେଷ୍ଟ ରେଞ୍ଜର୍—ବୈଦେ. ବ. (ଇଂ)—ରକ୍ଷିତ ଜଙ୍ଗଲର ତଦାରଖବା
Pharesht renjar ଉଚ୍ଚ କର୍ମଚାରୀ—Forest-ranger.
ଫରେଷ୍ଟରେଞ୍ଜର फरेष्टरैंजार

ଫରେଷ୍ଟ(ଷ୍ଟା)ର୍—ବୈଦେ. ବ—(ଇଂ)—ରକ୍ଷିତ ଜଙ୍ଗଲର ତତ୍ତ୍ୱାବଧାରକ
Pharesh̤ta(shtā)r ବା ଭାରପ୍ରାପ୍ତ କର୍ମଚାରୀ—Forester.
ଫରେଷ୍ଟାର फरेष्टार

ଫର୍ଜ୍—ବୈଦେ. (ଆ) ବ—୧ । କର୍ତ୍ତବ୍ୟ କର୍ମ—
Pharj ଫର୍ଜ फर्ज 1. Duty.
୨ । ଉତ୍ତରଦାୟିତ୍ୱ—2. Responsibility.
୩ । କଳ୍ପନା—3. Imagination.

ଫର୍ଦ(ର୍ଦା)ଳିଆ—ପ୍ରାଦେ. (ଗଡ଼ଜାତ) ବିଣ. ପୁଂ—ଯେଉଁ ଲୋକ
Pharda(rdā)liā ଗୋଟାଏ କଥାକୁ ଦୁହାଇ ଦୁହାଇ ବାରମ୍ବାର
[ଫର୍ଦ(ର୍ଦା)ଳେଇ—ସ୍ତ୍ରୀ] କହି ଲାଗେ—A person who
repeats a matter several times.

ଫର୍ଦ(ର୍ଦା)ଳି ହେବା—ପ୍ରାଦେ. (ଗଡ଼ଜାତ) କ୍ରି—ଗୋଟାଏ କଥାକୁ ବହୁ-
Pharda(rdā)li hebā ବାର ଘୋଷି ବା ନଠେଇକରି କହିବା--
To repeat a thing several times.

ଫର୍ଫର(ରା)—ସ. ବିଣ—(ସ୍ଫୁର୍ ଧାତୁ=ସ୍ଫୁର୍ତ୍ତି ପାଇବା+କର୍ତ୍ତୃ.ଅ;
Pharphara(rā) ନିପାତନ)—ଅତ୍ୟନ୍ତ ଚଞ୍ଚଳ; ଚପଳ—
Restless; hasty; very brisk.

ଫର୍ଫରିକ—ସ. ବ (ସ୍ଫୁର୍ ଧାତୁ+ସଙ୍କାର୍ଥେ. ଇକ)—
Pharpharika ୧ । ଚପେଟ; ଗୁଣ୍ଡୁଚା—1. Slap.
୨ । ଗଛର ନୂତନ କୋମଳ ପତ୍ର—
2. New tender leaves.
୩ । ମିଷ୍ଟତା—3. Sweetness.
୪ । ମୃଦୁତା—3, Mildness.

ଫର୍ଫରିକା—ସ. ବ. (ଫର୍ଫରିକ+ଆ)—୧ । ପାଦୁକା—
Pharpharikā 1. Shoes;
୨ । ଚଟି ଯୋତା—2 Slippers.

ଫର୍ଫସା କୁଡ଼ାଏର୍—ପ୍ରାଦେ. (ସମ୍ବଲପୁର) ବ—ମାଟିହଣା କୁରାଢ଼ି; କାଙ୍କ-
Pharphasā kurdāer An axe to cut earth.

ଫର୍ମ୍—ବୈଦେ. ବ (ଇଂ)—ନିର୍ଦ୍ଦିଷ୍ଟ ବିଷୟ ଲେଖାଯିବା ପାଇଁ ଘର
Pharm କଟା ଯାଇଥିବା କାଗଜ; ଫାରମ—
ଫର୍ମ फारम Form; tabulated form.
ପ୍ରାଦେ (ଗଞ୍ଜାମ) ବୈଦେ. ବ—ସ୍କୁଲର ଶ୍ରେଣୀ ବା କ୍ଲାସ୍—
Class in a school.

ଫର୍ମା—ବୈଦେ. ବ (ଇଂ. ଫ୍ରେମ୍; ଫର୍ମ୍)—୧ । ଛାଞ୍ଚ—
Pharmā 1. A mould.
୨ । (ଇଂ. ଫ୍ରେମ୍) ଛବିର ଚାରିପାଖେ ଦିଆ ଯାଇଥିବା କାଠର
ଧନ୍ଦା—2. The frame set round a picture.
୩ । (ଛାପାଖାନା) ଛାପା ହେବା ପାଇଁ ସଜ୍ଜିତ ହୋଇଥିବା ଅକ୍ଷରର ଛାଞ୍ଚ—
3. A form in printing.

ଫର୍ଲଙ୍ଗ—ବୈଦେ. ବ (ଇଂ)—ଦୂରତ୍ୱ ପରିମାଣ; ଏକ ମାଇଲର ଅଷ୍ଟମାଂଶ;
Pharlang ୨୨୦ ଗଜ—One eighth of a mile.
ଫର୍ଲଙ୍ଗ फर्लांग

ଫର୍ଲୋ—ବୈଦେ. ବ—ବହୁଦିନ ଚାକିରି କରିବା ସରକାରୀ କର୍ମଚାରୀଙ୍କୁ
Pharlo ଅର୍ଦ୍ଧ ବେତନରେ ମିଳିବା ଦୀର୍ଘ ଛୁଟି—Furlough.
ଫର୍ଲୋ फर्लो

ଫଲ୍ (ଧାତୁ)—ସ—୧ । ଫଳିବା—
Phal (root) I. To bear fruit.
୨ । ନିଷ୍ପନ୍ନ ହେବା—2. To be accomplished.
୩ । ଉର୍ବର କରିବା—3. To fructify; to fertilise.
୪ । ଗମନ କରିବା—4. To go.
୫ । ଭେଦ କରିବା—5. To pierce.
୬ । ବିଭକ୍ତ କରିବା—6. To divide.

ଫଲ୍ଶା—ପ୍ରାଦେ. (ସମ୍ବଲପୁର) ବ (ସ. ପଲାଶ)—ପଳାଶ; କିଂଶୁକ—
Phal-sā Butea Frondosa (tree).

**ଫଲ୍‌ହା**—ପ୍ରାଦେ. (ସମ୍ବଲପୁର) ବ —ଚଳ; ଧାନ ଆଦି ଗଛର ଗୁଣ୍ଡ— Phal-hā Seedling.

**ଫଳ**—ସ. ବି—( ଫଲ୍ ଧାତୁ+କର୍ତ୍ତୃ. ଅ )—୧ । ବୃକ୍ଷଲତାଦିରୁ ଜାତ Phaḷa ଶସ୍ୟ ବା ବୀଜ ବିଶିଷ୍ଟ ବସ୍ତୁ—1. Fruit.

[ ଦ୍ର—ଗଛ ଆଦିରେ ପ୍ରଥମେ ଫୁଲ ଧରେ ଓ ପରେ ତହିଁରୁ ଫଳ ଉତ୍ପନ୍ନ ହୁଏ । ବୈଜ୍ଞାନିକ ଦୃଷ୍ଟିରେ ବୀଜ ଓ ବୀଜକୋଷକୁ ଫଳ ବୋଲାଯାଏ; କିନ୍ତୁ ଲୋକବ୍ୟବହାରରେ ଫଳରେ ଥିବା ମଞ୍ଜିକୁ ବୀଜ ଓ ଧାନ, ଗହମ ଆଦିକୁ ଶସ୍ୟ ବୋଲାଯାଏ । କୌଣସି କୌଣସି ଫଳରେ ଗୋଟିଏ ମାତ୍ର ବୀଜ ଥାଏ; କୌଣସି କୌଣସି ଫଳରେ ଏକାଧିକ ବୀଜ ଥାଏ ଓ କୁଇଁ ଆଦିରେ ବହୁ ବୀଜ ଥାଏ । ]

୨ । ସନ୍ତାନ—2. Offspring.

୩ । କୌଣସି କ୍ରିୟାର ପରିଣାମ; ଉତ୍ପନ୍ନ ବସ୍ତୁ— 3. Result; consequence; effect.

୪ । ଫସଲ—4. Crop.

୫ । ଲାଭ—5. Gain; acquisition; benefit.

୬ । ନିଷ୍ପତ୍ତି—6. Settlement.

୭ । କାର୍ଯ୍ୟ ସିଦ୍ଧି; ଉଦ୍ଦେଶ୍ୟ ସିଦ୍ଧି— 7. Fulfilment; accomplishment.

୮ । ସମ୍ପତ୍ତି; ଧନ—8. Riches.

୯ । ଉନ୍ନତି; ଶ୍ରୀବୃଦ୍ଧି—9. Affluence; blessing; prosperity.

୧୦ । ପ୍ରୟୋଜନ; ବ୍ୟବହାର— 10. Necessity; utility; use.

୧୧ । ସୁଖ—11. Happiness.

୧୨ । ଉତ୍ତର—12. Answer; reply.

୧୩ । ପୁରସ୍କାର—13. Reward; recompense.

୧୪ । ଢାଲ—14. Shield.

୧୫ । ଫଳକ; ତକ୍ତା; ପଟା—15. Plate; plank.

୧୬ । ଖଣ୍ଡା, ଛୁରୀଆଦି ଅସ୍ତ୍ରଶସ୍ତ୍ରର ଫଳା ବା ଧାରଅଂଶ— 16. Blade of a weapon.

୧୭ । ବାଣାଗ୍ର; ଶରାଗ୍ର ଲୌହ— 17. The head of an arrow; dart; barb.

୧୮ । ଲଙ୍ଗଳ ଲୁହା; ଫାଳ—18. Ploughshare.

୧୯ । ତ୍ରିଫଲା; ହରିଡ଼ା, ବାହାଡ଼ା ଓ ଅଁଳା— 19. The three myrobalans.

୨୦ । ଜାଇଫଳ—20. Nutmeg.

୨୧ । ଗଣିତ ସମସ୍ୟାର ମୀମାଂସା—21. The solution or result of a mathematical problem or calculation.

(ଯଥା—୧ । ଯୋଗଫଳ—1. Sum; total. ୨ । ବିୟୋଗ-ଫଳ—2. Difference. ୩ । ଗୁଣଫଳ—3. Product. ୪ । ଭାଗଫଳ—4. Quotient.)

୨୨ । ସ୍ତ୍ରୀରଜଃ; ଆର୍ତ୍ତବ—22. Menses.

୨୩ । ଦାନ—23. Gift; present.

୨୪ । କ୍ଷେତ୍ରଫଳ—24. Area.

୨୫ । (ବୀଜ ଗଣିତ) ସମୀକରଣ—25. Equation.

୨୬ । (ଜ୍ୟୋତିଷ) ଗ୍ରହର ସମୀକରଣ— 26. (Astrology) The equation of a planet.

୨୭ । ମୁଷ୍କ; ଅଣ୍ଡକୋଷ—27. Testicle; scrotum.

୨୮ । ଆବୁ; ଦେହଉପରେ ଉତ୍ପନ୍ନ ବର୍ତ୍ତୁଳାକାର ମାଂସଖଣ୍ଡ— 28. Tumour.

୨୯ । କୌଣସି କାର୍ଯ୍ୟର ଦଣ୍ଡ ବା ପୁରସ୍କାର— 29. The reward or punishment for an action.

୩୦ । କଙ୍କାଳ (ହି. ଶ.)—30. Skeleton.

୩୧ । (ଫଳିତ ଜ୍ୟୋତିଷ) ଗ୍ରହମାନଙ୍କ ବିଶିଷ୍ଟ ଅବସ୍ଥିତି ବା ଯୋଗର ସୁଖ ବା ଦୁଃଖ ଆଦି ପରିଣାମ— 31. (Astrology) The effect ( good or bad) of certain conjunction or position of planets.

୩୨ । ପଶାକାଠିରେ ଅଙ୍କିତ ବିନ୍ଦୁ ବା ଚିହ୍ନ (ହି. ଶ.)— 32. The points drawn on a die.

୩୩ । ପ୍ରତିଫଳ; ପ୍ରତୀକାର (ହି. ଶ.)— 33. Requital; retribution; remedy.

୩୪ । ପ୍ରଭାବ (ହି. ଶ.)—34. Influence.

୩୫ । (ଦର୍ଶନ ଶାସ୍ତ୍ର) ସଂସାରରେ ଶୁଭକର୍ମର ପରିଣାମ (ଯଥା—ଧର୍ମ, ଅର୍ଥ, କାମ, ମୋକ୍ଷ) (ହି. ଶ.)—35. ( Philosophy) The fourfold result of one's good actions in the world; summum bonum of human existence.

୩୬ । ପୂର୍ବଜନ୍ମକୃତ କର୍ମର ଇହଜନ୍ମରେ ଅନୁଭୂତ ସୁଖଦୁଃଖାଦି (ହି. ଶ.)—36. The result of one's acts in a previous existence.

୩୭ । (ବୈଦ୍ୟକ) କଙ୍କୋଲ (ହି. ଶ.) (ଦେଖ) 37. Kakkoḷa (See)

୩୮ । ମୂଳଧନ ଖଟାଇବାଦ୍ୱାରା ମିଳିବା ଲାଭ ବା ସୁଧ— 38. Profit or interest on capital (Apte).

୩୯ । ସନ୍ତାନ ସନ୍ତତି—39. Progeny (Apte).

୪୦ । ତ୍ରୈରାଶିକରେ ଦ୍ୱିତୀୟ ସଂଖ୍ୟା—40. The second term in a rule of three sum (Apte).

୪୧ । କୁଟଜ; ପିତାକୋରୁଆ (ହି. ଶ.)— 41. Wrightea Antedysenterica (creeper).

ଦେ. ବି—୧ । ଭାଗ୍ୟ—1. Good luck.

କର୍ମ ଅବଳକୁ କୁଳକୁ ଫଳକୁ
କଂଶ ନୃପତ ବଳକୁ ଗଲେ । ଗୋପକୃଷ୍ଣ. ଉସକଲ୍ଲୋଳ ।

୨ । ପୁଣ୍ୟ—2. Religious merit.

ଏମନ୍ତ ବୋଲନ୍ତୁ କନକ ଶୃଙ୍ଗୀ ଗାଈ
ଶତେକ ଦେଲେ ଯେଉଁ ଫଳକୁ ହୁଅଇ । କୃଷ୍ଣସିଂ. ମହାଭାରତ ଅଦ ।

**ଫଳକ**—ସ. ବି. (ଫଳ+ସ୍ୱାର୍ଥେ. କ)—୧ । ଢାଲ— Phaḷaka 1. Shield.

୨ । ପଟ୍ଟା—2. Plate; plank; tablet.
୩ । ଅସ୍ତ୍ରର ପତ୍ର; ଫଳା—3. Blade of weapon.
୪ । କପାଳର ଅସ୍ଥି—4. Brow-bone.
୫ । ଧୋବା ଗଣ୍ଡି; ଯେଉଁ ପଟାରେ ଧୋବା ଲୁଗା କାଚେ—
5. Washerman's plank.
୬ । ନାଗ କେଶର—6. Mesua Ferra.
୭ । କରତଳ (ହି. ଶ.)—7. Palm of the hand.
୮ । ଗୁଦର (ହି. ଶ.)—8. Sheet.
୯ । ଫଳ—9. Fruit.
୧୦ । ଖଟର ପୃଷ୍ଠ (ଯହିଁ ଉପରେ ଲୋକେ ଶୁଅନ୍ତି) (ହି. ଶ)—
10. The back or ridge of a bedstead.
୧୧ । ମେଜ; ଟେବଲ (ହି. ଶ.)—11. Table.

କନ୍ଧରେ ଶାଗୀ ଫଳକ ଥାଏ ଶୋଭା ଅମୃ ପ୍ରତପାଳନକୁ ।
ଉଞ୍ଜ. ବୈଦେହୀଶବିଳାସ ।

**ଫଳ କଣ୍ଟକ**—ସ. ବି. (ବହୁବ୍ରୀହି; ଫଳ+କଣ୍ଟକ)—୧ । ପଣସ (ହି.ଶ.)
Phala kantaka 1. Jack fruit.
୨ । ଖେତ ପାପଡ଼ା; ଘର ପୋଡ଼ଅ (ହି. ଶ.)—
2. Oldenlandia Biflora (plant).

**ଫଳ କଥା**—ଦେ. ବି. (ସ. ଫଳ+କଥା)—୧ । ପ୍ରକୃତ ବିଷୟ—
Phala kathā 1. Actual tact.
फल कथा बात ଫଳ କଥା ଏତିକ ଜାଣିଥିବ । ରଧାନାଥ. ଚନ୍ଦ୍ରଭାଗା ।
୨ । ଶେଷ ଫଳ—2. The result.

**ଫଳ କନ୍ଦଳ**—ପ୍ରାଦେ. (ଭଦ୍ରଖ) ବି. (ସହଚର ଶବ୍ଦ)—ଫଳମୂଳ—
Phala kandala Fruits and roots.

**ଫଳ କର**—ଦେ. ବି—ଗଛର ଫଳ ଭୋଗ କରିବା ବ୍ୟକ୍ତି ଗଛର
Phala kara ଅଧିକାରୀଙ୍କୁ ଦେବା ଖଜଣା—Rent paid for
फलकर the enjoyment of the fruits of a tree to
फलकर the owner of the tree.

**ଫଳ କାମ**—ସ. ବିଣ. ପୁଂ (ଫଳ+କମ୍ ଧାତୁ ଣିଜନ୍ତ କାମି ଧାତୁ+
Phala kāma କର୍ତ୍ତ୍ରି. ଅ)—କୃତ କର୍ମର ଫଳ କାମନାଯୁକ୍ତ;
(ଫଳକାମୀ—ଅନ୍ୟରୂପ) ଫଳ ପାଇବାକୁ ଇଚ୍ଛୁକ (ବ୍ୟକ୍ତି)—
(ଫଳକାମା—ସ୍ତ୍ରୀ) Desirous of the fruit of one's action.

**ଫଳ କାମନା**—ସ. ବି ( ୬ଷ୍ଠୀ ତତ୍; ଫଳ+କାମନା )—କୌଣସି
Phala kāmanā କୃତକାର୍ଯ୍ୟର ଫଳ ପାଇବାର ଆଶା—
The hankering after the result of one's
(ଫଳାକାଙ୍କ୍ଷା—ଅନ୍ୟରୂପ) action.

**ଫଳକୀ**—ସ. ବି (ଫଳକ+ଅଳ୍ପ ଅର୍ଥରେ, ଇନ୍; ୧ମା. ୧ବି)—ଫଳ ମାଛ
Phalakī A kind of flat fresh water fish.
ସ. ବିଣ ପୁଂ—ଢାଲୀ; ଯେ ଢାଲ ଧରିଥାଏ—
(ଫଳକାନା—ସ୍ତ୍ରୀ) Armed with a shield.

**ଫଳ କେଶର**—ସ. ବି. ( ବହୁବ୍ରୀହି; ଫଳ+କେଶର )—ନଡ଼ିଆ ଗଛ
Phala keśara ( ଶ୍ଳାନେକ୍ତ )—The cocoanut tree.

**ଫଳ କୋଷ**—ସ. ବି—ଅଣ୍ଡକୋଷ—
Phala kosha Testicle.

**ଫଲଗୁ**—ଗ୍ରା. (ପଦ୍ୟ) ବି—ଫଲ୍ଗୁ (ଦେଖ)
Phalagu Phalgu (See)
ଫଲଗୁରେ ସ୍ନାନ କରଇ ଯେଉଁ ନର
ଫୁଲଇଦେଇ ଦେହ ବସେ ସ୍ୱର୍ଗପୁର—କୃଷ୍ଣସିଂହ. ମହାଭାରତ. ବନ ।

**ଫଳଗ୍ରାହୀ**—ସ. ବିଣ. ପୁଂ (ଫଳ+ଗ୍ରହ୍ ଧାତୁ=ଗ୍ରହଣ କରିବା+କର୍ତ୍ତ୍ରି.
Phalagrāhī ଇନ୍)—ଯେ କୌଣସି ବିଷୟର ଫଳ ଗ୍ରହଣ
(ଫଳଗ୍ରାହିଣୀ—ସ୍ତ୍ରୀ) କରେ—Enjoying or reaping
(ଫଳଭୋଗୀ—ଅନ୍ୟରୂପ) the fruits.

**ଫଳଚ୍ଛି**—ପ୍ରାଦେ (ବାମଣ୍ଡା) ବି—ସାନ ଘର—
Phalachhi A small house; cottage.

**ଫଲଣା(ନା)**—ବୈଦେ. ସଂ (ଫା. ଫର୍ଲାଁ)—ଅମୁକ—
Phalanā(nā) So and so.
ଅଲଣା ବିନା ସେ କାର୍ଯ୍ୟ ନାହିଁ ପଛେ ଫଲଣାର
ଉକ୍ତିକଳ—ବକୁଳୀ

ଫଲଣେଇ, ଫଳନା, ଫଲ୍ଲନା — ଅନ୍ୟରୂପ — ବିଣ ( ଆ. ଫଲାନ୍=ଯୋକ )—
୧ । ଅମୁକ—1. So and so.
फलना ଯେବେ ଶୁଣିବେ ଫଲଣା ଜମିଦାର ହାତରେ ଭେର୍ ହେଲା ଅନ୍ଧ ଭକ୍ଷଣେ
फलना ବୁଝିସିବେ ସେ ରୂପବାନ୍ ଗୁଣବାନ୍ × × × ଫକୀରମୋହନ. ଛମାଣଆଠଗୁଣ୍ଠ ।

[ଦ୍ର—କୌଣସି ବ୍ୟକ୍ତିର ନାମ ଉଲ୍ଲେଖ କରି ନ ଯାଇ ଏହି ଶବ୍ଦ ବ୍ୟବହୃତ ହୁଏ । ଅଦାତା ଓ କୃପଣ ବ୍ୟକ୍ତିଙ୍କ ନାମୋଚ୍ଚାରଣ କଲେ ଅମଙ୍ଗଳ ଘଟେ ବୋଲି କୌଣସି ଅଞ୍ଚଳର ପ୍ରସିଦ୍ଧ 'ଅଦାତାର ନାମ ଉଚ୍ଚାରଣ ନ କରି ଲୋକେ 'ଫଲଣା' ବାବୁ ବୋଲି କହିଲେ ସମସ୍ତେ ସେହି ବ୍ୟକ୍ତିଙ୍କୁ ଠଉରାଇ ନିଅନ୍ତି । ]

୧ । ଅପ୍ରକାଶ୍ୟ ( ବିଷୟ )—
1. Unmentionable ( matter ).
୨ । ଜଘନ୍ୟ (କଥା)—2. Dirty (matter).
୩ । ଅଶ୍ଳୀଳ ( ଶବ୍ଦ )—3. Indecent (word).

**ଫଳତଃ**—ସ. କ୍ରି. ବିଣ (ଫଳ+ତସ୍)—୧ । ଫଳରେ; ବସ୍ତୁତଃ; କାର୍ଯ୍ୟତଃ
Phalatah 1. In effect; in reality.
୨ । ଶେଷରେ—2. In the end; ultimately.
୩ । ପ୍ରକୃତରେ—3. Virtually; indeed.

**ଫଳତ୍ରୟ**—ସ. ବି—୧ । ( ବୈଦ୍ୟକ ) ତ୍ରିଫଳା; ହରଡ଼ା, ବାହାଡ଼ା
Phalatraya ଅଁଳା—1. The three myrobalans.
୨ । (ବୈଦ୍ୟକ) ଶୁଣ୍ଠି, ପିପ୍ପଳୀ ଓ ଗୋଲ ମରିଚ—
2. Dry ginger, blackpepper and long pepper.

**ଫଳଦ**—ସ. ବିଣ. ପୁଂ (ଫଳ+ଦା ଧାତୁ+କର୍ତ୍ତ୍ରି. ଅ)— ଯାହା ଫଳ
Phalada ଦିଏ—Producing fruit; yielding fruit;
(ଫଳଦା—ସ୍ତ୍ରୀ) fruitful.
ଫଳଦାୟକ, ଫଳଦାତା—ପୁଂ; ଫଳଦାୟିକା, ଫଳଦାତ୍ରୀ—ସ୍ତ୍ରୀ — ଅନ୍ୟରୂପ — ବି.—ବୃକ୍ଷ—Tree.

**ଫଳଦର୍ଶୀ**—ସ. ବିଣ. ପୁଂ (ଫଳ+ଦୃଶ୍ ଧାତୁ=ଦେଖିବା+କର୍ତ୍ତ୍ରି.ଇନ୍)-
Phala darśī ଯେ ଶେଷ 'ଫଳକୁ ଦେଖେ—
( ଫଳଦର୍ଶିନୀ—ସ୍ତ୍ରୀ ) Looking for the result or
consequence.

**ଫଳଦାତା**—ସ. ବିଣ. ପୁଂ. (ଫଳ+ଦା ଧାତୁ+ତୃନ୍; ୧ମା. ୧ବ.)—
Phaḷa dātā · ଯେ କୌଣସି କାର୍ଯ୍ୟର ଫଳ ଦିଏ—
(ଫଳଦାତ୍ରୀ—ସ୍ତ୍ରୀ) Awarding the fruits of an action.
[ଫଳଦାତୃତ୍ୱ(ତା)—ବି]

**ଫଳଦାୟକ**—ସ. ବିଣ. ଓ ବି—ଫଳଦ (ଦେଖ)
Phaḷadāyaka Phaḷada (See)

**ଫଳଦାୟୀ**—ଦେ. ବିଣ (ଫଳ+ଦା ଧାତୁ+କର୍ତ୍ତୃ.ଇନ୍ ୧ମା ୧ବ. )—
Phaḷa dāyi ଫଳଦ (ଦେଖ)—
[ଫଳଦାୟିନୀ—ସ୍ତ୍ରୀ, ଫଳଦାୟିତା(ତ୍ୱ) – ବି] Phaḷada (See)
କ୍ରମରେ ଲକ୍ଷ ହୋଇ ଫଳଦାୟୀ ହୁଏ—କୃଷ୍ଣସିଂହ, ମହାଭାରତ. ଅବ।

**ଫଳ ଧରିବା**—ଦେ. କ୍ରି—ଫଳିବା; (ବୃକ୍ଷାଦି) ଫଳରେ ଶୋଭିତ ହେବା—
Phaḷa dharibā ফলধরা फलना To bear fruit.

**ଫଳନ**—ସ.ବି (ଫଳ୍ ଧାତୁ+ଭାବ. ଅନ)—୧ । ଫଳିବା; ଫଳୋତ୍ପାଦନ—
Phaḷana Production; yield.
୨ । ପ୍ରସବନ—2. Giving birth to.
୩ । ପାଣି ଅଁଳା—3. Fracourtia Cataphracta.

**ଫଳନ୍ତା(ନ୍ତି)**—ଦେ. ବିଣ ( ସ. ଫଳତ୍ )—ଫଳୁଥିବା; ଫଳୋତ୍ପାଦନ
Phaḷantā(nti) କରୁଥିବା—Fruit-bearing; yielding fruit.

**ଫଳନ୍ତୀ**—ଦେ. ବିଣ—୧ । ସନ୍ତାନ ପ୍ରସବ କରୁଥିବା (ସ୍ତ୍ରୀ)—
Phaḷanti 1. Bearing children.
ফলন্ত ୨ । ଫଳ ପ୍ରସବ କରୁଥିବା (ବୃକ୍ଷ)—
फलताहुआ 2. Fruit-bearing.

**ଫଳନ୍ଦ**—ପ୍ରାଦେ (ଚିଲିକା ଅଞ୍ଚଳ) ବି—ଚିଲିକାରେ ଚଳୁଥିବା ଡଙ୍ଗାର
Phaḷanda ପରିନ୍ଦ ବା ଫନ୍ଦ ପଟା—The edge-beam of a boat (plying in the Chilka lake).

**ଫଳ ପାଇବା**—ଦେ. କ୍ରି—୧ । ପୁରସ୍କାର ପାଇବା; ଲାଭ ପାଇବା—
Phaḷa pāibā 1. To get one's reward.
ফলপাওয়া फलपाना ୨ । ଉପଯୁକ୍ତ ପ୍ରତିଫଳ ଲାଭ କରିବା—
2. To get one's deserts.

**ଫଳ ପାକାନ୍ତା(ନ୍ତ)**—ସ. ବି (ଫଳ+ପାକ=ପାଚିବା+ଅନ୍ତ=ମୃତ୍ୟୁ)—
Phaḷa pākāntā(nta) ଫଳ ପାଚିଲେ ଯେଉଁସବୁ ଗଛ ମରିଯାଏ; ଓଷଧି—Annual plants.
[ ଯଥା—ଧାନ, କଦଳୀ, ବାଉଁଶ ପ୍ରଭୃତିର ଫଳ ପାଚିଲେ ସେ ସବୁ ଗଛ ମରିଯାଏ । ]

**ଫଳପୂର**—ସ. ବି (ଫଳ+ପୂର)—୧ । ଡାଳିମ୍ବ—
Phaḷapura 1. Pomegranete.
( ଫଳପୂରକ—ଅନ୍ୟରୂପ ) ୨ । ଟାଭା ଲେମ୍ବୁ—
2. Citron.

**ଫଳପ୍ରଦ**—ସ. ବିଣ. ପୁଂ—( ଫଳ+ପ୍ର+ଦା ଧାତୁ+କର୍ତ୍ତୃ. ଅ)
Phaḷaprada ୧ । ଫଳଦାତା; ଫଳୋତ୍ପାଦକ—
1. Bearing or yielding fruit.
( ଫଳପ୍ରଦା—ସ୍ତ୍ରୀ ) ୨ । ଗୁଣକାରକ—
ଫଳପ୍ରଦାତା—ପୁଂ } ଅନ୍ୟରୂପ 2. Effective.
ଫଳପ୍ରଦାତ୍ରୀ—ସ୍ତ୍ରୀ [ଫଳପ୍ରଦତା(ତ୍ୱ)—ବି]

**ଫଳ ପ୍ରାପ୍ତି**—ସ. ବି (୬ଷ୍ଠୀ ତତ୍; ଫଳ+ପ୍ରାପ୍ତି)—କାମ୍ୟ ବସ୍ତୁର ପ୍ରାପ୍ତି—
Phaḷa prāpti Achievement of one's aim.

**ଫଳ ଫୁଲୁ(ଲୋ)ରି**—ପ୍ରାଦେ (ବାଲେଶ୍ୱର) ବି (ସହଚର ଶବ୍ଦ ଦ୍ୱନ୍ଦ୍ୱ; ତୁଳ.
Phaḷa phulu(lo)ri ବ. ଫଲଫুলুরି )—ପରିବାପତ୍ର—
ଫଳଫୁଲରି } ଅନ୍ୟରୂପ Fruits etc; kitchen
ଫଳଫୁଲେଇ vegetables.

**ଫଳବନ୍ତ**—ଦେ. ବିଣ (ସ. ଫଳବାନ୍)—୧ । ଫଳରେ ପୂର୍ଣ୍ଣ—
Phaḷabanta 1. Full of fruits.
ফলবন্ত फलदार ୨ । ଫଳୁଥିବା—
[ଫଳବନ୍ତୀ(ନ୍ତି)—ସ୍ତ୍ରୀ] 2. Bearing fruits.
୩ । ସଫଳ—3. Successful.

ହସ୍ତ ଧରେ କରିବା କି ଉପାୟର ପାନ
ହେଉ ଫଳବନ୍ତ ସଦ୍ଭବନ ଗୋ—୫ବପର୍ବ. ଲୋଶେଇ ଚମ୍ପୂ, ହ ଗୀତ ।

**ଫଳଭାକ୍**—ସ. ବିଣ. ପୁଂ (ଫଳ+ଭଜ୍ ଧାତୁ+କର୍ତ୍ତୃ. କ୍ୱିପ୍; ୧ମା. ୧ବ)-
Phaḷabhāk ଫଳଭାଗୀ (ଦେଖ)
Phaḷabhāgi (See)

**ଫଳଭାଗୀ**—ସ. ବିଣ. ପୁଂ ( ଫଳ+ଭଜ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Phaḷabhāgi ୧ବ )—ପରିଣାମଭାଗୀ—
( ଫଳଭାଗିନୀ—ସ୍ତ୍ରୀ ) Sharing the fruits or
[ଫଳଭାଗିତା(ତ୍ୱ)—ବି] results.

**ଫଳଭୁକ୍**—ସ. ବିଣ. ପୁଂ ( ଫଳ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍, ୧ମା.
Phaḷabhuk ୧ବ)—ଯେ ଫଳ ଖାଇ ପ୍ରାଣ ଧାରଣ କରେ—Frugivorous; fruit-eating.

**ଫଳ ଭୋଗ**—ସ. ବି (୬ଷ୍ଠୀ ତତ୍; ଫଳ ଭୋଗ)—ନିଜକୃତ କର୍ମର ସୁଖ-
Phaḷa bhoga ଦୁଃଖାଦିର ଅନୁଭୂତି— Experience of
ଫଳଭୋଗୀ—ପୁଂ } ବ୍ୟକ୍ତିବାଚକ the good or bad effect
ଫଳଭୋଗିନୀ—ସ୍ତ୍ରୀ } ବିଶେଷଣ of one's actions.

**ଫଳ ଭୂମି**—ସ. ବି (୬ଷ୍ଠୀ ତତ୍; ଫଳ+ଭୂମି )—୧ । କର୍ମଫଳ ଭୋଗର
Phaḷa bhūmi ସ୍ଥାନ—1. The place where a man experiences the result of one's action.
୨ । ଭାରତବର୍ଷ (ଜ୍ଞାନେନ୍ଦ୍ର)—2. India.

**ଫଳମୁଖ**—ସ. ବି (୬ଷ୍ଠୀ ତତ୍; ଫଳ +ମୁଖ)—ଫଳୋଦୟ (ଦେଖ)—
Phaḷamukha Phaḷodaya (See)
(ଫଳାରମ୍ଭ—ଅନ୍ୟରୂପ)

**ଫଳ ଯିବା**—ଦେ. କ୍ରି—୧ । (ଗାଈ) ବୃଷଭର ସଙ୍ଗମ କରିବା; ବଏ-
Phaḷa jibā ଯିବା—(said of a cow) To take to a bull.
পাল যাওয়া, পাল ধরা
जोड़ाखाना; गाभिनी होना ୨ । (ସ୍ତ୍ରୀ ପଶୁ) ଗର୍ଭବତୀ ହେବା—
2. (a female animal) To be pregnant.

**ଫଳ ଲାଭ**—ସ. ବି. (୬ଷ୍ଠୀ ତତ୍; ଫଳ+ଲାଭ)—
Phaḷa lābha ଚରିତାର୍ଥତା; ମନୋବାଞ୍ଛାସିଦ୍ଧି—
(ଫଳ ସିଦ୍ଧି—ଅନ୍ୟରୂପ) Fruition; realisation of one's desires.

**ଫଲଶାଲୀ**—ସ. ବଣ. (ଫଲ+ଶାଳିନ୍; ୧ମା. ବ.)—
Phalaśāli ଫଲଯୁକ୍ତ; ଫଳୁଥିବା—
(ଫଲଶାଲିନୀ—ସ୍ତ୍ରୀ) Fruitful; bearing fruits.
[ଫଲଶାଲିତା(ତ୍ୱ)—ବି]

**ଫଲ ଶ୍ରୁତି**—ସ. ବି. (୬ଷ୍ଠୀ ତତ୍; ଫଲ+ଶ୍ରୁତି)—
Phala śruti ୧ । କୃତକୃତ କର୍ମର ଫଲ ଶ୍ରବଣ କରିବା—
1. Hearing the result of one's action.
୨ । ଶାସ୍ତ୍ରପାଠ ଓ ଧର୍ମକାର୍ଯ୍ୟାଦି କଲେ କି ଫଲଲାଭ ହୁଏ ଏହାର ଉଲ୍ଲେଖ—2. Statement of the advantages to be gained by doing a meritorious act.

**ଫଲ ହାନି**—ସ. ବି. (୬ଷ୍ଠୀ ତତ୍; ଫଲ+ହାନି)—
Phala hāni ୧ । ଫଲ ନ ଫଳିବାରୁ କ୍ଷତି—Loss of fruit.
(ଫଲକ୍ଷୟ—ଅନ୍ୟରୂପ) ୨ । ଅକୃତକାର୍ଯ୍ୟତା—2. Failure.

**ଫଲହାରୀ**—ସ. ବଣ. ପୁଂ. (ଫଲ. ହୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—
Phalahāri ଫଲ ଆହରଣକାରୀ; ଯେ ଫଲ ସଂଗ୍ରହ କରେ—
(ଫଲହାରିଣୀ—ସ୍ତ୍ରୀ) Gathering fruits.

**ଫଲା**—ଦେ. ବି. ( ସ. ଫଲ; ଫଲକ )—୧ । ବ୍ୟଞ୍ଜନ ବର୍ଣ୍ଣରେ ଅନ୍ୟ
Phalā ବ୍ୟଞ୍ଜନ ବର୍ଣ୍ଣ ସଂଯୁକ୍ତ ହେବାର ଆକୃତି; ଅସଲ
ଫଲା ଅକ୍ଷରରେ ଯୁକ୍ତ ହେବା ବ୍ୟଞ୍ଜନ ବର୍ଣ୍ଣର ଚିହ୍ନ—
1. The sign added to a letter to make a dipthong or compound consonant.
[ ଦ୍ର—ଯଥା—ମ ଫଲା, ର ଫଲା; ଓଡ଼ିଆରେ ୧୭ଗୋଟି ଫଲା-ଯୁକ୍ତ ବନା ଅଛି । ଏହାକୁ ପିଲ୍ଲମାନେ ବର୍ଣ୍ଣପରିଚୟ ପରେ ଶିଖନ୍ତି । (ସଙ୍କର ଫଲା ଦେଖ) । ବ୍ୟଞ୍ଜନ ବର୍ଣ୍ଣରେ ଆ, ଇ ଆଦି ସ୍ୱରବର୍ଣ୍ଣ ଯୁକ୍ତ ହେବା ଚିହ୍ନକୁ ମାତ୍ରା ବୋଲାଯାଏ । ]
୨ । (ସ. ଫଲକ) ଶରାଗ୍ର—2. The head of an arrow.
୩ । ଫରି; ଢାଲ—3 Shield.
୪ । ଶସ୍ତ୍ରାଦିର ସୂକ୍ଷ୍ମ ମୁଖ—4. The fine edge of a weapon.
ଦେ. ବି—୧ । (ପାନବରଜା ଭାଷା) ପାନ ଲତାର ଗଣ୍ଠିମାନଙ୍କରୁ ବାହାରିବା ଶାଖା—1. The branch or secondary shoot of a betel creeper.
୨ । ଫଲ୍ଲ (ଦେଖ)—2. Phalā (See)

**ଫଲ୍ଲ**—ଦେ. ବି. (ସ. ଫଲକ)—ଛୁରୀ ଓ ଖଣ୍ଡାର ପତ୍ର; ପାତ—
Phalā The blade of a sharp weapon.
ফলা ফল

**ଫଲା(ଳେ)ଇବା**—ଦେ. କ୍ରି (ସ. ଫଲ୍ ଧାତୁ; ଫଳିବାର ଣିଜନ୍ତ)—
Phalā(le)ibā ୧ । ଗଛରେ ଫଲ ଫଳିବାର ଉପାୟ କରିବା—
ফলান 1. To cause a tree to bear frnit.
फलाना ୨ । ଚିତ୍ରର ରଙ୍ଗକୁ ସୁସ୍ପଷ୍ଟ କରାଇବା—
2. To make the colour of a picture grow distinct.
୩ । କୌଣସି ବିଷୟର ସୂଚନା ବା ଇଙ୍ଗିତ ଦେବା—
3. To throw out a hint or suggestion.
୪ । ଫଲରେ ଦେଖାଇ ଦେବା; ସଫଲ କରାଇବା—
4. To show by results.
ଭକତ ବାକ୍ୟ ଫଲାଇବା ଲାଗି
ସେତିକିଲେ ଅସ୍ତୁ ତାର କଥନ ମନାସି । ରାଧାନାଥ· ମହାଯାତ୍ରା ।
୫ । ବନ୍ଧ୍ୟା ସ୍ତ୍ରୀର ଗର୍ଭ ହେବାର ଉପଚାର କରିବା—
5. To cause a barren woman to bear children.

**ଫଲାକାଙ୍କ୍ଷା**—ସ.ବି. (୬ଷ୍ଠୀ ତତ୍; ଫଲ+ଆକାଂକ୍ଷା)—ଫଲ ପାଇବାର
Phalākānkshā ଆଶା—Desire to get the fruits or result.
ଫଲାକାଙ୍କ୍ଷୀ—ପୁଂ
ଫଲାକାଙ୍କ୍ଷିଣୀ—ସ୍ତ୍ରୀ } ବ୍ୟକ୍ତିବାଚକ ବିଶେଷଣ

**ଫଲାଗମ**—ସ. ବି. (୬ଷ୍ଠୀ ତତ୍; ଫଲ+ଆଗମ)—
Phalāgama ୧ । ଫଲ ଦେଖାଯିବା; ଫଲୋଦୟ—
1. Appearance of the fruit or result.
୨ । ଶରତ୍‌କାଳ—2. Autumn.
୩ । ଗଛରେ ଫଲ ଦେଖାଯିବା ସମୟ—
3. The season or time of a tree bearing fruit.

**ଫଲାନ୍ତ**—ସ. ବି. (ବହୁବ୍ରୀହି; ଫଲ+ଅନ୍ତ; ଫଲ ଧରିଲେ ଏ ଗଛ
Phalānta ମରେ)—ବାଉଁଶ ଗଛ—The bamboo.

**ଫଲାପେକ୍ଷା**—ସ. ବି. ( ୬ଷ୍ଠୀ ତତ୍; ଫଲ+ଅପେକ୍ଷା)—ଫଲ ପାଇବାର
Phalāpekshā ଆଶା—Expectation of the fruit or result.
ଫଲାପେକ୍ଷୀ—ପୁଂ
ଫଲାପେକ୍ଷିଣୀ—ସ୍ତ୍ରୀ } ବ୍ୟକ୍ତିବାଚକ ବିଶେଷଣ

**ଫଲାଫଲ**—ସ. ବି. (ଫଲ+ଅଫଲ)—୧ । ଭଲ କିମ୍ବା ମନ୍ଦ ଫଲ—
Phalā phala 1. Success or failure; good or bad result.
୨ । ଶେଷ ଫଲ—2. Consequence (good or bad.).

**ଫଲାଶନ**—ସ. ବଣ. ପୁଂ. (ଫଲ+ଅଶ୍ ଧାତୁ=ଖାଇବା+କର୍ତ୍ତୃ. ଅନ)
Phalāśana ଫଲାହାରୀ (ଦେଖ)—Phalāhāri (See)
(ଫଲାଶନା—ସ୍ତ୍ରୀ) ବି.—ଶୁକ ପକ୍ଷୀ—The parrot.

**ଫଲାଶୀ**—ସ. ବଣ. ପୁଂ.—(ଫଲ+ଅଶ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ.
Phalāśi ଇନ୍; ୧ମା. ୧ବ.)—ଫଲାହାରୀ (ଦେଖ)
(ଫଲାଶିନୀ—ସ୍ତ୍ରୀ) Phalāhāri (See)

**ଫଲାହାର**—ସ. ବି.—ଫଲ ମାତ୍ର ଖାଇବା; ଅନ୍ନ ବ୍ୟତୀତ ଅନ୍ୟ ଫଲାଦି
Phalāhāra ଭୋଜନ—Fruit-meal; eating fruits only.
ଦେ. ବି.—ଫଲ ଓ ମିଷ୍ଟାନ୍ନାଦି ସହଯୋଗରେ ଦଧି, ଦୁଗ୍ଧ ଓ ଚିପିଟକାଦି ଭକ୍ଷଣ—A meal of fruits, sweets, milk, curd, parched rice etc on fast days.
ফলার [ଦ୍ର—ଆମ୍ଭ ଦେଶର ଏକାଦଶୀ ଆଦି ଉପବାସରେ ଫଲାହାର
फलार କରିବାର ବିଧି ଅଛି । କିନ୍ତୁ ଆମ୍ଭମାନଙ୍କ ଫଲାହାରରେ ପାଚିଲା ଫଲ, କଦଳୀ ଆଦି ସଙ୍ଗେ ଚୂଡ଼ା, ଦହି, ଛେନା, ଗୁଡ଼, ମିଠେଇ ଆଦି ମଧ୍ୟ ଥାଏ । ]

**ଫଲାହାରୀ**—ସ. ବଣ. ପୁଂ.—ଫଲମାତ୍ରଭୋଜୀ; ଯେ ଫଲମାତ୍ର ଖାଏ—
Phalāhāri Subsisting on fruits only.
(ଫଲାହାରିଣୀ—ସ୍ତ୍ରୀ) (ଫଲାହାରିତା—ବି)

**ଫଳ**—ସଂ. ବି. ( ଫଲ୍ ଧାତୁ + ଇ )—ମଧୁର ପାଣିରେ ରହୁବା ଏକ
Phaḻi ପ୍ରକାର ଚଟକା ନାଭିବୃହତ୍ ମାଛ—
ফলই; ফলুই A kind of flat fresh water fish; Noto-
**फली, फलुई** pterus Kapirat.
[ଦ୍ର—ଏହା ଶକଳୀ ମତ୍ସ୍ୟ । ଏହାର ଗଠନ ଚଉଲ ପର ଚେପ୍ଟା କିନ୍ତୁ ଶ୍ରେଷ୍ଠ । ଲମ୍ବାରେ ଏକ ହାତରୁ ବଡ଼ ଫଳ ଦେଖା ଯାଏ ନାହିଁ ।]
ଦେ. ବି.—(ସଂ. ଫଲକ)—ଶଗଡ଼ ବା ନିଶୁଣିର ଦୁଇ ଦଣ୍ଡାକୁ ଯୋଗ କରିଥିବା ପଟା ଖଣ୍ଡମାନ—The plates joining the two shafts or beams of a bullock cart or the 2 arms of a ladder.

**ଫଳି**—ପ୍ରାଦେ. (ସମ୍ବଲପୁର) ବି.—(ଳ ସ୍ଥାନରେ ଲ ଉଚ୍ଚାରଣ)—
Phaḻi ଫଳ (ଦେଖ)—Phaḻi (See)

**ଫଳିତ**—ସଂ. ବିଣ. (ଫଳ + ସଞ୍ଜାତାର୍ଥେ. ଇତ)—୧ । ଫଳଯୁକ୍ତ; ଫଳ
Phaḻita ଫଳଥିବା; ଯେଉଁ ବୃକ୍ଷରେ ଫଳ ଧରେ—
1. Bearing fruits; fruit-bearing.
୨ । ସଫଳ—2. Fruitful.
୩ । ଫଳ ଘଟିଥିବା—3. Fulfilled; successful.
୪ । ଯଦ୍ୱାରା ଭବିଷ୍ୟତ କଥା ଗଣନା କରାଯାଏ—
4. Helping to interpret the future.
୫ । ଜଡ଼ିତ—4. Involved.

**ଫଳିତ ଜ୍ୟୋତିଷ**—ସଂ. ବି.—ଯେଉଁ ଜ୍ୟୋତିଃଶାସ୍ତ୍ର ଦ୍ୱାରା ମନୁଷ୍ୟ
Phaḻita jyotisha ଜୀବନର ଭବିଷ୍ୟତ ଘଟନାମାନଙ୍କ ଗଣନା କରାଯାଏ—Astrology.
[ ଦ୍ର—ଗ୍ରହନକ୍ଷତ୍ରାଦିଙ୍କ ସଞ୍ଚାର ଯେଉଁ ଜ୍ୟୋତିଷଦ୍ୱାରା ସ୍ଥିର କରାଯାଏ ତାକୁ ଗଣିତ ଜ୍ୟୋତିଷ—Astronomy—ବୋଲାଯାଏ]

**ଫଳିତାର୍ଥ**—ସଂ. ବି. (କର୍ମଧା)—୧ । ଅସଲ ଅର୍ଥ; ପ୍ରକୃତ ଅର୍ଥ; ମର୍ମ—
Phaḻitārtha 1, Gist; substance; purport; actual meaning.
୨ । ମୂଳାଧାର (କ୍ଷୀରୋଦ) (ଦେଖ)—
2. Mūḻādhāra (See)
୩ । ସାରାଂଶ; ପ୍ରଧାନ ଅଂଶ (କ୍ଷୀରୋଦ)—
3. Essence; epitome; principal part.

ଫଳିନ—ସଂ. ବିଣ. (ଫଲ୍ ଧାତୁ + ଇନ)— ଫଳିତ (ଦେଖ) —
Phaḻina Phaḻita (See)

ଫଳିବା—ଦେ. କ୍ରି. (ସଂ. ଫଲ୍ ଧାତୁ) —୧ । ଫଳ ଧରିବା; ଫଳଯୁକ୍ତ
Phaḻibā ହେବା—1. To bear fruit; to fructify.
ফলা ଭଲିତ ମୋ କପାଳ ଲଟାଇଲୁ ରସାଳ ଜମ୍ବୁ ଫଳିଲାରେ ।
**फला** କବିସୂର୍ଯ୍ୟ ସଙ୍ଗୀତ ।
୨ । ସଫଳ ହେବା; କୃତକାର୍ଯ୍ୟ ହେବା—2. To succeed.
ହରବଣ୍ଣ ଦେବ ସୁତା ଚଟ ନାଟ ଉପୁରତା
ହାଃକାଙ୍ଗୀ ଲଭ ଫଳ ଫଳିଲାରେ ।
କବିସୂର୍ଯ୍ୟ ରତ୍ନାକର ଚମ୍ପୂ: ହ ଗୀତ ।
୩ । ଲାଭଯୁକ୍ତ ହେବା—3. To be profitable.
୪ । ଦେହରେ (ଗାଣ୍ଟି, ଘିମିରି ଓ ବ୍ରଣ ଆଦି) ବାହାରିବା—
4. To come out of the body (as eruptions).
୫ । ଭାରବହିବା ହେତୁରୁ (ଅଙ୍ଗବିଶେଷ) ଫୁଲିବା ହେବା—
5. To get swoollen on account of carrying loads (said of a part of the body).
ପୁଣି ଦେଖୁଅଛୁ କ୍ୟାଘାତ ସକାଶରେ
ଫଳିଛି ବେନିକର ଅତ୍ୟନ୍ତ ନିଷ୍ଠୁରରେ । କୃଷ୍ଣସିଂହ, ମହାଭାରତ ସଭା ।
୫ । (ଗାଈ ଆଦି ପଶୁ) ସନ୍ତାନ ପ୍ରସବ କରିବା—
5. To bear offsprings.
୬ । ଫଳ ପ୍ରଦାନ କରିବା—6. To give fruits.
ସୁକୃତ ଫଳେ ଯଥା ପାଇ ସୁକ୍ଷଣ – ରାଧାନାଥ. ତୁଳସୀ ସ୍ତବକ ।
୭ । କାର୍ଯ୍ୟରେ ଘଟିବା—
7. To happen; to take place.
ଜୟଜୟ ଫଳିଛି ଫଳିବ ସତ୍ୟରେ—କୃଷ୍ଣସିଂହ, ମହାଭାରତ ସଭା ।
୮ । ମିଳିବା; ପ୍ରାପ୍ତ ହେବା—
8. To be found; to be attained.
ଉତ୍କଳ ମାତାଙ୍କ ମୃତ୍ତିକା ବଳେ
ଯତନ କରିଲେ ରତନ ଫଳେ । ଉତ୍କଳ ଗୀତ ଲହରୀ ।
୯ । ଉତ୍ପନ୍ନ ହେବା; (ଫଳ) ଉପୁଜିବା—
9. To ensue; (a fruit) to be produced.
ତାହାର ଅଶ୍ୱମେଧ ଯାଗ କଲା ଫଳ
ଫଳଇ ଅଟେହ ଶ୍ରେଷ୍ଠ ରଥଙ୍କ ଶାର୍ଦ୍ଦୂଳ । କୃଷ୍ଣସିଂହ ମହାଭାରତ ବନ ।
ପ୍ରାଦେ (ସମ୍ବଲପୁର) କ୍ରି. (ଗାଈ ଆଦି) ଗର୍ଭବତୀ ହେବା—
(a beast) To become pregnant.

**ଫଳୀ**—ସଂ. ବି—(ଫଲ୍ ଧାତୁ + କର୍ତ୍ତୃ ଅ + ଈ)—୧ । ପ୍ରିୟଙ୍ଗୁ ଗୁଳ୍ମ—
Phaḻī 1. A medicinal plant.
୨ । ଫଳ ମାଛ—2. A kind of fish.
୩ । ଅସ୍ତ୍ରର ଫଳା—3. The blade of a weapon.
୪ । ଶରାଗ୍ର—4. The head of an arrow.
୫ । ଲଙ୍ଗଳ ଲୁହା—5. Plough-share.
୬ । ଶ୍ୟୋନାକ (ବୃ. ଶ) (ଦେଖ)—6 Śyonāka (See).
୭ । ପଣସ (ବୃ. ଶ)—7. Jack fruit.
୮ । ଆମ୍ବଡ଼ା (ବୃ. ଶ)—8. Hog plum.
ବିଣ. ପୁଂ—ଫଳିତ (ଦେଖ)—
(ଫଳିନୀ—ସ୍ତ୍ରୀ) Phaḻita (See).

ଫଳେନ୍ଦ୍ର—ସଂ.ବି. (୭ମୀ ତତ୍; ଫଳ + ଇନ୍ଦ୍ର)—ବଡ଼ ଜାମୁ; ରାଜଜାମୁ—
Phaḻendra A large species of blackberry.
[ଅନ୍ୟ ସଂ ନାମ—ନନ୍ଦ; ରାଜଜମ୍ବୁ, ମହାଫଳା; ସୁରଭିପତ୍ରା, ମହାଜମ୍ବୁ
বড়জাম **फलेंदा, फरेंद** ଓଡ଼ିଆ-ରାଜଜାମୁ ]

**ଫଳୋଦୟ**—ସଂ. ବି—(୬ଷ୍ଠୀ ତତ୍; ଫଳ + ଉଦୟ)—୧ । ଫଳ
Phaḻodaya ଘଟିବା ଅବସ୍ଥା—1. The appearence of the fruit or result.
୨ । ଲାଭ—2. Gain; profit.
୩ । ଆନନ୍ଦ; ସୁଖ—3. Joy; happiness.
୪ । ସ୍ୱର୍ଗ—4. Heaven; paradise.
୫ । ଉପକାର—5. Benefit.

**ଫଳୋତ୍ପତ୍ତି**—ସଂ. ବି—(୭ମୀ ତତ୍; ଫଳ+ଉତ୍ପତ୍ତି)—୧ । କୌଣସି
Phalotpatti କର୍ମର ଫଳ ଘଟିବା—1. The ensuing of the result of an action.
[ଫଳୋତ୍ପାଦକ—ବିଧେୟ ବିଶେଷ୍ୟ]
ଫଳୋତ୍ପାଦକ—ପୁଂ } ବ୍ୟକ୍ତିବାଚକ ବିଶେଷଣ
ଫଳୋତ୍ପାଦିକା—ସ୍ତ୍ରୀ }
୨ । ବୃକ୍ଷାଦିରେ ଫଳ ଧରିବା—2. The coming out of fruits in a tree.
୩ । (ବହୁବ୍ରୀହି) ଆମ୍ବଗଛ—3. The mango tree.

**ଫଳୋପଧାୟକ**—ସଂ. ବିଣ. (ଫଳ+ଉପ+ଧା ଧାତୁ+କର୍ତ୍ତୃ. ଅକ)—
Phalopadhāyaka ଫଳଦାୟକ; ଯାହା ଫଳ ଜନ୍ମାଏ; ଫଳ-
[ଫଳୋପଧାୟିକା—ସ୍ତ୍ରୀ] ଜନକ—Fruitful; fruit-bearing;
(ଫଳୋପଧାନ—ବିଶେଷ୍ୟ) producing result.

**ଫଲ୍ଗୁ**—ସଂ. ବି—(ଫଲ୍ ଧାତୁ+କର୍ତ୍ତୃ. ଗୁ)—୧ । ଗୟାରେ ଥିବା
Phalgu ଅନ୍ତଃସଲିଳା ନଦୀବିଶେଷ—1. Name of a small river in Gaya.
[ଦ୍ର—ଏ ଅଗସ୍ତ୍ୟର ନଦୀର ଶଯ୍ୟାରେ ପିତୃଲୋକଙ୍କୁ ପିଣ୍ଡ ଦିଆଯାଏ ।]
୨ । ମିଥ୍ୟା କଥା—2. False words.
୩ । ବୃଥା ବା ଅସାର ବାକ୍ୟ—3. Unnecessary or unsubstantial speech; useless words.
୪ । ଅବିର; ଲୋହିତବର୍ଣ୍ଣ ଚୂର୍ଣ୍ଣ; ଫଗୁ—
4. Red powder used during the Holi festival.
୫ । ବସନ୍ତ କାଳ—5. The spring season.
୬ । କାକୋଡ଼ୁମ୍ବର ଫଳ—
6. The opposite-leaved fig tree;
ସଂ. ବିଣ—୧ । ତୁଚ୍ଛ—1. Despicable.
୨ । ଅସାର—2. Worthless; useless.
୩ । ନୀରସ—3. Juiceless; sapless.
୪ । କ୍ଷୀଣ; ଦୁର୍ବଳ—4. Week; feeble.
୫ । ମନୋହର; ସୁନ୍ଦର—5 Beautiful; handsome.

**ଫଲ୍ଗୂତ୍ସବ**—ସଂ. ବି—(୩ୟା ତତ୍ ବା ୭ମୀ ତତ୍; ଫଲ୍ଗୁ=ଫଗୁ+ଉତ୍ସବ;
Phalgūtsaba ଫଗୁ ଦ୍ୱାରା ଅନୁଷ୍ଠିତ ଉତ୍ସବ; ବା ଫଗୁ ସମୟରେ ଅନୁଷ୍ଠିତ ଉତ୍ସବ)—ହୋରି; ଦୋଳଯାତ୍ରା; ହୋଲିକା ଉତ୍ସବ—
The Holi festival.

**ଫଲ୍ଗୁଦା**—ସଂ. ବି. ସ୍ତ୍ରୀ—ଫଲ୍ଗୁ ନଦୀ—
Phalgudā The river phalgu.

**ଫଲ୍ଗୁନ**—ସଂ. ବି.—୧ । ଅର୍ଜୁନ (ହି. ଶ)—
Phalguna 1. A name of Arjuna,
୨ । ଫାଲ୍ଗୁନ ମାସ (ହି. ଶ)—2. The month of Phālguna.
ସଂ.ବିଣ. (ଫଲ୍ଗୁନୀ+ଅ)—ଫାଲ୍ଗୁନୀ ନକ୍ଷତ୍ର ସମ୍ବନ୍ଧୀ (ହି. ଶ)—
Relating to the 11th and 12th asterisms,

**ଫଲ୍ଗୁନୀ**—ସଂ. ବି—ଫାଲ୍ଗୁନୀ (ଦେଖ)—
Phalgunī Phālguni (See)

**ଫଲ୍ଲକୀ**—ସଂ. ବି - ଫଳମାଛ (କ୍ଷୀରୋଦ)—A kind of medium-
Phallakī sized fresh water fish.

**ଫଲ୍ସପଏଣ୍ଟ**—ବୈଦେ. ବି (ନାମ)—ଓଡ଼ିଶାର ବଙ୍ଗୋପସାଗର ତୀରସ୍ଥ
Phals-paent ସ୍ଥାନବିଶେଷ (ଏଠାରେ ମହାନଦୀ ସମୁଦ୍ରରେ ପଡ଼ି-ଅଛି; ଏହାର ଅନ୍ୟ ନାମ ବନ୍ଦରଘର)—
Falsepoint in the Orissa coast.

**ଫସ୍**—ଦେ (ଧ୍ୱନ୍ୟନୁକରଣ) ଅ—ଫସ୍ ଫସ୍ (ଦେଖ)—
Phas Phas phas (see).

**ଫସ୍କା**—ଦେ. ବିଣ—(ଆ. ଫସକ୍ନା=ଖସିଯିବା; ଆ. ଫାସଖ୍=
Phas-kā ଅଲଗା)—୧ । ଶ୍ଳଥ; ଢିଲା—1. Loose, slack; lax.
(ଫସ୍କା—ଅନ୍ୟରୂପ)
फस्का ୨ । ଚ୍ୟୁତ—2. Lost; slipped off.
**फिसफिसा, पीलपीला** ୩ । ସ୍ଖଳିତ—3. Stumbled; slipping.
୪ । କୋମଳ—4. Soft.
୫ । ହାଲୁକା—5 Light.
୬ । ଯାହା ଚିପିଲେ ବା ଦାବିଲେ ଦବିଯାଏ—
6. Flaccid; yielding to pressure.
ପ୍ରାଦେ (ବାଲେଶ୍ୱର) ବିଣ.—ପାଣିଚିଆ; ସ୍ୱାଦବିହୀନ—
Tasteless; watery.

**ଫସ୍(ସ)କି ଯିବା**—ଦେ. କ୍ରି—୧ । ବିଫଳ ହୋଇଯିବା—
Phas(sa)ki jibā 1. To be ineffectual.
(ଫସ୍କିଯିବା—ଅନ୍ୟରୂପ) ୨ । ଖସିଯିବା—2. To slip off.
फसकेयाओयां ୩ । ଶିଥିଳ ହେବା—3. To be slackened.
**फसक्ना** ୪ । ଆକାଙ୍କ୍ଷିତ ଫଳ ପ୍ରସବ ନ କରିବା—
4. To miscarry.

**ଫସ୍ ଫରସ୍**—ବୈଦେ. ବି (ଇଂ)—ଦୀପକ; ଉଗ୍ର ଦାହିକା ଶକ୍ତି ଯୁକ୍ତ
Phas-pharas ଖଣିଜ ଦ୍ରବ୍ୟବିଶେଷ; ବୈଜ୍ଞାନିକ ମୌଳିକ ବସ୍ତୁ-
(ଫସ୍ଫରସ୍—ଅନ୍ୟରୂପ) ବିଶେଷ—Phosphorus.
फसफरस **फासफरस**
[ ଦ୍ର—ଏହା ବାୟୁ ସଂଯୋଗରେ ମନକୁ ଜଳି ଉଠେ ଓ ସବୁ-ବେଳେ ଜକ୍ ଜକ୍ ଦିଶୁଥାଏ । ରାତିରେ ଜକଜକ ଦେଖା-ଯାଉଥିବା ଜୁଳୁଜୁଳିଆ ପୋକ, କାନକଣ୍ଟିଳ ବିଲ୍ଲ ଓ ସମୁଦ୍ର ମାଛଙ୍କ-ଠାରେ ଫସ୍ ଫରସ୍ ଅଛି । ଫସ୍ଫରସ୍ ମଧ୍ୟ ଜୀବଦେହର ଗୋଟିଏ ଉପାଦାନ । ]

**ଫସ୍ ଫସ୍**—ଦେ (ଧ୍ୱନ୍ୟନୁକରଣ) ଅ—୧ । କୁଣ୍ଡା ଚୋବାଇବା ପରି
Phas-phas ଶବ୍ଦ—1. Sound of chewing chaff.
(ଫସ୍ ଫାସ୍—ଅନ୍ୟରୂପ)
फिसफिस; फुसफुस ୨ । ଶୀଘ୍ର ଶୀଘ୍ର କଥା କହିବାର ଶବ୍ଦ—
**फसफस; फिसर फिसर** 2. Sound of quick talk.
୩ । ଚୁପ୍‌ଚାପ୍ କଥାବାର୍ତ୍ତା ହେବା ଶବ୍ଦ; ମୃଦୁ ସ୍ୱରରେ କଥାବାର୍ତ୍ତା
3. Sound of whispering.
୪ । ବଡ଼ ଛିଦ୍ର ବା ଜାଲା ବାଟେ (ଯଥା—ଦାନ୍ତ ନ ଥିବା ଲୋକ କଥା କହିଲାବେଳେ ତା ମୁହଁରୁ ) ପବନ ବାହାରିଯିବା—
4. Coming out of air through a hole.

ଫସଡ଼—ଗ୍ରା. ଵ. (ଫ. ନିଷ୍ଫଳ)—ବୃଥା; ନିଷ୍ଫଳ—
Phasarda Fruitless; vain.

ଫସଣ୍ଡି ଯିବା—ଦେ. କ୍ରି—(ଧାନ ଓ ମୁଗଗଛ ଆଦି) ବଳୁଆମାଟି ଯୋଗୁଁ
Phasandi jibā ଗୁଡ଼ାଏ ପତ୍ର ଧରି ବଢ଼ିବା ଓ ତହିଁରେ ଫୁଲ ଫଳ ନ ହେବା—To grow over-luxuriantly (said of plants growing on a very fertile ground but not bearing good fruits or flowers.)

ଫସର୍ ଫାସର୍—ଦେ. କ୍ରି. ଵିଣ—ଖୁବ୍ ଉଚ୍ଚ ସ୍ୱରରେ (କାନ୍ଦିବା)—
Phasar phāsar (weeping) A high tone.

ଫସର ଫସର—ଦେ. (ଧ୍ୱନ୍ୟନୁକରଣ) ଅ—ଫସ୍ ଫସ୍ ୩ (ଦେଖ)
Phasara phasara Phas phas 3 (See)
(ଫସର ଫାସର, ଫୁସୁର୍ ଫୁସୁର୍, ଫୁସୁରୁ ଫୁସୁରୁ, ଫୁସ୍‌ଫୁସ୍, ଫୁସ୍‌ଫାସ୍—ଅନ୍ୟରୂପ)
फुसफास; फिसफिस फुसफुस; खिसरफिसर

ଫସର ଫସା—ଦେ. ଵିଣ. (ଭୁଲ. ଇଂ. ଫସ୍—ନିଷ୍ଫଳ ଆଡ଼ମ୍ବର)—
Phasara phasā ୧ । ଅକୃତକାର୍ଯ୍ୟ—
1. Unsuccessful.
୨ । ନିଷ୍ପ୍ରୟୋଜନ—2. Useless.
ଅଲ୍ଲେ ମଉସା । କଉ ଯଉସା, ଆଜକାଲିକ କଥା ଫସରଫସା । ଚଗ ।
ଦେ ଵି—ନିଷ୍ଫଳ ଆଡ଼ମ୍ବର; ବହ୍ୱାରମ୍ଭଯୁକ୍ତ ଲଘୁକ୍ରିୟା—
Fussiness, much ado about nothing; fruitless show; the ending of a thing in fuss.

ଫସର ଫାଟ୍—ଦେ. ଵି—ବଡ଼ଭୋର; ପ୍ରତ୍ୟୁଷ—
Phasara phāt Daybreak; break of day.

ଫସର ଫାଟିବା—ଦେ. ଵ. (ସଂ. ପ୍ରଭାତ)—ସକାଳ ହୋଇଯିବା—
Phasara phātibā The break of day; dawning.
भोर हओया ଦେ. କ୍ରି—୧ । ଥକି ଯିବା—
पौ फटना; पौ फटे 1. To become tired.
୨ । ଅକୃତକାର୍ଯ୍ୟ ହେବା—
2. To become unsuccessful; to fail.
ବଡ ବଡ ଗଲେ ଫସର ଫାଟି
ସାନ ସାନ ଅଇଲେ ବେଶର ବାଟି । ଚଗ ।
୪ । (କୌଣସି ପ୍ରସ୍ତାବ) ନିଷ୍ଫଳ ହେବା—
4. (any proposal) To end in nothing.

ଫସର ଫାସ୍—ଦେ. ଵିଣ—୧ । ଅତି ଅକିଞ୍ଚିତ୍କର—
Phasara phās 1. Insignificant.
୨ । ଅକୃତକାର୍ଯ୍ୟ—2. Unsuccessful.
ଏତେ କରିକୁ ଦୃଷ୍ଟିଗୃହ, ଛଡ଼ା ଘୋଡ଼ା ଆଗୃହ
ମୂଲ ଏ ଗୃହ ଫସର ଫାସ୍ । ଚଗ ।
ଦେ. ଵି—ଅକୃତକାର୍ଯ୍ୟତା—Failure.

ଫସଲ—ବୈଦେ. ଵି. (ଆ. ଫସ୍ଲ୍—ଋତୁ)—
Phasala ୧ । କୃଷିଜାତ ଶସ୍ୟ; କ୍ଷେତ୍ରରେ ଉତ୍ପନ୍ନ ବସ୍ତୁଚୟ—
फसल 1. Agricultural produce; crop.
फसल ୨ । କୃଷିଜାତ ଶସ୍ୟ ସଂଗ୍ରହର ସମୟ—
2. Harvest season.
[ ଦ୍ର—ବର୍ଷ ମଧ୍ୟରେ କୃଷିଜାତ ଶସ୍ୟାଦିକୁ ବା ଫସଲକୁ ସଂଗୃହୀତ ହେବାର ଋତୁ ଅନୁସାରେ ୨ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି; ଯଥା—ଖରୀଫ୍ ଓ ରବି । ଆଶ୍ୱିନଠାରୁ ପୁଷମାସ ପର୍ଯ୍ୟନ୍ତ ଅମଳ ହେବା ଫସଲ (ଯଥା ଧାନ)କୁ ଖରୀଫ୍ ଓ ମାଘଠାରୁ ଆଷାଢ଼ ପର୍ଯ୍ୟନ୍ତ ଅମଳ ହେବା ଶସ୍ୟ (ଯଥା—ମୁଗ, ବିରି, କୋଳଥ)କୁ ରବି ଫସଲ ବୋଲାଯାଏ—ହି. ଶ ]
୩ । ଏକ ପ୍ରସ୍ଥ ବା ଏକ ଥର; ଦଫା—
3. One shower; paroxysm.
(ଯଥା—ମୁଁ ତାକୁ ଫସଲେ ଜୋତାମାଡ଼ ଦେଇ ଥାଆନ୍ତି ।)

ଫସଲ ଆମଦାନ—ବୈଦେ. ଵି.(ଆ. ଫସ୍ଲ+ଆମଦାନୀ)—କ୍ଷେତ୍ରରୁ କୃଷି-
Phasala āmadāni ଜାତ ଶସ୍ୟର ସଂଗ୍ରହ—Harvesting;
फसलआमदानी फसलकीआमदानी collection of a crop
(ଫସଲ ଉଠିବା—ଅନ୍ୟରୂପ) from the field.

ଫସଲୀ—ବୈଦେ. ଵିଣ.—୧ । ଫସଲ ଉତ୍ପନ୍ନ ହେବା କାଳରୁ ଗଣା ଯିବା
Phasali (ବର୍ଷ)—1. (the year) Calculated from
फसली फसली the harvest time.
୨ । ଫସଲ ସମ୍ବନ୍ଧୀୟ—
2. Pertaining to a crop.
[ଦ୍ର—ଫସଲୀ ସନ ଫସଲ ଅମଳ ହେବା ସମୟରୁ ଗଣନା କରାଯାଏ । ମୁସଲମାନମାନଙ୍କ ହିଜିରି ସନ ଚନ୍ଦ୍ରମାନ ଅନୁସାରେ ଗଣା ଯାଏ । ମୋଗଲ ସମ୍ରାଟ ଅକ୍‌ବର ୧୪୭୮ ଶକାବ୍ଦ ଠାରୁ ଫସଲୀ ସନ ସୌରମାନ ଗଣନାକ୍ରମେ ଚଳାଇଲେ । କିନ୍ତୁ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ପ୍ରଧାନ ଫସଲ ଅମଳ ହେବାର ଋତୁର ବିଭିନ୍ନତା ଅନୁସାରେ ଫସଲୀ ସନର ଗଣନା ମଧ୍ୟ ବିଭିନ୍ନ ହୋଇ ଅଛି । ଫସଲୀ ସନକୁ ମଧ୍ୟ ଦାକ୍ଷିଣାତ୍ୟରେ ବା ଅମଳ ସନ ବୋଲାଯାଏ । ଓଡ଼ିଶାରେ ଭାଦ୍ର ଶୁକ୍ଳ ଦ୍ୱାଦଶୀ ଠାରୁ ଅର୍ଥାତ୍ ସୁନିଆଠାରୁ ଫସଲୀ ସନ ଆରମ୍ଭ ହୁଏ, ବଙ୍ଗଳାରେ ମହାବିଷୁବସଂକ୍ରାନ୍ତିର ପର ଦିବସଠାରୁ ଓ ଉତ୍ତର ଭାରତରେ ଶୁକ୍ଳ ଆଶ୍ୱିନ ଆରମ୍ଭରୁ ଫସଲୀ ସନର ଗଣନା ହୁଏ । ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନରେ ଫସଲୀ ସନ ମହାବିଷୁବ ସଂକ୍ରାନ୍ତିଠାରୁ ଗଣନା କରାଯାଏ । ଫସଲୀ ସନର ବର୍ଷ ସଂଖ୍ୟା ନ ଜାଣିବା ଲୋକଙ୍କୁ ପ୍ରଥମେ ଗୋଲମାଳିଆ ବୋଧ ହୁଏ । ଆକବର ବାଦସାହା ଯେଉଁ ସମୟରେ (୧୪୭୮ ଶକାବ୍ଦରେ) ଏହା ପ୍ରଥମେ ଚଳାଇଲେ, ସେ ସମୟରେ ଯେଉଁ ହିଜିରୀ ସନ (୯୬୩ ସାଲ) ହୋଇଥିଲା ତହିଁର ସଂଖ୍ୟାଗଣନାରୁ ପ୍ରଥମ ଫସଲୀ ସନର ଗଣନା ଆରମ୍ଭ ହେଲା ଓ ଫସଲ ସନର ଗଣନା ହିଜିରି ସନ ପରି ଚନ୍ଦ୍ରମାନ ଗଣନାକ୍ରମେ ନ ହୋଇ ସୌରମାନ ଗଣନାକ୍ରମେ ଚଳିଲା ଓ ଆଜି ପର୍ଯ୍ୟନ୍ତ ଚଳି ଆସୁ ଅଛି । ଅତଏବ ଫସଲୀ ସନର ସଂଖ୍ୟା ଶକାବ୍ଦ ସଂଖ୍ୟାଠାରୁ ୬୯ ବର୍ଷ କମ୍ ଓ ଖ୍ରୀଷ୍ଟାବ୍ଦ ସଂଖ୍ୟାରୁ ୫୯୩ ବର୍ଷ କମ୍ । ଉଦାହରଣ ସ୍ୱରୂପ ଖ୍ରୀଷ୍ଟାବ୍ଦ ୧୯୩୫=ଶକାବ୍ଦ ୧୮୫୭=ଫସଲୀ ସନ ୧୩୪୨ ଅଟେ ।]

ଫସା—ପ୍ରାଦେ• (ବାଲେଶ୍ୱର) ଵି.—ସାମୁଦ୍ରିକ ମତ୍ସ୍ୟବିଶେଷ—
Phasā A kind of sea-fish.
[ଦ୍ର—ଏହା ଖାଇବାକୁ ସୁସ୍ୱାଦୁ, କିନ୍ତୁ ଏହାର ଦେହରେ ଅନେକ ସରୁ ସରୁ କଣ୍ଟା ଥାଏ ।]

ଫସା(ସେ)ଇବା—ଦେ. କ୍ରି.—(ସ. ପାଶ; ଫସିବାର ଣିଜନ୍ତରୂପ)—
Phasā(se)ibā ୧ । ବିପଦରେ ପକାଇବା; କୌଣସି ବ୍ୟକ୍ତିକୁ
फाँसान ବିପଦଗ୍ରସ୍ତ କରିବା—1. To involve a persen
फसाना in danger.
୨ । କୌଣସି ବ୍ୟକ୍ତିକୁ ମନ୍ଦ କାର୍ଯ୍ୟରେ ପ୍ରବର୍ତ୍ତାଇବା—
[ଫସା(ସେ)ଇ ଦେବା—ଅନ୍ୟରୂପ] 2.To seduce (a person.)

ଫସି ଦେବା—ପ୍ରାଦେ. (ସମ୍ବଲପୁର) କ୍ରି.—(ଭୁଲ. ସ୍ଥ. ଫସା ଦେବା)—
Phasi debā ଠକିବା; ପ୍ରତାରଣା କରିବା—To cheat.

ଫସିବା—ଦେ. କ୍ରି. (ସ. ସ୍ପର୍ଶ Beams; ସ. ପାଶ)—ଅଜ୍ଞାତଭାବରେ
Phasibā ବିପଦରେ ପଡ଼ିବା—To step into danger
फेँसे याओया फँसजाना unawares.
ପ୍ରାଦେ. (ସମ୍ବଲପୁର) କ୍ରି.—ଫସିଦେବା (ଦେଖ)
Phasidebā (See)

ଫସି ଯିବା—ଦେ. କ୍ରି.—ଅନ୍ୟଦ୍ୱାରା ପ୍ରତାରିତ ହେବା; ଠକାଇରେ
Phasi jibā ପଡ଼ିବା—To be cheated by another.
फेँसे याओया फसजाना

ଫସୁଆ—ପ୍ରାଦେ. (ସମ୍ବଲପୁର) ବିଣ.—ଠକ; ପ୍ରତାରକ—
Phasuā Cheating; fraudulent.

ଫାଇଁ—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଅଧିକ ରୂପେ—
Phāiṅ 1. Excessively.
ଉଦରେ ମୋତେ କହୁଅଛ ଫାଇଁ
ତୁମ୍ଭ କ୍ରୋଧ ଜାତ ହୋଇବା ପାଇଁ । ବିଶ୍ୱନାଥ, ବିଚିତ୍ର ରାମାୟଣ ।
୨ । 'ଫଁ' ଶବ୍ଦ ସହ—2. With a faṅ sound.
( ଯଥା—କାକର ଝିଟା ପିଅ ତେଲୁଣିରେ ପଡ଼ିବା ମାତ୍ରକେ
ଫାଇଁ କରି ଫୁଲି ଉଠିଲା । )

ଫାଇଁ ଦେବା—ଦେ. କ୍ରି.—ଧକ୍କା ମାରିବା; ଭଣ୍ଡାଇବା—
Phāiṅ debā To cheat.
धापादेओया धोखादेना ((ଫାଇଁ ମାରିବା—ଅନ୍ୟରୂପ)

ଫାଇଁ ଫାଇଁ—ଦେ. (ଧ୍ୱନ୍ୟନୁକରଣ) ଅ.—ଫଁ ଫଁ (ଦେଖ)
Phāiṅ phāiṅ Phaṅ phaṅ (See)
ସର୍ପକୁ ମାରିଲେ ଟେକା ଯେମନ୍ତ ହୋଇ ସେ ଥକା
ଗର୍ଜେ ଫାଇଁ ଫାଇଁ ସେହି ମତ ରହି ବୋଲେ ଗ୍ରୀବା କରି ବଙ୍କା ।
ବିଶ୍ୱନାଥ, ବିଚିତ୍ର ରାମାୟଣ ।

ଫାଇଁଫାଇଁ ହେବା—ଦେ. କ୍ରି.—୧ । ସାପ ପରି ଫଁ ଫଁ ହେବା—
Phāiṅ phāiṅ hebā 1. To make a hissing sound.
फोँसफोँस हओया ୨ । ଆପତ୍ତି କରିବା—
फुफकारना 2. To object.

ଫାଇ(ଏ)ଦା—ବୈଦେ. ବି.—(ଆ. ଫାୟିଦା)—୧ । ଉପକାର—
Phāi(e dā 1. Benefit.
୨ । ଲାଭ—2. Profit.
फायदा फायदा ୩ । ଆୟ—3. Income.

ଫାଇଦାବନ୍ତ(ନ୍ଦ)—ବୈଦେ. ବିଣ. (ଫା. ଫାୟିଦାମନ୍ଦ)—
Phāidābant(nd) ୧ । ଲାଭଦାୟକ—1. Profitable.
फायदामन्द ୨ । ଉପକାରକ—
फायदामंद 2. Benefical.

ଫାଇନ—ବୈଦେ. ବି. (ଇଂ)—ଜୋରିମାନା; ଅର୍ଥଦଣ୍ଡ—Fine.
Phāin फाइन फाइन ବିଣ.—ସୁନ୍ଦର—Fine; nice.

ଫାଇନାନ୍ସ—ବୈଦେ. ବି. (ଇଂ)—ଅର୍ଥ; ଧନ—
Phāināns फाइनान्स फाइनानस Finance.

ଫାଇନାନ୍ସ କମିଟି—ବୈଦେ. ବି.—(ଇଂ)—ଲାଟସାହେବ ସଭା ବା
Phāināns kamiṭi ଡିଷ୍ଟ୍ରିକ୍ଟବୋର୍ଡ଼ ଆଦିରେ ଅର୍ଥ ସତବମାନଙ୍କ
ସମିତି—Finance committee.

ଫାଇନାନ୍ସ ଡିପାର୍ଟମେଣ୍ଟ—ବୈଦେ.ବି. (ଇଂ)—ସରକାରୀ ଅର୍ଥ ବିଭାଗ—
Phāināns dipārṭ menṭ Finance department.

ଫାଇନାନ୍ସ ମେମ୍ବର—ବୈଦେ. ବି. (ଇଂ)—ଅର୍ଥ ସଦସ୍ୟ—
Phāināns membara Finance member.

ଫାଇନାନ୍ସିଆଲ କମିସନର—ବୈଦେ. ବି. (ଇଂ)—ରାଜ୍ୟର ଅର୍ଥ
Phāinānsiāl kamisanar ସମ୍ବନ୍ଧୀୟ ଉଚ୍ଚ କର୍ମଚାରୀ—
Financial Commissioner.

ଫାଇନାଲ—ବୈଦେ. ବି. (ଇଂ)—ଶେଷ; ଚୂଡ଼ାନ୍ତ; ଅନ୍ତିମ—
Phāināl फाइनाल फाइनाल Final.
(ଯଥା—ସ୍କୁଲ ଫାଇନାଲ, ଫୁଟବଲ ଫାଇନାଲ ।)

ଫାଇନାଲ ଡିଗ୍ରୀ—ବୈଦେ. ବି. (ଇଂ. ଫାଇନାଲ ଡିକ୍ରୀ)—
Phāināl ḍigri ବଣ୍ଟନ ଓ ହିସାବ ମକଦ୍ଦମାରେ ବଣ୍ଟନ କାର୍ଯ୍ୟ ଓ
फाइनाल डिक्री ହିସାବ ବୁଝା ଶେଷ ହେବା ପରେ କୋର୍ଟଙ୍କଦ୍ୱାରା
फाईनाल डिग्री ପ୍ରଦତ୍ତ ଡିଗ୍ରୀ—Final decree passed in
partition and account suits.

ଫାଇ ଫାର୍ମାନ(ସ) ହୁକୁମ—ଦେ. ବି—୧ । ଅଲଂଘ୍ୟ ଆଦେଶ; ଜରୁରି
Phāi phārmān(s) hukuma ହୁକୁମ—1. Urgent
फाईफर्मास order.
୨ । ବାଜେ କାର୍ଯ୍ୟ କରିବାର ଆଦେଶ—
2. Order for doing miscellaneous works.

ଫାଇଲ—ବୈଦେ. ବି. (ଇଂ)—୧ । କାଗଜର ନଥି ବା ବିଡ଼ା; ଗାଡ଼ା—
Phāil 1. File of papers.
फाईल ୨ । ବର୍ଣିଅଙ୍କ ଉଖା; ଉଖା—
फाइल 2. Filing instrument.

ଫାଇଲ କରିବା—ଦେ. କ୍ରି.(ଇଂ.ଫାଇଲ)—୧ । ନଥି ସାମିଲ କରିବା—
Phāil karibā 1. To file with the records.
फाईल करा ୨ । କୌଣସି ଦରଖାସ୍ତ ଉପରେ କିଛି ହୁକୁମ ନ ଦେଇ
फाइल करना ରଖିବା—2. To record no order on
a petition.

ଫାଇଲ ଜାମିନ—ବୈଦେ. ବି. (ଫା. ଫୈଲ=କର୍ମ+ଆ. ଜାମିନ
Phāil jāmin =ପ୍ରତିଭୂ)—ଦୁଷ୍ଟ ଲୋକମାନଙ୍କର ଭବିଷ୍ୟତ
फाईल जामीन ସଦାଚରଣ ନିମନ୍ତେ ସେମାନଙ୍କଠାରୁ ମାଜିଷ୍ଟ୍ରେଟ
फाइल जामीन ଲେଖାଇ ନେବା ଜାମିନନାମା—Security for
good behaviour taken by a Magistrate
from wicked people.

ଫାଉ—ବୈଦେ. (ଆ. ଫାଓ)—୧ । ନିର୍ଦ୍ଦିଷ୍ଟ ପରିମାଣର ଅତିରିକ୍ତ
Phāu ବସ୍ତୁ—1. Excess; surplus.

ଫାଉ(ଓ) ୨ । ଟଙ୍କାରୁ ଋଣ ଦିଆଯାଇ ଥିବା ଟଙ୍କା ବଦଳରେ
ଫାଓ ଖାତକଠାରୁ ବାଣ୍ଡ ଭାଉ ଅପେକ୍ଷା ବେଶି ନିଆଯିବା ଧାନଆଦି—
2. The excess paddy repaid by a debtor for money loans at a rate higher than the existing market rate.
୩ । ଖରିଦ କରାଯିବା କୌଣସି ପଦାର୍ଥର ନିରୂପିତ ପରିମାଣ ଉପରେ ମାଗଣା ଯାହା ଅଧିକା ମିଳେ; ଅଧିକା ଲାଭ; ଲଫା—
3. Extra gain; anything got extra over the purchased quantity.
୪ । ଉପରି ଲାଭ—4. Perquisite; tip; gratuity.
ଫାଉ ଫଉବତ ଉଡ଼ ବଖ । ଫକୀରମୋହନ, ଛମାଣ ଆଠଗୁଣ୍ଠ ।
[ ଦ୍ର—ଫାଉ ସଙ୍ଗେ ଫଉବତ(ତି) ସହଚର ଶବ୍ଦରୂପେ ବ୍ୟବହୃତ ହୁଏ । ]
ବିଣ—୧ । ମାଗଣା—1. Got gratis; gratuitous.
୨ । ଅତିରିକ୍ତ; ଅଧିକା—2. Extra; additional.
ପ୍ରାଦେ. (ସମ୍ବଲପୁର) ବିଣ—ଗପଡ଼ି; ବହୁଭାଷୀ—
Talkative; garrulous.

ଫାଉଁ—ପ୍ରାଦେ. (ପୁରୀ) ବି—୧ । କାଡ଼ିଆ (ଦେଖ)
Phāuñ 1. Kārdhiā (See)
୨ । କୋରା ନଡ଼ିଆରୁ ଚିପୁଡ଼ି ରସ କଢ଼ାଗଲା ପରେ ଯେଉଁ ନୀରସ ଭୂଷି ପରି ପଦାର୍ଥ ରହିଯାଏ—2. The dry cocoanut scrapings left after the juice is pressed therefrom.

ଫାଉ କୁରୁଣୀ—ଦେ. ବି—ଉଦ୍ଭି, ବନ୍ୟ ଗୁଳ୍ମ ବିଶେଷ—
Phāu kuruṇi Wrightia Tomentosa (Haines).

ଫାଉଡ଼ା—ଦେ. ବି. (ସଂ. ପର୍ବ)—୧ । ଖଜୁରୀ ଗଛର ବାହୁଙ୍ଗାର
Phāurdā ମୂଳଭାଗ—1. The lower part of a branch
ପାବଡ଼ା of date-palm.
फावडा ୨ । (ସଂ. ଫାଲ; ପ୍ରା. ଫାଡ଼)—ଚଉଡ଼ା ଦାଢ଼ ବିଶିଷ୍ଟ
ফাওড়া କୋଡ଼—2. Broad hoe; a spade with a long
फावडा handle.

ଫାଉଡ଼ିବା—ପ୍ରାଦେ. (ସିଂହଭୂମ) କ୍ରି—ଫୋପାଡ଼ିବା; ଫିଙ୍ଗିବା—
Phāurdibā To throw.

ଫାଉଣ୍ଟ—ବୈଦେ. ବି. (ଇଂ; ଛାପାଖାନା ଶବ୍ଦ)—ଏକ ଆକାରର
Phāuṇṭ ଟାଇପ୍ ଅକ୍ଷରର ଏକ ସାଟ—
ফাউণ্ট Fount; a set of printing types of one
फाउन्ट size or body.

ଫାଉଣ୍ଟେନ୍ ପେନ୍—ବୈଦେ. ବି. ( ଇଂ )—ଏକପ୍ରକାର ନବାବିଷ୍କୃତ
Phāunṭen pen କଲମ; ଝର କଲମ; ନିର୍ଝରଲେଖନୀ—
ফাউন্টেনপেন फाउंटेनपेन Fountain pen.
[ ଦ୍ର—ଏ ଫମ୍ପାକଲମ ମଧ୍ୟରେ ଗୁଡ଼ାଏ କାଳି ସଞ୍ଚିତ କରି ରଖାଯାଇ ଥାଏ, ଉକ୍ତ କାଳି କ୍ରମଶଃ କଲମର ମୁନ୍ଦବାଟେ ନିକିଳି ଆସିଲେ ତଦ୍ଦ୍ୱାରା ଅନେକ କାଗଜ ଲେଖାଯାଏ । ଏହାକୁ ପ୍ରସ୍ରବଣୀ-ଲେଖନୀ ବା ନିର୍ଝର ଲେଖନୀରୂପେ ଅନୁବାଦ କରାଯାଇ ପାରେ । ]

ଫାଉଣ୍ଡା—ଦେ. ବି—ଫାଉଡ଼ା ୨ (ଦେଖ)
Phāuṇḍā Phāurdā 2 (See).
(ଫାଉଣ୍ଡୀ—ସ୍ତ୍ରୀ) ବିଣ. ପୁଂ. (ସଂ. ପ୍ରକାଣ୍ଡ)—ସ୍ଥୂଳକାୟ—
Fat; corpulent.

ଫାଉଣ୍ଡେସନ୍ ସେଆର—ବୈଦେ. ବି. ( ଇଂ )—ପ୍ରଥମେ ଯେଉଁ
Phāuṇḍesan seār ଅଂଶୀଦାରମାନଙ୍କ ପ୍ରଦତ୍ତ ଅଂଶ ବା
ফাউণ্ডেসন সেয়ার ଧନରେ କୌଣସି ଯୌଥ କାରବାର ଆରମ୍ଭ
फाउँडेसन सेयार କରାଯାଏ—Foundation shares in a joint stock company.

ଫାଉଣ୍ଡ୍ରୀ—ବୈଦେ. ବି (ଇଂ)—ଲୁହା ବା ସୀସା ଆଦି ଧାତୁ ତରଳାହୋଇ
Phāuṇḍri ଯେଉଁ କାରଖାନାରେ ନାନାବିଧ ବସ୍ତୁ ଗଢ଼ା ହୁଏ—
ফাউণ্ড্রী फाउण्डरी Foundry.
(ଯଥା—ଟାଇପ୍ ଫାଉଣ୍ଡ୍ରୀ; ଆଇରନ୍ ଫାଉଣ୍ଡ୍ରୀ ଇତ୍ୟାଦି)

ଫାଉ ମାରିବା—ଦେ. କ୍ରି—୧ । କୌଣସି ପଦାର୍ଥ ମାଗଣାରେ ହସ୍ତଗତ
Phāu māribā କରିବା—1. To get a thing gratis.
ফাওমারা ୨ । କୌଣସି ପଦାର୍ଥ ଠକି କରି ନେବା—
फाउमारना 2. To get a thing by underhand means.
୩ । ଅନାଜି କରି କଥା କହିବା—
3. To say a thing by guess.

ଫାଉରି—ପ୍ରାଦେ (ବସ୍ତର) ବି—ବେତା—
Phāuri A big basket.

ଫାଉଲ—ବୈଦେ. ବି—(ଇଂ)—୧ । ଫୁଟ୍‌ବଲ୍ ପ୍ରଭୃତି ଖେଳରେ ନିୟମ
Phāul ଲଙ୍ଘନ—1. Unfair or foul practice in the
ফাউল फाउल football and other games.
୨ । କୁକ୍କୁଟଜାତୀୟ ପକ୍ଷୀ—2. Fowl.

ଫାଁ ଗାଳିବା—ଦେ. କ୍ରି—୧ । ଛଳ ଗାଳିବା—
Phāñ gālibā 1. To feign.
୨ । ଛଳ ଗାଳି କ୍ଲାନ୍ତ ଦେଖାଇବା—2. To feign as if one is pulled down or spent up.
୩ । ଅତ୍ୟନ୍ତ କ୍ଲାନ୍ତ ହେବା—3. To be exhausted.
୪ । ଅବସନ୍ନ ହେବା—4. To be worne out.
(ଯଥା—ମୁଁ ରେଲ ପାଇବା ଲାଗି ଦଉଡ଼ି ଦଉଡ଼ି ଆସି ଷ୍ଟେସନରେ ପହଞ୍ଚି ଖଣ୍ଡେ ଫାଁ ଗାଳଦେଇ ପଡ଼ିଗଲି)

ଫାଁଜି—ପ୍ରାଦେ (ସମ୍ବଲପୁର) ବି ( ଭୂଲ. ହି, ଫାଁଗ; ଫାଁଗୀ )—ଶାକ
Phāñji ବିଶେଷ—A sort of pot-herb.

ଫାକଶି—ବୈଦେ. ବି (ଉର୍ଦ୍ଦୁ)—୧ । ଦମ୍; ନିଶ୍ୱାସ—
Phākāsi 1. Breath.
(ଫାଙ୍କାଶି—ଅନ୍ୟରୂପ) ୨ । ପ୍ରାଣବାୟୁ—2. Breath of life.

ଫାକାଶି ଉଡ଼ିବା—ଦେ. ବି—୧ । ବେଦମ୍ ହୋଇଯିବା—
Phākāsi urdibā 1. Being out of breath.
দমছুটেযাওয়া ୨ । ହଂସା ଉଡ଼ିଯିବା—
दमछूटजाना 2. Dying condition.
୩ । ଧୈର୍ଯ୍ୟ ଚ୍ୟୁତ—3. Losing patience.
୪ । କିଂକର୍ତ୍ତବ୍ୟବିମୂଢ଼ତା—4. Bewilderment.
ଏ କଥା ଶୁଣିଲାବେଳେ ଶ୍ୟାମର ଫାକାଶି ଉଡ଼ିଗଲା—ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ଫାକୁଟିଆ**—ପ୍ରାଦେ (ଗଡ଼ଜାତ) ବି—ହଳଦିଆ ଓ ନାଲି ମିଶା ରଙ୍ଗ—
Phākuṭiā Reddish yellow colour.

**ଫାକୁଡ଼ି**—ଦେ. ବି—ପାକୁଡ଼ି (ଦେଖ)—Pākurḍi (See).
Phākurḍi (ଫାକୋଡ଼ି—ଅନ୍ୟରୂପ)

**ଫାଙ୍କ**—ଦେ. ବି (ସଂ. ଫକ୍କିକା)—୧ । ଦୁଇ ବସ୍ତୁ ମଧ୍ୟସ୍ଥ ବ୍ୟବଧାନ; ଅନ୍ତର—1. Gap; space between two things.
Phāṅka
ফাঁক सूराख; दरार
୨ । ରନ୍ଧ୍ର; ଛିଦ୍ର—2. Hole.
୩ । ଦୋଷ; ତ୍ରୁଟି—3. Defect; blemish.
୪ । ଉନ୍ମୁକ୍ତ ବା ଅନାବୃତ ସ୍ଥାନ—4. Open space.
୫ । ଶୂନ୍ୟ ସ୍ଥାନ—5. Vacant or empty space.
୬ । ଫାଟ—6. Crack; crevice; chink.
୭ । ସୁବିଧା; ସୁଯୋଗ—7. Opportunity.
୮ । ପ୍ରଭେଦ—8. Difference.
୯ । ବିଶେଷତ୍ୱ—9. Distinction.
୧୦ । ନିର୍ଜ୍ଜନ ସ୍ଥାନ—10. Solitude.
୧୧ । ବିଶେଷ ସ୍ୱଭାବ—11. Special custom.
୧୨ । ବିଭିନ୍ନ ସ୍ୱଭାବ—22. Different or distinct custom.
(ଯଥା—ଦେଶକେ ଫାଙ୍କ; ନଈକେ ବାଙ୍କ)
୧୩ । ଅବସର; ଅବକାଶ—13. Liesure.
୧୪ । ବିଚ୍ଛେଦ; ପୃଥକ ହେବା—14. Separation.
ফাঁকা ବିଣ—୧ । ପୃଥକ; ଭିନ୍ନ—1. Separate.
୨ । ବିଭିନ୍ନ—2. Different.
୩ । ଛଡ଼ାଛଡ଼ା—3. Sparse.
୪ । ଖାଲି; ଶୂନ୍ୟ—4. Empty; hollow; vacant; unoccupied.
୫ । ଜନଶୂନ୍ୟ; ନିର୍ଜ୍ଜନ—5. Solitary.
୬ । ଖୋଲା; ଉନ୍ମୁକ୍ତ—6. Open.

**ଫାଙ୍କଡ଼ା**—ଦେ. ବିଣ. ପୁଂ—୧ । ଛଳ ପୂର୍ଣ୍ଣ; ପ୍ରତାରକ—
Phāṅkarḍā 1. Fraudulent; deceitful,
(ଫାଙ୍କଡ଼ୀ—ସ୍ତ୍ରୀ) ୨ । ଯେ ଫାଙ୍କି ଦିଏ—
ফাকড়িআ छली 2. Feigning.

**ଫାଙ୍କଡ଼ାମି**—ଦେ. ବି (ବଙ୍ଗଳାରୁ ଅନୁକୃତ)—୧ । ପ୍ରତାରଣା—
Phāṅkarḍāmi 1. Fraud.
(ଫାଙ୍କଡ଼—ଅନ୍ୟରୂପ) ୨ । ଛଳନା—2. Feigning.
ফাক্কড়ামী ୩ । ଦାମ୍ଭିକତା—3. Audacity.
छल ୪ । ଅବାଧ୍ୟତା—4. Insubordinatoin.

**ଫାଙ୍କଡ଼ାମି ମାରିବା**—ଦେ. କ୍ରି—୧ । ମିଛ କହି ଠକିବା—1. To deceive by false statement.
Phāṅkarḍāmi māribā
ଫାଙ୍କ ମାରିବା
ଫାଙ୍କଡ଼ ମାରିବା
ଫାଙ୍କଡ଼ାମି କରିବା } ଅନ୍ୟରୂପ
ফাক্কড়ামীকরা
फरपैसीदिखलाना
୨ । କାମଦାମ ନ କରି ଉପର-ଠାଉରିଆ ହୋଇ ବଡ଼ କାର୍ଯ୍ୟ କରୁଥିବାପରି ଦେଖେଇହେବା—2. To show one's self off without substantially doing anything.
୩ । ଛଳନା କରିବା—3. To feign.

**ଫାଙ୍କତାଲ**—ଦେ. ବି—୧ । ବାଦ୍ୟର ତାଳବିଶେଷ—
Phāṅkatāla ফাঁকতাল 1. A musical measure.
ଫାଙ୍କତାଳ
ତାଳ ଫାଙ୍କ } ଅନ୍ୟରୂପ
୨ । କପଟ; ପ୍ରତାରଣା—2. Deception; hypocricy.
କ୍ରି. ବିଣ—ମାଗଣା—Gratis.

**ଫାଙ୍କା**—ଦେ. ବିଣ—୧ । ଛଳନାପୂର୍ଣ୍ଣ—
Phāṅkā ফাঁকা फाँका; खाली 1. Fraudulent.
୨ । ମାୟାପୂର୍ଣ୍ଣ—2. Illusory.
୩ । ଖୋଲା; ଅନାବୃତ; ଉନ୍ମୁକ୍ତ—3. Open.
୪ । ମିଥ୍ୟା—4. False.
୫ । ଅସାର—5. Unsubstantial.
୬ । ଖାଲି; ଶୂନ୍ୟ—6. Empty.

**ଫାଙ୍କା ଅୱା(ବା)ଜ୍**—ଦେ. ବି—ବନ୍ଧୁକରେ ଗୁଳି ନ ଦେଇ କେବଳ ବାରୁଦ ଭରି କରି ଫାଏର କରିବା ଶବ୍ଦ—
Phāṅkā awā(bā)j
ফাঙ্কা আওয়াজ Blank shot; blank firing of a gun.
खालि आवाज

**ଫାଙ୍କି**—ଦେ. ବି. (ସଂ. ଫକ୍କିକା)—୧ । ପ୍ରତାରଣା; ଛଳନା—
Phāṅki ফাঁকী फाँकी 1. Fraud; trick; deception.
୨ । ଧପ୍ପାବାଜି—
2. Throwing dust in the eyes of others.
୩ । ଗୁଣ୍ଡାମି—3. Cunning.
୪ । ଭଣ୍ଡିବା—4. Evasion.
୫ । ମାୟା—5. Illusion.
୬ । କୂଟ ତର୍କ—6. Sophistry; sophison.
୭ । (ଔଷଧରୂପେ ବ୍ୟବହୃତ) ଶୁଣ୍ଠି ପିପ୍ପଳୀ ଆଦିର ଚୂର୍ଣ୍ଣ—
7. Powdered drugs used as medicine.
୮ । ଚୂର୍ଣ୍ଣ; ଚନା—8. Powdered substance.
୯ । (ପାନ ବରଜ) ମାଟି ଦୋଷରୁ ଲତାମୂଳ ଗଣ୍ଠିରେ ଫୁଲ ଫୁଟିବା ଦ୍ୱାରା ପାନ ଲତା ଛିଣ୍ଡି ଯିବା—
୧୦ । ଭୁରୁଡ଼ୁ—10. Brozen facedness.
ଦେ. ବିଣ.—ପ୍ରତାରଣାପୂର୍ଣ୍ଣ—Evasive.
(ଯଥା—ଫାଙ୍କି ଉତ୍ତର ।)

**ଫାଙ୍କି ଦେବା**—ଦେ. କ୍ରି.—୧ । ଧପ୍ପା ମାରିବା—
Phāṅki debā 1. To deceive.
(ଫାଙ୍କି ମାରିବା—ଅନ୍ୟରୂପ) ୨ । ଭଣ୍ଡି ଦେବା—
ফাঙ্কিদেওয়া फाकिदेना 2. To evade.
୩ । ଛଳନା କରିବା—3 To feign.
୪ । ପରର ଆଖିରେ ଧୂଳି ପକାଇବା—4. To throw dust in the eyes of others.
୫ । ଅବାଧ୍ୟତା ଦେଖାଇବା—
5. To show insubordination.

**ଫାଙ୍କିବା**—ଦେ. କ୍ରି.—୧ । ମିଥ୍ୟା କଥା କହି ଠକି ଦେବା—
Phāṅkibā 1. To cheat (a person) by falsehood.

ফাঁকা ୨ । ଚୂନା ଖାଦ୍ୟଦ୍ରବ୍ୟ ମୁଖ ପୂର୍ଣ୍ଣ କରିବା ଓ ତାହା ଚୋବାଇବା—
**फाकना** 2. To chew a powdered eatable.
(ଯଥା—ଗୁଡ଼ଲଭଜା ଚୂନାକୁ ଘଣ୍ଟେ ହେଲା ସେ ଫାଙ୍କୁଛି ।)

ଫାଙ୍କିବାଜ୍—ଦେ. ବିଣ.—ଛଳନାପୂର୍ଣ୍ଣ—1. Evasive.
Phāṅkibāj ୨ । ଧୂର୍ତ୍ତ—2. Fraudulent.
ফাঁকিবাজ **फाँकीबाज, धोखेबाज**

ଫାଙ୍ଗୁଲା—ଦେ. ବିଣ. ପୁଂ.—୧ । ବାଉଳିଆ ଯେଉଁ ବ୍ୟକ୍ତିର କିଛି
Phāṅgulā ଠିକଣା ନ ଥାଏ; ଯେଉଁ ବ୍ୟକ୍ତି ଜିନିଷପତ୍ର ସବୁ
(ଫାଙ୍ଗୁଲୀ—ସ୍ତ୍ରୀ) ଅସାବଧାନ ଭାବରେ ଏଣେ ତେଣେ ପକାଇ
বেপরোয়া ପରେ ଖୋଜିଲେ ପାଏ ନାହିଁ—1. Careless about things.
**लापरवा**
୨ । ଅସ୍ଥିରମନା—2. Fickle-minded.

ଫାଜଲ୍—ବୈଦେ. ବି.—(ଆ. ଫାଜଲ୍=ଆବଶ୍ୟକତାରୁ ଅଧିକ)—
Phājal ୧ । ବଳି ପଡ଼ିବା ଅଂଶ; ଆଧିକ୍ୟ—
ফাজল 1. Quantity in excess; surplus.
**फाजिल** ୨ । ଜମାରୁ ବେଶି ଖରଚ—
2. Expense in excess of receipt.
୩ । ଅବଶିଷ୍ଟ ଅଂଶ—3. Remainder; remnant.
ବିଣ.—୧ । ଅଧିକ—1. In excess.
୨ । ଉଦ୍ବୃତ୍ତ—2. Remaining over.
୩ । ଫାଜିଲ୍ (ଦେଖ)—3. Phājil (See)
ଏହିପରି ବାକ୍ୟମାନ ପଢ଼ି ପଢ଼ି ଲେଖକଙ୍କର ଫାଜଲ ପଣ ଅନୁଭବ କରୁଥିବ ।
ରାଧାନାଥ ରଚନା ।

ଫାଜଲ୍ ହେବା—ଦେ. କ୍ରି. (ଆ. ଫାଜଲ୍)—ବଳି ପଡ଼ିବା—
Phājal hebā To be in excess.
ফাজল হওয়া **फाजिल होना**

ଫାଜ(ଜି)ଲାମି—ଦେ. ବି. (ମନ୍ଦ ଅର୍ଥରେ ବ୍ୟବହୃତ)—୧ । ଧୃଷ୍ଟତା—
Phāja(ji)lāmi 1. Forwardness; arrogance.
ফাজলামী **फजुल** ୨ । ପ୍ରଗଲ୍ଭତା—2 Garrulity; loquacity.
୩ । ଚତୁରତା; ଚାଲାକି—3. Cleverness.

ଫାଜିଲ୍—ବୈଦେ. ବିଣ. (ଆ. ଫାଜିଲ୍=ବିଦ୍ୱାନ୍, ବୁଦ୍ଧିମାନ୍;) (ମନ୍ଦ
Phājil ଅର୍ଥରେ ବ୍ୟବହୃତ)—୧ । ଧୃଷ୍ଟ—
ফাজীল **फाजल** 1. Arrogant; forward.
୨ । ବେଜାୟ ଗପୁଡ଼ି—2. Over talkative.
୩ । ପ୍ରଗଲ୍ଭ—3. Garrulous.
୪ । ଚତୁର—4 Sly; clever.
[ଦ୍ର—ଆରବୀରେ ଏ ଶବ୍ଦ ଭଲ ଅର୍ଥରେ ବ୍ୟବହୃତ ହୁଏ ।]

ଫାଜିଲ୍ ଚ(ଚା)ଲାଖ—ବୈଦେ. ବିଣ. (ଆ)—ଧୃଷ୍ଟ ଓ କୂଟ ନୀତି ପୂର୍ଣ୍ଣ—
Phājil cha(chā)lākh Forward and sly; over-clever; brazen faced.
ফাজিল চালাক **ज्यादा चलाक**

ଫାଜିଲ୍ ଚଲାଖି—ବୈଦେ. ବି. (ଆ)—ପ୍ରଗଲ୍ଭତା; ଧୃଷ୍ଟତା—
Phājil chalākhi Forwardness; arrogance; garrulity.
ফাজিল চালাখী **ज्यादा चलाखी**
(ଫାଜିଲ ଚାଲାଖି—ଅନ୍ୟରୂପ)

ଫାଞ୍ଚେଇବା—ପ୍ରାଦେ. (ବାଲେଶ୍ୱର) କ୍ରି.—(ସଂ. ପାୟୁ+ଶୌଚ)—
Phāñcheibā ମଳତ୍ୟାଗ ପରେ ପାଣି ଦ୍ୱାରା ଶୌଚ ହେବା; ଛୁଆଁଇବା—To wash the private parts after passing stools.

ଫାଟ—ଦେ. ବି.—(ସଂ. ସ୍ଫୁଟ୍ ଧାତୁ=ବିଦାରଣ କରିବା)—୧ । ଫାଙ୍କ;
Phāṭa ଜଳା; ଚିର; ଲମ୍ବା ଛିଦ୍ର—1. A crack; chink; crevice.
ফাট **फाट**
୨ । ସନ୍ଧି—2. Narrow space; interstices.
୩ । ଛିଦ୍ର; କଣା; ରନ୍ଧ୍ର—3. Aperture.
୪ । ବିଦାରିତ ଅଂଶ—4. A split.
୫ । ଶୀତ କାଳରେ କେତେକ ବ୍ୟକ୍ତିଙ୍କ ଗୋଡ଼ ଅଦର ଚମଡ଼ା ଫାଟି ଯିବା—5. The cracking of the skin in the leg and soles during winter.

ଫାଟକ—ବୈଦେ. ବି. (ହି; ସଂ. ସ୍ଫୁଟ; Beams; ସଂ. କପାଟ'ର
Phāṭaka ଅକ୍ଷର ବିପର୍ଯ୍ୟୟ)—୧ । ତୋରଣ; ବହିର୍ଦ୍ୱାର—
ফাটক **फाटक** 1. Gate.
(ଫଟକ—ଅନ୍ୟରୂପ) ୨ । କାରାଗାର—2. Jail; prison.
୩ । କଏଦ୍; ଜେଲ ଦଣ୍ଡ; କାରାବନ୍ଧନ—3. Imprisonment.

ଫାଟକ ପାଇବା—ଦେ. କ୍ରି—୧ । କଏଦ ହେବା—
Phāṭaka pāibā 1. To be imprisoned.
ফাটক পাওয়া ୨ । କାରାଦଣ୍ଡାଜ୍ଞା ପ୍ରାପ୍ତ ହେବା—
**फाटक पाना** To be sentenced to imprisonment.

ଫାଟଣ(ନ, ଣା)—ଦେ. ବି—୧ । ଫାଟିବା କ୍ରିୟା; ବିଦୀର୍ଣ୍ଣ ହେବା—
Phāṭaṇa(na, ṇā) 1. Bursting; state of being split up.
ফাটন ফাটা ୨ । ଫାଟ—2, Split; chink; crevice.
**फाटना, फटना**

ଫାଟଳ—ଦେ. ବି. (ସଂ. ସ୍ଫୁଟ୍ ଧାତୁ)—୧ । ଫାଟ—
Phāṭaḷa 1. Crevice; chink.
ফাটল ୨ । ଛିଦ୍ର—2. Hole; aperture.
**दरार** ୩ । ଇଟାଗାନ୍ଥିଣୀ ମଧ୍ୟରେ ଥିବା ଛିଦ୍ର—
3. Cracks inside a brick masonry.

ଫାଟି ପଡ଼ିବା—ଦେ. କ୍ରି—(ଗୋଡ଼) ଅବସନ୍ନ ହେବା; ଅତିରିକ୍ତ କର୍ମ-
Phāṭi paṛibā ଯୋଗୁଁ କ୍ଳାନ୍ତ ହେବା—
ফেটে যাওয়া (one's legs) To become over-tired.
**फटजाना** ଫାଟି ପଡ଼ିବାର ନକୁଞ୍ଜ ସଖୀର ଶ୍ରମୁଁ ମୋ ଚରଣ ତଳ ।
(ଫାଟିଯିବା—ଅନ୍ୟରୂପ) କାଳସୂର୍ଯ୍ୟ. ଦଂଶୋଦ୍ଧାରଙ୍କ ପ. ଗୀତ ।

ଫାଟି ଫୁଟି ଯିବା—ଦେ. କ୍ରି—୧ । ବହୁସ୍ଥାନରେ ବିଦୀର୍ଣ୍ଣ ହେବା; ବହୁ-
Phāṭi phuṭi jibā ସ୍ଥାନରେ ଫାଟିଯାଇ ଖଣ୍ଡ ଖଣ୍ଡ ହେବା—
ফেটেফুটে যাওয়া 1. To be split up at many places.
**फाटफुट जाना** ୨ । ବହୁଚେଷ୍ଟା ପରେ ଅକୃତକାର୍ଯ୍ୟ ହୋଇ ନିରସ୍ତ ହେବା ବା ବିରକ୍ତ ହେବା—2. To be tired after repeated unsuccessful endeavours.

**ଫାଟିବା**—ଦେ. କ୍ରି. (ସ. ସ୍ଫୁଟ୍ ବା ସ୍ଫଟ୍ ଧାତୁ=ବିଦାରଣ)—
**Phāṭibā** ୧ । ବିଦୀର୍ଣ୍ଣ ହେବା—1. To be split up or cleft.
[ଫଟା(ଟେ)ଇବା—ପ୍ରଯୋଜକ କ୍ରିୟା]
**फाटा**
ଯେବେ ମୋହର ପେଟ ଟୋକ୍ତ ଫାଟିଯିବ ।
**फटना, चनकना** କୃଷ୍ଣସିଂହ. ମହାଭାରତ. ବନ ।
୨ । ଭାଙ୍ଗିଯିବା; ଦ୍ୱିଧା ବିଭକ୍ତ ହେବା—
2. To break asunder; to be split asunder.
୩ । ଚିରିଯିବା—3. To be torn.
୪ । (ଶୀତ କାଳରେ ଦେହ ଓ ଗୋଡ଼ର ଚମଡ଼ା) ବିଦୀର୍ଣ୍ଣ ହେବା—4. To crack (said of the skin in winter).
(ଫାଟିଯିବା—ଅନ୍ୟରୂପ)
୫ । (ପାଦାଦି) ଥକିଯିବା; ଅବସନ୍ନ ହେବା—
5. (legs) To be fatigued; to be over-tired.

ପଦ୍ମ ପଙ୍କଜ ମୃଦୁ ଦ୍ରବିତ ପାଦ
ଫାଟୁ ଯେ ଥିବ ଲଭୁ ସବୁର ଖେଦ । କବିସୂର୍ଯ୍ୟ. ସଙ୍ଗୀତ ।

୬ । (ବ୍ରଣ ଘାଆ ଆଦି) ମେଲା ହୋଇଯିବା—
**फुटना, तरकना** 6. To burst (said of boils).
୭ । କମ୍ପିଯିବା—7. To tremble.

ଟାଣ୍ଡିବ ଧନୁଙ୍କର ଗୁଣ ଟଙ୍କାରୁ
ଶୁଣିଲେ ଫାଟିଯାଏ ଯୁଦ୍ଧ କଲ ସ୍ଥାନ । କୃଷ୍ଣସିଂହ. ମହାଭାରତ ବିରାଟ ।

୮ । (ଦୁଇଜଣଙ୍କର ମନର ମେଳ) ଭାଙ୍ଗିଯିବା—
8. To become alienated (said of two friends).
୯ । (ଲକ୍ଷଣାର୍ଥ; ମନ)—ନିରୁତ୍ସାହ ହେବା ବା ଦୁଃଖିତ ହେବା—
9. (fig) To be discouraged or dejected.
୧୦ । (ଲକ୍ଷଣାର୍ଥ; କପାଳ) ମନ୍ଦଭାଗ୍ୟ ଯୁକ୍ତ ହେବା—
10. (figurative; one's luck) To become bad.

ସଖି ! ଫାଟିଲା ମୋ କରମ ଜାଣିଲି ଭଲେ । କବିସୂର୍ଯ୍ୟ. ସଙ୍ଗୀତ ।

(ଯଥା—ମୋ କପାଳ ଫାଟିଲା; ମୋ କର୍ମ ଫାଟିଲା; ମୋ ଭାଗ୍ୟ ଫାଟିଲା ।)

**ଫାଟୁଆ**—ଦେ. ବି—ଗୋରୁମାନଙ୍କ ମାରାତ୍ମକ ସଂକ୍ରାମକ ରୋଗବିଶେଷ—
**Phāṭuā** A contagious and fatal cattle disease; foot and mouth disease of cattle; a kind of rinderpest.
**आओसावा, खूरी**
**जर्री; जरखोर**

ଫାଟେଇ } ସ୍ତ୍ରୀ.
ଫାଟୋଇ }
ବିଣ. ପୁଂ—ଯେଉଁ ବ୍ୟକ୍ତିର ଗୋଡ଼ଅଧର ଚମଡ଼ା ଫାଟିଯାଇ ଥାଏ—
Having cracked skin.

**ଫାଟୁଆ ଗାଈ**—ଦେ. ବି—ଯେଉଁ ଗାଈକୁ ଫାଟୁଆ ରୋଗ ଧରିଥାଏ—
**Phāṭuā gāī** A cow which is attacked with the Phāṭuā disease.

ଗ୍ରା. ବୈଦେ.ବି. (ବାଲେଶ୍ୱରୀ ଜାହାଜିଆଙ୍କ ଭାଷା;ଇଂ. ପର୍ତ୍ତୁଗୀଜ୍)—
ପର୍ତ୍ତୁଗିଜ୍ ଜାତି—The Portugese.

ସେମାନେ ଫାଟୁଆଟୋପି ଜାତି, ଏଇ ଫିରିଙ୍ଗୀମାନଙ୍କ ପରି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଫାଡ଼**—ଗ୍ରା. ବି. (ଅଶ୍ଳୀଳ—ଯୋନି—Female organ.
**Phāṛḍa** (ଫାଡ଼ଣ, ଫାଡ଼ୀ, ଫାଡ଼ୁ—ଅନ୍ୟରୂପ)

**ଫାଡ଼ି କଇଁତୀ**—ପ୍ରାଦେ. (ପୁରୀ) ବିଣ. (ବାଳିକାଙ୍କ ପ୍ରତି ବ୍ୟବହୃତ)—
**Phāṛḍi kaintī** ଯେଉଁ ବାଳିକା ବୟସ ତୁଳନାରେ ବେଶି ବାକ୍‌ଚତୁରୀ କରେ; ଝେଞ୍ଚୁଡ଼ୀ—
(ଫାଡ଼ କଇଁତି—ଅନ୍ୟରୂପ)
**এঁচড় পাকা** **अगैती** Forward (girl); precocious.

**ଫାଡ଼ିବା**—ଦେ. କ୍ରି. (ସ. ସ୍ଫୁଟ୍ ବା ସ୍ଫଟ୍ ଧାତୁ=ବିଦାରଣ; ସ. ସ୍ଫାଟନ)—୧ । ଚିରି ଦେବା—
**Phāṛḍibā**
**फाड़ा** 1. To tear up; to split up; to cleave.
**फाड़ना**
ବଳେ ଜଙ୍ଘ ତାହାର ଫାଟି ଫାଡ଼ି ଦେଲ ।
କୃଷ୍ଣସିଂହ. ମହାଭାରତ ବନ ।

୨ । ବିଦାରଣ କରିବା—2. To tear up; to rive up.
୩ । ଦୁଇଶାଖାଯୁକ୍ତ ଅଙ୍ଗକୁ ବିପରୀତ ଦିଗକୁ ବିସ୍ତୃତ କରିବା; ବିସ୍ତୃତ କରିବା—3. To spread out (one's arms or legs).
[ଫଡ଼ା(ଡ଼େ)ଇବା—ପ୍ରଯୋଜକରୂପ]
୪ । ପୃଥକ୍ କରିବା; ବିଭକ୍ତ କରିବା—
4. To divide; to separate.
୫ । ଫଡ଼ା ଫଡ଼ା ବା ଫାଳ ଫାଳ କରିଦେବା—
5. To split up into strips.
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ପକାଇବା, ଦେବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଫାଣି**—ସ. ବି (କମ୍ପା ସ୍ଫାୟ୍ ଧାତୁ=ସ୍ଫୀତ ହେବା+କର୍ତ୍ତୃ. ଣି)—
**Phāṇi** ୧ । ଗୁଡ଼—1. Molasses; unrefined sugar.
୨ । ଦଧିମିଶ୍ରିତ ଛତୁ—2. Corn flour mixed with curds.

**ଫାଣିତ**—ସ. ବି. ( ଫଣ୍ ଧାତୁ=ଅନାୟାସରେ ଉତ୍ପନ୍ନ ହେବା, ଣିଚ୍. ଫାଣି ଧାତୁ+କର୍ମ. ତ )—୧ । ଗାଢ଼ ଇକ୍ଷୁଗୁଡ଼—
**Phāṇita**
1. Thickened molasses; unrefined sugar.
୨ । ଫେଣା; ଗୁଡ଼ ଆଉଟି କରି ତିଆରି କରାଯିବା ଏକପ୍ରକାର ପିଠା—2. Sugar cake; bloated sugar ball.

**ଫାଣ୍ଟ**—ସ. ବିଣ. ( ଫଣ୍ ଧାତୁ+କର୍ତ୍ତୃ ତ; ନିପାତନ )—୧ । ଅନାୟାସରେ ପ୍ରସ୍ତୁତ—1. Easily prepared; made easily.
**Phāṇṭa**
୨ । ଯାହା ଫେଣିଆ ହୋଇ ତିଆରି ହୋଇଥାଏ—
2. Prepared from a liquid by stirring it.
ବି—୧ । କ୍ୱାଥ; ନାନା ଦ୍ରବ୍ୟର ସିଝା ପାଣି—1. Decoction.
୨ । ଅସ୍ତ୍ରାଦିରେ ପାଣି ଦେବା ପ୍ରକ୍ରିୟା—
2. The process of tempering a weapon.
୩ । ଧାତୁଦ୍ରବ୍ୟ ତରଳିବାର ପୁଟ—3. A flux.
୪ । ଦହି ମୋହିଁବା ବେଳେ ପ୍ରଥମେ ଯେଉଁ ଲହୁଣୀ ବାହାରେ—
4. Particles of butter first produced at churning.
୫ । ଫେଣିଆ ହୋଇଥିବା ବଟା ବିରି ( ଜ୍ଞାନେନ୍ଦ୍ର )—
5. Stirred up dough.

**ଫାଣ୍ଟ କଷାୟ**—ଦେ. ବି. ( ବୈଦ୍ୟକ )—ଔଷଧ କ୍ୱାଥ ବିଶେଷ—
**Phāṇṭa kashāya** A kind of cold decoction.

[ ଦ୍ର—୪ ତୋଲା କୁଟ୍ଟିତ ଔଷଧ ଦ୍ରବ୍ୟକୁ ୧୬ ତୋଲା ଅତ୍ୟୁଷ୍ଣ ଜଳରେ ନିକ୍ଷେପ କରି କିଛିକ୍ଷଣ ଘୋଡ଼ାଇ ରଖି ପରେ ସେହି ଦ୍ରବ୍ୟକୁ ହାତରେ ମନ୍ଥି କନାରେ ଛାଣିଲେ ଏହି କଷାୟ ପ୍ରସ୍ତୁତ ହୁଏ । ]

**ଫାଣ୍ଟିବା**—ଦେ. କ୍ରି ( ସଂ. ଫାଣ୍ଟ; ସଂ. ପିଷ୍ଟ; ପ୍ରା. ପିଟ୍ଟ ) ୧ । ଫେଣ୍ଟିବା; ଦୁଇ ପଦାର୍ଥକୁ ଏକତ୍ର ମିଶାଇ ହାତଦ୍ୱାରା ଗୋଳିବା—
Phāṇṭibā ফাঁটা **फैंटना** 1. To mix up two things and stir them together with the hand.
୨ । ଫେଣାଇବା; ଦ୍ରବ ପଦାର୍ଥକୁ ହାତରେ ଗୋଳି ତାକୁ ଫେନଯୁକ୍ତ କରିବା —2 To make any watery substance lather by stirring much.
(ଫାଣ୍ଟେଇବା — ଣିଜନ୍ତ)

**ଫାଣ୍ଡି**—ଦେ ବି. ( ସଂ. ପାଟକ=ଗ୍ରାମ )—ଶାନ୍ତିରକ୍ଷାର୍ଥ ପୁଲିସ୍ ରଖାଯାଇଥିବା ଗ୍ରାମ୍ୟ କେନ୍ଦ୍ର; ପୁଲିସ୍ ଚୌକି—
Phāṇḍi ফাঁড়ী **चौकी; नाका** 1. Police outpost
[ ଦ୍ର — ବଡ଼ ବଡ଼ ପୁଲିସ୍ କେନ୍ଦ୍ରକୁ ଥାନା ଓ କ୍ଷୁଦ୍ର କେନ୍ଦ୍ରକୁ ଫାଣ୍ଡି ବୋଲାଯାଏ । ଥାନାର ଉଚ୍ଚତମ କର୍ମଚାରୀ ମୁନସୀ ( Sub Inspector ) ଏବଂ ଫାଣ୍ଡିର ଉଚ୍ଚତମ କର୍ମଚାରୀ ଜମାଦାର ( Head constable) ଅଟନ୍ତି । ]
୨ । (ସ୍ତ୍ରୀ) (ସଂ. ଫଣ୍ଡ=ଉଦର) ସ୍ଥୂଳକାୟା ସ୍ତ୍ରୀ; ସ୍ଥୂଳୋଦରୀ ସ୍ତ୍ରୀ—2 A corpulent woman; a pot-bellied woman.

**ଫାଣ୍ଡିଦାର**—ଦେ. ବି—ଫାଣ୍ଡିର ଭାରପ୍ରାପ୍ତ ପ୍ରଧାନ ପୁଲିସ୍ କର୍ମଚାରୀ—
Phāṇḍidāra ফাঁড়িদার **नाकेदार** ( ଫାଣ୍ଡି ଜମାଦାର—ଅନ୍ୟରୂପ ) The Police officer in charge of an outpost.

**ଫାତିଆ(ହା)**—ବୈଦେ. ବି ( ଆ. ଫାତିହା=ପ୍ରାର୍ଥନା )—୧ । କୋରାନ୍ ପାଠପୂର୍ବକ ମୁସଲମାନମାନେ ପୀରଙ୍କ ଉଦ୍ଦେଶ୍ୟରେ ଯେଉଁ ନୈବେଦ୍ୟ ବା ପୂଜା ଦିଅନ୍ତି—
Phātiā(hā) ফাতিয়া **फातिहा** 1. Worship or offering made to a Pir or saint by a Mahommedan by reciting passages from the Koran.
୨ । ମୃତବ୍ୟକ୍ତି ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ—2 Offering dedicated in the name of a deceased person.

**ଫାଦମ୍**—ବୈଦେ. ବି ( ଇଂ. ଫାଦମ୍ )—୬ ଫୁଟ ଦୀର୍ଘତା; ଜଳର ମାପବିଶେଷ—Fathom.
Phādam ফাদম **फैदम**

**ଫାନ(ନୁ)ସ**—ବୈଦେ. ବି ( ଫା. ଫାନସ୍ )—ପାନସ ( ଦେଖ )
Phāna(nu)sa ফান(নু)স **फानूस** Pānasa ( See )

**ଫାନ୍ଦ**—ଦେ. ବି. ( ସଂ. ସ୍ପନ୍ଦନ; ପ୍ରା. ଫନ୍ଦନ; କମ୍ବା ସଂ. ବନ୍ଧ=ରଜ୍ଜୁ; ଫା. ଫନ୍ଦ; ଫନ୍ଦ=ଜାଲ; ଶୃଙ୍ଖଳ )—୧ । ଜାଲ; ପାଶ; ଫାଶ—1. Net; snare; noose; trap.
Phānda ফাঁদ **फन्द; फन्दा**

କେଉଁ ଯୁବତୀକି ନେଇ ନାହିଁ ଝିଙ୍କି ତା ନୟନ ଫନ୍ଦ—କବିସୂର୍ଯ୍ୟ. ସଙ୍ଗୀତ ।

୨ । ରଜ୍ଜୁର ଗଣ୍ଠି—2. Knot of a rope; tangle.
୩ । ଫନ୍ଦି; କୌଶଳ—3. Artifice.
୪ । ଫିକର; ଉଦ୍ଭାବିତ ଉପାୟ—4. Means; alternative.
୫ । ଗୋଳମାଳ; ବିପଦ —5. Confusion; danger
୬ । କୂଟ କୌଶଳ—6. Wiles; stratagem; trick.
୭ । ପ୍ରତାରଣା — 7. Cheating; knavery.
୮ । ଛଳ; କପଟ—8. Fraud; treachery; deceit.
୯ । କାଳ୍ପନିକ ବିଷୟ —
9. Imaginary and invented matter.
୧୦ । ଗୋଲକ ଧନ୍ଦା—10. Maze; labyrinth.
୧୧ । ପରୀକ୍ଷାର ସ୍ଥାନ—11. Testing place.

ଗୌତମ ଭଲକୁ ଫାନ୍ଦ ସେ ହାର
ଇନ୍ଦ୍ର ଶାପ ପିଞ୍ଜର ଭିତର । ସ୍ୱା. ପରତେଗୀତା ।

୧୧ । ଦଉଡ଼ିର ଘେର— 11. Coil of a rope.
ବିଣ—୧ । କପଟତା ପୂର୍ଣ୍ଣ —1. Treacherous.
୨ । ଶଠତାପୂର୍ଣ୍ଣ—2. Fraudulent.
୩ । ଉଦ୍ଭାବିତ; କାଳ୍ପନିକ—3. Imaginary; invented.
୪ । କୁଟମାଡ ପୂର୍ଣ୍ଣ—4. Mazy; artful.
୫ । ଗୋଳମାଳିଆ—5. Confused.

**ଫାନ୍ଦ ପାତିବା**—ଦେ. କ୍ରି—୧ । କୌଣସି ଜୀବକୁ ଧରିବା ନିମନ୍ତେ ଜାଲ ବା ଫାଶ ବିସ୍ତାର କରିବା—1. To lay or spread a snare or noose.
Phānda pātibā ফাঁদবসান **फँदफैलाना**

ଫାନ୍ଦ ବସା(ସେ)ଇବା
ଫାନ୍ଦ ମେଲ୍ଲା(ଲେ)ଇବା } ଅନ୍ୟରୂପ
ଫାନ୍ଦ ମେଲିବା
ଫାନ୍ଦ ପାରିବା

୨ । କୌଣସି ବ୍ୟକ୍ତିକୁ ବିପଦରେ ପକାଇବା ନିମନ୍ତେ କୂଟ କୌଶଳ ବା ଉପାୟ ପ୍ରୟୋଗ କରିବା—
2. To apply means or stratagem to entangle or ensnare a person.

**ଫାନ୍ଦ ଫାନ୍ଦିବା**—ଦେ. କ୍ରି — ୧ । ଫାନ୍ଦ ପାତିବା (ଦେଖ)—
Phānda phāndibā ফাঁদ ফাঁদা 1. Phānda pātibā (See).
୨ । ମିଥ୍ୟା ବା କାଳ୍ପନିକ କଥା ଯୋଡ଼ି କରି କହିବା—
**फाँदना** 2. To invent a falsehood.

**ଫାନ୍ଦରେ ପକା(କେ)ଇବା**—ଦେ. କ୍ରି—୧ । ଲୋକକୁ ବିପଦରେ ପକାଇବା; ବିପନ୍ନ କରିବା—
Phāndare pakā(ke)ibā ফাঁদে ফেলা 1. To involve a person in danger.
**फान्द्मेडालना; फन्दना** ୨ । ଲୋକକୁ ପ୍ରଲୋଭନଦ୍ୱାରା ବଶୀଭୂତ କରିବା — 2. To cause a person to succumb to temptations.
୩ । ଗୋଳମାଳରେ ଜଡ଼ିତ କରିବା —
3. To entangle a person in confusion.
୪ । ଜନ୍ତୁକୁ ଜାଲ ବା ଫାଶରେ ପକାଇବା—
4. To entrap or ensnare an animal

**ଫାନ୍ଦି(ନ୍ଦୁ)ଆ**—ଦେ. ବିଣ, ପୁଂ—୧ । କୁଟମାଡପୂର୍ଣ୍ଣ—
Phāndi(ndu)ā 1. Full of stratagem.
୨ । ଯେ ମିଛକଥା ଫାନ୍ଦିକରି କହେ—
2. One who invents false or imaginary stories; tale-tell.
ଫାନ୍ଦେଇ
ଫାନ୍ଦୋଇ } ସ୍ତ୍ରୀଲିଙ୍ଗ
फन्दीबाज **फँदीबाज**

**ଫାନ୍ଦିବା**—ଦେ. କ୍ରି—(ସଂ. ଛନ୍ଦ ଧାତୁ; ସଂ. ବନ୍ଧ ଧାତୁ)—୧ । କାଳ୍ପନିକ
Phāndibā ବା ମନଗଢ଼ା କଥା କହିବା; ଉଦ୍ଭାବନ କରିବା;
ফাঁদা ମନରୁ କାଢ଼ିବା—1. To invent a false or
**रचना** imaginary story.

ନହେ ବୁଝିବାକୁ ଏବେ କଥା ଫାନ୍ଦ । ଦାଶରଥି, ବ୍ରଜବିହାର ।

୨ । (ଗୀତ ଆଦି) ରଚନା କରିବା; ଯୋଡ଼ିବା—
2. To compose (a song).

୩ । ଜାଲ ବିସ୍ତାର କରିବା—3. To ensnare; to lay or spread a snare.

୪ । ଛନ୍ଦିବା; ଗଣ୍ଠି ପକାଇବା—
4. To make a knot or tangle.

୫ । ଛନ୍ଦିକରି ବାନ୍ଧିବା; ବନ୍ଧନ କରିବା—5. To bind tightly.

୬ । ଆରମ୍ଭ କରିବା—6. To commence; to begin.

୭ । ରେଖା ଟାଣିବା—
7. To draw a line; to make an outline.

**ଫାନ୍ଦିଶାଗ୍**—ପ୍ରାଦେ (ସମ୍ବଲପୁର) ବି—ଏକପ୍ରକାର ବନ୍ୟ ଶାଗ—
Phāndi sāg A species of pot-herb.

**ଫାପଡ଼୍**—ପ୍ରାଦେ (ଗଡ଼ଜାତ) ବି—ଫୋପାଡ଼ିବା କ୍ରିୟାର ଥର—
Phāpaṛd A throw.
(ଯଥା—ମୁଁ ଏକା ଫାପଡ଼କେ ଏ ଆମ୍ବପେଣ୍ଡାଟି ଝଡ଼ାଇ ଦେବି)

**ଫାଫଣ**—ଦେ. ବି.—ଦଣ୍ଡିରେ ଝୁଲୁ ଥିବା ଅସଲ ବା ନକଲ ମୋତି—
Phāphaṇa Pure or imitation pearl hanging down
(ଫଣୀ, ଫାମ୍ଫଣ, ଫାମ୍ଫଣୀ—ଅନ୍ୟରୂପ) a nose ornament; a gempendant.

**ଫାବିବା**—ଦେ. କ୍ରି.—(ସଂ. ପ୍ରବର୍ତ୍ତନ, ପ୍ରାପଣ; ସଂ. ପ୍ରଭବନ; ପ୍ରା;
Phābibā ପଭବଣ)—୧ । ଉପଯୁକ୍ତ ବିବେଚିତ ହେବା—
খাটা **फबना, फावना** 1. To be adjudged or considered proper.

୨ । ଘଟିବା—2. To happen.

୩ । ନିର୍ଦ୍ଧାରିତ ହେବା;ସ୍ଥିରୀକୃତ ହେବା—
3. To be ascertained or adjudged.
(ଯଥା—ଏ ଦୋଷଟା ଅମୁକ ଉପରେ ଫାବୁଛି)

୪ । ପ୍ରାପ୍ୟ ହେବା—4. To be due.

**ଫାମ୍ପ**—ଦେ. ବି—(ସଂ. ଷ୍ଫାୟୃ. ଧାତୁ=ଫୁଲିବା)—ଷ୍ଫୀତି; ଫୁଲା; ଫୁଲି
Phāmpa ফাঁপ **फुलाव** ଉଠିବା—Swelling; inflation

**ଫାମ୍ପଡ଼ା**—ଦେ. ବିଣ—ଫାମ୍ପା (ଦେଖ)
Phāmparḍā Phāmpā (See).
ପ୍ରାଦେ. (ବାଲେଶ୍ୱର) ବି—ଫୋପାଡ଼ିବାର ଥର—
A throw.
(ଯଥା—ଏକା ଫାମ୍ପଡ଼ାକେ ସେ ଗୁରଗଣ୍ଡା ଆମ୍ବ ଝଡ଼େଇଲା)

**ଫାମ୍ପଣ ମଲ୍ଲୀ**—ପ୍ରାଦେ (ଗଡ଼ଜାତ) ବି—ପୁଷ୍ପ ଲତାବିଶେଷ—A kind
Phāmpaṇa malli of flowering creeper.
[ ଦ୍ର—ଏହାର ଫୁଲ ମଲ୍ଲୀଫୁଲ ପରି । ଏ ଲତାର କ୍ଷୀର କଣ୍ଟା-ନେଣ୍ଡା ରୋଗରେ ଉପକାରୀ । ]

**ଫାମ୍ପ (ମ୍ପୁ)ଣିଆ**—ପ୍ରାଦେ (ଗଞ୍ଜାମ) ବି—(ସଂ. ଶେଫାଳୀକ)—ଫଣଫଣା—
Phāmpa(mpu)ṇiā (ଦେଖ)—Phaṇaphaṇā (See).

**ଫାମ୍ପା**—ଦେ. ବିଣ—(ସଂ. ଷ୍ଫାୟୃ ଧାତୁ)—୧ । ଷ୍ଫୀତ—1. Swollen;
Phāmpā ফাঁপা **पोला** bloated.
(ଫାମ୍ଫା—ଅନ୍ୟରୂପ) ୨ । ଫମ୍ପା;ଫୋମ୍ପା—2. Empty; hollow.

**ଫାମ୍ପିବା**—ଦେ. କ୍ରି—(ସଂ. ଷ୍ଫାୟୃ. ଧାତୁ=ଫୁଲିବା)—୧ । ଫୁଲି
Phāmpibā ଉଠିବା—1 To become swollen or
ফাঁপা **फुलना** bloated.

୨ । ଫୁଲାଇବା; ଫମ୍ପେଇବା—
2. To cause to swell; to inflate.

**ଫାୟାର୍** (ଇତ୍ୟାଦି)—ଦେ. କ୍ରି—ଫଏର୍ ଇତ୍ୟାଦି (ଦେଖ)—
Phāyār (etc) ফায়ার **फायर** Phaer etc (See).

**ଫାୟାର୍ ଇ(ଏ)ଞ୍ଜିନ୍**—ବୈଦେ. ବି. ( ଇଂ )—ପାଣି ଦ୍ୱାରା ନିଆଁ
Phāyār i(e)ñjin ଲିଭାଇବା ପାଇଁ କଳଯୁକ୍ତ ଢଳ—Fire-
ফায়ার এঞ্জীন **फायरअन्जीन** engine.

**ଫାୟାର୍ ବ୍ରିଗେଡ୍**—ବୈଦେ. ବି—( ଇଂ )—ବଡ଼ ବଡ଼ ସହରରେ
Phāyār briged ହଠାତ୍ ଘର ଆଦିରେ ନିଆଁ ଲାଗିଲେ ନିଆଁ
ফায়ারব্রিগেড ଲିଭାଇବା ପାଇଁ କଳ ସହିତ ଯେଉଁ କର୍ମଚାରୀଦଳ
**फायरब्रीगेड** ନିଯୁକ୍ତ ହୋଇଥାଆନ୍ତି—Fire-brigade.

**ଫାୟାର୍ ମା(ମ୍ୟା, ମେ)ନ୍**—ବୈଦେ. ବି. ( ଇଂ )—ଜାହାଜ, ରେଲ
Phāyār-mā(myā, me)n ଆଦିର ଏଞ୍ଜିନ୍‌ରେ ଜଳୁଥିବା ନିଆଁରେ
ফায়ারমেন **फायरमैन** କୋଇଲା ଭରିବା ବ୍ୟକ୍ତି—Fireman.

**ଫାୟାର୍ ଲାଇନ୍**—ବୈଦେ. ବି—ରକ୍ଷିତ ଜଙ୍ଗଲରେ ଦାବାଗ୍ନି ବିସ୍ତୃତ
Phāyār lāin ନ ହେବା ପାଇଁ ମଝିରେ ମଝିରେ ସଫା କରି
ফায়ারলাইন **फायरलाइन** ଯାଇଥିବା ରେଖା—Fire-line

**ଫାର୍‌ଖତ୍(ତି)**—ବୈଦେ. ବି. ( ଫା. ଫାରିଖତ୍; ଆ. ଫାରଗ୍‌ଖତ୍ )—
Phār-khat(ti) ୧ । ବିବାହବନ୍ଧନ ଛେଦନପତ୍ର; ଛାଡ଼ପତ୍ର—
ফারখত **फारखती** 1. Deed of divorce.
(ଫାରକତ୍[ତି]—ଅନ୍ୟରୂପ ) ୨ । ଦାବିତ୍ୟାଗ ପତ୍ର; ମୁକ୍ତିପତ୍ର—
2. Deed of release or reliquishment.

୩ । ବିଶୋଧନ ପାଉତି—3. Acquittance-roll; a receipt in full discharge.

୪ । ସମାପ୍ତି ରସିଦ—4. Full satisfaction receipt.

୫ । ( ଆ. ଫାରଗ୍ ) ଫାଙ୍କଜାଗା ବା ଉନ୍ମୁକ୍ତ ସ୍ଥାନ—
5. Open space.

୬ । ( ଆ. ଫରକ୍ ) ପୃଥକ୍ ହେବା; ଭିନ୍ନ ହେବା—
6. Separation from each other.

୭ । ଅବସର—7. Liesure.

୮ । ଘୁଞ୍ଚିବା ନିମନ୍ତେ ଯଥେଷ୍ଟ ସ୍ଥାନ—8. Moving space

୯ । ମୁକ୍ତି—9. Release; relief

୧୦ । ପରିତ୍ୟାଗ—10. Relinquishment.

ବିଣ—୧ । ମୁକ୍ତ—1. Released; set free; discharged.

୨ । ଛାଡ଼ପତ୍ର ହୋଇଯାଇଥିବା (ସ୍ତ୍ରୀ)—2 Divorced.

୩ । ପରିତ୍ୟକ୍ତ—3. Relinquished.

୪ । ପୃଥକ୍ ପୃଥକ୍ କରାଯାଇଥିବା—4. Separated.
୫ । ଅବସର ପ୍ରାପ୍ତ—5. Liesured.
୬ । ଉନ୍ମୁକ୍ତ—6. Open.

ଫାର—ପ୍ରାଦେ. ( ବସ୍ତର ) ବି. ( ଭୂଲ. ହି. ଫାର୍ ) —ଲଙ୍ଗଳ ଲୁହା—
Phāra Ploughshare.

ଫାରକ—ଦେ. ବି—ଦେବମନ୍ଦିରର ଚାବି ରଖିବା ସେବକବିଶେଷ—
Phāraka A temple servant in charge of the key of a temple.

ଫାରକିତ—ପ୍ରାଦେ. ( ବାଲେଶ୍ୱର ) ବିଣ—ପରିପୂର୍ଣ୍ଣ—
Phārakita Full; filled with.
ସପ୍ତା କହେ, ତେମା ସବୁ ଗୁଣରେ ଫାରକିତ—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଫାରନ୍ ହିଟ୍—ବେଦେ ବି. (ଇଂ. ଫାରେନ୍ ହିଟ୍; ଏ ଯନ୍ତ୍ରର ଆବିଷ୍କାରକଙ୍କ
Phāran hit ନାମ )—ଏକପ୍ରକାର ତାପମାନ ଯନ୍ତ୍ର—
फार्नाहिट फारनहीट (ଫାରନାହିଟ୍—ଅନ୍ୟରୂପ) Fahrenheit.
[ ଦ୍ର - ଏଥିରେ ତାପ ୩୨ ଡିଗ୍ରୀରୁ ଆରମ୍ଭ ହୋଇଥାଏ ଓ ୨୧୨°ରେ ଶେଷ ହୋଇଥାଏ । ୨୧୨ ଡିଗ୍ରୀରେ ପାଣି ବାଷ୍ପ ହୁଏ ଓ ୩୨ ଡିଗ୍ରୀରେ ପାଣି ବରଫ ହେବାକୁ ଆରମ୍ଭ କରେ । ] ଏହାକୁ ପାଣିରେ ବୁଡ଼ାଇଲେ ପାଣି କେତେ ଗରମ କି ଥଣ୍ଡା ଅଛି ତାହା ଜଣା ପଡ଼େ । ]

ଫାରମ—ବୈଦେ. ବି. ( ଇଂ )—୧ । ( ଇଂ. ଫର୍ମ୍ )—ଦରଖାସ୍ତ, Phārama ରେଜିଷ୍ଟ୍ରୀ, ରସିଦ୍ ଆଦିରେ କେଉଁ ସ୍ଥାନରେ କଅଣ ଫାରମ ଲେଖାଯିବ ତହିଁର ସୂଚନା ରେଖାଆଦିଦ୍ୱାରା ଯହିଁରେ फारम ଚିହ୍ନିତ ହୋଇଥାଏ—1. Form for petitions, (ଫାର୍ମ—ଅନ୍ୟରୂପ) registers, receipts etc.
୨ । ( ଇଂ. ଫର୍ମ୍ ) ଛପା କଳରେ ଏକାଥରକେ ଛପା ହେବା ଡଙ୍ଗା—2 Form in printing.
୩ । (ଇଂ ଫାର୍ମ୍) କୃଷିକ୍ଷେତ୍ର—3. Farm.
୪ । (ଇ. ଫାର୍ମ୍) ସରକାରୀ ଆଦର୍ଶ କୃଷିକ୍ଷେତ୍ର—
4. Governamet agricultural farm.
୫ । ( ଇଂ. ଫର୍ମ୍ ) ଯୌଥ କାରବାର କମ୍ପାନୀ—
5. A trading firm.
୬ । ( ଇଂ. ଫର୍ମ୍ ) ବିଦ୍ୟାଳୟର ଶ୍ରେଣୀ—
6. Form; class in a school.
୭ । ଇଟା ଆଦିର ଛାଞ୍ଚ—7. Brick-mould.

ଫାରମ ଗୁଡ଼—ଦେ. ବି ( ଇଂ. ଫାର୍ମ୍+ସ. ଗୁଡ଼ )—ସରକାରଙ୍କ Phārama gurḍa ଆଦର୍ଶ କୃଷିକ୍ଷେତ୍ରରେ ଉତ୍କୃଷ୍ଟ ପ୍ରଣାଳୀରେ ପ୍ରସ୍ତୁତ ହେବା ଗୁଡ଼—Excellent molasses manufactured in Government agricultural farms.
[ ଦ୍ର—ଏ ଦେଶରେ ପ୍ରଚଳିତ ପୂର୍ବ ରୀତିରେ ପ୍ରସ୍ତୁତ ଗୁଡ଼ ଅପେକ୍ଷା ଫାରମ ଗୁଡ଼ ନିର୍ମଳ, ସ୍ୱଚ୍ଛତର ଓ ଉତ୍କୃଷ୍ଟ ଅଟେ । ]

ଫାରଶା—ଦେ. ବି. ( ସ. ପରଶୁ )—୧ । ବେଣ୍ଟ ଲାଗିଥିବା ଯୁଦ୍ଧାସ୍ତ୍ର ବା Phārasā ବଂଶଫଳା କୁଠାର—Battle axe; the pole-फारशा फरसा ( ଫାର୍ଶା—ଅନ୍ୟରୂପ ) axe
ତର୍ଜ୍ଜନ ଯେ ଫଳକର କାଳେ ବଢ଼
ଫାରଶା କରେ ଧରି ତହୁଁ ଗଲେ ପାଇ—କୃଷ୍ଣସିଂ. ମହାଭାରତ. ବନ
୨ । ଫାରଶା କୋଳି ( ଦେଖ )
2. Phārasā koḷi ( See )

ଫାରଶା କୋଳି—ଦେ. ବି ( ସ. ପାରୁଷଫଳ; ପରୂଷକ; ପରୁଷ; ହି. Phārasā koḷi ଫରୁସ )—ଏକପ୍ରକାର କୋଳି—
ସ. ପର୍ଯ୍ୟାୟ—ପରୂଷକ, A tree bearing acid berries;
ଗିରିପିଲୁ, ଶୋଷଣ, ପାରାବତ, Grewia Asiatica; Carpus
ପାରୁଷ, ପରୂଷ Grantum.
फालशाकुल; फालशा; परुषा [ ଦ୍ର—ଏହାର ଗଛ ବୁଦାଳିଆ ଓ
ମ. ଫାଲସା ୪।୫ ହାତ ଉଚ୍ଚ । କୋଳି ବଡ଼ିଳି
ତେ. ପୁଟିକି କୋଳି ପରି ଓ ପାଚିଲେ ମନୋହର
ଗୁ ଧାମଣ ନାଲି ଓ ଧଳା ରଙ୍ଗ ହୁଏ ଓ ଖଟା
ଫା. ପାଲସା, ଅ, ଫାଲସା ଲାଗେ । ପତ୍ର ଦନ୍ତୁର ଓ ଗୋଲ ।
ବୈଦ୍ୟକ ମତରେ ଏହାର କଞ୍ଚା କୋଳି ବାତଘ୍ନ ଓ ପିତ୍ତକାରକ; ପାଚିଲା କୋଳି ଅମ୍ଳ ମଧୁର କଷାୟ ରସ, ରୁଚିକାରକ, ପିତ୍ତଘ୍ନ ଓ ଶୋଥନାଶକ । ଲୋକେ ଏହାକୁ ଅମିଳ ଛଅଣ କରି ଓ ସରବତ୍ କରି ଖାଆନ୍ତି । ]

ଫାରସୀ—ବୈଦେ. ବିଣ ( ଆ )—ପାରସ୍ୟଦେଶୀୟ—Persian.
Phārasi ବି—ପାରସ୍ୟଦେଶୀୟ ଭାଷା—
( ଫାର୍ସୀ—ଅନ୍ୟରୂପ ) The Persian language.

ଫାରୁଆ—ପ୍ରାଦେ ( ମେଦିନୀପୁର ) ବି—ଫରୁଆ ( ଦେଖ )
Phāruā Pharuā ( See )

ଫାରୋ—ବୈଦେ. ବି ( ଇଂ )—ପ୍ରାଚୀନ ମିଶରଦେଶୀୟ ରାଜାଙ୍କ ଉପାଧି Phāro ବିଶେଷ—A title of the kings of ancient (ଫାରୁଓ—ଅନ୍ୟରୂପ) Egypt; Pharoa.

ଫାର୍ମା କୋପିଆ—ବୈଦେ ବି ( ଇଂ )—ଔଷଧମାନଙ୍କର ତାଲିକା—
Phārmā kopiā Pharmacopia.
फार्माकोप्य़िा फार्माकोपिया

ଫାର୍ମାନ୍—ବୈଦେ. ବି (ଫା)—ରାଜକୀୟ ହୁକୁମ—Royal order.
Phārmān फार्मान फारमान

ଫାର୍ମେ(ର୍ମା)ସି—ବୈଦେ. ବି (ଇଂ)—ଔଷଧ ବା ଡାକ୍ତରଖାନା—
Phārme(rmā sí फार्मासी फार्मासी Pharmacy.

ଫାର୍ସ—ବୈଦେ. ବି (ଇଂ)—ହାସ୍ୟରସ ଓ ବ୍ୟଙ୍ଗପୂର୍ଣ୍ଣ ସାମାଜିକ ନାଟକ;
Phārs फार्स फार्स ପ୍ରହସନ—Farce.

ଫାଳ—ସ. ବି ( ଫଳ୍ ଧାତୁ=ବିଦାର୍ଣ୍ଣ କରିବା+କରଣ. ଅ )—
Phāḷa ୧ । ଲଙ୍ଗଳର ଲୌହଫଳକ; ଲଙ୍ଗଳ ଲୁହା—
1. Ploughshare.
୨ । ( ଫାଳ+ଅଛି ଅର୍ଥରେ ଅ )—ଶିବ; ମହାଦେବ—
2. Siba.
୩ । ବଳଦେବ; ବଳରାମ—3. Baḷarāma.
୪ । ଚଷା—4. A cultivator; husbandman.
ବିଣ—(ଫଳ+ନିର୍ମାଣାର୍ଥେ ଅ)—ଭୂଳା ବା କାର୍ପାସ ନିର୍ମିତ
(ବସ୍ତ୍ରାଦି)—Made of cotton.

ଦେ. ବ—(ସ. ଫଳକ)—୧ । କୌଣସି ବସ୍ତୁର ଅଧଖଣ୍ଡ ବା
खण्ड फाल ଅଂଶ—1. Piece; parcel.
ବାଇଳ ୨ । ଯାଡ଼ିଲ କବାଟର ଏକପଟ—2. Leaf or fold or shutter of a double door.
୩ । ଚକୁଡ଼ା—3. Slice.
୪ । ଅଂଶ—4. Part; portion.
୫ । କୌଣସି କଟିଲା ଦ୍ରବ୍ୟର ଅର୍ଦ୍ଧାଂଶ—
5. The half portion of a thing cut.
୬ । କୌଣସି ବସ୍ତୁର ଏକ ପାଖ—
6 One side of a thing.

ଫାଲ୍—ପ୍ରାଦେ (ସମ୍ବଲପୁର) ବ—(ତୁଳ. ଆସାମୀ. ଫାଲ୍=ପାଖ)—
Phāl ୧ । ପାଖ; ପାର୍ଶ୍ୱ—1. Side.
୨ । ଅଂଶ—2 Part.
୩ । ଫାଲ; ଅର୍ଦ୍ଧାଂଶ—3. Half
ଅ—ଖଣ୍ଡ ଖଣ୍ଡ କର—Into pieces.

ଫାଲ କାଣ୍ଡ—ଦେ. ବିଣ—୧ । ଅସମ୍ପୂର୍ଣ୍ଣ—
Phāla kāṇḍa 1, Incomplete.
(ଫାଲ କାଣ୍ଡିଆ—ଅନ୍ୟରୂପ) ୨ । ଏକ ପାର୍ଶ୍ୱରେ ଘଟିବା—
2. Happening or one side only.
୩ । ଆଂଶିକ—3. Partial.

ଫାଲ କୃଷ୍ଟ—ସ. ବିଣ—(ଷଷ୍ଠୀ ତତ୍; ଫାଲ ଲଙ୍ଗଳଲୁହା ଦ୍ୱାରା + କୃଷ୍.
Phāla kṛushṭa ଧାତୁ=ଚଷା ହେବା+ତ)—ଲଙ୍ଗଳଦ୍ୱାରା
(ଫାଲ କୃଷ୍ଟ—ଅନ୍ୟରୂପ) କୃଷ୍ଟ ହୋଇଥିବା—Ploughed up.
ବ—ଲଙ୍ଗଳ ଦ୍ୱାରା ଚଷା ହୋଇଥିବା ଭୂମି—Ploughed up field.

ଫାଲ ଗୋଇ—ଦେ. ବ.—ଲଙ୍ଗଳ ଲୁହା ପଶିବା ପାଇଁ ଲଙ୍ଗଳ ମୁଣ୍ଡାରେ
Phāla goi ଖୋଳାଯାଇ ଥିବା ଗୋହିର—A groove for
नास putting the ploughshare into the body
(ଫାଲ ଗୋହିର—ଅନ୍ୟରୂପ) of a plough.

ଫାଲ ଡଣ୍ଡ—ଦେ. ବ.—୧ । ବୃଥା ଦେଇଥିବା ଅର୍ଥଦଣ୍ଡ; ବୃଥା ଦଣ୍ଡ—
Phāla ṭaṇḍa 1. A fine which a man is obliged
फकट फन्द to pay for no fault of his.
୨ । ବୃଥା ଦଣ୍ଡ—2. An unmerited punishment or penality.

ଫାଲତୁ—ବୈଦେ. ବ. (ହି)—୧ । ବଳକା; ଅଧିକା—
Phālatu 1. Extra.
ଫାଲତ, ଫାଲ୍ତୁ, ଫାଲ୍ତୁ } ଅନ୍ୟରୂପ ୨ । ଆବଶ୍ୟକରୁ ଅଧିକ; ଅତ୍ୟଧିକ—
2. Excessive; redundant; more than necessary;
फालत, फालतो ୩ । ଅନାବଶ୍ୟକ; ନିଷ୍ପ୍ରୟୋଜନ—
फालतु 3. Useless; unnecessary.
୪ । ନିଷ୍ଫଳ; ବୃଥା; ବାଜେ—4. Vain; fruitless.

ଫାଲ ଫାଲ—ଦେ. ବିଣ.—ଖଣ୍ଡ ଖଣ୍ଡ ହୋଇ ଥିବା; ଫାଲ ଫାଲ
Phāla phāla ହୋଇ ଚିରି ଯାଇଥିବା (ବନ୍ଧୁ ଖଣ୍ଡ)—
खण्ड खण्ड खणडखणड Divided into slices; sliced.

(ଫାଲ ଫାଳିଆ, ଫାଲ ଫାଳିକିଆ—ଅନ୍ୟରୂପ)
ଦୁଃଖ ଅସହ୍ୟାକ ଭଲ ହୃଦ କ ସୁଶୀଲ ଶିଳ
ହେଲା ଅଛ ନୋହୁ ଫାଲ ଫାଲ । ଭଞ୍ଜ. ହେମସୁଧାନଧି ।

ଫାଲସା କୋଲି—ଦେ. ବ.—ଫାରସା କୋଳି (ଦେଖ)
Phālasā koḷi Pharaśā koḷi (See)

ଫାଲସିଆ—ପ୍ରାଦେ. (ବାମଣ୍ଡା) ବ. (ସ. ପରଶୁ)—ଅସ୍ତ୍ର ବିଶେଷ
Phālasiā (କଳଭଦ୍ର ଗ୍ରନ୍ଥାବଳୀ)—Name of a weapon.

ଫାଳି—ଦେ. ବ.—ଫାଳିଆ (ଦେଖ)
Phāḷi Phāḷiā (See)

ଫାଳିଆ—ଦେ. ବ.—(ସ. ଫାଲ)—ବଡ଼ ଖଣ୍ଡ; କୌଣସି ପଦାର୍ଥର
Phāḷiā ଲମ୍ବ ଓ ବଡ଼ ଖଣ୍ଡ—A big piece; slice.
खण्ड टुकडा ଅଳ୍ପ ଇଟଣ ଶାମ ଓଳଆ, ଗୋବର ଗୋଡକୁ କାଠଫାଳିଆ । ଚଗ
ବିଣ.—୧ । ବଡ଼—1. Big; large.
୨ । ଫାଲ ଫାଲ ହୋଇ ଚିରି ଯାଇଥିବା—2. Cut into stripes or long pieces; split up; sliced.
୩ । ଫାଳିକିଆ (ଦେଖ)—3. Phāḷikiā (See)

ଫାଳିଆ କାଠ - ଦେ. ବ—ଚିରି ହୋଇଥିବା କାଠ—
Phāḷiā kāṭha फाड़ाहुआ काठ Split up wood.

ଫାଳିଆ ବାଉଁଶ - ଦେ. ବ.—ଦୁଇ ଫାଳରେ ଚିରି ଯାଇଥିବା ବାଉଁଶ—
Phāḷiā bāuṅsa Bamboo split up into two.

ଫାଳିକିଆ—ଦେ. ବିଣ.—୧ । ଏକ ଫାଳ ଯୁକ୍ତ—
Phāḷikiā 2. Consisting of a big slice.
(ଫାଲୁଆ—ଅନ୍ୟରୂପ)

ଫାଳି ବତା—ଦେ ବ—ବାଉଁଶକୁ ଫାଳ କରି ତିଆରି ହୋଇଥିବା
Phāḷi batā ବତା—Split up strips of bamboo.

ଫାଲିସା—ପ୍ରାଦେ. (ବାମଣ୍ଡା) ବ.—ଫାରସା—
Phālisā Battle axe.

ଫାଲୁଆ—ଦେ. ବିଣ. (ସ. ସ୍ଫାୟ୍ ଧାତୁ; ସ୍ଫୀତ)—୧ । ବଡ଼ ବଡ଼—
Phāluā फाला उखड़िआ 1. Very big.
(ଫାଲେଇ, ଫାଲେଇ—ସ୍ତ୍ରୀ) ୨ । (ପୁଂ) ମୋଟା; ସ୍ଥୂଳକାୟ—
2. Stout; fat.

ଫାଲୁଆ ଗାଣ୍ଡି—ଦେ. ବ—ବଡ଼ ବଡ଼ ପିଚ୍ଛ—
Phāluā gāṇḍi उखड़िआगागाड़ि Big buttocks.
(ଫାଲୁଆଗାଣ୍ଡିଆ—ବିଣ)

ଫାଲୁଆ ଗୁଣ୍ଡା—ଦେ. ବ.—ଖାଦ୍ୟର ବଡ଼ ବଡ଼ ଗୁଣ୍ଡା—
Phāluā gundā Food made into big handfuls
बडाबडाकौर or morsels.
ଅଳସୀ ମାଇପିର ଫାଲୁଆ ଗୁଣ୍ଡା
ଗଣ୍ଡି ଉଦ୍ଧାବ ଗେରସ୍ତ ବୁଣ୍ଡା । ହାସ୍ୟରଙ୍ଗ ।

ଫାଲୁଆ ମୁହଁ - ଦେ. ବ—ଚେପ୍ଟା ଓ ବଡ଼ (ଅତଏବ ଅସୁନ୍ଦର) ମୁହଁ—
Phāluā muhan घोडामूहाँ Flat and big face.

ଫାଲୁଆ ମୁହାଁ—ଦେ. ବିଣ. ପୁଂ—ଚେପ୍ଟା ଓ ବଡ଼ ମୁଖଯୁକ୍ତ (ଅତଏବ
Phāluā muhāṅ ଅସୁନ୍ଦର)—Having a big and flat
घोड़ मुहाँ face.
(ଫାଲୁଆ ମୁହାଁ, ଫାଲେଇ ମୁହାଁ, ଫାଲେଇ ମୁହାଁ—ସ୍ତ୍ରୀ)

ଫାଲୁକା—ଦେ ବି—ଫୁଲିଥିବା; ଫଉଲି ଯାଇଥିବା—
Phālukā फुलाहुआ; सुजाहुआ Bloated; swollen.

ଫାଲେ—ପ୍ରାଦେ. (ସମ୍ବଲପୁର) ବି. (ଳ ସ୍ଥାନରେ ଲ ଉଚ୍ଚାରଣ)—
Phāle ଅର୍ଦ୍ଧେ; ଏକ ଫାଳ—Half.

ଫାଲ୍ଗୁନ—ସଂ ବି (ଫଲ୍ଗୁନ + ଯୁକ୍ତାର୍ଥେ. ଅ)—୧ । (ମହାଭାରତ
Phālguna ମତରେ ଅର୍ଜୁନ ହିମାଳୟ ପୃଷ୍ଠରେ ଫାଲ୍ଗୁନୀ ନକ୍ଷତ୍ର-
ଯୁକ୍ତ ଦିବସରେ ଜନ୍ମଗ୍ରହଣ କରିଥିବାରୁ) ଅର୍ଜୁନ—
1. Arjuna.
୨ । ମାଘର ପରବର୍ତ୍ତୀ ଚାନ୍ଦ୍ରମାନ ମାସ—
2. The lunar month of Fālguna.

ଫାଲ୍ଗୁନି—ସଂ. ବି— ଅର୍ଜୁନ—Arjuna.
Phālguni

ଫାଲ୍ଗୁନୀ—ସଂ ବି. (ଫାଲ୍ଗୁନ+ଈ)—୧ । ଫାଲ୍ଗୁନ ପୂର୍ଣ୍ଣିମୀ; ଦୋଳ-
Phālguni ପୂର୍ଣ୍ଣିମୀ—1 The fullmoon of the month of Phālguna.
୨ । ପୂର୍ବଫାଲ୍ଗୁନୀ ଓ ଉତ୍ତର ଫାଲ୍ଗୁନୀ ନକ୍ଷତ୍ର—
2. The 11th and 12th lunar mansions or asterisms.

ଫାଶ—ଦେ. ବି. (ସଂ. ପାଶ)—୧ । ଜୀବ ଧରିବା ଜାଲ; ପାଶ—
Phāśa 1. Snare; net.
फँास ୨ । ସୂତାର ବା ଦଉଡ଼ିର ଗଣ୍ଠି—
काँसी; फँदा 2 Knot of a rope or thread.
୩ । ଦଉଡ଼ିରେ ପଡ଼ିଥିବା ଫୁସୁଲା ଗଣ୍ଠି—
3. Slipknot; noose.
ଲଗାଇଛି ଫାଶ ସେହି ସମସ୍ତଙ୍କ ଗଳେ । ରାଧାନାଥ· ମହାଯାତ୍ରା ।
୪ । ଫାଶିଆ—4 A kind of earring.
ଝିଙ୍କ କାଠି ଶଙ୍ଖ ଧାନ୍ଧି କେଶ ପାଶ
କର୍ଣ୍ଣେ ଶୋଭନ୍ତି ଶୋଭେ ଶତ ଫାଶ । ଚାରୁଣୀଚରଣ· ରୂପକୁଳ୍ୟା ।

ଫାଶି—ଦେ. ବି. (ସଂ. ପାଶ)—୧ । ଉଦ୍ବନ୍ଧନ; ଦଉଡ଼ି ଦେଇ ମରିବା—
Phāśi 1. Death by hanging.
फँासी ୨ । ଏକପ୍ରକାର ଜଙ୍ଗଲି ଗଛ—
फाँसी 2. A wild tree; Anogeissus Acumenata.
ପ୍ରାଦେ. (ଗଡ଼ଜାତ) ବି—ମଝିରେ ମଝିରେ ଫାଙ୍କଥିବା ବୁଣା ହୋଇଥିବା ଚଲେଇ—A kind of mattress of bamboo-laths with small interstices throughout.

ଫାଶିଆ—ଦେ. ବି. (ସଂ. ପାଶ)—ନାକ ଓ କାନରେ ପିନ୍ଧାଯିବା ତାରର
Phāśiā ସରୁ ମୁଦିଆ—Wire ring for the nose and ear.
ବିଣ—ଯେ ଫାଶି ଦିଏ—One who hangs a man till death; hang-man.

ଫାଶିଆରା—ଦେ. ବି. (ସଂ. ପାଶ)—୧ । ଯେ ଫାଶିଦଣ୍ଡରେ ଦଣ୍ଡିତ ଅପ-
Phāśiārā ରାଧୀକୁ ଫାଶି ଖୁଣ୍ଟରେ ଝୁଲାଏ—1. A hangman.
ଫାଶିଆର } ଅନ୍ୟରୂପ ୨ । ଯେଉଁ ଡକାଏତ ଲୋକଙ୍କ ଗଳାରେ
ଫାଶିହାରା } ଫାଶି ଲଗାଇ ଦ୍ରବ୍ୟ ଅପହରଣ କରେ;
फँासुड़े ନରଘାତୀ ଦସ୍ୟୁ—2. A strangulating robber;
फसीहारा a strangler.
୩ । ଲୋକଙ୍କୁ ବିପଦରେ ପକାଇବା ବ୍ୟକ୍ତି—
3. A person who involves people in danger.

ଫାଶିଆରି - ପ୍ରାଦେ. (ବାଲେଶ୍ୱର) ବି—ବଡ଼ ଫାଶଯୁକ୍ତ ମୁଣ୍ଡଘୁରା ଜାଲ—
Phāśiāri A kind of noosed fishing net.
[ ଦ୍ର—ଏଥିରେ ବଡ଼ ବଡ଼ ମାଛ ଧରା ପଡ଼ନ୍ତି । ସାନ ମାଛ ଫାଶର ଜଲା ବାଟେ ବାହାରି ଯାଆନ୍ତି । ]

ଫାଶି କାଠ—ଦେ. ବି· (ସଂ. ପାଶ + କାଷ୍ଠ)—ଯେଉଁ ତାରକାଠର କଡ଼ିରୁ
Phāśi kāṭha ଦଉଡ଼ା ଲଗାଇ ଫାଶି ଦଣ୍ଡ ଦିଆଯାଏ—
(ଫାଶିଖମ୍ବ, ଫାଶିଖୁଣ୍ଟ—ଅନ୍ୟରୂପ) The gallows.
फँासीकाठ फाँसीतख्ता

ଫାଶିଘର(ରା)—ଦେ. ବି —ଫାଶିଆରା (ଦେଖ)—
Phāśighara(rā) Phāśiārā (See)

ଫାଶି ଘି(ଘେ)ନିବା—ଦେ. କ୍ରି—ସ୍ୱୟଂ ଉଦ୍ବନ୍ଧନରେ ପ୍ରାଣତ୍ୟାଗ କରିବା—
Phāśi ghi(ghe)nibā To commit suicide by hanging.
(ଫାଶି ଲଟକିବା—ଅନ୍ୟରୂପ)
फासी लागान फाँसीलगाना

ଫାଶି ଦଉଡ଼ା(ଡ଼ି)—ଦେ. ବି— ଯେଉଁ ରଜ୍ଜୁରେ ମନୁଷ୍ୟ ଫାଶି ଦେନେ—
Phāśi daurdā(rdi) Rope used for hanging men.
फँासी दड़ी फाँसी रस्सी

ଫାଶି ଦଣ୍ଡ—ଦେ. ବି – ରାଜାଦେଶରେ ଅପରାଧୀର ଫାଶିଦ୍ୱାରା ଜୀବନ-
Phāśi daṇḍa ନାଶରୂପ ଦଣ୍ଡ – Punishment of hanging.
(ଫାଶି ହୁକୁମ— ଅନ୍ୟରୂପ) फँासीदण्ड फाँसीदन्ड

ଫାଶି ଦେବା—ଦେ. କ୍ରି—୧ । ଦଉଡ଼ି ଦେବା; ନିଜେ ଉଦ୍ବନ୍ଧନରେ
Phāśi debā ମରିବା—1. To die by hanging.
ଫାଶି ଝୁଲିବା } ଅନ୍ୟରୂପ ୨ । ଅନ୍ୟଲୋକଙ୍କୁ ଫାଶି ଦେଇ
ଫାଶି ଲଗା(ଗେ)ଇବା } ମାରିବା—2. To strangulate a person by hanging.
फँासी देओया फाँसी देना

ଫାଶି ପାଇବା—ଦେ. କ୍ରି—ରାଜଦଣ୍ଡ ସ୍ୱରୂପ ଫାଶିଦ୍ୱାରା ପ୍ରାଣ ହରାଇବା—
Phāśi pāibā To undergo the sentence of hanging.
फँासी पाओया फाँशि पाना

ଫାଶସିଷ୍ଟ—ବୈଦେ. ବି (ଇଂ)—ଇଉରୋପର ଇଟାଲୀ ରାଜ୍ୟରେ
Phāśisisht ପ୍ରତିଷ୍ଠିତ ସାମ୍ୟବାଦୀଙ୍କ ବିରୋଧୀ ରାଜନୀତିକ
(ଫ୍ୟାଶି ସିଷ୍ଟ; ଫେଶି ସିଷ୍ଟ—ଅନ୍ୟରୂପ) ଦଳବିଶେଷ—
फ्यासी सिष्ट Facioist; the name of a new political
फैसि सिष्ट party in Europe.
[ ଦ୍ର—ଇଟାଲୀରେ ମୁସୋଲିନୀ ଏ ଦଳର ନେତାରୂପେ ବର୍ତ୍ତମାନ ରାଜଦଣ୍ଡ ଧାରଣ କରି ଅଛନ୍ତି । ]

ଫାଷ୍ଟ- ବୈଦେ. ବି. (ଇଂ. ଫର୍ଷ୍ଟ)—୧ । ପ୍ରଥମ—
Phāsht 1. First.
(ଲାଷ୍ଟ—ବିପରୀତ) ୨ । ସର୍ବୋତ୍କୃଷ୍ଟ—2. Best.
फाष्ट ୩ । ସର୍ବୋଚ୍ଚ ସ୍ଥାନାଧିକାରୀ—
फष्ट 3. Occupying the highest position.
फाष्ट ବିଣ. ( ଇଂ. ଫାଷ୍ଟ ) —ଚଞ୍ଚଳ ଗତି କରୁଥିବା; ଶୀଘ୍ରଗାମୀ—
Going fa

**ଫାଷ୍ଟ୍ ଇଅର୍ କ୍ଲାସ୍**—ବୈଦେ. ବି. ( ଇଂ. ଫର୍ଷ୍ଟ୍ ଇଅର୍ କ୍ଲାସ୍ )—
Phāshṭ iar klās କଲେଜ, ସ୍କୁଲ ପ୍ରଭୃତିର ପ୍ରଥମ ବାର୍ଷିକ ଶ୍ରେଣୀ—
ফাষ্টইয়র ক্লাস The first year class of a college
फाष्टइयर क्लास or school.

**ଫାଷ୍ଟ୍ ଏଡ୍**—ବୈଦେ. ବି ( ଇଂ. ଫର୍ଷ୍ଟ୍+ଏଡ୍ )—ଆକସ୍ମିକ ବିପଦରେ
Phāshṭ ed ଆହତ ବ୍ୟକ୍ତି ପ୍ରତି କରାଯିବା ପ୍ରାଥମିକ ଉପଚାର
ফাষ্টএড फाष्टएड ବା ଚିକିତ୍ସା—First aid.

[ ଦ୍ର—ହଠାତ୍ ଆହତ ବ୍ୟକ୍ତିଙ୍କୁ ଚିକିତ୍ସା କରିବା ପାଇଁ ବିଶେଷଜ୍ଞ ବା ଡାକ୍ତର ଉପସ୍ଥିତ ନ ଥିଲେ ତାଙ୍କୁ ପ୍ରଥମେ ଫାଷ୍ଟ୍ ଏଡ୍ ଦିଆଯାଏ । ]

**ଫାଷ୍ଟ୍ କ୍ଲାସ୍**—ବୈଦେ. ବି ( ଇଂ )—୧ । ବିଦ୍ୟାଳୟାଦିର ପ୍ରଥମ
Phāshṭ klās ଶ୍ରେଣୀ—1. The first class of a school.
ফাষ্টক্লাস फाष्टक्लास

୨ । ରେଳ, ଜାହାଜ ଆଦିର ସର୍ବୋଚ୍ଚ ଶ୍ରେଣୀ—
2. The first class of a rail or steamer.

ବିଣ—ସର୍ବୋତ୍କୃଷ୍ଟ—
Of first class; superior to all others.

**ଫାଷ୍ଟ୍ ପା(ପେ)ସେଞ୍ଜର୍**—ବୈଦେ. ବି (ଇଂ. ଫାଷ୍ଟ୍ ପାସେଞ୍ଜର୍)—ଯେଉଁ
Phāshṭ pā(pe)señjər ଯାତ୍ରୀବାହୀ ରେଳଗାଡ଼ି ସାଧାରଣ ଗାଡ଼ି
ফাষ্ট পাশেঞ্জর ଅପେକ୍ଷା ଚଞ୍ଚଳ ଗତି କରେ—
फाष्ट पैसेञ्जर Fast passenger train.

**ଫାସାଣ୍ଡି**—ପ୍ରାଦେ. ( ଗଞ୍ଜାମ ) ବିଣ. ( ସଂ. ପଣ୍ଡ )—ପଣ୍ଡ; ବ୍ୟର୍ଥ—
Phāsāṇḍi Vain; infructuous.

**ଫାସୁ**—ଦେ. ବି ( ସଂ. ତୁଷ )—କୋରା ନଡ଼ିଆକୁ ଚିପୁଡ଼ି ରସ ବାହାର
Phāsu କରିନେବା ପରେ ଯେଉଁ ନୀରସ ତୁଷି ପରି ପଦାର୍ଥ
निचोड़ा हुआ, ରହିଯାଏ; ନଡ଼ିଆ ଫାଡ଼ି—The sapless
नारीयलका गूदा remains of the scourings of cocoanut kernel after they are pressed.

**ଫାସୁ ଫାସୁ**—ଦେ. ( ଧ୍ୱନ୍ୟନୁକରଣ ) ଅ—ଶୁଖିଲା ଦ୍ରବ୍ୟ (ଯଥା ଚଷୁ
Phāsu phāsu ପରି ପଦାର୍ଥ) ଚୋବାଇବାର ଶବ୍ଦ—The sound
ফিস ফিস of chewing chaff.

**ଫାସୁଣ୍ଡା**—ଦେ. ବିଣ—ସ୍ଥୂଳକାୟ; ଭୁଷୁଣ୍ଡା—Corpulent.
Phāsuṇḍā ভুঁড়িওয়ালা मसटण्डा; भुषण्डा
( ଫାସୁଣ୍ଡୀ—ସ୍ତ୍ରୀ )

**ଫାହିଆନ୍**—ଦେ. ବି ( ଚୀନଦେଶୀୟ ନାମ )—ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ
Phāhiān ଭାରତକୁ ଆସିଥିବା ଜଣେକ ଚୀନଦେଶୀୟ ପର୍ଯ୍ୟଟକ—
ফাহিয়ান Name of a Chinese traveller who
फाहीयान visited India in the 4th century A. D.

[ ଦ୍ର—ଏହାଙ୍କର ପ୍ରକୃତ ନାମ କାଂ । ଚୀନଦେଶରେ ସର୍ବପ୍ରଥମେ ଖ୍ରୀ. ୬୭ ସାଲରେ ଭାରତରୁ ଯାଇଥିବା ପ୍ରଚାରକଙ୍କଦ୍ୱାରା ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା । ଫାହିଆନ୍ ଭାରତକୁ ଆସିଥିବା ପ୍ରଥମ ଚୈନିକ ପରିବ୍ରାଜକ । ଏ ଖ୍ରୀ ୩୯୯ ସାଲଠାରୁ ୪୧୪ ପର୍ଯ୍ୟନ୍ତ ଭାରତରେ ବାସ କରି ଭାରତର ତଦାନୀନ୍ତନ ରୀତି, ନୀତି, ଧର୍ମ ପ୍ରଭୃତି ପର୍ଯ୍ୟାଲୋଚନା କରି ଫୋକୋକି ନାମକ ଗ୍ରନ୍ଥ ରଚନା କରିଥିଲେ । ]

**ଫି**—ବୈଦେ. ବିଣ ( ଆ )—ପ୍ରତ୍ୟେକ—Every; each.
Phi ফী फी ( ଯଥା—ଫି କଥାରେ ସେ ଚିଡ଼ି ଉଠୁଛି । )

ବୈଦେ. ବି (ଇଂ)—ଫିଜ୍ (ଦେଖ)—Phij (See)

**ଫିଆ**—ଦେ. ବି ( ସଂ. ସ୍ଫେଟନ )—୧ । ଫେଇବା; ପ୍ରକାଶିତ କରିବା;
Phiā ଦେଖାଇବା—1. Exhibiting; showing.

୨ । ଖୋଲିବା—2. Opening

ବିଣ—୧ । ଦେଖାଇ ଦିଆଯିବା; ପ୍ରକାଶିତ କରାଯାଇଥିବା—
1 Exhibited.

୨ । ଖୋଲା ଯାଇଥିବା; ମୁକ୍ତ—2. Opened.

**ଫିଉଜ୍**—ବୈଦେ. ବି ( ଇଂ )—୧ । ଇଲେକ୍ଟ୍ରିକ୍ ତାରର ଅନାବୃତ
Phiuj ଅଂଶର ବିଦ୍ୟୁତ୍ ସଞ୍ଚାଳନଜନିତ ଅଗ୍ନି ଦ୍ୱାରା ଜଳିଉଠିବା—
ফিউজ फिउज 1. Fusing of an electric wire.

୨ । ବାଣ ଆଦିରେ ଅଗ୍ନି ସଂଯୋଗ କରିବା ପାଇଁ ତହିଁରେ ଲଗାଯିବା ବିଦ୍ୟୁତର ତାର ବା ରଞ୍ଜିକ—
2. Fuse of a firework.

**ଫିଉଡେଟରୀ ଚିଫ୍**—ବୈଦେ. ବି ( ଇଂ )—ଯୁଦ୍ଧ ସମୟରେ ସାହାଯ୍ୟ
Phiuḍeṭarī chiph ଦେବା ସର୍ତ୍ତରେ ସମ୍ରାଟଙ୍କ ସଙ୍ଗେ ଆବଦ୍ଧ
ফিউডেটরী চীফ फिउडेटरी चीफ ରାଜା—Feudatory Chief.

**ଫିଉଡେଟରୀ ଷ୍ଟେଟ୍**—ବୈଦେ. ବି (ଇଂ)—ଯେଉଁ ରାଜ୍ୟର ରାଜା ଯୁଦ୍ଧ
Phiuḍeṭarī shṭeṭ ସମୟରେ ସମ୍ରାଟଙ୍କୁ ସାହାଯ୍ୟ ଦେବା ପାଇଁ
ফিউডেটরী ষ্টেট ସନ୍ଧିଦ୍ୱାରା ଆବଦ୍ଧ ଥାଆନ୍ତି—Feudatory
फिउडेटरी ष्टेट State.

[ ଦ୍ର· ଓଡ଼ିଶାର ଗଡ଼ଜାତ ରାଜ୍ୟମାନ ଇଂରାଜ ସରକାରଙ୍କ ସଙ୍ଗେ ସନ୍ଧି କରିଥିଲେ ଯେ ସେମାନେ ସରକାରଙ୍କୁ କର୍ଦ୍ଧାରିତ କର ଦେବେ ଓ ଆବଶ୍ୟକ ହେଲେ ଯୁଦ୍ଧ ବେଳେ ସେନା ଆଦି ଯୋଗାଇବେ । ପୂର୍ବେ ଏମାନଙ୍କୁ 'ଟ୍ରିବୁଟେରୀ ଷ୍ଟେଟ୍ସ' (କରଦରାଜ୍ୟ) ବୋଲାଯାଇଥିଲା, ପରେ ଏମାନଙ୍କୁ ଫିଉଡେଟରୀ ଷ୍ଟେଟ୍ସ ( ସାମରିକ ସାହାଯ୍ୟଦାୟୀ ରାଜ୍ୟ ) ବୋଲାଯାଉଥିଲା; ତତ୍ପରେ ଏମାନଙ୍କୁ କେବଳ 'ଓଡ଼ିଶା ଷ୍ଟେଟ୍ସ' ନାମ ଦିଆଗଲା; ଏବେ ଏମାନଙ୍କୁ ଓଡ଼ିଶା ଷ୍ଟେଟ୍ସ ବୋଲି ନ ଯାଇ ଓଡ଼ିଶା ଓ ମଧ୍ୟପ୍ରଦେଶ ଓ ଛୋଟନାଗପୁରର ରାଜ୍ୟମାନଙ୍କୁ ମିଶାଇ 'ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସୀ' ନାମକ ଗୋଟିଏ ରାଷ୍ଟ୍ରପୁଞ୍ଜ କରା ଯାଇଅଛି ଓ ରାଜ୍ୟପୁଞ୍ଜର ଶାସନ ସମ୍ବନ୍ଧେ ପରାମର୍ଶଦାତାରୂପେ ଗଭର୍ଣ୍ଣର ଜେନେରାଲ୍ (ବଡ଼ଲାଟ)ଙ୍କ ଏଜେଣ୍ଟ ରାଞ୍ଚିରେ ପ୍ରତିଷ୍ଠିତ ହୋଇଅଛନ୍ତି । ]

**ଫିଁ ଫିଁ**—ଦେ. ( ଧ୍ୱନ୍ୟନୁକରଣ ) ଅ—ଫୁଁ ଫୁଁ ( ଦେଖ )
Phiñ phiñ Puñ puñ ( See )

**ଫିକ୍‌ଡୋ**—ପ୍ରାଦେ. (ସିଂହଭୂମ) ବି—ଗୋବର ଚଢ଼େଇ—
Phik-ḍo Bulbul.

**ଫିକର**—ବୈଦେ. ( ଆ. ଫିକ୍ର୍=ଚିନ୍ତା; ଉପାୟ )—୧ । ଭାବନା;
Phikara ଚିନ୍ତା—1. Thought; contemplation.
ফিকির फिक्र ୨ । ଉପାୟଚିନ୍ତା—2. Thinking out a means.
( ଫିକିର—ଅନ୍ୟରୂପ )

୩ । ଜୀବିକା ନିର୍ବାହର ଉପାୟ—
3. Means of livelihood.

୪ । ଉପାୟ—4. Means; resource.

ସେଥିର ଫିକର ମୋତେ କଣା—ଫକୀରମୋହନ, ଛମାଣ ଅଠଗୁଣ୍ଠ ।

୫ । ଫନ୍ଦୀ; କୌଶଳ; ଗୂଢ଼ୁଯୁକ୍ତି—5. Stratagem; artifice; contrivance; tactics.

୬ । ଉଦ୍‌ବେଗ—6. Anxiety.

୭ । ଅବଲମ୍ବନ; ଆଶ୍ରୟ—7. Shelter.

୮ । ଛଳନା—8. Feigning; excuse.

**ଫିକର ପାଞ୍ଚିବା**—ଦେ. କ୍ରି—ଉପାୟ ଉଦ୍ଭାବନ କରିବା—
Phikara pānchibā To think out a way out of a difficulty.
ফিকীরকরা **फीक्र सोचना**

**ଫିକର୍‌ବାଜ୍**—ବୈଦେ. ବଣ. ( ଆ. ଫିକର୍‌ମନ୍ଦ୍; ଫିକରବାଜ୍ )—
Phikarabāj ୧ । ଫନ୍ଦିବାଜ୍; କୌଶଳୀ; ଉପାୟକୁଶଳ—
ফিকীরবাজ **फीक्रमन्द** 1. Resourceful; strategic.
ଫିକରଦାର, ଫିକରବନ୍ତ, ଫିକରିଆ, ଫିକରବାଜ } ଅନ୍ୟରୂପ ୨ । ଯୋଗାଡ଼ିଆ; ଉଦ୍ୟମୀ—2. Active.

୩ । ଉପସ୍ଥିତ ବୁଦ୍ଧିଯୁକ୍ତ—
3. Tactful; having presence of mind.

**ଫିକା**—ଦେ. ବଣ. ( ସ. ପିଙ୍ଗ; ଭୁଲ—ଆ. ଫକ୍ )—୧ । ପାଣ୍ଡୁର; ଫିକ୍କା; ବିବର୍ଣ୍ଣ—1. Pale; light coloured.
Phikā
ফাঁকাসে, ফেঁকাসে **फीका**

ପର୍ଯ୍ୟୁଷିତ ପଦ୍ମ ପ୍ରାୟେ ଭନୁ ଫିକା—
ରାଧାନାଥ, ନନ୍ଦକେଶରୀ ।

( ଫିକାସିଆ, ଫିକ୍କା—ଅନ୍ୟରୂପ ) ୨ । ରକ୍ତହୀନ—
2. Bloodless; anemic.

୩ । ବିରସ; ନୀରସ—3. Vapid.

୪ । ବିଷଣ୍ଣ—4. Gloomy; dejected.

୫ । ମଳିନ—5. Foul.

୬ । ପାଣିଚିଆ; ସ୍ୱାଦହୀନ—6. Tasteless.

ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) ବି—ଫିତା—Tape.
( ଯଥା—ସ୍ତ୍ରୀର ହାତ ଧରି କେ ଚମଡ଼ାର ଫିକା । )

**ଫିକା ଜାଲ**—ପ୍ରାଦେ. ( ସମ୍ବଲପୁର ) ବି. ( ଭୁଲ. ହି. ଫେଁକ୍‌ନା—ଫୋପାଡ଼ିବା)—ଖେପାଜାଲ; ଯେଉଁ ଜାଲକୁ ଡୋର ଲଗାଇ ଦୂରକୁ ପାଣି ଭିତରକୁ ଫିଙ୍ଗି ମାଛ ଧରାଯାଏ—Casting net.
Phikā jāla
**घुमौआ जाल** ঘুরাজাল

**ଫିକି**—ଦେ. ବି—ଦସ୍ତ ବା ଗଞ୍ଜପା ଖେଳରେ ବିପକ୍ଷୀୟ ଖେଳାଳି ହାତରେ ରଜା, ମନ୍ତ୍ରୀ ଓ ଦହ ରହିଗଲେ ନଅ ସାରକୁ ଖେଳିବାକୁ ବାଧ୍ୟ ହେବା ଅବସ୍ଥା—The state of a player in the Ganjapā game being obliged to place his card with 9 points, when the adversary has got with him the King, the Minister and the card with 10 points.
Phiki

ପ୍ରାଦେ. ( ସମ୍ବଲପୁର ) ବି—ତାସ୍ ଖେଳ—Card play.

**ଫିକିବା**—ପ୍ରାଦେ. ( ସମ୍ବଲପୁର ) କ୍ରି. ( ସ. କ୍ଷିପ୍ ଧାତୁ; ଭୁଲ. ପାଲି ଫିକର; ହି. ଫେଁକ୍‌ନା )—ଫିଙ୍ଗିବା; ଫୋପାଡ଼ିବା—To throw.
Phikibā
( ଫିକିବା; ଫିଙ୍ଗିବା—ଅନ୍ୟରୂପ )

**ଫିଙ୍ଗ**—ଦେ. ବି ( ସବାରି ବେହେରାଙ୍କ ଭାଷା )—ସବାରି ପଛଆଡ଼ର ବାଉଁଶ—The bamboo pole attached to the back of a palanqin.
Phinga
[ ଦ୍ର—ସବାରି ଆଗ ବାଉଁଶକୁ କୁମ୍ଭ ବୋଲାଯାଏ । ]

**ଫିଙ୍ଗକ**—ସ. ବି ( ଫିଙ୍ଗ—ଅନୁକରଣ ଶବ୍ଦ + କୈ ଧାତୁ = ରବକରିବା + ଅ; ଅନ୍ୟ ସ. ନାମ ଧୂମ୍ୟାଟ, କଳିଙ୍ଗ; ଭୃଙ୍ଗ )—କଜଳପାତି ଚଢ଼େଇ—The black drongo (bird); the fork-tailed shrike; Corvus Balicassius.
Phingaka
ফিঁগা **फिगाँ; फेंगा**

**ଫିଙ୍ଗା**—ଦେ. ବି—( ସ. କ୍ଷିପ୍ ଧାତୁ ) ୧ । ଫିଙ୍ଗିବା ବା ଫୋପାଡ଼ିବା—
Phingā 1. The act of throwing.
ফিঙ্গা **फेँकना**
୨ । ଇଟା ବା ଢେଲା ଦୂରକୁ ଫୋପାଡ଼ିବା ପାଇଁ ବ୍ୟବହୃତ ଦଉଡ଼ିର ଫାସଲଗା—2. Sling.
୩ । ( ସ. ଫିଙ୍ଗକ ) କଜଳପାତି ଚଢ଼େଇ—
3. The black drongo (bird).
ବଣ—ଫୋପଡ଼ା ଯାଇଥିବା—
Thrown away.
ছুঁড়া **फेँका हुआ**

**ଫିଙ୍ଗା(ଙ୍ଗେ)ଇବା**—ଦେ. କ୍ରି—ଫିଙ୍ଗିଦେବାର ଣିଜନ୍ତ ରୂପ—
Phingā(nge)ibā The causative form of Phingibā.
ছোঁড়ান **फीकवाना**

ଫିଙ୍ଗାଇ ଦେବ ବୋଲି ମନରେ ଭାବିଲେ ।
କୃଷ୍ଣସିଂହ, ମହାଭାରତ ସଭା ।

(ଫିଙ୍ଗାଇଦେବା—ଅନ୍ୟରୂପ)

**ଫିଙ୍ଗାଫିଙ୍ଗି**—ଦେ. ବି—୧ । ଫୋପଡ଼ା ଫୋପଡ଼ି; ଅନେକ ବସ୍ତୁକୁ ଫିଙ୍ଗିବ କାର୍ଯ୍ୟ—1. Throwing away of many articles.
Phingā phingi
ছুঁড়াছুড়ী **फेँकाफेँकि**

୨ । ପରସ୍ପରକୁ ତଳେ ପକାଇବା—2. Throwing down of each other on the ground.

୩ । ପରସ୍ପର (ଢେଲା ଆଦି) ଫୋପଡ଼ା ଫୋପଡ଼ି ହେବା—
3. Throwing of missiles at each other.

ଦେ. ବି—୧ । ପରସ୍ପରକୁ ତଳେ ପକାଇବା—
1. Throwing down each other on the ground.

ପୁଣି ଫିଙ୍ଗା ଫିଙ୍ଗି ଅନ୍ୟୋନ୍ୟରେ ହେଲେ
ଝିଙ୍କା ଝିଙ୍କି ହୋଇଣ ଯୁଦ୍ଧ ଆରମ୍ଭିଲେ । କୃଷ୍ଣସିଂହ, ମହାଭାରତ ବନ ।

୨ । ଫୋପଡ଼ା ଫୋପଡ଼ି (ଦେଖ)
2. Phoparḍā phoparḍi (See).

**ଫିଙ୍ଗା ଫୋପଡ଼ା କଥା**—ଦେ. ବି—ଅନାଦରପୂର୍ଣ୍ଣ ବାକ୍ୟ—
Phingā phopardā kathā Disrespectful words.

**ଫିଙ୍ଗାଳ**—ଦେ. ବି.(ସବାରି ବେହେରାଙ୍କ ଭାଷା)—ଯେଉଁ ବେହେରାମାନେ ସବାରିର ପଛଆଡ଼ ବାଉଁଶ କାନ୍ଧେଇ ଥାଆନ୍ତି—The bearers carrying the back-side pole of a palanquin.
Phingāla
ଫିଙ୍ଗାଳିଆ, ଫେଙ୍ଗାଳ } ଅନ୍ୟରୂପ

[ଦ୍ର—ସବାରିର ଆଗ ବାଉଁଶକୁ କାନ୍ଧେଇବା ବେହେରାଙ୍କୁ କୁମ୍ଭାଳ ବୋଲାଯାଏ ।]

ଫିଙ୍ଗିବା—ଦେ. କ୍ରି—(ସଂ. କ୍ଷିପ୍. ଧାତୁ; ବର୍ଣ୍ଣବିପର୍ଯ୍ୟୟ; ସଂ. ପ୍ରେଷଣ; ପ୍ରା.
Phiṅgibā ପେଷଣ)—୧ । ଦୂରକୁ ନିକ୍ଷେପ କରିବା; ଫୋପାଡ଼ି
ছুঁড়া, ছোড়া ଦେବା—1. To throw away; to cast
**फेंकना** away.

ଫିଙ୍ଗିଲେ କୁମାରଙ୍କ ଦେହକୁ ଦେଖାଇ । କୃଷ୍ଣସିଂହ. ମହାଭାରତ, ବନ ।

୨ । ତ୍ୟାଗ କରିବା—2. To abandon; to relinquish.

ଲୋକମାନେ କେବଳ ମାନନ୍ତି ଧର୍ମକୁ
ଫିଙ୍ଗି ଦେଇ କରି ପଛକୁ ଅଧର୍ମକୁ । କୃଷ୍ଣସିଂହ. ମହାଭାରତ ସଭା ।

୩ । ( ଦୃଷ୍ଟି; କଟାକ୍ଷ ) ପକାଇବା—3. To cast (one's eyes).

ଏବେଁ ମୁଁ କଟାକ୍ଷ ଫିଙ୍ଗ, ନାହିଁ ପକ୍ଷ
ହେବାକୁ ତୁ ଅହଙ୍କାରରେ । କବିସୂର୍ଯ୍ୟ: ସଙ୍ଗୀତ ।

ଫିଜ୍ (ସ୍)—ବୈଦେ. ବି (ଇଂ)—ନିର୍ଦ୍ଧାରିତ କର ବା ଶୁଳ୍କ; ମାସୁଲ—
Phij(s) ফীস্ **फीस** Fees; cess.
(ଯଥା—କୋର୍ଟ୍ ଫିଜ୍; ରେଜିଷ୍ଟ୍ରେସି ଫିଜ୍, ସ୍କୁଲଫିଜ୍ ଇତ୍ୟାଦି)

ଫିଜ୍ (ସ୍) ଟେଏ(ୟ)ନ୍—ବୈଦେ. ବି(ଇଂ. ଫିସ୍+ଅ. ତୟନ୍)—ନିର୍ଦ୍ଦିଷ୍ଟ
Phij (s)tae(ya)n ଶୁଳ୍କ ବା ମାସୁଲର ନିର୍ଣ୍ଣୟ—Ascertainment
ফীস্তয়ন **फिसतयन** of the fee to be paid.

ଫିଟ୍—ବୈଦେ. ବିଣ (ଇଂ)—୧ । କାର୍ଯ୍ୟର ଉପଯୁକ୍ତ—1. Fit.
Phiṭ ୨ । ଉପଯୋଗୀ—2 Fitting.
ফীট্ **फिट** ବି. (ଇଂ)—୧ । ମୂର୍ଚ୍ଛା—1. Fit; fainting.
୨ । ଦୈର୍ଘ୍ୟସୂଚକ ଇଂରାଜୀ ଫୁଟ୍ ଶବ୍ଦର ବହୁବଚନ—2. Feet (length).

ଫିଟ୍ ଫାଟ୍—ଦେ. ବିଣ—(ସଂ. ସ୍ଫୁଟ୍ କିମ୍ବା ଇଂ. ଫାଇଟ୍=ଜାକ୍‌ଜମକ
Phiṭ phāṭ ଦୃଶ୍ୟ)—୧ । ସୁସଜ୍ଜିତ—1. Well decorated;
ফীট্ ফাট **फिटफाट** well dressed; well eqipped
୨ । ସମୁଜ୍ଜ୍ୱଳ—2. Bright.
୩ । ଚମତ୍କାର—3 Wonderful.
୪ । ଜାକଜମକ—4. Brilliant; dazzling.
୫ । ବାବୁଆନା ଭାବରେ ସୁସଜ୍ଜିତ—5. Fopppish; shipshape.

ଫିଟ୍‌ବା—ପ୍ରାଦେ. (ଆଠମଲ୍ଲିକ) ବି—ପତଳା ଝାଡ଼ା ହେବା; ଛେର
Phiṭ-bā ହେବା—Passing of liquid stools.

ଫିଟ୍ ବାବୁ—ଦେ. ବି. (ବ୍ୟଙ୍ଗୋକ୍ତି)—୧ । ଫୁଲ୍ ବାବୁ; ଲମ୍ପଟ-
Phiṭ bābu ପଟାବୃତ ବ୍ୟକ୍ତି—1. Beau.
ଫିଟ୍ ବସିକ } ଅନ୍ୟରୂପ
ଫିଟ୍‌କ ବସିକ }
୨ । ଆଧୁନିକ ରୀତି ଅନୁସାରେ ଗୋଡ଼ଠାରୁ ମୁଣ୍ଡପର୍ଯ୍ୟନ୍ତ ସୁସଜ୍ଜିତ ବ୍ୟକ୍ତି—
ফীটবাবু 2. A perscn dressed in the latest fashion
**फिटबाबु** from top to toe.

ଫିଟ(ଟି)ନ୍—ବୈଦେ. ବି. ( ଇଂ. ଫାଇଟନ୍ )—
Phiṭa(ṭi)n ଘଟାଟୋପ୍ ଥିବା ଚାରିଚକିଆ ଗାଡ଼ି—
ফিটন **फिटीन** A phaeton carriage.

ଫିଟା—ଦେ. ବିଣ. (ସଂ. ଫେଟନ; ସ୍ଫୁଟ)—୧ । ବନ୍ଧନମୁକ୍ତ—
Phiṭā 1. Unbound; dishevelled.
খোলা; ফেটা ୨ । ଉନ୍ମୁକ୍ତ—2. Open.
**खोला; खुला** ୩ । ମୁକୁଳା—3. Untied.
୪ । ପୃଥକ୍—4. Separated.

କାଳ ପ୍ରବାହେ ଲୋକ କାଟି ପଡ଼ୁ ଛୁଟା
ପ୍ରାଣେ ମେଳ କରି କୁଅନ୍ତି ପୁଣି ଫିଟା । କୃଷ୍ଣସିଂହ. ମହାଭାରତ ଶାନ୍ତି ।

ଦେ. ବି—ଉନ୍ମୋଚନ—Untying.
(ଯଥା—ଗଇଁଠାଲ ଫିଟା ।)

ଫିଟାଇ—ଦେ. କ୍ରି. ବିଣ—ସ୍ଫୁଟରୂପେ; ସ୍ପଷ୍ଟରୂପେ—Clearly.
Phiṭai ଫିଟାଇ ମୋତେ କଥା କହିଲ ହେ ନାହିଁ ।
খুলে **खुल कर** କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

ଫିଟାଇ କହିବା—ଦେ. କ୍ରି—ସମସ୍ତ କଥା ଖୋଲି କରି ବା ସ୍ପଷ୍ଟରୂପେ
Phiṭai kahibā କହିବା—To make a clean breast
খুলে বলা of everything; to speak out a thing
**खुलकर बात बोलना; साफ साफ बात बोलना** clearly.

ବଧ କରିବାରେ ଏତେକ ଦୋଷ ଅଛି
ତୁମ୍ଭ ଆଗେ ତାହା ମୁଁ ଫିଟାଇ କହୁଛି । କୃଷ୍ଣସିଂହ. ମହାଭାରତ ଆଦି ।

ଫିଟା(ଟେ)ଇବା—ଦେ. କ୍ରି. (ସଂ. ଫେଟ ବା ସ୍ଫିଟ୍ ଧାତୁର ଣିଜନ୍ତ)—
Phiṭā(ṭe)ibā ୧ । ଖୋଲିବା; ମୁକ୍ତ କରିବା; ମେଲା କରିବା;
ফেটান; খুলা ଉଦ୍ଘାଟନ କରିବା—1. To untie; to open;
**खोलना** to unfasten.
୨ । ମୁକୁଳାଇବା; ବନ୍ଧନ ମୁକ୍ତ କରିବା—2. To release.

ଜରାସନ୍ଧ ମାରି ରାଜାଙ୍କୁ ଫିଟାଇବା । କୃଷ୍ଣସିଂହ. ମହାଭାରତ ସଭା ।

୩ । (ଗୁପ୍ତ କଥା) ପ୍ରକାଶ କରି କହିବା—
3. To divulge (a secret).
**भंडा फोडना** ୪ । ବ୍ୟାଖ୍ୟା କରି କହିବା—
4. To explain clearly.

ଫିଟାଇ କହିଲି ତୁମ୍ଭଙ୍କୁ ବନମାଳୀ । କୃଷ୍ଣସିଂହ. ମହାଭାରତ ସଭା ।

୫ । ବିସ୍ତୃତ କରିବା—5. To spread out.
୬ । ତ୍ୟାଗ କରିବା; ଛାଡ଼ିବା—6. To give up.

ମାର୍କଣ୍ଡ ଋଷି ରାମ ଅଗ୍ରେ କହି
ଏକ ମନେ ଶୁଣ ନରେ ତାପ ଫିଟାଇ । ପ୍ରାଚୀ. ଜଳ ତରିତ ।

[ ଫିଟାଇ ଦେବା, ଫିଟାଇ ପକା(କେ)ଇବା—ଅନ୍ୟରୂପ ]

ଫିଟା ଫିଟି—ଦେ. ବି—ମନୋମାଳିନ୍ୟ; ଭେଦ ଭାବ—
Phiṭā phiṭi Rupture; difference.
খুলা খুলি ଯାହା ବୋଇଲ ତୁମ୍ଭେ ଭାଇ ଭାଇଙ୍କର
**खुलाखुलि** ଫିଟା ଫିଟି କରିବା ଦେଖି ହିଁ କବର । କୃଷ୍ଣସିଂହ. ମହାଭାରତ. ଆଦି ।
ବିଣ—ପୃଥକ୍ ପୃଥକ୍; ଅଲଗା ଅଲଗା—
Separated from one another.

ସେହିକ୍ଷଣି ମୁଣ୍ଡାମାନଙ୍କ ଯେ ଫିଟାଫିଟି
ହୋଇଣ ତରିଗଲେ ମେଳି ଦେଇ ପାଟି । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

ଫିଟା ଫିଟି କରିବା—ଦେ. କ୍ରି—ଥରକୁଥର ଫିଟାଇବା—
Phiṭā phiṭi karibā To open repeatedly.
খুলা খুলি করা **खोलाखोलि करना**

ଫିଟିକ ଯିବା—ଦେ. କ୍ରି. (ସଂ. ପୃଥକ୍)—ପୃଥକ୍ ହେବା; ଅଲଗା ହୋଇ-
Phiṭiki jibā ଯିବା—To become independent of; to
আলাদা হওয়া be separated from.
**स्वतन्त्र होना** ସମ୍ବଲପୁର ପ୍ରାଦେଶିକ କମିଟି କଂଗ୍ରେସ ଅନୁଷ୍ଠାନରୁ ଫିଟିକି ଗଲେ ।
ଉତ୍କଳ ସେବକ ।

ଫିଟିକରୀ—ଦେ. ବି. (ସଂ. ସ୍ଫଟିକା; ସ୍ଫଟିକାରି; ଫାଟକୀ)—ସୁହାଗା; ଟାଙ୍ଗଣା—Alum; borax.
Phiṭikirī

ସଂ. ନାମ - ସ୍ଫଟିକା, ସ୍ଫଟୀ, ସ୍ଫଟିକାରୀ, ଫାଟକୀ, ଶ୍ୱେତା, ଶୁଭ୍ରା, ରଙ୍ଗଦା, ଦୃଢ଼ରଙ୍ଗା, ରଙ୍ଗଦୃଢ଼ା, ରଙ୍ଗାଙ୍ଗା, ଟଙ୍କଣ, ସୌଭାଗ୍ୟ, ଦୃଢ଼ରଙ୍ଗଦାତ୍ରୀ
(ଫଟକରୀ—ଅନ୍ୟରୂପ)
ସୋହাগা; ফিটকিরী
फिटकिरी
ତେ. ଫଟିକ
ମ. ତୁରଟୀ ଫଟକରୀ

[ ଦ୍ର—ଏହା ଜଳ ତଟରେ ଜାତ ଶୁକ୍ଳ ସ୍ଫଟିକବତ୍ ସ୍ୱଚ୍ଛ କ୍ଷାରବିଶେଷ । କାଶ୍ମୀର ଦେଶର ଉଷ୍ଣପ୍ରସ୍ରବଣର ଜଳରୁ ଗନ୍ଧକ ଓ ଫଟିକରୀ ମିଳେ ଓ ଭାରତ ଦେଶୀୟ ହ୍ରଦ ତଟରୁ ଫିଟିକିରୀ ମିଳେ । ସୁନା, ରୁପା ତରଲାଇବାରେ ଓ ଔଷଧରେ ଏହା ବ୍ୟବହୃତ ହୁଏ । ଏହା କଷା ଓ ଲୁଣିଆ ଲାଗେ; ଏହାକୁ ପାଣିରେ ଗୋଳାଇ ସେ ପାଣିରେ ମୁହଁ ଓ କ୍ଷତଆଦି ଧୋଇଲେ କ୍ଷତାଦି ପରିଷ୍କୃତ ହୁଏ । ଫିଟିକରୀକୁ ନିଆଁରେ ପୋଡ଼ି ଦେଲେ ଏହା ଖୁବ୍ ଫୁଲିଯାଏ । ବୈଦ୍ୟଶାସ୍ତ୍ର ମତରେ ଏହା ବାତ, ପିତ୍ତ, କଫ, ବ୍ରଣ, ଶ୍ୱିତ୍ର ଓ ବିସର୍ପ ନାଶକ । ସୁହାଗା ରୋଗ କୀଟାଣୁ ନାଶକ । ]

ଫିଟିବା—ଦେ. କ୍ରି. (ସଂ. ସ୍ଫୁଟ୍ ଧାତୁ)—୧ । ବନ୍ଧନରୁ ମୁକ୍ତ ହେବା—1. To be released.
Phiṭibā
ফিটা; খুল
खुलजाना
(ଫଟିଯିବା—ଅନ୍ୟରୂପ)

ତାର ସେବାରେ ଶ୍ରମ ତୁଟେ
ଅଶେଷ ମାୟା ବନ୍ଧ ଫିଟେ । ଜଗନ୍ନାଥ, ଭାଗବତ ।

୨ । ଉନ୍ମୁକ୍ତ ହେବା; ଉଦ୍ଘାଟିତ ହେବା; ଢିଲା ହେବା—2. To be opened; to be loosened.
୩ । ପ୍ରକାଶିତ ହେବା—3. To appear.
୪ । ବାହାରିବା—4. To come forth; to issue.

ଇନ୍ଦ୍ରଙ୍କଠାରୁ ବଜ୍ର ଫିଟି ଅତି ଅଗ୍ରେ
ବାଜିଲା ସ୍କନ୍ଦଙ୍କର ଯାଇ ବକ୍ଷ ପଟେ । କୃଷ୍ଣସିଂହ, ମହାଭାରତ. ବନ ।

୫ । ଦୂରିତ ହେବା—5. To be removed.

ରେ କିଶୋରି । ଫିଟିଗଲା ଯେ ସନ୍ଦେହ । କବିସୂର୍ଯ୍ୟ କିଶୋରୀ ଚମ୍ପୂ, ଗୀତ ।

୬ । ନଷ୍ଟ ହେବା—6. To be lost.

ଗଲେ ହେଲେ ଜାତ ମହିଁରୁ ସମ୍ପତ୍ତି ଫିଟି ଲୁଟି ଲୁଟି ଯାଉ । କବିସୂର୍ଯ୍ୟ. ସଙ୍ଗୀତ ।

୭ । ପୃଥକ୍ ହେବା—7. To be separated.
୮ । (ଝର) ବହିବା—8. (a spring) To flow out.

ଫିଟିଲା ଝର ଦେଖ ଠାଙ୍ଗର ଅଙ୍ଗେ । ରାଧାନାଥ. ତୁଳସୀସ୍ତବକ ।

୯ । ପ୍ରତ୍ୟାହାର କରାଯିବା—9. To be withdrawn.
୧୦ । (ମୁହଁ) ବାକ୍ୟ ଉଚ୍ଚାରଣ କରିବା—
10. (the mouth) To open for speaking.

ମୁଖ ଫିଟିଲେ ଦୁଃଖ ଯାଏ—ଢଗ ।

୧୧ । (କପାଳ) ସୌଭାଗ୍ୟଯୁକ୍ତ ହେବା—11. (one's luck) To be good; to be favourable.
୧୨ । (କେଶ) ଗ୍ରନ୍ଥିବିହୀନ ହେବା—
12. (the hair) To be dishevelled or untied.

ଫିଡ଼୍କା—ଦେ. ବି.—ପୂର୍ବରୁ ଭୟ ଦେଖାଇ ତଡ଼ିବା କର୍ମ—
Phir̤d̤kā Driving away beforehand by threats; scaring away.
ଫିଡ଼କା ଫିଡ଼୍କ, ଫିଡ଼କା ଫିଡ଼କା ଫିଡ଼କ } ଅନ୍ୟରୂପ

ଫିଡ଼୍କା(କେ)ଇବା—ଦେ. କ୍ରି.—୧ । ଉଖାଡ଼ିବା; ଢିଲାକରିବା—1. To loosen; to slacken.
Phir̤d̤kā(ke)ibā
ভাগিয়ে দেওয়া उखाड़ना
भगाना

୨ । ଖସାଇବା; ଦୂର କରିବା; ସ୍ଥାନାନ୍ତରିତ କରିବା—2. To remove.
୩ । ଭୟ ଦେଖାଇ ବା ଧମକାଇ ତଡ଼ି ଦେବା; ହୁରୁଡ଼ାଇବା—
3. To drive away by threats; to scare away.

ଫିଡ଼୍(ଡ଼ି)କିବା—ଦେ. କ୍ରି.—୧ । ଉଖୁଡ଼ି ଯିବା; ସ୍ଥାନାନ୍ତରିତ ହେବା; ଖସି ଯିବା—1. To be uprooted; to be removed.
Phir̤d̤(r̤d̤i)kibā
ভড়কান भागना

୨ । ପଳାଇ ଯିବା—2. To fly away.
୩ । ଢିଲା ହୋଇ ଯିବା—3. To be loosened.
୪ । ହୁରୁଡ଼ି କରି ପଳାଇବା—4. To be scared away.
୫ । ଛିଟିକିବା—5. To shoot out.

ଫିଣ୍—ଗ୍ରା. ଅ. (ସଂ. ପୁନଃ)—ପୁଣି; ଫେରି; ଆଉ ଥରେ; ପୁନର୍ବାର—Again; over again.
Phiṇ আবার, পুনর্ব্বার फिर

ଫିତା—ବୈଦେ. ବି. (ପର୍ତ୍ତୁଗୀଜ୍. ଫୀତା)—୧ । ଲୁଗାର ଧଡ଼ିରେ ଓ ମନୁଷ୍ୟ ଧଡ଼ିରେ ଓ ବେଣୀରେ ବନ୍ଧାଯିବା ମୋଟ ଲମ୍ବା ପଟି; ଲେସ୍; ଲେବାରି—1. Tape; ribbon; lace.
Phitā
ফিতা, ফিতে
फीता

୨ । ଦୂରତ୍ୱ ମାପିବା ପାଇଁ ସରୁ ପଟି—2. Measuring tape.

ଫିତା ଧଡ଼ି—ଦେ. ବି.—ଯେଉଁ ଲୁଗାର ଧଡ଼ି ଫିତା ପରି ମୋଟ ଓ ଚଉଡ଼ା ହୋଇ ବୁଣା ହୋଇ ଥାଏ—Tape-bordered (cloth).
Phitā dhar̤d̤i
ফীতাপাড় फीताकोर
(ଫିତା ଧଡ଼ିଆ, ଫିତା ପାଡ଼ି, ଫିତା ପାଡ଼ିଆ—ଅନ୍ୟରୂପ)

ଫିତୁରାତ୍(ତି)—(କଟକିଆ) ବୈଦେ. ବି.—(ଆ. ଫୁତୁର୍)—
Phiturāt(ti) ୧ । ପ୍ରଜାଙ୍କ ମେଳି—1. Revolt; rebellion.
फितुर, फितुरती, फितुरी

୨ । ଅରାଜକତା—2. Anarchy.
୩ । ଉପଦ୍ରବ—3. Oppression.
ବିଣ.— ୧ । ଉପଦ୍ରବୀ—1. Oppressive.
୨ । ମେଳିଆ—2. Rebellious.

ଫିତୁରି—ପ୍ରାଦେ. (ପୁରୀ ଓ ଗଞ୍ଜାମ) ବି.—(ଆ. ଫୁତୁର୍)—ପ୍ରଜାଙ୍କ ମେଳି ବା ବିଦ୍ରୋହ—Rebellion; revolt; mutiny.
Phituri

ଫିନାଇଲ୍—ବୈଦେ. ବି. (ଇଂ)—ଦୂଷିତ କୀଟ ଓ ଦୁର୍ଗନ୍ଧ ନଷ୍ଟ କରିବା ନିମନ୍ତେ ବ୍ୟବହୃତ କୃଷ୍ଣବର୍ଣ୍ଣ ରାସାୟନିକ ଦ୍ରବବିଶେଷ—Phinile.
Phināil
ফিনাইল फिनाइल (ଫେନାଇଲ—ଅନ୍ୟରୂପ)

ଫିଫି—ଦେ. ଅ.—(ଧ୍ୱନ୍ୟନୁକରଣ)—ଓଷ୍ଠ୍ୟ ଶବ୍ଦବିଶେଷ—Hissing labial sound.
Phi phi ফুঁ ফুঁ फु फु

ଫିଫି କୃତ—ଦେ. ବି.—(ଧ୍ୱନ୍ୟନୁକରଣ)—ଫିଫିକାର ଶବ୍ଦ—The labial sound of phi phi.
Phiphi kr̥uta ফুঁফুঁকার फुफुकार
(ଫିଫିକାର—ଅନ୍ୟରୂପ)

ବୁର୍‌ବୁର୍ ନ ହସେ ଜଳ ଫିଫିକୃତ କରି । ଭକ୍ତ. ବୈଦେଶିଶବ୍ଦକୋଷ ।

ଫିପ୍ଟ୍(ଫ୍ଥ୍)—ବୈଦେ. ବିଣ. (ଇଂ— ଫିଫ୍ଥ୍)—ପଞ୍ଚମ—Fifth.
Phipt(phth)

**ଫିପ୍ଥ୍(ଫ୍ଥ୍) ଇୟର୍ କ୍ଲାସ୍**—ବୈଦେ. ବି. (ଇଂ)—କଲେଜର ପଞ୍ଚମ ବାର୍ଷିକ ଶ୍ରେଣୀ—The fifth year class of a college.
Phipt(phth) iyar klās

**ଫିମ୍ପା**—ପ୍ରାଦେ (ଗଞ୍ଜାମ) ବି—ପେଡ଼ାଯିବା ପରେ ଆଖୁର ନୀରସ ଚୋପା; ଆଖୁ ଛେଦା—The sapless sugarcane after the juice is pressed out of it.
Phimpa

**ଫିମ୍ପାଡ଼ିବା**—ପ୍ରାଦେ (ବାଲେଶ୍ୱର) କ୍ରି (ଇତର ଭାଷା)—ଫୋପାଡ଼ିବା—To throw away.
Phimpārdibā
(ଫୁମ୍ପାଡିବା—ଅନ୍ୟରୂପ)

**ଫିମ୍ପି (ମ୍ଫି)**—ଦେ. ବି—ବସ୍ତ୍ର ଓ ଶସ୍ୟ ଆଦି ବହୁଦିନ ଆର୍ଦ୍ର ସ୍ଥାନରେ ରହିଲେ ତହିଁ ଉପରେ ଦେଖାଯିବା ଛତଆ—Minute fungii growing on grains etc long kept in a wet place; mildew; mold.
Phimpi (mphi)
ছাতা
**ফফুন্দী; ফনগী, ফুফরী**
(ଫିମ୍ଫି, ଫିମ୍ପି—ଅନ୍ୟରୂପ)

**ଫିମ୍ପି ମାରିବା**—ଦେ. କ୍ରି—ବସ୍ତ୍ର ଓ ଶସ୍ୟ ଉପରେ ଛତଆ ପଡ଼ିଯିବା—To be mildewed.
Phimpi māribā
ছাতাধরা **चिचिमारना; फफून्दीमारना** (ଫିମ୍ଫି ଧରିବା—ଅନ୍ୟରୂପ)

**ଫିର**—ପ୍ରାଦେ (ବାଲେଶ୍ୱର ଓ ଲଇଆ) ବି—କବାଟ—Door
Phira

**ଫିରଙ୍ଗ**—ସ. ବି (ଇଂ ଫ୍ରାଙ୍କ୍ ଶବ୍ଦ; ନବ୍ୟ ସଂସ୍କୃତରେ ଗୃହୀତ) ଇଉରୋପ ଦେଶ—Europe.
Phiraṅga

[ଦ୍ର—ପ୍ରାଚୀନ ସଂସ୍କୃତରେ ଏହି ଶବ୍ଦର ବ୍ୟବହାର ନାହିଁ; କିନ୍ତୁ ଆଧୁନିକ ବୈଦ୍ୟଶାସ୍ତ୍ର ଭାବପ୍ରକାଶାଦିରେ ଏ ଶବ୍ଦ ବ୍ୟବହୃତ ହେବାର ଦେଖାଯାଏ ।]

(ଫିରଙ୍ଗିଣୀ—ସ୍ତ୍ରୀ) ବିଣ—ଇଉରୋପ ଦେଶବାସୀ—European.

**ଫିରଙ୍ଗ ରୋଗ**—ସ. ବି—ଉପଦଂଶ ବା ଗରମୀ ରୋଗ—Syphilis.
Phiraṅga roga

[ଦ୍ର—ପ୍ରାୟ ୪୦୦ ବର୍ଷ ପୂର୍ବେ ରଚିତ ବୈଦ୍ୟକ ଗ୍ରନ୍ଥ ଭାବପ୍ରକାଶରେ ଲେଖା ଅଛି ଯେ ଏ ରୋଗ ଫିରଙ୍ଗ ଦେଶରେ ବହୁଳ ଭାବରେ ଦୃଷ୍ଟ ହୁଏ ବୋଲି ଏ ରୋଗର ନାମ ଫିରଙ୍ଗ ରୋଗ । ଏଥିରୁ ଅନୁମିତ ହୁଏ ଯେ ଫିରଙ୍ଗୀ ବା ଇଉରୋପୀୟମାନେ ଏ ଦେଶକୁ ଏ ରୋଗ ପ୍ରଥମେ ଆଣିଥିଲେ ।]

**ଫିରଙ୍ଗ ରୋଟି**—ସ. ବି—ପାଉଁରୋଟୀ—Loaf.
Phiraṅga roṭi (ଫିରଙ୍ଗ ରୋଟିକା—ଅନ୍ୟରୂପ)

**ଫିର(ରି)ଙ୍ଗୀ**—ବୈଦେ. ବିଣ. ପୁଂ. (ଇଂ. ଫ୍ରାଙ୍କ୍)—୧ । ଇଉରୋପୀୟ ବ୍ୟକ୍ତି; ସାହେବ—1. European.
Phira(ri)ṅgi
[ଫିର(ରି)ଙ୍ଗିଆଣୀ—ସ୍ତ୍ରୀ]
২ । କଳା ସାହେବ; ଇଉରୋପୀୟ ପୁରୁଷଙ୍କ ଔରସରେ ଭାରତୀୟା ସ୍ତ୍ରୀ ଗର୍ଭଜାତ ସନ୍ତାନ ଓ ସେମାନଙ୍କର ବଂଶଧର; ବର୍ଣ୍ଣସଙ୍କର ଜାତିବିଶେଷ—2. Eurasian; Anglo Indian; (specially Indo-Portugese).
ফিরিঙ্গী
**फिरंगी**

[ଦ୍ର—ପ୍ରାଚୀନ ସଂସ୍କୃତରେ ଫିରଙ୍ଗ ଶବ୍ଦ ଦେଖାଯାଏ ନାହିଁ, କିନ୍ତୁ ଖ୍ରୀ ୧୬୦୦ ସାଲ ପରେ ରଚିତ ବୈଦ୍ୟକ ଗ୍ରନ୍ଥ (ଯଥା—ଭାବପ୍ରକାଶ), ଜ୍ୟୋତିଷ ଗ୍ରନ୍ଥ (ଯଥା—ସୂର୍ଯ୍ୟସିଦ୍ଧାନ୍ତ) ଓ ପାକରାଜ ଗ୍ରନ୍ଥାଦିରେ ଏ ଫିରଙ୍ଗ ଶବ୍ଦ ବ୍ୟବହୃତ ହୋଇଅଛି । ପ୍ରଥମେ ପର୍ତ୍ତୁଗୀଜ୍ ଦସ୍ୟୁମାନେ ବଙ୍ଗୋପକୂଳକୁ ଆସି ସେଠାରେ କେତେକ ଦେଶୀୟ ସ୍ତ୍ରୀଲୋକଙ୍କୁ ନେଇ ବାସ କରି ରହିଲେ । ତତ୍ପରେ ମୋଗଲ ବାଦସାହାଙ୍କ ଅମଳରେ ଅନେକ ଇଉରୋପୀୟ ଆସି ମୋଗଲମାନଙ୍କ ନିକଟରେ ଚାକିରି କରିଥିଲେ । ଭାରତରେ ଇଂରାଜମାନେ ଅଧିକାରୀ ହେବା ପରେ କ୍ରମଶଃ ସାହେବମାନେ ମଧ୍ୟ ଏ ଦେଶକୁ ଆସିଲେ । ଏମାନଙ୍କ ଔରସରେ ଦେଶୀୟ ସ୍ତ୍ରୀମାନଙ୍କ ଗର୍ଭରେ ଯେଉଁ ସନ୍ତାନମାନେ ଜନ୍ମିଥିଲେ ସେହିମାନଙ୍କ ବଂଶଧରମାନଙ୍କୁ ଫିରଙ୍ଗୀ ବୋଲାଯାଏ । ଭାରତରେ ସମୁଦ୍ର କୂଳବର୍ତ୍ତୀ ସ୍ଥାନ (ଯଥା—ମାନ୍ଦ୍ରାଜ, ନୂଆଖାଲି, ଚଟ୍ଟଗ୍ରାମ, ବାଖରଗଞ୍ଜ)ରେ ଅନେକ ଫିରଙ୍ଗୀ ଥିଲେ ଓ ଅଛନ୍ତି ଓ ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ପୂର୍ବପୁରୁଷ ପର୍ତ୍ତୁଗୀଜ୍ ଥିଲେ ।

ଜ୍ୟୋତିଷିକ ଗ୍ରନ୍ଥ ସୂର୍ଯ୍ୟସିଦ୍ଧାନ୍ତର ଟୀକାକାର ରଙ୍ଗନାଥ ଲେଖିଅଛନ୍ତି ଯେ ସ୍ୱୟଂବହ ଯନ୍ତ୍ର (ସମୟ ନିର୍ଦ୍ଦେଶକ ଘଣ୍ଟା, ଯାହାକି ପ୍ରଥମେ ଭାରତବାସୀମାନେ ଆବିଷ୍କାର କରିଥିଲେ) ସମ୍ବନ୍ଧୀୟ ବିଦ୍ୟାରେ ସମୁଦ୍ରାନ୍ତନିବାସୀ ଫିରଙ୍ଗ ଜାତୀୟ ବ୍ୟକ୍ତିମାନେ ସମ୍ୟକ୍ ଅଭ୍ୟସ୍ତ । ପାକରାଜ ଗ୍ରନ୍ଥରେ 'ଫିରଙ୍ଗ ରୋଟୀ' ଅର୍ଥାତ୍ ପାଉଁରୋଟୀ ବର୍ଣ୍ଣିତ ହୋଇଅଛି । 'ଭାବ ପ୍ରକାଶ' ଗ୍ରନ୍ଥର ରଚୟିତା ଭାବ ମିଶ୍ରଙ୍କ ଘର ଉତ୍ତରପଶ୍ଚିମ ଭାରତରେ ଥିଲା । ସେ ସମୟରେ ଅର୍ଥାତ୍ ୪୦୦ ବର୍ଷ ପୂର୍ବେ ସେ ଅଞ୍ଚଳ ପର୍ଯ୍ୟନ୍ତ ଫିରଙ୍ଗ ରୋଗ (ଉପଦଂଶ) ବ୍ୟାପିଥିବାର ଅନୁମିତ ହୁଏ । ନୂଆଖାଲି, ଚଟ୍ଟଗ୍ରାମ ଆଦି ଅଞ୍ଚଳରେ ସ୍ତ୍ରୀମାନେ 'ଫିରଙ୍ଗ ଲୋଟନ୍' ବା 'ଫିରଙ୍ଗୀ ଖୋସା' ଅର୍ଥାତ୍ ଫିରଙ୍ଗିଆଣୀମାନେ ବାନ୍ଧିଲା ପରି ବେଣୀ ପକାଇ ଲୋଟଣି ଜୁଡ଼ା ଅଦ୍ୟାବଧି ବାନ୍ଧନ୍ତି ।

ଫିରଙ୍ଗୀମାନେ କ୍ରମଶଃ ସାହେବ ନାମରେ ପରିଚିତ ହେଉଅଛନ୍ତି । ଫିରଙ୍ଗୀ ନାମରେ ଡାକିଲେ ଏମାନଙ୍କୁ ଅପମାନ ବୋଧହୁଏ । ଏମାନେ ଭାରତବାସୀମାନଙ୍କ ସଙ୍ଗେ ନ ମିଶି ଇଉରୋପୀୟ ଚାଲଚଳଣ ଅନୁକରଣ କରନ୍ତି; କିନ୍ତୁ ରାଜନୀତିକ ସୁବିଧା ପାଇଁ ଭାରତବାସୀମାନଙ୍କ ସଙ୍ଗେ ସମାନ ଅଧିକାର ଦାବି କରନ୍ତି । ]

**ଫିରତ୍**—ଦେ. ବି—( ସ. ପ୍ରତ୍ୟାବୃତ୍ତ )—ଫେରସ୍ତ ( ଦେଖ )
Phirat Pherasta. ( See )
ফিরত **फिरति**

**ଫିରନ୍ତା**—ଦେ. ବିଣ ( ସ. ପ୍ରତ୍ୟାବୃତ୍ତ )—ଫେରନ୍ତା ( ଦେଖ )
Phirata Pherantā ( See )
ফিরতী **फिरता**

**ଫିରସ୍ତ**—ଦେ ଓ ବୈଦେ. ବି. ଓ ବିଣ.—ଫେରସ୍ତ ( ଦେଖ )
Phirasta Pherasta ( See )

**ଫିରା(ରେ)ଇ**—ଦେ. ବି ( ସ. ତର୍ଯ୍ୟକ୍; ତିରଶ୍ଚିନ )—
Phirā(re)i
( ଫିରେଇ—ଅନ୍ୟରୂପ )
টেরী, টেড়ী **टेढी, मांगा**
୧ । କପାଳ ଉପରସ୍ଥ କେଶର ବିନ୍ୟାସ ବିଶେଷ; ସୁନ୍ଥା; ଟେଶି; କପାଳ ଉପରସ୍ଥ କେଶର ଦ୍ୱିଫାଳୀକୃତ ବିନ୍ୟାସ; ରେଖ—
1. A mode of parting the hair of the forehead.
୨ । ତାସ ଖେଳରେ ଜଣେ ଖେଳାଳି ନିକଟରେ ଥିବା ଯେଉଁ 'ବେରଙ୍ଗ' ତାସ ଦେଇ ଅପର ପକ୍ଷର ତାସକୁ ଜିଣି ନିଅ-

ଯାଏ; ଯେଉଁ ତାସ୍‌କୁ ଏକରୂପ ଭିନ୍ନ ଅପର ତାସ୍ କର୍ତ୍ତନକରି ନେଇ ନ ପାରେ—

2 ( Cardplay ) Cards of a class different from those of the first player with which the second player can win the 1st player's throw.

ଫିରା(ରେ)ଇ କାଟିବା—ଦେ. କ୍ରି—ମୁଣ୍ଡର କପାଳ ଉପରର ବାଳକୁ Phirā(re)i kāṭibā ଦୁଇ ଅଡ଼କୁ କୁଣ୍ଡାଇ ମଝିରେ ରେଖ **टेरी काटा** ବାହାର କରିବା—To part the hair of the **मांगफाडना** head with the comb and leave a parting line in front.

ଫିରାଡ(ଡି) (ଇତ୍ୟାଦି)—ବେଦେ. ବି ଓ ବିଣ—
Phirāda(di) ( etc ) ଫେରାଡ(ଡି) ଇତ୍ୟାଦି ( ଦେଖ ) Pherāda(di) etc (See).

ଫିରି—ଦେ. ବି—ଫିରାଇ ୧ ( ଦେଖ )
Phiri Phirāi ( See )

ଫିରିକ—ଦେ ଓ ବୈଦେ. ବି—ପିରିକ ( ଦେଖ )
Phirika Pirika ( See )
(ଫିରକ, ଫିର୍କି, ଫିର୍କି—ଅନ୍ୟରୂପ)

ପ୍ରାଦେ ( ବାଲେଶ୍ୱର ) ବି—ଏକପ୍ରକାର ଲୁଣି ମାଛ—
A kind of sea-fish.

ପ୍ରାଦେ ( ଗଡ଼ଜାତ ) ବି—ଡଙ୍କି—Dragon fly

ଫିରିଙ୍ଗ(ଙ୍ଗି)—ପ୍ରାଦେ ( ଗଡ଼ଜାତ ) ବି—ଫିରିକ ( ଦେଖ )
Phiringa(ṅgi) Phirika ( See )
ଦେ ବି ଓ ବିଣ—ଫିରଙ୍ଗ (ଦେଖ)—Phiraṅga ( See )

ଫିରିଙ୍ଗୀ ସାମ୍ରାଣୀ—ଦେ. ବି—ଏକପ୍ରକାର ଧୂପଦ୍ରବ୍ୟ—A kind of Phiriṅgi sāmrāṇi incense; frankincense.
[ ଦ୍ର—ଏହା ଜଳାଇଲେ ଭକ୍ତି ହୁଏ । ଘିଅ ସହିତ ଏହା ସେବନ କଲେ ମେହ ରୋଗ ନିବାରିତ ହୁଏ । ( ଦ୍ରବ୍ୟଗୁଣ କଳ୍ପଦ୍ରୁମ ) ]

ଫିରିଡ଼ି—ଦେ. ବି—ପକ୍ଷିବିଶେଷ—
Phirirdi A species of bird.
[ ଦ୍ର—ଏମାନେ ବାୟା ଚଢ଼େଇ ପରି ଶ୍ରେଣୀପକ୍ଷୀ; ଏମାନଙ୍କ ମୁଣ୍ଡରେ ହଳଦିଆ ଟୋପି ଅଛି । ଏମାନେ ଦଳଦଳ ହୋଇ ଧାନ କ୍ଷେତରେ ପଡ଼ି ଫସଲ ନଷ୍ଟ କରନ୍ତି । ]

ଫିରିଫିରା—ଦେ. ବି—୧ । ଫାଳିଆରେ ନୁଡ଼ୁକା ଝୁଲୁଥିବା କର୍ଣ୍ଣାଳଙ୍କାର
Phiriphirā ବିଶେଷ—
**कनौसी** 1. A kind of earring with flat pendants
[ ଦ୍ର—ଏହା କାନର ଉପର ଭାଗରେ ଛିଦ୍ର କରାଯାଇ ପିନ୍ଧାଯାଏ । ]

୨ । ଝୁଲ; ରଥାଦି ମଣ୍ଡନ ଉପକରଣ ବିଶେଷ—
2. Hanging tassels.

୩ । ଝିପି ଝିପି ବରଷା; କ୍ଷୁଦ୍ର ଟୋପାରେ ବରଷା—
3. Drizzling rain.

ଅଂଠ ବୁଂ କାନି ଖୋଳ ଅଙ୍ଗ
ବଜଣି ଫିରଫିରା କରଣଠି ବୃଣାଇବ
ଭେବେ ଯାଇ ଜଖାଳ ଫେଟ ହୁଏ ପଙ୍କ
କୃଷିବତନ

ପ୍ରାଦେ. ( କଳାହାଣ୍ଡି ) ବି—ପ୍ରଜାପତି—Butterfly.

ଫିରିଫିରି—ଦେ. ବିଣ ( ଧ୍ୱନ୍ୟନୁକରଣ )
Phiri phiri ଝିପିଝିପି; ଅତି ସାମାନ୍ୟ ( ବରଷା )—Drizzling (rain).

**झिरझिर बरसना; झकास** ଫିର ଫିର ବରଷା କରି
ଚଳା ଗୁଣ କରି ନ ପାରି । ଜଗନ୍ନାଥ. ଭାଗବତ

ପ୍ରାଦେ. ( ସମ୍ବଲପୁର ) ବି—ଡଙ୍କି—Dragon fly.

ପ୍ରାଦେ. ( ଯାଜପୁର ) ବି—କର୍ଣ୍ଣାଳଙ୍କାରବିଶେଷ; ଫରଫିରା—
A kind of ear ring.

ଫିରିୟାଦ—ବୈଦେ. ବି ( ଆ. ଫରୟାଦ୍ )—
Phiriyāda ଫେରାଦ ( ଦେଖ ) Pherāda ( See )
ଫିରିୟାଦ କାହିଁ ଗୋ ନାମେ କରିବ ?
କବିସୂର୍ଯ୍ୟ, ଲଗୋଷ ଜଣ୍ଣ. ସ. ଗୀତ

ଫିରିସ୍ତା—ବୈଦେ. ବି. ( ଆ ଫିରିସ୍ତା )—
Phiristā ମୁସଲମାନ ଶାସ୍ତ୍ରୋକ୍ତ ଦେବଦୂତ—Angel.
ফিরিস্তা **फिरिस्ता**

ଫିରିସ୍ତି—ବୈଦେ. ବି. (କଚେରୀ) ( ଫା. ଫିହ୍‌ରସ୍ତ୍ )—
Phiristi ফিরিস্তি **फिहिरिस्त** ତାଲିକା; ଫର୍ଦ—List; schedule.

ଫିରୋଜ—ବୈଦେ ଅ—ପ୍ରତିଦିନ; ହରରୋଜ--Every day; daily.
Phi roj ফিরোজ ବି—ପିରୋଜା ( ଦେଖ )
**फीरोज** फीरोज Pirojā ( See )

ଫିରୋଜା—ବୈଦେ. ବି—( ଫା; ନବୀ ସବୁଜ ପଥର, ପରୋଜ )—
Phirojā फीरोजा ପିରୋଜା ( ଦେଖ )
**फीरोजा** Pirojā ( See )

ଫିଲ୍—ବୈଦେ. ବି ( ଫା; ତୁଳ. ସ. ପୀଲୁ=ହାତୀ )—
Phil ୧ । ହାତୀ—1. Elephant.
ফিল ୨ । ସତରଞ୍ଜ ଖେଳାରେ ନୌକା ଗୋଟି—
**फील** 2. Name of the boat in the game of chess.

ଫିଲ୍‌ଖାନା—ବୈଦେ. ବି ( ଫା )—
Phil-khānā फीलखाना ହାତୀଶାଳ—
**फीलखाना** Elephant stable.

ଫିଲ୍‌ଟ(ଟା)ର—ବୈଦେ (ଇଂ)—ଜଳ ବା ଅନ୍ୟ କୌଣସି ତରଳ ଦ୍ରବ୍ୟ
Phil-ṭa(ṭā)r ଛାଣି ଶୋଧନ କରିବାରେ ବ୍ୟବହୃତ ଯନ୍ତ୍ର—Filter.
ফিল্টার **फिलटार** [ ଫିଲ୍(ଲ୍ଟା)ର—ଅନ୍ୟରୂପ ]

ଫିଲ୍‌ଫୋର—ବୈଦେ. ବି (ଫା) ଡେଙ୍ଗ୍ନାଗରା—A pair of kettle-
Phil-phor **फिलफोर** (ଫିଲ୍‌ଫଅର—ଅନ୍ୟରୂପ) drums.
**फौरन** ଅ—ତତ୍‌କ୍ଷଣାତ୍—Immediately.

ଫିଲ୍ଡ—ବୈଦେ. ବି (ଇଂ)—
Phild ୧ । ଖେଳ ପଡ଼ିଆ—1. Playground.
ফীল্ড ୨ । ସର୍ଭେୟରମାନଙ୍କର ମାପ କରିବା ଜମି—2. The field
**फील्ड** of surveying; surveying ground.

୩ । ଯୁଦ୍ଧଭୂମି; ରଣସ୍ଥଳୀ—3 Battle-field.
୪ । କୃଷିକ୍ଷେତ୍ର—4. Agricultural field.
୫ । କ୍ଷେତ୍ର; ଉପଯୁକ୍ତ କର୍ମକ୍ଷେତ୍ର—5. Proper place to work; field of action.

**ଫିଲ୍ଡବୁକ୍**—ବୈଦେ. ବି (ଇଂ)—
Phild-buk ମାପ କରିବା ବ୍ୟକ୍ତି ମାପର ବିବରଣ ଯେଉଁ ବହିରେ ଫୀଲ୍ଡବୁକ୍ **फील्डबुक** ଲେଖି ରଖନ୍ତି; ଉଦ୍ଧୃତିଖାତା—Fieldbook.

**ଫିଜ୍**—ବୈଦେ. ବି ( ଇଂ )—
Phis ଫିଜ୍ ( ଦେଖ )—Phij ( See )

**ଫିସ୍‌ଫିସ୍**—ଦେ. ଅ. ( ଧ୍ୱନ୍ୟନୁକରଣ ) ( ଭୂଲ. ଇଂ. ଫିସ୍ )—
Phis-phis ୧ । ଛୋଟ ଛୋଟ ବିନ୍ଦୁରେ ବର୍ଷା ହେବାର ଶବ୍ଦ—
(ଫିସିଫିସି, ଫିସିର ଫିସିର—ଅନ୍ୟରୂପ) 1. Sound of drizzling rain; pissing sound.
ফিস্ ফিস্, ফুইফুই ୨ । ଗୁଜୁ ଗୁଜୁ କଥାବାର୍ତ୍ତା ହେବାର ଶବ୍ଦ—
**फुस फुस** 2. Whispering sound
[ ବି—ଫସ୍ ଫସ୍ ଓ ଫସର ଫସର—ବଡ଼ ଶବ୍ଦ । ଫିସ୍‌ଫିସ୍ ଓ ଫିସର ଫିସର—ଫସ୍ ଫସ୍ ଅପେକ୍ଷା ଛୋଟ ଶବ୍ଦ । ଫୁସ୍ ଫୁସ୍ ଓ ଫୁସୁରୁ ଫୁସୁରୁ—ଫିସ୍ ଫିସ୍ ଅପେକ୍ଷା ଆହୁରି ଛୋଟ ଶବ୍ଦ ସ୍ଥଳରେ ବ୍ୟବହୃତ ହୁଏ । ]

**ଫିସ୍‌ଫିସା**—ଦେ. ବି. —ଫିରିଫିରି ବର୍ଷା; ଝିପି ଝିପି ବର୍ଷା—
Phis-phisā Drizzling rain.
ফুইফুই **फुहार पडना; मिस्सिपडना** ( ଫିସିଫିସା—ଅନ୍ୟରୂପ )

**ଫିସାଦ**—ବୈଦେ ବି. ( ଅ. ଫସାଦ୍ )—୧ । କଳହ; ଝଗଡ଼ା—
Phisāda ফেসাদ **फसाद** (ଫେସାଦ—ଅନ୍ୟରୂପ) 1. Quarrel.
୨ । ଦ୍ୱନ୍ଦ୍ୱ; ବିବାଦ—2 Dispute.
୩ । ମନ୍ଦ ଫଳ; ଅନିଷ୍ଟ—3 Bad effects.
× × ଦେ-ମଦଢ଼-ନର୍ଥ—ପାହିଁ ଶ ଭୃତ୍ୟାଙ୍କ ଗାଇଥିଲ, ତାହାର ଫିସାଦ = ଫକୀରମୋହନ. ଗଳ୍ପସ୍ୱଳ୍ପ ।
୪ । ଗୁପ୍ତମନ୍ତ୍ରଣା—4. Instigation.
୫ । ବିପଦ—5. Danger.
୬ । ବିଦ୍ରୋହ—6. Rebellion; revolt.
୭ । ଗୋଳମାଳ—7 Confusion.
୮ । ଛଳନା—8. Feigning; excuse.

**ଫିସାଦ କରିବା**—ଦେ କ୍ରି. ( ଅ. ଫସାଦ୍ )—
Phisāda kariba ୧ । ଗୋଳମାଳ ଜାତ କରିବା—
(ଫିସାଦ କାଢ଼ିବା—ଅନ୍ୟରୂପ) 1. To set up a row.
ফেসাদ করা ୨ । ମେଳ କରିବା—2. To combine.
**फसाद करना** ୩ । ଧର୍ମଘଟ କରିବା—3. To strike work.
୭ । କୁଫଳ ଉତ୍ପାଦନ କରିବା—
7. To produce bad effect.

**ଫିସାଦି**—ବୈଦେ. ବି—ଫିସାଦ (ଦେଖ)—
Phisādi Phisāda (See)
ବିଣ (ଅ. ଫସାଦୀ)—ଫିସାଦିଆ (ଦେଖ)—Phisādia (See)

**ଫିସାଦିଆ**—ବୈଦେ ବିଣ. (ଅ)—୧ । କଳହପ୍ରିୟ—
Phisādia 1. Quarrelsome; contentious.
[ଫିସାଦ(ଦ)ବାଜ୍—ଅନ୍ୟରୂପ] ୨ । ଫଳରେ କଳହ ଘଟାଇବା—
ফেসাদী; ফেসাদিয়া 2. Leading to quarrel or dispute.
**फसादी**
୩ । ଗୁପ୍ତ ମନ୍ତ୍ରଣା ଦାତା—3. Secret instigator.
୪ । ମେଳିଆ—4. Combining; rebellious.

**ଫୁ**—ଦେ. ଅ. (ଧ୍ୱନ୍ୟନୁକରଣ)—ଫୁଁ (ଦେଖ)
Phu (ଫୁ ଫୁ—ଅନ୍ୟରୂପ) Phuñ (See)

**ଫୁଆର**—ବୈଦେ ବି. (ଅ. ଫାଭ୍ୱାରହ୍; ଭୂଲ ସ. ଫୁତ୍କାର)—
Phuāra ୧ । ଝରଣା; ଉତ୍ସ—1 Fountain.
(ଫୋଆର—ଅନ୍ୟରୂପ) ୨ । କୃତ୍ରିମ ଉତ୍ସ—
ফুয়ারা; ফোয়ারা **फुआरा; फव्वारा** 2. Artificial fountain.

**ଫୁଇ**—ପ୍ରାଦେ. (ସମ୍ବଲପୁର) ବି—୧ । ବନସି ସୂତାକୁ ପାଣିରେ ଉବୁଟୁବୁ ରଖିବା ପାଇଁ ବ୍ୟବହୃତ ସୋଲ୍ହ ବା ମୟୂର ପକ୍ଷିର କାଠି; ଡେରେଣ୍ଡା—1. Float attached to the angling string.
Phui
୨ । (ସ. ପର୍ବ) ଆଖୁର ଛୋଟଛୋଟ ଖଣ୍ଡ (ଯହିଁରେ ଆଖି ବା ଗଣ୍ଠି ନ ଥାଏ)—Small bits of sugarcane having no knots or nodes therein.

**ଫୁଁ**—ଦେ. ଅ (ଧ୍ୱନ୍ୟନୁକରଣ)—ଦୁଇ ଓଠ ମଧ୍ୟ ଦେଇ ନଳ ଆଦିରେ ପବନ ଫୁଙ୍କିବାର ଶବ୍ଦ (ଶଙ୍ଖଆଦିରେ)—Hissing sound; sound of blowing wind with the mouth through a hole.
Phuñ
ফু **फु**

**ଫୁଃ**—ଦେ. ଅ—(ଅନାଦର ବା ତୁଚ୍ଛାର୍ଥବୋଧକ ଧ୍ୱନି)—ଛିଃ !
Phuḥ (Interjection) Fie ! Tush ! Pooh !

**ଫୁକ୍‌ନା**—ପ୍ରାଦେ (ଗଞ୍ଜାମ) ବି—୧ । ସୂତାଧାର—
Phuk-nā 1. A receptacle for thread.
୨ । ନଟେଇ—2. Spindle.

**ଫୁକ୍‌ଲଲିଆ**—ପ୍ରାଦେ. (ସମ୍ବଲପୁର) ବି. (ଭୂଲ. ହି. ଲବା)—
Phuk-lālia ଖଇ; ଲିଆ—Fried paddy.

**ଫୁକ**—ସ. ବି. ପୁଂ—ପକ୍ଷୀ; ଚଢ଼େଇ—
Phuka Bird (Wilson).

**ଫୁକର**—ଦେ. ବି—ଫୁକାର ୧, ୨, ୩ (ଦେଖ)—
Phukara (ଫୁଙ୍କର—ଅନ୍ୟରୂପ) Phukāra 1. 2. 3. (See)

**ଫୁକା**—ପ୍ରାଦେ. (ଗଞ୍ଜାମ) ବି—କ୍ଷୁଦ୍ର ବ୍ରଣ—
Phukā A small boil.

**ଫୁକାର**—ଦେ. ବି. (ସ. ଭୂକ=ଛିଦ୍ର; ଯୋଗେଶ୍ଚନ୍ଦ୍ର)—ଖିଲାଣ—
Phukāra 1. Archway.
ফোকর; ফুকর ୨ । ପୋଲତଳେ ପାଣି ଯିବା ନିମନ୍ତେ କରାଯିବା
**पुलिया** ଖିଲାଣ -2. Archway for the exit of the rushing water below a bridge.
୩ । ଛୋଟ ଶଙ୍କ ବା ପୋଲ—3. Culvert.
ফুস ফুস শব্দ ୪ । (ସ ଫୁତ୍କାର)—ଫୁ ଫୁ ଶବ୍ଦ; ଫୁତ୍କାର—
**फुँकार; फुफकार** 4. Hissing sound.
୫ । ମୁଖବାଦ୍ୟବିଶେଷ—5. A vocal musical sound produced by the mouth

ଅଠାଶି ସହସ୍ର ଫୁକାର ସାଙ୍କେ
ଗ୍ଭଳଶି ସହସ୍ର ବର୍ମିକ ବାଟେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଫୁକାର**—ଦେ. ବିଣ. (ହି. ଫୁକାରନା; ସଂ. ପ୍ରଗ୍ଭର )—ପ୍ରଗ୍ଭରିତ—
Phukārā — Proclaimed; promulgated.
ফুকারা — ରେ କଶୋର । ଫୁକାର କୋହୁ ଜଗତେ ।
**फुकारा** — କବସୂର୍ଯ୍ୟ, କଶୋର ଚମ୍ପୂ ଫ ଗୀତ ।
ଦେ ବି—ପ୍ରଗ୍ଭର—Proclamation; publication.

**ଫୁକାରିବା**—ଦେ. କ୍ରି. (ହି. ଫୁକାର୍‌ନା; ତୁଲ. ସଂ. ଚତ୍କାର; ପ୍ରଗ୍ଭର)—
Phukāribā — ୧ । ଚତ୍କାର କରିବା; ପାଟି କରି ଡାକିବା; ଉଚ୍ଚୈଃସ୍ୱର କରିବା—
1. To call aloud; to halloo
ଫୁକରି(ରେ)ଇବା, ଫୁକାର ହେବା, ଫୁଲୁରି(ରେ)ଇବା, ଫୁକ୍ରାରିବା } ଅନ୍ୟରୂପ
୨ । କହିବା—2. To speak out
୩ । ଗର୍ଜନ କରିବା; ରବ କରିବା—
ফুকারা — 3. To roar; to utter a loud sound.
**फुकारना** — ୪ । ପ୍ରକାଶ କରିବା—4 To publish.

**ଫୁକଆ**—ପ୍ରାଦେ. (ଗଡ଼ଜାତ) ବି—ରାତ୍ର ୪ଟା ବେଳେ ଉଦିତ ହେବା ପାହାନ୍ତିଆ ତାରା; ଶୁକ୍ର ଗ୍ରହ—
Phukiā
(ଫୁକଆତାରା—ଅନ୍ୟରୂପ) Morning star; the planet Venus rising in the early morning.
(ଯଥା—ଫୁକଆ ଉଠିଲେ କେଉଟୁଣୀମାନେ ଚୁଡ଼ାକୁଟା ଆରମ୍ଭ କରନ୍ତି ।)

**ଫୁ(କୁ)କଆଣି**—ପ୍ରାଦେ. (ପୁରୀ) ବି—ଫୁଟିଆଣି (ଦେଖ)
Phu(ku)kiāṇi — Phuṭiāṇi (See)

**ଫୁକୁର ଫୁକୁର**—ଦେ. କ୍ରି. ବିଣ. ( ସଂ. ଫକ୍କ୍ ଧାତୁ=ମନ୍ଦଗତ; ଲଘୁଗତ )—କୁଦକୁଦକା; କ୍ଷୁଦ୍ର ପ୍ରାଣୀ ନାଚିବା ବା ଡେଇଁବା ପ୍ରକାରେ—
Phukur phukur
(ଫୁକୁରୁ ଫୁକୁରୁ—ଅନ୍ୟରୂପ)
ফুক্; ফুক্ফুক্ — In a frisking manner.
**फुदुक फुदुक** — (ଯଥା—ପିଲାଟି ଫୁକୁର ଫୁକୁର ହୋଇ ନାଚୁଛି ।)
[ ଦ୍ର—ଫକର ଫକର ଅପେକ୍ଷା ଫୁକୁର ଫୁକୁର କ୍ଷୁଦ୍ରତର ପ୍ରାଣୀ ସୂଚନା କରେ । ବଡ଼ ମନୁଷ୍ୟ ବା ପ୍ରାଣୀ (ଯଥା—ମାକଡ଼) ଫକର ଫକର ହୁଏ । ଛୋଟ ପ୍ରାଣୀ (ଯଥା—ଶିଶୁ, ଛେଳିଛୁଆ) ଫୁକୁର ଫୁକୁର ହୁଏ । 'ଫୁକୁର ଫୁକୁର' ଶବ୍ଦ ପ୍ରୟୋଗଦ୍ୱାରା ନର୍ତ୍ତକର କ୍ଷୁଦ୍ର ଆକୃତି ଓ ନାଚିବାର ସ୍ନିଗ୍ଧତା ସୂଚିତ ହୁଏ । ]

**ଫୁଙ୍କ(ଙ୍କା)**—ଦେ.ବି. (ସଂ.ଫୁତ୍କାର)—ତୁଣ୍ଡ ଓଠ ପବନ ବାହାର କରିବା ପ୍ରକ୍ରିୟା—1. The act of blowing wind through the lips.
Phuṅka(ṅkā)
ফুঁক, ফুকো; ফকা **फुँकना**
( ଫୁଙ୍କା—ଅନ୍ୟରୂପ ) ୨ । ବଣିଆମାନେ ନଳଦ୍ୱାରା ନିଆଁକୁ ପବନ ଯୋଗାଇବା—2. The act of blowing up a fre with a pipe.
୩ । ଦୋହନ କାଳରେ ସଦ୍ୟଃ ପ୍ରସୂତା ଗାଈମାନଙ୍କ ଦୁଷ୍ଟାମିକୁ ନିବାରଣ କରିବା ପାଇଁ ସେମାନଙ୍କ ପ୍ରସବରନ୍ଧ୍ରରେ ମୁହଁ ଦେଇ ପେଟରେ ପବନ ପୂରାଇବା କ୍ରିୟା; ଗାଈ ଧରା—
3. Phooka; the process of blowing through the female organ of a newly delivered cow.
୪ । କଞ୍ଚା କଦଳୀକୁ ଧୂଆଁଦ୍ୱାରା ଶୀଘ୍ର ପଚାଇବା ରୀତିବିଶେଷ—
4. A process of ripening green plantains by blowing hot smoke into them.
[ ଦ୍ର—କଞ୍ଚା ପାକଳ କଦଳୀକୁ କୁଟା ଆଦିରେ ପୃଣ୍ଡି ଗୋଟିଏ ମାଠିଆ ବା ହାଣ୍ଡିରେ ବା ଗର୍ତ୍ତରେ ପୂରାଇ ତହିଁରେ ଗୋଟିଏ ମାତ୍ର ଛିଦ୍ର ରଖି ସେ କୁଟାରେ ନିଆଁ ଦେଇ ଫୁଙ୍କିବାକୁ ହୁଏ; ତାହା ହେଲେ କଞ୍ଚା କଦଳୀ ଧୂଆଁ ବାଜି ଶୀଘ୍ର ପାଚଯାଏ । ]

**ଫୁଙ୍କ ନଳ**—ଦେ. ବି. ( ସଂ. ଫୁତ୍କାର+ନଳ )—ବଣିଆମାନେ ଯେଉଁ ନଳ ମଧ୍ୟ ଦେଇ ନିଆଁକୁ ଫୁଙ୍କନ୍ତି—
Phuṅka naḷa
ফুকনল **फुँकनल** — Goldsmith's blow-pipe.
( ଫୁଙ୍କନଳ—ଅନ୍ୟରୂପ )

**ଫୁଙ୍କ ନଳି**—ଦେ. ବି—ଫୁଙ୍କ ନଳ ( ଦେଖ )
Phuṅka naḷi — Phuṅka naḷi ( See )
(ଫୁଙ୍କନଳ—ଅନ୍ୟରୂପ) ପ୍ରାଦେ. (ପୁରୀ) ବି—ଫୁଙ୍କନଳଆ (ଦେଖ)
Phuṅkanaḷiā (See.

**ଫୁଙ୍କ ନଳଆ**—ପ୍ରାଦେ. ( ପୁରୀ )ବି—ପୁରୀଜିଲ୍ଲା ରାଜାଙ୍କ ବ୍ରାହ୍ମଣ ଶାସନର କୁଳୀନ ବ୍ରାହ୍ମଣମାନଙ୍କର ବଶିଷ୍ଟତାପରିଚାୟକ ସଂଜ୍ଞାବିଶେଷ—A distinctive title of certain high caste Brāhmaṇas of Puri district.
Phuṅkanaḷiā
(ଫୁଙ୍କନଳଆ—ଅନ୍ୟରୂପ)

**ଫୁଙ୍କ ବାଦ୍ୟ**—ଦେ. ବି. ( ସଂ. ଫୁତ୍କାର+ବାଦ୍ୟ )—କାହାଳୀ ଆଦି ଯେଉଁ ଯନ୍ତ୍ରକୁ ଫୁଙ୍କି ବଜାଇବାକୁ ହୁଏ ( ଜଗ- ବନ୍ଧୁ. ପ୍ରାଚୀନ ଉତ୍କଳ ) (ଯଥା—ବଂଶୀ)—Musica instruments (such as trumpets ) which ar blown by the mouth.
Phuṅka bādya
**फुँकबाद्य**

**ଫୁଙ୍କା**—ଦେ. ବି—ଫୁଙ୍କ ( ଦେଖ )—Phuṅka ( See )
Phuṅkā — ବିଣ—ମୁଖଦ୍ୱାରା ବାୟୁ ଭର୍ତ୍ତି କରାଯାଇଥିବା—
ফুকা; ফোকা **फुँकाहुआ** — Blown with the mouth.

**ଫୁଙ୍କା(ଙ୍କେ)ଇବା**—ଦେ. କ୍ରି ( ସଂ. ଫୁତ୍କାର )—(ଫୁଙ୍କିବା କ୍ରିୟାର ଣିଜନ୍ତରୂପ—The causative form of Phuṅkibā.)
Phuṅkā(ṅke)ibā
ফুকান **फुँकवाना**
ଅନ୍ୟଦ୍ୱାରା ଫୁଙ୍କିବା କ୍ରିୟା କରାଇବା—
To cause another to blow wind.

**ଫୁଙ୍କା ଝଡ଼ା**—ଦେ. ବି—ମନ୍ତ୍ର ଉଚ୍ଚାରଣପୂର୍ବକ ଘାଆ କମ୍ପା ଇତ୍ୟାଦିକୁ ଫୁଙ୍କିବା ଓ ରୁଗ୍ଣ ସ୍ଥାନ ଉପରେ ହାତ ବୁଲାଇବା—To make one's palm pass over an affected part and to blow wind over it by incanting mantras.
Phuṅkā jhaṛḍā
ঝাড় ফুক
**झाडफुँक**

**ଫୁଙ୍କାଣି**—ଦେ. ବି—ଫୁଟିଆଣି (ଦେଖ)—Phuṭiāṇi (See)
Phuṅkāṇi ( ଫୁଙ୍କିଆଣି; ଫୁଙ୍କୁଆଣି—ଅନ୍ୟରୂପ )

**ଫୁଙ୍କାଫୁଙ୍କି**—ଦେ. ବି—୧ । ଫୁଙ୍କିବା ପ୍ରକ୍ରିୟା—1. The act of blowing wind with the mouth.
Phuṅkāphuṅki
ফুকাফুকী — ୨ । ଝଡ଼ା ଫୁଙ୍କା; ମନ୍ତ୍ର ପଢ଼ି ଘାଆ ଆଦିକୁ ଫୁଙ୍କିବା—
**फुँकाफुँकी** — 2. The act of blowing wind with the mouth by reciting mantras.

ଫୁଙ୍କା ବନ୍ଧ—ଦେ. ବି—ବ୍ରହ୍ମଜ୍ଞାନ ମତରେ ପାଞ୍ଚ ମନ ପଚିଶ ପ୍ରକୃତି ଆଦି
Phuṅkā bandha ସ୍ଥୂଳ ଶରୀର—The body with five minds and twenty five propensities according to the Brahmajñāna school.
ଫୁଙ୍କା ବନ୍ଧ କଥା ସେ ସଦ୍ଗୁରୁ ମୋତେ—ପ୍ରାଚୀ. ପରଚେ ଗୀତା ।

ଫୁଙ୍କିବା—ଦେ. କ୍ରି. ( ସଂ. ଫୁତ୍କାର )—୧ । ମୁହଁବାଟେ ପବନ ଛାଡ଼ିବା;
Phuṅkibā ଫୁତ୍କାର କରିବା—1. To blow wind through
ଫ୍ କ୍ନା, ଫୁଁକ୍ନା ফুঁকনা; फुँकना the mouth.
ଫୁଙ୍କାଯିବା } କର୍ମବାଚ୍ୟ ରୂପ ଫୁଙ୍କିଦେଲେ ଉଡ଼ିଯିବା ପରି ସଢ଼ ଅଛି
ଫୁଙ୍କାହେବା } ତନ ... ଭଗବତ୍ ଗୀତ
୨ । ମୁହଁ ବା ନଳ ଦ୍ୱାରା ପବନ ଛାଡ଼ି ନିଆଁକୁ ସତେଜ କରାଇବା
2. To keep up a fire by constant blowing.
୩ । ମନ୍ତ୍ରପାଠ ପୂର୍ବକ ଘାଆ ବା ଭଙ୍ଗା ଉପରକୁ ମୁହଁ ଦ୍ୱାରା ପବନ ଛାଡ଼ିବା—
( ଫୁଙ୍କିଦେବା —ଅନ୍ୟରୂପ )
3. To blow wind over a sore or affected part of the body by reciting mantras.
ଗାଆର ବଥ ନା ପିଲଙ୍କୁ ଦୁଃଖ ହେଲେ ଫୁଙ୍କି ଉଡ଼ାଇ ଦେବ ।
ଫକୀରମୋହନ ଭ୍ରମଣ ଅଠଗଡ଼
୪ । (ନୂଆ ପ୍ରସବ କରିଥିବା ଗାଈଠାରୁ ଦୁଧ ଦୁହିଁବା ବେଳେ ଯେପରି ସେ ଦୁଷ୍ଟାମି ନ କରିବ, ସେହି ଉଦ୍ଦେଶ୍ୟରେ ଗଉଡ଼ମାନେ ତାହାର ପ୍ରସବ ଦ୍ୱାରରେ ମୁହଁ ବା ବାଉଁଶ ନଳ ଦେଇ ତା ପେଟ ଭିତରେ ପ୍ରଚୁର ପବନ ପୂରାନ୍ତି; ଏହିଭଳି ପ୍ରକ୍ରିୟାକୁ ଫୁଙ୍କିବା କହନ୍ତି)—ଗାଈ ଧରିବା—
4. To blow wind into the belly of a newly calved cow, so that she will submit easily to being milked.
୫ । ( ଲକ୍ଷଣାର୍ଥ ) ଧନକୁ ଅପବ୍ୟୟ କରିବା ବା ଉଡ଼ାଇ ଦେବା—
5. (figurative) To squander (money.
୬ । ଗୁପ୍ତ ଭାବରେ ଅନ୍ୟର କାନରେ କୌଣସି କଥା କହିଦେବା—
6. To whisper a matter into another's ears.
୭ । ( ଗୁରୁ ) ଶିଷ୍ୟର କାନରେ ମନ୍ତ୍ର ଦେବା—
7. (the spiritual preceptor) To whisper esoteric formula into the ears of a disciple.
୮ । ଶଙ୍ଖ, ବଂଶୀ ଆଦି ବଜାଇବା—
8. To blow conches, flutes etc.
ପୁଣି ଅଭିର ଅରେ ଫୁଙ୍କିଲି ମୁଁ ଶଙ୍ଖ ।
କୃଷ୍ଣସିଂହ ମହାଭାରତ. ଉଦ୍ଯୋଗ

ଫୁଙ୍ଗୁଲା—ଦେ. ବିଣ ( ସଂ. ନଗ୍ନ )—୧ । (ପୁଂ) ଅନାବୃତ ଶରୀର—
Phuṅg-lā 1. With naked or uncovered body.
ଫଙ୍ଗା } ଅନ୍ୟରୂପ ୨ । ଇତସ୍ତତଃ ବିକ୍ଷିପ୍ତ—2. Strewn here and there.
ଫୁଙ୍ଗୁଲା }
नंगा, ढींदा हुआ, तितरबितर ୩ । ( ପୁଂ ) ଫାଙ୍ଗୁଲା ( ଦେଖ )
( ଫୁଙ୍ଗୁଲୀ—ସ୍ତ୍ରୀ ) 3. Phāṅgulā (See).
—ପ୍ରାଦେ ( ସମ୍ବଲପୁର ) ବି—ଷ୍ଟେଟ ଗାତ—
ṅgal Small hole.

ଫୁଙ୍ଗୀ—ଦେ. ବି ( ସଂ. ନଗ୍ନ )—ବୌଦ୍ଧ ସନ୍ନ୍ୟାସୀ ବା ଭିକ୍ଷୁ—
Phuṅgi পুংগী फुगी Buddhist monk.

ଫୁଟ୍—ବୈଦେ. ବି ( ଇଂ )—ଇଂରାଜ ଦୈର୍ଘିକ ପରିମାଣବିଶେଷ;
Phuṭ ଗଜର ଏକତୃତୀୟାଂଶ; ୧୨ଇଞ୍ଚ; ପ୍ରାୟ ୧୬ ଅଙ୍ଗୁଳ
ଫୁଟ ফুট ପରିମାଣ; ପ୍ରାୟ ଏକପାଦ ପରିମାଣ—Foot (measure)
ଦେ. ( ଧ୍ୱନ୍ୟନୁକରଣ ) ଅ - ଫୁଟ୍ ଫୁଟ୍ ( ଦେଖ )
Phuṭ phuṭ (See)

ଫୁଟ୍କର—ଦେ. ବି. ( ସଂ. ସ୍ଫୁଟ ) ୧ । ପୃଥକ୍—1. Separate.
Phuṭ-kar ୨ । କ୍ଷୁଦ୍ର—2. Small.
ছোট ୩ । ବାଜେ—3. Miscellaneous.
फुटकर ୪ । ଅଯୁଗ୍ମ (ସଂଖ୍ୟା)—4. Odd (number).

ଫୁଟ୍କା—ପ୍ରାଦେ. ( ବାଲେଶ୍ୱର ) ବି—(ସଂ. ସ୍ଫୋଟକ; ଭୁଲ-ହିଁ ଫୁଟ୍କା)-
Phuṭ-kā ଫୁକ୍ନା ( ଦେଖ ) Phuk-nā (See)
ଦେ. ବି.—ଫୋଟକା ( ଦେଖ ) Phoṭakā (See)

ଫୁଟ୍କୁର୍ଡ଼ି(ରି) – ପ୍ରାଦେ. ( ଗଡ଼ଜାତ ) ବି—ଝୁମ୍ପୁର୍ଡ଼ି ୧ ( ଦେଖ )
Phuṭ-kurḍi(ri) Jhumpurḍi 1 (See)

ଫୁଟ୍ନୋଟ୍—ବୈଦେ. ବି. ( ଇଂ )—କୌଣସି ପୃଷ୍ଠାରେ ଲେଖା ଯାଇ-
Phuṭ-noṭ ଥିବା ବିଷୟ ସମ୍ବନ୍ଧେ ପୃଷ୍ଠା ତଳେ ଦିଆଯିବା ଟିପ୍ପଣୀ—
ফুটনোট फुटनोट Foot-note

ଫୁଟ୍ପାଥ୍—ବୈଦେ. ବି ( ଇଂ )— ମନୁଷ୍ୟ ଚାଲିବା ପାଇଁ ଅଭିପ୍ରେତ ପଥ
Phuṭ-pāth ফুটপাথ फुटपाथ Footpath.

ଫୁଟ୍ଫାଟ୍—ଦେ ଅ ( ଧ୍ୱନ୍ୟନୁକରଣ )—୧ । ଗୁପ୍ତ୍ଗୁପ୍ତ୍ କଥାବାର୍ତ୍ତା;
Phuṭ-phāṭ ଭୁଟ୍ଭାଟ୍—1. Whispering.
୨ । ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଅନୁଚ୍ଚ କଥାବାର୍ତ୍ତା ଦ୍ୱାରା ଗୁପ୍ତ କଥାର ପ୍ରକଟନ—
3. A secret being divulged by being carried from ear to ear by whispers.

ଫୁଟ୍ ଫୁଟ୍—ଦେ ଅ (ଧ୍ୱନ୍ୟନୁକରଣ) —ଭାତ ଫୁଟିବାର ଶବ୍ଦ—
Phuṭ phuṭ The sound of rice while boiling.
ফুট ফুট, ফুট ফাট ବି. (ସଂ. ସ୍ଫୁଟ) - ଦେହରେ ବିନ୍ଦୁ ବିନ୍ଦୁ ହୋଇ
दमदमा ଘିମିରି ଆଦି ବାହାରି ଯିବା; ବିରି ବିରି ହୋଇ ଫଳିଯିବା—
फूटफूट The coming out of pimples on the body; tiny eruptions

ଫୁଟ୍ବଲ—ବୈଦେ. ବି ( ଇଂ )—୧ । ଗୋଡ଼ଦ୍ୱାରା ଆଘାତ କରି
Phuṭ-bal ଖେଳାଯିବା ପେଣ୍ଡୁ—1. Football.
ফুটবল ୨ । ଗୋଡ଼ରେ ପେଣ୍ଡୁ ବାଡ଼େଇ ଖେଳିବା ଖେଳ—
फूटबाल 2. The game of football.

ଫୁଟ—ସଂ. ବି—(ସ୍ଫୁଟ୍ ଧାତୁ=ବିକସିତ ହେବା; ବ୍ୟକ୍ତ ହେବା; ଭେଦ
Phuṭa କରିବା+କର୍ତ୍ତୃ. ଅ; କ୍ରପାଦନ)—୧ । ସାପର ଫଣା—
1. The expanded hood of a serpent.
୨ । ଟୋପା—2. Drop
୩ । ଫୁଟି କାକୁଡ଼ି; ଲତାଫଳବିଶେଷ—
3. A cucurbitacious fruit; Cucumus Memordica.
୪ । ପ୍ରକାଶ—4. Exhibition.

୫ । ଯେଉଁ ଦ୍ରବ୍ୟ ସାହାଯ୍ୟରେ ଧାତୁ ତରଳାଇବାକୁ ହୁଏ—
5. A menstruum; a solvent; flux.

ବିଣ—୧ । ବିଦୀର୍ଣ୍ଣ—1. Pierced.

୨ । ପ୍ରସ୍ଫୁଟିତ—2. Opened; expanded.

ଦେ. ବି —(ସ. ପୁଟ)—ବୀଜକୋଷ; ପଣସ, ତେନ୍ତୁଳ, ଲେମ୍ବୁ ଆଦି ମଧ୍ୟସ୍ଥ ବୀଜପୂର୍ଣ୍ଣ କୋଷା—A seed-vessel of the jack, lemon, tamarind and such other fruits.
କୋଯା
कोषा

ଦେ. ବିଣ—(ସ. ସ୍ଫୁଟ)—ଗାଡ଼ିରେ ବା ବଗିରେ ଲାଗିବା ଏକୁଟିଆ(ଘୋଡ଼ା)—Single (Carriage-horse).
ফুট फुट

**ଫୁଟ(ଟ)ଣ**—ଦେ. ବି—ଫୁଟା (ଦେଖ)
Phutana Phuta. ( See )

**ଫୁ(ଟ)ଣା**—ଦେ. ବି (ସ. ସ୍ଫୋରଣ; ସ୍ଫୁଟନ)—୧ । ତରକାରି ଆଦିକୁ ଘିଅ ବା ତେଲରେ ବଘାରିବା ପାଇଁ ବ୍ୟବହୃତ ମସଲା; ବାଣ୍ଡିଫୁଟା—1. Condiment used to savour curry etc with ghee or oil.
Phuta(tu)na
ফোড়ন
छौंकनेका मसाला

୨ । ଭାତ ଆଦି ପାଇଁ ପାଣିଫୁଟିବା—2. The boiling of rice in water.
ফুটন
फूटना

**ଫୁଟନ୍ତ(ନ୍ତା)**—ଦେ. ବିଣ—(ସ. ସ୍ଫୁଟତ୍)—୧ । ପ୍ରସ୍ଫୁଟିତ; ଫୁଟିଥିବା; ବିକସିତ—1. Full blown
Phutanta(nta)
(ଫୁଟନ୍ତା—ଅନ୍ୟରୂପ)
ফুটন্ত
खिलाहुआ

କର୍ଣ୍ଣ ଅର୍ଜ୍ଜୁନଙ୍କ ଡାଗରେ ଗର୍ଜ୍ଜି ମର୍ଜ୍ଜି
ଫୁଟନ୍ତା ପଦ୍ମଣ ଶୋଭାକୁ ଦେଖିଲେ ଗର୍ଜ୍ଜି । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

୨ । ଅଗ୍ନି ଉତ୍ତାପରେ ଫୁଟୁଥିବା—2. Boiling on fire.

**ଫୁଟା**—ଦେ. ବି—(ସ. ସ୍ଫୁଟ୍. ଧାତୁ )—୧ । ଭାତ ଫୁଟିବା— Boiling of rice.
Phuta ফুটা, ফুটো फूटना

୨ । ବାଣ୍ଡିଫୁଟା; ତରକାରି ବଘାରିବା ମସଲା; ଫୁଟଣା—2. Spices used in frying or flavouring curry.
छौंकनेका मसाला

୩ । ଛିଦ୍ର; କଣା—3. Hole.
भुर, सूराख

୪ । ଫୁଲ ଫୁଟିବା – 4. The blowing of blossoms into flowers.
फूटना

ବିଣ—୧ । ପ୍ରସ୍ଫୁଟିତ ହୋଇଥିବା; ବିକସିତ (ଫୁଲ)—1. Expanded; full-blown, (flower).
ফুটন্ত
खीलाहुआ, फुटाहुआ

ଜଳସ୍ଥାନମାନଙ୍କେ ଫୁଟା ପଦ୍ମ ଗନ୍ଧ
ଲେଉଟେ ଭୃଙ୍ଗେ ସେଠାକୁ ଧାଇଁ ହୋଇ ଅନ୍ଧ । କୃଷ୍ଣସିଂହ. ମହାଭାରତ. ବନ ।

(ଫୁଟୀ—ସ୍ତ୍ରୀ) ୨ । ଫୁଟି ଯାଇଥିବା; ଛିଦ୍ର ହୋଇଥିବା; କଣା ହୋଇ ଥିବା—2. Having a hole.
ফুটা फुटाहुआ

**ଫୁଟା(ଟେ)ଇବା**—ଦେ. କ୍ରି—(ସ. ସ୍ଫୁଟ୍. ଧାତୁ)—( ଫୁଟିବା କ୍ରିୟାର ଣିଜନ୍ତ ରୂପ—The causative form of Phutiba).
Phuta(te)iba
ফুটান, ফোটান फुटाना, फुटवाना

୧ । ପ୍ରସ୍ଫୁଟିତ କରାଇବା—
1. To cause to expand.
ଫୁଟାଏ କୁସୁମବଣୀ କମଳ । ମଧୁସୂଦନ. ଛନ୍ଦମାଳା ।

୨ । ବିଦ୍ଧ କରିବା—2. To pierce through.

ବାଣରେ ଫୁଟାଇଲେ ତାଙ୍କର ଦେହକୁ ।
କୃଷ୍ଣସିଂହ. ମହାଭାରତ. ଖ୍ରଣ୍ଡ ।

୩ । ଛିଦ୍ର କରିବା—3. To make a hole.
ফোটান
फोडना

୪ । ଗୋଡ଼ ବା ହାତର ଅଙ୍ଗୁଠିର ଗଣ୍ଠିମାନଙ୍କୁ ମୋଡ଼ିବା ଦ୍ୱାରା ଟକ୍ ଟାକ୍ ଶବ୍ଦ ଉତ୍ପନ୍ନ କରାଇବା—4. To crack the finger joints.
फूटाना

୫ । ଭାତ ଆଦିକୁ ପାଣିରେ ସିଦ୍ଧ କରିବା, ଜଳକୁ କଡ଼ାଇରେ ବସାଇ ତାହା ଫୁଟିଲା ପରି କରିବା—5. To cause (water) to boil.
उबालना,
फूटाना

୬ । (ଶୋଭା, ସୌନ୍ଦର୍ଯ୍ୟ) ପ୍ରକାଶିତ କରାଇବା—
6. To bring out ( the beauty of a thing ); to manifest.

୭ । ବନ୍ଧୁକ ଆଦି ଫାୟାର୍ କରିବା—
7. To fire a gun.
फोडना

ফোড়ন দেওয়া ୮ । ତରକାରି ଆଦିକୁ ବାଣ୍ଡିମସଲା ଦେଇ ବଘାରିବା; ଛୁଙ୍କ ଦେବା—To flavour curry by frying it in oil with spices.
छौंकना

୯ । ବୁଝାଇବା —9. To explain.

୧୦ । ବିସ୍ତାରିତ ରୂପେ ପ୍ରକାଶ କରିବା—
10. To dilate; to descrbe in detail.
ଲଗା ଫୁଟାଇ କହିଲେ ବଢ଼ିଯିବ କଥା । ସ୍ୱାମୀ. ବ୍ରହ୍ମଜଳପଣ ଗୀତା ।

**ଫୁଟାଣ**—ଦେ. ବି—ଫୁଟଣା ( ଦେଖ )
Phutana Phutana ( See )

**ଫୁଟା ଲୁଗା**—ପ୍ରାଦେ. (ଗଞ୍ଜାମ) ବି—ଭୂକ; ବିଧବାମାନଙ୍କ ପିନ୍ଧିବା ଧଡ଼ି ନ ଥିବା ଲୁଗା—A cloth without coloured hems worn by widows
Phuta luga

**ଫୁଟି**—ଦେ ବି. ( ସ. ସ୍ଫୁଟ; ସ୍ଫୁଟିତ )—୧ । ପ୍ରକାଶ—
Phuti 1. Exhibition; manifestation.

୨ । ଏକ ପ୍ରକାର କାକୁଡ଼ି; ଚର୍ଭଟୀ; ଚର୍ଭଟିକା—
2. Cucumber; Cucumis Memordica.
ফুটী फूट

ବିଣ—୧ । ସ୍ଫୁଟ; ପ୍ରକାଶିତ—1. Manifested; patent.

୨ । ଖ୍ୟାତ; ପ୍ରକଟିତ—2. Divulged; published.

୩ । କ୍ଳାନ୍ତ; ଶ୍ରାନ୍ତ—3. Tired; fatigued.
ଅନେକ କାଳ ଗଲେ ଭ୍ରମି
ଫୁଟି ହୋଇଲେ ପଥଶ୍ରମୀ । ଜଗନ୍ନାଥ. ଭାଗବତ ।

**ଫୁଟିଆ**—ଦେ. ବିଣ. ( ସଂଖ୍ୟାବାଚକ ଶବ୍ଦ ସଙ୍ଗେ ବ୍ୟବହୃତ )—
Phutia ଏତେ ଫୁଟ ପରିମିତ—Measuring so many feet.
ফুটিয়া फुटिया

( ଯଥା—୫ ଫୁଟିଆ ଆଲମାରି । )

**ଫୁଟିଆଣି**—ଦେ. ବି—ଭାତ ଫୁଟିବା ସମୟରେ ହାଣ୍ଡିରୁ ବାହାର କରି ଆଣିବା ଗରମପାଣି—Boiling water brought out from the pot in which rice is being boiled.
Phutiani
ফুটন্ত জল
अदहन

**ଫୁଟି ଉଠିବା**—ଦେ. କ୍ରି. (ସ. ସ୍ଫୁଟିତ)—୧ । ପ୍ରସ୍ଫୁଟିତ ହେବା—
Phuti uthiba 1. To be full blown.

फूटे उठा, ଫୁଙ୍କା ବାଲି ଫଲେ ଫୁଟ ହଠେ ଛତ୍ରୁ, ଘୋର ଘନ ଘାର ପାଇଁ।
खौलजाना — ନନ୍ଦକିଶୋର. ନର୍ମ୍ମଦାଣୀ।

୨। ବିକଶିତ ହେବା; ପ୍ରକାଶିତ ହେବା; ସ୍ପଷ୍ଟ ରୂପେ ଦେଖାଯିବା—
2 To be manifest; to be seen clearly.

**ଫୁଟି କରିବା**—ଦେ କ୍ରି—ମାର୍ଗଶିର ମାସରେ ନୂଆ ଧାନ ସିଝାଇବା—
Phuṭi karibā — To boil newly harvested paddy in the month of Mārgaṣira.

**ଫୁଟିକା**—ଦେ. ବି—ଅଣ୍ଠୁରୁ ବଳାଗଣ୍ଠି ପର୍ଯ୍ୟନ୍ତ ଗୋଡ଼ର ଅଂଶ—
Phuṭikā जंघा — The calf of the leg.
ଗଣ୍ଠିରୁ ଅଣ୍ଠୁ ପର୍ଯ୍ୟନ୍ତେ,
ଫୁଟିକା ବଳାଇ ଯୁଗଳେ। ଗ୍ରାଗ. ପୂର୍ଣ୍ଣତମ ଚନ୍ଦ୍ରୋଦୟ।

ପ୍ରାଦେ. (ଗଡ଼ଜାତ) ବି—ନଦୀ ବା ଝର ନିକଟରେ ହେବା ବୃକ୍ଷବିଶେଷ —Harpullia Imbricata (tree).

**ଫୁଟି କାକୁଡ଼ି**—ଦେ. ବି.— ଫୁଟି (ଦେଖ)—Phuṭi 2. ( See )
Phuṭi kākurdi

**ଫୁଟିକିଆ**—ଦେ. ବିଣ—ଏକ ଫୁଟ ପରିମିତ ଲମ୍ବ—
Phuṭikiā — Measuring a foot.
(ଫୁଟକିଆ—ଅନ୍ୟରୂପ)

**ଫୁଟିଗୁଡ଼ି**—ପ୍ରାଦେ. (ବାଲେଶ୍ୱର) ବି—ଝୁମ୍ପୁଡ଼ି ୧ ( ଦେଖ )
Phuṭigurdi — Jhumpurdi 1 ( See )

**ଫୁଟିଫୁଟିକା**—ଦେ. ବି. ( ସଂ. କର୍କଟୀ )—ଫୁଟୁଫୁଟୁକା ( ଦେଖ )
Phuṭiphuṭikā — Phutuphuṭukā ( See )

**ଫୁଟିବା**—ଦେ. କ୍ରି. ( ସଂ. ସ୍ଫୁଟ୍ ଧାତୁ=ବିକସନ; ଭେଦନ ଭିନ୍ନ ଶବ୍ଦ ଧାତୁ )—୧। ପ୍ରସ୍ଫୁଟିତ ହେବା—
Phuṭibā
फूटा, फोटा — 1. To be full blown.
**फूटना, खौलना** ( ଯଥା—ଫୁଲ ଫୁଟିବା। )

୨। ଭୁଷିବା; ଫୋଡ଼ା ହେବା; (ମୁନିଆ ପଦାର୍ଥ) ବିଦ୍ଧ ହେବା—
**चुभना, गडना** 2. To prick.
( ଯଥା—ମୋ ଗୋଡ଼ରେ ଗୋଟିଏ କଣ୍ଟା ଫୁଟିଗଲା। )

୩। ଏକ ପାଖରୁ ଅନ୍ୟ ପାଖକୁ ଭେଦ କରିବା; ବିଦ୍ଧ
**फोडकर निकलना** କରିବା—3. To pierce through.
( ଯଥା— ଗୋଟିଏ ଶର ତାଙ୍କ ବକ୍ଷସ୍ଥଳକୁ ଫୁଟିଲା। )

**फुटजाना** ୪। କଣା ହେବା; ଛିଦ୍ର ହେବା; ଛିଦ୍ରଯୁକ୍ତ ହେବା—
4. To eat holes; to have holes.
( ଯଥା—ନିଆଁରେ ବସାଇବା ମାତ୍ରକେ ହାଣ୍ଡି ଟା ଫୁଟିଗଲା। )

**फुटपडना** ୫। ( ସୌନ୍ଦର୍ଯ୍ୟ ) ବିକଶିତ ହେବା; ସ୍ପଷ୍ଟରୂପେ ପ୍ରକାଶିତ ହେବା; ସ୍ପଷ୍ଟରୂପେ ଦେଖାଯିବା—
5. To be manifest; to be seen clearly.
ସମାଗମେ ଏବେ ଗଣ୍ଡେ ସୁନ୍ଦରୀର ଫୁଟିଲା ଲାଜ ସିନ୍ଦୂର—
ରାଧାନାଥ. ପାର୍ବତୀ।

**फुटना** ୬। ଗରମ ପାଣି ଅଗ୍ନି ଉତ୍ତାପରେ ବୁଦ୍‌ବୁଦ୍‌ଯୁକ୍ତ ହୋଇ ଟକମକ ଶବ୍ଦ କରିବା—6. To boil; to bubble.
( ଯଥା—ଭାତ ଫୁଟୁଅଛି ଟକର ମକର। )

**फुटना** ୭। ( ବାଣ, ଫୋଟକା ଆଦି ) ଛୁଟିବା ଶବ୍ଦପୂର୍ବକ ଫାଟିବା ହେବା—7. To be fired; to explode with a sound.
(ଯଥା— ବନ୍ଧୁକ ବା ତୋପ ଫୁଟିବା ମାତ୍ରକେ ସମସ୍ତେ ଉଠିବସିଲେ। )

**फुटना** ୮। ( ଚକ୍ଷୁ ) ଦୃଷ୍ଟିଶକ୍ତିହୀନ ହେବା; ନଷ୍ଟ ହେବା—
8. (the eye) To be blind; to be lost.
( ଯଥା—ବସନ୍ତରେ ତା ଆଖି ଫୁଟିଗଲା। )

୯। ( ବହୁ ସଂଖ୍ୟକ ଛୋଟ ମାଛ ) ଜଳର ଉପରଭାଗକୁ ଡେଇଁବା—9. ( a large number of small fishes ) To spring up from water in large numbers.

**ऋतुमती होना** ୧୦। ( ଅଶ୍ଳୀଳ ) (ବାଳିକା) ପ୍ରଥମେ ଋତୁମତୀ ହେବା—
10. ( a girl ) To have the menses for the first time; to attain puberty.

**लौटना** ୧୧। (କଉଡ଼ି ଖେଳରେ କମ ବା ବେଶି ଦାନ ପଡ଼ିବାଦ୍ୱାରା ଖେଳାଳିର ସାରି ) ପାଚ ନ ପାରି ପୁଣି ଲେଉଟିବା; କଞ୍ଚା ହେବା—11. ( the cowrie of a player ) To be obliged to start its movements anew from the beginning owing to a throw resulting in a higher figure than the required one.

**फुटना** ୧୨। ଧାନକୁ ଭାଜିଲେ ଧାନ ଉପରର ଚୋପା ବିଦୀର୍ଣ୍ଣ ହୋଇ ତହିଁ ମଧ୍ୟରୁ ଖଇ ଶବ୍ଦ କରି ଡେଇଁ ଡେଇଁ ବାହାରି ପଡ଼ିବା—12. To burst (said of paddy and other chaffed grains while being fried).
( ଯଥା—ରଙ୍ଗିଅରିଆ ଧାନ ଭଲ ଖଇ ଫୁଟେ। )

**गडगडना** ୧୩। ଠକ ଠକ ଶବ୍ଦ କରିବା—13. To make a bubbling sound; to make a cracking sound.
( ଯଥା—ଗୁଡ଼ଯାକ ତା ପେଟ ଫୁଟୁଛି। )

୧୪। ପ୍ରକଟିତ ହେବା—
14. To be published or divulged.
ଫୁଟି ବାହାରୁଛି ଦୁଃଖ ଦୀର୍ଘ ନିଶ୍ୱାସ – ରାଧାନାଥ· ନନ୍ଦିକେଶ୍ୱରୀ।

୧୫। ସୁନ୍ଦରରୂପେ ପ୍ରକାଶିତ ହେବା—
15. To come out or appear beautifully.
( ଯଥା—ଏ ଚିତ୍ରରେ ଶ୍ରୀକୃଷ୍ଣଙ୍କ ରୂପଟି ଫୁଟିଛି। )

**फुटना** ୧୬। ଛିଦ୍ରମୟ ବା ବ୍ରଣମୟ ହେବା—
16. To be full of holes or sores.
( ଯଥା—କୁଷ୍ଠ ରୋଗରେ ତା ସର୍ବାଙ୍ଗ ଫୁଟିଗଲାଣି। )

**थकना** ୧୭। ଶ୍ରାନ୍ତ ହେବା; କ୍ଳାନ୍ତ ହେବା; ଥକିଯିବା—
17. To be over-tired.
ଚାଲିପି ଚାଲିପି ଗୋଡେ ଫୁଟିଲେଣି ଆଳ—କବିସୂର୍ଯ୍ୟ. ସଙ୍ଗୀତ।

**फुटना** ୧୮। ଆବରଣ ମଧ୍ୟରୁ ଫିଟି ବାହାରକୁ ବାହାରି ପଡ଼ିବା—
18. To burst.
( ଯଥା—କପାକଡ଼ା ଫୁଟିଗଲାଣି। )

୧୯। ଜାତ ହେବା; ଜନ୍ମ ହେବା—19. To be born.
ଯାବତ ଯୋନିରେ ଭ୍ରମନ୍ତି, ସର୍ବତ୍ର ଫୁଟିଣ ମରନ୍ତି—
ଜଗନ୍ନାଥ. ଭାଗବତ।

୨୦ । ପୀଡ଼ା କରିବା; ପୀଡ଼ାଯୁକ୍ତ ହେବା—20. To become painfull; to ache; to smart.

କେ ବୋଲେ ଶ୍ରୀଅଙ୍ଗ ଫୁଟିବ ସିନା—ସାଳଭୂଷ. ରସକଲ୍ଲୋଳ ।

୨୧ । ବିଦ୍ଧ ହେବା—21. To be pierced through.

( ଯଥା—କାଣ୍ଡରେ ତା ଛାତି ଫୁଟିଗଲା )

**ଫୁଟୀ**—ଦେ. ବି. ( ସଂ. ସ୍ଫୁଟୀ; ପର୍କଟୀ )—କାକୁଡ଼ି ଜାତୀୟ ଲତାଫଳ-
Phuṭi ବିଶେଷ; ପର୍କଟୀ; ଚିର୍ଭଟୀ—A cucurbitacious fruit;
ফুটী **फुट, फुयट, फुटी** Cucumis Memordica.
(ଫୁଟୀକାକୁଡ଼ି—ଅନ୍ୟରୂପ) [ ଦ୍ର—ଏହା ଦେଖିବାକୁ କାକୁଡ଼ି ପରି, କିନ୍ତୁ ବେଶି ଲମ୍ବା, ମୋଟ ଓ ଚିକଣ; ପାଚିଲେ ହଳଦିଆ ହୋଇ ଫାଟିଯାଏ । ]

**ଫୁଟୁକା**—ଦେ. ବି—ଫୋଟକା ( ଦେଖ )
Phuṭukā Photakā ( See )

**ଫୁଟୁକି**—ଦେ. ବି. ( ସଂ. ସ୍ଫୋଟ; ଛୋଟିକା )—୧ । ଅଙ୍ଗୁଠି ଫୁଟାଇବା
Phuṭuki ଶବ୍ଦ—1. Snapping of the fingers; crack-
টুস্‌কি, টোস্‌কা ing sound with the fingers; fillip.
**चुटकी, थापी** ୨ । କରତଳକୁ ପାତ୍ର ପରି କରି ଦେହର ମାଂସଳ ଅଂଶରେ ବାଡ଼େଇବାର ଶବ୍ଦ—2. Sound produced by striking the palm of the hand ( made into a cup ) on a fleshy part of the body; patting.

[ ଦ୍ର—ଗୋଡ଼କୁ ବା ଦେହକୁ ଘଷିବା ସମ୍ପୃକ୍ତିରେ ଘଷିବା ବ୍ୟକ୍ତି ଘଷାଇ ହେବା ବ୍ୟକ୍ତି ଦେହରେ କରତଳଦ୍ୱାରା ଫୁଟୁକି ମାରେ ଓ ମାଲମାନେ ଲଢ଼ିବା ବା କସରତ କରିବା ପୂର୍ବରୁ ମଧ୍ୟ ନିଜ ନିଜ ଦେହରେ ଫୁଟୁକି ମାରି ଥାଆନ୍ତି । ]

**ଫୁଟୁକି ଫୁଟା(ଟେ)ଇବା**—ଦେ. କ୍ରି—୧ । ହାତର ଦୁଇ ଅଙ୍ଗୁଠିର
Phuṭuki phuṭā(ṭe)ibā ଫୁଟାଇବା—1. To make
টুসকী মাবা a cracking sound with two fingers.
**चुटकी बजाना, थापी मारना** ମୁହୁର୍ମୁହୁ ମାରି ହାଇ ଫୁଟୁକି ଫୁଟାଇ । ରଥଯାତ୍ରା, ମହାଯାତ୍ରା ।

( ଫୁଟୁକି ମାରିବା—ଅନ୍ୟରୂପ )

[ ଦ୍ର—ବୃଦ୍ଧାଙ୍ଗୁଳ ଓ ମଧ୍ୟମାଙ୍ଗୁଳ ସଂଯୋଗରେ ଫୁଟୁକି ଜାତ ହୁଏ; କିନ୍ତୁ ମଧ୍ୟମାଙ୍ଗୁଳର କରତଳର ମୂଳଦେଶରେ ଆଘାତ ଯୋଗେ ଏ ଶବ୍ଦର ଉତ୍ପତ୍ତି ହୁଏ । ]

୨ । କରତଳକୁ ପାତ୍ରାକୃତି କରି ଶରୀରରେ ଆଘାତ କରିବା—2. To pat on the body with the palm ( by making it like a cup).

**ଫୁଟୁକି ମାରିଦେବା**—ଦେ. କ୍ରି.—(ଲକ୍ଷଣାର୍ଥ)—କୌଣସି ବିଷୟକୁ ଶୁଣି
Phuṭuki māri ḍebā ନ ଶୁଣିଲା ପରି କରି ବେଖାତିର କରିବା—
**चुटकीमें उडादेना** (figurative) To disregard.
[ଫୁଟୁକିରେ ଉଡ଼ା(ଡ଼େ)ଇ ଦେବା—ଅନ୍ୟରୂପ]

**ଫୁଟୁକୁରିଆ**—ଦେ. ବିଣ.—(ସଂ. କ୍ଷୁଦ୍ର)—ଛୋଟ; କ୍ଷୁଦ୍ର—
Phuṭukuriā ছোট **फुटकर** Small; petty.
(ଫୁଟୁକୁରିଆ—ଅନ୍ୟରୂପ)

**ଫୁଟୁ ଫୁଟୁକା**—ଦେ. ବି.—(ସଂ. କଟଭୀ)—୧ । ବନ୍ୟ ପ୍ରଜାତୀ ଲତା
Phuṭu phuṭukā ବିଶେଷ—1. The Staff tree; Cardiospermum Halicacabum.

ଫୁଟଫୁଟକା, ଫଟି ଫୁଟିକିଆ, ଫୁଟି ଫୁଟକା, ଫୁଟି ଫୁଟିକିଆ, ଫୁଟୁଫୁଟୁକିଆ — ଅନ୍ୟରୂପ

[ଦ୍ର—ଏହା ବାରି ବାଡ଼ରେ ଜନ୍ମେ; ପତ୍ର କ୍ଷିପଣ୍ଡି, ଫଳ ତିନି ଫାଳିଆ । ଫଳକୁ ହାତରେ ଚିପି ଦେଲେ ଫୁଟେ ।]

ସଂ.—ଜ୍ୟୋତିଷ୍ମତୀ, କଟଭୀ, ଜ୍ୟୋତିଷ୍କା, ପାରାବତପଦୀ, ପଣ୍ୟା, ଲତା, ଲୁଲୁଭାନ୍ତୀ
**लताफटकी, नयाफटकी**
**मालकङ्गिनी काङ्गोनी**
ନେ. କାଙ୍ଗୋଣୀ, ଉଙ୍ଗୁଲୁ
ଗୁ. ମାଲକାଙ୍କଣ
ମ. କାଙ୍ଗୋଣୀ

୨ । ଅମରି ପୋଇ—2. A wild plant (the buds of which make a bursting sound.

[ଦ୍ର—ଏଥିର କଢ଼କୁ ଚିପି ଦେଲେ ଫଟ ଫଟ ହୋଇ ଫୁଟେ । ଏଥିର ପତ୍ର ମୋଟା । ପତ୍ରର ଦାଢ଼ କଣ୍ଟା-କଣ୍ଟା । ପତ୍ରରୁ ଗଛ ଜାତ ହୁଏ ।]

ଦେ. ବିଣ.—୧ । ବିରିବିରି ହୋଇ ଦେହରେ ଫଳ ଯାଇଥିବା—1. Appearing or coming out on the body like small eruptions or pimples

୨ । ଛିପଛିପକିଆ; ବିନ୍ଦୁ ବିନ୍ଦୁଯୁକ୍ତ—2. Spotted.

**ଫୁଟୁ(ସୁ)ରୁ ଫୁଟୁ(ସୁ)ରୁ ହେବା**—ଦେ. କ୍ରି.—ଗୋପନରେ ଧୀରେ ଧୀରେ
Phuṭu(su)ru phuṭu(su)ru hebā କଥାବାର୍ତ୍ତା ହେବା—
**फुसुरु फुसुरु होना** To talk silently and in whispers.

ଗାଁରେ ଯାମାନେ ଭିତରେ ଭିତରେ କହିଥା ଆଉ ଗୋଷ୍ଠୀ କଥା ଫୁସୁରୁ ଫୁସୁରୁ ହେଲେ । ଲକ୍ଷ୍ମୀଲକ୍ଷ୍ମୀମାସ, ନଅଭୁଣୀ ।

**ଫୁଡ଼୍ ଫୁଡ଼୍**—ଦେ. ଅ. (ଧ୍ୱନ୍ୟନୁକରଣ)—ଫଡ଼ ଫଡ଼ଠାରୁ ଅନୁଚ୍ଚ ଶବ୍ଦ-
Phurd phurd Light cracking sound.
(ଫୁଡ଼ୁ ଫୁଡ଼ୁ—ଅନ୍ୟରୂପ) (ଯଥା—ତା ପିଣ୍ଡ ଫଡ଼୍ ଫଡ଼୍ ହେଉଅଛି ।)
ফুড় ফুড়, ফুডুত ফুডুত **फुडफुड**

**ଫୁତ୍**—ସଂ. ଅ.—(ଫୁତ୍ ଧାତୁ+ଭାବ. କ୍ୱିପ୍, ନିପାତନ)—୧ । ଧିକ୍କାର;
Phut ଭୁଚ୍ଛ ଭର୍ତ୍ସଣ—1. Expression of contempt; hooting.
(ଫୁତ୍—ଅନ୍ୟରୂପ)

୨ । ମୁଖରେ ଫୁଙ୍କିବା ଶବ୍ଦ—2. Hissing or blowing sound with the mouth.

**ଫୁପ୍ଫୁସ**—ସଂ. ବି.—ଫୁସ୍ ଫୁସ୍; ହୃଦୟସ୍ଥ ଶ୍ୱାସ ମୁଣା—
Phup-phusa Lungs.

**ଫୁ(ଫୂ)ତ୍କର**—ସଂ. ବି.—(ଫତ୍=ଶବ୍ଦାନୁକରଣ+କୃ ଧାତୁ+କର୍ତ୍ତୃ. ଅ)
Phu(phū)t kara ଅଗ୍ନି; ନିଆଁ—Fire.
[ଫୁ(ଫୂ)ତ୍କର—ଅନ୍ୟରୂପ]

**ଫୁ(ଫୂ)ତ୍କାର**—ସଂ. ବି. (ଫୁତ୍+କୃ ଧାତୁ+ଭାବ. ଅ)—୧ ଫୁଙ୍କିବା—
Phu(phū)t-kāra 1. Blowing of air through the mouth.

ଫୁ(ଫୂ)ତ୍କୃତ, ଫୁ(ଫୂ)ତ୍କାରି, ଫୁ(ଫୂ)ତ୍କୃତି — ଅନ୍ୟରୂପ

୨ । ଫୁଁ ଫୁଁ ଶବ୍ଦ; ଫଁଫୁକାର; ଫଁ ଫଁ ଶବ୍ଦ—2. Hissing sound.

୩ । ଅହଙ୍କାର; ଘୃଣା ପ୍ରଦର୍ଶନ—3. Arrogance; showing contempt or disdain.

**ଫୁତ୍କାରିଣୀ**—ଦେ. ବିଣ.—ଫୁତ୍କାରଯୁକ୍ତ—
Phutkāriṇī Having a blowing or hissing sound.

ହର ପ୍ରେମ ଭକ୍ତି ଭକ୍ତ ମନ ହରି ବକ୍ଷେ ବସି ଫୁତ୍କାରିଣୀ ।
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।

**ଫୁଟ୍‌ଲି**—ପ୍ରାଦେ. (ବାଲେଶ୍ୱର) ବିଣ.—ଅତି କ୍ଷୁଦ୍ର—
Phut-li Very small.
(ଯଥା—ଫୁଟ୍‌ଲି କେଇଣ୍ଟି ।)

**ଫୁନିବା**—ପ୍ରାଦେ. (କଳାହାଣ୍ଡି) କ୍ରି.—ପାଛୁଡ଼ିବା—
Phunibā To winnow.

**ଫୁପା(ପ୍ପା, ଫା)**—ବୈଦେ. ବି. ପୁଂ. (ହି. ସଂ. ପଶ୍ୱ=ଧାତ୍ରୀ)—(ମୁସଲମାନୀ
Phupā (ppā; phā) ଭାଷା) ପିଉସା—Father's sister's
ପୀସେ ମଶାୟ ফুপা (ଫୁପୀ [ପ୍ପୀ]ଫୀ—ସ୍ତ୍ରୀ) husband.

**ଫୁପି(ଫି)**—ଦେ. ବି.—୧ । ମୁଣ୍ଡର ରୂପୀ ରୋଗ—
Phupi(phi) 1. A skin disease in the scalp.
୨ । ଫିମ୍ପି; ଛତୁଆ—2. Mildew; mold.
୩ । କାଠରେ ପୋକ ଲାଗିବା ଯୋଗୁଁ ବାହାରିବା ପାଂଶୁ—
3. Dust from moth-eaten wood.
ବିଣ.—ଖଉଗ୍ନ; କାଷ୍ଠଦଗ୍ଧ—Moth-eaten.

**ଫୁପି ମାରିବା**—ଦେ. କ୍ରି.—ଫିମ୍ପି ମାରିବା; ଛତୁଆ ମାରିବା—
Phupi māribā To be mildewed.

**ଫୁପୁ(ଫୁ)**—ପ୍ରାଦେ. (ଗଡ଼ଜାତ) ବି.—ଖୁଡ଼ୁତା ଦେଢ଼ୁତା ଭାଇ—
Phupu(phu) Cousin.

**ଫୁଫ୍(ଫୁ)ସ**—ସଂ. ବି.—ଫୁସ୍‌ଫୁସ (ଦେଖ)
Phuph(phu)sa Phus-phusa (See)

**ଫୁଫ୍‌ଲା**—ପ୍ରାଦେ.—(ସମ୍ବଲପୁର) ବିଣ. ପୁଂ.—ପାକୁଆ—
Phuph-lā (ଫୁଫ୍‌ଲୀ—ସ୍ତ୍ରୀ) Toothless.

**ଫୁ ଫୁ**—ଦେ. ବି.—(ଧ୍ୱନ୍ୟନୁକରଣ)—୧ । ସର୍ପମାନଙ୍କର ଶବ୍ଦ—
Phu phu 1. The hissing of serpents
ফোঁস ফোঁস फुफु ସର୍ପ ଧାମନ୍ତି ଫୁ ଫୁ କରି,
ଅନଳ ପ୍ରାୟ ଚକ୍ଷୁ ଧରି । ଜଗନ୍ନାଥ, ଭାଗବତ ।
फूफू धाई ୨ । (ସ୍ତ୍ରୀ) (ସଂ. ପଶୁ=ଧାତ୍ରୀ)—ଧାଇ—2. Nurse.

**ଫୁଫୁକାର**—ଦେ. (ସଂ. ଫୁତ୍କାର)—ବି.—ଫୁଁ ଫୁଁ ଶବ୍ଦ—
Phuphukāra Hissing sound.
ফোঁস, ফোঁস फुफकार, फुसकार
(ଫୁ ଫୁକୃତ—ଅନ୍ୟରୂପ) ବଳି ଅଛ ଜନ ଧାର ରୁଧିର
(ଫୁ ଫୁକାରିବା—କ୍ରି) ଫୁଫୁକାର କରି କବନ୍ଧ ଗତ । ବିଶ୍ୱନାଥ, ବିଚିତ୍ରରାମାୟଣ ।

**ଫୁର୍**—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଫୁରୁ ଫୁରୁ (ଦେଖ)
Phur 1. Phuru phuru (See)
୨ । ଫୁରର (ଦେଖ)—2. Phurr (See)

**ଫୁର୍ ଫୁରିଆ**—ଦେ. ବି.—ଘାସ ପର ବୋରଝାଙ୍କି ଉପରେ ମାଡ଼ିବା ଦଳ-
Phur phuriā ବିଶେଷ—A kind of water-weed
(ଫୁରୁଫୁରା, ଫୁରୁଫୁରିଆ—ଅନ୍ୟରୂପ) growing on other weeds.

[ଦ୍ର—ଏହାର ସଣ୍ଢ଼ା ପିଥାନ୍ତ ସଣ୍ଢ଼ା ପଞ୍ଜ; ଉଚ୍ଚରେ ପ୍ରାୟ ୧୨ ହାତ ବା ୬ ହାତ ବଢ଼େ । ସଣ୍ଢ଼ା ମଞ୍ଜିରେ ଫୁଲ ଥାଏ । ଫୁଲକୁ ଫୁଟାଇ ସଣ୍ଢ଼ା ବାହାରେ । ଫୁଲ ମୂଳକୁ ଗୃହ କଡ଼କୁ ବାନ୍ଧିଟା ନଣ ବାହାରେ ଫୁଲଟା ପେଣ୍ଡୁ ଭଳ ।]

**ଫୁରର୍**—ଦେ. (ଧ୍ୱନ୍ୟନୁକରଣ) ଅ.—ଛୋଟ ଚଢ଼େଇ ଉଡ଼ି ଯିବାର ଶବ୍ଦ-
Phur-r The fluttering sound produced by a small bird flying.
ফর फुरर

**ଫୁର୍‌ଲା**—ପ୍ରାଦେ. (ବାମଣ୍ଡା)—ବି.—ଛଚିନ୍ଦା—
Phur-lā Snakegourd.

**ଫୁର୍‌ସ(ସେ)ତ**—ବୈଦେ. ବି. (ଆ)—ଅବକାଶ—
Phur-sa (se) ta Leisure.
ফুরসত फुरसत

**ଫୁରଣ**—ଦେ. ବି.—(ସଂ. ସ୍ଫୁରଣ)—୧ । ଚକ୍ଷୁ ଆଦିର ସ୍ପନ୍ଦନ, ଆଖି ବା
Phuraṇa ବାହୁ ଆଦିର ଡେଇଁବା—1. Throbbing or tingling of the eyelids or skin.
স্ফুরা ୨ । ସ୍ଫୂର୍ତ୍ତି—2. Grandeour.
फडकना ୩ । ପ୍ରକାଶ—3. Manifestation.

**ଫୁରସ**—ଦେ. ବି.—୧ । ଫାରସା କୋଳି (ଦେଖ)
Phurasa 1. Phārasākoḷi (See)
ফরুস ୨ । ଉଦ୍ୟାନଜାତ ପୁଷ୍ପ ବୃକ୍ଷବିଶେଷ—
फुरस 2. Lagerstraemia Indica.
(ଯଥା—ଏହାର ଫୁଲ ବଡ଼, ନାଲି, ଧଳା ବା ତାମ୍ର ବର୍ଣ୍ଣ । ଫୁଲ ଷଟ୍‌ଦଳ କୁଞ୍ଚିତ ଧାର, କେଶର ଅନେକ—ଯୋଗେଶଚନ୍ଦ୍ର ।)

**ଫୁରସା(ସେ)ଇବା**—ଦେ. କ୍ରି.—୧ । ଫୁରସିବା କ୍ରିୟାର ଣିଜନ୍ତ ରୂପ—
Phurasā(se)ibā 1. The causative form of phurasibā.
ভীজিয়ে খুঁড়া করা
भीगाकर चूर करना ୨ । ଜଳ, ବାୟୁ ବା ଅଗ୍ନି ସାହାଯ୍ୟରେ ଚୂନ
(ଫୁରୁସା(ସେ)ଇବା—ଅନ୍ୟରୂପ) ବା ଅଙ୍ଗାରର ସମ୍ବନ୍ଧ ପୃଥକ କରିବା-
2. To slake (lime).

**ଫୁରସିବା**—ଦେ. କ୍ରି.—ଗୋଟା ବାନ୍ଧିଥିବା ଚୂନ, ପଥର ବା ସିପ ବାୟୁ-
Phurasibā ପ୍ରଭାବରେ ଚୂର୍ଣ୍ଣୀଭୂତ ହେବା—To become slaked (said of lime).
গুঁড়া হওয়া चूर होना
(ଫୁରୁସିବା—ଅନ୍ୟରୂପ)

**ଫୁରି**—ଦେ. ବି.—ଶୀତ ଦିନରେ ନିଆଁ ଜାଳି ପୋଇଁବା ପାଇଁ ସଂଗୃହୀତ
Phuri ଛୋଟ ଛୋଟ କାଠିର ସମୂହ—Small light firewood collected during winter for lighting a fire to warm one's body with.

**ଫୁରିବା**—ଦେ. କ୍ରି.—(ସଂ. ସ୍ଫୁର ଧାତୁ; ପ୍ରା. ଫୁର ଧାତୁ)—୧ । ସ୍ଫୁରିବା;
Phuribā ସ୍ପନ୍ଦିତ ହେବା; ଡେଇଁବା, କମ୍ପିବା—1. To tingle;
স্ফুরা फडकना to shake; to throb; to vibrate.
(ଯଥା—ମୋ ବାଁ ଆଖି ଦୁଇଦିନ ହେଲା ଫୁରୁଛି ।)
୨ । ସ୍ଫୁରିବା; ସ୍ଫୂର୍ତ୍ତି ହେବା; ପ୍ରକାଶିତ ହେବା—
2. To find expression; to find utterance; to be given vent to.

ଚାମ୍ଚେଡ ତାଙ୍କ ଦେଲେ·ଫୁରେ ଶଙ୍ଖ ଧ୍ୱନ ।
ପ୍ରାଚୀ. ପ୍ରଭାତ. ଶଶିସେଣା ।

**ଫୁରୁକୁଟିଆ**—ଦେ. ବି.—ମୁର୍ଦ୍ଦାର, ଚର୍ବି, ଚମ୍, କେଶ ଆଦି ପୋଡ଼ିବା ଦ୍ୱାରା
Phurukuṭiā ଜାତ (ଗନ୍ଧ)—Having the smell of
ମଡ଼ାପୋଡ଼ା **चिराद्, चिराइन** burnt fat, skin, hair or
(ଫୁରୁକୁଟିଆ, ଫୁଲୁକୁଟିଆ—ଅନ୍ୟରୂପ) car coss.

**ଫୁରୁଫୁରି**—ଦେ. ବି.—(ସଂ. ପର୍ପଟ)—୧ । ଗଛର ଶୁଖିଲା ଛାଲି—
Phuru phuri 1. Peeled off bark of some trees.
পাপড়ী **पपाड़, चिपड** ୨ । ଉଇଁଶ୍ଚ, ଅଶ୍ୱତ୍ଥ ଆଦି ଗଛର ଗଣ୍ଡିରେ
(ଫୁରି ଫୁରି—ଅନ୍ୟରୂପ) ବା ଦେହରେ ଜାତ ହେବା କେଶରଯୁକ୍ତ
ଗୁଚ୍ଛ—2. A hairy vegetable growth on the trunk of certain trees.

**ଫୁରୁ ଫୁରୁ**—ଦେ ଅ· (ଧ୍ୱନ୍ୟନୁକରଣ)—୧ । ପତଳା ଲୁଗା ଆଦି
Phuru phuru ଚିରି ଯିବାର ଶବ୍ଦ—1. The sound of
ফুরু ফুরু (ଫୁର୍ ଫର୍—ଅନ୍ୟରୂପ) tearing a cloth.
୨ । ଝୋଟ ବା ତୁଳାରେ ନିଆଁ ଲାଗି ଯିବାର ଶବ୍ଦ—
2. The sound of jute or cotton catching fire.
୩ । କାଠି ଓ କୁଟା ଆଦି ଶୀଘ୍ର ଜଳି ଯିବା ପ୍ରକାରେ—
3. Like the quick burning of straw and other inflamable articles.
୪ । ପତଳା କେଶଗୁଚ୍ଛ ପବନରେ ସ୍ନିଗ୍ଧ ଭାବରେ ଉଡ଼ିବା
ପ୍ରକାରେ—4. Like the waving of a thin tuft of hair in the wind.

**ଫୁରୁଣା**—ଦେ. ବିଣ.—(ସଂ. ସ୍ଫୁରଣ)—୧ । ପ୍ରଫୁଲ୍ଲ; ଆନନ୍ଦିତ—
Phuruṇā 1. Overjoyed; delighted.

ଲଙ୍କାରେ ଏହି ମାତ୍ର ଅଛି ବୀର, ଫୁରୁଣା ହୋଇଣ କର ସମର ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

୨ । ଭାଗ୍ୟବାନ୍—2. Fortunate.
ଯାହା ଧନ ଯେ ଫିଙ୍ଗି ଦେଲ ପାଣିକି,
ଫୁରୁଣା ହେବ କାହା ଘେନ ଏଣିକି । କବିସୂର୍ଯ୍ୟ ରତ୍ନାକର ଚମ୍ପୂ ଫ ଗୀତ ।

୩ । ( ସଂ. ପୂର୍ଣ୍ଣକାମ ) ପୂର୍ଣ୍ଣମନୋରଥ—3. Successful; having one's desires fulfilled.

ରେ କଶୋଷ ! ଫୁରୁଣା ହୋଇ ତୁ ରସ ।
କବିସୂର୍ଯ୍ୟ, କିଶୋର ଚମ୍ପୂ ଫ. ଗୀତ ।

୪ । (ସଂ. ସ୍ଫୁରଣ) ସ୍ଫୂର୍ତ୍ତିଯୁକ୍ତ—4. Vigorous.
ବି.—ଆନନ୍ଦ; ଫୁଲ୍ଲପଣ—Joy; delight.

**ଫୁରୁସତ**—ବୈଦେ. ବି. (ଆ. ଫୁର୍‌ସତ୍)—୧ । ଅବକାଶ; ଅବସର—
Phurusata ফুরসত **फुरसत** 1. Leisure.
ଫୁର୍‌ସତ୍, ଫୁର୍‌ସେତ୍, ଫୁରୁସେତ୍ } ଅନ୍ୟରୂପ

ଆପଣଙ୍କର ଯେବେ ଇଚ୍ଛା, ଫୁରୁସତ ବେଳେ କହିଲେ
ଆମେ ସବୁ ରାମାୟଣ ଯାକ ଶୁଣାଇବୁ ।
ନୀଳକଣ୍ଠ.ପେଲଙ୍କ ରାମାୟଣ ।

୨ । ବିଶ୍ରାମ—2. Rest.

**ଫୁଲ୍**—ବୈଦେ. ବିଣ.—(ଇଂ. ଫୁଲ୍)—ସମ୍ପୂର୍ଣ୍ଣ; ପରିପୂର୍ଣ୍ଣ—
Phul ফুল **फुल** Full.

ପ୍ରାଦେ. (ସମ୍ବଲପୁର) ବି.—(ଫୁଲର ଶେଷ ଅକ୍ଷରର ହଲନ୍ତ ଉଚ୍ଚାରଣ) ଫୁଲ—Flower.
ବୈଦେ. ବିଣ.(ଇଂ. ଫୁଲ୍)—ନିର୍ବୋଧ—Foolish.
ବି (ଗାଳି)—ନିର୍ବୋଧ ବ୍ୟକ୍ତି—A fool.

**ଫୁଲ୍ ଉଶାସ୍**—ପ୍ରାଦେ. ( ସମ୍ବଲପୁର ) ବିଣ—ଅତି ହାଲୁକା ( ଫୁଲପରି
Phul uśāsa ହାଲୁକା)—Very light ( like a flower ).

**ଫୁଲ୍‌କା**—ଦେ. ବି.—୧ । ମଲ୍ଲକ୍ରୀଡ଼ା ପାଇଁ ଘେରି ହୋଇଥିବା ସ୍ଥାନ—
Phulkā 1. A circular ground prepared for
ফলকা **अखाड़ा** athletic exercises.
ପ୍ରାଦେ. (ବାଲେଶ୍ୱର) ବି. (ଭୁଲ୍.ବଂ. ଏହି ଅର୍ଥରେ ଏହି ଶବ୍ଦ)—
୧ । ମାଛର ଗାଲିସି—1. The gills of a fish.
୨ । ଏକ ଜାତୀୟ ବଳଘାସ—A kind of weed grow-
**फुलका** ing in corn-fields.
ଦେ. ବିଣ. (ସଂ. ସ୍ଫାୟୃ ଧାତୁ ) ସ୍ଫୀତ—Swollen.

**ଫୁଲ୍ ତାନିର୍**—ପ୍ରାଦେ. ( ସମ୍ବଲପୁର ) ବି—ଏକ ଜାତୀୟ ମୋଟାଳିଆ
Phul-tānir ଘାସ—Potyloca Barbata; a kind of coarse grass.
[ ଦ୍ର—ଏହା ୫ରୁ ୮ ଫୁଟ ଯାଏ ଲମ୍ବ ହୁଏ । ଏହା ଗୋଚର
ବଣରେ ଓ ପଡ଼ିଆରେ ଜନ୍ମେ । ]

**ଫୁଲ୍ ବାବୁ**—ବୈଦେ. ବି—(ଇଂ. ଫୁଲ୍ + ପୂର୍ଣ୍ଣ + ହି. ବାବୁ )—
Phul bābu ଫିଟ୍ ବାବୁ; ପୋଷାକପରିହିତ ସୁବେଶଧାରୀ ବ୍ୟକ୍ତି—
ফুলবাবু Fashionably dressed person; beau.
**फूलबाबु**

**ଫୁଲ୍ ବେଞ୍ଚ୍**—ବୈଦେ. ବି. ( ଇଂ )—୧ । ହାଇକୋର୍ଟରେ କୌଣସି
Phul beñch ଜଟିଳ ପ୍ରଶ୍ନର ମୀମାଂସା ନିମନ୍ତେ ଦୁଇରୁ ଅଧିକ
ফুল বেঞ্চ ନିର୍ଦ୍ଦିଷ୍ଟସଂଖ୍ୟକ ଜଜ୍‌ମାନଙ୍କର ବୈଠକ—1. Full bench.
**फुलबेञ्च** ୨ । ( ଲକ୍ଷଣାର୍ଥ, ବ୍ୟଙ୍ଗ ) ସମସ୍ତ ସଙ୍ଗୀମାନଙ୍କର ଏକତ୍ର
ବୈଠକ—2. (Figurative and ironical). A full meeting of all boon companions

**ଫୁଲ୍‌ବେଞ୍ଚ୍ ନଜିର୍**—ବୈଦେ ବି. ( ଇଂ. ଫୁଲ୍‌ବେଞ୍ଚ୍ + ଆ. ନଜିର୍)—
Phul-beñch najir ହାଇକୋର୍ଟର ଫୁଲ୍‌ବେଞ୍ଚ୍ ଦ୍ୱାରା ମୀମାଂସିତ
ফুলবেঞ্চ নজীর ମକଦ୍ଦମାର ରାୟ, ଯାହା କି ନିମ୍ନ ଅଦାଲତରେ
**फुलबेंच नजीर** ଓକିଲମାନେ ଅନ୍ୟ ମକଦ୍ଦମାର ପୋଷକତାରେ
ପ୍ରାମାଣିକ ମୀମାଂସାରୂପେ ଦର୍ଶାନ୍ତି—Full bench ruling.

**ଫୁଲ୍‌ସ୍କାପ୍**—ବୈଦେ· ବି. ( ଇଂ ) - ୧ । ଦୁଷ୍ଟ ଛାତ୍ରମାନଙ୍କୁ ଦଣ୍ଡ
Phuls-kāp ଓ ଲଜ୍ଜା ଦେବା ନିମନ୍ତେ ପିନ୍ଧାଇବା ଅପମାନସୂଚକ
ଟୋପି; ଗଧ ଟୋପି—
ଫୁଲ୍‌ସକେପ୍, ଫୁଲିସ୍କା (କେ) ପ୍ } ଅନ୍ୟରୂପ 1. A ludicrous cap which
ফুলসকেপ a wicked student is made to put on as
**फुलसकेप** an insulting punishment.
୨ । ୧୬ ଇଞ୍ଚ × ୧୩ ଇଞ୍ଚ ଆକାରର କାଗଜ—
2. Foolscap paper.

[ ଦ୍ର—ଏହାର ଫର୍ଦ୍ଦକୁ ମଝିରୁ ଠିଆ ବାଗରେ ଭାଙ୍ଗିଦେଲେ ଯାହା ଫାଲର ଆକାର ୮ ଇଞ୍ଚ × ୧୩ ଇଞ୍ଚ ହୁଏ । ]

**ଫୁଲ୍ ଷ୍ଟକିଙ୍ଗ୍**—ବୈଦେ. ବି ( ଇଂ )—ଗୋଡ଼ତଳୁ ଅଣ୍ଟା ପର୍ଯ୍ୟନ୍ତ ଆବରଣ
Phul staking କରିବା ମୋଜା—Full-stockings.
फ़ुलष्टाकिन **फुलइस्टाकिन** ( ଫୁଲ୍ସ୍ଟାକିନ୍—ଅନ୍ୟରୂପ )

**ଫୁଲ୍‌ସ୍‌ଟପ୍**—ବୈଦେ. ବି. ( ଇଂ )—ପୂର୍ଣ୍ଣଚ୍ଛେଦ; ସମାପ୍ତ ବାକ୍ୟ ପରେ
Phul-s-ṭap ବ୍ୟବହୃତ ଚ୍ଛେଦ ଚିହ୍ନ—Fullstop.
फ़ुलष्टप **फुलईस्टाप** [ଫୁଲଇଷ୍ଟ(ଷ୍ଟା)ପ୍, ଫୁଲ୍ସ୍ଟପ୍—ଅନ୍ୟରୂପ]
[ ଦ୍ର—ଭାଷାରେ ଏହା ଗୋଟିଏ ଦଣ୍ଡାୟମାନ ରେଖା, ମାତ୍ର ଇଂରାଜୀରେ ଏହା ଗୋଟିଏ ବିନ୍ଦୁ । ]

**ଫୁଲ**—ତେ. ବି ( ସଂ. ଫୁଲ୍ଲ ଧାତୁ=ପ୍ରସ୍ଫୁଟିତ ହେବା ) ୧ । ପୁଷ୍ପ;
Phula फूल **फुल** ପ୍ରସୂନ; କୁସୁମ—1. Flower.
[ ଦ୍ର—ବୃକ୍ଷଲତାଦିର ଯେଉଁ ଗ୍ରନ୍ଥି-କୋଷରୁ ଫଳ ଉତ୍ପନ୍ନ ହୁଏ ସେହି ପ୍ରସ୍ଫୁଟିତ ଗ୍ରନ୍ଥିକୁ ଫୁଲ ବୋଲାଯାଏ । ଫୁଲକୁ ଉଦ୍ଭିଦର ଜନନେନ୍ଦ୍ରିୟ ବୋଲାଯାଇ ପାରେ । ସାଧାରଣତଃ ଫୁଲକୁ ୫ ଭାଗରେ ବିଭକ୍ତ କରାଯାଇ ପାରେ;—୧ । କଣ୍ଟରୀ ବା ବହିଃପାତ୍ର, ୨ । ହରିତ୍‌ପୁଟ, ୩ । ଦଳ ବା ପାଖୁଡ଼ା, ୪ । ଗର୍ଭକେଶର, ୫ । ପରାଗ କେଶର ।
ନାଡ଼ ବା ଡେମ୍ଫ ଗଛର ଶାଖାରୁ ବାହାରେ । ଡେମ୍ଫର ଅଗ ଚଉଡ଼ା ହୋଇ ପ୍ରଥମେ ଗୋଟିଏ ଭୂଣ୍ଡି ବାହାରେ । ସେହି ଭୂଣ୍ଡିଟି କଡ଼ ଅଟେ । ସେହି ଭୂଣ୍ଡିଟି ଗୋଟିଏ ପାତ୍ର (୧ । କଣ୍ଟରୀ) ପରି ଦେଖାଯାଏ ଓ ତହିଁରେ ସାଗୁଆ ବର୍ଣ୍ଣର ଆବରଣ ପତ୍ର ( ୨ । ହରିତ୍‌ପୁଟ ) ଥାଏ । ସେହି ପୁଟ ମଧ୍ୟରେ କଢ଼ି ( କଳିକା ) ରୂପେ ଭାବୀ ଫୁଲ ବନ୍ଦ ହୋଇ ରହି ଥାଏ । ଏହି ପୁଟ ମଧ୍ୟରେ ଥିବା ଭୂଣ୍ଡି ଆକାରର ମଧ୍ୟାଂଶର ଗୁରିକଡ଼ରୁ ପାଖୁଡ଼ା ବାହାରେ । ସାଧାରଣତଃ ଫୁଲର ପାଖୁଡ଼ା ଦେଖିବାକୁ ସୁନ୍ଦର ଓ ସୁବାସଯୁକ୍ତ । ଫୁଲର ପ୍ରଧାନ ବସ୍ତୁ ମଧ୍ୟାଂଶ, ଯହିଁରେ ପରାଗକେଶର ଓ ଗର୍ଭକେଶର ଥାଏ । ପରାଗକେଶରର ଅଗରେ ପରାଗ ବା ଧୂଳି ଥାଏ, ଏହି ପରାଗକେଶରହିଁ ବୃକ୍ଷର ପୁଂଜନନେନ୍ଦ୍ରିୟ । ଗର୍ଭକେଶର ଗର୍ଭାଗ୍ର, ଏହା ସ୍ତ୍ରୀ ଜନନେନ୍ଦ୍ରିୟ । ପରାଗକେଶରରୁ ପରାଗ ଝଡ଼ି ଗର୍ଭକେଶରରେ ପଡ଼ିଲେ ଫୁଲ ଗର୍ଭବତୀ ହୁଏ ଓ ତହିଁରୁ ଫଳ ଜାତ ହୁଏ । କେତେକ ବୃକ୍ଷରେ କେବଳ ଗର୍ଭକେଶର ଯୁକ୍ତ ସ୍ତ୍ରୀ-ଫୁଲ ଓ କେବଳ ପରାଗକେଶର ଯୁକ୍ତ ପୁରୁଷ-ଫୁଲ ପୃଥକ୍ ହୋଇ ଫୁଟେ (ଯଥା—କାକୁଡ଼ି, କଖାରୁ, ଜହ୍ନି, ଲାଉ ); ପବନଦ୍ୱାରା ପରାଗକେଶର ଉଡ଼ି ଯାଇ ଗର୍ଭକେଶରରେ ପଡ଼େ । କେତେକ ଜାତୀୟ ବୃକ୍ଷ ଅଣ୍ଡିରା ଗଛ ଓ ମାଈ ଗଛ ପୃଥକ୍ ( ଯଥା—ତାଳ ); କେତେକ ଗଛରେ ଏକ ଫୁଲରେ ପରାଗକେଶର ଓ ଗର୍ଭକେଶର ଦୁହେଁ ଏକତ୍ର ଥାଆନ୍ତି । କେତେକ ଫୁଲ ଗୋଟିକିଆ ଫୁଟେ, କେତେକ ଫୁଲ ପେନ୍ଥା ବା ଗୁଚ୍ଛ ହୋଇ ଫୁଟେ । ଗୁଚ୍ଛଯୁକ୍ତ ଫୁଲକୁ ମଞ୍ଜରୀ କହନ୍ତି । ଫୁଲକୁ ଲୋକେ ଭୂଷଣ ଓ ସୁଗନ୍ଧ ଦ୍ରବ୍ୟରୂପେ ବ୍ୟବହାର କରନ୍ତି । ଫୁଲର ନିର୍ଯ୍ୟାସ ବା ସାରରୁ ସୁବାସିତ ଅତର, ଅର୍କ ଓ ତୈଳାଦି ପ୍ରସ୍ତୁତ ହୁଏ । ସୁକୁମାରତା, କୋମଳତା ଓ ସୌନ୍ଦର୍ଯ୍ୟ ପାଇଁ ଫୁଲ ପ୍ରସିଦ୍ଧ—ହି. ଶ । ]

୨ । ଫୁଲ ପରି ହାଲୁକା ବା କୋମଳ ପଦାର୍ଥ—
2. Anything as light or delicate as a flower.
ଫୁଲ ପରି କରି ଟେକି ଧରିଥିଲ, କାହିଁକି ପକାଇଲ । ଭଗ ।

୩ । ଫୁଲ ଆକାରରେ ଅଙ୍କିତ ଚିତ୍ର ବା କାରୁକାର୍ଯ୍ୟ—
3. Drawings or paintings of figures like flowers; floral designs.

୪ । ଜରାୟୁ ମଧ୍ୟସ୍ଥ ଭ୍ରୂଣର ନାଭିସଙ୍ଗେ ସଂଯୁକ୍ତ ପୁଷ୍ପାକୃତି ମାଂସପିଣ୍ଡ; ଫୁଲସ୍ରବ—4. The placenta.

୫ । ଗଞ୍ଜପା ଖେଳର ତାସ୍‌ରେ ବୋଳାଯିବା ପାଇଁ ଗନ୍ଧକ ଓ ହିଙ୍ଗୁଳ ବାଟି କଇଥ ଅଠାଦ୍ୱାରା ପ୍ରସ୍ତୁତ କରାଯିବା ଏକପ୍ରକାର ରଙ୍ଗ—5. A yellow paint used in painting the cards of the 'Ganjapā' game.

୬ । ରାସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ଦାନା—6. Crystals.
(ଯଥା—ପିପରମେଣ୍ଟ୍ ଫୁଲ ।)

୭ । ସ୍ତ୍ରୀରଜଃ; ଋତୁ ସ୍ରାବ—7. The menstrual flux.

୮ । ମାଛର ଗାଲସି—8. The gills of fish.

୯ । ଫୁଲ ଆକାରର ଅଳଙ୍କାର—
9. Ornaments shaped like a flower.
(ଯଥା—କାନଫୁଲ; ନାକଫୁଲ ।)

୧୦ । ଦୀପର ବତିର ଦେହରେ ବା ଜଳୁଥିବା ଚୁଲି ଉପରେ ବସାପାଇଥିବା ହାଣ୍ଡି ତଳେ ସମୟେ ସମୟେ ଦେଖାଯିବା ଅଗ୍ନିସ୍ଫୁଲିଙ୍ଗ—10. Burning sparks appearing sometimes on the wick or below earthen cooking pots while put on a flaming fire.
[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦର ପୂର୍ବରେ ମିଶିଲେ ଫୁଲର 'ଲ' ଅକ୍ଷରର ହଳନ୍ତ ଉଚ୍ଚାରଣ ବା 'ଲୁ' ଉଚ୍ଚାରଣ ଶୁଣାଯାଏ । ଯଥା—ଫୁଲ୍‌ଝରି, ଫୁଲୁଝରି । ]

୧୧ । (ସ୍ତ୍ରୀ) ସ୍ତ୍ରୀଲୋକଙ୍କ ନାମ—
11. A name given to females.

ବିଣ. (ଲକ୍ଷଣାର୍ଥ)—ଫୁଲ ପରି ହାଲୁକା; ଖୁବ୍ ହାଲୁକା—
(figurative) Very light (like a flower).
[ ଦ୍ର—ଖୁବ୍ ଉଶ୍ୱାସିଆ ଓ ସୁକୁମାର ବସ୍ତୁକୁ ଲୋକେ ଫୁଲ ସଙ୍ଗେ ତୁଳନା କରନ୍ତି । ଯଥା—'ଏ ଲୁଗା ଖଣ୍ଡି ଫୁଲ ପରି ଲାଗୁଛି', ଅର୍ଥାତ୍ ଖୁବ୍ ହାଲୁକା ହୋଇଅଛି । କୌଣସି ବ୍ୟକ୍ତିକୁ ବା ବସ୍ତୁକୁ ଆଦର ବା କୋମଳ ବ୍ୟବହାର କରୁଥିବା ବ୍ୟକ୍ତିକୁ ଲୋକେ କଥା ପ୍ରସଙ୍ଗରେ 'ସେ ଅମୁକ ବ୍ୟକ୍ତିକୁ ବା ବସ୍ତୁକୁ ଫୁଲ ପରି କରି ଟେକି ଧରିଛି' ବୋଲି କହନ୍ତି । ]

**ଫୁଲ ଆଲଟ**—ଦେ. ବି—ଫୁଲର ତିଆରିଥିବା ବା ଉପରେ ସ୍ୱାଭାବିକ ବା
Phula ālaṭa କୃତ୍ରିମ ଫୁଲ ଲଗାଯାଇ ଥିବା ଆଲଟ ବା ଚାମର—
(ଫୁଲଚାମର—ଅନ୍ୟରୂପ) A fan adorned or set with
ফুলের চৌঁরী flowers or floral designs on
**फूलकी चँवर** cloth or floral paintings.
ଫୁଲ ପଙ୍ଖା ଫୁଲ ଆଲଟ ଚାମର
ପୂର୍ଣ୍ଣରେ ଧରି ନର । ଦୀନକୃଷ୍ଣ. ଜଗମୋହନ ।

(ଯଥା—ଏହିପରି ଫୁଲ ପଙ୍ଖା, ଫୁଲ ବିଞ୍ଚଣା ଶବ୍ଦମାନ ହୁଏ ।)

**ଫୁଲ ଉଡ଼ା(ଡ଼େ)ଇବା**—ଦେ. କ୍ରି—( ଧାନ ଗଛ ପ୍ରଥମେ ) ପୁଷ୍ପଯୁକ୍ତ ହେବା—To flower (said of paddy plants).
Phula urdā(rde)ibā
फुलना फूलधरा

**ଫୁଲ କମାଣ**—ଦେ. ବି—ଫୁଲ ଧନୁ (ଦେଖ)
Phula kamāṇa Phula dhanu (See)

**ଫୁଲ କସି**—ଦେ. ବି. (ସଂ. ଫୁଲ୍ଲ+କଷାୟ)—
Phula kasi
फूलकली
୧ । ଏକାଗଛରେ ଧରିଥିବା ଫୁଲ ଓ କଷି ବା ଛୋଟ ଫଳ—1. Flowers and very young fruits growing at the same time in a tree.
୨ । ଅତି ଛୋଟ ଫଳ—2. Very young fruits, just passing out of the flower stage.
(ଯଥା—ଏ ଗଛରେ ଲଙ୍କାମରିଚ ଫୁଲ କସି ଧରିଅଛି ।)

**ଫୁଲ କାଟିବା**—ଦେ. କ୍ରି. (ସଂ. ଫୁଲ୍ଲ+କର୍ତ୍ତନ)—
Phula kāṭibā
ফুলকাটা
फूल काढना
୧ । କୃତ୍ରିମ ପୁଷ୍ପ ରଚନା କରିବା—1. To make artificial flowers.
୨ । ପୁଷ୍ପର ଚିତ୍ର ଅଙ୍କନ କରିବା—2. To draw figures resembling flowers.
୩ । ନବଜାତ ଶିଶୁର ନାଭି ସଙ୍ଗେ ନାଡ଼ଦ୍ୱାରା ସଂଯୁକ୍ତ ଫୁଲକୁ କାଟି ଦେବା—3. To separate the placenta from the navel-string of a new-born infant.

**ଫୁଲ କାମ**—ଦେ. ବି. (ସଂ. ଲ୍ଲ+କର୍ମ)—କାଗଜ, ସୋଲ ଇତ୍ୟାଦିରେ ପ୍ରସ୍ତୁତ କୃତ୍ରିମ ଫୁଲ—1. Artificial flowers made of paper etct.
Phula kāma
ফুলকাজ,ফুলকারী
फूलकाम
୨ । ଲୁଗାଆଦିରେ ଫୁଲର ଚିତ୍ରଯୁକ୍ତ କାରୁକାର୍ଯ୍ୟ—2. Floral designs or needlework wrought on clothes.

**ଫୁଲ କିନାରି**—ଦେ. ବିଣ (ସଂ. ଫୁଲ୍ଲ+ପା. କିନାର)—ଧଡ଼ିରେ ଫୁଲ ପରି ଚିତ୍ରକାର୍ଯ୍ୟ ବୁଣା ଯାଇଥିବା ଲୁଗା—Cloth having hems with floral designs.
Phula kināri
ଫୁଲକିନାରି, ଫୁଲକିନାରିଆ
ଫୁଲକିନାରି, ଫୁଲଧଡ଼ିଆ } ଅନ୍ୟରୂପ
ଫୁଲପାଡ଼ୀ, ଫୁଲଧଡ଼ିଆ
ফুলকিনারি; ফুলমপাড়ি फुलकिनारी

**ଫୁଲକୋଦଣ୍ଡ**—ଦେ ବି—ଫୁଲଧନୁ (ଦେଖ)—
Phula kodaṇḍa Phuladhanu (See)

**ଫୁଲ କୋବି**—ଦେ. ବି. (ସଂ. ଫୁଲ୍ଲ+ପା. ଗୋଭି)—ପତ୍ରବେଷ୍ଟିତ ଛତ୍ରାକୃତି ବୃହତ୍ ପୁଷ୍ପକେଶରଯୁକ୍ତ ବୈଦେଶିକ ଶାକବିଶେଷ—Cauli-flower.
Phula kobi
( ଫୁଲ କପି—ଅନ୍ୟରୂପ )
ফুলকপি फुलगोभी

**ଫୁଲ ଖଡ଼ି**—ଦେ. ବି—( ସଂ. ଫୁଲ୍ଲ+ଖଟୀ )—ଚକ୍ ଖଡ଼ି—Chalk.
Phula khardi ফুলখড়ি फुलखडि

**ଫୁଲ ଗଭା**—ଦେ. ବି.—( ସଂ. ଫୁଲ୍ଲ+ଗର୍ଭକ; ପ୍ରା. ଗବ୍ଭଅ )—ଫୁଲରେ ଗୁନ୍ଥା ବା କାଠିର ଚାରିପାଖେ ଖଞ୍ଜା ହୋଇଥିବା ପ୍ରକୃତ ବା କୃତ୍ରିମ ପୁଷ୍ପଗୁଚ୍ଛ ବା ତୋଡ଼ା—Nosegay.
Phula gabhā
ফুলতোড়া गुलदस्ता

**ଫୁଲ ଗୁଣା**—ଦେ.ବି—ନାକର ଡାହାଣ ପୁଡ଼ାରେ ପିନ୍ଧାଯିବା ଏକପ୍ରକାର ଗୁଣା—A nose ornament worn on the right side of the nose (with a flower-like bulb on the top.)
Phula guṇā
বেসর
फुलवेसर;गुलछक
(ଫୁଲୁଗୁଣା—ଗ୍ରାମ୍ୟରୂପ)

ବାଘଙ୍କ ହିଙ୍କ ଚାଣ୍ଡୁଆର କବାଟ ଫାଙ୍କରୁ ଫୁଲଗୁଣା
କସଣୀ ସହିତ ହୁଇ ଉକଗୋଟ ନାସିକା ଦୃଷ୍ଟ ହେଲା ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ଫୁଲ ଚଢ଼ା(ଢ଼େ)ଇବା**—ଦେ. କ୍ରି—ଦେବପ୍ରତିମା ଉପରେ ପୁଷ୍ପ ଅର୍ପଣ କରିବା—To dress idols with flowers; to offer flowers on idols.
Phula chardhā(rdhe)ibā
(ଫୁଲ ଦେବା; ଫୁଲ ଲାଗିକରିବା—ଅନ୍ୟରୂପ)
ফুল চড়ান फुलचढाना

**ଫୁଲଚନ୍ଦନ**—ଦେ· ବି—(ସଂ. ଫୁଲ୍ଲ+ଚନ୍ଦନ)—ଦେବତା ବା ବିଶିଷ୍ଟ ଅତିଥିମାନଙ୍କ ମୁଣ୍ଡରେ ଚଢ଼ାଯିବା ଫୁଲ ଓ ବୋଲାଯିବା ଚନ୍ଦନ—Flower and sandal paste offered to idols or honoured guests.
Phula chandana
ফুলচন্দন
फुलचन्नन
( ଫୁଲଚନ୍ନ—ଗ୍ରାମ୍ୟରୂପ )

**ଫୁଲଚୁଇଁ**—ଦେ· ବି—( ସଂ. ଫୁଲ୍ଲ+ଶୋଷୀ )—ଶାଖାଶ୍ରୟୀ ବର୍ଗର ପୁଷ୍ପମଧୁପାୟୀ କ୍ଷୁଦ୍ର ପକ୍ଷିବିଶେଷ—The honey sucker; the humming bird.
Phula chuin
ফুলচুকী फुलचुही

ନଥାଲି ଭକାଣୀ ଚେଗ୍ର ବସନ୍ତକୁ ମନେ ଯଥା ଫୁଲଚୁଇଁ । ରଘୁନାଥ. ଯଯାତି ।

[ବି—ଏ ପକ୍ଷୀର ଥଣ୍ଟ ସରୁଆ ଓ ଦୁଇଆଙ୍ଗୁଳ ଲମ୍ବ । ଏହାର ଶରୀର ୩।୪ ଆଙ୍ଗୁଳ ମାତ୍ର ଲମ୍ବ; ବର୍ଣ୍ଣ ନେଳ ମିଶା କଳା; ଏ ପକ୍ଷୀ ଗୁଣୁଗୁଣୁ ଶବ୍ଦ କରି ଫୁଲ ମଧ୍ୟରେ ଥଣ୍ଟ ପୂରାଇ ଫୁଲରୁ ମହୁ ଶୋଷେ । ବସନ୍ତ ପ୍ରାରମ୍ଭରେ ପୁଷ୍ପିତ ବୃକ୍ଷରେ ବସି ଏ ପକ୍ଷୀ ଚୁଇଁ ଚୁଇଁ ରବ କରେ । ]

**ଫୁଲ ଛଉ**—ଦେ. ବି—ଯୁବା ବୟସରେ ଦେହରେ ମାଡ଼ିଯିବା ଧଳା ଛଉ; ବୟସ ଛଉ—Scurf; partial whitening of the skin in patches during youth.
Phula chhau
ছুলি सिहुली

**ଫୁଲ ଛତି**—ଦେ. ବି. (ସଂ. ଫୁଲ୍ଲ+ଛତ୍ର)—୧ । ପୁଷ୍ପଚିତ୍ରିତ ବା ଫୁଲରେ ଅଲଂକୃତ ଦେବଛତ୍ର—1. An umbrella with designs of flowers woven all over it, or adorned with flowers.
Phula chhati
ফুলছাতি
फुलछाता, फुलेरा

ଫୁଲଛତି ଫୁଲ ବଡାକେ ଅକାଇ
ଫୁଲକ ଉଠଇ ଛୁଅ । ଦୀନକୃଷ୍ଣ. ଜଗମୋହନ

୨ । ଛତ୍ରାକାରରେ ଗ୍ରଥିତ ପୁଷ୍ପଚୟ—2. Flowers strung together and set in the shape of an umbrella.

**ଫୁଲ ଛାଞ୍ଚୁଣୀ**—ଦେ. ବି.—ଫୁଲଝାଡ଼ୁ (ଦେଖ)
Phula chhānchuṇi Phula jhārdu (See)

**ଫୁଲ ଜାଲି**—ଦେ. ବି—( ସଂ. ଫୁଲ୍ଲ+ଜାଲ )—ଫୁଲର ଆକୃତିବିଶିଷ୍ଟ ଜାଲିକରି କାମ ହୋଇଥିବା କାନର ଅଳଙ୍କାରବିଶେଷ—A flower-like ornament with filagree works for the ear.
Phula jāli
करनफूल

**ଫୁଲ ଝଡ଼ିବା**—ଦେ. ବି—ଗଛରୁ ମନକୁ ଫୁଲ ଖସିପଡ଼ିବା—
Phula jhardibā — Dropping of flowers from the tree.
ফুলঝড়া ফুলঝড়না

**ଫୁଲଝର**—ଦେ. ବି—ଫୁଲ ଗୁନ୍ଥା ହୋଇ ଝଅର ହୋଇଥିବା ଗୁଚ୍ଛ—
Phula jhara — Tassels made of flowers strung together.
फुलकाम्भा

**ଫୁଲଝରି(ଡ଼ୀ)**—ଦେ. ବି—ଏକପ୍ରକାର ବାଣ—A kind of firework, producing floral sparks.
Phula jharī(rdī)
ফুলঝরী फुलझड़ि
[ ଦ୍ର—ଏହା ଜାଳଲେ ଏଥିରୁ ଫୁଲପରି ଅଗ୍ନିଫୁଲିଙ୍ଗମାନ ଖସେ । ]

**ଫୁଲ ଝାଡ଼**—ଦେ. ବି. (ସଂ. ଫୁଲ୍ଲ+ପା. ଝାଡ଼)—୧ । ବୃକ୍ଷ ବା ଦୀପବୃକ୍ଷ ଆକାରରେ ସଜ୍ଜିତ କୃତ୍ରିମ ପୁଷ୍ପଗୁଚ୍ଛ—
Phula jhārda
ফুলঝাড় फुलझाड — 1. Artificial flowers made to resemble a tree or lampstand.
୨ । କାଣ୍ଡଶର ୧ (ଦେଖ)—
2. Kāndaśara 1 (See)

**ଫୁଲ ଝାଡ଼ୁ**—ଦେ. ବି.—୧ । ମକା ଗଛ ଜାତୀୟ ଏକପ୍ରକାର ବୁଦାଳିଆ ତୃଣ—1. A kind of broad-leaved bushy plant like maze or Indian corn; broomgrass.
Phula jhārdu
ফুলঝাড়ু
फुलझाड्डु
[ ଦ୍ର—ଏହାର ପତ୍ର ଘାସପତ୍ର ଅପେକ୍ଷା ଚଉଡ଼ା; ବୁଦା ପ୍ରାୟ ୨।୩ ହାତ ଉଚ୍ଚ ହୁଏ । ଏଥିର କଦାରୁ ଗୋଟିଏ ଲେଖାଏଁ ଗମର ପରି ଡେଙ୍ଗ ବାହାରେ । ସେହି ଗମର ଗୁଡ଼ିକ ଶୁଖାଇ ଗୁଚ୍ଛ ଆକାରରେ ବାନ୍ଧି ଲୋକେ ଝାଡ଼ୁ ବା ଖଇଚୁଣୀ କରନ୍ତି ।]
୨ । ଗୋଟିଏ ଫୁଲଝାଡ଼ୁ ତୃଣର ଡେଙ୍ଗ ଏକତ୍ର ବନ୍ଧା ହୋଇଥିବା ସମ୍ମାର୍ଜନୀ—
2. A broomstick made of broom-grass.

**ଫୁଲ ଝୁମୁକା**—ଦେ. ବି. (ବଣିଆ ଶବ୍ଦ)—ତଳକାନରେ ପିନ୍ଧାଯିବା ସୁନାର ତାରକସି ଅଳଙ୍କାରବିଶେଷ—
Phula jhumukā
करनफुल — A golden filagree ornament for the ear, worn on the lower part of it.

**ଫୁଲ ଟାହିଆ**—ଦେ. ବି. (ସଂ. ଫୁଲ୍ଲ+ଇଂ. ଟାୟରା)—
Phula ṭāhiā — ଖଡ଼କାରେ ବା ସରୁ ବାଉଁଶ କାଠିରେ ଗୁନ୍ଥା ହୋଇଥିବା ମୟୂରପଙ୍ଖା ଆକାରରେ ସଜ୍ଜିତ ପୁଷ୍ପମାନ—A flat fanlike structure or framework made of flowers.
(ଫୁଲଟାହିଆ— ଅନ୍ୟରୂପ)
ফুলটায়রা
फुलमेढ
[ ଦ୍ର—ଏହା ଦେବପ୍ରତିମାଙ୍କ ପଛଅଡ଼େ ଖଞ୍ଜାଯାଏ । ]

**ଫୁଲ ଠାର**—ଦେ. ବି—୧ । କେତେକ ଫୁଲର ନାମୋଚ୍ଚାରଣ ସାହାଯ୍ୟରେ କଥିତ ଏକପ୍ରକାର ଠାର ବା ସଙ୍କେତ-ଭାଷା—
Phula ṭhāra
ফুলচিকন — 1. A cypher language expressed with the names of flowers beginning with certain letters.
फुलचिकारी
(ଦ୍ର :—କଥା ଫୁଲ କହିଲେ 'କ' ଅକ୍ଷର, ଚମ୍ପା କହିଲେ 'ଚ' ଅକ୍ଷର, ଟଗର କହିଲେ 'ଟ' ଅକ୍ଷର, ତଗର=ତ, ପଦ୍ମ=ପ, ରଙ୍ଗଣିଫୁଲ=ର, ଇତ୍ୟାଦି ଉକ୍ତ ଠାରରୁ ବୁଝିବାକୁ ହୁଏ ।)

୨ । ବାକ୍ୟସ୍ଥ ଅକ୍ଷରମାନଙ୍କ ମଧ୍ୟରେ 'ଫୁଲ' ଶବ୍ଦ ପ୍ରୟୋଗ କରି ବାକ୍ୟ ପ୍ରକାଶ କରିବାର ଏକପ୍ରକାର ଠାର—2. A cypher language used by uttering the word Phula between the letters of a word.

**ଫୁଲ ଡ(ଡା)ଲା**—ଦେ. ବି. (ସଂ. ଫୁଲ୍ଲ+ଡଲ୍ଲକ)—
Phula ḍa(ḍā)lā — ଯେଉଁ ଡାଲାରେ ଫୁଲ ସଜା ହୋଇଥାଏ—
ফুলডালা — A wicker-work troy or flat basket for holding flowers.
फुलडालिया

**ଫୁଲ ତୋଡ଼ା**—ଦେ. ବି(ସଂ. ଫୁଲ୍ଲ+ପା. ତୁର୍ରା)—ଫୁଲ ଗଭା (ଦେଖ)
Phula torḍā — Phula gabhā (See)
କେ ବୋଇଲେ ନାନା ଜାତିର ଫୁଲ ତୋଡ଼ା । କୃଷ୍ଣସିଂହ, ମହାଭାରତ. ବନ ।

**ଫୁଲ ତୋଳା**—ଦେ. ବି—(ସଂ. ଫୁଲ୍ଲ+ତୋଳନ)—
Phula tolā — ୧ । ଫୁଲ ତୋଳିବା କାର୍ଯ୍ୟ; ପୁଷ୍ପଚୟନ—
ফুলতোলা — 1. The act of plucking flowers
फुलतोड़ना — ୨ । ଏହି ନାମଯୁକ୍ତ ଏକ ପ୍ରାଚୀନ ଓଡ଼ିଆ ଗୀତମାଳା—
2. A metrical composition of this name by Balarāma Das.
[ ଦ୍ର—ଗୋପୀମାନେ କୃଷ୍ଣଙ୍କୁ ଫୁଲଦ୍ୱାରା ମଣ୍ଡିତ କରିବା ନିମିତ୍ତ ଫୁଲ ତୋଳୁଥିବା ବେଳେ ବୋଲିଥିବାର କଳ୍ପିତ ଗୀତ । ଏଥିର ରଚୟିତା ବଳରାମଦାସ । ]

**ଫୁଲ ତୋଳିବା**—ଦେ. କ୍ରି. (ସଂ. ଫୁଲ୍ଲ+ତୁଲ୍ ଧାତୁ)—
Phula tolibā — ପୁଷ୍ପ ଚୟନ କରିବା—To pluck flowers.
ফুলতোলা फुलतोड़ना

**ଫୁଲ ଦାନ(ନୀ)**—ବୈଦେ. ବି. (ପା. ଫୁଲ୍ ଦାନ୍)—
Phula dān(nī) — ପୁଷ୍ପାଧାର; ପୁଷ୍ପଗୁଚ୍ଛ ଲଗାଇ ରଖିବାର ପାତ୍ର—
ফুলদান — A vase for holding bunches of flowers, set up as a decoration.
फुलदान

**ଫୁଲ ଦାର**—ବୈଦେ. ବିଣ. (ପା. ଫୁଲ୍ ଦାର୍)
Phula dār — ଫୁଲର ଚିତ୍ରସମ୍ବଳିତ—
ফুলদার फुलदार — Having floral designs.

**ଫୁଲ ଦୋଳ**—ଦେ. ବି. (ସଂ. ଫୁଲ୍ଲ+ଦୋଳନ)—ଚୈତ୍ର ପୂର୍ଣ୍ଣିମା ସମୟରେ ଅନୁଷ୍ଠିତ ଶ୍ରୀକୃଷ୍ଣଙ୍କର ପୁଷ୍ପଦୋଳ ଉତ୍ସବ—
Phula dolā
(ଫୁଲୁଦୋଳ—ଅନ୍ୟରୂପ) The festival of the swinging of the image of Śrīkrushna during Chaitra fullmoon.
ফুলডোল
फुलदोल
[ ଦ୍ର—ଏହା ଚୈତ୍ର ଶୁକ୍ଳ ଏକାଦଶୀଠାରୁ ଚୈତ୍ର ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ]

**ଫୁଲ ଧନୁ**—ଦେ. ବି. (ସଂ. ଫୁଲ+ଧନୁସ୍)—
Phula dhanu — ୧ । ପୁଷ୍ପଧନ୍ୱା; କାମଦେବ; କନ୍ଦର୍ପ—
ଫୁଲ ବାଣ, ଫୁଲ ଶର } ଅନ୍ୟରୂପ
1. The God Cupid.
୨ । କାମଦେବଙ୍କର କଳ୍ପିତ ପୁଷ୍ପନିର୍ମିତ ଧନୁ ଓ ଶର—2. The imaginary bow and arrow of God Cupid.

**ଫୁଲ ଧରିବା**—ଦେ· ବ ଓ କ୍ରି—ଗଛରେ ପୁଷ୍ପୋଦ୍ଗମ ହେବା—
Phula dharibā The coming out of flowers from
ফুলধরা **खुलधरना; खुलखगना** a tree; to flower.

**ଫୁଲ ନାଁ କଢ଼ି**—ପ୍ରାଦେ. (ଗଞ୍ଜାମ) ବ—ଏକ ପ୍ରକାର ଶିଶୁ କ୍ରୀଡ଼ା—
Phula nāñ kardhi A kind of children's outdoor game.

**ଫୁଲ ନାଡ଼**—ଦେ. ବ—୧ । ଫୁଲର ଡେଙ୍ଗ—1. The stem to
Phula nārda which a flower is attached.
ফুলবোঁঠা, ফলফুল ୨ । ଶିଶୁଜନ୍ମ ପରେ ମାତୃ ଗର୍ଭରୁ ନିଃସୃତ
**फुलनाड़, फुलडंटी** ହେବା ଫୁଲ ଓ ଶିଶୁର ନାଭି ସଲଗ୍ନ ନାଡ଼ୀ—
2. The placenta and the cord attached to it.

**ଫୁଲ ନାଡ଼ କରି ଟେକିଦେବା**—ଦେ. କ୍ରି—ଶିଶୁ ଜନ୍ମ ହେଲେ ତାକୁ
Phula nārda kari ṭekidebā ଅନ୍ୟ ବ୍ୟକ୍ତି ନେଇ ଆପଣା
ফলে ফুলে তুলে দেওয়া ସନ୍ତାନ ପରି ପାଳନ କରିବେ ବୋଲି
କଥା ଶିଶୁର ଗର୍ଭରେ ଥିବା ଅବସ୍ଥାରେ ସ୍ଥିର ହୋଇ
ଥିବାରୁ ଶିଶୁର ଜନ୍ମ ହେବା ମାତ୍ରକେ (ଅର୍ଥାତ୍ ତାହାର ନାଡ଼ଚ୍ଛେଦନ ହେଉଣୁ) ପ୍ରସୂତି ଉକ୍ତ ଶିଶୁକୁ ତତ୍‌ସଲଗ୍ନ
ଫୁଲ ସହିତ ପୋଷିଆ ମାଆଙ୍କ ହାତକୁ ଟେକି ଦେବା—
To hand over a newborn infant with the placenta still unseparated, to the adoptive mother (a mode of giving in adoption common in Orissa).

[ ଦ୍ର—ଏହା ଉତ୍କଳରେ ପୋଷ୍ୟପୁତ୍ର ଗ୍ରହଣ କରିବାର ଗୋଟିଏ ସାଧାରଣ ପାଳିତ ପ୍ରଥା । ]

**ଫୁଲ ପଇଞ୍ଚ(ଞ୍ଚି)**—ଦେ. ବ. (ବଣିଆ ଶବ୍ଦ) (ସ. ଫୁଲ୍ଲ+ପ୍ରକୋଷ୍ଠ-
Phula paiñcha(ñchi) ବଳୟ)—ହାତରେ ପିନ୍ଧାଯିବା ରୁପା
ফুল পোঁহচা ବା ସୁନାର ଅଳଙ୍କାରବିଶେଷ—A kind of
**फुलपोंहचा** silver or gold ornament for the wrist, ornamented with floral designs.

**ଫୁଲ ପଙ୍ଖା**—ଦେ. ବ. (ସ. ଫୁଲ୍ଲ+ପକ୍ଷ)—ଉପରେ ଫୁଲର ଚିତ୍ରଥିବା
Phula paṅkhā ବା ଫୁଲ ଖଞ୍ଜାଯାଇ ଥିବା ପଙ୍ଖା ବା ବ୍ୟଜନ
(ଫୁଲବିଞ୍ଚଣା—ଅନ୍ୟରୂପ) A fan with floral designs
ফুল পাখা or flowers strung thereon
**फुल पंखा** ଫୁଲ ପଙ୍ଖା ଫୁଲ ଅଳିଃ ଗୁମଳ
ଫୁଲୁଣାରେ ଧରି ନରେ । ଆନନ୍ଦକୃଷ୍ଣ, ନଗମୋହନ ।

**ଫୁଲ ପଡ଼ିବା**—ଦେ ବ (ସ. ଫୁଲ୍ଲ+ପତନ)—୧ । ଶିଶୁ ଜନ୍ମ ହେବା
Phula pardibā ପରେ ମାତୃ ଗର୍ଭରୁ ଫୁଲ ନିଃସୃତ ହେବା—
ফুলপড়া 1. The evacuation of the placenta from the
**फुलगीरना** womb after child-birth.
୨ । ଅଣ୍ଡି କାର୍ଯ୍ୟସିଦ୍ଧି ଅର୍ଥାତ୍ ଦେବତାଙ୍କ ପ୍ରସନ୍ନତାର ନିଦର୍ଶନ ସ୍ୱରୂପ ଦେବତାଙ୍କ ମୁଣ୍ଡରେ ଚଢ଼ାଯାଇଥିବା ଫୁଲ ମାଳକୁ ଖସି ପଡ଼ିବା—2. The falling down on the ground of a flower from the head of an idol, interpreted as an auspicious sign

**ଫୁଲ ପରି କରି ଟେକି ଧରିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ଅତ୍ୟନ୍ତ
Phula parā kari ṭeki dharibā ଆଦର ଓ ସ୍ନେହ କରିବା—
1. (figurative) To cherish with tender
ফুলপাতান affection.
୨ । ଲକ୍ଷଣାର୍ଥ ) କୋମଳ ବ୍ୟବହାର କରିବା—
2. (figurative) To treat one tenderly.
କଣ୍ଠା ଚିରିକ ! ଏତେ ଗୁଣ ବୋଲ କାହିଁଥିଲ କି ?
ବେଳକୁଁ ନ କହୁଲୁ ! ଫୁଲ ପରି କରି ଟେକି ଧରିଥିଲୁ, କଣ୍ଠରୁ ପକାଇଲୁ । ଉତ

**ଫୁଲ ପରି**—ଦେ. ବିଣ. (ସ. ଫୁଲ୍ଲ+ପ୍ରାୟ)—୧ । ଅତି କୋମଳ—
Phula pari 1. Very tender or delicate.
ফুলের মতন ୨ । ଅତି ହାଲୁକା—2. Light as a flower.
**फुलका ऐसा** ୩ । ସୁନ୍ଦର—3. Lovely; beautiful.

**ଫୁଲ ପାଣି**—ଦେ. ବ—(ସ. ଫୁଲ୍ଲ+ପାନୀୟ)—ଦେବପ୍ରତିମା ଉପରେ
Phula pāṇi ଚଢ଼ାଯିବା ପୁଷ୍ପ ଓ ଜଳ—Flower and water
ফুলজল **फुलपानी** offered to an idol.

**ଫୁଲପିଢା ଖାଇ ଆସିବା**—ପ୍ରାଦେ. (ଗଞ୍ଜାମ) କ୍ରି—କନ୍ୟା ରଜସ୍ୱଳା
Phula piṭā khāi āsibā ହୋଇ ସ୍ୱାମିଗୃହକୁ ପ୍ରଥମ ଥର ଯାଇ
କିଛିଦିନ ସ୍ୱାମୀଙ୍କ ଘରେ ରହିବା ପରେ ବାପଘରକୁ ଆସିବା—
To return to her father's house from her father-in-law's house where she had gone for the first time after attaining puberty (said of a girl).

ପ୍ରାଦେ.—(ଯାଜପୁର) କ୍ରି—(ରଜସ୍ୱଳା କନ୍ୟା) ପ୍ରଥମ ଥର ଶାଶୁ ଘରକୁ ଯିବା; ଭାର ନେଇ ଯିବା—(a girl) To go to her father-in-law's house for the first time after puberty, with presents

**ଫୁଲ ବସିବା**—ଦେ. କ୍ରି.—ପରସ୍ପର ଫୁଲ ଦିଆନେଇ ହୋଇ ଫୁଲ ଡକା-
Phula basibā ଡକି ହେବା ରୂପ ସମ୍ବନ୍ଧ ସ୍ଥାପନ କରିବା—
ফুল পাতান To set up a friendship (in which each addresses the other as Phula) of Phula with another.

**ଫୁଲ ପିଢା**—ପ୍ରାଦେ. (ପୁରୀ). ବିଣ.—ରଜସ୍ୱଳା ହୋଇ ସ୍ୱାମୀଙ୍କ ଘରକୁ
Phula piṭā (jhia) ଯିବା ପୂର୍ବରୁ ବାପଘରେ ରହି ଥିବା
(ଫୁଲପିଢା[ଝିଅ]—ଅନ୍ୟରୂପ) (ବାଳିକା)—(a girl) Who is staying at her father's house after puberty and before she is sent to her husband's house for the first time.

[ଦ୍ର—ଫୁଲପିଢା ଝିଅକୁ ପରିବାରର ପ୍ରାପ୍ତବୟସ୍କ ପୁରୁଷମାନେ ଓ ବାହାରର ପୁରୁଷ ଲୋକେ ଦେଖନ୍ତି ନାହିଁ ।]

**ଫୁଲପିଢା ଭାର ନେଇଯିବା**—ପ୍ରାଦେ. (ଗଡ଼ଜାତ). କ୍ରି.—(କନ୍ୟା)
Phula piṭā bhāra neijibā ଦୁଆପାଳ ଯିବା—(a girl).
To go for the second time to her father-in-law's house after puberty.

ଫୁଲପିଠା ଯିବା—ପ୍ରାଦେ. (ସାଜପୁର) କ୍ରି.—(କନ୍ୟା) ପହିଲ ପାଳି
Phula piṭhā jibā (ଘର ଯେକ) ଶାଶୁଘରକୁ ଯାଇ ଫେରି
(ଫୁଲପିଠା ଯିବା—ଅନ୍ୟରୂପ) ଫେର ଦ୍ୱିତୀୟ ଥର ଶାଶୁଘରକୁ ଯିବା;
ଦୁଆ ପାନ ଯିବା—(a girl) To go to her father-in-law's house for the second time

ଫୁଲ ଫୁଟିବା—ଦେ. ବି—ପୁଷ୍ପ ପ୍ରସ୍ଫୁଟିତ ହେବା—
Phula phuṭibā The opening of flowers.
ফুলফোটা फुलआना

ଫୁଲ ବଉଳବେଣୀ—ଦେ. ବି—ବାଳିକା ଓ ସ୍ତ୍ରୀଲୋକମାନେ ଆମୋଦାର୍ଥ
Phula baulabeṇi ଗୀତର ଯେଉଁ ଏକପ୍ରକାର ଘୋଷା ବୋଲନ୍ତି।
A refrain of songs sung by girls and women.

ଫୁଲ ବଗଡ଼ୀ—ପ୍ରାଦେ. ( ଗଡ଼ଜାତ ) ବିଣ. ସ୍ତ୍ରୀ—( ଗାଳିବିଶେଷ )—
Phula bagaṛi ଯେଉଁ ସ୍ତ୍ରୀର ଅକାଳରେ ଗର୍ଭପାତ ହୁଏ—
( ଫୁଲବଗଡ଼ିଆ—ସ୍ତ୍ରୀ ) A woman who miscarries

ଫୁଲ ବଗିଚ୍ଚା—ଦେ. ବି (ସଂ. ପୁଷ୍ପ+ଫା. ବାଗ୍; ବଗିଚ୍ଚା)—ପୁଷ୍ପୋଦ୍ୟାନ—
Phula bagichā Flower-garden.
(ଫୁଲ ବାଗିଚା, ଫୁଲ ବାଡ଼—ଅନ୍ୟରୂପ) ফুলবাগান, ফুলবাড়ী
फुलबगिचा, फुलबारि

ଫୁଲ ବଡ଼ି—ଦେ. ବି—( ସଂ. ପୁଷ୍ପ+ବଟକ ) ଉତ୍ତମରୂପେ ଫେଣିଆ
Phula baṛi ହୋଇଥିବା ମୁଗ ବଟା ବା ବିରି ବଟାଦ୍ୱାରା ପ୍ରସ୍ତୁତ ଓ
(ଫୁଲବଡ଼—ଅନ୍ୟରୂପ) ରୌଦ୍ରଶୁଷ୍କ ଛୋଟ ଛୋଟ ବଡ଼ି—
ফুলবড়ি :Little balls of lentil-paste dried and
फुलबड़ि preserved for being used in making curry
ଅଗଲୁ ହାଣ୍ଡିଏ ଫୁଲବଡ଼ି ପର ହୋଇଅଛ । ଫକୀରମୋହନ, ଗଳ୍ପସ୍ୱଳ୍ପ ।

ଫୁଲବରଣା(ନା)—ଦେ. ( ପଦ୍ୟ ) ବିଣ. ସ୍ତ୍ରୀ—( ସଂ. ପୁଷ୍ପ+ବର୍ଣ୍ଣ;
Phulabaraṇā(nā) ଫୁଲ ପରି ବର୍ଣ୍ଣ ଯାହାର)—ସୁନ୍ଦରୀ—Very beautiful (as a flower )
ତୋର ବେଶ ଗଢ ଯାଇଥିବା ଫୁଲ ଫୁଲବରଣା—ଜଗନ୍ନାଥ. ଉଷା

ଫୁଲ ବିଞ୍ଚଣା—ଦେ. ବି—ଯେଉଁ ବିଞ୍ଚଣା ବା ପଙ୍ଖାରେ ଫୁଲ ଗୁନ୍ଥା
Phula biñchaṇā ହୋଇଥାଏ—A fan in which
ফুলপাঁখা फुलपंखा flowers have been strung

ଫୁଲ ବିବାହ—ଦେ. ବି—(ସଂ. ପୁଷ୍ପ+ବିବାହ)—ଫୁଲମାଳା ଦେଇ ପତ୍ନୀ
Phula bibāha ଗ୍ରହଣ କରିବା ପ୍ରଥା—To take a
ফুলবিবাহ woman as one's wife by the formal
(ଫୁଲବାହା—ଅନ୍ୟରୂପ) offering of a flower garland
[ଦ୍ର—ଋଷିପୁତ୍ରଙ୍କର ପ୍ରଥାନୁସାରେ ବିବାହ ବେଳାରେ କନ୍ୟାପିତା କନ୍ୟା ସାଙ୍ଗରେ ଗୋଟିଏ ସମବୟସ୍କା ଦାସୀ ଦିଅନ୍ତି । ବର କନ୍ୟାକୁ ଗ୍ରହଣ କରିବା ସମୟରେ ଏ ଦାସୀକୁ ମଧ୍ୟ (ଫୁଲମାଳା ଦେଇ ପତ୍ନୀରୂପେ) ଗ୍ରହଣ କରନ୍ତି । ଏ ଦାସୀର ପରିବାର ମଧ୍ୟରେ ସ୍ଥାନ ଅନ୍ୟାନ୍ୟ ଦାସୀଙ୍କଠାରୁ ଉଚ୍ଚତର । (ଜଗବନ୍ଧୁ, ପ୍ରାଚୀନ ଉତ୍କଳ) ]

ଫୁଲ ବିବାହୀ—ପ୍ରାଦେ. ( ଗଡ଼ଜାତ ) ବି. ସ୍ତ୍ରୀ—ରାଜାମାନଙ୍କର ରକ୍ଷିତା
Phula bibāhi ସ୍ତ୍ରୀବିଶେଷ—A class of concubines
ଫୁଲବାହି } of Rajas ( taken by the
ଫୁଲବେଇ(ସ୍ତ୍ରୀ) } ଅନ୍ୟରୂପ present of flowers)
ଫୁଲ ମାହାଦେଇ }
[ଦ୍ର—ରାଜା ଫୁଲ ଉପହାର ଦେଇ ଗାନ୍ଧର୍ବ ମତରେ ସ୍ତ୍ରୀରୂପେ ଏମାନଙ୍କୁ ଗ୍ରହଣ କରନ୍ତି । ମୃତ ରାଜାଙ୍କର ବିବାହିତା ସ୍ତ୍ରୀର ଗର୍ଭଜାତ ପୁତ୍ର ନ ଥିଲେ ଫୁଲବିବାହୀଙ୍କ ପୁତ୍ର କେତେକ ଗଡ଼ଜାତରେ ରାଜା ହୁଅନ୍ତି । ଫୁଲର ହସ୍ତ ଦେଇ, ମାଳା ଦେଇ, ଚଉକିରେ ଆସନ ଆଦି ଦେଇ ଗୃହୀତା ଦାସୀମାନଙ୍କୁ ଯଥାକ୍ରମେ ହସ୍ତବାଇ, ମାଳବାଇ, ଚଉକିବେଇ ଆଦି ନାମରେ ଡକାଯାଏ । ]

ଫୁଲ ବୁକୁ—ଦେ. ବି—ହୃଦୟ ମଧ୍ୟସ୍ଥ ଡାହାଣ ପାଖରେ ପୁଷ୍ପ ସଦୃଶ
Phula buku ଫଦାକାର ମାଂସପିଣ୍ଡ; କଲିଜା; ଯକୃତ୍—A mass of flesh inside
(ଫୁଲବୁକୁ—ଅନ୍ୟରୂପ) the breast appearing like a reddish
মেটে flower; the liver.
कलेजा

ଫୁଲବୁଡ଼ାଖିଆ—ପ୍ରାଦେ. ( ଗଡ଼ଜାତ ଓ ଗଞ୍ଜାମ ) ବି—ଏକପ୍ରକାର
Phulabuṛākhiā ପୁଷ୍ପଗନ୍ଧଯୁକ୍ତ ମଦ; ଏ ମଦରେ ଫୁଲ
ବୁଡ଼ାଇ ଖାଇବାକୁ ହୁଏ)—A kind of wine scented with flowers.

ଫୁଲ ବେଲପତ୍ରୀ—ଦେ. ବି—ମହାଦେବଙ୍କ ଲିଙ୍ଗ ଉପରେ ଚଢ଼ାଯିବା ଫୁଲ
Phula belapatri ଓ ବେଲପତ୍ର—Flowers and Bel
ফুল বেলপাতা leaves put on the Siba Linga.
फुल बेलपत्ता [ଦ୍ର—ବିଷ୍ଣୁ ପ୍ରତିମା ଉପରେ ଫୁଲ ତୁଳସୀ ଦିଆଯାଏ ।]

ଫୁଲବେଲପତ୍ରୀ ଚଢ଼ା(ଢ଼େ)ଇବା—ଦେ. କ୍ରି—୧ । ମହାଦେବଙ୍କ ଲିଙ୍ଗ
Phula belapatri chaṛhā(ṛhe)ibā ଓ ଶକ୍ତି ଉପରେ ଶିବ-
ফুল চঢান ପ୍ରିୟ ପୁଷ୍ପ ଓ ବିଲ୍ୱଦଳ ଅର୍ପଣ କରିବା—1. To offer
फुल चढाना favourite flowers and bel leaves on a Siba linga.
୨ । (ଲକ୍ଷଣାର୍ଥ) ଲାଞ୍ଚଦ୍ୱାରା ସନ୍ତୁଷ୍ଟ କରିବା—
2, (figurative) To satisfy a person by bribing.

ଫୁଲର ଭାର(ରା)—ଦେ. ବି—ଅତି ହାଲୁକା ବସ୍ତୁର ଭାର—
Phulara bhāra(rā) The weight of a very light
(ଫୁଲର ଭର—ଅନ୍ୟରୂପ) thing.
ଫୁଲର ଭାର ନ ସହନ୍ତି ରାଣୀ । ଉପେନ୍ଦ୍ର । ଉପେଙ୍ଗ ।

ଫୁଲରା—ଦେ. ବିଣ—୧ । ଫୁଲ ବ୍ୟବସାୟୀ—
Phularā 1. Dealing or trading in flowers.
(ଫୁଲୁରା—ଅନ୍ୟରୂପ) ୨ । ଯେ ଫୁଲ ବିକେ—
ফুল ওয়ালা 2. Flower-selling.
फुलवाला; फुलेहारा ୩ । ଯେ ଫୁଲ ବଗିଚ୍ଚା ତିଆରି କରେ—
3 Raising flowers for the market.
ଦେ. ବି—ଫୁଲରା ମାଳି (ଦେଖ)—Phularā māli (See)

ଫୁଲ ରାଣୀ—ଦେ. ବି• (ଫୁଲ ମଧ୍ୟରେ ରାଣୀ)—ପଦ୍ମ—Lotus.
Phula rāṇi ସୁରଭିମାସ ଫୁଲ— ରାଣୀ ସଙ୍ଗୀ ଭୃଙ୍ଗ
ফুলরাণী ଅଦ୍ଭୁତଙ୍କଯୋଗ୍ୟ ସେ ସୌଦାମିନୀ ।
ଜଳଦଙ୍ଗୋର, କୃଷ୍ଣସିଂହ ।
ପ୍ରାଦେ. (ଗଡ଼ଜାତ) ବି—ଫୁଲ ବିବାହୀ (ଦେଖ)। Phula bibāhi (See)

**ଫୁଲ(ଲୁ)ର ମାଳୀ**—ଦେ· ବି. (ସଂ. ଫୁଲ୍ଲ + ମାଲାକାର)—
Phula(lu)ra māḷi   ୧ । ଯେଉଁ ମାଳୀ ଫୁଲ ବଗିଚା କରେ—
ফুলবালা মালী   1. Flower gardener.
**फुलवाला माली**   ୨ । ଯେଉଁ ମାଳୀ ଫୁଲ ବିକେ—2. Florist.

**ଫୁଲ(ଲ୍ଲ)ରି**—ଦେ. ବି—୧ । ତେଲ ବା ଘିଅରେ ଛଣା ହୋଇଥିବା
Phula(lla)ri   ବିରିଆଦି ବଟାର ପିଷ୍ଟକବିଶେଷ—1. Small
ଫୁଲୁରି } ଅନ୍ୟରୂପ   cakes of lentil-paste fried in ghee
ଫୁଲୋରି }   or oil.
ফুলরি; ফুলুরি, ফুলোরি; ফুলেল   ୨ । ଫୁଲର ତେଲ (ଦେଖ)
**फुलेल**   2 Phulari tela (See)
ବିଣ—ଫୁଲ ସମୂହ—A collection of flowers.

**ଫୁଲରି ଅମାବ(ବା,)ସ୍ୟା**—ଦେ. ବି. (ସଂ. ଫୁଲ୍ଲେର ଅମାବାସ୍ୟା)—
Phulari amāba(bā)syā   ମହାଳୟା ଅମାବାସ୍ୟା—
ଫୁଲ୍ଲର ଅମାବସ୍ୟା } ଅନ୍ୟରୂପ   The newmoon day of the
ଫୁଲୁର ଅମାବସ୍ୟା }   month of Kārttika.

**ଫୁଲ(ଲେ)ର ତେଲ**—ଦେ. ବି—ପୁଷ୍ପବାସିତ ତୈଳ—
Phula(le)ri tela   Floral oil; oil scented with the
(ଫୁଲୁର ତେଲ—ଅନ୍ୟରୂପ)   essence of flowers.
ফুলেল তেল   **फुलेल**

**ଫୁଲ ଲଙ୍କା**—ଦେ. ବି—ଫୁଲ ଡାଲା—Flower-tray.
Phula laṅkā   କରେ ଧରିଛି ଏପରି ଫୁଲ ଲଙ୍କା । ଗୋକୁଳ, ରସକଲ୍ଲୋଳ ।
ফুলডালা   **फुल डलिआ**

**ଫୁଲ ଲାଗି**—ଦେ. ବି. (ସଂ. ଫୁଲ୍ଲ + ଲଗ୍ନ)—ଦେବତା ଓ ରାଜାଆଦିଙ୍କର
Phula lāgi   ଫୁଲରେ ଭୂଷିତ ହେବା—Decoration with
(ଫୁଲମଣ୍ଡଣି—ଅନ୍ୟରୂପ)   flowers (of Rajas and idols).
ফুলে সাজান
**फुलमे सजावट**   ବିଣ—ଫୁଲଦ୍ୱାରା ସର୍ବାଙ୍ଗ ମଣ୍ଡିତ—
With the body dressed with flowers like ornaments; decorated with flowers.

**ଫୁଲ ଶଯ୍ୟା**—ଦେ. ବି. (ସଂ. ଫୁଲ୍ଲ + ଶଯ୍ୟା)—
Phula śajyā   ୧ । ଫୁଲଦ୍ୱାରା ପ୍ରସ୍ତୁତ ବା ପୁଷ୍ପବିସ୍ତୃତ ଶଯ୍ୟା—
ଫୁଲ ଶେଯ } ଅନ୍ୟରୂପ   1. A bed strewn with flowers.
ଫୁଲ ଶେଯ୍ୟା }   ୨ । ମଧୁଶଯ୍ୟା; ମଙ୍ଗଳଶଯ୍ୟା; ବିବାହିତ
ফুলশয্যা   ଦମ୍ପତିର ବିବାହର ପ୍ରଥମ ସପ୍ତାହ ରାତିରେ ଏକତ୍ର ଶୟନ
କରିବା ବିଛଣା—2. The marriage bed; the bed on which the married couple sleep during the first week of marriage.

**ଫୁଲ ଶର**—ଦେ. ବି. (ସଂ. ଫୁଲ୍ଲ + ଶର)—ପୁଷ୍ପଶର (ଦେଖ)
Phula śara   Pushpa śara (See)
ফুলশর   ପ୍ରାଦେ. (ଗଡ଼ଜାତ) ବି—ଇଙ୍କଡ଼ି ଜାତୀୟ ଜଙ୍ଗଲି
**फुलशर**   ତୃଣଗୁଳ୍ମବିଶେଷ—A kind of reed.

**ଫୁଲ ଶାଗୁଣା(ଣୀ)**—ଦେ. ବି. (ସଂ. ଫୁଲ୍ଲ + ଶକୁନୀ)—
Phula śāguṇā(ṇī)   ଗୃଧ୍ରୀ; ମାଈ ଶାଗୁଣା—
ফুল শকুনী   **गीधनी**   A female vulture.

[ ଦ୍ର—ଏହାର ଗଳାଦେଶ ସଂଲଗ୍ନ ମାଂସଥଳି ମଦାର ଫୁଲ ପରି ନାଲି ଦେଖାଯିବାରୁ ଏହାର ଏହି ନାମ ହୋଇଅଛି । ]

**ଫୁଲ ସଞ୍ଜ(ନ୍ଧ୍ୟା)**—ଦେ. ବି—ସନ୍ଧ୍ୟାର ଆରମ୍ଭ ଅବସ୍ଥା; ମୁହଁ ସନ୍ଧ୍ୟା—Dusk.
Phula sañja(ndhyā)   ଗୃହ ଛମାସ ଉତ୍ତାରେ ଦିନେ ଫୁଲସଞ୍ଜ ସମୟରେ । ଫକୀରମୋହନ ଗଳ୍ପସ୍ୱଳ୍ପ ।
[ଫୁଲସନ୍ଧ(ଞ୍ଜି)ଆ]

**ଫୁଲ ସଭା**—ଦେ. ବି—ବ୍ରତ ଓ ବିବାହ ଦିନ ସନ୍ଧ୍ୟା ସମୟରେ ବୈଦିକ
Phula sabhā   ବ୍ରାହ୍ମଣ ଓ ପଣ୍ଡିତମାନଙ୍କର ଆଶୀର୍ବାଦ ସଭା—
( ଫୁଲୁସଭା—ଅନ୍ୟରୂପ )   A meeting of Brāhmaṇas and Pandits held on the evening of a marriage or Upanayana, to bless the married couple or the Brahmachārī boy.

**ଫୁଲା**—ଦେ ବି—( ସଂ. ଶ୍ୱାୟୃ. ଧାତୁ ) ୧ । ସ୍ଫୀତି—1. Swelling;
Phulā   ( ଫୁଲ୍ଲା—ଅନ୍ୟରୂପ )   inflation.
ତଳ ସୁମନସ ନାସାଫୁଲା—କବିସୂର୍ଯ୍ୟ, ସଙ୍ଗୀତ.
ফুলা   ୨ । ଶୋଥ; ଆଧ୍ମାନ—2. Plethora; dropsy.
**फुला, फुलना**   ୩ । ଚକ୍ଷୁରୋଗବିଶେଷ; ଆଖିର କଳା ଡୋଳାରେ ମାଡ଼ିବା ପରଳ—3. Pearl on the eye.
୪ । ବେଙ୍ଗ ଗର୍ଭରୁ ଜାତ ବୁଦ୍‌ବୁଦମୟ ଫେଣ; ବେଙ୍ଗଫୁଲା—
4 Frog-spittle; frog spit.
[ ଦ୍ର—ଏଥିରୁ ବେଙ୍ଗଛୁଆ ଜନ୍ମନ୍ତି । ]
ব্যেঙাছী   ୫ । ଲାଙ୍ଗୁଡ଼ ଯୁକ୍ତ ବେଙ୍ଗ ଛୁଆ—
**छुच्छमञ्जली**   The young ones of frog, with long tails.
୬ । ପାଣିରେ ସିଝାଯାଇ ଫୁଲିଥିବା ବଡ଼ି ତିଅଣ; ବଡ଼ି ଫୁଲା—
6. Dried lentil-paste-balls boiled in water and used as curry
ବିଣ—୧ । ଫୁଲିଥିବା; ସ୍ଫୀତ—1. Bloated; swollen; inflated; puffed up.
ফুলা; ফোলা   **फुलाहुआ**
୨ । ଗର୍ବ ସ୍ଫୀତ—2. Bloated or swollen with pride.
ଫୁଲା ମନମଥ ଗୁଲ୍ମରୁ ମୋର ଏଣିକି ଆଉ କା ଉରରେ । କବିସୂର୍ଯ୍ୟ. ସଙ୍ଗୀତ
ପ୍ରାଦେ ( ବସ୍ତ୍ରର ) ବି—ବଥ—Boil.

**ଫୁଲା(ଲେ)ଇବା**—ଦେ. କ୍ରି—( ଫୁଲିବା କ୍ରିୟାର ଣିଜନ୍ତ ରୂପ; the causative form of Phulibā).
Phulā(le)ibā
ফোলান   ୧ । ସ୍ଫୀତ କରିବା—1. To puff up; to cause to swell.
**फुलाना**
ହସି ଫୁଲାଇଲୁ ନାସାକୁ ରେ । କବିସୂର୍ଯ୍ୟ. ସଙ୍ଗୀତ ।
୨ । ଗର୍ବିତ ହେବା—2. To be proud.
୩ । ସ୍ଫୀତ ହେବା—3. To be swollen or puffed up.
(ଯଥା—ତା ପେଟ ଫୁଲେଇଛି ।)
୪ । ଆକାରରେ ବୃଦ୍ଧି ପାଇବା—
4. To become larger in size.
ସୌଗନ୍ଧିକ ପୁଷ୍ପରେ ବାନ୍ଧ ଗନ୍ଧବହ
ବହୁ ଫୁଲାଇଛ ତେବେଙ୍କ ଦିବ୍ୟ ଦେହ । କୃଷ୍ଣସିଂହ. ମହାଭାରତ, ବନ ।
୫ । (ସଂ. ଫୁଲ୍ଲିତ)—ଉତ୍‌ଫୁଲ୍ଲ କରିବା; ପୁଲକିତ କରିବା—
5. To gladden; to make one cheerful.
ବହୁ ସେ ଫୁଲାଇଛି ଦେହୁଙ୍କର ଦେହ । କୃଷ୍ଣସିଂହ. ମହାଭାରତ. ଅଦି ।

**ଫୁଲଣ**—ଦେ. ବି—ଫୁଲାଇବା କ୍ରିୟା—
Phulāṇa　The act of inflating.
ফুলান **फुलाना** (ଯଥା—ତାର ମୁହଁ ଫୁଲଣ ମୁଁ ଆଉ ସେହିଁ ପାରିବି ନାହିଁ ।)

**ଫୁଲଣି**—ଦେ. ବି—କଣ୍ଟି ଖିଲାର ଅଗ ତର ପଛରୁ ମାରିବା ଖିଲ—
Phulāṇi　A flat pin of wood or bamboo driven into a crack made at the top of a plough-pin.

**ଫୁଲଣିଆ(ଆଁ)**—ଦେ. ବି—ଫୁଲାଣି (ଦେଖ)—Phulāṇi (See)
Phulāṇiā(ā̃)　ବିଣ—୧ । ଫୁଲିଥିବା; ସ୍ଫୀତ—1. Bloated.
ফুলা　୨ । ଗର୍ବସ୍ଫୀତ; ଗର୍ବଯୁକ୍ତ—2. Inflated with pride.
**फुला**　୩ । ଦାୟିତ୍ୱଜ୍ଞାନ ଶୂନ୍ୟ—3. Irresponsible.
୪ । ନିଶ୍ଚିନ୍ତ; ଚିନ୍ତାଶୂନ୍ୟ—4. Free from cares.
(ଯଥା—ମନ ଫୁଲଣିଆ ଗୀତ ଗାଏ ।)

**ଫୁଲନୟନ୍**—ବୈଦେ• ବି ( ଇଂ. ଫ୍ଲାନେଲ୍ )—ମେଣ୍ଢାରୁମ ବା ପଶମରେ ବୁଣା ବନା—Flannel.
Phulānayan
ফুলানয়ন **फुलानयन** ( ଫ୍ଲାନେଲ୍—ଅନ୍ୟରୂପ )

**ଫୁଲ ପଣ**—ଦେ. ବି—୧ । ସ୍ଫୀତି—1. Swelling; the state of being swollen.
Phulā paṇa
ଫୁଲାପଣିଆ(ଆଁ) / ଫୁଲାଣିଆ(ଆଁ) ପଣ } ଅନ୍ୟରୂପ　୨ । ଗର୍ବସ୍ଫୀତି—2. The state of being puffed up with pride.
ফুলপানা　୩ । ଅତ୍ୟନ୍ତ ଗର୍ବ ବା ଅହଙ୍କାର—
**फुलाव; फुलावट**　3. Excess of pride; arrogance.

ଫୁଲପଣକୁ ନହେଁ ସରି, ଫଲମାଳରେ ଦେହ ଭରି—
କମଳଲୋଚନ ଚଉତିଶା ।

**ଫୁଲ ଫାଙ୍କିଆ**—ଦେ. ବିଣ—୧ । ଗର୍ବିତ—1. Proud.
Phulā phāṅkiā　୨ । ଗର୍ବସ୍ଫୀତ—2. Inflated with pride.
**फुला फुजा**　(ଫୁଲା ଖ[ଫା]ଙ୍କିଆ—ଅନ୍ୟରୂପ)
୩ । ପୋଲାଫାଙ୍କିଆ; ଯେ ପର ଉପରେ ପଡ଼ି ଚଳେ; ପରର ଗଲଗ୍ରହ—3. A toady; hanger-on.
୪ । ଦାୟିତ୍ୱଜ୍ଞାନଶୂନ୍ୟ—4. Irresponsible; devoid of any sense of responsibility.
୫ । ଚିନ୍ତାଶୂନ୍ୟ—5. Free from anxiety or care.

**ଫୁଲ ଲୁଣ**—ଦେ. ବି. ( ସଂ. ଫୁଲ୍ଲ+ଲବଣ ) ୧ । ପାଂଶୁଲବଣ (ହରେକୃଷ୍ଣ ଦ୍ରବ୍ୟଗୁଣ )—1. Ash-salt.
Phulā luṇa
পাঙ্গানুন **करकच**　୨ । ପଙ୍ଗାଲୁଣ; ସାମୁଦ୍ରିକ ଲବଣ—
2. Sea-salt.

**ଫୁଲି**—ଦେ ବି. ( ସଂ. ଫୁଲ୍ଲ )—୧ । ସୂତା ବା ପାଟ ନିର୍ମିତ ପୁଷ୍ପାକାର ଗୁଚ୍ଛ; ପାଟଝୁମ୍ପା—1. Tassel.
Phuli　ফুল, ফুলী
**फुलाव; फुलिया; फुल्ली**　ବାଳାର; ଚଳଚ୍ଚିତ୍ରମାଳା ଫୁଲି ଦେଇ ।
ବାନା ବରମ ମନୋରମ ପ୍ରକାରରେ ବନ୍ଧା ଚ ଏମନ୍ତ ତେ ଯୋଗି—
ଭଞ୍ଜ, ବୈଦେହୀଶବିଳାସ ।
୨ । ଶ୍ଳୋକାଦିର ଶେଷରେ ଚତ୍ରିତ ପୁଷ୍ପାକାର ଚିହ୍ନ—
2. The representation of a floral design at the end of a couplet or poem.
୩ । ଫୁଲ ପରି ଦେଖା ଯାଉଥିବା ନାକର ଅଳଙ୍କାରବିଶେଷ—
3. A kind of nose-ornament having a floral top.
୪ । ବିଶାକାଠିରେ ଚିହ୍ନ ଦିଆ ଯାଇଥିବା ଗାରମାନଙ୍କ ମଧ୍ୟରୁ ଯଥାକ୍ରମେ ୫, ୧୦, ୧୫ ଓ ୨୦ ପଲ ଓଜନର ଜିନିଷ ପଲ୍ଲଡ଼ାରେ ରଖାଗଲେ ଯେଉଁ ଦାଗ ଉପରେ ସୂତା ରହେ ଉକ୍ତ ଦାଗରେ ଦିଆଯାଇଥିବା ବନ୍ଧୁ ରେଖାଯୁକ୍ତ ଚିହ୍ନ(*)—
4. A star-mark on the pole of a Bisā to indicate 5, 10, 15 and 20 Palas weight respectively.
[ ଦ୍ର—୧ ବିଶା=୨୫ ପଲ । ୪ ଫୁଲ ଚିହ୍ନ ପର୍ଯ୍ୟନ୍ତ=୨୦ ପଲ । ୪ ଫୁଲ ଆଗରେ ସୂତା ବସିଲେ ୨୫ ପଲ ବା ପୂର୍ଣ୍ଣ ୧ ବିଶା ଓଜନର ଜିନିଷ ହେଲା ବୋଲି ଜଣାଯାଏ । ୪ ଫୁଲ ଆଗ=ପୂର୍ଣ୍ଣ ୨୫ ପଲ ବା ୧ ବିଶା ଓଜନ । ]
୫ । ଲେଖା ଆଙ୍କରେ ବ୍ୟବହୃତ ତାରକା ଚିହ୍ନ—
5. Asterisk.
ପ୍ରାଦେ. ( ସମ୍ବଲପୁର ) ବି—କାନ୍ଥକୁଣ୍ଡ—Wall niche.

**ଫୁଲିଆ**—ଦେ. ବିଣ. ( ଅନ୍ୟ ପୁଷ୍ପବାଚକ ଶବ୍ଦ ସଙ୍ଗେ ଯୁକ୍ତ )—
Phuliā　୧ । ଅମୁକ ଫୁଲ ପରି—1. Like such and such flower.
ফুলআলা **फुलवाला**
( ଯଥା—କଦମ୍ବ ଫୁଲିଆ, ଓଡ଼ୁ ଫୁଲିଆ ଇତ୍ୟାଦି । )
୨ । ପୁଷ୍ପପ୍ରିୟ—2. Liking flowers; taking a fancy to flowers.
( ଯଥା—କିଆ ଫୁଲିଆ ରସିକ, କଖାରୁ ଫୁଲିଆ ରସିକ । )
ଦେ. ବି. ( ବଣିଆ ଶବ୍ଦ )—୧ । ଭାତ—1. Boiled rice.
୨ । ଚିଲିକାର ଏକପ୍ରକାର କଙ୍କଡ଼ା—
2. A kind of crab of the Chilikā lake.

**ଫୁଲିଆ ଘାସ**—ଦେ. ବି—ଏକପ୍ରକାର ଘାସ—
Phuliā ghāsa　A kind of grass.
[ ଦ୍ର—ଏଥିର କାଣ୍ଡ ଅଗରେ ଗୋଟିଏ ଫୁଲ ବା ଥୋପା ଭଳି ଫୁଲ ଫୁଟେ । ]

**ଫୁଲିତ**—ଦେ. ବିଣ—ଫୁଲିଥିବା—Swollen.
Phulita　ପ୍ରଖର ଶ୍ୱାସ ଶ୍ୱସନ ଫୁଲିତ ନାଶା ଦଶନ—
ବସନେ ସ୍ଥିତ ଦର୍ଶିତ କୁଚ ଦଂଶନ—ଭଞ୍ଜ, ପ୍ରେମସୁଧାନିଧି ।

**ଫୁଲି ଫୁଲି କାନ୍ଦିବା**—ଦେ. କ୍ରି—ଦୀର୍ଘନିଶ୍ୱାସ ଛାଡ଼ି ରହିରହି କାନ୍ଦିବା (ଓ ତଜ୍ଜନିତ ମୁହଁ ଓ ଆଖି ଫୁଲିବା)—
Phuli phuli kāndibā
ফুঁপিয়ে ফুঁপিয়ে কান্দা　To sob; to weep with sobs; to cry with convulsions.
**हीसकना; सीसकना**

**ଫୁଲିବା**—ଦେ. କ୍ରି. (ସଂ. ସ୍ଫାୟୀ ଧାତୁ)—୧ । ସ୍ଫୀତ ହେବା—
Phulibā　1. To be swollen; to swell.
ফুলা; ফোলা　୨ । ମୋଟା ହେବା—2. To become large or fat.
**फुलना**
୩ । ଗର୍ବସ୍ଫୀତ ହେବା; ଅତି ଗର୍ବିତ ହେବା—
3. To become very proud or arrogant.

ଫୁଲୁଅଛୁଁକେତେ ଦେଖାଉ କରଉଚ ଉକ୍ତ କୋଦଣ୍ଡ ଖଣ୍ଡକୁ । କବ୍ୟର୍ଧ୍ୟ ସଙ୍ଗୀତ ।

(ଫୁଲିଯିବା—ଅନ୍ୟରୂପ) ୪ । (ଗର୍ବ, ମଦ, ରାଗ ବା ଆନନ୍ଦରେ) ଉଲ୍ଲସିତ ବା ଉତ୍‌ଫୁଲ୍ଲ ହେବା—1. To be overjoyed, to start up (as with anger or joy.)

ଫୁଲଲେ ମୁଁ ଶତ୍ରୁ ଶୁଣି ମଦରେ । କବକର୍ପଣ. ଉତ୍କଳର ଭକ୍ତ. ଫ. ଗୀତ ।

**ଫୁଲୁକା**—ଦେ.ବଣ—୧ । ଶ୍ୱୀତ; ଫୁଲିଥିବା—1. Swollen; bloated.
Phulukā (ଫୁଲୁକୀ—ସ୍ତ୍ରୀ) ୨ । ସ୍ଥୂଳକାୟ—2. Corpulent.
ଫୁଲ୍‌କ फुलाहुआ ବ—ଫୁଲ୍କା (ଦେଖ)—Phulkā (See).

**ଫୁଲୁକା ଗାଲିଆ**—ଦେ. ବଣ. ପୁଂ—ଯାହାର ଗାଲ ଫୁଲିଥାଏ—
Phulukā gālia Having bloated cheeks.
ଫୁଲୁକା ଗାଲୀ / ଫୁଲୁକା ଗାଲେଇ / ଫୁଲୁକା ଗାଲୀ / ଫୁଲୁକା ଗାଲେଇ } ସ୍ତ୍ରୀ (ଫୁଲୁକାଗାଲ—ଅନ୍ୟରୂପ)
ଫୁଲାଗାଲଓୟାଲା
फुलाहुआगालवाला

**ଫୁଲୁକା ମୁହାଁ**—ଦେ. ବଣ. ପୁଂ—ଶୋଥାମୁହାଁ; ଯାହାର ମୁହଁ ଫୁଲିଥାଏ-
Phulukā muhāñ Having a bloated or swollen face.
[ଫୁଲୁକା ମୁହାଁ, ଫୁଲୁକ ମୁହାଁ—ସ୍ତ୍ରୀ]

**ଫୁଲୁ ଫୁଲିଆ**—ଦେ. ବଣ (ସ. ଫୁଲ୍ଲ)—୧ । ପୁଷ୍ପ ସଦୃଶ—
Phuluphuliā 1. Flower-like.
ଫୁଲ ଫୁଲିଆ / ଫୁଲ୍ ଫୁଲୁକା / ଫୁଲୁ ଫୁଲୁକା } ଅନ୍ୟରୂପ
୨ । ଫୁଲପରି ମନୋହର—
2. Beautiful as a flower.
୩ । ଫୁଲପରି ପ୍ରସ୍ଫୁଟିତ—
3 Opened or full-blown like a flower.
ଫୁଲ୍‌ଫୁଲିଆ, ଫୁଲ୍‌ଫୁଲେ ୪ । ଫୁଲପରି ହାଲୁକା—
4. Light like a flower.
୫ । ଫୁଲପରି କୋମଳ ବା ସୁକୁମାର—
5. Tender or soft or delicate like a flower,
୬ । (ସ. ଶ୍ୱୀତ) ଫୁଲୁକା; ଫୁଲିଥିବା; ଶ୍ୱୀତ—
6. Bloated; swollen.

**ଫୁଲୁଟ୍**—ବୈଦେ. ବ. (ଇଂ. ଫ୍ଲୁଟ୍)—ବଂଶୀ; ଯେଉଁ ବଂଶୀର ପାର୍ଶ୍ୱସ୍ଥ
Phulut ଛିଦ୍ର ଫୁଙ୍କି ବଜାଇବାକୁ ହୁଏ—Flute.
ଫ୍ଲୁଟ୍ बाँसुरी

**ଫୁଲେଇ ହେବା**—ଦେ. କ୍ରି—୧ । ଅଭିମାନ କରିବା—1. To become sensitive; to become sullen.
Phulei hebā
ଫୁଲା फुलना ୨ । ଗର୍ବିତ ହେବା; ଗର୍ବସ୍ଫୀତ ହେବା—
2. To become proud; to be puffed up with pride.
୩ । ଦେଖେଇ ହେବା—
3. To make a show; to assume airs
୪ । ଆତ୍ମବଡ଼ିମା ପ୍ରକାଶ କରିବା—
4. To become boastful of one's praise.

**ଫୁଲେଇ**—ଦେ. ବଣ. ସ୍ତ୍ରୀ—୧ । (ଗାଲରେ ବନ୍ଧବନ୍ଧୁତ) ଗର୍ବିତା (ସ୍ତ୍ରୀ)—
Phulei 1. Proud (woman); haughty.
୨ । ଯେ (କ୍ରୋଧ, ଘୃଣା, ଗର୍ବରେ) ନାକ ବା ମୁହଁ ଫୁଲାଏ—
2, Puffing up one's nostrils in disdain, pride or anger.

**ଫୁଲୁ(ଲେ,ଲୋ,ଲୌ)ରି**—ଦେ. ବ—୧ । ତେଲ ବା ଘିଅରେ ଛଙ୍କା ହୋଇ ଭଜା ହୋଇଥିବା ଖେଚଡ଼ ଶ୍ରେଷ୍ଠ
Phulu(le,lo,lau)ri
ଫୁଲୋରୀ; ଫୁଲୌରୀ ବଡ଼ା ବା ବରା; ପକୌଡ଼ି—1. Lentil-paste-cakes fried in oil or ghee.
फुलौरी
୨ । ପୁଷ୍ପବାସିତ ତୈଳ—2. Floral oil.

ଫୁଲୁରି ଫୁଲତ କଷ; ଭଲୁର ଅଛ ଅନଶ
ବନ୍ଦନକାର ହରଣ, ରକ୍ତଚ ହେଉଛି କେଶ । ପ୍ରାଚୀନ. ସଙ୍ଗୀତ ।

ବଣ—୧ । ଫୁଲରୁ ଜାଆଁ ହୋଇଥିବା—1. Made or extracted from flower; floral.
ଫୁଲେଲ फुलेल
(ଯଥା—ଫୁଲୁରି ତେଲ)
୨ । ପୁଷ୍ପବାସିତ—2. Scented with flowers.

**ଫୁଲ୍କା**—ଦେ. ବ—ମାଛଙ୍କ ଗାଲସି—
Phulkā Gills of a fish.
ଫୁଲ୍‌କା ବଣ—ଶ୍ୱୀତ; ଫୁଲୁକା—
गलफड़ा Bloated; puffed up; swollen.

**ଫୁଲ୍ଲ୍(ଧାତୁ)**—ସ—୧ । ବିକଶିତ ହେବା; ପ୍ରସ୍ଫୁଟିତ ହେବା—1. To be full blown; to be opened.
Phull (root)
୨ । (ଦେହ) ଉଲ୍ଲସିତ ହେବା; ଉଲସି ଉଠିବା—
2. To start up (with anger or joy).

**ଫୁଲ୍ଲ**—ସ. ବ. (ଫୁଲ୍ଲ୍ ଧାତୁ+କର୍ତ୍ତୃ. ଅ)—
Phulla ଫୁଲ; ପୁଷ୍ପ—Flower.
ବଣ. (ଫୁଲ୍ଲ୍ ଧାତୁ=ବିକଶିତ ହେବା+କର୍ତ୍ତୃ. ଅ)—
୧ । ମୁକୁଳିତ; ପ୍ରସ୍ଫୁଟିତ—1. Full-blown.
୨ । ବିକଶିତ—2. Opened; expanded.
୩ । ପ୍ରଫୁଲ୍ଲ—3. Overjoyed.

**ଫୁଲ୍ଲ ଲୋଚନ**—ସ. ବଣ. ପୁଂ. (ବହୁବ୍ରୀହି; ଫୁଲ୍ଲ+ଲୋଚନ)—
Phulla lochana ପ୍ରଫୁଲ୍ଲ ନୟନ—Having eyes brightened up or expanded (with joy).
ଫୁଲ୍ଲ ନୟନ / ଫୁଲ୍ଲ ନେତ୍ର } ଅନ୍ୟରୂପ
(ଫୁଲ୍ଲ ଲୋଚନା, ଫୁଲ୍ଲ ନୟନା, ଫୁଲ୍ଲ ନେତ୍ରା—ସ୍ତ୍ରୀ)

**ଫୁଲ୍ଲାଧର**—ସ. ବଣ. ପୁଂ. (ବହୁବ୍ରୀହି; ଫୁଲ୍ଲ+ଅଧର)—
Phullādhara ପ୍ରଫୁଲ୍ଲବଦନ; ହାସ୍ୟମୁଖ—
(ଫୁଲ୍ଲାଧରା—ଅନ୍ୟରୂପ) Having a laughing face.

**ଫୁଲ୍ଲାରବିନ୍ଦ**—ସ. ବ. (କର୍ମଧା; ଫୁଲ୍ଲ+ଅରବିନ୍ଦ)—ପ୍ରସ୍ଫୁଟିତ ପଦ୍ମ—
Phullārabinda Full-blown lotus.

**ଫୁଲ୍ଲେନ୍ଦୀବର**—ସ. ବ. (କର୍ମଧା; ଫୁଲ୍ଲ+ଇନ୍ଦୀବର)—
Phullendībara ପ୍ରସ୍ଫୁଟିତ ନୀଳ କଇଁ—Full-blown blue waterlily.

**ଫୁଲ୍ଲେନ୍ଦୁ**—ସ. ବ. (କର୍ମଧା; ଫୁଲ୍ଲ+ଇନ୍ଦୁ)—ପୂର୍ଣ୍ଣଚନ୍ଦ୍ର—
Phullendu Full moon.

**ଫୁଷ୍‌କେଲ୍**—ପ୍ରାଦେ. (ସମ୍ବଲପୁର) ବ. (ସ. ପୁଷ୍କର)—ପଦ୍ମ ପୁଷ୍କର—
Phush-kel The cup of the lotus flower.

ଫସ୍—ଦେ. (ଧ୍ୱନ୍ୟନୁକରଣ) ଅ—୧ । (ତୁଚ୍ଛାର୍ଥକ)—ଧିକ୍ !
Phus 1. (Interjection) Pish ! pooh ! fie !
ফুস্ ୨ । ଧୀର ଭାବରେ ଗହ୍ୱରରୁ ବା ମୁଖରୁ ପବନ ବାହାର
फुस ହିବାର ଶବ୍ଦ—2. The low hissing sound of air escaping through a hole or the mouth.
୩ । ପାଦିବାର ଅନୁଚ୍ଚ ଶବ୍ଦ—3. The low sound of breaking wind.
ହାତୀ ପାଦିବ ପାଦିବ ବୋଲି ଫୁସ୍ – ଉଗ ।
୪ । ଫୁସ୍ ଫୁସ୍ (ଦେଖ)—5. Phus phus (See)
୫ । ନିଷ୍ଫଳ (କର୍ମ)—5. Fruitless (act).

ଫୁସ୍କି—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ବଂ. ଫୁସ୍କୁଡ଼ି)—
Phus-ki ଘିମ୍ବିରି ପରି ବ୍ରଣ—Small pimples like lichen or prickly heat.

ଫୁସ୍ ଫୁସ୍—ଦେ. ବି. (ସ. ଫୁସ୍ଫୁସ)—ଫୁସ୍ଫୁସ (ଦେଖ)
Phus phus Phusphusa (See)
ফুস্ফুস্ ଅ.— ଫୁସୁରୁ ଫୁସୁରୁ (ଦେଖ)
फेफड़ा Phusuru phusuru (See)
ଫୁସ୍ଫାସ୍ } ଅନ୍ୟରୂପ
ଫୁସୁଫୁସୁ }
ଫୁସ୍ ଫୁସ୍ ହେଉଛନ୍ତି ନାମ ଜପୁ ଅଛନ୍ତି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଫୁସା—ପ୍ରାଦେ. ଗ୍ରା. (ବାଲେଶ୍ୱର) ବି. (ଅଶ୍ଳୀଳ)—
Phusā ହିରିକି; ମଳଦ୍ୱାର—Anus.

ଫୁସା ଚୁପ୍ ଚୁପ୍ ଡାକିବା—ପ୍ରାଦେ. ଗ୍ରା. (ବାଲେଶ୍ୱର) କ୍ରି. (ଅଶ୍ଳୀଳ)—
Phusā chup chup ḍākibā ଖୁବ ଭୟରେ ଥରିବା —
(ଫୁସାଫୁସ ହେବା—ଅନ୍ୟରୂପ) To quake with fear.

ଫୁସି—ପ୍ରାଦେ. (ଗଞ୍ଜାମ) ବି— ୧ । ନିର୍ଦ୍ଧନ; ଦରିଦ୍ର—1. Poor.
Phusi ୨ । ତୁଚ୍ଛ; ହେୟ—2. Despicable.
୩ । କୃପଣ—3. Miserly.

ଫୁସିଆର—ଦେ. ବି—ଶଗଡ଼ ଚକର ପୁଟି ଦେହରେ ମରା ଯାଇଥିବା
Phusiāra ଅରକୁ ଟାଣ କରି ଚପି ରଖିବା ପାଇଁ ପଇରେ ମରା ଯାଇଥିବା ଖିଲ—The wooden pin driven into the rims of a cart-wheel to keep the spokes tight therein.

ଫୁସି କଙ୍କଡ଼ା—ଦେ. ବି—ଛୋଟ କଙ୍କଡ଼ା—
Phusi kaṅkarḍā Small crab.

ଫୁସୁରୁ ଫୁସୁରୁ—ଦେ. ଅ. ( ଧ୍ୱନ୍ୟନୁକରଣ ) ଅ—
Phusuru phusuru ଖୁବ୍ ଚୁପ୍ ଚୁପ୍ କଥା ଭାଷା ହେବାର ଶବ୍ଦ—
(ଫୁସୁର ଫୁସୁର—ଅନ୍ୟରୂପ) Low whispering; whispering sound.
ফুস্ফুস্ फुसफुस

ଫୁସୁକି ଯିବା—ଦେ. କ୍ରି—(କୌଣସି କାର୍ଯ୍ୟ) ନିଷ୍ଫଳ ହେବା; ଫସକି ଯିବା—
Phusuki jibā To miscarry (said of a work).
(ଫୁସ୍କି ଯିବା—ଅନ୍ୟରୂପ) फसके जाओया

ଫୁସୁଲା(ଲେ)ଇବା—ଦେ. କ୍ରି. (ସ. ପ୍ର + ସରଣ=ପ୍ରବୃତ୍ତ ହେବା)—
Phusulā(le)ibā ୧ । କୋମଳ କଥା ଦ୍ୱାରା ଭୁଲାଇବା; ଭଣ୍ଡାଇବା—1. To coax; to cajole; to wheedle.
ଫୁସ୍ଲା(ଲେ)ଇବା } ଅନ୍ୟରୂପ
ଫୁସୁଲି କରିବା }
ফুসলান ଅଳପାଇସିଆ ଗାଁଲୋକେ ତାକୁ ଫୁସୁଲେଇଲେ ଶୁଣିବାକୁ ହେବ ନାହିଁ ।
फुसलाना ଫକୀରମୋହନ, ଗଳ୍ପସ୍ୱଳ୍ପ ।
୨ । ପ୍ରଲୋଭନ ଦେଖାଇବା—
2. To inveigle; to seduce; to entice.

ଫୁସୁଲା ଫୁସୁଲି—ଦେ. ବି—୧ । ଭଣ୍ଡିବା; କଥାଦ୍ୱାରା ଭୁଲାଇବା—
Phusulā phusuli ফুসলা ফুসলি 1. Coaxing; cajolry.
फुसला फुसलि ୨ । ପ୍ରଲୋଭନ ଦେଖାଇ ପ୍ରବର୍ତ୍ତାଇବାର
(ଫୁସ୍ଲା ଫୁସଲି, ଫୁସୁଲା – ଅନ୍ୟରୂପ) ଚେଷ୍ଟା—2. Enticement.

ଫୁସ୍ଫୁସ—ସଂ. ବି—ଫୁସ୍ ଫୁସ୍ ଯନ୍ତ୍ର; ହୃଦୟ ମଧ୍ୟସ୍ଥ ବାୟୁପାତ୍ର—
Phusphusa The lungs.

ଫୂର୍ତ୍ତି—ଦେ. ବି. ( ସ. ସ୍ଫୂର୍ତ୍ତି )—୧ । ତେଜ—
Phūrtti ফূর্ত্তি फुर्ती 1. Sprightliness; energy.
୨ । ଉଲ୍ଲାସ; ମଉଜ; ଆନନ୍ଦ—
2. Exhilaration; merriment.
୩ । ତତ୍ପରତା; ଚାଞ୍ଚଲ୍ୟ—
3. Activity; briskness.
୪ । ବେଗ; ତତ୍ପରତା—4. Promptness.
୫ । ଶୀଘ୍ରତା; ତ୍ୱରା—5. Quickness; haste.
୬ । ସ୍ଫୂର୍ତ୍ତି; ସ୍ଫୁରଣ—6. Finding expression.
୭ । ଆମୋଦ; ମନର ଆନନ୍ଦ—
7. Buoyancy of spirits.
ବିଣ—୧ । ତେଜସ୍ୱାନ୍—1. Energetic; sprightly.
୨ । ଉଲ୍ଲସିତ—2. Exhilarated; overjoyed.
୩ । ଚଲାକ; ଚଞ୍ଚଳ—
3. Active; nimble; brisk.
୪ । ତତ୍ପର—4. Prompt.
୫ । ତ୍ୱରିତ—5. Quick; hasty.
କ୍ରି• ବିଣ—୧ । ଶୀଘ୍ର—1. Sharp; soon.
୨ । ବେଗରେ—2. Quickly.
୩ । ତତ୍କ୍ଷଣାତ୍—3. Immediatly; at once.

ଫୂର୍ତ୍ତି କରିବା—ଦେ. କ୍ରି—୧ । ଆନନ୍ଦିତ ହେବା; ମଉଜ କରିବା—
Phūrtti karibā 1. To be exhilarated; to express joy; to be merry.
ফূর্ত্তিকরা फुर्ती करना
୨ । ତତ୍ପରତା ସହିତ କାର୍ଯ୍ୟ କରିବା—2. To act with promptness; to make haste; to look sharp.
୩ । ଚଞ୍ଚଳଆ ହେବା—
3. To be brisk; to be up and doing.

ଫୂର୍ତ୍ତି ଦେଖା(ଖେ)ଇବା—ଦେ. କ୍ରି—କାର୍ଯ୍ୟରେ ତତ୍ପରତା ପ୍ରକାଶ
Phūrtti dekhā(khe)ibā କରିବା—To show promptness or briskness.
ফূর্ত্তি দেখান फूर्ती दिखलाना

ଫୂର୍ତ୍ତିବାଜ୍—ଦେ. ବିଣ (ସ. ସ୍ଫୂର୍ତ୍ତି+ଫା. ପ୍ରତ୍ୟୟ-ବାଜ୍)—୧ । ପ୍ରଫୁଲ୍ଲମନା—
Phūrttibāj 1. Having buoyancy of spirits.
ফূর্ত্তিবাজ फूर्तीला; फूर्तीबाज ୨ । ଚଞ୍ଚଳ—2. Active.

ଫୂର୍ତ୍ତିବାଜି — ଦେ. ବି—କର୍ମକୁଶଳତା ବା ସିଦ୍ଧହସ୍ତତା—Activity in work; dexterity in work.
Phūrttibāji
ফুর্ত্তিবাজী फुर्त्तिबाजी

ଫୁସତ୍—ବୈଦେ. ଗ୍ରା. ବି—ଫୁରୁସତ୍ ( ଦେଖ )—Phurusat (See)
Phrusat ( ଫୁ୍ରସେତ, ଫୁ୍ରସ୍[ସେ]ତ—ଅନ୍ୟରୂପ )

ଫେଅର୍ କପି—ବୈଦେ. ବି ( ଇଂ )—ତଠାରୁ ସାଫ କରିବା ନକଲ—
Phear kapi ফেয়ার কাপী फेयार कापी Fair copy.

ଫେଇବା—ଦେ. କ୍ରି ( ସଂ. ଫେଟନ )—୧ । ଫେଡ଼ିବା; ଖୋଲିବା;
Pheibā ମେଲିବା; ଫିଟାଇବା; ମେଲା କରିବା—
ফুয়ন; ফেটান खोलना 1. To unfasten; to open; to unfurl.

ଗୋବନ୍ଦ ଲୋଚନ ଫେଇଲେ — ଭୂପତି. ପ୍ରେମପଞ୍ଚାମୃତ ।

୨ । ପ୍ରକାଶିତ କରିବା—2. To show.

୩ । ମୁକୁଳାଇବା; ଖୋଲି ବାହାର କରିବା—3. To untie.

ଫେଇ ବାଥିଲ୍ଲା କଣ୍ଠୁ ମୁକୁତା ହାର; ଫଳାଇ ପାଇବ କ କବ ନିହର—
କବିସୂର୍ଯ୍ୟ. ରତ୍ନାକର ଚମ୍ପୂ. ଙ-ଗୀତ ।

ଫେଉ—ଦେ. ବି—୧ । ଫାଉ; ଧପ୍ପାବାଜି; ପ୍ରତାରଣା—
Pheu 1. Fraud; deception.

୨ । ଚତୁରତା; ଧୂର୍ତ୍ତତା; ଛଳ — 2. Cunning.

୩ । ଫୁସୁଲା ଫୁସୁଲି—3. Coaxing; cajolry.

୪ । ବାହାନା—4 Excuse; feigning; pretext.

ଫେଏ ଫେଏ—ଦେ. ଅ ( ଧ୍ୱନ୍ୟନୁକରଣ ) ଅ—ବିଲୁଆ ଭୁକିବା ଶବ୍ଦ;
Phe-e phe-e ভেউ ভেউ, হুকে হুকে—The braying of jackals.
( ଫେ ଫେ —ଅନ୍ୟରୂପ ) खे खे

ଫେଏ ଫେଏ ରବ ଦେଇ ଫେରୁ ଉଲ୍କାମୁଖୀ –
ରାଧାନାଥ. ଶ୍ମଶାନ ଦୃଶ୍ୟ ।

ଫେଁ ଫେଁ—ଦେ. ଅ. ( ଧ୍ୱନ୍ୟନୁକରଣ )—ଉଚ୍ଚହାସ୍ୟ କରିବାର ଶବ୍ଦ;
Pheṅ pheṅ ହେଁ ହେଁ—Sound of loud laughter.
ফিক ফিক खेँ खेँ (ଫେଁଏଁ ଫେଁଏଁ—ଅନ୍ୟରୂପ)

ଫେକଟ୍—ପ୍ରାଦେ. ( ବସ୍ତର ) ଅ. ( ଭୁଲ. ହି. ଫୋକଟ୍=ବ୍ୟର୍ଥ )—
Phekaṭ ବୃଥା; ଅକାରଣ—In vain; for nothing.

ଫେକାରି—ପ୍ରାଦେ. ( ବାମଣ୍ଡା ) ବି. ( ସଂ. ଫେରୁ=ବିଲୁଅ )—
Phekāri କୋକଶିଆଳ—Fox.

ଫେଚକାମୀ—ଦେ. ବି—୧ । ଫିସାଦ—1. Fraud.
Pheeh·kāmī ୨ । ଫାଜିଲାମି—2. Undue forwardness.
ফেচকামী फापाकुटनी ୩ । ଖଳତା—3. Wantonness.
(ଫେଞ୍ଚକାମୀ—ଅନ୍ୟରୂପ) [ଫେଚକା(ପୁଂ), ଫେଚକୀ(ସ୍ତ୍ରୀ)—ବିଣ]

ଫେଟ୍ ( ଧାତୁ )—ସ—ଫିଟାଇବା; ଖୋଲିବା—
Pheṭ ( root ) To open.

ଫେଟନ—ସ. ବି. ( ଫେଟ୍ ଧାତୁ+ଭାବ. ଅନ )—ଫିଟାଇବା—
Pheṭana Opening.

ଫେଟା—ଦେ. ବି. ( ସ. ଫୈଟ )—୧ । ଚଉଡ଼ା ପିନ୍ଧା ଲୁଗା—
Pheṭā ফেটা फेँटा 1. A wide cloth.

ରଣ ଶେଷେ ହସ୍ତ ଛନ୍ଦିଲ ଭୋ କଟ ଯାହା ପୀତଫେଟା ଫେଇ ରେ—
କବିସୂର୍ଯ୍ୟ. ରତ୍ନାକରଚମ୍ପୂ. ଋ-ଗୀତ ।

୨ । ଅଣ୍ଟାରେ ଲୁଗା ଉପରେ ଭିଡ଼ାଯିବା ଲୁଗା—2. A cloth tied round the waist over the loin-cloth.

୩ । କମଳା ଲେମ୍ବୁର ଚୋପା—3. Peel of orange.

୪ । ଶିମ୍ବରୁ ଗୋଟିଏ—4. A bean.

ଫେଟା ଧଡ଼ିଆ—ଦେ. ବିଣ—ଚଉଡ଼ାଧଡ଼ିଯୁକ୍ତ ( ଲୁଗା )—
Pheṭā-dhaṛdiā Having a broad hem ( cloth ).

ଫେଟ(ଟି)ନ୍—ବୈଦେ. ବି—ଫିଟନ୍ ( ଦେଖ )
Pheṭa(ṭi)n Phiṭan ( See )

ଫେଡ଼—ଦେ. ବି. ( ସ. ଷ୍ଫୁଟ୍ ଧାତୁ କିମ୍ବା ଫେଟ୍ ଧାତୁ )—
Pherḍa ୧ । ମୋକ୍ଷଣ; ମୋଚନ; ଫେଡ଼ିବା—1. The act of releasing.
ଫେଡ଼ଣ, ଫେଡ଼ା
ଫେଡ଼ାଙ୍କ, ଫେଡ଼ାଣ } ଅନ୍ୟରୂପ ୨ । ଦୂରୀକରଣ—2 Removal.

୩ । ଏକ ଅଙ୍କରୁ ଅନ୍ୟ ଅଙ୍କର ବିଯୋଗ କରଣ; ବ୍ୟବକଳନ—
3. The process of subtraction.

ଫେଡ଼ ମିଶା—ଦେ. ବି—ଅଙ୍କ ଫେଡ଼ିବା ଓ ମିଶାଇବା ପ୍ରକ୍ରିୟା—
Pherḍa misā The processes of subtraction and addition.
যোগ বিয়োগ घटाना जोड़ना
(ଫେଡ଼ା ମିଶା, ଫେଡ଼ାଣ ମିଶାଣ, ଫେଡ଼ ମିଶା—ଅନ୍ୟରୂପ)

ଫେଡ଼ା—ଦେ. ବିଣ—ବ୍ୟବକଳିତ; ବିଯୁକ୍ତ—Subtracted.
Pherḍā বাদ দেওয়া घटाया हुआ

ଫେଡ଼ା(ଡ଼େ)ଇବା—ଦେ. କ୍ରି. (ସ. ଷ୍ଫିଟ୍ ବା ଫିଟ୍ ଧାତୁ ଣିଚ=ଷ୍ଫେଟି
Pherḍā(ṛḍe)ibā ବା ଫେଟ୍ ଧାତୁ )—( ଫେଡ଼ିବା କ୍ରିୟାର
ফিড়ান; ফেড়ান; ফিঁড়ান ଣିଜନ୍ତ ରୂପ—The causative form of 'Pherḍibā')
खुलवाना, घटवाना

୧ । ଅନ୍ୟ ବ୍ୟକ୍ତିଦ୍ୱାରା ଫେଡ଼ିବା କ୍ରିୟା କରାଇବା—
1. To cause to subtract.

୨ । ଅନ୍ୟଦ୍ୱାରା ଫିଟାଇବା—2. To cause to be opened or unlocked.

ସାର କବାଟ ଫେଡ଼ାଇଲ
ଅନ୍ଧାର ଘରକୁ ପୂହିଁଲ । ଜଗନ୍ନାଥ. ଭାଗବତ ।

ଫେଡ଼ିବା—ଦେ. କ୍ରି. (ସ. ଷ୍ଫୁଟ; ଷ୍ଫିଟ୍ ବା ଫିଟ୍ ଧାତୁ ଣିଚ୍ ବା ଫେଟ୍
Pherḍibā ଧାତୁ)—୧ । ଦୂର କରିବା—1. To remove.
ফেড়া; বাদদেওয়া ଫେଡ଼ିଲୁ ତୋ କଷ୍ଟ ସୁଖ ଦେଇ ଅଷ୍ଟ-
घटाना ଛନ୍ଦ ଏ ଆସ୍ଥ ବାଞ୍ଛିତ । କବିସୂର୍ଯ୍ୟ. କଳାବତୀ. ଙ. ଗୀତ ।

୨ । ବିଯୋଗ କରିବା; ଏକ ରାଶିରୁ ଅନ୍ୟ ରାଶିକୁ ବାଦ୍ ଦେବା—
2. To subtract.

୩ । ଫେଇବା; ଫିଟାଇବା; ଖୋଲିବା—3. To open.

ଫେଡ଼ୁ ମୁଁ ଗାଲବନ୍ଧନ, ଧନ । ଭକ୍ତ. ପ୍ରେମସୁଧାନିଧି ।

୪ । ମୁକ୍ତ କରିବା—4. To liberate; to release.

୫ । ମୋକ୍ଷଣ କରିବା; ତ୍ୟାଗ କରିବା—5. To give up.

୬ । ଲାଘବ କରିବା; ମୋଚନ କରିବା—
6. To lessen; to relieve.

ଆହେ କୃଷ୍ଣ । ଅର୍ଦ୍ଧକ୍ଷଣ ତୁମ୍ଭେ ହୋଇ
ଏ ଅରତ ଅସ୍ତ୍ରର ଫେଡ଼ିଲ ତ ନାହିଁ । କୃଷ୍ଣସିଂହ. ମହାଭାରତ ସଭା ।

୨ । (ଭିତ୍ରର ଭାବକୁ) ସ୍ପଷ୍ଟରୂପେ ପ୍ରକାଶ କରିବା—
7. To speak out plainly or frankly; to express.

ଭ୍ରମୁଦ୍‌ଗଣ ଭୂତ ଫେଡ଼େ ଦଣ୍ଡବତ୍‌ଭାବ । ଭେଟ କା ସ୍ୱଭାବପଣେ । ରାଧାନାଥ. ପାର୍ବତୀ ।

୮ । ଅନ୍ତର୍ଦୃଷ୍ଟିର ପ୍ରୟୋଗରେ ଜାଣିବା—
8. To know by insight or instinct
ଜୀବ ଚେଷ୍ଟିଅଛ ଫେଡ଼ି ଭବେଦେ । ରାଧାନାଥ. ନନ୍ଦିକେଶ୍ୱରୀ ।

ଫେଡ଼ି କହିବା—ଦେ. କ୍ରି—ଖୋଲି କହିବା; ସ୍ପଷ୍ଟରୂପେ ବୁଝାଇ କହିବା
Pherdi kahibā To speak clearly.
खुले बला କଥାଏ ପଚାରିବ ତୋତେ
खोलकर बोलना ଫେଡ଼ି କହିବ ମୋ ଅଗ୍ରତେ । ଗ୍ରାମ୍ୟ. ନିର୍ଗୁଣମନ୍ତ୍ରଧ୍ୟାନ ।

ଫେଣ୍—ପ୍ରାଦେ. (କଟକ ସହର) ଅ. (ସଂ. ପୁନଃ)—ପୁଣି; ପୁନର୍ବାର—
Phen (ଫିଣ୍—ଅନ୍ୟରୂପ). Again; also.

ଫେଣ—ଦେ. ବି. (ସଂ. ଫେନ; ଫେଣ)—୧ । ଫେନ; ଦ୍ରବ ପଦାର୍ଥ
Pheṇa ଉପରେ ଭାସୁଥିବା ବୁଦ୍‌ବୁଦ—1. Froth; foam;
ফেনা scum.
फेन; गउँज ୨ । ପାଟିରୁ ବାହାରିବା ବଡ—
2. Froth issuing from the mouth.
୩ । ଛୁଣ୍ଡୀର; ସମୁଦ୍ରଫେଣ; ଏକପ୍ରକାର ମାଛର କଙ୍କାଳ—
3. The bone of the cuttle fish; meerschaum.
ফণা ୪ । (ସଂ. ଫଣା) ସାପର ଫଣା—
फन 4. The expanded hood of a serpent.

ଫେଣ କାଢ଼ିବା—ଦେ. କ୍ରି—୧ । ତରଳ ପଦାର୍ଥ ବା ସାବୁନଆଦି ଘଷି
Pheṇa kāṛhibā ତାହା ଫେନଯୁକ୍ତ କରିବା—1. To
(ଫେଣ ବାହାର କରିବା—ଅନ୍ୟରୂପ) produce froth or
ফেনকাঢ়া lather from liquids by friction.
गउँज निकालना; फेन निकालना ୨ । କୌଣସି ଜନ୍ତୁକୁ ଅତ୍ୟଧିକ
ପରିଶ୍ରମ କରାଇ ତା ପାଟିରୁ ବଡ ବାହାର କରାଇବା—
3. To cause an animal to emit froth from its mouth by causing it to labour hard.
୩ । (ସାପ) ଫଣା ବାହାର କରିବା—3. (a serpent) To stand with its hood expanded.
୪ । (ଲକ୍ଷଣାର୍ଥ) ଜବତ୍ କରିବା—4. To subjugate.

ଫେଣ ଧରିବା—ଦେ. କ୍ରି—ଫଣା ପ୍ରକାଶ କରିବା—
Pheṇa dharibā To raise up the hood.
ଫେଣ କାଢ଼ିବା } ଅନ୍ୟରୂପ ମାଛର ମାର୍ଜାର ସର୍ପଫେଣ କ ଧରେ
ଫେଣ ବାହାର କରିବା } ଯେତେ ପଦ୍ମଲୋଳା ଗାଇଲେ ।
ফণা বাহিরকাব फेन काढ़ना ଗୋପକୃଷ୍ଣ. ଜଗମୋହନ ।

ଫେଣା—ଦେ. ବି. (ସଂ. ଫଣା)—୧ । ସର୍ପର ଫଣା—
Pheṇā 1. Serpent's hood.
ফণা ୨ । କଦଳୀ କାନ୍ଦିରେ ଥିବା କଦଳୀର ପେନ୍ଥା—
फन; फेन 2. A cluster of plantain fruits in a big bunch.
ফেনি

फज; हत्था ୩ । ମଧୁଚକ୍ର; ମହୁମାଛି ଛୁଆର କରିଥିବା କୋଷ—
মউচাক্ 3. Bee-hive.
छत्ता ୪ । (ସଂ. ଫେନ) ତରଳୀକୃତ ଗୁଡ଼ ବା ନବାତ ଚଳା ହୋଇ
ফেণী; বাতসা ପ୍ରସ୍ତୁତ ହୋଇଥିବା ବୁଦ୍‌ବୁଦମୟ ମିଷ୍ଟାନ୍ନବିଶେଷ—
बतास फेनी 4. (ସଂ. ଫାଣିତ) A bloated ball made of boiled sugar.
ବଡ, ମିଶିରି, ଫେଣା, ଖଜା ବୃନ୍ଦ । ଗ୍ରାମ୍ୟ. ପଦରେଖାଣ୍ଡା ।
ବିଣ—ଫେନଯୁକ୍ତ—Frothy.
କ୍ରି—ଫେଣାଇବା (ଦେଖ)—Pheṇāibā (See)

ଫେଣା(ଣେ)ଇବା—ଦେ. କ୍ରି. (ସଂ. ଫେନ ଶବ୍ଦରୁ ଫେନାୟ ଧାତୁ)—
Pheṇā(ṇe)ibā ୧ । ତରଳ ପଦାର୍ଥକୁ ଫେଣ୍ଟିବା; ବିଶେଷତଃ
ଫେଣିଆଇବା } ଅନ୍ୟରୂପ ଘାଣ୍ଟି ଫେନଯୁକ୍ତ କରାଇବା—
ଫେଣିବା } 1. To stir dough with
ফেনান फेनाना fingers so as to make it foamy.
୨ । ଫେନଯୁକ୍ତ ହେବା—
2. To be frothy; to emit froth

ଫେଣୀ—ଦେ. ବି—(ସଂ. ଫେନକ)—୧ । ଗୁଡ଼ ବା କଳକୁ ଅତ୍ୟନ୍ତ
Pheṇi ଛାଳିବା ଦ୍ୱାରା ପ୍ରସ୍ତୁତ ମିଷ୍ଟାନ୍ନ; ବିଶେଷ ଫେଣା—
ফেণিবাতাসা बतासफेनी 1. Bloated sugar cake.
୨ । (ସଂ. ଫେନକା) ଚକ୍ର ଓ ଅଟାରେ ପ୍ରସ୍ତୁତ ସ୍ତର ସ୍ତର ଯୁକ୍ତ ମିଷ୍ଟାନ୍ନ ବିଶେଷ, ଫେନକା (ଦେଖ)—2. A sweetmeat consisting of layers of kneaded flour fried in ghee.

ଫେଣିଆ—ଦେ. ବିଣ—ଘଣ୍ଟା ହୋଇ ଫେନଯୁକ୍ତ କରି ଯାଇଥିବା—
Pheṇiā ফেনা फेनाहुआ Made foamy by stirring.
(ଫେଣିଆ ଫେଣୀ—ଅନ୍ୟରୂପ)

ଫେଣେଇ—ପ୍ରାଦେ. (ବାଲେଶ୍ୱର) ବି—ଫେଣା ୪ (ଦେଖ)—
Pheṇei Pheṇā 4 (See).

ଫେଣେଇ ହେବା—ଦେ. କ୍ରି—କଳି କଥା ବାର ବାର ପକାଇବା—
Pheṇei hebā To introduce a disputed matter repeatedly to attract the disputant's attention.

ଫେଣ୍ଟ—ଦେ. ବି. (ବଣିଆ ଶବ୍ଦ)—୧ । ଦସ୍ତା—1. Lead.
Pheṇṭa ୨ । ତାସ ଆଦି ଫେଣ୍ଟିଆ ବା ଏକତ୍ର ମିଶାଇବା କ୍ରିୟା—
2. Shuffling, intermingling.

ଫେଣ୍ଟିବା—ଦେ. କ୍ରି—୧ । ଫେଣାଇବା (ଦେଖ)
Pheṇṭibā ফেন্টা फेटना 1. Pheṇāibā (See).
୨ । (ସଂ. ପ୍ରିଷ୍ଟ) ଏକ ପଦାର୍ଥ ସହିତ ଅନ୍ୟ ପଦାର୍ଥକୁ ସମ୍ୟକ୍‌ରୂପେ ମିଶାଇବା—2. To mix up a thing with another.
୩ । ତାସ ଆଦି ଗୋଳାଇବା—
3. To intermingle (cards); to shuffle.

ଫେଟି—ପ୍ରାଦେ. (ପୁରୀ) ବି—ଖୁବ୍ ଯୋରରେ ଦୂରକୁ ଟେକା ପକାଇବା ପାଇଁ ଦଉଡ଼ିରେ ନିର୍ମିତ ଫାଶ—A contrivance made
Pheti of rope to throw stones to a great distance with great force; sling.

**ଫେତ୍କାରିଣୀ ତନ୍ତ୍ର**—ବି—ତନ୍ତ୍ରଶାସ୍ତ୍ରବିଶେଷ—
Phetkārinī tantra  Name of a 'Tantra-treatise'.
ଯେ ଅଛ ଫେତ୍କାରିଣୀ ତନ୍ତ୍ରେ
ବୈଷ୍ଣବାଗ୍ରେ ଯେ ସୁଗନ୍ଧେ—ପ୍ରାଚୀ. ପୂର୍ଣ୍ଣତମ, କଲ୍ଲୋଳସ୍ ।

**ଫେନ(ଣ)**—ସ. ବି—( ଫ୍ୟାସ୍ ଧାତୁ=ଫୁଲିବା+କର୍ତ୍ତୃ ନ. ନିପାତନ )—
Phena(ṇa) ୧ । ଘର୍ଷଣ ବା ମନ୍ଥନ ଦ୍ୱାରା ଦ୍ରବ ପଦାର୍ଥରୁ ବାହାରିବା ବୁଦ୍ବୁଦ୍‌ରାଶି—1. Froth; foam; scum.
୨ । ସମୁଦ୍ର ଫେଣ; ସାମୁଦ୍ରିକ ମତ୍ସ୍ୟବିଶେଷର ବୁଦ୍ବୁଦାକୃତି କଙ୍କାଳ— 2. The spongy skeleton of cuttle-fish; Sepia Officinalis.
ଦେ. ବି—ପାଟିରୁ ବାହାରିବା ଫେଣ—Froth issuing from the mouth.
ପ୍ରାଦେ. ( କଳାହାଣ୍ଡି ) ବି. (ଭୁଲ. ଏହି ଅର୍ଥରେ ବଂ. ଓ ହି. ଫେନ୍)—ପେଜ—Rice-gruel.

**ଫେନକ**—ସ. ବି—(ଫେନ+ସ୍ୱାର୍ଥେ. କ)—୧ । ସମୁଦ୍ର ଫେଣ—
Phenaka  1. Skeleton of the cuttle-fish.
୨ । ଫେଣା ନାମକ ମିଷ୍ଟାନ୍ନ—2. Bloated sugar ball.
୩ । ଫେଣ; ବୁଦ୍ବୁଦ୍‌ରାଶି—3. Foam; froth; scum.
୪ । ରିଠାଫଳ ଆଦି ଫେନୋତ୍ପାଦକ ବସ୍ତୁ ଦ୍ୱାରା ଶରୀର ଘଷି ଧୋଇବା ପ୍ରଣାଳୀ (ହି. ଶ)—4. Bath by rubbing the body with lather-forming substance.

**ଫେନକା**—ସ. ବି—(ଫେନ+କ+ସ୍ତ୍ରୀ. ଆ)—୧ । ଜଳପକ୍ୱ ତଣ୍ଡୁଳ
Phenakā  ଚୂର୍ଣ୍ଣ—1. Ground rice boiled in water.
(ଫେନକା—ଅନ୍ୟରୂପ) ୨ । ଖଜା; ଫେଣା ନାମକ ମିଷ୍ଟାନ୍ନ—2. Bloated sugar-ball.
୩ । ଅରିଷ୍ଟ ବୃକ୍ଷ ଓ ଫଳ; ରିଠା ଗଛ ଓ ଫଳ—3. The soap-berry (tree and berry); Sapindus Saponarius.

**ଫେନପ**—ସ. ବିଣ—(ଫେନ+ପା. ଧାତୁ+କର୍ତ୍ତୃ. ଅ)—୧ । ଯେ ଫେଣ
Phenapa  ପାନ କରେ—1. Drinking froth.
ବି—ସ୍ୱତଃପତିତ ଫଳଦ୍ୱାରା ଜୀବନଧାରଣକାରୀ ମୁନି—
A sage subsisting only on fruits dropped down from trees.

**ଫେନାଗ୍ର**—ସ. ବି. (୬ଷ୍ଠୀ ତତ୍; ଫେନ+ଅଗ୍ର; ଫେନର ଅଗ୍ରଭାଗ)-
Phenāgra  ବୁଦ୍ବୁଦ—Bubble.

**ଫେନାୟମାନ**—ସ. ବିଣ—(ଉଦ୍‌ବମନାର୍ଥକ ଫେନାୟ 'ନାମଧାତୁ+
Phenāyamāna  କର୍ତ୍ତୃ. ଶାନଚ୍)—ଯହିଁରୁ ଫେଣ ବାହାରୁଥାଏ—
(ଫେନାୟମାନା—ସ୍ତ୍ରୀ). Foaming; emitting froth.

**ଫେନିକା**—ସ. ବି—ଫେଣୀ; ମଇଦାରେ ତିଆରି ଏକପ୍ରକାର ମିଷ୍ଟାନ୍ନ;
Phenikā  ପତଳା ବହୁସ୍ତରଯୁକ୍ତ ଘୃତପକ୍ୱମିଷ୍ଟକବିଶେଷ; ଖଜା—
ଖାଜା खाजा  A kind of pastry cake made up of
ଓ. ଖଜା, ଫେଣୀ  many thin layers.
[ଦ୍ର—ଘୃତବହୁଳ ମଇଦାକୁ ଦଳି ତହିଁରେ ପାର୍ଶ୍ୱାକୃତ ବର୍ତ୍ତିକା ପ୍ରସ୍ତୁତ କରି ତାକୁ ବେଲଣାପେଡ଼ି ଉପରେ ରଖି ବେଲଣାକାଠି ଦ୍ୱାରା ବେଲି ଖଣ୍ଡିଏ ରୁଟି ପ୍ରସ୍ତୁତ କରାଯାଏ । ସେହି ରୁଟିକୁ ଛୁରି ଦ୍ୱାରା ସଲଗ୍ନ ଭାବରେ କାଟି ପୁଣି ବେଲିବାକୁ ହୁଏ । ସେ ରୁଟି ଉପରେ ଷଟ୍ଟକ (ଶାଳିତଣ୍ଡୁଳ ଚୂର୍ଣ୍ଣ, ଘୃତ ଓ ଜଳ) ଲେପନ କରି ତାକୁ ମୁଦ୍‌ଗର ଗୁଡ଼ାଇଲା ଭଳି ଗୁଡ଼ାଇ, ସେହି ଲମ୍ବ ଖଣ୍ଡକୁ ପୁଣି ମୁଣ୍ଡା ମୁଣ୍ଡା କରି କାଟି ବେଲିବାକୁ ହୁଏ । ସେହି ବେଲା ହୋଇଥିବା ପତଳା ରୁଟିକୁ ଘିଅରେ ଛାଣି ଶିରା (ଚିନିରସ) ରେ ବୁଡ଼ାଇବାକୁ ହୁଏ । ଏ ପିଠା ଫୁଲୁକା ଓ ଉପରେ ବହୁ ସୂକ୍ଷ୍ମସ୍ତରଯୁକ୍ତ ହୁଏ । ଏହାକୁ ଫେନକା ବୋଲାଯାଏ । ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁପାକ ଓ ମଣ୍ଡକ ଗୁଣଯୁକ୍ତ—ଦ୍ରବ୍ୟଗୁଣ । ]

**ଫେନିଳ**—ସ. ବିଣ—(ଫେନ+ଯୁକ୍ତାର୍ଥେ. ଇଲ)—ଫେନଯୁକ୍ତ—
Phenila (ଫେନଲ—ଅନ୍ୟରୂପ) Frothy; scummy.
ବି—୧ । ଅରିଷ୍ଟ ବୃକ୍ଷ ଓ ଫଳ; ରିଠାଫଳ—1. The soap-berry; soap-nut; Sapindus Saponarius.
୨ । ବରକୋଳି—2. Jujuba Zyzyphus.
୩ । ମଦନ ଫଳ; ମଳଣ ଫଳ—
3. The fruit of Vangueria Spinosa.

**ଫେଫଲ୍**—ପ୍ରାଦେ. (ସମ୍ବଲପୁର) ବି—ଫେଣ—
Phephal  Foam; froth.

**ଫେବ୍ରୁଆରି**—ବେଦେ. ବି. (ଇଂ. ଫେବ୍ରୁଆରୀ)—
Phebruāri  ଇଂରାଜି ସନର ମାସଗଣନାରେ ଦ୍ୱିତୀୟ ମାସ—
ফেব্রুয়ারী  The month of February.
फरवरी  [ ଦ୍ର—ଏ ମାସର ଦିନ ସଂଖ୍ୟା ଅଠେଇଶି ଅଟେ । କେବଳ ଲିପ୍ ଇଅରରେ ( ଅର୍ଥାତ୍ ଯେଉଁ ସନର ଅଙ୍କ ସଂଖ୍ୟାକୁ ୪ରେ ହରଣ କଲେ ଫଳ ରହେ ନାହିଁ ସେହି ସନରେ ) ଏ ମାସର ଦିନ ସଂଖ୍ୟା ୨୯ ହୁଏ । କିନ୍ତୁ ଯେଉଁ ଲିପ୍‌ଇଅରର ଅଙ୍କର ଶେଷ ସଂଖ୍ୟାଦ୍ୱୟ ଶୂନ୍ୟ ହୋଇଥାଏ ସେ ସନରେ ଫେବ୍ରୁଆରି ମାସର ଦିନ ସଂଖ୍ୟା ୨୯ ନ ହୋଇ ୨୮ ହୁଏ । ଯଥା—ସନ ୧୯୦୦ ଖ୍ରୀଷ୍ଟାବ୍ଦ ଲିପ୍ ଇଅର୍ ହେଲେ ମଧ୍ୟ ଉକ୍ତ ସନର ଫେବ୍ରୁଆରି ମାସର ଦିନ ସଂଖ୍ୟା ୨୮, କିନ୍ତୁ ଯେଉଁ ଦ୍ୱିଶୂନ୍ୟ-ସଂଖ୍ୟାଯୁକ୍ତ ସନ ୪୦୨ ରେ ହରିଲେ ଛିଣ୍ଡି ଯାଏ ସେ ସନର ଫେବ୍ରୁଆରି ମାସର ୨୯ ଦିନ ହୁଏ । ]
ଫେବ୍ରୋରି, ଫିବ୍ରୋରି, ଫିବ୍ରେରି, ଫିବ୍ରୁଆରି } ଅନ୍ୟରୂପ

**ଫେମ୍ପର**—ଦେ. ବି. ( ଭୁଲ. ଇଂ. ଭେପର୍ )—
Phempara  ୧ । ବାଷ୍ପ—1. Steam.
ফেঁপর भाफ  ୨ । ଫେଣ—2. Froth; foam.

**ଫେର୍**—ଦେ. ଅ. (ସ. ପୁନର୍)—ପୁଣି; ପୁନବାର; ଆଉଥରେ; ପୁନରପି—
Pher  Again.
আবার  ବି—୧ । କୁଣ୍ଡଳୀକୃତ ରଜ୍ଜୁର ମୋଡ଼ା—
फिर  1. Fold of a coiled rope.
୨ । ( ଲକ୍ଷଣାର୍ଥ ) କପଟ; ଛଳ—
2. ( figurative ) Wile.

**ଫେର୍ ଘାଇ**—ପ୍ରାଦେ. ( ସମ୍ବଲପୁର ) ବି—ବିଲର ଜଳାଧାରରୁ ପାଣି
Pher ghāi  ବାହାରୁ ଯିବା ପାଇଁ ଛୋଟ ନାଳ—Branch channel to drain out or take out water from corn fields.

**ଫେର୍ ଫାର୍**—ଦେ. ବି—୧ । ହେର୍ ଫେର୍; ଉଲଟ ପାଲଟ; ଲେଉଟ ପାଉଟ—1. Transposition.
Pher phār
ফের ফার, ফের ঘোর
फेरफार

୨ । ପୁନଃ ପୁନଃ ପ୍ରତ୍ୟାବର୍ତ୍ତନ—2. Repeatedly coming back.

୨ । ପୁନଃ ପୁନଃ ଯିବା ଆସିବା ବା ବୁଲିବା; ଗୁଲବୁଲ—3. Roving; walking to and fro.

ଖାଲି ମକ୍କା ଫେର୍ ଫାର୍
ବୋହର ପଇସା ଅନ୍ଧାରେ ମାର୍ —ଢଗ ।

୪ । ଆଦାନ ପ୍ରଦାନ—4. Giving and taking.

୫ । ପରିବର୍ତ୍ତନ କରାଇବା; ଫେରାଇବା—5. Act of returning or changing.

୬ । ପରିବର୍ତ୍ତନ—6. Change.

୭ । ଅଦଲ ବଦଲ; ବିନିମୟ; ବଦଳ—7. Exchange; barter.

୮ । ପେଁଚ ପାଁଚ; ମାୟା; ଛଳ; କୂଟ କୌଶଳ—8. Wile; stratagem; artifice.

୯ । ଠାଳ ଠୁଳ; ଠାଳମୁଠୁଳ—2. Repeated putting off on various excuses.

ବିଣ—ପୁନଃ ପୁନଃ ଯିବା ଆସିବା କରୁଥିବା—Repeatedly coming and going.

**ଫେର୍ ଫେରୁ(ରି)ଆ**—ଦେ. ବି. ( ବଣିଆ ଶବ୍ଦ )—ସୁନା ବା ରୁପାର ତାରକସି କାମରେ କେତେକ ଖୋଲା ସ୍ଥାନକୁ ପୂରଣ କରିବା ଲାଗି ତାରକୁ ପରସ୍ପରକୁ ପରସ୍ପ ଗୁଡ଼େଇ ସେହି ଖୋଲା ସ୍ଥାନରେ ବସାଯିବା କୁଣ୍ଡଳ—Coils of wire put into blank spaces in a gold or silver filagree work.
Pher pheru(ri)ā

**ଫେର**—ସଂ. ବି (ଫେ=ଶବ୍ଦ+ରୁ ଧାତୁ+କର୍ତ୍ତୃ. ଅ)—ଫେରଣ୍ଡ (ଦେଖ) Pheranda ( See )
Phera

କୌଁଚା / साँची, कोंचा — ଦେ. ବି. ( ସଂ. ପ୍ରତ୍ୟାବୃତ୍ତ; ପ୍ରେରଣ )—୧ । ସାମନାରେ ଲମ୍ବିଥିବା ପିନ୍ଧା ଲୁଗାର କୁଞ୍ଚିତ ଅଂଶ; କୁଞ୍ଚ—1. The narrow folds of a loin cloth hanging down in front of the wearer.

ନବଡ଼ ଗାବଡ଼ ଯାଉଅଛି ଫିଟି
ଲେଉଟି ହେଉଅଛି ଅଗରେ ଫେର ଗୋଟି । କୃଷ୍ଣସିଂ. ମହାଭାରତ, ବନ ।

পাক / लच्छा — ୨ । ରଜ୍ଜୁର ବାଙ୍କ ବା ମୋଡ଼; ବେଷ୍ଟନ—2. A coil or twist of a rope; a turn or bend.

୩ । ପ୍ରତ୍ୟାବର୍ତ୍ତନ—3. Coming back; returning; a turning; reversion.

୪ । ମାୟା; ଛଳ; ଫନ୍ଦୀ; କୌଶଳ; ପେଁଚପାଁଚ—4. Wile; stratagem; artifice.

୫ । ଗୋଳମାଳିଆ ଅବସ୍ଥା; ବିଭ୍ରାଟ—5. Confusion; confused state of affairs.

୬ । ଆପଦ; ବିପନ୍ନ ଅବସ୍ଥା; ସଙ୍କଟ; ଦକା; ଧୋକା—6. Crisis; danger; peril; grave difficulty.

୭ । ଭାଗ୍ୟବିପର୍ଯ୍ୟୟ—7. Reverse of fortune.

୮ । ଫାନ୍ଦ; ଜାଲ—8. Snare.

୯ । ପିନ୍ଧା ଲୁଗାର ଯେଉଁ ଅଂଶ କଟିର ଗୁଡ଼ପାଖରୁ ବଳି ଥାଏ—9. The part of the loin-cloth in excess of the part wound round the waist.

ଉଭ ଶେଷେ ଦୁଇ ଉଇଲ ତୋ କଟି
ଯାହା ଯୀଗ ଫେନା ଫେରରେ । ବଳଦେବ. ଇନ୍ଦ୍ରାକରିବଳାକୁ, ରସ, ଗୀତ ।

ଗ୍ରାଦେ. (ବାଲେଶ୍ୱର) ବି—୧ । ପରିସ୍ତ; ଖଞ୍ଜା; ଅଗଣା—1. Courtyard of a house.

୨ । ପାଣିର କାଳ—2 Canal.

(ଖୋର୍ଧା) ବି—ପାଣି ବୋହି ଯାଉଥିବା ସ୍ଥାନରେ କରାଯିବା ପଥର ବା ଚେକାଦ୍ୱାରା ଆଚ୍ଛାଦିତ ଗଡ଼ାଣି; କାଜ—A causeway.

**ଫେର କାନି**—ଦେ. ବି—ଫେରର ନିମ୍ନପ୍ରାନ୍ତ; ପିନ୍ଧାଲୁଗାର ସାମନାରେ ଲମ୍ବିଥିବା ଅଂଶର ପ୍ରାନ୍ତ—The front end of a loin cloth hanging down the waist.
Phera kāni
(କଣ୍ଠକାନ—ବିପର୍ଯ୍ୟୟ)
सामनेकाखूँ

**ଫେର ଖୋସିବା**—ଦେ. କ୍ରି—ପିନ୍ଧାଲୁଗାର ଫେରର ନିମ୍ନ କାନକୁ ଲେଉଟାଇ ଆଣି ନାଭି ପାଖରେ ଖୋସିବା—To tuck up the lower front end of the loincloth.
Phera khosibā
खुँटखोसना
কোঁচা মারা (ଫେର ମାରିବା—ଅନ୍ୟରୂପ)

**ଫେର ଛାଡ଼ିବା**—ଦେ. କ୍ରି—ପିନ୍ଧିଥିବା ଲୁଗାର ଫେରକୁ ନ ଖୋସି ତଳକୁ ଓହଳାଇବା—To let the front lower corner of the cloth hang down.
Phera chhārdibā
ଫେର ଛାଡ଼ିଦେବା / ଫେର ଲମ୍ବା(ମ୍ଭେ)ଇବା } ଅନ୍ୟରୂପ
কোঁচা ছাড়া खुँट खोलदेना

**ଫେରଣ**—ଦେ. ବି. (ସଂ. ପରିବର୍ତ୍ତନ; ପାଶ୍ଚାତ୍ୟମାନଙ୍କ ପ୍ରବର୍ତ୍ତିତ ଓଡ଼ିଆ ଭାଷା; ଯଥା—ମନ ଫେରଣ)—ପରିବର୍ତ୍ତନ—1. Change.
Pheraṇa
ফিরা
फेरना

୨ । ଭ୍ରମଣ—2. Roving; walking.

୩ । ପ୍ରଚାରଣ—3. Publishing.

୪ । ପ୍ରତ୍ୟାବର୍ତ୍ତନ—4. Returning.

**ଫେରଣା(ଣି)**—ଦେ. ବି.—ଫେରଣ ୪ (ଦେଖ) Pheraṇa 4 (See)
Pheraṇā(ṇi)

**ଫେରଣ୍ଡ**—ସଂ. ବି. (ଫେ=ଅନୁକରଣ ଧ୍ୱନି+ରୁ ଧାତୁ=ରାବିବା+କର୍ତ୍ତୃ. ଅଣ୍ଡ)—ବିଲୁଆ; ଶିଆଳ—Jackal.
Pheraṇḍa

**ଫେରଣ୍ଡା**—ଦେ. ବି. ( ସଂ. ଫେରଣ୍ଡ )—ଅଣ୍ଡିରା ବିଲୁଆ—Male jackal; a he-jackal.
Pheraṇḍā
(ଫେରେଣ୍ଡା—ଅନ୍ୟରୂପ)

**ଫେରତା**—ଦେ. ବି.—କର୍ଣ୍ଣାଳଙ୍କାରବିଶେଷ—An ornament worn on the ear.
Pheratā

ଶ୍ରବଣେ ଭର ମୋ ଝଲକ ଉତ
ଫେରତା ମଲୁତା ବନ୍ଧ । ପ୍ରାଚୀ ରହସ୍ୟମଞ୍ଜରୀ

**ଫେରନ୍ତା**—ଦେ. ବିଣ.—(ସଂ. ପ୍ରତ୍ୟାବୃତ୍ତ; ପ୍ରେରିତ)—୧ । ପ୍ରତ୍ୟାଗତ—1. Returned.
Pherantā ফেরতা फिरता; फिरती
(ଫେରନ୍ତି—ଅନ୍ୟରୂପ) (ଯଥା—ବିଳାତ ଫେରନ୍ତା ।)

୨ । ଫେରି ଆସୁଥିବା—2. Returning.

(ଯଥା—ବିଦେଶ ଫେରନ୍ତା ଶିକ୍ଷିତମାନଙ୍କ ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ଦୈନିକ ଆଶା ।)

୩ । ଭ୍ରମଣକାରୀ—3. Travelling; roaming.

**ଫେରନ୍ତା ଡାକ**—ଦେ. ବି.—ଲେଖା ଯାଉଥିବା ପତ୍ର ହସ୍ତଗତ ହେବା
Pherantā ḍāka ପରେ ପ୍ରଥମେ ଯେଉଁ ଡାକ ଆସେ—
ফেরতা ডাক **फिरतीडाँक** Return post

**ଫେର ପକା**—ଦେ. ବି.—ସାମନା ପାଖେ ଶାଢ଼ୀର ଅଂଶକୁ ଭୁଞ୍ଜି କରି
Phera pakā ଲମ୍ବାଇ ସ୍ତ୍ରୀମାନଙ୍କର ବଡ଼ ଶାଢ଼ୀ ପରିଧାନ
(ଫେର ପିନ୍ଧା—ଅନ୍ୟରୂପ) ପ୍ରଣାଳୀ; ସ୍ତ୍ରୀଲୋକମାନଙ୍କର ପୁନ୍ଦାରଣ—
কুঁচা **कोंचा** A mode of female wearing of loin-cloth.

**ଫେର ଫ(ଭ)ଟକ(କା)**—ଦେ. ବି—୧ । ଭୁଲରେ ଯେଉଁ ହିସାବ ଦୁଇ
Phera pha(bhā)ṭaka(kā) ଥର (ପୁନର୍ବାର) ଲେଖା ହୋଇ-
ভূলভটক ଥାଏ—1. Double entry in an account.
**भूलभटक** ୨ । ଭୁଲ ଭଟକ; ଭ୍ରମପ୍ରମାଦ—2. Mistake.

**ଫେରବ**—ସଂ. ବି. ( ଫେ=ଅନୁକରଣ ଶବ୍ଦ+ରୁ ଧାତୁ=ରବିବା+
Pheraba କର୍ତ୍ତୃ: ଅ. )—ବିଲୁଆ; ଶିବା; ଜମ୍ବୁକ—Jackal.
ବିଣ. ( ଫେରୁ+ଅ )—୧ । ଶଠ; ଧୂର୍ତ୍ତ; ପ୍ରବଞ୍ଚକ—
1. Cunning; fraudulent; deceitful.
୨ । ହିଂସ୍ର; ପରର ଅନିଷ୍ଟକାରୀ —
2. Malignant; malicious; injurious.
ଦେ. ବିଣ—୧ । ପ୍ରତ୍ୟାବୃତ୍ତ—1. Returned.
୨ । ପ୍ରତ୍ୟର୍ପିତ—2. Given back.

**ଫେରସ୍ତ**—ଦେ. ବି. ( ସଂ. ପ୍ରତ୍ୟାବୃତ୍ତ; ପ୍ରେରିତ )—
Pherasta ୧ । ପ୍ରତ୍ୟାଗମନ; ପ୍ରତ୍ୟାବର୍ତ୍ତନ; ଲେଉଟି ଆସିବା —
ফিরস্ত 1. Returning; coming back.
**फिरता** ୨ । ପ୍ରତ୍ୟର୍ପଣ—2. Giving back.
ବିଣ—ପ୍ରତ୍ୟର୍ପିତ—Given back.
ফিরিস্ত ବୈଦେ. ବି. ( ଆ. ଫିହରସ୍ତ୍ )—ତାଲିକା—List.
**फिहरिस्त**

**ଫେରସ୍ତ କରିବା**—ଦେ. କ୍ରି—୧ । (ସଂ. ପ୍ରତ୍ୟାବର୍ତ୍ତିତ; ପ୍ରେରିତ)—
Pherasta karibā ନେଇଥିବା ପଦାର୍ଥକୁ ୱାପସ୍ ଦେବା—
(ଫେରସ୍ତ ଦେବା—ଅନ୍ୟରୂପ) 1. To give back or return a thing taken.
ফিরিয়ে দেওয়া
**फिरा देना** ୨ । (ଆ. ଫହରସ୍ତ୍) ତାଲିକା କରିବା—
ফিরিস্ত করা **फिहरिस्त करना** 2. To make a list.

**ଫେରସ୍ତ ମୁତାବକ୍**—ବୈଦେ. ବିଣ. ( କ୍ରିୟାବିଶେଷଣ ) ( ଫା. ଫିହରସ୍ତ୍
Pherasta mutābak ମୋତାବକ୍ )—ତାଲିକା ଅନୁସାରେ—
ফিরিস্ত মোতাবেক As per list; according to the list.
**फिरिस्त मोताविक**
(ଫେରସ୍ତ । ବ ।, ଫେରସ୍ତ ବମୁଜି,ଫେରସ୍ତ ବମୁଜିବ୍, ଫେରସ୍ତ ବମୋଜି, ଫେରସ୍ତ ବମୋଜି, ଫେରସ୍ତ ବମୁଜିବ୍, ଫେରସ୍ତ । ମୁ ।—ଅନ୍ୟରୂପ)

**ଫେରା**—ଦେ. ବି. ( ସଂ. ପ୍ରତ୍ୟାବର୍ତ୍ତନ; ପ୍ରେରଣ )—
Pherā ୧ । ଫେରି ଆସିବା; ପ୍ରତ୍ୟାବର୍ତ୍ତନ; ପୁନରାବୃତ୍ତି—
ফিরা, ফেরা 1. Coming back.
**फिरना, फेरा** ସେ ଯନ୍ତ୍ର ହୋଇଥିଲେ ମରି, ଲେଉଟି ନାହିଁ ଅଙ୍ଗ ଫେରା ।
ଯଶୋବନ୍ତ, ପ୍ରେମଭକ୍ତି. ବ୍ରହ୍ମଗୀତା ।
୨ । ପ୍ରତ୍ୟର୍ପଣ—2. Giving back.
୩ । ଯିବା ଆସିବା; ଇତସ୍ତତଃ ଭ୍ରମଣ—
3. Walk; going to and fro.
୪ । (ସଂ. ଫାର=ବିସ୍ତାର—ଯୋଗେଶଚନ୍ଦ୍ର)—ଚୂନ, ସୁରୁକି ଓ ବାଲି ଆଦି ମାପ କରିବା ନିମନ୍ତେ ବ୍ୟବହୃତ ଚତୁଷ୍କୋଣ ପାତ୍ର—4. A square vessel for measuring lime, sand, mortar etc.
୫ । ଦଉଡ଼ି ବା ସୂତାର ଏକ ଘେର—
5. A coil of a rope or string.
ବିଣ—ଗୁଡ଼ାଇଥିବା ଗୁଡ଼ିଆ ବା ଘେରି ହୋଇଥିବା—
Encircled by; entwined by.
ପାଟ ପଟନି ମଣି ଫେରା । ଯଶୋବନ୍ତ. ପ୍ରେମଭକ୍ତି. ବ୍ରହ୍ମଗୀତା ।

**ଫେରା(ରେ)ଇ ଆଣିବା**—ଦେ. କ୍ରି—୧ । ଦତ୍ତ ବସ୍ତୁକୁ ଆପଣା ନିକଟକୁ
Pherā(re)i āṇibā ଘେନି ଆସିବା—1. To bring back a thing given.
ফিরিএ আনা
**फिरा लाना** ୨ । କୌଣସି ସ୍ଥାନକୁ ଚାଲି ଯାଉଥିବା ବ୍ୟକ୍ତିକୁ ସେ ସ୍ଥାନକୁ ଲେଉଟାଇ ଆଣିବା—2. To cause a person to come back.

**ଫେରାଇ ନେବା**—ଦେ. କ୍ରି—୧ । ଦେଇଥିବା ପଦାର୍ଥକୁ ୱାପସ୍ ନେବା-
Pherāi nebā 1. To take back a thing given.
ফিরিএ লওয়া ୨ । ଯାଇଥିବା ବ୍ୟକ୍ତିକୁ ବାହୁଡ଼ାଇ ନେବା—
**फिरा लेना** 2. To cause a person to go back.

**ଫେରା(ରେ)ଇବା**—ଦେ. କ୍ରି. (ସଂ. ପ୍ରତ୍ୟାବର୍ତ୍ତନ; ପ୍ରେରଣ)—
Pherā(re)ibā (ଫେରିବା କ୍ରିୟାର ଣିଜନ୍ତ ରୂପ—
ফেরান The causative form of 'Pheribā'.)
**फिराना** ୧ । ପ୍ରତ୍ୟାବର୍ତ୍ତିତ କରାଇବା; ବାହୁଡ଼ାଇବା—
1. To cause to return.
( ଯଥା—ମୁଁ ପୁରୀଠାରୁ ତାଙ୍କୁ ଫେରାଇଲି । )
୨ । (ସଂ. ପରିବର୍ତ୍ତନ) ପରିବର୍ତ୍ତନ କରିବା; ବଦଳାଇବା—
2. To change.
(ଯଥା—ସେ ଦୁଇଚାରି କଥା କହି ତାଙ୍କ ମନ ଫେରାଇ ଦେଲା ।)
୩ । (ସଂ ପ୍ରତ୍ୟର୍ପଣ) ପ୍ରତ୍ୟର୍ପଣ କରିବା; ଫେରସ୍ତ ଦେବା; ୱାପସ୍ ଦେବା—3. To give back; to return a thing.
(ଯଥା—ସେ ମୋ ବହିଟିର ଫେରାଇଲେ ।)
୪ । ବଦଳା ବଦଳି କରିବା; ବିନିମୟ କରିବା—
4. To barter; to exchange
(ଯଥା—ସୂତାଲୁଗା ଫେରାଇ ମଠା ପାଟଲୁଗା ଦିଅ ।)
୫ । ଇତସ୍ତତଃ ଚାଳନ କରିବା; ବୁଲାଇବା; ଇତସ୍ତତଃ ଗତି କରାଇବା—5. To cause to walk; to cause to move
(ଫେରାଇ ଦେବା—ଅନ୍ୟରୂପ)
(ଯଥା—ସଇସ ସକାଳୁ ଘୋଡ଼ାକୁ ଫେରାଇବାକୁ ନେଇଛି ।)

୬ । ଘୂର୍ଣ୍ଣନ କରାଇବା; ଘୂରାଇବା—6. To cause to rotate or revolve; to turn round.

୭ । ଓଲଟାଇବା—7. To upset.

(ଯଥା—ନିମ୍ନ ଅଦାଲତଙ୍କ ହୁକୁମ ଫେରାଇବା ସହଜ ନୁହେଁ ।)

୮ । ବିପରୀତ ଦିଗକୁ ଗତି କରାଇବା—8. To cause to move in an opposite direction.

(ଯଥା—ମୋ କଥା ଶୁଣି ସେ ମୁହଁ ଫେରାଇଲେ ।)

୯ । (ଝାଡ଼ା) ଫେରିବାର ସୁବିଧା କରିବା—
9. To cause to pass (stools).

(ଯଥା—ମା ଶିଶୁକୁ ଝାଡ଼ା ଫେରାଉ ଅଛନ୍ତି) ।

**ଫେରାଦ(ଦି)**—ବୈଦେ. ବି. (ଅ. ଫରାୟାଦ୍)—୧ । କୌଣସି ବ୍ୟକ୍ତି
Pherāda(di) ବିରୋଧରେ ଉଚ୍ଚ ପଦସ୍ଥ ବ୍ୟକ୍ତିଙ୍କ ନିକଟରେ ବା ଅଦାଲତରେ ଅଭିଯୋଗ; ଗୁହାରି—
ଫେରଅଦ } ଅନ୍ୟରୂପ
ଫେରଆଦ }
1. Complaint; filing of a charge of an offence against a person.
ফরিআদ फरियाद

ଫରିଆଦୀ ୨ । (ଫା. ଫରାୟାଦୀ), ଗୁହାରିଆ ବ୍ୟକ୍ତି; ମକଦ୍ଦମାରେ ବାଦୀ—2. Complainant or plaintiff.
फरियादी

ବିଣ—(ଫା. ଫରାୟାଦୀ)—୧ । ଗୁହାରିଆ—
1. Complaining.

୨ । ଅଭିଯୋଗକାରୀ—2. Bringing a charge of an offence against a person.

୩ । ଯେଉଁ ବିଷୟରେ ଅଭିଯୋଗ ଅଣାଯାଇ ଥାଏ—
3. (the matter) Complained of.

**ଫେରାଦ(ଦି) କରିବା**—ଦେ. କ୍ରି—( ରାଜା, ରାଜପୁରୁଷ ବା ଜମିଦାରଙ୍କ
Pherāda(di) karibā ନିକଟରେ ) ଗୁହାରି କରିବା; ନାଲିସ ( ଫେରାଦ ହେବା—ଅନ୍ୟରୂପ ) କରିବା—To complain against a person.
ফরিআদ করা फरियाद करना

**ଫେରା ଫେରି**—ଦେ. ବି—୧ । ବଦଳା ବଦଳ; ଅଦଳ ବଦଳ—
Pherā pheri ফিরাফিরী फेराफेरी 1. Change; barter.

୨ । ଲେଉଟା ଲେଉଟି—2. Giving back.

୩ । ପୁନଃ ପୁନଃ ପ୍ରତ୍ୟାବର୍ତ୍ତନ—
3. Repeated coming back.

୪ । ଇତସ୍ତତଃ ବୁଲାବୁଲି—4. Walking to and fro.

୫ । ପୁନଃ ପୁନଃ ଫେରାଇବା କର୍ମ—
5. Repeated returning of a thing.

**ଫେରାର୍**—ବୈଦେ. ବି. (କଚରିଆ) [ଫା. ଫିରାର]—ପଳାୟନ; ଲୁଚି
Pherār ଲୁଚି ବୁଲିବା—Fleeing away; absconding; running away.
ফেরার फिरार

ବିଣ—କଚରିଆ (ଫା. ଫିରାରୀ)—୧ । ପଳାୟିତ—
ফেরারী फिरारी 1. Run away.

୨ । ପଳାତକ—2. Fugitive; absconding.

୩ । ଯେଉଁ ରଇତ ଆପଣା ଜମି ଛାଡ଼ି ଦେଶତ୍ୟାଗ କରିଥାଏ—
3. Absconding (tenant).

**ଫେରାର ହେବା**—ଦେ. କ୍ରି (କଚରିଆ)—ପଳାଇବା—To run away;
-ār hebā ফেরারহওয়া फिरारहोना to abscond.

**ଫେରାର(ରି) ଆସାମୀ**—ବୈଦେ. ବି. (କଚରିଆ) (ଫା. ଫିରାରୀ
Pherār(ri) āsāmī ଅସାମୀ)—୧ । ବିଚାରକଙ୍କ ନିକଟରେ ଉପସ୍ଥିତ ନ ହୋଇ ପଳାଇଯାଇଥିବା ବା ଲୁଚିଥିବା ଅଭିଯୁକ୍ତ ବ୍ୟକ୍ତି—1. An absconding accused; an accused who tries to conceal himself from the hands of justice
ফেরারীআসামী फिरारीआसामी

ଅନ୍ୟ ଉଦାହରଣ ଯାଅ ଅନ୍ୟାନ୍ୟ ଲୋକର ଫେରାର ଅସାମୀ । ଫକୀରମୋହନଙ୍କ ଗଳ୍ପସ୍ୱଳ୍ପ ।

୨ । ଯେଉଁ ରଇତ ଆପଣା ଜୋତକୁ ଚାଷ ନ କରି ଛାଡ଼ି ପଳାଏ—2. A tenant who has abandaned his holding.

ଫେରାରି—ବୈଦେ. ବିଣ. କଚରିଆ (ଫା)—ଫେରାର (ଦେଖ)—
Pherāri Pherār (See)

**ଫେରାରି ଜମି**—ଦେ. ବି. ( କଚରିଆ ) ( ଫା. ଫିରାରୀ ଜମୀନ୍ )—
Pherāri jami ପଳାତକ ରଇତର ଜମି—
ଫେରାର ଜୋତ } ଅନ୍ୟରୂପ
ଫେରାର ବୃତ୍ତି }
The holding of an absconding tenant; an abandoned holding.
ফেরারী জমি फिरारी जमीन

**ଫେରି**—ଦେ. ଅ—ଫେରୁ (ଦେଖ)—Pher (See)
Pheri ବୈଦେ. ବି. (ଇଂ)—ଫେରି ଘାଟ (ଦେଖ)—
ফেরী Pheri ghāṭa (See)
फेरी (ହି)—ଫେରିୱାଲା (ଦେଖ)—Pheriwālā (See)
ଦେ. ବି—ଫିରାଇ ୧ (ଦେଖ)—Phirāi 1 (See)

**ଫେରି ଆଣିବା**—ଦେ. କ୍ରି—ଫେରାଇ ଆଣିବା (ଦେଖ)
Pheri ānibā Pherāi ānibā (See)

ତାହାର ଗର୍ବ ଦାମୋଦର
ଫେରି ଆଣିଲେ ନିକଟର । ଜଗନ୍ନାଥ, ଭାଗବତ ।

**ଫେରି ଆସିବା**—ଦେ. କ୍ରି—ଲେଉଟି ଆସିବା—To come back.
Pheri āsibā ফিরে আসা फिरआना

**ଫେରି କରିବା**—ଦେ. କ୍ରି—ଘର ଘର ବୁଲି ସଉଦା ବିକିବା—
Pheri karibā To hawk commodities.
ফেরী করা फेरी करना

**ଫେରି ଘାଟ**—ଦେ. ବି. (ଇଂ. ଫେରି + ଦ. ଘାଟ)—ଡଙ୍ଗାରେ ନଦୀପାର
Pheri ghāṭa ହେବାର ଘାଟ—Ferry.
ফেরী ঘাট फेरी घाट

**ଫେରି ଚାହିଁବା**—ଦେ. କ୍ରି—ମୁହଁ ବୁଲାଇ ଦେଖିବା; ପଛଆଡ଼କୁ ଚାହିଁବା—
Pheri chāhinbā To look back.
ফিরে চাওয়া फिरकर तकाना

ଫେରି ଥରେ ହେଲେ ମୋତେ ନ ଚାହିଁଲରେ । ଦୀନକୃଷ୍ଣ, ସଙ୍ଗୀତ ।

**ଫେରି ଦେବା**—ଦେ. କ୍ରି—ଫେରାଇ ଦେବା; କୌଣସି ବସ୍ତୁକୁ ଫେରସ୍ତ ଦେବା—To give back a thing.
Pheri debā
ফিরে দেওয়া फिरादेना (ଫେରାଇ ଦେବା—ଅନ୍ୟରୂପ)

**ଫେରି ନେବା**—ଦେ. କ୍ରି—ପ୍ରଦତ୍ତ ବସ୍ତୁକୁ ଆପଣା ପାଖକୁ ଆଣିବା—
Pheri nebā To get back a thing.
ফিরে নেওয়া फिरा लेना

**ଫେର ପାଇବା**—ଦେ. କ୍ରି—ହସ୍ତାନ୍ତରିତ ବସ୍ତୁକୁ ଆପଣାର ହସ୍ତରେ
Pheri pāibā ପୁନଃ ପ୍ରାପ୍ତ ହେବା—To get back a thing.
ফিরে পাওয়া **वापस पाना; फिराकर पाना**

**ଫେର ଫେର**—ଦେ. କ୍ରି. ବିଣ—ପୁନଃ ପୁନଃ; ଲେଉଟି ଲେଉଟି—
Pheri pheri Again and again; backwards again
ফিরে ফিরে and again.
**फिर फिर** ଗର୍ଚ୍ଛି ଯାଉଥିଲୁ ତୁ ଯାହା ଫେର ଫେର,
ନେଲୁ ମୋ ମାନସକୁ ସେ ଉର୍ଦ୍ଧରେ ଧର । କୃଷ୍ଣସିଂହ, ମହାଭାରତ ଅବ ।

**ଫେରିବା**—ଦେ. କ୍ରି. (ସ. ପ୍ରତ୍ୟାବର୍ତ୍ତନ)—୧ । ପ୍ରତ୍ୟାବର୍ତ୍ତନ କରିବା;
Pheribā ପ୍ରତ୍ୟାଗମନ କରିବା; ଲେଉଟିବା; ବାହୁଡ଼ିବା—
ফিরা, ফেরা **फिरना** 1. To return.
୨ । ଲେଉଟି ଆସିବା—2. To come back.
୩ । ଲେଉଟି ଯିବା—3. To go back.
୪ । ଇତସ୍ତତଃ ବୁଲିବା; ଭ୍ରମିବା; ଗୁଲିବା—
4. To walk; to rove; to roam; to travel.
ସମର ରେ ଥିବା ହେ ପରି ଭୂଭ ମର
ନୋହିଲେ ବା ଦଶଦଗନ୍ତରେ ଫେର । କୃଷ୍ଣସିଂହ, ମହାଭାରତ ଅବ ।
୫ । ପରିବର୍ତ୍ତିତ ହେବା; ବଦଳିବା—5. To change.
ସମ୍ପନ୍ନ ହେବେ ତୋ ପୁନ, ସବେ ଏ କର୍ମ
ଫେରିବ ତୋର ଗୋ । କୃଷ୍ଣସିଂହ, ମହାଭାରତ ଅବ ।
୬ । ବିଫଳ ହୋଇ କୌଣସି ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରିବା—
6. To return from a place unsuccessful.
୭ । ବିପରୀତ ଦିଗକୁ ଗତି କରିବା—
7. To move in an opposite direction.
୮ । (ଝାଡ଼ା) ଉତ୍ସର୍ଗ କରିବା; ତ୍ୟାଗ କରିବା—
8. To emit; to pass (stools).
୯ । (ହୁକୁମ, ସୁନାମ) ଚାରିଆଡ଼େ ପ୍ରଚାରିତ ହେବା—
9. (order; good name) To be published widely.

**ଫେରି ବୋଟ୍**—ବୈଦେ. ବି. (ଇଂ)—ଘାଟ ଡଙ୍ଗା—
Pheri bot ফেরী বোট **फेरी बोट** Ferry boat.

**ଫେରି ୱା(ବା)ଲା**—ବୈଦେ. ବି. (ହିନ୍ଦୀ)—ଯେ ଘର ଘର ବୁଲି ସଉଦା
Pheri wā(bā)lā ବିକେ—A hawker; a pedlar.
ফেরীওয়ালা **फेरीवाला**

**ଫେରୁ**—ସ. ବି—ଫେରଣ୍ଡ (ଦେଖ)
Pheru Pheranda (See)

**ଫେରେ**—ଗ୍ରା. ଅ—ଫେରି; ପୁଣି—
Phere Again; moreover; besides; also.

**ଫେରୋଜ**—ସ. ବି—ପିରୋଜ ମଣି; ଭୁରଙ୍ଗ ମଣି—
Pheroja Beryll (gem).

**ଫେରୋରି**—ବୈଦେ. ବି (ଇଂ. ଫେବ୍ରୁଆରି)—ଇଂରାଜ ଦ୍ୱିତୀୟ ମାସ—
Pherori ফরোরী **फबरोरी** February.

**ଫେଲ୍ (ଧାତୁ)**—ସ—୧ । ତ୍ୟାଗ କରିବା—
Phel (root) 1. To abandon; to give up.
୨ । କ୍ଷେପ କରିବା—2. To throw out.
୩ । ଉତ୍ସର୍ଗ କରିବା—3. To emit; to give forth; to ejaculate.
୪ । ଗମନ କରିବା—4 To go forth.

**ଫେଲ୍**—ବୈଦେ. ବି. (ଇଂ)—୧ । ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହେବା—
Phel 1. Failing to secure pass marks in an
ফেল examination.
**फेल** ୨ । ବ୍ୟବସାୟରେ ଦେବାଳିଆ ହେବା—
2. Becoming insolvent.
୩ । ଶକ୍ତି ଯୋଗୁଁ ବ୍ୟବସାୟ ବନ୍ଦ ହେବା—
3. Closing of a business.
୪ । ଅକୃତକାର୍ଯ୍ୟ ହେବା—4. Being unsuccessful.

ବିଣ—୧ । ପରୀକ୍ଷାରେ ଅନୁତ୍ତୀର୍ଣ୍ଣ—1. Unable to secure pass marks in an examination.
୨ । ଦେବାଳିଆ ହୋଇଥିବା—2. Insolvent; failed in a business.
୩ । ଅକୃତକାର୍ଯ୍ୟ—3. Unsuccessful in an endeavour.
୪ । ବ୍ୟବସାୟରେ କ୍ଷତିଗ୍ରସ୍ତ—4. Losing in a business.

**ଫେଲ୍ କରିବା**—ଦେ. କ୍ରି.—୧ । ପରୀକ୍ଷାରେ ଛାତ୍ରକୁ କମ୍ ନମ୍ବର ଦେଇ
Phel karibā ଅକୃତକାର୍ଯ୍ୟ କରାଇବା—1. Not to award
ফেল করা; ফেল করান pass marks to an examinee.
**फेल करना** ୨ । ବ୍ୟବସାୟରେ କ୍ଷତିଗ୍ରସ୍ତ କରାଇବା—2. To
(ଫେଲ୍ କରାଇବା—ଅନ୍ୟରୂପ) cause a person to fail in a business.

**ଫେଲ୍ ମାରିବା**—ଦେ. ବି.—୧ । କ୍ଷତିଗ୍ରସ୍ତ ହୋଇ ବ୍ୟବସାୟ ବନ୍ଦ
Phel māribā କରିବା—1. To close a business
ফেল মারা **फेल मारना** owing to loss.
୨ । ଦେବାଳିଆ ହେବା—
2. To become insolvent.
୩ । ଅଦାଲତଙ୍କ ଦ୍ୱାରା ଦେବାଳିଆ ବୋଲି ଉଦ୍ଘୋଷିତ ହେବା—
3. To be adjudged insolvent by a court.

**ଫେଲ୍ ହେବା**—ଦେ. କ୍ରି.—୧ । ପରୀକ୍ଷାରେ ପାଶ ନ କରିବା—
Phel hebā 1. To get plucked at an examination.
ফেল হওয়া ୨ । ବ୍ୟବସାୟରେ କ୍ଷତିଗ୍ରସ୍ତ ହେବା—
**फेल होना** 2. To lose in a business.
୩ । ବ୍ୟବସାୟରେ ଦେବାଳିଆ ହେବା—
3. To become insolvent.

**ଫେଲ (ଲ)**—ସ. ବି. (ଫେଲ୍ ଧାତୁ+କର୍ମ. ଅ)—୧ । ପରିତ୍ୟକ୍ତ ଦ୍ରବ୍ୟ—
Phela(la) 1. Abandoned thing; leavings.
ଫେଲକ, ଫେଲି, ଫେଲ, ଫେଲିକା } ଅନ୍ୟରୂପ ୨ । ଭୁକ୍ତାବଶେଷ; ଉଚ୍ଛିଷ୍ଟ; ଅଇଁଠା—2. Leavings of a meal; orts

**ଫେଲର**—ଦେ. ବି. (ସ. ଫେଲ)—୧ । ବିସ୍ତୃତି; ବିସ୍ତାର—
Phelara 1. Expansion; extension; spreading.
୨ । ଓସାର—2. Breadth; width.

ବିଣ.—ବିସ୍ତୃତ—Expansive.

ଫେଲସ—ଦେ. ବଣ.—(ସ. ଫାର=ବସ୍ତାର)—୧ । ବସ୍ତୃତ
Phelasa (ଅଲଙ୍କାରାଦ)—1. Extensive; wide
(ଫେଲେସ—ଅନ୍ୟରୂପ) (ornaments).
୨ । ଅଧିକତର ବସ୍ତୃତ—2. Wider.
୩ । ଚଉଡ଼ା; ଓସାରିଆ—3. Broad.
୪ । ବସ୍ତୃତଗର୍ଭ—4. Having a wide belly.
୫ । ଢୁଗୁଲା; ଶିଥିଳ; ଢିଲ୍ଲା—5. Slack; loose.
( ଯଥା—ଏ ମୁଦଟ ଅଭ୍ ଝକଏ ଫେଲସ ହେଲେ ମୋ ଆଙ୍ଗୁଠି ଲୁ ଖୁଅନ୍ତା । )

ଫେଲୋ—ବୈଦେ. ବ. ( ଇଂ. ଫେଲୋ )—
Phelo ବଶ୍ୱବଦ୍ୟାଳୟ ସଲଗ୍ନ ବଗ୍ୟରସଭାର ସଦସ୍ୟ—
ফেলো Fellow of an university.
फेलो (ଫେଲୋ ଶୀପ୍=ଫେଲୋଙ୍କ ପଦବୀ)

ଫେଷା—ଦେ. ବ. ( ସ. ପିଷ୍ ଧାତୁ )—ପେଷା ୨ ଓ ୩ ( ଦେଖ )
Phesha Pesha 2 & 3 ( See )
ବଣ—ପେଷା ୨ ( ଦେଖ )—Pesha 2 ( See )

ଫେଷା(ଷେ)ଇବା—ଦେ. କ୍ରି—ପେଷାଇବା ( ଦେଖ )
Phesha(she)iba Peshaiba ( See )

ଫେଷିବା—ଦେ. କ୍ରି—ପେଷିବା ୧, ୨ ଓ ୩ ( ଦେଖ )
Pheshiba Peshiba 1, 2 & 3 ( See )
ଦେଖ । ଚକ ପକେଇ ମାଣିଅ ଫେଷ—ଉଗ ।

ଫେସ୍ କ୍ରିମ୍—ବୈଦେ. ବ. ( ଇଂ )—ମୁହଁକୁ ମନୋହର କର ରଞ୍ଜିତ
Phes krim କରବା ପାଇଁ ବ୍ୟବହୃତ ଏକ ପ୍ରକାର ଲେପ—
ফেস্ ক্রীম फेस क्रीम Face cream.

ଫେସ୍ ପାଉଡର୍—ବୈଦେ. ବ. (ଇଂ)—ମୁହଁକୁ ମନୋହର କର ରଞ୍ଜିତ
Phes paudar କରବା ପାଇଁ ବ୍ୟବହୃତ ଚୂର୍ଣ୍ଣବଶେଷ—
ফেস্ পাউডার फेस पाउडर Face powder.

ଫେସନ୍—ବୈଦେ. ବ. ( ଇଂ. ଫାଶନ୍ )—
Phesan ୧ । ସଭ୍ୟ ସମାଜାନୁମୋଦିତ ପଦ୍ଧତି—
ফেশন 1 Approved fashion.
फ़शन ୨ । ସୌଖୀନ୍ ବେଶଭୂଷା—
2. Fashionable dress.
ବଣ—ଫେସନ୍ ଦ୍ୱାରା ଅନୁମୋଦିତ—Approved by fashion; fashionable.
ସେ ନ ମାନେ ଭାଇ, ଫେସନ ହେଉଛି । ରଧାନାଥ, ପଞ୍ଚବାର ।

ଫୈରି—ପ୍ରାଦେ. ( ଗଡ଼ଜାତ ) ବ—ଗୋଡ଼ର ବଳା—
Phairi Anklet.

ଫୈଲ୍ (ଇତ୍ୟାଦ)—ବୈଦେ. ବ., ( ଅ. ଫେଲ୍=କାମ, କାର୍ଯ୍ୟ )—
Phail (etc) ଫଏଲ୍ ଇତ୍ୟାଦ ( ଦେଖ )
ফএল फैल Fael etc ( See )

ଫୈସଲ୍(ଲା) (ଇତ୍ୟାଦ)—ବୈଦେ. ବ ଓ ବଣ—
Phaisal(la) (etc) ଫଇସଲ୍(ଲା) ଇତ୍ୟାଦ ( ଦେଖ )
Phaisala(la) etc ( See )

ଫୋକ୍ହା—ପ୍ରାଦେ. (ବସ୍ତର) ବଣ—ଅକର୍ମଣ୍ୟ—
Phok-ha Useless.

ଫୋକଟ୍—ଦେ. ବଣ. (ସ. ସ୍ଫୋଟ ବା ସ. ବଲ୍କଲ ହି. ଶ. )—
Phokat ୧ । ମୋଫତ; ମାଗଣା; ବନା ମୂଲ୍ୟରେ ମିଳବା
বিনি পয়সায় (ବସ୍ତୁ)—1. Got gratis; gratuitous.
फोकट ୨ । ପାରଶ୍ରମିକ ବନା କୃତ (କର୍ମ)—2. Done gratis.
ଦେ. କ୍ରି ବଣ—ବନା ମୂଲ୍ୟରେ—Gratis.

ଫୋକଟ୍ ପଡ଼ିବା—ଦେ. କ୍ରି—ମାଗଣାରେ ମିଳବା ବା କରାଯିବା—
Phokat pardiba To be done or got gratis.

ଫୋକସ୍—ବୈଦେ. ବ. (ଇଂ)—୧ । ଲେନ୍ସ କାଚ ମଧ୍ୟ ଦେଇ ପାତିତ
Phokas ଆଲୋକ ରଶ୍ମିମାନଙ୍କ ଏକତ୍ର ହେବା ବନ୍ଦୁ—1. Focus
ফোকাস ୨ । ଫଟୋ ଯନ୍ତ୍ରରେ ଉଠିବା ଛବର ସ୍ପଷ୍ଟତାକୁ ଲେନ୍ସ
फोकस ସାହାଯ୍ୟରେ ଏକ ସ୍ଥାନରେ ପକାଇ ସ୍ଥିର କରବା
କ୍ରିୟା—1. Focussing of the lens of a camera in photography.

ଫୋଟ୍—ବୈଦେ. ବ. ( ଇଂ. ଫୋର୍ଟ )—ଦୁର୍ଗ—Fort.
Phot ପ୍ରାଦେ. (ଗଞ୍ଜାମ) ବ—ଫଟୋଗ୍ରାଫ୍—Photo.
ফোর্ট फोर्ट

ଫୋଟୋ—ବୈଦେ.ବ. (ଇଂ.ଫୋଟୋ)—ଫଟୋଗ୍ରାଫ୍; ଆଲୋକ ଚିତ୍ର—
Photo ফটো फोटो Photo.

ଫୋଟକା—ଦେ ବ. ( ସ. ସ୍ଫୋଟକ )—
Photaka ୧ । ସ୍ଫୋଟକ; ଅଗ୍ନିଦାହ ଜନତ ଜଳପୂର୍ଣ୍ଣ ବ୍ରଣ—
ফোস্কা फौंका, फफोला 1. Blister.
ଫୋଟକା ହୋଇଛି ଦିଶବା କର୍ପୂର ଦେଳ ମିଶିତ ବାର ।
କବସୂର୍ଯ୍ୟ, ରତ୍ନାକରଚମ୍ପୂ, ୫ ଛାନ୍ଦ ।

ଭୁଡ଼ଭୁଡ଼ୀ ୨ । ଜଳ ବୁଦ୍ବୁଦ—2. Water bubble.
बुलबुला, बुल्ला ଜଳତାର ଯଥ ପାଣିର ଫୋଟକା । ରଧାନାଥ, ଦରବାର ।
পটকা ୩ । (ସ. ସ୍ଫୁଟ ଧାତୁ) ଫୁଟୁକା; ତାଳପତ୍ର ପୁଡ଼ାରେ ଆବଦ୍ଧ
फटाका, पटाका ବାରୁଦ ପୂର୍ଣ୍ଣ ଶବ୍ଦକାରୀ ବାଣ—3. Crackers.
୪ । (ବୈଦ୍ୟକ) ଏକ ପ୍ରକାର ଛୋଟ ଗଛ—
सरफोंका 4. Name of a small plant.
[ଦ୍ର—ଏହି ଗଛ ସର୍ବତ୍ର ସୁଲଭ । ଏହାର ବାଜକୁ ଜଳରେ ବୁଡ଼ାଇ ବାହାର କଲେ ଫୁଟି ଯାଏ । ଏହାର ସମୂଳ ପତ୍ରର ପ୍ରଲେପ କଦର୍ଯ୍ୟ ବ୍ରଣ ନାଶକ; ଏହା ପରୀକ୍ଷିତ । (ଦ୍ରବ୍ୟଗୁଣ କଳ୍ପଦ୍ରୁମ)।]

ଫୋଡ଼—ଦେ. ବ. (ସ. ସ୍ଫୁଟ ଧାତୁ)—ବନ୍ଧ; ଛିଦ୍ର; ରନ୍ଧ୍ର—
Phorda ফোর, ফোড় Hole; bore; aperture.
छेद; सुराख [ଦ୍ର—ଯେଉଁ ଛିଦ୍ର ବସ୍ତୁର ଦୁଇପାଖକୁ ବନ୍ଧ କର ଥାଏ ତାକୁ ଫୋଡ଼ ବୋଲ ଯାଏ ।]

ଫୋଡ଼ଣୀ—ଦେ. ବ.—(ସ ସ୍ଫୋଟନୀ)—ଫୋଡ଼ିବା ଯନ୍ତ୍ର; ବେଧନୀ—
Phordani A drilling or boring instrument; an
তুরপুন; বিঁধনী सुतारी, सुआ awl.

ଫୋଡ଼ ଫାଡ଼—ଦେ. ବ.—ଅସ୍ତ୍ରାଦ ଦ୍ୱାରା ଫୋଡ଼ିବା ଓ ଫାଡ଼ିବା—
Phorda pharda Drilling and cutting with
বেঁধা ফোড়া चीर फाड instruments.

ଫୋଡ଼ା—ପ୍ରାଦେ. (ମେଦିନୀପୁର) ବି. (ସଂ. ସ୍ଫୋଟକ; ପୀଡ଼କା; ତୁଳ. ହି. ଫୋଡ଼ା )—ବ୍ରଣ; ବଥ—1. Boil.
Phorḍā
ଫୋଡ଼ା ଫୋଡା ଦେ. ବି. (ସଂ. ସ୍ଫୋଟକ) ଛିଦ୍ର, କରିବା—
ବିଁଧା ଛେଦନା 2. Boring; drilling; making holes.
ବେଁଧା ଛେଦାହୁଆ (ଯଥା—କାନଫୋଡ଼ା ।)
ବିଣ.—ବିଦ୍ଧ ହୋଇଥିବା—Bored; drilled through.

ଫୋଡ଼ା(ଡ଼େ)ଇବା—ଦେ. କ୍ରି. (ସଂ. ସ୍ଫୋଟନ; ପ୍ରା. ଫୋଡ଼ନ)—
Phorḍā(ṛḍe)ibā (ଫୋଡ଼ିବା କ୍ରିୟାର ଣିଜନ୍ତରୂପ—
ବେଁଧାନ The causative form of Phorḍibā)
ଛେଦবানা ଅନ୍ୟଦ୍ୱାରା ଫୋଡ଼ିବା କ୍ରିୟା କରାଇବା—
To cause to be drilled or bored.

ଫୋଡ଼ା(ଡ଼େ)ଇ ହେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିଦ୍ୱାରା ଆପଣା ଅଙ୍ଗ
Phorḍā(ṛḍe)i hebā (ଯଥା— କାନ)କୁ ବିଦ୍ଧ କରାଇବା—
ବେଁଧান To cause one's body to be bored by
ଛେଦানা another.

ଫୋଡ଼ା ଫୋଡ଼ି—ଦେ. କ୍ରି—ଅନେକ ଫୋଡ଼ିବା କ୍ରିୟା—
Phorḍā phorḍi Piercing or drilling of many-
ବିଁଧা ବିଁଧି ଛେଦা ଛେଦି things

ଫୋଡ଼ି—ଦେ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—
Phorḍi ୧ । ଫୋଡ଼ ଯୁକ୍ତ—1. Having bores.
(ଫୋଡ଼ିଆ—ଅନ୍ୟରୂପ) ୨ । ଫୋଡ଼ା ଯାଇଥିବା—2. Bored.
(ଫୋଡ଼ୀ—ସ୍ତ୍ରୀ) ବେଁଧা ଛେଦা (ଯଥା—ନାକ ଫୋଡ଼ି ବଳଦ)

ଫୋଡ଼ିବା—ଦେ. କ୍ରି—(ସଂ. ସ୍ଫୋଟନ; ପ୍ରା. ଫୋଡ଼ନ)—
Phorḍibā ୧ । ଛିଦ୍ର କରିବା—1. To bore; to drill; to
ଫোঁড়া ଫୋଡনা; ଛେଦনা prick; to perforate.
(ଫୋଡ଼ି ଦେବା—ଅନ୍ୟରୂପ) ୨ । ଭେଦ କରିବା; ଫୁଟାଇବା—
2. To pierce through.

ବିନ୍ଧ ଶର ହେଲେ ତାଙ୍କର ଗଣ୍ଡି ଫୋଡ଼ି । କୃଷ୍ଣସିଂହ. ମହାଭାରତ ବନ ।

[ଦ୍ର—ମୂନଥିବା ବସ୍ତୁ ଦ୍ୱାରା ଫୋଡ଼ିବା କର୍ମ କରାଯାଏ ।]

୩ । ଅନୁଚ୍ଚ ସ୍ୱରରେ ଜଣକର କାନ ପାଖେ ଅନ୍ୟର ବିପକ୍ଷରେ ଚୁଗୁଲି କହିବା—3. To whisper against a person into anothers' ear.

ଫୋଡ଼ି ହେବା—ଦେ. କ୍ରି (ଫୋଡ଼ିବାର କର୍ମବାଚ୍ୟରୂପ)—୧ । ବିଦ୍ଧ ହେବା—
Phorḍi hebā 1. To be pierced or bored through
(ଫୋଡ଼ି ହୋଇଯିବା—ଅନ୍ୟରୂପ) ୨ । ଛିଦ୍ରବେଧନ ପରି ଯନ୍ତ୍ରଣା
ଫুটে যাওয়া ଅନୁଭୂତ ହେବା—2. To feel a pricking
ଛେଦ হোনা sensation.

ଫୋତା—ବୈଦେ. ବି. (ଫା)—ଅଣ୍ଡକୋଷ—
Photā ପোতা କোতা Testicle.

ଫୋପଡ଼—ଦେ. ବି(ସଂ. ପ୍ରକ୍ଷିପ୍ତ)—୧ । ଲମ୍ବ କାଷ୍ଠଖଣ୍ଡ, ଯାହା ଅସ୍ତ୍ର ସ୍ୱରୂପ
Phoparḍa ନିକ୍ଷେପ କରି ଉଚ୍ଚ ବୃକ୍ଷ ପ୍ରଭୃତିରୁ ଫଳ ଝଡ଼ାଇବାକୁ
ଫাবড়া ହୁଏ—1. A stick or long piece of wood
ফটহা thrown as a weapon of offence or to
bring down fruits from high trees.

ଫୋପଡ଼ ହକାର ପାଖଗଲେ ଆଉ ଉଛୁଳିବି କେଉଁ ହଇ ।
ବ୍ରଜନାଥ. ସମରତରଙ୍ଗ ।

ଆମ୍ଭ ଗଛରେ ଅମ୍ବ ନାହିଁ ଫୋପଡ଼ କାହିଁକି ମାରୁ ?
ମୋ ଅଣ୍ଟାରେ ତ ପଇସା ନାହିଁ, ଅଣ୍ଟି କାହିଁପାଇଁ ଠାରୁ ? ଋଗ ।

ফাবড়া ୨ । (ପ୍ରକ୍ଷେପଣ) ଫିଙ୍ଗିବା; ନିକ୍ଷେପଣ—
ফেকনা 2. Act of throwing.
୩ । ଡାବଲି ଗୁଆ ଖେଳ—3. A kind of game played by throwing or striking wooden pins with sticks
ବିଣ—ଫୋପଡ଼ା (ଦେଖ)—Phoparḍā (See)

ଫୋପଡ଼ା—ଦେ. ବିଣ. (ସଂ. ପ୍ରକ୍ଷିପ୍ତ)—୧ । ନିକ୍ଷିପ୍ତ—
Phoparḍā 1. Thrown.
ফেলা; ফেলন ୨ । ଅନାଦର ପୂର୍ଣ୍ଣ (କଥା)—
ফেঁক 2. Disrespectful (words).
୩ । କଡ଼ା ବା ନିଷ୍ଠୁର (ବାକ୍ୟ)—
3. Hard or cruel (words).
ଦେ. ବି—ଫୋପଡ଼ (ଦେଖ)—Phoparḍa (See)

ଫୋପଡ଼ା(ଡ଼େ)ଇବା—ଦେ. କ୍ରି—(ଫୋପାଡ଼ିବା କ୍ରିୟାର ଣିଜନ୍ତରୂପ—
Phoparḍā(ṛḍe)ibā The causative form of
ফেলান Phoparḍibā).
ফেঁকবানা ୧ । ନିକ୍ଷିପ୍ତ କରାଇବା—1. To cause to be thrown.
୨ । ତଳେ ପକାଇବା—2. To throw down; to bring down to the ground.
୩ । ଫୋପାଡ଼ିବା; ଫିଙ୍ଗିବା; ନିକ୍ଷେପ କରିବା—3. To throw.

ଫୋପଡ଼ା ଫିଙ୍ଗା—ଦେ. ବି. (ଏକାର୍ଥକ, ସହଚର)—ବହୁ ବସ୍ତୁ ଫିଙ୍ଗିବା
Phoparḍā phiṅgā କର୍ମ—Throwing away of many things.
ଦେ. ବିଣ—ଅନାଦର ପୂର୍ଣ୍ଣ (ବାକ୍ୟ)—Disrespectful (words).
( ଯଥା—ତା ଫୋପଡ଼ା ଫିଙ୍ଗା କଥା ମୋ ଦେହରେ ଯିବ ନାହିଁ । )

ଫୋପଡ଼ା ଫୋପଡ଼ି—ଦେ. ବି—୧ । ଫିଙ୍ଗାଫିଙ୍ଗି; ଇତସ୍ତତଃ ଫିଙ୍ଗିବା—
Phoparḍā phoparḍi 1. Scattering about.
ଫପଡ଼ା ଫପଡ଼ି } ଅନ୍ୟରୂପ ୨ । ପରସ୍ପରକୁ (ଢେଳାଆଦି) ଫିଙ୍ଗିବା—
ଫବଡ଼ା ଫବଡ଼ି } 2 Throwing (of stones)
ফাবড়া ফাবড়ি ফেঁকা ফেঁকী at each other
ବିଣ—୧ । ଇତସ୍ତତଃ ବିକ୍ଷିପ୍ତ—1. Scattered about.
୨ । ପରସ୍ପରକୁ (ଢେଳାଆଦି) ଫିଙ୍ଗୁଥିବା—
2. Throwing (stones) at each other.

ଫୋପର—ଦେ. ବି. (ସଂ. ପୋଲ୍; ପୁଲ୍ଲକ=ଶୂନ୍ୟଗର୍ଭ ଧାନ; ଅଗାଡ଼ି)—
Phoparā ୧ । କ୍ଷୟପ୍ରାପ୍ତ; ଜୀର୍ଣ୍ଣ—1. Decayed.
(ଫୋମ୍ପର—ଅନ୍ୟରୂପ) ୨ । ଖତର; ପୋରହା—
ফোঁপর, ফোঁপরা, ফোবা 2. Worn out; moth-eaten.
খুখলা; পোলা: ফোফর; ফোক ୩ । ବହୁ ଛିଦ୍ର ଯୁକ୍ତ—
3. Having holes; spongy.

୪ । ଶୂନ୍ୟଗର୍ଭ; ଫମ୍ପା; ଫୋମ୍ପ—4. Hollow; empty.
୫ । ଅସାର—5. Unsubstantial.

**ଫୋପାଡ଼ିବା**—ଦେ. କ୍ରି. (ସ. ପ୍ର+କ୍ଷିପ୍ ଧାତୁ)—
Phopārdibā ୧ । ଦୂରକୁ ଫିଙ୍ଗିବା; ନିକ୍ଷେପ କରିବା—
ଫେଲା, ଫାବଡ଼ା 1. To throw away.
फेंकना ୨ । ତଳକୁ ପକାଇବା—2. To fell; to throw down.

**ଫୋପାଡ଼ି କରି କଥା କହିବା**—ଦେ. କ୍ରି—୧ । ଅନାଦର ବା ଅସମ୍ମାନ
Phopārdi kari kathā kahibā ପୂର୍ବକ କଥା କହିବା—
(ଫୋପଡ଼ା କଥା କହିବା—ଅନ୍ୟରୂପ) 1. To talk or speak with disrespect or disregard.
୨ । ନିଷ୍ଠୁର କଥା କହିବା—
2. To speak cruel words.
୩ । କଡ଼ା କଥା କହିବା—2. To speak harshly.

**ଫୋ ଫା**—ଦେ. ବିଣ—୧ । ଅନାଦରପୂର୍ଣ୍ଣ (କଥା)—
Pho phā 1. Disrespectful (words).
୨ । ଅବାଧ୍ୟତାପୂର୍ଣ୍ଣ (କଥା)—2. Insubordinate (words).
ଦେ. କ୍ରି. ବିଣ—୧ । ଅନାଦର ସହକାରେ—
1. Disrespectfully.
୨ । ଅବାଧ୍ୟତା ସହକାରେ—2. Insubordinately.

**ଫୋମେଣ୍ଟ**—ବୈଦେ. ବି. (ଇଂ. ଫୋମେଣ୍ଟ; ଫୋମେଣ୍ଟେସନ୍)—
Phoment ଗରମ ଜଳରେ ସେକ—Fomentation.
ফোমেণ্ট फैमेन्ट

**ଫୋରମାନ୍**—ବୈଦେ. ବି. (ଇଂ)—କାରଖାନାରେ କାରିଗରମାନଙ୍କ
Phormān କାମର ତତ୍ତ୍ୱାବଧାନ କରିବା କର୍ମଚାରୀ—
[ଫୋରମ୍ୟା(ମେ)ନ୍—ଅନ୍ୟରୂପ] Foreman in a workshop.
ফোরম্যান फोरमैन

**ଫୋରା**—ପ୍ରାଦେ. (ସିଂହଭୂମ) ବିଣ.—(ଭୁଲ. ଏହି ଅର୍ଥରେ ବି. ଫୋଗ)
Phorā ଫମ୍ପା; ଫୋମ୍ପ—Hollow.

**ଫୋର୍ଡ**—ବୈଦେ. ବି. (ଇଂ) (ନାମ)—୧ । ଅନ୍ଧମାନଙ୍କ ପାଇଁ ଯେ
Phord ବାଇବଲ ଲେଖି ଥିଲେ—1. Name of a Bible-
(ଫୋଡ଼୍—ଅନ୍ୟରୂପ) writer who wrote Bible for blind people; ford.
[ବ୍ରେ—ଏ ନିଜେ ୨୨ ବର୍ଷ ବୟସରେ ଅନ୍ଧ ହୋଇ ଯିବାରୁ Braith system (ଅନ୍ଧଙ୍କ ପାଇଁ ପ୍ରଯୁକ୍ତ ଏସ୍ଛି)ରେ ୩୪ ଭାଗରେ ବାଇବଲ ଲେଖି ଥିଲେ । ଏ ଇଂରାଜୀ, ହିବ୍ରୁ ଓ ଆରବୀ ଏହି ତିନ ଭାଷାରେ ବାଇବଲ ଲେଖି ଥିଲେ । ]
୨ । ଆମେରିକାର ସର୍ବଶ୍ରେଷ୍ଠ ମଟର ବ୍ୟବସାୟୀ ଓ ଧନୀ ବ୍ୟକ୍ତି—
2. Henry Ford of America; the famous rich man and maker of Ford cars.

**ଫୋର୍ଥ**—ବୈଦେ. ବିଣ. (ଇଂ)—ଚତୁର୍ଥ—
Phorth ফোর্থ फोरथ Fourth.

**ଫୋର୍ଥ୍ ଇୟର କ୍ଲାସ୍**—ବୈଦେ. ବି. (ଇଂ)—କଲେଜର ଚତୁର୍ଥବାର୍ଷିକ
Phorth iyar klās ଶ୍ରେଣୀ—The fourth year class
ফোর্থ ইয়ার কাস फोरथइयार किलास of a college.

**ଫୋଲିଓ**—ବୈଦେ. ବି. (ଇଂ)—୧ । ଏକଫର୍ଦ୍ଦ କାଗଜର ଅଧ—
Pholio 1. Folio; half of a sheet of paper.
ফোলিও ୨ । ଫୋଲିଓ ପେପର (ଦେଖ)—
फोलियो 2. Pholio pepar (See)

**ଫୋଲିଓ ପେପର**—ବୈଦେ. ବି. (ଇଂ)—ଦରଖାସ୍ତ ଆଦି ଲେଖାହେବା
Pholio pepar ପାଇଁ ସରକାରଙ୍କ ଦ୍ୱାରା ବିକ୍ରି କରାଯାଉଥିବା
(ଫୋଲିଓ କାଗଜ—ଅନ୍ୟରୂପ) ମୋଟ ଓ ସ୍ଥାୟୀ କାଗଜ—
ফোলিও কাগজ फोलियो कागज Folio paper.

**ଫୋସ୍**—ଦେ. ଅ—୧ । ସାପର ଫଁ ଫଁ ଶବ୍ଦ—1. Hissing sound.
Phos ୨ । ସାପ ଦେହେ ମାରିବା ବେଳର ଗର୍ଜନ—
ফোঁস 2. Hissing sound of a serpent while biting.
सिसकार; फिफकार

**ଫୌଜ (ଇତ୍ୟାଦି)**—ବୈଦେ. ବି—ଫଉଜ ଇତ୍ୟାଦି (ଦେଖ)
Phauja (etc) Phauja etc (See)

**ଫୌତ୍(ତୁ)**—ବୈଦେ. ବି. (ଆ. ଫୌତ୍=ମୃତ୍ୟୁ)—ମୃତ୍ୟୁ—
Phaut(tu) Death.
ফোত फौत ବିଣ—ମୃତ—Dead.

**ଫୌରନ୍**—ବୈଦେ. ଅ. (ଆ)—ତୁରନ୍ତ; ତତ୍କ୍ଷଣାତ୍—
Phauran ফোরন फौरन Immediately; at once.

**ଫ୍ରକ୍**—ବୈଦେ. ବି. (ଇଂ)—୧ । ସ୍ତ୍ରୀଲୋକଙ୍କ ଘାଗରା—
Phrak 1. Frock for female wear.
(ଫ୍ରାକ୍—ଅନ୍ୟରୂପ) ୨ । ପିଲାଙ୍କ ବ୍ୟବହୃତ ଲମ୍ବ ଓ ଢିଲା କୁରୁତା—
ফ্রক, ফরাক फराक; फ्राक 2. Frock for children.

**ଫ୍ରାଇ**—ଦେ. ବି—ଫିରାଇ (ଦେଖ)
Phrāi Phirāi (See)

**ଫ୍ରାଙ୍କ**—ବୈଦେ. ବି. (ଇଂ)—ଦଶପଇସା ବା ଆଠଅଣା ମୂଲ୍ୟର ଫ୍ରାନ୍ସ ଓ
Phrānk ବେଲଜିୟମ ଦେଶ ପ୍ରଚଳିତ ରୌପ୍ୟ ମୁଦ୍ରା—
ফ্রাঙ্ক फ्रांक France silver coin.

**ଫ୍ରାନ୍ସ**—ବୈଦେ. ବି. (ଇଂ)—ଇଉରୋପର ସାଧାରଣତନ୍ତ୍ରଶାସିତ ଦେଶ-
Phrāns ফ্রান্স फ्रांस ବିଶେଷ; ଫରାସୀ ଦେଶ—France.

**ଫ୍ରି**—ବୈଦେ. ବିଣ. (ଇଂ)—୧ । ମୁକ୍ତ; ଛାଡ଼ ପାଇଥିବା—
Phri 1. Free.
ফ্রি ୨ । ମାଗଣା—2. Gratuitous.
फ्री ୩ । ଯେଉଁ ବାଳକକୁ ସ୍କୁଲରେ ଦରମା ଛାଡ଼ ଦିଆଯାଇ ଥାଏ—3. (a student) Who is allowed to study without paying tuition fees.
୪ । ଯେଉଁ ସ୍କୁଲ ବା ଡାକ୍ତରଖାନାରେ ଛାତ୍ରଙ୍କୁ ବା ରୋଗୀଙ୍କୁ ବିନା ଖରଚରେ ସେବା କରାଯାଏ—4. Free (school or dispensary)

ଫ୍ରି ଚର୍ଚ୍ଚ—ବୈଦେ. ବି ( ଇଂ )—ଖ୍ରୀଷ୍ଟାନ୍‌ମାନଙ୍କ ଧର୍ମପନ୍ଥୀ ଶାଖା-
Phri charchch ବିଶେଷ—A sect of Christians hol-
ଫି଼୍ରି ଚାର୍ଚ୍ଚ ding free opinions about worship
**फ्री चार्च** in churches.

ଫ୍ରି ଟ୍ରେଡ୍—ବୈଦେ. ବି. ( ଇଂ )—ସ୍ୱାଧୀନଭାବରେ ବ୍ୟବସାୟ କରିବା;
Phri tred ବିନା ଶୁଳ୍କରେ କରାଯିବା ବାଣିଜ୍ୟ—Free trade;
ଫ୍ରି ଟ୍ରେଡ଼ free interchange of commodities with-
**फ्रि ट्रेड** out protective duties.

ଫ୍ରିଡମ୍—ବୈଦେ. ବି. ( ଇଂ )—ସ୍ୱାଧୀନତା—
Phridam ଫ୍ରିଡମ **फ्रिडम** Freedom.

ଫ୍ରି ପାଶ୍—ବୈଦେ. ବି. (ଇଂ)—ମାସୁଲ ନ ଦେଇ ରେଲଗାଡ଼ି ଆଦିରେ
Phri pās ଚଢ଼ି ବୁଲିବା ନିମନ୍ତେ ଦିଆଯାଇଥିବା ଛାଡ଼ ଚିଠି—
ଫ୍ରି ପାଶ **फ्रि पास** Free pass.

ଫ୍ରି ପ୍ରେସ୍—ବୈଦେ. ବି. ( ଇଂ )—ଖବର କାଗଜମାନଙ୍କୁ ସମଗ୍ର
Phri pres ପୃଥିବୀର ସମ୍ବାଦ ତାରଯୋଗେ ଯୋଗାଇବା କୋମ୍ପାନୀ—
ଫ୍ରି ପ୍ରେସ **फ्रि प्रेस** Free Press.
[ ଦ୍ର—ଏହି କୋମ୍ପାନୀ କଲିକତାରେ ସ୍ଥାପିତ ହୋଇଅଛି । ଏ ସମୁଦାୟ ପୃଥିବୀର ସମ୍ବାଦ ସଂଗ୍ରହ କରି ରଖେ ଓ ମାସିକ ଟ ୫୦୦୯ ପାଇଲେ ଏ କୋମ୍ପାନୀ ଦୈନିକ ଖବର କାଗଜକୁ ପ୍ରତିଦିନର ସଂଗୃହୀତ ଖବର ତାରଯୋଗେ ଜଣାଇ ଦିଏ । ]

ଫ୍ରି ମାସନ୍—ବୈଦେ. ବି. ( ଇଂ )—ଫ୍ରି ମାସନରି ନାମକ ପରସ୍ପର-
Phri māsan ସହାୟକ ସଭ୍ୟଯୁକ୍ତ ଗୁପ୍ତ ସଙ୍ଘର ସଭ୍ୟ—
ଫ୍ରି ମେସନ **फ्रि मेसन** (ଫ୍ରି ମେସନ୍—ଅନ୍ୟରୂପ) Freemason.

ଫ୍ରି ମାସନରି—ବୈଦେ. ବି. ( ଇଂ. ଫ୍ରି ମାସନ୍ରୀ )—ଧର୍ମନିର୍ବିଶେଷରେ
Phri māsanari ପରସ୍ପର ସହାୟକ ସଭ୍ୟମାନଙ୍କଦ୍ୱାରା ଗଠିତ
ଫ୍ରି ମେସନରୀ ପୃଥିବୀବ୍ୟାପୀ ଶାଖାଯୁକ୍ତ ସଙ୍ଘବିଶେଷ—
**फ्रि मेसनरी** Freemasonry.
[ ଦ୍ର—ଏ ସଙ୍ଘର ଉଦ୍ଦେଶ୍ୟ ପୃଥିବୀରେ ଧର୍ମନିର୍ବିଶେଷରେ ଭ୍ରାତୃଭାବ, ସତ୍ୟ, ଦାନ, ବିପନ୍ନପ୍ରତିକାରର ପ୍ରଚାର । ଏମାନଙ୍କ ସଙ୍ଘର ନିୟମମାନ ବାହାରର ଲୋକଙ୍କଠାରୁ ଗୁପ୍ତ ରଖାଯାଏ । ଏହା ଖ୍ରୀ ୧୭୧୭ ସାଲରେ ସ୍ଥାପିତ । ଏଥିର ସଭ୍ୟମାନେ ପରସ୍ପରକୁ ଗୋଟିଏ ନିର୍ଦ୍ଦିଷ୍ଟ ଚିହ୍ନ ବା ସଙ୍କେତଦ୍ୱାରା ଚିହ୍ନି ପାରନ୍ତି । ]

ଫ୍ରି ସିପ୍—ବୈଦେ. ବି. (ଇଂ. ଫ୍ରୀ ଷ୍ଟୁଡେଣ୍ଟ୍ ସିପ୍)—
Phri sip ଛାତ୍ରର ବିନା ବେତନରେ ସ୍କୁଲରେ ପଢ଼ିବାର ଅବସ୍ଥା—
ଫ୍ରି ସିପ **फ्रि सिप** Freestudentship.

ଫ୍ରି ସ୍କୁଲ—ବୈଦେ. ବି. (ଇଂ) —ଯେଉଁ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ
Phri skul ବିନା ଦରମାରେ ବିଦ୍ୟାଶିକ୍ଷା ଦିଆଯାଏ—Free
ଫ୍ରି ସ୍କୁଲ **फ्रि स्कुल** school.

ଫ୍ରି ଷ୍ଟୁଡେଣ୍ଟ—ବୈଦେ. ବି. (ଇଂ)—ସ୍କୁଲରେ ବିନା ବେତନରେ ପଢ଼ୁ-
Phri student ଥିବା ଛାତ୍ର—Free student.
ଫ୍ରି ଷ୍ଟୁଡେଣ୍ଟ **फ्रि स्टुडेण्ट**

ଫ୍ରି ଷ୍ଟୁଡେଣ୍ଟ୍ ସିପ୍—ବୈଦେ. ବି. (ଇଂ)—ଫ୍ରି ସିପ୍ ( ଦେଖ )
Phri student sip Phri sip ( See )

ଫ୍ରିହାଣ୍ଡ୍ ଡ୍ରଇଙ୍ଗ୍—ବୈଦେ. ବି. (ଇଂ)—ଯନ୍ତ୍ରର ବିନା ସାହାଯ୍ୟରେ
Phrihānd draing କେବଳ ଖାଲି ହାତରେ ଯେଉଁ ଚିତ୍ର
ଫ୍ରି ହାଣ୍ଡ ଡ୍ରଇଙ୍ଗ ଅଙ୍କନ କରାଯାଏ—Free hand drawing.
**फ्रि हाण्ड ड्रइं**

ଫ୍ରେଞ୍ଚ୍—ବୈଦେ. ବି. (ଇଂ)—ଫ୍ରାନ୍ସ ଦେଶୀୟ; ଫରାସୀ—
Phrench ଫ୍ରେଞ୍ଚ **फ्रेंच** French.

ଫ୍ରେଞ୍ଚ୍ ପଲିଶ୍—ବୈଦେ. ବି. (ଇଂ)—ଘଷାମଜା ହୋଇ ଥିବା ପଦାର୍ଥକୁ
Phrench palis ଚକଚକିଆ କରିବା ନିମନ୍ତେ ତହିଁ ଉପରେ
(ଫ୍ରେଞ୍ଚ ପାଲିଶ—ଅନ୍ୟରୂପ) ବୋଳାଯିବା ଲାଖାଦି ଦ୍ରବ; ବାର୍ଣ୍ଣିସ୍—
ଫ୍ରେଞ୍ଚ ପାଲିସ **फ्रेंच पालिस** French polish; copal varnish.

ଫ୍ରେମ୍—ବୈଦେ. ବି. (ଇଂ)—ଛବିର ଚାରି ପାଖରେ ବନ୍ଧା ହୋଇଥିବା
Phrem ଚଉକାଠ; ଫର୍ମା—The frame of a picture.
ଫ୍ରେମ **फ्रेम**

ଫ୍ଲରିଡ଼ା ୱାଟର୍—ବୈଦେ. ବି. (ଇଂ)—ଗାଧୁଆ ପାଣିରେ ମିଶାଇବା
Phlariḍā wāṭar ପାଇଁ ବ୍ୟବହୃତ ଏକ ପ୍ରକାର ସୁବାସିତ
ଫ୍ଲରିଡା ଓୟାଟର ଜଳ—Florida water.
**फ्लरिडा वाटर**

ଫ୍ଲାଇ ସଟଲ୍ ତନ୍ତ—ଦେ. ବି. (ଫ୍ଲାଇ ସଟ୍‌ଲ୍ + ଓଡ଼ିଆ. ତନ୍ତ)—
Phlāi saṭal tanta ଏକ ପ୍ରକାର ତନ୍ତ—Fly shuttle
ଫ୍ଲାଇ ସଟଲ ତାଁତ **फ्लाइ सटल ताँत** loom.
[ ଦ୍ର—ଏଥିରେ ଦେଶୀ ତନ୍ତ ଅପେକ୍ଷା ଶୀଘ୍ର ଲୁଗା ବୁଣାଯାଇ ପାରେ । ]

ଫ୍ଲାନେଲ୍—ବୈଦେ. ବି. ( ଇଂ. ଫ୍ଲାନେଲ୍ )—ପଶମ ନିର୍ମିତ ବସ୍ତ୍ର—
Phlānel ଫ୍ଲାନେଲ **फ्लानेल** Flannel.

ଫ୍ଳୁଟ୍—ବୈଦେ. ବି. (ଇଂ)—ବଂଶୀ; ମୁରଲୀ—
Phlut ଫ୍ଲୁଟ **फ्लूट** Flute

# ବ

ବ—ବ୍ୟଞ୍ଜନ ବର୍ଣ୍ଣର ତ୍ରୟୋବିଂଶ ବର୍ଣ୍ଣ—The 23rd consonant corresponding to 'B'
Ba
ବ ଵ

[ ଦ୍ର—ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ବର୍ଗ୍ୟ 'ବ'—ଏହା ପ ବର୍ଗର ତୃତୀୟ ବର୍ଣ୍ଣ । ସଂସ୍କୃତରେ ଏ ବର୍ଗ୍ୟ 'ବ' ଓ ଲ ଅକ୍ଷରର ପରବର୍ତ୍ତୀ ( ଅର୍ଥାତ୍ ବ୍ୟଞ୍ଜନ ବର୍ଣ୍ଣର ଊନତ୍ରିଂଶ ବର୍ଣ୍ଣ ) ଅବର୍ଗ୍ୟ 'ଵ'—ଏହି ଦୁଇ ଅକ୍ଷରର ଉଚ୍ଚାରଣ ସ୍ୱତନ୍ତ୍ର । ବର୍ଗ୍ୟ 'ବ' ଉଚ୍ଚାରଣ କଲାବେଳେ ଦୁଇ ଓଠକୁ ସଂଯୁକ୍ତ କରି ଛାଡ଼ି ଦେବାକୁ ହୁଏ ଓ ଅବର୍ଗ୍ୟ 'ଵ' ଉଚ୍ଚାରଣ କଲାବେଳେ ଉପର ପାଟିର ଦାନ୍ତ ଓ ତଳ ଓଠକୁ ଛୁଆଁଇ ଛାଡ଼ି ଦେବାକୁ ହୁଏ । ଅବର୍ଗ୍ୟ 'ଵ' ଦନ୍ତ୍ୟୌଷ୍ଠ୍ୟ ଅଟେ । ଓଡ଼ିଆ ଭାଷାରେ ଅବର୍ଗ୍ୟ 'ଵ'ର ଉଚ୍ଚାରଣ 'ଵ' ଫଳାରେ ଅଛି । ଯଥା—କ୍ୱଣ, ପକ୍ୱ, ଅନ୍ୱୟ ଇତ୍ୟାଦି ।

କିନ୍ତୁ 'ମ' ତଳେ 'ବ' ଫଳା ଦେଲେ ତାହା ବର୍ଗ୍ୟ 'ବ'ର ଉଚ୍ଚାରଣ ଧାରଣ କରେ । ଇଂରାଜୀରେ ବର୍ଗ୍ୟ 'ବ'ର ଉଚ୍ଚାରଣ 'B' ଓ ଅବର୍ଗ୍ୟ 'ଵ'ର ଉଚ୍ଚାରଣ 'W'; କିନ୍ତୁ ଓଡ଼ିଆ ଭାଷାର ବ୍ୟବହାରରେ ବର୍ଗ୍ୟ ଓ ଅବର୍ଗ୍ୟ 'ବ' ଅକ୍ଷର ଦ୍ୱୟ ଥିବା ସଂସ୍କୃତଶବ୍ଦମାନଙ୍କ ଉଚ୍ଚାରଣରେ ପ୍ରଭେଦ ରକ୍ଷା ହେଉ ନଥିବାରୁ କେଉଁ 'ବ' ବର୍ଗ୍ୟ ଓ କେଉଁ 'ବ' ଅବର୍ଗ୍ୟ ତାହା ସ୍ଥିର କରାଯିବା ଦୁର୍ଘଟ ହୁଏ । ଏଥିପାଇଁ ଦୁଇଟି 'ବ' ଆଦ୍ୟରେ ଥିବା ତତ୍ସମ (ସଂସ୍କୃତ) ଓ ତଦ୍ଭବ ( ଦେଶୀୟ ) ଶବ୍ଦମାନ ଏହି 'ବ' ଅକ୍ଷର ତଳେ ଦିଆଗଲା । ଏହି ଭାଷାକୋଷରେ ଏହି ଦୁଇ 'ବ' ମଧ୍ୟରେ ପ୍ରଭେଦ ଦେଖାଇବା ପାଇଁ ବର୍ଗ୍ୟ 'ବ'କୁ 'ବ' ଓ ବର୍ଣ୍ଣକ୍ରମରେ ଅବର୍ଗ୍ୟ 'ବ'କୁ 'ଵ'ରୂପେ ଚିହ୍ନିତ କରାଯାଇଅଛି । ଅବର୍ଗ୍ୟ 'ଵ' ତଳେ ନୋଟ୍ ଦ୍ରଷ୍ଟବ୍ୟ । ହିନ୍ଦୀ ଓ ମରହଟ୍ଟୀ ଭାଷାରେ ଏହି ଦୁଇ 'ବ' ଅକ୍ଷରର ଉଚ୍ଚାରଣରେ ପାର୍ଥକ୍ୟ ରେଖାଯାଏ । ]

ସଂ. ବି. ( ବା ଧାତୁ=ବଧ କରିବା+କର୍ତ୍ତୃ. ଅ )—
୧ । ବରୁଣ—1. The ocean-God
୨ । ସିନ୍ଧୁ; ସମୁଦ୍ର—2. Ocean; the sea
୩ । ଜଳର ମୃଦ୍ଘଟ; ମାଠିଆ—3. Earthen jar.
୪ । (+କରଣ. ଅ) ଅଧ୍ୟବସାୟ—4. Perseverance.
୫ । ( ବନ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ )—ଜଳ—5. Water
୬ । ( ବା ଧାତୁ=ଗତି କରିବା+କର୍ତ୍ତୃ. ଅ )—ବାୟୁ—6. Air, wind
୭ । ଯୋନି—7. Vulva; female organ.
୮ । ( +ଭାବ. ଅ ) ଗମନ; ଗତି—8. Going; motion.
୯ । ( ବନ୍ଧ୍ ଧାତୁ+ଭାବ. ଅ ) ବନ୍ଧନ—9. Tying; binding.
୧୦ । ( ବପ୍ ଧାତୁ=ବୁଣିବା+କର୍ମ. ଅ ) ବଅ; ତନ୍ତର ସୂତ୍ର ନିର୍ମିତ ଯେଉଁ ପାନିଆ ମଧ୍ୟ ଦେଇ ଟାଣୀ ସୂତା ଯାଇଥାଏ—10. The series of hanging strings attached to frames, through which the warp threads remain suspended in alternative positions to enable the spindle to pass through the space made by the threads passing up and down alternately.
୧୧ । ବଖିଆ ସିଲେଇ; ତାଗା ଗଳା—11. Simple stitch in sewing.

ଦେ. ବି. ( ପାନବରଜୀ ଭାଷା )—ପାନ ଲତାର ଚେର—The root of betel creeper.

ବୈଦେ. ଅ. ( ଫା ) ( । ବ । ସାଙ୍କେତିକ; ବମୁଜିବ ଶବ୍ଦର ସାଙ୍କେତିକ )—୧ । ମୁତାବକ; ଅନୁସାରେ—1. As per.
( ଯଥା—ତାଲିକା । ବ ।=ତାଲିକା ଅନୁସାରେ । )
୨ । ( ବକଲମ ଶବ୍ଦର ସାଙ୍କେତିକ ) ଲେଖି ଜାଣୁ ନ ଥିବା ବ୍ୟକ୍ତି ପାଇଁ କିମ୍ବା ଅନୁପସ୍ଥିତ ବ୍ୟକ୍ତି ପାଇଁ ସ୍ୱାକ୍ଷର କରୁଥିବା ବ୍ୟକ୍ତିର ନିଦର୍ଶନ—2. Corresponding to Sd/ or Signed by so and so for so and so; by the pen of.
( ଯଥା—ଗୋପାଳଚନ୍ଦ୍ର ପ୍ରହରାଜ । ବ । ପୁତ୍ର ଚନ୍ଦ୍ରଶେଖର ପ୍ରହରାଜ, ଅର୍ଥାତ୍ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନିମନ୍ତେ ତାଙ୍କ ପୁଅ ଚନ୍ଦ୍ରଶେଖର ପ୍ରହରାଜ ସ୍ୱାକ୍ଷର କଲେ । )
[ ଦ୍ର—ଏହା । ସ୍ୱା ( ସ୍ୱାକ୍ଷର ) ଚିହ୍ନଦ୍ୱାରା ମଧ୍ୟ ସୂଚିତ ହୁଏ । ]
୩ । ( ବନାମ ଶବ୍ଦର ସାଙ୍କେତିକ ) ଅପର ପକ୍ଷ; ଅମୁକର ନାମରେ—3. Versus.
( ଯଥା—ବାଦୀ ରାମସାହୁ । ବ । ପ୍ରତିବାଦୀ ଶ୍ୟାମସାହୁ । )

ଗ୍ରା. କ୍ରି ( ବସିବା କ୍ରିୟାର ଅନୁଜ୍ଞା ଏକବଚନ ଅନାଦରାର୍ଥକ ରୂପ )—( ତୁ ) ବସ୍, ଏଠାରେ ଉପବେଶନ କର—Do sit.

ବଅ—ଦେ. ବି. ( ସଂ. ବ )—ତନ୍ତର ସୂତ୍ରନିର୍ମିତ ପାନିଆଁ; ଯେଉଁ ସୂତ୍ରମୟ ଫାଶ ମଧ୍ୟରେ ଟାଣୀ ସୂତା ଗୋଟିଗୋଟି ହୋଇ ଗଳି ଝୁଲୁଥାଏ—The comb or knots through which the warp threads pass and hang down.
Ba-a
ବ
(ବଅ ପାଟି—ଅନ୍ୟରୂପ)

ବଅଁର—ପ୍ରାଦେ. ( ସମ୍ବଲପୁର ) ବି (ସଂ. ବଦର)—ବରକୋଳି—The jujube berry.
Ba-añra

ବଅ କାଠି—ଦେ. ବି—ଯେଉଁ କାଠି ଦୁଇ ଖଣ୍ଡରେ ବଅର ସୂତା ବନ୍ଧା ଯାଏ—The two sticks enclosing the hanging warp-strings.
Ba-a kāṭhi

ବଅ ପଟା—ଦେ. ବି—ଯେଉଁ ପଟାରୁ ଦଉଡ଼ି ଲାଗି ବଅ ଝୁଲା ଯାଇଥାଏ—A plank from which the Ba-a threads are suspended
Ba-a paṭā

**ବଅ ପଡ଼ିଆ**—ଦେ. ବି. (ସଂ. ବ + ପତିତ)—ଲୁଗା ବୁଣିଲା ବେଳେ 'ବଅ'
Ba-a pardiā ପଡ଼ି ଯାଇଥିବା ଯୋଗୁଁ ସେହିଠାରେ ଏକାଧିକ ଥର
**उचला** ଣାଣୀ ସୂତାର ଏକପାଖରେ ଭରଣୀ ସୂତା ବୁଣା ଯାଇଥାଏ—
( ବ ପଡ଼ିଆ—ଅନ୍ୟରୂପ ) A defect in the texture of a cloth due to the string-comb not having gone up and down regularly during weaving.
ବିଣ—ବଅ ଦୋଷଯୁକ୍ତ ( ଲୁଗା )—
Defectively woven ( cloth )

**ବଅର**—ଦେ. ବି. ( ସଂ. ବଦର )—ବର କୋଳି—
Ba-ara କୁଲ **बेर** The jujube berry.

**ବଅଲ**—ଗ୍ରା. (ଇତର) ବି. (ହିନ୍ଦୀ. ବଏଲ୍)—ବଳଦ—
Ba-ala Ox; bullock.
ବୈଦେ. (ଇଂ. ବଲ୍ ) ବି—ଫେଣ୍ଡୁ; କ୍ରୀଡ଼ା କନ୍ଦୁକ—
Ball; playball.

**ବଅସ (ଇତ୍ୟାଦି)**—ଗ୍ରା. ବି— ବୟସ ଇତ୍ୟାଦି ( ଦେଖ )
Ba-asa (etc) Bayasa etc. ( See )

**ବଇ**—ଦେ. ବି—୧ । ଗୁଡ଼ି; ଗଦା—1. Heap; mass.
Bai ୨ । ଘେର; ବାଡ଼—2. Fence; compound.
୩ । (ଆଦରାର୍ଥକ) ବୈଷ୍ଣବ, ବୈକୁଣ୍ଠ ନାମକ ବ୍ୟକ୍ତିର ଡାକ-ନାମ—3. Name by which a person named Baishnaba or Baikuntha is called.
୪ । (ସାଙ୍କେତିକ) ବୈଶାଖ ମାସର ସାଙ୍କେତିକ—
4. Abbreviation for the month of Baisākha
[ ଦ୍ର—ଅକାମାବଇ ଉଲେ କୋଳି (ଦେଖ) ]
ବୈଦେ. ବି. (ଆ. ବହି = ଧର୍ମ ପୁସ୍ତକ; କୋରାନ୍)—
୧ । ବହି; ପୁସ୍ତକ; କିତାପ—1. Book.
୨ । ଖାତା—2. Account book.

**ବଇଁ**—ପ୍ରାଦେ. (ଗଞ୍ଜାମ) ବି— ପ୍ରାଚୀର; କାନ୍ଥ—
Baiṅ Wall.
ବି (ସମ୍ବଲପୁର)—ପ୍ରଦୀପ—Lamp.

**ବଇଁଛି**—ପ୍ରାଦେ. (ବାଲେଶ୍ୱର) ବି—ବନଶୀ—
Baiṅchhi Angling rod and line.
(ବଇଁଛି ଖଡ଼ା, ବନ୍ଛି—ଅନ୍ୟରୂପ)

**ବଇଁଛି କାଟିବା**—ପ୍ରାଦେ. (ବାଲେଶ୍ୱର) କ୍ରି—ବାଉଁଶ ବୁଦାରୁ ବନଶୀ
Baiṅchhi kāṭibā ହେବା ଯୋଗ୍ୟ କଣି କାଟିବା—
To cut a twig of bamboo for making an angling rod.

**ବଇଁଛି ସେକିବା**—ପ୍ରାଦେ. ( ବାଲେଶ୍ୱର ) କ୍ରି—ବନଶୀ ପାଇଁ ଅଣା
Baiṅchhi sekibā ଯାଇଥିବା ବାଉଁଶ କଣିକୁ ନିଆଁରେ ସେକ ଦେଇ ଚାପ ପ୍ରୟୋଗ ଦ୍ୱାରା ସିଧା କରିବା—
To straighten a newly brought bamboo-twig by heating it over fire for making an angling rod.

**ବଇଁଠି**—ପ୍ରାଦେ. (ମେଦିନୀପୁର) ବି. (ତୁଳ. ବଂ. ବଁଠି)—ପନିକ—
Baiṅṭhi Vegetable chopper.

**ବଇଁରି**—ପ୍ରାଦେ. (ସମ୍ବଲପୁର ଓ ଲଡ଼ଆ) ବି—ତୋଡ଼ି ମାଛ—
Baiṅri A kind of tubular fresh water fish.

**ବଇଁଶିଆ** - ଦେ. (ପଦ୍ୟ) ବିଣ. (ସଂ. ବଂଶୀଧର)— ବଂଶୀ ବାଦକ—
Baiṅsiā Blowing a flute.
କଲି ବଇଁଶିଅ ଭରତଖ ବଂଶୀ ଧ୍ୱନି । ରଥାକାଂଟ, ସପାତ ।
ଦେ. ବି. (ଅନାଦରାର୍ଥକ)—ବଂଶୀଧରର ଡାକ ନାମ—
A name for calling 'Baṁsidhara.'

**ବଇଁଶୀ**—ଗ୍ରା. (ପଦ୍ୟ) ବି. ( ସଂ. ବଂଶୀ )—୧ । ମୁରଲୀ—
Baiṅsi बाँशी **बाँसुरी** 1. Flute; a fife.
ଗୋପୀ ନାମ ଧରି କଲେ ବଇଁଶୀ ସ୍ୱନ । ପ୍ରାଚୀ. ରହସ୍ୟମଞ୍ଜରୀ ।
୨ । ବଂଶୀଧରର ଆଦରାର୍ଥକ ଡାକ ନାମ—
2. A name for calling Baṁsidhara.

**ବଇକୁଣ୍ଠ (ଇତ୍ୟାଦି)**—ଗ୍ରା. (ପଦ୍ୟ) ବି—୧ । ବୈକୁଣ୍ଠ ଇତ୍ୟାଦି (ଦେଖ)
Baikuṇṭha (etc) 1. Baikuṇṭha etc. (See)
ଅନ୍ତରେ ବଇକୁଣ୍ଠ ପୁରରେ ବସଇ । କୃଷ୍ଣସିଂ. ମହାଭାରତ. ଅଦ ।
୨ । ବୈକୁଣ୍ଠନାଥର ଡାକ ନାମ—2. The name by which one named Baikuṇṭha is called.

**ବଇକୁଳ**—ଦେ. (ପଦ୍ୟ) ବିଣ. (ସଂ. ବିକଳ—ବିଣ; ଓ ବୈକଲ୍ୟ—ବି)—
Baikula ବିକଳ; କଳବଳ—Perturbed; distressed.
ସେ ଜଳ ପିଇଲେ ଏବେ ଅମ୍ଭେ ବଇକୁଳ ।
ମଳୟ ପବନ ବହେ ଅଙ୍ଗ ସନ ଭୁଲ । ପ୍ରାଚୀ. ରହସ୍ୟ ମଞ୍ଜରୀ ।

**ବଇ ଜନ୍ତୀ**—ଦେ. ବି—ଅଗସ୍ତି ଜାତୀୟ ବୃକ୍ଷ ବିଶେଷ—
Bai janti Sesbania Egyptica (tree).

**ବଇଜୟନ୍ତ**—ଗ୍ରା. (ପଦ୍ୟ) ବି. (ସଂ. ବୈଜୟନ୍ତ)—ବୈଜୟନ୍ତ (ଦେଖ)
Baijayanta Baijayanta (See)
ବଇଜୟନ୍ତ ଅସମ କହେ ଚନ୍ଦ୍ରଚଳନେ ରଥ କଳାପ । ଉଞ୍ଜ. ବୈଦେହୀଶବିଳାସ ।

**ବଇଜୟନ୍ତୀ**—ଗ୍ରା. (ପଦ୍ୟ) ବି. (ସଂ. ବୈଜୟନ୍ତୀ)—ବୈଜୟନ୍ତୀ (ଦେଖ)
Baijayanti Baijayanti (See)
ବଇଜୟନ୍ତୀ ପୀତ ଦୁକୂଳ ବନ୍ଧୁର ତରୁ ପ୍ରକଟ ସେ ସଙ୍ଗେ ।
ଉଞ୍ଜ. ବୈଦେହୀଶବିଳାସ ।

**ବଇଞ୍ଚ(ଞ୍ଚି)**—ଦେ. ବି. (ସଂ. ବିକଙ୍କତ)—ଭଇଞ୍ଚି; କଣ୍ଟକଶାଖ ବନ୍ୟ
Baiñcha(ñchi) କ୍ଷୁପ ବିଶେଷ—Flacourtia Cataphracta; Flacourtia Ramontchi; a thorny bush bearing edible berries.
ସଂ. ନାମ—ଗ୍ରନ୍ଥିକ, ସ୍ରୁବାବୃକ୍ଷ, ସ୍ୱାଦୁକଣ୍ଟକ, କଂଟକୀ, ବ୍ୟାଘ୍ରପାଦ, କଂଟକାସ୍ତ୍ର, ବୃଢ଼କଂଟ, ସ୍ରୁଗ୍ବୃକ୍ଷ, ମଧୁପର୍ଣ୍ଣୀ, କନ୍ଦୁଫଳ, ଗୋପଘଣ୍ଟୀ, ଦନ୍ତକାଷ୍ଠ, ବ୍ରହ୍ମପାଦପ, ହୃମକ, ପିଣ୍ଡାର, ପୂତିଦ୍ରୁମ, ଗ୍ରନ୍ଥିଳ, ପାଦରୋହଣ, ସୁଧାବୃକ୍ଷ, ଯଜ୍ଞବୃକ୍ଷ
बैंईच; बेऊँच; बैंच
**কাঁটাই; কিঙ্কিণী**
ମ. ଓଲଯୋଣ୍ଟୀ, ବେହକଲ
ତେ. କାନରେଗୁ ତେଣ୍ଡୁ
ଗୁ. ବିକଳେ
ପୁନାଙ୍ଗ ଭଲ୍ଲାତକ ବଇଞ୍ଚ ଧାଉଞ୍ଚ । କୃଷ୍ଣସିଂ. ମହାଭାରତ ବନ ।
[ ଦ୍ର—ଏହି ଗୁଳ୍ମ ଦାକ୍ଷିଣାତ୍ୟ, ଲଙ୍କା, ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶ ଅଞ୍ଚଳର ଜଙ୍ଗଲରେ ଜାତ ହୁଏ । ଏହାର କାଠ, ଘନ ଓ ଦୃଢ଼; କଣ୍ଟା ଲମ୍ବ ଓ ମୋଟ । ଏହାର କୋଳ ପ୍ରଥମେ ଟିକ୍ଲାଳି ହୁଏ; ପାଚିଲେ କୃଷ୍ଣବର୍ଣ୍ଣ ଓ ମିଠା ହୁଏ; ପାଚିଲା କୋଳ ମନୁଷ୍ୟମାନେ ଖାଆନ୍ତି । ଫଳ

ହଲଦିଆ ଓ ଆପୀତ ଓ ଦଲଘ୍ନ; ଶୀତକାଳରେ ଫୁଟେ । ଗଛ ଗ୍ରନ୍ଥିଳ । ଏହା ପଡ଼ିଆ ଓ କଙ୍କର ଭୂମିରେ ଜାତ ହୁଏ । ବୈଦ୍ୟଙ୍କ ମତରେ ଏହା ବାତାଦି ଦୋଷନାଶକ । ପୂର୍ବକାଳରେ ଏ ଗଛର କାଠରେ ସ୍ରୁବ ତିଆରି କରାଯାଉ ଥିଲା । ]

ପ୍ରାଦେ. (ବାଲେଶ୍ୱର) ବି—ବନଶି—
Angling rod and line.

ବଇଠକ—ଦେ. ବି. [ସଂ. (ଉପ) ବିଷ୍ଟ, ବେଷ୍ଟକ; ତୁଳ; ସଂ. ବିଷ୍ଟ=
Baiṭhaka ପ୍ରା. ବିଟ୍ଠ; ସଂ. ବିଉଷ୍ଟିତ; ପ୍ରା. ବଇଟ୍ଠଇଁ]—
(ବୈଠକ—ଅନ୍ୟରୂପ) ୧ । ବସିବା; ଉପବେଶନ—
বৈঠক 1. Sitting.
**बैठक** ୨ । ସଭା; ବନ୍ଧୁଲୋକଙ୍କ ସମାଗମ—
2. Meeting; assemblage.
୩ । ସଭାର ଅଧିବେଶନ—3. A session of a meeting.
୪ । (ସଂ. ବାଟିକା)—ବାସସ୍ଥାନ; ଅବସ୍ଥିତି—
4. Residence.

ମୁକତ ମଣ୍ଡପ ସେ ଦେଖ
ବୈକୁଣ୍ଠ ବିଷ୍ଣୁର ବୈଠକ । ଯଶୋବନ୍ତ. ପ୍ରେମଭକ୍ତି. ବ୍ରହ୍ମଗୀତା ।

୫ । ଚୌପାଢ଼ୀ; ସଭାଗୃହ—5. A meeting hall; meeting place.

ବଇଠକ ଖାନା—ଦେ. ବି. (ହି. ବୈଠକ+ଫା. ଖାନାହ୍)—
Baiṭhaka khānā ବସିବା ନିମନ୍ତେ ବ୍ୟବହୃତ କୋଠରି;
(ବଇଠକ ଘର—ଅନ୍ୟରୂପ) ବେହରଣ ମଣ୍ଡପ; ଉପବେଶନ ଗୃହ—
বৈঠক খানা **बैठक खाना** Parlour; drawing room.

ବଇଠକି—ଦେ. ବି—୧ । ଦୀପାଧାର; ଦୀପରୁଖା; ପିଲସଜ—
Baiṭhaki 1. Lampstand.
(ବୈଠକି—ଅନ୍ୟରୂପ) ୨ । ଏକପ୍ରକାର ବ୍ୟାୟାମ; ଝୁଲୁଥିବା
বৈঠকী ଗୋଟିଏ ଦଉଡ଼ିକୁ ଦୁଇହାତରେ ମୁଠାଇ ଧରି ଉଠିବା
**बैठकी** ଓ ବସିବା ରୂପ ବ୍ୟାୟାମ—2. Squat; a kind of athletic exercise.
୩ । ବଇଠକ (ଦେଖ)—2. Baiṭhaka (See)

ବଇଠକି ଉଠା(ଠେ)ଇବା—ଦେ. କ୍ରି. (ନିଜର ବସିବା ସ୍ଥାନକୁ ନଷ୍ଟ
Baiṭhaki uṭhā(ṭhe)ibā କରିବା)—ନିଜ ଦୋଷରେ ସମସ୍ତ ସମ୍ପତ୍ତି ଉଡ଼ାଇ ଦେବା—To squander away one's properties.

ବଇଠକି ଦଣ୍ଡ—ଦେ. ବି—ଏକପ୍ରକାର କସରତ୍, ଯହିଁରେ ଦଣ୍ଡ କରିବା
Baiṭhaki daṇḍa ପରେ ମଲ୍ଲ ବସିଯାଏ ଓ ବସି କରି ଦୁଇ-
বৈঠকী ডন্ ହାତର କହୁଣୀ ଉପରେ ଭାର ଦେଇ ବସେ
**बैठे दंड** ଓ ଦଣ୍ଡ କରେ—A kind of athletic exercise.

ବଇଠା—ଗ୍ରା. ବି. (ଶୂଦ୍ରାଦିଙ୍କ ବ୍ୟବହୃତ ଭାଷା)—୧ । ପ୍ରଦୀପ—
Baiṭhā 1. Lamp.
(ବେଠା—ଅନ୍ୟରୂପ) ବଇଠା ମିଞ୍ଜି ମିଞ୍ଜି ହୋଇ ଜଳୁ ଅଛି ।
প্রদীপ **दीया** ଫକୀରମୋହନ. ଛମାଣ ଆଠଗୁଣ୍ଠ ।
୨ । (ସର୍ବଷ୍ଟ. ଉପବେଶନ କରିବା—2. Sitting.
୩ । ବସାଇବା—3. Causing to sit; setting.
୪ । ଦୀପରୁଖା—4. Lampstand.
୫ । ଖୋରଧା ସହରର ଦକ୍ଷିଣ ପଶ୍ଚିମରେ ଏକ ମାଇଲ ଦୂରରେ ଥିବା ପର୍ବତବିଶେଷ—5. Name of a hill to the south-west of the town of 'Khurdā', at a distance of one mile.

ବଇଠା(ଠେ)ଇବା—ଦେ. କ୍ରି.—ବସାଇବା—
Baiṭhā(ṭhe)ibā বসান **बैठाना** To cause to sit.
ବଇଠାଇବ ତାଙ୍କୁ ଯମଙ୍କ ପୁରରେ । କୃଷ୍ଣସିଂହ. ମହାଭାରତ ବନ ।

ବଇଠାଣି—ପ୍ରାଦେ. (ମେଦିନୀପୁର) ବି.—ହୁକ୍କା ଆଧାର ବଇଠି—
Baiṭhāṇi A stand for the 'Hukkā'
(ବୈଠାଣି—ଅନ୍ୟରୂପ)

ବଇଠାର(ରୁ)—ପ୍ରାଦେ. (ଗଞ୍ଜାମ) ବି.—ବଣିଆମାନଙ୍କ ବଂଶୋପାଧି
Baiṭhāra(ru) ବିଶେଷ—A family-title of certain
(ବୈଠାର[ରୁ]—ଅନ୍ୟରୂପ) goldsmiths.

ବଇଠାଲ—ଦେ. ବି.—ଶୂଦ୍ରଙ୍କ ବଂଶୋପାଧି ବିଶେଷ—
Baiṭhāḷa A family-title of Śūdras.

ବଇଠା ଲଗା(ଗେ)ଇବା—ଦେ. କ୍ରି.—ପ୍ରଦୀପରେ ଅଗ୍ନି ସଂଯୋଗ
Baiṭhā lagā(ge)ibā କରିବା; ଦୀପ ଜଳାଇବା—
দীপ লাগান **दिया लगाना** To light a lamp.

ବଇଠି—ଦେ. ବି. (ସଂ. ବେଷ୍ଟକ)—୧ । ଗୋଲ ବା ଡେଙ୍ଗା ପଦାର୍ଥ ବା
Baiṭhi ପାତ୍ର ଭୂମିରେ ଯେପରି ଅଟଳ ହୋଇ ବସି ପାରିବ ଏଥି
বৌঠক ନିମନ୍ତେ ତହିଁ ତଳେ ଲାଗି ଥିବା ଆସନ—1. A pedestal attached to the bottom of a round or
**बैठकी**
**बैठी** tall thing to enable it to be set without sliding.
୨ । ପ୍ରତିମା ଆଦିର ତଳେ ଲାଗିଥିବା ଆସନ—
2. Pedestal at the bottom of an image.
୩ । କୌଣସି ପଦାର୍ଥ (ଯଥା, ହୁକା, ଲମ୍ପ୍) ରଖି ଦେବାର ଆସନ ବା ଆଧାର—3. A small tripod used as a stool.
୪ । ଆସନ; ଯାହା ଉପରେ ବସିବାକୁ ହୁଏ—4. A seat.
ମୋର ନାକ ବଇଠିକ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
୫ । (ଜଗନ୍ନାଥଙ୍କର) ଚକା ଆସନ—5. A round seat on which the image of Lord Jagannath is set.

ସ୍ୱର୍ଣ୍ଣ ପାତ ଲ, ମଣି ଛନ
ବଇଠି ସ୍ୱରୂପେ ଜନନି । ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା ।

ପ୍ରାଦେ· (ଗଡ଼ଜାତ) ଅ—(ପୋଡ଼ୁଅଙ୍କୁ ଆଗ ଗୋଡ଼କୁ ପାଞ୍ଚଣ ଦ୍ୱାରା ଈଷତ୍ ଆଘାତ କରିବା ଦ୍ୱାରା ଜଗୁଆଳର ଉଚ୍ଚାରିତ ପଦ) ଆଗ ଗୋଡ଼ଦ୍ୱାରା ଆଣ୍ଠେଇ ପଡ଼—(Interjection; a word used by buffalo-keepers to a male buffalo) Kneel down by the front legs.

**ବଇଠି କରଣ**—ଦେ. ବି—ରାଜକର୍ମଗୃହବିଶେଷ; ଦେବାଳୟର
Baiṭhi karaṇa କର୍ମଗୃହବିଶେଷ; କ୍ଷୁଦ୍ରକରଣ—A clerk in a temple or in the court of a Raja, whose duty is to write accounts and supervise daily works.
[ ଦ୍ର—ଏମାନେ ଏକ ସ୍ଥାନରେ ବସି କାର୍ଯ୍ୟର ତତ୍ତ୍ୱ ବୁଝନ୍ତି ଓ ହିସାବ ଲେଖନ୍ତି । ]

**ବଇଠିବା**—ପ୍ରାଦେ. (ସମ୍ବଲପୁର) କ୍ରି—(ସଂ. ଉପବିଷ୍ଟ. ପ୍ରା. ବଇଠ୍ଠଇ;
Baiṭhibā ତୁଳ. ହି. ବୈଠନା)—ବସିବା—To sit.

**ବଇଠେ**—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ (ତୁଳ. ହି. ବୈଠେ)—ବସି
Baiṭhe ବସି—In a sitting posture; sitting.

**ବଇଡୁ(ଦୁ)ର୍ଯ୍ୟ**—ଗ୍ରା. ବି—(ସଂ. ବୈଦୂର୍ଯ୍ୟ)—ବୈଦୂର୍ଯ୍ୟ (ଦେଖ)
Baiḍu(du)rjya लहसुनिया Baidūrjya (See).
ସମୀପରେ ବଇଡୁର୍ଯ୍ୟ ଗିରିବରେ
ଅଗସ୍ତ୍ୟ ମହର୍ଷି ଅଛନ୍ତି ନିରନ୍ତରେ । କୃଷ୍ଣସିଂହ. ମହାଭାରତ ବନ ।

**ବଇତମ**—ଗ୍ରା. ବିଣ—୧ । ପୁରାତନ—1. Old.
Baitama ୨ । କ୍ଷୟପ୍ରାପ୍ତ; ଜୀର୍ଣ୍ଣ—2. Worn out.

**ବଇତରଣୀ (ଇତ୍ୟାଦି)**—ଗ୍ରା. ( ପଦ୍ୟ ) ବି—ବୈତରଣୀ ଇତ୍ୟାଦି—
Baitaraṇī (etc) (ଦେଖ)—Baitaraṇī (etc) (See).
ବଇତରଣୀ ନାମେ ନଦୀ, ଯାତନା ମଧ୍ୟେ ଏ ପ୍ରସିଦ୍ଧି । ଜଗନ୍ନାଥ. ଭାଗବତ ।

**ବଇତାଳୁ(ଳ)**—ପ୍ରାଦେ. (ସିଂହଭୂମ ଓ ବାଲେଶ୍ୱର) ବି. (ତୁଳ. ବଂ.
Baitāḷu(ḷa) ବୈତାଲ)—ବୋଇତ କଖାରୁ (ଦେଖ)—
(ବୁଇତାଳୁ—ଅନ୍ୟରୂପ) Boiti kakhāru (See).

**ବଇଦ**—ଗ୍ରା. ବି. ପୁଂ—(ସଂ. ବୈଦ୍ୟ)—୧ । ବୈଦ୍ୟ; ଚିକିତ୍ସକ—
Baida (ବଇଦ୍ୟ—ଅନ୍ୟରୂପ) 1. Physician.
ବଦ୍ୟି वैद मଲୁ ଖୋଜୁଥିଲ କାକର ପାଣି ! ବଇଦ ବୋଇଲ ପି ଗୋଡ଼ାଣି । ଚଗ ।
ବଇଦଆଣୀ } —ସ୍ତ୍ରୀ ୨ । ( ଆଦରାର୍ଥକ ) ବୈଦ୍ୟନାଥ ନାମକ
ବଇଦାଣୀ } ବ୍ୟକ୍ତିର ଡାକନାମ—2. Name by
( ବଇଦ୍ୟ—ଅନ୍ୟରୂପ ) which a person named
(ବଇଦା—ଅନାଦରାର୍ଥକ) 'Baidyanātha' is called.

**ବଇଦ ଗୁଆଳ ପଥ୍ୟ କରିବା**—ଦେ. ( ନ୍ୟାୟ ବାକ୍ୟ )—ଚିକିତ୍ସକଙ୍କ
Baida chāuḷa pathi karibā ପାରିଶ୍ରମିକ ଦେବା ପରିବର୍ତ୍ତେ ତାଙ୍କର ଧନରେ ରୋଗୀ ଆପଣା ଖାଦ୍ୟ ଦ୍ରବ୍ୟର ବ୍ୟୟ ଚଳାଇବା ନ୍ୟାୟ; ଯେଉଁ ଲୋକଙ୍କୁ ଧନ ଦେବା ନ୍ୟାଯ୍ୟସଙ୍ଗତ ତା ଠାରୁ ଧନ ନେବା ସ୍ଥଳରେ ଏ ନ୍ୟାୟ ବୋଲାଯାଏ—Like a patient being fed at the cost of the physician; (a saying applied to a person who takes money from one whom he should pay instead).

**ବଇଦର୍ଭୀ**—ଗ୍ରା. (ପଦ୍ୟ) ବି. ସ୍ତ୍ରୀ. (ସଂ. ବୈଦର୍ଭୀ)—ବୈଦର୍ଭୀ (ଦେଖ)
Baidarbhī Baidarbhī ( See )
ବଇଦର୍ଭୀ ରୀତିର ପ୍ରକାଶ
ବଛେ ଯଯୋଗି ପଢ଼ି ରସବୃଦ୍ଧ । ଉପେ. ବୈଦେହୀଶବିଳାସ ।

**ବଇଦିକ**—ଗ୍ରା. (ପଦ୍ୟ) ବିଣ. (ସଂ. ବୈଦିକ)—ବୈଦିକ (ଦେଖ)
Baidika Baidika ( See )
ଯେ ଇଷ୍ଟ ବଇଦିକ କର୍ମ
ଯେ ଅବା ସ୍ମାର୍ତ୍ତ କର୍ମ ଧର୍ମ । ଜଗନ୍ନାଥ. ଭାଗବତ ।

**ବଇ ଦେବା**—ଦେ. କ୍ରି. (ସଂ. ବ୍ୟୟ)—ବ୍ୟୟ କରିବା—
Bai debā To spend away.
ବଇ ଦେଇ କନ୍ଥ କର କେଶର
ଜନସୁଂପ୍ରାନ୍ତେ ଦେଖି ସାରସଳ । ଉପେ. ବୈଦେହୀଶବିଳାସ ।

**ବଇଦେଶୀ**—ଗ୍ରା. (ପଦ୍ୟ) ବିଣ. (ସଂ. ବୈଦେଶିକ)—ବିଦେଶୀ
Baidesī Foreign; belonging to a different part
वैदेशी बिदेशी of country.
ବଇଦେଶୀ ଯେଉଁ ଧନ ଅଳଗବ
ବଳଛନ କଲେ ପରଶ୍ରରେ ଜବ । ଉପେ. ବୈଦେହୀଶବିଳାସ ।

**ବଇଦେହୀ**—ଗ୍ରା. ( ପଦ୍ୟ ) ବି. ( ସଂ. ବୈଦେହୀ )—
Baidehī ବୈଦେହୀ ( ଦେଖ )
बइदेही बैदेही Baidehī ( See )
ବଇଦେହୀ କି ଯେ ଅମ୍ଭେ ଭୂଷଣ କର୍ମ ଆରମ୍ଭେ
କନ୍ୟା ରତ୍ନ ସଙ୍ଗେ ଯୋଗ କରିବୁ ଭେବେ । ଉପେ. ବୈଦେହୀଶବିଳାସ ।

**ବଇଧବ୍ୟ**—ଗ୍ରା. (ପଦ୍ୟ) ବି. (ସଂ. ବୈଧବ୍ୟ)—ବୈଧବ୍ୟ (ଦେଖ)
Baidhabya Baidhabya ( See )
ବଇଧବ୍ୟ ଅବସ୍ଥା ଅଲଙ୍ଘ୍ୟ । ଉପେ. ବୈଦେହୀଶବିଳାସ ।

**ବଇଧୀ**—ଗ୍ରା. ବି—ବୈଧୀ ଭକ୍ତି ( ଦେଖ )
Baidhī Baidhī bhakti ( See )
ହରିବେ ବଇଧୀ ସାଧନ
ଶ୍ରବଣ କୀର୍ତ୍ତନାଦି ନାବ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ ।

**ବଇ(ହି)ନା(ଣା)**—ବୈଦେ. ବି. ( ଆ. ବୟ୍ =ବିକ୍ରୟ+ଫା. ପ୍ରତ୍ୟୟ—
Bai(hi)nā(ṇā) ଆନା)—କଣିବା ବସ୍ତୁ ନିମନ୍ତେ କ୍ରେତାର ବା ଫରମାସ ଦେବା ବ୍ୟକ୍ତିର ବିକ୍ରେତାଙ୍କୁ ଆଗତୁରା ଦେବା ମୂଲ୍ୟାଂଶ; ଅଗ୍ରିମ ମୂଲ୍ୟାଂଶ—
ବଏଣା } ଅନ୍ୟରୂପ
ବଅଣା }
बायना Tender; earnest money; advance paid
बयाना to a vendor.
ଭେବେ ଆମକୁ ହଜାର ଟଙ୍କା ବଇନା ଦେଇ ସାଥ ।
ଉକାସ. ସୌଭକ ।

**ବଇନା ଉଠା(ଠେ)ଇବା**—ଦେ. କ୍ରି—(ବିକ୍ରେତା) ଦ୍ରବ୍ୟ ବିକିବା ନିମନ୍ତେ
Bainā uṭhā(ṭhe)ibā ସ୍ୱୀକୃତ ହୋଇ କ୍ରେତାଠାରୁ ବଇନା ଗ୍ରହଣ କରିବା—To accept the earnest money from the purchaser.
ବଇନା ଧରିବା } ଅନ୍ୟରୂପ
ବଇନା ନେବା }
बायना लओया बयाना उठाना

**ବଇନା କରିବା**—ଦେ. କ୍ରି—କ୍ରୀତ ବସ୍ତୁ ପାଇଁ ମୂଲ୍ୟର କେତେକ
Bainā karibā ଅଂଶ ଆଗତୁରା ଦେବା—To make an
(ବଇନା ଦେବା—ଅନ୍ୟରୂପ) advance; to advance the
बायना करा बयाना देना earnest money to the vendor.
[ ଦ୍ର—କୌଣସି ଦ୍ରବ୍ୟ କଣିବାର କଥା କରି ବଇନା କଲେ ଖରିଦ ବିକିର ଯବାବ ସ୍ଥିର ହେଲା ବୋଲି ବୁଝିବାକୁ ହୁଏ । ]

**ବଇନାରେ ପଡ଼ିବା**—ଦେ. କ୍ରି—ଏକ ବସ୍ତୁ ଅନ୍ୟ ବସ୍ତୁର ସମ୍ପୂର୍ଣ୍ଣ ତୁଲ୍ୟ
Bainārepaṛdibā ହେବା ଦୂରେ ଥାଉ ତାହାର କୌଣସି ଅଂଶର
(ବଇନାରେ ଆସିବା—ଅନ୍ୟରୂପ) ସହିତ ତୁଳନୀୟ ନ ହେବା—
Not to stand comparision with another.

**ବଇ(ହି)ନି**—ଦେ. ବି. (ସଂ. ବୋଧନୀ=ଯାହା ମନୁଷ୍ୟଙ୍କୁ ବା ବେପାରକୁ ନିଦରୁ ଉଠାଏ; ସଂ. ବର୍ଦ୍ଧନୀ=ବୃଦ୍ଧିକାରକ-ଯୋଗେଶଚନ୍ଦ୍ର; ଦିନର ପ୍ରଥମ ବିକ୍ରିରେ ଲବ୍ଧ ଧନ ଦ୍ୱାରା ସେ ଦିନର ଲାଭାଲାଭ ନିର୍ଦ୍ଧାରିତ ହୁଏ ବୋଲି ଲୋକବିଶ୍ୱାସ ଅଛି )—ଦୋକାନରେ ଦିନ ମଧ୍ୟରେ ସର୍ବ ପ୍ରଥମେ ବିକ୍ରି ହେବା ପଣ୍ୟର ନଗଦ ମୂଲ୍ୟ ଗ୍ରହଣ—Taking cash for the first sale of a commodity in the shop for the day.

Bai(hi)ni
(ବହନି—ଅନ୍ୟରୂପ)
ବଉନି
ବୁ(ବୋ)हनी
[ବଉ(ହୁ)ନି—ଅନ୍ୟରୂପ]

[ ଦ୍ର—ଦୋକାନର କୌଣସି ସଉଦାର ପ୍ରଥମ ନଗଦ ବିକ୍ରିକୁ ଓ କୌଣସି ଦିନର ପ୍ରଥମ ନଗଦ ବିକ୍ରିକୁ ବଇନି ବୋଲାଯାଏ; ବଇନି ନ ହେବା ପର୍ଯ୍ୟନ୍ତ ଦୋକାନୀ କାହାକୁ କାଲରେ ବା ଧାରରେ ସଉଦା ଦିଅନ୍ତି ନାହିଁ । ]

**ବଇନି କରିବା**—ଦେ. କ୍ରି—୧ । ଦିନ ମଧ୍ୟରେ ସର୍ବପ୍ରଥମେ ଦୋକାନରୁ ପଣ୍ୟ ବିକ୍ରି କରିବା—1. To sell the first thing for the day; to make the first sale of commodities in a shop for the day.

Baini karibā
बउनि करा
**बोहनी करना**

୨ । ଦୋକାନରେ ପଣ୍ୟ ଦ୍ରବ୍ୟର ଦୈନିକ ବିକ୍ରିର ଆରମ୍ଭରେ ସର୍ବପ୍ରଥମେ ବିକ୍ରୀତ ଦ୍ରବ୍ୟର ନଗଦ ମୂଲ୍ୟ ଗ୍ରହଣ କରିବା—2. To make the first sale ot a commodity from a shop by taking cash for it

**ବଇନ୍ତ(ନ୍ତି)ରିବା**—ଦେ. କ୍ରି. (ସଂ. ବର୍ତ୍ତନ)—ଉଦ୍ଧାର ହୋଇବା. ବରଞ୍ଚିବା; ନିସ୍ତାର ପାଇବା—To be rescued; to be delivered, to overcome.

Bainta(nti)ribā
[ବଇନ୍ତ(ନ୍ତ)ର ଯିବା—ଅନ୍ୟରୂପ]

( ଯଥା—ସେ ବାଘ ମୁହଁରୁ ବଇନ୍ତର ଗଲା । )

ପ୍ରାଦେ. ( ଯାଜପୁର )—ବେଶି ଦିନ ସ୍ଥାୟୀ ହେବା—To wear long.

( ଯଥା—ଏ ଖଦଡ଼ ଲୁଗା ବେଶି ଦିନ ବଇନ୍ତର ଗଲା । )

**ବଇନ୍ତି**—ପ୍ରାଦେ. ( ଗଞ୍ଜାମ ) ବି—ଟେଙ୍ଗଡ଼ା ( ଦେଖ )

Bainti — Tengarḍā ( See )

**ବଇବ**—ଦେ. ବି—ପନାସି ( ଦେଖ )

Baiba — Panāsi ( See )

**ବଇବର୍ଣ୍ଣ୍ୟ**—ଗ୍ରା. ( ପଦ୍ୟ ) ବିଣ. ( ସଂ. ବୈବର୍ଣ୍ଣ୍ୟ )—ବୈବର୍ଣ୍ଣ୍ୟ (ଦେଖ)

Baibarṇṇya — Baibarṇṇya ( See )

ବଇବର୍ଣ୍ଣ୍ୟ ଦଶା ଅବକାଶର
ବର୍ଣ୍ଣି ହସିଗଲା କେତେ ଧୂସର—ଉପେନ୍ଦ୍ର ବୈଦେହୀଶବିଳାସ ।

**ବଇବସ୍ୱତ**—ଗ୍ରା. ( ପଦ୍ୟ ) ବି. (ସଂ. ବୈବସ୍ୱତ)—ବୈବସ୍ୱତ (ଦେଖ)

Baibaswata — Baibaswata ( See )

ମାର୍କଣ୍ଡେୟ ବୋଇଲେ ସୂର୍ଯ୍ୟଙ୍କର ସୁତ
ବଇବସ୍ୱତ ହୋଇଲେ ଜଗତେ ବଦିତ—କୃଷ୍ଣସିଂହ, ମହାଭାରତ, ବନ ।

**ବଇବା**—ଦେ. କ୍ରି. ( ପଦ୍ୟ ) ( ସଂ. ବ୍ୟୟ )—ବଏ କରିବା ( ଦେଖ )

Baibā — Bae karibā ( See )

ଯେତେ ବଇଲେ ନ ସରଇ, ଅଧିକୁଁ ଅଧିକ ବଢଇ—
ଭୂପତି, ପ୍ରେମପଞ୍ଚାମୃତ ।

—ପ୍ରାଦେ. ( ଯାଜପୁର ) ବି—ଝାଟିମାଟିର ବାଡ଼—Mud and wattle wall.

ārḍa

**ବଇଭବ**—ଗ୍ରା. ( ପଦ୍ୟ ) ବି. ( ସଂ. ବୈଭବ )—ଐଶ୍ୱର୍ଯ୍ୟ; ଅତୁଲ ସମ୍ପତ୍ତି—Riches; affluence.

Baibhaba

ବଇରାଗୀ ପ୍ରେମ ବଇଭବ ଭଣ୍ଡାର ଶୋଭା ପ୍ରଭବରଧନୀ ଯେ—
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

**ବଇଭୋଗ**—ଗ୍ରା. ( ପଦ୍ୟ ) ବି—୧ । ( ସଂ. ବୈଭବ ) ଐଶ୍ୱର୍ଯ୍ୟ—1. Riches; affluence.

Baibhoga

୨ । (ସଂ. ବି+ଭୋଗ) ଭୋଗ—2. Enjoyment.

କଳ୍ପିତ ମଖ ବଇଭୋଗେ
ସେ ପଜା ଅର୍ଥେ ରତ ରଙ୍ଗେ—ଜଗନ୍ନାଥ, ଭାଗବତ ।

**ବଇମାତ୍ର(ତ୍ରି, ତୃ)**—ଗ୍ରା. ବିଣ. ( ସଂ. ବୈମାତ୍ର )—ବୈମାତ୍ର ( ଦେଖ )

Baimātra(tri, tṛu) — Baimātra ( See )

( ବଇମାତୃ[ତ୍ରୀ]କ(କା)—ଅନ୍ୟରୂପ )

**ବଇର**—ଗ୍ରା. ( ପଦ୍ୟ ) ବି—୧ । ( ସଂ. ବୈର ) ବୈରଭାବ; ଶତ୍ରୁତା—1. Enmity.

Baira

କଉସନ୍ଧି ବୋଇ ଲ ଭୂଷର ଆତ୍ମଜ
କେଉଁ କାଳେ ହୋଇଅଛନ୍ତି ବଇର—କୃଷ୍ଣସିଂହ, ମହାଭାରତ, ସଭା ।

୨ । ( ସଂ. ବୈରୀ ) ଶତ୍ରୁ—2. Enemy.

ନରଦେ ମରଣ ତାହାର
ଯେଣୁ ସେ ଅଟନ୍ତି ବଇର—ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ ।

**ବଇରଖ**—ବୈଦେ. ବି. ( ତୁର୍କୀ. ବୈରକ୍ )—ପତାକା—Flag.

Bairakha
पताका **बैरख**
( ବୈରଖ—ଅନ୍ୟରୂପ )

ଉଡ଼ ଛତ୍ର ଯା ଝଣ୍ଡା ବଇରଖ
ପୁଣି ବୋଲନ୍ତି ମହିମା ଦେଖ—ବ୍ରଜନାଥ, ସମରତରଙ୍ଗ ।

ପ୍ରାଦେ. ( ସମ୍ବଲପୁର ) ବି—ତାସ୍ ଖେଳର କଳାପାନ ରଙ୍ଗ—The Spade in cards.

**ବଇର(ରି)ତା**—ଗ୍ରା. ବି. ( ସଂ. ବୈରିତା; ବୈର )—ବୈର ( ଦେଖ )

Baira(ri)tā वैरिता — Baira ( See )

( ବୈରତା—ଅନ୍ୟରୂପ )

ବଧ ନ କଲାକୁ ସୁଝାଇଲା ବଇରତା—
ଉପେନ୍ଦ୍ର. ବୈଦେହୀଶବିଳାସ ।

**ବଇରା**—ଦେ. ବିଣ—ବହିରା ( ଦେଖ )

Bairā (ବୈରା—ଅନ୍ୟରୂପ) — Bahirā ( See )

ପ୍ରାଦେ. ( ସମ୍ବଲପୁର ) ବି—ତୋଡ଼ି ମାଛ—A kind of bill-fish.

**ବଇରାଗ**—ଗ୍ରା. ( ପଦ୍ୟ ) ବି. ( ସଂ. ବିରାଗ; ବୈରାଗ୍ୟ )—୧ । ବିରାଗ; ବିରକ୍ତି—1. Displeasure.

Bairāga विराग **वैराग**

୨ । ବୈରାଗ୍ୟ—2. Indifference to worldly concerns

ଭକତ ତୋ ଚରଣ ଯୁଗ, ଡେବେ ବିଷୟେ ବଇରାଗ—
ଜଗନ୍ନାଥ. ଭାଗବତ ।

୩ । (ଇତର)—ରାଗ; କ୍ରୋଧ—3. Anger.

**ବଇରାଗୀ**—ଗ୍ରା. ବି. ପୁଂ ( ସଂ. ବୈରାଗୀ; ବିରାଗୀ )—ବୈରାଗୀ (ଦେଖ)

Bairāgi वैरागी **बैरागी** — Bairāgi ( See )

(ବୈରାଗିଆଣୀ—ସ୍ତ୍ରୀ)

ଜୀଇଁବ ହେ କୃଷ୍ଣ ହୋଇଣ ବଇରାଗୀ—
କୃଷ୍ଣସିଂହ. ମହାଭାରତ, ଆଦି ।

[ ଦ୍ର—ବଇରାଗୀ ଶବ୍ଦ ପରେ ବଇଷମ ଶବ୍ଦ ଓ ପୂର୍ବେ ବାବାଜି ଶବ୍ଦ ସହଚରରୂପେ ବ୍ୟବହୃତ ହୁଏ । ]

**ବଇରାଗ୍ୟ**—ଗ୍ରା. ( ପଦ୍ୟ ) ବି. ( ସଂ. ବୈରାଗ୍ୟ )—ବୈରାଗ୍ୟ (ଦେଖ)
Bairāgya — Bairāgya ( See )
বৈরাগ্যী ନ୍ୟହିଁ ବଇରାଗ୍ୟ ହେବେ ସେ ନଦହେ
वैराग ତାହା ବିନା ଯନ୍ତ୍ର ଲବେ ନ ରହେ—କବିସୂର୍ଯ୍ୟ କବିତା ।

**ବଇରିତ(ତା) ପଣ**—ଗ୍ରା. ବି॰ (ପଦ୍ୟ) ( ସଂ. ବୈରିତା )—ଶତ୍ରୁଭାବ—
Bairita(tā) paṇa — Enmity.
বৈরিতা ବଇରିତ ପଣେ ଯେଉଁ ଭଜନ୍ତି
**दुष्मनी** ନାଶନ୍ତି ସାତ୍ତ୍ୱିକ୍ୟ ମୁକ୍ତି ଲଭନ୍ତି – ପ୍ରାଚୀ. ନଳଚରିତ ।

**ବଇରି**—ଗ୍ରା. ବି. (ସଂ. ବୈରି)—୧ । ବୈରି ( ଦେଖ )—1 Bairi ( See )
Bairi
୨ । ବାଜ ବହିରି ପକ୍ଷୀ—2 The eagle-hawk.
ବଇରି(୧) ହଂସା ତହିଁ ହତ
ବଇରି(୨) ସନ୍ଧି କପୋତ—ଉପେ. ବୈଦେହୀଶବିଳାସ ।

**ବଇରୋଷ**—ଗ୍ରା. ବି. ( ସଂ. ବି + ରୋଷ )— ୧ । ରୋଷ; ରାଗ—
Bairosha — 1. Anger,
୨ । ବିଦ୍ୱେଷ—2. Malice.
ବିଣ—୧ । ରାଗୀ—1. Angry; irritable.
୨ । ବିଦ୍ୱେଷୀ—2. Malicious.

**ବଇଲା(ଲ୍)**—ବୈଦେ. ବି—(ହିନ୍ଦୀ. ବୈଲ୍)—ବଳଦ—
Bailā(l) — Ox; bullock.
(ବଇଲେ—ଅନ୍ୟରୂପ) ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ବଦ ଧାତୁ)
(ସେ) ବୋଇଲା; କହିଲା—(he) Said.

**ବଇଲୋଚନ**— ଗ୍ରା. ବି. (ସଂ. ବୈରୋଚନ) — ବୈରୋଚନ (ଦେଖ)
Bailochana — Bairochana (See)
ବଇଲୋଚନ ତଳୁଭ ଝିଙ୍କା । ପ୍ରାଚୀ. ରହସ୍ୟ ମଞ୍ଜରୀ ।

**ବଇଶାଖ(ଷ, ଖ୍ୟ)**— ଗ୍ରା. (ପଦ୍ୟ) ବି—(ସଂ. ବୈଶାଖ) — ବୈଶାଖ—
Baiśākha(ksha,khya) — Baiśākha (See).
ବଇଶାଖ ରାକା ରଜନୀରେ ଏକା ତ୍ରଣାଟଙ୍କ ପରି ଜଣାଯିବ—କବିସୂର୍ଯ୍ୟ. ସଙ୍ଗୀତ ।

**ବଇଶ୍ୟ**— ଗ୍ରା. (ପଦ୍ୟ) ବି. (ସଂ. ବୈଶ୍ୟ)—ବୈଶ୍ୟ (ଦେଖ)
Baiśya — Baiśya (See).
ବ୍ରାହ୍ମଣ କ୍ଷତ୍ରିୟ ବଇଶ୍ୟ ଏ ତିନଙ୍କୁ । କୃଷ୍ଣସିଂହ. ମହାଭାରତ ବନ ।

**ବଇଶ୍ରବଣ**—ଗ୍ରା. (ପଦ୍ୟ) ବି —(ସଂ. ବୈଶ୍ରବଣ) — ବୈଶ୍ରବଣ (ଦେଖ)
Baiśrabaṇa — Baiśrabaṇa (See).
ବଇଶ୍ରବଣଙ୍କୁ ଜିଣିବେ ପୁଷ୍ପକ ମଣ୍ଡନେ ହୋଇ ସରାଗୀ । ଉପେ. ବୈଦେହୀଶବିଳାସ ।

**ବଇଷମ୍ୟ**—ଗ୍ରା. (ପଦ୍ୟ) ବି— ବୈଷମ୍ୟ (ଦେଖ)
Baishamya — Baishamya (See).
ଷାଣ୍ଢିଣ୍ଡ ପଥ ବଇଷମ୍ୟ, ଯେ ପ୍ରଭଲୋଏର ଅଷ୍ଟ ନ । ଜଗନ୍ନାଥ, ଭାଗବତ ।

**ବଇଷ୍ଣ(ଷ୍ଟ)ବ(ମ)**—ଗ୍ରା. (ପଦ୍ୟ) ବି ପୁଂ. (ସଂ. ବୈଷ୍ଣବ)—ବୈଷ୍ଣବ (ଦେଖ)
Baishṇa(shṭañ)ba(ma) — Baishṇaba (See).
ହିଁକ ବଇଷ୍ଣବମାନଙ୍କୁ ପୂଜ ବିଧ—କୃଷ୍ଣସିଂହ, ମହାଭାରତ ସଭା ।

ବଇଷମ } ଅନ୍ୟରୂପ
ବଇଷ୍ଟେବ }
বৈষ্ণব **साधु, वैष्णव**

[ ଦ୍ର—ବ୍ୟାକରଣ ନିୟମ ଅନୁସାରେ ସିଦ୍ଧ 'ବଇଷ୍ଣବାଣୀ' 'ବଇଷ୍ଣବର' ସ୍ତ୍ରୀ ନୁହେ; ବଇଷ୍ଣବର ବିପରୀତ ଲିଙ୍ଗ । ଆମ ସମାଜରେ 'ମାତା' 'ବାବା'ଙ୍କ ସ୍ତ୍ରୀ, କିନ୍ତୁ 'ମାତାଜୀ' ବାବାଜୀଙ୍କର ବିବାହିତା ସ୍ତ୍ରୀ ନୁହନ୍ତି । ସେ ବାବାଜୀଙ୍କର ଧର୍ମପଥାଲମ୍ବିନୀ ନାରୀ । ]

**ବଇଷ୍ଣ(ଷ୍ଟ)ବା(ମା)ଣୀ**—ଗ୍ରା ବି. ସ୍ତ୍ରୀ. (ସଂ. ବୈଷ୍ଣବୀ)—ବୈଷ୍ଣବୀ—
Baishṇa(shṭañ)bā(mā)ṇī ( ଦେଖ )—Baishṇabī
বৈষ্ণবী **वैष्णवानी, माताजी** (ବଇଷମାଣୀ—ଅନ୍ୟରୂପ) (See).

**ବଇସିରା**—ପ୍ରାଦେ. (ଗଡ଼ଜାତ, ବଉଦ) ବି—ଅଭ୍ୟାସ—
Baisirā — Habit.

**ବଇ ସୁଲ୍‌ତାନ୍(ନୀ)**—ବୈଦେ. ବି. (ଫା. ବୈ—ବିକ୍ରି + ସୁଲତାନୀ= ସମ୍ରାଟଙ୍କ ସମ୍ବନ୍ଧୀୟ; ରାଜସ୍ୱ ବାକି ନିମନ୍ତେ ସରକାରଙ୍କ ଦ୍ୱାରା ଜମିଦାରି ନିଲାମ କରାଯାଉଥିବାରୁ) - ରାଜସ୍ୱ ବାକି ପଡ଼ି ଥିବାରୁ ସରକାରଙ୍କଦ୍ୱାରା ଜମିଦାରୀର ନିଲାମ—
Baisul-tān(nī) — Sale of Zamindaries for arrears of revenue
ବୈସୁଲ୍‌ତାନ୍(ନ) } ଅନ୍ୟରୂପ
ବୈସୁନ୍ତାନ(ନ) }
বৈস্থলতান(নী)
**वैसुलतान(नी)**
ବିଣ—ରାଜସ୍ୱ ବାକି ନିମନ୍ତେ ନିଲାମ କରା ଯାଇଥିବା (ଜମିଦାରୀ)—( estate ) Sold for arrears of its revenue.

**ବଇସୁଲ୍‌ତାନ୍(ନୀ) ନିଲାମ**—ବୈଦେ· ବି. ( ଫା )—ଲାଟବନ୍ଦି କିସ୍ତିରେ ରାଜସ୍ୱ ଦାଖଲ କରା ନ ଗଲେ ଜମିଦାରୀର ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଲାମ ହେବା—Auction-sale of defaulting estates.
Baisul-tān(nī) nilām
[ବୈସୁନ୍ତାନ(ନୀ)-ନିଲାମ—ଅନ୍ୟରୂପ]

**ବଇସୁଲ୍‌ତାନ୍(ନି)ରେ ଆସିବା**—ଦେ. କ୍ରି—(କୌଣସି ଜମିଦାରୀର ରାଜସ୍ୱ ନିର୍ଦ୍ଧାରିତ କିସ୍ତିରେ ଦିଆ ନ ଯିବାରୁ ତାହା) ନିଲାମ କରାଯିବା ପାଇଁ ବିଜ୍ଞାପିତ ହେବା—(a defaulting Zamindary) To be advertised for sale for arrears of revenue.
Baisul-tān ni)re āsibā
বৈস্থলতানেআসা
**वैसुलतानिमेआना**
[ବଇସୁଲ୍‌ତାନ୍(ନ)ରେ ଉଠିବା—ଅନ୍ୟରୂପ]

**ବଉଁଛାଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ବାଆଁରେଇ ଦେବା; ଭୁଲାଇ ଦେବା—To entice; to inveigle; to pursuade by wile
Bauñchhāibā

**ବଉଁଶ** ଗ୍ରା ବି— (ସଂ ବଂଶ)—୧ । ବଂଶ ( ଦେଖ )
Bauñśa বংশ **वंश** — 1. Baṁśa (See).
୨ । ଜାତି—2. Caste; species; class.

**ବଉଁଶ ଖାଇବା**—ଗ୍ରା. କ୍ରି—୧ । କୌଣସି ବଂଶର ସମସ୍ତଙ୍କୁ ନାଶ କରିବା—1. To cause the ruin or extinction all the members of a family or species.
Bauñśa khāibā
(ବଂଶ ଖାଇବା—ଅନ୍ୟରୂପ)
বংশ খাওয়া
**वंश खाना**
୨ । (ଲକ୍ଷଣାର୍ଥ) ଆପଣାର ବଂଶର ସମସ୍ତ ବ୍ୟକ୍ତିଙ୍କର ମୃତ୍ୟୁ ଘଟାଇବା—2. (figurative) To cause the destruction of one's family or Species

[ ଦ୍ର—ଲୋକବିଶ୍ୱାସ ଅଛି ଯେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ କେତେକ 'ଡାଆଣୀ' ଅଛନ୍ତି; ସେମାନେ ମନୁଷ୍ୟଙ୍କୁ ଖାଇଯାଆନ୍ତି ଓ ରାତିରେ ଗୁହପଡ଼ିଆକୁ ଯାଇ ଗୃହ ଚରନ୍ତି; ସେମାନଙ୍କ ବଂଶର ଅନ୍ୟ ସମସ୍ତଙ୍କୁ ସେମାନେ ଖାଇ ଯାଆନ୍ତି । କୌଣସି ସ୍ତ୍ରୀ ବଞ୍ଚି ଥାଇଁ ଥାଇଁ ତାର ପିତା, ମାତା, ସ୍ୱାମୀ, ପୁତ୍ରାଦି ମରିଗଲେ ଲୋକେ ବିଦ୍ରୂପୋକ୍ତିରେ କହନ୍ତି ସେ ତା ବଉଁଶକୁ ଖାଇଲାଣି । ]

**ବଉଁଶ ଖିଆ**—ଗ୍ରା. ବଣ. ପୁଂ. (ଗାଳ)—ଯେ ଆପଣାର ବଂଶକୁ ନାଶ
Bauṅśa khiā କରେ ବା ବଂଶନାଶର କାରଣ ହୁଏ—
(ବଉଁଶ ଖାଈ—ସ୍ତ୍ରୀ) (a term of abuse) One who kills
বংশ খেকো his family; one who causes or brings
**वंश सोधन** about the extinction of his family.

[ ଦ୍ର—ଯେଉଁ ସ୍ତ୍ରୀଲୋକ ବଞ୍ଚି ଥାଇଁ ଥାଇଁ ତା ବଂଶର ଅନ୍ୟ ସମସ୍ତେ ମୃତ ହୁଅନ୍ତି ତାକୁ ଗାଳରେ ସ୍ତ୍ରୀଲୋକମାନେ ବଉଁଶଖାଈ ବୋଲି କହନ୍ତି । ]

**ବଉଁଶ ମରା**—ଗ୍ରା. ବଣ—୧ । ଯେ ଅନ୍ୟ ଦ୍ୱାରା ଆପଣାର ବଂଶର ଲୋପ
Bauṅśa marā ସାଧନ କରେ—1. One who procures
(ବଂଶମରା—ଅନ୍ୟରୂପ) the death of his family members.
**वंश सोधन** ୨ । ଯେ ଆପଣା ଜାତୀୟ ଜୀବଙ୍କୁ ଅନ୍ୟଦ୍ୱାରା ମରାଏ—
2. One who causes other members of his species to be killed by others.

**ବଉଁଶମରା ଡାହୁକ**—ଦେ. ବ. (ଲକ୍ଷଣାର୍ଥ)—ଆପଣାର ଦଳୀୟ ବା
Bauṅśamarā ḍāhuka ଜାତୀୟ ବ୍ୟକ୍ତିଙ୍କର ଅନ୍ୟଦ୍ୱାରା ବିନାଶ
(ବଂଶମରା ଡାହୁକ—ଅନ୍ୟରୂପ) ବା ଅନିଷ୍ଟ ଘଟାଇବା ବ୍ୟକ୍ତି—
One who brings about the ruination of his own people.

[ ଦ୍ର— ବର୍ଦ୍ଧିଧମାନେ ଡାହୁକ ଧରିବା ପାଇଁ କୌଣସି ସ୍ଥାନରେ ଫାଶ ମେଲାଇ, ସେହି ଫାଶ ମଝିରେ ଗୋଟିଏ ପଞ୍ଜୁରିରେ ଗୋଟିଏ ପୋଷା ଡାହୁକ ରଖି ଦିଅନ୍ତି; ସେ ଡାହୁକର ରାବ ଶୁଣି ଅନ୍ୟ ଡାହୁକମାନେ ସେ ସ୍ଥାନକୁ ଆସି ବସିବାକ୍ଷଣି ସେ ଫାଶରେ ପଡ଼ି ବ୍ୟାଧର ହସ୍ତଗତ ହୁଅନ୍ତି । ଏହି ଘଟଣାରୁ ଏ ଶବ୍ଦର ଏପରି ଲକ୍ଷଣାର୍ଥକ ବ୍ୟବହାର ଦେଖାଯାଏ । ]

**ବଉ କଥା କହ**—ଦେ. ବ. (ବଙ୍ଗଳାରୁ ଅନୁକୃତ)—ଶାଖାଶ୍ରୟୀ ବର୍ଗର
Bau kathā kaha ୧୨।୧୨ ଅଙ୍ଗୁଳ ଲମ୍ବା କୋକିଳ ଜାତୀୟ
বৌকথাকও ପକ୍ଷିବିଶେଷ—The brown cuckoo; Cuculus
**कोयल** Micropterus.

[ ଦ୍ର—ଏମାନଙ୍କ ଗୋଡ଼ରେ ଲୋମ ଅଛି; ପକ୍ଷ ଅପେକ୍ଷା ପୁଚ୍ଛ ଶ୍ରେଷ୍ଠ । ଏମାନେ କୋକିଳ ପରି ଘୋର କୃଷ୍ଣବର୍ଣ୍ଣ ନୁହନ୍ତି; ପାଉଁଶିଆ ବେକ ଓ ଛାତି ଧୂସର, ପେଟ ଧଳା; ପୁଚ୍ଛାଗ୍ରରେ ଗୋଟିଏ କଳା ଡୋରା ଥାଏ । ଶୀତକାଳରେ ଏମାନେ ଏ ଦେଶରେ ଦେଖା ଯାଆନ୍ତି ନାହିଁ । ଏମାନେ ବୋବାଇଲା ବେଳେ 'ବଉ କଥା କହ' ଏହିପରି କଳ୍ପିତ ଧ୍ୱନି ଶୁଣାଯାଏ । ଏମାନଙ୍କ ଡାକ ବସନ୍ତ ଓ ଗ୍ରୀଷ୍ମ କାଳରେ ସକାଳ ସମୟରେ ଶୁଣାଯାଏ । ଏମାନଙ୍କ ଥଣ୍ଟ କୋଇଲିର ଥଣ୍ଟ ଅପେକ୍ଷା ଲମ୍ବା । ଏମାନେ କୋକିଳ ପରି ପରଭୃତ । ]

**ବଉଦ(ଧ)**—ଦେ. ବ. (ନାମ)—୧ । ବୌଦ୍ଧ ରାଜ୍ୟ; ଓଡ଼ିଶାର ଗୋଟିଏ
Bauda(dha) ଗଡ଼ଜାତ ରାଜ୍ୟ—1. Baudh; name of an
(ବୌଦ, ବୌଧ—ଅନ୍ୟରୂପ) Oriya State.
বোদ **बोद**

[ଦ୍ର—ଏଠାରେ ଖ୍ରୀ. ୯ମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଧର୍ମ ପ୍ରଚଳିତ ଥିଲା—(ବିହାର ଓଡ଼ିଶାର ଋସର୍ଲ ସୋସାଇଟି ଜର୍ଣ୍ଣାଲ୍) । ଏ ରାଜ୍ୟରେ ଖ୍ରୀ ୯ମ ଶତାବ୍ଦୀରେ ନିର୍ମିତ କେତେକ କାରୁକାର୍ଯ୍ୟବିଶିଷ୍ଟ ମନ୍ଦିର ଓ ଭୁବନେଶ୍ୱରର ପରଶୁରାମେଶ୍ୱରଙ୍କ ମନ୍ଦିର ପରି କେତେଗୋଟି ମନ୍ଦିର ଅଛି । ରାଜାଙ୍କ ସିଂହଦ୍ୱାରର ବାହାରେ ଗୋଟିଏ ଖୁବ୍ ବଡ଼ ଆସନରେ ଆସୀନ ବୁଦ୍ଧ ମୂର୍ତ୍ତି ମଧ୍ୟ ଅଛି ।

ପ୍ରଥମେ ଏ ରାଜ୍ୟ ସମ୍ବଲପୁର ଗଡ଼ଜାତ ଶ୍ରେଣୀ ମଧ୍ୟରେ ଥିଲା, ତତ୍ପରେ ଓଡ଼ିଶା ଗଡ଼ଜାତ ମଧ୍ୟରେ ଗଣ୍ୟ ହେଲା । ଏବେ ଏହା ଇଷ୍ଟର୍ଣ୍ଣ ଷ୍ଟେଟ୍ସ୍ ଏଜେନ୍‌ସୀର ଅନ୍ତର୍ଭୁକ୍ତ ଗୋଟିଏ ପ୍ରଥମ ଶ୍ରେଣୀର ରାଜ୍ୟ । ଏ ଆଦିମ ଅବସ୍ଥାରେ କନ୍ଧ ରାଜ୍ୟ ଥିଲା । ସହସ୍ରାଧିକ ବର୍ଷ ତଳେ ଜଣେ ବ୍ରାହ୍ମଣ ଏ ରାଜ୍ୟ ଅଧିକାର କରି ରାଜା ହୋଇଥିଲେ । ସେହି ବ୍ରାହ୍ମଣଙ୍କ ବଂଶର ବଂଶଧରମାନେ କେତେକାଳ ରାଜତ୍ୱ କରି ଥିବାର ଜଣାଯାଏ । ଏ ରାଜବଂଶୀୟମାନେ ଜଙ୍ଗଲ ଭାଙ୍ଗି ରାଜ୍ୟ ସ୍ଥାପନ କରି ଥିବାରୁ ଏମାନଙ୍କର 'ଭଞ୍ଜ' ଉପାଧି ହୋଇଅଛି ।

( କୃପାସିନ୍ଧୁ. ଉତ୍କଳ ଇତିହାସ )

ଏ ରାଜା ମାନଙ୍କର ଲାଞ୍ଛନ 'ମୟୂର'; ଏମାନେ ସୂର୍ଯ୍ୟ ବଂଶୀୟ ।

(ଜଗବନ୍ଧୁ. ପ୍ରାଚୀନ ଉତ୍କଳ) ।]

বাদল ୨ । (ସଂ. ବାରିଦ) ଆକାଶରେ ଉଠାଇ ଥିବା ମେଘ ଖଣ୍ଡ—
**बादल** 2. Cloud rising in the sky.

ଅପାଳକ ଦେଖିଲୁ ବଉଦ ଖଣ୍ଡେ ଲକ୍ଷେ ହେଁ । ରା ।

୩ । ( ସଂ. ବୌଦ୍ଧ ) ବିଷ୍ଣୁଙ୍କର ନବମ ବା ବୌଦ୍ଧାବତାର; କଳିଯୁଗରେ ବିଷ୍ଣୁଙ୍କର ପୁରୁଷୋତ୍ତମରେ ଜଗନ୍ନାଥ ରୂପରେ ଅବତାର—3. The 9th. incarnation of Bishnu
বৌদ্ধ **बोद्ध** (viz as Lord Jagannātha at Puri in Orissa).

ବଉଦ ରୂପ ଅବତାରେ,
ହରି ଜନ୍ମିଲେ ଏ ସଂସାରେ । ପ୍ରାଚୀ, ନିର୍ମାଣମାହାତ୍ମ୍ୟ ।
ଉତ୍ତରେ ଦକ୍ଷିଣେ ପାର୍ଶ୍ୱେ ଦେଶ ଜାଳିଲି
କରଧନୁ ରୂପେ ଦାରୁବ୍ରହ୍ମ ଯହୁ ବକମ୍ପେ କରି । ପ୍ରାଚୀ, ପ୍ରଭାତ, ଗଣିଶେଣା ।

**ବଉଦ ଉଠା(ଠେ)ଇବା**—ଦେ. ବ.—(ସଂ. ବାରିଦ+ଉତ୍ଥାନ)—
Bauda uṭhā (ṭhe)ibā ଆକାଶରେ ମେଘ ଦେଖାଯିବା;
বাদল উঠা ମେଘୋଦୟ—Clouds appearing in the
**बादल आना, बादल उठना** sky; overcloudiness of the sky.

**ବଉରା**—ପ୍ରାଦେ. (ସମ୍ବଲପୁର) ବ—ଅନାର୍ଯ୍ୟ ଜାତିବିଶେଷ—
Baurā Name of an aboriginal caste.

**ବଉଲ୍ ଖିଆ**—ପ୍ରାଦେ. (ସମ୍ବଲପୁର) ବ.—ଫାଲ୍ଗୁନ ପୂର୍ଣ୍ଣିମା ଦିନ ଗ୍ରାମର
Baul khiā ପ୍ରତ୍ୟେକ ଗୃହସ୍ଥଙ୍କ ଘରେ ଅନୁଷ୍ଠିତ ଖିଆପିଆ ଉତ୍ସବ—
A feast observed by every villager on the fullmoon of 'Phālguna.

**ବଉଳ**—ଦେ. ବ.—(ସଂ. ମୁକୁଳ; ପ୍ରା. ମୁଉଡ଼)—୧ । ଆମ୍ବ ମୁକୁଳ—
Baula বকুল, বউল—**मंजर, बौर** 1. Mango bud.

ଆମ୍ବ ବଉଳ ଉଗଣଡାଳ, ଛୁଟେ ଲମ୍ବିଳ ବନମାଳ । ଜଗନ୍ନାଥ. ଭାଗବତ ।

୨ । (ସଂ. ମୁକୁଳ) ଆମ୍ବ ବଉଳ ପରି କେଣ୍ଡାବାଉଆ ଫୁଲ—
2. The flowers of certain trees, flowering in racemes or spikes; sessile flowers

୩ । (ସଂ. ବକୁଳ) ବକୁଳ ବୃକ୍ଷ; ବଉଳ ଗଛ—
**मौलसिरी** 3. Mimusops Elengi.

୪ । ପରସ୍ପର ଆମ୍ବ ମୁକୁଳ ଦିଆଦେଇ ହୋଇ ସୃଷ୍ଟ ବନ୍ଧୁତା—
4. Friendship between two persons set up by exchanging mango buds.

[ଦ୍ର—ଅନ୍ୟ ଗଛର ଫୁଲ ଆମ୍ବବଉଳ ପରି ପେଣ୍ଡା ପେଣ୍ଡା ହେଲେ ତାକୁ ସେ ଗଛର ବଉଳ ବୋଲି କହନ୍ତି; ଯଥା; ଅମ୍ବଡ଼ା ।]

ବଉଳ ଅମାବ(ବା)ସ୍ୟା—ଦେ. ବି. (ସଂ. ବକୁଳ ଅମାବାସ୍ୟା)—ପୌଷ ମାସର ଅମାବାସ୍ୟା—The new-moon of the month of Pausha.
Baula amāba(bā)syā
ବଉଳ ଅମାସ୍ୟା, ବଉଳଅମା(ମେ)ଇସା, ବଉଳ ଉଆଁସ } ଗ୍ରାମ୍ୟରୂପ

[ ଦ୍ର—ଏ ଦିନ ଆମ୍ବ ବଉଳ ପକାଇ ବ୍ରାହ୍ମଣ ଗୃହସ୍ଥ ସାଉ ବା ଶିଶୁ କରି ଦେବପୂଜା କରନ୍ତି । ଜଗନ୍ନାଥଙ୍କ ଦେଉଳରେ ମଧ୍ୟ ଏହି ଉତ୍ସବ ହୁଏ । ]

ବଉଳ କୋଳି—ଦେ. ବି—୧ । ବଉଳ ଗଛର ଫଳ—1. The fruit of Bakula tree.
Baula koli
बकुल कुल
मौलसिरीकाफल

[ ଦ୍ର—ଏହାର କଞ୍ଚା ଫଳରୁ ଏକପ୍ରକାର ଅଠା ବାହାରେ ଓ ପାଚିଲେ ଏ କୋଳି ଖାଇବାକୁ କଷାୟମଧୁର ଲାଗେ । ]

୨ । ( ବଣିଆ ଶବ୍ଦ ) ବଦର ଭୁଣ୍ଡି—2. The pendant of any arm-ornament resembling the Bakula fruit.

ବଉଳ ଝରା—ଦେ. ବି—ରଥ ଓ ରାଜପ୍ରାସାଦରେ ମଣ୍ଡିତ ବକୁଳ ଫୁଲର ମାଳା ଆକାରର ଝୁଲା—A decoration done in cars and buildings representing wreaths of Bakula flowers; a decoration representing a festoon.
Baula jharā
( ବଉଳା ଝରା—ଅନ୍ୟରୂପ )

ବଉଳ ପା(ବା)ଟ—ଦେ. ବି—ବିବାହ ବେଳେ କନ୍ୟା ପିନ୍ଧିଥିବା ହଳଦିଆ ପାଟ—A piece of yellow cloth having broad yellow borders, used at the time of marriage by the bride.
Baula pā(bā)ṭa
घोघटकी साढी

[ ଦ୍ର—ବରର ପିନ୍ଧିବା ଲୁଗା ଯୋଡ଼ାକୁ ପାଟ ବୋଲାଯାଏ । ପାଟର କନ୍ଦରର ଗୋଟିଏ କୋଣ ସଙ୍ଗେ ବଉଳପାଟର ଗୋଟିଏ କାନି ଗଇଣ୍ଠା ହୁଏ; ଏ ଗ୍ରନ୍ଥିକୁ ଗଇଣ୍ଠାଳ କହନ୍ତି । ]

ବଉଳ ମାଳ(ଳା)—ଦେ. ବି—୧ । ବକୁଳ ଫୁଲର ମାଳା—1. A wreath of Bakula flowers.
Baula māla(lā)

୨ । ଏକପ୍ରକାର ବାଦାମୀ ପାଉଁଶିଆ କଳା ପଥର—2. A kind of brown spotted granite.

୩ । ଏକପ୍ରକାର ଧାନର ନାମ—3. Name of a kind of paddy growing in clusters.

[ ଦ୍ର—ଏ ଧାନ ପେଣ୍ଡା ପେଣ୍ଡା ହୋଇ ଫଳେ ଓ ବଉଳ ଫୁଲ ପରି ଦେଖାଯାଏ । ]

ବଉଳ ମାଳି—ଦେ. ବି—ବଉଳ ଫୁଲର ମାଳା ପରି ଏକଜାତୀୟ ଦଳ—A kind of water-weed resembling a Bakula-garland.
Baula māli

ପ୍ରାଦେ. ( ବାଲେଶ୍ୱର ) ବି—ବେସନରେ ଛୁଆଣ ହୋଇଥିବା ଏକପ୍ରକାର ତେଲ ବା ଘିଅରେ ଛଣା ପିଠା—A kind of small pastry cake fried in ghee or oil.

ବଉଳା—ଦେ. ବଣ. ପୁଂ. ଓ ସ୍ତ୍ରୀ. ( ସଂ. ବକୁଳ )—୧ । ବକୁଳ ପୁଷ୍ପର ବର୍ଣ୍ଣବିଶିଷ୍ଟ; ଯେଉଁ ଧଳା ବଳଦ ବା ଗାଈଙ୍କର ମୁଣ୍ଡର ଲୋମ ବଉଳ ଫୁଲ ପରି ଈଷତ୍ ରକ୍ତ ବର୍ଣ୍ଣ ବା ପାଣ୍ଡୁର—1. ( white cattle ) Having brown furs on the head.
Baulā

୨ । ବକୁଳ ପୁଷ୍ପ ପରି—2. Resembling the Bakula flower.

ବି—୧ । (ଆମ୍ବଗଛ ଆଦି) ମୁକୁଳିତ ହେବା; ମୁକୁଳୋଦ୍ଗମ—1 Budding ( of trees like the mango ).

୨ । ବଉଳୀ ୧ ( ଦେଖ )—2. Bauli 1 ( See )

୩ । ବକୁଳ ଫୁଲ ବର୍ଣ୍ଣବିଶିଷ୍ଟ ବଳଦ ଓ ଗାଈଙ୍କୁ ଦିଆଯିବା ନାମ—3. A name given to chestnut coloured cattle.

ବଉଳା(ଳେ)ଇବା—ଦେ. କ୍ରି—(ବଉଳିବା କ୍ରିୟାର ଣିଜନ୍ତ ରୂପ)—Baulā(le)ibā (The causative form of Baulibā).
ବୃକ୍ଷକୁ ମୁକୁଳିତ କରାଇବା—To cause a tree to put forth buds.

ବଉଳା ଗାଈ—ଦେ. ବି. (ନାମ)—ପୁରାଣପ୍ରସିଦ୍ଧ କାମଧେନୁର ନାମ—The mythological cow, which was said to give as much milk as was required by her posessor at any time, and which had the power of granting boons.
Baulā gāi

ବଉଳିବା—ଦେ. କ୍ରି. ( ସଂ ମୁକୁଳ )—୧ । ( ଆମ୍ବ ଆଦି ଫଳ ବୃକ୍ଷ ) ମୁକୁଳିତ ହେବା—1. To bud forth; to bloom; to blossom forth.
Baulibā
बकुल धरना बौरना; मंजरना

ଫୁଟିଥିଲ ଯାହା ବାଲ୍ୟରୁ ବଉଳି
ରୂପ-ପୁଷ୍ପ ଗଲା କାହିଁକି ମଉଳି । ରାଧାନାଥ, ନନ୍ଦିକେଶ୍ୱରୀ ।

୨ । ( ସଂ. ବତୁଳ ) ( ପୋଖରୀର ପାଣି ଗରମ ହେବାରୁ କିମ୍ବା ବିଷାକ୍ତ ହେବାରୁ ପୋଖରୀରେ ଥିବା ମାଛମାନେ) ବହୁସଂଖ୍ୟାରେ ଉପରକୁ ଭାସି ଉଠିବା ଓ ଶେଷରେ ମରିବା—2. ( said of fishes in a pond) To float in large numbers on the surface water which becomes heated in summer or becomes otherwise poisoned.
(माछ) भेसे उठ्ना
अलगना
(ବଉଳିଯିବା—ଅନ୍ୟରୂପ)

୩ । ( ଖରା ଖରା ଯୋଗୁଁ ମାଟି ) ଫୁରୁସିଯିବା—3. ( said ) of the soil ) To become pulverised by the effect of the sun's rays.

ବଉଳୀ—ଦେ. ବଣ—ବଉଳା ( ଦେଖ ) Baulā (See)
Bauli

ବି—୧ । ପଲଙ୍କ ଓ ଚଉକି ଆଦିର ବାଡ଼ରେ ବସା ଯାଇଥିବା ଛୁଙ୍କ ହୋଇଥିବା ଲମ୍ବ କାଠି—1. Slender and tube-like railings put on the side-frame of chairs and bedsteads.
बउली कठहराखुँटी

୨ । ନଖମୂଳ ଓ ଚମ ମଧ୍ୟରେ ଥିବା ସରୁଆ ଖଡ଼ ଚମ—2. Thin stiff narrow strip of skin at the root of finger nails
मान

୩ । ବାଉଳ ଫାସିଆ—3. A kind of earing for the upper part of the ear.

୪ । ( କାହାଳଅ ଭାଷା ) ଡଙ୍ଗାର ବାହାରକୁ ବାହାରିଥିବା ଆଗ ମଙ୍ଗର ମୁନିଆଁ ମୁହଁ—4. The pointed end of the prow of a boat.

ବଏ—ଦେ. ବି. (ମହାଜନୀ ଖାତା) (ସଂ. ବ୍ୟୟ; ପ୍ରା. ବଅ)—୧ । ବ୍ୟୟ; ଖରଚ—1. Expenditure; debit.
Bae ଖର୍ଚ୍ଚ **खर्च**
( ଆୟ, ପଇଠ—ଅନ୍ୟରୂପ ) ୨ । ହିସାବ ବହିର ଖରଚ ଲେଖା ହୋଇଥିବା ଅଂଶ—2. The debit side of an account.
ବୟ **बए** ୩ । ମହାଜନଠାରୁ ଋଣ ବା ଦୋକାନଠାରୁ ମାଲ ଉଧାର ନେବା—3. Taking of money or things on credit; borrowing.

ବୈଦେ. ବି. ( ଇଂ )—୧ । ଚାକର ଟୋକା—
1. Boy-servant.
୨ । ସାହେବଙ୍କ ଚାକର —
2. Servant ( of Europeans ).

ବଏ(ୟ)କଟ୍—ବୈଦେ. ବିଣ. ( ଇଂ. ବଏକଟ୍ )—ସମାଜରୁ ବହିଷ୍କୃତ; ଏକଘରିଆ—
Bae(ya)kat
ବୟକଟ **बयकट** Outcasted; boycotted
ବି—କୌଣସି ବ୍ୟକ୍ତିକୁ ଅଛୁଆଁ ବା ଏକଘରିଆ କରିବା—Boycotting; outcasting.

ବଏ କବଲା—ବୈଦେ ବି. (ଫା. ବୈକବାଲା)—ବିକ୍ରୟ ପତ୍ର—
Bae kabalā ବୟ କବାଲା **बै कबाला** Deed of sale.
(ବଇ କବଲା, ବଏ କବାଲା, ବୈକବ[ବା]ଲା—ଅନ୍ୟରୂପ)

ବଏ(ୟ) କରିବା—ଦେ କ୍ରି. ( ସଂ ବ୍ୟୟ )—
Bae(ya) karibā ୧ । ବ୍ୟୟ କରିବା—1. To spend.
ଲଓୟା ୨ । କୌଣସି ବ୍ୟକ୍ତିଠାରୁ ଟଙ୍କା ନେବା—
**लेना** 2 To take money.
[ ଦ୍ର—ଖାତକ ମହାଜନଠାରୁ ଟଙ୍କା ବଏ କରେ । ]
୩ । ଆପଣା ପ୍ରାପ୍ୟ ବାବଦକୁ ଆଗତୁରା ଟଙ୍କା ନେବା—
3. To take advance towards one's account.
୪ । ଦୋକାନଠାରୁ ପଣ୍ୟ ଦ୍ରବ୍ୟ ଧାରରେ ନେବା—
4. To take commodities from a shop-keeper on credit.

ବଏଡ୍—ବୈଦେ. ବି. (ଇଂ) (ନାମ)—କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର
Baeḍ ଜଣେକ ସଂସ୍କୃତଜ୍ଞ ଇଂରେଜ ପଣ୍ଡିତ—Boyd; name of a Sanscrit scholar of the Cambridge university.
[ ଦ୍ର—ଏ ସଂସ୍କୃତ ଭାଷାତତ୍ତ୍ୱ ଓ ଅଭିଧାନ ଓ ବ୍ୟାକରଣ ସମ୍ବନ୍ଧୀୟ ଅନେକ ଗୁରୁତ୍ୱ ଗ୍ରନ୍ଥ ରଚନା କରିଥିଲେ । ]

ବଏ ନାମା—ବୈଦେ. ବି. (ଫା. ବୈନାମାହ୍)—୧ । ବିକ୍ରୟ ପତ୍ର—
Bae nāmā 1. Deed of sale.
ବୟ ନାମା ୨ । ଅଦାଲତରେ ନିଲାମ ହୋଇଥିବା ସମ୍ପତ୍ତି ସମ୍ବନ୍ଧେ
**वैनामा** ଅଦାଲତଙ୍କ ମୋହରଯୁକ୍ତ ସାର୍ଟିଫିକେଟ୍—
2. A certificate of sale signed by the court.

ବଏ ପଇ(ଏ)ଠ—ଦେ ବି. (ମହାଜନୀଖାତା) (ଦ୍ୱନ୍ଦ୍ୱାର୍ଥ ସହଚର ଶବ୍ଦ; ସଂ. ବ୍ୟୟ; ପ୍ରବିଷ୍ଟ)—
Bae pai(e)ṭha
୧ । ଟଙ୍କା ଆଦାନପ୍ରଦାନ; ବ୍ୟୟ ଓ ଆୟ—
দেন লেন 1. Taking money and paying back;
**जमा खर्च** credit and debit.
୨ । ମହାଜନୀ ହିସାବଖାତାରେ ଆୟ ଓ ବ୍ୟୟ ଲେଖା ହୋଇଥିବା ଅଂଶ ମାନ; ଜମା ଖରଚ—2. The credit and debit sides of an account book.

ବଏ ବାଦ୍—ଦେ. ଅ (ମହାଜନୀଖାତା) (ସଂ ବ୍ୟୟ+ଅ. ବାଦ୍ )—ବ୍ୟୟ
Bae bād ବା ଖରଚ ବାଦ୍ ଯାଇ—After deducting the expenses; minus the expenses.

ବଏ ଯିବା—ଦେ. କ୍ରି—୧ । (ଗାଈ ପ୍ରଭୃତି ସ୍ତ୍ରୀ ପଶୁ) ବୃଷାଦିର ସଙ୍ଗମ-
Bae jibā ଲାଭ କରିବା—4. To be crossed with a
পাল্ খাওয়া bull (said of a cow).
**बाहना, बहाना** ୨ ।(ପଶୁ)ଗର୍ଭଧାରଣ କରିବା—2. To conceive.

ବଏରାଗୀ—ପ୍ରାଦେ. (ସମ୍ବଲପୁର) ବି—ବଇରାଗୀ; ବାବାଜୀ—
Baerāgi A male recluse.
(ବଇରାଗେନ୍, ବଏରାଗେନ୍—ସ୍ତ୍ରୀ)

ବଏଲ୍—ଦେ. ବି. (ହିନ୍ଦୀରୁ ଅନୁକୃତ) —ବଳଦ—
Bael বএল **बैल** Bullock.

ବଏଲ(ଲା)ର୍—ବୈଦେ ବି. (ଇଂ)—ବାଷ୍ପଚାଳିତ ଇଞ୍ଜିନରେ ଯେଉଁ
Baela(lā)r ଆଧାରରେ ପାଣି ଭର୍ତ୍ତି ହୋଇ ଅଗ୍ନିତାପରେ
বয়লার বାଷ୍ପରେ ପରିଣତ ହେଉଥାଏ—The boiler
**बयलार** of a steam engine.

ବଏ ସ୍କାଉଟ୍—ବୈଦେ. ବି. (ଇଂ)—ବାଳଚର; ଦେଶସେବା ଓ ଜନ-
Bae skāuṭ ସେବା ପାଇଁ ଗଠିତ ଆଧୁନିକ କ୍ଷୁଦ୍ରଦଳର ସଭ୍ୟ—
বএ স্কাউট **बय स्काउट** Boy scout.
[ ଦ୍ର—ଲର୍ଡ଼ ବାଡେନ୍ ପଏଲ୍ ନାମକ ଜଣେ ଇଂରେଜ ଏହି ପ୍ରଥାର ପ୍ରବର୍ତ୍ତକ । ଏଥିରେ ନିଯୁକ୍ତ ବାଳକମାନେ ରାଜାଙ୍କର, ଦେଶର ଓ ଲୋକସମାଜର ସେବା କରିବା ବ୍ରତ ଅବଲମ୍ବନ କରନ୍ତି । ]

ବଂ—ଦେ. (ଧ୍ୱନ୍ୟନୁକରଣ) ଅ—ବମ୍ ( ଦେଖ )
Bam Bam ( See )

ବଂ ବଂ—ଦେ. ( ଧ୍ୱନ୍ୟନୁକରଣ ) ଅ—ମହାଦେବଙ୍କ ନିକଟରେ ପୂଜା
Bam bam କରିବା ବେଳେ ଉଚ୍ଚାରିତ ଧ୍ୱନି—
বোম্ বোম্ A sound made while offering prayer
**बम् बम्** (ବଂ ଭୋଲା—ଅନ୍ୟରୂପ) to Siba.

ବଂକ୍ଷଣ—ସଂ. ବି—କୋଡ଼ଗାଡ଼; ଜଙ୍ଘସନ୍ଧି; ତଳପେଟ ଓ ଜଙ୍ଘ ମଧ୍ୟସ୍ଥ ସନ୍ଧି
Bamkshaṇa Groin; the pubic and iliac region of the body; the inguen.

ବଂଶ—ସଂ. ବି—(ବମ୍ ଧାତୁ=ବମନ କରିବା+କର୍ମ. ଶ)—
Bamśa ୧ । ପରିବାର; କୁଳ—1. Family; race.
୨ । ଗୋତ୍ର; ଗୋଷ୍ଠୀ; ବର୍ଗ—
2. Species; line; lineage; genus.
୩ । ସନ୍ତାନ ସନ୍ତତି—3. Children; offspring.

୪ । କୁଳପରମ୍ପରା—4. Successive generations.

୫ । କୁଳର ପୂର୍ବପୁରୁଷ ଓ ଉତ୍ତର ପୁରୁଷଗଣ—
5. Ancestors and descendants of a family.

୬ । ସମୂହ—6. All; collection; multitude.

୭ । ଏକଜାତୀୟ ବହୁ ଜୀବ—7. A number of animals of the same species.

୮ । ପୁତ୍ରପୌତ୍ରାଦି; ଭବିଷ୍ୟତ୍ ବଂଶଧର—8. Descendants.

୯ । ଗର୍ବ—9. Pride; hauteur.

୧୦ । ନାସାରନ୍ଧ୍ର; ନାସା ବିବର—10. Nostril.

୧୧ । ଗୃହର ଊର୍ଦ୍ଧ୍ୱକାଷ୍ଠ; ଘରର ଚାଳର ମଥାନ ଉପରେ ବନ୍ଧା ଯାଇଥିବା ଶ୍ରେଣୀ—11. The uppermost long beam on the ridge of a thatch.

୧୨ । ପୃଷ୍ଠଦଣ୍ଡ; ମେରୁଦାଣ୍ଡ—12. Backbone.

୧୩ । (ବନ୍ ଧାତୁ=ଶବ୍ଦ କରିବା + କର୍ତ୍ତୃ. ଶ)—ବାଉଁଶ—
13. Bamboo.

୧୪ । ବଂଶୀ—14. Flute made of bamboo

**ବଂଶ ଉଚ୍ଛ(ଛ)ନ(ନ୍ନ)**—ଦେ. ବି. (ସଂ. ବଂଶୋଚ୍ଛେଦ)—ମୃତ୍ୟୁଦ୍ୱାରା ବଂଶକ୍ଷୟ; ବଂଶନାଶ—Death of the members of a family by death from starvation, curse or other causes; extinction of a family.
Bamśa uchchha(chha)na(nna)
বংশউৎসন্ন
বংশনাশ

**ବଂଶ ଉଜ୍ଜ୍ୱ(ଜ୍ଜ, ଜ)ଳ**—ଦେ. ବି. (ସଂ. ବଂଶୋଜ୍ଜ୍ୱଳ)—ପରିବାରର ଗୌରବ ବୃଦ୍ଧି—The addition to the glory of a family.
Bamśa ujjwa(jja, ja)la

ଦେ. ବିଣ—ବଂଶର ଗୌରବ ବର୍ଦ୍ଧକ—Adding to the glory of a family.

**ବଂଶକ**—ସଂ ବି—(ବଂଶ + କ)—୧ । ବାଉଁଶ ପତ୍ର—
Bamśaka　1. Bamboo leaf.

୨ । କନ୍ଦାସ ଆଖୁ—2. A kind of sugarcane; Saccharum Officinarum.

୩ । ବାଉଁଶପତ୍ରିଆ ନାମକ ମାଛ—3. A kind of small thin scaleless fresh-water-fish.

**ବଂଶ କର୍ପୂର**—ସଂ. ବି—ବାଉଁଶ ଗଛର ପବ ମଧ୍ୟରେ ଥିବା ଏକପ୍ରକାର ନୀଳାଭଶ୍ୱେତ ସ୍ୱଚ୍ଛ ଓ କଠିନ ଦ୍ରବ୍ୟ—The manna of bamboo; a silicious deposit found inside the bamboo; Tabashir
Bamśa karpūra

ବଂଶକ୍ଷୀରୀ, ବଂଶଜା, ବଂଶରୋଚନା, ବଂଶଲୋଚନ, ବଂଶଲୋଚନା, ବଂଶଶର୍କରା } ଅନ୍ୟରୂପ

[ ଦ୍ର—ଏହା କଷାୟ ମଧୁରରସ, ଶୀତଳ, ରୁକ୍ଷ, ପୁଷ୍ଟିକର, ଶୁକ୍ରବର୍ଦ୍ଧକ, ପିତ୍ତନାଶକ ଓ ଜ୍ୱର, ଶ୍ୱାସ, କାସ, ପାଣ୍ଡୁ, କୁଷ୍ଠ, ମୂତ୍ରକୃଚ୍ଛ୍ର ଆଦି ପୀଡ଼ାର ଉପଶମକାରକ । ସବୁ ବାଉଁଶରେ ବଂଶକର୍ପୂର ଜନ୍ମେ ନାହିଁ । ସମୟେ ସମୟେ କେତେକ ବାଉଁଶ ମଧ୍ୟରୁ ନିର୍ଯ୍ୟାସରୂପେ ଏକପ୍ରକାର ମିଠାବସ୍ତୁ ବାହାରେ, ଏହାକୁ 'ବଂଶଶର୍କରା' ବୋଲାଯାଏ ଓ ଏହା ମଧ୍ୟ ଔଷଧରେ ବ୍ୟବହୃତ ହୁଏ । ]

ଅନ୍ୟ ସଂ. ନାମ—ପିଂଗା, ବଂଶୀ, ଭୁଗାକ୍ଷୀରୀ, ଭୁଗା, ଭୁଗା, ଶୁଭ୍ର, ତ୍ୱକ୍‌କ୍ଷୀରୀ, ଶୁଭ୍ରା, ଶୁଭ୍ରା, ବୈଣବୀ, କ୍ଷୀରିକା, ରୋଚନା, ତବକ୍ଷୀର ।

বংশলোচন
वंशलोचन
ଗୁ. ବଂଶକପୁର
ଫା. } ତବାଶୀର
ଆ.
(ବାଉଁଶକପୁର—ଅନ୍ୟ ନାମ)

**ବଂଶ କ୍ରମ**—ସଂ. ବି—(୬ଷ୍ଠୀ ତତ୍; ବଂଶ + କ୍ରମ)—୧ । ବଂଶପରମ୍ପରା; ପୁରୁଷାନୁକ୍ରମ; ଧାରାବାହିକ ବଂଶଧରଗଣ—
Bamśa krama
1. A family from generation to generation successive generations.

୨ । ବଂଶଧରମାନଙ୍କ ଧାରାବାହିକ ଉଲ୍ଲେଖ—
2. Genealogy.

୩ । କୁର୍ସିନାମା; ବଂଶବୃକ୍ଷ—
3. A genealogical tree; pedigree.

**ବଂଶ କ୍ଷୟ**—ସଂ. ବି. (୬ଷ୍ଠୀ ତତ୍; ବଂଶ + କ୍ଷୟ)—୧ । କୌଣସି ପଦାର୍ଥର ସମୂଳ ବିନାଶ—1. Eradication.
Bamśa kshaya

ବଂଶ ଧ୍ୱଂସ } ଅନ୍ୟରୂପ
ବଂଶ ନାଶ

୨ । ବଂଶର ବିନାଶ; ପରିବାରସ୍ଥ ସମସ୍ତ ବ୍ୟକ୍ତିମାନଙ୍କର ମୃତ୍ୟୁ; ପରିବାରରେ ଆଉ କେହି ବଞ୍ଚି ନ ରହିବା ଅବସ୍ଥା—2. Death of all the members of a family; extinction of a family; extinction of a species.

**ବଂଶ ଗୌରବ**—ସଂ. ବି. (୬ଷ୍ଠୀ ତତ୍; ବଂଶ + ଗୌରବ)—୧ । ଆପଣା କୁଳର ସମ୍ମାନ—1. The glory of one's family.
Bamśa gauraba

୨ । ( ବହୁବ୍ରୀହି ) କୀର୍ତ୍ତିଦ୍ୱାରା ବଂଶୋଜ୍ଜ୍ୱଳକାରୀ ବ୍ୟକ୍ତି—
2. Adding to the glory of one's family or race.

**ବଂଶ ଚରିତ**—ସଂ. ବି. (୬ଷ୍ଠୀ ତତ୍; ବଂଶ + ଚରିତ)—କୌଣସି କୁଳରେ ଜାତ ବ୍ୟକ୍ତିମାନଙ୍କ ଜୀବନ ବୃତ୍ତାନ୍ତ; ବଂଶର ଇତିହାସ—The history of a family.
Bamśa charita

ବିଣ.—ବଂଶର ବ୍ୟକ୍ତିମାନଙ୍କଦ୍ୱାରା ଆଚରିତ (ରୀତି)—(practice) Followed by the members of a family.
(ବଂଶାନୁଚରିତ—ଅନ୍ୟରୂପ)

**ବଂଶ ଚରିତ୍ର**—ସଂ. ବି.—(୬ଷ୍ଠୀ ତତ୍; ବଂଶ + ଚରିତ୍ର)—୧ । କୌଣସି ବଂଶଜାତ ବ୍ୟକ୍ତିଙ୍କର ଆଚରଣ—1. The general character of the members of a family.
Bamśa charitra
(ବଂଶାନୁଚରିତ୍ର—ଅନ୍ୟରୂପ)

୨ । କୌଣସି ବଂଶର ଧାରାବାହିକ ବିଶିଷ୍ଟତା—2. The traditional characteristic of a family.

ଗ୍ରା. ବି.—ବଂଶ ଚରିତ (ଦେଖ)
Bamśa charita (See)

**ବଂଶଜ**—ସଂ. ବିଣ. (ବଂଶ + ଜନ୍ ଧାତୁ + କର୍ତ୍ତୃ. ଅ)—୧ । କୌଣସି ବଂଶରୁ ଜାତ; ବଂଶୀୟ—1. Born of a family; descended from a family.
Bamśaja
(ବଂଶଜା—ସ୍ତ୍ରୀ)

୨ । ସଦ୍‌ବଂଶଜ; କୁଳୀନ; ସତ୍‌କୁଳପ୍ରସୂତ—2. Born of a high family; of a respectable famil

**ବଂଶଜା**—ସଂ. ବି.—୧ । ବଂଶ କର୍ପୂର (ଦେଖ)
Bamśajā 1. Bamśa karpūra (See)
ସଂ ବିଣ. ସ୍ତ୍ରୀ—ବଂଶଜର ସ୍ତ୍ରୀଲିଙ୍ଗ—
2 The feminine of 'Bamśaja

**ବଂଶ ଧର**—ସଂ. ବି. (ବଂଶ + ଧୃ ଧାତୁ + କର୍ତ୍ତୃ. ଅ)—
Bamśa dhara ୧ । କୌଣସି ବଂଶରେ ଜାତ ବ୍ୟକ୍ତି—
1. The scion of a family.
୨ । ଯେ ବଂଶ ରକ୍ଷା କରେ—2. One who maintains or continues a family.
୩ । ବଂଶ ପ୍ରବର୍ତ୍ତକ ବ୍ୟକ୍ତି—3. Founder of a line or family.
୪ । ସନ୍ତାନ—4 Issue; offspring.

**ବଂଶ ନାଳିକା**—ସଂ. ବି. (୬ଷ୍ଠୀ ତତ୍; ବଂଶ + ନାଳିକା)—
Bamśa nālikā ୧ । ବାଉଁଶ ନଳ—1. A tube of bamboo.
୨ । ବାଉଁଶର ବଂଶୀ—2. A flute made of bamboo.

**ବଂଶ ନିପାତ**—ସଂ. ବି. (୬ଷ୍ଠୀ ତତ୍; ବଂଶ + ନିପାତ)—
Bamśa nipāta ୧ । ସମୂଳ ବିନାଶ—1. Eradication.
୨ । କୌଣସି ବଂଶର ସମସ୍ତ ଜୀବଙ୍କର ହତ୍ୟା ବା ବିଲୋପ—
2. The destruction or extinction of a species.

**ବଂଶ ପତ୍ର**—ସଂ. ବି.—୧ । (୬ଷ୍ଠୀ ତତ୍, ବଂଶ+ପତ୍ର)—ବାଉଁଶ ଗଛର ପତ୍ର—
Bamśa patra 1. The leaf of bamboo plant.
୨ । ଏକପ୍ରକାର ଘାସ—2. A kind of grass.

**ବଂଶ ପତ୍ରକ**—ସଂ. ବି. (ବଂଶ ପତ୍ର+ସାଦୃଶ୍ୟାର୍ଥେ. କ)—
Bamśa patraka ୧ । ବାଉଁଶପତ୍ରୁଆ ମାଛ—
1. A kind of small thin fish.
୨ । ନଳ ଗଛ—2. A sort of reed
୩ । ଧଳା ଆଖୁ—3. The white variety of sugar-cane.

**ବଂଶ ପତ୍ରୀ**—ସଂ. ବି. (ବଂଶ ପତ୍ର+ଈ)—ବାଉଁଶ ପତ୍ର ପରି ପତ୍ରବିଶିଷ୍ଟ
Bamśa patrī ଏକପ୍ରକାର ତୃଣ—A kind of grass with
(ବଂଶ ଦଳା—ଅନ୍ୟରୂପ) large leaves resembling those of bamboo.

**ବଂଶ ପରମ୍ପରା**—ସଂ. ବି. (୬ଷ୍ଠୀ ତତ୍; ବଂଶ+ପରମ୍ପରା)—
Bamśa paramparā ବଂଶକ୍ରମ; ପୁରୁଷାନୁକ୍ରମ—
Successive generations in a family.

**ବଂଶ ପରମ୍ପରା କ୍ରମେ**—ଦେ. କ୍ରି. ବିଣ—ବଂଶର ଏକ ପୁରୁଷରୁ ଅନ୍ୟ
Bamśa paramparā krame ପୁରୁଷକୁ, ଏହିପରି ଧାରାରେ;
বংশ পরম্পরা ক্রমে ବଂଶାନୁକ୍ରମେ—From generation;
**वंश परंपरा क्रममे** to generation; for generations in the course of successive generations.

**ବଂଶ ପରମ୍ପରାଗତ**—ସଂ. ବିଣ. (୨ୟା ତତ୍; ବଂଶପରମ୍ପରା+ଗତ; କିମ୍ବା
Bamśa paramparāgata ୭ମୀ ତତ୍; ବଂଶପରମ୍ପରା+ ଆଗତ)—ବଂଶପରମ୍ପରାକ୍ରମେ ଚଳି ଆସୁଥିବା (ରୀତି ବା ବିଷୟ)—(a custom) Observed or obtaining in a family from generation to generation.

**ବଂଶ ବର୍ଦ୍ଧନ**—ସଂ. ବି. (୬ଷ୍ଠୀ ତତ୍; ବଂଶ+ବର୍ଦ୍ଧନ)—
Bamśa barddhana ୧ । ବଂଶସ୍ଥ ବ୍ୟକ୍ତିଙ୍କର ସଂଖ୍ୟାବୃଦ୍ଧି—
1. Increase in a family.
୨ । ବଂଶର ଉନ୍ନତି—2. Improvement of a family.
ବିଣ. (ଉପପଦ ସମାସ)—ବଂଶର ବୃଦ୍ଧି ବା ଉନ୍ନତିକାରୀ—
Causing improvement or adding to the glory of a family.

**ବଂଶ ବୀଜ**—ସଂ. ବି. (୬ଷ୍ଠୀ ତତ୍; ବଂଶ + ବୀଜ)—
Bamśa bīja ୧ । ବାଉଁଶ ଗଛର ଧାନ ବା ଚାଉଳ—
1. Bomboo seeds.
୨ । କୁଳର ହେତୁ; ବଂଶର ଆଦ୍ୟ ପୁରୁଷ—
2. The founder of a family.

**ବଂଶ ବୃଦ୍ଧି**—ସଂ. ବି. (୬ଷ୍ଠୀ ତତ୍; ବଂଶ + ବୃଦ୍ଧି)—୧ । ବଂଶର ଉନ୍ନତି-
Bamśa bruddhi 1. Improvement of a family.
୨ । ବଂଶର ବିସ୍ତାର; ସନ୍ତାନସନ୍ତତିଙ୍କ ସଂଖ୍ୟାବୃଦ୍ଧି—
2. Increase of a family by additions or by births.

**ବଂଶ ମରା (ଇତ୍ୟାଦି)**—ଦେ. ବିଣ. (ସଂ. ବଂଶ + ମାରକ)—
Bamśa marā (etc) ବାଉଁଶମରା ଇତ୍ୟାଦି (ଦେଖ)
Baunsa marā etc (See)

**ବଂଶ ମର୍ଯ୍ୟାଦା**—ସଂ. ବି. (୬ଷ୍ଠୀ ତତ୍; ବଂଶ+ମର୍ଯ୍ୟାଦା)—
Bamśa marjyādā ୧ । ବଂଶର ମହତ୍ତ୍ୱ; କୁଳ ଗୌରବ-ବଂଶରେ ଚଳି ଆସୁଥିବା ସମ୍ମାନ; ଆଭିଜାତ୍ୟ—
1. Family dignity; respectability of a family.
୨ । କୌଣସି ଉଚ୍ଚ ବା ପ୍ରସିଦ୍ଧ ବଂଶର ପ୍ରାପ୍ୟ ସମ୍ମାନ—
2. Honour or respect due to a high family.

**ବଂଶ ମାରିବା**—ଦେ. କ୍ରି—୧ । କୌଣସି ବଂଶର ସମସ୍ତ ବ୍ୟକ୍ତିଙ୍କୁ ବା
Bamśa māribā ଜୀବଙ୍କୁ ନାଶ କରିବା—To destroy
(ବଂଶ ନିପାତ କରିବା—ଅନ୍ୟରୂପ) every member of a
বংশ মারা **वंश मारना** a family or race.
(ଯଥା—ଆମ ରାଇଜକୁ ସବାଶିଆ ଲୋକମାନେ ଆସି କମ୍ମୀରଙ୍କ ବଂଶ ମାରି ଦେଲେଣି ।)
୨ । କୌଣସି ପଦାର୍ଥକୁ ନିର୍ମୂଳ ବା ସମ୍ପୂର୍ଣ୍ଣରୂପେ ଲୋପ କରିବା; ସମୂଳ ବିନାଶ କରିବା—2. To eradicate or destroy a thing or its species.

**ବଂଶ ମାହାତ୍ମ୍ୟ**—ସଂ. ବି. ( ୬ଷ୍ଠୀ ତତ୍ )—ବଂଶର ମହତ୍ତ୍ୱ—
Bamśa māhātmya Family greatness or dignity.

**ବଂଶ ରକ୍ଷା**—ସଂ. ବି. ( ୬ଷ୍ଠୀ ତତ୍; ବଂଶ + ରକ୍ଷା )—୧ । କୌଣସି
Bamśa rakshā ବଂଶକୁ ଖାଦ୍ୟାଦିଦ୍ୱାରା ବଞ୍ଚାଇବା—
1. Maintaining a family.
୨ । ପୁତ୍ରୋତ୍ପାଦନଦ୍ୱାରା ବଂଶକୁ ଲୋପ ମୁଖରୁ ରକ୍ଷା କରିବା—
2. Preservation of a family by bringing forth offspring

ବଂଶ ଲତା—ସ. ବି. ( ଆଧୁନିକ ପ୍ରୟୋଗ; ରୂପକ; ବଂଶ + ଲତା )—
Bamśa latā ୧ । ବଂଶାବଳୀ; କୁଳିନାମା—1. Genealogy; pedigree.
୨ । ରକ୍ତସମ୍ପର୍କ—2. Blood relation.

ବଂଶଲ—ପ୍ରାଦେ: ( ସମ୍ବଲପୁର ଓ ଲଇଆ ) ବି. (ଭୁଲ. ହି. ବସୁଲା)—
Bamśalā ବଢ଼େଇଙ୍କ ବାଉସୀ—Carpenter's axe; adze.

ବଂଶ ଲୋପ—ସ. ବି. (୬ଷ୍ଠୀ ତତ୍; ବଂଶ + ଲୋପ)—୧ । ବଂଶ କ୍ଷୟ(ଦେଖ)
Bamśa lopa 1. Bamśa kshaya (See)
(ବଂଶ ନପାତ—ଅନ୍ୟରୂପ) ୨ । ବଂଶଧରଙ୍କ ଅଭାବରୁ କୁଳର ଲୋପ-
2. Extinction of a family or race (on account of the non-survival or death of all the members thereof ).

ବଂଶ ଶର୍କରା—ସ. ବି. (ମ. ପ. ଲୋ; ବଂଶ+ଶର୍କରା)—ବାଉଁଶଗଛ ମଧ୍ୟରୁ
Bamśa śarkarā ଜାତ ହେବା ଏକପ୍ରକାର ମିଷ୍ଟ ନିର୍ଯ୍ୟାସ—
Manna of bamboo; a sweet juice exuded from bamboo.

ବଂଶ ଶଲାକା—ସ. ବି. ( ୬ଷ୍ଠୀ ତତ୍; ବଂଶ + ଶଲାକା )—ବାଉଁଶ
Bamśa śalākā କାଠି—A long thin rod or stake of bamboo

ବଂଶସ୍ଥ—ସ. ବିଣ. ( ୭ମୀ ତତ୍; ବଂଶ+ସ୍ଥା ଧାତୁ+କର୍ତ୍ତୃ. ଅ )—ବଂଶରେ
Bamśastha ଥିବା—Included in a family; staying in a family.
ବି—ସଂସ୍କୃତ ଛନ୍ଦୋବିଶେଷ—
Name of a Sanscrit metre.

ବଂଶସ୍ଥବିଲ—ସ. ବି—ଦ୍ୱାଦଶାକ୍ଷରବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ—
Bamśasthabila Name of a metre of 12 syllables.

ବଂଶ ହୀନ—ସ. ବିଣ. ପୁଂ. ( ୫ମୀ ତତ୍; ବଂଶ+ହୀନ )—ନିର୍ବଂଶ;
Bamśa hīna ଯାହା ବଂଶରେ କେହି ସନ୍ତାନ ନ ଥାନ୍ତି—
( ବଂଶବିହୀନ, ବଂଶରହିତ—ଅନ୍ୟରୂପ ) Issueless; without posterity.

ବଂଶା—ପ୍ରାଦେ. ( ବାମଣ୍ଡା ) ବି. (ସ. ବଂଶ=ବାଉଁଶ)—ଘରର ରୁଅ—
Bamśā Rafter of a thatched house.

ବଂଶାଙ୍କୁର—ସ. ବି. ( ୬ଷ୍ଠୀ ତତ୍; ବଂଶ+ଅଙ୍କୁର )—ବାଉଁଶ ଗଜା;
Bamśāṅkura ବାଉଁଶ କରଡ଼—The young shoots of bamboo.

ବଂଶାଚାର—ସ. ବି. ( ୬ଷ୍ଠୀ ତତ୍, ବଂଶ + ଆଚାର )—କୁଳାଚାର—
Bamśāchāra Family custom; observances or practices obtaining in or followed by a family from generation to generation.

ବଂଶାନୁକଥା—ସ. ବି. ( ୬ଷ୍ଠୀ ତତ୍; ବଂଶ + ଅନୁକଥା )—
Bamśānukathā ବଂଶ ଚରିତ ( ଦେଖ )
(ବଂଶାନୁଚରିତ—ଅନ୍ୟରୂପ) Bamśa charita (See)
ଶୁଣିଲି ବଂଶାନୁକଥା ମନ ଦେଇ ଶୁଣ । ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା ।

ବଂଶାନୁକ୍ରମ—ସ. ବି. ( ୬ଷ୍ଠୀ ତତ୍; ବଂଶ+ଅନୁକ୍ରମ )—ବଂଶ-
Bamśānukrama ପରମ୍ପରା; ପୁରୁଷାନୁକ୍ରମ—A family through its successive generation.

ବଂଶାନୁକ୍ରମିକ—ସ. ବିଣ. ( ବଂଶାନୁକ୍ରମ + ଇକ )—ପୁରୁଷାନୁକ୍ରମେ
Bamśānukrmika ଚଳି ଆସୁଥିବା—Observed in a family for successive generations.

ବଂଶାନୁକ୍ରମେ—ଦେ. କ୍ରି. ବିଣ. ( ସ. ବଂଶାନୁକ୍ରମେଣ )—ବଂଶପରମ୍ପରା
Bamśānukrame ଅନୁସାରେ—Through successive
ବংশানুক্রমে वंशानुक्रमसे generations.

ବଂଶାନୁଗତ—ସ. ବିଣ. ( ୨ୟା ତତ୍; ବଂଶ + ଅନୁଗତ )—
Bamśānugata ୧ । ବଂଶପରମ୍ପରାଗତ—1. Handed down from generation to generation.
୨ । କୌଣସି ବଂଶରେ ଅବଚ୍ଛିନ୍ନରୂପେ ପ୍ରତିଷ୍ଠିତ—
2. Established by the family traditions; permanently rooted in a family.

ବଂଶାବଳ(ଳୀ)—ସ. ବି. ( ୬ଷ୍ଠୀ ତତ୍; ବଂଶ + ଆବଳ )—କୁଳିନାମା;
Bamśābali(lī) ଯେଉଁ ଚକ୍ରରେ ବା ତାଲିକାରେ ପୁରୁଷାନୁକ୍ରମେ ଜନ୍ମିଥିବା ବଂଶଧରମାନଙ୍କର ବିବରଣ ପ୍ରଦର୍ଶିତ ହୋଇ-ଥାଏ—A genealogical tree; pedigree or family line; genealogy.

ବଂଶି—ଦେ. ବିଣ. ( ସ. ବଂଶୀୟ )—ବଂଶୀୟ (ଦେଖ)
Bamśi Bamśīya (See)
ବୋଲନ୍ତି ଶୁକ ବୁଦ୍ଧବନ୍ତି
ଶୁଣ ହୋ ରାଜା କୁରୁବଂଶି । ଜଗନ୍ନାଥ. ଭାଗବତ ।

ବଂଶିକ—ସ. ବିଣ. ପୁଂ. ( ବଂଶ+ସଞ୍ଜାତାର୍ଥେ. ଇକ )—ବଂଶୀୟ;
Bamśika ବଂଶଜାତ—Relating to or belonging to a family; born of a family.
( ବଂଶିକା—ସ୍ତ୍ରୀ )
ବି—୧ । ଅଗୁରୁ—1. Agallochum.
୨ । କଳା ଆଖୁ ( ହି. ଶ. )—
2. The black variety of sugar-cane.
ଦେ. ବିଣ—କୁଳୀନ—Born of a high family.
ବଂଶିକ ରାଜା ମାନସ ମଧ୍ୟରୁ ଧୈର୍ଯ୍ୟ ସାରସ ଅସ୍ତ୍ରଲଗେ ଦରଶନେ
ଉପୁଜି ନେଲେ । ଉପେନ୍ଦ୍ର. ବୈଦେହୀଶବିଳାସ ।

ବଂଶିକା—ସ. ବିଣ. ସ୍ତ୍ରୀ. ( ବଂଶିକ + ଆ )—ବଂଶିକର ସ୍ତ୍ରୀଲିଙ୍ଗ—
Bamśikā The feminine of Bamśika.
ସ. ବି—୧ । ( ବଂଶ + କ + ସ୍ତ୍ରୀ. ଆ )—ବଂଶୀ—
1. Flute; fife.
୨ । ପିପ୍ପଳୀ (ହି. ଶ.)—2. Long pepper.
୩ । ଅଗୁରୁ କାଠ ( ହି. ଶ. )—
3. Agallochum wood.

ବଂଶିନୀ—ଦେ. ବି—ବଂଶୀ—
Bamśinī Flute.
ମୃଦଙ୍ଗ ମୋହୁରୀ ବଂଶିନୀ ସ୍ୱର । ପ୍ରାଚୀ. ରସବାରିଧି ।

ବଂଶୀ—ସ ବି (ବଂଶ + ଈ; ଏହା ବାଉଁଶ ନଳରେ ତିଆର ହେବାରୁ)—
Bamśī ୧ । ବଇଁଶୀ; ମୁରଲୀ; ବେଣୁ—
1. Flute; fife; pipe.

[ ଦ୍ର—ଶ୍ରୁତରେ ବର୍ଣ୍ଣିତ ଅଛି ଯେ ଶ୍ରୀକୃଷ୍ଣଙ୍କର ବଂଶୀନାଦ ଶୁଣିଲେ କ୍ରମାନ୍ୱୟରେ ଉଚ୍ଚାଟନ, ସ୍ତମ୍ଭନ, ବଶୀକରଣ ଓ ମୋହନ ଏହି ଚାରି ଅବସ୍ଥା ଜାତ ହୁଏ । ଏହି ଅବସ୍ଥା ଅନୁସାରେ ଗୋପକନ୍ୟାମାନଙ୍କର ଚାରିଗୋଟି ଶ୍ରେଣୀ-ବିଭାଗ କରାଯାଇଅଛି । ଯଥା— ବେଦକନ୍ୟା, ଦେବକନ୍ୟା, ମୁନିକନ୍ୟା ଓ ବ୍ରଜକନ୍ୟା ।
ପ୍ରଥମ ବଂଶୀ ଉଚ୍ଚାଟନ, ପ୍ରକାଶ ବେଦକନ୍ୟାଗଣ ।
ସ୍ତମ୍ଭନନାଦେ ବଂଶୀ ଶୁଣି, ଉନ୍ମତ୍ତ ଦେବତା ନନ୍ଦିନୀ ।
ବଶୀକରଣ ନାଦ ବଂଶୀ, ଭଜୁଁ ସମ୍ଭୂତ ମୁନି ଅଂଶୀ ।
ମୋହନନାଦେ ଯେ ମୁରଲୀ, ଭଜୁଁ ବନ୍ଦିତ ବ୍ରଜବାଳୀ—
ଭୂପତି. ପ୍ରେମପଞ୍ଚାମୃତ ।
ବଂଶୀ ଦୁଇ ପ୍ରକାର; ଏକ ପ୍ରକାର ବଂଶୀର ଗୋଟିଏ ମୁଣ୍ଡର ରନ୍ଧ୍ରରେ ଫୁଙ୍କିବାକୁ ହୁଏ ଓ ଅନ୍ୟ ବଂଶୀର ପାର୍ଶ୍ୱସ୍ଥ ଛିଦ୍ରକୁ ଓଠ ପାଖେ ସ୍ପର୍ଶ କରି ସେ ରନ୍ଧ୍ରରେ ତିର୍ଯ୍ୟକ୍‌ଭାବରେ ଫୁଙ୍କିବାକୁ ହୁଏ । ]

୨ । ବଂଶଲୋଚନ (ହି. ଶ.)—2. Bamboo manna
୩ । ୪ କର୍ଷ ପରିମାଣ ବିଶେଷ (ହି. ଶ.)—
3. A unit of weight of 4 karshas.

**ବଂଶୀ କୁହା**—ଦେ. ବିଣ—୧ । ଯେ ବଂଶୀ ବଜାଏ—
Bamsi kuha 1. Blowing the flute.
୨ । ଯେ ବଂଶୀସ୍ୱନଦ୍ୱାରା ମନୋଗତଭାବ ଅନ୍ୟକୁ ଜଣାଏ—
2. Expressing one's wishes through the flute.
ନାହିଁ ଏଥି ଗତି ବଂଶୀ କୁହାକୁ ଟୋ । ବଳଦୂର୍ଯ୍ୟ. ସଙ୍ଗୀତ ବଳ୍ଳରୀ ।

**ବଂଶୀଧର**—ସ. ବି. (ଉପପଦ ତତ୍ପୁରୁଷ; ବଂଶୀ+ଧର )—
Bamsi dhara ଯେ ହାତରେ ବଂଶୀ ଧରି ଥାଏ—
(ବଂଶୀଧାରୀ—ଅନ୍ୟରୂପ) Holding a flute.
ବଂଶୀଧରୀ } ସ୍ତ୍ରୀ
ବଂଶୀଧାରଣୀ }
ବି—ଶ୍ରୀକୃଷ୍ଣଙ୍କର ନାମ—
A name of Srikrushna.
ଦେ. ବି—ପୁରୁଷ ଲୋକଙ୍କୁ ଦିଆଯିବା ନାମ—
A name given to males.

**ବଂଶୀ ଧ୍ୱନି**—ସ. ବି. (୬ଷ୍ଠୀ ତତ୍; ବଂଶୀ+ଧ୍ୱନି)—
Bamsi dhwani ବଂଶୀ ବାଜିବାର ଶବ୍ଦ—The sound
(ବଂଶୀ ରବ—ଅନ୍ୟରୂପ) produced by the blowing of a flute.

**ବଂଶୀ ବଜା(ଜେ)ଇବା**—ଦେ. କ୍ରି. ( ସ. ବଂଶୀ+ବାଦନ )—
Bamsi baja(je)iba ମୁଖ ଦ୍ୱାରା ଫୁଙ୍କି ବଂଶୀ ବାଦନ କରିବା—
बाँशी बाजान 1. To blow a flute.
**बाँसुरी बजाना,** ୨ । (ଲକ୍ଷଣାର୍ଥ) କୌଣସି ବିଷୟରେ ପରିଶ୍ରମ କରି
**बंशी बजाना** ନିଷ୍ଫଳ ହେବା—2. (figurative) To go without any reward after doing a work.
୩ । ଶବେଇ କରି କାନ୍ଦିବା; ବଂଶୀ ସ୍ୱର ପରି ସ୍ୱର କରି କାନ୍ଦିବା—
3. To wail plaintively.

**ବଂଶୀ ବଟ**—ସ. ବି—ବୃନ୍ଦାବନର ଯମୁନା ନିକଟସ୍ଥ ପ୍ରସିଦ୍ଧ ବଟ ବୃକ୍ଷ;
Bamsi bata ଯେଉଁ ବଟ ବୃକ୍ଷ ମୂଳରେ ଶ୍ରୀକୃଷ୍ଣ ବଂଶୀ ବଜାଉ ଥିଲେ—A banyan tree said to be the tree under which Srikrushna used to blow his flute.
[ ଦ୍ର—ବୃନ୍ଦାବନରେ ବର୍ତ୍ତମାନ ପର୍ଯ୍ୟନ୍ତ ଗୋଟିଏ ବର ଗଛକୁ ଲୋକେ ବଂଶୀବଟ ବୋଲି ନିର୍ଦ୍ଦେଶ କରନ୍ତି । ]

**ବଂଶୀ ବଦନ**—ସ. ବିଣ. ପୁଂ. (ବହୁବ୍ରୀହି; ବଂଶୀ+ବଦନ)—
Bamsi badana ଯେ ମୁହଁରେ ବଂଶୀ ବଜାଉ ଥାଏ—
(ବଂଶୀ ବଦନା—ସ୍ତ୍ରୀ) Having a flute blown with the mouth.

**ବଂଶୀ ବାଦନ**—ସ. ବି. ( ୬ଷ୍ଠୀ ତତ୍; ବଂଶୀ+ବାଦନ )—
Bamsi badana ବଂଶୀକୁ ବଜାଇବା—Blowing of a flute.

**ବଂଶୀୟ**—ସ. ବିଣ. ପୁଂ. (ବଂଶ+ଭବାର୍ଥେ ଇୟ)—
Bamsiya ୧ । ପାରିବାରିକ; ବଂଶ ସମ୍ବନ୍ଧୀୟ—
(ବଂଶ୍ୟ—ଅନ୍ୟରୂପ) 1. Relating to a family.
(ବଂଶୀୟା, ବଂଶ୍ୟା—ସ୍ତ୍ରୀ) ୨ । ବଂଶଜ—2. Born in a family.

**ବଂହିମା**—ସ ବି (ବଂହିମନ୍ ଶବ୍ଦ; ବହୁଳ+ଭାବେ. ଇମନ୍; ୧ମା. ୧ବ.)—
Bamhima ବାହୁଲ୍ୟ—Excess.

**ବଂହିଷ୍ଠ**—ସ. ବିଣ. ( ବହୁଳ+ଅତିଶୟାର୍ଥେ. ଇଷ୍ଠ )—
Bamhishtha ଅତି ବହୁଳ—Very excessive.
(ବଂହୀୟାନ୍—ଅନ୍ୟରୂପ) (ବଂହିଷ୍ଠା, ବଂହୀୟସୀ—ସ୍ତ୍ରୀ)

**ବଁକା**—ପ୍ରାଦେ. (ସମ୍ବଲପୁର) ବି—ନିଜର ଜମି ଚାଷ କରିବା ପାଇଁ ଅନ୍ୟ
Banka ବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ ପରିମାଣରେ ଧାନ ଦେଇ ତାଠାରୁ
**हलखरीद** ବଳଦ ଧାରରେ ମାଗି ଆଣିବା ପ୍ରଥା—System of taking bullocks on loan ( on payment of paddy ) to cultivate one's fields.

**ବଁଧ**—ପ୍ରାଦେ. (ସମ୍ବଲପୁର) ବି—ବନ୍ଧ; ପୋଖରୀ—
Bandh Pond.

**ବଁଧ୍ ଯିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ପୋଖରୀପାଣି ଯିବା; ଝାଡ଼ା
Bandh jiba ଫେରି ଯିବା—To go out to answer the
(ବଁଧ୍ ବୁଁଧା ଯିବା—ଅନ୍ୟରୂପ) call of nature.

**ବକ୍‌ତାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—ବାଧ୍ୟ କରି ଦୋଷ ସ୍ୱୀକାର
Bak-taiba କରାଇବା—To extort confession.

**ବକ୍‌ତିବା**—ପ୍ରାଦେ. (ସମ୍ବଲପୁର) କ୍ରି—ମାନିଯିବା; ସ୍ୱୀକାର କରିବା—
Bak-tiba To confess; to admit.

**ବକ୍ ବକ୍**—ଦେ. ( ଧ୍ୱନ୍ୟନୁକରଣ ) ଅ—
Bak bak ୧ । ଏଣୁ ତେଣୁ ଗୁଡ଼ାଏ ଗପିବା—1. Babbling.
ବକ୍‌ଟକ୍, ବକରଟକର } ଅନ୍ୟରୂପ
ବକର ବକର }
୨ । ଅନର୍ଥକ ବାକ୍ୟ ପ୍ରୟୋଗ—
2 Gibberish.
बकबक ୩ । କ୍ରମାଗତ ଗପିବା—3. Continuous talking.
**बकबक**

**ବକ୍ ବକ୍ କରି ଚାହିଁବା**—ଦେ. କ୍ରି—ତାଟକା ହୋଇ ଚାହିଁ ରହିବା—
Bak bak kari chahinba To look on vacantly or
(ବକ୍ ବକ୍ ଚାହିଁବା—ଅନ୍ୟରୂପ) helplessly; to stare.
ताकान ସମସ୍ତେ ବକ୍ ବକ୍ କରି ଚାହିଁ ଅଛନ୍ତି, ତାହାଙ୍କୁ କିଛି ବୁଦ୍ଧି ଦିଶୁ ନାହିଁ ।
**ताकना** ଗୋଲକଣ୍ଡ. ତିଲକ ସମାପଣ ।

**ବକ୍ ବକ୍ କରିବା**—ଦେ. କ୍ରି—ଅନର୍ଥକ ବାକ୍ୟ ପ୍ରୟୋଗପୂର୍ବକ କ୍ରମାଗତ ଏଣୁ ତେଣୁ ଗୁଡ଼ାଏ ଗପିବା; ପ୍ରଳାପ କରିବା—To prattle; to talk too much without any meaning or purpose.
Bak bak karibā
ବକ୍ ବକ୍ ହେବା } ଅନ୍ୟରୂପ
ବକର ବକର ହେବା }
বকবককরা **बकबककरना**

**ବକ୍ ବକମ୍**—ଦେ. (ଧ୍ୱନ୍ୟନୁକରଣ) ଅ—ପାର ଓ କପୋତଙ୍କ ଘୁମୁରିବା ଶବ୍ଦ (ଏ ପାରମାନଙ୍କ ପ୍ରଣୟବ୍ୟଞ୍ଜକ ଶବ୍ଦ)—The Cooing sound of pigeons and doves.
Bak bakam
ବକ୍ ବକମ୍ କମ୍ } ଅନ୍ୟରୂପ
ବକ୍ ବକୁମ୍ କୁମ୍ }
বকবকম **गुटरगूं; गुटरगू**

**ବକ୍ ବକି(କୁ)ଆ**—ଦେ. ବିଣ. (ସଂ ବାବଦୂକ)—ବାବଦୂକ; ଗପଡ଼ି—Talkative; garrulous.
Bak baki(ku)ā
বকো; বকুয়া **बकवादी, बक्की, बकबकीया**

**ବକ୍ ବଜାରି**—ଦେ. ବି. (ସଂ. ବଚ ଧାତୁ)—୧ । ଅବିରତ କଥା କହିବା—1. Talking incessantly.
Bak bajāri
বকাঝকা **बकवाद**
୨ । ଅନେକ ସମୟ ପର୍ଯ୍ୟନ୍ତ ଉଚ୍ଚୈଃସ୍ୱରରେ ଗପିବା—2. Talking loudly for a long time.
୩ । ବହୁତଗୁଡ଼ାଏ ଗପିବା ଦ୍ୱାରା ବିରକ୍ତି ବା କ୍ଳାନ୍ତି—3. Weariness due to talking for a long time.
ବିଣ—୧ । ବାବଦୂକ; ଗପଡ଼ି—1. Talkative.
୨ । ବହୁତଗୁଡ଼ାଏ ଗପି ଗପି ବିରକ୍ତ—2. Tired of talking too much.

**ବକ୍ ବଜାରି ହେବା**—ଦେ. କ୍ରି—୧ । ବୃଥା ଗୁଡ଼ାଏ ଗପିବା—1. To talk for a long time in vain.
Bak bajāri hebā
বকাঝকা করা **बकवाद करना**
୨ । ଅନେକ ସମୟଯାଏ ଉଚ୍ଚୈଃସ୍ୱରରେ ଗପିବା—2. To talk loudly for a long time.

**ବକ୍ଲା**—ପ୍ରାଦେ. (ସମ୍ବଲପୁର) ବି—(ସଂ. ବଲ୍କଲ; ପ୍ରା. ବଲ୍କଲ; ତୁଳ. ହି. ବକଲା)—ବୃକ୍ଷାଦିର ବଲ୍କଲ; ବକଲା; ଗଛ ଉପରର ଛାଲି—Bark of a tree.
Bak-lā

**ବକ୍ ଶଟ୍**—ବୈଦେ. ବି. (ଇଂ)—ଛରା; ଛୋଟ ଜନ୍ତୁ ଓ ପକ୍ଷୀ ଆଦିଙ୍କୁ ମାରିବା ପାଇଁ ବନ୍ଧୁକରେ ବ୍ୟବହୃତ ଅତିକ୍ଷୁଦ୍ର ଗୁଳି—Buckshot; pellet.
Bak śat
ছর্রা **छर्रा**

**ବକ**—ସଂ. ବି—(ବଚ୍ ଧାତୁ କହିବା + କର୍ମ. ଅ; ଯାହାକୁ ମତ୍ସ୍ୟଭକ୍ଷକ ବୋଲି ଲୋକେ କହନ୍ତି; ବା ବନକ୍ ଧାତୁ = କୁଟିଳ ଗତି କରିବା + କର୍ତ୍ତୃ. ଅ)—୧ । ବଗ; କୂଳେଚରବର୍ଗର ପ୍ରାୟ ଏକ ହାତ ଦୀର୍ଘ ମତ୍ସ୍ୟାଶୀ, ଲମ୍ବଚଞ୍ଚୁ ଓ ଦୀର୍ଘପଦବିଶିଷ୍ଟ ଶୁକ୍ଳ ପକ୍ଷୀ—1. The egret; the paddy bird; Bubuleus Coromandus.
Baka
(ବକୀ—ସ୍ତ୍ରୀ)

[ ଦ୍ର—ଅନେକ ଶ୍ରେଣୀର ଓ ବର୍ଣ୍ଣର ବକ ବା ବଗ ଦେଖାଯାନ୍ତି; ଯଥା—

୧ । ସାଧାରଣ ବଗ ବା ଗାଈ ବଗୁଲା । ଏହା ଏକ ହାତ ଦୀର୍ଘ, ଶ୍ୱେତ ବର୍ଣ୍ଣ । ଏମାନଙ୍କୁ ଗଡ଼ିଆ ଓ ବିଲରେ ଚରୁଥିବା ଗାଈଙ୍କ ପିଠିରେ ବସିବାର ଦେଖାଯାଏ ଓ ଏମାନେ ପୋକଜୋକ ଖାଆନ୍ତି; ଏକତ୍ର ଏକାଧିକ ଚରନ୍ତି । (ବଂ. বগ; ହି. गाइबगला—The egret; Bubuleus Coromandus.)

୨ । କାଣ୍ଠି ବଗ (ସଂ. ଉତ୍କ୍ରୋଶ, ହି. अंधे बगला; ବଂ কোঁচবগ—The pond heron; paddy bird; Ardeola Grayi); ଏମାନଙ୍କ ବର୍ଣ୍ଣ ମାଟିଆ । ଏମାନେ ଧାନକ୍ଷେତ୍ରରେ ଓ ପୋଖରୀକୂଳରେ ଦେଖାଯାନ୍ତି ।

୩ । ବଗୁଲା—ଦୁଇ ହାତ ଦୀର୍ଘ, ଶ୍ୱେତ ବର୍ଣ୍ଣ (ବଂ. বগলা;—The large egret, Heradias Alba); ଏମାନେ ଗୋଟି ଗୋଟିକିଆ ହୋଇ ଚରିବାର ଦେଖାଯାଏ ।

୪ । କଣା ବଗୁଲା—ଏକ ହାତ ଦୀର୍ଘ; ଗୋଡ଼ ଛୋଟ, ମୁଣ୍ଡ ପାଉଁଶିଆ; ମୁଣ୍ଡରେ କଳା ଓ ସବୁଜମିଶା ଜଟ । ଏମାନେ ରାତ୍ରିଚର (ବଂ. কানাবগলা; The green heron; Butorides Javanica.)

୫ । କାଠ ବଗ—ଗଳା ଓ ଗୋଡ଼ ଛୋଟ; ମୁଣ୍ଡରେ ଛୋଟ ଚୂଡ଼ା; ବେକରେ ପକ୍ଷ ନ ଥାଏ; ପିଠି ହଳଦିଆ, (ବଂ. কাঠবগলা; The yellow bittern, Ardetta Sinensis)

୬ । ନାଲି ବଗ—(ବଂ. লাল বগলা—The chestnut bittern; Ardetta Cinnamonia); ପିଠି ପକ୍ଷ ଖଇରି ।

୭ । ନେଳ ବଗ (ବଂ. নীলবগলা; The black bittern; Dupetor Flavicollis); ପ୍ରାୟ ହାତେ ଦୀର୍ଘ ଓ କଳା; ବେକରେ ପକ୍ଷ ନ ଥାଏ; ରାତ୍ରିଚର; ପୂର୍ବବଙ୍ଗରେ ଅଧିକ ଦେଖାଯାଆନ୍ତି । ଯୋଗେଶଚନ୍ଦ୍ର । ]

୨ । ଅଗସ୍ତି ନାମକ ଗଛ—2. Sesbania Grandiflora.
৩ । ଅଗସ୍ତି ଗଛପରି ଆଉ ଏକପ୍ରକାର ଗଛ; ବଗଫୁଲା ଗଛ—3. Another species of tree like Sesbania.
পদ্মবক
**बासना; बनहुला**
ମ. ଅଗସ୍ତା
ତେ. ବେସି
୪ । ବକାସୁର (ଦେଖ)—4. Bakāsura (See)
୫ । (ବୈଦ୍ୟକ) ବକ ଯନ୍ତ୍ର (ଦେଖ)—5. Baka jantra (See)
୬ । ଲଣ୍ଡାବଗୁଲି ଗୁଳ୍ମ; ବବରି; ବନବବରି—6. Ocymum Gratissimum (plant).
୭ । କୁବେର (ହି. ଶ)—7. A name of Kubera.
୮ । ଭୀମଦ୍ୱାରା ହତ ରାକ୍ଷସବିଶେଷ (ହି. ଶ)—8. A demon killed by Bhīma.
୯ । ଋଷିବିଶେଷ (ହି. ଶ.)—9. Name of a sage.

**ବକ ଚନ୍ଦନ**—ସଂ. ବି—ଏକପ୍ରକାର ବନ୍ୟବୃକ୍ଷ (ହି. ଶ.)—Name of a wild tree.
Baka chandana
[ ଦ୍ର—ଏହାର ପତ୍ର ଗୋଲ ଓ ବଡ଼; ଗଛ ଉଚ୍ଚ ଓ କାଠ ଦୃଢ଼; ଫଳ ଲମ୍ବ ଓ ପତଳା, ଏଥିରେ ୩।୪ ଟି ଦଳ ଥାଏ । ଫଳକୁ ବାଟି ମୁଣ୍ଡବିନ୍ଧାରୋଗରେ କପାଳରେ ଲଗାଯାଏ । ]

**ବକ ଚଞ୍ଚିକା**—ସଂ ବି. (ଏହାର ଥଣ୍ଟ ବକର ଚଞ୍ଚୁ ପରି ଥିବାରୁ)—ତୋଡ଼ୀ ମାଛ—A kind of slender fish.
Baka chinchikā

**ବକଜିତ୍**—ସ. ବି. (ବକ + ଜି ଧାତୁ = ଜୟ କରିବା + କର୍ତ୍ତୃ. କ୍ୱିପ୍)—
Bakajit ବକାରି (ଦେଖ)—Bakāri (See)

**ବକଟେ**—ଦେ ବିଣ—୧ । ନକଟେକ; ନକଟେ; ଟିକିଏ ମାତ୍ର—
Bakaṭe 1. A little bit.
(ବକଟକ—ଅନ୍ୟରୂପ) × × × ହର ଯାଉ ମୂଠାଏ, ଲୁଣ ବକଟେ × × ×
ଏକ୍‌ଟୁକୁ; ଏକ୍‌ଟୁ ଫଠାଉ ଉଥରୁ । ଫକୀରମୋହନ. ଛମାଣଆଠଗୁଣ୍ଠ ।
तनीक; जरासा ୨ । ଅତି ଛୋଟ—2. Very small; tiny.
(ଯଥା—ବକଟେ ପିଲା ଠେଇଁ ଏତେକ ବୁଦ୍ଧି !)

**ବକଡ଼ା**—ଦେ. ବି—କପାର ଉଗୁର୍ଦ୍ଦଲ କୋଷ ବା ଖୋସା—
Bakarḍā The closed pod of the cotton plant
ढेंढी which encloses the seed surrounded
ढोंटी by the cotton fibres.
[ଦ୍ର—ଏହା ଫଳପରି ଦେଖାଯାଏ ଏବଂ ଫାଟିଗଲେ ଏଥିମଧ୍ୟରୁ ମଞ୍ଜିକୁ ବେଢ଼ିଥିବା କପାତୁଲା ବାହାର ପଡ଼େ । ]

**ବକତ**—ବୈଦେ. ବି (ଅ. ବକ୍ତ୍ = ସମୟ; ଫା. ବଖ୍ତ୍ = ଭାଗ୍ୟ,
Bakata ଭଉଁଥି) —୧ । ସମୟ—1. Time.
ବକ୍ତ, ଖତ } ଅନ୍ୟରୂପ ୨ । ଉପଯୁକ୍ତ କାଳ—2. Suitable time; favourable or proper time
वक्त ୩ । ଦିବସର ବିଭିନ୍ନ ସମୟ—
बख्त 3. Different times of the day.
୪ । ଏକଥର ଭୋଜନ କ୍ରିୟା—4. One meal.
(ଯଥା—ସେ ଦିନକେ ବକତେ ଖାଏ ।)
୫ । ସୁଯୋଗ—5. Opportunity.
୬ । ଅଦୃଷ୍ଟ; ଭାଗ୍ୟ—6. Fortune; luck.
୭ । ଥର—7. Time.
(ଯଥା—ସେ ମତେ ଆଜକ ଘରରେ ୩ ବକତ ଗାଳି ଦେଇଛି ।)

**ବକତ(ତେ)ଇ ବଳିଆର**—ଦେ. ବାକ୍ୟ (ଫା. ବଖ୍ତ୍ + ସ. ହି + ସ.
Bakata(te)i baḷiār ବଳବାନ୍)—ବର୍ତ୍ତମାନ ଭାଗ୍ୟହିଁ ତୋର ଅନୁକୂଳ—Your luck is good now.
(ଯଥା—ତୋ ବକତଇ ବଳିଆର, ତୁ ଆଜ ବାଘମୁହଁରୁ ବର୍ତ୍ତି ଆସିଲୁ ।)

**ବକତର**—ବୈଦେ. ବି. (ଫା. ବକତର୍ = ଲୌହ ମୁଦ୍ଧଆରେ ନିର୍ମିତ
Bakatara ସାଞ୍ଜୁ)—ସାଞ୍ଜୁ—Mailcoat; armour.
बकतर

**ବକତା**—ଗ୍ରା. (ପଦ୍ୟ) ବିଣ—ବକ୍ତା (ଦେଖ)—
Bakatā बकता Baktā (See)
ସେ ବାଲଖିଲ୍ୟମାନେ ତ ସତ୍ୟ ବକତା । କୃଷ୍ଣସିଂହ. ମହାଭାରତ ଅଦ ।

**ବକତ୍ର**—ଗ୍ରା. (ପଦ୍ୟ) ବି—ବକ୍ତ୍ର (ଦେଖ)—
Bakatra Baktra (See)
କେମନ୍ତ ଚନ୍ଦ୍ର ବସେ ବକତ୍ର, କେମନ୍ତ ଶୋଭ ଦେହ । ଗୀତକୃଷ୍ଣ ରସକଲ୍ଲୋଳ ।

**ବକ ଧାର୍ମିକ**—ସ ବିଣ. ପୁଂ (ଉପମାନ କର୍ମଧାରୟ; ବକସଦୃଶ ଧାର୍ମିକ)—
Baka dhārmika ୧ । ଭଣ୍ଡଧାର୍ମିକ; ଭଣ୍ଡ ତପସ୍ୱୀ; ଧର୍ମଧ୍ୱଜ—
(ବକଧାର୍ମିକତା—ବି) 1. Hypocritical in religious observances.
୨ । କପଟାଚାରୀ—2. Hypocritical
[ଦ୍ର—ବକ ପାଣି କୂଳରେ ମାଛ ପାଇଁ ଠାକ ବସିଲା ବେଳେ ତାହାର ଗାମ୍ଭୀର୍ଯ୍ୟବ୍ୟଞ୍ଜକ ଠାଣିରୁ ତାର ମାଛ ମାରିବା ଉଦ୍ଦେଶ୍ୟ ଦର୍ଶକ ଠଉରାଇ ନ ପାରିବା ଭଳି ଯେଉଁ ଲୋକ ସାଧୁତାର ବାହାନା କରେ ତାପ୍ରତି ଏ ବିଶେଷଣ ପ୍ରୟୋଗ କରାଯାଏ । ]

**ବକ ଧ୍ୟାନ**—ସ. ବି.—ବକ ମାଛକୁ ଗୁହିଁବା ପରି କୌଣସି ବିଷୟରେ
Baka dhyāna ଏକାଗ୍ରତା—Perseverance or concentrated attention given
(ବକ ଧ୍ୟାନୀ—ବ୍ୟକ୍ତିବାଚକ ବିଣ.) to a particular matter (like an arden sitting on the look-out, for hours together near the water, for catching a fish.)

**ବକନା**—ବୈଦେ. ବି. (ଫା. ବଦନା)—୧ । ମୁସଲମାନମାନଙ୍କ
Bakanā ବ୍ୟବହୃତ ଏକ ପ୍ରକାର ଗଡ଼ୁ—A long-necked spouted water pot used by Mahamedans.
বকনা, বদনা
बकना, बदना
বখুন, বখুনা ୨ । ପିତଳର ବଡ଼ କଂସା—
2. Big pot of brass.

**ବକ ନିସୂଦନ**—ସ. ବି —ବକାରି (ଦେଖ)
Baka nisūdana Bakāri (See)
(ବକ ବୈରୀ; ବକସୂଦନ—ଅନ୍ୟରୂପ)

**ବକ ପଞ୍ଚକ**—ସଂ. ବି.—କାର୍ତ୍ତିକ ମାସର ପଞ୍ଚକ ବ୍ରତ; କାର୍ତ୍ତିକ ଶୁକ୍ଳ
Baka pañchaka ଏକାଦଶୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚଦିନ—The last five days of the lunar month of Kārttika.
[ଦ୍ର—ଏ ପାଞ୍ଚଦିନ ଆମିଷ ଭୋଜନ ନିଷିଦ୍ଧ । କଥିତ ଅଛି ଯେ, ଏ ପାଞ୍ଚଦିନ ବଗମାନେ ସୁଦ୍ଧା ମାଛ ଖାଆନ୍ତି ନାହିଁ ।]

**ବକ ପୁଷ୍ପ**—ସ. ବି. (ଏ ପୁଷ୍ପ ବକ ପରି ଆକାରବିଶିଷ୍ଟ ଥିବାରୁ)—ଅଗସ୍ତି
Baka pushpa ଫୁଲ ଓ ତାହାର ଗଛ—Sesbania Grandiflora (flower and tree).
ଦେ. ବି.—୧ । ଶିବମଲ୍ଲୀ; ଗଇଶ ଫୁଲ—
1. Leucas fower.
ବକ ପୁଷ୍ପ ମାଳା ମାଳକ
ବନ୍ଧୁଧିକୁ ଗୁଙ୍ଗତାରୁ ଠେକାଇ ଦୂକ । ଉଞ୍ଜ. ବୈଦେହୀଶବିଳାସ ।
୨ । ବଗହୁଲା (ଦେଖ)—(ହରେକୃଷ୍ଣ. ଦ୍ରବ୍ୟଗୁଣ)
2. Bagahuḷā (See)

**ବକ ବୃତ୍ତି**—ସ. ବିଣ—ବକ ଧାର୍ମିକ; ଶଠ; ଭଣ୍ଡ; ଭଣ୍ଡତପସ୍ୱୀ—
Baka brutti Hypocritical.
ବି—ବକଧାର୍ମିକତା; ଭଣ୍ଡତା—Hypocricy.

**ବକ ବ୍ରତ**—ସ. ବି—ବକ ବୃତ୍ତି; ବକ ଧାର୍ମିକତା—
Baka brata Hypocricy.
ସ. ବିଣ. ପୁଂ—ବକ ଧାର୍ମିକ—Hypocritical.

**ବକ ବ୍ରତୀ**—ସ. ବିଣ. ପୁଂ—ଭଣ୍ଡ ତପସ୍ୱୀ—Hypocritical in
Baka bratī (ବକବ୍ରତିନୀ—ସ୍ତ୍ରୀ) religious matters.

(ବକବ୍ରତଚର, ବକବ୍ରତଶ୍ରୁଷୀ—ଅନ୍ୟରୂପ) [ ଦ୍ର—ଶାସ୍ତ୍ରରେ ବକବ୍ରତୀର
ବକବ୍ରତୀ } ସ୍ତ୍ରୀ ଏହି ଲକ୍ଷଣ ବର୍ଣ୍ଣିତ ହୋଇଅଛି । ଯଥା—
ବକବ୍ରତଚରୀ } ଅଧୋଦୃଷ୍ଟି ର୍ନୈଷ୍କୃତିକଃ ସ୍ୱାର୍ଥସାଧନ ତତ୍ପରଃ
ବକବ୍ରତଶ୍ରୁଷୀ } ଶଠୋମିଥ୍ୟା-ବିନୀତଶ୍ଚ ବକବ୍ରତଚରୋଦ୍ଵିଜଃ;
ଅର୍ଥାତ୍—ସର୍ବଦା ଅଧୋଦୃଷ୍ଟିସମ୍ପନ୍ନ, ସ୍ୱାର୍ଥପର, ଛଳନାପରାୟଣ, ଶଠ, ମିଥ୍ୟାବାଦୀ, ମାତ୍ର ବିନମ୍ରୀ ବ୍ରାହ୍ମଣଙ୍କୁ ବକବ୍ରତଚର ବୋଲାଯାଏ । ]

ବକମ—ବୈଦେ. ବି. (ଆ· ଓ ଫା. ବକମ୍)—ବନ୍ୟ ବୃକ୍ଷବିଶେଷ—
Bakama Sappan wood; Caesalpinia Sappan; the log wood
ସଂ. ପତ୍ରାଙ୍ଗ, ପତ୍ରଙ୍ଗ, ପଟ୍ଟରଙ୍ଗ, ରକ୍ତସାର, ସୁରଙ୍ଗ, ରଞ୍ଜନ, ପଟ୍ଟରଞ୍ଜକ, ପତ୍ତୂର, କୁଚନ୍ଦନ
ବକମ୍; पातङ्ग
बक्कम; पातंग
ମ. ପତଙ୍ଗ
ତେ. ଓିକନ୍ନକଟ୍ଟି
ତା. ବଟଙ୍ଗୀ, ପତୁଙ୍ଗ
ଫା. ବକମ
ଆ. ବକମ
[ ଦ୍ର—ଏହା କାଞ୍ଚନାଦି ବର୍ଗର ମଧ୍ୟମାକୃତି କଣ୍ଟକୀ ତରୁ । କାଠର ମଞ୍ଜି ନାଲି । ଏ କାଠକୁ ସିଝାଇଲେ ସେଥିଁ ନାଲି ରଙ୍ଗର ପାଣି ବାହାରେ, ତହିଁରେ ପାଟ ରଙ୍ଗାଯାଏ, କିନ୍ତୁ ସୂତା ଲୁଗାରେ ଏ ରଙ୍ଗ ଭଲ ଧରେ ନାହିଁ । ପତ୍ର ବହୁପର୍ଣ୍ଣି । ଫୁଲ ହଳଦିଆ । ଏହା ବର୍ଷା ଦିନରେ ଫୁଟେ ।
ବୈଦ୍ୟଶାସ୍ତ୍ର ମତରେ ଏହା ମଧୁର ରସ, ଶୀତବୀର୍ଯ୍ୟ; ଏହା ପିତ୍ତ, ଶ୍ଳେଷ୍ମା, ବ୍ରଣ, ରକ୍ତଦୋଷ ଓ ଦାହନାଶକ । ]

ବକ ଯନ୍ତ୍ର—ସଂ. ବି. (ବୈଦ୍ୟକ)—କୌଣସି ଜଳମିଶ୍ରିତ ପଦାର୍ଥକୁ କାଚ ରେ
Baka jantra ବସାଇ ସେଥିରୁ ବାହାରିବା ବାଷ୍ପକୁ ବଗମୁହଁ ପରି ବଙ୍କା ନଳ ବାଟେ ନେଇ ଥଣ୍ଡା କରାଇ ଅରକ କାଢ଼ିବା ନିମନ୍ତେ ବ୍ୟବହୃତ ଯନ୍ତ୍ର—A crane-necked apparatus used for distilling; a still; a retort.

ବକ(କେ)ୟା—ବୈଦେ. ବି ଓ ବିଣ—ବକିୟା (ଦେଖ)
Baka(ke)yā Bakiyā (See)

ବକର ବକର ହେବା—ଦେ. କ୍ରି. (ସଂ. ବଚ୍ ଧାତୁ)—
Bakara bakara hebā ବୃଥାରେ ଗୁଡ଼ାଏ ଗପିବା—
बक बक करना बकरना; बकर बकर होना To prattle

ବକରା(ରୀ)—ବୈଦେ. ବି. (ସଂ. ବର୍କର=ପଶୁ ଶାବକ; କିମ୍ବା ଆ. ବକର
Bakarā(rī =ଗୋରୁ, ଗୋମେଷାଦି; ପରବର୍ତ୍ତୀ କାଳର ଅର୍ଥ,
बकरा(री) बकरा(री) ଛେଳ)—ଛେଳି—Goat.

ବକରୀଦ୍—ବୈଦେ. ବି. (ଆ. ବକର୍ ଈଦ୍)—ଇଦ ପର୍ବ; (ଯହିଁରେ
Bakarīd ବକର୍ ଅର୍ଥାତ୍ ଗୋରୁଙ୍କୁ ହଲାଲ୍ କରାଯାଏ ବା
(ବକ୍ରୀଦ୍—ଅନ୍ୟରୂପ) ବଳି ଦିଆଯାଏ;) ମୁସଲମାନ୍‌ମାନଙ୍କ ପଶୁବଳି
बकरीद ଦାନ ପର୍ବ—A festival of the Mahomedans
बक़रीद् for offering victims.
[ ଦ୍ର—ଏହା ଜାଲ୍‌ହେଜ୍ ମାସର ଦ୍ଵିତୀୟା ଚନ୍ଦ୍ର ଦେଖା ଯିବାର ଦଶମ ଦିନରେ ପଡ଼େ ।
କୋରାନରେ ଲେଖାଅଛି ଯେ ଇବ୍ରାହିମ୍ ଈଶ୍ୱରଙ୍କର ଭକ୍ତ ଥିଲେ । ସ୍ୱପ୍ନାଦେଶ ଅନୁସାରେ ତାଙ୍କର ପ୍ରିୟତମ ପୁତ୍ର ଇସ୍ମାଇଲ୍‌ଙ୍କୁ ବଳି-ଦେବାକୁ ପ୍ରସ୍ତୁତ ହେବାରୁ ଈଶ୍ୱରଙ୍କ ମାୟାରେ ପୁତ୍ରର ସ୍ଥାନ ଅଧିକାର କରିବା ପାଇଁ ଆକାଶରୁ ଗୋଟିଏ ଦୁମ୍ବା ବା ମେଣ୍ଢା ପଡ଼ିଲା । ସେହି ଘଟଣାର ସ୍ମାରକ ସ୍ୱରୂପ ମୁସଲମାନ୍‌ମାନେ ଏହି ବକରୀଦ ପର୍ବରେ କୁର୍ବାନୀ ବା ବଳିଦାନ କରନ୍ତି । ଏ ପର୍ବର ଅନ୍ୟ ନାମ ଇଦୁଜ୍ଜୁହା । ]

ବକର୍ଣ୍ଣା(ନ୍ନା, ନା)—ଦେ. ବି. ସ୍ତ୍ରୀ—(ସଂ. ବଷ୍କୟଣୀ=ଚିରସୂତା; ଅନେକ
Bakrṇṇā(nnā, nā) ଦିନ ହେଲା ପ୍ରସବ କରିଥିବା ଗାଈ)—
बकन(ना) ୧ । ବହୁକାଳପ୍ରସୂତା ଗାଈ; ପଡ଼ୁଆ ଗାଈ—1. A cow
बकेन(ना) which has long given birth to a calf; a cow which has gone dry.
୨ । (ସଂ. ବଷ୍କୟ=ବର୍ଷିକିଆ ବାଛୁରୀ)—ଛଡ଼ା; ମାଈ ବାଛୁରୀ; ଅବସ୍ଥା ଛଡ଼ା—2 A female calf.
୩ । ସଦ୍ୟଃପ୍ରସୂତା ଗାଈ—3. A cow which has recently given birth to a calf.

ବକର୍ଣ୍ଣା(ନ୍ନା) ଦୁଧ—ଦେ. ବି—୧ । ସଦ୍ୟଃପ୍ରସୂତା ଗାଈର ଦୁଧ; କଷ
Bakrṇṇā(nnā) dudha ଦୁଧ—(କଟକ)—1. Milk of a
बकनाद्दुध बकेनाद्दुध newly delivered cow.
୨ । ପଡ଼ୁଆ ଗାଈର ଦୁଧ—
2. Milk of a cow which has gone dry.

ବକଳ(ଳା) ଦେ. ବି—(ସଂ. ବଲ୍କଲ; ପ୍ରା. ବକ୍କଲ)—୧ । ବଲ୍କଲ;
Bakaḷa(ḷā) ଗଛର ଛାଲି—1. Bark of a tree.
(ବକୁଳା[କି]—ଅନ୍ୟରୂପ) बकल् बक्कल

ଅଗସ୍ତ୍ୟ ସେହିକ୍ଷଣି କନ୍ୟାକୁ ବକଳ
ପକାଇଲେ ଛଡ଼ି ଯୋଗୁଣ ବକଳ—କୃଷ୍ଣସିଂହ. ମହାଭାରତ. ବନ ।

୨ । ଫଳଆଦିର ଚୋପା—2. Rind
୩ । ଘାଆ ଆଦିରୁ ଉଠିବା ପତଳା ଚମ—3. Thin layer of skin peeling off from a sore.
୪ । ଏକପ୍ରକାର ପାରା—
4. A species of pigeon.
[ ଦ୍ର—ଏମାନଙ୍କର ବର୍ଣ୍ଣ ଧୂସର ଓ କଣ୍ଠ ଉଜ୍ଜ୍ୱଳ ଅଟେ । ]

ବକଲମ୍—ବୈଦେ. ଅ. (କଚିତଥ) (ଫା. ବକଲମ୍—ଅନ୍ୟର କଲମ
Bakalam ବା ଲେଖାଦ୍ୱାରା)—ଦଲିଲର ସମ୍ପାଦନକାରୀ ଉପସ୍ଥିତ
बकलम न ଥିଲେ ବା ଲେଖାପଢ଼ା ଜାଣି ନ ଥିଲେ ତାହାଙ୍କର
बक़लम ଦସ୍ତଖତ ଅନ୍ୟ ଜଣେ କରିବା—The practice of a person signing for an absent or illiterate executant (literally, through the pen of another)
ବିଣ—'ବକଲମ୍' ପ୍ରଥା ଅନୁସାରେ କୃତ—Done according to the practice of signing for another person.

ବକଲମ୍ କରିବା—ଦେ. କ୍ରି (କଚିତଥ; ଫା. ବକଲମ୍)—ଅନ୍ୟ ବ୍ୟକ୍ତିଙ୍କ
Bakalam karibā ନାମ ସହି କରିବା—To sign the
बकलम करना name of another person; to sign
बक़लम करना through the pen of another.

[ ଦ୍ର—ଏ ଶବ୍ଦର ସାଙ୍କେତିକ । ବ ।; ବକଲମ କରବା ବ୍ୟକ୍ତି ସମ୍ପାଦନକାରୀ ବ୍ୟକ୍ତିର ନାମ ଲେଖି । ବ । ଲେଖି ତତ୍ପରେ ଆପଣା ନାମ ଲେଖନ୍ତି । ]

ବକଲମ୍ ଦସ୍ତଖତ୍—ବୈଦେ. ବି. (ଫା. ବିକଲମ୍ ଓ ଦସ୍ତଖତ୍)—
Bakalam dastakhat ଅନ୍ୟ ବ୍ୟକ୍ତିର ହାତଲେଖାଦ୍ୱାରା ଏକ
বকলম দস্তখত ବ୍ୟକ୍ତିର ସ୍ୱାକ୍ଷର—Signature through
**बकलम दस्तखत** the pen of another.

ବକଲ(ଲି)ସ୍—ବୈଦେ ବି—(ଇଂ·ବକ୍ଲସ୍)—ଧାତୁ ନିର୍ମିତ ବନ୍ଧନାଙ୍ଗୁରୀ—
Bakala(li)s বক্লস **बकलस** Buckles.
[ ଦ୍ର—ଏଥିଦ୍ୱାରା ଫିତାର ବା ବେଲ୍ଟର ଦୁଇ ମୁଣ୍ଡକୁ ଅଟକାଯାଏ । ]

ଦେ. ବିଣ. ପୁଂ. (ଇଂ ବାଚଲର୍)—ଅବିବାହିତ (ଶ୍ୱେତାଙ୍ଗ
[ବକ୍ଲ(କ୍ଲି)ସ୍—ଅନ୍ୟରୂପ] ବ୍ୟକ୍ତି)—Unmarried (European.)

ବକସୀ—ବୈଦେ. ବି. (ଫା. ବଖ୍‌ସୀ=ବେତନଭୋଗୀ ରାଜକର୍ମଚାରୀ)—
Bakasi ୧ । ମୁସଲମାନ୍ ରାଜସରକାରଙ୍କ ଦପ୍ତରର ପ୍ରଧାନ
(ବକ୍ସୀ—ଅନ୍ୟରୂପ) କର୍ମଚାରୀ—1. The chief ministerial
বক্সী **बकसी** officer under the Mahommedan rules.

ବ୍ୟବର୍ତ୍ତୀ ଭଲ ଭଲ ଲୋକ ମଧ୍ୟରେ
ବକସି ପଟ୍ଟଯୋଷି ମହାପାତ୍ରରେ—ବ୍ରଜନାଥ, ସମରତରଙ୍ଗ ।

[ ଦ୍ର—ଏମାନେ ମୁନସୀ ବା କରାମାଙ୍କ ଉପରସ୍ଥ ଓ ନାଜାରଙ୍କ ନିମ୍ନ ହାକିମ ଅଟନ୍ତି । ]

୨ । କଲେକ୍ଟରଙ୍କ ନାଜରଙ୍କ ସହକାରୀ—2. The assistant Nazir in the Collectorate.

୩ । ପ୍ରାଚୀନ ଓଡ଼ିଶା ରାଜାମାନଙ୍କ ଅଧୀନ ସେନାପତିଙ୍କ ଉପାଧି—
3. The title of generals in the army of ancient Orissa.

[ ଦ୍ର—ଓଡ଼ିଶାର ବକସୀ ଖୋରଧା ଗଜପତି ରାଜାଙ୍କ ସମୟରେ ପ୍ରଧାନ ସେନାପତିର କାର୍ଯ୍ୟ କରୁଥିଲେ । ବଂଶପରମ୍ପରାକ୍ରମେ ବକସୀମାନଙ୍କୁ ପାଇକମାନେ ଆପଣାର ଉପଯୁକ୍ତ ସେନାପତି ବୋଲି ଭକ୍ତି ଓ ବିଶ୍ୱାସ କରୁଥିଲେ । ରାଜାଙ୍କ ତଳେ ବକସୀ ସମ୍ମାନପାତ୍ର ଥିଲେ । କୃପାସିନ୍ଧୁ. ଇତିହାସ । ]

ବକା—ଦେ. ବି. ( ସଂ. ବଚ୍ ଧାତୁ; ସଂ. ବୁକ୍କ ଧାତୁ=ଭାଷଣ କରବା )—
Bakā ୧ । ଗପିବା; ବକିବା; କହିବା—
বকা, বকুনী 1. Talking; prattling.
**बकना** ୨ । ଗାଳି; ଭର୍ତ୍ସନା—2 Rebuke.
୩ । ବକାସୁର ( ଦେଖ )—3. Bakāsura (See)
୪ । ବୋକା ( ଦେଖ )—4 Bokā ( See )
ପ୍ରାଦେ. (ସମ୍ବଲପୁର)—ବଁକା ( ଦେଖ )—Bañkā ( See )

ବକା(କେ)ଇବା—ଦେ. କ୍ରି—ବକିବା କ୍ରିୟାର ଣିଜନ୍ତ ରୂପ—
Bakā(ke)ibā The causative form of 'Bakibā.
বকান ୨ । ଗପାଇବା; ବୃଥା ବହୁତ ସମୟ କଥା କହିବାକୁ ବାଧ
**बकवाना** କରିବା—2. To cause one to talk much in vain.

ବକା ଖାଇବା—ଦେ. କ୍ରି—ଭର୍ତ୍ସିତ ହେବା—To be rebuked.
Bakā khāibā বকা, (বকুনি) খাওয়া **गालीखाना**
(ବକା ପାଇବା, ବକା ଶୁଣିବା—ଅନ୍ୟରୂପ)

ବକା ଝକା—ଦେ. ଗ୍ରା. ବି—ବକା ବନା ( ଦେଖ )
Bakā jhakā Bakā banā ( See )
বকা ঝকা **बकना झकना**

ବକାଣ୍ଡ ପ୍ରତ୍ୟାଶା ନ୍ୟାୟ—ସଂ. (ଲକ୍ଷଣାର୍ଥ)—ବୃଥା ଆଶା—
Bakāṇḍa pratyāśā nyāya Vain hope; (an analogy ) a hope which can not fulfilled (like-crane following a bull).

[ ଦ୍ର—ନଦୀତୀରସ୍ଥ ମତ୍ସ୍ୟାକାଙ୍କ୍ଷୀ ବକ ପକ୍ଷୀ ଚରୁଥିବା ବୃଷର ଲମ୍ବମାନ ଅଣ୍ଡକୋଷକୁ ମତ୍ସ୍ୟ ଭ୍ରମ କରି, ଉକ୍ତ ଅଣ୍ଡକୋଷ ଖସି ପଡ଼ିଲେ ତାହାକୁ ଖାଇବା ପ୍ରତ୍ୟାଶାରେ ନଦୀତଟ ତ୍ୟାଗ ପୂର୍ବକ ବହୁଦୂର ବୃଷଭର ପଶ୍ଚାତ୍ ଗମନ କରି ଶେଷରେ ନିରାଶ ହୁଏ ।

ବକ ଯେପରି ଅସମ୍ଭାବିତ ଆଶା ଦ୍ୱାରା ଚାଳିତ ହୋଇ ବୃଷଭର ପଦାଘାତ ଦ୍ୱାରା ତାହାର ପ୍ରାଣ ନାଶର ଆଶଙ୍କାକୁ ଭ୍ରୂକ୍ଷେପ ନ କରେ, ସେହିପରି ମନୁଷ୍ୟ ଆସନ୍ନ ବିପଦକୁ ନ ଗଣି ବିଷୟପ୍ରତ୍ୟାଶାରେ ସଂସାରରେ ବୁଲୁଥାଏ । ଏହିପରି ସ୍ଥଳରେ ଏହି ଉପମା ଦିଆଯାଏ । ଫଳତଃ ବକମାନେ ଗୋରୁଙ୍କ ଦେହରୁ ଟିଙ୍କ ଖାଇବା ପାଇଁ ପଛଆଡ଼େ ଚାଲୁ ଥାଆନ୍ତି ଓ ଗାଈଙ୍କ ପିଠିରେ ବସନ୍ତି । ଏଥିପାଇଁ ହିନ୍ଦୀରେ ବଗକୁ 'ଗାଈ ବଗଲା' ବୋଲାଯାଏ । ]

ବକା ଦେବା—ପ୍ରାଦେ. ( ସମ୍ବଲପୁର ) କ୍ରି—ବର୍ଷକ ପାଇଁ ନିର୍ଦ୍ଦିଷ୍ଟ
Bakā debā ମୂଲ୍ୟର ଧାନ ନେଇ ଅନ୍ୟକୁ ଆପଣାର ବଳଦ ହଳ ବୁଲାଇବା ପାଇଁ ଧାର ଦେବା—To lend the service of one's bullock in return for some paddy.

ବକା ବନା—ଦେ ବି. (ସଂ. ବଚ ଧାତୁ ଓ ବର୍ଣ୍ଣ୍ ଧାତୁ)—
Bakā banā ୧ । ଗପ; ଗୁଡ଼ାଏ ଗପିବା—
ବକା ବକ / ବକା ବର୍ଣ୍ଣା } ଅନ୍ୟରୂପ 1. Too much talking.
୨ । ଗାଳିମନ୍ଦ—2. Rebuke.
বকাঝকা ୩ । ଅନ୍ୟୋଽନ୍ୟରେ ଗାଳି ଦିଆଦେଇ—
**बकना झकना** 3. Mutual rebuke.

ବକାରି—ସଂ. ବି. ( ଷଷ୍ଠୀ ତତ୍; ବକ+ଅରି )—
Bakāri ୧ । ଶ୍ରୀକୃଷ୍ଣ—1. Śrikṛushṇa.
୨ । ଭୀମ—2. Bhīma.

ବକାସୁର—ସଂ. ବି—୧ । ଶ୍ରୀକୃଷ୍ଣଙ୍କ ଦ୍ୱାରା ହତ ବକାକୃତି ଅସୁରବିଶେଷ-
Bakāsura 1. A demon (who had assumed the shape of an egret to devour Śrīkṛushṇa) killed by Śrīkṛushṇa.

[ ଦ୍ର—ଏ ମଥୁରାରାଜ କଂସର ଜଣେ ଅନୁଚର । କଂସର ଆଦେଶରେ ଏ ବକରୂପ ଧାରଣ କରି ବ୍ରଜପୁରକୁ ଯାଇ ଶ୍ରୀକୃଷ୍ଣଙ୍କୁ ଗ୍ରାସ କରିବାକୁ ଉଦ୍ୟତ ହେବାରୁ ଶ୍ରୀକୃଷ୍ଣ ଏହାର ଥଣ୍ଟର ଉପର ଓ ତଳ ଫାଳକୁ ଫାଡ଼ି ଦେଇ ଏହାକୁ ମାରି ପକାଇଲେ । ]

୨ । ଏକଚକ୍ରା ନଗରୀ ନିକଟରେ ବାସ କରୁଥିବା ରାକ୍ଷସବିଶେଷ—
2. Name of a demon killed by Bhīma.

[ ଦ୍ର—ଏ ରାକ୍ଷସର ଦୌରାତ୍ମ୍ୟରୁ ରକ୍ଷା ପାଇବା ନିମନ୍ତେ ଏକଚକ୍ରା ଗ୍ରାମବାସୀମାନେ ତାହା ନିକଟକୁ ପ୍ରତିଦିନ ତାହାର ଭୋଜନାର୍ଥ ପ୍ରଚୁର ଖାଦ୍ୟ ଦ୍ରବ୍ୟ ଓ ଜଣେ ମନୁଷ୍ୟଙ୍କୁ ପଠାଇବାପାଇଁ ତା ସଙ୍ଗେ ଜବାବ କରି ସେହି ଅନୁସାରେ ପ୍ରତିଦିନ ପାଳି କରି ଗୋଟିଏ ଲୋକଙ୍କୁ ପଠାଉଥିଲେ ଓ ଏ ଅସୁର ଉକ୍ତ ପ୍ରେରିତ ଖାଦ୍ୟଦ୍ରବ୍ୟକୁ ଓ ମନୁଷ୍ୟଟିକୁ ଖାଉଥିଲା । ପାଣ୍ଡବମାନେ ଜତୁଗୃହଦାହ ପରେ ବାରଣାବତ ନଗରୀରୁ ପଳାଇ ଯାଇ ଏକଚକ୍ରା ନଗରୀରେ କୌଣସି ବ୍ୟକ୍ତିର ଗୃହରେ ଅବସ୍ଥାନ କରୁଥିବା ସମୟରେ ସେହି ପରିବାରର ଗୋଟିଏ ଲୋକର ବକାସୁର ନିକଟକୁ ଯିବାର ପାଳି ପଡ଼ିଲା, ତେଣୁ ପରିବାରରେ କ୍ରନ୍ଦନ ରୋଳ ଉଠିଲା । ପାଣ୍ଡବମାନଙ୍କ ମାତା କୁନ୍ତୀ ଏଥିର କାରଣ ଅବଗତ ହୋଇ ଆପଣାର ମଧ୍ୟମ ପୁତ୍ର ଭୀମଙ୍କର ପରାକ୍ରମ ବିଷୟ ଉତ୍ତମରୂପେ ଜାଣି ସେଦିନ ପ୍ରେରିତ ଖାଦ୍ୟଦ୍ରବ୍ୟ ସଙ୍ଗେ ସେହି ପରିବାରର ମନୁଷ୍ୟଙ୍କୁ ନ ପଠାଇ ତା ପରିବର୍ତ୍ତରେ ଭୀମଙ୍କୁ ଅସୁର ନିକଟକୁ ଯିବାକୁ ଆଦେଶ ଦେଲେ ଓ ତଦନୁସାରେ ଭୀମ ଅସୁର ନିକଟକୁ ଯାଇ ତା ସଙ୍ଗେ ଯୁଦ୍ଧ କରି, ତାହାର ପ୍ରାଣନାଶ କରି, ଏକଚକ୍ରା ନଗରୀକୁ ନିଷ୍କଣ୍ଟକ କରିଥିଲେ । ]

**ବକିଙ୍ଗ୍ ହାମ୍**—ବୈଦେ. ବି. (ଇଂ) (ନାମ)—ଇଂଲଣ୍ଡର ଗୋଟିଏ ପ୍ରସିଦ୍ଧ
Bakiṅg-hām କାଉଣ୍ଟି ଓ ନଗରର ନାମ—Buckingham,
বকিংহাম a county and a town in England.
**बकिंहाम** [ ଦ୍ର—ଏହା ଲଣ୍ଡନର ଉତ୍ତରପୂର୍ବ ଓ ଟେମସ୍ ନଦୀର ଉତ୍ତର କୂଳରେ ଅବସ୍ଥିତ । ଏଠାରେ ଇଂଲଣ୍ଡର ରାଜାଙ୍କର ପ୍ରସିଦ୍ଧ ରାଜପ୍ରାସାଦ ଅଛି । ଏହି କାଉଣ୍ଟିରେ ବିଲାତର ପ୍ରସିଦ୍ଧ ଇଟନ୍ କଲେଜ୍ ଅଛି । ]

**ବକିଚା**—ପ୍ରାଦେ. (ଗଡ଼ଜାତ) ବି—ବଗିଚା—
Bakichā Garden.

**ବକିବା**—ଦେ. କ୍ରି. (ସଂ. ବଚ୍ ଧାତୁ; ବୁକ୍କ ଧାତୁ=କହିବା)—
Bakibā ୧ । ଗାଳି ଦେବା—1. To rebuke.
বকা ଗୋପ ନନ୍ଦନେ ବାଦ ବଚନେ ଏକ ଆରକେ ବକ ।
**बकना** ଭକ୍ତଚରଣ. ମଥୁରାମଙ୍ଗଳ ।
୨ । ଅନେକ ସମୟଯାଏ ଗପିବା—
2. To talk for a long time
୩ । ପାଗଳପରି ପ୍ରଳାପ କରିବା—
3. To talk incoherently; to prattle.

**ବକି(କେ)ୟା(ଆ)**—ବୈଦେ. ବିଣ. (କଚେରୀ) (ଫା. ଓ ଆ. ବକିୟା, Baki(ke)yā(ā) ବକାୟା=ଅବଶିଷ୍ଟ; ବାକି ଥିବା)—ପୂର୍ବରୁ
ବାକେୟା
ବାକିୟା(ଆ)
ବାକି ବକିୟା
ବାକି ବକର } ଅନ୍ୟରୂପ
ବାକି ଥିବା—Remaining outstanding.
ବି—୧ । ପୂର୍ବରୁ ବାକି ରହିଥିବା କାର୍ଯ୍ୟ—
1, Arrear works.
বকেয়া ୨ । ଗତ ସନରୁ ବାକିଥିବା ଖଜଣା ବା ପ୍ରାପ୍ୟ—
**बकया** 3. Arrear rent or due; arrears.

**ବକିୟା ଖଜଣା**—ବୈଦେ. ବି. (କଚେରୀ) (ଫା. ବକାୟା+ଖଜାନା)—
Bakiyā khajaṇā ପୂର୍ବସନମାନଙ୍କର ଖଜଣା, ଯାହା ପ୍ରଜା (ସନହାଲ୍ ଖଜଣା—ବିପରୀତ) ଆଦାୟ ନ ଦେଇ ବାକି
বকেয়া খাজনা ରଖିଥାଏ—Arrear rent for year or
**बकाया खजाना** years other than the current year.

**ବକିୟା ବାକି**—ଦେ. ବିଣ. (କଚେରୀ)—ଗତ ସନରୁ ବାକି ପଡ଼ିଥିବା—
Bakiyā bāki Last year's arrear.
(ସନହାଲ୍ ବାକି—ବିପରୀତ) বকেয়া বাকী **बकाया बाकी**

**ବକୀ**—ସଂ. ବି. ସ୍ତ୍ରୀ. (ବକ+ଈ)—୧ । ସ୍ତ୍ରୀ ଜାତୀୟ ବକ; ବଗୁଲୀ—
Bakī 1. A female egret.
୨ । ବକାସୁରର ଭଉଣୀ; ପୂତନା—2. The sister of the demon Baka, who was killed by Śrikṛushṇa.
ଏତେ କାଳ ସହିବ କି । ଏଥିରୁ ତାଙ୍କୁ ଜଣାଣ ସେ ମାରିଲେ ବକୀ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ବକୁଆ**—ଦେ. ବିଣ. ପୁଂ—ଯେ ବହୁତ ବକେ ବା ଗପେ; ବାଚାଳ—
Bakuā (ବକେଇ, ବକୋଇ—ସ୍ତ୍ରୀ) Talkative.
বকুয়া **बक्की**

**ବକୁର**—ସଂ. ବି—୧ । ଭାସ୍କର; ସୂର୍ଯ୍ୟ (ହ୍ର. ଶ.)—1. The sun.
Bakura ୨ । ତୂରୀ (ହ୍ର. ଶ.)—2. Trumpet.
୩ । ବିଜୁଳି (ହ୍ର. ଶ.)—3. Lightning.

**ବକୁଳ**—ସଂ. ବି—ପୁଷ୍ପବୃକ୍ଷବିଶେଷ; ବଉଳ ଗଛ—
Bakuḷa Mimusops Elengi (a flower tree).
ଅନ୍ୟ - ସଂ. ସିଧୁଗନ୍ଧ, ଶୀର୍ଷକେଶରକ, ଚିରପୁଷ୍ପ
ଓ. ବଉଳ
বকুল
**बकुल; मौलसिरी**
ତେ ପୋଗଡ଼ଚେଟ୍ଟୁ, ପାଘଡ଼ା
ତା. ମୋଗଦମ୍
ମ. ବକୁଲୀ, ବଗୌଲ
ଗୁ. ବୋଲସରୀ, ବରଶୋଲୀ
[ ଦ୍ର—ଏହା ଚିରଶ୍ୟାମଳ ବୃକ୍ଷ । ଏଥିର ଫୁଲ ଈଷତ୍ ହଳଦିଆ, ତୀବ୍ର ସୁଗନ୍ଧଯୁକ୍ତ ଓ ବସନ୍ତରେ ଫୁଟେ । ଏହାର ଫଳ କୋଳପରି ଓ ପାଚିଲେ କଷାଟିଆ-ମିଠା ଲାଗେ ; ମଞ୍ଜି ଗୋଟିଏ । ଫୁଲ ଶୁଖିଗଲେ ସୁଦ୍ଧା ବହୁକାଳ ଏଥିର ସୁବାସ ରହେ । ବୈଦ୍ୟକ ମତରେ ଏହା କଷାୟ କଟୁ ରସ ଓ ଗୁରୁ; ଏହା କଫ, ପିତ୍ତ, ବିଷ, ଶ୍ୱିତ୍ର, କୃମି ଓ ଦନ୍ତଦୋଷ ନାଶକ । ଏହାର ଫଳ ମଧୁରକଷାୟ, ସ୍ନିଗ୍ଧ, ମଳସଂଗ୍ରାହକ, ଓ ଦନ୍ତର ସ୍ଥିରତାକାରକ । ବଉଳ ଛେଲିର ଚୂନାରେ ଦାନ୍ତ ଘଷିଲେ ଦାନ୍ତ ମୂଳ ଦୃଢ଼ ହୁଏ । ]

**ବକୁଳ ଅମାବାସ୍ୟା**—ସଂ. ବି—ବଉଳ ଅମାବାସ୍ୟା (ଦେଖ)—
Bakuḷa amābāsyā Bauḷa amābāsyā (See)
(ବକୁଳ ଅମାସ୍ୟା, ବକୁଳ ଅମାବାସ୍ୟା—ଦେଶଜ ରୂପ)

**ବକୁଳି**—ଦେ. ବି. (ସଂ. ବଲ୍କଲ)—୧ । ନାକଭିତରୁ ଛାଲ ଛାଡ଼ିବା ଭଳି
Bakuḷi ମଳ—1. Layer of dried up phlegm inside the nostrils.
মামড়ী; বকাল
**छिलका** ୨ । କ୍ଷତସ୍ଥାନର ଶୁଷ୍କ ଚମ ବା ଚୋପା—2. Dry skin or peel of a healing wound or sore.

**ବକ୍ତବ୍ୟ**—ସଂ. ବିଣ. (ବଚ୍ ଧାତୁ=କହିବା+କର୍ମ. ତବ୍ୟ)—
Baktabya ୧ । ବାଚ୍ୟ; କଥନୀୟ; କହିବାର ଯୋଗ୍ୟ—
1, Speakable; proper to be spoken.

୨ । ଯାହା କହିବାକୁ ହେବ—2. To be spoken.
ବି—୧ । ପ୍ରସ୍ତାବ—1. Proposal.
୨ । କଥା—2. Speech.

**ବକ୍ତବ୍ୟ ବିଷୟ**—ସଂ. ବି—ବକ୍ତୃତାର ବିଷୟୀଭୂତ ବସ୍ତୁ—
Baktabya bishaya Subject-matter of a lecture or speech.

**ବକ୍ତା**—ସଂ. ବିଣ. ପୁଂ. (ବଚ୍ ଧାତୁ+କର୍ତ୍ତୃ. ତୃ; ବକ୍ତୃ ଶବ୍ଦ, ୧ମା. ୧ବ)—
Baktā ବାଗ୍ମୀ; ବାକ୍‌ପଟୁ—Able to speak fluently; eloquent.
(ବକ୍ତ୍ରୀ—ସ୍ତ୍ରୀ)
ସଂ. ବି. ପୁଂ—କଥକ; ବକ୍ତୃତାକାରୀ—Speaker; lecturer.

**ବକ୍ତିୟାର୍ ଖିଲିଜି**—ବୈଦେ (ନାମ)—ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀର ଶେଷ
Baktiyār khiliji ଭାଗରେ ଭାରତରେ ରାଜତ୍ୱ କରୁଥିବା ଖିଲିଜି
বক্তিয়ার খিলজি ବଂଶୀୟ ମୁସଲମାନ୍ ରାଜାମାନଙ୍କ ମଧ୍ୟରୁ
**बख्तियारखिलजी** ଏକତମ—One of the Mahomedan kings of the Khiliji dynasty who ruled in India, in the 13th century A.D.

**ବକ୍ତୃତା**—ସଂ. ବି. (ବକ୍ତୃ+ଭାବ. ତା)—୧ । ବାକ୍‌ପଟୁତା; ବାଗ୍ମିତା—
Baktṛutā 1. Eloquence.
୨ । ଲେକ୍‌ଚର୍; ବକ୍ତାଙ୍କ କଥିତ ବିଷୟ—
2. Lecture; a speech; an address.

**ବକ୍ତୃତା କରିବା**—ଦେ. କ୍ରି—ସଭାରେ କୌଣସି ବିଷୟ କହିବା—
Baktṛutā karibā To deliver a lecture; to address a meeting.
(ବକ୍ତୃତା ଦେବା—ଅନ୍ୟରୂପ)
বক্তৃতা করা **भाषन देना, वयान करना**

**ବକ୍ତୃତା ଝାଡ଼ିବା**—ଦେ. କ୍ରି. (ବ୍ୟଙ୍ଗ)—୧ । ବକ୍ତୃତା କରିବା—
Baktṛutā jhāṛdibā 1. To deliver a lecture.
বক্তৃতা ঝাড়া ୨ । ଅନର୍ଗଳ ଗପିବା—
**बयान करना** 2. To talk much.

**ବକ୍ତୃତ୍ୱ**—ସଂ. ବି. (ବକ୍ତୃ+ଭାବ. ତ୍ୱ)—ବାଗ୍ମିତା—
Baktṛutwa Eloquence.

**ବକ୍ତ୍ର**—ସଂ. ବି. (ବଚ୍ ଧାତୁ=କହିବା+କରଣ; ତ୍ର)—
Baktra ୧ । ମୁଖ; ପାଟି—1. Mouth.
୨ । ବଦନ; ମୁହଁ—2. Face.
(ଯଥା—ଚତୁର୍ବକ୍ତ୍ର; ପଞ୍ଚବକ୍ତ୍ର ।)
୩ । ବୈଦିକ ଛନ୍ଦୋବିଶେଷ—3. Name of a vedic metre.
୪ । ତଗର ଗୁଳ୍ମ (ଦେଖ) (ହି. ଶବ୍ଦସାଗର)—
4. Tagara (plant).
୫ । କାର୍ଯ୍ୟାରମ୍ଭ (ହି. ଶ.)—5. The beginning of a work.
୬ । ଅନୁଷ୍ଟୁପ୍ ଛନ୍ଦ ପର ଛନ୍ଦୋବିଶେଷ (ହି. ଶ.)—
6. A Sanscrit metre.
ବୈଦେ. ବି. (ଫା. ବକ୍‌ତର୍)—ବକତର୍ (ଦେଖ)—
Bakatar (See)

ବକ୍ତ୍ରେ ଯେ ରାଜନ୍ୟଙ୍କ ବକ୍ତ୍ରେ ଜନକ ଜନଙ୍କ
ଏହି ଗିର ଶରଦେଦ ଭୂଦେବେ କରେ । ଉଷ୍ଟ. ବୈଦେହୀଶବିଳାସ ।

**ବକ୍ତ୍ରଜ**—ସଂ. ବିଣ. (ବକ୍ତ୍ର+ଜନ୍ ଧାତୁ+କର୍ତ୍ତୃ. ଅ)—ମୁଖଜାତ—
Baktraja Produced from the mouth or face.
(ବକ୍ତ୍ରଜା—ସ୍ତ୍ରୀ) ବି—(ବ୍ରହ୍ମାଙ୍କ ମୁଖରୁ ଜାତ ହୋଇ ଥିବାରୁ)—
ବ୍ରାହ୍ମଣ—A Brāhmaṇa (said to have been born from the mouth of Brahmā).

**ବକ୍ତ୍ର ଦଶ**—ଦେ. ବି. (ବହୁବ୍ରୀହି; ବକ୍ତ୍ର+ଦଶ; ଦଶମୁଖ)—ରାବଣ—
Baktra daśa Rābaṇa the king of Laṅkā, who had ten heads).

ବକ୍ତ୍ରଦଶ କଥା କସ ଦଶପାଳେ କ ପ୍ରକାଶ
ଏକହେ ଅଶ୍ରିତ ସ୍ୱନାଟିର । ଉଷ୍ଟ. ବୈଦେହୀଶବିଳାସ ।

**ବକ୍ତ୍ର ପଟ୍ଟ**—ସଂ. ବି. (ମ. ପ. ଲୋ; ବକ୍ତ୍ରରେ ବନ୍ଧାଯିବା ପଟ୍ଟ)—
Baktra paṭṭa ଘୋଡ଼ା ଦାନା ଖାଇବାର ଝୋଲିବୁଣା ତୋବଡ଼ା—
A gunny bag of corn attached to the mouth of a horse from which it eats.
[ ଦ୍ର—ଏଥିମଧ୍ୟରେ ଘୋଡ଼ାଙ୍କ ମୁହଁ ପଶି ଏହାର ଦୁଇ ପାଖର ଦଉଡ଼ି ଘୋଡ଼ାର ମୁଣ୍ଡ ବାଟେ ବୁଲି ଯାଇ ବନ୍ଧା ଯାଏ । ]

**ବକ୍ତ୍ର ମାଳୀ**—ଦେ. ବିଣ ପୁଂ. (ବକ୍ତ୍ର+ମାଳନ୍; ୧ମା. ୧ବ)—
Baktra māḷī ବହୁ ମୁଖବିଶିଷ୍ଟ—Having many heads; many-headed.
(ବକ୍ତ୍ର ମାଳନୀ—ସ୍ତ୍ରୀ)

**ବକ୍ତ୍ର ଶୋଧୀ**—ସଂ. ବିଣ. (ବକ୍ତ୍ର+ଶୁଧ୍ ଧାତୁ+ଇନ୍, ୧ମା. ୧ବ.)—
Baktra śodhī ମୁଖଶୁଦ୍ଧି କାରକ (ତାମ୍ବୂଳାଦି)—
Purifying the mouth (betel etc).
ବି—ଜମ୍ବୀର ଲେମ୍ବୁ—Citrus Medica (a species of orange).

**ବକ୍ତ୍ରାସବ**—ସଂ. ବି. (ମ. ପ. ଲୋ; ବକ୍ତ୍ର ନିଃସୃତ ଅସବ)—
Baktrāsaba ୧ । ଅଧରାମୃତ; ପାଟିର ଲାଳ—1. Saliva.
୨ । ଥୁକ; ଶ୍ଳେଷ—2. Spittle.

**ବକ୍ତ୍ରିମା**—ଦେ. ବି. (ବ୍ୟଙ୍ଗ; ସଂ. ବକ୍ତୃତା)—ବକ୍ତୃତା ଭଙ୍ଗୀ—
Baktrimā Airs assumed while giving a lecture; mode of delivery of a lecture.

**ବକ୍ର**—ସଂ. ବିଣ. (ବକ୍ ଧାତୁ=ବଙ୍କା ହେବା+କର୍ତ୍ତୃ. ର)—
Bakra ୧ । ବଙ୍କା; କୁଟିଳ—1. Curved; crooked.
୨ । ନଇଁ ଯାଇଥିବା—2. Bent.
୩ । କ୍ରୂର—3. Cruel.
୪ । କୁଚକ୍ରୀ; ଶଠ; ପ୍ରତାରଣାପୂର୍ଣ୍ଣ—4. Fraudulent.
୫ । ପ୍ରତିକୂଳ—5 Unfavourable.
୬ । ତେରଛା—6. Oblique, slanting.
ବି—୧ । ବାଙ୍କ; ମୋଡ଼—1 A bend; a curvature.
୨ । ଶନି ଓ ମଙ୍ଗଳ ଗ୍ରହ—2. The planets Saturn and Mars.
୩ । ତଗର ପାଦୁକା (ହି. ଶ.) (ଦେଖ)—
3. Tagara pādukā (See)
୪ । ପର୍ପଟ (ହି. ଶ.) (ଦେଖ)—4. Parpaṭa (See)

୫ । ତ୍ରିପୁରାସୁର (ହ୍ରି. ଶ.) (ଦେଖ)—
5. Tripurāsura (See)
୬ । ବକ୍ରୀ ଗ୍ରହ (ଦେଖ)—6. Bakri graha (See)
ଦେ. ବି—ବକ୍ର ଦାସ; ଅଚ୍ୟୁତାନନ୍ଦ ଦାସ ଗୋସ୍ୱାମୀଙ୍କ ଜଣେକ ପ୍ରଧାନ ଶିଷ୍ୟ—Name of disciple of Achyutānanda Gosāiñ.

ବକ୍ର ଉତର—ଦେ. ବି. (ସଂ. ବକ୍ର+ଉତ୍ତର)—ଥଟ୍ଟା କଥା—
Bakra utara Jest.
ଜାଣେ ରସିକ ମାଭର ସେହୁ ମୋହନ ମନ୍ତର
ଯେମନ୍ତ ମଧୁରଭର ବକ୍ର ଉତର । ଭଞ୍ଜ. ପ୍ରେମସୁଧାନିଧି ।

ବକ୍ର ଗତି—ସଂ. ବି. (କର୍ମଧା; ବକ୍ର+ଗତି)—୧ । ସାପପରି ମୋଡ଼ି ମୋଡ଼ି ହୋଇ ଚାଲିବା—1. Tortuous movement; curved motion.
Bakra gati
୨ । (ବହୁବ୍ରୀହି) ସର୍ପ; ସାପ—2. Serpent.
୩ । ଖଳ ବ୍ୟକ୍ତି—3. A wicked person.
୪ । ଶଠ ବ୍ୟକ୍ତି—4. A crooked person; a cheat; a swindler; a crook.
ବିଣ—୧ । ବଙ୍କା ହୋଇ ଗତି କରୁଥିବା—
1. Moving tortuously.
୨ । କୁଟକଟି; ଶଠ—2. Crooked; fraudulent.

ବକ୍ର ଗ୍ରୀବ—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ଗ୍ରୀବା)—
Bakra griba ଯାହାର ବେକ ବଙ୍କା—Having a curved neck.
(ବକ୍ରଗ୍ରୀବା—ସ୍ତ୍ରୀ)
(ବକ୍ରଗ୍ରୀବତା—ବି) ବି—ଉଷ୍ଟ୍ର, ଓଟ—The camel.

ବକ୍ର ଚଞ୍ଚୁ—ସଂ. ବିଣ. (ବହୁବ୍ରୀହି; ବକ୍ର+ଚଞ୍ଚୁ)—
Bakra chañchu ଯାହାର ଥଣ୍ଟ ବଙ୍କା—Having a curved beak
ବି—ଶୁକପକ୍ଷୀ; ଶୁଆ—Parrot.

ବକ୍ର ଡଉଁରି—ଦେ. ବି. (ସଂ. ବକ୍ର+ଡମରୁ)—୧ । ବାଙ୍କ ଡେଉଁରିଆ;
Bakra dauñrā ସ୍ତ୍ରୀ ବାହୁଭୂଷଣବିଶେଷ—1. An armlet consisting of a series amulets strung together.
ବଙ୍କା ଡ(ଡେ)ଉଁରି }
ବାଙ୍କ ଡ(ଡେ)ଉଁରି } ଅନ୍ୟରୂପ
ବାଙ୍କ ଡ(ଡେ)ଉଁରିଆ }
୨ । ସ୍ତ୍ରୀମାନଙ୍କ ଜୁଡ଼ାରେ ପିନ୍ଧିବା ଧନୁସାକାର ଅଳଙ୍କାରବିଶେଷ—
2. A bow-shaped ornament worn on the chignon.
ବକ୍ର ଡଉଁରି ହେମ ଦୁବ ଝରା
ଦେବାରୁ ବଢିଲା ଏମନ୍ତ ପରା । ଭଞ୍ଜ. ଲବଣ୍ୟବତୀ ।

ବକ୍ରଣ—ସଂ. ବି. (ବକ୍ର ଧାତୁ=କୁଟିଳ ହେବା+ଭାବ. ଅନ)—
Bakraṇa ବକ୍ରୀ କରଣ; ବଙ୍କାଇବା; ବକ୍ର କରିବା—Curving; bending.

ବକ୍ରତା(ତ୍ୱ)—ସଂ. ବି. (ବକ୍ର+ଭାବ. ତା)—ବକ୍ର ଭାବ—
Bakratā(twa) Crookedness.

ବକ୍ରତା(ନା)ଳ—ସଂ. ବି. (ବହୁବ୍ରୀହି; ବକ୍ର+ତାଳ; ନାଳ)—
Bakratā(nā)la ମୁହଁରେ ଫୁଙ୍କାଯିବା ଏକପ୍ରକାର ବାଜା—A kind of musical instrument blown by the mouth.

ବକ୍ର ତୁଣ୍ଡ—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ତୁଣ୍ଡ)—
Bakra tuṇḍa ଯାହା ପାଟି ବଙ୍କା; ବଙ୍କାମୁହାଁ—Having a curved or bent mouth.
(ବକ୍ରତୁଣ୍ଡା—ସ୍ତ୍ରୀ)
ବି—୧ । ଶୁକପକ୍ଷୀ; ଶୁଆ—1. Parrot.
୨ । ଗଣେଶ—2. Gaṇesa.

ବକ୍ର ଦଂଷ୍ଟ୍ର—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ଦଂଷ୍ଟ୍ରା)—
Bakra damshṭra ଯାହାର ଦାନ୍ତ ବଙ୍କା—Having curved teeth or tusks.
(ବକ୍ର ଦଂଷ୍ଟ୍ରା—ସ୍ତ୍ରୀ)
ବି—୧ । ଶୂକର; ବାରହା—1. Hog; boar.
୨ । (କର୍ମଧା) ବଙ୍କା ଦାନ୍ତ—2. Curved tooth.

ବକ୍ର ଦୃଷ୍ଟି—ସଂ. ବି. (କର୍ମଧା; ବକ୍ର+ଦୃଷ୍ଟି)—
Bakra drushṭi ୧ । ବାଙ୍କ ଚାହାଣି—1. Glance with the corner of the eye; ogling.
୨ । ଟେରା ଚାହାଣି—2. Squint-eyed look.
୩ । ବେଅନୁଗ୍ରହ ଦୃଷ୍ଟି—3. Unfavourable look.
୪ । କ୍ରୂର ଦୃଷ୍ଟି—4. Scoul; angry or sullen look.
ବିଣ—ଟେରା—Squint-eyed.

ବକ୍ରନକ୍ର—ସଂ. ବିଣ. ପୁଂ—୧ । ପିଶୁନ; ଚୁଗୁଲିଆ (ହ୍ରି. ଶ.)—
Bakranakra Backbiting.
(ବକ୍ରନକ୍ରା—ସ୍ତ୍ରୀ) ସଂ. ବି.—୧ । ଚୁଗୁଲିଖୋର ଲୋକ (ହ୍ରି. ଶ.)—
1 A backbiter.
୨ । ଶୁକପକ୍ଷୀ (ହ୍ରି. ଶ.)—2. Parrot.

ବକ୍ର ନଖ—ସଂ. ବି. (କର୍ମଧା; ବକ୍ର+ନଖ)—୧ । ବଙ୍କା ନଖ—
Bakra nakha 1. Curved nail or talon.
(ବକ୍ର ନଖର—ଅନ୍ୟରୂପ) ୨ । (ବହୁବ୍ରୀହି) ହିଂସ୍ର ପଶୁ ଓ ପକ୍ଷୀ—
2. Beasts and birds of pray.
ବକ୍ର ନଖା } ସ୍ତ୍ରୀ
ବକ୍ର ନଖରା }
ବିଣ. ପୁଂ. (ବହୁବ୍ରୀହି) ଯାହାର ନଖ ବଙ୍କା—Having curved nails.

ବକ୍ର ନାସିକ—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ନାସିକା)—
Bakra nāsika ଯାହାର ନାକ ବଙ୍କା—Having an aquiline nose.
(ବକ୍ର ନାସିକା—ସ୍ତ୍ରୀ)
ବି—ପେଚକ; ପେଚା—An owl.

ବକ୍ରପୁଚ୍ଛ—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ପୁଚ୍ଛ)—
Bakra puchchha ଯାହାର ଲାଙ୍ଗୁଡ଼ ବଙ୍କା—Having a curved tail.
(ବକ୍ରପୁଚ୍ଛା—ସ୍ତ୍ରୀ)
ସଂ. ବି—କୁକ୍କୁର (ହ୍ରି. ଶ.)—Dog.

ବକ୍ର ପୁଷ୍ପ—ସଂ. ବି. (ବହୁବ୍ରୀହି; ବକ୍ର+ପୁଷ୍ପ)—୧ । ଅଗସ୍ତି ଗଛ—
Bakra pushpa 1. The Sesbania Grandiflora (tree).
୨ । ପଳାଶ ଗଛ—2. The Butea Frondosa (tree).
୩ । (କର୍ମଧା) ଅଗସ୍ତିଫୁଲ—
3. The Sesbania grandiflora flower.

ବକ୍ରୟ—ସଂ. ବି—ମୂଲ୍ୟ; ଦାମ (ହ୍ରି. ଶ)—
Bakraya Price.

ବକ୍ର ରେଖା—ସଂ. ବି. (କର୍ମଧା)—ଅସରଳ ରେଖା; ବଙ୍କା ଗାର—
Bakra rekhā A curved line.

ବକ୍ରାଙ୍ଗ—ସଂ. ବିଣ. ପୁଂ. (ବହୁବ୍ରୀହି; ବକ୍ର+ଅଙ୍ଗ)—
Bakrānga ୧ । ବଙ୍କା ଦେହବିଶିଷ୍ଟ—
(ବକ୍ରାଙ୍ଗୀ—ସ୍ତ୍ରୀ) 1. Having a curved body.
୨ । ଅବନତାଙ୍ଗ—2. Having the body bent.
ବି—୧ । ହଂସ—1. Swan.
୨ । ସର୍ପ (ହି. ଶ)—2. Snake; serpent.

ବକ୍ରିତ ଶ୍ଳେଷାନ୍ତର ଶ୍ଳେଷ— ବି— କାବ୍ୟାଲଙ୍କାରବିଶେଷ—
Bakrita ślesha̅ntara ślesha A figure of speech.
[ ଦ୍ର—ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର ନିମ୍ନଲିଖିତ ପଦ ଦୁଇଟି ଏହି ଅଲଙ୍କାରର ଉଦାହରଣ । ଯଥା—
ଭାବେ ହର ଆମନଙ୍କୁ ବିମନ କୁମୁଦ
ହର ଭାବେ ବା ଧରକ କାରଣୀ କୁମୁଦ ।
କୁମୁଦ କର ସୁଖଦ ବନ୍ଧୁ ହର ପଦ
କୁମୁଦ କର ସୁଗନ୍ଧ ହର ଇନ୍ଦୁ ଖେଦ । ]

ବକ୍ରିମ(ମା)—ସଂ. ବି. (ବକ୍ର+ଇମ, ଇମନ୍; ୧ମା. ୧ବ)—
Bakrima(mā) ୧ । ବକ୍ରଭାବ—1. Crookedness
୨ । କୁଟିଳତା; ଶଠତା—2. Fraud.

ବକ୍ରୀ—ସଂ. ବିଣ. ପୁଂ. (ବକ୍ର+ଇନ୍; ୧ମା. ୧ବ.)—
Bakrī . ୧ । ବକ୍ର ରୂପେ ଅବସ୍ଥିତ—1. Situate in a
(ବକ୍ରିଣୀ—ସ୍ତ୍ରୀ) tortuous position
୨ । ବକ୍ରଗତିବିଶିଷ୍ଟ; ବକ୍ରଗାମୀ—
2. Moving in a tortuous manner.
୩ । ଆପଣା ମାର୍ଗରୁ ଛାଡ଼ି ପଛକୁ ଯେ ଗତି କରେ (ହି. ଶ.)—
3. Moving backwards.
ସଂ. ବି—ବୁଦ୍ଧ (ପ୍ରକୃତିବାଦ)—The Buddha.

ବକ୍ରୀ ଗ୍ରହ—ସଂ. ବି. (ବକ୍ରିନ୍+ଗ୍ରହ; ଯେଉଁ ଗ୍ରହ ବକ୍ରଗତି କରେ)—
Bakrī graha ସୂର୍ଯ୍ୟଙ୍କଠାରୁ ୩୦ ଅଂଶ ମଧ୍ୟରେ ଅବସ୍ଥିତ ଗ୍ରହ (ହି. ଶ)—A planet within 30 degrees of the sun.
[ ଦ୍ର—ଯେଉଁ ଗ୍ରହ ନିଜ ରାଶିରୁ ଛାଡ଼ି ଏକବାରକେ ଅନ୍ୟରାଶିକୁ ଚାଲିଯାଏ ତାକୁ ଅତିବକ୍ରୀ ବା ମହାବକ୍ରୀ ଗ୍ରହ ବୋଲାଯାଏ । ମଙ୍ଗଳ ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଏ ପାଞ୍ଚଗ୍ରହଙ୍କୁ ବକ୍ରୀ ଗ୍ରହ ବୋଲାଯାଏ—ହି. ଶ. ]

ବକ୍ରୋକ୍ତି—ସଂ. ବି—( କର୍ମଧା; ବକ୍ର+ଉକ୍ତି )—୧ । ଦୁଇଅର୍ଥବୋଧକ
Bakrokti କଥା—1. An equivoke.
୨ । ଶ୍ଳେଷ ବାକ୍ୟ—2. A pun.
୩ । କୂଟବାକ୍ୟ ବା ଉତ୍ତର—3. Evasive reply.
୪ । ଶ୍ଳେଷାଲଙ୍କାରବିଶେଷ; ଶ୍ଳେଷବାକ୍ୟ—
4. (rhetoric) Punning.
[ ଦ୍ର—ଜଣକର ଏକାର୍ଥରେ ପ୍ରଯୁକ୍ତ ଶବ୍ଦକୁ ଅନ୍ୟ ଜଣେ ଯେବେ ଅର୍ଥରେ ଗ୍ରହଣ କରେ ତାହାହେଲେ ବକ୍ରୋକ୍ତି ଅଲଙ୍କାର ହୁଏ । ଏହା ଦୁଇପ୍ରକାର, ଯଥା—ଶ୍ଳେଷ ବକ୍ରୋକ୍ତି ଓ କାକୁ ବକ୍ରୋକ୍ତି । ଶ୍ଳେଷ ବକ୍ରୋକ୍ତିରେ ବକ୍ତା ଏକ ଅର୍ଥରେ ଯେଉଁ ଶବ୍ଦ ବା ବାକ୍ୟ ପ୍ରୟୋଗ କରି ଥାଏ, ଅନ୍ୟ ଲୋକ ତାକୁ ଭିନ୍ନ ଅର୍ଥରେ ଗ୍ରହଣ କରେ । କାକୁ ବକ୍ରୋକ୍ତିରେ ବକ୍ତାର କଣ୍ଠସ୍ୱରକୁ ବା ବଚନଭଙ୍ଗୀକୁ ଅନ୍ୟ ଭାବରେ ଗ୍ରହଣ କରାଯାଏ ।
ଶ୍ଳେଷବକ୍ରୋକ୍ତିର ଉଦାହରଣ ଯଥା:—
ପ୍ରଶ୍ନ—ବାରୁଣୀ ଆଶାରେ— ରଜନୀ ମୁଖରେ
ଆସୁଅଛ କିଏ ଭାଇ,
ପଥ ଦିଶୁ ନାହିଁ— ଅନ୍ଧ ମୁଁ ଅଟଇ
ବାଟେ ଅଟକାଅ ନାହିଁ ।
ଉତ୍ତର—କିଏରେ ଅଜ୍ଞାନ ମଦ୍ୟପ ଦୁର୍ଜନ !
ନିଜପର କି ଜଗତ,
ମଣୁଅଛୁ ତୁହି— ମଦେ ଅନ୍ଧ ହୋଇ
ସମସ୍ତଙ୍କୁ ଅନ୍ଧବତ ?
କାକୁ ବକ୍ରୋକ୍ତିର ଉଦାହରଣ ଯଥା—
ନାହିଁ ଏ ଭାରତେ ହିନ୍ଦୁର ବିଳାସ ?
ନାହିଁ ଏ ଭାରତେ ଶୌର୍ଯ୍ୟର ପ୍ରକାଶ ?
କୁଳମଣି—ଅଲଙ୍କାର ତରଙ୍ଗିଣୀ ।]

ବକ୍ରୋଷ୍ଠିକା—ସଂ. ବି—(ବକ୍ର+ଓଷ୍ଠ+କ+ଆ)—ସ୍ମିତ ; ଯେଉଁ
Bakroshṭhikā ହସରେ ଦାନ୍ତ ଦିଶେ ନାହିଁ, କେବଳ ଓଠ ବକ୍ର ହୁଏ (ହି ଶ)—Smile.

ବକ୍ଷ୍ ( ଧାତୁ )—ସଂ—ସଂହତ ହେବା—To be gathered
Baksh (root) together; to conglomerate.

ବକ୍ଷ—ଦେ ବି—(ସଂ. ବକ୍ଷଃ)—ବକ୍ଷଃ (ଦେଖ)
Baksha Bakshaḥ (See).

ବକ୍ଷଃ—ସଂ ବି—(ବକ୍ଷ୍ ଧାତୁ+କର୍ତ୍ତୃ. ଅସ୍)—୧ । ବୁକୁ; ଛାତି; ଦୁଇ
Bakshaḥ ସ୍କନ୍ଧ ଓ ଉଦରର ମଧ୍ୟସ୍ଥଳ; ପେଟ ଓ ବେକର ମଧ୍ୟସ୍ଥ ସମ୍ମୁଖସ୍ଥ ଶରୀରାଂଶ—1. The breast; bosom; chest.
୨ । ବଳଦ (ହି. ଶ)—2. Bullock.

ବକ୍ଷଃପୀଡ଼ା—ସଂ. ବି—(୬ଷ୍ଠୀ ତତ୍; ବକ୍ଷଃ+ପୀଡ଼ା)—୧ । ଛାତି ଦରଜ-
Bakshaḥ pīrdā 1. Pain in the breast; chest complaint.
୨ । ଯକ୍ଷ୍ମାରୋଗ—2. Pulmonary consumption; pthisis.

ବକ୍ଷଃସ୍ଥଳ—ସଂ. ବି. ( ୬ଷ୍ଠୀ ତତ୍; ବକ୍ଷଃ+ସ୍ଥଳ)—ଛାତି; ବୁକୁ; କାନ୍ଧ ଓ
Bakshaḥsthala ବେକତଳଠାରୁ ପେଟ ପର୍ଯ୍ୟନ୍ତ ଦେହର ସାମନା
(ବକ୍ଷୋଦେଶ—ଅନ୍ୟରୂପ) ଅଂଶ—The region of the breast.
(ବକ୍ଷସ୍ଥଳ—ଦେଶଜରୂପ)

ବକ୍ଷୀ—ସଂ. ବି—(ବକ୍ଷ ଧାତୁ+ଈ)—ଅଗ୍ନିଶିଖା (ହି. ଶ)—
Bakshī Flame.

ବକ୍ଷୋଜ—ସଂ. ବି—(ଉପପଦ ତତ୍ପୁରୁଷ; ବକ୍ଷଃ+ଜନ ଧାତୁ+କର୍ତ୍ତୃ.ଅ;
Bakshoja ଯାହା ବକ୍ଷଃସ୍ଥଳରୁ ଜନ୍ମେ)—ପୟୋଧର; ସ୍ତ୍ରୀ ସ୍ତନ;
(ବକ୍ଷୋରୁହ—ଅନ୍ୟରୂପ) ଉରଜ; ଦୁଧ—The female breast; the mamma; teat.

ବକ୍ଷମାଣ—ସ. ବଣ—(ବଚ ଧାତୁ + କର୍ମ. ଶାନଚ୍)—୧ । ବାଚ୍ୟ;
Bakshyamāṇa ବକ୍ତବ୍ୟ (ଭୂ. ଣ)—1 Speakable.
୨ । କଥନର ବିଷୟୀଭୂତ—
2. Subject of discourse or talk.
୩ । ଯାହା ବୋଲାଯାଉ ଅଛି— 3. Being spoken of.

ବକ୍ସ—ବୈଦେ. ବ. (ଇଂ. ବକ୍ସ)—କାଠର ଛୋଟ ଆଧାର; ବାକସ—
Baksa ବାକ୍‌ସ **बक्स; बकस** Box.

ବକ୍‌ସିସ୍(ସି)—ବୈଦେ. ବ. (ଅ. ବଖ୍‌ଶୀସ୍)—୧ । ପୁରସ୍କାର;
Baksis(si) ପାରିତୋଷିକ—1. Reward.
[ବକ୍‌ଶିସ୍(ସି)—ଅନ୍ୟରୂପ ୨ । ଭୃତ୍ୟାଦିଙ୍କୁ ପ୍ରଦତ୍ତ ବେତନରୁ
ବଖ୍‌ଶୀସ ଅଧିକା ଧନ—2. Tip given to servants;
**बक(ख)सीस** gratuity; bonus.

ବଖଡ଼(ଡ଼ା)—ଦେ. ବ. (ହିନ୍ଦୀ. ବଖେଡ଼ା; ଭୂଲ. ସ. ବିଘ୍ନ)—
Bakharḍa(rḍā) ୧ । ବଗଡ଼; ଗୋଳମାଳ—
ବଖେଡ଼ା; ବାଗଡ଼ା 1. Noise; complications.
**बखेडा** ୨ । ଝଗଡ଼ା; କଳି—2. Quarrel.
୩ । ବାଧା; ବିଘ୍ନ—3. Obstruction
୪ । ଆପତ୍ତି—4. Objection; interruption.
ବିଣ—ବଖଡ଼ିଆ (ଦେଖ)—Bakharḍiā (See)

ବଖଡ଼ ଲଗା(ଗେ)ଇବା—ଦେ. କ୍ରି—କୌଣସି କାର୍ଯ୍ୟରେ ବିଘ୍ନ ଉପସ୍ଥିତ
Bakharḍa lagā(ge)ibā କରିବା—To raise
ବଖଡ଼ ଦୂର୍(ରେ)ଇବା } objection or obstruction or
ବଖଡ଼ ବାହାର କରିବା } —ଅନ୍ୟରୂପ complications in a
ବଖଡ଼ ଆଣି ପହଞ୍ଚା(ଞ୍ଚେ)ଇବା } matter.
ବାଗଡ଼ା ଲାଗାନ **बखेडा निकालना**

ବଖଡ଼ିଆ—ଦେ. ବିଣ. ପୁଂ—୧ । ବଗଡ଼ିଆ; ଯେ ଗୋଳମାଳ ବା ଆପତ୍ତି
Bakharḍiā କରେ—1. Noisy.
ବଖଡ଼ୀ } ସ୍ତ୍ରୀ ୨ । ଯେ ବାଧା ଜାତ କରେ—
ବଖଡ଼େଇ } 2. Obstructive.
୩ । କଳିହୁଡ଼ା—3. Quarrelsome.
୪ । ବଗୁଲିଆ; ଖେଚଡ଼ା—4. Wicked; wanton.
୫ । ଆପତ୍ତିକାରୀ—5. Habitually objecting.
୬ । ଗୋଳମାଳିଆ (ବିଷୟ)—6. Full of intricacies; intricate.

ବଖର୍‌ା—ଦେ. ବ. (ସ. ପକ୍ଷାଗାର)—ଗୃହ ମଧ୍ୟସ୍ଥ ପ୍ରକୋଷ୍ଠ; ନିର୍ଦ୍ଦିଷ୍ଟ
Bakharā ପରିମାଣବିଶିଷ୍ଟ କୋଠରି—Room; compart-
କାମରା **कमरा** ment; room of standard dimensions.
ତା ପଛେ ବେଶି ଭଲେ ଅଛା ବଖର୍‌ାମାନ
ଶ୍ରେଷ୍ଠଭାବରୂପେ ଜାସ୍ ମନୋହର ସ୍ଥାନ । ତୁଳସୀ, ଜେମସ୍ଗାରାସୁଣ ଅବ ।
[ ଦ୍ର—ବଖର୍‌ାର ଲମ୍ବ ଓ ଓସାର ଭିନ୍ନ ଭିନ୍ନ ପରିମାଣ ଅଛି । ଏକ ବଖର୍‌ାର ଲମ୍ବ ୫ ହାତ, ୭ ହାତ ବା ୯ ହାତ ହୋଇଥାଏ । ବଖର୍‌ା ଓ କୋଠରି ମଧ୍ୟରେ ପ୍ରଭେଦ ଏହି କି, ଦୈର୍ଘ୍ୟ ଓ ପ୍ରସ୍ଥ ଅନୁସାରେ ବଖର୍‌ା ଧରାଯାଏ; କୋଠରି ସଂଖ୍ୟା ଅନୁସାରେ ଧରାଯାଏ । ଗୋଟିଏ ଲମ୍ବ କୋଠରିର ପରିମାଣ ଏକାଧିକ ବଖର୍‌ା ହୋଇ ପାରେ, କିମ୍ବା ଏକ ବଖର୍‌ାର ପରିମାଣଠାରୁ ଛୋଟ ହୋଇପାରେ; ଓ ମଧ୍ୟ ବଖର୍‌ାର ସୀମାମଧ୍ୟରେ ଏକ ଅଧିକ ଛୋଟ କୋଠରି ରହିପାରେ ।]
ବୈଦେ. ବ. (ଫା. ବଖ୍‌ରା)—୧ । ଅଂଶ; ଭାଗ—
ବଖରା 1. Share.
**बखरा** ୨ । ଅଂଶୀଦାର କାରବାର—
2. Partnership concern.
୩ । ବାଣ୍ଟ; ବଣ୍ଟନ—3. Partition
୪ । କୃଷି କାର୍ଯ୍ୟରେ ଦୁଇଜଣଙ୍କ ମଧ୍ୟରେ ଭାଗ କରି କାମ କରିବା ଓ ଫଳ ବାଣ୍ଟି ନେବା; କୃଷିକାର୍ଯ୍ୟରେ ଭାଗଦାରି—
4. The system of division of labour and produce in agriculture.
[ ଦ୍ର—ଏହି ଅର୍ଥରେ ଭାଗ ଶବ୍ଦ ପରେ ବଖର୍‌ା ଶବ୍ଦ ସହଚର-ରୂପେ ମଧ୍ୟ ବ୍ୟବହୃତ ହୁଏ । ]

ବଖର୍‌ା କରିବା—ଦେ. କ୍ରି—୧ । ବଡ଼ ଘରକୁ ଛୋଟ ଛୋଟ କୋଠରିରେ
Bakharā karibā ବିଭକ୍ତ କରିବା—1. To partition a
ବଖରା କରା big house into compartments.
**बखरा करना** ୨ । ବାଣ୍ଟିବା; ବିଭାଗ କରିବା; ଭାଗ ଭାଗ କରି ବାଣ୍ଟି ନେବା—2. To partition; to divide into allotments.
୩ । ବଖର୍‌ା ଧରିବା (ଦେଖ)—3. Bakharā dharibā (See)

ବଖର୍‌ା ଦାର—ବୈଦେ. ବିଣ ଓ ବ. (ଫା)—ଅଂଶୀଦାର; ଭାଗଦାର;
Bakharā dār ସାଝୀଦାର—Cosharer; partner.
ବଖରା ଦାର **हिस्सादार**

ବଖର୍‌ା ଦାରି—ବୈଦେ. ବ. (ଫା)—ଅଂଶୀଦାର; ପରିଶ୍ରମ ଓ ଫଳକୁ
Bakharā dāri ବାଣ୍ଟି ନେବା ରୀତି; ସହକାରୀ—
ବଖରାଦାରୀ **हिस्सादारी** Partnership.

ବଖର୍‌ା ଧରିବା—ଦେ. କ୍ରି—କୌଣସି ଜମିକୁ ଭାଗରେ ବା ସାଝାରେ
Bakharā dharibā ଗ୍ରହଣ କରିବା—To hold a land on
ବଖର୍‌ା ନେବା } ଅନ୍ୟରୂପ bhag or partnership; to
ବଖର୍‌ାରେ ଧରିବା } hold land on the system
ବଖରାଏ ଧରା of division of labour and produce.
**साजीमे लेना**

ବଖର୍‌ା ବସା(ସେ)ଇବା—ଦେ. କ୍ରି—ଭାଗ ବସାଇବା; କୌଣସି ପଦାର୍ଥକୁ
Bakharā basā(se)ibā ଅଂଶୀଦାରମାନଙ୍କ ମଧ୍ୟରେ ବଣ୍ଟନ
ବଖରା ବସାନ କରି ନେବା ପାଇଁ ଯେ ଯାହାର ହିସ୍ସା ପୃଥକ ପୃଥକ୍
**बंटवारा करना** ଅଂଶରେ ବିଭକ୍ତ କରିବା—To apportion; to divide a thing into different allotments or shares; to allot shares.

ବଖର୍‌ା ଲଗା(ଗେ)ଇବା—ଦେ. କ୍ରି—୧ । ଆପଣାର ଜମିକୁ କୃଷୀକୁ ଭାଗରେ
Bakharā lagā(ge)ibā ବିଲି କରିବା—1 To let out
ବଖର୍‌ା ଦେବା } ଅନ୍ୟରୂପ land to a cultivator on the
ବଖର୍‌ାରେ ଲଗାଇବା } system of produce rent.
ବଖରାୟ ଲାଗାନ [ ଦ୍ର—ବଖର୍‌ା ଲଗାଇବା ଜମିରେ କୃଷୀ ନିଜେ
**साझीमे लगाना** ପରିଶ୍ରମ ଓ ବ୍ୟୟ କରିବ ଏବଂ ଜମିର ମାଲିକଙ୍କୁ

ଖଜଣା ନ ଦେଇ ଜମିର ଉତ୍ପନ୍ନ ବସ୍ତୁରୁ ଅଧେ ଦେବ, ଏହି ସର୍ତ୍ତରେ ଧୂଶୀ ଜମିବାଲାଠାରୁ ଜମି ନେଇଥାଏ । ]

୨ । ବଖର୍ ବସାଇବା (ଦେଖ)—
2. Bakharā basāibā (See)

**ବଖରିଆ**—ଦେ. ବଣ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ)—୧ । ଏତେ
Bakhariā ସଂଖ୍ୟକ ବଖରର ପରିମାଣଯୁକ୍ତ ( ଗୃହ ବା କୋଠରି)-
(ବଖୁରିଆ—ଅନ୍ୟରୂପ) 1. (a room or hall) Measuring so many standard-sized rooms.
(ଯଥା— ସାତ ବଖୁରିଆ ଉଦ ।)
୨ । ଏତେ ସଂଖ୍ୟକ କୋଠରିବିଶିଷ୍ଟ—2. Consisting of so many rooms; roomed (e.g. three-roomed).
(ଯଥା—ପାଞ୍ଚବଖୁରିଆ ଘର ।)
ପ୍ରାଦେ॰ ( ଲରିଆ ) ବି—ଘୋଡ଼ା ସଇସ—
Syce; groom of a horse.

**ବଖାଡୁ** – ଦେ. ବଣ—ଗୋଲମାଲିଆ; ଅଡୁଆ ପୂର୍ଣ୍ଣ—
Bakhārdu ॰ बखेड़ाका Full of intricacies.

**ବଖାଣ**—ଦେ. ବି. (ସଂ. ବକ୍ଷ୍ୟମାଣ; ସଂ. ବ୍ୟାଖ୍ୟାନ; ପ୍ରା. ବକ୍ଖାଣ. ଭୁଲ.
Bakhāna ଫା. ବୟାନ୍)—୧ । କଥନ; କହିବା—
ବର୍ଣନ, বয়ান बखान 1. Speaking; statement
ଅଗ କର ଏବେ ବରୁଛ ବଖାଣ । କୃଷ୍ଣସିଂ. ମହାଭାରତ. ଅଦ ।
୨ । ମୁଖବର୍ଣ୍ଣିତ ବିବରଣ—2. Narration; oral description.
୩ । ବର୍ଣ୍ଣନ—3. Describing.
ବଣ—ଉକ୍ତ; କଥିତ—Spoken.
ତାହାଙ୍କ ଯେ ଥିବା ଲକ୍ଷଣ
ଛଟାରେ ହୋଇଛି ବଖାଣ । ଜଗନ୍ନାଥ. ଭାଗବତ ।

**ବଖାଣ କରିବା**—ଦେ. କି. ( ସଂ. ବ୍ୟାଖ୍ୟାନ; ପ୍ରା. ବକ୍ଖାଣ; ଫା.
Bakhāna karibā ବୟାନ୍)—୧। କହିବା—1. To speak
(ବଖାଣିବା—ଅନ୍ୟରୂପ) ପୁଣି କୃଷ୍ଣ ଅଗରେ ବସିଲେ ବଖାଣି ।
বয়ান করা बखानना କୃଷ୍ଣସିଂ. ମହାଭାରତ ସଭ ।
୨ । ବିଶଦ ଭାବରେ କହିବା—
2 To state plainly and extensively.
ତାହା ମୁଁ ଭୂମି ଆଗେ କରୁଛି ବଖାଣ । କୃଷ୍ଣସିଂ. ମହାଭାରତ. ଅଦ ।
୩ । ବର୍ଣ୍ଣନା କରିବା—3. To describe; to narrate.
କେତେ ଇତିହାସ କଥା ବଖାଣିଲେ ମୁନି । ମଧୁସୂଦନ. ବାଲ ରାମାୟଣ ।
୪ । ପ୍ରଚାର କରିବା—4. To proclaim; to publish.
ସେ ଶବଦକୁ ଭଜ ହୋଇ ବାହାରିଲ
ସ୍ୱର୍ଗପୁରେ ଗମ୍ଭୀର କୀର୍ତ୍ତି ବଖାଣିଲ । କୃଷ୍ଣସିଂ. ମହାଭାରତ ବନ ।

**ବଖାଣି ହେବା**—ଦେ. କି—ପରସ୍ପରକୁ କହି ହେବା; କଥୋପକଥନ
Bakhāni hebā କରିବା—To speak to each other;
বয়ান করা बखान करना to talk about.
ବଡ଼ ହୁଏ ନଗର ଜନଙ୍କ ୯ ଭାବ
ବଖାଣି ହୋଇଲେ ଏକା ସେହି ପ୍ରସ୍ତାବ । ଉପେ. ବୈଦେହୀଶବିଳାସ ।

**ବଖାରି**—ଦେ. ବି. (ସଂ. ବଲ୍କଲ)—୧ । ବଂଶ ଶଲାକା; ବାଉଁଶ କାଠି—
Bakhāri 1 A thin rod or stake of bamboo.
বাখারী ୨ । ବାଉଁଶର ଛାଲପଟ୍ଟି—2. The bark-lath of
धज्जी bamboo.

**ବଖାରି ସାହେବ୍**—ଦେ. ବି. (ନାମ)—ଖୋର୍ଦ୍ଧାରେ ଥିବା ପ୍ରସିଦ୍ଧ
Bakhāri sāheb ପୀର ଓ ତାଙ୍କ ଅସ୍ଥାନ—Name of the
(ବୋଖାରି ସାହେବ୍—ଅନ୍ୟରୂପ) seat of a Pir (Mahommedan saint) in the Khurda Subdivision of the Puri District.
[ ଦ୍ର—ଏ ସ୍ଥାନ ଖୋର୍ଦ୍ଧାରୁ ଅଳ୍ପ ଦୂରରେ ଥିବା କାଇପଦର ନାମକ ଗ୍ରାମରେ; ଅନେକ ହିନ୍ଦୁ ଯାତ୍ରୀ ମଧ୍ୟ ଏଠାକୁ ଆସନ୍ତି । ]

**ବଖିଆ** — ବୈଦେ. ବି. (ଫା) — ଏକ ପ୍ରକାର ମଜବୁତ୍ ସିଲାଇ —
Bakhiā Back stitching; a kind of strong
বখিয়া stitch in sewing; double stitch in
बखिया sewing.
[ ଦ୍ର—ପ୍ରଥମେ 'ଡାଗା ସିଲାଇ' କରି ୨ ଖଣ୍ଡ କନାକୁ ସଂଲଗ୍ନ କରିବାକୁ ହୁଏ । ପରେ ଉକ୍ତ ଡାଗା ସିଲାଇ ଉପରେ ଦଢ଼ କରି 'ବଖିଆ' କରିବାକୁ ହୁଏ; ଏ ପ୍ରଣାଳୀରେ ପ୍ରଥମେ ଲୁଗାରେ ଫୋଡ଼ିଆ ବା ଡାଗା ଗଳାଇ ପୁଣି ପଛକୁ ଛୁଞ୍ଚିକୁ ଆଣି ଖଣ୍ଡ ଦୂରକୁ ଆଗ ପର୍ଯ୍ୟନ୍ତ ପୁଣି ଫୋଡ଼ିଆ ମାରିବାକୁ ହୁଏ; ଏ ଭାବରେ ସିଲେଇ ଖୁବ ମଜବୁତ ହୁଏ । ]

**ବଖିଆ କରିବା**—ଦେ. କି— ଦୁଇ ଖଣ୍ଡ କନାକୁ ବଖିଆ ଭାବରେ ସିଲାଇ
Bakhiā karibā କରିବା— To sew two pieces of cloth
বখিয়া করা बखिया करना with double stitches.

**ବଖିଲ୍**—ବୈଦେ. ବଣ. (ଆ. ବଖୀଲ୍ = କୃପଣ)—
Bakhil ୧ । କୃପଣ; ବ୍ୟୟକୁଣ୍ଠ—1. Miserly; niggardly.
বখীল ୨ । ଅଭାବଗ୍ରସ୍ତ—2. Needy; poverty-stricken.
बखील ୩ । ଲୋଭୀ—3. Avaricious.

**ବଖୁରି**—ଦେ. ବି—ଛୋଟ ବଖର୍ ବା କୋଠରି—
Bakhuri A small room.
ଏକା ବଖୁରିକେ ଅଛ ପ୍ରକଞ୍ଚ ଲେଖେଁ ତାଃ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।

**ବଖୁରିଆ** — ଦେ. ବଣ—ବଖରିଆ (ଦେଖ)—
Bakhuriā Bakhariā (See)

**ବଖୁରିକିଆ** —ଦେ. ବଣ—ଯେଉଁ ଗୃହର ପରିମାଣ ଏକବଖର୍ ମାତ୍ର—
Bakhurikiā Having the dimensions of one Bakharā only.

**ବଗ୍‌ରାଇବା**—ପ୍ରାଦେ. (ସମ୍ବଲପୁର) କି. (ସଂ. ବକ୍ରକରଣ; ଭୁଲ. ହି.
Bag-rāibā ବଗ୍‌ରନା)—ସ୍ତୂପୀକୃତ କୌଣସି ବସ୍ତୁକୁ ଖେଳେଇ କରି ଇତସ୍ତତଃ କରି ଦେବା—To scatter heaped-up things.

**ବଗ୍‌ଲା**—ପ୍ରାଦେ. (ବାଲେଶ୍ୱର) ବି—ଧଳା ରଙ୍ଗର ପାରା—
Baglā White pigeon.

**ବଗ**—ଦେ. ବି. (ସଂ. ବକ)—ବକ (ଦେଖ)
Baga বগ बग Baka (See)

**ବଗଚର(ରା)**—ଦେ. ବି. (ସଂ. ବକ + ଚର୍ ଧାତୁ; ଏଠାରେ ବଗମାନେ
Bagachara(rā) ପୋକଜୋକ ଓ ମୀନମାଛ ପାଇବା ଆଶାରେ

**अंगनइ** ଚଉନ୍ତି)—୧ । ସଡ଼କ ପାଖର ନୟନଯୋଡ଼—
1. Roadside ditches; low water channels on both sides of a road.
[ ଦ୍ର—ଏଥିରୁ ମାଟି ଖୋଲା ହୋଇ ସଡ଼କରେ ପଡ଼ୁଥାଏ ଓ ସେଥିରେ ଅଳ୍ପ ପାଣି ଥାଏ, ତେଣୁ ବଗମାନେ ମାଛ ଓ ଗେଣ୍ଡା ଆଦି ଖୋଜିବା ପାଇଁ ସେଠାରେ ଚରି ବୁଲନ୍ତି । ]
୨ । ପୋଖରୀକୂଳର ଯେଉଁ ଅଂଶ ବର୍ଷାଦିନେ ପାଣିରେ ବୁଡ଼ିଯାଏ ଓ ଖରାଦିନେ ସୁଖିଲା ରହେ ( ଯେଉଁଠାରେ ବଗମାନେ ସାଧାରଣତଃ ଖାଦ୍ୟ ଖୋଜି ବୁଲନ୍ତି ) ପୋଖରୀ ବା ହ୍ରଦର କୂଳର ଯେଉଁ ଅଂଶ ବର୍ଷାଦିନେ ଜଳପୂର୍ଣ୍ଣ ଥାଏ ଓ ଯେଉଁ ଅଂଶରେ ଖରାଦିନେ ପାଣି ରହେ ସେହି ଅଂଶ ମଧ୍ୟରେ ଥିବା ଅଳ୍ପ ଢାଲୁ ସମତଳ ସ୍ଥାନ—2. The nearly level portion on the bank of a tank or lake which is filled up with water during the rains and dries up in summer.
ଗୃହପାଖ ଅଢ଼ ବଗଚରଠାରୁ ଦଶବାର ହାତ ଉଚ୍ଚ ।
ଫକୀରମୋହନ• ଛ ମାଣ ଅଠଗୁଣ୍ଠ ।

**ବଗଣ୍ଠା**—ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ପାଟକ ଜାତିବିଶେଷ—
Bagaṭā A class of Śūdras in the district of Ganjam.

**ବଗଡ଼**—ଦେ. ବିଣ. (ସଂ. ବକ୍ର, ବିକୃତ)—୧ । ଜାରଜ—
Bagaṛda 1. Bastard.
বখাটে ୨ । ନୀତିଭ୍ରଷ୍ଟ; କୁଚରିତ୍ର; ଦୁଷ୍ଟ; ଖେଚଡ଼ା—
**बगड, कमिना** 2. Wicked; immoral.
୩ । ମୋଟା—3. Coarse.
୪ । ଅଶ୍ୱତର; ଖଚର—4. Mule.
୫ । ଦୋମିଶା ଜୀବ—5. A cross-breed.
ବି—୧ । ପର୍ବତର ଉପରିଭାଗସ୍ଥ ଗୋଡ଼ି ବା କଙ୍କରମୟ ଉଚ୍ଚଭୂମି—
1. A high gravelly soil on the top of a mountain.
୨ । ଅଶ୍ଳୀଳ ଭାଷା—2. Coarse or indecent language.
୩ । ମୋଟା ଖାଦ୍ୟ—3. Coarse food.
ପ୍ରାଦେ. (ଗଡ଼ଜାତ) ବି—ପାହାଡ଼ର ପାର୍ଶ୍ୱଦେଶରେ ଢାଲୁ ଭୂଇଁ ଚଷି ଜଙ୍ଗଲୀମାନେ ଯେଉଁଠାରେ କାଙ୍ଗୁ ବା ବଡ଼ ହରଡ଼ ବୁଣନ୍ତି—
Land on the slope of a hill where the aborigines grow pulse.

**ବଗଡ଼ା**—ଦେ. ବିଣ. (ସଂ. ବକ୍ର; ବିକରାଳ; ବିକଟ; ବିକୃତ)—
Bagaṛdā ୧ । ମୋଟା—1. Coarse.
(ସରୁ—ବିପରୀତ) ବଗଡ଼ା ଅନ୍ନ ଟିକେ ଆଣିଲା
বগড়া; বোকড়া ବେଲ କରଞ୍ଜ ଲୁଣ ଅଁଳା । ଜଗନ୍ନାଥ• ଭାଗବତ ।
**भद्दा; उजड्ड** ୨ । କର୍କଶ—2 Rough.
(ଯଥା—ବଗଡ଼ା ଲୁଗା ।)

**ବଗଡ଼ାଲୁ**—ପ୍ରାଦେ. (ଗଞ୍ଜାମ) ବି—ମଲକଡ଼ି; ଉପର କାନର ଅଳଙ୍କାର—
Bagaṛdālu An ear-ornament worn on the upper part of the ear.

**ବଗଡ଼ିଆ**—ଦେ. ବିଣ. (ସଂ. ବିକୃତ; ବିକଟ)—୧ । ବଗୁଲିଆ; ଦୁଷ୍ଟ;
Bagaṛdiā ଖେଚଡ଼ା—1. Wicked.
বখাটে; বখাটিয়া ୨ । କଳହପ୍ରିୟ—2. Quarrelsome.
**विगडैल** ୩ । ଅଶ୍ଳୀଳଭାଷୀ—3. Of indecent speech; coarse (person)

**ବଗମେଳ(ଳି)**—ଦେ. ବି. (ସଂ. ବକ+ମିଲ୍ ଧାତୁ)—(ବଗମାନେ ଉଡ଼ିଲା
Bagameḷa(ḷi) ବେଳେ ଧାଡ଼ି ବାନ୍ଧି ଉଡ଼ିଲା ପରି) ବହୁଲୋକ ବା
বকমীল ଅଶ୍ୱାରୋହୀଙ୍କର ଧାଡ଼ି ବାନ୍ଧି ଗତି କରିବା—
**बगमेल** A race of persons or horsemen by forming one line (like the egrets flying in a row.

**ବଗଲ**—ବୈଦେ. ବି. (ଫା. ବଗଲ୍; ତୁଳ• ସଂ. ବାହୁମୂଳ)—
Bagala ୧ । କାଖ; ବାହୁମୂଳର ନିମ୍ନଦେଶ—1. Armpits
বগল ୨ । ପାର୍ଶ୍ୱଦେଶ—2. The side; flank.
**बगल** ୩ । (ଦରଜୀଙ୍କ ଭାଷା)—କୁର୍ତ୍ତାର ଯେଉଁ ତ୍ରିକୋଣ କନା ଛାତି କନା ଓ ପିଠି କନାର ମଧ୍ୟରେ ଦୁଇପାର୍ଶ୍ୱରେ ଲାଗିଥାଏ—3. The triangular piece of cloth on the sides of a shirt
ପ୍ରାଦେ. (ଆଳି ଓ କନିକା) ବି—ମଇର ଦୁଇମୁଣ୍ଡ—
The two ends of a ladder.

**ବଗଲ କୟାଁ**—ପ୍ରାଦେ. (ଆଳି ଓ କନିକା) ବି—ମଇର ଶେଷ ଦୁଇମୁଣ୍ଡ
Bagala kayāñ ଫଳରେ ମରାଯାଇଥିବା ଖିଲ—
The pegs or pins inserted at the two ends of an agricultural ladder.

**ବଗଲ ବଜା(ଜେ)ଇବା**—ଦେ. କ୍ରି. (ଫା. ବଗଲ୍+ସଂ. ବାଦନ)—
Bagala bajā(je)ibā ୧ । ହେଣ୍ଡି ମାରିବା; କାଖ ସନ୍ଧିରେ
বগল বাজান ଏକ କରତଳ ରଖି ପାର୍ଶ୍ୱଦେଶକୁ ବାହୁଦ୍ୱାରା ଆଘାତ
**काँख बजाना** କରିବା; ହାବୁଡ଼ା ବଜାଇବା—1. To strike the arm on the side by putting the palm of the other hand in the armpit.
୨ । ଆନନ୍ଦରେ ବାହୁକୁ ପାର୍ଶ୍ୱ ଦେଶରେ ବାଡ଼େଇ ଶବ୍ଦ କରିବା—2. To strike one's arm on the ribs in glee

**ବଗଲ ବନ୍ଦ(ନ୍ଧ,ନ୍ଦି,ନ୍ଧି)**—ଦେ. ବି. (ଫା. ବଗଲ୍+ସଂ. ବନ୍ଧ)—ଏକ
Bagalaband(ndh,ndi,ndhi) ପ୍ରକାର କୁର୍ତ୍ତା, ଯହିଁର
বগলবন্দী ବୋତାମ ବା ଡୋରି ବଗଲରେ ଥାଏ—A kind of
**बगलबंदी** coat with button or strings below the armpit.

**ବଗଲା**—ସଂ• ବି—ତନ୍ତ୍ରୋକ୍ତ ଦଶମହାବିଦ୍ୟା ମଧ୍ୟରୁ ଏକତମା ; ଦେବୀ-
Bagaḷā ବିଶେଷ—Name of a Tantric Goddess.
(ବଗଳାମୁଖୀ—ଅନ୍ୟରୂପ) [ଦ୍ର—ଏହାଙ୍କ ଆରାଧନା କଲେ ଆରାଧକର ଶତ୍ରୁମାନଙ୍କ ବାକ୍, ମୁଖ, ପଦ, ପାଣି, ଜିହ୍ୱା ସ୍ତମ୍ଭିତ ହୁଏ ଓ ଶତ୍ରୁ ବଶ ହୁଏ । ]

**ବଗ(ଗୁ)ଲା**—ଦେ. ବି. ପୁଂ—(ସଂ. ବକ; ସଂ. ବଲାକା)—ବଗ—
Baga(gu)lā বগলা **बगला** The egret.

(ବଗ[ଗୁ]ଲୀ—ସ୍ତ୍ରୀ) ସକାଳୁ ଉଠି ନିଶ୍ଚର ଓ ମଁସେନ୍ ମହାପାତ୍ର ବଗଲ ବଗଲୀପର ବସିଛନ୍ତି ଜନପ୍ରାଣୀ, ପାଖରେ ନାହିଁ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

ବଗଲ—ଦେ. ବ—ପନାସି (ଦେଖ)
Bagali वगई, वगनो Panāsi (Haines) (See).

ବଗହୁଲା—ଦେ. ବ—ବକ ୩ (ଦେଖ)
Bagahulā Baka 3 (See).

ବଗା—ଦେ. ବଣ. (ସଂ ବୃକ୍କ=ବୋଦା; ମେଣ୍ଢାପରି ମନ୍ଦବୁଦ୍ଧି)—
Bagā ୧ । ଓଲୁ; ଓଲମା—1. Stupid; idiotic
বোকা ୨ । ନିର୍ବୋଧ—2. Foolish
नादान ୩ । ଯେ ଗୋଟାଏ ଆଡ଼କୁ ଅଧିକ ସମୟ ଚାହିଁ ବସିଥାଏ—3. Staring.
ପ୍ରାଦେ. (ସମ୍ବଲପୁର) ବଣ—ପାଗଲ—Mad.

ବଗାତ—ବୈଦେ. ବ—(ଫା. ବାଗ; ତୁଲ. ସଂ. ବାଟିକା)—୧ । ବଗିଚା;
Bagāta ଉଦ୍ୟାନ—1 Garden.
ବଗାଇତ, ବଗାଏତ } ଅନ୍ୟରୂପ. ୨ । ଫଳବଗିଚା—2. Orchard.
বাগ, বাগাত वगीचा, वाग

ବଗାର—ପ୍ରାଦେ. (ସମ୍ବଲପୁର) ବ—ଅଣ୍ଡିରା ମଇଁଷିପିଲା—
Bagāra The male calf of a buffalo.
ପ୍ରାଦେ (ବୌଦ୍ଧ) ବ—ଜନ୍ମ କରି ନ ଥିବା ମାଈ ମଇଁଷି—
A she-buffalo which has not yet borne a calf.

ବଗାରୀ—ପ୍ରାଦେ (ସମ୍ବଲପୁର) ବ—ମଇଁଷି ଛଡ଼ା—
Bagāri A she-calf of a buffalo.

ବଗାଲ—ପ୍ରାଦେ (ସିଂହଭୂମ) ବ—ମାଲିକର ଘରେ ରହି ଗ୍ରାସାଚ୍ଛାଦନ
Bagāla ପାଇ ବାର୍ଷିକ ଦରମାରେ ଯେଉଁ ଗୋରୁରଖୁଆଳ ଚାକିରି କରେ—A cowherd engaged on yearly salary.

ବଗି—ବୈଦେ. ବ—୧ । (ଇଂ. ବଗ୍ଗି) ଦୁଇଚକିଆ ଘୋଡ଼ାଗାଡ଼ି—
Bagi 1. Buggy; gig; a light two-wheeled
বগ্গী वग्गी carriage drawn by a horse.
୨ । (ଇଂ. ବୋଗୀ) ଚାରିଚକିଆ ଗାଡ଼ି—
2. A low four-wheeled carriage; bogie.
ଦେ. ବ (ସଂ. ବକ)—ବକଜାତୀୟ ଏକପ୍ରକାର କୂଳେଚର ପକ୍ଷୀ—A small egret (bird).

ବଗିଚା—ବୈଦେ ବ. (ଫା. ବାଗ୍‌ଚା)—ଉଦ୍ୟାନ—
Bagichā Garden.
[ ଦ୍ର—ଫଳର ବଗିଚାକୁ ବଗାତ ଏବଂ ଶାକ ଶବଜୀର ବା ଫୁଲର ଉଦ୍ୟାନକୁ ବଗିଚା ବୋଲାଯାଏ । ]

ବଗିରାମ—ଦେ. ବ—ବଗି (ଦେଖ)
Bagirāma Bagi (See)

ବଗି ହଙ୍କା(ଙ୍କେ)ଇବା—ଦେ. କ୍ରି—ବଗିର ଘୋଡ଼ାଙ୍କୁ ବାଗକୁ ଧରି
Bagi haṅkā(ṅke)ibā ଘୋଡ଼ାଙ୍କୁ ଚଳାଇବା—To drive
বগিহাঁকা वगीहाँकना a carriage.
[ବଗି ହାଙ୍କିବା, ବଗି ଚଲା(ଲେ)ଇବା—ଅନ୍ୟରୂପ ]

ବଗୁଲ(ଲା)—ଦେ. ବ. ପୁଂ. (ସଂ. ବକ)—ବକଜାତୀୟ କୂଳେଚର ପକ୍ଷି-
Bagula(lā) ବିଶେଷ—A kind of wading bird of the
(ବଗୁଲୀ—ସ୍ତ୍ରୀ) egret species.

ବଗୁଲିଆ—ବୈଦେ. ବଣ—(ସଂ. ବାକ୍‌ବ୍ୟଳୀକ=ଯାହାର ବାକ୍ୟର ସ୍ଥିରତା
Baguliā ନାହିଁ; ତୁଲ ସଂ. ବର୍ବର; ବର୍ବରତୁଲ୍ୟ)—୧ । ଦୁଷ୍ଟ;
ବଗୁଲି, ବବଲ, ବବଲଚଣ୍ଡ, ବବଲିଆ, ବବୁଲଚଣ୍ଡ, ବବୁଲି, ବବୁଲିଆ, ବବୁଲଚଣ୍ଡ } ଅନ୍ୟରୂପ ପାମର; ବର୍ବର ତୁଲ୍ୟ-
1. Wicked; naughty
বক্বলা, বক্বলিয়া ୨ । ବାବଦୂକ—2 Talkative.
नटखट; वावडा ୩ । ମିଛୁଆ—3. Liar.
୪ । ଠକ—4. Cheating.
୫ । ଯାହାର କଥା ଠିକ୍ ନ ଥାଏ—
5. Not true to his words.

ବଗୁଲିଆ ପଣ—ଦେ. ବ—ଦୁଷ୍ଟାମି—
Baguliā paṇa Wickednes ; naughtiness.
(ବଗୁଲିଆଗିରି, ବଗୁଲିଆତ, ବଗୁଲିଆ ପଣିଆ, ବଗୁଲିଗିରି—ଅନ୍ୟରୂପ)
বক্বলাপনা नटखटी, बावडापन

ବଗୁଲି ଘାସ—ପ୍ରାଦେ. (ଗଡ଼ଜାତ) ବ—ଏକ ପ୍ରକାର ଘାସ—
Baguli ghāsa A species of grass.
[ ଦ୍ର—ଏଥିରେ ଦଉଡ଼ି ବଳାଯାଏ । ]

ବଘର(ରେ)ଇବା—ପ୍ରାଦେ (ସମ୍ବଲପୁର) କ୍ରି. (ତୁଲ. ହି. ବଗ୍‌ରାନା)—
Baghra(re)ibā ଗଦା ହୋଇଥିବା କୌଣସି ବସ୍ତୁକୁ ଖେଳେଇ ଦେବା—To scatter a heap of anything.

ବଘର—ଦେ. ବ. (ସଂ. ଅବଘାରଣ; ପ୍ରା. ବଘାରଣ)—
Bagharā ବଘାରିବା କ୍ରିୟା—The act of flavouring
(ବଘର ବଘର—ଅନ୍ୟରୂପ) curry etc by frying it with
ছোঁকা species in oil etc.
बघारना, छौंकना ବଣ—ଯାହା ବଘର ହୋଇଥାଏ—
Flavoured by being fried with spices.

ବଘର(ରେ)ଇବା—ଦେ. କ୍ରି—ବଘାରିବା କ୍ରିୟାର ଣିଜନ୍ତ ରୂପ—
Bagharā(re)ibā The causative form of
ছোঁকান 'Bagharibā.'
छौंकवाना ଅନ୍ୟ ଦ୍ୱାରା ବଘାରିବା କାର୍ଯ୍ୟ କରାଇବା—
To cause curry to be flavoured by another.

ବଘ(ଘେ)ଲ—ବୈଦେ. ବ. (ହିନ୍ଦୀ. ବଘେଲ)—
Bagha(ghe)la କ୍ଷତ୍ରିୟ ବା ରାଜପୁତ ବଂଶବିଶେଷ—
A caste of Rajputs.
ବଘେଲ ବାଦସା ନୃପ କୃଷ୍ଣର । କବିସୂର୍ଯ୍ୟ. କବିତା ।
[ ଦ୍ର—ପୂର୍ବକାଳରେ ବଘଲ କ୍ଷତ୍ରିୟମାନଙ୍କ ଶାସିତ ରାଜ୍ୟ ଅଧୁନାକ ମଧ୍ୟଭାରତ ଏଜେନ୍‌ସିର ବଘେଲଖଣ୍ଡ ନାମରେ ଖ୍ୟାତ । ]

ବଘାର୍‌ବା—ପ୍ରାଦେ (ବସ୍ତର) କ୍ରି—୧ । ସନ୍ତୁଳିବା (ଦେଖ)
Baghār-bā 1. Santulibā ( See )
୨ । ବଘାରିବା (ଦେଖ)—2. Bagharibā ( See )

ବଘାରିବା—ଦେ. କ୍ରି. (ସଂ ଭର୍ଜ ଧାତୁ=ଭାଜିବା; ସଂ. ଅବଘାରଣ)—
Baghāribā ୧ । ଛୁଙ୍କିବା; ତେଲ ବା ଘିଅରେ ମସଲା ଫୁଟାଇ
ফোড়ন দেওয়া, সম্বরা, ছোঁকা ତହିଁରେ ଜଳସିଦ୍ଧ ବ୍ୟଞ୍ଜନାଦିକୁ
बघारना, छौंकना ପରକିବା—1, To flavour water-boiled

curry by frying it with spices in oil or ghee.

୨ । ( ଲକ୍ଷଣାର୍ଥ ) ପ୍ରକାଶ୍ୟରେ ଗାଳମନ୍ଦ କରିବା—2. (figurative) To abuse a person openly.

୩ । ପରର ଗୁପ୍ତ ଦୋଷ ପ୍ରକାଶ କରିବା—3. To divulge another person's secrets.

୪ । ଶେଖୀ ବଘାରିବା; ଆପଣାର ବାହାଦୁରୀ କହି ବୁଲିବା—4. To aggrandise one's self.

ବଘିବା—ପ୍ରାଦେ. ( ଗଡ଼ଜାତ ଓ ସମ୍ବଲପୁର ) କ୍ରି. ( ସଂ. ବଳ=ଗତି Baghibā ହୁ. ଶ. )—ଚଢ଼ିବା; ଆରୋହଣ କରିବା—To ride; to climb.

ବଙ୍କ—ସଂ. ବି. ( ବନକ୍ ଧାତୁ=ଗମନ କରିବା+କର୍ତ୍ତି. ଅ )—Banka ବକ୍ର; ବଙ୍କା—Curved; crooked.

ପ୍ରାଦେ. (ବୌଦ୍ଧ) ବି.—ବଗ—Egret.

ବଙ୍କସେନି—ଦେ. ବି. (ସଂ. ବଙ୍ଗସେନ)—ଅଗସ୍ତି ବୃକ୍ଷ—Ba kasena Sesbania Grandiflora. বাক

ବଙ୍କସେନ ତରୁ ତରୁଣୀ ଅଙ୍ଗରେ ତା'ର ନାମ ନାହିଁ ।

ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ବଙ୍କା—ଦେ ବିଣ. (ସଂ. ବଙ୍କ, ବକ୍ର; ବନକ୍ ଧାତୁ=ଗତି କରିବା)—Bankā ୧ । କୁଟିଳ; ବକ୍ର—1. Curved; crooked.

(ବଙ୍କେଇ—ସ୍ତ୍ରୀ) ୨ । ନତ—2. Bent; inclined.

(ସିଧା—ବିପରୀତ) ୩ । ଜଟିଳ—3. Complicated.

বাঁকা ବିଣ—ଅଯଥାର୍ଥ ରୂପେ ଉଚ୍ଚାରିତ—बाँका, बंका Improperly articulated.

ସାହେବ ପୋଷାକ କେହି ଅବା ପିନ୍ଧି
ସମ୍ମିତେ କହଇ ବଙ୍କା ବଙ୍କା ଭୁଡ଼ା । ରାଧାନାଥ. ଦରବାର ।

ବଙ୍କା(ଙ୍କେ)ଇବା—ଦେ. କ୍ରି. ( ସଂ. ବନକ୍ ଧାତୁ )—Bankā(nke)ibā ୧ । ବକ୍ର କରିବା—1. To bend.

(ବଙ୍କା କରିବା—ଅନ୍ୟରୂପ) ୨ । ବକ୍ର ହେବା—2. To be bent or curved. বাঁকান बाँकाना

ବଙ୍କା ଟଙ୍କା—ଦେ. ବିଣ—(ନିରର୍ଥକ ସହଚର; ସଂ ବଙ୍କୁର ଟଙ୍କୁର)—Bankātankā ଅନେକ ସ୍ଥାନରେ ବକ୍ର—Bent at many places.

ବଙ୍କା ଟଙ୍କା } ଅନ୍ୟରୂପ আঁকাবাঁকা
ବଙ୍କୁର ଟଙ୍କୁର } बाँकाटेढा

ବଙ୍କାମୁହାଁ—ଦେ. ବିଣ - ବକ୍ର ମୁଖବିଶିଷ୍ଟ—Having the face Bankāmuhāñ বাঁকামুখো मुहँटेढा turned to one side.

( ବଙ୍କାମୁହିଁ—ସ୍ତ୍ରୀ )

ବଙ୍କାଲୀ—ଦେ. ବି—ଦେବୀବିଶେଷ—Bankāli Name of a popular Goddess.

ବଙ୍କି—ଦେ. ବି. (ସଂ. ବକ୍ର)—ଫୁଲର ନାଡ଼—Banki डंटी The stem of a flower.

ପ୍ରାଦେ. (ସମ୍ବଲପୁର) ବି—ଧାନଗଛର ରୋଗବିଶେଷ—A disease attacking paddy plants.

ବଙ୍କିଆ—ଦେ. ବି. (ସଂ. ବକ୍ର)—ଗୋଡ଼ରେ ପିନ୍ଧିବା ଏକପ୍ରକାର ବଳା; Bankiā ବାଙ୍କି—A kind of anklet

ମଞ୍ଜୀର ଯୋଗେ ପୂରିକରି ଅଙ୍ଗି—
ଉଚ୍ଚଳ ବଙ୍କିଆ ଲଗି ସେ—କବିସୂର୍ଯ୍ୟ. ଚନ୍ଦ୍ରକଳା ।

ବଙ୍କିମ—ଦେ. ବିଣ—(ସଂ. ବଙ୍କିମ)—ବକ୍ର—Bankima Curved; bent; crooked.

(ବଙ୍କିମା—ଅନ୍ୟରୂପ) বঙ্কিম बाँका

ତୋ ମନ୍ଦ ପଦୁଗୌରଭ ସୁଧା ଯୁଗରେ ବଙ୍କିମ ବଚନ ସୃଷ୍ଟି—
ପ୍ରାଚୀ. ଉଷବାବୁଧ ।

ବଙ୍କିମଚନ୍ଦ୍ର—ଦେ. ବି. (ନାମ)—ବଙ୍ଗୀୟ ସୁପ୍ରସିଦ୍ଧ ସ୍ୱର୍ଗୀୟ ଉପନ୍ୟାସକାର Bankimachandra ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ—Name of a very talented Bengali novelist; Bankima Chandra.

[ ଦ୍ର—ଏହାଙ୍କ ଜନ୍ମ ଖ୍ରୀ ୧୮୩୮—ମୃତ୍ୟୁ ୧୮୯୪ । ଏ ପ୍ରଥମ ବଙ୍ଗାଳୀ ଗ୍ରାଜୁଏଟ୍ । ଏ ୧୮୫୮ ଠାରୁ ୧୮୯୧ ପର୍ଯ୍ୟନ୍ତ ଡେପୁଟି କଲେକ୍ଟର ଥିଲେ । ଏ କେତୋଟି କ୍ଷୁଦ୍ର ପଦ୍ୟ ରଚନା କରି ଶେଷରେ ବଙ୍ଗଳାରେ ଦୁର୍ଗେଶନନ୍ଦିନୀ, କପାଳକୁଣ୍ଡଳା, ମୃଣାଳିନୀ, ବିଷବୃକ୍ଷ ଓ ଅନ୍ୟାନ୍ୟ ଅନେକଗୁଡ଼ିଏ ଉପନ୍ୟାସ ଲେଖିଥିଲେ ଓ ବଙ୍ଗଦର୍ଶନ ନାମକ ମାସିକ ପତ୍ର ସମ୍ପାଦନ କରିଥିଲେ । ଏ ଧର୍ମ-ତତ୍ତ୍ୱ, କୃଷ୍ଣଚରିତ ନାମକ ଧର୍ମରହସ୍ୟପୂର୍ଣ୍ଣ ଗ୍ରନ୍ଥ ଲେଖିଥିଲେ । ଏ ଆଧୁନିକ ବଙ୍ଗସାହିତ୍ୟର ଯୁଗପ୍ରବର୍ତ୍ତକ । 'ବନ୍ଦେମାତରଂ' ସଙ୍ଗୀତ ଏହାଙ୍କ ରଚିତ । ]

ବଙ୍କିମ ନୟନା—ଦେ. ବିଣ—ବାମାକ୍ଷୀ; ବକ୍ରନୟନା—Casting Bankima nayanā glances through the corner of the eyes; casting oblique glances

ବଙ୍କିମ ନୟନା ମୋ ହୋଇଲା ଏହି ମତ ।
ଭଞ୍ଜ, ବୈଦେହୀଶବିଳାସ ।

ବଙ୍କିଳ—ଦେ. ବି—କଦମ୍ବ ନାଡ଼—Bankila The stalk of Anthocephalus Kadamba.

ବଙ୍କିଳ ତୁଲ୍ୟ ଖୋଜିଲେ ନ ପାଇବା ମତ—
ଭଞ୍ଜ. ବୈଦେହୀଶବିଳାସ ।

ବଙ୍କୁ—ସଂ. ବିଣ—(ବୈଦିକ; ବଙ୍କ+ଉ)—ବକ୍ର, କୁଟିଳ—Banku Crooked; bent; curved.

ବଙ୍କୁ ନାଡ଼(ଳ)—ଦେ ବି. (ଶରୀରଭେଦ) (ସଂ. ବକ୍ର ଓ ନାଳ)—Banku nārda(la) ଭ୍ରୂମଧ୍ୟସ୍ଥ ବଙ୍କୁ—The point between the eye brows.

ଶରୀରଭେଦ (ଦେଖ)—Sarirabheda (See).

ନୟନ ପବନ ନାଶିଲେ
ବସିବ ନେଇ ବଙ୍କୁନାଳେ—ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।

ବଙ୍କୁର—ସଂ. ବି—(ବଙ୍କ+ଉର)—ବଙ୍କା—Bankura Curved; bent; crooked.

( ବଙ୍କ୍ୟ—ଅନ୍ୟରୂପ ) [ବଙ୍କୁର ସଙ୍ଗେ ଟଙ୍କୁର ନିରର୍ଥକ ସହଚରରୂପେ ସଂସ୍କୃତ ଶ୍ଳୋକରେ ବ୍ୟବହୃତ ହୋଇଅଛି] ।

ବଙ୍କୁଲି—ଦେ. ବିଣ. ( କ୍ଷୁଦ୍ରାର୍ଥ )—୧ । ବଙ୍କା ଓ ଛୋଟ (ବାଡ଼ି)—Bankuli 1. Small and curved (stick).

বাঁকুয়া ୨ । ଈଷତ୍ ବକ୍ର—बकुली 2. Slightly curved.

**ବଙ୍କୁଲି ବାଡ଼ି**—ଦେ. ବି—୧ । ଯେଉଁ ବାଡ଼ିର ଅଗ ବଙ୍କା—
Bankuli bardi 1. Stick with a curved top.
বাঁকুয়াছড়ি ୨ । ଯେଉଁ ବାଡ଼ିର ଦେହ ୨।୩।୪ ସ୍ଥାନରେ ବଙ୍କା—
**वक्रुलीछडी** 2. A stick having a curved body.

**ବଙ୍ଗ**—ସଂ. ବି. (ବନ୍‌ଗ ଧାତୁ=ଖଞ୍ଜ ଗତି+ଅଧିକରଣ. ଅ)—
Banga ୧ । ଧାତୁବିଶେଷ; ରଙ୍ଗ; ଟିଣ—
রাঙ 1. Tin (metal).
**वंग** ୨ । ଉତ୍ତର ଭାରତର ପୂର୍ବଦେଶବିଶେଷ—
ତେ. ତଗରମୁ 2. The Province of Bengal.
[ ଦ୍ର—ବର୍ତ୍ତମାନ ଯାହା ପୂର୍ବବଙ୍ଗ ନାମରେ ଖ୍ୟାତ, ଅର୍ଥାତ୍ ପଦ୍ମାନଦୀର ପୂର୍ବରେ ସ୍ଥିତ ପ୍ରଦେଶ, ପୂର୍ବେ ତାହା 'ବଙ୍ଗ' ଦେଶ ଥିଲା । ପଶ୍ଚିମ ବଙ୍ଗକୁ ପୂର୍ବେ 'ଗୌଡ଼ ଓ ରାଢ଼' ଦେଶ କହୁଥିଲେ ବର୍ତ୍ତମାନର ବଙ୍ଗ ପ୍ରଦେଶ ପୂର୍ବକାଳର ବଙ୍ଗ, ରାଢ଼ ଓ ଗୌଡ଼ ଦେଶର ମିଶ୍ରଣ । ]
୩ । (ବଂ=ଜଳ, ସମୁଦ୍ର+ଗମ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ; ଯେ ଜଳମୟ ସ୍ଥାନରେ ଗତି କରେ)—କେଉଟ; ନୋଳିଆ—3. Fisherman.
ବିଣ—୧ । ବଙ୍ଗଦେଶୀୟ—1. Pertaining to the country of Bengal.
୨ । ବଙ୍ଗୀୟ; ବଙ୍ଗାଳୀ; ବଙ୍ଗବାସୀ—2. Bengalee.
ଦେ. ବି—ବଙ୍ଗ ଭସ୍ମ—Oxide of tin.

**ବଙ୍ଗଜ**—ସଂ. ବିଣ—ପୂର୍ବବଙ୍ଗରେ ଜାତ—
Bangaja Born in East Bengal.

**ବଙ୍ଗଜ କାୟସ୍ଥ**—ଦେ. ବି—ପୂର୍ବବଙ୍ଗ ବା ଢାକାଦେଶୀୟ କାୟସ୍ଥ—
Bangaja kāyastha A class of Kāyasthas of
बङ्गज कायस्थ East Bengal.

**ବଙ୍ଗଣ**—ପ୍ରାଦେ. (ମେଦିନୀପୁର) ବି. (ସଂ. ବଙ୍ଗନ)—ବାଇଗଣ—
Bangana Brinjal.

**ବଙ୍ଗନ**—ସଂ. ବି. (ବନ୍‌ଗ ଧାତୁ=ଖଞ୍ଜ ହେବା+ଅନ)—
Bangana ବାର୍ତ୍ତାକୀ; ବାଇଗଣ—Egg-plant.

**ବଙ୍ଗନ(ନା) ପ(ପା)ଲ୍ଲୀ**—ଦେ. ବି. (ନାମ)—ଦକ୍ଷିଣ ଭାରତର ମୁସଲମାନ୍ ନବାବଙ୍କ ଶାସିତ ଏକ ରାଜ୍ୟ—
Bangana(nā)pa(pā)lli
বাগনান পলী Bagnanpalli; name of an Indian
**बंगनापाली** State in Southern India.
[ ଦ୍ର—ଏହି ସ୍ଥାନର ଉତ୍କୃଷ୍ଟ ଆମ୍ବ 'ବାଇଗଣ ପଲେଇ ଆମ୍ବ' ରୂପେ ଭାରତରେ ସର୍ବତ୍ର ବିଖ୍ୟାତ । ]

**ବଙ୍ଗ ଭସ୍ମ**—ସଂ. ବି—ଆୟୁର୍ବେଦିକ ପ୍ରକ୍ରିୟାରେ ପ୍ରସ୍ତୁତ ଟିଣ ଧାତୁର ପାଉଁଶ—
Banga bhasma Oxide of tin prepared according to the Āyurbeda.

**ବଙ୍ଗର ଗୁଡ଼ିଆ**—ପ୍ରାଦେ. (ଗଡ଼ଜାତ) ବି—ଏକଜାତୀୟ ଗୁଡ଼ିଆ—
Bangara gurdiā A class of confectioners.
[ ଦ୍ର—ଏମାନେ ଗୁଆ, ଗୁଣ୍ଡି ଓ ବଣିଆତି ମସଲା ବିକନ୍ତି, କିନ୍ତୁ ଓଡ଼ିଶାର ଗୁଡ଼ିଆମାନଙ୍କ ପରି ମୁଡ଼ି, ଉଖୁଡ଼ା ଓ ମିଷ୍ଟାନ୍ନ ପ୍ରସ୍ତୁତ କରନ୍ତି ନାହିଁ । ]

**ବଙ୍ଗଳା**—ଦେ. ବି. (ସଂ. ବଙ୍ଗ)—୧ । ବଙ୍ଗ ଦେଶ—
Bangaḻā 1. Bengal.
বাঙ্গলা ୨ । ବଙ୍ଗୀୟ ଭାଷା—2. Bengalee language.
**वंगला; बगाल** ୩ । ମଉଡ଼ମରା ଘର; ଚୂଉଚାଳିଆ ଘର; ଯେଉଁ ଘରର ଚାରିପାଖରେ ତ୍ରିକୋଣାକାର ଚାଳମାନ ଥାଏ—
3. Bungalow; a house with 4 simple thatches on four sides.
[ ଦ୍ର—ସମ୍ଭବତଃ ବଙ୍ଗଦେଶରେ ଏହିପରି ମଉଡ଼ମରା ଘର ବେଶି ଥିବାରୁ ଏ ପ୍ରକାର ଘରକୁ 'ବଙ୍ଗଳା' ବୋଲାଯାଏ । ]
ବିଣ—ବଙ୍ଗ ଦେଶୀୟ—Belonging to Bengal
ପ୍ରାଦେ. (ସମ୍ବଲପୁର) ବି—ମହାନଦୀ କୂଳର ପଟୁ ଜମିରେ ଚାଷ ହେଉଥିବା ଏକପ୍ରକାର ଫୁଟି ଫଳ—A kind of cucumber grown on the silt of the Mahānadī river
[ ଦ୍ର—ସମ୍ଭବତଃ ଏହା ପ୍ରଥମେ ବଙ୍ଗଦେଶରୁ ଆସିଥିଲା । ]

**ବଙ୍ଗଳା ପାନ**—ଦେ. ବି—ବଙ୍ଗଦେଶରେ ମିଳୁଥିବା ସୁଗନ୍ଧଯୁକ୍ତ ଏକ ପ୍ରକାର ପାନ—
Bangalā pāna A species of betel
**वंगला पान** grown in Bengal.

**ବଙ୍ଗଳା ବାଟ**—ପ୍ରାଦେ. (ପୁରୀ) ବି—ପୁରୀର ପଣ୍ଡା ଗୁମାସ୍ତାମାନଙ୍କର ଯାତ୍ରି ସଂଗ୍ରହ କରିବାପାଇଁ ବଙ୍ଗଦେଶକୁ ଯିବା—
Bangalā bāṭa The agents of the Paṇḍās of Puri going to Bengal to secure pilgrims to Lord Jagannath
ଏଇ ପେଟ ! ଏଇ ପେଟ ଲାଗି ବଙ୍ଗଳା ବାଟ । ଚଗ ।

**ବଙ୍ଗଳା ବାଦାମ**—ଦେ. ବି—ଏକ ଜାତୀୟ ବାଦାମ—
Bangaḻā bādāma Terminalia Catapha.
[ ଦ୍ର—ଏହାର ପତ୍ର ଦେଶୀ ବାଦାମର ପତ୍ରଠାରୁ ଅଧିକ ସୁନ୍ଦର ଓ ଚିକ୍କଣ । ]

**ବଙ୍ଗଳା ଶ୍ରୀ**—ଦେ. ବି—ରାଗବିଶେଷ—Name of a metre.
Bangaḻā śrī [ ଦ୍ର—ରାଗ ତଳେ ନୋଟ୍ ଦ୍ରଷ୍ଟବ୍ୟ । ]

**ବଙ୍ଗ ସେନ**—ସଂ. ବି—ବକପୁଷ୍ପ; ଅଗସ୍ତି ଗଛ ଓ ଫୁଲ—
Banga sena Sesbania Grandiflora (tree and flower).

**ବଙ୍ଗାବ୍ଦ**—ସଂ. ବି. (ଆଧୁନିକ ପ୍ରୟୋଗ)—ବଙ୍ଗଦେଶର ପ୍ରଚଳିତ ସନ—
Bangābda The Bengalee year.
[ ଦ୍ର—ଶକାବ୍ଦରୁ ୫୧୫ ଫେଡ଼ିଲେ ବଙ୍ଗାବ୍ଦ ହୁଏ । ଓଡ଼ିଶା ପ୍ରଚଳିତ 'ଫସଲୀ' ସନ ସଙ୍ଗେ ୧୫୩ ଯୋଗ କଲେ ବଙ୍ଗାବ୍ଦ ହୁଏ । ଏ ସନ ବୈଶାଖରୁ ଆରମ୍ଭ ହୁଏ । ଓଡ଼ିଆ ସନ ଭାଦ୍ର ମାସ ସୁନିଆଁଠାରୁ ଆରମ୍ଭ ହୁଏ । ଏହି ପ୍ରଭେଦ ଛଡ଼ା ଓଡ଼ିଆ ସନ ଓ ବଙ୍ଗାବ୍ଦ ସମାନ । ସନ ତଳେ ନୋଟ୍ ଦ୍ରଷ୍ଟବ୍ୟ । ]

**ବଙ୍ଗାଳ**—ଦେ. ବି. (ସଂ. ବଙ୍ଗ=ଟିଣ)—ଧଳା ରଙ୍ଗ—
Bangāḻa White colour.
ରଙ୍ଗରେ ବଙ୍ଗାଳ ଗଣ୍ଡିରେ ହିଙ୍ଗୁଳ
ମୂଦ ପଦ୍ମ ବିଶେ ଧରି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ବଙ୍ଗାଲ୍**—ଦେ. ବି ( ବ. ବାଂଗାଲ୍ )—ପୂର୍ବ ବଙ୍ଗୀୟ ବ୍ୟକ୍ତି—
Bangāl বাঙ্গাল A man of east Bengal.

**ବଙ୍ଗାଲିୟା**—ଦେ. ବିଣ—ବଙ୍ଗାଳୀମାନଙ୍କ ମଧ୍ୟରେ ପ୍ରଚଳିତ—
Bangāliyā Prevalent amongst the Bengalees.
বাঙ্গালী बंगाली (ଯଥା—ବଙ୍ଗାଳିୟା ଖୋଷା ।)

**ବଙ୍ଗାଲୀ**—ଦେ. ବି. ପୁଂ—ବଙ୍ଗଦେଶୀୟ ବ୍ୟକ୍ତି—
Bangāli The Bengalee people.
(ବଙ୍ଗାଲୁଣୀ—ସ୍ତ୍ରୀ) ବିଣ—ବଙ୍ଗଦେଶୀୟ—Bengalee;
বাঁগালী बंगाली pertaining to Bengal.

**ବଙ୍ଗାଲି ଆଳୁ**—ପ୍ରାଦେ. (ଗଞ୍ଜାମ ବି—ଗୋଲ ଆଳୁ; ବିଲାତି ଆଳୁ—
Bangāli ālu Potato.

**ବଙ୍ଗାଲୀ କନ୍ଦା**—ପ୍ରାଦେ. (ଜୟପୁର ଓ ବିଶାଖାପଟ୍ଟଣା)—ବିଲାତି ଆଳୁ—
Bangāli kandā Potato.

**ବଙ୍ଗାଲୀ ତନ୍ତି**—ଦେ. ବି—ଓଡ଼ିଶାରେ ବହୁ ପୁରୁଷ ହେଲା ଉପନିବେଶ
Bangāli tanti କରିଥିବା ବଙ୍ଗବାସୀ ତନ୍ତି—A class of weavers who originally migrated from Bengal generations ago.
[ ଦ୍ର—ଏମାନେ ବହୁ ପୁରୁଷ ହେଲା ଓଡ଼ିଶାରେ ରହି ଓଡ଼ିଆମାନଙ୍କ ଭାଷା ଓ ରୀତିନୀତିକୁ ବ୍ୟବହାର କରୁଅଛନ୍ତି । ]

**ବଙ୍ଗୀ**—ଦେ. ବି. (ସଂ. ବଙ୍ଗ)—ଏକ ପ୍ରକାର ମୋଟ ଧାନ—
Bangi A kind of coarse paddy.
**बंगलिया** ପ୍ରାଦେ. (ସମ୍ବଲପୁର) ବି—ବଙ୍କି; ଧାନ ଗଛର ରୋଗବିଶେଷ—A disease of the paddy plant.

**ବଚ୍ (ଧାତୁ)**—ସ—କହିବା—
Bach (root) To speak.

**ବଚ**—ସ. ବି. ( ବଚ୍ ଧାତୁ + କର୍ତ୍ତୃ. ଅ )—
Bacha ୧ । ଶୁକପକ୍ଷୀ—1. Parrot.
ସ. ବଗ୍ର, ଷଡ଼ଗ୍ରନ୍ଥା, ଉଗ୍ରଗନ୍ଧା, ୨ । ସୂର୍ଯ୍ୟ (ହି. ଶ)—
କଞ୍ଚଲ, ଲୋମଶା, କ୍ଷୁଦ୍ରପର୍ଣ୍ଣୀ, 2. The sun.
ଇକ୍ଷୁପର୍ଣ୍ଣୀ, ଗୋଲୋମୀ, ଶତପର୍ବିକା, ୩ । (+କର୍ମ.ଅ)—କାରଣ(ହି.ଶ)-
କ୍ଷୁଦ୍ରପତ୍ରୀ, ମଙ୍ଗଲ୍ୟା, ଜଟିଲା, 3. Cause.
ଉଗ୍ରା, ତୀକ୍ଷ୍ଣା, ଭଦ୍ରା, କାଙ୍ଗା ଦେ. ବି—୧ । କନ୍ଦ ଆଦି ବର୍ଗର
বাচ, বচা, ঘোরবচ, বচ্ ଶାକବିଶେଷ—1. Acorus
बच, घोरबच Calamus (plant); sweet
ତେ. ବଡଜ୍, ନାହିରସ, ବସା flag (root).
ତା. ବସମ୍ବୁ [ ଦ୍ର—ଏହା ଉତ୍ତରଭାରତ,
ମ. ବେଖଁଣ୍ଡେ ବ୍ରହ୍ମଦେଶ ଓ ଦକ୍ଷିଣଭାରତର ପାବତ୍ୟ ପ୍ରଦେଶରେ ଜନ୍ମେ । ଏଥିର ମୂଳ କଟୁ ଓ ଔଷଧରେ ବ୍ୟବହୃତ ହୁଏ । ବଚ ଦୁଇ ପ୍ରକାର, ଯଥା—ଅରୁଣ ବର୍ଣ୍ଣ ବଚ ଓ ଶ୍ୱେତ ବଚ । ଅରୁଣ ବର୍ଣ୍ଣ ବଚର ସ. ନାମ ବଗ୍ର; ଶ୍ୱେତ ବଚର ସ ପର୍ଯ୍ୟାୟ—ଶ୍ୱେତ ବଗ୍ର, ହୈମବତୀ, ଦୀର୍ଘ ପତ୍ରିକା, ମେଧା (ଦ୍ରବ୍ୟଗୁଣ କଳ୍ପଦ୍ରୁମ) । ପାରସ୍ୟ ଦେଶରୁ ଯେଉଁ ବଚ ଆସେ ତାକୁ ବାଲବଚ ବା ଘୋଡ଼ା ବଚ କହନ୍ତି ।
ବୈଦ୍ୟକ ମତରେ ବଚ ବିବନ୍ଧ, ଉଦରାଧ୍ମାନ, ଶୂଳ, ଅପସ୍ମାର, କଫ, ଉନ୍ମାଦ, ଭୂତଦୋଷ, କ୍ରିମି ଓ ବାୟୁ ବିନଷ୍ଟ କରେ ଓ ଏହା ଦ୍ୱାରା ମଳ ମୂତ୍ର ଶୋଧିତ ହୁଏ । ଏହା କଣ୍ଠର ହିତକର । ଭାବ ପ୍ରକାଶରେ ବଚ ତିନି ପ୍ରକାର ଲେଖା ହୋଇଅଛି; ୧. ବଚ, ୨. ଖୁରାସାନୀ ବଚ ଓ ୩. ମହାଭରୀ ବଚ । ଖୁରାସାନୀ ବଚ ଧଳା ଓ ଈଷତ୍ ମିଷ୍ଟ, ଏହା ମଣ୍ଡ ଓ ମେଧାବର୍ଦ୍ଧକ; ମହାଭରୀ ବଚ କାସ ଓ କଫ ଦୂର କରେ ଓ ମୁଖ ଶୋଧନ କରେ—ହି. ଶ. ]
୨ । ବହୁତ କଥାବାର୍ତ୍ତା ବା ପରିଶ୍ରମ କଲେ ମୁହଁରୁ ଯେଉଁ ଫେନଯୁକ୍ତ ନାଳ ବାହାରେ—2. Froth appearing on the lips on account of too much talking.
୩ । ବାକ୍ୟ—3. Speech.
ବଚ ଶ୍ରେଣୀ ତେଜ ଗଲେ ସମସ୍ତ
ବଦାସ୍ୟ ପଢନ ସନ୍ତାକ ଗୁହିଁଲ ମଡ । ଉଛ. ବୈଦେଶ୍ରୀଶବିଳାସ ।

**ବଚକାନୀ**—ବୈଦେ. ବିଣ. (ହିନ୍ଦୀ; ଫା. ବଚା; ମୂଳ ସ. ବତ୍ସ ପ୍ରା. ବଚ୍ଛ)-
Bachakāni ୧ । ଶିଶୁମାନଙ୍କ ଯୋଗ୍ୟ—1. Fit for infants
বচকানী बचकाना or children.
( ଯଥା—ବଚକାନୀ ଯୋତା । )
୨ । ଶିଶୁଜନୋଚିତ—2. Childish; befitting a child.
ବି—ଶିଶୁଙ୍କ ପରିଧେୟ ବସ୍ତ୍ର—A cloth for children's wear.

**ବଚନ**—ସ. ବି. ( ବଚ୍ ଧାତୁ+ଭାବ. ଅନ )—୧ । କଥନ—
Bachana 1. Speaking; utterance.
ସ. ବଚନ ଶବ୍ଦର ଅନ୍ୟ ୨ । (+କର୍ମ.ଅନ) ବାକ୍ୟ; କଥା;
ସଂସ୍କୃତ ପ୍ରତିଶବ୍ଦମାନ :— ମୁଖୋଚ୍ଚାରିତ ବାକ୍ୟ—
ଇରା, ସରସ୍ୱତୀ, ବ୍ରାହ୍ମୀ, ଭାଷା, 2. Speech; spoken
ଗୀଃ, ଗୀର୍ଦେବୀ, ଭାରତୀ, ବାକ୍, matter.
ବାଣ୍ଟ, ବର୍ଣ୍ଣମାତୃକା, ବ୍ୟାହାର, ୩ । ଶାସ୍ତ୍ରକଥିତ ବାକ୍ୟ—
ଲପିତ, ବାକ୍ୟ, ବାଣୀ 3. A saying of scriptures, a passage from a sacred book.
୪ । ସତ୍ୟ; ଅଙ୍ଗୀକାର; ପ୍ରତିଜ୍ଞା—4. A promise.
୫ । ବ୍ୟାକରଣର ଏକତ୍ୱ ବା ଏକାଧିକତ୍ୱଜ୍ଞାପକ ବିଧାନବିଶେଷ—5. (grammar) Number.
[ ଦ୍ର—ସଂସ୍କୃତ ବ୍ୟାକରଣରେ ତିନିଗୋଟି ବଚନ ଅଛି, ଯଥା—ଏକବଚନ, ଦ୍ୱିବଚନ ଓ ବହୁବଚନ; କିନ୍ତୁ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀଭାଷାରେ ବଚନ ଦୁଇଟି, ଯଥା—ଏକବଚନ ଓ ବହୁବଚନ ।]
ଦେ. ବି—୧ । ଉପଦେଶ—1. Advice.
୨ । ଆଜ୍ଞା—2. Order.

**ବଚନ କରିବା**—ଦେ. କ୍ରି—ପ୍ରତିଜ୍ଞା କରିବା—To make a
Bachana karibā promise; to give one's word.
(ବଚନ ଦେବା—ଅନ୍ୟରୂପ) বচন দেওয়া बचन देना

**ବଚନ କାରୀ**—ସ. ବିଣ. ପୁଂ. (ବଚନ+କୃ ଧାତୁ+କର୍ତ୍ତୃ. ଇନ୍; ୧ମା.
Bachana kāri ୧ ବ)—ଆଜ୍ଞାକାରୀ (ହି. ଶ.)—Obedient;
(ବଚନକାରିଣୀ—ସ୍ତ୍ରୀ), carrying out orders.
(ବଚନକାରିତା—ବି)

**ବଚନଗ୍ରାହୀ**—ସଂ. ବିଣ. ପୁଂ. (ବଚନ+ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—ଯେ କଥା ମାନେ—One who respects another's behests.
Bachanagrāhī
(ବଚନଗ୍ରାହିଣୀ—ସ୍ତ୍ରୀ)

**ବଚନ ପିତା ହେବା**—ଦେ. ବାକ୍ୟ—ଜଣକଦ୍ୱାରା ଅନ୍ୟ ଜଣଙ୍କୁ କଥିତ ବାକ୍ୟ ଦ୍ୱିତୀୟ ବ୍ୟକ୍ତିଙ୍କୁ ଅପ୍ରୀତିକର ବୋଧ ହେବା—The words of a person addressed to another seeming unpleasant to the latter.
Bachana pitā hebā
(ବଚନ ପିତା ଲାଗିବା—ଅନ୍ୟରୂପ)

ଯେବେ ହେଲେ ପିତା ବଚନ ତାଙ୍କୁ ପିତା
ହେଲ ସୋହୁଥିଲୁ ତ ମରଣ ହେବଟା । କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ବଚନ ବଦ୍ଧ**—ସଂ. ବିଣ. ପୁଂ. (ତୃତୀୟା ତତ୍; ବଚନ+ବଦ୍ଧ)—ପ୍ରତିଜ୍ଞାବଦ୍ଧ—Bound by a promise; promise-bound.
Bachana baddha
(ବଚନବଦ୍ଧା—ସ୍ତ୍ରୀ)

**ବଚନ ବିଦଗ୍ଧା**—ସଂ. ବିଣ. ସ୍ତ୍ରୀ. (ସପ୍ତମୀ ତତ୍)—କାବ୍ୟୋକ୍ତ ନାୟିକା-ବିଶେଷ; ଯେଉଁ ପରକୀୟା ନାୟିକା ଆପଣା ବଚନଚାତୁରୀଦ୍ୱାରା ନାୟକର ପ୍ରୀତି ସାଧନ କରେ (ହି. ଶ.)—An epithet of a class of mistresses in love-stories who captivate the gallants' heart by their art of speech.
Bachana bidagdhā

**ବଚନ ଲକ୍ଷିତା**—ସଂ. ବିଣ. ସ୍ତ୍ରୀ. (ସପ୍ତମୀ ତତ୍)—କାବ୍ୟୋକ୍ତ ନାୟିକା-ବିଶେଷ; ଯେଉଁ ପରକୀୟା ନାୟିକାର କଥାବାର୍ତ୍ତାରୁ ଉପପତିଠାରେ ଥିବା ପ୍ରେମ ପରିଲକ୍ଷିତ ହୁଏ—An epithet of a class of mistresses in love-stories whose attachment to the paramours is indicated by their speech.
Bachana lakshitā

**ବଚନ ଶୂର**—ସଂ. ବିଣ. (ତୃତୀୟା ତତ୍; ବଚନ+ଶୂର)—ଯେ କେବଳ ବାକ୍ୟରେ ଶୌର୍ଯ୍ୟ ପ୍ରକାଶ କରେ; ବାକ୍ୟବୀର—A person who shows bravery in words only.
Bachana śūara
(ବାକ୍ୟଶୂର—ଋପତ୍ତିଗତ)

**ବଚନ ସର୍ବସ୍ୱ**—ସଂ. ବିଣ. ପୁଂ. (ବହୁବ୍ରୀହି; ବଚନ+ସର୍ବସ୍ୱ)—ଯେ କଥାରେ ଡାଉଁଫ କରେ କିନ୍ତୁ କାର୍ଯ୍ୟତଃ କିଛୁ କରେ ନାହିଁ—One who talks much but does little.
Bachana sarbaswa
(ବଚନ ସର୍ବସ୍ୱା—ସ୍ତ୍ରୀ)

**ବଚନିକା**—ଦେ. ବି—ଦୁଇଜଣଙ୍କ ମଧ୍ୟରେ କଥୋପକଥନ—A dialogue; conversation.
Bachanikā
କଥোপকথন **बातचीत, कथावार्त्ता**

**ବଚନୀୟ**—ସଂ. ବିଣ. (ବଚ୍ ଧାତୁ+କର୍ମ. ଅନୀୟ)—୧ । କଥନୀୟ; ବାଚ୍ୟ—1. Speakable; utterable.
Bachanīya
୨ । ନିନ୍ଦନୀୟ—2. Blameable.
ବି—ନିନ୍ଦା; ବାଇଚ; ଅପବାଦ—Blame; scandal.

**ବଚନୀୟତା**—ସଂ. ବି. (ବଚନୀୟ+ଭାବ. ତା—୧ । କଥନୀୟତା—1. The state of being utterable.
Bachanīyatā
୨ । ଅପବାଦ; ନିନ୍ଦା—2. Blame; notoriety.
୩ । ନିନ୍ଦିତ ହେବାର ଅବସ୍ଥା—3. The state of being blamed.

**ବଚର**—ସଂ. ବି. (ବଚ୍ ଧାତୁ+କର୍ତ୍ତୃ. ଅର)—୧ । କୁକ୍କୁଟ (ହି. ଶ.)—1. Cock.
Bachara
୨ । ଶଠ (ହି. ଶ.)—2. A cheat.

**ବଚସ୍**—ସଂ. ବି. (ବଚ୍ ଧାତୁ+କର୍ମ. ଅସ୍)—ବାକ୍ୟ—Speech.
Bachas (ବଚଃ—ଅନ୍ୟରୂପ)

**ବଚସା**—ଦେ. ବି. (ସଂ. ବଚସ୍; ବଙ୍ଗଳାରୁ ଅନୁକୃତ)—କଳହ; ବାଗ୍‌ଯୁଦ୍ଧ—Quarrel; dispute; wordy altercation.
Bachasā
বচসা **झगडा**

**ବଚସା କରିବା**—ଦେ. କ୍ରି—ବାଗ୍‌ଯୁଦ୍ଧ କରିବା; କଳି କରିବା—To quarrel; to exchange angry words.
Bachasā karibā
বচসা করা **झगडा करना**

**ବଚସ୍କର**—ସଂ. ବିଣ. ପୁଂ. (ବଚସ୍+କୃ ଧାତୁ+କର୍ତ୍ତୃ. ଅ)—୧ । ଆଜ୍ଞା ପାଳକ—1. Obedient.
Bachaskara
(ବଚସ୍କରା—ସ୍ତ୍ରୀ) ୨ । ଅଧୀନ—2. Subordinate.
(ବଚସ୍କରତା—ବି) ଦେ. ବି—କହିବା ଲୋକ; କଥକ; ବକ୍ତା—Reporter; speaker; lecturer.

ବଚସ୍କର ନୃପ ଯେଉଁ ସୁବାହୁ ବଳେ ସୁବାହୁ ନାଶି ଭୂତ ବନାକୁଛିଭୂଷା ।
ଭଞ୍ଜ. ବୈଦେହୀଶବିଳାସ ।

**ବଚସ୍କୃତ**—ଦେ. ବିଣ. (ସଂ. ବଚସ୍କର)—ବଚସ୍କର (ଦେଖ)—Bachaskara (See)
Bachaskṛuta

ବଚସ୍କୃତ ବଚ୍ଛାବଣ ବଳସେ ନରେ ସ୍ୱବଣ । ଭଞ୍ଜ. ବୈଦେହୀଶବିଳାସ ।

**ବଚା**—ସଂ. ବି. ସ୍ତ୍ରୀ. (ବଚ୍ ଧାତୁ+କର୍ମ. ଅ+ସ୍ତ୍ରୀ. ଆ)—୧ । ଭେଷଜ ମୂଳବିଶେଷ; ବଚ (ଦେ. ୧ ଦେଖ)—1. The sweet flag.
Bachā
(ବଚା—ଅନ୍ୟରୂପ)
୨ । ସାରିକା ପକ୍ଷୀ (ହି. ଶ)—2. The hill myna bird.
(ବଚୀ, ବଚୀ—ସ୍ତ୍ରୀ)

বাচ্চা ବୈଦେ. ବି. ପୁଂ. (ଫା. ଭୁଲ.ସଂ. ବତ୍ସ, ବତ୍ସା; ପ୍ରା. ବଚ୍ଛ; ବଚ୍ଚା)—୧ । ଶିଶୁ—1. Infant.
**बच्चा**
୨ । ପୁତ୍ର—2. Son.

ମହନ୍ତ ମହାରାଜ କଲ୍ୟାଣ କଲେ, ଶାଢେ ରହୋ,
ଶାଢେ ରହୋ, ବଚା । ଡଠ-ଉଠ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

୩ । ବାଳକ—3. Boy.
୪ । ଜୀବଜନ୍ତୁଙ୍କ ଛୁଆ—4. The young ones of animals.
ଦେ. ବି—ବଚୁଆ (ଦେଖ)—Bachuā (See)
ଗ୍ରା. ପ୍ରାଦେ. (କଟକ ସଦର) ବି (ଫା)—
ବୟସ୍କମାନେ ଯୁବକମାନଙ୍କୁ କରିବା ସମ୍ବୋଧନ—(slang) Interjection addressed to young men by elders.

**ବଚା ବଚୀ**—ବୈଦେ. ବି. (ଫା. ହିନ୍ଦିରୁ ଅନୁକୃତ; ବଚନ ଲିଙ୍ଗାର୍ଥକ ସହଚର ଶବ୍ଦ)—
Bachā bachī
বাচ্চা বাচ্চী ପିଲାପିଲି; ପରିବାରସ୍ଥ ଶିଶୁ ସନ୍ତାନ ସନ୍ତତି—Male and female children of a family.
**बच्चा बच्ची**

**ବଚୁଆ**—ଦେ. ବି. (ସଂ. ବାଚ; ବାଚ୍)—ଏକ ପ୍ରକାର ଧଳା ଅଣଙ୍ଗି ମାଛ—
Bachuā

ବାଚା A kind of small thin sweet water fish
ବଚୁଆ without scales; Entropiichthys Vacha.
[ ଦ୍ର—ଏହା ମଧୁର ପାଣିରେ ରହେ; ଲମ୍ବରେ ମୁଠାଏ ପର୍ଯ୍ୟନ୍ତ ବଢ଼େ; ଦେଖିବାକୁ ବାଲଆ ମାଛ ପରି; ଏହାର ଛାଣ ୮ଟା; ବୈଦ୍ୟକ ମତରେ ଏହା ମଧୁର ରସ, ସ୍ନିଗ୍ଧ, ଶ୍ଳେଷ୍ମକର ଓ ବାତ ପିତ୍ତ ନାଶକ । ]

ବଚ୍ଛଳ—ଗ୍ରା ବିଣ. (ସଂ. ବତ୍ସଳ)—ବତ୍ସଳ ( ଦେଖ )
Bachchhala Batsala ( See )

ବଚ୍ଛା—ଦେ. ବି. (ସଂ. ବତ୍ସ)—୧ । ବାଛୁରି—1. Calf.
Bachchhā (ବଚ୍ଛୀ-ସ୍ତ୍ରୀ) ୨ । (ପୁଂ) ପୁତ୍ର; ସନ୍ତାନ—2. Male-child.

ବଚ୍ଛ(ଚ୍ଛ)—ଦେ. ବି. (ସଂ. ବତ୍ସ)—୧ । ବତ୍ସ—1. Infant.
Bachha(chchha) ସାତ କଳ୍ପର ସମ ବଚ୍ଛ, ଗୁଣେ ଧ୍ରୁବକୁ ହେଲେ ଉଚ୍ଛ ।
ବାଛା ବଚ୍ଛ ପ୍ରାଚୀ. କାର୍ତ୍ତିକ ମାହାତ୍ମ୍ୟ ।
[ ଦ୍ର—ସଂସ୍କୃତରେ 'ତ୍ସ' ଭାଷାରେ ସାଧାରଣତଃ 'ଚ୍ଛ' ଉଚ୍ଚାରିତ ହୁଏ । ]
୨ । (ସଂ. ବକ୍ଷଃ) ବକ୍ଷ—2. Breast.
ଶ୍ରୀବଚ୍ଛ ବଚ୍ଛ ବନମାଳ, ଭ୍ରଦସ୍ୱ ପରମ ଦୟାଳ । ଭୂପତି. ପ୍ରେମପଞ୍ଚାମୃତ ।
୩ । ବୃକ୍ଷ—3. Tree.
ବଚ୍ଛର ଶିଖରେ ଦେଖି ଏମନ୍ତ ଗତ
ଦୁଃଖ ଭରେ ପକ୍ଷୀ ଅଂଗ ପୂର୍ଣ୍ଣ କାନ୍ଦନ୍ତି । ପ୍ରାଚୀ. ରସବାରିଧି ।

ବଚ୍ଛରା—ଦେ. ବିଣ. ପୁଂ. ( ସଂ. ବତ୍ସତର )—ପଶୁ ଶାବକ; ବାଛୁରି—
Bāchharā The young of an animal.
(ବଚ୍ଛରୀ—ସ୍ତ୍ରୀ) ବି—ଘୋଡ଼ା ଛୁଆ—A young horse; colt.
ବାର୍ଚ୍ଛୀ बच्छडा

ବଚ୍ଛରୁ—ପ୍ରାଦେ. (ଲରିଆ) ବି. (ସଂ. ବତ୍ସତର; ତୁଳ. ହି. ବଚ୍ଛରୁ)—
Bachharu ବାଛୁରି—Calf.

ବଚ୍ଛସ—ଗ୍ରା. ବି. ( ସଂ. ବତ୍ସସ )—ପୁରୀ ଜିଲ୍ଲା ବ୍ରାହ୍ମଣ ଶାସନର ସାମନ୍ତ
Bachhasa ବ୍ରାହ୍ମଣ ଗୋଷ୍ଠୀ ମଧ୍ୟରୁ ଏକତମ—One of the
ବଚ୍ଛସ } ଅନ୍ୟରୂପ branches of high caste Brāhmanas of the Puri
ବଚ୍ଛସ ସାଆନ୍ତ } district.

ବଚ୍ଛା—ଦେ. ବି. (ସଂ. ନିର୍+ବାଚନ; ସଂ. ବିର୍ ଧାତୁ=ପୃଥକ କରିବା)-
Bachha ୧ । ନିର୍ବାଚନ; ବାଛିବା କର୍ମ—1. The act of
ବାଛା चुनाव, बाँछना selecting.
ବାଛା ୨ । ବିଲ ବାଛିବା କର୍ମ—2. The act of weeding of
निराना a paddy field.
ରିଫୁ ୩ । ଲୁଗାରେ ହୋଇଥିବା ଛିଦ୍ରରେ ଛୁଞ୍ଚିଦ୍ୱାରା ସୂତା ବୁଣିବା;
रफु ରଫୁ; ରଫୁ—3. The act of knitting a hole in a cloth with thread in imitation of the texure of the cloth; darning.
ବାଛା ୪ । ମାଛ ବାଛିବା କର୍ମ—
बनाना 4. The act of preparing fish for cooking.
ବାଚ୍ଛା ୫ । (ସଂ. ବତ୍ସ) ବଚ୍ଛା (ଦେଖ)
बच्चा 5. Bachchhā (See).
୬ । ବଚ୍ଛ ମୁଦି ( ଦେଖ )—6. Bachhā mudi (See).

ବାଛା ବିଣ—(ସଂ. ନିର୍ବାଚିତ)—୧ । ଯାହାକୁ ବାଛି କରି ବାହାର
चुनाहुआ, बाछाहुआ କରାଯାଏ; ନିର୍ବାଚିତ—Selected.
ସବୁ କାଳରେ ଦେବେ ସାଧୁସଙ୍ଗ ଇଚ୍ଛା
କରନ୍ତି ଜାଣ ଏକଥା ଗୋଟି ବଚ୍ଛା । କୃଷ୍ଣସିଂହ. ମହାଭାରତ. ଶାନ୍ତି ।
୨ । ଶ୍ରେଷ୍ଠ—2. Best; pre-eminent.
ବୋଇଲେ ଶ୍ରେଷ୍ଠ ସମ ରଥୀଙ୍କର ବଚ୍ଛ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।
ପ୍ରାଦେ (ସମ୍ବଲପୁର ଓ ଲରିଆ; ତୁଳ. ହି. ବଚ୍ଛଡ଼ା) ବି—ଅଣ୍ଡିରା
ବାଛୁରି—A young bullock.
ବନ୍ଦଗରୁ ଗାଈ, ବନ୍ଦ ପୁଅର ମାଈ
ବନ୍ଦ ଥିବର ଘର ଭେଜ୍ୟାବର—ଢଗ ।
ପ୍ରାଦେ (ଗଡ଼ଜାତ) ବିଣ—ଅଣ୍ଡିରା (ପଶୁ)—
Male (beast).

ବଚ୍ଛା(ଛେ)ଇବା—ଦେ. କ୍ରି. (ସଂ. ନିର୍+ବାଚନ)— (ବାଛିବା
Bachhā (chhe)ibā କ୍ରିୟାର ଣିଜନ୍ତରୂପ—1. The causative form of Bāchhibā).
ବାଛାନ नवाना बछवाना
ଅନ୍ୟ ଦ୍ୱାରା ବାଛିବା କ୍ରିୟା କରାଇବା—To caus another to select or weed out or dar.

ବଚ୍ଛାଡ଼ି—ପ୍ରାଦେ —(ବାଲେଶ୍ୱର) ବି —ତେରେଣ୍ଡା (ଦେଖ)
Bachhārdi Terendā (See).

ବଚ୍ଛା ବଚ୍ଛା—ଦେ. ବିଣ —( ବହୁବଚନ )—ନିର୍ବାଚିତ ଓ ଉତ୍କୃଷ୍ଟ
Bachhā bachhā (ବହୁବସ୍ତୁ)—Selected and best
ବାଛା ବାଛା चुनाहुआ (many).

ବଚ୍ଛାବଚ୍ଛି—ଦେ. ବି—୧ । ବାଛିବା କ୍ରିୟା—
Bachhā bachhi 1. The act of selecting; selection.
ବାଛାଗୁଛା, ବାଛଗୋଛ ୨ । ଧାନ ବିଲରୁ ଘାସ ବାଛିବା—
चुनाचुनी, बिछाबिछि 2. The operation of weedinn out grass in paddy fields.

ବଚ୍ଛାବଚ୍ଛି ପରୀକ୍ଷା—ଦେ. ବି—ଟେଷ୍ଟ୍ ପରୀକ୍ଷା; କୌଣସି ବିଦ୍ୟାଳୟରେ
Bachhābachhi parikshā ପଢ଼ୁଥିବା ଛାତ୍ରମାନଙ୍କ ମଧ୍ୟରୁ ଶେଷ
ବାଛାବାଛୀ ପରୀକ୍ଷା ପରୀକ୍ଷାକୁ ଯିବାର ଉପଯୁକ୍ତ ଛାତ୍ରଙ୍କୁ ବାଛି ବାହାର
चुनाव इमतीहान କରିବା ନିମନ୍ତେ ଯେଉଁ ପରୀକ୍ଷା କରାଯାଏ—
The test examination.

ବଚ୍ଛାମୁଦି—ଦେ. ବି—ନାମାଙ୍କିତ ମୁଦ୍ରିକା—Signet ring.
Bachhāmudi ସୀଲଆଂଟୀ छापअंगुठी

ବଚ୍ଛା ରଖିବା—ଗ୍ରା. କ୍ରି—ବାଛୁରି ଜଗିବା—To keep watch on
Bachhā rakhibā calves; to tend calves.

ବଚ୍ଛାଳି—ଦେ. ବିଣ ଓ ବି(ପୁଂ ଓ ସ୍ତ୍ରୀ)—୧ । ଯେ ବାଛିବା କ୍ରିୟା କରେ-
Bachhāli निरानेवाला, 1. Selector; separater
बाँछनेवाला ୨ । ଯେଉଁଲୋକ ଧାନ ବିଲରୁ ଘାସ ଉପାଡ଼େ—
2. One who weeds out grass etc from paddy or other crop fields.

ବଚ୍ଛି—ଦେ. ବି. ପୁଂ. ( ସଂ. ବତ୍ସ ) ( ଆଦରାର୍ଥକ ପ୍ରୟୋଗ )—ପୁତ୍ର.
Bachhi ବାଛନି, ବାଛା बचा ସନ୍ତାନ—Male child; son.
ମୋର ବିଶ୍ୱାସ ତୁ ଏଣ ବଚ୍ଛି
ଆଣିଦେବୁ ନନ୍ଦର ବେନି ବଚ୍ଛା—ଭକ୍ତଚରଣ. ମଥୁରାମଙ୍ଗଳ

ବଚ୍ଛୀ—ଦେ. ବ .ସ୍ତ୍ରୀ—(ସଂ. ବତ୍ସ, ପ୍ରା. ବଚ୍ଛା)—କନ୍ୟା—
Bachhi ବାଚ୍ଛୀ बची Daughter.
ପ୍ରାଦେ (ଗଡ଼ଜାତ) ମାଈ; ସ୍ତ୍ରୀ ଜାତି—Female.

ବଜ୍ (ଧାତୁ)—ସ—ଗମନ କରିବା; ଗତି କରିବା—
Baj (root) To go; to move.

ବଜ୍‌ନିଆଁ—ପ୍ରାଦେ. (ସମ୍ବଲ ପୁର) ବି. (ଭୁଲ. ହି. ବଜନିୟାଁ)—
Baj-niañ ବଜନ୍ତି; ବାଜାଦାର—Drummer; musician.

ବଜ୍‌ନିଶ୍—ବୈଦେ. ବି. (ଫା. ବଜଂସ୍=ସେହି ପ୍ରକାରେ; ବ=
Baj-nis ଅନୁସାରେ+ଜଂସ୍=ପ୍ରକାର, ବସ୍ତୁ)—୧ । ଠିକ୍;
ହୁବହୁ ତୁଲ୍ୟ; ଅବିକଳ—1. Exact; copied exactly;
बजिंस, हुबाहु tallying exactly.
୨ । ଅଭିନ୍ନ—2. Undistinguishable.

ବଜ୍‌ନିଶ୍ ନକଲ—ବୈଦେ. ବି. (ଫା. ବଜଂସ୍+ନକ୍ଲ)—
Baj-nis nakala ଅବିକଳ ନକଲ; ପ୍ରତିଲିପି—A true or
ହୁବହୁ ନକଲ बिजिंस नकल exact copy.

ବଜ୍‌ବଜ୍—ଦେ. ଅ—୧ । (ଧ୍ୱନ୍ୟନୁକରଣ) ଗୁଡ଼ାଏ ଗପିବା—
Baj baj 1. Talking too much.
बकबाद ୨ । ପଚ୍ ପଚ୍; ଯାହା ଗୋଡ଼ରେ ଦାବ ଦେଲେ ଦବିଯାଏ-
बजबज; बिजबिज 2. Shifting (soil); yielding to touch
बज बज or treading.
୩ । (ସଂ. ପଚ ଧାତୁ)—ପାଚ କରି କୃମିସଙ୍କୁଳ (ଘାଆ)—
3. (sore) Which has gangrened and is full of maggots.
(ଯଥା—ଘାଆଟା ବଜ୍ ବଜ୍ ହେଲାଣି ।)
୪ । (କୌଣସି ଦ୍ରବ୍ୟରେ କୀଟାଦି) ବହୁପରିମାଣରେ ଦେଖାଯିବା;
ସାଲୁ ସାଲୁ—4. Abounding in (worms).
(ଯଥା—ତା ମୁଣ୍ଡରେ ଉକୁଣୀ ବଜ୍ ବଜ୍ ହେଉ ଅଛନ୍ତି ।)
୫ । ଦହି ବା ଅନ୍ୟ କୌଣସି ଦ୍ରବ୍ୟ ବହୁକାଳ ରହି ସଢ଼ି ପଚି
ଭଡ଼ଭଡ଼ ହେବା—5. To rot and ferment
(said of stale curd and other things).

ବଜ୍ ବଜ୍ ହୋଇ ପୋଖରୀ—ଦେ. ବି—ଆମ ଓ ବିଶେଷ ଫେନଯୁକ୍ତ
Baj baj hoi pokhari ମଳ—Foamy slimy stool.
(ବଜ୍‌ବଜିଆ ପୋଖରୀ—ଅନ୍ୟରୂପ)

ବଜ୍‌ବଜ୍ ହେବା—ଦେ. କ୍ରି—୧ । ଗୁଡ଼ାଏ ବୃଥା ଗପିବା—
Baj-baj hebā 1. To talk too much to no effect.
ବଜର୍ ବଜର୍ ହେବା } ଅନ୍ୟରୂପ ଅଭିଶୃତାଏ ବଜର ବଜର ହେଉଛନ୍ତି ମିତ୍ରେ ।
ବାଜୁରୁ ବାଜୁରୁ ହେବା } ପଦ୍ମାକରମୋହନ. ଗଳ୍ପସ୍ୱଳ୍ପ ।
୨ । ବଜ୍‌ବଜାଇବା (ଦେଖ)—2. Baj-bajāibā (See)

ବଜ୍‌ବଜା(ଜେ)ଇବା—ଦେ. କ୍ରି—୧ । (ପୋକ) ଭିଡ଼ିତେଇ ହେବା;
Baj-bajā(je)ibā ଫଳ ବା ଘାଆଆଦିରେ ପୋକ) ସାଲୁ ସାଲୁ
बजबजान; बिज बिज करा ହେବା—1. To abound in
बजबजाना maggots.

୨ । ଘାଆ ଆଦି ପୂଜପୂର୍ଣ୍ଣ ହୋଇ ଲଡଲଡ ହେବା—
2. To become very soft, due to excessive pus inside (said of a sore, skin or boil).

ବଜ୍‌ବଜିଆ—ପ୍ରାଦେ. (ଗଡ଼ଜାତ) ବି—ଗୋରୁଙ୍କୁ ଧରିବା ଏକପ୍ରକାର
Baj-bajiā ରୋଗ—Name of a cattle disease.
[ଦ୍ର—ଏଥିରେ ଗୋରୁଙ୍କ ଦୁଇ ପାଖର ପଞ୍ଜରାଠାରୁ କାଖ ସନ୍ଧି ପର୍ଯ୍ୟନ୍ତ ଅଂଶ ଚକଡ଼ା ଧରି ଚଡ଼ଉ ପିଠା ପରି ଫୁଲେ; ହାତ ମାଇଲେ ବଜ୍ ବଜ୍ ଶୁଭେ । ତା ଉପରେ ମାଣ୍ଡିଆ ଚୂନା, ହୁକାମାଟିର କାଦୁଅକୁ ଏକତ୍ର ବାଟି କରି ନିଆଁରେ ଗରମ କରି ବୋଳିଲେ ଏ ରୋଗ ଭଲ ହୁଏ ।]
ଦେ. ବିଣ—୧ । କୀଟସଙ୍କୁଳ ଓ ସଢ଼ା (ଦ୍ରବ୍ୟ ବା ଘାଆ)—
बजबजिया 1. Rotten and full of maggots.
୨ । ନାଳ ଓ ଫେନ ମିଶ୍ରିତ (ଝାଡ଼ା)—
2. (stools) Mixed with froth and mucus.

ବଜ—ପ୍ରାଦେ. (ଗଡ଼ଜାତ) ବି—ଧାନ, ମାଣ୍ଡିଆ ବା ମୁଗଆଦିର ଗଦା ବା
Baja ବହୁ ପରିମାଣ—A heap of corn.

ବଜନ୍ତି—ପ୍ରାଦେ. (ଗଞ୍ଜାମ) ବି (ଫା. ବଜଂସ୍=ଅବିକଳ)—
Bajanti ଯଥାଯଥ ବର୍ଣ୍ଣନା—Exact description.

ବଜନ୍ତୁରୀ—ପ୍ରାଦେ. (ଗଞ୍ଜାମ) ବି (ସଂ. ବାଦ୍ୟ)—ବାଦ୍ୟ—
Bajanturi Musical instrument.

ବଜନ୍ତ୍ରୀ—ଦେ. ବି. (ସଂ. ବାଦିତ୍ର ଶବ୍ଦ)—ବାଜା ବଜାଇବା ଲୋକ;
Bajantri ବାଜାଦାର—Drummer; musician.
[ବଜନ୍ତ(ନ୍ତ୍ରି)ରୀ—ଅନ୍ୟରୂପ] बाजनदार बजंत्री

ବଜର—ଗ୍ରା. (ପଦ୍ୟ) ବି (ସଂ. ବଜ୍ର)—ବଜ୍ର—Thunder.
Bajara ତା ଟାଳେ । ସବୁ ବଜର
बाज मो ପୁଅକୁ ଯେ ମନ୍ଦ ମନାସେ, ତା ମୁଣ୍ଡେ ପଡ଼ୁ ବଜର ।
बजर ଶିଶୁରଞ୍ଜନ ଗୀତ ।
ପ୍ରାଦେ (କଳାହାଣ୍ଡି) ବିଣ—ଟାଣ—Hard.

ବଜରା—ବୈଦେ. ବି. (ଇଂ. ବଜ୍‌ରୋ; ବାର୍ଜ)—ପ୍ରକୋଷ୍ଠ ଥିବା ଡଙ୍ଗା—
Bajarā House boat; a pleasure boat; a barge;
बजरा बजरा a budgerow.
ଦେ. ବି. (ସଂ. ବର୍ଜରୀ; ବଜ୍ରା)—ବାଜରା (ଦେଖ)
Bājarā (See)

ବଜା—ଦେ. ବି. (ସଂ. ବାଦ୍ୟ; ବାଦନ; ସଂ. ବାଜ=ନିଃସ୍ୱନ)—
Bajā ୧ । ବଜାଇବା; ବାଦ୍ୟ ବାଦନ—
बाजान 1. Striking on a musical instrument.
बाजन(ना) ୨ । (ସଂ. ବଜ ଧାତୁ=ଗତି କରିବା) ସ୍ପର୍ଶ କରିବା—
लगा, छूना 2. Touching.
बाजा ୩ । ଆଘାତ—3. Stroke.
चोट ୪ । ମାଛ ଧରିବାର ଏକପ୍ରକାର ଚତୁଷ୍କୋଣ ଯନ୍ତ୍ର—
अन्ता 4. A rectangular long basket trap for catching fish.
ବିଣ—୧ । ଆହତ—1. Struck.
लागा ବଜ୍‌ବଜା ପବନ ପ୍ରାଣେ ହାରିବାକୁ
लगाहुआ ପଡ଼ିବାରେ ଯେ ପୂରଇଲେ ଯୁଦ୍ଧସ୍ଥଳ
କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।

୨ । ଯାହା ବାଜେ—2. Striking. (ଯଥା, ବଜା ଘଣ୍ଟା)
ପ୍ରାଦେ. (ସମ୍ବଲପୁର) ବି—ବାଜା; ବାଦ୍ୟ—
Musical instrument.
ପ୍ରାଦେ. (ସିଂହଭୂମ) ଅ. (ଅନ୍ୟ ଶବ୍ଦ ପରେ ଯୋଗ ହୁଏ)—
(ଅମୁକ) ବାଜିବା ବେଳ—(so and so) O'clock.

ବଜା(ଜେ)ଇବା—ଦେ. କ୍ରି. ( ସଂ. ବାଦନ )—
Bajā(je)ibā ବାଜିବା କ୍ରିୟାର ଣିଜନ୍ତ ରୂପ—The causative form of 'Bājibā.'
ବାଜାନ
बजाना, बजवाना ୧ । ଶବ୍ଦାୟମାନ କରାଇବା—
1. To cause a sound by beating.
୨ । ବାଦ୍ୟାଦି ବାଦନ କରିବା—2. To play on a musical instrument; to strike a musical instrument.
ନାନା ଜାତି ବାଦ୍ୟ ବାଜଣା ବଜାଇଲେ । କୃଷ୍ଣସିଂହ. ମହାଭାରତ. ସଭା ।
୩ । ସ୍ପର୍ଶ କରିବା—3. To touch
ବଜାଇ ଦେଖୁ କି ଥରେ ରସନା । କବିସୂର୍ଯ୍ୟ. ସଙ୍ଗୀତ ।
୪ । ଆଘାତ କରିବା—4. To strike.
୫ । ପ୍ରହାର କରିବା; ମାରିବା—
5. To beat; to give a blow.
ବାହୁଲେ ସାଯୁଦ୍ଧକୁ ଦେହକୁ ବଜାଇ । କୃଷ୍ଣସିଂହ. ମହାଭାରତ. ବନ ।

ବଜାଇ ବୁଲିବା—ଦେ. କ୍ରି ( ଆକ୍ଷରିକ ଅର୍ଥ ଡିଣ୍ଡିମ ବଜାଇ ବିଚରଣ କରିବା )—ଦୁର୍ନାମ ରଟନା କରିବା; ନିନ୍ଦା ଗାଇ ବୁଲିବା—To publish evil things of a person; to defame a person.
Bajāi bulibā
ଢେଁଟରା ପେଟା
डुगडुगी देना

ବଜା ଘଣ୍ଟା(ଡ଼ି)—ଦେ. ବି—ଯେଉଁ ଘଣ୍ଟାର ଭିତରେ ଥିବା ଘଣ୍ଟି ବାଜି ଉଠିବା ଦ୍ୱାରା ସମୟ ଜଣାଯାଏ—A striking clock; a bell.
Bajā ghanṭā(ṛdi)
ବାଜା ଘଡ଼ି बाजना घड़ि

ବଜାଣି—ଦେ. ବି. ( ସଂ. ବାଦନ )—
Bajāṇi ୧ । ବଜାଇବା; ବାଦନ—1. Striking.
ବାଜନ ୨ । ବାଦନ ଶବ୍ଦ; ବାଜେଣି; ବାଜଣା—
बाजन 2. Sound.

ବଜା ବଜି—ଦେ. ବି—ଅନ୍ୟୋନ୍ୟରେ ଆଘାତ ବା ସ୍ପର୍ଶ କରିବା—
Bajā baji Touching or striking each other.
ଲାଗାଲାଗି टक्करा टक्करी ଅଶ୍ୱତ୍ଥାମା ଭୀମଙ୍କ କାଣ୍ଡେ କୋଦଣ୍ଡ ଛୁଅନ୍ତେ ଜାତ ହେଲା ଜାତବେଦ ବଜି । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
କ୍ରି—୧ । ବାଦନ କରିବା—1. Striking.
୨ । ସ୍ପର୍ଶ କରିବା—2. Touching.

ବଜାୟ(ଏ)—ବୈଦେ. ବିଣ. ( ଫା. ବଜା=ଉଚିତ; ଫା. ବଜାୟ=ସ୍ୱସ୍ଥାନରେ; ପରିବର୍ତ୍ତେ )—
Bajāya(e)
ବଜାୟ ୧ । ଅବିକଳ—1. Exact; tallying
बजा, ज़ारी ୨ । ପୂର୍ବବତ୍ ରକ୍ଷିତ—2. Placed in the same position as before.
୩ । ଅପରିବର୍ତ୍ତିତ—3. Unchanged; unmodified.
୪ । (କୌଣସି ଆଦେଶ ବା କଥା) ପାଳିତ ହେବା; କାଏମ୍—
4. Upheld; carried out.

ସମ୍ରାଟଙ୍କର ମତ ବଜାୟ ରଖି କାର୍ଯ୍ୟ କରିବା ଅଭିପ୍ରାୟରେ ଏହିପରି ସ୍ଥିର କରାଯାଇଅଛି । ଉତ୍କଳ. ଇତିହାସ ।

ବଜାୟ ରଖିବା—ଦେ. କ୍ରି. (ଫା. ବଜା)—୧ । ( କଥା ବା ଆଦେଶ ) ରକ୍ଷା କରିବା; ପାଳନ କରିବା; କାଏମ୍ ରଖିବା—1. To carry out or uphold.
Bajāya rakhibā
ବଜାୟ ରାଖା
जारी रखना, बजालाना
୨ । ପୂର୍ବ ପରି ଅକ୍ଷୁଣ୍ଣ ରଖିବା—2. To keep a thing intact as before

ବଜାର—ବୈଦେ. ବି. ( ଫା. ବାଜାର୍=ଦ୍ରବ୍ୟାଦିର ପ୍ରାପ୍ତିସ୍ଥାନ; ଅର୍ଥାତ୍ ଯେଉଁଠାରେ ନାନାବିଧ ଦ୍ରବ୍ୟ କ୍ରୟବିକ୍ରୟ ହୁଏ)—
Bajāra
ବାଜାର ୧ । ପଣ୍ୟ ଶାଳିକା; କ୍ରୟ ବିକ୍ରୟ ସ୍ଥାନ—
बजार, बाजार 1. Bazar; mart.
୨ । ଦୋକାନ ଶ୍ରେଣୀ—2. A row of shops.
୩ । ଦୋକାନଶ୍ରେଣୀସଜ୍ଜିତ ନଗରର ରାଜପଥ—3. A road in the town, containing rows of shops.
[ ଦ୍ରି—ହାଟରେ ସପ୍ତାହର ପାଳି ଦିନ ପଣ୍ୟ ଦ୍ରବ୍ୟ ବିକା ହୁଏ, ମାତ୍ର ବଜାରରେ ସବୁ ଦିନେ ବିକି ଖରିଦ ଲାଗିଥାଏ । ]
୪ । ସମୂହ—4 Collection; multitude
ଦୃଶ୍ୟ ଦୃଶ୍ୟ ଯାର ପୁଣ୍ୟମୟଶ ବଜାର
ରତ୍ନ କେହ୍ନେ ରଖିଥିବ ତାକ । କବିସୂର୍ଯ୍ୟ. ସଙ୍ଗୀତ ।

ବଜାର କରିବା—ଦେ. କ୍ରି. ( ଫା ବାଜାର୍ )—
Bajāra karibā ବଜାରରୁ ଦ୍ରବ୍ୟାଦି କ୍ରୟ କରିବା—
ବାଜାର କରା To purchase things from the bazar;
हाट बाजार करना to make shopping.

ବଜାର ଖରଚ—ବୈଦେ. ବି—( ଫା. ବାଜାର୍+ଖର୍ଚ୍ଚ )—ଦୈନିକ ବ୍ୟବହାର୍ଯ୍ୟ ପଣ୍ୟଦ୍ରବ୍ୟ (ଯଥା, ଚାଉଳ, ଡାଲି, ପରିବାପତ୍ର, ଲୁଣ, ତେଲ) କିଣିବାରେ ଯାହା ଖରଚ ହୁଏ—Expenses for procuring victuals and other daily necessaries in the market.
Bajāra kharacha
ବାଜାର ଖରଚ
बाजारखर्च

ବଜାର ଗରମ—ଦେ. ବି—ବଜାରରେ ବିକ୍ରିତ ଦ୍ରବ୍ୟାଦିର ମୂଲ୍ୟବୃଦ୍ଧି ଓ ଅଧିକ କାଟତି ହେବା ଅବସ୍ଥା—Rise in prices and demand of commodities.
Bajāra garama
( ବଜାର ଚଢ଼ା—ଅନ୍ୟରୂପ )
ବାଜାରଗରମ बाजारगर्मी

ବଜାର ଦର—ଦେ. ବି—ପଣ୍ୟଦ୍ରବ୍ୟର ବଜାରରେ ପ୍ରଚଳିତ ମୂଲ୍ୟ—
Bajāra dara Market rate; market price.
(ବଜାର ଭାଉ—ଅନ୍ୟରୂପ) ବାଜାରଦର (ଭାଓ) बाजारदर (भाव)

ବଜାର ବସିବା—ଦେ. କ୍ରି—୧ । ବଜାରରେ କ୍ରୟ ବିକ୍ରୟ କାର୍ଯ୍ୟ ଚାଲିବା—1. The going on of purchase and sale in a bazar.
Bajāra basibā
ବାଜାରବସା बाजारबैठना
୨ । ପଣ୍ୟଶାଳିକାର ସ୍ଥାପିତ ହେବା—2. The opening of a bazar at a certain place.

ବଜାର ବୁଲା—ଦେ. ବିଣ. ପୁଂ. ( ଗାଳିବିଶେଷ )—ଯେଉଁ ଲୋକ ବଜାରରେ ବୁଲି ଭିକ୍ଷା କରି ପେଟ ପୋଷେ—Earning his livelihood by begging in the bazar; a vagabond.
Bajāra bulā
(ବଜାରବୁଲି—ସ୍ତ୍ରୀ)
ବାଜାରେ मेला घुमना

ବଜାର ମାନ୍ଦା—ବୈଦେ. ବ—(ଫା. ବାଜାର୍+ମାନ୍ଦାହ୍)—ପଣ୍ୟାଦିର
Bajāra māndā ମୂଲ୍ୟର ହ୍ରାସ ଓ ଚାହିଦାର ଅଲ୍ପତା—A fall in
बाजारमन्दा वाजारमान्दा the price and demand of commodites.
(ବଜାର ନରମ—ଅନ୍ୟରୂପ)

ବଜାର ସଉଦା—ବୈଦେ. ବ—(ଫା. ବାଜାର୍+ସୌଦା)—ମନୁଷ୍ୟର
Bajāra saudā ଦୈନିକ ବ୍ୟବହାର୍ଯ୍ୟ ଖାଦ୍ୟାଦିର ଉପକରଣ ପଣ୍ୟଦ୍ରବ୍ୟ (ଯଥା, ଚାଉଳ, ଗୁଡ଼, ହାଣ୍ଡି, କାଠ, ପରିବା ତେଲ,ଲୁଣ)—Commodites which are the daily necessaries and are available in an ordinary market.

ବଜାରୀ—ଦେ. ବିଣ. ପୁଂ. (ଗାଳିବିଶେଷ)—୧ । ସହରବାସୀ (ଲୋକ)—
Bajāri 1. (person) Living in a town.
(ବଜାରିଆ—ଅନ୍ୟରୂପ) ୨ । ଶାଳୀନତାହୀନ; ନୀଚ ଓ ଦୁଷ୍ଟ (ଲୋକ)—
(ବଜାରୁଣୀ—ସ୍ତ୍ରୀ) 2. Vile; wicked (person).
बाजारिया, बाजारे ୩ । ଅଭଦ୍ର—3. Ignoble; uncivil.
वजारी, वाजारु ୪ । ଇତର (ବ୍ୟକ୍ତି)—
4. Vulgar (person).
୫ । ନିକୃଷ୍ଟ (ବସ୍ତୁ)—5 Inferior (article).
୬। ନିକୃଷ୍ଟ ଉପକରଣରେ ପ୍ରସ୍ତୁତ ଓ ବଜାରରେ ଅଳ୍ପ ଦାମରେ
बाजारू ମିଳୁଥିବା (ପଣ୍ୟଦ୍ରବ୍ୟ)—6. (a commodity) which is made of inferior materials and is of low price.
(ବିପରୀତ—ଫରମାଶି)

ବଜାରୀ ହେବା—ଦେ. କ୍ରି—ବକବକାର ହେବା; ବକର ବକର
Bajāri hebā ହେବା; ଗୁଜାଟ ବକିବା—To talk too much.
बकाबकाकरना बकवाद करना

ବଜେ—ବୈଦେ. କ୍ରି. ବିଣ—(ହିନ୍ଦୀ. ବଜେ=ବାଜିବା ଧାତୁରୁ)—
Baje (ଏତେ ଘଣ୍ଟା) ବାଜିବାବେଳେ—At (such or
टारबेलाय वजे such) O'clock.
(ଯଥା—ମୁଁ ଆଜି ଛଅବଜେ କଟକ ଯିବି ।)

ବଜେଟ୍—ବୈଦେ. ବ. (ଇଂ)—ଆଗାମୀ ବର୍ଷର ଆୟବ୍ୟୟର
Bajeṭ ଆନୁମାନିକ ତାଲିକା—Budget
(ବଜଟ୍—ଅନ୍ୟରୂପ) बजेट वजट [ଦ୍ର—ଏହା ବର୍ଷର ଆରମ୍ଭରୁ କରାଯାଏ ଓ ବର୍ଷ ଶେଷରେ ପ୍ରକୃତ ଆୟବ୍ୟୟ ଦେଖାଗଲେ, ତାହା ଠିକ୍ ହିସାବ କରି ତାଲିକା କଲେ ତାକୁ ରିଭାଇଜ୍‌ଡ୍ (revised) ବଜେଟ୍ କହନ୍ତି ।]

ବଜେଟ୍ ପାଶ୍—ବୈଦେ. ବ. (ଇଂ. ବଜେଟ୍+ପାଶ୍=ମଞ୍ଜୁର)—ପ୍ରସ୍ତାବିତ
Bajeṭ pās ଆୟବ୍ୟୟର ତାଲିକାକୁ ଅନୁମୋଦନ କରିବା—The
बजेटपाश वजटपाश passing of a budget.

ବଜେଟ୍ ମଞ୍ଜୁର(ରି)—ବୈଦେ. ବ. (ଇଂ. ବଜେଟ୍ ଓ ଫା. ମନ୍‌ଜୁର୍)—
Bajeṭ manjura(ri) ବଜେଟ୍ ପାଶ୍ (ଦେଖ)—Bajet pās
बजेटमञ्जुर वजेटमंजुर (See).

ବଜ୍ଜାତ୍—ବୈଦେ. ବିଣ ପୁଂ ଓ ସ୍ତ୍ରୀ. (ଫା. ବଦ୍ ଜାତ୍)—
Bajjāt ୧ । ଦୁର୍ବୃତ୍ତ; ଦୁଷ୍ଟ; ଖେଚେଡ଼ା—1. Wicked; vile.
ବଜ୍ଜାତ
ବଜ୍ଜାତିଆ } ଅନ୍ୟରୂପ ୨ । ନୀଚ କୁଳୋତ୍ପନ୍ନ—
2. Low-born; base-born.
(ବଜ୍ଜାତିଆଣୀ—ସ୍ତ୍ରୀ) बज्जात वज्जात

ବଜ୍ଜାତି—ବୈଦେ. ବ. (ଫା.—ବଦ୍‌ଜାତୀ)—ଦୁଷ୍ଟାମୀ; ଖଚଡ଼ାମୀ; ପାଜି
Bajjāti ପଣ—Wickedness; baseness; vileness.
बज्जाती वज्जाती ବିଣ.—ବଜ୍ଜାତ୍ (ଦେଖ)—
Bajjāt (See)

ବଜ୍ଜାତି କାଢ଼ିବା—ଦେ. କ୍ରି—ଦୁଷ୍ଟାମୀ କରିବା—
Bajjāti kāḍhibā To exihibit one's wickedness.
[ବଜ୍ଜାତି ଦେଖା(ଖେ)ଇବା, ବଜ୍ଜାତି ବାହାର କରିବା, ବଜ୍ଜାତି କରିବା
बज्जातिकरना वज्जाति करन —ଅନ୍ୟରୂପ]

ବଜ୍ର—ସଂ ବ. (ବଜ୍ ଧାତୁ=ଗମନ କରିବା+କର୍ତ୍ତୃ. ର)—୧ । ଚଡ଼ୁକ
Bajra କୁଳିଶ; ଅଶନି; ଚଡ଼ଚଡ଼ି—1. Thunderbolt.
ବଜ୍ରର ଅନ୍ୟ ସଂସ୍କୃତ ନାମ— ଅଶନି, କୁଳିଶ, ଭିଦୁର, ପବି, ଶତକୋଟି, ସ୍ୱରୁସ୍, ହ୍ରାଦନୀ, ଶମ୍ବ, ଦମ୍ଭୋଳି, ସ୍ୱଧିତି, ଶତଘ୍ନୀ, ଶର୍ମ, ଆପୋବ, ହ୍ଲାଦନୀ, ଭୁଜ, ଉଗ୍ର, ମେନି, ଶତଧାର, ସାୟକ, ପରଶୁ, ଅକ୍ଷଜ, ଗିରି-କଣ୍ଟକ, ଗୋ, ଅଗ୍ରେଜୁ, ଦଂଭ ।
୨ । ଇନ୍ଦ୍ରଙ୍କ ଲୌହମୟ ପ୍ରଧାନ ଅସ୍ତ୍ର—2. The weapon of Indra (the rain-God). [ଦ୍ର—ଋଗ୍‌ବେଦରେ ଉକ୍ତ ହୋଇଅଛି ଯେ, ଦଧୀଚ ଋଷିଙ୍କ ହାଡ଼ରେ ଇନ୍ଦ୍ର ୯୯ ବୃତ୍ରମାନଙ୍କର ଧ୍ୱଂସ କଲେ । ଐତରେୟ ବ୍ରାହ୍ମଣରେ ଲେଖାଅଛି ଯେ ଦଧୀଚ ଋଷି ବଞ୍ଚିଥିବା ଯାକେ ଅସୁରମାନେ ତାଙ୍କୁ ଦେଖି ପଳାଇ ଯାଉଥିଲେ । ସେ ମଲା ପରେ ଅସୁରମାନେ ଉତ୍ପାତ ଆରମ୍ଭ କଲେ । ଇନ୍ଦ୍ର ତାଙ୍କ ଅସ୍ଥି ଖୋଜି ଖୋଜି ପୁଷ୍କର କ୍ଷେତ୍ରରେ ତାଙ୍କ ମୁଣ୍ଡର ଅସ୍ଥି ପାଇଲେ; ତହିଁରେ ଇନ୍ଦ୍ର ବଜ୍ର ତିଆରି କରି ଅସୁରମାନଙ୍କୁ ସଂହାର କଲେ । ଭାଗବତରେ ଲେଖାଅଛି ଯେ, ବୃତ୍ରାସୁରଙ୍କୁ ବଧ କରିବା ପାଇଁ ଇନ୍ଦ୍ର ଦଧୀଚଙ୍କ ହାଡ଼ରେ ବଜ୍ର ତିଆରି କରାଇଥିଲେ । ମତ୍ସ୍ୟ ପୁରାଣରେ ଲେଖାଅଛି ଯେ, ଯେତେବେଳେ ବିଶ୍ୱକର୍ମା ଭ୍ରମ ଯନ୍ତ୍ର (ଶାଣ ଚକ)ରେ ସୂର୍ଯ୍ୟଙ୍କୁ ଚଢ଼ାଇ ତାଙ୍କ ତେଜ କମାଇଲେ, ସେତେବେଳେ ସୂର୍ଯ୍ୟଙ୍କ ଦେହରୁ ତେଜ ଛିଡ଼ିକି ଯାଇ ସେଥିରୁ ବିଷ୍ଣୁଙ୍କ ଚକ୍ର, ଶିବଙ୍କ ତ୍ରିଶୂଳ ଓ ଇନ୍ଦ୍ରଙ୍କ ବଜ୍ର ହେଲା । ଏହିପରି ଭିନ୍ନ ଭିନ୍ନ ପୁରାଣ-ମାନଙ୍କରେ ବଜ୍ରର ଉତ୍ପତ୍ତି ସମ୍ବନ୍ଧେ ଭିନ୍ନ ଭିନ୍ନ ଆଖ୍ୟାୟିକା ଅଛି । ବୈଦିକ ନିର୍ଘଣ୍ଟୁରେ ବଜ୍ରର ଅନ୍ୟ ନାମ ବଦ୍ଧ୍ୟତ୍, ନେମି, ହେତି, ନମ, ସ୍ୱକ୍, ବୃକ, ବଧ, ଅର୍କ, କୁତ୍ସ—ହ. ଶ । ଅଧୁନିକ ଲେଖାରେ କୌଣସି ଅଂଶ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ଦିଆଯିବା ✝ ଚିହ୍ନକୁ ବଜ୍ରଚିହ୍ନ ବୋଲାଯାଏ ।
୩ । ବଜ୍ରର ଆଘାତ ପରି ଦାରୁଣ ଆଘାତ—
3. A hard stroke like that of thunder.
୪ । ଦେବତା ମାନଙ୍କର ଆଠ ପ୍ରକାର ଅସ୍ତ୍ର; ଅଷ୍ଟ ବଜ୍ର—
4 Eight different weapons of different gods.
[ଦ୍ର—ଭିନ୍ନ ଭିନ୍ନ ଦେବତା ଭିନ୍ନ ଭିନ୍ନ ପ୍ରକାର ଅସ୍ତ୍ର ବ୍ୟବହାର କରନ୍ତି; ଯଥା—ବିଷ୍ଣୁଙ୍କର ଚକ୍ର, ଶିବଙ୍କର ତ୍ରିଶୂଳ, ବରୁଣଙ୍କର ପାଶ, ବ୍ରହ୍ମାଙ୍କର ଅସ୍ତ୍ର, ଯମଙ୍କର ଦଣ୍ଡ, ଇନ୍ଦ୍ରଙ୍କର କୁଳିଶ ବା ବଜ୍ର,

କାର୍ତ୍ତିକେୟଙ୍କର ଶକ୍ତି ଓ କାଳୀଙ୍କର ଖଡ୍ଗ । ଭାରତ ଆକ୍ରମଣକାରୀ ଗ୍ରୀକ୍‌ବୀର ସିକନ୍ଦରଙ୍କ ସମସାମୟିକ ଗ୍ରୀକ୍ ଐତିହାସିକ ଫିଲଷ୍ଟ୍ରେଟସ୍ ଲେଖିଯାଇ ଅଛନ୍ତି ଯେ ଭାରତୀୟ ସୈନ୍ୟମାନେ ବିପକ୍ଷମାନଙ୍କୁ ଦୂରରୁ ବଜ୍ର, ବିଦ୍ୟୁତ୍ ଓ ଅଗ୍ନିମୟ ଘୂର୍ଣ୍ଣିବାୟୁ ଦ୍ୱାରା ଆକ୍ରମଣ କରି ଯୁଦ୍ଧ କରୁଥିଲେ—ଜ୍ଞାନେନ୍ଦ୍ରଙ୍କ ଉଦ୍ଧୃତ ବଙ୍ଗଳା ଗୃହସ୍ଥ ପତ୍ରିକା ୧୩୨୦ ଆଶ୍ୱିନ । ],

୫ । ହୀରକ; ହୀରା—5. Diamond,

୬ । ମର୍ମଭେଦୀ ତିରସ୍କାର—6. Heart-rending abuse.

୭ । ମଣିଆଦି ବିନ୍ଧ କରିଯିବା ହୀରକର ସୂଚୀ—7. A gem-boring needle.

୮ । ( ସାମୁଦ୍ରିକ ) ମନୁଷ୍ୟର ଦେହରେ ଦେଖାଯିବା ବଜ୍ରାକୃତି ଚିହ୍ନ—8. ( Palmistry ) A sign in the human body resembling a thunderbolt.

୯ । ( ଜ୍ୟୋତିଷ ) ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ଏକତମ—9. One of the 27 conjunctions in astrology.

[ ଦ୍ର—ଏ ଯୋଗର ପ୍ରଥମ ୯ ଦଣ୍ଡ ଅଶୁଭକର ଅଟେ । ]

୧୦ । ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର ଓ ଅନିରୁଦ୍ଧଙ୍କ ପୁତ୍ର—10. The great grandson of Śrikṛushṇa and son of Aniruddha.

୧୧ । କୁଶ—11. The Kuśa grass.

୧୨ । ଶିଶୁ—12. Child.

୧୩ । ଛାତ୍ର—13. Student.

୧୪ । ଅମ୍ଳ—14. Acid.

୧୫ । ଅଲାବୁ—15. Pumpkin.

୧୬ । ଆକସ୍ମିକ ଭୟଙ୍କର ବିପଦ—16. Sudden and serious danger.

୧୭ । ବିଦ୍ୟୁତ୍; ବିଜୁଳି—(ହି, ଶ)—17. Lightning

୧୮ । ବଜ୍ରଲୌହ (ଦେଖ) (ହି. ଶ)—11. Bajra lauha (See).

୧୯ । ଭଲ୍ଲ; ବରଛି (ହି. ଶ) 19, Spear.

୨୦ । (ବାସ୍ତୁ ବିଦ୍ୟା) ଯେଉଁ ଖୁଣ୍ଟର ମଧ୍ୟ ଭାଗ ଅଷ୍ଟକୋଣ (ହି ଶ) 20. ( architecture ) A pillar whose middle is octagonal.

୨୧ । ବିଷ୍ଣୁଙ୍କ ଚରଣ ତଳେ ଥିବା ଚିହ୍ନବିଶେଷ (ହି. ଶ)—21. A particular mark appearing on the sole of Bishṇu.

୨୨ । ଅଭ୍ରକ (ହି. ଶ)—22. Mica.

୨୩ । କୋକିଳାକ୍ଷ ଗୁଳ୍ମ (ହି. ଶ)—23. Hygrophila Spinosa (plant).

୨୪ । ଶ୍ୱେତ କୁଶ (ହି. ଶ)—24. White Kuśa grass.

୨୫ । କାଞ୍ଜି (ହି. ଶ)—Fermented rice-water.

୨୬ । ଧାତ୍ରୀ ଗୁଳ୍ମ (ହି. ଶ)—26. Dhātrī plant (See),

୨୭ । ସିହୁଗଛ (ହି. ଶ)—27. Euphorbia.

୨୮ । ବିଶ୍ୱାମିତ୍ରଙ୍କର ଏକ ପୁତ୍ର (ହି. ଶ)—Name of a son of Biśwāmitra.

୨୯ । ବଜ୍ରପୁଷ୍ପ (ଦେଖ)—29. Bajrapuspa (See).

ବିଣ—(ବଜ୍ର ଧାତୁ+କର୍ତ୍ତୃ. ର)—

୧ । କଠିନ—1. Hard.

୨ । ବଜ୍ରାକୃତି—2. Thunder-shaped.

୫ । ଦାରୁଣ—5. Terrible.

୩ । ଅସହ୍ୟ—3. Unbearable.

୪ । ହୃଦୟଭେଦୀ—4. Heart-rending.

ଦେ. ବିଣ—୧ । ଦୁର୍ଜ୍ଜୟ—1. Invincible.

ବଜ୍ର — ବଜ୍ରଦୁର୍ଗ ପ୍ରାୟ ସେମାନେ ବେଷ୍ଟିତ ହୋଇଛନ୍ତି ଅନୁକ୍ଷଣେ ।

वज्र — ଭଞ୍ଜ, ବୈଦେହୀଶବିଳାସ ।

୨ । ଦୃଢ଼ ଓ ଚିରସ୍ଥାୟୀ—3. Firm and lasting.

(ଯଥା—ତୋ କାଚ (ବା ଖଡ଼ୁ) ବଜ୍ର ହେଉ—ସଧବାଙ୍କ ପ୍ରତି ଆଶୀର୍ବାକ୍ୟ । )

**ବଜ୍ର କଣ୍ଟକ**—ସଂ. ବି. (ବହୁବ୍ରୀହି; ବଜ୍ର ପରି କଠିନ କଣ୍ଟକ ଯାହାର)—
Bajra kaṇṭaka ୧ । କୋକିଳାକ୍ଷ ବା କୋଇଲଖିଆ ନାମକ କଣ୍ଟକୀ ଗୁଳ୍ମ—1. Hygrophila Spinosa.

୨ । ସିହୁଗଛ (ହି. ଶ)—2. Euphorbia (plant).

**ବଜ୍ରକନ୍ଦ**—ସଂ. ବି—୧ । ଜଙ୍ଗଲୀ ଓଲୁଅ (ହି. ଶ.)—
Bajrakanda 1. Wild arum.

୨ । ଶକରକନ୍ଦ (ଦେଖ) (ହି. ଶ.)—
2. Śakarakanda (See)

୩ । ତାଳଗଛର ଫୁଲ (ହି. ଶ.)—
3. The flower of Palm tree.

**ବଜ୍ର କବାଟ(ଟି)**—ଦେ. ବି—ଖୁବ୍ ମଜଭୁତଥିବା ଦୃଢ଼ କବାଟ—
Bajra kabāṭa(ṭi) Very strong door.
বজ্রকপাট **वज्रकिवाड(डी)**

**ବଜ୍ର କାପଟା**—ଦେ. ବି. (ସଂ ବଜ୍ର ଓ କାଠ—କାଟ)—
Bajra kāpata ନେଉଳ ଜାତୀୟ ଏକପ୍ରକାର ଅଦନ୍ତ କଠିନ-ଶଳ୍କଯୁକ୍ତ କୀଟଭୁକ୍ ସରୀସୃପ—
ବଜ୍ର କାପଟି, ବଜ୍ର କାପ୍ତା, ବଜ୍ର କାବଟା } ଅନ୍ୟରୂପ
The Pangolin ( a reptile); the scaly ant-eater; Manis Tricuspis; Manis Pentadactyla.
বজ্রকাতি **वज्रबदन नेवला** [ଦ୍ର—ଏହାର ଦେହଯାକ, ପଦ ଓ ପୁଚ୍ଛରେ କଠିନ କାତି ପରି ଆବରଣ ଥାଏ । ଶତ୍ରୁ ଆକ୍ରମଣ କଲେ ଏମାନେ ମୁହଁ ଓ ଲାଞ୍ଜକୁ ଯାକି ଏପରି ଗୁଡ଼ାଇ ହୋଇ ଯାଆନ୍ତି ଯେ ଶତ୍ରୁପାଖେ କେବଳ କଠିନ କାତି ଛଡ଼ା ଆଉ କିଛି ଦେଖାଯାଏ ନାହିଁ । ଏମାନଙ୍କ ଦେହ ପ୍ରାୟ ୧ ହାତ ଓ ପୁଚ୍ଛ ୧ ହାତ ଲମ୍ବ । ଏମାନେ ଛାଡ଼ିଥିବା କାତିରୁ କମ୍ପା ଏମାନଙ୍କୁ ମାରି ଏମାନଙ୍କ କାତିରୁ ମୁଦି ତିଆରି କରାଯାଏ । ଏମାନେ ଅଦନ୍ତ ଓ କୀଟଭୁକ୍ । ]

**ବଜ୍ର କିଳ(ଳି)ଣୀ(ଣି)**—ଦେ. ବି. (ସଂ. ବଜ୍ର+କୀଲନୀ)—
Bajra kiḻa(ḻi)ṇī(ni) କବାଟର ଖୁବ ଦୃଢ଼ କୀଳକ—
**वज्रकील्ली** A very strong bolt of a door.
বজ্রকীল — ଗୃହ ରହିବ ଯେ ବଜ୍ର କିଳଣୀ ଠାବରେ । ଛାଗୁରୁ ଉକ୍ତି ଗୀତା ।

**ବଜ୍ର କୀଟ**—ସଂ. ବି—ଏକପ୍ରକାର କୀଟ—
Bajra kita A kind of worm.

ଇନ୍ଦ୍ର, ବଜ୍ରକୀଟ ହୋଇ ମୋ ଦେହ କାଟି
ଗଲେ ଭେଦିଲେ ଯାଇଁ ରାମଙ୍କ କାନ୍ଦୁ । କୃଷ୍ଣସିଂହ, ମହାଭାରତ କର୍ଣ୍ଣ ।

[ ଦ୍ର—ଏ କୀଟ ପଥର କାଟି ପାରେ; ଏହି କୀଟର ଗଣ୍ଡକୀନଦୀ ଗର୍ଭରେ କାଟିଥିବା ପଥର ଶାଳଗ୍ରାମଶିଳା ହୁଏ । ]

**ବଜ୍ର ଗୁପତି**—ଦେ. ବି. (ସଂ. ବଜ୍ରଗୁପ୍ତି)—ସାଞ୍ଜୁ—
Bajra gupati Armour.
(ବଜ୍ର ଗୁପ୍ତି—ସଂ. ରୂପ)

ନାଶଇ ବରଡ ଉଡନ୍ତ,
ମାର ଶରକୁ ସେ ବାଳା ବଜ୍ରଗୁପତି । ଉପେ. ପ୍ରେମସୁଧାନିଧି ।

**ବଜ୍ରଗୋପ**—ସଂ. ବି—ଇନ୍ଦ୍ରଗୋପ କୀଟ (ଦେଖ) (ହି. ଶ.)
Bajragopa Indragopa (See)

**ବଜ୍ରଙ୍ଗ**—ଦେ. ବି. (ସଂ. ବଜ୍ରାଙ୍ଗ)—ଦୃଢ଼ଶରୀରବିଶିଷ୍ଟ (ବ୍ୟକ୍ତି)—
Bajranga A person of hardy physique.
ବଜରଙ୍ଗ बजरंग

**ବଜ୍ର ଚର୍ମା**—ସଂ. ବଣ. (ବହୁବ୍ରୀହି; ବଜ୍ର+ଚର୍ମନ୍; ୧ମା. ୧ବ.)—
Bajra charmā ଯାହାର ଚର୍ମ ଖୁବ୍ ଦୃଢ଼—
Having tough skin.
ସଂ. ବି—ଗଣ୍ଡା ପଶୁ—Rhinocers.

**ବଜ୍ର ଜ୍ୱାଳା**—ସଂ. ବି—୧ । (ନାମ) ବିରୋଚନ ଦୈତ୍ୟର ପୌତ୍ରୀ
Bajra jwālā (ହି. ଶ.)—1. Name of the grand-daughter of Birochana.
୨ । (ନାମ) କୁମ୍ଭକର୍ଣ୍ଣର ସ୍ତ୍ରୀ (ହି. ଶ.)—
2. Name of the wife of Kumbhakarnna.

**ବଜ୍ର ତୁଣ୍ଡ**—ସଂ. ବି. (ବହୁବ୍ରୀହି; ବଜ୍ର+ତୁଣ୍ଡ)—୧ । ଗରୁଡ଼ (ହି.ଶ.)—
Bajra tunda 1. Garurda.
୨ । ଗଣେଶ (ହି. ଶ.)—2. Ganesa.
୩ । ଶାଗୁଣା (ହି. ଶ.)—3. Vulture.
୪ । ମଶା (ହି. ଶ.)—4. Mosquito.
୫ । ସିଜୁ (ହି. ଶ.)—5. Euphorbia.

**ବଜ୍ର ଦଂଷ୍ଟ୍ର**—ସଂ. ବି—୧ । (ନାମ) ରାବଣର ସେନାପତି ରାକ୍ଷସବିଶେଷ -
Bajra damshtra Name of a demon general of Rābana.

ବଜ୍ର ଦଂଷ୍ଟ୍ରକୁ ନବେଶିଲା ପୂର୍ବରେ ଦକ୍ଷିଣରେ ପ୍ରଶସ୍ତକୁ ସେ ।
ଉପେ. ବୈଦେହୀଶବିଳାସ ।

୨ । ଇନ୍ଦ୍ରଗୋପ (ଦେଖ)—2. Indragopa (See)
୩ । ଭାଗବତ ଲିଖିତ ଅସୁର (ହି. ଶ.)—3. Name of a demon mentioned in the Bhāgabata.

**ବଜ୍ରଦନ୍ତ**—ସଂ. ବଣ. (ବହୁବ୍ରୀହି; ବଜ୍ରପରି କଠିନ ଦନ୍ତ ଯାହାର)—
Bajra danta ବଜ୍ରପରି କଠିନ ଦନ୍ତବିଶିଷ୍ଟ—
Having very hard teeth
ବି—୧ । ଶୂକର—1. Hog.
୨ । ବରାହ—2. Boar.
୩ । ହସ୍ତୀ—3. Elephant.
୪ । ମୂଷିକ—4. Mouse.

**ବଜ୍ର ଦ୍ରୁମ**—ସଂ. ବି—(ସଂ. ବଜ୍ରା) ଛକଣ୍ଟା ସିଜୁ—
Bajra druma Euphorbius Antiqorum.
(ବଜ୍ରଦ୍ରୁ—ଅନ୍ୟରୂପ)

**ବଜ୍ର ଧର**—ସଂ. ବି. ପୁଂ. (ଉପପଦ; ବଜ୍ର+ଧୃ ଧାତୁ+କର୍ତ୍ତୃ. ଅ)—
Bajra dhara ଇନ୍ଦ୍ର—The God Indra.
ବଜ୍ର ପାଣି } ଅନ୍ୟରୂପ ସଂ. ବିଣ—ବଜ୍ରପାଣି (ଦେଖ)
ବଜ୍ର ଧାରୀ } Bajrapāni (See)

**ବଜ୍ର ନଖ**—ସଂ. ବଣ. (ବହୁବ୍ରୀହି; ବଜ୍ରପରି କଠିନ ନଖ ଯାହାର)—
Bajra nakha ବଜ୍ରପରି କଠିନ ନଖଯୁକ୍ତ—
Having very hard nails.
ସଂ. ବି—ନୃସିଂହ—The man-lion incarnation of Bishnu.

**ବଜ୍ର ନାଦ**—ସଂ. ବି. (ଷଷ୍ଠୀ ତତ୍; ବଜ୍ର+ନାଦ)—
Bajra nāda ୧ । ଅଶନି ଶବ୍ଦ; ଘଡ଼ଘଡ଼ି—
1. Thunder-clap.
ବଜ୍ର ନିନାଦ
ବଜ୍ର ନିର୍ଘୋଷ } ଅନ୍ୟରୂପ ୨ । ଘଡ଼ଘଡ଼ି ପରି ଉଚ୍ଚ ଶବ୍ଦ—
ବଜ୍ର ନିସ୍ୱନ
2 Thundering sound; a very loud sound like that of thunder.

**ବଜ୍ର ପଞ୍ଜର**—ସଂ. ବି—୧ । ସ୍ତୋତ୍ରବିଶେଷ; ୨ । କବଚବିଶେଷ—
Bajra panjara 1. A hymn; 2. An armour.

ବଜ୍ର ପଞ୍ଜର କବଚ ସ୍ୱଗାତେ ପ୍ରଥମେ ଓଁକାର ଦେଇ ।
ଉପେ. ବୈଦେହୀଶବିଳାସ ।

**ବଜ୍ର ପାଣି**—ସଂ. ବଣ. (ବହୁବ୍ରୀହି; ବଜ୍ର+ପାଣି)—ବଜ୍ରଧାରଣକାରୀ—
Bajra pāni Holding the Bajra.
ବଜ୍ରହସ୍ତ } ଅନ୍ୟରୂପ ସଂ. ବି—୧ । ଇନ୍ଦ୍ର—1. Indra.
ବଜ୍ରାୟୁଧ } ୨ । ବ୍ରାହ୍ମଣ (ହି. ଶ.)—2. Brāhmana.

**ବଜ୍ର ପାତ**—ସଂ ବି. (୬ଷ୍ଠୀ ତତ୍; ବଜ୍ର+ପାତ)—ଘଡ଼ଘଡ଼ି ପଡ଼ିବା—
Bajra pāta Thunderstroke; the fall of thunder
(ବଜ୍ରପତନ—ଅନ୍ୟରୂପ)

**ବଜ୍ର ପୁଷ୍ପ**—ସଂ. ବି—ତିଳ ପୁଷ୍ପ—
Bajra pushpa The flower of sessamum.

**ବଜ୍ର ବାଟୁଳି**—ପ୍ରାଦେ. ( ଗଡ଼ଜାତ ) ବି.—ଏକପ୍ରକାର ବଣ୍ଯ ବନ୍ୟ
Bajra bātuli ଗଛ—Name of a wild tree.
[ ଦ୍ର—ଏଥିର ଫଳ ଗିଲଠାରୁ ବଡ଼ ଓ ଗୋଲାକାର । ଏ ଫଳକୁ ଫୋଡ଼ି ନାସଦାନା କରନ୍ତି । ]
ପ୍ରାଦେ. (ଯାଜପୁର) ବି—ଶମ୍ବର ଦଶମୀଦିନ ସୂର୍ଯ୍ୟଙ୍କୁ ନୈବେଦ୍ୟ ଦିଆଯିବା ଘୃତପକ୍ୱ ଖଳ ଗୋଲାକ—Name of a small globular cake fried with ghee.
[ ଦ୍ର—ଏହା ସୂର୍ଯ୍ୟ ପୂଜାରେ ବଢ଼ାଯାଏ । ]
ବିଣ—୧ । ଧୁରନ୍ଧର; ତତ୍କରସ୍; ମଜଭୁତ୍—1. Expert.
୨ । ଖୁବ୍ ପରିଶ୍ରମ ଓ କଷ୍ଟସହିଷ୍ଣୁ —
2 Very hardy (person).

**ବଜ୍ର ବାଟୁଳି ଗିଲ**—ପ୍ରାଦେ (ଗଡ଼ଜାତ) ବି—ବଡ଼ ଗିଲ ଜାତୀୟ ଗଛ—
Bajra bātuli gila A species of thorny tree with thorny fruits; Entada Hursaetha; Mimosa Octandra.

[ ଦ୍ର—ଏଥିର ଫଳ ଗିଲଠାରୁ ଅପେକ୍ଷାକୃତ ବଡ଼ । ]

ବଜ୍ରବାଣ—ସଂ. ବି. (ବଜ୍ର+ବାଣ)—ବଜ୍ରାସ୍ତ୍ର (ଦେଖ)
Bajra bāṇa Bajrāstra (See)

ବଜ୍ରବାରକ—ସଂ. ବି—ଛ ଜଣ ମହାଭଧା, ଯେଉଁମାନଙ୍କ ନାମ ସ୍ମରଣ
Bajra bāraka କଲେ ମନୁଷ୍ୟ ଉପରେ ବଜ୍ର ପଡ଼ିବାର ଭୟ ନ ଥାଏ—Six sages said to prevent thunder if their names are uttered at the time when raining clouds appear in the sky
[ ଦ୍ର—ଜୈମିନି, ସୁମନ୍ତ୍ର, ବୈଶମ୍ପାୟନ, ପୁଲସ୍ତ୍ୟ, ପୁଲହ ଓ କ୍ରତୁ ଏହିମାନେ ବଜ୍ର ବାରକ ଅଟନ୍ତି । ]

ବଜ୍ର ବାରଣ—ଦେ. ବି. ( ସଂ. ବଜ୍ର+ବାରଣ )—
Bajra bāraṇa ୧ । ଉଚ୍ଚ କୋଠା ଆଦିକୁ ବଜ୍ରପାତରୁ ରକ୍ଷା
বজ্রবারণ, বাজবারণ କରିବା ପାଇଁ ତହିଁ ଉପରେ ଲଗାଯିବା
बज्रबारण ଲୁହାର ଜାଲି ବା ଶଲାକା—
1. Lightning conductor rods attached to high buildings as a safeguard against thunder-stroke.
୨ । ମନସା ସିଜୁ (ଦେଖ)—2. Manasā sijhu (See)

ବଜ୍ର ବାରାହୀ—ସଂ. ବି. ସ୍ତ୍ରୀ—ବୌଦ୍ଧମାନଙ୍କର ଉପାସ୍ୟଦେବୀବିଶେଷ—
Bajra bārāhi Name of a Goddess worshipped by the Buddhists.

ବଜ୍ର ଭଙ୍ଗ—ଦେ. ବିଣ. ( ସଂ. ବଜ୍ର+ଭଞ୍ଜନ )—ଦେ. ବି—
Bajra bhāṅga ଯେଉଁ ଶିଶୁକୁ ପ୍ରସବ କରିବା ପାଇଁ ମାତା ବହୁତ ସମସ୍ତ ଗର୍ଭ ଯନ୍ତ୍ରଣା ଭୋଗ କରେ—
ବଜ୍ର ଭଙ୍ଗା } ଅନ୍ୟରୂପ
ବଜ୍ରା ଭଙ୍ଗ }
A child costing its mother much pain and long travail.
बज्रभाँड
( ଯଥା—ପେଟକୁ କ ବଜ୍ରଭଙ୍ଗ ପିଲା ଆସିଛି ଯେ, ମାଆ ତିନ ଦିନ ହେଲା କଷ୍ଟ ପାଉଛି । )

ବଜ୍ର ମଣି—ସଂ. ବି. ( କର୍ମଧା; ବଜ୍ର+ମଣି )—ହୀରା—
Bajra maṇi (ବଜ୍ରସାର—ଅନ୍ୟରୂପ) Diamond

ବଜ୍ର ମାରି—ଦେ. ବି—ବଜ୍ରମୂଳ—
Bajra māri Sida Cordifolia.
[ ଦ୍ର—ଏହା ବାଲିରେ ଜନ୍ମେ । ]

ବଜ୍ର ମୁଠି—ଦେ. ବି. ( ବଣିଆ ଶବ୍ଦ )—ଗୁନ୍ଦନ କାମ କରିବାରେ
Bajra muṭhi ବ୍ୟବହୃତ ହତିଆର—Name of an instrument used by goldsmiths in setting gem on gold.

ବଜ୍ର ମୁଷ୍ଟି—ସଂ. ବି. ( ବହୁବ୍ରୀହି; ବଜ୍ର+ମୁଷ୍ଟି )—
Bajra mushṭi ୧ । ଇନ୍ଦ୍ର (ହି. ଶ)—1. Indra.
୨ । ରାକ୍ଷସବିଶେଷ (ହି. ଶ)—2. Name of a demon.
୩ । ଜଙ୍ଗଲୀ ଓଲୁଅ (ହି. ଶ)—3. Wild arum.

ବଜ୍ର ମୂଳ—ଦେ ବି—ଜବାଦି ବର୍ଗର କ୍ଷୁପବିଶେଷ; ଔଷଧ ଗୁଳ୍ମବିଶେଷ—
Bajra mūḷi A medicinal plant; Sida Cordifolia; Penicillaria Spicata.
ସଂ. ବଳା, ପୀତପୁଷ୍ପୀ
বেড়েলা, করেটা, বনমেথি
करेटा, बारिका करेटा
ତେ. ବିଷ ବୋଡ୍ଡି
ମ. ଚିକନ୍‌ପାତା
ଗୁ. ଜଙ୍ଗଲମୁଥି, ବିଷବର୍ଦ୍ଧି
[ ଦ୍ର—ଏହାର ପତ୍ର ମୂଳ ପାନ ପତ୍ରର ମୂଳ ପରି । ପତ୍ର ସୂକ୍ଷ୍ମ ଲୋମଶ । ଫୁଲ ହଳଦିଆ । ପାଚିଲା ଫଳ ଫାଟିଗଲେ ୧୦ ଖଣ୍ଡ ହୋଇଯାଏ । ଏହାର ଆଉ ତିନି ଗୋଟି ପ୍ରକାର ଅଛି । ୧ । ନାଲି—ସଂ. ଅତିବଳା । ବ. ଲାଲ ବେଡ଼େଲା । ଇଂ. Sida Rhombifolia. ୨ । ଧଳା—ସଂ. ମହାବଳା । ବ. ଶ୍ୱେତ ବେଡ଼େଲା । ଇଂ. Sida Rhomboidia. ୩ । ଗୋରଖ ଗୁଲିଆ—ସଂ. ନାଗବଳା । ବ. ଗୋରଖ ଗୁଲି । ଇଂ. Sida Spinosa. ]

ବଜ୍ର ମୂଳୀ—ସଂ. ବି—ମାଷପର୍ଣ୍ଣୀ (ହି. ଶ)—
Bajra mūḷi Grangea Madrasspatna (plant).

ବଜ୍ର ଯାନ—ଦେ ବି—ବୌଦ୍ଧ ଉପସମ୍ପ୍ରଦାୟବିଶେଷ—
Bajra jāna A Buddhistic sect.
[ ଦ୍ର—ମହାଯାନ ତଳେ ନୋଟ୍ ଦ୍ରଷ୍ଟବ୍ୟ । ]

ବଜ୍ର ଲେପ—ସଂ. ବି—୧ । ଚିତ୍ର ଓ ମୂର୍ତ୍ତି ଉପରେ ମଡ଼ାଯିବା ଚିରସ୍ଥାୟୀ
Bajra lepa ଲେପବିଶେଷ—1. A permanent layer of paint or colour put on a picture or image.
୨ । ବାର୍ଣ୍ଣିସ୍—2. Varnish.
୩ । ( ଲକ୍ଷଣାର୍ଥ ) ଯାହା ଚିରସ୍ଥାୟୀ ରୂପେ କୌଣସି ବସ୍ତୁରେ ସଂଲଗ୍ନ ହୋଇ ରହେ—2. (figurative) Anything which is attached to a thing permanently.
୪ । ଯେଉଁ ଲେପ ଲିଭେ ନାହିଁ—
4. An ineffaceable plaster.
(ଯଥା—ଅନ୍ୟ କ୍ଷେତ୍ରେ କୃତ ପାପ ଧର୍ମ କ୍ଷେତ୍ରେ ନାଶ ଯାଏ, ଧର୍ମ କ୍ଷେତ୍ରେ କୃତ ପାପ ବଜ୍ର ଲେପ ହୋଇ ରହେ ।)
[ଦ୍ର—କଞ୍ଚା କେନ୍ଦୁ, କଞ୍ଚା କଇଁଥ, ସିମିଳି ଫୁଲ, ବର ଓ କେତେକ ଗଛର ଛେଲିକୁ ସିଝାଇ ସେହି ପାଣିର ଆଠଭାଗରୁ ଭାଗେ ବାକି ରହିଲେ ସେହି କ୍ୱାଥରେ ତାର୍ପିନ, ଝୁଣା, ଫେଣି, ବେଲ ଅଠା, ଦେବଦାରୁ ଅଠା ଓ ଭାଲିଆ ମିଶାଇ ଏହି ପ୍ରଲେପ ପ୍ରସ୍ତୁତ କରାଯାଏ । ଏହି ଲେପକୁ କୋଠା, ଦେଉଳ, କୂଅ ଆଦିର କାନ୍ଥରେ ଲେପିଲେ ସେ କାନ୍ଥମାନ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୁଏ ।—ବରାହମିହିର, ବୃହତ୍ ସଂହିତା—ବଙ୍ଗଳା ଭାଷାର ମନ୍ଦିରେର କଥା । ]

ବଜ୍ର ଲୌହ—ସଂ. ବି.—ଏକପ୍ରକାର ଲୌହ—
Bajra lauha A kind of iron.
[ଦ୍ର—ବୈଦ୍ୟକ ଗ୍ରନ୍ଥମାନଙ୍କରେ ବଜ୍ରଲୌହର ଅନେକ ପ୍ରକାର ଉଲ୍ଲେଖ ଅଛି :—କାଳପିଣ୍ଡ, ଅରୁଣାଭ, ମୋରକ, ନାଗକେଶର, ଭଦ୍ରାଙ୍ଗ, ସ୍ୱର୍ଣ୍ଣବଜ୍ର, ଶୈବାଳବଜ୍ର, ଶୋଣବଜ୍ର, ସ୍ନେହଣୀ, କାଙ୍କୋଲ, ଗ୍ରନ୍ଥିବଜ୍ରକ ଓ ମଦନ—(ହି. ଶ.) ।]

ବଜ୍ର ସୂଚି—ସଂ. ବି.—ପୃଥିବୀରେ ପଡ଼ିବା ସମୟରେ ବଜ୍ରର ଯେଉଁ
Bajra sūchi ଲୌହମୟ ଅଂଶ ବୃକ୍ଷ ଆଦିକୁ ଭେଦ କରେ—
Thunder bolt.

ବଜ୍ର ସେହ୍ଣା—ଦେ. ବି.—ଦୃଢ଼ କବଚ—
Bajra sehnā A strong armour.
ଅଙ୍ଗିରେ ବଜ୍ରସେହ୍ଣା ଶରଣପଞ୍ଜରେ । ନନ୍ଦକିଶୋର, ସୀତା ବନବାସ ।

ବଜ୍ର ହସ୍ତ—ଦେ. ବି. (ନାମ)—ଓଡ଼ିଶାର ପ୍ରାଚୀନ ଗଙ୍ଗାବଂଶୀୟ
Bajra hasta ଖ୍ୟାତନାମା ଜଣେକ ରାଜା—A famous king of the ancient Gaṅgā dynasty of Orissa.
ସଂ. ବି. ଓ ବିଣ.—ବଜ୍ର ପାଣି (ଦେଖ)—
Bajrapāṇi (See)

ବଜ୍ର ହେବା—ଦେ. କ୍ରି.—୧ । ବଜ୍ର ପରି କଠିନ ହେବା—
Bajra hebā 1. To be as hard as thunder.
ବଜ୍ର ହওয়া (ଯଥା—ଦୁଃଖ ସହି ସହି ମୋ ଛାତି ବଜ୍ର ହୋଇ
**बजर होना** ଗଲାଣି ।)
୨ । ଚିରସ୍ଥାୟୀ ହେବା—2. To be permanent.
(ଯଥା—ତୋ କାଚ ବା ଖଡ଼ୁ ବା ସିନ୍ଦୂର ବଜ୍ର ହେଉ ।)

ବଜ୍ରା—ସଂ. ବି ସ୍ତ୍ରୀ.—(ବଜ୍ର+ସ୍ତ୍ରୀ. ଆ)—୧ । ଦୁର୍ଗା—
Bajrā 1 Goddess Durgā.
୨ । ଭିକଣ୍ଡା ସିଜୁ; ପତ୍ର ସିଜୁ—
2. Euphorbia Antiqorum.

ବଜ୍ରାଘାତ—ସଂ. ବି. (୬ଷ୍ଠୀ ତତ୍; ବଜ୍ର+ଆଘାତ)—ଉପରେ ବଜ୍ର
Bajrāghāta ପଡ଼ିବା—The stroke of thunder.

ବଜ୍ରାଚାର୍ଯ୍ୟ—ସଂ. ବି.—ନେପାଳୀ ବୌଦ୍ଧମାନଙ୍କ ମତରେ ତାନ୍ତ୍ରିକ ବୌଦ୍ଧ
Bajrāchārjya ଆଚାର୍ଯ୍ୟ, ଯାହାଙ୍କୁ ଭାରତରେ ଲାମା କହନ୍ତି—
The great Buddhist priest; the Lama.
[ଦ୍ର—ଏ ଗୃହସ୍ଥ ହୁଅନ୍ତି ଓ ପରିବାର ସହ ବିହାରରେ ବାସ କରି ପାରନ୍ତି । ନେପାଳ ଓ ଭାରତରେ ଏହାଙ୍କର ଖୁବ୍ ସମ୍ମାନ, (ହି. ଶବ୍ଦସାଗର) ।]

ବଜ୍ରାଭ୍ର—ସଂ. ବି. (ବଜ୍ର=କଠିନ+ଅଭ୍ର)—କୃଷ୍ଣାଭ୍ର—(ହି. ଶ.)—
Bajrābhara Black mica.

ବଜ୍ରାସ୍ତ୍ର—ସଂ. ବି.—(ବଜ୍ର+ଅସ୍ତ୍ର; ରୂପକ)—୧ । ତଡ଼ିତାସ୍ତ୍ର—
Bajrāstra 1. Electric weapon.
୨ । ଇନ୍ଦ୍ରଙ୍କର ଅସ୍ତ୍ର; ଅଶନି—2, Thunderbolt; the weapon of Indra.
୩ । ଆଗ୍ନେୟାସ୍ତ୍ର (ଯଥା—ତୋପ, ବନ୍ଧୁକ ।)—3. Firearm; gun, cannon etc.

ବଜ୍ରାସନ—ସଂ. ବି.—(ବଜ୍ର+ଆସନ)—ହଠ ଯୋଗର ଆସନ ବିଶେଷ-
Bajrāsana A kind of posture in Joga exercise.
[ ଦ୍ର—ଏଥିରେ ଗୁହ୍ୟ ଓ ଲିଙ୍ଗ ମଧ୍ୟସ୍ଥ ସ୍ଥାନକୁ ବାଆଁ ଗୋଡ଼ର ଗୋଇଠି ଦ୍ୱାରା ଦାବି, ତହିଁ ଉପରେ ଡାହାଣ ଗୋଡ଼ ରଖି ବେକ ପକାଇ ବସିବାକୁ ହୁଏ । ହଠଯୋଗର ୮୪ ଆସନରୁ ଏହା ଏକ—ହି. ଶ. । ]

ବଜ୍ରାହତ—ସଂ. ବିଣ—( ତୃତୀୟା ତତ୍; ବଜ୍ର+ଆହତ )—ବଜ୍ରଦ୍ୱାରା
Bajrāhata ଆଘାତ ପ୍ରାପ୍ତ—Struck with thunder-bolt.

ବଜ୍ରୀ—ସଂ. ବି—(ବଜ୍ର+ଅଛି ଯାହାର, ଅର୍ଥରେ ଇନ୍)—୧ । ଇନ୍ଦ୍ର—
Bajrī 1. Indra.
୨ । ଭିକଣ୍ଡା ସିଜୁ ଗଛ—
2. Euphorbia Antiqorum
୩ । ମହିଷ—3. Buffalo.
୪ । ଜୈନ ମୁନି—4 A Jaina saint.

ବଜ୍ରୌଳି—ସଂ. ବି—ହଠଯୋଗୋକ୍ତ ମୁଦ୍ରାବିଶେଷ—
Bajrauḷī Name of an exercise in Haṭhajoga.

ବଞ୍ଚ୍ (ଧାତୁ)—ସଂ—୧ । ଗମନ କରିବା—1 To go.
Bañch (root) ୨ । ତ୍ୟାଗ କରିବା—2. To give up.
୩ । ଠକିବା—3. To cheat.

ବଞ୍ଚ—ଦେ. ବି—ଖେଳନ୍ତା ବା ଗଞ୍ଜପା ଖେଳର ଗୋଟିଏ ଦାନ—
Bañch A throw of cards in the game of Gañjapā.

ବଞ୍ଚକ—ସଂ. ବିଣ. ପୁଂ—(ବଞ୍ଚ୍ ଧାତୁ. ଣିଚ୍=ବଞ୍ଚି ଧାତୁ+କର୍ତ୍ତୃ. ଅକ)-
Bañchaka ପ୍ରତାରକ; ଶଠ—Fraudulent; deceitful;
(ବଞ୍ଚିକା—ସ୍ତ୍ରୀ) crafty.
ବି—୧ । ଠକ—1. A swindler; a cheat.
୨ । ଶୃଗାଳ—2. Jackal.
୩ । କୁକୁର—3. Dog.
୪ । ଚୋର—4. Thief.

ବଞ୍ଚନ—ସଂ. ବି—(ବଞ୍ଚି. ଧାତୁ+ଭାବ. ଅନ)—୧ । ପ୍ରବଞ୍ଚନା; ପ୍ରତାରଣ;
Bañchana ଠକିବା; ଶଠତା—1. Deception; cheating;
(ବଞ୍ଚନା—ଅନ୍ୟରୂପ) fraud; deceit; knavery.
୨ । (ବଞ୍ଚ୍ ଧାତୁ+ଅନ)- ଯାପନ; ଅତିବାହନ; କ୍ଷେପଣ—
2. Passing (of time).
ଦେ. ବି—ବାଧା ଦେବା—Obstructing.
କରରେ କର ବଞ୍ଚନ ଡ଼ାଳିଲାପରି ଲୋଚନ
ହୋଏ କି ମନ ମଞ୍ଚନ କାହିଁ ବଚନ—ଭଞ୍ଜ. ପ୍ରେମସୁଧାନିଧି ।

ବଞ୍ଚା—ଦେ. ବି—(ସଂ. ବଞ୍ଚ୍ ଧାତୁ=ଗତି କରିବା)—ବଞ୍ଚିବା; ଜୀବନ-
Bañchā बाँचा **बचना** ଧାରଣ—Living.

ବଞ୍ଚାଇ କହିବା—ଦେ. କ୍ରି—୧ । ( ଲକ୍ଷଣାର୍ଥ ) ପ୍ରତାରିତ କରିବା—
Bañchāi kahibā 1. To diceive.
बाँचिये बला **बचाबचाकर बोलना**
ବଞ୍ଚାଇ କହିବନ୍ତି ସେ କଥା ତାହାଙ୍କୁ—କୃଷ୍ଣସିଂହ. ମହାଭାରତ, ଆଦି ।
୨ । ପରୋକ୍ଷ ଭାବରେ କୌଣସି ବିଷୟ କହିବା—
2. To say a thing indirectly.
୩ । କୌଣସି ବ୍ୟକ୍ତିକୁ ଦୋଷଭାଗୀ ନ କରିବା ପରି କଥା କହିବା—3. To speak in such a manner so as to save a person from blame.

ବଞ୍ଚା(ଞ୍ଚେ)ଇବା—ଦେ. କ୍ରି—(ସଂ. ବଞ୍ଚ୍. ଧାତୁ=ଗମନ କରିବା)—
Bañchā(ñche)ibā (ବଞ୍ଚିବା କ୍ରିୟାର ଣିଜନ୍ତ ରୂପ—
The causative form of 'Bañchibā).

বাঁচান ୫ । ଆପଣାର ବା ଅନ୍ୟବ୍ୟକ୍ତିର ଜୀବନ ରକ୍ଷା କରିବା—
**बचवाना** 1. To save or preserve or spare the life of another or of one's self.

୬ । ଜୀଆଁଇବା; ପୋଷିବା; ପାଳିବା—
2, To sustain; to rear up; to maintain.

୩ । ବିପଦରୁ ଉଦ୍ଧାର ବା ରକ୍ଷା କରିବା—
3, To save from impending danger,

କୃଷ୍ଣଙ୍କୁ ନାହିଁ, ଥିଲେହେଁ ବଞ୍ଚାଅ । କବିସୂର୍ଯ୍ୟ. କଳୀଆଯାଚକ. ୭. ଗୀତ

୪ । ସହିବା; ସମ୍ଭାଳି ନେବା—5. To bear.

୬ । ଛଳାଇବା—7. To speak with hints

ବିଷ୍ଣୋଳ ନ ପାରି ମନ ଉଦ୍ଧତ ହୋଇ
ପଚାରିଲେ ବଞ୍ଚାଇ ମନରେ ଲଜପାଇ । ଶିଶୁଶଙ୍କର. ଉଷା ଅଭିଳାଷ ।

୭ । (ଆଘାତରୁ ଦେହକୁ) ଏଡ଼ାଇବା; ରକ୍ଷା କରିବା—
7. To ward off (a blow).

ଦୁଷ୍ଟେ୍ରାକ ଦୃଢ଼ାଘାତ ବଞ୍ଚାଇବାକୁ ଶକ୍ତ ଅଟଇ ରେ । କବିସୂର୍ଯ୍ୟ. ସଙ୍ଗୀତ

୮ । ପ୍ରତାରିତ କରିବା; ଭଣ୍ଡିବା; ବଞ୍ଚିତ କରିବା—
8. To defraud; to inveigle.

ଏ ଅନ୍ତେ ଋତୁପର୍ଣ୍ଣ ଚିନ୍ତୁ ସଙ୍କୋଚଇ
କହିଲେ ସେହୁ ଗ୍ରାମ ରାଜାଙ୍କୁ ବଞ୍ଚାଇ । କୃଷ୍ଣସିଂହ. ମହାଭାରତ ବନ ।

୯ । କୌଣସି କାର୍ଯ୍ୟକୁ ସମ୍ପୂର୍ଣ୍ଣରୂପେ ବା ଏକାବେଳକେ ନ କରିବା—9. To shelve up a matter.

୧୦ । ଏକାବେଳକେ ଖର୍ଚ୍ଚ ନ କରି ରଖିରଖି ଖର୍ଚ୍ଚ କରିବା—
10 To spare; to use frugally.

ଅଳ୍ପ ଅଳ୍ପ ବଞ୍ଚାଇ ବଞ୍ଚାଇ ବସ୍ତ୍ରାଧରୁ ମଧୁ ଚଖାଇଲୁ । କବିସୂର୍ଯ୍ୟ. ସଙ୍ଗୀତ ।

୧୧ । କୌଣସି ବ୍ୟକ୍ତିକୁ ନିନ୍ଦା ବା ଦୋଷ ବା କ୍ରୁଟିର ଅଭିଯୋଗରୁ ମୁକ୍ତ କରିବା—11. To save a person from blame or any other charge.

**ବଞ୍ଚାବଞ୍ଚି**—ଦେ. ବି. (ସଂ. ବଞ୍ଚନ)—୧ । ଅନ୍ୟୋନ୍ୟରେ ବଞ୍ଚାଇବା—
Bañchābañchi 1. Practising deception on each other or one another.
ঠকাঠকি
**ठगाठगी** ୬ । (ଲକ୍ଷଣାର୍ଥ) ଭୁଲା ଭୁଲି—2. (figurative) Enticement; inducement; pursuation.

ବୁଝୁଥିବ ବୋଇଲେ କହୁଅଛୁ ଶତୀ
ଯାଉଣ କଥାରେ କରନ୍ତି ବଞ୍ଚାବଞ୍ଚି । କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ

**ବଞ୍ଚି** (ଧାତୁ)—ସଂ. (ବଞ୍ଚ୍ ଧାତୁ ଣିଚ୍)—ଠକାଇବା; ପ୍ରତାରଣା କରିବା—
Bañchi (root) To cheat.

**ବଞ୍ଚି ଆସିବା**—ଦେ. କ୍ରି—କୌଣସି ବିପଦ ବା ଆସନ୍ନ ମୃତ୍ୟୁରୁ ଉଦ୍ଧାର
Bañchi āsibā ପାଇବା—To escape with one's life
(ବଞ୍ଚିଯିବା—ଅନ୍ୟରୂପ) from impending death or
বেঁচেআসা **बचआना** danger.

ସୁଯୋଗୁଁ ସିନା ବଞ୍ଚି ଅଇଲୁଟେ । କବିସୂର୍ଯ୍ୟ. କଳୀଆଯାଚକ. ୫. ଗୀତ ।

**ବଞ୍ଚି ଉଠିବା**—ଦେ. କ୍ରି—(ମୃତ ବ୍ୟକ୍ତି) ପୁନର୍ଜୀବିତ ହେବା—
Bañchi uṭhibā To come to life; to be resusciated.
বেঁচেউঠা **बचउठाना**

**ବଞ୍ଚିଣୀ**—ଦେ. ବି—ବିଞ୍ଚଣା; ବିଞ୍ଚିବା—Fan, fanning.
Bañchiṇi ପଙ୍କାର ସେବକ ଘୃଣି ବଞ୍ଚଣୀ ବାଶେ । ଶିଶୁଶଙ୍କର ଉଷାଅଭିଳାଷ ।

**ବଞ୍ଚିତ**—ସଂ. ବିଣ. ପୁଂ. (ବଞ୍ଚ୍ ଧାତୁ+କର୍ମ. ତ)—୧ । ପ୍ରତାରିତ—
Bañchita 1. Cheated; defrauded.
(ବଞ୍ଚିତା—ସ୍ତ୍ରୀ) ୬ । ବିରହିତ—2. Deprived of.
ଦେ. ବିଣ (ସଂ. ବାଚ୍ୟ)—ନିନ୍ଦିତ—Blamed.

ସେ ବସ୍ତୁ ବଞ୍ଚିତ ଜୀବନ
ଏମନ୍ତେ ଗଲ କେତେ ଦିନ । ଜଗନ୍ନାଥ. ଭାଗବତ ।

**ବଞ୍ଚିବା**—ଦେ. କ୍ରି. (ସଂ. ବଞ୍ଚ୍ ଧାତୁ=ଗମନ କରିବା)—୧ । ଜୀଇଁବା;
Bañchibā ଜୀବନଧାରଣ କରିବା; ଜୀବିତ ରହିବା; ବାସ କରିବା-
বাঁচা **बचना** 1. To live; to survive.

ତମ୍ଭକାରଣେ ଏକ ରାତ୍ର ସେ ବଞ୍ଚିତ
ସହସ୍ରେ ଗାଈ ଦାନ ଫଳ ସେ ପାଉଛି । କୃଷ୍ଣସିଂହ. ମହାଭାରତ ବନ ।

୬ । ବଳି ପଡ଼ିବା; ଉଦ୍ବୃତ୍ତ ହେବା—
2. To be outstanding; to remain over.

୩ । କଷ୍ଟ ବା ବିପଦରୁ ରକ୍ଷା ପାଇବା—
3. To be saved from danger.

ଅସୁର ପ୍ରଜ ପ୍ରହଲାଦ, ବଞ୍ଚିଲା ଅନେକ ପ୍ରମାଦ । ଜଗନ୍ନାଥ. ଭାଗବତ ।

୪ । (ଦିନ ବା କାଳ) ଯାପନ କରିବା; ଅତିବାହିତ କରିବା;
**काटा** କ୍ଷେପଣ କରିବା—4. To pass (time); to while away (time)

ବଧଅର୍ଥେ ଦିନ ବଞ୍ଚି ଅଛ ମୋ ଧନ ।
କବିସୂର୍ଯ୍ୟ. ରହ୍ମାକରଚଉତିଶ. ବ. ଗୀତ ।

**ବଞ୍ଚି ରହିବା**—ଦେ. କ୍ରି—୧ । ଜୀଇଁବା—1. To be alive; to
Bañchi rahibā continue to live.
বেঁচে থাকা **बच रहना** ୬ । ବହୁଦିନ ଜୀଇଁବା—2. To live long.

**ବଞ୍ଚୁକ**—ସଂ. ବିଣ. ପୁଂ (ବଞ୍ଚ୍ ଧାତୁ+କର୍ତ୍ତୃ. ଉକ)—ଠକ; ପ୍ରତାରକ-
Bañchuka Crafty; fraudulent, deceitful.
(ବଞ୍ଚୁକା—ସ୍ତ୍ରୀ) ଦେ. ବି—ବିଲୁଆ—Jackal.

ବଞ୍ଚୁକ ପରସ୍ପେ ହେଲେ ମୃଗରେ ଅନଳ ଜଳେ
ଦେଖାଇ ନାଗ ଖଗୁବ ହେଲେ ଦୃଷିଲେ । ଭଞ୍ଜ, ବୈଦେହୀଶବିଳାସ ।

**ବଞ୍ଚ୍ୟ**—ସଂ. ବିଣ. (ବଞ୍ଚ୍ ଧାତୁ+କର୍ମ. ଯ)—ପ୍ରତାରଣାର ଯୋଗ୍ୟ—
Bañchya Fit to be cheated.

**ବଞ୍ଜର**—ବୈଦେ. ବି. (ହିନ୍ଦୀ; ଭୂଲ. ସଂ. ବନ୍ଧ୍ୟା)—
Bañjara ୧ । ଅନାବାଦ ବା ପଡ଼ିଆ ଜମି—
1. Waste land.
পড়ৎ ୨ । ଢିପ ଜମି—2. High land
**बञ्जर** ୩ । ଯେଉଁ ଜମିରେ କୌଣସି ଫସଲ ହୁଏ ନାହିଁ—
3. Barren and unproductive land.

**ବଞ୍ଜିରି**—ପ୍ରାଦେ (ସମ୍ବଲପୁର ଓ ଲଡ଼ଥା) ବି.—ଆଡ଼ମାଛ—
Bañjiri A kind of fresh water fish.

**ବଞ୍ଜୁଳ**—ସଂ. ବିଣ (ବଞ୍ଜ୍ ଧାତୁ+ଉଳ)—୧ । ଅଶୋକ ବୃକ୍ଷ—
Bañjula 1. The Asoka tree.
୬ । ବେତଲତା—2. The cane (creeper).
୩ । ପକ୍ଷୀବିଶେଷ (କ୍ଳାନେକ୍)—3. A kind of bird.

**ବଟ୍** (ଧାତୁ)—ସଂ.—୧ । ବେଷ୍ଟନ କରିବା—
Baṭ (root) 1. To surround.
୬ । ଆଚ୍ଛାଦନ କରିବା—2. To cover.

୩ । ବ୍ୟାପିବା—3. To extend over.

୪ । ଉକ୍ତି କରିବା; କହିବା—4. To speak.

**ବଟ୍କା**—ପ୍ରାଦେ (ବସ୍ତର) ବି—(ଭୁଲ ହି. ବଟୁକ)—କଂସା—
Bat-kā Bellmetal pot.

**ବଟ୍କି**—ପ୍ରାଦେ. (ବସ୍ତର) ବି—(ଭୁଲ ହି. ବଟକା)—ଗିନା; ଢାଳୁଆ—
Batki A small pot of bellmetal.

**ବଟ୍ବା**—ପ୍ରାଦେ. (ସମ୍ବଲପୁର) କି—(ଭୁଲ ହି. ବାଁଟନା)—ବଳବା—
Bat-bā To roll,

**ବଟ୍ଲେହି**—ପ୍ରାଦେ. (ସମ୍ବଲପୁର) ବି—(ଭୁଲ. ହି. ବଟଲୋହୀ)—ବଟୁଳ-
Bat-lehi A round cooking jug made of brass.

**ବଟ**—ସଂ. ବି. (ବଟ୍ ଧାତୁ+କର୍ତ୍ତୃ ଅ; ଏହା ଅଧିକ ସ୍ଥାନ ଆଚ୍ଛାଦନ କରୁଥିବାରୁ)—୧ । ବରଗଛ—1. The banyan tree.
Bata

୨ । କପର୍ଦ୍ଦକ; କଉଡ଼ି; କଡ଼ା—
2. One shell money; one cowrie.

୩ । ଏକ କଡ଼ା କଉଡ଼ିର ୫ ଭାଗରୁ ଏକଭାଗ—
3. One fifth of one cowrie or ancient shell-money.

୪ । ବଡ଼ା; ଘିଅ ବା ତେଲପକ୍ୱ ଗୋଲାକାର ଚଟକା ପିଠ—
4. A round flat cake fried in ghee or oil.

୫ । ବର୍ତ୍ତୁଳାକାର ବସ୍ତୁ; ଗୁଳା; ଗୁଟିକା—
5. A round ball; pillule,

୬ । ସାଦୃଶ୍ୟ—6. Similarity.

୭ । ମୂଲ୍ୟ; ଦାମ୍ (ଜ୍ଞାନେନ୍ଦ୍ର)—7. Price.

୮ । ବଟକରା (ହି. ଶ) (ଦେଖ)—8. Baṭakarā (See).

୯ । ଦଉଡ଼ି ବଳାଯିବା (ହି. ଶ)—9. Stringing of a rope.

୧୦ । ପୁରାଣ ପ୍ରସିଦ୍ଧ କଳ୍ପବଟ—
10. The mythological Banyan tree which is said to be everlasting.

[ ଦ୍ର—ହିନ୍ଦୁ ପୁରାଣମାନଙ୍କରେ ଉଲ୍ଲେଖ ଅଛି ଯେ, କଳ୍ପାନ୍ତ ପ୍ରଳୟ କାଳରେ, ଯେତେବେଳେ ବ୍ରହ୍ମାଣ୍ଡ ଜଳ ଗର୍ଭରେ ବୁଡ଼ି ଯାଇଥିଲା ସେତେବେଳେ, 'କଳ୍ପବଟ' ନାମକ ବୃକ୍ଷର ଅଗ୍ରଭାଗ ମାତ୍ର ଦେଖାଯାଉଥିଲା, ଓ ତହିଁର ଅଗ୍ରରେ ଥିବା ଗୋଟିଏ ପତ୍ର ଉପରେ ବିଷ୍ଣୁ ଶୋଇଥିଲେ । ସେହି ପତ୍ରଟି ପ୍ରଳୟ ପୟୋଧି ଜଳରେ ଭାସୁଥିଲା । ନିଦ୍ରିତ ବିଷ୍ଣୁଙ୍କର ନାଭିକମଳରୁ ଗୋଟିଏ ପଦ୍ମ ଫୁଟିଲା ଓ ସେହି ପଦ୍ମରୁ 'ବ୍ରହ୍ମା' ଜାତ ହେଲେ । ବିଷ୍ଣୁଙ୍କ କର୍ଣ୍ଣମଳରୁ 'ମଧୁ କୈଟଭ' ଦୈତ୍ୟ ଦ୍ୱୟ ଜାତ ହେଲେ । ବିଷ୍ଣୁ ଆପଣାର ଜଙ୍ଘ ଉପରେ ସେମାନଙ୍କୁ ମାରିବାରୁ ସେହିମାନଙ୍କ ମେଦରୁ ମେଦିନୀ ବା ପୃଥିବୀ ଜାତ ହେଲା । ସେହି ପୃଥିବୀ ଉପରେ ବ୍ରହ୍ମା ସୃଷ୍ଟି ଆରମ୍ଭ କଲେ । ବର୍ତ୍ତମାନ ହିନ୍ଦୁମାନେ ପୁରୀ, ପ୍ରୟାଗ, ବୃନ୍ଦାବନ, କାଶୀ, ଭୁବନେଶ୍ୱର ଆଦି ତୀର୍ଥ ସ୍ଥାନମାନଙ୍କରେ ଥିବା ଗୋଟିଏ ଲେଖାଏଁ ବଟ ଗଛକୁ ସେହି କଳ୍ପବଟ ବୋଲି କଳ୍ପନା କରି ଯାତ୍ରୀମାନଙ୍କୁ ଦେଖାନ୍ତି ।

ଓଡ଼ିଶାର ଅଚ୍ୟୁତାନନ୍ଦ ଦାସ ଆଦିଙ୍କ 'ମାଳିକା' ବା ଭବିଷ୍ୟତ ବାଣୀରେ କେତେଗୁଡ଼ିଏ 'ବଟ'ର ନାମ ନିର୍ଦ୍ଦିଷ୍ଟ ହୋଇଅଛି । କଳ୍କୀ ଅବତାରବେଳେ ଏ ପୃଥିବୀରୁ ଦୁଷ୍ଟ ସଂହାର କରିବା ପାଇଁ ଯୁଦ୍ଧ ହେବା ପୂର୍ବରୁ ସେହି ବଟମାନଙ୍କ ମୂଳରେ ବାଇଶୀ ଭକ୍ତମାନେ ରୁଣ୍ଡ ହେବେ ବୋଲି ମାଳିକାରେ ଲେଖା ଯାଇଅଛି ।

କଟକ ଜିଲ୍ଲାର ଲେମ୍ବାଳ ମଠ ନିକଟସ୍ଥ ବଟ 'ଲେମ୍ବାଳ ବଟ', ଏହି ଜିଲ୍ଲାର ଦର୍ପଣୀ କିଲ୍ଲାର ଛଇଆ ଗ୍ରାମସ୍ଥ ବଟ 'ଛଇଆ ବଟ', କଟକ ସହରର ପୂର୍ବରେ ୧୪ ମାଇଲ ଦୂରରେ ଅବସ୍ଥିତ ରତ୍ନଯୋଡ଼ ବା ଇଟରେ ଯୋଡ଼ୀ ନାମକ ହ୍ରଦର କୂଳସ୍ଥ ବଟ 'ରତ୍ନବଟ' ଉକ୍ତ ବଟମାନଙ୍କ ମଧ୍ୟରୁ ତିନିଗୋଟି ବୋଲି କଥିତ । ଗ୍ରାମ ଦେବତା ବା ଠାକୁରାଣୀମାନେ ସାଧାରଣତଃ ବଟଗଛମାନଙ୍କ ମୂଳରେ ପ୍ରତିଷ୍ଠିତ ହୋଇ ପୂଜା ପାଉଥିବାର ଦେଖାଯାଏ ।]

ଦେ· ବି—( ଆଦରାର୍ଥକ ) ବଟକୃଷ୍ଣ ନାମକ ବ୍ୟକ୍ତିର ଡାକ ନାମ—Name for calling Baṭakrushṇa,

**ବଟକ**—ସଂ. ବି (ବଟ+ସ୍ୱାର୍ଥେ. କ)—୧ । ବରି ଆଦିର ବଡ଼ା; ଘିଅ ବା ତେଲପକ୍ୱ ଗୋଲାକାର ପିଷ୍ଟକ—1, A round thick pastry cake.
Baṭaka

୨ । ବରି ବାଟି କରି ତହିଁରେ ପ୍ରସ୍ତୁତ ହୋଇଥିବା ଗୋଲାକାର ଗୁଳା; ବଡ଼ି—2. A ball of corn-paste dried and stored for being used in the preparation of curry.

୩ । ଏକତୋଳା ବା ୮ ମଷା ଓଜନର ପରିମାଣ—
3. A standard weight corresponding to the weight of one silver rupee.

୪ । ବଟୀ (ଦେଖ)—4. Baṭī.

**ବଟକ(କେ)ରା**—ଦେ. ବି. (ସଂ. ବଟକ)—ନିକିତିଦ୍ୱାରା ପଦାର୍ଥମାନ ଓଜନ କରିବା ନିମନ୍ତେ ବ୍ୟବହୃତ ଧାତୁ ବା ପଥରର ଗୋଟିକା—Small pieces of metal or stone used as standard weights to weigh articles in a balance.
Baṭaka(ke)rā

ବଟ ଖରା } ଅନ୍ୟରୂପ
ବଟ ଖେରା }
বাটখারা
**बटखरा; बटैरा**

ପ୍ରାଦେ. (ଯାଜପୁର) ବି—ବଟା; କଳଙ୍କ; ଅପବାଦ—
Staim; stigma.

**ବଟକୀ**—ପ୍ରାଦେ. (ସମ୍ବଲପୁର) ବି—ଛୋଟ ବେଲା—
Baṭakī A small bellmetal pot.

**ବଟକୃଷ୍ଣ**—ସଂ. ବି. (ମ. ପ. ଲୋ; ବଟ ଶାୟୀ କୃଷ୍ଣ)—ଭଗବାନଙ୍କ ନାମ—
Baṭakrushṇa A name of Bishṇu.

[ ଦ୍ର—ପୁରାଣରେ ଉଲ୍ଲେଖ ଅଛି ଯେ ପ୍ରଳୟ ସମୟରେ ବିଷ୍ଣୁ କଳ୍ପବଟ ଗଛର ପତ୍ର ଉପରେ ଶୋଇ ଭାସୁଥିଲେ । ଏହି କଥାକୁ ଲକ୍ଷ୍ୟ କରି ଏ ଶବ୍ଦ ବ୍ୟବହୃତ ହୋଇଅଛି । ]

ଦେ. ବି. ପୁଂ— ପୁରୁଷ ଲୋକଙ୍କୁ ଦିଆଯିବା ନାମ—
A name given to males.

[ ଦ୍ର ଆଦରାର୍ଥକ ରୂପ— ବଟ, ବଟି, ବଟୁ । ଅନାଦରାର୍ଥକ ରୂପ—ବଟିଆ, ବଟୁଆ । ]

ଦେ. ବି. ପୁଂ—ପୁରୁଷ ଲୋକଙ୍କୁ ଦିଆଯିବା ନାମ—
Name given to males.

**ବଟ ପତ୍ରୀ**—ସଂ. ବି. (ବୈଦ୍ୟକ)—ପାଷାଣ ଭେଦୀ ଜାତୀୟ ଏକ ପ୍ରକାର
Baṭa patrī ଗୁଳ୍ମ—A sort of herb; Lycopidium; Coleus Amboinicus.
ଅନ୍ୟ ସଂ. ନାମ— ଇଳାମା, ଐରାବତୀ, ମୋହିନୀ, ଗୋଧାବତୀ, ଶ୍ୟାମା, ଖଡ୍ଗାଙ୍ଗ ନାମିକା, ଇରାବତୀ
ବଡ଼ ପାଥର କୁଚୀ
**पाखान भेद, पथर फोड**
ତେ. ଚିଉ, ବଣ୍ଡ ଚେଟ୍ଟୁ
ମ. ବଡ଼ିବତୀ
[ ଦ୍ର—ଏହା କଷାୟ ରସ, ଶୀତଳ, ପିଚ୍ଛିଳ, ଅଗ୍ନିବର୍ଦ୍ଧକ, ବଳକାରକ, ଦଦ୍ରୁନାଶକ ଓ ମେହ, ମୂତ୍ରକୃଚ୍ଛ୍ର, ବ୍ରଣ ଓ ଯୋନି ରୋଗରେ ଔଷଧ ରୂପରେ ବ୍ୟବହୃତ ହୁଏ । ]

**ବଟ ଫଳ**—ସଂ. ବି—ବର ଗଛର ଫଳ—
Baṭa phaḷa The berries of the banyan tree.
ଦେ. ବି—ବର ଫଳ ଆକୃତି ବିଶିଷ୍ଟ ସ୍ୱର୍ଣ୍ଣ ରୌପ୍ୟାଦିର ଗୋଲକମାନଙ୍କ ଦ୍ୱାରା ଗୁନ୍ଥା ହୋଇଥିବା ହସ୍ତର ବଳୟବିଶେଷ—
A bangle consisting of small balls strung together.

**ବଟମ**—ପ୍ରାଦେ. (ବାଲେଶ୍ୱର) ବୈଦେ. ବି. [ଜାହାଜିଆ ଶବ୍ଦ; ବାଲେଶ୍ୱରରେ ପୂର୍ବେ ଜାହାଜ କାରବାର ଚଳୁଥିବା ବେଳେ
Baṭama
**जाहाज पर लहना**
ବ୍ୟବହୃତ ଶବ୍ଦ; ଭୁଲ. ଇଂ. ବଟମ୍ରି (bottomry) ଜାହାଜକୁ ବନ୍ଧକ ଦେଇ ଋଣ କରାଯିବା ଟଙ୍କା]—ଜାହାଜିଆମାନଙ୍କୁ ଅନ୍ୟ ଲୋକମାନେ ବେଶି ସୁଧରେ ଋଣ ଦେବା ଟଙ୍କା—Loans advanced to sailors at high rate of interest.
ତାହାର ପାଞ୍ଚ ମାସର ଦରମା ସାଢ଼େ ସାତ ଟଙ୍କା ଅଗଭୁର ନେଇ ବଟମ ଦେଇ ଥିଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ବଟ(ତ)ର**—ଦେ. ବି. ( ସଂ. ବର୍ତ୍ତୁଲ; ପ୍ରା. ବଟ୍ଟ )—
Baṭa(ta)ra ଲାବ ପକ୍ଷୀ; ପାଂଶୁ ବର୍ଣ୍ଣ ପକ୍ଷୀବିଶେଷ—
ବଟେର **बटेर** The grey quail.
[ ଦ୍ର—ଏହା ୧୦।୧୨ ଅଙ୍ଗୁଳ ଲମ୍ବ; ଥଣ୍ଟ ସରୁ ଓ ଛୋଟ; ପିଠିରେ ଲମ୍ବା ଧଳା ଡୋରି । ଏମାନେ ଶୀତକାଳରେ ଧାନ କିଆରିରେ ଦଳ ଦଳ ହୋଇ ପଡ଼ି ଧାନ ଖାଆନ୍ତି । ଏମାନଙ୍କ ମାଂସ ସୁସ୍ୱାଦୁ । ଉତ୍ତର ପଶ୍ଚିମ ଭାରତରେ ଚଢ଼େଇ-ଲଢ଼େଇ କରାଇବା ପାଇଁ ଲୋକେ ଏ ପକ୍ଷୀଙ୍କୁ ପାଳନ୍ତି । ]

**ବଟ ଶୟନ**—ଦେ. ବି.- (ଭଗବାନଙ୍କର) ପ୍ରଳୟ କାଳରେ ବାଳମୁକୁନ୍ଦ
Baṭa śayana ରୂପ ଧାରଣ କରି ବଟପତ୍ରରେ ଶୋଇବା—
(Bishnu's) Reclining on the Banyan leaf at the time of the Deluge, assuming the incarnation or shape of a child.

**ବଟା**— ଦେ. ବି. ( ସଂ. ବର୍ତ୍ତନ; ପ୍ରା. ବଟ୍ଟଣ )—
Baṭā ୧ । ବାଟିବା କ୍ରିୟା; ଶିଳରେ ପେଷିବା—
ବାଟା 1. The act of pounding with a pestle and mortar.
**बाँटना, पीसना**

ଡ଼ିପେ, ବାଟା ୨ । (ସଂ. ବଟ; ବାଟ=ବେଷ୍ଟିତ ସ୍ଥାନ)—
**बटा** ପାନ ଆଦି ରଖିବାର ଦୁଇ ଫାଳ ବିଶିଷ୍ଟ ପାତ୍ର; ଡବା; ଧାତୁ ସମ୍ପୁଟ—2. A metal pot consisting of two cups set on each other (for keeping betel etc).

୩ । କଳଙ୍କ; ଅପବାଦ; ଦୁର୍ନାମ; ବାଟୁଆ—
**बटा** 3. Stain; stigma.
( ଯଥା—ମୁଁ ଅମୁକ କାମରେ ହାତ ଦେବାରୁ ମୋଠେଇଁ ବଟା ଲାଗିଲାଣି । )

ବାଟା ୪ । (ସଂ. ବାର୍ତ୍ତ) ଟଙ୍କାକୁ ବଦଳାଇ ପଇସା ଭଙ୍ଗାଇଲେ ସେଥି
**बटा** ପାଇଁ ଯେଉଁ କମିସନ ଦେବାକୁ ପଡ଼େ—4. Commission paid by the person exchanging coins.

୫ । ଏକ ଦେଶର ମୁଦ୍ରାକୁ ଅନ୍ୟ ଦେଶର ମୁଦ୍ରାରେ ବଦଳାଇବା ପାଇଁ ଯାହା କମିସନ ଦିଆଯାଏ—5. Batta; rate of exchange between two countries.

୬ । ଦଲାଲୀ; ଦସ୍ତୁରୀ—6. Commission paid to a middleman.

୭ । ଖତ—7. Loss.

୮ । ଡିସ୍କାଉଣ୍ଟ ( ଦେଖ )—8. Ḍis-kāunṭ (see)

୯ । କୌଣସି ପଦାର୍ଥ (ବାସନ ଆଦି)କୁ ବଦଳାଇବାରେ ଯେଉଁ ଅଧିକା ପଇସା ଲାଗେ—9. Extra payment made for exchanging an old article.
ପାଏ ଅଛି ବଟା ବଢ଼ିଛ ଯିବା । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

୧୦ । ବଟକୃଷ୍ଣର ଡାକ ନାମ—10. A name for calling Baṭakṛushṇa.

୧୧ । ମାଠ ସିଲାଇ କରିବା ପାଇଁ ଅନେକ ଖିଅ ସୂତାକୁ ଏକତ୍ର ବଳ ଦିଅର କରାଯାଇ ଥିବା ମୋଟ ଡୋର—
11. A thick thread made by twisting many thin threads together.
**बटा सूत**

ବାଟା ଦେ. ବିଣ—ପିଷ୍ଟ ହୋଇଥିବା—
**पीसा हुआ** Pounded with stone.

ପ୍ରାଦେ. (ଗଞ୍ଜାମ) ବି—ଭଟା; ଜୁଆର ଖସି ଯିବାର ଅବସ୍ଥା—
Ebb tide.

ବୈଦେ. ବି. (ହିନ୍ଦୀ)—ବଟା ନମ୍ବର ( ଦେଖ )
Baṭā nambara ( See )

**ବଟା(ଟେ)ଇବା**—ଦେ. କ୍ରି. ( ସଂ. ବର୍ତ୍ତନ; ବୃତ୍ ଧାତୁ ଣିଜନ୍ତ )—
Baṭā(ṭe)ibā ବାଟିବା କ୍ରିୟାର ଣିଜନ୍ତ ରୂପ—The
ବାଟାନ **पीसाना** causative form of 'Bāṭibā.'

୧ । ଅନ୍ୟ ବ୍ୟକ୍ତି ଦ୍ୱାରା କୌଣସି ପଦାର୍ଥକୁ ଶିଳରେ ପେଷଣ କରାଇବା—1. To cause a thing to be bruised or pestled.

୨ । ବଟା ବଟି କରିବା ( ଦେଖ )
2. Baṭā baṭi karibā ( See )

ଗ୍ରା. କ୍ରି—(ପ ସ୍ଥାନରେ ବ ଉଚ୍ଚାରଣ) ପଠାଇବା—To send

**ବଟା ଘଷା**—ଦେ. ବି. (ଏକାର୍ଥକ ସହଚର ଶବ୍ଦ)—ଖାଦ୍ୟ ଦ୍ରବ୍ୟକୁ ପାକ କରିବା ପୂର୍ବରୁ ବେସର ମସଲା ଆଦି ବାଟିବା ।—Pounding of pastes (before cooking).
Baṭā ghashā
बाटा घसा
**पीसा घसा**

**ବଟା ନମ୍ବର**—ବୈଦେ. ବି. (ହିନ୍ଦୀ; ସେଟ୍‌ଲମେଣ୍ଟରେ ବ୍ୟବହୃତ ଶବ୍ଦ)—ଏକ ଖଣ୍ଡ କ୍ଷେତ୍ରରୁ ଗୋଟିଏ ଅଂଶ ବାହାର କରି ନେଲେ ଅସଲ କ୍ଷେତ୍ରର ପ୍ରଥମେ ଯେଉଁ ନମ୍ବର ଥାଏ ତହିଁ ତଳେ ଭଗ୍ନାଂଶ ଦେଇ ନୂତନ କ୍ଷେତ୍ରକୁ ଚିହ୍ନଟ କରାଯିବା ନମ୍ବର; ଫ୍ରାକ୍‌ସନ୍ ନମ୍ବର—A fractional number given to a plot of land carved out and separated from a bigger plot of land having an original number.
Baṭā nambara
**बटा नम्बर**

**ବଟା ବଟି**—ଦେ. କ୍ରି—୧ । ବାଟିବା କ୍ରିୟା—1 The act of pounding or bruising
Baṭā baṭi
बाटा बाटी
୨ । (ସଂ. ବଞ୍ଚନ) ଭଣ୍ଡାଭଣ୍ଡି କରିବା; କଥାରେ ଭୁଲାଇ ଦେବା—1. Inveigling; seducing.
**पीसा पीसी**
**वँचा वँची**
ବଟୋଗଡ଼ କରି ବଟାବଟି । କବିସୂର୍ଯ୍ୟ, ସଙ୍ଗୀତ, ବନ୍ଧୁଲତା ।
୩ । ଠକାଠକି—3. Cheating.

**ବଟାବଟି କରିବା**—ଦେ. କ୍ରି—୧ । ଭଣ୍ଡାଇବା; ମିଛ କଥା କହି କୌଣସି ବ୍ୟକ୍ତିକୁ ବୋଧସୋଧ କରାଇବା—1. To inveigle; to satisfy by hook or crook.
Baṭā baṭi karibā
(ମଣ୍ଟାପଟ୍ଟ କରିବା—ଅନ୍ୟରୂପ)
ठगाठगी करा
**वँचावँची करना, पट्टी देना**
୨ । ଠକିବା—2. To cheat.

**ବଟାଲି**—ଦେ. ବି. ( ସଂ. ବର୍ତ୍ତିକ; ପ୍ରା. ବଟ୍ଟିଅ )—
Baṭāli
୧ । ଯେଉଁ ଲୋକ କୌଣସି ପଦାର୍ଥକୁ ଶିଳରେ ପେଷଣ କରେ—1. One who bruises or pounds a thing in a pestle.
बाटाली
**बटारी**
୨ । (ସଂ. ବଣ୍ଟାଲା=ଖନନକ; ସଂ. ବଣ୍ଟ=ଅସ୍ତ୍ର ବେଣ୍ଟ) କାଠରେ ସାର୍ଘ ଛିଦ୍ର କରିବା ନିମନ୍ତେ ବ୍ୟବହୃତ କାଠର ବେଣ୍ଟ ଲାଗିଥିବା ବଢ଼େଇର ଯନ୍ତ୍ର ବିଶେଷ—2. Chisel.
बाटाली
**बटाली, रुखानी**
ମ. କଙ୍କରେଁ ଠାକୀ

[ ଦ୍ର—ଏହାର ଦାନ୍ତ ବା ଧାର ଚଉଡ଼ା । ଏ ଯନ୍ତ୍ର ନାନା ପ୍ରକାର, ଯଥା—ଚଉଡ଼ା ମୁହାଁ, ସରୁ ମୁହାଁ, ବାଙ୍କ ମୁହାଁ, ଗୋଲ ମୁହାଁ ଇତ୍ୟାଦି । ବଟାଲିରେ କାଠବେଣ୍ଟ ଲାଗିଥାଏ, କିନ୍ତୁ ନିହାଣରେ ବେଣ୍ଟ ନ ଥାଏ । ]

**ବଟାଳିବା**—ଦେ. କ୍ରି.—(ସଂ. ବର୍ତ୍ତୁଲ; ସଂ. ବଣ୍ଟାଲା=ଖଣତି)—
Baṭāḷibā
**बटारना**
ଡଙ୍ଗାର ତଳପଟାମାନଙ୍କ ସନ୍ଧି ମଧ୍ୟରେ ଗଛର ଛାଲ ବା ଝୋଟ ଆଦିକୁ ବଟାଳିର ଦାନ୍ତଦ୍ୱାରା ଭରିତ କରି ଫାଟ ବନ୍ଦ କରିବା—1. To thrust jute or other strong fibres into the crevices of the planks of a boat with the blunt edge of a chisel, so that there will be no leaking.
୨ । ବଟାଳିଦ୍ୱାରା କାଠ କାଟିବା—
2. To cut wood with the chisel.

**ବଟି**—ଦେ.ବି.—(ସଂ.ବାର୍ତ୍ତି,ପ୍ରା.ବାଟ୍ଟି=ଦ୍ରବ୍ୟ ପ୍ରସ୍ତୁତ କରିବା ମଜୁରି)—
Baṭi
୧ । ମୁଦ୍ରା ଭଙ୍ଗାଇବା ନିମନ୍ତେ ଦେୟ ଶୁଳ୍କ—1. Commission paid for exchanging one sort of coin into another.
बाटा
**वट्टी; वट्टा**
बट्ट **वटी**
୨ । ମାସୁଲ; ଶୁଳ୍କ; ଟିକସ—2. Tax; cess; customs.
(ଯଥା—ଶଗଡ଼ ବଟୀ=ଶଗଡ଼ ଗାଡ଼ି କେତେକ ସମୟ ଅନ୍ୟ ବ୍ୟକ୍ତିର ଜମିରେ ବିଶ୍ରାମ କଲେ ଭୂସ୍ୱାମୀକୁ ଶକଟସ୍ୱାମୀ ଦେବା ଶୁଳ୍କ ।)
୩ । (ଆଦରାର୍ଥକ) ବଟକୃଷ୍ଣର ଡାକନାମ—3. A name for calling Baṭakṛshṇa.

**ବଟିଆ**—ଦେ.ବି.(ସଂ.ବର୍ତ୍ତିକା,ପ୍ରା. ବଟ୍ଟିଆ)—ଭୂତାଦି ଭୟରୁ ରକ୍ଷା ପାଇବା ନିମନ୍ତେ ବ୍ୟବହୃତ ଜଡ଼ିବୁଟି ରଖିବା ନିମନ୍ତେ ବ୍ୟବହୃତ ଧାତୁର ଫରୁଆ—A metal pot for containing charms and herbs
Baṭiā
कटूया
**डिबिया**
धांपाबाज
୨ । ଯେ ଭଣ୍ଡା ଭଣ୍ଡି କରି ଲୋକଙ୍କୁ ଭୁଲାଏ; ଠକ—2. A inveigler; a cheat.
**पट्टीवाज**
**बटुआ**
୩ । (ଅନାଦରାର୍ଥକ) ବଟକୃଷ୍ଣର ଡାକ ନାମ—3. Name for calling Baṭakṛushna.

**ବଟିକା**—ସଂ. ବି. (ବଟ+କ+ସ୍ତ୍ରୀ. ଆ)—୧ । ଗୋଲାକାର ଔଷଧ ଗୁଳା; ଗୋଲି; ଗୁଟିକା; ବଡ଼ି—1. Pill; a bolus.
Baṭikā
୨ । ବିରି ବା ମୁଗ ଆଦିର ପ୍ରସ୍ତୁତ ବଡ଼ି—2. Balls of corn-paste dried and used in the preparation of curry.

**ବଟିକି**—ପ୍ରାଦେ. (ବସ୍ତର) ବି.—ବାଟି; ଗିନା—A pot; saucer; dish.
Baṭiki

**ବଟିବା**—ଦେ. କ୍ରି.—କଥାରେ ଭଣ୍ଡିବା; ଠକିବା—To inveigle.
Baṭibā
धांपा देओया **पट्टिदेना**
ସାଧୁ ଅଛ ଏକ ସବଙ୍କ ଦେଖାଇ, ଏହାକୁ ପାରିବ କେ ବଟି ।
କବିସୂର୍ଯ୍ୟ, ଉଦ୍ଧାବର ଚମ୍ପୂ, ଗ. ଗୀତ ।

**ବଟୀ**—ସଂ. ବି. (ବଟ+ଈ)—୧ । ବଟ ଜାତୀୟ ବୃକ୍ଷବିଶେଷ—1. A species of Ficus Indicus.
Baṭi
ଅନ୍ୟ ସଂ. ନାମ—ନଦୀ ବଟ, ଯକ୍ଷ ବୃକ୍ଷ, ସିଦ୍ଧାର୍ଥ, ବଟକ, ଅମରୀ, ଭଙ୍ଗେଣୀ, କ୍ଷୀରକାଷ୍ଠା
[ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ]
୨ । ବଡ଼ି; ବଟିକା (ହି. ଶ.)—2. Pill.
୩ । ବଡ଼ା; ପିଷ୍ଟକବିଶେଷ (ହି. ଶ )—3. A kind of pastry cake.

**ବଟୁ**—ସଂ. ବି. (ବଟ୍ ଧାତୁ=କହିବା+ସଂଜ୍ଞାର୍ଥେ ଉ)—୧ । ବ୍ରାହ୍ମଣ କୁମାର—1. A Brāhmaṇa boy.
Baṭu
୨ । ବାଳକ—2. Boy.
୩ । ଗୁରୁଙ୍କ ନିକଟରେ ଅଧ୍ୟୟନ କରୁଥିବା ଛାତ୍ର—3. A student.
୪ । ବାଳକ ବ୍ରହ୍ମଚାରୀ ଛାତ୍ର—4. A Brāhmaṇa student reading the Bedas by staying in the house of the preceptor.

[ ଦ୍ର—ଉପନୟନ ପରେ ବିବାହ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଗୁରୁ ଗୃହରେ ରହିବା ବ୍ରାହ୍ମଣ କୁମାରଙ୍କୁ ବଟୁ ବୋଲାଯାଏ । ]

୫ । ଅଜ୍ଞାନ ବା ନିର୍ବୋଧ ବ୍ୟକ୍ତି—5. A fool or stupid or ignorant person.

ଦେ. ବି.—୧ । ବଡ଼ୁ ୨ (ଦେଖ)—1, Bardu 2 (See)

୨ । ବୈଦିକ କ୍ରିୟା କରିବା ସମୟରେ କ୍ରିୟାକର୍ତ୍ତା ଅଙ୍ଗୁଠିରେ କୁଶର ଯେଉଁ ଅଙ୍ଗୁରୀୟକ ପିନ୍ଧନ୍ତି; କୁଶବଟୁ—2, A ring of Kusa grass worn by **कुसकीअंगूठी** a person performing vedic rites,

ପୁଣ୍ୟକାଳକୁ ମଜ୍ଜନ ମଞ୍ଚରେ ହାତେ ବାନ୍ଧିବସୁ ବଟୁ—ଦ୍ୱାରକା-ଲୀଳାବିହାର ।

୩ । (ଆଦରାର୍ଥକ) ବଟକୃଷ୍ଣଙ୍କ ଡାକ ନାମ—

**वटुआ** 3. A name for calling Batakrushna.

**ବଟୁଆ**—ଦେ. ବି. (ସଂ. ବଟ=କ୍ଷଣପଟର ସୂତା; ସଂ. ବର୍ତ୍ତୀ=ରଜ୍ଜୁ; ସଂ. Batua ବର୍ତ୍ତୁଳ)—୧ । ପାନ ଖାଇବାର ଉପକରଣ ବା ଔଷଧାଦି **वटुआ** ରଖିବା ନିମନ୍ତେ ବ୍ୟବହୃତ ଦଉଡ଼ିବାନ୍ଧ ଏକାଧିକ କୋଠରିବିଶିଷ୍ଟ ଥଳି—1. A small bag or wallet with a slip-knot contrivance to open or shut it by means of working strings.

(ଯଥା—ପାନ ବଟୁଆ, ଔଷଧ ବଟୁଆ)

୨ । (ଅନାଦରାର୍ଥକ) ବଟକୃଷ୍ଣଙ୍କ ଡାକ ନାମ—

2. A name for calling Batakrushna.

**ବଟୁଆ ଗୁଡ଼ି**—ପ୍ରାଦେ (ଯାଜପୁର) ବି—ମୁଣ୍ଡିରି (ଦେଖ)
Batua gurdi Mundiri (See).

**ବଟୁକ**—ସଂ. ବି—(ବଟୁ+ସ୍ୱାର୍ଥେ. କ)—୧ । ବଟୁ (ଦେଖ)
Batuka 1. Batu (See),

୨ । ବଟୁକ ଭୈରବ (ଦେଖ)

2. Batuka bhairaba (See).

୩ । କାଶୀର ଅଧିଷ୍ଠାତା ଶିବାନୁଚରବିଶେଷ—3. A Deity presiding in Benares, an attendant of God Siba.

**ବଟୁକ ଭୈରବ**—ସଂ. ବି—ମାନବପୂଜିତ ଶିବାନୁଚରବିଶେଷ—
Batuka bhairaba Name of attendant of Siba worshipped by people.

**ବଟୁଲି**—ଦେ. ବି—( ସଂ. ବର୍ତ୍ତୁଳ; ପ୍ରା. ବଟ୍ଟୁଲ )—ପାକପାତ୍ରରୂପେ Batuli ବ୍ୟବହୃତ ବର୍ତ୍ତୁଳାକାର ଚଉଡ଼ାମୁହାଁ ପିତଳ ଘଣ୍ଟି—A बाटलो round cooking jug made of brass.

**वटलोइ, वटुला, वटली** [ ଦ୍ର—ଏଥିର ମୁହଁ ଚଉଡ଼ା ଓ ଏଥିରେ ଭାତ ଡାଲି ରନ୍ଧା ହୁଏ । ]

**ବଟୂ କରଣ**—ସଂ. ବି—(ବଟୁ+ଅଭୂତ ତଭାବେ ଚ୍ୱି+କରଣ)—
Batukarana ଦ୍ୱିଜାତି, ବାଳକର ଉପନୟନ ବା ବ୍ରହ୍ମଚର୍ଯ୍ୟ ସଂସ୍କାର; ବଡ଼ୁ—
The ceremony of investiture of the sacred thread of the twice-born.

**ବଟେ**—ଦେ. କ୍ରି. ବିଣ—ବଟ ଦେଇ; ଠକ ଦେଇ—
Bate Deceitfully; by deceiving.

ବଟେ ଯିବ । ବ୍ୟର୍ଥ ହେବ ଏବାବେ ମଣ୍ଡି—ଉଦ୍ଧ. ବୈଦେହୀଶବିଳାସ ।

ବି—ବଟମୂଳକୁ—To the ground under a banyan tree.

ବଟେ ଯିବ । ଶମାନ ଅଛିବ ସେ ପୂଜ—ଉଦ୍ଧ. ବୈଦେହୀଶବିଳାସ ।

**ବଟ୍ଟଡ଼ା**—ପ୍ରାଦେ (ଜୟପୁର) ବି—ଭଟ୍ଟଡ଼ା (ଦେଖ)
Battarda Bhattrda (See).

**ବଟ୍ଟା**—ଦେ. ବି—(ସଂ. ବାର୍ତ୍ତ; ପ୍ରା. ବାଟ୍ଟ=ଦ୍ରବ୍ୟ କିମ୍ବା ମଜୁରି)—
Batta ୧ । ବଟା ୪ । ୫ । ୬ । ୭ । ୮ (ଦେଖ)—
बाटा **वट्टा** 1. Bata 4, 5, 6, 7, 8 (See).

**ବଟ୍ଟା ଖାତା**—ଦେ. ବି—(ମହାଜନୀ କାରବାର) ମହାଜନମାନଙ୍କର ଯେଉଁ Batta khata ଖାତାରେ ଲୋକସାନ ହୋଇଥିବା ଧନ **वट्टाखाता** ଓ ଖାତକଠାରେ ବୁଡ଼ିଯିବା ଧନର ହିସାବ ଓ ତାଲିକା ଲେଖାଯାଏ—
Merchants' account book in which losses and irrecoverable amounts are enumerated and entered.

**ବଡ଼ିକା(ଖା)**—ପ୍ରାଦେ. (ସମ୍ବଲପୁର) ବିଣ—(ଭୁଲ. ହି. ବଡ଼୍‌କା)—
Bard-ka(kha) ୧ । ଅତି ବଡ଼—1. Very great.

୨ । ବୃହତ୍ତମ—2. Greatest; largest.

୩ । ସମସ୍ତଙ୍କଠାରୁ ବୟୋଜ୍ୟେଷ୍ଠ—3. Eldest.

୪ । ସର୍ବୋତ୍କୃଷ୍ଟ—4. Excellent; highest.

**ବଡ଼ିକା ପୁଅ**—ପ୍ରାଦେ (ସମ୍ବଲପୁର) ବି—(ଭୁଲ .ହି. ବଡ଼କାଲଡ଼କା)—
Bard-ka pua ଜ୍ୟେଷ୍ଠପୁତ୍ର—Eldest son.

(ଏହିପରି ବଡ଼କାଭାଇ, ବଡ଼କା କାକା ଇତ୍ୟାଦି ଶବ୍ଦ)

**ବଡ଼ିକା ରଜା**—ପ୍ରାଦେ (ସମ୍ବଲପୁର) ବି—(ଭୁଲ. ହି. ବଡ଼କା ରାଜା)—
Bardka raja ସମ୍ରାଟ୍; ଚକ୍ରବର୍ତ୍ତୀ—Emperor.

**ବଡ଼୍ ବଡ଼୍**—ଦେ. ଅ. (ଧ୍ୱନ୍ୟନୁକରଣ; ସଂ ବଦ ଧାତୁ=କହିବା, ଅବ୍ୟକ୍ତ Bard bard ଧ୍ୱନି କରିବା)—୧ । ବହୁକାଳ ବୃଥାଳାପ—
बड़बड़, बिड़बिड़ **वडवड** 1. Long and vain talk.

୨ । ପ୍ରଳାପ—2. Raving.

(ପ୍ରୟୋଗ—ବଡ଼୍ ବଡ଼୍ ହେବା; ବଡ଼୍ ବଡ଼୍ କରିବା)

**ବଡ଼୍ ବଡ଼ି(ଡ଼ୁ)ଆ**—ଦେ. ବିଣ—୧ । ଗପଡ଼ି—1. Talkative.
Bard-bardi(rdu)a ୨ । ପ୍ରଳାପକାରୀ—2 Raving.
(ବଡ଼ବଡ଼ୀ, ବଡ଼୍‌ବଡ଼ୋଇ—ସ୍ତ୍ରୀ) बड़बड़े **वडवडिया**

**ବଡ଼ିରି**—ପ୍ରାଦେ. (ବାଲେଶ୍ୱର) ବି. (ସଂ. ବରଟା)—ବିରୁଡ଼ି—
Bard-ri Wasp.

**ବଡ଼ିରି ବାଣ**—ପ୍ରାଦେ. ( ବାଲେଶ୍ୱର ) ବି—ଢାଲସୁପାରି କୁହୁକରେ Bard-ri-bana ବ୍ୟବହୃତ ଏକପ୍ରକାର ମନ୍ତ୍ର—A mystic formula used in the Dhalasupari magical performance.

[ ଦ୍ର—ଏଥିରେ ମୁଠାଏ ବାଲିକୁ ମନ୍ତ୍ର ପଢ଼ି ଫୋପାଡ଼ିଲେ ତାହା ବିରୁଡ଼ି ହୋଇ ଯାଇ ଶତ୍ରୁକୁ ଆକ୍ରମଣ କରେ । ]

**ବଡ଼ୁଲି**—ପ୍ରାଦେ. (କଳାହାଣ୍ଡି) ବି—ଜ୍ୟେଷ୍ଠା ଭାର୍ଯ୍ୟା
Bard-li Senior wife.

**ବଡ଼**—ଦେ. ବିଣ. (ସଂ. ବର=ଶ୍ରେଷ୍ଠ; ସଂ. ବଡ୍ର=ବୃହତ୍; ମହତ୍
Barda Apte)—୧ । ବୃହତ୍—1. Large; big.
(ସାନ—ବିପରୀତ) ୨ । ଉଦାର—2. Liberal; magnanimous.
ବଡ଼
**बड़े, बड़ा** ୩ । ମହତ୍; ମହାନ୍—3. Great; noble.
୪ । ବୟୋବୃଦ୍ଧ—4. Older; senior; elder.
ବଡ଼ ହୋଇ ବଡ଼ିଅଛନ୍ତି, ସାନ ହୋଇ ସୁଲଭ ଦେଶ—ଉଗ ।
୫ । ପ୍ରଧାନ; ଶ୍ରେଷ୍ଠ—5. Superior; chief.
୬ । ଅତ୍ୟଧିକ—6. Excessive.
୭ । ଉଚ୍ଚ; ଡେଙ୍ଗା—7. Tall; high.
୮ । ପରିଣତବୟସ୍କ—8. Major.
୯ । ଦୃଷ୍ଟରଜା (କନ୍ୟା)—9. Menstruated (girl); who has attained maturity.
୧୦ । ଅପେକ୍ଷା ବେଶି—10. More than.
ଅକ୍ଷେତ୍ରବାକ୍ଷର ହେଲା କଥାକ୍ଷର ଦମ୍ଭୋଳରୁ ବଡ଼ ଦାରୁ ।
କବିସୂର୍ଯ୍ୟ. ସଙ୍ଗୀତ ।
୧୧ । ଧନୀ; ବିଭବଶାଳୀ—11. Rich; affluent.
(ଯଥା—ବଡ଼ଲୋକ; ବଡ଼ ଘରର ପୁଅ ।)
ବିଣ ର ବିଣ ଓ କ୍ରି. ବିଣ—୧ । ଅତ୍ୟନ୍ତ—1. Verymuch.
ପ୍ରିୟ ସହୁ । ପରମାଦ ବଡ଼ ଭୁଲୁ ଗୋ ।
କବିସୂର୍ଯ୍ୟ. ବିଶୋଷ କ୍ଷେ. ପ୍ର. ଗୀତ ।
୨ । ଅଧିକତରରୂପେ; ଅପେକ୍ଷାକୃତ—Much more.
୩ । ଅତ୍ୟଧିକ; ଅତ୍ୟନ୍ତ—3. Too much; excessively.
ଦେ. ବି—୧ । ବହୁଲୋକଙ୍କ ମଧ୍ୟରେ ସମସ୍ତଙ୍କ ଅପେକ୍ଷା ବୟସରେ ବଡ଼—1. The eldest of all.
ପୃଚ୍ଛିଲେ ଭୀମସେନ ପାଣ୍ଡବଙ୍କ ବଡ଼ । କୃଷ୍ଣସିଂ. ମହାଭାରତ ବନ ।
୨ । ବୟୋବୃଦ୍ଧ ବ୍ୟକ୍ତି—2. Elderly person.
ବଡ଼ ବଡ଼ ଗଲେ ପସର ଫାଟ
ସାନ ସାନ ଥିଲେ ବେଶର ବାଟ—ଢଗ ।
ପ୍ରାଦେ. (ବାଲେଶ୍ୱର) ବି—୧ । ଜୁଈରେ ଲିଆର ହୋଇ ଥିବା କାଆଁ ଦୂଳା; କାଆଁ ବଡ଼ିଆ—1. A bundle of straw made into a plait for preserving fire.
୨ । ଛଣଖାଇ (ଦେଖ)—2. Chhanakhāi (See)
୩ । (ମେଦିନୀପୁର ଓ ସିଂହଭୂମ) ବି—ବର ଗଛ (ଭୁଲ. ବି. ଏହି ଅର୍ଥରେ ବଡ଼)—3. Banyan tree.
୪ । (ସମ୍ବଲପୁର) ବି. ପୁଂ—ଦଦେଇ; ବାପର ବଡ଼ ଭାଇ—
(ବଡ଼ୀ—ସ୍ତ୍ରୀ) 4. Father's elder brother.

**ବଡ଼ ଅଲା(ଲେ)ଇଚ**—ଦେ. ବି. (ସଂ. ବୃହତ୍+ଏଲା)—ଏକ ଜାତୀୟ ଦାନାଦାର ମସଲା; ଅଲେଇଚ—
Barda alā(le)icha Amomum Subulatum; Cardamom.
ବଡ଼ଏଲାଚି
**बड़ी इलायची** [ଦ୍ର—ବଡ଼ ଅଲେଇଚକୁ ଅଲେଇଚ ଓ ଛୋଟ ଅଲେଇଚକୁ ଗୁଜରାତି କହନ୍ତି ।]

**ବଡ଼ ଆଖି**—ଦେ. ବି—୧ । ବୃହଦାକାର ଚକ୍ଷୁ—
Barda ākhi 1. Big eyes; large eyes.
(ବଡ଼ ଆଖିଆ ପୁଂ.—ବିଣ) ୨ । ଯେଉଁ ଦୃଷ୍ଟିକୁ ଛୋଟ ବା ଅଳ୍ପ କଥା ଭଲ ଲାଗେ ନାହିଁ—2. A look
(ବଡ଼ ଆଖେଇ—ସ୍ତ୍ରୀ-ବିଣ) or eye which is not satisfied with small or little things.
ବଡ଼চোখ
**बड़ा नजर**
୩ । ଉଦାର ଦୃଷ୍ଟି—3. Liberal outlook.

**ବଡ଼ ଆଠ**—ଦେ. ବି—ବାର ଆଠ; ଏକପ୍ରକାର କଉଡ଼ି ଖେଳ—
Barda ātha A kind of game played with 7 cowries.
(ବଡ଼ ଡେମା—ଅନ୍ୟରୂପ)
[ଦ୍ର—ଏହା ସାତ କଡ଼ା କଉଡ଼ିରେ ଖେଳ ହୁଏ ।]

**ବଡ଼ଇ**—ଦେ. ବିଣ; ବିଣର ବିଣ. (ସଂ. ବଡ୍ର+ହିଁ)—ଅତ୍ୟନ୍ତ—
Bardai Very; very much.
ଗର୍କ୍ଷିଷ ବଡ଼ଇ ଅଛାର । ଜଗନ୍ନାଥ. ଭାଗବତ ।

**ବଡ଼ ଓଷା**—ଦେ. ବି—୧ । ପର୍ବ ବିଶେଷ—
Barda oshā 1. Name of a festival.
[ଦ୍ର—ସ୍ଥାନବିଶେଷରେ ଭିନ୍ନଭିନ୍ନ ପର୍ବଙ୍କୁ ଲୋକେ ଏହି ନାମ ଦେବାର ଦେଖାଯାଏ । କଟକ ଓ ପୁରୀ ଜିଲ୍ଲାରେ ଅଠଗଡ଼ର ଧବଳେଶ୍ୱର ମହାଦେବଙ୍କଠାରେ କାର୍ତ୍ତିକ ପୂର୍ଣ୍ଣିମାର ପୂର୍ବଦିନ ଏହି ଓଷା କରିଥିବା ଲୋକମାନେ ଭୋଗ ଲଗାନ୍ତି । ଅଧିକାଂଶ ଶୂଦ୍ର ଏହି ଓଷା କରନ୍ତି ।
ପୁରୀ ଓ କଟକରେ ପ୍ରଚଳିତ ସୋମନାଥ ବ୍ରତକୁ ଗଞ୍ଜାମ ଜିଲ୍ଲାରେ 'ବଡ଼ ଓଷା' ବୋଲି କହନ୍ତି । ଏହି ବ୍ରତ ଭାଦ୍ର ଶୁକ୍ଳ ଷଷ୍ଠୀ ଦିନ ଆରମ୍ଭ କରାଯାଇ ଆଶ୍ୱିନ ଶୁକ୍ଳଦଶମୀ (ଦଶହରା) ଦିନ ଉଦ୍‌ଯାପନ କରାଯାଏ ।]
୨ । ଏକ ଜାତୀୟ ଈଷତ୍ ହଳଦିଆ ଲମ୍ବା ଓ ମୋଟ ଧାନ—
2. Name of a coarse yellowish kind of paddy.

**ବଡ଼ କଙ୍କ**—ଦେ. ବି—ବୃଦାଳିଆ ଘାସ ବିଶେଷ—Spinifex
Barda kanka Squarrous (grass) (Haines).

**ବଡ଼ କଥା**—ଦେ. ବି. (ସଂ. ବୃହତ୍+କଥା)—୧ । ଲମ୍ବା କଥା; ଦୀର୍ଘ କାହାଣୀ—1. Long story.
Barda kathā
ବଡ଼କথা ୨ । ଉଚ୍ଚୈଃସ୍ୱରରେ କଥନ—2. Loud talk.
**बड़ीबात** ୩ । ଅତିଶୟୋକ୍ତି—3. Exaggeration.
୪ । ବଡ଼େଇ; ଗର୍ବଯୁକ୍ତ କଥା—4. Arrogant talk.
୫ । ବିଶେଷରୂପେ ଉଲ୍ଲେଖ ଯୋଗ୍ୟ ବିଷୟ—
5. A matter of particular moment.
୬ । ପ୍ରଧାନ ବିଷୟ—6. Chief matter.

**ବଡ଼ କନ୍ୟା**—ଦେ. ବି. (ସଂ. ବର୍ଦ୍ଧିତା+କନ୍ୟା)—
Barda kanyā ୧ । ବଢ଼ିଲି କନ୍ୟା; ଦୃଷ୍ଟରଜା ବାଳିକା—
1. A girl whose menses have appeared.
୨ । ଦୃଷ୍ଟରଜା ହେବା ପରେ ବିବାହିତା କନ୍ୟା—2. A bride given in marriage after puberty.

**ବଡ଼ କରିବା**—ଦେ. କ୍ରି—୧ । ଶ୍ରେଷ୍ଠ କରିବା—
Barda kariba 1. To regard as great.

ବଡ଼କରା ୨ । (ଲକ୍ଷଣାର୍ଥ) ଆଦର କରିବା—
बढाना 2. (figurative) To respect; to love.
୩ । ଶିଶୁକୁ ବଡ଼ ହେବା ପର୍ଯ୍ୟନ୍ତ ଲାଳନ ପାଳନ କରିବା—
3. To bring up an infant.

ବଡ଼ କଷ୍ଟ—ଦେ. ବି—ବିଶେଷ ଦୁଃଖ; ଦାରୁଣ ଦୁଃଖ—
Barda kashta Too much pain; agony.
(ବଡ଼ ଦୁଃଖ—ଅନ୍ୟରୂପ) বড় কষ্ট बड दुःख

ବଡ଼ କାଙ୍କ—ପ୍ରାଦେ. (ଗଡ଼ଜାତ) ବି— ବଢ଼ିଆ କାଙ୍କ (ଦେଖ)
Barda kānka Stork.
ଦେ. ବିଣ. ( ପୁଂ ଓ ସ୍ତ୍ରୀ )—ଡେଙ୍ଗା ଓ ନଳଗୋଡ଼ିଆ (ବ୍ୟକ୍ତି)—Tall and thin-legged (person).

ବଡ଼ କାଠ—ଦେ. ବି—ଏକ ପ୍ରକାର ବଡ଼ ଢୋଲ—A big long
Barda kātha drum (about 4 cubits long).
[ ଦ୍ର—ଏହା ୩।୪ ହାତ ଲମ୍ବ ଓ ଦୁଇ ହାତ ବ୍ୟାସବିଶିଷ୍ଟ ଓ ଏଥିର ଦୁଇ ମୁଣ୍ଡରେ ଚମ ଛାଉଣି ହୋଇ ଥାଏ, ଏହାକୁ ଏକାଧିକ ଲୋକ ବାଉଁଶରେ ଝୁଲାଇ ବାଉଁଶର ଦୁଇ ମୁଣ୍ଡ କାନ୍ଧେଇ କରି ସ୍ଥାନାନ୍ତରକୁ ନିଅନ୍ତି । ]

ବଡ଼ କାନ୍ଦୁଲ—ପ୍ରାଦେ. (ଗଞ୍ଜାମ) ବି—କାନ୍ଦୁଲ ( ଦେଖ )
Barda kāndula Kāndula ( See )

ବଡ଼ କାମ—ଦେ. ବି. ( ସଂ. ବୃହତ୍‌+କର୍ମ )—
Barda kāma ୧ । ବହ୍ୱାଡ଼ମ୍ବର—1. Much ado.
ବଡ଼ କାଣ୍ଡ, ବଡ଼ କାରଖାନା } ଅନ୍ୟରୂପ ୨ । ସମାରୋହ—1 Grapndeur.
বড় কায बडा काम

ବଡ଼ କୁ—ପ୍ରାଦେ. ( ଯାଜପୁର ) ଅ—୧ । ପରେ—1. At last.
Barda ku ୨ । ତତ୍ପରେ—2. Then; there after.

ବଡ଼ କୁଆଁର—ପ୍ରାଦେ. (ଗଡ଼ଜାତ) ବି. (ସଂ. ବଡ଼+କୁମାର)—
Barda kuāṅra ରାଜକୁମାରବିଶେଷଙ୍କ ଉପାଧି—
(ବଡ଼ କୁମାର—ଅନ୍ୟରୂପ) Title of one of the princes.

ବଡ଼ କେଳି—ଦେ. ବି—ଖଇର ( ଦେଖ )
Barda keli Khaira ( See )

ବଡ଼ ଗଳ—ପ୍ରାଦେ. (ଗଞ୍ଜାମ) ବୈଦେ. (ତା. ବଡ଼ ହେଲ)—
Barda gala ରାମାନୁଜ ବୈଷ୍ଣବ ସମ୍ପ୍ରଦାୟର ଶାଖାବିଶେଷ—
(ବଡ଼ ହାଲ—ଅନ୍ୟରୂପ) A subsect of the Rāmānuja Baishnaba Sampradāya.

ବଡ଼ ଗଳା—ଦେ. ବି—ଉଚ୍ଚୈଃସ୍ୱର—
Barda galā Loud tone; loud tongue.
(ବଡ଼ ପାଟି—ଅନ୍ୟରୂପ)

ବଡ଼ ଗିଲ—ପ୍ରାଦେ. (ଗଡ଼ଜାତ) ବି—ଏକ ଜାତୀୟ ଚେପ୍ଟା ବନ୍ୟ ଲତା-
Barda gila ଫଳ—The fruit of a wild creeper.
[ ଦ୍ର—ଏହାର ବ୍ୟାସ ୨ ଇଞ୍ଚ । ଲିପା ହୋଇଥିବା ମାଟି ଉପରେ ଏ ଫଳକୁ ଘଷିଲେ ସେହି ଯାଗାଟି ଚିକ୍କଣ ଓ ସୁନ୍ଦର ହୋଇଯାଏ । ]

ବଡ଼ ଗୁଣ୍ଡ—ଦେ. ବି—ଏକ ପ୍ରକାର ଅସ୍ତ୍ର—
Barda gunda A kind of weapon.
[ ଦ୍ର—ଏହା ଶତ୍ରୁ ଉପରକୁ ଲକ୍ଷ କରି ନିକ୍ଷେପ କରାଯାଏ । ]

ବଡ଼ ଘର—ଦେ. ବି—୧ । ଧନୀ ଓ ପ୍ରତିଷ୍ଠିତ ପରିବାର—
Barda ghara 1. A rich and respectable family.
বড় বাড়ী ବଡ ଘର ଦେଖି ବନ୍ଧୁ କଲି
बडा घर ହିଅକୁ ନେଇ ଯମକୁ ଦେଲି—ଢଗ ।
୨ । ବୃହଦାକୃତିବିଶିଷ୍ଟ ଗୃହ—2. A big house.

ବଡ଼ ଘାଇ—ପ୍ରାଦେ. (ସମ୍ବଲପୁର) ବି—ବଡ଼ ନାଳ—
Barda ghāi A big moat or canal.

ବଡ଼ ଘାଇଁ—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ—ବଡ଼ ଘାଏଁ ( ଦେଖ )
Barda ghāiṅ Barda ghāeṅ ( See )

ବଡ଼ ଘାଏଁ—ଦେ. କ୍ରି. ବିଣ—୧ । ବିଶେଷ ଜୋରରେ—
Barda ghāeṅ 1. With much force.
বড় জোরে ୨ । ଉଚ୍ଚୈଃସ୍ୱରରେ—2. In a loud voice.
बडा जोरसे
୩ । ଅଧିକତର ଜୋରରେ—3 With greater force.
୪ । ଅଧିକତର ଉଚ୍ଚୈଃସ୍ୱରରେ—4. More loudly.

ବଡ଼ ଚଣା—ଦେ. ବି—ମଟର ଜାତୀୟ ଏକ ପ୍ରକାର ଶସ୍ୟ—
Barda chanā A big species of grain like pea.

ବଡ଼ ଚାଟ—ଦେ. ବି—୧ । ସ୍କୁଲ୍ ବା ଶ୍ରେଣୀରେ ଅନ୍ୟ ଛାତ୍ରମାନଙ୍କ
Barda chāta ତତ୍ତ୍ୱାବଧାନ କରିବା ନିମନ୍ତେ ଶିକ୍ଷକଙ୍କ ଦ୍ୱାରା ନିର୍ବାଚିତ ଛାତ୍ର—1. Monitor.
× × × ଗୋଷ୍ଠିଏ ସାନ ପିଲାକୁ ଦୁଇଟା ବଡ ଚାଟ ଧରି ନେଇ ଯାଉଥିଲେ ।
ଫକୀରମୋହନ. ଛ ମାଣ ଆଠ ଗୁଣ୍ଠ ।
୨ । ପ୍ରଧାନ ଶିଷ୍ୟ—2. Chief disciple.

ବଡ଼ ଜାଲ—ପ୍ରାଦେ. (ବାଲେଶ୍ୱର) ବି.—ଟଣା ଜାଲ (ଦେଖ)
Barda jāla Tanā jāla (See)
বড়জাল बडाजाल ଦେ. ବି.—ଯେଉଁ ଜାଲରେ ଗଭୀର ପାଣିରେ ବଡ଼ ମାଛ ଧରା ଯାଆନ୍ତି—Big nets used for catching big fishes in deep water

ବଡ଼ ଜୀରା—ଦେ. ବି. (ସଂ. ବନଜୀରକ)—ବନଜୀରକ; ଏକ ପ୍ରକାର
Barda jirā ବନ୍ୟ ଜୀରା—A kind of wild cumin seed; Veruonia Anthelmentica; Purpule fleabane.
ସଂ.—ଅରଣ୍ୟ ଜୀରକ, ବୃହତ୍ପାଲୀ, କ୍ଷୁଦ୍ର ପତ୍ର, କଣ, କଣଜୀର
ମ କଡୁଜୀରେଂ
ଗୁ କାଲୀଜୀରୀ,
କଡ଼ୁବା ଜୀରା
বনজীরে কালজীরী
[ଦ୍ର—ଏହା ସ୍ତମ୍ଭବାତ, କଫ ରୋଗ ଓ ବ୍ରଣ ରୋଗରେ ଔଷଧରୂପେ ବ୍ୟବହୃତ ହୁଏ । ଏହା କଷାୟ କଟୁ ।]

ବଡ଼ ଜୁଆଣି—ଦେ. ବି. (ସଂ. ବନ ଯମାନୀ)—ଏକ ପ୍ରକାର ଜୁଆଣି;
Barda juāni ଅଜମୋଦା—A kind of Ajwan; Seseli Indicum.
ସଂ. ନାମ—ଅଜମୋଦା, ଖରାଶ୍ୱା, ମାୟୂରୀ, ଦୀପ୍ୟକ, ବ୍ରହ୍ମକୁଶା, କାବେରୀ, କାରବୀ, ଲୋଚମସ୍ତକା
ଗୁ. ବୋଡ଼ୀ ଅଜମୋଦ
ତେ. ବାମଠ୍; ଅଜାମୌଦା
ଫା· କରଫସ ଆ. ହବୁଲ କରୁକେରଫସ୍
বনযমানী, রাঁধুনী अजमोद
[ଦ୍ର—ଏହା କଟୁ, ଅଗ୍ନିଦୀପକ; କଫ ଓ ବାୟୁନାଶକ; ଉଷ୍ଣ, ବିଦାହୀ, ବୃଷ୍ୟ ଓ ବଳକର; ଏହା ନେତ୍ର ରୋଗ, କ୍ରିମି, ହିକ୍କା ଓ ବସ୍ତିରୋଗ ନିବାରକ ।]

ବଡ଼୍‌ଜେଟ୍ (ଟ୍ର) —ପ୍ରାଦେ· (ଗଞ୍ଜାମ) ବୈଦେ. (ଇଂ. ବଜେଟ୍)—
Bard-jet (ṭu) ବଜେଟ୍ (ଦେଖ)—Bajet (See)
[ଦ୍ର—ଗଞ୍ଜାମ ଜିଲ୍ଲାର ଲୋକମାନେ ଅନ୍ୟଙ୍କ ଦେଖାଦେଖି ଏ ଇଂରାଜି ଶବ୍ଦର ଲୁପ୍ତ 'ଡ' ଅକ୍ଷରକୁ ଲୁପ୍ତ ନ କରି ସ୍ପଷ୍ଟରୂପେ ପ୍ରକାଶ କରି ଉଚ୍ଚାରଣ କରନ୍ତି । ଇଂରାଜି 'ଜଜ୍' ଶବ୍ଦକୁ ମଧ୍ୟ 'ଜଡ଼୍‌ଜ୍' ବୋଲି ଉଚ୍ଚାରଣ କରନ୍ତି ।]

ବଡ଼ ଜେନା—ଦେ ବି.—କ୍ଷତ୍ରିୟ ସନ୍ତାନଙ୍କ ଉପାଧି ବିଶେଷ—
Barda jenā A family title of Kshatriyas.

ବଡ଼ ଜୋର୍—ଦେ. ଅ.—(ସ. ବଡ଼+ଆ. ଜୋର୍)—୧ । ଅନ୍ୟୂନ-
Barda jor ପରିମାଣରେ; ଊର୍ଦ୍ଧ୍ୱ ପରିମାଣରେ କହିବାକୁ ଗଲେ;
আবড্ড জোর অନୁମାନର ଶେଷ ସୀମା ଧରିବାକୁ ଗଲେ—
**बडाजोर** 1. Making the greatest calculation; at the highest computation or estimate.
୨ । ବଡ଼ାଜୁ ବେଶି ହେଲେ—2. At best.

ବଡ଼ ଠାକୁର—ଦେ. ବି—୧ । ଜଗନ୍ନାଥଙ୍କ ବଡ଼ ଭାଇ ବଳଭଦ୍ର; ଶ୍ରୀକୃଷ୍ଣଙ୍କ
Barda thākura ବଡ଼ ଭାଇ ବଳରାମ—1. The elder
বড়ঠাকুর **बड़ेठाकुर** brother of Lord Jagannātha or Srikrishna.
୨ । ପୁରୀର ଜଗନ୍ନାଥ ଦେବ—
2. Lord Jagannātha at Puri
୩ । ଈଶ୍ୱର; ଭଗବାନ୍—3. God.

ବଡ଼ ଥାଠି—ପ୍ରାଦେ ବସ୍ତର) ବି—ଥାଳ—
Barda tāṭhi A big plate

ବଡ଼ତାର୍—ପ୍ରାଦେ (ସମ୍ବଲପୁର) ବିଣ—ଅଧିକ; ଅତ୍ୟନ୍ତ—
Bardatār Very; very much.

ବଡ଼ତି—ଦେ. ବି (ସ. ବୃଦ୍ଧି)—୧ । ବୃଦ୍ଧି—1. Increase.
Bardati ୨ । ସମୃଦ୍ଧି—2 Affluence.
বাড়তি ୩ । ଭାଗ୍ୟୋଦୟ; ଶ୍ରୀବୃଦ୍ଧି—
**बढति** 3. Rise in fortune.
୪ । ଅଧିକା ପଦାର୍ଥ—4. Excess; extra; surplus.

ବଡ଼ ତୁଣ୍ଡ—ଦେ. ବି— ବଡ଼ ଗଳା; ଉଚ୍ଚୈଃସ୍ୱର—A loud tongue.
Barda tunda বড়গলা **मोटागला**

ବଡ଼ତୁଣ୍ଡା—ଦେ. ବିଣ. ପୁଂ—୧ । ଯେ ଉଚ୍ଚସ୍ୱରରେ କଥା କହେ—
Bardatundā 1 Of loud tone.
(ବଡ଼ତୁଣ୍ଡିଆ—ଅନ୍ୟରୂପ) ୨ । କଳହୁଡ଼ା—
(ବଡ଼ତୁଣ୍ଡୀ, ବଡ଼ ତୁଣ୍ଡେଇ—ସ୍ତ୍ରୀ) 2. Quarrelsome.

ବଡ଼ ଦାଣ୍ଡ—ଦେ. ବି—୧ । ପ୍ରଶସ୍ତ ରାସ୍ତା—
Barda dānda বড়রাস্তা **बडीरास्ता** 1 High road
୨ । ପୁରୀ ଜଗନ୍ନାଥଙ୍କ ମନ୍ଦିରଠାରୁ ଗୁଣ୍ଡିଚା ଘରଯାଏ ପଡ଼ିଥିବା ପ୍ରଶସ୍ତ ରାସ୍ତା—2. The wide road extending from Puri temple to Gundichāghara

ବଡ଼ ଦାଣ୍ଡଠାରୁ ବେଳା ଉଠେ ସହି ବିଜେକଲେ ମହାବୀର—
ରାଧାନାଥ—ଗାଙ୍ଗା ।

ବଡ଼ଦାଣ୍ଡକୁ ଯିବା—ଦେକ୍ରି—୧ । (ସ୍ତ୍ରୀ) ଘରରୁ ବାହାରିଯିବା; କୁଳତ୍ୟାଗ କରିବା
Barda dāndaku jibā ହେବା—1. (a woman) To go
রাস্তায়বসা out of a family; to go abegging.
**बाटपरबैठना**
୨ । (ସ୍ତ୍ରୀଲୋକ) ବେଶ୍ୟାବୃତ୍ତି ଅବଲମ୍ବନ କରିବା—
2. (a woman) To take to prostitution.

ବଡ଼ ଦାନ—ଦେ. ବି—୧ । ପଶାଖେଳରେ ଯେଉଁ ଦାନ ପଡ଼ିଲେ
Bardadāna ଖେଳର ବିଶେଷ ସୁବିଧା ହୁଏ—1. The most lucky throw in dice play.
୨ । ବହୁମୂଲ୍ୟ ଦ୍ରବ୍ୟର ଦାନ—
2. The gift of a very valuable thing.

ବଡ଼ଦିନ—ଦେ. ବି—୧ । ଇଂରାଜୀ ଡିସେମ୍ବର ମାସର ତା ୨୫ ରିଖ; ଖ୍ରୀଷ୍ଟ
Bardadina ଜନ୍ମ—1. Christmas day falling on the
বড়দিন **बडादिन्** twentyfifth of December.
[ ଦ୍ର—ଏ ଦିନ ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମଦିନ । ଅଧିକନ୍ତୁ ମଧ୍ୟ ଏହି ଦିନଠାରୁ ଦିନମାନ କ୍ରମଶଃ ବଡ଼ ହେବାର ଅନୁମିତ ହୁଏ, ସେଥିପାଇଁ ଏହାକୁ ବଡ଼ଦିନ କହନ୍ତି । ଡିସେମ୍ବର ମାସ ୨୨ ତାରିଖରୁ ଦିନ କ୍ରମେ ବଡ଼ ହୁଏ ଓ ରାତ୍ରି କମେ । ]
୨ । ଖ୍ରୀଷ୍ଟିୟାନ୍‌ମାନଙ୍କର ଡିସେମ୍ବର ମାସର ଶେଷ ସପ୍ତାହର ପର୍ବ—
2. The Christmas festival.
୩ । ଯେଉଁ ଦିନମାନଙ୍କ ପରିମାଣ ରାତ୍ରିର ପରିମାଣ ଅପେକ୍ଷା ବେଶୀ—3. A day longer in duration than the night.

ବଡ଼ଦୁମା—ଦେ. ବି—(ସ. ବୃହତ୍+ଆ. ଦୁମ୍)—ଯେଉଁ ହାତୀର ଲାଞ୍ଜ
Bardadumā ଗୋଡ଼ ପର୍ଯ୍ୟନ୍ତ ଲମ୍ବି ଥାଏ—An elephant
বড়দুমা **बडदुमा** having its tail hanging to the feet.

ବଡ଼ ଦେଉଳ—ଦେ, ବି—୧ । ପୁରୀର ଜଗନ୍ନାଥଙ୍କ ମନ୍ଦିର—
Barda deula 1. The temple of Jagannath at Puri.
বড়দেউল **बडामन्दिर** ନନ୍ଦିଘୋଷେ ବଡଦେଉଳେ ବାହିଲେ ଠାକୁର ଧ୍ୱଜ ବାନା ।
ରାଧାନାଥ—ଗାଙ୍ଗା ।
୨ । କେତେଗୁଡ଼ିଏ ଦେଉଳ ମଧ୍ୟରେ ଉଚ୍ଚତମ ମନ୍ଦିର—
2. The highest temple in a group.

ବଡ଼ ଧାନ—ଦେ, ବି—୧ । ମୋଟା ଧାନ—1. Coarse paddy.
Barda dhāna ୨ । ଯେଉଁ ଧାନ ବେଶୀ ପାଣି ଜମା ହେବା କ୍ଷେତରେ ବଢ଼ି ଧାନ କଟାକାଳର ଶେଷସମୟକୁ କଟା ହୁଏ—
2. A kind of paddy which is harvested late in the harvesting season.

ବଡ଼ନଦୀ—ଦେ. ବି—(ନାମ) ନଦୀବିଶେଷ—Name of a river
Bardanadī in Ganjam.
[ ଦ୍ର—ଏ ନଦୀ ଘୁମୁସର ମାଳରୁ ବାହାରି ଆସିବା କଟକଠାରେ ଋଷିକୁଲ୍ୟାରେ ମିଶିଛି । ଏହି ନଦୀ ଆସିକା ତାଲୁକର ଉତ୍ତରରେ ଓ ଋଷିକୁଲ୍ୟା ତାଲୁକର ଦକ୍ଷିଣରେ ପ୍ରବାହିତ । ଏଥିରେ ଗଭର୍ଣ୍ଣମେଣ୍ଟ ଆନିକଟ କରିଅଛନ୍ତି । ]

ବଡ଼ନାମ—ଦେ. ବି—ଖ୍ୟାତି; ପ୍ରଶଂସା; ପ୍ରସିଦ୍ଧି—
Bardanāma Fame; good name.
(ବଡ଼ନାଁ, ବଡ଼ନାଁଅ, ବଡ଼ନାଅଁ—ଅନ୍ୟରୂପ)
বড়নাম **बडानाम**

**ବଡ଼ପଣ**—ଦେ. ବି—୧ । ଗର୍ବ—1. Pride.
Bardapana ୨ । ବଡ଼ଲୋକୀ; ଧନୀ ହେବା ଅବସ୍ଥା—
বড়াই 2. The state of being rich.
**वडप्पन** ୩ । ଗୌରବ; ମହତ୍ତ୍ୱ—3. Greatness.
[ବଡ଼ପଣିଆ(ଆଁ)—ଅନ୍ୟରୂପ] ତାହାଙ୍କୁ ତୁମ୍ଭେ ଯୁଦ୍ଧେ ମାର ଏହୁ ଠାଣ
କଲେ କିନା ଲୋକେ ହୋଇବ ବଡ଼ ପଣ ।
କୃଷ୍ଣସିଂହ. ମହାଭାରତ ଉଦ୍‌ଯୋଗ ।
୪ । ଆପଣାକୁ ବଡ଼ କରି ଦେଖାଇବାର ଭାବ—
4. Assuming to be a big man; self aggrandisation

**ବଡ଼ପଣ୍ଡା**—ଦେ. ବି—୧ । ଦେବତାଙ୍କର ପ୍ରଧାନ ବ୍ରାହ୍ମଣପୂଜକ—
Bardapanda 1. The chief Brāhmana sebak of a Deity.
বড়পাণ্ডা
**वडापंडा** ୨ । ବ୍ରାହ୍ମଣମାନଙ୍କୁ ରାଜପ୍ରଦତ୍ତ ଉପାଧିବିଶେଷ—
2. A title given to Brāhmanas by kings.
ପ୍ରାଦେ. (ଯାଜପୁର) ବି—ଯାଜପୁରର କୁଳୀନ ବ୍ରାହ୍ମଣ ବଂଶର ଉପାଧିବିଶେଷ—Title of a high Brāhmana family of Jajpur.

**ବଡ଼ପଦା**—ପ୍ରାଦେ. (ଗଡ଼ଜାତ) ବି—ଚହଟା (ଦେଖ)
Bardapadā Chahatā (See)

**ବଡ଼ପାଟଳି**—ଦେ. ବି—ପାଟଳିବୃକ୍ଷର ପ୍ରକାରବିଶେଷ—
Barda pātali Olereospermum Suaviolens (tree) (Haines).
পারুল **पाडर**

**ବଡ଼ପାଟି**—ଦେ. ବି—ବଡ଼ ଗଳା (ଦେଖ)
Bardapāti Bard galā (See)

**ବଡ଼ପାଟିଆ**—ଦେ. ବି—ଚାଳଘରର ପ୍ରଧାନ ଶେଣୀ—
Bardapātiā The chief long pole at the top of a thatched roof.
গলাবাজ
**वडवोला** ଦେ. ବିଣ. ପୁଂ—୧ । ଯେ ଉଚ୍ଚସ୍ୱରରେ କଥା କହେ—
1. Loud-tongued.
ବଡ଼ ପାଟେଇ / ବଡ଼ ପାଟୋଇ } ସ୍ତ୍ରୀ
୨ । ଯେ ବହୁତ ଗପି ପାରେ—
2. Talkative.

**ବଡ଼ପାସ୍**—ଦେ. ବି. (ବିଦ୍ୟାଳୟମାନଙ୍କରେ ଅଧିକ ପ୍ରୟୋଗ; ସଂ. ବୃଦ୍ଧ+ଇଂ. ପାସ୍)—ଦୁଇ; ଝାଡ଼ା ଫେରିଯିବା ପାଇଁ ଛାତ୍ରମାନଙ୍କର ଶିକ୍ଷକଙ୍କୁ ଦେଇ ଯିବା ସଙ୍କେତ—Two; second pass (a term used while boys ask the teacher's permission to go out of the school for easing).
Bardapās
বড়পাশ

**ବଡ଼ପାହିଆ**—ଦେ. ବି. (ସଂ. ବୃହତ୍+ପଦ)—ଉଚ୍ଚପଦ—
Bardapābiā High position.
বড়পদ **वडापद** ଦେ. ବି—ଉଚ୍ଚପଦଧାରୀ—
(ବଡ଼ପାହ୍ୟା, ବଡ଼ପାୟା—ଅନ୍ୟରୂପ) Of high position.

**ବଡ଼ପିଠିଆ**—ପ୍ରାଦେ. ବି. (ଗଡ଼ଜାତ)—ସାପ—
Bardapithiā Snake.

**ବଡ଼ ପୁଅ(ତ)**—ଦେ. ବି. (ସଂ. ବୃଦ୍ଧ+ପୁତ୍ର)—ଜ୍ୟେଷ୍ଠ ପୁତ୍ର—
Barda pua(ta) One's eldest son.
বড়ছেলে **वडा लडका**

**ବଡ଼ ପୁତ୍ରୀ**—ଦେ. ବି—୧ । ପୁତ୍ରଜୀବ (ଦେଖ)
Barda putrī 1. Putrajība (See)
୨ । ବଡ଼ ଝିଅ—2. One's eldest daughter.

**ବଡ଼ ପେଟା**—ଦେ. ବିଣ ପୁଂ—୧ । ଯେଉଁ ଲୋକର ପେଟ ବଡ଼—
Barda petā 1. Big-bellied; pot-bellied.
[ବଡ଼ ପେଟ(ଟି)ଆ—ଅନ୍ୟରୂପ] ୨ । ଯେଉଁ ଲୋକ ବେଶି ଅନ୍ନାଦି ଖାଏ; ପେଟୁ—
(ବଡ଼ ପେଟୀ, ବଡ଼ ପେଟେଇ—ସ୍ତ୍ରୀ)
ভুঁড়িবালা **वडपेटू** 2. Voracious.

**ବଡ଼ ବକଳା**—ପ୍ରାଦେ. (ପୁରୀ, ଗଡ଼ଜାତ ଓ ଅନୁଗୁଳ) ବି—
Barda bakalā ସରୁ ସିଧା ଡେଙ୍ଗା ବୃକ୍ଷବିଶେଷ—
Dalbergia Paniculata (Haines).

**ବଡ଼ ବଡ଼**—ଦେ. ବିଣ. (ବହୁବଚନାର୍ଥ ଦ୍ୱିତ୍ୱ)—ଅନେକଗୁଡ଼ାଏ ବଡ଼ (ବସ୍ତୁ ବା ଲୋକ)—Many big (things or persons).
Barda barda
বড় বড় **वडा वडा**
ଦେ. ଅ—ବଡ଼୍ ବଡ଼୍ (ଦେଖ)—Bard-bard (See)

**ବଡ଼ବଡ଼ ହେବା**—ଦେ କ୍ରି.—୧ । ଗୁଡ଼ାଏ ଗପିବା—
Barda barda hebā 1. To chatter long.
বড় বড়ান; বড় বড় করা ୨ । ବାତୁଳ ପରି ପ୍ରଳାପ କରିବା—
**वड वडाना** To rave.
୩ । ଅସ୍ପଷ୍ଟଭାବରେ ଗପିବା—
3. To grumble or murmur.

**ବଡ଼ବଡ଼ି (ଡ଼ୁ)ଆ**—ଦେ. ବି.—୧ । ଆପଣାର ମୃତ ପୂର୍ବପୁରୁଷଗଣ—
Barda bardī(rdu)ā 1. One's deceased ancestors
(ବଡ଼ବଡ଼କେ—ଅନ୍ୟରୂପ) ୨ । ଶୂଦ୍ରମାନଙ୍କ ରାନ୍ଧିଶାଳରେ ରଚିତ
বাপ দাদা ପୂର୍ବପୁରୁଷମାନଙ୍କର କଳ୍ପିତ ପ୍ରତିମା—2. The ima-
**बाप दादा** ges of the deceased ancestors made in the kitchen (in the case of the śūdras).
ଦେ. ବିଣ.—ବଡ଼୍‌ବଡ଼ିଆ (ଦେଖ)
Bard-bardiā (See)

**ବଡ଼ବଡ଼ି(ଡ଼ୁ)ଆ ଅମାବାସ୍ୟା**—ଦେ. ବି.—ପିପେଇ ଅମାବାସ୍ୟା (ଦେଖ)
Bardabardi(rdu)ā amābāsyā Pipei amābāsyā (See)
ବଡ଼ବଡ଼ି(ଡ଼ୁ)ଆ ଅମେଇସା / ବଡ଼ବଡ଼ି(ଡ଼ି)ଆ ଅମାସ୍ୟା }—ଅନ୍ୟରୂପ
**उकापाती अमावस**

**ବଡ଼ବଡ଼ୁଆ ଡାକ**—ଦେ. ବି.—କାର୍ତ୍ତିକ ଅମାବାସ୍ୟାରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଆଲୋକ ପ୍ରଦର୍ଶନ—
Barda bardua dāka
ঈজলপি জল Offering of light to the deceased
**उकफेरना** ancestors on the newmoon day of Kārttika.

[ ଦ୍ର—ଏହି ସମୟରେ କାଠିଁରଥା ବଡ଼ା ଜାଳ ଉପରକୁ ଟେକି ଧରି ପୂର୍ବପୁରୁଷମାନଙ୍କୁ ସମ୍ବୋଧନ କରି ଡାକ ଦିଆଯାଏ । ସେହି ଡାକ :—"ବଡ଼ବଡ଼ୁଆ ହେ !
ଅନ୍ଧାରରେ ଆସି ଆଲୁଅରେ ଯାଅ
ବାଇଶି ପାବାଛରେ ମହାପ୍ରସାଦ ଖାଇ
ଗଡ଼ଗଡ଼ାଉ ଥାଅ"

**ବଡ଼ବଡ଼ୁଆ ଡାକିବା**—ଦେ. କ୍ରି—କାର୍ତ୍ତିକ ଅମାବାସ୍ୟା ଦିନ ସନ୍ଧ୍ୟା ପରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପ୍ରଦୀପଦାନ ଓ ଶ୍ରାଦ୍ଧ କରି 'ବଡ଼ବଡ଼ୁଆ ହେ ଅନ୍ଧାରରେ ଆସ, ଆଲୁଅରେ ଯାଅ, ବାଇଶି ପାବାଛରେ ଗଡ଼ଗଡ଼ାଉ ଥାଅ' ବୋଲି ଡାକ ଦେଇ ସିଥ ବଳଦା, କାଠିଁରଥାର ଜଳା ଜୁଲା ମୁଣ୍ଡ ଉପରକୁ ଟେକିବା—To raise up a lighted faggot by invoking one's deceased ancestors on the evening of the new moon of Kārttika.
Bardabardua dakiba
ईंजल पिंजल करा
उकफेरना

**ବଡ଼ବର**—ପ୍ରାଦେ. (ଗଡ଼ଜାତ) ବି—ଶଗଡ଼ିଆ-ବଳଦଙ୍କୁ ବାଟରେ ଖୁଆଇବା ପାଇଁ ବହୁତ ପାଳକୁ ଅଳ୍ପକରେ ନେବା ପାଇଁ ପାଳରେ ବନାଯାଇ ଥିବା ମୋଟା ବେଣୀ—Twisted and plaited straw taken by cartmen for feeding cattle on the way.
Bardabara

**ବଡ଼ବା**—ସ. ବି. ସ୍ତ୍ରୀ. (ବଳ=ଶକ୍ତି + ବା ଧାତୁ ଗମନ କରିବା + କର୍ତ୍ତୃ. ଅ + ସ୍ତ୍ରୀ. ଆ)—୧ । ଘୋଟକୀ—1. A mare.
Bardaba
ବଡ଼ବାର ସଙ୍ଗେ ସଙ୍ଗେ ତୁରଙ୍ଗେ ମତ୍ତଙ୍ଗେ
' କ ଶୈଳି ଭ୍ରମନ୍ତି ହୋଇ ଦ୍ଵିପ ହେ । ଉଣ୍ଡ, ବୈଦେହୀଶବିଳାସ ।
୨ । ଅଶ୍ୱମୁଖୀ ସମୁଦ୍ରଗର୍ଭସ୍ଥା ଦେବୀବିଶେଷ—
2. Name of a sea-nymph; a mythological female Deity with a mare's head, said to inhabit the ocean.
୩ । ଅଶ୍ୱିନୀ ନକ୍ଷତ୍ର—3. Aries (asterism).
୪ । ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାର ଦ୍ୱୟଙ୍କ ମାତା—4. The mother of the heavenly physican-twins.
୫ । କ୍ରୀତଦାସୀ; ଦାସୀ—5. Maid servant; a female slave.
୬ । ଦୂତୀ; କୁଟ୍ଟଣୀ—6. A female go-between; a procuress.
୭ । ଦ୍ୱିଜ ପତ୍ନୀ—7. A Brāhmana woman.
୮ । ଅଶ୍ୱିନୀ ରୂପ ଧାରିଣୀ ସୂର୍ଯ୍ୟ ପତ୍ନୀ ସଞ୍ଜ୍ଞା—
8. Sajnyā; a wife of the Sun-god while she assumed the shape of a mare.

**ବଡ଼ବାଗ୍ନି**—ସ. ବି. ମ. ସ ଲୋ; ବଡ଼ବାର ମୁଖରୁ ଉତ୍ପନ୍ନ ଅଗ୍ନି)—ସମୁଦ୍ର ଗର୍ଭରୁ ଉତ୍ଥିତ ଅଗ୍ନି—Submarine fire or flame.
Bardabāgni
ବଡ଼ବାନଳ } ଅନ୍ୟରୂପ
ବଡ଼ବାମୁଖ }
[ ଦ୍ର—ଏ ଅଗ୍ନି ବଡ଼ବା ନାମ୍ନୀ ଦେବୀଙ୍କ ଏଣକ ବହିର୍ଗତ ହେବା ପୁରାଣପ୍ରସିଦ୍ଧ; ଫଳତଃ ଏହା ସମୁଦ୍ର ଗର୍ଭସ୍ଥ ଚିରନ୍ତ ଅଗ୍ନ୍ୟୁତ୍ପାତ ବୋଲି ଅନୁମିତ ହୁଏ । ]

**ବଡ଼ବା ତୀର୍ଥ**—ସ. ବି. (ବଡ଼ବା + ତୀର୍ଥ)—ହିନ୍ଦୁମାନଙ୍କର ତୀର୍ଥବିଶେଷ—A sacred place of the Hindus
Bardaba tirtha
ବଡ଼ବା ତୀର୍ଥେ ନର୍ମ୍ମଦ ଅଶ୍ୱ ସମୟରେ
ସ୍ନାନ କଲେ ସବୁ ପାତକୁ ଲୋକକରେ । ସାରଳା ମହାଭାରତ, ବନ ।

**ବଡ଼ ବାପା**—ଦେ ବି. ପୁଂ. (ଶୂଦ୍ରଙ୍କ ବ୍ୟବହୃତ)—୧ । ପିତାମହ—1. Paternal grandfather.
Barda bāpā
ठाकुर दादा
୨ । ଜ୍ୟେଷ୍ଠ ତାତ; ଦେଉତା—2. Father's elder brother.
दादा
ବଡ଼ମା } ସ୍ତ୍ରୀ
ବଡ଼ମାଆ }
ମୋଠାରୁ ଶୁଣ ତୁମ୍ଭ ବଡ଼ବାପାଙ୍କର (କଥା)
କୃଷ୍ଣସିଂହ ମହାଭାରତ ବନ
जेठा चाचा

**ବଡ଼ବାବୁ**—ଦେ.ବି.—୧ । କୌଣସି କାର୍ଯ୍ୟାଳୟ ବା ଅଫିସରେ ଥିବା ଦେଶୀୟ କର୍ମଚାରୀମାନଙ୍କ ମଧ୍ୟରେ ପ୍ରଧାନ କର୍ମଚାରୀ ବା ମେନେଜର—1. The Indian head of an office or workshop. ୨ । ଜ୍ୟେଷ୍ଠ ପିତୃବ୍ୟ; ଦଦେଇ—2 Father's elder brother.
Bardababu
ବଡ଼ବାବୁ
बडेबाबु
ବଡ଼ବାବୁ ଖାଲ୍କୁ ଦେନେଇ ନ ଥିବା । କୃଷ୍ଣସିଂହ-ମହାଭାରତ ସଭା.

**ବଡ଼ବାସୁତ**—ସ ବି. (୬ଷ୍ଠୀତତ୍)—ଅଶ୍ୱିନୀକୁମାର—The twin physicians of heaven
Bardabāsuta

**ବଡ଼ବାହୃତ**—ସ. ବି ପୁଂ—୩ୟା ତତ୍; ବଡ଼ବା + ଆହୃତ) (ହିନ୍ଦୁସ୍ମୃତି) ୧୫ ପ୍ରକାର ଦାସ ମଧ୍ୟରୁ ଏକତମ ଯେଉଁ ବ୍ୟକ୍ତି ଦାସୀ ସହିତ ବିବାହ କରିବା ଦ୍ୱାରା ଦାସୀର ମାଲିକଙ୍କ ଦାସ ରୂପେ ଗଣ୍ୟ ହୁଏ—(Hindu law) A person who becomes a slave by marrying one's maid servant.
Bardabāhruta

**ବଡ଼ବୋଉ**—ଦେ. ବି. ସ୍ତ୍ରୀ—୧ । ଭାଉଜ; ବଡ଼ଭାଇଙ୍କ ସ୍ତ୍ରୀ—1 Elder brother's wife or widow. ୨ । ଜ୍ୟେଷ୍ଠା ବିମାତା—2. One's elder stepmother.
Bardabou ବଡ଼ବଉ
बडी बहू বড়মা
बडी मा

**ବଡ଼ବୋଲା**—ଦେ. ବିଣ—ଉଚ୍ଚସ୍ୱରରେ ନ କହିଲେ ଯେଉଁ ଶ୍ରୋତା ଶୁଣି ପାରେ ନାହିଁ—One who can not hear unless talked to in a loud tone.
Bardabolā
नीमकाला उचाशुननेवाला; अकान
ବଡ଼ବୋଲି } ସ୍ତ୍ରୀ
ବଡ଼ବୋଲେଇ }

**ବଡ଼ ବୋହୂ**—ଦେ. ବି. ସ୍ତ୍ରୀ—୧ । ପରିବାରରେ ଜ୍ୟେଷ୍ଠ ପୁତ୍ରର ସ୍ତ୍ରୀ—1. The wife or widow of the eldest son of the family.
Barda bohu
বড়বৌমা शाडीपुतोहू
୨ । ପ୍ରାପ୍ତବୟସ୍କା ବୋହୂ (ପିଲାବୋହୂର ବିପରୀତ) ।
2 Matured daughter-in-law as opposed to an unmatured one.

**ବଡ଼ ଭାଇ**—ଦେ. ବି. ପୁଂ—ଜ୍ୟେଷ୍ଠଭ୍ରାତା—Elder brother.
Barda bhāi বড়দাদা बडेभाइ

**ବଡ଼ଭାଗ**—ପ୍ରା. ଦେ—(ସମ୍ବଲପୁର) ବିଣ.—୧ । ଅଧିକାଂଶ—1. Great portion.
Barda bhāga
(ବଡ଼ଭାଗୋ—ଅନ୍ୟରୂପ)
୨ । ଅଧିକ ସଂଖ୍ୟକ—2. Majority of.
୩ । ସବାପେକ୍ଷା ଅଧିକ ଅଂଶ—3. The largest share.

ବଡ଼ଭି(ଭୀ)—ସଂ. ବି. ( ବଲ୍ ଧାତୁ—ଆବୃତ କରିବା+କର୍ତ୍ତୃ ଅଭ+ଇ, ଈ)—୧ । ଚନ୍ଦ୍ରଶାଳା—1. A room on the roof of a pucca house.
Bardabhi(bhī)
୨ । କୋଠାର ଛାତ ଉପରେ ରଚିତ ଗୃହ ବା ଘର—2. Thatch or awning spread over the roof of a building.
ଦେ. ବି. ( ସଂ. ବଡ଼+ଭୀ )—ବିଶେଷ ଭୟ—Great fear.
ବଡଭୀକ ଉଠି ଯାଉଁ ବୃକ୍ଷ
ବଡଭୀରେ ଶୀଘ୍ର କଲେ ବୃକ୍ଷ । ଉକ୍ତ. ବୈଦେହୀଶବିଳାସ ।

ବଡ଼ ମଲ୍ଲି(ଲ୍ଲୀ)—ଦେ. ବି—ମାଧବୀ ( ଦେଖ )
Barda mali(llī) Mādhabī ( See )

ବଡ଼ ମା—ଦେ. ବି. ସ୍ତ୍ରୀ—୧ । ପିତାମହୀ—1. Paternal grandmother
Barda mā
ଠାକୁର মা ୨ । ବଡ଼ବୋଉ—2. Elder paternal aunt.
दादी ୩ । ଜ୍ୟେଷ୍ଠ ବିମାତା—3. One's elder step-mother.
(ବଡ଼ ମାଆ—ଅନ୍ୟରୂପ) দেঠাই মা चाची

ବଡ଼ ମୁଣ୍ଡ—ଦେ. ବି—୧ । ବଡ଼ ବା ପ୍ରଧାନ ବ୍ୟକ୍ତି—1. A rich or great man.
Barda munda
(ବଡ଼ମୁଣ୍ଡିଆ—ଅନ୍ୟରୂପ) ୨ । ଖୁବ୍ କ୍ଷମତାଶାଳୀ ବ୍ୟକ୍ତି—2. A very influential person.
বড়মাথা
वडामुंड ୩ । ପ୍ରଭାବଶାଳୀ ଅଭିଭାବକ ବା ପୃଷ୍ଠପୋଷକ—3. A very influential patron.
(ଯଥା—ସେ ଚାକିରି ପାଇବା ପାଇଁ ଏକ ବଡ଼ ମୁଣ୍ଡକୁ ଧରିଛି) ;

ବଡ଼ମୁଣ୍ଡିଆ ଚାଣ୍ଟି—ପ୍ରାଦେ. (ବୌଦ୍ଧ) ବି.—ଜନ୍ତୁ—Big black ant; the black pismire or emmet.
Bardamundiā chānti

ବଡ଼ ମୁଥା—ଦେ ବି—ନାଗର ମୁଥା ( ଦେଖ )
Barda muthā Nāgara muthā ( See )

ବଡ଼ର ବଡ଼ର ହେବା—ଦେ. କ୍ରି—ବଡ଼ ବଡ଼ ହେବା ( ଦେଖ )
Bardara bardara hebā Barda barda hebā ( See )
বড় বড় করা ଦଳବେହେରା ପଛରେ ବଡର ବଡର ହୋଇ ଚାଲନ୍ତି
बडबडाना ଲେ ।—ଫକୀରମୋହନ. ଗଳ୍ପସ୍ୱଳ୍ପ ।

ବଡ଼ ରାଣୀ—ଦେ. ବି. ସ୍ତ୍ରୀ—ରାଜାଙ୍କର ପାଟରାଣୀ—The senior Ranee.
Barda rāni
বড় রানী वडी रानी

ବଡ଼ ରାଶି ଖୁରୁଡ଼—ପ୍ରାଦେ. ( ପୁରୀ ) ବି—ବଡ଼ ଗୁଳାବିଶିଷ୍ଟ ଖୁରୁଡ଼ ନଡ଼ିଆ—Dried cocoanut having kernel of big size.
Barda rāsi khururda

ବଡ଼ ରୋଗ—ଦେ. ବି—କୁଷ୍ଠ ରୋଗ—Leprosy.
Barda roga বড় রোগ पाप रोग, कुष्ठ

ବଡ଼ ଲାଟ—ଦେ. ବି. ( ସ. ବଡ଼+ଇଂ. ଲର୍ଡ୍ )—ଭାରତବର୍ଷର ଗଭର୍ଣ୍ଣର ଜେନେରାଲ୍ ଏବଂ ଭାଇସ୍‌ରୟ୍—The Governor General and Viceroy of India.
Barda lāta
বড় লাট
बडे लाट

ବଡ଼ ଲୋକ—ଦେ. ବି. ( ସ. ବଡ଼+ଲୋକ )—
Barda loka ୧ । ଧନୀ ବ୍ୟକ୍ତି—1. Rich man.
বড় লোক, বড় মানুষ ପଢିଲେ କେତେ ପୁଣ୍ୟ ଫଳକୁ ପାଏ
बडा आदमी, बडे लोग ଶୁଣିଲେ ଶୂଦ୍ର ବଡ ଲୋକ ହୋଇ ଯାଏ ।
କୃଷ୍ଣସିଂହ, ମହାଭାରତ, ଅନୁଶାସନ ।
୨ । ମହାଜନ; ମହାପୁରୁଷ—2. A great man.
ଶୁଣ ଧ୍ୱଜନ ଭାଗବତ, ଏ ବଡ ଲୋକଙ୍କର ମତ—ଜଗନ୍ନାଥ. ଭାଗବତ ।

ବଡ଼ ଲୋକୀ—ଦେ. ବି—୧ । ଧନୀ ପଣ—1. The state of being rich.
Barda lokī
বড় মানুষী ୨ । ଧନୀର ବ୍ୟବହାର ବା ଚାଲି ଚଳନ—2. Conduct befitting a rich man.
वडप्पन
୩ । ଗର୍ବ—3. Pride.

ବଡ଼ ଶିଂଘାର—ଦେ. ବି. (ସ. ବୃହତ୍+ଶୃଙ୍ଗାର)—ଦେବତାଙ୍କର ରାତ୍ରି ଶୟନ ବା ପହୁଡ଼ ହେବା ପୂର୍ବର ବେଶ, ଭୋଗାଦି କାର୍ଯ୍ୟ—The rites performed before an Idol is laid to sleep for the night.
Barda śimghāra
ବଡ଼ ଶିଂଗାର } ଅନ୍ୟରୂପ
ବଡ଼ ଶିଂହାର }
वडा शृङ्गार
ବଡ ଶିଂଘାର ବେଳେ ନରେ ଯାଇଁ, ଦେଖି ଅଶିବ ଚନ୍ଦ୍ରାନ୍ତ ଗୋସାଇଁ ।
ପ୍ରାଚୀ. ଗୁଣ୍ଡିଚାବିଜେ ବେଶ ।

ବଡ଼ ଶିଂଘାର ଧୂପ—ଦେ. ବି—ରାତ୍ରିରେ ଦେବତାଙ୍କର ପହୁଡ଼ ହେବା ପୂର୍ବରୁ ଯେଉଁ ଭୋଗ ହୁଏ—Offering made to an Idol before the night's rest.
Barda śimghāra dhūpa

ବଡ଼ ଶିଂଘାର ବେଶ—ଦେ ବି—ଦେବତା ରାତ୍ରିରେ ପହୁଡ଼ିବା ପୂର୍ବରୁ ଯେଉଁ ବେଶରେ ସଜ୍ଜିତ ହୁଅନ୍ତି—The dressing put on an Idol before the night's rest.
Barda śimghāra beśa

ବଡ଼ ଶିଂଘାର ଲାଗି—ଦେ. ବି—ବଡ଼ ଶିଂଘାର ବେଶରେ ସୁସଜ୍ଜିତ ହେବା—Equipment of an Idol with the fittings before the night's rest.
Barda śimghāra lāgi

ବଡ଼ଶୀ—ଦେ. ବି. (ସ. ବଡ଼ିଶୀ)—ବଡ଼ିଶୀ ( ଦେଖ )
Bardaśi Bardiśi ( See )
ନ ଦିଅ ବଡ଼ଶୀ, ବଳେ ମନ ମୀନ ନବ ଅଙ୍କଶି
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ବଡ଼ ଶୃଙ୍ଗାର (ଇତ୍ୟାଦି)—ଦେ. ବି—ବଡ଼ ଶିଂଘାର ଇତ୍ୟାଦି (ଦେଖ)
Barda śrungāra (etc) Barda śimghāra etc. (See)
ଚନ୍ଦ୍ରଚୂଡ଼-ବଡଶୃଙ୍ଗାର-ରଚନା, କାଲେ ସେ ଶୋଲେ ସେବକେ ।
ରାଧାନାଥ. ପାର୍ବତୀ ।

ବଡ଼ ହେବା—ଦେ. କ୍ରି.—(ସ. ବର୍ଦ୍ଧନ)—୧ । ବଢ଼ିବା—1. To become large.
Barda hebā
বড় হওয়া ୨ । ବୃଦ୍ଧି ପାଇବା—2. To increase; to wax.
वडा होना
୩ । ପରିଣତବୟସ୍କ ହେବା; ସାବାଳକ ହେବା—3. To be of age; to attain majority.

୪ । (ବାଳକାମାନଙ୍କ ସମ୍ବନ୍ଧେ) ଜ୍ଞାନ ପାଇବା; ପ୍ରଥମେ ରଜସ୍ୱଳା ହେବା—4. To attain puberty (said of a girl).

୫ । ପରିମାଣରେ ବା ଦୈର୍ଘ୍ୟରେ ବଳି ପଡ଼ିବା— 5. To exceed in quantity or length.

୬ । ଉଚ୍ଚତାରେ ବୃଦ୍ଧି ପାଇବା—6. To become taller.

ବଡ଼ା—ଦେ. ବି. (ସଂ. ବଟକ)—୧ । ଘିଅ ବା ତେଲପକ୍ୱ ପିଷ୍ଟକବିଶେଷ; Bardā ବରା—1. A kind of cake fried in ghee or oil.
ବଡ଼ା ବड़ा, बाड़ा

ବଡ଼ା ঘা; স্থনর ঘা ୨ । ମୁଣ୍ଡର କେଶମୂଳରେ ହେବା ଏକପ୍ରକାର ବଥ—2. Boil at the root of the hair on the head.

বেসালি, ভাঁড় ୩ । ମାଟିର ଛୋଟ ହାଣ୍ଡି (ଏହାର ମୁହଁ ଘଡ଼ି ଅପେକ୍ଷା ଚଉଡ଼ା ଓ ଏଥିରେ ଘିଅ, ତେଲ ଆଦି ରଖାଯାଏ)—
टाड़ी
3. A small wide-mouthed earthen pot.

ପ୍ରାଦେ. (ସମ୍ବଲପୁର) ବିଣ.—୧ । ବଡ଼—1. Great.
୨ । ଅତ୍ୟନ୍ତ ବଡ଼—2. Very great.
ପ୍ରାଦେ. (ସମ୍ବଲପୁର) ବିଣ ର ବିଣ.—ଅତ୍ୟନ୍ତ—Very much.

ବଡ଼ାଇ—ଦେ. ବି.—(ସଂ. ବୃଦ୍ଧି)—୧ । ମାହାତ୍ମ୍ୟ; ବଡ଼ପଣ; ବଡ଼ିମା; Bardāi ଗରିମା; ପ୍ରାଧାନ୍ୟ; ମହିମା; ଗୌରବ— 1. Greatness; glory.
বড়াই बड़ाई

ଅଣା ବଢ଼ି ଜଳ କର୍ମି ଅବଶ୍ୟରେ ଏଥିଁ ଅଧିକ କେଉଁ ବଡାଇ ।
ଉଦ୍ଧ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୨ । ଗର୍ବ—2. Pride; arrogance; haughtiness.
ତୁମ୍ଭ କର ତୋର କେତେ ବଡ଼ାଇ—କବିସୂର୍ଯ୍ୟ. ବଳରା ।

୩ । ପ୍ରଶଂସା—3. Eulogy; praise.
୪ । ଆତ୍ମପ୍ରଶଂସା—4. Self aggrandisement.
ଦେ. ବିଣ.—ଅତ୍ୟନ୍ତ; ଅତ୍ୟଧିକ—Too much.

ମଧର ହାସ୍ୟ ମନ୍ଦ ମନ୍ଦ, ଦର୍ଶନେ ବଡ଼ାଇ ଆନନ୍ଦ ।
ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

ବଡ଼ାଇ କରିବା—ଦେ. କ୍ରି.—୧ । ପ୍ରଶଂସା କରିବା— Bardāi kariba 1 To eulogise.
বড়াই করা ୨ । ଆତ୍ମ ପ୍ରଶଂସା କରିବା— 2. To brag; to boast.
बड़ाई करना

ସେ ପ୍ରଶଂସା ନାହିଁ କଲେ ନ ବଡ଼ାଇ,
କରୁଥିବ ଅଣ କେତେ ତା ବଡ଼ାଇ ।ଗ୍ରାମନାଥ ୯୯୯।

ବଡ଼ାଇ କହିବା—ଦେ କ୍ରି.—ନିଜର ମହିମା ଦେଖାଇ କହିବା— Bardāi kahibā To boast of one's powers.
বড়াই করা ବାଣୀ ରମଣୀଙ୍କ ଶୁଣେ ବଡ଼ାଇ ଅମ୍ଭ ବନ୍ଧରେ ଏକୁଥାନ୍ତି ମାଇକି କାନର-
अपनी बड़ाई करना ଉଦ୍ଧ. ବୈଦେହୀଶବିଳାସ ।

ବଡ଼ା ଗୋରେ—ପ୍ରାଦେ. (କଳାହାଣ୍ଡି) ବିଣ.—ବେଶିଗୁଡ଼ିଏ— Bardā gore Too much.

ବଡ଼ା ତାର୍—ପ୍ରାଦେ. (ସମ୍ବଲପୁର) ବିଣ.—ଅନେକଗୁଡ଼ିଏ— Bardā tār Very many.

ବଡ଼ାପା—ଗ୍ରା. (ଇତର) ବି—ବଡ଼ବାପା (ଦେଖ) Bardāpā Barda bāpā (See)

ବଡ଼ାମି—ଗ୍ରା. ବି. (ବଙ୍ଗଳାରୁ ଅନୁକୃତ)—ବଡ଼ପଣ— Bardāmi Greatness.
বড়ামী ଦେ. ବିଣ.—ବଡ଼ ପଣ; ଅଭିମାନୀ; ଗର୍ବୀ—
बड़पन Proud; egoistic.

ବଡ଼ାମ୍ବା—ଦେ. ବି. (ନାମ)—ଓଡ଼ିଶାର ଏକ ଗଡ଼ଜାତ ରାଜ୍ୟ— Bardāmbā A feudatory state of Orissa.

[ଦ୍ର—ଜଣେ କ୍ଷତ୍ରିୟ ମଲ୍ଲ ଯୋଦ୍ଧା ଉତ୍କଳ-ଗଜପତିଙ୍କୁ ଆପଣାର ବୀରତ୍ୱରେ ସନ୍ତୁଷ୍ଟ କରାଇ ଦୁଇଖଣ୍ଡ ଗ୍ରାମ ପାଇଥିଲେ । ଏହି ମଲ୍ଲ ଗଜପତିଙ୍କ ବଳରେ ଆଦିମ ଅଧିବାସୀ କନ୍ଧମାନଙ୍କୁ ତଡ଼ି ଦେଇ ପ୍ରାୟ ୫୦୦ ବର୍ଷ ପୂର୍ବେ ଏହି ରାଜ୍ୟ ସ୍ଥାପନ କରି ଥିଲେ ଏବଂ କ୍ରମେ କ୍ରମେ ତାହାଙ୍କ ରାଜ୍ୟ ବଢ଼ାଇ ଥିଲେ ।
କୃପାସିନ୍ଧୁ. ଇତିହାସ ।

ଏ ରାଜ୍ୟସ୍ଥିତା ବୃହଦମ୍ବା (ଦୁର୍ଗା, ଭଟ୍ଟାରିକା)ଙ୍କ ନାମାନୁସାରେ ଏ ରାଜ୍ୟର ନାମକରଣ ହୋଇ ଅଛି ।]

ବଡ଼ି—ବୈଦେ. ବି. (ଇଂ. ବଡିସ୍)—ସ୍ତ୍ରୀଲୋକମାନଙ୍କ ଅଣ୍ଟାସରୁଆ Badi କୁର୍ତ୍ତା; ଯାକେଟ୍—Female jacket; bodice.
বডী, বাডী चोली, आँगी (ବଡ଼ିସ—ଅନ୍ୟରୂପ)

ବଡ଼ି—ଦେ. ବି—୧ । (ସଂ. ବଟୀ; ସଂ. ବଟକ)—ବଟା ମୁଗ ବା ବିରିକୁ Bardi ଛୋଟ ଛୋଟ ପିଠାପରି କୁଲା ବା ଡାଲାର ପୃଷ୍ଠରେ ପାରି ତାକୁ
বড়ী ଶୁଖାଇ ତରକାରୀରେ ବ୍ୟବହାର କରିବା ନିମନ୍ତେ ରଖାଯିବା
बड़ी ପଦାର୍ଥ—1. Cakes of pasted corn dried and preserved for being cooked and used in curry.

[ଦ୍ର—ଛୋଟ ଛୋଟ ବଡ଼ିକୁ 'ଫୁଲବଡ଼ି', ଯେଉଁ ବଡ଼ିରେ ପାଣିକଖାରୁ କୋରା ହୋଇ ମିଶିଥାଏ ତାକୁ 'କଖାରୁବଡ଼ି (ହି. କୁମ୍ହଡ଼ୌରୀ), ଯେଉଁ ବଡ଼ିରେ ବୋଇତି କଖାରୁ ବା ପାଣି କଖାରୁ ମଞ୍ଜି ମିଶିଥାଏ ତାକୁ 'ମଞ୍ଜି ବଡ଼ି' ଓ ଯହିଁରେ ଖସା ମିଶିଥାଏ ତାକୁ 'ଖସା ବା ରାଶିବଡ଼ି' (ହି. ତିଲୌଡ଼ି) କହନ୍ତି । ମୁଗବଟାରେ ତିଆରି ବଡ଼ିକୁ 'ମୁଗବଡ଼ି' କହନ୍ତି ।

ଗଞ୍ଜାମ ଅଞ୍ଚଳରେ ମୂଳାବଡ଼ି, ମୁନଗାବଡ଼ି ଓ ପିଆଜ ଆଦିର ବଡ଼ି ହୁଏ ।]

বড়ী ୨ । (ସଂ. ବଟିକା)—ଔଷଧାଦିର ବଟିକା—
बड़ी 2 Pill.

বড়ে, বড়িয়া ୩ । ସତରଞ୍ଜ ଖେଳର ଗୋଟୀ—
मुहरा 3. A pawn at chess.

ପ୍ରାଦେ (ଗଡ଼ଜାତ ଓ ସମ୍ବଲପୁର) ବି—ଦେଠେଇ—Wife of father's elder brother, elder paternal aunt.

ବଢ଼ି ଅନ୍ଧାରୁଆ—ଦେ. ବି—ପ୍ରତ୍ୟୁଷ; ଅରୁଣୋଦୟର ପ୍ରାକ୍‌କାଳ— Bardi andhāruā Early morning; the time just before dawn.
খুব্‌ভোর; মুখআঁধারী बड़ेभोर, तड़के

ବଢ଼ି ଝୁଇଁ ଝୁଇଁ, ବଢ଼ିଭୋରୁ, ବଢ଼ି ସକାଳ, ବଢ଼ି ଭୋରୁ, ବଢ଼ି ସକାଳ, ବଢ଼ି ଝୁଇଁ ପଡ଼ି, ବଢ଼ିଅନ୍ଧାର(ରୁ) ବଢ଼ି(ଉ)ଅନ୍ଧାରଅ } ଅନ୍ୟରୂପ

ବଡ଼ିଅଲ୍—ପ୍ରାଦେ (ସମ୍ବଲପୁର) ବି—(ଭୁଲ. ହି. ବଡ଼ହର୍)—ଆତଫଳ
Bardial Custard apple.
(ବଢ଼ିଅଲ, ବଡ଼ିଅଲ୍, ବଢ଼ିଅଲ୍—ଅନ୍ୟରୂପ)

ବଡ଼(ଢ଼ି)ଆ—ଦେ. ବିଣ—୧ । ବଡ଼—1. Big; large.
Bardi(rdhi)ā ୨ । ଉତ୍କୃଷ୍ଟ—2. Excellent.
୩ । ଉଚ୍ଚ—3. High.
ବେଢେଁ ୪ । ମୂଲ୍ୟବାନ୍—4. Valuable.
ବଢ଼ିୟା ୫ । ଅତି ଉତ୍ତମ—5. Very good.
ଦେ. ବି—(ସଂ. ବେଣୀ)—ନିଆଁ ରଖିବା ପାଇଁ ବା ଧୂଆଁ
ବେଣୀ ଦେବା ପାଇଁ ବେଣୀ ପକାଯାଇ କୁଣ୍ଟାରେ ମୋଡ଼ା ହୋଇଥିବା
ନଡ଼ୁଆକା ଉକ୍ ଅଣ୍ଟା—A long wisp of straw twisted tightly so that it may smoulder slowly when lighted and the fire in it preserved for a long time.

ପ୍ରାଦେ (ସିଂହଭୂମି) ବି—ସତରଞ୍ଚ ଖେଳର ପଦାତି—
The foot soldiers in a game of chess.

ବଡ଼(ଢ଼ି)ଆ କାଙ୍କ—ଦେ. ବି. (ସଂ. ବୃହତ୍ ଓ କଙ୍କ)—ଲମ୍ବ ଲମ୍ବ
Bardi(rdhi)ā kānka ସରୁଗୋଡ଼, ଥଣ୍ଟ ଓ ବେକ ଥିବା
ମାଣିକଯୋଡ଼ ବକଜାତୀୟ ପକ୍ଷିବିଶେଷ—Stork; flamingo; Dissura Episcopus.
ମାଣିକଜୋଡ (ବଢ଼ କାଙ୍କ, ବଢ଼ିକାଙ୍କ—ଅନ୍ୟରୂପ)

ନଡ ବୋଲୁ ବଡିଆ କାଙ୍କ
ସାନ ବୋଲୁ ବଗର ବେଣୀ — ଢଗ ।

[ ଦ୍ର—ଏମାନେ କୁଳେଚର ବର୍ଗୀୟ ପକ୍ଷୀ; ବେକ ଓ ପେଟ
ଧଳା; ଗଳା ଓ ପିଠି କଳାମିଶା ସବୁଜ; ଥଣ୍ଟ ଦୀର୍ଘ ଓ ସ୍ଥୂଳ; ପକ୍ଷ
ଦୀର୍ଘ; ପୁଚ୍ଛ ଖର୍ବ; ଗୋଡ଼ ଖୁବ୍ ଡେଙ୍ଗା ଓ ରକ୍ତବର୍ଣ୍ଣ; ପାଦ ଲିପ୍ତ
(ଜାଲୁଆ); ପଡ଼ିଆରେ ବା ବିଲର ପାଣିରେ ଏମାନେ ପଲ ପଲ
ବସନ୍ତି ଓ ଚରନ୍ତି । ]

ବଡ଼ି ଖଇଞ୍ଚି—ପ୍ରାଦେ (ଯାଜପୁର) ବି—ବଡ଼ି ପକାଯିବା ଚଟେଇ ବା
Bardi khainchi ମସିଣା—A mat for laying and sunning Bardi.

ବଡ଼ି ପୋଲୁଅ—ଦେ. ବି—ବରିପୋଲୁଅ (ଦେଖ)
Bardi polua Baripolua (See).
[ବଢ଼ିଫୁଲ, ବଢ଼ିପୋଲ—ଅନ୍ୟରୂପ]

ବଡ଼ିଫୁଲ—ପ୍ରାଦେ (ଗଞ୍ଜାମ) ବି—ବରିପୋଲୁଅ (ଦେଖ)
Bardiphula Baripolua (See).

ବଡ଼ିଫୁଲା—ଦେ ବି—(ସଂ. ବଟକ+ସଂ. ଫ୍ଲାୟ ଧାତୁ)—ବଡ଼ିକୁ ଭଜି
Bardi phulā ମସଲାପାଣିରେ ସିଝାଇଲେ ତାହା ଫୁଲିଯାଇ ଯେଉଁ
ବଡ଼ିଛେଁଚକୀ ବ୍ୟଞ୍ଜନ ହୁଏ—Curry made of preserved
ବଡିକା ତିମନ and dried pills of corn-paste boiled in spiced water and become bloated.

ବଡ଼(ଢ଼ି)ମା—ଦେ. ବି (ସଂ. ବରିମନ୍ ଶବ୍ଦରୁ ବରିମା)—୧ । ବଡ଼ପଣ;
Bardi(rdhi)mā ଗରିମା—1. Greatness; excellence.
ବଡ଼ମାପଣ } ଅନ୍ୟରୂପ ୨ । ଗର୍ବ—2. Pride.
ବଢ଼ିମାପଣ } ୩ । ଆତ୍ମଗର୍ବ—3. Arrogance.
ବଡ଼ାଈ; ବଡ଼ିମା ୪ । ଆତ୍ମ ପ୍ରଶଂସା; ଚେଙ୍କ—4. Self-praise.
ବଡାଈ କେହୁ କହୁଅଛ ନିଜ ବଂଶର ବଡ଼ିମା—ଗୋପୀନାଥ ମହାପାତ୍ର ।

ବଡ଼(ଳ)ଶ—ସଂ. ବି—ବଡ଼ଶୀ (ଦେଖ)
Bardi(li)sa Bardisi (See)

ବଡ଼ିଶ ଲଠି—ଦେ. ବି—ବନଶୀ ଖଡ଼ା—
Bardisa lathi Angling rod.
ଛୀପ କଣୋଗଣଙ୍କର ମନମୀନକୁ ଏ ବଡିଶ ନିଷ୍ଠ ବଡ଼ିଶଲଠି ଛଡ଼ଗ ରେ ।
ବନସୀକାଣ୍ଡୟା; ଛୀପ ଉଦ୍ଭବସୂର୍ଯ୍ୟ ସଙ୍ଗୀତ ।

ବଡ଼ିଶୀ—ସଂ. ବି—ବନଶୀ; ମାଛ ଧରିବା ପାଇଁ ଥୋପ ଲାଗିଥିବା
Bardisi କଣ୍ଟାଯୁକ୍ତ ଡୋରି ଓ ଦଣ୍ଡ—
ବଡଶୀ ବନସୀ Angling rod and line.

ବଡ୍ଡୁ—ଦେ. ବି (ସଂ ବଟୁ=ବ୍ରହ୍ମଚାରୀ)—୧ । ବ୍ରତ ବା ଉପନୟନ ସଂସ୍କାର-
Bardu 1. The ceremony of the investiture of
ପଇତେ ଜନେଉ the sacred thread.
ବଡୁ ୨ । ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କର ମାଳଜାତୀୟ
ବଡ୍ଡ ଶୂଦ୍ରସେବକ—2. A class of Sūdra temple-servants at Bhubaneswar.
୩ । ପରିଚାରକ; ଚାକର—3. Servant.
(ଯଥା—ଜଗନ୍ନାଥ ମହାପ୍ରଭୁଙ୍କର 'ଦ୍ୱିବାନବଡ୍ଡୁ' ।)
ପ୍ରାଦେ (ଗଡ଼ଜାତ) ବି—ବାପର ବଡ଼ ଭାଇ; ଜେଠୁବା—
Father's elder brother.

ବଡ୍ଡୁ(ଢ଼ୁ)ଆ—ଦେ. ବି—ବଡ଼ା; ଚଉଡ଼ାମୁହାଁ ଛୋଟ ହାଣ୍ଡି—
Bardu(rdhu)ā Small wide-mouthed earthen pot.
କୁଁଡୀ, ଗୁଡୀହାଡୀ ହାଣ୍ଡୀ

ବଡ୍ଡୁ ଘର—ଦେ. ବି—ବ୍ରତ ଉତ୍ସବ; ଉପନୟନ—
Bardu ghara The festival of investiture of sacred thread.
ପୈତେଘର ଜନେଉକାଉତ୍ସବ (ଭୁଲ—ବଡୁଘର)

ବଡ୍ଡୁ ଭିକ୍ଷା—ଦେ. ବି. (ସଂ. ବଟୁ ଓ ଭିକ୍ଷା)—ଉପନୟନ ସମୟରେ
Bardu bhikshā ଦ୍ୱିଜ ବାଳକର ବ୍ରହ୍ମଚାରୀ ବେଶରେ 'ଭବତ୍
ପଇତାରଭିକ୍ଷା ଭିକ୍ଷାଂଦେହି' ବୋଲି କହି ଭିକ୍ଷାପାତ୍ରହସ୍ତରେ
ବଟୁଆକୀଭିକ୍ଷା ଆଗନ୍ତୁକ ବ୍ୟକ୍ତିମାନଙ୍କ ନିକଟରେ ମାଗିବା
ଭିକ୍ଷା; ବ୍ରତଭିକ୍ଷା—The ceremony of begging done by a Brāhmana boy during the investiture of sacred thread.

ବଡ୍ଡୁ ମ(ମା)ହାପାତ୍ର—ପ୍ରାଦେ (ପୁରୀ) ବି—ପୁରୀ ଜଗନ୍ନାଥଙ୍କର ବ୍ରାହ୍ମଣ
Bardu ma(mā)hāpātra ସେବକ, ଯେ ମଧ୍ୟ ପୁରୀ ରାଜାଙ୍କର
ବଡ୍ଡୁସେବା କରନ୍ତି—The Brāhmana servants of the Jagannath temple who also do Barduseba with the Raja of Puri.

**ବଡ଼ୁସେବା**—ପ୍ରାଦେ (ପୁରୀ) ବି—୧ । ଜଗନ୍ନାଥଙ୍କଠାରେ ଲାଗି ହୋଇଥିବା
Bardusebā ଫୁଲ ଅଣି ପୂଜା ସକାଳୁ ଦେବା ଓ ମୁହଁ ଧୋଇବା-
ବେଳେ ଓ ବଡ଼ଶିଂଗାରବେଳେ ଗଡ଼ୁରେ ଜଗନ୍ନାଥଙ୍କ ପାଣି
ଯୋଗାଇବା ସେବା—1. Service performed by a Brāhmaṇa Sebak before Lord Jagannath and with the Rājā of Puri.
୨ । ଶୂଦ୍ର ସେବକଙ୍କର ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କୁ ପାଣି, ଫୁଲ ଓ ବେଲପତ୍ରି ଲାଗି କରିବା ଓ ବେଶ କରିବା ସେବା—2. Service of offering water, flowers and bel-leaves performed by the Śūdra Sebaks at Bhubaneśwar.

**ବଡ଼େ**—ଦେ. ବିଣ ଓ କ୍ରି. ବିଣ. ( ପ୍ରାଚୀନ ସାହିତ୍ୟ )—
Barde ବଡ଼; ଭାରି; ଅତି; ଅତ୍ୟନ୍ତ—
বেড়ে बडे Very much; excessive.
ବଡ଼େ ସେ ସବକୁ ବହି, ବୋଲଇ ସ୍ୱରଣ ସେହି ।
ଭକ୍ତ• ବୈଦେହୀଶବିଳାସ ।

**ବଡ଼େ ଦିବାଲ(ପାଖା)**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ବଡ଼େ
Barde dibāla (pākhā) ପଙ୍ଖା)—ଘର ଘରର ହାତଅଦ—Gable.

**ବଡ଼େ ପୁରୁ**—ପ୍ରାଦେ• (ସମ୍ବଲପୁର) ଅ—ବଡ଼ି ଭୋରରୁ—
Barde puru Very early in the morning.

**ବଡ୍ଡ**—ଦେ. ବିଣ. (ସ. ବୃଦ୍ଧ; ତେ. ପେଦ୍ଦା)—
Badda ୧ । ବୃହତ୍; ବଡ଼—1. Big; large.
বড্ড ୨ । ବିପୁଳ—2. Extensive; gigantic.
वडा ୩ । ଅତ୍ୟନ୍ତ ବଡ଼—3. Very large.

**ବଢ଼ଇ**—ପ୍ରାଦେ. (ବସ୍ତର) ବି. (ଭୁଲ. ହି. ବଢ଼ଇ)—ବଢ଼େଇ—
Bardhai Carpenter.

**ବଢ଼ଣି**—ପ୍ରାଦେ. (ସମ୍ବଲପୁର) ବି. (ସ. ବର୍ଦ୍ଧନୀ; ଭୁଲ. ହି. ବଢ଼ନୀ)—
Bardhaṇi ଝାଡ଼ୁ; ଝାଣ୍ଟୁଣି—Broomstick; sweeping brush.

**ବଢ଼ଣେଇବା**—ପ୍ରାଦେ. (ସମ୍ବଲପୁର) (ଭୁଲ. ହି. ବାଢ଼ନା)—
Bardhaneibā ଝାଡ଼ୁ ଦେବା; ଝାଣ୍ଟୁଣିରେ ଓଲାଇବା—
To sweep with a sweeping brush or broomstick.

**ବଢ଼ତି**—ଦେ. ବି—ବଡ଼ତି ( ଦେଖ )
Bardhati Bardati ( See )
ପ୍ରାଦେ. ( ଗଡ଼ଜାତ ) ବି—ମଙ୍ଗଳ; ସୁଖ—Good luck; happiness.

**ବଢ଼ଲ**—ପ୍ରାଦେ. ( ସମ୍ବଲପୁର ) ବି—୧ । ପଣସ—1. Jackfruit.
Bardhal ୨ । ଆତ—2. Custard apple.

**ବଢ଼ା** ଦେ. ବି. (ସ. ବୃଧ୍ ଧାତୁ ; ବର୍ଦ୍ଧନ; ବୃଦ୍ଧି)—
Bardhā ୧ । ଆଧିକ୍ୟ; ବୃଦ୍ଧି—1. Increase; increment.
বাঢ়া, বাড়া बढना
বাড়া ୨ । ଅନ୍ନ ବ୍ୟଞ୍ଜନାଦି ଖାଦ୍ୟ ପାତ୍ରରେ ପରିବେଷଣ କରିବା—
परोसना 2. Serving of food.
বাঢ়ান ୩ । ବୃଦ୍ଧି କରିବା—3. Act of increasing.
बढाना ୪ । ଭାଗବତାଦି ଗ୍ରନ୍ଥ ପ୍ରଭୃତିର ପାରାୟଣ ବା ପାଠର ସମାପ୍ତି କ୍ରିୟା—4. The act of finishing the recital of a scripture.
বেসালি ୫ । (ସ. ବର୍ଦ୍ଧମାନ—ହାଣ୍ଡି) ମାଟିର ଶ୍ରେଷ୍ଠ ହାଣ୍ଡି (ଏଥିର ମୁହଁ
ढाडी ଘଡ଼ିର ମୁହଁ ଅପେକ୍ଷା ବଡ଼)—5. A small wide
বডার ঘা, সুনর mouthed earthen pot.
বডাই, বাঢ়া ୬ । ମୁଣ୍ଡରେ ହେବା ଘାଆ ରୋଗ; ବଡ଼ା—
बढती 6. Boils on the skull.
বাডা ଦେ. ବିଣ—୧ । ଅଧିକା; ଅତିରିକ୍ତ—1. Extra.
परोसा हुआ ୨ । ଖାଦ୍ୟ ପାତ୍ରରେ ଯାହା ପରିବେଷଣ କରାଯାଇଥାଏ—2. (food) Served up on the plate.
ପ୍ରାଦେ. (ବାଲେଶ୍ୱର) ବି—ଘୁଡ଼ିରେ ଅଧିକା ସୂତା—Extra thread in a playing kite.
ପ୍ରାଦେ• (ବାଲେଶ୍ୱର) ବିଣ—୧ । ଅଧିକା ସୂତା ଯେଉଁ ଉଡ଼ୁଥିବା (ଘୁଡ଼ି)—1. (a playing kite) Flying with excess thread.
୨ । ଅପର ଘୁଡ଼ିଠାରୁ ଆଗକୁ ଅଗେଇ ରହିଥିବା—2. Flying ahead (said of a kite) of another.
[ ଦ୍ର—ଉଡ଼ୁଥିବା ଘୁଡ଼ି ସମ୍ବନ୍ଧରେ ପ୍ରଯୁଜ୍ୟ । ]
ପ୍ରାଦେ. (ବାଲେଶ୍ୱର) କ୍ରି—ଆଗକୁ ବଢ଼େଇ ରଖିବା—Extending.

**ବଢ଼ା(ଢ଼େ)ଇ**—ଦେ. ବି—୧ । ବଡ଼ାଇ ( ଦେଖ )
Bardhā(rdhe)i 1. Bardāi ( See )
ছুতার, বাডই, বাড়ুই ୨ । ( ପୁଂ. ବର୍ଦ୍ଧକି; ପ୍ରା. ବଡ୍ଢଇ )—କାଠ
बढई କାଟିବା କାରିଗର; ସୂତ୍ରଧର—2. Carpenter.
ମା. ବଢ଼ାଇ ବଢ଼ାଇଙ୍କୁ ଡକାଅ ବୋଲି ଆଜ୍ଞା ଦେଲେ । କୃଷ୍ଣସିଂ. ମହାଭାରତ, ସଭା
(ବଢ଼ାଉଣୀ, ବଢ଼ଉଣୀ, ବଢ଼ୌଣୀ – ସ୍ତ୍ରୀ)

**ବଢ଼ା(ଢ଼େ)ଇ ଦେବା**—ଦେ. କ୍ରି—୧ । ବଢ଼ାଇବା ( ଦେଖ )
Bardhā(rdhe)i debā 1. Bardhāibā ( See )
বাড়িয়ে দেওয়া ୨ । କର ପ୍ରସାରିତ କରି କୌଣସି ପଦାର୍ଥକୁ ଅନ୍ୟ
बढा देना ବ୍ୟକ୍ତିର ହାତରେ ଅର୍ପଣ କରିବା—
2 To hand over a thing.
ଗାଣ୍ଡିବ ବଢ଼ାଇ ଦେଇ ଶତ୍ରୁଙ୍କୁ ମନେ କରଇ ପାର୍ଥ ।
କବିସୂର୍ଯ୍ୟ. ସଙ୍ଗୀତ ।

**ବଢ଼ା(ଢ଼େ)ଇବା**—ଦେ. କ୍ରି. (ସ. ବର୍ଦ୍ଧନ; ପ୍ରା. ବଡ୍ଢଣ)—
Bardhā(rdhe)ibā ୧ । ବଢ଼ିବା କ୍ରିୟାର ଣିଜନ୍ତ ରୂପ—
বাঢ়ান 1. Causative of Bardhibā.
बढाना ୨ । ବାଢ଼ିବା କ୍ରିୟାର ଣିଜନ୍ତ ରୂପ—
বাড়ান 2. Causative of Bardhibā.
परोसवाना ୩ । (କର ଆଦି) ପ୍ରସାରିତ କରିବା—
3. To extend or outstretch.
ଗମନି ମଣ୍ଡଳକୁ ଭୁଜ କରି ବଢ଼ାଇଲୁ ନେ । କବିସୂର୍ଯ୍ୟ. କଳୋପକଣ୍ଠ, ୪ ଗୀତ ।
୪ । ପୂରଣ କରିବା—4. To finish; to fulfil

ଅକଠାରୁ ତୁମ୍ଭର ଅଶ୍ରମରେ ଥିବ
ତୁମ୍ଭର ମନୋରଥ ସମସ୍ତ ବଢ଼ାଇବ । କୃଷ୍ଣସିଂହ. ମହାଭାରତ. ବନ ।

୫ । ପ୍ରାଣକୁ ନାଶ କରିବା; ମାରିବା—5. To destroy life; to kill.

ବୋଇଲା ବ୍ରାହ୍ମଣ ତୁ ହେଲୁ ନଷ୍ଟେ ଚାର
ତୋ ଯେଣେ ସବୁ ହିଂକେ ଦେବ ମୁଁ ବଢ଼ାଇ । କୃଷ୍ଣସିଂହ. ମହାଭାରତ. ବନ ।

বাড়ান ୬ । ଶିଶୁ ଆଦିଙ୍କୁ ବାଲ୍ୟ କାଳରୁ ଲାଳନ ପାଳନ କରିବା—
**बढाना** 6. To bring up or foster a child.

ଏ ଲଳିତ ବପୁ ବଢ଼ାଇଲା ଯେତୁ ନିଜ ସ୍ତନ ଦେଇ କ୍ଷୀର ।
ରାଧାନାଥ. ଯଯାତି ।

୭ । ହସ୍ତ ଦ୍ୱାରା କୌଣସି ବସ୍ତୁକୁ ଅନ୍ୟ ବ୍ୟକ୍ତିଠାରେ ଅର୍ପଣ କରିବା—7. To hand over.

ବଢ଼ିଆ ବଢ଼ି ବଢ଼ାଇଲ ସକାଢ଼ି । କବିସୂର୍ଯ୍ୟ. ରତ୍ନାକର ଚମ୍ପୂ ।

୮ । (ମନ) ବଳାଇବା—7. To engage or incite one's mind to do a thing; to make one's mind intent upon doing a thing.

ଯାବତ ନାନା କର୍ମ କରେ
ମନ ବଢ଼ାଇ ନିରନ୍ତରେ । ଜଗନ୍ନାଥ. ଭାଗବତ ।

୯ । ( ଲକ୍ଷଣାର୍ଥ ) ସାହାଯ୍ୟ କରିବା—9. (figurative) To help.

କରିବ ଭରସା ବଢ଼ାଅ ଅପରିମିତ । କବିସୂର୍ଯ୍ୟ, ସଙ୍ଗୀତ ।

୧୦ । ଆଗକୁ ଧାବିତ କରାଇବା—
10. To cause to run forward.

ପ୍ରାଦେ. (ବାଲେଶ୍ୱର) କ୍ର—ଅଧିକ ସୂତା ଛାଡ଼ି ଗୁଡ଼ିକୁ ବେଶି ବେଶି ଉଚ୍ଚକୁ ଉଠିବାକୁ ଦେବା—To let one's kite fly higher than the other by letting out more string.

**ବଢ଼ାଉଣି**—ଦେ. ବି—ବୃଦ୍ଧି କରାଇବା କ୍ରିୟା—
Bar̲dh̲āuṇi The act of increasing.
বাড়ান **बढ़ाना, बड़ौना**

**ବଢ଼ା ବଢ଼ି**—ଦେ. ବି—୧ । ପରିବେଷଣ; ଭୋଜନ ପାତ୍ରରେ ଖାଦ୍ୟ ଆଣି ବାଣ୍ଟିବା ବା ଦେବା—
Bar̲dh̲ā bar̲dh̲i
বাঢ়াবাড়ি, বাড়াবাড়ি 1. The act of serving meals on the plate.
**परसा परसी**

ଠାଅପିଡ଼ା କରି କୃଷ୍ଣଙ୍କୁ ଯେନ ଗଲେ
ଛତ ଅନ୍ନରେ ସବୁ ବଢ଼ାବଢ଼ି କଲେ ।
କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

বাড়াবাড়ি ୨ । ଅତି ବୃଦ୍ଧି—2. Excess.
**बढ़ावढ़ी** ୩ । ପରସ୍ପରର ଉପରକୁ ଉଠିବା—3. Rising over each other; outbidding.

( ଯଥା—୧ ଟଙ୍କାର ଜିନିଷ ନିଲାମ ହେବାରୁ ଲୋକେ ବଢ଼ାବଢ଼ି ହୋଇ ୧୦ ଟଙ୍କା ପର୍ଯ୍ୟନ୍ତ ଡାକିଲେ । )

ଦେ. ବିଣ—୧ । ଅତ୍ୟଧିକ—1. Excessive.
**बढ़ावढि** ୨ । ଅତିରିକ୍ତ ପରିମାଣରେ ବୃଦ୍ଧି ପ୍ରାପ୍ତ—
2. Increased to a great extent; which reaches a climax.

( ଯଥା—ଦୁଇ ଜଣଙ୍କ ମଧ୍ୟରେ କଳି କଜିଆ ଅତି ବଢ଼ାବଢ଼ି ହୋଇଗଲା । )

**ବଢ଼ା ଭାତ**—ଦେ. ବି—୧ । ଖାଇବା ପାତ୍ରରେ ବାଢ଼ିଥିବା ଅନ୍ନ—
Bar̲dh̲ā bhāta 1. Boiled rice served up on the plate.
বাড়া ভাত, পোরের ভাত **गुलत्थी**

୨ । ରୋଗୀଙ୍କୁ ଓ ଶିଶୁମାନଙ୍କୁ ସକାଳୁ ଖୁଆଇବା ନିମନ୍ତେ ଶ୍ରେଷ୍ଠ ହାଣ୍ଡିରେ ସୁପକ୍ୱ ହୋଇ ରନ୍ଧା ହୋଇଥିବା ଭାତ—
2. Rice boiled to softness and prepared to feed infants and invalids in the morning.

**ବଢ଼ା ମାସ**—ଦେ. ବି—ମଳ ମାସ—
Bar̲dh̲ā māsa Intercalary month.

**ବଢ଼ି**—ଦେ. ବି. ( ସଂ. ବୃଦ୍ଧି )—
Bar̲dh̲i ନଦୀ ବୃଦ୍ଧି; ବର୍ଷାଜଳର ଆଧିକ୍ୟ ଯୋଗୁଁ ହେବା ନଦୀର
বান **बाढ़** ବନ୍ୟା—Flood of a river; rising of a river.

ନୂଆ ବଢ଼ିକି ପଇଲେ ନାହିଁ, ଫେଣରୁ କମ୍ପୀର ଗାଏ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ବଢ଼ିଅ(ଆ)ଳ**—ଦେ. ବିଣ. ପୁଂ ଓ ସ୍ତ୍ରୀ. ( ସ. ବର୍ଦ୍ଧନଶୀଳ )—
Bar̲dh̲ia(ā)ḻa ୧ । ଶସ୍ୟଳ—1. Capable of luxuriant growth.
বাড়ন্ত **बढने वाला**

୨ । ଖୁବ ପୁଷ୍ଟ—2. Very luxuriant.
୩ । ବର୍ଦ୍ଧନଶୀଳ; ବର୍ଦ୍ଧିଷ୍ଣୁ—3. Growing; prospering.
୪ । ପୁଷ୍ଟକାୟ ଓ ଡେଙ୍ଗା (ବ୍ୟକ୍ତି)—4. Stout and tall.

ଦେ. ବି—ଆତ—Custard apple.

**ବଢ଼ିଆ**—ଦେ. ବିଣ. ( ସ. ବୃଦ୍ଧି ପ୍ରାପ୍ତ; ବର୍ଦ୍ଧିତ )—
Bar̲dh̲iā ୧ । ଉତ୍କୃଷ୍ଟ—1. Excellent.
বেড়ে ୨ । ଉଚ୍ଚ—2. High; tall.
**वढ़िया** ୩ । ବଡ଼—3. Great.
୪ । ଧନୀ—4. Rich.

ଦେ. ବି—ବଢ଼ୁଆ ( ଦେଖ )
Bar̲d̲iā ( See ).

ପ୍ରାଦେ (ଅଳି) ବି—ଶଗଡ଼ିଆ ବଳଦଙ୍କୁ ବା ପୋଢ଼ଙ୍କୁ ବାଟରେ ଖୁଆଇବା ପାଇଁ ବେଶି ପାଲକୁ ଅଳ୍ପ ଆକାରରେ ନେବାପାଇଁ ପାଲରେ ତିଆରି କରାଯାଇଥିବା ମୋଢ଼ା ବା ବେଣୀ—
Twisted straw taken by cartmen for feeding the cart-bullocks on the way.

**ବଢ଼ିଆଁ**—ପ୍ରାଦେ (ସିଂହଭୂମି) ବିଣ—ଉତ୍କୃଷ୍ଟ; ଖୁବ୍ ଭଲ—
Bar̲dh̲iāñ Excellent.

**ବଢ଼ିଆ ଚାକିରି**—ଦେ. ବି—ଉଚ୍ଚ ଭୃତ୍ୟତା ବା ସେବା—
Bar̲dh̲iā chākiri High post or service.
বড় চাকুরী **बढ़ि नौकरी**

**ବଢ଼ିଆ ବଢ଼ି**—ଦେ. ବିଣ—ପରସ୍ପର ପରସ୍ପରର ହାତକୁ କୌଣସି ବସ୍ତୁ ବଢ଼ାଇ ଦେବା—Mutually handing over a thing.
Bar̲dh̲iā bar̲dh̲i
বাঢ়াবাঢ়ী **बढ़ाबढी**
( ବଢ଼ିଆ ବଢ଼େଇ—ଅନ୍ୟରୂପ )

**ବଢ଼ିଆ ମାଲ୍**—ଦେ. ବି—(ହିନ୍ଦିରୁ ଅନୁକୃତ)—୧ । ଉତ୍କୃଷ୍ଟ ବସ୍ତୁ—
Bar̲dh̲iā māl 1. Any excellent article.
বেড়েমাল **वढ़ियामाल** ୨ । ମୂଲ୍ୟବାନ୍ ଜିନିଷ—
2. A valuable thing.

**ବଢ଼ି କହିବା**—ଦେ. କ୍ରି—ବଢ଼ି ବଢ଼ି କହିବା (ଦେଖ)
Bar̲dh̲i kahibā 'Bar̲dh̲i bar̲dh̲i kahibā (See)
লম্বালম্বা কথা বলা **बढ़बढ़कर बातें बोलना**
ତୁମ୍ଭର ଛାମୁରେ ଗୋ—କେତେ ବଢ଼ି କହୁଥିବ — ଉତ ପ. ଶଟିଶେଣା ।
( ବଢ଼ି କର କହିବା, ବଢ଼ି କର କଥା କହିବା— ଅନ୍ୟରୂପ )

**ବଢ଼ି ଜଳ**—ଦେ. ବି —(ସଂ. ବୃଦ୍ଧି + ଜଳ)—ନଦୀ ବନ୍ୟାର ପାଣି—
Bar̲dh̲i jala বন্যাজল, বানেরজল Flood-water.
**बाढ़की पानी** (ବଢ଼ିପାଣି—ଅନ୍ୟରୂପ)

**ବଢ଼ିଣା**—ଦେ. ବି. (ସଂ. ବର୍ଦ୍ଧନୀ; ପ୍ରା. ବଡ଼ଢଣୀ)—ଝାଡ଼ୁ; ସମାର୍ଜ୍ଜନୀ;
Bar̲dh̲iṇā ପଦ୍ମଁସ୍ର—Broomstick.
বাড়ন, বাডনী, বাডন, বিড়া বাড়ুন **बढ़नी, बुहारी**
( ବଢ଼ିଣା ମୁଠା—ଅନ୍ୟରୂପ )

**ବଢ଼ିଣା ମାରିବା**—ଦେ. କ୍ରି—୧ । ଝାଡ଼ୁ ଦ୍ୱାରା ଓଳାଇବା—
Bar̲dh̲iṇā māribā 1. To sweep with a broom.
ঝাঁট্‌দেওয়া ୨ । ଝାଡ଼ୁ ଦ୍ୱାରା ପ୍ରହାର କରିବା—
**बुहारना** 2. To strike with a broomstick.
ঝাঁটামারা **बढ़नीमा**

**ବଢ଼ି ବଢ଼ି କହିବା**—ଦେ. କ୍ରି—ଧୃଷ୍ଟତା ସହିତ କଥା କହିବା; ଗର୍ବିତ
Bar̲dh̲i bar̲dh̲i kahibā ଭାବରେ କଥା କହିବା—To talk
লম্বালম্বা কথা বলা **ढ़बढ़क बोलना** arrogantly.
(ବଢ଼ି ବଢ଼ି କର କହିବା, ବଢ଼ି ବଢ଼ି କଥା କହିବା—ଅନ୍ୟରୂପ)

**ବଢ଼ି ବରଷା**—ଦେ. ବି—(ସମ୍ବତର ଶବ୍ଦ) (ସଂ. ବୃଦ୍ଧି + ବର୍ଷା)—ଏକ
Bar̲dh̲i barashā ସମୟରେ ନଦୀବନ୍ୟା ଓ ବୃଷ୍ଟି—Flood and
বন্যাবৃষ্টি **बाढ़बरखा** rain at the same time
(ବଢ଼ିବର୍ଷା ,ବଢ଼ି ବଦଲ—ଅନ୍ୟରୂପ)

**ବଢ଼ିବା**—ଦେ. କ୍ରି—(ସଂ. ବୃଦ୍ଧି; ସଂ. ବୃଧ୍ ଧାତୁ)—୧ । ବୃଦ୍ଧି ପାଇବା-
Bar̲dh̲ibā To increase; to grow up.
বাড়া, বাঢ়া ୨ । ଶିଶୁକାଳରୁ ଲାଳିତ ପାଳିତ ହେବା—
**बढ़ना, बड़ना** 2. To be reared or brought up.
(ବଢ଼ା[ଢ଼େ]ଇବା—ପ୍ରୟୋଜକ ରୂପ)
ବଢିକୁ ପୂର୍ବ ଭବରେ, ବ୍ରଜ ନବରେ ଯେ— ଉଛ୍ଲ. ବୈଦେହୀଶବିଳାସ ।
୩ । ବୟଃପ୍ରାପ୍ତ ହେବା; ସାବାଳଗ ହେବା—
3. To attain age; to become major.
ତୁମ୍ଭ ବାହୁ ଛାୟା ତଳେ ବଢ଼ୁ ଏ କୁମର । ରଘୁନାଥ—ମହାଯାତ୍ରା ।
୪ । ସୁଖ ସ୍ୱଚ୍ଛନ୍ଦରେ ଜୀବନ ଧାରଣ କରିବା—
4. To live; to thrive.
ହାଁଡି ବଣରେ ବଢିଲେ ରଜାଙ୍କର । ଢଗ ।
୫ । ( ବାଳିକା ) ପ୍ରଥମେ ରଜସ୍ୱଳା ହେବା; ଜ୍ଞାନ ପାଇବା;
ବାଳିକାର ପ୍ରଥମ 'ରଜୋଦର୍ଶନ' ଘଟିବା—5. To attain puberty (said of a girl).
କଞ୍ଚନଦଗର ବଢିବାର ଦେଖି ରାଣୀ ।
ପୀତାମ୍ବର—ଛନ୍ଦ. କଞ୍ଚନଦଗ ।
୬ । (କାର୍ଯ୍ୟ) ସମାପ୍ତ ହେବା—6. To be accomplished or completed (said of a work).
ଯଜ୍ଞ ବଢିଲା ପରେ, ଅଶ୍ୱମେଧ କରିବାର ହୋଇଲା ନକର ।
ବିଶ୍ୱନାଥ. ବଡଃରାମାୟଣ ।
୭ । ଐଶ୍ୱର୍ଯ୍ୟାନ୍ୱିତ ହେବା; ଉତ୍ତରୋତ୍ତର ଐଶ୍ୱର୍ଯ୍ୟ ବୃଦ୍ଧିପାଇବା—
7. To thrive; to prosper; to grow in prosperity.
ପୁଣ ଭାର୍ଯ୍ୟା ଧନ କୁଳରେ ସେ ବଢଇ । କୃଷ୍ଣସିଂହ, ମହାଭାରତ ବନ ।
୮ । (ନଦୀ) ବନ୍ୟାଯୁକ୍ତ ହେବା—
8. To inundate; to be flooded (said of a river).
ଭୂରଠେ ଜହ୍ନୁଣୀ ସରିତ ବଢିଲା ଦାସ ଦ୍ରୁମ ଗଲା ଭାସି । କବିସୂର୍ଯ୍ୟ. ସଙ୍ଗୀତ ।
୯ । (ଶୁଭବାଚକ) ନିଃଶେଷ ହେବା—9. To be exhausted.
[ ଦ୍ର— ଏହି ନବମ ଅର୍ଥରେ ବଙ୍ଗଳାରେ 'ଘରେ ଚାଲ୍ ବାଡ଼ନ୍ତ ହୟେଛେ=ଘରୁ ଚାଉଳ ସରି ଯାଇଛି; ବ୍ୟବହୃତ ହୁଏ । ]

**ବଢ଼ିଲା କନ୍ୟା**—ଦେ. ବି—ବୟଃପ୍ରାପ୍ତା ବା ରଜସ୍ୱଲା ହୋଇଥିବା
Bar̲dh̲ilā kanyā କନ୍ୟା; ଦୃଷ୍ଟରଜସ୍କା କନ୍ୟା—A girl who
বড় কন্যা **बाड़ि कनया** has attained puberty.
(ବଢ଼ିବା କନ୍ୟା, ବଢ଼ିଲା ଝିଅ—ଅନ୍ୟରୂପ)

**ବଢ଼ୁଆ**—ଦେ ବି—ବଡ଼ୁଆ (ଦେଖ)
Bar̲dh̲uā Bar̲d̲uā (See).

**ବଢ଼େ(ଢେଁ)**—ଦେ. କ୍ରି ବିଣ—୧ । ବଡ଼ଘାଏଁ; ବିଶେଷରୂପେ—
Bar̲dh̲e(r̲dh̲eñ) 1. With a great force.
বড্ডেজাবে ୨ । ବୃହତ୍ତରରୂପେ ଅଧିକତରରୂପେ—
**बड़ा, बड़े जोरसे** 2. More.
୩ । ଅତ୍ୟନ୍ତ—3. Very much.
୪ । ଅଧିକ ଭାବରେ—4. Greatly; largely.

**ବଢ଼େ କନ୍ୟା**—ପ୍ରଦେ (ବସ୍ତର) ବି —ଦୃଷ୍ଟରଜସ୍କା କନ୍ୟା—
Bar̲dh̲e kanyā A matured girl.

**ବଢ଼େଲ୍**—ପ୍ରାଦେ (ସମ୍ବଲପୁର) ବି—୧ । ଜେଉଟ (ଦେଖ)
Bar̲dh̲el 1. Jeuṭa (See).
୨ । ଆତ—2 Custard apple.

**ବଣ**—ଦେ. ବି—(ସଂ. ବନ; ପ୍ରା. ବଣ)—୧ । ବନ; ଅରଣ୍ୟ—
Baṇa বন **वन** 1. Forest.
ତାହାଙ୍କ ତନ୍ତ୍ରା କାହିଁ ଏଣେ
ଯେ ଦୀ ଭ୍ରମନ୍ତ ଉପବଣେ । ଜଗନ୍ନାଥ—ଭାଗବତ ।
୨ । ଜଙ୍ଗଲ; ନିବିଡ଼ ଅରଣ୍ୟ—2. Jungle; dense forest.
୩ । ଏକଜାତୀୟ ଅନେକ ବୃକ୍ଷର ସମଷ୍ଟି—
3. Plantation of tress of the same species.
୪ । ( ଲକ୍ଷଣାର୍ଥ ) ସମୂହ—4. (figurative) Multitude.
କ୍ଷତ୍ରିୟ ଧର୍ମ କରି ମରୁଅଛ ରଣେ
ବୋଲୁଛ ନ ପଡ଼ିବ ତୁମ୍ଭେ ଦୁଃଖବନେ—କୃଷ୍ଣସିଂହ, ମହାଭାରତ ଦ୍ରୋଣ ।
୫ । ( ଅନ୍ୟ ଶବ୍ଦ ପରେ ବ୍ୟବହୃତ; ଗୁହ୍ନବଣ; ସାପବଣ ) ଯେଉଁ ସ୍ଥାନରେ ଅମୁକ ଦ୍ରବ୍ୟ ବହୁଳ ଥାଏ—5. A place abounding in a particular thing or things.
ଦେ. ବିଣ—(ଲକ୍ଷଣାର୍ଥ) ଅବୋଧ୍ୟ—Unintelligible.
ଦେବତା ଋଷିଙ୍କର ମନ୍ତ୍ର କାରଣ
ଏ ସକାଶୁଁ ସବୁଙ୍କୁ ଅଟେ ମନ୍ତ୍ର ବଣ । କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ବଣ ଅଦା**—ଦେ. ବି—( ସଂ. ବନାର୍ଦ୍ରକା; ବନାର୍ଦ୍ରକ )—A kind of
Baṇa adā বনআদা **बनैया आदरक** wild ginger.

ବଣ ଆଖୁ—ଦେ. ବି—( ସଂ. ବନେକ୍ଷୁ )—ବନ୍ୟ ଇକ୍ଷୁ—A kind of
Bana ākhu ବୁନେବ ଆଖ wild sugarcane.
ସଂ. ବେଣୁ କାଣ୍ଡନ वनैया उख

ବଣ ଆଳୁ—ଦେ. ବି—କରବା—Wild yam; Dioscora
Bana ālu वनपिण्डालु; নোআলু Pentaphylla.
ସଂ ନାଗପୁଷ୍ପକନ୍ଦ, ବନକାର୍ପାସୀ, ଶୂକରୀ, ବ୍ୟାଘ୍ରକନ୍ଦା वनैयाअरुआ

ବଣ ଏଣ୍ଡା—ପ୍ରାଦେ (ଗଞ୍ଜାମ) ବି—ବହୁରୂପୀ ଏଣ୍ଡୁଅ—
Bana endā Chameleon.

ବଣ ଓଲ—ଦେ. ବି—ବିନା କୃଷିରେ ବଣରେ ଜାତ ହେବା ଓଲୁଅ—
Bana ola Wild arum; wild Amorphophallus
বুনো ওল वनैया ओल Campanulatus
ସଂ. ବନ୍ୟଶୂରଣ; ଅର୍ଶଘ୍ନ (ବଣ ଓଲୁଅ—ଅନ୍ୟରୂପ)
[ ଦ୍ର—ଏ ଓଲୁଅକୁ ଯେତେ ସିଦ୍ଧ କରି ଖାଇଲେ ମଧ୍ୟ କଣ୍ଠ ଓ ଗଳା ଭାରି ଗଲୁ କରେ । ]

ବଣକ—ପ୍ରାଦେ (ସମ୍ବଲପୁର) ବି—ବନ୍ୟ ଫଳବିଶେଷ—
Banaka A kind of wild fruit.

ବଣ କଦମ୍ବ—ଦେ. ବି. (ସଂ. ଭୂମି କଦମ୍ବ)—ଭୂକଦମ୍ବ ବୃକ୍ଷ—
Bana kadamba A kind of tree.

ବଣ କଦଳୀ—ଦେ. ବି. ( ସଂ. ବନ୍ୟ ଓ କଦଳୀ )—
Bana kadali ୧ । ଏକ ପ୍ରକାର ଧାନ—
ସଂ. କାଷ୍ଠ କଦଳୀ, ବନ କଦଳୀ, 1. A variety of paddy.
ଫଲାଢ୍ୟା ୨ । ବଣରେ ହେବା କଦଳୀ ବୃକ୍ଷ—
বন কদলী, বন কেলা 2. A species of wild
वनैया केला plantain.
[ ଦ୍ର—ଏହାର ଫଳ କାଟିଅ କଦଳୀ ପରି; ପାଚିଲେ ଏହାକୁ ଖାଆନ୍ତି । ଫଳ ଭିତରେ କପା ମଞ୍ଜି ପରି ଏକ ଗୁଚ୍ଛ ମଞ୍ଜି ଥାଏ । ]

ବଣ କପା—ଦେ. ବି. (ସଂ. ବନ କାର୍ପାସୀ)—
Bana kapā ବଣରେ ଜାତ ହେବା କପା ଜାତୀୟ ଗୁଳ୍ମ—
ସଂ ଭୂପର୍ଣ୍ଣୀ, ଯଶସ୍ୱିନୀ, Thespisia Lampas.
ଭାରଦ୍ୱାଜୀ, ଅରଣ୍ୟ କାର୍ପାସୀ [ ଦ୍ର—ଏହା ବଙ୍ଗ, ପଶ୍ଚିମ ଭାରତ
বন কাপাস ଓ ହିମାଳୟରେ ଜନ୍ମେ । ଏହା ବ୍ରଣ,
पुला, वारेंगा, वन कपास ଶସ୍ତ୍ରକ୍ଷତ, ରକ୍ତ ରୋଗ ଓ ବାତ
(ବଣ କପାସିଅ—ଅନ୍ୟରୂପ) ରୋଗରେ ଉପକାରୀ । ]

ବଣ କର—ଦେ. ବି. (ସଂ. ବନ + କର)—ବନ କର (ଦେଖ)
Bana kara Bana kara ( See )

ବଣ କଲରା—ଦେ. ବି. ( ସଂ. ବନ କଟୁଲ୍ଲକ )—
Bana kalarā ଫୁଟି ଫୁଟିକା ( ଦେଖ )
বন উচ্ছে वन करेला Phuṭi phuṭikā ( See )

ବଣ କାନ୍ଦୁଲ—ପ୍ରାଦେ. ( ଗଡ଼ଜାତ, ଖୋରଧା ) ବି—
Bana kāndula ଏକ ପ୍ରକାର ହରଡ଼ ଜାତୀୟ ବନ୍ୟ ଗୁଳ୍ମ—
A kind of wild lentil.

ବଣ କୁକୁଡ଼ା—ଦେ. ବି. (ସଂ. ବନ୍ୟ କୁକ୍କୁଟ)—ବଣରେ ମିଳିବା
Bana kukurdā କୁକ୍କୁଟ—Wild cock; the red jungle
(ବଣମୁରଗୀ—ଅନ୍ୟନାମ) fowl; Gallus; Kaly Gennaeous
বন্য মোরগ Albicristatus.

बनमुरगा [ ଦ୍ର—ଏହାର ମାଂସ ଲଘୁ, ରେଚକ, ବାତପିତ୍ତ ନାଶକ, ବଳବୀର୍ଯ୍ୟ ବର୍ଦ୍ଧକ ଏବଂ କଫକାରକ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

ବଣ କୁଜି ସାରୁ—ଦେ. ବି. (ସଂ. ଅରଣ୍ୟ କଚ୍ଚ)—ଅରଣ୍ୟ କଚ୍ଚ—
Bana kuji sāru Wild Colocacia Antiquorum.
বুনো কচু [ ଦ୍ର—ଏହାର ଶୁଷ୍କପତ୍ରର ଚୂର୍ଣ୍ଣ ପୁରାତନ କଦର୍ଯ୍ୟ
बनैला अरुआ ବ୍ରଣରେ ପ୍ରକ୍ଷେପ କଲେ ବ୍ରଣ ଶୁଷ୍କ ହୁଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

ବଣ କୁନ୍ଦୁରି—ଦେ ବି. (ସଂ. ବିମ୍ବ)—କଇଁଚକାକୁଡ଼ି—
Bana kunduri Cephalandra. Indica.
তেলাকুচা कुन्दुरि

ବଣ କୋଦୁଆ—ଦେ. ବି. (ସଂ. ବନ କୋଦ୍ରବ)—ବିନା କୃଷିରେ ଉତ୍ପନ୍ନ
Bana koduā କ୍ଷୁଦ୍ର ଶସ୍ୟବିଶେଷ—Paspalum
ଅନ୍ୟ ନାମ—ଉଦ୍ଦାଲ Scrobiculatum; Punctured
বন কোদোধান Paspalum.
कोदों [ ଦ୍ର—ବୈଦ୍ୟକମତରେ ଏହା ଉଷ୍ଣବୀର୍ଯ୍ୟ,
ମ. ହରିକ ଗ୍ରାହୀ ଓ ଅତ୍ୟନ୍ତ ବାତଜନକ—ଦ୍ରବ୍ୟଗୁଣ । ]
ଗୁ. କୋଦରୋ; ତେ. ଅଲୁବାଲୁ; ଆ. କୋଦ୍ରୁ

ବଣ କୋଳଥ—ଦେ. ବି. (ସଂ. ବନ୍ୟ + କୁଲତ୍ଥ)—
Bana kolatha ଏକପ୍ରକାର ବନ୍ୟ ଲତା ଓ ଶସ୍ୟ—
ସଂ. ଅରଣ୍ୟ କୁଲତ୍ଥିକା, A kind of wild lentil.
ବନ୍ୟକୁଲତ୍ଥିକା
বুনো কুলথী [ ଦ୍ର—ଏହାର ମୂଳ ଘୋରି ଚକ୍ଷୁରେ
बन कुरथि ଲଗାଇଲେ ଚକ୍ଷୁର କଣ୍ଡୁ, ରକ୍ତିମା ଓ ପଟଳ
(ବଣ କୋଳଥିଅ—ଅନ୍ୟରୂପ) ରୋଗ ବିନଷ୍ଟ ହୁଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

ବଣ ଗଲି—ପ୍ରାଦେ. (ବାଲେଶ୍ୱର) ବି—ଏକଜାତୀୟ କ୍ଷୁଦ୍ର ପକ୍ଷୀ—
Bana gali A species of small bird.

ବଣ ଗହମ—ଦେ. ବି. (ସଂ. ଗବେଧୁକା)—ଗରଗଡ଼ (ଦେଖ)
Bana gahama Garagarda (See)
বুনোগম [ ଦ୍ର—ଏହା କଫ, ବାତ, ହୃଦ୍‌ରୋଗ ଓ ମୂତ୍ରକୃଚ୍ଛ୍ର ହରଣ କରେ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

ବଣ ଗୁଆ—ଦେ. ବି—ଏକପ୍ରକାର ବନ୍ୟଗୁଳ୍ମ ଓ ତାହାର ଫଳ—
Bana guā A kind of wild plant and its fruit.
বুনোসুপারী [ ଦ୍ର—ଏହା କଷାୟ ରସ, ଅରୋଚକ, କଫକାରକ,
बनैला सुपारी ବାତନାଶକ, ବିରେଚକ ଓ ବଳବର୍ଦ୍ଧକ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

ବଣ ଚଟିଆ—ଦେ. ବି. (ସଂ. ବନ୍ୟ ଚଟକ)—ବାୟା ଚଢ଼େଇ (ଦେଖ)
Bana chatiā Bāyā chardhei (See)
বুনোচড়ই; বাবুই [ ଦ୍ର—ଜଙ୍ଗଲରେ ବସା କରି ରହିବା ପକ୍ଷୀକୁ
बनैला चटक ଘରଚଟିଆ ବୋଲିଯାଏ । ]

ବଣ ଚମ୍ପା—ଦେ. ବି—ଏକଜାତୀୟ ବନ୍ୟ ପୁଷ୍ପକ୍ଷୁପ—
Bana champā A kind of wild flowering shrub.

बनचाँपा [ ଦ୍ର—ଏହାର ମୂଳର କ୍ୱାଥ ଶୀତଳ, ସାର୍ଯ୍ୟବର୍ଦ୍ଧକ,
**बनचम्पा** ବଳକାରକ ଏବଂ ଲଘୁ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ବଣ ଛଣପଟ**—ଦେ. ବି. (ସଂ. ବନ+ଶଣ)—ଛଣପଟ ଫୁଲ ପରି ଫୁଲ ଫୁଟୁଥିବା ଅରଣ୍ୟ ଗୁଳ୍ମ—
Bana chhanapata Crotalaria Juncia.
ସଂ. ନାମ—ଶଣପୁଷ୍ପୀ, ଘଣ୍ଟା
बनशण [ ଦ୍ର—ଏହା କଟୁତିକ୍ତ ରସ, ବମନ-
**बनशणह्** କାରକ ଓ କଫ ଓ ପିତ୍ତନାଶକ । ]
ମ. ଥୋରଭାଗ ତେ ଶଣମଭୁଦେଈ ଫା. ଲୁକୁନାଂ
(ବଣ ଛୁଣୀ—ଅନ୍ୟନାମ)

**ବଣ ଜଙ୍ଗଲ**—ଦେ. ବି. (ଏକାର୍ଥବୋଧକ ସହଚର ଶବ୍ଦ)—ଅରଣ୍ୟ—
Bana jangala বনজঙ্গল **भाडजंगल** Forest,

**ବଣ ଜନ୍ତୁ**—ଦେ ବି. (ସଂ. ବନ୍ୟଜନ୍ତୁ)—ବନ୍ୟ ଜୀବ—
Bana jantu Wild animal
বন্যজন্তু **बनैला जानवर, बनजन्तु**

**ବଣ ଜହ୍ନି**—ପ୍ରାଦେ. (ଗଡ଼ଜାତ) ବି—ତରଡ଼ା (ଦେଖ)
Bana jahni Tararda (See)

**ବଣ ଜାମୁ**—ଦେ. ବି. ( ସଂ. ବନ ଜମ୍ବୁ )—ଏକ ପ୍ରକାର ଜାମୁ ଗଛ, ଯହିଁରେ ଛୋଟ କୋଳ ଫଳେ—
Bana jāmu
বন জাম **बनैला जामुन** A small variety of blackberry.

**ବଣ ଜୀର**—ଦେ. ବି. ( ସଂ. ବନ ଜୀର )—
Bana jirā ବନଜାତ ଜୀରକବିଶେଷ; ବଡ଼ ଜୀର—
ସଂ. ଅରଣ୍ୟ ଜୀରକ, ବୃହତ୍କାଳୀ, A sort of wild cumin-
କ୍ଷୁଦ୍ର ପତ୍ର, କଣ, ବନଜୀର, seed; Purple fleabane;
କୃଷ୍ଣ ଜୀରକ Veruonia Anthelmentica,
ব জীরে [ ଦ୍ର—ଏହା ଉଷ୍ଣବୀର୍ଯ୍ୟ, କଟୁ-
**काली जीरा** କଷାୟ; ଏହା ମୂତ୍ର ବାତ, କଫରୋଗ
ଆ. କମୁନ୍ ବର୍ହୀ ଓ କୃମି ରୋଗରେ ଉପକାରୀ । ]
ମ କଡୁ ଜୀରେଂ; ଗୁ. କାଳୀ ଜୀର

**ବଣ ଝଟା**—ପ୍ରାଦେ. (ଗଞ୍ଜାମ) ବି—ବନ୍ୟ ଶିମ୍ବ—
Bana jhatā A kind of wild bean.

**ବଣ ତୁଳସୀ**—ଦେ. ବି. ( ସଂ. ବନ+ତୁଳସୀ )—
Bana tulasi ବନଜାତ ଏକ ପ୍ରକାର ସୁଗନ୍ଧପତ୍ରଯୁକ୍ତ ଗୁଳ୍ମ—
ସଂ. ଅରଣ୍ୟ ତୁଳସୀ, କାଳମାଳ, A kind of wild plant
ମାଲୁକ, କଠିଞ୍ଜର, କୁଠେରକ, with scented leaves;
କବରୀ, କୃଷ୍ଣ ବର୍ବରୀ, Perilla Ocimoides (Haines);
କୃଷ୍ଣ ବର୍କିକା Assimum Basilicum.
বন বাবুই তুলসী [ ଦ୍ର—ଏହା ସାନ ବଡ଼ ଭେଦରେ
**बनतुलसी** ଦୁଇ ପ୍ରକାର ଏବଂ ଏହାର ଗୁଣ ବର୍ବରୀ
ଗୁ. ରାନ ତୁଳସୀ ପରି—ଦ୍ରବ୍ୟଗୁଣ. କଳ୍ପ ଦ୍ରୁମ ]

**ବଣ ଦିଅଁ**—ଗ୍ରା. ବି—ବଣ ଦେବତା ( ଦେଖ )
Bana diañ Bana debatā ( See )

ବଣ-ଦିଅଁକୁ ପତର ପୂଜା
ଵାଇରେଵାକୁ ଗଳାଜଳ—ଡଗ ।

**ବଣ ଦେବତା**—ଦେ. ବି. ( ସଂ. ବନ ଦେବତା )—
Bana debatā ୧ । ଅରଣ୍ୟରେ ଥିବା ଅପୂଜା ଦେବତା—
বন দেবতা; বুনো ঠাকুর 1. Idols found in the jungle
**वन देवता, वन देवी** and worshipped by wild tribes.
୨ । ବନର ଅଧିଷ୍ଠାତ୍ରୀ ଦେବତା—2. Sylvan Deity.

**ବଣ ଦ୍ରାକ୍ଷା**—ଦେ. ବି. (ବୈଦ୍ୟକ) (ସଂ. ବନ+ଦ୍ରାକ୍ଷା)—
Bana drākshyā ବନ୍ୟ ଲତାବିଶେଷ—A wild creeper.
বুনো আঙুর [ ଦ୍ର—ଏହାର ଫଳ ଶୀତଳ, ରକ୍ତଶୋଧକ,
**बनैला दाख** ଦାହ ଓ ତୃଷାର ନିବାରକ । ]

**ବଣ ନେଳି**—ଦେ. ବି. (ସଂ. ବନନୀଳ)—କୃଷିବିନା ଉତ୍ପନ୍ନ ନୀଳଗୁଳ୍ମ—
Bananeli Indigo plant growing wild.
বুনোনীল [ ଦ୍ର—ଏହାର ମୂଳର କ୍ୱାଥ ଓ ପ୍ରଲେପ ସକଳପ୍ରକାର
**बनैलानील** ବିଷନାଶକ; ଏହାର ଅନ୍ୟାନ୍ୟ ଗୁଣ ନୀଳଗଛ ପରି—
ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ବଣ ପତି**—ଦେ. ବି. (ସଂ. ବନ+ପତି)—ଉତ୍କଳର ପ୍ରାଚୀନ ରାଜଉପାଧି-
Bana pati ବିଶେଷ—A title of ancient kings of Utkal.
[ ଦ୍ର—ପ୍ରାଚୀନ ଉତ୍କଳର ଅରଣ୍ୟମୟ ରାଜ୍ୟମାନଙ୍କର କେତେକ ରାଜାଙ୍କୁ ଝାଡ଼ଖଣ୍ଡ ଓ ତହିଁର ରାଜାଙ୍କୁ ଝାଡ଼ଖଣ୍ଡ ବାଦସାହା, ବଣବାଦସ ବୋଲାଯାଉଥିଲା । ]

**ବଣ ପାର**—ଦେ. ବି. (ସଂ. ବନ+ପାରାବତ)—ବଣୁଆ ପାର ପକ୍ଷୀ—
Bana pārā Wild pigen.
বুনোপায়রা [ ଦ୍ର—ଏହାର ମାଂସ ଉଷ୍ଣ; ଏହା ଖାଇଲେ
**बनैलापरवा** ପକ୍ଷାଘାତ, କ୍ଷୟ ଓ ବାତ ରୋଗ ନଷ୍ଟ ହୁଏ । ]

**ବଣ ପାଳଧୁଆ**—ଦେ. ବି. (ସଂ. ବନ୍ୟ+ପାରିଭଦ୍ର)—ବନ୍ୟବୃକ୍ଷବିଶେଷ—
Bana pāladhuā A kind of wild tree.
বুনোপালিতা মাঁদার [ ଦ୍ର—ଏହା ଗୁଣରେ ପାଳଧୁଆ ସମାନ । ]
**बनेला फरहद्**

**ବଣ ପିଆଜ**—ଦେ. ବି. (ସଂ. ଅରଣ୍ୟ ପଲାଣ୍ଡୁ)—ବଡ଼ ଉଲ ପିଆଜ ପରି କନ୍ଦଯୁକ୍ତ ଏକପ୍ରକାର ବନ୍ୟ ଗୁଳ୍ମ—
Bana piāja
বনপেয়াঁজ A kind of wild plant having a
**बनैयापयाज** root resembling onion.
[ ଦ୍ର—ଏହାର ଗୋଟିଏ କାଣ୍ଡ ବାହାରେ ଓ ସେ କାଣ୍ଡରୁ ଝଟା ଫୁଲ ଦେଉଳଆ ସିନ୍ଦୁଫୁଲ ପରି ବାହାରେ । ]

**ବଣ ପିପଳି(ଳୀ)**—ଦେ. ବି. (ସଂ. ବନ୍ୟ ପିପ୍ପଳୀ)—
Bana pipali(lā) ବନାନ୍ତରରେ ଜାତ ପିପ୍ପଳୀ—
বনপিপুল **बनैया पिपरी** Wild long pepper.

**ବଣ ପୋଟଳ**—ଦେ. ବି. (ସଂ. ବନ+ପଟୋଳ)—ଏହା ଏକପ୍ରକାର
Bana potala କଇଁଝକାକୁଡ଼ି ପରି ଫଳବିଶିଷ୍ଟ ଲତା—
বুনো পটল A kind of creeper bearing fruits
**बनैया परवल** resembling coccinear Indica; wild Liquorice creeper.
[ ଦ୍ର—ଏହା ପିତା ଓ ମଧୁର ଭେଦରେ ଦୁଇ ପ୍ରକାର । ]

**ବଣପୋଡ଼ା**—ଦେ. ବି.—ଜଙ୍ଗଲରେ ନିଆଁ ଲାଗିବା—Forest conflagration.
Bana pordi ବনে আগুন লাগা (ধরা)
**वन जलना** ବଣ ପୋଡ଼ା ହେଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଲେ କେହି ନ ଜାଣେ । ଢଗ ।

**ବଣ ବାରିହା**—ପ୍ରାଦେ. (ଗଞ୍ଜାମ) ବି.—(ସଂ. ବନ୍ୟ ବରାହ)—ବରାହ—
Bana bāriha Wild boar.

**ବଣ ବିରି**—ଦେ. ବି.—(ସଂ. ବନ୍ୟ+ମାଷ)—ମାଷପର୍ଣ୍ଣୀ (ଦେଖ)
Bana biri Māshaparnnī (See)

**ବଣ ବିଲୁଆ**—ପ୍ରାଦେ, (ସମ୍ବଲପୁର) ବି.—ବଣଭୁଆ (ଦେଖ)
Bana biluā Banabhuā (See)

**ବଣ ବିଲେଇ**—ଦେ. ବି.—ବଣଭୁଆ (ଦେଖ)
Banabilei (ବଣବିରାଡ଼ି—ଅନ୍ୟରୂପ) Banabhuā (See)

**ବଣ ବୁଦା**—ଦେ. ବି. (ଉଭୟାର୍ଥବୋଧକ ଶବ୍ଦର ଶବ୍ଦଦ୍ୱୟ)—ବଡ଼ ଓ କ୍ଷୁଦ୍ର ଗଛର ଅରଣ୍ୟ—Forest consisting of trees and bushes growing in an intermingled manner.
Bana budā
বন ঝোপ
**झारि जंगल**
[ଦ୍ର—ବଡ଼ ଗଛର ସମଷ୍ଟିକୁ ଅରଣ୍ୟ ଓ କ୍ଷୁଦ୍ର ଗଛର ସମଷ୍ଟିକୁ ବୁଦା କହନ୍ତି ।]

**ବଣ ଭୁଆ**—ଦେ. ବି. (ସଂ. ବନ ବିଡାଲ)—ବନ ମାର୍ଜାର; କଟାସ—
Bana bhuā বনবিড়াল; বনবেরাল Wild cat.
**बनैया बिडार, बन बिलार(व)** [ଦ୍ର—ଏମାନେ ବର୍ଷା ଋତୁରେ ବାଡ଼ରେ ବୋବାଇବାର ଶୁଣା ଗଲେ ପିଲାମାନେ ଘରେ ଥାଇ ଚଲାଇ କହନ୍ତି 'ଭୂ ? କି, ଭୂଷ' ? । ବଣଭୁଆ ଯେବେ 'ଭୂ' ଶବ୍ଦ କରେ ତେବେ ପିଲାଏ କହନ୍ତି ଯେ ନିକଟରେ ଖୁବ୍ ଭୂ ଭୂ ବର୍ଷା ହେବ; ଯେବେ 'ଭୂଷ୍' ଶବ୍ଦ କରେ ତେବେ କହନ୍ତି ବର୍ଷା ଛାଡ଼ିଯିବ ।]

**ବଣ ଭେଣ୍ଡି**—ଦେ. ବି.—ଭେଣ୍ଡି ଜାତୀୟ ବନ୍ୟ ଗୁଳ୍ମବିଶେଷ—
Bana bhendi Triumfetta Rhomboidea
ସଂ. ହିଞ୍ଜଳଟ ବনওক্রা; বুনো ঢেঁড়স **चेटकि,चिरियारि** (Kirtikar)
ମ. ଝୁଞ୍ଜୁଡ଼, କାମ୍ବରଡ଼ ଗୁ. ଆଓଡ଼ାଭିଣ୍ଡି

**ବଣ ଭୋଜି**—ଦେ. ବି. (ସଂ. ବନ+ଭୋଜନ)—ବଣରେ ରାନ୍ଧି କରି ଖିବା ଭୋଜନ ଉତ୍ସବ—A picnic in the forest.
Bana bhoji
বন ভোজি, বন ভোজন **वन भोजन**

**ବଣ ମନ(ଶି,ଣ)ଷ**—ଗ୍ରା. ବି.—(ସଂ. ବନ+ମନୁଷ୍ୟ)—୧ । ମନୁଷ୍ୟ ପରି ଏକ ପ୍ରକାର ମାଙ୍କଡ଼; ଓରାଙ୍ଗ୍ ଓଟାଙ୍ଗ୍—1. Chipanzee; the orang otang.
Bana mani (ni, na) sha
বন মানুষ
**वन मानुष** [ଦ୍ର—ଏମାନେ ଜାବା, ବୋର୍ଣ୍ଣିଓ ଆଦି ଦ୍ୱୀପରେ ଥାଆନ୍ତି (ବଣ ମନୁଷ୍ୟ—ଦେଶଜ ରୂପ) ଓ ବଣରେ ବସା ତିଆରି କରି ରହନ୍ତି ।]
୨ । ବଣରେ ବାସ କରୁଥିବା ଅସଭ୍ୟ ବ୍ୟକ୍ତି; ଜଙ୍ଗଲି ଲୋକ—2. Wild tribe; aborigine; uncivilized person.
୩ । ଭଦ୍ର ସମାଜର ରୀତି ନ ଜାଣିଥିବା ଲୋକ—3. A person ignorant of the rules of polished society.

**ବଣ ମଲ୍ଲିକା**—ଦେ. ବି.—ସୁନ୍ଦର ଓ ଶ୍ୱେତ ସୁବାସ ଫୁଲ ଫୁଟିବା ଗଛ; କାମିନୀ ଗଛ ଓ ଫୁଲ—The Chinese myrrh; Chinese box; Murraya Grotica.
Bana mallikā
কামিনী
**कामिनी**

**ବଣ ମଲ୍ଲୀ(ଲି)**—ଦେ. ବି —(ସଂ. ବନ ମଲ୍ଲୀ )—ମଲ୍ଲୀ ଫୁଲ ଜାତୀୟ ଏକପାଖିଆ ବନ୍ୟ ଫୁଲ—Wild jasmine; Barleia Strigosa; Coffea Bengalensis (Haines).
Bana mallī(li)
বন মল্লী
**वन मल्लिका**
ତେ. ଅଡ଼ବୀ ମଲ୍ଲୀ [ଦ୍ର—୨୧୪ ପୃଷ୍ଠା ଭୁଇଁ ଗଛ; ଫୁଲ ନେଳିଆ ।]

**ବଣ ମୁଗ**—ଦେ. ବି.—(ସଂ. ବନ୍ୟ ମୁଦ୍ଗ)—ମୁଦ୍ଗପର୍ଣ୍ଣୀ (ଦେଖ)
Bana muga মুগানী Mudgaparnnī (See)
**माठ मुगानी** ମ. ରାଣମୁଙ୍ଗ

**ବଣ ମୁଥା**—ଦେ. ବି. (ସଂ. ବନ୍ୟ ମୁସ୍ତକ)—ନାଗରମୁଥା (ଦେଖ)
Banamuthā Nāgaramuthā (See)

**ବଣ ମୁନିଙ୍ଗା(ଗା)**—ଦେ. ବି. (ସଂ· ବନ ଶିଗ୍ରୁ; ମୂଳଧବଳ)—
Bana muningā(gā) ଏକ ପ୍ରକାର ବନ୍ୟ ସଜନା ଗଛ—A kind of Moringa tree growing wild.
বুনো সজনা **वन मुनिङ्गा**
(ବଣ ମୁଗୁନା—ଅନ୍ୟ ନାମ)

**ବଣ ମେଥି**—ଦେ. ବି. (ସଂ. ବନ ମେଥିକା)—ମେଥି ପରି ଏକ ପ୍ରକାର ବନ୍ୟ ଶସ୍ୟ ଗୁଳ୍ମ ( ଏହାର ଫଳ ମେଥି ପରି)—
Bana methi
বন মেথি Crotalaria Albidia; Melilotus Parviflora.
**वन मेथि, सान्**

**ବଣ ଯୁ(ଜୁ)ଆଣି**—ଦେ. ବି. (ସଂ. ବନ ଯମାନୀ)—ଅଜମୋଦା (ଦେଖ)
Bana ju(ju)āni Ājamodā ( See )
ସଂ. ନାମ ଅଜମୋଦା বন জুয়ান; **अजवाइन**

**ବଣ ଯ(ଜୁ)ଇ**—ଦେ. ବି. (ସଂ. ବନ+ଯୂଥୀ)—ଅରଣ୍ୟ ଯୂଥିକା—
Bana jūi(ju)i বন যূঁই **वन जुही** Wild jasmine.

**ବଣ ରଖୁଆଳ**—ଦେ. ବି. ( ସଂ. ବନ+ରକ୍ଷକ )—
Bana rakhuāla ଫରେଷ୍ଟ ଗାର୍ଡ; ଜଙ୍ଗଲର ରକ୍ଷକ—
বন রাখাল **वन रखा** Forest guard.
[ବଣ ଜଗା, ବଣ ଜଗିଆ, ବଣ ଜଗୁଆଳ(ଳି)—ଅନ୍ୟରୂପ]

**ବଣ ରାଶି**—ଦେ. ବି—ବନ। କୂଳରେ ଉତ୍ପନ୍ନ ରାଶି—
Bana rāsi বন তীল **वन तील** Wild sesamum.
(ବଣ ରାସ—ଅନ୍ୟରୂପ) [ ଦ୍ର—ଏହା ବୃଦ୍ଧିବର୍ଦ୍ଧକ ଓ ଧାତୁ ସମ୍ବନ୍ଧକାରକ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ବଣ ରିଠା**—ଦେ. ବି· (ସଂ. ବନ+ଅରିଷ୍ଟ)—ରିଠାର ପ୍ରକାରବିଶେଷ—
Bana rithā A species of soap-berry tree; Acacia Concinna (Haines).
বন রিঠে **वन रिठा**

**ବଣ ରୁଆଡ଼**—ଦେ. ବି—ମହାନଦୀ ମୁହାଣର ଜଳାଭୂମିରେ ଜନ୍ମିବା ଏକ ପ୍ରକାର ବୁଦା—Argialitis Rotundifolia (Haines); a small shrub in the deltaic swamps of the Mahanadi river.
Bana ruārda

ବଣ ସାରୁ—ଦେ. ବ. (ସଂ. ବନ୍ୟ କଚୁ)—୧ । ଏକ ପ୍ରକାର ସାରୁ—
Baṇa sāru ବନ କচু 1. Colocacia Nymphaefolia.
**बनैला अरुआ** [ଦ୍ର—ଏହାଁ ସାଧାରଣତଃ ପାଣି କୂଳରେ ମନକୁ ଜନ୍ମେ । ଏହାର ଗଛ ନାଲି ଓ ଧଳା ଭେଦରେ ଦୁଇ ପ୍ରକାର । ଏହାର ମୂଳ ସାଧାରଣ ସାରୁ ଅପେକ୍ଷା ବେଶି ଗଳାର କଣ୍ଡୁ ଉତ୍ପାଦକ । ]
୨ । ଦୁଷ୍ଟ ବ୍ୟକ୍ତି ବା ବାଳକ—2. A wicked person or boy.

ବଣ ସିରିଆଲି—ଦେ. ବ—ଏକ ପ୍ରକାର ପାର୍ବତ୍ୟ ଗୁଳ୍ମ—A kind of
Baṇa siriāli erect under shrub (Haines).
[ ଦ୍ର—ଏହା ୧୦ରୁ ୩ ଫୁଟ ଉଚ୍ଚ ହୁଏ; ଏଥିରେ ଚକ୍କଣ ଓ ଫକ୍କା ଗୋଲାପି ରଙ୍ଗର ଫୁଲ ଫୁଟେ । ଏହା କଙ୍କରମୟ ପାହାଡ଼ିଆ ଭୂମିରେ ହୁଏ । ]

ବଣ ସୋରିଷ—ଦେ. ବ. ( ସଂ. ବନ+ସର୍ଷପ )—
Baṇa sorisha ୧ । ବନ୍ୟ ଭୂମିରେ ଜାତ ସୋରିଷ—
বন সরিষা **बनैला सरसों** 1. Mustard growing wild.
୨ । ଅଣ ସୋରିଷ (ଦେଖ)—2 Aṇa sarisho (See)

ବଣ ହରଡ଼—ଦେ. ବ—ଖୋରଧା ଜଙ୍ଗଲରେ ଜାତ ଗୁଳ୍ମବିଶେଷ—
Baṇa hararḍa Atylosca Cajanifolia (Haines).
**बनैया अरहर**; বুনো অড়হর

ବଣ ହଳଦୀ—ଦେ ବ. ( ସଂ. ବନ+ହରିଦ୍ରା )—
Baṇa haḷadī ୧ । ବନ୍ୟ ଭୂମିରେ ଜାତ ହରିଦ୍ରା ଓ ତାହାର ମୂଳ
বন হলুদ **जङ्गलि हलदि, वन हरदि** 1. Wild turmeric.
ସ. ଶୋଲୀ, ବନ ହରିଦ୍ରା [ ଦ୍ର—ଏହା କଟୁତିକ୍ତମଧୁରରସ,
ତେ. ଅଡ଼ବିପସୁପୁ ରୁଚିକାଟକ ଓ ଅଗ୍ନି ପାଚକ; ଏହା କୁଷ୍ଠ ବାତାକାର୍ତ୍ତି ଦୋଷ, ରକ୍ତ ଦୁଷ୍ଟି, ଶ୍ୱାସ, କାସ ଓ ହିକ୍କାରେ ଉପକାରୀ—ଦ୍ରବ୍ୟଗୁଣ । ]
୨ । ଦାରୁ ହଳଦୀ (ଦେଖ)—2. Dāru haḷadī (See)

ବଣ ହି(ହେ)ଙ୍ଗୁ—ଦେ. ବ. (ବୈଦ୍ୟକ)—ନାଡ଼ୀ ହିଙ୍ଗୁ (ଦେଖ)
Baṇa hi(he)ṅgu Nārḍi hiṅgu (See)

ବଣା—ଦେ. ବ. (ସଂ. ଭରଣୀ)—୧ । ଗୁଡ଼ ରଖିବା ନିମନ୍ତେ ବ୍ୟବହୃତ
Baṇā ଉଚ୍ଚଡ଼ାମୁହାଁ ଲମ୍ବା ମୃତ୍ତିକା ଘଟ ବା ପାତ୍ରବିଶେଷ—
বাইন, কুঁদো **भरिन, नौलि** 1. A long pot for jaggery.
୨ । (ସଂ. ଭ୍ରାନ୍ତ) ଭୁଲ୍;ଭ୍ରାନ୍ତି—2. Mistake.
ଏ.ଥି ନାହିଁ କିଛି ବଣା । ନନ୍ଦକିଶୋର. ଶର୍ମା ।
ଦେ. ବିଣ. (ସଂ. ଭ୍ରାନ୍ତ)—୧ । ପଥଭ୍ରାନ୍ତ; ପଥଭ୍ରଷ୍ଟ—
ভোলা Having lost one's way; gone astray;
**भटका हुआ, हक्कावक्का** straggling.
କଣା ଗଭୀରରେ ବଣା ମୃଗାକ୍ଷି ତୋ ଗଲି । କବିସୂର୍ଯ୍ୟ. ସଙ୍ଗୀତ ।
୨ । ଭ୍ରାନ୍ତ—2. Erring; mistaken.
ରୁଦ୍ର ପୃଥ୍ୱୀଙ୍କ ବଣା ହେଲ ବୁଦ୍ଧି—କୃଷ୍ଣସିଂହ, ମହାଭାରତ ବନ ।
୩ । (ସଂ. ବହୁଳ) ପର୍ଯ୍ୟାପ୍ତ; ବହୁତ—3. Profuse.
ପଣା, ଅମ୍ବ ଫଳେ ବଣା —ଡାକ ।
୪ । (ସଂ. ବିହ୍ୱଳ) କିଂକର୍ତ୍ତବ୍ୟବିମୂଢ଼ (ବ୍ୟକ୍ତି)—
4. Bewildered (person),
ତପଁ। ଭୁମ୍ଭେ କାହା ହେଉଛ ଅଛେ ବଣା । କୃଷ୍ଣସିଂହ. ମହାଭାରତ ବନ ।
୫ । (ବୁଦ୍ଧି) ବିଚଳିତ; ଆନ୍ଦୋଳିତ (ମନ)—5. Disturbed; agitated (mind).
ବେଗେ ଘାରୁ ହେବେ ପବନ କିଛି ଉଣା
ତଣ ଦେଖି ମୃତ୍ୟୁ କହିବେ ବୁଦ୍ଧି ବଣା । କୃଷ୍ଣସିଂହ. ମହାଭାରତ ବନ ।
୬ । ଯାହାଙ୍କୁ କୌଣସି ନୂଆ ସ୍ଥାନ ସୁଖ ଲାଗୁ ନ ଥାଏ—
6. Feeling out of one's elements at a new place.

ବଣା(ଣେ)ଇ—ଦେ. ବ—ଓଡ଼ିଆ ଗଡ଼ଜାତ ରାଜ୍ୟବିଶେଷ—Name
Baṇā(ṇe)i of an Oriya state.
[ ଦ୍ର—ଏ ରାଜବଂଶ ସାକଲ ଦ୍ୱୀପ ବା ସିଲୋନ୍‌ରୁ ଆସିଥିଲେ । ଏମାନଙ୍କ ସଙ୍କେତ 'ମୟୂର' । ଏମାନେ କଦମ୍ବ ବଂଶୀୟ । ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ]

ବଣା କ(ଢ଼)ଣା—ଦେ. ବିଣ. (ଅନର୍ଥକ ଦ୍ୱିତୀୟ ସହଚର)—ଦୃଷ୍ଟିକୁ ନ
Baṇā ka(ḍha)ṇā ଆସିଥିବାରୁ ଭୁଲ୍‌ରେ ରହିଯାଇ ଥିବା—
ভূলচুক **भूलभटक** Left out owing to mistake.
(ଯଥା—ଏ ଆମ୍ବଗଛରୁ ସବୁ ପାଚିଲା ଆମ୍ବ ଯାକ ମୁଁ ତୋଳିଲି । କେଜାଣି, ବଣା କଣା ହୋଇ ଗଛରେ ଗୋଟାଏ ଦିଓଟା ଆମ୍ବ ଥିବ ।)

ବଣାଗଣ—ଦେ. ବିଣ—ଯୂଥଭ୍ରଷ୍ଟ; ଗୋଠଛଡ଼ା—Strayed from the
Baṇāgaṇa herd or flock; gone astray.
গোঠছাড়া ବଣାଗଣ ଏଣି ଗ୍ରାମ୍ୟେ ଏଣେ ତେଣେ ଗୁହାଁ ହବ
**पथसे अलग; भटकाहुआ** ତଥା ପର ଭୁତେ କଲେ ଚନ୍ଦ୍ରା ।
ଭଞ୍ଜ, ବୈଦେହୀଶବିଳାସ ।

ବଣା ବଣା—ଦେ. ବିଣ—୧ । ଅଲଗା ଅଲଗା—1. Disjointed
Baṇā baṇā ୨ । ଅଣଙ୍କିଆ; ଅଡୁଆ—2. Awkward.
কেমন কেমন ଆଜଠାରେ ଲେଶ ହେଲେ ଅନୁରାଗ
**अनमना** ଲାଗେ ପୃଥ୍ୱୀ ବଣା ବଣା । ନନ୍ଦକିଶୋର. ଶର୍ମା ।
୩ । ଅପରିଚୟ ଯୋଗୁଁ ଯେଉଁ ସ୍ଥାନକୁ ମନୁଷ୍ୟ ଠଉରାଇ ପାରେ ନାହିଁ—3. (a place) With which a person is not familiar.

ବଣା ହେବା—ଦେ. କ୍ରି. (ସଂ. ଭ୍ରାନ୍ତ)—୧ । ଭ୍ରାନ୍ତ ହେବା—1. To
Baṇā hebā err; to be mistaken, to fall into error.
ভুলা ୨ । ବାଟ ଭୁଲିବା—2. To go astray.
**भूलना; भटक जाना** ଜାଣିଲି ପାଣ୍ଡୁ ସୁତଙ୍କର ବୁଦ୍ଧି ଉଣା
ତୁମ୍ଭ ବୋଲେ ମାର୍ଗ ଛାଡ଼ି ଯା ହେଲେ ବଣା । କୃଷ୍ଣସିଂହ, ମହାଭାରତ ସଭା ।
୩ । ବୁଦ୍ଧିଭ୍ରଷ୍ଟ ହେବା—3. To be dumbfounded; to be at a loss; to be bewildered. ୪ । ବୁଝା ନ ହେବା; ଜଣା ନ ଯିବା—4. Not to be understood; not to be known.
ସନ୍ଧିବା ବନ୍ଧିବା ସାଧ୍ୟଙ୍କର ବଣା
ହେଲ ଜାଣ ସ୍ୱସ୍ୱରୂପ ମହାମନା । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।

ବଣି—ଦେ. ବ. (ସଂ. ନାମ ଅବଲମ୍ବ)—ଭୂମିଚର ଗ୍ରାମ୍ୟ ପକ୍ଷୀବିଶେଷ—
Baṇi The common myna; Acridotherus Tristis.
সালিক ଝର୍ଣ୍ଣିକା ମାତ୍ର ବଣି ପୋଷିବା ନ୍ୟାୟ—ଡାକ ।
**अवलखा** [ ଦ୍ର—ଏହା ତେର ଇଞ୍ଚ ଅଙ୍ଗୁଳ ଦୀର୍ଘ; ମୁଣ୍ଡ ଓ ବେକ

କଳା; ପେଟ ନାଲି ଖଇରି ବା ଶ୍ୱେତାଭ; ଆଖି ତଳେ ଓ ପକ୍ଷ ଶେଷରେ ଧଳା ବା ନାଲି ବା ହଳଦିଆ ଦାଗ ଥାଏ; ଏମାନଙ୍କୁ ପୋଷିଲେ ଏମାନେ ମନୁଷ୍ୟ ପରି ଡାକ ଶିଖନ୍ତି । ଏମାନେ ଝିଙ୍କା ଓ ପୋକଜୋକ ଖାଇ ପ୍ରାଣଧାରଣ କରନ୍ତି । ଏମାନେ ସାମାଜାତୀୟ; ସାମମାନେ ଜଙ୍ଗଲ ଓ ପାହାଡ଼ରେ ଥାଆନ୍ତି, କିନ୍ତୁ ଏମାନେ ଗ୍ରାମ ନିକଟସ୍ଥ ବୃକ୍ଷରେ ଓ କୋଠାର ଖୋପରେ କାଠିକୁଟାରେ ବସା ତିଆରି କରି ବାସ କରନ୍ତି । ଏକ ଜାତୀୟ ବଣିକୁ 'ରାଜବଣି' କୁହାଯାଏ । ଆଉ ଏକ ଜାତୀୟ ବଣିକୁ ଗୁହ୍ମକାଳିକା ବା ଗୁହ୍ମବଣି କହନ୍ତି; ଏହାକୁ ବଙ୍ଗଳାରେ ଗୁୟା ସାଲିକ ଓ ଇଂରାଜୀରେ The pied myna କହନ୍ତି । ଅନ୍ୟ ଏକପ୍ରକାର ବଣିକୁ ନାଲି ବଣି ବୋଲାଯାଏ; ଏହାକୁ ବଙ୍ଗଳାରେ ଗାଙ୍ଗସାଲିକ ଓ ଇଂରାଜୀରେ Bank myna କୁହାଯାଏ । ]

୨ । ହେନ୍ତାଳ—2. Mangrove roots; Avicennia Officinalis. ୩ । ସ୍ତ୍ରୀ ଲୋକଙ୍କୁ ଦିଆଯିବା ନାମ—3. A name given to females.
୪ । (ସଂ. ବନ) କ୍ଷୁଦ୍ର ବଣ—(ଯଥା—ତାଳ ବଣି)
4. A small custer of trees.

**ବଣିଆ**(ଆଁ)—ଦେ. ବି. (ଅନ୍ୟ ବୃକ୍ଷ ବାଚକ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ବେଲ ବଣିଆ, ତାଳ ବଣିଆ)—୧ । ଏକ ଜାତୀୟ ବୃକ୍ଷମାନଙ୍କର ସମଷ୍ଟି ବା ତୋଟା—1. A grove or plantation of one kind of trees.
Baṇiā(āṅ) बन वनी

ମାଉଳି, ନବତ ଜାତକ ବଣିଆ । ରଘୁନାଥ. ଚଳିକା ।

୨ । ପୁଷ୍ପବୃକ୍ଷବିଶେଷ—2. Yellow flowered Hibiscus Tiliceus (Haines). ୩ । ବଣିଆଁ (ଦେଖ)—3. Baṇiāṅ (See)
୪ । ପୁଂ. (ସଂ. ବଣିକ୍)—ସୁନାର ବଣିଆ; ସୁନା ରୁପାର କାରିଗର—1. Goldsmith; silversmith.
বেনে ୫ । ପୋଟଳ ବଣିଆ; ଗନ୍ଧବଣିକ—5. Druggist
बनिया ୬ । କୁମୁଟୀ; ବଣିକ; ବେପାରୀ—6. A trader.
(ବଣିଆଣୀ—ସ୍ତ୍ରୀ) ୭ । ବୈଶ୍ୟ—7. Baiśya.

**ବଣିଆ ଘଣ୍ଟା**—ଦେ. ବି—୪-୬ ଫୁଟ୍ ଉଚ୍ଚ ବନ୍ୟ ବୃକ୍ଷବିଶେଷ—A robust shrub; Clerodendrun Infortunatum (Haines).
Baṇiā ghaṇṭā

[ ଦ୍ର—ଏହାର ଫୁଲ ସୁବାସଯୁକ୍ତ; ସନ୍ଧ୍ୟା ସମୟରେ ଫୁଲରୁ ସୁଗନ୍ଧ ବାହାରେ । ]

**ବଣିଆ ଝାଟି**—ପ୍ରାଦେ. (ବାଲେଶ୍ୱର) ବି—ବଡ଼ ବଡ଼ ଏବଂ ଲୋମଶ ପତ୍ରବିଶିଷ୍ଟ ଏକପ୍ରକାର ମାଝବୃହତ୍ ଗୁଳ୍ମ—A middle-sized shrub having big furry leaves.
Baṇiā jhāṭi

[ ଦ୍ର—ଏଥିର ପତ୍ରରେ ଏକପ୍ରକାର ଗନ୍ଧ ଅଛି । ଏହାର ଫୁଲ ଧଳା ଏବଂ ଫଳର ଭେଣ୍ଟ ନାଲି; ପେନ୍ଥା ପେନ୍ଥା ହୋଇ ଫୁଟେ । ]

**ବଣିଆତି**—ଦେ. ବି—ବଣିଆ ବ୍ୟବସାୟ—Goldsmith's occupation.
Baṇiāti বেনেগিরি, বেনেটি **बनियाती**
ଦେ. ବିଣ—୧ । ବଣିଆ ସମ୍ବନ୍ଧୀୟ—1. Relating to a Baṇiā. ୨ । ବାଣିଜ୍ୟସମ୍ବନ୍ଧୀୟ—2 Relating to trade.
বেনেটি **बनियाती**

**ବଣିଆତି ଚିଜ**—ଦେ. ବି—( ସଂ. ବାଣିଜ୍ୟ+ଫା. ଚୀଜ୍)—ଗନ୍ଧବଣିକମାନେ ଯେଉଁ ସବୁ ମସଲାର ବ୍ୟବସାୟ କରନ୍ତି—Druggist's store; spices and drugs.
Baṇiāti chija বেনেব মাল **बनियाती चिज**

ବଣିଆତି ମାଲ, ବଣିଆତି ରକମ, ବଣିଆତି ମସଲା } ଅନ୍ୟରୂପ

**ବଣିଆତି ବେପା(ଭା)ର**—ଦେ. ବି—( ସଂ. ବାଣିଜ୍ୟ+ବ୍ୟାପାର)—୧ । ବଣିଆର ବ୍ୟବସାୟ—1. Goldsmith's profession or occupation. ୨ । ଔଷଧ ଓ ମସଲା ବେପାର—2. Trade in spices and drugs.
Baṇiāti bepā(bhā)ra বেনেব ব্যাপাব **बनियातीबयापार**
[ବଣିଆତି ବେଉ(ବ)ସା—ଗ୍ରାମ୍ୟରୂପ]

**ବଣିକ୍**—ସଂ. ବି—(ପଣ୍ ଧାତୁ=ବିକ୍ରି କରିବା+କର୍ତ୍ତୃ. ଇକ୍; ବଣିଜ୍ ଶବ୍ଦ ୧ମା. ୧ବ)—୧ । ପଣ୍ୟ କ୍ରୟବିକ୍ରୟକାରୀ; ବେପାରୀ—1. Trader; merchant. ୨ । ବଣିଆଁ; ବୈଶ୍ୟଜାତି—2. The Baiśya or trading caste. ୩ । (+ଅଧିକରଣ ଇକ୍) ଫଳିତ ଜ୍ୟୋତିଷୋକ୍ତ କରଣ ବିଶେଷ; ଜ୍ୟୋତିଷର ୬ଷ୍ଠ କରଣ—3. (Astrology)—The 6th Karaṇa or astrological conjunction.
Baṇik

**ବଣିକପଥ**—ସଂ. ବି—(୬ଷ୍ଠୀ ତତ୍; ବଣିକ୍+ପଥ)—୧ । ବଜାର; ହାଟ—1. Market; bazar. ୨ । ବାଣିଜ୍ୟ—2. Trade
Baṇik-patha

**ବଣିକ**—ଦେ. ବି—( ସଂ. ବଣିକ୍ )—୧ । ବଣିକ୍; ବଣିଆ—1. Trader; merchant. ୨ । ସୁନାର ବଣିଆ—2. Goldsmith.
Baṇika বেনে **बनियाँ**

ବଣିକ ଭାବ ଲମ୍ଭ ପ୍ରକଟ କରି ମର୍କଟ କନକ କଟକ ଭଗ୍ନକାଲେ—ଭଞ୍ଜ. ବୈଦେହୀଶବିଳାସ ।

**ବଣି ଗୋଡ଼ା**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ଗୋଡ଼ ସରୁ ଓ ଲମ୍ବା—Thin-legged.
Baṇi goṛā স্বকপা
(ବଣି ଗୋଡ଼ିଆ—ଅନ୍ୟରୂପ) [ବଣିଗୋଡ଼ୀ—ସ୍ତ୍ରୀ]

**ବଣିଗ୍‌ବନ୍ଧୁ**—ସଂ. ବି—(୬ଷ୍ଠୀ ତତ୍; ବଣିକ୍+ବନ୍ଧୁ)—ନୀଳଗଛ—The Indigo plant; Indigo; Fera Tinctoria.
Baṇigbandhu

**ବଣିଗ୍‌ବହ**—ସଂ. ବି—(ବଣିକ୍+ବହ୍ ଧାତୁ=ବହନ କରିବା+କର୍ତ୍ତୃ. ଅ) ଉଷ୍ଟ୍ର; ଓଟ—Camel.
Baṇigbaha

[ ଦ୍ର—ପୂର୍ବକାଳରେ ଉଷ୍ଟ୍ରପୃଷ୍ଠରେ ପଣ୍ୟ ଦ୍ରବ୍ୟ ବୁହା ହୋଇ ଦୂର ଦେଶ ସହିତ ବାଣିଜ୍ୟ ଚଳୁଥିଲା । ]

**ବଣିଗ୍‌ବୃତ୍ତି**—ସଂ ବି—(୬ଷ୍ଠୀ ତତ୍; ବଣିକ୍ ବୃତ୍ତି)—ବାଣିଜ୍ୟ; ବେପାର—Trade.
Baṇigbṛutti
( ବଣିଗ୍‌ଭାବ, ବଣିଗ୍‌ବ୍ୟବସାୟ, ବଣିଗ୍‌ବ୍ୟାପାର—ଅନ୍ୟରୂପ )

ବଣିଜ—ସଂ. ବି—(ପଣ୍ ଧାତୁ+କରଣ. ଇଜ)—୧ । ବଣିକ୍—
Banija 1. Trader. ୨ । ଫଳିତ ଜ୍ୟୋତିଷୋକ୍ତ କରଣ ବିଶେଷ—2. An astrological conjunction.
[ ଦ୍ର—ଏଥିରେ ଯେ ଜନ୍ମଗ୍ରହଣ କରେ ସେ ଭାଗ୍ୟବାନ୍, ବ୍ୟବସାୟୀ ଓ ଧନୀ ହୁଏ । ]
বানিজ্য, ব্যাপার ଦେ. ବି—( ସଂ. ବାଣିଜ୍ୟ )—୧ । ବାଣିଜ୍ୟ;
बनिज, तिजारत ବେପାର—1. Trade.
ବେହୁ ବୋଇଲ ରଥ ବୋଇତରେ ବନି
ନୃପତି ଏ ବଣିଜ ପାଇଛନ୍ତି ଅସି । କୃଷ୍ଣସିଂହ ମହାଭାରତ ବନ ।
୨ । ପଣ୍ୟଦ୍ରବ୍ୟଚୟ—2, Merchandise; commodities.
ବାଢ ବାଣିଜାକୁ ଏ ସକଳେ ବଣିକ । କୃଷ୍ଣସିଂ. ମହାଭାରତ ବନ ।

ବଣିଜ ପଥ—ସଂ. ବି (୬ଷ୍ଠୀ ତତ୍; ବଣିଜ+ପଥ)—୧ । ଦୋକାନ—
Banija patha ୨ । ବଜାର; ହାଟ—2. Market; bazar,
୩ । କ୍ରୟବିକ୍ରୟ ସ୍ଥାନ; ଗଞ୍ଜ—3. Mart.

ବଣିଜ ବେପାର—ଦେ. ବି—( ଏକାର୍ଥବୋଧକ ସହଚର ଶବ୍ଦ;
Banija bepāra ବାଣିଜ୍ୟ+ବ୍ୟାପାର)—ବଣିଗ୍‌ବୃତ୍ତି; ପଣ୍ୟକ୍ରୟ-
বণিজব্যাপার बनिज बेपार ବିକ୍ରୟ; କାରବାର—Trade.

ବଣିଜା—ଦେ. ବି—(ସଂ. ବଣିଜ୍)—ବଣିକ୍—Merchant; trader.
Banijā ব্যাপারী बंजारा
ବଣିଜାର ହସ୍ତ ସ୍ୱର୍ଗ ପ୍ରଗତ । ଉକ୍ତ. ବୈଦେହୀଶବିଳାସ ।

ବଣିଜାର(ରୁ)—ଦେ. ବି. (ସଂ. ବଣିଜ)—ବଣିକ୍—Merchant;
Banijāra(ru) ব্যাপারী बंजारा, बनजारा trader.
ଯେମନ୍ତ ବଣିଜାରମାନେ, ଅର୍ଥ ଅର୍ଜନ ଛେଲ ମନେ ।
ଜଗନ୍ନାଥ, ଭାଗବତ ।
ଏହୁ ସମ୍ପୂର୍ଣ୍ଣ ବଣିଜାରୁ ବଳ । କୃଷ୍ଣସିଂହ, ମହାଭାରତ ବନ ।

ବଣିଜ୍ୟ(ଜ୍ୟା)—ସଂ. ବି. (ବଣିଜ୍+ଭାବେ. ଯ; ସ୍ତ୍ରୀ. ଆ)—ବେପାର,
Banijya(jyā) ବାଣିଜ୍ୟ—Trade; traffic.

ବଣିବେକା—ଦେ. ବିଣ. ପୁଂ—ଯାହାର ବେକ ବଣି ଚଢ଼େଇର ବେକ
Banibekā ପରି ଲମ୍ବ ଓ ଅସୁନ୍ଦର—Having a long
হাঁসেরগলা वकुलघटा and ungraceful neck.
(ବଣିବେକୀ—ସ୍ତ୍ରୀ)

ବଣୁଆ(ଆଁ)—ଦେ. ବିଣ. ( ସଂ. ବନ୍ୟ )—୧ । ବନ୍ୟ; ବନଜାତ—
Banuā(ān) বনুয়া, বুনো 1. Growing in the forest.
वनैला या) ୨ । ବନବାସୀ—2. Living in the forest.
୩ । ଜଙ୍ଗଲି; ବନ ସମ୍ବନ୍ଧୀୟ—3. Relating to forests.
୪ । ଅସଭ୍ୟ—4. Uncivilised.
ଦେ ବି—ଏକ ପ୍ରକାର ପୋଟଳ—A kind of kitchen fruit.

ବଣ୍ଟ୍ (ଧାତୁ)—ସ—୧ । ଭାଗ କରିବା—1. To divide; to par-
Bant(root) tition. ୨ । ବାଣ୍ଟିବା—2. To distribute.
୩ । ବାଟିବା; ପେଷିବା—3. To pestle; to bruise; to pound.

ବଣ୍ଟ—ସଂ. ବି. ( ବଣ୍ଟ ଧାତୁ+ଭାବ. ଅ )—୧ । ଭାଗ; ଅଂଶ—
Banta 1. Share. ୨ । ବଣ୍ଟନ—2. Partition; distribution. ୩ । (କର୍ମ+ଅ) ବେଣ୍ଟ; ଦାଆ ପ୍ରଭୃତିର ମୁଠା—3. The handle of sickle.
୪ । ଅବିବାହିତ ପୁରୁଷ—4. A bachelor (Apte)
ସଂ. ବିଣ. ପୁଂ—ଅବିବାହିତ—Unmarried.

ବଣ୍ଟକ—ସଂ. ବିଣ. ( ବଣ୍ଟ୍ ଧାତୁ+କର୍ତ୍ତୃ. ଅକ )—୧ । ଯେ ବଣ୍ଟନ
Bantaka କରେ—1. Distributer. ୨ । ବିଭାଜକ—2. Divider.
ସଂ. ବି. (+ସ୍ୱାର୍ଥେ. କ)—ବିଭାଗ; ଅଂଶ—Share.

ବଣ୍ଟନ—ସଂ. ବି. (ବଣ୍ଟ୍ ଧାତୁ+ଭାବ. ଅନ)—୧ । ବାଣ୍ଟିବା; ଭିନ୍ନ ଭିନ୍ନ
Bantana ଭାଗରେ ବିଭକ୍ତ କରିବା; ଅଂଶୀକରଣ—1. Partition; division; apportionment. ୨ । ଭିନ୍ନ ଭିନ୍ନ ଅଂଶକୁ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ଦେବା—2. Distribution. ୩ । ବାଟିବା; ପେଷଣ—3. Bruising; pounding with pestle and mortar.

ବଣ୍ଟନ କରିବା—ଦେ. କ୍ରି. (ସଂ. ବଣ୍ଟନ)—୧ । ଅଂଶ ବା ବିଭାଗ କରିବା-
Bantana karibā 1. To partition; to divide.
বণ্টন করা ୨ । ଭିନ୍ନ ଭିନ୍ନ ଅଂଶ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ଦେବା—
बण्टन करना 2. To distribute; to apportion.

ବଣ୍ଟନ କାରକ—ସଂ. ବିଣ ଓ ବି ପୁଂ—ଯେ ବାଣ୍ଟେ—Distributary;
Bantana kāraka dividing; partitioning.
(ବଣ୍ଟନକାରୀ—ଅନ୍ୟରୂପ)
(ବଣ୍ଟନ କାରିକା, ବଣ୍ଟନ କାରିଣୀ—ସ୍ତ୍ରୀ)

ବଣ୍ଟର—ଦେ. ବି. (ସଂ. ବଣ୍ଟନ)—୧ । ବଣ୍ଟନ; ଅଂଶୀକରଣ; ବିଭାଗ
Bantara କରଣ—1. Partition; separation of share.
বাঁটবা ୨ । ଭିନ୍ନ ଭିନ୍ନ ଅଂଶର ପୃଥକ୍ କରଣ ବା ସ୍ଥିରୀକରଣ—
बंटाइ, बटवारा 1. Appotionment of shares.
ବଣ୍ଟୁଆର / ବଣ୍ଟୁର / ବଣ୍ଟୋର } ଅନ୍ୟରୂପ ୩ । ବହୁ ଲୋକଙ୍କୁ କୌଣସି ଦ୍ରବ୍ୟର ଅଂଶ-ମାନ ପୃଥକ୍ ପୃଥକ୍ କରି ବିତରଣ—3. Distribution.
୪ । ପ୍ରଜା ଓ ଭୂସ୍ୱାମୀଙ୍କ ମଧ୍ୟରେ କ୍ଷେତ୍ରର ଉତ୍ପନ୍ନର ଅଂଶ ବା ଭାଗ ଦିଆ ନିଆ—4. Division of the produce of a field between the cultivator and the landlord.

ବଣ୍ଟରା ଆଇନ୍—ଦେ. ବି. (ସଂ. ବଣ୍ଟନ+ଫା. ଆଇନ୍)—
Bantarā āin ଯେଉଁ ବିଧାନ ଦ୍ୱାରା ସମ୍ପତ୍ତି ବିଭାଗ କରାଯାଏ—
বাঁটরা আইন बटवारा आइना The law of partition.

ବଣ୍ଟରା କୁଣ୍ଟରା—ଦେ ବି. (ନିରର୍ଥକ ସହଚର ଶବ୍ଦ)—ବଣ୍ଟାକୁଣ୍ଟା (ଦେଖ)
Bantarā kuntarā Bantākuntā (See)

ବଣ୍ଟା—ଦେ. ବି—୧ । ବଣ୍ଟନ—1. Partition, ୨ । ବିତରଣ—
Bantā 2. Distribution. ୩ । ଭାଗ; ଅଂଶ—3. Share.
କଣ୍ଟା ନରୁଛ ଘାଣ୍ଟି ସଂସାର କ୍ଲେଶ ଧାଣ୍ଟି ବଣ୍ଟା ନେବ ମୁଁ ବୋଲି
ଅଭିଳାଷେ । କବିସୂର୍ଯ୍ୟ ସର୍ବାଙ୍ଗ ।

ବଣ୍ଟା(ଣ୍ଟେ)ଇବା—ଦେ. କ୍ରି—( ବାଣ୍ଟିବା କ୍ରିୟାର ଣିଜନ୍ତରୂପ—
Banṭā(nṭe)ibā Causative form of Bāṇṭibā)—ଅନ୍ୟ ଦ୍ୱାରା ବଣ୍ଟନକ୍ରିୟା କରାଇବା—To cause to be partitioned or distributed.
বাঁটান **बँटवाना**

ବଣ୍ଟାକୁଣ୍ଟା —ଦେ. ବି—( ନିରର୍ଥକ ସହଚର ଶବ୍ଦ )—୧ । ବଣ୍ଟନ—
Banṭākunṭā 1. Distribution. ୨ । ବହୁ ଲୋକଙ୍କ ମଧ୍ୟରେ ବଣ୍ଟା—2. Partition or division amongst many persons.
বাঁটাবাঁটি **बाँटचूट**

ବଣ୍ଟାବଣ୍ଟି —ଦେ. ବି ଓ ବିଣ.—୧ । ପରସ୍ପର ମଧ୍ୟରେ ବିଭାଗ କରିବା—
Banṭābanṭi 1. Mutual partition; division of a thing amongst each other.
বাঁটাবাঁটি **बाँटाबाँटि**

ରାଜା ବୋଇଲେ ଅହେ ଭୂମି ଅମ୍ଭ ଫଳ
ବଣ୍ଟାବଣ୍ଟି କରିବା ବୋଲି ହିଁ କରାଳ । କୃଷ୍ଣଙ୍କ ମହାଭାରତ ଶାନ୍ତି.

୨ । ବହୁ ବଣ୍ଟନ କର୍ମ—2. Various acts of partition. ୩ । ବହୁଲୋକଙ୍କୁ ଦ୍ରବ୍ୟାଂଶର ବିତରଣ—3. Acts of distribution.

ବଣ୍ଠ୍ (ଧାତୁ)—ସଂ—ଏକାକୀ ବୁଲିବା—
Banṭh(root) To walk alone.

ବଣ୍ଠ—ସଂ. ବିଣ. ପୁଂ—(ବଣ୍ଠ୍ ଧାତୁ=ଏକାକୀ ବୁଲିବା+କର୍ତ୍ତୃ. ଅ)—
Banṭha ୧ । ବାମନ ବା ଖର୍ବ— 1. Dwarfish.
୨ । ଅବିବାହିତ—3. Unmarried.
୩ । ବିକଳାଙ୍ଗ—3. Crippled (Apte).
(ବଣ୍ଠା—ସ୍ତ୍ରୀ) ସଂ. ବି. ପୁଂ—୧ । ଅବିବାହିତ ପୁରୁଷ—1. A bachelor (Apte). ୨ । ଭୃତ୍ୟ—2. Servant (Apte) ୩ । କୁନ୍ତ ଅସ୍ତ୍ର—3. Javelin; dart(Apte).

ବଣ୍ଠର—ସଂ. ବି—(ବଣ୍ଠ ଧାତୁ+କର୍ତ୍ତୃ. ଅର)—୧ । ବାଉଁଶ ଗଜାର
Banṭhara ଆବରକ ବକଳ—1. The sheath that envelops young bamboo (Apte). ୨ । ତାଳ ଗଛର କଅଁଳ ନୂଆ କୁଆଁ—2. The new shoot of the palm tree (Apte). ୩ । ପଘା—3. A rope for tying ( a beast ) (Apte). ୪ । କୁକୁର—4. Dog (Apte). ୫ । କୁକୁର ଲାଞ୍ଜ—5. The tail of a dog (Apte). ୬ । ମେଘ—6. A cloud (Apte). ୭ । କୁଚ—7. The female breast (Apte).

ବଣ୍ଡ୍ (ଧାତୁ)—ସ—୧ । ବାଣ୍ଟିବା; ବିଭାଗ କରିବା—1. To divide;
Banḍ (root) apportion (Apte). ୨ । ଘେରିବା; ବେଢ଼ିବା-2. To encompass; to surround (Apte).

ବଣ୍ଡ୍ —ବୈଦେ ବି. (ଇଂ)—୧ । ତମସୁକ—1. Bond. ୨ । ଯାମିନ-
Band বণ্ড **बंड** ନାମା—2. Security bond.

ବଣ୍ଡ୍ରିଆ—ପ୍ରାଦେ. (ସମ୍ବଲପୁର) ବି—ସ୍ତ୍ରୀଲୋକମାନେ ହାତରେ ଯେଉଁ
Band-riā ଖଡୁ ପରି ଅଳଙ୍କାର ପିନ୍ଧନ୍ତି—A kind of bracelet.
(ବଣ୍ଡ୍ରିଆ, ବନ୍ଦରିଆ, ବନ୍ଦ୍ରିଆ—ଅନ୍ୟରୂପ)
[ ଦ୍ର—ଏହା କଡରିଆ ସଙ୍ଗେ ମିଳାଯାଏ । ]

ବଣ୍ଡ—ସଂ. ବିଣ. ପୁଂ—(ବଣ୍ଡ ଧାତୁ+କର୍ମ. ଅ)—୧ । ବିକଳାଙ୍ଗ;
Banḍa ଲୁଳାଙ୍ଗ—1. Maimed; crippled (Apte).
୨ । ଅବିବାହିତ—2. Unmarried (Apte). ୩ । ଖାସି କରାଯାଇଥିବା—3. Emasculated (Apte).
ସଂ. ବି—୧ । ସୁନ୍ନତ୍ ହୋଇଥିବା ବ୍ୟକ୍ତି—1. A person who has been circumcised (Apte). ୨ । ଲାଙ୍ଗୁଡ଼ଖଣ୍ଡିଆ ବଳଦ—2. An ox without a tail (Apte).
୩ । ଯେଉଁ ବ୍ୟକ୍ତିର ଲିଙ୍ଗାବରକ ଚର୍ମ ନ ଥାଏ—3. A person who has no prepuce (Apte).

ବଣ୍ଡର—ସଂ ବି. ପୁଂ—(ବଣ୍ଡ୍ ଧାତୁ+କର୍ତ୍ତୃ. ଅର)—୧ । କୃପଣବ୍ୟକ୍ତି-
Bandara 1. Miser; a stingy person (Apte).
୨ । ପୁଂସ୍ତ୍ୱହୀନ ବ୍ୟକ୍ତି—2. An eunoch (Apte).

ବଣ୍ଡଲ୍(ଲି)—ବୈଦେ. ବି—(ଇଂ. ବଣ୍ଡ୍ଲ)—୧ । ବୋଝକରା; ଗୋଛା—
Banḍal(li) 1. Bundle. ୨ । ଏକତ୍ର ବନ୍ଧା ହୋଇଥିବା
( ବଣ୍ଡିଲ, ବଣ୍ଡିଲି—ଅନ୍ୟରୂପ ) ଗୁଡ଼ାଏ ବସ୍ତୁର ପୁଡ଼ା—
বাণ্ডিল **बंडल** 2. Packet.

ବଣ୍ଡା—ସଂ. ବି· ସ୍ତ୍ରୀ—( ବଣ୍ଡ ଧାତୁ+କର୍ମ. ଅ+ଆ )—ଅସତୀ ସ୍ତ୍ରୀ—
Banḍā An unchaste woman (Apte).
ପ୍ରାଦେ (ପଡ଼ଜାତ, ବୌଧ) ବିଣ. ପୁଂ—(ସଂ. ବଣ୍ଡ)—
(ବଣ୍ଡୀ—ସ୍ତ୍ରୀ) ଲାଙ୍ଗୁଳହୀନ (ଜନ୍ତୁ)—Tailless; bereft of tail.

ବଣ୍ଡା(ଣ୍ଟା)ଳ—ସଂ. ବି—(ବଣ୍ଡ ଧାତୁ+ ଅଧିକରଣ. ଅଲ)—
Banḍā(nṭā)la ୧ । ବୀରମାନଙ୍କ ମଧ୍ୟରେ ଯୁଦ୍ଧ—1. A contest of heroes (Apte). ୨ । ଫାଉଡ଼ା; ଲମ୍ବ ବେଣ୍ଟିଆ କୋଡ଼ି—2. A shovel; hoe (Apte).
୩ । ନୌକା—3. A boat (Apte).

ବଣ୍ଡାଇବା—ପ୍ରାଦେ (ସମ୍ବଲପୁର) କ୍ରି—( ସଂ. ବର୍ଦ୍ଧନୀ )—(ସକର୍ମ)
Banḍāibā ଓଳାଇବା; ଝାଡ଼ିବା—To sweep (a room or place)

ବଣ୍ଡି—ପ୍ରାଦେ ( ଗଞ୍ଜାମ ) ବି—( ତେଲୁଗୁ )—୧ । ଶଗଡ଼ ଗାଡ଼ି—
Banḍi 1. Cart. ୨ । କେରେଞ୍ଚି ଗାଡ଼ି—2. A bandy bullock cart with iron springs and wooden frame.
ପ୍ରାଦେ (ସମ୍ବଲପୁର) ବି.—ଫତେଇ—Jacket.

ବଣ୍ଢା(ଣ୍ଢେ)ଇବା—ପ୍ରାଦେ ( ସମ୍ବଲପୁର ) କ୍ରି—ଓଳାଇବା—
Banḍhā(nḍhe)ibā To sweep.

ବତ୍—ସଂ. ଅ. (ପ୍ରତ୍ୟୟ)—୧ । ସଦୃଶ; ପରି; ତୁଲ୍ୟ (ଅର୍ଥବୋଧକ)—
Bat (An affix meaning) Like; similar to.
[ଦ୍ର—ଏହା ଅନ୍ୟ ବିଶେଷ୍ୟ ଓ ବିଶେଷଣ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ .—
ଯଥା—ମାତୃବତ୍, ବାଳକବତ୍, ଯଥାବତ୍]—
୨ । 'ଅଛି' ଅର୍ଥବୋଧକ ସଂସ୍କୃତ ପ୍ରତ୍ୟୟ—2. (An affix denoting) Possessing or having.
[ଦ୍ର— ଅସ୍ତି ଅର୍ଥରେ ଏହି ପ୍ରତ୍ୟୟ ହୁଏ; ଏ ପ୍ରତ୍ୟୟାନ୍ତ ପଦ ବିଶେଷଣ ହୁଏ; ଏହାର ପୁଂଲିଙ୍ଗ ପ୍ରଥମା ବିଭକ୍ତି ଏକବଚନର

ଆକାର ବାନ୍; (ଯଥା—ଧନବାନ୍; ଗୁଣବାନ୍;) ସ୍ତ୍ରୀଲିଙ୍ଗରେ 'ବତୀ' ହୁଏ) ଯଥା—ଧନବତୀ, ଗୁଣବତୀ]

**ବଟ୍ରିବା**—ପ୍ରାଦେ (ସମ୍ବଲପୁର) କ୍ରି — ବଟୁରଯିବା — To be
Bat-ribā saturated with water.

**ବତ**—ଦେ. ଅ.—(ସଂ. ବତ୍) ସଦୃଶ; ତୁଲ୍ୟ—Like
Bata ବର୍ଷା ନଶାରେ ଖଦ୍ୟୋତ ବନ୍ତି ତ ବଳିଲା ବତ ମନକୁ ଅସେ ଯେମନ୍ତ ଘନ ଉଭବ ।
ଉତ୍କ. ବୈଦେହୀଶବିଳାସ ।

**ବତଂସ**—ସଂ. ବି. (ଅବ+ତନସ୍ ଧାତୁ=ଭୂଷିତ କରିବା+କରଣ. ଅ=
Batamsa ଅବତଂସ; 'ଅ' ଲୋପ)—୧ । କର୍ଣ୍ଣ ଭୂଷଣ—
1. Ear-ornament. ୨ । ଶିରୋଭୂଷଣ—2. Ornament for the head ୩ । ଭୂଷଣ—3. Ornament.

**ବତଂସକ**—ସଂ. ବି. (ବତଂସ+ସ୍ୱାର୍ଥେ. କ) —ବତଂସ (ଦେଖ)
Batamsaka Batamsa (See)

**ବତକ**—ବୈଦେ. ବି—(ଅ. ବତକା) ଲୁଞ୍ଜ ହଂସ; ପାଳିହଂସ—
Bataka ବତ **बतक(ख)** Gander.
[ବ୍ର—ଏହା ହଂସ ଜାତୀୟ କ୍ଷୁଦ୍ର ସନ୍ତରଣକାରୀ ପକ୍ଷୀ; ରଙ୍ଗ ଧଳା; ଲମ୍ବ ପାଦ; ଥଣ୍ଟ ଚେପ୍ଟା, ଥଣ୍ଟ ଓ ଗୋଡ଼ ହଳଦିଆମିଶା ନାଲିଆ ।]

**ବତକା ସୁଦ**—ପ୍ରାଦେ (ଗଡ଼ଜାତ) ବି—ନୀଚ କୃଷକ—A low caste
Batakā-suda of farmers.

**ବତକିବା**—ପ୍ରାଦେ (ସମ୍ବଲପୁର) କ୍ରି—ଲୁଦ ଲୁଦ ପଳେଇବା—
Batakibā To scamper away.

**ବତର୍**—ପ୍ରାଦେ (ସମ୍ବଲପୁର) ବିଣ—ଆର୍ଦ୍ର; ବଟୁରା—Moistioned;
Batar saturated with water.

**ବତର୍ କି(କେ)ରି**—ପ୍ରାଦେ (ସମ୍ବଲପୁର) ବି—(ଭୁଲ. ହ୍ର କୀଡ଼ା)
Batar-ki(ke)ri ଝିଙ୍କପୋକ—Winged white ant.

**ବତର**—ଦେ. ବି. (ସଂ. ବର୍ତ୍ତକ ପ୍ରା. ବଟ୍ଟ; ଅନ୍ୟ ସଂସ୍କୃତ ନାମ ଲବ,
Batara ବର୍ତ୍ତକା,ବର୍ତ୍ତିକା)—୧ । ପାଉଁଶିଆ ବର୍ଣ୍ଣ ପକ୍ଷିବିଶେଷ—
ବটেব; **बटेर** 1. The grey quail; Cotornix Communis.
[ବ୍ର—ଏହା ୧୦।୧୨ ଅଙ୍ଗୁଳ ଦୀର୍ଘ; ଥଣ୍ଟ ସରୁ ଓ ଶ୍ଳେଟ; ପିଠିରେ ଲମ୍ବା ଧଳା ଡୋରା; ଶୀତକାଳରେ ଏ ଦେଶକୁ ଆସନ୍ତି; ଶସ୍ୟ ଖାଆନ୍ତି; ଚଞ୍ଚଳ ଉଡ଼ି ପାରନ୍ତି । ଏ ପକ୍ଷୀ ଘରେ ରହିବାକୁ ସୁଖ ପାଏ । ଏହାର ମାଂସ ପୁଷ୍ଟିକର ବୋଲି ପ୍ରସିଦ୍ଧ; ଉତ୍ତର ପଶ୍ଚିମ ଭାରତରେ ଘରଘର ମଧ୍ୟରେ ଲଢ଼ିବାକୁ ଲୋକେ ଏ ପକ୍ଷୀଙ୍କୁ ସଉକରେ ପୋଷନ୍ତି]

୨ । (ସଂ.ବାର୍ତ୍ତା=କୃଷି)—ଜମିର କୃଷିର ଉପଯୁକ୍ତ ଆର୍ଦ୍ରତା—
বাৎ. যো; **तरी** Proper wetness or moisture of a field for agricultural operation, ୩ । (ସଂ. ଆର୍ତ୍ତବ)
পাল দেখা, ଗାଈର ଋତୁମତୀ ହେବା ଅବସ୍ଥା—3, The men-
**बरधना; बरधाजाना** struated condition of a cow.
ভিজা ଦେ. ବିଣ—୧ । ଆର୍ଦ୍ର—1 Wet; moist ୨ ।
**गीला, भीगा** ଋତୁମତୀରୂପେ ଶୁଖି ନ ଥିବା (ଉଷୁଆଁ ଧାନ)—
(ଖର—ବିପରୀତ) 2. Not fully dried up (boiled paddy).

**ବତର ପଡ଼ିବା**—ଦେ. କ୍ରି—୧ । (ଗାଈ) ଋତୁମତୀ ହେବା—1. (a
Batara pardibā cow) To be in heat; to have
বাথানিয়া হওয়া **बरधाना,जुम्रीखाना** menses.
କନକା ଗାଈ ବତର ପଡ଼ିଲେ
ଭୂଜଙ୍ଗ ଷଣ୍ଢକୁ ପାଇ କି ? ଢଗ ।
୨ । (ଜମି) କୃଷିର ଉପଯୁକ୍ତ ଆର୍ଦ୍ର ରହିବା —1. (the soil) To have sufficient moisture for cultivation.

**ବତର ପାଗ**—ଦେ. ବି—ଜମିର ଆର୍ଦ୍ରତାରୂପ ସୁଯୋଗ—The
Batara pāga condition of an agricultural land
নরম বাৎ **गीलापन** still retaining proper moisture
(ଖରଡ଼ପାଗ—ବିପରୀତ) after a shower.

**ବତର ବୁଣା**—ଦେ. ବି—ବର୍ଷା ପରେ ଭୂଇଁ ଓଦା ଥିବା ଅବସ୍ଥାରେ
Batara bunā ଧାନ ବୁଣିବା ପ୍ରଣାଳୀ—Sowing paddy
**अछारना** while the field has still got some moisture after a shower.

**ବତରା**—ଦେ. ବି ଓ ବିଣ—ବଟୁରା (ଦେଖ)
Batarā Baturā (See)

**ବତରା(ରେ)ଇବା**—ଦେ. କ୍ରି—୧ । ବତାରିବା (ଦେଖ)—1.
Batarā(re)ibā Batāribā (See)
୨ । ବଟୁରାଇବା (ଦେଖ)— 2. Baturāibā (See)

**ବତଲ୍**—ବୈଦେ. ପ୍ରାଦେ. (ମେଦିନୀପୁର) ବି. (ଇଂ. ବଟ୍)—ବୋତଲ—
Batal Bottle.

**ବତଲି**—ପ୍ରାଦେ. (ସମ୍ବଲପୁର) ବି—ଆଉ—
Batali Apple.

**ବତ(ତା)ସା**—ଦେ ବି—ବାତସା (ଦେଖ)—
Bata(tā)sā Bātasā (See)

**ବତା**—ଦେ. ବି. (ସଂ. ବେତ୍ର)—୧ । ଚିରା ବାଉଁଶ; ବାଉଁଶର ଫାଳ—
Batā 1. Split bamboo; bamboo lath. ୨ । କବାଟର
বাতা; বাখারী ପଟାରେ ଆଡ଼ବାଗରେ ଦିଆଯାଇ ଥିବା କାଠର ପଟି
**फट्टी, फट्टा** ବା ବିଟ—2. Wooden bars attached horizontally to door plates crosswise; door-lath. ୩ । ପତ୍ର ଛଡ଼ା ହୋଇଥିବା ନଡ଼ିଆ ବାହୁଙ୍ଗା—3. The stick-like middle portion or ridge of the cocoanut branch when stripped off
ফেঁচো; কেঁচো its leaves. ୪ । ବଡ଼ କାଡ଼ୁଟି; କେଞ୍ଚୁଆ—
**चाली, केंचुआ** 4. Big tape worms in the stomach.

**ବତା(ତେ)ଇବା**—ଦେ. କ୍ରି. (ସଂ. ବ୍ୟକ୍ତ; ସଂ. ବାର୍ତ୍ତା)—୧ । ସୂଚନା
Batā(te)ibā କରିବା—1. To indicate; to hint.
বাতলান ବାଳକ ନେଇ ପ୍ରାନ୍ତ ବତାଇବା ସଙ୍କେତ
**बताना; बतलाना** ସ୍ଥଳକୁ କଲ ଅନୁସାରକୁ ସେ । କବିଦୂର୍ଯ୍ୟ. ସଙ୍ଗୀତ ।
୨ । ଶିଖାଇ ଦେବା; ଶିକ୍ଷା ଦେବା—
2 To teach; to instruct.
ଭୃଙ୍ଗ ଅବ ଅଇ କଥାମାନ ଭଲ କରି ବତାଇ ଦେଇ ।
ଗୋଲକର୍ଣ୍ଣ. ପିଙ୍ଗଳ ରାମାୟଣ ।
୩ । ବୁଝାଇ ଦେବା—3. To explain.

ମୋତେ ବସାଇ ତାହା ବଟାଇ କହୁଥିଲେ । କୃଷ୍ଣସିଂହ, ମହାଭାରତ ବନ ।

୪ । ( ବାଟ ) ଦେଖାଇବା—4. To direct or show (the way). ୫ । ପରାମର୍ଶ ଦେବା—5. To advise.

ନ ବଟାଇଲେ ତୁ ସୁଖ ପାଉ । କବିସୂର୍ଯ୍ୟ, କଳେଶାପରାଧ୍ୟ ସ୍ତୁତି ଗୀତ ।

୬ । (ବ୍ୟଙ୍ଗ) ସମସ୍ତ ମନକଥା ଖୋଲି କହି ଗାଳି ଦେବା; ଅପ୍ରିୟ ସତ୍ୟ କହିବା—6. (ironical) To speak unpleasant truths.

ମୁଁ ନୁହେ ଘଟଭୁଡା; ବଟାଇବାକୁ ଛଡା ହୋଇଛ ବଟାଇବ ଭଲେ ହେ କବିସୂର୍ଯ୍ୟ, କବିତା ।

୭ । (ଲକ୍ଷଣାର୍ଥ) ନିର୍ଭୀକଭାବରେ ପ୍ରତ୍ୟୁତ୍ତର ଦେବା— 7. (figurative) To retort boldly.

ସେ କ ବୁଢୀକୁ ଖୁବ୍ ବଟେଇଲା । କୁନ୍ତଳାକୁମାରୀ – ନଅଭୁଣୀ ।

**ବଟା ଛୁଡ଼ିବା**—ପ୍ରାଦେ. (ଗଡ଼ଜାତ) କ୍ରି—ପେଟରୁ କାଚୁଟି ପଡ଼ିବା; Batā chhārḍibā ପେଟରୁ ଜିଆ ପଡ଼ିବା—Falling of big (ବଟାଖସିବା; ବଟାପଡ଼ିବା—ଦେଶଜ ରୂପ) worms with the stools.
ଚାଲୀଗିରନା ফেঁচোপড়া

**ବଟାରି(ଡ଼ି)ବା**—ଦେ. କ୍ରି.—(ସ. ବେତ୍ର,—ଚାଳଘରର ଛତର ବାଉଁଶ Batāri(ṛḍi)bā ଚୁଅ ଉପରେ ବଟାମାନଙ୍କୁ ଶ୍ରେଣୀବଦ୍ଧ କରି ବେତ ବା ଦଉଡ଼ି ଦ୍ୱାରା ବାନ୍ଧିବା—To attach layers of split bamboos to the rafters of a thatched frame by tying them together with strings.
বাখারি বাঁধা **वीटन विछाना**

**ବଟାଲୀ**—ଦେ. ବି—ସାନ ବୋଇତ;—Jolly boat, life boat
Batāli ଘନ ହେଲା, ଦେଖିଲୁଁ, ଧାମଘରଠାଅ ମାଲମୁହାଣ.
পান্সী ଆଉ ରକ୍ଷା ନାହିଁ, ବଟାଲୀକୁ ଓହ୍ଲାଇ ଅଛିଲୁଁ
**डोंगी** ଫକୀରମୋହନ—ଗଳ୍ପସ୍ୱଳ୍ପ ।

**ବଟାସ**—ଦେ. ବି (ସଂ ବାତ)—୧ । ପବନ—1 Wind. ୨ । ପ୍ରଚଣ୍ଡ Batāsa ବାୟୁ; ବତାସ; ତୋଫାନ—2. Storm; hurricane.
বাতাস ବଡହୋଇ ବହିଲ ବଟାସ ଘୋଟିଏ
**बतास, बिहारी** କୃଷ୍ଣସିଂହ. ମହାଭାରତ. ବନ.
୩ । ଏକପ୍ରକାର ବନ୍ୟଗଛ ଓ ତାହାର ନରଖାଦ୍ୟ ଫଳ— 3 A kind of wild tree and its edible fruit.

[ଦ୍ର—ଏହା ଗୁଣରେ ନାରଙ୍ଗ ତୁଲ୍ୟ—ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

**ବଟାସା**—ଦେ. ବି.—ବାତସା (ଦେଖ)
Batāsā Bātasā (See)

**ବଟାସି**—ଦେ. ବି—ବାତାସ (ଦେଖ)
Batāsi Batāsa (See)

ଭୂଇଁ କମ୍ପିଲା; ବଟାସି ବୋହିଲା; ଗଛପତ୍ର ଭାଙ୍ଗି ପଡିଲା ।
ନୀଳକଣ୍ଠ ଦାଶ ·ପିଲାଙ୍କ ରାମାୟଣ·

**ବଟାସିଆ**—ଦେ. ବିଣ.—(ସଂ. ବାତ) ୧ । ବଟାସଯୁକ୍ତ—1. Tempestuous; windy. ୨ । ମିଥ୍ୟାବାଦୀ—2. Lying; ୩ । ଆଡ଼ମ୍ବର ପ୍ରିୟ—3. Loving splendour; showy. ୪ । ବାଗାଡ଼ମ୍ବର ପ୍ରିୟ—4. Boastful.
Batāsiā
ঝোড়ো **बतासी**
বাতাসে
**डींगीया**

**ବଟାସି କୁଟା**—ପ୍ରାଦେ. (ଗଡ଼ଜାତ) ବି.—(ବଟାସରେ ବା ପବନରେ Batāsi kutā ଗୋଟି ଗୋଟି ହୋଇ ଉଡ଼ି ଯାଇଥିବା କୁଟାର ଭାବରୁ) ସରୁ କୁଟା—Thin or slender straw.
(ଯଥା—ସେ ଚଳାରେ ବଟାସୀ କୁଟା ପଡ଼ି ବସିଲାଣି ।)

**ବତି**—ଦେ. ବି. (ସଂ ବର୍ତ୍ତି, ପ୍ରା· ବତ୍ତି)—୧ । ଶଳିତା; ବଳିତା—
Bati 1. A wick.
[ ଦ୍ର—ସୂତା, ତୁଳା ବା କନାକୁ ବଳି ବତି ପ୍ରସ୍ତୁତ କରାଯାଏ; କାଚର ଲ୍ୟାମ୍ପ ଓ ଲଣ୍ଠନ ଆଦିରେ ଜଳିବାପାଇଁ ମୋଟ ଫିତା ଆକାରର ବତି କଳରେ ବୁଣାଯାଏ । ]
বাতী **बत्ती, चिराग** ୨ । ମହମ ବତି—2. Candle.
୩ । ପ୍ରଦୀପ—3. Lamp.

**ବତିଘର(ରା)**—ଦେ ବି.—ସମୁଦ୍ରଗାମୀ ଜାହାଜର ନାବିକମାନଙ୍କୁ ସାବଧାନ Batighara (rā) କରାଇବା ଉଦ୍ଦେଶ୍ୟରେ ସମୁଦ୍ର କୂଳରେ ଏବଂ ବିପଦସଙ୍କୁଳ ସ୍ଥାନ ନିକଟରେ ଉଚ୍ଚ ସ୍ତମ୍ଭ ଉପରେ ଦିଆ ଯାଇଥିବା ଆଲୋକ—Light-house.
বাতীঘর, বাতীঘরা **कंडीलिया; लाईटघर**

**ବତିଝାଡ଼**—ଦେ. ବି—ବହୁ ପ୍ରଦୀପ ଖଞ୍ଜା ହୋଇଥିବା ବୃକ୍ଷାକାର Batijhārḍa ଆଲୋକାଧାର ଯନ୍ତ୍ର; ଦୀପ ବୃକ୍ଷ—Chandelier.
বাতীঝাড় **बत्तीयोंकीझाड**

**ବତିପେଲା**—ଦେ. ବି.—୧ । ଖୋସାମଦିଆ ବ୍ୟକ୍ତି; ଚାଟୁକାର—
Bati pelā 1. A flatterer. ୨ । ଅନ୍ୟ ବ୍ୟକ୍ତିର ସବୁ କାର୍ଯ୍ୟରେ ଅନୁମୋଦକ—(ବତି ଠେଲା—ଅନ୍ୟରୂପ) 2. A slavish approver or follower of a person.
মোসাহেব; খোসামদে **खुसामदी**
খুসামদ **खुसामद्**

**ବତିଭର୍**—ବୈଦେ. ବିଣ. (ଫା ?; ଗାଳିରେ ବ୍ୟବହୃତ) ନିର୍ଲଜ୍ଜ—
Batibhar বেসরম **वेसरमा** Shameless.

**ବତି(ତ୍ରି)ଶ(ଶି)**—ଦେ. ବି ଓ ବିଣ.—(ସଂ.ଦ୍ୱାତ୍ରିଂଶତ୍; ପ୍ରା. ବତ୍ତୀସା)—
Bati(tri)śa(śi) ୩୨ ସଂଖ୍ୟା—32; Thirty-two
বত্রিশ **बत्तीश**

**ବତିଶ(ଶି)ଫେଣିଆ ବନ୍ତଲ**—ଦେ· ବି—ଏକ ପ୍ରକାର ବନ୍ତଲ କଦଳୀ; Batiśa(śi) pheṇiā bantaḷa ମେଣ୍ଢିବନ୍ତଲ—A sort of small plantain.
**बतीसयथीया फेला**
[ ଦ୍ର—ଏଥିର ଫେଣାର ସଂଖ୍ୟା ୩୨ । ]

**ବତି(ତ୍ରି)ଶ ଲକ୍ଷଣ**—ଦେ. ବିଣ. ପୁଂ—ଦେହରେ ବତିଶ ସୁଲକ୍ଷଣଯୁକ୍ତ—
Bati(tri)śa lakshaṇa Having thirty two good signs on the body.
বত্রিশ লক্ষণা [ ବତି(ତ୍ରି)ଶ ଲକ୍ଷଣା—ସ୍ତ୍ରୀ ]

ବତିଶ ଲକ୍ଷଣା ଗୁଣକପୂର୍ଣ୍ଣା—ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

**ବତି(ତ୍ରି)ଶ ସିଂହାସନ**—ଦେ. ବି—( ସଂ. ଦ୍ୱାତ୍ରିଂଶତ୍ ପୁତ୍ତଳିକା )—
Bati(tri)śa siṁhāsana ମହାକବି କାଳିଦାସ ପ୍ରଣୀତ ଉପାଖ୍ୟାନ ଗ୍ରନ୍ଥବିଶେଷର ଓଡ଼ିଆ ଅନୁବାଦ—A legend of the throne (with 32 steps) of king Bikramāditya which was discovered and dug out of the earth by a miraculous chance.
বত্রীশ সিংহাসন **बत्तिस सिंहासन**

[ ଦ୍ର—ବିକ୍ରମାଦିତ୍ୟ ରାଜାଙ୍କର ୩୨ ଟି ପୁତ୍ତଳିକାକୃତି ଅପ୍ସରାଙ୍କ ଦ୍ୱାରା ରକ୍ଷିତ ୩୨ ପାବଚ୍ଛବିଶିଷ୍ଟ ସିଂହାସନ କାଳକ୍ରମେ ଭୂଗର୍ଭରେ ପୋତି ହୋଇ ଯିବାରୁ ଲୋକେ ସେଠାରେ ଗୋରୁ ଚରାଉ ଥିଲେ । ଏକ ସମୟରେ ସେହି ସ୍ଥାନରେ କେତେ-ଗୁଡ଼ିଏ ବାଳକ ଗୋଚାରଣ କରୁଥିଲେ ଓ ସେଥି ମଧ୍ୟରୁ ଜଣେ ଉକ୍ତ ସିଂହାସନ ପୋତା ହୋଇଥିବା ସ୍ଥାନ ଉପରେ ଉପବେଶନ କରିବାରୁ ସେହି ସିଂହାସନର ମାହାତ୍ମ୍ୟରୁ ରାଜାଙ୍କ ତୁଲ୍ୟ ନ୍ୟାୟ-ବିଚାର କଲା । ଏ ବିଷୟ କ୍ରମଶଃ ଜନସାଧାରଣରେ ପ୍ରଚାରିତ ହେବାରୁ ତଦାନୀନ୍ତନ ରାଜା ଭୋଜ ଗୋପାଳବାଳକର ଅଦ୍ଭୁତ ବିଚାରରେ ଚମତ୍କୃତ ହୋଇ ସେ ସ୍ଥାନ ଖୋଳିବାରୁ ଉକ୍ତ ସିଂହାସନଟି ବାହାରିଲା । ଅନନ୍ତର ରାଜା ଭୋଜ ସେ ସିଂହାସନରେ ବସିବାକୁ ଚେଷ୍ଟା କରିବାରୁ ପ୍ରତ୍ୟେକ ପୁତ୍ତଳିକା ବିକ୍ରମାଦିତ୍ୟଙ୍କର ଶୌର୍ଯ୍ୟ ବୀର୍ଯ୍ୟ ଔଦାର୍ଯ୍ୟାଦି ବର୍ଣ୍ଣନ କରି ତାଙ୍କୁ କହିଲେ,—ଯେବେ ତୁମ୍ଭେ ବିକ୍ରମାଦିତ୍ୟଙ୍କ ପରି ଗୁଣଶାଳୀ ହେବେ ଏହି ସିଂହାସନରେ ବସ; ମାତ୍ର ଭୋଜ ସର୍ବଥା ଆପଣାକୁ ଅଯୋଗ୍ୟ ମନେ କରି ତହିଁରେ ବସିଲେ ନାହିଁ । ପରେ ସେ ପୁତ୍ତଳିକାମାନେ ସିଂହାସନଟିକୁ ଧରି ସ୍ୱର୍ଗକୁ ଉଠିଗଲେ । ]

**ବତିଶା**—ଦେ. ବିଣ—୧ । ୩୨ ସମ୍ବନ୍ଧୀୟ—1 Relating to 32.
Batiśā ୨ । ୩୨ ସଂଖ୍ୟକ—2, Numbering 32. ୩ । ୩୨
ବତ୍ରିଶା, ବତ୍ରିଶେ ସଂଖ୍ୟାର ପୂରଣ—3. Thirty second.
**बत्तीसी**
कँठालीकला ଦେ. ବି—୧ । (ସଂ. ନାମ କାଷ୍ଠକଦଳୀ) ଏକପ୍ରକାର
**अँठियाकेला** ଖରସା କାଠିଆ କଦଳୀ; ସଙ୍କର କଦଳୀ—
1. A kind of inferior plantain.
[ ଦ୍ର—ଏ କଦଳୀ ଗୋଲ ଓ ଶ୍ରେଷ୍ଠ । ଲୋକେ ଏହାକୁ ବେଶି ଆଦର କରନ୍ତି ନାହିଁ ଓ ଏଥି ମଧ୍ୟରେ ମଞ୍ଜି ଥାଏ । ]
୨ । ମନୁଷ୍ୟର ଦୁଇ ପାଟିର ସମସ୍ତ ଦାନ୍ତ (ଯାହାର ପୂର୍ଣ୍ଣସଂଖ୍ୟା ୩୨ ଅଟେ )—2. All the teeth of a person.

**ବତୀ**—ସଂ—ପ୍ରତ୍ୟୟ (ସ୍ତ୍ରୀ)—ବତ୍ ପ୍ରତ୍ୟୟାନ୍ତ ଶବ୍ଦର ସ୍ତ୍ରୀଲିଙ୍ଗ—
Batī A suffix which is the feminine form of the suffix bat.
(ଯଥା—ଗୁଣବତୀ, ଧନବତୀ, ବିଦ୍ୟାବତୀ ଇତ୍ୟାଦି ।)

**ବତୁ**—ପ୍ରାଦେ (ଗଞ୍ଜାମ) ବି—୧ । କନ୍ଦୁକ—1. A ball.
Batu ୨ । ସମ ସଂଖ୍ୟା—2. Even number,
(ଯଥା—୨,୪,୬,୮······ଇତ୍ୟାଦି ।)
ପ୍ରାଦେ ( ସମ୍ବଲପୁର )—ବି—ଅଣନାତି—
Great-grandson.

**ବତୁରା**—ଦେ. ବି—ବତୁରାଇବା କାର୍ଯ୍ୟ; ଭିଜାଇବା—Act of
Baturā भिजान **भीगाना** moistening a thing.
भिजा ଦେ. ବିଣ—ଭିଜା ହୋଇଥିବା; ଜଳସିକ୍ତ—Moistened;
**भीगाहुआ** saturated with water.

**ବତୁରା(ରେ)ଇବା**—ଦେ. କ୍ରି—କୌଣସି ପଦାର୍ଥକୁ କିଛିକାଳ ଜଳରେ
Baturā(re)ibā ବୁଡ଼ାଇ ରଖିବା—To keep a thing for
भीजान **भीगाना** sometime immersed in water.

**ବତୁରି (ଇତ୍ୟାଦି)**—ଦେ. ବି—ବତର ଇତ୍ୟାଦି (ଦେଖ)
Baturi (etc) Batara etc (See).

**ବତୁରିବା**—ଦେ. କ୍ରି—ଜଳସିକ୍ତ ହେବା; ଜଳଦ୍ୱାରା ଭିଜିବା—To be
Baturibā moistened with or immersed in water.
भिजा **भीगना** (ବତୁରେଇବା—ଅନ୍ୟରୂପ)

**ବତୁରି ବୁଣା**—ଦେ. ବି—ବତର ବୁଣା (ଦେଖ)
Baturi buṇā Batara buṇā (See).

**ବତ୍ରି ପୋକ**—ପ୍ରାଦେ (ବୌଧ) ବି—ଝିଣ୍ଡିପୋକ; ଝିରପୋକ—
Batri poka Winged white ant.
( ବତୁରି ପୋକ—ଅନ୍ୟରୂପ )

**ବତ୍ରିଶ ଦଉଡ଼ି କଟା**—ପ୍ରାଦେ (ବାଲେଶ୍ୱର) ବି. ଓ ବିଣ—(ଜୁଲା—
Batriśa dauṛdi kaṭā ଦେଶର ବ୍ୟବହାର—ଘର ଦଉଡ଼ି କଟା)—ସର୍ବବିଧ ବନ୍ଧୁ କୁଟୁମ୍ବ ଶୂନ୍ୟ ଲୋକ;
One who has got no relative.

**ବତ୍ସ**—ସଂ ବି—( ବଦ୍ ଧାତୁ=ସ୍ନେହ ସମ୍ଭାଷଣ; କଥନ+କର୍ମ. ସ;
Batsa ଯାହାକୁ ସ୍ନେହ ପୂର୍ବକ ଡକାଯାଏ )—୧ । ପୁତ୍ର—
1, Son; ୨ । ପ୍ରାଣୀର ଛୁଆ—2 The young of an animal. ୩ । ସନ୍ତାନ—3. Child; offspring. ୪ । ଗୋଶିଶୁ; ବାଛୁରୀ—4. A calf. ୫ । ଭାରତୀୟ ପ୍ରଦେଶବିଶେଷ (ଆଧୁନିକ ଦୋଆବ୍ )—4, Name of a country in ancient India ( the modern Doab). ୬ । (ବସ୍ ଧାତୁ=ବାସ କରିବା+ଅଧିକରଣ. ସ; ନିପାତନ) ବତ୍ସର; ବର୍ଷ (ହି. ଶ)—6. Year; a period of 12 months. ୭ । ଶ୍ରୀବତ୍ସ; ପୌରାଣିକ ନରପତି-ବିଶେଷ—7 Name of a mythological king Śrībatsa.
[ ଦ୍ର—ଏ ନରପତି ଲକ୍ଷ୍ମୀ ଓ ଶନିଙ୍କର କଳହ ନିଷ୍ପତ୍ତି କରି ଶନିଙ୍କ କୋପରୁ ବହୁତ କଷ୍ଟ ସହିଥିଲେ । ]
୮ । ଜନୈକ ଭକ୍ତ ବ୍ରାହ୍ମଣ; ଶ୍ରୀବତ୍ସ—
8. A Brahmin devotee.
ବତ୍ସ ପାଦ ଚିହ୍ନ ପରି ହୃଦରେ, ବାହ୍ୟେ ନ ଦିଶି ରଖିଲେ ଉଚରେ—
ଅଙ୍କ. ବୈଦେହୀଶବିଳାସ ।
୯ । ବକ୍ଷଃ; ଛାତି—9. Breast.
ବଇଦର୍ଭୀ ଗୁରୁଙ୍କ ତୁଙ୍କାରିତ, ବତ୍ସେ ସଂଯୋଗି ପତି ରଘୁସୁତ—
ଅଙ୍କ, ବୈଦେହୀଶବିଳାସ ।
୧୦ । ଗୋବତ୍ସାରୂପଧାରୀ କଂସର ଅନୁଚରବିଶେଷ; ବତ୍ସାସୁର—
10. An attendant of Kaṁsa; Batsāsura.
୧୧ । ଇନ୍ଦ୍ରଯବ ( ହି. ଶ. ) ( ଦେଖ )—
11. Indrajaba (See).
ଦେ—ଦ୍ୱାଦଶ ଗୋପାଳ ମଧ୍ୟରୁ ଜଣେ ଗୋପାଳ—
One of the 12 Gopālas.
[ ଦ୍ର—ବାରସୁତି ତଳେ ନୋଟ ଦେଖ । ]
ସଂ ଅ—(ସମ୍ବୋଧନ) (ପୁତ୍ର ଓ ଶିଷ୍ୟ ସ୍ଥାନୀୟ ବ୍ୟକ୍ତିକୁ ସ୍ନେହ) ବାପ !—
(An affectionate term addressed to one's younger)—
Oh child !

ବତ୍ସକ—ସଂ. ବି—(ବତ୍ସ+ସ୍ୱାର୍ଥେ. କ)—୧ । ପୁତ୍ର; ସନ୍ତାନ—
Batsaka 1. Son.
ବତ୍ସକ ଅନୁଭବରେ ଶିଶୀ ଶୋଭାକର — ଭଞ୍ଜ. ବୈଦେହୀଶବିଳାସ ।
୨ । କୁଟଜ (ଦେଖ)—2. Kutaja (See).
୩ । ବାଛୁରୀ—3. Calf.
ବତ୍ସକ ସହ ସୁରଭି ପୟୋଧର ବୃନ୍ଦ ବୃନ୍ଦ ଝଟକନ୍ତି ।
ଭଞ୍ଜ — ବୈଦେହୀଶବିଳାସ ।
୪ । ଇନ୍ଦ୍ରଯବ (ବ୍ର. ଶ) (ଦେଖ)—4. Indrajaba (See).
୫ । ନିର୍ଗୁଣ୍ଡୀ (ବ୍ର. ଶ) (ଦେଖ)—5. Nirgundi (See).

ବତ୍ସ କାମ—ସଂ. ବି. ପୁଂ—(ବହୁବ୍ରୀହି; ବତ୍ସ ଅର୍ଥାତ୍ ସନ୍ତାନ ହୋଇଅଛି
Batsa kāma କାମନା ଯାହାର)—ସନ୍ତାନାଭିଳାଷୀ—Wishing
(ବତ୍ସକାମୀ—ଅନ୍ୟରୂପ) to get a child born to oneself.
(ବତ୍ସକାମା, ବତ୍ସକାମିନୀ—ସ୍ତ୍ରୀ)

ବତ୍ସ ଜାତ—ଦେ. ବି. (ସଂ. ବତ୍ସ=ହୃଦ+ଜାତ)—ସ୍ତନ—
Batsa jāta Female breast.
ବତ୍ସ ଜାତ ହରେ ଦେଲେ କମଳ କର—ଭଞ୍ଜ. ବୈଦେହୀଶବିଳାସ ।

ବତ୍ସ ତନ୍ତ୍ରୀ—ସଂ. ବି—( ୬ଷ୍ଠୀ ତତ୍; ବତ୍ସ+ତନ୍ତ୍ରୀ )—ବାଛୁରି ବାନ୍ଧିବା
Batsa tantrī ଦଉଡ଼ି—A string to tie a calf.

ବତ୍ସତର—ସଂ. ବି. ପୁଂ—( ବତ୍ସ+ତନୁତ୍ୱାର୍ଥେ ତର )—୧ । ଗୋଶିଶୁ;
Batsatara ବାଛୁରୀ; ଅଣ୍ଡିରବାଛୁରୀ; ଦାମୁଡ଼ି—1. A small
(ବତ୍ସତରୀ—ସ୍ତ୍ରୀ) calf; a steer. ୨ । ( ୩ ବର୍ଷର ବାଛୁରୀ
(ବ୍ର. ଶ)—2. A calf 3 years old.

ବତ୍ସ ଦାନ୍ତ—ଦେ. ବି—କାଣ୍ଡ ବା ଶରବିଶେଷ—
Batsa dānta Name of an arrow.
ବତ୍ସ ଦାନ୍ତ କାଣ୍ଡ ଗୁଣରେ ବସାଇ—କୃଷ୍ଣସିଂହ. ମହାଭାରତ ବନ ।

ବତ୍ସ ଦେଶ—ସଂ. ବି—ଦୋଆବର ପ୍ରାଚୀନ ନାମ—The ancient
Batsa deśa name of modern Doab.
କାଳିନ୍ଦୀ-ସମୁନା-ବେଣୀ-ମଥାନର ରୂପା
ଶସ୍ୟଶାଳୀ ବତ୍ସଦେଶୁଁ ଅସ୍ତ୍ରହନ୍ତ ସାଙ୍ଗେ,
ଦଳେ ଦଳେ ଅଶ୍ୱପୃଷ୍ଠେ—ରାଧାନାଥ. ମହାଯାତ୍ରା ।

ବତ୍ସ ନାଭ—ସଂ. ବି—( ବତ୍ସନାଭ+ଭୂଲ୍ୟାର୍ଥେ. ଅ )—ସ୍ଥାବର ବିଷ-
Batsa nābha ବିଶେଷ; ମହୁରୀ—Aconite; Aconitum
ମିଠେବିଷ **मिठाविष, वचनाग** Nepellum.

ଅନ୍ୟ ସଂ ନାମ—ଅମୃତ, ବିଷ, ଉଗ୍ର, ମହୌଷଧ, ଗରଳ, ମାରଣ, ନାଗ, ସ୍ତୋକକ, ପ୍ରାଣହାରକ, ସ୍ଥାବର ।
ମ. ବଚନାଗ
ଗୁ. ବଛନାଗ
ତେ. ନାଭି
ତା. ବସନଭୀ
ଫା. ଜହର
ଆ. ବିଷ

[ ଦ୍ର—ଏହି ଗଛ ହିମାଳୟର ଅତି ଶୀତଳ ସ୍ଥାନରେ ହୁଏ । ଏହାର ପତ୍ର ବେଗୁନିଆ ପଦ୍ମପରି, ଏହାର ଚେର ବାଛୁରିର ନାଭି ପରି, ଏ ବୃକ୍ଷ ପାଖେ ଅନ୍ୟ ଗଛ ଉଠେ ନାହିଁ । ଏହାର ଚେର ବିଷ । ଏହି ଚେର ୩ ଦିନ ଗୋମୂତ୍ରରେ ସିଝାଇ, ଛାଲ କାଢ଼ି ସୋରିଷ ତେଲରେ ବତୁରାଇ ରଖିଲେ ଏହା ଶୋଧିତ ହୁଏ । ଉପଯୁକ୍ତ ମାତ୍ରାରେ ଏହା ରସାୟନ, ଯୋଗବାହୀ, ବାତନାଶକ ଓ ତ୍ରିଦୋଷଘ୍ନ । ]

ବତ୍ସପାଳ—ସଂ. ବି—(ବତ୍ସ+ପାଳ ଧାତୁ+କର୍ତ୍ତୃ. ଅ)—୧ । ଗୋପାଳ;
Batsapāla ଯେ ବାଛୁରୀ ଜଗେ—1. A cowherd.
୨ । ଶ୍ରୀକୃଷ୍ଣ—2. Name of Śrikrushna.

ବତ୍ସର—ସଂ. ବି—( ବସ୍ ଧାତୁ=ବାସ କରିବା+ଅଧିକରଣେ. ସର୍;
Batsara ଯହିଁରେ ଋତୁମାନେ ବାସ କରନ୍ତି)—ବର୍ଷ; ବାରମାସଯୁକ୍ତ
ସମୟ; ଅବ୍ଦ; ସନ; ସାଲ—A year; a period of
twelve months.
ବତ୍ସର ନବମ ଦିନଭିନ୍ନ ସଙ୍ଗ ବହର
ବତ୍ସ(ଦେଶ)ରେ ଭୂତ ଅଦ୍ଭୁତ, ଏହି ଉତ୍‌କଣ୍ଠା ହୋଇ—
ଭଞ୍ଜ. ବୈଦେହୀଶବିଳାସ ।

[ ଦ୍ର—ପୃଥିବୀରେ ବିଭିନ୍ନ ଗଣନାନୁସାରେ ନାନାପ୍ରକାର ବତ୍ସର ପ୍ରଚଳିତ; ଯଥା—ନକ୍ଷତ୍ରମାନ, ସୌରମାନ, ଚାନ୍ଦ୍ରମାନ, ଶକାବ୍ଦ, ଫସଲୀ ବା କୃଷିବର୍ଷ, ହିଜରୀ, ଖ୍ରୀଷ୍ଟାବ୍ଦ, ଶାଳବାହାନାବ୍ଦ, ଇତ୍ୟାଦି ।

ପୂର୍ବେ ଭାରତବର୍ଷରେ ବର୍ଷକ ୩ ଅଂଶ ବା ଋତୁରେ ବିଭକ୍ତ ହେଉଥିଲା, ଯଥା—ଫାଲ୍‌ଗୁନ, ଚୈତ୍ର, ବୈଶାଖ ଓ ଜ୍ୟୈଷ୍ଠ=ଗ୍ରୀଷ୍ମ ଋତୁ; ଆଷାଢ଼, ଶ୍ରାବଣ, ଭାଦ୍ର ଓ ଆଶ୍ୱିନ=ବର୍ଷା ଋତୁ; କାର୍ତ୍ତିକ, ମାର୍ଗଶିର, ପୌଷ ଓ ମାଘ—ହେମନ୍ତ ଋତୁ । ବ୍ରାହ୍ମଣମାନେ ଏହି ଋତୁମାନଙ୍କର ପ୍ରାରମ୍ଭରେ ବା ଅନ୍ତରେ ଯାଗଯଜ୍ଞାଦି ଅନୁଷ୍ଠାନ କରୁଥିଲେ । ହିନ୍ଦୁସନ୍ନ୍ୟାସୀ, ବୌଦ୍ଧଭିକ୍ଷୁ ଓ ଜୈନ ଯତିମାନେ ବର୍ଷା ଚାରି ମାସ ଅନ୍ୟତ୍ର ପରିଭ୍ରମଣ ନ କରି ଆଶ୍ରମରେ ରହୁଥିଲେ । ]

ବତ୍ସରା—ପ୍ରାଦେ. (ସିଂହଭୂମି) ବି (ସଂ. ବତ୍ସରାଦ୍ୟ)—ଚୈତ୍ର ସଂକ୍ରାନ୍ତି;
Batsarā ସୌର ମେଷ ବା ବୈଶାଖ ମାସର ପ୍ରଥମ ଦିନ—
Thd 1st. day of the solar month of Baiśākha.

[ ଦ୍ର—ପ୍ରତିବର୍ଷ ଏ ଦିନ ସିଂହଭୂମି ଜିଲ୍ଲାର କୋଲ୍ହାଣର ଓଡ଼ିଆମାନେ ଘରଦ୍ୱାର ପରିଷ୍କାର କରନ୍ତି, ଝୋଟି ଓ ଅଳ୍ପନା ଓ ତୋରଣ ଇତ୍ୟାଦି ଦ୍ୱାରା ଘରଦ୍ୱାର ସଜାନ୍ତି; ଆପଣା ଆପଣା ଅବସ୍ଥାନୁରୂପ ପୂଜା ପାଠ, କୀର୍ତ୍ତନ ଓ ଭୋଜନର ବ୍ୟବସ୍ଥା କରନ୍ତି । ତୁଳସୀ ଚଉରା ବା ଅଶ୍ୱତ୍ଥ ଗଛରେ ଘଟ ସ୍ଥାପନ ଓ ଜଳ ସେଚନ ଆରମ୍ଭ କରନ୍ତି—ଦୈନିକ ଆଶା ୨୨।୪।୩୪ ]

ବତ୍ସଳ—ସଂ ବିଣ. ପୁଂ—( ବତ୍ସ+ଅସ୍ତି ଅର୍ଥରେ ଲ )—ପୁତ୍ର, ଶିଷ୍ୟ,
Batsala ସନ୍ତାନ ଓ କନିଷ୍ଠଙ୍କ ପ୍ରତି ସ୍ନେହ ବା ଅନୁରାଗଯୁକ୍ତ
(ବତ୍ସଳା—ସ୍ତ୍ରୀ) Loving; affectionate towards one's youngers

[ଦ୍ର—ସାଧାରଣତଃ ଏହା ଆଶ୍ରିତ ଓ କନିଷ୍ଠ ବ୍ୟକ୍ତିସୂଚକ ଶବ୍ଦମାନଙ୍କ ସଙ୍ଗେ ବ୍ୟବହୃତ ହୁଏ ଯଥା;—ସନ୍ତାନବତ୍ସଳ=ଯେ ସନ୍ତାନକୁ ସ୍ନେହ କରେ, ପ୍ରଜାବତ୍ସଳ=ଯେ ପ୍ରଜାଙ୍କୁ ସ୍ନେହ କରେ । ଏହିପରି ପୁତ୍ରବତ୍ସଳ, ଶିଷ୍ୟବତ୍ସଳ, ଆଶ୍ରିତବତ୍ସଳ ଓ ଭକ୍ତବତ୍ସଳ ଇତ୍ୟାଦି ଶବ୍ଦ ହୁଏ ।]

ସଂ. ବି.—( ବତ୍ସଳ+ଭାବ. ଅ )—୧ । ବାତ୍ସଲ୍ୟ; ସ୍ନେହ, ଅନୁରାଗ—1. Affection; love. ୨ । କାବ୍ୟର ରସବିଶେଷ—2. A kind of emotion in fiction

ବତ୍ସଲତା—ସ. ବି.—(ବତ୍ସଲ + ଭାବ॰ ତା)—ସ୍ନେହ; ଅନୁରାଗ; Batsalatā ବାତ୍ସଲ୍ୟ—Affection; love; compassion; attachment.

ବତ୍ସା—ସ. ବି. (ବତ୍ସ+ସ୍ତ୍ରୀ. ଆ)—୧ । ବାଛୁରି—1. Calf. Batsā ଦେ. ବି.—ବତ୍ସାସୁର (ଦେଖ)—2. Batsāsura (See)

ବତ୍ସାଦନୀ—ସ. ବି.—ଗୁଳଞ୍ଚ (ଦେଖ) Batsādanī Gulancha (See)

ବତ୍ସାସୁର—ସ. ବି.—ଦୈତ୍ୟବିଶେଷ— Batsāsura A demon.

ବତ୍ସା ବତ୍ସା ଭାଗେ ହୋଇଲ ନାଶ—ଗଗନ୍ୟ ବଦନ୍ୟଚନ୍ଦ୍ରାମଣି ।

[ଦ୍ର—ଏହି ଦୈତ୍ୟର ବିଷୟ ଭାଗବତ ଦଶମସ୍କନ୍ଧ ଓ ହରିବଂଶରେ ବର୍ଣ୍ଣିତ ହୋଇ ଅଛି । ଏହାକୁ କୃଷ୍ଣ ନିହତ କରିଥିଲେ । ]

ଦେ. ବି.—ବତ୍ସି (ଦେଖ)—Batsi (See)

ବତ୍ସି—ଦେ. ବି. (ପଦ୍ୟ) (ସ. ବତ୍ସ; ସ୍ନେହାର୍ଥକ) – ସନ୍ତାନ— Batsi Son.

ନୃପତି କହେ ଶୁଣ ବତ୍ସି । କୃଷ୍ଣସିଂହ. ମହାଭାରତ. ଅଦି ।

ବଥ—ଦେ. ବି (ସ. ବ୍ୟଥା)—ବ୍ରଣ —Furuncle; a boil; Batha ফোড়া **फोडा** abscess

[ ଦ୍ର—ଅଙ୍ଗଭେଦରେ ବଥର ଭିନ୍ନ ଭିନ୍ନ ନାମ ହୁଏ । ଯଥା;— ପିଠିରେ ପଠା, ପିଲାଙ୍କ ବେକରେ ବେଙ୍ଗୀ, ତଳପାରେ ଛାଲୁକା, ମୁହଁରେ ବରୁଣ, ଅଙ୍ଗୁଠିରେ ଜୟକାଣ୍ଡ ବା ଅନ୍ତାଅଙ୍ଗୁଳ, ଆଖିରେ ଅଲ୍ପଥ, ଲୋମକୂପରେ ବାଳଫୁଟିଆ, ମଳଦ୍ୱାରରେ ମଳକଣ୍ଟକ; କଣ୍ଠରେ ଗଳକଣ୍ଟକ ।]

ବଥର ମଞ୍ଜି—ଦେ. ବି.—ବ୍ରଣ ମଧ୍ୟରେ ଥିବା କଠିନ ଚୂଳମୟ ବସ୍ତୁ— Bathara manji The core inside a boil. ফোড়ার বীচী **फोडाका खील**

ବଥା—ଦେ. ବି. (ସ. ବ୍ୟଥା)—୧ । ବେଦନା; ବ୍ୟଥା; ବିନ୍ଧା — Bathā 1. Aching; acute pain

୨ । ଶୂଳ ରୋଗ— ব্যাথা **टीस** 2. Pang; colic pain.

ବଥା(ଥୋ)ଇବା—ଦେ. କ୍ରି.—(ଶରୀରର ଅଂଶ) ବ୍ୟଥାଯୁକ୍ତ ହେବା; Bathā(tho iba ପୀଡ଼ାଯୁକ୍ତ ହେବା; ବ୍ୟଥିତ ହେବା—To ব্যাথান, ব্যাথাকবা ache; to smart with aching pain. **टीसना**

ବାଜପକୁ ବୋଇଲେ ବଥାଉଛି ମୁଣ୍ଡ, ଗାର ପଣତ ନ ଶୋଇବ ଅର୍ଦ୍ଧଦଣ୍ଡ । କୃଷ୍ଣସିଂହ, ମହାଭାରତ ବନ ।

ବଥୁଆ—ଦେ ବି. (ସ. ବାସ୍ତୁକ; ପ୍ରା. ବତ୍ଥୁଅ)—ଖାଦ୍ୟ ଶାକବିଶେଷ— Bathuā A kind of pot-herb; white goose-foot; Chenopodium Album.

ସ. ବାସ୍ତୁକ, କ୍ଷାରପତ୍ର, ଶାକବଟ, ଯବଶାକ, ଶାକରାଜ, ବସ୍ତୁକ
বেতো, বাথুয়া, বেথুআ
**बथवा, चिल्ली; बथुआ**
ମ. ଶୁକବାଡ, ତବଲ
ତ୍ରକବଲ

[ ଦ୍ର—ଏହା ୨୧୩ ହାତ ଉଚ୍ଚର ଗୁଳ୍ମ; ପତ୍ରର ଦାଢ଼ ଦନ୍ତୁର; ଡେଙ୍ଗ ଲମ୍ବ । ଏହା ଧଳା ଓ ନାଲି ଭେଦରେ ୨ପ୍ରକାର । ନାଲି ବଥୁଆକୁ ସଂସ୍କୃତରେ ଗୌଡ଼-ବାସ୍ତୁକ କହନ୍ତି । ନାଲି ବଥୁଆର ପତ୍ର ଧଳା ବଥୁଆର ପତ୍ର ଅପେକ୍ଷା ବଡ଼ । ଫା. ମୁସେଲସା ସରମକ ବୈଦ୍ୟଶାସ୍ତ୍ର ମତରେ ବଥୁଆ ମଧୁର, କ୍ଷାରଯୁକ୍ତ, ଲଘୁ, ଅଗ୍ନିଦୀପକ, ପାଚକ ରୁଚିପ୍ରଦ, ଶୁକ୍ରବର୍ଦ୍ଧକ, ବଳକର, ସାରକ । ଏହା ପ୍ଲୀହା, ରକ୍ତ, ପିତ୍ତ, ଅର୍ଶ, କୃମି ଓ ତ୍ରିଦୋଷ ନାଶକ । ]

ବଦ୍ (ଧାତୁ)—ସ—୧ । କହିବା—1. To speak. ୨ । ଉଚ୍ଚାରଣ Bad (root) କରିବା—2. To utter; to pronounce. ୩ । ସମ୍ବୋଧନ କରିବା—3. To address; to speak to. ୪ । ପ୍ରଚାର କରିବା—4. To announce. ୫ । ଉପସ୍ଥାପିତ କରିବା—5. To bring up a matter or proposal for consideration. ୬ । ଉଲ୍ଲେଖ କରିବା 6 To name; to allude to. ୭ । ସ୍ଥିର ରହିବା— 7. To remain still. ୮ । ଜ୍ଞାପନ କରିବା—8. To inform; to intimate; to notify.

ବଦ୍—ବୈଦେ. ବିଣ. (ଫା. ବଦ୍=ମନ୍ଦ; ମୂଳ ଇଂ. ବାଡ୍)—୧ । ମନ୍ଦ; Bad ଖରାପ; କୁ—1. Bad; evil. বদ [ ଦ୍ର—ଏହା ଅନ୍ୟ ଶବ୍ଦ ପୂର୍ବରେ ମନ୍ଦ ଅର୍ଥରେ ମଧ୍ୟ **बद** ବ୍ୟବହୃତ ହୁଏ । ଯଥା— ବଦ୍‌ନାମ୍; ବଦ୍‌ମାଏସ୍; ବଦ୍‌ଖିଆଲ୍ ] ୨ । ଅସଚ୍ଚରିତ୍ର—2. Immoral. ୩ । ଦୁଷ୍ଟ— 3. Wicked. ୪ । ଅସୁନ୍ଦର—4 Bad-looking.

ବଦ୍ ଅଭ୍ୟାସ—ଦେ. ବି. (ଫା. ବଦ୍+ସ. ଅଭ୍ୟାସ)—ମନ୍ଦ ଅଭ୍ୟାସ— Bad abhyāsa বদ অভ্যাস **बदखो;बदलत** Bad habit. (ବଦଭ୍ୟାସ—ଅନ୍ୟରୂପ)

ବଦ୍ ଆଚରଣ—ଦେ. ବି. (ଫା. ବଦ୍+ସ. ଆଚରଣ)—ଅସଦାଚରଣ; Bad ācharana ଅସଦ୍‌ବ୍ୟବହାର—Bad character; bad মন্দআচরণ **खराप आचरण; बदचाल** conduct. (ବଦାଚରଣ—ଅନ୍ୟରୂପ)

ବଦ୍ ଆଚାର—ଦେ. ବି. (ଫା. ବଦ୍+ସ. ଆଚାର)—ମନ୍ଦ କାର୍ଯ୍ୟ— Bad āchāra কদাচার **बदचाल** Bad practice. (ବଦାଚାର—ଅନ୍ୟରୂପ) (ବଦାଚାରୀ—ବ୍ୟକ୍ତିବାଚକ ବିଶେଷଣ)

ବଦ୍ କିସ୍ମତ—ବୈଦେ. ବିଣ. (ଫା)—ଅଭାଗା; ହତଭାଗ୍ୟ— Bad-kismat Unfortunate; unlucky. বদকিস্মত ବୈଦେ. ବି. (ଫା. ବଦ୍+କିସ୍ମତ୍)— **बदकिस्मत** ମନ୍ଦ ଭାଗ୍ୟ; ଦୁର୍ଭାଗ୍ୟ—Bad-luck. (ବଦ୍‌କିସ୍ମତିଆ, ବଦ୍‌କିସ୍ମତା—ଦେଶଜ ବିଶେଷଣ ରୂପ)

ବଦ୍ ଖତ୍ - ବୈଦେ. ବି. (ଫା)—ଖରାପ ବା ମନ୍ଦ ଲେଖା ବା ହସ୍ତାକ୍ଷର; Bad khat କଦକ୍ଷର—Clumsy handwriting. বদখত ବିଣ—ଯାହାର ହସ୍ତାକ୍ଷର ଖରାପ— **बदखत** Writing a very clumsy hand.

ବଦ୍ ଖିଆଲ୍ - ବୈଦେ. ବି. (ଫା. ବଦ୍ ଖୟାଲ୍)—୧ । ମନ୍ଦ ଅଭିପ୍ରାୟ; Bad khiāl ଅସତ୍ ଉଦ୍ଦେଶ୍ୟ—1. Bad intention. ୨ । বদখেয়াল ଅସଦାଚରଣ; ଅସଚ୍ଚରିତ୍ର—2. Bad character; bad conduct. ୩ । ଅସଚ୍ଚିନ୍ତା—3. Evil **बदखयाल** thoughts.

ବଦ୍ ଖିଅାଲି—ଦେ. ବିଣ. ପୁଂ—୧ । ଅସଦଭିପ୍ରାୟ ଯୁକ୍ତ—1. Evil-
Bad khiāli intentioned. ୨ । ଅସଚ୍ଚରିତ୍ର—2. Immoral;
ବদখেয়ালী **बदख्याली** of bad character.
(ବଦଖିଅାଲିଅା—ଅନ୍ୟରୂପ) (ବଦ୍‌ଖିଅାଲୀ—ସ୍ତ୍ରୀ)

ବଦ୍‌ଖୋ—ବୈଦେ. ବି (ଫା. ବଦ୍+ଖୋ)—୧ । ବଦ୍‌ଅଭ୍ୟାସ—
Bad-kho 1. Bad habit ୨ । ବଦ୍ ପ୍ରକୃତି 2. Bad
বদঅভ্যাস **बदअभ्यास** (ବଦ୍‌ଖୋଇ—ଅନ୍ୟରୂପ) nature.

ବଦ୍ ଗନ୍ଧ(ନ୍ଧି)—ଦେ. ବି. (ଫା. ବଦ୍+ସ. ଗନ୍ଧ)—ଦୁର୍ଗନ୍ଧ—
Bad gandha(ndhi) বদগন্ধ **बदबु** Bad odour.
ଦେ. ବିଣ—ଦୁର୍ଗନ୍ଧମୟ; ଗନ୍ଧିଆ—Foul-smelling.

ବଦ୍‌ଗୁଣ—ଦେ. ବି. (ଫା ବଦ୍+ସ. ଗୁଣ)—୧ । ଦୁର୍ଗୁଣ; ମନ୍ଦଗୁଣ—
Bad-guṇa 1. Bad quality. ୨ । ମନ୍ଦ ପ୍ରକୃତି—2. Evil
বদগুণ nature. ୩ । ଅବଗୁଣ—3. Misunderstanding.
**अवगुण** (ବଦ୍‌ଗୁଣୀ, ବଦ୍‌ଗୁଣିଆ—ବ୍ୟକ୍ତିବାଚକ ବିଶେଷଣ)

ବଦ୍ ଚାଲ୍(ଲି)—ଦେ. ବି—ମନ୍ଦ ଆଚାର ବ୍ୟବହାର—
Bad chāl(li) Bad behaviour or conduct
বদচলন ଦେ. ବିଣ—୧ । ମନ୍ଦଆଚରଣ ବିଶିଷ୍ଟ—1. Of bad
**बदचलनी** conduct. ୨ । ବ୍ୟସନାସକ୍ତ—2. Dissipated.
(ବଦଚଲମା, ବଦଚାଲିଆ—ଅନ୍ୟରୂପ) **बदचलन; बदचाली**

ବଦ୍ ଜବାନ୍—ବୈଦେ. ବି. (ଫା. ବଦ୍ ଜବାନୀ)—୧ । ଅଶିଷ୍ଟ ଭାଷା—
Bad jabān 1. Filthy or foul language; obscene
বদ জবানী language. ୨ । ଗାଳିମନ୍ଦ—2. Rebuke;abuse
**बदज़बानी** in obscene language; calling evil names.
ବଦ୍ ଜବାନ } ଅନ୍ୟରୂପ ବୈଦେ. ବିଣ—ଅଶିଷ୍ଟଭାଷୀ—
ବଦ୍ ଜମାନ୍ Speaking obscene or uncivil
ବଦ୍ ଜମାନି language.
ବଦ୍ ଜବାନିଆଁ **बदज़बान**

ବଦ୍‌ଜାତ—ବୈଦେ. ବିଣ. (ଫା.ବଦ୍+ଅ ଜାତ୍)—୧ । ଦୁଷ୍ଟ;ଖଳ;
Bad-jāt ଦୁଷ୍ଟ—1. Wicked. ୨ । ନୀଚ—2 Low; mean.
বজ্জাত **बदजात** (ବଦ୍‌ଜାତି—ବି) ୩ । ନୀଚଜାତ—3. Of
low birth.

ବଦ୍‌ଦୁଆ ବୈଦେ. ବି. (ଫା. ବଦ୍+ଅ. ଦୁଆ)—ଅଭିଶାପ—
Bad-duā **बददुआ** Curse.

ବଦ୍ ନଜର୍—ବୈଦେ' ବି. (ଫା)—୧ । ଦ୍ୱେଷ—1. Envy:malice.
Bad-najar ୨ । କୁଦୃଷ୍ଟି ଦୃଷ୍ଟି—2. Malevolent glance;
ছোটনজর **बदनज़र** malignant look.

ବଦ୍ ନଜରି—ଦେ. ବିଣ. ପୁଂ—ଦ୍ୱେଷଯୁକ୍ତ—Envious; malig-
Bad najari ছোটনজরের nant; malicious.
**बदनज़र** (ବଦ୍‌ନଜରିଆ—ଅନ୍ୟରୂପ; ବଦ୍‌ନଜରୀ—ସ୍ତ୍ରୀ)

ବଦ୍‌ନସୀବ୍—ବୈଦେ.ବି. (ଫା)—ମନ୍ଦଭାଗ୍ୟ; ଦୁର୍ଭାଗ୍ୟ—Bad luck;
Bad-nasib বদনসীব **बदनसीब** misfortune.
বদনসীব **बदनसीब** ବୈଦେ. ବିଣ.—ହତଭାଗ୍ୟ—
Unfortunate.

ବଦ୍‌ନା—ଦେ. ବି.—(ହିନ୍ଦୀରୁ ଅନୁକୃତ; ସ. ବର୍ଦ୍ଧମା=କଳସ)—
Bad-nā ମୁସଲମାନଙ୍କ ବ୍ୟବହୃତ ଗଡ଼ୁ ବା ନଳ ଯୁକ୍ତ ପାନପାତ୍ର—
বদনা **बधना** A water-jug with a sprout used by
Mahommedans.

ଘରକୋଣ ଓ ଏଣେତେଣେ ଛଣ୍ଡାଭାଙ୍ଗ ଶି, ଜଳପୂର୍ଣ୍ଣ ବଦ୍‌ନା
ଫକୀରମୋହନ. ଛଅମାଣ ଅଠଗୁଣ୍ଠ

ବଦ୍‌ନାମ୍(ମି)—ଦେ.ବି.(ଫା.ବଦ୍‌ନାମୀ=ଅପକୀର୍ତ୍ତି)—୧ । ଦୁର୍ନାମ; ଅପଯଶ;
Bad-nām (mi) ନିନ୍ଦାବାଦ; ଅପବାଦ—1. Blame; dis-
বদনাম **बदनामी** credit; infamy; defamation; noto-
ବଦନାମ୍ } ଅନ୍ୟରୂପ riety. ୨ । କଳଙ୍କ—2. Stain.
ବଦନାମି } ଦେ. ବିଣ—(ଫା ବଦ୍‌ନାମ୍) ନିନ୍ଦିତ;
(ନେକ୍‌ନାମ—ବିପରୀତ) କଳଙ୍କିତ—Traduced; vilified;
বদনামী **बदनाम** infamous; defamed.

ବଦ୍‌ନାମ୍ କରିବା—ଦେ. କ୍ରି—୧ । କୌଣସିବ୍ୟକ୍ତିଙ୍କୁ ନିନ୍ଦା କରିବା—
Badnām kariba 1. To vilify or traduce a person.
বদনামকরা ୨ । ଅପବାଦ ଦେବା—2. To defame.
**बदनामीकरना** ୩ । କୌଣସି ବ୍ୟକ୍ତିଙ୍କୁ ନିନ୍ଦାଭାଗୀ କରିବା—
3. To bring discredit on a person.

ବଦ୍‌ନାମ୍ ପାଇବା—ଦେ. କ୍ରି—ନିନ୍ଦିତ ବା ଅପବାଦଗ୍ରସ୍ତ ହେବା—
Badnām pāiba To be traduced; to be charac-
ବଦ୍‌ନାମହେବା—ଅନ୍ୟରୂପ terised as a bad man,
বদনাম পাওয়া **बदनाम होना**

ବଦ୍‌ନାମିଆ—ଦେ. ବିଣ. ପୁଂ—(ଫା. ବଦ୍‌ନାମ୍)—୧ । ନିନ୍ଦାଯୁକ୍ତ;
Badn-āmiā ନିନ୍ଦିତ—1. Blamed. ୨ । ନିନ୍ଦାଯୋଗ୍ୟ—
বদনামী **बदनामी** 2. Blameworthy. ୩ । ଯେ ନିନ୍ଦା
(ବଦନାମୀ—ଅନ୍ୟରୂପ) ରଟନା କରେ—3. Vilifying; blas-
(ବଦନାମୀ—ସ୍ତ୍ରୀ) phemous. ୪ । ଯେଉଁ କାର୍ଯ୍ୟରେ ନିନ୍ଦା
ପାଇବାକୁ ହେବ—4. (an act) Bringing dis-
credit on the doer.

ବଦ୍‌ନିୟତ (ତି)—ବୈଦେ. ବିଣ. (ଫା ବଦ୍‌ନିୟତ୍)—୧ । ବେଇମାନ୍;
Bad-niyat(ti) ଦଗାବାଜ; ଅବିଶ୍ୱାସୀ—1. Perfidious;
বদনিয়ত faithless. ୨ । କୃତଘ୍ନ—2. Uagrateful. ୩ । ପ୍ରଭୁର
**बदनियत** ଅପକାରୀ—3. Doing disservice to one's
master; false to one's salt.

বদনিয়তী ବୈଦେ. ବି (ଫା.ବଦ୍‌ନିୟତି) ୧ । ବେଇମାନୀ; ଦଗାବାଜୀ;
**बदनियती** ଅବିଶ୍ୱାସୀପଣ - 1. Perfidy; faithlessness.
୨ । କୃତଘ୍ନତା—2. Ingratitude.

ବଦ୍‌ଫାଇସିଆ—ପ୍ରାଦେ. (କେନ୍ଦ୍ରାପଡ଼ା) ବିଣ—ମନ୍ଦପ୍ରକୃତିକ (ବ୍ୟକ୍ତି)—
Bad-phāisiā Evil-natured; bad.

ବଦ୍‌ବୁ(ବୋ)—ବୈଦେ. ବି (ଫା. ବଦ୍ ବୂ)—ବଦ୍‌ଗନ୍ଧ; ଦୁର୍ଗନ୍ଧ—
Bad-bu(bo) বদবু, বদগন্ধ **बदबू** Foul smell.
(ବଦବୋଇ—ଅନ୍ୟରୂପ) ବୈଦେ. ବିଣ—(ଫା ବଦ୍‌ବୂଦାର୍)ଦୁର୍ଗନ୍ଧ
বদবুদার **बदबूदार** ଯୁକ୍ତ; ପୂତିଗନ୍ଧମୟ—Bad-smelling;
(ଖୁସବୋ—ବିପରୀତ) fetid.

**ବଦ୍‌ବୁ(ବୋ)ଦାର୍**—ବୈଦେ. ବଣ. (ଫା. ବଦ୍‌ବୂଦାର୍)—ଦୁର୍ଗନ୍ଧ ଯୁକ୍ତ—
Bad-bu(bo)dār  बदबूदार  **बदबूदार**  Evil-smelling.

**ବଦ୍‌ବୋଇ କରିବା**—ଦେ. କ୍ରି.—୧ । (କୌଣସିବସ୍ତୁ) ଗନ୍ଧାଇବା—
Bad-boi karibā  1. To emit a bad smell.  ୨ । ବାତ-
बदगंधकरना  **बदबूकरना**  କର୍ମ କରିବା—2. To pass wind
(ବଦ୍‌ବୋ ଦେବା—ଅନ୍ୟରୂପ)  through the anus.

**ବଦ୍‌ମଙ୍ଗଳ**—ଦେ. ବ—(ଫା. ବଦ୍+ସଂ. ମଙ୍ଗଳ)—୧ । ଅମଙ୍ଗଳ; ଅନିଷ୍ଟ
Bad-maṅgaḷa  ଘଟଣା—1. Dissaster; the befalling
अमंगल  **अमवथ**  of evil.  ୨ । ଅମଙ୍ଗଳସୂଚକ ଲକ୍ଷଣ;
ଶକୁନ—2. Evil omen.

ଦେ. ବଣ—ଅମଙ୍ଗଳଜନକ—Ominous; portentious.

ଦେ. ବଣ. ପୁଂ—ଅମଙ୍ଗଳିଆ; ଯେଉଁ ଲୋକର ଉପସ୍ଥିତି ଦ୍ୱାରା
अमंगले  **अमङ्गल**  କୌଣସି କାର୍ଯ୍ୟରେ ଅଶୁଭ ବା ଅମଙ୍ଗଳ
ବଦ୍‌ମଙ୍ଗୁଲୀ } ସ୍ତ୍ରୀ ଘଟେ—One whose presence portends disaster; inauspicious.
ବଦ୍‌ମଙ୍ଗୁଲେଇ }

**ବଦ୍‌ମସ୍ତ**—ବୈଦେ. ବଣ. (ଫା)—୧ । ନିଶାରେ ଚୂର—1. Much
Bad-mast  बदमस्त  **बदमस्त**  intoxicated.
(ବଦ୍‌ମସ୍ତୀ—ବ) ୨ । କାମୋନ୍ମତ୍ତ; ଲମ୍ପଟ  2. Maddend with amor; lecherous.

**ବଦ୍‌ମାସ୍**—ବୈଦେ. ବଣ. (ଫା. ବଦମାଶ୍; ବଦ୍=ମନ୍ଦ+ମଆସ୍=
Bad-mās  ଜୀବିକା)—୧ । ଅନ୍ୟାଯ୍ୟ ଉପାୟରେ ଜୀବିକା ନିର୍ବାହକାରୀ
बदमाएस्, बदमाइस्  बदमास्  1. Pursuing an immoral
**बदमास, बगड, कमिना**  or infamous profession.
ବଦ୍‌ମାଇସ୍ ) ୨ । ଦୁଷ୍ଟ; ଦୁର୍ବୃତ୍ତ; ଖେଡେଡ଼ା; କମଣା—
ବଦ୍‌ମାଇସି ) 2. Wicked; infamous; wanton.
ବଦ୍‌ମାଏସ୍ } ଅନ୍ୟରୂପ
ବଦ୍‌ମାଏସି ) ୩ । ଚରିତ୍ରହୀନ; ନଷ୍ଟଚରିତ୍ର—
ବଦ୍‌ମାସିଆ ) 3. Immoral

ବୈଦେ. ବ.—ମନ୍ଦ ବା ଦୁଷ୍ଟ ବ୍ୟକ୍ତି—Wicked man; a man of evil character; a bad character.

ଏବ ସେ ଜଣେ ମସ୍ତ ବଦମାଏସ୍ ଏବ ଜାଲିମବାଜ ଥିବାହାଲରୁ.
ଫକୀରମୋହନ—ଛମାଣ ଅଠଗୁଣ୍ଠ

**ବଦ୍‌ମାସି**—ବୈଦେ ବ. (ଫା. ବଦ୍‌ମାଶୀ)—୧ । ଦୁଷ୍ଟାମି; ଖେଡ଼ାମୀ-
Bad-māsi  1. Wickedness; wantonness.
बदमाईसी, बदमासी  ୨ । ଚରିତ୍ରହୀନତା—2. Immorality.
**बदमासी**  ୩ । କୁକାର୍ଯ୍ୟ—3. Evil act.  ୪ । ଲାମ୍ପଟ୍ୟ—
ବଦ୍‌ମାଇସି } ଅନ୍ୟରୂପ 4. Adultery.  ୫ । ଇନ୍ଦ୍ରିୟସେବା—
ବଦ୍‌ମାଏସି } 5. Coarse sensuality  ୬ । କାମୁକତା
6. Lechery.

ବୈଦେ. ବ ଓ ବଣ.—ବଦ୍‌ମାସ୍ (ଦେଖ)—Bad-mās (See)

**ବଦ୍‌ମିଜାଜ୍ (ସ୍)**—ବୈଦେ. ବ. (ଫା. ବଦ୍‌ମିଜାଜ୍)—ଉଗ୍ର ପ୍ରକୃତି;
Bad-mijāj (s)  କୋପନ ସ୍ୱଭାବ—Fiery temper; irri-
बद् मेजाज्  **बद् मिजाजी**  table turn of mind.
ବଦ୍‌ମିଜ୍ଜାଜ୍ } ଅନ୍ୟରୂପ  ବଣ—ବଦ୍‌ମିଜାଜୀ (ଦେଖ)
ମିଜ୍ଜାସ୍ }  Bad-mijāji (See).

**ବଦ୍‌ମିଜାଜି(ସି)**—ବୈଦେ. ବଣ.—(ଫା. ବଦ୍‌ମିଜାଜ୍) ୧ । କ୍ରୋଧୀ;
Bad-mijāji(si)  କ୍ରୋଧସ୍ୱଭାବଯୁକ୍ତ—1. Of fiery temper.
बद् मेजाजी  ୨ । ଯେ ହଠାତ୍ ରାଗିଯାଏ; ଚଡ଼ଲ୍; ଚଡ଼ଚଡ଼ା;
**बदमिजाज**  2. Irritable; surly.
ବଦ୍‌ମିଜ୍ଜାଜି(ସି)ଆ )
ବଦ୍‌ମିଜ୍ଜାଜି(ସି) } ଅନ୍ୟ ଦେଶଜ ରୂପ
ବଦ୍‌ମିଜାଜି(ସି)ଆ )

**ବଦ୍‌ମୁହଁ**—ଦେ. ବ (ଫା. ବଦ୍+ସଂ. ମୁଖ) ୧ । ଅମିଷ୍ଟଭାଷୀ ମୁଖ—
Bad-muhañ  बदमुख  1. Evil tongue.
**बदमुहँ**  ୨ । ଅଶିଷ୍ଟ ଭାଷଣ—Evil speech.

**ବଦ୍‌ମୁହାଁ**—ଦେ. ବଣ. ପୁ—(ଫା. ବଦ୍+ସଂ. ମୁଖ) ୧ । ଅଶିଷ୍ଟଭାଷୀ—
Bad-muhāñ 1. Wsing obscene words; evil-tongued,
दुर्मुख  ୨ । ରାଗୀ; କ୍ରୋଧନସ୍ୱଭାବ—2. Irritable; surly.
**बदलगाम**  ୩ । ଯାହାର ବାକ୍ୟରେ ସଂଯମ ନାହିଁ—3 Having
ବଦ୍‌ମୁହାଁ—ସ୍ତ୍ରୀ  no control over one's tongue.
୪ । ଯେଉଁ ଲୋକ ଭବିଷ୍ୟତରେ ଅଶୁଭ ଆଶଙ୍କା କରି କହି ବୁଲେ—
4. Pessimistic.

**ବଦ୍‌ରଙ୍ଗ**—ବୈଦେ. ବ. (ଫା)—୧ । ତାସ୍‌ଖେଳର ରଙ୍ଗ ଖେଳରେ
Bad-raṅga  ଖେଳ ଆରମ୍ଭ ହେବା ପୂର୍ବରୁ ଯେଉଁ ରଙ୍ଗର ତାସ୍
बदरंग  କଟାଯାଇଥାଏ ତାହାଛଡ଼ା ଅନ୍ୟରଙ୍ଗର ତାସ୍—1. (Game
**बदरंग**  of cards) Any card other than the trump
card.  ୨ । ଅସୁନ୍ଦର ରଙ୍ଗ—2. Bad colour.

ବୈଦେ. ବଣ.—୧ । ଅସୁନ୍ଦର ରଙ୍ଗଯୁକ୍ତ—Bad coloured.  ୨ । ଯାହାର ରଙ୍ଗ ଖରାପ ହୋଇ ଥାଏ—
2. Discoloured.  ୩ । ଯାହାର ରଙ୍ଗ ଫିକା ପଡ଼ି ଯାଇ
ଥାଏ—3. Faded.

**ବଦ୍‌ରାଗୀ**—ବୈଦେ. ବଣ. (ଫା.) ବଦ୍+ସଂ. ରାଗ)—ଯେ ସାମାନ୍ୟ
Bad-rāgī  କଥାରେ ହଠାତ୍ ରାଗି ଯାଏ; ଉଗ୍ରସ୍ୱଭାବ, କୋପନ-
बदरागी  ସ୍ୱଭାବ—Of fiery temper; of irritable temper;
**बदमिज़ाज**  easily irritable.

**ବଦ୍‌ରାହା**—ବୈଦେ. ବ. (ଫା. ବଦ୍+ରାହ)—୧ । କୁମାର୍ଗ—
Bad-rāhā  बदराहा  **बदराह**  1. Bad road.
୨ । (ଲକ୍ଷଣାର୍ଥ) ମନ୍ଦ ଆଚରଣ—2. Bad conduct.
ବଣ (ଫା. ବଦ୍‌ରାହ) ୧ । କୁମାର୍ଗଗାମୀ—1. Taking to evil ways.
୨ । ଦୁଷ୍ଟ; ଖଳ—2. Wicked.

**ବଦ୍‌ଲଗାମ**—ବୈଦେ. ବଣ. (ଫା)—ଯେଉଁ ଲୋକର ମୁହଁରେ ବାଡ଼
Bad-lagāma  ବନ୍ଧା ନ ଥାଏ; ଅସଂଯତଭାଷୀ—Of unbridled
बदलागाम  **बदलगाम**  tongue.

**ବଦ୍‌ସୁରତ୍ (ତି)**—ବୈଦେ ବଣ. (ଫା. ବଦ୍‌ସୁରତ୍)—ଅସୁନ୍ଦର; କୁରୂପ
Bad-surat (ti)  बदसूरत  **बदसुरत**  Ugly to look at.
ବ.—ଅସୁନ୍ଦର ରୂପ—Ugly look or appearance.

**ବଦ୍‌ସୁରା**—ବୈଦେ. ବଣ. (ଫା)—ଯେଉଁ ବାଦ୍ୟ ଯନ୍ତ୍ରର ସ୍ୱର ବିଗିଡ଼ି
Badsurā  ଯାଇଥାଏ; ଶୁଦ୍ଧକରି ସ୍ୱରଯୁକ୍ତ. ( ବାଦ୍ୟ ଓ ଯନ୍ତ୍ର )—
बदसूरा  **बदसूरा**  Out of tune (musical instrument).

ବଦ୍‌ହଜମ ମ — ବୈଦେ. ବି. (ପା. ବଦ୍ ହଜମୀ)—
Bad-hajama(mi) ଅଜୀର୍ଣ୍ଣ; ଖାଦ୍ୟ ଦ୍ରବ୍ୟର ଅପରିପାକ—
बद हजम(मि) **बद्‌ हजमि, अपच** Indigestion.
ବୈଦେ. ବିଣ—୧ । ଯେଉଁ ଖାଦ୍ୟଦ୍ୱାରା ଅଜୀର୍ଣ୍ଣ ହୁଏ—
1. Indigestible (food). ୨ । ଅଜୀର୍ଣ୍ଣଜନିତ (ରୋଗ)-
2 (a disease) Due to indigestion.

ବଦ୍ ହବାସ୍—ବୈଦେ. ବିଣ (ପା)—୧ । ବେହୋସ୍; ଚେତନାରହିତ;
Bad-habās ଅଚେତା—1. Unconscious; senseless.
बद हवास ୨ । ବ୍ୟାକୁଳ; ବିକଳ; ଉଦ୍‌ବିଗ୍ନ—2. Perturbed;
**बद्‌ हवास** very anxious. ୩ । କିଂକର୍ତ୍ତବ୍ୟବିମୂଢ଼—
3. Bewildered. ୪ । ଅତି କ୍ଲାନ୍ତ; ଶ୍ରାନ୍ତ—4. Over-tired; fed up.

ବଦ—ସଂ. ବିଣ. (ବଦ୍ ଧାତୁ=କହିବା+କର୍ତ୍ତୃ. ଅ)—ବକ୍ତା; ଯେ
Bada (ବଦା—ସ୍ତ୍ରୀ) କହେ—Speaking (a suffix).
[ ଦ୍ର—ଯଥା—ପ୍ରିୟଂବଦ—ଯେ ପ୍ରିୟ କଥା କହେ—
Speaking pleasant or endearing words.
ବଶଂବଦ—'ମୁଁ ଆପଣଙ୍କର ବଶ ବା ଅଧୀନ' ବୋଲି ଯେ
କହେ; ଆଜ୍ଞାଧୀନ—Obedient; subservient. ]

ବଦତି—ଦେ. କ୍ରି. (ସଂ. ବଦ୍ ଧାତୁ ବର୍ତ୍ତମାନ କାଳ, ୧ମ ପୁରୁଷ, ଏକ
Badati ବଚନ ଆକାର; ପୁରାଣାଦିରେ ବ୍ୟବହୃତ)—
(ସେ) କହୁଛନ୍ତି—(he or she) Speaks.
ବଦତି ଲକ୍ଷ୍ମଣ ଏ କପଟୀ ଏଣ ମାରିତ ନଷ୍ଟସ୍ୱ ।
ଉପେ. ବୈଦେହୀଶବିଳାସ ।

ବଦନ—ସଂ. ବି. (ବଦ୍ ଧାତୁ=କହିବା+କରଣ. ଅନ; ଯାହା ଦ୍ୱାରା
Badana ଲୋକେ କଥା କହନ୍ତି)—୧ । ଆନନ; ମୁଖ-1. Face.
୨ । ପାଟି—2. Mouth. ୩ । (+ଭାବ. ଅନ) କହିବା;
କଥନ—3. Speaking.

ବଦନ ଇନ୍ଦୁ—ଦେ. ବି. (ରୂପକ; ବଦନ+ଇନ୍ଦୁ; ସଂ. ବଦନେନ୍ଦୁ)—
Badana indu ଚନ୍ଦ୍ର ସଙ୍ଗେ ତୁଳନା ଯୋଗ୍ୟ ମୁଖ; ମୁଖଚନ୍ଦ୍ର;
ସୁନ୍ଦର ମୁଖ—A beautiful face (like the moon).
[ ଦ୍ର—ମୁଖ ଅର୍ଥବୋଧକ ଅନ୍ୟାନ୍ୟ ଶବ୍ଦ ସଙ୍ଗେ ଚନ୍ଦ୍ର ପର୍ଯ୍ୟାୟର
ଅନ୍ୟ ଶବ୍ଦମାନଙ୍କର ଏହିପରି ରୂପକ କର୍ମଧାରୟ ସମାସ ହୁଏ;
ମୁଖଚନ୍ଦ୍ରମା, ମୁଖେନ୍ଦୁ । ]

ବଦନ ପଦ୍ମ—ସଂ. ବି. (ରୂପକ; ବଦନ+ପଦ୍ମ)—ପଦ୍ମ ପରି ରମଣୀୟ
Badana padma ମୁଖ—A face as beautiful as the lotus.
ବଦନ କମଳ, ବଦନ ସରୋଜ, ବଦନାରବିନ୍ଦ —ଅନ୍ୟରୂପ. [ ଦ୍ର—ମୁଖବାଚକ ଅନ୍ୟାନ୍ୟ ଶବ୍ଦ
ସଙ୍ଗେ ପଦ୍ମବାଚକ ଅନ୍ୟ ଶବ୍ଦର ସମାସରେ
ଏହିପରି ଅନ୍ୟାନ୍ୟ ପଦ ମଧ୍ୟ ନିଷ୍ପନ୍ନ ହୁଏ । ]

ବଦନ ମଣ୍ଡଳ—ସଂ. ବି. (୬ଷ୍ଠୀ ତତ୍; ବଦନ+ମଣ୍ଡଳ)—ମୁଖ ମଣ୍ଡଳ;
Badana mandala ଲଲାଟଠାରୁ ଓଠ ଓ ଏକ କର୍ଣ୍ଣଠାରୁ ଅନ୍ୟ
କର୍ଣ୍ଣ ପର୍ଯ୍ୟନ୍ତ ବିସ୍ତୃତ ମୁଖର ଆୟତନ—The whole
surface of one's face; the facial expression;
the full outline of one's face

ବଦନ ମଧୁ—ସଂ. ବି. (୬ଷ୍ଠୀ ତତ୍)—ଅଧର ମଧୁ; ମୁଖାମୃତ; ମୁହଁରୁ
Badana madhu ବାହାରିବା ନାଳ ବା ଅଇଁଠା—
Saliva or leavings from the mouth of a person.
(ବଦନସୁଧା, ବଦନାମୃତ, ବଦନାସବ—ଅନ୍ୟରୂପ)
[ ଦ୍ର- ଭକ୍ତମାନଙ୍କୁ ଗୁରୁଙ୍କର ଓ ପ୍ରେମିକପ୍ରେମିକାମାନଙ୍କୁ ଅପଣା
ଆପଣା ପ୍ରଣୟପାତ୍ରର ମୁଖନିଃସୃତ ନାଳ ବା ଉଚ୍ଛିଷ୍ଟ ଅମୃତ ପରି
ମଧୁର ଲାଗେ ବୋଲି ଏହି ଉପମା ପ୍ରଚଳିତ । ]

ବଦନା—ଦେ.ବି.ସ୍ତ୍ରୀ.(ଅନ୍ୟ ଶବ୍ଦ ସଙ୍ଗେ 'ସଂବଦନା' ସ୍ଥଳରେ ବ୍ୟବହୃତ)-
Badanī ୧ । ବଦନଯୁକ୍ତା—1. (a suffix used in a
बदना, बदनी compound word, meaning) Faced;
**बदन** having a face.
ଗୁରୁ ଗୁମାନର ଚମ୍ପକ ବରଣୀ ଚନ୍ଦ୍ରବଦନା ଗୁରୁକେଶୀ । କବିସୂର୍ଯ୍ୟ ।
୨ । ସ୍ତ୍ରୀ ଲୋକଙ୍କର ନାମ—2. A name of females.

ବଦନ୍ତୀ—ସଂ. ବି. (ବଦ୍ ଧାତୁ+କର୍ମ ଅନ୍ତୀ)—କଥା; ବାକ୍ୟ (ହି. ଶ)—
Badantī Speech.

ବଦର୍—ବୈଦେ. ବି. (ହି) (ଓଡ଼ିଶା ସେଟ୍‌ଲ୍‌ମେଣ୍ଟ୍ ବିଭାଗର ହିନ୍ଦୁସ୍ଥାନୀ
Badar କର୍ମଚାରୀଙ୍କ ଦ୍ୱାରା ଏ ଦେଶରେ ବ୍ୟବହୃତ ଅର୍ବାଚୀନ ଶବ୍ଦ;
बदर ପା. ବଦର୍=ହିସାବପତ୍ର; ଇଂ. ବଦର୍=ବିରକ୍ତ
**बद्‌र** କରିବା)—ଭୂସମ୍ପତ୍ତି ସମ୍ବନ୍ଧେ ପ୍ରତିଦ୍ୱନ୍ଦୀମାନଙ୍କ ମଧ୍ୟରେ
ବିବାଦ ହେଲେ ସେଟ୍‌ଲ୍‌ମେଣ୍ଟ୍ ହାକିମଙ୍କ ନିକଟରେ ପ୍ରଥମେ
ଯେଉଁ ସରସରି ମକଦ୍ଦମା ଦାଏର କରାଯାଏ—
Preliminary summary dispute regarding
a piece of land between 2 rival claimants
before a Settlement Officer.

ବଦର—ସଂ. ବି. (ସଂ. ବଦ୍ ଧାତୁ=ସ୍ଥିର ରହିବା+କର୍ତ୍ତୃ. ଅର; ଯେଉଁ
Badara ଗଛ କଟା ହେଲେ ସୁଦ୍ଧା ସ୍ଥିର ରହେ, ଅର୍ଥାତ୍ ମରେ
ନାହିଁ)—୧ । ବରକୋଳି (ଦେଖ)—1. Barakoḷi
(See) ୨ । କପା ବକଡ଼ା; କପା ଫଳ—2. The
berry like pod of cotton; the closed pod of cotton.
ଦେ. ବି—ଭଦଭଦଳିଆ; ଲେଉଟ ବୃକ୍ଷବିଶେଷ—
କୋକୋଆରୁ Olase Scandens tree (Haines).
[ ଦ୍ର—ଏ ଗଛ ଦେଢ଼ ପୁରୁଷ ପର୍ଯ୍ୟନ୍ତ ଉଚ୍ଚ ହୁଏ; ଫଳ ଅଗ୍ରୁଠି
ଟୁପ ପରି ଓ ଶିବଲିଙ୍ଗ ଆକୃତିବିଶିଷ୍ଟ ଓ ତାହାର ଅଗରେ ଖୋପା
ନ ଥାଇ ଫଳ ମୂଳରୁ ଅଧ ପର୍ଯ୍ୟନ୍ତ ଖୋପା ବକଲକୁ ଘୋଡ଼ାଇ
ଥାଏ । ଏ ଫଳକୁ ଖାଆନ୍ତି ଓ କୋମଳ ପତ୍ର ଶାଗ ହୁଏ । ]

ବଦରାମଳକ—ସଂ. ବି—ପାଣି ଅଁଳା (ହି. ଶ) (ଦେଖ)
Badarāmaḷaka Pāṇi a-ṅḷā (See)

ବଦରି(ରୀ)—ସଂ. ବି. (ସଂ. ବଦ୍ ଧାତୁ=ସ୍ଥିର ରହିବା+ଅର+ଇ(ଈ)]—
Badari(rī) ବଦର (ଦେଖ)—Badara (See)

**ବଦରିକା**—ସଂ. ବି. (ବଦ୍ ଧାତୁ=ସ୍ଥିର ରହିବା+କର୍ତ୍ତି. ଅର+କ
Badarikā +ଆ)—ବଦର (ଦେଖ)—Badara (See)
ସଂ. ବି—ବଦରିକାଶ୍ରମ (ଦେଖ)
Badarikāśrama (See)
ଏବେ ଭୁ ଶୀଘ୍ରେ ଚଳ ଏହା
ଅଶ୍ରମ ନାମେ ବଦରିକା । ଜଗନ୍ନାଥ, ଭାଗବତ ।

**ବଦରିକାଶ୍ରମ**—ସଂ. ବି—ବଦ୍ରିକାଶ୍ରମ; ହିମାଳୟ କ୍ରୋଡ଼ରେ ଗଡ଼ବାଲ୍
Badarikāśrama ପ୍ରଦେଶସ୍ଥ ଅଲକାନନ୍ଦା ନଦୀର ପଶ୍ଚିମ ତୀର-
(ବଦରି ଶୈଳ—ଅନ୍ୟରୂପ) ବର୍ତ୍ତୀ ପ୍ରସିଦ୍ଧ ହିନ୍ଦୁ ତୀର୍ଥ—
The name of a place of Hindu pilgrimage on the Himalayas, formerly a famous place of hermitage.
[ ଦ୍ର—ଏହା ପୂର୍ବେ ଗୋଟିଏ ତପସ୍ୟାକ୍ଷେତ୍ର ଥିଲା । ଏହିଠାରେ ଋଷିମାନେ ପୁରାଣମାନ ପ୍ରକଟନ କରୁଥିଲେ । ଏହା ବ୍ୟାସଦେବଙ୍କ ଆଶ୍ରମସ୍ଥଳ ବୋଲି ବିଖ୍ୟାତ । ଏହାହିଁ ଭାରତର ପ୍ରଧାନ ତୀର୍ଥ ବଦ୍ରିକା ଓ ଏହା ଭାରତପ୍ରସିଦ୍ଧ ୪ ଗୋଟି ହିନ୍ଦୁଧାମ ମଧ୍ୟରୁ ଗୋଟିଏ । ଏଠାର ଦେବତା ବଦ୍ରିନାଥ । ଏହା ବର୍ଷ ମଧ୍ୟରେ ୬ ମାସ ବରଫରେ ଆବୃତ ଓ ଅଗମ୍ୟ ହୁଏ । କଥିତ ଅଛି ଯେ ଏହାନିକଟସ୍ଥ ହିମାଳୟର ଭୃଗୁତୁଙ୍ଗ ନାମକ ଶୃଙ୍ଗ ଉପରେ ଥିବା ଗୋଟିଏ ବଦରି (ବରକୋଳି) ଗଛରୁ ଏ କ୍ଷେତ୍ରର ନାମକରଣ ହୋଇ-ଥିଲା । ମହାଭାରତରେ ଲେଖାଅଛି ଯେ ଏହିଠାରେ ଗଙ୍ଗା ନଦୀର ଉଷ୍ଣ ଓ ଶୀତଳ ଦୁଇଟି ଧାର ଥିଲା ଓ ଏହାର ବାଲି ସୁନା ଥିଲା, ଦେବତାମାନେ ଏହିଠାରେ ତପସ୍ୟା କରି ବିଷ୍ଣୁଙ୍କୁ ପାଇଥିଲେ । ଗନ୍ଧମାଦନ, ବଦରୀ, ନରନାରାୟଣ ଓ କୁବେର ଶୃଙ୍ଗମାନ ଏହି ତୀର୍ଥର ଅନ୍ତର୍ଗତ । ନରନାରାୟଣ ଅର୍ଜୁନ ଏହିଠାରେ ତପସ୍ୟା କରିଥିଲେ । ପାଣ୍ଡବମାନେ ମହାପ୍ରସ୍ଥାନ କାଳରେ ଏହିଠାକୁ ଯାଇଥିଲେ । ବୈଷ୍ଣବମାନଙ୍କର ସବୁ ତୀର୍ଥ ମଧ୍ୟରେ ଏହା ଶ୍ରେଷ୍ଠ ଥିବାର ବିଷ୍ଣୁ ପୁରାଣରେ ଲେଖା ଅଛି—ହି. ଶ ]

**ବଦରି(ରୀ) ନାରାୟଣ**—ଦେ. ବି—ବଦ୍ରିକାଶ୍ରମର ଅଧିଷ୍ଠାତା ଦେବ—
Badari(rī) nārāyaṇa The presiding Deity of
বদ্রিনারায়ণ **बद्री नारायण** Badrinārāyaṇa.
(ବଦ୍ରିନାଥ, ବଦ୍ରିନାରାୟଣ—ଅନ୍ୟରୂପ) [ଦ୍ର—ଏହା ବିଷ୍ଣୁ ମୂର୍ତ୍ତି ଅଟେ । ]
ବଦରି ନାରାୟଣାଶ୍ରମେ
କାନନେ ଚଳ ଯଥାକ୍ରମେ । ଜଗନ୍ନାଥ, ଭାଗବତ ।

**ବଦଲ**—ବୈଦେ. ବି. (ଆ. ବଦଲ୍)—୧ । ପରିବର୍ତ୍ତନ;
Badala বদল **बदल** 1. Change; substitution.
୨ । ବିନିମୟ; ହେରଫେର—2. Exchange. ୩ । ପଣ୍ୟ-ବିନିମୟ—3. Barter. ୪ । ଏକ ପଦାର୍ଥର ବିନିମୟରେ ପ୍ରଦତ୍ତ ବା ଆନୀତ ଅନ୍ୟ ପଦାର୍ଥ—4. A substitute. ୫ । ପ୍ରତିଶୋଧ—5 Tit for tat. ୬ । ପ୍ରତିଦାନ—6. A return. ୭ । ଜଣେ କର୍ମଚାରୀର ବା ଭୃତ୍ୟର ସ୍ଥାନରେ ଅନ୍ୟ ଜଣଙ୍କର ଅବସ୍ଥାନ—7. The situation or putting of one officer or servant in the place of another.

ଦେ ବି. ୧ । (ଅ—ବାଦଲ୍=ମେଘ, କିମ୍ବା ସଂ. ବର୍ଦ୍ଦଲ=ଦୁର୍ଦ୍ଦିନ)—
পয়াড় **सलाब** ଏକାଦିକ୍ରମେ ଅତିବୃଷ୍ଟି ଯୋଗୁଁ କ୍ଷେତରେ ଜଳପୂର୍ଣ୍ଣ ହେବା ଅବସ୍ଥା—1. Overflowing condition of the fields owing to very heavy rain. ୨ । ଜଳପ୍ରଳୟ, ଜଳପ୍ଳାବନ—2. Deluge due to incessant rain.

**ବଦଲ କରିବା**—ଦେ. କ୍ରି—ବିନିମୟ କରିବା; କୌଣସି ବସ୍ତୁ
Badala karibā ପରିବର୍ତ୍ତରେ ଅନ୍ୟ ବସ୍ତୁକୁ ଦେବା ବା
বদল করা ନେବା—To barter; to exchange a thing
**बदल करना** for another.

**ବଦଲ ଦେବା**—ଦେ. କ୍ରି—ଅନ୍ୟ ବସ୍ତୁ ଆଣିବା ପାଇଁ ଆପଣା ନିକଟସ୍ଥ
Badala debā କୌଣସି ବସ୍ତୁକୁ ଦେବା—To give a thing
বদল দেওয়া **बदलदेना** in exchange.

**ବଦଲ ନେବା**—ଦେ. କ୍ରି—ଆପଣା ନିକଟର କୌଣସି ବସ୍ତୁକୁ ଅନ୍ୟକୁ
Badala nebā ଦେଇ ଅନ୍ୟର ବସ୍ତୁକୁ ଆପେ ନେବା—To
বদল লওয়া **बदल लेना** take a thing in exchange.

**ବଦଲ ପଡ଼ିବା**—ଦେ. ବି-ଏକାଦିକ୍ରମରେ ବହୁଜଳ ବୃଷ୍ଟିଯୋଗୁଁ କୌଣସି
Badala paṛibā ଅଞ୍ଚଳ ଜଳପୂର୍ଣ୍ଣ ହୋଇ ସବୁଆଡ଼ ବିସ୍ତୀର୍ଣ୍ଣ
পয়াড় বহা ଜଳାଶୟପରି ଦେଖାଯିବା—The country being
**सैलाव होना** overflooded and turned into a vast sheet of water on account of incessant heavy rain.

**ବଦଲରେ**—ଦେ. ଅ—୧ । ଅମୁକର ପରିବର୍ତ୍ତେ—1. Instead of.
Badalare ୨ । ଅମୁକର ସ୍ଥାନରେ—2. In the place of;
বদলে in lieu of. ୩ । ଅମୁକ ଦ୍ରବ୍ୟର ବିନିମୟରେ—
**बदलेमे** 3. In exchange of.

**ବଦଲା**—ବୈଦେ. ବି—(ଆ. ବଦଲାଇ)—ବଦଲ କରିବା କ୍ରିୟା—
Badalā Act of changing or exchanging.
বদলান ଦେ. ବିଣ—ବଦଲ କରାଯାଇଥିବା—
**बदला** Changed; exchanged.

**ବଦଲା(ଲେ)ଇବା**—ଦେ. କ୍ରି—(ବଦଳିବା କ୍ରିୟାର ଣିଜନ୍ତରୂପ—
Badalā(le)ibā Causative of Badalibā)-୧ । ବିନିମୟ
বদলান କରିବା—1. To barter. ୨ । ପୁରୁଣା ଜିନିଷ ଦେଇ
**बदलाना, बदलवाना** ନୂଆ ଜିନିଷ ଆଣିବା—2. To get an old thing exchanged for a new one.

**ବଦଲା ବଦଳି**—ଦେ. ବି—( ଆ. ବଦଲ୍ )—୧ । ଅନ୍ୟୋନ୍ୟରେ
Badalā badali ପରିବର୍ତ୍ତନ; ଅଦଲ ବଦଲ—1. Exchange.
বদলা বদলি ୨ । ପରସ୍ପର ସ୍ଥାନପରିବର୍ତ୍ତନ—2. Change of
**बदला बदलि, बदलौवल** places.
୩ । ପଣ୍ୟଦ୍ରବ୍ୟାଦିର ବିନିମୟ—3. Barter.

**ବଦଳି**—ବେଦେ· ବି—(ଆ. ବଦଲ୍ଇ)—୧ । ପରିବର୍ତ୍ତନ—
Badali 1. Chang ୨ । ବିନିମୟ—2. Exchange; barter.
বদলী ୩ । ସ୍ଥାନାନ୍ତର କରଣ—3. Transfer.
**बदली** ୪ । ଏକ ସ୍ଥାନରୁ ଚାକିରି ପରିବର୍ତ୍ତରେ ଅନ୍ୟ ସ୍ଥାନରେ ଚାକିରିରେ ନିଯୁକ୍ତି—4. Transfer of service from one place to another. ୫ । ପ୍ରତିନିଧି—5. Deputy; representative; locum tenens.

ବୈଦେ॰ ବିଣ—୧ । ସ୍ଥାନାନ୍ତରିତ—1. Transferred from one place to another. ୨ । ପରିବର୍ତ୍ତିତ—2. Changed. ୩ । ପ୍ରତିଦତ୍ତ—3. Bartered; given or taken in exchange.

ବଦଲିଆ—ବୈଦେ.ବି (ଅ.ବଦଲ୍ଲଇ)—୧ । ଦୁଇ ଜଣ ଚଷାଙ୍କ ମଧ୍ୟରେ Badalia ମୂଲ ପରିବର୍ତ୍ତରେ ହଳ ବଳଦ ବା ମୂଲିଆ କାମର বদলী ବିନିମୟ ରୀତି—1. A system current amongst अँगोरिया, भाँज poor cultivators of exchanging one man's bullocks and plough for another's labour and vice versa. ୨ । ଚାକର ଛୁଟି ନେବା ସମୟ ପାଇଁ ସେ ଯେଉଁ ଅନ୍ୟ ଚାକରକୁ ତା ଚାକିରିରେ ରଖାଏ—2. A temporary substitute given by a servant; locum tenens.

বদলী बदला ୩ । ପ୍ରତିନିଧି—3. Deputy; representative.

ବଦଳି କରିବା—ଦେ. କ୍ରି—୧ । କୌଣସି କର୍ମଚାରୀଙ୍କୁ ସ୍ଥାନାନ୍ତରକୁ Badali kariba ଯିବାକୁ ଆଦେଶ ଦେବା—1. To pass বদলীকরা order for transfer of a person in बदलि करना service. ୨ । ପରିବର୍ତ୍ତନ କରିବା—2. To change. ୩ । ପଣ୍ୟଦ୍ରବ୍ୟାଦିର ବିନିମୟ କରିବା—3. To exchange; to barter.

ବଦଳିବା—ଦେ॰ କ୍ରି—(ଫା. ବଦଲ୍‌ନା)—୧ । ପରିବର୍ତ୍ତିତ ହେବା—Badaliba 1. To change; to be changed. ୨ । ପିନ୍ଧି বদলা ଥିବା ଲୁଗାକୁ ପାଲଟିବା—2. To change clothes; बदलना to put off an old and put on a new cloth instead. ୩ । ଅନ୍ୟଥା ହେବା—3 To turn otherwise.

ବଦଳି ହୁକୁମ—ବୈଦେ॰ ବି-(ଫା. ବଦଲ୍ଲଇ+ହୁକୁମ୍)—କର୍ମଚାରୀଙ୍କର Badali hukuma କାର୍ଯ୍ୟସ୍ଥାନ ପରିବର୍ତ୍ତନର ଆଦେଶ—বদলী হুকুম Order for transfer of service. बदलि हुकुम

ବଦସ୍ତ—ବୈଦେ. ଅ—(କଚେରିଆ)—( ଫା॰ ବଦସ୍ତ୍=ହାତଦ୍ୱାରା )—Badasta ଦସ୍ତ ବଦସ୍ତ; ହାତେ ହାତେ; ନଗଦ—Hand to বদস্ত बदस्त hand; in cash.

[ ଦ୍ର—କବାଲା ଓ ଦଲିଲ ଆଦିରେ ବ୍ୟବହୃତ; ଯଥା—ତୁମ୍ଭେ ମୁସ୍ତରିଙ୍କୁ ଆମ୍ଭେ ବାସ୍ତା ଏ ଜମି ବିକ୍ରୟ କରି ଆଜଦିନ ଦସ୍ତବଦସ୍ତ ତୁମ୍ଭଠାରୁ ବବାକ୍ ଜରସମନ୍ ଟଙ୍କା ବୁଝିନେଲୁଁ । ]

ବଦସ୍ତୁର୍—ବୈଦେ.ଅ.(ଫା)(କଚେରିଆ)—ରୀତି ଅନୁସାରେ; ରୀତିମତେ—Badastur According to the prevailing custom বদস্তুর बदस्तूर or practice.

ବଡାଇ—ଦେ. ବି.—୧ । ବଧାଇ (ଦେଖ)—1 Badhai (see). Badai. ୨ । ରସଦ; ସିଧାସାମଗ୍ରୀ—Rasad; provisions; victuals presented to a guest.

ବଦା(ଦେ)ଇବା—ଦେ. କ୍ରି.—(ପଦ୍ୟ)—୧ । (ବଦିବା କ୍ରିୟାର Bada (de) iba. ଣିଜନ୍ତରୂପ—Causative of Badiba) —ହି. ବଦାନା, ଲଲକାରନା—ଡୁହାଇବା; ଡକାଇବା —To cause to speak or call. ୨ । ଯୁଦ୍ଧକୁ ଅନ୍ୟକୁ ଆହ୍ୱାନ କରିବା—2. To call upon a person to fight; to challenge.

ବଦାଇଛୁ ନେଇ ସମରେ ମୁଁ ଏବେ—ଉତ୍କ. ବୈଦେହୀଶବିଳାସ ।

ବଦାଉ—ଦେ. ବି.—୧ । ଖଡ୍ଗର ଫଳକ—1. The blade of a Badau weapon. ବଦାଉ ଗଲେ ଚେଇଁ ଖଡ୍ଗଫଳକ—ଉତ୍କ. ବୈଦେହୀଶବିଳାସ ।

୨ । ଅସ୍ତ୍ରବିଶେଷ—2. A kind of weapon.

ବାଦଇ କ ପକ୍ଷ କକ୍ଷ ସାଜେ । ଉତ୍କ॰ବୈଦେହୀଶବିଳାସ ।

ललकारा ୩ । ଯୁଦ୍ଧ କରିବା ପାଇଁ ବିପକ୍ଷକୁ ଆହ୍ୱାନ—3. A call to the adversary for a fight; challenge.

ବଦାଡ଼—ବୈଦେ. ବି. ( ଅ. ବାଦ୍ୟା=ବନ— ଯୋଗେଶ୍ଚନ୍ଦ୍ର) Badarda ୧ । ଜଙ୍ଗଲ—1. Jungle; forest. ୨ । ବଣ-ବୁଦା; বাদাড় बादाद —2. Wild trees and bushses growing in an intermingled manner.

ବଦାଡ଼ି—ଦେ. ବି.—ବଦାଡ଼ (ଦେଖ)—Badarda (see). Badardi ଦେ.ବିଣ.—ବଦାଡ଼ିଆ (ଦେଖ)—Badardia (See)

ପ୍ରାଦେ (ଯାଜପୁର). ବି.—ଗଦା; ଧାନ ହଳାର ଗଦା—A heap of paddy sheaves.

ଯଥା କୃଷିବଳ, ଖଙ୍ଗ ବଦାଡ଼ି ପକୁଣେ ।
କଚୁଡ଼େ କଚଡ଼ା ବଡ଼ା ଖଳାବଡ଼ି ପରେ—ଚନ୍ଦ୍ରାମଣି, ଲକ୍ଷଚଲଳନା.

ବଦାଡ଼ିଆ—ଦେ. ବିଣ—ଅରଣ୍ୟମୟ—Jungly. Badardia বাদাড়ে जंगली

ବଦା(ଦ)ନ୍ୟ—ସଂ. ବିଣ. ପୁଂ—(ବଦ୍ ଧାତୁ=କହିବା+କର୍ତ୍ତୃ. ଅନ୍ୟ; Bada(da)nya ଯେ ମଧୁର ସମ୍ଭାଷଣ କରେ)—୧ । ମଧୁରଭାଷୀ—[ବଦା(ଦ)ନ୍ୟା—ସ୍ତ୍ରୀ] 1. Sweet-speaking. ୨ । ଦାନଶୀଳ; 2. Liberal; charitable; generous; munificent ୩ । ଉଦାର—3. Liberal-minded.

ବଦାନ୍ୟତା—ସଂ. ବି—(ବଦାନ୍ୟ+ଭାବ. ତା)—୧ । ଦାନଶୀଳତା—Badanyata 1. Generosity; liberality. ୨ । ଉଦାରତା—2. Liberal-mindedness; broadness of view.

ବଦାବଦ(ଦି)ହେବା—ଦେ.କ୍ରି. (ପ୍ରାଚୀନ ପ୍ରୟୋଗ)—ପରସ୍ପର କୁହାକୁହି Badabadi(ji)heba ହେବା—To speak mutually; to बदाबदि होना converse.

ବଦାବଦି ଯାଉଥିଲେ ଲକେ ବେନି ଏ ଶୋଭା ଦୃଶ୍ୟନ୍ତା ଦର୍ଶନ ।
ଉତ୍କ॰ ବୈଦେହୀଶବିଳାସ ।

ବଦାଯିବା—ପ୍ରାଦେ. (ସମ୍ବଲପୁର) କ୍ରି—(ଗ୍ରାମ ଦେବତାଙ୍କୁ ବୋଦାଆଦି) Badajiba ଯଙ୍ଗୁଯିବା—To be vowed to be given; (a victim) to be offered to a Goddess.

ବଦାରିବା—ପ୍ରାଦେ. (ଜୟପୁର) କ୍ରି—(ଘାସ,ଧାନ ବା ପାଳ ଆଦି) ଗଦା Badariba କରିବା—To heap up (straw etc).

ବଦାଳିଆ—ଦେ. ବି—ବଦର (ଦେଖ) Badalia Badara (See)

**ବଢ଼**—ବୈଦେ. ବି. (ଫା. ବଦ୍‌ଈ)—୧ । ବଦ୍‌ନାମ; ଦୁର୍ନାମ—
Badi 1. Defamation; bad reputation. ୨ । ଦାୟିତ୍ୱ—
बदी 2. Responsibility. ୩ । ଅପକାର—3. Injury.
**बदी** (ବଦେଇ—ଦେଶଜ ରୂପ) ୪ । ମନ୍ଦତା—4. Badness.
[ ଦ୍ର—ଏ ଶବ୍ଦ ଫା. 'ନେକ' ସହ ବ୍ୟବହୃତ ହୋଇ ନେକ ବଦ ଶବ୍ଦ(=ସୁନାମ ଓ ଦୁର୍ନାମ; ପୁରସ୍କାର ଓ ଦଣ୍ଡ; ଭଲ ମନ୍ଦ ଫଳର ଦାୟିତ୍ୱ ଅର୍ଥରେ) ବ୍ୟବହୃତ ହୁଏ । ]
(ସୁଦି—ବିପରୀତ) ୩ । (ମାରୱାଡ଼ିଙ୍କ ଭାଷା; ହି. ସଂ. ଅବଦାତ)—
କୃଷ୍ଣପକ୍ଷ—3. The dark fortnight of a month.

**ବଢ଼ିବା**—ଦେ. କ୍ରି. (ପଦ୍ୟ) (ସଂ. ବଦ୍ ଧାତୁ) (ପ୍ରାଚୀନ ପ୍ରୟୋଗ)—
Badiba बदा **बदना** କହିବା—To speak.
ପ୍ରାଦେ. (ସମ୍ବଲପୁର) କ୍ରି—ମନାସିବା; ଦେବତାଙ୍କୁ ବୋଦା ମାନସିକ କରିବା; ଯାଚିବା—To vow to offer victims to a Goddess.

**ବଢ଼ୁ**—ପ୍ରାଦେ. (ଗଞ୍ଜାମ) ବି—ଦୁଆରବନ୍ଧର ଚଉକାଠ ଉପରେ ଖୋଳା ଯିବା ରେଖା ଚିତ୍ର—Figures carved above the
Badu door-frame.

**ବଦୁରୁଲି**—ଦେ. ବି. (ସଂ. ବଦର)—ବଦର (ଦେଖ)
Baduruli Badara (See)

**ବଦ୍ଧ**—ସଂ. ବିଣ, (ବନ୍ଧ ଧାତୁ=ବାନ୍ଧିବା+କର୍ମ. ତ)—୧ । ବନ୍ଦ କରା
Baddha ଯାଇ ଥିବା—1. Shut; closed. ୨ । ବନ୍ଧନ
(ମୁକ୍ତ—ବିପରୀତ) କରାଯାଇ ଥିବା—2. Bound. ୩ । ଗ୍ରଥିତ; ବନ୍ଧା ହୋଇଥିବା—3. Tied; strung together. ୪ । ସଂଯତ; ନିୟମିତ; ବ୍ୟବସ୍ଥିତ—4. Constrained; regulated. ୫ । ଅଟକା ଯାଇଥିବା—5. Restrained, with-held. ୬ । ଦମିତ; ନିବାରିତ—6. Checked; suppressed. ୭ । ଏକତ୍ର; ସମ୍ମିଳିତ—7. Joined together; assembled. ୮ । ସଜ୍ଜିତ—8. Arranged. ୯ । ଅବରୁଦ୍ଧ—9. Confined. ୧୦ । ଯାହାର ସ୍ରୋତ ରୁଦ୍ଧ ହୋଇଥାଏ—10. Stagnant. ୧୧ । ଉତ୍ପାଦିତ; ଉତ୍ପନ୍ନ—11. Produced. ୧୨ । ନିହିତ—12. Directed. ୧୩ । ଅନ୍ୟ ସଙ୍ଗେ ସଂଯୋଜିତ—13. Linked to another. ୧୪ । ନିର୍ଦ୍ଧାରିତ; ନିର୍ଦ୍ଦିଷ୍ଟ (ହି. ଶ.)—1. Fixed; settled.
ଦେ.ବି—୧ । ଅବରୁଦ୍ଧ ଜଳରେ ବଢ଼ିବା ଦଳଆଦିର ସ୍ଥୂଳ ସ୍ତର—
दल 1. A thick layer of weeds spreading over stagnant water. ୨ । ଦେହରେ ମୋଟ ହୋଇ ବସିଥିବା ମଇଳା—2. A thick layer of dirt accumulating on the body.

**ବଦ୍ଧକ**—ସଂ. ବି. (ବଦ୍ଧ+କ)—କଏଦୀ; ବନ୍ଦୀ (ହି. ଶ.)—
Baddhaka Prisoner.

**ବଦ୍ଧ କୋଷ୍ଠ**—ସଂ. ବି. (ବହୁବ୍ରୀହି; ବଦ୍ଧ+କୋଷ୍ଠ)—ଝାଡ଼ା କଷଣ ରୋଗ; ସଫାଝାଡ଼ା ନ ହେବା ରୋଗ—
Baddha koshṭha Habitual constipation.

**ବଦ୍ଧ ଗୁଦୋଦର**—ସଂ. ବି—ଏକପ୍ରକାର କୋଷ୍ଠବଦ୍ଧ ରୋଗ—
Baddha gudodara A kind of constipation.
(ବଦ୍ଧୋଦର—ଅନ୍ୟରୂପ) [ ଦ୍ର—ଏଥିରେ ଛାତି ଓ ନାଭି ମଧ୍ୟସ୍ଥ ଉଦରାଂଶ ଫୁଲିଯାଏ ଓ ବହୁକଷ୍ଟରେ ଅଳ୍ପ ଅଳ୍ପ ଝାଡ଼ା ହୁଏ । ଅନ୍ନରେ ଅନ୍ନ, ମାଟି, ବାଲି ଆଦି ମିଶିଲେ ଏ ରୋଗ ହୁଏ । ଅତ୍ୟଧିକ ତୈଳବହୁଳ ଓ ଗୁରୁପାକ ଖାଦ୍ୟ ଖାଇଲେ ଏ ରୋଗ ହୁଏ । ରୋଗୀର ବମନର ମଧ୍ୟ ମଳବତ୍ ଦୁର୍ଗନ୍ଧ ହୁଏ—ହି.ଶ. ]

**ବଦ୍ଧଜଳ**—ସଂ. ବିଣ. (ବହୁବ୍ରୀହି)—ଯେଉଁ ଜଳାଶୟର ପାଣି ଅନ୍ୟତ୍ର
Baddhajaḷa ଯାଇ ନ ପାରି ଅଟକି ରହିଥାଏ—Having stagnant water.

**ବଦ୍ଧ ଦୃଷ୍ଟି**—ସଂ. ବିଣ. (ବହୁବ୍ରୀହି; ବଦ୍ଧ ହୋଇଅଛି ଦୃଷ୍ଟି ଯାହାର)—
Baddha dṛushṭi ନ୍ୟସ୍ତ ଦୃଷ୍ଟି; ସ୍ଥିରଲକ୍ଷ୍ୟ—Staring; with a fixed gaze.
ସଂ. ବି. (କର୍ମଧା)—ଏକସ୍ଥାନରେ ନିବଦ୍ଧ ନିର୍ନିମେଷ ଦୃଷ୍ଟି—
Fixed gaze; stare.

**ବଦ୍ଧପରିକର**—ସଂ. ବିଣ. (ବହୁବ୍ରୀହି; ବଦ୍ଧ ହୋଇଅଛି ପରିକର=
Baddhaparikara କଟିବନ୍ଧ ଯାହାର)—୧ । ଯାହାର ଅଣ୍ଟାରେ କଟିବନ୍ଧ ଭିଡ଼ା ହୋଇଅଛି; ଦୃଢ଼ୀକୃତ କଟିବନ୍ଧ—1. Having one's belt tied to the waiste; girdled. ୨ । (ଲକ୍ଷଣାର୍ଥ) ଦୃଢ଼ପ୍ରତିଜ୍ଞ; କୃତନିଶ୍ଚୟ—2. (figurative) Resolved; determined to do a work. ୩ । କୌଣସି କାର୍ଯ୍ୟ କରିବା ନିମନ୍ତେ ପ୍ରସ୍ତୁତ—3. Prepared to undertake a certain work.

**ବଦ୍ଧ ପାଗଲ(ଲା)**—ଦେ. ବିଣ. ପୁଂ. (ବଙ୍ଗଳାରୁ ଅନୁକୃତ)—
Baddha pāgaḷa(ḷā) ୧ । ଭୁଚ୍ଛା ବାୟା; ପୂର୍ଣ୍ଣରୂପେ ବାୟା—
बद पागल 1. Stark mad. ୨ । ଅତ୍ୟନ୍ତ ନିର୍ବୋଧ—
**बिलकुल पागल; एकदम बावड़ा** 2. Utterly foolish.
ବଦ୍ଧ ପାଗଲ(ଲ)—ଅନ୍ୟରୂପ । ବଦ୍ଧ ପାଗଲୀ(ଲୀ)—ସ୍ତ୍ରୀ
ବଦ୍ଧବାୟା—ପୁଂ, ବଦ୍ଧବାଇ—ସ୍ତ୍ରୀ—ଅନ୍ୟରୂପ

**ବଦ୍ଧମୁଖ**—ସଂ. ବିଣ. (ବହୁବ୍ରୀହି; ବଦ୍ଧ+ମୁଖ)—ଯାହାର ମୁହଁ ବନ୍ଦ
Baddhamukha ହୋଇଥାଏ—Having the mouth closed or shut.

**ବଦ୍ଧମୁଷ୍ଟି**—ସଂ. ବିଣ. (ବହୁବ୍ରୀହି; ବଦ୍ଧମୁଷ୍ଟି)—୧ । ଦୃଢ଼ମୁଷ୍ଟି; ଯେ
Baddhamushṭi ହାତକୁ ମୁଠା କରିଅଛି—1. Having closed up one's fist. ୨ । (ଲକ୍ଷଣାର୍ଥ) କୃପଣ; ବ୍ୟୟକୁଣ୍ଠ—2. (figurative) Miserly; close-fisted; niggardly. ୩ । (ଲକ୍ଷଣାର୍ଥ) ଦୃଢ଼ପ୍ରତିଜ୍ଞ; କୃତନିଶ୍ଚୟ—3. (figurative) Resolved; determined.

**ବଦ୍ଧମୂଳ**—ସଂ. ବିଣ. (ବହୁବ୍ରୀହି)—୧ । ଦୃଢ଼ମୂଳ; ଯାହାର ମୂଳ ଭୂମିରେ
Baddha mūḷa ଏପରି ଛନ୍ଦି ହୋଇ ମାଡ଼ି ଥାଏ ଯେ ସହଜରେ ଉପୁଡ଼େ ନାହିଁ—1. Deep rooted; firmly rooted. ୨ । (ଲକ୍ଷଣାର୍ଥ) ସୁଦୃଢ଼—2. (figurative) Firmly fixed

ବଦ୍ଧ ଶିଖ—ସ. ବଣ. ପୁଂ. (ବହୁବ୍ରୀହି; ବଦ୍ଧ ହୋଇଅଛି ଶିଖା ଯାହାର)—
Baddha śikha ଯେ ମୁଣ୍ଡର କେଶଗୁଚ୍ଛ ବାନ୍ଧି ଅଛି—Having
(ବଦ୍ଧ ଶିଖା—ସ୍ତ୍ରୀ) one's hair of the head tied together.

ସ. ବି. ପୁଂ—୧ । ଶିଶୁ—1. Child. ୨ । ଯେଉଁ ବ୍ରାହ୍ମଣ ଶିଖା ବନ୍ଧନ କରିଅଛି—2. A Brāhmaṇa who has tied his hair into a knot.

ବଦ୍ଧାଞ୍ଜଳି—ସ. ବି. (ବହୁବ୍ରୀହି; ବଦ୍ଧ+ଅଞ୍ଜଳି)—କୃତାଞ୍ଜଳି; ହାତ
Baddhāñjali ଯୋଡ଼ି ଥିବା—With folded hands; with hands joined together in supplication.

ସ. ବି—ଏକତ୍ର ଯୋଡ଼ା ହୋଇ ଥିବା କରତଳ ଦ୍ୱୟ—Folded hands.

ବଦ୍ଧାନୁଶୟ—ସ. ବଣ. (ବହୁବ୍ରୀହି; ବଦ୍ଧ+ଅନୁଶୟ)—ସ୍ଥିରପ୍ରତିଜ୍ଞ;
Baddhānuśaya କୃତପ୍ରତିଜ୍ଞ—Determined; resolved.

ବଦ୍ୟ—ସ. ବଣ—(ବଦ୍ ଧାତୁ+କର୍ମ. ଯ) କଥିତ ହେବାର ଯୋଗ୍ୟ—
Badya Fit to be spoken.

ବଦ୍ଦି, ବଦ୍ୟ ଗ୍ରା. ବି. (ସ. ବୈଦ୍ୟ)—୧ । ବୈଦ୍ୟ (ଦେଖ)
ବଦ୍ 1. Baidya (See)

ବଇଦ୍, କୋଷ ଏ ତୁକାର, ଏଥିକୁ ବଦ୍ୟ ବେଣ୍ଟଧର ।
ଲୁପତ. ପ୍ରେମପଞ୍ଚାମୃତ ।

୨ । କୃଷ୍ଣ ପକ୍ଷ—2. Dark fortnight.

ବଦ୍ୟନାଥ—ଗ୍ରା. ବି. (ସ. ବୈଦ୍ୟନାଥ)—ବୈଦ୍ୟନାଥ (ଦେଖ)
Badyanātha Baidyanātha (See)

ବଦ୍ରିକା—ଦେ. ବି. (ସ. ବଦରିକା)—ବଦରିକାଶ୍ରମ (ଦେଖ)
Badrikā ବଦ୍ରିକା बद्रिका Badarikāśrama (See)
(ବଦ୍ରିକାଶ୍ରମ—ଅନ୍ୟରୂପ) ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ସିଦ୍ଧ ବ କାଇଣେ
ଜଗନ୍ନାଥ, ଭାଗବତ ।

ବଦ୍ରିନାଥ—ଦେ. ବି—ବଦରିନାରାୟଣ (ଦେଖ)
Badrinātha ବଦ୍ରିନାଥ बद्रीनाथ Badarinārāyaṇa
(ବଦ୍ରିନାରାୟଣ—ଅନ୍ୟରୂପ) (See)

ବଧ୍ (ଧାତୁ)—ସ—୧ । ହିଂସା କରିବା; ମାରି ପକାଇବା—1. To
Badh (root) kill. ୨ । ବନ୍ଧନ କରିବା—2. To bind.
୩ । ଘୃଣା କରିବା—3. To hate; to detest.

ବଧିରିବା—ପ୍ରାଦେ. (ସମ୍ବଲପୁର) କ୍ରି—କୌଣସି କାର୍ଯ୍ୟ କରିବା ପାଇଁ
Badh-ribā ଅନ୍ୟ ବ୍ୟକ୍ତିକୁ ନିଷେଧ କରିବା—To forbid; to prohibit a person from doing anything.

ବଧ—ସ. ବି. (ହନ୍, କିଂବା ବଧ୍ ଧାତୁ+ଭାବ. ଅ)—
Badha ୧ । ହନନ; ନାଶ; ହତ୍ୟା; ମାରଣ—1. Killing; destruction; slaughter; murder.
୨ । ମାଂସପେଶୀର ଆଧିକ୍ୟ—2. Plenty of muscles.
୩ । ଆଘାତ—3. A stroke; blow. ୪ । ପକ୍ଷାଘାତ—4. Paralysis. ୫ । ଗୁଣନ—5. Multiplication.
୬ । ଅଦୃଶ୍ୟତା; ଲୋପ—6. Disappearance.
ଦେ. ବି—ହତ୍ୟାଜନିତ ପାପ—1. Sin due to slaughter.
हत्या हतया

ସେ ସମୟରେ ଯୋଗେ ବଧ ନ ଲାଗଇ । ସ୍ୱାମୀ. ରସକଲ୍ଲୋଳ ।

୨ । ସ୍ରୋତ ନ ଥିବା ଜଳ ଉପରେ ମାଡ଼ିବା ଜଳଜ ଘାସ ଆଦିର
ଘନସ୍ତର—2. A thick layer of aquatic weeds
कड़ौती, लीद spread on the surface of stagnant pools. ୩ । ବହୁକାଳ ନ ଗାଧୋଇବା ଓ ଦେହକୁ ସଫା ନ କରିବା ଦୋଷରୁ ଦେହ ଉପରେ ଜମିବା ମଳର
ଘନ ସ୍ତର—3. A thick layer of dirt formed on
ମୟଲା the body of a person who has not had a
घनामैला clean bath for a long time.
୪ । ଘନ ସ୍ତର—4. Thick layer.

ସଂସାର ସାଗର ବୁଡ଼ା ବଧ ବାନ୍ଧ ଯିବ । ଅଭିମନ୍ୟୁ, ବଦଗ୍ଧଚିନ୍ତାମଣି ।

ବଧକ—ସ. ବି. ପୁଂ. (ବଧ୍ ଧାତୁ+କର୍ତ୍ତୃ. ଅକ)—
Badhaka ୧ । ହତ୍ୟାକାରୀ; ଘାତୁକ—1. Murderer; slayer.
(ବଧକା, ବଧିକା—ସ୍ତ୍ରୀ) ୨ । ପ୍ରାଣଦଣ୍ଡାଜ୍ଞା ପାଳନକାରୀ—
2. An executioner; a hangman (Apte). ୩ । ଏକ ପ୍ରକାର ଶର ତୃଣ—3. A kind of reed (Apte).
୪ । ବ୍ୟାଧ—4. Hunter.

ବଧକ ଯେ ଧଇରେ କ ଶରି ବ ଅନ୍ଧକରେ ସେ ହିତୁ ଶରଉରେ ନାଶେ ସେ ।
ଭକ୍ତ. ଚୈତନ୍ୟଭାଗବତ ।

ବଧ କରିବା—ଦେ. କ୍ରି—କୌଣସି ପ୍ରାଣୀର ବିନାଶ କରିବା—
Badha karibā To kill; to slaughter.
বধ করা बध करना

ବଧକର୍ମାଧିକାରୀ—ସ. ବି—ପ୍ରାଣଦଣ୍ଡାଜ୍ଞା ପ୍ରତିପାଳକ—Executioner;
Badhakarmādhikārī hangman (Apte).

ବଧଜୀବୀ—ସ. ବି. ପୁଂ—(ବଧ+ଜୀବ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Badhajībī ୧ବ)—୧ । ବ୍ୟାଧ; ଶିକାରୀ—1. Hunter.
(ବଧଜୀବିନୀ—ସ୍ତ୍ରୀ) ୨ । କଂସେଇ—2. Butcher.

ବଧତ୍ର—ସ. ବି—(ବଧ୍ ଧାତୁ+କରଣ. ଅତ୍ର)—ଆୟୁଧ; ଅସ୍ତ୍ର—
Badhatra Weapon.

ବଧ ଦଣ୍ଡ—ସ. ବି—(ରୂପକ; ବଧ+ଦଣ୍ଡ)—୧ । ଅପରାଧୀର ମୃତ୍ୟୁରୂପ
Badha daṇḍa ରାଜଦଣ୍ଡ; ପ୍ରାଣଦଣ୍ଡ—1. Capital punishment. ୨ । ଶାରୀରିକ ଦଣ୍ଡ—2. Corporeal punishment.

ବଧ ଦଣ୍ଡାଜ୍ଞା—ସ. ବି. (୬ଷ୍ଠୀ ତତ୍; ବଧଦଣ୍ଡ+ଆଜ୍ଞା)—ଅପରାଧୀକୁ ମାରି
Badha daṇḍājñā ପକାଇବା ନିମନ୍ତେ ରାଜକୀୟ ଆଦେଶ; ଫାଶି ହୁକୁମ—Capital sentence; sentence of death by hanging or execution.

ବଧନୀୟ—ସ. ବଣ—(ବଧ୍ ଧାତୁ+କର୍ମ. ଅନୀୟ)—ବଧାର୍ହ; ବଧ୍ୟ—
Badhaniya Deserving to be killed

ବଧ ଭୂମି—ସ. ବି—(୬ଷ୍ଠୀ ତତ୍)—୧ । ବଧ୍ୟଭୂମି; ଯେଉଁ ସ୍ଥାନରେ
Badha bhūmi ଅପରାଧୀଙ୍କୁ ହତ୍ୟା କରାଯାଏ—1. A place
ବଧସ୍ଥଳୀ } ଅନ୍ୟରୂପ where persons condemned to
ବଧସ୍ଥାନ } capital punishment are executed. ୨ । କଂସେଇଖାନା—2. Slaughter-house.

ବଧଶାଳୀ—ଦେ (ପ୍ରାଚୀନ) ବିଣ—ବଳାଶଳାଶ୍ରୀ; ହତ୍ୟାକାରୀ—
Badhaśāli Slaying.
ବଧାରେ ତା ବଧଶାଳୀ ବଧକେକ ଗୋଟେ ମିଳ, ଭବ ବୃତ୍ତପଦ ବପିନରେ ।
ଲକ୍ଷ୍ମ, ବୈଦେହୀଶବିଳାସ ।

ବଧ ସ୍ତମ୍ଭ—ସଂ. ବି—(ବଧ ନିମିତ୍ତ ସ୍ତମ୍ଭ)—ଫାଶି ଖୁଣ୍ଟ—
Badha stambha Gallows (Apte).

ବଧ ହେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିଦ୍ୱାରା ହତ ହେବା—
Badha hebā To be killed or murdered.
ବଧ হওয়া बध होना

ବଧା—ଦେ. ବି—(ସଂ. ବଧ)—୧ । (କୌଣସି ବ୍ୟକ୍ତିର) ବଧର ନିଦାନ—
Badhā 1. Occasion of one's death; cause of one's
মরণ मृत्यु, बध death by being killed.
(ଯଥା—ସୁରୁକସ୍ ଖେଳାଳ ଯେଉଁ ସିଂହ ସଙ୍ଗେ ଖେଳ ଦେଖାଉଥିଲା ସେହି ସିଂହହିଁ ତାହାର ବଧା ହେଲା ।)
মরণকাল ୨ । ବଧ ହୋଇ ମରିବାର ଉପଯୁକ୍ତ କାଳ—
मृत्युकाल 2. Time of death by being killed.
(ଯଥା—ବଣକୁ ଗଲେ ବାଘ ମୁହଁରେ କେତେ ଲୋକର ବଧା ପହଞ୍ଚିଯାଏ)
୩ । ଜୀବିତ କାଳ; ଆୟୁଃ—3. Lifetime; period of one's life
(ଯଥା—ସୁଗ୍ରୀବ ବାଳିକୁ ଡାକ ଦେଲା 'ତୁ ମୋ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋ । ତୋର ଆସି ବଧା ପୂରିଲାଣି ।')
[ ଦ୍ର—'ବଧା' ଶବ୍ଦ ଦ୍ୱାରା ବଧଦ୍ୱାରା ମୃତ୍ୟୁ ଘଟିବାର ସୂଚନା ହୁଏ । ]
୪ । ବାଘବଜାର ଖେଳରେ ବାଘ-ସାରକୁ ଚଳିବା ପାଇଁ ଛେଳି-ସାର ବସାଇବା ପକ୍ଷର ଛାଡ଼ିଦେବା ଗୋଟିଏ ଘର—
4. A room left for the movement of the tiger-pawn in a game of Bāghabajāri.
୫ । କଥାର ମଞ୍ଜି ବା ସନ୍ଧି—5. The crux of a matter. ୬ । ଦୁଇ ଜଣଙ୍କ ମଧ୍ୟରେ ହେଉଥିବା କଥାରେ ଥିବା ପ୍ରଭେଦ—6. Difference between the sayings of two persons in a transaction.
[ ଦ୍ର—ବିକିଲାବାଲା ଖଣ୍ଡିଏ ଲୁଗାର ଦାମ ବାରଅଣା କହିଲା, କିଣିଲାବାଲା କହିଲା ଦଶଅଣା । ଅତଏବ ଏ ଦୁହିଙ୍କ କଥାରେ ଦୁଇ ଅଣାର 'ବଧା' ରହିଛି । ]
ପ୍ରାଦେ. (ଗଡ଼ଜାତ) ବି—ହାତୀ ଖେଦାରେ ହାତୀଙ୍କୁ ଖେଦା ଆଡ଼କୁ ଘୁରୁଡ଼ାଇବା ପାଇଁ ଲୋକମାନଙ୍କର ପଙ୍କ୍ତି ପଙ୍କ୍ତି
বাধা ହୋଇ ଲାଗିବା—Stationing of troops of beaters in an elephant catching operation.

ବଧା(ଧେ)ଇ—ଦେ. ବି- (ସଂ. ବଦାନ୍ୟ ବା ବଦ୍ ଧାତୁରୁ; ଆ. ବଦା)—
Badhā(dhe)i କୌଣସି ସୁଖବାଦ ଆଣିବା ବ୍ୟକ୍ତିକୁ ଦିଆଯିବା
বিদাই, ପାରିତୋଷିକ ବା ବଦାନ୍ୟ—Reward given to the
बधाई, बधावा bearer of good tidings.
ପୁଣି ବୋଇଲେ ମୋ ହୃଦ ଲଥ ଇଛି
ଖୋଜ ଦେଲେ ବଧାଇ ଦେବ ମଁ ନାହିଁ କି । କୃଷ୍ଣସିଂହ, ମହାଭାରତ ବନ ।

ବଧା(ଧେ)ଇବା—ଦେ. କ୍ରି. (ସଂ. ବାଧା)—୧ । ବାଧିବା କ୍ରିୟାର
Badhā(dhe)ibā ଣିଜନ୍ତରୂପ—1. Causative of bādhibā.
বাধান ୍ (ଯଥା—ସେ ମତେ ଭୁଲ ବଧେଇ କରି ବିପଦ କଥା
बधान କହିଲା ।)
बधाना ୨ । ବଧିବା କ୍ରିୟାର ଣିଜନ୍ତରୂପ—2 Causative of badhibā.

ବଧାଙ୍ଗକ—ସଂ. ବି. (ବଧ+ଅଙ୍ଗ+କ)—୧ । ବିଷ—1. Poison
Badhāṅgaka (Apte). ୨ । କାରାଗାର (ହେ. ଶ.)—
2. Prison.

ବଧା ପହ(ହୁ)ଞ୍ଚିବା—ଦେ. କ୍ରି—ମୃତ୍ୟୁକାଳ ବା ବଧଦ୍ୱାରା ମରିବାର
Badhā paha(hu)ñchibā ସମୟ ଉପସ୍ଥିତ ହେବା—The
মরণকাল উপস্থিত হওয়া approach or arrival of one's
बध पहुँचना preordained time of death (by being
[ବଧା ପହ(ହୁ)ଞ୍ଚି ଯିବା—ଅନ୍ୟରୂପ] killed).

ବଧା ପୂରିବା—ଦେ. କ୍ରି—ଆୟୁଃ ଶେଷ ହେବା; ଆୟୁ ପୂରିବା—The
Badhā pūribā end of one's term of life.
आयु खतम होना (ବଧା ପୂରିଯିବା—ଅନ୍ୟରୂପ)

ବଧାର୍ହ—ସଂ. ବିଣ. ପୁଂ. (୬ଷ୍ଠୀ ତତ୍; ବଧର ଅର୍ହ=ଯୋଗ୍ୟ)—ବଧର-
Badhārha ଯୋଗ୍ୟ; ବଧ ହେବାର ଯୋଗ୍ୟ—Deserving
(ବଧାର୍ହା—ସ୍ତ୍ରୀ) to be killed.

ବଧା ଯି(ହେ)ବା—ଦେ. କ୍ରି—ବଧ ହେବା (ଦେଖ)
Badhā ji(he)bā Badha hebā (See)
ବସନ୍ତ ଅର୍ଜନେ ଅତ ପ୍ରବନ୍ଧନେ ଯିବ କି ଏ ବଧା । ଲକ୍ଷ୍ମ, ବୈଦେହୀଶବିଳାସ ।

ବଧି—ଦେ. ବି. (ସଂ. ବନ୍ଧନୀ)—୧ । (ସଂ. ବଦ୍ଧ) ମୃଦଙ୍ଗ ଉପରେ ଭିଡ଼ା
Badhi ଯାଇଥିବା ଚମ ଦଉଡ଼ି—1. Thongs of hide tied
बन्धी round the body of a drum. ୨ । ବଧୀ (ଦେଖ)—
প্রাণ 2. Badhī (See) ୩ । ଛାତି; ହୃଦୟ—3. Heart. ୪ ।
जीव ପ୍ରାଣ—4. Life.
ପ୍ରାଦେ. (ବାଲେଶ୍ୱର) ବି—ବଡ଼ ପୋଖରୀ, ଯହିଁରେ ପ୍ରାୟ ଦଳ ମାଡ଼ିଯାଇ ଥାଏ—A big tank overgrown with aquatic reeds.
ପ୍ରାଦେ. (ବାଣପୁର, ପୁରୀ) ବି—ଲଣ୍ଠନର ଫିତା ବା ବତି—
A tape or wick for lantern.

ବଧିଆ—ଦେ. ବିଣ. (ସଂ. ବଧିର)—୧ । କାଲ—1. Deaf. ୨ ।
Badhiā (କାନ) ବଧିର; ସ୍ତବ୍ଧ—2. Stunned (said of the
কালা बहिरा ear).
ଦକ୍ଷିଣୀ ଚୌପଦୀ ଅଛି ଗୋଷ୍ଠପୋ ତାଧିଆ
ଶୁଣି ଶୁଣି କାନ ହୋଇ ଗଲାଣି ବଧିଆ । ଫକୀରମୋହନ, ଉତ୍କଳଭ୍ରମଣ ।
খাসী ୩ । (ସଂ. ବଧ୍ରି) ଖାସୀ; ନଷ୍ଟପୁଂସ୍ତ୍ୱ (ଜୀବ)—
बधिया 3. Castrated (animal).
ପ୍ରାଦେ. (ବାଲେଶ୍ୱର) ବିଣ—ଅତିରିକ୍ତ ବର୍ଷା ଯୋଗୁଁ ସନ୍ତସନ୍ତିଆ (ମାଟି)—Damp owing to too much rainfall.
(ଯଥା—ମାଟି ବଧିଆ ହେଲେ ସେଥିରେ କଣ୍ଟାରୁ ଗଛ ଉଦ୍ଗମ-ରୂପେ ଉଧାଏ ନାହିଁ ।)

ପ୍ରାଦେ. (ଗଡ଼ଜାତ) ବି—ଖାସି କୁକୁଡ଼ା; ଯେଉଁ କୁକୁଡ଼ାର ପୁଂସ୍ତ୍ୱ ନଷ୍ଟ କରାଯାଇ ଥାଏ—A castrated cock; capon.

ବଧିକ—ଦେ. ବିଣ. (ପ୍ରାଚୀନ ପଦ୍ୟ; ସଂ ବଧକ)—ହତ୍ୟାକାରୀ; Badhika **बधिक** ବଧକାରୀ—Murderous.

ବ୍ରାହ୍ମଣେ ଅଛ ଅବିବେକ, ଏ ବେଦ ଅଟଇ ବଧିକ । ଭୂପତି, ପ୍ରେମପଞ୍ଚାମୃତ ।

ବି—୧ । ପ୍ରାଣ ଦଣ୍ଡିତ ବ୍ୟକ୍ତିର ହତ୍ୟାକାରୀ ବ୍ୟକ୍ତି—1. Hangman; public executioner. ୨ । ଘାତୁକ—2. Murderer; slayer. ୩ । ବ୍ୟାଧ—3. Hunter.

ବଧି ଧରିବା—ଦେ. କ୍ରି—୧ । ବଞ୍ଚି ରହିବା; ପ୍ରାଣ ଧାରଣ କରିବା—Badhi dharibā 1. To continue to live. ୨ । କୌଣସି ଜୀବନଧରା ଘଟନା ଦେଖି ବା ଶୁଣି ଛାତି ଧରି ରହିବା ବା ସହିବା—**जीउ धरना** 2. To bear a thing.

(ଯଥା—ଆପଣା ଆଖି ଆଗରେ ଏତେ ନିରୀହ ପ୍ରାଣୀଙ୍କ ବଧ ଦେଖି ତୁ କିପରି ବଧି ଧରିଛୁ ?)

ବଧି ଫାଟିଯିବା—ଦେ. କ୍ରି—୧ । ଛାତି ଫାଟିଯିବା; ଅସହ୍ୟ ମନୋ-Badhi phāṭijibā ବେଦନା ଘଟିବା—1. The rending କଲିଜାଫାଟା **कलेजा फटना** of one's heart.

(ଯଥା—ମୋ ବାବାଙ୍କୁ କାନ୍ଦିବାର ଦେଖି ମୋ ବଧି ଫାଟି ଯାଉଛି ।)

ବଧିବା—ଦେ. କ୍ରି. (ପଦ୍ୟ) (ସଂ. ବଧ ଧାତୁ)—ବଧ କରିବା; ହତ୍ୟା Badhibā ବଧା **बधना** କରିବା—To kill; to slay.

ଜରାସନ୍ଧେ ବଧି ଥିଲେ ଗିରିଦୁର୍ଗେ ଯହିଁ
ବାୟୁସୁତ ବୃକୋଦର କେଶବ କୌଶଳେ । ରାଧାନାଥ, ମହାଯାତ୍ରା ।

ବଧିର—ସଂ ବିଣ. (ବନ୍ଧ୍ ଧାତୁ=ବନ୍ଦ କରିବା+ସଂଜ୍ଞାର୍ଥେ ଇର; Badhira ଯାହାର ଶ୍ରବଣଶକ୍ତି ବନ୍ଦ ହୋଇଥାଏ)—୧ । କାଲ; (ବଧିରା—ସ୍ତ୍ରୀ) ଶ୍ରବଣଶକ୍ତିହୀନ—1. Deaf. ୨ । (କର୍ଣ୍ଣ) ସ୍ତବ୍ଧ—(ବଧିରତା—ବି) 2. Stunned (said of the ear).

ବଧିରା—ଦେ. ବିଣ. (ପୁଂ ଓ ସ୍ତ୍ରୀ)—୧ । ବଧିର (ଦେଖ)—Badhirā Badhira See) ୨ । ଅସମ୍ଭବ (ବିଷୟ)—କାଲା **बहिरा** 2. Impossible (matter).

ବଧି ସହି—ଦେ. ବି—ଦେହରେ ସହ୍ୟ ହେବା—Badhi sahibā A thing being tolerated.

(ଯଥା—ଏ କଥା ଦେଖି ମୋ ବଧି ସହିଲା ନାହିଁ ।)

[ଦ୍ର—ବଧି ଧରିବା କ୍ରିୟାର ବଧି ସହିବା ବିଶେଷ୍ୟ ଆକାର; ମୁଁ ବଧି ଧରୁଛି, ମୋ ବଧି ସହୁଛି ।]

ବଧୀ—ସଂ. ବିଣ. ପୁଂ (ବଧ୍+କରିବା ଅର୍ଥରେ ଇନ୍; ୧ମା. ୧ବ.)—Badhī ବଧକାରୀ; ହତ୍ୟାକାରୀ—Killing; slaying.

(ବଧିନୀ—ସ୍ତ୍ରୀ) ଏ ବାଳ ବଧୀ ସ୍ୱାମି ଦ୍ରୋହୀ
ଏହାକୁ ଦଣ୍ଡେହେଁ ନ ଥୋଇ । ଜଗନ୍ନାଥ, ଭାଗବତ ।

ପଟୀ ଦେ· ବି—୧ । କୁକୁର ବେକରେ ବନ୍ଧାଯିବା ପଟି—**बद्धी** 1. Strap for dog's neck. ୨ । (ସଂ. ବଦ୍ଧ ଜଳ) ବାଦୀ ନଦୀରେ ସ୍ରୋତହୀନ ଗଭୀର ପାଣିଥିବା ସ୍ଥାନ; ଗଣ୍ଡ—2. The **बंधाजल** part of a river where there is no current and the water is very deep.

ଦେ. ଓ ପ୍ରାଦେ· ବି.—ବଧି (ଦେଖ)—Badhi (See).

ବଧୂକା—ସଂ· ବି. ସ୍ତ୍ରୀ.—(ବଧୂ+କ+ଆ)—ବଧୂ ୧—୫ (ଦେଖ) Badhukā Badhū 1—5 (See)

ବଧୂଲି—ଦେ. ବି. (ସଂ. ବନ୍ଧୂଳ)—ବାର୍ଷିକ ପୁଷ୍ପଶାକବିଶେଷ—Badhuli Pentapetus Phœnicea (flowering plant).

ସଂ. ରକ୍ତକ, ବନ୍ଧୂକ, ବନ୍ଧୁଜୀବ, ବନ୍ଧୁଜୀବକ, ମାଧ୍ୟାହ୍ନିକ, ଅର୍କବଲ୍ଲଭ, ପୁଷ୍ପରକ୍ତ, ଓଷ୍ଠପୁଷ୍ପ । ମ. ବାନ୍ଦୁଜା ତେ. ମଙ୍କନଚେଟ୍ଟୁ, ବେଗସିନ ଚେଟ୍ଟୁ, ତା. ନାଗପୁ ଗୁ. ଜାମ୍ବୁବଦୁପାର ବାଁଧୁଳି **दुपहरिया, गेजुलिया**

ବଧୂଲୀ କୁସୁମ ରଙ୍ଗ ଶୋଷଇ ଲୋକନେ । ମଧୁସୂଦନ ଛନ୍ଦମାଳା ।

[ଦ୍ର—ଏହା ବର୍ଷାକାଳରେ ଜନ୍ମେ; ଫୁଲ ଅଲତା ପରି ନାଲି, ପଞ୍ଚଦଳବିଶିଷ୍ଟ; ଏହାର ଫଳ ଓ ଚେର ଔଷଧରେ ଲାଗେ । ଓଷ୍ଠ ସହିତ ତୁଳନା କରାଯାଏ ବୋଲି ଏ ଫୁଲର ଅନ୍ୟ ନାମ ଓଷ୍ଠପୁଷ୍ପ । ଏ ଫୁଲ ଖରା ହେଲେ ଫୁଟେ ଓ ବେଳ ଗଡ଼ିଲେ ଝାଉଁଳି ପଡ଼େ ବୋଲି ଏହାର ଅନ୍ୟ ନାମ ଦ୍ୱିପହରିଆ (ବଂ. ଓ ହି. ଦୁପହରିଆ ଓ ସଂ. ମାଧ୍ୟାହ୍ନିକ ।]

ବଧୂ—ସଂ. ବି. ସ୍ତ୍ରୀ. (ବହ୍ ଧାତୁ=ବହନ କରିବା+କର୍ତ୍ତୃ ବା କର୍ମ. ଊ) Badhū ୧ । ମହିଳା; ନାରୀ—1. Woman. ୨ । ଭାର୍ଯ୍ୟା; ପତ୍ନୀ; ସ୍ତ୍ରୀ—2. Wife. ୩ । ସ୍ନୁଷା; ପୁତ୍ରବଧୂ; ବୋହୂ—3. Daughter-in-law. ୪ । କୁଳବଧୂ; କୁଳସ୍ତ୍ରୀ—4. A housewife. ୫ । ନୂଆବୋହୂ; ନବୋଢ଼ା ସ୍ତ୍ରୀ—5. Newly married lady. ୬ । ପୁଳ୍କା ବା ପିଡ଼ଙ୍ଗ ଶାଗ—6. A kind of pot-herb; Trigonella Corniculata. ୭ । ଶ୍ୟାମା ଲତା—7. A plant; Echites Frutescenss. ୮ । ଶାରିବା; ଅନନ୍ତମୂଳ—8. A medicinal root; Esclipias Pseudasarsa. ୯ । ଶଠୀ ବା ଆମ୍ବ ଅଦା—9. Zedoary; Curcuma Zerumbets.

ବଧୂଜନ—ସଂ. ବି.—(ବଧୂ+ଜନ)—୧ । ନାରୀଗଣ—Badhūjana 1. Women. ୨ । ସ୍ତ୍ରୀ ବ୍ୟକ୍ତି—2. Female. ୩ । ଯୁବତୀ ସ୍ତ୍ରୀ—3. Young wife.

ବଧୂଟ ଶୟନ—ସଂ. ବି—ବାତାୟନ; ଗବାକ୍ଷ—Badhūṭa śayana Window.

ବଧୂଟୀ—ସଂ. ବି—[ବଧୂ+କ୍ଷୁଦ୍ରାର୍ଥେ. ଟୀ]—୧ । କ୍ଷୁଦ୍ର ବଧୂ; ଛୁଆବୋହୂ; Badhūṭī ନୂଆ ବୋହୂ—1. A small wife, a young (ବଧୂଟିକା—ଅନ୍ୟରୂପ) wife. ୨ । ପୁତ୍ର ବଧୂ—2 Daughter-in-law. ୩ । କନ୍ୟା; ନବବିବାହିତା ବଧୂ—3. Bride.

ବଧୂତ୍ସବ—ସଂ. ବି.—(୬ଷ୍ଠୀ ତତ୍; ବଧୂ+ଉତ୍ସବ)—ବଧୂର ପ୍ରଥମ Badhūtsaba ରଜୋଦର୍ଶନ ସମୟେ ଅନୁଷ୍ଠିତ ଉତ୍ସବ—A festival observed on the occasion of the 1st. appearance of menses of a wife.

ବଧୂ ମାଡା—ଦେ. ବି.—(ଶିଷ୍ଟ ସମାଜରେ ପୁତ୍ରବଧୂ ଓ ଭ୍ରାତୃବଧୂଙ୍କ
Badhū mātā ପ୍ରତି ମଧୁର ସମ୍ବୋଧନ) ବୋହୂ ମା—A term
ବଉ ମା of endearment applied to one's daughter-in-law or younger brother's wife.

ବଧେଇ—ଦେ. ବି.—ବଧାଇ (ଦେଖ)
Badhei Badhāi (See).
ଦେ. ବିଣ. (ସଂ. ବିଧେୟ)—ବିଧେୟ; କର୍ତ୍ତବ୍ୟ—
Proper to be done; performable.

ବଧୋଦ୍ୟତ—ସଂ. ବିଣ. ପୁଂ—(୭ମୀ ତତ୍; ବଧ+ଉଦ୍ୟତ)—
Badhodyata ଅନ୍ୟକୁ ବଧ କରିବା ନିମନ୍ତେ ଉଦ୍ୟତ—
(ବଧୋଦ୍ୟତା—ସ୍ତ୍ରୀ) Ready or preparing to kill a person.
ସଂ. ବି.—ଆତତାୟୀ; ଘାତୁକ; ହତ୍ୟାକାରୀ ବ୍ୟକ୍ତି—
An assassin; a murderer.

ବଧୋପାୟ—ସଂ. ବି. (୬ଷ୍ଠୀ ତତ୍; ବଧ+ଉପାୟ)—ବଧ ବା ହତ୍ୟା
Badhopāya କରିବାର ଉପାୟ—Means of putting one to death.

ବଧ୍ୟ—ସଂ. ବିଣ. ପୁଂ (ବଧ୍ ଧାତୁ+କର୍ମ. ଯ)—୧ । ବଧ ଯୋଗ୍ୟ;
Badhya ବଧାର୍ହ—1. Deserving to be killed.
୨ । ଯାହାକୁ ହତ୍ୟା ଦଣ୍ଡ ଆଦେଶ ହୋଇଥାଏ—
2. Sentenced to death.
ସ୍ତ୍ରୀ. ବି.—(ସଂ. ବଧ; ଭୁଲ. ଯୁଦ୍ଧ ସ୍ଥଳରେ ଯୁଧ୍ୟ, ଶୁଦ୍ଧ ସ୍ଥଳରେ ଶୁଦ୍ଧ୍ୟ) ବଧ; ହତ୍ୟା—Murder.
ଦେ. ବିଣ—ହତ—Killed; slain.

ବଧ୍ୟପାଳ—ସଂ. ବି. (ବଧ୍ୟ+ପାଲ୍ ଧାତୁ+କର୍ତ୍ତୃ. ଅ)—ପ୍ରାଣଦଣ୍ଡାଜ୍ଞା-
Badhyapāla ପ୍ରାପ୍ତ ଅପରାଧୀମାନେ ଯେଉଁ କାରାଗାରରେ ଆବଦ୍ଧ ରହନ୍ତି ତାହାର ରକ୍ଷକ—The keeper of the Jail for criminals condemned to death.

ବଧ୍ୟ ଭୂମି—ସଂ. ବି—ବଧ ଭୂମି (ଦେଖ)
Badhya bhūmi Badha bhūmi (See)

ବଧ୍ର—ସଂ. ବି—ସୀସା ଧାତୁ (ହ୍ର. ଶ)—
Badhra Lead.

ବଧ୍ରି—ସଂ. ବି—ଖାସୀ ବା ଅଣ୍ଡିରା ହୋଇଥିବା ଜୀବ (ହ୍ର. ଶ)—
Badhri Castrated animal.

ବଧ୍ରିକା—ସଂ. ବି. ପୁଂ—ନଷ୍ଟ ପୁଂସ୍ତ୍ୱ ପୁରୁଷ—
Badhrikā Eunoch.

ବନ୍ (ଧାତୁ)—ସଂ—୧ । ବିସ୍ତୃତ ହେବା; ବ୍ୟାପିବା—1. To spread.
Ban (root) ୨ । ଯାଚଞ୍ଚା କରିବା—1. To ask for; to solicit. ୩ । ସେବା କରିବା—3. To serve. ୪ । ମାଗିବା—4. To beg. ୫ । ଶବ୍ଦ କରିବା—5. To sound.

ବନ୍‌ଡାଇବା—ପ୍ରାଦେ. (ସମ୍ବଲପୁର) କ୍ରି—ଓଳାଇବା; ଓଳାଇବା—
Ban-dāibā To sweep (a house or place).

ବନ୍‌ବନ୍—ବୈଦେ. ବି. (ଇଂ)—ଶିଶୁମାନଙ୍କର ଖାଇବା ନିମନ୍ତେ ପ୍ରସ୍ତୁତ
Ban-ban ଏକ ପ୍ରକାର ଶ୍ରେଷ୍ଠ ମିଠାଇ—Bonbon.
**वनवन बनबन, चीनी कटोरा**

ବନ୍‌ବନ୍‌କା—ଦେ. ବି—ଏକ ପ୍ରକାର ବନ୍ୟ ପୁଷ୍ପ ଗଛ; ଚନ୍ଦ୍ରମଲ୍ଲିକା—
Ban-bankā Moon flower; Colonyction Grandiflorum.
[ ଦ୍ର—ଏ ଫୁଲ ଫୁଟିଲେ ଚନ୍ଦ୍ରଙ୍କ ଗତି ସହିତ ଫୁଲର ସମ୍ମୁଖାଂଶ ବୁଲୁ ଥାଏ; ଏ ଫୁଲ ରାତିରେ ଫୁଟେ ଓ ଦିନରେ ଥାଏ; ଗଛ ୨।୩ ହାତ ଉଚ୍ଚ । ]

ବନ—ସଂ. ବି. (ବନ୍ ଧାତୁ=ବିସ୍ତାର+କର୍ତ୍ତୃ. ଅ; ଯାହା ବିସ୍ତୃତ ହୁଏ)—
Bana ୧ । ଅରଣ୍ୟ; କାନନ; ଜଙ୍ଗଲ; ବୃକ୍ଷସମଷ୍ଟି—1. Forest wood. ୨ । ଜଳ—2. Water. ୩ । ପ୍ରସ୍ରବଣ—3. A spring; fountain. ୪ । ନିବାସ; ଆଲୟ—4. Abode; house; residence. ୫ । ତୋଟା—5. Plantation; tope ୬ । ପୁଷ୍ପୋଦ୍ୟାନ; ଫୁଲ ବଗିଚା—6. Garden. ୭ । କୁଞ୍ଜ—7. Grove; abour.
ବନେ କେଳି କୃତ ହରି ଅବର ନିଶାରେ । ଉପ. ବୈଦେହୀଶବିଳାସ ।
୮ । କାଠ—8. Wood; timber. ୯ । ଆଲୋକ; ଆଲୋକରେଖା—9. Light; ray of light. ୧୦ । ତମସା ନାମକ ଯଜ୍ଞ ପାତ୍ର (ହ୍ର. ଶ)—10. Name of a sacrificial vessel. ୧୧ । ଶଙ୍କରାଚାର୍ଯ୍ୟ ମତାବଲମ୍ବୀ ସନ୍ନ୍ୟାସିସମ୍ପ୍ରଦାୟଙ୍କ ଉପାଧିବିଶେଷ—11. Name of the title of one class of anchorites, the followers of Śankarāchārjya. ୧୨ । ପୁଷ୍ପ ଗୁଚ୍ଛ (ହ୍ର. ଶ)—12. A bunch of flowers.
ଦେ. ବି. (ସଂ. ବନ୍ୟା)—୧ । ବନ୍ୟା; ନଈ ବଢ଼ି—1. Flood
୨ । (ସଂ. ବର୍ଣ୍ଣ) ବର୍ଣ୍ଣ; ରଙ୍ଗ—2. Colour.
୩ । ବନମାଳୀ ବା ବନବିହାରୀ ନାମକ ବ୍ୟକ୍ତିର ଡାକ ନାମ—3. Name by which persons named Banamāli or Banabihāri are called.

ବନ(ନା)ଉତ—ଦେ. ବି—ବନାତ (ଦେଖ)
Bana(nā)uta Banāta (See)

ବନକ—ଦେ. ବି. (ସଂ. ବର୍ଣ୍ଣ; ବର୍ଣ୍ଣକ)—୧ । ରଙ୍ଗବିଶେଷ—1. A kind of paint. ୨ । ବର୍ଣ୍ଣ; ରଙ୍ଗ—2. Colour.
ବିବିଧ ବନକ ତହିଁ ତରଣୀକି ଏଣିକ ତେଣିକ ତଳେ ।
ଉପ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ପୀତ ବର୍ଣ୍ଣ ମୃତ୍ତିକାବିଶେଷ—3. Yellow ochre.

ବନ କଦଳୀ—ସଂ. ବି—ବନକଦଳୀ; କାଠ କଦଳୀ—
Bana kadali A kind of wild plantain.

ବନ କନ୍ଦ—ସଂ. ବିଣ—ବଣ ଓଲୁଅ; ବଣ ସାରୁ—Wild arum.
Bana kanda (ବନଶୂରଣ—ଅନ୍ୟରୂପ)

ବନକର—ସଂ. ବି.--ଜଙ୍ଗଲରୁ ଉତ୍ପନ୍ନ ଦ୍ରବ୍ୟ ବ୍ୟବହାର କରିବା ବ୍ୟକ୍ତିଙ୍କର-
Banakara ବନର ଅଧିକାରୀ ବ୍ୟକ୍ତିଙ୍କୁ ଦେବା ଶୁଳ୍କ—
ବନକର୍ ବନକର Forest-cess.

ବନକଲମ—ଦେ. ବି.—ଲତାବିଶେଷ—
Bana kalama Ipomoea Palchella.

ବନ କୁକ୍କୁଟ—ସଂ. ବି.—ବଣ କୁକୁଡ଼ା—
Bana kukkuta Wild fowl; wild cock.

ବନ କୁଣ୍ଡଳ—ସଂ. ବି.—ଉତ୍କୃଷ୍ଟ ଜାତୀୟ ଓଲୁଅ (ହି. ଶ.)—
Bana kundala A good variety of wild arum.

ବନ କୁଲତ୍ଥ—ସଂ. ବି.—ବନ୍ୟ ଶସ୍ୟବିଶେଷ—
Bana kulattha A kind of wild grain.

ବନ କୋଲି—ସଂ. ବି. (ବନ+କୋଲ)—ବଣୁଆ ବରକୋଳି ଗଛ—
Bana koli The wild jujube tree (Apte).

ବନ ଗଜ—ସଂ. ବି.—(୭ମୀ ତତ୍; ବନ+ଗଜ)—ବଣୁଆ ହାତୀ—
Bana gaja A wild elephant.
(ବନ କୁଞ୍ଜର, ବନ କରୀ, ବନ ହସ୍ତୀ—ଅନ୍ୟରୂପ)

ବନ ଗହନ—ସଂ. ବି.—(କର୍ମଧା; ଶବ୍ଦବିପର୍ଯ୍ୟୟ)—ଗହନ ବନ;
Bana gahana ଗଭୀର ଅରଣ୍ୟ—Dense jungle.

ବନ ଗୋ—ସଂ. ବି—ଗବୟ; ଗୟଳ—Wild ox.
Bana go (ବନ ଗବ—ଅନ୍ୟରୂପ)

ବନ ଚଣ୍ଡାଲ—ବି.—(ସଂ. ବନ+ଚଣ୍ଡାଲ; ସଂ. ନାମ ଚଣ୍ଡାଳିକା)—
Bana chandala ଶିମ୍ବାବର୍ଗର ବର୍ଷାୟୁଃ ବନ୍ୟକ୍ଷୁପବିଶେଷ—
ବନ ଚାଣ୍ଡାଳ ଚଣ୍ଡାଳିକା Desmodium Gryrans; the telegraph plant.
[ଦ୍ର—ଏହାର ଗଛ ୨ ହାତ ଉଚ୍ଚ ହୁଏ । ପତ୍ର ତ୍ରିପର୍ଣ୍ଣ । ପାଖର ଦୁଇଟି ପତ୍ର ଗରମ ବେଳେ ବାରଂବାର ମୁଦ ହେଉଥାଏ ଓ ଖୋଲି ଯାଉଥାଏ—ଯୋଗେଶଚନ୍ଦ୍ର ।]

ବନ ଚନ୍ଦନ—ସଂ. ବି.--୧ । ଦେବଦାରୁ ଗଛ—1. The pine tree.
Bana chandana ୨ । ଅଗୁରୁ (ହି. ଶବ୍ଦସାଗର)—
2. The Aloes wood.

ବନ ଚମ୍ପକ—ସଂ. ବି.—ବଣଚମ୍ପା ଗଛ—The wild Champaka tree.
Bana champaka (ବନ ଚାପ—ଅନ୍ୟରୂପ)

ବନ ଚର—ସଂ. ବିଣ, ପୁଂ—(ଉପପଦ ତତ୍ପୁରୁଷ; ବନ+ଚର ଧାତୁ
Bana chara +କର୍ତ୍ତି. ଅ)—ଯେ ବନରେ ବିଚରଣ କରେ—
(ବନଚରୀ—ସ୍ତ୍ରୀ) Roving in the forest; sylvan.
ସଂ. ବି.—୧ । ବ୍ୟାଧ—1. A hunter. ୨ । ରାକ୍ଷସ—
2. A demon. ୩ । ହିଂସ୍ର ଜନ୍ତୁ—3. Wild animal. ୪ । ବନବାସୀ ବ୍ୟକ୍ତି—Forest-dweller; woodman. ୫ । ମୁନି—5. A sage.

ବନ ଚର୍ଯ୍ୟା—ସଂ. ବି.—ବନରେ ବୁଲିବା ବା ବାସ କରିବା କାର୍ଯ୍ୟ—
Bana charjya The roaming about or residence in a forest.

ବନଚାରୀ—ସଂ. ବି. ଓ ବିଣ.—(ବନ+ଚର ଧାତୁ+କର୍ତ୍ତି. ଇନ୍;
Banachari ୧ମା. ୧ବ.)—ବନଚର (ଦେଖ)
(ବନଚାରିଣୀ—ସ୍ତ୍ରୀ) Banachara (See)

ବନଜ—ସଂ. ବିଣ.—(ବନ+ଜନ୍ ଧାତୁ+କର୍ତ୍ତି. ଅ)—୧ । ଅରଣ୍ୟରେ
Banaja ଜାତ—1. Produced in the forest.
୨ । ଜଳରେ ଜାତ—2 Produced in water.
ସଂ. ବି.—୧ । ପଦ୍ମ—1. Lotus. ୨ । ମୁଥା (ହି. ଶ.)—
2. Bulbous grass-root. ୩ । ବନକୁଲତ୍ଥ (ହି. ଶ.)—3. A kind of wild grain. ୪ । ଚଉଡ଼ା ଫଳ (ହି. ଶ.)—4. A kind of wild cucurbitaceous fruit. ୫ । ଜଙ୍ଗଲୀ ଟଭା (ହି. ଶ.)—
5. Wild orange or citron.

ବନ ଜଙ୍ଗଲ—ଦେ. ବି. (ସହଚର ଶବ୍ଦ; ସଂ. ବନ+ଜଙ୍ଗଲ)—ଝୋଟ
Bana jangala ଓ ବଡ଼ ବୃକ୍ଷଲତାଦି ପୂର୍ଣ୍ଣ ସ୍ଥାନ—Forest.
ବନ ଜଙ୍ଗଲ୍ ଝାଡ ଜଙ୍ଗଲ

ବନ ଜଟାଙ୍ଗି—ଦେ. ବି.—ଅଗ୍ନିଜାର (ଦେଖ)
Bana jatangi Agnijara (See)

ବନଜାକ୍ଷ—ସଂ. ବିଣ. ପୁଂ.—(ବହୁବ୍ରୀହି; ବନଜ=ପଦ୍ମ+ଅକ୍ଷି)—
Banajaksha ପଦ୍ମଲୋଚନ; ଯାହାର ପଦ୍ମ ପରି ସୁନ୍ଦର ନୟନ--
(ବନଜାକ୍ଷୀ—ସ୍ତ୍ରୀ) Having beautiful eyes like lotus-petals; lotus-eyed.

ବନ ଜାଗରଣ ବ୍ରତ—ଦେ. ବି—ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚାମନ୍ଦିର ଅବସ୍ଥିତି
Bana jagarana brata ସମୟରେ ସପ୍ତଦିବସବ୍ୟାପୀ ପାଳନୀୟ ବ୍ରତବିଶେଷ—A festival lasting for seven days during the time of Lord Jagannatha's staying in the garden-house.

ବନ ଜାତ—ସଂ. ବିଣ. (୭ମୀ ତତ୍; ବନ+ଜାତ)—ବନରେ ଉତ୍ପନ୍ନ-
Bana jata Produced in the forest.

ବନଜାସନା—ଦେ. ବି. (ସଂ. ବନଜାସନା)—ଲକ୍ଷ୍ମୀ—
Banajasani Goddess Lakshmi; wife of Bishnu.

ବନଜିନୀ—ସଂ. ବି. (ବନଜ+ଇନ୍+ସ୍ତ୍ରୀ. ଈ)—ପଦ୍ମିନୀ (ଦେଖ)
Banajini Padmini ( See )
ବନଜିନୀ ଯେ କଳଣ ସୁରଭେ । ଉତ୍କ. ବୈଦେହୀଶବିଳାସ ।

ବନଜିର—ସଂ. ବି—ବଣଜୀରା ( ଦେଖ )
Banajira (ବନଜୀରକ—ଅନ୍ୟରୂପ) Banajira (See)

ବନ(ନା)ଟି—ଦେ. ବି—ବନୋଟି ( ଦେଖ )
Bana(na)ti [ବନ(ନା)ଇଟି—ଅନ୍ୟରୂପ] Banoti (See)

ବନଦ—ସଂ. ବି. (ବନ=ଜଳ+ଦା ଧାତୁ=ଦେବା+କର୍ତ୍ତି. ଅ)—
Banada ମେଘ—Cloud.
ବନଦ ଶ୍ୟାମ କାହିଁ ଏ ଅଳ, ବଇଭ ଏ ସମା କ ଉଚ କଳ ।
ଉତ୍କ. ବୈଦେହୀଶବିଳାସ ।

ବନ ଦେବତା—ସଂ. ବି. ସ୍ତ୍ରୀ—୧ । ବଣ ଦଅଁ; ଅପୂଜା ଦେବତା—
Bana debata 1. Sylvan Deity; a Deity of the forest. ୨ । କୌଣସି ଅରଣ୍ୟର ଅଧିଷ୍ଠାତ୍ରୀ ଦେବତା—2. The presiding Deity of any forest.
ବନ ଦେବ—ପୁଂ } ଅନ୍ୟରୂପ
ବନ ଦେବୀ—ସ୍ତ୍ରୀ }

**ବନ ଧବ**—ସ. ବି. ( ୬ଷ୍ଠୀ ତତ୍; ବନ+ଧବ )—ସିଂହ—
Bana dhaba Lion.

ବନ ଧବ ଘୋଷର ଶର ଶର ନଖର ସୂଅପତଙ୍କ ତନ ଯେ ।
ଉକ୍ତ. ବୈଦେହୀଶବିଳାସ

**ବନ ଧାତୁ**—ସଂ. ବି—୧ । ଗେରୁ ( ହି. ଶ )—1. Red chalk.
Bana dhātu ୨ । ବନ ମାଟି ( ହି. ଶ )—2. Coloured earth.

**ବନଧି**—ସଂ. ବି. (ବନ=ଜଳ+ଧା ଧାତୁ+କର୍ତ୍ତୃ. ଇ)—ସମୁଦ୍ର—
Banadhi (ବନନିଧି—ଅନ୍ୟରୂପ) The sea.

ବନଧିରେ ମଇନାକ ଲୁଚସ୍ତ ସତ । ଉକ୍ତ. ବୈଦେହୀଶବିଳାସ ।

**ବନ ଧେନୁ**—ସ. ବି—ବନ ଗୋ; ଗବୟ; ଗୟଳ ( ଦେଖ )
Bana dhenu Gayaḷa (See)

**ବନ ପିପ୍ପଳୀ**—ସଂ. ବି—କ୍ଷୁଦ୍ର ପିପ୍ପଳୀ (ହି. ଶ)—
Bana pippaḷi A small variety of long pepper.
(ବନ କଣା—ଅନ୍ୟରୂପ)

**ବନ ପ୍ରିୟ**—ସଂ. ବିଣ. (ବହୁବ୍ରୀହି; ବନ ଅଟେ ପ୍ରିୟ ଯାହାର)—
Bana priya ଯେ ବଣରେ ବିଚରଣ କରିବାକୁ ସୁଖ ପାଏ—
Loving to roam in the forest.

ସଂ. ବି—୧ । କୋକିଳ—1. The cuckoo. ୨ । ସମ୍ବର-ହରିଣ (ହି.ଶ)—2. The sambar deer. ୩ । କର୍ପୂର କଚୂର (ହି. ଶ) ଆମ୍ବକସିଆ ଗଦ—3. Curcuma Amada. ୪ । ବାହାଡ଼ା ଗଛ (ହି. ଶ)—3. Barleria Cristata (tree).

**ବନଫ୍ସା**—ବୈଦେ. ବି. (ଫା)—କାଶ୍ମୀର ଓ ହିମାଳୟ ଅଞ୍ଚଳର ଶାକ-
Banaph-sā ବିଶେଷ—Wild violet; Viola Odorota.
ବନଫସା [ ଦ୍ର—ଏ ଗଛ ଉଚ୍ଚରେ ହାତେ ବଡ଼େ; ଏଥିର କାଣ୍ଡରୁ
**बनफसा** ବହୁତ କ୍ଷୁଦ୍ର ଶାଖା ବାହାରେ; ଶାଖାର ଅଗରେ ବାଇଗଣୀ ବା ନାଲ ବର୍ଣ୍ଣ ସୁଗନ୍ଧ ଫୁଲ ଫୁଟେ । ଏଥିର ପତ୍ର ତାଲମ୍ବ ପତ୍ର ପରି । ଏଥିର ଚେର, ପତ୍ର ଓ ଫୁଲକୁ ହକିମ୍ (ମୁସଲମାନ ବୈଦ୍ୟ)ମାନେ ଔଷଧରେ ବ୍ୟବହାର କରନ୍ତି । ଏଥିର ଫୁଲ ଖାଇଲେ ଖୁବ ପ୍ରସ୍ରାବ ହୁଏ । ଫୁଲ ଓ ଚେର ବମନକାରକ—ହି. ଶବ୍ଦସାଗର । ]

**ବନ ଫୁଲ**—ଦେ. ବି—ବନ୍ୟ ପୁଷ୍ପ—
Bana phula बन फूल **बनफुल** Wild flower.

**ବନ ବନକା**—ଦେ. ବି—ଫୁଲ ଓ ଗୁଳ୍ମ ବିଶେଷ—Moon flower;
Bana banakā Calonyction Grandiflorum; Plecospermum Spinosium.

[ ଦ୍ର—ଏ ଗୁଳ୍ମ ବଡ଼ ବଡ଼ କଣ୍ଟାଯୁକ୍ତ । ]

**ବନବନା**—ଦେ. ବି—ଏକ ପ୍ରକାର ଜଙ୍ଗଲି କଣ୍ଟାଳିଆ ଗୁଳ୍ମ—
Banabanā A kind of wild thorny shrub;
ସ. ନାମ. ଶଙ୍ଖପୁଷ୍ପୀ, ଶଙ୍ଖାହ୍ୱା, Canscora Decussata;
ମାଙ୍ଗଲ୍ୟ କୁସୁମ Evalvus Erecta.
ଡାନକୁନୀ [ ଦ୍ର—ଏହା ଫୁଲ ଭେଦରେ ୩ ପ୍ରକାର—
**शंखाहुली, कौडीयाली** ୧. ଶ୍ୱେତ ବନବନା—ସଂ. ଶଙ୍ଖପୁଷ୍ପୀ । ୨. ନାଲ ବନବନା—ସଂ. ବିଷ୍ଣୁକ୍ରାନ୍ତା । ୩. ରକ୍ତପୁଷ୍ପୀ—ସଂ. ସର୍ପାକ୍ଷୀ । ]

**ବନ ବରାହ**—ସଂ. ବି—ବନ ଶୂକର ( ଦେଖ )
Bana barāha Bana śūkara ( See )

**ବନ ବାସ**—ସ. ବି—(୭ମୀ ତତ୍ )—୧ । ଅରଣ୍ୟରେ ରହିବା—
Bana bāsa 1. Forest life. ୨ । ଜନପଦ ତ୍ୟାଗ କରି ବନରେ କାଳଯାପନ କରିବା—2. Sojourn in the forest.

ବନବାସଶବ୍ଦ ଶୁଣି ବନବାସ କେନେ ଅଣି ହୃଦ ମଧ୍ୟେ ଘନ ବହୁଦତ ।
ଉକ୍ତ. ବୈଦେହୀଶବିଳାସ ।

**ବନବାସୀ**—ସ. ବିଣ. ପୁଂ—(ଉପପଦ ତତ୍ )—ଯେ ଅରଣ୍ୟରେ ବାସ
Banabāsi କରେ—Living in the forest,
( ବନବାସିନୀ—ସ୍ତ୍ରୀ )

ସ. ବି—୧ । ଋଷଭ ନାମକ ମହୌଷଧ—1. A rare herb. ୨ । ଶାଲୁଲୀ କନ୍ଦ (ହି. ଶ)—2. A kind of wild root-bulb. ୩ । ଦ୍ରୋଣକାକ; ଡାମରା କୁଆ (ହି. ଶ) - 3. Rook.

**ବନ ବିହାର**—ସ. ବି—(୭ମୀ ତତ୍; ବନ + ବିହାର )—ଅରଣ୍ୟରେ
Bana bihāra କ୍ରୀଡ଼ାର୍ଥ ଭ୍ରମଣ—Sport in the forest

**ବନ ବିହାରୀ**—ସ. ବି—(ଉପପଦ ତତ୍; ବନ + ବିହାରିନ୍)—ଶ୍ରୀକୃଷ୍ଣଙ୍କ
Banabihāri ନାମାନ୍ତର—A name of Śrikṛushna.
(ବନବିହାରିଣୀ—ସ୍ତ୍ରୀ) ସ. ବିଣ. ପୁଂ—ଯେ ବନରେ ବିହାର କରେ—Sporting in the forest.

ଦେ. ବି—ଲୋକଙ୍କୁ ଦିଆଯିବା ନାମ—A name given to males.

**ବନ ଭୋଜି**—ଦେ. ବି—( ସ. ବନ+ଭୋଜନ )—ବନକୁ ଯାଇ
Bana bhoji ସମ୍ମିଳିତ ବନ୍ଧୁମାନଙ୍କର ଭୋଜି—A picnic in
(ବନ ଭୋଜନ—ଅନ୍ୟରୂପ) बनभोजन **बनभोज** the woods.

ସଙ୍ଗରେ ସହସ୍ର ଗୋପାଳ ଘେନ
ବନଭୋଜ ସେବା ପରଶ ବେନ—ପ୍ରାଚୀ, ଶ୍ରୀ ଗୁରୁଭକ୍ତି ଗୀତା ।

**ବନ ମନୁଷ୍ୟ**—ସ. ବି—୧ । ବଣ ମଣିଷ; ନରକୃତି ବାନରବିଶେଷ—
Bana manushya 1. Orang-outang; man-like ape

[ ଦ୍ର—ଏମାନେ ଦୁଇ ଗୋଡ଼ରେ ମନୁଷ୍ୟପରି ଠିଆ ହୋଇ ପାରନ୍ତି । ଏମାନଙ୍କର ଲାଞ୍ଜ ନାହିଁ ଓ ଗାଲ ଭିତରେ ଖାଦ୍ୟ ରଖିବାର ଥଳି ନାହିଁ । ଏମାନେ ଚାରି ଶ୍ରେଣୀରେ ବିଭକ୍ତ:—ଗରିଲ୍ଲ—Gorilla; ଶିମ୍ପାଞ୍ଜି—Chimpanzee; ଓରାଂଅଉଟାଂ—Orangautang; ଗୀବନ୍—Gibbon. । ]

୨ । ବନବାସୀ ବ୍ୟକ୍ତି—2. A man living in the forest; woodman.

**ବନ ମଲ୍ଲି**—ସ. ବି—ବଣମଲ୍ଲୀ (ଦେଖ)
Bana malli Baṇamalli (See)

ବନ ମଲ୍ଲିକା—ସଂ. ବି—୧ । ବଣମଲ୍ଲୀ (ଦେଖ)—1. Banamalli
Banamallikā (See). ୨ । ସେବତୀ ଗଛ ଓ ଫୁଲ—2. Musk-rose (plant and flower).

ବନ ମାଟି—ଦେ. ବି—(ସଂ. ବର୍ଣ୍ଣ ଓ ମୃତ୍ତିକା)—ଆବରଣ୍ଡ ବା ଅଲକ୍ତ
Bana māṭi ମୃତ୍ତିକା; ଯେଉଁ ମାଟିକୁ ଘରେ ଲିପିଲେ ଘର ରଞ୍ଜିତ
बनमाटि ଦେଖାଯାଏ—Coloured earth used in washing
रंगीन मिट्टी the walls.

ବନ ମାର୍ଜାର—ସଂ. ବି—ବଣଭୁଆ; ବଣବିରାଡ଼ି; କଟାଶ—Wild
Bana mārjāra [ବନ ବି(ବ୍ରା)ଡ଼ାଳ -ଅନ୍ୟରୂପ] cat

ବନମାଳ—ଦେ. ବି—(ସଂ. ବନମାଲା)—ବନମାଳା (ଦେଖ)
Banamāla Banamālā (See).

ବନମାଳା—ସଂ. ବି—( ମ. ଯ. ଲୋ; ବନପୁଷ୍ପଦ୍ୱାରା ରଚିତ ମାଳା )—
Banamālā ୧ । ବନ୍ୟପୁଷ୍ପମାନଙ୍କଦ୍ୱାରା ରଚିତ ମାଳା—1. A chaplet made of wild flowers. ୨ । ଗୋଡ଼ର ବଲାଗଣ୍ଠି ବା ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିବା ନାନା ଫୁଲର ହାର—2. A garland hanging up to the ankles or knees of the wearer.
[ ଦ୍ର— ଶ୍ରୀକୃଷ୍ଣ ଏହା ଧାରଣ କରୁଥିଲେ । ]
୩ । ବନମାନଙ୍କ ଶ୍ରେଣୀ—3. Forest range.

ବନମାଳୀ—ସଂ. ବି. ପୁଂ—(ବନମାଳା+ଅସ୍ତ୍ୟର୍ଥରେ ଇନ୍; ବନମାଳିନ୍
Banamāli ଶବ୍ଦ; ୧ମା. ୧ବ)—ଶ୍ରୀକୃଷ୍ଣଙ୍କର ନାମବିଶେଷ—A name of Srikrushna.
(ବନମାଳିନୀ—ସ୍ତ୍ରୀ) ସଂ. ବିଣ ପୁଂ—ବନମାଳା ଧାରଣକାରୀ—Wearing a chaplet of wild flowers.
ଦେ. ବି—୧ । ଲୋକଙ୍କର ନାମବିଶେଷ—1. A name given to persons. ୨ । ବନପୁଷ୍ପରେ ରଚିତ ମାଳ—2. A garland made of wild flowers.

ବନମାଳୀ ଦାସ—ଦେ. ବି. (ନାମ)—ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀର ଜନୈକ
Banamāli dāsa ଓଡ଼ିଆ କବି—An Oriya poet of the 16th century A. D.
[ଦ୍ର—ଏହାଙ୍କ ରଚନା ବୈଷ୍ଣବଧର୍ମସମ୍ବଳିତ, ବିନାୟକ—ଉତ୍କଳ ସାହିତ୍ୟର ଇତିହାସ ।]

ବନମାଳୀ ସିଂହ—ଦେ. ବି (ନାମ)—ଜନୈକ ଓଡ଼ିଆ ଲେଖକ—An
Banamāli simha Oriya writer.
[ଦ୍ର—'ଶକୁନ୍ତଳା ଉପାଖ୍ୟାନ' ଏହାଙ୍କ ପ୍ରଣୀତ ଗଦ୍ୟପୁସ୍ତକ—ତାରଣୀ ଓ ଉତ୍କଳ ସାହିତ୍ୟର ଇତିହାସ ।]

ବନମୂତ—ସଂ. ବି.—ଜୀମୂତ; ମେଘ (ହି. ଶ)—
Banamūta Cloud.

ବନ ରକ୍ଷକ—ସଂ. ବି. (୬ଷ୍ଠୀ ତତ୍)—ବଣର ଜଗୁଆଳ—Forester;
Bana rakshaka forest-guard; forest-keeper.
(ବନରକ୍ଷ, ବନପାଳ—ଅନ୍ୟରୂପ)

ବନ ରାଜି—ସଂ. ବି.—(୬ଷ୍ଠୀ ତତ୍)—ବନସମୂହ; ବନଶ୍ରେଣୀ—A line
Bana rāji of forests.

ବନ (ନି)ଶି—ଦେ. ବି.—(ସଂ. ବଡ଼ିଶ)—ବଡ଼ିଶୀ (ଦେଖ)—
Bana(ni)si बड़सी বঁসী Bardiśi (see)
(ବନସ୍, ବନଶି—ଅନ୍ୟରୂପ)

ବନ(ନି)ଶିଆ—ଦେ. ବି.—ଯେଉଁ ଲୋକ ବନଶି ଦ୍ୱାରା ମାଛ ଧରେ—
Bana(ni)siā বড়সীয়া बासावा Angler.

ବନରୁହ—ସଂ. ବି. (ବନ+ରୁହ ଧାତୁ+କର୍ତ୍ତୃ.ଅ)—୧ । ଜଙ୍ଗଲୀ ଗଛ—
Banaruha 1 Wild tree. ୨ । ପଦ୍ମ—2. Lotus.

ବନଲକ୍ଷ୍ମୀ—ସଂ. ବି.—୧ । (୬ଷ୍ଠୀ ତତ୍) ବନର ଶୋଭା—1. The
Banalakshmi glory of the forest. ୨ । (ବହୁବ୍ରୀହି) କଦଳୀ (ହି. ଶ)—2. Plantain.

ବନଶି କଣ୍ଟା—ଦେ. ବି—ମାଛଙ୍କପାଇଁ ଖାଦ୍ୟ ବା ଗଣ୍ଡୁଗୁଣ୍ଡା ହୋଇ ଥିବା
Banasi kanṭā ବଙ୍କାଅଙ୍କୁଶଯୁକ୍ତ କଣ୍ଟା—Angling hook.
বঁড়সী কাঁটা ସାଗରକନ୍ୟା, ଚୋଲୁଚପଣ୍ଡା, କରୁଚଭୂଷଣ, ଗାଲ୍ଲଦିକଥା
वंसीका काँटा ଚଳଚ୍ଚପଦରୁ ସରଗ ଦେଖିଲି; ମନେ ଭରଛନ୍ତି ବନଶି କଣ୍ଟା—ରଗ ।

ବନଶି ଖଡ଼ା—ଦେ. ବି—ଯେଉଁ ଦଣ୍ଡରେ ବନଶିର ଡୋର ଲାଗିଥାଏ—
Banasi khardā The angling rod
वंसीकी छड़ी বঁড়সীর ছীপ

ବନଶି ଡୋର(ରି)—ଦେ. ବି—ଯେଉଁ ଡୋରର ଅଗରେ ବନଶି କଣ୍ଟା
Banasi dora(ri) ଲାଗିଥାଏ—Angling line.
वंसीकी डोरी বঁড়সী সুত

ବନଶି ଟେର(ରେ)ଣ୍ଡା—ଦେ.ବି—ବନସିର କଣ୍ଟାକୁ ପାଣିରେ ଝୁଲାଇ
Banasi tera(re)ṇḍā ରଖିବା ପାଇଁ ଡୋର ମଝିରେ ଲାଗିଥିବା
फतना ଶୋଲ ବା ମୟୂର ପକ୍ଷର କାଠି—A float attached to
कडेला; तिरेन्दा the angling line.

ବନଶି ପକା(କେ)ଇବା—ଦେ. କ୍ରି—ମାଛ ଧରିବାପାଇଁ ପାଣିରେ ବନଶି
Banasi pakā(ke)ibā ଯନ୍ତ୍ର ବ୍ୟବହାର କରିବା—
ছীপফেলা वंसीफेकना (ବନଶି ମାରିବା—ଅନ୍ୟରୂପ)To angle.

ବନ ଶୂକର—ସଂ. ବି—ବଣୁଆ ଘୁଷୁରି; ବାରହା; ବରାହ—
Bana śūkara Wild-boar.

ବନଶ୍ୱା—ସଂ. ବି. (ବନ+ଶନ୍=ବନଶ୍ୱନ୍; ୧ମା. ୧ବ.)—୧ । ବନ୍ୟ
Banaśwā କୁକୁର; ବଣୁଆ କୁକୁର—1 Wild dog.
୨ । ବିଲୁଆ—2. Jackal. ୩ । ହେଟା; ଗଧିଆ—3. Wolf.

ବନସ୍ତ(ସ୍ଥ)—ଦେ. ବି. (ସଂ. ବନସ୍ଥଳୀ)—୧ । ବନ; ଜଙ୍ଗଲ—
Banasta(stha) 1. Forest.
वनस्त ଯାଉଥିଲ କହ ବାହୁଁଙ୍କ ବନସ୍ତକୁ ।
बनज्त କୃଷ୍ଣସିଂହ, ମହାଭାରତ ବନ ।
୨ । ଘୋର ଜଙ୍ଗଲ—2 Dense forest.
ଅଥବା ବନସ୍ତେ ପଶିବ
ସନ୍ଧ୍ୟାସମରେ ବା ବଞ୍ଚିବ । ଜଗନ୍ନାଥ, ଭାଗବତ ।

ବନସ୍ଥ—ସଂ. ବିଣ—୧ । ବନରେ ସ୍ଥିତ—1. Situate in the
Banastha wood. ୨ । ବାନପ୍ରସ୍ଥ ଧର୍ମାବଲମ୍ବୀ—2. Taking to the forests; living in the forests.

ଶୁଣ ହେ ବ୍ରହ୍ମାର ନନ୍ଦନ
ବନସ୍ଥ ଅବଧୂତଧର୍ମ । ଜଗନ୍ନାଥ—ଭାଗବତ ।

**ବନସ୍ଥଳ(ଳୀ)**—ସଂ. ବି. ( ବନ+ସ୍ଥଳ; ସ୍ଥଳୀ; ୬ଷ୍ଠୀ ତତ୍ ) — Banasthala(li) ୧ । ବନଦେଶ; ଅରଣ୍ୟ ପ୍ରଦେଶ—1. Wild region. ୨ । ଅରଣ୍ୟର ଅଂଶବିଶେଷ—2. A part of a forest.

ବାମଣ୍ଡ୍ରୀ-ମଣ୍ଡନ-ପ୍ରପାତ-ଶୀକର-ସ୍ନାତ ଘନ ବନସ୍ଥଳୀ ।
ରାଧାନାଥ. ପାବଂଗ ।

**ବନସ୍ପତି**—ସଂ. ବି. ( ବନ+ପତି; ନିପାତନ )—୧ । ମହାଦ୍ରୁମ; Banaspati ବଡ଼ଗଛ—1. Big tree. ୨ । ପୁଷ୍ପହୀନ ଫଳଦ ବୃକ୍ଷ; ଯେଉଁ ବୃକ୍ଷର ଫୁଲ ପ୍ରକାଶିତ ନ ହୋଇ ଫଳ ଧରେ--2. Trees producing fruits apparently without flowers or blossoms. (ଯଥା—ଅଶ୍ୱତ୍ଥ, ଡିମ୍ବିରି, ବର ।) ୩ । (ସାଧାରଣତଃ) ବୃକ୍ଷ—3. A tree in general (Apte). ୪ । ସୋମ ଲତା—4. The Soma plant (Apte). ୫ । ଗଛର ଗଣ୍ଡି; ମୁଣ୍ଡି—5 A stem; trunk (Apte). ୬ । କଡ଼ି—6. A beam (Apte); ୭ । ଖୁଣ୍ଟ—7. A pole; post (Apte). ୮ । ବଳି-ସ୍ତମ୍ଭ; ଭାଲୁଡ଼—8. A sacrificial post (Apte). ୯ । ବନସ୍ପତିଙ୍କୁ ପ୍ରଦତ୍ତ ନୈବେଦ୍ୟ—9. An offering to Banaspati (Apte). ୧୦ । କାଠର ତେଉଁରିଆ—10. A wooden amulet (Apte). ୧୧ । ଫାଶୀଖୁଣ୍ଟ—11. A scaphold (Apte). ୧୨ । ଯୋଗୀ; ସନ୍ନ୍ୟାସୀ—12. An ascetic (Apte).

**ବନସ୍ପତି କାୟ**—ସଂ. ବି. ( ବହୁବ୍ରୀହି )—ଉଦ୍ଭିଜ୍ଜଗତ; ପୃଥିବୀର Banaspati kāya ବୃକ୍ଷସମୂହ—The whole vegetable kingdom (Apte).

**ବନା**—ଦେ. ବି.—୧ । [ସଂ.—ବର୍ଣ୍ଣଯୋଜନ (ନା)]—ବ୍ୟଞ୍ଜନ ବର୍ଣ୍ଣରେ Banā ସ୍ୱରବର୍ଣ୍ଣର ମାତ୍ରା ଯୁକ୍ତ କରିବା ଧାରା—1. The process बानान of inflecting consonants with vowel signs. **बक्दमल** ୨ । (ସଂ. ବର୍ଣ୍ଣନା)—ବର୍ଣ୍ଣନା—2 Description. ୩ । ରଚନା—3. Composition. ୪ । କଥନ—4. Speaking. ୫ । ଶବ୍ଦାଳଙ୍କାରବିଶେଷ; ଯେଉଁ ପଦ୍ୟରେ ବ୍ୟବହୃତ ଅକ୍ଷରାବଳି 'ଅ' ଭିନ୍ନ ଅନ୍ୟ ସ୍ୱରବର୍ଣ୍ଣଯୁକ୍ତ ଥାଏ-5. A kind of matrical composition in which the words or letters contain vowels other than 'a'.

ଯଥା—ଭୀରୁ ଯିଲା ବଳାସିଂକି କାନ୍ତି ସୁରୁଚେ
ଗିନାଞ୍ଚ ମୋହନୀ କାନ୍ତ ଦେଖି ବୈଚକାରେ । ଦୀନ ମହୁଷ ।

୬ । ପରିବା ଆଦିକୁ ରନ୍ଧା ଯିବା ନିମନ୍ତେ କାଟିବା—6. Cutting or slicing of vegetables for cooking
୭ । (ଅନାଦରାର୍ଥକ) ବନମାଳୀର ଡାକ ନାମ—7. A name for calling Banamāli.

**ବନା(ନେ)ଇବା**—ଦେ. କ୍ରି. ( ସଂ. ବର୍ଣ୍ଣନ )—୧ । Banā(ne)ibā बनान ୧ । ବନିବା କ୍ରିୟାର ଣିଜନ୍ତ ରୂପ—**बनाना, बनवाना** 1. Causative of Banibā.
୨ । ପରିବା ଆଦି ରାନ୍ଧିବା ନିମନ୍ତେ କାଟିବା—2. To chop or slice vegetables for cooking.
୩ । ପ୍ରସ୍ତୁତ କରିବା—3. To make; to prepare.
ବନ ହରୁ ସୁମ ଝର ବନାଇ ବନାଇ । କବିସୂର୍ଯ୍ୟ. ସଙ୍ଗୀତ ।
୪ । ନିର୍ମାଣ କରିବା—4. To build; to construct.
ଯମୁନା ବାହୁନୀ ଛାଇ ରହି କଣ୍ଠ ଅଙ୍ଗେ ବନାଇ ବାଉରେ ।
କବିସୂର୍ଯ୍ୟ. ଚଉପଦୀ ସଙ୍ଗୀତ ।
୫ । ପରିଣତ କରାଇବା—5. To cause to change into. ( ଯଥା—ଭଲଲୋକଙ୍କୁ କଥାରେ ସେ ଚୋର ବନାଇ ଦେଲା । )
୬ । (ସଂ. ବିନ୍ୟାସ) ସଜାଇବା; ସଜ୍ଜିତ କରିବା—6. To dress; to adorn; to fit up.
ବନାଇ ତନୁ ଲୁଚୁମେ ଚନ୍ଦନ ଲେପନ । ଉକ୍ତ ବୈଦେହୀଶବିଳାସ ।

**ବନାଉ(ଓ)ତ**—ଦେ. ବି—ବନାତ (ଦେଖ)
Banāu(o)ta Banāta ( See )

**ବନାଗ୍ନି**—ସଂ. ବି. (୬ଷ୍ଠୀ ତତ୍; ବନ+ଅଗ୍ନି)—ଦାବାନଳ—
Banāgni Forest-fire.

**ବନାଟି**—ଦେ. ବି—ବନୋଟି ( ଦେଖ )
Banāṭi Banoti ( See )

**ବନାଣିଆ କଥା**—ପ୍ରାଦେ. (ସିଂହଭୂମ) ବି. (ଭୁଲ. ହି. ବନାବଟ୍ ବାତ୍)-Banāṇiā kathā ମନଗଢ଼ା କଥା—Got-up story.

**ବନାତ**—ଦେ. ବି. ( ସଂ. ବପ୍ ଧାତୁ=ବୁଣିବା )—
Banāta ଲୋମଜ ଶୀତବସ୍ତ୍ରବିଶେଷ—Broad-cloth.
बनात् **बनात** (ବନୋତ—ଅନ୍ୟରୂପ)

**ବନାତୀ**—ଦେ. ବି—ବନାତରେ ତିଆରି ହୋଇଥିବା (ଜିନିଷ)—
Banātī बनाती **बनाति** Made of broad-cloth.

**ବନାନ**—ଦେ. ବି. [ ସଂ. ବର୍ଣ୍ଣ ଯୋଜନ(ନା) ]—
Banāna ୧ । ଅକ୍ଷରର ଉଚ୍ଚାରଣ ବା ବର୍ଣ୍ଣମାନଙ୍କର ବିସ୍ତାର—बानान् **हिज्जे, बीबरण** 1. Spelling of letters.
୨ । ଶବ୍ଦସ୍ଥ ବର୍ଣ୍ଣମାନଙ୍କର ଯୋଜନାପ୍ରଣାଳୀର ବିଶ୍ଳେଷଣ ବା ବର୍ଣ୍ଣନା—2. The mode of spelling the letters comprising a word.

**ବନାନ କରିବା**—ଦେ. କ୍ରି—କୌଣସି ଶବ୍ଦର ଅକ୍ଷରମାନଙ୍କୁ ବିଶ୍ଳେଷଣ Banāna karibā କରି ବ୍ୟାଖ୍ୟାନ କରିବା—To spell a word.
बानान करा **हिज्जे करना, बर्णन करना**

**ବନାନ ଭୁଲ**—ଦେ. ବି—ବର୍ଣ୍ଣାଶୁଦ୍ଧି; ଶବ୍ଦରେ ଅଶୁଦ୍ଧ ବର୍ଣ୍ଣବିନ୍ୟାସ—
Banāna bhula Spelling mistake.
बानान्‌ भूल **बर्णाशुद्धि, अक्षर गलती**

[ ଯଥା—'ଣ' ସ୍ଥାନରେ 'ସ', 'ଚ୍ଛ' ସ୍ଥାନରେ 'ଛ', 'ଢ଼' ସ୍ଥାନରେ 'ଡ଼' ଇତ୍ୟାଦିର ପ୍ରୟୋଗ । ]

**ବନାମ୍ନା**—ଦେ ବି. (ସଂ. ଅରଣ୍ୟାମ୍ନାର ଅନୁକରଣରେ ଅଶୁଦ୍ଧ ପ୍ରୟୋଗ; ସଂ. ବନ ଶବ୍ଦର ବହୁବଚନ ବନାନି )—
Banāni
୧ । ଅରଣ୍ୟାନୀ; ସୁବିସ୍ତୃତ ଜଙ୍ଗଲ—1. A range of forests; vast forest. ୨ । ବହୁ ଅରଣ୍ୟ—2. A great many forests.

**ବନାନ୍ତ**—ସଂ. ବି• ( ୬ଷ୍ଠୀ ତତ୍; ବନ + ଅନ୍ତ )—୧ । ଅରଣ୍ୟର ପ୍ରାନ୍ତ
Banānta ଭାଗ—1. The extremity of a forest.
୨ । ବନ ଭୂମି;ବନ ଦେଶ –2. Wild tract; wilderness.

**ବନାବନି**—ଦେ. ବି• ( ସଂ ବନା=ମିଳନ ) —
Banābani ୧ । ଅନ୍ୟାନ୍ୟରେ ଗାଳି ଦିଆଦେଇ—
বকাবকী **बकाबकी** 1. Mutual recrimination.
কোটাকুটী **बनाबनी** ୨ । ପରିବା ଆଦି ବନାଇବା କ୍ରିୟା—
2. The act of slicing vegetables for cooking.
୩ । ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣର ମାତ୍ରା ଯୋଗ କରିବା—
3. The act of joining vowel-signs to consonants. ୪ । ଦୁଇ ଜଣଙ୍କ ମଧ୍ୟରେ ସଦ୍ଭାବ ବା କଥା ଭାଷା
-4. Mutual friendship or terms of speaking between two persons.
বনি বনাও **बनीवनाव**

**ବନାମ୍**—ବୈଦେ. ଅ. (କଚେରୀ) (ଫା. ବନାମ୍=ନାମରେ)—
Banām ୧ । ବିପକ୍ଷୀୟ ପକ୍ଷରେ; ଅପର ପକ୍ଷରେ—1. Versus; on the opposite party.
বনাম **बनाम**
( ଯଥା—ସରକାର୍ ବାହାଦୁର୍ ବାଦୀ ବନାମ୍ ରାମଚନ୍ଦ୍ର ମଙ୍ଗରାଜ ସାକିନ୍ ଗୋବିନ୍ଦପୁର—ପ୍ରତିବାଦୀ । )
ଫକୀରମୋହନ. ଛଅମାଣଅଠଗୁଣ୍ଠ ।
୨ । ଓରଫ୍; ଅନ୍ୟ ନାମ—2. Alias.
( ଯଥା—ଶ୍ରୀ ରାମଚନ୍ଦ୍ର ମଙ୍ଗରାଜ ବନାମ୍ ବଡ଼ ବାବୁ । )
୩ । (ଅମୁକର) ନାମରେ—3. In the name of
[ ଦ୍ର—ଏହି ଶବ୍ଦର ସାଙ୍କେତିକ ଚିହ୍ନ 'ା ବ ।' । ସାଧାରଣତଃ ବାଦୀ ଓ ପ୍ରତିବାଦୀଙ୍କ ନାମ ମଧ୍ୟରେ ଏହି ଶବ୍ଦ ଅଦାଲତରେ ବ୍ୟବହୃତ ହୁଏ । ]

**ବନାୟୁ**—ସଂ• ବି. (ନାମ) ( ତୁଳ. ଫାରସୀ ନାମ ୟୁନାନ୍ )—
Banāyu ୧ । ପ୍ରାଚୀନ ଦେଶବିଶେଷ; ଭାରତବର୍ଷର ପଶ୍ଚିମରେ ଅବସ୍ଥିତ ଆରବ ବା ପାରସ୍ୟ ଦେଶର ପ୍ରାଚୀନ ନାମ; ୟୁନାନ୍ ଦେଶ—1. The ancient country of Unan (modern Arabia or Persia).
[ ଦ୍ର—ଏ ଦେଶ ଉତ୍କୃଷ୍ଟ ଘୋଟକ ନିମନ୍ତେ ପ୍ରସିଦ୍ଧ ଥିଲା । ]
୨ । ଏ ଦେଶବାସୀ ଜାତି ( ହି. ଶ )—2. A caste of people inhabiting the Unan country.
୩ । (ନାମ) ରାଜା ପୁରୁରବାଙ୍କର ଏକ ପୁତ୍ର—
3. A son of King Pururabā.

**ବନାୟୁଜ**—ସଂ. ବିଣ—ବନାୟୁ ଦେଶ ଜାତ—Belonging to Persia or Arabia; Unani.
Banāyuja
( ଯଥା—ବନାୟୁଜ ଅଶ୍ୱ । )
ସଂ. ବି—ଆରବୀ ଘୋଡ଼ା—Arab horse.

**ବନାରସ**—ଦେ. ବି• ( ସଂ. ବାରାଣସୀ; ବର୍ଣ୍ଣ ବିପର୍ଯ୍ୟୟ )—
Banārasa କାଶୀ; ବାରାଣସୀ ନଗର—Town of Benares.
বেনারস, বনারস **बनारस**

**ବନାରସୀ**—ଦେ. ବିଣ—୧ । କାଶୀରେ ନିର୍ମିତ—1. Made or manufactured in Benares.
Banārasi
বেনারসী **बनारसी** (ଯଥା—ବନାରସୀ ପାଟ । )
୨ । ବନାରସର ଅଧିବାସୀ—2. Inhabiting in or belonging to Benares.
( ଯଥା—ବନାରସୀ ନର୍ତ୍ତକୀ ବା ବାଈ । )
ଦେ. ବି—କାଶୀ ପ୍ରସ୍ତୁତ ପାଟ ଲୁଗା—
Benares silk cloth.

**ବନାର୍ଦ୍ରକ**—ସଂ. ବି. (ବୈଦ୍ୟକ)—ଓରୁଅ ( ଦେଖ )
Banārdraka Orua ( See )

**ବନାଲକ୍ତକ**—ଦେ. ବି. ( ବନ+ଅଲକ୍ତକ; ଉପମିତ ସମାସ )—
Banālaktaka ଗେରୁ—Red chalk; hematate; red ochre.
ବ୍ୟାଖ୍ୟାନ କଲ ମହୀ ଦ୍ରୋଣ ଚରିତ
ବନାଲକ୍ତକ ଚିହ୍ନ ଘେନି ଯେମନ୍ତ । ଉତ୍ତ. ବୈଦେହୀଶବିଳାସ ।

**ବନା ଶାଢ଼ୀ**—ଦେ. ବି. ( ସଂ. ବର୍ଣ୍ଣ+ଶାଟୀ )—ରଙ୍ଗିନ୍ ଲୁଗା; ଛିଟ—
Banā sārdhi Coloured or spotted cloth; chintz.
বংগীন শাড়ী ବନା ଶାଢ଼ୀ ଖଣ୍ଡେ ପିନ୍ଧିଲେ ସୁନ୍ଦରଅଟ ।
**रंगीन शाढी** କୃଷ୍ଣସିଂ ହ. ମହାଭାରତ. ବନ୍ତ ।

**ବନାଶ୍ରମ**—ସଂ. ବି. ( ବନ + ଆଶ୍ରମ )—ବାନପ୍ରସ୍ଥାଶ୍ରମ—Taking
Banāsrama to the forest-life after the age of 50 to pass one's old age there.

**ବନାଶ୍ରମୀ**—ସଂ. ବିଣ. ପୁଂ ( ବନାଶ୍ରମ + ଇନ୍; ୧ମା. ୧ବ )—
Banāsrami ବାନପ୍ରସ୍ଥାବଲମ୍ବୀ—Living in the forest in an advanced age.
(ବନାଶ୍ରିତ—ଅନ୍ୟରୂପ)

**ବନାଶ୍ରୟ**—ସଂ. ବି. ( ୬ଷ୍ଠୀ ତତ୍; ବନ+ଆଶ୍ରୟ )—
Banāsraya ୧ । ବନର ଆଶ୍ରୟ—1 Talking shelter in the forests. ୨ । (ବହୁବ୍ରୀହି) ଡାମରା କାଉ—2. Rook; crow; jackdaw.
ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ବନବାସୀ—1. Living in the forests. ୨ । ବନଗାମୀ—2. Moving in the forests. ୩ । ବାନପ୍ରସ୍ଥାବଲମ୍ବୀ—3. Taking to the forests to pass one's old age there.

**ବନି**—ଦେ. ବି—(ଆଦରାର୍ଥକ) ବନମାଳୀର ଡାକନାମ—Name for calling Banamāli in endearment.
Bani
ପ୍ରାଦେ. (ଗଡ଼ଜାତ) ବି—ରକ୍ତ; ଲହୁ—Blood.
(ଯଥା—ଓହୋ ! ତା ମୁଣ୍ଡରୁ କେତେ ବନି ବୋହିଗଲା । )

**ବନିଆଦ**—ବୈଦେ. ବି—(ଫା)—(ଫା. ବୁନୟାଦ୍)—୧ । ଘର ଆଦିର ନିଅଁ ବା ଭିତ୍ତିମୂଳ—1. The foundation of a house. ୨ । (ଲକ୍ଷଣାର୍ଥ) କୌଣସି ବଂଶର ମୂଳ—2. (figurative) The origin or foundation of a family.
Baniād
ব(বু)নিয়াদ **बुनियाद्**

**ବନିଆଦି**—ବୈଦେ. ବିଣ. (ଫା)—୧ । (ଦୃଢ଼ ବା ପ୍ରଶସ୍ତ ଭିତ୍ତିବିଶିଷ୍ଟ
Baniādi ( ଗୃହ )—1. (house) Having strong
ବ(ବୁ)ନିଆଦୀ foundation; well-founded. ୨ । (ଲକ୍ଷଣାର୍ଥ)
**बुनियादी** ବହୁକାଳ ସ୍ଥାୟୀ—2. (figurative) Permanent.
୩ । ବହୁ କାଳରୁ ସମାଜରେ ସମ୍ମାନିତ ଓ ପ୍ରସିଦ୍ଧ (ବଂଶ)—
3. Old and respectable (family); aristocratic.

**ବନିଅନ୍**—ପ୍ରାଦେ ( ଗଞ୍ଜାମ ) ବୈଦେ ବି—( ଇଂ. ବନିଅନ୍,
Baniān ଫ୍ଲାନେଲ୍ ଜାକେଟ୍ )—ଗେଞ୍ଜି—Banian; a gauze
ବେନିୟାନ **बनीयान** underwear or shirt.
[ ଦ୍ର—ଇଂରେଜମାନେ ଭାରତକୁ ଆସିବାବେଳେ ସେମାନଙ୍କ ସଙ୍ଗେ କାରବାର କରୁଥିବା ବଣିକ୍‌ଙ୍କୁ 'ବନିଅନ୍ (ବଣିଆ)' ଡାକୁଥିଲେ ଓ ସେମାନେ ପିନ୍ଧୁଥିବା ଅଧାହାତିଆ ଯାକେଟ୍‌କୁ ସେମାନଙ୍କ ନାମ ଅନୁସାରେ 'ବନିଅନ୍' ନାମ ଦିଆ ହୋଇଥିବା ବିଷୟ Webster କହନ୍ତି । ]

**ବନିକା**—ଦେ. ବି—( ବନ+ସ୍ୱାର୍ଥେ. କ+କ୍ଷୁଦ୍ରାର୍ଥେ. ଆ )—
Banikā ୧ । ଉଦ୍ୟାନ—1. Garden.
ଅଶୋକ ବନିକାରେ ସୀତାଙ୍କ ଦେଖିଲି— କୃଷ୍ଣସିଂହ. ମହାଭାରତ ବନ ।
୨ । ଛୋଟ ବନ—2. Small forest.
କାନନୀ ଭଳ ବାଲୁଙ୍ଗ, ଶାଲୁଷ୍ଟ ବନିକା ବନୋଦ—
ଭୂପତି – ପ୍ରେମପଞ୍ଚାମୃତ ।
୩ । କୁଞ୍ଜବନ—3. Grove.

**ବନିତ**—ସଂ. ବିଣ—(ବନ୍ ଧାତୁ+କର୍ମ. ତ)—୧ । ଯାହା ପ୍ରାର୍ଥନା
Banita କରାଯାଏ; ପ୍ରାର୍ଥିତ; ଯାଚିତ—1. Prayed for.
୨ । ସେବିତ—2. Tended.

**ବନିତା**—ସଂ. ବି. ସ୍ତ୍ରୀ—(ବନ୍ ଧାତୁ=ମାଗିବା+କର୍ମ. ତ+ସ୍ତ୍ରୀ. ଆ)—
Banitā ୧ । ଭାର୍ଯ୍ୟା; ସ୍ତ୍ରୀ—1. Wife. ୨ । ନାରୀ—2. Woman. ୩ । ପ୍ରିୟା; ପ୍ରିୟତମା ସ୍ତ୍ରୀ—3. One's beloved lady. ୪ । ସଂସ୍କୃତ ଛନ୍ଦୋବିଶେଷ—4 Name of a Sanscrit metre.

**ବନି ବନାଉ (ଓ)**—ଦେ. ବି—(ଦ୍ୱି; ସଂ—ବନ=ମିଳନ; ଦ୍ୱି. ବନାଉ=
Bani banāu(o) ମିଳନ ଭାବ)—୧ । ବନା ବନି; ସଦ୍ଭାବ—
ବନି ବନାଓ 1. Good relations. ୨ । ଦୁଇ ଜଣଙ୍କ ମଧ୍ୟରେ
**बनाव** ପଡ଼ି—2. Speaking terms between two persons.

**ବନିବା**—ଦେ. କ୍ରି—୧ । (ସଂ.ବର୍ଣ୍ଣଯୋଜନ) ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣର
Banibā ମାତ୍ରା ଯୋଗ କରିବା—1. To add vowel-signs
ବାନାନକବା to consonants. ୨ । ଶବ୍ଦସ୍ଥ ଅକ୍ଷରମାନଙ୍କର ବର୍ଣ୍ଣମାନ
**हिजे करना, विवरण करना** ବିଶ୍ଳେଷଣ କରିବା; ବନାନ କରିବା—
2. To analyse the spelling of the letters in
ତୟେରହୱୟା a word. ୩ । ନିର୍ମିତ ହେବା —3. To be built.
**बनना** (ଯଥା—ତାଙ୍କର ଗୋଟିଏ ହୋମାହାଣ୍ଡି କୋଠା ବନୁଛି)
ବନା ୪ । ଦୁଇ ଜଣଙ୍କ ମଧ୍ୟରେ ସଦ୍ଭାବ ଥିବା; ପଟିବା—4. To
**बनना** continue in the maintenance of good relations between two persons.

(ଯଥା—ଶ୍ରୀମିତ ଗୁରୁଙ୍କ ମଧ୍ୟରେ ଘନିଷ୍ଠ ସୁଦ୍ଧା 'ବନନ୍ତି' ନାହିଁ)
ବର୍ଣ୍ଣନା କରା ୫ । ବର୍ଣ୍ଣନା କରିବା—5. To describe. ୬ । ବର୍ଣ୍ଣିବା;
**वर्णन करना** ଗାଳିଦେବା; ବକିବା; ବକାବକି କରିବା—6. To
ବକା **गालीदेना** abuse; to call names.
ବାନାନଶିଖା ୭ । (ଛାତ୍ର) ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରମାତ୍ରା (ଆକାର,ଇକାର
**हिजेसिखना विवरनशिखना** ଆଦି) ଯୋଗ କରିବାକୁ ଶିକ୍ଷା କରିବା—
7. (student) To learn the adding of vowel-signs to consonants. ୮ । ଶବ୍ଦରେ ଥିବା ସ୍ୱରଯୁକ୍ତ
ବାନା କରା ବ୍ୟଞ୍ଜନ ବର୍ଣ୍ଣକୁ ବିଶ୍ଳେଷଣ କରିବା—8. To spell a
**विवरन करना** consonant joined with a vowel ୯ । ହୃଷ୍ଟ-
ବନା **बनना** ପୁଷ୍ଟାଙ୍ଗ ହେବା—9. To be fat. ୧୦ । (ଫଳାଦି)
ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବା—10. To develop to proper proportions (said of a fruit). ୧୧ । ସୌନ୍ଦର୍ଯ୍ୟରେ ଶୋଭିତ ହେବା—11. To develop or shine in one's beauty. ୧୨ । ପରିଣତ ହେବା—12. To be;
ବନା **बनना** to become; to turn into.
(ଯଥା—ସେ ମୋ ମୁରବ୍ବୀ ବନିଛନ୍ତି ।)
୧୩ । ଫଳତଃ ବା କାର୍ଯ୍ୟରେ ଅମୁକର ସ୍ୱରୂପ ଧାରଣ କରିବା;
ପାଲଟା ପାଲଟିବା; ରୂପେ ପରିଣତ ହେବା—13 To be
**बनना** virtually like; to be turned into.
(କନ୍ଦର୍ପ) ପଞ୍ଚବାଣ ବନିଲେ ସେ ମୁରଲୀଧର ।
କବିସୂର୍ଯ୍ୟ—ଉତ୍କାକର ଚମ୍ପୂ ।
ପ୍ରାଦେ. (ସମ୍ବଲପୁର) କ୍ରି—୧ । ଠିକ୍ ହେବା—1. To suit; to be appropriate. ୨ । ଆସିବା; ପଇଟିବା—
2. To be recalled; to be committed to memory.

**ବନୀ**—ଦେ ବି—୧ । ( ବନ+ସ୍ତ୍ରୀ. ଈ )—ବନସ୍ଥଳୀ; ବନ—
Banī 1. Forest.
ଯମୁନା ବାହୁନା ତଇଁ ବଣ ବନୀ ଅବନୀ ବନାଇ ବାର ସେ ।
କବିସୂର୍ଯ୍ୟ. କଳୋଳପକ୍ଷୀ ସ. ଗୀତ ।
୨ । ଛୋଟ ବନ—2. A small forest ୩ । (ବନ ଧାତୁ+ଭାବ. ଈ) ଯାଚଣା—3. Begging ୪ । ମିଳନ
—4. Meeting; mixing ୫ । ପ୍ରାର୍ଥନା—5. Prayer; solicitation. ୬ । (ପୁଂ; ବନ+ଇନ୍; ୧ମା. ୧ବ.) ବାନପ୍ରସ୍ଥ—6. A person who has taken to the 3rd stage of a Hindu's life.

**ବନୀକ**—ସଂ. ବିଣ. ପୁଂ. (ବନୀ=ପ୍ରାର୍ଥନା+ଯ+ଅକ; ଯ ଲୋପ; ପ୍ରକୃତି
Banīka ବାଦ)—ପ୍ରାର୍ଥନାକାରୀ—Soliciting; begging;
(ବନୀପକ, ବନୀୟକ—ଅନ୍ୟରୂପ) solicitous.
(ବନୀକା, ବନୀପକା, ବନୀୟକା—ସ୍ତ୍ରୀ) ସଂ. ବି—ଭିକ୍ଷୁକ—
A beggar; a mendicant (Apte).

**ବନୁଟି**—ଦେ. ବି—ବନେଟି (ଦେଖ)
Banuṭi Baneṭi (See)

**ବନେ**—ଦେ. (କ୍ରିୟା, ଅବ୍ୟୟରୂପେ ବ୍ୟବହୃତ) ଅ—୧ । ନିଶ୍ଚୟ—
Bane 1. Certainly. ୨ । ଦୃଢ଼ସଂକଳ୍ପ—2. Determination.
**बनेगा**

(ଯଥା—ଭୁ ଆଜ ମୋ ଗୋଡ଼ ତଳେ ମୁଣ୍ଡ ନୁଆଁଇଲେ ଯାଇ ମୋର ବନେ=ମୁଁ ଦୃଢ଼ ସଙ୍କଳ୍ପ କରିଛି ଯେ ଭୁ ଆଜ ମୋ ଗୋଡ଼ତଳେ ମୁଣ୍ଡ ଲୁଆଁଇବୁ ।)

୩ । (ଏହା) ଚଳିବ—3. (this) Will do.
ଯଥା—ମୋର ଏକାମ ହେଲେ ବନେ ।

**ବନେଇ ବାନେଇ**—ଦେ. କ୍ରି. ବିଣ—କୌଣସି ବସ୍ତୁକୁ ସୁନ୍ଦରରୂପେ ସଜେଇ ସାଜେଇ—Embellishingly.
Banei bānei
बानियें बानियें
**बानावट करके; बनावना करके**
ଭୁ ଯା ତାଙ୍କ ଦୃଷ୍ଟିରେ ବନେଇ ବାନେଇ କହିବୁ । ଫଙ୍କୀରମୋହନ—ଗଳ୍ପସ୍ବଳ୍ପ ।

**ବନେ ଇଂଶୁକ**—ସ. ବି. (ଅଲୁକ୍ ସମାସ; ବଣରେ ପଳାଶଫୁଲ ପରି)—ବିନା ପରିଶ୍ରମରେ ମିଳିବା ଦ୍ରବ୍ୟ (ହି. ଶ.)—Anything got for nothing.
Bane kimśuka

**ବନେଚର**—ସ. ବିଣ. ଓ. ବି (ବନେ=ବନରେ+ଚର ଧାତୁ=ବୁଲିବା +କର୍ତ୍ତୃ. ଅ; ଅଲୁକ୍ ଉପପଦ ସମାସ)—ବନଚର (ଦେଖ)—Banachara (See)
Banechara

**ବନେଜା**—ସଂ. ବି. (ବନେ+ଜନ ଧାତୁ+କର୍ତ୍ତୃ. ଅ+ଆ; ଅଲୁକ୍; ଉପପଦ ସମାସ)—୧ । ଆମ୍ବ (ହି.ଶ.)—1. Mango.
Banejā
୨ । ପର୍ପଟ (ହି. ଶ.) (ଦେଖ)—2. Parpaṭa (See)

**ବନେ(ନୋ, ନୌ)ଟି**—ବୈଦେ. ବି. (ଥ. ବନେଟ; ଭୁଲ. ସଂ. ବନ+ଯଷ୍ଟି)—ମଲ୍ଲକ୍ରୀଡ଼ାରେ ବ୍ୟବହୃତ ୩।୪ ହାତ ଲମ୍ବ ବାଡ଼ି—A cudgel 3 or 4 cubits long used in wrestling.
Bane(no, nau)ṭi
बनेटि; बेनेटी
**बनेठी**

[ ଦ୍ର—ଏଥିର ଦୁଇ ମୁଣ୍ଡରେ କନା ପୁଡ଼ା ବା କଣାଁ ଝୁଲା ବାନ୍ଧି ଉକ୍ତ ବାଡ଼ିର ମଧ୍ୟସ୍ଥଳକୁ ହାତଦ୍ୱାରା ମୁଠାଇ ହସ୍ତକୌଶଳଦ୍ୱାରା ଦୁଇ ମୁଣ୍ଡକୁ ବୃତ୍ତାକାରରେ ବୁଲାଇ ମଲ୍ଲକ୍ରୀଡ଼ା କରାଯାଏ । ]

**ବନୋତ୍ସର୍ଗ**—ସଂ. ବି. (ବନ+ଉତ୍ସର୍ଗ)—ଦେବମନ୍ଦିର, ବାପୀ, କୂପ, ଉପବନଆଦିର ସର୍ବସାଧାରଣଙ୍କ ବ୍ୟବହାରାର୍ଥ ଉତ୍ସର୍ଗ ବା ଦାନ କର୍ମ (ହି. ଶ.)—Formal dedication of a temple well, tank or park for the use of the public.
Banotsarga

**ବନୌକା**—ସଂ. ବିଣ. (ବନ ଅଟେ ଓକସ୍=ଗୃହ, ବାସ ଯାହାର; ବନୌକସ୍ ଶବ୍ଦ; ୧ମା. ୧ବ.)—୧ । ବନବାସୀ—1. Living in the forest.
Banaukā
ସଂ. ବି—୧ । ବାନର; ମାକଡ଼—1. Monkey. ୨ । ତପସ୍ୱୀ; ଋଷି—2 Sage; hermit.
ବନୌକା (୧) ସଙ୍ଗେ ବନୌକା (୨) କହନ୍ତ କ ଚିତ । ଭଞ୍ଜ, ବୈଦେହୀଶବିଳାସ ।

**ବନୌଷଧି(ଧୀ)**—ସଂ. ବି (୬ଷ୍ଠୀ ତତ୍; ବନ+ଓଷଧି)—୧ । ବନଜାତ ଚେରମୂଳୀ; ଜଡ଼ିବୁଟି—2. Herbs; medicinal plants and roots.
Banaushadhi(dhī)

**ବନ୍ତ**—ଦେ.ପ୍ରତ୍ୟୟ (ଅନ୍ୟ ଶବ୍ଦ ସଙ୍ଗରେ ଯୁକ୍ତ ହୁଏ; ସଂ ବତ୍ ପ୍ରତ୍ୟୟର ଅପଭ୍ରଂଶ)—ଯୁକ୍ତ; ଯାହାର ଥାଏ—(a suffix meaning) Having.
Banta
**वन्त वन्त** ବନ୍ତା, ବନ୍ତୀ—ସ୍ତ୍ରୀ
( ଯଥା—ଭାଗ୍ୟବନ୍ତ; ଲକ୍ଷ୍ମୀବନ୍ତ । )

**ବନ୍ତ** ପ୍ରାଦେ (ପୁରୀ) ବି—ବାଲିଗଦା—A heap or hillock of sand; sand dune.
**बालुका टील**
ପ୍ରାଦେ (ଗଡ଼ଜାତ; ଅନୁଗୁଳ) ବି—୧ । ରାମ ଶିଆଳ ୨ (ଦେଖ) 1. Rāmaśiāḷa 2 (See) ୨ । ହେଣ୍ଟା—2. Wolf.

**ବନ୍ତଳ**—ଦେ. ବି (ସଂ, ନାମ - କାଷ୍ଠ କଦଳୀ)—କଞ୍ଚାରେ ତରକାରି ହୋଇ ଖିଆଯିବା କୋଣବିଶିଷ୍ଟ ଏକପ୍ରକାର କଦଳୀ—A kind of plantain used in preparing curry while raw; Plantain; Musa Paradiaca (Haines).
Bantaḷa
**काँचकला**
**कच्चाकेला; कठकेला**
( ବନ୍ତଳ କଦଳୀ—ଅନ୍ୟରୂପ )

[ ଦ୍ର—କଦଳୀ ସାଧାରଣତଃ ତିନ ପ୍ରକାରର; ଯଥା—
୧ । ଯାହା କଞ୍ଚାରେ ତରକାରି କରି ଖିଆ ଯାଏ, ଅର୍ଥାତ୍—ବନ୍ତଳ ।
୨ । ଯାହା ପାଚିଲେ ଖିଆଯାଏ ।
୩ । ଯାହା କଞ୍ଚା ତରକାରି କରି ଓ ପାଚିଲେ ମଧ୍ୟ ଖିଆଯାଇ ପାରେ
୧ମ ଶ୍ରେଣୀର ବନ୍ତଳ କଦଳୀ ଅନେକ ଜାତୀୟ ଅଛି; ଯଥା—ମେଣ୍ଢୀବନ୍ତଳ (ଶ୍ରେଷ୍ଠ ଶ୍ରେଷ୍ଠ), ପାଣିଁଗିଆ, ଲାଉଆ, ଦକ୍ଷିଣିସାଗର, ବଙ୍ଗଳିଙ୍ଗଣିଆ ବନ୍ତଳ, ମଞ୍ଜି କଦଳୀ ।
୨ୟ ଶ୍ରେଣୀର କଦଳୀ ମଧ୍ୟ ନାନା ଜାତୀୟ; ଯଥା—କାଠିଆ, ଚମ୍ପା, ଅମୃତପାଣି, ପାଟକପୁର, କାବୁଲା, କଦ୍ଭୋଇବଇଁଶି, ନାଲିକଦଳୀ, ଚଣିଚମ୍ପା ।
୩ୟ ଶ୍ରେଣୀର;କଦଳୀ—ଶଙ୍କର ଓ ବଇଶା; ଏଗୁଡ଼ିକ ଉତ୍କୃଷ୍ଟ ନୁହେଁ ଓ ବନାସହିରେ ବଢ଼େ । ]

**ବନ୍ତାଳୁ କଦଳୀ**—ପ୍ରାଦେ (ଗଞ୍ଜାମ) ବି—ବନ୍ତଳ (ଦେଖ) Bantaḷa (See)
Bantāḷu kadaḷī

**ବନ୍ତାଳୁ ମାଛ**—ପ୍ରାଦେ. (ଗଞ୍ଜାମ) ବି. (ତେଲୁଗୁ ବନ୍ତାଳୁ+ସ. ମତ୍ସ୍ୟ)—ଏକ ପ୍ରକାର ସାମୁଦ୍ରିକ ମାଛ—A kind of sea-fish.
Bantāḷu māchha

**ବନ୍ଥ**—ପ୍ରାଦେ. (ଗଞ୍ଜାମ) ବି.—ଖାଲୁଅ; ମାଛ ଧରିବା ପାଇଁ ବାଉଁଶ କାଟିରେ ବୁଣା ହୋଇ ଥିବା ଜାଲବାଡ଼—A matting made of bamboo-laths for catching fish.
Bantha

**ବନ୍ଥଡ଼(ଢ଼ା)**—ଦେ. ବି.—ବ୍ୟାଘାତ; ବାଧା—Obstacle.
Bantharḍa(rḍā)
ଦେ. ବିଣ.—୧ । ବୁଦ୍ଧିହୀନ; ମୋଟାବୁଦ୍ଧି—1 Blunt; dull-headed ୨ । ବ୍ୟାଘାତକାରକ—2. Obstructive.
୩ । (ସ. ଦନ୍ତୁର; ଭୁଲ. ଇଂ. ବ୍ଲଣ୍ଟ)—ଦନ୍ତୁରସ; ଯେଉଁ ଅସ୍ତ୍ରର ଧାର ମୋଟା ଓ ଦନ୍ତୁର ହୋଇ ଯାଇଥାଏ—3. Blunt; dull-edged.

**ବନ୍ଦ୍ (ଧାତୁ)**—ସ.—୧ । ପୂଜା କରିବା—1. To worship.
Band (root)
୨ । ସ୍ତବ କରିବା—2. To pray. ୩ । ନମସ୍କାର; କରିବା—. To salute; to show respect.

**ବନ୍ଦ୍**—ବୈଦେ. ବି. (ଫା; ଭୁଲ. ଇଂ. ବଣ୍ଡଲ)—୧ । (କଡ଼ରଆ) ବଣ୍ଡିଲ୍; ଗୋଛ; ବିଡ଼ା; ଗାଡ଼ା—1. Bundle;
Band

बन्द बंद packet. ୨ । ପୁଞ୍ଜୀକୃତ ବସ୍ତୁ ବା ପଦାର୍ଥର ଗୋଟିଏ ଗୁଣ୍ଡି—2. One lot out of several lots of a thing.

ଦେ. ବି—(ପା. ବନ୍ଦ୍, ସ. ବନ୍ଧ୍ ଧାତୁ)—୧ । ବ୍ୟବସାୟ, ବିଦ୍ୟାଳୟ ଓ କଚେରୀ ଆଦିର କାର୍ଯ୍ୟ ସ୍ଥଗିତ ହେବାର ଅବସ୍ଥା—1. Closing of a business, school or office; closure. ୨ । ସ୍ଥିରତ୍ୱ; ନିବୃତ୍ତି—2. Cessation; stoppage ୩ । ଗତିସ୍ଥିରତ୍ୱ—3 Stoppage or cessation of motion.

ବୈଦେ. ଅ.—(ଯୁବକ ସୈଧାଶ୍ୟାମଙ୍କ ପ୍ରବର୍ତ୍ତିତ) ଡ୍ରିଲ୍ ସମ୍ବନ୍ଧୀୟ ଆଦେଶବଚନ)—ଭୂମିର ଗତି ରହିତ କର—3. (A term of drill) Halt!

बन्द ଦେ. ବିଣ.—୧ । ସ୍ଥଗିତ—1. Stopped; ceased. ୨ । ବଦ୍ଧ—2. Tied. ୩ । ରୁଦ୍ଧ; ଅବଦ୍ଧ—3. Confined. ୪ । ଦମିତ; ରହିତ—4. Restrained. ୫ । କାର୍ଯ୍ୟରହିତ; ନିଷ୍କର୍ମା (ବ୍ୟକ୍ତି)—5. Unemployed (person). ୬ । ମୁଦ୍ରିତ; ମୁଦା—6. Closed; shut up.

ତିଙ୍ଗଳ ନସ୍ୱନରୁ ବସ୍ଥିକ୍ତ ବନ୍ଦ—କୃଷ୍ଣସିଂ ହ. ମହାଭାରତ ବନ ।

୭ । ଗତିରହିତ—3. With the motion stopped. ୮ । ଯହିଁର କାର୍ଯ୍ୟ ସ୍ଥଗିତ ହୋଇ ଥାଏ (ଯଥା—ସ୍କୁଲ, କଚେରି, ଅଫିସ୍)—8. Closed (school, court, office).

**ବନ୍ଦନା ଯିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ବନ୍ଦନା)-(ବଢ଼ିଲା Band-nā jibā କନ୍ୟା) ସ୍ୱାମୀଘରକୁ ଯିବା—(Matured girl) To go to the husband's house for the first time after attaining puberty.

**ବନ୍ଦବାନ୍ଦ**—ଦେ. ବି.—(ନିରର୍ଥକ ଧ୍ୱନ୍ୟନୁକାରୀ ସହଚର ଶବ୍ଦ)—Band-band ସ୍ଥିରତ୍ୱ—Stoppage; cessation.
बन्द बंद

**ବନ୍ଦରିଆ**—ପ୍ରାଦେ. (ସମ୍ବଲପୁର) ବି—ସ୍ତ୍ରୀମାନଙ୍କର ହାତରେ ପିନ୍ଧା Band-riā ଯିବା ଏକ ପ୍ରକାର ଖଡୁ—A kind of bracelet

**ବନ୍ଦକ**—ସ. ବିଣ. ପୁଂ. (ବନ୍ଦ୍ ଧାତୁ+କର୍ତ୍ତୃ. ଅକ)—Bandaka ୧ । ଯେ ବନ୍ଦନା କରେ; ସ୍ତୁତି କାରକ—(ବନ୍ଦିକା—ସ୍ତ୍ରୀ) 1. Praying; praising. ୨ । ପ୍ରଣାମକାରୀ—2. Making obeisance.

**ବନ୍ଦ କରିବା**—ଦେ. କ୍ରି. (ସ. ବନ୍ଧ୍ ଧାତୁ; ପା. ବନ୍ଦ୍)—Banda karibā ୧ । (ବ୍ୟବସାୟ, କଚେରି, ସ୍କୁଲ ଆଦିର କାର୍ଯ୍ୟ) बन्द करा ସ୍ଥଗିତ କରିବା—1. To close up (a business, **बन्द करना** school or office. ୨ । ଅବଦ୍ଧ ବା ଅବରୁଦ୍ଧ କରିବା—2. To confine. ୩ । ରୋଧ କରିବା; ଅଟକାଇବା—2. To restrain. ୪ । ଖୋଲା ଥିବା ଜିନିଷକୁ (ଯଥା—କବାଟ, ବାକ୍ସ, ଘର) ମୁଦିବା ବା ବୁଜିବା—4. To shut up (a box, room or door). ୫ । ଅନ୍ୟର ଗତି ରୋଧ କରିବା—5. To stop the flow or movement of a thing. ୬ । କାର୍ଯ୍ୟ ରହିତ କରିବା—6. To cause cessation of a work. ୭ । ମନା କରିବା; ନିଷେଧ କରିବା—7. To prohibit.

**ବନ୍ଦନ**—ସ. ବି. (ବନ୍ଦ୍ ଧାତୁ+ଭାବ. ଅନ)—୧ । ସ୍ତୁତି; ସ୍ତବ—Bandana 1. Prayer; hymn; invocation. ୨ । ପୂଜା—2. Worship; adoring. ୩ । ଅଭିବାଦନ; ପ୍ରଣାମ—3. Obeisance; salutation. ୪ । ହୋମାନ୍ତେ ହୋମ ଭସ୍ମରେ ଅଙ୍କିତ ତିଳକ—4. Painteing of marks on the body with the ashes of a Homa on its conclusion. ୫ । ବନ୍ଦାକ; ନମୁଲୀ (ହି. ଶ)—5. Parasitic plant; orchid. ୬ । ପ୍ରଶଂସା କରଣ (ହି. ଶ)—6. Eulogism, praising. ୭ । (ନାମ) ଅସୁର ବିଶେଷ (ହି. ଶ)—7. Name of a demon. ୮ । (ନାମ) ଋଷି ବିଶେଷ (ହି. ଶ)—8. Name of a sage. ୯ । (ନାମ) ବିଷ ବିଶେଷ (ହି.ଶ) Name of a poison. ୧୦ । ଅନୁରୋଧ; ପ୍ରାର୍ଥନା—10. Solicitation (Apte). ୧୧ । ବନ୍ଦାପନା (ଦେଖ) 11. Bandāpanā (See)

ଦେ. ବି—ବନ୍ଧନ (ଦେଖ)—Bandhana (See)

**ବନ୍ଦନ କରିବା**—ଦେ. କ୍ରି. (ସ. ବନ୍ଧନ)—୧ । ମନ୍ତ୍ରଯନ୍ତ୍ର ପ୍ରୟୋଗ Bandana karibā ଦ୍ୱାରା ଭୂତପ୍ରେତାଦିଙ୍କୁ ବାନ୍ଧିବା—1. To बन्द करा **बंधन करना** confine spirits through magic. ୨ । ମନ୍ତ୍ର ଯନ୍ତ୍ର ପ୍ରୟୋଗ ଦ୍ୱାରା (ମୁଖର ବା ସ୍ତ୍ରୀଗର୍ଭର) ଶକ୍ତିକୁ ବନ୍ଦ କରିବା—2. To restrain the proper working (e.g. of the mouth, of the womb) बन्दन करा **वन्दन करना** by magic. ୩ । (ସ. ବନ୍ଦ ଧାତୁ) ସ୍ତବ କରିବା; ପ୍ରଶଂସା କରିବା—3. To praise; to pray. ୪ । ପୂଜା କରିବା—4. To worship. ୫ । ନମସ୍କାର କରିବା—5. To make obeisance. ୬ । ବନ୍ଦାପନା କରିବା—6. To formally welcome.

**ବନ୍ଦନ ମାଳା**—ସ. ବି. (ବନ୍ଦନ=ସ୍ତବ+ମାଳା; ମାଳିକା)—Bandana mālā ଉତ୍ସବ ସମୟରେ ବହିର୍ଦ୍ୱାରରେ ଟଙ୍ଗାଯିବ (ବନ୍ଦନ ମାଳିକା—ଅନ୍ୟରୂପ) ମଙ୍ଗଳସୂଚକ ପୁଷ୍ପାଦିର ମାଳା—(ବନ୍ଦନ ମାଳ—ଅନ୍ୟରୂପ) Garlands hung on the gatबन्दन माला **वन्दनवार** on festive occasions.

**ବନ୍ଦନା**—ସ. ବି. (ବନ୍ଦ୍ ଧାତୁ+ଭାବ. ଅନ+ଆ)—ବନ୍ଦନ (ଦେଖ) Bandanā Bandana (See)

ଦେ. ବି. (ସ. ବନ୍ଦନ)—ମଙ୍ଗଳାଚରଣ; ଗ୍ରନ୍ଥ ବା ନୃତ୍ୟ ଗୀତାଦି ଆରମ୍ଭ କରିବା ପୂର୍ବରୁ ଦେବୋଦ୍ଦେଶ୍ୟରେ ବୋଲାଯିବା ମଙ୍ଗଳସୂଚକ ଗାନ ବା ସ୍ତବ—Hymn invoking blessings at the beginning of a book or of a musical performance.

ଦେ. ବିଣ. ସ୍ତ୍ରୀ—ବନ୍ଦନୀୟା—Adorable (woman).

ତ୍ରୁ ପଦ ନନ୍ଦନା ଜଗତେ ବନ୍ଦନା—କୃଷ୍ଣସିଂହ. ମହାଭାରତ, ବନ।

**ବନ୍ଦନୀ**—ପ୍ରାଦେ. (ସମ୍ବଲପୁର) ବି—ମାତୃ ସ୍ତନ୍ୟ—
Bandanī Mother's breast.

( ଯଥା—ପିଲ୍ଲ ବେମାର୍ ହେଉରୁ ବନ୍ଦନୀ ଧରବାକୁ ନାହିଁ । )

ସଂ. ବି. (ବନ୍ଦ୍ ଧାତୁ+ଭାବ. ଅନ+ଈ)—୧ । ସ୍ତୁତି; ସ୍ତବ (ହି. ଶ)—1. Prayer. ୨ । (+କରଣ ଅନ+ଈ) ଗୋରୋଚନା (ହି. ଶ)—2. A yellow pigment got from dead cattle ୩ । ବଟୀ (ହି. ଶ);ବଟିକା-3. Pill. ୪ । ଶରୀରରେ ଧାରଣ କରାଯିବା ତିଳକ ଚିହ୍ନ (ହି. ଶ)—4. Sectarian mark painted on the body.

**ବନ୍ଦନୀୟ**—ସଂ. ବିଣ. ପୁଂ. ( ବନ୍ଦ୍ ଧାତୁ+କର୍ମ ଅନୀୟ )—
Bandanīya ୧ । ଯାହାକୁ ବନ୍ଦନ ବା ପୂଜା କରାଯାଏ—
(ବନ୍ଦନୀୟା—ସ୍ତ୍ରୀ) 1. Worshipped; adored. ୨ । ପୂଜ୍ୟ—2. Worshippable; adorable. ୩ । ପ୍ରଶଂସନୀୟ; ସ୍ତବନୀୟ—3. Fit to be praised; praiseworthy.

**ବନ୍ଦନୀୟା**—ସଂ. ବିଣ—ବନ୍ଦନୀୟର ସ୍ତ୍ରୀ ଲିଙ୍ଗ—
Bandanīyā Feminine of 'Bandanīya'

ସଂ. ବି. ସ୍ତ୍ରୀ—ଗୋରୋଚନା—A yellow pigment found in the body of cows.

**ବନ୍ଦବସ୍ତ**—ବୈଦେ. ବି—ବନ୍ଦୋବସ୍ତ (ଦେଖ)
Bandabasta Bandobasta (See)

ବନ୍ଦବସ୍ତେ ଭକ୍ତ ପାଣ୍ଡ ସୁନତେ । ଭଞ୍ଜ, ବୈଦେହୀଶବିଳାସ ।

**ବନ୍ଦର**—ବୈଦେ. ବି. (ଫା. ବନ୍ଦର୍)—୧ । ସମୁଦ୍ର ବା ନଦୀକୂଳର
Bandara ଜାହାଜ ଲାଗିବାର ସ୍ଥାନ; ନଦୀ ବା ସମୁଦ୍ରକୂଳସ୍ଥ
बन्दर ବାଣିଜ୍ୟ ସ୍ଥାନ—1. Port; harbour. ୨ । ବନ୍ଦର
**बन्द्र** ସଲଗ୍ନ ନଗର—2. Port town.

**ବନ୍ଦରିଆ**—ବୈଦେ. ବିଣ. (ଫା. ବନ୍ଦରୀୟା)—୧ । ବନ୍ଦରସମ୍ବନ୍ଧୀୟ—
Bandariā 1. Pertaining to a port. ୨ । ବନ୍ଦରର
बन्दुरे **बन्दरिया** ଅଧିବାସୀ—2. Residing in a port.
(ବନ୍ଦର—ଅନ୍ୟରୂପ) ପ୍ରାଦେ. (ସମ୍ବଲପୁର) ବି—ବନ୍ଦ୍ରଆ; ବାଲା ବା ବଳୟ—Bracelet.

**ବନ୍ଦଲ**—ଦେ. ବି. (ବଣିଆ ଶବ୍ଦ)—ସୁନା ମୁଦି ତିଆର କରିବାରେ
Bandala ବ୍ୟବହୃତ ଏକପ୍ରକାର ଛୋଟ ନିହାଇ—A small anvil used in preparing gold rings.

**ବନ୍ଦା**—ସଂ. ବି. (ବନ୍ଦ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । ବନ୍ଦନ-
Bandā କାରିଣୀ ସ୍ତ୍ରୀ—1. An adoring woman. ୨ ।
ବନ୍ଦାକୀ, ବନ୍ଦାକା } ଅନ୍ୟରୂପ ନିର୍ମୂଳୀ; ମଲଙ୍ଗ; ଯେଉଁ ଗଛ ବା ଲତା ଅନ୍ୟ ଗଛ ଉପରେ ଉଠି ତାହା ଦେହରେ ବଞ୍ଚେ—2. A parasitic plant. ୩ । ଭିକ୍ଷୁକା ସ୍ତ୍ରୀ—3. A female beggar.

ବୈଦେ. ସର୍ବ (କଟକିଆ; ଫା. ବନ୍ଦା=ସେବକ; ଦାସ)
बान्दा; बन्दा ( ଶିଷ୍ଟଭାବେ ବ୍ୟବହୃତ ଶବ୍ଦ )—୧ । ଅଧୀନ;
बंदा ଆପଣଙ୍କର ଆଜ୍ଞାକାରୀ ଭୃତ୍ୟ, ମୁଁ—1. I, your most obedient slave or servant.

ମନସୀ ଚକ୍ରଧର ଦାସ ବନ୍ଦା ତାହାଣ ପାଖରେ ବସି
ହେଜନା ତାଉସି କଲମବନ୍ଦ କରୁଥିବା ହାଲତ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ

୨ । କ୍ରୀତଦାସ; ଗୋଲାମ—2. Slave.

[ ଦ୍ର—ଏହାର ଅର୍ଥ ଅଧୀନ, କ୍ରୀତଦାସ ବା ଗୋଲାମ; କିନ୍ତୁ ମାନ୍ୟ ବ୍ୟକ୍ତିଙ୍କ ନିକଟରେ ଅନୁସରଣିଆ ବା ଆଶ୍ରିତ ବ୍ୟକ୍ତି ଆପଣାକୁ 'ମୁଁ' ବୋଲି ନ କହି ସାନତା ପ୍ରକାଶ ପୂର୍ବକ 'ବନ୍ଦା' ଶବ୍ଦ ବ୍ୟବହାର କରେ । ଏହାର ସ୍ତ୍ରୀଲିଙ୍ଗ 'ବାନ୍ଦୀ'='ପୋଇଲୀ; ଦାସୀ' ।]

ଦେ. ବି. ( ସଂ. ବନ୍ଦନ )—୧ । ବନ୍ଦନା; ପ୍ରଶଂସା—
बन्दना **वन्दना** 1. Adoration; praise

ତା ଜାଣି ନ ପାରି କରନ୍ତୁ ନନ୍ଦା ବନ୍ଦା
କରନ୍ତୁ ଏଣୁ ଦୋଷ ଗୁଣ ଦୁଇ ଫନ୍ଦା । କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ

୨ । ବନ୍ଦାପନା (ଦେଖ)—2. Bandāpanā (See)

**ବନ୍ଦା(ନ୍ଦେ)ଇବା**—ଦେ. କ୍ରି. (ସଂ ବନ୍ଦ୍ ଧାତୁ)—୧ । ବନ୍ଦନ କରିବା;
Bandā(nde)ibā ପୂଜା କରିବା—1. To worship ୨ ।
बन्दना करा ଅଭିବାଦନ କରିବା—2. To salute. ୩ । ସ୍ତବ
**बन्दन करना** କରିବା—3. To worship. ୪ । ବନ୍ଦାପନା
बरण करा କରିବା; ଦେବତା ବା ବରକନ୍ୟା ବା ବନ୍ଦନୀୟ ବ୍ୟକ୍ତିଙ୍କ
**आरती करना** ସମ୍ମୁଖରେ ପ୍ରଦୀପ ଆଦି ହଲାଇ ଅଭ୍ୟର୍ଥନା କରିବା—4. To welcome by offerings; to salute a Deity or an honoured person by waving lights etc before him.

ନଷ୍ଟ ଯେ କଦଳୀ ଘୃତ ଦୀପ ବନ୍ଦାଇବ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।

୫ । ପୂଜ୍ୟ ବ୍ୟକ୍ତିଙ୍କୁ ବା ଦେବତାଙ୍କୁ ଧନ ବା ଅଳଙ୍କାରଆଦି ଭେଟି ଦେବା—5. To give presents (of cash or ornaments etc) to a distinguished guest or Deity; to give offerings to a distinguished person as a sign of respect or welcome.

**ବନ୍ଦାକ**—ସଂ. ବିଣ. ପୁଂ. (ବନ୍ଦା+ସ୍ୱାର୍ଥେ. କ,—ଯେ ବନ୍ଦନା କରେ—
Bandāka Adoring; worshipping; saluting.
(ବନ୍ଦାକା—ସ୍ତ୍ରୀ) ସଂ. ବି.—ଚିର ଶ୍ୟାମଳ ପରବୃକ୍ଷଜୀବୀ କ୍ଷୁପ; ନିର୍ମୂଳୀ ବା ମଲଙ୍ଗ; ଗଛ ଉପରେ ଜନ୍ମିବା ଓ ମାଡ଼ିବା ଲତା—A parasitic plant; orchid; Loranthus Longifolius.

ସଂ. ଅନ୍ୟ ନାମ—
ବନ୍ଦନ, ବନ୍ଦକ(କା),
ବନ୍ଦାକା(କୀ), ବୃକ୍ଷାଦନୀ,
ବୃକ୍ଷରୁହା, ଜୀବନ୍ତିକା, ଶେଖରୀ,
ବନ୍ଦାରୁ, ବନ୍ଦାଲ, ସେବ୍ୟା, ନୀଲବଲ୍ଲୀ,
ପରବାସିକା, ବନ୍ଦିନୀ, ପୁଷ୍କରିଣୀ, ବନ୍ଧ୍ୟା,
ପରପୁଷ୍ଟା, ପରାଶ୍ରୟା, କାମବୃକ୍ଷା,
କେଶରୂପା, ଗାନ୍ଧମାଦନୀ, କାମିନୀ,
ଶ୍ୟାମା, କାମବୃକ୍ଷ
बन्दा, मान्दा, परगाछा

[ ଦ୍ର—ଏହା ଆମ୍ବ ଆଦି ଗଛର ଶାଖାରେ ମାଡ଼େ; ପତ୍ର ମୋଟା; ଫୁଲ ପ୍ରାୟ ଆରକ୍ତ । ଏହାର ସ୍ୱାଦ ତିକ୍ତ । ବୈଦ୍ୟକ ମତରେ ଏହା କଫ,

बांदा
ଛୋ. ବାଙ୍କମାଙ୍କେ
ମ. ବାଦାଂୱୁଲ, କାମରୁଥ
ଗୁ. ବାଂଦୋ
ଚିତ୍ତ ଓ ଶ୍ରମବଦ୍ଧକ; ରକ୍ତ-ଦୋଷ, ବ୍ରଣ ଓ ବିଷଦୋଷ ନାଶକ ।]

**ବନ୍ଦାଣ**—ଦେ· ବି·—(ସଂ· ବନ୍ଦନ)—୧ । ବନ୍ଦନ; ବନ୍ଦାପନା; ଅର୍ଚ୍ଚନା; ପ୍ରଦୀପ ଆଦି ଦେଖାଇ ଅଭ୍ୟର୍ଥନା କରିବା—1. Act of saluting a person by waving lights before him.
Bandāṇa
বন্দন, বরণ
आरती

ବନ୍ଦାଣ ମାଗନ୍ତେ ଦେଲେ ବେ ଭୁଷ ବେ କେ ନଡ ବନ୍ଦାଉ ।
ଉଷ, ବୈଦେହୀଶବିଳାସ ।

୨ । ବନ୍ଦାଣ ଘର (ଦେଖ)—2. Bandāṇa ghara (See)

୩ । ବୃତ ବିବାହାଦିରେ ବନ୍ଧୁମାନଙ୍କର ବରକୁ ବା ବାଳକକୁ ଦେବା ଭେଟି—A present given to the bride-groom or the boy on the occassion of a marriage or upanayana.

**ବନ୍ଦାଣ ଘର**—ଦେ ବି.—ପୁନର୍ବିବାହ ଉତ୍ସବ—The ceremony of consummation of marriage.
Bandāṇa ghara
পুনরবিবাহ गोना

**ବନ୍ଦାଣ ତଣ୍ଡୁଳ**—ଦେ. ବି.—ବନ୍ଦାପନା ସମୟରେ ବ୍ୟବହୃତ ଚାଉଳ—The unparboiled rice used in Bandāpanā.
Bandāṇa taṇḍuḷa
(ବନ୍ଦାଣ ଚାଉଳ—ଅନ୍ୟରୂପ)

ବନ୍ଦାଣ ତଣ୍ଡୁଳ ଥିଲୁ ଉନଗନ୍ଧ ଗଢ ।
ଉଷ, ବୈଦେହୀଶବିଳାସ ।

**ବନ୍ଦାପନ(ନା)**—ଦେ. ବି. (ସଂ. ବନ୍ଦନ)—୧ । ବନ୍ଦାଣ; ବନ୍ଦାଇବା କ୍ରିୟା—1. The ceremony of saluting a distinguished guest or a newly married couple.
Bandāpana(nā)
বরণ
आरती

୨ । (ଏଥିରେ ବର କନ୍ୟାଙ୍କୁ ବନ୍ଦାପନା କରି ଯାଉ ଥିବାରୁ) ବନ୍ଦାଣ ଘର; ପୁନର୍ବିବାହ; କନ୍ୟା ରଜସ୍ୱଳା ହେବା ପରେ ବର କନ୍ୟାଙ୍କ ସହବାସ ପୂର୍ବରୁ କରି ଯିବା କର୍ମ; ଆଶୀର୍ବାଦ-ଘର; ଦ୍ୱିରାଗମନ—2 The ceremony or ritual of consummation of marriage.
गोना

ଶୁଭଯୋଗରେ ସବୁଲ ବନ୍ଦାପନା ଦିନ—ଉଷ, ପ୍ରେମସୁଧାନିଧି ।

**ବନ୍ଦାପନା ଘର**—ଦେ. ବି.—ବନ୍ଦାପନା ୨ (ଦେଖ)—Bandāpanā 2. (See)
Bandāpanā ghara

**ବନ୍ଦାପନ୍ଦା**—ଗ୍ରାମ୍ୟ. ବି. (ସଂ. ବନ୍ଦନା)—ବନ୍ଦାପନା (ଦେଖ)—Bandāpanā (See)
Bandāpandā
বরণ आरती

**ବନ୍ଦାରୁ**—ସ ବିଣ.—୧ । (ବନ୍ଦ୍ ଧାତୁ + କର୍ତ୍ତୃ. ଆରୁ)—ଅଭିବାଦକ; ବନ୍ଦନକାରୀ—1. Adoring; saluting.
Bandāru

୨ । (+କର୍ମ. ଆରୁ)—ପୂଜନୀୟ (ହି. ଶ.)—2. Adorable

ସ. ବି.—୧ । ସ୍ତୁତିଗାନକାରୀ ବ୍ୟକ୍ତି; ସ୍ତାବକ—2 Supplicant; singer of hymn.

ବନ୍ଦାରୁ ପରଶୁରାମ ଦର୍ପବିଭଞ୍ଜନ—ଉଷ, ବୈଦେହୀଶବିଳାସ ।

୨ । (+କରଣ. ଅରୁ) ସ୍ତୋତ୍ର; ସ୍ତବ (ହି. ଶ)—2.Hymn; psalm. ୬ । (+କର୍ତ୍ତୃ. ଅରୁ) ବନ୍ଦାକ; ମଲ୍ଲଙ୍ଗ; ପରାଙ୍ଗ-ପୁଷ୍ଟ ବୃକ୍ଷ (ହି· ଶ)—3 Parasitic plant.

**ବନ୍ଦି**—ସ. ବି. ପୁଂ. (ବନ୍ଦ୍ ଧାତୁ=ସ୍ତବ କରିବା+କର୍ତ୍ତୃ. ଇ; ଯେ ବନ୍ଦନା କରେ; ଯେ କାରାରୁଦ୍ଧ ଅବସ୍ଥାରେ ବନ୍ଦନା କରେ; (ବନ୍ଦୀ—ସ୍ତ୍ରୀ) ଭୁଲ ଫା. ବନ୍ଦୀ)—୧ । କଏଦୀ—1. Prisoner; captive (Apte). ୨ । (ବନ୍ଦ୍ ଧାତୁ+ଭାବ. ଇ) ବନ୍ଧନ—2. Bondage; confinement (Apte).
Bandi

୩ । ସିଢ଼ୀ; ନିଶୁଣୀ—3. Ladder. ୪ । ବନ୍ଦନା; ସ୍ତୁତି-4. Hymn; salutation; panegyrics; prayer.

ସ. ବିଣ—କାରାରୁଦ୍ଧ—Imprisoned; made captive.

ଦେ. ବି—୧ । ସ୍ତ୍ରୀମାନଙ୍କ ଅଳକା ମଧ୍ୟରେ ପିନ୍ଧାଯିବା ଝୁଲା ପଦକ—1. A locket hanging in the middle of a chain for the forehead.
সীঁথীর পদক
बंदी

বন্দ बन्द ୨ । ବନ୍ଦ; ସ୍ଥଗିତ୍ୟ—2. Stoppage; cassation.

୪ । ଅବରୋଧ; କାରାରୋଧ—4. Confinement; imprisonment. ୪ । ଭୂତପ୍ରେତ ଆଦିଙ୍କୁ କୌଣସି ବ୍ୟକ୍ତି-ଠାରେ ବା ସ୍ଥାନରେ ମନ୍ତ୍ର ଯନ୍ତ୍ର ପ୍ରୟୋଗ ଦ୍ୱାରା ଅଟକାଇ ରଖିବା—4 The act of impounding an evil spirit which has possessed a person or place.

বন্দ बन्द ଦେ. ବିଣ—କାର୍ଯ୍ୟରୁ ରହିତ; ନିଷ୍କର୍ମୀ—Restrained; unengaged; stopped from doing work.

**ବନ୍ଦିଆ**—ବୈଦେ. ବି. (ସଂ· ବନ୍ଦ୍)—୧ । ମଥାମଣି—1. An ornament for the forehead.
Bandiā
সীংথীৰ মণি

୨ । କର୍ଣ୍ଣାଳଙ୍କାରବିଶେଷ—2. A kind of ear-ring.
बिन्दी, बंदी
बन्दिया

କେ ବୋଇଲେ କର୍ଣ୍ଣର ବନ୍ଦିଆ ବନ୍ଦିକ ।
କୃଷ୍ଣସିଂହ, ମହାଭାରତ, ବନ ।

୩ । (ସ. ବନ୍ଦି; ଫା. ବନ୍ଦୀ) କାରାରୁଦ୍ଧ ବ୍ୟକ୍ତି; ବନ୍ଦି—3. Prisoner.
বন্দি बन्दिवान

ବନ୍ଦିଆ ମଣ୍ଡନେ ଶ୍ରବଣେ ଢାଳ ପାଦ ଘଉଡ଼
ବନ୍ଦିଆ ନୋହିଲ ସେ ସିବ ସେଇଁ ନୟନ ପଦ୍ମ । ଉଷ, ବୈଦେହୀଶବିଳାସ

**ବନ୍ଦିଆଣ**—ଦେ. ବି. (ସ. ବନ୍ଦି)—ବନ୍ଦୀ—Prisoner.
Bandiāṇa বন্দি बन्दिवान

ଅତୁଳବ ଭେର ବନ୍ଦିଆଣ ସେ ଘରେ ବନ୍ଦୀ ହୋଇ ପଡ଼ିଛନ୍ତି ।
ଫକୀରମୋହନ ଗଳ୍ପସ୍ୱଳ୍ପ ।

**ବନ୍ଦିଖାନା**—ବୈଦେ. ବି. (ସ. ବନ୍ଦିଗୃହ; ଫା. ବନ୍ଦୀଖାନାହ୍)—ବନ୍ଦିଶାଳା (ଦେଖ)—Bandiśāḷā (See)
Bandikhānā
বন্দি শালা बन्दिखाना, बन्दि घर

**ବନ୍ଦି ଗାନ**—ସ. ବି. (୬ଷ୍ଠୀ ତତ୍)—ବନ୍ଦି ପାଠ (ଦେଖ)—Bandi pāṭha (See)
Bandi gāna

**ବନ୍ଦି ଗୃହ**—ସ. ବି. (୬ଷ୍ଠୀ ତତ୍; ବନ୍ଦି+ଗୃହ)—ବନ୍ଦିଶାଳା (ଦେଖ)—Bandiśāḷā (See)
Bandi gṛuha

**ବନ୍ଦିଗ୍ରାହ**—ସ. ବି. ପୁଂ. (ବନ୍ଦି=କଏଦୀ; ଗ୍ରହ୍ ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ)—୧ । ଯେ ସିନ୍ଧି କରି ଚୋରି କରେ (କ୍ଲାନେକ)—1. Housebreaker.
Bandigrāha
ବନ୍ଦି ଚୌର } ଅନ୍ୟରୂପ
ବନ୍ଦିକାର }
୨ । ଡକାଏତ (ହି. ଶବ୍ଦସାଗର)—2, Dacoit.

ସ. ବିଣ. ପୁ.—ଯେ ହଠାତ୍ ଆକ୍ରମଣ କରି ବନ୍ଦି କରେ—Taking persons captive by waylaying them.

**ବନ୍ଦି ଘର**—ଦେ. ବି—ବନ୍ଦିଶାଳା ( ଦେଖ ) Bandiśāḷā ( See )
Bandi ghara

**ବନ୍ଦି ଚୌର**—ସ. ବି—୧ । ବନ୍ଦିଗ୍ରାହ ( ଦେଖ ) 1. Bandi grāha ( See )
Bandi chaura
୨ । କାରାରୁଦ୍ଧ ଚୋର (କ୍ଲାନେକ)—2. An imprisoned thief.

**ବନ୍ଦି ପଡ଼ିବା**—ଦେ. କ୍ରି—୧ । ବନ୍ଧନରେ ପଡ଼ିବା; ଆବଦ୍ଧ ହେବା—1. To be confined.
Bandi paṛibā
বন্দি হওয়া बन्दि होना
(ବନ୍ଦି ହେବା—ଅନ୍ୟରୂପ)
୨ । ବଶୀଭୂତ ହେବା—2. To be brought under subjugation.

ତୋ ନଜ ମହିମା ନ ଜାଣି, ତୋ ନାମେ ଗୁହି ବନ୍ଦି ପଡ଼ି ।
ପ୍ରାଚୀ. ନଗୁଣ ମାହାତ୍ମ୍ୟ ।

**ବନ୍ଦି,ପାଠ**—ସ. ବି. (୬ଷ୍ଠୀ ତତ୍; ବନ୍ଦି+ପାଠ)—୧ । ପ୍ରଶଂସାଗାନ—1. Panegyrics. ୨ । ସ୍ତୁତି ବିଷୟକ ଗ୍ରନ୍ଥ—2. A work on Panegyrics. ୩ । ସ୍ତବ ବୋଲିବା-3. Reciting of hymns of praise.
Bandi pāṭha

**ବନ୍ଦି ପାଳ**—ସ. ବି. (ବନ୍ଦି+ପାଳ ଧାତୁ+କର୍ତ୍ତୃ. ଅ; ଉପପଦ ତତ୍)—କାରାଧ୍ୟକ୍ଷ—Jailor; warder.
Bandi pāḷa

**ବନ୍ଦିବା**—ଦେ. କ୍ରି—(ପଦ୍ୟ)—(ସଂ. ବନ୍ଦ୍ ଧାତୁ)—୧ । ବନ୍ଦନା କରିବା; ପୂଜା କରିବା—1, To adore; to worship.
Bandiba
বন্দা बन्दन करना

ଚରଣଯୁଗକୁ ତୋର ବନ୍ଦେ ଅଷ୍ଟ ଦୁର୍ଗେଶ୍ୱର —କବିସୂର୍ଯ୍ୟ,କଶୋର ଚମ୍ପୂ, ଚ. ଗୀତ

୨ । ସ୍ତବ କରିବା—2, To pray,

ବନ୍ଦୀଏ ବନ୍ଦିବାକୁ ନୃପଙ୍କ କୀରତି – କୃଷ୍ଣସିଂହ, ମହାଭାରତ ଆଦି –

୩ । ପ୍ରଶଂସା କରିବା—3. To praise.

ବନ୍ଦିଲେ ସେହି କାଳରେ ରହିଲେ କାହିଁ କୋଳରେ
ଶବକୁ ସବେ ସେ କଥା କହି – ଭଞ୍ଜ. ବୈଦେହୀଶବିଳାସ ।

୪ । ( ସଂ. ବନ୍ଧ୍ ଧାତୁ ) ଭୂତ ପ୍ରେତାଦିଙ୍କୁ କୌଣସି ବ୍ୟକ୍ତିର ଦେହରେ ବା କୌଣସି ସ୍ଥାନରେ ମନ୍ତ୍ରଯନ୍ତ୍ର ପ୍ରଭାବ ଦ୍ୱାରା ଅବରୁଦ୍ଧ କରି ରଖିବା—4. To confine an evil sprit inside the body of a person or within certain limits by means of charms.
বন্দকরা
बाँधना

୫ । ମନ୍ତ୍ରଯନ୍ତ୍ର ପ୍ରୟୋଗଦ୍ୱାରା ସର୍ପର ଗତିରୋଧ କରିବା ବା ଦଂଶନ କର୍ମରୁ ସର୍ପକୁ ବିରତ କରାଇବା--5 To cause a serpent become motionless or unable to bite by means of charm; to hypnotise or enchant a snake by incantations.

ଶ୍ରମ କୋଧକୁ ସର୍ପକୁ ବନ୍ଦିବା ଇଚ୍ଛାରେ
ପକାଇଲେ ମନ୍ତ୍ରଧୂଳିକି ମନ୍ତ୍ରି ଝରେ – କୃଷ୍ଣସିଂହ, ମହାଭାରତ ବନ ।

୬ । ମନ୍ତ୍ରଯନ୍ତ୍ର ପ୍ରୟୋଗଦ୍ୱାରା କୌଣସି କାର୍ଯ୍ୟ (ଯଥା—ବାକ୍ୟୋଚ୍ଚାରଣ, ପ୍ରସବ, ଗର୍ଭଧାରଣ, ଗୋରୁ ଦୁଧ ଦେବା ଆଦି) ବନ୍ଦ କରାଇବା—6, To cause natural actions to cease or stop by means of black magic.

ନଷ୍ଟ ସ୍ତ୍ରୀରାଯାକ ଔଷଧେ ଭରତାକୁ
ବନ୍ଦି, ଯେଣ ଶ୍ରଅନ୍ତି ଅନପୁରୁଷକୁ – କୃଷ୍ଣସିଂହ, ମହାଭାରତ ବନ ।

୭ । ବ୍ରଣ ଆଦିକୁ ମନ୍ତ୍ରଯନ୍ତ୍ର ପ୍ରୟୋଗଦ୍ୱାରା ଦୂଷିତ ବା କଷ୍ଟଦାୟକ କରାଇବା—7. To cause a boil or wound to rankle or fester without healing by means of charms. ୮ । ବନ୍ଦି କରିବା; କଇଦ କରିବା—8. To imprison. ୯ । ବାହୁନିବା; ଗୁଣି ଗୁଣି ହାହାକାର ହେବା—9. To weep; to sob out,

ଏହିରୂପେ ଭାଇମାନଙ୍କ ଗୁଣ ବନ୍ଦି
ଯୁଧିଷ୍ଠିର ରଜା ବନରେ କାନ୍ଦି କାନ୍ଦି—କୃଷ୍ଣସିଂହ. ମହାଭାରତ ବନ ।

**ବନ୍ଦିଶାଳା**—ସ. ବି—( ବନ୍ଦି+ଶାଳା; ୬ଷ୍ଠୀ ତତ୍ )—କାରାଗାର—Prison; jail.
Bandiśāḷā বন্দিশালা बन्दिखाना
( ବନ୍ଦିଶାଳ —ଦେଶଜରୂପ )

**ବନ୍ଦୀ**—ସ. ବି. ପୁଂ—( ବନ୍ଦ ଧାତୁ=ସ୍ତବ କରିବା+କର୍ତ୍ତୃ. ଇନ୍; ବନ୍ଦିନ୍; ୧ମା. ୧ବ)—୧ । ଭଟ୍ଟ; ଚାରଣ—1. Herald.
Bandī
୨ । (ତୁଳ. ଫା. ଏହି ଅର୍ଥରେ ବନ୍ଦୀ) କାରାରୁଦ୍ଧ ବ୍ୟକ୍ତି—2. Prisoner,

ଦେ. ବି ଓ ବିଣ — ବନ୍ଦି (ଦେଖ)—Bandi (See).

ମନେ ବିଚାରି ଦୟାନିଧି
ରକ୍ଷୁ ତୁର ହୋଇବଇଁ ବନ୍ଦି – ଜଗନ୍ନାଥ. ଭାଗବତ ।

**ବନ୍ଦୁ**—ପ୍ରାଦେ (ଗଡ଼ଜାତ) ବି—କବାଟରେ ମରାଯାଇଥିବା ଲୌହଖଣ୍ଡ--A bit of iron attached to a door-plate.
Bandu

**ବନ୍ଦୁଆଳ**—ପ୍ରାଦେ (ଗଡ଼ଜାତ) ବି—(ତୁଳ. ହି. ବନ୍ଦୀବାନ୍ )—କଏଦୀ; କାରାରୁଦ୍ଧ ବ୍ୟକ୍ତି—Prisoner.
Banduāḷa

**ବନ୍ଦୁକ (ଇତ୍ୟାଦି)**—ବୈଦେ. ବି—ବନ୍ଧୁକ ଇତ୍ୟାଦି (ଦେଖ) Bandhuka etc (See),
Banduka (etc)

**ବନ୍ଦୁରିଆ**—ପ୍ରାଦେ (ସମ୍ବଲପୁର) ବି—ସ୍ତ୍ରୀମାନଙ୍କର ମଣିବନ୍ଧରେ ବ୍ୟବହାର୍ଯ୍ୟ ପିତଳର ବା ଅନ୍ୟ ଧାତୁର ଅଳଙ୍କାରବିଶେଷ; ବନ୍ଦୁରିଆ—A sliver or brass wristlet.
Banduriā

**ବନ୍ଦେ**—ସ. କ୍ରି. (ସଂସ୍କୃତ ବନ୍ଦ ଧାତୁର ଉତ୍ତମ ପୁରୁଷ ଏକବଚନର କ୍ରିୟା) ୧ । ମୁଁ ବନ୍ଦନା କରୁଅଛି; ବନ୍ଦଇ—1 I adore; I salute.
Bande

[ଦ୍ର—ଏହା 'ବନ୍ଦ୍' ଧାତୁର ସଂସ୍କୃତରୂପ ହେଲେ ମଧ୍ୟ ବଙ୍କିମଚନ୍ଦ୍ରଙ୍କର 'ବନ୍ଦେମାତରଂ' ଗୀତରେ ବ୍ୟବହୃତ ହୋଇଥିବାରୁ ବର୍ତ୍ତମାନ ଭାରତରେ ସ୍ୱଦେଶୀ ଓ ସ୍ୱରାଜ୍ୟ ଆନ୍ଦୋଳନ ସମୟରେ 'ବନ୍ଦେ ମାତରମ୍' ଭାରତୀୟ ସମସ୍ତ ଭାଷାରେ ବ୍ୟବହୃତ ହୋଇଗଲାଣି । ]

**ବନ୍ଦେଗି(କି)**—ବୈଦେ. ଅ. (ଫା. ବନ୍ଦଗୀ=ବନ୍ଦା ବା ଗୋଲାମର କର୍ମ; Bandegi(ki) ସମ୍ବୋଧନ ବା ଅଭିବାଦନରେ ବ୍ୟବହୃତ; ତୁଲ. ସ. বন্দগী, বন্দেগী ବନ୍ଦେ)—(ମୁସଲମାନଙ୍କର ନମସ୍କାର) ସଲାମ୍— **बन्देगी, बन्दगी** Salutation (to thee); Good morning. (ବନ୍ଦକ, ବନ୍ଦଗି—ଅନ୍ୟରୂପ)

**ବନ୍ଦେଜ୍**—ବୈଦେ ବି. ( ଇଂ. ବାଣ୍ଡେଜ୍, ଫା. ବନ୍ଦିଶ୍=ବାନ୍ଧୁଣୀ Bandej ଦଉଡ଼ି)—୧ । ବାନ୍ଧୁଣୀ—1. A bond; bondage. বন্দেজ ୨ । ବ୍ୟବସ୍ଥା; ଚିରସ୍ଥାୟୀ ବନ୍ଦୋବସ୍ତ; ମାମୁଲ—2. **बंदीश, बंदेज** Permanent arrangement; provision; settlement. ୩ । ଅପରିବର୍ତ୍ତନୀୟ ଅଭ୍ୟାସ—3. A firmly rooted habit.

**ବନ୍ଦେ ମାତରମ୍(ରଂ)**—ସ. ବାକ୍ୟ—(ସ. ମାତର୍=ମାତାଙ୍କୁ+ବନ୍ଦେ= Bande mātaram(raṁ) ବନ୍ଦନା କରୁଛି) (ବଙ୍ଗୀୟ ଆନନ୍ଦମଠ ନାଟକରଚୟିତା ବଙ୍କିମ ବାବୁଙ୍କର ଭାରତମାତାଙ୍କ ପୂଜାସୂଚକ ଜାତୀୟ ସଙ୍ଗୀତର ଘୋଷା ପଦ)—ମୁଁ ମାତାଙ୍କୁ ବନ୍ଦନା କରୁଛି—(The refrain of the celebrated national Bengalee anthem of Bankim Chandra's novel)—I salute thee, Oh Mother ! Hail mother land !

[ ଦ୍ର—ସ୍ୱଦେଶ ବା ଜନ୍ମ ଭୂମି ପ୍ରତି ଅନୁରାଗ ବା ଭକ୍ତିର ଉଦ୍ଦୀପକ ଯେତେ ଗୀତ ବା ଶବ୍ଦ ଭାରତ ବର୍ଷରେ କଳ୍ପିତ ବା ରଚିତ ହୋଇଅଛି, ତହିଁ ମଧ୍ୟରେ ଏହି ବାକ୍ୟଟି ଭାରତବର୍ଷ ତମାମ୍ ସର୍ବୋଚ୍ଚ ସ୍ଥାନ ଅଧିକାର କରିଅଛି ଓ ଜାତିଧର୍ମନିର୍ବିଶେଷରେ ଭାରତୀୟଙ୍କ ମୁଖରେ ଏ ବାକ୍ୟ ସର୍ବଦା ବୋଲି ଯାଉଅଛି ଓ ଭାରତୀୟ କଂଗ୍ରେସ ମଧ୍ୟ ଏ ବାକ୍ୟକୁ ପବିତ୍ରତମ ଜାତୀୟ ମଙ୍ଗଳାଚରଣ ରୂପେ ଗ୍ରହଣ କରି ଅଛନ୍ତି । ]

**ବନ୍ଦୋପାଧ୍ୟାୟ**—ଦେ. ବି. (ସ. ବନ୍ଦ୍ୟୋପାଧ୍ୟାୟ; ବନ୍ଦ୍ୟ+ଉପାଧ୍ୟାୟ)— Bandopādhyāya ଏକ ଜାତୀୟ ବଙ୍ଗୀୟ ବ୍ରାହ୍ମଣଙ୍କର କୌଳିକ বন্দোপাধ্যায় ଉପାଧି; ବାନାର୍ଜ୍ଜୀ—Banerjee (a family- **बन्दोपाध्याय** title of a class of Bengali Brahmins. (ବନ୍ଦୋପାଧ୍ୟା—ଅନ୍ୟରୂପ)

**ବନ୍ଦୋବସ୍ତ**—ବୈଦେ. ବି. ( ଫା. ବନ୍ଦ୍ ଓ ବସ୍ତ୍=ବ୍ୟବସ୍ଥା )— Bandobasta ୧ । ବ୍ୟବସ୍ଥା—1. Settlement; provision; (ବେ ବନ୍ଦୋବସ୍ତ—ବିପରୀତ) ୨ । ସୁନିୟମ; ସୁଶୃଙ୍ଖଳା— বন্দেবস্ত **बन्दोबस्त; प्रबन्ध** 2. Regularity.

୩ । ସେଟଲ୍‌ମେଣ୍ଟ୍ ; ଗଭର୍ଣ୍ଣମେଣ୍ଟ୍ ରାଜ୍ୟରକ୍ଷିତ ଭୂମି ପାଇଁ ପ୍ରଜାଙ୍କଠାରୁ ଆଦାୟ କରିବା ରାଜସ୍ୱର ପରିମାଣ ନିର୍ଣ୍ଣୟ କରିବା ନିମନ୍ତେ ଜମିକୁ ମାପି ତହିଁର ଶ୍ରେଣୀ ଓ ରାଜସ୍ୱାଦି ନିରୂପଣ କରି ତହିଁରେ କାହାର କି ପ୍ରକାର ସ୍ୱତ୍ୱ ଓ ଦଖଲ ଅଛି ଏହା ସ୍ଥିର କରିବା ନିମନ୍ତେ ଯେଉଁ ପ୍ରଣାଳୀ ଓ କ୍ରିୟାମାନ ଅବଲମ୍ବନ କରନ୍ତି—3. Revenue Settlement; the operations undertaken by the Government for settlement of land revenue.

[ଦ୍ର—ଇଂରାଜମାନେ ପ୍ରଥମେ ବାଣିଜ୍ୟ କରିବା ନିମନ୍ତେ ଭାରତ ବର୍ଷକୁ ଆସିବା ପରେ 'ଇଷ୍ଟ୍ ଇଣ୍ଡିଆ କମ୍ପାନୀ'ଙ୍କୁ ଦିଲ୍ଲୀ ସମ୍ରାଟ୍ ସନନ୍ଦ ଦ୍ୱାରା ବଙ୍ଗ ବିହାର ଓ ଓଡ଼ିଶାର ରାଜସ୍ୱକୁ ଇଜାରା ଦେଲେ । ତହିଁ ବଳରେ ଇଂରାଜମାନେ ପ୍ରଥମେ ନିର୍ଦ୍ଦିଷ୍ଟ କାଳ ପାଇଁ (ଯଥା— ଦୋସାଲା, ତିସାଲା, ଦଶ ସାଲା) ପ୍ରଜାମାନଙ୍କ ସଙ୍ଗେ ରାଜସ୍ୱ ବନ୍ଦୋବସ୍ତ କଲେ । ବଙ୍ଗ ଦେଶର ଭାଗ୍ୟ କ୍ରମେ ଏହି ଅସ୍ଥାୟୀ ବନ୍ଦୋବସ୍ତ ଚିରସ୍ଥାୟୀ ବନ୍ଦୋବସ୍ତରେ ପରିଣତ ହେଲା; କିନ୍ତୁ ଓଡ଼ିଶାରେ କେତେଗୁଡ଼ିଏ କିଲ୍ଲା ଛଡ଼ା ଅନ୍ୟତ୍ର ଥରକୁ ଥର ଅସ୍ଥାୟୀ ବନ୍ଦୋବସ୍ତ ହେଉଅଛି ଓ ବନ୍ଦୋବସ୍ତ ଆମଲା ଏବଂ ଅମିନଙ୍କ ଦାଉରେ ପ୍ରଜାମାନଙ୍କ ମଧ୍ୟରେ କେତେଗୁଡ଼ିଏ ଢଗ ମଧ୍ୟ ସୃଷ୍ଟି ହୋଇଅଛି । ଯଥା—

'ଅଇଲେ ବାବା ଅମିନ ବଗ୍ଧ,
କର ଚରଗ୍ଧ, ଦେ ଖରଗ୍ଧ, ନେ ପାରଗ୍ଧ' ।
'ଅଇଲେ ଅମିନ ମାଇଲେ ମେଖ,
ବାରହାଣ୍ଡିଆଙ୍କୁ କରୁଛି ଭେକ' ।
'ଅମିନ ଗାଆଁରେ ମାଇଲେ ମେଖ,
ପୋଲ ଶିଆଙ୍କର ମଲାଟ ଭେକ' ।

ବନ୍ଦୋବସ୍ତର କ୍ରମିକ ପ୍ରଣାଳୀର ନାମମାନ ଇଂରାଜି, ଫାରସୀ ଓ ହିନ୍ଦୀ ଭାଷାରୁ ଓଡ଼ିଆ ଭାଷାକୁ ଆସିଅଛି । ଯଥା—ସେଟଲ୍‌ମେଣ୍ଟ୍ (ଇଂ), ସର୍ଭେ (ଇଂ), ଅଫିସ୍ (ଇଂ), ଅଫିସର (ଇଂ), ଖେଶ୍‌ରା (ହି), ଖତିଆନ (ହି), ରେକର୍ଡ଼ (ଇଂ), ପଟ୍ଟା (ସ), ଆଟେଷ୍ଟେସନ (ଇଂ), ଯାଞ୍ଚ (ହି), ଖାନାପୁରୀ (ହି), କଦର (ହି), ଖସଡ଼ା (ଫା), ଅମିନ (ଫା), ଇନ୍ସପେକ୍ଟର (ଇଂ), ବାଉଣ୍ଡର (ଇଂ), ଫିଲ (ଫା), ବମ୍ବା (ହି) । ]

**ବନ୍ଦୋବସ୍ତ ଅପି(ଫି)ସର୍**—ବୈଦେ. ବି (ଫା. ବନ୍ଦୋବସ୍ତର ଇଂ. ଅଫିସର୍)- Bandobasta api(phi)sar ବନ୍ଦୋବସ୍ତ ବିଭାଗର ଉଚ୍ଚ ପଦସ୍ଥ বন্দোবস্তি আফিসর କର୍ମଚାରୀ; ସେଟଲମେଣ୍ଟ ହାକିମ— **बन्दोबस्त अपसर** Settlement officer. (ବନ୍ଦୋବସ୍ତ ହାକିମ—ଅନ୍ୟରୂପ) [ ଦ୍ର—ସର୍ବୋଚ୍ଚ ହାକିମଙ୍କୁ ସେଟଲ୍‌ମେଣ୍ଟ୍ ଅଫିସର୍ ଓ ନିମ୍ନସ୍ଥ ହାକିମଙ୍କୁ ଆସିଷ୍ଟାଣ୍ଟ୍ ସେଟଲ୍‌ମେଣ୍ଟ୍ ଅଫିସର୍ ବୋଲାଯାଏ । ]

**ବନ୍ଦୋବସ୍ତ ଅମିନ**—ବୈଦେ. ବି. (ଫା. ବନ୍ଦୋବସ୍ତ୍ ଓ ଆ. ଅମିନ୍)— Bandobasta amina ରାଜସ୍ୱ ବନ୍ଦୋବସ୍ତ ଇଲାକାରେ ଭୂମି ମାପ বন্দোবস্ত আমিন କରିବା ଓ ଜମି ଜମା ସ୍ଥିର କରିବା ନିମନ୍ତେ **बन्दोबस्त अमिन** ନିଯୁକ୍ତ କର୍ମଚାରୀ—Settlement Amin or surveyor.

**ବନ୍ଦୋବସ୍ତ ଆଇନ୍ (ନି)**—ବୈଦେ. ବି.—(ଫା. ବନ୍ଦୋବସ୍ତ ଓ ଆ- Bandobasta āin(ni) ଆଇନ୍ )—ଯେଉଁ ବିଧିମାନଙ୍କଦ୍ୱାରା বন্দোবস্ত আইন ବନ୍ଦୋବସ୍ତ କାର୍ଯ୍ୟ ପରିଚାଳିତ ହୁଏ— **बन्दोबस्त आईन** Settlement Law.

**ବନ୍ଦୋବସ୍ତ ଅ(ଆ)ମଲା**—ବୈଦେ. ବି. (ଫା. ଓ ଆ.)—ଯେଉଁ ଅଧସ୍ତନ
Bandobasta ā(a)malā କର୍ମଚାରୀମାନେ ସରକାରଙ୍କ ବନ୍ଦୋବସ୍ତ
বন্দোবস্ত আমলা ବିଭାଗରେ କାମ କରନ୍ତି—The ministerial
**बन्दोबस्त अमला** officers of the Settlement Department.

**ବନ୍ଦୋବସ୍ତ ଇଲାକା**—ବୈଦେ. ବି. (ଫା.)—ସରକାରଙ୍କର ରାଜସ୍ୱ
Bandobasta ilākā ବନ୍ଦୋବସ୍ତ ସଂକ୍ରାନ୍ତ କାର୍ଯ୍ୟ ବିଭାଗ—
বন্দোবস্ত এলাকা Settlement Department.
**बन्दोबस्त इलाका**
ବନ୍ଦୋବସ୍ତ ଡିପାର୍ଟ୍‌ମେଣ୍ଟ, ବନ୍ଦୋବସ୍ତ ବିଭାଗ, ବନ୍ଦୋବସ୍ତ ମହକ(କୁ)ମା }—ଅନ୍ୟରୂପ

**ବନ୍ଦୋବସ୍ତ କଚେ(ଚି)ରି**—ବୈଦେ. ବି. (ଫା. ଓ ଆ.)—ସେଟଲମେଣ୍ଟ
Bandobasta kache(chi)ri ହାକିମଙ୍କ କାର୍ଯ୍ୟାଳୟ—Settle-
বন্দোবস্ত আফিস **बन्दोबस्त आफिस** ment office.
ବନ୍ଦୋବସ୍ତ ଅ(ଆ) ଫି(ଫି)ସ(ସି), ବନ୍ଦୋବସ୍ତ ଆଫୁ(ଫୁ)ସି, }—ଅନ୍ୟରୂପ

**ବନ୍ଦୋବସ୍ତ କରିବା**—ଦେ. କ୍ରି.—୧ । କୌଣସି ବିଷୟର ବ୍ୟବସ୍ଥା
Bandobasta karibā କରିବା—1. To arrange.
বন্দোবস্ত করা ୨ । ସ୍ଥିର କରିବା—2. To settle.
**प्रबन्ध करना** ୩ । ଜମିଦାର ପ୍ରଜାଙ୍କୁ ଜମି ବିଲି କରିବା ବା ପଟ୍ଟା ଦେବା—3. To settle land with a royat.
୪ । ଭୂମିର ରାଜସ୍ୱ ସ୍ଥିର କରିବା—4. To settle the rent or revenue for a holding.

**ବନ୍ଦୋବସ୍ତ କା(କେ)ମ୍ପ**—ବୈଦେ. ବି. (ଫା. ଓ ଇଂ)—ମଫସଲରେ
Bandobasta kā(ke)mp ବନ୍ଦୋବସ୍ତ ହାକିମ ଯେଉଁ
বন্দোবস্ত ক্যাম্প ସ୍ଥାନରେ କିଛିକାଳ ପାଇଁ ତମ୍ବୁ ପକାଇ କଚେରି
**बन्दोबस्त कंपु** ଜମାନ୍ତି—Camp of a Settlement Officer.

**ବନ୍ଦୋବସ୍ତ ମ(ମା)ହାଲ**—ବୈଦେ. ବିଣ.—(ଫା. ଓ ଆ.)—ଯେଉଁ
Bandobasta ma(mā)hāla ମାହାଲ ବା ଜମିଦାରି ବା
বন্দোবস্ত মাহাল ଅଞ୍ଚଳର ରାଜସ୍ୱ ସ୍ଥିରୀକୃତ ହୋଇଅଛି—
**बन्दोबस्त महाल** Tract of country or land in which
[ବନ୍ଦୋବସ୍ତି ମ(ମା)ହାଲ—ଅନ୍ୟରୂପ] there has been a settlement of land revenue.

**ବନ୍ଦ୍ୟ**—ସଂ. ବିଣ. ପୁଂ.—(ବନ୍ଦ୍ ଧାତୁ=ପୂଜା କରିବା+କର୍ମ. ଯ)—
Bandya (ବନ୍ଦ୍ୟା—ସ୍ତ୍ରୀ) ପୂଜ୍ୟ—Worshippable; adorable.

**ବନ୍ଦ୍ୟା**—ସଂ. ବି. ସ୍ତ୍ରୀ.—ଗୋରୋଚନା—A yellow pigment
Bandyā found in the body of cows.
ସଂ. ବିଣ.—ବନ୍ଦ୍ୟର ସ୍ତ୍ରୀଲିଙ୍ଗ—Feminine of Bandya.

**ବନ୍ଧ୍ (ଧାତୁ)**—ସଂ—୧ । ବାନ୍ଧିବା—
Bandh(root) 1. To bind; to tie.
୨ । ଅଟକ କରି ରଖିବା—2. To restrain.
ପ୍ରାଦେ. (ସମ୍ବଲପୁର) ବି.—ପୋଖରୀ; ପୁଷ୍କରିଣୀ—Tank.

**ବନ୍ଧ୍ ବୁନ୍ଧା ଯିବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଝାଡ଼ାଫେରିବାକୁ ଯିବା;
Bandh-bundhā jibā ପୋଖରିପାଣି ଯିବା—To go out to ease one's self; to pass stools.

**ବନ୍ଧ୍‌ଲି**—ପ୍ରାଦେ. (ସମ୍ବଲପୁର) ବି.—ଗଡ଼ିଆ; ଛୋଟ ପୋଖରୀ—
Bandh-li A small tank.
ଯେଉଁଠି ଟକେ ବନ୍ଧ୍‌ଲି, କାଁଠାଏ କାଁଠାଏ ଭୁବ୍‌ଲି ।
[ଗାଁ ଢଗ—ଉତ୍ତର :—ପନକମଞ୍ଚ ଦନା ବା ଚଉପଦୀ ।

**ବନ୍ଧ**—ସଂ. ବି. (ବନ୍ଧ୍ ଧାତୁ=ବନ୍ଧନ କରିବା+କର୍ମ. ଅ)—୧ । ଗଚ୍ଛିତ
Bandha ଧନ; ଗଚ୍ଛିତ ଦ୍ରବ୍ୟ—1. A deposit
୨ । (+କରଣ. ଅ)—ବୃନ୍ତ; ପତ୍ର, ଫୁଲ ବା ଫଳର ଡେମ୍ଫ—
2. Stalk. ୩ । ଶରୀର—3. Body. ୪ । ଗ୍ରନ୍ଥି—
4. Knot. ୫ । (+ଭାବ. ଅ)—ବନ୍ଧନ; ବାନ୍ଧିବା—
5. Binding; tying; fastening.
ବନ୍ଧନ ମୂର୍ତ୍ତି କବନ୍ଧ, ବନ୍ଧିଲେ ବନ୍ଧ ସେ ।
ଭଞ୍ଜ. ବୈଦେହୀଶବିଳାସ ।
୬ । ଉତ୍ପତ୍ତି—6. Production ୭ । ବାନ୍ଧୁଣୀ; ବାନ୍ଧିବା
ଦଉଡ଼ି—7. Bond; string; rope. ୮ । ଗୃହାଦିର
ବେଷ୍ଟନ ବା ଚତୁଃସୀମା—8. The wall surrounding a house; compound; surrounding fence; the boundary line on all sides.
୯ । ରୋଧ—9. Restraint. ୧୦ । ଧନ ବା ସମ୍ପତ୍ତି
ଅନ୍ୟ ଲୋକଠାରେ ବନ୍ଧକ ରଖିବା—10. Pledge.
୧୧ । ନିର୍ମାଣ; ଗ୍ରନ୍ଥନ; ରଚନା—11. Composition;
construction. ୧୨ । ସେତୁ; ଜଳାଶୟର ଜଳରୋଧକ
ବାଡ଼—12. Bank; dam; embankment; dyke.
୧୩ । (ରତିଶାସ୍ତ୍ର) ରତିକ୍ରୀଡ଼ା ସମୟରେ ଭିନ୍ନ ଭିନ୍ନ ପ୍ରକାରର
ଅଙ୍ଗ ବିନ୍ୟାସପଦ୍ଧତି; ରତିବନ୍ଧ—13. Different postures during copulation.
ବନ୍ଧ ସଂଯୋଗ ଏହାର ମୋର ହୋଇଲେ
ବଶ ହୋଇ ଗୋଡାଇବ ମୋହର ଭୁଲେ । ଭଞ୍ଜ. ବୈଦେହୀଶବିଳାସ ।

[ଦ୍ର—କୋକଶାସ୍ତ୍ର ଅନୁସାରେ ରତିର ୧୬ ପ୍ରକାର ମୁଖ୍ୟ ଆସନ ବା ବନ୍ଧ ବର୍ଣ୍ଣିତ ହୋଇଅଛି ଓ କୌଣସି କୌଣସି ଶାସ୍ତ୍ରରେ ୬୪ ବନ୍ଧ ବର୍ଣ୍ଣିତ ହୋଇଅଛି । ୧୬ ମୁଖ୍ୟବନ୍ଧର ନାମ—୧ । ପଦ୍ମାସନ; ୨ । ନାଗପାଦ; ୩ । ଲତାବେଷ୍ଟ; ୪ । ଅର୍ଦ୍ଧସମ୍ପୁଟ; ୫ । କୁଳିଶ; ୬ । ସୁନ୍ଦର; ୭ । କେଶର; ୮ । ହିଲ୍ଲୋଳ; ୯ । ନରସିଂହ; ୧୦ । ବିପରୀତ; ୧୧ । କ୍ଷୁବ୍ଧକ; ୧୨ । ଧେନୁକ; ୧୩ । ଉତ୍କଣ୍ଠ; ୧୪ । ସିଂହାସନ; ୧୫ । ରତିନାଗ; ଓ ୧୬ । ବିଦ୍ୟାଧର—ହି. ଶ. ।]

୧୪ । ଧାରା; ରୀତି; ପ୍ରଣାଳୀ—14. Method.
୧୫ । ଯୋଗ—15. Connection; union.
୧୬ । ବନ୍ଦୋବସ୍ତ—16. Arrangement. ୧୭ । ଅଙ୍ଗାଦିର ସୁକୌଶଳପୂର୍ଣ୍ଣ ଚାଳନା ବା ବିନ୍ୟାସ—17. Artistic athletic posture of the body or limbs. ୧୮ । ବିଭିନ୍ନ ଆକୃତିବିଶିଷ୍ଟ ରେଖା ଅଙ୍କନ କରି ତହିଁର ଭିନ୍ନ ଭିନ୍ନ ସ୍ଥାନରେ କୌଶଳପୂର୍ବକ ଗୀତ ବା ବାକ୍ୟ ବିନ୍ୟାସ କରିବା ରୀତି; ଚିତ୍ରକାବ୍ୟର ରଚନାବିଶେଷ—18. Different figures drawn on paper or wall and set with the component leters ot a stong.

(ଯଥା—ସର୍ବବନ୍ଧ, ଖଡ୍ଗବନ୍ଧ, ଚକ୍ରବନ୍ଧ, ରଥବନ୍ଧ, 'ଚନ୍ଦ୍ରବନ୍ଧ, ପଦ୍ମବନ୍ଧ। ଉପେନ୍ଦ୍ରଭଞ୍ଜ ଚିତ୍ରକାବ୍ୟ ବନ୍ଧୋଦୟରେ ଏହି ଶ୍ରେଣୀର ଅନେକ ବନ୍ଧର ଉଦାହରଣ ଦେଇଅଛନ୍ତି ।)

କନ୍ଧନାଗ ବନ୍ଧ ଏକ ଲେଖିଲେ ୨ଦ ଅନେକ । ଗୋଲକ, ଋଜୁରେଖା ।

୨୦ । ଶିକ୍କୁଳ; ଶୃଙ୍ଖଳ; ବେଡ଼ି—21 Chain; fetters ୨୧ । କାରାବନ୍ଧନ; କଏଦ (ହି. ଶ)—21. Imprisonment, ୨୨ । ଯୋଗ ସାଧନରେ ଅବଲମ୍ବିତ ମୁଦ୍ରା ବା ଅଙ୍ଗନ୍ୟାସ—22. Postures in joga-exercise.

(ଯଥା—ଉଡ୍ଡୀୟାନ ବନ୍ଧ, ମୂଳବନ୍ଧ, ଜାଳନ୍ଧର ବନ୍ଧ—ହି. ଶ)

୨୩ । ନିବନ୍ଧ ରଚନା; ଗଦ୍ୟ ବା ପଦ୍ୟ ରଚନା (ହି. ଶ)—23. Literary composition; prose or poetical composition. ୨୪ । ଶିଳ୍ପଶାସ୍ତ୍ର ଅନୁସାରେ ଗୃହର ଦୈର୍ଘ୍ୟ ଓ ପ୍ରସ୍ଥର ଭିନ୍ନ ଭିନ୍ନ ମାନ (ହି. ଶ.)—24. Different standards of rooms having prescribed length and breadth.

ଦେ. ବି—୧ । ନାଟୁଆପିଲାମାନଙ୍କର ଅବୟବ ଚାଳନ ଜନିତ ନ୍ୟାସ—1. Different postures of the limbs performed by dancing boys.

[ ଦ୍ର—ଏ ବନ୍ଧମାନ ଦାକ୍ଷିଣାତ୍ୟରେ ଓ ଓଡ଼ିଶାର ଦକ୍ଷିଣ ଅଞ୍ଚଳରେ ନର୍ତ୍ତକ ନର୍ତ୍ତକୀମାନେ ସାଧନ କରନ୍ତି । ]

ଡୀଗବାଜୀ ୨ । ମାକଡ଼ଚିତ; ମୁଣ୍ଡକୁ ଭୂମିରେ ଲଗାଇ ଗୋଡ଼କୁ
**अलमचीत, लोटन** ଉପରକୁ ଉଠାଇ ଲେଉଟି ପଡ଼ିବା—2. Somersault.

ପ୍ରାଦେ. (ସମ୍ବଲପୁର, ସିଂହଭୂମି ଓ ଗଞ୍ଜାମ)—ଚାରିଆଡ଼େ ଆଡ଼ି ବା ବନ୍ଧ ଥିବା ପୋଖରୀ; ଜଳାଶୟ—A tank surrounded by embankments.

ପ୍ରାଦେ (ସମ୍ବଲପୁର ଓ ଗଞ୍ଜାମ)—୧ । ପାହାଡ଼ ନିକଟସ୍ଥ ନିମ୍ନ ଭୂମିରେ ବାଡ଼ ପକାଇ ପାଣି ଅଟକାଇ ରଖିବା ଯୋଗୁଁ ହୋଇଥିବା ଜଳାଶୟ—1. A tank formed by forming an embankment stopping the flow of hill-streams; water reservoir. ୨ । ବଡ଼ ହିଡ଼—2. A high ridge.

ବନ୍ଧକ—ସଂ. ବି. (ବନ୍ଧ୍ ଧାତୁ+କର୍ମ ଅକ)—୧ । ଋଣ ପରିଶୋଧର
Bandhaka ଜାମିନ୍ ସ୍ୱରୂପ ଖାତକ ମହାଜନ ନିକଟରେ ଯେଉଁ ଦ୍ରବ୍ୟ ରଖେ—1. Pawn; pledge of a thing by the debtor as security for a loan.

୨ । (+ଭାବ. ଅକ) ବନ୍ଧା; କୌଣସି ଭୂସମ୍ପତ୍ତି ଜାମିନ୍ ରଖି ଋଣ ନେବା—2. Mortgage.

[ ଦ୍ର—୧. ଯେଉଁ ବନ୍ଧକ ପ୍ରଣାଳୀରେ ମହାଜନ ନିକଟରେ ବନ୍ଧା ଦିଆ ଯାଇଥିବା ଦ୍ରବ୍ୟକୁ ମହାଜନ ଦଖଲ ନ କରି ଋଣଶୋଧ ପର୍ଯ୍ୟନ୍ତ ଅଦାଲତଙ୍କ ଜରିଆରେ ବିକ୍ରୟ କରିବା ନିମିତ୍ତ ଅଟକାଇ ରଖି ପାରନ୍ତି ତାହା ସେହିଣ ବନ୍ଧକ ବା ଜାୟ ବନ୍ଧକ (simple mortgage), ୨. ଯେଉଁଥିରେ ଋଣର ସୁଧ ବା ମୂଳ ଓ ସୁଧ ଉଭୟ ଆଦାୟ ହେବା ପର୍ଯ୍ୟନ୍ତ ମହାଜନ ଉକ୍ତ ଦ୍ରବ୍ୟକୁ ବା ଦ୍ରବ୍ୟର ଆୟକୁ ଭୋଗ କରନ୍ତି ତାହା ଦଖଲ ବନ୍ଧକ (usufructuary mortgage), ୩. ଯହିଁରେ ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ମହାଜନ ସୁଧ ମୂଳ ଓ ଫିରାକ୍ ପାଇବାର କଥା କରି ବନ୍ଧକ ଦିଆ ଯାଇଥିବା ବସ୍ତୁକୁ ଏକାବେଳକେ କବାଲା କରି ନିଏ, ମାତ୍ର ଅସଲ ଓ ସୁଧ ଫିରାକ୍ ପାଇଲେ ଖାତକକୁ ଉକ୍ତ ଜମି ଲେଉଟି କବାଲା କରି ଦିଏ ତାହା କଟ ବନ୍ଧକ (English mortgage), ୪. ଯହିଁରେ ଖାତକ ମହାଜନକୁ କବାଲା ଲେଖି ଦିଏ, ମାତ୍ର ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖାତକ ଟଙ୍କା ସୁଝି ନ ପାରିଲେ ମହାଜନ ବନ୍ଧକ ସମ୍ପତ୍ତିରେ ମାଲିକ ହୁଅନ୍ତି, ବା ଟଙ୍କା ପରିଶୋଧ କଲେ କବାଲା ଅକର୍ମଣ୍ୟ ହୁଏ, ଏହି ସର୍ତ୍ତ ରଖି ବନ୍ଧକ ଦଲିଲ ହୁଏ ତାହା କଟ କବାଲା ବା କଣ୍ଟି କବାଲା (mortgage by conditional sale), ୫. ଯେଉଁ ପ୍ରକାର ବନ୍ଧକରେ ଦଖଲବନ୍ଧକ ଓ ସାଧା ବନ୍ଧକ ବା ଦଖଲ ବନ୍ଧକ ଓ କଟ କବାଲାର ସର୍ତ୍ତମାନ ମିଶାମିଶି ହୋଇଥାଏ ତାହା ନୈପାତନିକ ବା ମିଶାମିଶି ବନ୍ଧକ ( anomalous mortgage ).

ଏ ଶେଷୋକ୍ତ ବନ୍ଧକ ନୂଆ ଆଇନ୍ ଅନୁସାରେ ସିଦ୍ଧ ହୋଇଅଛି । ]

୫ । (+ଭାବ. ଅକ) କଇଦ; କାରାବନ୍ଧନ—3. Confinement; imprisonment. ୪ । ବିନିମୟ; ଅଦଳବଦଳ—4. Barter; exchange. ୫ । (+କର୍ମ. ଅକ) ଲମ୍ପଟ ବ୍ୟକ୍ତି; ସ୍ତ୍ରୀଚୋର; ଉପପତି—5. A lecher; an adulterer. ୬ । ନଗର—6. City. ୭ । (+ଭାବ. ଅକ) ବନ୍ଧନ—7. Binding; bond. ୮ । (+କର୍ତ୍ତୃ. ଅକ) ଯେ ବାନ୍ଧେ; ବନ୍ଧନକାରୀ—8 Binder.

ବନ୍ଧକ ଗ୍ରହୀତା—ଦେ ବି. (କଟକିଆ) (ସଂ. ବନ୍ଧକ+ଗ୍ରହୀତୃ)—
Bandhaka grahitā ଖାତକର ଚଳନ୍ତି ଜିନିଷ ବା ଅଚଳନ୍ତି
बन्धक ग्रहीता ସମ୍ପତ୍ତି ବନ୍ଧକ ରଖି ଟଙ୍କା ଋଣ ଦେବା ମହାଜନ—
**बन्धक दार** Mortgagee; pledgee; pawnee.

ବନ୍ଧକ(କି) ଡିକି(ଗି)ରି—ଦେ. ବି. ( କଟକିଆ )—ବନ୍ଧକ ଋଣ ଆଦାୟ
Bandhaka(ki) ḍiki(gi)ri କରିବା ପାଇଁ ମହାଜନ ମକଦ୍ଦମା
बन्धक डिक्री ଦାଏର କରି ଅଦାଲତରେ ହାସଲ କରିଥିବା
**बन्धक डिग्री** ହୁକୁମ—Mortgage decree.

[ବନ୍ଧକ(କି) ଡିକି(ଗି)—ଅନ୍ୟରୂପ]

ବନ୍ଧକ(କି) ଦଲିଲ୍—ଦେ. ବି. ( କଟକିଆ )—ଖାତକ ଯେଉଁ ବନ୍ଧକ
Bandhaka(ki) dalil ତମସୁକ ସମ୍ପାଦନ କରି ମହାଜନକୁ
बन्धकि खत् ଦେଇ ଋଣ ଗ୍ରହଣ କରେ—
**बन्धकी दस्तावीज** Mortgage-bond.

[ବନ୍ଧକ(କି) ଦସ୍ତାବିଜ, ବନ୍ଧକ(କି) ତମସୁକ, ବନ୍ଧକନାମା—ଅନ୍ୟରୂପ]

ବନ୍ଧକ ଦାତା—ଦେ. ବି. (କଟକିଆ)—ବନ୍ଧକ ଦ୍ୱାରା ଋଣ କରିଥିବା
Bandhaka dātā ଖାତକ—Mortgager.
बन्धक दाता **बन्धक दाता**

ବନ୍ଧକ ଦାୟ—ଦେ. ବି. (କଟକିଆ) (ସଂ. ବନ୍ଧକ+ଦାୟ)—
Bandhaka dāya ଋଣ ଟଙ୍କା ପରିଶୋଧ କରିବା ପାଇଁ

(ବନ୍ଧକ ଦାୟିତ୍ୱ—ଅନ୍ୟରୂପ) ବନ୍ଧକ ସମ୍ପତ୍ତି ଉପରେ ଥିବା ଦାୟିତ୍ୱ-
बन्धक दाय़ Mortgage lien; the responsibility
**बन्दक दावा** attached to a mortgaged property for payment of the mortgage debt.

[ ଦ୍ର—କୌଣସି ମହାଜନ କୌଣସି ବ୍ୟକ୍ତିର ସମ୍ପତ୍ତି ବନ୍ଧକ ନ ନେଇଥିବା ଅବସ୍ଥାରେ ତାହା ଯେବେ ପୂର୍ବରୁ ଅନ୍ୟ ମହାଜନ ଠାରେ ବନ୍ଧକ ଥାଏ, ତେବେ ପ୍ରଥମୋକ୍ତ ମହାଜନ ଅଦାଲତରେ ନାଲିସ କରି ଖାତକ ଉପରେ ଡିଗ୍ରୀ ହାସଲ କରି ଖାତକର ଉକ୍ତ ସମ୍ପତ୍ତିକୁ ନିଲାମ କରାଇଲେ ଉକ୍ତ ସମ୍ପତ୍ତି ପ୍ରଥମ ବନ୍ଧକଦାର ମହାଜନଙ୍କ ବନ୍ଧକଦାୟ ସହିତ ନିଲାମ ହୁଏ । ]

ବନ୍ଧକଦାର୍—ଦେ. ବି. (କଟକିଆ)—ବନ୍ଧକ ଗ୍ରହୀତା (ଦେଖ)
Bandhaka dār Bandhaka grahitā (See)

ବନ୍ଧକ(କି) ଦେଣା—ଦେ. ବି. ( କଟକିଆ )—
Bandhaka(ki) denā ସମ୍ପତ୍ତି ବନ୍ଧକ ରଖାଯାଇ ମହାଜନଠାରୁ
बन्धक देना ନିଆ ଯାଇଥିବା ଋଣ—Mortgage-debt.
**बन्धक देना** [ବନ୍ଧକ(କି) ଦେଏଣା—ଅନ୍ୟରୂପ]

ବନ୍ଧକ ଦେବା—ଦେ. କ୍ରି. ( କଟକିଆ )—ସମ୍ପତ୍ତି ଆବଦ୍ଧ ରଖି
Bandhaka debā ମହାଜନଠାରୁ ଋଣ କରିବା—To borrow
बन्धक देओया money by pledge or mortgage.
**बन्धक देना, गीरौ रखना**
[ବନ୍ଧକ ରଖିବା; ବନ୍ଧକ ପକା(କେ)ଇବା—ଅନ୍ୟରୂପ]

ବନ୍ଧକ(କି) ନିଲାମ—ଦେ. ବି. (କଟକିଆ)—ବନ୍ଧକ ଡିଗ୍ରୀ ଅନୁସାରେ
Bandhaka(ki) nilāma ଅଦାଲତଙ୍କ ଦ୍ୱାରା ବନ୍ଧକ ସମ୍ପତ୍ତିର
बन्धकी निलेम ପ୍ରକାଶ୍ୟ ବିକ୍ରୟ—Court auction in exe-
**बन्धकी निलाम** cution of a mortgage-decree.

ବନ୍ଧକ ନେବା—ଦେ. କ୍ରି. (କଟକିଆ)—ଋଣ ଦେଇ ଖାତକର ସମ୍ପତ୍ତିକୁ
Bandhaka nebā ଜାମିନ୍ ସ୍ୱରୂପ ରଖିବା—To advance
बन्धक लओआ money on pledge or mortgage.
**बन्धक लेना** (ବନ୍ଧକ ରଖିବା—ଅନ୍ୟରୂପ)

ବନ୍ଧକ(କି) ମକଦ(ଦ୍ଦ)ମା—ଦେ. ବି. (କଟକିଆ)—ବନ୍ଧକ ଋଣ ବାବଦ
Bandhaka(ki) makada(dda)mā ଟଙ୍କା ଆଦାଏ ପାଇବ
बन्धक मोकद्दमा ପାଇଁ ମହାଜନ ଖାତକ ନାମରେ କରିଥିବ
**बन्धकी मुकद्‌मा** ମକଦମା—Mortgage suit.

ବନ୍ଧକ ରଖିବା—ଦେ. କ୍ରି—୧ । ବନ୍ଧକ ଦେବା ( ଦେଖ )
Bandhaka rakhibā 1, Bandhaka debā ( See )
बन्धक राखा ୨ । ବନ୍ଧକ ନେବା ( ଦେଖ )
**बन्धक रखना** 2 Bandhaka nebā ( See )

ବନ୍ଧକୀ—ସଂ. ବି. ସ୍ତ୍ରୀ.—(ବନ୍ଧ ଧାତୁ+କର୍ତ୍ତୃ. ଅକ+ସ୍ତ୍ରୀ. ଈ; ଯେ ପର-
Bandhakī ପୁରୁଷର ମନକୁ ବନ୍ଧନ କରେ କିମ୍ବା ଯେ ପର-ପୁରୁଷର ପ୍ରେମରେ ବନ୍ଧ୍ୟ ହୋଇଥାଏ)—୧ । ଅସତୀ ସ୍ତ୍ରୀ; ପୁଂଶ୍ଚଳୀ; କୁଳଟା—1. An adulteress.

ବନ୍ଧକୀ ସ୍ୱଭାବ ଲୁଣ୍ଠ ପରଚ୍ଛିଦା କଲେ ହଟ
ସ୍ୱମୁଷ୍ଟ ମହତ ଧୃଷ୍ଟି ତାଙ୍କ ରଖିଲ । ଉପେ. ବୈଦେହୀଶବିଳାସ ।

୨ । ବେଶ୍ୟା—2. Harlot. ୩ । ବନ୍ଧ୍ୟା ସ୍ତ୍ରୀ—3. A barren or childless woman. ୪ । ଋଣ ଗ୍ରହଣ କାଳରେ ମହାଜନ ନିକଟ ବନ୍ଧା ରଖା ଯାଇଥିବା ବସ୍ତୁ—4. Mortgaged property; pledged article.
୫ । ହସ୍ତିନୀ—5. A female elephant.
ଦେ. ବି—ବନ୍ଧକ—Mortgage.
ଦେ. ବିଣ—ବନ୍ଧକ ସମ୍ବନ୍ଧୀୟ—Relating to mortgage.

ବନ୍ଧ କୁଡ଼ା—ପ୍ରାଦେ. (ସମ୍ବଲପୁର) କ୍ରି—ପୋଖରୀ ଖୋଳା—
Bandha kurdā Digging of a pool.

ବନ୍ଧ ତନ୍ତ୍ର—ସଂ. ବି. (ବନ୍ଧ+ତନ୍ତ୍ର=ସୈନ୍ୟ)—୧ । ବ୍ୟୂହ ରଚନାର
Bandha tantra କୌଶଳ ବିଶେଷ—1. A kind of battle-array. ୨ । ବନ୍ଧ ଆକାରରେ ସଜ୍ଜିତ ଚତୁରଙ୍ଗ ସେନା—2. The four divisions of army (foot, horse elephant and chariot) arrayed in the form of an embankment. ୩ । ଚତୁରଙ୍ଗ ସୈନ୍ୟ ( ପଦାତି, ଅଶ୍ୱ, ହସ୍ତୀ, ରଥ )—3. The four divisions of the army (infantry, cavalry, elephant and chariot).

ବନ୍ଧନ—ସଂ. ବି. (ବନ୍ଧ୍ ଧାତୁ+ଭାବ. ଅନ)—୧ । ବାନ୍ଧିବା କ୍ରିୟା—
Bandhana 1. The act of binding. ୨ । ଅବରୋଧ; ଅଟକ—2. Restraint. ୩ । କାରାରୋଧ—3. Confinement, imprisonment. ୪ । ବାଧା; ପ୍ରତିବନ୍ଧ—4. Obstruction; hindrance; obstacle. ୫ । ସଂଯମନ—5. Regulating; controlling ୬ । ସେତୁଆଦିର ନିର୍ମାଣ—6. Raising of a dam. ୭ । ( +କରଣ. ଅନ )—ବୃନ୍ତ; ଡେମ୍ଫ—7. Stalk. ୮ । ବଧ; ହନନ; ହତ୍ୟା; ହିଂସା—8. Murder; slaughter. ୯ । ବାଣର ପୁଙ୍ଖ—9. The feathers tied at the tail of an arrow. ୧୦ । ଫାଶ; ଗଣ୍ଠି—10 Knot ୧୧ । ନିଗଡ଼; ବାନ୍ଧିବା ଦଉଡ଼ି—11. Ligature; string; chain; fetters; band. ୧୨ । ବନ୍ଧାଯିବା ପଟି—12. Bandage. ୧୩ । (ଆୟୁର୍ବେଦ) ପତନ ବା ଅଘାତଜନିତ କ୍ଷତକୁ କିମ୍ବା ଅସ୍ତ୍ରଚିକିତ୍ସା ପରେ ଅଙ୍ଗାଦିକୁ ବସ୍ତ୍ରଦ୍ୱାରା ବାନ୍ଧିବା—13. Ligaturing or bandaging of a wound after a fall or an operation.

[ ଦ୍ର—ସୁଶ୍ରୁତରେ ୧୪ ପ୍ରକାରର କ୍ଷତବନ୍ଧନ ପ୍ରଣାଳୀ ଲେଖା-ଅଛି, ଯଥା—୧. ସ୍ୱସ୍ତିକ, ୨. ଗୋଫଣା, ୩. ପଞ୍ଚାଙ୍ଗୀ, ୪ କୋଶ, ୫ ଦାମ, ୬ ଅନୁବେଲ୍ଲିତ, ୭ ବୃତ୍ତୋଳ, ୮ ମଣ୍ଡଳ, ୯ ସ୍ଥଗିକା, ୧୦ ଯମକ, ୧୧ ଖଟ୍ଟା, ୧୨ ଚୀନ, ୧୩ ବିବନ୍ଧ ଓ ୧୪ ବିତାନ ।]

୧୪ । ଶରୀରର ସନ୍ଧି ସ୍ଥାନ (ହି. ଶ.)—14. Joint of the body. ୧୫ । ଶିବ; ମହାଦେବ—15. Śiba; Mahādeba. ୧୬ । ବୀର୍ଯ୍ୟସ୍ତମ୍ଭନ; ବୀର୍ଯ୍ୟସ୍ଖଳନ ନ କରାଇବା; ବାଜୀକରଣ—16. Restraint of seminal discharge.

ଦେ. ବି—ବାନ୍ଧନ କାଠ; ବାନ୍ଧଣ କାଠ; ଆରଣ୍ୟ ତରୁବିଶେଷ—ସଂ. ସ୍ୟନ୍ଦନ, ରଥଦ୍ରୁ, ତିନିଶ A timber tree; Ougenia
तिनिश; बाँधन् सन्दन, असइन्द; Dalborgoiodes.
तिन्नाश; तिमशा [ ଦ୍ର—ଏହାର କାଠ ଶକ୍ତ ଓ ଚିକ୍କଣ । ଏହି କାଠରେ ଶଗଡ଼ର ଚକଆଦି ତିଆରି ହୁଏ (ଏଥିଯୋଗୁଁ ଏହାର ସଂ. ନାମ ରଥଦ୍ରୁ); ବସନ୍ତକାଳରେ ପତ୍ର ଝଡ଼ି ପଡ଼େ । ବନରେ ଅନେକ ଗଛ ଏକତ୍ର ଜନ୍ମେ ବୋଲି ଏହାର ସଂସ୍କୃତ ନାମ ତିନିଶ ? ଏହା ବିହାର, ଓଡ଼ିଶା ଓ ମଧ୍ୟଭାରତର ଜଙ୍ଗଲରେ ମିଳେ । ତିନିଶ (ଦେଖ) ]

ଦେ. ବିଣ—୧ । ବନ୍ଧା; ବଦ୍ଧ—1. Confined, bound; tied
୨ । ମୁଗ୍ଧ—2. Charmed.

ମନ୍ତ୍ରବନ୍ଧନ ମନ କରେ ମୋହନ
ତରୁଣ ଜନ ସ୍ୱଭାବେ ବନ୍ଧନ । ଶ୍ରୀଟୀ ରସକାବ୍ୟ ।

**ବନ୍ଧନ କରିବା**—ଦେ. କ୍ରି—୧ । ବାନ୍ଧିବା—1. To tie; to confine,
Bandhana kariba ୨ । ବନ୍ଦନ କରିବା ୧+୨ (ଦେଖ)
बन्धन करा बन्दन करना 2. Bandana kariba 1+2 (See)

**ବନ୍ଧନ ଗ୍ରନ୍ଥି**—ସଂ. ବି. (୬ଷ୍ଠୀ ତତ୍; ବନ୍ଧନ+ଗ୍ରନ୍ଥି)—ଦେହର ସନ୍ଧିର
Bandhana granthi. ବା ଜୋଡ଼ର ହାଡ଼ (ହ୍ରି. ଶ.)—A bone of any joint of the body.

**ବନ୍ଧନ ପାଳ**—ସଂ. ବି. (ବନ୍ଧନ+ପାଳ ଧାତୁ+କର୍ତ୍ତୃ. ଅ)—କାରାଗାର-
Bandhana pāla ରକ୍ଷକ (ହ୍ରି. ଶ.)—Jailor.

**ବନ୍ଧନ ବେଶ୍ମ**—ସଂ ବି—କାରାଗାର; କଏଦଖାନା; ଜେଲ୍‌ଖାନା—
Bandhana beśma Jail; prison.
(ବନ୍ଧନାଗାର, ବନ୍ଧନଶାଳା, ବନ୍ଧନାଳୟ—ଅନ୍ୟରୂପ)

**ବନ୍ଧନ ଭୟ**—ସଂ. ବି (୫ମୀ ତତ୍)—ଆପେ ବନ୍ଧା ହେବାର ବା
Bandhana bhaya କାରାବଦ୍ଧ ହେବାର ଆଶଙ୍କା—Fear of being tied down or imprisoned.

**ବନ୍ଧନ ମୁକ୍ତ**—ସଂ. ବିଣ. (୫ମୀ ତତ୍)—ବନ୍ଧାହେବାରୁ ମୁକୁଳି ଥିବା—
Bandhana mukta Untied; emancipated.
(ବନ୍ଧନ ମୁକ୍ତି, ବନ୍ଧନ ମୋଚନ—ବି)

**ବନ୍ଧନ ରଜ୍ଜୁ**—ସଂ. ବି. (୪ର୍ଥୀ ତତ୍)—ବାନ୍ଧିବାର ଦଉଡ଼ି—
Bandhana rajju A rope for tying.

**ବନ୍ଧନ ସାଧନ**—ସଂ. ବି (୬ଷ୍ଠୀ ତତ୍)—ଯାହାଦ୍ୱାରା ବନ୍ଧାଯାଏ; ବାନ୍ଧିବାର
Bandhana sādhana ଉପକରଣ—Contrivance used in binding or tying.

**ବନ୍ଧନ ସ୍ତମ୍ଭ**—ସଂ. ବି (୪ର୍ଥୀ ତତ୍)—ପଶୁଆଦିଙ୍କୁ ବାନ୍ଧିବାର ଖୁଣ୍ଟ—
Bandhana stambha Tying post.

**ବନ୍ଧନାର୍ହ**—ସଂ. ବିଣ. ପୁଂ—ବନ୍ଧାହେବାର ଉପଯୁକ୍ତ—
Bandhanārha Fit to be tied; deserving confinement or imprisonment.
(ବନ୍ଧନାର୍ହା—ସ୍ତ୍ରୀ)

**ବନ୍ଧନୀ**—ସଂ. ବି. (ବନ୍ଧ ଧାତୁ+କରଣ ଅନ+ସ୍ତ୍ରୀ. ଈ)—୧ । ବାନ୍ଧିବା
Bandhanī ଦଉଡ଼ି—1. Tying rope. ୨ । ଅସ୍ତ୍ରୋପଚାର ପରେ ଶିରାସ୍ନାୟୁ ପ୍ରଭୃତି ବାନ୍ଧିବାର ସୂତ୍ର—2 Ligature.
୩ । ଦେହର ଗଣ୍ଠିରେ ଥିବା ମୋଟ ଶିରା (ହ୍ରି. ଶ.)—3, Thick veins in the joints of the body.
୪ । ବ୍ରାକେଟ୍; କୌଣସି ବାକ୍ୟକୁ ବା ଅଙ୍କକୁ ସ୍ୱତନ୍ତ୍ରରୂପେ ଚିହ୍ନାଇବାପାଇଁ ବ୍ୟବହୃତ ଦ୍ୱିକୋଣ ବା ଦ୍ୱିଫଳକବିଶିଷ୍ଟ ଚିହ୍ନ—4. Brackets; paranthesis.

[ ଦ୍ର—ଏହା ଚାରିପ୍ରକାର ଯଥା—୧ । ଚନ୍ଦ୍ରବନ୍ଧନୀ ( ), Simple brackets; first bracket. ୨ । କୁଟିଳବନ୍ଧନୀ { } Second brackets. ୩ । ବର୍ଗବନ୍ଧନୀ [ ], Third brackets. ୪ । ପାର୍ଶ୍ୱରେଖା ——— Brace. ଯେଉଁ ସଂଖ୍ୟାମାନଙ୍କ ଉପରେ ଏହି ଭଳି ୪ର୍ଥ ଚିହ୍ନ ଥାଏ ତାହାର କାର୍ଯ୍ୟ ଗଣିତରେ ସର୍ବପ୍ରଥମେ କରାଯାଏ, ଏହା ଗଣିତରେ ବନ୍ଧନୀର ଅନ୍ତର୍ଗତ

**ବନ୍ଧନୀୟ**—ସଂ. ବିଣ—(ବନ୍ଧ୍ ଧାତୁ+କର୍ମ ଅନୀୟ)—ଯାହା ବନ୍ଧା ଯିବାର
Bandhanīya ଉପଯୁକ୍ତ—Capable of being bound; deserving confinement.
ସଂ. ବି—ସେତୁ; ପୋଲ (ହ୍ରି. ଶ)—Bridge.

**ବନ୍ଧ ବାଡ଼**—ଦେ. ବି—(ସମାନାର୍ଥକ ସହଚର)—୧ । ପାଣିକୁ
Bandha bārḍa ଅଟକାଇବା ପାଇଁ ନିର୍ମିତ ବନ୍ଧ ଓ ବାଡ଼—
बाँधबेड़ा; भेड़ी 1, Embankment and dyke.
बाँध ୨ । (ଲକ୍ଷଣାର୍ଥ) ବାଧାବିଘ୍ନ; ଅନ୍ତରାୟ—2. (figurative) Obstacle; check.

**ବନ୍ଧ ବାନ୍ଧିବା**—ଦେ. କ୍ରି—ଜଳକୁ ଅଟକାଇ ରଖିବାପାଇଁ ସେତୁ ନିର୍ମାଣ
Bandha bāndhibā କରିବା—To raise a dyke or
[ ବନ୍ଧ ବନ୍ଧା(କେ)ଇବା—ଅନ୍ୟରୂପ ] bridge or embankment.
बाँधबाँधा बाँधबधाँना

**ବନ୍ଧ ଭାଙ୍ଗିବା**—ଦେ. କ୍ରି—ନାନାପ୍ରକାରେ ଶରୀରକୁ ଓଲଟାଇ କର
Bandha bhāṅgibā ବ୍ୟାୟାମ କରିବା—To cut somersaults.
डीगबाजी खाइओं अलमची उलटना

ଦେ. ବି—ଜଳାଶୟ ହେତୁ ନଦୀର ବା ଜଳାଶୟର ବନ୍ଧର
बाँधभाँगा ଭଙ୍ଗ—1 Collapse of an embankment
बाँधटूटना due to rush or excess of water.
(ବନ୍ଧ ଭାଙ୍ଗିଯିବା—ଅନ୍ୟରୂପ)

**ବନ୍ଧ(ନ୍ଧି)ରିଆ**—ପ୍ରଦେ (ସମ୍ବଲପୁର) ବି—କଙ୍ଗନ୍ (ଦେଖ)
Bandha(ndhi-)riā Kaṅgan (See).

**ବନ୍ଧଲି**—ପ୍ରାଦେ (ସମ୍ବଲପୁର) ବି—(ବନ୍ଧ+କ୍ଷୁଦ୍ରାର୍ଥେ. ଲି)—ଖେଣ୍ଟ,
Bandhali ପୋଖରୀ—Pool; small tank.

**ବନ୍ଧା**—ଦେ. ବି—(ସଂ. ବନ୍ଧ୍ ଧାତୁ)—୧ । ବନ୍ଧନ କ୍ରିୟା—1. The
Bandhā act of binding. ୨ । ଅନ୍ୟ ପାଇଁ ଜାମିନ୍; ପ୍ରତିଭୂ-
बाँधा 2. Surety; security. ୩ । ବନ୍ଧକ—3. Mortgage;
बंधन बाँधा जमानत बाँधा बंधक;गिरो pledge.
୪ । ଋଣଶୋଧର ଯାମିନ୍‌ସ୍ୱରୂପ ମହାଜନ ନିକଟରେ ନ୍ୟସ୍ତ ବା ରକ୍ଷିତ ବସ୍ତୁ—4. A pledge.

ମଣି ବନ୍ଧା ନଥ କଣ୍ଠ ଦୁଧ ଦଥ ଘଇ ମୋର କରୁ ପାନ ।
ବିଶ୍ୱନାଥ—ବଚିତ୍ର ରାମାୟଣ ।

ବାঁধা ୫ । ବୀର୍ଯ୍ୟ ସ୍ତମ୍ଭନ; ବାଜୀକରଣ—5. Restraint of
ବंधा seminal discharge.
୬ । ବ୍ରହ୍ମଚର୍ଯ୍ୟ; ମୈଥୁନରାହିତ୍ୟ—6. Continence.
ଦେ. ବିଣ—୧ । ବନ୍ଧନ କରା ଯାଇଥିବା; ବଦ୍ଧ—
ବାঁধা ਬंधेज 1. Bound; tied. ୨ । ବନ୍ଧକ ଦିଆ ଯାଇଥିବା—
2. Pledged; mortgaged. ୩ । ବ୍ରହ୍ମଚର୍ଯ୍ୟାବଲମ୍ବୀ—
3. Observing continence.
( ଯଥା—କୁସ୍ତି କରିବାକୁ ହେଲେ ବନ୍ଧା ରହିବାକୁ ପଡ଼ିବ । )
୪ । ସଂଯତେନ୍ଦ୍ରିୟ; ଯେ ଇନ୍ଦ୍ରିୟର ବଶୀଭୂତ ନୁହେଁ—
4. Practising self restraint. ୫ । ଅବରୁଦ୍ଧ—
5. Restrained; confined. ୬ । ନିର୍ଦ୍ଦିଷ୍ଟ—6. Ascertained; settled. ୭ । ଅପରିବର୍ତ୍ତନୀୟ—
7. Unchangeable; permanent; hard and fast.
୮ । ଗ୍ରଥିତ; ଇଟା, ପଥର ଓ ଚୁନଆଦିରେ ତିଆରି; ପକ୍କା—
8. Paved; made of masonry.

ବନ୍ଧାଇ—ଦେ. ବି. ( ସଂ, ବନ୍ଧନ )—୧ । ବହି ଆଦି ବାନ୍ଧିବା—
Bandhāi 1. Binding ( of books ).
ବাঁধাই ୨ । ବହି ବାନ୍ଧିବାର ଖର୍ଚ୍ଚ ବା ମଜୁରି—
बन्धाइ 2. Binding charges.

ବନ୍ଧା(ନ୍ଧେ)ଇବା—ଦେ. କ୍ରି. ( ବନ୍ଧ୍ ଧାତୁର ଣିଚ୍ )—
Bandhā(ndhe)ibā ୧ । ବାନ୍ଧିବା କ୍ରିୟାର ଣିଜନ୍ତ ରୂପ—
বাঁধান बन्धवाना 1. Causative of Bāndhibā.
(ବନ୍ଧିଆଇବା—ଅନ୍ୟରୂପ) ୨ । ବନ୍ଧ ପକାଇବା—2. To raise a dam or dyke.

ବୋହି ଗଲା ପାଣି ଯାଉ ଛେଣିକି, ବନ୍ଧେଇଲା ପାଣି ରହୁ ଅଟକି—ଢଗ ।

ବନ୍ଧା ଓକିଲ—ଦେ. ବି—ଯେଉଁ ଓକିଲଙ୍କୁ ଆପଣାର ସମସ୍ତ ମକଦମାରେ
Bandhā okila ନିଯୁକ୍ତ କରାଯାଏ—One's retained
বাঁধা উকিল बंधा वकिल pleader.

ବନ୍ଧା କୋବି—ଦେ. ବି—ଏକ ପ୍ରକାର ବିଦେଶୀୟ ପରିବା—
Bandhā kobi বাঁধা কপি बंद गोभी Cabbage.
[ ଦ୍ର—ଏ କୋବିର ପତ୍ରମାନ ଗୋଟାଳିଆ ହୋଇ ବାନ୍ଧି ହୋଇଥାଏ ।]

ବନ୍ଧା ଗ(ଘ)ତ—ଦେ. ବି (ସଂ. ବଦ୍ଧ+ଗତ)-୧ । ଅପରିବର୍ତ୍ତନୀୟ ରୀତି—
Bandhā ga(gha)ta 1. Unchangeable practice.
বাঁধী গত্ ୨ । ବାଦ୍ୟ ଯନ୍ତ୍ରରେ ବାଦିତ ହେବା କେବଳ ଏକ
बँधा गत प्रकारର ସ୍ୱର—2. One fixed melody or tune
(ବନ୍ଧା ସୁର—ଅନ୍ୟରୂପ) set in a musical instrument.
୩ । ନିର୍ଦ୍ଦିଷ୍ଟ ପଦ୍ଧତି ବା ନିୟମ—3. Hard and fast rule.

ବନ୍ଧା ଗହକ—ଦେ. ବି. ( ସଂ. ବଦ୍ଧ+ଗ୍ରାହକ )—ଯେଉଁ ଗ୍ରାହକ ଏକ
Bandhā gahaki ଦୋକାନରୁ ନିୟମିତ ରୂପେ ସଉଦା ନିଏ—
বাঁধা গ্রাহক Regular customer (of a tradesman).
बँधा ग्राहक

ବନ୍ଧା ଘାଟ—ଦେ. ବି. ( ସଂ. ବଦ୍ଧ+ଘଟ୍ଟ )—ଇଟା ବା ପଥର ବସାଇ
Bandhā ghāṭa ତିଆରି କରା ଯାଇଥିବା ଘାଟ; ପକ୍କା ଘାଟ—
বাঁধা ঘাট A masonry bathing ghat; paved land-
बंधा घाट ing place.

ବନ୍ଧା ଚାକର—ଦେ. ବି. ( ସଂ. ବଦ୍ଧ+ଫା. ଚାକର )—୧ । ଯେଉଁ
Bandhā chākara ଚାକର ଦିନ ଓ ରାତି ସବୁ ବେଳେ କାର୍ଯ୍ୟ
বাঁধা চাকর କରିବା ପାଇଁ ଚାକିରି କରଥାଏ—1. A regular
बंधा नौकर servant; a whole-time servant.
୨ । ସ୍ଥାୟୀ ଭାବରେ ନିଯୁକ୍ତ ଭୃତ୍ୟ—2. Permanent
(ବନ୍ଧା ଚାକରିଆ, ବନ୍ଧା ନଉକର—ଅନ୍ୟରୂପ) servant.

ବନ୍ଧା ଚାକ(କି)ରି—ଦେ. ବି. ( ସଂ. ବଦ୍ଧ+ଫା. ଚାକରି )—
Bandhā chāka(ki)ri ୧ । ନିର୍ଦ୍ଦିଷ୍ଟ କର୍ମ ପାଇଁ ନିଯୁକ୍ତ ଚାକରର
বাঁধা চাকুরী କର୍ମ; ଖାସ୍ ଭୃତ୍ୟତା—1. Service for doing a
बंधी नौकरी particular work. ୨ । ସ୍ଥାୟୀ ଚାକିରି—
2. Permanent service. ୩ । ଦିନ ରାତି ସବୁବେଳେ
ଦରକାର ବେଳେ କାମ କରିବା ପାଇଁ ଚାକିରି—
3. Whole time service.

ବନ୍ଧା ଛନ୍ଦା—ଦେ. ବି. ( ଏକାର୍ଥ ବୋଧକ ସହଚର ଶବ୍ଦ )—
Bandhā chhandā ବସ୍ତୁ ବା ସମ୍ପତ୍ତି ବନ୍ଧକ ରଖି ମହାଜନଠାରୁ
বাঁধা ছাঁদা ଋଣ ଆଣିବା—Borrowing money by mort-
बँधक उँधक gaging or pledging or otherwise encumbering one's property.

ବନ୍ଧାଛନ୍ଦା ହେବା—ଦେ. କ୍ରି.—୧ । ଧରି ପଗଡ଼ ହେବା—
Bandhā chhandā hebā 1. To be detained or
ধর পাগড় बाँधाछँदा होना arrested and bound.

କଟକରୁ ନକେ ଲୁଣ୍ଠନ ପଟାଲିମ ଘେନ ଆସିବ;
ଗାଁ ଲୋକେ ବନ୍ଧା ଛନ୍ଦା ହେବେ ଏହା ନିଃସନ୍ଦେହ ।
ଫକୀରମୋହନ- ଛମାଣ ଅଠଗୁଣ୍ଠ ।

୨ । (ଜିନିଷ) ବନ୍ଧକ ଦିଆଯିବା—
2. To be pledged or pawned.

ବନ୍ଧା ଦାନ୍ତ—ଦେ. ବି.—(ସଂ. ବଦ୍ଧ+ଦନ୍ତ)—୧ । କୃତ୍ରିମ ଦାନ୍ତ—
Bandhā dānta Artificial or false tooth.
বাঁধা দান্ত बाँधा दान्त

ବନ୍ଧା ଦିହ—ଦେ. ବି.—(ସଂ. ବନ୍ଧ+ଦେହ)—୧ । କେତେକ ଦିନ
Bandhā diha ବିଶ୍ରାମ ନେବା ଯୋଗୁଁ ସବଳୀଭୂତ ଶରୀର—
বাঁধা শরীর 1. A man's body strengthened by some
बाँधाहुआ बदन days' rest. ୨ । ବ୍ରହ୍ମଚର୍ଯ୍ୟାବଲମ୍ବନ କରି
ଥିବା ଯୋଗୁଁ ସବଳ ଶରୀର—2. One's body strengthened by continence or cessation of sexual acts.

ବନ୍ଧା ଦେବା—ଦେ. କ୍ରି.—ଋଣ ଗ୍ରହଣ କରି କୌଣସି ଦ୍ରବ୍ୟକୁ ଋଣ
Bandhā debā ଆଦାୟ ପର୍ଯ୍ୟନ୍ତ ବନ୍ଧକ ସ୍ୱରୂପ ମହାଜନଙ୍କ ନିକଟ
বাঁধা দেওয়া ନ୍ୟସ୍ତ କରିବା—To pledge or mortgage
[ବନ୍ଧା ପକା(କେ)ଇବା—ଅନ୍ୟରୂପ] any property with
बन्धक रखना the creditor.

ଗୀତ କଲ୍ଲ ବଡ ଚାଣ,
ବଡବୋହକୁ ବନ୍ଧା ପକେଇ ଚୂଡ଼ା ଗୁଡ଼ ମାଣ ଅଣ । ଶିଶୁଗୀତ ।

**ବନ୍ଧା ନଟ**—ଦେ. ବି.—ସଞ୍ଚିତ ଧନ—
Bandā naṭa    Hoarded cash

ମାର ଧର ବାନ୍ଧରେ ଯେ ହୋଇବେ ପ୍ରମତ୍ତ
ବନ୍ଧା ନଟ ନ ପାଇଣ କଉଡ଼ିରେ ଦତ୍ତ । ପ୍ରାଚୀ, ଶ୍ରୀ ଗୁରୁଭକ୍ତି ଗୀତ ।

**ବନ୍ଧା ନିୟମ**—ଦେ. ବି.—ନିର୍ଦ୍ଧାରିତ ବା ଅପରିବର୍ତ୍ତନୀୟ ନିୟମ—
Bandā niyama    Hard and fast rule; fixed and
বাঁধা নিয়ম **बधेज, बांधा नियम**    immutable rule.

**ବନ୍ଧା ପଡ଼ିବା**—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତି ପାଇଁ ଜାମିନ୍ ହେବା—
Bandhā paṛibā    1. To stand security for
বাঁধা পড়া; জামিন হওয়া **बन्धक रहना**    another
(ବନ୍ଧା ରହିବା—ଅନ୍ୟରୂପ) ୨ । (କୌଣସି ବସ୍ତୁ) ଋଣ ନିମନ୍ତେ ମହାଜନ ନିକଟରେ ବନ୍ଧକ ରଖାଯିବା—2 (a property) To be pledged or mortgaged with a creditor ୩ । ଆବଦ୍ଧ ରହିବା—3. To be confined or detained.

**ବନ୍ଧା ପଶୁ**—ଦେ. ବି.—(ସଂ ବନ୍ଧ+ପଶୁ)—ଯେଉଁ ପଶୁ ସର୍ବଦା
Bandhā paśu    ଖୁଣ୍ଟରେ ବନ୍ଧା ରହି ଥାଏ ଓ ଚରିବାକୁ ଛଡ଼ା
বাঁধা পশু    ଦିଆ ଯାଏ ନାହିଁ—A beast always kept tied
**बंधा पशु**    up and not let out to graze; stable-bred
[ଦ୍ର—ଯଥା—ଘୋଡ଼ା, ଗୋରୁ ।] or stall-fed animal.

**ବନ୍ଧା ପାଣି**—ଦେ. ବି.—(ସଂ. ବନ୍ଧ+ପାନୀୟ) ଅଟକ ରଖା ଯାଇଥିବା
Bandhā pāṇi    ଜଳ; ଆବଦ୍ଧ ବା ସ୍ରୋତୋହୀନ ଜଳ—
বাঁধা জল **बन्धा जल, बन्धा पानी**    Stagnant water.

**ବନ୍ଧା ବନ୍ଧି**—ଦେ. ବି.—୧ । ଅନେକ ବସ୍ତୁ ବାନ୍ଧିବା ପ୍ରକ୍ରିୟା—
Bandhā bandhi    1. The act of tying down many
বাঁধা বাঁধি **बाँधा बाँधि**    things. ୨ । ଉତ୍ତମରୂପେ ବାନ୍ଧିବା—2. Binding a thing strongly or securely. ୩ । ଅନ୍ୟୋନ୍ୟରେ ବାନ୍ଧିବା; ଛନ୍ଦାଛନ୍ଦି—3. Mutual tying; binding each other.

ତରୁ ଦୃତଗିର    ପ୍ରେମେ ବନ୍ଧାବନ୍ଧି
ଛନ୍ଦାଛନ୍ଦି ଯେନାଛେଦନ ।
ଯୋଗ୍ୟ କୁଞ୍ଜ ପୁଞ୍ଜ    ଅନ୍ଧାରିତ ଯାଉ
ଠାବେ ଠାବେ ନୀରବେଣୀ । ରାଧାନାଥ, ଯଯାତିକେଶରୀ ।

୪ । ଅପରିବର୍ତ୍ତନୀୟ ନିୟମ—4 Hard and fast rule
ଦେ ବିଣ.—ଧରାବନ୍ଧା; ନିର୍ଦ୍ଦିଷ୍ଟ (ନିୟମ)—
Hard and fast (rule)

**ବନ୍ଧା ବହି**—ଦେ. ବି.—(ସଂ. ବନ୍ଧ+ଆ. ବହୀ)—ଯେଉଁ ପୁସ୍ତକର ପୃଷ୍ଠା
Bandhā bahi    ଗୁଡ଼ିକର ମୂଳ ସୂତାରେ ବନ୍ଧା ହୋଇ ତହିଁ ଉପରେ
বাধাবই **बाँन्धाहुआ बही**    ଠାଣୁଆ ମଲାଟ ମଡ଼ା ହୋଇଥାଏ—
Bound book.

**ବନ୍ଧା ମଉ(ହ)କି(କେ)ଲ**—ଦେ. ବି—(ସଂ. ବନ୍ଧ+ଫା. ମୁଵକ୍କିଲ୍)—
Bandhā mau(ha)ki(ke)la    ଯେଉଁ ମକ୍କେଲ୍ ସମସ୍ତ ମକଦମାରେ
বাঁধামকেল    ନିଜର ନିର୍ଦ୍ଦିଷ୍ଟ ଓକିଲଙ୍କ ଛଡ଼ା ଅନ୍ୟ ଓକିଲଙ୍କୁ ଆଶ୍ରୟ
**बंधा मुवक्किल**    କରେ ନାହିଁ—Regular client of a lawyer.

**ବନ୍ଧିତ୍ର**—ସଂ. ବି—(ବନ୍ଧ୍ ଧାତୁ=ବନ୍ଧନ କରିବା+କର୍ତ୍ତୃ. ଇତ୍ର)—
Bandhitra    ୧ । କାମଦେବ; ମଦନ—1 Cupid. ୨ । (+କରଣ. ଇତ୍ର) ଅନୁରାଗ; ସ୍ନେହ; ପ୍ରୀତି—2 Love; attachment. ୩ । (+କର୍ମ. ଇତ୍ର) ଚର୍ମ ବ୍ୟଜନ—3. Leather fan.

**ବନ୍ଧୀ**—ସଂ. ବିଣ. ପୁଂ—(ବନ୍ଧ୍ ଧାତୁ+ଇନ୍)—ବନ୍ଧା ହୋଇଥିବା—
Bandhī    (ବନ୍ଧିନୀ—ସ୍ତ୍ରୀ)    Bound; tied down.

**ବନ୍ଧୁ**—ସଂ, ବି—(ବନ୍ଧ୍ ଧାତୁ+କର୍ତ୍ତୃ. ଉ; ଯେ ସ୍ନେହଦ୍ୱାରା ବନ୍ଧନ
Bandhu    କରେ)—୧ । ଆତ୍ମୀୟ; ବାନ୍ଧବ; ଜ୍ଞାତି; ସ୍ୱଜନ—
1. Relative; kinsman; a cognate.

[ ଦ୍ର—ଅମରକୋଷରେ ସଗୋତ୍ର ଓ ଅସଗୋତ୍ର ସ୍ୱଜନମାନଙ୍କୁ ବନ୍ଧୁ ବୋଲାଯାଇ ଅଛି; କିନ୍ତୁ ହିନ୍ଦୁ ଶାସ୍ତ୍ରରେ ବିବାହ ବନ୍ଧନଦ୍ୱାରା ଯେଉଁମାନଙ୍କ ସଙ୍ଗେ ସମ୍ପର୍କ ଥାଏ ସେମାନଙ୍କୁ ବନ୍ଧୁ (Cognate) ବୋଲାଯାଏ; ରକ୍ତ ବା ଗୋତ୍ରଦ୍ୱାରା ଯେଉଁମାନଙ୍କ ସଙ୍ଗେ ସମ୍ପର୍କ ଥାଏ ସେମାନଙ୍କୁ କୁଟୁମ୍ବ (agnate) ବୋଲାଯାଏ । କୁଟୁମ୍ବମାନେ ନିଜ ଗୋତ୍ରଜ, କିନ୍ତୁ ବନ୍ଧୁମାନେ ପରଗୋତ୍ରଜ । ହିନ୍ଦୁଶାସ୍ତ୍ର ଅନୁସାରେ ବନ୍ଧୁ ତିନି ପ୍ରକାର:—ଆତ୍ମବନ୍ଧୁ; ଯଥା— ଝିଅର ପୁଅ, ଝିଅର ଝିଅର ପୁଅ ଇତ୍ୟାଦି । ମାତୃବନ୍ଧୁ, ଯଥା—ମଉସା । ପିତୃ-ବନ୍ଧୁ—ଯଥା:—ପିଉସା । ]

୨ । ମିତ୍ର; ସୁହୃଦ୍—2. Friend; fast friend.

[ ଦ୍ର—ବନ୍ଧୁ, ସୁହୃଦ୍, ମିତ୍ର ଓ ସଖା ପ୍ରାୟ ଏକ ଅର୍ଥରେ ବ୍ୟବହୃତ ହୁଏ, କିନ୍ତୁ ନିମ୍ନଲିଖିତ ଶ୍ଳୋକରେ ଏ ଶବ୍ଦମାନଙ୍କର ଅର୍ଥଗତ ପ୍ରଭେଦ ସୂଚିତ ହୋଇଅଛି—

ଅଭ୍ୟାଗସମ୍ବନ୍ଧୋବନ୍ଧୁଃ; ସର୍ବଦୈବାନୁଗତଃ ସୁହୃଦ୍
ଏକକ୍ରିୟଂ ଭବେନ୍ମିତ୍ରଂ; ସମପ୍ରାଣଃ ସଖା ମତଃ । ]

୩ । ପ୍ରଣୟୀ—3. Lover. ୪ । ବନ୍ଧୂକ ବୃକ୍ଷ; ବଧୁଲି—4. Pentapetallus Phoenicia. ୫ । କୁଟୁମ୍ବ—5. Kinsman; agnate. ୬ । ପିତା—6. Father (Apte). ୭ । ମାତା—7. Mother (Apte). ୮ । ଭ୍ରାତା—8. Brother (Apte). ୯ । ପ୍ରିୟ ବ୍ୟକ୍ତି—9. One's beloved person. ୧୦ । ପିତୃବ୍ୟ ପୁତ୍ର—10. Father's brother's son. ୧୧ । ସର୍ବଦା ସହାୟକ ବ୍ୟକ୍ତି (ହି. ଶ.)-11. A constant helper. ୧୨ । ସଂସ୍କୃତ ଛନ୍ଦୋବିଶେଷ (ହି. ଶ.)—12. Name of a Sanscrit metre.

ସଂ. ବିଣ—୧ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ) ସଦୃଶ—1. Equal to (when added to another word)
ବନ୍ଧୁଜୀବ-ବନ୍ଧୁ ଦନ୍ତ ବାସ—କବିସୂର୍ଯ୍ୟ, ସଙ୍ଗୀତ ।

୨ । (ପିତୃ, ମାତୃ, ବିପ୍ର, କ୍ଷତ୍ରିୟ ଆଦି ଶବ୍ଦ ପରେ ଯୁକ୍ତ ହେଲେ) ନୀଚତର; ହୀନତର—2. Inferior to.

ଦେ. ବି—ବ୍ରଜବନ୍ଧୁ ଓ ଦାନବନ୍ଧୁ ଆଦି ବ୍ୟକ୍ତିଙ୍କୁ ଡାକିବା ନାମ—2. A name by which persons named Brajabandhu etc are called.

**ବନ୍ଧୁଆ**—ଗ୍ରା. (ପଦ୍ୟ) ବି—(ସଂ. ବନ୍ଧୁ)—୧ । ବନ୍ଧୁ—1 Friend.
Bandhuā ବଁଧୁଆ **बन्धुआ** ୨ । ପ୍ରିୟତମ ବ୍ୟକ୍ତି—
2 One's dearest person.

ମୋରମାର୍ଗଣ ଧାଁଇରେ ବନ୍ଧୁଆ ସରଲଟ ସରଲଟ—କବିସୂର୍ଯ୍ୟ, ସଙ୍ଗୀତ ।

**ବନ୍ଧୁ(ନ୍ଧୂ)କ**—ସଂ. ବି—(ବନ୍ଧ୍ ଧାତୁ+ଉକ; ଊକ)—ବଧୂଲି (ଦେଖ)—
Bandhu(ndhū)ka Badhūli (See)
ବନ୍ଦ୍(ନ୍ଧୁ)କ ବୈଦେ. ବି—(ତୁରକୀ—ବନ୍ଦୁକ୍; ତୁଳନା କର ସଂ.—
**बन्दुक** ବିନ୍ଦୁକ=ବନ୍ଧୁକ ନଳୀର ଅଗ ଉପରେ ଦିଆଯାଇ ଥିବା ବିନ୍ଦୁ ବା ମାଛି)—ନାଳକାଷ୍ଠ; ନଳୀ; ଆଗ୍ନେୟାସ୍ତ୍ର—
Gun; musket.

[ ଦ୍ର—ବନ୍ଧୁକ ଅନେକପ୍ରକାର ଯଥା:—ଟୋପିଦାର (muzzle loader), ତୋଡ଼ାଦାର (match lock), ପିସ୍ତଲ ବା ଗଣ୍ଡିଆ (pistol). ରାଇଫଲ୍ (Rifle), ବ୍ରିଚଲୋଡ଼ (Breech loader), ପକେଟ୍ ବନ୍ଧୁକ (Revolver) ଓ କମାଣ ବା ତୋପ (Cannon) । ପୂର୍ବେ ଭାରତୀୟ ଯୋଦ୍ଧାମାନେ ଏ ଅସ୍ତ୍ରମାନ ବ୍ୟବହାର କରୁଥିବାର ପ୍ରମାଣ ମିଳେ । କୃଷ୍ଣଯଜୁର୍ବେଦରେ ନାଳକାଷ୍ଠର ନାମ କର୍ଣ୍ଣୀ ବା କର୍ଣ୍ଣିକାବତୀ ।

ବନ୍ଧୁକର ଭିନ୍ନ ଭିନ୍ନ ଅଂଶ:—

ନଳ—ଯେଉଁ ନଳ ମଧ୍ୟରେ ବାରୁଦ ଥାଏ ଓ ଯାହାଁର ଅଗ ବାଟେ ଗୁଳି ଅବା ଫାଏର୍ ହୁଏ—Muzzle. କୁନ୍ଦା ବା ପିଣ୍ଡ—ଯେଉଁ କାଠ ମଧ୍ୟରେ ନଳର ମୂଳ ବସା ଯାଇଥାଏ—Stock. ଛଡ଼—ଯେଉଁ କାଠି ଦ୍ୱାରା ନଳ ଭିତରକୁ ବାରୁଦ ଖୁନ୍ଦାଯାଏ—Ramrod. ଛଟ୍‌ରା—ଗୁଳିଠାରୁ ଅତି କ୍ଷୁଦ୍ର ସୀସାର ଗୋଲକ (କ୍ଷୁଦ୍ର ଜୀବ ମାରିବା ନିମନ୍ତେ ବନ୍ଧୁକରେ ବ୍ୟବହୃତ)—Pillets ଗୁଳି ବା ଗୁଳା—ଯେଉଁ ସୀସା ଗୋଲକ ଦ୍ୱାରା ଲକ୍ଷ୍ୟକୁ ଆଘାତ କରାଯାଏ—Balls. କାରତୁଜ୍—ବାରୁଦ ଓ ଗୁଳିପୂର୍ଣ୍ଣ ପୁଡ଼ିଆ—Cartridge. ଟୋପି—ବନ୍ଧୁକନଳର ମୂଳରେ ଥିବା ଛିଦ୍ର ବାଟେ ନଳମଧ୍ୟସ୍ଥ ବାରୁଦରେ ନିଆଁ ଲଗାଇବା ପାଇଁ ଯେଉଁ ଟିକଲି ବ୍ୟବହୃତ ହୁଏ—Concussion caps. ଘୋଡ଼ା—ଯେଉଁ ଚିକିଆକୁ ଟିପିଦେଲେ ବନ୍ଧୁକର ନଳରେ ନିଆଁ ଧରେ—Trigger. ତୋଡ଼ା ବା ଶଳିତା—ଯେଉଁ ନିଆଁ ବଳିତା ଦ୍ୱାରା ନଳର ମୂଳସ୍ଥ ଛିଦ୍ରରେ ଅଗ୍ନି ସଂଯୋଗ କରାଯାଏ—Match. ]

**ବନ୍ଧୁକ ଅବାଜ୍**—ବୈଦେ. ବି (ତୁ. ବନ୍ଦୁକ୍+ଫା. ଆୱାଜ୍)—ବନ୍ଧୁକ
Bandhuka abāj ଫୁଟିବାର ଶବ୍ଦ—The sound or
ବନ୍ଧୁକ ଆଓଯାଜ report of a gun when it is fired;
**बन्दूक आवाज** booming of a gun.
(ବନ୍ଧୁକ ଆଉଆଜ, ବନ୍ଧୁକ ଅବାଜ୍—ଅନ୍ୟରୂପ)

**ବନ୍ଧୁକ ଉଆଲ**—ଦେ. ବି—ଆଗ୍ନେୟାସ୍ତ୍ର ବ୍ୟବହାରକାରୀ ବ୍ୟକ୍ତି—
Bandhuka uālā Gunner; rifle-man.
(ବନ୍ଧୁକ ଵୁଆଲା, ବନ୍ଧୁକଧାରୀ, ବନ୍ଧୁକବାଲା—ଅନ୍ୟରୂପ)
ବନ୍ଧୁକଆଳା **बन्दुकवाला**

**ବନ୍ଧୁକ ନା(ଲା)ଛିବା**—ଦେ. କ୍ରି (ତୁର୍କୀ. ବନ୍ଦୁକ୍+ସଂ. ଲକ୍ଷ)—ବନ୍ଧୁକସ୍ଥ
Bandhuka nā(lā)chhibā ବାରୁଦରେ ଅଗ୍ନି ସଂଯୋଗ
ବନ୍ଧୁକ মাৰা(দাগা) ପୂର୍ବକ ତାହା ପରିଚାଳନ କରିବା—
**बन्दूक दागना(छोडना) (मारना)** To fire a gun; to shoot.
ବନ୍ଧୁକ ଚଲା(ଲେ)ଇବା, ବନ୍ଧୁକ ଫୁଟା(ଟେ)ଇବା,
ବନ୍ଧୁକ ମାରିବା, ବନ୍ଧୁକ ଫାଏର୍ କରିବା, } —ଅନ୍ୟରୂପ
ବନ୍ଧୁକ ଦାଗିବା

**ବନ୍ଧୁକ ଫିଟିଯିବା**—ଦେ. କ୍ରି—ଥୁଆ ହୋଇଥିବା ବନ୍ଧୁକରୁ ହଠାତ୍
Bandhuka phiṭijibā ନିଆଁ ବାହାରିପଡ଼ି ମନକୁ ଫାଏର
ବন্ধুক আৱাজ হওয়া ହୋଇଯିବା—To fire suddenly
**बन्धूक छूटजाना** and automatically (said of
(ବନ୍ଧୁକ ଫୁଟିଯିବା—ଅନ୍ୟରୂପ) a gun being accidentally fired).

**ବନ୍ଧୁକ ଫୁଟା**—ଦେ. ବି (ଫା. ବନ୍ଦୁକ+ସଂ. ସ୍ଫୋଟନ)—୧ । ଅଗ୍ନି-
Bandhuka phuṭā ସଂଯୋଗ ଦ୍ୱାରା ବନ୍ଧୁକର ଶବ୍ଦପୂର୍ବକ ଅଗ୍ନି
ଉଦ୍‌ଗୀରଣ—1. Tha firing of a gun; the discharge of a gun; gunfire
ବନ୍ଧୁକ ଫାଏର୍, ବନ୍ଧୁକ ଫୁଟିବା, ବନ୍ଧୁକ ମରା, ବନ୍ଧୁକ ଦଗା —ଅନ୍ୟରୂପ
୨ । ବନ୍ଧୁକ ଫାଏର୍ ହେବାଦ୍ୱାରା ଉତ୍ପାଦିତ ଶବ୍ଦ—2. The sound of gunfire; booming of a gun.
বন্ধুক ফুটা
**बन्धककूठना**

**ବନ୍ଧୁକବନ୍ଧୁ**—ସଂ. ବି (୬ଷ୍ଠୀ ତତ୍; ବନ୍ଧୁକ ପୁଷ୍ପର ବନ୍ଧୁ)—ସୂର୍ଯ୍ୟ—
Bandhukabandhu The sun

**ବନ୍ଧୁ କରିବା**—ଦେ. କ୍ରି—ବନ୍ଧୁ ବାନ୍ଧିବା (ଦେଖ)
Bandhu karibā Bandhu bāndhibā (See).

**ବନ୍ଧୁକୁଟୁମ୍ବ**—ସଂ. ବି (ପ୍ରଭେଦାର୍ଥକ ସହଚର ଶବ୍ଦ)—ଅସଗୋତ୍ର ଓ
Bandhu kutumba ସଗୋତ୍ର ଆତ୍ମୀୟଗଣ—Relatives and kinsmen; one's kith and kin.

**ବନ୍ଧୁ ଘର**—ଦେ. ବି.—୧ । ବାନ୍ଧବର ଗୃହ—1. The house of
Bandhughara a relative. ୨ । ବନ୍ଧୁର ପରିବାର—
বন্ধুববাড়ী **बंधुघर** 2. The family of a relation.

**ବନ୍ଧୁ ଚରଚା**—ଦେ. ବି—(ସଂ. ବନ୍ଧୁ ଚର୍ଚ୍ଚା)—ସମାଗତ ବନ୍ଧୁଙ୍କର ସତ୍କାର—
Bandhu charchā Entertainment of relatives or guests.
বন্ধুসৎকার **बंधुसत्कार**
(ବନ୍ଧୁଚର୍ଚ୍ଚା, ବନ୍ଧୁ ସତ୍କାର—ସଂସ୍କୃତ ରୂପ)

**ବନ୍ଧୁଜନ**—ସଂ. ବି—୧ । ବନ୍ଧୁ ସମୂହ; ବନ୍ଧୁଗଣ; ବନ୍ଧୁମାନେ—
Bandhujana 1; Relatives; the body of one's relatives. ୨ । କୌଣସି ବନ୍ଧୁ—2. Any friend or relative.

**ବନ୍ଧୁ(ନ୍ଧୂ)ଜୀବ**—ସଂ. ବି.—[ ବନ୍ଧ୍ ଧାତୁ+ଉ (ଊ)+ଜୀବ୍+ଅ]—
Bandhu(ndhū)jiba ବଧୂଲି (ଦେଖ) Badhuli (See)
[ବନ୍ଧୁ (ନ୍ଧୂ) ଜୀବକ—ଅନ୍ୟରୂପ] ବିଣ. ବନ୍ଧୁ ଯାହାର ଜୀବନ ସ୍ୱରୂପ; ବନ୍ଧୁଗତପ୍ରାଣ—Sincerely devoted to one's friend.

ବନବାସୀ ରହିବା ରସିକା ନୋହୁ ଥିବ ଯେ
ବନ୍ଧୁଜୀବ ବୋଲିବାକୁ ବନ୍ଧୁଜୀବ ଥିବ ସେ । ଉକ୍ତ. ବୈଦେହୀଶ ବିଳାସ.

**ବନ୍ଧୁତା(ତ୍ୱ)**—ସଂ. ବି. (ବନ୍ଧୁ+ଭାବାର୍ଥେ ତା, ତ୍ୱ)—୧ । ବନ୍ଧୁଭାବ; Bandhutā (twa) ମିତ୍ରତା—1. Friendship. ୨ । ପ୍ରଣୟ—2. Attachment. ୩ । ଘନିଷ୍ଠତା; ସଂଶ୍ରବ—3. Intimacy. ୪ । ବାନ୍ଧବ ସମ୍ପର୍କ—4 Ralationship. ୫ । (+ସମୂହାର୍ଥେ ତା) ବନ୍ଧୁ ସମୂହ ।—5. Friends

**ବନ୍ଧୁତାସୂତ୍ରେ**—ଦେ. କ୍ରି ବିଣ—ମିତ୍ରତା ଦ୍ୱାରା—By relationship; Bandutā sūtre বন্ধুতাসূত্রে by friendship. बंधुतासूत्रमे [ବନ୍ଧୁତା ସୂତ୍ରରେ—ଅନ୍ୟରୂପ]

**ବନ୍ଧୁଦତ୍ତ**—ସଂ. ବି (ହିନ୍ଦୁସ୍ମୃତି)—ସ୍ତ୍ରୀଧନ ବିଶେଷ; ବିବାହ ସମୟେ Bandhudatta ଅପଣା ପିତାମାତା ଓ ଭାଇଅଜଙ୍କଠାରୁ କନ୍ୟାକୁ ମିଳିଥିବା ଧନ—(Hindu Law) A class of woman's own property consisting of gifts of her relations at the marriage.

**ବନ୍ଧୁଦା**—ସଂ. ବି. (ବନ୍ଧୁ+ଦା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ ଆ)—୧ । ଦୁଷ୍ଚରିଣୀ ସ୍ତ୍ରୀ (ବ୍ର. ଶ)—1. A wicked woman. Bandhudā ୨ । ବେଶ୍ୟା (ବ୍ର. ଶ)—2. Prostitute.

**ବନ୍ଧୁପ**—ସଂ. ବିଣ. ପୁଂ (ବନ୍ଧୁ+ପା ଧାତୁ=ରକ୍ଷା କରିବା+କର୍ତ୍ତୃ ଅ)—Bandhupa ଯେ ଅପଣା ବନ୍ଧୁକୁ ରକ୍ଷାକରେ—One who (ବନ୍ଧୁପା—ସ୍ତ୍ରୀ) saves his friend.

**ବନ୍ଧୁ ପରିମଳ**—ଦେ. ବି—(ସଂ ବନ୍ଧୁ+ପରିମଳ=ସୁବାସ)—ବନ୍ଧୁର Bandhu parimaḷa ପରିଚୟ; ଉତ୍କୃଷ୍ଟ ବନ୍ଧୁର ଲକ୍ଷଣ—বন্ধুর পরিচয় बंधुताजाँच The indications of a good relative or friend.

> ଶାଁ ପରିମଳ, ଧୋବା ଭୂତରୁ ଜାଣେ
> ବନ୍ଧୁ ପରିମଳ, ଦେଖିଲେ ହୁଏ । ଢଗ.

**ବନ୍ଧୁ ବସିବା**—ଦେ. କ୍ରି—ମହାପ୍ରସାଦ ଆଦି ଦେଇ କୌଣସି ବ୍ୟକ୍ତି Badhu basība ସଙ୍ଗେ ଧର୍ମ-ସମ୍ବନ୍ଧ ସ୍ଥାପନ କରିବା—To set বন্ধুপাতান बंधुताजोडना up a god-relationship with a person.

**ବନ୍ଧୁ ବାନ୍ଧବ**—ଦେ. ବି—(ଏକାର୍ଥକ ସହଚର ଶବ୍ଦ)—ବନ୍ଧୁ ଓ କୁଟୁମ୍ବାଦି—Bandhu bāndhaba Kith and kin; relatives and বন্ধুবান্ধব बंधुबान्धव kinsmen.

> ଏମନ୍ତ ବୋଲି ଅଙ୍କ ଦେଲେ
> ବନ୍ଧ ବାନ୍ଧବ ଅଣାଇଲେ । ଜଗନ୍ନାଥ, ଭାଗବତ.

**ବନ୍ଧୁ ବାନ୍ଧିବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ବଂଶ ସଙ୍ଗେ ବିବାହ Bandhubāndhiba ବନ୍ଧନ ଦ୍ୱାରା ବନ୍ଧୁତା ସ୍ଥାପନ କରିବା—কাজকরা To establish relationship with a person सम्बन्ध जोडना or family by marriage.

**ବନ୍ଧୁ ବିଦାକି**—ଦେ. ବି—(ସଂ. ବନ୍ଧୁ+ଅ. ବିଦାଇ)—୧ । କୌଣସି Bandhu bidāki ଉତ୍ସବ ଉପଲକ୍ଷରେ ନିମନ୍ତ୍ରିତ ହୋଇ ଆସିଥିବା বন্ধুবিদায়, সম্মান ବାନ୍ଧବମାନଙ୍କୁ ବିଦାୟଦେବା ସମୟରେ ଉପହାର बंधुविदाई ଦିଆଯିବା ବସ୍ତ୍ରାଦି ଓ ବାଟ ଖରଚଆଦି—1. Presents and passage-money or honorarium given to guests and relatives on their departure after attending ceremonies. ୨ । ଉତ୍ସବାଦି ପାଇଁ ନିମନ୍ତ୍ରିତ ବନ୍ଧୁମାନଙ୍କୁ ବିଦାୟ ଦେବା—2. Bidding adiew to guests after a social function.

**ବନ୍ଧୁ ବେଭାର**—ଦେ. ବି (ସଂ. ବନ୍ଧୁ+ବ୍ୟବହାର)—କୌଣସି ପାରିବାରିକ Bandhu bebhāra ଉତ୍ସବରେ ବନ୍ଧୁମାନଙ୍କ ମଧ୍ୟରେ ଉପଢୌକନର ଆଦାନ ପ୍ରଦାନ—Exchange of gifts between relatives and friends on the occasion of social ceremonies.

**ବନ୍ଧୁ ମର୍ଯ୍ୟାଦା**—ଦେ. ବି—(ସଂ. ବନ୍ଧୁ+ମର୍ଯ୍ୟାଦା)—୧ । ବନ୍ଧୁଙ୍କ ପ୍ରତି Bandhu marjyādā ପ୍ରଯୁକ୍ତ ସମ୍ମାନ—1. Respect due সম্মান to a relative or friend. ୨ । ନିମନ୍ତ୍ରଣ କ୍ରମେ बधुसत्कार ଉତ୍ସବାଦିକୁ ସମାଗତ ବନ୍ଧୁଙ୍କର ସତ୍କାର ବା ସେବା—2. Entertainment of relatives and guests. ୩ । ବନ୍ଧୁ ବିଦାକି (ଦେଖ)—3. Bandu bidāki (See). ୪ । ବନ୍ଧୁ ବେଭାର (ଦେଖ)—4. Bandhu bebhāra (See).

**ବନ୍ଧୁ(ନ୍ଧୂ)ର**—ସଂ. ବିଣ—(ବନ୍ଧ୍ ଧାତୁ+କର୍ତ୍ତୃ. ଉର; ଊର)—Bandhu(ndhū)ra ୧ । ଉନ୍ନତାବନତ; ଉଚ୍ଚାବଚ; ଅମୁଡ଼ା [ବନ୍ଧୁ(ନ୍ଧୂ)ରା—ସ୍ତ୍ରୀ] ଖାବୁଡ଼ା; ଖାଲ ଢିପ; ଅସମତଳ—1. Un- (ବନ୍ଧୁରତା[ତ୍ୱ]—ବି) even; undulting; wavy; rough. ୨ । ବଧିର—2. Deaf. ୩ । ରମ୍ୟ; ସୁନ୍ଦର—3. Beautiful. ୪ । କ୍ଷତିଜନକ—4. Harmful. ୫ । ନମ୍ର; ବିନୀତ—5. Humble.

ସଂ. ବି—୧ । ବିହଙ୍ଗ; ପକ୍ଷୀ—1. Bird. ୨ । ବକ; ବଗ—2. Paddy-bird. ୩ । ହଂସ—3. Duck; gander. ୪ । ମୁକୁଟ—4. Crown; diadem. ୫ । କକଡ଼ାଶୃଙ୍ଗୀ (ବ୍ର. ଶ.) (ଦେଖ)—5. Kakarḍāsrungī (See) ୬ । ବନ୍ଧୁଲି ଫୁଲ (ବ୍ର. ଶ.) (ଦେଖ)—6 Badhuli (See). ୭ । ଗର୍ତ୍ତ; ଗାତ—7. Den; hole. ୮ । ରଥରେ ବା ଗାଡ଼ିରେ ସାରଥି ବସିବାର ସ୍ଥାନ (ବ୍ର. ଶ.)—8 The driver's seat in a car or carriage.

**ବନ୍ଧୁ(ନ୍ଧୂ)ରା**—ସଂ ବି. ସ୍ତ୍ରୀ—(ବନ୍ଧୁର+ସ୍ତ୍ରୀ. ଆ)—୧ । କୁଳଟା; ପୁଂଶ୍ଚଳୀ Bandhu(ndhū)rā 1. Adulteress; unchaste woman.

ସଂ. ବିଣ—'ବନ୍ଧୁର'ର ସ୍ତ୍ରୀଲିଙ୍ଗ—Feminine of Bandhura.

**ବନ୍ଧୁଳ**—ସଂ ବି· ପୁଂ—୧ । ବେଧପିଲ୍ଲା; ଦୁଶ୍ଚରିଣୀ ସ୍ତ୍ରୀଠାରୁ ଉତ୍ପନ୍ନ Bandhuḷa ସନ୍ତାନ (ବ୍ର. ଶ)—1. Bastard. ୨ । ବେଶ୍ୟା- (ବନ୍ଧୁଳା—ସ୍ତ୍ରୀ) ପୁତ୍ର—2. Whoreson.

ସଂ. ବିଣ—୧ । ସୁନ୍ଦର (ବ୍ର. ଶ)—1. Beautiful. ୨ । ନମ୍ର (ବ୍ର. ଶ)—2. Humble.

**ବନ୍ଧୁଲୀ**—ସଂ ବି—ବନ୍ଧୁଳ (ଦେଖ) Bandhuḷī Bandhūli (See)

> ବେଳାରେ ପଡ଼ିଲେ ବାଲ୍ୟ ରୂପେ ଅବା ବନ୍ଧୁଲୀପୁଷ୍ପ-ଶେଖର ।
> ରାଧାନାଥ—ପାର୍ବତୀ ।

**ବନ୍ଧୁ ସମ୍ପର୍କ**—ସଂ. ବି—(୬ଷ୍ଠୀ ତତ୍; ବନ୍ଧୁ+ସମ୍ପର୍କ)— ବିବାହଜନିତ
Bandhu samparka ବନ୍ଧୁତା ବା ସମ୍ବନ୍ଧ—Tie established
(ବନ୍ଧୁ ସମ୍ବନ୍ଧ—ଅନ୍ୟରୂପ) by marriage.

**ବନ୍ଧୁଳ**—ସଂ. ବିଣ.—୧ । ବନ୍ଧୁର—1. Uneven, ୨ । କୋମଳ—
Bandhūla 2. Soft. ୩ । ଅସତୀ ପୁତ୍ର—3. Whore-son; the son of a harlot.
ସଂ. ବି.—ବଧୂଲି (ଦେଖ)—Badhūli (See)

**ବନ୍ଧୂଲି**—ସଂ. ବି. (ବନ୍ଧ୍ ଧାତୁ+ଉଲି)—ବଧୂଲି (ଦେଖ)
Bandhūli Badhūli (See)

**ବନ୍ଧୋ**—ସଂ. ବି. (ବନ୍ଧୁ ଶବ୍ଦର ସମ୍ବୋଧନ ରୂପ)—(ବନ୍ଧୁ ପ୍ରତି ସମ୍ବୋଧନ)
Bandho ହେ ବନ୍ଧୁ !—Oh friend !

**ବନ୍ଧ୍ୟ**—ସଂ. ବିଣ. ପୁଂ. (ବନ୍ଧ୍ ଧାତୁ+କର୍ମ. ଯ)—୧ । ବନ୍ଧନ ଯୋଗ୍ୟ;
Bandhya ବନ୍ଧନାର୍ହ—1. Fit to be tied; deserving
(ବନ୍ଧ୍ୟା – ସ୍ତ୍ରୀ) confinement.
[ବନ୍ଧ୍ୟତା(ତ୍ୱ)—ବି] ୨ । ବାଞ୍ଝ; ଫଳହୀନ; ନିଷ୍ଫଳ (ବୃକ୍ଷ)—
2. Fruitless; sterile; barren. (tree)
୩ । ନିଃସନ୍ତାନ (ବ୍ୟକ୍ତି)—3. Childless.
ସଂ. ବି.—୧ । ବନ୍ଧ—1. Dam. ୨ । ପୋଲ—
2. Bridge; culvert.

**ବନ୍ଧ୍ୟା**—ସଂ. ବିଣ. ସ୍ତ୍ରୀ.—(ବନ୍ଧ୍ୟ+ସ୍ତ୍ରୀ. ଆ)—୧ । ସନ୍ତାନୋତ୍ପାଦ-
Bandhyā ଶକ୍ତିହୀନା; ବାଞ୍ଝି—1. Sterile (woman).
ସଂ. ବି.—୧ । ରଜସ୍ୱଳା କୁମାରୀ; ଅନୂଢ଼ାବସ୍ଥାରେ ରଜସ୍ୱଳା
ହୋଇଥିବା କନ୍ୟା—1. A girl who has attain ed puberty before marriage. ୨ । ସୁଗନ୍ଧ
ଔଷଧ ଦ୍ରବ୍ୟବିଶେଷ—2. Name of a medicinal
scent. ୩ । ଯୋନିରୋଗବିଶେଷ—3. A sort of vaginal disease.

**ବନ୍ଧ୍ୟା କର୍କୋଟକୀ**—ସଂ. ବି.—୧ । ତିକ୍ତ କର୍କୋଟକୀ; ପିତା କୁଆଁମଇତା-
Bandhyā karkoṭakī 1. A kind of bitter cucurbitatious fruit; Memordica Diocicamale.
তীত কাকরোল, তিত কাঙ্কড়ী
**বাঁঝখখসা बाँझ ककोडा**
ସଂ. ପର୍ଯ୍ୟାୟ—
ଦେବୀ, କନ୍ୟା, ଯୋଗେଶ୍ୱରୀ,
ନାଗାରି, ନାଗ ଦମନୀ, ବିଷ କଣ୍ଟକିନୀ
ମ. ବନ୍ଧ୍ୟା କର୍କୋଲି
ଗୁ. ବାଁଝ କଣ୍ଟୋଲା
ତେ. ଗୋଡ୍ଡୁଆଗାକର
[ ଗୁ—ଏହାର ଲତା, କଟୁତିକ୍ତ ରସ; ଏହା ବ୍ରଣ, କଫ, ବିସର୍ପ ନାଶକ ।]
୨ । ହାଡିଆ କାଙ୍କଡ଼; ଏକ ପ୍ରକାର ବଡ଼ କାଙ୍କଡ଼—
2. A cucurbitatious fruit with soft thorns over the rind.
୩ । ଅଷାଢ଼ୁଆ (ଦେଖ)—3. Ashārdhuā (See)

**ବନ୍ଧ୍ୟାସୁତ**—ସଂ. ବି—ବନ୍ଧ୍ୟା ସ୍ତ୍ରୀର ପୁତ୍ର ପରି ଅସମ୍ଭବ ବା ଅଲୀକ ବସ୍ତୁ—
(ବନ୍ଧ୍ୟା ତନୟ – ଅନ୍ୟରୂପ) A physically impossible thing (like the son of a barren woman).

**ବନ୍ଧ୍ର**—ସଂ. ବି. (ବନ୍ଧ୍ ଧାତୁ+ର)—ପେଟ; ଉଦର; କୁକ୍ଷି—
Bandhra Belly.

**ବନ୍ନ**—ଗ୍ରା. ବି. (ସଂ. ବର୍ଣ୍ଣ)—ବର୍ଣ୍ଣ—
Banna Colour.
ଦେ. ବିଣ.—ବର୍ଣ୍ଣଯୁକ୍ତ; ରଞ୍ଜିତ; ରଙ୍ଗୀନ୍—Coloured.
(ଯଥା—ବନମାଛ, ବନଦଳସୀ ।)

**ବନ୍ନେଇବା**—ପ୍ରାଦେ. (ସମ୍ବଲପୁର)—କ୍ରି.—( ଭୂଳ. ହି. ବୁହାରୁନା; ବହୁନାନା)—ଓଳାଇବା; ଝାଡ଼ୁଦ୍ୱାରା ପରିଷ୍କାର
Banneibā କରିବା—To sweep with a broom.

**ବନ୍ୟ**—ସଂ. ବିଣ.—(ବନ+ସମ୍ବନ୍ଧାର୍ଥେ ଓ ଜାତାର୍ଥେ ଯ)—୧ । ବଣୁଆ;
Banya ବନ ସମ୍ବନ୍ଧୀୟ—1. Relating to forest; wild;
(ବନ୍ୟା— ସ୍ତ୍ରୀ) sylvan. ୨ । ବନବାସୀ—2. Living in the forest. ୩ । ବନଜାତ—3. Produced in the forest; growing wild.
ସଂ. ବିଣ.—୧ । ବଣ ଓଲୁଅ—1. Wild arum.
୨ । ଭୂଇଁ କଖାରୁ (ହି. ଶବ୍ଦସାଗର) (ଦେଖ) 2. Bhūiṅ kakhāru (see) ୩ । ଶଙ୍ଖ (ହି. ଶ.)—3. Conch.

**ବନ୍ୟ ଜନ୍ତୁ**—ସଂ. ବି. ( କର୍ମଧା )—ବଣୁଆ ଜନ୍ତୁ—
Banya jantu (ବନ୍ୟଜୀବ—ଅନ୍ୟରୂପ) Wild animal.

**ବନ୍ୟ ବରାହ**—ସଂ. ବି. (କର୍ମଧା)—ବଣ ବାର୍ହା—
Banya barāha Wild boar.

**ବନ୍ୟା**—ସଂ. ବି. ( ବନ=ଜଳ+ସମୂହାର୍ଥେ ଯ+ଆ; ବନ=
Banyā ଅରଣ୍ୟ+ଜାତାର୍ଥେ. ଯ+ଆ )—୧ । ଅରଣ୍ୟାନୀ;
ବନସମୂହ—1. Range of forests.

ବନ୍ୟାଗିଶିରର ତହିଁ ବସ୍ତରଳିଆ ଗ୍ରାସ୍ ହୋଇ
ଭୃଷ୍ଟିବାର ପ୍ରବର୍ତ୍ତାଇ ଅଛ ଯେ – ଉତ୍କ. ବୈଦେହୀଶବିଳାସ ।

୨ । ବଢ଼ି; ଜଳପ୍ଲାବନ—2. Flood; inundation.
୩ । ମୁଦ୍ଗପର୍ଣ୍ଣୀ—3. Pheseolus Trilobus. ୪ ।
ଗୋପାଳ କର୍କଟୀ—4. A kind of wild fruit.
୫ । ଗୁଞ୍ଜା; କାଇଞ୍ଚ—5. Abrus Precatorius.
୬ । ମିଶ୍ରେୟା; ସଉଫ—6. Aniseed; Pimpinella Anisum. ୭ । ଭଦ୍ରମୁସ୍ତା—7. A sort of bulbous grass root. ୮ । ଗନ୍ଧପତ୍ରା—8. A species of zedoary. ୯ । ଅଶ୍ୱଗନ୍ଧା (ଦେଖ) (ହି. ଶ.)—
9. Aśwagandhā (See).

**ବପ୍ ( ଧାତୁ )**—ସଂ—୧ । ବୀଜ ବୁଣିବା—1. To sow seeds.
Bap (root) ୨ । ମୁଣ୍ଡନ କରିବା; କ୍ଷୌର କରିବା—2. To
shave. ୩ । ଲୁଗା ବୁଣିବା—3. To weave.
୪ । ନିଷେକ କରିବା; ସ୍ତ୍ରୀ ଗର୍ଭରେ ବୀର୍ଯ୍ୟାଧାନ କରିବା—
4. To put semen into a woman's womb.
୫ । ଘାସ ଛେଲିବା—5. To mow grass.

**ବପ**—ସଂ. ବି. ( ବପ୍ ଧାତୁ+ଭାବ. ଅ )—ବପନ ( ଦେଖ )
Bapa Bapana ( See )

**ବପନ**—ସଂ. ବି (ବପ୍ ଧାତୁ. ବୁଣିବା; ମୁଣ୍ଡନ କରିବା + ଭାବ. ଅନ)—
Bapana ୧ । ବୀଜ ବପନ; ମଞ୍ଜି ବୁଣିବା—1. Sowing of seeds. ୨ । ଗର୍ଭାଧାନ; ଜନନେନ୍ଦ୍ରିୟ କ୍ରିୟା—2. The act or ceremony of putting semen into a woman's womb. ୩ । ମୁଣ୍ଡନ; କ୍ଷୌର କର୍ମ—3. Shaving.

ଯାହା ସମ୍ପୂର୍ଣ୍ଣ ଯାଏ ଥିବ, କେବେହେଁ ବପନ ନ କର—
ଜଗନ୍ନାଥ. ଭାଗବତ ।

୪ । ବୟନ; ଲୁଗା ବୁଣିବା—4. Weaving. ୫ । ଘାସ କାଟିବା—5. Mowing.

**ବପନୀ**—ସଂ. ବି. ( ବପ୍ ଧାତୁ + କରଣ. ଅନ + ସ୍ତ୍ରୀ. ଈ. )—୧ । ଲୁଗା
Bapanī ବୁଣିବା ଯନ୍ତ୍ରବିଶେଷ; ତୁରୀ ( ବଙ୍ଗଳା-ମାକୁ )—1. Shuttle. ୨ । ଭଣ୍ଡାରୀର ଅସ୍ତ୍ରବିଶେଷ; ଖୁର—2. A razor. ୩ । (+ଅଧି. ଅନ) ତନ୍ତଘର—3. Loom-room. ୪ । ଭଣ୍ଡାରୀ ଯେଉଁଠାରେ ବସି ଲୋକଙ୍କୁ କ୍ଷୌର କରେ ( ଗ୍ରା. ଶ. )—4 A place where a barber shaves people.

**ବପା**—ସଂ. ବି. (ବପ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ)—୧ । ରନ୍ଧ୍ର; ଛିଦ୍ର—
Bapā 1. Hole. ୨ । ମେଦ; ମାଂସ—2. Flesh. ୩ । ଚର୍ବି—3. Fat.

(ବପ୍ପା—ଅନ୍ୟରୂପ) ଗ୍ରା. ବି ( ପ୍ରାଚୀନ ପଦ୍ୟ ) ( ସଂ. ବପ୍ତା )—
ବାବା **बप्पा** (ଆପଣାଠାରୁ ବୟସରେ ସାନ ଲୋକ ପ୍ରତି ବାତ୍ସଲ୍ୟ ସମ୍ବୋଧନ) ବତ୍ସ ! ବାବୁ !—(a term of endearment used to persons who are one's youngers). Oh son !

ବୃଦ୍ଧା ତ ଅସି ନୁହଁ ହୋଇଲନ ବପା
ତୁମ୍ଭର ବଚନକୁ ନାହିଁ ମୋର କପା – କୃଷ୍ଣସିଂହ. ମହାଭାରତ. ଦ୍ରୋଣ

**ବପୁ**—ଦେ ବି. ( ସଂ. ବପୁଃ = ବପୁସ୍ ଶବ୍ଦର ୧ମା. ୧ବ )—୧ । କାୟ;
Bapu वपू **वपु** ଶରୀର; ଦେହ—1. Body. ୨ । ବହପ; ଶାରୀରିକ ବଳ—2. Might; strength.

ଏହାକୁ ମାରିବ ଦେଖାଇ ମହାବପୁ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

୩ । ଶକ୍ତି; କ୍ଷମତା—3. Power.

ହୋଇଛି ଜଡେଜୀବନ ନଥିଲୁ
ଦେଖିଲେ ଜନଙ୍କର ଭଙ୍ଗ ଅଛି ବପୁ – କୃଷ୍ଣସିଂହ, ମହାଭାରତ. ଉଦ୍ୟୋଗ ।

**ବପୁଃ**—ସଂ. ବି (ବପ୍ ଧାତୁ + କର୍ତ୍ତୃ. ଉସ୍; ୧ମା. ୧ବ)—ଶରୀର; ଦେହ—
Bapuḥ Body.

**ବପୁ ବ(ମ)ନ୍ତ**—ଦେ. ବିଣ ( ସଂ. ବପୁଷ୍ମତ୍ ଶବ୍ଦ )—୧ । ଶରୀରୀ;
Bapu ba(ma)nta ମୂର୍ତ୍ତିମନ୍ତ—1. Represented by
वपूवन्त **मुर्त्तिमंत; वपुवंत** image; assuming a body or physical form; corporeal.

ବନାଇବାରେ ପୁଣି ଯେ ପ୍ରତିମାଏ
ବପୁବନ୍ତ ହେଲ ସ୍ୱର୍ଣ୍ଣାକ୍ଷର ପ୍ରାୟେ—ଉପେନ୍ଦ୍ର. ବୈଦେହୀଶବିଳାସ ।

୨ । ଲାବଣ୍ୟଯୁକ୍ତ, ଶୋଭାମୟ—2. Graceful.

ବପୁବନ୍ତରୁ ହୋଇଛ ରଞ୍ଜନ
ବାଙ୍କ ସୁନେତ୍ର ରେଖିତ ଖଞ୍ଜନ —ଉପେନ୍ଦ୍ର. ବୈଦେହୀଶବିଳାସ ।

**ବପୁବାଲା**—ଦେ. ବିଣ. ପୁଂ.(ସଂ. ବପୁସ୍ + ଫା. ବାଲା) —୧ । ବଳୁଆ—
Bapubālā 1. Strong. ୨ । ବିଶାଳକାୟ—2. Big-
(ବପୁବାଲୀ—ସ୍ତ୍ରୀ) bodied. ୩ । ସୁନ୍ଦର—3. Graceful.

**ବପୁଷ୍ଟମା**—ସଂ. ବି. ସ୍ତ୍ରୀ. ( ବପୁସ୍ + ପ୍ରଶସ୍ତାର୍ଥେ ତମ + ସ୍ତ୍ରୀ. ଆ )—
Bapushṭamā ୧ । ସର୍ବାଙ୍ଗଶୋଭନା ସ୍ତ୍ରୀ—1. A woman with a very graceful body and limbs. ୨ । ପରୀକ୍ଷିତଙ୍କ ପୁତ୍ର ଜନମେଜୟ ରାଜାଙ୍କ ଭାର୍ଯ୍ୟା—2. Name of the wife of king Janamejaya, the son of Parīkshita. ୩ । ପଦ୍ମଚାରିଣୀ ଲତା; ସ୍ଥଳପଦ୍ମ ଗଛ—3. Hibiscus Mutabilis.

**ବପୁଷ୍ମନ୍ତ**—ଦେ. ବିଣ. (ସଂ. ବପୁଷ୍ମତ୍ ଶବ୍ଦ)—୧ । ବପୁଷ୍ମାନ୍ (ଦେଖ)—
Bapushmanta 1. Bapushmān ( See ) ୨ । ସଶରୀର; ସଦେହ—2 In body; bodily; corporeal.

ବପୁଷ୍ମନ୍ତେ ମନ୍ତ୍ର ହୋଇବେ କଣ୍ଠରେ ।
ଭବବେ ଜନମି ପ୍ରେମ ହେ । ଉପେନ୍ଦ୍ର ବୈଦେହୀଶବିଳାସ ।

**ବପୁଷ୍ମାନ୍**—ସଂ. ବିଣ. ପୁଂ. (ବପୁସ୍ + ଅସ୍ତି ଅର୍ଥେ ମତ୍; ବପୁଷ୍ମତ୍ ଶବ୍ଦ ୧ମା.
Bapushmān ୧ବ.)—୧ । ସୁନ୍ଦର ଓ ସ୍ଥୂଳକାୟ - 1. Having a big and graceful body. ୨ । ସ୍ଥୂଳକାୟ—2. Corpulent.

ସଂ. ବି—ଶାଲ୍ମଳୀ ଦ୍ୱୀପର ରାଜା—Name of an ancient king of the mythological Śālmalī island.

**ବପ୍ତା**—ସଂ. ବିଣ. ପୁଂ. (ବପ୍ ଧାତୁ + କର୍ତ୍ତୃ. ତୃ; ବପ୍ତୃ ଶବ୍ଦ ୧ମା. ୧ବ.)-
Baptā ବୀଜବପନକାରୀ; ଯେ ବୀଜ ବୁଣେ—Sowing seeds.
(ବପ୍ତ୍ରୀ—ସ୍ତ୍ରୀ) ସଂ. ବି—୧ । ବାପ; ପିତା—1. Father. ୨ । କବି—2. Poet. ୩ । କୃଷକ; ଚଷା—3. Husbandman ୪ । ଭଣ୍ଡାରୀ; ନାପିତ (ଗ୍ରା. ଶ.)—4. Barber.

**ବପ୍ର**—ସଂ. ବି. (ବପ୍ ଧାତୁ + ଅଧିକରଣେ ର)—୧ । କିଆରି; କ୍ଷେତ;
Bapra ଜମି—1 Field.

ବୋଇଲା ମୋ ଦନ୍ତ ଲାଙ୍ଗଳ ଈଶ
ବପ୍ର ତୁମ୍ଭେ ହେବ କରିବ ଚାଷ । ଉପେନ୍ଦ୍ର. ବୈଦେହୀଶବିଳାସ ।

୨ । ତୀର; ତଟ—2. Bank. ୩ । ପର୍ବତର ସାନୁ—3. Tableland. ୪ । କାନ୍ଥ—4. Wall. ୫ । (+ କର୍ମ. ର) ପ୍ରାଚୀର—5. Compound wall.

ବପ୍ର ଡାରଦର ସାର ନବୀନ
ବଷ ସମ୍ଭ୍ରମରେ ବହଗ ସ୍ଥାନ । ଉପେନ୍ଦ୍ର. ବୈଦେହୀଶବିଳାସ ।

୬ । ଦୁର୍ଗ ବା ନଗରର ଚାରିପାଖରେ ଖାଇ ଖୋଳିବାଦ୍ୱାରା ଯେଉଁ ମୃତ୍ତିକାସ୍ତୂପ ଜମା କରାଯାଏ—6. Mound of earth raised after digging a ditch round a city or fort. ୭ । କ୍ଷେତର ହିଡ଼—7. Ridge of a field. ୮ । (+କର୍ତ୍ତୃ. ର) ବାପ; ଜନକ; ପିତା—8, Father. ୯ । ପ୍ରଜାପତି—9. Brahmā. ୧୦ । ସୀସକ—10. Lead. ୧୧ । ଧୂଳି (ଗ୍ରା. ଶ)—11. Dust. ୧୨ । ମାଟିର ଢିପ (ଗ୍ରା. ଶ.)—12. A high mound of earth. ୧୩ । ନଦୀଆଦିର ଅଗଡ଼ା (ଗ୍ରା.ଶ)—

13. Precipitous bank of a river. ୧୪ । ପର୍ବତର ଶୃଙ୍ଗ (ହ୍ରି. ଶ.)—14. The summit of a mountain.

ବପ୍ର କ୍ରୀଡ଼ା—ସଂ. ବି. (୭ମୀ ତତ୍; ବପ୍ର=କ୍ଷେତ୍ର+କ୍ରୀଡ଼ା)—ହୃଷ୍ଟ Bapra krirdā ପଶୁମାନେ (ଯଥା—ହାତୀ, ଷଣ୍ଢ) ଦନ୍ତ, ଶୃଙ୍ଗ ବା (ବପ୍ରକ୍ରିୟା—ଅନ୍ୟରୂପ) ଖୁରଦ୍ୱାରା ଉଚ୍ଚଭୂମିକୁ ବା ପାହାଡ଼ର ଗାତ୍ରକୁ ବିଦାରଣ କରି ଯେଉଁ କ୍ରୀଡ଼ା କରନ୍ତି; ଖୁସି ଖାଇବା; ଉତ୍‌ଖାତ କେଳି—Frolics of mad or frolicsome beasts in striking mounds of earth or the sides of mountains with tusks (in the case of elephants) and hoofs and horns (in the case of bulls).

ବପ୍ରକ—ସଂ. ବି—ବୃତ୍ତର ପରିଧି (ହ୍ରି. ଶ.)—
Bapraka Circumference of a circle.

ବପ୍ରା—ସଂ. ବି. ସ୍ତ୍ରୀ. (ବପ୍ର+ଆ)—ମଞ୍ଜିଷ୍ଠା—
Baprā Indian madder.

ବପ୍ରି—ସଂ. ବି. (ବପ୍ର+ଇ)—୧ । ସମୁଦ୍ର (ହ୍ରି. ଶ.)—1 The sea.
Bapri ୨ । କ୍ଷେତ୍ର (ହ୍ରି. ଶ)—2. A field for raising crops.

ବପ୍ରୀ—ସଂ. ବି—(ବପ୍ର+ଈ)—ବଲ୍ମୀକ; ଉଇହୁଙ୍କା (ହ୍ରି. ଶ)
Bapri Anthill.

ବଫାତ୍—ବୈଦେ. ବି—(ଆ)—ମୃତ୍ୟୁ—
Baphāt ବଫାତ୍ **वफात** Death.

ବବ—ସଂ. ବି—ଫଳିତ ଜ୍ୟୋତିଷଶାସ୍ତ୍ରୋକ୍ତ ଏକାଦଶ କରଣ ମଧ୍ୟରୁ
Baba ଏକତମ—One of the eleven astrological conjunctions.

[ଦ୍ର—ଏଥିରେ ଜାତ ବ୍ୟକ୍ତି ବଳବାନ୍, ଧୀର, କୃତୀ ଓ ସୁଲକ୍ଷଣ ହୁଏ । ]

ବବ(ବୁ)ର୍ଚ୍ଚି(ର୍ଚି)—ବୈଦେ. ବି—(ଫା)—(ତୁର୍କୀ. ବାବର୍ଚୀ)—ପାଚକ;
Baba(bu)rchchi(rchi) ସାହେବ ଓ ମୁସଲମାନ୍‌ମାନଙ୍କ ପାଚକ-
ବାବୁର୍ଚ୍ଚି **वावर्ची** Cook (of Europeans and Mahommedans).
ବବରଚି } ଅନ୍ୟରୂପ
ବବୁରୁଚି }

ଆସାମ ଗୁ ବଟିରେ ମେନେକର ସାହେବ ଗୋଟିଏ ଭୁଲ ଚୋକାକୁ ବାବୁଚି କାମରେ ବାହାଲ କରିଥିଲେ । ଫକୀରମୋହନ, ଗଳ୍ପସ୍ୱଳ୍ପ ।

ବବ(ବୁ)ର୍ଚ୍ଚି ଖାନା—ବୈଦେ. ବି—(ତୁର୍କୀ. ବାବର୍ଚୀ+ଫା. ଖାନାହ୍)-
Baba(bu)rchchi khānā (ସାହେବ ଓ ମୁସଲମାନ୍‌ମାନଙ୍କ)
ବାବୁର୍ଚ୍ଚିଖାନା **वावर्चीखाना** ରନ୍ଧନଶାଳା—Cook room; kitchen.

ସାହେବ ଥରେ ବବୁର୍ଚ୍ଚିଖାନା ତଦାରଖ କରିବାକୁ ଗଲେ—ଫକୀରମୋହନ—ଗଳ୍ପସ୍ୱଳ୍ପ ।

ବବଲତି—ଦେ. ବି—ବଗୁଲିଆତି; ବଗୁଲିଆଗିରି; ଦୁଷ୍ଟାମି—
Babalati **नटखट** Wickedness.
[ବବା(ବ୍ବ,ବୁ,ବ୍ବୁ)ଲିଆତି; ବବ(ବ୍ବ, ବୁ,ବ୍ବୁ)ଲିସ୍ପାମି(ଗି)—ଅନ୍ୟରୂପ]

ବବ(କ,କ୍ବ,ବୁ)ଲା(ଲେ)ଇବା—ଦେ. କ୍ରି—(ଭୁଲ· ଇଂ. ବାବ୍‌ଲ୍=ବୃଥା
Baba(bba,bbu,bu)lā(le)ibā ଗପିବା)—ମିଥ୍ୟା କଥା କହି ଭୁଲାଇବାକୁ ଚେଷ୍ଟା କରିବା—To try to deceive
ଭୋଳାନ **भूलाना** by false words

ବବ(କ,ବୁ,କ୍ବୁ)ଲିଆ—ଦେ. ବି—ବଗୁଲିଆ (ଦେଖ)—Baguliā
Baba(bba,bu,bbu)liā **नटखटिया** ହୁଣ୍ଡି (See).

ବବା—ପ୍ରାଦେ. (ବାମଣ୍ଡା; ସମ୍ବଲପୁର)—ବି—ବାପର ବଡ଼ଭାଇ; ବଡ଼ବାପା;
Babā ବଡ଼ ବାପା—Father's elder brother.

ବବୁଆ—ଦେ. ଅ—(ହିନ୍ଦୀରୁ ଅନୁକୃତ)—ପୁତ୍ର, ଜାମାତାଆଦିଙ୍କୁ ସ୍ନେହ
Babuā ସମ୍ବୋଧନ—A term of endearment addressed
ବାବା **बबुआ** to one's youngers.

ବବୁର(ଲ,ରି)—ଦେ. ବି—(ସଂ. ବବ୍ବୂର; ବବ୍ବୂଲ)—କଣ୍ଟାଳୁଗୁମ ଗଛ;
Babura(la,ri) କଣ୍ଟାଳ କ୍ଷୁଦ୍ର ବୃକ୍ଷବିଶେଷ—Acacia Gummi; Acacia Arabica (Haines)

ବବୁର ବୃକ୍ଷମ ବାସ ଜନପଦେ ପ୍ରସରଇ ଅହର୍ନିଶି—ସ୍ୱାଧୀନାଥ ଉର୍ବଶୀ ।

| | |
|---|---|
| ସ—ତୀକ୍ଷ୍ଣକଣ୍ଟକ, ପଂକ୍ତିଶାଳ, ଷଟ୍‌ପଦମୋଦିନୀ, ଅଜଭକ୍ଷ, ବବ୍ବୂର, ବବ୍ବୂଲ, କଙ୍କିରାଳ, କଙ୍କିରାତ, ସର୍ପାତକ, ଆଭା । | [ ଦ୍ର—ଏହା ଖଦିରଜାତୀୟ ବୃକ୍ଷ, ଏଥିରେ କଣ୍ଟା ଅଛି । ଫଳ ଶ୍ୱେତ, ଗୋଲାକାର,ଦଳଦଳ ଓ ସୁଗନ୍ଧଯୁକ୍ତ । ଏ ଗଛ ବାଲିଆ ଭୂମିରେ ହୁଏ ଓ ବହୁ- |
| ବାବଲା | କାଳ ବଞ୍ଚେ । ଏହାର ଗଣ୍ଡିକୁ କ୍ଷତ |
| **बाबुल, बबुल, कीकर** | କଲେ ଏଥିରୁ ଯେଉଁ ଅଠା ବାହାରେ |
| ତେ. ବଲ ବଲୁଡୁ, ନଲ୍ଲତୁମ୍ମ | ତାହା ଅନେକ କାର୍ଯ୍ୟରେ ଲାଗେ । |
| ମ. ବାଭୁଲ, କାକର | ଏହାର ଛୁଇଁ ଓ ମଞ୍ଜି ତେପନ୍ଥ । |
| ଗୁ ବାବଲ | ଏହାର କାଠରେ ଲଙ୍ଗଳ ଓ |
| ଫା. ମୁଗିଲାଂଗୋନ | ଗାଡ଼ିର ଚକ ହୁଏ । କେତେକ |
| ଆ. ମୁଗିଲାଂସିମଗ | ସ୍ଥାନରେ ଏ ଗଛରେ ଲାଖପୋକ |
| ବାବଲା } ଅନ୍ୟରୂପ ବବୂର } | ପାଳ ଲୋକେ ଏ ଗଛରୁ ଲାଖ ଉତ୍ପାଦନ କରନ୍ତି । ଏହାର ଛାଲରେ |

ଓ ଛୁଇଁରେ ଚମଡ଼ା କଷାଇବା ପାଣି ପ୍ରସ୍ତୁତ ହୁଏ । ଏ ଗଛର ଡାଳ ଦାନ୍ତକାଠିରୂପେ ଦାନ୍ତର ହିତକର । ଏହାର ଶୁଖିଲା ଫଳରୁ ସ୍ଥାୟୀ-ସ୍ୟାହି ତିଆର ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଳସଂଗ୍ରାହକ, ପିତ୍ତ ଓ ବାୟୁନାଶକ, ଶୀତବୀର୍ଯ୍ୟ, ଭଗ୍ନସନ୍ଧାୟକ ଓ ରକ୍ତାତିସାର, ରକ୍ତପିତ୍ତ, ମେହ, ପ୍ରଦର, ରକ୍ତସ୍ରାବ, କଫ, କୁଷ୍ଠ, କୃମି ଓ ବିଷ-ନାଶକ—ଦ୍ରବ୍ୟଗୁଣ । ଏହି ଶ୍ରେଣୀର ଆଉ ଏକଜାତୀୟ ଗଛକୁ ଗନ୍ଧଗୁହାଭିଧା (ବଂ. ଗୁଇଆ ବାବଲା, ସଂ. ବିଟ ଖଦିର; ଇଂ Acacia Farnesira; Acacia Leucopploea) କହନ୍ତି ।]

ବବୁର(ରି) ଅଠା—ଦେ. ବି—ବବୁର ଗଛରୁ ବାହାରିବା ନିର୍ଯ୍ୟାସ—
Babura(ri)athā Gum arabica; gum acacia
ବାବଲାଆଠା **बबुलकागोंद** [Haines].

ବବୁର(ରି) ବାଳ—ଦେ. ବି. (ସଂ. ବର୍ବର କେଶ; ଭୁଲ ଇଂ. ବବ୍‌ଡ୍; ସଂ.
Babura (ri) bāla ବାବରୀ=ଆଲୁଳାୟିତ କେଶ=ଯୋଗେଶ-
ବାବରୀ; ବାଅରୀ ଚନ୍ଦ୍ର)—ବାଗୁଲିବାଳ; ମୁଣ୍ଡର ବାଳକୁ
**घुंघराले बाल;** ବେକ ପର୍ଯ୍ୟନ୍ତ ଲମ୍ବ କରି କାଟି ତହିଁର ଅଗ୍ରଭାଗକୁ
**बलखायाहुआ बाल** ବେକ ପାଖରେ ମୋଡ଼ି ତରଙ୍ଗାୟିତ କରିବା
ବାବର } ରୂପ କେଶବିନ୍ୟାସବିଶେଷ—A sort of
ବାବୁର } ଅନ୍ୟରୂପ curling the hair by growing it up
ବାବୁଲ } to the neck.

**ବବେଇ**—ପ୍ରାଦେ. (ସିଂହଭୂମ) ବି—ସବେଇ ଘାସ; ଏକପ୍ରକାର ଜଙ୍ଗଲ
Babei ଘାସ—Sabai grass.

[ ଦ୍ର—ଏଥିରେ ଦଉଡ଼ା ବଳାଯାଏ ଓ କାଗଜ ତିଆର ହୁଏ ।]

**ବବ୍ରା**—ପ୍ରାଦେ (ସମ୍ବଲପୁର) ବି—ବର୍ (ଦେଖ)—
Babrā Barā (See)

**ବଭ୍ରବୀ**—ସଂ. ବି. ସ୍ତ୍ରୀ. (ଭୃ ଧାତୁ=ପାଳନ କରିବା+ଉ. ନିପାତନ=
Babhrabi ବଭ୍ରୁ=ଶିବ+ସ୍ତ୍ରୀ. ଈ)—ଶିବପତ୍ନୀ; ଦୁର୍ଗା—
Durgā.

**ବଭ୍ରି**—ସଂ. ବି—ବଜ୍ର (ହ୍ରି. ଶ)—Thunder
Babhri

**ବଭ୍ରୀ**—ସଂ. ବି—ଉଇ (ହ୍ରି. ଶ.)—
Babhrī White ant.

**ବଭ୍ରୀକୂଟ**—ସଂ. ବି. (୬ଷ୍ଠୀ ତତ୍)—ଉଇହୁଙ୍କା; ବଲ୍ମୀକ (ହ୍ରି. ଶ.)—
Babhrikūṭa Anthill.

**ବଭ୍ରୁ**—ସଂ. ବି. (ଭୃ ଧାତୁ+କର୍ତ୍ତୃ. ଉ. ନିପାତନ)—୧ । ଶିବ—
Babhru 1. Śiba. ୨ । ବିଷ୍ଣୁ—2. Bishṇu. ୩ । ମୁନିବିଶେଷ
—3. Name of a sage. ୪ । ଦେଶବିଶେଷ—
4. Name of a country. ୫ । ବହ୍ନି—5. Fire.
୬ । ଗେରୁମାଟି—6. Red ochre; red chalk. ୭ ।
ନେଉଳ—7. Ichneumon; mongoose. ୮ ।
ମୂଷା—8. Rat; mouse. ୯ । ଭଗବତଙ୍କୁ ଯଦୁବଂଶୀୟ
ଜଣେକ ବୀର—9. Name of a hero born of the
Jadu dynasty. ୧୦ । ପିଙ୍ଗଳ ବର୍ଣ୍ଣ—10. Tawny
colour. ୧୧ । ସୁଶ୍ରୁତୋକ୍ତ ଏକପ୍ରକାର ସର୍ପ (ହ୍ରି. ଶ.)—
11. A kind of serpent.
ସଂ. ବିଣ.—୧ । ପାଳନକର୍ତ୍ତା; ପାଳକ—1. Maintainer.
୨ । ବିଶାଳ; ବୃହତ୍—2. Large; big. ୩ । ପିଙ୍ଗଳ—
3. Tawny. ୪ । ରୋଗ ଯୋଗୁଁ ଟାଙ୍ଗରା—
4. Become bald owing to illness.

**ବଭ୍ରୁବାହନ**—ସଂ. ବି. (ନାମ)—ଚିତ୍ରାଙ୍ଗଦା ଗର୍ଭରେ ଅର୍ଜ୍ଜୁନଙ୍କ ଔରସ
Babhrubāhana ଜାତ ପୁତ୍ର; ଆସାମ ଦେଶସ୍ଥ ମଣିପୁରର ରାଜା—
Name of a son of Arjuna, who ruled in
Maṇipur (Assam)

ପୁଣି ସେ ଚିତ୍ରାଙ୍ଗଦା କନ୍ୟା ଠାରୁ ଗଲେ
ବଭ୍ରୁବାହନଙ୍କ ଚହ୍ନିଁରୁ ଉପୁଜିଲେ । କୃଷ୍ଣସିଂ. ମହାଭାରତ. ଅଦି ।

**ବମ୍ (ଧାତୁ)**—ସଂ.—୧ । ବାନ୍ତି କରିବା—
Bam (root) 1. To vomit.
୨ । ଅହୁତି ଦେବା—2. To pour oblations into fire.

**ବମ୍**—ସଂ ଅ.—(ଧ୍ୱନ୍ୟନୁକରଣ)—୧ । ଗାଲ ବାଦ୍ୟ—
Bam 1. Sound produced by striking the puffed
बम वम up cheeks with the fingers.

[ଦ୍ର—ଗାଲକୁ ଫୁଲାଇ ପାଞ୍ଚ ମୁଦ ହାତର ଆଙ୍ଗୁଠିଦ୍ୱାରା ଗାଲର
ଦୁଇ ପାଖ ଆଘାତ କଲେ ଓଠ ବାଟେ ପବନ କ୍ରମଶଃ ବାହାରୁ
ଥିବା ବେଳେ ଏ ଶବ୍ଦ ଉତ୍ପନ୍ନ ହୁଏ ।]
୨ । ଡମ୍ବରୁ ଧ୍ୱନି—
2. The sound of Śiba's hand drum.
[ଦ୍ର—ମହାଦେବଙ୍କୁ ସ୍ତବ କରିବା ପୂର୍ବରୁ ବମ୍, ବମ୍ ବମ୍," ବମ୍
ଭୋଲା ଓ ବମ୍ ଭୋଲାନାଥ ଶବ୍ଦ ଉଚ୍ଚାରଣ କରାଯାଏ ]
୩ । ବରୁଣ ଦେବତାଙ୍କ ମନ୍ତ୍ରର ବୀଜ ଅକ୍ଷର—3. The mystical syllable uttered as the essential part
in the worship of the Indian Neptune.
ବୈଦେ. ବି.—(ଇଂ. ବମ୍, ପର୍ତ୍ତୁଗୀଜ୍—ବମ୍ବା)—
বোম্ बम ୧ । ବୋମା; ବମ୍ବାଣ, ବାଣର ଗୋଳା, ଯାହାଙ୍କ ବମ୍ ଶବ୍ଦ
କରି ଫୁଟେ—1. A bomb. ( ଇଂ. ବୀମ୍, ବାମ୍
ଘୋଡ଼ା ଗାଡ଼ିର ସାମନାର ଦଣ୍ଡ, ଯୁଗନ୍ଧର—
বম वम 2. The beam of a carriage.
বম बोम् ୩ । (ଫା.) ତାସ୍ ଖେଳର ଗ୍ରାବୁ ଖେଳରେ ଏକ ପକ୍ଷ
କ୍ରମାନ୍ୱୟରେ ୬ ଥର ଜିତିବା ଅବସ୍ଥା—(ତାସ୍ ଖେଳ
ତଳେ ନୋଟ ଦେଖ)—3. Successive winning of
one party for six times in a game of cards
called Grābu.
ଦେ. ବି.—(ସଂ. ବ୍ୟୋମ)—ମହାଦେବ—Śiba.

**ବମ୍ତୋଡ଼ି**—ପ୍ରାଦେ. (ବାଲେଶ୍ୱର) ବି.—ବମି (ଦେଖ) Bami (See)
Bam-torḍi

**ବମ୍ ଫୁଟା(ଟେ)ଇବା**—ଦେ. କ୍ରି.—ଅଗ୍ନିସଂଯୋଗ ପୂର୍ବକ ବମ୍ବାଣ
Bam phutā(ṭe)ibā ବାଣଙ୍କୁ ଶବ୍ଦ କରାଇବା—
বোমা ফোটান To fire or discharge a bomb.
बम फोड़ना

**ବମ୍ ବନିବା**—ଦେ. କ୍ରି.—ହୃଷ୍ଟ ପୁଷ୍ଟ ହେବା; ସ୍ଥୂଳକାୟ ହେବା—
Bam banibā To become fat or stout.
कोलहु वनजाना, पिट्ठा वनजाना

**ବମ୍ ବୁଲି ଯିବା**—ଦେ. ବି—ପୂର୍ବାପେକ୍ଷା ହୃଷ୍ଟପୁଷ୍ଟ, ସବଳ ଓ
Bam buli jibā ସୁସ୍ଥ ହେବା—To be stouter and
(ବମ୍ ବନି ଯିବା—ଅନ୍ୟରୂପ) stronger than before.

**ବମ୍ଭୋଳା(ଲା)**—ଦେ. ବି.—ମହାଦେବ— Siba.
Bam bhoḷā(lā) বম ভোলানাথ बम भोलानाथ
[ବମ୍ ଭୋଳା(ଲା)ନାଥ—ଅନ୍ୟରୂପ] ଗାଲବାଦ୍ୟ ବାଦନପୂର୍ବକ ମହାଦେବଙ୍କ ପ୍ରତି ଭକ୍ତର ଡାକ—Interjection used in
addressing Siba after producing bam
sound with the cheeks.

**ବମକଇ**—ଦେ. ବି.—ଏକପ୍ରକାର କଣ୍ଡୁ—
Bamakai A kind of itches.

**ବମ(ମୁ, ମୋ)ଜିବ୍**—ବୈଦେ. ଅ ( ଫା. ବମଜିବ୍ )—ମୁତାବକ—
Bama(mu, mo)jib 1. As per; according to; by
পোতাবেক बमूजिब reason of.
ବମୁଜିବ, ବମୋଜିବ, } ଅନ୍ୟରୂପ [ ଦ୍ର—ଏଥିର ସାଙ୍କେତିକ
ବମୋଜି, ବମୋଜ } ଚିହ୍ନ — । ବ । । ଯଥା—ଏ
ତାଲିକା । ବ । ଜିନସ ପଠାଗଲା । ]

ବମତୁଡ଼ି—ପ୍ରାଦେ. ( ମେଦିନୀପୁର ) ବି—ବମି ( ଦେଖ )
Bamaturdi Bami (See)

ବମଥୁ—ସଂ. ବି ( ବମ୍ ଧାତୁ+ଭାବ. ଅଥୁ )—ବମନ (ଦେଖ)
Bamathu Bamana (See)

ବମନ—ସଂ. ବି. ( ବମ୍ ଧାତୁ+ଭାବ. ଅନ )—୧ । ଉକାର; ବାନ୍ତି—Bamana 1. Vomiting. ୨ । ବହିଷ୍କରଣ—2. Emitting. ୩ । ଯେଉଁ ଦ୍ରବ୍ୟ ବମନ କରାଏ—3. An emetic causing vomiting. ୪ । ଅଗ୍ନିରେ ଆହୁତି—4. Oblation to fire. ୫ । କଷ୍ଟ; ଯନ୍ତ୍ରଣା—5. Pain.

ବମନୀୟ—ସଂ. ବିଣ ( ବମ୍ ଧାତୁ + କର୍ମ. ଅନୀୟ )—ବମନ କରାଯିବାର
Bamaniya ଯୋଗ୍ୟ—Fit to be vomited.
ସଂ. ବି—ମାଛି—A fly.

ବମନେଚ୍ଛା—ସଂ. ବି—ଉକାର ଉଠାଇବା; ବାନ୍ତି ଦେଖାଇବା; ଅରୁ
Bamanechchhā ଦେଖାଇବା—Tendency to vomit; nausea.

ବମନୋଦ୍ବେଗ—ସଂ. ବି—ବଳବତ୍ତ ବମନେଚ୍ଛା—Strong tendency
Bamanodbe ga to vomit.

ବମା—ବୈଦେ. ବି ( ଇ. ବମ୍ )—ବମ୍ବାଜି ( ଦେଖ )
Bamā ବୋମା **बम** Bambāji ( See )
କୀଡ଼ା, ଦେ. ବି—ଭମା; ଗହମ ଓ ଧାନଆଦିରେ ଲାଗିବା
**सूड़ा** ପୋକ—Winged moths or worms attacking rice, paddy and other grains.

ବମା ଖାଇବା—ଦେ. କ୍ରି—ଶସ୍ୟାଦି କୀଟଦଷ୍ଟ ହେବା—Being moth-
Bamā khāibā କୀଡ଼ାଯ଼ ଖାଓଯ଼ା **सूँड़ालगना** eaten.
ବମା ଧରିବା; } ଅନ୍ୟରୂପ ଧାନ ଗଲେଣି ବମା ଖାଇ
ବମା ଲାଗିବା } ରଖିଥ ପଡ଼ିଛ ଶୀଳ ହୋଇ—ଭଗ ।

ବମାଖିଆ—ଦେ. ବିଣ—କୀଟଦଷ୍ଟ; ପୋକରା—Worm-eaten;
Bamākhiā **सूडफक्कू; सूँडालगा** moth-infested.
କୀଡ଼ାଲାଗା ( ବମାଧରା, ବମାଲଗା—ଅନ୍ୟରୂପ )

ବମାଲ୍—ବୈଦେ. ଅ (କଚରିଆ) (ଫା. ବମାଲ୍)—ଚୋରିମାଲ ସହିତ—
Bamāl ବমাল, বামাল With the stolen property.
**बमाल** ବମାଲ ଗ୍ରେପ୍ତାର, ଆଉ କଣ ରକ୍ଷା ଅଛି ? ରହିଥିବ କଠିନ ପରିଶ୍ରମ ସହିତ ମିଆଦ ଦେଢ଼ବର୍ଷ—ଫକୀରମୋହନ, ଗଳ୍ପସ୍ବଳ୍ପ ।
ବି. ( କଚରିଆ )—ଚୋରିମାଲ—Stolen property.

ବମାଲି କରଣ—ପ୍ରାଦେ. (ଗଞ୍ଜାମ) ବି—ଶେଠ କରଣ (ଦେଖ)
Bamāli karaṇa Śeṭha karaṇa (See)

ବମି—ସଂ. ବି ( ବମ୍ ଧାତୁ+ଭାବ. ଇ )—୧ । ବମନ—1. Vomiting. ୨ । (+କର୍ତ୍ତୃ. ଇ) ବହ୍ନି; ଅଗ୍ନି—2. Fire. ୩ । ଠକ; ଧୂର୍ତ୍ତବ୍ୟକ୍ତି—3. A cheat.
Bami
ବାନମାଛ, বাইনমাছ ଦେ. ବି ( ସଂ. ବର୍ମି )—ସର୍ପାକୃତ ଥଣ୍ଡଯୁକ୍ତ
**बाँब; बमी; बमेल** ଏକପ୍ରକାର ମାଛ—A fresh water
(ବମ୍ବି—ଅନ୍ୟରୂପ) tubular fish; bill fish; Tylosurus Longirostris.

[ ଦ୍ର—ଏହା କୁଣ୍ଡବର୍ଣ୍ଣ ଓ ଚୋଡ଼ମାଛ ଅପେକ୍ଷା ବଡ଼ । ଏମାନେ ଲମ୍ବରେ ଏକ ହାତ ଓ ବ୍ୟାସରେ ୨ ଇଞ୍ଚ ପର୍ଯ୍ୟନ୍ତ ବଢ଼ନ୍ତି । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଗୁରୁ, ସ୍ନିଗ୍ଧ ଓ ବାୟୁ ଏବଂ ଶ୍ଳେଷ୍ମ ପ୍ରକୋପକ । ]

ବମିତ—ସଂ. ବିଣ ( ବମ୍ ଧାତୁ, ଣିଜନ୍ତ ବମି ଧାତୁ+କର୍ମ. ତ )—
Bamita ଉଦ୍ଗୀର୍ଣ୍ଣ; ବାନ୍ତି—Vomited forth.

ବମିତବ୍ୟ—ସଂ. ବିଣ ( ବମ୍ ଧାତୁ+ତବ୍ୟ ପ୍ରତ୍ୟୟ )—ବାନ୍ତି ହେବାର
Bamitabya ଉପଯୁକ୍ତ—To be vomited from the mouth.

ବମିମୁହାଁ—ଦେ. ବିଣ. ପୁଂ—ବମି ମାଛ ପରି ଯେଉଁ ଲୋକର ଓଠ
Bamimuhāñ ଗୋଳା; ଛୁଞ୍ଚମୁହାଁ—Having one's lips
**सूइमुँहा** ( ବମିମୁହାଁ—ସ୍ତ୍ରୀଲିଙ୍ଗ ) pointed.
[ ଦ୍ର—ଏପରି ଲୋକ ଚୁପ୍‌ସିଇଲାକ୍ ବୁଝନ୍ତି । ]

ବମେ—ବୈଦେ. ଅ (ଫା)—୧ । ସକଳ ପ୍ରକାରର—1. Of all kinds.
Bame सब, सारा **बिलकुल** ୨ । ସମସ୍ତ—2 All.
( ଯଥା—ବମେ ସରଞ୍ଜାମ ଏଠାରୁ ସ୍ଥାନାନ୍ତରିତ କରିବାକୁ ହେବ । )

ବମ୍ପର—ବୈଦେ. ବି ( ଇଂ ) ( ମୋଟର୍ ଗାଡ଼ି ସମ୍ବନ୍ଧୀୟ ଶବ୍ଦ )—
Bampar ମୋଟର୍ ଗାଡ଼ିରେ ସାମନାରୁ ହାବୁଡ଼ି ଯିବା ବସ୍ତୁର
বম্পার **बंपार** ଧକ୍କା ସମ୍ଭାଳିବାପାଇଁ ମୋଟର୍‌ର ଆଗରେ ଲାଗିଥିବା ଅନର୍ଗଳବିଶେଷ—Bumper.

ବମ୍ବ(ମ୍ଭ)ର—ଗ୍ରା. ବି ( ସଂ. ବିବର )—ଗଭୀର ଗର୍ତ୍ତ—
Bamba(mbha)ra **भौंकाड** Deep hole; abyss.

ବମ୍ବା—ବୈଦେ. ବି (କାନାଡ଼ୀ—ବମ୍ବୁ, ଇଂ. ବାମ୍ବୁ; ଆ. ମମ୍ବା=ନଳ)—
Bambā ୧ । ନଳାକାର ଖୁଣ୍ଟ—1. A tubular post.
বংবা, খুঁটি **बंबा** ୨ । ଖିଲା—2. A peg.
(ବୋମ୍ବା—ଅନ୍ୟରୂପ) [ ଦ୍ର—ସରକାରୀ ରାଜସ୍ବ ବନ୍ଦୋବସ୍ତ (ସେଟଲମେଣ୍ଟ୍) ସମୟରୁ ଏ ଶବ୍ଦ ଏ ଦେଶରେ ପ୍ରଚଳିତ । ଏହା ମଉଜାମାନଙ୍କ ସୀମା ନିର୍ଦ୍ଦେଶ କରିବା ନିମନ୍ତେ ପୋତାଯିବା ଖୁଣ୍ଟ । ପ୍ରଥମେ ଏହା ବାଉଁଶ ନଳାରେ ହେଉଥିଲା, କିନ୍ତୁ ପରେ ଏ ଚିହ୍ନକୁ ଚିରସ୍ଥାୟୀ କରିବା ନିମନ୍ତେ ପୋଡ଼ା ମାଟିର ବା ଲୁହାର ନଳାକାର ଖିଲା ଏହି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇ ଭୂମିରେ ପୋତା ହେଲା । ]

ବମ୍ବାଜି—ଦେ. ବି ( ଇଂ. ବମ୍ )—ତୋପବାଜି; ବାଣବିଶେଷ—
Bambāji Firework producing bomblike report.
বোমবাজী **बमबाज़ी** [ ଦ୍ର—ଏହା ବାରୁଦ ଭୁଜା ଯାଇଥିବା (ବମ୍‌ବାଜି—ଅନ୍ୟରୂପ) ପିଣ୍ଡ । ବାଉଁଶ ନଳ ମଧ୍ୟରେ ବାରୁଦ ଭୁଜା ହୋଇ ନଳ ଉପରେ ଦୃଢ଼ଭାବରେ ଛଣପଟି ଦଉଡ଼ି ଗୁଡ଼ା ଯାଇଥାଏ । ଏଥିରେ ନିଆଁ ଲାଗିଲେ ତୋପ ପରି ଶବ୍ଦ କରେ । ]

ବମ୍ବା(ମ୍ବେ)ଟିଆ—ଦେ. ବି. ( ଇଂ ବମ୍ବାର୍ଡିଅର୍ )—୧ । ଗୋଲନ୍ଦାଜ
Bambā(mbe)ṭiā ସୈନ୍ୟ—1 Bombardier.
বম্বেটে, বম্বেটিআ [ ଦ୍ର—ପର୍ତ୍ତୁଗୀଜ ବା ଫିରିଙ୍ଗୀ ଜଳଦସ୍ୟୁମାନେ
**समुद्रिडाकू** (ବୋମ୍ବାଟିଆ—ଅନ୍ୟରୂପ) ବଙ୍ଗୋପସାଗରକୂଳକୁ ଆକ୍ରମଣ

କରିବା ସମୟରୁ ଏ ଶବ୍ଦ ବଙ୍ଗଭାଷାରେ ପ୍ରବେଶ କରିଅଛି ଓ ଓଡ଼ିଆମାନେ ବଙ୍ଗଦେଶକୁ ଯାଇ ତେଣୁ ଏ ଶବ୍ଦକୁ ଆଣି ଆମ ଭାଷାରେ ପୂରାଇ ଅଛନ୍ତି । ]

୨ । ନଦୀ ଓ ସମୁଦ୍ରର ଡକାଇତ; ଜଳଦସ୍ୟୁ—2. Pirate.

ଦେ. ବିଣ—ଠକ୍ଷାମିଆ; ଠକ୍ଷାବାଜୀ—Fraudulent; deceitful.

ବମ୍ବୁ—ବୈଦେ. ବି. (ଇଂ. ବାମ୍ବୁ; କନାଡ଼ୀ-ବନ୍ବୁ)—୧ । ବାଉଁଶ—
Bambu 1. Bamboo. ୨ । ବାଉଁଶ କାଲା—2. A piece of bamboo used as a peg.
ବାংশ बंस

ବମ୍ବୁରୁ—ପ୍ରାଦେ. (କଳାହାଣ୍ଡି) ବି- ବନ୍ଧନ କାଠ ପରି ଏକପ୍ରକାର ଟାଣୁଆ
Bamburu କାଠ—A tough timber like Bāndhana.
[ ଦ୍ର—ଏଥିରେ ଶଗଡ଼ ଈଷାର ହୁଏ । ]

ବମ୍ବେଇ—ଦେ. ବି. (ନାମ)—ଭାରତର ପଶ୍ଚିମ ଉପକୂଳସ୍ଥ ପ୍ରଦେଶ ଓ
Bambei ରାଜଧାନୀ—Bombay Presidency and capital town.
বোম্বাই मुंबाई, बबई

ବମ୍ବାଇ, ବମ୍ବେ, ବୋମ୍ବାଇ, ବୋମ୍ବେ, ବୋମ୍ବେଇ } — ଅନ୍ୟରୂପ [ ଦ୍ର—ପୂର୍ବକାଳର ଏହା ସମୁଦ୍ର ମଧ୍ୟସ୍ଥ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପପୁଞ୍ଜର ସମଷ୍ଟି ଥିଲା । ଇଂରେଜମାନେ ଲବଣ-ଜଳପୂର୍ଣ୍ଣ ସ୍ଥାନମାନ ମୃତ୍ତିକାରେ ପୂର୍ଣ୍ଣ କରି କେତେକ ଗୁଡ଼ିଏ ଦ୍ୱୀପକୁ ମିଶାଇ ଏ ସହରର ଭିତ୍ତି ସ୍ଥାପନ କଲେ । ଭୁଲେଶ୍ୱର ନାମକ ସ୍ଥାନରେ ପ୍ରତିଷ୍ଠିତ ମୁମ୍ବା ଦେବୀଙ୍କ ନାମାନୁସାରେ ଏ ସହରର ନାମ ହିନ୍ଦୀରେ ମୁମ୍ବାଇ ଓ ଅନ୍ୟ ଭାଷାରେ ବମ୍ବାଇ, ବମ୍ବେଇ ଓ ଇଂରାଜୀରେ 'ବମ୍ବେ' ହୋଇ ଅଛି । ଏହା ବର୍ତ୍ତମାନ ଭାରତବର୍ଷରେ ଗୋଟିଏ ସମୃଦ୍ଧିଶାଳୀ ନଗର । ମଦନମୋହନ—ତୀର୍ଥଦର୍ଶନ । ]

ବମ୍ଭର—ସଂ. ବି.—(ବମ୍=ଅନୁକରଣ ଶବ୍ଦ+ଭୃ ଧାତୁ+କର୍ତ୍ତୃ. ଅ)—
Bambhara ମଧୁମକ୍ଷିକା—Bee.

ବମ୍ଭରାଳୀ(ଣୀ)—ସଂ. ବି.—(ବମ୍ଭର+ଆଳୀ; ଅଣୀ —ମଧୁମକ୍ଷିକାସମୂହ-
Bambharāli(ṇi) 1. A swarm of bees. ୨ । (ବମ୍= ଭିଁ ଶବ୍ଦାନୁକରଣ+ଭୃ ଧାତୁ+ଅଳ+ଈ)—ମକ୍ଷିକା, ମାଛି—2. Flea. ୩ । ଭ୍ରମର—3. Black wasp.

ବୟ (ଧାତୁ)—ସଂ.—ଗମନ କରିବା—
Baya (root) To go.

ବୟ—ଗ୍ରା. ବି.—୧ । (ସଂ. ବ୍ୟୟ)—ବଏ (ଦେଖ)
Baya 1. Bae (See)
(ଯଥା—ଆୟରୁ ବୟ ବଳଲେ ପାଇବ ଶେଷ ।)
୨ । (ସଂ. ବୟସ୍)—ବୟସ—2. Age.
ଓଷ୍ଟ କରେ ବୟ ଭାର
ବଏସ ବୟ ଦେଖି ଉଚିତ ବଳ ଘୋର । କବୋଧ. ଜଗନ୍ନାଥ ।

ବୈଦେ. ବି. (ଫା. ବୈ.)—ବଏ (ଦେଖ)—Bae (See)

ସଂ. ବି.—( ବେ ଧାତୁ=ବୁଣିବା+କର୍ତ୍ତୃ ଅ ) ୧ । ତନ୍ତୁବାୟ ( ହି. ଶ. )—1. Weaver.
୨ । ବାୟାଚଢ଼େଇ (ହି. ଶ.)—2. The weaver bird.

ବୟଃ—ସଂ. ବି.—(ବୟ ଧାତୁ+ଅସ୍; ଯେ ଅଲକ୍ଷିତ ଭାବରେ ଗମନ
Bayah କରେ)—୧ । ବୟସ; ଜୀବନ; ଆୟୁଃ—1. Age; time of one's life. ୨ । ଯୌବନ—2. Youth.
୩ । ପକ୍ଷୀ—Bird.

ବୟଃକ୍ରମ—ସଂ. ବି.—(୬ଷ୍ଠୀ ତତ୍)—ଆୟୁଷ୍କାଳ; ବୟସ; ଜୀବନକାଳ—
Bayah krama Age; period of one's life.

ବୟଃ ସଙ୍ଗୀ—ଦେ. ବି.—୧ । (ସଂ. ବୟଃ+ସଙ୍ଗୀ)—ସମବୟସ୍କ
Bayah sangi ବନ୍ଧୁ—1. A friend of the same age.
୨ । (ସଂ. ବୟଃ+ସଙ୍ଗିନୀ)—ସ୍ତ୍ରୀମାନଙ୍କର ସମବୟସ୍କା ସଙ୍ଗୀ—A woman's female companion of the same age.
ବୃଦ୍ଧ ବୟଃସଙ୍ଗୀବାର ଭାଙ୍ଗିବ ଏ ଧନ୍ୟବର ମନରେ ଏମନ୍ତ କରି ତା ଜାଣି ଗ୍ଲାନି ।
ଉପେନ୍ଦ୍ର—ବୈଦେହୀଶବିଳାସ ।

ବୟଃସନ୍ଧି—ସଂ. ବି. (୬ଷ୍ଠୀ ତତ୍)—ବାଲ୍ୟ ଓ ଯୌବନର ସଂଯୋଗ
Bayah sandhi ସ୍ଥଳ; ଯୌବନାରମ୍ଭ—Prime of life; transition from childhood to youth.

ବୟଃସ୍ଥ—ସଂ. ବିଣ. ପୁଂ. —(ବୟଃ+ସ୍ଥା ଧାତୁ+କର୍ତ୍ତୃ.ଅ)—୧ । ମଧ୍ୟ
Bayahstha ବୟସ୍କ; ଯୁବା—Youthful. ୨ । ପ୍ରାପ୍ତବୟସ୍କ; (ବୟଃସ୍ଥା—ସ୍ତ୍ରୀ) (ବୟସ୍ଥ—ଅନ୍ୟରୂପ) ସାବାଳଗ—2. Major; mature; middle-aged.

ବୟଃସ୍ଥା—ସଂ.ବିଣ.ସ୍ତ୍ରୀ—୧ । ଯୁବତୀ—1 Youthful; young
Bayahsthā (woman). ୨ । ବିବାହର ଉପଯୁକ୍ତା—(ବୟସ୍ଥା— ଅନ୍ୟରୂପ) 2 Arrived at a marriageable age.
ସଂ. ବି.—୧ । ଆମଳକୀ, ବାହାଡ଼ା ଓ ହରିଡ଼ା; ତ୍ରିଫଳା—
1. The three myrobalans. ୨ । ଗୁଳୁଚ—
2. A medicinal creeper. ୩ । ସୋମଲତା—
3. The Soma creeper. ୪ । କାକୋଲୀ—
4. A medicinal berry. ୫ । ଆମ୍ବିଳିଆ ଶାଗ—
5. A kind of potherb of acid taste.
୬ । ଛୋଟ ଅଳେଇଚ; ଗୁଜୁରାତି (ହି. ଶ.)—6. The small cardamom. ୭ । ଶିମିଳି (ହି. ଶ.)—
7. Silk cotton. ୮ । ଯୁବତୀ ସ୍ତ୍ରୀ—8. A young woman.

ବୟଃସ୍ଥାନ—ସଂ. ବି.—ଯୌବନ (ହି. ଶ.)—Youth.
Bayahsthāna (ବୟସ୍ଥାନ—ଅନ୍ୟରୂପ)

ବୟନ—ସଂ. ବି. ( ବେ ଧାତୁ=ବୁଣିବା+ଭାବ. ଅନ )—
Bayana ଲୁଗା ବୁଣା—Weaving.

ବୟନ ବିଦ୍ୟାଳୟ—ସଂ.ବି.(ଆଧୁନିକ ବ୍ୟବହାର)—ଯେଉଁ ବିଦ୍ୟାଳୟରେ
Bayana bidyālaya ଲୁଗାବୁଣା ଶିକ୍ଷା ଦିଆଯାଏ—Weaving school.

ବୟ ପଥ(ଥୁ)—ଗ୍ରା. ବି. (ପଦ୍ୟ) ( ସଂ. ବେପଥୁ )—
Baya patha(thu) ୧ । କମ୍ପ—1. Trembling.
୨ । ଭୟ—2. Fear.

ଅର୍ଜୁନ ବୋଇଲେ ମୋ ରଥେ ସାରଥ୍ୟ
ଉତ୍ତର କର ଛାଡ଼ ଛଦରୁ ବୟ ପଥ୍ୟ । କୃଷ୍ଣସିଂହ, ମହାଭାରତ, ବଧ୍ୟଃ ।

**ବୟ ବୃଦ୍ଧ** — ଗ୍ରା. ବିଣ. (ସଂ. ବୟୋବୃଦ୍ଧ)—ବୟୋବୃଦ୍ଧ (ଦେଖ)
Baya bṛuddha — Bayobṛuddha (See)
ବଦ୍ୟାବୃଦ୍ଧ ଯେ ବୟବୃଦ୍ଧରେ ଛନ୍ତି । କୃଷ୍ଣସିଂହ, ମହାଭାରତ ଉଦ୍ୟୋଗ

**ବୟସ** — ଦେ. ବି. (ସଂ. ବୟଃ)—୧ । ଜନ୍ମାବଧି କାଳ ପରିମାଣ; ପ୍ରାଣୀର ଅତୀତ ଜୀବନ କାଳ—1. Time of life; age, ୨ । ଯୁବା ବୟସ; ଯୌବନ—2. Youth.
Bayasa
ବଏସ ब्यस, उम्र
ଅତ ବୟସ ମୋର କାହିଁ
ପାରିବ ପୁଣ ଉପୁଯାଇ । ଜଗନ୍ନାଥ, ଭାଗବତ ।

**ବୟସ କାଳ** — ଦେ. ବି—୧ । ଯୁବା ବୟସ—1. Youth, ୨ । ପରିଣତ ବୟସ—2, Mature age,
Bayasa kāḷa
(ବୟସ ବେଳ—ଅନ୍ୟରୂପ) बयसकाल ବଏସ

**ବୟସ ଛଉ** — ଦେ. ବି. (ସଂ. ବୟସ + ଶିତ୍ର)—ବଅସ ଛଉ; ଯୁବକ ଓ ଯୁବତୀଙ୍କ ଦେହରେ ଯେଉଁ ଛଉ ମାଡ଼ି ଯିବାର ଦେଖାଯାଏ—Scurf or scab appearing on the body of young people.
Bayasa chhau
सिहलि ছুলী

**ବୟସ ବରୁଣ** — ଦେ. ବି. (ସଂ. ବୟସ + ବ୍ରଣ)—କାଠ ବରୁଣ; ଯୁବକ ଓ ଯୁବତୀଙ୍କ ମୁହଁରେ ସରୁଆ ଖିଲ ଯୁକ୍ତ ଯେଉଁ ବ୍ରଣମାନ ଦେଖାଯାଏ—Small pimples appearing on the face of youths; blackhead.
Bayasa baruṇa
বয়স ফোড়া
बडर, बरें, बरड, बरा

**ବୟସ ମକମକେଇ** — ଗ୍ରା. ବିଣ—(ସ୍ତ୍ରୀ ଲୋକଙ୍କ ପ୍ରତି ଗାଳି) ଯୌବନ-ଗର୍ବିତା (ସ୍ତ୍ରୀ); ଯୁବା ବୟସ ଓ ସୌନ୍ଦର୍ଯ୍ୟ ଜନିତ ଗର୍ବରେ ଯେଉଁ ନାରୀ ମକମକ ବା ଉତଫୁଲ୍ଲ ହେଉଥାଏ—(a woman) Who is unduly proud of her youthful charms
Bayasa makamakeī

**ବୟସ ଯିବା** — ଦେ. ବି— ସମୟ ଅତିବାହିତ ହେବା; ବୃଦ୍ଧ ହେବା—Becoming old.
Bayasa jibā बयस बीतना
ବୟସ ଗଲାନ ସବ ଯୁଷ୍ଟ ସୁନ୍ଦରୀର ପର ଏ ସଙ୍ଗେ ବହୋଧ କରିବାର ଉଚିତ ।
ବଏସ ଯାଓୟା — ଭଞ୍ଜ, ବୈଦେହୀଶବିଳାସ ।

**ବୟସ ସନ୍ଧି** — ଦେ. ବି—ବୟଃ ସନ୍ଧି (ଦେଖ)
Bayasa sandhi — Bayaḥ sandhi (See)
ବୟସ ସନ୍ଧି ନକ ନାରୀ, ନାୟକ ଅଛି କି ଅବୋଇ ।
ଭୂପତି, ପ୍ରେମପଞ୍ଚାମୃତ ।

**ବୟସି** — ଦେ. ବିଣ. ପୁଂ. (ସଂ ବୟଃସ୍ଥ)—(ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ; ଯଥା—ସମବୟସି, ଅଧା ବୟସିଆ, ଷୋଳ ବୟସୀ, ପିଲା ବୟସିଆ, ଯୁବା ବୟସୀ, ସତର ବୟସୀ) ବୟସବିଶିଷ୍ଟ; ବୟସ୍ଥ; ଯାହାକୁ ଏତେ ବୟସ ହୋଇଅଛି—Aged; having reached such an age.
Bayasi
(ବୟସିଆ—ଅନ୍ୟରୂପ)
(ବୟସୀ—ସ୍ତ୍ରୀ)
বয়সী बयसी
ସତର ବୟସୀ ସତର ମନ, କେତେ ଯାହାକୁ ଅନୁଗମନ ।
କବିସୂର୍ଯ୍ୟ, କବିତା ।

**ବୟସିକା** — ଦେ. ବି. ସ୍ତ୍ରୀ. (ସଂ. ବୟସ୍ୟା)—ବୟସୀ (ଦେଖ)
Bayasikā — Bayasī (See)

**ବୟସୀ** — ଦେ. ବିଣ—୧ । ବୟସିର ସ୍ତ୍ରୀ ଲିଙ୍ଗ—1. Feminine of Bayasi. ୨ । ଯୁବତୀ—2 Youthful (lady).
Bayasī
କେ ମୋତେ ଦେବ ଯାଚି ନବୀନ ବୟସୀ । କୃଷ୍ଣସିଂହ, ମହାଭାରତ, ବନ ।
ଦେ. ବି. ସ୍ତ୍ରୀ. (ସଂ. ବୟସ୍ୟା)—ସ୍ତ୍ରୀର ସମବୟସ୍କା ସଖୀ; ଏକବୟସିଆ ସଖୀ—A woman's female companion of the same age.
ଭାବେ ନବ ବୟସୀ ବୟସୀ ପାଶେ ବସି ବଶୀଭୂତ ଦର୍ଶନ ଅସେ ଯେ ।
ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ବୟସ୍କ** — ଦେ. ବିଣ. ପୁଂ. (ସଂ. ବୟଃସ୍ଥ)—୧ । (ଯୁବା ବା ବୃଦ୍ଧ) ବୟସବିଶିଷ୍ଟ—1. Having reached a certain age (e. g. young or old). ୨ । ପୂର୍ଣ୍ଣଯୌବନ—2. Youthful; young. ୩ । ବୟଃସ୍ଥ; ପ୍ରାପ୍ତବୟାଃ; ସାବାଳଗ—3. Major; mature. ୪ । ଯେ ବୟସରେ ବଡ଼—4. Elderly; older in age.
Bayaska
(ବୟସ୍କା—ସ୍ତ୍ରୀ)
বয়স্ক वयस्क
[ ଦ୍ର—ବୟଃ ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ସମସ୍ତ ପଦରେ ବୟସ୍କ ଆକାର ଧାରଣ କରେ । ଯଥା—ବୃଦ୍ଧବୟସ୍କ, ଅଳ୍ପ ବୟସ୍କ, ସମବୟସ୍କ; କିନ୍ତୁ ଏକୁଟିଆ ବୟସ୍କ ଶବ୍ଦର ପ୍ରୟୋଗ ସଂସ୍କୃତ ବ୍ୟାକରଣବିରୁଦ୍ଧ; ବୟଃସ୍ଥ ଶୁଦ୍ଧ ବ୍ୟବହାର ଅଟେ । ]

**ବୟସ୍କୃତ୍** — ସଂ. ବିଣ—(ବୟଃ + କୃ ଧାତୁ + କ୍ୱିପ୍)—ଆୟୁଃପ୍ରଦ—Giving longevity.
Bayaskṛut

**ବୟସ୍ଥ** — ସଂ. ବିଣ. ପୁଂ—ବୟଃସ୍ଥ (ଦେଖ)—Bayahstha (See).
Bayastha (ବୟସ୍ଥା—ସ୍ତ୍ରୀ)

**ବୟସ୍ଥା** — ସଂ. ବିଣ ଓ ବି—ବୟଃସ୍ଥା (ଦେଖ)—Bayaḥsthā (See).
Bayasthā
ବୟସ୍ଥା ଯହିଁ ଅମଙ୍ଗଳତା କହି ବାର୍ଦ୍ଧକ୍ୟ ସ୍ୱଭାବ ଧରି ହେ—
ଭଞ୍ଜ, ବୈଦେହୀଶବିଳାସ ।

**ବୟସ୍ୟ** — ସଂ. ବି. ପୁଂ—(ବୟସ୍ + ତୁଲ୍ୟାର୍ଥେ. ଯ)—୧ । ସଖା; ତୁଲ୍ୟ ବୟସ୍କ ବନ୍ଧୁ; ସମବୟସ୍କ ମିତ୍ର—1. Friends of the same age. ୨ । ସଙ୍ଗୀ; ସହଚର—2, Companion; comrade.
Bayasya (ବୟସ୍ୟା—ସ୍ତ୍ରୀ)

**ବୟସ୍ୟା** — ସଂ. ବି. ସ୍ତ୍ରୀ—(ବୟସ୍ୟ + ଆ)—୧ । ସଖୀ—1. A female companion. ୨ । ଇଟା (ହ୍ରି.ଶ)—2. Brick.
Bayasyā

**ବୟା** — ଗ୍ରା. ବି—(ସଂ. ବ୍ୟୟ)—୧ । ବ୍ୟୟ—1. Expenses. ୨ । (ଅନାଦରାର୍ଥକ) ବୈଷ୍ଣବ ବା ବୈକୁଣ୍ଠ ନାମକ ବ୍ୟକ୍ତିକୁ ଡାକିବା ନାମ—2. Name by which Baishṇaba or Baikuṇṭha is called.
Bayā
(ବୟି, ବଇ—ଆଦରାର୍ଥକ ରୂପ)
ବୈଦେ. ବି—(ଇଂ. ବଏ)—ବୟାଁ (ଦେଖ)—Bayāṅ (See).
ମାତ୍ର ବାଲେଶ୍ୱର ବାବୁ ବାହାର ବୟା ପାଖରେ ପଢ଼ଅଛି—
ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ବୟାଅଶୀ** — ଦେ. ବି ଓ ବିଣ—(ସଂଖ୍ୟାବାଚକ) (ସଂ. ଦ୍ୱ୍ୟଶୀତି)—୮୨—Eightytwo; 82.
Bayā-aśī বিরাশী बिरासी
(ବୟାଶୀ—ଅନ୍ୟରୂପ)

ବୟାଁ—ବୈଦେ. ବି—(ଇଂ. ବୟ୍; ପର୍ତ୍ତୁଗୀଜ୍. ବୟା)—ନାବିକମାନଙ୍କୁ
Bayāñ ନଦୀ ସମୁଦ୍ରାଦିରେ ପଥ ନିରୂପଣ ବିଷୟରେ ସାହାଯ୍ୟ
বয়া(য়াঁ) କରିବାପାଇଁ ନଦୀ ବା ସମୁଦ୍ର ଗର୍ଭରେ ଭସା ଯାଇଥିବା
**बोया** ପୀପା—A buoy.

ବୟାଁ(ୟା)ନବେ—ଦେ. ବି ଓ ବିଣ—(ସଂ. ଦ୍ୱିନବତି; ପ୍ରା. ବାଣ୍ଣବଇ)—
Bayāñ(yā)nabe ୯୨; ଦ୍ୱ୍ୟଧିକ ନବତି—Ninetytwo
বিবান্নবই ବୟାଣୋଇ ପଦରେ ୪ ଛନ୍ଦ ହେଲା ଶେଷ—
**बियानबे; बानबे** ଭଞ୍ଜ. ବୈଦେହୀଶବିଳାସ ।
[ବୟାଁ(ୟା)ଣୋଇ, ବୟାଁ(ୟା)ଲବେ(ବ୍ବେ), ବୟାଁ(ୟା)ଲୋଇ, ବୟାଁ(ୟା)-ନ୍ନବେ(ବ୍ବେ)—ଅନ୍ୟରୂପ]

ବୟାଁଳୁ—ପ୍ରାଦେ (ବାଲେଶ୍ୱର) ବି—(ସଂ. ବନ୍ୟ+ଆଳୁ)—ବଣଆଳୁ,
Bayāñlu କରବା—Wild yam

ବୟାଁଳୁ ଗୋଡ଼(ଡ଼ା)—ପ୍ରାଦେ (ବାଲେଶ୍ୱର) ବି—ଛୋଟ ବୟାଁଳୁ ବା
Bayāñlu gorda(rdā) ବୟାଁଳୁର କ୍ଷୁଦ୍ର ଅଂଶ; ବଣଆଳୁର
ବାଟଗି—Small globes of wild yam.
(ଯଥା-ଏହା ଲତାର ଗଣ୍ଠିରେ ଆଳୁବାଟଗି ପରି ଧରେ)

ବୟାନ—ଦେ. ବି—(ସଂ. ବର୍ଣ୍ଣନ; ବ୍ୟାଖ୍ୟାନ; ଫା. ବୟାନ୍)—
Bayāna ୧ । ବାକ୍ୟ—1. Speech. ୨ । ବିବରଣ; ବର୍ଣ୍ଣନ;
বয়ান ବୃତ୍ତାନ୍ତ—2. Description; relation; narration.
**बयान** ୪ । ବ୍ୟାଖ୍ୟାନ; ବ୍ୟାଖ୍ୟା କରିବା—4. Explaining.
ବାବୁମାନଙ୍କ ଆଗରେ ସବୁ ହାଲ ବୟାନ କରିଯାଉ—
ଫକୀରମୋହନ—ଗଳ୍ପସ୍ୱଳ୍ପ ।

ବୟାନ କରିବା—ଦେ. କ୍ରି—୧ । ବର୍ଣ୍ଣନା କରିବା—1. To describe; to relate; to narrate.
Bayāna karibā
বয়ান করা ୨ । କଥା କହିବା—To speak. ୩ । ଡନ୍ନ ତନ୍ନକରି
**बयान करना** ବ୍ୟାଖ୍ୟା କରିବା—3. To expatiate upon; to
explain. ୪ । କିଛିଦିନ ପାଇଁ (ବର୍ଷା) ବନ୍ଦ କରିବା—
4. To stop; to cease for a time.
(ଯଥା—ଦୁଇଦିନ ହେଲା ବର୍ଷା ବୟାନ କରିଛି)

ବୟାମ୍—ଦେ. ବି. (ସଂ. ବହ୍ ଧାତୁ)—ଚିନା ମାଟିର ବଡ଼ମୁହାଁ ବୋତଲ-
Bayām A wide-mouthed bottle or jar made of
বোয়াম **बयाम, बोयाम** porcelain or china clay.
[ ଦ୍ର—ଏଥିରେ ଆଚାର ଆଦି ରଖାଯାଏ ।]

ବୟାର—ଦେ. ବି. (ସଂ. ବାୟୁ)—ବତାସ; ତୋଫାନ; ପ୍ରବଳ ବାୟୁ; ଝଡ଼-
Bayāra বাতাস **बयार[रा]** Tempest; gale.
ପ୍ରାଦେ (କଟକ) ବି—ଝାଡ଼ା ବାନ୍ତି—Cholera.

ବୟାରିଆ—ଦେ. ବିଣ—ତୋଫାନିଆ; ପ୍ରବଳବାୟୁଯୁକ୍ତ (ଋତୁ)—
Bayāriā বাতাসে **बयारिया** Tempestuous (weather)

ବୟା(ୟାଁ)ଲ୍—ବିଣ. ପୁଂ. (ସଂ. ବାଚାଳ)—ଯେ ଗୁଡ଼ାଏ ବୟାନ୍ କରେ;
Bayā(yāñ)l ବାବଦୂକ; ଯେ ଗୁଡ଼ାଏ ଗପେ; ବାଚାଳ—
[ବୟା(ୟାଁ)ଲୀ—ସ୍ତ୍ରୀ] বকুয়া **बकवादी** Talkative; garrulous.

ବୟାଳିଶ(ଶି)—ଦେ. ବି ଓ ବିଣ (ସଂଖ୍ୟାବାଚକ) (ସଂ. ଦ୍ୱିଚତ୍ୱାରିଂଶତ୍,
[Bay]āñlisa(si) ପ୍ରା. ବି ଚତ୍ତାଲିସୀ)—ଦୁଇ ଅଧିକ ଚାଳିଶ, ୪୨—
**[ब]यालीस** 42; Fortytwo.

ବୟାଶି—ଦେ. ବି ଓ ବିଣ. (ସଂଖ୍ୟାବାଚକ)—ବୟାଅଶୀ (ଦେଖ)—
Bayāsi Bayā-asi (See)
ବୟାଶୀ ପଦେ ଛନ୍ଦ ପ୍ରାନ୍ତ । ଭଞ୍ଜ, ବୈଦେହୀଶବିଳାସ ।
ପ୍ରାଦେ. (ବାଲେଶ୍ୱର) ବି—ଚାଷୀର ଖଳାରୁ ମହଣ ଦରରେ
ଧାନ କିମ୍ବା ଚାଉଳ ଆଣିଲେ ଦୁଇମହଣ ସ୍ଥଳରେ ବୟାଶୀ ସେର
ମିଳେ, ପ୍ରତ୍ୟେକ ମହଣରେ ମିଳିବା ଏହି ଅଧିକା ଏକସେର—
The extra seer per maund given to the purchaser of two maunds purchased from the threshing floor of a husbandman.
[ ଦ୍ର—ଯଥା ମହଣେ ଦରରେ ମୋତେ ୧ ସେର ବୟାଶି ମିଳିବ । ]

ବୟିବା—ଦେ. କ୍ରି. (ସଂ. ବ୍ୟୟ)—୧ । ବଏ କରିବା (ଦେଖ)—
Bayibā 1. Bae-karibā (See) ୨ । ବ୍ୟୟ କରିବା—2 To spend.

ବୟୋଗତ—ସଂ. ବିଣ. ପୁଂ. (୨ୟା ତତ୍, ବୟଃ+ଗତ)—ବୃଦ୍ଧ—
Bayogata (ବୟୋଗତା—ସ୍ତ୍ରୀ) Aged; old.

ବୟୋତୀତ—ସଂ. ବିଣ. ପୁଂ. (ବୟଃ+ଅତୀତ)—ବୃଦ୍ଧ—Aged; old.
Bayotīta (ବୟୋତୀତା—ସ୍ତ୍ରୀ)
[ ଦ୍ର—ସଂସ୍କୃତରେ ଏ ଶବ୍ଦ ବୟୋଽତୀତ ରୂପେ ଲେଖାଯାଇ
ୟୋ ଏବଂ ତୀ ମଧ୍ୟରେ ଲୁପ୍ତ ଅକାର ଚିହ୍ନିତ ହୁଏ । ]

ବୟୋବୃଦ୍ଧ—ସଂ. ବିଣ. ପୁଂ. (ବୟଃ+ବୃଦ୍ଧ)—୧ । ଯେ ଆପଣାଠାରୁ
Bayobṛuddha ବୟସରେ ବଡ଼—1. Elderly; senior.
(ବୟୋବୃଦ୍ଧା—ସ୍ତ୍ରୀ) ୨ । ବୁଢ଼ା; ବୟସରେ ବୃଦ୍ଧ—2. Aged; of an advanced age

ବୟୋବୃଦ୍ଧି—ସଂ. ବି. (୬ଷ୍ଠୀ ତତ୍; ବୟଃ+ବୃଦ୍ଧି)—ବୟସର ବୃଦ୍ଧି;
Bayobṛuddhi ବୟସର କ୍ରମେ କ୍ରମେ ବଢ଼ିବା—Increase of years; gradual advance in age

ବର୍ (ଧାତୁ)—ସଂ—୧ । ଅବ୍ୟକ୍ତ ବା ଅସ୍ପଷ୍ଟ ଶବ୍ଦ କରିବା—
Bar (root) 1. To make an inarticulate sound.
୨ । ଅବୋଧ୍ୟ ଭାଷାରେ କଥା କହିବା—2. To speak in a language which cannot be understood; to babble.

ବର୍ କଦମ୍—ବୈଦେ. ବି. (ଫା)—କାଶିନ୍ଦ ଆଚାର—A kind of
Bar-kadam কাসন্দী **बरकद्दम** cooked mango-pickle.

ବର୍ କରାର—ବୈଦେ. ବିଣ (କଚେରିଆ) (ଫା)—୧ । କାଏମ୍; ସୁସ୍ଥିର—
Bar-karār 1. Confirmed. ୨ । ଉପସ୍ଥିତ; ମୌଜୁଦ୍—
বরকবার **बरकरार** 2. Present; ready; in stock.

ବର୍ ଖିଲାପ୍(ଫ୍)—ବୈଦେ. ବିଣ. (କଚେରିଆ) (ଫା. ବର୍+ଆ. ଖିଲାଫ୍)—
Bar-khilāp(ph) ପ୍ରତିକୂଳ; ବିରୁଦ୍ଧ—Opposite;
বরখেলাপ **बरखिलाफ** unfavourable.
ବୈଦେ. ବି—୧ । ପ୍ରତିକୂଳତା—1. Opposition. ୨ । ତ୍ରୁଟି—2. Negligence.

ବର୍ଖୀ—ପ୍ରାଦେ. (ସମ୍ବଲପୁର) ବି—ରେଜେଇ (ଦେଖ)
Bar-khī Rejei (See)

ବର୍‌ଗାଏ(ୟ୍)—ପ୍ରାଦେ. (ଲରିଆ) ବି—ଗଉଡ଼—
Bar-gāe(y) Cowherd.

ବର୍ ତରଫ୍—ବୈଦେ. ବିଣ ( କଚରିଆ ) (ଫା. ବର୍+ଆ. ତର୍ଫ୍ )—
Bar-taraph ୧ । ଅଲଗା; ପୃଥକ୍—1. Separate. ୨ ।
बरतरफ दରଖାସ୍ତ; କାର୍ଯ୍ୟରୁ ବହିଷ୍କୃତ—2. Dismissed
**बरतरफ** or removed from service

ବର୍‌ନା—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ବଢ଼ନୀ)—ବଢ଼ିଣୀ;
Bar-nā ଝାଡ଼ୁ—Broomstick.

ବର୍‌ନାଁ(ନେଁ)ଇବା—ପ୍ରାଦେ. ( ସମ୍ବଲପୁର) କ୍ରି. (ଭୁଲ. ହି. ବାଢ଼ନା )—
Bar-nāñ(neñ)ibā ଓଳାଇବା; ଖରଡ଼ିବା—To sweep ( a house ).

ବର୍‌ପାଲ୍—ପ୍ରାଦେ. (ସମ୍ବଲପୁର) ବି—ବର ଗଛର ଓହଳ—Aerial.
Bar-pāl root of a banyan tree
[ ଦ୍ର—ଏହି ଶବ୍ଦରୁ ବରପାଲି ଗ୍ରାମର ନାମକରଣ ହୋଇ-ଅଛି । ]

ବର୍‌ବଟି—ପ୍ରାଦେ. (ସମ୍ବଲପୁର) ବି. (ସଂ. ବର୍ବଟୀ)—ଝୁଡ଼ଙ୍ଗ (ଦେଖ)
Bar-baṭi Jhurḍaṅga ( See )

ବର୍‌ବୁଡ଼ି—ପ୍ରାଦେ. (ସମ୍ବଲପୁର) ବି. ( ସଂ. ବର୍ବଟୀ )—ବରଗଡ଼ାଝୁଡ଼ୁଙ୍ଗ—
Bar-burḍi A kind of bean; Vigna Semensis.

ବର୍‌ର ବର୍‌ର ହେବା—ଦେ. କ୍ରି—କୌଣସି ଉପସ୍ଥିତ ଘଟଣାରେ ବିକୃତ
Bar-ra bar-ra hebā ବା ବିରକ୍ତିଭାବସୂଚକ ଶବ୍ଦ କରିବା—
To grumble; to whimper.

ବର୍‌ହମ୍‌ପୁଲା—ପ୍ରାଦେ. (ସମ୍ବଲପୁର) ବିଣ—ଏକଦମ୍ ପୋଲା —
Bar-ham-pulā Entirely hollow.

ବର୍‌ହା—ପ୍ରାଦେ. ( ସମ୍ବଲପୁର ) ବି—ବନ୍ୟବରାହ; ବାର୍ହା—
Bar-hā Wild boar.

ବର—ସଂ. ବିଣ. ପୁଂ. ( ବୃ ଧାତୁ=ବରଣ କରିବା+କର୍ମ. ଅ )—
Bara ୧ । ପ୍ରବର; ଶ୍ରେଷ୍ଠ; ପ୍ରଧାନ; ଉତ୍କୃଷ୍ଟ—1. Chief;
(ବରା—ସ୍ତ୍ରୀ) best; excellent.

ବଳାଇ କମ୍ବୁବର, ବାହୁରେ ଉରଉର— ଉଞ୍ଜ. ବୈଦେହୀଶବିଳାସ ।

[ ଦ୍ର—ଏହା ସାଧାରଣତଃ ଅନ୍ୟ ଶବ୍ଦ ସଙ୍ଗେ ସମାସରେ ବ୍ୟବହୃତ ହୁଏ; ଯଥା—ନୃପବର, ମିତ୍ରବର, ଯୋଷାବର, ବରପୁତ୍ର, ବରବର୍ଣ୍ଣିନୀ, ବରାଙ୍ଗ, ବରାରୋହା ଇତ୍ୟାଦି । ]

୨ । ଅଭୀଷ୍ଟ; ଇପ୍‌ସିତ—2. Wished for. ୩ । ଅଳ୍ପ—3. Little.

ସଂ. ବି—୧ । ନବବିବାହିତ ପୁରୁଷ—1. A newly married man. ୨ । ଜୋଇଁ; ଜାମାତା—2. Son-in-law. ୩ । ଭର୍ତ୍ତା; ପତି; ସ୍ୱାମୀ—3. Husband.

ବଧିଲେ ଦେବରବର ବରାରୋହା ମନେ ବର—
ଉଞ୍ଜ. ବୈଦେହୀଶବିଳାସ ।

୪ । ବିବାହାର୍ଥ ସ୍ୱୀକୃତ ପାତ୍ର—4. Bridegroom elect. ୫ । ଆଶୀର୍ବାଦ—5. Blessing ୬ । ଅଭୀଷ୍ଟ ଲାଭ ବା ପ୍ରାର୍ଥନାପୂରଣସୂଚକ ଆଶୀର୍ବାଦ ବା ପ୍ରତିଶ୍ରୁତି—6. Boon; blessing or promise for the fulfilment of one's wishes.

ପୂର୍ବେ କଠୋର ତପ କରି
ବର ମାଗିଲେ ପୁଅ ହରି—ଜଗନ୍ନାଥ. ଭାଗବତ ।

[ ଦ୍ର—୧. ଦେବତାଙ୍କଦ୍ୱାରା ବା ଅଭୀଷ୍ଟପୂରଣ କରିବାକୁ ସମର୍ଥ ବ୍ୟକ୍ତିଙ୍କଦ୍ୱାରା ନିଜର ଅଭୀଷ୍ଟ ବା ମନୋରଥ ସିଦ୍ଧିକୁ ବର ବୋଲାଯାଏ, ଯଥା—ମୁଁ ପରମେଶ୍ୱରଙ୍କୁ 'ଭାଷାକୋଷ' ପୂରଣ ବର ମାଗୁଛି । ୨ ଦେବତା ବା ଅଭୀଷ୍ଟପୂରକ ବ୍ୟକ୍ତିଙ୍କଠାରୁ ଅଣୁ ବା ଭବିଷ୍ୟତରେ ମନୋରଥ ସିଦ୍ଧିସୂଚକ ଯେଉଁ ଅଭୟବାଣୀ ବା ଆଶୀର୍ବାଦ ମିଳେ ତାକୁ ବର ବୋଲାଯାଏ, ଯଥା—ହେ ପରମେଶ୍ୱର ! ଭାଷାକୋଷର ପୂର୍ତ୍ତି ପାଇଁ ବର ମୋତେ ମିଳୁ । ୩. ପ୍ରାର୍ଥିତ ଅଭୀଷ୍ଟ ବା ମନୋରଥକୁ ମଧ୍ୟ ବର ବୋଲାଯାଏ । ]

୭ । ବାଳକ—7 Boy. ୮ । ଜାଫ୍ରାନ; କୁଙ୍କୁମ—8. Saffron. ୯ । ଶିବ; ମହାଦେବ—9. Śiba. ୧୦ । ଦେବତା ଆଦିଙ୍କ ଆଶୀର୍ବାଦରୁ ଅଭୀଷ୍ଟ ପ୍ରାପ୍ତି ବା ମନୋରଥ ସିଦ୍ଧି—10. Fulfilment of one's wishes through Divine Grace. ୧୧ । ଷିଙ୍ଗ; ଲମ୍ପଟ ବ୍ୟକ୍ତି; ରତିପ୍ରିୟକ—11. An adulterer; lecher. ୧୨ । ଜାର; ଉପପତି—12 Paramour; lover. ୧୩ । ଅସୁରବିଶେଷ—13. Name of a demon. ୧୪ । ବେଢ଼ିବା; ବେଷ୍ଟନ—14. Surrounding; encompassing. ୧୫ । ଛତାବରୀ; ଛତୌରୀ—15. Asparagus Racemosus ୧୬ । ତ୍ୱକ୍; ଚମଡ଼ା—16. Skin. ୧୭ । ଛାଲ; ବକଳ—17. Bark. ୧୮ । ଆର୍ଦ୍ରକ; ଅଦା—18. Ginger. ୧୯ । ଗୁଗ୍‌ଗୁଳ ( ହି. ଶ. )—19. Bdellium. ୨୦ । ଡାଲଚିନି ( ହି. ଶ )—20. Cinnamon. ୨୧ । ସୈନ୍ଧବ ଲବଣ ( ହି. ଶ. )—21. Rocksalt. ୨୨ । ପିୟାଳଗଛ ( ହି. ଶ. )—22. Buchanania Latifolia ( tree ). ୨୩ । ବଉଳ ଗଛ ( ହି ଶ. )—23. Mimusops Elengi ( tree ). ୨୪ । ହଳଦୀ (ହି. ଶ )—24 Turmeric. ୨୫ । ବାୟା ଚଢ଼େଇ (ହି. ଶ.)—25. The weaver bird.

ବର—ଦେ. ବି.—(ସଂ. ବଟ )—୧ । ବଟବୃକ୍ଷ—1. The
बट, बड़ banyan tree; Ficus Indica; Ficus
**बड, वर, बरगद** Bengalius.

ସଂ. ନାମ—ବଟ, ବଟପୀ, ସ୍କନ୍ଧରୁହ, ସ୍କନ୍ଧଜ, ମଣ୍ଡଳୀ, ମହାଛାୟ, ଭଙ୍ଗୀ, ଧ୍ରୁବ, ନୀଳ, ଯମ ପ୍ରିୟ, ଯକ୍ଷାବାସ, ଯକ୍ଷ ତରୁ, ପାଦରୋହଣ, କ୍ଷୀରୀ, ଶିଫାରୁହ, ରକ୍ତ ଫଳ, ଶୃଙ୍ଗୀ, ନ୍ୟଗ୍ରୋଧ, ବୃହତ୍ପାଦ, ବୈଶ୍ରବଣୋଦୟ, ବୈଶ୍ରବଣାବାସ, ବୃକ୍ଷନାଥ, ଯମପ୍ରିୟ, କର୍ମଜ, ଭଣ୍ଡୀର,

[ ଦ୍ର—ଏହା ପ୍ରସିଦ୍ଧ ବିସ୍ତୀର୍ଣ୍ଣଶାଖ ଅବରୋହବିଶିଷ୍ଟ ବୃହତ୍ ବୃକ୍ଷ । ଏହା ଉଚ୍ଚତାରେ ୧୦୦ ଫୁଟ ଓ ପରିଧିରେ ଦୁଇ ହଜାର ବର୍ଗ ଗଜ ପର୍ଯ୍ୟନ୍ତ ବଢ଼େ । ଏଥିର ସ୍କନ୍ଧରୁ ଓ ଶାଖାରୁ ଅବରୋହ ( ଓହଳ )ମାନ ବାହାରି ତଳ

ଜଟୀଲ, ଜଟାଲ, ରୋହଣ, ଅବରୋହୀ, ବହୁପାଦ, ବନସ୍ପତି । ଆଡ଼କୁ ଲମ୍ବି ଭୂମିରେ ସଂଲଗ୍ନ ହୁଏ । ଏ ଗଛର ପଲ୍ଲବ କୋମଳ ଓ ଲୋମଶପୃଷ୍ଠ । ଫଳଗୁଡ଼ିକ ଶ୍ରେଷ୍ଠ ବରକୋଳି ପରି ଗୋଲ ଓ ପାଚିଲେ ଟୋପା ନାଲିଆ ଦିଶେ । ଫଳ ମଧ୍ୟସ୍ଥ ଅସଂଖ୍ୟ ବୀଜ ହଳଦିଆ ଓ ରେଣୁବତ୍ । ଗୋଟିଏ ଫଳରେ ବହୁସହସ୍ର ବୀଜ ଥାଏ । ଡିମ୍ବିରି ଓ ଓସ୍ତ ପରି ଏହାର ଫଳରେ ଫୁଲ ଥାଏ । ଏ ଫଳକୁ ( ନାମ୍ବ ଫଳ ପରି ) କୁଆମାନେ ଖାଇ ହଗିଲେ ସେହି ମଞ୍ଜିରୁ ଗଛ ଉଠେ । ମଞ୍ଜିମାନ ପଥର ଦେଉଳ, କାନ୍ଥ, କୋଠା ଛାତ, ଅନ୍ୟ ବୃକ୍ଷ ( ଯଥା—ତାଳ, ଖଜୁରି, ଆମ୍ବ )ର କୋରଡ଼ରେ ପଡ଼ି ବା ଲାଗିରହି ବଡ଼ ବଡ଼ ଗଛ ଜନ୍ମେ । ବରଗଛର ଚେର ଦେଉଳ, କୋଠା ଆଦିର କାନ୍ଥ ସନ୍ଧିକୁ ଭେଦ କରିବା ଓ ପଥର ଇଟା କାନ୍ଥକୁ ଫଟାଇବା ଦେଖାଯାଏ । ଅନ୍ୟ ବୃକ୍ଷର କୋଟରରୁ ଗଛ ଉଠି ଗଛର ଚେର ଉକ୍ତ ଗଛକୁ ଚିପି କରି ମାରିପକାଏ । ବରଗଛର ଡାଳ ନେଇ ପୋତିଲେ ତାହା ବଞ୍ଚି ଗଛ ହୁଏ ।

ଅତି କ୍ଷୁଦ୍ର ବର ବୀଜରୁ ମହା ପ୍ରକାଣ୍ଡ ବୃକ୍ଷ ଜନ୍ମେ । ଗୋଟିଏ ଗୋଟିଏ ଗଛର ବିସ୍ତୃତ ଡାଳମାନ ପ୍ରକାଣ୍ଡ ଭୂଖଣ୍ଡକୁ ଆବୃତ କରେ ଓ ଏଥିର ଲମ୍ବ ଡାଳମାନଙ୍କରୁ ଓହଳମାନ ଭୂମିକୁ ଲାଗି ଉକ୍ତ ଡାଳମାନଙ୍କୁ ସମ୍ଭାଳି ଟେକି ଧରେ । କାଳକ୍ରମେ ଉକ୍ତ ଓହଳମାନ ଗଛର ଗଣ୍ଡି ରୂପେ ପରିଣତ ହୁଏ । ଏ ଗଛ ପତ୍ରଗହଳ ଥିବାରୁ ଛାୟା ପାଇଁ ଲୋକେ ଏହାକୁ ହାଟ, ବାଟ ଓ ରାଜପଥ ପାଖରେ ଲଗାନ୍ତି । ହିନ୍ଦୁମାନେ ଏ ଗଛକୁ ପୂଜା କରନ୍ତି । ଏହାର ପତ୍ର ବସନ୍ତକାଳରେ ଝଡ଼ି ପଡ଼େ, ପୁଣି ନୂଆ ପତ୍ର କଅଁଳେ । ଲୋକେ ବର ଓ ଅଶ୍ୱତ୍ଥ ଗଛକୁ ଏକ ସଙ୍ଗରେ ଲଗାଇ ବର ଗଛକୁ କନ୍ୟା ଓ ଅଶ୍ୱତ୍ଥ ଗଛକୁ ବର କଳ୍ପନା କରି ବିଭା କରାନ୍ତି ଓ ହିନ୍ଦୁମାନେ ଏହି ବର ଓସ୍ତ ବିଭାକୁ ଧର୍ମ କାର୍ଯ୍ୟ ବୋଲି ଗଣନା କରନ୍ତି; କିନ୍ତୁ ଛାୟାଦାନ ପାଇଁ ବର ଓ ଓସ୍ତ ଗଛ ଲଗାଇବା ଏଥିର ମୌଳିକ ଉଦ୍ଦେଶ୍ୟ । ବରଅଠା ଔଷଧରେ ଲାଗେ । ବର ଡାଳକୁ ହାତୀ ଖାଆନ୍ତି ଓ ବରକାଠ ଜାଳ ହୁଏ । ଗରିବ ଲୋକମାନେ ବର ଡାଳରେ ଘରର ଖୁଣ୍ଟ କରନ୍ତି । ବରଗଛ ବହୁକାଳ ବଞ୍ଚେ । ବିଶେଷ ବିଶେଷ ବରଗଛକୁ ଲୋକମାନେ ଭିନ୍ନଭିନ୍ନ ସ୍ଥାନୀୟ ନାମରେ ଡାକନ୍ତି ଯଥା—କାଉଁରି ବର, ଫାସିଦିଆ ବର, ଯୋଗିଆ ବର, ବିଶ୍ୱର ବର ଇତ୍ୟାଦି । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଶୀତବୀର୍ଯ୍ୟ, ଗୁରୁ, ଧାରକ, ବର୍ଣ୍ଣ ପ୍ରସାଦକ ଓ କଷାୟ ରସ ଓ କଫ, ପିତ୍ତ, ବ୍ରଣ, ଦାହ, ତୃଷ୍ଣା, ମେହ ଓ ଯୋନିଦୋଷନାଶକ । ଏକ ପ୍ରକାର ବରଗଛର ଡାଳମାନ ଲଟା ପରି କଅଁଳ ଓ ଡାଳର ଅଗମାନ ନଇଁ ପଡ଼ି ଥାଏ । ବର ଜାତୀୟ ଏକ ପ୍ରକାର ଗଛର ଅଠାରୁ ରବର ହୁଏ ।]

ଦେ. ବିଶେ ବିଣ—ମହାନ୍; ଅତ୍ୟନ୍ତ—Very; very much.

ବର ଉନ୍ନତ ଉନ୍ନତ ଉପମା ବହାନ
ବହିତ କରିଛ ବହି କବିଭ ବଚନ—ଉପେ. ବୈଦେହୀଶବିଳାସ ।

ଗ୍ରା. ବି.—(ବାଉରି କଣ୍ଡରା ଆଦି ନୀଚ ଜାତିଙ୍କ ଉଚ୍ଚାରଣ ଦୋଷରୁ ଲ ସ୍ଥାନରେ ର ଉଚ୍ଚାରଣ)—୧ । ବଳ—1. Strength. ୨ । କ୍ଷମତା—2. Power.

ସଂ. ପ୍ରତ୍ୟୟ (ସଂ. ବରଟ୍)—ବିଶିଷ୍ଟାର୍ଥ ଓ ଅତ୍ୟନ୍ତାର୍ଥବୋଧକ ପ୍ରତ୍ୟୟ—(meaning) A suffix; greatly. (ଯଥା—ଭାସ୍ୱର, ଜିତ୍ୱର ।)

ବର ଓସ୍ତ—ଦେ· ବି.—(ସଂ. ବଟ+ଅଶ୍ୱତ୍ଥ)—ବର ଗଛ ଓ ଅଶ୍ୱତ୍ଥ ଗଛ—The banyan tree and the religious fig tree.
Bara osta
বট অশ্বথ **बर पिपल** (ବର ଓଶସ୍ତ—ଅନ୍ୟରୂପ)

ବର ଓସ୍ତ ବିଭା—ଦେ. ବି.—(ସଂ. ବଟ+ଅଶ୍ୱତ୍ଥ+ବିବାହ)—ନିକଟରେ ଲଗାଲଗି ହୋଇ ରୋପିତ ହୋଇଥିବା ବା ମନକୁ ଉଠିଥିବା କନ୍ୟାରୂପେ କଳ୍ପିତ ବର ଗଛ ସଙ୍ଗେ ବର ରୂପେ କଳ୍ପିତ ଅଶ୍ୱତ୍ଥ ବୃକ୍ଷର କାଳ୍ପନିକ ବିବାହ ଉପଲକ୍ଷରେ ଅନୁଷ୍ଠିତ ଉତ୍ସବ—A mock marriage ceremony performed between a banyan and a religious fig tree planted side by side.
Bara osta bibhā
ବର ଓସ୍ତ ବାହା } —ଗ୍ରାମ୍ୟରୂପ
ବର ଓସ୍ତ ଭଥା }
বট অশ্বথ বিবাহ
**बरपिपलकी सादी**

[ଦ୍ର—ଏ ବିବାହ ଅନୁଷ୍ଠାନରେ ହଳଦିଆ ସୂତା ଏ ଦୁଇ ଗଛର ଗଣ୍ଡିର ପାଖେ ବେଢ଼ାଇ ଦିଆଯାଏ ।]

ବର ଓହ(ହୋ)ଳ—ଦେ. ବି.—(ସଂ. ବଟ+ଅବରୋହ )—ବରଗଛର ଶାଖାରୁ ଯେଉଁ ଚେରମାନ ବାହାରି ତଳକୁ ମୁହାଁଏ—The aerial roots which a banyan tree throws out towards the ground from the branches.
Bara oha(ho)la
বটের ঝুরি
**बरगदका जटा**

ବରଂ—ସଂ. ଅ.—(ବୃ ଧାତୁ=ଆବରଣ କରିବା+ଅମ୍)—୧ । ଏକ ପକ୍ଷରେ—1. On the one hand.
Barm̐ **बरन**
(ବରଂଚ—ଅନ୍ୟରୂପ)

ବରଂ ନିବାସ ଭଲ ରଣ କ୍ଷେତ୍ରରେ,
ଭୟରେ ସଦା ଯହିଁ ହୃଦୟ ଥରେ,
କିନ୍ତୁ ଏ ଗ୍ରାମ ସ୍ଥଳେ ରାଜ୍ୟ ପ୍ରାପତି
ଅଟଇ ମୋ ବିଚାରେ ଅଧମ ଗତି ।
ମଧୁସୂଦନ. ନର୍କଜ ଦ୍ୱୀପରେ ନିର୍ବାସିତର ବିଳାପ ।

୨ । ଅଧିକନ୍ତୁ—2. Moreover. ୩ । ଅପେକ୍ଷାକୃତ ଉତ୍କୃଷ୍ଟ ବା ଉତ୍ତମ—3. Rather good. ୪ । ଇଚ୍ଛାର ବିଷୟୀଭୂତ—4. Desirable.; optional ୫ । ଅନ୍ୟ ବିଷୟ ଅପେକ୍ଷା ଶ୍ରେୟସ୍କର—5. Preferable to anothe matter.

ବରକ୍—ବୈଦେ. ବି. (ଆ)—୧ । ପତ୍ର; ପର୍ଣ୍ଣ—1. Leaf of a tree. ୨ । ପୁସ୍ତକର ପତ୍ର—2. Leaf of a book. ୩ । ସୁନା ରୁପାର ଖୁବ୍ ପତଳା ପତ୍ର; ତବକ (ଯାହା ମିଠାଇ ଆଦି ଉପରେ ଜଡ଼ା ଯାଏ)—3. Very thin leaf of gold or silver.
Barak
বরক
**बरक**

ବରକ—ସଂ. ବିଣ· ପୁଂ. (ବୃ ଧାତୁ+କର୍ତ୍ତୃ. ଅକ)—୧ । ବରଣକାରୀ—1. Choosing. ୨ । କନ୍ୟାର ବିବାହପ୍ରାର୍ଥୀ—2. Wooing; asking a female in marriage;
Baraka
(ବରିକା—ସ୍ତ୍ରୀ)

ସଂ. ବି—୧ । ଆଚ୍ଛାଦନ ବସ୍ତ୍ର—1. A covering cloth; cloak. ୨ । ଛନା ଧାନ୍ୟ—2 A kind of fine grain. ୩ । ବନ୍ୟ ମୁଦ୍ଗ (ପ୍ରକୃତିବାଦ)—3. A wild pulse. ୪ । ପୋତାଚ୍ଛାଦନ (ପ୍ରକୃତିବାଦ)—4. A covering for a ship ୫ । ପ୍ରିୟଙ୍ଗୁ (ଦ୍ର. ଶ)—5. Priyangu (See) ୬ । ବନ୍ୟ ବଦର (ଦ୍ର. ଶ)—6 Wild jujube (tree). ୭ । (ବର+ସ୍ୱାର୍ଥେ. କ) ବର; ଅଭୀଷ୍ଟ ଫଳ—7. Boon (Apte) ୮ । କନ୍ୟାର ବିବାହ ପ୍ରାର୍ଥୀ ବ୍ୟକ୍ତି—8, Suitor; one who asks a female in marriage; wooer (Apte). ୯ । (ବୃ ଧାତୁ+କରଣେ. ଅକ) ଗାମୁଛା; ଭଉଲିଆ—9. A towel; wiper (Apte). ୧୦ । (+କର୍ମ. ଅକ) ବନ୍ୟ ଶିମ୍ବିବିଶେଷ—10. A kind of wild bean (Apte).

**ବରକତ(ତି)**—ବୈଦେ. ବି. (ଆ. ବରକତ୍=ବୃଦ୍ଧି)—୧ । ପ୍ରାଚୁର୍ଯ୍ୟ—Barakata(ti) बरकत **बरकत** 1. Plenty. ୨ । ସୌଭାଗ୍ୟ—2. Good fortune. ୩ । ମଙ୍ଗଳ—3. Bliss ୪ । ଉନ୍ନତି; ଶ୍ରୀବୃଦ୍ଧି; ବଢ଼ନ୍ତି—4. Prosperity.

ନଯ୍ସରେ ବରକତ; ନଯ୍ସରେ ବରକତ=ଭଗ ।

୫ । ସଫଳତା—5. Success. ୬ । ବୃଦ୍ଧି—6. Increase. ୭ । ପୂର୍ଣ୍ଣତା—7. Fullness; completion.

**ବରକତି**—ବୈଦେ. ବିଣ. (ଆ. ବରକତି)—୧ । ଭାଗ୍ୟବାନ—Barakati बरकते **बरकती** 1. Lucky; fortunate; (ବରକତିସ୍ୱା—ଅନ୍ୟରୂପ) ୨ । ଶ୍ରୀବୃଦ୍ଧିଶାଳୀ—2. Prosperous; ୩ । ପ୍ରାଚୁର୍ଯ୍ୟପୂର୍ଣ୍ଣ—3. Full of plenty.

**ବର କନିଆଁ**—ଗ୍ରା. ବି. (ବିପରୀତ ଲିଙ୍ଗ ସହଚର; ବର+କନ୍ୟା)—Bara kaniāṅ ବର କନ୍ୟା (ଦେଖ)—Bara kanyā (See) वर कने **दुल्हा दुल्हिन, बनरा बनरो**

**ବରକନ୍ଦାଜ୍**—ବୈଦେ. ବି. (ଆ ଓ ଫା. ବର୍‌କନ୍ଦାଜ୍; ଆରବୀ ବରକ୍ Barakandāj =ବିଦ୍ୟୁତ୍, ବଜ୍ର ବା ଆଗ୍ନେୟାସ୍ତ୍ର+ଆନ୍ଦାଜ୍ बर कन्दाज, सापाही ପ୍ରତ୍ୟୟ=ନିକ୍ଷେପକ; ବଜ୍ର ନିକ୍ଷେପକ ଯୋଦ୍ଧା; **बर कन्दज** ଯେ ଆଗ୍ନେୟାସ୍ତ୍ର ବା ବନ୍ଧୁକ ଧରି ପ୍ରଭୁଙ୍କ ସଙ୍ଗରେ ଯାଏ ।

ବର କନାର, ବର୍କନାଜ୍(ଜ୍), ବରକନାଜ୍(ଜ୍) } ଅନ୍ୟରୂପ ତୁଳନା କର ସଂ. ପରିଷନ୍ଦ=ଅଙ୍ଗ; ପୁରର ରକ୍ଷକ)—୧ । ଚପରାସୀ; ପିଆଦା—1. Peon.

ଦେଇ ଦାନ ନାନା ସଜା ସବୁ କାଢ଼ ଭୁଲ କନାଇବାହାର
ହୋଇଲେ ବରକନ୍ଦାଜ । ବ୍ରଜନାଥ. ସମର ତରଙ୍ଗ ।

୨ । ଅର୍ଦ୍ଦଳୀ; କନଷ୍ଟବଲ୍—2. An orderly.; constable.

× × × ଲଭ କଶାରୁ ସୁଷ୍ଠାବ ମୁନସି ଜମାଦାର
ବରକନ୍ଦାଜ ସକାଶେ ନେବାରତ ସ୍ୱଭାବତ କଥା ।
ଫକୀରମୋହନ. ଛଅମାଣ ଅଠଗୁଣ୍ଠ ।

୩ । ସିପାଇ; ପଦାତିକ—3. A foot soldier. ୪ । ବନ୍ଧୁକଧାରୀ ପ୍ରହରୀ—4. A watchman armed with a gun. ୫ । ଯଷ୍ଟିଧାରୀ ପ୍ରହରୀ—5. A guardsman armed with a baton.

**ବର କନ୍ୟା**—ସଂ. ବି—୧ । (ଦ୍ୱନ୍ଦ୍ୱ) ବରପାତ୍ର ଓ କନ୍ୟାପାତ୍ର—Bara kanyā 1 Bridegroom elect and bride elect. ୨ । ନବବିବାହିତା ପୁରୁଷ ଓ ବଧୂ—3. Bridegroom and bride ୩ । (କର୍ମଧା) ଉତ୍କୃଷ୍ଟା କନ୍ୟା ବା ବିବାହିତା ସ୍ତ୍ରୀ—3. An excellent bride or married woman.

**ବରକନ୍ୟା ପ୍ରସଙ୍ଗ**—ସଂ. ବି—କୌଣସି ବିବାହଯୋଗ୍ୟ ବାଳକ ପାଇଁ Barakanyā prasaṅga କନ୍ୟା, କିମ୍ବା କନ୍ୟା ପାଇଁ ବର ସ୍ଥିର କରାଯିବା ପ୍ରସ୍ତାବ—A proposal in connection with the finding out of a suitable bride for a bridegroom or vice versa.

**ବର କଲନା**—ପ୍ରାଦେ (ସମ୍ବଲପୁର) ବି—ବରଡ଼ା (ଦେଖ) Bara kaḷanā Barardā (See).

**ବର କାୟା**—ସଂ. ବିଣ. ସ୍ତ୍ରୀ—(ବହୁବ୍ରୀହି; ବର=ସୁନ୍ଦର ଅଟେ କାୟ= Bara kāyā ଶରୀର ଯାହାର)—ସୁନ୍ଦରୀ (ସ୍ତ୍ରୀ)—Beautiful; graceful (woman).

**ବରକୁଦା**—ଦେ. ବି. (ନାମ)—ଚିଲିକା ମଧ୍ୟସ୍ଥ ଗୋଟିଏ କ୍ଷୁଦ୍ର ଦ୍ୱୀପ—Barakudā A small island in the Chilkā lake. (ବଡ଼କୁଦା—ଅନ୍ୟରୂପ) [ ଦ୍ର—ଏଥିରେ ଖଲ୍ଲିକୋଟ ରାଜାଙ୍କର ଗୋଟିଏ ବଙ୍ଗଳା ଅଛି ଓ ଗୁଡ଼ିଏ ହରିଣ ଛଡ଼ାଯାଇଛନ୍ତି । ]

**ବରକୁଳି**—ଗ୍ରାମ୍ୟ. ବି—ବରକୋଳି (ଦେଖ) Barakuḷi Barakoḷi (See).

**ବରକୋଳି**—ଦେ. ବି—(ସଂ. ବଦର+କୋଳି)—ବଦରବୃକ୍ଷ ଓ ତହିଁର Barakoḷi ଫଳ—Jujube (tree and berry); Zezyphus; नारकुल्, कुल्, नारकुले कुल्, बअर Jujube. **बेर, बैर**

କର କାର ବରକୋଳି ବକଧ ପ୍ରକାରେ—
ବଳରାମ. ରାମାୟଣ. ଅଯୋଧ୍ୟା ।

| | |
|---|---|
| ସଂ.ନାମ—ବଦର, ବଦରୀ, ବଦରୀ | [ ଦ୍ର—ଏହା ନାତିଦୀର୍ଘ କଣ୍ଟକୀ |
| ବଦରିକା, କର୍କନ୍ଧୁ, କଣ୍ଟକୀ, | ତରୁ; ପତ୍ରର ନିମ୍ନପୃଷ୍ଠ ଲୋମଶ ଓ |
| କୋଳ, କୋଲ, ଫେନିଲ, | ଧଳା; ଫଳ ପ୍ରାୟ ଗୋଲ । ଏକ- |
| କୁବଲ, ଘୋଣ୍ଟା, ସୌବୀର, | ପ୍ରକାର ବରକୋଳି ନଡ଼ିଆ ଫଳ |
| ବକ୍ର କଣ୍ଟକା | ଭଳି ଅଣ୍ଡାକାର ଅଟେ । ଏହାର |
| ମ. ବୋର୍ | ଫଳ ପାଚିଲେ ଈଷତ୍ ମିଷ୍ଟ ଓ ଅମ୍ଳ |
| ତେ. ରେଗୁଚେଟ୍ଟୁ, ରେଂଘ | ଲାଗେ । ଏହାର ମଞ୍ଜି ଟାଣୁଆ । |
| ତା. ଇଲନ୍ଦି | ପାଚିଲା ଫଳକୁ ଲୋକେ ଆଗ୍ରହ |
| ଗୁ. ବୋରଡ଼ୀ | କରନ୍ତି । ବରକୋଳି ଗୁରୁପ୍ରକାର- |
| ଫା. କୁନାର | ଏକପ୍ରକାର ବରକୋଳି ଗଛର |
| ଆ. ସୀଦର୍, ନବକ୍ | ଫଳ ଗୋଲ ଓ ମଞ୍ଜି ବଡ଼; ଅନ୍ୟ |

ପ୍ରକାର ବରକୋଳି ମାଂସଳ ଓ ଏହାର ଷାଇ କ୍ଷୁଦ୍ର । ଆଉ ଏକ ପ୍ରକାର ବରକୋଳି ଗଛ ଅଛି ତାହା ଚକଡ଼ା ତେଲେଙ୍ଗର ଭୂମିରେ ମାଡ଼େ । ଚତୁର୍ଥ ପ୍ରକାର ବରକୋଳିକୁ ବଣବରକୋଳି କହନ୍ତି । ଏହା ବହୁ କଣ୍ଟକଯୁକ୍ତ ଓ କ୍ଷୁଦ୍ର ପତ୍ରବିଶିଷ୍ଟ । ଏ ଗୁରୁପ୍ରକାର ବର-

ବରାଙ୍ଗନା—ସଂ. ବି. ସ୍ତ୍ରୀ. (ବର=ଉତ୍ତମା, ଶ୍ରେଷ୍ଠା+ଅଙ୍ଗନା=ସ୍ତ୍ରୀ)—
Barāṅganā ୧ । ଉତ୍ତମା ସ୍ତ୍ରୀ; ଶ୍ରେଷ୍ଠା ସ୍ତ୍ରୀ—1. An excellent woman. ୨ । ସତୀ; ସାଧ୍ୱୀ—2. A chaste woman. ୩ । ଆଦର୍ଶସ୍ଥାନୀୟା ସ୍ତ୍ରୀ—3. A model woman. ୪ । ସୁନ୍ଦରୀ ସ୍ତ୍ରୀ—4 A lovely woman.

ବରାଙ୍ଗୀ—ସଂ. ବିଣ. ସ୍ତ୍ରୀ. (ବରାଙ୍ଗ+ଈ)—ବରାଙ୍ଗର ସ୍ତ୍ରୀଲିଙ୍ଗ—
Barāṅgi Feminine of Barāṅga.
ସଂ. ବି—ହଳଦୀ—Turmeric (Apte).

ବରାଜୋର(ରି)—ଦେ. ବି. (ହି. ବରଜୋରୀ)—୧ । ବଳାତ୍କାର—
Barājora(ri) 1. Force. ୨ । ଜୋରଜବରଦସ୍ତି; ବଳ-
जोर जबरदस्ति ପ୍ରୟୋଗ—2. Use of force or compul-
**बरजोरी** sion; coercion.
ଦେ. ବିଣ. (ହି. ବରଜୋର୍)—୧ । ଅନ୍ୟାୟ ବଳପ୍ରୟୋଗ-
जबरदस्त କାରୀ—1. Using force. ୨ । ଯେ ଜବରଦସ୍ତି
**बरजोर** କରେ—2 Coercive. ୩ । ଜବରଦସ୍ତ; ବଳବାନ୍—3. Strong.
ଦେ. କ୍ରି. ବିଣ—ବଳପୂର୍ବକ ଜବରଦସ୍ତି କରି—Forcibly.

ବରାଟ—ସଂ. ବିଣ. (ବର=ଅଳ୍ପ+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ.
Barāṭa ଅ; ଯେ ଅଳ୍ପ ଯାଏ ଅର୍ଥାତ୍ ଯାହାର ପ୍ରସାର ଅଳ୍ପଦୂର
(ବରାଟୀ—ସ୍ତ୍ରୀ) ପର୍ଯ୍ୟନ୍ତ)—୧ । ଅକିଞ୍ଚିତ୍କର—2. Insignificant. ୨ । ଅଳ୍ପ; କ୍ଷୁଦ୍ର; ଛୋଟ—2. Small; little.
୩ । ଛାର; ହେୟ—3. Negligible.
ସଂ. ବି—୧ । କଉଡ଼ି—1. Cowrie; shell-money.
ବିକ କରି ନଥିନ୍ତି ଗଣି ବରାଟକୁ । କୃଷ୍ଣସିଂହ. ମହାଭାରତ ବନ ।
୨ । ଦଉଡ଼ି—2. Rope; cord (Apte).

ବରାଟକ—ସଂ. ବିଣ. (ବର+ଅଟ୍ ଧାତୁ+ଅ; କ)—୧ । ବରାଟ; ତୁଚ୍ଛ;
Barāṭaka ଅକିଞ୍ଚିତ୍କର—1. Insignificant. ୨ । ଛୋଟ—2. Small; little.
ସଂ. ବି—୧ । କପର୍ଦ୍ଦକ; କଉଡ଼ି, ବୋଡ଼ି—1. Shell money; cowrie. ୨ । ପଦ୍ମଫୁଲର ବୀଜକୋଷ—2. The seed-vessel of the lotus flower (Apte) ୩ । ଦଉଡ଼ି—3. Rope (Apte).

ବରାଟୀ—ସଂ. ବିଣ—ବରାଟର ସ୍ତ୍ରୀଲିଙ୍ଗ—Feminine of Barāṭa,
Barāṭi ସଂ. ବି—୧ । କପର୍ଦ୍ଦକ; କଉଡ଼ି—1. Shellmoney.
୨ । ରଜ୍ଜୁ; ଦଉଡ଼ି—2. Rope; string. ୩ । ବରାଡ଼ୀ (ଦେଖ)—3. Barārḍi (See)

ବରାଡ଼ାଲୁ—ପ୍ରାଦେ. (ଗଞ୍ଜାମ) ବି. (ତେଲୁଗୁ)—କାନର ମଲକଡ଼ି—
Barārḍālu A kind of ear-ring.

ବରାଡ଼ି—ପ୍ରାଦେ. (ଉତ୍ତର ବାଲେଶ୍ୱର) ବି. (ସଂ. ବରଳ)—ବିରୁଡ଼ି—
Barārḍi Wasp.

ବରାଡ଼ୀ—ସଂ. ବି. ସ୍ତ୍ରୀ—ରାଗିଣୀବିଶେଷ—One of the subor-
Barārḍi dinate airs in the Hindu music.
बराड़ी [ ଦ୍ର—ବରାଡ଼ୀ ରାଗିଣୀ ବସନ୍ତ ରାଗର ୬ ରାଗିଣୀ
**बराडी** ମଧ୍ୟରୁ ଏକତମ । ]

ବରାଣସୀ—ସଂ. ବି. ସ୍ତ୍ରୀ. (ବରଣା ଓ ଅସୀ ନାମକ ନଦୀଦ୍ୱୟ ଅଛି ଯେଉଁ
Barāṇasi ସ୍ଥାନରେ)—ବାରାଣସୀ; କାଶୀ—Benares.

ବରାଣ୍ଡି—ଦେ. ବି. (ସଂ. ବରଣ୍ଡ)—ବରଣ୍ଡୀ (ଦେଖ)—
Barāṇḍi Baraṇḍi (See)

ବ୍ରାଣ୍ଡୀ ବୈଦେ. ବି. (ଇଂ. ବ୍ରାଣ୍ଡୀ)—୧ । ବ୍ରାଣ୍ଡି ନାମକ ବିଲାତି
**बराण्डी** ଉଗ୍ର ସୁରା—1. Brandy ୨ । ବିଲାତି ମଦ; ବିଦେଶୀ ମଦ୍ୟ—2. Foreign liquor.

ବରାତ(ଦ)—ବୈଦେ. ବି. (ଆ. ବରାଅତ୍=ଅନ୍ୟକୁ କାର୍ଯ୍ୟଭାର ଦେଇ
Barāt(da) ନିଜେ ମୁକ୍ତ ହେବା—ଯୋଗେଶଚନ୍ଦ୍ର; କମ୍ୱା ଫା.
बरात(द) ବରାୟ=ନିମନ୍ତେ+ଦାନ=ଦେବା ନିମନ୍ତେ କମ୍ୱା ସଂ.
भारा; सुपुर्दगी ଭାର)—୧ । କୌଣସି ବ୍ୟକ୍ତି ଉପରେ କୌଣସି
(ବରାଦ—ଅନ୍ୟରୂପ) କାର୍ଯ୍ୟର ଭାର ନ୍ୟସ୍ତୀକରଣ; କାର୍ଯ୍ୟଭାରାର୍ପଣ—
1. Commission; assignment of a duty to a certain person. ୨ । ନିୟୋଜନ; ନିୟୋଗକରଣ; କୌଣସି କାର୍ଯ୍ୟ କରିବାପାଇଁ ଆଦେଶ କରିବା—2. Direction
ଭଡ଼ଯାଏ ଚୂଡ଼ି ନୂଡ଼ି ହେଲେ ବରାଦ । ଭକାଗ—ଗୀତ ଲହରୀ ।
୩ । ବନ୍ଦୋବସ୍ତ; ନିର୍ଦ୍ଧାରଣ; ବ୍ୟବସ୍ଥା—3. Settlement;
प्रबन्ध arrangement. ୪ । ପ୍ରୟୋଜନ—4. Necessity.
नसीब ୫ । କପାଳ; ଭାଗ୍ୟ; ଅଦୃଷ୍ଟ—5. Luck; fortune.
୬ । ଯେଉଁ ଚିଠିଦ୍ୱାରା ପ୍ରେରକ ଛଡ଼ା ଅନ୍ୟ କୌଣସି ବ୍ୟକ୍ତିକୁ ଟଙ୍କାଆଦି ଗ୍ରହଣ କରିବା ସକାଶେ କ୍ଷମତା ଦିଆଯାଏ—6. Letter of authority to a person to receive from or give to any person any amount or article; letter of assignment; payment order. ୭ । କୌଣସି ପଣ୍ୟାଦି ପଠାଇବା ପାଇଁ ବ୍ୟବସାୟୀ ନିକଟ ପଠାଯିବା ହୁକୁମ; ଫରମାସ—7. A business-order for the
बराती supply of an article. ୮ । ହୁଣ୍ଡି—8. Hoondi.
हुण्डी ୯ । ଚିଠି; ହୁକୁମନାମା; ଆଦେଶପତ୍ର; ପରୁଆନା—9. Order; warrant; writ.

ବରାତ୍ କରିବା—ଦେ. କ୍ରି—୧ । କାର୍ଯ୍ୟର ଭାର କୌଣସି ବ୍ୟକ୍ତିଠାରେ
Barāt karibā ଅର୍ପଣ କରିବା—1. To assign a work
बरात करा to a certain person, to commission a
**सुपर्द करना** person to do a particular act. ୨ । ଆଦେଶ କରିବା—2. To direct. ୩ । କୌଣସି ବ୍ୟକ୍ତିକୁ ଟଙ୍କା ଆଦି ଦେବା ନିମନ୍ତେ ଚିଠି ଲେଖିବା—3. To write a letter of assignment ୪ । ନିର୍ଦ୍ଧାରଣ କରିବା;
**तय करना** ସ୍ଥିର କରିବା—4. To settle.

ବରାତ—ବୈଦେ. ବି. (ହିନ୍ଦିରୁ ଅନୁକୃତ; ସଂ. ବରଯାତ୍ରା)—୧ । ବିବା-
Barāta ସମ୍ବନ୍ଧବ୍ୟାପାରରେ ବିବାହାର୍ଥୀ ବରର ଶୋଭାଯାତ୍ରା;
वरयात्रा वरात ବରଯାତ୍ରୀଙ୍କ ଶୋଭାଯାତ୍ରା—1. Marriage
**बारात; बरात** procession or party headed by a bridegroom, going to marry. ୨ । ବରଯାତ୍ରୀ—

2. Bridegroom's friends attending a marriage party. ୩ । ଗଞ୍ଜପା ଖେଳରେ ରଙ୍ଗବିଶେଷ —3. One set of cards in a game of Gañjapā.

[ ଦ୍ର—ଗଞ୍ଜପା ତଳେ ନୋଟ୍ ଦେଖ । ]

ବରାତି(ଦି)—ବୈଦେ. ବଣ. (ଆ)—୧ । ଯାହା ବରାଦ କରାହୋଇ-
Barāti(di) ଅଛି—1. Directed; assigned; ordered.
ବରାତୀ ୨ । ନିର୍ଦ୍ଧାରିତ—2. Ascertained; fixed.

ବରାତି(ଦି) ଚିଠି—ଦେ. ବି—୧ । ଅର୍ଥାଦି ଗ୍ରହଣ କରିବାର ଭାର; ଅର୍ପଣ-
Barāti(di) chiṭhi ପତ୍ର—1. Letter of assignment.
बराती चिट्ठी हुण्डी; चिट्ठी ୨ । ହୁଣ୍ଡି—2. Hoondi

ବରାତି(ଦି) ଚେକ୍—ବୈଦେ. ବି (କଚିରୀଆ)—(ଆ. ବରାତ+ଇଂ.
Barāti(di) chek ଚେକ୍ )—ଯେଉଁ ଚେକ୍‌ଦ୍ୱାରା କୌଣସି
बरातीचेक ବ୍ୟକ୍ତିଙ୍କୁ କିମ୍ବା ତାଙ୍କ ଆଦେଶ ଅନୁସାରେ ଟଙ୍କା
चेक ଦିଆଯିବାପାଇଁ ଲେଖାଯାଇଥାଏ—A cheque payable to order.

ବରାଦି ମାଲ—ବୈଦେ. ବି (ମହାଜନୀ) (ଆ)—ଯେଉଁ ମାଲ ବା ଦ୍ରବ୍ୟ
Barādi māla ପାଇଁ ଆଦେଶ ଦିଆଯାଇଥାଏ—Ordered
बराती माल article.

ବରାନନା—ସଂ. ବଣ. ସ୍ତ୍ରୀ—(ବହୁବ୍ରୀହି; ବରାନନ+ଆ)—ସୁନ୍ଦର ମୁଖ-
Barānanā ବିଶିଷ୍ଟା ସ୍ତ୍ରୀ—A woman having a fair face; a lovely faced woman.

ବରାଣ୍ଡା—ଦେ. ବି. (ସଂ. ବରଣ୍ଡ)—(ଶିଳ୍ପଶାସ୍ତ୍ର) ଗୃହ ଘର ଛତର କାଠ
Barāṇḍa କାମ—Wood work of the thatch frame.

ବରା ପୁଆ—ଦେ. ବି.—(ସଂ. ବଟକ+ପୂପ)—ବରା ଗୁଲଗୁଲା (ଦେଖ)
Barā puā Barā gulgulā (See)

ବରାବର—ବୈଦେ. ଅ. (ଫା. ବରାବର)—୧ । ପରି; ତୁଲ୍ୟ; ସଦୃଶ;
Barābara ସମଭାବରେ—1. Alike; like.
बराबर(रि) ଭଗବାନ କରଣ ବରାବର ଚରଣ
बराबर ନଖାଂଶୁ ସୁରେଶ ବୈଶ ଭରଣ ହେ । କବିସୂର୍ଯ୍ୟ: କଣେ ସରଖୁ ।

ବରାବର
ବୋରାବର } — ଅନ୍ୟରୂପ ୨ । ସମାନ ଭାବରେ—2. Uniformly; equally.
ବୋରାବର

କ୍ଷୀର ଖାଇ ସୁଧାଂଶୁ କେ ଉବ ତାର ମୀନ ବରାବରେ ଖେଳିବା ।
କବିସୂର୍ଯ୍ୟ. ଉଦ୍ଧାକରଚନ୍ଦ୍ର.

୩ । ସଙ୍ଗେ ସଙ୍ଗେ ବା ସମାନ୍ତର ଭାବରେ—3. A breast; running parallel to. ୪ । ଏକଦମ୍—4 At once. ୫ । ସମ୍ମୁଖରେ—5 In front.

୬ । ସମ୍ପୂର୍ଣ୍ଣରୂପେ—6. Fully; completely.

ବଶ୍ରୀଖଣକୁ ବିଶ୍ୱାସ କରିବାକୁ ସୁଗ୍ରୀବ ବରାବର ମନା କଲ ।
ମାଳକଣ୍ଠ — ଟିଳକ ରାମାୟଣ ।

୭ । ସିଧା ସିଧା; ଏକ ରେଖାରେ—7. Straight way; directly; in a line. ୮ । ଅନବଚ୍ଛିନ୍ନରୂପେ; ସଦା-ସର୍ବଦା—8 Continually; always; all along. ୯ । ମୂଳରୁ ଶେଷ ପର୍ଯ୍ୟନ୍ତ—9. From beginning to end. ୧୦ । ପ୍ରଥମରୁ ଆରମ୍ଭ କରି—10. From the very beginning. ୧୧ । ଶେଷ ପର୍ଯ୍ୟନ୍ତ—11. To the end; to the finish. ୧୨ । ସମୀପରେ; ପାଖେ ପାଖେ—12. Contiguously. ୧୩ । ସମାନ୍ତରାଳଭାବରେ—13. Parallely. ୧୪ । ନିକଟକୁ 14 To; up to. ୧୫ । ଚିରକାଳ ପାଇଁ—15. For ever. ୧୬ । ଅତ୍ୟନ୍ତ; ଅତି—16. Very; very much.

ବୈଦେ. ବଣ.—୧ । ସମାନ—1. Similar.

ବରୁଣରେ ନାମ ରୂପ ବେନ ବରାବର ।
ତୁଳସୀ—ବଙ୍ଗ ରାମାୟଣ ଅବ ।

୨ । ସେହି ଏକା—2. Same. ୩ । ସମାନ୍ତର—3. Parallel. ୪ । ସମ୍ମୁଖରେ ଅବସ୍ଥିତ—4. Frontal

ବରାବର ହେବା—ଦେ. କ୍ରି. (ମନ୍ଦ ଅର୍ଥରେ)—କୌଣସି ମନ୍ଦ ବ୍ୟକ୍ତି
Barābara hebā ସଙ୍ଗେ ସେହି ବ୍ୟକ୍ତିର ବ୍ୟବହାରସ୍ୱରୂପ ବ୍ୟବହାର
ଲାଗାନ बराबरि करना କରିବା—To return a wicked
(ବରାବର କରିବା—ଅନ୍ୟରୂପ) person's action or words in his own coins.

(ଯଥା—ଖେଳି ଲୋକ ମତେ ଗାଳି ଦେଲା ବୋଲି ମୁଁ ତା ସଙ୍ଗେ ବରାବର ହେଲେ ଲୋକେ ମିନା ନିନ୍ଦା କରିବେ ।)

ବରାବରି—ବୈଦେ. ଅ ଓ ବଣ.— (ଆ. ବରାବରୀ=ସମାନତା)—
Barābari ବରାବର (ଦେଖ)—Barābara (See)
बराबरी ବି—୧ । ସମାନତା; ତୁଲ୍ୟତା—1. Equality;
बराबरी similarity. ୨ । ସାମ୍ମୁଖ୍ୟ—2. Front.

ବରାବରେଷୁ—ଦେ. କ୍ରି. ବଣ (କଚିରୀଆ)—(ପାରସୀ ଶବ୍ଦ ବରାବରର ବା ବରାବର ସଙ୍ଗେ ସଂସ୍କୃତ ୭ମୀ ବିଭକ୍ତି
Barābareshu
बराबरेषु ବହୁବଚନର ପ୍ରତ୍ୟୟ 'ସୁ' (ଏଷୁ) ଯୋଗ—ସମୀପେଷୁ;
सेवामे ସମୀପକୁ; ସନ୍ନିଧାନକୁ—To.

(ଯଥା—ଏ ପତ୍ର ଶ୍ରୀହରିକୃଷ୍ଣଙ୍କ ବରାବରେଷୁ ।)

[ ଦ୍ର—ଏହା ପତ୍ରାଦିର ଶିରୋନାମାରେ ଲେଖାଯାଏ ।]

ବରାବାଦ(ଦୀ)—ବୈଦେ. ବି—(ଫା. ବରବାଦ=ନାଶ; ବିନାଶ)—
Barābad(di) ୧ । ଲୋକସାନ; କ୍ଷତି—1. Loss. ୨ ।
बर्बादी ଅପବ୍ୟୟ—2. Squandering.
बरबादी ୩ । ଅପଚୟ—3. Waste.

ବଣ (ଫା ବରବାଦ୍)—୧ । ବିନଷ୍ଟ—1. Lost. ୨ । କ୍ଷତିଗ୍ରସ୍ତ—2. Put to loss. ୩ । ଅପବ୍ୟୟିତ—3. Squandered. ୪ । ଅପଚୟିତ—4. Wasted.

ବରାଭୟ—ସଂ. ବି—(ଦ୍ୱନ୍ଦ୍ୱ; ବର ଓ ଅଭୟ)—ଅଭୀଷ୍ଟ ଫଳ ଓ ଅଭୟ
Barābhaya ବଚନ—Boon and assurance of safety.

ବରାଭୟ ଦାତା—ସଂ. ବଣ. ପୁଂ—(ବର+ଅଭୟ+ଦାତା; ଦ୍ୱନ୍ଦ୍ୱ ଓ
Barābhaya dātā ୬ଷ୍ଠୀ ତତ୍)—ଯେ (ପ୍ରଭୁ ବା ଦେବତା)
(ବରାଭୟ ଦାତ୍ରୀ—ସ୍ତ୍ରୀ) ଆଶ୍ରିତ ବ୍ୟକ୍ତିକୁ ବର ଓ ଅଭୟ ପ୍ରଦାନ
କରନ୍ତି—Granting a boon and assurance of safety to a supplicant.

**ବରାଭରଣ**—ସଂ. ବି—( ବର+ଆଭରଣ )—କନ୍ୟାଦାତା ବିବାହ
Barābharaṇa ସମୟରେ ବରକୁ ଯେଉଁ ବସ୍ତ୍ରାଳଙ୍କାରାଦି ଉପଢୌକନ ଦିଅନ୍ତି; ଯୌତୁକ—Present of cloth and ornaments given to the bridegroom by the bride's parents

**ବରାମତ୍(ଦ)**—ବୈଦେ. ବି (କଚେରୀ)—( ଫା. ବରାମଦ୍=ପ୍ରାପ୍ତ )—
Barāmat(da) କୌଣସି ଫୌଜଦାରୀ ଅପରାଧଘଟିତ ବସ୍ତୁ
বরামদ କୌଣସି ସ୍ଥାନରୁ ଅନୁସନ୍ଧାନଦ୍ୱାରା ବାହାରିବା—
**बरामद** Seizure of an article from any place.
বরামদী ବୈଦେ. ବିଣ—୧ । ଜବତ—1. Seized (said of an
**बरामदी** article). ୨ । ପ୍ରାପ୍ତ (ନଷ୍ଟବସ୍ତୁ)—2. Recovered (lost property).

[ ଦ୍ର—ପୁଲିସ କର୍ମଚାରୀ ଆଦି ଖୋଜି ବାହାର କରିବା ଅପହୃତ ଧନ ଓ ବସ୍ତୁ ଆଦିକୁ ବରାମତି(ଦୀ) ମାଲ ବୋଲାଯାଏ । ]

**ବରାମତ(ଦ) କରିବା**—ଦେ. କ୍ରି ( କଚେରୀ )—( ଫା. ବରାମଦ୍ )—
Barāmata(da) karibā କୌଣସି ଅପରାଧଘଟିତ ଦ୍ରବ୍ୟକୁ
বরামদ করা ଖୋଜି ବାହାର କରିବା—To find out or
**बरामद करना** bring out an article (after search) in respect of which an offence has been committed.

**ବରାମତ(ଦ) ହେବା**—ଦେ. କ୍ରି (କଚେରୀ)—(ଫା. ବରାମଦ୍)—
Barāmata(da) hebā କୌଣସି ଅପରାଧଘଟିତ ଦ୍ରବ୍ୟ ତଲାସ
বরামদ হওয়া ପରେ ବାହାରିବା—To be seized (said of
**बरामद होना** articles for which search is made).

ହେକଲ ନଙ୍ଗରାଜଙ୍କ ପହଡ ଘର, ତିନ ହାତ ଲମ୍ବ ଚେକେ ମୋଟ ଗୋଟାଏ ତାଉଁଶଠେଙ୍ଗା ବରାମଦ ହେଲା । ଫକୀରମୋହନ—ଛମାଣଆଠଗୁଣ୍ଠ ।

**ବରାମତି(ଦି)**—ବୈଦେ. ବି ଓ ବିଣ—( ବରାମତ୍ )—ବରାମତ୍
Barāmati(di) (ଦେଖ)—Barāmat (See).

**ବରାରକ**—ସଂ. ବି—ହୀରକ; ହୀରା (ହି. ଶ)
Barāraka Diamond.

**ବରାରୋହ**—ସଂ. ବିଣ—(ବର=ଉତ୍ତମ+ଆରୋହ=ଆରୋହଣ, ଯାନ
Barāroha ଯାହାର; ବହୁବ୍ରୀହି)—୧ । ଉତ୍କୃଷ୍ଟ ଯାନାରୋହୀ—
(ବରାରୋହା—ସ୍ତ୍ରୀ) 1 Riding on an excellent conveyance. ୨ । ( ବହୁବ୍ରୀହି; ବର=ସୁନ୍ଦର+ଆରୋହ=ଶ୍ରୋଣି ଯାହାର ) ଉତ୍କୃଷ୍ଟ କଟିଯୁକ୍ତ—2. Having symetrical or beautiful waiste.

ସଂ. ବି. ପୁଂ—୧ । (ବହୁବ୍ରୀହି) ହସ୍ତିପକ; ହାତୀର ମାହୁନ୍ତ—1. A driver of an elephant. ୨ । ହସ୍ତ୍ୟାରୋହୀ ବ୍ୟକ୍ତି—2. Elephant rider. ୩ । (କର୍ମଧା) ସୁନ୍ଦର କଟିଦେଶ—3. Fine waist ୪ । ବିଷ୍ଣୁ (ହି. ଶ)—4. A name of Bishṇu.

**ବରାରୋହା**—ସଂ. ବିଣ. ସ୍ତ୍ରୀ—ବରାରୋହର ସ୍ତ୍ରୀଲିଙ୍ଗ—
Barārohā Feminine of Barāroha

ସଂ. ବି. ସ୍ତ୍ରୀ—୧ । ଶ୍ରେଷ୍ଠ ଯାନବାହିକା—1. A woman who bears a conveyance excellently, ୨ । ସୁଶ୍ରୋଣୀ—2. A woman having good or graceful buttocks. ୩ । ବରାଙ୍ଗୀ; ସୁନ୍ଦରୀ ସ୍ତ୍ରୀ—3. A paragon amongst women; a very graceful woman.

**ବରାଳ**—ସଂ. ବି—ଲବଙ୍ଗ (ହି. ଶ)
Barāḷa Clove.

**ବରାଳି**—ସଂ. ବି—ଚନ୍ଦ୍ରମା (ହି. ଶ)
Barāḷi The moon.

**ବରାଳିକା**—ସଂ. ବି. ସ୍ତ୍ରୀ—(ବରା=ଉତ୍କୃଷ୍ଟା+ଆଳିକା=ସଖୀ ଯାହାଙ୍କର;
Barāḷikā ବହୁବ୍ରୀହି)—୧ । ଦୁର୍ଗା—1. Durgā. ୨ । (କର୍ମଧା) ପ୍ରଧାନା ସଖୀ—2. Chief female companion.

**ବରାଶି(ସି)**—ସଂ. ବି—(ବର=ଉତ୍ତମ+ଅଶ୍ ଧାତୁ=ଆବରଣ କରିବା+ଇ)—ମୋଟାଲୁଗା—Coarse cloth.
Barāśi(si)

**ବରାସନ**—ସଂ ବି (କର୍ମଧା)—୧ । ଶ୍ରେଷ୍ଠ ଆସନ—1. Excellent
Barāsana or chief seat. ୨ । ସମ୍ମାନିତ ପଦ—2. Honorable seat. ୩ । (ଷଷ୍ଠୀ ତତ୍) ବିବାହ ବେଦିରେ ବର ବସିବାର ଆସନ-3 The seat for a bride groom on the marriage altar. ୪ । (ବର=ବରଣ କରିବା+ଅସନ=କ୍ଷେପଣ; ଯେଉଁ ଫୁଲକୁ ଦେବତାଙ୍କ ଉପରକୁ ବରଣ ବା ପୂଜା କରିବା ସମୟରେ କ୍ଷେପଣ କରାଯାଏ ) ଜବା; ମନ୍ଦାରଫୁଲ—4. The china rose ୫ । (ବର=ଶ୍ରେଷ୍ଠ ବ୍ୟକ୍ତି+ଅସ୍ ଧାତୁ=ଦୂରୀକରଣ+କର୍ତ୍ତୃ. ଅନ; ଯେ ପତ୍ନୀଠାରୁ ତାହାର ଶ୍ରେଷ୍ଠ ବ୍ୟକ୍ତିଙ୍କୁ ବା ସ୍ୱାମୀଙ୍କୁ ଦୂର କରେ)—ଲମ୍ପଟ ବ୍ୟକ୍ତି; ପରସ୍ତ୍ରୀଗାମୀ—5. A lecher; adulterer. ୬ । (ବହୁବ୍ରୀହି; ବର+ଆସନ; ଯାହାର ଆସନ ଗୃହର ଶ୍ରେଷ୍ଠସ୍ଥାନ ବା ଦ୍ୱାରରେ ) ଦ୍ୱାରପାଳ—6 Doorkeeper. ୭ । ନପୁଂସକ ବ୍ୟକ୍ତି (ହି. ଶ)—7. An eunoch.

**ବରାହ**—ସଂ. ବି—(ବର=ଶ୍ରେଷ୍ଠାଙ୍ଗ ବା ଥୋମଣୀ+ଆ+ହନ୍ ଧାତୁ
Barāha ଆଘାତ କରିବା+କର୍ତ୍ତୃ. ଅ; ଯେ ଥୋମଣୀରେ ଭୂମିକୁ ଆଘାତ କରେ; କିମ୍ବା ବର=ଶ୍ରେଷ୍ଠ ବସ୍ତୁ ବା ଫସଲ ଆଦି+ହନ୍ ଧାତୁ=ନଷ୍ଟ କରିବା+କର୍ତ୍ତୃ ଅ )—
(ବରାହୀ—ସ୍ତ୍ରୀ) ୧ । ବାହ୍ରା; ବନ୍ୟଶୂକର—1. Wild hog; boar. ୨ । ଶୂକର; ଘୁଷୁରି—2. Hog; pig. ୩ । ବିଷ୍ଣୁଙ୍କର ବରାହରୂପ ତୃତୀୟ ଅବତାର—3. The third incarnation of Bishṇu.

[ ଦ୍ର—ପୂର୍ବେ ଧରଣୀ ଜଳତଳେ ନିମଗ୍ନ ଥିଲା । ବିଷ୍ଣୁ ବରାହରୂପ ଧାରଣ କରି ପୃଥିବୀକୁ ଜଳମଧ୍ୟରୁ ଦନ୍ତଦ୍ୱାରା ଉତ୍ତୋଳନ କରିଥିଲେ । ଏହାଙ୍କ ଔରସରେ ଧରଣୀଙ୍କ ଗର୍ଭରୁ ନରକାସୁର ଜାତ ହୋଇଥିଲେ । ଏହି ଅବତାରରେ ବିଷ୍ଣୁ ହିରଣ୍ୟାକ୍ଷ ନାମକ ଦୈତ୍ୟକୁ ନିପାତ କରିଥିଲେ । ଏହି ଅବତାରର ଜନ୍ମଦିନ ପୌଷ ଅମାବାସ୍ୟା ବା ବହୁଳା ଅମାବାସ୍ୟା । ]

ଶ୍ୱେତ ବରାହରୂପ ଧରି, ପୃଥିବୀ ପାତାଳୁଁ ଉଦ୍ଧରି ।
ଭୂପତି—ପ୍ରେମପଞ୍ଚାମୃତ ।

୪ । ପ୍ରାଚୀନ ଦେଶବିଶେଷ—4. Name of an ancient country.

[ ଦ୍ର—ପୁରାଣୋକ୍ତ ୧୮ଟି ଦ୍ୱୀପ ମଧ୍ୟରୁ ଏହା ଗୋଟିଏ—ହି. ଶ. । ]

୫ । ପୁରାଣବିଶେଷ; ବରାହପୁରାଣ—5. Name of a Hindu mythological treatise. ୬ । ବରାହମିହିର ( ଦେଖ )—6. Barāhamihira (See).

୭ । ମୁଥା (ହି. ଶ)—7. Bulbous grass-root.

୮ । ଶିଶୁମାର ( ହି. ଶ )—8. The gangetic porpoise. ୯ । ବାରାହୀ କନ୍ଦ (ହି. ଶ), ଭୂଇଁକଖାରୁ—9. Disocorea; Ipomoea Digitata.

ବରାହକ—ସଂ. ବି—(ବରାହ+କ)—୧ । ହୀରକ; ହୀରା (ହି. ଶ)—Barāhaka 1. Diamond. ୨ । ଶିଶୁମାର ( ହି. ଶ )—2. The gangetic porpoise.

ବରାହକର୍ଣ୍ଣୀ—ସଂ. ବି—(ବରାହ+କର୍ଣ୍ଣ+ଈ)—ଅଶ୍ୱଗନ୍ଧା (ହି. ଶ) Barāha karṇṇī (ଦେଖ)—Aśwagandhā (See).
(ବରାହପର୍ଣ୍ଣୀ—ଅନ୍ୟରୂପ)

ବରାହକ୍ରାନ୍ତା—ସଂ.ବି—୧ । ବାରାହୀକନ୍ଦ, ( ହି. ଶ )—1. A bul-Barāha krāntā buous rooted creeper; Disocorea.
୨ । ଲଜ୍ଜାଳୁ ଲତା ( ହି. ଶ )—2. The Mimosa creeper.

ବରାହଜୀ—ଦେ ବି—କିଲ୍ଲା ଅଳର ପ୍ରସିଦ୍ଧ ବରାହରୂପୀ ବିଷ୍ଣୁ ବିଗ୍ରହ—Barāhajī Name of an image of the third incarnation of Bishṇu worshipped in the Killa Aul of Cuttack.

ବରାହତୀର୍ଥ—ହିନ୍ଦୁମାନଙ୍କର ତୀର୍ଥବିଶେଷ—
Barāha tīrtha A sacred place of the Hindus.
ବରାହତୀର୍ଥେ ସ୍ନାନ କଲେ ବିଷ୍ଣୁଲୋକ
ହୁଅଇ ସେଣୁ ପୁଣ୍ୟ ହୁଅଇ ଅଧିକ—କୃଷ୍ଣସିଂହ. ମହାଭାରତ ବନ ।

ବରାହ ଦାଢ଼—ଦେ. ବି. (ସଂ. ବରାହ+ଦଂଷ୍ଟ୍ରା; ବରାହ ଦାନ୍ତର ଦାଢ଼ପରି Barāha dāṛḍha ଆକୃତି ହୋଇଥିବାରୁ )—୧ । ଏକପ୍ରକାର ବନ୍ୟପୁଷ୍ପ; ବାରହାଦାଢ଼ଫୁଲ—1 A kind of wild flower.
ବାହ୍ରା ଦାଢ଼ } ଅନ୍ୟରୂପ
ବରହା ଦାଢ଼ }
୨ । ବରାହ ଦନ୍ତର ଦାଢ଼—2. The sharp edge of the tusk of a boar.
(୧+୨) ବହି ହରଣାକ୍ଷ ଛବି ଶିଶିର
ବରାହଦାଢ ଭେଦରେ ରୁଚିର । ଉପେନ୍ଦ୍ର. ବୈଦେହୀଶବିଳାସ ।

ବରାହ ଦ୍ୱାଦଶୀ—ସଂ. ବି—ମାଘର ଶୁକ୍ଳ ଦ୍ୱାଦଶୀ (ଏ ଦିନ ବିଷ୍ଣୁପୂଜା Barāha dwādaśī କରାଯାଏ)—The 12th day of the bright lunar fortnight of Māgha.

ବରାହ ନାଥ—ଦେ. ବି—ଯାଜପୁରର ବିଷ୍ଣୁଙ୍କ ବରାହ ଅବତାରରୂପୀ Barāha nātha ଦେବବିଗ୍ରହ—The famous deity of Jājpur.

ବରାହ ବ୍ୟୂହ—ସଂ. ବି—ପ୍ରାଚୀନକାଳର ସୈନ୍ୟରଚନାବିଶେଷ—Barāha byūha A kind of battle-array in ancient India.

[ ଦ୍ର—ଏଥିର ଅଗ୍ରଭାଗ ସରୁ, ମଝି ଓ ଶେଷ ଭାଗ ସ୍ଥୂଳ ହେଉଥିଲା । ]

ବରାହମିହିର—ସଂ. ବି. (ନାମ)—ଉଜ୍ଜୟିନୀ ଅଧିପତି ବିକ୍ରମାଦିତ୍ୟଙ୍କ ସଭାର Barāha mihira ନବରତ୍ନ ବା ୯ ଜଣ ଭାରତବିଖ୍ୟାତ ପଣ୍ଡିତଙ୍କ (ବରାହାଚାର୍ଯ୍ୟ—ଅନ୍ୟ ନାମ) ମଧ୍ୟରୁ ଏକତମ—One of the nine gems or Pandits or the Court of king Bikramāditya.

[ ଦ୍ର—ଏ ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିତ୍ ପଣ୍ଡିତ ଥିଲେ । ଏ ଜ୍ୟୋତିଷଶାସ୍ତ୍ରର ବିଶେଷ ଉନ୍ନତି କରିଥିଲେ । ଏହାଙ୍କ ରଚିତ ପ୍ରଧାନଗ୍ରନ୍ଥର ନାମ 'ବୃହତ୍ ସଂହିତା' । ପଞ୍ଚସିଦ୍ଧାନ୍ତିକା ନାମକ ଅନ୍ୟ ଗୋଟିଏ ଜ୍ୟୋତିଷଗ୍ରନ୍ଥ ଏହାଙ୍କ ରଚିତ । ଆର୍ଯ୍ୟଭଟ୍ଟଙ୍କ ଉଦ୍ଭାବିତ ପୃଥିବୀର ଆହ୍ନିକ ଗତିକୁ ଏ ସ୍ୱୀକାର କରି ନାହାନ୍ତି । କେହି କେହି କହନ୍ତି, ବରାହ ଓ ମିହିର ଦୁଇଜଣ ବ୍ୟକ୍ତି ଥିଲେ । ବରାହ ପିତା, ମିହିର ପୁତ୍ର ଓ ଖନା ମିହିରଙ୍କ ସ୍ତ୍ରୀ ଥିଲେ । କିନ୍ତୁ ଜଣାଯାଏ ଯେ, ବରାହ ମିହିର ଦୁଇଜଣ ବ୍ୟକ୍ତି ନୁହନ୍ତି । ଯେଉଁ ଶ୍ଳୋକରେ ବିକ୍ରମାଦିତ୍ୟଙ୍କ 'ନବରତ୍ନ'ଙ୍କ ନାମ ଉଲ୍ଲେଖ ଅଛି, ସେ ଶ୍ଳୋକରୁ ବରାହମିହିର ଜଣେ ବୋଲି ଜଣାଯାଏ । କାହାରି କାହାରି ମତରେ ବରାହମିହିର ଖ୍ରୀଷ୍ଟ ଷଷ୍ଠ ଶତାବ୍ଦୀରେ ଜୀବିତ ଥିଲେ । ବିକ୍ରମାଦିତ୍ୟଙ୍କ ରାଜତ୍ୱ କାଳ ଖ୍ରୀ ୩୭୫--୪୧୩ (ସୁବଳଚନ୍ଦ୍ର. ବଙ୍ଗଳା ଅଭିଧାନ ।

ଯୋଗେଶଚନ୍ଦ୍ର ରାୟଙ୍କର 'ଆମାଦେର ଜ୍ୟୋତିଷୀ' ଗ୍ରନ୍ଥରେ ଏହାଙ୍କ ବିଷୟରେ ନିମ୍ନଲିଖିତ ରୂପେ ଲେଖାଅଛି ।

ମଗଧ ଦେଶ (ଉତ୍ତର ପଶ୍ଚିମ ପ୍ରଦେଶ ଜର୍ଲୌନ୍ ଜିଲ୍ଲାରେ କାଲ୍ପୀ ନଗର) କାମ୍ପିଲ୍ୟ ନଗରର ଦ୍ୱିଜକୁଳରେ ବରାହମିହିର ଜାତ ହୋଇଥିଲେ । ବିକ୍ରମାଦିତ୍ୟଙ୍କ ସଭାର ନବରତ୍ନ ମଧ୍ୟରୁ ଏ ଜଣେ । ଏ ପଞ୍ଚସିଦ୍ଧାନ୍ତିକା ନାମକ ଜ୍ୟୋତିଷକରଣ ଗ୍ରନ୍ଥକୁ ରଚନା କରିଥିଲେ । ଶକାବ୍ଦ ୫ମ ଶତାବ୍ଦୀ ( ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ) ରଚିତ ଜ୍ୟୋତିଷଗ୍ରନ୍ଥରେ ବରାହମିହିର ଯବନାଚାର୍ଯ୍ୟ ଯାବନିକ ପାରିଭାଷିକ ଶବ୍ଦ ଓ ଯାବନିକ ସଂଜ୍ଞାମାନ ଉଲ୍ଲେଖ କରିଅଛନ୍ତି । ଏହାଙ୍କର ପିତା ଆଦିତ୍ୟ ଦାସ । ପୁତ୍ର ପୃଥୁଯଶା ମଧ୍ୟ ଜ୍ୟୋତିଷୀ ଥିଲେ । ]

ବରାହମୁକ୍ତା—ସଂ. ବି (ମ. ପ. କୋ)—ବରାହର ଶରୀରରୁ ପ୍ରାପ୍ତ ମୁକ୍ତା—Barāha muktā Pearl said to be got from the body of a boar.

ବରାହ ଲେଣ୍ଡି ସାରୁ—ପ୍ରାଦେ. (ବାମଣ୍ଡା) ବି—ଏକପ୍ରକାର ଛୋଟ ସାରୁ—Barāha leṇḍi sāru A species of small arum.
(ବହ୍ରା ଲେଣ୍ଡି ସାରୁ—ଅନ୍ୟରୂପ)

ବରାହ ସଂହିତା—ସଂ. ବି—ବରାହମିହିରଙ୍କ ସଙ୍କଳିତ ବୃହତ୍ ସଂହିତା Barāha saṁhitā ନାମକ ଜ୍ୟୋତିଷିକ ଗ୍ରନ୍ଥ—A name of an astronomical treatise by Barāha mihira.

ବରାହିକା—ସଂ. ବି (ବରାହ+କ+ଆ)—କପିକଚ୍ଛୁ; ବାଇଡଙ୍କ (ହି ଶ)-Barāhikā Cowhage.

ବରାହୀ—ସଂ. ବି. ସ୍ତ୍ରୀ. ( ବରାହ+ସ୍ତ୍ରୀ. ଈ )—୧ । ମାଈ ଘୁଷୁରି—
Barāhī 1. A female pig. ୨ । ବରାହୀକନ୍ଦ (ଉ. ଶ)—
2. A kind of wild yam. ୩ । ଅଶ୍ୱଗନ୍ଧା (ଉ. ଶ.) (ଦେଖ)—3. Aśwagandhā ( See ) ୪ । ଭଦ୍ରମୁସ୍ତା (ଉ. ଶ); ନାଗରମୂଥା—4. A kind of bulbuous grass-root ୫ । କୃଷ୍ଣବର୍ଣ୍ଣ ଜଳପକ୍ଷୀବିଶେଷ (ଉ. ଗୌରେଶ୍ୱ)—5. A kind of black water-cock.

ବରିଆ—ଦେ. ବି—୧ । ଅଗ୍ନି ସଞ୍ଚୟ କରିବାପାଇଁ କୁଡ଼ାରେ ବଳା ଯାଇଥିବା ଲମ୍ବା ମୋଡ଼ା; ନିଆଁଅଣ୍ଡା; ନିଆଁବରିଆ—
Bariā
খড়ের বড় 1. A plait of straw twisted to preserve fire,
লুয়াঠা; ভক
ଉଷ କରେ ଯଷ୍ଟି ବାମେ ନିଆଁ ବରିଅନ୍ତ—ସାରଳା, ମହାଭାରତ, ବନପ.
୨ । ବଣିଆ ( ଗଛ ) ( ଦେଖ )
2. Baṇiā ( gachha ( See )
ଗ୍ରା. ( ଇତର; ନୀଚ ଜାତିଙ୍କ ଉଚ୍ଚାରଣଦୋଷଘଟିତ ) ବି—ବଳିଆ ( ଦେଖ )—Baḷiā ( See )

ବରିକୁଙ୍କ—ପ୍ରାଦେ. ( ବାଲେଶ୍ୱର ) ବି—ଏକଜାତୀୟ ଧାନ—
Barikuṅka A kind of paddy.

ବରିପୋଲୁଅ—ଦେ. ବି. ( ସଂ. କଳକାରକ )—ଗିଳକାଜାତୀୟ ବୃହତ୍ ଲଟାଳିଆ ଏକପ୍ରକାର କଣ୍ଟା
Baripolua
ସଂ. କଳକାରକ, କଣ୍ଟକିରଞ୍ଜ, ପୂତିକରଞ୍ଜ, ଅମ୍ଳକରଞ୍ଜ, ସୋମବଳ୍କ ଗଛ—Caesalpina Bonducella; a species of
নাটা করঞ্জা, ডহর করঞ্জা pongamia.
कटकरंज, कायटकरेजा
[ ଦ୍ର—ଏହାର ପତ୍ର ଚିକ୍କଣ ହୁଏ । ଫଳ ଆଗୁର ହୁଏ ଓ ତା. ପେଟା କଳପ୍ଲ ଏହାର ମଞ୍ଜି ସବିଷମ ଜ୍ୱରର ଔଷଧ, ଫଳ କଣ୍ଟକମୟ । ଏହାର କୁଳିଁକୁ ବାଟି ମୁଣ୍ଡରେ ଲଗାଇଲେ ବାଳ ପରିଷ୍କାର ହୁଏ । ଗଞ୍ଜାମ ଅଞ୍ଚଳରେ ଏହାର ପତ୍ରକୁ ଗୁରୁପାଣି କରନ୍ତି । ]
ବରିପୋଲ, ବୋରପୋଲ, ବରିପଲଉ, ବୋରପୋଲଉ — ଅନ୍ୟରୂପ

ବରିବସ୍(ସି୍ୟା)—ସଂ. ବି. ( ବୃ ଧାତୁ=ସେବା କରିବା+ଭାବେ. ଇବସ୍+ଯ+ଆ )—୧ । ପୂଜା—1. Wor-
Baribas(syā) shipping. ୨ । ସେବା; ଶୁଶ୍ରୂଷା—2. Tending; service rendred to an elder; infant or invalid. ୩ । ଧନ—3. Wealth ( Apte ). ୪ । ଭକ୍ତି—4. Devotion.

ବରିବସି(ସି୍ୟ)ତ—ସଂ. ବିଣ. ପୁଂ ( ବରିବସ୍; ବରିବସ୍ୟା+ଯୁକ୍ତାର୍ଥେ. ଇତ )—୧ । ପୂଜିତ—1. Worshipped.
Baribasi(syi)ta
(ବରିବସି[ସି୍ୟ]ତା—ସ୍ତ୍ରୀ) ୨ । ସେବିତ—2. Tended; served.

ବରିବା—ଦେ. କ୍ରି. ( ସଂ. ବୃ ଧାତୁ )—୧ । ମନୋନୀତ କରିବା; ବରଣ
Baribā କରିବା—1. To choose; to select, to elect;
বরা to engage. ୨ । ସ୍ୱାମୀ ବା ସ୍ତ୍ରୀରୂପେ ବରଣ
बरना କରିବା—2. To accept as one's husband or wife.

ବହୁ ବନା ଅନ ଗନ୍ଧ ନାହିଁ ମୋ ଜଗତେ
ଅନଙ୍ଗ ନ ବରୁ ଏକା ବରବୁ ତୁ ମୋତେ — ଉପେନ୍ଦ୍ର. ଲବଣ୍ୟବତୀ ।
୩ । ମଣ୍ଡନ କରିବା—3. To adorn.
ଘନେ ବରୁ ସବୁ ସବୁ ମାଳତୀ କବଷ ବରୁ
ଧରଣୀ ଲୋକ ପ୍ରସାର ସାରୁ — ଉପେନ୍ଦ୍ର. ପ୍ରେମସୁଧାନିଧି ।

ବରି(ରୀ)ମା—ସଂ. ବି. ( ବର+ଇମନ୍; ୧ମା. ୧ବ. )—ଶ୍ରେଷ୍ଠତା—
Bari(rī)mā Excellence ( Apte ).

ବରିଲା—ପ୍ରାଦେ. ( କଟକ ) ବି—ଓଳିଆର ମୋଡ଼ା—The circular
Barilā rings of rope encircling a straw-packet for storing grains.

ବରିଶୀ—ସଂ. ବି—ବନସି; ବଢ଼ିଶ—
Bariśī Fish-hook ( Apte ).

ବରିଷଣ—ଗ୍ରା. ବି. ( ସଂ. ବର୍ଷଣ )—ବୃଷ୍ଟି—Raining.
Barishaṇa বরিষণ बरसना

ବରିଷ୍ଟ—ଗ୍ରା. ବିଣ ( ସଂ. ବରିଷ୍ଠର ଅଶୁଦ୍ଧ ପ୍ରୟୋଗ )—ବରିଷ୍ଠ (ଦେଖ)
Barishṭa Barishṭha ( See )
ପାଣ୍ଡୁପୁତ୍ର ବରିଷ୍ଟ ଲୋକଙ୍କ ସଙ୍ଗଲେ—କୃଷ୍ଣସିଂହ. ମହାଭାରତ. ଅଦ ।

ବରିଷ୍ଠ—ସଂ. ବିଣ. ପୁଂ. (ଉରୁ=ମହତ୍+ଅତ୍ୟନ୍ତ ଅର୍ଥରେ. ଇଷ୍ଠ)—
Barishṭha ୧ । ବିଶେଷ ପୂଜ୍ୟ; ପୂଜ୍ୟତମ—1. Very
( ବରିଷ୍ଠା—ସ୍ତ୍ରୀ ) honourable or adorable ୨ । ସବୁଠାରୁ ବୃହତ୍—2. Greatest. ୩ । ସର୍ବୋତ୍ତମ—3. Best.
ସଂ. ବି—୧ । ତାମ୍ର—1. Copper. ୨ । ମରିଚ—2. Black pepper, ୩ । ତିତିର ପକ୍ଷୀ—3. Sand piper; Frankoline partridge. ୪ । ନାରଙ୍ଗ ବୃକ୍ଷ—4. Sweet orange.

ବରିହା—ଦେ. ବି—ବରିଆ (ଦେଖ)—Bariā (See)
Barihā ପ୍ରାଦେ. (କଳାହାଣ୍ଡି) ବି—ବାହ୍ମା—Boar.
ପ୍ରାଦେ. (ଗଡ଼ଜାତ) ବି—ବଂଶୋପାଧିବିଶେଷ—A family title.

ବରୀ—ସଂ. ବି. ( ବୃ ଧାତୁ+କର୍ମ ଅ+ସ୍ତ୍ରୀ. ଈ )—୧ । ଶତାବରୀ—
Barī 1. Asparagus Racemosus. ୨ । ମଧୁର ତରଡ଼ା—
2. Luffa Aegytiaca; Luffa Algyptiaca. (ହରେକୃଷ୍ଣ ଦ୍ରବ୍ୟଗୁଣ) ୩ । ସୂର୍ଯ୍ୟପତ୍ନୀ; ଛାୟା—
3. Name of one of the two wives of the Sun-God.

ବରୀ(ଲୀ)ବର୍ଦ୍ଦ—ସଂ. ବି. ( ବଲୀ=ଶକ୍ତି+ବୃଧ୍ ଧାତୁ+ଭୂତ. ଇଂ.
Barī(lī)bardda ଦୃଷ୍ଟିକ୍ କର୍ତ୍ତୃ ଅ, ନିପାତନ )—ବଳଦ—
Ox (Apte); bullock.

ବରୀୟାଂସ—ଦେ. ବିଣ. (ସଂ. ବରୀୟସ୍)—ବରୀୟାନ୍ (ଦେଖ)—
Barīyāṁsa Barīyān (See)
କେଶ୍ୟର ନାମ କର୍ମଶ୍ରେଷ୍ଠ
ବିଂଶତ୍ୟ ବରୀୟାଂସ ଶ୍ରେଷ୍ଠ । ଜଗନ୍ନାଥ—ଭାଗବତ ।

**ବରୀୟାନ୍**—ସଂ. ବଣ. ପୁଂ. ( ଉରୁ+ଅତ୍ୟର୍ଥେ ଈୟସ୍; ବରୀୟସ ଶବ୍ଦ
Barīyān ୧ମା. ୧ବ. )—୧ । ଉତ୍କୃଷ୍ଟତର—1. Better;
(ବରୀୟସୀ—ସ୍ତ୍ରୀ) more excellent. ୨ । ପୂଜ୍ୟତର—2. More adorable. ୩ । ବୃହତ୍ତର—3. Largely greater. ୪ । ଅତିଉତ୍ତମ—4. Very good. ୫ । ବୟସରେ ଅତି ସାନ—4. Extremely tender or younger (Apte).

ସଂ. ବି—ଜ୍ୟୋତିଷୋକ୍ତ ବିଷ୍କୁମ୍ଭାଦି ଯୋଗ ମଧ୍ୟରୁ ଏକତମ; ଅଷ୍ଟାଦଶ ଯୋଗ—Name of an astrological conjunction.

**ବରୀଷୁ**—ସଂ. ବି—କାମଦେବ (ହି. ଶ.)—Cupid personified.
Barīshu

**ବରୁଗୁଡ଼ି**—ଗ୍ରା. ବି. (ସଂ. ବର୍ବଟୀ)—ବରଗୁଡ଼ି (ଦେଖ)
Barugurdi Baragurdi (See)

**ବରୁଣ**—ସଂ. ବି॰ (ବୃ ଧାତୁ=ବେଢ଼ିବା+ଉନ; ଯେ ପୃଥିବୀକୁ ସାଗର—
Baruṇa ଦ୍ୱାରା ବେଷ୍ଟନ କରିଅଛନ୍ତି)—୧ । ଜଳାଧିପତି; ସମୁଦ୍ରାଧିପତି ଦେବତା—1. The legendary god of the ocean.

ସଂ—ତିକ୍ତଶାକ, ଶ୍ୱେତପୁଷ୍ପ ଶ୍ୱେତଦ୍ରୁମ, ମରୁତାପହ, ଅଶ୍ମରୀଘ୍ନ
ବଙ୍ଗ, ବରୁଣ; ବରୁନ୍;
ତିକ୍ତଶାକ୍; ଗୋଡ଼ା
ବରାନା; ବରବନ୍ନା, ବରୁଣ;
ବରୁନା; ବରୁଆ; ବିଳାସୀ;
ବିଲା; ବିଲାନା
ମ, ବରୁଣ, ଲୁମ୍ଲା, କାବଙ୍କାନ୍
ତା. ମରଲିଙ୍ଗମ୍; ମାରିଲେଙ୍ଗାମ୍,
ମାରୁଭଲେଙ୍ଗା, ନାର୍ବାଲ
ତେ॰ ଉରୁମଣ୍ଟି, ଭଲମିଡ଼ି,
ଉସ୍କିଆ, ଉସିକି,
ତେଲ୍ଲଉଲିମିଡ଼ି, ଉରମିଡ଼ି

[ ଦ୍ର—ବୈଦିକଯୁଗରେ ବରୁଣ ପ୍ରଧାନ ଦେବତାରୂପେ କଳ୍ପିତ ହୋଇଥିଲେ । ତତ୍ପରେ ତାଙ୍କର ପ୍ରାଧାନ୍ୟ କମିଯାଇ ଇନ୍ଦ୍ରଙ୍କ ପ୍ରାଧାନ୍ୟ ବଢ଼ିଲା । ବରୁଣ ଅଦିତିଙ୍କ ଆଠ ପୁତ୍ର ମଧ୍ୟରେ ଜଣେ ବୋଲି କଥିତ । ବେଦରେ ଏ ଜଳର ଅଧିପତି; ଦସ୍ୟୁମାନଙ୍କ ନାଶକ ଓ ଦେବତା-ମାନଙ୍କ ରକ୍ଷକ ବୋଲି କଳ୍ପିତ । ଏହାଙ୍କର ଅସ୍ତ୍ର ପାଶ । ପୁରାଣମାନଙ୍କରେ ଏ ପଶ୍ଚିମ ଦିଗର ଦିକ୍‌ପାଳ ଥିବାର ଉଲ୍ଲେଖ ଅଛି । କାବ୍ୟାଦିରେ ବରୁଣଙ୍କୁ କରୁଣରସର ଅଧିଷ୍ଠାତୃ-ରୂପେ କଳ୍ପିତ । ଜ୍ୟୋତିଷରେ ବରୁଣ ଶତଭିଷା ନକ୍ଷତ୍ରର ଅଧିଷ୍ଠାତୃ ଦେବ । ବରୁଣଙ୍କ ଅନ୍ୟ ସଂସ୍କୃତ ନାମ ପ୍ରଚେତା, ପାଶୀ, ଯାଦସାଂପତି, ଅପ୍‌ପତି, ଯାଦଃପତି, ଜଂବୁକ, ମେଘନାଦ, ପରଂଜୟ, ବାରଲୋମ, କୁଣ୍ଡଳୀ । ]

୨ । ସମୁଦ୍ର—2. Ocean. ୩ । ଜଳ—3. Water. ୪ । ଦ୍ୱୀପବିଶେଷ —4. Name of a legendary island. ୫ । ଋଷିବିଶେଷ (ହି. ଶ.)—5. Name of a sage. ୬ । ବୃକ୍ଷବିଶେଷ—6. A wild tree; Cratæva Religiosa; Crotseva Aurifolia.

(୧+୫) ବରୁଣ ଶଙ୍କାଦି ସୁମନସ ସ୍ତୁ ଚ ଯହିଁ ଯେ । ଉଞ୍ଜ॰ ବୈଦେହୀଶବିଳାସ ।

[ ଦ୍ର—ଏହା ମଧ୍ୟାକୃତି ବନ୍ୟ ତରୁ; ବଲ୍କଲ ଲୁଞ୍ଚିତ, ପତ୍ର ତ୍ରିପର୍ଣ୍ଣି ଓ ଶାଖାର ଅଗ୍ରରେ ଥାଏ; ବର୍ଷକୁବର୍ଷ ଏଥିର ପତ୍ର ଝଡ଼େ; କାଠ ପାଣ୍ଡୁର ଓ ଶକ୍ତ; ଫୁଲ ବଡ଼ ବଡ଼ ଓ ଆପୀତ; ଖରାଦିନେ ଫୁଟେ; ଫଳ ଗୋଲ ଓ ବହୁବୀଜ ।

ମୂତ୍ରରୋଗ, ଜ୍ୱର, କାଛୁକୁଣ୍ଡିଆ, ବମନ ଓ ପଥୁରିଆ ରୋଗର ଔଷଧ ପାଇଁ ଏହାର ଛେଲି, ପତ୍ର ଓ ମୂଳ ବ୍ୟବହୃତ ହୁଏ । ]

**ମେଛେତା** ଦେ. ବି.—(ସଂ. ବ୍ରଣ, ବରୁଣ୍ଡ)—କାଠବରୁଣ; ମୁଖବ୍ରଣ;
ବର୍ଷେ ବର୍ଷେ ଯୌବନକଣ୍ଟକ—Pimples on the face of young
ବ୍ରଣ people. ୨ । ମୁଖରେ ହେବା ଭୟାନକ ବ୍ରଣ—2. Fatal boil on the face. ୩ । ନବାବିଷ୍କୃତ ଗ୍ରହବିଶେଷ; ନେପ୍‌ଚୁନ୍ ଗ୍ରହ (ହି. ଶ.)—3 Neptune (planet)

**ବରୁଣ ଗ୍ରହ**—ସଂ. ବି.—(ବରୁଣ+ଗ୍ରହ ଧାତୁ+ଅଧିକରଣ. ଅ)—
Baruṇa graha ଘୋଡ଼ାଙ୍କ ରୋଗବିଶେଷ—Name of a horse disease.

[ ଦ୍ର—ଏ ରୋଗରେ ଘୋଡ଼ାର ଆଖି, ଜଭ, ତାଳୁ ଓ ଲିଙ୍ଗ କଳା ପଡ଼ିଯାଏ ଓ ଦେହରୁ ଖୁବ୍ ଝାଳ ବହେ । ଏ ରୋଗ ଅଧିକାଂଶ ସମୟରେ ମାରାତ୍ମକ ହୁଏ—ହି. ଶ.]

ଦେ. ବି.—ନେପ୍‌ଚୁନ୍ ଗ୍ରହ—Neptune.

**ବରୁଣ ପାଶ**—ସଂ. ବି.—୧ । (୬ଷ୍ଠୀ ତତ୍)—ବରୁଣଦେବଙ୍କର ପାଶାସ୍ତ୍ର—
Baruṇa pāśa 1. Noose, the weapen of Baruṇa God. ୨ । (ବହୁବ୍ରୀହି)—ନକ୍ର; କୁମ୍ଭୀର (ହି. ଶ.) (ବରୁଣଙ୍କ ପାଶ ପରି ଏ ଜଗଦ୍ୱାରା ଆକ୍ରାନ୍ତ ଜୀବକୁ ଆକ୍ରମଣ କରେ)—2. Alligator.

**ବରୁଣ ପ୍ରଘାସ**—ସଂ. ବି—ଆଷାଢ଼ ବା ଶ୍ରାବଣପୂର୍ଣ୍ଣିମା ଦିନ ଅନୁଷ୍ଠିତ
Baruṇa praghāsa ବ୍ରତବିଶେଷ—A religious vow observed on the fullmoon of Āshārdh or Śrābaṇa.

[ଦ୍ର—ଏଥିରେ ଛତୁଆ ଖିଆଯାଏ । ଏହି ବ୍ରତଧାରୀ ବ୍ୟକ୍ତି ଜଳରେ ବୁଡ଼ିମରେ ନାହିଁ କିମ୍ବା ଜଳଜନ୍ତୁମାନେ ତାଙ୍କୁ ଆକ୍ରମଣ କରନ୍ତି ନାହିଁ ବୋଲି ଲୋକବିଶ୍ୱାସ ।]

**ବରୁଣ ମଣ୍ଡଳ**—ସଂ. ବି. (ଜ୍ୟୋତିଷ) ରେବତୀ, ପୂର୍ବାଷାଢ଼ା, ଆର୍ଦ୍ରା,
Baruṇa maṇḍaḷa ଅଶ୍ଳେଷା, ମୂଳା, ଉତ୍ତରଭାଦ୍ରପଦ ଓ ଶତଭିଷା ନକ୍ଷତ୍ର ସମନ୍ୱିତ ନକ୍ଷତ୍ରମଣ୍ଡଳ ( ହି. ଶ. )—A group of stars consisting of the 28th, 20th, 6th, 9th, 15th, 26th and 24th asterisms.

**ବରୁଣା(ଣେ)ଇ**—ଦେ. ବି. ସ୍ତ୍ରୀ.—ବରୁଣୀ (ଦେଖ)
Baruṇā(ṇe)ī Baruṇī (See)
(ଯଥା—ତାଙ୍କୁ 'ସି' ଅକ୍ଷର ବରୁଣାଇ ପର୍ବତ ।)

**ବରୁଣାତ୍ମଜା**—ସଂ. ବି. ସ୍ତ୍ରୀ.—(୬ଷ୍ଠୀ ତତ୍; ବରୁଣ+ଆତ୍ମଜା)—
Baruṇātmajā ବାରୁଣୀ (ଦେଖ)—Bāruṇī (See)

**ବରୁଣାନୀ**—ସଂ. ବି. ସ୍ତ୍ରୀ.—(ବରୁଣ+ସ୍ତ୍ରୀ. ଆନୀ)—ବରୁଣ ଦେବତାଙ୍କ ସ୍ତ୍ରୀ—
Baruṇānī The wife of the God of ocean.

**ବରୁଣାଳୟ**—ସଂ. ବି.—(୬ଷ୍ଠୀ ତତ୍; ବରୁଣ+ଆଳୟ)—ସମୁଦ୍ର—
Baruṇālaya The sea.

ବରୁଣାଳୟ କୂପାରେ ଯେ ସେ ସୀତା ସଙ୍ଗେ ଯେ । ଉଞ୍ଜ॰ ବୈଦେହୀଶବିଳାସ ।

**ବରୁଣୀ**—ଦେ. ବି. ସ୍ତ୍ରୀ.—୧ ଗ୍ରାମଦେବୀବିଶେଷ—1. Name of a
Baruṇi popular goddess. ୨ । ଖୋରଧା
(ବରୁଣେଇ—ଅନ୍ୟରୂପ) ଅଞ୍ଚଳସ୍ଥ ପାହାଡ଼; ବରୁଣାଇ ପାହାଡ଼—
2. Name of a hill in Khurdha
subdivision of the Puri District.

ରନ୍ଧ୍ରିରେଖା ମହା ଶରେ ଅସିଥିବ ବାରୁଣୀ-ଶିଖର-ଶିଖେ ।
ରାଧାନାଥ—ପାର୍ବତୀ ।

[ଦ୍ର—ଏହି ପାହାଡ଼ ଖୋରଧାର ଦକ୍ଷିଣ ପଶ୍ଚିମରେ ୧ ମାଇଲ ଦୂରରେ ଅବସ୍ଥିତ । ଏଥିରେ କେତେକ ଗୁମ୍ଫା ଓ ପ୍ରାଚୀନ ଶିଳାଲିପି ଅଛି ।

**ବରୁତ୍ର**—ସଂ. ବି. (ବୃ ଧାତୁ=ଆବରଣ କରିବା+ତ୍ରଣ୍)—
Barutra ୧ । ଉତ୍ତରୀୟ ବସ୍ତ୍ର—1. Sheet. ୨ । ଓଢ଼ଣୀ—
2. Upper cloth; cloak; mantle (Apte).

**ବରୂଥ**—ସଂ. ବି. ( ବୃ ଧାତୁ=ଆବରଣ କରିବା+କର୍ମ. ଊଥ)—
Barūtha ୧ । ରଥ ମଧ୍ୟରେ ଲୁଚି ରହିବାପାଇଁ ଥିବା ଗୁପ୍ତ ସ୍ଥାନ ବିଶେଷ; ରଥଗୁପ୍ତି—1. A secret and covered space inside a car.

ସାର ଗ୍ରହଯାକ ଯେ ଅନୁକର୍ଷ କଲେ
ତାରକା ଏ ରଥବରୂଥ ବୋଲାଇଲେ । କୃଷ୍ଣସିଂହ, ମହାଭାରତ କର୍ଣ୍ଣ ।

୨ । (+କର୍ତ୍ତୃ. ଊଥ) ଚର୍ମ—2. Skin. ୩ । (+କରଣ, ଊଥ)—କବଚ; ବର୍ମ; ସାଞ୍ଜୁ—3. Armour. ୪ । (କର୍ମ. ଊଥ) ଗୃହ—4. House. ୫ । ଶତ୍ରୁର ବାଣ ଗୁଳା ଆଦିର ଆକ୍ରମଣରୁ ରଥକୁ ରକ୍ଷା କରିବାପାଇଁ ରଥ ଉପରେ ପଡ଼ିବା ଲୁହାର ଆବରଣ (ହି. ଶ)—5. An iron cover for protecting a car from the blow of an enemy's missile. ୬ । ସେନା; ସୈନ୍ୟ; ଫଉଜ (ହି. ଶ)—6. Army. ୭ । ପରସ୍ପର ଆଘାତରୁ ରଥକୁ ରକ୍ଷା କରିବାପାଇଁ ରଥରେ ଯୁକ୍ତ ବାଡ଼ା ବା ପଟା—7. A short of wooden or iron fence or finder with which a chariot is provided as a defence against collision ( Apte ). ୮ । ଢାଲ—8. Shield (Apte). ୯ । ସମୂହ—9. Group; multitude (Apte) ୧୦ । (+ଭାବ. ଊଥ) ରକ୍ଷଣ—10 Protection (Apte). ୧୧ । ( +କର୍ମ. ଊଥ ) ପରିବାର—11. Family (Apte). ୧୨ । କୋକିଳ—12. The cuckoo (Apte).

**ବରୂଥିନୀ**—ସଂ. ବି—(ବରୂଥ+ଇନ୍+ସ୍ତ୍ରୀ. ଈ)—ସେନା—
Baruthini Army.

ଏହି ଯେ ଦେଖୁଛ ସାର, ଅକ୍ଷୌହିଣୀବରୂଥିନୀ
ସମବେତ ନାନାଦିଗଦିଗନ୍ତରୁ ଆସି—ରାଧାନାଥ, ମହାଯାତ୍ରା ।

**ବରୂଥୀ**—ସଂ. ବି—(ବରୂଥ+ଇନ୍; ୧ମା. ୧ବ)—ରଥ—
Baruthi Car; chariot.
ବରୂଥିନୀ—ସ୍ତ୍ରୀ। ସଂ. ବିଣ. ପୁଂ—୧ । କବଚ ଦ୍ୱାରା ରକ୍ଷିତ—
1. Protected by an armour ( Apte ).
୨ । ସେନାପରିବୃତ—2. Surrounded by a troop (Apte).

**ବରେ**—ଦେ. କ୍ରି. ବିଣ—( ସଂ. ବର=ଉତ୍କୃଷ୍ଟ )—ବଡ଼େ; ବଢ଼େ;
Bare ଉଚ୍ଚରେ—Loudly.

ବରେ ଶୁଭନ୍ତେ ଶବଦ ତାହାର
କେଖାନେ ଦୃଷ୍ଟି ବସୁନ୍ଧାବାସୀଙ୍କର । ଭକ୍ତ. ବୈଦେହୀଶବିଳାସ ।

**ବରେଇ** (ଇତ୍ୟାଦି)—ଦେ. ବି—ବରେହି ଇତ୍ୟାଦି ( ଦେଖ )
Barei (etc) Barehi etc. ( See )

**ବରେଇ ଖୋଦ୍**—ବୈଦେ. ଅ. ( କଚରଅ. ହିନ୍ଦିରୁ ଅନୁକୃତ; ଫା.
Barei khod ବରଏ ଖୁଦ୍=ନିଜ ପାଇଁ)—ସ୍ୱୟଂ ନିଜେ—
Self; personaly.
ଖୁଦ୍ खुद
(ବରେ ଖୋଦ୍, ବରୈ ଖୋଦ୍—ଅନ୍ୟରୂପ)

**ବରେଣ୍ୟ**—ସ. ବି. ପୁଂ. (ବୃ ଧାତୁ=ବରଣ କରିବା+କର୍ମ. ଏନ୍ୟ)—
Bareṇya ୧ । ବରଣୀୟ; ପୂଜ୍ୟ; ମାନ୍ୟ—1. Respectable
(ବରେଣ୍ୟା—ସ୍ତ୍ରୀ) reverend; honourable. । ୨ । ଉତ୍କୃଷ୍ଟ—
2. Excellent. । ୩ । ପ୍ରାର୍ଥନୀୟ; ଅଭୀଷ୍ଟ—3. Desirable; wished for; cherished. ୪ । ଶ୍ରେଷ୍ଠ; ପ୍ରଧାନ—4. Chief; principal.
ସ. ବି—୧ । କୁଙ୍କୁମ—1. Saffron. ୨ । ଶିବ; ମହାଦେବ (ହି. ଶ)—2. Siba. ୩ । ଭୃଗୁଙ୍କର ଏକ ପୁତ୍ର (ହି. ଶ)-
3. Name of a son of sage Bhṛugu.

**ବରେନ୍ଦ୍ର**—ସ. ବି. (ବର+ଇନ୍ଦ୍ର)—୧ । ପ୍ରାଚୀନ ଗୌଡ଼;ବଙ୍ଗଦେଶର
Barendra ପ୍ରାଚୀନ ବିଭାଗ; ପୁଣ୍ଡ୍ରଦେଶ—1. Ancient Bengal. ୨ । ଗୌଡ଼ ଦେଶର ରାଜଧାନୀ—2. Capital of ancient Bengal.

[ ଦ୍ର—କେହି କେହି ଏହାକୁ ବରେନ୍ଦ୍ରୀ କହନ୍ତି । ]

୩ । ଇନ୍ଦ୍ର—3. Indra. ୪ । ପ୍ରଧାନ ରାଜା; ସମ୍ରାଟ୍; ରାଜାଧିରାଜ—4. Emperor.

**ବରେନ୍ଦ୍ର ଗୋଷ୍ଠୀ**—ଦେ. ବି—ବଙ୍ଗୀୟ ବ୍ରାହ୍ମଣଙ୍କର ଶାଖାବିଶେଷ—
Barendra goshṭhi Name of a branch of Bengalee Brāhmaṇas.
বরেন্দ্র গোষ্ঠী वरेंन्द्रगोष्ठि

**ବରେହା**—ଗ୍ରା. ବି. (ପ୍ରାଚୀନ ପଦ୍ୟ) (ସ. ବରାହ)—
Barehā ବନ୍ୟଜନ୍ତୁବିଶେଷ; ବାରୁହା—Boar.

ହରଣ ବରେହା ଶ୍ରେଣୀ ଶୃଗାଳ । ପ୍ରତାପ. ଶଶିସେଣା ।

**ବରେହି**—ଦେ. ବି—ବରେହି ପାଟକ ( ଦେଖ )
Barehi Barehi pāṭaka ( See )

**ବରେହି କରିବା**—ଦେ. କ୍ରି—ଜାତିଆଣ ସମ୍ବନ୍ଧରେ କୌଣସି କଠିନ
Barehi karibā ବିଷୟର ମୀମାଂସା ନ ହୋଇ ପାରିଲେ ତହିଁର ମୀମାଂସା କରିବା ପାଇଁ
ବରେହି କରା(ରେ)ଇବା }
ବରେହି ବସା(ସେ)ଇବା } ଅନ୍ୟରୂପ
ବରେହି ଡକା(କେ)ଇବା }
ବରେହି ପାଟକର ଅଧିବେଶନ କରାଇବା ଅର୍ଥାତ୍ ଉକ୍ତ ବିଷୟ (ବରେହି ବସିବା—ଅନ୍ୟରୂପ) ନେଇ ସାର୍ବଜନୀନ ସଭାରେ ଉପସ୍ଥାପିତ କରିବା—To have a matter discussed and decided by a gathering of various castes.
বারোআরী তলায় নিষ্পত্তি করান बरह बरना सभा करना

**ବରେହ୍ନ ପାଟକ**—ଦେ. ବି. (ସଂ. ବାର=ସମୂହ) (ତୁଳ• ବଂ• ଶବ୍ଦ Barehi pāṭaka ବାରୋୟାରୀ=ପ୍ରତି ବର୍ଷ ଏକ ଗ୍ରାମର ବା ବାରୁଆରି ତଲାୟ ନିଷ୍ପତ୍ତି ପଡ଼ାର ବା ନଗରର ସମସ୍ତ ଜାତିର **बरह बरना सभा** ଲୋକେ ମିଳି ଯେଉଁ ଠାକୁରପୂଜା ବା ଉତ୍ସବ (ବରେହ୍ମ ସଭା—ଅନ୍ୟରୂପ) କରନ୍ତି)—କୌଣସି ସମାଜଗତ ବିଷୟ ଜାତିଆଣ ସଭାରେ ମୀମାଂସିତ ହୋଇ ନ ପାରିଲେ ତାହା ମୀମାଂସା କରିବା କାରଣ ଅନ୍ୟୂନ ୩୬ ପାଟକର ଲୋକଙ୍କ ଦ୍ୱାରା ଗଠିତ ସଭା; ଛତିଶ ପାଟକ ସଭା; ସାର୍ବଜନୀନ ସଭା—A gathering of people of various castes to consider and adjudicate upon a matter which could not be decided by a meeting of a caste-guild.

[ ଦ୍ର—ଜାତିଆଣ ସଭାରେ ଜାତି ଭାଇଙ୍କ ବିଚାରମଣାରେ ଯାହାର ମନ ନ ମାନେ ସେ ବରେହ୍ନ ପାଟକ ବସାଏ । ସବୁ ଜାତିର ଲୋକଙ୍କୁ ଡାକି ଏକ ସ୍ଥାନରେ ବସାଇବାକୁ ସବୁବେଳେ ସମ୍ଭବପର ନ ଥିବାରୁ ଲୋକେ ହାଟକୁ ଯାଇ ସେହିଠାରେ ଉପସ୍ଥିତ ବହୁ ଜାତୀୟ ଲୋକଙ୍କୁ ବସାଇ ସଭା କରନ୍ତି ଓ ତାକୁ ବରେହ୍ନ ପାଟକ ସଭା ବୋଲାଯାଏ ।]

**ବରେହ୍ନ ପାଟକ ବସା(ସେ)ଇବା**—ଦେ. କ୍ରି—ବରେହ୍ନ କରିବା (ଦେଖ) Barehi pāṭaka basā(se)ibā Barehi karibā (See)

**ବରେହ୍ନ ବସିବା**—ଦେ. କ୍ରି—ବରେହ୍ନ ସଭାର ଅଧିବେଶନ କରିବା—Barehi basibā The holding of a Barehi meeting to discuss a matter.
बरह बरना सभा बैठना
(ବରେହ୍ନ ପାଟକ ବସିବା—ଅନ୍ୟରୂପ)

**ବରୋଟ**—ସଂ. ବି—ମରୁଆ ଗୁଳ୍ମ ଓ ଫୁଲ (ହି. ଶ)—The Marubaka Barota plant and flower (Apte).

**ବରୋଦା**—ଦେ. ବି. (ନାମ)—୧ । ଗାଇକବାଡ଼ ବା ପ୍ରାଚୀନ ଗୁର୍ଜ୍ଜର Barodā ରାଜ୍ୟର ରାଜଧାନୀ—1 Capital of ancient Gurjara; Baroda.
বরোদা **बरोदा**

[ ଦ୍ର—ଏହି ନଗର ବିଶ୍ୱାମିତ୍ର ନଦୀକୂଳରେ ଅବସ୍ଥିତ । ନଗର ମଧ୍ୟରେ ଅନେକ ହିନ୍ଦୁ ଦେବମନ୍ଦିର ଅଛି । ବହୁକାଳରୁ ଏଠାରେ ଏକ ମୁଦ୍ରାଯନ୍ତ୍ର ଅଛି ଓ ବରୋଦା ମହାରାଜଙ୍କ ନାମାଙ୍କିତ ମୁଦ୍ରା ଏଠାରେ ମୁଦ୍ରିତ ହୋଇ ଏ ରାଜ୍ୟରେ ପ୍ରଚଳିତ ହୁଏ । ]

୨ । ଭାରତର ପଶ୍ଚିମ ଉପକୂଳରେ ଅବସ୍ଥିତ ଦେଶୀୟ ରାଜ୍ୟବିଶେଷ ଓ ତହିଁର ପ୍ରଧାନ ନଗର—2. Baroda state and its capital.

[ ଦ୍ର—ଏ ରାଜ୍ୟ ମଧ୍ୟଭାରତରେ ଅବସ୍ଥିତ ଗୋଟିଏ ମରହଟ୍ଟା ରାଜ୍ୟ । ଏଥିର ରାଜାଙ୍କ ବଂଶଗତ ଉପାଧି ଗାଇକବାଡ଼ । ଏଥିର କ୍ଷେତ୍ରଫଳ ୮୧୮୨ ବର୍ଗମାଇଲ ଓ ଲୋକସଂଖ୍ୟା ପ୍ରାୟ ୨୫ ଲକ୍ଷ ଓ ଏଥିର ରାଜସ୍ୱ ପ୍ରାୟ ୨୫ କୋଟି ଟଙ୍କା । ଏଠାରେ ମହାରାଜଙ୍କ ପ୍ରତିଷ୍ଠିତ କଲେଜ ବମ୍ବାଇ ବିଶ୍ୱବିଦ୍ୟାଳୟ ସଙ୍ଗେ ସମ୍ବନ୍ଧ । ଏ ମହାରାଜଙ୍କର ସ୍ୱତନ୍ତ୍ର ହାଇକୋର୍ଟ ଅଛି ଏବଂ ଏ ରାଜାଙ୍କ ନିକଟରେ ବ୍ରିଟିଶ ସରକାରଙ୍କର ଜଣେ ରେସିଡେଣ୍ଟ ( ରାଜଦୂତ ) ଥାଆନ୍ତି । ମରହଟ୍ଟା ଶକ୍ତିର ପତନୋନ୍ମୁଖ ଅବସ୍ଥାରେ ଯେତେବେଳେ ପେଶବାମାନେ ନାଗପୁର ଭୋଁସଲାମାନଙ୍କ ନାମରେ କ୍ଷମତା ପରିଚାଳନ କରୁଥିଲେ, ସେହି ସମୟରେ ( ଖ୍ରୀ. ୧୭୪୦–୬୧ ) ପିଲାଜୀ ରାଓ ଗାଇକବାଡ଼ ବରୋଦାଠାରେ ଏ ରାଜବଂଶର ମୂଳଭିତ୍ତି ସ୍ଥାପନ କରିଥିଲେ ଓ ରଣଜୀ ସିନ୍ଧିଆ ଗୁଆଲିୟରରେ ଓ ମୁଲ୍‌ହର ରାଓ ହୋଲ୍‌କାର ଇନ୍ଦୋରରେ ମଧ୍ୟ ଗୋଟିଏ ଗୋଟିଏ ରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ । ]

**ବରୋନ୍ମୁଖ**—ସଂ. ବିଣ. ପୁଂ. ( ବର ଦେବାପାଇଁ ଉନ୍ମୁଖ ହୋଇଅଛି Baronmukha ଯେ; ବହୁବ୍ରୀହି )—ବର ଦେବାକୁ ଉଦ୍ୟତ—Ready to grant a boon.

**ବରୋରୁ**—ସଂ. ବିଣ. ପୁଂ. ଓ ସ୍ତ୍ରୀ—୧ । ଯାହାର ଶ୍ରେଷ୍ଠ ଜଙ୍ଘ ଅଛି—Baroru 1. Having excellent thighs. ୨ । ସୁନ୍ଦରୀ ସ୍ତ୍ରୀ ( ହି. ଶ. )—2. A beautiful or graceful lady.

**ବରୋଲ**—ସଂ. ବି—ଏକପ୍ରକାର ଭିରୁଡ଼ି—Barola A kind of wasp ( Apte ).

**ବରୋହି**—ପ୍ରାଦେ. ( ସିଂହଭୂମ ) ବି—ମୋଟା ଦଉଡ଼ି—Barohi A thick rope.

**ବର୍କ୍କର**—ସଂ• ବି• ପୁଂ ( ବୃକ୍ ଧାତୁ=ଗ୍ରହଣ କରିବା+କର୍ମ. ଅର; Barkkara ଯାହାକୁ ଛେଦନାର୍ଥେ ଗ୍ରହଣ କରାଯାଏ; ବହୁବ୍ରୀହି)—
बकरी **बकरी** ଓ.ବର୍କ୍କରୀ (ବର୍କ୍କରୀ—ସ୍ତ୍ରୀ)
୧ । ମେଷଶାବକ; ଛେଳିଛୁଆ; ବକରା—1. A small goat or lamb. ୨ । ଯୁବା ପଶୁ—2. A young beast. ୩ । କ୍ରୀଡ଼ା—3. Game; sport; pastime. ୪ । କୌତୁକ; ଆମୋଦପ୍ରମୋଦ—4 Amusement; mirth. ୫ । ପରିହାସ—5. Jesting. ୬ । ଛେଳି—6, A goat .(Apte).

**ବର୍କରାଟ**—ସଂ. ବି. ( ବର୍କର+ଅଟ ଧାତୁ=ଗତି କରିବା+ଅ )—Barkarāṭa ୧ । କଟାକ୍ଷ ( ହି. ଶ. )—1. Sideglance; ogling. ୨ । ମଧ୍ୟାହ୍ନ ସୂର୍ଯ୍ୟଙ୍କ ପ୍ରଭା ( ହି. ଶ. )—2. The rays of the midday sun. ୩ । ସ୍ତ୍ରୀ କୁଚ ପାର୍ଶ୍ୱରେ କାହିତ ନଖକ୍ଷତ (ହି. ଶ. )—3. Scratching of nails on the sides of the female breast ( as a result of amorous pastime ).

**ବର୍ଗ**—ସଂ. ବି. ( ବୃଜ୍ ଧାତୁ=ତ୍ୟାଗ କରିବା, ପୃଥକ କରିବା+ଭାବ. Barga ଅ )—୧ । ବର୍ଜନ; ତ୍ୟାଗ—1. Relinquishment. ୨ । ( +କର୍ମ. ଅ ) ଧାଡ଼ୀ; ଶ୍ରେଣୀ—2. Class; row; category. ୩ । ବୃନ୍ଦ; ଦଳ; ପଲ—3. Flock; multitude. ୪ । ( ସଂସ୍କୃତ ବ୍ୟାକରଣ ) ଏକସ୍ଥାନରୁ ଉଚ୍ଚାରିତ ସ୍ପର୍ଶ ବ୍ୟଞ୍ଜନବର୍ଣ୍ଣମାନଙ୍କ ସମୂହ ) ବ୍ୟଞ୍ଜନ ବର୍ଣ୍ଣମାଳାର ଉଚ୍ଚାରଣ ଭେଦରେ ପାଞ୍ଚ ଶ୍ରେଣୀ—4. Sanscrit grammar ) The five classes of consonants.

[ ଦ୍ର—ଯଥା; କ ବର୍ଗ—କ, ଖ, ଗ, ଘ, ଙ । ଚ ବର୍ଗ—ଚ, ଛ, ଜ, ଝ, ଞ । ଟ ବର୍ଗ—ଟ, ଠ, ଡ, ଢ, ଣ । ତ ବର୍ଗ—ତ, ଥ, ଦ, ଧ, ନ । ପ ବର୍ଗ—ପ, ଫ, ବ, ଭ, ମ ।

[ ଦ୍ର—ଜ୍ୟୋତିଷ ଶାସ୍ତ୍ରରେ ବ୍ୟାକରଣକଥିତ ୫ ବର୍ଗ ଛଡ଼ା ସ୍ୱରବର୍ଣ୍ଣ, ଅନ୍ତସ୍ଥ ବର୍ଣ୍ଣ ଓ ଶ ଷ ସ ହ ବର୍ଣ୍ଣମାନଙ୍କୁ ପୃଥକ୍ ବର୍ଗର ଅନ୍ତର୍ଗତ କରାଯାଇଅଛି । ଯଥା — ଅ ବର୍ଗ=ସବୁ ସ୍ୱରବର୍ଣ୍ଣ, ଯ ବର୍ଗ=ଯ ର ଲ ୱ, ଶ ବର୍ଗ=ଶ ଷ ସ । ଅ ବର୍ଗର ସ୍ୱାମୀ ସୂର୍ଯ୍ୟ, କ ବର୍ଗର ମଙ୍ଗଳ, ଚ ବର୍ଗର ଶୁକ୍ର, ଟ ବର୍ଗର ବୁଧ, ତ ବର୍ଗର ବୃହସ୍ପତି, ପ ବର୍ଗର ଶନି, ଯ ବର୍ଗର ଚନ୍ଦ୍ର ବୋଲି ଯାଇଅଛି—ହ୍ର. ଶବ୍ଦସାଗର । ]

୫ । ସଜାତୀୟସମୂହ; ଗୋଷ୍ଠୀ; ଏକଜାତୀୟ ଅନେକ ବସ୍ତୁର ସମୂହ; ଗଣ; ଶ୍ରେଣୀ—5. A number or multitude of similar things or animals; clan; class. ୬ । ପ୍ରକାର—6. Kind; species. ୭ । ଗ୍ରନ୍ଥର ପରିଚ୍ଛେଦ ବା ବିଭାଗ ବା ଅଧ୍ୟାୟ—7. Chapter of a book. ୮ । ଖଣ୍ଡ—8. Piece. ୯ । ମାର୍ଗ; ପଥ—9. Road; way. ୧୦ । ଦୁଇ ସମାନ ସଂଖ୍ୟାର ଗୁଣଫଳ—10. A square number. ୧୧ । ଶାସନ—11. Administration. ୧୨ । ସଂସାରରେ ଜନ୍ମଲାଭର ଉଦ୍ଦେଶ୍ୟ—12. One of the 4 ulterior objects of life; the summon bonum of existence.

[ ଦ୍ର—ଚତୁର୍ବର୍ଗ=ଧର୍ମ, ଅର୍ଥ, କାମ ଓ ମୋକ୍ଷ । ]

୧୩ । ( ଅନ୍ୟ ଶବ୍ଦ ସଙ୍ଗେ ବହୁବଚନରେ ବ୍ୟବହୃତ । ଯଥା— ଭ୍ରାତବର୍ଗ; ବନ୍ଧୁବର୍ଗ ) ମାନେ; ସମୂହ; ସମସ୍ତେ—13. ( used to denote plural or all ) All of. ୧୪ । ଆକାର ପ୍ରକାରରେ କିଛିଟା ଭିନ୍ନ; କିନ୍ତୁ କୌଣସି ସାଧାରଣ ଧର୍ମବିଶିଷ୍ଟ ପଦାର୍ଥମାନଙ୍କ ସମୂହ ( ଯଥା— ଅଳଙ୍କାର ବର୍ଗ, ବନୌଷଧି ବର୍ଗ )—14. A class of things having a common attribute though differing in shape and other things. ୧୫ । ( ଜ୍ୟାମିତି ) ବର୍ଗକ୍ଷେତ୍ର; ଯେଉଁ ସମକୋଣୀ କ୍ଷେତ୍ରର ଦୈର୍ଘ୍ୟ ଓ ପ୍ରସ୍ଥ ସମାନ—15. ( geometry ) A square. ୧୬ । (ଗଣିତ) ଦୁଇ ସମାନ ରାଶିର ଗୁଣଫଳ—16. ( Mathematics ) The square of a number.

( ଯଥା—୪ ର ବର୍ଗ=୧୬ । )

୧୭ । ବଳ—17. Strength ( Apte ).

ଦେ. ବି—୧ । ନିୟମ—1. Rule; regulation.

୨ । ନିୟମାଧୀନତା—2. Discipline; regularity.

୩ । ଧାରା; ପଦ୍ଧତି; ଶୃଙ୍ଖଳା—3. Method; system,

୪ । ଭଦ୍ରସମାଜ; ଭଦ୍ରଗୋଷ୍ଠୀ—4. High society.

୫ । ବିଦ୍ୟାଳୟର ଶ୍ରେଣୀ—5. A class of a school.

ପ୍ରାଦେ. ( ସମ୍ବଲପୁର ) ବି—ବଂଶୋପାଧିବିଶେଷ — A family title.

**ବର୍ଗକ୍ଷେତ୍ର**—ସଂ. ବି—ସମକୋଣ ଓ ସମବାହୁବିଶିଷ୍ଟ ଚତୁର୍ଭୁଜ କ୍ଷେତ୍ର; Bargakshetra ସମକୋଣୀ ଓ ସମବାହୁ ଚତୁର୍ଭୁଜ—A square field or figure; a square.

**ବର୍ଗଛଡ଼ା**—ଦେ. ବିଣ. ( ମନ୍ଦ ଅର୍ଥରେ )—ଆପଣାର ଶ୍ରେଣୀର ଅନ୍ୟ Bargachhardā ମାନଙ୍କଠାରୁ ସ୍ୱତନ୍ତ୍ର—Exceptional; not confirming to the others of the same class.

**ବର୍ଗଣା**—ସଂ. ବି—ଗୁଣନ— Bargaṇā Multiplication ( Apte ).

**ବର୍ଗଫଳ**—ସଂ. ବି ( ଗଣିତ )—୧ । ଦୁଇଟି ସମାନ ସଂଖ୍ୟାର ଗୁଣଫଳ— Bargaphala 1. The square of a number. ୨ । ଭୂମିର ଦୈର୍ଘ୍ୟ ଓ ପ୍ରସ୍ଥର ଗୁଣଫଳ; କ୍ଷେତ୍ରଫଳ— 2. The square area of a figure or field.

**ବର୍ଗବନ୍ଧନୀ**—ସଂ. ବି—୧ । ଏକପ୍ରକାର ବନ୍ଧନୀ—1. A kind of Bargabandhanī bracket. ୨ । ବନ୍ଧନୀ ତଳେ ନୋଟ୍ ଦେଖ—2. See notes under Bandhanī.

**ବର୍ଗବର୍ଗ**—ସଂ. ( ଗଣିତ )—କୌଣସି ସଂଖ୍ୟାର ବର୍ଗଫଳର ବର୍ଗଫଳ— Bargabarga ( mathematics ) The square of the square of a number.

**ବର୍ଗଭୀମା**—ଦେ. ବି—ତାମ୍ରଲିପ୍ତ ବା ଆଧୁନିକ ତମଲୁକରେ ପ୍ରତିଷ୍ଠିତା Bargabhīmā ଦେବୀ—Name of the image of a popular goddess in Tamaluk.

ବର୍ଗଭୀମା ଅଧିଷ୍ଠିତ ମଣ୍ଡିତସ୍ୱର୍ଗୋପମା—ଧର୍ମନାଥ. ମହାଯାତ୍ରା ।

**ବର୍ଗମୂଳ**—ସଂ. ବି. ( ଗଣିତ )—ଦୁଇ ସମାନ ରାଶିର ଗୁଣଫଳରୁ ବାହାର Bargamūla କରାଯିବା ମୌଳିକ ସଂଖ୍ୟା ବା ରାଶି—( mathe- (ବର୍ଗପଦ—ଅନ୍ୟରୂପ) matics ) The square root.

**ବର୍ଗଶଃ**—ସଂ. ବିଣ. ( ବର୍ଗ+ଶସ୍ )—ବର୍ଗ ବର୍ଗ ହୋଇ; ଶ୍ରେଣୀ ଶ୍ରେଣୀ Bargaśaḥ ହୋଇ; ଦଳ ଦଳ ହୋଇ—In groups ( Apte ).

**ବର୍ଗା**—ଦେ. ବି—ବରଗା ( ଦେଖ ) Bargā Baragā ( See )

**ବର୍ଗାଏ**—ପ୍ରାଦେ. ( ଲରିଆ ) ବି—ଗଉଡ଼— Bargāe Cowherd.

**ବର୍ଗି**—ବୈଦେ. ବି. ( ମରହଟ୍ଟି ଶବ୍ଦ )—ବରଗି ( ଦେଖ ) Bargi Baragi ( See )

**ବର୍ଗିଆ**—ଦେ. ବି. ( ସଂ. ବର୍ଗୀୟ )—୧ । ବର୍ଗୀୟ; ବର୍ଗସମ୍ବନ୍ଧୀୟ— Bargiā 1. Relating to Barga ୨ । ଶୃଙ୍ଖଳ— 2. Methodical.

**ବର୍ଗିବା**—ଦେ. କ୍ରି. (ସଂ. ବୃଜ୍ ଧାତୁ=ତ୍ୟାଗ କରିବା)—ପଠାଇବା— Bargibā To send; to dipute.

ପୁଣି ସେନାନାୟକ ପାଞ୍ଚୋଟି ବର୍ଗିଲ
ହନୁମନ୍ତ ବଳରେ ତାଙ୍କ କ୍ଷୟ ଗଲ—କୃଷ୍ଣସିଂହ. ମହାଭାରତ. ବନ ।

**ବର୍ଗୀୟ**—ସଂ. ବିଣ. ପୁଂ. (ବର୍ଗ+ସମ୍ବନ୍ଧାର୍ଥେ. ଇୟ)—୧ । ଶ୍ରେଣୀୟ— Bargīya 1. Belonging to a class. ୨ । ବର୍ଗର ( ବର୍ଗୀଣ—ଅନ୍ୟରୂପ ) ଅନ୍ତର୍ଗତ—2. Included in a class. (ବର୍ଗୀଣା, ବର୍ଗୀୟା—ସ୍ତ୍ରୀ) ୩ । ବ୍ୟଞ୍ଜନବର୍ଣ୍ଣର ୫ ଗୋଟି ବର୍ଗର ଅନ୍ତର୍ଗତ—3. Included in the 5 Bargas of consonants

ବର୍ଗୀୟ ଜ—ସ. ବ—ଚ ବର୍ଗର ତୃତୀୟ ବର୍ଣ୍ଣ—The 3rd consonant of Cha Barga.
Bargīya ja

[ ଦ୍ର—ଅବର୍ଗୀୟ ବା ଅନ୍ତଃସ୍ଥ ଯର ଉଚ୍ଚାରଣ 'ଯ' 'ଜ୍ୟ' ବା 'ୟ' । ]

ବର୍ଗୀୟ ବ—ସ. ବ—'ପ' ବର୍ଗର ତୃତୀୟ ବର୍ଣ୍ଣ—The 3rd consonant of Pa Barga.
Bargīya ba

[ ଦ୍ର—ଅନ୍ତଃସ୍ଥ ବା ଅବର୍ଗୀୟ 'ବ'ର ଉଚ୍ଚାରଣ ଉଅ (ଯଥା—ଉଅର୍ଦ୍ଧ); ଏହାକୁ ଭାଷାକୋଷରେ ଏକ ନୂତନ ଅକ୍ଷର ୱ ଦ୍ୱାରା ଚିହ୍ନିତ କରାଯାଇଅଛି । ଓଡ଼ିଆ ଭାଷାରେ ସଂସ୍କୃତ ଶବ୍ଦମାନଙ୍କରେ ଥିବା ବର୍ଗୀୟ ଓ ଅବର୍ଗୀୟ 'ବ'ର ଉଚ୍ଚାରଣରେ ବା ଲେଖାରେ କୌଣସି ପ୍ରଭେଦ ରଖାଯାଏ ନାହିଁ । ]

ବର୍ଗୁଡ଼ି ( ଇତ୍ୟାଦ )—ଦେ. ବ ( ସ. ବବଂଶୀ )—ବରଗୁଡ଼ି ଇତ୍ୟାଦ ( ଦେଖ )—Baragurdi etc ( See )
Bargurdi ( etc )

ବର୍ଗୋତ୍ତମ—ସ. ବିଣ—ବର୍ଗ ମଧ୍ୟରେ ଶ୍ରେଷ୍ଠ—Chief among the clan; best in the lot.
Bargottama

ସ. ବି—୧ । ( ଫଳିତ ଜ୍ୟୋତିଷ )—୧ । ମେଷାଦ ଦ୍ୱାଦଶ ରାଶିର ନବାଂଶବିଶେଷ—1. ( astrology ) The 9th part of the signo of zodiac

[ ଦ୍ର—ଫଳିତ ଜ୍ୟୋତିଷ ମତରେ ଚର ରାଶି ( ମେଷ, କର୍କଟ ତୁଳା, ମକର )ର ପ୍ରଥମ ଅଂଶ; ସ୍ଥିର ରାଶି ( ବୃଷ, ସିଂହ, ବୃଶ୍ଚିକ, କୁମ୍ଭ )ର ପଞ୍ଚମ ଅଂଶ; ଓ ଦ୍ୱ୍ୟାତ୍ମିକ ରାଶି ମିଥୁନ, କନ୍ୟା, ଧନୁ ମୀନ )ର ନବମ ଅଂଶ ବର୍ଗୋତ୍ତମ ଅଟେ । ଏହାର ଅର୍ଥରେ ସମସ୍ତ ରାଶିଙ୍କ ନବାଂଶକୁ ବର୍ଗୋତ୍ତମ ବୋଲାଯାଏ । ବର୍ଗୋତ୍ତମରେ ଥିବା ଗ୍ରହମାନ ଶୁଭ ଅଟନ୍ତି—ହ୍ଳ. ଶ. । ]

୨ । ( ବ୍ୟାକରଣ ) ବର୍ଗ୍ୟ ବର୍ଣ୍ଣମାନଙ୍କର ଶେଷରେ ଥିବ ଅକ୍ଷର; ଅନୁନାସିକ ବର୍ଣ୍ଣ; ବର୍ଗାନ୍ତ୍ୟ ବର୍ଣ୍ଣ—2. ( grammar ) A nasal consonant; the last letter or each of the first five classes of consonants ( Apte ).

ବର୍ଗ୍ୟ ( ଇତ୍ୟାଦ )—ସ. ବିଣ. ( ବର୍ଗ+ସମ୍ବନ୍ଧାର୍ଥେ. ଯ )—ବର୍ଗୀୟ ଇତ୍ୟାଦ ( ଦେଖ )—Bargīya etc ( See ).
Bargya ( etc )
( ବର୍ଗ୍ୟା—ସ୍ତ୍ରୀ )

ସ. ବି—୧ । ସହପାଠୀ ବ୍ୟକ୍ତି—1. Fellow student ( Apte ). ୨ । ସହକର୍ମୀ ବ୍ୟକ୍ତି—2. Colleague ( Apte )

ବର୍ଗ୍ୟ ଜ—ସଂ. ବ—ବର୍ଗୀୟ ଜ ( ଦେଖ )
Bargya ja Bargīya ja ( See )

ବର୍ଗ୍ୟ ବ—ସ. ବ—ବର୍ଗୀୟ ବ ( ଦେଖ )
Bargya ba Bargīya ba ( See )

ବର୍ଚ୍ଚ (ଧାତୁ)—ସ-ଦୀପ୍ତି ପାଇବା—
Barchh (root) To shine.

ବର୍ଚ୍ଚଃ—ସ. ବ. ( ବର୍ଚ୍ଚ ଧାତୁ+କର୍ତ୍ତୃ. ଅସ୍ )—୧ । ଉଜ୍ଜ୍ୱଳତା—1. Lustre. ୨ । ତେଜଃ—2. Glory; spirit; power; vigour. ୩ । କାନ୍ତି—3. Splendour; beauty. ୪ । ରୂପ—4. Form; shape. ୫ । ଶୁକ୍ର—5. Semen; matter. ୬ । ମଳ—6. Fæcus.
Barchhah

ବର୍ଚ୍ଚସ୍ୱୀ—ସ. ବିଣ. ପୁଂ. (ବର୍ଚ୍ଚସ୍+ଅସ୍ତ୍ୟର୍ଥରେ ବିନ୍; ବର୍ଚ୍ଚସ୍ୱିନ୍ ଶବ୍ଦ ୧ମା. ୧ବ )—୧ । ତେଜସ୍ୱୀ—1. Glorious; Splendid. ୨ । ଉଜ୍ଜ୍ୱଳ; ଦୀପ୍ତିଶାଳୀ—2. Radiant; dazzling; shining. ୩ । ଓଜସ୍ୱୀ—3. Powerful,
Barchhaswī
(ବର୍ଚ୍ଚସ୍ୱାନ୍—ଅନ୍ୟରୂପ)
ବର୍ଚ୍ଚସ୍ୱିନୀ, ବର୍ଚ୍ଚସ୍ୱତୀ } ଅନ୍ୟରୂପ

ସ. ବି—୧ । ସୂର୍ଯ୍ୟ—1. The Sun. ୨ । ଚନ୍ଦ୍ର—2. The moon.

ବର୍ଚ୍ଚସ୍ୟ—ସ. ବିଣ (ବର୍ଚ୍ଚସ୍+ଯ)—ତେଜୋବର୍ଦ୍ଧକ—Increasing spirit or vigour.
Barchchasya

ବର୍ଚ୍ଛା(ର୍ଚ୍ଛା)—ଦେ. ବ—ବରଛା ( ଦେଖ )
Barchhā(rchchhā) Barachhā ( See )

ବର୍ଜନ—ସ. ବ. ( ବୃଜ୍ ଧାତୁ=ତ୍ୟାଗ କରିବା+ଭାବ ଅନ )—୧ । ତ୍ୟାଗ—1. Giving up; abandonment; relinquishment. ୨ । ରହିତ କରିବା—2. Setting aside. ୩ । ହିଂସା—3. Hostility. ୪ । ବଧ—4 Slaughter.
Barjana
(ବର୍ଜ୍ଜନ—ଅନ୍ୟରୂପ)

ବର୍ଜନା—ଦେ. ବ—ପ୍ରତିବନ୍ଧକ—Obstacle.
Barjanā (ବର୍ଜ୍ଜନା—ଅନ୍ୟରୂପ)

ବର୍ଜନା କି ସେନବ ଘାର, କରିବେ କାମ ଶଙ୍କର ।
ଭଞ୍ଜ, ବୈଦେହୀଶବିଳାସ ।

ବର୍ଜନୀୟ—ସ. ବିଣ. ( ବୃଜ୍ ଧାତୁ+କର୍ମ. ଅନୀୟ )—ବର୍ଜନଯୋଗ୍ୟ; ତ୍ୟାଜ୍ୟ—Proper to be shunned; relinquishable.
Barjanīya
(ବର୍ଜ୍ୟ, ବର୍ଜ୍ଜ୍ୟ, ବର୍ଜ୍ଜନୀୟ—ଅନ୍ୟରୂପ)
(ବର୍ଜ୍ୟା, ବର୍ଜ୍ଜ୍ୟା, ବର୍ଜନୀୟା—ସ୍ତ୍ରୀ)

ବର୍ଜୟିତା—ସ. ବିଣ. ପୁଂ—ତ୍ୟାଗକାରୀ—Abandoning; growing up.
Barjayitā (ବର୍ଜୟିତ୍ରୀ—ସ୍ତ୍ରୀ)

ବର୍ଜାଇସ୍—ବୈଦେ. ବ. (ଇଂ)—ଛାପାର କ୍ଷୁଦ୍ରତମ ଅକ୍ଷର—Smallest type of printing letters bourgeois.
Barjāis
बर्जाइस बर्जाइस

ବର୍ଜିତ—ସ. ବିଣ. ( ବୃଜ୍ ଧାତୁ+କର୍ମ. ତ )—୧ । ପରିତ୍ୟକ୍ତ—1. Abandoned; shunned; relinquished.
Barjita
(ବର୍ଜ୍ଜିତ—ଅନ୍ୟରୂପ)
(ବର୍ଜିତା—ସ୍ତ୍ରୀ)

ଅଧ୍ୟାସ୍ୟମାନଙ୍କରେ ହୋଇବ ବର୍ଜିତ ।
କୃଷ୍ଣସିଂହ, ମହାଭାରତ, ଆଦ ।

୨ । କୃତ୍ରକୃତ—2. Removed. ୩ । ରହିତ—3. Set aside; deprived of. ୪ । ହତ—4. Killed.

ବର୍ଜିବା—ଦେ. କ୍ରି. (ସ. ବୃଜ୍ ଧାତୁ)—ତ୍ୟାଗ କରିବା—To abandon; to shun; to give up.
Barjibā
वर्जा बर्जना

ଘାମଙ୍କଠାରେ ଅପରାଧ ଯେ ବର୍ଜଇ
ଜାଣି କର ଏକା ସେ ପ୍ରାଣକୁ ବର୍ଜଇ
କୃଷ୍ଣସିଂହ, ମହାଭାରତ, ବନ ।

**ବଡ଼ି**—ପ୍ରାଦେ. (ସିଂହଭୂମ) ବି—ବିରୁଡ଼ି—
Barrdi Wasp.

**ବର୍ଣ୍** (ଧାତୁ)—ସଂ—୧ । ବାକ୍ୟର ବିସ୍ତାର କରିବା; ବର୍ଣ୍ଣନା କରିବା—
Barn (root) 1. To describe. ୨ । ସ୍ତବ କରିବା—2. To pray. ୩ । ନିଯୋଗ କରିବା—3. To appoint; to depute; to commission. ୪ । ଚିତ୍ର କରିବା—4. To point; to colour. ୫ । ବିଲେପନ କରିବା—5. To anoint.

**ବର୍ଣ୍ଣ**—ସଂ. ବି. ( ବର୍ଣ୍ ଧାତୁ+କର୍ମ. ଅ; ପ୍ରା. ବନ୍ନ; ଯେଉଁମାନେ ବେଦ
Barnna ବାକ୍ୟଦ୍ୱାରା ଆଚାରବିଧିରେ ପ୍ରବୃତ୍ତ ହୁଅନ୍ତି; କିମ୍ବା ବୃ ଧାତୁ-ବାଛିବା+କର୍ମ. ନ; ବ୍ୟବସାୟ ଅନୁକ୍ରମରେ ଯାହାଙ୍କୁ ବିଭିନ୍ନ ଶ୍ରେଣୀରେ ବଛା ଯାଇଅଛି )—୧ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଜାତି; ଜାତି—1. Caste; class.

[ଦ୍ର—ଏ ଶବ୍ଦର ପ୍ରାଚୀନ ପ୍ରୟୋଗ ଋଗ୍ବେଦରେ ଅଛି । ତହିଁରେ ମନୁଷ୍ୟମାନଙ୍କୁ ଦୁଇବର୍ଣ୍ଣରେ ବିଭକ୍ତ କରାଯାଇଅଛି; ଆର୍ଯ୍ୟ ଓ ଦସ୍ୟୁ ବା ଅନାର୍ଯ୍ୟ । ଏ ବିଭାଗ ପ୍ରଥମେ ଦେହର ବର୍ଣ୍ଣ ଅନୁସାରେ ହୋଇଥିବାର ଜଣାଯାଏ, କାରଣ ଆର୍ଯ୍ୟମାନେ ଗୋରା ଓ ଦସ୍ୟୁ ବା ଅନାର୍ଯ୍ୟମାନେ କଳା ଥିଲେ । ପରବର୍ତ୍ତୀ କାଳରେ ବ୍ୟବସାୟ ଉପରେ ଚାରିବର୍ଣ୍ଣର ବିଭାଗ ହେବାର ଜଣାଯାଏ । ପୁରୁଷସୂକ୍ତରେ ଆଲଙ୍କାରିକ ଉକ୍ତିରେ ବର୍ଣ୍ଣିତ ହୋଇଅଛି ଯେ, ଈଶ୍ୱରଙ୍କ ମୁଖରୁ ବ୍ରାହ୍ମଣ ବାହୁରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ ଶୂଦ୍ରଙ୍କ ଉତ୍ପତ୍ତି ହୋଇଥିଲା । ବର୍ଣ୍ଣ ଶବ୍ଦ ବୃ ଧାତୁରୁ ଉତ୍ପନ୍ନ; ବୃ ଧାତୁର ଅର୍ଥ ବରଣ କରିବା, ବାଛିବା; ଅତଏବ ବର୍ଣ୍ଣଶବ୍ଦର ଅର୍ଥ ହେଲା ବ୍ୟବସାୟ; ବ୍ୟବସାୟ ଅନୁସାରେ ବିଭିନ୍ନ ଶ୍ରେଣୀବିଭାଗକୁ ବର୍ଣ୍ଣ ବୋଲାଗଲା । ଏହି ଚାରିବର୍ଣ୍ଣଙ୍କର ଧର୍ମ ବା ବର୍ଣ୍ଣାଶ୍ରମଧର୍ମ ମଧ୍ୟ ସ୍ମୃତି ଆଦିରେ ନିରୂପିତ ହୋଇଅଛି । ବ୍ରାହ୍ମଣର ଧର୍ମ—ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ, ଦାନ, ପ୍ରତିଗ୍ରହ; କ୍ଷତ୍ରିୟର—ଅଧ୍ୟୟନ, ଯଜ୍ଞାନୁଷ୍ଠାନ, ଦାନ, ପ୍ରଜାପାଳନ; ବୈଶ୍ୟର କୃଷି, ପଶୁପାଳନ, ବାଣିଜ୍ୟ, ଦାନ ଯଜ୍ଞ, ଅଧ୍ୟୟନ; ଶୂଦ୍ରର—ଉଚ୍ଚତର ତିନି ବର୍ଣ୍ଣଙ୍କ ସେବା । ସବୁ ଦେଶରେ ବ୍ୟବସାୟଭେଦ ଓ ଧଳା କଳା ଚମଡ଼ା ଭେଦବିଚାର ଅଳ୍ପ ବହୁତ ଚଳି ଆସୁଅଛି । ଭାରତୀୟ ଆର୍ଯ୍ୟଙ୍କ ଲୋକ ବ୍ୟବସ୍ଥାରେ ଏହି ବର୍ଣ୍ଣଭେଦ ବ୍ୟବସାୟଗତ ଭେଦରୁ ଆରମ୍ଭ ହୋଇଥିଲେହେଁ ତାହା ଜନ୍ମଗତ ହୋଇଅଛି (ହି. ଶ ) । ଗୀତାରେ ଭଗବାନ କହିଅଛନ୍ତି— ଗୁଣକର୍ମବିଭାଗ ଅନୁସାରେ ମୁଁ ଚାରି ବର୍ଣ୍ଣର ସୃଷ୍ଟି କରିଅଛି । ପ୍ରୋଫେସର ପ୍ରାଣକୃଷ୍ଣ ପରିଜା 'ନବଭାରତ' ପତ୍ରିକାର ୧ ମ ଖଣ୍ଡ ୬ଷ୍ଠ ସଂଖ୍ୟାରେ ବିଜ୍ଞାନଦୃଷ୍ଟିରେ ବର୍ଣ୍ଣାଶ୍ରମଶୀର୍ଷକ ପ୍ରବନ୍ଧରେ ମତ ପ୍ରକାଶ କରିଅଛନ୍ତି ଯେ ଲୋକମାନଙ୍କ ଦେହର ବର୍ଣ୍ଣର ତାରତମ୍ୟ ବର୍ଣ୍ଣାଶ୍ରମର ମୂଳକାରଣ । ତାପରେ କର୍ମବିଭାଗ ଏବଂ ଆନୁଷଙ୍ଗିକ ଗୁଣବିଭାଗ ଆସିଲା । ଆମେରିକାର ଉଦାହରଣଦ୍ୱାରା ସେ ଏ ମତର ପୋଷକତା କରିଅଛନ୍ତି ]

୨ । (ଯାହାଦ୍ୱାରା ବାକ୍ୟ ବିସ୍ତାର କରାଯାଏ) 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଅକ୍ଷର—2. Alphabet; letter of alphabet.

[ ଦ୍ର—ଉଦାନ ବାୟୁ କଣ୍ଠନାଳୀରୁ ନିଃସୃତ ହୋଇ ଶ୍ରବଣେନ୍ଦ୍ରିୟଗ୍ରାହ୍ୟ ଶବ୍ଦ ଉତ୍ପାଦନ କରେ । ଏହି ଅସ୍ଫୁଟ ଶବ୍ଦର ନାମ ଧ୍ୱନି ଓ ସ୍ଫୁଟ ଶବ୍ଦର ନାମ ବର୍ଣ୍ଣ; ବର୍ଣ୍ଣର ଯେଉଁ ସାଙ୍କେତିକ ଚିହ୍ନ ଲେଖାଯାଏ ତାକୁ ଲିପି ବୋଲାଯାଏ । ବର୍ଣ୍ଣ ୨ ଶ୍ରେଣୀରେ ବିଭକ୍ତ; ସ୍ୱର ଓ ବ୍ୟଞ୍ଜନ । ]

୩ । (କର୍ମ. ଅ) ଅକ୍ଷରସମଷ୍ଟି; ବାକ୍ୟ—3. Word. ୪ । ରଙ୍ଗ—4. Colour; hue; tint. ୫ । ଦେହର ରଙ୍ଗ—5. Colour of the skin. ୬ । ସୌନ୍ଦର୍ଯ୍ୟ—6. Beauty, ୭ । ହସ୍ତୀର ପୃଷ୍ଠସ୍ଥିତ ଚିତ୍ରିତ କମ୍ବଳାଦି—7. Painted blanket covering the back of an elephant. ୮ । ଗୁଣ—8. Virtue. ୯ । ସ୍ତବ, ପ୍ରଶଂସା—9. Adoration; praise. ୧୦ । ବ୍ରତ—10. Vow ୧୧ । କୀର୍ତ୍ତି—11. Fame. ୧୨ । ନାଟ୍ୟାବେଶ—12. Prelude. ୧୩ । ବର୍ଣ୍ଣନା—13. Description ୧୪ । ଉତ୍କର୍ଷ—14. Excellence; eminence. ୧୫ । ପ୍ରସିଦ୍ଧି; ଖ୍ୟାତି—15. Reputation; good name. ୧୬ । ଗୁଣକୀର୍ତ୍ତନ—16. Extolling, recitation of good deeds. ୧୭ । ଗୀତକ୍ରମ—17. Sequence of songs. ୧୮ । ସୁବର୍ଣ୍ଣ—18. Gold. ୧୯ । ଭେଦ; ପ୍ରକାର—19. Kind; class. ୨୦ । ବିଲେପନ—20. Annointment. ୨୧ । ଅଷ୍ଟବିଧ ମୈଥୁନାଭାବ ରୂପ ବ୍ରତ—21. A vow consisting of eight kinds of amour. ୨୨ । ଆକୃତି; ରୂପ—22. Shape; figure. ୨୩ । କଷ୍ଟି ପଥରରେ ପଡ଼ିଥିବା ସୁବର୍ଣ୍ଣରେଖା—Gold line on the touch stone. ୨୪ । କୁଙ୍କୁମ—24. Saffrn. ୨୫ । ଚିତ୍ର ଛବି (ହି.ଶ)—25. Picture. ୨୬ । ବ୍ୟବସାୟ; ପେଷା; ଜୀବିକା (ହି. ଶ)—26. Livelihood; profession.

**ବର୍ଣ୍ଣକ**—ସଂ. ବିଣ. (ବର୍ଣ୍ଣ୍ ଧାତୁ+କର୍ତ୍ତୃ. ଅକ)—୧ । ବର୍ଣ୍ଣନାକାରୀ—
Barnnaka 1 Describing. ୨ । ସ୍ତୁତିପାଠକ; ଗୁଣକୀର୍ତ୍ତନକାରୀ—2. Singing praise; eulogising.

ସଂ. ବି—୧ । (ବର୍ଣ୍ଣ+ସ୍ୱାର୍ଥେ.କ)—ହରିତାଳ—1. Yellow orpiment. ୨ । ତୂଳୀ—2. Painting brush. ୩ । ମଣ୍ଡଳ (ହି. ଶ.)—3. Circle. ୪ । ରଙ୍ଗ (ହି. ଶ.)—4. Colour. ୫ । ଅକ୍ଷର—5. Letter; alphabet. ୬ । ଗ୍ରନ୍ଥ—6. Book. ୭ । କେଶବିନ୍ୟାସ—7. Chignon. ୮ । ଲେପନଦ୍ରବ୍ୟ (ଚନ୍ଦନାଦି)—8. Ointment (eg, sandal paste). ୯ । ହଳଦୀ—9. Turmeric. ୧୦ । ଅଭିନେତାମାନଙ୍କ

ପରଚ୍ଛଦ (ହ୍ର. ଶ.)—10. The dress of actors.
୧୧ । ଚିତ୍ରକର (ହ୍ର. ଶ.)—11. Painter.

**ବର୍ଣ୍ଣ ଗନ୍ଧ**—ସଂ. ବି. (ଦ୍ୱନ୍ଦ୍ୱ ସମାସ)—୧ । କୌଣସି ବସ୍ତୁର ରଙ୍ଗ ଓ ଗନ୍ଧ—1. Colour and smell of a thing. ୨ । କୌଣସି ବସ୍ତୁର କିଛି ମାତ୍ର ଚିହ୍ନ—2. Trace of a thing.
Barṇṇa gandha

**ବର୍ଣ୍ଣ ଗୁରୁ**—ସଂ. ବି. (୭ମୀ ତତ୍)—୧ । ବ୍ରାହ୍ମଣ—1 A Brāhmaṇ. ୨ । ଯେଉଁ ଗୁରୁ ଅକ୍ଷର ଶିକ୍ଷା ଦେଇଥାନ୍ତି—2. A teacher who teaches the alphabets.
Barṇṇa guru

**ବର୍ଣ୍ଣଜ୍ଞାନ**—ସଂ. ବି. (୬ଷ୍ଠୀ ତତ୍; ବର୍ଣ୍ଣ+ଜ୍ଞାନ)—ଅକ୍ଷରସମ୍ବନ୍ଧୀ ଜ୍ଞାନ—Knowledge of the alphabet.
Barṇṇajñāna
(ବର୍ଣ୍ଣପରିଚୟ, ବର୍ଣ୍ଣବୋଧ—ଅନ୍ୟରୂପ)

**ବର୍ଣ୍ଣ ଜ୍ୟେଷ୍ଠ**—ସଂ. ବିଣ. ପୁଂ. (୭ମୀ ତତ୍)—୧ । ବର୍ଣ୍ଣ ବା ଜାତିରେ ଉତ୍କୃଷ୍ଟ—1. Of superior caste. ୨ । ସବୁଜାତି ଅପେକ୍ଷା ଶ୍ରେଷ୍ଠ—2. Superior to all other castes.
Barṇṇa jyeshṭha
(ବର୍ଣ୍ଣଜ୍ୟେଷ୍ଠା—ସ୍ତ୍ରୀ)
(ବର୍ଣ୍ଣଶ୍ରେଷ୍ଠ—ଅନ୍ୟରୂପ)
(ବର୍ଣ୍ଣଶ୍ରେଷ୍ଠା—ସ୍ତ୍ରୀ) ସଂ. ବି—ବ୍ରାହ୍ମଣ—Brāhmaṇa.

**ବର୍ଣ୍ଣତୁ(ତୂ)ଲି(ଲୀ)**—ସଂ. ବି—୧ । ରଙ୍ଗ କରିବାର ତୂଳିକା—1. Painting brush. ୨ । କଲମ—2. Pen.
Barṇṇatu(tū)li(lī)
(ବର୍ଣ୍ଣତୁ(ତୂ)ଳିକା—ଅନ୍ୟରୂପ)

**ବର୍ଣ୍ଣଦୂତ**—ସଂ. ବି· (୬ଷ୍ଠୀ ତତ୍; ବର୍ଣ୍ଣ+ଦୂତ; ଏହା ବର୍ଣ୍ଣ ବା ଅକ୍ଷରମାନଙ୍କୁ ବହନ କରେ)—ପତ୍ର; ଚିଠି—Letter.
Barṇṇadūta

**ବର୍ଣ୍ଣ ଦୂଷକ**—ସଂ. ବି. ପୁଂ. (୬ଷ୍ଠୀ ତତ୍; ବର୍ଣ୍ଣ+ଦୂଷକ)—ପଂକ୍ତିଦୂଷକ; ପତିତ ବ୍ୟକ୍ତି—Outcaste; excommunicated.
Barṇṇa dūshaka

**ବର୍ଣ୍ଣ ଧର୍ମ**—ସଂ.ବି. (୬ଷ୍ଠୀ ତତ୍)—ବ୍ରାହ୍ମଣ,କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରାଦିବର୍ଣ୍ଣର ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମ—The respective duties of the castes as prescribed in the shastras.
Barṇṇa dharma

**ବର୍ଣ୍ଣନ(ନା)**—ସଂ. ବି. (ବର୍ଣ୍ଣ+ଭାବ. ଅନ)—୧ । ବାକ୍ୟ ବିସ୍ତାର କରିଣ; ବିସ୍ତାରିତ ରୂପେ କଥନ; କୌଣସି ବିଷୟର ବିସ୍ତାରିତ ବିବରଣ—1. Describing; description. ୨ । ଗୁଣ କଥନ; ପ୍ରଶଂସା କରିଣ; ସ୍ତୁତିପାଠ—2. Praising; eulogy. ୩ । ଅନ୍ୟର ଚିତ୍ତ ବିନୋଦନ—3. Act of pleasing another. ୪ । ରଞ୍ଜନ; ଚିତ୍ରଣ—4. Painting; dying. ୫ । ଲେଖିବା—5. Writing. ୬ । ବ୍ୟାଖ୍ୟାନ—6. Explaining; explanation.
Barṇṇana(nā)

**ବର୍ଣ୍ଣନ କର**—ଦେ. ବି. (ବର୍ଣ୍ଣନ+କୃ ଧାତୁ+ଅ)—କବି—Poet.
Barṇṇana kara
ବର୍ଣ୍ଣନକର ଦର୍ପ ସକଳ । ଭଞ୍ଜ· ପ୍ରେମସୁଧାନିଧି ।

**ବର୍ଣ୍ଣନା**—ସଂ. ବି. (ବର୍ଣ୍ଣନ+ଆ)—ବର୍ଣ୍ଣନ (ଦେଖ) Barṇṇana (See
Barṇṇanā

**ବର୍ଣ୍ଣନା କରିବା**—ଦେ.କ୍ରି—୧ । ବ୍ୟାଖ୍ୟା କରିବା—1. To describe. ୨ । ବିଶଦଭାବରେ କହିବା—2. To narrate in full.
Barṇṇanā karibā
ବର୍ଣନା କରা वर्णन करना

**ବର୍ଣ୍ଣନାତୀତ**—ସଂ. ବିଣ (୭ମୀ ତତ୍; ବର୍ଣ୍ଣନା+ଅତୀତ)—ଯାହା ବର୍ଣ୍ଣନା କରି ଶେଷ କରାଯାଇ ନ ପାରେ—Passing description; indescribable.
Barṇṇanātīta

**ବର୍ଣ୍ଣନା ପତ୍ର**—ଦେ. ବି. (କଚେରୀ)—ଅଦାଲତରେ ପ୍ରତିବାଦୀ ବାଦୀର ଅଭିଯୋଗର ଉତ୍ତରରେ ଯେଉଁ ଲେଖା ଦାଖଲ କରେ; ଜବାବ—A written statement filed by the defendant.
Barṇṇanā patra
জবাব
**जबाब**

**ବର୍ଣ୍ଣନାଶ**—ସଂ. ବି. (୬ଷ୍ଠୀ ତତ୍) (ନିରୁକ୍ତ ବା ବୈଦିକ ବ୍ୟାକରଣ)—ପ୍ରକୃତିପ୍ରତ୍ୟୟଦ୍ୱାରା ନିଷ୍ପନ୍ନ ପଦ ମଧ୍ୟସ୍ଥ କୌଣସି ବର୍ଣ୍ଣର ଲୋପ—The dropping out of a letter from a word formed under grammatical rules.
Barṇṇanāśa
( ଯଥା—ପୃଷତୋଦର ଓ ପୃଷତୋଦ୍ୟାନ ପଦର 'ତ'ର ନାଶ ହୋଇ ପୃଷୋଦର ଓ ପୃଷୋଦ୍ୟାନ ପଦର ବ୍ୟବହାର ହୁଏ ।]

**ବର୍ଣ୍ଣନିବା**—ଦେ. କ୍ରି.—(ପଦ୍ୟ) (ସଂ. ବର୍ଣ୍ଣନ) ବର୍ଣ୍ଣନା କରିବା—To describe; to relate.
Barṇṇanibā
ବର୍ଣ୍ଣନୁ ଥାଉ ଗୁରୁ ଚରିତ । ଭଞ୍ଜ· କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ବର୍ଣ୍ଣନୀୟ**—ସଂ. ବିଣ. (ବର୍ଣ୍ଣ ଧାତୁ+କର୍ମ. ଅନୀୟ)—୧ । ବର୍ଣ୍ଣନା ଯୋଗ୍ୟ—1. Describable. ୨ । ବ୍ୟାଖ୍ୟାର ଉପଯୁକ୍ତ—2. Fit to be narrated in detail.
Barṇṇanīya
(ବର୍ଣ୍ଣ୍ୟ—ଅନ୍ୟରୂପ)

**ବର୍ଣ୍ଣବତୀ**—ସଂ. ବି. (ବର୍ଣ୍ଣ+ବତ୍+ଈ)—ହଳଦୀ (ହ୍ର. ଶ.)—Turmeric.
Barṇṇabatī (ବର୍ଣ୍ଣବିଳାସିନୀ—ଅନ୍ୟରୂପ)

**ବର୍ଣ୍ଣବିକାର**—ସଂ. ବି. (୬ଷ୍ଠୀ ତତ୍; ବର୍ଣ୍ଣ+ବିକାର) (ଭାଷାତତ୍ତ୍ୱ)—ଶବ୍ଦ ବା ପଦର କୌଣସି ବର୍ଣ୍ଣର ଅନ୍ୟ ବର୍ଣ୍ଣରେ ପରିବର୍ତ୍ତନ—(philology) The change of one letter to another in a word.
Barṇṇabikāra
[ ଦ୍ର—ହରିଦ୍ରା ଶବ୍ଦର ବର୍ଣ୍ଣବିକାର ଘଟି ହଳଦୀ ଶବ୍ଦରେ ପରିଣତ ହୋଇଛି । ]

**ବର୍ଣ୍ଣ ବିପର୍ଯ୍ୟୟ**—ସଂ. ବି. (୬ଷ୍ଠୀ ତତ୍)—(ଭାଷାତତ୍ତ୍ୱ) ଶବ୍ଦରେ ଥିବା ବର୍ଣ୍ଣମାନଙ୍କର ହେରଫେର—(philology) The inversion or exchange of letters in a word.
Barṇṇa biparjyaya
[ ଦ୍ର—ହିନସ୍ ଧାତୁ+ଅ ପ୍ରତ୍ୟୟ ନିଷ୍ପନ୍ନ ହିଂସ ଶବ୍ଦର ବର୍ଣ୍ଣ ବିପର୍ଯ୍ୟୟ ଘଟି ସିଂହ ଶବ୍ଦର ଉତ୍ପତ୍ତି । ]

**ବର୍ଣ୍ଣବୃତ୍ତ**—ସଂ. ବି (୬ଷ୍ଠୀ ତତ୍)—ଯେଉଁ ପଦ୍ୟର ଚରଣମାନଙ୍କରେ ଅକ୍ଷରମାନଙ୍କ ସଂଖ୍ୟା ଓ ଲଘୁଗୁରୁର କ୍ରମ ସମାନ ରଖାଯାଏ—Metre.
Barṇṇabṛutta

**ବର୍ଣ୍ଣବୋଧ**—ସଂ. ବି—ଯେଉଁ ପୁସ୍ତକଦ୍ୱାରା ବର୍ଣ୍ଣଜ୍ଞାନ ଜନ୍ମେ—A primer; a spelling book.
Barṇṇabodha
(ବର୍ଣ୍ଣବୋଧକ—ଅନ୍ୟରୂପ).

**ବର୍ଣ୍ଣମାଳା**—ସଂ. ବି—୧. । କୌଣସି ଭାଷାର ଅକ୍ଷରସମୂହ; ସବୁ ଅକ୍ଷର-
Barnnamālā ମାନଙ୍କର ପର୍ଯ୍ୟାୟ କ୍ରମେ ଲିଖିତ ସୂଚୀ—
1. The alphabets. ୨ । ଜାତି ଫୁଲର ମାଳା—2. A garland made of Jāti flowers.

**ବର୍ଣ୍ଣୟିତବ୍ୟ**—ସଂ. ବି. (ବର୍ଣ୍ଣ୍ ଧାତୁ+କର୍ମ. ତବ୍ୟ)—ବର୍ଣ୍ଣନୀୟ (ଦେଖ)
Barnnayitabya Barnnanīya ( See )

**ବର୍ଣ୍ଣୟିତା**—ସଂ. ବିଣ. ପୁଂ ( ବର୍ଣ୍ଣୟିତୃ; ବର୍ଣ୍ଣ୍ ଧାତୁ+କର୍ମ. ତୃ )—ଯେ
Barnnayitā ବର୍ଣ୍ଣନା କରେ—Describing; narrating.
(ବର୍ଣ୍ଣୟିତ୍ରୀ—ସ୍ତ୍ରୀ)

**ବର୍ଣ୍ଣ ଯୋଜକ**—ସଂ. ବି. ( ଅଧୁନିକ ପ୍ରୟୋଗ )—( ଛାପାଖାନା ) ଯେ
Barnna jojaka ଟାଇପ୍ ଅକ୍ଷର ଯୋଡ଼େ—(printing) Compositor.

**ବର୍ଣ୍ଣ ଯୋଜନ(ନା)**—ସଂ.ବି. ( ଅଧୁନିକ ପ୍ରୟୋଗ )—୧ । (ଛାପାଖାନା)
Barnna jojana(nā) ଅକ୍ଷର ଟାଇପ୍ ଯୋଡ଼ିବା—1. (printing) Composition of the type of letters.
୨ । କୌଣସି ଶବ୍ଦରେ ଥିବା ମୌଳିକ ଅକ୍ଷରମାନଙ୍କର ବିଶ୍ଳେଷଣ କରି ସେମାନଙ୍କୁ ଏକତ୍ର ଯୋଡ଼ିବା—2. The conglomeration of original letters of a word after they are disjointed.

**ବର୍ଣ୍ଣ ରେଖା**—ସଂ. ବି—କଠିମାଟି; ଖଡ଼ି—
Barnna rekhā Chalk.

**ବର୍ଣ୍ଣ ସଙ୍କର**—ସଂ. ବି. ( ବର୍ଣ୍ଣ=ବ୍ରାହ୍ମଣାଦି+ସଙ୍କର=ମିଶ୍ରଣ )—
Barnna sankara ୧ । ଅନୁଲୋମ ବା ପ୍ରତିଲୋମଜାତ ମିଶ୍ର ଜାତି—1 Mixed caste. ୨ । ଭିନ୍ନ ବର୍ଣ୍ଣର ସ୍ତ୍ରୀ-ପୁରୁଷ ସଂଯୋଗରୁ ଉତ୍ପନ୍ନ ସନ୍ତାନ; ଦୋଗଲା—2. A person of mixed blood.

ସେହି ଦେଶରେ ବର୍ଣ୍ଣସଙ୍କର ଦୋଷହିଁ
ସବୁ ଅଙ୍ଗରୁ ଯାଇ ରହିଅଛି ପୋଷି । କୃଷ୍ଣସିଂ ମହାଭାରତ, ୪୫ ।

[ ଦ୍ର—ଗରୁଡ଼ପୁରାଣ ୯୬ ଅଧ୍ୟାୟରେ ଉଦ୍ଧୃତ ଯାଜ୍ଞବଲ୍କ୍ୟଙ୍କ ବଚନ ଅନୁସାରେ ବର୍ଣ୍ଣସଙ୍କର ଜାତିଙ୍କ ନାମ—ବ୍ରାହ୍ମଣ ପିତା ଓ କ୍ଷତ୍ରିୟା ମାତାଙ୍କଠାରୁ ଜାତ=ମୂର୍ଦ୍ଧାବସିକ୍ତ; ଶିବ । ବ୍ରାହ୍ମଣ ପିତା+ବୈଶ୍ୟା ମାତା=ଅମ୍ବଷ୍ଠ । ବ୍ରାହ୍ମଣ ପିତା+ଶୂଦ୍ରା ମାତା=ନିଷାଦ; ପାର୍ଶବ । କ୍ଷତ୍ରିୟ ପିତା+ବ୍ରାହ୍ମଣୀ ମାତା=ସୂତ । କ୍ଷତ୍ରିୟ ପିତା+ବୈଶ୍ୟା ମାତା=ମାହିଷ୍ୟ । କ୍ଷତ୍ରିୟ ପିତା+ଶୂଦ୍ରା ମାତା=ଉଗ୍ର । ବୈଶ୍ୟ ପିତା+ବ୍ରାହ୍ମଣୀ ମାତା=ବୈଦେହକ । ବୈଶ୍ୟ ପିତା+କ୍ଷତ୍ରିୟା ମାତା=ମାହିଷ୍ୟସୂତ; ମାଗଧ । ବୈଶ୍ୟ ପିତା+ଶୂଦ୍ରା ମାତା=ଉଗ୍ରସୂତ; କରଣ । ଶୂଦ୍ର ପିତା+ବ୍ରାହ୍ମଣୀ ମାତା=ଚଣ୍ଡାଳ । ଶୂଦ୍ର ପିତା+କ୍ଷତ୍ରିୟା ମାତା=କ୍ଷତ୍ତ୍ର । ଶୂଦ୍ର ପିତା+ବୈଶ୍ୟା ମାତା=ଆୟୋଗବ । ମାହିଷ୍ୟ ପିତା+କରଣୀ ମାତା=ରଥକାର । ଅନୁଲୋମଜ ଓ ପ୍ରତିଲୋମଜ ଭେଦରେ ବର୍ଣ୍ଣସଙ୍କରଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଅଛି । ମାତାଙ୍କ ଅପେକ୍ଷା ପିତାଙ୍କ ବର୍ଣ୍ଣ ଉଚ୍ଚତର ହେଲେ ତଦୁତ୍ପନ୍ନ ବ୍ୟକ୍ତି ବା ଜାତି ଅନୁଲୋମଜ ଓ ପିତାଙ୍କ ଅପେକ୍ଷା ମାତାଙ୍କ ବର୍ଣ୍ଣ ଉଚ୍ଚ ହେଲେ ତଦୁତ୍ପନ୍ନ ବ୍ୟକ୍ତି ବା ଜାତିକୁ ପ୍ରତିଲୋମଜ ବୋଲାଯାଏ । ]

ସଂ. ବିଣ—ଭିନ୍ନ ଜାତୀୟ ପିତା ଓ ମାତାଙ୍କଠାରୁ ଉତ୍ପନ୍ନ; ଦୋମିଶା; ଦୋଗୋଲିଆ—Half bred; hybrid; of mixed descent.

**ବର୍ଣ୍ଣା**—ସଂ. ବି. (ବର୍ଣ୍ଣ+ଆ)—ହରଡ଼ (ହି. ଶ)—
Barnnā A kind of pulse.
ପ୍ରାଦେ. (ସମ୍ବଲପୁର) ବି—ଏକ ପ୍ରକାର ଧାନ—
A species of paddy.

**ବର୍ଣ୍ଣାଞ୍ଜନ**—ଦେ. ବିଣ. ପୁଂ (ବହୁବ୍ରୀହି; ବର୍ଣ୍ଣ+ଅଞ୍ଜନ; ବର୍ଣ୍ଣ ଅଟେ
Barnnānjana ଅଞ୍ଜନ ପରି ଯାହାର)—ଶ୍ୟାମଳବର୍ଣ୍ଣବିଶିଷ୍ଟ—
(ବର୍ଣ୍ଣାଞ୍ଜନା—ସ୍ତ୍ରୀ) Of dark colour.

ବର୍ଣ୍ଣାଞ୍ଜନ ହେଲେ କୃଷ୍ଣବର୍ଣ୍ଣ ଦିଶିଲା । ଉପେନ୍ଦ୍ର- ବୈଦେହୀଶବିଳାସ ।

**ବର୍ଣ୍ଣାଟ**—ସଂ. ବି. ପୁଂ (ବର୍ଣ୍ଣ+ଅଟ୍ ଧାତୁ+କର୍ତ୍ତୃ. ଅ)—୧ । ଗାୟକ—
Barnnāta 1 Singer. ୨ । ଚିତ୍ରକର—2. Painter.
(ବର୍ଣ୍ଣାଟୀ—ସ୍ତ୍ରୀ) ୩ । ନଟ—3. Dancer; actor.

**ବର୍ଣ୍ଣାଧିପ**—ସଂ. ବି. ( ୬ଷ୍ଠୀ ତତ୍; ବର୍ଣ୍ଣ+ଅଧିପ )—(ଫଳିତ ଜ୍ୟୋତିଷ)
Barnnādhipa ବ୍ରାହ୍ମଣ କ୍ଷତ୍ରିୟାଦି ବର୍ଣ୍ଣମାନଙ୍କ ଅଧିପତି ବା ରକ୍ଷକ
(ବର୍ଣ୍ଣାଧିପତି—ଅନ୍ୟରୂପ) ଗ୍ରହ—(astrology) The planets said to be the protectors of particular castes.

[ ଦ୍ର—ବ୍ରାହ୍ମଣମାନଙ୍କ ଅଧିପତି ବୃହସ୍ପତି ଓ ଶୁକ୍ର, କ୍ଷତ୍ରିୟଙ୍କର ମଙ୍ଗଳ ଓ ରବି, ବୈଶ୍ୟଙ୍କର ଚନ୍ଦ୍ର, ଶୂଦ୍ରଙ୍କର ବୁଧ ଓ ଅନ୍ତ୍ୟଜମାନଙ୍କର ଅଧିପତି ଶନି ଅଟନ୍ତି । ]

**ବର୍ଣ୍ଣାନୁଭାବକତା**—ସଂ. ବି. ( ଆଧୁନିକ ପ୍ରୟୋଗ )—ଶୁକ୍ଳାଦି ବର୍ଣ୍ଣର
Barnnānubhābakatā ପ୍ରଭେଦ ଅନୁଭବ କରିବାର କ୍ଷମତା—
( ବର୍ଣ୍ଣାନୁଭୂତି—ଅନ୍ୟରୂପ ) The power of differentiating between different colours.

**ବର୍ଣ୍ଣାଶୁଦ୍ଧି**—ସଂ. ବି. ( ୬ଷ୍ଠୀ ତତ୍; ବର୍ଣ୍ଣ+ଅଶୁଦ୍ଧି )—ଅକ୍ଷର ଲେଖିବାରେ ଭୁଲ—Spelling mistake.
Barnnāsuddhi

**ବର୍ଣ୍ଣାଶ୍ରମ**—ସଂ. ବି. ( ୬ଷ୍ଠୀ ତତ୍; ବର୍ଣ୍ଣ+ଆଶ୍ରମ )—ହିନ୍ଦୁଧର୍ମର ଦ୍ୱିଜାତି
Barnnāsrama ( ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ )ମାନଙ୍କ ଜୀବନରେ ବାଲ୍ୟକାଳରୁ ଅନୁଷ୍ଠିତ ଭିନ୍ନ ଭିନ୍ନ ଶାସ୍ତ୍ରୋକ୍ତ ଆଶ୍ରମ ( ଯଥା—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଭିକ୍ଷୁ ବା ଯତି)—The four stages of the life enjoined in the Sāstras to be followed by a twice-born amongst the Hindus.

[ ଦ୍ର—ଆଶ୍ରମ ଶବ୍ଦ ନୋଟ୍ ଦେଖ । ]

**ବର୍ଣ୍ଣାଶ୍ରମ ଧର୍ମ**—ସଂ. ବି—ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ
Barnnāsrama dharma ଶୂଦ୍ରଙ୍କ ଆଚରଣୀୟ ବା କର୍ତ୍ତବ୍ୟ
( ବର୍ଣ୍ଣଧର୍ମ—ଅନ୍ୟରୂପ ) ପୃଥକ୍ କର୍ମମାନ—The different duties enjoined by the Sāstras to be performed by the 4 castes amongst the Hindus.

[ ଦ୍ର—ବର୍ଣ୍ଣ ୧ ଶବ୍ଦ ନୋଟ୍ ଦେଖ । ]

**ବର୍ଣ୍ଣାଶ୍ରମୀ**—ସଂ. ବିଣ. ପୁଂ—ବର୍ଣ୍ଣାଶ୍ରମଧର୍ମ ଅବଲମ୍ବନ କରିଥିବା (ବ୍ୟକ୍ତି)—
Barnnāsramī Following the duties of Barnnāsrama system.

ବଳବତ୍ତା—ସଂ. ବି (ବଳବତ୍+ଭାବ. ତା)—୧ । ଅତିଶୟ ବଳ, Balabattā ସାମର୍ଥ୍ୟ ବା ଶକ୍ତି—1. Very great power. ୨ । ଶକ୍ତିମତ୍ତା; ଶକ୍ତିବିଶିଷ୍ଟତା—2. The state of being strong; potency; validity.

ବଳବତ୍ର—ଗ୍ରା. ବିଣ—(ସଂ. ବଳବତ୍ତର)—ବଳବତ୍ତର (ଦେଖ) Balabatra Balabattara (See).

ବଳବନ୍ତ(ନ୍ତା)—ଦେ, ବିଣ—( ସଂ. ବଳବତ୍ ଶବ୍ଦର ୧ମା ବହୁବଚନ, Balabanta(ntā) ବଳବନ୍ତଃ)—୧ । ବଳବାନ୍; ବଳୁଆ— (ବଳବନ୍ତୀ—ସ୍ତ୍ରୀ) 1. Strong; might.

ଯାହାକୁ ରକ୍ଷିବେ ଅନନ୍ତ
କି କରି ପାରେ ବଳବନ୍ତ—ଜଗନ୍ନାଥ. ଭାଗବତ ।

बलवन्त ସେ ନାବରେ ବସି ମାଛଙ୍କ କଥା ଚିନ୍ତା

बलवंत କରନ୍ତେ ପାଇଗଲେ ମାତ୍ର ବଳବନ୍ତା—କୃଷ୍ଣସିଂହ, ମହାଭାରତ ବନ ।

୨ । କ୍ଷମତାଶାଳୀ—2. Powerful.

ପୁଣି ସେଙ୍କ ମାନେ ଅନନ୍ତ ବଳବନ୍ତ
ତାଙ୍କ ଭୂମ୍ଭେ ବଡ଼ୁଛନ୍ତ କି ସତକୃତ—କୃଷ୍ଣସିଂହ, ମହାଭାରତ ସଭା ।

ବଳ ବୟସ—ଦେ. ବି (ସଂ. ବଳ+ବୟଃ)—୧ । ଦେହରେ ସମର୍ଥକ Bala bayasa ବଳ ଓ ଯୁବା ବୟସ—1. Strength and बलबएस youth, ୨ । କୌଣସି କାର୍ଯ୍ୟ କରିବା ପାଇଁ ଉପଯୁକ୍ତ बलवयेस ବଳ ଓ ବୟସ—2. Enough strength and age for accomplishing an act.

ବଳବର୍ଦ୍ଧକ—ସଂ. ବିଣ—(ଉପପଦ ତତ୍ପୁରୁଷ)—ଯାହା ବଳ ବଢ଼ାଏ— Bala barddhaka Increasing strength; strengthening; invigorating.

ବଳବର୍ଦ୍ଧନ—ସଂ. ବି (୬ଷ୍ଠୀ ତତ୍)—ବଳର ବୃଦ୍ଧି—Increase Balabarddhana of strength, power or force.

ସଂ. ବିଣ—ଶକ୍ତି ବର୍ଦ୍ଧକ—Increasing strength or vigour; strengthening.

ବଲବଲ କରି ଚାହିଁବା—ଦେ. ବି (ସଂ. ପଲକ)—ଓଲୁପରି ନିର୍ନିମେଷ Balabala kari chāhiṅbā ନୟନରେ ଅନାଇବା—To बलबलकरे चाओया ताकना stare like an idiot.

ସେ ବଲ ବଲ କରି ଚାହିଁ ରହୁଥାଏ—
ଫକୀରମୋହନ: ଛମାଣ ଅଠଗୁଣ୍ଠ ।

ବଳ ବଳଣା(ନା)—ଦେ. ବି—ବନ୍ୟ ଗୁଳ୍ମବିଶେଷ—A wild shrub. Bala balaṇā(nā)

दुसारमाल [ ଦ୍ର—ଏଥିର ଚେର ହାଡ଼ୁଆ । ଏହା ପୁରୀ, ଖୋର୍ଦ୍ଧା ଓ ଗଡ଼ଜାତ ଅଞ୍ଚଳର ଜଙ୍ଗଲମାନଙ୍କରେ ହୁଏ । ]

ବଲବଲା—ଦେ. ବିଣ. ପୁଂ—ଓଲୁ—Idiot, Balabalā ଉଲୁ उल्लु [ ବଲବଲୀ, ବଲବଲେଇ ସ୍ତ୍ରୀ ]

ବଲବଲିଆ—ଦେ. ବିଣ. ପୁଂ—(ପୁରୁଷଙ୍କ ପ୍ରତି ଗାଳିବିଶେଷ)—(a Balabaliā term of abuse to males)—୧ । ବଲବଲା बलबले भदु (ଦେଖ)—1, Balabalā (See) ୨ । ସେ କାର୍ଯ୍ୟଗୁଡ଼ିକ ଅସୁନ୍ଦର ଭାବରେ କରେ— 2. Doing acts clumsily. ୩ । ଯାହା ପେଟରେ କଥା ରହେ ନାହିଁ 3. Babbling.

ଦେ. ବି—୧ । ଏକ ପ୍ରକାର ଶାଗ—1. A kind of pot-herb. ୨ । କ୍ଷୁଦ୍ର ଗୁଳ୍ମ ବିଶେଷ—2. A kind of small shrub.

[ ଦ୍ର—ଏହାର ପତ୍ର ଘାଆରେ ଲଗାଇଲେ ଘାଆ ଶୁଖିଯାଏ ।]

ବଳବାନ୍—ସଂ. ବିଣ ପୁଂ—(ବଳ+ବତ୍; ବଳବତ୍ ଶବ୍ଦ, ୧ମା. ୧ବ)— Balabān ୧ । ବଳୁଆ—1. Strong; mighty, ୨ । କ୍ଷମତା- [ବଳବତୀ—ସ୍ତ୍ରୀ] ଶାଳୀ—2. Powerful.

କ୍ରି. ବିଣ ଓ ବିଣର ବିଣ—ଅତ୍ୟନ୍ତ—Very much.

ବଳ ବିକ୍ରମ—ସଂ. ବି—(ଏକାର୍ଥକ ସହଚର ଶବ୍ଦଦ୍ୱୟ)—ଶକ୍ତି— Bala bikrama Power; strength. (ବଳପରାକ୍ରମ—ଅନ୍ୟରୂପ; ବଳପ୍ରାକର୍ମ—ଦେଶଜରୂପ)

ବଳ ବିନ୍ୟାସ—ସଂ. ବି—(୬ଷ୍ଠୀ ତତ୍; ବଳ+ବିନ୍ୟାସ)—ସୈନ୍ୟସଜ୍ଜା; Balabinyāsa ବ୍ୟୂହ ରଚନା—Array of troops.

ବଳବୀଜ—ସଂ. ବି—ଅତିବଳା (ଦ୍ବି. ଶ) (ଦେଖ) Balabija Atibalā (See).

ବଳ ବ୍ୟସନ—ସଂ. ବି—(୬ଷ୍ଠୀ ତତ୍; ବଳ=ସୈନ୍ୟ+ବ୍ୟସନ= Bala byasana ବିପଦ)—ସୈନ୍ୟ ଦଳର ପରାଜୟ ବା ଛତ୍ରଭଙ୍ଗ—Defeat or rout of an army.

ବଳଭଦ୍ର ଭଞ୍ଜ—ଦେ. ବି—ଗଞ୍ଜାମ ଜିଲ୍ଲା ଘୁମୁସର ରାଜ୍ୟର ଜନୈକ Balabhadra bhañja ପୁରାତନ ସାହିତ୍ୟିକ ରାଜା—Name of a literary Raja of Ganjam district.

[ ଦ୍ର—ସେ ୧୦୨୭-୧୦୫୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଉତ୍କଳର ପ୍ରଥମ କବି ଏବଂ ଉତ୍କଳଭାଷାରେ 'ଭାଗବତ' ନାମକ ଖଣ୍ଡିଏ କାବ୍ୟ ରଚନା କରିଥିଲେ । ଚାରଣୀଚରଣ-ଉତ୍କଳସାହିତ୍ୟ ଇତିହାସ । ]

ବଳଭଦ୍ର ଭୋଗ—ଦେ. ବି—ଏକପ୍ରକାର ସୁବାସିତ ଧାନ—A species Balabhadra bhoga of sweet scented paddy.

ବଳଭଦ୍ର ମିଶ୍ର—ସଂ. ବି (ନାମ)—ଜନୈକ ଓଡ଼ିଆ ଜ୍ୟୋତିଷୀ— Balabhadra misra Name of an Oria astrologer.

[ ଦ୍ର—୧୫୬୩ ଶକାବ୍ଦରେ ଏ ହାୟନରତ୍ନ ନାମକ ବର୍ଷଫଳ ଗଣନୋପଯୋଗୀ ତାଜକଗ୍ରନ୍ଥ ରଚନା କରିଥିଲେ । )

ବଳଭଦ୍ରା—ସଂ. ବି (ବଳ+ଭଦ୍ର+ଆ)—୧ । କୁମାରୀ—1. A Balabhadrā maiden. ୩ । ବଳରାମଙ୍କ ସ୍ତ୍ରୀ—3. Wife of Balarāma. ୪ । ଜଙ୍ଗଲୀ ଗାଈ; ନୀଳଗାଈ (ହ୍ରୀ)— 4, The Nilghau. ୫ । ତ୍ରାୟମାଣା ଲତା (ଦ୍ବି. ଶ) (ଦେଖ)—5. Trāyamāṇā (See).

ବଳ ଭାଙ୍ଗିବା—ଦେ. କ୍ରି—କୌଣସି କାର୍ଯ୍ୟରେ ନିଜର ବଳ ଓ ଶକ୍ତି Bala bhāṅgibā ପ୍ରୟୋଗ କରିବା—To spend one's बलभांगा energy (in doing a thing).

ଦେ. ବି—ବଳକ୍ଷୟ ହେବା—The ebbing of one's बल टुटना strength.

ବଳଭଦ୍ର—ସଂ. ବି (ବଳ=ଶକ୍ତି+ଭଦ୍ର=ଶ୍ରେଷ୍ଠ, ଅଥବା ବଳ= Balabhadra ବଳବାନ୍=ବଳବାନ୍ (ହୋଇ ମଧ୍ୟ)+ଭଦ୍ର=

ସୋମ୍ୟ)—୧ । ବଳରାମ; ଶ୍ରୀକୃଷ୍ଣଙ୍କ ବଡ଼ ଭାଇ—1. Balarāma. ୨ । ଅନନ୍ତ ନାଗ—2. The great serpent. ୩ । ଲୋଧ୍ର; ଲୋଧ୍ରଗଛ—3. Symplocus Racemosa. ୪ । ବଳୁଆ ବ୍ୟକ୍ତି—4. A strong man. ୫ । ନୀଳ ଗାଈ (ହି. ଶ)—5. The Nilghau; Boselaphus Tragocamelus. ୬ । ଭାରତବର୍ଷରେ ପର୍ବତବିଶେଷ (ହି. ଶ)—6. Name of a mountain. ୭ । ଗବୟ; ଗୟଲ—7. The Gayal; Bos Frontalis.

**ବଳଭଦ୍ର ଗୋତ୍ରୀ**—ଦେ. ବି (ସଂ.ବଳଭଦ୍ର+ଗୋତ୍ରୀୟ)—ଓଡ଼ିଆ ବ୍ରାହ୍ମଣ-Balabhadra gotri ମାନଙ୍କର ଏକ ନିମ୍ନଶାଖା; ମାସ୍ଥାନ—A low class of Oria Brāhmaṇas.
**ମୁହଁହାର**
ବଳଭଦ୍ର ଗୋତ୍ରିଆ, ବଳରାମ ଗୋତ୍ରୀ, ବଳରାମ ଗୋତ୍ରିଆ } ଅନ୍ୟରୂପ
[ଦ୍ର—ଏମାନେ ଆଠ କର୍ମରେ ବ୍ରତ ହୁଅନ୍ତି, କିନ୍ତୁ ଏମାନଙ୍କର ସାବିତ୍ରୀ ପ୍ରଦାନ ବା ବ୍ରତ ସମୟରେ ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ ପ୍ରଥା ନାହିଁ । ଏମାନେ ସାଧାରଣତଃ ହଳ କରନ୍ତି ଓ ଶିକା ଖାଆନ୍ତି, ଏମାନଙ୍କ ମଧ୍ୟରେ ସେନାପତି, ସାହୁ, ସ୍ୱାଇଁ, ମହାନ୍ତି ଆଦି ଶୂଦ୍ରୋଚିତ ବଂଶୋପାଧି ଅଛି । ]

**ବଳଭଦ୍ର ଜନ୍ମ**—ସଂ. ବି—ବଳଦେବଙ୍କର ଜନ୍ମଦିନ; ବଳଦେବ ପୂଜା, Balabhadra janma ଗହ୍ମାପୂର୍ଣ୍ଣିମା; ଶ୍ରାବଣ ପୂର୍ଣ୍ଣିମା—The fullmoon of the month of Śrābaṇa.
( ବଳଭଦ୍ର ପୂଜା—ଅନ୍ୟରୂପ )

**ବଳଭି(ଭୀ)**—ସଂ. ବି. (ବଲ୍ ଧାତୁ=ଆବୃତ କରିବା+ଅଭ+ଇ;ଈ)—Balabhi(bhi) ବଡ଼ଭି ( ଦେଖ )—Bardabhi ( See )

**ବଳଭିଦ୍**—ସଂ. ବି. ( ବଳ ନାମକ ଅସୁରକୁ ଯେ ଭେଦ କରିଥିଲେ; Balabhid ବଳ+ଭିଦ୍ ଧାତୁ+କର୍ତ୍ତୃ କ୍ୱିପ୍ )—ଇନ୍ଦ୍ର—Indra.
(ବଳଘ୍ନ, ବଳହା, ବଳସୂଦନ, ବଳନିସୂଦନ, ବଳହନ୍ତା—ଅନ୍ୟରୂପ )

**ବଳଭୂମି**—ସଂ. ବି. ( ୬ଷ୍ଠୀ ତତ୍; ବଳ=ସୈନ୍ୟ+ଭୂମି=ସ୍ଥାନ )—Balabhūmi ଛାଉଣୀ; ସେନାନିବାସ—A camp of soldiers; cantonment.

**ବଲମ୍(ମ)**—ଦେ. ବି. ( ସଂ. ଭଲ୍ଲ )—ବର୍ଚ୍ଛା—Spear.
Balam(ma) ବର୍ଷା **बल्लम**

**ବଳମାନ**—ଗ୍ରା. ବିଣ ( ସଂ. ବଳବାନ୍‌ର ଅଶୁଦ୍ଧ ପ୍ରୟୋଗ )—Balamāna ବଳବାନ୍; ସବଳ—Strong.
ବାସବର ସ୍ନେହ; ବଳମାନ ସଂକର୍ଷଣ କରଇ—
ଭଞ୍ଜ, ବୈଦେହୀଶବିଳାସ ।

**ବଳୟ**—ସଂ. ବି ( ବଲ୍ ଧାତୁ=ବେଷ୍ଟନ କରିବା+କର୍ତ୍ତୃ. ଅୟ )—Balaya ୧ । କରଭୂଷଣ; କଙ୍କଣ; ଖଡ଼ୁ—1. Wristlet; bracelet.
[ ଦ୍ର—ଓଡ଼ିଆରେ ଗୋଡ଼ର ଭୂଷଣ 'ବଲା' ଓ ବଙ୍ଗଳାରେ ହାତର ଭୂଷଣ 'ବାଲା' ଏହି ଶବ୍ଦର ଅପଭ୍ରଂଶ । ]
୨ । ବାହୁ ଅଗରେ ବସାଯିବା ଧାତୁନିର୍ମିତ ମୁଦିଆ ବା ବଳା—2. A circular ring of metal. ୩ । ଗୋଲାକାର ବାଡ଼; ବେଷ୍ଟନ—3. A circular enclosure. ୪ । ମଣ୍ଡଳ—4. Circle. ୫ । ( +ଭାବେ. ଅୟ ) ବେଷ୍ଟନ—5. Circumscribing; encircling. ୬ । ( +କର୍ତ୍ତୃ. ଅୟ ) ଗଳରୋଗବିଶେଷ—6. A kind of throat disease.
[ ଦ୍ର—ଏହା ୧୮ ପ୍ରକାର ଗଳଗଣ୍ଡ ରୋଗରୁ ଏକ ଅଟେ; ଏଥିରେ କଫ ଯୋଗୁଁ ଗଳନାଳୀରେ ଗୋଟିଏ ଗଣ୍ଠି ହୋଇଯାଏ ଓ ଏହା ଅନ୍ନର ପଥ ରୋଧ କରେ; ଏହା ଅସାଧ୍ୟ—ହି. ଶ. । ]
୭ । ଶାଖା—7. A branch. ୮ । କଟିମେଖଳା—8. The zone or girdle of a married woman. ୯ । ଗୋଡ଼ି; କଙ୍କର ( ହି. ଶ )—9. Pebble.

**ବଳୟା**—ଗ୍ରା. ପ୍ରାଦେ. ( ଗଡ଼ଜାତ ) ବି—ବଳଆ କୁକୁର; ବନ୍ୟ Balayā କୁକୁର—Wild dog.

**ବଳୟାକାର**—ସଂ. ବିଣ ( ବହୁବ୍ରୀହି; ବଳୟ+ଆକାର )—( ବଳୟ Balayākāra ପରି ) ଗୋଲ—Circular ( like a bracelet ).
( ବଳୟାକୃତି—ଅନ୍ୟରୂପ )

**ବଳୟିତ**—ସଂ. ବିଣ. ( ବଳୟ+ଯୁକ୍ତ ବା ସଞ୍ଜାତାର୍ଥେ. ଇତ )—Balayita ୧ । ବଳୟଯୁକ୍ତ; ବଳୟପରିହିତ—1. Wearing a bracelet. ୨ । ଗୋଲ; ବଳୟାକୃତି—2. Circular; round. ୩ । ବେଷ୍ଟିତ—3. Surrounded. ୪ । କୁଞ୍ଚୁକୁଞ୍ଚିଆ—4. Curly ( Apte ).

**ବଳ ରହିବା**—ଦେ. ବି—( ବୟସର ଆଧିକ୍ୟ ହେତୁରୁ, ରୋଗାଦି Bala rahibā ହେତୁରୁ ବା କାର୍ଯ୍ୟରେ କ୍ଳାନ୍ତ ହେତୁରୁ) ପୂର୍ବତନ ଜୋର କମା,କାମଜୋର ହଓୟା ଶକ୍ତି ରହିତ ହେବା—The decaying of strength ( owing either to old age, disease or fatigue).
**बल घटना**
ବଳ କମିବା, ବଳ କମିଯିବା, ବଳ ରହିଯିବା } ଅନ୍ୟରୂପ

**ବଳରାମ**—ସଂ. ବି ( ବଳ+ରମ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. ଅ )—Balarāma ଶ୍ରୀକୃଷ୍ଣଙ୍କ ବଡ଼ ସାବତ ଭାଇ; ବଳଦେବ; ବଳଭଦ୍ର, ବିଷ୍ଣୁଙ୍କର ଅଷ୍ଟମ ଅବତାର—The elder stepbrother of Srikrushna; the 8th incarnation of Bishnu.

**ବଳରାମ ଦାସ**—ଦେ. ବି. ( ନାମ )—ଜନୈକ ଓଡ଼ିଆ କବି—Balarāma dāsa An Oriya poet.
[ ଦ୍ର—କବି ପୁରୁଷୋତ୍ତମ କ୍ଷେତ୍ରବାସୀ ଜଣେ କରଣ ଥିଲେ । ଏ ବୈଷ୍ଣବଧର୍ମାବଲମ୍ବୀ; ରାମାୟଣ, ଭଗବଦ୍‌ଗୀତା, ବିରାଟଗୀତା, ଲକ୍ଷ୍ମୀପୁରାଣ ପ୍ରଭୃତି ୨୪ ଖଣ୍ଡ ପୁସ୍ତକ ରଚନା କରିଥିଲେ । ଓଡ଼ିଶାର ସ୍ୱାଧୀନ ରାଜା ପ୍ରତାପରୁଦ୍ରଦେବଙ୍କ ସମୟରେ ( ୧୫୦୪—୧୫୩୨ ଖ୍ରୀଷ୍ଟାବ୍ଦ ) ସେ ଜୀବିତ ଥିଲେ—ଭାରଣୀ. ଉତ୍କଳ ସାହିତ୍ୟ. ଇତିହାସ । ]

**ବଳରିପୁ**—ସଂ. ବି. ( ୬ଷ୍ଠୀ ତତ୍ )—ଇନ୍ଦ୍ର—Balaripu Indra.

ବଳଶାଳୀ—ସଂ. ବିଣ. ପୁଂ ( ବଳ+ଅସ୍ତ୍ୟ ଅର୍ଥରେ ଶାଳିନ୍ )—
Bala̤śāḷī ବଳବାନ୍; ବଳୁଆ; ବଳିଷ୍ଠ—Strong; mighty.
(ବଳଶାଳିନୀ—ସ୍ତ୍ରୀ)

ବଳସ—ପ୍ରାଦେ. ( ଅଠମଲ୍ଲିକ ) ବି—ଅମାର; ଶସ୍ୟାଗାର—
Bala̤sa Granary.

ବଳ ସଞ୍ଚୟ—ସଂ. ବି. ( ୬ଷ୍ଠୀ ତତ୍ ) —ବଳାଧାନ—Conservation
Bala saṅchaya or accumulation of energy.

ବଳସୂଦନ—ସଂ. ବି ( ବଳ+ସୂଦ ଧାତୁ=ବିନାଶ କରିବା+କର୍ତ୍ତୃ.
Bala̤sūdana ଅନ )—ଇନ୍ଦ୍ର—Indra.

ବଳସେବୀ—ଦେ. ବି. ବିଣ ( ଆଧୁନିକ ପ୍ରୟୋଗ; ଇଂ. ବଲ୍‌ଶଭିକ୍ ଶବ୍ଦର
Bala̤sebī ଆଧୁନିକ ଭାବାର୍ଥକ ଓଡ଼ିଆ ଅନୁବାଦ )—ବଲ୍‌ଶଭିକ୍
( ଦେଖ )—Bals-bhik ( See ).

ବଳସ୍ଥିତି—ସଂ. ବି. ( ୬ଷ୍ଠୀ ତତ୍ )—୧ । ସେନାନିବାସ; ଛାଉଣୀ—
Bala̤sthiti 1. Cantonment; camp. ୨ । ସୈନ୍ୟ
ସମାବେଶ—2. Array of troops. ୩ । ସୈନ୍ୟ-
ମାନଙ୍କର ଅବସ୍ଥିତି—3. The position of an army.

ବଳହା—ସଂ. ବି. ( ବଳ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍; ବଳହନ୍ ଶବ୍ଦ
Bala̤hā ୧ମା. ୧ବ )—୧ । ଇନ୍ଦ୍ର—1. Indra. ୨ । (ଯାହା
( ବଳହନ୍ତା—ଅନ୍ୟରୂପ ) ଶକ୍ତିକୁ ବିନାଶ କରେ ) ଶ୍ଳେଷ୍ମା—
2. Cough; catarrh; phlegm. ୩ । ବଳରାମ—
Balarāma

ବଳହାନି—ସଂ. ବି. ( ୬ଷ୍ଠୀ ତତ୍ )—୧ । ଶକ୍ତିର ବିନାଶ—
Bala̤hāni 1. Loss of strength. ୨ । ସୈନ୍ୟନାଶ—
( ବଳଲୋପ, ବଳକ୍ଷୟ—ଅନ୍ୟରୂପ ) 2. Loss of an army.

ବଳହୀନ—ସଂ. ବିଣ. ପୁଂ ( ୩ୟା ତତ୍ )—୧ । ନିର୍ବଳ; ଦୁର୍ବଳ—
Bala̤hīna 1. Weak; infirm. ୨ । ସୈନ୍ୟବଳହୀନ—
( ବଳରହିତ—ଅନ୍ୟରୂପ ) 2. Devoid of an army.
( ବଳହୀନା, ବଳରହିତା—ସ୍ତ୍ରୀ )

ବଳା—ସଂ. ବି. ( ବଳ+ଆ )—୧ । ବାଡ଼ି ଅଁଲା ଗୁଳ୍ମ—1. Sida
Bala̤ Cordifolia. ୨ । ବଳା ଚତୁଷ୍ଟୟ ( ଦେଖ )
वमल पयल, पायल 2. Bala̤ chatushṭaya (See)

ବଳାପତ୍ର ଫଳବତୀ ପ୍ରଫୁଲ୍ଲ ସେବତୀ
ବତିଶ ଲକ୍ଷଣା ଦେଖ ବହୁରେ ପାଟଗା । ଭଞ୍ଜ. ବୈଦେହୀଶବିଳାସ ।

୨ । ଯୁଦ୍ଧବିଦ୍ୟାବିଶେଷ—2. An art of war.
୩ । ଅସ୍ତ୍ରବିଦ୍ୟାବିଶେଷ; ( ତାଡ଼କାବଧ ସମୟରେ ବିଶ୍ୱାମିତ୍ର
ଶ୍ରୀରାମଙ୍କ ଏହି ମନ୍ତ୍ର ପ୍ରଦାନ କରିଥିଲେ)—3. A kind of
incantation. ୪ । ସାନ ଭଉଣୀ (ହ୍ରୀ. ଶ)—
4. Younger sister.
ଦେ. ବି. (ସଂ. ବଳୟ)—୧ । ଗୋଡ଼ର ଗଣ୍ଠି ତଳେ ପିନ୍ଧା-
ଯିବା ଅଳଙ୍କାର—1. Anklet.

ତରୁଣକେ ବଳା ପଦେ, ନାଦ ପ୍ରକଟଇ । ଭଞ୍ଜ. ଲାବଣ୍ୟବତୀ ।

अँगठी मुदिया ୨ । ମୁଦିସ୍ତା; ଧାତୁ ବଳୟ—1. A metal
बाला चूडी ring. ୩ । ସ୍ତ୍ରୀକରଭୂଷଣ—3. Bracelet;
bangle. ୪ । ଶଗଡ଼ଚକର ନାହିର ଚାରି ପାଖେ ଗୁଡ଼ିଥିବା
ଲୁହା—4. An iron plate surrounding the
knob of a cart wheel. ୫ । ବଳିବା କ୍ରିୟା—
5. Act of rolling up a thing. ୬ । (ସଂ. ବାଳ)
ବାଳକ; ସନ୍ତାନ; ପୁତ୍ର—6. Son.

ଯୋ ମାଅର ତୁ ଏକୋଇ ବଳା
ଯେଣୁ ତୁ ଅଟୁ ଡେଣିକ ଡଳା
ଡେଙ୍ଗୁଳ ବଗ ପ୍ରତି ସୁଗ୍ରୀବ ବଚନ ।

ପ୍ରାଦେ. (ଭଦ୍ରକ) ବି—ଡାବଲର ଦୁଇ ମୁଣ୍ଡରେ ଥିବା ଦଉଡ଼ିର
ବଳା ଯାଇଥିବା ମୂଠା—The two knobbed ends
of the stick with which the game of
Ḍābala puā is played.

ପ୍ରାଦେ. (ସିଂହଭୂମ) ବି—ହାତରେ ପିନ୍ଧାଯିବା ସୁନା ରୂପାର
ଗହଣା—An ornament of gold or silver for
the wrist.

ପ୍ରାଦେ. (ଯାଜପୁର ଓ ବାଲେଶ୍ୱର) ବି. (ଭୁଲ. ବି. ବାଲା)—
ସ୍ତ୍ରୀଙ୍କ ହାତରେ ପିନ୍ଧାଯିବା ସରୁଆ ଖଡ଼ୁ—Thin brace-
let worn by women.

ପ୍ରାଦେ. (ଗଞ୍ଜାମ) ବି—ବାଗି—Bubo.

ବଲ୍ଲା—ପ୍ରାଦେ. (ସମ୍ବଲପୁର) ବି—ବଳୟ; ହାତ ଖଡ଼ୁ—
Bala̤ Bangle.

ବଳା(ଳେ)ଇବା—ଦେ. କ୍ରି. ( ସଂ. ବଳ; ବଳାତ୍କାର )—୧ । କୌଣସି
Bala̤(le)ibā କାର୍ଯ୍ୟ କରିବାକୁ ବାଧ୍ୟ କରିବା; କୌଣସି
जबरदस्ति करना କର୍ମ କରିବାକୁ ବଳାତ୍କାର କରିବା—
बरजोरी करना 1. To force a person to do a thing.
୨ । ବଳାତ୍କାର କରିବା; ବଳ ପ୍ରୟୋଗ କରିବା; ଜବରଦସ୍ତି
କରିବା—2. To use force; to commit viol-
ence; to coerce.
( ଯଥା—ଦେଖିବା ଦେଖି ! ସେ ମୋତେ ବଳାଇ ଅନ୍ୟାୟ
କାର୍ଯ୍ୟ କରାଇବ ? )
୩ । ଆଗ୍ରହାତିଶୟ୍ୟ ପୂର୍ବକ ପ୍ରବର୍ତ୍ତାଇବା; ବିଶେଷ ଭାବରେ
हठ करना ଅନୁରୋଧ କରିବା—3. To importune; to
press.

କାହିଁକି ସଖି । ବଳାଉ ମୋତେ ଗୋ । ସଙ୍ଗୀତ ।

୪ । ଅତିକ୍ରମ କରାଇବା—4. To cause a person to
pass over a place.

ଏ ସମସ୍ତେ ଦୋଳାକୁ ବଳାଇ ଦେହଳୀ କି ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୫ । ପ୍ରସ୍ଥାନକାରୀ ବ୍ୟକ୍ତିଙ୍କ ସଙ୍ଗେ କିଛିଦୂର ବାଟକୁ ଯାଇଁ ଛାଡ଼ି
ଦେଇ ଆସିବା; ବାଟ ବଳାଇବା—5. To see a
अरिआतना departing person off by accompanying
him to a certain distance.
( ଯଥା—ରାଜା ସାହେବ ଗୋଲ୍‌ଡ଼ିକାଲ୍ ଏଜେଣ୍ଟଙ୍କୁ ବଳାଇବାକୁ
କୋଶେ ବାଟ ଯାଇଥିଲେ । )

୬ । ବଢ଼ିବା; ବଳ ପଡ଼ିବା; କ୍ଷମତା ବା ଶକ୍ତିର ଅଧିକରୁ ହେବା—6. To exceed one's power or capacity.
**बढ़ना**

( ଯଥା—ଏଣିକି ପେଟ ଦୁଃଖ ମତେ ବଳାଇଲାଣି । )

୭ । ଅନ୍ୟ ଦ୍ୱାରା ବଳିବା କ୍ରିୟା କରାଇବା—7. To cause another to roll or twist up.
**बाँटवाना**

( ଯଥା—ଶ୍ରେଣରକୁ ଜେଲର ବାବୁ ଦଉଡ଼ି ବଳାଉଛନ୍ତି । )

୮ । ଅବଶିଷ୍ଟ ବା ଉଦ୍ବୃତ୍ତ ରଖିବା—8. To leave any remainder.
**बाँकि रखना**

( ଯଥା—ମୁଁ ବଣ ଭୋଜି ପାଇଁ ଯେତେକ ଗୁଡ଼ଲ ଦେଲି ତାକୁ ବଳାଇ କର ଘରକୁ ଫେରାଇ ଆଣିବ ନାହିଁ । )

୯ । ବଢ଼ାଇବା; ସୀମାରୁ ଅଧିକ କରିବା—9. To cause to exceed a limit.
**बेशि करना**

( ଯଥା—ଗଉଣୀ ଉପରେ ବଳାଇ କର ଆଉ ପୋଏ ଗୁଡ଼ଲ ମୋତେ ନ ଦେଲେ ମୋ ପେଟ ପୂରିବ ନାହିଁ । )

୧୦ । ସୀମାରୁ ଅଧିକରୁ ବା ଅଧିକ ହେବା—10. To exceed the limit.
**बढ़ना**

( ଯଥା—ନଈରେ ପଶି କର ଯାଉଁ ଯାଉଁ ଖଣ୍ଡଦୂରରେ ପାଣି ମୋ ଛାତିରୁ ବଳାଇଲା । )

୧୧ । ମହତ୍ତର କରିବା—11. To make greater; to enhance; to enlarge.
**बढ़ाना**

ବସ୍ତ୍ର ମଧ କଇଁଚ ପାଦାଳେ
ବନାଳେ ଏ ଲାଗି ବଳାଇଲେ ।—ଉପ୍ତ, ବୈଦେହୀଶବିଳାସ ।

୧୨ । ( ଆପଣାର ମନକୁ ) କୌଣସି ବିଷୟ ପ୍ରତି ଆକୃଷ୍ଟ କରାଇବା; ଆସକ୍ତ କରିବା—12. To cause (one's mind) to be attracted or attached to a matter.
**बढ़ाना**

ବଳାହକ କେଶୀ ତଳ, ବଳାନା ମାନେ ବତୁତ । ପ୍ରାଚୀନ ସଙ୍ଗୀତ ।

୧୩ । ଆଗ ବଳିବା; ସମସ୍ତଙ୍କ ଆଗରେ ଅଗ୍ରସର ହେବା—13. To go ahead; to overtop. ୧୪ । ତଡ଼ିଦେବା—14. To drive out.
**बढ़ना**

ବଳାଇ ଦ୍ୱାର ବାହୁଡ଼େ ସମତକୁ ବଳେ
ସୁବେଳରେ ଘନେ ସେ (ଦ୍ୱାର) ଉପ୍ତ, ବୈଦେହୀଶବିଳାସ ।

୧୫ । କୌଣସି ପଦାର୍ଥକୁ ସ୍ପର୍ଶ କରିବା ନିମିତ୍ତ ହସ୍ତ ପଦାଦି ବଢ଼ାଇବା—15. To extend one's hands or feet in order to touch a thing.
**बढ़ाना**

ବନ ର ପେଟ ହେଳ ହେଳ ପଦ ବଳା । ଉପ୍ତ, ବୈଦେହୀଶବିଳାସ ।

**ବଳାକ**—ସଂ. ବି. ପୁଂ. (ବଳ=ଶକ୍ତି+ଅଲ୍ ଧାତୁ=ବକ୍ରଗମନ କରିବା +କର୍ତ୍ତୃ. ଅ; ଯେ ବଳପ୍ରକାଶ ପୂର୍ବକ ଊର୍ଦ୍ଧ୍ୱକୁ ବକ୍ରଭାବରେ ଗମନ କରେ)—୧ । କ୍ଷୁଦ୍ର ବକପକ୍ଷୀ—1. The paddy bird; the egret. ୨ । (ନାମ) ଭାଗବତୋକ୍ତ ପୂରୁ ରାଜାଙ୍କ ପୁତ୍ର ଓ ଜହ୍ନୁଙ୍କ ପୌତ୍ର (ହି. ଶ.)—2. Name of a king of ancient India. ୩ । ରାକ୍ଷସବିଶେଷ (ହି. ଶ.)—3. Name of a demon. ୪ । ଜାତୁକର୍ଣ୍ଣ ମୁନଙ୍କର ଏକ ଶିଷ୍ୟ (ହି. ଶ.)—4. Name of a disciple of sage Jātukarnna.
Balāka (ବଳାକା—ସ୍ତ୍ରୀ)

**ବଳାକା**—ସଂ. ବି. ସ୍ତ୍ରୀ.—(ବଳାକ+ଆ)—୧ । ସ୍ତ୍ରୀ ବକପକ୍ଷୀ—1. A female egert. ୨ । କାମୁକା ସ୍ତ୍ରୀ—2. A passionate or lustful woman. ୩ । ପ୍ରେମିକା—3. A mistress; a loved woman (M. W.). ୪ । ବକଶ୍ରେଣୀ—4. A row of egrets. ୫ । କୁଳଟା ସ୍ତ୍ରୀ—5. An adulteress. ୬ । ଏକପ୍ରକାର ନୃତ୍ୟ—6. A kind of dance.
Balākā

**ବଳାଗଣ୍ଠି**—ଦେ. ବି—[ ଯାହାତଳେ ବଳା ପିନ୍ଧା ଯାଏ । ] ଗୋଡ଼ର ଗଣ୍ଠି—Ankle.
Balāganthi
**पायेरगाँठ**
**घुटना; गट्टा**

ଯେଉଁ ମାନଙ୍କର ଉରୁ, ବଳାଗଣ୍ଠି
ସାର୍ବ ହେଲ ସେମାନେ ଭଜନେ ପଢ଼ ଉଠି ।
କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

**ବଳାଗଣ୍ଠି ପାଣି**—ଦେ. ବି—ବଳାଗଣ୍ଠି ପର୍ଯ୍ୟନ୍ତ ପାଣିରେ ବୁଡ଼ିଯିବା ଭଳି ଗଭୀର ଜଳ; ପ୍ରାୟ ୩ ଅଙ୍ଗୁଳ ଗଭୀର ଜଳ—Water about 3 inches deep.; water deep up to a man's ankle.
Balāganthi pāni
**एकगाँठ जल**
**भरघुट्टो पानी**
(ବଳାଗଣ୍ଠିଏ ପାଣି—ଅନ୍ୟରୂପ)

**ବଳାଗୁଣା**—ଦେ. ବି—ଖଣ୍ଡିଗୁଣା ( ଦେଖ )
Balāgunā Khandi gunā ( See )

**ବଳାଗୁଣି**—ଦେ. ବି. ( ବଣିଆ ଶବ୍ଦ )—ମଞ୍ଚ ପ୍ରଭୃତି ତିଆରି କରିବା ଲାଗି ଏକପ୍ରକାର ସରୁ ଓ ଲମ୍ବା ହାତୁଡ଼ି—A thin long hammer.
Balāguni

**ବଳାଗ୍ର**—ସଂ. ବି. ( ୬ଷ୍ଠୀ ତତ୍; ବଳ+ଅଗ୍ର )—୧ । ସେନାପତି—1. Commander in chief. ୨ । ସେନାର ଅଗ୍ରଭାଗ—2. The advance guard of an army
Balāgra

ସଂ. ବିଣ. ପୁଂ—ବଳଶାଳୀ ( ହି. ଶ. )—Strong; mighty.
(ବଳାଗ୍ରା—ସ୍ତ୍ରୀ)

**ବଲଙ୍ଗି**—ଦେ. ବି—ମୟୂରଭଞ୍ଜର ଶିମୁଳପାଳ ପର୍ବତରୁ ବାହାର ଥିବା ଗୋଟିଏ ନଦୀ—The river Balāngi rising from Simulipal mountain of Mourbhanj.
Balāñi

ପ୍ରାଦେ. (ଗଡ଼ଜାତ) ବି—ବେଲଙ୍ଗି ବାଉଁଶ—A kind of slender bamboo; Arundinacea (Kirtikar); Oxylenanthera Nigrocilliatate (Haines); Bambusa Tulda.

**ବଳା ଚତୁଷ୍ଟୟ**—ସଂ. ବି—ବୈଦ୍ୟ ଶାସ୍ତ୍ରୋକ୍ତ ବଳା, ଅତିବଳା, ମହାବଳା ଓ ନାଗବଳା ନାମକ ଗୁଳ୍ମ ଗୁଳ୍ମ—The four kinds of medicinal plants known as Balā.
Balā chatushtaya
୧ । ବଳା:—(ସଂ. ବଳା, ବାଟ୍ୟା, ବାଟ୍ୟାଳକ, ବାଟ୍ୟାଳକା, ବାଟ୍ୟାମଲା, ବେଡ଼େଲା
**खिरैटी, बरियारा, बोजबन्द**
[ ଦ୍ର—ବଳା ବା ବାଡ଼ିଅଁଲାର ଗୁଳ୍ମ ପ୍ରକାର ବୈଦ୍ୟଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ଏ ଗୁଳ୍ମ ପ୍ରକାର

ମ. ଲଘୁଚକଣା, ଖିରହଟୀ, ଖୋରଚକଣା ।
ଗୁ. ବଲଦାନା, ଖରେଣ୍ଟୀ
ତେ. ମୁର୍ପଡ଼ୀ

ଗୁଳ୍ମକୁ ବଲା ଚତୁର୍ଦ୍ଧୃଷ୍ଟ ବେଲ୍ଲଯାଏ; ଯଥା—ବଲା, ମହାବଲା, ଅତିବଲା ଓ ନାଗବଲା ।

୧ । ବାଡ଼ିଅଁଅଲା ଗୁଳ୍ମ ବା ବଜ୍ରମୂଳୀ । ଏହା ଜବାଦ୍ଧ ବର୍ଗର କ୍ଷୁପ; ପତ୍ରର ମୂଳ ପାନ ପତ୍ର ପରି; ପତ୍ର ସୂକ୍ଷ୍ମ ରୋମଶ । ଫୁଲ ପୀତବର୍ଣ୍ଣ, ଫଳ ପାଚଲେ ଫାଟି କରି ଦଶ ଚକୁଡ଼ା ହୁଏ—Sida Cordifolia; heart-leaved Sida.

୨ । ମହାବଲା-(ସଂ. ମହାବଲା, ପୀତପୁଷ୍ପା, ସହଦେବୀ)
ପୀତପୁଷ୍ପ ବେଡ଼େଲା
सहदेवी
ମ. ଭୁଂଭୁର୍କୀ ଗୁ. ସହଦେବୀ

୨ । ବାଡ଼ି ଅଁଅଲା ଜାତୀୟ କ୍ଷୁପ; (ଫୁଲ ଆପୀତ, ଶୀତକାଳରେ ମଧ୍ୟାହ୍ନରେ ଫୁଟେ; ପତ୍ରର ଅଗ୍ରଭାଗ ଶିର ସ୍ପଷ୍ଟ)—Sida Rhomboida.

୩ । (ଅତିବଲା) ସଂ. ଅତିବଲା, ଋଷ୍ୟପ୍ରୋକ୍ତା, କଙ୍କତିକା
लाल बेड़ेला
ମ. ଚିକଙ୍କଣୀ, ଅକକଇ, କାଂସୁଲୀ
ଗୁ. ଖପାଟ୍ୟ

୩ । ବାଡ଼ି ଅଁଅଲା ବା ଜାତୀୟ ଆରକ୍ତ କ୍ଷୁପ; ପତ୍ରର ପିଠି ଲୋମଶ; ଫଳ ପାଚଲେ ଫାଟି କରି ୫ ଚକୁଡ଼ା ଫଳ ଆପୀତ—Abtylon Indicum; Sida Rhombifolia Indian mallow.

୪ । ନାଗବଲା ( ସଂ. ନାଗବଲା, ଗାଙ୍ଗେରୁକୀ, ହ୍ରସ୍ୱଗବେଧୁକା )
गगरन, गुलसकरी
नागबेड़ाला, गोरखचाउला, पानसाड़ा
ମ. ଗାଙ୍ଗେଟି, ଗାଣ୍ଡେଧାମନ

ଗରଗଡ଼ା ଗୁଳ୍ମ; ଗୋରଖ ଚାଉଳ—Sida Spinosa.

ଏ ଚତୁର୍ବିଧ ବଲା ଶୀତବୀର୍ଯ୍ୟ; ମଧୁରରସ, ବଲ ଓ କାନ୍ତିବର୍ଦ୍ଧକ, ଧାରକ; ବାୟୁ, ରକ୍ତଦୋଷ ଓ କ୍ଷତନାଶକ । ବଲାମୂଲଚୂର୍ଣ୍ଣ ଦୁଧ ଓ ଚିନି ସଙ୍ଗେ ଖାଇଲେ ମୂତ୍ରାତିସାର, ମହାବଲାଚୂର୍ଣ୍ଣ ଦୁଧ ଓ ଚିନି ସଙ୍ଗେ ମୂତ୍ରକୃଚ୍ଛ୍ର ଓ ଅତିବଲାଚୂର୍ଣ୍ଣ ଦୁଧ ଓ ଚିନି ସଙ୍ଗେ ପ୍ରମେହନାଶକ ।

ବଲାଜୋର(ରି)—ଦେ. ବି—ବଲାତ୍କାର (ଦେଖ)
Ba<u>l</u>ājora(ri) Ba<u>l</u>ātkāra (See).

ବଲାଟ—ସଂ. ବି (ବଲ+ଅଟ୍ ଧାତୁ+କର୍ତ୍ତୃ. ଅ; ଯେ ବଲପୂର୍ବକ ଗମନ କରେ)—୧ । ଗୋଯୋନି—1. The vagina of a
Ba<u>l</u>āṭa cow. ୨ । ମୁଗ—2. A kind of pulse; mung.

ବଲାଢ୍ୟ—ସଂ. ବିଣ (ବଲ+ଆଢ୍ୟ=ବଳିଷ୍ଠ)—ବଲବାନ୍; ବଲବନ୍ତ—Strong.
Balāḍhya
(ବଲାଢ୍ୟା—ସ୍ତ୍ରୀ) ସ. ବି.—ମାଷ (ହି. ଶ)—A kind of pulse.

ବଲାଣ—ପ୍ରାଦେ (ଯାଜପୁର) ବି—ଜମିକୁ ପାଣି ନେବାପାଇଁ ତିଆରି ହୋଇଥିବା ଛୋଟ ନାଳ—A small canal for
Ba<u>l</u>āṇa the purpose of irrigating fields.

ବଲାତ୍—ସ. ଅ (ବଲ+ଅତ୍ ଧାତୁ=ଗମନ କରିବା+କରଣ. କ୍ୱିପ୍)—
Ba<u>l</u>āt ୧ । ବଲପୂର୍ବକ; ଜବରଦସ୍ତି—1. Forcibly; violently. ୨ । ହଠାତ୍—2. Suddenly.

ବଲାତ୍କାର—ସ. ବି (ବଲାତ୍+କୃ ଧାତୁ+ଭାବ. ଅ)—୧ । ଅତ୍ୟାଚାର;
Ba<u>l</u>ātkāra ଦୌରାତ୍ମ୍ୟ; ଜୋରପ୍ରକାଶ; ଜବରଦସ୍ତି; ଜୋର୍
(ବଲାତ୍କୃତ—ବିଣ) ଜୁଲମ—1. Oppression; violence; outrage. ୨ । କୌଣସି ବ୍ୟକ୍ତିର ଇଚ୍ଛାବିରୋଧରେ ବଲପୂର୍ବକ କୌଣସି କାର୍ଯ୍ୟ କରାଇବା ( ହି. ଶ )—2. Coercion. ୩ । ବଲପ୍ରୟୋଗ—3. Use of force.
ଦେ. ବି—୧ । ବଲପ୍ରୟୋଗପୂର୍ବକ ସ୍ତ୍ରୀସଙ୍ଗମ କରିବା—1. Rape; outraging female modesty. ୨ । ଖାତକକୁ ଅଟକ ରଖିବାପୂର୍ବକ ଦଣ୍ଡ—2. Forcible detention of a debtor as punishment.

ବଲାତ୍କାର କରିବା—ଦେ କ୍ରି—୧ । ବଲପୂର୍ବକ ସ୍ତ୍ରୀର ଇଚ୍ଛାବିରୋଧରେ
Ba<u>l</u>ātkāra karibā ସଙ୍ଗମ କରିବା—1. To ravish a
बलात्कारकरा woman; to commit rape. ୨ । ବଲ-
बरजोरीकरना ପ୍ରୟୋଗପୂର୍ବକ ଜୁଲମ କରିବା—2. To commit outrage; to use violence.

ବଲାତ୍କାରାଭିଗମ—ସ. ବି—ବଲପୂର୍ବକ ସ୍ତ୍ରୀସଙ୍ଗମ—Rape; forcible
Ba<u>l</u>ātkārābhigama cohabitation with a woman.
(ବଲାତ୍କାରାଭିଗମନ—ଅନ୍ୟରୂପ)

ବଲାତ୍କାରିତ—ସ. ବି—୧ । ଯାହାକୁ ବଲପ୍ରୟୋଗ ପୂର୍ବକ ତାହାଦ୍ୱାରା
Ba<u>l</u>ātkārita କୌଣସି କାର୍ଯ୍ୟ କରାଯାଇ ଥାଏ—2. Made to do a work by coercion.

ବଲାତ୍କାରେ—ଦେ. କ୍ରି. ବିଣ. (ସଂ. ବଲାତ୍କାର)—୧ । ବଳେ ବଳେ;
Ba<u>l</u>ātkāre ବାଧ୍ୟ ହୋଇ—1. Perforce, ୨ । ଅଗତ୍ୟା—
जबरदस्ति जबरदस्ति 2. Necessarily.

ବଲାତ୍କାରେ ନଳ ଆସନରୁ ଉଠି
ଗୃହିଁଲେ ସେ ନଳଙ୍କ ଅଡ଼କରି ପିଠି । କୃଷ୍ଣସିଂହ. ମହାଭାରତ ବନ ।

୩ । ନିଶ୍ଚେ—3. Certainly. ୪ । ବଲପୂର୍ବକ; ଜୋର ଜୁଲମ କରି—4. Forcibly; violently.

ବଲାତ୍କାରେ ସ୍ତ୍ରୀମାନଙ୍କ ଧରଆଣି
ନ ରଖିବ ଘରେ ମୋ ବଚନକୁ ମାନି । କୃଷ୍ଣସିଂହ, ମହାଭାରତ ଶାନ୍ତି ।

୫ । ଉପାୟାନ୍ତରବିହୀନ ହୋଇ—5 Having no other alternative left.
( ଯଥା—ମୁଁ ଆଗେ କେତେ ଅନୁସରଣ କରି କେତେ ନେହୁରା ହେଉଥିଲି, ତେବେ ତୋ ମନ ତରଳୁ ନ ଥିଲି, ଏବେ ତୋର ମୋଠେଇଁ କାମ ପଡ଼ିଲାଣି, ତୁ ବଲାତ୍କାରେ ଆସି ମୋ ଗୋଡ଼ ଧରିବୁ ଯେ । )

ବଲାତ୍କୃତ—ସ. ବିଣ. ପୁଂ. ( ବଲାତ୍+କୃତ )—ଯାହା ଉପରେ
Ba<u>l</u>ātkṛuta ବଲାତ୍କାର କରାଯାଇ ଅଛି—Oppressed; coerced.
(ବଲାତ୍କୃତା—ସ୍ତ୍ରୀ)

ବଲାତୋଡ଼ପ—ପ୍ରାଦେ. (ଗଞ୍ଜାମ) ବି—ଶଗଡ଼ ଚକର ଭୁମ୍ବରେ ଥିବା ଲୁହାର
Ba<u>l</u>āto<u>rd</u>apa ବଲା ଓ ଦୁଇ ଇଞ୍ଚ ଲମ୍ବରେ ବଳଥିବା ଲୁହା—The broad iron ring round the nave of a cart-wheel.

ବଳାଦ୍ୟା—ସଂ. ବି—ବରଛାଞ୍ଚି—Duck weed.
Balādyā

ବଳାଧାନ—ସଂ. ବି. ( ୬ଷ୍ଠୀ ତତ୍; ବଳ + ଆଧାନ )—ଶକ୍ତିସଞ୍ଚାର; ଶକ୍ତି
Balādhāna ସଞ୍ଚୟ—The storing or accumulation or conservation of energy.

ବଳାଧିକ୍ୟ—ସଂ. ବି. ( ୬ଷ୍ଠୀ ତତ୍; ବଳ + ଆଧିକ୍ୟ )—ଶକ୍ତିର
Balādhikya ଆତିଶଯ୍ୟ ବା ପ୍ରଚୁରତା—Abundance or excess of strength.

ବଳାଧ୍ୟକ୍ଷ—ସଂ. ବି. ( ୬ଷ୍ଠୀ ତତ୍; ବଳ + ଅଧ୍ୟକ୍ଷ )—ସେନାପତି—
Balādhyaksha Commander or general of an army.

ବଳନି ଦେବା—ଗ୍ରାଦେ. ( ସମ୍ବଲପୁର ) କ୍ରି. ( ସଂ. ବଳ; ତୁଳ ହି.
Balāni debā ବଲୀ ଦେନା )—ଗ୍ରାମରେ ବସନ୍ତ, ବସନ୍ତ ଆଦି ଲାଗିଥିବା ବେଳେ ବା ଭୂତ ପ୍ରେତ ଆଦିଙ୍କୁ ଛଡ଼ାଇବା ପାଇଁ ଗ୍ରାମ ଶେଷ ଛକ ମୁଣ୍ଡରେ ନୈବେଦ୍ୟ, ଛେନାପଣା ହାଣ୍ଡି ଓ ଚିଗୁଲା ଆଦି ଥୋଇବା—To leave the offerings to the village-goddess at the extremity of the village during the prevalence of smallpox, cholera etc, with a hope that the evil spirits will be propitiated thereby.

ବଳାନୁଜ—ସଂ. ବି—ବଳରାମଙ୍କ କନିଷ୍ଠ; ଶ୍ରୀକୃଷ୍ଣ—Śrīkṛushṇa,
Balānuja the younger brother of Balarāma.
(ବଳାବରଜ—ଅନ୍ୟରୂପ)

ବଳାନ୍ୱିତ—ସଂ. ବିଣ. (ବଳ + ଅନ୍ୱିତ; ୩ୟା ତତ୍)—୧ । ଶକ୍ତିଯୁକ୍ତ—
Balānwita 2. Mighty; powerful. ୨ । ସୈନ୍ୟ ପରିବୃତ—2. Accompanied or surrounded by an army.

ବଳାପିଟା—ଦେ. ବିଣ-ଖିଳତ (ଦ୍ୱାର)—Barred; bolted (door).
Balāpiṭā ଦ୍ୱାରବନ୍ଧେ ବଳପିଟା ହୋଇଅଛନ୍ତି ମୁହିଁ ।
ପ୍ରାଚୀ—ବୃନ୍ଦାବନଭୂଷଣ ଗୀତା ।

ବଳାବଳ—ସଂ. ବି.—ବଳ ଓ ଅବଳ—
Balābala Strength and weakness.
ଦେ. ବି.—୧ । ଶକ୍ତି ସାମର୍ଥ୍ୟର ଯଥାର୍ଥ ପରିମାଣ—
1. Actual measure or estimate of one's strength.
ବଳାବଳ ବୁଝି ସୁଖ ତ କରିବର । କୃଷ୍ଣସିଂହ ମହାଭାରତ ସଭା ।
୨ । ବଳ; ଶକ୍ତି—2. Strength; power. ୩ । ଅଧିକାର; ପ୍ରଭୁତ୍ୱ—3. Authority; mastery.
ଦେ. ବିଣ—ବଳପଡ଼ିବା; କ୍ଷମତାର ଅତିରିକ୍ତ; ଅସହ୍ୟ—Unbearable; excessive; exceeding one's strength or capacity.
( ଯଥା—ତା କଥା ତାକୁ ବଳାବଳ ହେଲାଣି, ସେ ଅନ୍ୟ ବ୍ୟକ୍ତିଙ୍କୁ କାହୁଁ ସମ୍ଭାଳିବ ? )

ବଳାବଳ କରିବା—ଦେ. କ୍ରି—୧ । ବଳାତ୍କାର କରିବା—1. To use
Balābala karibā force. ୨ । ବାଧ୍ୟ କରିବା—2. To
बरजोर करना force a person to do a thing.

ବଳାବଳ ସମୟ—ଦେ. ବି—ଅତ୍ୟନ୍ତ ଦରକାର ବା ଜରୁର ବେଳ—
Balābala samaya Very urgent time.
দরকারের সময় बहुत जरूरत

ବଳାବଳି—ଦେ. ବି—୧ । ଜଣେ ଅନ୍ୟ ଜଣଙ୍କୁ ବଳପଡ଼ିବା ଅବସ୍ଥା—
Balābaḷi 1. The state of one exceeding the
জোর जोर जबरदस्ति other. ୨ । ବଳାତ୍କାର—2. [Use of force or violence. ୩ । ଅନୁରୋଧାତିଶଯ୍ୟ—3. Importunity.
କହୁଛ ସେ ବଳି, ଭଗ ସଙ୍ଗଗଣଙ୍କା ବଳାବଳି—
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

ବଳାବଲିପ୍ତ—ସଂ. ବିଣ—ବଳ ହେତୁ ଅହଙ୍କାରୀ—
Balābalipta Proud of one's strength.

ବଳାବଲେପ—ସଂ. ବି—ବଳଗର୍ବ; ମୁଁ ବଳୁଆ ବୋଲି ଗର୍ବ—
Balābalepa Pride of one's strength.

ବଳାମୋଟା—ସଂ. ବି—ନାଗଦମନୀ ( ଦ୍ରବ୍ୟଗୁଣ )—
Balāmoṭā Indian wormwood.

ବଳାୟ—ସଂ. ବି—ବରୁଣ ଗଛ ( ହି. ଶ. ) ( ଦେଖ )
Balāya Baruṇa tree ( See )

ବଳାରାତି—ସଂ. ବି. ( ବଳ ନାମକ ଅସୁରର ଅରାତି; ୬ଷ୍ଠୀ ତତ୍ )—
Balārāti ଇନ୍ଦ୍ର—Indra.
ଦେ. ବି—ପେଚକ—Owl.
(ସେ ଓ ସେ) ବଳ ରାତ ନାକ କହାରକୁ ମନ୍ତ ସୁରବୃନ୍ଦେ ପଳାଇ—
ଭଞ୍ଜ, ବୈଦେହୀଶବିଳାସ ।

ବଳାଶ(ସ)—ସଂ. ବି. ( ବଳ = ଶକ୍ତି + ଅଶ୍ ଧାତୁ = ଖାଇବା + ଅ;
Balāśa(sa) ଯେ ବଳକୁ ଖାଇଯାଏ ବା ନାଶ କରେ )—
୧ । ଶ୍ଳେଷ୍ମରୋଗ—1. Cold. ୨ । କ୍ଷୟ ରୋଗ—2. Tuberculosis.
ଗ୍ରାଦେ. (ଗଡ଼ଜାତ) ବି—ଧାନକୋଠି—Barn; granary.

ବଳାହକ—ସଂ. ବି. ( ବଳ=ଶକ୍ତି+ଅନହ୍ ଧାତୁ=ଗମନ କରିବା +
Balāhaka କର୍ତ୍ତୃ. ଅକ; ଯେ ବଳ ପ୍ରକାଶ କରି ଗତି କରେ କିମ୍ବା ବାରି+ବାହକ=ନିପାତନ ସିଦ୍ଧ )—୧ । ମେଘ—
1. Cloud. ୨ । ପର୍ବତ—2. Mountain.
(୧ + ୨) ବଳାହକଙ୍କୁ ଛାଡ଼ି ପଡ଼ି ବଳକ
ବଳାହକ୨ ଉପରେ କଲା ସେନ—ଭଞ୍ଜ, ବୈଦେହୀଶବିଳାସ ।
୩ । ଦୈତ୍ୟବିଶେଷ—3. Name of a demon ୪ । ସର୍ପବିଶେଷ—4. A species of serpent ୫ । ମୁଥା—5. Grass-root. ୬ । ଅଶ୍ୱବିଶେଷ—6. A species of horse.
ବରଷାକାଳ ତା କଲ୍ଲେ ବଳାହକ ମେଘପୁଞ୍ଜେ
ଶୋଭ ଘୋର ତକେ ବ୍ୟାପେ ମୂଳବଗ ଚୋଷେ—ଭଞ୍ଜ, ବୈଦେହୀଶବିଳାସ
୭ । ଶ୍ରୀକୃଷ୍ଣଙ୍କ ରଥର ଗୋଟିଏ ଘୋଡ଼ାର ନାମ (ହି. ଶ.)—
7. Name of one of the pair of horses drawing Śrikṛushṇa's chariot. ୮ । ପୌରାଣିକ ପର୍ବତବିଶେଷ—
8. Name of a mythological mountain.
[ ଦ୍ର—ଲିଙ୍ଗପୁରାଣ ମତରେ ଏହା ଶାଲ୍ମଳଦ୍ୱୀପରେ ଓ ମତ୍ସ୍ୟପୁରାଣ ମତରେ ଏହା କୁଶଦ୍ୱୀପରେ ଅବସ୍ଥିତ – ହି. ଶ. । ]

୯ । ଜୟଦ୍ରଥର ଏକ ଭାଇ ( ହି. ଶ. ) —
9. Name of a brother of Jayadratha.

**ବଳାହକକେଶା**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି)—ଯାହାର କେଶ ମେଘ
Baḻāhakakeśā ପରି ଘନ କୃଷ୍ଣବର୍ଣ୍ଣ—(a woman) Having
( ବଳାହକକେଶୀ—ଅନ୍ୟରୂପ ) hair as black as cloud.

ବଳାହକ କେଶୀ ଧର,
ବଳାନା ମାନେ ବହୁତ । ପ୍ରାଚୀନ. ସଙ୍ଗୀତ ।

**ବଳାହକବଲ୍ଲୀ**—ସଂ. ବି (ରୂପକ; ବଳାହକ＝ମେଘ＋ବଲ୍ଲୀ＝ଲତା)—
Baḻāhakaballī ବିଜୁଳି—Lightning.

ବସ୍ତ୍ର ଭଟେ ପୀତ ବସନ ବସ୍ତ୍ରେ ବଳାହକ ବଲ୍ଲୀ ସମାନ ।
ଦୀନକୃଷ୍ଣ. ରସକଲ୍ଲୋଳ ।

**ବଳାହିତ**—ସଂ. ବି. (ବଳ＝ଅସୁରବିଶେଷ＋ଅହିତ＝ଶତ୍ରୁ)—
Baḻāhita ବଳାରି; ଇନ୍ଦ୍ର—Indra.

**ବଳାହିତ ରତ୍ନ**—ସଂ. ବି—ଇନ୍ଦ୍ର ନୀଳମଣି—
Baḻāhita ratna Sapphire; emerald.

**ବଳି**—ସଂ.ବି. (ବଲ୍ ଧାତୁ＝ଦାନ କରିବା; ବଧ କରିବା＋କର୍ତ୍ତୃ.ଇ)—
Baḻi ୧ । ଦୈତ୍ୟରାଜ ବିରୋଚନ ପୁତ୍ର ଓ ପ୍ରହ୍ଲାଦ ପୌତ୍ର—
1. Name of a demon king who was pressed down to the nether regions by Bishṇu in his third incarnation.

[ ଦ୍ର—ବିଷ୍ଣୁ ବାମନ ଅବତାରରେ ନିଜ ଦେହରୁ ତୃତୀୟ ପାଦ କାଢ଼ି ତଦ୍ୱାରା ଏ ରାଜାଙ୍କୁ ପାତାଳକୁ ଚାପିଥିଲେ । ]

୨ । (＋କରଣ. ଇ) ନୈବେଦ୍ୟ; ଭୋଗ; ପୂଜାର ଉପକରଣ ବା ସାମଗ୍ରୀ—2. Offerings to a Deity; the ingredients or materials offered to a Deity.

ଭେଟିଲେ ଅର୍ଘ ପାଣ୍ଡ ସୁତେ ଯେନ ବଳି ।
କୃଷ୍ଣସିଂହ. ମହାଭାରତ. ସଭା ।

୩ । ଛେଦନଯୋଗ୍ୟ ପୂଜାପଶୁ—3. An animal for sacrifice; victim.

[ ଦ୍ର—ଶାସ୍ତ୍ରରେ ବଳିପଶୁ ୧୦ ପ୍ରକାର ଉଲ୍ଲେଖ ଅଛି; ଯଥା—ମୃଗ, ଛାଗ, ମେଷ, ମହିଷ, ଶୂକର, ଶଲ୍ଲକୀ, ଶଶକ, ଗୋଧା, କୂର୍ମ ଓ ଗଣ୍ଡାର । ]

୪ । କର; ରାଜକର; ରାଜସ୍ୱ—4. Revenue; tax.

[ ଦ୍ର—ଭୂମିର ଉତ୍ପନ୍ନ ବସ୍ତୁର ଯେଉଁ ଅଂଶ (ସାଧାରଣତଃ ଷଷ୍ଠାଂଶ) ପ୍ରଜା ରାଜାଙ୍କୁ ଦେଉଥିଲେ ତାହାକୁ ସ୍ମୃତି ଶାସ୍ତ୍ରରେ ବଳି ବୋଲି ଯାଇଅଛି—ହି. ଶ ]

୫ । ଖାଦ୍ୟାଂଶ; ଅଇଁଠା—5. Leavings of the table.

୬ । ଭୂତ ଯଜ୍ଞ; ବୈଶ୍ୱଦେବ—6. A daily offering of boiled rice to various animals (e.g. gods, guests, ancestors, dogs, crows, sweepers).

୭ । ବୈଶ୍ୱଦେବରେ ଦିଆଯିବା ପିଣ୍ଡମାନ; ବୈଶ୍ୱଦେବ—
7. Oblations given to several beings in Baiśwadeba.

[ ଦ୍ର—ହିନ୍ଦୁ ଗୃହସ୍ଥର ଦୈନିକ କର୍ତ୍ତବ୍ୟ ପଞ୍ଚ ଯଜ୍ଞ ମଧ୍ୟରୁ ଏହା ୪ର୍ଥ ବା ଭୂତ ଯଜ୍ଞ; ଏଥିରେ ଗୃହସ୍ଥ ନିଜର ଭୋଜ୍ୟାନ୍ନରୁ କିଛି ଅଂଶ ପୃଥକ୍ କରି କାକ, ଶୃଗାଳ, କୁକ୍କୁର ଆଦିଙ୍କ ଉଦ୍ଦେଶ୍ୟରେ ତାହା ଘରର ବାହାରେ ରଖି ଦିଅନ୍ତି । ]

୮ । ଚଣ୍ଡ; ପୂଜା ପରେ ପୂଜା ସାମଗ୍ରୀରୁ କଢ଼ାଯିବା ଅଂଶ—
8. A fixed portion (generally a quarter) taken out of the offerings to a Deity and set apart for a secondary or dependant De ty.

[ ଦ୍ର—ଚଣ୍ଡ ବଳି ତଳେ ନୋଟ ଦେଖ । ]

୯ । ପଶୁ ଯଜ୍ଞ; ଯଜ୍ଞରେ ପଶୁ ବଧ—9. Animal sacrifice.

୧୦ । ଚାମର ଦଣ୍ଡ; ଚାମର ବେଣ୍ଟ—10. The handle of a chowrie fan. ୧୧ । ଜରା ଜନିତ ଶ୍ଳଥ ଚର୍ମ; ବିଲୋଳ ଚର୍ମ; ପଳିତ ଚର୍ମ—11. Wrinkle; skin shrivelled up through old age. ୧୨ । ଉଦରାଦି ଅଙ୍ଗରେ ତରଙ୍ଗିତ ମାଂସ; ପୃଷ୍ଠୀ—12. Folds of skin covered flesh appearing on the belly.

ସେ ବଢିଶ ବଳୀ ବଳୀ-ଶୋଭୀ ଦେଉ ବଳ
ବଳଭୂବେ ପୂଜୁ ବାରତା ଅଳୀ ଅଳୀ । ଭଞ୍ଜ, ପ୍ରେମସୁଧାନିଧି ।

୧୩ । ଅର୍ଶୋରୋଗ ଜନିତ ମଳଦ୍ୱାରର ମୁହଁରେ ବା ଠିକ୍ ଉପରେ ବାହାରିବା ମାଂସ ଗୁଟିକା; ଗୁଦାଙ୍କୁର; ଗୁହ୍ୟ ଦ୍ୱାରାଭ୍ୟନ୍ତରସ୍ଥ ମାଂସ ପିଣ୍ଡ—13. A ball-like formation just at the mouth of the rectum above the anus in piles.

[ ଦ୍ର—ଅର୍ଶ ୨ ପ୍ରକାର; ଏକ ପ୍ରକାର ବହିର୍ବଳି (Blind piles), ଯହିଁରେ ମାଂସ ଗୁଟିକା ଗୁହ୍ୟ ଦ୍ୱାରର ବାହାରେ ଥାଏ ଓ ଅନ୍ତର୍ବଳି (Bleeding piles), ଯହିଁରେ ମାଂସ ଗୁଟିକା ଗୁହ୍ୟ ଦ୍ୱାରର ମୁହଁ ଭିତରେ ହୁଏ ଓ ଯହିଁରୁ ଖୁବ୍ ରକ୍ତସ୍ରାବ ହୁଏ । ବହିର୍ବଳି ଆକାରରେ ଛେଳିର ଚୀର (ଚୁଚୁକ) ପରି । ଏଥିରେ ରକ୍ତ ସ୍ରାବ ହୁଏ ନାହିଁ; କିନ୍ତୁ ଏହା ଭାରି କଷ୍ଟ ଓ ଯନ୍ତ୍ରଣା ଦିଏ । ]

୧୪ । ଶରୀରର ରେଖା 14. Lines on the body. ୧୫ । ଗୃହଦାରୁ ବିଶେଷ; ଭୂଜଙ୍ଗା ଖୁଣ୍ଟ—14. The tallest pillar in a thatched house. ୧୬ । ମାଧ୍ର; ଘରଚାଳର ଓଳି—16. The lower edge of the thatch. ୧୭ । ରାଜକର; ରାଜସ୍ୱ (ହି.ଶ )—17. Rent; revenue. ୧୮ । ରେଖା (ହି. ଶ.)—18. Line. ୧୯ । ଗନ୍ଧକ (ଦ୍ରବ୍ୟଗୁଣ)—19 Sulphur. ୨୦ । ଶ୍ରେଣୀ; ପଂକ୍ତି (ହି. ଶ ,—20. Row. ୨୧ । ଏକପ୍ରକାର ବାଦ୍ୟ (ହି. ଶ.)—21. A kind of musical instrument. ୨୨ । ଉପହାର; ଭେଟି (ହି. ଶ.)—22. Present. ୨୩ । ଭକ୍ଷ୍ୟ ବସ୍ତୁ; ଅନ୍ନ ଆହାର (ହି.ଶ.)—23. Food. ୨୪ । ବିଶିଷ୍ଟ ଦେବତାଙ୍କ ଉଦ୍ଦେଶ୍ୟରେ ପୃଥକ୍‌କୃତ ଯଜ୍ଞାଦିରେ ନିବେଦିତ ବସ୍ତୁର ଅଂଶ—
24. Parts of the offerings kept apart for particular Deities in a sacrifice.

ସେ ବଢିଶ ବଳୀ ବଳୀ ଶୋଭ ଦେଇ ବଳୀ ବଳୀ ଭୂଲେ ପୂଜୁ କାର୍ଯ୍ୟ
ଅଳୀ ଅଳୀ । ଭଞ୍ଜ. ପ୍ରେମସୁଧାନିଧି ।

ଦେ. ବି.—୧ । ଲାକ୍ଷା ( ଦ୍ରୁମଖଣ୍ଡସ୍ରା )—1. Lac. ୨ । (ଆଦରାର୍ଥକ) ବଳଭଦ୍ର, ବଳରାମ, ବଳଦେବ ଆଦିଙ୍କ ଡାକ ନାମ—2. (a term of endearment) The name for calling persons whose names begin with the word (Baḻa). ୩ । (ସଂ. ବଳି) (ଲକ୍ଷଣାର୍ଥ) ମହତ୍ ଉଦ୍ଦେଶ୍ୟରେ ଜୀବନ ଆଦିର ସମର୍ପଣ (ଯଥା—ଆତ୍ମବଳି, ସ୍ୱାର୍ଥବଳି)—3. (figurative) Offering of something (e. g. one's life, one's selfish aims) for some great object; sacrifice for some noble object.

ପ୍ରାଦେ. (ସୋନପୁର)—ବି.—ଯେଉଁ ବ୍ୟକ୍ତିଠାରେ ଠାକୁରାଣୀ ଅଧିଷ୍ଠା ହୁଅନ୍ତି ବା ଭିଜି ହୁଅନ୍ତି—A person who is possessed by a Goddess.

[ଦ୍ର—ଅଶ୍ୱିନ ଦଶହରା ସମୟରେ ସମଲେଇ ଠାକୁରାଣୀ ଯେଉଁ ଡାଗୁଆ ( ସେବକ ) ଠାରେ ଭିଜି ହୁଅନ୍ତି, ସେହି ବ୍ୟକ୍ତି ଠାକୁରାଣୀଙ୍କ ନିକଟରେ ବଳି ଦିଆ ଯାଇ ଥିବା ପଶୁର ଗଣ୍ଡିକୁ ହାତରେ ଧରି ତାହାର ବେକରୁ ଦ୍ରବୁ ଥିବା ରକ୍ତକୁ ଶୋଷି କରି ଦିଇ ସେ ଗଣ୍ଡିକୁ ତଳେ ପକାଇ ଦିଏ । ସୋନପୁର ଅଞ୍ଚଳରେ ଯେଉଁ ଜୀବକୁ ବଳି ଦିଆ ଯାଏ ତାହାର ନାମ ପଶୁ ଓ ଯାହାଠାରେ ଠାକୁରାଣୀ ଭିଜି ହୁଅନ୍ତି ତାହାକୁ ବଳି କହନ୍ତି ।]

**ବଳି**—ପ୍ରାଦେ. (ସିଂହଭୂମ୍) ଅ.—ବୋଲି—
Bali As; styled as; called as; known as. (ଯଥା—ଏ ବହି ଉତ୍ତମ ବଳି ଆମ୍ଭର ବିଶ୍ୱାସ ।)

**ବଳିଆ**—ଦେ. ବି.—୧ । ଶ୍ୱାନ ଜାତୀୟ ବନ୍ୟ ହିଂସ୍ର ଜନ୍ତୁ ବିଶେଷ—
Baḻiā **ବନୋଲାକୁତା** 1. A wild ferocious dog.
(ବଳିଆ କୁକୁର—ଅନ୍ୟରୂପ) [ଦ୍ର—ଏମାନେ ଦୁଇ ପ୍ରକାରର, ଯଥା—ପାଟ ବଳିଆ ଓ ଖଗ ବଳିଆ । ଏମାନେ ଯେଉଁ ଅଞ୍ଚଳରେ ରହନ୍ତି ବାଘ ସେଠାରୁ ଭୟରେ ଛାଡ଼ି ପଳାଏ । ଏମାନେ ମୃଗ ଆଦିଙ୍କୁ ଗୋଡ଼ାଇ ପଛ ଆଡ଼ୁ କାମୁଡ଼ି କାମୁଡ଼ି ଘାଇଲା କରି ମାରି ପକାନ୍ତି ଓ ଖାଇଯାନ୍ତି । ପାଟବଳିଆମାନେ ସ୍ତ୍ରୀ ପୁରୁଷ ଯୋଡ଼ାଏ ଲେଖାଏ ବିଚରଣ କରନ୍ତି । ଖଗବଳିଆମାନେ ଦଳବଦ୍ଧ ହୋଇ ବିଚରଣ କରନ୍ତି । ପାଟବଳିଆମାନେ ଖଗବଳିଆଙ୍କଠାରୁ ଆକାରରେ ବଡ଼ । ଏମାନଙ୍କ ଲୋମ ଇଟାଳିଆ । ]

୨ । (ଏହା ବଳାଯାଇ ଥିବାରୁ) ଶିଆଳି ଲଇରେ ବଳା ହୋଇଥିବା ମୋଟ ଦଉଡ଼ି—2. A twisted thick rope of Śiāḻi creepers.

[ଦ୍ର—ଏ ଦଉଡ଼ିଦ୍ୱାରା ବାଉଁଶ ପଟାଳ ଓ ଡଙ୍ଗା ଆଦିକୁ ଟଣା ଯାଏ । ଏହା ସର୍ବଦା ପାଣିରେ ଓଦା ହେଲେ କଚା ବା ଛୋଟ ଦଉଡ଼ି ପରି ପୋକରା ହୋଇ ଯାଏ ନାହିଁ ।]

୩ । (ଅନାଦରାର୍ଥକ) ବଳଭଦ୍ର, ବଳଦେବ, ବଳରାମଆଦିଙ୍କ ଡାକନାମ—3. A name for calling persons whose names begin with the word Baḻa.

**ବଳିଆ**—ପ୍ରାଦେ. ୧ । (ସମ୍ବଲପୁର) ବି. (ହି. ବୋଆଡ଼ୀ)—ପାଠୀନ; ବାଳିଆ
Baḻiā ମାଛ—1. The cat fish; Pike; Cyprinus Denticulatus. ୨ । ( ଗଡ଼ଜାତ ) ବଳିଆକୁକୁର—2. Wild dog.

**ବଳିଆଇବା**—ଦେ. କ୍ରି. ( ସଂ. ବଳ )—୧ । ବଳାଇବା (ଦେଖ); ଅତିରିକ୍ତ ହେବା—
Baḻiāibā 1. To exceed; to excel,

> ସୁଭଦ୍ରାଙ୍କ ସୁତ ଅଭିମନ୍ୟୁ ତହିଁ
> ପଶିଗଲେ ସମସ୍ତ ବୀରଙ୍କୁ ବଳିଆଇ । କୃଷ୍ଣସିଂହ, ମହାଭାରତ ଆଦି ।

୨ । ଅତିରିକ୍ତ କଥା କହିବା; ବିଶେଷ ଅନୁରୋଧ କରି କହିବା—2. To speak repeatedly or much.

> ଫଳ ମୋର ମରଣରେ ପୁଣି କେତେ ବଳିଆଇ କହୁ ଥାଇ ।
> କବିସୂର୍ଯ୍ୟ—ସଙ୍ଗୀତ ।

୩ । ବଳି ପଡ଼ିବା; ଆଗ ବଳିଯିବା—3. To outdo; to surpass.

> ବଳିଆଇଁ କିଛି ଅଗ ମୁହିଁ ଭୁଛି ମରୁବୁ ପଛରେ । ଭଞ୍ଜ. ବୈଦେହୀଶବିଳାସ ।

୪ । ବିଶେଷ ଭାବରେ ଜିଗର କରିବା—4. To insist; to persist; to importune.

> ଅତି ବଳିଆଇ କହିବା ମୋତେ ନୋହୁ । କୃଷ୍ଣସିଂହ, ମହାଭାରତ ବନ ।

୫ । ଅନାଦର କରିବା—5. To show disrespect; to treat unlovingly.

> ଇନ୍ଦ୍ରଙ୍କୁ ବଳିଆଇ ଯାଗ ଭାଗ ମୁହିଁ
> ତୁମ୍ଭଙ୍କୁ ଦେବି ଏଥି ସନ୍ଦେହ ତ ନାହିଁ । କୃଷ୍ଣସିଂହ, ମହାଭାରତ ବନ ।

୬ । ଲଙ୍ଘିବା; ଏଡ଼ିବା—6. To overstep; to avoid.

> ବର ପାଇଥିବାରୁ ମୋତେ ବଳିଆଇ
> ଯିବାକୁ ତୁମ୍ଭର ଶକତି ହେଲା ନାହିଁ । କୃଷ୍ଣସିଂହ, ମହାଭାରତ, ବନ ।

**ବଳିଆର**—ଦେ. ବିଣ (ସଂ. ବଲୀୟାନ୍)—୧ । ବଲୀୟାନ; ବଳବତ୍ତର—
Baḻiāra 1. Stronger. ୨ । ବଳିଷ୍ଠ; ବଳବତ୍ତମ—
**बरीयार** 2. Strongest.

> ସେ ମହାବଳ ବଲୀୟାର — ମଧୁସୂଦନ ଛନ୍ଦମାଳା ।

୩ । ବଳୁଆ—3. Strong; mighty.

> ପାଣ୍ଡୁଙ୍କର ସୁତେ ମହାବଳିଆର—କୃଷ୍ଣସିଂହ ମହାଭାରତ ଆଦି ।

୪ । ବଡ଼; ବୃହତ୍; ଅତି ବଡ଼—4. Great; very great.

> ତାହାର ପେଟ ବଳିଆର.
> କେ ଦେବ ସମ୍ପୂର୍ଣ୍ଣ ଆହାର—ଭୂପତି. ପ୍ରେମପଞ୍ଚାମୃତ ।

୫ । ବେଜାୟ; ଅତ୍ୟଧିକ—5. Excessive; very much.

> ସନ୍ତାପ ସେ ସମାର ବଳିଆର—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଦେ. କ୍ରି. ବିଣ—ଅତ୍ୟନ୍ତ—
Very much; too much; excessively.
( ଯଥା—ବହୁକାଳ ପରେ ମତେ ଦେଖି ସେ ବଳିଆର କାନ୍ଦିଲା ।)

**ବଳିଆର ଭୁଜ**—ଦେ. ବି ( ସଂ. ବଲୀୟାନ + ଭୁଜ )—ବଳିଷ୍ଠ ବାହୁ—
Baḻiāra bhuja Strong arms.
**बरीयारबाह** ଦେ. ବିଣ—ବଳିଷ୍ଠ ବାହୁଶାଳୀ—
Having strong arms.
[ ଦ୍ର—ଏ ଶବ୍ଦ ପ୍ରଭୁଙ୍କୁ ସମ୍ବୋଧନରେ ବ୍ୟବହାର କରାଯାଏ ।]

ବଳଅରସିଂହ—ଦେ. ବି—କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ— Baliārasimha A family title of some Kshatriyas.

ବଳି(ଳୀ)କ—ସଂ. ବି (ବଳ+ସ୍ୱାର୍ଥେ କ)—ଗୃହର ଓଳ— Bali(lī)ka The lowest edge of a thatch; the eaves.

ବଳିକରି—ପ୍ରାଦେ (ସମ୍ବଲପୁର) ଅ—ବୋଲିକରି; ଯୋଗୁଁ— Balikari Owing to.

ବଳିଙ୍ଗ—ଦେ. ବି—କଳିଙ୍ଗ ରାଜ୍ୟର ନିକଟବର୍ତ୍ତୀ ଏକ କ୍ଷୁଦ୍ର ରାଜ୍ୟ— Balinga A small kingdom near Kalinga.

[ ଦ୍ର—ସାରଳା ମହାଭାରତରେ ଏହି ନାମ ବହୁଥର ଲିଖିତ ଅଛି । ]

ବଳିଙ୍ଗି—ଦେ. ବି—ଚିଲିକାରେ ମିଳୁଥିବା ଏକପ୍ରକାର ମାଛ— Balingi A kind of fish (in the Chilka).

ବଳିଣ(ନ)—ଦେ. ବିଣ—୧ । ବଳ ହୋଇଥିବା—1. Twisted. Balina(na) ୨ । ଦୃଢ଼ ଓ ବର୍ତ୍ତୁଳ—2 Round and strong; muscular.

ବଳିଣ ଭୁଜେ (ସେ) ମର୍କଟେ ଘଟକ
ଅଙ୍ଗଦ ବଳିଣ ବେନ କରେ ବଳଳେ—ପ୍ରାଚୀ ରଘୁସ୍ୟମନ୍ତକ ।

ବଳିତ—ସଂ. ବିଣ (ବଳ=ପଳିତ ଚର୍ମ+ସଂଜାତ ଅର୍ଥରେ ଇତ)— Balita ୧ । କୁଞ୍ଚିତ; ବଳିଯୁକ୍ତ; ତ୍ରିବଳିଯୁକ୍ତ—1. Wrinkled folded. ୨ । ବଳବଳକିଆ—2. Curled; shrivelled; rolled. ୩ । ଶ୍ଳଥ; ଧଡ଼ଧଡ଼ିଆ; ଲୋଲ; ଲୁଳିତ; ଝୁଲୁଲା ହୋଇ ଝୁଲୁଥିବା— 3. Slackened; flabby; flaccid. ୪ । ପରିବୃତ; ଆବେଷ୍ଟିତ (ହି. ଶ)—4. Surrounded; encircled. ୫ । ଆଚ୍ଛାଦିତ (ହି. ଶ)—5. Covered; enveloped.

ଦେ. ବିଣ—୧ । ଅଧିକତର; ସୁନ୍ଦରତର— 1. Finer; more beautiful.

ଅଭିନବ ରୂପ ବଳିତ କାମ—ଉଷା ଶିଶୁଙ୍କର ।

୨ । ଜାତ—2. Produced; born; generated.

ହର ପଦଗନ୍ଧ ସରସ ରସେଣ ବଳିତ ବହୁ ବିକାର—ପ୍ରାଚୀ ରସବାରିଧି ।

ବଳିତା—ଦେ. ବି (ସଂ. ବଳିତ; ବର୍ତ୍ତିକା)—୧ । ସଳିତା; ବର୍ତ୍ତି; ବନ୍ଧି; ଶଳିତା; ବଳା ଯାଇଥିବା କନା— Balitā 1. Wick; rolled wick.
সলতে; বাতী बत्ती; पलीता

ଯେସନେ ପ୍ରଦୀପ ଜଳଇ
ଘୃତ ବଳିତା ଯୋଗ ପାଇ—ଜଗନ୍ନାଥ ଭାଗବତ ।

୨ । ବଳା ଯାଇଥିବା କନା ବା ତୂଳା—2. A roll or skein (of rag or cotton). ୩ । କନ୍ଥା; କନାର ଟିକି ଟିକି ଖଣ୍ଡ—3. Rags; shrivelled up rags.

(ଯଥା—ଏ ଲୁଗା ଖଣ୍ଡ ଚିରିଯାଇ ବଳିତା ହୋଇଗଲାଣି ।)

ଦେ. ବିଣ.—ବଳିତା ପରି ସରୁ ବା କ୍ଷୀଣ— Slender like a wick.

(ଯଥା—ଖାଇବାକୁ ନ ପାଇ ତା ଦେହ ବଳିତା ହୋଇଗଲାଣି ।)

ବଳିତା କନା—ଦେ. ବି—ଯେଉଁ ଚିରା କନାକୁ ବଳି ବଳିତା ତିଆରି କରାଯାଏ—The rags which are to be Balitā kanā rolled up into wicks.

ବଳିତା ଖଡ଼ି—ଦେ. ବି—ଏକପ୍ରକାର ସରୁ ଲମ୍ବ କୋଇଲା ଖଡ଼ି— Balitā khardi A kind of hard chalk cut into thin long slices.

[ ଦ୍ର—ଏହାର ବର୍ଣ୍ଣ ପାଣ୍ଡୁରିଆ ଧଳା । ଏହା ଲମ୍ବ ଓ ଗୋଲ ହୋଇ ତିଆରି ହୋଇଥାଏ; ଏହାର ବ୍ୟାସ ପ୍ରାୟ ୧ ଇଞ୍ଚ । ଗୁରୁଶାଳର ପିଲାମାନେ ଏହା ସାହାଯ୍ୟରେ ଭୂମିରେ ଲେଖନ୍ତି । ]

ବଳିତା ବଳିବା—ଦେ. କ୍ରି—କନାକୁ ଉପର୍ଯ୍ୟୁପରି ଗୁଡ଼ାଇ ବନ୍ଧି Balitā balibā ତିଆରି କରିବା—To roll up rags into a piece of wick.
সলতে পাকান बती बटना

ବଳିତା ବସା(ସେ)ଇବା—ଦେ. କ୍ରି—ଦେବତାଙ୍କ ସମ୍ମୁଖରେ ବା Balitā basā(se)ibā ଦେବତାଙ୍କ ଉଦ୍ଦେଶ୍ୟରେ ବା ତୁଳସୀଗଛ ମୂଳରେ ସନ୍ଧ୍ୟା ସମୟରେ ଘିଅ ବଳି ଜାଳିବା— To set lighted wicks saturated with ghee or oil before Deities or the holy basil plant at eve.
পিদীমদেওয়া बतीदेना

[ ଦ୍ର—ବଳିତା ବସାଇବା ସମୟରେ ଲୋକେ ଆପଣାର ଅଭୀଷ୍ଟ ସିଦ୍ଧିପାଇଁ ବା ଶତ୍ରୁର ଅମଙ୍ଗଳ ପାଇଁ ଦେବତାଙ୍କର ପ୍ରାର୍ଥନା କରି ଥାଆନ୍ତି । ଏଥିପାଇଁ 'ଅମୁକ ଅମୁକର ନାଆଁରେ ବଳି ବଳିତା ବସାଉଛି, ବୋଲି କହିଲେ ଅମୁକ ଲୋକ ଅମୁକ ବ୍ୟକ୍ତିର ଅମଙ୍ଗଳ ହେବାପାଇଁ ଦେବତାଙ୍କଠାରେ ପ୍ରାର୍ଥନା କରୁଛି ବୋଲି ବୁଝାଯାଏ ।]

ବଳିତା ଲଗା(ଗେ)ଇବା—ଦେ. କ୍ରି.—ଘୃତ ବା ତୈଳାକ୍ତ ବର୍ତ୍ତିକାରେ Balitā lagā(ge)ibā ଅଗ୍ନିସଂଯୋଗ କରି ତାହାକୁ ଜଳାଇବା- To light a wick saturated with ghee or oil.
সলতে লাগান बत्ती लगाना (ବଳିତା ଜଳିବା—ଅନ୍ୟରୂପ)

ବଳିଦାନ—ସଂ. ବି. (୬ଷ୍ଠୀ ତତ୍)—୧ । ଦେବତାଙ୍କ ଉଦ୍ଦେଶ୍ୟରେ Balidāna ପଶୁବଧ-1. Animal sacrifice or offering to a Deity; sacrifice of a victim. (ବଳିପ୍ରଦାନ—ଅନ୍ୟରୂପ) ୨ । ଦେବତାଙ୍କ ଉଦ୍ଦେଶ୍ୟରେ କୌଣସି ଦ୍ରବ୍ୟର ଉତ୍ସର୍ଗ— 2. Dedication of a thing to a Deity. ୩ । ଦେବତାଙ୍କୁ ନୈବେଦ୍ୟ ଦେବା; ପୂଜାର ଉପକରଣ ଦାନ—3. Making of an offering.

ବଳିଦାନ କରିବା—ଦେ. କ୍ରି.—୧ । ଦେବତାଙ୍କ ଉଦ୍ଦେଶ୍ୟରେ ପଶୁବଧ Balidāna karibā କରିବା—1. To sacrifice an animal.
বলিদান করা बलिदान कर (ବଳିଦେବା—ଅନ୍ୟରୂପ)

ତ୍ରିଦଶ ପଶୁରେ ବଦେବୁ କେଉଁରେ ବଳି ନ ହେଁ ଦେବ କାହିଁ ।
ନନ୍ଦକିଶୋର. ଶମସ୍ତା ।

୨ । ବୈଶ୍ୱଦେବରେ ଭୂତ ଓ ପିତୃଗଣଙ୍କୁ ପିଣ୍ଡ ଦେବା— 2. To make food offerings to the created beings and to the manes.

ବଳିଦଗ—ଦେ. ବି.—(ସଂ. ବଳି+ଦଗ୍) ପାତାଳ—
Balidiga The nether region.

ବଳି ଦଗକୁ ଉପର କରିବା କରୁ କେଉଁର ।
ଉତ୍ସ- ବୈଦେହୀଶବିଳାସ ।

ବଳିଧ୍ୱଂସୀ—ସଂ. ବି. ପୁଂ.—(ବଳି+ଧ୍ୱଂସ୍ ଧାତୁ+କର୍ତ୍ତ୍ରି. ଇନ୍; ୧ମା.
Balidhwamsi ଏ.ବ.)—ଯେ ବାମନାବତାରରେ ବଳିକୁ ନାଶ କରିଥିଲେ)—ବିଷ୍ଣୁ—A name of Bishnu.

ବଳିନ—ସଂ. ବିଣ. ପୁଂ.—(ବଳି+ଅସ୍ତ୍ୟର୍ଥେ. ଇନ୍)—୧ । ବଳିଯୁକ୍ତ—
Balina 1. Wrinkled; shrivelled.
(ବଳିଭ—ଅନ୍ୟରୂପ) ୨ । ତ୍ରିବଳିଯୁକ୍ତ—2. Having 3 folds
(ବଳିନା, ବଳିଭା—ସ୍ତ୍ରୀ) of skin about the navel.
୩ । ଲୁଳିତ; ଶ୍ଳଥ—3. Flabby; flaccid.
ଦେ. ବିଣ.—ବର୍ତ୍ତୁଳ ଓ ଦୃଢ଼—Round and strong.
(ଯଥା—ବାହୁ ବଳିନ ଭୁଜ ହେମବ୍ରତତୀ ।)

ବଳି ନନ୍ଦନ—ସଂ. ବି. (୬ଷ୍ଠୀ ତତ୍)—ବାଣାସୁର—
Bali nandana A demon; son of Bali.
[ ଦ୍ର—ବଳି ରାଜାଙ୍କର ଶତଗୋଟି ପୁତ୍ର ଥିଲେ, କିନ୍ତୁ 'ବଳିନନ୍ଦନ' କେବଳ ବାଣାସୁରକୁ ବୁଝାଏ । ]

ବଳିନୀ—ସଂ ବି. ସ୍ତ୍ରୀ (ବଳି+ଇନ୍+ସ୍ତ୍ରୀ. ଈ)—ବାଡ଼ିଅଁଳା; ବାଟ୍ୟା-
Balini ମଳକ; ବଳା—A medicinal plant; Sida Cordifolia.

ବଳିନ୍ଦମ—ସଂ. ବି. ପୁଂ ( ବଳିଂ=ବଳିକୁ+ଦମ୍ ଧାତୁ=ଶାସନ
Balindama କରିବା+କର୍ତ୍ତ୍ରି. ଅ )—ବିଷ୍ଣୁ; ବଳିଧ୍ୱଂସୀ—Bishnu

ବଳି ପକା(କେ)ଇବା—ଦେ. କ୍ରି—ବଳି ଦେବା; ବୋଦା ପକାଇବା;
Bali paka(ke)iba ଦେବତାଙ୍କ ଅଗରେ ପଶୁବଳି ଦେବା ବା
ବଳି ଦେଓଯା ପଶୁ ହାଣିବା—To slay an animal before
**बलि देना** a Deity for sacrifice; to victimise.
( ବଳି ଦେବା—ଅନ୍ୟରୂପ )

ବଳି ପଡ଼ିବା—ଦେ. କ୍ରି—୧ । (ସଂ. ବଳି) (ପଶୁ) ଦେବତାଙ୍କ ଅଗରେ
Bali pardiba ବଳିରୂପେ ହାଣ ଖାଇବା; ବୋଦା ପଡ଼ିବା—
ବଳି ପଡ଼ା 1. To be killed or slain before a Deity as
**बलि होना** a victim. ୨ । (ସଂ. ବହୁଳ) ବଳକ ପଡ଼ିବା; ଅଧିକା ହେବା; ଉଦ୍‌ବୃତ୍ତ ରହିବା—2. To be in excess; to exceed; to outstand; to remain over.
୩ । ଟପିଯିବା; ଅତିକ୍ରମ କରିବା—3. To outrun; to pass over. ୪ । ବୃଦ୍ଧି ପାଇବା—4. To increase.

ଏହା ଶୁଣି ବଳି ପଡ଼ଇ ମୋ ଉତ୍ସାହ—
କୃଷ୍ଣସିଂହ, ମହାଭାରତ ବନ ।

୫ । ସୀମା ଅତିକ୍ରମ କରିବା—5. To pass beyond bounds; to exceed the limit.

ଗୁପତେ ବଂଶୀ ମୁଁ ତୋତେ ପଶୁରୁଛି ବଳିପଡ଼ିବାରୁ ବ୍ୟଥା—
କବିସୂର୍ଯ୍ୟ, ବଳୋସଟମ୍ଭୁ ଗ. ଗୀତ ।

୬ । ଅସହ୍ୟ ହେବା—6 To be unbearable.
୭ । ସବାପେକ୍ଷା ଅଧିକ ହେବା—7. To preponderate.

ଏହିରୂପେ କଣ୍ଠରୁ ବଳିପଡ଼ ଶୋକ
ଚିରଦେଲେ କମଳନ୍ତୀଙ୍କର ଶବେକ—କୃଷ୍ଣସିଂହ, ମହାଭାରତ ବନ ।

ବଳି ପଶୁ—ସଂ. ବି—କୌଣସି ଦେବତାଙ୍କ ଉଦ୍ଦେଶ୍ୟରେ ହତ ପଶୁ—
Bali pasu An animal killed as a victim to a particular Deity.

ବଳି ପାଇବା—ଦେ. କ୍ରି—୧ । ( ପଶୁ ) ଦେବତାଙ୍କ ଅଗରେ ବଳି
Bali paiba ପଡ଼ିବା ବା ହଣା ହେବା—1. To be slain as
ବଳି ପାଓୟା **बलि पाना** a sacrifice before a Deity.
(ଯଥା—ଅଜ କାଳୀଠାକୁରାଣୀଙ୍କ ଅଗରେ ୩ଟି ଛେଳି ବଳି ପାଇଲେ ।)
୨ । (ଦେବତା) କୌଣସି ପଶୁକୁ ବଳିରୂପେ ପ୍ରାପ୍ତହେବା—
2 To get a victim slain for self (said of a Deity).
(ଯଥା—ବିମଳାଠାକୁରାଣୀ ଦୁର୍ଗାପୂଜା ସମୟରେ ପ୍ରତିବର୍ଷ ୭ଟି ଲେଖାଏଁ ମାଈ ବଳି ପାଆନ୍ତି ।)

ବଳିପୁଷ୍ଟ—ସଂ. ବିଣ. ପୁଂ (୩ୟା ତତ୍)—୧ । ବଳି ବା ଖାଦ୍ୟାଂଶଦ୍ୱାରା
Balipushta ପାଳିତ—1. Brought up with food
(ବଳିପୁଷ୍ଟା—ସ୍ତ୍ରୀ) thrown after meals. ୨ । ଅଇଁଠାଖିଆ—
2. Living on the leavings of other people's tables.
ସଂ. ବି—କାକ; କୁଆ—Crow.

ବଳି ପୋଦକୀ—ସଂ. ବି—ବଡ଼ ପୋଇଶାଗ ଲତା (ହି. ଶ)
Bali podaki A large variety of Poi creeper.

ବଳି ପ୍ରିୟ—ସଂ ବି—୧ । ଲୋଧ୍ର (ହି. ଶ) ( ଦେଖ )—1. Lodhra
Bali priya (See). ୨ । କୁଆ (ହି. ଶ)—2 Crow.

ବଳିବର୍ଦ୍ଦ—ସଂ. ବି—୧ । ଷଣ୍ଢ (ହି. ଶ)—1. Bull. ୨ । ବଳଦ
Balibardda (ହି. ଶ)—2. Ox; bullock.

ବଳି ବଳିକା—ଦେ. ବିଣ—ଯାହା ମୋଡ଼ି ମୋଡ଼ି ହୋଇଥାଏ—
Bali balika Crisp; wrinkled; shrivelled.
( ବଳିବଳିକିଆ—ଅନ୍ୟରୂପ )

ବଳିବା—ଦେ. କ୍ରି (ସଂ. ବୃତ୍ ଧାତୁ)—୧ । କନା ଆଦିକୁ ଉପର୍ଯ୍ୟୁପରି
Baliba ପାକନ ଗୁଡ଼ାଇବା—1. To roll up (rag etc).
**बटना** ୨ । ଛୋଟ ବା କତାକୁ ହାତରେ ଗୁଡ଼ାଇ ଦଉଡ଼ି କରିବା—
2. To weave or twist fibres into a rope.
୩ । (ମତି ବା ମନ) କୌଣସି ବିଷୟ ପ୍ରତି ଆସକ୍ତ ହେବା ବା ଆକୃଷ୍ଟ ହେବା—3. (the mind) To be bent upon
ଯାଓଯା a matter or to be attached towards a thing.
**जाना**

ଏ ବାଣୀ ଶ୍ରବଣେ ରାମ ଶ୍ରୀପଦ ଦର୍ଶନ
କରିବାକୁ ନ ବଳିଲା ଏ ଦାସର ମନ । ନନ୍ଦକିଶୋର, ସୀତା ବନବାସ ।

୪ । (ମନ) ଉଦ୍‌ବିଗ୍ନ ହେବା—4. (the mind) To be anxious for.

ତାହାଙ୍କ ଦେଖିବାକୁ ବଳିଛି ମାନସ ।
କୃଷ୍ଣସିଂହ, ମହାଭାରତ ବନ ।

ପାକାନ ୫ । ଅଙ୍ଗୁଷ୍ଠ ଦ୍ୱାରା ମାଣ୍ଡ ଆଦିକୁ ପେଣ୍ଡୁଳି କରିବା—
ବଟନା 5. To roll up into a ball with the help of the fingers.

ବଳ ବାନ୍ଧୁଳକ ସ୍ୱନାଗ୍ର ରୂପେ ସେ ମନୋହର ।
ଉଷ୍ଟ. ବୈଦେହୀଶବିଳାସ ।

୬ । ବାରଣ ନ ମାନିବା—6. To disobey a restriction.

ବଳୀ ବଳସୁକ୍ଷ୍ମ ଝାଙ୍କେ ଅହାର ଲେଉଚେ
ଚନ୍ଦନଲଗୋଭିମା ଡାହାର ନବାରଚେ । ଉଷ୍ଟ. ବୈଦେହୀଶବିଳାସ ।

ଟପକା ୭ । ଡେଇଁ ଯିବା; ଅତିକ୍ରମ କରିଯିବା—7. To pass over; to outrun.
ବଢନା

ବଢ଼ଇ ଅନଳ ଗଡ କରି ଶାଳ ଦୁର୍ଗମ ଦୁର୍ଗ ସବୁର ।
ଉଷ୍ଟ. ବୈଦେହୀଶବିଳାସ ।

୮ । (ସ. ବହୁଳ) ବଳିକା ହେବା; ବଳିଯିବା—8. To exceed; to be in excess. ୯ । ଅବଶିଷ୍ଟ ରହିବା; ବଳିକା ରହିଯିବା; ବ୍ୟବହାର ପରେ ଉଦ୍ବୃତ୍ତ ରହିବା; ବଳ
ବଚନା ପଡ଼ିବା—9. To remain over after use.
ବାଁଚା ( ଯଥା—ମୋ ପଙ୍କରେ ଗୁଡ଼ାଏ ଭାତ ବଳବ । )
୧୦ । ବଳିବା; ଅତିରିକ୍ତ ହେବା; ଅଧିକତର ହେବା; ବଳିଯିବା—
ବଢ଼ନା 10. To exceed; to be more than.

ବାଳପେସ୍ ଯାଗରୁ ତା ଫଳ ବଳଲ । କୃଷ୍ଣଦ୍ୱଂ. ମହାଭାରତ. ବନ ।

୧୧ । ବଢ଼ିବା; ବୃଦ୍ଧି ପାଇବା; ବଳିଯିବା—11. To increase.
ବାଡ଼ା (ଯଥା—ଧନଲୁ ଧନ ତା ରୋଗ ବଳିଲାଣି ।)
୧୨ । ଜିତିବା; ବଳିଯିବା—12. To win.
( ଯଥା—ତାଙ୍କୁ କେହି କଥାରେ ବଳବ ନାହିଁ । )
୧୩ । (ନିର୍ଦ୍ଦିଷ୍ଟ ସମୟ) ଅତୀତ ବା ଅତିକ୍ରାନ୍ତ ହେବା; ବଳିଯିବା—
ଗତ ହওয়া 13. To pass (said of a fixed time-limit).

ପ୍ରାଣ ନାଥ—ବଳେ ବେଳ ବଳଲାରେ । କବିସୂର୍ଯ୍ୟ. ସଙ୍ଗୀତ ।

୧୪ । (ମନରେ ଶ୍ରଦ୍ଧା, ଆଗ୍ରହ, ସ୍ନେହ ଆଦି) ଜାତ ହେବା, ଜନ୍ମିବା—14. To grow.

ଶ୍ରଦ୍ଧା ବଳଇ ଯାର ମନେ, ସେ ପ୍ରାଣୀ ଧନ୍ୟ ତ୍ରିଭୁବନେ ।
ଭୂପତି. ପ୍ରେମପଞ୍ଚାମୃତ ।

লংঘন করা ୧୫ । ଲଙ୍ଘିଯିବା—15. To overflow; to overtop.
লাঁঘনা

ଉଚ୍ଛୁଳା ଜଳ ହୋଇ ଟ୍ରେଳ ବଳନ୍ତି ତଟ ।
ଗୋପକୃଷ୍ଣ. ଜଗମୋହନ ।

୧୬ । ସଙ୍ଗୀମାନଙ୍କୁ ଗତିରେ ବା ପଢ଼ାରେ ଡେଇଁଯିବା—16. To outstrip; to outwalk.
ବଢଜାନା
[ ଦ୍ର—ବଳବା କ୍ରିୟାର ଅସମାପିକା ରୂପ ସଙ୍ଗେ ଯିବା, ପଡ଼ିବା, କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ବଲ୍ଲବା—ପ୍ରାଦେ (ଜାଜପୁର) କ୍ରି. (ଭୁଲ. ବ. ବଲ୍ଲ)—ବୋଲିବା; କହିବା—To say; to speak.
Baliba

ବଳଭୁକ୍—ସ. ବି. ପୁଂ ଓ ସ୍ତ୍ରୀ. (ବଳ+ଭୁଜ୍ ଧାତୁ=ଖାଇବା+କର୍ତ୍ତ୍ରି. କ୍ୱିପ୍; ବଳଭୁଜ୍ ଶବ୍ଦ; ୧ମା. ୧ବ.)—
Balibhuk
୧ । କାକ—1. Crow. ୧ । ଘରଚଟିଆ—2. Sparrow.

ବଳଭୁକ—ଦେ. ବି—ବଳଭୁକ୍ ( ଦେଖ )
Balibhuka Balibhuk ( See )

ସେ ବରଜ ବଳା ବଳାଶୋଭା ଦେଇ ବଳ
ବଳଭୃକେ ପୃଷ୍ଠ ବାର୍ତ୍ତ ଅଳା ଅଳା । ଉଷ୍ଟ. ପ୍ରେମସୁଧାନିଧି ।

ବଳଭୁଜ—ସ. ବି. (ବଳ+ଭୁଜ ଧାତୁ+କର୍ତ୍ତ୍ରି. ଅ)—
Balibhuja ବାୟସ; କୁଆ—Crow.

ବଳଭୋଜ(ଜା)—ସ. ବି. (ବଳ+ଭୁଜ୍ ଧାତୁ+ଅ; ଆ)—
Balibhoja(jā) କୁଆ (ହି. ଶ)—Crow.

ବଳି ଭୋଜା—ଦେ. ବି—ନୈବେଦ୍ୟ—
Bali bhojā Offerings to a Deity.

ଭୁ ମୋତେ ଯଜ୍ଞେ କରୁ ପୂଜା
ଦେବଙ୍କ ଦେଇ ବଳଭୋଜା । ଜଗନ୍ନାଥ. ଭାଗବତ ।

ବଳିମାନ୍—ସଂ. ବିଣ. ପୁଂ. (ବଳି+ମତ୍; ୧ମା. ୧ବ)—
Balimān ବଳିନ; ବଳିଯୁକ୍ତ—Having wrinkles or
(ବଳିମତୀ—ସ୍ତ୍ରୀ) folds of skin; flabby-skinned.

ବଳି ମୁଖ—ସଂ. ବି. (ବହୁବ୍ରୀହି; ବଳି=ଶ୍ଳଥ ଚର୍ମ ମୁଖରେ ଯାହାର)—
Bali mukha ୧ । ବାନର; ମାଙ୍କଡ଼—1. Monkey.

ବଳିମୁଖ ଧରେ ଯେଣ ଚିହ୍ନ ଅପ୍ରବୃର । ଉଷ୍ଟ. ବୈଦେହୀଶବିଳାସ ।

୨ । ଶିବଙ୍କ ଅନୁଚର ବିଶେଷ—2. An attendant of Siba.

(୧+୨) ବସୁକ ବଳିମୁଖଙ୍କୁ ଚେତା କରି ।
ଉଷ୍ଟ. ବୈଦେହୀଶବିଳାସ ।

ବଳିର—ସଂ. ବି. ପୁଂ. (ବଳି+ର)—ଟେରା—Squint-eyed.
Balira (ବଳିରା—ସ୍ତ୍ରୀ) (ବଳିରତା—ବିଶେଷ୍ୟ)

ବଳିଶ—ସଂ. ବି—ବଳିସି (ହି. ଶ)—
Balisa Angling rod.

ବଳି ଶୋଭିନୀ—ସଂ. ବିଣ. ସ୍ତ୍ରୀ. (ବଳି+ଶୋଭ୍+ଇନ୍+ଈ)—
Bali sobhini ତ୍ରିବଳୀ ଶୋଭିନୀ ( ସ୍ତ୍ରୀ )—( a female ) Having wrinkled folds of skin about her navel. ବଳି ବଳଶୋଭୀନୀ ଡାହାର ନବାରଚେ । ଉଷ୍ଟ. ବୈଦେହୀଶବିଳାସ ।

ବଳିଷ୍ଟ—ଗ୍ରା. ବିଣ. (ସଂ. ବଳିଷ୍ଠର ଅଶୁଦ୍ଧ ପ୍ରୟୋଗ)—ବଳବାନ୍—
Balishta Strong; mighty.

ବଳିଷ୍ଠ—ସ. ବିଣ. ( ବଳବତ୍+ଅତ୍ୟର୍ଥେ. ଇଷ୍ଠ )—୧ । ଅତ୍ୟନ୍ତ
Balishtha ବଳବାନ୍—1. Very strong. ୨ । ବଳୁଆ—2. Strong. ୩ । ବଳବତ୍ତମ—3. Strongest. ୪ । କାର୍ଯ୍ୟକ୍ଷମ—4. Fit for work; hale. ୫ । ହୃଷ୍ଟପୁଷ୍ଟ—5. Well developed; stout; robust.

ବଳିଷ୍ଠକାୟ—ସ. ବି ( କର୍ମଧା )—ବଳବାନ୍ ଦେହ—Strong
Balishthakāya body; robust physique.
( ବଳିଷ୍ଠ ଦେହ, ବଳିଷ୍ଠ ଶରୀର—ଅନ୍ୟରୂପ )
ସ. ବିଣ. ( ବହୁବ୍ରୀହି )—ଦୃଢ଼କାୟ—
Strong in physique; able-bodied.

ବଳିଷ୍ଣୁ—ସ. ବିଣ ( ବଳ+ଇଷ୍ଣୁ )—ଅପମାନିତ ( ହି. ଶ )—
Balishnu Insulted.

ବଳିସଦ୍ମ—ସ. ବି ( ୬ଷ୍ଠୀ ତତ୍ )—ପାତାଳ—The nether world;
Balisadma infernal regions.
( ବଳି ମନ୍ଦିର, ବଳି ସଦନ, ବଳିପୁର—ଅନ୍ୟରୂପ )

ବଳିହା—ସ. ବି ( ବଳି+ହନ୍ ଧାତୁ+କର୍ତ୍ତ୍ରି. କ୍ୱିପ୍ )—ବଳିଧ୍ୱଂସୀ;
Balihā ବିଷ୍ଣୁ—Bishnu (who killed Bali).

ବଳିହାର କରିବା—ଦେ. କ୍ରି ( ହିନ୍ଦୀରୁ ଅନୁକୃତ )—ଜୟଜୟକାର
Balihāri karibā କରିବା; ଜେଜେକାର କରିବା—To sing
बलिहारि करना praise; to extol; to raise exclamations
**बलिहारि करना** praising a man.

ବଳିହୃତ୍—ସ. ବିଣ ( ବଳି+ହୃ ଧାତୁ+କର୍ତ୍ତୃ. କ୍ୱିପ୍ )—୧ । କରପ୍ରଦ;
Balihrut ଯେ କର ଦିଏ—1. Paying rent; tributary.
୨ । ଯେ ଭେଟି ଆଣେ—2. Carrying or bringing presents. ୩ । ଯେ କର ଗ୍ରହଣ କରେ; କରଗ୍ରାହୀ—3. Taking or accepting tribute or rent.
ସ. ବି—ରାଜା ( ହ୍ରି. ଶ )—A king.

ବଳୀ—ସ. ବିଣ. ପୁଂ ( ବଳ+ଇନ୍; ବଳିନ୍ ଶବ୍ଦ ୧ମା. ୧ବ )—
Bali ୧ । ବଳବାନ୍; ବଳୁଆ—1. Strong. ୨ । ଅଂଶଳ;
( ବଳିନୀ—ସ୍ତ୍ରୀ ) ସ୍ଥୂଳକାୟ—2. Stout; robust; muscular.
ବି—୧ । ବଳରାମ; ବଳଭଦ୍ର—1 Balabhadra. ୨ । ଉଷ୍ଟ୍ର; ଓଟ—2. Camel. ୩ । ମହିଷ—3. Buffalo. ୪ । ବୃଷଭ; ଷଣ୍ଢ—4 Bull. ୫ । ଶୂକର—5. Hog. ୬ । କଫ—6. Phlegm. ୭ । କୁନ୍ଦ ( ଫୁଲଗଛ )—7. A sort of jasmine. ୮ । ମାଷ; ବିରି—8. A sort of pulse; Phaseolus Radiatus. ୯ । ବଳି ୧୧ରୁ ୧୬ ( ଦେଖ )—9. Bali 11 to 16 (See).

ବଳୀ ବଳ ଦେଖେ ସେ ପ୍ରବଳ ରହି ଶୋଭା—ଭକ୍ତ. ବୈଦେହୀଶବିଳାସ

ବଳୀକ—ସ. ବି ( ବଲ୍ ଧାତୁ=ଆବରଣ କରିବା+କର୍ତ୍ତୃ. ଈକ )—
Balika ୧ । ଛାମୁ; ଘରଚାଳର ତଳ—1. The lower end of a thatch; the eaves. ୨ । କାଣ୍ଡଶର ( ହ୍ରି. ଶ )—2. A kind of reed.

ବଳୀନ—ସଂ. ବି—୧ । ବିଛା; ଛତ୍ରୁଳିଆ ବିଛା—1. A centepede.
Balina ୨ । ଦୈତ୍ୟବିଶେଷ ( ହ୍ରି. ଶ. )—2. Name of a demon.

ବଳୀନ୍ଦ୍ର—ସ. ବିଣ (୭ମୀ ତତ୍. ବଳୀ+ଇନ୍ଦ୍ର)—ଅତ୍ୟନ୍ତ ବଳଶାଳୀ—
Balindra Very strong.
ବି—ବୀର ପୁରୁଷ—A hero.

ବଳୀବର୍ଦ୍ଦ—ସ. ବି ( ବଳ=ଶକ୍ତି+ବୃଧ୍ ଧାତୁ=ବୃଦ୍ଧି ପାଇବା+
Balibardda କର୍ତ୍ତୃ. ଅ, ନିପାତନ )—୧ । ବଳଦ—1. Ox; a castrated bull; bullock. ୨ । ଷଣ୍ଢ—2. Bull.

ବଳୀବର୍ଦ୍ଦ ପୂଜା—ସ. ବି—ବଳଦେବ ପୂଜା ( ଦେଖ )
Balibardda pūjā Baladeba pūjā ( See )

ବଳୀୟାନ୍—ସ. ବିଣ. ପୁଂ ( ବଳବତ୍+ଅତ୍ୟର୍ଥେ. ଈୟସ; ବତ୍‌ଲୋପ;
Baliyān ବଳୀୟସ ଶବ୍ଦ ୧ମା. ୧ବ )—୧ । ବଳୁଆ; ବଳୀୟାର—
(ବଳୀୟସୀ—ସ୍ତ୍ରୀ) 1. Strong; mighty. ୨ । ବଳବତ୍ତର—2. Stronger. ୩ । ଖୁବ୍ ବଳୁଆ—3. Very strong.
ବି—ଉଷ୍ଟ୍ର, ମହିଷ ପ୍ରଭୃତି ବଳଶାଳୀ ପଶୁ—Strong beasts (e. g. camel, buffalo etc ).

ବଳୁଆ—ଦେ. ବିଣ ( ସ. ବଳବାନ୍ )—ବଳବାନ୍—Strong.
Baluā बलवन्त **बलिष्ठ**
ପ୍ରାଦେ. ( ଆଠମଲ୍ଲିକ ଓ ଗଡ଼ଜାତ ) ବି—ବଳିଆ କୁକୁର—Wild ferocious dog.

ବଳୁରି—ଦେ. ବି—ବିରୁଡ଼ି ( ଦେଖ )
Baluri Birurdi ( See )

ବଳୁଳ—ସ. ବି ( ବଳ+ଅସ୍ତି ଅର୍ଥରେ ଉଲ )—ବଳୁଆ; ବଳବାନ୍—
Balula Strong; mighty.

ବଲେ—ଦେ. କ୍ରି. ବିଣ—୧ । ବଳପୂର୍ବକ; ଜବରଦସ୍ତି—
Bale जबरदस्ति **जबरदस्त** 1. Forcibly.

ଦ୍ୱାରକାରେ ଯାଇ ବଲେ ସୁଭଦ୍ରାଙ୍କୁ
ହରି ହୋଇ ଅର୍ଜୁନ ଆଣିଲେ ଘରକୁ—କୃଷ୍ଣସିଂହ. ମହାଭାରତ. ଆଦି ।

आपनी ୨ । ଆପଣା ମନକୁ; ସ୍ୱେଚ୍ଛାରେ; ସ୍ୱଇଁ ସ୍ୱଇଁ—2. Out of
**आपसेआप** one's own accord; automatically; willingly.
निश्चय ୩ । କାର୍ଯ୍ୟତଃ; ନିଶ୍ଚେ—
**अलबत** 3. Certainly; as a matter of course.

ବଳନ ସ୍ଥଳେ ସେ ବଳେ, ବଚନରେ
କ୍ଷଣରୁଦ ରୁଚରେ—କବିସୂର୍ଯ୍ୟ. କଣୋଗ ଚମ୍ପୂ. ଠ ଗୀତ

୪ । ବାଧ୍ୟ ହୋଇ—4. Under compulsion; compulsorily.

ଔଷଧ ଯେତେକ ନ ରୁଚଇ
ବ୍ୟାଧି ସଂଯୋଗେ ବଲେ ଖାଇ—ଜଗନ୍ନାଥ. ଭାଗବତ ।

ଅ—( ଅନ୍ୟ ବିଶେଷ୍ୟ ଶବ୍ଦ ପରେ ଲାଗେ )—ଯୋଗେ; ଯୋଗୁଁ—For.

ନଥାଇ ରୁ କୋଳେ, କସନ୍ତିବଲେ
ଉକ୍ତ ହେଲେ ସୁରେଶ୍ୱର ରେ—କବିସୂର୍ଯ୍ୟ, ସଙ୍ଗୀତ ।

ବଲେ—ପ୍ରାଦେ. ( ଉତ୍ତରଗୁଞ୍ଜାମ ) ଅ—ସୁଦ୍ଧା; ହେଲେହେଁ—
Bale Even.

ବଲେଇ—ଦେ. ବିଣ—କ୍ଷୁଦ୍ର; ଛୋଟ—
Bale-i Small; minute.
(ବଲୈ—ଅନ୍ୟରୂପ) ବି—୧ । ଛୋଟ ବିଆର—1. Small strip or plot of fields. ୨ । ଛୋଟ ଛୋଟ ଆକାରରେ କଟା ହୋଇ ବଡ଼ା ବନ୍ଧା ହୋଇଥିବା ଜାଳ କାଠ—2. Fuel cut into bits and tied into small bundles.
ଦେ. କ୍ରି. ବିଣ—କୌଣସି ବ୍ୟକ୍ତିଙ୍କୁ ଆଗ ବଲାଇ ଦେଇ—After accompanying a person to some distance.

बलाई; बालाई ବୈଦେ. ବି. (ଅ. ବଲା=ବିପଦ; ଗୁରୁଦାୟିତ୍ୱ)—
**बला; बलाय** ୧ । ଦାୟ; ଦାୟିତ୍ୱ—1. Responsibility.

ମୁଁ ତାଙ୍କୁ ବାରବାର ଡେଙ୍କିବ ବେଙ୍କୁ କହୁଛି
ପରସ୍ତୁଥ, ଗୁଣ୍ଡାରୁଷ ସେ ବଲେଇରେ ପଶ ନାଁ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୨ । ବିପଦ—2. Danger. ୩ । ବିଘ୍ନ—3. Obstacle. ୪ । ଅଡୁଆ; ଗୋଳମାଳ—4. Trouble; confusion; difficulty.

[ଦ୍ର—ଏ ଶବ୍ଦ ଅନର୍ଥକ 'ଅଲେଇ' ଶବ୍ଦ ସହିତ ବ୍ୟବହୃତ ହୋଇ ଏକାର୍ଥବୋଧକ ଯୁକ୍ତଶବ୍ଦ ଉତ୍ପାଦନ କରେ, ଅଲେଇ ବଲେଇ ।]

**ବଲେ କଲେ**—ଦେ. କ୍ରି. ବିଣ. (ସହଚର ଶବ୍ଦ)—କଲେ ବଲେ
Bale kale କୌଶଳେ; ଶରୀରର ବଳଦ୍ୱାରା ହେଉ ବା କୌଶଳ-
(ବଲେ କଲେ କୌଶଲେ—ଅନ୍ୟରୂପ) ଦ୍ୱାରା ହେଉ, ଯେ କୌଣସି
କଳେବଳେ, ଛଳେବଳେ ଉପାୟରେ; ସତ୍ ହେଉ ବା ଅସତ୍ ହେଉ
छलबलसे ଯେ କୌଣସି ଉପାୟରେ—Anyhow; by any means whatever; either by bodily strength or wiles; by means fair or foul.

**ବଲେନ**—ପ୍ରାଦେ. (ବାମଣ୍ଡା) ବି—ଛୋଟ ପାଣି ନାଳ—
Balena A small water channel.

**ବଲେପଶା**—ଦେ. ବିଣ. ପୁଂ—ବଲପଶା ( ଦେଖ )
Balepaśā (ବଲେପଶୀ—ସ୍ତ୍ରୀ) Balapaśā (See)

**ବଲେ ପଶି ମଙ୍ଗଲବାର କରିବା**—ଦେ. କ୍ରି—ପରଘରେ ଜବରଦସ୍ତି ବା
Bale paśi maṅgalabāra karibā ଅନାହୂତ ହୋଇ
(ବଲେ ପଶି ଓଷା ଉଜେଇବା—ଅନ୍ୟରୂପ) ମୁରବୀ ପଣିଆ କରିବା—To thrust one's self as the guardian of another's affairs; to poke one's nose into another's affairs.

**ବଲେ ବଲେ**—ଦେ. କ୍ରି. ବିଣ—ଆପଣା ମନକୁ; ସ୍ୱଇଚ୍ଛାରେ—
Bale bale Of one's own accord; without any one's request.
আপনা আপনি आपसेआप

**ବଲେୟା**—ଦେ. ବି—ବନ୍ୟଜନ୍ତୁବିଶେଷ, ବଳଆ କୁକୁର—
Baleyā Wild ferocious dog.

ମଇଁଷି ଘୋଡା ଫଙ୍କେ।ଷ ବଲେୟା । ପ୍ରତାପ ଶଶିସେଣା ।

**ବଲୋପବିଷ୍ଟ**—ସଂ. ବିଣ. (ତୃତୀୟାତତ୍; ବଲ+ଉପବିଷ୍ଟ)—୧ । ଶକ୍ତି-
Balopabishṭa ବିଶିଷ୍ଟ—1. Powerful; endowed with
(ବଲୋପେତ—ଅନ୍ୟରୂପ) strength. ୨ । ଜବରଦସ୍ତି ପ୍ରବେଶ କରିଥିବା—2. Entering into a place by force.

**ବଲ୍କ**—ସଂ. ବି. (ବଲ୍ ଧାତୁ=ଆବରଣ କରିବା+କର୍ତ୍ତୃ. କ)—ବକଲ;
Balka ବୃକ୍ଷତ୍ୱକ୍; ଗଛର ଛାଲ—Bark of tree.

**ବଲ୍କତରୁ**—ସଂ. ବି. (ବହୁବ୍ରୀହି)—ଗୁଆଗଛ ( ହି. ଶ. )—
Balkataru Arecanut-tree.

**ବଲ୍କଦ୍ରୁମ**—ସଂ. ବି.(ମ. ପ. ଲୋ)—ଭୋଜପତ୍ରର ଗଛ ( ହି. ଶ. )—
Balkadṛuma The birch tree.

**ବଲ୍କଲ**—ସଂ. ବି. ( ବଲ୍ ଧାତୁ=ଆବରଣ କରିବା+କର୍ତ୍ତୃ. କଲ )—
Balkala ୧ । ଗଛର ଛାଲ; ବକଲ—1. Bark. ୨ । ମାଛର କାତି; ଶଲ୍କ—2. Scale of fish. ୩ । ଦାରୁଚିନି—3. Mace (spice). ୪ । ଲୁଗାରୂପେ ବ୍ୟବହୃତ ଗଛର ଛାଲ ( ହି. ଶ. )—4. Bark of a tree used as a cloth.

**ବଲ୍କଲ ଧାରୀ**—ସଂ. ବିଣ. ପୁଂ. ( ଉପପଦ ତତ୍ପୁରୁଷ )—ଯେଉଁ ବ୍ୟକ୍ତି
Balkala dhārī ଗଛର ବକଲ ପିନ୍ଧିଥାଏ—Wearing bark.
(ବଲ୍କଲ ଧାରଣୀ—ସ୍ତ୍ରୀ)

**ବଲ୍କଲୀ**—ସଂ. ବିଣ. ପୁଂ. (ବଲ୍କଲ+ଅସ୍ତି ଅର୍ଥରେ ଇନ୍)—ବଲ୍କଲଧାରୀ—
Balkalī (ବଲ୍କଳନୀ—ସ୍ତ୍ରୀ) Wearing bark.

ବଲ୍କଲୀ ରଜାଙ୍କୁ ଦେଖି ସର୍ବେ ଦୁଃଖମନ
ସଜ ହେଲେ ସେହିକ୍ଷଣି ଅରଣ୍ୟକ ବେଶେ । ରଘୁନାଥ, ମହାଯାନ ।

**ବଲ୍କା**—ଦେ. ବିଣ. ପୁଂ. ( ଫା. ଉଲ୍କୁ )—ଓଲ୍ଲା; ଓଲ୍ଲୁ; ଓଲମା; ନିର୍ବୋଧ-
Balkā (ବଲ୍କୀ—ସ୍ତ୍ରୀ) Idiotic; foolish.

**ବଲ୍କାନ୍**—ଦେ. ବି. (ନାମ)—ଇଉରୋପ ଅନ୍ତର୍ଗତ ତୁରସ୍କ ନିକଟବର୍ତ୍ତୀ
Balkān ଉପଦ୍ୱୀପସ୍ଥ କ୍ଷୁଦ୍ର ରାଜ୍ୟପୁଞ୍ଜ—The Balkans (a group of states in Europe)

**ବଲ୍ଗ୍** (ଧାତୁ)—ସଂ.—୧ । ବକ୍ର ଗମନ କରିବା—
Balg (root) 1. To move in a crooked line.
୨ । ଡେଇଁ ଡେଇଁ ଚାଲିବା—2. To walk frisking; to move by leaps. ୩ । କହିବା—3. To speak; to talk.

**ବଲ୍ଗ**—ସଂ. ବି. (ବଲ୍ଗ୍ ଧାତୁ+କରଣ. ଅ)—ବଲ୍ଗା (ରାଜଶେଖର ବସୁ,
Balga ଚଲନ୍ତିକା); ଲଗାମ—Rein.

**ବଲ୍ଗନ**—ସଂ. ବି. (ବଲ୍ଗ୍ ଧାତୁ+ଭାବ. ଅନ)—୧ । ବହୁ କଥନ; ବକା-
Balgana 1. Talking much; talkativeness.
୨ । ବକ୍ର ଗତି—2. Crooked motion. ୩ । ଭୂରି ଭୋଜନ—3. Eating to the fill. ୪ । ଘୋଡ଼ାର ଦୁଲ୍କି ଚାଲି (ହି. ଶ.)—4. Canter or trot of a horse.

**ବଲ୍ଗମାନ**—ସଂ. ବିଣ. ପୁଂ. (ବଲ୍ଗ୍ ଧାତୁ+କର୍ତ୍ତୃ. ଆନ)—କୁଦି କରି
Balgamāna ଚାଲୁଥିବା—Walking in a frisking
(ବଲ୍ଗମାନା—ସ୍ତ୍ରୀ) manner; trotting; cantering.

**ବଲ୍ଗା**—ସଂ. ବି.—(ବଲ୍ଗ୍ ଧାତୁ+କରଣ. ଅ+ସ୍ତ୍ରୀ. ଆ)—ବାଗ;
Balgā ଘୋଡ଼ାର ଲଗାମ—Rein of a horse.

**ବଲ୍ଗାଧାରୀ**—ସଂ. ବି. ପୁଂ.—(ଉପପଦ ତତ୍ପୁରୁଷ)—ସାରଥି—
Balgādhārī (ବଲ୍ଗାଧାରଣୀ—ସ୍ତ୍ରୀ) Charioteer.

**ବଲ୍ଗା ହରିଣ**—ଦେ. ବି.—(ସଂ. ବଲ୍ଗା+ଓ. ହରିଣ; ଆଧୁନିକ ପ୍ରୟୋଗ;
Balgā hariṇa ବଙ୍ଗଳାରୁ ଅନୁକୃତ)—ଏକପ୍ରକାର ମୃଗ—
বলগাহরিণ बारहसिंह The reindeer

[ଦ୍ର—ଏମାନେ ଆସିଆ ଓ ଇଉରୋପର ଉତ୍ତର ମେରୁ ନିକଟବର୍ତ୍ତୀ ଶୀତପ୍ରଧାନ ଅଞ୍ଚଳରେ ବାସ କରନ୍ତି; ତଦ୍ଦେଶବାସୀମାନେ ଏହାଙ୍କ ମୁହଁରେ ଲଗାମ ଦେଇ ଘୋଷରା ଗାଡ଼ିରେ (sladge) ଏମାନଙ୍କୁ ଯୋଚି ବରଫ ଉପରେ ଚଳାନ୍ତି ।]

**ବଲ୍ଗିବା**—ଦେ. କ୍ରି—(ସଂ. ବଲ୍ଗ୍ଧାତୁ=କହିବା)—କହିବା—
Balgibā (ବଲଗିବା—ଅନ୍ୟରୂପ) To speak.

ବଲଗିଲେ ଗୁଣାକର, ଅନ୍ତରଲେ ରତ୍ନାକର
ଘୋଷ ଯେତେ ଦରକର. ଗ୍ରାମ ନକବ ? ଅଜୟଚନ୍ଦ୍ର, ଶେଷବନ୍ଦୀ ଭାରତୀ

**ବଲ୍ଗିତ**—ସଂ. ବି (ବଲ୍ଗ୍ ଧାତୁ ଘୋଡ଼ାର ଗତିବିଶେଷ;+ଭାବ. ତ)
Balgitā ଦୁଲୁକି—Trotting or cantering of the horse.

[ ଦ୍ର—ଘୋଡ଼ାର ପଞ୍ଚବିଧ ଗତି, ଯଥା—ଆସ୍କନ୍ଦିତ, ଧୌରିତକ, ରେଚିତ, ବଲ୍ଗିତ ଓ ପ୍ଲୁତ ]

୨ । କୁଦାକୁଦିକରିବା; ପ୍ଲୁତ „ ଗମନ—2. Frisking. ୩ । ବହୁ କଥନ, ଜଳ୍ପନ; ଗପିବା—3. Talking babbling. ୪ । ଗପିବାବେଳେ ହସ୍ତପଦାଦିର ଅଙ୍ଗାଳନ—4. Making motions with the hands and legs (while talking).

ବଲ୍ଗୁ—ସଂ. ବ. (ବଲ୍ ଧାତୁ+କର୍ତ୍ତୃ. ଗୁ)—ଛେଳି; ଛାଗଳ—Goat.
Balgu
ବିଶ—ସୁନ୍ଦର; ମନୋଜ୍ଞ—Decent; lovely; beautiful; handsome.

ବଲ୍ଗୁକ—ସଂ. ବ. (ବଲ୍ଗୁ ଧାତୁ+କର୍ତ୍ତୃ. ଉକ)—ଶୃଗାଳ; ବଲୁଆ (ହି.ଶ)—Jackal.
Balguka

ବଲ୍ଗୁଲିକା—ସଂ. ବ (ବଲ୍ଗୁ+ଉଲ+କ+ସ୍ତ୍ରୀ. ଆ)—୧ । ଅସରପା; ଅସରଲା—1. Cockroach.
Balgulikā
(ବଲ୍ଗୁଳିକା—ଅନ୍ୟରୂପ) ୨ । ଚେମଣି (ହି. ଶ)—2. House-bat. ୩ । ପେଟରା (ହି. ଶ)—Cane box.

ବଲଗ—ସଂ. ବ—ଅଁଳା (ହି. ଶ)
Balwaga Embelic myrobalan.

ବଲ୍ୱଜ—ସଂ. ବ—ଉଦୁଖଳ (ହି. ଶ)
Balwaja Mortar.

ବଲ୍ୱଜା—ସଂ. ବ.—ଏକପ୍ରକାର ଘାସ—
Balwajā A kind of grass.
(ଏହାର ଅନ୍ୟ ସଂଜ୍ଞାମ ଦୃଢ଼ପତ୍ରୀ, [ ଦ୍ର—ବୈଦ୍ୟକ ମତରେ ଏହା ଦୃଢ଼କ୍ଷୁର ମୌଂଜାପର୍ଣ୍ଣୀ, ଦୃଢ଼ମେଖୁ ) ଶୀତଳ ଓ ମଧୁର; ଏହା ପିତ୍ତ, ତୃଷା ଓ ଦାହ ଦୂର କରେ—ହି. ଶ ]

ବଲ୍ୱଲ—ସଂ. ବ—ବଳରାମଙ୍କଦ୍ୱାରା ନିହତ ଦୈତ୍ୟବିଶେଷ—Name of a demon killed by Balarāma.
Balwala

ବଲ୍ମୀ(ଲ୍ମୀ)କ(କୀ)—ସଂ. ବ (ବଲ୍ ଧାତୁ=ଆଚ୍ଛାଦନ କରିବା; ବୃଦ୍ଧି ପାଇବା+ଇକ, ନିପାତନସିଦ୍ଧ)—
Balmi(lmī)ka(kī)
୧ । ଉଈହୁଙ୍କା—1. Ant hill; mole hill.
୨ । ଶୋଥ ରୋଗ—2. Dropsy; plethora.
୩ । ଗଳଗଣ୍ଡ—3. The goitre. ୪ । ଶ୍ଳୀପଦ ବା ଗୋଦର—The elephantiasis. ୫ । ରାମାୟଣ ପ୍ରଣେତା ବାଲ୍ମୀକି ମୁନି—5. Sage Bālmīki, the author of the Rāmāyana.
[ ଦ୍ର—ରତ୍ନାକର ନାମକ ଦସ୍ୟୁ ଭଗବାନଙ୍କ ଦୟାରୁ ଦିବ୍ୟଜ୍ଞାନ ଲାଭ କରି ଦସ୍ୟୁବୃତ୍ତି ତ୍ୟାଗକରି ବହୁକାଳ ତପସ୍ୟାରେ ରତ ହୋଇ ହୁଙ୍କା ପାଲଟି ଗଲେ । ପରେ ସେହି ହୁଙ୍କାରୁ ବାହାରିବାରୁ ତାଙ୍କ ନାମ ବଲ୍ମୀକି ବା ବାଲ୍ମୀକି ହେଲା ]
୬ । ଉଈ—6. White ant.

ବଲ୍ମୀକୂଟ—ସଂ. ବ (୬ଷ୍ଠୀ ତତ୍)—ଉଈହୁଙ୍କା—
Balmikūta Ant hill.

ବଲ୍ୟ—ସଂ. ବିଣ—(ବଳ=ଶକ୍ତି+ହିତାର୍ଥେ, ଯ)—୧ । ବଳ ବିଷୟରେ ହିତକାରକ—1. Conducing to one's health or strength.
Balya
(ବଲ୍ୟା—ସ୍ତ୍ରୀ)
୨ । ବଳକାରକ—2. Strength-bestowing; invigorating. ୩ । ଶକ୍ତି ବିଷୟକ—3. Relating to strength.
ବ.—୧ । ଶୁକ୍ର; ବୀର୍ଯ୍ୟ—1. Semen; virile. ୨ । ଶବର ଚନ୍ଦନ (ଦ୍ରବ୍ୟଗୁଣ)—2. A kind of sandal-wood.

ବଲ୍ୟା—ସଂ. ବ. ସ୍ତ୍ରୀ. (ବଲ୍ୟ+ସ୍ତ୍ରୀ. ଆ)—୧ । ଅତିବଳା ନାମକ ଔଷଧ ଗୁଳ୍ମ ବିଶେଷ—1. Indian mallow. ୨ । ଅଶ୍ୱଗନ୍ଧା—2. Phisalis Flexuosa. ୩ । ପ୍ରସାରଣୀ ବା ପସାରୁଣୀ ଲତା—3. A creeper; Poedesia Foetida.
Balyā

ବଲ୍ଲ୍ (ଧାତୁ)—ସ—୧ । ଆଚ୍ଛାଦନ କରିବା—1. To cover.
Ball (root) ୨ । ସଞ୍ଚାଳନ କରିବା—2. To move to and fro. ୩ । ସଂରକ୍ଷଣ କରିବା—3. To preserve. ୪ । ଜଗିବା—4. To watch.

ବଲ୍ଲ—ସ. ବ ( ବଲ୍ଲ୍ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅ )—
Balla ୧ । ପରିମାଣବିଶେଷ; ତିନିଗୁଞ୍ଜା ବା ରତି ଓଜନ—1. A standard of weight.
[ ଦ୍ର—ସୁନା ରୁପା ଆଦିର ଓଜନ କରିବାରେ ଏହା ୩ ଗୁଞ୍ଜାର ଓ ବୈଦ୍ୟକ ମତରେ ଏହା ୨ ଗୁଞ୍ଜାର ଓଜନ ଧରାଯାଏ । ସ୍ମୃତି-ନିର୍ଣ୍ଣୟରେ ଏହା ୨୫ ଗୁଞ୍ଜାର ସମାନ ବୋଲି ନିର୍ଦ୍ଦିଷ୍ଟ ହୋଇ ଅଛି—ହି. ଶ. । ]
୨ । ଆହାର; ଭକ୍ଷ୍ୟଦ୍ରବ୍ୟ—2. Victuals. ୩ । ଶସ୍ୟାଦି ପାଛୁଡ଼ିବା—3. Winnowing of corn.
[ ଦ୍ର—ଶସ୍ୟାଦି ଅମଳ ହେବା ପରେ ଭୁଷ ମିଶା ଶସ୍ୟକୁ ପବନଦ୍ୱାରା ଭୁଷକୁ ଅଲଗା କରିବା ପାଇଁ ଉଚ୍ଚରୁ ତଳକୁ ପଡ଼ଲା କରି ଶସ୍ୟାଦିକୁ ସୁର ସୁର କରି ଅଡ଼ାଉଡ଼ିବାକୁ ବଲ୍ଲ ବୋଲାଯାଏ । ]
୪ । ନିଷେଧ ( ହି. ଶ. )—4. Prohibition. ୫ । ଆବରଣ ( ହି. ଶ. )—5. Covering. ୬ । ଶଲ୍ଲକୀ ବୃକ୍ଷ (ହି. ଶ.)—6. A kind of wild tree; Acacia.

ବଲ୍ଲକୀ—ସଂ. ବ. ( ବଲ୍ଲ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅକ+ସ୍ତ୍ରୀ. ଈ )—୧ । ବୀଣା—1. Harp. ୨ । ଶଲ୍ଲକୀ ଗଛ; ବବୁର ଗଛ—2. Acacia Arabica ( tree ). ୩ । ଝିଙ୍କ ( ଜନ୍ତୁ )—3. Percupine.
Ballaki

ବଲ୍ଲବ—ସଂ. ବ ( ବଲ୍ଲ=ଭକ୍ଷ୍ୟ ଦ୍ରବ୍ୟ+ଅନ୍ତ ଯାହାର, ଅର୍ଥରେ ବ )—
Ballaba ୧ । ଭୀମ—1. Bhima, the 2nd Pāndaba.
[ ଦ୍ର—ଏ ବିରାଟ ରଜାଙ୍କ ଗୃହରେ ପାକଶାଳାଧ୍ୟକ୍ଷ ଥିଲେ । ]
୨ । ଗୋପ; ଗୋପାଳ—2. Cowherd.
୩ । ପାଚକ—3. Cook.

ବଲ୍ଲବ ଯୁବତ(ତୀ)—ସଂ. ବ—ଗୋପାଳୁଣୀ; ଗଉଡ଼ୁଣୀ—
Ballaba jubati(ti) A female cowherd (Apte).
ବଲ୍ଲବ ଯୁବତରେ ବନ୍ଦେ ଅକ୍ଷୟଦୁର୍ଗାଧରାପଣ—
କବିସୂର୍ଯ୍ୟ, କଳାଣ୍ଡକରଣ, ୧-ଗୀତ ।

ବଲ୍ଲଭ—ସଂ. ବିଣ. ପୁଂ (ବଲ୍ଲ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅଭ)—
Ballabha ପ୍ରିୟତମ ( ପୁରୁଷ )—Dearest beloved (male).
( ବଲ୍ଲଭା—ସ୍ତ୍ରୀ )

ବି. ପୁଂ.—୧ । ଭର୍ତ୍ତା; ପତି—1. Husband. ୨ । ପ୍ରିୟତମ ବ୍ୟକ୍ତି—2. One's dearest person. ୩ । ନାୟକ; ଦୟିତ; ପ୍ରଣୟୀ—3. Lover; sweet heart. ୪ । ଉତ୍ତମ ଅଶ୍ୱ—4. Steed; excellent horse. ୫ । ଅଧ୍ୟକ୍ଷ; ମାଲିକ (ହି. ଶ.)—5. Owner.

**ବଲ୍ଲଭ ପାଳକ**—ସଂ. ବି. ପୁଂ. (ଉପପଦ ତତ୍ପୁରୁଷ)—ଅଶ୍ୱପାଳକ; ସହିସ—A groom.
Ballabha pāḻaka

**ବଲ୍ଲଭ ପାଳୁଅ**—ପ୍ରାଦେ. ( କଟକ ) ବି—ପାଳୁଅ ନିର୍ମିତ ଏକପ୍ରକାର ଘନ କ୍ଷୀରି ଯାହା ଧବଳେଶ୍ୱରଙ୍କ ନିକଟରେ ଭୋଗ ହୁଏ—A kind of sweetjelly offered to Dhabaḻeśwara Idol.
Ballabha pāḻua

**ବଲ୍ଲଭ ସମ୍ପ୍ରଦାୟ**—ଦେ. ବି—ବଲ୍ଲଭାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବସଂପ୍ରଦାୟ ବିଶେଷ—A sect of Baishṇabas started by Ballabhāchārjya
Ballabha sampradāya
বল্লভ সংপ্রদায়
वल्लभ सम्प्रदाय

**ବଲ୍ଲଭାଚାର୍ଯ୍ୟ**—ଦେ. ବି. ( ନାମ ) (ବଲ୍ଲଭ+ଆଚାର୍ଯ୍ୟ)—ବୈଷ୍ଣବ ଧର୍ମ ସଂସ୍କାରକ ଓ ବଲ୍ଲଭ ସଂପ୍ରଦାୟର ପ୍ରବର୍ତ୍ତକ—Name of a Baishṇaba reformer of the 16th century.
Ballabhāchārjya
বল্লভস্বামী
वल्लभाचार्य
( ବଲ୍ଲଭସ୍ୱାମୀ—ଅନ୍ୟରୂପ ) [ ଦ୍ର—ଏ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଆଦ୍ୟଭାଗରେ ଉତ୍ତରଭାରତରେ ବୈଷ୍ଣବମତ ପ୍ରଚାର କରିଥିଲେ । ଏହାଙ୍କ ଧର୍ମମତ ଏହି ଯେ ପୃଥିବୀ ଉପଭୋଗର ସ୍ଥାନ ଓ ଧର୍ମାଚରଣରେ ଶାରୀରିକ ନିଗ୍ରହର ପ୍ରୟୋଜନ ନାହିଁ—ସୁବଳଚନ୍ଦ୍ର ।
ଚୁନାରଗଡ଼ ପାଖେ ବାଟରେ ପଡ଼ିଥିବା ଗୋଟିଏ ଶିଶୁକୁ ଲକ୍ଷ୍ମଣଭଟ୍ଟ ନାମକ ଜଣେ ବ୍ରାହ୍ମଣ ପାଇ ନିଜ ଘରକୁ ଆଣି ପାଳିଲେ । ଲକ୍ଷ୍ମଣ ମରିଯିବାରୁ ଉକ୍ତ ବାଳକ ବିଷ୍ଣୁସ୍ୱାମୀଙ୍କ ମନ୍ଦିରକୁ ଯାଇ ଦୀକ୍ଷା ଗ୍ରହଣ କଲେ; ପରେ କାଶୀକୁ ଯାଇ ସନ୍ନ୍ୟାସ ଗ୍ରହଣ କଲେ; ପରେ ସନ୍ନ୍ୟାସ ତ୍ୟାଗ କରି ଗୃହସ୍ଥ ହେଲେ । ଏ ଆଡ଼ମ୍ବର ସହକାରେ ରାଧାକୃଷ୍ଣଙ୍କ ପୂଜା କରୁଥିଲେ । ଏ ବିଶୁଦ୍ଧାଦ୍ୱୈତବାଦ ମତର ପ୍ରତିଷ୍ଠା କଲେ—ଜନ୍ମ ଖ୍ରୀ. ୧୪୭୨ ମୃତ୍ୟୁ ୧୫୩୭—ହି. ଶ. । ]

**ବଲ୍ଲଭା**—ସ. ବି. ସ୍ତ୍ରୀ. (ବଲ୍ଲଭ+ସ୍ତ୍ରୀ. ଆ)—୧ । ପ୍ରିୟା—1. Beloved (woman). ୨ । କାନ୍ତା; ଦୟିତା; ସ୍ତ୍ରୀ; ପତ୍ନୀ—2. Wife; spouse. ୩ । ବ୍ରହ୍ମାଙ୍କ ଜନନୀ—3. The mother of Brahmā.
Ballabhā

ସ. ବିଣ. ସ୍ତ୍ରୀ—ପ୍ରିୟତମା ( ସ୍ତ୍ରୀ )—Dearest; beloved (woman).

ଦେ. ବି—୧ । ବଲ୍ଲଭାଚାର୍ଯ୍ୟ (ଦେଖ)—1. Ballabhāchārjya (See). ୨ । ବଲ୍ଲଭ ସଂପ୍ରଦାୟ ( ଦେଖ )—2. Ballabha sampradāya (See). ୩ । ଜଗନ୍ନାଥ, ସାକ୍ଷୀଗୋପାଳ ଆଦି ଦେବତାଙ୍କଠାରେ ସକାଳ ଓଳି ଅର୍ପିତ ହେବା ମିଷ୍ଟାନ୍ନାଦି ଭୋଗ—3. Name of an offering of refreshment made to a Deity in the morning. ୪ । ରୂପ ଗୋସ୍ୱାମୀ ଓ ସନାତନ ଗୋସ୍ୱାମୀଙ୍କ କନିଷ୍ଠ ଭ୍ରାତା ଓ ଜୀବ ଗୋସ୍ୱାମୀଙ୍କ ପିତା—4. Name of the younger brother of Rūpa and Sanātana Goswāmīs.

**ବଲ୍ଲଭୀ**—ଦେ. ବି. ସ୍ତ୍ରୀ, (ସଂ. ବଲ୍ଲଭା)—୧ । ଦୟିତା—1. Beloved woman. ୨ । ସ୍ତ୍ରୀ—2. Wife.
Ballabhī

**ବଲ୍ଲମ**—ଦେ. ବି. (ସଂ. ଭଲ୍ଲ)—ବରଛା—Spear.
Ballama বর্শা बल्लम

**ବଲ୍ଲର**—ସଂ. ବି. (ବଲ୍ଲ୍ ଧାତୁ+ଅର)—୧ । ମଞ୍ଜରୀ—1. A sprout. ୨ । କୁଞ୍ଜ—2. Grove. ୩ । ବନ—3. Forest. ୪ । କୃଷ୍ଣାଗୁରୁ—4. A kind of black sandal wood.
Ballara

ଦେ. ବି—୧ । କ୍ଷେତ୍ର—1. Field; a sacred place ୨ । ନିର୍ଜନ ସ୍ଥାନ—2. Solitude.
ବଲ୍ଲର ସ୍ଥାନେ ପୂଜାଇ ଲବଣ ଗ୍ରାମରା । ଉଣ୍ଡ. ବୈଦେହୀଶବିଳାସ ।

**ବଲ୍ଲରି(ରୀ)**—ସଂ. ବି (ବଲ୍ଲ୍ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅରି; ଈ)—୧ । ମଞ୍ଜରୀ—1. Sprout; shoot. ୨ । ଲତା; ବ୍ରତତୀ—2. A creeper. ୩ । ମେଥି (ହି.ଶ)—Fenugrick. ୪ । ବଚ (ହି. ଶ)—3. Acornus Calamus (root); sweet flag. ୫ । ଏକ ପ୍ରକାର ବାଦ୍ୟ (ହି. ଶ)—5. A kind of musical instrument.
Ballari(rī)

**ବଲ୍ଲାଳ ବଂଶ**—ଦେ. ବି. (ନାମ)—ବର୍ତ୍ତମାନ ମଧ୍ୟ ପ୍ରଦେଶର ନାଗପୁର ଅଞ୍ଚଳରେ ବାସ କରୁଥିବା ବ୍ରାହ୍ମଣ ବଂଶ—A distinguished Brahmin family now residing in Nagpur
Ballāla bamśa

**ବଲ୍ଲାଳ ସେନ**—ଦେ. ବି. (ନାମ)—ବଙ୍ଗ ଦେଶରେ ରାଜତ୍ୱ କରୁଥିବା ସେନ ବଂଶୀୟ ରାଜାମାନଙ୍କ ମଧ୍ୟରୁ ଜଣେ—One of the Sen kings of Bengal.
Ballāla sena
বল্লালসেন वल्लालसेन
[ ଦ୍ର—ଏ ରାଜା ବିଜୟ ସେନଙ୍କ ପୁତ୍ର ଓ ସେନବଂଶୀୟ ରାଜାମାନଙ୍କ ମଧ୍ୟରେ ପ୍ରସିଦ୍ଧ; ବଲ୍ଲାଳ ସେନ ବଙ୍ଗୀୟ ବ୍ରାହ୍ମଣ, କାୟସ୍ଥ ଓ ବୈଦ୍ୟମାନଙ୍କ ମଧ୍ୟରେ କୁଳୀନ ପ୍ରଥାର ସୃଷ୍ଟି କରିଥିଲେ । ସେ ଗୁଣ ଅନୁସାରେ କୁଳୀନମାନଙ୍କୁ ପ୍ରଥମେ ବାଛିଥିଲେ । ପରେ ଏହା ବଂଶାନୁଗତ ହେବାରୁ ନାନା ଦୋଷଯୁକ୍ତ ହେଲା । ଏ ସ୍ୱୀୟ ରାଜ୍ୟକୁ ୫ ଭାଗରେ ବିଭକ୍ତ କରିଥିଲେ । ୧. ରାଢ଼ (ବର୍ତ୍ତମାନ ବର୍ଦ୍ଧମାନ ବିଭାଗ), ୨. ବରେନ୍ଦ୍ର (ବର୍ତ୍ତମାନ ରାଜସାହି ବିଭାଗ), ୩. ବାଗଡ଼ୀ (ବର୍ତ୍ତମାନ ପ୍ରେସିଡେନ୍ସୀ ବିଭାଗ) ୪. ବଙ୍ଗ (ପୂର୍ବ ବଙ୍ଗ), ୫. ମିଥିଳା (ଉତ୍ତର ବିହାର) । ଏହାଙ୍କର ନବଦ୍ୱୀପ, ଗୌଡ଼ ଓ ରାମପାଳ ଏପରି ୩ ସ୍ଥାନରେ ରାଜଧାନୀ ଥିଲା । ଏ ୫୦ ବର୍ଷ ରାଜତ୍ୱ କରିଥିଲେ ଓ ଦାନସାଗର ନାମକ ସୁପ୍ରସିଦ୍ଧ ସଂସ୍କୃତଗ୍ରନ୍ଥ ରଚନା କରିଥିଲେ—ସୁବଳଚନ୍ଦ୍ର ]

**ବଲ୍ଲି(ଲ୍ଲୀ)**—ସଂ. ବି. ( ବଲ୍ଲ୍ ଧାତୁ+କର୍ତ୍ତୃ. ଇ; ଈ )—୧ । ବ୍ରତତୀ; ଲତା—1. Creeper. ୨ । ପୃଥିବୀ—2. Earth.
Balli(llī)

**ବଲ୍ଲିକ**—ଦେ. ବି. (ନାମ)—ପ୍ରାଚୀନ ଉତ୍କଳର ବଣିକ ବିଶେଷ—Name of a trader of ancient Utkal.
Ballika
[ ଦ୍ର—ସେ ପ୍ରଥମେ ଉତ୍କଳବାସୀ ବଣିକ ଥିଲେ । ପରେ ବୁଦ୍ଧଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । କୃପାସିନ୍ଧୁ ଇତିହାସ ]

ବଲ୍ଲିକା—ସଂ. ବି. (ବଲ୍ଲି+କ+ଆ)—୧ । ଲତା—1. Creeper.
Ballikā ୨ । ପୋଇ ଲତା ( ହି. ଶ )—2. The Basella creeper. ୩ । ମଲ୍ଲୀ (ହି. ଶ)—3. Jasmine.

ବଲ୍ଲି(ଲ୍ଲୀ)ଜ—ସଂ. ବି· (ବଲ୍ଲି+ଜନ ଧାତୁ+କର୍ତ୍ତୃ. ଅ)—
Balli(llī)ja ମରିଚ (ହି. ଶ)—Black pepper.

ବଲ୍ଲି(ଲ୍ଲୀ) ନିଲୟ—ସଂ. ବି.—ଲତାକୁଞ୍ଜ ଗୃହ—
Balli(llī) nilaya An arbour; shady grove.
ବଲ୍ଲୀ ନିଲୟ ବିହାର ଲୀଳା । ଦିବ୍ୟସୂର୍ଯ୍ୟ. ବିଶୋରୀଚନ୍ଦ୍ର, ବ. ଗୀତ ।

ବଲ୍ଲୁ(ଲ୍ଲୂ)ର—ସଂ. ବି. (ବଲ୍ଲ ଧାତୁ+କର୍ମ. ଉର; ଊର)—୧ । ଅକର୍ଷିତ
Ballu(llū)ra ଭୂମି; ପତିତ ଭୂମି—1. Waste land. ୨ । ତୃଣକ୍ଷେତ୍ର—2. Grassy field. ୩ । ମରୁଭୂମି—3. A desert. ୪ । ଅରଣ୍ୟ—4. Forest. ୫ । ନିର୍ଜନ ଭୂମି—5. Solitary place. ୬ । ମୁକୁଳ—6. Bud. ୭ । ମଞ୍ଜରୀ—7. Sprout. ୮ । ଶୂକରର ମାଂସ—8. Pork. ୯ । କୁଞ୍ଜ (ହି. ଶ)—9. Grove. ୧୦ । ନିର୍ଜଳ ସ୍ଥାନ (ହି.ଶ)—10. Waterless place. ୧୧ । ଖରରେ ଶୁଖାଯାଇଥିବା ମାଂସ (ହି. ଶ.)—11. Sun-dried meat.

ବଲ୍ଲୁ(ଲ୍ଲୂ)ରା—ସଂ. ବି. ସ୍ତ୍ରୀ—୧ । ଊଷର ; ଲବଣାକ୍ତ ଭୂମି; ଲୁଣିମାଟି—
Ballu(llū)rā 1. Saline soil. ୨ । ଅରଣ୍ୟ—2. Forest.

ବଲ୍ୱଜ—ସଂ. ବି. (ବଲ୍ ଧାତୁ=ବେଷ୍ଟନ କରିବା+ବଜ୍)—ଉଦୂଖଳ;
Balwaja ଖଲ—Mortar.

ବଲ୍ୟା—ସଂ. ବି. ( ବଲ୍ଲ ଧାତୁ+ଯ+ସ୍ତ୍ରୀ· ଆ )—ଧାତ୍ରୀ ବା ଆମଲକୀ
Balyā ବୃକ୍ଷ; ଅଁଳା ଗଛ—Embellic myrobalan (tree).

ବଲ୍‌ସ୍‌ଭିକ୍—ବୈଦେ. ବି ( ଇଂ· ବଲ୍ସଭିକ୍ )—୧ । ସାମ୍ୟବାଦୀ ରାଜ·
Bal-s-bhik ନୀତିକ ଦଳବିଶେଷ—The name of a
বলসভীক; বলসেবী political party formed in Russia;
**वलसवीक; वलसेवी** Bolshevik.
[ ଦ୍ର—ରୁଷିୟା ଦେଶରୁ ଏହି ମତବାଦର ଉତ୍ପତ୍ତି । ]
ବୈଦେ. ବିଣ—ବଲ୍ସଭିଜ୍ମ ବା ସାମ୍ୟବାଦ ନୀତିସମ୍ବନ୍ଧୀୟ—
[ବଲ୍‌ସି(ସେ)ଭିକ୍—ଅନ୍ୟରୂପ] Relating to Bolshevism.

ବଲ୍‌ସ୍‌ଭିଷ୍ଟ୍—ବୈଦେ. ବିଣ· (ଇଂ)—ସାମ୍ୟବାଦ ସମ୍ବନ୍ଧୀୟ—
Bal-s-bhisht Relating to Bolshevism
বলসভিষ্ট ବୈଦେ ବି—ବଲ୍ସଭିଜ୍ମ ବା ସାମ୍ୟବାଦଦଳର ସଭ୍ୟ—
**वलसभिष्ट** A Bolshevist.

ବଲ୍‌ସଭିଜ୍ମ୍—ବୈଦେ. ବି. (ଇଂ)—ସାମ୍ୟବାଦନୀତି—Bolshevism.
Balsbhism বলসভিজম **वलसभिजम**
[ବଲ୍ସଭିକ୍ସ, ବଲ୍ଭିଜମ୍, ବଲ୍‌ସି(ସେ)ଭିକ୍—ଅନ୍ୟରୂପ]
[ଦ୍ର—ଊନବିଂଶ ଶତାବ୍ଦୀର ଶେଷଭାଗରେ ଓ ବିଶେଷତଃ ବିଗତ ଇଉରୋପୀୟ ମହାଯୁଦ୍ଧ (ଖ୍ରୀ. ୧୯୧୫) ସମୟରେ ଇଉରୋପରେ ଓ ବିଶେଷତଃ ରୁସିଆରେ ଗୋଟିଏ ପ୍ରକାରର ସାମ୍ୟବାଦ socialism ର ପ୍ରାଦୁର୍ଭାବ ହେଲା ଓ ତହିଁଫଳରେ ରୁସିଆରେ ଓ ଅନ୍ୟ କେତେକ ଦେଶରେ ଏହି ନୀତି ପ୍ରବଳରୂପେ ବିସ୍ତାରିତ ହେଲା । ଏହି ନୀତିଫଳରେ କେତେକ ଦେଶରୁ ରାଜତନ୍ତ୍ର ଉଠିଗଲା ଓ ପ୍ରଜାତନ୍ତ୍ର ପ୍ରତିଷ୍ଠିତ ହେଲା । ଏ ସାମ୍ୟବାଦର ବୀଜ ଫ୍ରେଞ୍ଚ୍ ରିଭଲ୍ୟୁସନ୍ (ଫରାସୀ ରାଷ୍ଟ୍ରବିପ୍ଳବ) ଯୁଗରୁ ପୋତା ହୋଇ ଗଜୁରିଥିଲେହେଁ ତାହା ବଲସ୍‌ଭିକ୍‌ରୂପ ଧାରଣ କରି ନ ଥିଲା । ଏହି ନୀତିବାଦୀମାନଙ୍କର ମତ ଏହି କି ରାଜ୍ୟରେ ବଡ଼ ଲୋକ ଗରିବ ଲୋକ ମଧ୍ୟରେ ପ୍ରଭେଦ ରହିବ ନାହିଁ; ଦେଶରୁ ରାଜା, ଧନୀ, ମହାଜନ, ଶେଠ ଶ୍ରେଣୀ-ମାନ ଲୁପ୍ତ ହେବ । ଆପାମର ସାଧାରଣଙ୍କର ଦେଶର ସମସ୍ତ ଭୂମି, ସମସ୍ତ ସମ୍ପତ୍ତି, ସମସ୍ତ ଅଧିକାର ଓ ପଦରେ ସମାନ ଅଧିକାର ରହିବ; ଏମନ୍ତ କି ଅଚ୍ଛେଦ୍ୟ 'ବିବାହବନ୍ଧନ' ନାମରେ କୌଣସି ବନ୍ଧନ ସମାଜରେ ରହିବ ନାହିଁ ଓ ଦେଶରେ ଧର୍ମାନୁଷ୍ଠାନମାନ ଲୁପ୍ତ ହେବ । ]

ବଶ୍ (ଧାତୁ)—ସଂ. କ୍ରି—୧ । ଇଚ୍ଛା କରିବା—1. To desire.
Baś (root) ୨ । ଚକ୍ ଚକ୍ କରିବା—2. To shine; to glamour. ୩ । ଅଧିକାର କରିବା; ସ୍ୱକୀୟ କରିବା; ପ୍ରଭୁତ୍ୱ କରିବା—3. To exercise mastery. ୪ । ଅନୁଗ୍ରହ ଦେଖାଇବା—4 To show favour.

ବଶ—ସଂ. ବିଣ. ପୁଂ. (ବଶ୍ ଧାତୁ+କର୍ମ. ଅ)—୧ । ବଶୀଭୂତ; ଆୟତ୍ତ;
Baśa ଅଧୀନ—1. Under control. ୨ । ବଶୀକୃତ—2.
(ବଶା—ସ୍ତ୍ରୀ) Subjugated; subdued. ୩ । ଯେ କଥା ବା ଉପଦେଶ ଅନୁସାରେ ଚଳେ—3. Acting according to the wish or advice of.
ଆନାଳ ଶତପତ୍ରନେତ୍ରା ଯା ଅମ୍ଭ ବଶ ନୋହିଲୁ ରେ ।
କବିସୂର୍ଯ୍ୟ, ବିଶୋରୀଚନ୍ଦ୍ର, ଘ, ଗୀତ ।
୪ । ମୁଗ୍ଧ; ମୋହିତ—4. Charmed; enchanted.
ବି—୧ । ( +ଭାବ. ଅ ) କର୍ତ୍ତୃତ୍ୱ—1. Mastery; authority. ୨ । ଅଧିକାର—2. Control. ୩ । ଅଧୀନତା—3. Subjugation. ୪ । କାମନା; ଅଭିଲାଷ; ଇଚ୍ଛା—4 Desire. ୫ । ଗଣିକାଳୟ—5. The house of a prostitute.

ବଶଂବଦ—ସଂ. ବିଣ. ପୁଂ. ( ବଶ=ଅଧୀନତା+ବଦ୍ ଧାତୁ=କହିବା
Baśambada +କର୍ତ୍ତୃ. ଅ )—୧ । ଯେ ବାକ୍ୟଦ୍ୱାରା ବଶୀଭୂତ
(ବଶଂବଦା—ସ୍ତ୍ରୀ) କରେ—1. One who captivates by his words. ୨ । ଅନୁଗତ; ବଶବର୍ତ୍ତୀ—2. Subservient; dependent. ୩ । ଆଜ୍ଞାବହ; ଆଜ୍ଞା-
(ବଶମ୍ବଦ—ଅନ୍ୟରୂପ) କାରୀ—3. Obedient.
[ଦ୍ର—ଆଜିକାଲି ନବ୍ୟଧରଣର ପତ୍ରାଦିରେ ଶେଷରେ "ଇତି । ଆପଣଙ୍କର ବଶଂବଦ (ଦା) ( ପତ୍ର ପ୍ରେରକ )" ଲେଖାଯାଏ । ଇଂରାଜରେ Yours obediently ବାକ୍ୟର ଅନୁକରଣରେ ଏହା ବ୍ୟବହୃତ । ]
୩ । ଆଜ୍ଞାକାରୀ—3. Obedient. ୪ । ପ୍ରିୟମ୍ବଦ; ମିଷ୍ଟଭାଷୀ—4. Sweet-speaking.

ବଶକ—ସଂ. ବିଣ. ପୁଂ. ( ବଶ+କ )—୧ । ବଶୀଭୂତ—
Baśaka 1. Subservient; come under control.
(ବଶକା—ସ୍ତ୍ରୀ) ୨ । ଆଜ୍ଞାଧୀନ—2. Obedient.

ଦେ ବଶ—ବଶକାରୀ—Subduing; subjugating.
ବଶକ ଏ କଳା ଭଙ୍ଗର । ଉପେନ୍ଦ୍ର ବୈଦେହୀଶବିଳାସ ।

**ବଶ କରିବା**—ଦେ. କ୍ରି—୧ । ବଶୀଭୂତ କରିବା—1. To subjugate; to bring under control.
Basa kariba
(ବଶ୍ୟ କରିବା—ଅନ୍ୟରୂପ) ୨ । ମୁଗ୍ଧ କରିବା—2 To enchant; to charm. ୩ । ପୋଷ ମନାଇବା—3. To tame. ୪ । ମନ୍ତ୍ର ବା ବଶୀକରଣଦ୍ୱାରା କରଗତ କରିବା—4. To bring a person under control by magical means or charms.
ବଶକରନା
**वशकरना**

**ବଶ କ୍ରିୟା**—ସ. ବି. ( ୬ଷ୍ଠୀ ତତ୍; ବଶ=ଅଧୀନତା+କ୍ରିୟା )—ବଶୀକରଣ ( ଦେଖ )—Basikarana ( See )
Basa kriya

**ବଶଗ**—ସ. ବିଣ. ପୁଂ (ବଶ+ଗମ୍ ଧାତୁ+କର୍ତ୍ତୃ. ଅ)—ବଶୀଭୂତ; ଅଧୀନ—Subservient; obedient; brought under control.
Basaga
(ବଶଗା—ସ୍ତ୍ରୀ)

**ବଶ(ଶୁ)ଣି**—ଦେ. ବି—୧ । କଣ୍ଟା ଲମ୍ବାମଣିରେ ଅଙ୍କୁଡ଼ି ବସିଥିବା ଅଙ୍କୁଶୀ ଲଗିଥିବା ନାକର ଦାଁଆଁ ପୁଡ଼ାରେ ଭିଡ଼ାଯିବା ଏକପ୍ରକାର ଅଳଙ୍କାର—1. A hooked pendant for the nose. ୨ । ପ୍ରଜା ଉପରେ ରାଜସ୍ୱ ବା ଜମିର ପରିମାଣର ଅନୁପାତରେ ଧାର୍ଯ୍ୟ କରାଯିବା ଅଧିକା ଟ୍ୟାକ୍ସ ବା ଶୁଳ୍କ—2. Additional assessment; cess assessed on the money-rent or area of a holding.
Basa(su)ni
ବସାନ
**लगान**

**ବଶଣି କରିବା**—ଦେ. କ୍ରି—ପ୍ରଜାଦେୟ ରାଜସ୍ୱର ଟଙ୍କା ବା ଜମିର ପରିମାଣର କସୋଟିରେ ପ୍ରଜାଠାରେ ଅଧିକା ଟିକସ ବସାଇବା—To make an additional assessment in proportion to the rent or area of a holding.
Basani kariba
କର ବସାନ
**लगान करना**

**ବଶତଃ**—ସ. ଅ (ବଶ+ପଞ୍ଚମୀ ବିଭକ୍ତିରେ ତସ୍)—୧ । ଅଧୀନତାପ୍ରଯୁକ୍ତ—1. Owing to. ୨ । ଯୋଗୁଁ; ହେତୁରୁ—2. For; on account of; by reason of. ୩ । ବନ୍ଧନ; ବନ୍ଧନକ୍ରମେ—3. Under the influence of; under the control of.
Basatah
[ ଦ୍ର—ଏହା ଅନ୍ୟ ଶବ୍ଦ ସହିତ ପ୍ରଯୁକ୍ତ ହୁଏ; ଯଥା—ଇଚ୍ଛାବଶତଃ; କାରଣବଶତଃ; କାର୍ଯ୍ୟବଶତଃ; ଭାଗ୍ୟବଶତଃ ]

**ବଶତା(ତ୍ୱ)**—ସ. ବି (ବଶ+ଭାବ. ତା)—ଅଧୀନତା—Subservience; subjugation.
Basata (twa)

**ବଶତାପନ୍ନ**—ସ. ବିଣ-(୨ୟା ତତ୍; ବଶତା+ଆପନ୍ନ)—୧ । ବଶୀଭୂତ—1. Come under control; subjugated. ୨ । ଅନୁଗତ—Subservient.
Basatapanna

**ବଶବର୍ତ୍ତୀ**—ସ. ବିଣ. ପୁଂ—( ବଶ+ବୃତ୍ ଧାତୁ+ଇନ୍; ବଶବର୍ତ୍ତିନ୍ ୧ମା. ୧ବ)—୧ । ବଶୀଭୂତ—1. Subject to; subservient; obsequious. ୨ । ଆଜ୍ଞାଧୀନ—2 Obedient. ୩ । ଅଧୀନ—3. Under control.
Basabartti
( ବଶବର୍ତ୍ତିନୀ—ସ୍ତ୍ରୀ )
[ ବଶବର୍ତ୍ତିତା(ତ୍ୱ)—ବି ]

**ବଶମ୍ବଦ**—ସ. ବିଣ. ପୁଂ—ବଶଂବଦ ( ଦେଖ )—Basambada (See).
Basambada (ବଶମ୍ବଦା—ସ୍ତ୍ରୀ)

**ବଶରେ(କୁ) ଆଣିବା**—ଦେ. କ୍ରି—ଅଧୀନରେ ଆୟତ୍ତ କରିବା—To bring under control; or sway.
Basare(ku) aniba
বশেআনা **वशमे लाना**

**ବଶରେ(କୁ) ଆସିବା**—ଦେ. କ୍ରି—କରାୟତ୍ତ ହେବା—To come under the control of.
Basare(ku) asiba
বশেআসা **वशमे आना**

**ବଶରେ ରହିବା**—ଦେ. କ୍ରି—(କୌଣସି ବ୍ୟକ୍ତିର) କରାୟତ୍ତ ହୋଇ ରହିବା—To be under the control of (some person).
Basare rahiba
বশে থাকা **वशमे होना**

**ବଶ ହେବା**—ଦେ. କ୍ରି—୧ । ବଶୀଭୂତ ହେବା; ଆଜ୍ଞାକାରୀ ହେବା—1 To be subservient.
Basa heba
বশ হওয়া
**वश होना**
ଲକ୍ଷ୍ମୀ ଚ ଅର୍ଦ୍ଧଙ୍ଗଠାରେ ବଶ ହେଲେ—
କୃଷ୍ଣସିଂହ. ମହାଭାରତ ବନ ।
୨ । ପୋଷ ମାନିବା—2. To be tamed; to be domesticated.

**ବଶା**—ସ. ବି. ସ୍ତ୍ରୀ—(ବଶ+ସ୍ତ୍ରୀ. ଆ)—୧ । ବାଂଝୀ; ବନ୍ଧ୍ୟାନାରୀ—1. A barren woman. ୨ । ବନ୍ଧ୍ୟା ଗାଈ—2. A barren cow. ୩ । ଚତୁର୍ବିଧା ନାରୀ ମଧ୍ୟରୁ ଏକ—3. One of the four divisions of women. ୪ । ସ୍ତ୍ରୀ; ପତ୍ନୀ 4. Wife. ୫ । କନ୍ୟା—5. Daughter; bride. ୬ । ଶ୍ୟାଳକା; ଶାଳୀ—6. One's wife's sister ୭ । ନଣନ୍ଦ—7. One's husband's sister. ୮ । ହସ୍ତିନୀ—8. A female elephant. ୯ । ନାରୀ—9. Woman. ୧୦ । ଗାଈ (ହ୍ରୁ. ଶ)—10. Cow.
Basa

**ବଶାନୁଗ**—ସ. ବିଣ. ପୁଂ ( ବଶ+ଅନୁ+ଗମ ଧାତୁ+କର୍ତ୍ତୃ. ଅ )—୧ । ଆଜ୍ଞାନୁବର୍ତ୍ତୀ—1. Obedient. ୨ । ଅଧୀନ—1. Subservient; subordinate.
Basanuga
(ବଶାନୁଗା—ସ୍ତ୍ରୀ)
ସ. ବି—ଦାସ—Slave; servant.

**ବଶି**—ଦେ. ବିଣ (ସ. ବଶିକ=ଶୂନ୍ୟ)—ଶୂନ୍ୟ—Empty; vacant.
Basi
ବଶିଗଲ କେ ସିଂହାସନରେ ରହିଁ —
ଉପେନ୍ଦ୍ର. ବୈଦେହୀଶବିଳାସ ।

**ବଶିକ**—ସ. ବିଣ—ଶୂନ୍ୟ (ହ୍ରୁ. ଶ)—Empty; vacant.
Basika

**ବଶିକା**—ସ. ବି—ଅଗୁରୁ (ହ୍ରୁ. ଶ)—Agallochum.
Basika

**ବଶିତା(ତ୍ୱ)**—ସ. ବି (ବଶିନ୍+ତା; ତ୍ୱ)—୧ । ବଶ କରିବାର ଶକ୍ତି—1. The power of bringing others under control. ୨ । ଶିବଙ୍କର ଓ ଯୋଗସିଦ୍ଧ ବ୍ୟକ୍ତିଙ୍କର ଅଷ୍ଟୈଶ୍ୱର୍ଯ୍ୟ ମଧ୍ୟରୁ ଏକତମ—2. One of the 8 godly attributes of Siba and of a Jogasiddha person. (viz, control over desire).
Basita(twa)

[ ଦ୍ର—ଅଷ୍ଟୈଶ୍ୱର୍ଯ୍ୟ ଇଲେ ନୋଟ୍ ଦେଖ ।
୩ । ବାଧ୍ୟତା—3. Obligation. ୪ । ଆତ୍ମସଂଯମ—4. Self control. ୫ । ଅଧୀନତା; ବଶବର୍ତ୍ତିତା—5. Subservience. ୬ । ମୋହନ—6. Enchanting; charming.

ବଶିନୀ—ସଂ. ବି—ଶମୀ ବୃକ୍ଷ (ହି. ଶ)—
Basini The Sami tree.

ବଶିମା—ସଂ. ବି—(ବଶ+ଇମନ୍; ୧ମା. ୧ବ)--ବଶିତା ୨ (ଦେଖ)—
Basima Basita 2 (See).

ବଶିର—ସଂ. ବି—୧ । ସମୁଦ୍ର ଲବଣ (ହି. ଶ)—1. Sea salt.
Basira ୨ । ଲଙ୍କାମରିଚ (ହି. ଶ)—2. Red pepper.

ବଶିଷ୍ଟ—ସଂ. ବି—( ଅବ+ଶାସ୍ ଧାତୁ+କର୍ତ୍ତୃ. ତ; ଯେ ଅନ୍ୟ
Basishta ମୁନିମାନଙ୍କୁ ଶାସନ କରୁଥିଲେ)—ବଶିଷ୍ଠ (ଦେଖ)—
Basishtha (See).

ବଶିଷ୍ଠ—ସଂ. ବି—(ବଶିନ୍=ଯେ ବଶ କରେ+ଅତିଶୟାର୍ଥେ ଇଷ୍ଠ)—
Basishtha ବ୍ରହ୍ମାଙ୍କ ମାନସ ପୁତ୍ର; ଋଗ୍‌ବେଦର ବହୁସୂକ୍ତ (ବସିଷ୍ଠ—ଅନ୍ୟରୂପ) ରଚୟିତା ମୁନିବିଶେଷ; ଇକ୍ଷ୍ୱାକୁ ବା ସୂର୍ଯ୍ୟ ବଂଶର କୁଳଗୁରୁ ବା ପୁରୋହିତ—Name of a sage, the family priest of Rāmachandra

[ ଦ୍ର—ବେଦରେ ବଶିଷ୍ଠ ମିତ୍ରାବରୁଣଙ୍କ ପୁତ୍ର ଥିବାର ବର୍ଣ୍ଣିତ ହୋଇଅଛି । ଥରେ ଯଜ୍ଞସ୍ଥଳରେ ଉର୍ବଶୀଙ୍କୁ ଦେଖି ମିତ୍ରାବରୁଣ ଉଭୟଙ୍କର ରେତଃପାତ ହେଲା । ଉକ୍ତ ରେତଃ ଯଜ୍ଞକୁମ୍ଭରେ ରଖା ଗଲା । ସେଥିରୁ ବଶିଷ୍ଠ ଓ ଅଗସ୍ତ୍ୟ ଜାତ ହେଲେ । ଋଗ୍‌ବେଦରେ ବଶିଷ୍ଠ ରାଜାଙ୍କର ଦିବୋଦାସଙ୍କ ପୌତ୍ର ଥିବାର ଉକ୍ତ ହୋଇଅଛି । ପୁରାଣମାନଙ୍କରେ ବଶିଷ୍ଠ ବ୍ରହ୍ମାଙ୍କ ମାନସପୁତ୍ର ଥିବାର ବର୍ଣ୍ଣିତ ହୋଇଅଛି । ବଶିଷ୍ଠ ଓ ରାଜା ନିମିଙ୍କ ମଧ୍ୟରେ ଥରେ କଳି ହେବାରୁ, ଉଭୟେ ଉଭୟଙ୍କୁ ଶାପ ଦେଲେ । ସେହି ଶାପଫଳରେ ବଶିଷ୍ଠ ମିତ୍ରାବରୁଣଙ୍କ ବୀର୍ଯ୍ୟରୁ ପୁଣି ଥରେ ଜନ୍ମଗ୍ରହଣ କଲେ । ବଶିଷ୍ଠଙ୍କ କାମଧେନୁ ଶବଳାଯୋଗୁଁ ବିଶ୍ୱାମିତ୍ରଙ୍କ ( ଯେ ପ୍ରଥମେ ଜଣେ ରାଜା ଥିଲେ ତାଙ୍କ)ର ଓ ବଶିଷ୍ଠଙ୍କର କଳି ହେଲା । ବିଶ୍ୱାମିତ୍ରଙ୍କ ଶତ ପୁତ୍ରଙ୍କୁ ବଶିଷ୍ଠ ହୁଙ୍କାରଦ୍ୱାରା ଜଳାଇ ଦେଲେ । ବିଶ୍ୱାମିତ୍ର ହାରିଯାଇ ବ୍ରାହ୍ମଣତ୍ୱ ପାଇବାପାଇଁ ତପସ୍ୟା କଲେ । ବଶିଷ୍ଠଙ୍କର ଅନେକ ପତ୍ନୀ ଥିଲେ । କିନ୍ତୁ କର୍ଦ୍ଦମ ଋଷିଙ୍କ କନ୍ୟା ଅରୁନ୍ଧତୀ ତାଙ୍କର ପ୍ରିୟତମା ଥିଲେ । ଅକ୍ଷମାଳା ନାମରେ ତାଙ୍କର ଆଉ ଏକ ସ୍ତ୍ରୀ ଥିଲେ । ଋଗ୍‌ବେଦରେ ସେ ଅନେକ ମନ୍ତ୍ରର ସ୍ରଷ୍ଟା ଅଟନ୍ତି । ବଶିଷ୍ଠଙ୍କର ଶତପୁତ୍ର ଥିଲେ । ସପ୍ତର୍ଷିମଣ୍ଡଳର ଲୁଞ୍ଜ ତାରକାପୁଞ୍ଜ ମଧ୍ୟରୁ ବଶିଷ୍ଠ ଏକତମ (ନକ୍ଷତ୍ର ଇଲେ ନୋଟ୍ ଦେଖ) । ଗୋଟିଏ ଧର୍ମସୂତ୍ର ବଶିଷ୍ଠସଂହିତା ବଶିଷ୍ଠଙ୍କ ସଙ୍କଳିତ ଥିବାର କଥିତ । ଗୋଟିଏ ଜ୍ୟୋତିଷ ଗ୍ରନ୍ଥ (ବଶିଷ୍ଠ ସିଦ୍ଧାନ୍ତ) ମଧ୍ୟ ତାଙ୍କ ରଚିତ ଥିବାର କଥିତ । ହି. ଶ. ]

ଦେ• ବି—ପ୍ରଧାନ ବ୍ୟକ୍ତି—Prominent person.

ବଶିଷ୍ଠେ ଯେତେ ବଞ୍ଚି ସେ ହେଲେ ଭଗବନ୍ତି
ତମ ମସ୍ତରେ ଲୁଚ କୋଟି ସେ । ଉଷ୍ମ. ବୈଦେହୀଶବିଳାସ ।

ବଶି—ଉପବିଷ୍ଟ—Seated.

ବଶିଷ୍ଟ କୁମ୍ଭକହିଁ ବଶିଷ୍ଟ କୁମ୍ଭ ସହିଁ
ଶାନ୍ତ କୁମ୍ଭରେ ଭାଳେ କଳ ସେ । ଉଷ୍ମ. ବୈଦେହୀଶବିଳାସ ।

ବଶିଷ୍ଠାଶ୍ରମ—ଦେ. ବି. ( ନାମ )—ଆସାମର ଆଶ୍ରମବିଶେଷ ( ସ୍ୱାମୀ
Basishthāsrama ଗ୍ରମାନନ୍ଦ)—A hermitage in Assam.

ବଶୀ—ସଂ. ବିଣ. ପୁଂ. (ବଶ=ସ୍ୱାଧୀନତା+ଅସ୍ତି ଅର୍ଥରେ ଇନ୍. ବଶିନ୍
Basi ଶବ୍ଦ. ୧ମା. ୧ବ; ଯାହାର ଇନ୍ଦ୍ରିୟଗଣ ନିଜ ଅଧୀନ)—
(ବଶିନୀ—ସ୍ତ୍ରୀ) ୧ । ଜିତେନ୍ଦ୍ରିୟ—1. One who has subdued his passions ୨ । ବଶକାରୀ—2. Capable of bringing under control. ୩ । ବଶବର୍ତ୍ତୀ—3. Obedient; subservient.

ବଶୀକରଣ—ସଂ. ବି. (ବଶ+ଅଭୂତତଦ୍ଭାବେ ଚ୍ୱି+କରଣ )—୧ ।
Basikarana ଲୋକକୁ ବଶ କରିବା—1. Act of bringing a person under control ୨ । ତାନ୍ତ୍ରିକ ଅଭିଚାରବିଶେଷ—2. A Tantric process of subduing another. ୩ । (+କରଣ ଅନ) ପରକୁ ବଶ କରିବା ପାଇଁ ବ୍ୟବହୃତ ତାନ୍ତ୍ରିକ ମନ୍ତ୍ରସନ୍ଧାନ—3. Esoteric magical applications to bring others under control; a magical charm.
( ଯଥା—ସ୍ତ୍ରୀ ବଶୀକରଣ, ସ୍ୱାମୀ ବଶୀକରଣ, ରାଜ ବଶୀକରଣ, ସର୍ପ ବଶୀକରଣ, ଶତ୍ରୁ ବଶୀକରଣ ଇତ୍ୟାଦି । )

[ ଦ୍ର—ଏହା ତନ୍ତ୍ରୋକ୍ତ ପଞ୍ଚକ୍ରିୟାର ଅନ୍ତର୍ଗତ । ପଞ୍ଚକ୍ରିୟା ଯଥା—ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ ଓ ମାରଣ । ତନ୍ତ୍ର ଇଲେ ନୋଟ୍ ଦ୍ରଷ୍ଟବ୍ୟ; ଅଥର୍ବ ବେଦରେ ବଶୀକରଣ ବିଷୟର ଉଲ୍ଲେଖ ଅଛି । ]

ବଶୀକୃତ—ସଂ. ବିଣ. ପୁଂ. ( ବଶ+ଅଭୂତ ତଦ୍ଭାବେ. ଚ୍ୱି+କୃତ )—
Basikruta ଅଧୀନୀକୃତ; ଯାହାକୁ ଆୟତ୍ତ କରାଯାଇ ଅଛି—
( ବଶୀକୃତା—ସ୍ତ୍ରୀ ) Overcome; subdued; brought under control; rendered obedient; brought under one's power.

ବଶୀଭୂତ—ସଂ. ବିଣ. ପୁଂ. ( ବଶ+ଅଭୂତ ତଦ୍ଭାବେ ଚ୍ୱି+ଭୂତ )—
Basibhūta ବଶବର୍ତ୍ତୀ; ବଶତାପନ୍ନ; ଆଜ୍ଞାଧୀନ—Obedient;
( ବଶୀଭୂତା—ସ୍ତ୍ରୀ) come under control; fallen into
(ବଶୀଭାବ—ବି) subjection.

ବଶୁ(ଶୁଁ)—ଦେ. ଅ.—(ସଂ. ବଶତଃ)—ବଶତଃ; ହେତୁରୁ; ଯୋଗୁଁ—
Basu(sun) ବଶତଃ କାରଣସେ Owing to.

ସ୍ୱଦେଶେ ବାହୁଡ଼ି ଯିବାକୁ ବାସନା
ବଶୁଁ କରୁଛନ୍ତି ବିକଳେ ମନ୍ତ୍ରଣା । ରଘୁନାଥ ନନ୍ଦକେଶରୀ ।

ବଶୁଦଅ—ଗ୍ରା. ବି.—ବୈଶ୍ୱଦେବ (ଦେଖ)
Basudia Baiswadeba (See)
(ବଶୁଦେବ, ବଶ୍ୱଦେବ, ବଶୁଦ୍ୟ—ଅନ୍ୟରୂପ)

ବଶେ—ଦେ. ଅ.—(ସଂ. ବଶତଃ)—ବଶୁ (ଦେଖ)
Base asu (See)

**ବଶ୍ୟ**—ସ. ବିଣ. ପୁଂ (ବଶ୍ ଧାତୁ+କର୍ମି. ଯ) – ୧ । ଯେ ସହଜରେ ବଶ
Basya ହୁଏ—1 Easily controllable.
(ବଶ୍ୟା—ସ୍ତ୍ରୀ) ୨ । ପୋଷା—2. Tame. ୩ । ଆଜ୍ଞାଧୀନ—
3. Obedient; subservient. ୪ । କାମୁଣ୍ଟ; ଅଧୀନ—
4. Subordinate. ୫ । ବିନୀତ—5. Humble.
ସ. ବି.—୧ । ଦାସ; ସେବକ (ହ୍ରି. ଶ.)—1. Slave;
servant. ୨ । ଅଧୀନ କର୍ମଚାରୀ—
2. A subordinate.
ଗ୍ରା. ବି.—(ସ. ବୈଶ୍ୟ)—ବୈଶ୍ୟ—Baisya.
ବ୍ରାହ୍ମଣ ବଶ୍ୟ ଶୁଦ୍ର ଜାତି,
ପାଂକ ଅଷ୍ଟାଦଶ ଛତ୍ରି । ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।

**ବଶ୍ୟକ**—ସ. ବିଣ. ପୁଂ (ବଶ୍ୟ+କ)—ଆଜ୍ଞାଧୀନ—
Basyaka (ବଶ୍ୟକା—ସ୍ତ୍ରୀ) Obedient.

**ବଶ୍ୟ କରଣ**—ଗ୍ରା ବି.—(ସ. ବୈଶ୍ୟ+କରଣ)—ଶ୍ରେଷ୍ଠୀ କରଣ;
Basya karana ବୈଶ୍ୟଜାତିବିଶେଷ—
(ବଶ୍ୟ ମାହାନ୍ତି—ଅନ୍ୟରୂପ) A caste of Baisyas.

**ବଶ୍ୟତା(ତ୍ୱ)**—ସ. ବି.—(ବଶ୍ୟ+ଭାବ. ତା, ତ୍ୱ)—୧ । ଅଧୀନତା—
Basyatā(twa) 1. Dependence.
୨ । ବଶବର୍ତ୍ତିତା—2. Subservience.
୩ । ଆଜ୍ଞାଧୀନତା—3. Obedience.

**ବଶ୍ୟତା ସ୍ୱୀକାର କରିବା**—ଦେ. କ୍ରି.—୧ । ପୋଷ ମାନିବା—
Basyatā swikāra karibā 1. To become tame.
বশ্যতাস্বীকার করা ୨ । ଅନ୍ୟର ପ୍ରଭୁତ୍ୱ ସ୍ୱୀକାର କରିବା—
**वश्यता स्वीकार करना** 2. To acknowledge another's
sway or suzerainty. ୩ । ଆପଣାକୁ ପରର ପଦ
ତଳେ ସମର୍ପଣ କରିବା—3. To surrender one's
self to another.

**ବଶ୍ୟ ବଣିଆ**—ଗ୍ରା. ବି.—(ସ. ବୈଶ୍ୟବଣିକ୍)—ଏକ ଜାତୀୟ ବଣିଆ;
Basya baniā ପୋଟଳୀବଣିଆ—A caste of druggists;
বৈশ্যবেনে **वैश्यबणिक** Baisya by caste.

**ବଷଟ୍**—ସ. ଅ.—(ବହ୍ ଧାତୁ=ବହନ କରିବା+କରଣ. ଅଷଟ୍,
Bashat ଯାହାଦ୍ୱାରା ଦେବତାଙ୍କ ନିକଟକୁ ପୂଜା ଦ୍ରବ୍ୟ ବାହିତ
ହୁଏ)—ତ୍ୟାଗାର୍ଥକ ମନ୍ତ୍ର; ଦେବତାଙ୍କ ଉଦ୍ଦେଶ୍ୟରେ ପୁଷ୍ପ ଓ
ଆହୁତି ଆଦି ଦେବାର ମନ୍ତ୍ର—A mystic exclamation
uttered while offering flowers and obla-
tions to Deities.
[ଦ୍ର—ଅଙ୍ଗନ୍ୟାସ କରିବା ବେଳେ ଶିଖା ଶବ୍ଦ ସଙ୍ଗେ ଓ କର-
ନ୍ୟାସ କରିବା ବେଳେ ମଧ୍ୟମାଙ୍ଗୁଳି ସଙ୍ଗେ ଏହି ଶବ୍ଦ 'ଶିଖାୟୈ
ବଷଟ୍, ମଧ୍ୟମାଭ୍ୟାଂ ବଷଟ୍' ରୂପେ ବୋଲାଯାଏ । ]

**ବଷଟ୍କାର**—ସ. ବି. (ବଷଟ୍=ତ୍ୟାଗାର୍ଥକ ମନ୍ତ୍ର+କୃ ଧାତୁ+ଅ)—
Bashatkāra ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୁତି
(ବଷଟ୍କୃତ୍ୟ—ଅନ୍ୟରୂପ) ପ୍ରଦାନ; ହୋମ—Act of offer-
ing oblations to the Gods in fire.

**ବଷଟ୍କୃତ**—ସ. ବିଣ.—(ବଷଟ୍+କୃତ)—ବଷଟ୍ ଏହି ମନ୍ତ୍ରଦ୍ୱାରା
Bashat-kruta ଅଗ୍ନିରେ କୃତ—Offered unto the fire
by pronouncing the mantra 'Bashat'.

**ବଷ୍କ** (ଧାତୁ)—ସ.—ଗତି କରିବା—
Bashka (root) To move.

**ବଷ୍କୟ**—ସ. ବି (ବଷ୍କ ଧାତୁ+ଅୟ)—ଏକ ବରଷିଆ ବାଛୁରୀ—
Bashkaya A calf one year old (Apte).

**ବଷ୍କୟ(ୟି)ଣୀ(ଣି)**—ସଂ ବି. ସ୍ତ୍ରୀ—(ବଷ୍କ ଧାତୁ+କର୍ତ୍ତୃ ଅନ+ସ୍ତ୍ରୀ. ଈ)
Bashkaya (yi)nī(ni) ୧ । ବକ୍ଷି ଯାଇଥିବା ଗାଈ;
ବରଡ଼ ଗାଈ (ହ୍ରି. ଶ.)—1. A cow which has
all but gone dry.
[ଦ୍ର—ଏ ଗାଈର ଦୁଧ ଅନ୍ୟ ଗାଈର ଦୁଧ ଅପେକ୍ଷା ଗାଢ଼ା ଓ
ମିଠା ହୁଏ । ]
୨ । ଯେଉଁ ଗାଈର ବାଛୁରୀ ବଢ଼ି ଯାଇଅଛି—2. A cow
having a full grown calf (Apte). ୩ । ବହୁ-
ପ୍ରସବା ଗୌ—3. A prolific cow (Apte).

**ବସ୍** ( ଧାତୁ )—ସ—୧ । ବାସ କରିବା—1. To live. ୨ । ଘର
Bas ( root ) କରି ରହିବା—2. To settle. ୩ । ଆଚ୍ଛାଦନ
କରିବା—3. To cover. ୪ । ଅବସ୍ଥିତ ହେବା—
4. To be; to exist ( Apte ). ୫ । ( ସମୟ )
ଯାପନ କରିବା—5. To pass ( time ) ( Apte )
୬ । ପରିଧାନ କରିବା—6 To wear; to put on
( Apte ).

**ବସ୍**—ବୈଦେ.—୧ । (ଇଂ) (ବି) ବହୁତ ଲୋକ ବସିଯିବାର ଉପଯୋଗୀ
Bas ବଡ଼ ମଟରଗାଡ଼ି—1. Bus ୨ । (ଅବ୍ୟୟ) ବାସ୍
বাস (ବାସ୍—ଅନ୍ୟରୂପ) ( ଦେଖ )—Bās ( See )
ପ୍ରାଦେ. ( ସମ୍ବଲପୁର ) ବି. (ସ. ବସା)—ବସ; ଚର୍ବି—Fat

**ବସ୍କେ(ଗେ)ତ୍**—ପ୍ରାଦେ. ( ସମ୍ବଲପୁର ) ବି ( ସ. ବାସ )—ବାସ,
Bas-ke(ge)t ଅଧିବାସ; ବାସ କରିବା—Habitation; resi-
dence.
( ଯଥା—ଇନେ ଆମର ବସ୍କେତ ୧୨ ବର୍ଷ ହେଲାଣି । )

**ବସ୍ବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ବସିବା—
Bas-bā To sit.

**ବସ୍ଲା ଦହି**—ପ୍ରାଦେ. ( ବସ୍ତର ) ବି—ବସାଦହି—
Bas-lā dahi Curdled milk

**ବସ**—ଦେ ବି ( ସ. ବସା )—୧ । ଅନ୍ତ; ପୁଟା—1. Entrails.
Basa [ ଦ୍ର—ମାଛ ପେଟର ଅନ୍ତକୁ ବସ କୁହାଯାଏ । ]
আঁতী, বস ୨ । ବସା; ଚର୍ବି—2. Fat.
ବୈଦେ ଅ.—୧ । ( ଅ. ବସ୍=ଯଥେଷ୍ଟ ) ଏତିକି—
1. This much. ୨ । ଯଥେଷ୍ଟ—2 Enough !
୩ । ବନ୍ଦକର; ତୁନି ହୁଅ—3 Stop !
বস **बस, बास** ୪ । ବି (ଇଂ Bus) ଯାତ୍ରୀ ବୁହା ମଟର—2. Bus.
ଦେ. କ୍ରି ( ବସିବା କ୍ରିୟାର ଅନୁଜ୍ଞା ରୂପ )—( ତୁମେ )
ଉପବେଶନ କର—Do sit.

**ବସ ଉଠ(ଠା)**—ଦେ. ବ—୧ । ଏକାଦିକ୍ରମେ ବସିବା ଓ ଠିଆ ହେବା
Basa utha(thā) କ୍ରିୟା—1. Sitting and standing in
ଔଠ ବସ **उठ(ठा) बैठ** succession. ୨ । କୌଣସି ବ୍ୟକ୍ତିଙ୍କ
ନିକଟକୁ ବା ସ୍ଥାନକୁ ଯିବା ଆସିବା କରିବା; ଚଳପ୍ରଚଳ—
2. Constant intercourse. ୩ । ଉପର୍ଯ୍ୟୁପରି
ବସାଇବା ଓ ଠିଆ କରାଇବାରୂପ ଦଣ୍ଡ—3. The
punishment given to a person by making
him sit down and stand up repeatedly.

**ବସଣୀ**—ଦେ. ବ—ନାକଚଣା; ବସୁଣୀ—1. An ornament for
Basaṇi the nose. ୨ । ବସତି; ବାସ—2. Residence.
ବସଣୀ(୧) ଚେଙ୍କ ହେବାର ବ ମନୋରମ
ବସଣୀ(୨) କରିବ ଯୁବା ଚଉରେ ପ୍ରେମ – ଉଞ୍ଜ, ବୈଦେଶ୍ୱଶକଳାସ ।

**ବସତ ବାଟି**—ଦେ. ବ (ବଙ୍ଗଳାରୁ ଅନୂକୃତ; ସ. ବସତ୍=ବାସ
Basatā bāti କରୁଥିବା ବା ବାସକାରୀ+ବାଟିକା=ଗୃହ)—
বাস, বসৎবাটী ୧ । ଯେଉଁ ଘରେ ମନୁଷ୍ୟ ସପରିବାର ବାସ କରେ;
**वास** ବସବାସ ଘର—1. Family residence. ୨ । ଯେଉଁ
ଘରେ କୌଣସି ବ୍ୟକ୍ତି ଚିରସ୍ଥାୟୀ ଭାବରେ ବାସ କରେ—
2. Permanent habitation. ୩ । ବାସଗୃହ—
3. Dwelling house.

**ବସତି(ତୀ)**—ସ. ବ (ବସ୍ ଧାତୁ=ବାସ କରିବା+ଅଧିକରଣ. ଅତି;
Basati(tī) বস্তী **वस्ती** +ଈ)—୧ । ଅବସ୍ଥାନ; ନିବାସ—
ଓ. ବସ୍ତି 1. Residence; abode. ୨ । (+ଭାବ. ଅତି)
ବାସ କରିବା—2. Act of living or residing.
୩ । (+ଅଧି. ଅତି) ବସ୍ତି; ଜନପଦ—3. Village. ୪ ।
ଯେଉଁ ସ୍ଥାନରେ ବହୁଲୋକ ବାସ କରନ୍ତି—4. A place
resided by many people. ୫ । ଉପନିବେଶ—
5. Settlement; colony. ୬ । ରାତ୍ରି—6. Night.

**ବସତି କରିବା** ଦେ. କ୍ରି—୧ । ଘର କରି ରହିବା; ବାସ କରିବା—
Basati kariba 1. To take up one's abode or
বাস করা **वसना** residence. ୨ । ଚିରସ୍ଥାୟୀଭାବରେ
ରହିବା—2. To take up a place as one's
permanent place of abode; to settle
୩ । କୌଣସି ସ୍ଥାନରେ ବହୁଲୋକଙ୍କ ସଙ୍ଗେ ଘର କରି
ରହିବା—3. To colonize at a place; to settle
at a place with other people

**ବସତି ବସା(ସେ)ଇବା**—ଦେ. କ୍ରି—କୌଣସି ସ୍ଥାନରେ ନୂତନ ଗ୍ରାମ
Basati basā(se)ibā ବା ଉପନିବେଶ ବା ବସ୍ତି ସ୍ଥାପନ
বস্তী বসান କରିବା—To open up a colony or settle-
**वस्ती बसाना** ment at a place; to establish a colony
or a new village.

**ବସନ**—ସଂ. ବ. (ବସ୍ ଧାତୁ=ଆଚ୍ଛାଦନ କରିବା+କରଣ. ଅନ)—
Basana ୧ । ବସ୍ତ୍ର; ଲୁଗା—1. Cloth; clothing;
raiment. ୨ । ପୋଷାକ—2 Dress. ୩ । (+ଭାବ
ଅନ) ଆଚ୍ଛାଦନ—3. Covering. ୪ । ବାସ—
4 Residence. ୫ । (+କର୍ମ. ଅନ) ସ୍ତ୍ରୀମାନଙ୍କର
କଟିଭୂଷଣ—5. Belt; ornament for the waist.
୬ । ତେଜପତ୍ର (ଦ୍ର. ଶ.)—6. Cassia leaf.
୭ । ବାସସ୍ଥାନ—7. Place of residence.

**ବସନ ଭୂଷଣ**—ସଂ. ବ. (ଦ୍ୱନ୍ଦ୍ୱ; ବସନ+ଭୂଷଣ)—ଲୁଗା ଓ
Basana bhūshaṇa ଅଳଙ୍କାର—Cloth and ornament.

**ବସନ୍ତ**—ସଂ. ବ (ବସ୍ ଧାତୁ=ବାସ କରିବା+ଅଧିକରଣ. ଅନ୍ତ)—
Basanta (ଯେଉଁ ଋତୁରେ ପ୍ରାଣିଗଣ ସୁଖରେ ବାସ କରନ୍ତି)
୧ । ବର୍ଷର ଛଅ ଋତୁ ମଧ୍ୟରୁ ନାତିଶୀତୋଷ୍ଣ ଋତୁ—
1. The spring season.
[ଦ୍ର—ଫାଲ୍‌ଗୁନ, ଚୈତ୍ର ଓ ବୈଶାଖ ଏହି ତିନି ମାସ ଓ
ମତାନ୍ତରରେ ଫାଲ୍‌ଗୁନ ଓ ଚୈତ୍ରକୁ ସାଧାରଣତଃ ବସନ୍ତଋତୁ କହନ୍ତି ।]
୨ । ସ୍ୱନାମ ପ୍ରସିଦ୍ଧ ସ୍ଫୋଟକ ରୋଗ; ଶୀତଳା ରୋଗ—
ବସନ୍ତ **चेचक, माता, गोटी** 2 Smallpox.
[ଦ୍ର—ଏ ରୋଗରେ ପ୍ରଥମେ ଜ୍ୱର ହୋଇ ୩ୟ ଦିନ ଦେହରେ
ଟିପ୍ପିରି ଭଳି ବାହାରି ଯାଏ, ପରେ ଏହା ବଡ଼ ହୋଇ ପୂଜରେ
ପୂର୍ଣ୍ଣହୋଇ ଯାଏ ଏବଂ ୯ଦିନ ପରେ ଶୁଖି ଯାଇ ଖୋଲପା ଛାଡ଼ିଯାଏ ।
ଏହା ନାନାଆକାରରେ ବାହାରେ; ଯଥା—ବରଗୁଡ଼ିଆ ବା ମସୁରିଆ
(ବରଗୁଡ଼ି ବା ମସୁର ପରି), ସୋରିଷିଆ (ସୋରିଷ ପରି ଛୋଟ
ଛୋଟ), ମୁଗେଇ (ମୁଗ ଆକାରର) ବରକୋଳିଆ
(ବରକୋଳି ପରି), ଅଖାବସନ୍ତ (ଯେଉଁ ସ୍ଫୋଟକ ଦେହସାକ
ଲେଟି ହୋଇଯାଇଥାଏ ।)
ପୂର୍ବେ ବସନ୍ତରୋଗୀର ସ୍ଫୋଟକରୁ ପୂଜ (ବା ୱାଜ) ନେଇ
ଲୋକଙ୍କୁ ଟୀକା (ଦେଶୀ ଟୀକା) ଦେବାଦ୍ୱାରା ସେମାନଙ୍କୁ ବସନ୍ତର
ମାରାତ୍ମକ ଆକ୍ରମଣରୁ ରକ୍ଷା କରିବାକୁ ଚେଷ୍ଟା କରାଯାଉଥିଲା; ମାତ୍ର
ଏବେ ବସନ୍ତରୋଗାକ୍ରାନ୍ତ ଗୋରୁର ସ୍ଫୋଟକରୁ ୱାଜ ନେଇ
ଟୀକା (ବିଲାତିଟୀକା ବା ଗୋୱାଜଟୀକା) ଦେବାର ବିଧାନ
ଚଳୁଅଛି ।
ଲୋକେ 'ଶୀତଳା' ଠାକୁରାଣୀଙ୍କୁ ବସନ୍ତରୋଗର
ଅଧିଷ୍ଠାତ୍ରୀ ଦେବତା ବୋଲି ବିଶ୍ୱାସ କରି ତାହାଙ୍କୁ ପୂଜା କରନ୍ତି
ଏବଂ ବସନ୍ତରୋଗୀ ପ୍ରଳାପ କଲେ 'ଠାକୁରାଣୀ ଅବତରୁଛନ୍ତି' ବୋଲି
କହନ୍ତି ।
ଆୟୁର୍ବେଦରେ ଏହି ବସନ୍ତରୋଗର ନାମ ମସୂରିକା ବା
ମସୁରିକା । ପ୍ରକୁପିତ ଶ୍ଳେଷ୍ମା ଓ ପିତ୍ତଯୋଗୁଁ ରକ୍ତ ଦୂଷିତ ହେଲେ
ଏ ରୋଗ ହୁଏ । ମନୁଷ୍ୟ ଦେହରେ ରୋଗବୀଜ ପ୍ରବେଶ କରିବାର
୧୦ । ୧୨ଦିନ ପରେ ଏହା ପ୍ରକାଶ ପାଏ । ଏହାର ଅବସ୍ଥାମାନ
ଯଥା—୧. ଅପ୍ରକାଶ ଅବସ୍ଥା ।
୨ । ଆକ୍ରମଣାବସ୍ଥା—କମ୍ପ ବା ଶୀତ ହୋଇ ଜ୍ୱର ହୁଏ ।
ଶରୀରର ଉତ୍ତାପ ୧୦୪-୧୦୬ ଡିଗ୍ରୀ ଯାଏ ହୁଏ । ଏହି ଜ୍ୱରକୁ
ମୁଖ୍ୟଜ୍ୱର କହନ୍ତି । ଜ୍ୱର ସଙ୍ଗେ ପେଟବ୍ୟଥା ହୁଏ, ବାନ୍ତି ମାଡ଼େ,
ଦେହ, ଅଣ୍ଟା, ପିଠି ଘୋଳହେଲା ଭଳି ହୁଏ, ମୁଣ୍ଡ ବଥାଏ ଏବଂ ମୁହଁ ଲାଲ
ହୋଇଯାଏ । ସ୍ଥଳବିଶେଷରେ ପ୍ରଳାପ, ଆକ୍ଷେପ ଓ ମୂର୍ଚ୍ଛା ମଧ୍ୟ
ହୁଏ ।

୩ । ସ୍ଫୋଟକ ଅବସ୍ଥା—ଜ୍ୱରର ୩ୟ ବା ୪ର୍ଥ ଦିବସରେ ମୁଖ-ମଣ୍ଡଳରେ ଓ ଦେହରେ ଉଜ୍ଜ୍ୱଳ ଲାଲବର୍ଣ୍ଣ ଦାଗ ଦିଶେ । କ୍ରମେ କ୍ରମେ ଦାଗସବୁ ଉଚ୍ଚ ହୋଇ ସୋରିଷ ଜମା ବନ୍ଧୁକର ଛର୍‌ରା ପରି ଫୋଟକାରେ ପରିଣତ ହୁଏ । ଏହି ଫୋଟକାଗୁଡ଼ିକ ଜଳୀୟପଦାର୍ଥରେ ପୂରିଯାଏ ।

୫ମ ଦିନ ଫୋଟକାର ଜଳୀୟ ଅଂଶ ପୂଜରେ ଯାଏ । ୮ମ ଦିନ ପରେ ଫୋଟକା ଫାଟି ସେଥିରୁ ପୂଜ ବୋହିବାକୁ ଆରମ୍ଭ କରେ । ୧୧ଶ ବା ୧୪ଶ ଦିନ ଫୋଟକା ଶୁଖି ଖୋପା ଝଡ଼େ; ମାତ୍ର ଫୋଟକାର ଦାଗ ୨ । ୮ ସପ୍ତାହଯାଏ ରହେ । ଫୋଟକା ମାରାତ୍ମକ ହୋଇଥିଲେ ଦେହର ଚମ ଏକାବେଳକେ ନଷ୍ଟ ହୋଇଯାଇ ଗାତମାନ ହୋଇଯାଏ । ଆଖିରେ ବସନ୍ତ ବାହାରିଲେ ଆଖି ଫୁଟିଯାଏ ।

ବସନ୍ତରୋଗର ଆନୁସଙ୍ଗିକ ଉପସର୍ଗମାନ—ଫୁସ୍‌ଫୁସ୍‌ରେ ଓ ହୃଦୟରେ ରୋଗ, ଉଦରାମୟ ଓ ମୁଖବାଟେ ରକ୍ତ ପଡ଼ିବା—

ହରଡ଼ାମଞ୍ଜି ଉପରେ ଲମ୍ବାଭାଗରେ ଗୋଟିଏ ଛିଦ୍ର କରି ତାକୁ ସୂତାରେ ଗୁନ୍ଥି ବାହୁରେ ବାନ୍ଧିବା; କଣ୍ଟକାରୀ ଚେରର ଚୂର୍ଣ୍ଣ ୨ ତୋଳା, ମରିଚ ଓ ପାଣି ମିଶାଇ ସପ୍ତାହରେ ଦୁଇ ଥର ପିଇବା, ପୁରଣୀଶାଗର ଚେରକୁ ମରିଚଚୂନା ସଙ୍ଗେ ସପ୍ତାହରେ ୨ । ୩ ଥର ଖାଇବା ଓ ବାସଙ୍ଗରସ ବା ଯଷ୍ଟିମଧୁ ବା କଦଳୀଭଣ୍ଡାର ରସ ସେବନ କରିବା ବସନ୍ତରୋଗର ପ୍ରତିଷେଧକ ବୋଲି କେତେକ କବିରାଜଙ୍କର ମତ । ]

୩ । ରାଗବିଶେଷ—3 Name of a musical air, ୪। (+କର୍ତ୍ତୃ. ଅ) ଅତିସାର ରୋଗ—4. Diarrhoea; dysentery, ୫ । ନାଟକରେ ବିଦୂଷକର ଉପାଧି—5. The nickname of a buffoon in a drama ୬ । ତାଳବିଶେଷ—6, A kind of measure in dancing or music. ୭ । ଫୁଲର ଗୁଚ୍ଛ (ହି. ଶ.)—7. A bunch of flowers.

[ଦ୍ର—ସଙ୍ଗୀତ ଶାସ୍ତ୍ରୋକ୍ତ ଛଅଟି ରାଗ ମଧ୍ୟରୁ ବସନ୍ତ ଏକ । ଏହା ବସନ୍ତଋତୁରେ ଗେୟ; ରାଗ ତଳେ ନୋଟ୍ ଦେଖ । ]

বাসন্তী রঙ্গ ଦେ. ବି—୧ । ଭଣ୍ଡାଫୁଲପରି ହଳଦିଆ ରଙ୍ଗ; ଫିକା
**वसन्ती रङ्ग** ହଳଦିଆ—1, Light yellow colour.
বসন্ত বাতাস ୨ । ମଳୟାନିଳ; ବସନ୍ତ ପବନ—2, Spring-
**वसन्तकि हवा** breeze. ୩ । ଦେଉଳର ତଳପାଚ୍ଛିରେ ହୋଇଥିବା କାରୁକାର୍ଯ୍ୟ ବିଶେଷ—3. Work of art engraved on the plinth of a temple.
୪ । ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଭୋଗ କରାଯିବା ଏକପ୍ରକାର ପାତଳ ଆରିସା ପିଠା—4. A kind of flat, round and thin sweet cake fried in ghee, offered to the Lingarāja Deity at Bhubaneswar.
বাসন্তী রঙ্গের কাপড় ୫ । ଫିକା ହଳଦିଆ ଲୁଗା—
**वसन्ती रङ्गका कपडा** 5, Light yellow cloth

ନୀଳ ବସନ ବେଣୀପାଣି,
ବସନ୍ତ ପନ୍ଧିଛୁ ଗୋପିନୀ—ଭୂପତି. ପ୍ରେମପଞ୍ଚାମୃତ ।

୬ । ରାମାୟଣବର୍ଣ୍ଣିତ ମର୍କଟ ଯୂଥପତିବିଶେଷ—
6. Name of a leader of the monkey-army.

ବସନ୍ତ ପୂର୍ବରେ ପଦ୍ମିନୀ କ୍ଷୀଣକୁ ନାଶ ଅର୍ଥେ ପେଣି ବେଗେ ।
ଉପେ. ବୈଦେହୀଶବିଳାସ ।

ବସନ୍ତ ଆରିସା—ଦେ. ବି—ଭୁବନେଶ୍ୱରର ଲିଙ୍ଗରାଜଙ୍କୁ ଭୋଗଲାଗିବା
Basanta ārisā ଏକପ୍ରକାର ପତଳା ଆରିସା ପିଠା—
A kind of flat; round and thin sweet cake offered to the Lingarāja Deity at Bhubaneswar.

[ଦ୍ର—ଅରୁଆ ଚାଉଳ ଚୂନାକୁ ଗୁଡ଼ ପାଣିରେ ସିଝାଇ ପତଳା ଖଳ କରି ଖଳକୁ କଦଳୀପତ୍ରରେ ବିଛାଇ, ଘିଅରେ ଛାଣି ଏହି ପିଠା କରାଯାଏ ।]

ବସନ୍ତକ—ସଂ. ବି (ବସନ୍ତ+କ)—ଶୋନାକ; ଫଣଫଣା ( ହି. ଶ )
Basantaka (ଦେଖ)—Phaṇaphaṇā (See)

ବସନ୍ତ କୁସୁମ—ସଂ. ବି—ବସନ୍ତକାଳରେ ଫୁଟିବା ଫୁଲ—
Basanta kusuma Vernal flower.

ବସନ୍ତକୁସୁମାକର ରସ—ସଂ. ବି—କାସନିବାରକ ଆୟୁର୍ବେଦୋକ୍ତ ବଟିକା
Basantakusumākara rasa ବା ଔଷଧବିଶେଷ—
A medicinal preparation or pill prescribed in the Ayurveda for cough.

ବସନ୍ତଗୁଣ୍ଡି—ଦେ. ବି—କମଳାଗୁଣ୍ଡି (ଦେଖ)
Basantaguṇḍi Kamaḻāguṇḍi (See).

ବସନ୍ତଗୁଣ୍ଡିଚା—ସ.ବି-ସ୍କନ୍ଦପୁରାଣୀୟ ଏକାମ୍ରପୁରାଣାନ୍ତର୍ଗତ ମହୋଦୟରେ ବର୍ଣ୍ଣିତ ଚୈତ୍ର ଗୁଣ୍ଡିଚା; ଚୈତ୍ର
Basantaguṇḍichā ମାସରେ ହେବା ଭୁବନେଶ୍ୱରର ରଥଯାତ୍ରା; ଅଶୋକାଷ୍ଟମୀ ରଥଯାତ୍ରା—The car festival held during the month of Chaitra at Bhubaneswar.

ବସନ୍ତ ଗୁଣ୍ଡିଚା ଏକାମ୍ର ବନେ କି ଯାତ୍ରୀ ଅନୁଗତ ଘନ ।
ଉପେ. ବୈଦେହୀଶବିଳାସ ।

[ ଦ୍ର—ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କର ଚୈତ୍ର ଶୁକ୍ଳାଷ୍ଟମୀରେ ଏହି ଯାତ୍ରା ହୁଏ । ଏ ଯାତ୍ରାରେ ଗୋଟିଏମାତ୍ର ରଥ ହୁଏ । ଏ ରଥର ନାମ ରୁକୁଣାରଥ । ]

ବସନ୍ତଘୋଷ—ସ. ବି ( ବହୁବ୍ରୀହି; ବସନ୍ତ+ଘୋଷ )—ବସନ୍ତଦୂତ;
Basantaghosha କୋକିଳ; କୋଇଲି—The Indian
(ବସନ୍ତଘୋଷୀ—ଅନ୍ୟରୂପ) Cuckoo; (the herald of spring).

ବସନ୍ତ ଚଢ଼େଇ—ଦେ. ବି—ହଳଦିବସନ୍ତ (ଦେଖ)
Basanta chardhei Haḻadibasanta (See).

ବସନ୍ତତିଳକ—ସ. ବି—୧ । ୧୪ ବର୍ଣ୍ଣର ସଂସ୍କୃତ ଛନ୍ଦୋବିଶେଷ—
Basantatiḻaka 1. A Sanskrit metre of 14 letters.

[ଦ୍ର—ଏଥିର ଉଦାହରଣ; ଅଙ୍କେ ସ୍ଥିତାପି ଯୁବତୀ ପରିଶଙ୍କନୀୟା, ଏଥିରେ ୧ମ, ୨ୟ, ୪ର୍ଥ, ୮ମ, ୧୧ଶ, ୧୩ଶ ଓ ୧୪ଶ ଅକ୍ଷରମାନ ଗୁରୁ, ଅନ୍ୟ ବର୍ଣ୍ଣମାନ ଲଘୁ । ଏଥିର ଲକ୍ଷଣ—ଜ୍ଞେୟଂ ବସନ୍ତତିଳକଂ ତଭଜାଜଗୌଗଃ । ]

୨ । ପୁଷ୍ପବିଶେଷ—2. A kind of flower. ୩ । ଆୟୁର୍ବେଦୋକ୍ତ ଯକ୍ଷ୍ମା ରୋଗର ଔଷଧବିଶେଷ—3. A medicinal preparation prescribed in the Ayurbeda for Pthisis

ବସନ୍ତଦୂତ—ସଂ. ବି—୧ । (୬ଷ୍ଠୀ ତତ୍; ବସନ୍ତ+ଦୂତ)—କୋକିଳ—
Basanta dūta 1. The cuckoo. ୨ । ( ବହୁବ୍ରୀହି ) ( ବସନ୍ତ ସଖ—ଅନ୍ୟରୂପ ) କାମଦେବ; ମଦନ—2. Cupid personified. ୩ । ପଞ୍ଚମ ସ୍ୱର—3. The fifth of the seven musical notes in the gamot. ୪ । ଆମ୍ବ ଗଛ—4. Mango tree ୫ । ଚୈତ୍ରମାସ (ହି. ଶ)—5. The month of Chaitra.

ବସନ୍ତଦୂତିକା—ସଂ. ବି ( ୬ଷ୍ଠୀ ତତ୍; ବସନ୍ତ+ଦୂତିକା )—
Basantadūtikā ୧ । କୋକିଳା—1. A female cuckoo. (ବସନ୍ତଦୂତୀ—ଅନ୍ୟରୂପ) ୨ । ମାଧବୀଲତା—2. A flowering creeper. ୩ । ପାଟଳୀଗଛ—3. A flowering tree. ୪ । ଗଣିକାରୀ; ଅଗବଥ ଗଛ—. Premna Integrifolia (tree).

ବସନ୍ତଦ୍ରୁ—ସଂ. ବି—ଆମ୍ବଗଛ—Mango tree.
Basantadru ବସନ୍ତ ବସନ୍ତ ପକ୍ଷୀ ବସନ୍ତଦ୍ରୁମରେ—ଭଞ୍ଜ. ବିଦେଗ୍ଧଶକଳାସ ।
( ବସନ୍ତଦ୍ରୁମ—ଅନ୍ୟରୂପ )

ବସନ୍ତପକ୍ଷୀ—ଦେ. ବି—ହଳଦିବସନ୍ତ ( ଦେଖ )
Basantapakshi Haḷadibasanta ( See )
ବସନ୍ତ ବସନ୍ତପକ୍ଷୀ ବସନ୍ତଦ୍ରୁମରେ—ଭଞ୍ଜ. ବେଦେଗ୍ଧଶକଳାସ ।

ବସନ୍ତପଞ୍ଚମୀ—ସଂ. ବି—ମାଘ ଶୁକ୍ଳପଞ୍ଚମୀ; ଶ୍ରୀପଞ୍ଚମୀ—The 5th day
Basanta pañchamī of the bright fortnight of the month of Māgha
[ ଦ୍ର—ଏହିଦିନ ବାଣୀ ଆରାଧନା ଦିବସ ବୋଲି ପ୍ରସିଦ୍ଧ । ଛାତ୍ରମାନେ ମହାସମାରୋହରେ ସରସ୍ୱତୀ ପୂଜା କରନ୍ତି । ଗ୍ରାମ୍ୟଳୀର ଛାତ୍ରମାନେ ସରସ୍ୱତୀଙ୍କର ପ୍ରତିମା ବା ଚିତ୍ରିତ ନାରକେଳ ଧରି ଗୀତ ବୋଲି ପିତାମାତା ଓ ବନ୍ଧୁବାନ୍ଧବଙ୍କ ଘରକୁ ଯାଇ ଭିକ୍ଷା କରନ୍ତି ଏବଂ ଭିକ୍ଷାଲବ୍ଧ ଧନବସ୍ତୁ ଅବଧାନଙ୍କୁ ଆଣି ଦିଅନ୍ତି । ]

ବସନ୍ତ ପବନ—ସଂ. ବି ( ୬ଷ୍ଠୀ ତତ୍; ବସନ୍ତ+ପବନ )—ବସନ୍ତ-
Basanta pabana କାଳରେ ଦକ୍ଷିଣ ଦିଗରୁ ବହୁଥିବା ଆରାମପ୍ରଦ **बसन्ती हवा** ସ୍ନିଗ୍ଧ ବାୟୁ; ଝୁଲୁଝୁଲିଆ ଦକ୍ଷିଣା ପବନ; ମଳୟପବନ—
ବସନ୍ତ ବାୟୁ, ବସନ୍ତ ମରୁତ୍, ବସନ୍ତାନିଳ } ଅନ୍ୟରୂପ South wind blowing during the spring; south breeze.
[ ଦ୍ର—ମଳୟଗିରିର ଚନ୍ଦନ ଗଛରେ ଏ ପବନ ବାଜି ଆମ୍ଭ ଆଡ଼କୁ ଆସୁଥିବାରୁ ଏହା ଉକ୍ତ ଚନ୍ଦନର ସୁବାସଦ୍ୱାରା ସୁବାସିତ ହୋଇଥାଏ ବୋଲି କେତେକ କଳ୍ପନା କରନ୍ତି ।]

ବସନ୍ତବନ୍ଧୁ—ସଂ. ବି. ( ୬ଷ୍ଠୀ ତତ୍ )—କାମଦେବ; ମଦନ (ହି. ଶ)—
Basantabandhu Cupid.
( ବସନ୍ତଯୋଧ, ବସନ୍ତସଖ[ଖା]—ଅନ୍ୟରୂପ )

ବସନ୍ତ ବସନ—ଦେ. ବି—୧ । (କର୍ମଧା) ହଳଦିଆ ଲୁଗା—1. Yellow
Basanta basana बसन्त बसन **बसन्ती कपडा** cloth.
( ବସନ୍ତବାସ—ଅନ୍ୟରୂପ ) ୨ । ( ବହୁବ୍ରୀହି ) ପୀତାମ୍ବର; ବିଷ୍ଣୁ—2 Bishṇu.
ବସନ୍ତ ବସନେ(୧) ଗଣ୍ଡିକି ଦେଇ କାନ୍ଧେ ଟକାଇ
ବସନ୍ତ ବସନ(୨) ମୋହନ ଏହି ଗୁମାନ ବହି—ଭଞ୍ଜ, ବୈଦେହୀଶବିଳାସ

ବସନ୍ତ ବ(ବୋ)ହିବା—ଦେ. ବି—ବସନ୍ତ ପବନ ପ୍ରବାହିତ ହେବା—
Basanta ba(bo)hibā The blowing of the spring बसन्त बहना **बसन्ती हवा बहना** -breeze.

ବସନ୍ତବ୍ରତ—ସଂ. ବି ( ବହୁବ୍ରୀହି; ବସନ୍ତ+ବ୍ରତ )—କୋକିଳ ( ହି.
Basanta brata ଶ. )—The Indian cuckoo.

ବସନ୍ତମୁହାଁ—ଦେ. ବିଣ. ପୁଂ ( ସଂ. ବସନ୍ତ ଓ ମୁଖ )—ଯାହା ମୁହଁରେ
Basantamuhāñ ବସନ୍ତରୋଗଜାତ ବିସ୍ଫୋଟକମାନଙ୍କର ଦାଗ **खोदराहा** ବା ଛିଦ୍ରମାନ ଥାଏ—Having pock-marked or ( ବସନ୍ତମୁହିଁ—ସ୍ତ୍ରୀ ) pock-pitted face.
ବସନ୍ତମୁହାଁଙ୍କ ଉପମା ଶରୁ
କାମକାକର ଛନ୍ଦା କାଲିଚରୁ—ଦେମଣି ରହସ୍ୟ ।

ବସନ୍ତରା—ଗ୍ରା. ବି—୧ । ( ସଂ. ବସୁଧାରା ) ବସୁଧାରା ୨ ( ଦେଖ )
Basantarā बसुधारा 1. Basudhārā 2 ( See )
**पनसाला** ୨ । ( ସଂ. ବସନ୍ତ ଓ ରାଜନ୍ ) ଶୂଦ୍ର ଓ ଭଣ୍ଡାରୀମାନଙ୍କର ( ବସ[ନ୍ତ]ରା[ରା]—ଅନ୍ୟରୂପ ) ରାଜଦତ୍ତ ଉପାଧିବିଶେଷ—2. A title given to śūdras.
ପ୍ରାଦେ ( ପାରିକୁଦ ) ବି—ପାରିକୁଦ ରାଜାଙ୍କ ପାଖଲୋକଙ୍କ ମଧ୍ୟରୁ ଯେ ରାଜାଙ୍କ ଅତ୍ୟନ୍ତ ପ୍ରିୟପାତ୍ର ହୁଏ ତାହାର ରାଜଦତ୍ତ ଉପାଧି—A title given to the most favourite servant of the Rājā of Pārikuda.

ବସନ୍ତରା ଘଡ଼ି—ଦେ. ବି—ପଣାସଂକ୍ରାନ୍ତିଠାରୁ ମାସକ ଯାଏ ତୁଳସୀ
Basantarā ghaṛdi ଚଉରା ଉପରେ ବନ୍ଧା ରହିଥିବା ସଚ୍ଛିଦ୍ର बसुधारा ଘଟ—A water pot with a hole at the **पनसाला** bottom suspended over the top of the holy Basil plant.

ବସନ୍ତ ରାସ—ସଂ ବି—ଶ୍ରୀକୃଷ୍ଣଙ୍କର ବସନ୍ତକାଳୀନ ରାସଯାତ୍ରା ବା ଉତ୍ସବ,
Basanta rāsa ବିଶେଷ—The dancing festival of (ବସନ୍ତ ରାସ—ଦେ. ରୂପ Śrīkrushṇa during the spring.

ବସନ୍ତା(ନ୍ତେ)ଈ—ଦେ. ବି. ସ୍ତ୍ରୀ—୧ । ଗ୍ରାମଦେବତାବିଶେଷ—
Basantā(nte)ī 1. Name of a popular Goddess. ୨ । ଶୀତଳା ଦେବୀ—2. Goddess śītaḷā ( presiding over small pox ).

ବସନ୍ତାବତାର—ସଂ. ବି ( ୬ଷ୍ଠୀ ତତ୍; ବସନ୍ତ+ଅବତାର )—ପୃଥିବୀରେ
Basantābatāra ବସନ୍ତ ଋତୁର ଆରମ୍ଭ—The advent or (ବସନ୍ତାଗମ—ଅନ୍ୟରୂପ) setting in of spring ( Apte )

ବସନ୍ତାର୍ତ୍ତି—ସଂ. ବି ( ବସନ୍ତଋତୁରେ ଏଥିର ପତ୍ର ଝଡ଼ିବାରୁ; ବସନ୍ତ+
Basantārtta ଆର୍ତ୍ତି)—ବିଭୀତକ ବୃକ୍ଷ; ବାହାଡ଼ାଗଛ (ହି. ଶ)—Beleric myrobalan ( tree ).

ବସନ୍ତିଆ—ଦେ. ବିଣ. ( ସ ବାସନ୍ତିକ )—୧ । ଫିକା ହଳଦିଆ ରଙ୍ଗ
Basantiā ଯୁକ୍ତ—1. Light yellow ୨ । ବସନ୍ତକାଳ बसन्ती, बासन्ती ସମ୍ବନ୍ଧୀୟ—2. Relating to the spring; **बसन्तो** vernal.

**ବସନ୍ତୋତ୍ସବ**—ସଂ. ବିଂ ( ମ. ପ. ଲୋ; ବସନ୍ତକାଳୀନ ଉତ୍ସବ )—
Basantotsaba ୧ । ପୂର୍ବେ ମାଘ ଶୁକ୍ଳପଞ୍ଚମୀର ପର ଦିନ କାମଦେବ
ବସନ୍ତ ମହୋତ୍ସବ } ଅନ୍ୟରୂପ ଓ ବସନ୍ତର ପୂଜା କରାଯାଉଥିବା
ବସନ୍ତଯାତ୍ରା ଉତ୍ସବ; ମଦନୋତ୍ସବ (ହି. ଶ)—
1. A festival formerly observed in honour of God Cupid during the spring on the sixth day of the bright lunar fortnight of Māgha. ୨ । ହୋଲିକା ଉତ୍ସବ; ହୋଲି ( ହି. ଶ.)—2. The Holi festival ( abou tthe full moon of Phālguna ).
[ ଦ୍ର—ପୂର୍ବେ ଏ ଉତ୍ସବ ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଥିଲା । ଅଧୁନା ଫାଲ୍ଗୁନ ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଅଛି—Apte ].

**ବସନ୍ତୀ**—ସଂ. ବିଂ ( ବସନ୍ତ+ଇନ୍; ୧ମା. ୧ବ. ବସନ୍ତକାଳର ସଙ୍ଗୀ
Basantī ହେତୁ )--କୋକିଳ; କୋଇଲି—Cuckoo.
ଦେ. ବିଣ—ବସନ୍ତିଆ ( ଦେଖ )—Basantiā ( See )

**ବସ(ସୁ) ବାସ**—ଦେ. ବି. ( ସଂ. ବସତି ଓ ବାସ )—୧ । ଚିରସ୍ଥାୟୀ-
Basa(su) bāsa ଭାବରେ ବାସ କରିବା—1. Taking up
बसवास permanent residence or domicile at a
**वसोवास** place. ୨ । ବସବାସ କରିବା ଘର, ସ୍ଥାୟୀ ଆବାସ
ସ୍ଥଳ—2. One's permanent place of residence.

**ବସ ବାସ କରିବା**—ଦେ. କ୍ରି—କୌଣସି ସ୍ଥାନରେ ସ୍ଥାୟୀ ଭାବରେ ବାସ
Basa bāsa karibā କରି ରହିବା—To take up one's
बसवास करा abode or residence at a place.
**वसोवास करना, बसना**

**ବସ ବାସ ଘର**—ଦେ. ବି—ସ୍ଥାୟୀ ଆବାସ ସ୍ଥଳ—One's perma-
Basa bāsa ghara nent place of residence.
बसत्‌बाटी **वसोवास, वास घर**

**ବସା**—ସଂ. ବି. ( ବସ୍ ଧାତୁ=ଆଚ୍ଛାଦନ କରିବା+କର୍ମ. ଅ+ଆ;
Basā ଯାହାକୁ ଚର୍ମ ଆଚ୍ଛାଦନ କରିଥାଏ )—୧ । ମଜ୍ଜା; ଚର୍ବୀ
ମେଦ—1. Fat; adeps; suet. ୨ । କୌଣସି ତୈଳମୟ ରସ—2. Any fatty exudation (Apte). ୩ । ମଗଜ; ମସ୍ତିଷ୍କ—3. Brain (Apte)
ଦେ. ବିଂ ( ସଂ. ବସ୍ ଧାତୁ=ବାସ କରିବା; ସଂ. ବସ )—
बासा ୧ । ପକ୍ଷୀର ଘରଡ଼ା—1. Nest. ୨ । ବନ୍ୟ ପଶୁଙ୍କ ରହିବା
**घोंसला, खोंता** ସ୍ଥାନ—2. Lair of wild beasts.
गर्त्त **माँद** ୩ । ଅସ୍ଥାୟୀ ବାସ ସ୍ଥାନ—3. Lodgings.
बासा ରହିଲେ ସୁଅର୍ଣ୍ଣିର ଘରେ କରି ବସା—
**वासा** କୃଷ୍ଣସିଂହ, ମହାଭାରତ ସଭା ।
୪ । ଆବାସ—4. Residence.
କରି ଗୋହାବସ୍ତ ନିକଟେ ବସା
" ବି.ଲ ଦେବତା ଯେବେ ହେବ ତୁଷ।—କବିସୂର୍ଯ୍ୟ. ବଳଭ।
बसा **बैठक** ୫ । ଉପବେଶନ—5. Sitting.
बसान **बठाना** ୬ । ବସାଇବା—6. Setting.
ଦେ. ବିଣ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ହୀରାବସା
बसान **जडाहुआ** ମୁଦି; ମୟୂରବସା ଗୁଣା )—
୧ । ଖଚିତ—1. Set with (stones etc).
बसान **बसायाहुआ** ୨ । ବସାଯାଇଥିବା; ସ୍ଥାପିତ—2. Established.
बसा ୩ । ଘନୀଭୂତ—3. Set; solidified;
**जमायाहुआ** ( ଯଥା—ବସାଦହି । ) coagulatel.
ଦେ. କ୍ରି—ବସାଇବା କ୍ରିୟାର ଅନୁଜ୍ଞା ଅନାଦରାର୍ଥକ ରୂପ ଏକ ବଚନ; (ତୁ) ବସାଇବା କର୍ମ କର—(imperative mood) (thou) Do let or cause to sit; do set.

**ବସା(ସେ)ଇବା**—ଦେ. କ୍ରି. (ସଂ. ଉପପୂର୍ବକ ବିଶ୍ ଧାତୁ=ଉପବେଶନ
Basā(se)ibā କରିବା; 'ବସିବା'ର ଣିଜନ୍ତ ରୂପ )—
बसान ୧ । କୌଣସି ବ୍ୟକ୍ତିକୁ କୌଣସି ସ୍ଥାନରେ ଉପବେଶନ
**बसाना, बैठाना** କରାଇବା—1. To cause one to sit.
(ଯଥା—ତାଙ୍କୁ ନେଇ ସଭାରେ ବସାଅ ।)
୨ । କୌଣସି ସ୍ଥାନରେ ନୂତନ ଗ୍ରାମ, ନଗର, ଦୋକାନ, ହାଟ ଆଦି ସ୍ଥାପିତ କରିବା; ପ୍ରତିଷ୍ଠିତ କରିବା—1. To establish (a new village etc. at a place); to start; to set up; to found.
ଗ୍ରାମ ବସାଇ ନିଜ ନାମେ
ରହିଲା ଚମ୍ପାପୁର ଗ୍ରାମେ । ଜଗନ୍ନାଥ, ଭାଗବତ ।
୩ । କୌଣସିଠାରେ କୌଣସି ବସ୍ତୁକୁ ସ୍ଥିର ବା ଦୃଢ଼ ଭାବରେ ରଖିବା—3. To set a thing firmly.
ଛଗଳ ଶିର ତାର କଲେ
ବସାଅ ମନ୍ତ୍ର-ଅନୁବଳେ । ଜଗନ୍ନାଥ, ଭାଗବତ ।
୪ । ଅଳଙ୍କାରାଦିରେ ରତ୍ନ ଆଦି ଖଚିତ କରିବା—4. To set gems etc. on ornaments.
( ଯଥା—ଏ ମୁଦିରେ ଖଣ୍ଡେ ହୀରା ବସାଇଦିଅ । )
୫ । ଘନୀଭୂତ କରାଇବା; ଜମାଇବା—5. To cause a
**जमाना** liquid to co-agulate; to solidify.
( ଯଥା—ଏ ଘିଅକୁ କାକରରେ ରଖି ବସାଅ । )
୬ । ସନ୍ନିବେଶିତ କରିବା; ରଖିବା; ସ୍ଥାପନ କରିବା; ଥୋଇବା—6. To put; to place; to lay down.
( ଯଥା—ଚୁଲି ଉପରେ ହାଣ୍ଡି ବସାଅ । )
୭ । ଝୁଗୁଲା ଜିନିଷକୁ ଠାଣି କରି ପୋତିବା; ଦୃଢ଼ୀଭୂତ କରିବା—7. To strengthen a loose thing; to drive a
**गाडना** thing firmly to the ground.
( ଯଥା—ଏ ଖୁଣ୍ଟକୁ ନ ବସାଇଲେ ଏହା ଛାତକୁ ସମ୍ଭାଳିବ ନାହିଁ । )
୮ । କର ଆଦି ଧାର୍ଯ୍ୟ କରିବା—8. To assess.
**लगाना** (ଯଥା—ରାଜା ପ୍ରଜାଙ୍କ ଉପରେ ଘର ପିଛା ତିନି ଅଣା ଟିକସ ବସାଇଲେ ।)
୯ । ନିକମା କରିବା; ନିଷ୍କର୍ମା ହୋଇ ବସି ରହିବାକୁ ବାଧ୍ୟ
**बठाना** କରିବା—9. To cause one to sit idle.
( ଯଥା—ମତେ ଏପରି ୩ ଦିନ ହେଲା ବସାଇ ହଇରାଣ କରୁଛ କାହିଁକି ? )

୧୦ । ଗ୍ରଥନ କରିବା; ସଜ୍ଜିତ କରିବା; ସଜାଇବା—10. To arrange; to lay out (as a layer of brick).
(ଯଥା—ପୋଖରୀର ପାହାଚରେ କାରିଗର ପଥରଗୁଡ଼ିକ ଅତି ସୁନ୍ଦର କରି ବସାଇଛି ।)
୧୧ । ମୁଦ୍ରିତ କରିବା; ଛାପ ମାରିବା—11. To stamp; to put a mark.
(ଯଥା—ଏ କୁମ୍ଭମାନଙ୍କରେ ରାଣୀଙ୍କ ମୋହର ବସାଅ ।)
ଲଗାନା ୧୨ । (ବେତ୍ରାଦିଦ୍ୱାରା) ଚିହ୍ନ ରହିବା ଭଳି ଆଘାତ କରିବା; ପ୍ରହାର କରିବା; ମାରିବା; ଲଗାଇବା—12. To flog or beat; to give a blow with.
୧୩ । (ସଭା ବା ପଞ୍ଚାୟତ ଆଦି) ବସିବାର ବ୍ୟବସ୍ଥା କରିବା 13. To bring about the sitting of a Panchāyet of one's caste people.
ବଠନା
(ଯଥା—ସେ ଏ କଥାରେ ଜାତିଆଣ ସଭା ବସାଇବ ।)

ବସା ଉଠ(ଠା)—ଦେ. ବି.—ବସ ଉଠ (ଦେଖ)
Basā utha (thā) Basa utha (See)

ବସା ଉଠା(ଠେ)ଇବା—ଦେ. କ୍ରି.—ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ
Basā uthā(the)ibā, ବସା କରିବା; ବସାକୁ ସ୍ଥାନାନ୍ତର କରିବା
বাস তোলা To remove from one place of lodging
वासा तोडना (ବସା ଉଠିବା—ବି. ରୂପ) to another.

ବସା କରିବା—ଦେ. କ୍ରି.—୧ । (ପକ୍ଷୀ) ଖାଡ଼ ନିର୍ମାଣ କରିବା—
Basā kariba 1. To build a nest (said of a
কুলায় নির্মাণ করা घोंसला बनाना bird.)
(ଯଥା—ବାୟାଚଢ଼େଇ ତାଳ ଗଛ ଅଗରେ ବସା କରିଛି ।)
୨ । ଅସ୍ଥାୟୀଭାବରେ ବାସ କରିବା—2. To take up
বাস করা वासा करना one's lodgings; to board at.
ସେଠାରେ ନ ପୁରରେ ଦେବ ପ୍ରସ୍ଥେ ବସା
କରି ଅର୍ଜୁନ ହରଲେ ବହୁ କଣା । କୃଷ୍ଣସିଂହ-ମହାଭାରତ ସଭା ।
୩ । ବାସ କରିବା; ସ୍ଥାୟୀଭାବରେ ରହିବା—3. To live; to take up one's residence.
(ଯଥା—ତା ମୁଣ୍ଡରେ ଉକୁଣୀ ବସା କଲେଣି ।)
লেখে থাকা ୪ । ସର୍ବଦା ଉପସ୍ଥିତ ରହିବା—
रहना 4. To be present always
(ଯଥା—ତା ଜିଭ ଅଗରେ ଖରାପ କଥା ବସା କଲାଣି ।)
বাসা করা ୫ । ବସା ଘର ସ୍ଥିର କରିବା—
वासा करना 5. To settle one's lodgings.
(ଯଥା—ରାଜା କଲିକତା ଯିବା ଆଗରୁ ମେନେଜର ଯାଇ ବସା କରିଲୁ ।)

ବସା ଘର—ଦେ. ବି. (ସଂ. ବାସ+ଗୃହ)—ବିଦେଶୀ ଲୋକ ଯେଉଁ
Basāghara ଘରେ ଅସ୍ଥାୟୀଭାବରେ ବାସ କରେ—
বাসা ঘর Lodging house; boarding house.
डेरा, वासाघर

ବସାଟିଆ—ଦେ. ବି.—ଯେଉଁ ବ୍ୟକ୍ତି କୌଣସି ସ୍ଥାନରେ ଅସ୍ଥାୟୀ
Basātiā ଭାବରେ ବସା କରି ଥାଏ; ଭଡ଼ାଟିଆ—Lodger;
বাসাড়িআ डेरादार occupier of a rented house.

ବସାଢ୍ୟ—ସଂ. ବିଣ. (ବସା ଢ଼ାଙ୍କ)—ଚିକ୍କଣ; ମଜ୍ଜାମୟ—
Basādhya Marrowy; oily.
(ବସାଢ୍ୟକ—ଅନ୍ୟରୂପ) ସଂ. ବି.—ଶୁଶୁକ—
The gangetic porpoise (Apte)

ବସାଣ(ଣି)—ଦେ. ବି.—୧ । ବସିବା କ୍ରିୟା—
Basāna (ni) 1. Act of sitting.
বসা বৈঠনা ୨ । ବସାଇବା କ୍ରିୟା—2. The act of setting.
বসা বৈঠানা ୩ । କର ଧାର୍ଯ୍ୟକରଣ; ଲଗାଣି—
বসান लगान 3. Assessment (of tax or rent).
ପ୍ରାଦେ. (ପୁରୀ) ବି.—କାକରା, ଅମାଲୁ, ପିଠା ଆଦି ଉପରୁପରି ସଜାଇ ରଖିବା ପାଇଁ ବ୍ୟବହୃତ ପଲମ; ତାଡ଼ ବା ତାଡ଼ୁଆ—A flat earthen pan for arranging flat pastry cakes one over the other.

ବସା ଦହି—ଦେ. ବି.—ଅଉଟା ଦୁଧ ଥଣ୍ଡା ହେଲେ ତହିଁରେ ମଖା ବା
Basā dahi ଖଟା ପକାଇ କିଛିକାଳ ରଖିଦେବା ପରେ ପ୍ରସ୍ତୁତ
দই হেবা ଘନୀଭୂତ ଦଧି—Curdled milk; coagulated
चक्कादहि, जमाहुआदही milk; curd.
ପ୍ରାଦେ (ସମ୍ବଲପୁର) ବି—ଘୋଲ ଦହି—Curd.

ବସା ପଡ଼ିବା—ପ୍ରାଦେ (ଗଞ୍ଜାମ) କ୍ରି—ହଠାତ୍ ଏକ ସ୍ଥାନରୁ ଆସି ଅନ୍ୟ
Basā pardibā ଏକ ସ୍ଥାନରେ ବସା କରି ରହିବା—To remove suddenly from one place of lodging to another.

ବସା ବାନ୍ଧିବା—ଦେ. କ୍ରି—(ପକ୍ଷୀମାନେ) କାଠି କୁଟାଆଦି ସଂଗ୍ରହ କରି
Basā bāndhibā ତହିଁରେ ବସା ତିଆରି କରିବା—To
বাসা বান্ধা घोंसला बनाना build a nest (said of birds).

ବସା ବାସ—ଦେ. ବି—ବସାଘର—
Basabāsa বাসাঘর वासाघर Lodgings.
ଅଶ୍ୱତ୍ଥାମା ତା ଶୁଣି ହୋଇଲେ ଲୋତେ ଭୋଷ
ଗଲେ ରାଜାମାନେ ଯେ ଯାହା ବସାବାସ—କୃଷ୍ଣସିଂହ-ମହାଭାରତ କର୍ଣ୍ଣ ।

ବସା ଭାଙ୍ଗିବା—ଦେ. କ୍ରି—ସ୍ଥାନାନ୍ତରରେ ବାସ କରିବା ପାଇଁ କୌଣସି
Basā bhāngibā ସ୍ଥାନରୁ ବସା ଅନ୍ତରିତ କରିବା—To
বাসা তোলা वासा तोडना remove from a place.
আড়া ভেঁগেযাওয়া ଦେ. ବି—କୌଣସି ବ୍ୟକ୍ତିର ଅଶ୍ରୟ ସ୍ଥାନର
वासा टूट जाना ଚ୍ୟୁତି—Discontinuance of one's temporary habitation.

ବସା ସଞ୍ଚା—ଦେ. ବି—(ସହରର) ଆଗନ୍ତୁକ ବ୍ୟକ୍ତିଙ୍କର ରହିବା ନିମନ୍ତେ
Basā sañchā ବସାଘର ଓ ସେଠିଭେଇ ପାଇଁ ଖାଦ୍ୟ ସାମଗ୍ରୀ—
বাসা সীধা Lodgings and victuals for a newly
वासा और उपाद(य)त् arrived guest.
ଏହି ସକାଶରୁ ବାହରେ ବାସାସଞ୍ଚା
କିଅଥ ତାଙ୍କପାଇଁ ନ କରି କିଛି ପଞ୍ଚା—କୃଷ୍ଣସିଂହ-ମହାଭାରତ-ଉଦ୍ୟୋଗ ।
[ ପୂର୍ବେ ରାଜାମାନଙ୍କ ନିକଟକୁ କେହି ବରିଷ୍ଠ ବ୍ୟକ୍ତି ଗଲେ ପ୍ରଥମରେ ତାଙ୍କୁ ବସାସଞ୍ଚା ଦିଆଯାଉଥିଲା । ]

**ବସି**—ସଂ. ବି (ବସ ଧାତୁ=ପିନ୍ଧିବା+କର୍ମ. ଇ)—୧ । ଲୁଗାପଟା—
Basi 1. Clothes (Apte). ୨ । (ବସ୍ ଧାତୁ=ବାସ କରିବା+ଅଧିକରଣ. ଇ) ଆବାସ; ଗୃହ—2. Dwelling; residence.

ଗ୍ରା. ଅ—(ପାଦ ବା ବାକ୍ୟ ପୂରଣାର୍ଥରେ ଅଥବା କଥିତ ବିଷୟରେ ଜୋର୍ ଦେବାପାଇଁ ବ୍ୟବହୃତ)—ବି; ମଧ୍ୟ; ସୁଦ୍ଧା—
ବସେ **बैठकर** Even; too.
(ଯଥା—ମୁଁ ବସି କାହିଁକି ଜଗିଥିବି ? ମୋର ଆଉ କିଛି କାମ ନାହିଁ, ମୁଁ ବସି ଏଇଠା କରୁଥିବି ?)

**ବସି ଆସିବା**—ଦେ. କ୍ରି—କୌଣସି ସ୍ଥାନରେ ବସିବା ପରେ ସେଠାରୁ ଉଠିଆସିବା—To come out after sitting at a place.
Basi āsibā
ବସେଆସା **बैठकरआसा**
(ଯଥା—ମୁଁ ଥରେ ଯାଇ ସେ ସଭାରେ ବସିଆସେଁ, ତା ପରେ ତୁମକୁ ସବୁ କଥା କହିବି ।)

**ବସି ଉଠିବା**—ଦେ. କ୍ରି—୧ । ବସିବା ମାତ୍ରକେ ଠିଆ ହେବା—
Basi uthibā 1. To stand up immediately after sitting down.
ବସେଇ ଓଠା **बैठकर उठना**
(ଯଥା—ମୁଁ ଭିଡପଡ଼ିରେ ବସି ଉଠିଲି ମାତ୍ର)
୨ । (ଶୋଇଥିବା ବ୍ୟକ୍ତି) ହଠାତ୍ ଜାଗ୍ରତ ହୋଇ ବସିବା; ଉଠିବସିବା—2. To sit up from a sleeping position.
(ଯଥା—ସେ ଗୋଟିଏ ବିକଟ ଚିତ୍କାର ଶୁଣି ବସି ଉଠିଲା)
୩ । (ରୋଗୀ) ଶୋଇବା ଅବସ୍ଥାରୁ ଅନ୍ୟର ବିନା ସାହାଯ୍ୟରେ ବସିବାକୁ ସମର୍ଥ ହେବା—3. To be able to sit up without another's aid (said of a patient recovering from illness).
(ଯଥା—ସନ୍ନିପାତ ମଲୁ ମୋ ଔଷଧରେ ବର୍ତ୍ତମାନ ଉଠି ବସିଲାଣି)

**ବସି ଖାଇବା**—ଦେ. କ୍ରି—୧ । କିଛି ରୋଜଗାରର ପନ୍ଥା ନ ଧରି ସଞ୍ଚିତ ଧନରେ ଜୀବିକା ନିର୍ବାହ କରିବା—To consume or spend money without earning anything.
Basi khāibā
ବସେ ବସେ ଖାଓଆ **बैठके खाना**
ବସି ଖାଇଲେ ନଈବାଲି ସରେ—ଡଗ ।
୨ । ଉପବେଶନ କରି ଭୋଜନ କରିବା—2. To take one's meal sitting.

**ବସି ପଡ଼ିବା**—ଦେ. କ୍ରି—୧ । (କ୍ଲାନ୍ତ ବା ଦୁଃଖବାର୍ତ୍ତ ହୋଇ ଠିଆ ହୋଇଥିବା ବ୍ୟକ୍ତି ବା ପ୍ରାଣୀ) ହଠାତ୍ ଉପବେଶନ କରିବା—1. To sit down suddenly.
Basi pardibā
ବସେପଡ଼ା **बैठजाना**
...ଉଠୁ ଉଠୁ ଥରେ ...ବସି ପଡ଼ୁ ଛନ୍ତି
କେବେ ପୁଣି କେବେ ପଡ଼ନ୍ତି । ... ଦ୍ୱାରକାନାଥ ପାଟଯୋଶୀ । ...
୨ । ହତାଶ ଓ କିଂକର୍ତ୍ତବ୍ୟବିମୂଢ଼ ହେବା—2. To be bewildered; to be struck with despair.

**ବସିତ**—ସଂ. ବିଣ. (ବସ୍ ଧାତୁ+କର୍ମ. କ୍ତ)—୧ । ପରିହିତ—
Basita 1. Worn; put on. ୨ । (+କର୍ତ୍ତୃ. କ୍ତ) ବାସ କରୁଥିବା—2. Dwelling. ୩ । (+କର୍ମ. କ୍ତ) ସଞ୍ଚିତ—3. Stored (Apte).
ସଂ. ବି (+ଅଧି. କ୍ତ)—ବାସସ୍ଥାନ—Dwelling (Apte).

**ବସିବା**—ଦେ. କ୍ରି. (ସଂ. ଉପପୂର୍ବକ ବିଶ୍ ଧାତୁ ବା ଆସ୍ ଧାତୁ)—
Basibā ୧ । ଉପବେଶନ କରିବା—1. To sit; to take one's seat. ୨ । ଶରୀରର ନିମ୍ନାର୍ଦ୍ଧକୁ ଭୂମିରେ ସ୍ଥାପନ କରି ଉପବିଷ୍ଟ ହେବା—2. To squat. ୩ । ଅବସ୍ଥାନ କରିବା; ରହିବା—3. To stay.
ବସା **बैठना**
[ବସା(ସେ)ଇବା—ଣିଜନ୍ତ]
(ଉଠିବା—ବିପରୀତ)
ଥାକା **ठहरना**
ସେ ଯାହାର ବସାରେ ସୁଖରେ ବସିଲେ
ଦମୟନ୍ତୀଠାରେ ମାନସ ଲଗେଇଲେ—
କୃଷ୍ଣସିଂହ, ମହାଭାରତ ବନ ।
ବସା ୪ । ବିଶ୍ରାମ କରିବା—4. To take rest.
**बैठना** (ଯଥା—ଦିନଯାକ ପିଟିକି କରି କରି ବସିବାକୁ ମତେ ଫୁରୁସତ୍ ନାହିଁ ।)
ବସେଥାକା ୫ । ଅପେକ୍ଷା କରିବା—5. To wait.
**बैठना** ୬ । ନିଷ୍କର୍ମା ହୋଇ ରହିବା—6. To sit idle.
ବସେଥାକା (ଯଥା—ଦରମା ନେଇ କିଛି କାମ ନ କରି ତୁ କେତେ
**बैठेरहना** ଦିନ ଯାକେ ବସିବୁ ?)
ବସା ୭ । ଘନୀଭୂତ ହେବା; ଜମାଟ ହେବା—7. To coagulate
**जमना** to be congealed; to curdle; to thicken.
(ଯଥା—ଥଣ୍ଡା ହେବୁ ଘିଅ ବସିଗଲା)
ବସା ୮ । ଭୂମିରେ ଦୃଢ଼ରୂପ ହୋଇ ସଂଲଗ୍ନ ହେବା—
**बैठना** 8. To be set firmly on the ground.
(ଯଥା—ଏ ଟେବୁଲ୍‌ଟି ଅସମତଳ ଭୂଇଁରେ ବସିବ କିପରି ?)
ପଡ଼ା ୯ । (ପୋକ, ଅଂଶେଇ, ମାଛି) ଉତ୍ପନ୍ନ ହେବା; ଜାତ ହେବା;
**पड़ना** ଦେଖାଯିବା—9 To appear (said of maggots).
(ଯଥା—ତା ଘାଆରେ ଅଂଶେଇ ବା ମାଛି ବସିଲେଣି)
୧୦ । (ଶୁଭବାଚନ) (ଘୋଡ଼ା, ହାତୀ) ମୃତ ହେବା; ମରିବା—10. (euphemism) To die; to sink down (said of horses and elephants).
(ଯଥା—ଏ ବରଷ ରାଜାଙ୍କର ୩ ଘର ହାତୀ ବସିଗଲେ)
ଜମା ୧୧ । ଘନଭାବରେ ମାଡ଼ିଯିବା; ଅଧିକଭାବରେ ଜାତ ହେବା—
**जमना, बैठना** 11. To preponderate; to spread thickly.
(ଯଥା—ପୋଖରୀରେ ବଧ ବସିଗଲାଣି; ବିଲରେ ମଳ ବସିଗଲାଣି)
ବସା ୧୨ । ବସିଯିବା; ତଳକୁ ପଶିବା—12. To sink down; to go down.
(ଯଥା—ଏ ମୂଳଭୂଅର ମାଟି ବର୍ଷା ପାଣି ଖାଇ ବସି ନ ଥିବାରୁ ଖୁଣ୍ଟଗୁଡ଼ାକ ବସିଗଲା ।)
ବସା ୧୩ । (କଣ୍ଠସ୍ୱର ବା ଗଳା) କାର୍ଯ୍ୟକାରିତା ଶକ୍ତି ହରାଇବା—
**बैठना** 13. To lose the power of action.
(ଯଥା—ଥଣ୍ଡାରେ ମୋ ଗଳା ବସିଗଲା ।)
୧୪ । ସ୍ଥିରଭାବରେ ରହିବା—14. To remain still.

ବସା ୧୫ । ଉନ୍ନତ ଅବସ୍ଥାରୁ ଅବନତ ଅବସ୍ଥାକୁ ଗଢ କରିବା; 
**बैठना** ଅଧୋଗତ କରିବା; ଅବନତର ଅବସ୍ଥାପନ୍ନ ହେବା—15. To come down from a higher position; to deteriorate.

(ଯଥା—ପୂର୍ବେ ସେ ଭାରି ଧନୀ ଥିଲେ; ମାତ୍ର ଏବକୁ ବସି-ଗଲେଣି ।)

ବସା ୧୬ । କଷି ହେବା; ଦୃଢ଼ ହେବା—16. To become tight.

(ଯଥା—ଶିଶୁଟି ବଡ଼ ହୋଇଯିବାରୁ ତାର ପିଲାଦିନର ଖଡ଼ୁ ହାତରେ ବସି ଗଲାଣି ।)

ବସା ୧୭ । ଖାପ ଖାଇବା; ଅଙ୍ଗର ମାପସହ ହେବା—
**बैठना** 17. To fit in; to suit.

(ଯଥା—ଏ କୁର୍ତ୍ତା ମୋ ଦେହରେ ଠିକ୍ ହୋଇ ବସୁଛି ।).

ବସା ୧୮ । କାଳଯାପନ କରିବା; ଚଳିବା; ବଢ଼ିବା—
**बैठना** 18. To spend time; to be brought up.

( ଯଥା—ସେ ତ ସଭ୍ୟସମାଜରେ ବସି ନାହିଁ; ଭଦ୍ରତା କାହୁଁ ଜାଣିବ ? )

ବସେକାଜକରା ୧୯ । କୌଣସି କାର୍ଯ୍ୟରେ କିଛିକାଳ ନିଯୁକ୍ତହେବା—
**रहकर कामकरना** 19. To be engaged in any work for a protracted period.

ପୁରୁଷ ବସି ଯେବେ ଶାସ୍ତ୍ର ପଢ଼ୁଥାଏ
ତେବେ ଜାଣ ଜ୍ଞାନ ବୃଦ୍ଧି ତାର ହୁଏ—କୃଷ୍ଣସିଂହ ମହାଭାରତ, ଶାନ୍ତି ।

ବସା ୨୦ । ଦଖଲ କରିବା; ଅଧିକାର କରିବା; ପ୍ରଜାରୂପେ 
**वसना** ଜମିରେ ଦଖଲ ପାଇବା—20. To settle on land (said of tenants).

(ଯଥା—ସେ ଅନାବାଦ ଜମିରେ ଗୁଡ଼ିଏ ପ୍ରଜା ବସିଲେଣି ।)

ବସନା ୨୧ । ଚହ୍ନିତ ହେବା; ଦାଗ ରହିବା—
**बैठना** 21. To be left as a mark.

(ଯଥା—ତା ଦେହରେ ବେତର ନୋଳା ବସିଗଲାଣି ।)

ବସା ୨୨ । ଈଶ୍ୱରଙ୍କୁ ବା ମହାପ୍ରସାଦକୁ ସାକ୍ଷୀ ରଖି ଅନ୍ୟର 
**बनना** ସଙ୍ଗେ ମିତ୍ରଭାବରେ ଆବଦ୍ଧ ହେବା—22. To establish god-relationship.

ବସା ୨୩ । (ଉଠୁଥିବା ବ୍ରଣ ଆଦି) ନ ପାଚି ଦେହରେ ଲୀନହେବା—
**बैठना** 23. To be assimilated to the body; to sink again into the body ( said of boils); to be absorbed.

( ଯଥା—ଥଣ୍ଡା ମଲମ ବୋଳିବାରୁ ବଥଟା ନ ପାଚି ବସିଗଲା । )

ବସା ୨୪ । ( ଜଳରେ ଭାସମାନ ପଦାର୍ଥ ବା ଜନ୍ତୁ ) ଜଳର 
**बैठना** ନିମ୍ନଦେଶକୁ ଯାଇ ଅବସ୍ଥିତ ହେବା; ତଳକୁ ଲାଗିଯିବା; ତଳତଳେଇବା—24. To precipitate; to sink down to the bottom.

( ଯଥା—ଗୋଳଆ ପାଣିରେ ଫିଟ୍‌କିରି ଗୋଳି ମାଠିଆରେ ଛାଡ଼ିଦେଲେ ପଙ୍କ ତଳକୁ ବସିଯାଏ । )

ବସା ୨୫ । ( ଅମୁକ ରୂପରେ ) କର ଆଦି ଧାର୍ଯ୍ୟ ହେବା—
**बैठाया जाना** 25. To be assessed ( said of tax etc. )

( ଯଥା—ସବୁ ଜମିରେ ଅଣାଏ ଲେଖାଏ ଟିକସ ବସିଗଲା । )

ବସା ୨୬ । ସ୍ଥାପିତ ହେବା; ପ୍ରତିଷ୍ଠିତ ହେବା—
**खुलना** 26. To be held or established.

( ଯଥା—ଅଳ୍ପ ଦିନ ହେଲା ସେଠାରେ ଗୋଟିଏ ସ୍କୁଲ ବସିଛି । )

ବସା ୨୭ । କଚେରି ଆଦିର କାର୍ଯ୍ୟ ଚଳିବା ବା ଆରମ୍ଭ 
**खुलना** ହେବା—27. To go on; to be begun; to be opened; to be started.

( ଯଥା—ଖରାଦିନେ ସକାଳ ୬ଟା କଚେରୀ ବସେ । )

ବସା ୨୮ । ଜୀବିତ ରହିବା; ଜୀଇଁବା; ବଞ୍ଚିବା—
**बैठना** 28. To live.

( ଯଥା—ବୁଢ଼ା ବୁଢ଼ୀ ବସିଛନ୍ତି, ମାତ୍ର ପୁଅ ନାତି ଚାଲି ଗଲେ । )

ବସା ୨୯ । ଉଦ୍ୟତ ହେବା; ପ୍ରସ୍ତୁତ ହୋନା—
**तयारहाना** 29. To be ready for; to be about to do a thing.

( ଯଥା—ସେ ତ କାଲି ବୁଢ଼ା ମରିବାକୁ ବସିଥିଲା । )

ବସା ୩୦ । ଆରମ୍ଭ କରିବା; ବ୍ୟାପୃତ ହେବା—
**सुरु करना** 30. To begin; to be engaged in.

କଳି ଯେବେ କରିବସିବ ସଙ୍ଗେ ଥିବ ଘର
ଦୁଧ ଯେବେ ଖାଇବସିବ ଘରେ ଥିବ ଗାଈ
ଘର ଯେବେ କରିବସିବ ସଙ୍ଗେ ଥିବ ମାଈ—ଢଗ ।

ବସାନହଓୟା ୩୧ । ଗ୍ରଥିତ ହେବା—
**बैठायाजाना** 31. To be laid or set.

( ଯଥା—ଏ ପିଣ୍ଡାରେ ଗୁଡ଼ିଏ ମାକଡ଼ାପଥର ବସିଛି । )

ବସା ୩୨ । ସାନ୍ଦ୍ର ହେବା; ଘନ ହେବା—
**गफदेना** 32. To thicken; to become closer.

( ଯଥା—ନୂଆ ଲୁଗା ଥରେ ଦୁଇଥର ଧୋବାଘରେ ପଡ଼ିଲେ ବସିଯାଏ । )

ବସା ୩୩ । ଉନ୍ନିଦ୍ର ହୋଇ ରହିବା; ଚେଇଁ ରହିବା—
**बैबठना** 33. To watch; to keep waking.

(ଯଥା—ଆମର ରୋଗୀପାଖେ ବସି ବସି ରାତି ପାହିଲା । )

ବସା ୩୪ । ମନରେ (ଦୟାଦିଭାବ) ଉଦ୍ରେକ ହେବା—
**होना** 34. To arise in the mind.

ଦୟା ନ ବସିବ ତାହାଙ୍କର ନିକଅଙ୍ଗ । ବଳରାମ, ରାମାୟଣ ।

ବାସକରା **बसना** ୩୫ । ବାସ କରିବା—35. To live.

ମହିମା ଏହାର ଜାଣି ବସନ୍ତ ଏ ଦେଶେ ନାନା ସ୍ଥାନେ ଉତ୍କଳ ।
ଜଗନ୍ନାଥ ମହାପାତ୍ର ।

ବସା ୩୬ । କୌଣସିଠାରେ ରହିବାକୁ ସ୍ଥାନ ପାଇବା—
**वसना** 36. To get a place or footing in.

ବସୁଥାଏ ତୀର୍ଥରେ ଯେ କରଇ ସ୍ନାନ
ସେହି ଶ୍ରେଷ୍ଠ ହୁଏ ବୈକୁଣ୍ଠ ଭୁବନ । କୃଷ୍ଣସିଂହ, ମହାଭାରତ, ବନ ।

বসা স্থাপিতহোনা ୩୭ । ଅବସ୍ଥାପିତ ହେବା—37. To be set up.
(ଯଥା—ଅଷ୍ଟମୀ ଦିନ ସପ୍ତମୀ ଦିନ ଦୁର୍ଗାପୂଜାର ଘଟ ବସିବ ।)
୩୮ । (ନାକ) ଚେପ୍ଟା ହୋଇ ଯିବା—38. ( the nose) To become flattened.
ପ୍ରାଦେ. (ଉତ୍ତର ବାଲେଶ୍ୱର) କ୍ରି.—ଲଖାଯିବା; ଥୁଆହେବା-To be placed; to be kept.
[ଯଥା—ଘଟ ବସିଛି । (ଠାଇ ଥୁଆ ହୋଇଛି) ।]
[ଦ୍ର—ବସିବା କ୍ରିୟାର ଅସମାପିକାରୂପ ସଙ୍ଗେ ପଡ଼ିବା, ରହିବା, ଯିବା କ୍ରିୟାର ସମାପିକା ରୂପ ବ୍ୟବହୃତ ହୁଏ ।]

**ବସିଯିବା**—ଦେ. କ୍ରି —୧ । ଘନୀଭୂତ ହେବା—
Basi jiba 1. To coagulate; to be congealed.
বসে যাওয়া ୨ । ବସିବା କର୍ମ ଶେଷ କରିବା—
যমযানা 2. To already do the act of sitting
(ଯଥା—ବନ୍ଧୁମାନେ ଭୋଜନ କରିବାକୁ ଯେଉଁଠି ଆସନରେ ବସି ଗଲେ ।)

**ବସି ରହିବା**—ଦେ. କ୍ରି.—ନିଷ୍କର୍ମୀ ହୋଇ ଅର୍ଥାତ୍ କୌଣସି କର୍ମ ନ
Basi rahiba କରି ଆଳସ୍ୟରେ ଦିନ ଯାପନ କରିବା—To spend time without doing any work; sit idle.

**ବସୁ**—ସଂ. ବି. ( ବସ୍ ଧାତୁ+କର୍ତ୍ତୃ. ଉ )—୧ । ଗଣଦେବତାବିଶେଷ
Basu (ଏମାନେ ସଂଖ୍ୟାରେ ଆଠ)—1. A group of eight divine beings or Dieties.
[ ଦ୍ର—ମହାଭାରତ ମତରେ ଏମାନଙ୍କ ନାମ—ଧର ବା ଭବ, ଧ୍ରୁବ, ସୋମ, ବିଷ୍ଣୁ, ଅନିଳ,ଅନଳ, ପ୍ରତ୍ୟୂଷ ଓ ପ୍ରଭବ ବା ପ୍ରଭାସ। ଭାଗବତ ମତରେ ଦ୍ରୋଣ, ପ୍ରାଣ, ଧ୍ରୁବ, ଅର୍କ, ଅଗ୍ନି, ଦୋଷ, ବାସ୍ତୁ ଓ ବିଭାବସୁ; ଏମାନେ ବସୁଦେବତା ଓ ଏମାନେ ଦକ୍ଷ ପ୍ରଜାପତିଙ୍କ କନ୍ୟା 'ବସୁ'ଙ୍କ ଗର୍ଭରୁ ତାଙ୍କ ସ୍ୱାମୀ ଧର୍ମଙ୍କ ଔରସରେ ଜନ୍ମିଥିଲେ । ଥରେ ବସୁମାନେ ବଶିଷ୍ଠଙ୍କ ନନ୍ଦିନୀ ଗାଈକୁ ଚୋରାଇ ନେବାରୁ ବଶିଷ୍ଠ ଶାପ ଦେଲେ ଓ ତହିଁ ଫଳରେ ସେମାନେ ଶାନ୍ତନୁଙ୍କ ପତ୍ନୀ 'ଗଙ୍ଗା'ଙ୍କ ଗର୍ଭରୁ ଜନ୍ମ ଗ୍ରହଣ କଲେ ଓ ଜନ୍ମ ହେବା କ୍ଷଣି ମାତା ସେମାନଙ୍କ ମଧ୍ୟରୁ ପ୍ରଥମ ୭ ଜଣଙ୍କୁ ଗଙ୍ଗା ନଦୀର ଗର୍ଭକୁ ଫିଙ୍ଗି ଦେଇଥିଲେ, କେବଳ ସପ୍ତମ ଶିଶୁ ଭୀଷ୍ମ ଶାନ୍ତନୁଙ୍କ ଯୋଗୁଁ ବଞ୍ଚି ଗଲେ ।
ବେଦରେ ବସୁ ଶବ୍ଦର ପ୍ରୟୋଗ ଅଗ୍ନି, ମରୁତ୍, ଇନ୍ଦ୍ର, ଉଷା, ଅଶ୍ୱୀ, ରୁଦ୍ର, ବାୟୁ ଓ ଆଦିତ୍ୟଙ୍କ ପ୍ରତି ହୋଇଅଛି । ବୃହଦାରଣ୍ୟକରେ ପୃଥିବୀ, ବାୟୁ, ଅନ୍ତରୀକ୍ଷ, ଆଦିତ୍ୟ, ଦ୍ୟୌ, ଅଗ୍ନି, ଚନ୍ଦ୍ରମା ଓ ନକ୍ଷତ୍ରଙ୍କ ପ୍ରତି ପ୍ରୟୋଗ କରା ଯାଇଅଛି—ହି. ଶ ]
୨ । ( ବସୁଦେବଙ୍କ ସଂଖ୍ୟାରୁ ) 'ଆଠ' ସଂଖ୍ୟା—9. The number '8' (eight). ୩ । ଏକ କଉଡ଼ା କଉଡ଼ିମୂଲ୍ୟର ଆଠ ଭାଗରୁ ଏକ ଭାଗ—3. One eighth of the value of a cowrie or shell-money. ୪ । ବସୁଧାରା ୧ (ଦେଖ) 4. Basudhārā 1 (See). ୫ । ଧନ—5. Riches;wealth. ୬ । ଧନପତି କୁବେର—6. The God of riches. ୭ । ଅଗ୍ନି—7, Fire. ୮ । ସୂର୍ଯ୍ୟ—8, The sun. ୯ । ଧନିଷ୍ଠା ନକ୍ଷତ୍ର—9. The 23rd asterism. ୧୦ । କିରଣ; ରଶ୍ମି—10. A ray of light. ୧୧ । ବଲ୍ଗା; ଘୋଡ଼ାର ବାଗ ବା ଲଗାମ—11. Rein of a horse. ୧୨ । ରାଜା—12. King. ୧୩ । ଚେଦିରାଜ—13 Name of an ancient king of India. ୧୪ । ସ୍ୱର୍ଣ୍ଣ । 14. Gold. ୧୫ । ଲବଣ —15. Salt. ୧୬ । ଜଳ—16. Water. ୧୭ । କାଳ-ବସୁ ବା କଳାବାଉଁଶି ମାଛ—17. A kind of fresh water fish. ୧୮ । ରତ୍ନ (ହି. ଶ )—19. Gem. ୧୯ । ଅଗସ୍ତି ଗଛ (ହି. ଶ)—19. Sesbania Grandiflora (tree). ୨୦ । ଯୋତ୍ତ୍ର; ଯୋଚ ଦଉଡ଼ି (ହି. ଶ)—20. The rope with which the beasts are tied to the yoke; the tie of a yoke (Apte). ୨୧ । ପୀତମୁଗ (ହି. ଶ)—21. The yellowish variety of Phaseolus Munga. ୨୨ । ବୃକ୍ଷ (ହି. ଶ)—22. Tree. ୨୩ । ଶିବ (ହି.ଶ)—23. Siba. ୨୪ । ସରୋବର (ହି. ଶ)—24. Tank. ୨୫ । ବିଷ୍ଣୁ (ହି. ଶ)—25. Bishṇu. ୨୬ । ବକୁଳ (ବୃକ୍ଷ) (ହି. ଶ)—26, Bakuḷa (tree). ୨୭ । ସାଧୁପୁରୁଷ; ସଜ୍ଜନ (ହି. ଶ)—27. A saintly person. ୨୮ । ଦୀପ୍ତି; ଆଭା (ହି. ଶ) —28. Lustre; light. ୨୯ । ବୃଦ୍ଧି ନାମକ ଔଷଧ (ହି. ଶ)—29. A rare-herb. ୩୦ । ଦକ୍ଷପ୍ରଜାପତିଙ୍କ କନ୍ୟା ଓ ଧର୍ମଙ୍କ ସ୍ତ୍ରୀ (ଭାଗବତ) (ହି. ଶ)—30. Name of the wife of Dharma and daughter of Daksha.
[ ଦ୍ର—ଭାଗବତ ମତରେ ଏ ଦ୍ରୋଣାଦି ଅଷ୍ଟବସୁଙ୍କ ମାତା—ହି. ଶ ]
ସଂ. ବିଣ. (ପୁଂ ଓ ସ୍ତ୍ରୀ)—୧ । (+କର୍ତ୍ତୃ. ଉ) ଯେ ସବୁଥିରେ ବାସ କରନ୍ତି (ହି. ଶ)—1. Living or existing in all things. ୨ । ( +ଅଧିକରଣ ଉ ) ଯହିଁରେ ସମସ୍ତଙ୍କର ବାସ ( ହି. ଶ. )—2. Holding all things. ୩ । ମଧୁର—3. Sweet ( Apte ). ୪ । ଶୁଖିଲା—4. Dry ( Apte. )
ଦେ. ବି—୧ । ବଙ୍ଗୀୟ କାୟସ୍ଥଙ୍କର ଉପାଧିବିଶେଷ—1. A family title of the Kāyasthas of Bengal. ୨ । ପୁରୀଜିଲ୍ଲା ଶାସନୀ ବ୍ରାହ୍ମଣଙ୍କର ବଶିଷ୍ଟତା ପରିଚାୟକ ସଙ୍ଗାବିଶେଷ—2. A distinctive surname of certain high class Brāhmaṇas of Puri district.
( ଯଥା—ବେସରପୁରିଆ ବସୁ । )
ସଂ. ବିଣ —୧ । ଶୁଷ୍କ—1. Dry. ୨ । ମଧୁର—2. Sweet.
বসুক বৈঁঠ ଦେ. କ୍ରି—( ବସିବା କ୍ରିୟାର ଅନୁଜ୍ଞାର୍ଥକ ତୃତୀୟ ପୁରୁଷ ଏକବଚନ [ ସେ ] କର୍ତ୍ତା ସହିତ ପ୍ରଯୁକ୍ତ ରୂପ ) ( ସେ ) ଉପବେଶନ କରୁ—Let him sit.

**ବସୁକ**—ସଂ. ବି—୧ । ବକପୁଷ୍ପ ( ଦେଖ ) ( କବିରାଜ ହରେକୃଷ୍ଣ. ଦ୍ରବ୍ୟଗୁଣ )—1. Bakapushpa ( See )
Basuka
୨ । ସମ୍ବର ଲବଣ ( ହି. ଶ. )—2. Salt from the Sambar Lake; fossil salt. ୩ । ପାଂଶୁ ଲବଣ ( ହି. ଶ. )—3. Salt from vegetable ash. ୪ । ବଥୁଆ ଶାଗ ( ହି. ଶ. )—4. Chenopodum pot-herb. ୫ । ଅରଖଗଛ (ହି. ଶ)—5. Swallow-wort plant. ୬ । ବଡ଼ ବଉଳଗଛ ( ହି. ଶ. )—6. A big-flowering variety of Bakula tree. ୭ । ( ନାମ ) ଇନ୍ଦ୍ରଙ୍କ ଗୋତ୍ରଜ ଓ ବଶିଷ୍ଠଙ୍କ ଗୋତ୍ରଜ ଦୁଇଜଣ ଋଷି ( ହି. ଶ. )—7. Name of two ancient sages.
[ ଦ୍ର—ଏହି ଋଷିଙ୍କ ଦୃଷ୍ଟ ମନ୍ତ୍ର ବେଦରେ ଦୃଷ୍ଟ ହୁଏ—ହି. ଶବ୍ଦସାଗର । ]
୮ । ସମୁଦ୍ର ଲବଣ—8. Sea-salt ( Apte ).

**ବସୁକୀଟ**—ସଂ. ବି (୬ଷ୍ଠୀ ତତ୍; ବସୁ=ଧନ + କୀଟ)—୧ । ଧନଯାଚକ; ଧନଭକ୍ଷୁକ—1. One who begs money; beggar. ୨ । କୃପଣ ବ୍ୟକ୍ତି—2. A miser.
Basukita
( ବସୁକୃମି—ଅନ୍ୟରୂପ )

**ବସୁଦ**—ସଂ. ବିଣ. ପୁଂ ( ବସୁ+ଦା ଧାତୁ+କର୍ତ୍ତୃ. ଅ )—ଧନଦାତା—Giving riches. ସଂ. ବି—୧ । କୁବେର—1. God of riches. ୨ । ( ସହସ୍ର ନାମୋକ୍ତ ) ବିଷ୍ଣୁ—2. Bishnu.
Basuda
( ବସୁପ୍ରଦ—ଅନ୍ୟରୂପ)
(ବସୁଦା, ବସୁପ୍ରଦା—ସ୍ତ୍ରୀ)

**ବସୁଦା**—ସଂ. ବି. ସ୍ତ୍ରୀ ( ବସୁ+ଦା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—୧ । ପୃଥିବୀ—1. The earth. ୨ । ସ୍କନ୍ଦଙ୍କ ଛଅ ମାତାଙ୍କ ମଧ୍ୟରୁ ଏକ—2. Name of one of the 6 mothers of Kārttikeya. ୩ । ନର୍ମଦାନାମ୍ନୀ ଗନ୍ଧର୍ବୀର କନ୍ୟା ଓ ମାଲୀ ରାକ୍ଷସର ପତ୍ନୀ—3. Name of the wife of demon Māli.
Basudā
[ ଦ୍ର—ଏହାଙ୍କ ଗର୍ଭର ପୁତ୍ର ଅନଳ, ନୀଳ, ହର ଓ ସମ୍ପାତି ବିଭୀଷଣଙ୍କ ଅମାତ୍ୟ ଥିଲେ—ହି. ଶ. । ]

**ବସୁଦେବ**—ସଂ. ବିଣ. ପୁଂ ( ବସୁ=ଧନ+ଦିବ୍ ଧାତୁ=କ୍ରୀଡ଼ା କରିବା + କର୍ତ୍ତୃ. ଅ; ଯେ ଧନରେ କ୍ରୀଡ଼ା କରେ )—୧ । ଧନୀ—1. Rich. ୨ । ( ବହୁବ୍ରୀହି; ବସୁ=ରତ୍ନ + ଦେବ=କାନ୍ତି ) ଉଜ୍ଜ୍ୱଳ କାନ୍ତିବିଶିଷ୍ଟ—2. Lustrous.
Basudeba
ସଂ. ବି—୧ । ଶ୍ରୀକୃଷ୍ଣଙ୍କ ପିତା; ଦେବକୀଙ୍କ ସ୍ୱାମୀ—1. Father of Srikrushna.
[ ଦ୍ର—ବସୁଦେବ ଯଦୁବଂଶର ଶୂରକୁଳର ରାଜା ଦେବମୀଢ଼ ଓ ତାଙ୍କ ପତ୍ନୀ ମାରିଷାଙ୍କଠାରୁ ଜନ୍ମି ଥିଲେ । ଏ ଜନ୍ମିବା ସମୟରେ ସ୍ୱର୍ଗରୁ ଦୁନ୍ଦୁଭି ଶବ୍ଦ ଶୁଣାଯାଇଥିଲା । ଏଥିଯୋଗୁଁ ଏହାଙ୍କର ଏକ ନାମ ଆନକଦୁନ୍ଦୁଭି । ଏ ପିତାଙ୍କ ଜ୍ୟେଷ୍ଠପୁତ୍ର ଥିଲେ । ଏହାଙ୍କର ପୌରବୀ, ରୋହିଣୀ, ମଦିରା, ଧରା, ବୈଶାଖୀ, ଭଦ୍ରା, ସୁନାମ୍ନୀ ସହଦେବା, ଶାନ୍ତିଦେବା, ଶ୍ରୁତଦେବା, ଦେବରକ୍ଷିତା ଓ ଦେବକୀ ନାମରେ ୧୨ ଜଣ ଭାର୍ଯ୍ୟା ଥିଲେ । ଏହାଙ୍କ ଛଡ଼ା ସୁତନୁ ଓ ବଡ଼ବା ନାମରେ ଦୁଇ ଦାସୀ ଥିଲେ । ରୋହିଣୀଙ୍କ ଗର୍ଭରୁ ବଳରାମ ଓ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଜାତ ହୋଇଥିଲେ । ପାଣ୍ଡବ ମାତା କୁନ୍ତୀ ଏହାଙ୍କ ଭଉଣୀ ଥିଲେ—ହି. ଶ. । ]
୨ । (୬ଷ୍ଠୀ ତତ୍; ବସୁ=ଧନ+ଦେବ=ଦେବତା) କୁବେର—2. God of riches. ୩ । (ନାମ) ବସୁଭୂତି ରାଜାଙ୍କର ଅମାତ୍ୟ ଓ ପରେ ତାଙ୍କୁ ହତ କରି ସିଂହାସନରେ ବସିଥିବା ରାଜା ( ହି. ଶ )—3. Name of a king of ancient India. ୪ । ( ବହୁବ୍ରୀହି ) ଧନିଷ୍ଠା ନକ୍ଷତ୍ର (ହି. ଶ. )—4. The 23rd asterism.

**ବସୁଦେବତ**—ସଂ. ବି. ( ବହୁବ୍ରୀହି; ବସୁ=ଅଷ୍ଟାବସୁ ଅଧିଷ୍ଠାତ୍ରୀ ଦେବତା ଯାହାର )—ଧନିଷ୍ଠା ନକ୍ଷତ୍ର ( ହି. ଶ. )—The 23rd asterism.
Basudebata
(ବସୁଦେବ୍ୟା, ବସୁଦୈବତ, ବସୁଭ—ଅନ୍ୟରୂପ)
(ବସୁଦଅ—ଅନ୍ୟ ଗ୍ରାମ୍ୟନାମ) ଗ୍ରା. ବି—ବୈଶ୍ୱଦେବ ( ଦେଖ ) Baiśwadeba ( See )

**ବସୁଦେବତା**—ସଂ. ବି—୧ । (୬ଷ୍ଠୀ ତତ୍; ବସୁ+ଦେବତା) କୁବେର—1. God Kubera. ୨ । (ବହୁବ୍ରୀହି) ଧନିଷ୍ଠା ନକ୍ଷତ୍ର—2. The 23rd asterism.
Basudebatā

**ବସୁଧା**—ସଂ. ବିଣ. ସ୍ତ୍ରୀ. ( ବସୁ=ଧନ+ଧା ଧାତୁ=ଧାରଣ କରିବା + କର୍ତ୍ତୃ. କ୍ୱିପ୍ )—୧ । ଧନଧାରିଣୀ—1. Holding or containing riches. ୨ । ଧନଦାତା ( ହି. ଶ. )—2. Bestowing riches.
Basudhā
(ବସୁଧାନ—ଅନ୍ୟରୂପ) ସଂ. ବି—୧ । ପୃଥିବୀ—1. The earth. ୨ । ଭୂମି—2. The ground ( Apte ).

**ବସୁଧାଧର**—ସଂ. ବି. ( ଉପପଦ ତତ୍ପୁରୁଷ; ବସୁଧା=ପୃଥିବୀ+ଧୃ ଧାତୁ =ଧାରଣ କରିବା+କର୍ତ୍ତୃ. ଅ)—୧ । ଭୂଧର; ପର୍ବତ—1. Mountain. ୨ । ଅନନ୍ତ; ବାସୁକୀ—2. The great serpent.
Basudhādhara

**ବସୁଧାଧିପ**—ସଂ. ବି. ପୁଂ. ( ୬ଷ୍ଠୀ ତତ୍, ବସୁଧା + ଅଧିପ )—ପୃଥିବୀପତି; ରାଜା—A King.
Basudhādhipa

**ବସୁଧାଭୃତ୍**—ସଂ. ବି. ପୁଂ. ( ବସୁଧା+ଭୃ ଧାତୁ=ପାଳନ କରିବା+କର୍ତ୍ତୃ. କ୍ୱିପ୍ )—ପର୍ବତ—1. Mountain. ୨ । ରାଜା—2. King.
Basudhābhrut

**ବସୁଧାରା**—ସଂ. ବି. ( ବସୁ=ଧନ+ଧୃ ଧାତୁ=ଧାରଣ କରିବା+ଭାବ. ଅ+ସ୍ତ୍ରୀ. ଆ )—୧ । ଆଭ୍ୟୁଦୟିକ ବା ନାନ୍ଦୀମୁଖ ଶ୍ରାଦ୍ଧ ପୂର୍ବରୁ ଗୃହର କାନ୍ଥରେ ଘୃତର ସାତଗୋଟି ଧାର ବହାଇ ତାହାର ମୁଣ୍ଡରେ ଚନ୍ଦନ ଓ ସିନ୍ଦୂର ଟୋପା ମାରିବାରୂପ କୃତ୍ୟବିଶେଷ—1. A ritual consisting of letting seven currents of ghee trickle down a wall and putting tips of sandal-paste and vermilion on the heads thereof
Basudhārā

[ ଦ୍ର—ଏ କୃତ୍ୟରେ ରାଜା ବସୁଙ୍କ ଉଦ୍ଦେଶ୍ୟରେ ଘୃତର ୭ଟି ଧାର କାନ୍ଥରେ ଦିଆଯାଏ । ପ୍ରଥମେ କାନ୍ଥରେ ଚନ୍ଦନଦ୍ୱାରା ୭ଟି ବିନ୍ଦୁ ଚିହ୍ନିତ କରାଯାଏ, ପରେ ବେଦମନ୍ତ୍ରପାଠପୂର୍ବକ ପାତ୍ରୀର ମୁଖକୁ କାନ୍ଥରେ ଲଗାଇ ତଳକୁ ଧାର ବୋହିଯିବା ଭଳି ୭ଟି ଧାର ପାଖେ ପାଖେ ଲଗାଇ ଢାଳିବାକୁ ହୁଏ । ]

୨ । (୬ଷ୍ଠୀ ତତ୍; ବସୁ=ଜଳ+ଧାରା) ବୈଶାଖ ମାସରେ ପଣା-ସଂକ୍ରାନ୍ତି ଠାରୁ ଏକ ମାସ ପର୍ଯ୍ୟନ୍ତ ତୁଳସୀ ଗଛ ବା ଦେବତାଙ୍କ ଉପରେ ସଚ୍ଛିଦ୍ର ଜଳପୂର୍ଣ୍ଣ କଳସ ଝୁଲାଇ ତାହାର ଛିଦ୍ର ବାଟେ ଜଳଧାର ବୋହିବାର ଯେଉଁ ବ୍ୟବସ୍ଥା କରାଯାଏ—A mode of maintaining a dropping flow of water from a jug (with a hole at the bottom) over the Basil plant or a Deity during the summer month of 'Baiśākha.'

୩ । ଜୈନଙ୍କ ଦେବୀବିଶେଷ (ହି. ଶ )—3. Name of a Goddess worshipped by the Jainas.

[ ଦ୍ର—ଏହାଙ୍କର ଅନ୍ୟ ନାମ—ତାରା, ତାରିଣୀ, ନୀଳସରସ୍ୱତୀ, ମହାଶ୍ରୀ, ସ୍ୱାହା, ଶ୍ରୀ, ଜୟା, ଅନନ୍ତା, ଶିବା, ଭଦ୍ରା, ଶଙ୍ଖିନୀ, ମହାତାରା, ତ୍ରିଲୋଚନା—ହି. ଶ. ]

୪ । କୁବେରପୁରୀ; ଅଳକା (ହି. ଶ) — 4. Name of the capital of Kubera. ୫ । ତୀର୍ଥବିଶେଷ (ହି. ଶ)—5. Name of a sacred place of the Hindus.

୬ । ନଦୀବିଶେଷ (ହି. ଶ)—6. Name of a river.

**ବସୁଧାରା ତୀର୍ଥ**—ସଂ. ବି—ହିନ୍ଦୁମାନଙ୍କର ତୀର୍ଥବିଶେଷ—A sacred
Basudhārā tirtha place of the Hindus.

ବସୁଧାରା ତୀର୍ଥରେ ଯେ କରଇ ସ୍ନାନ
ବସଇ ସେହି ନର ବୈକୁଣ୍ଠ ଭୁବନ । କୃଷ୍ଣସିଂହ, ମହାଭାରତ, ବନ ।

**ବସୁ ଧାର୍ମିକା**—ସଂ. ବି. ( ବସୁ+ଧର୍ମ+କ+ଆ )—
Basu dhārmikā ୧ । ସ୍ଫଟିକ (ହି. ଶ)—1. Quartz.
୨ । ଶ୍ୱେତମର୍ମର (ହି. ଶ)—2. Marble.

**ବସୁଧ୍ୟା**—ଗ୍ରା. ବି. ( ସଂ. ବସୁଧା )—ବସୁଧା; ପୃଥିବୀ—
Basudhyā The earth.

**ବସୁନ୍ଧର**—ସଂ. ବି. ପୁଂ. ( ବସୁଂ+ଧୃ ଧାତୁ+କର୍ତ୍ତୃ. ଅ )—
Basundhara କୁବେରଙ୍କ ଅନୁଚରବିଶେଷ—An attendant of Kubera.

**ବସୁନ୍ଧରା**—ସଂ. ବିଣ. ( ବସୁ+ଧୃ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—
Basundharā ଧନଧାରିଣୀ; ବସୁଧା—Containg riches.

ସଂ. ବି—୧ । ବସୁଧା; ପୃଥିବୀ—1. The earth.

୨ । 'ବସୁନ୍ଧର'ର ସ୍ତ୍ରୀ—2. The wife of Kubera's attendant. ୩ । ଶ୍ୱଫଲକଙ୍କ କନ୍ୟା ଓ କୃଷ୍ଣତନୟ ଶାମ୍ବଙ୍କ ଭାର୍ଯ୍ୟା ( ହି. ଶ )—2. The wife of a Kṛushṇa's son Śāmba.

ଦେ. ବି—ବସୁଧାରା (ଦେଖ)—Basudhārā (See)

**ବସୁନ୍ଧରୀ**—ଦେ. ବି. ସ୍ତ୍ରୀ. ( ସଂ. ବସୁନ୍ଧରା )—ପୃଥିବୀ—
Basundharī

ଅସୁର ଭୟେ ବସୁନ୍ଧରୀ, ବ୍ରହ୍ମାଙ୍କୁ କଲା ସେ ଗୁହାରି ।
ଭୂପତି, ପ୍ରେମପଞ୍ଚାମୃତ ।

**ବସୁପତି**—ସଂ. ବି. ( ୬ଷ୍ଠୀ ତତ୍; ବସୁ+ପତି )—ରାଜା—
Basupati King.

ବସୁପତି ସମସ୍ତ ବସୁଂ ସେବବେ ସେବକ ମତି—
ଉଞ୍ଜ. ବୈଦେହୀଶବିଳାସ ।

**ବସୁପ୍ରଦ**—ସଂ. ବିଣ. ପୁଂ. ( ବସୁ+ପ୍ର+ଦା ଧାତୁ+କର୍ତ୍ତୃ. ଅ )—
Basuprada ବସୁଦ (ଦେଖ)—Basuda (See)
(ବସୁପ୍ରଦା—ସ୍ତ୍ରୀ) ସଂ. ବି. ପୁଂ—୧ । ବସୁଦ ( ଦେଖ )
1. Basuda (See). ୨ । ଶିବ (ହି. ଶ)—2. Śiba.
୩ । ସ୍କନ୍ଦଙ୍କ ଅନୁଚରବିଶେଷ (ହି. ଶ)—3. Name of an attendant of Kārttikeya.

**ବସୁମତୀ**—ସଂ. ବିଣ. ସ୍ତ୍ରୀ. (ବସୁ=ଧନ+ଅସ୍ତି ଅର୍ଥରେ ମତ୍+ସ୍ତ୍ରୀ. ଈ)—
Basumatī ଧନଶାଳିନୀ—Rich.
ସଂ. ବି—ପୃଥିବୀ—The earth.

**ବସୁମତୀ ଧର**—ଦେ. ବି. ( ବସୁମତୀ+ଧର )—ଭୂଧର; ପର୍ବତ—
Basumatī dhara Mountain.

ବସୁମତୀଧରରେ ଶ୍ରେଷ୍ଠ ସାର, ବୋଲଇଲ ରତି ସମବହାର ।
ଉଞ୍ଜ. ବୈଦେହୀଶବିଳାସ ।

**ବସୁ ମାତା**—ଦେ. ବି. (ସଂ. ବସୁମତୀ)—ପୃଥିବୀ ( ମାତୃ ଦେବତାରୂପେ
Basu mātā କଳ୍ପିତା—The earth (goddess).
বসুমাঈ बसुधामायी

**ବସୁମାତା ଗାଧୁଆ**—ଦେ. ବି—ରଜସଂକ୍ରାନ୍ତିର ପରବର୍ତ୍ତୀ ୩ୟ ଦିବସ
Basumātā gādhuā ପ୍ରଭାତରେ ସମ୍ପାଦିତ ବସୁମତୀ ଦେବୀଙ୍କର ସ୍ନାନ ଉତ୍ସବବିଶେଷ; ଠାକୁରାଣୀଗାଧୁଆ—
A ceremony performed on the 3rd day after Raja Saṁkrānti.

[ ଦ୍ର—ଆଷାଢ଼ ସଂକ୍ରାନ୍ତିରେ ପୃଥିବୀ ବା ବସୁମାତା ରଜସ୍ୱଳା ହୁଅନ୍ତି ଏବଂ ୩ ଦିନ ପରେ ଘରେ ଗୋଟିଏ ସ୍ଥାନ ଲିପା ହୋଇ ମହାଲକ୍ଷ୍ମୀଙ୍କୁ ପୂଜା ଓ ବସୁମାତାଙ୍କୁ ସ୍ନାନ କରାଇବା ବିଧି ସମ୍ପାଦିତ ହୁଏ । ]

**ବସୁମାନ୍**—ସଂ. ବିଣ. ପୁଂ. ( ବସୁ=ଧନ+ମତ୍; ୧ମା. ୧ବ )—
Basumān (ବସୁମାତା—ସ୍ତ୍ରୀ) ଧନବାନ୍—Rich.
ସଂ. ବି—୧ । ରାଜା—1. King. ୨ । ନୃପବିଶେଷ—2. Name of a King. ୩ । ଉତ୍ତର ଦେଶୀୟ ପୌରାଣିକ ପର୍ବତବିଶେଷ (ହି. ଶ )—3. Name of a mythological mountain.

**ବସୁରେତା**—ସଂ. ବି. ( ବସୁ+ରେତସ୍; ୧ମା. ୧ବ )—
Basuretā ୧ । ଅଗ୍ନି (ହି. ଶ)—1. Fire.
୨ । ଶିବ (ହି. ଶ)—2. Śiba.

**ବସୁଲ**—ସଂ. ବି. (ବସୁ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ)—
Basula ଦେବ (ହି. ଶ)—Deity.

**ବସୁ ଶ୍ରେଷ୍ଠ**—ସଂ. ବି. ( ୭ମୀ ତତ୍; ବସୁ+ଶ୍ରେଷ୍ଠ)—ରୌପ୍ୟ (ହି. ଶ)—
Basu śreshṭha Silver.

**ବସୁସାର—ସ. ବି.** (ବସୁ+ସାର+ଅ)—କୁବେରପୁରୀ; ଅଳକାପୁରୀ—
Basusārā The capital of Kubera.

**ବସୁସ୍ଥଳୀ—ସ. ବି. ସ୍ତ୍ରୀ.** (୬ଷ୍ଠୀ ତତ୍; ବସୁ+ସ୍ଥଳୀ)—
Basusthalī ୧ । ଧନାଗାର—1. Treasury. ୨ । କୁବେର ଭବନ—2. The abode of Kubera. ୩ । କୁବେର ନଗରୀ; ଅଳକା—3. The capital of Kubera; Alakā.

**ବସୂକ—ସ. ବି**—ଅଗସ୍ତ୍ୟ ଗଛ (ହି. ଶ)—
Basūka Sesbania Grandiflora.

**ବସୂରା—ସ. ବି.** (ବସୁ+ର ଧାତୁ+ଅ+ସ୍ତ୍ରୀ· ଆ)—ବେଶ୍ୟା—
Basūrā Harlot; prostitute (Apte).

**ବସେଇବା—ଦେ. କ୍ରି**—ବସାଇବା (ଦେଖ)—
Baseibā Basāibā (See)

**बसान बैठाना** ପ୍ରାଦେ. (ଗଞ୍ଜାମ) ବି—ବାଳକାର ପ୍ରଥମେ ରଜସ୍ୱଳା ହେବା ଉପଲକ୍ଷେ ସମ୍ପାଦିତ ଉତ୍ସବବିଶେଷ—A ceremony performed in connection with a girl being menstruated for the first time.

[ ଦ୍ର—କୌଣସି ବାଳିକା ଋତୁମତୀ ହେଲେ ତା ଶାଶୁଘରୁ ଦୁଇ ଚାରି ଜଣ ଅଧବା ସ୍ତ୍ରୀ ନୂଆ ଲୁଗା, ହଳଦୀ, ସିନ୍ଦୁର ପ୍ରଭୃତି ସାଙ୍ଗରେ **ଅଣି ଆସନ୍ତି** । ଗୋଟିଏ ଘରେ ନୂଆ ଧାନ, ଚିଉଡ଼ା ପ୍ରଭୃତିରେ କୋଠି କରାଯାଇ ସେହି କୋଠି ମଧ୍ୟରେ ନବଯୁବତୀକୁ ବସାଇ ଦିଆଯାଏ ଏବଂ ସଙ୍ଗେ ସଙ୍ଗେ **ପୁଅଣି** ବା ଆଶୀର୍ବାଦ ଘର କେଉଁ ଦିନ ହେବ ସ୍ଥିର କରାଯାଏ । ସାଧାରଣତଃ ଏହି **'ବସେଇବା'**ର ସପ୍ତମଦିବସରେ ସାତପୁଅଣି ବା **ଆଶୀର୍ବାଦ** ଘର ହୁଏ । କୌଣସି ଅସୁବିଧା ଥିଲେ କନ୍ୟାର ପିତା ବା ଅଭିଭାବକ ଏହି ସମୟରେ ପ୍ରସ୍ତାବ ପକାଇ କନ୍ୟାକୁ ଶାଶୁଘରକୁ ପଠାଇବା ପାଇଁ ଛଅମାସ ବା ବର୍ଷେ ସମୟ ନିଅନ୍ତି । ]

**ବସ୍ତ୍ (ଧାତୁ)—ସ**—୧ । ହିଂସା କରିବା; ବଧ କରିବା—1. To
Bast (root) hurt; to kill (Apte). ୨ । ଭିକ୍ଷା କରିବା—2. To beg; to ask; to solicit (Apte). ୩ । ଗତି କରିବା—3. To move (Apte). ୪ । ଯନ୍ତ୍ରଣା ଦେବା—4. To torment (Apte).

**ବସ୍ତ—ସ· ବି**—୧ । (ବସ୍ତ ଧାତୁ=ବଧ କରିବା+କର୍ମ. ଅ)—ବକରା;
Basta ଛେଳି (ହି. ଶ.)—1. Goat. ୨ । (ବସ ଧାତୁ+ଅଧି ତ)—ଆବାସ; ଗୃହ—2. An abode (Apte).

**ବସ୍ତକ—ସ. ବି**—କୃତ୍ରିମ ଲବଣ—
Bastaka Artificial salt (Apte).

**ବସ୍ତବ୍ୟ—ସ. ବିଣ.** (ବସ୍ ଧାତୁ=ବାସ କରିବା+କର୍ମ. ତବ୍ୟ)—
Bastabya ବାସୋପଯୋଗୀ—Fit for residence.

**ବସ୍ତର—ପ୍ରାଦେ.** (ସମ୍ବଲପୁର) ବି. (ସ.°ବସ୍ତ୍ର; ଭୁଲ. ହି. ବସ୍ତର)—
Bastar ବସ୍ତ୍ର; ଲୁଗା—Cloth.

**ବସ୍ତର—ଗ୍ରା. ବି.** (ସ. ବସ୍ତ୍ର)—ବସ୍ତ୍ର; ଲୁଗା—
Bastara Cloth.

**ଦେ. ବି.** (ନାମ)—ଉତ୍କଳୀୟ ଗଡ଼ଜାତବିଶେଷ—
Name of an Oriya State.

[ ଦ୍ର—ଏହା ମଧ୍ୟପ୍ରଦେଶର ଉତ୍ତର ପଶ୍ଚିମର ଶେଷ କୋଣରେ ଅବସ୍ଥିତ । ଏହାର ଦକ୍ଷିଣରେ ମାନ୍ଦ୍ରାଜ ପ୍ରଦେଶ, ଉତ୍ତରରେ ଛତିଶଗଡ଼, ଦକ୍ଷିଣରେ ହାଇଦ୍ରାବାଦ ଓ ପଶ୍ଚିମରେ ମଧ୍ୟପ୍ରଦେଶର ମୋଗଲବନ୍ଦି, ଏହା କଳାହାଣ୍ଡି ଓ ଜୟପୁରକୁ ଲାଗିଛି । ଏହାର ରାଜବଂଶ ଓଡ଼ିଆ । ଦଳପତି ଦେବ ମହାରାଜ ୨୦୦ ବର୍ଷ ତଳେ ଏ ରାଜ୍ୟ ବସାଇଥିଲେ । ଏହାର ରାଜଧାନୀ ଜଗଦଲପୁର ବା ବସ୍ତର; ଏହା ଗୋଦାବରୀ ନଦୀର ଇନ୍ଦ୍ରାବତୀ ନାମକ ଗୋଟିଏ ଶାଖା ନଦୀର କୂଳରେ ଅବସ୍ଥିତ । ଏ ରାଜ୍ୟର କ୍ଷେତ୍ରଫଳ ୧୩୦୦୦ ବର୍ଗମାଇଲ, ଏଥିମଧ୍ୟରୁ କୃଷିଜମି ୧୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୪ ଲକ୍ଷ । ଏହି ବସ୍ତର ରାଜ୍ୟ ଓ ଜୟପୁରର ପାହାଡ଼ମାନ ରାମାୟଣବର୍ଣ୍ଣିତ କିଷ୍କିନ୍ଧ୍ୟାର ଅଂଶ ବୋଲି ଅନୁମାନ କରାଯାଏ । ବସ୍ତର ପ୍ରାଚୀନ ଦଣ୍ଡକାରଣ୍ୟ ଏବଂ ତ୍ରେତାଯୁଗରେ ଅଗସ୍ତ୍ୟ ଋଷି ଏଠାରେ ବାସ କରୁଥିଲେ । ]

**ବସ୍ତା—ବୈଦେ. ବି.** (ଫା. ବସ୍ତା=ବସ୍ତାନ; ଭୁଲ. ସ. ବସ୍ତ୍ର)—୧ ।
Bastā ବୋରା; ଅଖାର ବଡ଼ ମୁଣା—1. Gunny-bag; bale;
बोरा, बस्ता bag. ୨ । ଗଣ୍ଠିଲି ବାନ୍ଧିବାରେ ବ୍ୟବହୃତ ମୋଟାଲୁଗା—
**बस्ता; बोरा** 2. Gunny. ୩ । ବାଲେଶ୍ୱର ଜିଲ୍ଲାର ଗୋଟିଏ ଥାନା ଓ କ୍ଷୁଦ୍ର ନଗର—3. Name of a small town and a police station in Balasore.

**ବସ୍ତାନି—ଦେ. ବି.** (ଫା. ବସ୍ତା)—ଗୁଡ଼ିଏ ଲୁଗା ବା କାଗଜପତ୍ର
Bastāni ଏକାଠି ବନ୍ଧା ଯାଇଥିବା କନାର ପୁଡ଼ା—A cloth-
बस्तानी **बस्ता; बस्तार** packet of cloths or papers.

ମୁନ୍ସି ରଘୁଧର ଦାସ ବଗଲ ବସ୍ତାନି ଫିଟାଇ ସେରସ୍ତା ମେଲ କଲେ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ବସ୍ତାପଚା—ଦେ. ବିଣ**—ଯେଉଁ ମାଲ ବସ୍ତାରୁ ନ ବାହାରୁଣୁ ପଚି ନଷ୍ଟ
Bastāpachā ହୋଇଥାଏ—(article) Damaged while
बोरापचा **सडापचा** long kept in the bale.

**ବସ୍ତାବନ୍ଦ (ନ୍ଦି)—ଦେ. ବି.** (ଫା. ବସ୍ତା+ସ. ବନ୍ଧନ)—ଧାନ ଚାଉଳ-
Bastāband(ndi) ଆଦି ବସ୍ତୁକୁ ଭିନ୍ନ ଭିନ୍ନ ବସ୍ତାରେ ପୂରାଇ
बस्ताबन्द(न्दी) ବାନ୍ଧିବା—Act of making of articles
**बोराबंदी** into bags or bales.

ଦେ. ବିଣ—ଯାହା ବସ୍ତାରେ ବନ୍ଦ କରାଯାଇ ଅଛି—
Baled; made up into bales.

**ବସ୍ତି(ସ୍ତୀ)—ସ. ବି.** (ବସ୍ ଧାତୁ=ବାସ କରିବା, ଆଚ୍ଛାଦନ କରିବା+
Basti(stī) ଅଧି+ତି+ଈ)—୧ । ନାଭିର ନିମ୍ନଦେଶ; ତଳପେଟ—
1. Abdomen; pelvis. ୨ । (+କରଣ+ତି) ବସ୍ତ୍ରର ଦଶୀ—2. The ends of a cloth. ୩ । (+ଅଧିକରଣ+ତି) ବସତି; ବାସ—3. Residence. ୪ । ଗ୍ରାମର ଭିଟା—4. Village site. ୫ । ପଲ୍ଲୀ; ଗ୍ରାମ—5. Village; hamlet. ୬ । ନଗର—6 Town. ୭ । (+କର୍ମ. ତି) ମୂତ୍ରାଶୟ—7. Bladder; kidney. ୮ । (ଯୋଗରେ) ଏକପ୍ରକାର ସାଧନା; ବସ୍ତିଶୋଧନବିଶେଷ—

8. A sort of external or bodily purification (in Joga). ୯ । ପିଚକାରୀ (ହି.ଶ.)— 9. Syringe.

ଦେ. ବି—୧ । ସାହି; ଏକଜାତୀୟ ଲୋକଙ୍କର ବାସସ୍ଥାନ—
ବସ୍ତୀ 1. A hamlet consisting of several houses
बस्ती of people of the same class. ୨ । ନିମ୍ନଶ୍ରେଣୀର ଓ ଅତି ଗରୀବ ବ୍ୟକ୍ତିମାନଙ୍କର ଘନସନ୍ନିବିଷ୍ଟ ବାସଗୃହଶ୍ରେଣୀ— 2. Slum.

ପ୍ରାଦେ. (ସମ୍ବଲପୁର) ବି—ଗୃହଜମି ଜମି; ଘରବାଡ଼ି ରହିଥିବା ଜମି—Village land; homestead holding.

**ବସ୍ତିଆ**—ଦେ. ବିଣ—କୌଣସି ବସ୍ତି ବା ପଲ୍ଲୀରେ ବାସ କରୁଥିବା—
Bastiā Resident of a particular hamlet.

ବସ୍ତୀଓ୍ୱାଲା ଦେ. ବି—ଶୂଦ୍ରମାନଙ୍କର ବଂଶୋପାଧିବିଶେଷ—
**बस्तीवाला** Family title of certain Sūdras.

**ବସ୍ତିକର୍ମ**—ସଂ. ବି. (ବୈଦ୍ୟକ)—ଲିଙ୍ଗେନ୍ଦ୍ରିୟ ଓ ଗୁହ୍ୟେନ୍ଦ୍ରିୟ ଆଦିର ମାର୍ଗ
Bastikarma ପିଚକାରୀଦ୍ୱାରା ପରିଷ୍କାର କରିବା କର୍ମ—The act of cleansing the bowels.

**ବସ୍ତିମଳ**—ସଂ. ବି. (୬ଷ୍ଠୀ ତତ୍; ବସ୍ତି+ମଳ)—ମୂତ୍ର—
Bastimala Urine.

**ବସ୍ତି ଶୋଧନ**—ସଂ. ବି. (ବହୁବ୍ରୀହି; ବସ୍ତି+ଶୋଧନ)—୧ । ଯେଉଁ
Basti śodhana ଔଷଧଦ୍ୱାରା ମୂତ୍ରାଶୟରୁ ବିଶେଷ ପରିମାଣରେ ମୂତ୍ର ନିର୍ଗତ ହୁଏ—1. A diuretic (medicine). ୨ । ମଦନଫଳ ଓ ବୃକ୍ଷ (ଦେଖ)—2. Madana fruit and tree (See)

**ବସ୍ତୁ**—ସଂ. ବି. (ବସ୍ ଧାତୁ=ଥିବା, ହେବା+କର୍ତ୍ତୃ. ତୁ)—୧ । ଦ୍ରବ୍ୟ;
Bastu ପଦାର୍ଥ—1. Thing; object; article; substance. ୨ । ସତ୍ୟ—2. Truth; reality. ୩ । ପ୍ରକୃତ ପଦାର୍ଥ; ଅସ୍ତିତ୍ୱବିଶିଷ୍ଟ ବସ୍ତୁ — 3. Actual or existing thing; matter; a reality. ୪ । ସାର—4. Essence; pith. ୫ । ଉପକରଣ; ଉପାଦାନ—5. Materials; ingredients; stuff of which a thing is made. ୬ । ଦ୍ରବ୍ୟର ପ୍ରାକୃତିକ ଗୁଣ— 6. Natural property of a thing. ୭ । ନାଟକବର୍ଣ୍ଣିତ ବିଷୟ ବା ଗଳ୍ପ—7. The plot of a drama. ୮ । ବୃତ୍ତାନ୍ତ—8. Circumstance. ୯ । ସତ୍ପାତ୍ର— 9. Fit person. ୧୦ । ଧନ; ସମ୍ପତ୍ତି—10. Wealth; possessions; property (Apte). ୧୧ । କୌଣସି ବିଷୟର ପୂର୍ବରୁ କଳ୍ପିତ ଆକାର—11. Plan; design. ୧୨ । ନାଟକାଦିର କଥାବସ୍ତୁ (ହି. ଶ.)—12. The plot of a drama or poem or novel.

[ ଦ୍ର—ଏହା ୨ ପ୍ରକାର; ଆଧିକାରିକ, ଯହିଁରେ ନାୟକର ଚରିତ ଥାଏ ଓ ପ୍ରାସଙ୍ଗିକ, ଯହିଁରେ ନାୟକ ବ୍ୟତୀତ ଅନ୍ୟ କାହାର ଚରିତ ବର୍ଣ୍ଣିତ ହୋଇଥାଏ—ହି. ଶ. ]

ଗ୍ରା. ବି. (ସଂ.ବସ୍ତି)—(ସ୍ତ୍ରୀମାନଙ୍କ ବ୍ୟବହୃତ)(ଗୁହ୍ୟ ବା ଯୋନି)— (euphemism) Vagina; female organ.

[ ଦ୍ର—କଥା ପ୍ରସଙ୍ଗରେ ସ୍ତ୍ରୀମାନେ 'ଯୋନି' ଶବ୍ଦର ଅଶ୍ଳୀଳ ଓଡ଼ିଆ ପ୍ରତିଶବ୍ଦ ବ୍ୟବହାର ନ କରି ବସ୍ତୁ ଶବ୍ଦ ବ୍ୟବହାର କରିଥାଆନ୍ତି । ]

**ବସ୍ତୁକ**—ସଂ. ବି. (ବସ୍ ଧାତୁ+ଉକ୍, ତ ଆଗମ)—ବଥୁଆ (ଦେଖ)
Bastuka Bathuā (See)

**ବସ୍ତୁଗତ୍ୟା**—ସଂ. କ୍ରି. ବିଣ. (ବସ୍ତୁ=ପଦାର୍ଥ+ଗତ୍ୟା=ଗତିଦ୍ୱାରା)—
Bastugatyā ବସ୍ତୁତଃ; ଫଳତଃ; କାର୍ଯ୍ୟତଃ; ପ୍ରକୃତରେ— Naturally; virtually; as a matter of fact; in point of fact.

**ବସ୍ତୁତଃ**—ସଂ. କ୍ରି. ବିଣ. (ବସ୍ତୁ+ତସ୍)—୧ । ଫଳତଃ; ପ୍ରକୃତରେ;
Bastutaḥ ଯଥାର୍ଥରେ—1. Actually; really; in fact; virtually. ୨ । ନିଶ୍ଚେ—2. Of course.

**ବସ୍ତୁତତ୍ତ୍ୱ**—ସଂ. ବି—୧ । ପଦାର୍ଥବିଜ୍ଞାନ—1. Physics; Natural
Bastutattwa science; physical Science. ୨ । ଈଶ୍ୱର ଏହି ଜଗତରେ ଏକମାତ୍ର ସାର ବସ୍ତୁ ଏହି ଜ୍ଞାନ— 2. The knowledge that God is the only essence in the creation.

**ବସ୍ତୁ ନିର୍ଦ୍ଦେଶ**—ସଂ. ବି. (୬ଷ୍ଠୀ ତତ୍)—କାବ୍ୟ ନାଟକରେ ମଙ୍ଗଳା-
Bastu nirddeśa ଚରଣର ଏକ ଭେଦ, ଯହିଁରେ କଥାବସ୍ତୁର ଆଭାସ ଦିଆଯାଇ ଥାଏ—The invocation at the beginning of a drama or epic or lyric in which there is indication of the plot.

**ବସ୍ତୁବାଦ**—ସଂ. ବି—ଦାର୍ଶନିକ ସିଦ୍ଧାନ୍ତବିଶେଷ; ଜଡ଼ବାଦ —
Bastubāda Materialism; materialistic theory.

**ବ ବିଜ୍ଞାନ**—ସଂ. ବି—ବସ୍ତୁ ତତ୍ତ୍ୱ (ଦେଖ)
Bastu bijnāna Bastu tattwa (See)
(ବସ୍ତୁ ବିଶ୍ୱର—ଅନ୍ୟରୂପ)

**ବସ୍ତୁ ମାତ୍ର**—ସଂ. ବି—କୌଣସି ବିଷୟର ସ୍ଥୂଳ ବର୍ଣ୍ଣନା (ଯହିଁରେ ସୂକ୍ଷ୍ମ
Bastu mātra ବର୍ଣ୍ଣନା ପରେ କରାଯିବ)—The mere outline or skeleton of any subject (to be afterwards developed) (Apte)

**ବସ୍ତୂତ୍ଥାପନ(ନା)**—ସଂ. ବି. (୬ଷ୍ଠୀ ତତ୍; ବସ୍ତୁ+ଉତ୍ଥାପନ)—
Bastūtthāpana(nā) ନାଟକରେ ଯାଦୁକରୀ ବା ମନ୍ତ୍ରତନ୍ତ୍ରଦ୍ୱାରା କୌଣସି ବିଷୟର ଅବତାରଣା—The production of any incident in a drama by means of magic or conjuration. (Apte).

**ବସ୍ତୂପମା**—ସଂ. ବି—ଉପମାଳଙ୍କାରବିଶେଷ —
Bastūpamā A kind of simile.

[ ଦ୍ର—ଯେଉଁଠାରେ ଉପମାନ ଓ ଉପମେୟ ବସ୍ତୁଙ୍କର ସାଧାରଣ ଧର୍ମର ଉଲ୍ଲେଖ ବା ପ୍ରକାଶ ହୋଇ ନ ଥାଏ ତାକୁ ବସ୍ତୂପମା ବୋଲି-

ଯାଏ । ଯଥା—ସ୍ୱଭାବ ସର ବଦନ, ନେତ୍ର ନୀଳୋତ୍ପଳ, ଉପମାନ ଓ ଉପମେୟରୂପେ ପ୍ରଯୁକ୍ତ ଦୁଇଟି ବାକ୍ୟର ସାଧାରଣ ଧର୍ମ ଭିନ୍ନ ଭିନ୍ନ ପଦଦ୍ୱାରା କଥିତ ହେଲେ ତାକୁ ପ୍ରତିବସ୍ତୂପମା ବୋଲାଯାଏ । ]

ବସ୍ତ୍ୟ—ସଂ. ବି. ( ବସ୍ ଧାତୁ=ବାସ କରିବା + ଅଧିକରଣରେ ତ୍ୟ; Bastya ଯହିଁରେ ବାସ କରାଯାଏ )—ବାସସ୍ଥାନ; ଆବାସ; ଗୃହ—Residence; abode; house.

ବସ୍ତ୍ର—ସଂ. ବି. (ବସ୍ ଧାତୁ=ଆଚ୍ଛାଦନ କରିବା + କରଣ. ତ୍ର; ଯାହାଦ୍ୱାରା Bastra ଶରୀର ଆଚ୍ଛାଦନ କରାଯାଏ)—୧ । ବସନ; ଲୁଗା—1. Cloth. ୨ । ପୋଷାକ; ପରିଚ୍ଛଦ—2. Dress; apparel; garment.

ବସ୍ତ୍ର କୁଟ୍ଟିମ—ସଂ. ବି. ( ୬ଷ୍ଠୀ ତତ୍; ବସ୍ତ୍ର+କୁଟ୍ଟିମ )—Bastra kuṭṭima ୧ । ପଟ୍ଟବାସ; ସ୍ୱଉଟି; ତମ୍ବୁ—1. Tent. ୨ । ଅତପତ୍ର; ଛତା—2. Umbrella.

ବସ୍ତ୍ର ଗୃହ—ସଂ. ବି. ( ୬ଷ୍ଠୀ ତତ୍; ବସ୍ତ୍ର+ଗୃହ )—Bastra gṛuha ତମ୍ବୁ; ସ୍ୱଉଟି; ପଟ୍ଟବାସ—Tent. (ବସ୍ତ୍ରାଗାର—ଅନ୍ୟରୂପ)

ବସ୍ତ୍ର ଗ୍ରନ୍ଥି—ସଂ. ବି. ( ୬ଷ୍ଠୀ ତତ୍; ବସ୍ତ୍ର+ଗ୍ରନ୍ଥି )—Bastra granthi ପିନ୍ଧିଥିବା ଲୁଗାର ଗଣ୍ଠି; ନୀବି; କଛଗଣ୍ଠି—Knot of the lower garment.

ବସ୍ତ୍ର ନିର୍ଣ୍ଣେଜକ—ସଂ. ବି. ( ୬ଷ୍ଠୀ ତତ୍ )—ଧୋବା—Bastra nirṇṇejaka Washerman (Apte). (ବସ୍ତ୍ରନିର୍ଣ୍ଣେଜିକା—ଅନ୍ୟରୂପ)

ବସ୍ତ୍ର ପୁତ୍ରିକା—ସଂ. ବି. ସ୍ତ୍ରୀ. (ବସ୍ତ୍ର+ପୁତ୍ରିକା)—କନାର ପିତୁଳା—Bastra putrikā A doll made up of rags.

ବସ୍ତ୍ର ପୂତ—ସଂ. ବିଣ. ( ୩ୟା ତତ୍; ବସ୍ତ୍ର+ପୂତ )—Bastra pūta କପଡ଼ା ଛାଣ୍ କରାଯାଇଥିବା; କନାରେ ଛଣା ଯାଇଥିବା—Filtered through a cloth.

ବସ୍ତ୍ର ବିଳାସ—ସଂ. ବି. (୭ମୀ ତତ୍)—ପୋଷାକରେ ଆଡ଼ମ୍ବର—Bastra biḷāsa Foppery in dress (Apte).

ବସ୍ତ୍ର ଭୂଷଣ—ସଂ. ବି. ( ଦ୍ୱନ୍ଦ୍ୱ; ବସ୍ତ୍ର+ଭୂଷଣ; ସଦ୍ୱତର )—ଲୁଗା ଓ Bastra bhūshaṇa ଅଳଙ୍କାର—Dress and ornaments

ବସ୍ତ୍ର ଭେଦକ—ସଂ. ବି. ( ୬ଷ୍ଠୀ ତତ୍ )—ଦରଜି—Bastra bhedaka Tailor (Apte) ( ବସ୍ତ୍ର ଭେଦୀ—ଅନ୍ୟରୂପ )

ବସ୍ତ୍ର ଯୋନି—ସଂ. ବି. ( ୬ଷ୍ଠୀ ତତ୍ )—କୌଣସି ବସ୍ତ୍ରର ଉପାଦାନ Bastra joni (ଯଥା—ତୁଳା, ପାଟ, ରେଶମ)—The material of cloth.

ବସ୍ତ୍ର ରଞ୍ଜନ—ସଂ. ବି. (ବହୁବ୍ରୀହି; ଯାହାଦ୍ୱାରା ବସ୍ତ୍ରର ରଞ୍ଜନ ହୁଏ)—Bastra rañjana କୁସୁମ ଫୁଲ—Safflower (Apte).

ବସ୍ତ୍ରାଗାର—ସଂ. ବି. ( ୬ଷ୍ଠୀ ତତ୍; ବସ୍ତ୍ର+ଆଗାର )—ଯେଉଁ ଘରେ Bastrāgāra ଲୁଗାପଟା ରଖାଯାଏ—War-drobe; a room in which dress is kept.

ବସ୍ତ୍ରାଞ୍ଚଳ—ସଂ. ବି. (୬ଷ୍ଠୀ ତତ୍; ବସ୍ତ୍ର+ଅଞ୍ଚଳ)—ଲୁଗାର କାନି; ପଣନ୍ତ Bastrāñchaḷa କାନି—The hem of a garment; (ବସ୍ତ୍ରାନ୍ତ—ଅନ୍ୟରୂପ) the end of a cloth.

ବସ୍ତ୍ରାଭାବ—ସଂ. ବି. ( ୬ଷ୍ଠୀ ତତ୍; ବସ୍ତ୍ର+ଅଭାବ )—ଲୁଗାର ଅଭାବ—Bastrābhāba Want of cloth.

ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍—ସଂ. ବାକ୍ୟ—ଶାସ୍ତ୍ରରେ ଯେଉଁଠାରେ Bastrābhābe sūtraṁ dadyāt ଖଣ୍ଡିଏ ଲୁଗା ଦେବାର ବିଧି ଅଛି, ଲୁଗା ଖଣ୍ଡେ ଦେବାକୁ ଅକ୍ଷମ ବ୍ୟକ୍ତି ସେ ସ୍ଥଳରେ ଖଣ୍ଡିଏ ନୂଆ ସୂତା ଦେଇ ଶାସ୍ତ୍ର ବିଧାନକୁ ରକ୍ଷା କରେ ଏହି ଭଳି ନ୍ୟାୟରେ ଏ ବାକ୍ୟ ବ୍ୟବହୃତ ହୁଏ—A sanskrit sentence used in cases where the direction for giving a piece of cloth is observed by substituting a piece of thread in its place.

ବସ୍ଥା—ସଂ. ବି. (ଅବ୍+ସ୍ଥା ଧାତୁ+ଅ+ଆ' —ଅବସ୍ଥା; ଦଶା—Basthā Condition.

ବସ୍ନ—ସଂ. ବି. (ବସ୍ ଧାତୁ+ନ)—୧ । (+କର୍ମ. ନ) ଭଡ଼ା; ମଜୁରି—Basna 1. Hire; wages (Apte). ୨ । (+ଭାବ. ନ) ବାସ କରିବା—2. Dwelling; abiding (Apte). ୩ । ( +କରଣ. ନ ) ଧନ; ସମ୍ପତ୍ତି—3. Wealth. ubstance (Apte). ୪ । (+କର୍ମ. ନ) ଲୁଗା—4. Cloth. ୫ । ଚମଡ଼ା—5. A skin (Apte). ୬ । ମୂଲ୍ୟ—6. Price (Apte). ୭ । ମୃତ୍ୟୁ—7 Death (Apte)

ବସ୍ନନ—ସଂ. ବି. (ବସ୍ ଧାତୁ+ନନ)—କମରପଟ୍ଟି; କମରବନ୍ଧ—Basnana Girdle; zone (Apte)

ବସ୍ନସା—ସଂ. ବି. (ବସ୍ ଧାତୁ+କରଣ. ନସ୍+ଆ) —ସ୍ନାୟୁ; ପେଶୀ—Basnasā Tendon; nerve (Apte).

ବସ୍ନିକ—ସଂ. ବିଣ. ( ବସ୍ନ+ଇକ )—ଭଡ଼ା ବା ମଜୁରିଦ୍ୱାରା ଗୃହୀତ Basnika (ବ୍ୟକ୍ତି)—Mercenary; hireling.

ବହ୍ (ଧାତୁ)—ସଂ—୧ । ବହନ କରିବା—1. To carry. Bah (root) ୨ । ପ୍ରବାହିତ ହେବା; ବହିବା—2. To flow; to blow.

[ ଦ୍ର—ଏଥିରେ ତ ପ୍ରତ୍ୟୟ ହୋଇ ବିଶେଷଣରେ ଊଢ଼ ଓ ତି ପ୍ରତ୍ୟୟ ହୋଇ ବିଶେଷ୍ୟରେ ଊଢ଼ି ହୁଏ । ]

୩ । ଚଳାଇବା— . To drive; to propel (Apte) ୪ । ବାଟ କଢ଼ାଇ ନେବା—4. To lead on. ୫ । ବିସ୍ତାରିତ କରିବା—5. To spread; to diffuse. ୬ । ଧାରଣ କରିବା—6. To have; to possess. ୭ । ଯେନି ପଳେଇଯିବା; ହରଣ କରିବା; ଚୋରି କରି ନେବା—7. To take away; to rob; to carry off. ୮ । ପିନ୍ଧିବା—8. To wear. ୯ । ଗର୍ଭ ଧାରଣ କରିବା—9. To be with child. ୧୦ । ଟାଣିବା—10. To draw. ୧୧ । ଚେଷ୍ଟ ଧରିବା—

11. To sustain; to support. ୧୨ । ବିବାହ କରିବା—12. To marry. ୧୩ । ସହ୍ୟ କରିବା; ଅନୁଭବ କରିବା—13. To bear; to suffer; to experience. ୧୪ । ନିଶ୍ୱାସ ମାରିବା—14. To breathe (Apte).

ବହ - ସଂ. ବିଣ. ପୁଂ. (ବହ୍ ଧାତୁ+କର୍ତ୍ତୃ. ଅ) ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ୍ୟ Baha ଯଥା—ଅଙ୍ଗବହ)—ଯେ ବହନ କରେ—Carrying (ବହା—ସ୍ତ୍ରୀ) anything.
ସଂ. ବି.—(ବହ୍ ଧାତୁ+କର୍ତ୍ତୃ. ଅ)—୧ । ଯାନ; ବାହନ—1. Conveyance. ୨ । ବୃଷସ୍କନ୍ଧ—2. The shoulder of a bull. ୩ । ପଥ; ରାସ୍ତା—3. Road; path. ୪ । ଘୋଡ଼ା—4. Horse; (Apte). ୫ । ବାୟୁ—5. Air; wind (Apte) ୬ । ନଦୀ—6. River.—୭ । ବାହୁ—7. Arm.
୮ । (+କର୍ମି.ଅ) ପରିମାଣବିଶେଷ; ଚାରି ଦ୍ରୋଣ ପରିମାଣ—8 .A measure equal to 4 Dronas.
୯ । (+ଭାବ. ଅ)—ବହନ—9. Bearing; carrying; supporting.

ବହକ—ଦେ. ବି.—୧ । ଆଧିକ୍ୟ—1. Excess.
Bahaka ୨ । ଅନ୍ୟାୟ—2. Wrong.

ବହକା—ଦେ. ବିଣ. (ସଂ. ବହୁଳ)—୧ । ବଳକା; ଅଧିକନ୍ତୁ—Bahakā 1. Excessive; spare
ବେଶୀ ୨ । ଅଧିକା—2. Outstanding.
बढाहुआ ୩ । ଉଦ୍‌ବୃତ୍ତ—3. In excess.

ବହକା(କେ)ଇବା—ଦେ. କ୍ରି. ('ବହକିବା'ର ଣିଜନ୍ତ ରୂପ)—Bahakā(ke)iba ୧ ପ୍ରୟୋଜନରୁ ଅଧିକ କରି ବଞ୍ଚାଇବା; বাঁচান ବଳାଇବା—1. To cause anything to be in बढाकर रखना excess. ୨ । ଲୋକକୁ ଭୁଲାଇବା; ଭଣ୍ଡାଇବା ভোলান ফুসলাইবা—2. To inveigle. ୩ । ଲୋକକୁ ଲକ୍ଷ୍ୟ-बहकाना ଭ୍ରଷ୍ଟ କରିବା—3. To cause a person to miss his aim.

ବହକିବା—ଦେ. କ୍ରି.—୧ । ବଳିଯିବା; ବଳି ପଡ଼ିବା; ଅଧିକା ହେବା—Bahakiba 1. To be in excess. ୨ । ଅତିକ୍ରମ କରିବା—উপছে পড়া 2. o exceed. ୩ । ଲକ୍ଷ୍ୟଭ୍ରଷ୍ଟ ହେବା—3. To बढना miss one's aim. ୪ । ଭ୍ରମ ପ୍ରମାଦ କରିବା—ভুলকরা बहकना 4. To err.

ବହକିଯିବା—ପ୍ରାଦେ.—(ଯାଜପୁର) କ୍ରି.—ଭୁଲିଯିବା—Bahaki jiba To forget.

ବହଙ୍ଗର—ପ୍ରାଦେ. (ସମ୍ବଲପୁର) ବିଣ.—୧ । ବଳବାନ୍—Bahangar 1. Strong.
୨ । ଅଂସଳ; ହୃଷ୍ଟପୁଷ୍ଟ—2. Stout; muscular.

ବହତ—ସଂ. ବି.—(ବହ୍ ଧାତୁ+କର୍ତ୍ତୃ. ଅତ)—୧ । ବାୟୁ—Bahati 1. Air. ୨ । ବଳଦ—2. Ox. ୩ । ସଚିବ—3. Minister.
ଗ୍ରା. ବି.—(ସଂ. ବର୍ତ୍ତି)—ପ୍ରଦୀପର ବତି; ବଳିତା—The wick of a lamp.

ବହତୀ—ସଂ. ବି. (ବହ୍ ଧାତୁ+କର୍ତ୍ତୃ. ଅତ+ଈ)—ନଦୀ—Bahatī River

ବହତୁ—ସଂ. ବି. (ବହ୍ ଧାତୁ=ବହନ କରିବା+କର୍ତ୍ତୃ. ଅତୁ)—Bahatu ୧ । ଦୂତ—1 Messenger.
ବହତୁ ବହନ ଶତାନନ ହେଲେ ।
ଉଚ୍ଚ. ବୈଦେହୀଶବିଳାସ ।
୨ । ପଥିକ—2. Traveller. ୩ । ବୃଷଭ; ବଳଦ—3. Bull; ox. ୪ । (ଭାବ. ଅତୁ) (ବୈଦିକ) ବିବାହ ପରେ ବିବାହିତା ପତ୍ନୀର ପିତୃଗୃହରୁ ସ୍ୱାମୀଗୃହକୁ ଯାତ୍ରା ହେବା—4. (vedic) The conveyance of a married wife from her father's house to her husband's after marriage.
[ଦ୍ର—ଏହି ବୈଦିକ ଶବ୍ଦରୁ ପରବର୍ତ୍ତୀକାଳରେ ବିବାହ ଓ ଉଦ୍ୱାହ ଶବ୍ଦ ଉତ୍ପନ୍ନ । ]

ବହନ—ସଂ. ବି. (ବହ୍ ଧାତୁ+ଭାବ. ଅନ)—୧ । ଭାର ବୋହିବା—Bahana 1. Carrying of weight. ୨ । ଅଙ୍ଗରେ ଧାରଣ; ପରିଧାନ—2. Wearing. ୩ । ସହିବା; ସହନ—3. Bearing. ୪ । ବୋହିବା—4. Flowing; blowing ୫ । (+କର୍ତ୍ତୃ. ଅନ) ଯାନ; ବାହନ—5. Conveyance. ୬ । ନୌକା—6. Boat; raft (Apte).
শীগীর ଦେ. କ୍ରି. ବିଣ—ଶୀଘ୍ର; ସତ୍ୱର; ଚଞ୍ଚଳ—Soon;
जलदी quickly.
ସଳ୍ୟଙ୍କ ଚନକାଣ୍ଡ ବଳିଲେ ବହନ । କୃଷ୍ଣସିଂହ, ମହାଭାରତ ଗ୍ରନ୍ଥ ।

ବହନି—ଗ୍ରା. ବି. (ପଦ୍ୟ) (ସଂ. ବହ୍ନି)—୧ । ବହ୍ନି; ଅଗ୍ନି—1. Fire.
Bahani ଏ ମୋର କ୍ରୋଧ ବହନି, ଫଳବ ଜାଣି ଯେ ।
(ବହନି—ଅନ୍ୟରୂପ) ପ୍ରତାପ. ଶଶିସେଣା ।
वहनी ୨ । ବଇନି (ଦେଖ)—2. Baini (See)

ବହନୀୟ—ସ. ବିଣ. (ବହ୍ ଧାତୁ+କର୍ମି. ଅନୀୟ)—୧ । ବହନ-Bahanīya ଯୋଗ୍ୟ—1. Fit to be carried.

ବହନେଣ—ଦେ. (ପଦ୍ୟ) କ୍ରି. ବିଣ. (ସ. ବହନ)—ଶୀଘ୍ର; ସତ୍ୱର--Bahanena Soon; quickly.
শীগীব ଏବେ ମୋର ବୋଲ କର, ବହନେଣ ଅଭୁସର ।
जलदि ପ୍ରାଚୀ. ରସବାରିଧି ।

ବହନ୍ତା—ଦେ. ବିଣ—୧ । (ସଂ. ବହତ୍) (ପାଣି) ବହିଯାଉ ଥିବା; Bahantā ସ୍ରୋତୋଯୁକ୍ତ (ନଦୀ ବା ଜଳ)—1. Flowing
ବୋହନ୍ତା } ଅନ୍ୟରୂପ (water). ୨ । (ପବନ) ବହୁଥିବା—2.
ବୁହନ୍ତା } Blowing (wind).
বহতা बहताहुआ

ବହନ୍ତି—ଦେ. ବି—୧ । ପିଣ୍ଡାର ସୀମାକୁ ବଳି ବାହାରକୁ ଥିବା ଚାଳର Bahanti ଅଂଶବିଶେଷ—1. The portion of a thatch ছাঁচ which projects beyond the edges of the बढती; बलती veranda below; eave. ୨ । ବହନ୍ତି ଚାଳର ସହିସମାନ କରି ପିଣ୍ଡାର ଯେଉଁ ଅଂଶକୁ ବଢ଼ାଇ କରି ପୁଣି

ବକ୍ସଥାଏ—2. Extension of a veranda below projecting thatch. ୩ । କୌଣସି ନିର୍ଦ୍ଦିଷ୍ଟ ସୀମାର ବାହିର ବହିର୍ଭୂତ ଅଂଶ—3. Outskirt; suburban. (ଯଥା—ଗାଁ ବହନ୍ତ ।)

୪ । ଘୋର ଜଙ୍ଗଲର ଯେଉଁ ସୀମା ମେଲ୍ଲ ଜାଗା ଆଡ଼କୁ ମାଡ଼ି ଆସିଥାଏ ଓ ଯାହାର ଗଛ ବୁଦା ଆଦି ଅସଲ ଜଙ୍ଗଲ ପରି ଗହଳିଆ ହୋଇ ନ ଥାଏ—4 Outskirts of a forest; a strip up forest projecting with the open country.

ଦେ. ବିଣ—ବହନ୍ତା ( ଦେଖ )—Bahantā ( See )

**ବହପ(ପା)**—ଦେ. ବି. ( ସଂ. ବପୁ )—୧ । ହେମତ; ସାହସ—Bahapa(pā) 1. Courage. ୨ । ଶକ୍ତି; ବଳ—2. Strength. बल बल, बफ, वोफ

**ବହପ କରିବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ସାହସ Bahapa karibā ବାନ୍ଧିବା—1. To muster courage वोफ करना to do thing. ୨ । କୌଣସି କାର୍ଯ୍ୟ କରିବାକୁ ଚେଷ୍ଟା କରିବା—2. To try to do a thing.

**ବହପ ପାଇବା**—ଦେ. ବି—୧ । କୌଣସି କାର୍ଯ୍ୟ କରିବାକୁ ସାହସୀ Bahapa pāibā ହେବା—1. Having courage to do बल पाओया a thing. ୨ । କୌଣସି କାମକୁ ବଳ ପାଇବା—2. वोफपाना वोफआना Having strength or power for doing a thing. (ବହପ ଆସିବା—ଅନ୍ୟରୂପ)

(ଯଥା—ଏ ବୟସରୁ ପିଲାର କୋଡ଼ ହାଣିବାକୁ ବହପ ପାଇବା ଶାଇଁ ଖାଦ୍ୟ କାହିଁ ?)

ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ଉତ୍ସାହ ପାଇବା—To get encouragement from another to do something.

**ବହପ ବାନ୍ଧିବା**—ଦେ. କ୍ରି—କୌଣସି କଷ୍ଟସାଧ୍ୟ କାର୍ଯ୍ୟ କରିବାକୁ Bahapa bāndhibā ମନରେ ସାହସ ବା ସଂକଳ୍ପ କରିବା—बुकबाँधा वीफवाँधना To resolve to do some difficult task.

**ବହପିଆ**—ଦେ. ବିଣ. ପୁଂ—୧ । ବଳୁଆ—1 Strong. ୨ । Bahapiā बलवान ସାହସୀ—2. Courageous. (ବହପୀ, ବହପେଇ—ସ୍ତ୍ରୀ) साहसी

**ବହମାନ**—ସଂ. ବିଣ. ( ବହ୍ ଧାତୁ+କର୍ତ୍ତୃ. ଅନ )—୧ । ପ୍ରବାହିତ Bahamāna ହେଉଥିବା (ଜଳ)—1. Flowing (water). ୨ । ବୋଝ ବୋହୁଥିବା—2. Carrying (a load). ୩ । ବହୁଥିବା (ବାୟୁ)—3. Blowing (air; wind).

**ବହର**—ବୈଦେ. ବି. (ଆ. ବହର୍=ଉପସାଗର; ସମୁଦ୍ର, ଜାହାଜ; Bahara ତୁଳ. ସଂ. ବହଳ=ନୌକା)—୧ । ଜାହାଜ—बहर 1. Ship. ୨ । ଜଳଯାନ ସମୂହ—2 A fleet of ships. बेडा ଦେ. ବି—୧ । ( ସଂ. ଗମ୍ଭୀର ) ଜଳର ଗମ୍ଭୀରତା—बहर 1. Depth of water. ୨ । (ସଂ. ବିସ୍ତାର) ଲୁଗାର ପ୍ରସ୍ଥ चौडाइ ବା ଓସାର—2. Breadth; width.

ଗ୍ରା. ବି—୧ । (ସଂ. ବୃତ୍ତାକାର) ଚକ୍ରାକାର ବା ବୁଲାଣିଆ ରାସ୍ତା—1. Winding path. ୨ । (ଇତର ଲୋକଙ୍କ ଉଚ୍ଚାରଣ ଦୋଷ; ଳ ସ୍ଥାନରେ ର ଉଚ୍ଚାରଣ)—ବହଳ—2. Thickness.

**ବହରେଇବା**—ପ୍ରାଦେ. (ସମ୍ବଲପୁର) କ୍ରି. (ତୁଳ. ହି. ବହରାନା)—Bahareibā 'ବାହାରିବା'ର ଣିଜନ୍ତରୂପ—Causative form of Bāhāribā.

**ବହଲ୍**—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ବହୁଳ)—ବହଳ; ଘନ—Bahal Thick.

**ବହଳ**—ସଂ. ବିଣ. (ବହ୍ ଧାତୁ=ବଦ୍ଧନ କରିବା+କର୍ତ୍ତୃ. ଅଳ)—Bahaḷa ୧ । କଠିନ; ଦୃଢ଼; କଠୋର; ଝାଣ—1. Hard; घन; पुरू firm. ୨ । ବହୁଳ; ବିପୁଳ—2. Great; plentiful; copious; abundant. ୩ । ଅନେକ—3. Many. ୪ । ମୋଟା—4. Thick; tough.

ନୂର୍ଦ୍ଧେ ବହଳ ଉପାନହ ଯୋଗ୍ଯ
କିଏକେ କଣ୍ଟକ ନ କରେ ଅଙ୍ଗ । କବିସୂର୍ଯ୍ୟ, କବିତାକଲ୍ଲୋଳ ।

୫ । ଘଞ୍ଚ; ସାନ୍ଦ୍ର; ଘନ—5. Dense. ୬ । ବହୁ ଲୋମଶ; ଝାମ୍ପୁଡ଼ା—6. Shaggy (Apte). ୭ । କଠୋର (ଶବ୍ଦ) –7. Harsh (sound).

ସଂ. ବି. ( ବହ୍ ଧାତୁ+କର୍ତ୍ତୃ. ଅଳ; ତୁଳ. ଫା. ବହର୍=ଜାହାଜ)—୧ । ନୌକା; ଜଳଯାନ; ଜାହାଜ—1. Boat; vessel, ship. ୨ । ଏକପ୍ରକାର ଆଖୁ—2. A kind of sugarcane (Apte).

ଦେ. ବିଣ—ନିର୍ଲଜ୍ଜ; ଦାମ୍ଭିକ—Shameless; thick-मुखेवल skinned.

ଗ୍ଲେଇର ମହିଁ ବହଳ—ଢଗ ।

ଦେ. ବି—୧ । ( ସଂ. ବହୁଳତା ) ଅଧିକ୍ୟ; ପ୍ରାଚୁର୍ଯ୍ୟ—1. Excess.

ଜଳ ବହଳେ ସୃଷ୍ଟି ଦ୍ରବ୍ୟ ନାଶ ହୁଅନ୍ତି ସର୍ବଜନ ।
ପ୍ରାଚୀ. ନର୍ଗୁଣମାହାତ୍ମ୍ୟ ।

୨ । ବାହୁଲ୍ୟ ବଚନ; ଅନାବଶ୍ୟକ ବାକ୍ୟ-ଅପଚୟ—2 Unnecessary waste of words.

**ବହଳ ତ**—ସଂ. ବି. (ବହୁବ୍ରୀହି; ବହଳ+ତ୍ୱକ୍)—ଧଳା ଫୁଲ ଫୁଟିବା Bahaḷatwacha ଲୋଧ୍ରଗଛ—The white flowering Lodhra tree (Apte).

**ବହଳା**—ସଂ. ବି. ସ୍ତ୍ରୀ. ( ବହଳ+ସ୍ତ୍ରୀ. ଆ )—୧ । ଭେଳା—1. Bahaḷā 1. Rafter. ୨ । ବଡ଼ ଅଳେଇଚ—2. Large cardamums (Apte).

ଦେ. ବିଣ—ବହଳ (ଦେଖ)—Bahaḷa (See)

**ବହଳା(ଳେ)ଇବା**—ଦେ. କ୍ରି—୧ । କୌଣସି ଲେପକୁ ବହଳ Bahaḷā(ḷe)ibā କରିବା; ମୋଟା କରିବା—1. To thicken. घनकरा ୨ । (ଲକ୍ଷଣାର୍ଥେ) କୌଣସି କଥାକୁ ବାରମ୍ବାର କହିବା—गाढा करना বাড়ান 2. (fig) To repeat a thing.

ବହଲ(ଲେ)ଇବା—ଦେ. କ୍ରି (ସଂ. ବହ୍ୱଲ; ଫା. ବହାଲ୍=ଭୁଲାଇବା; ହି. ଶ.)—୧ । ମିଠା କଥାରେ ଭୁଲାଇବା—1. To seduce; to inveigle, ୨ । ଭଣ୍ଡାଇବା; ଭୁଲାଇବା; ଧପାଇବା—2. To cheat; to deceive.
Bahalā(le)ibā
फुसलाना
बहलाना

ବହଳିଆ——ଦେ. ବିଣ—ବହଳ ( ଦେଖ )—
Bahaḷiā Bahaḷa ( See )

ବହସ୍—ବୈଦେ. ପ୍ରାଦେ. (ସମ୍ବଲପୁର) ବି. (ଆ) (କଚହରିଆ) (ହିନ୍ଦୀରୁ ଅନୁକୃତ)—୧ । ତର୍କବିତର୍କ; ବାଦାନୁବାଦ—1. Argument, ୨ । ଅଦାଲତରେ ଓକିଲଙ୍କ ବାଦାନୁବାଦ—2 Pleaders' argument. ୩ । କୌଣସି ବ୍ୟକ୍ତିର ପକ୍ଷରେ ଲଢ଼ି କହିବା—3. Pleading in favour of a person. ୪ । କଳି; ବିବାଦ—4. Dispute. ୫ । ବାଜି—5. Wager; stake in a hazard.
Bahas

ବହସ୍ କରିବା—ବୈଦେ. ପ୍ରାଦେ. ( ସମ୍ବଲପୁର ) କ୍ରି. ( ଆ. ବହସ୍‌ନା ) କ୍ରି—୧ । କୌଣସି ବ୍ୟକ୍ତି ପାଇଁ ଓକିଲାତି କରିବା ବା ତାହାର ପକ୍ଷ ସମର୍ଥନ କରିବା—1. To plead for a person, ୨ । ମକଦ୍ଦମାରେ ଓକିଲରୂପେ ବାଦାନୁବାଦ କରିବା—2. To argue for a party in a court.
Bahas karibā

ବହା—ସଂ. ବି. ( ବହ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ )—ନଦୀ—1. River.
Bahā
ଦେ. ବି. ( ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୋଜ୍ୟ; ସଂ. ବହ )—ଯେ ବହନ କରେ—One who carries.

ବମାନବହା ପୁରୁଷରେ, ନୃପ କହଇ କୋପଭରେ । ଜଗନ୍ନାଥ. ଭାଗବତ ।

ବହା(ହେ)ଇବା—ଦେ. କ୍ରି. ( 'ବହିବା'ର ଣିଜନ୍ତରୂପ )—ବୁହାଇବା (ଦେଖ); ଅନ୍ୟଦ୍ୱାରା ବହିବା କ୍ରିୟା କରାଇବା—To cause to carry or flow.
Bahā(he)ibā
বহান
बहाना

ବହାଲ—ପ୍ରାଦେ. (ବାଲେଶ୍ୱର) ବି—ଏକପ୍ରକାର ଲୁଣୀ ମାଛ—A species of sea-fish.
Bahāla

ବହାଳୁ—ଦେ. ବି. (ସଂ. ବହୁବାର)—ଗର୍ଭଣା ଗଛ (ଦେଖ)
Bahāḷu Garbhaṇā gachha (See)

ବହି—ବୈଦେ. ବି. (ଆ. ବହୀ=ହିସାବ ଖାତା, କୋରାନ୍; ତୁଳ. ଇଂ. ବୁକ୍; ସଂ. ବେଦ; ବଦ୍ଧ ପୁସ୍ତକ)—୧ । ଖଡ଼ାପ; ଗ୍ରନ୍ଥ; ପୁସ୍ତକ—1. Book, ୨ । ଲେଖା ଖାତା—2. A manuscript book. ୩ । ବନ୍ଧା ବହି—3. Bound book. ୪ । ହିସାବ ପୁସ୍ତକ—4. Account book. ୫ । ବ୍ୟବସାୟର ଆୟ ବ୍ୟୟର ହିସାବ ଖଡ଼ାପ—5. Business accounts.
Bahi
বই, বহি
बही

ବହିଃ—ସଂ. ଅ. ( ବହିସ୍ ଶବ୍ଦ )—ବାହାରେ—In the outside; the exterior.
Bahiḥ (ବିପରୀତ—ଅନ୍ତଃ)

ବହିଃ ପ୍ରାଣ—ସଂ. ବି—୧ । ( କୌଣସି ବ୍ୟକ୍ତିର ଦେହର ବାହାରେ ଥିବା ଜୀବନ ସ୍ୱରୂପ ) କୌଣସି ବ୍ୟକ୍ତିର ପ୍ରିୟତମ ବ୍ୟକ୍ତି—1. One's beloved or dear person ( as dear as one's life); any thing as dear as life (Apte). ୨ । ଟଙ୍କା; ମୁଦ୍ରା—2. Money (Apte).
Bahiḥ prāṇa

ବହିଃ ଶତ୍ରୁ—ସଂ. ବି—ଆପଣା ଦେଶର, ଘରର ବା ଦଳର ବାହାରର ଶତ୍ରୁ—Outside enemy; external enemy.
Bahiḥ śatru
(ବିପରୀତ—ଅନ୍ତଃ ଶତ୍ରୁ)

ବହି(ଇ)ଣୀ—ଦେ. ବି. ସ୍ତ୍ରୀ. ( ସଂ. ଭଗିନୀ; ପ୍ରା. ବହିଣୀ )—ଭଗିନୀ; ଭଉଣୀ—Sister.
Bahi(i)ṇī
বইন, বহিনী
बहिन

ବହିଣୀ ତୁ ମୋର ନ ଜାଣି ସଂସାର ମଧ୍ୟରେ କେ ଅଛି— ଉପେ. ବୈଦେହୀଶବିଳାସ ।

ବହିତ୍ର—ସଂ. ବି. ( ବହ୍ ଧାତୁ=ବହନ କରିବା + କରଣ. ଇତ୍ର )—୧ । ନୌକା; ଜଳଯାନ; ବୋଇତ; ଜାହାଜ—1. Boat; ship, ୨ । ରାମାୟଣ ବର୍ଣ୍ଣିତ ରାକ୍ଷସ ସେନାପତି-ବିଶେଷ—2, A commander of the demons described in the Rāmāyaṇa
Bahitra

ବହିତ୍ର ନାମ ଭଲେ ଅପୂର୍ବ ନଳ ମାଲେ ଭସ୍ମ କରି ଜଭାଇ ଦେଲେ— ଉପେ. ବୈଦେହୀଶବିଳାସ ।

ବହିଦାର—ପ୍ରାଦେ. (ସମ୍ବଲପୁର) ବି. (ତୁଳ. ହି. ବହୀଦାର୍=ଖାତା ଲେଖକ)—୧ । ଯେ ହିସାବ ପତ୍ର ଲେଖେ—1, Accountant. ୨ । ଯେ ବହି ତିଆରି କରେ—2, Book binder. ୩ । ସମ୍ବଲପୁର କରଣମାନଙ୍କ ଉପାଧି ବିଶେଷ—3. A family-title of the Karaṇas in Sambalpur
Bahidār

ବହିନ୍—ପ୍ରାଦେ. ( ଉତ୍ତର ଭାଗ ) ବି ( ତୁଳ. ହିନ୍ଦୀ )—ଭଉଣୀ—Sister.
Bahin

ବହିନା—ଦେ. ବି—ବଇନା ( ଦେଖ )
Bahinā Bainā ( See )

ମାଗିଲେ କଣ୍ଠ ଦେବା ବହିନା କରି ଯେ— ବିଶ୍ୱନାଥ, ବିଚିତ୍ର ରାମାୟଣ ।

ବହିବା—ଦେ. କ୍ରି. ( ସଂ. ବହ୍ ଧାତୁ )—୧ । ବହନ କରିବା—1. To carry.
Bahibā
বহা
बहना

ଶମ୍ଭୁ ପଦପଙ୍କ୍ତି ଭୂଷେ କେଭେ ବାଣ ବହିଲ । କବିସୂର୍ଯ୍ୟ. ରତ୍ନାକର ଚଷ୍ପ୍ ।

୨ । (ସ୍ରୋତଃ) ପ୍ରବାହିତ ହେବା—2. To flow (said of a current).

ବହୁ ରଙ୍ଗ ତାମ୍ବୁଲ ପତଉ ଅଧରେ । ଉପେ. ବୈଦେହୀଶବିଳାସ ।

୩ । (ପବନ) ଚଳିତ ହେବା—3. To blow (said of the wind) ୪ । (ସମୟ) ଅତିବାହିତ ହେବା—4. To pass (said of time).

ଏ ମଧ୍ୟେ ବହିଗଲ କେତେ ଦିବସ । ମଧୁସୂଦନ. ଉତ୍ତରରାମଚରିତ ।

୫ । ଦେହରେ ଧାରଣ କରିବା; ପରିଧାନ କରିବା—5 To bear on the body; to wear; to put on.

ଦେବବନେ ବାକୁଦା ନନ୍ଦା ନଦୀ ଛନ୍ତି
ପ୍ରିତିକ ପରି କାନ୍ତ ଜଳକୁ ବହନ୍ତି । କୃଷ୍ଣସିଂହ. ମହାଭାରତ, ବନ ।

୬ । ମନରେ ଧାରଣ କରିବା—6. To entertain; to feel.

ତୁ କି ଏ ଅଭିଳାଷ ବହିଲୁ ରେ । କବିସୂର୍ଯ୍ୟ. କଶୋରଚନ୍ଦ୍ରା. ଚ ଗୀତ ।

୭ । (ନାମ) ଧାରଣ କରିବା—7. To bear (a name).

ଉତପତ ଭାଙ୍କର ଅବୃତ ଦେଖିଲ
ଇନ ସଞ୍ଜ ଅଧକ ନାମକୁ ବହିଲ । କୃଷ୍ଣସିଂ. ମହାଭାରତ. ବନ ।

୮ । ଗଳିବା; ପ୍ରବେଶ କରିବା—8. To enter.

କଣ୍ଟା ନ ବହେ ଯା ଚରଣ, ସେ କ ଜାଣଇ ସେ କଷଣ ।
ଜଗନ୍ନାଥ—ଭାଗବତ ।

୯ । କୌଣସି ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ଅନୁକୂଳ କରିବା—9. To go out; to leave a place; to start from a place.

ବାହର କଣି ଏ ଜଙ୍ଗଲରେ ରହି
ବହିଲେ ପ୍ରଭାତେ ହରଷ ହୋଇ—ଭକ୍ତ. ବୈଦେଶୀଶବଳାସ ।

୧୦ । (ଦେହରୁ ରକ୍ତ, ପୂଜ)—କ୍ଷରିତ ହେବା; କ୍ଷରିବା—13. (blood; pus) To come out (of the body).

**ବହିର**—ଦେ. ବଣ. (ସଂ. ବଧିର; ପ୍ରା. ବହିର)—୧ । ବଧିର—Bahira 1. Deaf. ୨ । ବଧିର (କାନ)—2. Deafened; stunned (said of the ears). ୩ । ବୋଧଶକ୍ତିହୀନ (ଚମଡ଼ା)—3. Deadened to touch; made insensitive to touch (said of skin). କାଲା ବହରା; ବହିରା (ବହିରୀ—ସ୍ତ୍ରୀ)

**ବହିରଙ୍ଗ**—ସଂ. ବଣ. (ବହୁବ୍ରୀହି; ବହିସ୍=ବାହାରେ+ଅଙ୍ଗ)—Bahiranga ୧ । ବାହାରରେ ଥିବା—1. Belonging to or staying outside. (ଅନ୍ତରଙ୍ଗ—ବିପରୀତ) ୨ । ଅନାତ୍ମୀୟ; ପର—2. Foreign; not closely related. (ବହିରଙ୍ଗତା—ବି)

ବହିରଙ୍ଗେ ରହି ବୁଲୁଛନ୍ତି ଅଗଣାରେ—ବଂଶୋଧରଙ୍କ ବ. ଗୀତ ।

୩ । ଦଳର ବହିର୍ଭୂତ—3. Not belonging to a party.

ସଂ. ବି—୧ । ଅନାତ୍ମୀୟ ବ୍ୟକ୍ତି—1. Stranger. ୨ । ଦଳ ବା ପରିବାରର ବାହାରର ଲୋକ—2. Outsider. ୩ । ଶତ୍ରୁ—3. Enemy.

**ବହିରୀ**—ଦେ. ବି—୧ । (ସଂ. ବଧିର, ପ୍ରା. ବହିରୀ) ବଧିର ବ୍ୟକ୍ତି—1. A Bahirā deaf person. ୨ । (ଅ. ବହରୀ; ସଂ. ପକ୍ଷିବୈରୀ) ମାଈଆ ଚଲ—2. A bird of prey allied to the kite; the peregrine falcon; Falco Peregrinus. କାଲା ବହରା ବୈରୀ; বাজবৈরী [ଦ୍ର—ଏହା ଏକ ପ୍ରକାର ମାଂସାଶୀ ପକ୍ଷୀ; ପ୍ରାୟ ୧ ହାତ ଲମ୍ବ ଏବଂ ବାଜଠାରୁ ବଡ଼ । ଏ ପାଖ ପ୍ରଭୃତି ଶ୍ରେଷ୍ଠ ପକ୍ଷୀଙ୍କୁ ଶିକାର କରି ଖାଏ; ଏହା ଶ୍ୟେନ ବା ବାଜ ଅପେକ୍ଷା ବଡ଼ ଓ ବଳୁଆ; ଚଞ୍ଚୁ ସ୍ଥୂଳ ଓ ଚଞ୍ଚୁର ଉପର ପାଖ ବଙ୍କୁର । ପୁଚ୍ଛ ଗୋଲ ଓ ଅଗଲ ମାଈଆ ।] बेरि; बहरी

୩ । ବାଜ ବା କୁକ୍ଷଣ—3. The hawk; the goshawk. ୪ । ଏକ ଜାତୀୟ କୁକ୍ଷଣ—4. Goat-sucker. ୫ । କାଠ ଚିରି ଦୁଇଫାଳ କରିବା ପାଇଁ ବ୍ୟବହୃତ କାଠର କୋରମୁଣ୍ଡା ବା ହାତୁଡ଼ା—5. A very heavy wooden sledge-hammer used for splitting up logs of wood.

ଦେ. ବଣ—ବହିର (ଦେଖ)—Bahira (See)

**ବହିରାଗମନ**—ସଂ. ବି. (ବହିଃ+ଆଗମନ)—ବାହାରକୁ ଆସିବା—Bahirāgamana Coming out; emerging.

**ବହିରି**—ଦେ. ବି—ବହିରୀ (ଦେଖ) Bahiri Bahirā (See)

**ବହିରିନ୍ଦ୍ରିୟ**—ସଂ. ବି. (ବହିଃ+ଇନ୍ଦ୍ରିୟ)—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଏହି ୫ ଇନ୍ଦ୍ରିୟ—The five Bahirindriya external organs of sight, hearing, smell, taste and touch.

**ବହିରିଭୂତ**—ଗ୍ରା. ବଣ. (ସଂ. ବହିର୍ଭୂତ)—ବହିର୍ଭୂତ (ଦେଖ) Bahiribhuta বাহির बाहिर Bahirbhūta (See)

**ବହିର୍ଗତ**—ସଂ. ବଣ. ପୁଂ. (ବହିଃ+ଗତ)—୧ । ବାହାରକୁ ଯାଇଥିବା ବା ଆସିଥିବା—1. Come out; emerged; gone forth; gone out ୨ । ବାହାରରେ ଥିବା—2. Staying or situated outside. ୩ । ପୃଥକ୍ (ହି. ଶ.)—2. Separate. Bahirgata (ବହିର୍ଗତା—ସ୍ତ୍ରୀ) (ଅନ୍ତର୍ଗତ—ବିପରୀତ)

**ବହିର୍ଗମନ**—ସଂ. ବି. (ବହିଃ+ଗମନ)—ବାହାରକୁ ବା ପଦାକୁ ଯିବା—Bahirgamana Going outside.

**ବହିର୍ଦାସୀ**—ସଂ. ବି. (ବହିଃ+ଦାସୀ)—ଶୁଦ୍ରକାଣୀ; ଯୋଇଲୀ—Bahirdāsi Maid servant.

ରାଜକରେ ଅଶ୍ୱାଦି କରନ୍ତି ବହିର୍ଦାସୀମାନଙ୍କ ଅଙ୍କରେ କଉଳରେ ।
ବଳଭଦ୍ର, ସଙ୍ଗୀତ ।

**ବହିର୍ଦେ(ର୍ଦ୍ଦେ)ଶ**—ସଂ. ବି. (ବହିଃ+ଦେଶ)—୧ । ବାହାର ପାଖ—Bahirde(rdde)śa 1. External side. ୨ । ପଦାର୍ଥର ଉପରଭାଗ—2. Exterior; outside. ୩ । ଗ୍ରାମର ବାହାରର ଅଂଶ—3. Outskirts of a village (where people ease themselves). ୩ । ଗ୍ରାମ ବା ନଗରହୀନ ସ୍ଥାନ—3. A place without a town or village (Apte.)

বহির্দেশ ଦେ. ବି.—ପୋଖରପାଣି ଯିବା; ଝାଡ଼ାଫେରିବା—झाडेजङ्गल Going out to answer the calls of nature.

**ବହିର୍ଦେ(ର୍ଦ୍ଦେ)ଶ ଯିବା**—ଦେ. କ୍ରି.—ଝାଡ଼ା ଫେରିବାକୁ ଯିବା—Bahirde(rdde)śa jiba To go out to answer the calls of nature. বহির্দেশ যাওয়া झाडेजङ्गलजाना

[ଦ୍ର—ପୂର୍ବେ ପାଇଖାନାର ପ୍ରଚଳନ ନ ଥିଲା । ଲୋକେ ମଳତ୍ୟାଗ କରିବାକୁ ଗ୍ରାମର ବହିର୍ଦେଶକୁ ଯାଉଥିଲେ । ଏଣୁ 'ବହିର୍ଦେଶ' 'ପୋଖରପାଣି' 'ବାହାରକୁ' ବା 'ମଇଦାନ' ଯିବା ଆଦି ଶବ୍ଦ ମଳତ୍ୟାଗ କରିବା ଅର୍ଥରେ ବ୍ୟବହୃତ ହୋଇଅଛି ଓ ହିନ୍ଦିରେ ଗ୍ରାମ ବାହାରର ଝାଡ଼ ଜଙ୍ଗଲରୁ ଝାଡ଼ାଫିରନା, ଝାଡ଼େଜଙ୍ଗଲ ଜାନା ଓ ବଙ୍ଗଳାରେ ବାହ୍ୟ ଯାଓୟା ଶବ୍ଦମାନଙ୍କର ବ୍ୟବହାର ହୋଇଅଛି । ମଳତ୍ୟାଗାନ୍ତେ ଲୋକେ ଶୌଚ କରିବାକୁ ପୁଷ୍କରିଣୀ ଓ ନଦୀ ଆଦିକୁ ଯିବାରୁ ଓଡ଼ିଆରେ ପୋଖରୀ ଯିବା ଓ ହିନ୍ଦୀରେ ପୋଖରଜାନା,ନଦୀ ଜାନା ମଳତ୍ୟାଗ କରିବା ଅର୍ଥ ବୋଲାଯାଏ ।]

**ବହିର୍ଦ୍ୱାର**—ସଂ. ବି. (ବହିଃ+ଦ୍ୱାର)—ବାହାରର ଫାଟକ—Bahirdwāra, The outer gate.

ବହିର୍ବଳି—ସଂ. ବି.—(ବହିଃ+ବଳି)—('ଅର୍ଶ' ତଳେ ନୋଟ୍ ଦେଖ—
Bahirbaḻi See notes under Arṡa)
(ଅନ୍ତର୍ବଳି—ବିପରୀତ) ଏକପ୍ରକାର ଅର୍ଶ ରୋଗରେ ଗୁହ୍ୟଦ୍ୱାରର ବାହାର ପାଖ ଦାଢ଼ରେ ବାହାରିବା ଅଜାଗଳସ୍ତନବତ୍ ଚର୍ମଗୁଟିକା—Blind piles.

ବହିର୍ବାଣିଜ୍ୟ—ସଂ. ବି. (ବହିଃ+ବାଣିଜ୍ୟ)—୧। ରପ୍ତାନି; ଅପଣା
Bahirbāṇijya ଦେଶରୁ ବିଦେଶକୁ ପଣ୍ୟ ପ୍ରେରଣ—
(ଅନ୍ତର୍ବାଣିଜ୍ୟ—ବିପରୀତ) 1. Export trade.
୨। ଭିନ୍ନ ଭିନ୍ନ ଦେଶମାନଙ୍କ ପରସ୍ପର ମଧ୍ୟରେ ଚଳୁଥିବା ବାଣିଜ୍ୟ—2. International trade. ୩। ଦେଶାନ୍ତରରୁ ଆପଣା ଦେଶକୁ ପଣ୍ୟ ଦ୍ରବ୍ୟର ଆନୟନ—3. Import trade.

ବହିର୍ବାସ—ଦେ.ବି (ବହିଃ+ବାସ)—୧। ବୈଷ୍ଣବମାନେ କୌପୁନୀମାନ
Bahirbāsa ତାହା ଉପରେ ଯେଉଁ ଲୁଗା ପିନ୍ଧି ଥାନ୍ତି—
1. A piece of cloth worn by ascetics round the lions over the strip of rag tucked about the privities. ୨। ଉତ୍ତରୀୟ ବସ୍ତ୍ର; ଚଦର—2. Outer sheet put round the upper part of the body. ୩। ବାହାରରେ ଅବସ୍ଥାନ—3. Residence abroad.

ବହିର୍ବାହ—ସଂ.ବି. (ବୈଜ୍ଞାନିକ ପରିଭାଷା;ବହିଃ+ବାହ)—ଯେଉଁ ପ୍ରବାହ
Bahirbāha ଦ୍ୱାରା କୌଣସି ପଦାର୍ଥର ଅଭ୍ୟନ୍ତରସ୍ଥ ଜଳ ବାହାରକୁ ବହି ଥାଏ—An outer current, exosmosis.
ସଂ. ବିଣ.—ଯାହା (ଯେଉଁ ନଦୀ ଆଦି) ଦେଶର ବାହାର ଆଡ଼କୁ ବହି ଯାଉ ଥାଏ—Flowing or running outwards (said of a stream)

ବହିର୍ବାହୀ ସ୍ନାୟୁ—ଦେ. ବି. (ଆଧୁନିକ ବିଜ୍ଞାନ ପରିଭାଷା)—ଯେଉଁ
Bahirbāhi snāyu ନାଡ଼ୀମାନ ରକ୍ତକୁ ହୃତ୍ପିଣ୍ଡରୁ ଦେହର ଅନ୍ୟ ଅଂଶମାନଙ୍କୁ ବହି ନିଏ—Arteries.

ବହିର୍ବିକାର—ସଂ. ବି. (ବହିଃ+ବିକାର)—ଫିରଙ୍ଗ ରୋଗ; ଗରମୀ
Bahirbikāra ବେମାର—Syphilis (Apte).

ବହିର୍ବ୍ୟସନ—ସଂ. ବି.—ଇନ୍ଦ୍ରିୟ ବୃତ୍ତିର ଚରିତାର୍ଥତା—
Bahirbyasana Licentiousness; immorality;
(ବହିର୍ବ୍ୟସନୀ—ବିଣ. ପୁଂ) lewdness.

ବହିର୍ଭବ—ସଂ. ବିଣ. (ବହିଃ+ଭୂ ଧାତୁ+ଅ)—ବାହ୍ୟ; ବାହାରରେ
Bahirbhaba ଥିବା—External.

ବହିର୍ଭାଗ—ସଂ. ବି. (ବହିଃ+ଭାଗ)—ବାହାରର ଅଂଶ—
Bahirbhāga Outside; external part.
(ଅନ୍ତର୍ଭାଗ—ବିପରୀତ)

ବହିର୍ଭୂତ—ସଂ. ବିଣ. (ବହିସ୍+ଭୂ ଧାତୁ+କର୍ତ୍ତୃ. ତ)—୧। ବହିର୍ଗତ—
Bahirbhūta 1. Gone forth. ୨। ବର୍ଜିତ—
(ବହିର୍ଭୂତା—ସ୍ତ୍ରୀ) 2. Abandoned. ୩। ବହିଷ୍କୃତ; ତାଡ଼ିତ—
(ଅନ୍ତର୍ଭୂତ—ବିପରୀତ) 3. Expelled; driven out.
(ବହିର୍ଭବ—ବି) ୪। ଅତୀତ (ସମୟ)—4. Past; expired (time) ୫। ବାହାରରେ ଥିବା—5. Situate outside; outside the scope of; beyond the boundaries of. ୬। ଅମନୋଯୋଗୀ—6 Careless; inattentive.

बाहिर दे. विण—(आदेश वा इच्छार)—लङ्घनकारी;
बाहर अबाध्य—1. Disregarding one's wish or order
୨। ଅନ୍ୟଥାକୃତ—2. Performed or done otherwise

ବହିର୍ମୁଖ—ସଂ. ବିଣ.—(ବହୁବ୍ରୀହି; ବହିଃ+ମୁଖ)—୧। ଯାହାର ମୁହଁ
Bahirmukha ବାହାର ଆଡ଼କୁ ବୁଲିଅଛି—1. Facing outwards; with the face turned outwards; turning one's face away from. ୨। ବିମୁଖ; ପରାଙ୍ମୁଖ—2. Averse from; indifferent to. ୩। ବାହ୍ୟବିଷୟାସକ୍ତ—3. Much addicted to worldly or outer matters.
୪। ମୁଖରୁ ବହିର୍ଗତ—4. Coming out of the mouth (Apte).
ସଂ. ବି.—ଦେବତା—God; deity.

ବହିର୍ଯାତ୍ରା(ନ)—ସଂ.ବି. (ବହିଃ+ଯାତ୍ରା;ଯାନ)—ଦେଶର ବାହାରକୁ ବୁଲି
Bahirjātrā(na) ଯିବା—Expedition; excursion (Apte)

ବହିର୍ଲମ୍ବ—ସଂ. ବିଣ. (ବହୁବ୍ରୀହି; ବହିଃ+ଲମ୍ବ) (ଜ୍ୟାମିତି)—ସ୍ଥୂଳକୋଣୀ
Bahirlamba (ତ୍ରିଭୁଜ)—Obtuse-angled (triangle) (Apte).

ବହିର୍ଲିପି—ସଂ. ବି. (ବହିଃ=ବାହାରେ ପ୍ରକଟିତ+ଲିପି)—ଶବ୍ଦାଲଙ୍କାର
Bahirlipi ବା ଚିତ୍ରରଚନାବିଶେଷ—A rhetorical
(ଅନ୍ତର୍ଲିପି—ବିପରୀତ) composition in which the 1st,
(ବହିର୍ଲିପିକା—ଅନ୍ୟରୂପ) 2nd or any other letters of the successive lines, when put one after the other, make out a meaning intended to be conveyed by the composer; a poetical composition in which the intention of the author becomes patent by putting a particular letter of each line, as opposed to Antarlipi in which the meaning is latent or lies hidden in the words which are got in answer to the questions put in the successive lines.

[ଦ୍ର—ବହିର୍ଲିପିରେ ପ୍ରତିପଦର ଆଦ୍ୟ, ମଧ୍ୟ, ଦ୍ୱିତୀୟ ବା ଶେଷ ଅକ୍ଷରମାନଙ୍କୁ ଯଥାକ୍ରମେ ଧାଡ଼ିଟିଏ କରି ବସାଇଲେ ସେହି ଅକ୍ଷରମାନଙ୍କଦ୍ୱାରା ଯେଉଁ ବାକ୍ୟ ହେବ, ତହିଁରୁ ରଚକଙ୍କ ମନୋଭାବ ବ୍ୟକ୍ତ ହୁଏ। ଅନ୍ତର୍ଲିପି ରଚନାରେ ପ୍ରତି ଧାଡ଼ିରେ ଥିବା ପ୍ରଶ୍ନର ଉତ୍ତର ବା ସମାଧାନରୂପେ ଯେଉଁ ପଦମାନ ବାହାରେ

ସେହି ପଦମାନଙ୍କ ଆଦ୍ୟ, ମଧ୍ୟ ବା ପ୍ରାନ୍ତ ଅକ୍ଷରମାନଙ୍କୁ ଯାଡ଼ିମୂଳଅ କରି ବସାଇଲେ ରଚକଙ୍କ ମନୋଭାବ ବ୍ୟକ୍ତ ହୁଏ । ଅନ୍ତର୍ଲିପିରେ ରଚକଙ୍କ ମନୋଭାବ ଅନ୍ତର୍ନିହିତ (latent) ଥାଏ, ବହିର୍ଲିପିରେ ଏହା ବହିର୍ନିହିତ ବା ପ୍ରକାଶିତ ( patent or apparent) ଥାଏ ।

ବହିର୍ଲିପିର ଉଦାହରଣ ଃ—

କେହି ନାଗ୍ରି ସଙ୍ଗରେ ରଙ୍ଗରେ ରୂପଦକ୍ଷ,
ବସି ଭାଷି ରହେ କହେ ଏମନ୍ତ ଭାରତୀ—
୧. (କ)ର୍ଣ୍ଣ ସ୍ପର୍ଶ ଦାଣ୍ଡିମା ! କେ ଆହତ୍ୟ ନନ୍ଦନ ? (କର)
୨. (ର)ତି ଲାଲସି ! କେ ସୁଖ କରଇ ବର୍ଦ୍ଧନ ? (ରତି)
୩. (ହ)ରିଣ ନୟନା ! କେହୁ ସଂସାର ସର୍ଜଇ ? (ହର)
୪. (ର)ହସ୍ୟ ବର୍ଦ୍ଧିନ ! କାହିଁ ରସ ପ୍ରବର୍ତ୍ତଇ ? (ରହଃ)
୫. (ସ)ଖି ! କେଉଁ ଅଟଇ ନାରୀଙ୍କ ପ୍ରିୟତର ? (ସଖୀ)
୬. (ମା)ନିମାର କିସ ଛଡ଼ାଏ ନାଗରେ ? (ମାନ)
୭. (ନ)ର ଇନ୍ଦ୍ରଜା ! ବିଷ୍ଣୁର କେଉଁ ଅବତାର ? (ନର)
୮. (ଶ)ଶିହାସୀ ! କେ ଭୂଷଣ ମହାଦେବଙ୍କର ? (ଶଶୀ)
ଅନ୍ତର୍ଲିପି ଆଦ୍ୟେ ବହିର୍ଲିପି ପ୍ରାନ୍ତେ ଭାଷା
ରୁକ୍ମିଣି ସୁନ୍ଦରୀ କର ସରସିଜ ଦୃଷ୍ଟା !
ବସୁକଣ୍ଠେ ଖ୍ୟାତ ବୋଲି ରମଣୀ ଭାଷିଲା
ସ୍ନେହେ ମୃଦୁ ମୃଦୁ ହସି ଅଲିଙ୍ଗନ କଲା
ପାଦାଦ୍ୟ ଦ୍ୱିବର୍ଣ୍ଣ ବାମଭାଗରେ ପ୍ରକାଶ
ଏଥୁଁ ବାହାରୁଛି 'କର ହରଷ ମାନସ' ।

ଉପେନ୍ଦ୍ରଭଞ୍ଜ. ଚିତ୍ରକାବ୍ୟବନ୍ଧୋଦୟ ।

ଏହା ବହିର୍ଲିପିରେ 'କର ହରଷ ମାନସ' ପ୍ରକଟିତ କରୁଛି । ଏହା ମଧ୍ୟ ଅନ୍ତର୍ଲିପିରେ ସେହି ବାକ୍ୟ ପ୍ରତିପାଦନ କରୁଛି । ୧ ଚିହ୍ନିତ ପଦରେ ନିହିତ ପ୍ରଶ୍ନର ଉତ୍ତର (କର); ଏହାପର ପରବର୍ତ୍ତୀ ସାତ ପଦରେ ଥିବା ପ୍ରଶ୍ନର ଉତ୍ତର ପଦମାନଙ୍କ ପ୍ରଥମ ଅକ୍ଷରମାନଙ୍କୁ ପଢ଼ିଲେ ମଧ୍ୟ 'କର ହରଷ ମାନସ' ବାକ୍ୟ ହେବ । ]

**ବହିଶ୍ଚର**—ସଂ. ବିଣ. ( ବହିଃ+ଚର୍ ଧାତୁ=ଗମନ କରିବା+କର୍ତ୍ତୃ. ଅ )—୧ । ଯେଉଁ ବ୍ୟକ୍ତି ଗ୍ରାମର ବା ଘରର ବାହାରେ ବିଚରଣ କରେ—1. Roaming outside the village or home (Apte). ୨ । ବାହ୍ୟ—2. External.
Bahischara
(ବହିଶ୍ଚରୀ—ସ୍ତ୍ରୀ)
ସଂ. ବି— କୁଳୀର; କଙ୍କଡ଼ା—Crab.

**ବହିଷ୍କ**—ସଂ. ବିଣ. (ବହିଃ+ସମ୍ବନ୍ଧାର୍ଥେ କ)—ବାହ୍ୟ—
Bahishka (ବହିଷ୍କା—ସ୍ତ୍ରୀ) External; outer.

**ବହିଷ୍କରଣ**—ସଂ. ବି. (ବହିଃ+କରଣ)—୧ । ବାହାର କରିଦେବା; ତଡ଼ିଦେବା; ଦୂରୀକରଣ—1. Removal; expulsion; expelling; driving away. ୨ । ବର୍ଜନ—2. Abandoning; rejection. ୩ । ଆବିଷ୍କାର କରିବା—3. Making a discovery. ୪ । ଜାତିଚ୍ୟୁତି—4. Excommunication. ୫ । ବାହ୍ୟେନ୍ଦ୍ରିୟ—5. External organ.
Bahishkarana
ବହିଷ୍କାର } ଅନ୍ୟରୂପ
ବହିଷ୍କ୍ରିୟା }

**ବହିଷ୍କୃତ**—ସଂ. ବିଣ. (ବହିଃ+କୃତ)—୧ । ଦୂରୀକୃତ; ଯାହାକୁ ତଡ଼ି ଦିଆଯାଇ ଥାଏ—1. Expelled; driven out; turned out. ୨ । ସ୍ଥାନାନ୍ତରିତ—2. Removed. ୩ । ବର୍ଜିତ—3 Rejected.
Bahishkruta
(ବହିଷ୍କୃତା—ସ୍ତ୍ରୀ)

**ବହିଷ୍କ୍ରାନ୍ତ**—ସଂ. ବି. (ବହିଃ+କ୍ରାନ୍ତ)— ବାହାରକୁ ବାହାରି ଯାଇଥିବା—
Bahishkrānta Emerged; gone out; come out.
(ବହିର୍ନିଷ୍କ୍ରାନ୍ତ—ଅନ୍ୟରୂପ)

**ବହିଷ୍କ୍ରିୟା**—ସଂ. ବି. (ବହିଃ+କ୍ରିୟା)— ବହିଷ୍କରଣ (ଦେଖ)
Bahishkriyā Bahishkarana (See)
ଦେ. ବି—ଝାଡ଼ାଫେରିବା କର୍ମ—
Act of easing one's self.

**ବହିଷ୍ଠାତ୍**—ସଂ. ଅ. (ବହିଃ+ସ୍ଥାତ୍)—ବାହାରରେ—
Bahisthat On the outside; abroad (Apte).

**ବହୁ**—ସଂ. ବିଣ. (ବନ୍ହ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ଉ; ଯେ ବୃଦ୍ଧି ପାଏ)—୧ । ବିପୁଳ—1. Great; large. ୨ । ବହୁତ; ଅନେକ—2. Many. ୩ । ଅସଂଖ୍ୟ—3. Innumerable. ୪ । ବେଶି ଅଧିକ—4. Excessive; ୫ । ପ୍ରଚୁର; ବହୁଳ—5. Much. ୬ । ଅତ୍ୟନ୍ତ—6. Very. ୭ । ବାରଂବାର କୃତ—7. Repeated (Apte).
Bahu
(ବହ୍ୱୀ, ବହ୍ୱୀ—ସ୍ତ୍ରୀ)
ସଂ. କ୍ରି. ବିଣ—୧ । ଅତ୍ୟନ୍ତ—1. Much. ୨ । ଅତ୍ୟଧିକ-ରୂପେ—2. Exceedingly; greatly.
ଦେ. ବି. (ସଂ. ବଧୂ)—ବହୂ (ଦେଖ)—Bahū (See)
ଦେ. କ୍ରି—(ବହିବା କ୍ରିୟାର ଅନୁଜ୍ଞା ଅନ୍ୟ ପୁରୁଷ ୧ ବଚନ ଅନାଦରାର୍ଥକ କର୍ତ୍ତା (ସେ) ସଙ୍ଗେ ବ୍ୟବହୃତ)— ସେ ବହନ କରୁ—Let him carry.
वहन करूक
वहे

**ବହୁକ**—ସଂ. ବି. ( ବହୁ+କ )—୧ । କର୍କଟ; କଙ୍କଡ଼ା—1. Crab. ୨ । ଅର୍କ ବା ଅରକ ଗଛ—2. A plant; Asclepias Gigantea. ୩ । ଡାହୁକ; ଡାହୁକ ପକ୍ଷୀ—3. The white-breasted water-hen. ୪ । ଜଳଖାତକ; ଯେ ପୋଖରୀ ଖୋଳେ—4. Digger of a tank. ୫ । ସୂର୍ଯ୍ୟ—5. The sun (Apte).
Bahuka
ସଂ. ବିଣ—ମହର୍ଘରେ କ୍ରୀତ—Dear-brought (Apte).

**ବହୁକଣ୍ଟକ**—ସଂ. ବି. (ବହୁବ୍ରୀହି)—୧ । ଏକପ୍ରକାର କଣ୍ଟକୀ ଗୁଳ୍ମ—1. A prickly plant; Hedysarum Alhagi. ୨ । ହିନ୍ତାଳ—2. Marshy date tree; Phoenix or Elate Paludosa. ୩ । କ୍ଷୁଦ୍ର ଗୋକ୍ଷୁର ଗୁଳ୍ମ—3. A small medicinal plant; Ruellia Longifolia.
Bahukantaka

**ବହୁ କଣ୍ଟକା**—ସଂ. ବି. ( ବହୁକଣ୍ଟକ+ଆ )—ଅଗ୍ନିଦମନୀ ଗୁଳ୍ମ—
Bahu kantakā A medicinal plant of narcotic properties; Solanum Jacquinai.

ବହୁକଣ୍ଟା—ସଂ. ବି—କଣ୍ଟକାରୀ ଗଛ—
Bahukaṇṭā The prickly nightshade.

ବହୁକନ୍ଦ—ସଂ. ବି—ଶୂରଣ; ଓଲଅ—The wild arum; Arum
Bahukanda Campanelatum.

ବହୁକର ସଂ. ବି—୧ । ଓଷ୍ଟ୍ର—1. Camel. ୨ । ପରିଶ୍ରମୀ
Bahukara ବ୍ୟକ୍ତି—2. A laborious person. ୨ । ମାର୍ଜନ-
କାରୀ; ଯେ ଘର ଓଳାଏ—3. A sweeper; a
cleaner.
(ବହୁକରୀ—ସ୍ତ୍ରୀ) ସଂ. ବିଣ. ପୁଂ—୧ । ପରିଶ୍ରମୀ—1. Indus-
trious (Apte). ୨ । ଅନେକପ୍ରକାରରେ ଉପକାରୀ
ବା ବ୍ୟବହାରଯୋଗ୍ୟ—2. Useful in many-
ways ( Apte )

ବହୁକରୀ—ସଂ. ବି—ସମ୍ମାର୍ଜନୀ; ଝାଡ଼ୁ—
Bahukarī A broom.

ବହୁକର୍ଣ୍ଣିକା—ସଂ. ବି—ମୂଷାକାଣୀ ଗଛ—A medicinal plant;
Bahukarṇṇikā Salvinia Cucullata.

ବହୁକଳୀ—ସଂ. ବିଣ. ( ବିଜ୍ଞାନ ପରିଭାଷା )—ଯାହାର ଅନେକ କଳ
Bahukaḷī ଥାଏ—Multiphase.

ବହୁକାଳ—ସଂ. ବି. ( କର୍ମଧା; ବହୁ+କାଳ )—ଅନେକ ଦିନ; ବହୁ
Bahukāḷa ସମୟ—A long time.

ବହୁକାଳିଆ—ଦେ. ବିଣ. ( ସଂ. ବହୁକାଳୀନ )—ଅନେକ ଦିନର;
Bahukāḷiā ବହୁକାଳୀନ—1. Of long standing; an-
বহুকালের cient; old. ୨ । ବୃଦ୍ଧ ( ବ୍ୟକ୍ତି )—
**बहुतदिनका** (ବହୁଦିନିଆ—ଅନ୍ୟରୂପ) 2 Old ( person ).

ବହୁକାଳୀନ—ସଂ. ବିଣ. ( ବହୁକାଳ+ଈନ )—୧ । ଅନେକ ଦିନରୁ
Bahukāḷīna ଥିବା—1. Of long standing; chronic.
୨ । ପୁରାତନ—2. Ancient; old.

ବହୁକୂର୍ଚ୍ଚ—ସଂ. ବି. ( ବହୁବ୍ରୀହି; ବହୁ+କୂର୍ଚ୍ଚ )—ମଧୁନାରିକେଳ;
Bahukūrchcha ଏକପ୍ରକାର ସୁସ୍ୱାଦୁ ନଡ଼ିଆ—A kind of
excellent cocoanut with sweet kernel.

ବହୁକେନ୍ଦ୍ରକ—ସଂ. ବିଣ. ( ବିଜ୍ଞାନ ପରିଭାଷା )—ଯାହାର ବହୁ କେନ୍ଦ୍ର
Bahukendraka ଅଛି Multinuclear.
( ବଙ୍ଗୀୟ ବିଜ୍ଞାନପରିଷଦ୍; ବୈଜ୍ଞାନିକପରିଭାଷା । )

ବହୁକୋଷ—ସଂ. ବିଣ. ( ବିଜ୍ଞାନ ପରିଭାଷା )—ଯାହା ମଧ୍ୟରେ ବହୁ
Bahukosha କୋଷ ଅଛି—Multicellular.

ବହୁକ୍ଷମ—ସଂ. ବିଣ. ପୁଂ. ( ବହୁ+କ୍ଷମ୍ ଧାତୁ+କର୍ତ୍ତୃ. ଅ )—୧ । ଯେ
Bahukshama ବହୁକ୍ଲେଶ ସହିପାରେ—1. Capable of
(ବହୁକ୍ଷମା—ସ୍ତ୍ରୀ) much endurance. ୨ । ସହିଷ୍ଣୁ—
(ବହୁକ୍ଷମତା—ବି) 2. Patient ୩ । ବିଶେଷ କ୍ଷମାଶୀଳ—
3. Very forgiving.
ସଂ. ବି—ଜୀନବିଶେଷ—A deified Jaina saint (Apte)

ବହୁକ୍ଷୀର—ସଂ. ବିଣ. ପୁଂ. ( ବହୁବ୍ରୀହି; ବହୁ+କ୍ଷୀର—
Bahukshīra ବହୁଦୁଗ୍ଧ (ଦେଖ) Bahudugdha (See)

ବହୁଗନ୍ଧ—ସଂ. ବିଣ. ( ବହୁବ୍ରୀହି; ବହୁ+ଗନ୍ଧ )—ତୀବ୍ରଗନ୍ଧବିଶିଷ୍ଟ,
Buhugandha କଡ଼ା ବାସନାଯୁକ୍ତ—Strong-scented.
ସଂ. ବି—୧ । କୁନ୍ଦୁରୁଖଣ୍ଡି; ସୁଗନ୍ଧ ଧୂପଦ୍ରବ୍ୟବିଶେଷ—
1. Olibanum. ୨ । ତେଜପତ୍ର—2. The cassia
leaves. ୩ । ଡାଲଚିନି—3. Cinnamon.

ବହୁଗନ୍ଧଦା—ସଂ. ବି. ସ୍ତ୍ରୀ ( ବହୁ+ଗନ୍ଧ+ଦା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ.
Bahugandhadā ଆ )—କସ୍ତୁରୀ—Musk ( Apte ).

ବହୁଗନ୍ଧା—ସଂ. ବି. ସ୍ତ୍ରୀ—୧ । ଚମ୍ପାକଢ଼ି—1. The bud of
Bahugandhā Champaka flower. ୨ । ଯୂଥିକା;
ଯୂଈ—2. Arabian jasmine. ୩ । କଳାଜୀରା—
3. The black cumin seed; Aligela Indica.

ବହୁଗୁଣ—ସଂ. ବିଣ (ବହୁବ୍ରୀହି)—୧ । ବହୁଗୁଣବିଶିଷ୍ଟ—1. Having
Bahuguṇa many qualities. ୨ । ବହୁସୂତ୍ରବିଶିଷ୍ଟ—
2. Having many threads or strings.

ବହୁଗ୍ରନ୍ଥି—ସଂ. ବିଣ ( ବହୁବ୍ରୀହି; ବହୁ+ଗ୍ରନ୍ଥି )—ବହୁତ ଗଣ୍ଠି ଯୁକ୍ତ;
Bahugranthi ଗଣ୍ଠିଗଣ୍ଠିଆ—Knotty
( ବହୁଗ୍ରନ୍ଥିକ—ଅନ୍ୟରୂପ ) ସଂ. ବି—ଝାଉଁଗଛ—The tama-
risk tree; the aspen ( tree )

ବହୁଗ୍ରହ—ସଂ. ବିଣ ( ବହୁବ୍ରୀହି; ବହୁ+ଗ୍ରହ=ଗ୍ରହଣ )—ଯହିଁରେ
Bahugraha ବହୁତ ପଦାର୍ଥ ସମ୍ପାଏ—Capacious; having
the capacity to hold a large quantity

ବହୁଜଳବୃଷ୍ଟି—ସଂ. ବି—ଖୁବ୍ ବର୍ଷା; ପ୍ରଚୁର ବୃଷ୍ଟି—
Bahujaḷabṛushṭi Copious outpour of rain.

ବହୁଜଳ୍ପ—ସଂ. ବିଣ. ପୁଂ ( ବହୁବ୍ରୀହି )—ଗପଡ଼ୀ—Talkative;
Bahujaḷpa (ବହୁଜଳ୍ପା—ସ୍ତ୍ରୀ) loquacious.

ବହୁଜ୍ଞ—ସଂ. ବିଣ. ପୁଂ ( ବହୁ+ଜ୍ଞା ଧାତୁ+କର୍ତ୍ତୃ. ଅ )—୧ । ଯେ
Bahujña ଅନେକ ବିଷୟ ଜାଣେ—1 Knowing much.
( ବହୁଜ୍ଞା—ସ୍ତ୍ରୀ ) ୨ । ଅତି ବିଦ୍ୱାନ୍—2. Very learned.
୩ । ବହୁଦର୍ଶୀ—3. Experienced.

ବହୁଡ଼—ଦେ. ବି—ଏକଜାତୀୟ ତୃଣ—
Bahuṛḍa A kind of grass.

ବହୁଡ଼ୀ—ପ୍ରାଦେ. ( ମେଦିନୀପୁର; ମାଠ ଭାଷା; ଭୁଲ. ବଂ. ବହୁଡ଼ୀ=
Bahuṛḍi ବାଳକାବଧୂ ) ବି—ବୋହୂ; ବଧୂ—
Daughter-in-law.
ଦେ. ବି—ବହୁଡ଼ (ଦେଖ)—Bahuṛḍa ( See )

ବହୁତ—ଦେ. ବିଣ ( ସଂ. ବହୁ; ଭୁଲ. ସଂ. ପ୍ରଭୂତ=ପ୍ରା. ବହୁଅ )—
Bahuta ୧ । ବହୁ; ବହୁଳ—1. Many; multifarious
বহুত **बहुत** ୨ । ଅତ୍ୟନ୍ତ; ପ୍ରଭୂତ—2. Much. ୩ । ଅତ୍ୟଧିକ—
3. Excessive. ୪ । ଅଧିକ ପରମିତ—4 Exten-
sive. ୫ । ପ୍ରଚୁର; ପର୍ଯ୍ୟାପ୍ତ—5. Abundant.

ଅଳପ ଦିନରୁ ବହୁତ କଥା
ଝୁରୁ ମନବାକୁ କଲ ବଧାତା—ଚଗ ।

ଦେ. କ୍ରି. ବିଣ ଓ ବିଣର ବିଣ. (ସଂ. ବହୁତଃ)—୧ । ଅନେକ ପରିମାଣରେ—1. In large quantity ୨ । ଅନେକ ପ୍ରକାରେ 2. In many ways. ୩ । ଅତ୍ୟନ୍ତ—3. Very much.

ଦେ. ବି ( ଶୁଭବାଚକ )—'୧' ସଂଖ୍ୟା—( euphemism ) Number '1'; one.

[ଦ୍ର—ଧାନ ମାପୁଣୀମାନେ ପ୍ରଥମ ଗଉଣୀକି ଧାନ ମାପିବାବେଳେ 'ଏକ' ସଂଖ୍ୟା ମୁହଁରେ ନ କହି 'ବହୁତ', 'ରାମ', 'ଜଗନ୍ନାଥ' ଆଦି ଶବ୍ଦମାନ ଉଚ୍ଚାରଣ କରନ୍ତି ।]

**ବହୁତଃ**—ସ. କ୍ରି. ବିଣ. (ବହୁ+ତସ୍)—ବହୁଧା; ବହୁପ୍ରକାରରେ; Bahutaḥ ଅନେକରୂପେ—In many ways; in various ways.

**ବହୁତନ୍ତ୍ରିକ**—ସ. ବିଣ. (ବହୁ+ତନ୍ତ୍ରି+କ)—ଅନେକ ତନ୍ତ୍ର ବା ତାର Bahutantrika ବିଶିଷ୍ଟ—Having many wires; fibrous; (ବହୁତନ୍ତ୍ରୀ—ଅନ୍ୟରୂପ) many-fibred.

**ବହୁତର**—ସ. ବିଣ. (ବହୁ+ଅପେକ୍ଷାକୃତ ଅଧିକ ଅର୍ଥରେ ତର)—Bahutara ୧ । ଅଧିକତର; ଅପେକ୍ଷାକୃତ ବେଶି—1 More; more excessive; greater; larger. ୨ । ଅପେକ୍ଷାକୃତ ଅଧିକ ସଂଖ୍ୟକ—2. More numerous. ୩ । ଅତି ଅଧିକ—3. Very great; very large.

**ବହୁତା(ତ୍ୱ)**—ସ. ବି. [ବହୁ+ଭାବାର୍ଥରେ ତା (ତ୍ୱ)]—Bahutā (twa) ୧ । ଆଧିକ୍ୟ—Excess; multifariousness. ୨ । ବାହୁଲ୍ୟ; ପ୍ରାଚୁର୍ଯ୍ୟ—2. Plenty; abundance.

**ବହୁତିଥ**—ସ. ବି. (ବହୁ+ପୂରଣାର୍ଥରେ. ତିଥ)—୧ । ଅନେକତମ, Bahutitha ଅନେକଙ୍କ ମଧ୍ୟରୁ ଗୋଟିଏ—1. One out of many. ୨ । ବହୁସଂଖ୍ୟକ—2. Multitudinous; numerous; many. ୩ । ଅତ୍ୟଧିକ—3. Excessive; much. ୪ । ପ୍ରଚୁର—4. Abundant.

**ବହୁତୃଣ**—ସ. ବିଣ.—୧ । (ତୃଣ+ତୁଲ୍ୟାର୍ଥରେ ବହୁ; ପୂର୍ବନିପାତ)—Bahu truṇa ତୃଣତୁଲ୍ୟ; ତୃଣ ସଦୃଶ; ତୃଣବତ୍—1. Like grass. ୨ । (ବହୁବ୍ରୀହି; ବହୁ+ତୃଣ)—ଯେଉଁଠାରେ ବିଶେଷ ଘାସ ଜନ୍ମି ଥାଏ—2. Grassy ୩ । ହେୟ; ତୁଚ୍ଛ—3. Insignificant (Apte).

ସ. ବି—୧ । ପଡ଼ିଆ—1. Meadow. ୨ । ଘାସଥିବା ଭୂମି—2. A grassy plot of land.

**ବହୁତ୍ୱକ୍**—ସଂ.ବି. (ବହୁ+ତ୍ୱଚ୍; ଯାହାର ତ୍ୱକ୍ ବା ଛାଲି; ବହୁସ୍ତରଯୁକ୍ତ) Bahutwak ଭୂର୍ଜ ବୃକ୍ଷ—The birch tree. (ବହୁତ୍ୱକ୍କ—ଅନ୍ୟରୂପ)

**ବହୁତ୍ର**—ସଂ. କ୍ରି. ବିଣ. (ବହୁ+ସ୍ଥାନାଧିକରଣାର୍ଥେ. ତ୍ର)—୧ । ବହୁ Bahutra ସ୍ଥାନରେ; ଅନେକ ସ୍ଥଳରେ—1. In many places. ୨ । ଅନେକ ପ୍ରକାରେ—2. In many ways (Apte).

**ବହୁଦ**—ସଂ. ବିଣ. ପୁଂ (ବହୁ+ଦା ଧାତୁ+କର୍ତ୍ତୃ. ଅ)—ବଦାନ୍ୟ; Bahuda ଦାନଶୀଳ—Munificent; liberal. (ବହୁଦା—ସ୍ତ୍ରୀ)

**ବହୁଦଂଷ୍ଟ୍ର**—ସଂ. ବିଣ. ପୁଂ. (ବହୁବ୍ରୀହି; ବହୁ+ଦଂଷ୍ଟ୍ର)—ଯାହାର Bahudaṁshṭra ଅନେକ ଦାନ୍ତ ଥାଏ—Having many teeth, (ବହୁଦଂଷ୍ଟ୍ରା—ସ୍ତ୍ରୀ)

**ବହୁଦକ୍ଷିଣ**—ସଂ. ବିଣ. ପୁଂ (ବହୁ+ଦକ୍ଷିଣ=ଉଦାର)—୧ । ବଦାନ୍ୟ Bahu dakshiṇa ଅତ୍ୟୁଦାର—1. Very liberal; munificent. (ବହୁ ଦକ୍ଷିଣା—ସ୍ତ୍ରୀ)

୨ । ଯେଉଁ ଯଜ୍ଞାଦିରେ ବହୁତ ଦକ୍ଷିଣା ଦିଆଯାଏ—2. (a vedic festival) Attended with various presents and offerings.

**ବହୁଦର୍ଶୀ**—ସଂ. ବିଣ. ପୁଂ. (ବହୁ+ଦୃଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ) Bahudarśī ୧ । ବହୁଜ୍ଞ; ଯେ ବହୁତ ବିଷୟ ଦେଖି ଥାଏ, (ବହୁଦର୍ଶକ—ଅନ୍ୟରୂପ) ଅନୁଭବୀ—1. Experienced. (ବହୁଦର୍ଶିକା, ବହୁଦର୍ଶିନୀ—ସ୍ତ୍ରୀ) ୨ । ପର୍ଯ୍ୟବେକ୍ଷକ—(ବହୁଦର୍ଶିତା—ବି) 2. Observant. ୩ । ଜ୍ଞାନୀ—3. Wise. ୪ । କାର୍ଯ୍ୟାକାର୍ଯ୍ୟ ବିଚାରକ—4. Prudent.

**ବହୁଦଳ**—ସଂ. ବିଣ. (ବହୁବ୍ରୀହି; ବହୁ+ଦଳ)—ବହୁତ ପତ୍ର ବା Bahudaḷa ପାଖୁଡ଼ାବିଶିଷ୍ଟ—Polypetalous; having (ବହୁଦଳକ—ସ୍ତ୍ରୀ) many petals.

**ବହୁଦୁଗ୍ଧ**—ସଂ. ବିଣ. (ବହୁବ୍ରୀହି; ବହୁ+ଦୁଗ୍ଧ)—ଯାହାଠାରେ ବହୁତ Bahu dugdha ଦୁଗ୍ଧ ବା ଦୁଗ୍ଧ ପରି ରସ ଥାଏ—Having abundant milk or milky juice.

ସଂ. ବି—ଗୋଧୂମ—Wheat.

**ବହୁଦୁଗ୍ଧା**—ସଂ. ବିଣ. ସ୍ତ୍ରୀ. (ବହୁଦୁଗ୍ଧ+ସ୍ତ୍ରୀ. ଆ)—ବହୁକ୍ଷୀରା; ଯେଉଁ Bahu dugdhā ଗାଈ ଅନେକ ପରିମାଣରେ ଦୁଧ ଦିଏ—(ବହୁକ୍ଷୀରା—ଅନ୍ୟରୂପ) (a cow) Giving much milk.

**ବହୁଦୁଗ୍ଧିକା**—ସଂ. ବି. ସ୍ତ୍ରୀ (ବହୁ+ଦୁଗ୍ଧ+କ+ସ୍ତ୍ରୀ. ଆ)—ସ୍ନୁହୀ ବା Bahudugdhikā ସିଜୁ ଗଛ—The Euphorbia (plant).

**ବହୁଦୃଷ୍ଟ**—ସଂ. ବିଣ. ପୁଂ. (ବହୁବ୍ରୀହି)—ଖୁବ ଅନୁଭବୀ—Bahudṛushṭa Much experienced (Apte). (ବହୁଦୃଶ୍ୱା—ଅନ୍ୟରୂପ) (ବହୁଦୃଷ୍ଟା—ସ୍ତ୍ରୀ)

**ବହୁଧନ**—ସଂ. ବି. (କର୍ମଧା; ବହୁ+ଧନ)—ପ୍ରଚୁର ଧନ—Bahu dhana Too much riches.

ସଂ. ବିଣ. ପୁଂ (ବହୁବ୍ରୀହି)—ଖୁବ୍ ଧନୀ—Very rich.

**ବହୁଧା**—ସଂ. ଅ. (ବହୁ+ପ୍ରକାରାର୍ଥରେ. ଧା)—୧ । ବହୁ ପ୍ରକାରରେ-Bahudhā 1. In many ways; manifold; in various ways. ୨ । ଅନେକ ଥର—2. Many a time. ୩ । ଅନେକ ଶାଖାରେ—3. Into many branches. ୪ । ପୁନଃପୁନଃ—4. Repeatedly; several times.

**ବହୁଧାକୃତ**—ସଂ. ବିଣ.—୧ । ଗୁଣିତ—Bahudhākṛuta 1. Multiplied (Apte).

(ବହୁଧାକରଣ—ବ) ୨ । ସାଧାରଣରେ ପ୍ରକାଶିତ—
2. Published broadcast; divulged (Apte).

ବହୁଧାର—ସଂ. ବି. (ବହୁବ୍ରୀହି; ବହୁ+ଧାର=ଖଡ୍ଗ ପ୍ରାନ୍ତ ଭାଗ; Bahudhāra ଇନ୍ଦ୍ରଙ୍କ ବଜ୍ର—The thunderbolt of Indra

ବହୁନାଦ—ସ. ବି. (ବହୁବ୍ରୀହି; ବହୁ+ନାଦ)—ଶଙ୍ଖ—
Bahunāda Conch-shell (used as a trumpet).

ବହୁପତ୍ନୀକ—ସ. ବିଣ. ପୁଂ—(ବହୁ+ପତ୍ନୀ+କ)—ଯାହାର ଅନେକ Bahupatnika ଭାର୍ଯ୍ୟା ଥାଆନ୍ତି—Poligamous; polyan-
[ବହୁ ପତ୍ନୀକତା(ତ୍ୱ)—ବି] drous.

ବହୁପତ୍ର—ସଂ. ବି. (ବହୁବ୍ରୀହି; ବହୁ+ପତ୍ର)—୧ । ପଲାଣ୍ଡୁ; ପିଆଜ—
Bahu patra 1. Onion. ୨ । ଅଭ୍ରକ ଧାତୁ—2 Mica
ସଂ. ବିଣ—ବହୁ ପତ୍ର ବା ପାଖୁଡ଼ାବିଶିଷ୍ଟ—Many-leaved polypetalous.

ବହୁପଦୀ—ସଂ. ବିଣ—( ବହୁ ପଦ+ଇନ୍ ) (ବିଜ୍ଞାନ ପରିଭାଷା )—
Bahupadi ୧ । ବହୁ ଚରଣଯୁକ୍ତ—1. Multiped-
୨ । ( ଗଣିତ ) ବହୁରାଶିପୁଞ୍ଜଯୁକ୍ତ—2. ( mathematics) Multinomial.

ବହୁପର୍ଣ୍ଣ (ର୍ଣ୍ଣୀ)—ସଂ. ବିଣ—(ବହୁବ୍ରୀହି; ବହୁ+ପର୍ଣ୍ଣ)—ଅନେକ ପତ୍ର
Bahuparnna (rnnī) ବିଶିଷ୍ଟ; ବହୁପତ୍ର; ବହୁଦଳ—Having many leaves, polypetalous.
ସଂ. ବି—ସପ୍ତଚ୍ଛଦ ବୃକ୍ଷ; ଛତିଆନା ଗଛ—Chhatiānā (See)

ବହୁପାଦ୍(ଦ)—ସଂ. ବି—[ବହୁବ୍ରୀହି; ବହୁ+ପାଦ୍ (ଦ)]—ବଟବୃକ୍ଷ—
Bahupād(da) The Banyan tree.
( ବହୁପଦ—ଅନ୍ୟରୂପ )

ବହୁପୁଷ୍ପ—ସଂ. ବି—( ବହୁବ୍ରୀହି )—୧ । ନିମ୍ବଗଛ—1. Nimba
Bahu pushpa tree. ୨ । ପାଲଧୂଆ ଗଛ—2. The coral tree.

ବହୁପ୍ରଜ—ସଂ. ବିଣ. ପୁଂ (ବହୁବ୍ରୀହି; ବହୁ+ପ୍ରଜା)—୧ । ଅନେକ
Bahupraja ସନ୍ତାନ ସନ୍ତତି ବିଶିଷ୍ଟ—1 Having many
(ବହୁ ପ୍ରଜା—ସ୍ତ୍ରୀ) offsprings ୨ । ବହୁ ପ୍ରଜାବିଶିଷ୍ଟ—
2. Populous ୩ । ଫଳବାନ୍; ବହୁଫଳ—
3. Prolific
ସଂ. ବି—୧ । ଶୂକର—1. Hog. ୨ । ମୁଞ୍ଜତୃଣ—
The Munja grass.

ବହୁପ୍ରଦ—ସଂ. ବିଣ. ପୁଂ ( ବହୁ+ପ୍ରଦ )—ବିଶେଷ ଦାନଶୀଳ—
Bahuprada (ବହୁପ୍ରଦା—ସ୍ତ୍ରୀ) Very munificent.

ବହୁପ୍ରସୂ—ସଂ. ବିଣ. ସ୍ତ୍ରୀ (ବହୁ+ପ୍ରସୂ=ଯେ ସନ୍ତାନ ପ୍ରସବ କରେ)—
Bahuprasū ବହୁ ସନ୍ତାନ ପ୍ରସବକାରିଣୀ ( ସ୍ତ୍ରୀ )—Very
(ବହୁ ପ୍ରସୂତା—ଅନ୍ୟରୂପ) prolific (woman).

ବହୁଫଳ—ସଂ. ବିଣ. ପୁଂ ( ବହୁବ୍ରୀହି; ବହୁ+ଫଳ )—୧ । ଯାହାର
Bahuphala (ଯେଉଁ ବୃକ୍ଷର) ବହୁତ ଫଳ ଥାଏ—1. Bearing
(ବହୁଫଳା—ସ୍ତ୍ରୀ) many fruits; rich in fruits
୨ । ଉର୍ବର—2. Fertile; fruitful; fecund.
ସଂ. ବି—୧ । କଦମ୍ବ ଗଛ—1. Kadamba tree.
୨ । ବିକଙ୍କତ; ଭଇଁଞ୍ଚକୋଳ ଗୁଳ୍ମ—2. A thorny plant bearing berries.

ବହୁଫଳା(ଳୀ)—ସଂ. ବି. ସ୍ତ୍ରୀ [ ବହୁବ୍ରୀହି; ବହୁ+ଫଳ+ସ୍ତ୍ରୀ. ଆ
Bahuphalā(lī) (ଈ)] - ୧ । କ୍ଷୀରକା; କ୍ଷୀରକୋଳି ଗଛ—
1. A tree bearing edible berries; Flacourtia Ramontchi. ୨ । ମାଷପର୍ଣ୍ଣୀ ( ଲତା ) (ଦେଖ)—
2 Māsha parnni (creeper) (See). ୩ । କାକାଦନୀ (ଗୁଳ୍ମ)—3. Caparis Separia (plant).
୪ । କାକୁଡ଼ି—4 Cucumber. ୫ । କ୍ଷୁଦ୍ର କାରବେଲ୍ଲ; ଟୁଣୀ କଲରା—5. A small round species of memordica. ୬ । ଭୂମ୍ୟାମଲକୀ; ଭୁଇଁ ଅଁଳା—6 A medicinal plant. ୭ । ଅଁଳା ଗଛ—
7. Embalic Myrobolan tree. ୮ । ଉମ୍ବିରଗଛ—
9. Fig tree.

ବହୁବଚନ—ସଂ. ବି—( ବ୍ୟାକରଣ ) ଦୁଇରୁ ଅଧିକ ସଂଖ୍ୟା
Bahubachana (grammar) The plural number.

ବହୁବଳ - ସଂ ବିଣ (ବହୁବ୍ରୀହି; ବହୁ+ବଳ )—ବିଶେଷ ବଳଶାଳୀ;
Bahubala ଖୁବ୍ ବଳୁଆ—Very strong; mighty.
ସ. ବି—ସିଂହ—Lion.

ବହୁବାର—ସ. ବି—୧ । ଗର୍ଭଣାଗଛ—1. Cordia Mixa.(tree)
Bahubāra ୨ । ଓଉ (ଦେଖ)—2. Ou (See).
ଦେ. କ୍ରି. ବିଣ ( ସଂ. ବହୁବାର )—ଅନେକ ଥର—
ବହୁବାର **बहुतदफा** Many times; often.

ବହୁବିଘ୍ନ—ସ. ବି (କର୍ମଧା; ବହୁ+ବିଘ୍ନ)—ନାନାପ୍ରକାର ବାଧା—
Bahubighna Many obstacles.
ସଂ. ବିଣ (ବହୁବ୍ରୀହି)—ନାନାବିଘ୍ନଯୁକ୍ତ—Attended with various obstacles

ବହୁବିତ୍—ସଂ. ବିଣ (ବହୁ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍)-୧ । ବହୁଜ୍ଞ—
Bahubit 1. Wise; knowing many things
ବହୁବେତ୍ତା } ଅନ୍ୟରୂପ ୨ । ଖୁବ୍ ପଣ୍ଡିତ—
ବହୁବିଦ୍ୟ } 2. Very learned.

ବହୁବିଧ—ସଂ. ବିଣ ( ବହୁବ୍ରୀହି; ବହୁ+ବିଧା=ପ୍ରକାର )· ବିବିଧ,
Bahubidha ନାନାପ୍ରକାରର—Manifold, of many
(ବହୁବିଧା—ସ୍ତ୍ରୀ) sorts; various; multifarious.

ବହୁ ବିବାହ—ସଂ. ବି—୧ । ଗୋଟିଏ ପୁରୁଷର ଏକାଧିକ ସ୍ତ୍ରୀକୁ
Bahu bibāha ବିବାହ କରିବା ବିଧି—1. Polygamy
୨ । ଜଣେ ସ୍ତ୍ରୀର ଅନେକ ପୁରୁଷଙ୍କୁ ବିବାହ କରିବା ପ୍ରଥା—
2. Polyandry.

ବହୁବୀଜ—ସଂ. ବିଣ (ବହୁବ୍ରୀହି; ବହୁ+ବୀଜ)—ପ୍ରଚୁର ବୀଜବିଶିଷ୍ଟ—
Bahubīja Having many seeds.
(ବହୁବୀଜୀ—ଅନ୍ୟରୂପ) ସଂ. ବି—୧ । ଡାଳିମ୍ବ—
1. Pomagranate. ୨ । ଆତ୍ତୃପ୍ୟ; ଆତଫଳ—
2. Custard apple.

ବହୁ ବ୍ୟୟ—ସଂ. ବି (କର୍ମଧା; ବହୁ+ବ୍ୟୟ)—୧ । ବିଶେଷ ଖରଚ—
Bahu byaya 1. A great expense. ୨ । ଅତିରିକ୍ତ ବ୍ୟୟ—2. Lavishness in expenditure.

**ବହୁ ବ୍ୟୟସାଧ୍ୟ**—ସଂ. ବିଣ (ତୃତୀୟା ତତ୍; ବହୁ ବ୍ୟୟ+ସାଧ୍ୟ)—ଯେଉଁ
Bahu byaya sādhya କାର୍ଯ୍ୟ ବହୁ ଧନ ବ୍ୟୟ କରିବାଦ୍ୱାରା ସିଦ୍ଧ ହୋଇପାରେ—Very costly or expensive.

**ବହୁବ୍ୟୟୀ**—ସଂ. ବିଣ. ପୁଂ. (ବହୁବ୍ୟୟ+କର୍ତ୍ତୃ. ଇନ୍)—ଯେ ବିଶେଷ
Bahubyayī ଖରଚ କରେ—Spending too much;
(ବହୁବ୍ୟୟିନୀ—ସ୍ତ୍ରୀ) having to meet large expenses; prodigal; lavish; spendthrift.

**ବହୁବ୍ରୀହି**—ସଂ. ବି. (ବ୍ୟାକରଣ) (ବହୁ+ବ୍ରୀହି=ଶସ୍ୟ)—ସମାସ
Bahubrīhi ବିଶେଷ, ଯେଉଁ ସମାସରେ ଅନ୍ୟ ପଦର ପ୍ରାଧାନ୍ୟ ରହେ; (ଯେଉଁ ପଦମାନଙ୍କଦ୍ୱାରା ସମସ୍ତ ପଦଟି ଗଠିତ ହୁଏ ଉକ୍ତ ସମସ୍ତ ପଦ ତଦନ୍ତର୍ଗତ ଭିନ୍ନ ଭିନ୍ନ ପଦର ଅର୍ଥକୁ ନ ବୁଝାଇ ଅନ୍ୟ ଅର୍ଥ ପ୍ରକାଶ କଲେ ବହୁବ୍ରୀହି ସମାସ ହୁଏ)—A form of grammatical attributive compound.

[ ଦ୍ର—ବହୁବ୍ରୀହି ସମାସ ନାନାବିଧ, ତନ୍ମଧ୍ୟରୁ ଏହି କେତୋଟି ପ୍ରଧାନ, ଯଥା—ଦ୍ୱିତୀୟାନ୍ୟପଦାର୍ଥ—ଆରୂଢ଼ବାନର—ଆରୂଢ଼ ହୋଇଅଛି ବାନର ଯାହାକୁ । ତୃତୀୟାନ୍ୟପଦାର୍ଥ;—ଜିତେନ୍ଦ୍ରିୟ—ଜିତ ହୋଇଅଛି ଇନ୍ଦ୍ରିୟ ଯାହାଦ୍ୱାରା । ଚତୁର୍ଥାନ୍ୟପଦାର୍ଥ;—ଦତ୍ତୋପଦେଶ—ଦତ୍ତ ହୋଇଅଛି ଉପଦେଶ ଯାହାକୁ । ପଞ୍ଚମ୍ୟନ୍ୟ ପଦାର୍ଥ;—ନିରତିଶୟ—ନାହିଁ ଅତିଶୟ ଯାହାଠାରୁ । ଷଷ୍ଠ୍ୟନ୍ୟ-ପଦାର୍ଥ;—ଲମ୍ବୋଦର—ଲମ୍ବ ଉଦର ଯାହାର । ସପ୍ତମ୍ୟନ୍ୟ-ପଦାର୍ଥ;—ନିର୍ଜନ—ନାହିଁ ଜନ ଯେଉଁଠାରେ । ସାଧାରଣତଃ ବହୁବ୍ରୀହି ସମାସନିଷ୍ପନ୍ନ ପଦ ବିଶେଷଣ ହୁଏ, କିନ୍ତୁ ସମୟ ସମୟରେ ଉକ୍ତ ପଦ ଉକ୍ତ ବିଶେଷଣ ଗୁଣଧାରୀ ବ୍ୟକ୍ତି ବା ବସ୍ତୁକୁ ବୁଝାଏ, ଯଥା—ଚକ୍ରପାଣି, ଚତୁର୍ମୁଖ, ଶଶିମୌଳି । ]

ସଂ. ବିଣ—ଯାହାର ବହୁତ ଶସ୍ୟ ଥାଏ—Having an abundant supply of grain

**ବହୁଭାଗ୍ୟ**—ସଂ. ବି. (କର୍ମଧା; ବହୁ+ଭାଗ୍ୟ)—ଅତିଶୟ ସୌଭାଗ୍ୟ—
Bahubhāgya Good fortune.
ସଂ. ବିଣ. ପୁଂ (ବହୁବ୍ରୀହି)—ସୌଭାଗ୍ୟବାନ୍—Fortunate.
( ବହୁଭାଗ୍ୟା—ସ୍ତ୍ରୀ )

**ବହୁଭାର୍ଯ୍ୟ**—ସଂ. ବିଣ. ପୁଂ. ( ବହୁବ୍ରୀହି; ବହୁ+ଭାର୍ଯ୍ୟା )—ଯାହାର
Bahubhārjya ଏକାଧିକ ସ୍ତ୍ରୀ ଅଛନ୍ତି—Having many wives
(ବହୁପତ୍ନୀକ—ଅନ୍ୟରୂପ)

**ବହୁଭାଷଣ**—ସଂ. ବି. (କର୍ମଧା; ବହୁ+ଭାଷଣ)—ବହୁତ ଗୁଡ଼ାଏ ଗପିବା—
Bahubhāshaṇa Talking too much.

**ବହୁଭାଷାବିତ୍**—ସଂ. ବିଣ. (ବହୁଭାଷା+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍;
Bahubhāshābit ବହୁଭାଷାବିଦ୍, ୧ମା. ୧ବ.)—ଯେ ଅନେକ-ଗୁଡ଼ାଏ ଭାଷାରେ ପଣ୍ଡିତ—
ବହୁଭାଷାଭିଜ୍ଞ
ବହୁଭାଷାଜ୍ଞ } ଅନ୍ୟରୂପ Learned in many languages.
ବହୁଭାଷାବିଶାରଦ

**ବହୁଭାଷୀ**—ସଂ. ବିଣ. ପୁଂ—୧ । (ବହୁ+ଭାଷ୍ ଧାତୁ=କହିବା+
Bahubhāshī କର୍ତ୍ତୃ ଇନ, ୧ମା. ୧ବ)—ଗପଡ଼ି; ବାଚାଳ—
(ବହୁଭାଷିଣୀ—ସ୍ତ୍ରୀ) 1 Talkative; loquacious; garru-
(ଅଳ୍ପଭାଷୀ—ବିପରୀତ) lous. ୨ । ( ବହୁ+ଭାଷା+ଇନ୍ )—
(ବହୁଭାଷିତା—ବି) ଅନେକ ଭାଷାଭିଜ୍ଞ—2. Polyglot; versed in many languages. ୩ । ଯେଉଁ ଗ୍ରନ୍ଥରେ ଏକାଧିକ ଭାଷା ବ୍ୟବହୃତ ହୋଇଥାଏ—3. Multilingual; (a book) witten in more than 2 languages

**ବହୁଭୁକ୍**—ସଂ. ବିଣ. ପୁଂ. (ବହୁ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍; ବହୁଭୁଜ୍,
Bahubhuk ୧ମ. ୧ବ.)—ଉଦରମ୍ଭରି; ପେଟୁ; ଯେ ଗୁଡ଼ାଏ ଖାଏ—Greedy; voracious.

**ବହୁମଞ୍ଜରୀ**—ସଂ. ବିଣ. ( ବହୁବ୍ରୀହି; ବହୁ+ମଞ୍ଜରୀ )—ଯେଉଁ ଗଛ
Bahumañjarī ଅନେକ ମୁକୁଳ ଧରେ—Many-blossomed
ସଂ. ବି—ତୁଳସୀ ଗଛ—The holy Basil plant.

**ବହୁମତ**—ସଂ. ବିଣ. ପୁଂ. (ବହୁ+ମନ୍ ଧାତୁ+କର୍ମ. ତ)—୧ । ଅତି
Bahumata ସମାଦୃତ—1. Highly respected or
(ବହୁମତା—ସ୍ତ୍ରୀ) esteemed or prized. ୨ । ପୂଜିତ—2. Honoured. ୩ । ବହୁଜ୍ଞାନଶାଳୀ—3. Very wise. ୪ । ଯାହାର ଅନେକ ମତ ଥାଏ—4. Having many opinions.
ଦେ. ବିଣ—ବହୁପ୍ରକାରର—Of various sorts.

ନିର୍ଗୁଣେ ନୋହେ ସେ ଗୁଣୀତ
ଈଶ୍ୱର-ମାୟା ବହୁମତ । ଜଗନ୍ନାଥ ଭାଗବତ ।

**ବହୁମଳ**—ସଂ. ବିଣ. (ବହୁବ୍ରୀହି; ବହୁ+ମଳ=ମଇଳା)—ବିଶେଷ
Bahumaḷa ମଳଯୁକ୍ତ—Having too much dirt.
ସଂ. ବି—ସୀସକ; ସୀସା—Lead (metal).

**ବହୁମାନ**—ସଂ ବି. (କର୍ମଧା; ବହୁ+ମାନ)—ସମ୍ମାନ; ସମାଦର—
Bahumāna Great respect; high regard.
(ବହୁମତ—ଅନ୍ୟରୂପ) ସଂ. ବିଣ ( ବହୁବ୍ରୀହି )—ଅତି ସମ୍ମାନିତ—Much respected; honowred.

**ବହୁମାର୍ଗ**—ସଂ. ବି—୧ । ( କର୍ମଧା; ବହୁ+ମାର୍ଗ=ବାଟ )—ଅନେକ
Bahumārga ବାଟ—1. Many ways; various paths.
୨ । (ବହୁବ୍ରୀହି) ଅଙ୍ଗନ; ଅଗଣା—2. A courtyard.
୩ । ଛକ—3. A meeting place of many roads ( Apte ).

**ବହୁମାର୍ଗଗା**—ସଂ. ବି. ସ୍ତ୍ରୀ ( ବହୁମାର୍ଗ+ଗମ୍ ଧାତୁ+କର୍ତ୍ତୃ. ଅ )—
Bahumārgagā ୧ । ଗଙ୍ଗାନଦୀ—1. The river Ganges
୨ । ଅସତୀ ସ୍ତ୍ରୀ—2. A wanton or unchaste woman ( Apte ).

**ବହୁମାର୍ଗୀ**—ସଂ. ବିଣ. ପୁଂ—(ବହୁ+ମାର୍ଗ+ଇନ୍; ୧ମା. ୧ବ)—
Bahumārgī ନାନା ପଥାବଲମ୍ବୀ—Following various paths.
(ବହୁମାର୍ଗିଣୀ—ସ୍ତ୍ରୀ)
ସଂ. ବି—ଛକ—A meeting place of many roads (Apte).

**ବହୁମୁଖ**—ସଂ. ବିଣ ପୁଂ—(ବହୁବ୍ରୀହି)—୧ । ଅତ୍ୟନ୍ତ—
Bahumukha 1. Excessive (Apte).
( ବହୁମୁଖୀ—ସ୍ତ୍ରୀ )

ବହୁମୂତ୍ର—ସଂ. ବି. (ବହୁବ୍ରୀହି)—ମେହରୋଗବିଶେଷ—
Bahumūtra Diabetes.
[ ଦ୍ର—ଏଥିରେ ରୋଗୀ ପୁନଃ ପୁନଃ ବହୁପରିମାଣରେ ପ୍ରସ୍ରାବ କରେ ଏବଂ ତଦ୍ଦ୍ୱାରା ରୋଗୀର ଜୀବନୀଶକ୍ତି କମିଯାଏ । ଏହା ଦୁଇ ପ୍ରକାର—ମୂତ୍ର ସଙ୍ଗେ ଚିନି ଥିଲେ ମଧୁମେହ ଓ ଚିନି ନ ଥିଲେ ମୂତ୍ରମେହ । ]

ବହୁମୂର୍ତ୍ତି—ସଂ. ବିଣ. (ବହୁବ୍ରୀହି; ବହୁ+ମୂର୍ତ୍ତି)—ବହୁରୂପ; ଅନେକ-
Bahumūrtti ରୂପବିଶିଷ୍ଟ—Having various forms; multiform.
ସଂ. ବି—୧ । ବିଷ୍ଣୁ—1. Bishṇu ୨ । ଶିବ—2. Śiba.
୩ । ବନକାର୍ପାସ—3. Wild cotton.

ବହୁମୂର୍ଦ୍ଧା—ସଂ. ବିଣ. (ବହୁବ୍ରୀହି; ବହୁ+ମୂର୍ଦ୍ଧନ୍; ୧ମା. ୧ବ.)—
Bahumūrddhā ଯାହାର ଅନେକଗୁଡ଼ିଏ ମୁଣ୍ଡ ଥାଏ—
(ବହୁଶିରସ୍କ—ଅନ୍ୟରୂପ) Having many heads; hydra-headed.
ସଂ. ବି—ବିଷ୍ଣୁ (ସହସ୍ରଶୀର୍ଷ ଥିବାରୁ)—Bishṇu.

ବହୁମୂଳ—ସଂ. ବିଣ. (ବହୁବ୍ରୀହି; ବହୁ+ମୂଳ)—ବହୁ ଚେରବିଶିଷ୍ଟ—
Bahumūḷa Having many roots.
(ବହୁମୂଳକ—ଅନ୍ୟରୂପ) ସଂ. ବି—୧ । ବଟବୃକ୍ଷ—1. The Banyan tree. ୨ । ନାଗବିଶେଷ—2. Name of a mythological serpent. ୩ । ଏକପ୍ରକାର ଘାସ—3. A kind of grass.

ବହୁମୂଳୀ—ସଂ. ବି. ( ବହୁମୂଳ+ସ୍ତ୍ରୀ. ଈ )—ଶତାବରୀ; ଶତମୂଳୀ;
Bahumūḷī ଛତୋରୀ—Asparagus Recemosus.

ବହୁମୂଲ୍ୟ—ସଂ. ବିଣ. ( ବହୁବ୍ରୀହି; ବହୁ + ମୂଲ୍ୟ )—୧ । ବିଶେଷ
Bahumūlya ମୂଲ୍ୟବାନ୍; ଦାମୀ—1. Valuable; costly.
୨ । ମହାର୍ଘ; ମହର୍ଗ—2. Dear (in price).
ସଂ. ବି. ( କର୍ମଧା )—୧ । ବହୁତ ଦାମ—1. High price. ୨ । ବହୁତ ଧନ—2. A large amount of money.

ବହୁରାଶିକ—ସଂ. ବି. ( ଗଣିତ ପରିଭାଷା ) ( ବହୁ+ରାଶି+କ )—
Bahurāśika ପାଟୀଗଣିତରେ ଦୁଇ ବା ତତୋଽଧିକ ତ୍ରୈରାଶିକ-ଘଟିତ ଅଙ୍କ—(arithmetic) The double Rule of Three.
ସଂ. ବିଣ. (ଗଣିତ)—ଯହିଁରେ ଅନେକ ରାଶି ଥାଏ—
( mathematics ) Consisting of many terms.

ବହୁରୁଚି—ଦେ. ବି—ରାଜସାହିରୁ ଆସୁଥିବା ଏକ ପ୍ରକାର ପତ୍ର—
Bahuruchi Ganja leaves brought from Raj-
(ବରୁରୁଚି, ବରୁଚି—ଅନ୍ୟରୂପ) Sahi district in Bengal.

ବହୁ ରୂପ—ସଂ. ବିଣ. ( ବହୁବ୍ରୀହି; ବହୁ+ରୂପ )—ବହୁମୂର୍ତ୍ତିଧାରୀ;
Bahu rūpa ବହୁବେଶଧାରୀ—Of various shapes; assuming different shapes; assuming different masks is disguise.
ବହୁ ରୂପକ } ଅନ୍ୟରୂପ
ବହୁ ରୂପୀ }
(ବହୁରୂପା—ସ୍ତ୍ରୀ)

ସଂ. ବି—୧ । ବିଷ୍ଣୁ—1. Bishṇu. ୨ । କାମଦେବ—2. Cupid. ୩ । ଶିବ—4. Śiba. ୪ । ଝୁଣା—4. Resin ୫ । ନାସାରୋଗବିଶେଷ; ପୀନସ ରୋଗ—5. Polypus of the nose. ୬ । କୃକଳାସ; ଏଣ୍ଡୁଅ-6. Chameleon. ୭ । ବ୍ରହ୍ମା—7. Brahmā. ୮ । କେଶ—8. Hair. ୯ । ଯେଉଁ ବ୍ୟକ୍ତି ଲୋକ-ରଞ୍ଜନାର୍ଥ ନାନା ଛଦ୍ମ ବେଶ ଧାରଣ କରେ—9. A professional masker.

ବହୁ ରୂପା—ସଂ. ବି. ସ୍ତ୍ରୀ. (ବହୁ+ରୂପ+ସ୍ତ୍ରୀ. ଆ; ବହୁବ୍ରୀହି)—
Bahu rūpā ଦୁର୍ଗା—The Goddess Durgā.

ବହୁରୂପୀ(ପା)—ଦେ. ବି. (ସ. ବହୁରୂପ)—୧ । ସରଟ; ଏକ ପ୍ରକାର
Bahurūpī(pā) ଏଣ୍ଡୁଅ—1. Chameleon.
[ ଦ୍ର—ଏହା ସରୀସୃପ; ଦେହ ୯।୧୦ ଅଙ୍ଗୁଳ ଲମ୍ବା; ଲାଞ୍ଜ ୧୦।୧୨ ଅଙ୍ଗୁଳ; ଆଖି ବଡ଼ ବଡ଼; ଦେହ ଚେପଟା ଓ ଅବୃମସୃଣ; ପଦ ପାର୍ଶ୍ୱ; ମୁଣ୍ଡ ପାଖରେ ଚୂଳ ଥାଏ; ଜିଭ ଗୋଲ ଏବଂ ଜିଭ ଅଗ ମୋଟା; ଏ ହଠାତ୍ ଜିଭ ବାହାର କରି ପକାଏ । ବହୁରୂପୀର ଦେହର ରଙ୍ଗ ଦିନ ମଧ୍ୟରେ ଅନେକ ଥର ବଦଳେ । ମାଛଙ୍କ ପରି ଏମାନଙ୍କ ପିଠିର ମେରୁଦଣ୍ଡ ଉପରେ କଣ୍ଟା ଥାଏ । ]
बहुरूप ୨ । ଏକ ପ୍ରକାର ଫୁଲ—2. Quisakialis Indica.
**बहुरूपीया** ୩ । ବହୁରୂପ ୯ (ଦେଖ)—3. A masker.

ବହୁରେଖ—ସଂ. ବିଣ. ( ବହୁବ୍ରୀହି; ବହୁ+ରେଖା )—
Bahurekha ଅନେକ ରେଖାବିଶିଷ୍ଟ—Having various lines.

ବହୁରୋମା—ସଂ. ବିଣ. ( ବହୁବ୍ରୀହି; ବହୁ+ରୋମନ୍ )—
Bahuromā ଅତି ଲୋମଶ—Having shaggy furs.
ସଂ. ବି—ମେଣ୍ଢା—Ram; sheep.

ବହୁଳ—ସଂ. ବିଣ. (ବହନ୍ ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ଉଳ)—
Bahuḷa ୧ । ଅନେକ; ଅଧିକ—1. Many; much; ex-
( ବହୁଳତା(ତ୍ୱ)—ବି ) cessive. ୨ । ଘନ—2. Thick; dense; compact.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ସମାସଦ୍ୱାରା ଯୁକ୍ତ ହୁଏ, ଯଥା—ତରଙ୍ଗବହୁଳ ସାଗର, ହିଂସ୍ରଜନ୍ତୁବହୁଳ ଅରଣ୍ୟ । ]
୩ । ଗପଡ଼ୀ—3. Garrulous. ୪ । (ବହୁ+ଲା ଧାତୁ=ଦାନ କରିବା+କର୍ତ୍ତୃ. ଅ) କୃଷ୍ଣବର୍ଣ୍ଣବିଶିଷ୍ଟ—5. Black; dark. ୫ । କୃତ୍ତିକା ନକ୍ଷତ୍ରରେ ଜନ୍ମ ଗ୍ରହଣ କରିଥିବା ( ବ୍ୟକ୍ତି )—5. (a person) Born under the Pleidas ( Apte ).
ସଂ. ବି—୧ । କୃଷ୍ଣ ପକ୍ଷ—1. The dark fortnight of the month. ୨ । କୃଷ୍ଣବର୍ଣ୍ଣ—2. Black colour.
୩ । ଧଳା ମରିଚ—3. White pepper. ୪ । ଆକାଶ—4. The sky. ୫ । ଅଗ୍ନି—5. Fire.
ସଂ. କ୍ରି. ବିଣ—୧ । ଅତ୍ୟନ୍ତ—1. Much. ୨ । ସର୍ବଦା—2. Frequently; often (Apte).

**ବହୁଳଛଦ**—ସଂ. ବିଣ. (ବହୁବ୍ରୀହି; ବହୁଳ+ଛଦ=ପତ୍ର; ସନ୍ଧି ଦ୍ୱାରା ଛ ସ୍ଥାନରେ ଚ୍ଛ)—୧ । ବହୁ ପତ୍ରବିଶିଷ୍ଟ; ପତ୍ରବହୁଳ—1. Having many leaves. ୨ । ଘନ ପତ୍ର ସନ୍ନିବିଷ୍ଟ—2. Densely set with leaves.
Bahulachchhada

**ବହୁଳତା(ତ୍ୱ)**—ସଂ. ବି. [ ବହୁଳ+ଭାବ. ତା(ତ୍ୱ) ]—୧ । ବାହୁଲ୍ୟ; ଆଧିକ୍ୟ—1. Excess; multifariousness. ୨ । ପ୍ରାଚୁର୍ଯ୍ୟ—2. Abundance; copiousness.
Bahulatā(twa)

**ବହୁଳ ପକ୍ଷ**—ସଂ. ବି. (ବହୁଳ=କୃଷ୍ଣ+ପକ୍ଷ)—କୃଷ୍ଣ ପକ୍ଷ—The dark fortnight.
Bohula paksha

ଅଥବା ବହୁଳ— ପକ୍ଷେ ପ୍ରାଚୀ ମୂଳେ
ହିମାଂଶୁ କଳା ବରମା । ରଥାନାଥ, ପାର୍ବତୀ ।

**ବହୁଳା**—ସଂ. ବି. ସ୍ତ୍ରୀ ( ବହୁଳ+ସ୍ତ୍ରୀ. ଆ )—୧ । କୃଷ୍ଣପକ୍ଷ—1. The dark lunar fortnight.
Bahulā
୨ । ତାମସୀ ରାତ୍ରୀ—2 Dark or moonless night ୩ । କୃତ୍ତିକା ନକ୍ଷତ୍ର—3. The 3rd asterism; the Pleidas. ୪ । ଗାଈ—4. Cow. ୫ । ନଦୀବିଶେଷ—5. Name of a river. ୬ । ଏଲା ଲତା—6, Cardamom plant. ୭ । ନୀଳ ଗୁଳ୍ମ—7. Indigo plant. ୮ । ଶୁକ୍ଳ ମରିଚ—8. White pepper (Apte) ୯ । ଆକାଶ—9. The sky (Apte).

**ବହୁଳାଳାପ**—ସଂ. ବିଣ ( ବହୁବ୍ରୀହି; ବହୁଳ+ଆଳାପ )—ଗପୁଡ଼ି—Talkative (Apte).
Bahulālāpa
(ବହୁଳାଳାପା—ସ୍ତ୍ରୀ)

**ବହୁଳାଶ୍ୱ**—ସଂ. ବିଣ. ପୁଂ ( ବହୁବ୍ରୀହି; ବହୁଳ+ଅଶ୍ୱ )—ଯାହାର ଅନେକ ଘୋଡ଼ା ଅଛନ୍ତି—Owning many horses.
Bahulāśwa
ସଂ. ବି—ଜନକ ବଂଶୀୟ ଜନୈକ ରାଜା—Name of a king of Mithilā.

**ବହୁଳୀକରଣ**—ସଂ. ବି. (ବହୁଳ+ଅଭୂତ ତଦ୍ଭାବେ. ଚ୍ୱି+କରଣ)—୧ । ବିସ୍ତାରିତ-କରଣ—1. Expanding. ୨ । ବୃଦ୍ଧିକରଣ—2. Multiplying. ୩ । ଧାନ୍ୟାଦିର ନିସ୍ତୁଷୀକରଣ; ବେଙ୍ଗଲା ପକାଇ ବା ପଟା ଉପରେ ବାଡ଼େଇ ଧାନ କେଣ୍ଡାରୁ ଶସ୍ୟକୁ ପୃଥକ୍ କରି ଏକତ୍ର କରିବା—3. The winnowing of grains; the threshing of grains. ୪ । ସାଧାରଣରେ ପ୍ରକଟିତ କରିବା—4. Promulgation; publication.
Bahulīkaraṇa
(ବହୁଳୀକୃତ—ବିଣ)

**ବହୁଳୀଭୂତ**—ସଂ. ବିଣ. ( ବହୁଳ+ଅଭୂତ ତଦ୍ଭାବେ ଚ୍ୱି+ଭୂତ )—୧ । ବୃଦ୍ଧିପ୍ରାପ୍ତ—1. Increased. ୨ । ସୁଦୂର ବିସ୍ତୃତ—2. Wide spread. ୩ । ସୁପ୍ରକଟିତ—3. Published broadcast. ୪ । ସୁବିଖ୍ୟାତ—4. Made notorious or famous (Apte).
Bahulībhūta
(ବହୁଳୀଭାବ—ବି)

**ବହୁଶଃ**—ସଂ. କ୍ରି. ବିଣ. (ବହୁ+ଶସ୍)—୧ । ଅନେକବାର; ବାରଂବାର 1. Many a time; frequently; repeatedly. ୨ । ବାହୁଲ୍ୟରୂପେ; ପ୍ରଚୁରରୂପେ—2. Abundantly; copiously. ୩ । ସାଧାରଣତଃ—3. Generally.
Bahuśaḥ

**ବହୁଶତ୍ରୁ**—ସଂ. ବିଣ. ( ବହୁବ୍ରୀହି; ବହୁ+ଶତ୍ରୁ )—ଯାହାର ଅନେକ ଶତ୍ରୁ ଅଛନ୍ତି—Having many enemies.
Bahu śatru
ସଂ. ବି.—ଚଟକ; ଘରଚଟିଆ ପକ୍ଷୀ—Sparrow.

**ବହୁଶାଖ**—ସଂ. ବିଣ. ( ବହୁବ୍ରୀହି; ବହୁ+ଶାଖା )—ଅନେକ ଶାଖା-ବିଶିଷ୍ଟ—Having many branches or ramifications.
Bahu śākha
(ବହୁଶାଖା—ସ୍ତ୍ରୀ)

**ବହୁଶିଖ(ଖା)**—ସଂ. ବିଣ. (ବହୁବ୍ରୀହି; ବହୁ+ଶିଖ [ଖା])—ଅନେକ ଶିଖାଯୁକ୍ତ—Having several tufts or points.
Bahu śikha(khā)
ସଂ. ବି.—ଅଗ୍ନି—Fire.

**ବହୁଶିରାଃ**—ସଂ ବିଣ.—(ବହୁବ୍ରୀହି; ବହୁ+ଶିରସ, ୧ମା. ୧ବ.)—ଯାହାର ଅନେକ ମୁଣ୍ଡ ଥାଏ—Having many heads.
Bahu śirāḥ
ସଂ. ବି.—ବିଷ୍ଣୁ—Bishṇu.

**ବହୁଶ୍ରୁତ**—ସଂ. ବିଣ. ପୁଂ (ବହୁ+ଶ୍ରୁତ=ଶୁଣିଥିବା; ଅନେକବାର ବେଦାଦି ଶ୍ରବଣ କରିଥିବାରୁ)—୧ । ସୁପଣ୍ଡିତ—1. Very learned. ୨ । ସୁଶିକ୍ଷିତ—2. Well educated. ୩ । ବେଦାଦି ଶାସ୍ତ୍ରଜ୍ଞ—3. Well versed in the Bedas.
Bahu śruta
(ବହୁଶ୍ରୁତା—ସ୍ତ୍ରୀ)

**ବହୁଶ୍ରେୟାନ୍**—ସଂ. ବିଣ. ପୁଂ (ବହୁବ୍ରୀହି; ବହୁ+ଶ୍ରେୟସ୍; ବହୁଶ୍ରେୟସ୍ ୧ମା. ୧ବ.)—୧ । ବହୁ ସୁଗୁଣଶାଳୀ—1. Having many good qualities. ୨ । ଅତି ଉତ୍ତମ—2. Excellent.
Bahu śreyān
(ବହୁଶ୍ରେୟସୀ—ସ୍ତ୍ରୀ)

**ବହୁସଂଖ୍ୟକ**—ସଂ. ବିଣ. (ବହୁ+ସଂଖ୍ୟା+କ)—ସଂଖ୍ୟାରେ ଅନେକ—Multifarious; many.
Bahu saṁkhyaka

**ବହୁ ସନ୍ତତି**—ସଂ. ବିଣ. (ବହୁବ୍ରୀହି; ବହୁ+ସନ୍ତତି)—ଯାହାର ଅନେକ ପୁଅ ଝିଅ ଅଛନ୍ତି—Having numerous children.
Bahu santati
ସଂ. ବି.—କଣ୍ଟା ବାଉଁଶ—The thorny bamboo; Bambusa Arundinacea.

**ବହୁସାର**—ସଂ. ବିଣ. (ବହୁବ୍ରୀହି; ବହୁ+ସାର)—ଯାହା ମଧ୍ୟରେ ଅନେକ ସାରାଂଶ ଅଛି—Having much substance or pith inside.
Bahu sāra
ସଂ. ବି.—୧ । ଖଜୁରି ଗଛ—1. The date palm. ୨ । ଖଦିର ବୃକ୍ଷ—2. The catechu tree.

**ବହୁସୂ**—ସଂ. ବିଣ. ସ୍ତ୍ରୀ—(ବହୁବ୍ରୀହି; ବହୁ+ସୂ=ପ୍ରସବ)—ଅନେକ ଥର ପ୍ରସବ କରିଥିବା (ସ୍ତ୍ରୀ ବା ଗାଈ); ବହୁପ୍ରସୂ—Bearing many children.
Bahusū
(ବହୁସୂତି—ଅନ୍ୟରୂପ)
ସଂ. ବି.—୧ । ଶୂକରୀ—1. She-hog; sow.

୨ । ଅନେକ ପିଲାଙ୍କ ମାତା—2. The mother of many children ୩ । ଅନେକ ବାଛୁରି ବେଇଁଥିବା ଗାଈ—3. A cow that often calves.

ବହୁସୂନା—ସଂ. ବିଣ. ସ୍ତ୍ରୀ. ଓ ପୁଂ (ବହୁ+ସୂନ+ଆ); ପୁଂ. (ବହୁ ସୂନ+ଇନ୍; ୧ମା. ୧ବ.)—୧ । ବହୁ ପୁଷ୍ପବତୀ (ଲତା) ବା ବହୁପୁଷ୍ପଧାରୀ (ବୃକ୍ଷ)—1. (a creeper or tree) Bearing many flowers.
Bahusūnī

୨ । ବହୁବାର ପୁଷ୍ପବତୀ ଲତା ବା ପୁଷ୍ପଧାରୀ ବୃକ୍ଷ—2. (a creeper or tree) Bearing flowers several times during the year.

୩ । (ସ୍ତ୍ରୀ) ବହୁବାର ରଜସ୍ୱଳା ହୋଇଥିବା (ସ୍ତ୍ରୀ)—3. (a woman) Who has menstruated many times.

ସଂ. ବି. ସ୍ତ୍ରୀ—ଭୂଆସୁଣୀ; ଯୁବତୀ କୁଳବଧୂ—A young housewife.

[ଦ୍ର—ଓଡ଼ିଆ ଭୂଆସୁଣୀ ଶବ୍ଦ ସଂ. 'ବହୁସୂନା' (=ବହୁବାର ପୁଷ୍ପବତୀ ହୋଇଥିବା ସ୍ତ୍ରୀ) ଶବ୍ଦର ଅପଭ୍ରଂଶ ଥିବାର ଅନୁମିତ ହୁଏ; ପ୍ରୋଫେସର ଆର୍ତ୍ତବଲ୍ଲଭ କହନ୍ତି ସୁବାସିନୀ (=ଅବଧ୍ୟ ସ୍ତ୍ରୀ) ଶବ୍ଦର ଅପଭ୍ରଂଶ ଭୂଆସୁଣୀ ।]

ବହୁସ୍ତ୍ରୀକ—ସଂ. ବିଣ. ପୁଂ (ବହୁ+ସ୍ତ୍ରୀ+କ)—ବହୁପତ୍ନୀକ; ଯାହାର ବହୁତ ପତ୍ନୀ ଅଛନ୍ତି—Having many wives; polygamous.
Bahu strīka

ବହୁସ୍ୱାମିକ—ସଂ. ବିଣ. (ବହୁ+ସ୍ୱାମିନ୍+କ)—ଯାହାର ଅନେକ ସ୍ୱାମୀ ବା ମାଲିକ ଅଛନ୍ତି—Having many owners or masters; owned by many persons.
Bahu swāmika
(ବହୁସ୍ୱାମିକା—ସ୍ତ୍ରୀ)

ବହୁସ୍ରବା—ସଂ. ବିଣ.—(ବହୁବ୍ରୀହି; ବହୁ+ସ୍ରବ)—ଯହିଁରୁ ବହୁତ ରସ ଅବା କ୍ଷରିତ ହୁଏ—Exuding too much juice.
Bahusrabā

ସଂ. ବି.—ଶଲ୍ଲକୀ ବୃକ୍ଷ; କୁନ୍ଦୁରୁକ୍ ଗଛ—The Gum Olibanum tree; Boswellia Thurifera.

ବହୂ—ଦେ. ବି. (ସଂ. ବଧୂ)—ବୋହୂ—Daughter-in-law.
Bahū
ବଉ ବହୁ

ବହୂଦକ—ସଂ. ବିଣ. (ବହୁବ୍ରୀହି; ବହୁ+ଉଦକ)—ପ୍ରଚୁର ଜଳବିଶିଷ୍ଟ—Having abundant water.
Bahūdaka

ସଂ. ବି—ଚତୁର୍ବିଧ ସନ୍ନ୍ୟାସୀଙ୍କ ମଧ୍ୟରୁ ଏକ—One of the 4 classes of Sannyāsis.

[ଦ୍ର—ସୂତସଂହିତା ମତରେ ସନ୍ନ୍ୟାସୀ ୪ ଶ୍ରେଣୀରେ ବିଭକ୍ତ;—କୁଟୀଚକ, ବହୂଦକ, ହଂସ ଓ ପରମହଂସ । ବହୂଦକଙ୍କର ନିୟମ ଏହି ଯେ ଏମାନେ ଏକ ଘରୁ ଆପଣାର ଭୋଜନାର୍ଥ ଯଥେଷ୍ଟ ଭିକ୍ଷା ଗ୍ରହଣ ନ କରି ସାତ ଘରୁ ଭିକ୍ଷା ଗ୍ରହଣ କରିବେ । ଗାଈର ପୁଚ୍ଛ-ରୋମରେ ବନ୍ଧା ତ୍ରିଦଣ୍ଡ, ଶିକା, ଜଳପୂର୍ଣ୍ଣ ପାତ୍ର, କୌପୀନ, କମଣ୍ଡଳୁ, କନ୍ଥା, ପାଦୁକା, ଛତ୍ର, ରୁଦ୍ରାକ୍ଷମାଳା, ଯୋଗପଟ୍ଟ, ଖନିତ୍ର ଓ କୃପାଣ ଏମାନେ ସଙ୍ଗରେ ନେବେ । ବହୂଦକଙ୍କର ଶବକୁ ପାଣିରେ ବୁଡ଼ାଇ ଦିଆଯାଏ—ହି. ଶ.]

ବହୂପମା—ସଂ. ବି. (ବହୁବ୍ରୀହି; ବହୁ+ଉପମା)—ଉପମାଲଙ୍କାରବିଶେଷ; ଯେଉଁ ଅଳଙ୍କାରରେ ଗୋଟିଏ ଉପମେୟକୁ ଅନେକ ଉପମାନ ସଙ୍ଗେ ତୁଳନା କରାଯାଏ (ହି. ଶ.)—A figure of speech in which one thing is compared to many other similar things.
Bahūpamā

ବହୂପରଷି(ସି)ନାଈ—ପ୍ରାଦେ.(ସମ୍ବଲପୁର) ବି. (ସଂ.ବଧୂ+ପରିବେଷଣ)—ବୋହୂର ପରିବେଷଣ ବା ପରଶିବା; ଶଶୁରଙ୍କ ଭୋଜନାର୍ଥ ବୋହୂଦ୍ୱାରା ଅନ୍ନାଦିର ପରିବେଷଣ—The daughter-in-law's serving food to her father-in-law.
Bahūparasa(si)nāi

ବହୂବହୂକା ଖେଳ—ଦେ. ବି. (ସଂ. ବଧୂ+ବଧୂ)—ବାଳିକାମାନଙ୍କର ଆପଣା ଆପଣା ମଧ୍ୟରେ ଶାଶୁ ବୋହୂ ବୌବୌକା ଖେଳ ଆଦି ଅଭିନୟ କରିବା ଖେଳ—A game of girls in which they act as mother-in-law, daughter-in-law etc; the game of girls playing at keeping house.
Bahū bahūkā khela
ବହୁବହୁ ଖେଲ

ବହୂଭୂଆସୁଣୀ—ଦେ. ବି. (ସଂ. ବଧୂ+ବହୁସୂନା; ଏକାର୍ଥବୋଧକ ସମାସ)—କୁଳବଧୂ—Housewife; the daughter-in-law of a family.
Bahūbhuāsuṇī
ବଉ ବହୁଡ଼ୀ ବହୁବହୁଅସିନୀ

ବହେ—ଦେ. ବିଣ ଓ କ୍ରି. ବିଣ. (ସଂ. ବହୁ)—ବହେ; ବହୁତ; ଅନେକ ଥୋଡା, ବହୁତ ବହୁତ—Much; too much.
Bahe
ବହକ, ବହାକ } ଅନ୍ୟରୂପ (ଯଥା—ମୁଁ ବହେ ବାଟ ଚାଲିଲିଣି; ସେ ମଲେ ବହେ ଶୋଷିଲେ ।)

ବହେର୍ଡ଼—ଗ୍ରା. ବି—ଭିଡ଼; ଲୋକମାନଙ୍କର ଦୁର୍ଭେଦ୍ୟ ସଂହତି—Pressure of people; crowd.
Baherḍa ଭିଡ଼ ଭୀଡ

ବହେଣୀ—ଦେ. (ପ୍ରାଚୀନ ପଦ୍ୟ) ବି (ସଂ. ଭଗିନୀ; ପ୍ରା. ବହିଣୀ)—ଭଗିନୀ; ଭଉଣୀ—Sister.
Baheṇī ବହିନୀ ବହୀନ

ରକ୍ଷସଙ୍କ ନସ୍ୟ କଲ, ବନେ ବହେଣୀକି ନେଇ ।
ବିଶ୍ୱନାଥ, ବଡଚମ୍ପୂ ।

ବହ୍ନା—ପ୍ରାଦେ. (ସମ୍ବଲପୁର) ବି—ବଢ଼ଣୀ; ଝାଡ଼ୁଣୀ—Broom stick
Bahnā

ବହ୍ନାଇବା—ପ୍ରାଦେ. (ସମ୍ବଲପୁର) କ୍ରି. (ତୁଳ. ହି. ବୁହାରନା)—ବଢ଼ଣୀମୁଠା ବା ଝାଡ଼ୁଣୀରେ ଓଳାଇବା; ଝାଡ଼ିବା—To sweep.
Bahnāibā

ବହ୍ନି—ସଂ. ବି. (ବହ୍ ଧାତୁ=ବହନ କରିବା+କର୍ତ୍ତ୍ରି. ନି; ଯେ ହୋମ-ଘୃତାଦି ଦେବତାମାନଙ୍କ ନିକଟକୁ ବହନ କରି ନିଏ)—୧ । ହବ୍ୟବାହ; ଅଗ୍ନି—1. Fire.
Bahni

[ଦ୍ର—ବୈଦିକ ସାହିତ୍ୟରେ 'ବହ୍ନି' ଶବ୍ଦର ଅର୍ଥ 'ବାହକ' ବା 'ବହନକାରୀ' ।]

୨ । ଭଲ୍ଲାତକ; ଭଲିଅ—2. Marking nut. ୩ । ଚିତ୍ରକ ବା ଧଳାଚିତା—3. A poisonous and

corrosive plant; plumbago plant. ୪ । (ତନ୍ତ୍ରଶାସ୍ତ୍ର) ରେଫ୍ ବା 'ର୍' ବର୍ଣ୍ଣ—4. (Tantra) The letter Ra or its mark. ୫ । (ନାମ) ମିତ୍ରବିନ୍ଦାଙ୍କ ଗର୍ଭରୁ ଉତ୍ପନ୍ନ କୃଷ୍ଣଙ୍କର ପୁତ୍ର (ହି. ଶ.)—5. Name of a son of Kṛushṇa. ୬ । (ନାମ) ତୁର୍ବସୁଙ୍କ ପୁତ୍ର—6. Name of the son of Turbasu. ୭ । (ନାମ) କୁକୁରବଂଶୀ ଏକ ଯାଦବ—7. Name of a scion of the Jādaba dynasty of kings of ancient India. ୮ । (ନାମ) ରାମଙ୍କ କପିସେନାର ଜଣେ ସେନାପତି (ହି. ଶ.)—8. Name of a monkey-general of Rama's army. ୯ । ତିନି ସଂଖ୍ୟା (ହି. ଶ.)—9. The number three.

**ବହ୍ନିକର**—ସଂ. ବି. ( ବହ୍ନି+କୃ ଧାତୁ+କର୍ତ୍ତୃ. ଅ )—୧ । ବିଦ୍ୟୁତ୍; ବିଜୁଳି ( ହି. ଶ. )—1. Lightning. ୨ । ଚକମକି ପଥର (ହି. ଶ.)—2. Flint stone.
Bahnikara

**ବହ୍ନିକରୀ**—ସଂ. ବି. (ବହ୍ନିକର+ଈ)—ଧଅ ଗଛ ( ହି. ଶ. )—Angeissus Latifolia (tree).
Bahnikarī
(ବହ୍ନିଜ୍ୱାଳ, ବହ୍ନିପୁଷ୍ପୀ—ଅନ୍ୟରୂପ)

**ବହ୍ନିକାଷ୍ଠ**—ସଂ. ବି. ( ମ. ପ. ଲୋ; ବହ୍ନି ଉତ୍ପାଦକ କାଷ୍ଠ )—୧ । ଜାଳକାଠ—1. Fuel. ୨ । ସଂଘର୍ଷଣଦ୍ୱାରା ଅଗ୍ନ୍ୟୁତ୍ପାଦକ କାଠ—2 A piece of wood which produces fire by friction. ୩ । ଅଗ୍ନିମନ୍ଥ; ଅଗବଥୁ ଗଛର କାଠ—3. The wood of the Premna Integrifolia tree.
Bahnikāshṭha

**ବହ୍ନିଗର୍ଭ**—ସଂ. ବିଣ. ( ବହୁବ୍ରୀହି; ବହ୍ନି+ଗର୍ଭ )—୧ । ଯାହାର ଗର୍ଭ ବା ଅନ୍ତଃସ୍ଥଳରେ ଅଗ୍ନି ଥାଏ—1. Having fire inside. ୨ । ଯାହାକୁ ଘଷିଲେ ନିଆଁ ବାହାରେ—2. Producing fire when rubbed.
Bahnigarbha
(ବହ୍ନିଗର୍ଭା—ସ୍ତ୍ରୀ)

ସଂ. ବି—୧ । ବାଉଁଶ—1. Bamboo. ୨ । ସମୁଦ୍ର—2. The ocean.

**ବହ୍ନିଗର୍ଭା**—ସଂ. ବି ସ୍ତ୍ରୀ. (ବହ୍ନିଗର୍ଭ+ସ୍ତ୍ରୀ. ଆ)—ଶମୀବୃକ୍ଷ; ଶାଇଁଗଛ—Prosopis Spicigera (tree).
Bahnigarbhā
[ ଦ୍ର—ପୂର୍ବକାଳରେ ଏହି ଗଛର କାଠ ଦୁଇ ଖଣ୍ଡ ଘଷି ଲୋକେ ନିଆଁ ବାହାର କରୁଥିଲେ । ]

**ବହ୍ନିନନ୍ଦନ**—ସଂ. ବି. (୬ଷ୍ଠୀ ତତ୍; ବହ୍ନି+ନନ୍ଦନ)—୧ । ଅଗ୍ନିର ପୁତ୍ର—1. Son of the Fire-god. ୨ । ନୀଳ ନାମକ ବାନରସେନାପତିବିଶେଷ—2. The monkey-commander Nīla
Bahninandana

ବେଗେ ଯାଇଁ, ବହ୍ନିନନ୍ଦନ ଠଣା ।
ଭଞ୍ଜ, ବୈଦେହୀଶବିଳାସ ।

**ବହ୍ନିନାମ**—ସଂ. ବି.—(ବହୁବ୍ରୀହି; ବହ୍ନି+ନାମନ୍; ୧ମା. ୧ବ.)—୧ । ଚିତ୍ରକ; ଧଳାଚିତା—1. Swallow wort. (plant). ୨ । ଭାଲିଆ (ହି. ଶବ୍ଦସାଗର)—2. Marking nut (plant).
Bahni nāma

**ବହ୍ନିବିବିକ୍ଷୁ**—ସଂ. ବିଣ. (ବହ୍ନି+ବିବିକ୍ଷୁ)—ଅଗ୍ନିରେ ପ୍ରବେଶ କରିବାକୁ ଅଭିଳାଷୀ—Wishing to enter into a fire.
Bahni bibikshu

**ବହ୍ନିବୀଜ**—ସଂ. ବି.—୧ । ସ୍ୱର୍ଣ୍ଣ; ସୁନା—1. Gold.
Bahni bīja
[ ଦ୍ର—ବ୍ରହ୍ମବୈବର୍ତ୍ତପୁରାଣରେ ଲେଖାଅଛି ଯେ ଥରେ ଦେବତାମାନଙ୍କ ସଭାରେ ନୃତ୍ୟ କରୁଥିବା ରମ୍ଭା ଅପ୍ସରାକୁ ଦେଖି ଅଗ୍ନିଦେବ କାମପୀଡ଼ିତ ହେଲେ ଓ ସେହି ସଭାରେ ତାଙ୍କ ରେତଃପାତ ହେଲା । ରମ୍ଭା ଏହା ଦେଖି ଲଜ୍ଜିତା ହୋଇ ଉକ୍ତ ସ୍ଖଳିତ ବୀର୍ଯ୍ୟକୁ ଆପଣା ଲୁଗାରେ ଘୋଡ଼ାଇ ଦେଲା । କିଛି ଦିନ ପରେ ତାହା ସୁନା ପାଲଟି ଯାଇ ରମ୍ଭାର ବସ୍ତ୍ରରୁ ତଳକୁ ଖସି ପଡ଼ିଲା—ହି. ଶ. ]
୨ । (ତନ୍ତ୍ର) ରଂ ବୀଜ—2. The particle Raṁ in tantrik ritual.

**ବହ୍ନିଭୂତିକ**—ସଂ. ବି—ରୂପା; ରୌପ୍ୟ (ହି. ଶ.)—Silver.
Bahnibhūtika

**ବହ୍ନିଭୋଗ**—ସଂ. ବି.—ଘୃତ; ଘିଅ (ହି. ଶ.)—Ghee.
Bahnibhoga

**ବହ୍ନିମନ୍ଥ**—ସଂ. ବିଣ. (ବହ୍ନି+ମନ୍ଥ ଧାତୁ+କରଣ. ଅ)—ମନ୍ଥନଦ୍ୱାରା ଅଗ୍ନି ଉତ୍ପାଦକ; ଯାହାକୁ ଘଷିଲେ ନିଆଁ ବାହାରେ—Producing fire when rubbed.
Bahnimantha
(ବହ୍ନିମନ୍ଥନ—ଅନ୍ୟରୂପ) ସଂ. ବି—ଅଗ୍ନିମନ୍ଥ; ଅଗବଥୁ ଗଛ—Premna Integrifolia (tree).

**ବହ୍ନିମିତ୍ର**—ସଂ. ବି. (୬ଷ୍ଠୀ ତତ୍; ବହ୍ନି+ମିତ୍ର)—ବାୟୁ—Wind; air.
Bahnimitra

**ବହ୍ନିମୁଖ**—ସଂ. ବି. (ବହୁବ୍ରୀହି; ବହ୍ନି+ମୁଖ; ଅଗ୍ନି ଯାହାଙ୍କର ମୁଖ ସ୍ୱରୂପ ଅର୍ଥାତ୍ ଅଗ୍ନିରେ ଆହୁତି ଦେଲେ ଯେ ପାଆନ୍ତି)-ଦେବତା—Deity; the gods.
Bahnimukha

**ବହ୍ନିରେତାଃ**—ସଂ. ବି. ( ବହୁବ୍ରୀହି; ବହ୍ନି+ରେତସ୍ )—ଶିବ; ମହାଦେବ—Śiba
Bahniretāḥ

**ବହ୍ନିଶିଖ**—ସଂ. ବିଣ. ( ବହୁବ୍ରୀହି; ବହ୍ନି+ଶିଖା=କେଶର )—ଅଗ୍ନିଶିଖାଯୁକ୍ତ—Having flames like fire.
Bahniśikha
ସଂ. ବି—କୁସୁମଫୁଲ—The safflower.

**ବହ୍ନିଶିଖା**—ସଂ. ବି. (୬ଷ୍ଠୀ ତତ୍; ବହ୍ନି+ଶିଖା)—ନିଆଁର ଶିଖା—Flames or tongues of fire.
Bahniśikhā

**ବହ୍ନିସଖ**—ସଂ. ବି. ( ୬ଷ୍ଠୀ ତତ୍; ବହ୍ନି+ସଖା )—ବାୟୁ—Air.
Bahnisakha
[ ଦ୍ର—'ଅଗ୍ନି'ର ମଧ୍ୟ 'ବାୟୁସଖ' ଏକନାମ । ]

**ବହ୍ୱପତ୍ୟ**—ସଂ. ବିଣ. ପୁଂ. ( ବହୁବ୍ରୀହି; ବହୁ+ଅପତ୍ୟ )—ଯାହାର ଅନେକ ସନ୍ତାନ; ବାଳବଚ୍ଛାବାଲା—Having a good many children.
Bahwapatya
(ବହ୍ୱପତ୍ୟା—ସ୍ତ୍ରୀ)

**ବହ୍ୱପତ୍ୟା**—ସଂ. ବିଣ. ସ୍ତ୍ରୀ. (ବହ୍ୱପତ୍ୟ+ସ୍ତ୍ରୀ. ଆ)—ବହ୍ୱପତ୍ୟର ସ୍ତ୍ରୀଲିଙ୍ଗ—Feminine of Bahwapatya.
Bahwapatyā

ସ. ବି. ସ୍ତ୍ରୀ—୧ । ଶୂକରୀ—1. A sow. ୨ । ମୂଷା—2. Rat

**ବହ୍ୱର୍ଥ**—ସ. ବିଣ.—(ବହୁବ୍ରୀହି; ବହୁ+ଅର୍ଥ)—ନାନାର୍ଥଯୁକ୍ତ; ଯାହାର
Bahwartha ନାନା ପ୍ରକାର ଅର୍ଥ ହୋଇପାରେ—Having
(ବହ୍ୱର୍ଥକ—ଅନ୍ୟରୂପ) more than one meaning.

**ବହ୍ୱାଡ଼ମ୍ବର**—ସ. ବି॰ (କର୍ମଧା; ବହୁ + ଆଡ଼ମ୍ବର)—ମହା ଆଡ଼ମ୍ବର;
Bahwārdamabara ବିଶେଷ ଜାଁକଜମକ; ଭାରି ଗୋଲମାଲ—
Grand preparation; much ado.
ସ. ବିଣ.—( ବହୁବ୍ରୀହି )—ମହା ଆଡ଼ମ୍ବରପୂର୍ଣ୍ଣ—Full of great ado; grand.

**ବହ୍ୱାୟାସ**—ସ. ବି.—(କର୍ମଧା; ବହୁ+ଆୟାସ)—ଖୁବ୍ ପରିଶ୍ରମ—
Bahwāyāsa (ବହୁଳାୟାସ—ଅନ୍ୟରୂପ) Great labour.

**ବହ୍ୱାରମ୍ଭ**—ସ. ବି. (କର୍ମଧା, ବହୁ+ଆରମ୍ଭ)—ମହା ଆଡ଼ମ୍ବର—
Bahwārambha Much ado.
(ଯଥା—ବହ୍ୱାରମ୍ଭ ଲଘୁ କ୍ରିୟା—ଅଳ୍ପ ପ୍ରବଚନ ।)
ସ. ବିଣ. (ବହୁବ୍ରୀହି)—୧ । ଯେଉଁ କାର୍ଯ୍ୟର ଆରମ୍ଭ ବିଶେଷ ଘନଘଟା ସହିତ କରାଯାଏ—1. (work) Begun with a great ado. ୨ । ମହାଆଡ଼ମ୍ବରମୟ—2. Grand.

**ବହ୍ୱାଶୀ**—ସ. ବିଣ. ପୁଂ—୧ । (ବହୁ+ଅଶ୍ ଧାତୁ=ଖାଇବା କର୍ତ୍ତୃ.
Bahwāsi ଇନ୍; ବହ୍ୱାଶିନ୍. ୧ମା. ୧ବ.)—ବହୁ ଭୋଜନଶୀଳ;
(ବହ୍ୱାଶିନୀ—ସ୍ତ୍ରୀ) ଯେ ଗୁଡ଼ାଏ ଖାଏ 1. Voracious; gluttonous. ୨ । (ବହୁ+ଆଶା+ଇନ୍) ବିଶେଷ ଆଶା ବା ଆକାଂକ୍ଷାଯୁକ୍ତ—2. Having great aspirations; expecting too much.
ସ. ବି.—ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ—Name of a son of Dhrutarāshtra.

**ବହ୍ୱୃକ୍**—ସ. ବିଣ. ପୁଂ (ବହୁ+ଋଚ୍=ବେଦ ମନ୍ତ୍ର; ବହ୍ୱୃର୍. ୧ମା
Bahwṛuk ୧ବ.)—ଋଗ୍ବେଦ ବା ମନ୍ତ୍ର ଜାଣିଥିବା (ବ୍ୟକ୍ତି);
(ବହ୍ୱୃଚୀ—ସ୍ତ୍ରୀ) ଋଗ୍ବେଦବେତ୍ତା—Versed in the Rugbeda or the Mantras. ୨ । ବହୁ ମନ୍ତ୍ରଯୁକ୍ତ—2. Full many mantras.

**ବହ୍ୟ**—ସ॰ ବିଣ. (ବହ୍ ଧାତୁ+କର୍ମ. ଯ)—ବହନୀୟ; ବହନଯୋଗ୍ୟ—
Bahya Fit to be carried or endured.
ସ. ବି.—୧ । (+କରଣ. ଯ.)—ଯାହାଦ୍ୱାରା ବହନ କରାଯାଏ; ଯାନ; ବାହନ—1. Conveyance. ୨ । ଗାଡ଼ି; ଶଗଡ଼—2. Cart; carriage. ୩ । ରଥ—3. Car.

**ବହ୍ଲା**—ଦେ. ବିଣ.—୧ । ଯେଉଁ ଲୋକ ଅଚନ୍ତା ହୋଇ ଖାଇ ପିଇ
Bahlā ହୃଷ୍ଟପୁଷ୍ଟାଙ୍ଗ ହୋଇଥାଏ—1. One who grows
ବେଜାୟବାଢ଼ା corpulent having no anxiety. ୨ ।
**बेजा बढाहुआ** ବିଶେଷ ହୃଷ୍ଟପୁଷ୍ଟ ହୋଇ ବଢ଼ିଥିବା (ଲତା, ବୃକ୍ଷାଦି) 2. Growing up over luxuriantly; over-luxuriant; exuberent. (said of plants
(ବହ୍ଲା—ଅନ୍ୟରୂପ) and creepers on a very rich soil).
[ଦ୍ର—ଜମିରେ ବିଶେଷ ସାର ଥିଲେ ଗଛଗୁଡ଼ିକ ବହ୍ଲା ହୋଇ ବଢ଼ି ଯାଏ, ମାତ୍ର ଉକ୍ତ ବହ୍ଲା ଗଛରୁ ଉତ୍ପନ୍ନ ଫଳ ସାଧାରଣ ଗଛର ଫଳ ଅପେକ୍ଷା କମ୍ ହୁଏ ।]

**ବା** (ଧାତୁ)—ସ.—୧ । ଗମନ କରିବା—
Bā (root) 1. To go.
୨ । ଗନ୍ଧ ବୋହି ନେବା—2. To carry scents or smells. ୩ । ସୂତ୍ର ବିସ୍ତାର କରିବା—3. To spred or extend a piece of thread.

**ବା**—ସ. ଅ. (ବା ଧାତୁ=ଗମନ କରିବା+ଭାବେ. କ୍ୱିପ୍)—୧ । ଅବା;
Bā ଅଥବା; କିମ୍ବା—1. Or; either;
[ଦ୍ର—ଏହା ସନ୍ଦେହ, ସମ୍ଭାବନା, କଷ୍ଟପୃଚ୍ଛା, ସାଦୃଶ୍ୟ, ସମୁଚ୍ଚୟ, ପ୍ରଶ୍ନ, ଉପମା, ନାନାର୍ଥ ଓ ପାଦ ପୂରଣରେ ବ୍ୟବହୃତ ହୁଏ ।]
୨ । ପରିବର୍ତ୍ତରେ—2. In lieu. ୩ । ପକ୍ଷାନ୍ତରରେ—3. Else; otherwise. ୪ । ଅପି ମଧ୍ୟ—4. Even.
ଦେ. ବି.—ବାଆ—(ଦେଖ)—Bā-a (See)
ଦେ. ବିଣ. (କଚରିଆ) (ସାଙ୍କେତିକ)—ବାବଦ; ସମ୍ବନ୍ଧୀୟ—
As per; regarding; relating to.
[ଦ୍ର—ଏହା । ବା । ବୋଲି ମଧ୍ୟ ଲେଖାଯାଏ ।
ଗ୍ରା. (ଇତର) ଅ.—୧ । ହେ ! ରେ ! —1. Oh, ! ୨ ।
୨ । (ବାକ୍ୟାନୁପ୍ରାସ) ମ; ମଁ—2. Too.

**ବାଆ**—ଦେ. ବି.—୧ । (ସ. ବାତ; ବାୟୁ)—ବାୟୁ; ପବନ—
Bā-a ବତାସ; बा **बतास, हवा** 1. Wind.

ନ୍ରୂପ ଗଗନେ ସକାଇ ଜବାସ, ଉଡ଼ିଛି ଶାଳ ବାଅରେ ।
ଉପକାସ. ଗୀତିଚକ୍ର ।

୨ । ପ୍ରବଳ ବାୟୁ; ବତାସ—2. Tempest; highwind.
୩ । (ଲକ୍ଷଣାର୍ଥେ) ସାମାନ୍ୟ ମାତ୍ର ସମ୍ପର୍କ ବା ସ୍ପର୍ଶ—3. Slight connection or touch.
( ଯଥା—ବଡ଼ଲୋକଙ୍କ ହାଡ଼ରେ ଗରିବର ବାଆ ବାଜିଲେ ବଡ଼ଲୋକେ ଚମକି ପଡ଼ନ୍ତି । )
ଗ୍ରାମ୍ୟ—(ଇତର ବ୍ୟବହୃତ)—୧ । ବାପ; ପିତା—
बिये **बयाह** 1. Father, papa.
୨ । (ସ. ବିବାହ) ବାହା; ବିବାହ—2. Marriage.

**ବାଆଁ**—ଦେ. ବିଣ. (ସ. ବାମ)—ବାମ ପାଖର; ବାମଦିଗସ୍ଥ—
Bā-ān बाँ **बायाँ** Left (side).
(ବିପରୀତ—ଡାଆଁ; ଡାହାଣ) ଦେ. ବି.—ବାମଭାଗ; ବାମ ପାର୍ଶ୍ୱ—Left side.

**ବାଆଁକୁ ମୋଡ଼**—ଦେ. ଅ—( ସବାର ବେହେରାମାନଙ୍କର ଡାକ);
Bā-ānku morda ସବାରିର ବାଡ଼ିଶକୁ ବାମ ଦିଗକୁ ନିଯୁକ୍ତ
(ବାଆଁକୁ ଧର—ଅନ୍ୟରୂପ) କରିବା ନିମନ୍ତେ ଅଗ ବେହେରାଙ୍କର ପଛ ବେହେରାଙ୍କ ପ୍ରତି ସଙ୍କେତ ବାକ୍ୟ—(A halloo of Palki bearers) Direct the motion of the Palki towards the left.

**ବାଆଁଖାଡ଼ିଆ**—ଦେ. ବି—କୌଣସି ବ୍ୟକ୍ତିର ହାତରେ ନ ପଡ଼ିବାପାଇଁ
Bā-āñ khārdiā ଖଞ୍ଜରେ ଇତସ୍ତତଃ ଗତି କରିବା—
ବାଆଁଖଡ଼ା
ବାଆଁଖେଳା } ଅନ୍ୟରୂପ Careful or stealthy Zigzag movement to evade a person.
ବାଆଁଖେଳ(ଳୁ)ଆ

**ବାଆଁଖାଡ଼ିଆ ଦେବା**—ଦେ. କ୍ରି—ଏଡ଼ି କରି ଏଣେ ତେଣେ ବୁଲିବା
Bā-āñkhārdia debā To evade a person by stealthily moving from one place to another.
এড়িয়ে চলা
**कन्नीकाटना, बाँयादेना**

**ବାଆଁ ଛାଡ଼**—ଦେ. ଅ—(ସବାରି ବେହେରାଙ୍କ ଡାକ) ବାଟର ବାମ
Bā-āñ chhārda ପାଖରେ କୌଣସି ବାଧା ଥିଲେ ପଛ
ବାଆଣ ଛାଡ଼
ବାମ୍ପା ଛାଡ } ଅନ୍ୟରୂପ ବେହେରାମାନଙ୍କୁ ଆଗ ବେହେରାମାନଙ୍କର ସତର୍କ କରିଦେବାର ଡାକ—
**बाँयाछाड** (a halloo of Palki-bearers) Avoid the danger on the left side.

**ବାଆଁ ଡାଆଁ**—ଦେ. ବି—(ସଂ. ବାମ+ଦକ୍ଷିଣ)-ବାମ ଓ ଦକ୍ଷିଣ ଦିଗ—
Bā-āñ dā-āñ Right and left sides.
( ବାଆଁଣ ଡାଆଁଣ—ଅନ୍ୟରୂପ )
ডাআন বাঁ **बाँया दाहिना**

**ବାଆଁ ଡାଆଁ ବତା(ତେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଅଭୀପ୍ସିତ
Bā-āñ dā-āñ batā(te)ibā ଉତ୍ତର ନ ଦେଇ ଏଣୁ ତେଣୁ
(ବାଆଁଣ ଡାଆଁଣ ବ[ତେତା]ଇବା—ଅନ୍ୟରୂପ) ଗୁଡ଼ାଏ କହିବା—
এধার ওধার বাতলান To prevaricate.
**बायाँ दाहिना बताना**

**ବାଆଁ ଡାଆଁ ବୁଲା(ଲେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ
Bā-āñ dā-āñ bulā(le)ibā ଅଭୀପ୍ସିତ ସ୍ଥାନକୁ ନ ନେଇ
এধার ওধার ঘোরান ଅନିର୍ଦ୍ଦିଷ୍ଟ ଭାବରେ ଏଣେ ତେଣେ ବୃଥା
**बायाँ दाहिना घुमाना** ବୁଲାଇବା—To lead a person astray without taking him at once to the desired point.

**ବାଆଁ ଡାହାଣ**—ଦେ. ଅ—(ସବାରି ବେହେରାଙ୍କ ଡାକ) ବାମ ଓ ଦକ୍ଷିଣ
Bā-āñ dāhāṇa ଦିଗରେ ବାଧା ଥିଲେ ଆଗ ବେହେରାମାନଙ୍କର
(ବାଆଁଣ ଡାହାଣ—ଅନ୍ୟରୂପ) ପଛ ବେହେରାମାନଙ୍କୁ ସତର୍କ
বাঁয়ে ডাইনে କରିବା ଡାକ—(a halloo of Palki-bearers).
**बायाँ दाहिना** Beware of both sides.

**ବାଆଁ ପଡ଼ିଆ**—ଦେ. ବି—ଶଗଡ଼ ଯାଉଥିବା ବାଟରେ ବାଆଁ ଚକ
Bā-āñ pardiā ଖାଲରେ ପଡ଼ିବା ଅବସ୍ଥା—The state of
( ଡାହାଣ ପଡ଼ିଆ—ବିପରୀତ ) the left wheel of a cart moving on a lower plane.

**ବାଆଁ(ୟାଁ)ବିଲୁଆ**—ଦେ. ବି—( ସଂ. ବାମ ଓ ବିଲବାସୀ )—କୌଣସି
Bā-āñ (yāñ)biluā ଉଦ୍ଦେଶ୍ୟ ସାଧନ ନିମନ୍ତେ ଅନୁକୂଳ କରି
(ବାଏଁ ବିଲୁଆ—ଅନ୍ୟରୂପ) ଯାତ୍ରା କରୁଥିବା ସମୟରେ ଯାତ୍ରାକାରୀର
বাঁয়ে শেয়াল ବାମ ପାଖରେ ଦେଖାଯିବା ବିଲୁଆ—A jackal
**बाया सियार** seen on the left side of a person while starting on a journey (regarded as a good omen).
(ବାଆଁ ଶିଆଳ—ଅନ୍ୟରୂପ)

[ ଦ୍ର—ଲୋକବିଶ୍ୱାସ ଅନୁସାରେ ଏହା ମଙ୍ଗଳସୂଚକ । ଡାହାଣ ପାଖରେ ଯାଉଥିବା ବିଲୁଆ ପଥିକ ଆଡ଼କୁ ମୁହଁ ଫେରାଇ ଦୃଷ୍ଟି ପକାଇଲେ ତାହା ମଧ୍ୟ ଶୁଭସୂଚକ । ସେ ସମ୍ବନ୍ଧରେ ଜନାବଚନ ଅଛି—ବାଆଁଠାରୁ ଡାହାଣ ଭଲ, ଯେବେ ଫେରି ଚାହେଁ । ]

**ବାଆଁରା**—ଦେ. ବି—ବାଛୁରୀମାନେ ଗାଈଙ୍କଠାରୁ ଯେପରି ଦୁଧ ପିଇ ନ
Bā-āñrā ପାରନ୍ତି ସେଥି ନିମନ୍ତେ ବାଛୁରୀମାନଙ୍କ ମୁହଁରେ ବନ୍ଧା
মুখের জালি ହୋଇଥିବା ଏକାଧିକ ସୂକ୍ଷ୍ମଯୁକ୍ତ ଏକପ୍ରକାର
**कटीला** ଆବରଣ—A pointed or forked muzzle put on the mouth of calves to prevent them from sucking milk from cows.

**ବାଆଁରା ବାଆଁରି**—ଦେ. ବି—୧ । ଛଳନା—1. Feigning;
Bā-āñrā bā-āñri excuse. ୨ । ଭୁଲାଇବା; ପ୍ରବର୍ତ୍ତାଇବା—
**मुलावा** 2. Deluding, inveigling.

**ବାଆଁରି**—ପ୍ରାଦେ. (ଅନୁଗୁଳ) ବି—ତୋଡ଼ି ମାଛ—
Bā-āñri The bill fish.

**ବାଆଁରେଇବା**—ଦେ. କ୍ରି—୧ । ଛଳନା କରିବା; ବାହାନା କରିବା—
Bā-āñreibā 1 To feign. ୨ । କଥାଦ୍ୱାରା ଭୁଲାଇବା;
ବାଆଁ(ଆ)ରା ବାଆଁ(ଆ)ରି କରିବା
ବାଆରେଇବା } ଅନ୍ୟରୂପ ଭଣ୍ଡିବା; ପ୍ରବଞ୍ଚନା କରିବା—To delude; to inveigle.
ବାଆଁ(ଆ)ରେଇ ଦେବା
লতাকরা **मुलावादेना; बहकाना**

[ ଦ୍ର—ଉଦାହରଣ ସ୍ୱରୂପ, ମୁଁ ଗୁପ୍ତ ଭାବରେ କୌଣସି ସମ୍ବାଦ ଜାଣିବା ପାଇଁ ଏକ ସ୍ଥାନକୁ ଯାଇଅଛି, କିନ୍ତୁ ମୋ ଉଦ୍ଦେଶ୍ୟ ଅନ୍ୟମାନଙ୍କ ଆଗରେ ପ୍ରକାଶିତ ନ ହେବା ମୋ ଇଚ୍ଛା ଅଟେ; ସେ ସ୍ଥାନରେ ହଠାତ୍ ଜଣକ ସାଙ୍ଗେ ଦେଖା ହେବାରୁ ଓ ସେ ମୋର ସେଠାକୁ ଆସିବାର କାରଣ ପଚାରିବାରୁ, ମୁଁ ତାଙ୍କୁ ମୋ ଉଦ୍ଦେଶ୍ୟ ନ କହି ଆଉ ଗୋଟିଏ ଉଦ୍ଦେଶ୍ୟରେ ଆସିଅଛି ବୋଲି କହି ତାଙ୍କୁ ବାଆଁରେଇ ଦେଲି । ]

**ବାଆଁଶ**—ପ୍ରାଦେ. (ଯାଜପୁର) ବି—(ସଂ. ବଂଶ)—ବାଉଁଶ—
Bā-āñśa Bamboo.

**ବାଆଁଶ ଗଜା**—ପ୍ରାଦେ. (ବାଲେଶ୍ୱର) ବି—ଏକଜାତୀୟ ଧାନ—
Bā-āñśa gajā A kind of paddy.

**ବାଆଁଶ ପତରି**—ପ୍ରାଦେ (ବାଲେଶ୍ୱର) ବି. ( ସଂ. ବଂଶପତ୍ରକ )—
Bā-āñśa patari ସାମୁଦ୍ରିକ ମତ୍ସ୍ୟବିଶେଷ—A sea fish.
(ବାଆଁଶ ପତରିଆ—ଅନ୍ୟରୂପ)

**ବାଆଁ(ଆ)ଶେଣା**—ଦେ ବି—ବୋରଝାଞ୍ଜି ଉପରେ ଜନ୍ମିବା ଘାସ ପରି
Bā-āñ(a) śeṇā ଏକ ପ୍ରକାର ଦଳ—A kind of aquatic grass growing on water-lettuce.

**ବାଆଁ ହାତ**—ଦେ. ବି. (ସଂ. ବାମ ହସ୍ତ)—ବାମ ହସ୍ତ—
Bā-āñ hāta বাঁ হাত **बायाँ हात** Left hand.

**ବାଆଁ ହାତିଆ**—ଦେ. ବିଣ—୧ । ବାମ ହସ୍ତ ସମ୍ବନ୍ଧୀୟ—
Bā-āñ hātiā 1. Relating to the left hand.
(ବାଆଁ ହାତି—ଅନ୍ୟରୂପ) ୨ । ବାମ୍ପାଁ; ବାଉଁଆ—
**बैंहत्थी** বাঁয়দিগের 2. Left-handed

ନେଟା, ନେଟା କ୍ରି. ବିଣ—୧ । ବାମ ଦିଗରେ—2. Towards
लेटराहा, लेटरा the left ୨ । ବାମ ହସ୍ତ ଦ୍ୱାରା—2. With the left hand.

ବାଆକୁ ବତା(ତେ)—ଦେ. ପ୍ରବଚନ—ପବନକୁ ବତା ଦେଇ ଅଟକାଇ
Bā-āku batā(te) ରଖିବା ପରି ହାସ୍ୟାସ୍ପଦ ଚେଷ୍ଟା—
वायुको हातसे रोकना Trying to do a ludicrous act like tying to tie the wind with a bamboo lath.

ବାଆ (ଏ)ଛଇଁ—ଗ୍ରାଦେ. (ଯାଜପୁର) କ୍ରି. ବିଣ—ସାମାନ୍ୟରେ—
Bā-ā-(e)chhāeṅ Slightly.
( ଯଥା—ସେ ବେଢଣା ହଲଉ ହଲଉ ମୋ ଦେହରେ ବାଆ ଛଇଁ ବାଜଗଲା । )

ବାଆଣୀ—ଦେ. ବି. ସ୍ତ୍ରୀ. ( ସ. ବାଦକମ )—ରଜା ଓ ରାଣୀଙ୍କ ଆଗରେ
Bā-āṇi ବାଦ୍ୟ ବଜାଇବା ଦାସୀ—A maid servant play-
बाजीये, बाईदी ing drums in the presence of Rajas and Ranees.
वजवया

ବାଆନ(ନେ)—ଦେ. ବି ଓ ବିଣ. ( ସଂଖ୍ୟାବାଚକ ) ( ସ. ଦ୍ୱିପଞ୍ଚାଶତ୍;
Bā-āna(ne) ପ୍ରା. ବାବନ୍ନା; ପା. ଦ୍ୱିପଣ୍ଣାସା )—ପଚାଶରୁ ଦୁଇ
(ବାଅବନ, ବାଉନ, ବାବନ—ଅନ୍ୟରୂପ) ଅଧିକ ସଂଖ୍ୟା—
বাআন্ন, বায়ান্ন, বাহান্ন वावन Fifty two; 52.

ବାଆନ ବଜାର ତେପନ ଗଳି—ଦେ. ବି—ଆଗ କାଳର କଟକ
Bā āna bajāra tepana gaḻi ସହରରେ ୫୨ ଗୋଟି ବଜାର ଓ ୫୩ଟି ଗଳି ଥିବାର ଲୌକିକ ଉକ୍ତି—52 bazars (big roads) and 53 lanes said to comprise the ancient town of Cuttack.

ବାଆ(ହା)ନ(ନ୍ନ)ବା—ଦେ. ବିଣ. ପୁଂ—୧ । ମିଥ୍ୟାବାଦୀ—
Bā-ā(hā)na(nna)bā 1. Lying ୨ । ଛଳନାକାରୀ—
[ବାଆନ(ନ୍ନ)ବୀ—ସ୍ତ୍ରୀ] 2. Feigning. ୩ । ସେ ବୃଥାରେ
বাফোর ଗୁଡ଼ାଏ ଗପେ—3. Talkative; braggart
डींगिया

ବାଆନା ଶହେ(ଏ)—ଦେ. ବି ଓ ବିଣ. ( ସଂଖ୍ୟାବାଚକ )—
Bā-ānā śahe(e) ଏକଶତ ବାଆନ; ୧୫୨—152.
(ଦ୍ର—ବାଆନା ଦୁଇଶ=୨୫୨)

ବାଆ ପବନ—ଦେ. ବି. ( ସଂ. ବାତ+ପବନ ) ( ଏକାର୍ଥବୋଧକ
Bā-ā pabana ସହଚର)—୧ । ବାୟୁ—1. Wind. ୨ । ଝଡ଼ ତୋଫାନ—2. Tempest.
ବା ପବନ, ବାଆ ବତାସ(ସି), ବାଆ ବୟାର } ଅନ୍ୟରୂପ বায়ু বাতাস वायु बसात

ବାଆ ପାଣି—ଦେ. ବି. ( ସଂ. ବାତ+ପାନୀୟ )—୧ । ତୋଫାନ ଓ
Bā-ā pāṇi ବର୍ଷା—1. Tempest and rain.
বাতাস বিষ্টী ଫୁଲ୍ ହାତ ଫୁଲ୍, ବାଆ ପାଣି ଖାଇ ଫୁଲ୍—ଶିଶୁ ଗୀତ ।
झक्कड ୨ । କୌଣସି ସ୍ଥାନର ଜଳବାୟୁ—2. Climatic condition of a place.
(ବାଆ ବରଷା—ଅନ୍ୟରୂପ)

ବାଆ ବତା—ଦେ. ବି—ଘରର ଛପର ପବନରେ ଉଡ଼ି ନ ଯିବ ବୋଲି
Bā-ā batā ଛପରର ଉପର ପାଖରେ ଓ ମୁଣ୍ଡ ଅଂଶରେ ବନ୍ଧାଯିବା ଚେଞ୍ଚ ଚେଞ୍ଚ ବତା—Pieces of split bamboo tied over the thatch of a house, so that it may not be blown away by the wind.

ବାଆଲ—ଦୈଦେ. ବି. ( ଫା; ଭୁଲ ସଂ. ବହୁଃ )—ଉପରେ—
Bā-āla Above.
ବି ଓ ବିଣ—ବାହାଲ (ଦେଖ)—Bāhāla (See)

ବାଆ(ହା)ଲିଆ—ଦେ. ବି ଓ ବିଣ. ( ସ. ବହୁଃ )—କାର୍ଯ୍ୟରେ ନିଯୁକ୍ତ
Bā-ā(hā)liā ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ହଠାତ୍ କାର୍ଯ୍ୟ
বাহিলী କରିବାକୁ ଅସମର୍ଥ ହେଲେ ତାହାର ସ୍ଥାନ ପୂରଣ କରିବା
एवजी ସକାଶେ ରକ୍ଷିତ ବ୍ୟକ୍ତି—A reserved person; an extra hand kept in reserve for emergency.

ବାଆ ଶୂଳ—ଦେ. ବି. ( ସଂ. ବାତ+ଶୂଳ )—ଘନ ଘନ ଶୂଳ ଆସି
Bā-ā śūḻa ପିଲା ଜନ୍ମ ହେବା ପୂର୍ବରୁ ପ୍ରସୂତି ଯେଉଁ ସାନ ସାନ ଶୂଳ ଅନୁଭବ କରେ—Slight labour-pangs felt before the acute throes begin.

ବାଆଷଠୀ ଶହେ(ଏ)—ଦେ. ବି ଓ ବିଣ. ( ସଂଖ୍ୟାବାଚକ )—
Bā-āshaṭhā śahe(e) ଏକଶତ ବାଆଷଠି; ୧୬୨—162.
(ବଅଷଠୀ ଶହେ—ଅନ୍ୟରୂପ) (ବାଆଷଠୀ ଦୁଇଶ=୨୬୨)

ବାଆଷଠି—ଦେ. ବି ଓ ବିଣ. ( ସଂଖ୍ୟାବାଚକ ) ( ସଂ. ଦ୍ୱିଷଷ୍ଟି ; ପ୍ରା.
Bā-āshaṭhi ବାସଟ୍ଠି )—ଷାଠିଏରୁ ଦୁଇ ଅଧିକ; ୬୨—62.
(ବାଷଠି—ଅନ୍ୟରୂପ) বাষট্‌ঠী बासठ

ବାଅସ୍ତ(ସ୍ତୁ, ସ୍ତୋ)ରି—ଦେ. ବି ଓ ବିଣ. ( ସଂଖ୍ୟାବାଚକ ) ( ସଂ.
Bā-āsta(stu, sto)ri ଦ୍ୱିସପ୍ତତି; ପ୍ରା. ବାହତ୍ତରି )—
ବାସ୍ତୁ(ସ୍ତୋ)ରି, ବାସ୍ତରି } ଅନ୍ୟରୂପ ସତୁରିରୁ ଦୁଇ ଅଧିକ; ୭୨—72.
বাহাত্তর बहत्तर

ବାଅସ୍ତ(ସ୍ତୁ)ରା ଶହେ—ଦେ. ବି ଓ ବିଣ—ଏକଶତ ବାଅସ୍ତରି; ୧୭୨—172.
Bā-āsta(stu)rā śahe

ବାଇ—ଦେ. ବି. ( ସଂ. ବାୟୁ )—୧ । ବାୟୁ କୁପିତ ହୋଇ ଉଦର
Bāi ମଧ୍ୟରେ ହେବା ବାୟୁ ରୋଗ; ବାତ ଶୂଳ—1. A disease
বাই बात, बाउ due to the derangement of wind in the stomach.
୨ । ପେଟ ଫମ୍ପା ରୋଗ—2. Flatulence ୩ । ଅଧୋବାୟୁ; ପାଦ଼—3. Wind passed through the anus.
୪ । ଶ୍ୱାସ ବାୟୁ; ପ୍ରାଣ ବାୟୁ—4. The vital air; breath.
ତ୍ରିଗୁ ଉଠଇ ହାଇ ମିଛ ଯାଇ
କ୍ଷୟ ହୋଇଯିବ ଯାଉଲେ ବାଇ—ପ୍ରାଚୀ. ପରବେ ଗୀତା ।
୫ । (ସଂ. ବାତିକ; ବାତ) ଖିଆଲ; କୌଣସି ବିଷୟରେ ମନୁଷ୍ୟ
বাতিক, বাই, ছিট ମନରେ ଜାତ ହେବା କ୍ଷଣିକ ବା ସ୍ଥାୟୀ ଝିଙ୍ଗର;
सिडीपन ଇଚ୍ଛା—5. Whim; caprice; a fit of desire which at times overpowers a person; craze; fad; hobby ୬ । ବାଉଳତା—6. Fit of madness. ୭ । ( ପୁଂ ଓ ସ୍ତ୍ରୀ ) ବାଉଳା ବ୍ୟକ୍ତି—7. Mad person; a mad cap.
বাঈ बाई

୮ । ରାଜପୁତାନା, ମହାରାଷ୍ଟ୍ର ଅଞ୍ଚଳ ଓ ବମ୍ବେରେ କ୍ଷତ୍ରିୟ ଓ ବୈଶ୍ୟ ଭଦ୍ର ମହିଳାମାନଙ୍କର ଉପାଧି ବିଶେଷ—8. A title attached to the name of ladies in Bombay corresponding to 'Lady' or 'Madam.' ୯ । ବେଶ୍ୟା ଓ ନର୍ତ୍ତକୀମାନଙ୍କର ଉପାଧି—9. A title of prostitutes and dancing girls, ୧୦ । ଭଉଣୀ—10. Sister ୧୧ । ଅଳ୍ପବୟସ୍କା ବାଳିକାଙ୍କୁ ଓ କନ୍ୟାସ୍ଥାନୀୟା ସ୍ତ୍ରୀଙ୍କୁ ଗୁରୁଜନଙ୍କର ସ୍ନେହ ସମ୍ବୋଧନ—11. An address of endearment to girls or to women in the position of a daughter by elders. ୧୨ । ପୁରୁଷ ଓ ସ୍ତ୍ରୀମାନଙ୍କୁ ଦିଆଯିବା ନାମ—12. A name given to males and females. ୧୩ । ନର୍ତ୍ତକୀ—13. Dancing girl.

बाई बाई

ଦେ. ବିଣ—୧ । ଉନ୍ମତ୍ତ; ବାଉଳ; ବାୟା—1. Maddened; mad.

ଧୃତରାଷ୍ଟ୍ରଙ୍କ ସୁତେ ହେଲେ ଗର୍ବେ ବାଇ—କୃଷ୍ଣସିଂହ. ମହାଭାରତ ବନ ।

୨ । କୌଣସି ବିଷୟ ପ୍ରତି ଅତି ଆସକ୍ତ—2. Much addicted to a thing; gone mad after a person or thing or after a hobby. ୩ । ବିବେଚନା ଶୂନ୍ୟ—3. Thoughtless; inconsiderate; devoid of judgment.

ରାଜା ହେଲ ବାଇ କି ? କନକ ଗାଈ ବଛର ପଢ଼ିଲେ
ଲୁଚଙ୍ଗ ସଣ୍ଢ଼ ପାଇବ ?—ଭଗ ।

ପ୍ରାଦେ—୧ । (ସମ୍ବଲପୁର ଓ ଗଡ଼ଜାତ) ବି—ବଡ଼ ଭଉଣୀ—1. Elder sister. ୨ । (ବାଲେଶ୍ୱର) ବି—ଘରଚଟିଆ ଚଢ଼େଇ—2. Sparrow.

**ବାଇଁଶିଆ**—ଦେ. ବି. (ସଂ. ବଂଶ)—ବାଉଁଶିଆ ( ଦେଖ )—
Bāiṅśiā — Bāuṅśiā ( See )

**ବାଇ ଅଡ଼ିବା**—ଦେ. କ୍ରି—ପେଟ ଭିତରେ ବାୟୁ କୁପିତ ହେବାରୁ ପେଟ ଫାମ୍ପିବା—Flatulence
Bāi arḍibā পেটফাঁপা
बाइरूकना (ବାଇଧରିବା, ବାଇକବକ, ବାଇକବନ୍ଧିବା—ଅନ୍ୟରୂପ)

**ବାଇକ୍**—ବୈଦେ. ବି. (ଇଂ. ବାଇସାଇକ୍ଲ; ବାଇକ୍)—ବାଇସାଇକଲ୍; ଦୁଇଚକିଆ ଗୃନ୍ଗାଡ଼ି—Bicycle.
Bāik বাইক बाइसिकिल

**ବାଇକ**—ଦେ. ବି—୧ । ( ସଂ. ଅବ୍ୟଙ୍ଗା )—ବାଇଡଙ୍କ—1 Cowage; Mucuna Prurita.
Bāika
আলকুসী
किवाच, कौंच
[ ଦ୍ର—ଏହା ଓଡ଼ିଶାରେ ଜନ୍ମେ । ଏହାର ପତ୍ର, ଡାଳ, ଗଣ୍ଡି ଓ ଛଇଁ ଅଂଶୁଅଂଶୁଆ । ଏହି ଗୁଳ୍ମ ସରୁ ଓ ଡେଙ୍ଗା । ]

୨ । ବାୟକ (ଦେଖ)—2. Bāyaka (See)

**ବାଇ କରିବା**—ଦେ. କ୍ରି—୧ । ପାଦିବା; ଅଧୋବାୟୁ କରିବା—1. To crack wind through the anus.
Bāi karibā
বাতকর্ম করা वाइ छोडना
পাগল করা ୨ । (ଅମୁକ ଲୋକକୁ ଅମୁକ ବିଷୟ) ପାଗଳ କରିବା—2. To make or turn one mad.
बावरा बनादेना

**ବାଇ କୋଷ**—ଦେ. ବି. (ସଂ. ବାୟୁ କୋଷ)—ଅନ୍ତ୍ରକୋଷ ରୋଗ; ବାୟୁ ଜନିତ କୋଷବୃଦ୍ଧି—Hernia.
Bāi kosha
অন্তকোষ अंडकोस

**ବାଇ ଖେଞ୍ଚିବା**—ଦେ. କ୍ରି—ପେଟମରି ବା, ବାତଶୂଳ ରୋଗ—Colic pain.
Bāi kheṅchibā

**ବାଇଗ(ଙ୍ଗ)ଣ**—ଦେ. ବି. (ସଂ. ବଙ୍ଗନ, ବାତିଙ୍ଗଣ)—ପ୍ରସିଦ୍ଧ କୃଷିଜାତ ଗୁଳ୍ମ ଓ ତାହାର ଫଳ—Brinjal; egg-fruit; Solanum Melongena.
Bāiga(ṅga)ṇa
ସଂ. ନାମ—ବାତିଙ୍ଗନ(ଣ), ବଙ୍ଗନ, ବାର୍ତ୍ତାକୀ, ବୃନ୍ତଫଳା, ନୃପପ୍ରିୟଫଳା, ମାଂସଫଳା, ବୃନ୍ତାକ(କୀ), ବାର୍ତ୍ତାକ(କୁ), ବାତିଗ, ବଙ୍ଗ, ବାତିଗମ, ଭଣ୍ଟାକୀ, ଭଣ୍ଟିକା
বেগুন बैंगन, बग्गुनी
ତେ. ବଙ୍ଗ, ବକାୟା
ତା. କତ୍ତିରିକକଇ
ଫା. ବାଦଞ୍ଜାନ୍
ଆ. ବାଦିଞ୍ଜାନ୍
ମ. ବୈଙ୍ଗନ, ବାଙ୍ଗେ, ଭଣ୍ଟା

[ ଦ୍ର—ଏହା କୃଷି ଜାତ ବାର୍ଷିକ ଗୁଳ୍ମ; ପ୍ରଥମେ ମଞ୍ଜିରୁ ଚାରା କରି ଚାରାଗୁଡ଼ିକ ପ୍ରାୟ ୮ ଅଙ୍ଗୁଳ ଉଚ୍ଚ ହୋଇଗଲେ କୋଡ଼ିରେ ହଣା ହୋଇଥିବା କିଆରିରେ ସେମାନଙ୍କୁ ପୋତିବାକୁ ହୁଏ । ବାଇଗଣ ଗଛ ଛିପ ଯାଗାରେ ହୁଏ ଏବଂ ୩ ଦିନରେ କିଆରିରେ ଥରେ ଲେଖାଏଁ ପାଣି ଦେବାକୁ ହୁଏ । ଖୁବ୍ ଉଚ୍ଚ ପାର୍ବତ୍ୟ ଦେଶରେ ବାଇଗଣ ଗଛ ଉଧାଏ ନାହିଁ । ବାଇଗଣ ଧଳା, କଳା, ବାଇଗିଣିଆ ଓ ସବୁଜ ଭେଦରେ ନାନାପ୍ରକାର । କେତେକ ବାଇଗଣର ଡାଳ ଓ ପତ୍ର ଓ ଡେମ୍ଫରେ କଣ୍ଟା ଥାଏ ଏବଂ କେତେକରେ ନ ଥାଏ । କେତେକ ବାଇଗଣ ଛୋଟ ଛୋଟ ଓ ପେଣ୍ଡା ପେଣ୍ଡା ହୋଇ ଫଳେ । ସେମାନଙ୍କୁ ପେଣ୍ଡ୍ରୀ ବାଇଗଣ ବୋଲାଯାଏ । ବଡ଼ ବଡ଼ ବାଇଗଣଙ୍କୁ ଭେଲୁଆ ଏବଂ ଖୁବ୍ ବଡ଼ ବଡ଼ ହେଲେ ସେମାନଙ୍କୁ ହନୁମନ୍ତିଆ ବାଇଗଣ ବୋଲାଯାଏ । ସରୁ ଓ ଲମ୍ବା ଏକପ୍ରକାର ବାଇଗଣଙ୍କୁ ନାଇଁକର ବା ନାଡ଼ିକର ବା ନାରକର ବାଇଗଣ ବୋଲାଯାଏ । ଯେଉଁ ବାଇଗଣ ନଈର ପାଲରେ ଫଳେ ଓ ପାଣିଚିଆ ଲାଗେ ତାକୁ ପାଳୁଆ ବା ଚରୁଆ ବାଇଗଣ କୁହାଯାଏ । ଅତି କ୍ଷୁଦ୍ର କଣ୍ଟାଯୁକ୍ତ ଏକପ୍ରକାର ଅତି ଛୋଟ ବାଇଗଣ ପଡ଼ିଆ ଜମିରେ ଫଳେ । ତାକୁ ଭେଜୀବାଇଗଣ ବୋଲାଯାଏ । ବେଏଁକୋଳ ନାମକ କଣ୍ଟାଲତାରେ ବାଇଗଣ ପରି ଅତି ଛୋଟ ଛୋଟ ଫଳ ଫଳେ ଏବଂ ତାହା ଔଷଧରେ ବ୍ୟବହୃତ ହୁଏ । ଲୋକେ ବାଇଗଣଙ୍କୁ ତରକାରି, ପୋଡ଼ା ଓ ଭଜା କରି ଖାଆନ୍ତି । ବାଇଗଣ ମଞ୍ଜି ଛୋଟ, ଚେପଟା ଓ ଗୋଲ ଥିବାରୁ ଯେଉଁ ଲେଖା ଅକ୍ଷର ଛୋଟ ଓ ଗୋଲ ହୋଇ ଥାଏ ତାକୁ ବାଇଗଣ ମଞ୍ଜି ସଙ୍ଗେ ତୁଳନା କରାଯାଏ; ଜଙ୍ଗଲରେ ଏହି ଜାତୀୟ ଏକପ୍ରକାର ଗଛ ୮।୧୦ ହାତ ଉଚ୍ଚରେ ବଢ଼େ ଓ ତହିଁରେ ବାଇଗଣ ଆକୃତି-ବିଶିଷ୍ଟ ଗୋଟାଳ ପରି କ୍ଷୁଦ୍ର ଫଳ ଧରେ; ଏହାର ନାମ ଗୋଠ-ବାଇଗଣ (ବଂ. ଗୋଟବେଗୁନ) । କୃଷକ ଯତ୍ନ କଲେ ବର୍ଷକ ମଧ୍ୟରେ ୩ ଥର ବାଇଗଣ ଫସଲ ଅମଦାନି କରି ପାରେ । ବୈଦ୍ୟକମତରେ ଏହା ମଧୁରରସ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, କଟୁବିପାକ, ଅଗ୍ନିଦୀପକ, ଶୁକ୍ରଜନକ, ଲଘୁ ଓ ବାୟୁ, ଜର ଏବଂ ଶ୍ଳେଷ୍ମନାଶକ, କଷି ବାଇଗଣ

କଫ ଓ ପିତ୍ତନାଶକ । ପାଚଲା ବାଇଗଣ ପିତ୍ତକାରକ ଓ ଗୁରୁ; ପୋଡ଼ା ବାଇଗଣ କିଞ୍ଚିତ୍ ପିତ୍ତକର, ଲଘୁ, ଅଗ୍ନିଦୀପକ ଓ କଫ, ମେଦ, ବାୟୁ ଓ ଆମଦୋଷର ଶାନ୍ତିକର । ଭୁକ୍ଇଁଣ୍ଡି ପରି ଏକ-ପ୍ରକାର ଧଳା ବାଇଗଣ ଅର୍ଶରୋଗରେ ବିଶେଷ ହିତକର । ]

**ବାଇଗଣ କୋଡ଼ା**—ଦେ. ବି—୧ । ବାଇଗଣ କିଆରିରେ ଲାଗିଥିବା Bāigaṇa korḍā ବାଇଗଣର ଛୋଟ ଗଛମାନଙ୍କ ମୂଳରେ ମାଟି ମାଟିକୋଡ଼ା ଦେବା ପାଇଁ କୋଡ଼ିଦ୍ୱାରା କିଆରିର ମାଟି ହାଣିବା **कोदालसे काटना** କ୍ରିୟା—1. The operation of spading କୋଦାଲେ କୋଦ୍‌ଲେ ମେଘ; କୋଦାଲେ କୁଡ଼ାଲେ a plot of land **कोदरकट्टा मेंह** on which brinjal plants have been (ବାଇଗଣକୋଡ଼ଅ—ଅନ୍ୟରୂପ) planted. ୨ । ମଳା ମଳା ହୋଇ ଦେଖା ଯାଉଥିବା ଏକପ୍ରକାର ମେଘ—2. A sort of cloud looking like clods of earth separated by a spade; the mackerel cloud..

[ଦ୍ର—ବାଇଗଣ କିଆରିରେ ମାଟି କୋଡ଼ିଲେ ମାଟି ଯାକ ଯେପରି ଛେଲ ଛେଲ ହୋଇ ଦେଖାଯାଏ ସେହିପରି ଛେଲ ଛେଲ ବା ମଳା ମଳା ଦେଖା ଯାଉଥିବା ମେଘକୁ ବାଇଗଣ କୋଡ଼ା ମେଘ କୁହାଯାଏ । ଏପରି ମେଘ ଦେଖା ଗଲେ ନିକଟ ଭବିଷ୍ୟତରେ ବର୍ଷା ହେବାର ସମ୍ଭାବନା ନ ଥାଏ ଏବଂ ଏହା ଅଣୁ ଦୁର୍ଭିକ୍ଷର ସୂଚନା କରେ । ଏଥି ପାଇଁ ଖନାବଚନ ଅଛି :—ଦିନକୁ ମଳା ମଳା, ରାତିକି କର୍ମିଳା, କାଥ ବୋଲେ ଯୁଭାରେ ! ରାଜ୍ୟ ଛାଡ଼ି ପଳା ।]

**ବାଇଗଣ ଟୋପର**—ଦେ. ବି.—ଖୁବ୍ ଛୋଟ ବାଇଗଣ; ମୁଣ୍ଡି ବାଇଗଣ- Bāigaṇa ṭopara Very stunted egg fruits. କୁଣ୍ଡୀ ବେଗୁନ [ଦ୍ର—ବାଇଗଣ ଗଛ ପୁରୁଣା ହୋଇ ଗଲେ ଫଳ ଖୁବ୍ ଛୋଟ ହୋଇଯାଏ । ଏହାକୁ ବାଇଗଣ ଟୋପର ବୋଲାଯାଏ ।]

**ବାଇଗଣ ପ(ପୋ)ଲେଇ**—ଦେ. ବି—ମାନ୍ଦ୍ରାଜର ବାଗ୍‌ନାନ୍ ପଲ୍ଲି Bāigaṇa pa(po)lei ନାମକ ଅଞ୍ଚଳର ଉତ୍କୃଷ୍ଟ ଆମ୍ବ ଫଳ- ମାନ୍ଦ୍ରାଜୀ ବିଶେଷ—A kind of excellent mango **बंगनापल्लि** growing in Bagnanpalli in Madras Presidency.

**ବାଇଗ(ଗି)ଣିଆ(ଆଁ)**—ଦେ. ବିଣ.—କଳା ବାଇଗଣ ବର୍ଣ୍ଣ ପରି ନୀଳ. Bāiga(gi)ṇiā(aṅ) ରକ୍ତ ବର୍ଣ୍ଣ ମିଶ୍ରିତ—Violet; deep ବେଗୁନେ **बेगनी** purple.

[ବାଇଗ(ଗି)ଣିଅ(ଅଁ)—ଅନ୍ୟରୂପ] ଦେ. ବି. ( ନାମ )— ବାଲେଶ୍ୱରର ପର୍ବତବିଶେଷ—Name of a mountain in Balasore.

ବସ୍ତ୍ର ପ୍ରାପ୍ତେ ଯାଉ ବଣେ ପଣ୍ଡଶୈଳ ବାଇଗଣିଆ । ରାଧାନାଥ- ଭଣା ।

**ବାଇଗ(ଗି)ଣୀ**—ଦେ. ବି.—୧ । ବାଇଗଣକୁ ଫଡ଼ା ଫଡ଼ା କରି ତାକୁ Bāiga(gi)ṇī ବେସନ ବା ପିଠଉରେ ବୁଡ଼ାଇ ଘିଅ ବା ତେଲରେ ବେଗୁନୀ ଛାଣି ପ୍ରସ୍ତୁତ କରିବା ଏକପ୍ରକାର ପିଠା—1 A cake **बैग(ज)नी** fried in ghee or oil, consisting of slices of brinjal immersed in gruel. ୨ । ବିଦେଶରୁ ଓଡ଼ିଶାକୁ ଆସି ବିକ୍ରୀତ ହେଉଥିବା ଏକ-ପ୍ରକାର ଧୂଆଁପତ୍ର- 2. Nicotina Alta (tobacco leaf).

[ଦ୍ର—ଏହାର ଫୁଲ ଧଳା । ସନ୍ଧ୍ୟାବେଳେ ଏଥିର ଫୁଲ ଫୁଟେ ଏବଂ ସକାଳେ ବୁଜି ହୋଇ ଯାଏ । ରାତିରେ ଫୁଲର ଖୁବ୍ ସୁଗନ୍ଧ ଥାଏ । (Haines).]

ଦେ. ବିଣ—ବାଇଗଣିଆ (ଦେଖ)—Bāigaṇiā (See)

**ବାଇଗବ(ବା)**—ଦେ. ବି.—୧ । (ସ. ବ୍ୟାଘ୍ରପୁଚ୍ଛ ଏରଣ୍ଡ; ଭୁଲ. ସ. Bāigaba(bā) ବ୍ୟାଘ୍ର=ନାଲି ଗବଗଛ)—ଶୁକ୍ଳ ଏରଣ୍ଡ; ଏକ ବାଷ ଭେରେଣ୍ଡା, ଗାବଭେରେଣ୍ଡା ପ୍ରକାର କ୍ଷୀରି ବୃକ୍ଷ—1. A kind ସ. ନାମ—ପଞ୍ଚାଙ୍ଗୁଳ of hedge plant; physic nut; Jatropha Curcas.

[ଦ୍ର—ଏ ଗଛ ୮।୧୦ ହାତ ଉଚ୍ଚ ହୁଏ । ଏହାର ପତ୍ର ହାତ ପାପୁଲି ପରି ୫୬ ଅଗୁଠିଯୁକ୍ତ; ଫୁଲ ଈଷତ୍ ହଳଦିଆ; ଫଳ ଗବ-ଫଳ ପରି ୩ ଚଉତିଆ; ମଞ୍ଜି ଗବ ମଞ୍ଜି ପରି, ମାତ୍ର ଆକାରରେ ବଡ଼ । ଏ ଗଛକୁ ହାଣିଲେ କ୍ଷୀର ବାହାରେ । ଏହାର ଡାଳକୁ ଦାନ୍ତକାଠି କରାଯାଏ । ଏ ଗଛରେ ବାଡ଼ ବୁଜିଲେ ବାଡ଼ ବହୁକାଳ ରହେ ।]

୨ । ଲଘୁ ଏରଣ୍ଡ; ଲାଲ ବାଇଗବା; ବାଇଗବା ଜାତୀୟ ଛୋଟ ଓ ନାଲି ଗଛ—2. A small species of Bāigabā plant; Jatropha Gossypifolia ଲାଲ ଫେବେଣ୍ଡା, ସ୍ୱୟମ୍ବର Jatrophā Glandulifera.

[ଦ୍ର—ଏହା ପ୍ରଥମେ ଆମେରିକାର ବ୍ରାଜିଲ୍ ଦେଶରୁ ଏ ଦେଶକୁ ଆନୀତ ହୋଇଥିଲା, ଏହାର ଉଚ୍ଚତା ପ୍ରାୟ ୨ ଫୁଟ । ଡାଳ ଓ ପତ୍ର ନାଲି ହୁଏ ।]

**ବାଇଚ(ଛ)**—ଗ୍ରା. ବି. (ସ. ବାଚ୍ୟ=ନିନ୍ଦ୍ୟ)—ନିନ୍ଦା— Bāicha(chha) Blame. ବାଚ୍ୟ; ବାଈଚ **कुचेष्टा** ବିଣ.—ନିନ୍ଦିତ—Blamed; censured.

**ବାଇଚ(ଛ)କରିବା**—ଦେ. କ୍ରି. (ସ. ବାଚ୍ୟ=ନିନ୍ଦନୀୟ)—କୌଣସି Bāicha (chha) kariba ବ୍ୟକ୍ତିର ଦୋଷ ଦେଖାଇ ତାକୁ ଗାଳି ଦେବା--To find fault with a person.

**ବାଇଚଟିଆ**—ଦେ. ବି.—(ସ. ବାତ+ନଟକ ବା ବାପକ+ଚଟକ)— Bāichatiā ବାୟା ଚଢ଼େଇ—The weaver bird; ବାୟା **बाया** Ploceus Baya.

**ବାଇଜ**—ଦେ. ବିଣ. (ସ. ବର୍ଜିତ)— ୧ । ସମାଜରୁ ଚ୍ୟୁତ— Bāija 1. Excommunicated ବାହିବ **बाहर** ୨ । ପରିତ୍ୟକ୍ତ—2 Abandoned.

**ବାଇଜ କରିବା**—ଦେ. କ୍ରି.—କୌଣସି ବ୍ୟକ୍ତିକୁ ସମାଜଚ୍ୟୁତ କରିବା- Bāija karibā To excommunicate a person. ବାହିବ କବା **बाहरना**

**ବାଇଜଡ଼ା**—ପ୍ରାଦେ. (ମେଦିନୀପୁର) ବି.—ବାଇଗବ (ଦେଖ) Bāijarḍā Bāigaba (See).

**ବାଇଜ(ଜି) ହାଣ୍ଡି**—ଦେ. ବି. (ସ. ବର୍ଜିତ ଓ ହଣ୍ଡିକା) ଅଶୌଚଦିନରେ Bāija(ji) hāṇḍi ସେଉଁ ପାକପାତ୍ରମାନ ବର୍ଜିତ ହୋଇ ଛୁତ ହାଁଡ଼ି ଫୋପଡ଼ା ଯାଏ—Earthen cooking pots which **मरदुअरी हाडि** are abandoned and thrown away on the occasion of a death or birth in a family.

× × × ପଡ଼ଆରେ ବାଇଜି ବାଣ୍ଡି ପଣ୍ଡି ଚନ୍ଦଳ ଦୁରନ୍ତ ଗଉ ଅଛ ।
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

ବାଇଜା(ଝା)ଲି—ଦେ. ବି.—ଦଣ୍ଡକର ମାଛ ପରି ଏକ ପ୍ରକାର ଅଛ
Bāijā (jhā)li ଛୋଟ ମାଛ—A kind of tiny fresh
[ବାଇଜା(ଝା)ଲିଆ—ଅନ୍ୟରୂପ] water fry with stings on the neck.

[ଦ୍ର—ଏ ମାଛ ଅଛ ପତଳା । ଏହାର ଗାଲ ପାଖେ କଣ୍ଟା ଥାଏ ବ ତାହା ମନୁଷ୍ୟ ଦେହରେ ଫୋଡ଼ି ହୋଇ ଗଲେ ଭାରି ବନ୍ଧା ହୁଏ ।]

ବାଇଜୀ—ବୈଦେ. ବି. (ହି.)—ନର୍ତ୍ତକୀ—
Bāiji बाईजी **बाईजी** Dancing girl; nautch girl.

ବାଇଝାଲି ଗୀତ—ପ୍ରାଦେ.—(ଗଡ଼ଜାତ) ବି.—ଗଡ଼ଜାତରେ ବାଳକା
Bāijhāli gita ମାନେ ବୋଲିବା ଗୀତବିଶେଷ—
A kind of song sung by girls.

ବାଇଟା—ଦେ. ବି. ( ସଂ. ବାୟୁକ; ବାପକ=ଯେ ବୁଣେ )—
Bāiṭā ୧ । ବାୟା ଚଢ଼େଇ—1. The weaver bird.

[ ଦ୍ର—ଏମାନଙ୍କ ମୁଣ୍ଡରେ ଲୋମ ନ ଥିବାରୁ ଏମାନେ ଟାଙ୍ଗରା ବିଶନ୍ତି । ]

୨ । ବାଇ ଟାଙ୍ଗରା (ଦେଖ)—2. Bāi ṭāṅgarā (See)

ବାଇଟା(ଟୁ)ଙ୍ଗ(ଙ୍ଗୁ)ରା(ରି)—ଦେ. ବି. ପୁଂ—ମୁଣ୍ଡରେ ବାଳ ନ ଥିବା
Bāiṭā(ṭu)ṅga(ṅgu)rā(ri) ବାଳକ ବାଳକାମାନଙ୍କୁ ବାୟା
[ବାଇଟା(ଟୁ)ଙ୍ଗ(ଙ୍ଗୁ)ରିଆ—ଅନ୍ୟରୂପ] ଚଢ଼େଇ ସଙ୍ଗେ ତୁଳନା କରି
[ବାଇଟା(ଟୁ)ଙ୍ଗ(ଙ୍ଗୁ)ରୀ—ସ୍ତ୍ରୀ] କରାଯିବା ସ୍ନେହ ସମ୍ବୋଧନ—
नेड़ा, न्याड़ा A term of endearment applied to
**टुँगारिया** bald headed children.

[ ଦ୍ର—ବାୟା ଚଢ଼େଇଙ୍କ ମୁଣ୍ଡ ଲୋମଶୂନ୍ୟ ବା ଟାଙ୍ଗରା । ]

ଦେ. ବିଣ—୧ । ଯେଉଁ ଲୋକ ବେଳେ ବେଳେ ବାଉଳ ପରି ହୁଏ; ଅଡ଼ବାୟା; ଅମୂଳ ବାୟା—1. Crack-brained;
आड पागला crazy; a person subject to temporary
**बाबला(रा)** madness.

୨ । ଅବ୍ୟବସ୍ଥିତ ଚିତ୍ତ—2. Of unsettled or unfixed
आड़ पागला mind; fickle-minded.
**बावला** ୩ । ବିଶୃଙ୍ଖଳବାନ୍(ଲୋକ)—3. Whimsical(person).

୪ । ଅବ୍ୟବସ୍ଥିତ କର୍ମୀ; ଅସଙ୍ଗତ କର୍ମୀ (ଲୋକ)—
4. Unmethodical (person).

୫ । ବାଇଟୁଙ୍ଗୁରା ବ୍ୟକ୍ତିର ଆଚରଣ ସଦୃଶ—5. Similar to the acts of or befitting a fickle-minded person.

ବାଇଡ(ଢ)ଙ୍କ—ଦେ. ବି. ( ସଂ. ଅବ୍ୟଙ୍ଗା; ବାନରୀ )—
Bāiḍa(ḍha)ṅka ଶିମ୍ବାଦି ବର୍ଗର ଅରଣ୍ୟ ଜାତ ଲତା ବିଶେଷ—
ସଂ. ପର୍ଯ୍ୟାୟ—କପିକଚ୍ଛୁ, ଆତ୍ମଗୁପ୍ତା, 1. A kind of wild nettle,
ବୃଷ୍ୟା, ବାନରୀ, ମର୍କଟୀ, the cowhage; cowitch;
ଅଜରା, କଣ୍ଡୁରା, କୁଣ୍ଡଳୀ, Mucuna Pruriens.
ପ୍ରେମବଲ୍ଲୀ, କଣ୍ଟା, ଗାନ୍ଧଭଙ୍ଗା,
ଅବ୍ୟଙ୍ଗା, ଦୁଃସ୍ପର୍ଶା, ଶୂକବଶ୍ୟା,
ଶୋଥା, ଶୁକା, ପ୍ରାବୃଷାୟଣୀ,
ଲାଙ୍ଗଲୀ, ଶୂକଶିମ୍ବି, କେଶୀ,
ଜଡ଼ା, କଚ୍ଛୁରା ଓ ସ୍ୱୟଂଗୁପ୍ତା,
ସଦ୍ୟଶୋଥା, ଋଷଭ
आलकुशी, शुयाँशिम्बी,
दयाधुनार गुँड़ो
**कावकुरि, काउयाँच, कौछ, किंवाँच, कोँच, काँच**
ତେ. ପିଲ୍ଲିଅଡୁଗୁ, ତୁଲଗୁଣ୍ଡି
ଗୁ. ଘୁନାଇକ୍, କାଲି
ମ. କଵଚ, ଖୁହାଣ୍ଡି

[ ଦ୍ର—ଶିମ୍ବ ଲତାର ପତ୍ର ପରି ଏହାର ତେଣ୍ଟକେ ୩ଟି ଲେଖାଏଁ ପତ୍ର ଥାଏ; ଛୁଇଁ ବଙ୍କା; ଲତାର ଓ ଛୁଇଁର ଦେହସାକ ଲୋମ ପରି ଛୋଟ ଛୋଟ ବିଷାକ୍ତ କଣ୍ଟା ଥାଏ । ଖରାଦିନେ ପବନ ସାହାଯ୍ୟରେ ଉକ୍ତ ଲୋମଗୁଡ଼ିକ ଉଡ଼ି ଆସି ମନୁଷ୍ୟ ଦେହରେ ବାଜିଲେ ଦେହ କୁଣ୍ଡାଇ ହୋଇ ଫୁଲି ଯାଏ ଏବଂ ବିଶେଷ ଯନ୍ତ୍ରଣା ହୁଏ । ଏହାର ମଞ୍ଜି ବଡ଼ ବଡ଼ ଓ ବାଇଗଣୀ ରଙ୍ଗ ଯୁକ୍ତ । ବୈଦ୍ୟକ ମତରେ ଏହା ଶୁକ୍ର ଓ ରତିଶକ୍ତିବର୍ଦ୍ଧକ ଓ ବାତଘ୍ନ । ଧାଉଁଶିଆ, କଳା ଓ ଧଳା ଭେଦରେ ଏ ଗଛ ୩ ପ୍ରକାର । ଧଳା ଗଛର ଛୁଇଁରେ ଲୋମ ନ ଥାଏ । ]

୨ । (ଲକ୍ଷଣାର୍ଥ) ଦୁଷ୍ଟ ବା ଖଳ ବ୍ୟକ୍ତି; ଯେଉଁ ବ୍ୟକ୍ତି ପରର ଅନିଷ୍ଟ
आलगुसी କରେ—2. (fig) A wicked person.

୩ । ନିର୍ମୂଳୀ ଲତା ବିଶେଷ—3. Cuscuta Reflexa ( Haines ).

[ ଦ୍ର—ଏହାର ଡାଙ୍କ ସୂତା ପରି; ଫୁଲ ଧଳା ଏବଂ ସନ୍ଧ୍ୟାବେଳେ ବାସେ । ]

ବାଇଡିମ୍ବିରି—ପ୍ରାଦେ. (ଗଞ୍ଜାମ) ବି—ଖରସଣ ( ଦେଖ )
Bāi ḍimbiri Kharasaṇa ( See )

ବାଇଣ୍ଟି ପୋଇଲି—ପ୍ରାଦେ. ( ଗଞ୍ଜାମ ) ବି. ସ୍ତ୍ରୀ—ଛୋଟ ଝିଅମାନଙ୍କ
Bāiṇṭi poili ମାଆମାନଙ୍କର ଦେବା ଗାଳିବିଶେଷ—
A term of mild abuse applied by mothers to young girls.

କାହାର କି ଚିନ୍ତା, ବାଇଣ୍ଟି ପୋଇଲିର ସଉତା ଚିନ୍ତା—ଢଗ ।

ବାଇଦ—ଗ୍ରା. ବି. ( ସଂ. ବାଦ୍ୟ )—ବାଜା; ଢୋଲ—
Bāida बाजा **बाजा** Drum.

ହୋଇ ଜାମବନ୍ତ ଓଟଂ କ ବାଇଦ । କୃଷ୍ଣସିଂ ହ. ମହାଭାରତ, ସଭା ।

ବାଇଦ(ଦି)କା(କି)ରିଆ—ଦେ. ବି. ( ସଂ ବାଦ୍ୟକାର )—
Bāida(di)kā(ki)riā ବାଜାବାଲା; ଯେ ବାଜା ବଜାଏ—
बाजादार **बजनिया** Drummer.

ବାଇଦ ବଡ଼କାଠ—ଦେ. ବି. ( ସହଚର )—ସାନ ଢୋଲ ଓ ବଡ଼
Bāida baṛdakāṭha ଢୋଲ—Small and big
ढोल डंका **ढोल डंका** drums.

ବାଇଦା—ପ୍ରାଦେ. (ଗଞ୍ଜାମ) ବୈଦେ. ( ଫା· ବାଦା; ଆ. ବାଇଦା= Bāidā ନିର୍ଦ୍ଦିଷ୍ଟ ସମୟ )—୧ । (କଚେରୀ) ମକଦ୍ଦମା ଆଦିର ଶୁଣାଣି
सावकास ନିମନ୍ତେ ନିର୍ଦ୍ଧାରିତ ଦିନ ବା ତାରିଖ—1. A date
**बादा** fixed for hearing of a case. ୨ । କୌଣସି କାର୍ଯ୍ୟ କରିବା ପାଇଁ ପ୍ରାର୍ଥିତ ବା ସ୍ୱୀକୃତ ସମୟ; ମିଆଦ—
2. Time taken or settled for doing a certain thing; time limit; adjournment.

ବାଇଦା ଦେବା—ପ୍ରାଦେ. (ଗଞ୍ଜାମ) କ୍ରି—କୌଣସି କାର୍ଯ୍ୟ କରିବା ପାଇଁ
Bāidā debā ପକ୍ଷଙ୍କୁ (ବିରୁଦ୍ଧପକ୍ଷ) ସମୟ ବା ମହଲତ ଦେବା—
सावकास देओया To grant time for some matter; to
**बादा देना** adjourn a case to some other date.

**ବାଇଦା ପଡ଼ିବା**—ପ୍ରାଦେ. ( ଗଞ୍ଜାମ ) ବି. ( କଟକରେ ଅଛି )—
Bāidā pardibā ମକଦ୍ଦମା ଶୁଣାଯିବା ନିମନ୍ତେ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ନିର୍ଦ୍ଧାରିତ ହେବା—(a case) Being fixed for hearing on a certain date.

**ବାଇଦା ଲୋଡ଼ିବା**—ପ୍ରାଦେ. ( ଗଞ୍ଜାମ ) କ୍ରି. ( କଟକରେ ଅଛି )—
Bāidā lordibā କୌଣସି ମକଦ୍ଦମାରେ ମହଲତ ପ୍ରାର୍ଥନା କରିବା—To pray for an adjournment of a case.

**ବାଇ ଧନ**—ଦେ. ବି. ପୁଂ—ପ୍ରିୟତମ ବ୍ୟକ୍ତିଙ୍କୁ ସ୍ନେହସୂଚକ ସମ୍ବୋଧନ—
Bāi dhana A term of endearment.
(ବାଇଧନୀ—ସ୍ତ୍ରୀ)
ବାପ ଧନ

ବାଇଧନ ତ ! ବାଇଧନ ଗଲେ ବୃନ୍ଦାବନ ତ ।
କେଳା ଗୀତ ।

**ବାଇ ଧନିଆ(ଆଁ)**—ଦେ. ବି. ପୁଂ ଓ ସ୍ତ୍ରୀ—ବାଇ ଧନ ( ଦେଖ )
Bāi dhaniā(āṅ) Bāi dhana ( See )

**ବାଇ ଧରିବା**—ଦେ. ବି—ଶରୀରରେ ବାୟୁବୃଦ୍ଧିଜନିତ ପୀଡ଼ା; ପେଟଫମ୍ପା
Bāi dharibā —Disease due to excess of wind in body; flatulence.
ପେଟ ফাঁপা **বাহু पगडना**
(ବାଇଧରା—ଅନ୍ୟରୂପ)

**ବାଇ ନାଚ(ଟ)**—ଦେ. ବି—ବେଶ୍ୟା ନାଚ—
Bāināchа (ṭa) Dancing girls' dance.
বাঈ নাচ **बाइ नाच**

**ବାଇ ଫଳ**—ଦେ. ବି—(ଏପରି ଫଳ ଖାଇଲେ ଲୋକ ବାତୁଳ ହୋଇ ଯିବାର ଆଶଙ୍କା ସ୍ୱାଭାବିକ ଥିବାରୁ)—ଅଜ୍ଞାତନାମା ଓ ଅଜ୍ଞାତଗୁଣ ବନ୍ୟ ଫଳ—A wild fruit of unknown name and attribute.
Bāi phaḷa
বাজে ফল
**बेकार फल**

ନରେନ୍ଦ୍ର, ହେବା ସୁକୃତ କୃତବନେ ଜ୍ଞାତଚୂତ ଚତ ଫିଙ୍ଗି ଦେଲ ବାଇଫଳ
ଗୁଞ୍ଜିରେ । ଅଭିମନ୍ୟୁ ବଦଗ୍ଧଚନ୍ତାମଣି ।

**ବାଇବ**—ଗ୍ରା. ବି—(ସଂ. ବାୟବ)—ବାୟୁ କୋଣ—
Bāiba বায়ব্য **बायब** Northwest.

ସେ ଷଡଚକ୍ରରେ ବସିଲେ ବାଇବେ ଦିଗପାଳ ହେଲେ ।
ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

**ବାଇବ(ବେ)ଲ**—ବୈଦେ. ବି—(ଇଂ. ବାଇବ୍ଲ)—ଖ୍ରୀଷ୍ଟାନମାନଙ୍କ ଧର୍ମ ପୁସ୍ତକ—The Holy Bible.
Bāiba(be)la
বাইবল **बाइबिल**

**ବାଇବା**—ଦେ. କ୍ରି—( ସଂ. ବଦ୍ ଧାତୁ ଣିଚ୍. ବାଦ ଧାତୁ )—
Bāibā ବାଦ୍ୟ ବଜାଇବା—To play on a musical instrument.
বাজান **बजाना**

ଶଙ୍ଖ ଭେରୀ ମୃଦଙ୍ଗ ପଣବ ବାଇଲେ
ସେ ଶବଦେ ଯୁଦ୍ଧଭୂମିକି କମ୍ପାଇଲେ—
କୃଷ୍ଣସିଂହ, ମହାଭାରତ ଭୀଷ୍ମ ।

**ବାଇ ବାଉ(ତୁ)ଳ(ଳା)**—ଦେ. ବିଣ—(ସହଚର)—ପାଗଳ—
Bāi bāu(tu)ḷa(ḷā) Mad.
(ବାଇବାଉଳୀ—ସ୍ତ୍ରୀ) ଦେ. ବି—ପାଗଳାମି—
Madness.
পাগল ছাগল **बाउरा**

**ବାଇବିଛ(ଛି)**—ଦେ. ବିଣ—(ସଂ. ବାୟୁବତ୍)-୧। ବାତୁଳପରି ଅସ୍ଥିର—
Bāibichha(chchha) 1. Restless like a mad man
[ବାଇବିଛା(ଛା)ଳ—ଅନ୍ୟରୂପ] ୨। ପ୍ରବଳ ବାୟୁପରି ଅସ୍ଥିର ଓ ଅସ୍ଥିର ବେଗଶୀଳ—2. Hasty and restless like the tempest.
**बायुकासा**
(ଯଥା—ପାଇକମାନେ ରଣଭୂଇଁରୁ ବାଇବିଛ ହୋଇ ପଳେଇ ଗଲେ ।)
ଦେ. ବି—ବାତୁଳତା—Insanity.
(ଯଥା—ତାକୁ ବାଇବିଛ ଲାଗିଛି ।)

**ବାଇବିଡ଼ଙ୍ଗ**—ଦେ. ବି. (ସଂ. ବିଡ଼ଙ୍ଗ)-ଔଷଧ ଗୁଳ୍ମ ବିଶେଷ; ବିଡ଼ଙ୍ଗ—
Bāibirdaṅga Embelia Robusta; embelia Ribes.
ସଂ. ନାମ—ଚିତ୍ର ତଣ୍ଡୁଳ, କୃମିଶତ୍ରୁ, ବୃଷାମ୍ଳ, ବାତାରି ଓ ରସାୟନ, କ୍ରିମିଘ୍ନ, ଜନ୍ତୁନାଶନ ।
বিড়ঙ্গ; বাবরঙ্গ
**बाओविडंग, बायविडंग, बाइविरंग, बिबिरङ्ग**
ମ. ବାବଡ଼ୀଙ୍ଗ, କାରକୁମୀ
ଗୁ. ବାବଟୀଂଗ
ତେ. ବାୟୁବିଡ଼ଙ୍ଗମୁ
ତା. ବାୟୁବିଲଂ
ଫା. ବରଙ୍ଗକାବଲୀ
ଆ. ବରଞ୍ଜକାବଲୀ
[ ଦ୍ର—ଏହାର ଫଳ ଗୋଲମରିଚ ପରି । ଏହା କୃମି ଓ ଉଦରବାୟୁ ନାଶକ; ପତ୍ର ନିମ୍ନପୃଷ୍ଠ ଓ ରୋମଶ ଏହି ଗଛକୁ ଲୁଣିଲୁଣିଆ ଗଛ ମଧ୍ୟ ବୋଲାଯାଏ । ଏ ଗଛ ଦୁଇ ଜାତି । ଏକ ଜାତି ବୃହତ୍ ଲଟାଳିଆ ଗୁଳ୍ମ; ଚଟ୍ଟଗ୍ରାମ, ବୋମ୍ବେ, ସିଂହଳ, ଓ ବ୍ରହ୍ମଦେଶରେ ଜନ୍ମେ । ଅପର ଜାତି ଶ୍ରେଷ୍ଠ ତରୁ, ବଙ୍ଗ ବିହାର ଓଡ଼ିଶାରେ ଜନ୍ମେ । ଦୁଇ ଜାତିର ଫଳ କ୍ରିମିଘ୍ନ ଓ ଉଦରବାୟୁ ନାଶକ । ବୈଦ୍ୟଙ୍କ ମତରେ ଏହା କଟୁ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ରୁକ୍ଷ, ଅଗ୍ନି କାରକ ଓ ଲଘୁ । ଏହା ଶୂଳ, ଉଦରାଧ୍ମାନ, ଉଦର ରୋଗ, ଶ୍ଲେଷ୍ମା, କୃମି, ବାତ ଓ ବିବନ୍ଧନାଶକ । ]

**ବାଇ ମୁଣ୍ଡ**—ଦେ. ବି—(ଶିଶୁରଞ୍ଜନ)—୧। ଶିଶୁମାନଙ୍କୁ ଖେଳାଇବ ଉଦ୍ଦେଶ୍ୟରେ ମାଆମାନଙ୍କର ବୋଲିବା ପଦ ବିଶେଷ—1. A term of endearment used to children while nodding their heads.
Bāi muṇḍa

ବାଇମୁଣ୍ଡ, କଛ ଖାଇନାହିଁ କଜଭୁଣ୍ଡ—ଶିଶୁରଞ୍ଜନ. ଗୀତ ।

[ ଦ୍ର—ମାଆମାନେ ଏହା ବୋଲିବା ସମୟରେ ଶିଶୁମାନେ ବାୟୁମନୁଷ୍ୟ ଭଳି ମୁଣ୍ଡକୁ ଏ ପାଖ ସେ ପାଖ ହଲାଉ ଥାଆନ୍ତି ।]
୨। ବାତୁଳ ବ୍ୟକ୍ତିର ମସ୍ତିଷ୍କ—2. Mad man's brain.

କଟକ ଚଳା ବାଇମୁଣ୍ଡର କଥା—ଚଗ ।

**ବାଇଲ**—ଦେ. ବି—୧। ରାଜଭୃତ୍ୟବିଶେଷ—1. Tittle of a class of personal servants of a Raja. ୨। ଏକପ୍ରକାର ଶିମ୍ବ—2. A kind of flat and fleshy been.
Bāila

[ ଦ୍ର—ଏହା ସାଧାରଣ ଶିମ୍ବପରି; ୪।୫ ଅଙ୍ଗୁଳ ଲମ୍ବ ଓ ଚେପଟା । ଏହାର ମଞ୍ଜି ଗୋଲ ଓ ଚେପଟା । ଶିମ୍ବର ମଞ୍ଜି ଓ ଚୋପାକୁ ତରକାରୀ କରାଯାଏ, ମାତ୍ର ବାଇଲର ଚୋପା ଖାଦ୍ୟ ନୁହେଁ । ଲୋକେ ଏହାର ମଞ୍ଜିକୁ କେବଳ ତରକାରୀ ଓ ଭଜା କରି ଖାଆନ୍ତି । ]

ବାଇଲ ବାइला ବୈଦେ. ବ. (ଇଂ)—ଉପବିଧି—Byelaw.

ବାଇ ଲଗିବା—ଦେ. କ୍ରି—୧ । ବେଳେ ବେଳେ କୌଣସି ବଦ୍‌ଖିଆଲ
Bāi lāgibā ମନକୁ ଆକ୍ରମଣ କରିବା—1. Fits of whims.
(ବାଇ ଉଠିବା—ଅନ୍ୟରୂପ) ୨ । ସାମୟିକ ବାତୁଳ ହେବା—2.
ବାତୀକଲାଗା The state of being attacked with a fit
बाइलगना of madness.

ବାଇଲି—ପ୍ରାଦେ. (ଉତ୍ତର ଭାଷା) ବ—୧ । ସ୍ତ୍ରୀଲୋକ; ମାଈକିନିଆ—
Bāili 1. Woman. ୨ । ଭାର୍ଯ୍ୟା; ମାଇପ—2. Wife.

ବାଇଲେନ୍—ବୈଦେ. ବ. (ଇଂ.)—ଗଳିଭିତରେ ଥିବା କ୍ଷୁଦ୍ର ଗଳି—
Bāilen ବାଇଲେନ बाइलेन By-lane.

ବାଇଶ(ଶି)—ଦେ. ବ ଓ ବଣ. (ସଂଖ୍ୟାବାଚକ) (ସ. ଦ୍ୱାବିଂଶତି; ପ୍ରା.
Bāiśa(śi) ବାଇସା)—କୋଡ଼ିଏରୁ ଦୁଇ ଅଧିକ; ଦ୍ୱାବିଂଶତି;
ବାଇସ बाईस ୨୨—Twenty two; 22.
ଦେ. ବ—୧ । ନିୟମ—1. Rule; regularity; ୨ ।
ସ୍ଥିରତା; ନିଶ୍ଚିତତା—2. Certainty. ୩ । ସାମଞ୍ଜସ୍ୟ—
3. Coherency.
(ଯଥା—ତା କଥାରେ କିଛି ବାଇଶ ନାହିଁ ।)

ବାଇଶ କୁରଡ଼ି ବେଣ୍ଟ—ପ୍ରାଦେ. ବାଲେଶ୍ୱର) ବ—(ପୁରୁଷଙ୍କୁ ଦିଆଯିବା
Bāiśa kurardhi benta ଅଶ୍ଳୀଳ ଗାଳି ବିଶେଷ—A
vulgar term of abuse applied to males.)
ନଷ୍ଟଚରିତ୍ର ବ୍ୟକ୍ତି—A licentious person.

ବାଇଶ(ଶି) ପାହାଚ—ଦେ. ବ—ପୁରୀର ଶ୍ରୀ ଜଗନ୍ନାଥଙ୍କ ସିଂହଦ୍ୱାରଠାରୁ
Bāiśa(śi) pāhācha ଭିତରବେଢ଼ାକୁ ଯିବା ପର୍ଯ୍ୟନ୍ତ ଯେଉଁ ୨୨
ଗୋଟି ପାବଚ୍ଛ ଅତିକ୍ରମ କରି ଯିବାକୁ ହୁଏ—The 22
steps leading from the lion's gate to the
main block of temples in the Temple of
Jagannath at Puri

ବାଇଶ ହରଡ଼ ଡାଲି—ପ୍ରାଦେ. ( ବାଲେଶ୍ୱର ) ବ—(ସ୍ତ୍ରୀ ଓ ପୁରୁଷଙ୍କ
Bāiśa hararda dāli ପ୍ରତି ଅଶ୍ଳୀଳ ଗାଳିବିଶେଷ—A
vulgar term of abuse, applied to males
and females). ନଷ୍ଟ ଚରିତ୍ର; ଖେଚେଡ଼ା—Licentious; wicked; wanton.

ବାଇଶା—ଦେ. ବଣ—୧ । ୨୨ ସଂଖ୍ୟକ—1. Numbering 22.
Bāiśā ୨ । '୨୨' ସମ୍ବନ୍ଧୀୟ—2. Relating to 22. ୩ ।
ବାଈଶା ୨୨ ଗୌଣୀ ପରିମିତ (ଶସ୍ୟ)—3. Measuring 22
Gaunies. ୪ । ଦ୍ୱାବିଂଶ; ୨୨ ସ୍ଥାନୀୟ—4. Twenty-second.
ଦେ. ବ—୧ । ବାଇଶଟି ବସ୍ତୁର ସମାହାର—1. An aggregate of 20 things. ୨ । କ୍ଷେତରୁ କଟାଳ କାଟିଆଣି
ମୁକୁଳ ନେବା ପୂର୍ବରୁ ଗଦା କରିଥିବା ୨୨ ଟି ଲେଖାଏଁ
ହଳାର ଗଦା—2. A heap of 22 sheaves of
paddy reaped by a reaper.
[ ଦ୍ର—ଧାନକଟାଳ ୧୧ଟି ହଳା କାଟିଲେ ତହିଁରୁ ଗୋଟିଏ
ଅପଣା ମୂଲ ପାଇଁ ପାଏ । ସେଥିପାଇଁ ୨୨ଟି ଲେଖାଏଁ ହଳା ପୃଥକ୍
କରି ରଖେ ଓ ମୁକୁଳ ହେଲା ବେଳେ ପ୍ରତି ବାଇଶାରୁ ୨ଟି
ଲେଖାଏଁ ହଳା ମୂଲ ନିଏ । ]

ବାଇଶା କୁଟା—ଦେ. ବ—୨୨ ଗୌଣୀ ଧାନ କୁଟା ଦେଲେ ତାହା
Bāiśā kutā ବଦଳରେ ୧୦ ଗୌଣୀ ଚାଉଳ ପାଇବା ରୀତି—
The system of getting 10 Gaunies of rice
in lieu of 22 Gaunies of paddy.
[ ଦ୍ର—ଉଷୁନା ଚାଉଳ ବାଇଶା କୁଟା ପ୍ରମାଣେ ଓ ଅରୁଆ
ଚାଉଳ ପଚଶାକୁଟାରେ ଧାନକୁଟାଳୀଙ୍କଠାରୁ ଅଦାୟ କରାଯାଏ । ]

ବାଇଶି ଦିନିଆ(ଆଁ) ଜର—ଦେ. ବ—୨୨ ଦିନ ବ୍ୟାପୀ ଏକପ୍ରକାର
Bāiśi diniā(āñ) jara ମାସ୍ତୃଷ୍ଟିକ ଜ୍ୱର; ଟାଇଫଏଡ୍ ଜର—
ବାଈଶଦିନେ ଜ୍ୱର Typhoid fever

ବାଇଶି ପଲିଆ—ଦେ. ବଣ—ଯେଉଁ ବିଶାର ପରିମାଣ ୨୨ ପଲ—
Bāiśi paliā (a Biśā) of 22 Palas.
[ ଦ୍ର—କେତେକ ସ୍ଥାନରେ ୨୫ ଓ କେତେକ ସ୍ଥଳରେ ୨୨
ପଲିଆ ବିଶା ଚଳେ । ]

ବାଇଶି ପଲିଆ ବିଧା—ଦେ. ବ—ଖୁବ୍ ଶକ୍ତ ବିଧା—A heavy fist-
Bāiśi paliā bidhā बीसमण कील blow.

ବାଇ ସାଇକଲ(କେ)ଲ୍—ବୈଦେ. ବ (ଇ.)—ଦୁଇଚକିଆ ପାଦଗଡ଼ିଳଡ
Bāi sāika(ke)l ବାଇସାଇକେଲ ଗାଡ଼ି; ଶୂନଗାଡ଼ି—Bicycle.
बाइसिकिल [ବାଇସିକ(କେ)ଲ୍—ଅନ୍ୟରୂପ]

ବାଇସୋଠା(ଡ଼ା)—ବୈଦେ ବ. (ଇଂ. ବାଇକାର୍ବନେଟ୍ ଅଫ୍ ସୋଡ଼ା)—
Bāisothā(rdā) ପାଶ୍ଚାତ୍ୟ ଲବଣ ଜାତୀୟ ଔଷଧ ବିଶେଷ—
ବାଇସୋଡ଼ା सोडा Sodi Bicarb; Bicarbonate of soda.
[ ଦ୍ର—ଏହା ଖାଇଲେ ପେଟର ବାୟୁରୋଗ କମେ । ]

ବାଇ(ଏ, ୟୁ, ୟୋ)ସ୍କୋପ୍—ବୈଦେ. ବ. ( ଇଂ. ବାୟୋସ୍କୋପ୍ )—
Bāi(e, ya, yo)skop ଆଲୋକ ଓ ଛାୟା ପ୍ରତିଫଳନ ପୂର୍ବକ
ବାୟୋସ୍କୋପ ଜୀବନ୍ତବତ୍ ଚଳାଚଳନୟ ଓ ଛବିର ଯନ୍ତ୍ର; ଚଳଚିତ୍ର—
बायस्कोप Bioscope.

ବାଇହାଣ୍ଡି—ପ୍ରାଦେ. (ପୁରୀ) ବ—ପୁରୀ ବଡ଼ଦେଉଳରେ ଜଗନ୍ନାଥଙ୍କୁ
Bāihāndi ଯେଉଁ ବଡ଼ ଅନ୍ନହାଣ୍ଡିରେ ମହାପ୍ରସାଦ ଭୋଗ କରା-
ଯାଏ—A big earthen pot for boiled rice
offered to Lord Jagannath at Puri.
ଦେ. ବ—ବାଇଜ ହାଣ୍ଡି (ଦେଖ)—Bāija hāndi (See)

ବାଈ—ଦେ. ବ. ସ୍ତ୍ରୀ—ବାଇ ୧୩ ( ଦେଖ )—
Bāī Bāi 13 ( See )
ଲାଜ ମଣ ଖାଇ ନବ୍ ଉଚ୍ଚ ବାଈ—ରାଧାନାଥ. ଦରବାର ।

ବାଉ—ପ୍ରାଦେ. (ବାଲେଶ୍ୱର) ବ—ବାୟା (ଦେଖ)—
Bāu Bāyā (See)

ବାଉଁ—ଦେ. ବ—୧ । (ସ. ବ୍ୟାମ)—ବେଁ—1. Fathom. ୨ ।
Bāuñ ବାଓଁ बायाँ ବାମପାର୍ଶ୍ୱ—2. Left side.
ବାଯାଁ, ବଁ ଦେ. ବଣ. ( ସ. ବାମ )—୧ । ବାମ—
बायाँ 1. Left (side

ବୈଦେ. ବି. (ଜାହାଜିଆ ଶବ୍ଦ)—ଦୀର୍ଘ ହାତ ଜଳର ଗଭୀରତାର
**बाम** ମାପ; ବାମ୍—( nautical ) A unit of measuring
the depth of water; fathom.

**ବାଉଁଆ(ଅାଁ)**—ଦେ.ବିଣ.ପୁଂ—(ସ.ବାମ)—ବାମ୍ୟା; ଯେଉଁ ବ୍ୟକ୍ତିର ବାମ-
Bāuṅā(āṅ) ହାତ ଡାହାଣ ହାତ ଅପେକ୍ଷା ବେଶୀ କାର୍ଯ୍ୟକାରୀ—
ল্যেটা, ন্যেটা, ন্যাটা, ন্যেঙা, ন্যেঙ্গা Left-handed; one who
**बैहतथा** is deft in using the left hand.
(ବାଉଆଁ, ବାଓଅାଁ—ଅନ୍ୟରୂପ) [ବାଉଁରି, ବାଓଁରି—ସ୍ତ୍ରୀ]

**ବାଉଁକ୍**—ପ୍ରାଦେ. (ମେଦିନୀପୁର) ବି. (ବ. ବାଙ୍ଗୀ)-ବାହୁଙ୍ଗୀ; ଭାରଦଣ୍ଡ—
Bāuṅk A pole with a sling attached to each end
for holding loads and carried across the
shoulder.

**ବାଉଁ ଡାଉଁ ଇତ୍ୟାଦି**—ଦେ. ବି—ବାଆଁ ଡାଆଁ ଇତ୍ୟାଦି (ଦେଖ)
Bāuṅ ḍāuṅ etc Bā-āṅ ḍā-āṅ etc (See).

**ବାଉଁଶ**—ଦେ. ବି—(ସ. ବଂଶ)—ଧାନ୍ୟାଦି ବର୍ଗର ପ୍ରସିଦ୍ଧ ଦୀର୍ଘ ବୃକ୍ଷ
Bāuṅśa ବିଶେଷ—Bamboo; Bambusa.
ସ. ପର୍ଯ୍ୟାୟ—ବେଣୁ, ତ୍ୱକ୍‌ସାର, ଶତପର୍ବା, ଯବଫଳ, ଧନୁର୍ଦ୍ରୁମ, କର୍ମାର, ଧାନୁଷ୍ୟ, ତ୍ୱଚସାର, ତୃଣଧ୍ୱଜ, ଶତଫଳ, ମସ୍କର, ତେଜନ—
বাঁশ
**बाँस**
ମ. ବେଲ
ଗୁ. ବାଂଶ
ତେ. ବେଦୁରୁ, ବେଦୁ
ତା. ମନଗିଲ
ପା. କସବ

[ତ୍ରି—ଏହା ଧାନଜାତୀୟ ବଡ଼ଗଛ। ୫୦। ୬୦ ବର୍ଷରେ ବାଉଁଶଗଛରେ ଧାନ କେଣ୍ଡାପରି ଫଳ ଧରେ ଏବଂ ଏଥିରୁ ଧାନ ଭଳି ଶସ୍ୟ ବାହାରେ। ଏ ଧାନକୁ ବାଉଁଶ ଧାନ ବୋଲା-ଯାଏ। ଏ ଧାନରୁ ଚାଉଳପରି ଏକପ୍ରକାର ଚାଉଳ ବାହାରେ ଏବଂ ଦୁର୍ଭିକ୍ଷ ସମୟରେ ଗରିବ ଲୋକେ ଏହାକୁ ରନ୍ଧନକରି ଖାଆନ୍ତି। ବାଉଁଶ ଗଛରେ ଫୁଲ ଧରିଲେ ବାଉଁଶଗଛ ମରିଯାଏ। ଏଥିପାଇଁ ପ୍ରବାଦ ଅଛି:—ବାଉଁଶ ଫୁଲିଲେ ମରେ। ବାଉଁଶଗଜା ବା କରଡ଼ିକୁ ତିଅଣ, ମୁରବା ଓ ଆଚାର କରାଯାଏ। ଅନେକପ୍ରକାର ବାଉଁଶ ଅଛି ଯଥା—ବେଲଙ୍ଗି, ବାଉଁବାଧ, କଣ୍ଟାବାଉଁଶ, ବାଲଅା, ଶାଳଅା, କଣ୍ଟାବାଲଅା ଓ ସୁନ୍ଦରକଣିଆ ବା ସୁନ୍ଦରଘାଇ ବା ସୁନ୍ଦରଘାଇ। ବୈଦ୍ୟକମତରେ ବାଉଁଶ କଫ, ପିତ୍ତ, କୁଷ୍ଠ, ରକ୍ତଦୋଷ, ବ୍ରଣ ଓ ଶୋଥନାଶକ, ମୂତ୍ରାଶୟ ଶୋଧକ ।
ବଂଶାଙ୍କୁର—ଗୁରୁ, ସାରକ, ବିଦାହୀ, କଫ, ବାୟୁ ଓ ପିତ୍ତ-ବର୍ଦ୍ଧକ ।
ବଂଶତଣ୍ଡୁଲ—ସାରକ, ବାୟୁ ଓ ପିତ୍ତବର୍ଦ୍ଧକ, ମୂତ୍ରରୋଧକ ଓ କଫନାଶକ ।]

**ବାଉଁଶ ଅଗିରା(ଲା)**—ଦେ. ବି.—(ସ. ବଂଶ ଓ ଅଗ୍ର)—ବାଉଁଶର ଅଗ୍ର-
Bāuṅśa agirā(lā) ଭାଗ—The top of a bamboo
বাঁশের ডগা **बासका छीप** stem.

**ବାଉଁଶ କଣି**—ଦେ. ବି.—ବାଉଁଶର କ୍ଷୁଦ୍ର ଶାଖା ଓ ଉପଶାଖା—
Bāiṅśa kaṇi The small branches from the
বাঁশের কচী **बासकी करची** main bamboo.
[ବାଉଁଶ ପକ୍ଷି(ଖି)ରା—ଅନ୍ୟରୂପ]

**ବାଉଁଶ କରଡ଼ି**—ଦେ. ବି. ( ସ. ବଂଶ ଓ କରୀର )—ବାଉଁଶର
Bāuṅśa karaṛi କଅଁଳିଆ ଗଜା—Tender shoots of
বাঁশের কোঁড় **बाँसका कोपल** bamboo.
[ ଦ୍ର—ଏଥିରେ ଆଚାର ଓ ତରକାରୀ କରାଯାଏ । ]

**ବାଉଁଶ କରିଡ଼**—ପ୍ରାଦେ. ( ଗଞ୍ଜାମ ) ବି—ବାଉଁଶ କରଡ଼ି—
Bāuṅśa kariṛa Tender shoots of bamboo.

**ବାଉଁଶ କୁଣ୍ଡି**—ପ୍ରାଦେ. ( ଗଞ୍ଜାମ ) ବି—ବାଉଁଶ ପାତିଆରେ ବୁଣା
Bāuṅśa kuṇḍi ଟୋକେଇ—Basket of bamdoo
laths.

**ବାଉଁଶ କୁମ୍ଭ**—ପ୍ରାଦେ. ( ଗଡ଼ଜାତ )—ବାଉଁଶ ବୁଦା—
Bāuṅśa kumbha A bamboo cluster; a clump
of bamboo trees.

**ବାଉଁଶ ଖେଳ**—ଦେ. ବି. ( ସ. ବଂଶ + କ୍ରୀଡ଼ା )—ଭୂମିରେ ଠିଆ
Bāuṅśa khela ହୋଇଥିବା ଖୁବ ଉଚ୍ଚ ବାଉଁଶ ଉପରେ
(ବାଉଁଶବାଜି—ଅନ୍ୟରୂପ) ନାନାପ୍ରକାର ବ୍ୟାୟାମ ପ୍ରଦର୍ଶନ—
বাঁশ বাজী Exhibition of various athletic exercises
**बाँसकीबाजी** on the top of a bamboo

**ବାଉଁଶ ଚାଉଳ**—ଦେ. ବି—ବାଉଁଶ ଧାନରୁ ବାହାରିବା ତଣ୍ଡୁଳବତ୍
Bāuṅśa chāula ଦ୍ରବ୍ୟ—Rice-like substance got
বাঁশের চাল from the paddy-like grains of
**बाँसका चावल** the bamboo tree.

**ବାଉଁଶ ଠୋଲ**—ଦେ. ବି—କଣ୍ଟାର ବଲ୍କଳ; ବାଉଁଶ କରଡ଼ି ଉପରେ
Bāuṅśa ṭholā ଥିବା ଖୋଳ ବା ଆବରଣ—The rind
(ବାଉଁଶ ଖୋଲପା—ଅନ୍ୟରୂପ) covering a young shoot
বাঁশের কাপড়(খোল) of bamboo.
**बाँसकी सुपती**

**ବାଉଁଶ ଦେବା**—ଦେ. କ୍ରି—ଫଳନ୍ତି ଧାନ ଗଛ ଏଣିକି ତେଣିକି ଅଛନ୍ତି
Bāuṅśa debā ପଡ଼ିଯିବା ଓ କାଟିବା ବେଳେ ଅସୁବିଧା ହେବା
মই দেওয়া ଭୟରେ ଠିଆ ହୋଇଥିବା ଧାନ ଗଛକୁ ବାଉଁଶ ଦ୍ୱାରା
ଏକ ଦିଗକୁ ଶୁଆଇ ଦେବା—To make the stan-
ding paddy plants incline towards one
side by drawing a long bamboo over them.

**ବାଉଁଶ ଧାନ**—ଦେ. ବି. ( ସ. ବଂଶ ଓ ଧାନ୍ୟ )—
Bāuṅśa dhāna ବାଉଁଶ ଗଛର ଫୁଲରୁ ବାହାରିବା ଧାନ
বাঁশের ধন ବିଶେଷ—A paddy-like grain borne by
**बाँस धान** bamboo trees.

**ବାଉଁଶ ପତୁରି**—ଦେ. ବିଣ. ( ସ. ବଂଶ ଓ ପତ୍ର )—ବାଉଁଶ ପତ୍ର ପରି—
Bāuṅśa paturi Like bamboo leaves.
(ବାଉଁଶ ପତୁରିଆ, ବାଉଁଶ ପତିଆ—ଅନ୍ୟରୂପ)
বাঁশ পাতা ଦେ. ବି—୧ । ଏକ ପ୍ରକାର ଧଳା ଛୋଟ ମାଛ—
**बाँस पतिया** 1. A kind of small fish. ୨ । ଏକ ପ୍ରକାର
ଘାସ—2. A kind of grass.

ବାଉଁଶ ପାଟିଆ—ଦେ. ବି—ବାଉଁଶ ବଟରୁ ଚିରି ହୋଇଥିବା ପଟଳା
Bāunsa pātiā ଖଣ୍ଡ (ବାଉଁଶିଆ ଆଦିର ନିର୍ମାଣରେ ବ୍ୟବହୃତ)—
বাঁশের পাত Thin strips taken from bamboo
**बाँसकी कमची** and used in weaving baskets.

ବାଉଁଶ ଫାଳିଆ—ଦେ. ବି—ମଝିରୁ ଦୁଇଫାଳ ହୋଇ ଚିରି ହୋଇଥିବା
Bāunsa phāliā ବାଉଁଶ—Bamboo split into two.
বাঁখারি [ଦ୍ର—ଫାଳିଆକୁ ଆହୁରି କ୍ଷୁଦ୍ର କରି ଚିରିଲେ ତାହା
**फट्टा** ବତା ହୁଏ । ]

ବାଉଁଶ ଫୁଲିବା—ଦେ. ବି—ବାଉଁଶ ଗଛରେ ଫୁଲ ଧରିବା—
Bāunsa phulibā The flowering of bamboo
বাঁশ ফোলা **बाँस फुलना** trees.

ବାଉଁଶ ବୁଦା - ଦେ. ବି—ଏକ ସ୍ଥାନରେ ଉଠିଥିବା ଅନେକ ଗୁଚ୍ଛ
Bāunsa budā ବାଉଁଶ—A cluster of bamboos
**बाँस कोठी, बाँसका बीट** coming out of one place.

ବାଉଁଶ ମୂଳୀ—ଦେ. ବି—୧ । ଏକ ପ୍ରକାର ମୋଟ ଧାନ—
Bāunsa mūli 1. A species of coarse paddy.
বাঁশের মূল ୨ । ବାଉଁଶ ଗଛର ଚେର ମୂଳ ଖଣ୍ଡ—2. The small piece of the lower part of bamboo with the roots attached to it.

ବାଉଁଶ ରାଣୀ—ଦେ. ବି—ଯେଉଁ ସ୍ତ୍ରୀ ଲୋକମାନେ ପୋଛା ହୋଇଥିବା
Bāunsa rāni ବାଉଁଶର ଅଗରେ ନାନା ପ୍ରକାର ଆଶ୍ଚର୍ଯ୍ୟ-
বাঁশ বাজীবালী (ওয়ালী) ଜନକ ବ୍ୟାୟାମ ଦେଖାନ୍ତି—Women
**बँसचढी** who perform athletic feats on the top of high bamboos.

ବାଉଁଶ ହଳ—ପ୍ରାଦେ. (ଗଡ଼ଜାତ) ବି—ହଳେ ବା ଦୁଇଟି ବଳଦ ଯେତେ
Bāunsa hala ବାଉଁଶ ଯୁଆଳିଦ୍ୱାରା ବଣରୁ ବୁହାଇ ଆଣି ପାରନ୍ତି—
As much of bamboo as can be carried by a pair of oxen.

ବାଉଁଶା—ପ୍ରାଦେ. ( ସମ୍ବଲପୁର ) ବି—ଛପର ଘରର ରୁଅ—
Bāunsā Rafters of a thatched house.

ବାଉଁଶିଆ—ଦେ. ବି. ( ସ. ବଂଶ; ସ. ବୋ ଧାତୁ=ବୁଣିବା )—
Bāunsiā ୧ । ବାଉଁଶ ପାତିଆରେ ତିଆରି ପାଚିଆ; ବାଉଁଶିଆ—
বাঁশের চুপড়ী 1. A small basket made of thin strips
**बोइया, पथिया** of bamboo; a work basket.
୨ । ଏକ ପ୍ରକାର ଆଖୁ—2. A species of sugarcane.

ବାଉଁଶିଣିଆ—ପ୍ରାଦେ. ( ଜୟପୁର ) ବି—ଏକ ପ୍ରକାର ଛତୁ—
Bāunsiniā A kind of mushroom.

ବାଉ(ହୁ)ଟା—ବୈଦେ. ବି. (ତୈ ?)—(ଜାହାଜିଆ ଶବ୍ଦ) ପତାକା—
Bāu(hu)tā পতাকা **झंडा** (nautical) Flag.
ପୁର ଏଣ୍ଡ ଟୋକିଆ ବାଉଟା ହଲାଇ ଅସୁମାନଙ୍କୁ ଡାକିବା କଲେ ।
ଫଣୀନମୋହନ. ଗଳ୍ପସ୍ୱଳ୍ପ ।

ଦେ. ବି—ବାଉଟିଆ ( ଦେଖ )—
Bāutiā ( See )

ବାଉ(ହୁ)ଟିଆ—ଦେ. ବି. ( ସ. ବାତାୟୁ; ବାତାଟ; ବାତମୃଗ )—
Bāu(hu)tiā ମୃଗ ବିଶେଷ; କୃଷ୍ଣସାର; କଳା ବାହୁଟିଆ—
বাউটা **काला हिरण, करसायल** The black buck.
[ ଦ୍ର—ଏମାନଙ୍କ ଶିଙ୍ଗ ଶାଖାହୀନ ଓ ମୋଡ଼ା ମୋଡ଼ା । ]

ବାଉଡ଼ି—ଦେ. ବି. ( ଧ୍ୱନ୍ୟନୁକରଣ )—ପୂର୍ଣ୍ଣ ଭୋଜନ ପରେ ଯେଉଁ
Bāurdi ହାକୁଟ ବା ଉଦ୍ଗାର ବାହାରେ; ଏଉଡ଼ି—
ঢেকুর Belching or eructations coming out
**डेकार** after a full meal

ବାଉନ ପତି—ଗ୍ରା. ବି—ବାହାନ ପତି ( ଦେଖ )
Bāuna pati Bāhāna pati ( See )

ବାଉନା—ଦେ. ବି—ବାହୁନା ( ଦେଖ )
Bāunā Bāhunā ( See )

ବାଉନିବା—ପ୍ରାଦେ. (ସମ୍ବଲପୁର) କ୍ରି—ନାପସନ୍ଦ କରିବା; ଅନୁମୋଦନ
Bāunibā ନ କରିବା—To disapprove.
ଦେ. କ୍ରି—ବାହୁନିବା (ଦେଖ)—Bāhunibā (See)

ବାଉରା—ପ୍ରାଦେ. ( ସମ୍ବଲପୁର ) ବିଣ. ପୁଂ. ( ସ. ବାତୁଲ; ଭୁଲ. ହି. Bāurā ବାଉରା )—ବାତୁଳ; ପାଗଳ; ବାଉଳା—
(ବାଉରୀ—ସ୍ତ୍ରୀ) Mad; insane.

ବାଉରି—ଦେ. ବି. ପୁଂ. (ସ. ବର୍ବର)—୧ । ହିନ୍ଦୁ ନୀଚ ଜାତିବିଶେଷ
Bāuri 1 A low depressed caste.
বাগদি [ଦ୍ର—ବାଉରିମାନେ ବିବାହାଦି ଉପଲକ୍ଷେ ଶଙ୍ଖ ବଜାନ୍ତି
(ବାଉରୁଣୀ—ସ୍ତ୍ରୀ) ଶଙ୍ଖାସୁର କନ୍ୟାରୁ ବିଷ୍ଣୁଙ୍କଠାରୁ ଏମାନେ ଶଙ୍ଖ ପାଇଥିବା କଥା ବଳରାମ ଦାସ ଲେଖିଅଛନ୍ତି ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ସ୍ଥିର କରିଅଛନ୍ତି ଯେ ବାଉରିମାନେ ବୌଦ୍ଧ ଥିଲେ । ପ୍ରତାପରୁଦ୍ର ଦେବ ଏମାନଙ୍କ ଧର୍ମ ବିଶ୍ୱାସ ଯୋଗୁଁ ଏମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିବାରୁ ଏମାନେ ପ୍ରକାଶ୍ୟରେ ବ୍ରାହ୍ମଣ୍ୟ (ହିନ୍ଦୁ) ଧର୍ମ ଗ୍ରହଣ କଲେ ଏବଂ ହିନ୍ଦୁ ଦେବଦେବୀଙ୍କୁ ମୁହଁରେ ମାନିଲେ; କିନ୍ତୁ ଭିତରେ ଭିତରେ 'ମହାଶୂନ୍ୟଙ୍କୁ' ପୂଜା କଲେ । ସେହି ସମୟରୁ ଏମାନେ ଅସ୍ପୃଶ୍ୟରୂପେ ବିବେଚିତ ହେଲେ । ଏମାନେ ବିବାହ ବେଳେ ପଇତା ପିନ୍ଧନ୍ତି । ଏମାନଙ୍କ ଜାତିର ସରଦାରଙ୍କୁ 'ମହାପାତ୍ର' ବୋଲାଯାଏ । 'ବାଉରି ବଇଷ୍ଣବ' ନାମକ ଏକ ସମ୍ପ୍ରଦାୟ ଏମାନଙ୍କ ପୁରୋହିତ । ଏମାନେ ଆର୍ଯ୍ୟେତରଭୂତ; କଦାପି ଅନାର୍ଯ୍ୟ ନୁହନ୍ତି । ଏମାନେ ପାଣ ହାଡ଼ି ଆଦିଙ୍କ ପରି ଗୋ-ମାଂସ ଭକ୍ଷଣ କରନ୍ତି ନାହିଁ । ମୟୂରଭଞ୍ଜର ବାଥୁଡ଼ିମାନେ ପ୍ରକୃତରେ ବାଉରି ନୁହନ୍ତି । ବଳରାମ ଦାସ ତାଙ୍କ ସିଦ୍ଧାନ୍ତ ଡମରୁରେ ଲେଖିଅଛନ୍ତି ଯେ ବାଉରିମାନେ ବିଶ୍ୱାମିତ୍ରଙ୍କଠାରୁ ଜାତ ଓ ବ୍ରାହ୍ମଣଙ୍କ ଭାଇ ଅଟନ୍ତି ।]

(ପୁଂ. ଓ ସ୍ତ୍ରୀ)—ଅପତ୍ୟହାରିଣୀ ପୁତ୍ର କନ୍ୟାଙ୍କୁ ଦିଆଯିବା ନାମ—
2. A name given to children born after the death of their elders.

ପ୍ରାଦେ. (ସମ୍ବଲପୁର) ବି.—ଓଲଟ ବେଭାର—A present sent to a friend's or a relative's house in return for the present sent by the latter.

ବାଉରି ବଇଷ୍ଣବ—ଦେ. ବି.—ବାଉରି ଜାତିର ପୁରୋହିତ—
Bāuri baishnaba A sect of Bāuris who officiate as priests amongst the Bāuris.

**ବାଉରି ବତା**—ଦେ. ବି.—ଶୂଳଘରର ଗୋଟିଏ ପାଖ ଛପର କରି ସାରି Bāuribatā ଅଗରୁ ସେ ପାଖର କାତରିଗଣ୍ଡର ଅଗକୁ ଭୂଲର ଟୁଇର ବାତା ଉପର ବାଟେ ବୁଲାଇ ଅପରପାଖେ ବାନ୍ଧିବାରେ ବ୍ୟବହୃତ ବତା—The bamboo lath tied to the topmost zone of the thatched framework of a house connecting it with the already thatched other half.

**ବାଉରି ବୁଣା**—ଦେ. ବି.—ବାଉରି ଜାତୀୟ ଏକପ୍ରକାର ତନ୍ତି— Bāuri buṇā A caste of low class weavers.
ଦେ. ବିଣ.—ବାଉରିବୁଣା ତନ୍ତିଙ୍କଦ୍ୱାରା ବୁଣା ହୋଇଥିବା (ମୋଟ ଲୁଗା)—( coarse cloth ) Woven by Bāuri weavers.

**ବାଉଳଶ ବକିବା**—ପ୍ରାଦେ. (ଯାଜପୁର)—କ୍ରି.—ବାଉଳ ପରି ପ୍ରଳାପ Bāuḷachi bakibā କରିବା—To rave like a mad man.

**ବାଉଳା**—ଦେ. ବିଣ. ପୁଂ. (ସ. ବାତୁଳ)—୧। ବାତୁଳ— Bāuḷā বাউল **बाउला; बाउर** 1. Mad; insane.
(ବାଉଳୀ—ସ୍ତ୍ରୀ) ୨। ଭ୍ରାନ୍ତ—2 Erring. ୩। ବାତୁଳ ବ୍ୟକ୍ତି ପରି ବାହ୍ୟ ଜ୍ଞାନଶୂନ୍ୟ—3. Maddened; behaving like a mad person.
ଦେ. ବି—୧। ଭ୍ରାନ୍ତି—1. Delusion; mistake; error. ୨। ବାତୁଳତା—2. Madness.
ପ୍ରାଦେ. (ଉତ୍ତର ବାଲେଶ୍ୱର) ବି.—କଣ୍ଟିଆ ଜାତୀୟ ଏକ ପ୍ରକାର ଅତି କ୍ଷୁଦ୍ର ମତ୍ସ୍ୟ—A very small fish belonging to 'kanṭiā' class.
[ଦ୍ର—ଏହାର କଣ୍ଟା ଦେହରେ ବାଜିଲେ ଭାରି ବିକା ଲୁଏ ଏବଂ ମନୁଷ୍ୟ ବାତୁଳ ପରି ହୋଇ ଯାଏ। ଏଣୁ ଏହାର ଏହି ନାମ ହୋଇ ଅଛି।]

**ବାଉଳା କରିବା**—ଦେ କ୍ରି—୧। ବାତୁଳ ପରି ଅସ୍ଥିର କରିବା— Bāuḷā karibā 1. To cause to be restless like a পাগল করা mad man ୨। ଭ୍ରାନ୍ତ ବା ଭ୍ରମଯୁକ୍ତ କରିବା; **बाउर करना** 2. To cause to fall into error; to delude.

**ବାଉଳି(ଲ)**—ଦେ. ବି.—୧। (ସ. ବାତୁଳ) ବୈଷ୍ଣବଧର୍ମୀ ସମ୍ପ୍ରଦାୟ Bāuḷi(la) বাউল ବିଶେଷ—1. A sect of anchorites.
[ଦ୍ର—ବଙ୍ଗଦେଶରେ ଏ ସମ୍ପ୍ରଦାୟର ବୈଷ୍ଣବମାନେ ମୁଣ୍ଡରେ ଟୋପର ଓ ଦେହରେ କନ୍ଥା ଦେଇ ଧୁଡୁଙ୍ଗା ବଜାଇ ହରି ନାମ ଗାଇ ବୁଲନ୍ତି। ଏଥିର ମୌଳିକ ଅର୍ଥ ସେ ହରି ନାମରେ ବାତୁଳ।]
୨। ବାଉଳି ( ଦେଖ )—Bāuli ( See ). ୩। ବାହାଳ ( ଦେଖ )—3. Bāhāḷi ( See ). ୪। ଘରର ଶୂଳ ଛପରବନ୍ଧ କରିବା ସମୟରେ ହାଣ୍ଡିଅଳିର କାନ୍ଥରେ ବର୍ଷା ପାଣି ନ ପଡ଼ିବା ଉଦ୍ଦେଶ୍ୟରେ ଛପରର ଶେଷଭାଗରେ ବାନ୍ଧି ଦିଆଯିବା ନଡ଼ା—4 Straw put on the extremity of a gabled thatch to prevent rain water from reaching the gabled wall.

**ବାଉଳି**—ଦେ. ବି. (ସଂ. ବଲୟ)—କାନର ଉପରଭାଗରେ ପିନ୍ଧିବା Bāuli ଝୁମ୍ପାଲଗା ନୋଳି—An ear-ring with pendants উপরকানের মাকড়ী worn on the upper part of the **कनौसी** ear.

**ବାଉଳି ଚାଉଳି**—ଦେ. ବିଣ—୧। କଥା ବା ବାତୁଳତା ଜନ୍ୟ ପ୍ରଳାପ Bāuḷi chāuḷi କରୁଥିବା—1. Raving. ୨। ବ୍ୟାକୁଳ— পাগলের মত **बावलाका पसा** 2. Agitated.
(ବାଉଳା ଚାଉଳା—ଅନ୍ୟରୂପ)

**ବାଉଳି ଫାସିଆ**—ଦେ. ବି—ବାଉଳିରେ ଝୁମ୍ପା ଓହୋଳ ଥିବା କର୍ଣ୍ଣ- Bāuḷi phāsiā ଭୂଷଣବିଶେଷ—A kind of ear-ring উপরকানের মাকড়ী **कनौसी** with pendants.

**ବାଉଳି ଲକ୍ଷ୍ମୀ**—ପ୍ରାଦେ. (ଯାଜପୁର) ବି. ସ୍ତ୍ରୀ—ବୁଦ୍ଧି ସ୍ତ୍ରୀ— Bāuḷi lakshmī A thought-less or foolish woman.

**ବାଏ**—ଦେ. କ୍ରି. ବିଣ (ସ. ବାତେନ)—ବାଆ ବା ପବନଦ୍ୱାରା— Bāe By the wind.

ମଇଠାରେ ମୋ ପୁଣ୍ୟେ ଦେଶ ମୋ କଥିବ
ଶାଗୁଣାଙ୍କୁ ଉଡାଉଛନ୍ତି କରିବାଏ—କୃଷ୍ଣସିଂହ, ମହାଭାରତ ସ୍ତ୍ରୀ।

**ବାଏଁ**—ଦେ. କ୍ରି. ବିଣ (ସ. ବାମେ)—ବାମପାର୍ଶ୍ୱରେ—On the left. Bāeṅ বাঁয়ে **बाये**

**ବାଏଁ ବାଏଁ**—ଦେ. କ୍ରି. ବିଣ—୧। ପବନ ଗତିରେ—1. With Bāeṅ bāeṅ the velocity of the wind ୨। ପବନଦ୍ୱାରା (ବାଏ ବାଏ—ଅନ୍ୟରୂପ) ଚାଳିତ ହୋଇ—2. Being carried বাঁএ বাঁএ **बाए बाए** away or waved by the wind.
( ଯଥା—ଶରଟି ଲକ୍ଷ୍ୟସ୍ଥାନରେ ନ ବାଜି ବାଏଁ ବାଏଁ ଉଡ଼ିଗଲା। )
୩। କାହାରି କର୍ଣ୍ଣରେ ପ୍ରବେଶ ନ କରି; କେହି ନ ଶୁଣି— 3 Without being heard or attended to by any one.
( ଯଥା—ମୁଁ ଯାଇ ହାକିମ ଆଗରେ ଗୁହାରିକଲି; ମାତ୍ର ମୋ ଗୁହାରିଟା ବାଏଁ ବାଏଁ ଉଡ଼ିଗଲା। )
୪। (ସ. ବହିଃ) ବାହାରେ ବାହାରେ; ଭିତରେ ପ୍ରବେଶ ନ କରି—4. Without-entering inside.
୫। (ସ. ବାମ) ବରାବର ବାମ ଦିଗରେ—5. All along to the left; keeping to the left.

**ବାଏଁରା**—ପ୍ରାଦେ. ( ସିଂହଭୂମ ) ବି—ବମିମାଛ— Bāeṅrā A kind of fish.

**ବାଏଗନ୍**—ପ୍ରାଦେ. ( ସମ୍ବଲପୁର ) ବି—ବାଇଗଣ— Bāegān Brinjal.

**ବାଏଙ୍କା**—ପ୍ରାଦେ. ( ଯାଜପୁର ) ବି—ବଣଭୁଆ— Bāeṅkā Wild cat.

ବାଏଲ୍—ପ୍ରାଦେ. (ସମ୍ବଲପୁର)ବି. ( ସଂ. ବାଲୁକା, ତୁଳ. ନଏଧ୍=ନଗ୍ନ; ଗ୍ରଏଳ=ଗ୍ରଚ୍ଛ)—ବାଲି—Sand.
Bāel

ବାଏଲ୍ ସେଁକ୍—ପ୍ରାଦେ. ( ସମ୍ବଲପୁର ) କ୍ରି—ବାଲିସେକ; ବାଲିପୁଡ଼ାକୁ ଗରମ କରି ଦେହରେ ସେକିବା—Dry fomentation with heated sand.
Bāel señk

ବାଓ(ଉଁ)—ଦେ. ବି. ( ସଂ. ବ୍ୟାମ )—ବେଁ—Fathom.
Bāo(oñ)

ବାଂଶ—ସଂ. ବିଣ. ( ବଂଶ+ ଅ )— ବଂଶସମ୍ବନ୍ଧୀୟ—Pertaining to 'Bamsa'.
Bāmsa
ସଂ. ବି—ବଂଶଲୋଚନା—The manna of bamboo.

ବାଂଶରି—ପ୍ରାଦେ. ( ଗଡ଼ଜାତ ) ବି(ତୁଳ. ଦ. ବାଂସୁରୀ)—ବଂଶୀ—Flute
Bāmsari

ବାଂଶିକ—ସଂ. ବି. ପୁଂ. (ବଂଶ+ ଅର୍ଥରେ ଇକ)–ବଂଶୀବାଦକ—The blower of a flute.
Bāmsika (ବାଂଶିକା—ସ୍ତ୍ରୀ)

ବାଃ—ଦେ. ଅ. ( ସଂ. ବା=ବିସ୍ମୟ ବା ବିତର୍କସୂଚକ ଅବ୍ୟୟ )— ୧ । ( ପ୍ରଶଂସାର୍ଥକ ) ସାବାସ୍; ଧନ୍ୟ—1 Bravo ! well done ! ୨ । ଅହୋ !—2. Oh !
Bāh
ବାଃ वाहवाह; वाह
(ବାଃ ବା; ବାଃବାଃ—ଅନ୍ୟରୂପ)

ବାଁ (ଇତ୍ୟାଦି)—ଦେ. ବି ଓ ବିଣ—ବାଆଁ ଇତ୍ୟାଦି ( ଦେଖ )
Bāñ (etc) Bā-āñ etc ( See )

ବାଁଟ୍ ଧରୁ—ପ୍ରାଦେ. ( ବସ୍ତର ) ବି—ଅଂଶୀଦାର—Shareholder; co-sharer.
Bāñt dharu

ବାଁଟ୍‌ବା—ପ୍ରାଦେ. ( ବସ୍ତର ) କ୍ରି—ବାଣ୍ଟିବା—To divide; to distribute.
Bāñt-bā

ବାଁଟାଦାର୍—ପ୍ରାଦେ. ( ବସ୍ତର ) ବି—ଅଂଶୀଦାର—A shareholder.
Bāñtādār

ବାଁ ମାରିବା—ପ୍ରାଦେ. ( ଗଡ଼ଜାତ ) କ୍ରି—ନବପ୍ରସୂତା ଗାଈ ବା ମଇଁଷିକୁ ଧରିବା ବା ଫୁଙ୍କିବା—To blow wind into the belly of a milch cow.
Bāñ māribā

ବାକ୍—ସଂ. ବି. ( ବଚ୍ ଧାତୁ=କହିବା+କ୍ୱିପ୍; ବାଚ୍ ଶବ୍ଦ ୧ମା. ୧ବ. ଯାହା କୁହାଯାଏ )—୧ । ବାକ୍ୟ; ଶବ୍ଦ; ଉକ୍ତି; କଥା; ଉଚ୍ଚାରିତ ବିଷୟ—1. Speech; utterance; word; sentence. ୨ । ବିଦ୍ୟା—2. Learning. ୩ । ସରସ୍ୱତୀ—3.The Goddess of learning. ୪ । (+ କରଣ କ୍ୱିପ୍ ) ବାଗିନ୍ଦ୍ରିୟ; ପାଟି—4. The organ of speech.
Bāk

[ ଦ୍ର—ଏହି ଶବ୍ଦ ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ପ୍ରଗଲ୍ଭବାକ୍, ଅନୃତବାକ୍, ପ୍ରିୟବାକ୍ ଇତ୍ୟାଦି । ]

ବାକ୍‌ଚାତୁରୀ—ସଂ. ବି. ( ୭ମୀ ତତ୍ )—୧ । କଥାରେ ଚାତୁରୀ ଦେଖାଇବା; ବାହାଦୁରୀ—1. Bravado; bragging. ୨ । କଥା କହିବାରେ ବାକ୍‌ପଟୁତା—2. Cleverness of speech
Bāk-chāturī
(ବାକ୍‌ଚାତୁର୍ଯ୍ୟ—ଅନ୍ୟରୂପ)
ବାକ୍‌ଚତୁର(ପୁଂ) } ବିଣ
ବାକ୍‌ଚତୁରା(ସ୍ତ୍ରୀ)

ଦେ. ବି—ବକ୍ରୋକ୍ତି; ଦୁଇ ଅର୍ଥ ପ୍ରକାଶ କରୁଥିବା କଥା—An equivoque.

ବାକ୍‌ଚାତୁରୀ କେମନ୍ତ ରହିଲା
କ୍ଷେତ୍ରରେ ସମର୍ପିବା ହୋଇଲା—ଭକ୍ତ. ବୈଦେହୀଶବିଳାସ ।

ବାକ୍‌ଚାପଲ୍ୟ—ସଂ. ବି. ( ୭ମୀ ତତ୍ )—୧ । କଥା କହିବା ବିଷୟରେ ଚଞ୍ଚଳତା ପ୍ରକାଶ—1. Hasty speech. ୨ । ବୃଥାଗପ—2. Chatter; gossip.
Bāk-chāpalya
ବାକ୍‌ଚପଳ(ପୁଂ) } ବିଣ
ବାକ୍‌ଚପଳା(ସ୍ତ୍ରୀ)

ବାକ୍‌ଛଳ—ସଂ. ବି. ( ୭ମୀ ତତ୍ )—କଥାଦ୍ୱାରା ପ୍ରତାରଣା—Dodge; evasive expression; quibble; equivocation.
Bāk-chhala

ବାକ୍‌ପଟୁ—ସଂ. ବିଣ. (୭ମୀ ତତ୍; ବାକ୍+ପଟୁ)—୧ । କଥା କହିବାରେ ପଟୁ ବା ଚତୁର—1. Skilled in language; clever in expression. ୨ । ବାଗ୍ମୀ—2 Eloquent.
Bāk-patu
[ବାକ୍‌ପଟୁତା (ଭା)—ବି]

ବାକ୍‌ପତି—ସଂ. ବିଣ. (୬ଷ୍ଠୀ ତତ୍) ବାଗ୍ମୀ—Eloquent.
Bāk-pati
ସଂ. ବି.—୧ । ବୃହସ୍ପତି—1. Bruhaspati. ୨ । ବିଷ୍ଣୁ (ହି. ଶ.)—2. Bishnu. ୩ । ନିର୍ଦ୍ଦୋଷ ବାକ୍ୟ (ହି. ଶ.)—3. Faultless speech.

ବାକ୍ ପାରୁଷ୍ୟ—ସଂ. ବି. (୬ଷ୍ଠୀ ତତ୍; ବାକ୍+ପାରୁଷ୍ୟ)—୧ । କଥାରେ କର୍କଶତା; ରୁକ୍ଷବଚନ ପ୍ରୟୋଗଶୀଳତା—1. Roughness in speech. ୨ । କଠୋର ବା ନିଷ୍ଠୁର ବଚନ—2. Scurrility. ୩ । ଅପବାଦ—3. Defamation.
Bāk-pārushya
[ବାକ୍‌ପରୁଷ(ଷା)—ବିଣ]

ବାକ୍‌ବାକୁମ୍ କୁମ୍—ଦେ. ଅ. (ଧ୍ୱନ୍ୟନୁକରଣ)—ପାରା ଘୁମୁରିବାର ଶବ୍ଦ—The sound made by pigeons; cooing of pegeons.
Bāk-bākum kum
बाक बाकुम् कुम्; बकबक टुकुम गटरगूं, घुटघु

ବାକ୍‌ବିତଣ୍ଡା—ଦେ. ବି. (ସଂ. ବାଚ୍‌ବିତଣ୍ଡା)—୧ । ବାଗ୍‌ଯୁଦ୍ଧ—1. Wordy fight. ୨ । ଅନୁପଯୁକ୍ତ ଯୁକ୍ତି—3. Improper argument.
Bāk-bitandā

ବାକ୍‌ଶକ୍ତି—ସଂ. ବି. (୬ଷ୍ଠୀ ତତ୍; ବାକ୍+ଶକ୍ତି)— କଥା କହିବାର କ୍ଷମତା—Power of speech.
Bāk-sakti

ବାକ୍‌ସଂଯମ—ସଂ. ବି. ( ୬ଷ୍ଠୀ ବା ୭ମୀ ତତ୍ )—ବୃଥାରେ ନ ଗପିବା; ଅଳ୍ପବାକ୍ୟ କହିବା; ଅପ୍ରୟୋଜନୀୟ ବାକ୍ୟ ନ କହିବା—Moderation in speech
Bāk-samjama
[ବାକ୍‌ସଂଯତ(ତା)—ବିଣ]

ବାକ୍‌ସିଦ୍ଧି—ସଂ ବି. ( ୬ଷ୍ଠୀ ତତ୍ )—କଥିତ ବାକ୍ୟ କାର୍ଯ୍ୟରେ ଘଟିବା ରୂପ ଅଲୌକିକ ସାଧନରେ ସଫଳତା—Success in bringing about the fruition of one's words.
Bāk-siddhi
[ବାକ୍‌ସିଦ୍ଧ(ଦ୍ଧା)—ବିଣ]

ବାକ୍‌ସୂତ୍ର—ସଂ. ବି (୬ଷ୍ଠୀ ତତ୍; ବାକ୍+ସୂତ୍ର)—୧ । କଥାର ସୂତ୍ରପାତ; ବାକ୍ୟାରମ୍ଭ—1. Beginning of speech.
Bāk-sūtra

୨ । ସ୍ୱରୋତ୍ପାଦକ ଚର୍ମସୂତ୍ର ବା ତନ୍ତୁ—2. Gut-string capable of producing sound when struck.

**ବାକ**—ସଂ. ବି. (ବଚ୍ ଧାତୁ+କର୍ମ. ଅ)—ବାକ୍ୟ; କଥା; ଉକ୍ତି—
Bāka Word; speech.

ବୋଲୁଁ କୋପେ ଚକ୍ରବାକ, ବୋଇଲ ଏମନ୍ତ ବାକ ।
ଉଞ୍ଜ. ବୈଦେହୀଶବିଳାସ ।

**ବାକ କଲ୍ୟାଣୀ**—ଦେ. ବି. ( ସଂ. ବାକ୍+କଲ୍ୟାଣ; ଯେ ବାକ୍ୟରେ
Bāka kalyāṇī କଲ୍ୟାଣ କରନ୍ତି )—ବ୍ରାହ୍ମଣ —
Brāhmaṇa.

ବାକକଲ୍ୟାଣୀଏ ଶୁଣି ଦଶରଥେ କହୁ—ଉଞ୍ଜ. ବୈଦେହୀଶବିଳାସ ।

**ବାକ ଟ(ଟା)କୁଳିଆ**—ଦେ ବିଣ—ଜାତିଭ୍ରଷ୍ଟ—
Bāka ta(ṭā)kuḻiā Excommunicated.
अजात ଦେ ବି—ଶୂଦ୍ର ଜାତିବିଶେଷ—A sect of śūdras.

**ବାକସ**—ବୈଦେ. ବି. ( ଇଂ ବକ୍ସ )—୧ । କାଠର ତାଲା ବିଶିଷ୍ଟ
Bākasa କ୍ଷୁଦ୍ର ଚତୁଷ୍କୋଣ ଆଧାର; ଛୋଟ ସିନ୍ଦୁକ—1. Box.
बाकस, बास्क ୨ । ଉଦ୍ୟାନରେ ରୋପିତ ବହୁଚିତ୍ରିତ ପତ୍ରଶାଳୀ
बक्कस ବିଦେଶାଗତ ଗୁଳ୍ମ; କ୍ରୋଟନ୍—2. Croton plant.
୩ । ଏକ ଜାତୀୟ ଦୃଢ଼କାଷ୍ଠ ଇଉରୋପୀୟ ବୃକ୍ଷ—
पाता बाहार 3. Box wood.
୪ । ହାତ ବାକସ—4. Hand box.

**ବାକସ ଗଛ**—ଦେ. ବି—ଉଦ୍ୟାନରେ ରୋପିତ ବହୁଚିତ୍ରିତପତ୍ର-
Bākasa gachha ବିଶିଷ୍ଟ ନାନା ବର୍ଣ୍ଣର ଗୁଳ୍ମ—
पाता बाहार Croton plant.

**ବାକି**—ବୈଦେ. ବିଣ. (ଅ)—୧ । ଅବଶିଷ୍ଟ—1 Remaining.
Bāki ୨ । ଉଦ୍‌ବୃତ୍ତ; ଯାହା ବଳି ପଡ଼ି ଥାଏ—2. In excess;
बाकी **बाकी** in balance. ୩ । ବକେୟା—3. In arrears, outstanding.
( ଯଥା—ହାଲ ବାକି; ଜାୟ ବାକି । )
୪ । ଅସୁଲ ବାଦ ଅବଶିଷ୍ଟ ପ୍ରଦେୟ—4. Payable after deducting previous payments.
( ଯଥା—ୱାସିଲ୍ ବାକି । )
୫ । ଅବଶିଷ୍ଟ ପ୍ରାପ୍ୟ—5. Due as remainder.
ବି—୧ । ଅବଶିଷ୍ଟାଂଶ; ଅବଶେଷ—1. Remainder, remnant. ୨ । ବକେୟା ଦେୟ ବା ପ୍ରାପ୍ୟ—2. Arrears; outstanding amount.
୩ । ଅବଶିଷ୍ଟ ଦେୟ ଧନ—3. Amount payable as remainder ୪ । ଅବଶିଷ୍ଟ ପ୍ରାପ୍ୟ ଧନ—4. Amount due as remainder. ୫ । ବିୟୋଗ ଫଳ—5. Remainder after subtraction; residue. ୬ । ଉଦ୍‌ବୃତ୍ତ ଧନ ବା ପଦାର୍ଥ; ଯାହା ବଳି ପଡ଼େ—6. Balance.
( ଯଥା—ତହବିଲ ବାକି । )
ବୈଦେ. ଅ—୧ । କିନ୍ତୁ—1. But. ୨ । ଏବଂ—2. And. ୩ । ମଧ୍ୟ—3. Also. ୪ । ଅଧିକନ୍ତୁ—Moreover.

**ବାକିଆ**—ଦେ. ବିଣ. ( ଅ. ବାକି )—୧ । ବକେୟା; ପୂର୍ବ ସନର ବାକି
Bākiā ଥିବା ଦେୟ—1. Arrears accruing in pre-
बाकी **बाकी** vious years. ୨ । ଅବଶିଷ୍ଟ; ବାକି—2. Remaining due.
ଦେ. ବି—୧ । ବାକିଥିବା ଧନ; ଅବଶିଷ୍ଟ ଧନ—1. Balance. ୨ । ବାକିଥିବା ଖଜଣା ବା ଅନ୍ୟ କୌଣସି ଦେୟ—2. Arrears.

**ବାକି କରିବା**—ଦେ କ୍ରି—ଦେୟ ଧନ ସମ୍ପୂର୍ଣ୍ଣ ରୂପେ ପରିଶୋଧ ନ
Bāki karibā କରିବା ଯୋଗୁଁ ଆପଣା ଉପରେ ବାକି ରହିବାକୁ
बाकी राखा ଦେବା—To allow arrears to accrue on
**बाकी रखना** one's self.

**ବାକି କାଟିବା**—ଦେ. କ୍ରି—୧ । ଦେୟ ଧନର ପରିମାଣରୁ ଦତ୍ତ ଧନର
Bāki kāṭibā ପରିମାଣ ବାଦ ଦେଇ ବାକି ଦେୟ ଧନର ହିସାବ
ବାକି ଗଡ଼ା(ଡ଼େ)ଇବା } ଅନ୍ୟରୂପ ଲେଖିବା—1. To show
ବାକି ଦେଖା(ଖେ)ଇବା } arrears after deduct-
बाकि काटा ing the amount paid. ୨ । ହିସାବ ନିକାଶ
**बाकि काटना** କରିବା—2 To finally strike the accounts of arrears. ୩ । ଦୁଇ ରାଶିର ବିୟୋଗଫଳ ସ୍ଥିର କରିବା—3. To cast off the balance. ୪ । ଆୟରୁ ବ୍ୟୟ ବାଦ୍ ଦେଇ ଉଦ୍‌ବୃତ୍ତ ଧନର ହିସାବ ଲେଖିବା—4. To show the balance of income over expenditure.

**ବାକି ଖ(ଖା)ଜ(ଞ୍ଜା)ଣା**—ବୈଦେ. ବି. (ଅ. ବାକୀ+ଫା. ଖଜାନା)—
Bāki kha(khā)ja(ñja)ṇā ପ୍ରଜାର ଦେୟ ଯେଉଁ କର ଚଳିତ
बाकी खाजना ବର୍ଷରେ ଦିଆ ନ ଯାଇ ପ୍ରଜା ଉପରେ ଜମିଦାରଙ୍କର
**बाकी खजाना** ପାଉଣା ଥାଏ—Arrear rent.

**ବାକି ଖାତା**—ବୈଦେ. ବି. ( ଅ. ବାକୀ+ଫା. ଖାତା )—
Bāki khātā ଯେଉଁ ଖାତା ବା ହିସାବ ବହିରେ ବାକିଦାର-
बाकि थाता ମାନଙ୍କଠାରୁ ପ୍ରାପ୍ୟ ଧନର ହିସାବ ଲେଖା ଥାଏ—
**बाकि खाता** Account books showing arrears.

**ବାକି ଗଡ଼ିବା**—ଦେ. ବି—ହିସାବ ଖାତାରେ କୌଣସି ବ୍ୟକ୍ତିର ନାମରେ
Bāki gaṛibā ଥିବା ବାକି ଧନ ଧାରାବାହିକ ରୂପେ ଦେଖାଯିବା-
**बाकि होना** The showing of arrears or balance
(ବାକି ପଡ଼ିବା, ବାକି ଉଠିବା—ଅନ୍ୟରୂପ) in the account book.

**ବାକି(କୁ)ଟି**—ପ୍ରାଦେ. ( ଗଞ୍ଜାମ ) ବି. ପୁଂ. ( ତୁଲ. ବଂ. ବାଗ୍ଦୀ )—
Bāki(ku)ṭi ମାଛ ଧରିବା ନୀଚ ଜାତିବିଶେଷ; ବାଗୁଡ଼ି—A low
(ବାକି [କୁ]ଟିଆଣୀ—ସ୍ତ୍ରୀ) caste of fishermen.

**ବାକି(କୁ)ଟିଆଣୀ**—ପ୍ରାଦେ.(ଗଞ୍ଜାମ) ବି.ସ୍ତ୍ରୀ—୧ । ବାକିଟିଜାତୀୟା ସ୍ତ୍ରୀ—
Bāki(ku)ṭiāṇī 1. A female of the Bākiti caste.
୨ । ବାକୁଟିଆଣୀ (ଦେଖ)—2. Bākuṭiāṇī (See)

**ବାକି ତାଲିକା**—ଦେ. ବି. ( ଅ. ବାକୀ+ଫା. ତାଲିକା )—
Bāki tālikā ବାକିଦାରମାନଙ୍କ ନାମ ଓ ଦେୟ ବାକିର ପରିମାଣ
बाकी तालिका ଯେଉଁ ତାଲିକାରେ ଲେଖାଯାଏ—Arrears list.
**बाकी तालिका**

ବାକଦାର୍—ବୈଦେ.ବି. ( ଅ. ବାକୀ+ଫା. ପ୍ରତ୍ୟୟ ଦାର୍ )—
Bākidār ଯେଉଁ ବ୍ୟକ୍ତିଠାରେ ଅନ୍ୟର ପ୍ରାପ୍ୟ ବାକି ରହିଥାଏ—
बाकीदार **बाकीदार** Defaulter.
ବିଣ—ଅନ୍ୟର ପ୍ରାପ୍ୟ ଯାହାଠାରେ ପାଉଣା ଥାଏ—
In arrears; defaulting.

ବାକି ବୁକର—ଦେ. ବି. ( ଧ୍ୱନ୍ୟନୁକରଣ ଅନର୍ଥକ ସହଚର )—
Bāki bukara ବାକିଥିବା ପ୍ରାପ୍ୟ—Arrears.
বাকি বুকর, বাকী সাকী **बाकी उकी**
(ବାକି ସାକି—ଅନ୍ୟରୂପ)

ବାକି ରଖିବା—ଦେ. କ୍ରି—୧ । ଆପଣାର ଦେୟ ନ ଦେବା—
Bāki rakhibā 1. To make default; to be in
[ବାକି ପକା(କେ)ଇବା—ଅନ୍ୟରୂପ] arrears. ୨ । କୌଣସି
বাকি থাকা କାର୍ଯ୍ୟକୁ ଅକୃତ ବା ଅବଶିଷ୍ଟ ରଖିବା—2 To leave
**बाकि रखना** any part of a work undone. ୩ । ବ୍ୟୟ
ପରେ ଧନ ବଳାଇ କରି ରଖିବା—3. To leave any
balance unspent.
( ଯଥା—ମୁଁ ତତେ ଖର୍ଚ୍ଚ ଟଙ୍କା ଦେଲି; ତୁ ସେଥିରୁ
କେତେ ହେଲେ ବାକି ରଖିଲୁ ନାହିଁ । )

ବାକି ରହିବା—ଦେ. କ୍ରି.—୧ । ଉଦ୍‌ବୃତ୍ତ ରହିବା—
Bāki rahibā 1. To be in balance.
(ବାକି ହେବା—ଅନ୍ୟରୂପ) ୨ । ଅବଶିଷ୍ଟ ରହିବା—
বাকি থাকা **बाकि रहना** 2 To be left as remainder.
୩ । ଦେୟ ଧନ ଆଦାୟ ନ ହେବା—3. To be due as
arrears. ୪ । ବଳି ପଡ଼ିବା—4. To be in
excess.

ବାକୁ(ଗୁ)ଚି—ଦେ.ବି.—(ସଂ ବାଗୁଚୀ)—ବର୍ଷାୟୁଃ ଶାକବିଶେଷର ବୀଜ—
Bāku(gu)chi Psorallea Corylifolia; Serratula
বাকুচি, হাকুচি **बकची, बाबची** Anthelmintica.
ସ. ପର୍ଯ୍ୟାୟ—ସୁଗନ୍ଧ, କଣ୍ଟକ, [ଦ୍ର—ଏ ଗୁଳ୍ମ ପ୍ରାୟ ୨ ହାତ ଉଚ୍ଚ
ଅବଲ୍‌ଗୁଜ, ସୋମରାଜୀ, ହୁଏ । ଏହାର ପତ୍ରରେ ୧ ବା ୩
ଶଶିଲେଖା, ବାଗୁଚି, ପତ୍ର ଥାଏ; ଫୁଲ ଈଷତ୍ ରକ୍ତ ନୀଳ ।
ସୁପର୍ଣ୍ଣିକା, କୃଷ୍ଣ ଫଳା, ଏହା ଶୀତ କାଳରେ ଫୁଟେ । ଏହାର
ସୋମା, ପୂତିଫଳା(ଳୀ) ଛୁଇଁରେ ଗୋଟିଏ ଅଣ୍ଡାକାର ମଞ୍ଜି
କାଳମେଷୀ, କୁଷ୍ଠଘ୍ନୀ, ଥାଏ । ଏ ମଞ୍ଜି ସୁଗନ୍ଧ ଓ ତିକ୍ତ ।
ସୁବଲ୍ଲୀ, ସୋମବଲ୍ଲୀକା ଏହା ପିତ୍ତବର୍ଦ୍ଧକ, କଟୁରସ ଏବଂ
କେଶର ଓ ଚର୍ମର ଉପକାରକ । ଏ ଗଛର ନାମ ସୋମରାଜୀ ଓ
ଏହା ଶ୍ଳେଷ୍ମା, ରକ୍ତପିତ୍ତ, ଶ୍ୱାସ, କୁଷ୍ଠ, ମେହ, ଜ୍ୱର, କୃମି ଓ ପାଣ୍ଡୁ
ରୋଗନାଶକ । ଏହି ବୀଜ ଧବଳ ରୋଗର ମହୌଷଧ ।]

ବାକୁଟିଆଣୀ—ପ୍ରାଦେ. (ଗଡ଼ଜାତ) ବି.—ରାଜାଙ୍କର ପାଟରାଣୀ ବା ପ୍ରଧାନ
Bākuṭiāṇī ରାଣୀଙ୍କ ଛଡ଼ା ଅନ୍ୟ ବା ସାଧାରଣ ରାଣୀ—
(ବାକୁଟିରାଣୀ—ଅନ୍ୟରୂପ) Ordinary or junior Ranee
of a Raja.

ଏତେ କହିଲ କନିଷ୍ଠ ରାଣୀ,
ପୁଣି କାହିଁକି ବାକୁଟିଆଣୀ । ଭକ୍ତଚରଣ- ମଥୁରାମଙ୍ଗଳ ।

ବାକୁଲି—ଦେ. ବି. ( ସ. ଯୁଗକୀଳକ )—୧ । ଶଗଡ଼ର ଯୁଆଳର ଦୁଇ
Bākuli ମୁଣ୍ଡରେ ଥିବା କଣାରେ ଗଳାଯିବା କାଠି (ଯହିଁରେ
**सैल, सैलां, कनैल** ଯୋଚା ହେବା ବଳଦଙ୍କ ପଘାକୁ ଅଟକାଇ
ରଖା ଯାଏ); ଯୁଗାଗ୍ରକୀଳକ; ଯୁଗକୀଳକ—The pin or
peg fixed on each end of the yoke of
a cart to which the neck-rope of the
bullock yoked to the cart is tied.
খীল ୨ । ଗୋଡ଼ ହାତ ବନ୍ଧିବା ରୋଗବିଶେଷ—Cramp (of
**मरोड़; वघा टटैनि** hands and legs).
ପ୍ରାଦେ.—(ବାଲେଶ୍ୱର, ମେଦିନୀପୁର) ବି. (ତୁଳ. ବଂ. ବାକୁଲି)
ପ୍ରାଚୀର ବା ଗୃହବେଷ୍ଟିତ ଚତ୍ୱର; ଅଗଣା—
Courtyard.

ବାକୁଲି ଉଠିବା—ଦେ. ବି.—ଗୋଡ଼ ହାତ ବନ୍ଧିବା—
Bākuli uṭhibā Being seized with cramp.
পায়েখীলধরা **मडोड**

ବାକୁ(ଙ୍କୁ)ସ—ବୈଦେ. ବି.—(ଇଂ. ବକ୍‌ସ୍)—କାଠର ଢାଙ୍କୁଣିବିଶିଷ୍ଟ
Bāku(ṅku)sa ଆଧାର—Box.

ବାକେଶ୍ୱରୀ—ଦେ. ବି.—(ସ. ବାକ=ବଚନ+ଈଶ୍ୱରୀ)—ଗ୍ରାମଦେବୀ
Bākeśwarī ବିଶେଷ—Name of a popular Goddess.

ବାକୋବାକ(କ୍ୟ)—ସ. ବି.—୧ । କଥୋପକଥନ (ହି. ଶ.)—
Bākobāka (kya) 2. Conversation.
୨ । ତର୍କବିତର୍କ (ହି. ଶ.)—2. Argument;
wrangling

ବାକ୍କୀର—ସ. ବି. ପୁଂ—ଶଳା—
Bākkīra Wife's brother (Apte)

ବାକ୍ୟ—ସ. ବି.—(ବଚ୍ ଧାତୁ+କର୍ମ. ଯ)—୧ । ଉଚ୍ଚାର୍ଯ୍ୟମାଣ ପଦ;
Bākya ବଚନ; କଥା—1. Speech; expression.
୨ । ଅର୍ଥବୋଧକ ଶବ୍ଦସମଷ୍ଟି—2. A significant
sentence or group of words.
୩ । ଅର୍ଥବୋଧକ ଶବ୍ଦ—3. A word. ୪ । ଶାସ୍ତ୍ରୀୟ
ବଚନ—4. A sentence or quotation from
scriptures. ୫ । ପ୍ରତିଜ୍ଞା—5. Promise.
[ଦ୍ର—ଅଳଂକାର ଶାସ୍ତ୍ରର ନିୟମାନୁସାରେ ଯୋଗ୍ୟତା ଆକାଙ୍କ୍ଷା
ଓ ଆସତ୍ତିଯୁକ୍ତ ପଦ ସମୂହକୁ ବାକ୍ୟ ବୋଲାଯାଏ । ଏହା ତ୍ରିବିଧ—
୧. ବିଭକ୍ତ୍ୟନ୍ତ ପଦ ସମୂହ, ୨. କ୍ରିୟା ପଦ ସମୂହ ଓ ୩. କାରକଯୁକ୍ତ
କ୍ରିୟା ପଦ । କ୍ରମଶଃ ଉଦାହରଣ ଯଥା—୧—ଏହା ମହାତ୍ମାମାନଙ୍କର
ପ୍ରକୃତିସିଦ୍ଧ; ୨—ଖାଉଛି, ଦେଉଛି ଓ ନାଚୁଛି; ୩—ଦେବଦତ୍ତ
ଗ୍ରାମକୁ ଯାଉଅଛି । ନ୍ୟାୟଶାସ୍ତ୍ର ମତରେ ଯେଉଁ ପଦସମଷ୍ଟି ଦ୍ୱାରା
ଶ୍ରୋତା ବକ୍ତାର ଅଭିପ୍ରାୟ ବୁଝି ପାରେ ତାହା ବାକ୍ୟ ଅଟେ ।
ବାକ୍ୟରେ ୩ଟି ଉପାଦାନ ରହିବା ଆବଶ୍ୟକ ଯଥା—ଆକାଙ୍କ୍ଷା
(ତାତ୍ପର୍ଯ୍ୟ), ଯୋଗ୍ୟତା (ଅର୍ଥର ସଙ୍ଗତି ବା ସମ୍ଭବତା) ଓ ଆସତ୍ତି
ପଦମାନଙ୍କର ଦେଶକାଳାନୁସାରେ ପରସ୍ପର ସମ୍ବନ୍ଧ—ହି. ଶ.]
ଦେ. ବି—ଧର୍ମକର୍ମାଦିର ସଂକଳ୍ପ କରିବା ସମୟରେ ବୋଲାଯିବା

ସଙ୍କଳ୍ପବଚନ—Appropriate formula or resolution uttered at the beginning of vedic rituals.

ବାକ୍ୟକର—ସ. ବି. ପୁଂ (ବାକ୍ୟ+କୃ ଧାତୁ+କର୍ତ୍ତୃ. ଅ)—୧ । ଦୂତ; Bākya kara ଯେ ଜଣକଠାରୁ ଅନ୍ୟ ଜଣକଠାକୁ ମୁହଁରେ ଖବର ନିଏ (ହି. ଶ)—2. Verbal messenger. ୨ । ବାକ୍ୟ ରଚନା କରିବା ବ୍ୟକ୍ତି—2. A person who constructs a sentence.

ବାକ୍ୟ କରିବା—ଦେ. କ୍ରି-୧ । ଦୃଢ଼ ଜବାବ ଦେବା; ପ୍ରତିଶ୍ରୁତ ହେବା—Bākya kariba 1. To promise. ୨ । ଚୁକ୍ତି କରିବା—କଥାଦେଓଯା 2. To enter into a contract. ୩ । ନିତ୍ୟ- बातकरदेना; बचनदेना ନୈମିତ୍ତିକ ବୈଦିକ କ୍ରିୟାଦିମ୍ ପୂର୍ବରୁ सङ्कल्पकरना ଶାସ୍ତ୍ରବିହିତ ପଦ୍ଧତି ଅନୁସାରେ ସଙ୍କଳ୍ପ-ବାକ୍ୟ ବୋଲିବା— वाकरकरना 3. To recite appropriate formula at a ritual.

ବାକ୍ୟଦାନ—ସ. ବି—( ୬ଷ୍ଠୀ ତତ୍; ବାକ୍ୟ+ଦାନ )—ଅଙ୍ଗୀକାର; Bākyadāna ପ୍ରତିଶ୍ରୁତି—Promise; making a promise.

ବାକ୍ୟ ବାଗୀଶ—ଦେ. ବିଣ—ଯେ କେବଳ ଗୁଡ଼ାଏ କଥା କହିପାରେ Bākya bāgisa (କାର୍ଯ୍ୟତଃ କିଛି କରେ ନାହିଁ)— वाक्यवागीश बक्की Braggart.

ବାକ୍ୟବାଣ--ସ. ବି—(ରୂପକ) ବାଣପରି କଠୋର ବାକ୍ୟ—Bākyabāṇa Cruel words (compared to shafts).

ବାକ୍ୟ ବିନିମୟ—ସ. ବି—( ୬ଷ୍ଠୀ ତତ୍; ବାକ୍ୟ+ବିନିମୟ )—Bākya binimaya କଥୋପକଥନ—Exchange of words; conversation.

ବାକ୍ୟବିନ୍ୟାସ—ସ. ବି—( ୬ଷ୍ଠୀ ତତ୍; ବାକ୍ୟ+ବିନ୍ୟାସ )—Bākyabinyāsa ୧ । ରଚନାରେ ଉପଯୁକ୍ତ ବାକ୍ୟମାନଙ୍କର ଯଥାସ୍ଥାନରେ ସନ୍ନିବେଶ—1. Arrangement of proper sentences or words in a composition. ୨ । ବାକ୍ୟମଧ୍ୟରେ ଯଥା ସ୍ଥାନରେ ଉପଯୁକ୍ତ ପଦମାନଙ୍କର ବିନ୍ୟାସ--2. Arrangement of proper words in a sentence.

ବାକ୍ୟ ବିଶାରଦ—ସ. ବିଣ ପୁଂ—(୭ମୀ ତତ୍; ବାକ୍ୟ+ବିଶାରଦ)—Bākya bisārada ୧ । ବାକ୍‌ପଟୁ—1. Skilled in (ବାକ୍ୟ ପଟୁ——ଅନ୍ୟରୂପ) speech. ୨ । ବାଗ୍ମୀ—(ବାକ୍ୟ ବିଶାରଦା – ସ୍ତ୍ରୀ) 2 Eloquent.

ବାକ୍ୟବ୍ୟୟ—ସ. ବି—(୬ଷ୍ଠୀ ତତ୍; ବାକ୍ୟ+ବ୍ୟୟ)-କଥା କହିବା—Bākya byaya Use of words in speaking.

ବାକ୍ୟବ୍ୟୟକରିବା—ଦେ. କ୍ରି—କଥା କହିବା—Bākya byaya kariba To speak; to talk. बाक्यव्यय करना वाकव्यय करना

ବାକ୍ୟାଡ଼ମ୍ବର—ସ. ବି—( ୬ଷ୍ଠୀ ତତ୍; ବାକ୍ୟ+ଆଡ଼ମ୍ବର )—Bākyārdambara ବାଗ୍‌ଜାଲ; ବାଗାଡ଼ମ୍ବର—Bombastic expression; grandiloquent speech; pompous style.

ବାକ୍ୟାଲାପ—ସ. ବି—( ୬ଷ୍ଠୀ ତତ୍; ବାକ୍ୟ+ଆଲାପ )—Bākyālāpa ୧ । କଥାବାର୍ତ୍ତା; କଥୋପକଥନ—1. Conversation. ୨ । ସଦ୍ଭାବଜନକ କଥାଭାଷା--2. Friendly talk. ୩ । କଥାକହିବାଦ୍ୱାରା କୌଣସି ବ୍ୟକ୍ତି ସଙ୍ଗେ ବନ୍ଧୁତା—3. Speaking terms. ୪ । କଥା କହିବା; ଶବ୍ଦ ଫିଟାଇବା—4. Speaking; talking.

ବାକ୍ସ—ବୈଦେ. ବି—(ଇଂ. ବକ୍ସ)—କାଠପଟା ବା କାଗଜ ପଟାରେ Bāksa ନିର୍ମିତ ଯୋଡ଼ଣୀ ବା ଢାଙ୍କୁଥିବା ସାନ ପେଡ଼ି; ପେଟୀ— बाक्स बकस Box.

ବାକ୍ସ ଗଛ—ଦେ. ବି—୧ । (ଇଂ.ନାମ—କ୍ରୋଟନ୍; ବୋଧ ହୁଏ ପୂର୍ବେ Bāksa gachha ଏ ଗଛମାନ କାଠର ବାକ୍ସରେ ମାଟି ଦେଇ କ୍ରୋଟନ ଉଠିରେ ଲଗାଯାଉ ଥିବାରୁ ଏ ନାମ)—ନାନାବର୍ଣ୍ଣ ରଞ୍ଜିତ- करोटन ପତ୍ରବିଶିଷ୍ଟ ବିଦେଶୀ ଗୁଳ୍ମ ବିଶେଷ—Croton.

[ ଦ୍ର—ବଗିଚାର ଶୋଭାବର୍ଦ୍ଧନାର୍ଥ ଏହା ରୋପିତ ହୁଏ । ଏହାର ଡାଳ ପୋତିଲେ ଗଛ ହୁଏ । ଏହା ପତ୍ରର ବର୍ଣ୍ଣ ଭେଦରେ ଓ ଆକାର ଭେଦରେ ନାନାଜାତୀୟ ଅଟେ । ଏ ଦେଶରେ ଏ ଗଛମାନଙ୍କର କଡ଼ି ଭଲ ଫୁଲ ଧରେ; କିନ୍ତୁ ଫଳ ହୁଏ ନାହିଁ । ଅଧିକାଂଶ ବୃକ୍ଷ ମାଲକ୍କାଦ୍ୱୀପରୁ ଆନୀତ (ଯୋଗେଶଚନ୍ଦ୍ର) । ]

୨ । (ଇଂ. ବକ୍ସ୍) ଏକପ୍ରକାର ଦୃଢ଼କାଷ୍ଠ ଇଉରୋପୀୟ ବୃକ୍ଷ—2. The box tree.

[ ଦ୍ର—ଏଥିର କାଠ ଖୁବ୍ ଦୃଢ଼ ଓ ଭଲ ପାଲିସ୍ ହୋଇପାରେ; ଏଥିପାଇଁ ଇଉରୋପରେ ଗୃହର ସଙ୍କୋପକରଣମାନ ଏ କାଠରେ ତିଆର ହୁଏ । ]

ବାଖଇ ପାଇଲ—ପ୍ରାଦେ. (ଗଡ଼ଜାତ) ବି—(ଗାଳ)—ଦୁଷ୍ଟ ପୁରୁଷ—Bākhai pāila Wicked person.

ବାଖର—ଦେ. ବି—(ସ. ବଲ୍କଲ; ଏହା ଗଛର ବଲ୍କଲ ସଙ୍ଗେ ଥାଏ Bākhara ବୋଲି)—୧ । ଉଦ୍ଭିଜ୍ଜାତ ସଢ଼ା ପଦାର୍ଥ ବିଶେଷ; बाखर ଚଣ୍ଡୁ—1. A herb which is made to turn into खमीर, बाखर fungus and added to boiled rice to ferment it for preparing spirituous liquor; a kind of yeast; ferment.

[ଦ୍ର—ଏହା ଏକଜାତୀୟ ବନ୍ୟଗୁଳ୍ମ; ଏହାକୁ କାଟି ଏହାର ବକଳ ଓ ଚେରକୁ ଛେଚି ତନ୍ଦୁଳ ଗୋଲି ବାନ୍ଧି ବାଖରରୂପେ ବଜାରରେ ବିକ୍ରି କରାଯାଏ । ]

୨ । ଘୋଡ଼ା ପିଠିରେ ପକାଇବା ଆସ୍ତରଣ ବା ପଲ୍ଲାଣ—2. A convering or cloth-saddle put on the back of a horse.

ସଂପାଇବ ତା ଦେଖି ଅଣାଇଣ ଘୋଡ଼ା
ତା ପୃଷ୍ଠେ ବାଖର ପକାଇ କଲେ ଛଡ଼ା—
କୃଷ୍ଣସିଂ ହ. ମହାଭାରତ. ଉଦ୍‌ଯୋଗ ।

ବାଖୁଣୀ—ପ୍ରାଦେ. (ସିଂହଭୂମ)—ବି—କାହାଣୀ; ଗଳ୍ପ—
Bākhuṇi Story; folktale.

ବାଖୁଲି—ପ୍ରାଦେ (ଯାଜପୁର) ବି—ବାକୁଲି (ଦେଖ)
Bākhuli Bākuli (See).

ବାଗ୍—ବୈଦେ. ବି—୧ । (ଆ. ବାଗ୍=ବଗିଚ୍; ତୁଲ. ସଂ. ବାଟିକା)—
Bāg ବଗିଚ୍; ଉଦ୍ୟାନ—1. Garden. ୨ । ପୁଷ୍ପୋଦ୍ୟାନ—
ବାଗ **বাগ** 2 Flower garden. ୩ । (ଇଂ) ଥଳୀ; ମୁଣୀ—
ବ୍ୟାଗ; ବେଗ **বেগ** 3. Bag.

ବାଗ୍‌ଜାଲ—ସଂ. ବି. ( ରୂପକ କର୍ମଧାରୟ; ବାକ୍+ଜାଲ )—୧ ।
Bāgjāla ବାଗାଡ଼ମ୍ବର; ବାକ୍ୟର ଆଡ଼ମ୍ବର—1. Bragging;
(ବାଗ୍‌ଡମ୍ବର—ଅନ୍ୟରୂପ) grandiloquent expressions,
bombast. ୨ । ମନୋମୁଗ୍ଧକର ବାକ୍ୟରସ—2.
Charming expressions

ବାଗ୍‌ଡ଼ି—ପ୍ରାଦେ. (ସମ୍ବଲପୁର) ବି—ବାଘବଜାର (ଦେଖ)
Bāg-rḍi Bāghabajāri (See)

ବାଗ୍‌ଡୁଡୁ—ଦେ. ବି—ଡୁଡୁ (ଦେଖ)—Ḍuḍu (See)
Bāg-ḍuḍu (ବାଗ୍‌ଡୁ, ବାଗ୍‌ଡୁଗୁଡୁ—ଅନ୍ୟରୂପ)

ବାଗ୍‌ଦଣ୍ଡ—ସଂ. ବି. (୬ଷ୍ଠୀ ତତ୍; ବାକ୍+ଦଣ୍ଡ)—୧ । ଭର୍ତ୍ସନା—
Bāg-daṇḍa 1. Abuse ୨ । ବାକ୍‌ସଂଯମ—2 Control
over the tongue; restraint of speech (Apte).

ବାଗ୍‌ଦତ୍ତ—ସଂ. ବିଣ. ( ୩ୟା ତତ୍; ବାକ୍+ଦତ୍ତ )—ଯାହାକୁ ଦାନ
Bāg-datta କରିବା ନିମନ୍ତେ ଦାତା ପ୍ରତିଶ୍ରୁତ ଅଛନ୍ତି—
(ବାଗ୍‌ଦତ୍ତା—ସ୍ତ୍ରୀ) Promised to be given away.

ବାଗ୍‌ଦତ୍ତା—ସଂ. ବିଣ. ସ୍ତ୍ରୀ—ପିତା ଯେଉଁ କନ୍ୟାକୁ ବରପାତ୍ରଙ୍କୁ ପ୍ରଦାନ
Bāgdattā କରିବା ନିମନ୍ତେ ପ୍ରତିଶ୍ରୁତ ହୋଇ ଥାଆନ୍ତି—
(a girl) Promised to be given away to a
bridegroom by the bride's father; affianced; betrothed.
ସଂ. ବି. ସ୍ତ୍ରୀ—ଯେଉଁ ବାଳିକାର ମହାପ୍ରସାଦ ନିର୍ବନ୍ଧ ହୋଇ
ସାଇଅଛି—An affianced virgin (Apte).

ବାଗ୍ ଦରିଦ୍ର—ସଂ. ବିଣ. ପୁଂ. ( ୭ମୀ ତତ୍; ବାକ୍+ଦରିଦ୍ର )—
Bāg-daridra ଯେ ଅଳ୍ପ କଥା କହେ—Speaking little
(ବାଗ୍ ଦରିଦ୍ରା—ସ୍ତ୍ରୀ) (Apte).
(ବାଗ୍‌ଦରିଦ୍ରତା, ବାଗ୍‌ଦାରିଦ୍ର୍ୟ—ବି)

ବାଗ୍‌ଦଳ—ସଂ. ବି. ( ବାକ୍+ଦଳ )—ଓଠ—
Bāg-daḷa Lip ( Apte ).

ବାଗ୍‌ଦାନ—ସଂ. ବି. ( ୬ଷ୍ଠୀ ତତ୍; ବାକ୍+ଦାନ )—୧ । ପ୍ରତିଶ୍ରୁତି—
Bāg-dāna 1 Promise. ୨ । କନ୍ୟାକୁ ବରପାତ୍ରଙ୍କ
ସଙ୍ଗେ ବିବାହ ଦେବା ନିମନ୍ତେ କନ୍ୟାପିତାଙ୍କର ପ୍ରତିଜ୍ଞା,
ମହାପ୍ରସାଦ ନିର୍ବନ୍ଧ—2. Ceremony of betrothal
done by the bride's father

ବାଗ୍ ଦୁଷ୍ଟ—ସଂ. ବିଣ. ପୁଂ. ( ବହୁବ୍ରୀହି, ବାକ୍+ଦୁଷ୍ଟ )—୧ । ଯେ
Bāg-dushta ମୁହଁରେ ଭର୍ତ୍ସନାପୂର୍ଣ୍ଣ ବାକ୍ୟ ଧରେ—2
(ବାଗ୍‌ଦୁଷ୍ଟା—ସ୍ତ୍ରୀ) 1. Scurrilous. ୨ । ଯେ ଅବ୍ୟାକରଣିକ
ଭାଷା ବ୍ୟବହାର କରେ—2. Using ungrammatical language.
(ବାଗ୍‌ଦୁଷ୍ଟି, ବାଗ୍‌ଦୋଷ } ବି
ବାଗ୍‌ଦୁଷ୍ଟତା)
ସଂ. ବି—୧ । ଅପବାଦକାରୀ—1. Defamer ( Apte ).
୨ । ଯେଉଁ ବ୍ରାହ୍ମଣର ଉପଯୁକ୍ତ ବୟସରେ ଉପନୟନ ହୋଇ
ନାହିଁ—2. A Brāhmaṇa not invested with
the sacred thread at the proper time of
life (Apte).

ବାଗ୍ ଦେବତା—ସଂ. ବି. ( ରୂପକ କର୍ମଧା; ବାକ୍+ଦେବତା )—
Bāg-debatā ସରସ୍ୱତୀ—The Goddess of learning.
(ବାଗ୍‌ବାଦିନୀ, ବାଗ୍‌ଦେବୀ—ଅନ୍ୟରୂପ)

ବାଗ୍‌ଦୋଷ—ସଂ. ବି. ( ୬ଷ୍ଠୀ ତତ୍ ବା ୭ମୀ ତତ୍; ବାକ୍+ଦୋଷ)—
Bāg-dosha ୧ । କର୍କଶ ବାକ୍ୟ ବା ଧ୍ୱନିର ଉଚ୍ଚାରଣ—
(ବାଗ୍‌ଦୋଷୀ—ବିଣ) 1 Utterance of harsh sound or
words ( Apte ). ୨ । ଭର୍ତ୍ସନା—2. Abuse
( Apte ). ୩ । ଅପବାଦ—4. Defamation
( Apte ). ୪ । ଅବ୍ୟାକରଣିକ ବାକ୍ୟ—4. Ungrammatical speech (Apte).
୫ । ବାକ୍ୟରେ ଅପରାଧୀ—5. Guilty of improper
or impious speech

ବାଗ୍‌ଦୋଷୀ—ସଂ. ବିଣ—ବାଗ୍‌ଦୋଷକାରୀ—
Bāg-doshī Guilty of Bāgdosha (See)
ଦେ. ବିଣ—୧ । ଯେ ନିଜର ବଚନ ବା ପ୍ରତିଶ୍ରୁତି ରକ୍ଷା ନ
କରେ—1. Not true to one's promise. ୨ ।
ଭର୍ତ୍ସନାକାରୀ—2. Abusive.
୩ । ବାକ୍ୟରେ ଅପରାଧୀ—3. Guilty of impious
speech.

ବାଗ୍‌ବଜ୍ର—ସଂ. ବି. ( ରୂପକ; ବାକ୍+ବଜ୍ର )—୧ । କଠୋର ବାକ୍ୟ—
Bāg-bajra 1. Severe or harsh language. ୨ ।
(ବାଗ୍‌ବଜ୍ର—ଅନ୍ୟରୂପ) ଅଟଳ ବାକ୍ୟ—2. Adamantine
words (Apte)

ବାଗ୍‌ବିଭବ—ସଂ. ବି (୬ଷ୍ଠୀ ତତ୍; ବାକ୍+ବିଭବ)—୧ । ବ୍ୟବହୃତ
Bāg-bibhaba ବାକ୍ୟମାନଙ୍କ ଭଣ୍ଡାର—1. Stock of
words (Apte). ୨ । ବାକ୍ୟରେ ବର୍ଣ୍ଣନା କରିବାରେ
ପ୍ରଚୁର କ୍ଷମତା—Power of description; command over language (Apte)

ବାଗ୍‌ବିଳାସ—ସଂ. ବି.—(୬ଷ୍ଠୀ ତତ୍; ବାକ୍+ବିଳାସ )—ମନୋହର
Bāg-biḷāsa ବାକ୍ୟ—Graceful or elegant speech.

ବାଗ୍‌ବ୍ୟବହାର—ସଂ ବି. (୬ଷ୍ଠୀ ତତ୍; ବାକ୍+ବ୍ୟବହାର)—
Bāg-byabahāra—ବାଦାନୁବାଦ—Verbal discussion.

ବାଗ୍‌ବୈଦଗ୍ଧ୍ୟ—ସଂ. ବି—୧ । ବାକ୍‌ଚାତୁରୀ ( ଦେଖ )—2. Bāk-
Bāg-baidagdhya chāturī (See). ୨ । ସୁନ୍ଦର ଅଳଙ୍କାର
ଓ ଉପମାଳାପୂର୍ଣ୍ଣ ବାକ୍ୟପ୍ରୟୋଗରେ ନିପୁଣତା—
2. Skill in using figures of speech.

ବାଗ୍‌ବ୍ୟୟ—ସଂ. ବି. (୬ଷ୍ଠୀ ତତ୍; ବାକ୍+ବ୍ୟୟ)—ବାକ୍ୟ ବ୍ୟୟ; କଥା
Bāg-byaya କହିବା—Use of words in speaking.

ବାଗ୍‌ବ୍ୟାପାର—ସଂ. ବି. ( ୬ଷ୍ଠୀ ତତ୍; ବାକ୍+ବ୍ୟାପାର )—୧ । କଥା
Bāg-byāpāra କହିବାର ଢଙ୍ଗ—1. The manner of speaking ( Apte ). ୨ । କଥା କହିବାର ପଦ୍ଧତି ବା ଅଭ୍ୟାସ—2. The style or habit of speaking. ୩ । ଅଭ୍ୟାସଗତ 'ବାକ୍ୟବିନ୍ୟାସ—3. Customary phraseology or mode of talking.

ବାଗ୍‌ଯତ—ସଂ. ବିଣ. ପୁଂ. ( ୭ମୀ ତତ୍; ବାକ୍+ଯତ )—୧ । ଯେ
Bāg-jata ଗୁଡ଼ାଏ କଥା କହେ ନାହିଁ; ଯାହାର ବାକ୍‌ସଂଯମ ଅଛି;
(ବାଗ୍‌ଯତା—ସ୍ତ୍ରୀ) ସଂଯତବାକ୍—1. Taciturn, reserved; having control over one's tongue. ୨ । ମୌନୀ —2. Silent; one who has curbed his speech.

ବାଗ୍‌ଯମ—ସଂ. ( ବାକ୍+ଯମ ) ( ୬ଷ୍ଠୀ ତତ୍ )—୧ । ବାକ୍‌ସଂଯମ
Bāg-jama ( ଦେଖ )—1. Bāk-saṁjama ( See ). ୨ । ( ବହୁବ୍ରୀହି ) ସଂଯତବାକ୍ ବ୍ୟକ୍ତି—2. A person who has control over his tongue. ୩ । ମୁନି, ଋଷି—3. Sage ( Apte ).

ବାଗ୍ ଯାମ—ସଂ. ବି. ପୁଂ. (ବାକ୍+ଯମ ଧାତୁ+ଅ)—ମୁକା ଲୋକ—
Bāg-jāma A dumb man ( Apte ).

ବାଗ୍‌ଯୁଦ୍ଧ—ସଂ. ବି. ( ୩ୟା ତତ୍; ବାକ୍+ଯୁଦ୍ଧ)—୧ । କଳହକଳିର;
Bāg-juddha ଗାଳିଦିଆଦେଇ—1. A war of words; exchange of abuses. ୨ । ବାଦାନୁବାଦ; ତର୍କବିତର୍କ —2. Wrangling; a verbal contest; controversy.

ବାଗ—ଦେ. ବି—୧ । ( ସଂ. ବର୍ତ୍ମ; ମାର୍ଗ )—ନିର୍ଦ୍ଧାରିତ ଉପାୟ; ଢାଞ୍ଚ;
Bāga ଢାଞ୍ଚା; ପ୍ରଣାଳୀ—1. Ascertained means; mode;
ବାଗ method. ୨ । ପନ୍ଥା; ପଥ; ବାଟ—2. Way; road;
**मार्ग; रास्ता** path. ୩ । ଫନ୍ଦି; ଯୁକ୍ତି; କୌଶଳ—3. Stratagem; skill; cleverness. ୪ । ବ୍ୟବସ୍ଥା—4. Arrangement. ୫ । ନିୟମ—5. Rule. ୬ । ପାଖ; ଆଡ଼; ଦିଗ—5 Side; direction. ୭ । ସୁବିଧା—6. Convenience. ୭ । ସୁଯୋଗ—7. Opportunity. ୮ । (ସଂ. ବଲ୍ଗା) ଘୋଡ଼ା
ବାଗ **बाग** ମୁହଁରେ ଲଗାଯିବା ରଜ୍ଜୁ; ଲଗାମ—8. Bridle; reins of a horse. ୯ । ଶାସନ—9. Rule. ୧୦ । ଆୟତ୍ତାଧୀନତା—10. Control.
ଦେ. ବିଣ.—ଅଧୀନ—Under control.

ବାଗ କରିବା—ଦେ. କ୍ରି.—୧ । ଅଧୀନ କରିବା—
Bāga kariba 1. To bring under control.
ବାଗେଆନା ୨ । କୌଶଳ କରିବା—2. To act tactfully.
**ठीक करना** ୩ । ସୁବିଧା କରିବା; ସଜାଡ଼ିବା;ସୁସଜ୍ଜିତ କରିବା—3. To arrange; to set right. ୪ । ଉପାୟ-କରିବା—4. To devise means.

ବାଗକୁ ଆଣିବା—ଦେ. କ୍ରି.—୧ । ବଶୀଭୂତ କରିବା; ଆପଣାର ଅଧୀନ
Bāgaku āṇibā କରିବା—1. To bring under one's
ବাগান, বাগেআনা **रास्तापरलाना** control. ୨ । ବିଗିଡ଼ି
[ବାଗରେ ପକା(କେ)ଇବା—ଅନ୍ୟରୂପ] ଥିବା ବସ୍ତୁକୁ ସଜାଡ଼ିବା—2. To reorganise; to set right. ୩ । ବାଟକୁ ଆଣିବା—3. To bring to the right path.

ବାଗଡ଼—ଦେ. ବି.—(ସଂ. ବଗର; ବ୍ୟାଘାତ)—ଗୁରୁଜନଙ୍କୁ ଦିଆଯିବା
Bāgarḍa ଅସମ୍ମାନସୂଚକ ଉତ୍ତର—Disrespectful or in-
বাগড়া **फटकार** subordinate reply to one's superior.

ବାଗଡ଼ ବତା(ତେ)ଇବା—ଦେ. କ୍ରି.—ଗୁରୁଜନଙ୍କୁ ଅସମ୍ମାନସୂଚକ
Bāgarḍ a batā(te)ibā ଉତ୍ତର ଦେବା—To give
বেআড়া কথা বলা disrespectful reply to one's
**फटकारना** superior.

ମୁଁ କେମନ୍ତ ମାଇର ଝି,
(ମୋ'ତ) ବାଗଡ ବତେଇ ଖା । ତଗ ।

ବାଗଡୋର—ଦେ. ବି.—( ସଂ. ବଲ୍ଗା+ଡୋରକ )—ଘୋଡ଼ାର
Bāga ḍora ମୁଖ ରଜ୍ଜୁ—A long rope used to tie up
বাগডোর **बागडोर** a horse at the mouth.
[ଦ୍ର—ଘୋଡ଼ାର ମୁହଁରେ ଲଗା ଯାଇ ଥିବା କଡ଼ିଆଳର ଏକ-ପାଖରେ ଏ ଡୋରକୁ ଲଗାଇ ଘୋଡ଼ାର ମୁଣ୍ଡ ବାଟେ ବୁଲାଇ ଆଣି କଡ଼ିଆଳ ଆର ପାଖରେ ସଲଗ୍ନ କରାଯାଏ ଓ ତହିଁର ଲମ୍ବ ଅଂଶକୁ ଘୋଡ଼ାକୁ ଚହଲାଇବା ଲୋକଙ୍କୁ ଧରେ ।]

ବାଗଣ—ଦେ. ବି—ଏକ ପ୍ରକାର ଇନ୍ଦ୍ରଜାଲ ବା କୁହୁକ ବିଦ୍ୟା—
Bāgaṇa A kind of magic.
ପ୍ରାଦେ. (ମେଦିନୀପୁର) ବି.—ବାଇଗଣ—Brinjal.

ବାଗ(ଗୁ)ଦି—ଦେ. ବି. (ସଂ. ବକଦ୍ୱୀପ=ମେଦିନୀପୁରସ୍ଥ ପ୍ରଗଣାବିଶେଷ,
Bāga(gu)di ଏମାନେ ସେଠାର ଅଧିବାସୀ ଥିବାରୁ)—ମତ୍ସ୍ୟଜୀବୀ
বাগ্দী ଅସ୍ପୃଶ୍ୟ ଜାତିବିଶେଷ—A low caste people living
[ବାଗୁ(ଘୁ)ଡି, ବାଉଗ(ଘ)—ଅନ୍ୟରୂପ] on fishing.
[ଦ୍ର—ବକଦ୍ୱୀପ ବଙ୍ଗାରୁର ରାଜ୍ୟ ଓ ଏହା ବାଗଦୀ ଜାତିର ଆଦିବାସସ୍ଥାନ ଥିଲା ବୋଲି କିଂବଦନ୍ତୀ ଅଛି ।—ଯୋଗେଶ୍ଚନ୍ଦ୍ର ]

ବାଗ ଧରିବା—ଦେ. କ୍ରି.—୧ । ପକ୍ଷ ଅବଲମ୍ବନ କରିବା—
Bāga dhariba 1. To take a side.
বাগধরা ୨ । କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ କରିବା—
**बागधरा** 2. To guide or control a person.
୩ । କୌଣସି କଥାରେ ଜିଦ୍ କରିବା—3. To persist in any act. ୪ । ସ୍ଥିର ବୋଲି ଗ୍ରହଣ କରିବା—4. To accept as unchangeable. ୫ । ଘୋଡ଼ାକୁ ନିୟନ୍ତ୍ରିତ କରିବା ପାଇଁ ଘୋଡ଼ାର ଲଗାମକୁ ଧରିବା—5. To hold the rein of a horse.

ବାଗ ପାଇବା—୧ । ସୁଯୋଗ ପ୍ରାପ୍ତ ହେବା—
Bāga pāibā 1. To get an opportunity.
୨ । କୌଣସି ବ୍ୟକ୍ତିର ହୃଦୟର ଭାବ ଜାଣି ପାରିବା;

ମରିକ୍ସ ପାଇବା—2 To fathom the heart of a person. ୩ । କୌଣସି ବିଷୟର ସୂତ୍ର ଜାଣି ପାରିବା-3. To know the secret of a matter.

ବାଗ ବଗିଚ୍ଛ—ବୈଦେ. ବି.—(ଫା. ବାଗ୍+ବାଗ୍ଚ୍ଛ; ଏକାର୍ଥବୋଧକ ସହଚର)—ଫୁଲ ଓ ଫଳ ବଗିଚ୍ଛ; ବଗାଇ— Bāga bagichā Orchards and flower gardens.
বাগ বগিচা ଘର, ବାଗ ବଗିଚ୍ଛ, ଘର ଅସବାବମାନ ଛଡ଼ି ଜମିଦାରୀ
बाग बगिचा ଛାଡ଼ିକା ଗ୍ରହ ଶୋଭା। ଫକୀରମୋହନ. ଛମାଣ ଆଠଗୁଣ୍ଠ।

ବାଗ ବତା(ତେ)ଇବା—ଦେ. କ୍ରି- ଗୋଟିଏ ସୁବିଧାଜନକ ଉପାୟ ଶିକ୍ଷା ଦେବା—To point out a convenient mode of doing a thing; to point out an expedient. Bāga batā(te)ibā
উপায় বাৎলান
उपाय बतलाना, राह बतलाना

ବାଗ ବରଗ—ଦେ. ବି. ( ଏକାର୍ଥକ ସହଚର; ସ. ବର୍ଗ; ମାର୍ଗ )— Bāga baraga ୧ । ନିର୍ଦ୍ଦିଷ୍ଟ ନିୟମ—1. Settled rule or principle. (ବାଗ ସାଗ, ବାଗ ବାଇଶ—ଅନ୍ୟରୂପ)
তাগ বাগ ୨ । ସାଞ୍ଚ; ଧାଞ୍ଚ; ସୁବ୍ୟବସ୍ଥା—2 Method; methodical arrangement.
ठिकाना
୩ । ଶଙ୍ଖ, ଯନ୍ତ୍ରାଦିର ରହସ୍ୟ—3. Mechanism of any instrument.

ବାଗ ବିଳାସ—ଦେ. ବି—ପୁଷ୍ପ ଲତାବିଶେଷ— Bāga bilāsa A kind of flowering creeper; Bougenvellia.
বাগান বিলাস बाग विलास
[ ଦ୍ର—ଏ କଣ୍ଟାଳିଆ ଓ ଲୁଦାଳିଆ ଗୁଳ୍ମ ଓ ବଙ୍କା କଣ୍ଟା ଦ୍ଵାରା ଅନ୍ୟ ଗଛରେ ମାଡ଼େ । ଫୁଲ ସଙ୍ଗେ ୩ଟି ପତ୍ର ଥାଏ ଏହି ପତ୍ର ଗୋଲାପୀ ବା ପାଟଳ । ଏ ଗଛ ଆମେରିକାରୁ ଏ ଦେଶକୁ (ବାଗନାବିଳାସ—ଅନ୍ୟରୂପ) ଆସିଥିଲା । ]

ବାଗ ମଡ଼ା(ଡ଼େ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ସୂଚନା ଦ୍ଵାରା ବା ଈଙ୍ଗିତାଙ୍ଗିତରେ କୌଣସି କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଇବା—To induce a person to do a thing by hints or stratagem. Bāga mar̲d̲ā(r̲d̲e)ibā

ବାଗ(ଘ)ମଣ - ଦେ. ବି. (ସ. ବାଙ୍ମଣ୍ଡ)—ବାଙ୍ମଣ ( ଦେଖ ) Bā‸a(gha)mati Bāṅ-mati ( See )

ବାଗ ମାନିବା—ଦେ. କ୍ରି—୧ । ଆୟତ୍ତ ହେବା—1. To be brought under control. Bāga mānibā
বাগ মানা ୨ । ଆଦେଶ ପାଳନ କରିବା—2. To obey one's directions. ୩ । ଆଦେଶ ମୁତାବକ ଚଳିବା—3. To be guided by.
बाग मानना
୪ । (ଘୋଡ଼ା) ଅରେଖାର ନିୟନ୍ତ୍ରଣାଧୀନ ହେବା—4. (a horse) To obey the reins.

ବାଗ ମୋଡ଼ିବା—ଦେ. କ୍ରି—୧ । ବାଗ ଦ୍ଵାରା ଘୋଡ଼ାର ଗତିକୁ କୌଣସି ଦିଗକୁ ନିୟନ୍ତ୍ରିତ କରିବା— Bāga mor̲d̲ibā 1, To direct the motion of a horse by handling the reins.
বাগ মোড়া
बाग मोडना
୨ । (ଲକ୍ଷଣାର୍ଥ) ଆଗେ ଚାଲିବା ନ ପଡ଼ି କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ କରିବା—2. ( figurative ) To guide a person from behind.

ବାଗର—ଦେ. ବିଣ—୧ । ସୁପନ୍ଥାରେ ଚଳିବା (ବ୍ୟକ୍ତି); ସୁଧାର— Bāgara 1. Methodical.
୨ । ଉତ୍ତମ—2. Good.
( ଯଥା—ସେ ପିଲାଟା ବାଗର ଦେଖା ନାହିଁ । )
ସ. ବି—୧ । ଶାଣ (ହ୍ରି. ଶ)—1. Whetstone.
୨ । ନିର୍ଣ୍ଣୟ (ହ୍ରି. ଶ)—2. Ascertainment.
୩ । ମେଣ୍ଢା (ହ୍ରି. ଶ)—3. Sheep.
୪ । ପଣ୍ଡିତ (ହ୍ରି. ଶ)—4. A learned person.
ସ. ବିଣ—ନିର୍ଭୟ (ହ୍ରି. ଶ)—Fearless.

ବାଗରେ ପକା(କେ)ଇବା—ଦେ. ବି—୧ । ଆୟତ୍ତକୁ ଆଣିବା— Bāgare pakā(ke)ibā 1. To bring under control.
বাগে ফেলা, কারে ফেলা ୨ । ସୁଧାରିବା—2. To set right.
रास्तापर लाना

ବାଗା—ସ. ବି—ବଲ୍ଗା; ଲଗାମ (ହ୍ରି. ଶ)— Bāgā Reins.

ବାଗାଡ଼ମ୍ବର—ସ. ବି. ( ୬ଷ୍ଠୀ ତତ୍; ବାକ୍+ଆଡ଼ମ୍ବର )— Bāgār̲d̲ambara ବାକ୍ୟର ଆଡ଼ମ୍ବର; ବାକ୍ୟାଡ଼ମ୍ବର— Pomposity; bragging; grandiloqent expression.

ବାଗାରୁ—ସ.ବିଣ—ଆଶା ଦେଇ ନୈରାଶ କରିବା (ବ୍ୟକ୍ତି); ବିଶ୍ଵାସଘାତକ- Bāgāru Treacherous; tantalising.

ବାଗି(ଘି)—ଦେ. ବି. ( ସ. ବର୍ଧ୍ମ=କୋଡ଼ ଗାତରେ ହେବା ବ୍ରଣ; Bāgi(ghi) ବଂକ୍ଷଣ=କୋଡ଼ ଗାତ )—୧ । ଉପଦଂଶ ଜନିତ ବ୍ରଣବିଶେଷ; ବାଳିଆ ଦାଢ଼—1 Bubo.
বাগী, বাঘী
बाघी, बद
[ ଦ୍ର—ଏହା ଜଂଘ ଓ ତଳ ପେଟର ସନ୍ଧି କୋଡ଼-ଗାତରେ ହୁଏ ଓ ବହୁ କଷ୍ଟଦାୟକ ହୁଏ । ଏହା ସହଜରେ ପାଚେ ନାହିଁ ଶମ୍ଭା ବସେ ନାହିଁ । ]
୨ । ପିଚ୍ଛିଳ; ଉରୁ ସନ୍ଧିରେ ପଡ଼ିବା ଗିଲ୍ଟି— 2. Lymphatic gland.

ବାଗିଆ—ଦେ ବି—୧ । ବାଇଗବା ( ଦେଖ ) Bāgiā 1. Bāigabā ( See)
୨ । ପାର୍ଶ୍ଵବର୍ତ୍ତୀ ଦୁଇ ଖଣ୍ଡି ପଥରକୁ ଜାକି ଧରିବା ନିମନ୍ତେ ବ୍ୟବହୃତ ଦୁଇ ପାଖରେ ବଙ୍କା ହୋଇ ଅଙ୍କୁଶା ଥିବା (⌐¬) ଏକ ପ୍ରକାର ଲୁହା କଣ୍ଟା; ଜୋକିଆ—2. An iron nail hooked at both ends to keep two adjacent stones in position.
जौंक

ବାଗିଆ ବାଗି କରିବା—ଦେ. କ୍ରି. (ସ. ବନ୍ଧ୍ ଧାତୁ=ଗଢ଼ କରିବା)— Bāgiā bāgi karibā ୧ । ଆୟତ୍ତ କରିବା—1. To bring under control.
বাগান बागना
୨ । କୌଣସି ବ୍ୟକ୍ତିର ମନକୁ ଭଲ ଆଡ଼କୁ ଆଣିବା—2 To bring a person to a better state of mind.
୩ । ସୁଧାରିବା—3. To set right.

୪ । ମଗାଇବା—4. To persuade.

ବାଗିନ୍(ନି)—ବୈଦେ. ବି. ( ଇଂ ୱାଗନ୍ )—ରେଲର ମାଲ ବୁହା Bāgin(ni) ଗାଡ଼ି; ମାଲ ବୁହା ଡବା—Goods-waggon of বাগেন वागन the Railway.

ବିଣ—ରେଲର ଏକ ୱାଗନ୍ ଭର୍ତ୍ତି ହେବା ପରିମିତ (ବସ୍ତୁ)—Waggon load of ( some article ).

'ବାଗିବା—ଦେ. କ୍ରି—ବାଗେଇବା ( ଦେଖ )
Bāgibā Bāgeibā ( See )

ଅକଯାବ ମଧ୍ୟ ଉତ୍ତର ତାହା ଭଗି
କହୁଛ ତସି କେତେ ବୃଥା କଥା ବାଗି—
କୃଷ୍ଣସିଂ. ମହାଭାରତ ଉଦ୍‌ଯୋଗ ।

ବାଗିର—ଗ୍ରାଦେ. ( ସମ୍ବଲପୁର ) କ୍ରି—୧ । ପରି; ସଦୃଶ—
Bāgir 1. Like; similar to.

୨ । ଅନୁସାରେ—2. According to; in accordance with.

ବାଗୀଶ—ସ. ବି. ( ୬ଷ୍ଠୀ ତତ୍; ବାକ୍+ଈଶ )—୧ । ପ୍ରଧାନ ବା Bāgīsa ଉତ୍କୃଷ୍ଟ ବକ୍ତା—1. An eloquent speaker; an (ବାଗୀଶ୍ୱର—ଅନ୍ୟରୂପ) excellent orator. ୨ । ବୃହସ୍ପତି—2, Bṛuhaspati. ୩ । ବ୍ରହ୍ମା—3. Brahmā.
ବାଗୀଶା, ବାଗୀଶ୍ୱରୀ } ସ୍ତ୍ରୀଲିଙ୍ଗ

ବାଗୀଶା—ସ. ବି. ସ୍ତ୍ରୀ. (ବାଗୀଶ+ଆ)—ସରସ୍ୱତୀ ( ହି. ଶ. )—
Bāgīsā The goddess of learning.
(ବାଗୀଶ୍ୱରୀ—ଅନ୍ୟରୂପ)

ବାଗୁଚି(ଜି)—ସ. ବି—ବାକୁଚି ( ହି. ଶ. )—
Bāguchi( ji) Bākuchi (See)

ବାଗୁଡ଼ି(ଡୁ)—ଦେ. ବି—ଡୁଡୁ (ଦେଖ)—
Bāgurdi(rdu) হাডুডুডু कवड्डी Ḍudu (See).
(ବାଗୁଡ଼ି ଗୁଡ଼ି, ବାଗୁଡ଼ୁ ଗୁଡ଼ୁ—ଅନ୍ୟରୂପ)

ବାଗୁଡ଼ି(ଡୁ) ଖେଳିବା—ଦେ. କ୍ରି—(ଲକ୍ଷଣାର୍ଥ) ଖୋଜୁଥିବା ବ୍ୟକ୍ତିକୁ Bāgurdi(rdu) khelibā ଧରି ନ ଦେଇ ଏଣେତେଣେ [ବାଗୁଡ଼ିବଢା(ଢେ)ଇବା—ଅନ୍ୟରୂପ] ବୁଲିବା—(figurative) লুকোচুরী খেলা To play at hide and seek with a छुपाछुपी खेलना person.
( ବାଗୁଡ଼ି ଗୁଡ଼ି ଖେଳିବା—ଅନ୍ୟରୂପ )

ବାଗୁଣ—ସ. ବି—୧ । ବାଇଗଣ (ହି. ଶ)—1 Brinjal,
Bāguṇa ୨ । କରମଙ୍ଗା (ହି. ଶ) (ଦେଖ)—2 Karamangā (See).

ବାଗୁରା—ସ. ବି—(ବା ଧାତୁ=ସୂତ୍ର ବିସ୍ତାର କରିବା+କରଣ. ଉର+ Bāgurā ସ୍ତ୍ରୀ. ଆ; 'ଗ' ଆଗମ)—୧ । ମୃଗ ଆଦି ଧରିବାର ଫାଶ; ଫାନ୍ଦ—1, Snare; a trap. ୨ । ଜାଲ—2. Net. ୩ । ମାଛ ଧରିବା ନିମିତ୍ତ ବାଉଁଶ ଖଡ଼କାଳମିତ ବଡ଼ ଖଇଞ୍ଚ—3. A fishing contrivance made (ବାଗୁରିକା—ସ୍ତ୍ରୀ) of slender bamboo laths.

ବାଗୁରିକ—ସ. ବି. ପୁଂ—(ବାଗୁରା+ଜୀବିକା ଅର୍ଥରେ.ଇକ )—ବ୍ୟାଧ;
Bāgurika ଯେ ଫାଶ ବସାଇ ଜନ୍ତୁ ଧରେ—One who sets snares to catch animals

ବାଗୁଲ—ଗ୍ରାଦେ. (ଗଡ଼ଜାତ) ବି—ଗଣ୍ଡିଆଳ (ଦେଖ)
Bāgula Gaṇḍiāḷa (See).

ବାଗୁଳି—ସ. ବି—ପାନବଟା; ପାନଡବା (ହି. ଶ)
Bāguḷi A metal case for keeping betel-packets.

ବାଗୁଲି—ଗ୍ରାଦେ. (ଗଡ଼ଜାତ) ବି—ପନାସୀ ଘାସ; ସବେଇ—
Bāguli Sabei grass,
ଦେ. ବି—ବବୁରି (ଦେଖ)—Baburi (See).

ବାଗୁଳିକ—ସ. ବି—ରାଜାଙ୍କୁ ପାନଖିଲି ଯୋଗାଇବା ଚାକର (ହି. ଶ)—
Bāguḷika A servant who hands over betel-(ବାଗୁଳି—ଅନ୍ୟରୂପ) packets to a Raja.

ବାଗୁଳୀ—ଗ୍ରାଦେ. (ଗଡ଼ଜାତ) ବି. ( ସ. ବାଗୁଳିକ )—ରାଜାଙ୍କର
Bāguḷi ତାମ୍ବୂଳବାହକ ଭୃତ୍ୟବିଶେଷ—The betel-bearer of a king.

ବାଗୁଲୁ ଚାଗୁଲୁ ବଟା(ଟେ)ଇବା—ଦେ. କ୍ରି—ନାନା ଛଳ ପ୍ରୟୋଗ Bāgulu chāgulu batā(te)ibā ପୂର୍ବକ ଭଣ୍ଡାଇ କରି କହିବା—এদিগ ওদিগ বলা इधरउधरबतलाना To prevaricate.

ବାଗେ—ଦେ. କ୍ରି. ବିଣ—୧ । ପ୍ରକାରେ; ରୂପେ—
Bāge 1. In the manner of,
(ବାଗେରେ—ଅନ୍ୟରୂପ) ୨ । ଅନୁସାରେ—2. According to.
বাগে तरहसे

ସ୍ଥାନ ତାହା ଶୁଣିଣ ସୁଧର୍ମି ର ଅଗେ
ଜଣାଇଲେ ସମସ୍ତ କଥା ସେହି ବାଗେ—
କୃଷ୍ଣସିଂ. ମହାଭାରତ ବନ ।

୩ । ପରି—3, Like. ୪ । ସୁବିଧାକ୍ରମେ—4. Conveniently.

ବାଗେଇବା—ଦେ. କ୍ରି—୧ । କୌଣସି ଆଡ଼କୁ ମୁହଁକରି ଗଢକରିବା—
Bāgeibā 1. To turn to go to one direction.
বাগান ୨ । ଏକ ଦିଗରୁ ଅନ୍ୟ ଦିଗକୁ ମୁହଁ ବୁଲାଇବା—2. To वागना turn round. ୩ । ଅଧୀନତାକୁ ଆଣିବା—3. To bring under control. ୪ । ସୁପଥକୁ ଆଣିବା—4. To bring to the right path. ୫ । ସୁଧାରିବା, ସଜାଡ଼ିବା—5. To set right; to change a thing for the better. ୬ । ଘୋଡ଼ାର ବାଗଧରି ତାହାର ଗତିକୁ ନିର୍ଦ୍ଦିଷ୍ଟ ଦିଗକୁ ନିୟନ୍ତ୍ରିତ କରିବା—6. To guide a horse by drawing the reins to one direction or other. ୭ । ଗୋଟିଏ ପାଖକୁ ବା ପକ୍ଷକୁ ଢଳିବା—7. To incline to one side.

ବାଗ୍ଭଟ—ସ. ବି. (ନାମ)—୧ । 'ବାଗ୍ଭଟ ସଂହିତା'ର ରଚୟିତା—
Bāgbhaṭa 1. The author of 'Bāg-bhaṭa samhitā
୨ । ଜୈନ ଆଳଙ୍କାରିକବିଶେଷ—2. Name of a Jaina grammarian.

[ ଦ୍ର—ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏକାଧିକ ବାଗ୍ଭଟନାମଧାରୀଙ୍କ ପରିଚୟ ମିଳେ । ୧—ଅଷ୍ଟାଙ୍ଗ ହୃଦୟ ସଂହିତା ନାମକ ବୈଦ୍ୟକ ଗ୍ରନ୍ଥର ରଚୟିତା; ପିତାଙ୍କ ନାମ ସିଂହ ଗୁପ୍ତ । ୨—ପଦାର୍ଥଚନ୍ଦ୍ରିକା, ଭାବପ୍ରକାଶ, ରସରତ୍ନସମୁଚ୍ଚୟ, ଶାସ୍ତ୍ର-ଦର୍ପଣ ଆଦି ଗ୍ରନ୍ଥର ରଚୟିତା । ୩—ବୈଦ୍ୟକ ନିର୍ଘଣ୍ଟୁର ରଚୟିତା ଓ ୪—ଅଲଙ୍କାର ତିଳକ, ବାଗ୍ଭଟାଲଙ୍କାର ଓ ଛନ୍ଦାନୁଶାସନ ଗ୍ରନ୍ଥ ପ୍ରଣେତା ଜୈନ ପଣ୍ଡିତ । ପିତାଙ୍କ ନାମ ନେମିକୁମାର—ହି. ଶ. । ]

**ବାଗ୍ଭଟ ସଂହିତା**—ସଂ. ବି—ସଂସ୍କୃତ ବୈଦ୍ୟଶାସ୍ତ୍ରବିଶେଷ; ଅଷ୍ଟାଙ୍ଗହୃଦୟ ସଂହିତା—A Sanskrit medical work on the Hindu system.
Bāgbhaṭa saṁhitā

[ ଦ୍ର—ଏହା ଚରକ ଓ ସୁଶ୍ରୁତ ନାମକ ଗ୍ରନ୍ଥଦ୍ୱୟ ପର ପ୍ରାମାଣିକ ଗ୍ରନ୍ଥ । ]

**ବାଗ୍ମୀ**—ସଂ. ବିଣ. ପୁଂ—(ବାକ୍+ଅସ୍ତି. ଅର୍ଥରେ ମିନ୍; ବାଗ୍ମିନ୍. ୧ମା. ୧ବ)—୧ । ସୁବକ୍ତା—1. Versed in oratory.
Bāgmī
(ବାଗ୍ମିତା(ତ୍ୱ)—ବି) ୨ । ବାକ୍‌ପଟୁ—2. Skilled in the use of expressions; skilful in speech
[ବାଗ୍ମିନୀ—ସ୍ତ୍ରୀ]
୩ । ବାଚାଳ—3. Talkative; garrulous.
୪ । ବିଦ୍ୱାନ୍—4. Learned.
ସଂ. ବି—୧ । ବୃହସ୍ପତି—1. Bṛuhaspati. ୨ । ଉତ୍କୃଷ୍ଟ ବକ୍ତା—2. Orator.

**ବାଗ୍ୟ**—ସଂ. ବିଣ. ପୁଂ—ପରିମିତଭାଷୀ (ହି. ଶ) Moderate in speech
Bāgya
ସଂ. ବି—ନିର୍ବେଦ (ହି. ଶ) ବୈରାଗ୍ୟ—Renunciation of worldly concerns.

**ବାଘ୍**—ପ୍ରାଦେ. (ସମ୍ବଲପୁର) ବି—ବାଘ—Tiger.
Bāgh

**ବାଘ୍‌ଧେରା**—ପ୍ରାଦେ. (ସମ୍ବଲପୁର) ବିଣ. ପୁଂ—ସ୍ତ୍ରୀଲୋକର ପୁରୁଷକୁ ଦେବା ଗାଳିବିଶେଷ; ବାଘଖିଆ—A term of curse addressed to a male by a female.
Bāgh-dherā

**ବାଘ**—ଦେ. ବି. (ସଂ. ବ୍ୟାଘ୍ର; ପ୍ରା. ବାଗ୍ଘ)—୧ । ହିଂସ୍ର ଶ୍ୱାପଦବିଶେଷ; ଶାର୍ଦ୍ଦୂଳ; ବ୍ୟାଘ୍ର—1. Tiger; Felis Tigris
Bāgha
বাঘ बाघ (ବାଘୁଣୀ—ସ୍ତ୍ରୀ)

[ ଦ୍ର—ଏମାନେ ବିଡ଼ାଳ ଜାତୀୟ । ଏମାନଙ୍କ ଦେହର ବର୍ଣ୍ଣ ଈଷତ୍ ହଳଦିଆ ବା ଲୋହିତ ପରି । ପଟାହାରିଆ ବାଘଙ୍କ ଦେହରେ କଳା ଲମ୍ବା ଡୋରି ଓ କଲରାପତ୍ରିଆ ବାଘଙ୍କ ଦେହରେ କଲରାପତ୍ର ଭଳି ଗୋଲଗୋଲିଆ କଳାଦାଗ ଥାଏ । ଏମାନେ ସାଧାରଣତଃ ୨|୩ ହାତ ଉଚ୍ଚ ଏବଂ ଲାଞ୍ଜସହିତ ୭|୮ ହାତ ଲମ୍ବ ହୁଅନ୍ତି । ଏମାନଙ୍କ ଶରୀରର ଗଠନ ଠିକ୍ ବିରାଡ଼ି ଦେହ ପରି । ଏଥିପାଇଁ ବିରାଡ଼ିକୁ ବାଘର ମାଉସୀ ବୋଲାଯାଏ । ବାଘ ଅନେକ ଜାତୀୟ; ଯଥା—ନେପାଳୀ ବା ଚିତାବାଘ, କେନ୍ଦୁଆ, ପେଣ୍ଡ୍ରା, କଲରାପତ୍ରିଆ ଓ ପଟାହାରିଆ ବା ମହାବଳ । ]

୨ । କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ—2. A family title of the Kshatriyas.

**ବାଘ ଅଙ୍କୁ(ଞ୍ଚୁ)ଡ଼ା**—ଦେ. ବି. [ ସଂ. ବ୍ୟାଘ୍ର+ଅଙ୍କୋଟ(ଲ) ]—ବୃକ୍ଷବିଶେଷ; ଏକପ୍ରକାର ଧଳା ଅଙ୍କୁ ଗଛ; ଅଙ୍କୋଟ ( ଦେଖ )—Alangium Decapetalum.
Bāgha āṅku(ñchu)ṛā
বাঘ আঁচড়া टेरा

**ବାଘ ଗଳିବା**—ଦେ. ବି—ବାଘ ପାହାଡ଼ରୁ ବା ଜଙ୍ଗଲରୁ ଆସି ବାହାରରେ ବୁଲିବା—A tiger's coming down from a hill or out of a forest.
Bāgha gaḷibā
বাঘনামা बाघ आना

**ବାଘଛାଲ**—ଦେ. ବି—ମଲା ବାଘର ଚମଡ଼ା—Tiger skin.
Bāghachhāla বাঘছাল(লা) बाघकाखाल

**ବାଘଛେଳି**—ଦେ. ବି—୧ । ବାଘବଜାରି ( ଦେଖ )—1. Bāgha-bajāri ( See ). ୨ । ପିଲାମାନଙ୍କର ଏକପ୍ରକାର ଦଉଡ଼ାଦଉଡ଼ି ଖେଳ—2. A kind of outdoor game amongst boys.
Bāgha chheḷi
[ବାଘବକ(ଲୁ)ରି—ଅନ୍ୟରୂପ]
বাঘ বকরী बाघ बकरी

[ ଦ୍ର—ଏ ଖେଳରେ ଗୋଟିଏ ପିଲା ବାଘ ହୁଏ; ଅନ୍ୟ ପିଲାମାନେ ଅଣ୍ଟା ଧରାଧରି ହୋଇ ଗୋଟିଏ ଧାଡ଼ିରେ ଛେଳି ସାଜନ୍ତି । ଅନ୍ୟ ଗୋଟିଏ ପିଲା ବୁଢ଼ିଆଣୀ ହୋଇ ଏକ ସ୍ଥାନରେ ବସିରହେ ଏବଂ ତା ଚାରିପାଖେ ବାଘ ଘାଣ୍ଟିରି ଖାଉଥାଏ । ଛେଳିମାନେ ବାଘକୁ ଏଡ଼ି ବୁଢ଼ିଆଣୀକୁ ଛୁଇଁବାପାଇଁ ଚେଷ୍ଟା କରନ୍ତି । ବୁଢ଼ିଆଣୀକୁ ଛୁଇଁବା ପୂର୍ବରୁ ବାଘ ଯେଉଁ ଛେଳିକୁ ଧରି ପକାଏ ସେ ପିଲା ହାରେ ବା ମରେ । ]

୩ । ବ୍ୟାଘ୍ର ଓ ଛାଗଳ—3. Tiger and sheep. ୪ । ( ଲକ୍ଷଣାର୍ଥ )—ଖାଦକ ଜୀବ ଓ ଖାଦ୍ୟଜୀବ—4. (figurative) The eater and its victim.

**ବାଘ ଛେଳି ଏକାଠୁ(ତୋ)ଠରେ(ଘାଟରେ) ପାଣି ପିଇବା**—ଦେ. ବାକ୍ୟ ( ନ୍ୟାୟ ବଚନ )—ରାଜ୍ୟରେ ସୁଶାସନ ଯୋଗୁଁ ସର୍ବତ୍ର ଶାନ୍ତି ବିରାଜିତ ହେବା—(An analogical sentence applied to) An administration where there is perfect peace amongst naturally antagonistic parties, due to good administration.
Bāgha chheḷi ekā tu(to)ṭhare (ghāṭare) pāṇi pi-ibā
बाघबकरी एक घाटपर पानीपीना

[ ଦ୍ର—ଯେଉଁ ରାଜ୍ୟରେ ସୁଶାସନ ଯୋଗୁଁ ପରସ୍ପର ଶତ୍ରୁମାନଙ୍କ ମଧ୍ୟରେ, ରାଜା ଓ ପ୍ରଜା ମଧ୍ୟରେ, ପ୍ରବଳ ଓ ଦୁର୍ବଳ ମଧ୍ୟରେ ଶାନ୍ତି ଥାଏ ଓ ପ୍ରବଳ ଦୁର୍ବଳ ପ୍ରତି କିଛି ଅନିଷ୍ଟ କରି ନ ପାରେ ସେଠାରେ ଏ ନ୍ୟାୟ ଖଟାଯାଏ; ଯଥା—'ଇଂରାଜ ସରକାରଙ୍କ ଅମଳରେ ବାଘ ଛେଳି ଏକାଠୁଠରେ ପାଣି ପିଉଛନ୍ତି' ]

**ବାଘଜିଭ**—ପ୍ରାଦେ. ( ଗଞ୍ଜାମ ) ବି—ଖରଖରି ( ଦେଖ ) Kharakhari ( See )
Bāghajibha

**ବାଘ(ଘେ)ଟା**—ଦେ. ବି—ନେକେଡ଼ା ବାଘ—Hejena.
Bagha(ghe)ṭā

ବାଘ(ଘୁ)ଟି—ଦେ. ବି. ( ସଂ: ବାହୁ )—ଅଳଙ୍କାରବିଶେଷ—
Bāgha(ghu)ṭi A kind of ornament for the arm.
**बाहुटी** ବାହୁଟି ବାଘଟି ବାହୁଟିଅ ପର ନାସ ବଇଉ ବାଉର ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ବାଘତଲ—ଦେ. ବି—ଜଇସଣ୍ଡା ( ଦେଖ )
Bāghatala Jaisandā (See) (Haines)

ବାଘଦୁଧ—ଦେ. ବି· (ସଂ. ବ୍ୟାଘ୍ରଦୁଗ୍ଧ )—୧ । ବାଘଠାରୁ ଦୁହାଁହେବା
Bāghadudha ଦୁଧ ଆଣିବା ମନୁଷ୍ୟ ପକ୍ଷରେ ଯେପରି ଅସମ୍ଭବ,
বাঘের দুধ ସେହିପରି ଅସମ୍ଭବ କଥା—1. Impossible thing.
**शेरका दुध** ୨ । ଅପ୍ରାପ୍ୟ ବସ୍ତୁ—2. Unprocurable thing.

ବାଘନଖ—ଦେ. ବି. ( ସଂ. ବ୍ୟାଘ୍ର ଓ ନଖ )—୧ । ବାଘର ନଖ—
Bāghanakha 1. Tiger's claws. ୨ । ବାଘନଖଯୁକ୍ତ
বাঘনখ କଣ୍ଠର ସ୍ୱର୍ଣ୍ଣାଳଙ୍କାରବିଶେଷ—2. An ornament for
**बाघनख** the neck set with tiger's claws.
[ଦ୍ର—ବାଘନଖର କେତେକ ଅଂଶକୁ ସୁନା ବା ରୁପା ଖଞ୍ଜାଇ କରି ବେକର ହାରରେ ହାତରେ, ବାଜୁବନ୍ଧରେ ବସାଯାଏ ଓ ଆଜି କାଲି ବ୍ରୁଚ୍ କରାଯାଉ ଅଛି । ]
୩ । ବାଘନଖୀ (ଦେଖ)—3. Bāghanakhī (See)

ବାଘନଖିଆ—ଦେ. ବିଣ—୧ । ବାଘନଖ ପରି ଅଗବଙ୍କା ହୋଇଥିବା
Bāghanakhiā (କଣ୍ଟା)—(thorns) Shaped like tiger-
[ବାଘନଖା(ଖୀ)—ଅନ୍ୟରୂପ] claws. ୨ । ବାଘନଖୀ ଅସ୍ତ୍ରଦ୍ୱାରା
বাঘনখ ସଜ୍ଜିତ—2 Armed with the Bāghanakhī
**बघघहाँ; बघनहियाँ** weapon.
କଠୀ ଆଉ ତଘନଖିଆ
ବୃନ୍ଦାବନର ମୋ ବାଘନଖିଆ । ଗୋକୁଳ. ଉପବନ୍ଦୋଳ ।
ଦେ· ବି—ବାଘନଖୀ ( ଦେଖ )—
Bāghanakhī ( See )

ବାଘନଖୀ—ଦେ. ବି. (ସଂ. ବ୍ୟାଘ୍ରନଖ)—୧ । ଲୋମଶ ବର୍ଷାୟୁ ବନ୍ୟ
Bāghanakhī ଶାକ ଗୁଳ୍ମବିଶେଷ—1, Devil's claw;
[ବାଘନଖ(ଖା),ବାଘନଖିଆ—ଅନ୍ୟରୂପ] Martynia Diandra.
বাঘনখী [ ଦ୍ର—ଏ ଗଛ ପ୍ରଥମେ ଦକ୍ଷିଣ ଆମେରିକାରୁ ଏ ଦେଶକୁ ଆସିଥ ହୋଇଥିଲା । ଏହା ବର୍ଷାଦିନେ ଜନ୍ମେ । ଏହାର ପତ୍ରବ କୋମଳ ଓ ଅଠାଳିଆ; ଫୁଲ ଫିକାଲାଲ ପରି କନ୍ଦ୍ର ବଡ଼ ବଡ଼ ଓ ଘଣ୍ଟିକ ଗୋଲାପୀ, ଏହାର ଫଳ ବାଇଗଣ ପରି ଅଂଶୁଯୁକ୍ତ ଏବଂ ଫଳ ଶେଷକୁ ବାଘନଖ ପରି ୨ଟା ବାହାରିଥାଏ । ଏହାର ଫଳ ଓ ଫୁଲ ପେଣ୍ଡା ପେଣ୍ଡା ହୋଇ ଧରେ । ଫଳ ଲମ୍ବା ହୋଇ ଯେଉଁ ଚେଲ ବାହାରେ ତାହା ଗାଈ ମଈଁଷିଙ୍କ ରୋଗରେ ଉପକାର କରେ । ଫଳ ଖୁବ୍ ପାଚିଗଲେ ବାଘ ନଖ ପରି ଦୁଇ ଦିଗରେ ଫଳକୁ ଅଗ ବଙ୍କା ହୋଇ ଫାଟିଯାଇ ଖୋସାରୁ ଖସି ପଡ଼େ । ]
୨ । ବ୍ୟାଘ୍ରନଖାକୃତି ଅସ୍ତ୍ରବିଶେଷ—2. A kind of weapon shaped like tiger's claws worn on the fingers and kept concealed in the fisted palm and used in attacking an enemy unawares.

[ ଦ୍ର—ଏଥିରେ ବାଘନଖ ପରି ଗୁଡ଼ିଏ ମୁନିଆଁ ବଙ୍କା କଣ୍ଟା ଥାଏ । କଣ୍ଟାମାନଙ୍କ ମୂଳରେ ମୁଦିଅ ଥାଏ ଓ ସେ ମୁଦିଆମାନ ଅଙ୍ଗୁଠିରେ ପୁରାଇ ଏହାକୁ ମୁଠା ମଧ୍ୟରେ ଗୋପନରେ ରଖାଯାଇ ପାରେ ଏବଂ ନିକଟକୁ ଆସିଲେ ଶତ୍ରୁକୁ ଅତର୍କିତ ଅବସ୍ଥାରେ ଆକ୍ରମଣ କରିବା ଲାଗି ବ୍ୟବହୃତ ହୁଏ । ହାତ ମୁଠାକୁ ମେଲି କରି ବାଘ ନଖ ସଦୃଶ କଣ୍ଟାମାନଙ୍କୁ ଶତ୍ରୁର ଦେହରେ ଗଳାଇ ଦିଆଯାଏ । ]
ନଖୀ ୩ । ନଖୀନାମକ ଗନ୍ଧଦ୍ରବ୍ୟ—
**नखी, बगनहा** 3. A medicinal scent; shell.

ବାଘ ନଳ( ଳି )—ଦେ· ବି—ଅଖୁ ବା ଶରଜାତୀୟ ତୃଣବିଶେଷ;
Bāgha naḷa(ḷi) କାଣ୍ଡଶର—A kind of hol-
**नरकट** low reed; Lobelia Nicotianaefolia
[ ଦ୍ର—ଏହାର ନଳ ଓ ପତ୍ର ବାଉଁଶ ପରି ଗୋଲ ଓ ହାଲୁକା । ]

ବାଘ ନ(ଲ)ହଡ଼ା—ଦେ. ବି—ଏକଜାତୀୟ ଲତା ଘାସ—
Bāgha na(la)harḍā Commelina Salicifolia; a kind of grass which creeps or extends over the ground.
[ ଦ୍ର—ଏହା ଜଳମ ଶାଗଜାତୀୟ ଲତା; ପାଣିକୂଳରେ ଜନ୍ମେ । ଏହା ଦେଖିବାକୁ ଘାସ ପରି । ଫୁଲ ନୀଳବର୍ଣ୍ଣ, ଶୀତକାଳରେ ଫୁଟେ । ଏ ଲତାର ରସ ନାଲୁଆ—ଯୋଗେଶ୍ୱର୍ । ]

ବାଘ ବକ(କୁ)ରି—ଦେ. ବି. ( ସଂ. ବ୍ୟାଘ୍ର+ବର୍କର )—
Bāgha ba(ka)kuri ୧ । ବାଘ ଓ ଛେଳି—
**बाघ बकरी** 1. Tiger and sheep.
୨ । ବାଘ ବଜାର (ଦେଖ)—2. Bāga bajāri (See)
୩ । ବାଘ ଛେଳି ୨ ( ଦେଖ )—3. Bāgha chheḷi 2 (See)

ବାଘ ବଜାର—ଦେ. ବି—ଭୂମିରେ ଗୋଟିଏ ଛକରେ ୨୫ଟି ଘର କାଟି
Bāgha bajāri ସେଥିରେ ଦୁଇ ଜଣ ଖେଳାଳିଙ୍କର ଖେଳିବା
ବାଘ ଛେଳି / ବାଘ ବକ(କୁ)ରି / ବାଘ ବନ୍ଦେ(ଧେ)ଇ } ଅନ୍ୟରୂପ বাঘ বন্দী ଏକ ପ୍ରକାର ଖେଳ—An indoor game.
**बाघ बकरी, बाघ गोटी**
[ ଦ୍ର—ଏ ଖେଳରେ ଦୁଇ ଜଣ ଖେଳାଳି ଖେଳନ୍ତି । ଭୂମିରେ ଗୋଟିଏ ବର୍ଗ କ୍ଷେତ୍ର ଅଙ୍କିତ କରାଯାଇ ତାକୁ ରେଖାପାତଦ୍ୱାରା ୧୬ଟି କ୍ଷୁଦ୍ର ବର୍ଗକ୍ଷେତ୍ରରେ ବିଭକ୍ତ କରାଯାଏ । ଲମ୍ବ ବାଗରେ ଓ ଚଉଡ଼ା ବାଗରେ ସମଦୂରସ୍ଥ ୫ଟି ଲେଖାଏଁ ରେଖା ଅଙ୍କନ କରି ଏ ଖେଳର ପାଲି କରାଯାଏ ଓ ସେ କ୍ଷେତ୍ରମାନଙ୍କୁ ଗୋଟିଏ ଲେଖାଏଁ କର୍ଣ୍ଣରେଖାଦ୍ୱାରା ୩୨ଟି ସମକୋଣୀ ତ୍ରିଭୁଜରେ ବିଭକ୍ତ କରାଯାଏ । କ୍ଷେତ୍ରମାନଙ୍କରେ ଗୋଟିଏ ଲେଖାଏଁ କର୍ଣ୍ଣରେଖା ଟଣାଯାଏ । ଛୋଟ ଛୋଟ ଉକ୍ତ ୧୬ଟି ବର୍ଗକ୍ଷେତ୍ର ଦ୍ୱାରା ୨୫ଟି ଛକ ଉତ୍ପନ୍ନ ହୁଏ । ଜଣେ ଖେଳାଳି ୪ଟି ବାଘସୂଚକ ବଡ଼ ଗୋଡ଼ି ବା କଉଡ଼ି ବା ମଞ୍ଜି ନିଏ । ଅନ୍ୟ ଜଣକ ୨୦ଟି ଛେଳିସୂଚକ ସାନ ଗୋଡ଼ି ବା ମଞ୍ଜି ନିଏ । ଖେଳାଳିମାନେ ନିଜ ନିଜର ସାରିମାନଙ୍କୁ ୨୪ଟି ଛକରେ ବସାନ୍ତି ଓ ବାଘକୁ ଚଳିବା ପାଇଁ ଗୋଟିଏ ଛକ ଛାଡ଼ି

ହଆଯାଏ । ତାହାକୁ ବାଘ ପାଣି ଖାଇବା ଘର ବୋଲାଯାଏ । ବାଘ ଓ ଛେଳମାନେ ରେଖାମାନଙ୍କ ବାଟେ ଏକ ଛକରୁ ନିକଟବର୍ତ୍ତୀ ଛକକୁ ଚଳା ଯାଆନ୍ତି । ଯେବେ ଯେଉଁ ଛକରେ ବାଘ ସାର ଥାଏ ଓ ତା ପରବର୍ତ୍ତୀ ଛକରେ ଗୋଟିଏ ଛେଳ ସାର ଥାଏ, କିନ୍ତୁ ତତ୍‌ପରବର୍ତ୍ତୀ ଛକ ଶୂନ୍ୟ ଥାଏ । ତେବେ ବାଘ ତେଇଁ ପଡ଼ି ଉକ୍ତ ଛେଳକୁ ଖାଇଦିଏ ଓ ଛେଳଟି ମରିଯାଏ । ଏହିପରି ଅତ୍ୟଧିକ ଛେଳସାର ମରି ଗଲେ ବାଘର ଅଧିକାଂଶ ଜିତେ । କିମ୍ବା ଯେବେ ଛେଳସାରମାନଙ୍କୁ ଏପରି ଚଳାଯାଏ ଯେ ବାଘର ଛକଠାରୁ ପରବର୍ତ୍ତୀ ଦୁଇଟି ଛକ ଶୂନ୍ୟ ନ ରହେ ତେବେ ବାଘମାନେ ଅବଦ୍ଧ ହୋଇ ଅଚଳ ହୋଇ ଯାଆନ୍ତି ଓ ଛେଳର ଅଧିକାଂଶ ଜିତେ । ]

ବାଘ ଭେଳ(ଳି)କି—ଦେ. ବି—୧ । ମନୁଷ୍ୟକୁ ଦେଖିଲେ ଭୟ ଉତ୍ପାଦନ Bāgha bhe̱la(̱li)ki କରିବା ନିମନ୍ତେ ବାଘ ଯେଉଁ ଗାଲ ବାଘ ଭେଙ୍କୀ **बघ जङ** ଫୁଡ଼ିକି କରେ; ସ୍ୱର ଓ ଅଙ୍ଗଭଙ୍ଗି ଆଦି—
1. The demeanour and poses of a tiger to frighten a man on seeing the latter.
୨ । କିଂକର୍ତ୍ତବ୍ୟବିମୂଢ଼ତା—2. Bewilderment.

ବାଘ ମାଛି—ପ୍ରାଦେ. (ଗଡ଼ଜାତ) ବି—ବାଘରା ମାଛି (ଦେଖ)
Bāgha māchhi Bāgharā māchhi (See)

ବାଘ ମାମୁଁ—ଦେ. ବି. ( ଶିଶୁ ଭାଷା )—ଶିଶୁମାନଙ୍କର କଳ୍ପିତ ମାଉଳ Bāgha māmuñ ସମ୍ପର୍କୀୟ ବାଘ (ଜହ୍ନ ଯେପରି ସବୁ ଶିଶୁଙ୍କର ବାঘ মামা ମାମୁଁ ବାଘ ମଧ୍ୟ ସେହିପରି କଳ୍ପିତ ହୁଏ)—1. The **बाघ मामा** tiger adddressed as the maternal uncle of every child in nursery stories.
୨ । କୌଣସି ପ୍ରଚଣ୍ଡ ଆତ୍ମୀୟ ବ୍ୟକ୍ତି—
2. A ferocious relation.

ବାଘ ମୁରଗିଆ—ପ୍ରାଦେ. ( ବାଲେଶ୍ୱର ) ବିଣ—ଧୋଇରେ ଧାନକ୍ଷେତ Bāgha muragiā ନଷ୍ଟ ହେବା ପରେ କିଆରରେ ଅବଶିଷ୍ଟ ଥିବା
ବାଘ ମିରଗିଆ } ଅନ୍ୟରୂପ ( ଧାନ ଗଛ )—(paddy plants)
ବାଘ ମୁ(ମି)ରୁଗା } Remaining in the field after the crops are destroyed by flood.

ବାଘ ମୁହାଁ—ଦେ· ବି—ଚୋରମାନଙ୍କୁ ଚୋରି କରିବାକୁ ଯିବା ସମୟରେ Bāgha muhāñ ଲୋକେ ଚିହ୍ନି ନ ପାରିବେ ବୋଲି କପାଳ, **कपर मुहाँ** କାନ ଓ ଓଠ ଆଦିକୁ ଘୋଡ଼ାଇ ବାନ୍ଧିଥିବା ଠେକା—
A mode of tying a long strip of cloth round the face and the chin; resorted to by robbers as a mask against detection.
ଦେ. ବି—ବାଘମୁଖ ପରି ବିକଟ ମୁଖବିଶିଷ୍ଟ (ବ୍ୟକ୍ତି)—
**सेरदहाँ** Ferocious looking (person),

ବାଘମୁ(ମୋ)ହିଁ—ଦେ. ବି—୧ । ବାଘମୁହାଁ ( ଦେଖ )
Bāgha mu(mo)hiñ 1. Bāgha muhāñ ( See )
**परदा** ୨ । ଘର ଭିତରକୁ ପଶିବା ଦୁଆରଆଗରେ ଘର ମଧ୍ୟରେ ଦିଆଯାଇଥିବା ଅଡ଼ କାନ୍ଥ (ଯେଉଁ କାନ୍ଥ ଯୋଗୁଁ ଆଗନ୍ତୁକ ବ୍ୟକ୍ତି ହଠାତ୍ ଗୃହମଧ୍ୟକୁ ପଶି ନ ପାରି ବାଉଳା ହୁଏ ଓ ଯେଉଁ କାନ୍ଥ ପ୍ରତିବନ୍ଧକ ଥିବାରୁ ବାହାରରେ ଠିଆ ହେବା ଲୋକକୁ ଘରର ଭିତର ଦେଖା ଯାଏ ନାହିଁ )—2. A small wall raised inside the room adjoining the entrance, so that a new comer is puzzled when trying to enter the room.
୩ । ପୋଖରୀର ପଥର ପାହାଚମାନଙ୍କ ମଝିରେ ମଝିରେ ପାଣି ଉପରକୁ ବାହାରିଥିବା ପଥରଖଣ୍ଡ—3. Stones projecting over the flight of steps in a tank.
[ ଦ୍ର—ଭୁବନେଶ୍ୱର କେଦାରଗୌରୀ କୁଣ୍ଡର ପାହାଚରେ ଏପରି ବାଘମୁହିଁ ପଥର ସବୁ ଅଛି । ଏ ପଥର ଉପରେ ଲୋକେ ବସି ଲୁଗା କାଚନ୍ତି ଓ ଗୋଡ଼ହାତ ଆଦି ଧୁଅନ୍ତି ।]

ବାଘର୍ ଚରା—ପ୍ରାଦେ. (ସମ୍ବଲପୁର) ବି.—ପୁରୁଷଙ୍କୁ ଦିଆଯିବା ଗାଳି Bāghar charā ବିଶେଷ; ବାଘଛିଆ—A term of abuse applied to males. (in Sambalpur)

ବାଘର ଘରେ ମିରିଗର ନାଟ—ଦେ. ନ୍ୟାୟବାକ୍ୟ—( ସଂ. ବ୍ୟାଘ୍ରସ୍ୟ Bāghara ghare mirigara nāṭa ଗୃହେ ମୃଗସ୍ୟ ନୃତ୍ୟଂ)—
বাঘের ঘরে ঘোগের বাসা ମାଲିକ ବା ଗୃହସ୍ୱାମୀଙ୍କ ଅନୁପସ୍ଥିତିରେ **शेरके घरमे सिआर कुदना** ବା ମୃତ୍ୟୁ ପରେ ତାଙ୍କ ଘରେ ନୀଚ ବ୍ୟକ୍ତିମାନଙ୍କର କ୍ରୀଡ଼ା ବା ବ୍ୟବହାର—
An analogical sentence applied to a case where lesser people or mean persons reign supreme in the family in the absence or on the death of the master.

ବାଘର ମାଉସୀ—ଦେ. ବି.—(ସଂ. ବ୍ୟାଘ୍ର+ମାତୃସ୍ୱସା)—୧ । (ଏହାର Bāghara māusi ରୂପ ସଙ୍ଗେ ବାଘର ସାଦୃଶ୍ୟ ଥିବାରୁ )—
বাঘের মাসী ୧ । ବିରାଡ଼ି—1. Cat. ୨ । ନିର୍ଭୀକ ବ୍ୟକ୍ତି—
**बाघकि माउसि** 2. Fearless person.

ବାଘରା—ଦେ. ବିଣ.—୧ । ବାଘ ସମ୍ବନ୍ଧୀୟ—
Bāgharā 1. Pertaining to the tiger.
বাঘটিয়া; বাঘাটে (ଯଥା—ବାଘରା ଗନ୍ଧ ।)
**बाघपेसा** ୨ । ବାଘ ପରି—2. Resembling the tiger.
ଦେ. ବି.—ବାଘରା ମାଛି (ଦେଖ)—
Bāgharā māchhi (See)

ବାଘରା ମାଛି—ଦେ. ବି.—ଏକପ୍ରକାର ବଡ଼ ମହୁମାଛି—A species Bāgharā māchhi of big bees; Apis Dorsata.
বাঘা মৌমাছী [ଦ୍ର—ଏମାନଙ୍କର ନାହୁଡ଼ ଅଛି । ଏମାନେ ବଡ଼ **बडी मधुमक्खी** ବଡ଼ ଫେଣା ବାନ୍ଧି ମହୁ କରନ୍ତି । କେହି ଏମାନଙ୍କ (ବାଘରା ମହୁମାଛି—ଅନ୍ୟରୂପ) ଫେଣାକୁ ଭାଙ୍ଗିଲେ ଏମାନେ ତାକୁ ବେଢ଼ି ଯାଇ ଅତି କଲବଲ କରି ମାରନ୍ତି । ଏମାନଙ୍କ ଦଂଶନରେ ଆହତ ବ୍ୟକ୍ତିର ଦେହ ଗଡ଼କାଠ ପରି ଫୁଲିଯାଏ । ]

ବାଘରା ମୁହାଁ—ଦେ. ବିଣ. ପୁଂ—କଥା କହିବା ସମୟରେ ଯେଉଁ Bāgharā muhāñ ଲୋକଙ୍କର ପାଟିରୁ ଦୁର୍ଗନ୍ଧ ବାହାରେ—
(ବାଘରାମୁହିଁ—ସ୍ତ୍ରୀ) (a person) Having an offensive **मुहँ गन्धक ; मुहँ महका** smell in the mouth.

ବାଘସିଂହ—ପ୍ରାଦେ. (ଗଞ୍ଜାମ) ବି.—ଦୈହିକ ବଳଶାଳୀ ବ୍ୟକ୍ତି ପ୍ରତି
Bāgha siṁha ରାଜଦତ୍ତ ଉପାଧିବିଶେଷ—A title conferred
by kings on persons of strong physique.

ବାଘା—ଦେ. ବିଣ.—୧ । ବାଘପରି ବିକଟ ମୁଖବିଶିଷ୍ଟ—
Bāghā 1. Having a face as fierce as that of a
বাঘা **बाघा** tiger.
(ଯଥା—ବାଘା କୁକୁର ।)
୨ । ବୃହତ୍; ବଡ଼—2. Big.

ବାଘାମ୍ବର(ରି)—ଦେ. ବି. ( ସଂ. ବ୍ୟାଘ୍ର+ଅମ୍ବର )—୧ । ସାଧୁମାନେ
Bāghāmbara(ri) ଯେଉଁ ବ୍ୟାଘ୍ରଛାଲ ଉପରେ ବସନ୍ତି—
বাঘাম্বর 1. Tiger hide on which anchorites sit.
**बघंबर** ୨ । ବାଘଛାଲ ପରି ଚିତ୍ରିତ କମ୍ବଳ—2. A blanket
or rug appearing like a tiger skin.
୩ । ବସ୍ତ୍ରରୂପେ ବ୍ୟବହୃତ ବାଘଚମ—3. Tiger
skin used as cloth.
ବିଣ.—ବ୍ୟାଘ୍ରଚର୍ମ ପରିଧାନକାରୀ—Wearing a tiger
skin.

ବାଘୁଆ (ଇତ୍ୟାଦି)—ଦେ. ବିଣ.—ବାଘରା ଇତ୍ୟାଦି (ଦେଖ)
Bāghuā (etc) Bāgharā etc. (See)

ବାଘୁଆ ଗନ୍ଧ—ଦେ. ବି.—ବାଘର ଦେହରୁ ବାହାରିବା ଗନ୍ଧ ପରି କଞ୍ଚା
Bāghuā gandha ବା ସଢ଼ା ମାଂସର ଗନ୍ଧ—An animal
বাঘাটে গন্ধ stench (like that of raw or rotten flesh
**बाघ पैसा गंध** as is emitted from the body and
mouth of a tiger.)

ବାଘୁଆ ଜାଡ଼—ଦେ. ବି—ଘୋର ଶୀତ (ଯଥା—ମାଘମାସର ଶୀତ)—
Bāghuā jārḍa Extreme cold (as is felt in the
(ବାଘୁଆଶୀତ—ଅନ୍ୟରୂପ) month of Māgha).
**बडाजोर शीत**

ବାଘୁଆ ଫାଶ—ଦେ. ବି. (ବ୍ୟାଘ୍ର+ପାଶ)—୧ । ଦଉଡ଼ିରେ ପକାଯିବା
Bāghuā phāśa ଏକପ୍ରକାର ଦୋହୋର ଗଣ୍ଠି—1. Reef-
**वघबंध** knot; clove hitch; a double knot made
with a string. ୨ । ବାଘକୁ ଧରିବାପାଇଁ ବ୍ୟବହୃତ
ଦଉଡ଼ିର ଜାଲ—2. A snare for catching a
tiger.

ବାଘୁଆ ବି(ଭି)ରୁଡ଼ି—ଦେ. ବି. ( ସଂ. ବ୍ୟାଘ୍ର+ବରଲ )—ଏକପ୍ରକାର
Bāghuā bi(bhi)rurḍi ବଡ଼ ବିରୁଡ଼ି—A species of big
বাঘা ভীমরুল **भमडा विढनी** wasp.

ବାଘୁଆରି—ଦେ. ବି—ଜଇସଣ୍ଢା ( ଦେଖ )
Bāghuāri Jaisaṇḍā ( See )

ବାଘୁଣୀ—ଦେ. ବି. ସ୍ତ୍ରୀ. ( ସଂ. ବ୍ୟାଘ୍ରୀ )—୧ । ମାଈବାଘ—1. A
Bāghuṇī tigress. ୨ । ବାଘପରି ଦୁଷ୍ଟା ସ୍ତ୍ରୀ—2. Vixen;
বাঘিনী; বাঘী **बाघीन** virago.

ବାଘୁତି—ଦେ. ବି—ବାଗୁତି ( ଦେଖ )
Bāghuti Bāguti ( See )

ବାଘେଟା—ଦେ. ବି—ଏକପ୍ରକାର ଛୋଟ ହେଟା—
Bāgheṭā **बघेरा** A kind of small hyena.

ବାଙ୍କ୍—ବୈଦେ. ବି. (ଇଂ)—ଟଙ୍କା ଅଦଳ ବଦଳ କାରବାର କରିବା କାର୍ଯ୍ୟାଳୟ—
Bāṅk ব্যাঙ্ক; বেঙ্ক **बैंक** Bank.
ପ୍ରାଦେ. ( ମେଦିନୀପୁର ) ବି. ( ତୁଳ. ବଂ. ବାଙ୍ଗୀ )—ବାହୁଙ୍ଗି
( ଦେଖ )—Bāhuṅgi ( See )

ବାଙ୍କଶିଆଳି ଦେବା—ପ୍ରାଦେ. ( ଯାଜପୁର ) କ୍ରି—ବାଆଁ ଖାଡ଼ୁଆ ଦେବା;
Bāṅkśiāḷi deba To evade a person.
[ ଦ୍ର—ବିଲୁଆକୁ କୁକୁର ଗୋଡ଼ାଇଲେ ବିଲୁଆ ଯେଉଁ ପରି
ବକ୍ରଗତି କରିବାରୁ କୁକୁର ତାକୁ ଧରି ପାରେ ନାହିଁ, ସେହିପରି
ବକ୍ରଗତିରୁ ଏ ଶବ୍ଦର ଅର୍ଥ ସୂଚନା । ]

ବାଙ୍କ—ଦେ. ବିଣ. ( ସଂ. ବକ୍ର, ବଙ୍କ )—ବକ୍ର; ବଙ୍କା—
Bāṅka বাঁক **बांक** Curved bent; crooked.
ଦେ. ବି—୧ । ନଈ ବା ରାସ୍ତା ଯେଉଁ ସ୍ଥାନରେ ବଙ୍କା ହୋଇ-
ଥାଏ; ମୋଡ଼—1. Curvature; a bend in a
river or road etc. ୨ । ଶୃଙ୍ଖି ଧରିବାପାଇଁ ବ୍ୟବହୃତ
ଲୁହାର ଯନ୍ତ୍ରବିଶେଷ—2. An iron vice. ୩ । ସ୍ତ୍ରୀ-
ଲୋକଙ୍କର ଗୋଡ଼ରେ ପିନ୍ଧିବା ଅଳଙ୍କାରବିଶେଷ; ବାଙ୍କି;
ଏକପ୍ରକାର ବଳା—3. A curved anklet.
ସୁନା ବାଙ୍କ ଥିଲେ ବଜଉ—ତଗ ।

ବାଙ୍କଚାହାଣି—ଦେ. ବି—ବକ୍ରଦୃଷ୍ଟି; ଅପାଙ୍ଗଦୃଷ୍ଟି—Side-long
Bāṅkachāhāṇi বাঁকানয়ন; বাঁকাচাউনী glance.
**तिरछी चितवन**

ବାଙ୍କଚୂଳିଆ—ଦେ. ବି. ( ସଂ. ବକ୍ରଚୂଡ଼ )—ଯାହାର ମୁଣ୍ଡର ଚୂଳ ବା
Bāṅkachūḷiā ଜଟ ବକ୍ରଭାବରେ ସଜ୍ଜିତ ହୋଇଥାଏ—
বাঁকাশিখী Having a slanting tuft on the head.
**वंकचूलीया** ଦେ. ବି—ଶ୍ରୀକୃଷ୍ଣଙ୍କର ବିଶେଷଣାତ୍ମକ ନାମବିଶେଷ—
An epithet of Srikṛushna.

ବାଙ୍କଛୁରି—ଦେ. ବି—ବକ୍ରାଗ୍ର ଛୁରିକା; ଯେଉଁ ଛୁରିର ଅଗ ବଙ୍କା—
Bāṅkachhuri A curved knife.
বাংকাছুরী [ ଦ୍ର—ସାଧାରଣତଃ ମଲ୍ଲ ଓ ଶିକାରୀମାନେ ଏହା
**बाँक** ବ୍ୟବହାର କରନ୍ତି । ]

ବାଙ୍କଟାଙ୍କ—ଦେ. ବି. ( ବଙ୍ଗଳାରୁ ଅନୁକୃତ; ନିରର୍ଥକ ସହଚର )—
Bāṅkaṭāṅka ବଙ୍କାଟଙ୍କା; ବକ୍ର—Crooked.
বাঁকাটাঁকা **बांकाटांका**

ବାଙ୍କଟେରା—ଦେ. ବିଣ. ପୁଂ—ଅଳ୍ପ ଟେରା—Slightly squint-
Bāṅkaṭerā স্বল্প টেরা **कुछटेरा** eyed.
(ବାଙ୍କଟେରୀ—ସ୍ତ୍ରୀ)

ବାଙ୍କଡ(ଡେ)ଉଁରିଆ—ଦେ. ବି ( ସଂ. ବକ୍ର+ଡମରୁ )—ସ୍ତ୍ରୀଲୋକଙ୍କର
Bāṅkaḍa(ḍe)uṅriā ବାହୁରେ ପିନ୍ଧିବା ଡେଉଁରିଆଯୁକ୍ତ ଏକ-
তাবিজ ପ୍ରକାର ବାହୁବନ୍ଧ—A kind of armlet worn
**बांक** by females.

ବାଙ୍କଡ଼ା—ଦେ. ବିଣ—ଈଷତ୍ ବକ୍ର—Slightly curved or bent.
Bāṅkarḍā বাঁকড়া, বাঁকুয়া **बांका**

**ବାଙ୍କନଲ(ଳି)**—ଦେ· ବି. (ସଂ. ବଙ୍କ + ନଲ)—ବଙ୍କିଆ ଯେଉଁ ବଙ୍କମୁଖ
Bāṅkanala(ḷi) ସରୁ ଧାତବ ନଳଦ୍ୱାରା ଦୀପଶିଖାକୁ ଫୁଙ୍କି
ବାଙ୍କନଲ; ଦେଇ ସୁନା ଅଳଙ୍କାରର କୌଣସି ଅଂଶକୁ ତରଳାଏ
**बंकनाल; बाँकनल** ବା କୌଣସି ଦୂର୍ ଅଳଙ୍କାରକୁ ଝାଳେ—
Blow pipe.

**ବାଙ୍କନିଧି**—ଦେ. ବି—୧ । ଶ୍ରୀକୃଷ୍ଣଙ୍କ ବିଶେଷଣ—1. An epithet
Bāṅkanidhi of Śrikrushṇa. ୨ । ପୁରୁଷଙ୍କୁ ଦିଆଯିବା
बाँकाराय **बाँकाविहारी** ନାମ—2. Name given to males.

**ବାଙ୍କମଲ**—ଦେ. ବି. ( ସଂ. ବକ୍ରବଲୟ )—ଗୋଡ଼ର ବଳାଗଣ୍ଠି ତଳେ
Bāṅkamala ପିନ୍ଧାଯିବା ଏକପ୍ରକାର ବଙ୍କ ବଳୟ; ବାଙ୍କି;
बाँकमल; बाँकी **बांक** ବାଙ୍କିଆ—A crooked anklet.

**ବାଙ୍କମୁଣି**—ଦେ· ବି—ଏକପ୍ରକାର କ୍ଷୁଦ୍ର ପକ୍ଷୀ—
Bāṅkamuṇi A small species of bird.

**ବାଙ୍କଶାଳ**—ପ୍ରାଦେ. (ବାଲେଶ୍ୱର) ବି. (ଜାହାଜିଆ ଶବ୍ଦ)—୧ । ବନ୍ଦର
Bāṅkaśāḷa ନଦୀତଟବର୍ତ୍ତୀ ବାଣିଜ୍ୟ ଗୋଦାମ—1.(nautical)
बाँकसाल A godown in a port on the bank of a
**बंकसाल** river or sea.

[ଦ୍ର—କଲିକତାରେ ଗଙ୍ଗାନଦୀର କୂଳଠାରୁ ଖଣ୍ଡିଦୂରରେ ବାଙ୍କସାଲ ଷ୍ଟ୍ରୀଟ (Bankshall Street) ନାମରେ ଗୋଟିଏ ଗଳି ଅଛି । ]

୨ । ଜାହାଜର ଯେଉଁ କୋଠରୀରେ ଜାହାଜର ଦଉଡ଼ି, ଶିକୁଳିଆଦି ରଖାଯାଏ—2. A cabin of a ship used for storing the ropes, chains etc.

**ବାଙ୍କ ସଣ୍ଡୁଆଶି**—ଦେ. ବି. (ସଂ. ବଙ୍କ ଓ ସନ୍ଦଂଶ)—ଏକ ପ୍ରକାର
Bāṅka sanduāsi ବଙ୍କ ଓ ଲମ୍ବ ମୁଖ ଚିମୁଟା; ବଙ୍କମୁଖ—
ବାଙ୍କ ସାଁଡ଼ାଶୀ **बाँका सँडसी** Tongs.

**ବାଙ୍କ ସୁନ୍ଥା**—ଦେ. ବି. (ସଂ. ବଙ୍କ+ସୀମନ୍ତ)—ମୁଣ୍ଡର ସାମନା ପାଖ
Bāṅka sunthā ବାଳକୁ କପାଳର ଏକ ପାଖରେ ଦ୍ୱିଭାଗ କରି
बाँका सिँथौ କୁଣ୍ଡାଇ ସଜାଇବା କେଶବିନ୍ୟାସ—A mode of
**टेढ़ि माँग** dressing the hair by combing it and parting it on one side of brow.

**ବାଙ୍କି**—ଦେ. ବି.—୧ । (ନାମ) କଟକ ଜିଲ୍ଲାର ଜିଲ୍ଲାଜାତ ଗୋଟିଏ
Bāṅki ଖାସମହାଲ ବା ସରକାରୀ ଜମିଦାରୀ—1. Name of a Government estate in the district of Cuttack.

[ଦ୍ର—ପ୍ରଥମେ ଏ ଗୋଟିଏ ଗଡ଼ଜାତ ରାଜ୍ୟ ଥିଲା । ଏ ରାଜ୍ୟର ରାଜା କେତେକ ବ୍ରାହ୍ମଣଙ୍କ ଉପରେ ଅତ୍ୟାଚାର କରି କେତେଜଣଙ୍କୁ ମାରି ପକାଇଥିବାରୁ ୧୮୪୦ ଖ୍ରୀଷ୍ଟାବ୍ଦରେ କମିଶନର ମିଲ୍ସ ଉକ୍ତ ରାଜାଙ୍କୁ ବନ୍ଦୀ କଲେ ଏବଂ ବାଙ୍କିକୁ ଖାସ୍ କରି କଟକ ଜିଲ୍ଲା ସାମିଲ କଲେ । ବାଙ୍କି ଖାସମହାଲର ଖଜଣାଅସୁଲଭାର ପ୍ରଥମେ ଜଣେ ତହସିଲଦାରଙ୍କ ଉପରେ ଥିଲା । ଏବେ ସେଠାରେ ଜଣେ ଡେପୁଟି କଲେକ୍ଟର ରହିକ୍ତି ଓ ସରକାରଙ୍କ ପକ୍ଷରୁ ଖଜଣା ଆଦାୟ କରାଯାଏ । ବର୍ତ୍ତମାନ ସେଠାରେ ଗୋଟିଏ ହାଇସ୍କୁଲ ହୋଇଅଛି ।]

୨ । ଏକପ୍ରକାର ବକ୍ରବଳୟ; ବାଙ୍କମଲ—
2. A crooked anklet.

ଦେ. ବିଣ—ବଙ୍କା—Curved bent.

ପ୍ରାଦେ. (ବାଲେଶ୍ୱର) ବି—ମାଛ ଧରିବାର ଯନ୍ତ୍ରବିଶେଷ—
A kind of implement for catching fish.

[ଦ୍ର—ଏହା ବାଉଁଶ କାଠିରେ ପ୍ରସ୍ତୁତ ହୁଏ । ଏହାର ଶେଷ ଅଂଶ ବା ଅଗ୍ରଭାଗ ବଙ୍କା ହୋଇଥାଏ । ଅଳ୍ପ ପାଣି ବହି ଯାଉଥିବା ସ୍ଥାନରେ ଏହା ବ୍ୟବହୃତ ହୁଏ । ]

**ବାଙ୍କିଆ**—ଦେ. ବିଣ—ବଙ୍କ; ବଙ୍କା—
Bāṅkiā बाँका **बांका** Crooked.

ବଙ୍କ ଗଳି, ବାଙ୍କିଆ କଟିସ ଭଙ୍ଗ ଅଗଳି—ପ୍ରହେଳିକା ।

ଦେ. ବି—୧ । ବାଙ୍କି ( ୨ ) ( ଦେଖ )
1. Bāṅki ( 2 ) ( See )

ପାଉଁସ ବାଙ୍କିଆ କଳ ସେ ସୁନାର, କେହିତ ନହିନ୍ତି ସେଠ ।
ଉକାଗ· ଶାଅରୁଥ ବାହା ।

୨ । ଏକ ପ୍ରକାର ଶିବିକା ( ଏହାର ବାଉଁଶ ବଙ୍କା )—
2. A kind of sedan chair or Palki with a crooked pole.

**ବାଙ୍କି ବସିବା**—ଦେ. କ୍ରି. ( ବଙ୍ଗଳାରୁ ଅନୁକୃତ )—
Bāṅki basibā ଅଡ଼ି ବସିବା; ଏକ ଅଣ୍ଟିଆ ଜିଦ୍ କରିବା—
बाँकिया बसा, बेँके बसा To become obstinate.
**हठ करना** (ବାଙ୍କେଇ ବସିବା—ଅନ୍ୟରୂପ)

**ବାଙ୍କିବା**—ଦେ. କ୍ରି. ( ସଂ. ବଙ୍କୀଭବ )—୧ । ବଙ୍କ ହେବା—
Bāṅkibā 1. To become bent.
बाँका ୨ । ବାଙ୍କି ବସିବା; ଏକଜିଦ ଧରିବା—2. To be
**बांका होना** insistent; to become obstinate.
(ବାଙ୍କି ଯିବା— ଅନ୍ୟରୂପ)

**ବାଙ୍କି ମୁହା(ହାଁ)ଣ**—ଦେ. ବି—ପୁରୀର ପୂର୍ବ ଦିଗରେ ଅବସ୍ଥିତ ସମୁଦ୍ର—
Bāṅki muhā(hāñ)ṇa The sea to the east of the town of Puri.

[ଦ୍ର—ଏଠାରେ ସମୁଦ୍ରର ଉପକୂଳ ବଙ୍କା ହୋଇ ଦକ୍ଷିଣ ଦିଗକୁ ବୁଲି ଯାଇଅଛି । ]

**ବାଙ୍କୁଲି**—ଦେ. ବି—ଏକ ପ୍ରକାର ବଙ୍କା ରତ୍ନ ଅଭରଣ—A kind of
Bāṅkuli ornament of gems.

**ବାଙ୍କେଇବା**—ଦେ. କ୍ରି· ( ସଂ. ବଙ୍କୀକରଣ )—କୌଣସି ବସ୍ତୁକୁ
Bāṅkeibā ବଙ୍କ କରିବା—To bend a thing.
बाँकान **बाँकना**

**ବାଙ୍କେଇ ଯିବା**—ଦେ. କ୍ରି—ବାଙ୍କିବା; ବକ୍ରହେବା—
Bāṅkei jibā To be curved.

ଦେ. ବିଣ—ହାତ ମୁଠା ପାଖରେ ବଙ୍କା ( ବାଡ଼ି )—
Curved at the handle (stick).

**ବାଙ୍କେଡ଼ି**—ଦେ. ବି—ବଙ୍କ ଯୁଦ୍ଧାସ୍ତ୍ରବିଶେଷ; ବାକେଡ଼ି; ବାଙ୍କୋଡ଼ି—
Bāṅkerdi A crooked weapon of offence.
**बांकडोरी**

ବାଙ୍କେଡ଼ିବା—ଦେ. କ୍ରି.—ବଙ୍କେଇଯିବା; ବକ୍ର ହୋଇଯିବା—
Bānkerdibā To bend; to be bent.
বেঁকেযাওয়া বাঁকাহোনা (ବାଙ୍କେଡ଼ିଯିବା—ଅନ୍ୟରୂପ)

ବାଙ୍କୋଇ—ଦେ. ବି—ଏକପ୍ରକାର ମୋଟ ଧାନ—
Bānkoi বাঁকুই A species of coarse paddy.

ବାଙ୍କୋଇ ମହୀପାଳ—ଦେ. ବି—ଏକପ୍ରକାର ମୋଟ ଧାନ—
Bānkoi mahīpāla A species of coarse paddy.
বাঙ্কসাল, বাঙ্কচুর

ବାଙ୍ଗ(ଙ୍ଗୁ)ର(ରା)—ଦେ. ବିଣ. ପୁଂ (ସଂ. ବଙ୍କୁର; ବାମନ; ସଂ. ବଣ୍ଡ=
Bānga(ṅgu)ra(rā) ଖର୍ବକାୟ)—ଖର୍ବକାୟ—Dwarfish.
[ବାଙ୍ଗ(ଙ୍ଗୁ)ରୀ—ସ୍ତ୍ରୀ] ନୁହେ ଡେଙ୍ଗା ଅଥବା ବାଙ୍ଗର—ଲାବଣ୍ୟବତୀ. ଉପେନ୍ଦ୍ରଭଞ୍ଜ।
বেঁটে(ঠে),বাঙ্গুর বোনা

ବାଙ୍ଗର ମାଧେ(ଧୋ)ଇ—ଦେ. ବି—ଏକପ୍ରକାର ସରୁ ଧାନ—
Bāngara mādhe(dho)i A species of fine paddy.

ବାଙ୍ଗା—ପ୍ରାଦେ (ବସ୍ତର) ବି.—ବାଇଗଣ—
Bāngā Brinjal.

ବାଙ୍ଗାଲ୍—ଦେ. ବିଣ (ବଙ୍ଗଳାରୁ ଅନୁକୃତ)—ପୂର୍ବବଙ୍ଗୀୟ—
Bāngāl Belonging to East Bengal.
বাঙ্গাল ଦେ. ବି—ପୂର୍ବବଙ୍ଗ ଅଧିବାସୀ—
Resident of East Bengal.

ବାଙ୍ଗିଣ—ପ୍ରାଦେ (ଗଞ୍ଜାମ) ବି—ବାଇଗଣ—
Bāngiṇa Brinjal.

ବାଙ୍ମତୀ—ସଂ. ବି (ନାମ)—ନେପାଳର ନଦୀବିଶେଷ—
Bāṅmatī Name of a river in Nepal.
[ଦ୍ର—ବରାହପୁରାଣରେ ଏ ନଦୀକୁ ଗଙ୍ଗାଙ୍କଠାରୁ ଅଧିକ ପବିତ୍ର ବୋଲି ବୋଲା ଯାଇଅଛି। ଏଥିରେ ସ୍ନାନ କଲେ ଓ ଏହା କୂଳରେ ମଲେ ବିଷ୍ଣୁଲୋକ ପ୍ରାପ୍ତି ହୁଏ—ହିଂ. ଶ.]

ବାଙ୍ମନ—ଦେ. ବି (ଦ୍ୱନ୍ଦ୍ୱ; ବାକ୍+ମନଃ; ଦ୍ୱିବଚନ=ବାଙ୍ମନସୌ)—
Bāṅmana ମନୋବଚନ; ମନ ଓ ବଚନ; ବାକ୍ୟ ଓ ମନ—
Word and mind.
[ଦ୍ର—ସଂସ୍କୃତରେ ବାକ୍ ଓ ମନଃ ଶବ୍ଦ ଦ୍ୱନ୍ଦ୍ୱରେ ଦ୍ୱିବଚନାନ୍ତ ବାଙ୍ମନସୌ ଶବ୍ଦ ହୁଏ ଓ ସମସ୍ତ ପଦରେ ଏ ଶବ୍ଦ ଅନ୍ୟ ଶବ୍ଦ ପୂର୍ବେ ଲାଗିଲେ ବାଙ୍ମନଃ ଆକାର ଧାରଣ କରେ, ଯଥା—ବାଙ୍ମନୋଯୋଗ, ବାଙ୍ମନଃସଂଯୋଗ।]

ବାଙ୍ମୟ—ସଂ. ବିଣ· ( ବାକ୍+ଅପୃଥକ୍ ଭାବ ଅର୍ଥରେ ମୟ )—
Bāṅmaya ୧। ବାକ୍ୟାତ୍ମକ—1. Composed or consis-
(ବାଙ୍ମୟୀ—ସ୍ତ୍ରୀ) ting of words. ୨। ବାଗ୍ମୀ—2. Eloquent.
୩। ବାକ୍ୟରେ ପ୍ରକାଶିତ—3. Verbal.
ସଂ. ବି—୧। ବକ୍ତୃତା ( ଶବ୍ଦ କଳ୍ପଦ୍ରୁମ )—1. Speech; address. ୨। ସାହିତ୍ୟ (ଶ. କ)—2. Literature.
୩। ଅଳଙ୍କାର ଶାସ୍ତ୍ର (ଶ. କ)—4 Rhetoric.
୪। କାବ୍ୟ ଶାସ୍ତ୍ର (ଶ. କ)—4. Epic.

ବାଙ୍ମୟ ତପଃ—ସଂ· ବି—ବାକ୍ୟ ଦ୍ୱାରା ସାଧିତ ତପସ୍ୟା—
Bāṅmaya tapah Austerity through words.
(ଶାରୀର ତପଃ—ଦ୍ରଷ୍ଟବ୍ୟ) [ଦ୍ର—ଭଗବଦ୍ଗୀତା ସପ୍ତଦଶ ଅଧ୍ୟାୟ ପଞ୍ଚଦଶ ଶ୍ଳୋକରେ ଅନୁଦ୍ବେଗକର ବାକ୍ୟ, ପ୍ରିୟ ଓ ହିତ ବାକ୍ୟ, ସତ୍ୟ, ସ୍ୱାଧ୍ୟାୟାଭ୍ୟସନ (ବେଦାଭ୍ୟାସ)କୁ ବାଙ୍ମୟ ତପଃ ବୋଲା ଯାଇଅଛି।]

ବାଙ୍ମୟୀ—ସଂ· ବି. ସ୍ତ୍ରୀ. (ବାଙ୍ମୟ+ସ୍ତ୍ରୀ. ଈ)—ସରସ୍ୱତୀ (ଶ୍ଳୋକନନ୍ଦ)—
Bāṅmayī The Goddess of learning.

ବାଙ୍ମୁଖ—ସଂ. ବି. ( ବାକ୍+ମୁଖ=ଆରମ୍ଭ )—୧। ବାକ୍ୟାରମ୍ଭ;
Bāṅmukha ଅବତରଣିକା; ମୁଖବନ୍ଧ—1. Introduction.
୨। ଗଦ୍ୟ କାବ୍ୟ; ଉପନ୍ୟାସ (ହି. ଶ)—2. Novel.

ବାଙ୍ମୂଳ—ଦେ. (ଗଞ୍ଜାମ) ବି. (କଚେରିଆ) (ବାକ୍+ମୂଳ)—
Bāṅmūḷa କୋର୍ଟରେ ସାକ୍ଷୀମାନଙ୍କ ଯବାନବନ୍ଦି—
Deposition of witnesses in court.

ବାଙ୍ଯମ—ସଂ. ବି. ପୁଂ ( ବହୁବ୍ରୀହି; ବାକ୍+ଯମ )—
Bāṅ-jama ୧। ମୁନି ( ହି. ଶ )—1. A sage.
୨। ମୌନବ୍ରତୀ ବ୍ୟକ୍ତି ( ହି. ଶ )—2. A person observing the vow of silence.

ବାଚ୍‌ବା—ପ୍ରାଦେ. (ଭଦ୍ରିଭାଷା) କ୍ରି—ବଳିବା; ବଳ ପଡ଼ିବା—
Bāch-bā To exceed.

ବାଚ—ଦେ. ବି—ବିବାହ ବେଦୀରେ ବର କନ୍ୟାଙ୍କର ଯେଉଁ ଦୁଇ
Bācha ଗୃହର ମୁଣ୍ଡରେ ଗଣ୍ଠି ପଡ଼େ ତହିଁ ମଧ୍ୟରୁ କନ୍ୟାର ଓଢ଼ଣୀ—The bridal scarf.
ସଂ. ବି—ବଚୁଆ ମାଛ (ଦେଖ)—Bachuā fish.

ବାଚଂଯମ—ସଂ. ବିଣ. ପୁଂ. (ବାଚଂ+ଯମ୍ ଧାତୁ+କର୍ତ୍ତୃ. ଅ)—
Bāchaṁjama ୧। ମୌନୀ—1. Silent; taciturn.
(ବାଚଂଯମା—ସ୍ତ୍ରୀ) ୨। ମୌନବ୍ରତୀ—2. Practising taciturnity as a vow.
ସଂ· ବି. ପୁଂ—ମୌନବ୍ରତୀ ମୁନି—A sage who maintains the vow of rigid silence.

ବାଚକ—ସଂ. ବିଣ. ( ବଚ୍ ଧାତୁ+କର୍ତ୍ତୃ. ଅକ )—
Bāchaka ୧। କଥକ—1. Speaking. ୨। ରବକାରକ—
(ବାଚକା—ସ୍ତ୍ରୀ) 2. Uttering cries. ୩। ପୁରାଣ ପାଠକ—3. Reading or reciting the Purāṇas.
୪। ବାବଦୂକ; ବାକ୍ୟ ପ୍ରକାଶକାରୀ—4. Vocal.
୫। (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ ଯଥା—ବସ୍ତୁବାଚକ; ସ୍ନେହ ବାଚକ; କ୍ରିୟାବାଚକ) ଅର୍ଥ ପ୍ରକାଶକ; ଦ୍ୟୋତକ; ବୋଧକ—5. Expressive of; indicating.
ସଂ. ବି—ନାମ; ସଂଜ୍ଞା ( ହି. ଶବ୍ଦସାଗର )—
Name; definition.

ବାଚ କଡ଼ି—ଦେ. ବି—ଯୁଦ୍ଧାସ୍ତ୍ରବିଶେଷ—
Bācha karḍi A weapon of offence.

ବାଚନ—ସଂ. ବି. (ବଚ୍ ଧାତୁ ଣିଚ୍=ବାଚ ଧାତୁ+ଭାବ. ଅନ)—
Bāchana ୧। କହିବା—1. Speaking. ୨। ବୋଲିବା; ଆବୃତ୍ତି କରିବା—2. Reciting; repeating.
୩। ଅନ୍ୟ ଦ୍ୱାରା ବୋଲାଇବା—3. Recital through

another. ୪ । ଜଣାଇବା—4. Informing.
୫ । ପ୍ରତିପାଦନ (ତ୍ରି. ଷ)—5. Demonstration.
୬ । ଉଚ୍ଚାରଣ (ତ୍ରି. ଷ)—6. Pronunciation; utterance

ବାଚନକ—ସଂ. ବି. (ବାଚନ + କ)—ପ୍ରହେଳିକା—
Bāchanaka Riddle.

ବାଚନି—ଦେ. ବି. (ସଂ. ବଚନ)—୧ । ଉକ୍ତି ପ୍ରତ୍ୟୁକ୍ତି—
Bāchani 1. Dialogue. ୨ । ମୌଖିକ ଉତ୍ତର—
बात वत 2. Verbal reply, ୩ । ଉତ୍ତର ପ୍ରତ୍ୟୁତ୍ତର—
বাচনিক জবাব 3. Exchange of replies. ୪ । ପ୍ରତ୍ୟୁତ୍ତର-
4. Reply. ୫ । ମୌଖିକ ସମ୍ବାଦ—5. Verbal message.

ଦେ. ବିଣ. (ସଂ. ବାଚନିକ)—ମୌଖିକ—
Verbal; oral.

ବାଚନିକ—ସଂ. ବିଣ. (ବଚନ + କୃତାର୍ଥେ. ଇକ)—ମୌଖିକ—
Bāchanika Verbal; oral.

ବାଚନି କରିବା—ଦେ. କ୍ରି.—୧ । କଥା କହିବା—
Bāchani karibā 1. To talk.
বাচনিক জবাব দেওয়া ୨ । ମୌଖିକ ଉତ୍ତର ଦେବା—
मुहँ जबानी करना 2. To give a verbal reply.

ବାଚ(ଛ) ବିଚାର—ଦେ. ବି.—(ସଂ. ନିର୍ବାଚନ + ବିଚାର)—୧ । ବିଚାର
Bācha(chha) bichāra ପୂର୍ବକ ନିର୍ବାଚନ—1. Choice
বাচ(ছ) বিচার after consideration; well considered
बात बिचार choice. ୨ । ନ୍ୟାୟାନ୍ୟାୟ ବିବେଚନା—
2. Discrimination between right and wrong. ୩ । ସମାଲୋଚନା—3. Criticism.

ବାଚୟିତା—ସଂ. ବିଣ. ପୁଂ—(ବଚ ଧାତୁ ଣିଚ୍ ବାଚ ଧାତୁ + ତୃ)—
Bāchayitā ଯେ କୁହାଏ—Causing to speak.
(ବାଚୟିତ୍ରୀ—ସ୍ତ୍ରୀ)

ବାଚସି—ପ୍ରାଦେ. (ଉତ୍ତର ଭାଷା) ବି.—ଆଧିକ୍ୟ—
Bāchasi Excess.

ବାଚସ୍ପତି—ସଂ. ବିଣ. (ବାଚଃ = ବାକ୍ୟର + ପତି = ପ୍ରଭୁ)—ବାକ୍‌ପଟୁ—
Bāchaspati Skilled in speech.
ବାଚଃପତି }
ବା(ବ)ଚସାଂପତି } —ଅନ୍ୟରୂପ
ସଂ. ବି.—୧ । ବାକ୍ୟ ଶାସ୍ତ୍ର ବିଶାରଦ ପଣ୍ଡିତ—1. A master in the art of speech; a linguist.
୨ । ବୃହସ୍ପତି—2. Bṛuhaspati. ୩ । ବିଦ୍ୱାନ୍ ବ୍ୟକ୍ତି—
3. Learned person. ୪ । ପୁଷ୍ୟା ନକ୍ଷତ୍ର—4. The 8th asterism of the Indian system of astronomy.

ଦେ. ବି.—ପ୍ରସିଦ୍ଧ ପଣ୍ଡିତଙ୍କୁ ପଣ୍ଡିତସଭା ବା ରାଜାଙ୍କ ପ୍ରଦତ୍ତ ଉପାଧି (ଯଥା ତାରାନାଥ ତର୍କ ବାଚସ୍ପତି)—A title of distinction bestowed on very learned Pandits.

ବାଚସ୍ପତ୍ୟ—ସଂ. ବି. (ବାଚସ୍ପତି + ଭାବେ. ଯ)—ବାଗ୍ମିତା; ବାକ୍‌ପଟୁତା—
Bāchaspatya Oratory; eloquence.
বাচস্পত্য ଦେ. ବି.—ବଙ୍ଗୀୟ ପଣ୍ଡିତ ତାରାନାଥ ତର୍କ ବାଚସ୍ପତି
बाचस्पतत्र ପ୍ରଣୀତ ସଂସ୍କୃତ ଅଭିଧାନବିଶେଷ—A Sanskrit dictionary edited by Pandit Taranath of Bengal.

ବାଚ୍ଚା—ଦେ. ବି. (ବଙ୍ଗଳାରୁ ଅନୁକୃତ)—(ସଂ. ବତ୍ସ)—ପିଲା; ଶିଶୁ—
Bāchā বাচ্চা बच्चा 1. Child; infant.
ସଂ. ବି.—କଥା; ବାକ୍ୟ—1. Word; speech.
ବାଚ ଗୁରୁର୍ଯ୍ୟ ସଙ୍ଗେ ମିଶାଇ—ଅଭିମନ୍ୟୁ. ବଦଗ୍ଧ ଚିନ୍ତାମଣି ।
୨ । ପ୍ରତିଜ୍ଞା; ପ୍ରତିଶ୍ରୁତି—2. Promise. ୩ । ବଚୁଆ ମାଛ (ଦେଖ)—3. Bachuā fish (See)

ବାଚ୍ଚା(ତା)ଖାନି—ଦେ. ବି.—କଥାର ବାଲିଗି; ବାଗାଡ଼ମ୍ବର—
Bāchā(tā)khāni Bragging; bombastic language
বড় বড় কথা डींग

ବାଚ୍ଚାଖାନି କରିବା—ଦେ. କ୍ରି.—କଥାରେ ବାଲିଗି କରିବା—
Bāchākhāṇi karibā To brag.
বড়বড় কথা বালা डींग हाँकना

ବାଚାଟ(ଳ)—ସଂ. ବିଣ. ପୁଂ [ବାଚ + ଆଟ (ଆଲ)]—ବହୁଭାଷୀ, ପ୍ରଗଲ୍ଭ—
Bāchāṭa(ḷa) Talkative; loquacious; garrulous, braggart.
[ବାଚାଟା(ଳା)—ସ୍ତ୍ରୀ] (ବାଚାଟ [ଳ]ତା—ବି)

ବାଚା ପତ୍ର—ସଂ. ବି. (ମ. ପ. ଲୋ)—ପ୍ରତିଜ୍ଞା ପତ୍ର (ତ୍ରି. ଶ)—A deed
Bāchā patra of promise; affidavit.

ବାଚାବଦ୍ଧ—ସଂ. ବି.—(୭ମୀ ତତ୍; ବାଚା + ଆବଦ୍ଧ) ପ୍ରତିଜ୍ଞାବଦ୍ଧ
Bāchā baddha (ତ୍ରି. ଶ.)—Promise-bound.
(ବାଚାବନ୍ଧନ—ବି.)

ବାଚିକ—ସଂ. ବିଣ—(ବାଚ୍ + କୃତାର୍ଥେ. ଇକ)—୧ । ବାଚନିକ;
Bāchika ମୌଖିକ—1. Verbal; oral. ୨ । ସଙ୍କେତରେ କଥିତ—3. Spoken by signs; spoken in cypher language.
ସଂ. ବି—ମୌଖିକ ସମ୍ବାଦ—Verbal message.

ବାଚୀ—ସଂ. ବିଣ. ପୁଂ (ଅନ୍ୟଶବ୍ଦ ପରେ ଲାଗେ)—ବାଚକ (ଦେଖ)
Bāchī (ବାଚିନୀ—ସ୍ତ୍ରୀ) Bāchaka (See).

ବାଚୁ—ଦେ.ବି—ବଚ; ଅତିରିକ୍ତ ପରିଶ୍ରମ ବା କଥାବାର୍ତ୍ତା ବା ରୋଗଜନିତ
Bāchu କ୍ଲାନ୍ତି ଯୋଗୁଁ ମୁହଁରୁ ବାହାରିବା ଫେନଯୁକ୍ତ ଲାଳ—
ফেনা Froth issuing from the mouth.
गाउद् ଦେଖ ପାଟ ଦେଇ ବାହାରୁଅଛି ବାଚୁ—
କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

ବାଚ୍ଛଲ୍ୟ—ଗ୍ରା. ବି—(ସଂ. ବାତ୍ସଲ୍ୟର ଅଶୁଦ୍ଧ ଉଚ୍ଚାରଣ)—ବାତ୍ସଲ୍ୟ
Bāchchhalya (ଦେଖ)—Bātsalya (See).

ବାଚ୍ୟ—ସଂ. ବିଣ—(ବଚ୍ ଧାତୁ + କର୍ମ. ଯ)—୧ । ବକ୍ତବ୍ୟ—
Bāchya 1. Fit to be spoken. ୨ । କଥନୀୟ; କହିବା-ଯୋଗ୍ୟ—2. Utterable. ୩ । ଭର୍ତ୍ସନୀୟ—
3. Reproachable; deserving abuse.
୪ । କୁତ୍ସିତ-4. Nasty; wretched. ୫ । ଘୃଣିତ—

5. Detested. ୬ । ଜାତିଭ୍ରଷ୍ଟ—6. Excommunicated. ୭ । ଦୁଷ୍ଟ—7. Wicked. ୮ । ପ୍ରତିପାଦ୍ୟ—8. Demonstrable. ୯ । ନିନ୍ଦ୍ୟ—9. Blameworthy.

ସଂ. ବି—୧ । କଥା—1. Speech. ୨ । ନିନ୍ଦା—2. Reproch. ୩ । ( ବ୍ୟାକରଣ ) ବାକ୍ୟର ଯେଉଁ ପ୍ରକୃତିଦ୍ୱାରା ଅଭିଧା ବା ବକ୍ତାଙ୍କର ଇଚ୍ଛା ଜଣାଯାଏ ଓ ବାକ୍ୟରେ ବ୍ୟବହୃତ କ୍ରିୟାର ପ୍ରକୃତି ଜଣାଯାଏ—3. (grammar) The voice of a verb (e. g. active voice and passive voice).

[ ଦ୍ର—ସଂସ୍କୃତ ବ୍ୟାକରଣରେ ବାଚ୍ୟ ୮ ପ୍ରକାର; ଯଥା—କର୍ତ୍ତୃ, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଅଧିକରଣ, ଭାବ ଓ କର୍ମକର୍ତ୍ତୃ । ଓଡ଼ିଆ ବ୍ୟାକରଣରେ ବାକ୍ୟର ବାଚ୍ୟ ଚାରି ପ୍ରକାର—କର୍ତ୍ତୃ, କର୍ମ, ଭାବ ଓ କର୍ମକର୍ତ୍ତୃ ବାଚ୍ୟ । ]

୪ । ( ବ୍ୟାକରଣ ) ଧାତୁର ଉତ୍ତର ଭିନ୍ନ ଭିନ୍ନ ଅର୍ଥରେ ଯୁକ୍ତ ହେବା ପ୍ରତ୍ୟୟ—4. ( grammar ) Suffix of a verb. ୫ । ( ବ୍ୟାକରଣ ) ଶବ୍ଦଦ୍ୱାରା ଯେଉଁ ବସ୍ତୁର ବା ଅର୍ଥର ବୋଧ ହୁଏ; ଅଭିଧେୟ ବସ୍ତୁ ବା ଅର୍ଥ (ହି.ଶ)—5. A thing or meaning indicated by a word. ୬ । ଅଭିଧେୟ (ଦେଖ)—6. Abhidheya (See).

**ବାଚ୍ୟମାନ**—ସ. ବିଣ.—( ବଚ ଧାତୁ ଣିଚ୍ + କର୍ମ. ଆନ )—
Bāchyamāna ୧ । ବକ୍ଷମାଣ; କଥ୍ୟମାନ—1. Being spoken. ୨ । ପ୍ରକାଶ୍ୟମାନ—2. That which is being expressed. ୪ । ନିନ୍ଦନୀୟ—3. Blameable.

**ବାଚ୍ୟାର୍ଥ**—ସଂ. ବି—(କର୍ମଧା; ବାଚ୍ୟ + ଅର୍ଥ)—(ବ୍ୟାକରଣ) ଶବ୍ଦର
Bāchyārtha ନିଯୁକ୍ତ ଅର୍ଥଦ୍ୱାରା ପ୍ରକଟିତ ଅଭିପ୍ରାୟ; ସଙ୍କେତରୂପେ ସ୍ଥିରୀକୃତ ଶବ୍ଦର ମୌଳିକ ଅର୍ଥ—(grammer) The original or settled or fundamental meaning of a word.

[ ଦ୍ର—ଶବ୍ଦମାନଙ୍କର ୩ଟି ଶକ୍ତିଃ—ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା । ଲକ୍ଷଣା ଓ ବ୍ୟଞ୍ଜନାର ଆଧାର ଅଭିଧା ଅଟେ, ଯାହା ଶବ୍ଦସଙ୍କେତ ଦ୍ୱାରା ଶବ୍ଦର ନିଯୁକ୍ତ ଅର୍ଥର ବୋଧ କରାଏ । ଯେଉଁ ଅର୍ଥ ଶବ୍ଦର ମୌଳିକ ଅର୍ଥ ଅଟେ ତାହା ଉକ୍ତ ଶବ୍ଦର ବାଚ୍ୟାର୍ଥ—( ହି. ଶ. ) । ]

**ବାଚ୍ୟାବାଚ୍ୟ**—ସ. ବିଣ—(ବାଚ୍ୟ + ଅବାଚ୍ୟ)—କଥ୍ୟ ଓ ଅକଥ୍ୟ—
Bāchyābāchya Speakable or unspeakable.
ସ. ବି—କଥ୍ୟ ଓ ଅକଥ୍ୟ ବିଷୟ—
Speakable and unspeakable matters.

**ବାଚ୍ୟୋତ୍ପ୍ରେକ୍ଷା**—ସଂ. ବି—ଅର୍ଥାଲଙ୍କାରବିଶେଷ ( ଉତ୍ପ୍ରେକ୍ଷା
Bāchyot-prekshyā ଲଙ୍କାର ତଳେ ନୋଟ୍ ଦେଖ)—Simile (see notes under 'Utprekshālankāra ).

**ବାଛ**—ଦେ. ବି ( ସ. ବାଚ୍ୟ )—୧ । ନିନ୍ଦା; ଅପବାଦ; ବାଇଚ—
Bāchha 1. Defamation; blame. ୨ । ସମାଲୋଚନା—
ବାଈଚ **निन्दा** 2. Criticism.
ବାଛା **चुनना** ୩ । (ସ. ନିର୍ବାଚନ) ବାଛିବା; ନିର୍ବାଚନ କରିବା—3. Selecting ( good from bad ).
ବାଛବିଚାର ୪ । ଭଲ ମନ୍ଦର ବିଚାର—4. Discrimination.
**बातवचार**

**ବାଛନ୍ଦ**—ଦେ. ବି. ଓ ବିଣ—ବାସନ୍ଦ (ଦେଖ)
Bāchhanda Bāsanda (See).

**ବାଛବୁଛ କରିବା**—ଦେ. କ୍ରି—ବଛାବଛି କରିବା; ଉତ୍ତମରୂପେ ବାଛିବା—
Bāchhabuchha kariba To carefully separate ( ବାଛିବୁଛି ଦେବା—ଅନ୍ୟରୂପ ) the good things from
ବାଛାବାଛି କରା **चुनाचुनी करना** the bad.

**ବାଛରା**—ଦେ. ବି (ସ. ବତ୍ସତର)—୧ । ଘୋଡ଼ାଛୁଆ—1. Colt.
Bāchharā ୨ । ( ସ. ବତ୍ସ+ଅତିସାର ) ଶିଶୁରୋଗବିଶେଷ;
ବାଛା **बछरा** ଶିଶୁମାନଙ୍କର ଝାଡ଼ା ରୋଗ—2. Infantile diarrhoea.
ଦେ. ବିଣ—ଅଳ୍ପବୟସ୍କ ( ପଶୁ )—Young (animal).

**ବାଚ୍ଛା**—ଦେ. ବି (ବଙ୍ଗଳାରୁ ଅନୁକୃତ) (ସ. ବତ୍ସ)—ଶିଶୁ; ବାଳକ—
Bāchhā Child; boy.
ବାଛା **बचा** ପ୍ରାଦେ ( ବସ୍ତର ) ବି (ଭୁଲ. ହି. ବାଛା)—ଅଣ୍ଡିରା ବାଛୁରୀ ବା ଦାମୁଡ଼ି—Young bullock.

**ବାଛିବା**—ଦେ. କ୍ରି (ସ. ନିର୍ବାଚନ)—୧ । ନିର୍ବାଚନ କରିବା—
Bāchhibā 1. To select; to choose.
ବାଛା **चूनना** ୨ । ଭଲ ଓ ମନ୍ଦକୁ ପୃଥକ୍ କରିବା—
[ବାଛି(ଛେ)ଇବା—ଣିଜନ୍ତ] 2. To separate the good from the bad.
ନିଡ଼ାନ **कमाना; निकोना** ୩ । ଧାନ କିଆରିରୁ ଘାସ ଆଦି ଓପାଡ଼ିବା—3. To root out weeds from paddy fields.
ବାଛା **अमनिया करना** ୪ । ଗୁଣ୍ଡିଲ ବା ଶସ୍ୟ ଆଦିରୁ ଅସାର ଅଂଶଯାକ କାଢ଼ିପକାଇବା—4. To pick out bad from good things.
ବାଛା **बनाना** ୫ । ମାଛ ଓ ଶାଗ ଆଦିରୁ ପାକର ଅଯୋଗ୍ୟ ବା ଅଖାଦ୍ୟ ଅଂଶମାନ ବାହାର କରିଦେବା—5. To prepare pot herb or fish for cooking after clearing them of refuse matters.
**दूषना** ୬ । (ସ. ବାଚ୍ୟ) ଦୋଷ ଦେବା; ନିନ୍ଦା କରିବା—6. To blame; to show any defect.
ବାଛିବାକୁ ଉହ୍ନେ ରେ କଥା ନାହିଁ ବଢ଼—ବିଷ୍ଣୁ ହ. ମହାଭାରତ ବନ ।
୭ । ସମାଲୋଚନା କରିବା—7. To criticise.
**रफू करना, जाली बीनना** ୮ । ଚିରା ଲୁଗାର ଛିଦ୍ରରେ ଛୁଞ୍ଚ
ରଫୁକରା ସାହାଯ୍ୟରେ ସୂତା ବୁଣିବା; ରଫ କରିବା—

8. To knit with thread and needle any hole opened in a cloth; to darn.

দোষবের করা ୯ । (ଦୋଷ, ଦୁର୍ଗୁଣାଦି) ଖୋଜି ବାହାର କରିବା—
दोष नीकालना To find fault with.

ତୁ କପାଁ ମୋତେ ଏତେ ନିନ୍ଦା କରୁଅଛୁ
କଟକରି କଥା କହୁ ମୋ ଦୋଷ ବଛୁ—କୃଷ୍ଣସିଂହ, ମହାଭାରତ ଶାନ୍ତି ।

**ବାଛୀ**—ପ୍ରାଦେ (ସମ୍ବଲପୁର) ବି (ତୁଳ. ହି. ବାଛୀ)—୧ । ଛଡ଼ାଗାଈ—
Bāchhī 1. Young cow.
୨ । ମାଈ ବାଛୁରୀ—2. Female calf.

**ବାଛୁରୀ**—ଦେ. ବି (ସ. ବତ୍ସତରୀ)—ଗୋବତ୍ସ—
Bāchhurī Calf.
বাছুর **বাছা, बछड़ा** ଦୁଧ ପିଇ ବାଛୁରୀ ଯେବେ ପଳା ଯିବେ—
କୃଷ୍ଣସିଂହ, ମହାଭାରତ ଆଦି ।

[ଦ୍ର—ସଂସ୍କୃତରେ ଅଣ୍ଡିରା ବାଛୁରୀକୁ 'ବତ୍ସତର' ଓ ମାଈ ବାଛୁରୀକୁ ବତ୍ସତରୀ ବୋଲାଯାଏ; କିନ୍ତୁ ଓଡ଼ିଆ ଭାଷାରେ 'ବାଛୁରୀ' ଶବ୍ଦ ଉଭୟ ଲିଙ୍ଗରେ ବ୍ୟବହୃତ ହୁଏ । ]

**ବାଛୁରୀ ବ୍ରତ**—ପ୍ରାଦେ. (ଅଳ) ବି—ବତ୍ସତରର ମୁଷ୍କଚ୍ଛେଦନ—
Bāchhurī brata Castration of a calf.
ଦେ ବି—ଅଣ୍ଡିରା ବାଛୁରୀକୁ ଶିବ ମନ୍ଦିରରେ ବ୍ରତ କରିବା, (ବାଛୁରିବରତ—ଗ୍ରାମ୍ୟରୂପ) ଅର୍ଥାତ୍ ତାହାର ଲୁହାରେ ତା ଦେହରେ ତ୍ରିଶୂଳ ଚିହ୍ନିତ କରି ଷଣ୍ଢରୂପେ ଉତ୍ସୃଷ୍ଟ କରି ଛାଡ଼ି ଦେବା ବିଧି—Consecration of a bull calf in the temple of Śiba.

**ବାଜ୍**—ବୈଦେ. ପ୍ରତ୍ୟୟ (ଫା)—୧ । ପଟୁ—1. Proficient in.
Bāj (ଯଥା—ମକଦ୍ଦମା ବାଜ୍; ଦଗାବାଜ୍ ।)
বাজ **बाज** ୨ । ଅଭ୍ୟାସକ୍ତ—2. Addicted to.
(ଯଥା—ନିଶାବାଜ୍; ରଣ୍ଡୀବାଜ୍ ।)

**ବାଜ୍ଖଟ୍**—ପ୍ରାଦେ. (ସମ୍ବଲପୁର) ବି—୧ । ମୁର୍ଦାର ବୁହା ଖଟିଆ;
Bāj-khaṭ କୋକେଇ—1. A bamboo bedstead or stretcher for carrying a corpse. ୨ । ସପ୍ତର୍ଷି-ମଣ୍ଡଳ (ତାରାପୁଞ୍ଜ)—2. The Great Bear (group of stars).

**ବାଜ୍ବା**—ପ୍ରାଦେ. (ସମ୍ବଲପୁର) କ୍ରି—ବାଜିବା—
Bāj-bā To slightly strike.

**ବାଜ**—ବୈଦେ. ବି—୧ । (ଆ. ବାଜ୍; ସ. ଶ୍ୟେନ)—ପ୍ରସିଦ୍ଧ ବର୍ଗର
Bāja ଦବାଚର ଶିକାରୀ ପକ୍ଷିବିଶେଷ; ଛଞ୍ଚାଣ—1. Hawk.
বাজ [ ଦ—ଏମାନେ ଶ୍ରେଷ୍ଠ ଓ ବଡ଼ ନାନା ଶ୍ରେଣୀର ଅଛନ୍ତି ।
**बाज** ଏମାନେ ଅନ୍ୟାନ୍ୟ ଶ୍ରେଷ୍ଠ ପକ୍ଷୀଙ୍କୁ ମାରି ଖାଆନ୍ତି । ]
୨ । (ଆ. ବାଜ୍=ଡେଣା)—ପକ୍ଷୀର ଡେଣା—
2. Wings of a bird.

ବାଜ ପକ୍ଷବଳ ତାର, ବକ୍ଷେ ଲୋଭିଣ ସେ ମାରେ ।
ଭଞ୍ଜ. ବୈଦେହୀଶ ବିଳାସ ।

বাজু ୩ । (ଫା. ବାଜୁ=ବନ୍ଧୁ)—ବାଜୁବନ୍ଧ—
**बाजू** 3. An ornament for the arm.

ସ. ବି. (ବଜ ଧାତୁ=ଗତି କରିବା+ଭାବ. ଅ)—୧ । ଗମନ; ଗତି—1. Movement; motion. ୨ । ଘୃତ; ଘିଅ—2. Ghee.

ଗ୍ରା. ବି—ସତ୍ୟବାଦୀ, ବ୍ରଜବନ୍ଧୁ ନାମକ ବ୍ୟକ୍ତିର ଆଦରାର୍ଥକ (ବାଜି—ଅନ୍ୟରୂପ) ଡାକନାମ—A name for calling a (ବାଜିଆ—ଅନାଦରାର୍ଥକରୂପ) person named Satyabādī or Brajabandhu in fondness.

**ବାଜଣା**—ଦେ. ବି. (ସଂ ବାଦନ)—୧ । ବାଦ୍ୟଧ୍ୱନି—1. Sound
Bājaṇā of music. ୨ । ବାଦନ; ବାଜାବଜାଇବା—
বাজনা **बाजन** 2. Playing on music

ଅଙ୍କକୁ ନେଇ ମିଳିବାରୁ ହୋଇଛି ଯଶଡିଣ୍ଡିମ ବାଜଣା ।
କବିସୂର୍ଯ୍ୟ. କଳାକଲ୍ଲୋଳ ।

୩ । ବାଦ୍ୟଯନ୍ତ୍ର; ବାଜା—3. Musical instrument

ନାନାଜାତି ବୀର ବାଜଣା ବଜାଇଲେ । କୃଷ୍ଣସିଂହ. ମହାଭାରତ ସଭା ।

**ବାଜଣାଦାର**—ଦେ. ବି—ବାଜାଦାର; ବାଦ୍ୟକାର—Musician
Bājaṇādāra বাজনাদার; বাজনদার **बजनीया**
(ବାଜଣାବାଲା, ବାଜଣିଆ—ଅନ୍ୟରୂପ)

**ବାଜ(ଜି, ଜେ)ଣୀ**—ଦେ. ବି (ସ. ବାଦ୍ୟ; ପାଦମଞ୍ଜୀର)—୧ । ନୂପୁର;
Bāja(ji, je)ṇī ଘୁଙ୍ଗୁର; ଘୁଙ୍ଗୁରଲଗା ବଳା—1. Tinkling
নেপুর anklet ୨ । ବଜାଇବାର ଶବ୍ଦ—3. Tinkling
**पैजनी** sound
(ଯଥା—ଏ ଟଙ୍କାର ବାଜଣୀ କମ୍ ଅଛି ।)
ଦେ. ବିଣ—ଶବ୍ଦକାରୀ—Making a sound; tinkling.

ବାଜଣୀ ନୂପୁର ବଜେ ଚରଣ ତଳେ । ବିଶ୍ୱନାଥ. ବିଚିତ୍ରରାମାୟଣ ।

**ବାଜଣିଆ**—ଦେ. ବି—ବାଦ୍ୟକାର—Musician.
Bājaṇiā ବାଜଣିଆ ବଳ ଲଙ୍କାରୁ ବାହାର ଏକାଳେ ବାଦ୍ୟ ବଜାଇ ସେ ।
বাজনদার **बजनीया** ଭଞ୍ଜ. ବୈଦେହୀଶବିଳାସ ।

**ବାଜ ପାରା**—ଦେ. ବି. (ବାଜ ପାରାକୁ ଆକ୍ରମଣ କରି ଖାଉଥିବାରୁ;
Bāja pārā ତୁଳ. ଅହିନକୁଳ)—୧ । (ଲକ୍ଷଣାର୍ଥ) ଖାଦକ
বাজপায়রা ଓ ଖାଦ୍ୟ ବସ୍ତୁ—1. (implied meaning) The
**बाजपरेवा** eater and the eaten. ୨ । ପରସ୍ପରର ଚିର-ଶତ୍ରୁ—2. Confirmed enemy of each other.

ରାଜା ପ୍ରଜା ଏବେ ହେଲେ ବାଜପାରା—ରାଧାନାଥ. ଦରବାର ।

**ବାଜପେୟ**—ସ. ବି. (ବହୁବ୍ରୀହି, ବାଜ=ଘୃତ+ପେୟ=ଯହିଁରେ
Bājapeya ଦେବତାଙ୍କ ଘୃତ ଦ୍ୱାରା ପାନ କରାଯାଏ)-ଯଜ୍ଞବିଶେଷ—
A vedic sacrifice

**ବାଜପେୟୀ**—ସ. ବି. ପୁଂ. (ବାଜପେୟ+ଇନ୍; ୧ମା. ୧ବ.)—୧ ।
Bājapeyī ବାଜପେୟ ଯଜ୍ଞକର୍ତ୍ତା—1. Performer of 'Bāja pega' ୨ । ଯାଜ୍ଞିକ ବ୍ରାହ୍ମଣଙ୍କ ଉପାଧିବିଶେଷ-
2. Title given to a class of performs of vedic sacrifices.

**ବାଜପୋଇ**—ଦେ. ବି—ବାଜ ଜାତୀୟ ପକ୍ଷୀ ବିଶେଷ—
Bājapoi A species of hawk.
ଗ୍ରା. ବି—ବାଜପେୟୀ (ଦେଖ)—Bājapeyī (See)

ବାଜ ବଇ(ହି)ର(ରି)—ଦେ. ବି—ବହିରା ୨ ( ଦେଖ )
Bāja bai(hi)rā(ri) বাজ বৈরী Bahirā 2 ( See)
[ବାଜ ବହ(ହା)ର, ବାଜ ଭଇର —ଅନ୍ୟରୂପ] বাজ

ପ୍ରତ ନଳୀରୁ ଗୁଳି ବାହାର ଧାଇଁ ତେବାର ବାଜ ବଉର
ମାଡ଼ ବସିଲେ ପକ୍ଷୀକ ଧରୁ କ ମନୋହର ଯେ—ଭଞ୍ଜ. ଲାବଣ୍ୟବତୀ ।

ବାଜରା—ଦେ. ବି. ( ସଂ. ବଜ୍ରା; ବର୍ଜରା )—
Bājarā ୧ । ମକ୍କା ଜାତୀୟ କୃଷିଜାତ ଶସ୍ୟବିଶେଷ—
বাজরা 1, Bulrush millet; Pennisetum
বাজ্রি, বাজরা Typhoidium.
[ ଦ୍ର—ଏ ଗଛ ୫।୬ ହାତ ଉଚ୍ଚ ହୁଏ; ଏ ଗଛ ବାଲିଆ ଓ ଢିପ ଜମିରେ ହୁଏ । ଏହା ଦେଖିବାକୁ ଆଖୁଗଛ ପରି । ଏ ଗଛରେ ଗୁଚ୍ଛ ଗୁଚ୍ଛ ହୋଇ ଶସ୍ୟ ଫଳେ । ପଶ୍ଚିମରେ ସାଧାରଣ ଲୋକେ ଏ ଶସ୍ୟକୁ ମଇଦା କରି ଖାଆନ୍ତି । ଏହାକୁ ଭାଜିଲେ ଖୁବ ବଡ଼ ବଡ଼ ଲିଆ ହୁଏ । ଏଥିର କ୍ଷେତ୍ରରେ ଖତ ଦେବା ବା ପାଣି ମଡ଼ାଇବା ଆବଶ୍ୟକ ହୁଏ ନାହିଁ । ]

ବାଜସନି—ସଂ. ବି—ସୂର୍ଯ୍ୟ ( ହ୍ରି. ଶ )—
Bājasani The sun.

ବାଜା—ଦେ. ବି. ( ସଂ. ବାଦ୍ୟ )—ବାଦ୍ୟ—
Bājā বাজা বাজা Musical instrument.

ବାଜଣା ପାହାନ୍ତି ବାଜା—ନନ୍ଦକିଶୋର. ଶର୍ମିଷ୍ଠା ।

ପ୍ରାଦେ. (ସମ୍ବଲପୁର) ବି—ଏକ ପ୍ରକାର ଢୋଲ; ନଗାଣି—
A kind of drum.

ବାଜା(ଦା) ଆମ୍ବ(ମ୍ବା)—ବୈଦେ. ବି. (ଫ୍ରେଞ୍ଚ-ଅକାଜ; ମାଲୟ-ଅକାୟୁ; କାୟୁ=ଗଛ)—ଲଙ୍କା ଆମ୍ବ—
Bājā(dā) āmba(mbā)
[ବାଜା(ଦା)ମ୍ବ(ମ୍ବା)—ଅନ୍ୟରୂପ] The cashew nut;
বাদাম, হিজলি বাদাম Anacardium Occidentale.
কাজু
ତେ. ଜିଡ଼ିମାମେଣ୍ଡି,
ମୁଣ୍ଡାମାମଡ଼ିଚେଟ୍ଟୁ
ଗୁ. କାଜୁ
[ ଦ୍ର—ଏହା ଆମ୍ରାଦି ବର୍ଗର ବୃକ୍ଷ; ଏହାର ଆଦି ନିବାସ ଦକ୍ଷିଣ ଆମେରିକା; ଏହାର ଫଳର ତେଣ୍ଟ ଖୁବ ମୋଟ ଓ ଫଳ ପରି ଦେଖାଯାଏ; ଏ ତେଣ୍ଟ ପାଚିଲେ ନାଲି ବା ହଳଦିଆ ହୁଏ ଏବଂ ଏହାର ରସ ମିଠା ଓ କଷା । ଲୋକେ ଏହି ଫଳର ବେଣ୍ଟକୁ ଫଳ ବୋଲି ଓ ବେଣ୍ଟ ଅଗରେ ଲାଗିଥିବା ଫଳକୁ ମଞ୍ଜି ବୋଲି ମନେ କରନ୍ତି । ଏହି ମଞ୍ଜି ଆମ୍ବ ଆକୃତିର, ମାତ୍ର ଅତି କ୍ଷୁଦ୍ର ଓ ନୀଳାଭ; ଏହା କଠିନ ତ୍ୱକ୍ ଦ୍ୱାରା ଆବୃତ । ଏହି ତ୍ୱକ୍‌ରେ କଷାକ୍ତ ତୈଳ ଥାଏ ଏବଂ ମଞ୍ଜି ଭିତରେ ସୁଖାଦ୍ୟ ଶସ ଥାଏ । ଏ ଗଛ ସମୁଦ୍ର ଉପକୂଳବର୍ତ୍ତୀ ବାଲିଆ ଜମିରେ ଉଠାଏ । ଏ ଫଳକୁ ନିଆଁରେ ପୋଡ଼ିଲେ ଖୋପାରୁ ତେଲ ବାହାରେ ଓ ପୋଡ଼ାଫଳ ଭିତରୁ ଶସ ବାହାରେ । କାଠ ଜଳସ ଆଦିରେ ଏହି ତେଲ ବୋଳ ତହିଁରେ ଉଇ ଧରନ୍ତି ନାହିଁ । ]

ବାଜାଦାର—ଦେ. ବି—ବାଦ୍ୟକର—
Bājādār Musician.
(ବାଜାବାଲା—ଅନ୍ୟରୂପ) বাজাদার বাজাদার

ବାଜି—ବୈଦେ. ବି. (ଫା. ବାଜୀ; ତୁଲ. ସଂ. ବାଜ)—
Bāji ୧ । କୁହୁକ; ଇନ୍ଦ୍ରଜାଲ—1. Magic. ୨ । କ୍ରୀଡ଼ା; କୌତୁକ—2. Amusements; sports. ୩ । ଖେଳର ଥର—3. Turn or heat of a game. ୪ । ଖେଳରେ ରଖାଯିବା ପଣ; ହୁଡ଼—4. Wager. ୫ । ବାଣ ପୋଡ଼ା—5. Firework; display of fireworks. ୬ । ଗଞ୍ଜପା ଖେଳରେ ସୂର୍ଯ୍ୟ ରଙ୍ଗର ରଜା—6. The King in one set of cards in 'Gañjapā' game. ୭ । ଖେଳରେ ଖେଳୁଥିବା ଏକାଧିକ ଖେଳାଳିଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତିର ଖେଳିବାର ଥର; ପାଳି—7. The turn of a player in a game.
বাজি
বাজী

ବୈଦେ. ପ୍ରତ୍ୟୟ (ଫା)—ଫା. 'ବାଜ୍' ପ୍ରତ୍ୟୟାନ୍ତ ଶବ୍ଦ ଦ୍ୱାରା ସୂଚିତ କାର୍ଯ୍ୟ ବା ଅବସ୍ଥା ( ଯଥା—ରଣ୍ଡିବାଜି, ଦଗାବାଜି, ଗୁଲିବାଜି)—Th state or act of doing a thing denoted by a word formed with the Persian suffix 'Baj.'
বাজী
বাজী

ପ୍ରାଦେ. (ବାଲେଶ୍ୱର) ବି—୧ । ମାଙ୍କଡ଼ଡିଆ—1. Somersault. ୨ । ପଟାତଳ ଡଙ୍ଗା—2. A plank-decked boat ୩ । ଖେଳର ଦାନ—3. The throw in a game. ୪ । ତାସ୍ ଖେଳରେ ତାସ୍ ବଣ୍ଟା ହେବା ପରେ ହାତକୁ ଆସିଥିବା ତାସ୍—4. The portion of the pack of cards coming to a player's hands after their distribution. ୫ । ତାସ୍ ଖେଳରେ ପ୍ରତ୍ୟେକ ଖେଳାଳି ଖଣ୍ଡେ ଖଣ୍ଡେ ତାସ୍ ଖେଳିବା ପରେ ଯେଉଁ ତାସ୍‌ମାନଙ୍କୁ ଜିଣିବା ବ୍ୟକ୍ତି ଉଠାଇ ନେଇ ଆପଣା ପାଖେ ରଖିଦିଏ—5. The cards collected by the winner after every throw. ୬ । ଥର—6. Time. ୭ । କ୍ରିୟା—7. Action.

ଗ୍ରା. ବି—ସତ୍ୟବାଦୀ, ବ୍ରଜବନ୍ଧୁ ଆଦି ବ୍ୟକ୍ତିର ଆଦରାର୍ଥକ ଡାକନାମ—A name for calling Satyabādi, Brajabandhu etc in fondness.

ବାଜିଆ—ଗ୍ରା. ବି. ପୁଂ. (ଅନାଦରାର୍ଥକ) ସତ୍ୟବାଦୀର ଡାକନାମ—
Bājiā A name for calling Satyabādi.

ବାଜି ଆଟିକା—ପ୍ରାଦେ. (ବାଲେଶ୍ୱର) ବି. (ସଂ. ବର୍ଜିତ)—
Bāji āṭikā ଅଶୌଚ ଆଦିରେ ଘରୁ ବାହାର କରି ଫିଙ୍ଗି ଦିଆଯାଇ
(ବାଜି ହାଣ୍ଡି—ଅନ୍ୟରୂପ) ଥିବା ହାଣ୍ଡି ଆଦି; ବାଇଜି ହାଣ୍ଡି—
Earthen cooking pots which are abandoned and thrown away as impure on the occasion of deaths or births in a family.

ବାଜିଆ ପ(ଫ)ତ୍(ତି)—ବୈଦେ. ବିଣ ଓ ବି. (ଫା. ବାଜେୟାପ୍ତ)—
Bājiā pa(pha)t(ti) . ବାଜ୍ୟାପ୍ତ ( ଦେଖ )—
Bājyāpt ( See

ବାଜିକ(ଗ)ର—ବୈଦେ. ବି. ( ଫା. ବାଜୀଗର )—
Bājika(ga)ra ୧ । ଐନ୍ଦ୍ରଜାଲିକ; କୁହୁକିଆ; ଜାଦୁକର—
বাজীকর বাজীগর 1. Magician.

କଣ୍ଟକ କି ନନ୍ଦନ ପୁଷ୍ପ ଉପବନ କଲା ପ୍ରେମ-ବାଜିଗର ।
ରାଧାନାଥ. ଯଯାତି ।

୨ । ଯେଉଁ ବ୍ୟକ୍ତି ନାନା ପ୍ରକାର ଐନ୍ଦ୍ରଜାଲିକ ଓ ଆଶ୍ଚର୍ଯ୍ୟମୟ କ୍ରୀଡ଼ା ଓ ଦୃଶ୍ୟ ଦେଖାଏ—2, A person who exhibits magical and other wonderful performances.

ବାଜିକ(ଗ,ଗି)ରି—ବୈଦେ. ବି. (ଫା ) ବାଜିକରର କାର୍ଯ୍ୟ ବା ପେଶା—
Bājika(ga,gi)ri The act or profession or performances of a magician.
বাজিগিরী **बाजिगरी**

ଦେ. ବିଣ—କୁହୁକ ଦେଖାଇବା ସମ୍ବନ୍ଧୀୟ—Pertaining to the exhibition of magical feats.
(ଯଥା—ବାଜିଗରି ତାମସା)

ବାଜିଗନ୍ଧା—ସଂ. ବି—ଅଶ୍ୱଗନ୍ଧା (ହି. ଶ.) (ଦେଖ)—
Bājigandhā Aśwagandhā (See).

ବାଜିନ୍ଦାର୍—ପ୍ରାଦେ. (ବାଲେଶ୍ୱର) ବି—ଯେ ବାଜି ବା କୁହୁକ ଦେଖାଏ-
Bājindār Magician.

ବାଜିନ୍ଦ୍ର(ନ୍ଦ୍ରା)—ଦେ. ବିଣ—୧ । ଉତ୍କୃଷ୍ଟ—1. Eminent. ୨ । ବୀରତାପୂର୍ଣ୍ଣ—2, Heroic. ୩ । ବାହାଦୁର—3. Creditable. ୪ । ଭାରି ଦୁଷ୍ଟ (ବାଳକ)-4. Naughty.
Bājindra(ndrā)
ବାଜି(ଜେ)ନ୍ଦ୍ର(ନ୍ଦ୍ରା)ପଣ—ବି } 
ବାଜି(ଜେ)ନ୍ଦ୍ର(ନ୍ଦ୍ରା)ପଣିଆ(ଆଁ) }

ବାଜିବା—ଦେ. କ୍ରି. (ବଦ୍ ଧାତୁ ଣିଚ୍=ବାଦି ଧାତୁ=ଶୁଣାଇବା; ଶବ୍ଦ କରାଇବା; ସଂ. ବାଦିତ=ଶବ୍ଦାୟିତ; ସଂ. ବଜଧାତୁ ଗତି କରିବା, ଣିଚ୍ ବାଜିଧାତୁ=ଗତି କରାଇବା) ୧ । ବାଦିତ ହେବା; ଧ୍ୱନିତ ହେବା; ଶବ୍ଦାୟମାନ ହେବା—1. To be sounded.
Bājibā
বাজা **बजना**
[ବଜା(ଜେ)ଇବା—ଣିଜନ୍ତ]

ବଡ଼ ଦେଉଳରେ ବାଜିଲା ଘଣ୍ଟା ।
ଖାଣ୍ଡି ଶିଅଙ୍କର ଉଠିଲେ ଅଣ୍ଟା —ଡଗ

୨ । ଆଘାତ କରିବା—2. To strike; to collide with.

ଉହୁଁ କହିଣ ଓଗଳରେ, ବ୍ରହ୍ମାଣ୍ଡ ବାଜିଲା ନର୍ଭରେ—
ଜଗନ୍ନାଥ. ଭାଗବତ ।

[ଦ୍ର—ଦୁଇ ବସ୍ତୁ ପରସ୍ପରକୁ ଆଘାତ କଲେ ପ୍ରତ୍ୟେକ ବସ୍ତୁ ଅନ୍ୟ ବସ୍ତୁରେ 'ବାଜିଲା' ବୋଲି ବୋଲାଯାଏ ଓ ଯେଉଁ ବସ୍ତୁ ଗତି କରି କରି ଅନ୍ୟ ସ୍ଥିର ବସ୍ତୁକୁ ଆଘାତ କରେ ଓ ଯେଉଁ ସ୍ଥିର ବସ୍ତୁରେ ଅନ୍ୟ ଗତିବିଶିଷ୍ଟ ବସ୍ତୁର ଆଘାତ ହୁଏ, ଏ ଦୁଇ ବସ୍ତୁ ପ୍ରତି ମଧ୍ୟ 'ବାଜିବା' କ୍ରିୟା ପ୍ରଯୋଜ୍ୟ ହୁଏ; ଯଥା—ଶୂଳରେ ମୁଣ୍ଡ ବାଜିବ ଓ ଶୂଳ ମୁଣ୍ଡରେ ବାଜିବ ।]

୩ । (ଶବ୍ଦ) ପ୍ରବେଶ କରିବା; ପହଞ୍ଚିବା—3. (a sound) To enter; to reach

ସୁହୃଦ ବିଳାପ—ଧ୍ୱନି ବାଜଇ ଶ୍ରବଣେ —ନନ୍ଦକିଶୋର. ସାଁତାବନବାସ ।

୪ । ଉଚ୍ଚସ୍ୱରରେ ପ୍ରକଟିତ ହେବା; ଉଦ୍‌ଘୋଷିତ ହେବା—4. To be loudly proclaimed.

ତୁମ୍ଭର ଦାମାପଣେ ଡାକ ବାଜଇ, ଶୁଣି ପେଷିଦେଲେ ମାପ୍ୟେ
ପ୍ରାଚୀ. ଉତ୍ସବମଞ୍ଜରୀ ।

୫ । ଘଡ଼ିରେ ସମୟଜ୍ଞାପକ ଘଣ୍ଟାର ସଂଖ୍ୟା ଜଣାଯିବା—5. To strike the time of the day (said of a clock).

(ଯଥା—ଦିନ ଅସି ଆଠଟା ବାଜିଲାଣି, ବାବୁଙ୍କର ନିଦ ଭାଙ୍ଗୁ ନାହିଁ; ପିଟା ଘଣ୍ଟା ବଜା ଯାଇ ସମୟ ଜ୍ଞାପିତ ହେବାରୁ ବାଜିବାର ଏହି ଅର୍ଥ ଆସିଅଛି । ବାଜିବା କଲଘଣ୍ଟାରେ ମଧ୍ୟ ଘଣ୍ଟାର ସଂଖ୍ୟା ଯନ୍ତ୍ର ଯୋଗେ ବାଦିତ ହୁଏ । ଏହି ଅର୍ଥରୁ ଘଣ୍ଟାର ସଂଖ୍ୟାପ୍ରତି ମଧ୍ୟ 'ବାଜିବା' କ୍ରିୟା ଲାଗୁଅଛି । )

୫ । (ପ୍ରହାର) ବସିବା—5. To be administered (as a stroke).
(ଯଥା—ରହ, ତୋ ଉପରେ ଏବେ ଗୋଟାକେତେ ବାଜିବ)

୬ । ହାବୁଡ଼ିବା; ଜୁଟିବା—6. To be met with; to be encountered with.
(ଯଥା—ଏତେବଡ଼ ଯାତ୍ରାରେ ପଣ୍ଡାଙ୍କ ଭାଗ୍ୟକୁ ଜଣେ ହେଲେ ବଡ଼ ଯାତ୍ରୀ ବାଜିଲା ନାହିଁ ।)

୭ । (ବାଦ୍ୟଯନ୍ତ୍ର) ଶବ୍ଦିତ ହେବା—7. (a musical instrument) To be played upon.
( ଯଥା—ହାରମୋନିୟମ ବାଜୁଛି; ବେହେଲା ବାଜୁଛି, ବଂଶୀ ବାଜଛି କହ୍ନା ଘରେ—ମଧୁସୂଦନ ବର୍ଣ୍ଣବୋଧ)

୮ । ବାଜିବା; ବାଧିବା; କ୍ଲେଶର ଅନୁଭୂତି ଉତ୍ପନ୍ନ କରାଇବା—8. To affect; to cause a painful sensation
(ଯଥା— ତାଙ୍କ ମନ୍ତବ୍ୟ ମୋତେ ଭରି ବାଜିଲା)

লাগা **लगना** ୯ । ଦେବାକୁ ପଡ଼ିବା—9. To have to be paid or given.
[ଯଥା—ଏ ମକଦ୍ଦମାରେ ତାଙ୍କୁ (ବା ତାଙ୍କ ହାତରୁ) ଟଙ୍କା ଶହେ ବାଜିଯିବ ।]

୧୦ । ସ୍ପର୍ଶ କରିବା;; ଲାଗିବା—10. To touch.
( ଯଥା—ଅସ୍ପୃଶ୍ୟ ବ୍ୟକ୍ତିର ଲୁଗାକାନି ମୋ ଦେହରେ ବାଜିଲା । )

ବାଜିଭ—ସଂ. ବି—ଅଶ୍ୱିନୀ ନକ୍ଷତ୍ର (ହି. ଶ.)
Bājibha The first asterism.

ବାଜି ଭୋର୍—ଦେ. ବି (ଫା. ବାଜୀ+ସଂ. ବିଭାବରୀ)—ଏକଥର ଖେଳର ସମାପ୍ତି—The end of a game; the end of one heat of a game.
Bāji bhor
বাজীভোর **बाजीभोर**

ବାଜୀ ମାତ୍—ବୈଦେ. ବି (ଆ)—ଖେଳରେ ଜୟଲାଭ—
Bāji māt Victory in a game
বাজীমাত্ **बाजीमात**

ବାଜି ମାରିବା—ଦେ. କ୍ରି—୧ । କୌଣସି ବିଷୟରେ ପଣ ରଖିବା—
Bāji māribā 1. To lay a wager; to bet.
বাজীমারা **बाजीमारना** ୨ । କୌଣସି ବିଷୟରେ ଜୟଲାଭ କରି ପଣକୁ ପାଇବା—2. To win a bet. ୩ । କୃତକାର୍ଯ୍ୟ ହେବା—3. To be successful in a competition.

ବାଜି ରଖିବା—ଦେ. କ୍ରି—ବାଜି ମାରିବା (୧) (ଦେଖ)
Bāji rakhibā Bāji māribā (1)(See).
[ବାଜିପକା(କେ)ଇବା, ବାଜିଲଗା(ଗେ)ଇବା—ଅନ୍ୟରୂପ]
বাজিরাখা **बाजीलगाना**
[ବାଜି ରଖାଯି(ହେ)ବା, ବାଜି ଲାଗିବା, ବାଜି ପଡ଼ିବା—କର୍ମବାଚ୍ୟରୂପ]

**ବାଜିର**—ପ୍ରାଦେ (ଅଳ ଓ କନିକା) ବି—ବାଦୁଡ଼ି—
Bājiri Flying fox; large bat

**ବାଜିରାଜ**—ସଂ. ବି (ବାଜିନ୍+ରାଜନ୍)—୧ । ବିଷ୍ଣୁ—1. Bishṇu.
Bājirāja ୨ । ଉଚ୍ଚୈଃଶ୍ରବା ଅଶ୍ୱ—2. Indra's horse.

**ବାଜିଶତ୍ରୁ**—ସଂ. ବି ( ୬ଷ୍ଠୀ ତତ୍; ବାଜିନ୍+ଶତ୍ରୁ )—ଅଶ୍ୱମାର;
Bājiśatru କନିଅର ଗଛ ( ହି. ଶ. )—The Bastard Oleander (tree).

**ବାଜୀ**—ସଂ. ବି. ପୁଂ (ବଜ୍ ଧାତୁ=ଗତିକରିବା+ଅ=ବାଜ=ଗମନ;
Bājī ବାଜ+ଅସ୍ତି ଅର୍ଥରେ ଇନ୍=ବାଜିନ୍, ୧ମା ୧ବ)—
( ବାଜିନୀ—ସ୍ତ୍ରୀ ) ୧ । ଅଶ୍ୱ; ଘୋଡ଼ା—1. Horse.
୨ । ଶର; ବାଣ—2. Arrow. ୩ । ଗ୍ରହ—3. Planet.
୪ । ପକ୍ଷୀ—4. Bird ୫ । ବାସକ (ଗଛ) (ହି. ଶ )—
5. Bāsaka (tree) (See). ୬ । ଛିଣ୍ଡି ଯାଇଥିବା ଦୁଧର ପାଣି; ଛେନାପାଣି ( ହି. ଶ )—6. Whey. (ବୈଦ୍ୟଙ୍କ ମତରେ ଏହା ଲଘୁକର ଓ ତୃଷ୍ଣା, ଦାହ, ରକ୍ତପିତ୍ତ ଓ ଜ୍ୱରର ନାଶକ—ହି. ଶ. )—୭ । ହବିଃ ( ହି. ଶ. ); ଘୃତ—
7. Ghee.

**ବାଜୀକରଣ**—ସଂ. ବି (ବାଜିନ୍=ଘୋଡ଼ା+ଅଭୂତତଦ୍ଭାବେ ଚ୍ୱି+କରଣ;
Bājīkaraṇa ଏ ପ୍ରକ୍ରିୟା ବା ପ୍ରୟୋଗଦ୍ୱାରା ନିର୍ବଳ ବ୍ୟକ୍ତି ଘୋଡ଼ା ପରି ବଳୁଆ ହେବାରୁ)—ଆୟୁର୍ବେଦୋକ୍ତ ରତିଶକ୍ତି-ବର୍ଦ୍ଧକ ଔଷଧ ଓ ପ୍ରକ୍ରିୟା—The process and medicines by which a man's vitality and virility are strengthened;aphrodisiac drugs and appliances
ଦେ. ବି—ବାଜିଗର; ବାଜିକରର କାର୍ଯ୍ୟ—
The act or profession of a magician
ଧନ୍ୟରେ ପ୍ରଣୟ ଧନ୍ୟ ତୋ କରଣି
ଧନ୍ୟ ତୋ ବାଜୀକରଣ – ନନ୍ଦକିଶୋର. ଶର୍ମିଷ୍ଠା ।

**ବାଜୀଦଇବତ**—ଦେ. ବି (ପଦ୍ୟ) (ସଂ. ବାଜିନ୍+ଦୈବତ)—ଅଶ୍ୱିନୀ-
Bājīdaibata କୁମାରଦ୍ୱୟ—The twin heavenly physicians.
ବାଜୀ ଦଇବତ ଶିଷ୍ୟ ଅଛି ହତ କରିନ ଅବଧି—ଭଞ୍ଜ. ବୈଦେହୀଶବିଳାସ ।

**ବାଜୁ**—ବୈଦେ. ବି (ଆ. ବାଜୁ=ବାହୁ; ପାର୍ଶ୍ୱ)—୧ । ପାର୍ଶ୍ୱଦେଶ—
Bāju 1. Side. ୨ । ଚଉକାଠର ଦୁଇପାଖର ଦଣ୍ଡି—
বাজু **বাজু** 2. The long side-pieces of wood of a door frame
୩ । ବାଜୁବନ୍ଧ; ବାହୁଟି—
3. An ornament for the arm.
ପ୍ରାଦେ (ସିଂହଭୂମି) ବି—ଖଟର ଦଣ୍ଡା; ଖଟର ଚଉକାଠର ଲମ୍ବ କାଠଦ୍ୱୟ—The long side-pieces of a bedstead-frame.

**ବାଜୁବନ୍ଦ(ନ୍ଧ)**—ବୈଦେ. ବି. (ଫା. ବାଜୁ=ବାହୁ; ତୁଳ. ସଂ. ଭୁଜ;
Bājubanda(ndha) ଫା. ବାଜୁବନ୍ଦ୍)—୧ । ବାହୁର ଅଳଙ୍କାର
[ବାଜ(ଜୁ), ବାଜବନ୍ଧ—ଅନ୍ୟରୂପ] ବିଶେଷ; ଭୁଜବଳୟ—1.
বাজু, বাজুবন্দ An arm plate; a broad ornament for the arm.
**बाजू; बाजूबन्द**
କରେ ନୂପୁର, ବାହୁ ଯୁଗେ ବାଜବନ୍ଧ—ରଘୁନାଥ. ଘଯାତ ।
୨ । ସ୍ତ୍ରୀଲୋକଙ୍କ ବାହୁରେ ବାଜୁବନ୍ଧ ଆକାରରେ କୁଟା ହୋଇଥିବା ଚିତା ବା ଚିତ୍ର—2. A painting resembling an armplate, tattooed on the arms of females.

**ବାଜେ**—ବୈଦେ. ବିଣ. ( ଆ. ବାଜ୍; ବଅଜ୍; ତୁଳ. ସଂ. ବାହ୍ୟ )—
Bāje ୧ । ଅନାବଶ୍ୟକ—1. Unnecessary; useless.
বাজে ୨ । ଇତର—2. Vulgar; common. ୩ । ଅନିୟମିତ;
**बाज, बाजे** ନିୟମର ବହିର୍ଭୂତ; ନିୟମବାହ୍ୟ—3. Irregular; not covered or governed by the rules; beyond the rules. ୪ । ବାହ୍ୟ; ବହିଃସ୍ଥ—4. External; outside; outer.
(ଯଥା—ବାଜେ ଘର ।)
୫ । ବିବିଧ; ନାନାସ୍ଥାନରୁ ସଂଗୃହୀତ—5. Miscellaneous ୬ । ଗୌଣ; ଅପ୍ରଧାନ—6. Secondary; of secondary importance. ୭ । ରଦ୍ଦି (କାଗଜ)—
7 Waste (paper). ୮ । ନିକୃଷ୍ଟ (ଜମି)—8. Inferior ( land ).

**ବାଜେ ଆଦାୟ**—ବୈଦେ. ବି. (ଫା. ବାଜ୍+ଅଦା)—ଜମିଦାରଆଦତ
Bāje ādāya ନିର୍ଦ୍ଦିଷ୍ଟ ଆୟ ଛଡ଼ା ଅନ୍ୟ ପ୍ରକାର ଅସ୍ଥାୟୀ ଆୟ—
বাজে আদায় **बाज आदा** Miscellaneous receipts.
(ବାଜେ ଆୟ, ବାଜେ ଜମା; ବାଜେ ଆମଦାନି—ଅନ୍ୟରୂପ)

**ବାଜେ କଥା**—ଦେ. ବି. (ଫା. ବାଜ୍+ସଂ. କଥା)—୧ । ଅନାବଶ୍ୟକ
Bāje kathā ବିଷୟ—1. Useless or unnecessary
বাজেকথা thing or matter. ୨ । ବୃଥା ଗଳ୍ପ—2.
**बाजबात** Idle talk.

**ବାଜେ କାଗଜ**—ବୈଦେ. ବି. ( ଫା. ବାଜ୍+କାଗଜ୍ )—୧ ।
Bāje kāgaja ବେଦରକାରୀ ବା ରଦ୍ଦି କାଗଜ—1. Useless
বাজে কাগজ or waste paper. ୨ । ବିବିଧ ବିଷୟକ କାଗଜ—
**बाज कागज** 2. Miscellaneous papers.
(ବାଜେ କାଗଜାତ୍—ବହୁବଚନ)

**ବାଜେ କାମ**—ଦେ ବି. (ଫା. ବାଜ୍+ସଂ. କର୍ମ)—୧ । ନିର୍ଦ୍ଦିଷ୍ଟ କାର୍ଯ୍ୟ
Bāje kāma ଛଡ଼ା ଅଧିକା କାର୍ଯ୍ୟ—1. Extra work. ୨ ।
বাজে কাজ ହୀନ ବା ଅକିଞ୍ଚିତ୍କର କାର୍ଯ୍ୟ—2. Mean or
**बाजकाम** insignificant work.

**ବାଜେ ଖରଚ**—ବୈଦେ. ବି. ( ଫା. ବାଜ୍+ଖର୍ଚ୍ଚ )—ଅନାବଶ୍ୟକ
Bāje kharacha ବା ସାମାନ୍ୟ ସମାନ୍ୟ ବ୍ୟୟ; ଖୁଚୁରା ଖରଚ—
বাজে খরচ Miscellaneous expenses; unnecessary
**बाजखर्च** or petty expenses

**ବାଜେ ଘର**—ଦେ. ବି. ( ଫା. ବାଜ୍+ସଂ. ଘର )—୧ । ଗୃହସ୍ୱାମୀଙ୍କ
Bāje ghara ବ୍ୟବହାରରେ ଲାଗିବା ଘର ଛଡ଼ା ଅନ୍ୟ ଘର,
বাজে ঘর ଅସଲ ଘରର ବାହାରେ (କିନ୍ତୁ ଏକ ହତା ମଧ୍ୟରେ)
**बाज घर** ଥିବା ଘର)—1. Out-houses. ୨ । ଅନ୍ତଃପୁରର ବହିଃସ୍ଥ ଗୃହ—2. The outer apartments of a house.

ବାଜେ ଜମା—ବୈଦେ. ବି. ( ଜମିଦାର ଓ ମହାଜନ ସିରସ୍ତା ) ( ଫା. Bāje jamā ବାଜ୍+ଜମା )—୧ । ଜମିଦାରଙ୍କ ପ୍ରାପ୍ୟ ଖଜଣା ବାଜେଜମା ଛଡ଼ା ଅନ୍ୟ ଜମା; ଦଫାଏବ୍ ଜମା—1. Receipts **बाज जमा** other than rent. ୨ । ଅନିର୍ଦ୍ଦିଷ୍ଟ ବା ଅନିୟମିତ ଜମା—2. Miscellaneous or irregular realisations. ୩ । ସାମାନ୍ୟ ବା ଛୋଟ ଛୋଟ ଆୟ—3. Petty realisations or receipts.

ବାଜେ ଜମି—ବୈଦେ. ବି· (ଜମିଦାର ସିରସ୍ତା) (ଫା. ବାଜ୍+ଜମୀନ୍) Bāje jami ନିକୃଷ୍ଟ ଭୂମି—Inferior land. बाजे जमि **बाज जिमिन**

ବାଜେ ଜିନିସ—ବୈଦେ. ବି. ( ଫା. ବାଜ୍+ଜୀଂସ୍ )—ଅପ୍ରୟୋଜନୀୟ Bāje jinisa ଦ୍ରବ୍ୟ—Useless articles; miscellaneous 'बाजेजिनिस **बाजजीन्स, बाजचीज** articles.

ବାଜେନ୍ଦ୍ର(ନ୍ଦ୍ରା)—ଦେ. ବି—ବାଜେ ଲୋକ, ଅଥଚ ଆପଣାର ପ୍ରତିପତ୍ତି Bājendra(ndrā) ପ୍ରଦର୍ଶକ ବ୍ୟକ୍ତି—A self-styled important personage, but actually a man of straw.

ଦେ. ବି—ବାଜିନ୍ଦ୍ର (ଦେଖ)—Bājindra (See)

ବାଜେ ମାର୍କା—ବୈଦେ. ବି. ( ଫା. ବାଜ୍+ଇଂ. ମାର୍କ୍ )—ନକଲି ବା Bāje mārkā ଖାରସା ପଦାର୍ଥ—Inferior sort of article बाँजेमर्का (which has not been stamped with a **बाजारी** wellknown or 1st class trademark of any celebrated maker)

ଦେ. ବିଣ—(ଲକ୍ଷଣାର୍ଥ) ଇତର; ନଗଣ୍ୟ—Counted as nothing; mean; insignificant

ବାଜେୟାପ୍ତ(ପ୍ତ, ପ୍ତି, ପ୍ତି)—ବୈଦେ. ବିଣ ଓ ବି—ବାଜ୍ୟାପ୍ତ (ଦେଖ) Bajeyāpt(pht; pti; phti) Bājyāpta (See)

ବାଜେ ଲୋକ—ଦେ·ବି.(ଫା.ବାଜ୍+ସ. ଲୋକ)—୧ । ଇତର ଲୋକ-Bāje loka 1. Common or vulgar people. ୨ । ବାଜେ ମନୁଷ୍ୟ / ବାଜେ ମର୍ଦ୍ଦ(ର୍ଦ୍ଦି, ନି)ସ } ଅନ୍ୟରୂପ ସାଧାରଣ ଲୋକ—2. The mass; the mob. ୩ । बाजे लोक ଅଧିକା ବା ଅତିରିକ୍ତ ଲୋକ—3. Extra hand. **बाज आदमी** ୪ । ନିକମା ବ୍ୟକ୍ତି—4. A person who sits idle; an unemployed person. ୫ । ଆପଣାର ଗୋଷ୍ଠୀ ବା ଦଳ ବହିର୍ଭୂତ ବ୍ୟକ୍ତି; ଯେ ଆପଣାର ସ୍ୱଜନ ନୁହେଁ —5. An outsider. ୬ । ଦେଖଣାହାରି—6. Sightseer; spectator. ୭ । କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତିଙ୍କ ଛଡ଼ା ଅନ୍ୟ ବ୍ୟକ୍ତି—7. Persons other than the retained or regular staff.

ବାଜ୍ୟାପ୍ତ (ପ୍ତ, ପ୍ତି, ପ୍ତି)—ବୈଦେ. ବିଣ. (କଚେରୀ; ଫା. ବାଜେୟାପ୍ତ= Bājyāpt (pht;pti;phti) ଫା. ବାଜ୍=ପୁନର୍ବାର+ଇୟାପ୍ତ୍ =ପ୍ରାପ୍ତ, ମିଳିତ)--ସରକାରଙ୍କର ସ୍ୱାଧିକାରକୁ ଆଗତ; ପୁନଃପ୍ରାପ୍ତି; (ବିପର୍ଯ୍ୟୟ—ବାଦେଲ୍) ଅଧିକାରକୁ ଆଗତ (ଭୂମି ଆଦି)— बाजेयाप्त **बाजेयाप्त** Resumed; brought to the direct control of the Government.

ବି—୧ । କୌଣସି ବ୍ୟକ୍ତିର ପୂର୍ବରୁ ଖଜଣା ନ ଦେଇ ଭୋଗ କରୁଥିବା ଜମି,ଯାହା କି ପୁନର୍ବାର ସରକାରଙ୍କ ଅଧିକାରକୁ ଆସେ ବା ଯହିଁରେ ଖଜଣା ସ୍ଥିର କରି ବସାନ୍ତି—1. Resumed revenue-free holding ୨ । ପ୍ରଜାର ଧନ ସରକାରଙ୍କ ହାତକୁ ଆସିବା—2. Forfeiture of any property. ୩ । ମ୍ୟାନେଜର ବା କର୍ମଚାରୀଙ୍କ ଦ୍ୱାରା କରାଯାଇଥିବା ଓ ହିସାବରେ ଲେଖା ଯାଇଥିବା ଖରଚର ନାମଞ୍ଜୁରୀ—3. Rejection of an item of expenditure undergone and entered in the accounts by a manager or other responsible servant.

(ଯଥା—ସତ୍ୟବାଦୀ ମନ୍ଦିର କମିଟିର ମାନେଜରଙ୍କ ଦାଖଲି ଜମା ଖରଚ ମଧ୍ୟରୁ ମେମ୍ବରମାନେ ବଜେଟ୍ ବହିର୍ଭୂତ ଖରଚମାନ ବାଜ୍ୟାପ୍ତ କଲେ )

ବାଜ୍ୟାପ୍ତ(ପ୍ତି,ପ୍ତ,ପ୍ତି) କରିବା—ଦେ.କ୍ରି (କଚେରୀ)—୧ । ନିଷ୍କର ଜମିରେ Bājyāpt(pti,pht,phti)karlba କର ବସାଇବା—1. To बाजेयाप्त करा resume a rent free holding. ୨ । ପ୍ରଜାର **बाजेयाप्त करना** ଜାଗିରଜମିକୁ ଖାସ୍ କରିବା—2. To resume or take khas possession of a service tenure. ୩ । ନିମ୍ନସ୍ଥ କର୍ମଚାରୀ ବା ଗୁମାସ୍ତାଙ୍କ ହିସାବରେ ଚଢ଼ିଥିବା ଆଦେଶବହିର୍ଭୂତ ଖରଚକୁ ନାମଞ୍ଜୁର କରିବା—3 To reject an unauthorised item of expenditure entered in the account by a subordinate or agent.

ବାଝିବା—ଦେ. କ୍ରି (ସଂ ବାଧ ଧାତୁ)—ବାଧିବା—To affect painfully; to pain. Bājhibā **दुःखदेना**

(ଯଥା—ତା ଅପ୍ରିୟ ବଚନ ମୋତେ ବଡ଼ ବାଝିଲା)

(ବାଝିଯିବା—ଅନ୍ୟରୂପ) ଦେ. ବି—କ୍ଲାନ୍ତିର ଅନୁଭୂତ **दुःखहोना** (ଯଥା—ପାଞ୍ଚକୋଶ ବାଟ ଚାଲିଆସିବାରୁ ମୋତେ ଭାରି ବାଝିଲାଣି)

ବାଞ୍ଛ୍ ଧାତୁ—ସଂ.—ଇଚ୍ଛାକରିବା—Bāñchh (root) To wish.

ବାଞ୍ଛନ—ସଂ. ବି (ବାଞ୍ଛ ଧାତୁ+ଭାବ. ଅନ)—ବାସନା; ଇଚ୍ଛା—Bāñchhana Wish; desire.

ସଂ. ବିଣ ( +କର୍ମ ଅନ)—ଇପ୍ସିତ (କ୍ଲୀବଲିଙ୍ଗ) Wished for; desired.

ବାଞ୍ଛନୀୟ—ସଂ. ବିଣ (ବାଞ୍ଛ୍ ଧାତୁ+କର୍ମ ଅନୀୟ)—୧ । ପ୍ରାର୍ଥନୀୟ—Bāñchhaniya 1. Prayed for; desirable. ୨ । ଅଭିଲଷିତ--(ବାଞ୍ଛ୍ୟ—ଅନ୍ୟରୂପ) 2. Wished for; desired.

ବାଞ୍ଛା—ସଂ. ବି—(ବାଞ୍ଛ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—ଅଭିଲାଷ; Bāñchhā ଇଚ୍ଛା—Desire.

ଦେ. ବି—(ଅନାଦରାର୍ଥକ) ବାଞ୍ଛାନିଧି ନାମକ ବ୍ୟକ୍ତିର ଡାକ
(ବାଞ୍ଛି, ବାଞ୍ଛୁ—ଆଦରାର୍ଥକରୂପ) ନାମ—Name by which Bāñchhānidhi is called.

**ବାଞ୍ଛାକଳ୍ପତରୁ**—ସଂ. ବି. (୬ଷ୍ଠୀତତ୍; ବାଞ୍ଛା+କଳ୍ପତରୁ)—୧ । ଭକ୍ତର
Bāñchhākalpataru ବାସନା ପୂରଣକାରୀ ପୌରାଣିକ
[ବାଞ୍ଛାଦ୍ରୁମ, ବାଞ୍ଛାବଟ—ଅନ୍ୟରୂପ] କଳ୍ପବୃକ୍ଷ—1. The mythological banyan tree which fulfils people's desires; the wish—yielding tree. ୨ । ବିଷ୍ଣୁଙ୍କ ନାମ—2. A name of Bishṇu.

**ବାଞ୍ଛାନିଧି**—ସଂ. ବି—୧ । ଭଗବାନଙ୍କ ନାମ—1. Name of
Bāñchhānidhi Bishṇu. ୨ । ବାଞ୍ଛିତ ରତ୍ନ—2. One's wished for gem or jewel.
ଦେ. ବି. ପୁଂ-ଲୋକଙ୍କୁ ଦିଆଯିବା ନାମ—A name given to males.

**ବାଞ୍ଛିତ**—ସଂ ବିଣ. (ବାଞ୍ଛ୍ ଧାତୁ+କର୍ମ. ତ)—ଇପ୍ସିତ; ଅଭିଳଷିତ—
Bāñchhita Desirsd; wished for.
ସଂ. ବି. (+ଭାବ. ତ)—ଇଚ୍ଛା—Desire.

**ବାଞ୍ଛିବା**—ଦେ. କ୍ରି. (ପଦ୍ୟ) ( ସଂ. ବାଞ୍ଛଧାତୁ )—୧ । ବାଞ୍ଛା କରିବା;
Bāñchhibā ଅଭିଳାଷ କରିବା—1. To wish; to desire.
वाञ्छा ; बांछना ୨ । ପାଇବାକୁ ଇଚ୍ଛାକରିବା; ମନାସିବା—
2. To desire to get, to wish for.

ଖଗ ହୋଇ ସୁରତରୁ କୁସୁମ ବାଞ୍ଛିଲୁରେ—କବିସୂର୍ଯ୍ୟ. କଶୋଘଚମ୍ପୂ । ୫ ଗୀତ

**ବାଞ୍ଝ**—ଦେ. ବିଣ. (ସଂ. ବନ୍ଧ୍ୟ; ପ୍ରା. ବଂଝ; ବାଂଝ)—୧ । ଅନୁର୍ବର—
Bāñjha ଅଫଳପ୍ରସୂ—1. Unproductive; sterile
বাঁঝা ମଙ୍ଗରାଜଙ୍କ ଝିଅଟା କି ବାଞ୍ଝ ?
बांझ ଫକୀରମୋହନ. ଛମାଣଆଠଗୁଣ୍ଠ ।
(ବାଞ୍ଝପଣ—ବି) ୨ । ଅଫଳନ୍ତୀ (ଗଛ)—2. Unfruitful (tree).
୩ । (ସ୍ତ୍ରୀ) ବନ୍ଧ୍ୟା (ସ୍ତ୍ରୀ)—3. Barren (woman).

ବାଞ୍ଝ,ମାଇପର କି ସମ୍ପତ୍ତି, ସିନ୍ଦୂର ଫଗୁଅ କଜଳପାଟି—ଡଗ ।

(ବାଂଝ—ଅନ୍ୟରୂପ) ୪ । (ପୁଂ) ଯେଉଁ ପୁରୁଷର ସନ୍ତାନୋତ୍ପାଦକା
বাঞ্জ बाझ बाञ्ज ଶକ୍ତି ନାହିଁ; ସନ୍ତାନୋତ୍ପାଦନାକ୍ଷମ ( ପୁରୁଷ )—
4. (a male) Having no power of procreation.
[ ଦ୍ର—ଞ+ଝ କୁ ଗଞ୍ଜାମ ଅଞ୍ଚଳରେ ଞ୍ଝ ଲେଖନ୍ତି; ଓଡ଼ିଶାରେ କେହି କେହି ଞ୍ଜ, ଞ୍ଝ ଲେଖନ୍ତି । ]

**ବାଞ୍ଝ କାକରା**—ଦେ. ବି—ଯେଉଁ କାକରାପିଠା ମଧ୍ୟରେ ପୂର ନ ଥାଏ—
Bāñjha kākarā A cake without sandwiches
(ପୂର କାକରା—ବିପରୀତ) पुरी inside it.

**ବାଞ୍ଝ କାଙ୍କଡ଼(ଡ଼ା)**—ଦେ. ବି—ବନ୍ଧ୍ୟାକର୍କୋଟକୀ ( ଦେଖ )
Bāñjha kāṅkarḍa(rḍā) Bandhyākarkoṭakī
তীতকাংকরোল बांझककोली (See)

**ବାଞ୍ଝପୁଅ(ଆ)**—ଦେ. ବି. (ସଂ. ବନ୍ଧ୍ୟାପୁତ୍ର)—ବନ୍ଧ୍ୟାର ପୁତ୍ରବତ୍ ଅସାର
Bāñjhapua(ā) ବା ଅଳୀକ କଥା—An unreal thing.
[ବାନ୍ଧପୁଅ(ଆ)—ଅନ୍ୟରୂପ] বাঁঝের ছেলে बांझका लडका

**ବାଞ୍ଝ ପୁଆତି**—ଦେ. ବି. (ସଂ. ବନ୍ଧ୍ୟା+ପୁତ୍ରବତୀ)—୧ । ବନ୍ଧ୍ୟାନାରୀର
Bāñjha puāti ବହୁଦିନ ପରେ ପୁତ୍ରଲାଭ—1. The birth of a son to a hitherto sterile woman.
୨ । ବହୁକାଳପରେ ସନ୍ତାନ ଲାଭ କରିଥିବା ନାରୀ—
2. A woman who has been blessed with a son after a long period of sterility.*

**ବାଞ୍ଝ ବରଡ଼ୀ**—ଦେ. ବିଣ. ସ୍ତ୍ରୀ. ( ସହଚର )—୧ । ବନ୍ଧ୍ୟା—
Bāñjha barardī 1. Barren.
বাংঝা ବାଞ୍ଝ ବରଡ଼ୀ ହେବା କି ଭଣା ପାପ ?
ବାଞ୍ଝୀ ବରଡ଼ୀ ଫକୀରମୋହନ, ଛମାଣଆଠଗୁଣ୍ଠ ।
ବାଞ୍ଝୀ ବରଡ଼ିଆ } ଅନ୍ୟରୂପ ୨ । ଥରେ ସନ୍ତାନ ଜନ୍ମ କରିବା ପରେ
ବାଞ୍ଝ ବରଡ଼ିଆ ବହୁକାଳ ହେଲା ବନ୍ଧ୍ୟା; କାକବନ୍ଧ୍ୟା—
2. (a woman) Who has become sterile after giving birth to one child.
୩ । ( ଦ୍ୱନ୍ଦ୍ୱ ) ବନ୍ଧ୍ୟା ଓ ବଷ୍କୟଣୀ ( ଗାଈ ଗଣ )—
बांझबकेन 3. Sterile cow and cow which calved long ago.
(ଯଥା—ରାମ ବେହେରାର ଗୋଠରେ ଆଗେ ଖଣ୍ଡ ଖଣ୍ଡ ଦୁଧିଆଳୀ ଗାଈ ଥିଲେ; ଏବେ ତାର ବାଞ୍ଝ ବରଡ଼ୀ ହୋଇ ୮।୧୦ଟି ଗାଈ ଅଛନ୍ତି ।)

**ବାଞ୍ଝୀ**—ଦେ. ବିଣ. ସ୍ତ୍ରୀ.—( ସଂ ବନ୍ଧ୍ୟା)—ବନ୍ଧ୍ୟା (ସ୍ତ୍ରୀ)—
Bāñjhī Barren (woman).
বাঝী बाँझ; बाझा ବି. ସ୍ତ୍ରୀ.—ବନ୍ଧ୍ୟା ସ୍ତ୍ରୀ ବା ପଶୁ—
A sterile woman or beast.

**ବାଟ**—ସଂ. ବି. (ବଟ୍ ଧାତୁ=ବେଷ୍ଟନ କରିବା+କର୍ମ. ଅ; ତୁଳ. ପ୍ରା.
Bāṭa ବଟ୍ଟ)—୧ । ବେଷ୍ଟିତ ସ୍ଥାନ—1. A fenced place; enclosure. ୨ । ମାର୍ଗ; ରାସ୍ତା; ପଥ—2. Road; way; path.

ଜଗିଲେ ତାଙ୍କ ଯିବା ବାଟକୁ ଦ୍ୱାର ହୋଇ—କୃଷ୍ଣସିଂହ. ମହାଭାରତ ବନ ।

୩ । ମଣ୍ଡପ (ହ୍ର. ଶ.)—3. An open shade. ୪ । ବାସ୍ତୁ (ହ୍ର. ଶ.)—4. Homestead. ୫ । କୋଡ଼ଗାଡ଼—5. Groin (Apte). ୬ । ଶସ୍ୟବିଶେଷ—6. A sort of grain (Apte).
ରାସ୍ତା ଦେ. ବି.—୧ । (ଲକ୍ଷଣାର୍ଥ) ଉପାୟ; ପନ୍ଥା—
रास्ता, बाट 1. (figurative.) Way; means.

ମୋନକ ବୋଇଲେ ସେ ବାଟ କହ ଭଲେ
କରିବ ମୁହିଁ ତ ତା ଅକର୍ତ୍ତବ୍ୟ ହେଲେ । କୃଷ୍ଣସିଂହ. ମହାଭାରତ. ବନ ।

୨ । ପ୍ରବେଶର ବା ବହିର୍ଗମନର ଦ୍ୱାର—2 Entrance or exit. ୩ । ଦୂରତ୍ୱ—3. Distance. ୪ । ଯାତ୍ରୀ ସନ୍ଧାନ କ୍ରମରେ ପୁରୀ ପଣ୍ଡାଙ୍କର ଯିବା ଦୂରଦେଶ—4. Distant countries visited by pilgrim-hunters of Puri. ୫ । ସ୍ଥାନ—5. Place.

ବିଷ୍ଣୁ ମିଳିଲେ ଯଜ୍ଞ ବାଟେ
କଳ୍ପ ନୃପତିର ନିକଟେ । ଜଗନ୍ନାଥ, ଭାଗବତ ।

**ବାଟ ଓଳା(ଳେ)ଇବା**—ଦେ. କ୍ରି.—୧ । ଓଳାଇ କରି ବାଟ ସଫା
Bāṭa oḷā(ḷe)ibā କରିବା—1. To sweep a path
ରାସ୍ତା ସାଫ କର୍ରା clean. ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ପାଇଁ
**रास्ता साफ करना, बाटबुहारना** ଉପାୟ ସ୍ଥିର କରିବା—2. To settle means to achieve an object.

**ବାଟ ଓଷା**—ଦେ. ବି.—ପୌଷମାସ କୃଷ୍ଣ ୨ୟା, ୬ଷ୍ଠୀ ଓ ୮ମୀ ଦିନରେ
Bāṭa oshā ସ୍ତ୍ରୀଲୋକଙ୍କର ଗ୍ରାମ ଦାଣ୍ଡରେ ବା ଛକରେ ଗାତ ଖୋଳି ତହିଁରେ ଯମ ଦେବତାଙ୍କୁ ଭୋଗ ଦେବା ରୂପ ପର୍ବ; ଯମ ଓଷା; ଦାଣ୍ଡପହଁଚ୍ଚ ଓଷା—A festival observed on the 2nd, 6th. and 8th. days of the dark fortnight of the month of Pausha when the God of death is worshipped in a hole dug on the crossing of the village roads.
[ ଦ୍ର—ମୃତବତ୍ସା ସ୍ତ୍ରୀଲୋକମାନେ ଏ ଓଷା କଲେ ସେମାନଙ୍କର ସନ୍ତାନମାନେ ଦୀର୍ଘଜୀବୀ ହୁଅନ୍ତି ।]

**ବାଟ କଢ଼ା(ଢ଼େ)ଇବା**—ଦେ. କ୍ରି.—୧ । କୌଣସି ବ୍ୟକ୍ତିକୁ ପଥ
Bāṭa karḍhā (ṛḍhe)ibā ପ୍ରଦର୍ଶନ କରିବା—1. To
ରାସ୍ତା ଦେଖାନ **बाट दिखान** lead the way.
[ବାଟ ଦେଖା(ଖେ)ଇବା—ଅନ୍ୟରୂପ] ୨ । ଗନ୍ତବ୍ୟ ପଥ ଦେଖାଇବା 2. To show the way. ୩ । ଆଗେ ଆଗେ ଯିବା—3. To go ahead.

**ବାଟକା ବାଟେ(ଟୋ)ଇ**—ଦେ. ବି.—ଯେଉଁ ଲୋକ ବାଟେ ବାଟେ
Bāṭakā bāṭe(to)i ଚାଲି ଯାଉ ଥାଏ ଏବଂ ଗଳ୍ପ ବେଳେ
ରାହାଗିର ଦୈବାତ୍ ଯାହା ଆଖି ଆଗରେ ପଡ଼େ ତାହା ଗୁହିଁ ଦିଏ—
**राहागिरि, बटाउ, बटोहि** A simple wayfarer who witnesses an occurrence by mere chance.

**ବାଟ ଖରଚ**—ଦେ. ବି. (ଦେ. ବାଟ+ଫା. ଖର୍ଚ)—ଏକ ସ୍ଥାନରୁ ଅନ୍ୟ
Bāṭa kharacha ସ୍ଥାନକୁ ଯିବା ବ୍ୟକ୍ତି ଯାତାୟାତ କରିବାପାଇଁ
**राह खरच** ଓ ଭୋଜନ ଆଦି ପାଇଁ ଯେଉଁ ବ୍ୟୟ କରନ୍ତି—
(ବାଟଖର୍ଚ—ଅନ୍ୟରୂପ) Travelling expenses.

**ବାଟ ଗୁଡ଼ି**—ଦେ. ବି.—ନରସିଂହ କଡ଼ା (ଦେଖ)
Bāṭa gurḍi Narasimha karḍā (See)

**ବାଟ ଘ(ଘା)ଟ**—ଦେ. ବି.—୧ । (ସହଚର)—ପଥ ଓ ନଇ ପାର
Bāṭa gha(ghā)ṭa ହେବା ସ୍ଥାନମାନ—1. Roads and
ରାସ୍ତା ଘାଟ crossingo. ୨ । ପଥରେ ପଥିକ ଓ ପଣ୍ୟବାହୀ-
**रास्ता घाट** ମାନଙ୍କଠାରୁ ଆଦାୟ ହେବା ଶୁଳ୍କ—2. Cess
ରାହଦାରୀ leved from wayfarers and merchandise.
**राहदारी**

**ବାଟ ଘର**—ଦେ. ବି.—୧ । ଯେଉଁ ଘର ଭିତର ଦେଇ ଅଗଣାକୁ
Bāṭa ghara ପଡାକୁ ଯିବାର ରାସ୍ତା ଥାଏ ଏବଂ ଯେଉଁ ବାଟେ
**बाटघर** ଲୋକେ ଅଗଣା ମଧ୍ୟକୁ ଯିବା ଆସିବା କରନ୍ତି—1. A house which is used by people for going out of and coming into a court-yard. ୨ । କୌଣସି ସ୍ଥାନକୁ ଯିବାର ଅଧବାଟରେ ଥିବା ଘର—2. A house situate midway. ୩ । ରାସ୍ତାକୁ ଲାଗି ଥିବା ଗୃହ; ରାସ୍ତା କଡକଟରେ ଥିବା ଘର—3. A house adjoining the road; wayside house.

ବାଟଘର ଦ୍ୱାରେ ଅଛୁଅଁ କର
ହେବେ ରଜା ରାଇଜରେ ଝରଡ଼ୁ ଘର—ଢଗ ।

୪ । (ଲକ୍ଷଣାର୍ଥ) ସର୍ବଦା ଯିବା ଆସିବା ସ୍ଥାନ—
4. (fig) A place of constant resort.

**ବାଟ ଘ(ହ)ଷ**—ଦେ. ବି. (ଏ ଦିନ ଉତ୍ସବକର୍ତ୍ତାର ଗୃହରେ ବଟା ଘଷା
Bāṭa gha(ha)sha ପ୍ରଧାନ କାର୍ଯ୍ୟ ଥିବାରୁ)—ବିବାହ ବା ବ୍ରତର
**दुनही** ଦୁଇ ଦିନର ପୂର୍ବ ଦିବସ—Last but one day before a marriage or Upanayana ceremony.

କାଲି ସେ ବାଟଘଷ ପିଠୋଉ ଗୋଳ
ପଅର ଦିନ ହେବ ମଙ୍ଗଳ ଘର । ପୀତାମ୍ବର. ଲଜ କଣ୍ଟକବଗ ।

**ବାଟ ଛାଡ଼ିବା**—ଦେ.କ୍ରି—୧ । ପ୍ରକୃତ ପଥ ତ୍ୟାଗ କରି ଅବାଟରେ ଯିବା-
Bāṭa chhārḍibā 1 To take a wrong path.
ରାସ୍ତା ଛଡ଼ା ୨ । କୌଣସି ବ୍ୟକ୍ତିର ବାଟରେ ଯିବା ସକାଶେ ତାକୁ
**रास्ता छोडना** ବାଟର କେତେକ ଅଂଶ ଛାଡ଼ି ଦେବା—2. To
(ବାଟ ଛାଡ଼ି ଦେବା—ଅନ୍ୟରୂପ) give a person road enough to pass; to make a way for another.

ସେ ହସ ନାହିଁ କି ବାଟ ଛଡ଼ ନାହିଁ—ଢଗ ।

**ବାଟ ଛାପୁଲି**—ଦେ. ବି—କପୋତ ଜାତୀୟ ଏକ ପ୍ରକାର ଛୋଟ
Bāṭa chhāpuli ଚଢ଼େଇ—A kind of dove-like bird.
(ବାଟ ଛାଲି—ଅନ୍ୟରୂପ) [ ଦ୍ର—ଏମାନେ ପାରାଠାରୁ ଛୋଟ; ଯୋଡ଼ି ଯୋଡ଼ି ହୋଇ ରହନ୍ତି । ଏମାନଙ୍କ ଦେହ ମାଟିଆ ବର୍ଣ୍ଣ ଏବଂ ଖୁବ୍ ଛୋଟ । ଏମାନେ ସନ୍ଧ୍ୟା ବେଳେ ମନୁଷ୍ୟ ଯିବା ବାଟରେ ବସି ଥାଆନ୍ତି ଏବଂ ଏମାନଙ୍କ ବର୍ଣ୍ଣ ମାଟି ସଙ୍ଗେ ମିଶିଯିବାରୁ ଏମାନେ ଭୂମିରୁ ବାରି ହୁଅନ୍ତି ନାହିଁ; ମନୁଷ୍ୟ ଏମାନଙ୍କ ପାଖରେ ପହଞ୍ଚିଲା ମାତ୍ରକେ ଫଡ଼ଫଡ଼ କରି ଉଡ଼ି ଯାଆନ୍ତି । ପଥିକ ହଠାତ୍ ଏହା ଦେଖି ଚକିତ ହୋଇଯାଏ । ]

**ବାଟଣ**—ପ୍ରାଦେ. (ମେଦିନୀପୁର) ବି. (ଭୁଲ. ହି. ବାଟନା)—
Bāṭaṇa ବଟା ବେସର—Rye paste.

**ବାଟ(ଟେ)ଣା**—ଦେ. ବି. ( ସ. ବର୍ତ୍ତନ—ବାଟିବା )—
Bāṭa(ṭe)ṇā ତରକାରୀରେ ଦିଆଯିବା ପାଇଁ ବଟା ହେବା ମସଲା--
ବାଟନା Spices ground for being mixed with
**उबटन, बटना** curry.

ଲୁଗା ଧୋଇ ବାଟଣା ବାଟି
ଲଟା ପୋଛ କରୁଁ ପରିବା କାଟି—ଭକ୍ତକବି. ରତ୍ନମାଳୀ ।

**ବାଟ ଦେବା**—ଦେ. କ୍ରି—୧ । ପଥ ଛାଡ଼ି ଦେବା—1. To give
Bāṭa debā give a person road enough to pass.
ରାସ୍ତା ଦେଓୟା ୨ । (ଲକ୍ଷଣାର୍ଥ) ଉପାୟ ବତାଇ ଦେବା—
**रास्ता देना** 2. (fig) To suggest means.

**ବାଟ ଧରିବା**—ଦେ. କ୍ରି—୧ । ପ୍ରକୃତ ରାସ୍ତାରେ ଚାଲିବା—
Bāṭa dharibā 1. To take to the true road.

ରାସ୍ତା ଧରା ୨ । ଅବାଟକୁ ନ ଯିବା—2. Not to take
राह पकडना the wrong track.

**ବାଟ ପଡ଼ା(ଡ଼ି)**—ଦେ. ବି. ( ସଂ. ବାଟ+ପତନ )—
Bāṭa parḍā(rḍi) ବାଟ ମାରଣା ( ଦେଖ )
বাট পাড় बाट पाडु(रु) Bāṭa māraṇā ( See )

**ବାଟ ପାରି(ଡ଼ି, ଡ଼ୁ)**—ଦେ. ବି. ( ବାଟ+ପତନ )—
Bāṭa pāri(rḍi, rḍu) ୧ । ଡକାଇତି; ରାଜ ଦାଣ୍ଡରେ ଦସ୍ୟୁ
(ବାଟ ପଡ଼ା—ଅନ୍ୟରୂପ) ବୃତ୍ତି—Highway robbery.
বাট পাড়ী, রাহাজানী ଏ କାଳରେ ଯେ ଘେନି ବଳ,
बटपारी ବାଟପାରି ବଳ ଛାଡ଼ି ତ ବଡ଼ନ୍ତି—
ଉକାଶ- କଳ୍ପ ଲକସ୍ ।

বাট পাড়া ୨ । ଡକାଇତ; ଯେ ରାଜଦାଣ୍ଡରେ ପଥିକମାନଙ୍କୁ
बट पार ଆକ୍ରମଣ କରେ—2. Highwayman.

**ବାଟ ପାହି**—ଦେ. ବି. ( ପାନ ବରଜ )—
Bāṭa pāhi ପାନ ବରଜରେ ଦୁଇ 'ଗଛ' ମଧ୍ୟରେ ଥିବା ଫାଙ୍କ—
The space between two rows of betel plants in a betel plantation.

**ବାଟ ବରଣ**—ଦେ. ବି—ବରପାତ୍ର ବିବାହ କରିବାକୁ କନ୍ୟାଘରକୁ ଆସିବା
Bāṭa baraṇa ସମୟରେ କନ୍ୟା କର୍ତ୍ତାଙ୍କର ତାହାଙ୍କୁ ଖଣ୍ଡଦୂରରୁ
ବରଣ କରି ଆଣିବା କର୍ମ—The ceremony of the bride's father formally meeting the coming bridegroom and welcoming him to the marriage alter,

ଆସ ପାତ୍ରେ ! ବରକୁ ବାଟବରଣ କରି ନଅ ।
ଫକୀରମୋହନ- ଗଳ୍ପସ୍ବଳ୍ପ ।

**ବାଟ ଭାଙ୍ଗିବା**—ଦେ. କ୍ରି—୧ । ବାଟରୁ ଏକ ପାଖିଆ ହୋଇଯିବା—
Bāṭa bhāṅgibā 1. To go by moving to a side.
রাস্তা ভাঙ্গা ୨ । ବାଟରେ କୌଣସି ପ୍ରତିବନ୍ଧକ ଥିବାର ଦେଖି
बाट काटना ଖଣ୍ଡଦୂର ଆଗରୁ ସେ ବାଟ ଛାଡ଼ି ଅନ୍ୟ ବାଟେ ଯିବା—
2. To alter one's course to evade an obstruction.
(ବାଟ କାଟିବା—ଅନ୍ୟରୂପ)

**ବାଟ ଭୁଲିବା**—ଦେ. କ୍ରି—୧ । ଗନ୍ତବ୍ୟ ପଥକୁ ଚିହ୍ନି ନ ପାରିବା—
Bāṭa bhulibā 1. To forget the true road.
(ବାଟ ବୁଡ଼ିବା—ଅନ୍ୟରୂପ) ୨ । ପ୍ରକୃତ ପଥରେ ନ ଯାଇ ଭ୍ରମରେ
রাস্তা ভুলা ଅନ୍ୟ ବାଟରେ ଯିବା; ଭୁଆଁ ବୁଲିବା—2. To take
बाट भूलना a wrong path by mistake.

**ବାଟ ମଙ୍ଗଳା**—ଦେ. ବି—୧ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବେଢ଼ା ମଧ୍ୟରେ
Bāṭa maṅgalā ଉତ୍ତର ଦୁଆର ପାଖେ ଥିବା ଦେବୀ—
1. An idol of a Goddess near the north gate inside the compound of the Jagannath temple at Puri.
୨ । ସ୍ତ୍ରୀ ଲୋକମାନେ ଚୈତ୍ର ମାସର ମଙ୍ଗଳବାରମାନଙ୍କରେ ଗ୍ରାମ ଦାଣ୍ଡରେ ଗାତ ଖୋଳି ଚହ୍ଲରେ ଘଣା, ଉଖୁଡ଼ା ଆଦି ରଖି ଯେଉଁ ଠାକୁରାଣୀଙ୍କୁ ପୂଜା କରନ୍ତି—2. A popular Goddess worshipped by females in a hole dug on the village road on the Tuesdays of the month of Chaitra.

**ବାଟ ମଡ଼ା ଶାଢ଼ୀ**—ପ୍ରାଦେ. ( ଯାଜପୁର ) ବି—
Bāṭa marḍā śārḍhi ନଣନ୍ଦ ପୋଟଳି ( ଦେଖ )
Nananda poṭali ( See )

**ବାଟ ମାରଣା**—ଦେ. ବି—୧ । ପଥ ଦସ୍ୟୁ; ଯେ ରାସ୍ତା ଘାଟରେ
Bāṭa māraṇā ପଥିକମାନଙ୍କଠାରୁ ଲୁଟ ପାଟ କରି ଧନ ଆଦି
বাট পাড় ଛଡ଼ାଇ ନିଅନ୍ତି ବା ସେମାନଙ୍କୁ ମାରି ପକାନ୍ତି—
बटपरा, बटपार, बटमार 1, Highwayman; robber.
(ବାଟମାରୁ, ବାଟମାରୁଆ—ଅନ୍ୟରୂପ) ୨ । ଡକାଏତ—2 Dacoit.

**ବାଟମୁଣ୍ଡ**—ଦେ. ବି—୧ । ରାସ୍ତାର ଶେଷ ଭାଗ ବା ଛକ ଯାଗା—
Bāṭamuṇḍa 1. The extremity of a road.
রাস্তার মোড় ୨ । ଦୁଆରମୁହଁ—2. Entrance at the door;
चौक doorway.

**ବାଟଲି**—ବୈଦେ. ପ୍ରାଦେ. (ବାଲେଶ୍ବର) ବି. (ଇଂ. ବଣ୍ଟ୍ଲାଇନ୍)—
Bāṭali (ଜାହାଜଆ) ଜାହାଜର ପାଲର ମୁଣ୍ଡରୁ ଲାଗିଥିବା ଦଉଡ଼ି,
বাটলীন ଯାହା ମାସ୍ତୁଲ ଅଗ ପର୍ଯ୍ୟନ୍ତ ଯାଇ ସେଠାରୁ ସଗଡ଼ି ବାଟଦେଇ
बाटली ତଳକୁ ଲମ୍ବିଥାଏ ଓ ଯାହାଦ୍ବାରା ପାଲକୁ ଟାଣିବାକୁ ହୁଏ—
( Nautical ) Buntline; a rope passing from the top of a sail, led up to the masthead and thence on deck to help in hauling up the sail.

**ବାଟା**—ପ୍ରାଦେ. (ବାଲେଶ୍ବର) ବି. (ଭୁଲ. ବି. ବାଟା)—ପୋହୋଲା
Bāṭā ମାଛ—Cirrhina Reba (fish).

[ ଦ୍ର—ଏମାନେ ଶକଳୀ ଓ ପ୍ରାୟ ୧୫।୧୬ ଅଙ୍ଗୁଳ ଲମ୍ବ ହୁଅନ୍ତି ଏବଂ ମଧୁର ପାଣିରେ ରହନ୍ତି । ]

**ବାଟି**—ଦେ. ବି—୧ । ଏକପ୍ରକାର କଉଡ଼ି ଖେଳ—1. A kind of
Bāṭi indoor game with cowries. ୨ । ଭୂମି ପରିମାଣ
ବିଶେଷ; ୨୦ ଏକର ବା ମାଣ—2. A unit of 20
বাটী acres of land. ୩ । (ବଙ୍ଗଳାରୁ ଅନୁକୃତ)—ଗିନା;
बाटी କଟୋରି; ଛାଟିଆ—3. Saucer; cup. ୪ । ମାରୱାଡ଼ୀ-
বাটী ମାନଙ୍କ ବ୍ୟବହୃତ ପିଠାକାର ରୁଟି—4. A kind of
बाटी bread resembling a ball.

[ ଦ୍ର—ଅଟାକୁ ଦଳ ଗୋଟିଏ ଲେଖାଏଁ ଚେପଟା ପିଣ୍ଡାକାର କରି ତାକୁ ଗରମ ପାଉଁଶରେ ପୋଡ଼ିବାକୁ ହୁଏ । ତତ୍ପରେ ତାହାକୁ କାଢ଼ି ଘିଅରେ ବୁଡ଼ାଇ ରଖିବାକୁ ହୁଏ । ଏହାକୁ ବାଟି ବୋଲଯାଏ । ଏହା ସୁରୁପାକ । ]

ପ୍ରାଦେ. (ଗଞ୍ଜାମ) ବି. (ସଂ. ବର୍ତ୍ତୀ)—୧ । ଗୁଲି ( ଦେଖ )—
1. Guli ( See ). ୨ । ଏକପ୍ରକାର ଗୁଲି ବା ମାର୍ବୁଲ ଖେଳ—2. A kind of game with balls of marble or glass.

[ ଦ୍ର—ଏହା ୨ ପ୍ରକାର ଯଥା—ଗାତଖେଳ ଓ ବନ୍ଧଖେଳ । ୧ମ ପ୍ରକାର ଖେଳରେ ଭୂଇଁରେ ଗୋଟିଏ ଗାତ ଖୋଳିବାକୁ ହୁଏ । ଗାତଟି ସାଧାରଣତଃ ½ ଇଞ୍ଚ ଗଭୀର ହୁଏ । ଖେଳାଳମାନେ

ସମସଂଖ୍ୟକ ୨ ଦଳ ହୁଅନ୍ତି । ପ୍ରଥମ ଦଳ ଆଗ ଖେଳ ନିଜର ବାଟିକୁ ଟିପି (ଅଙ୍ଗୁଠିଦ୍ୱାରା ଫିଙ୍ଗି) ଅନ୍ୟ ଦଳର ବାଟରେ ବଜାଇବାକୁ ଚେଷ୍ଟା କରନ୍ତି । ଶେଷରେ ଯେଉଁ ଖେଳାଳିର ବାଟ ବିପକ୍ଷର ବାଟରେ ବାଜି ଗାତରେ ପଡ଼େ ସେ ଜିତେ ।

୨ୟ ପ୍ରକାର ଖେଳ ବା ବନ୍ଧଖେଳରେ ଭୂଇଁରେ ଗୋଟିଏ ଚତୁଷ୍କୋଣ କ୍ଷେତ୍ର କାଟିବାକୁ ହୁଏ । ତହିଁ ମଧ୍ୟରେ ଏକ ଦଳ ଖେଳାଳିଙ୍କର କେତେ ଗୁଡ଼ିଏ ବାଟିକୁ ଥାଡ଼ କରି ରଖିବାକୁ ହୁଏ । ଅନ୍ୟ ଦଳ ଜଣଜଣ ହୋଇ କ୍ଷେତ୍ରମଧ୍ୟସ୍ଥ ବାଟମାନଙ୍କୁ ଲକ୍ଷ୍ୟ କରି ନିଜ ନିଜର ବାଟିକୁ ଫୋପାଡ଼ନ୍ତି । ଯେଉଁ ଖେଳାଳିର ବାଟ କ୍ଷେତ୍ର-ମଧ୍ୟସ୍ଥ ବାଟରେ ବାଜେ ସେ ଜିଣେ । ବାଟ ନ ବାଜିଲେ ତାହା ପଡ଼ିବା ଥାନରୁ ପୁଣି ଉକ୍ତ ବାଟିକୁ ଟିପି ବିପକ୍ଷର ବାଟିକୁ ମାରିବାକୁ ହୁଏ । ]

ପ୍ରାଦେ. ( ସିଂହଭୂମି ) ବି—୧ । ପଇଲି ( ଦେଖ )— 1. Pailā ( See ). ୨ । ୮୪ ଠାରୁ ୧୦୦ ତୋଳା ଓଜନ—2. A standard of weight varying from 84 to 100 Tolas.

**ବାଟିଆ**—ଦେ. ବି. ( ସଂ. ବାଟ )—୧ । ବାଟୋଇ; ପଥିକ—1. Way farer. ୨ । ଅଡୁଆ—2. Complication. ୩ । ଦୁର୍ନାମ; କଳଙ୍କ; ବଦ୍‌ନାମ—3. Stain; bad name. ୪ । ଗୁରୁ ଦାୟିତ୍ୱ—4. Grave responsibility.
Bāṭiā
ରାହୀ **बटाउ**
**गोलमाल**
**धब्बा**

(ଯଥା—ନିଜହାତରେ ତହବିଲ ରଖିଲେ ଦିନେ ହେଲେ ବାଟିଆ ଲାଗିବ ।)

୫ । ବିଲରେ ହଳ ବୁଲାଇବା ବେଳେ ଲଙ୍ଗଳ ମୁଣ୍ଡାର ଦୁଇପଟରେ ଯେଉଁ କାଦୁଅ ମାଟି ପୁଳାମାନ ଲାଗିଯାଏ (ଏ ସବୁକୁ ହଳିଆ ଗୋଡ଼ଦ୍ୱାରା ଲଙ୍ଗଳଦେହରୁ ଛଡ଼ାଇ ଦେଉଥାଏ ଏବଂ ଆଉ ଜଣେ ଲୋକ ସେଗୁଡ଼ାକୁ ଲଙ୍ଗଳତଳରୁ ଉଠାଇ ଛୋଟ ଛୋଟ ପୁଳା କରି ବିଆଡ଼ର ଚାରିଆଡ଼େ ଖେଳାଇ କରି ଫିଙ୍ଗୁଥାଏ)—5. Clods of clay clinging to the wings of a plough during the puddling operation.

**ବାଟିଆଇବା**— ଦେ. କ୍ରି. (ସଂ. ବାଟ)—ବାଟେଇବା ୧ ( ଦେଖ ) Bāṭeibā 1 (See)
Bāṭiāibā

**ବାଟିଆ ଖେଳା**—ଦେ. ବି— ବେଉଷଣ ପରେ ବିଆଡ଼ର ଘନ ସନ୍ନିବିଷ୍ଟ ଧାନବୁଦାମାନଙ୍କୁ ଓପାଡ଼ି ପରସ୍ପରଠାରୁ ସମାନ ଦୂରତାରେ ଖେଳାଇ ପୋତିବା— The act of evenly distributing and transplanting dense paddy plants in a field.
Bāṭiā khelā
[ବାଟିଆଖେଳ(ଳି)ଆ—ଅନ୍ୟରୂପ]
**थान बाछना**
( ବାଟିଆ ଖେଳା[ଳେ]ଇବା—କ୍ରିୟାରୂପ )

**ବାଟିଆ ଛଡ଼ା(ଡ଼େ)ଇବା**—ଦେ. କ୍ରି—୧ । କଳଙ୍କ ଅପନୟନ କରିବା— 1. To remove one's bad name. ୨ । ଦାୟିତ୍ୱରୁ ନିଷ୍କୃତି ପାଇବା ଉପାୟ କରିବା— 2. To take means to be relieved of a responsibility.
Bāṭiā chhaṛā(ṛe)ibā

**ବାଟିଆ ବୋଲିବା**—ଦେ. କ୍ରି—ଦୁର୍ନାମ କରିବା; (ପରକୁ) ଦୋଷ ଦେବା—To lay the blame on another.
Bāṭiā bolibā

**ବାଟିଆ ପକା(କେ)ଇବା**—ପ୍ରାଦେ. (ଯାଜପୁର) କ୍ରି—ଘନସନ୍ନିବିଷ୍ଟ ଧାନଗଛମାନଙ୍କୁ ପରସ୍ପରଠାରୁ ସମାନ ଦୂରତାରେ ପୋତିବା—To evenly distribute paddy plants in a field.
Bāṭiā pakā(ke)ibā

**ବାଟିଆ ମାଡ଼ିବା**—ଦେ. କ୍ରି—ହଳିଆ ହଳର ଦୁଇ ପଟରୁ ଗୋଡ଼ଦ୍ୱାରା ଛଡ଼ାଇଥିବା କାଦୁଅପୁଳାମାନ ( ହଳିଆର ସଙ୍ଗୀ) ବିଲରେ ଖେଳାଇ କରି ଚାରିଆଡ଼େ ପକାଇବା— To scatter over the paddy field the clods of clay clinging to the wings of a plough during puddling.
Bāṭiā māṛibā

**ବାଟିଆ ଲଗା(ଗେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିଠାରେ କଳଙ୍କାରୋପ ବା ଦୋଷାରୋପ କରିବା— 1. To accuse a person; to lay the blame on a person. ୨ । କୌଣସି ବ୍ୟକ୍ତିକୁ ଅଡ଼ୁଆରେ ପକାଇବା—2. To put a man to inconvenience or complications.
Bāṭiā lagā(ge)ibā
দোষ লাগান
**दोष लगाना**

**ବାଟିକା**—ସଂ. ବି-(ବଟ୍ ଧାତୁ=ବେଷ୍ଟନ କରିବା+ଇକ+ସ୍ତ୍ରୀ. ଆ)— ୧ । ଛୋଟ ଘର—1. A small house. ୨ । ବାଡ଼ି; ଛୋଟ ଫଳବଗିଚ୍ଚା—2. Small orchard ୩ । ବାସ୍ତୁ— 3 The site of a house (Apte).
Bāṭikā

**ବାଟି ଖେଳ**—ଦେ. ବି—ବଟି ଖେଳ— A kind of game.
Bāṭi kheḷa

ପ୍ରାଦେ. (ଗଞ୍ଜାମ) ବି—ମାରବଲ ଖେଳ—A kind of game with balls of marble or glass.

**ବାଟିଛତୁ**—ପ୍ରାଦେ. (ଜୟପୁର) ବି—ଏକପ୍ରକାର ଛତୁ— A kind of mushroom.
Bāṭichhatu

**ବାଟିବା**—ଦେ. କ୍ରି. ( ଉତ୍ ଉପସର୍ଗ ବୃତ୍ ଧାତୁ ବା ବଟ୍ ଧାତୁ=କ୍ଷୁଦ୍ର ବିଭାଗ କରିବା)—ଘନପଦାର୍ଥକୁ ଶିଳରେ ଜଳଯୋଗରେ ପେଷଣ କରି ପିଠଉ ପରି କରିବା; ପେଷିବା—To grind a hard substance to pulp; to bruise.
Bāṭibā
বাটা
**उबटना**

[ ଦ୍ର—ଶିଳ ଓ ଶିଳପୁଆ ସାହାଯ୍ୟରେ ବାଟିବାକୁ ହୁଏ; ମାତ୍ର କୁଣ୍ଡୀବାଡ଼ି ବା ଖଲପୁଆଦ୍ୱାରା ଘୋଟିବାକୁ ହୁଏ । ]

**ବାଟୀ**—ସଂ. ବି. (ବାଟ+ସ୍ତ୍ରୀ. ଈ) —୧ । ଘର—1. House ୨ । ଆବୃତ ସ୍ଥାନ; ବାଡ଼ି—2 An enclosed space or garden. ୩ । ବାସ୍ତୁ; ଘରବାଡ଼ି—3. The site of a house (Apte). ୪ । ରାସ୍ତା; ପଥ—4. A road (Apte). ୫ । କୋଡ଼ଗାତ—5. Groin (Apte).
Bāṭī

**ବାଟୁଆ** — ଦେ. ବି. (ସଂ. ବାଟ)—ବାଟୋଇ; ପଥିକ— Wayfarer.
Bāṭuā ରାହୀ **बटवाहा**

ପ୍ରାଦେ. (ପୁରୀ) ବି —ଯେଉଁ ପଣ୍ଡାମାନେ ଯାତ୍ରୀ ସଗ୍ରହ କରିବା-ପାଇଁ ଦୂରଦେଶକୁ ଯାଆନ୍ତି—The pilgrim-hunters of Puri who visit distant countries.

ବାଟୁଳ—ଦେ. ବଣ. ( ସଂ. ବର୍ତ୍ତୁଳ )—ବର୍ତ୍ତୁଳ—
Bāṭula Globular; spherical.

ବାଟୁଳା—ଦେ. ବି. (ସଂ. ବର୍ତ୍ତୁଳ)—୧ । ଗୋଲକ—1, A globe.
Bāṭulā ୨ । ଗେଣ୍ଡୁ—2. Ball. ୩ । ଅନ୍ନାଦିର ଗୋଲାକାର
गोला ପିଣ୍ଡ—3. Boiled rice etc made into a
গোলা ball ୪ । କଠାଉର ବୂଳ ଉପରେ ଥିବା ଗୋଲକ—
4. The ball-like top of the pin of a wooden sandal.

ବାଟୁଳା ଚଣା—ଗ୍ରାଦେ. (ଗଞ୍ଜାମ) ବି. (ସଂ. ବର୍ତ୍ତୁଳ+ଚଣକ; ଭୁଲ.
Bāṭulā chanā ସଂ. ବାଟଲ ମଟର)—ମଟର—Pea.

ବାଟୁଳା ଭୋଗ—ଦେ. ବି.—ସକାଳେ ରନ୍ଧା ହୋଇଥିବା ଅନ୍ନରୁ
Bāṭulā bhoga ଗୋଟିଏ ବାଟୁଳା କରି ରଖି ସନ୍ଧ୍ୟାବେଳେ
ତାହାକୁ ଠାକୁରଙ୍କ ନିକଟରେ ନୈବେଦ୍ୟରୂପେ ଅର୍ପଣ
କରିବା—Offering of a ball of rice to an
Idol in the evening, having kept it
apart out of the rice cooked in the morning and offered to the Idol.

ବାଟୁଳି—ଦେ. ବି. (ସଂ.ବର୍ତ୍ତୁଳ; ତୁଳ. ଫା. ଗିଲୁଲ୍—ବାଟୁଳ ଖଡ଼ା)—
Bāṭuli ଧନୁକାଦି ସାହାଯ୍ୟରେ ଦୂରକୁ କ୍ଷିପ୍ତ ହେବା ଲୁହାର ବା
বাটুল, ভাঁটা ମାଟିର ଗୋଟାଳ—Small iron or earthen
गुलति balls or pellets shot from a sling or bow.

ହସ୍ତେ ଶାର୍ଙ୍ଗଧନୁ ପୃଷ୍ଠେ ନିଷଙ୍ଗେ ପୂରିତ
ଅଗ୍ରତ-ମାରଣ-ପଟୁ ଅସ୍ତ୍ରସ ବାଟୁଳି—ରାଧାନାଥ, ମହାଯାତ୍ରା ।

ବାଟୁଳ ଖଡ଼ା—ଦେ. ବି—ବାଟୁଳି କ୍ଷେପ କରିବାରେ ବ୍ୟବହୃତ ବାଉଁଶ
Bāṭuli khaṛḍā ନିର୍ମିତ ଓ ଗୁଣଯୁକ୍ତ ଧନୁକାକୃତି ଅସ୍ତ୍ରବିଶେଷ—
বাঁটুলখাড়া A bow used in shooting iron or
गुलेल, गुलेला earthen pellets.

ସେ ଧନ ବନ୍ଧ ଗୋଟାଏ ସାମାନ୍ୟ ବାଟଳଖଡ଼ା ନୁହେଁ—
ଗାଳକଣ୍ଠ, ପିଲଙ୍କ ରାମାୟଣ ।

ବାଟେ(ଟୋ)ଇ—ଦେ. ବି—ପଥିକ—Wayfarer; traveller.
Bāṭe(ṭo)i ବାଟୀ बटबाहा

ବାଟେ(ଟୋ)ଇବା—ଦେ. କ୍ରି—(ସଂ. ବାଟ)—୧ । ବାଟଥରବା; ଯାଉ
Bāṭe(ṭo)ibā ଥିବା ବ୍ୟକ୍ତି ସଙ୍ଗେ ଖଣ୍ଡେଦୂର ବାଟ ଯାଇ ତାକୁ
আবগাড়ান ଛାଡ଼ି ଦେଇ ଆସିବା; ବାଟ ବଳେଇବା; ଅନୁବ୍ରଜନ
अरियातना କରିବା—1. To accompany a person
some way to see him off ୨ । ବାଟ ଦେଖାଇବା—
2. To lead or show the way.

ବାଟେ ବାଟେ—ଦେ. କ୍ରି. ବିଣ—୧ । ଗୋଟିଏ ବାଟକୁ ଧରି (ଚାଲି
Bāṭe bāṭe ଚାଲି ଯିବା); ରସ୍ତାକୁ ନ ଛାଡ଼ି (ଚାଲିବା)—
बाटे बाटे 1. (to go) One's way. ୨ । ସିଧା ସିଧା ବାଟରେ—
2. Straightway.

ବାଟ୍ୟ—ସଂ. ବି—(ବାଟ+ଯ)—ଉଦ୍ୟାନ ସମ୍ବନ୍ଧୀୟ—
Bāṭya Belonging to a garden.

ବାଟ୍ୟାଲ(ଳୀ)—ସଂ. ବି—ଅତିବଳା (ଦେଖ)
Bāṭyāla(ḷi) Atibaḷā (Apte) (See).
(ବାଟ୍ୟା, ବାଟ୍ୟୀ, ବାଟ୍ୟାଳକା—ଅନ୍ୟରୂପ)

ବାଡ୍ (ଧାତୁ)—ସଂ—୧ । ଗାଧୋଇବା—1. To bathe (Apte).
Bāṛd (root) ୨ । ପାଣିରେ ବୁଡ଼ିବା—2 To dive (Apte).
୩ । ବାହାରକୁ ବାହାରି ପଡ଼ିବା—3. To emerge (Apte).

ବାଡ଼କିନ୍—ବୈଦେ. ବି—( ଇଂ. ବଡ୍‌କିନ୍ )—୧ । ଛାପାଖାନାରେ
Bāḍ-kin କମ୍ପୋଜିଟରମାନେ ଫର୍ମରେ ବସାଯାଇଥିବା ଟାଇପ୍
বাড়কীন ମାନଙ୍କୁ ଘୁଞ୍ଚାଇବା ପାଇଁ ବ୍ୟବହାର କରିବା କାଠବେଣ୍ଟ-
बाडकीन ବାଲା ମୁନ ନ ଥିବା ଫୋଡ଼ଣୀ—1. Compositors'
bodkin; a wooden-handled blunt needle.
୨ । ଦପ୍ତରୀମାନେ ବହି ବାନ୍ଧିବା ପାଇଁ ପୃଷ୍ଠାମାନଙ୍କ
ଫୋଡ଼ିବାରେ ଯେଉଁ କାଠବେଣ୍ଟବାଲା ଫୋଡ଼ଣୀ
ବ୍ୟବହାର କରନ୍ତି—2. Bookbinder's bodkin.

ବାଡ଼(ଢ଼)ଣୀ—ଗ୍ରାଦେ. (ସମ୍ବଲପୁର) ବି. (ସଂ.ବର୍ଦ୍ଧନୀ)—ଝାଡ଼ୁପଟିର ମୁଠା
Bāṛd(ṛdh)-ni ବଢ଼ିଣା—Broomstick.
[ବାଡ଼ୁ( ଢ଼ୁ )ନ୍—ଅନ୍ୟରୂପ]

ବାଡ଼—ଦେ. ବି—(ସଂ. ବାଟ=ବେଷ୍ଟନ; ଆବୃତ ସ୍ଥାନ)—୧ । ବାଉଁଶ
Bāṛḍa ଖଣ୍ଡ ବା କଣ୍ଟା ଆଦିରେ ବୁଜା ହୋଇ କୌଣସି ସ୍ଥାନର
বাড়, বেড়া ଗୃହପାଖେ ଘେର ହେବା ବେଢ଼; ଘେର ବନ୍ଧ—
बेडा, बाडा 1 Fencing; hedge, enclosure.

ସୁଖ ଦେଇ ସୁଖୀ—ପଥେ ବକୁବାଡ଼ ଦେଇ ଭୁଜ ଦେଇ ସଡ଼ା—
ରାଧାନାଥ. ଯଯାତି ।

୨ । ଗୃହର କାନ୍ଥ—2. Wall.

ହେଲେ କି ସେ ଘର ସୁନା ଙ୍କ ବାଡ଼—
କୃଷ୍ଣସିଂହ. ମହାଭାରତ, ବନ—

कनहेडी ୩ । ନୌକାର ପାର୍ଶ୍ୱସ୍ଥ ବେଷ୍ଟନ—3. The walls of
a boat. ୪ । (ଖଟ ଓ ଯାନ ଆଦିର) ପାର୍ଶ୍ୱସ୍ଥ କାନ୍ଥ—
बाडा 4. Side railings (of a car or bedstead).
टाट ୫ । କୌଣସି ସ୍ଥାନକୁ ଭିନ୍ନ ଭିନ୍ନ ଅଂଶରେ ବିଭକ୍ତ
କରିବା ସକାଶେ ମଝିରେ ଦିଆଯିବା କାନ୍ଥ—5. Partition wall. ୬ । ଏକଗ୍ରାମବାସୀ ବା ଏକସମାଜ
ହେବା ଭିନ୍ନ ଭିନ୍ନ ଦଳ ବା ଫାଙ୍କ—6. F.
पाटी created amongst a body of villagers or caste people.

(ଯଥା—ସେହି ଗ୍ରାମଲୋକେ ୩ବାଡ଼ ହୋଇଅଛନ୍ତି ।)

୭ । କର ଆଦାୟ ଦୃଷ୍ଟିରେ ମଉଜାର ଭିନ
बटि ବା ବିଭାଗ—7. Separate fiscal pc

(ଯଥା—ଏ ମଉଜାର ୩ ବାଡ଼ରେ ବିଭକ୍ତ
ବାଡ଼, ବକସି ବାଡ଼ ଓ କାଗିର ବାଡ଼ ।)

बाडा ୭ । କାନ୍ଥ—7. Wall.
( ଯଥା—କନାଟ ବାଡ଼ )

୮ । ପରଦା—8. Partition; screen. ୯ । ଜଳାଶୟରେ ବା ନଦୀରେ ସୀମାବଦ୍ଧ ସ୍ଥାନରୁ ଅନ୍ୟତ୍ର ମାଛ ଆଦି ପଳାଇ ନ ଯିବା ପାଇଁ ସେଠାରେ ବନ୍ଧାଯିବା ଜାଲର ଘେର—9. A partition consisting of a net-wall put upright in a river or tank to prevent fishes from escaping.

ପ୍ରାଦେ. (ଗଡ଼ଜାତ) ବି. (ମୂଳ. ହି. ବାଡ଼ା=ଗୃହଆଡ଼େ ବାଡ଼ ଦ୍ୱାରା ଘେର ହୋଇଥିବା ସ୍ଥାନ)—ଷଣ୍ଢ ଦନେ ଗୋରୁ ଓ ମଇଁଷି ଗୋଠକୁ ଗଉଡ଼ମାନେ ରାତ୍ରରେ ବଳରେ ଯେଉଁଠାରେ ପକାନ୍ତି; ଅଡ଼ା—A place in a field where herds of cattle are kept confined at night; pen. ( ଯଥା—ଗାଈ ବାଡ଼; ମଇଁଷି ବାଡ଼ । )

ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—ଆଡ଼; ତରଫ—Direction; quarter.

ବାଡ଼ କରିବା—ଦେ. କ୍ରି—ବାଡ଼ ଦେଇ କୌଣସି ସ୍ଥାନକୁ ଭିନ୍ନ ଭିନ୍ନ ଅଂଶରେ ବିଭକ୍ତ କରିବା—To divide a plot into smaller plots by erecting partition hedges.
Bārda kariba
ବେଡ଼ା ଦେଓୟା
पाटी करना

ବାଡ଼ ଦେବା—ଦେ. କ୍ରି—୧ । ଅନ୍ତରାୟ ହେବା—
Bārda deba 1. To be an obstacle.
वाड देना ୨ । ବାଧା ଦେବା—2. To present an obstacle.
ବେଡ଼ା ଦେଓୟା ୩ । କୌଣସି ସ୍ଥାନକୁ ଘୁଞ୍ଚିବା ପାଇଁ ବାଡ଼ ପୋତିବା—2. To set up a fencing at a place.

ବାଡ଼ ପାଣି—ପ୍ରାଦେ. ( ଗଞ୍ଜାମ ଓ ଗଡ଼ଜାତ ) ବି—
Bārda pāni ଉଣ୍ଡାର ଅଦି ସାଟକ ଜାତିରେ ବିବାହଯୋଗ୍ୟା କନ୍ୟା ପାଇଁ ଉପଯୁକ୍ତ ବରପାତ୍ର ନ ମିଳିଲେ ପ୍ରଥମେ ଉକ୍ତ କନ୍ୟାକୁ ତାହାର ଭଉଣୀ-ପଣ୍ଡ ବା ଅଜାଙ୍କ ସଙ୍ଗେ ନାମମାତ୍ର ବିବାହ ଦେବାର ପ୍ରଥା—The usage prevalent amongst some Sudras of giving a grown-up girl in nominal marriage to a relative pending her regular marriage with a suitable bride-groom when available.
ବାଡ଼ ପାଣି ପିଣ୍ଡା, ବାଡ଼ୁଅପାଣି, ବାଡ଼ୁଅପାଣିପିଣ୍ଡା } ଅନ୍ୟରୂପ]

ବାଡ଼ ପୋତିବା—ଦେ. କ୍ରି—ବାଡ଼ ଦେବା ୩ ( ଦେଖ )
Bārda potiba Bārda deba 3 ( See)

ବାଡ଼ବ—ସଂ. ବି. ( ବଡ଼ବା=ଘୋଟକୀ+ବଦ୍ୟମାନାର୍ଥେ. ଅ )—
Bārdaba ୧ । ସମୁଦ୍ର ଗର୍ଭରୁ ଉପରକୁ ଉଠିବା ଅଗ୍ନି—1. Submarine fire.
ବାଡ଼ବା, ବାଡ଼ବାନଳ, ବାଡ଼ବାଗ୍ନି } ଅନ୍ୟରୂପ ୨ । ଘୋଟକ (ସିନ୍ଧୁଘୋଟକ ଛଡ଼ା)—2. Horse (excepting walrus).
୩ । ବ୍ରାହ୍ମଣ—3. A Brāhmana. ୪ । ପାତାଳ—4. The nether regions. ୫ । ଘୋଟକ ସମୂହ; ଘୋଡ଼ା ପଲ—4. A herd or stud of horses or mares.
୬ । ଫଳିତ ଜ୍ୟୋତିଷରେ କରଣବିଶେଷ; ବାଳବ କରଣ—6. A kind astrological conjunction.

ସଂ. ବିଣ—ବଡ଼ବା ସମ୍ବନ୍ଧୀୟ—Relating to Bardabā.

ବାଡ଼ବ ଜାତ—ଦେ. ବି—ଅଶ୍ୱିନୀକୁମାର ଦ୍ୱୟ—
Bārdaba jāta The twin heavenly physicians.

ବାଡ଼ ବଡା—ଦେ. ବି. ( ସହଚର )—ବାଧା; ପ୍ରତିବନ୍ଧକ—
Bārda bata Obstruction; restriction.
( ଯଥା—ତା ମୁହଁରେ ବାଡ଼ବଡା ନାହିଁ । )

ବାଡ଼ବାଗ୍ନି—ସଂ. ବି. (ବାଡ଼ବ+ଅଗ୍ନି)—
Bārdabagni ସମୁଦ୍ର ଗର୍ଭରୁ ଉପରକୁ ଉଠିବା ଅଗ୍ନି—Submarine fire.
(ବାଡ଼ବାନଳ—ଅନ୍ୟରୂପ)

ବାଡ଼ ବାଙ୍କୁ—ଦେ. ବି—ଡଙ୍ଗାବାଡ଼ର ପଟାରେ ସମକୋଣ ଭାବରେ ଲଗ୍ନ କାଠି—The right-angled props or brackets supporting the side-walls of a boat.
Bārda bānku

ବାଡ଼ ବୁଜା—ଦେ. ବି—କୌଣସି ସ୍ଥାନରେ ବାଡ଼ ଦେବା କର୍ମ—
Bārda bujā The act of setting up a fence at a place.
ବେଡ଼ା ଦେଓୟା वाडा देना

ବାଡ଼ ବୁଜିବା—ଦେ. କ୍ରି. ( ସଂ. ବାଟ+ମୁଦ ଧାତୁ )—
Bārda bujiba ୧ । କୌଣସି ସ୍ଥାନର ଚାରିଆଡ଼େ ବାଡ଼ାବନ୍ଦ କରିବା—1. To set up a fencing round a spot. ୨ । ଉନ୍ମୁକ୍ତ ସ୍ଥାନକୁ ବାଡ଼ାବନ୍ଦ କରିବା—2. To enclose an open space. a hedge with.
ବେଡ଼ା ଦେଓୟା
वाडा वन्दी करना
[ବାଡ଼ ଦେବା; ବାଡ଼ ପକା(କେ)ଇବା, ବାଡ଼ ବସା(ସେ)ଇବା—ଅନ୍ୟରୂପ]
[ବାଡ଼ ବୁଜା(ଯେ)ଇବା; ବାଡ଼ବଦଆଇବା—ପ୍ରଯୋଜକ ରୂପ]

ବାଡ଼ବେୟ—ସଂ. ବି. ( ବଡ଼ବା+ଏୟ )—
Bārdabeya ୧ । ବାଡ଼ବାଗ୍ନି—1. Submarine fire.
୨ । ଅଶ୍ୱିନୀକୁମାରଦ୍ୱୟ—2. The twin sons of Aswini; the twin heavenly physicians.
୩ । ଷଣ୍ଢ—3. A bull (Apte).

ସଂ. ବିଣ—ବଡ଼ବା ସମ୍ବନ୍ଧୀୟ—Relating to submarine fire.

ବାଡ଼ବେୟ ସୁତ—ଦେ ବି—୧ । ଅଶ୍ୱିନୀକୁମାର ଦ୍ୱୟ—
Bārdabeya suta 1. The twin sons of Aswini.
୨ । ନଳ ନାମକ ବାନର—2. A monkey called 'Nala.'
ବାଡବେୟ ସୁତ ଭାଷେ ସତ ଏ ତରକ । ଉକ୍ତ. ବୈଦେହୀଶବିଳାସ ।
[ ଦ୍ର—ଏ ଶ୍ରୀରାମଙ୍କ ଅଷ୍ଟ ବାନର ସେନାପତି ମଧ୍ୟରୁ ଜଣେ । ]

ବାଡ଼ବ୍ୟ—ସଂ. ବିଣ. (ବଡ଼ବା+ଯ)—୧ । ବଡ଼ବା ସମ୍ବନ୍ଧୀୟ—
Bārdabya 1. Relating to submarine fire.
୨ । (ବାଡ଼ବ=ବ୍ରାହ୍ମଣ+ସମୂହାର୍ଥେ. ଯ) ବ୍ରାହ୍ମଣ ସମୂହ—2. A collection or group of Brāhmanas.

ବାଡ଼ ମୋହିନୀ—ଦେ. ବି—ବନଦେବୀ—
Bārda mohini A class of demigoddesses.
ବାଡ଼ ମୋହିନୀ ସ୍ୱଭାବେ ବଦୂଧ ରହିତ । ଉକ୍ତ. ବୈଦେହୀଶବିଳାସ ।

ବାଡ଼ା—ଦେ. ବ (ସଂ. ବାଟ)—୧ । ବାଡ଼—1 Fence.
Bārdā ୨ । ପାର୍ଶ୍ୱସ୍ଥ କାନ୍ଥ—2. Side wall.
ପ୍ରାଦେ. (ମେଦିନୀପୁର) ବି—ଯଷ୍ଟି ; ବାଡ଼ି—Stick.

ବାଡ଼ାଇବା—ଦେ. କ୍ରି—ବାଡ଼େଇବା ( ଦେଖ )
Bārdāibā Bārdeibā ( See )

ବାଡ଼ା ବନ୍ଧି—ଦେ. ବି—୧ । କୌଣସି ସ୍ଥାନକୁ ବାଡ଼ ଦ୍ୱାରା ବେଷ୍ଟନ
Bārdā bandi କରିବା—1. The act of enclosing a
বেড়া বন্দি बाडा बन्दी place with a hedge.
୨ । ବାଡ଼ା; ପାର୍ଶ୍ୱସ୍ଥ କାନ୍ଥ—2. Side wall.

ବାଡି—ବେଦେ. ବି. ( ଇଂ. ବଡ଼ିସ୍ )—ସ୍ତ୍ରୀଲୋକଙ୍କ ବକ୍ଷଃସ୍ଥଳ ଓ ପେଟ
Bādi ଆବରଣ କରିବା ଓ ଅଣ୍ଟାପର୍ଯ୍ୟନ୍ତ ଲମ୍ବ କୁର୍ତ୍ତି; ଜାକେଟ୍—
বাড়ী बाडीस (ବାଡୀସ୍—ଅନ୍ୟରୂପ) Bodice.

ବାଡ଼ି—ଦେ. ବି—୧ । ( ସଂ. ବାଟିକା )—ବାଟିକା; ଛୋଟ ବଗିଚା—
Bārdi 1. Small garden. ୨ । କ୍ଷେତ;କିଆରି—2. Field;
বাগান cultivated plot of land for growing
बारी vegetables. ୩ । ଗୃହସଂଲଗ୍ନ ଭୂମି—3. Home-
ক্ষেত stead; land adjoining a house. ୪ । ଗୃହର
खेत ପଛପଟରେ ଥିବା ଗୃହସଂଲଗ୍ନ ଭୂମି—4. Backside of
বাড়ি; ছড়ি a homestead. ୫ । (ସଂ. ଯଷ୍ଟି; କମ୍ବା ବାଟ=ବାଡ଼; 
छड़ी ଯାହା ବାଡ଼ରେ ବ୍ୟବହାର କରାଯାଇ ପାରେ)—5. Stick;
staff.

ଏ ଘୋଡ଼ାଙ୍କ ଦେହେ ବାଜିବ ଯେବେ ବାଡ଼ି
ଯାଙ୍କୁଡ଼ାଇ ପିଠି ପଡ଼ିବେ ଅଣ୍ଟାମାଡ଼ି । କୃଷ୍ଣସିଂହ. ମହାଭାରତ ବନ ।

ঘা; বাড়ি ୬ । ଯଷ୍ଟିଆଦି ଦ୍ୱାରା ଆଘାତ—6. Stroke with a
चोट stick.
(ଯଥା—ମାଷ୍ଟରେ ପିଲାକୁ ବେତରେ ୩ ବାଡ଼ି ପକେଇଲେ ।)
লাঠি ୭ । ଜମି ମାପିବା ପନ୍ଦିକା—7. A rod for measuring
बल्ला land. ୮ । ହଇଜା; ଓଲାଉଠା—8. Cholera.
हैजा ভেদবমি

ବାଡ଼ିସହାରିଣୀ ଦେବୀ ନାରାୟଣୀ ନମସ୍ତୁତେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

୯ । ଲୁଣ ତିଆରି କରିବା ନିମନ୍ତେ ଲୁଣୀମାଟି ସଂଗୃହୀତ ହୋଇ ରଖାଯିବା ସ୍ଥାନ—9. A place where saline earth is collected for the manufacture of salt.

ମାଟି ସଂଗ୍ରହ ସ୍ଥାନର ନାମ ବାଡ଼ି । ଫକୀରମୋହନ. ଗଳ୍ପସ୍ୱଳ୍ପ ।

୧୦ । ଶୂଦ୍ରମାନଙ୍କର ବଂଶୋପାଧିବିଶେଷ—10. A family-title of certain Śūdras. ୧୧ । ଚାଟଶାଳୀରେ ଅବଧାନମାନେ ପିଲାଙ୍କୁ 'ଆ'କାର ଶିଖାଇବା ବେଳେ ରୂପକ ଆକାରରେ 'ଆ'ର ଯେଉଁ ନାମ ଦିଅନ୍ତି—11. The perpendicular line which is subjoined to a consonant in order to join 'ā', to it, is, by way of a familiar simile, is called a stick by the teacher while teaching the use of the compound alphabates to beginners.
(ଯଥା—'କ' ରେ ବାଡ଼ି ଦେଲେ 'କା', ଖ ରେ ବାଡ଼ି ଖା ।)
ପ୍ରାଦେ. (ଗଞ୍ଜାମ; ଗଡ଼ଜାତ) ବି. (ତୁଳ. ବଂ. ଓ ହିନ୍ଦୀ. ବାଢ଼ି =ଋଣ ଦିଆଯିବାର ସୁଦ)—ବିନା ସୁଧରେ ଟଙ୍କା ଧାର ଦେବା; ଉଧାର—Loan without interest.

ଅଣେ ଋଣ, ବଏ ବାଡ଼ି, ତା ମାଇପକୁ କଏହାଡ଼—ଢଗ ।

ବାଡ଼ିଅଁଳା—ଦେ. ବି— ୧ । ( ସଂ. ବାଟ୍ୟାଳକା )—ଜବାକୁସୁମବର୍ଗର କ୍ଷୁପବିଶେଷ; ବଳମୂଳୀ—1. Sida Cordifolia.
Bārdiānlā
ଅନ୍ୟ ସଂ. ନାମ—ବଳା, ବାଟ୍ୟାମଳକ] [ ଏହା ପତ୍ରର ମୂଳ ପାନ
বেড়েলা; ভুঁইআমলা ପରି ଏବଂ ସୂକ୍ଷ୍ମଲୋମଶ; ଫୁଲ ହଳଦିଆ;
खिरीहिटा; बारिआरि; ଫଳ ପାଚିଲେ ଫାଟି କରି ୧୦ ଚରୁଡ଼ା
ककहिआ; गुलशकरी ହୁଏ । ଲୋକେ ଭୁଲରେ ଭୁଇଁଅଁଳାକୁ
[ବାଡ଼ିଅଥି(ଏଁ)ଳା—ଅନ୍ୟରୂପ] ବାଡ଼ିଅଁଳା କହନ୍ତି । ]
লাল বেড়েলা ୨ । ( ସଂ. ଅତିବଳା )—ଏକପ୍ରକାର ନାଲି ବାଡ଼ିଅଁଳା—2. Sida Rhombifolia.
[ ଦ୍ର—ଏ ଗଛ ଈଷତ୍ ନାଲି । ଏହାର ପତ୍ର ଲୋମଶ ଓ ତଳପାଖ ପାଉଁଶିଆ । ଏ ପତ୍ରର ମୂଳ ପାନପତ୍ର ପରି ନୁହେଁ; ଫୁଲ ଫିକା ହଳଦିଆ; ଏହା ବର୍ଷାଦିନେ ଫୁଟେ । ଏ ଗଛର ପାଚିଲା ଫଳ ଫାଟିଯାଇ ୫ ଚରୁଡ଼ା ହୁଏ । ]
শ্বেত বেড়েলা ୩ । ( ସଂ. ମହାବଳା ) ଏକପ୍ରକାର ଶ୍ୱେତ ବାଡ଼ିଅଁଳା—3. Sida Rhomboidia.
[ ଦ୍ର—ଏହାର ଫୁଲ ଫିକାହଳଦିଆ । ଏହା ଶୀତଦିନେ ମଧ୍ୟାହ୍ନରେ ଫୁଟେ; ପତ୍ରରେ ୩ଟା ଶିରା ସ୍ପଷ୍ଟ ଦେଖାଯାଏ । ]
নাগ বেড়েলা; গোরখ চাউলা ୪ । ( ସଂ. ଗୋରକ୍ଷ ତଣ୍ଡୁଳା )—
ଅନ୍ୟ ସଂ. ନାମ—ନାଗବଳା] ଏକପ୍ରକାର ଗୋରକ୍ଷ ତଣ୍ଡୁଳ ବା ଗରଗଡ଼—Sida Spinosa.
[ ଦ୍ର—ଏହାର ପତ୍ରର ୩ଟା ଶିରା; ତେଣ୍ଟପାଖେ ୩ଟା ଥାଏ; ପତ୍ରର ତଳପାଖ ରୋମଶ ଓ ପାଉଁଶିଆ । ଏହାର ଫୁଲ ଛୋଟ ଓ ଧଳା ଏବଂ ଫଳ ପଞ୍ଚକୋଷ । ]
୫ । ବର୍ଷାୟୁ ଗୁଳ୍ମବିଶେଷ—5. A kind of bush.
[ ଏହା ଉଚ୍ଚରେ ପ୍ରାୟ ୨ ଫୁଟ୍ ହୁଏ । ଏହାର ପତ୍ର ତିନ୍ତୁଳପତ୍ର ପରି । ଏହାକୁ କଞ୍ଚାଦୁଧରେ ବାଟି ପିଇଲେ ଶୀଘ୍ର ପ୍ରସବ ହୁଏ । ଏ ଗଛର ଫଳ କେଣ୍ଡାରେ ଫଳେ ଏବଂ ମାଣ୍ଡିଆ ପରି ଗୋଲ ଓ କ୍ଷୁଦ୍ର । ]

ବାଡ଼ିଆ—ଦେ. ବି— ( ସଂ. ବଦ ଧାତୁ ଣିଚ ବାଦ ଧାତୁ; ବାଦନ)—
Bārdiā ୧ । ଯଷ୍ଟିଦ୍ୱାରା ପ୍ରହାର ବା ମାଡ଼—1. Stroke with
বাড়ান a stick. ୨ । ଯଷ୍ଟିଦ୍ୱାରା ପ୍ରହାର କରିବା କର୍ମ—2.
लाठीकामार Beating; cudgelling.
(ଯଥା—ଘୋଡ଼ାକୁ ବାଡ଼ିଆ ।)
୩ । ( ଲକ୍ଷଣାର୍ଥ ) ମୈଥୁନ—3. Cohabitation; coition. ୪ । ଭୂମିରେ (ମୁଣ୍ଡ) ପିଟିବା—4. Striking (of the head) on the ground. ୫ । (ସଂ.ବାଟିକା) ବଗିଚା ଜଗିବାବାଲା; ମାଳୀ—5. Gardener; a person in charge of a garden.

ଦେ. ବଣ—୧ । ପ୍ରହାରିତ—1. Struck. ୨ । ଯେଉଁ (ବାଡ଼େଇ—ସ୍ତ୍ରୀ) ବ୍ୟକ୍ତି ଖୁବ୍ ପ୍ରହାର ଖାଏ ବା ସହେ—2. Habituated to constant beatings. ୩ । ଯେ ଅନ୍ୟକୁ ଖୁବ୍ ପ୍ରହାର ଦେବାରେ ଅଭ୍ୟସ୍ତ; ପ୍ରହାରକାରୀ—3. Habituated to beating others.
(ଯଥା—କୁକୁର ବାଢ଼ୁଆ ମେଢ଼େନ୍ତୁର ।)
ପ୍ରାଦେ. ( ବାଲେଶ୍ୱର ) ବ—ବାଡ଼ୁଆ ( ଦେଖ )—Bārduā ( See )

**ବାଢ଼ିଅାଢ଼**—ଦେ. ବ—ଘରର ପଛ ଦିଗ—The backside of a house.
Bārdiārda ଖିଡ଼କି **बाडीतरफ**
(ଘାଢ଼ପଟ—ଅନ୍ୟରୂପ) ମେଘ ବରଷଇ ଚପର ଚପର ମୋ ବାଢ଼ଅଢ଼େ
(ବାଣ୍ଡଥାଢ଼—ବିପରୀତ) କିଏ ରେ ?—ଶିଶୁଗୀତ ।
[ ଦ୍ର—ଗୃହସଂଲଗ୍ନ ଭୂମି ସାଧାରଣତଃ ଘରର ପଛଆଡ଼େ ଥିବାରୁ 'ବାଢ଼ଅଢ଼'ର ଏପରି ଅର୍ଥ ହୋଇଅଛି । ]

**ବାଢ଼ିଆ ବାଢ଼ି**—ଦେ. ବ.—୧ । ନିର୍ମମ ପ୍ରହାର—1 Much beating.
Bārdiā bārdi
(ବାଢ଼ଅବାଡ଼େଇ—ଅନ୍ୟରୂପ) ୨ । ଅନ୍ୟୋନ୍ୟରେ ଯଷ୍ଟ୍ୟାଘାତ—2. Striking each other with sticks.
लाठालाठी **पिटा पीटी**
ଦେ. ବଣ.—ପରସ୍ପର ପ୍ରହୃତ—Severely struck by one another; mutually beaten.
ବାଢ଼ଅବାଡ଼େଇ ହୋଇ ମରନ୍ତି ପାମରେ—ସ୍ୱଧାନାଥ. ମହାଯାତ୍ରା ।

**ବାଢ଼ି କବ(ବା)ଟ**—ଦେ. ବ. ( ସଂ. ବାଟିକା+କପାଟ )—ବାଢ଼ିଘର Bārdi kaba(bāta) ଅର୍ଥାତ୍ ଗୃହର ପଛ ଦିଗରେ ଅବସ୍ଥିତ ଖିଡ଼କୀ ଦୁଆର ଘରର ଯେଉଁ କବାଟ ଘରପଛଆଡ଼ର ବାଢ଼ିକୁ ଫିଟି ଥାଏ—Postern of a house.
**बाडी दरवाजा**
[ସଦର ଦରଜା,ଦାଣ୍ଡକବ(ବା)ଟ—ବିପରୀତ]

**ବାଢ଼ିକି**—ଦେ. ବ.—୧ । ଝାଡ଼ା; ବିଷ୍ଠା—1. Dung; ordure.
Bārdiki
बाह्यी **म्हाडा, दस्त** ୨ । ଝାଡ଼ା ଫେରିବା—2. Easing one's self; passing stools.
[ଦ୍ର—ଝାଡ଼ାଫେରିବା ନିମନ୍ତେ ଲୋକେ ଗୃହସଂଲଗ୍ନ ବାଢ଼ିକୁ ଯାଉଥିବାରୁ 'ବାଢ଼ିକି' ଶବ୍ଦର ଏପରି ଅର୍ଥ ହୋଇଅଛି ।]

**ବାଢ଼ିକି ଛୁଆଁ**—ଦେ. ବଣ.—ଯେଉଁ ଲୁଗା ପିନ୍ଧି ଝାଡ଼ା ଫେରି ଯାଏ Bārdiki chhuāṅ ସେ ଲୁଗାକୁ ନ ଧୋଇବା ବା ନ ବଦଳିବା ଯୋଗୁଁ ଅଶୁଚ (ବ୍ୟକ୍ତି)—(a person who is) Untouchable owing to not having washed or changed his clothes after easing himself.

**ବାଢ଼ିକି ବସିବା**—ଦେ. କ୍ରି—ବାହାରକୁ ବସିବା; ଝାଡ଼ା ଫେରିବା; ମଳ Bārdiki basibā ତ୍ୟାଗ କରିବା—To ease one's self; to pass stools.
बाह्य बसा **म्हाडा फीरना**
ଅଳପି ଖାଇ ଲୋକେ କହନ୍ତି ବାଢ଼ିକି
ବସୁଛନ୍ତି ଅର୍ଣ୍ଣବ ହୋଇ ଯାଉଛନ୍ତି । କୃଷ୍ଣସିଂହ. ମହାଭାରତ ଉଦ୍ୟୋଗ ।

**ବାଢ଼ିକି ମାଡ଼ିବା**—ଦେ. ବ.—ଝାଡ଼ା ତଳିବ ଦେବା; ପୋଖରୀପାଣି Bārdiki mārdibā ମାଡ଼ିବା—Feeling of a tendency to ease one's self.
बाहि्य तलब देओया **म्हाडा तलब देना**
[ବାଢ଼ିକି ତଳିବ ଦେବା, ବାଢ଼ିକି ଦେଖା(ଖେ)ଇବା—ଅନ୍ୟରୂପ]

**ବାଢ଼ିକି ଯିବା**—ଦେ. କ୍ରି.—ଝାଡ଼ା ଫେରିବାକୁ ଯିବା; ବାହାରକୁ ଯିବା
Bārdiki jibā To go to ease one's self.
बाहि्य याओया **म्हाडाफीरने जाना**

**ବାଢ଼ିକି ହେବା**—ଦେ. ବ.—୧ । ମଳୋତ୍ସର୍ଗ—1. The Bārdiki hebā passing of stools. ୨ । ପେଟ ବିଗିଡ଼ି ବାହ୍ୟି ହଓୟା ଝାଡ଼ା ହେବା—2. Passing of loose stools.
**दस्त होना**

**ବାଢ଼ି ଖାଇବା**—ଦେ. କ୍ରି.—ଯଷ୍ଟିଦ୍ୱାରା ମାଡ଼ ଖାଇବା—
Bārdi khāibā To be struck with a stick.
ଦେ. ବ.—ହଇଜା ରୋଗରେ ମରିବା—Dying of cholera.

**ବାଢ଼ିଖିଆ**—ଦେ. ବଣ. ପୁଂ—(ଗାଳି)—ହଇଜା ରୋଗରେ ମରିବା Bārdikhiā ଯୋଗ୍ୟ(ବ୍ୟକ୍ତି)—Sure to die of cholera.
(ବାଡପଡ଼ା, ବାଡ ପଶା—ଅନ୍ୟରୂପ)

**ବାଢ଼ି ଗବ(ବା)**—ଦେ. ବ.—ବାଇଗବ (ଦେଖ)
Bārdi gaba (bā) Bāigaba (See)
ବାଢ଼ଅଢ଼େ ବାଢ଼ି ଗବ, କଥା ନ କହିଲେ କିସ ହୋଇବ,
କାଳସ୍ୱରେ ମନେ ଥିବ । ଚଗ ।

**ବାଢ଼ି ଗ(ଗା)ଢ଼ିଆ**—ଦେ. ବ. (ସଂ. ବାଟିକା+ଗହ୍ୱର)—ଭଦ୍ର ଘରର Bārdi ga(gā)rdiā ସ୍ତ୍ରୀମାନଙ୍କ ବ୍ୟବହାରାର୍ଥ ଘରର ପଛ ପଟେ ଖିଡ଼ିକି ପୁକୁର (ବାଢ଼ ଅଢ଼େ) ଥିବା ଛୋଟ ଜଳାଶୟ—A small tank on the back side of the house of well-to-do people for the exclusive use of the females.

**ବାଢ଼ି ଘର**—ଦେ. ବ.—୧ । ଗୃହ ସନ୍ନିକଟସ୍ଥ ଜମି ଓ ଘର; ଘରବାଢ଼ି—1. Homestead and home.
Bārdi ghara
ঘর বাড়ী **घरबाडि बाहारका घर** ୨ । ଘରର ପଶ୍ଚାତ୍ ଭାଗର କୋଠରୀ—2. A room on the back side of a house.

**ବାଢ଼ିଙ୍ଗନ(ଣ)**—ସଂ. ବ.—ବାର୍ତ୍ତାକୀ; ବାଇଗଣ—
Bārdingana(na) Egg plant; brinjal.

**ବାଢ଼ି ଟୀକା**—ଦେ. ବ (ଅଧୁନିକ ବ୍ୟବହାର)—ଲୋକଙ୍କୁ ହଇଜା Bārdi ṭikā ରୋଗର ଆଶୁ ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ଓଲାଉଠାର ଟିକା ଦିଆଯିବା ଟୀକା—Cholera injection.
(ବାଡଫୋଡ଼ା—ଅନ୍ୟରୂପ)

**ବାଢ଼ିତିଆ(ହା)ଢ଼ି**—ଦେ. ବ.—ଘରର ଚାରିପାଖରେ କାଠ ବା ବାଉଁଶର Bārdi tiā(hā)rdi ବାଡ଼ ଦେଇ ତହିଁ ଉପରେ ମାଟି ଲିପି ବେଡ଼ାର ଦେଓୟାଲ କାନ୍ଥ ତିଆରି କରି ଯିବା ରୀତି—Mode of raising the walls of a house by setting up a hedge of bamboo or wood and plastering it with mud; mud and wattle wall.
**टाट**

[ଦ୍ର—ଗୃହ ଘରର କାନ୍ଥ ସାଧାରଣତଃ ୩ ପ୍ରକାର ତିଆରି ହୁଏ; ୧ ଦଲମ ବା ନଦଭ; ଯେଉଁ କାନ୍ଥ କେବଳ କାଦୁଅ ଦୁଆ ଦୁଆ ଦିଆ ଯାଇ ତିଆରି ହୁଏ । ୨ ବାଡ଼ିତିଆଡ଼ି କାଠ ବାଉଁଶ ବାଡ଼ି (ଯଷ୍ଟି)ମାନ ପୋତା ଯାଇ ତହିଁ ଉପରେ କାଦୁଅ ଲିପି ଯେଉଁ କାନ୍ଥ ତିଆରି ହୁଏ ଓ ୩ ଝାଟି ମାଟି—ସରୁ ସରୁ କଣି ଓ ବୃକ୍ଷାଦିର ଝାଟି (ସରୁ ଶୁଖିଲା ପତ୍ରହୀନ ଅଗ ଶାଖା) ପୋତି ତା ଉପରେ କାଦୁଅ ଲିପି ଯେଉଁ କାନ୍ଥ କରାଯାଏ ।]

**ବାଡ଼ିତିଆଡ଼ିଆ**—ଦେ. ବଣ.—ବାଡ଼ିତିଆଡ଼ି ପ୍ରଣାଳୀରେ କାନ୍ଥ ଦିଆ ଯାଇ ଥିବା (ଘର)—(a house) Having walls made of bamboo plasted over with mud.
Bār̤di tiār̤d̤ā
**टटौकाघर**

**ବାଡ଼ି ଦୁଆର**—ଦେ. ବି.—୧ । ଗୃହର ପଛ ଅଡ଼ର କବାଟ—1. Back door of a house.
Bār̤di duāra
খিড়কিদরোজা ୨ । ଗୃହର ପଶ୍ଚାଦ୍‌ଦିଗସ୍ଥ ଅଞ୍ଚଳ; ବାଡ଼ିପଟ; ବାଡ଼ିଆଡ଼—2, The back side vicinity of a house.
**वाड़िका दरवाजा**

**ବାଡ଼ି ପଡ଼ିବା**—ଦେ. ବି—କୌଣସି ଅଞ୍ଚଳ ବା ଗ୍ରାମ ବା ଗୃହରେ ଓଲାଉଠା ରୋଗ ପ୍ରବଳ ହେବା—The raging of cholera in a village or family.
Bār̤di par̤dibā
ବାଡ଼ି ପଶିବା } ଅନ୍ୟରୂପ
ବାଡ଼ି ହେବା }
**हैजा होना**

**ବାଡ଼ି ପୋକ ଶୁଂଘା**—ଦେ. ବି—ଏକ ପ୍ରକାର ପୋକଶୁଂଘା ଗଛ—A kind of 'Pokaśuṁghā' plant; Vernonia Cinerera.
Bār̤di poka śuṁghā
ছোট কুকশিমা
[ ଦ୍ର—ଅନ୍ୟ ଏକ ଜାତିର ପୋକଶୁଂଘାକୁ ବଣ ପୋକଶୁଂଘା ବୋଲାଯାଏ । ପୋକଶୁଂଘା ତଳେ ନୋଟ୍ ଦେଖ । ]

**ବାଡ଼ି ପୋଖରୀ**—ଦେ. ବି—୧ । ଭଦ୍ର ପରିବାରର ଘରର ବାଡ଼ି ଅଡ଼େ ସ୍ତ୍ରୀ ଲୋକଙ୍କ ବ୍ୟବହାର ପାଇଁ ଖୋଳା ଯାଇଥିବା ପୁଷ୍କରିଣୀ—1. A tank on the back side of a house of a well-to-do person for the use of females.
Bār̤di pokharī
খিড়িকি পুকুর
**बावली**
[ବାଡ଼ି ଗ(ଗା)ଡ଼ିଆ—ଅନ୍ୟରୂପ]
ওলাওঠা, ভেদবমী ୨ । ହଇଜା ରୋଗ ଯୋଗୁଁ ହେବା ଝାଡ଼ା—2. Motions due to cholera.
**हैजाका दस्त**
୩ । ହଇଜା; ବିସୂଚିକା—3. Cholera.

**ବାଡ଼ି ବଗିଚା**—ଦେ. ବି. (ସହରର)—୧ । ଉଦ୍ୟାନ ସମୂହ—1. Gardens.
Bār̤di bagichā
(ବାଡ଼ି ବଗାଡ—ଅନ୍ୟରୂପ) ୨ । ବଡ଼ ଓ ସାନ ବଗିଚା—2. Gardens large and small.
বাগান
**बाग बगीचा** ୩ । ଘର ପଛ ଅଡ଼ ବଗିଚା—3. Back-side garden.

**ବାଡ଼ି ବଜା(ଜେ)ଇବା**—ପ୍ରାଦେ. (ଗଞ୍ଜାମ) କ୍ରି—ହାଡ଼ି ଅଦି ନିମ୍ନଶ୍ରେଣୀର ଲୋକେ ୨ ଖଣ୍ଡ ଛୋଟ ବାଡ଼ି ଧରି ଗୀତ ବୋଲି ଉକ୍ତ ବାଡ଼ି ଦୁଇ ଖଣ୍ଡକୁ ପରସ୍ପର ଆଘାତ କରିବା—To strike two small sticks with each other while singing songs.
Bār̤di bajā(je)ibā

[ ଦ୍ର—ବାଡ଼ି ବଜାଇବା ବେଳେ ବୋଲିବା ଗୀତ—
ଗଞ୍ଜାର ହାଡ଼ି ବୁଲନ୍ତି ବାଡ଼ି
ଚଢ଼ନ୍ତି ଗଧ ପିଅନ୍ତି ମଦ
ବୁଣନ୍ତି ଲୁଗା, ପଚାରିଲେ କହନ୍ତି, ଆମେ ବ୍ରାହ୍ମଣ ପିଲା । ]
ଦେ. କ୍ରି—ଯଷ୍ଟି ଦ୍ୱାରା ଅଳ୍ପ ପ୍ରହାର କରିବା—To give a light beating with a stick.

**ବାଡ଼ି ବସା ଲୁଗା**—ପ୍ରାଦେ. (ଗଡ଼ଜାତ) ବି—ଏକ ପ୍ରକାର ଶାଢ଼ୀ—A kind of 'Śār̤ḍhī'
Bār̤di basā lugā

**ବାଡ଼ି ବାଇଗଣ**—ଦେ. ବି—୧ । ଯେଉଁ ବାଇଗଣ ଗୃହ ନିକଟସ୍ଥ ବାଡ଼ିରେ ଫଳେ—1 Brinjals growing on the garden attached to a house.
Bār̤di bāigaṇa
**बगीचेका बैंगन**
[ ଦ୍ର—ନାନା ରକମର ବାଇଗଣ ଅଛି । 'ବାଇଗଣ' ତଳେ ନୋଟ୍ ଦେଖ । ]
୨ । ( ବିପରୀତ-ପୋଥି ବାଇଗଣ ) ଯେଉଁ ବାଇଗଣ ଆପଣା ବାଡ଼ିରେ ଫଳେ; ଆପଣା ବାଡ଼ିରେ ହେବା ବାଇଗଣ ଫଳ—2. Brinjals grown on one's own garden

**ବାଡ଼ି ବାଇଗଣ ପୋଥି ବାଇଗଣ**—ନ୍ୟାୟ—ଶାସ୍ତ୍ରବିଧି ଅନୁସାରେ କାର୍ଯ୍ୟ କରି ନ ହେବା ସ୍ଥଳରେ ଏ ନ୍ୟାୟ ପ୍ରୟୋଗ କରାଯାଏ; ଏ ସମ୍ବନ୍ଧରେ ଗୋଟିଏ ଗଳ୍ପ ଅଛି—ପୋଥି ବା ଶାସ୍ତ୍ରରେ ଲେଖାଅଛି ଯେ ଅଲାବୁ, ଶ୍ୱେତବାର୍ତ୍ତାକୀ । ଧଳା ବାଇଗଣ ଇତ୍ୟାଦି ଖାଇବା ନିଷିଦ୍ଧ । ଦିନେ ଜଣେ ପଣ୍ଡିତ ଆପଣା ବାଡ଼ିରେ ଫଳିଥିବା ଧଳା ବାଇଗଣକୁ ତୋଳି ତରକାରି କରିବାକୁ ଘରକୁ ନେବା ବେଳେ ପଣ୍ଡିତଙ୍କର ଶାସ୍ତ୍ରଜ୍ଞ ପୁଅ ପଚାରିଲେ, 'ବାପା ! ଶ୍ୱେତବାର୍ତ୍ତାକୀ ଖାଇବା ପରା ଶାସ୍ତ୍ରରେ ନିଷିଦ୍ଧ ?' ପଣ୍ଡିତେ ଉତ୍ତର କଲେ, "ପୋଥି ବାଇଗଣ ସିନା ଖାଇବା ନିଷିଦ୍ଧ । ଉକ୍ତ ନିଷେଧ ବଚନ ବାଡ଼ି ବାଇଗଣ ପ୍ରତି ପ୍ରଯୁଜ୍ୟ ନୁହେଁ"—Making a distinction between theory and practice.
Bār̤di bāigaṇa pothi bāigaṇa
**बगीचा बैंगन और पोथी बैंगन**

**ବାଡ଼ି ବାଁଉଁଶ**—ପ୍ରାଦେ. (ବାଲେଶ୍ୱର) ବି—ଲମ୍ବା, ମୋଟା ଓ କଣ୍ଟା ନ ଥିବା ବାଉଁଶ; ସୁନ୍ଦୁଘାଇ ବାଉଁଶ—A kind of stout bomboo,
Bār̤di bāāṅśa

**ବାଡ଼ି ବାଟ**—ଦେ. ବି—ଘରର ପଛ ଅଡ଼େ ଥିବା ବାଟ—A path running on the back side of a house.
Bār̤di bāṭa
খিড়কি রাস্তা

**ବାଡ଼ି ବାଡ଼ିକ**—ଦେ. ବି—ବାଡ଼ି ପୋଖରୀ ୨।୩ ( ଦେଖ )—Bār̤di pokharī 2,3 ( See )
Bār̤di bār̤diki
(ବାଡ଼ି ବାହାରକୁ—ଅନ୍ୟରୂପ)

**ବାଡ଼ି ବାନ୍ତି**—ଦେ. ବି—ଝାଡ଼ା ବାନ୍ତି; ହଇଜା—Cholera.
Bār̤di bānti ভেদবমি **भाडाकै**

**ବାଡ଼ି ବୁଲା(ଲେ)ଇବା**—ଦେ. କ୍ରି—ବ୍ୟାୟାମ ବା ମଲ୍ଲକ୍ରୀଡ଼ାରୂପେ ଯଷ୍ଟି ସଞ୍ଚାଳନ କରିବା—To brandish a stick.
Bār̤di bulā(le)ibā
লাঠি ঘুরান **लाठी भाँजना; लाठी घुमाना**

**ବାଢ଼ି ମଲୁ**—ଦେ. ବି—ହଇଜା ରୋଗଗ୍ରସ୍ତ ରୋଗୀ—
Bārdi malu Cholera patient.

**ବାଢ଼ି ମାରିବା**—ଦେ. କ୍ରି—ଅନ୍ଧାର ରାତ୍ରରେ ବାଟ ନ ଦିଶିଲେ କିମ୍ବା
Bārdi māribā ପାଣିର ଗଭୀରତା ଜଣା ନ ଥିଲେ ଅଗ୍ରସର
**लाठीमारा** ହେବା ପୂର୍ବରୁ ଆଗର ସ୍ଥାନ ଖାଲ କି ଢିପ ଏହା
**लाठीसे थाहना** ଜାଣିବା ପାଇଁ ଆପଣା ହାତରେ ଥିବା ଯଷ୍ଟିଦ୍ୱାରା ସେ ସ୍ଥାନକୁ ବାଡ଼ିବା—To feel a place by means of a stick held by the hand before stepping further (in water or in a dark place or road).

**ବାଢ଼ିରେ ଯିବା**—ଦେ. କ୍ରି—ହଇଜା ରୋଗରେ ମୃତ ହେବା—
Bārdire jibā To succumb to cholera.
**हैजामे खतम होना**

**ବାଢ଼ି ସାହାଲ**—ଦେ. ବି—ଗୃହର ପଛଆଡ଼େ ଥିବା ଗୃହଶ୍ରେଣୀ—
Bārdi sāhālā Row of houses on the back
**बाड़ीका वर्ग** part of a house.

**ବାଢ଼ୀର**—ସଂ. ବି—୧ । ଭୃତ୍ୟ; ଚାକର—1. Servant (Apte).
Bārdira ୨ । ଦାସ—2. A slave. ୩ । ମୂଲିଆ—
3. A day-labourer; a hireling (Apte).

**ବାଢ଼ୁଅ**—ଦେ. ବିଣ. ସ୍ତ୍ରୀ. (ସଂ. ଅବ୍ୟୂଢ଼ା)—ଅବିବାହିତା—
Bārdua Unmarried.
ଆଇବୁଡୋ(ଡା) ମୁଁ ବୋଇଲି ମାଇ କି ରୂପେ ଅଛ ଘର
**क्वारी; बिनब्याही** ବୋଇଲେ ବାଢ଼ୁଅ ବାଳେ ମୁଁ ଅଛି ପାଇ
କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ବାଢ଼ୁଅ ଝିଅ**—ଦେ. ବି. (ସଂ. ଅବ୍ୟୂଢ଼ା+ଦୁହିତା)—ଅବିବାହିତା
Bārdua jhia କନ୍ୟା; କୁମାରୀ; ଅଗଣ୍ଡି ଝିଅ—A maid;
ଆଇ ବୁଡାମେୟେ **क्वारी लड़की** unmarried girl.

**ବାଢ଼ୁଅ ପାଣି**—ଦେ. ବି. (ସଂ. ବିବାହ+ପାନୀୟ)—କୋଇଲି ଚୁଡ଼ି;
Bārdua pāni ବିବାହ ଦିନ ଭୋରରୁ କନ୍ୟା ଯେଉଁ ସ୍ନାନ
ବିୟାର ଜଲ କରେ—Bath taken early in the morning
**चतुर्थीका पानी** of the day of marriage by a bride.

**ବାଢ଼ୁଅ ପାଣି ପଡ଼ିବା**—ଦେ. ବି—କନ୍ୟାର ଦେହରେ ବାଢ଼ୁଅପାଣି
Bārdua pāni pardibā ପଡ଼ିବା ଅର୍ଥାତ୍ କନ୍ୟା ବିବାହିତା
ବିୟାର ଜଲ ଲାଗା ହେବା—Being married (said of a
**चतुर्थीका पानी पडना** girl).

**ବାଢ଼ୁଆ**—ପ୍ରାଦେ. (ବାଲେଶ୍ୱର) ବି—ଗ୍ରାମର ମୁଖ୍ୟ ବ୍ୟକ୍ତି; ପ୍ରଧାନ—
Bārduā Headman of a village.

**ବାଡ଼େଇବା**—ଦେ. କ୍ରି. (ଓ. ବାଡ଼ି ଶବ୍ଦରୁ ନାମଧାତୁ)—୧ । ଯଷ୍ଟି-
Bārdeibā ଦ୍ୱାରା ଆଘାତ କରିବା—1. To beat with a
ବାଡାନ Stick. ୨ । ମାଡ଼ ଦେବା; ପ୍ରହାର କରିବା—2. To
**पीटना; लठीयना** beat; to belabour. ୩ । ଆଘାତ କରିବା—
ବାଡ଼େଇ ଦେବା } ଅନ୍ୟରୂପ 3. To strike. ୪ । ଭୂମିରେ
ବାଡ଼େଇ ପକେଇବା } ପିଟିବା—4. To strike on
ଠୋକା **पटकना** the ground.
(ଯଥା—ମୁଣ୍ଡ ବାଡ଼େଇବା ।)

୫ । (ଲକ୍ଷଣାର୍ଥ) ସ୍ତ୍ରୀକୁ ରମଣ କରିବା—5. (figurative) Copulate with a woman. ୬ । (ବର୍ଷା, ତୋଫାନ)
**बढ़जाना** ବହୁପରିମାଣରେ ହେବା—6. (rain or wind) To be in a great or large quantity.

**ବାଡ଼େଇ ହେବା**—ଦେ. କ୍ରି—୧ । ବାୟୁଆଦିଦ୍ୱାରା ଅନ୍ୟ ପଦାର୍ଥରେ
Bārdei hebā ଅଘାତ କରିବା; ବାଜି ଯିବା—1. To strike
**भीड़ना** against another thing; to come
(ବାଡ଼େଇ ହୋଇଯିବା—ଅନ୍ୟରୂପ) in collision with.
(ଯଥା—ତୋଫାନରେ ଘରର ଡାଳସାକ କୋଠାକାନ୍ଥରେ ବାଡ଼େଇ ହଉଛି ।)
୨ । (ଲକ୍ଷଣାର୍ଥ) ବହୁତ ସମୟ ଜୋରରେ ଗପିବା—
2. (figurative) To talk loudly for a long time. ୩ । କୋଡ଼ି କଚାଡ଼ି ହେବା—3. To strike one's limbs on the ground.

**ବାଡ଼ୋରି**—ଦେ. ବି—ମଲ୍ଲ ଯୁଦ୍ଧବିଶେଷ—
Bārdori A kind of athletic exercise.

**ବାଢ଼ିବା**—ଦେ. କ୍ରି. (ସଂ. ବୃଧ୍ ଧାତୁ)—୧ । ଖାଇବା ଲୋକର ଭୋଜନ
Bārdhibā ପାଇଁ ଅନ୍ନ ବ୍ୟଞ୍ଜନାଦି ଭୋଜ୍ୟ ପାତ୍ରରେ ଆଣି ରଖିବା;
ବାଟା; ବାଡା ପରିବେଷଣ କରିବା—1. To serve food on.
**परोसना** plates; to deal out food to eaters.
[ବଢ଼ା(ଢ଼େ)ଇବା—ଣିଜନ୍ତରୂପ]
ଅଳ୍ପ ବ୍ୟଞ୍ଜନ ପଡ଼ଇସେ, ଆନନ୍ଦେ ବାଢ଼ିଲେ ବଳେସେ ।
ଜଗନ୍ନାଥ. ଭାଗବତ ।
**बढ़ाना, सजना** ୨ । ଦ୍ରବ୍ୟସମୂହକୁ ବିସ୍ତୃତ କରି ଥୋଇବା; ବିସ୍ତାର କରିବା; ମେଲେଇ ରଖିବା— . To spread things for show.
ସଉଦାଗରୁ ଦ୍ରବ୍ୟମାନ ବାଢ଼ିଲେ ଭ୍ରମରେ—ଗ୍ରନ୍ଥ ଇଚ୍ଛାବତୀ ।
ବାଡ଼ାବାଡ଼ିକରା ୩ । ବିସ୍ତାରିତ ଭାବରେ ପ୍ରକାଶ କରିବା—
**बढ़ाचढ़ाकर कहना** 3. To speak out in extense.
ଚୁହା ହେବାଠାରେ ସେ ପାଣ୍ଡବଙ୍କ ସ୍ତୋତ୍ରି
ଏବେ କିଁକି ଗୋତ୍ରିକ ଅଗେ ଛନ୍ଦ ବାଢ଼ି—କୃଷ୍ଣସିଂହ. ମହାଭାରତ ବନ ।
୪ । ପ୍ରସ୍ତାବ ଆଦି ଉପସ୍ଥାପିତ କରିବା; ପ୍ରସ୍ତାବ କରିବା—
4. To propose. ୫ । ଭାବିବା; ବିଚାର କରିବା—
5. To think.
ମୋହର କର୍ମ ଦୋଷମାନ ଭୁଦେ ବାଢ଼ି
ବଳଭଦ୍ରମନେ କଥ ମୋ ଅନ୍ତ କାଢ଼ି—
କୃଷ୍ଣସିଂହ. ମହାଭାରତ. ବନ—

**ବାଢ଼ୁଣୀ**—ପ୍ରାଦେ. (ଗଡ଼ଜାତ ଓ ସିଂହଭୂମ) ବି. (ସଂ. ବର୍ଦ୍ଧନୀ) ପ୍ରା.
Bārdhuni ବଢ଼ୁଣୀ)—ଝାଡ଼ୁଣୀ; ଝାଡ଼ୁ—
ବାଢୁନ **बढ़नी** Broomstick.

**ବାଢ଼ୋଇ**—ପ୍ରାଦେ. (ଗଡ଼ଜାତ) ବି (ସଂ. ବର୍ଦ୍ଧକି ପ୍ରା. ବଢ଼ୁଇ)-ବଢ଼େଇ
Bārdhoi ବାଡ଼ଇ, ବାର୍ଡଇ **बढ़ई** Carpenter.

**ବାଣ**—ସଂ. ବି. (ବଣ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ)—୧ । ଧନୁ-
Bāna ଦ୍ୱାରା ଦୂରକୁ ଫିଙ୍ଗାଯିବା ତୀକ୍ଷ୍ଣ ଲୌହାଗ୍ର ଲମ୍ବ ଅସ୍ତ୍ର; ଶର;
ତୀର—1. Arrow; a dart.

[ଦ୍ର—ବାଣର ଅନ୍ୟ ସଂ ନାମ—ପୃଷତ୍କ, ବିଶିଖ, ଖଗ, ଆଶୁଗ, କଳମ୍ବ, ମାର୍ଗଣ, ପତ୍ର, କ୍ଷେପ, ଶାରଭର, କାଣ୍ଡ, ଚିତ୍ରପର୍ଣ୍ଣକ, ଶର, ବାଜୀ, ପତ୍ରବାହ, ଅସ୍ତ୍ରକଣ୍ଟକ ।

ପ୍ରାଚୀନ କାଳରେ ପୃଥିବୀର ସମସ୍ତ ଦେଶରେ ଓ ଆଜକାଲି ଅସଭ୍ୟ ଜାତିମାନଙ୍କ ମଧ୍ୟରେ ଧନୁ ଓ ବାଣର ବ୍ୟବହାର ଥିଲା ଓ ଅଛି । ଏଥିରେ ଯୁଦ୍ଧ ଓ ମୃଗୟା କରାଯାଉଥିଲା । ବୃତ୍ତଖଣ୍ଡାକାର ବାଉଁଶର ଦୁଇ ମୁଣ୍ଡ ଡୋରଦ୍ୱାରା ବନ୍ଧା ହୋଇ ଧନୁ କରାଯାଉଥିଲା ଓ ସରୁ ବାଉଁଶ ବା କାଣ୍ଡଶର କାଠିର ଅଗ ଲୁହା ଫଳକଯୁକ୍ତ ହୋଇ କାଣ୍ଡ ତିଆରି ହେଉଥିଲା । ବାଣର ମୂଳ ପାଖେ ପକ୍ଷି ଲଗା ଯାଉଥିଲା । ପୂର୍ବେ ଧନୁର୍ବେଦ ଯୁଦ୍ଧବିଦ୍ୟାର ପ୍ରଧାନ ଅଙ୍ଗ ଥିଲା ।]

୨ । ୫ ଅଙ୍କ ବା ସଂଖ୍ୟା—2. The figure 5.

[ଦ୍ର—କାମଦେବଙ୍କ ବାଣସଂଖ୍ୟା ୫ଥିବାରୁ ବୋଧ ହୁଏ ବାଣର ଏହି ଅର୍ଥ ହୋଇଛି । ]

୩ । ଅଗ୍ନି—3. Fire. ୪ । ଶବ୍ଦ—4. Sound. ୫ । ଗୋସ୍ତନ; ଗାଈର ପଣ୍ଡା—5. The udder of the cow. ୬ । ଅସୁରବିଶେଷ; ବଳିରାଜାଙ୍କ ଜ୍ୟେଷ୍ଠପୁତ୍ର; ବାଣାସୁର ଅନିରୁଦ୍ଧଙ୍କ ସ୍ତ୍ରୀ ଉଷାର ପିତା—6. Name of a demon.

[ଦ୍ର—ଏହାଙ୍କ ରାଜଧାନୀ ପାତାଳର ଶୋଣିତପୁରରେ ଥିଲା । ଏ ମହାଦେବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ବର ପାଇଥିଲେ ଓ ତଦନୁସାରେ ଦେବତାମାନେ ଏହାଙ୍କ ଅନୁଚର ହୋଇଥିଲେ । ହି. ଶ ]

୭ । ନୀଲଝିଣ୍ଟି ଦାସକେରେଣ୍ଟା ଗୁଳ୍ମ ( ହରେକୃଷ୍ଣ ଦ୍ରବ୍ୟଗୁଣ ) 7. The blue flowered variety of Barlaria.

୮ । ବାଣଭଟ୍ଟ କାଦମ୍ବରୀ ପ୍ରଣେତା ପ୍ରସିଦ୍ଧ କବି—8 A poet author of Kādambarī. ୯ । ଶରର ଅଗ୍ରଭାଗ ( ହି. ଶ. )-9. The sharp edge or point of an arrow. ୧୦ । ଭଦ୍ରମୁଞ୍ଜ ( ହି. ଶ. ) ( ଦେଖ ) 10 Bhadramuñja ( See ). ୧୧ । ନିଶାଣ; ଲକ୍ଷ (ହି.ଶ.) 11. Aim; target. ୧୨ । ( ନାମ ) ଇକ୍ଷ୍ୱାକୁ ବଂଶୀୟ ବିକୃତି ରାଜାଙ୍କ ପୁତ୍ର ( ହି. ଶ. ) 12 Name of a son of Raja Bikṛuti.

আতসবাজী ଦେ. ବି—୧ । ଅଗ୍ନି ଲଗାଇବା କ୍ରମରେ ପ୍ରସ୍ତୁତ
**आतसबाजी,बान** ବାରୁଦକାମ; ଆତସବାଜୀ; ଅଗ୍ନିବାଣ—1 Fire works.

[ ଦ୍ର—ପୁରୀ ଜିଲ୍ଲାର କେତେକ ରାଜାଙ୍କ ଶାସନରେ ବହୁକାଳରୁ ଶୀତଳ ଷଷ୍ଠୀ, ଚମ୍ପକ ଦ୍ୱାଦଶୀ, ନୃସିଂହ ଚତୁର୍ଦ୍ଦଶୀଆଦିରେ ଗ୍ରାମର ଲୋକେ ପ୍ରତିଯୋଗିତାକ୍ରମେ ନାନାପ୍ରକାରର ବାଣ ନିଜେ ତିଆରି କରି ମାରନ୍ତି । କେତେକ ଲୋକଙ୍କ ଘରେ ବାରୁଦ ଓ ବାଣ ତିଆରି କରିବାରେ 'ଭାଗ' ସବୁ ପୋଥିରେ ଲେଖାଅଛି । ବାରୁଦରେ ବାଣ ତିଆରି ହୁଏ ଓ ତହିଁରେ ନିଆଁ ଲଗାଇଲେ ନାନା ବର୍ଣ୍ଣର ଚିତ୍ର, ଶବ୍ଦର ଓ ଗତିର ଅଗ୍ନିକ୍ରୀଡ଼ା ଦେଖାଯାଏ; ଗୁଡ଼ିଏ ବାଣର ନାମ—ଝମ୍ପା, ଲୁଆ, ଭୂମ, ହାବଳ, ଚକ୍ର, ଆକାଶମଣ୍ଡଳୀ, ଆସମାନଗୋଲା, ଚେଙ୍ଗ, କାଠଚମ୍ପା, ଚନ୍ଦ୍ରଉଦୟ ବା ମହତାପ, ପାଣିଲୁଆ, ବମ୍ବାଜୀ, ତୋପବାଜୀ, କଦମ୍ବଗଛ, ରସକଦମ୍ବ । ]

বাণ ୨ । ତାନ୍ତ୍ରିକ ମାରଣ କ୍ରିୟାର ପ୍ରୟୋଗ; ଯନ୍ତ୍ର ପ୍ରୟୋଗ—
**पुरस्चरण, यन्त्रमन्त्र** 2. A Tantric rite to kill a person.

[ ଦ୍ର—ଯେଉଁ ବ୍ୟକ୍ତିକୁ ବାଣ ମରାଯାଏ ସେ ବାନ୍ତି କରେ ଓ ତାର ରକ୍ତଝାଡ଼ା ହୋଇ ପ୍ରାଣ ଯାଏ । ]

বান ୩ । ( ସଂ. ବାନ; ବନ୍ୟା; ସଂ. ବନ=ସଲିଳ ) ବନ୍ୟା;
**बाढ** ନଈ ବଢ଼ି—3. Flood. ୪ । ଜୁଆର—4. Flow tide. ୫ । ଏକ ପ୍ରକାର ଫୁଲ; ଗୋଡ଼ି ବାଣ—5. A kind of flower.

[ ଦ୍ର—ଏହା ହଳଦିଆ ଓ ନାଲି ଭେଦରେ ଦୁଇ ପ୍ରକାର, ଯଥା—ଗୋଡ଼ିବାଣ ଓ ଅଗ୍ନିବାଣ । ]

বানী ୬ । (ସଂ. ବପ୍ୟନ ବେତନ) ତନ୍ତୀମାନଙ୍କୁ ଲୁଗା ବୁଣିବାପାଇଁ
**मजदूरी** ସୂତା ଦେଲେ ସେମାନେ ଯେଉଁ ଲୁଗା ବୁଣିବା ମଜୁରି ନିଅନ୍ତି; କରମୂଲ—7. Weaver's wages.

୭ । ମୂଲ୍ୟ—7. Price.

କାଣ ଝାଣ, ମାଣ ସାନ—ଦେଶ ।

**ବାଣ କରିବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ମାରି ଦେବା ଉଦ୍ଦେଶ୍ୟରେ
Bāṇa karibā ମାରାତ୍ମକ ଯନ୍ତ୍ରମନ୍ତ୍ରାଦି ପ୍ରୟୋଗ କରିବା—
[ବାଣ ବସା(ପେସ)ଇବା—ଅନ୍ୟରୂପ] To employ fatal
বাণ মারা **अभिचार प्रयोग करना** spells against.

**ବାଣ ଗଙ୍ଗା**—ସଂ. ବି—ହିମାଳୟରୁ ବାହାରିଥିବା ନଦୀବିଶେଷ—
Bāṇa gaṅgā Name of a river flowing from the Himalayas.

[ ଦ୍ର—ପୂର୍ବକାଳରେ ରାବଣ ବାଣ ଦ୍ୱାରା ହିମାଳୟର ସୋମେଶ୍ୱର ପର୍ବତକୁ ଫଟାଇ ତହିଁରୁ ଏହି ଜଳଧାରା ବାହାର କରାଇଥିଲେ । ]

**ବାଣ ଦଣ୍ଡ**—ସଂ. ବି. (ସଂ. ବପ୍ୟନ ଦଣ୍ଡ)—ବସ୍ତ୍ର ବପ୍ୟନ ଯନ୍ତ୍ରବିଶେଷ—
Bāṇa daṇḍa A working meterial of a loom consisting of a roller.

**ବାଣଧି**—ସଂ. ବି. (ବାଣ+ଧା ଧାତୁ+କର୍ତ୍ତୃ. ଇ)—
Bāṇadhi ତୂଣୀର; ଶରମୁଣି—A quiver.

**ବାଣ ନଡ଼ିଆ**—ଦେ. ବି. (ସଂ. ବାମନ ଓ ନାରକେଳ)—
Bāṇa naṛiā ଏକ ପ୍ରକାର ଛୋଟ ସ୍ୱାଦୁ ନଡ଼ିଆ—
বামন নারিকেল A small species of cocoanut.
**बौंका नारीयल**

**ବାଣପୁର**—ସଂ. ବି—ବାଣାସୁରର ରାଜଧାନୀ—The capital of the
Bāṇapura demon 'Bāṇāsura'.

[ ଦ୍ର—ଏହା ପାତାଳସ୍ଥ ଶୋଣିତପୁର ଥିଲା । ]

ଦେ. ବି—ଖୋରଧା ଅଞ୍ଚଳର ଗୋଟିଏ ରାଜସ୍ୱ ବିଭାଗ ଓ ଗ୍ରାମ—Name of a big village and a fiscal division in Khurda Subdivision of Puri District.

[ ଦ୍ର—ଏଠାରେ ଭଗବତୀ ଠାକୁରାଣୀ ଅଛନ୍ତି । ]

**ବାଣ ଫୁଟା(ଟେ)ଇବା**—ଦେ. କ୍ରି—ବାଣ ମାରିବା—
Bāṇa phuṭā(ṭe)ibā To exhibit fire work.
ଫୁଟାଉଛ ବାଣ ଚକ୍ଷୁ ଚମକାଇ—ସିଧାନାଥ, ଦରବାର ।

**ବାଣ ବାର**—ସଂ. ବି. (ବାଣ + ବୃ ଧାତୁ ଣିଚ୍ ବାର ଧାତୁ=ଆବରଣ
Bāṇa bāra କରିବା + କର୍ତ୍ତୃ. ଅ)—ବର୍ମ; କଞ୍ଚୁକ; ସାଞ୍ଜୁ—
Mail armour; coat of mail.

**ବାଣ ବିଦ୍ଧ**—ସଂ. ବିଣ. (୩ୟା ତତ୍; ବାଣ + ବିଦ୍ଧ)—
Bāṇa biddha ଶରଦ୍ୱାରା ବିଦ୍ଧ—Pierced by an arrow.

**ବାଣ ବିଦ୍ୟା**—ସଂ. ବି—ଧନୁର୍ବିଦ୍ୟା—
Bāṇa bidyā Archery.

**ବାଣ ଭଟ୍ଟ**—ସଂ. ବି—ପ୍ରସିଦ୍ଧ ସଂସ୍କୃତ ଗଦ୍ୟ କାବ୍ୟ ପ୍ରଣେତା କବି—
Bāṇa bhaṭṭa Name of the auther of Sanskrit novels.

[ ଦ୍ର—ସେ କାଦମ୍ବରୀର ପୂର୍ବାର୍ଦ୍ଧ ଓ ହର୍ଷଚରିତ ଆଦି ପ୍ରଣୟନ କରିଥିଲେ । ସେ ହର୍ଷବର୍ଦ୍ଧନଙ୍କ ସଭାପଣ୍ଡିତ ଥିଲେ । ]

**ବାଣ ମାରିବା**—ଦେ. କ୍ରି—୧ । ଅଗ୍ନି କ୍ରୀଡ଼ା କରିବା—
Bāṇa māribā 1. To exhibit fire works.
বাণ মারা ୨ । କୌଣସି ବ୍ୟକ୍ତି ପ୍ରତି ତାନ୍ତ୍ରିକ ମାରଣ ମନ୍ତ୍ର ପ୍ରୟୋଗ
बान मारना କରିବା; ଯନ୍ତ୍ର କରିବା—2. To employ Tantric rites to kill a person.

**ବାଣମୁଦ୍ରା**—ସଂ. ବି—ରିପୁନାଶିନୀ ତାନ୍ତ୍ରିକ ଅଙ୍ଗୁଳିମୁଦ୍ରାବିଶେଷ—
Bāṇamudrā A Tantric pose of the hands used against one's enemies.

**ବାଣଯୁଆର**—ପ୍ରାଦେ (ଗଡ଼ଜାତ) ବି (ସଂ. ବନ୍ୟଶୂକର)—ବରାହ—
Bāṇajuāra Boar.

**ବାଣଲିଙ୍ଗ**—ସଂ. ବି (ମ. ପ. ଲୋ. କର୍ମଧା; ବାଣ=ବାଣାସୁର ପ୍ରତିଷ୍ଠିତ
Bāṇaliṅga ଲିଙ୍ଗ)—୧ । ନର୍ମଦାତୀରସ୍ଥ ଶିବଲିଙ୍ଗବିଶେଷ—
1. Name of a Śiba Liṅga on the bank of the Narmada. ୨ । ନର୍ମଦା ନଦୀ ଗର୍ଭରୁ ପ୍ରାପ୍ତ କ୍ଷୁଦ୍ର ସ୍ୱଚ୍ଛ ଶ୍ୱେତ ଶିବଲିଙ୍ଗବିଶେଷ—2. Small Śiba Liṅga found on the bed of the Narmada river.

**ବାଣହତା**—ଦେ. ବି—ବାଣରେ ନିଆଁ ଧରାଇବାପାଇ ବ୍ୟବହୃତ ଭନ୍ତ-
Bāṇahatā ଉଦଆ ଆଦି ଯେଉଁ ଲମ୍ବା ବାଉଁଶଖଣ୍ଡର
(ବାଣଲଗା ହାତା—ଅନ୍ୟରୂପ) ଅଗ୍ରଭାଗରେ ସଂଲଗ୍ନ ହୁଏ—
The long bamboo pole to which the fuse rope is tied running to a fire work.

**ବାଣା**—ସଂ. ବି (ବାଣ + ଆ)—ନୀଳଝିଣ୍ଟି ଗଛ; ଦାସକେରେଣ୍ଟା—
Bāṇā The blue flowered Barberia.

**ବାଣାଧାର**—ସଂ. ବି (୬ଷ୍ଠୀ ତତ୍; ବାଣ + ଆଧାର)—ତୂଣୀର—
Bāṇādhāra Quiver.
(ବାଣାଶ୍ରୟ—ଅନ୍ୟରୂପ)

**ବାଣାବତୀ**—ସଂ. ବି. ସ୍ତ୍ରୀ—ବାଣାସୁରର ପତ୍ନୀ (ହ୍ରି. ଶ)—
Bāṇābatī The name of the wife of Bāṇāsura.

**ବାଣାବାଡ଼ି**—ପ୍ରାଦେ (ଗଞ୍ଜାମ) ବି—ଲମ୍ବା ମୋଟା ବାଡ଼ି; ଲାଠି—
Bāṇābarḍi A big stick; cudgel.

**ବାଣାସନ**—ସଂ. ବି. ( ବାଣ + ଅସ୍ ଧାତୁ=ନିକ୍ଷେପ କରିବା + କରଣ
Bāṇāsana ଅନ )—ଧନୁ; ଶରାସନ—Bow.

**ବାଣାସୁର**—ସଂ. ବି—ବଳିରାଜାଙ୍କ ଜ୍ୟେଷ୍ଠପୁତ୍ର; ଅସୁରବିଶେଷ—
Bāṇāsura Name of a demon.
(ବାଣରାଜ—ଅନ୍ୟରୂପ) [ ଦ୍ର—ଏ ଶିବଙ୍କ ବରରେ ୧୦୦୦ ହାତ ଭୁଜ ଓ ସହସ୍ର ବାହୁ ହୋଇଥିଲେ । ପାତାଳର ଶୋଣିତପୁର ଏହାଙ୍କ ରାଜଧାନୀ ଥିଲା । ଏ ହଜାରେ ବର୍ଷ ତପସ୍ୟା କରି ଶିବଙ୍କ ଠାରୁ ବର ପାଇଥିଲେ ଯେ ଶିବ ଏହାଙ୍କୁ ଯୁଦ୍ଧରେ ସ୍ୱୟଂ ସାହାଯ୍ୟ କରିବେ, ଏହାଙ୍କ କନ୍ୟା ଉଷା ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ସଙ୍ଗେ ପ୍ରଣୟାସକ୍ତା ହୋଇ ସ୍ୱସଖୀ ଚିତ୍ରଲେଖାଙ୍କୁ ପଠାଇ ଆକାଶମାର୍ଗରେ ଅନିରୁଦ୍ଧଙ୍କୁ ଆଣି ଅନ୍ତଃପୁରରେ ରଖିଥିବା ସମୟରେ ବାଣାସୁର ଅନିରୁଦ୍ଧଙ୍କୁ କାରାବଦ୍ଧ କଲେ । ଶ୍ରୀକୃଷ୍ଣ ଏହା ଶୁଣି ବାଣାସୁରଙ୍କୁ ଆକ୍ରମଣ କଲେ । ମହାଦେବଙ୍କ କହିବା ଅନୁସାରେ ଶ୍ରୀକୃଷ୍ଣ ବାଣାସୁରଙ୍କର ଚାରିଟି ହାତ ଛାଡ଼ିଦେଲେ, ବାକି ହାତଯାକ କାଟିପକାଇଲେ । ପରେ ବାଣ ପରାଜିତ ଓ ବାଧ୍ୟ ହୋଇ ଉଷାଙ୍କୁ ଅନିରୁଦ୍ଧଙ୍କ ହସ୍ତରେ ସମ୍ପ୍ରଦାନ କଲେ—(ହ୍ରି. ଶ) ]

**ବାଣି**—ସଂ. ବି (ବଣ୍ ଧାତୁ + ଭାବ. ଇ)—୧ । ବୟନ; ଲୁଗାବୁଣିବା—
Bāṇi 1. Weaving. ୨ । ( + କରଣ. ଇ ) ବାକ୍ୟ; ସ୍ୱର—Voice, speech. ୩ । ( + କରଣ. ଇ)—ବାୟଦଣ୍ଡ; ତନ୍ତ—3. Loom.

**ବାଣିଆଁ**—ଦେ. ବି (ବୈଦ୍ୟକ)—ଔଷଧବୃକ୍ଷବିଶେଷ—
Bāṇiāṅ A medicinal plant.
[ ଦ୍ର—ଏହାର ପତ୍ରରେ ଅଳ୍ପ ଜଡ଼ା ତେଲ ଲଗାଇ ଅଗ୍ନିରେ ସେକି ମୁଣ୍ଡରେ ଥୋଇ ପାଗ ବାନ୍ଧିଲେ ଶିରଃପୀଡ଼ା ଦୂର ହୁଏ । ଏହାର ମୂଳକୁ ମରିଚ ସହିତ ବାଟି ଖାଇଲେ ଗୋଡ଼ ଘୋଳା ନିବାରିତ ହୁଏ । ଏହାର ଅଧିକ ମାତ୍ରା ବାନ୍ତିକାରକ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ବାଣିଜ**—ସଂ. ବି. ( ବଣିଜ୍ + ଅ )—ବଣିକ; ବାଣିଜ୍ୟକାରୀ—
Bāṇija Merchant; trader.
ଦେ. ବି—ବାଣିଜ୍ୟକାରୀ—Trade.
କୃଷି ବାଣିଜ କରେ ନିତ୍ୟେ—ପ୍ରାଚୀ ନିର୍ଣ୍ଣୟମାହାତ୍ମ୍ୟ ।

**ବାଣିଜିକ**—ସଂ. ବିଣ. ( ବଣିଜ୍ + ଇକ )—ବାଣିଜ୍ୟ ସମ୍ବନ୍ଧୀୟ—
Bāṇijika Relating to trade.

**ବାଣିଜ୍ୟ**—ସଂ. ବି. ( ବଣିଜ୍ + ଭାବ. ଯ )—୧ । ବଣିଗ୍‌ବୃତ୍ତି;
Bāṇijya କ୍ରୟବିକ୍ରୟ—1. Trade. ୨ । (କର୍ମ. ଯ) ବ୍ୟବସାୟ—2. Commerce.

**ବାଣିଜ୍ୟ ପବନ**—ଦେ. ବି. ( ଆଧୁନିକ ପ୍ରୟୋଗ )—ଉତ୍ତରମେରୁ
Bāṇijya pabana ଆଡ଼ୁ ବିଷୁବରେଖାଆଡ଼କୁ ବହି ଆସୁଥିବା
বাণিজ্য বায়ু ब्यापार वायु ପବନ—Trade wind.
(ବାଣିଜ୍ୟ ବାୟୁ—ଅନ୍ୟରୂପ)

**ବାଣିଜ୍ୟ ପ୍ରତିନିଧି**—ସ. ବି. ( ଆଧୁନିକ ପ୍ରୟୋଗ )—ଏକ ଦେଶରୁ
Bāṇijya pratinidhi ଯାଇ ବାଣିଜ୍ୟର ପ୍ରତିନିଧିରୂପେ ଅନ୍ୟ ଦେଶରେ ରହିବା ବ୍ୟକ୍ତି—Trade agent of one country living in another.

**ବାଣିଜ୍ୟ ବ୍ୟବସାୟ**—ସ. ବି. ( ସହଚର )—ବାଣିଜ୍ୟ—
Bāṇijya byabasāya Commerce; trade.

**ବାଣିଜ୍ୟାଗାର**—ସ. ବି. ( ୬ଷ୍ଠୀ ତତ୍; ବାଣିଜ୍ୟ+ଆଗାର )—୧ ।
Bāṇijyāgāra ଯେଉଁ ଘରେ ପଣ୍ୟଦ୍ରବ୍ୟମାନ ରହେ—1. Warehouse. ୨ । ଯେଉଁ କୋଠିରେ ସଉଦା କିଣାଯାଏ—2. Mart; merchant office.

**ବାଣିନୀ**—ସ. ବି. ସ୍ତ୍ରୀ. ( ବାଣ ବା ବାଣି+ଇନ୍+ସ୍ତ୍ରୀ. ଈ )—
Bāṇini ୧ । ନଟୀ—1. An actress. ୨ । ନର୍ତ୍ତକୀ—2. A dancing girl. ୩ । ମତ୍ତ ସ୍ତ୍ରୀ—3. A furious woman; a shrew. ୪ । ବିଦଗ୍ଧା; ଚତୁରା—4. A clever woman; an intriguing woman. ୫ । ଦୂତୀ—5. A female go-between.

**ବାଣୀ**—ସ. ବି. ( ବଣ୍ ଧାତୁ=ଶବ୍ଦ କରିବା+କର୍ମ. ଇ+ସ୍ତ୍ରୀ. ଈ )—
Bāṇī ୧ । କଥା; ବାକ୍ୟ—1. Word; speech. ୨ । ବାଗ୍‌ଦେବୀ; ସରସ୍ୱତୀ—2. The Goddess of learning. ୩ । (+ଭାବ. ଇ)—ଲୁଗା ବୁଣିବା—3. Weaving.
ଦେ. ବି. ( ସ. ବା ଧାତୁ=ବୁଣିବା )—୧ । ହେଁସ ବା
सूतरी ମୁନ୍ଦୁରା ବୁଣିବାରେ ବ୍ୟବହୃତ ସରୁ ଝୋଟ ଦଉଡ଼ା—1. Strings for weaving mats. ୨ । ଝୋଟର ସରୁ ସୁତୁଲି—2. Jute strings. ୩ । ଗୋରୁଙ୍କ ଦେହରେ ଦିଆଯିବା ତାତିଲା ଲୁହାର ଚିହ୍ନ ବା ରେଖା—
दाग 3. Lines drawn on the body of cattle
तान with red-hot iron. ୪ । ( ସ. ବାଣୀ ) ଗୀତ
बानी ବୋଲିବାର ବୃତ୍ତି ବା ସ୍ୱର—4. Air of a song.
मज़ुरी ୫ । ବଣିଆଙ୍କର ଅଳଙ୍କାରଗଢ଼ା ମଜୁରି—5. Goldsmith's wages for preparing ornaments. ୬ । ଲୁଗା ବୁଣିବା ମଜୁରି—6. Weaver's wages.
ପ୍ରାଦେ.(ଗଡ଼ଜାତ) ବି—ଠେକା ପରି ବଡ଼ ବଡ଼ ବାଲିଗୋଡ଼ା Big pebbles.
[ଦ୍ର—ଲୋକେ ଏଥିରେ ମୁନ୍ଦୁରବୁଣା ଦଉଡ଼ି ବାନ୍ଧି ସେହି ଦଉଡ଼ିକୁ ଝୁଲାଇ ରଖି ମୁନ୍ଦୁରା ବୁଣନ୍ତି । ]

**ବାଣୀ କାଟିବା**—ଦେ. କ୍ରି—୧ । ଝୋଟ ବା ଛଣପଟର ସରୁ ଦଉଡ଼ି
Bāṇī kāṭibā ବୁଣିବା—1. To weave strings
सुतरीबाँटना ୨ । ଗୋରୁଙ୍କ ଦେହରେ ତାତିଲା ଲୁହାରେ
दागदेना ଦାଗଦେବା—2. To mark the bodies of cattle with hot iron

**ବାଣୀଜା**—ଦେ. ବି. ସ୍ତ୍ରୀ (ସ. ବାଣିନୀ)—ସଖୀ—
Bāṇījā A female companion.
ବାଣୀବାଣୀଜା ଭଷିଲ ମୁଁ ହେଜୁଛି—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ବାଣୀ ଦଉଡ଼ା(ଡ଼ି)**—ଦେ. ବି—ଝୋଟ ବା ଛଣପଟରେ ବୁଣାଯିବା
Bāṇī daurḍā(ṛḍi) ସରୁ ଦଉଡ଼ା—Slender strings
सुतरी made of hemp or flax.

**ବାଣୀ ପଥର**—ଦେ. ବି- ୧ । ସାନ ଗୋଟାଳିଆ ପଥର; ବାଲିଗୋଡ଼ା—
Bāṇī pathara 1. Small round pebbles.
सुतरीका मुट्ठा ୨ । ହେଁସ ବୁଣିବା ପାଇଁ ବ୍ୟବହୃତ ବାଣୀ ବା ଦଉଡ଼ା ଗୁଡ଼ିକ ଯେଉଁ ପଥରରେ ଗୁଡ଼ିଆ ହୋଇଥାଏ—2. Round bits of stone on which are wound the strings for weaving a reed mat.

**ବାଣୁଆ**—ଦେ. ବି. (ସ. ବାଣ)—୧ । ଯେ ବାଣ ମାରେ—
Bāṇuā 1. One who exhibits fire works; a
बानइत, बानैत, बनैत pyrotechnic.
୨ । ଯେ ଆତସବାଜି ତିଆରି କରେ—2. Manufacturer of fire works. ୩ । ବ୍ୟାଧ; ଶିକାରୀ—3. A hunter. ୪ । ବନ୍ଧୁକ ମାରିବାରେ ସିଦ୍ଧହସ୍ତ—4. A marksman.

**ବାଣୁଆ ରାଇ(ୟ)**—ପ୍ରାଦେ. (ଗଞ୍ଜାମ) ବି—ରାଜଦତ୍ତ ଉପାଧିବିଶେଷ—
Bāṇuā rāi(ya) A title conferred by Rajas.

**ବାଣୁଆ ସିଂହ**—ପ୍ରାଦେ. (ଗଞ୍ଜାମ) ବି—ରାଜଦତ୍ତ ଉପାଧିବିଶେଷ—
Bāṇuā siṁha A title conferred by Rajas.

**ବାଣ୍ଟ**—ଦେ. ବି. (ସ. ବଣ୍ଟ ଧାତୁ)—୧ । ବିଭାଗ କରଣ—
Bāṇṭa 1. Division. ୨ । ବଣ୍ଟନ; ବାଣ୍ଟରା—2. Partition.
୩ । ଅନେକ ଲୋକଙ୍କ ମଧ୍ୟରେ କୌଣସି ବସ୍ତୁର ବିତରଣ—3. Distribution of a thing amongst many.
୪ । ବିଭାଗ କରି ଯାଇଥିବା ଅଂଶ—4. Allotment.
୫ । ତାସ୍ ବାଣ୍ଟିବା ପାଳି—5. Turn for distributing playing cards amongst the players.

**ବାଣ୍ଟ କୁଣ୍ଟ**—ଦେ. ବି. (ସହଚର)—ବାଣ୍ଟ; ବଣ୍ଟନ—
Bāṇṭa kuṇṭa Division; distribution.
बाँटा कूँटा बाँटचूँट (ବାଣ୍ଟବଣ୍ଟା, ବାଣ୍ଟରାକୁଣ୍ଟରା—ଅନ୍ୟରୂପ)

**ବାଣ୍ଟରା**—ଦେ. ବି. (ସ. ବଣ୍ଟନ)—୧ । ବାଣ୍ଟ; ବଣ୍ଟରା; ବଣ୍ଟନ—
Bāṇṭarā 1. Partition. ୨ । ବହୁଲୋକଙ୍କୁ ବିତରଣ—
बाँटरा बटबारा 2. Distribution.

**ବାଣ୍ଟିବା**—ଦେ. କ୍ରି. (ସ. ବଣ୍ଟ ଧାତୁ)—୧ । ବିଭାଗ କରିବା; ଅଂଶ
Bāṇṭibā ପୃଥକ୍ କରିବା—1. To divide; to partition.
बाँटा बाँटना ୨ । ( ଧନାଦି ) ଅନେକ ଲୋକଙ୍କ ମଧ୍ୟରେ ବିତରଣ କରିବା—2. To distribute.
ବମ୍ପାଧରୁ ନବପଲ୍ଲବମାନଙ୍କ ବାଣ୍ଟିଲୁ କି ବନ୍ଧୁ ବନ୍ଧୁରେ ।
ଜଦୁମଣି. ରଘୁନାଥ
୩ । ମନରେ ଭଲ ମନ୍ଦ ବିଚାର କରିବା—3. To distinguish mentally the good from the bad; to think over the pros and cons of a matter.

କଥା ବାଣ୍ଟିଲେ ନ ଅସଇ ବଳ ।
ବୁଦ୍ଧି ହୁଅଇ ଏବେ ଭଲ ଅଛ । ପ୍ରାଚୀ. ରହସ୍ୟମଞ୍ଜରୀ ।

ବାଣ୍ଟି ହେବା—ଦେ· କ୍ରି.—୧ । ଆପଣା ଭିତରେ ପୃଥକ୍ ଦଲରେ
Bāṇṭi hebā ବିଭକ୍ତ ହେବା—1. To divide amongst
बँटहोना one another. ୨ । ବାଣ୍ଟିବା କ୍ରିୟାର କର୍ମବାଚ୍ୟରୂପ -
2. The passive voice of Bāṇṭibā.

ବାଣ୍ଠିଆ—ପ୍ରାଦେ. (ବାଲେଶ୍ୱର)—ବିଣ. (ଭୁଲ. ବ. ବେଁଟେ)—
Bāṇṭhiā ଖର୍ବକାୟ—Dwarfish
(ବାଣ୍ଠୁଲା—ଅନ୍ୟରୂପ)

ବାଣ୍ଡ୍—ବୈଦେ. ବି.—(ଇଂ. ବାଣ୍ଡ୍)—ବିଭାଗ ଯୁକ୍ତ ବାଦ୍ୟସମ୍ପର୍କୀୟ
Bāṇḍ ବାଦନକାରୀ ଦଳ—Band; a band of musicians
ब्यां ड attached to a particular regiment.
(ବ୍ୟାଣ୍ଡ୍, ବେଣ୍ଡ୍—ଅନ୍ୟରୂପ) [ଦ୍ର—ଏ ଦଳରେ ଢୋଲ, ଝାଞ୍ଜ ଓ
ଓ କାହାଳୀ ବଜାଯାଏ । ସାଧାରଣତଃ ଏହା ଯୁଦ୍ଧବାଦ୍ୟ ଅଟେ ।
ଆଜିକାଲି ବଡ଼ଲୋକମାନେ ଘରୁଆରେ ଏ ଦଳକୁ ପୋଷନ୍ତି ।]

ବାଣ୍ଡ—ଦେ. ବି. (ସଂ. ବାଣ=ଶର; ଭୁଲ ସଂ. ବଣ୍ଡ=ଛିନ୍ନଚର୍ମ ଲିଙ୍ଗ)
Bāṇḍa लडुडा (ଅଶ୍ଳୀଳ) ଶିଶ୍ନ; ଲିଙ୍ଗ—Penis

ବାଣ୍ଡି—ପ୍ରାଦେ. (ଗଞ୍ଜାମ) ବୈଦେ. (ତେ. ବାଣ୍ଡି)—ବି.—
Bāṇḍi ୧ । ଏକପ୍ରକାର ବଳଦ ଗାଡ଼ି; କେରେଞ୍ଚ ଗାଡ଼ି—
1. Bandy cart.
[ଦ୍ର—ଏହା ବଡ଼ ଆରାମପ୍ରଦ; ଏଥିରେ ସବାର ଘର କାଠର
ଛୋଟ କୋଠରି ଥାଏ ଏବଂ ଅକ୍ଷ ଉପରେ କମାଣୀ ଲାଗିଥାଏ ।]
୨ । ଶଗଡ଼ ଗାଡ଼ି—2. Bullock cart.

ବାଣ୍ଡେଜ୍—ବୈଦେ. ବି. (ଇଂ.)—ଘା ଆଦିର ଉପରେ ବାନ୍ଧିବା ପାଇଁ
Bāṇḍej ଅଳ୍ପ ଚଉଡ଼ାର ଲମ୍ବ କନାପଟି—Bandage.
ब्यांडेज बडेज [ବ୍ୟା(ବେ)ଣ୍ଡେଜ୍—ଅନ୍ୟରୂପ]

ବାଣ୍ଡୋରି—ବୈଦେ. ବି. (ଇଂ. ବାଉଣ୍ଡାରି)—ସେଟଲ୍‌ମେଣ୍ଟ ମାପରେ
Bāṇḍori ନିର୍ଦ୍ଦିଷ୍ଟ ଭୂମିର ସୀମା—Boundary line in a
survey.

ବାଣ୍ଡୋରିଆ—ଦେ. ବି. (ଇଂ. ବାଉଣ୍ଡାରି)—ଯେଉଁମାନେ ମାପ କରି
Bāṇḍoriā ଭୂମିର ସୀମା ନିରୂପଣ କରନ୍ତି; ଭୂମି ମାପ କରିବା
ଅମିନ—Surveyors who lay the boundaries
of villages.

ବାତ୍—ଦେ. ବି.—(ହିନ୍ଦୀରୁ ଅନୁକୃତ; ସଂ. ବାର୍ତ୍ତା)—ବାକ୍ୟ; କଥା;
Bāt बात बात ଉକ୍ତି; ବଚନ—Word; speech.

ବାତ୍‌ଚିତ୍—ଦେ. ବି.—( ହିନ୍ଦୀରୁ ଅନୁକୃତ; ସଂ. ବାର୍ତ୍ତା ସଙ୍ଗେ ଅନର୍ଥକ
Bāt-chit ଦ୍ୱିତୀୟ ସହଚର ଶବ୍ଦ)—୧ । କଥୋପକଥନ;
କଥାବାର୍ତ୍ତା ବାକ୍ୟାଳାପ—1. Conversation.
बातचित ୨ । ପ୍ରଶ୍ନୋତ୍ତର—2. Question and answer.

ବାତ୍‌ଫ(ଫୁ)ରୁସ୍(ସି)—ଦେ. ବି. ( ହି. ବାତ୍+ସଂ. ସ୍ଫୂର୍ତ୍ତି )—
Bāt-pha(phu)rus(si) ବାଲିଙ୍ଗି; ସତ ମିଛ ଖିଆଡ଼ି କଥା
ବକୁଆ ଗପିବା; ବାଗାଡମ୍ବର—Braggadacio; boasting;
बत फरेस bombast.

ବାତ୍ ଫ ର(ରୁ)ସିଆ—ପୁଂ } ବିଣ ଦେ. ବିଣ—ବାଗାଡ଼ମ୍ବର ପ୍ରିୟ—
ବାତ୍ ଫୁର(ରୁ)ସେଇ—ସ୍ତ୍ରୀ } Boastful; bragging;
bombastic.

ବାତ୍ସକ—ସଂ. ବି. (ବତ୍ସ+ସ୍ୱାର୍ଥେ. ଅ+କ)—ବାଛୁରୀ ପଲ—
Bāt-saka A herd of calves (Apte).

ବାତ୍ସଲ୍ୟ—ସଂ. ବି. (ବତ୍ସଳ+ଭାବ. ଯ)—ବତ୍ସଳତା; ସ୍ନେହ; ସ୍ନେହାଦିଙ୍କ
Bāt-salya ପ୍ରତି ଗୁରୁଜନଙ୍କ ପ୍ରେମ—Affection towards
one's youngers; tenderness or fondness
for children.

ବାତ୍ସାୟନ—ସଂ. ବି. (ନାମ)—୧ । ସଂସ୍କୃତ 'କାମସୂତ୍ର' ନାମକ ରତି-
Bāt-sāyana ଶାସ୍ତ୍ର ବିଷୟକ ଗ୍ରନ୍ଥର ରଚୟିତା—1. Name
of the author of a Sanskrit work on
erotic subjects.
୨ । ନ୍ୟାୟ ଶାସ୍ତ୍ରର ଟୀକାକାର—2. Name of a com-
mentator on the Nyāya Śāstra (Apte)

ବାତ୍ସି(ସୀ)—ସଂ. ବି. ସ୍ତ୍ରୀ—ବ୍ରାହ୍ମଣ ଔରସରେ ଶୂଦ୍ରା ଗର୍ଭଜାତା କନ୍ୟା-
Bāt-si(sī) The daughter of a Brāhmaṇa father
and Śūdrā mother (Apte).

ବାତ—ସଂ. ବି. ( ବା ଧାତୁ=ଗତି କରିବା+କର୍ତ୍ତୃ. ତ )—
Bāta ୧ । ପବନ; ବାୟୁ—1. Wind; air.
୨ । ଆୟୁର୍ବେଦ ମତେ ଶରୀରସ୍ଥ ବାୟୁ—2. One of the 3
humours of the body; wind in the body;
nerve energy; rheum.
[ ଦ୍ର—ବୈଦ୍ୟଙ୍କ ମତରେ ଶରୀରସ୍ଥ ବାୟୁର ସ୍ଥାନ ପକ୍ୱାଶୟ ।
ଶରୀରସ୍ଥ ସମସ୍ତ ଧାତୁର ଓ ମଳ ମୂତ୍ର ଆଦିର ପରିଚାଳନ ଏହା ଦ୍ୱାରା
ହୁଏ ଓ ଶ୍ୱାସ, ପ୍ରଶ୍ୱାସ, ଚେଷ୍ଟା, ବେଗ ଆଦି ଇନ୍ଦ୍ରିୟର କାର୍ଯ୍ୟରେ
ଏହାହିଁ ମୂଳ ଅଟେ । ହି. ଶ ]
୩ । ମୂର୍ଚ୍ଛାରୋଗ; ମୃଗୀ ରୋଗ—3. Fit; epilepsy
୪ । ଯେଉଁ ରୋଗରେ ଅଣ୍ଟ ଗଣ୍ଠି ଦରଜ ହୁଏ; ଆମବାତ—
4. Rheumatism; gout ୫ । ଜାର ପୁରୁଷ—
5. A paramour. ୬ । ଧୂର୍ତ୍ତ ନାୟକ—6. A fickle
paramour.
ସଂ. ବିଣ—ଗତ—Gone.
ଦେ. ବି—ବାୟୁ ଦେବତା—The God of wind.
ବଧ ବାତ ମେଳ ସଙ୍ଗ ବାଳକାରୁ ତହୁଁ—ଉତ୍ତ. ବୈଦେହୀଶବିଳାସ ।

ବାତ କଫ—ସଂ. ବି—୧ । ବାୟୁ ଓ କଫଜନିତ ରୋଗବିଶେଷ—
Bāta kapha 1. Cough due to wind in the body.
୨ । ଟାଇଫଏଡ୍ ଜ୍ୱର—2. Typhoid.

ବାତ କର୍ମ—ସଂ. ବି—ପର୍ଦ୍ଦନ; ପାଦିବା; ଅଧୋବାୟୁ ତ୍ୟାଗ—
Bāta karma The act of cracking air through
the anus; fart.

ବାତକୀ—ସଂ. ବିଣ. ପୁଂ. (ବାତ+ଇନ୍; କ ଆଗମ; ୧ମା. ୧ବ)—
Bātakī ବାତ ରୋଗାକ୍ରାନ୍ତ—Suffering from rheu-
(ବାତକିନୀ—ସ୍ତ୍ରୀ) matism.

**ବାତ କୁମ୍ଭ**—ସଂ. ବି—ଗଜ କୁମ୍ଭର ନିମ୍ନ ଦେଶ—
Bāta kumbha The lower part of the temples of an elephant.

**ବାତ କୁଷ୍ଠ**—ସ. ବି—ରୋଗବିଶେଷ—
Bāta kushṭha A disease.

**ବାତ କୃମି**—ଦେ. ବି—ଶିଶୁମାନଙ୍କ କୃମି ରୋଗବିଶେଷ—
Bāta krumi A disease of worms in children.
(ବାତକୃମି, ବାତଲୁକୃମି—ଗ୍ରାମ୍ୟ ରୂପ)

**ବାତ କେତୁ**—ସ. ବି. ( ୬ଷ୍ଠୀ ତତ୍; ବାତ+କେତୁ )—
Bāta ketu ପାଂଶୁ; ଧୂଳି—Dust.

**ବାତ କେଳି**—ସ. ବି—୧ । ସୁନ୍ଦର ଆଳାପ (ହି. ଶ)—
Bāta keḻi 1. Charming talk.
୨ । ଉପପତିଙ୍କ ଦନ୍ତକ୍ଷତ (ହି. ଶ)—2. The tooth mark left on the body (cheeks or lips) of a lady by her paramour.

**ବାତ ଗୁଳ୍ମ**—ସ. ବି—୧ । ବାତ ଯୋଗୁଁ ଉତ୍ପନ୍ନ ଗୁଳ୍ମ ରୋଗ—
Bāta guḻma 1. A disease due to vitiated wind.
(ବାତ ଗୁଲ୍ମମ—ଗ୍ରାମ୍ୟରୂପ) ୨ । ଆମବାତ—2. Rheumatism (Apte) ୩ । ପ୍ରବଳ ବାୟୁ; ତୋଫାନ—3. A high wind (Apte).

**ବାତଘ୍ନ**—ସ. ବିଣ. (ବାତ+ହନ୍ ଧାତୁ+କର୍ତ୍ତୃ. ଅ)—୧ । ଯାହା
Bātaghna ବାତରୋଗ ନାଶ କରେ—1. Curing rheuma-
(ବାତଘ୍ନୀ—ସ୍ତ୍ରୀ) tism. ୨ । ଯାହା ଶରୀରର ବାତଧାତୁ ଉପଶମ କରେ—2. Removing disorders of the wind in the system.

**ବାତଘ୍ନୀ**—ସ. ବି—୧ । ଅଶ୍ୱଗନ୍ଧା ( ଦେଖ )—1. Aswagandhā
Bātaghnī ( See ) ୨ । ଶାଳପର୍ଣ୍ଣୀ ( ଦେଖ )—2. Sāḻaparṇṇī ( See )

**ବାତ ଚକ୍ର**—ସ. ବି. ( ମ. ପ. ଲୋ; ବାତଚାଳିତ ଚକ୍ର )—୧ । ବାୟୁ-
Bāta chakra ଦ୍ୱାରା ଚାଳିତ ଚକ୍ର ବା ଯନ୍ତ୍ର—1 A wheel propelled by wind; windmill. ୨ । ଫଳିତ ଜ୍ୟୋତିଷର ଯୋଗବିଶେଷ—2. Name of an astrological conjunction.
[ କୃ—ଆଷାଢ଼ପୂର୍ଣ୍ଣିମା ଦିନ ସୂର୍ଯ୍ୟାସ୍ତ ବେଳେ ଏ ଯୋଗ ହୁଏ । ସେ ସମୟରେ ବାୟୁ ବହିବାର ଦିଗରୁ ବର୍ଷଫଳ ନିର୍ଣ୍ଣିତ କରାଯାଏ—ହି. ଶ. ]

**ବାତ ଚଟକ**—ସ. ବି—୧ । ତିତ୍ତିର ପକ୍ଷୀ (ହି. ଶ.)—1. Partridge.
Bāta chaṭaka ୨ । ବାୟା ଚଢ଼େଇ ( ଦେଖ )—2. Bāyā chaṛhei ( See )
ଦେ. ବି—୧ । ( ଲକ୍ଷଣାର୍ଥ ) ମନକୁ ଅସ୍ଥିର କରିବା କୌଣସି
बातचक्कर ବିଶେଷ ଚିନ୍ତା—1. Grave anxiety or uneasiness. ୨ । ବାତ୍ ଫରୁସ୍ ( ଦେଖ )—2. Bāt-pharus ( See ) ୩ । କଥାରେ ଭଣ୍ଡିବା—3. Prevarication.

**ବାତଜ**—ସଂ. ବି. ( ବାତ+ଜନ୍ ଧାତୁ+କର୍ତ୍ତୃ. ଅ )—ବାୟୁପୁତ୍ର;
Bātaja ହନୁମାନ୍—Hanumān.
ସ. ବିଣ—ଶରୀରସ୍ଥ ବାୟୁ ପ୍ରକୋପରୁ ଜାତ—Resulting from derangement of the wind or rheum in the body.
ଦେ. ବି—ବତାସ—Storm.
ବାତଜ ପ୍ରଖର ଅତ୍ୟନ୍ତ ଘନେନ୍ଦ୍ର-କୋଦଣ୍ଡ ଉଦିତ ଯହିଁ—
ଉପେ. ବୈଦେହୀଶବିଳାସ ।

**ବାତଜ୍ୱର**—ସଂ ବି—ବାତ ଧାତୁ-ପ୍ରକୋପରୁ ଉତ୍ପନ୍ନ ଜ୍ୱର—Fever
Bātajwara due to excess of wind in the system; rheumatic fever.
[ ଦ୍ର—ଏ ଜ୍ୱରରେ ଗଳା, ଓଠ ଓ ମୁହଁ ଶୁଖିଯାଏ, ନିଦ ହୁଏ ନାହିଁ, ହାକ୍କା ଉଠେ, ଶରୀର ରୁକ୍ଷ ହୁଏ, ମୁଣ୍ଡ ଓ ଦେହ ବିନ୍ଧେ, ମୁହଁ ଫିକ୍କା ପଡ଼ିଯାଏ, ମଳ ଶୁଖି ହୁଏ । କେବେ କେବେ ଦେହରେ ତାତି ବଢ଼ିଯାଏ ଓ କେବେ କେବେ କମିଯାଏ—ହି. ଶ. ]
ଦେ. ବି—ଶ୍ଳୀପଦ ରୋଗ; ଏକପ୍ରକାର ଜ୍ୱର—Moon
বাতের ব্যামো fever; fever accompanied with
फीलपाव swelling of the lymphatic glands and elephantiasis and scrotal tumour; filarial fever.
[ ଦ୍ର—ଏ ଜ୍ୱରରେ ପ୍ରଥମେ କାଖସନ୍ଧି ଓ ଉରୁସନ୍ଧି (କୋଉ-ଗାଡ଼)ର ଗିଲଟି ଫୁଲିଯାଇ ଦରଜ ହୁଏ ଓ ଶରୀରରେ ତାପ ବଢ଼େ; ଏବଂ ଶରୀରର ପ୍ରାନ୍ତଭାଗ ଅର୍ଥାତ୍ ଯେଉଁ ଅଙ୍ଗମାନ ତଳକୁ ଝୁଲେ (ଯଥା—ହାତ, ଗୋଡ଼, କୋଷ,ସ୍ତନ ବା ଲିଙ୍ଗ) ତହିଁକୁ ରକ୍ତ ଗଡ଼ି ତାହା ମୋଟର ହୋଇଯାଏ ଅର୍ଥାତ୍ ଫୁଲିଯାଏ; ଏବଂ ଏହି ଗୋଦର ଉପରେ ଅନେକମାନ ମଧ୍ୟ ବାହାରେ । କୌଣସି କୌଣସି ରୋଗୀର ଏକ ପାଖର ଅଙ୍ଗ, କାହାର କାହାର ଦୁଇ ପାଖର ଅଙ୍ଗ ଗୋଦର ହୁଏ । ଆଜି ପର୍ଯ୍ୟନ୍ତ ଏ ଜ୍ୱରର କୌଣସି ଔଷଧ ଆବିଷ୍କୃତ ହୋଇ ନାହିଁ । ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ସମସ୍ତ ମଧ୍ୟରେ ଭୋଜନ ନ କରିବାହିଁ ଏହାର ଏକମାତ୍ର ପ୍ରତିକାର । ପୂର୍ଣ୍ଣିମା, ସଂକ୍ରାନ୍ତି,ଅଷ୍ଟମୀ, ଏକାଦଶୀ ଓ ଅମାବାସ୍ୟାରେ ଏ ଜ୍ୱର ଆକ୍ରମଣ କରିବା ଦେଖା ଯାଏ । ସାଧାରଣତଃ ଏହା ୨।୩ ଦିନ ପରେ ଛାଡ଼ିଯାଏ; ମାତ୍ର କେତେ ବେଳେ ଏହା ନ ଛାଡ଼ି ଲାଗି ରହେ ଏବଂ ରୋଗୀକୁ ବିଶେଷ ଯନ୍ତ୍ରଣା ଦେଇ ଶେଷରେ ମାରି ପକାଏ । ବାତଜ୍ୱରର ଏହି ଅବସ୍ଥାକୁ 'ବାତଜ୍ୱର ବିଚିଟିବା' ବୋଲାଯାଏ, ବାତଜ୍ୱରର ପ୍ରଧାନ ଚିହ୍ନ ଗିଲ୍ଟି ଦରଜ ହେବା । ଗିଲଟି ଦରଜ ନ ହୋଇ ଅଙ୍ଗ ବିଶେଷ ଫୁଲିଲେ ତାହା ବାତଜ୍ୱର ନୁହେ ବୋଲି ଜାଣିବାକୁ ହେବ; ପାଶ୍ଚାତ୍ୟ ଡାକ୍ତରମାନେ ସ୍ଥିର କରି ଅଛନ୍ତି ଯେ, କୌଣସି କୌଣସି ଅଞ୍ଚଳରେ ଜଳବାୟୁ ଦୋଷରୁ ଦେହରେ ଏକ ପ୍ରକାର କୀଟାଣୁ (filaria) ପ୍ରବେଶ କରନ୍ତି ଓ ତାଙ୍କଦ୍ୱାରା ଏ ରୋଗ ହୁଏ । ପୁରୀଜିଲ୍ଲାରେ ଏ ରୋଗ ଅନେକ ଲୋକଙ୍କୁ ଆକ୍ରମଣ କରିବାର ଦେଖାଯାଏ । ପୁରୀରେ ଏ ବିଷୟରେ ସରକାର ଗବେଷଣା କରାଇ ଥିଲେ ଓ ଇଞ୍ଜେକ୍‌ସନ୍‌ଦ୍ୱାରା ଏ ରୋଗର ଆକ୍ରମଣରୁ ଲୋକଙ୍କୁ ରକ୍ଷା

କରିବାର ଚେଷ୍ଟା କରାଯାଇଥିଲା, କିନ୍ତୁ ତାହା ଫଳପ୍ରଦ ହେବାର ଦେଖାଗଲା ନାହିଁ—ଏମନ୍ତ କି, ଯେଉଁ ସିଭିଲ୍ ସର୍ଜନ ଏ ଗବେଷଣାର ଅଧ୍ୟକ୍ଷ ହୋଇଥିଲେ (ଡାକ୍ତର ଦାସ) ତାଙ୍କର ଗୋଡ଼ ଗୋଦର ହୋଇଥିବାର ଦେଖାଗଲା । ଏ ରୋଗଜନିତ ପାଦଶୋଥ (ଗୋଦରଗୋଡ଼)କୁ ପାରସୀରେ ଓ ହିନ୍ଦୀରେ ଫୀଲ୍‌ପାଓ (= ହାତୀଗୋଡ଼) ଓ ଇଂରାଜୀରେ ଏଲିଫାଣ୍ଟିଆସିସ୍ (ହାତୀ ପରି କରିବା ରୋଗ) ବୋଲାଯାଏ । ]

**ବାତ ତୁଳ**—ସ. ବି. (ମ. ପ. ଲୋ; କର୍ମଧା; ବାତଦ୍ୱାରା ଚାଳିତ ତୁଳ== Bāta tula ତୁଳା )—୧ । ଶୂନ୍ୟମାର୍ଗରେ ବାୟୁ ଚାଳିତ ଲୂତିଆଣୀ [ଅନ୍ୟ ସ. ନାମ—ବୃଦ୍ଧସୂତ୍ରକ, ସୂତା—1. Spider's web ଇନ୍ଦ୍ରତୁଳ, ଗ୍ରାବାହାସ, floating in the air. ୨ । ବଣକପା, ମରୁଧ୍ୱଜ] ପବନରେ ଉଡ଼ୁଥିବା ତୂଳା ପରି ମଞ୍ଜି—2. Cottony seeds floating in the air (Apte).

**ବାତଦେହୀ**—ଦେ. ବିଣ—ଯାହା ଦେହରେ ବାତ ଧାତୁ ପ୍ରବଳ—Bātadehī One in whose system the Bāta humour predominates.

**ବାତ ଧରିବା**—ଦେ. ବି—ଅମବାତ ରୋଗର ଆକ୍ରମଣ—Attack of Bāta dharibā वातधरा **वातपकडना** rheumatism.

**ବାତ ଧାତୁ**—ଦେ. ବି—ଶରୀରସ୍ଥ ବାତ ନାମକ ଧାତୁ—The humour Bāta dhātu of wind or rheum the system.

**ବାତ ଧ୍ୱଜ**—ସ. ବି. (ବହୁବ୍ରୀହି; ବାତ+ଧ୍ୱଜା)—୧ । ମେଘ—Bāta dhwaja 1. Cloud. ୨ । ଧୂଳି—2. Dust (Apte).

**ବାତ ପଟ**—ସ. ବି. (ମ. ପ. ଲୋ; ବାତଶ୍ଚଳିତ ପଟ)—ପତାକା (ହି. ଶ.) Bāta paṭa Flag.

**ବାତପତ୍ନୀ**—ସ. ବି. (୬ଷ୍ଠୀ ତତ୍; ବାତ+ପତ୍ନୀ)—ଦିଗ (ହି. ଶ.)—Bātapatnī Quarter of the globe.

**ବାତ ପିତ୍ତ**—ସ. ବି. (ଦ୍ୱନ୍ଦ୍ୱ; ବାତ+ପିତ୍ତ)—୧ । ବାତ ଓ ପିତ୍ତ—Bāta pitta 1. Rheum and bile in the system ୨ । ବାତ ଓ ପିତ୍ତ ବୃଦ୍ଧିଜନିତ ରୋଗ—2. Disease due to excess of bile and rheum in the system

**ବାତ ପିତ୍ତ କଫ**—ସ. ବି—ଆୟୁର୍ବେଦ ମତେ ଶରୀରସ୍ଥ ତିଧାତୁ (ଯଥା—Bāta pitta kapha ବାତ, ପିତ୍ତ ଓ କଫ—The three humours of the body (according to the Hindu system of medicine; rheum; bile and phlegm).

**ବାତ ପୁତ୍ର**—ସ. ବି. (୬ଷ୍ଠୀ ତତ୍; ବାତ+ପୁତ୍ର)—Bāta putra ୧ । ହନୁମାନ୍ (ହି. ଶ)—1. Hanumān. ବାତ ତନୟ } ଅନ୍ୟରୂପ ୨ । ଭୀମ—2. Bhīma (Apte). ବାତାତ୍ମଜ } ୩ । ଠକ—3. A cheat (Apte).

**ବାତ ପ୍ରକୃତି**—ସ. ବିଣ—ଯେଉଁ ଲୋକର ଦେହରେ ବାତ ଧାତୁର Bāta prakruti ଆଧିକ୍ୟ ବା ପ୍ରକୋପ ଦେଖାଯାଏ—(ବାତ ପ୍ରକୃତିକ—ଅନ୍ୟରୂପ) Of a rheumatic constitution.

**ବାତ ପ୍ରମୀ**—ସ. ବି. (ବାତ+ପ୍ର+ମା ଧାତୁ=ପରିମାଣ କରିବା+ Bāta pramī କର୍ତ୍ତୃ. ଈ)—୧ । ବାତ ମୃଗ (ଦେଖ) 1. Bāta mruga (See) ୨ । ଘୋଡ଼ା (ହି. ଶ)—2. Horse. ୩ । ନକୁଳ; ନେଉଳ (ହି. ଶ)—3. Ichneumon; mongoose.

**ବାତ ପ୍ରଶମକ**—ସଂ. ବିଣ. (ବାତ+ପ୍ରଶମକ)—Bāta praśamaka ଯାହା ଦ୍ୱାରା ଦେହରେ ବାତ ଧାତୁର ପ୍ରକୋପ (ବାତ ପ୍ରଶମୀ—ଅନ୍ୟରୂପ) ଉପଶମିତ ହୁଏ—Preventing the (ବାତ ପ୍ରଶମିକା, ବାତ ପ୍ରଶମିନୀ—ସ୍ତ୍ରୀ) morbidity of the (ବାତ ପ୍ରଶମନ—ବିଶେଷ୍ୟ) humour of rheum in the system.

**ବାତ ଫୁଟ**—ଦେ. ବି. (ସଂ. ବାତ+ସ୍ଫୋଟକ)—Bāta phuṭa କୁଷ୍ଠ ରୋଗବିଶେଷ; ବାତରକ୍ତ—ବାତ ଫୁଟ(ଟୁ)କା } ଅନ୍ୟରୂପ A sort of leprosy. ବାତ ଫୋଟକା } [ ଦ୍ର—ଏଥିରେ ଦେହସାରା ଗୁଡ଼ାଏ ଦୁର୍ଗନ୍ଧମୟ ବ୍ରଣ ହୋଇଯାଏ । ]

**ବାତ ଫୁଲ୍ଲାବ**—ସଂ. ବି—ବାୟୁଜନିତ ପେଟ ଫୁଲା—Bāta phullāba Flatulence in the bowels caused by indigestion (Apte).

**ବାତ ବୈରୀ**—ସଂ. ବି—୧ । ବାଦାମ (ଦେଖ) Bātabairī 1. Bādāma (See). ୨ । ଏରଣ୍ଡଗଛ—2. The Casto oil plant (Apte).

**ବାତବସ୍ତି**—ସଂ. ବି—ମୂତ୍ରରୋଧ—Suppression of urine Bātabastī (Apte).

**ବାତବୃଦ୍ଧି**—ସ. ବି—୧ । (୬ଷ୍ଠୀ ତତ୍) ଶରୀରରେ ବାତଧାତୁର ପ୍ରାବଲ୍ୟ-Bātabruddhi 1. Predominance of rheum or wind. in the system. ୨ । କୋଷବୃଦ୍ଧି—2. Swollen testicle (Apte).

**ବାତବ୍ୟାଧି**—ସ. ବି—ଦେହର ସନ୍ଧିସ୍ଥାନ ଫୁଲିବା ଓ ବିନ୍ଧିବା Bātabyādhi ରୋଗବିଶେଷ—Acute rheumatism. (ବାତରୋଗ ଅନ୍ୟରୂପ)

**ବାତମଣ୍ଡଳୀ**—ସ. ବି (୬ଷ୍ଠୀ ତତ୍; ବାତ+ମଣ୍ଡଳୀ)—ଘୂର୍ଣ୍ଣୀବାୟୁ; Bātamaṇḍalī ବାତାବର୍ତ୍ତ; ଖଣ୍ଡଆବୁଡ଼—Whirlwind.

**ବାତ ମାରିବା**—ଦେ. ବି—ଅପସ୍ମାରାଦି ରୋଗଜନିତ ମୂର୍ଚ୍ଛା—Bāta māribā Fit or attack of epilepsy. फीट **बातमारना**

**ବାତ ମୃଗ**—ସଂ. ବି (ମ. ପ. ଲୋ. କର୍ମଧା; ବାତ+ମୃଗ; ଯେଉଁଥିରୁ Bāta mruga ପବନ ବହୁଥାଏ ଏମାନେ ସେହି ଦିଗକୁ ମୁହଁକରି (ବାତମଜ—ଅନ୍ୟରୂପ) ଦଉଡ଼ନ୍ତି)—ଦ୍ରୁତଗାମୀ କ୍ଷୁଦ୍ର ମୃଗବିଶେଷ; ବାଉଁଶିଆ—A spotted deer.

**ବାତ ଯାନ**—ସଂ ବି (ବହୁବ୍ରୀହି; ବାତ+ଯାନ; ଯେ ବାୟୁ ସଙ୍ଗେ Bāta jāna ଗତି କରି ପାରେ)—ମୃଗ—Deer. (ବାତରଥ—ଅନ୍ୟରୂପ)

ବାତର—ସଂ. ବ ( ବାତ+ର )—୧ । ବାୟୁମୟ—1. Stormy; windy (Apte). ୨ । ଶୀଘ୍ରଗାମୀ; ଦ୍ରୁତଗାମୀ—2. Swift (Apte).
Bātara

ବାତରକ୍ତ—ସଂ. ବି—୧ । କୁପିତ ବାୟୁଦ୍ୱାରା ଦୂଷିତ ହେବା ରକ୍ତଜନିତ ରୋଗବିଶେଷ—1. A kind of leprosy.
Bātarakta
(ବାତ ଶୋଣିତ—ଅନ୍ୟରୂପ)
[ ଦ୍ର—ଏଥିରେ ଦେହରେ ଓ ବିଶେଷତଃ ଗୋଡ଼ରେ ମଳା ମଳା ବ୍ରଣ ଓ ଦାଗ ବାହାରେ । ଏହା ଏକପ୍ରକାର କୁଷ୍ଠରୋଗ ।]
୨ । ଆମବାତ—2. Acute gout (Apte).

ବାତରକ୍ତଘ୍ନ—ସଂ. ବି—୧ । ବାତରକ୍ତ ରୋଗନାଶକ ଔଷଧ—1. Antidote for 'Bātarakta'. disease. ୨ । କୁକୁରଶୁଙ୍ଘା; ପୋକସୁଂଘା—2. A herbal plant; Blumea Lacera.
Bātaraktaghna

ବାତ ରଥ—ସଂ. ବି—(୬ଷ୍ଠୀ ତତ୍; ବାତ+ରଥ)—ମେଘ (ହ୍ଵ. ଶ.)—Cloud.
Bāta ratha

ବାତରା—ଦେ. ବି—( ସଂ. ମାଣ୍ଡ )—ଦେଶୀଆଳୁଲତାର ପ୍ରତ୍ୟେକ ଗଣ୍ଠିରୁ ବାହାରିବା ଛୋଟ ଗୋଲାକାର କନ୍ଦ—Small round bulbs coming out of the joints of the creeper of yam.
Bātarā
(ବାଲୁରା—ଅନ୍ୟରୂପ)
गाईंठ आल

अरुयाकी गुटली ଦେ. ବିଣ. ପୁଂ—ଶରୀରସ୍ଥ ବାତ ଧାତୁର ପ୍ରାବଲ୍ୟ ବଶତଃ ରୋଗଗ୍ରସ୍ତ—Suffering from the excess of 'Bāta' humour in the system.
(ବାତୁରା—ଅନ୍ୟରୂପ)
(ବାତ[ତୁ]ରୀ—ସ୍ତ୍ରୀ)
बाती बातुया

ବାତରାୟଣ—ସଂ. ବିଣ—୧ । ନିଷ୍ପ୍ରୟୋଜନ ପୁରୁଷ (ହ୍ଵ. ଶ)—1. An useless person. ୨ । କାଣ୍ଡ; ଶର (ହ୍ଵ. ଶ)—2. Arrow (Apte). ୩ । କର ପାତ୍ର; ଲୋଟା (ହ୍ଵ. ଶ)—3. A small water pot, ୪ । କୂଟ; ପର୍ବତାଗ୍ରର ଚୂଡ଼ା—4. Peak or summit (Apte). ୫ । ସିଧା ଗଛ (ହ୍ଵ. ଶ)—5 A straight tree. ୬ । ଉନ୍ମତ୍ତ ପୁରୁଷ (ହ୍ଵ. ଶ)—6. A mad or intoxicated person (Apte). ୭ । ସରଳଦ୍ରୁମ—7. The pine tree (Apte). ୮ । କରତ—8. Saw (Apte). ୯ । ଅଳସୁଆ ବ୍ୟକ୍ତି—9. An idler (Apte). ୧୦ । ବାଣର ଗତି—10. Bowshot; an arrow's flight (Apte).
Bātarāyaṇa
(ବାତରାୟଣୀ—ସ୍ତ୍ରୀ)

ବାତରୂପ—ସଂ. ବି—(ବାତ+ରୂପ)—୧ । ତୋଫାନ—1. Storm; violent wind (Apte). ୨ । ଇନ୍ଦ୍ରଧନୁ—2. The rainbow (Apte) ୩ । ଲାଞ୍ଚ; ଘୁସ—3. A bribe (Apte).
Bātarūpa

ବାତରୋଗୀ—ସଂ. ବିଣ. ପୁଂ—ବାତରୋଗଦ୍ୱାରା ଆକ୍ରାନ୍ତ (ବ୍ୟକ୍ତି)—Suffering from epilepsy or rheumatism.
Bātarogī
(ବାତରୋଗିଣୀ—ସ୍ତ୍ରୀ)

ବାତଳ—ସଂ. ବିଣ—(ବାତ+ଲା.ଧାତୁ=ଦାନ କରିବା+କର୍ତ୍ତୃ.ଅ; ଯାହା 'ବାୟୁକୁ ଦିଏ ଅର୍ଥାତ୍ ଯାହା ଖାଇଲେ ଶରୀରରେ ବାୟୁ ବୃଦ୍ଧି ହୁଏ)—୧ । ବାୟୁବର୍ଦ୍ଧକ—1. Increasing wind in the system. ୨ । ପବନମୟ; ବତାସିଆ—2. Windy; stromy (Apte). ୩ । ଯାହା ପେଟ ଫୁଲାଏ; ଝାଡ଼ା ଉତ୍ପାଦକ—3. Flatulent (Apte).
Bātaḷa
(ବାତବର୍ଦ୍ଧକ—ଅନ୍ୟରୂପ)
(ବାତଳୀ—ସ୍ତ୍ରୀ)
ସଂ. ବି—୧ । ଚଣକ; ଚଣା—1. Chick pea; gram. ୨ । ଯବ—2. Oats. ୩ । ପବନ; ବତାସ—3. Wind (Apte).

ବାତଳା ରୋଗ—ସଂ. ବି—ଯୋନିରେ ସୂଚୀବେଧନବତ୍ ପୀଡ଼ା ହେବା ରୋଗବିଶେଷ (ହ୍ଵ. ଶ)—A disease consisting of sharp pricking sensation in the female organ.
Bātaḷā roga

ବାତଶୀର୍ଷ—ସଂ. ବି—ତଳପେଟ—The lower belly (Apte).
Bātaśīrsha

ବାତଶୂଳ—ସଂ. ବି—(ମ. ପ. ଲୋ. କର୍ମଧା; ବାତଜନିତ ଶୂଳ)—ବାୟୁ ରୋଗଜନିତ ପେଟମରା ରୋଗ; ପେଟମରା ସହିତ ପେଟ ଫମ୍ପା—Colic due to wind in the system; colic with flatulence (Apte).
Bātaśūḷa

ବାତଶ୍ଳେଷ୍ମା—ସଂ. ବି ବାତ ଓ କଫଜନିତ ରୋଗ; ବାତ କଫ—Disease due to wind and catarrh.
Bātaśḷeshmā

ବାତ ସହ—ସଂ. ବିଣ. ( ବାତ+ସହ୍ ଧାତୁ+କର୍ତ୍ତୃ. ଅ )—୧ । ଯେ ବା ଯାହା ବାୟୁର ବେଗ ସମ୍ଭାଳ ପାରେ—1. Capable of withstanding the force of wind. ୨ । ବାତ ରୋଗୀ—2. Suffering from 'Bāta' disease; gouty.
Bāta saha

ବାତ(ତା)ସା—ଦେ. ବି. ( ବଙ୍ଗଳାରୁ ଅନୁକୃତ ) (ସଂ. ବାତ; ଏଥି ମଧ୍ୟରେ ପବନର ବହୁ ବୁଦ୍ବୁଦ ଥିବାରୁ)—ଫେଣୀ—A kind of cake made of bloated sugar.
Bāta(tā)sā
বাতাসা
बतासा

ବାତ ସାରଥି—ସଂ. ବି. ( ୬ଷ୍ଠୀ ତତ୍; ବାତ ସାରଥି )—ଅଗ୍ନି ( ହ୍ଵ. ଶ )—Fire.
Bāta sārathi
(ବାତସଖ—ଅନ୍ୟରୂପ)

ବାତାଜୀର୍ଣ୍ଣ—ସଂ. ବି. ( ମ. ପ. ଲୋ. କର୍ମଧା; ବାତଜନିତ ଅଜୀର୍ଣ୍ଣ )—ବାତ ଜନିତ ଅଜୀର୍ଣ୍ଣ ରୋଗ—Dyspepsia.
Bātājīrṇṇa
[ ଦ୍ର—ଏହା ଦୁରାରୋଗ୍ୟ । ]

ବାତାଟ—ସଂ. ବି. (ବାତ+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ.ଅ)—ବାତ ମୃଗ; ବାଉଟିଆ—A spotted deer.
Bātāṭa

ବାତାଣ୍ଡ—ସଂ. ବି—ଅଣ୍ଡକୋଷ ରୋଗ (ହ୍ଵ. ଶ)—Hernia.
Bātāṇḍa

ବାତାଦ(ମ,ମ୍ର)—ସଂ. ବି—ବାଦାମ ( ଦେଖ ) Bādāma ( See )
Bātāda(ma,mra)

ବାତାଧିକ୍ୟ—ସଂ. ବି. ( ୬ଷ୍ଠୀ ତତ୍; ବାତ+ଆଧିକ୍ୟ )—ଶରୀରରେ କୁପିତ ବାୟୁର ଆଧିକ୍ୟ ବା ପ୍ରକୋପ—Increase or morbidity of wind or rheum in the system.
Bātādhikya

ବାତା(ତି, ତେ)ନି—ଦେ. ବି. ( ସ. ବଚନ )—
Bātā(ti, te)ni ୧ । କଥା; ଉକ୍ତି—1. Word; speech.
୨ । କୌଣସି କଥାର ମୌଖିକ ଉତ୍ତର—2. Verbal reply.
୩ । ମୌଖିକ ସମ୍ବାଦ ବା ଖବର—
3. Verbal message or information.
୪ । ବାଗାଡ଼ମ୍ବର—4. Bombastic speech; bombast.
ଦେ. ବିଣ—ବାଗାଡ଼ମ୍ବର ପ୍ରିୟ—Bombastic; boastful.

ବାତାପି—ସ. ବି. (ବାତ=ବାୟୁ+ଅପ୍ ଧାତୁ=ପ୍ରାପ୍ତ ହେବା+ଇ)—
Bātāpi ବାୟୁ ରୂପଧାରୀ ରାକ୍ଷସବିଶେଷ—A demon said to have been devoured by sage Agastya.

[ ଦ୍ର—ଅତାପି ଓ ବାତାପି ନାମରେ ଦୁଇ ଭାଇ ଅସୁର ଥିଲେ ଓ ଏମାନେ ଋଷିମାନଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ । ବାତାପି ମେଣ୍ଢା ରୂପ ଧରୁଥିଲା ଓ ଅତାପି ଉକ୍ତ ମେଣ୍ଢାକୁ ମାରି ଉକ୍ତ ମାଂସ ଋଷିମାନଙ୍କୁ ଖାଇବାକୁ ଦେଉଥିଲା । ଋଷିମାନେ ଉକ୍ତ ମାଂସ ଖାଇ ସାରିଲା ପରେ ଅତାପି ଋଷିମାନଙ୍କ ଆଗକୁ ଆସି ଆପଣା ଭାଇର ନାମ ଧରି ଡାକ ପକାଉଥିଲା । ଡାକ ପକାଇବାରୁ ବାତାପି ଉକ୍ତ ମୁନିମାନଙ୍କ ପେଟକୁ ଚିରି ପେଟରୁ ବାହାରୁଥିଲା—ଏହିପରି ଏହି ଦୁଇ ଭାଇ ଅନେକ ମୁନିଙ୍କ ପ୍ରାଣ ନେଲେ । ଥରେ ଅଗସ୍ତ୍ୟ ଋଷି ଅତାପି ଘରେ ଯାଇ ପହଞ୍ଚିବାରୁ ଅତାପି ବାତାପିର ମାଂସକୁ ଅଗସ୍ତ୍ୟଙ୍କୁ ଖୁଆଇଲା । ଅଗସ୍ତ୍ୟ ସମୁଦ୍ର ପାଣି ପିଇ ତାକୁ ଜୀର୍ଣ୍ଣ କରି ଦେଲେ ଓ ଅତାପି ଭାଇକୁ ଯେତେ ଡାକିଲା, ବାତାପି ଆଉ ଅଗସ୍ତ୍ୟଙ୍କ ପେଟରୁ ବାହାରିଲା ନାହିଁ—ହି. ଶ ]

ସ. ନାମ. ବୀଜପୂର, ମାତୁଲଙ୍ଗ, ରୁଚକ, ଫଲପୂରକ, ଅମ୍ଳକେଶର, ବୀଜପୂର୍ଣ୍ଣ, ପୂର୍ଣ୍ଣବୀଜ, ସୁକେଶ, ବୀଜକ, ସୁପୂର, ବୀଜ ଫଲକ, ଜଂତୁଘ୍ନ, ପୂରକ, ରୋଚନ ଫଲ
ବାତାପି(ବି)
**चकोतरा, महानींबू, बिजौरा, गागड,**
ତା. ବୋମ୍ପାଲେନସ୍
ତେ. ଏଦାପାଣ୍ଡୁ
ଗୁ. ଓବାକୋତ୍ରୁ
ମ. ପାପନାଶୀ

ଦେ. ବି. ( ସ. ବୀଜପୂର )—
୧ । ମୋଟା ଚୋପା ଥିବା ଓ ନାଲି ରଙ୍ଗର ବୀଜଯୁକ୍ତ ଏକ ପ୍ରକାର ବଡ଼ ଲେମ୍ବୁ; ଟଭା—A kind of thick-rinded orange; Citrus Decumana.

[ ଦ୍ର—ପ୍ରଥମେ ଏହା ଯବଦ୍ୱୀପର ବଟେଭିଆ ନଗରରୁ ଏ ଦେଶକୁ ଆସିଥିବାରୁ ଏହାର ଏପରି ନାମକରଣ ହୋଇଅଛି ବୋଲି କାହାର କାହାର ଅନୁମାନ । ଏହା ଦୁଇ ପ୍ରକାର । ଏକ ପ୍ରକାରର ଫୁଲ ଓ ଫଳ ଭିତରର ରୁଅ ଧଳା ଏବଂ ଅନ୍ୟ ପ୍ରକାରର ଫୁଲ ଓ ଫଳର ରୁଅ ନାଲି । ଏ ଫଳ ଶରତ୍‌କାଳରେ ପକ୍ୱ ହୁଏ । ଏ ଗଛ ଲେମ୍ବୁ ଗଛଠାରୁ ବଡ଼ । ଏକ ପ୍ରକାରର ଶସ ମିଠା ଓ ଅନ୍ୟର ଶସ ଖଟା; ଏ ଫଳର ଚୋପା ଭାରି ବହଳ ।

ବୈଦ୍ୟକ ମତରେ ଏହା ଖଟା, କଣ୍ଠଶୋଧକ, ପାଚକ, ରୁଚିକାରକ, ସ୍ୱାଦିଷ୍ଟ ଓ ତ୍ରିଦୋଷ, ତୃଷା, କାସ, ହିକ୍କା ଦୂର କରେ । ]

୨ । ବାତାପି ଛୁରି; ଛ ଇଞ୍ଚ ଲମ୍ବ ଓ ଏକ ଇଞ୍ଚ ଓସାରର ପତଳା ଫଳାଯୁକ୍ତ ଛୁରୀ—2. Table knife.

ବାତାପି ଛୁରି—ଦେ. ବି—ବାତାପି ୨ ( ଦେଖ )
Bātāpi chhuri    Bātāpi 2 ( See )

ବାତାପ୍ୟ—ସ. ବି—ଜଳ (ହି. ଶ)—
Bātāpya    Water.

ବାତାମୋଦ—ସ. ବି. (ବହୁବ୍ରୀହି; ବାତ+ଆମୋଦ)—
Bātāmoda    କସ୍ତୁରୀ (ହି. ଶ)—Musk.

ବାତାୟନ—ସ. ବି. (୬ଷ୍ଠୀ ତତ୍; ବାତ+ଅୟନ=ମାର୍ଗ)—୧ । ଗବାକ୍ଷ;
Bātāyana    ଝରକା—Window; shutter; loophole.
୨ । (ବହୁବ୍ରୀହି; ବାତ ପରି ଅୟନ ଅର୍ଥାତ୍ ଗତି ଯାହାର) ଘୋଡ଼ା; ଅଶ୍ୱ—Horse.

ବାତାୟୁ—ସ. ବି. (ବାତ+ଅୟ୍ ଧାତୁ=ଯିବା+କର୍ତ୍ତୃ. ଉ)—ମୃଗ—
Bātāyu    Deer.

ବାତାରି—ସ. ବି. (୬ଷ୍ଠୀ ତତ୍; ବାତ+ଅରି)—୧ । ବାତଘ୍ନ ଔଷଧ—
Bātāri 1. Medicine or antidote against wind disease ୨ । କଦଳୀ ଗଛ—2 Plantain tree. ୩ । ଏରଣ୍ଡ ବା ଗବଗଛ—3. Castor seed plant. ୪ । ବାଇବିଡ଼ଙ୍ଗ—4. Embelia. ୫ । ଶତମୂଳୀ; ଛତୁଆ—5. Asparagns Racemosus. ୬ । ଶେଫାଳିକା; ଗଙ୍ଗଶିଉଳି—6. The night flower; Nictanthes Arbor Tristes; night jasmine. ୭ । ଯବାନୀ; ଜୁଆଣି—7. Ajwan; Liquisticum Ajwan. ୮ । ଭାର୍ଗୀ; ବ୍ରାହ୍ମଣଯଷ୍ଟିଆ—8. Celodendron Syphonanthus. ୯ । ସ୍ନୁହୀ; ସିଜୁ—9. Euphorbia Nivulia; Euphorbia Hirta. ୧୦ । ଶୂରଣ; ଓଲୁଅ—1. An esculant bulbous root. ୧୧ । ଭଲ୍ଲାତକ; ଭଲିଆ—11. The marking nut (plant and fruit). ୧୨ । ନିର୍ଗୁଣ୍ଡୀ (ହି.ଶ.) (ଦେଖ); ବେଗୁନିଆ—12. Nirgundi (See) ୧୩ । ଜତୁକା; ବାଦୁଡ଼ି ( ଶବ୍ଦ କଳ୍ପଦ୍ରୁମ )—13. Bat (bird)—୧୪ । ଚେମଣି ଚଢ଼େଇ—14. House-bat.

ବାତାଳୀ—ସ. ବି. (ବାତ+ଆଳୀ=ଶ୍ରେଣୀ)—୧ । ବାତ୍ୟା—
Bātāli    1. Tempest.
୨ । ବାତାବର୍ତ୍ତ; ଘୂର୍ଣ୍ଣିବାୟୁ—2. Whirlwind.

ବାତାଶ୍ୱ—ସ. ବି. (ମ. ପ. ଲୋ. କର୍ମଧା; ବାତ ବା ବାୟୁର ଗତିବିଶିଷ୍ଟ
Bātāswa    ଅଶ୍ୱ)—ଦ୍ରୁତଗାମୀ ଅଶ୍ୱ—A fleet horse; a steed.

ବାତାସନ—ସ. ବି. (ବହୁବ୍ରୀହି, ବାତ+ଅସନ)—ମେଘ—
Bātāsana    Cloud.
ଦେ. ବି.—(ସ. ବାତଯାନ) ମୃଗ—Deer.
ବ୍ୟାଧ ଜଗି ଯେମନ୍ତ ଜଳ ଘାଟ
ବାତାସନ ଆଗମନେ ଲକ୍ଷ୍ୟ । ଭଞ୍ଜ, ବୈଦେହୀଶବିଳାସ ।

ବାତାହତ—ସ. ବିଣ. (୩ୟା ତତ୍; ବାତ+ଆହତ)—ପବନ ବା ବାୟୁ
Bātāhata    ଦ୍ୱାରା ଆଘାତପ୍ରାପ୍ତ—Struck down or shaken by the wind

ବାତି— ସଂ. ବି. (ବା ଧାତୁ=ବହିବା+କର୍ତ୍ତୃ. ଅତି)—୧ । ବାୟୁ—
Bāti 1. Wind. ୨ । ସୂର୍ଯ୍ୟ—2. The sun. ୩ । ଚନ୍ଦ୍ର-
The moon.

ପ୍ରାଦେ. (ମେଦନୀପୁର ଓ ଅଳ) ବି.—(ଭୁଲ. ବଂ. ବାତୀ)—
ବଳତା—Wick.

[ଦ୍ର—ଅଳରେ ଧୋବାମାନେ ଚଗ୍ଳୁରାରେ ବଳା ୬/୭ ଇଞ୍ଚ ଲମ୍ବ ଓ ୧ ଇଞ୍ଚ ଚଉଡ଼ାର ବଳତାକୁ ଲୁହାର ଡେଙ୍ଗା ଥାକୁଡ ବନିଷ୍ଟ ବାଡ଼ରେ ଯୋଞ୍ଜି ଯାତ୍ରାବେଳେ ଜାଳନ୍ତି; ତାହାକୁ ବାତି ବୋଲାଯାଏ ।]

ବାତିକ—ସଂ. ବିଣ. (ବାତ+କୋପନାର୍ଥେ ବା ସମ୍ବନ୍ଧାର୍ଥେ. ଇକ)—
Bātika ୧ । ବାତ ସମ୍ବନ୍ଧୀୟ—1. Relating to the vitiated state of wind in the system.
୨ । ବତାସିଆ—2. Windy; stormy; (Apte)
୩ । ବାତରୋଗଗ୍ରସ୍ତ—3. Gouty; rheumatic,
(Apte) ୪ । ବାୟା; ବାଉଳ—4. Mad (Apte).
বাতিক ଦେ. ବି.—(ବଙ୍ଗଳାରୁ ଅନୁକୃତ)—୧ । ବାତଜନିତ
वातिक ରୋଗ—1. Disease due to wind; nervous-desease. ୨ । ବାଉଳତା—2. Madness. ୩ । କ୍ଷଣିକ ପ୍ରବଳ ଇଚ୍ଛା; ଝୁଙ୍କ—3. Whim; caprice, a passing humour. ୪ । ବାଇ; କୌଣସି ବିଷୟ ପ୍ରତି କୌଣସି ବ୍ୟକ୍ତିର ପ୍ରକୃତି ବା ଅଭ୍ୟାସଗତ ପ୍ରବଳ ଇଚ୍ଛା—Hobby; mania

ବାତି(ତିଂ)ଗଣ(ମ)—ସଂ. ବି.—ବାଇଗଣ—
Bāti(tim)gaṇa(ma) The egg plant (Apte)

ବାତିଲ୍(ଲି)—ବୈଦେ. ବିଣ. (କଚରଆ) (ଅ. ବାଖାଲ୍)—୧ । ଗ୍ରହଣର
Bātil(li) ଅଯୋଗ୍ୟ; ଅଗ୍ରାହ୍ୟ—1. Unfit to be accepted;
বাতীল बातील unacceptable.
୨ । ଅସାର—2. Unsubstantial. ୩ । ମିଥ୍ୟା—
3. False. ୪ । ଅସିଦ୍ଧ; ଅକର୍ମଣ୍ୟ ଓ ନିଷ୍ଫଳ—4. Null and void; useless; fruitless ୫ ।
ନାମଞ୍ଜୁର କରାଯିବା—5. Rejected.

ବାତିଲ୍ କରିବା—ଦେ. କ୍ରି. (କଚରଆ)—ଅଗ୍ରାହ୍ୟ କରିବା; ନାମଞ୍ଜୁର
Bātil kariba କରିବା—1. To reject.
বাতিল করা ୨ । ରଦ୍ କରିବା—2. To set aside; to
बातील करना annual; to nullify.
(ଯଥା—ଉପରସ୍ଥ ହାକମ ତଳ ହାକମଙ୍କ ହୁକୁମକୁ ବାତିଲ୍ କରି ଦେଲେ ।)

ବାତୁଆ—ଦେ. ବିଣ. ପୁଂ.—୧ । ବାତରୋଗଗ୍ରସ୍ତ—
Bātuā ବେଟୋ, ବେତୋ 1. Suffering from rheuma-
बातड (ବାତେ[ତୋ]ଇ—ସ୍ତ୍ରୀ) tism or gout.
୨ । ଯାହାକୁ ବାତ ମାରେ—2. Epileptic.

ବାତୁ(ତୂ)ଳ—ସଂ. ବି.—( ବାତ+ଉ[ଊ]ଳ )—୧ । ବାତ୍ୟା—
Bātu(tū)la 1. Tempest. ୨ । (ପୁଂ) ପାଗଳ ଲୋକ—
(ବାଉଳୀ—ସ୍ତ୍ରୀ) 2. Mad man; a lunatic.

ସଂ. ବିଣ. ପୁଂ—୧ । ଉନ୍ମତ୍ତ; ବାୟା—1. Mad, crazy; insane; crack headed. ୨ । ବାତରୋଗଗ୍ରସ୍ତ—
(ବାଉଳା—ସ୍ତ୍ରୀ) 2. Suffering from wind desease.

ବାତୁଳା—ଦେ. ବିଣ. ପୁଂ (ସଂ. ବାତୁଳ) ପାଗଳ; ବାୟା—
Bātulā Mad; lunatic.
পাগল बावला ( ବାଉଳୀ—ସ୍ତ୍ରୀ )

ବାତୁଳି—ସଂ. ବି (ବାତ+ଉଳ)—ବାଦୁଡ଼ି—
Bātuli Bat.

ବାତ୍ୟା—ସଂ. ବି ( ବାତ+ସମୂହାର୍ଥରେ. ଯ+ଆ; ଭୂଳକୀ ଇଦ୍ର; ବନ+ପ୍ରାଚୁର୍ଯ୍ୟାର୍ଥେ ଯ+ଆ=ବନ୍ୟା)—୧ । ପ୍ରବଳ
Bātyā ବାୟୁ; ବତାସ; ଝଡ଼—1. Tempest; gale; storm.
୨ । ଘୂର୍ଣ୍ଣି ବାୟୁ—2. Whirlwind.

ବାତ୍ୟା ବିଚଳିତ—ସଂ. ବିଣ ( ୩ୟା ତତ୍; ବାତ୍ୟା+ବିଚଳିତ )—
Bātyā bichaḷita ପ୍ରବଳ ବାୟୁଦ୍ୱାରା ସ୍ଥାନଚ୍ୟୁତ—
Displaced by the force of wind or tempest.
ବାତ୍ୟାବିଘୂର୍ଣ୍ଣିତ } ଅନୁରୂପ
ବାତ୍ୟାବିତାଡ଼ିତ
ବାତ୍ୟାହତ

ବାତ୍ସଲ୍ୟ—ସଂ. ବି—ବାତ୍‌ସଲ୍ୟ (ଦେଖ)
Bātsalya Bāt-salya (See).

ବାତ୍ସଲ୍ୟ ଭକ୍ତି—ଦେ. ବି—କୃଷ୍ଣଙ୍କ ପ୍ରତି ନନ୍ଦ ଓ ଯଶୋଦାଙ୍କର ପୁତ୍ରସ୍ନେହ-
Bātsalya bhakti ମିଶ୍ରିତ ଭକ୍ତି—The affection verging on devotion shown by Nanda and Jasodā to Kṛushṇa; affectionate regard.

ବାତ୍ସଲ୍ୟ ରସ—ସଂ. ବି—ଅଳଙ୍କାରଶାସ୍ତ୍ରୋକ୍ତ ନବରସାତିରିକ୍ତ ରସବିଶେଷ
Bātsalya rasa A kind of sentiment of affection in poetry and romance.

[ଦ୍ର—ପୁତ୍ର କନ୍ୟା ଓ ଶିଷ୍ୟାଦିଙ୍କ ପ୍ରତି ପିତା ମାତା ଓ ଗୁରୁଜନ ପ୍ରଭୃତିଙ୍କର ସ୍ୱାଭାବିକ ସ୍ନେହପ୍ରକାଶତା ବାତ୍ସଲ୍ୟରସ ନାମରେ ଅଭିହିତ ହୁଏ । ବାତ୍ସଲ୍ୟରସର ଉଦାହରଣ—
ଯଶୋଦାଙ୍କର କୃଷ୍ଣଙ୍କ ପ୍ରତି—
ଭରୁଥାଇ ଅଧାରକୁ, ରଖିଥାଇ କୋଳୁ
କନକ କନକା ସୁଖ କାହିଁ ପାଇଁ ସାଳୁ,
କଳାମାଣିକ ରେ—ଅଭିମନ୍ୟୁ, ବଡଗାଧରେ ଲୋମଣି । ]

ବାଥୁଡ଼ୀ—ପ୍ରାଦେ ( ମୟୂରଭଞ୍ଜ ) ବି—ମୟୂରଭଞ୍ଜ ଓ କେନ୍ଦୁଝରବାସୀ
Bāthuṛī ଆଦିମଜାତିବିଶେଷ—Name of a low caste in Mayurbhanj & Keonjhar States.

[ଦ୍ର—ସମ୍ଭବତଃ ଏମାନେ ଅନାର୍ଯ୍ୟ । ଏମାନେ ଗଡ଼ଜାତର ଆଦିମନିବାସୀ ଭୂୟାଁ ଜାତିର ସମକକ୍ଷ ଜାତି । କେତେକ ବଙ୍ଗୀୟ ପ୍ରାଚ୍ୟତତ୍ତ୍ୱଜ୍ଞ ପଣ୍ଡିତ ଏମାନଙ୍କୁ ବାଉରି ବୋଲି ଯାହା କହିଥାନ୍ତି ତାହା ଠିକ୍ ନୁହେ । ସ୍ଥାନୀୟ ହିନ୍ଦୁମାନେ ଏମାନଙ୍କ ସ୍ପୃଷ୍ଟ ଜଳ ବ୍ୟବହାର କରନ୍ତି । ଏମାନେ ଡୋଲୀ ବହନ୍ତି, ଭଙ୍ଗ ବୁହାନ୍ତି । ]
ବାଥୁଡ଼ି ବାହକ ହେଲା ପରେ ଭଲ
ହୋଇ କାଡ ମାତ୍ର ଦେଖି ନଦୀ ଶୋଷ
ଘଡ଼ଦେଉଥାଏ ସ୍ୱପ୍ନରେ ସର୍ବାଙ୍ଗ,
ଅଙ୍ଗେ ଭୋକ ଗର ହୋଇ ଅନନ୍ତ—ବେଣବ. ବୈତରଣୀ ।

**ବାଦ୍**—ବୈଦେ, ଅ (ଅ)—୧ । ଉତ୍ତାରୁ; ପରେ; ଅନନ୍ତର— 1. After.
Bād
बादे **बाद** ୨ । ପରବର୍ତ୍ତୀ ସମୟରେ—2. Afterwards.
୩ । ସୀମାରୁ ବାହାରେ—3. Beyond the limit.
୪ । ବାକି; ଅବଶିଷ୍ଟ—4. Remaining.
୫ । ବହିର୍ଭୂତ—5. Excluded from; outside the scope of. ୬ । ବିୟୋଗ—Deduction.

**ବାଦ୍ ଦେବା**—ଦେ. କ୍ରି ( ଅ. ବାଦ୍ )—୧ । ଫେଡ଼ିବା—1. To deduct; to subtract.
Bād debā
[ ବାଦ୍ ପକା(କେ)ଇବା; ବାଦ୍‌କରିବା—ଅନ୍ୟରୂପ ] ୨ । ନ ଗଣିବା—2. Not to count.
बाद् देओया **बाद्‌देना**

**ବାଦ୍‌ନୁମା**—ବୈଦେ. ବି—ପବନ ବହୁଥିବା ଦିଗ ଜଣାଇବା ପାଇଁ ବ୍ୟବହୃତ ଘୂର୍ଣ୍ଣୀ ଯନ୍ତ୍ର—Windgauge; a contrivance for indicating the direction of the wind.
Bād-numā
बाद् नुमा **बाद्‌नुमा**

**ବାଦ୍ ପଡ଼ିବା**—ଦେ. କ୍ରି. ( ଅ. ବାଦ୍ )—୧ । କୌଣସି ବିଷୟରୁ ବହିର୍ଭୂତ ହେବା—1. To be excluded from. ୨ । ଫେଡ଼ାଯିବା—2. To be subtracted from.
Bād pa<u>r</u>dibā
(ବାଦ୍‌ଯିବା—ଅନ୍ୟରୂପ)
बादपड़ा; बादयाओया **बाद्‌पडना**

**ବାଦ୍ ବାକି**—ବୈଦେ. ବି. ( ଅ. ବାଦ୍+ଫା. ବାକି )—୧ । ବିୟୋଗ ଫଳ—1. Remainder after subtraction. ୨ । ଅବଶିଷ୍ଟାଂଶ—2. Residue.
Bād bāki
बादबाकी **बाद्‌बाकी**

**ବାଦ୍‌ଲି**—ପ୍ରାଦେ. ( ସମ୍ବଲପୁର ) ବି. ( ସ. ବାତୁଳ )—୧ । ବାଦୁଡ଼ି—1. Bat. ୨ । ଚେମେଣ୍ଣୀ—2. Housebat.
Bād-li

**ବାଦ୍‌ସା**—ବୈଦେ. ବି. ( ଫା. ବାଦ୍‌ଶାହ୍; ତୁଳ. ସ. ପଣ୍ଡଶାସକ )—ପାଦ୍‌ଶାହା; ସମ୍ରାଟ; ରାଜା—Emperor; king; sovereign.
Bād-sā
बादशा; बादशाह **बाद्‌शाह**
(ବାଦ୍‌ସାହା, ବାଦସା—ଅନ୍ୟରୂପ) ବସେଲ ବାଦସା ନୃପକୁଞ୍ଜର ।
କବିସୂର୍ଯ୍ୟ. କବିତାକଲ୍ଲୋଳ ।

**ବାଦ୍‌ସାଇ(ହି)**—ବୈଦେ. ବିଣ. ( ଫା )—୧ । ବାଦ୍‌ସା ସମ୍ବନ୍ଧୀୟ—1. Regal; kingly; imperial. ୨ । ବାଦ୍‌ସାଙ୍କ ଯୋଗ୍ୟ—2. Becoming or befitting an emperor. ୩ । ରାଜଭୋଗ୍ୟ—3. Fit for an emperor.
Bād-sāi(hi)
बादसाही **बाद्‌शाही**
ବୈଦେ. ବି. ( ଫା )—ସମ୍ରାଟଙ୍କ ପଦ—Kingly position.

**ବାଦ୍‌ସା ଜାଦା**—ବୈଦେ. ବି. ପୁଂ. ( ଫା. ବାଦ୍‌ଶାହ୍‌ଜାଦା )—ସମ୍ରାଟ ପୁତ୍ର—Prince.
Bād-sā jādā बादशाहजादा
**बाद्‌शाहजादा** (ବାଦ୍‌ସାହାଜାଦା – ଅନ୍ୟରୂପ)
(ବାଦ୍‌ସାଜାଦୀ, ବାଦ୍‌ସାହାଜାଦୀ—ବିପରୀତଲିଙ୍ଗ)

**ବାଦ୍‌ସାଦ୍**—ବୈଦେ. ବି. (ସହଚର; ଫା. ବାଦ୍+ନିରର୍ଥକ ଦ୍ୱିତୀୟ ଶବ୍ଦ)—୧ । ବିୟୋଗ—1. Deduction; subtraction. ୨ । ବହୁଲୋକ ବା ବସ୍ତୁ ମଧ୍ୟରୁ ପୃଥକ୍‌କରଣ—2. Separation from many. ୩ । ଅବଶେଷ—3. Remainder; remnant.
Bād-sād
बादसाह
**बाद्‌साह**
ବୈଦେ. ବିଣ—୧ । ବିଯୁକ୍ତ; ଫେଡ଼ା ଯାଇଥିବା—1. Deducted; subtracted. ୨ । ପୃଥକ୍‌କୃତ—2. Separated from many. ୩ । ଅବଶିଷ୍ଟ—3. Remaining. ୪ । ବଳି ପଡ଼ିଥିବା—4. Left over. ୫ । ଯାହାକୁ ଛାଡ଼ି ଦିଆଯାଇ ଥାଏ—5. Left out; omitted.

**ବାଦ୍‌ସା ଭୋଗ**—ଦେ. ବି. ( ଫା. ବାଦ୍‌ଶାହ୍+ସଂ. ଭୋଗ୍ୟ; ଅର୍ଥ= ରାଜଭୋଗ୍ୟ )—୧ । ଏକପ୍ରକାର ଉତ୍କୃଷ୍ଟ ଆମ୍ବ—1. A species of excellent mango. ୨ । ଏକପ୍ରକାର ସରୁ ଧାନ—2 A species of fine rice. ୩ । ଏକପ୍ରକାର ଉତ୍କୃଷ୍ଟ ମିଷ୍ଟାନ୍ନ—3. A kind of excellent sweetmeat. ୪ । ରାଜଭୋଗ—4. Royal enjoyment.
Bād-sā bhoga
(ବାଦ୍‌ସାହା ଭୋଗ—ଅନ୍ୟରୂପ)
बादसाह भोग
**बाद्‌शाह भोग**
ଦେ. ବିଣ—ସମ୍ରାଟ୍ ଭୋଗ୍ୟ—Fit for being enjoyed by an emperor.

**ବାଦ**—ସଂ. ବି. ( ବଦ୍ ଧାତୁ=କହିବା+ଭାବ. ଅ )—୧ । ଉକ୍ତି; କଥନ; କହିବା—1. Speech; talk. ୨ । ବିତର୍କ; ଯୁକ୍ତିତର୍କ—2. Argument; discussion. ୩ । ଯୁକ୍ତାଯୁକ୍ତ ବିଚାର—3. Reasoning.
Bāda
[ ଦ୍ର—ନ୍ୟାୟଶାସ୍ତ୍ରରେ କଥିତ ୧୬ ପଦାର୍ଥ ମଧ୍ୟରୁ ବାଦ ଦଶମ ବସ୍ତୁ । ଯେବେ ଜଣେ ବ୍ୟକ୍ତି କୌଣସି ବିଷୟ ସମ୍ବନ୍ଧରେ ଗୋଟିଏ ଉକ୍ତି ବା ପ୍ରତିଜ୍ଞା ଉତ୍ଥାପିତ କରେ ଓ ଆଉ ଜଣେ ବ୍ୟକ୍ତି ଉକ୍ତ ଉକ୍ତିର ବିରୁଦ୍ଧ ପ୍ରତିଜ୍ଞା କହେ ଓ ଦୁହେଁ ଦୁହିଁଙ୍କ ଉକ୍ତିର ସମର୍ଥକ ତର୍କ ବା ଯୁକ୍ତି କଥାବାର୍ତ୍ତାରେ ଉଲ୍ଲେଖ କରନ୍ତି, ଉକ୍ତ କଥୋପକଥନ ବା ଯୁକ୍ତି ତର୍କକୁ ବାଦ ବୋଲାଯାଏ । ବାଦରେ ପ୍ରତ୍ୟେକ ପକ୍ଷ ଆପଣା ଉକ୍ତିର ପୋଷକ ଓ ଅପରପକ୍ଷର ଉକ୍ତିର ଖଣ୍ଡନକାରକ ଯୁକ୍ତି ଓ ପ୍ରମାଣ ଉପସ୍ଥାପିତ କରେ । ଯେବେ ଉକ୍ତ ଯୁକ୍ତି ତର୍କ 'ନିଗ୍ରହସ୍ଥାନରେ' ପହଞ୍ଚେ ତେବେ ଯାହାର ଉକ୍ତି ଖଣ୍ଡିତ ହୁଏ ସେ ହାରିଗଲା ବୋଲି ବୋଲାଯାଏ — ହି. ଶ. ]
୪ । ପ୍ରବାଦ—4. Proverb. ୫ । (କର୍ମ. ଯ) ବାଦ୍ୟ—5. Music. ୬ । କୌଣସି ବିଶିଷ୍ଟ ବିଷୟରେ ଯୁକ୍ତି ଦ୍ୱାରା ନିରୂପିତ ବା ପ୍ରମାଣିତ ପ୍ରତିଜ୍ଞା—6. Theory; doctrine; a demonstrated conclusion.
( ଯଥା—ନାସ୍ତିକ ବାଦ; ବିବର୍ତ୍ତନ ବାଦ )
୭ । ବର୍ଣ୍ଣନା—7. Narration; account (Apte).
୮ । କୌଣସି ନିର୍ଦ୍ଦିଷ୍ଟ ବିଷୟରେ ବାଦାନୁବାଦ—8. Controversy (Apte). ୯ । ଉତ୍ତର; ଜବାବ—

9. Reply (Apte). ୧୦ । ବ୍ୟାଖ୍ୟା—10. Exposition; explanation (Apte). ୧୧ । ଶବ୍ଦ; ଧ୍ୱନି—11. Sound; sounding (Apte).
୧୨ । ଜନଶ୍ରୁତି—12. Report; rumour.

ଦେ. ବି—୧ । ବିବାଦ—1. Dispute; dissension.
୨ । କଳି; ଝଗଡ଼ା—2. Quarrel.
ଗୋପ ନନ୍ଦଙ୍କେ ବାଦ କରନ୍ତେ ଏକ ଥରକେ ବଳ ।
ଭକ୍ତ. ମଥୁରାମଙ୍ଗଳ ।
୩ । ଅହନ୍ତା; ଆକ୍ରୋଶ—3. Malice; grudge.
୪ । ପ୍ରତିଦ୍ୱନ୍ଦ୍ୱିତା—4. Emulation; rivalry.
୫ । ଶତ୍ରୁତା—5. Enmity.
୬ । ଶତ୍ରୁ—6. Enemy.
ବାଦ ସରୁଛ ଲଙ୍କାକୁ ଉପାୟ ନଗରୀରୁ ଅପରୁ ଯଥା ବାସ ।
ଉକ୍ତ. ବୈଦେହୀଶବିଳାସ
୭ । ପଣ; ଜିଦ୍—7. Wager
(ଯଥା—ସେ ମୋ ସଙ୍ଗରେ ଅମୁକ କଥାରେ ବାଦ ପକାଉଛି ।)

ବାଦ ଅହନ୍ତା—ଦେ. ବି. (ଦ୍ୱନ୍ଦ୍ୱ)—ବିବାଦ ଓ ଆକ୍ରୋଶ—
Bāda ahantā **बाद अहन्तेत्र** Grudge and dispute.

ବାଦ ଉଠା(ଠେ)ଇବା—ଦେ. କ୍ରି.—କୌଣସି ବିଷୟରେ ବିବାଦ ବା
Bāda uṭhā(ṭhe)ibā କଳିର ସୂତ୍ରପାତ କରିବା—To raise
বিবাদ লাগান up a quarrel; to set up a dispute.
**बाद् उठाना**

ବାଦକ—ସଂ. ବିଣ. ପୁଂ. (ବଦ୍ ଧାତୁ ଣିଚ୍. ବାଦ ଧାତୁ+କର୍ତ୍ତୃ. ଅକ)—
Bādaka ଯେ ବଜାଏ; ବାଦ୍ୟକର—Musician.
(ବାଦକା—ସ୍ତ୍ରୀ) ସଂ. ବି.—ବକ୍ତା—Speaker.

ବାଦ କରିବା—ଦେ. କ୍ରି.—୧ । କଳି କରିବା—
Bāda karibā 1. To quarrel.
(ବାଦ ଲଗା[ଗେ]ଇବା—ଅନ୍ୟରୂପ) ୨ । ତର୍କ କରିବା; ଯୁକ୍ତି
**बाद् करना** କରିବା—2. To argue. ୩ । ଆକ୍ରୋଶ କରିବା-
বিবাদকরা 3. To envy. ୪ । ପ୍ରତିଦ୍ୱନ୍ଦ୍ୱିତା କରିବା—
4. To emulate.

ବାଦଚଞ୍ଚୁ—ସଂ. ବିଣ. (ବାଦ+ଚଞ୍ଚୁ)—କୌଣସି ବିଷୟର ସରସ ଉତ୍ତର
Bāda chañchu ଦେବାରେ ପଟୁ—Clever in reparties or witty replies (Apte).

ବାଦନ(ନା)—ସଂ. ବି. (ବଦ୍ ଧାତୁ ଣିଚ୍+ଭାବ. ଅନ+ଆ)—୧ ।
Bādana(nā) ବାଦ୍ୟ ବଜାଇବା—1. Playing music.
୨ । (+କର୍ମ ଅନ) ବାଦ୍ୟଯନ୍ତ୍ର—2. Musical instrument.

ବାଦନ ଯନ୍ତ୍ର—ସଂ. ବି.—ବାଦ୍ୟଯନ୍ତ୍ର; ବାଜା—
Bādana jantra Musical instrument.
(ବାଦନକ—ଅନ୍ୟରୂପ)

ବାଦନା—ଗ୍ରାଦେ. (ଗଞ୍ଜାମ)—ବି.—(କଚେରୀ)—କଚେରୀରେ ପକ୍ଷ-
Bādanā ମାନଙ୍କ ଜବାବସୁଆଲ—Argument in court.

ବାଦ ଦଣ୍ଡ—ସଂ. ବି.—ସାରଙ୍ଗୀ, ବେହେଲା ଆଦି ବଜାଇବାର ଛଡ଼
Bāda daṇḍa (ହି. ଶ.)—The bow of a stringed instrument.

ବାଦ ପକା(କେ)ଇବା—ଦେ. କ୍ରି.—୧ । ପ୍ରତିଦ୍ୱନ୍ଦ୍ୱିତା କରିବା—
Bāda pakā(ke)ibā 1. To emulate; to rival.
**बाजी रखना** ୨ । ଜିଦ୍ ମାରିବା; ପଣ କରିବା—
বাজীরাখা 2. To lay a wager.

ବାଦ ବିବାଦ—ସଂ. ବି. (ଦ୍ୱନ୍ଦ୍ୱ)—୧ । ବାଦାନୁବାଦ; ଉକ୍ତି ପ୍ରତ୍ୟୁକ୍ତି-
Bāda bibāda 1. Wrangling; discussion.
ବାଦଯୁଦ୍ଧ | ଅନ୍ୟରୂପ
ବାଦ ପ୍ରତିବାଦ |
ବାଦବିଗ୍ରହ |
ବାଦବିତଣ୍ଡା |
୨ । କଳିକଜିଆ; ଝଗଡ଼ା—2. Quarrelling.
୩ । ବାଗ୍‌ଯୁଦ୍ଧ—3. Wordy fighting; controversy (Apte)

ବାଦବୁଦିଆ—ଦେ ବିଣ—୧। (ଦୁଇଜଣ) ପରସ୍ପର ମଧ୍ୟରେ ବିବାଦ କରୁ-
Bādabudiā ଥିବା—1. Antagonistic; disputing
**बाद विवादी** with each other. ୨ । ପ୍ରତିଦ୍ୱନ୍ଦ୍ୱୀ—
2. Rival; emulating one another; competing with each other.
ଦେ. ବି.—ପ୍ରତିଦ୍ୱନ୍ଦ୍ୱିତା—Rivalry; competition; antagonism.

ବାଦ ମେଣ୍ଟା(ଣ୍ଟେ)ଇବା—ଦେ. କ୍ରି.—ବିବାଦ ମୀମାଂସା କରିବା—
Bāda meṇṭā(ṇṭe)ibā To settle a dispute.
বিবাদ মেটানা **बाद् मिटाना**
[ବାଦ ଭୁଟା(ଟେ)ଇବା; ବାଦ ମିଟା(ଟେ)ଇବା—ଅନ୍ୟରୂପ]

ବାଦମି(ମେ)ଟି(ଣ୍ଟି)ବା—ଦେ. ବି.—ବିବାଦର ମୀମାଂସା—
Bāda mi(me)ṭi(ṇṭi)bā The settlement of a
বিবাদ মিটা **बाद् मिटना** dispute.
(ବାଦ ଛୁଟିବା, ବାଦ ମେଣ୍ଟିଯିବା, ବାଦ ଭୁଟିଯିବା—ଅନ୍ୟରୂପ)

ବାଦର—ସଂ. ବି. (ବଦର+ଅ)—୧ । ବରକୋଳି—
Bādara 1. Jujube plum.
୨ । ବରକୋଳି ଗଛ—2. The jujube plant.
୩ । କପା ଗଛ—3. Cotton plant. ୪ । କପାସୂତା-
4. Cotton thread. ୫ । ସୂତା ଲୁଗା (ହି. ଶ.)—
5. Cotton-cloth; cotton garment (Apte).
୬ । ବଦରିକାଶ୍ରମ (ଦେଶ)—6. Badarikāśrama.
୭ । ଦକ୍ଷିଣାବର୍ତ୍ତ ଶଙ୍ଖ—7. A conch shell winding from left to right. (Apte)
୮ । ରେଶମ—8. Silk (Apte). ୯ । ଜଳ—
9. Water (Apte).
ସଂ. ବିଣ.—କାର୍ପାସ ନିର୍ମିତ—Made of cotton.

ବାଦରା—ସଂ. ବି. (ବାଦର+ସ୍ତ୍ରୀ. ଆ)—୧ । କପାଗଛ—
Bādarā 1. Cotton plant.
୨ । କପା (ହି. ଶ.)—2. Cotton.

ବାଦରାୟଣ—ସଂ. ବି. (ବହୁବ୍ରୀହି, ବାଦର=ବଦରିକା+ଅୟନ=ଆଶ୍ରୟ
Bādarāyaṇa ଜନ୍ମ ବାଦର=ବୃକ୍ଷବିଶେଷ+ଅପତ୍ୟାର୍ଥେ.
ଅୟନ)—ବ୍ୟାସଦେବ; ବେଦବ୍ୟାସ—The sage Byāsa.

ବାଦରାୟଣି—ସଂ. ବି. (ବାଦରାୟଣ+ଅପତ୍ୟାର୍ଥରେ. ଇ)—
Bādarāyaṇi ୧। ବ୍ୟାସଦେବଙ୍କ ପୁତ୍ର ଶୁକମୁନି—1. The sage Śuka. ୨। (ବାଦରାୟଣ+ସ୍ୱାର୍ଥେ. ଇ)—ବ୍ୟାସଦେବ। (ପ୍ରକୃତିବାଦ)—2. The sage Byāsa.

ବାଦରିକ—ସଂ. ବିଣ. (ବଦର=ବରକୋଳି+ଇକ)—ବରକୋଳି
Bādarika ସମ୍ବନ୍ଧୀୟ—Relating to the jujube berry.
(ବାଦରିକା—ସ୍ତ୍ରୀ) ସ. ବି. ପୁଂ—୧। ବରକୋଳି ବିକେତା—1. Sellor of jujube berries.
୨। ବରକୋଳି ସଂଗ୍ରହକାରୀ ବ୍ୟକ୍ତି—2. One who gathers jujube berries (Apte).

ବାଦଲ୍—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ବାରିଦ; ବାର୍ଦ୍ଦଲ=ଦୁର୍ଦ୍ଦିନ;
Bādal ତୁଳ. ହି. ବାଦଲ୍ )—ମେଘ—Cloud.
**बादला** ଦେ. ବି—ଲୁଗା, ଟୋପି ଆଦିରେ କାରୁକାର୍ଯ୍ୟ କରିବା
बादला ପାଇଁ ବ୍ୟବହୃତ ସୁନା ରୁପା ଆଦିର ଖୁବ ସରୁ ତାର; ଜରି—Lace.

ବାଦଲ୍ କାମ—ଦେ. ବି—୧। ପ୍ରତିମାଙ୍କର ମେଢ଼ ଉପରେ ହଅଯିବା
Bādal kāma ପନ୍ନା କାମ—1 Tin foil embroidery
**बादल काम** work on the frame of an image.
୨। ଲୁଗା ଓ ଟୋପି ଆଦି ଉପରେ ଛୁଞ୍ଚ ଦ୍ୱାରା କରାଯିବା ଜରି କାମ—2. Fret-work; lace work; embroidery.

ବାଦଲ(ଳ)—ଦେ. ବି. ( ସଂ. ବାର୍ଦ୍ଦଲ=ଦୁର୍ଦ୍ଦିନ; ମେଘାଚ୍ଛନ୍ନ ଦିବସ;
Bādaḷa(la) ବାର୍ଦ୍ଦଲ=ଜଳ; ତୁଳ. ଆ. ବାଦଲ୍=ମେଘ )—
[ବାଦଲା(ଳା)—ଅନ୍ୟରୂପ] ୧। ମେଘ—1. Cloud.
बादल ୨। ଯେଉଁ ପାଗରେ ମେଘ ଓ ବୃଷ୍ଟି ହୁଏ—
**बादल** 2. Rainy and stormy weather.
୩। ମେଘୁଆ ପାଗ; ଦୁର୍ଦ୍ଦିନ; ମେଘାଚ୍ଛନ୍ନ ଦିନ—3. Cloudy weather.
୪। ଅବିରାମ ବୃଷ୍ଟି—4. Incessant raining.
୫। ବର୍ଷା—5. Rain.
୬। ଝଡ଼; ତୋଫାନ—6. Tempest.
ସ. ବି—ଯଷ୍ଟିମଧୁ (ହି॰ ଶ)—Liquorice root.

ବାଦଲ(ଳ) ଉଠା(ଠେ)ଇବା—ଦେ. ବି—ଆକାଶରେ ମେଘୋଦୟ
Bādaḷa(la) uṭhā(ṭhe)ibā ହେବା; ମେଘ ଘୋଟିବା—
बादलधरा Overclouding; rising of clouds in the
**बादल उठना** sky.

ବାଦଲ ଫାଟିବା—ଦେ. ବି—ଉଠିଥିବା ମେଘ ଖଣ୍ଡ ଖଣ୍ଡ ହୋଇ
Bādala phāṭibā ଇତସ୍ତତଃ ହୋଇଯିବା; ମେଘ ଫରକ-
**बादल फटना** ଫାଟିବା—The scattering of a rising cloud; the sky becoming clear by the diffusion of rising clouds.

ବାଦଲା—ଦେ. ବି—ଲୁଗା ଓ ଟୋପି ଆଦିରେ ସୂଚି କର୍ମରେ ବ୍ୟବହୃତ
Bādalā ସୁନା ବା ରୁପାର ଖୁବ୍ ସରୁ ତାର; ଜରି—
बादला Very fine gold or silver wire used in
**बादला** embroidery; lace.

ପ୍ରାଦେ. (ମେଦିନୀପୁର, ସମ୍ବଲପୁର) ବି. ( ତୁଳ. ଏହି ଅର୍ଥରେ ବ. ବାଦଲ୍ )—ଅତି ବୃଷ୍ଟି—Excessive rainfall.
ବିଣ—ମେଘୁଆ (ପାଗ)—Cloudy (weather).

ବାଦଲା ପାଗ—ଦେ. ବି—ମେଘୁଆ ପାଗ—
Bādaḷā pāga Cloudy weather.
(ବାଦଲଆ ପାଗ—ଅନ୍ୟରୂପ)

ବାଦଲା ପୋକ——ପ୍ରାଦେ. ( ମେଦିନୀପୁର, ସମ୍ବଲପୁର; ତୁଳ ଏହି
Bādalā poka ଅର୍ଥରେ ବ. ବାଦଲା ପୋକା )—
ଝିଙ୍କ ପୋକ—Winged ants.

ବାଦଲିଆ—ପ୍ରାଦେ. (ସମ୍ବଲପୁର) ବିଣ—ମେଘୁଆ (ପାଗ)—
Bādaliā Cloudy (weather).

ବାଦ ସାଧନ—ସ. ବି—୧। ଅପକାର କରିବା—1. Doing a
Bāda sādhana mischief; mischief-making.
୨। ତର୍କ କରିବା—2. Wrangling.

ବାଦ ସାଧିବା—ଦେ. କ୍ରି. ( ସ. ବାଦ ସାଧନ )—
Bāda sādhibā ୧। ଦାଉ ସାଧିବା; ପୂର୍ବର ଅପଚିତ୍ତ ସୁଝିବା;
बाद साधा ଅହନ୍ତା ନେବା—1. To feed fat one's old
**बाद साधना** grudge; to satisfy one's grudge.
୨। ଅକ୍ରୋଶ କରିବା; ଅହନ୍ତା ରଖିବା—2. To envy; to act maliciously; to have a grudge.

ବାଦାନୁବାଦ—ସ. ବି. (ଦ୍ୱନ୍ଦ୍ୱ; ବାଦ+ଅନୁବାଦ; ସ. ବାଦାନୁବାଦୌ—
Bādānubāda ଦ୍ୱିବଚନ)—୧। ବାଦ ପ୍ରତିବାଦ; ତର୍କବିତର୍କ;
ବାଗ୍‌ଯୁଦ୍ଧ—1. Hot discussion; wrangling; controversy.
୨। କୌଣସି ବିଷୟରେ ଉକ୍ତି ଓ ଉକ୍ତିର ପ୍ରତ୍ୟୁକ୍ତି—2. Assertion and reply.
୩। ମୁଦେଇର ଅଭିଯୋଗ ଓ ତଦୁତ୍ତରରେ ମୁଦାଲାର ସଫେଇ-3. Accusation and defence in court.
୪। ବାଦୀର ଆରଜି ଓ ତଦୁତ୍ତରରେ ପ୍ରତିବାଦୀର ବର୍ଣ୍ଣନା—4. Plaint and the statement in reply.

ବାଦାମ—ବୈଦେ. ବି—(ଫା. ବାଦାମ୍; ତୁଳ. ସ. ବାତାଦ; ବାତାମ)—
Bādāma ୧। ତୈଳପ୍ରଦ ଫଳ ବୃକ୍ଷ ବିଶେଷ; କାବୁଲୀ ବାଦାମ—
ସ. ବାତାଦ, ବାତାମ୍ର, ବାତବୈରୀ 1. Almond; Prunus
ନେତ୍ରୋପମ ଫଳ, ବାତାମ। Amygdalus; sweet
बादाम almond.
**बादाम** [ ଦ୍ର—ଏହା ଭାରତର ଉତ୍ତର
ତେ. ବେଦମ ପଶ୍ଚିମ ପ୍ରାନ୍ତ ଓ ଆଫଗାନି
ତା. ନଟ ବଡ଼ୁମ ସ୍ଥାନର ବୃକ୍ଷ ବିଶେଷର ଫଳ
ମ. ବାଦାମ ମଧ୍ୟସ୍ଥ ତୈଳମୟ ବୀଜ। ଏହି
ଆ. ଲୋଜଲହଲୁ ଫଳ ଉପରେ କଠିଣ ଖୋପା
ଫା. ଥାଏ ଏବଂ ଭିତରେ ସୁସ୍ୱାଦ୍ୟ
ମଞ୍ଜା (ଶସ) ଥାଏ। ଏହା କାବୁଲିମାନେ ବିକ୍ରୟ କରନ୍ତି। ବୈଦ୍ୟକ ଶାସ୍ତ୍ର ମତରେ ଏହା ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, ବାୟୁନାଶକ, ଶୁକ୍ରବର୍ଦ୍ଧକ

ଓ ଗୁରୁ; ବାଦାମ ମଞ୍ଜିର ମଜ୍ଜା ବା ଶସ ମଧୁର ରସ, ଶୁକ୍ରବର୍ଦ୍ଧକ, ପିତ୍ତଘ୍ନ, ବାୟୁନାଶକ ଓ କଫକାରକ । ବାଦାମ ମଞ୍ଜିର ଶସକୁ ସାମାନ୍ୟ ମରିଚ ସଙ୍ଗେ ବାଟି ମିଶ୍ରିପଣା ସଙ୍ଗେ ପିଇଲେ ବହୁକାଳର କୋଷ୍ଠବଦ୍ଧ ରୋଗ ଦୂର ହୁଏ । ]

୨ । ହରିତକ୍ୟାଦି ବର୍ଗର ବୃକ୍ଷବିଶେଷ; ଦେଶୀ ବାଦାମ—2. Indian almond; Terminalia Catapha.

[ ଦ୍ର—ଏହା ପ୍ରଥମେ ଆଣ୍ଡାମାନ ଦ୍ୱୀପରୁ ଏ ଦେଶକୁ ଆନୀତ ହୋଇଥିଲା । ଏହାର ପତ୍ର ଝଡ଼ିପଡ଼ିବା ପୂର୍ବରୁ ଲୋହିତ ନାଲିରଙ୍ଗ ହୁଏ । ଏ ଗଛର ଶାଖା ଗଛର ଗଣ୍ଡି ଚାରିପାଖେ ଆବର୍ତ୍ତାକାର ହୋଇ ବାହାରେ । ଏ ଫଳ ଆମ୍ବଡ଼ାପରି କିନ୍ତୁ ଅଖାଦ୍ୟ । ଏହାର ମଞ୍ଜି ଭିତରର ପତଳା ଶସ ତୈଳପ୍ରଦ । ସେଥିରେ ଶସରୁ ଅଧସେରେ ତେଲ ବାହାରେ । ଏହାକୁ ବିଲାତି ବା ଦେଶୀବାଦାମ ବୋଲି ସାଧାରଣ ଲୋକେ କହନ୍ତି । ଲୋକେ ଏହି ବାଦାମ ତେଲକୁ ଘିଅ ଓ ତେଲ ସଙ୍ଗେ ମିଶାଇ ବଜାରରେ ବିକନ୍ତି । ]

୩ । ବାଜାଆମ୍ବ (ଦେଖ)—3. Bājā-āmba (See).

ପ୍ରାଦେ. (ବାମଣ୍ଡା) ବି—ପିଜୁଳି—Guava.

**ବାଦାମୀ**—ଦେ. ବି—୧ । କାବୁଲି ବାଦାମଫଳ ପରି ଫିକା ହଳଦିଆ ମିଶା ନାଲିରଙ୍ଗବିଶିଷ୍ଟ—1. Almond coloured.
Bādāmi
बादामी
बादामी
୨ । କାବୁଲିବାଦାମର ଆକୃତିବିଶିଷ୍ଟ—2. Almond-shaped; elliptical.

**ବାଦାଲ**—ପ୍ରାଦେ. (ସିଂହଭୂମି) ବି—ବାଡ଼—
Bādāla Hedge.

**ବାଦାଳ**—ସଂ. ବି.—ବାଳିଆ ମାଛ (ହି. ଶ)
Bādāḷa The Boal fish.

**ବାଦି**—ସଂ. ବି. ( ବଦ୍ ଧାତୁ=କହିବା+ଇ )—୧ । ପଣ୍ଡିତ—
Bādi 1. A Pandit; a learned man. ୨ । ମୃଦଙ୍ଗର ଦୁଇ ମୁଣ୍ଡର ଉପରି ଚମକୁ ବାନ୍ଧି ଟାଣି ରଖିବା ନିମନ୍ତେ ବ୍ୟବହୃତ ଚମଦଉଡ଼ି—2. Thongs of leather which tie the round strips of leather on both ends of a Mrudaṅga drum.

ପ୍ରାଦେ. (ସିଂହଭୂମ) ବି—ସମତଳ ଶସ୍ୟକ୍ଷେତ୍ର—A levelled field.

**ବାଦିକ**—ସଂ. ବିଣ. ପୁଂ—(ବାଦ+ଇକ)—ତାର୍କିକ—
Bādika Argumentative.

**ବାଦିତ**—ସଂ. ବି—(ବଦ୍ ଧାତୁ ଣିଚ୍ ବାଦି ଧାତୁ+କର୍ମ. ତ)—
Bādita ୧ । ବଜାଯାଉଥିବା; ଶବ୍ଦିତ; ନିନାଦିତ—1. Sounded (said of musical instrument) ୨ । ଅନ୍ୟଦ୍ୱାରା ଉଚ୍ଚାରିତ—2. Caused to be uttered.

**ବାଦିତ୍ର**—ସଂ. ବି—( ବଦ୍ ଧାତୁ ଣିଚ୍+କର୍ମ. ଇତ୍ର )—ବାଦ୍ୟଯନ୍ତ୍ର; ବାଜା—Musical instrument.
Bāditra

**ବାଦିତ୍ରକ**—ଦେ. ବିଣ—ବାଦ୍ୟକର—
Bāditraka Musician.

ବାଦିତ୍ରକ, ବଗୁର ହାଣିବାର ପାଇଁ, ବାଦିତ୍ରକ କେନପାଶେ ବାଦ୍ୟ ବଜାଇ ।
ଉକ୍ତ. ବୈଦେହୀଶବିଳାସ ।

**ବାଦୀ**—ସଂ. ବିଣ—(ବଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Bādī ୧ । ବକ୍ତା; ଯେ କହେ—
(ବାଦିନୀ—ସ୍ତ୍ରୀ) 1. Speaking.

[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ସତ୍ୟବାଦୀ; ମିଥ୍ୟାବାଦୀ; ସ୍ପଷ୍ଟବାଦୀ । ]

୨ । ବିବାଦକାରୀ—2. Disputing. ୩ । ପ୍ରତିକୂଳ—3. Antagonistic. ୪ । ଅନିଷ୍ଟକାରୀ—4. Causing injury; injurious.

ସଂ. ବି—୧ । ( ସଙ୍ଗୀତ )—ସଙ୍ଗୀତର ପ୍ରଧାନ ସ୍ୱର—1. Homophonia. ୨ । ମକଦ୍ଦମାରେ ପ୍ରଥମପକ୍ଷ ବା ଫେରିୟାଦୀ; ମୁଦେଇ—2. Plaintiff; complainant.

[ ଦ୍ର—ପ୍ରଥମ ପକ୍ଷକୁ ଫଉଜଦାରୀ ମକଦ୍ଦମାରେ ମୁଦେଇ ଏବଂ ଦେଓ୍ୱାନି ମକଦ୍ଦମାରେ ବାଦୀ ବୋଲାଯାଏ । ]

୩ । ବିପକ୍ଷ; ଅପରପକ୍ଷ; ପ୍ରତିଦ୍ୱନ୍ଦ୍ୱୀ—3. Antagonist.
୪ । ଶତ୍ରୁ—4. Enemy.

କୃଷ୍ଣ ବିଷୟେ ଯେତେ ବାଦୀ
କ୍ଷତ୍ରିୟ ଶିଶୁପାଳ ଆଦି—ଜଗନ୍ନାଥ. ଭାଗବତ ।

୫ । କୌଣସି ବିଷୟରେ ପ୍ରଥମ ପ୍ରସ୍ତାବକାରୀ—5. Proposer.

विवाद **बिबाद** ଦେ. ବି—କଳି; ବିବାଦ—Dispute; quarrel.

ଦେ. ବିଣ—ସ୍ୱନଯୁକ୍ତ—Making a sound; sonorous.

ବାଦୀ ବାଜ ବେଣୁଥାଇ ଥାଇ ପ୍ରେମଶୀଳା—ଉକ୍ତ. ବୈଦେହୀଶବିଳାସ ।

**ବାଦୀ ଜମି**—ପ୍ରାଦେ. (ସିଂହଭୂମି) ବି—ସମତଳସ୍ଥ ଧାନଜମି—
Bādī jami Paddy field in the plain.

[ ଦ୍ର—ଏ ଜମିରେ ଲଘୁଧାନ ହୁଏ । ]

**ବାଦୀ ପାଲା**—ଦେ. ବି—ଯାଉଁଳିପାଲା; ଯେଉଁ ପାଲାରେ ଏକାଧିକ ପାଲା-
Bādī pālā ବାଲା ଦଳ ଆପଣା ଆପଣାର ଯୋଗ୍ୟତା ଦେଖାନ୍ତି;
**कीर्तनसम्मीलन** ଲଢ଼େଇ ପାଲା—The performance by 2 or more rival parties of Pālā dancers.

**ବାଦୀ ପ୍ରତିବାଦୀ**—ସଂ. ବି—(ସଂ.ବାଦିନ୍+ପ୍ରତିବାଦିନ୍)—୧ । ମକଦ୍ଦମାରେ
Bādī pratibādī ୧ମ ଓ ୨ୟ ପକ୍ଷ—1. Plaintiff and
(ବାଦୀ ବିବାଦୀ—ଅନ୍ୟରୂପ) defendant; complaint and accused. ୨ । ବିବାଦରେ ୧ମ ଓ ୨ୟ ପକ୍ଷ—2. The two opponents in a dispute

विवाद **बिबाद** ଦେ. ବି—ବିବାଦ—Dispute.

**ବାଦୀ ଭଗାରି**—ଦେ. ବି—(ଉକ୍ତାର୍ଥକ ସହଚର)—ଶତ୍ରୁ—
Bādī bhagārī Enemy

ଦେ. ବିଣ—ଶତ୍ରୁତାକାରୀ—Inimical; antagonistic.
(ଯଥା—ବର୍ଷେ ହେଲା ଗାଁଆଁବାଲା ବାଦୀ ଭଗାରି ହୋଇ ମୋ ସଙ୍ଗେ ଲାଗିଛନ୍ତି । )

**ବାଦୀସ୍ୱର**—ସଂ. ବି—(ସଙ୍ଗୀତ) ସଙ୍ଗୀତର ପ୍ରଧାନ ସ୍ୱର—
Bādīswara (music) Homophonia.

**ବାଦୁଆ**—ଦେ. ବିଣ. ପୁଂ—୧ । କଳହପ୍ରିୟ—1. Quarrelsome.
Bāduā ୨ । ବିବାଦ ପ୍ରିୟ—2. Fond of dispute.

[ବାଦେ(ଦୋ)ଈ—ସ୍ତ୍ରୀ] ୩ । ଯେ ଅନ୍ୟ ବ୍ୟକ୍ତିସହ ପ୍ରତିଦ୍ୱନ୍ଦ୍ୱିତା କରେ; ଈର୍ଷୀ—Emulative; malicious

**ବାଦୁଡ଼ି**—ଦେ. ବି (ସଂ. ବାଦୁଲ)—ଶୂନ୍ୟଚାରୀ ବା ଚେମେଣିଠାରୁ ବଡ଼ ଚମଡ଼ା—ଡେଣାଯୁକ୍ତ ସ୍ତନ୍ୟପାୟୀ ଜୀବବିଶେଷ—
Bādurḍi — Flying fox; large bat; Pteropus Medius.

ବାଜସ୍, ବାଜୁର; ବାଦୁଡ଼, ବାଦୁଡ଼ୁ, ବାଦେଡ଼ା, ବାଦେଡ଼, ବାଦରି } ଅନ୍ୟରୂପ

ବାଦୁଡ଼ [ ଦ୍ର—ଏମାନେ ସୁଭକ୍ଷାକ ଭଡ଼ ଫଳ ଖାଆନ୍ତି **ବାଦୁଡ; ଚମଗାଦଡ** ଓ ଦିନଯାକ ଗଛ ଡାଳରେ ଗୋଡ଼ର ନଖରେ ଧରି ଓଲଟି ମୁହଁକରି ଝୁଲୁଥାଆନ୍ତି । ଏମାନଙ୍କ ଦେହରେ ଲୋମ ଅଛି । ବର୍ଣ୍ଣ କୃଷ୍ଣ ବର୍ଣ୍ଣ । ମୁହଁ କୁକୁର ମୁହଁ ପରି । ଏହାର ନାକ କାନ ଅଛି । ଏମାନଙ୍କର ମୁଣ୍ଡଠାରୁ ଶେଷପର୍ଯ୍ୟନ୍ତ ଲମ୍ବରେ ୧ ଗୃଣ୍ଣ ଓ ଡେଣାର ୨ ମୁଣ୍ଡର ମାପ ପ୍ରାୟ ଏକ ହାତ ହେବ । ଏମାନଙ୍କ ଡେଣା ପକ୍ଷୀଙ୍କ ଡେଣାପରି ପରଯୁକ୍ତ ନୁହେଁ, ତାହା ପତଳା ଚର୍ମ ଅଟେ । ଏମାନେ ଛୁଆ ଜନ୍ମ କରନ୍ତି ଓ ଛୁଆମାନେ ମାତାର ସ୍ତନ୍ୟପାନ କରି ବଢ଼ନ୍ତି । ]

**ବାଦୁଲି**—ଗ୍ରାଦେ. (ସମ୍ବଲପୁର ଓ ବାମଡ଼ା) ବି.—ବାଦୁଡ଼ି (ଦେଖ)
Bāduli — Bādurḍi (See)

**ବାଦ୍ୟ**—ସଂ. ବି. (ବାଦ୍. ଧାତୁ. ଣିଚ ବାଦ ଧାତୁ+କର୍ମ. ଯ)—
Bādya ୧ । ବାଇଦ; ବାଜା—1. Musical instrument.
୨ । ବାଜଣା—2. Instrumental music.
ବିଣ.—ବାଦନୀୟ; ବାଦନଯୋଗ୍ୟ—Fit to be struck or tuned to music.

**ବାଦ୍ୟକ**—ସଂ. ବି. ପୁଂ (ବାଦ୍ୟ+କ)—ବାଜା ବଜାଇବା ବ୍ୟକ୍ତି;
Bādyaka ବାଜାବାଲା—Musician.

**ବାଦ୍ୟକର**—ସଂ. ବି ( ବାଦ୍ୟ+କୃ ଧାତୁ+କର୍ତ୍ତୃ. ଅ )—
Bādyakara ୧ । ବାଜାବାଲା; ଯେ ବାଜା ବଜାଏ; ବାଦକ;
(ବାଦ୍ୟକାର—ଅନ୍ୟରୂପ) ବାଇଦକାରିଆ—1. Musician.
୨ । ଯେ ବାଦ୍ୟଯନ୍ତ୍ର ନିର୍ମାଣ କରେ—2 Manufacturer of musical instruments.

**ବାଦ୍ୟ ଭାଣ୍ଡ**—ସଂ. ବି—(୬ଷ୍ଠୀ ତତ୍; ବାଦ୍ୟ=ବାଦ୍ୟ+ଭାଣ୍ଡ=ପାତ୍ର)-
Bādya bhāṇḍa ୧ । ମୃଦଙ୍ଗାଦି ବାଦ୍ୟଯନ୍ତ୍ର—1. Musical instruments such as tabour. ୨ । ନାନାସ୍ୱରସମନ୍ୱିତ ବାଦ୍ୟଯନ୍ତ୍ର ସମୂହ—2. Musical band; concert.

**ବାଧ୍** (ଧାତୁ) —ସଂ.—୧ । ବାଧା ଜନ୍ମାଇବା; ବାଧାଦେବା—
Bādh (root) 1. To obstruct; to resist; to oppose.
୨ । ପୀଡ଼ା ଦେବା. —2. To give pain. ୩ । ମନରେ ପୀଡ଼ା ଦେବା —3. To vex. ୪ । ଆଘାତ କରିବା—4. To hurt; (Apte). ୫ । କ୍ଷତିଗ୍ରସ୍ତ କରିବା; ଅପକାର କରିବା—5. To injure (Apte.)
୬ । ତଡ଼ି ଦେବା—6. To drive away; to expel. (Apte).

**ବାଧ**—ସଂ. ବି (ବାଧ୍. ଧାତୁ+ଭାବ. ଅ)—୧ । ବାଧା; ପ୍ରତିବନ୍ଧକ;
Bādha ବ୍ୟାଘାତ—1. Obstacle; obstruction; impediment; clog. ୨ । ବିଘ୍ନ; ରୋଧ—2. Resistance. ୩ । ଉପଦ୍ରବ—3. Ravage. ୪ । ପୀଡ଼ା 4. Pain.

ଦେ. ବି—୧ । ବିନାଶ—1. Destruction.
୨ । ଶୋଷଣ—2. Sucking.

(୧ + ୨) ବାଧ ନ କରୁ ରକ୍ଷସ ପ୍ରଚଣ୍ଡ ଉପଜ;
କଇବେଶ୍ମ ନାମ ରମ୍ୟ ସରବ୍ୟ ଜୀବନ—
ଉପେ. ବୈଦେହୀଶବିଳାସ ।

ଦେ. ବିଣ—ନିଷିଦ୍ଧ—Prohibited.

ବାଧ ବୋଲି ସୁଁ ସହିତ୍ୟା ବଧ ନ କଲକୁ ଶୁଝାଇଣ ବଇରିତା।
ଉପେ. ବୈଦେହୀଶବିଳାସ ।

**ବାଧକ**—ସଂ. ବିଣ—(ବାଧ୍ ଧାତୁ+କର୍ତ୍ତୃ. ଅକ)—୧ । ବାଧାଜନକ;
Bādhaka ଯେ ବାଧା ଦିଏ—1. Obstructing; impending; obstructive. ୨ । ଯେ କୌଣସି
(ବାଧକତା—ବି) କାର୍ଯ୍ୟ କରିବାକୁ ଅନ୍ୟକୁ ବାଧ୍ୟ କରେ—
2. Compelling; obliging.
ବି—୧ । ପ୍ରତିବନ୍ଧକ—1. Obstacle; hindrance.
୨ । ଗର୍ଭଧାରଣରେ ବାଧା ପ୍ରଦାୟକ ସ୍ତ୍ରୀ ରୋଗବିଶେଷ; ବନ୍ଧ୍ୟତ୍ୱ ରୋଗ; ନାରୀର ରକ୍ତସ୍ରାବ ଦୋଷ—
2. Barrenness; a female disease which prevents conception.

[ ଦ୍ର—ଆୟୁର୍ବେଦ ମତରେ ବାଧକ ରୋଗ ୪ ପ୍ରକାର; ଯଥା—୧ । ରକ୍ତମାଦ୍ରୀ—ଏଥିରେ କଟି, ନାଭି, ଗୋଡ଼ଭଣ୍ଡାରେ ବେଦନା ହୁଏ, ଋତୁ ନିୟମିତ ସମୟରେ ( ୨୭ । ୨୮ ଦିନରେ ଥରେ) ହୁଏ ନାହିଁ । ୨ । ଯଷ୍ଠୀ—ଏଥିରେ ଋତୁକାଳରେ ଆଖି, ଲେଉ ଓ ଯୋନିରେ ପୋଡ଼ାଜଳା ହୁଏ, ରକ୍ତସ୍ରାବ ଘୋଳାମସ୍ତୁ ହୁଏ, ମାସକେ ଦୁଇ ଥର ଋତୁ ହୁଏ । ୩ । ଅଙ୍କୁର—ଏଥିରେ ଋତୁ ସମୟରେ ମାନସିକ ଉଦ୍ବେଗ; ଶରୀରରେ ଭାର ବୋଧ ଓ ବହୁତ ରକ୍ତ ସ୍ରାବ ହୁଏ; ନାଭି ତଳେ ବେଦନା ହୁଏ ଓ ୩ । ୪ ମାସରେ ଥରେ ଋତୁ ହୁଏ; ହାତ ଗୋଡ଼ ଜଳେ । ୪ । ଜଳକୁମାର—ଏଥିରେ ଦେହ ଫୁଲିଯାଏ; ବହୁତ ଦିନ ଅନ୍ତରରେ ଋତୁ ହୁଏ, ମୂଢ଼ଗର୍ଭ ହୁଏ । ବାଧକରୋଗ ଗର୍ଭଧାରଣର ବାଧା ପ୍ରଦାୟକ—ହୁ. ଶ. । ]

୩ । ଋତୁସ୍ରାବ ସମୟରେ ବେଦନା—3. Painful menstrual discharge; dysmenorrhœa.
ଦେ. ବି—ବାଧକା (ଦେଖ)—Bādhakā (See).

**ବାଧକତା(ତ୍ୱ)**—ସଂ. ବି—୧ । ବାଧ୍ୟ କରିବାର ଶକ୍ତି—
Bādhakatā(twa) 1. Power of compelling.
୨ । ବାଧା ଦେବାର ଶକ୍ତି—
2 Power of obstructing.

ବାଧ(ଧି)କା—ଦେ. ବି—(ସଂ. ବାଧା)—୧ । କ୍ଲାନ୍ତି; ଅବସାଦ; ବାଧା—
Bādha(dhi)kā 1 Fatigue; weariness; exhaustion.
ବାଧା **बाधा** ୨ । ବେଦନା; ପୀଡ଼ା; ବ୍ୟଥା—2. Pang; pain; anguish. ୩ । ମନୋଦୁଃଖ—3. Mental pain.
୪ । ମୁମୂର୍ଷୁ ଅବସ୍ଥା—4. Dying condition.
ବିଣ—୧ । ଅବସନ୍ନ; କ୍ଲାନ୍ତ—1. Fatigued ୨ । ବ୍ୟଥିତ-
2. Pained. ୩ । ଦୁଃଖିତ—2. Sorry. ୪ । ବ୍ୟଥା-ପ୍ରଦ—4. Painful. ୫ । ମୁମୂର୍ଷୁ—5. Dying.

ବାଧ(ଧି)କିବା—ଦେ. କ୍ରି—୧ । ପ୍ରାଣାନ୍ତକ ପୀଡ଼ିତ ହେବା; ରୋଗଗ୍ରସ୍ତ
Bādha(dhi)kiba ହୋଇ ମୁମୂର୍ଷୁ ହେବା; କଡ଼ଣ୍ଣଗି ହେବା—
ବାଧକ କରି ପଡ଼ିବା } ଅନ୍ୟରୂପ 1. To be in a dying condition on account
ବାଧକ ପଡ଼ିବା } of protracted illness;
**सेजमे सटना** to lie very seriously ill. ୨ । ଅତ୍ୟନ୍ତ କ୍ଲାନ୍ତ ହେବା—2. To be over-fatigued.

ବାଧନ—ସଂ. ବି—(ବାଧ୍ ଧାତୁ+ଭାବ. ଅନ)—୧ । ଉପଦ୍ରବ; ପୀଡ଼ା—
Bādhana 1. Oppression; annoyance. ୨ । କ୍ଲାନ୍ତି—
(ବାଧିତ, ବାଧ, ବାଧନୀୟ—ବିଣ) 2. Fatigue. ୩ । କ୍ଲେଶ—
3. Pain. ୪ । ପ୍ରତିବନ୍ଧକ—4. Obstruction.
୫ । ବାଧା—5. Opposition; hindrance.
୬ । ବାଧା ଦେବା—6. Hindering; restraining. ୭ । କଷ୍ଟ ଦେବା—7. Giving pain.

ବାଧା—ସଂ. ବି—( ବାଧ୍ ଧାତୁ+ଭାବ. ଅ+ଆ )—୧ । ପ୍ରତିବନ୍ଧକ;
Bādhā ବିଘ୍ନ—1. Obstacle; obstruction; hindrance. ୨ । ଉପଦ୍ରବ; ଉତ୍ପୀଡ଼ନ—2. Oppression.
୩ । (+କର୍ତ୍ତୃ.ଅ) କାଷ୍ଠ ପାଦୁକା;ଖଡ଼ମ—3. Wooden sandal; a clog. ୪ । ଶାରୀରିକ ପୀଡ଼ା; ବ୍ୟଥା; ବେଦନା; କ୍ଲେଶ; ଦୁଃଖ—4. Pang; pain; agony.
୫ । ମନୋଦୁଃଖ—5. Mental pain. ୬ । ଭୟ; ଆଶଙ୍କା; (ହି. ଶ)—6. Fear; apprehension.

ବାଧାଜନକ—ସଂ. ବିଣ—ଯାହା ବାଧା ଦିଏ—
Bādhājanaka Obstructive; preventive; hindering.
(ବାଧାପ୍ରଦ, ବାଧାକାରକ—ଅନ୍ୟରୂପ)

ବାଧା ଦେବା—ଦେ. କ୍ରି—୧ । କୌଣସି କାର୍ଯ୍ୟରେ ବିଘ୍ନଜାତ
Bādhādebā କରାଇବା—1. To obstruct; to resist;
(ବାଧା କରିବା—ଅନ୍ୟରୂପ) to hinder; to impede.
ବାଧାଦେଓ୍ୱା ୨ । ବନ୍ଦ କରିବା—2. To stop.
**बाधादेना, बाधाडालना** ୩ । ମନା କରିବା—3. To forbid.

ବାଧା ପାଇବା—ଦେ. କ୍ରି—କୌଣସି କାର୍ଯ୍ୟରେ ବାଧାପ୍ରାପ୍ତ ହେବା;
Bādhā paibā ସ୍ଥଗିତ ହେବା—To be hindered or
ବାଧା ପାଓ୍ୱା **बाधा पाना** resisted; to be checked.

ବାଧା ବିଘ୍ନ—ସଂ. ବି—(ଏକାର୍ଥବୋଧକ ସହଚର ଶବ୍ଦ)—ବାଧା—
Bādhā bighna Obstacle.

ବାଧିକା ପଡ଼ିବା—ପ୍ରାଦେ. ବିଣ. (ବାଲେଶ୍ୱର)—ବାଧକିବା (ଦେଖ)—
Bādhikā pardibā Bādhakibā (See).

ବାଧିକା ପଡ଼ିଛ, କିଆ ବୋଲି ପାଇବ ନାହିଁ—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ବାଧିତ—ସଂ. ବିଣ—(ବାଧ୍ ଧାତୁ+କର୍ମ. ତ)—୧ । ଦୁଃଖିତ; ବ୍ୟଥିତ-
Bādhita (ବାଧିତା—ସ୍ତ୍ରୀ) 1. Pained.

ଶୋକରେ ହୃଦୟ ବାଧିତ
କ୍ରୋଧରେ କୁଦ ସେ ଦୁଃଖିତ—ଜଗନ୍ନାଥ ଭାଗବତ ।

୨ । ପୀଡ଼ିତ—2. Oppressed. ୩ । ନିବାରିତ—
3. Stopped; prevented. ୪ । ଅନୁଗତ; ବଶୀଭୂତ-
4. Obedient; subservient. ୫ । ବାଧ୍ୟ;
କୌଣସି ବ୍ୟକ୍ତି ନିକଟରେ ଉପକାରପାଶରେ ଆବଦ୍ଧ—
5. Obliged; ୬ । ଉପକୃତ—6. Benefited. ୭ ।
ପ୍ରତିବଦ୍ଧ; ବ୍ୟାହତ—7. Thwarted; obstructed.

ବାଧିବା—ଦେ. କ୍ରି.—(ସଂ. ବାଧ୍. ଧାତୁ)—୧ । କାଟିବା; କଷ୍ଟପ୍ରଦ
Bādhibā ହେବା—1. To affect painfully; to cut
ମନେ ଲାଗା to the quick; to hurt one's feeling
**चोट लागना** ୨ । କ୍ଲାନ୍ତିପ୍ରଦ ହେବା—2. To tire; to cause fatigue.

ବାଧେ ତୁମ୍ଭ । ବଳାଇବୁ କଣ ସମସ୍ତଙ୍କ ।
ଭକ୍ତ. ବୈଦେହୀଶବିଳାସ ।

୩ । ବ୍ୟଥା ଦେବା; ପୀଡ଼ା ଦେବା—3. To be painful; to agonise.

ଭୁଜର ପବନର ବଳୁଡ଼ା ବା ଅଛି,
ନୋହିଲେ କପୋ ଭୁଜଙ୍କୁ ସେ ନ ବାଧନ୍ତି । କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୪ । ବାଧା ଦେବା—4. To obstruct; to check.

ସୂର୍ଯ୍ୟ ଅନଳ ବୃକ୍ଷ ଚିହ୍ନ ତଥା ବଳାନଧ
ବଧରେ ସେ ବଧ ବାଧକରେ—ଭକ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ବାଧିର୍ଯ୍ୟ—ସଂ. ବି. (ବଧିର+ଭାବ. ଯ)—ବଧିରତା—
Bādhirjya Deafness.

ବାଧ୍ୟ—ସଂ. ବିଣ. (ବାଧ୍ ଧାତୁ+କର୍ମ. ଯ)—୧ । ବାଧାଯୋଗ୍ୟ;
Bādhya ନିବାରଣଯୋଗ୍ୟ—1. Preventible. ୨ । ବଶୀଭୂତ; ଅନୁଗତ—2. Obedient; subservient.
୩ । ଉପକୃତ; ଉପକାରଦ୍ୱାରା ଆବଦ୍ଧ—3. Obliged.
ବାଧ୍ୟ ଦେ. ବିଣ(ସଂ. ବାଧିତ)—୧। କୌଣସି କାର୍ଯ୍ୟ କରିବା ନିମନ୍ତେ
**बाधित** ଆବଦ୍ଧ—1. Obliged to do a thing; compelled to do a thing.—୨ । ଚୁକ୍ତିଦ୍ୱାରା ଆବଦ୍ଧ—2. Bound by contract or promise.

ବାଧ୍ୟ କରିବା—ଦେ. କ୍ରି.—ଯବରଦସ୍ତି କରିବା—
Bādhya karibā To oblige a person to do something; to compel a person to do a thing.
ବାଧ୍ୟ କରା
**बाधय करना**

ବାଧ୍ୟତା(ତ୍ୱ)—ସଂ. ବି.—(ବାଧ୍ୟ+ଭାବ. ତା)—୧ । ବଶ୍ୟତା—
Bādhyatā(twa) 1. Subservience.

୨ । ଆଦେଶାନୁଗତ୍ୟ—2. Obedience. ୩ । ଯବରଦସ୍ତି—3. Compulsion. ୪ । ବାରଣଯୋଗ୍ୟତା—4. Preventibleness. ୫ । ନିଷିଦ୍ଧତା—5. The state of being forbidden.

ବାଧ୍ୟତା ମୂଳକ—ସ. ବିଣ.—ଯାହା ଯବରଦସ୍ତି ବା ଅବଶ୍ୟ ବାଧ୍ୟ Bādhyatā mūlaka ହୋଇ କରିବାକୁ ହେବ—(ବିପରୀତ—ଇଚ୍ଛାମୂଳକ) Compulsory.

ବାଧ୍ୟ ବାଧକ—ଦେ. ବିଣ.—(ସ. ବାଧ୍ୟ ଓ ବାଧକ)—ଅନୁଗତ ବ୍ୟକ୍ତି Bādhya bādhaka ଓ ଉପକାରୀ ବ୍ୟକ୍ତି—The obliged বাধ্য বাধক बाध्य बाधक and the obliger.

ବାଧ୍ୟ ବାଧକତା—ଦେ. ବି.—୧ । ଦୁଇଜଣଙ୍କ ମଧ୍ୟରୁ ଜଣେ ଅନ୍ୟ Bādhya bādhakatā ଜଣକ ଠାରେ ବାଧ୍ୟ ହେବା ସମ୍ବନ୍ଧ—বাধ্য বাধকতা 1.The relationship of the obligor and बाध्य बाधकता the obliged between two persons. (ବାଧ୍ୟ ବାଧକ ସମ୍ବନ୍ଧ—ଅନ୍ୟରୂପ) ୨ । ଦୁଇଜଣଙ୍କ ମଧ୍ୟରେ ପରସ୍ପର ଅନୁଗତ୍ୟ ରୂପ ସମ୍ବନ୍ଧ—2. Mutual obligation.

ବାଧ୍ରୀଣ(ଣ)ସ—ସ. ବି.—ଖଡ୍ଗୀ; ଗଣ୍ଡା ପଶୁ—Bādhrīna(ṇa)sa Rhinoceros.

ବାନ୍—ସ (ପ୍ରତ୍ୟୟ) ପୁଂ (ବତ୍ ପ୍ରତ୍ୟୟ)—ବତ୍ ପ୍ରତ୍ୟୟାନ୍ତ ଶବ୍ଦର ୧ମା Bān ବିଭକ୍ତି ଏକ ବଚନାନ୍ତ—An affix denoting (ବତୀ—ସ୍ତ୍ରୀଲିଙ୍ଗ) having.

ବାନ—ସ. ବି.—୧ । (ବନ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ)—ଶୁଷ୍କ Bāna ଫଳ—1. Dry fruit. ୨ । (ବା ଧାତୁ=ଗମନ କରିବା+ଭାବ. ଅନ)—ଗମନ; ଗତି—2. Motion. ୩ । ଭିତ୍ତିଗର୍ତ୍ତ; ନିଅଁ—3. Foundation pit. ୪ । (ବନ+ସମୂହାର୍ଥେ. ଅ)—ବନ ସମୂହ—4. A number of forests. ୫ । ଜଳପ୍ରବାହ; ଜୁଆର—5. Tide; wave. ୬ । ବନ୍ୟା; ନଦୀବଢ଼ି—6. Flood. ୭ । ଚଟେଇ (ହି. ଶ.)—7. Mat. ୮ । ସୁଡ଼ଙ୍ଗ (ହି. ଶ.)—8. Culvert. ୯ । ବାୟୁ ଓ ଜଳ ଆଦିର ବହନ—9. Blowing of wind; flowing of water (Apte.) ୧୦ । କୁଟାର ମୂନ୍ଦୁର—10. A mat of straw (Apte.) ୧୧ । ଲୁଗା ବୁଣା; ବୟନ—11. Weaving (Apte). ୧୨ । ଘର କାନ୍ଥରେ କଣା—12. A hole in the wall (Apte.)

ସଂ. ବିଣ.—୧ । ଶୁଷ୍କ—1. Dry. ୨ । ଜୀବିତ—2. Living; alive. ୩ । ଜଙ୍ଗମ—3. Moving. ୪ । ବନ୍ୟ—4. Wild.

ଦେ. ବି.—୧ । ତେଜ; କାନ୍ତି—1. Lustre.

ବାନ ବଢ଼ାଇ ଅଙ୍ଗରେ ବହି ଗିଲେ ବଣାଇ ହେଲ ।
ଉଷ୍ଟ. ବୈଦେହୀଶବିଳାସ ।

୨ । ବାଅନ ସଂଖ୍ୟା—2. Fifty two.

ଭଲେ ରଚନାକରେ-ବାନ ପରେ କହେ ଗାରବର ।
ଉଷ୍ଟ. ବୈଦେହୀଶବିଳାସ

ଗ୍ରା. ବି.—(ଶିଶୁ ଭାଷା) ଶିଶୁ ଶିଶ୍ନ—A term of endearment used for the penis of infants.

ବାନପ୍ରସ୍ଥ—ସଂ. ବି.—(ବାନ=ବନର ଏକଦେଶ+ପ୍ର+ସ୍ଥା ଧାତୁ Bānaprastha +କର୍ତ୍ତୃ. ଅ; ଯେ ବନକୁ ପ୍ରସ୍ଥାନ କରେ)—୧ । ହିନ୍ଦୁଙ୍କର ଚାରି ଆଶ୍ରମରୁ ତୃତୀୟ ଆଶ୍ରମ—1. The 3rd of the 4 stages of a Hindu's life (in which he goes out to the forest to pass that period of his life.) ୨ । ପଳାଶ ବୃକ୍ଷ—2. Butea Frondosa (tree)

ବିଣ—ବାନପ୍ରସ୍ଥ ଆଶ୍ରମାବଲମ୍ବୀ—Retiring to the wilderness in the 3rd stage of life.

ବାନପ୍ରସ୍ଥାଶ୍ରମ—ସ. ବି—ହିନ୍ଦୁର ତୃତୀୟ ଆଶ୍ରମ ରୂପ ବନବାସ—Bānaprasthāsrama The 3rd stage of a Hindu's life; sojourn in the woods

[ଦ୍ର—ଦ୍ୱିଜାତି ବାଳକର ଉପନୟନଠାରୁ ୨୫ ବର୍ଷ ବୟସ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟାଶ୍ରମ, ତତ୍ପରେ ୫୦ ବର୍ଷ ବୟସ ପର୍ଯ୍ୟନ୍ତ ଗାର୍ହସ୍ଥ୍ୟାଶ୍ରମ, ତତ୍ପରେ ୭୫ ବର୍ଷ ବାନପ୍ରସ୍ଥାଶ୍ରମ, ତତ୍ପରେ ଜୀବନର ଶେଷକାଳ ପର୍ଯ୍ୟନ୍ତ ଭିକ୍ଷୁ ଆଶ୍ରମ; ଏହି ଚାରି ଆଶ୍ରମ ମଧ୍ୟରୁ ବାନପ୍ରସ୍ଥାଶ୍ରମ ତୃତୀୟ ଆଶ୍ରମ । ଏ ଆଶ୍ରମବାସୀ ନଗର ଓ ଗ୍ରାମରୁ ଦୂରରେ ଅରଣ୍ୟରେ ରହିବେ; ବନ ଫଳ ମୂଳ ଖାଇବେ; ଶଯ୍ୟା, ପଲଙ୍କ, ବାହନ, ବସ୍ତ୍ରାଦିର ବ୍ୟବହାର ତ୍ୟାଗ କରିବେ ଓ ସ୍ତ୍ରୀଙ୍କୁ ପୁତ୍ର ପାଖେ ଛାଡ଼ି ଯିବେ କିମ୍ବା ସଙ୍ଗରେ ବନକୁ ନେବେ । ଏହି ଆଶ୍ରମରେ ରହି ଯଦି ମନୁଷ୍ୟର ପୂର୍ଣ୍ଣ ବୈରାଗ୍ୟ ଜାତ ହୁଏ ତେବେ ସନ୍ନ୍ୟାସ ଅବଲମ୍ବନୀୟ—ହି. ଶ ]

ବାନପ୍ରସ୍ଥାଶ୍ରମୀ—ସ. ବିଣ. ପୁଂ—ଯେ ବାନପ୍ରସ୍ଥ ଆଶ୍ରମ ଗ୍ରହଣ କରେ—Bānaprasthāsrami Retiring to the woods in (ବାନପ୍ରସ୍ଥାବଲମ୍ବୀ—ଅନ୍ୟରୂପ) the 3rd stage of life

ବାନର—ସ. ବି. ପୁଂ (ବନ=ଅରଣ୍ୟ+ରମ୍ ଧାତୁ=କ୍ରୀଡ଼ା କରିବା+ Bānara କର୍ତ୍ତୃ. ଅ କିମ୍ବା ବା=ତୁଲ୍ୟ+ନର=ମନୁଷ୍ୟ)—(ବାନରୀ—ସ୍ତ୍ରୀ) କପି; ମର୍କଟ; ମାଙ୍କଡ଼; ହନୁମାନ୍—Monkey.

ବାନର ରାଜ—ସ. ବି. (୬ଷ୍ଠୀ ତତ୍; ବାନର+ରାଜନ୍)—Bānara rāja ୧ । କପି ଶ୍ରେଷ୍ଠ—1. Chief amongst the (ବାନରେନ୍ଦ୍ର—ଅନ୍ୟରୂପ) monkeys ୨ । କପିରାଜ ବାଳୀ—2. Bāli, the monkey king of Kishkindhyā ୩ । କପିରାଜ ସୁଗ୍ରୀବ—3. Sugrība, the brother of Bāli, the monkey king ୪ । ହନୁମାନ୍—4. Hanumān.

ବାନରୀ—ସ. ବି. ସ୍ତ୍ରୀ—୧ । ମାଈ ମାଙ୍କଡ଼—Bānarī 1. A female monkey. ୨ । କପିକଚ୍ଛୁ; ବାଇଡଙ୍କ (ହି. ଶବ୍ଦସାଗର)—2. Cowhage.

**ବାନସ୍ଥ**—ଦେ. ବି. (ସଂ. ବାନପ୍ରସ୍ଥ)—ବାନପ୍ରସ୍ଥ ( ଦେଖ )
Bānastha Bānaprastha ( See )
ଶୁଣ ହେ ଧର୍ମର ନନ୍ଦନ
ବାନସ୍ଥ ବ୍ରହ୍ମଚର୍ଯ୍ୟ ଧର୍ମ—ଜଗନ୍ନାଥ, ଭାଗବତ ।

**ବାନସ୍ପତ୍ୟ**—ସଂ. ବି. ( ବନସ୍ପତି + ଉପଶାଖାର୍ଥେ. ଯ )—
Bānaspatya ୧ । ଯେଉଁ ବୃକ୍ଷମାନଙ୍କରେ ଫଳ ହୋଇ ଫଳ ହୁଏ ( ଯଥା—ଆମ୍ବ ) (ଆପ୍ଟେ ଓ ପ୍ରକୃତିବାଦ)—
1. Trees the fruits of which are produced from flowers (Apte).
[ ଦ୍ର—ବନସ୍ପତି ଶବ୍ଦର ଅର୍ଥ, ଯେଉଁ ବୃକ୍ଷର ଫୁଲ ଦେଖା ନ ଯାଇ ଫଳ ଦେଖାଯାଏ; କିନ୍ତୁ ବାନସ୍ପତ୍ୟର ଅର୍ଥ ଏଥିର ବିପରୀତ, ଯେଉଁ ବୃକ୍ଷର ଫୁଲ ହୋଇ ଫଳ ହୁଏ । ]
୨ । (ବନସ୍ପତି+ସମୂହାର୍ଥେ. ଯ) ବନସ୍ପତି ସମୂହ (ହ୍ର.ଶ)—
2. A number of trees bearing fruits without flowering.

**ବାନା**—ଦେ. ବି. (ସଂ. ବର୍ଣ୍ଣି ଧାତୁ; ତୁମ୍ବା ସଂ. ବାନ=ବୟନ)—
Bānā ବାନା **झंडा, बाना** ୧ । ପତାକା—1. Flag.
୨ । ଅସ୍ତ୍ରରକ୍ଷା ଓ ଶତ୍ରୁଙ୍କୁ ଆକ୍ରମଣ କରିବା ପାଇଁ ମଲ୍ଲ ଦ୍ୱାରା ବ୍ୟବହୃତ ଲାଠି—1. A thick stick used by athletes for defence and attack.
୩ । ( ଲକ୍ଷଣାର୍ଥ ) ପ୍ରସିଦ୍ଧ ଗୁଣ—
2. (figurative) Known attribute.
ଶରଣାଗତ ବାନା ମୋର
ଅମୃତ କରିବଇଁ ସାର । ଜଗନ୍ନାଥ, ଭାଗବତ ।
୪ । ( ଲକ୍ଷଣାର୍ଥ ) ( ଅମୁକ କାମରେ ) ପ୍ରସିଦ୍ଧି—
2. ( figurative ) Celebrity for some thing.
ଦୀନ ବତ୍ସଳ ତୋର ବାନା
ଭକ୍ତରେ ତୋହର କରୁଣା । ଜଗନ୍ନାଥ, ଭାଗବତ ।
୫ । (ଲକ୍ଷଣାର୍ଥ) ଶ୍ରେଷ୍ଠ ବ୍ୟକ୍ତି ବା ବସ୍ତୁ—
5. (figurative) Supreme thing or person.
ସୁନ୍ଦର ଚକ୍ରବର୍ତ୍ତୀଙ୍କ ବାନା ସଂସାରରେ ସୁନ୍ଦର ଉଦେ ସିନା ।
କବିସୂର୍ଯ୍ୟ. କବିତା ।
୬ । ବାନାମ୍ବର ନାମକ ବ୍ୟକ୍ତିର ଡାକ ନାମ—
6. Name by which Bānāmbara is called.
ସଂ. ବି—ବର୍ତ୍ତିକ ପକ୍ଷୀ ( ହ୍ର. ଶବ୍ଦସାଗର )—
The grey quail.

**ବାନା ଉଡ଼ା(ଡ଼େ)ଇବା**—ଦେ. କ୍ରି—୧ । ଜୟ ଲାଭ ସୂଚକ ଯାତ୍ରା କରିବା—1. To advance with flag flying as a sign of victory.
Bānā urdā(rde)ibā
**झंडा फहराना**
୨ । ପତାକାକୁ ପବନ ଦ୍ୱାରା ସଞ୍ଚାଳିତ କରାଇବା—
2. To flow a flag.

**ବାନା ଉଡ଼ିବା**—ଦେ. କ୍ରି—୧ । ପତାକା ପବନରେ ଫରଫର ହେବା—
Bānā urdibā 1. The flying of a flag.
**झंडा फहरना**
ବଡ଼ ଦେଉଳରେ ଉଡ଼ୁଛି ବାନା—ଭଗ ।

୨ । ( ଲକ୍ଷଣାର୍ଥ ) ଯଶସ୍ୱୀ ହେବା—
2. ( figurative ) Being famous.
ଧନ୍ୟ ତା ଜନ୍ମର ବାସନା, ଉଡ଼ି ଭବରେ ଉଡ଼େ ବାନା—
ଭୂପତି, ପ୍ରେମପଞ୍ଚାମୃତ ।

**ବାନା ଧରିବା**—ଦେ. କ୍ରି—୧ । ଉଡ଼ୁଥିବା ପତାକାର ଦଣ୍ଡକୁ ହାତରେ ଧରିବା—1. To hold up a flag.
Bānā dharibā
(ବାନା ଟେକିବା—ଅନ୍ୟରୂପ) ୨ । ( ଲକ୍ଷଣାର୍ଥ ) କୌଣସି ମହତ୍ ବ୍ୟକ୍ତି ବା ଦେବତାଙ୍କ ଆଶ୍ରୟ ନେବା—
**झंडा पगडना**
2. To take shelter of a Deity or great man.

**ବାନା ପଟ୍ଟା**—ଦେ. (ସଂ. ବାଣ)—୧ । ଏକ ପ୍ରକାର ମଲ୍ଲ କ୍ରୀଡ଼ା; ଯଷ୍ଟି କ୍ରୀଡ଼ା; ଖଣ୍ଡିଏ ଲାଠି ଦ୍ୱାରା ଆତ୍ମରକ୍ଷା ଓ ଆକ୍ରମଣ ରୂପ କ୍ରୀଡ଼ା—1. Stick play; an athletic exercise with a stick.
Bānā paṭṭā
**बाना**
୨ । ବନୌଟି (ଦେଖ)—2. Banauṭi ( See )

**ବାନା ବନ୍ଧା**—ପ୍ରାଦେ. (କେନ୍ଦୁଝର) ବି (ନାମ)—କେନ୍ଦୁଝର ରାଜ୍ୟର ଇନ୍ଦ୍ରଛତୁ ପର୍ବତର ଅନ୍ୟ ନାମ—The other name of Indrachhatu mountain in the State of Keonjhar.
Bānā bandhā

**ବାନା ବାନ୍ଧିବା**—ଦେ. କ୍ରି—୧ । ମନସ୍କାମନାର ସିଦ୍ଧି ପାଇଁ ଦେବତାଙ୍କ ମନ୍ଦିର ଉପରେ ପତାକା ବନ୍ଧାଇବା; ମାନସିକ କରିବା—1. To have a flag set on the top of a temple.
Bānā bāndhibā
**मन्नतमानना**

**ବାନା ବୈରଖ**—ଦେ. ବି. (ସହଚର ଶବ୍ଦ)—ପତାକା—
Bānā bairakha **झंडापताका** Flag.
ଆଗରେ ବାନା ବୈରଖ ଉଡୁଛି, ହରି ବୋଲ ପଡୁଛି ।
ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ବାନୀର**—ସଂ. ବି. (ବନ=ଜଳ+ଈର)—ଜଳବେତସ; ବେତଗଛ—
Bānira The cane plant or creeper growing near water.

**ବାନୀରକ**—ସଂ. ବି. ( ବାନୀର+କ )—୧ । ଶରତଣ—1. Reed.
Bānīraka ୨ । ମୁଞ୍ଜତୃଣ—2. A sort of long grass with fibres.

**ବାନ୍ତ**—ସଂ. ବିଣ. ( ବମ୍ ଧାତୁ+କର୍ମ. ତ )—ଉଦ୍ଗୀର୍ଣ୍ଣ—
Bānta Vomitted; ejected.

**ବାନ୍ତାଦ**—ସଂ. ବି. ( ବାନ୍ତ+ଅଦ୍ ଧାତୁ+କର୍ତ୍ତୃ. ଅ; ଯେ ବାନ୍ତ ଦ୍ରବ୍ୟ ଖାଏ )—କୁକ୍କୁର—Dog.
Bāntāda

**ବାନ୍ତି**—ସଂ. ବି. ( ବମ୍ ଧାତୁ+ଭାବ. ତି )—୧ । ବମନ; ଉଦ୍ଗିରଣ—
Bānti 1. Vomitting. ୨ । ବମନ କରାଯିବା ବସ୍ତୁ—
2. Vomitted matter.
ଦେ. କ୍ରି. (ପଦ୍ୟ) (ସଂ. ବାଦ ଧାତୁ ଣିଚ ବାଦ ଧାତୁ; ବାଇବା କ୍ରିୟାର ବର୍ତ୍ତମାନ କାଳ; ସେ, ସେମାନେ)—ବଜାନ୍ତି—
(he) Does or (they) do play on musical instruments.
ଜନେ୍ୟ ନାରଦ ବୀଣା ବାନ୍ତି । ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତ

**ବାନ୍ତି କରିବା**—ଦେ. କ୍ରି—ବମନ କରିବା—
Bānti karibā **बाँतिकरना** To vomit.
बमिकरा

ମଶାମାନଙ୍କରେ ଜ୍ୱାଳା କରିଣ ବାନ୍ତି
ଘଡ ଦେଖି ରଖିଲେ କଲୁଥିଏ ଅଛି । କୃଷ୍ଣସିଂ. ମହାଭାରତ ଶାନ୍ତି ।

**ବାନ୍ତିକୃତ୍**—ସଂ. ବିଣ. (ବାନ୍ତି+କୃ ଧାତୁ+କ୍ୱିପ୍)—ଯାହା ବାନ୍ତି କରାଏ-
Bāntikṛut (ବାନ୍ତିଦ—ଅନ୍ୟରୂପ) Emetic (Apte).

**ବାନ୍ତି ପୋଖରି**—ଦେ. ବି—ଏକ ସମୟରେ ବମନ ଓ ମଳ ନିଃସରଣ;
Bānti pokhari ଝାଡ଼ା ବାନ୍ତି; ହଇଜା—Cholera.
झाड़ाबमी **कैदस्त**

**ବାନ୍ତି ମାଡ଼ିବା**—ଦେ. କ୍ରି—୧ । ଅଇ ଉଠିବା; ବମନୋଦ୍ବେଗ ହେବା—
Bānti mārdibā 1 A tendency to vomit.
ବାନ୍ତି ଉଠା(ଠେ)ଇବା } —ଅନ୍ୟରୂପ
ବାନ୍ତି ଦେଖା(ଖେ)ଇବା }

ଏହି ସକାଶୁଁ ମୋତେ ମାଡୁଅଛି ବାନ୍ତି । କୃଷ୍ଣସିଂହ. ମହାଭାରତ ବନ ।

बमिदेखान (ଲକ୍ଷଣାର୍ଥ) ଘୃଣା ବୋଧ ହେବା—2. (figurative)
**उलटीहोने चाहना** A feeling of revulsion.

ଅପୂର୍ବ କାନ୍ତି, ଭଲେ ଦେଖି କରି ମାଡନ୍ତି ବାନ୍ତି—ଭଗ

**ବାନ୍ତିଦା**—ସଂ. ବି ଓ ବିଣ. ସ୍ତ୍ରୀ—ଯାହା ବାନ୍ତି କରାଏ; ବମନକାରକ—
Bāntidā Causing vomitting; emetic.
ବି—କଟୁକୀ ଗୁଳ୍ମ—Picrorrhiza Kurroa (plant).

**ବାନ୍ଦ(ନ୍ଧ)ନ**—ଦେ. ବି. ( ସଂ. ସ୍ୟନ୍ଦନ )—ବନ୍ଧନ ( ଦେଖ )
Bānda(ndha)na Bandhana (See)

**ବାନ୍ଦର**—ଦେ. ବି. ( ସଂ. ବାନର )—୧ । କପି; ମାକଡ଼—
Bāndara (ବାନ୍ଦରୀ, ବାନ୍ଦେରୀ—ସ୍ତ୍ରୀ) 1. Monkey.
बाँदर
**बांदर; बंदर**

ଭୂତାଙ୍କୁ ଭେଉଁଛ ହୋଇ ବାନ୍ଦର
ହେ ଭଗମାନେ ! ପର ପଦ୍ମବନ ପିନ୍ଧ । ଛକାସ୍ତ ଗୀତ ଲହରୀ ।

୨ । ପାଣ୍ଡ ମାକଡ଼—2. Ape.

ବିଣ—ମାକଡ଼ ମୁହଁପରି ଅସୁନ୍ଦର—
Ugly, like the face of a monkey.

ହରୁ ସୁନ୍ଦର, ବୁଢାମାକଡ ବହୁ ଯାଇଛ ମୁହଁଟା ବାନ୍ଦର । ଶିଶୁଗୀତ ।

**ବାନ୍ଦ(ନ୍ଦେ)ରା**—ଦେ. ବିଣ. ପୁଂ—୧ । ଅସୁନ୍ଦର ( ପୁରୁଷ )—
Bānda(ndae)rā 1. Ugly-looking ( male ). ୨ ।
बाँदबमुख ଅସୁନ୍ଦରରୂପେ କାର୍ଯ୍ୟ କରିବା ( ଯଥା—ଲେଖିବା )
**बांदरा** (ବ୍ୟକ୍ତି)—2. Untidy (person). ୩ । ଅସୁନ୍ଦରରୂପେ
ବାନ୍ଦରୀ } ସ୍ତ୍ରୀ (ଯଥା—ମୋଟ ଅକ୍ଷର, ଲେଖିବା, ଲେଖାରେ କନ୍ଥ-
ବନ୍ଦେରୀ } ସ୍ଥାନରେ କାଳି ପକାଇବା) ଲେଖା ହୋଇଥିବା—
3. Clumsy (writing).
୪ । ଅପରିଚ୍ଛନ୍ନ (ବ୍ୟକ୍ତି)—4. Slovenly.

**ବାନ୍ଦରା ପଣ**—ଦେ. ବି—ଦେହ ବା ଲୁଗା ପଟା ବା କାଗଜ ପତ୍ରରେ
Bāndarā paṇa କଳା ବା ମଇଳା ବା ସ୍ୟାହି ଲଗାଇ ଅପରିଷ୍କୃତ
(ବାନ୍ଦରା ପଣିଆ—ଅନ୍ୟରୂପ) କରିବା ପ୍ରକୃତି—Untidiness;
बाँदबामि **बांदरापन** slovenliness

**ବାନ୍ଦରା ମୁହାଁ**—ଦେ. ବିଣ. ପୁଂ—ଯାହାର ମୁହଁ ଅସୁନ୍ଦର—
Bāndarā muhāṅ Having an ugly face.
(ବାନ୍ଦରୀ ମୁହୀ—ସ୍ତ୍ରୀ) बाँदरमुख **बंदरमुहाँ**

**ବାନ୍ଦା**—ବୈଦେ. ବି. ( ଫା. ବନ୍ଦା )—୧ । କ୍ରୀତଦାସ; ଗୋଲାମ—
Bāndā 1. Slave. ୨ । ଭୃତ୍ୟ; ଚାକର—2. Servant.
(ବାନ୍ଦୀ—ସ୍ତ୍ରୀ) बाँदा **बाँदा**

**ବାନ୍ଧ**—ଦେ. ବି—୧ । (ସଂ. ବନ୍ଧ୍ୟା)—ବନ୍ଧ୍ୟା; ବାଞ୍ଝ—1. Barren.
Bāndha ୨ । (ସଂ. ବନ୍ଧନ) ବନ୍ଧନ—2. Binding. ୩ ।
ଗଣ୍ଠି—3. Knot; tie. ୪ । ଲୁଗାବୁଣିବା ନିମନ୍ତେ
କଣ୍ଡାରେ ଗୁଡ଼ିଥିବା ହୋଇଥିବା ସୂତା—4. Thread
wound round a small roller of wood for
weaving

**ବାନ୍ଧକିନେୟ**—ସଂ. ବି. ପୁଂ. (ବନ୍ଧକୀ=ଅସତୀ ସ୍ତ୍ରୀ+ଅପତ୍ୟାର୍ଥେ ଏୟ
Bāndhakineya =ନ. ଆଗମ )—୧ । ଅସତୀପୁତ୍ର—
(ବାନ୍ଧକିନେୟୀ—ସ୍ତ୍ରୀ) 1 Whoreson.

**ବାନ୍ଧଣା**—ଦେ. ବି—ବାନ୍ଧଣି ୧ ଓ ୨ (ଦେଖ)
Bāndhaṇā Bāndhaṇi 1 and 2 (See).

କପିଙ୍କ ହାତରେ ବନ୍ଧଣା ପାଇଲୁଁ—
କୃଷ୍ଣସିଂହ ମହାଭାରତ ବନ ।

**ବାନ୍ଧଣି**—ଦେ ବି—(ସଂ. ବନ୍ଧନ)—୧ । ବନ୍ଧନ—1 Bond; tie.
Bāndhaṇi ୨ । (ସଂ. ବନ୍ଧନୀ) ବାନ୍ଧିବା ଦଉଡ଼ି—2. A rope
ବାନ୍ଧଣି } ଅନ୍ୟରୂପ for tying. ୩ । ଡଙ୍ଗାର ଆଡ଼କାଠ
ବାନ୍ଧେଣି } ବା ପଟାର ତଳେ ଦିଆ ଯାଇଥିବା ମଝି
बाँधन(नी) ଖୁଣ୍ଟିକୁ ସିଧା ଓ ଲମ୍ବ ଭାବରେ ଠିଆ କରି ରଖିବା
**बंधनी** ପାଇଁ ବ୍ୟବହୃତ, ଘର ଖୁଣ୍ଟରେ ଲାଗିଥିବା କନ୍ଧଣିଆଁ ପରି
ତିର୍ଯ୍ୟକ୍ ବା ତେରଛା କାଠ—A slanting or obli-
que piece of wood supporting the middle
post of a country-boat,

**ବାନ୍ଧ ପୁଅ(ଆ)**—ଦେ. ବି.—(ସଂ. ବନ୍ଧ୍ୟାପୁତ୍ର)—ବନ୍ଧ୍ୟାର ପୁଅ ପରି
Bāndha pua(ā) ଅସାର ବା ଅଲୀକ କଥା—
An unreal thing.

**ବାନ୍ଧବ**—ସଂ. ବି.—(ବନ୍ଧୁ+ସ୍ୱାର୍ଥେ. ଅ)—୧ । ସୁହୃଦ୍; ମିତ୍ର; ବନ୍ଧୁ—
Bāndhaba 1. Friend.
୨ । ସ୍ୱଜନ; ଆତ୍ମୀୟ—2. Relative. ୩ । ଅସଗୋତ୍ର
ସ୍ୱଜନ; ବିବାହାଦିଦ୍ୱାରା ଯେଉଁମାନଙ୍କ ସଙ୍ଗେ ଆତ୍ମୀୟତା
ଜାତ ହୋଇଥାଏ—2 Relations by marriage;
a cognate.

[ ଦ୍ର—ଜ୍ୱାଇଁ, ଭଣଜା, ମାମୁ, ମଉସା, ପିଉସା ପ୍ରଭୃତିଙ୍କୁ
ବାନ୍ଧବ କୁହାଯାଏ । ]

**ବାନ୍ଧବ ମର୍ଯ୍ୟାଦା**—ସଂ. ବି—ବାନ୍ଧବଙ୍କୁ ପ୍ରଦର୍ଶିତ ସମ୍ମାନ—
Bāndhaba marjyādā Respect due to a relative.
ଦେ. ବି—ବିବାହାଦି ସମୟରେ ବାନ୍ଧବମାନଙ୍କୁ ଦିଆଯିବା ବସ୍ତ୍ରାଦି
ଉପହାର—Presents of cloth etc given to
one's relatives on occasions of family-
ceremonies

**ବାନ୍ଧବୀ**—ଦେ. ବି. ସ୍ତ୍ରୀ—(ବାନ୍ଧବର ଓଡ଼ିଆ ସ୍ତ୍ରୀଲିଙ୍ଗ)-ସ୍ତ୍ରୀ; ପ୍ରାଣସଙ୍ଗିନୀ—
Bāndhabī **बंधुआ** Wife; beloved woman

ଜୀବ ବାନ୍ଧବୀ ରେ । ପ୍ରାଣ ବାନ୍ଧବୀ ରେ ! ତୋ ବିନା ମୋତେ ଅନ ।
କବିସୂର୍ଯ୍ୟ, ସଙ୍ଗୀତ ।

**ବାନ୍ଧ ମାର**—ଦେ. ବି—(ସହଚର ଶବ୍ଦ) (ସଂ. ବନ୍ଧନ+ମାରଣ)—
Bāndha māra କୌଣସି ବ୍ୟକ୍ତିଙ୍କୁ ବାନ୍ଧିବା ଓ ମାରିବା—
**बाँधमार** Binding and beating a person.

**ବାନ୍ଧି**—ଦେ. ବି—(ପାନବରଜୀ ଭାଷା)—ପ୍ରଥମେ ପାନ ଲଗା ହେବା
Bāndhi ଦୂବିଙ୍କୁ ପାନ ଲତା ଯୋଡାଯିବା ପାଇଁ ବରଜ ମଧ୍ୟରେ ଦିଆ ଯିବା ହୁଡ଼ା—The low ridges raised inside a betel plantation on which bitel creepers are first planted.

**ବାନ୍ଧିବା**—ଦେ. କ୍ରି—(ସଂ. ବନ୍ଧ୍ ଧାତୁ)—୧ । ରଜ୍ଜୁଦ୍ୱାରା ବନ୍ଧନ
Bāndibā କରିବା—1. To tie; to bind with a rope.
बाँधा ୨ । ଶୃଙ୍ଖଳିତ କରିବା—2. To enchain. ୩ । ନୌକାଦିକୁ
**बाँधना** କୂଳ ନିକଟସ୍ଥ ବୃକ୍ଷ ବା ଖୀଲା ସହିତ ଦଉଡ଼ିଦ୍ୱାରା ସଂଯୋଗ
[ବନ୍ଧାଯି(ହେ)ବା—କର୍ମବାଚ୍ୟରୂପ] କରିବା; ଖଟାଇବା—
(ବନ୍ଧା[କେ]ଇବା—ଣିଜନ୍ତରୂପ) 3. To tie up a boat to a peg or a tree. ୪ । ଗଣ୍ଠିଲି କରିବା; ବୋକଗ୍ କରିବା; ଲୁଗାପଟା ବା କୌଣସି ପଦାର୍ଥକୁ ଗଣ୍ଠିଲିରେ ଏକତ୍ର କରିବା—4. To tie up a thing into a packet; to pack up.

କାନ୍ଧ୍ ଥା, ଯାହା ପାଇଥିବୁ ବାନ୍ଧ୍ ଥା—ଢଗ ।

୫ । ଜଟ ପାଣ୍ଡିବା; କେଶ ରଚନା କରିବା; ମଥାର କେଶଗୁଚ୍ଛକୁ ଫିତା ଆଦିଦ୍ୱାରା ବନ୍ଧନ କରି ସଜ୍ଜିତ କରିବା—5. To tie the hair of the head into a knot or chignon or plait.

ବହୁ ଜାଣିଲେ କଥା ସୁନ୍ଦର
ବାନ୍ଧି ଜାଣିଲେ ମଥା ସୁନ୍ଦର—ଢଗ ।

୬ । ଗୋରୁ ଆଦି ପଶୁଙ୍କୁ ବା କୌଣସି ଜୀବଙ୍କୁ ନେଇ ଖୁଣ୍ଟରେ ଖଟାଇବା—6. To tie up cows etc to a peg or post.

ବାନ୍ଧିଲା କଳଙ୍କା ପୁଅଙ୍କ ବଇର—ଢଗ ।

୭ । ପଦ ବା ଗୀତ ଆଦି ରଚନା କରିବା—7. To compose a song. ୮ । ଯୁଦ୍ଧ କରିବା ପାଇଁ ଦେହକୁ ଖଡ୍ଗ, କାଛ ଆଦିଦ୍ୱାରା ସନ୍ନଦ୍ଧ କରିବା—8. To arm one's self with (weapons).

ହାତୀ ଲଢାଇବାକୁ ବାନ୍ଧିଲେ କାଛ—
କବିସୂର୍ଯ୍ୟ, କବିତା ।

୯ । ବନ୍ଧ ପକାଇବା; ବନ୍ଧ ପକାଇ ଜଳରୋଧ କରିବା; ସେତୁ ନିର୍ମାଣ କରିବା—9. To stop the flow of water by raising a dam; to build a dam.

ଦେଖ ସଖି । ତୋ ପାଇଁ ସମୁଦ୍ର ବାନ୍ଧିଛି—
କୃଷ୍ଣସିଂହ, ମହାଭାରତ ବନ ।

୧୦ । ବେହେଲା ସୀତାରଆଦି ଯନ୍ତ୍ରର ତାରକୁ ନିର୍ଦ୍ଦିଷ୍ଟ ସ୍ୱର ବାହାର କରିବା ପାଇଁ ସୁନିୟନ୍ତ୍ରିତ କରିବା—10. To bring an instrument to order for producing a proper tune; to tune a musical instrument. ୧୧ । ଅଟକାଇବା; ବାଧା ଦେବା—11. To restrain.

(ଯଥା—ଯେ କୁଳରୁ ବାହାରିବାକୁ ବସିବ ତାକୁ କିଏ ବାନ୍ଧି ରଖିବ । )

୧୨ । ଧନ ଆଦି ଲୁଗାର କାନରେ ସଂଗୃହୀତ କରିବା—12. To collect money or grains in a cloth or bag.

(ଯଥା—ମୁଁ ଟ୨୫୯ ବାନ୍ଧି ନିଲାମ ଡାକିବାକୁ ଆସିଛି । )

୧୩ । (ଲକ୍ଷଣାର୍ଥ) ରଜ୍ଜୁରେ ବାନ୍ଧିବାପରି ବଶୀଭୂତ କରିବା; ମୋହିବା—13. To bring a person under one's complete control.

ମାୟା ମୋହନ କଥା କହି
ଲକ୍ଷ୍ମୀର ମନ ସେ ବାନ୍ଧିଲ—ଜଗନ୍ନାଥ, ଭାଗବତ ।

୧୪ । କୌଣସି କାର୍ଯ୍ୟ କରିବାକୁ ବାଧ୍ୟ ବା ଜବରଦସ୍ତି କରିବା—14. To force or coerce a person to do a thing.

(ଯଥା—ଜମିଦାର ଧରିବାନ୍ଧି ମୋଠାରୁ ଗୋଟାଏ ଅଲେଖା କାଗଜରେ ସନ୍ତକ କରାଇ ନେଲେ । )

୧୫ । ଅବରୋଧ କରିବା; ବନ୍ଦ କରିବା—
15. To stop.

(ଯଥା—ମନ୍ତ୍ର ଓଷଦ କରି ତା ମୁହଁ କିଏ ବାନ୍ଧି ଦେଲାଣି । )

୧୬ । ଚଳୁଥିବା ନୌକା ବା କଳ ଗାଡ଼ିର ଗତିରୋଧ କରିବା—16. To stop the motion of a moving boat, steamer, train or motor.

୧୭ । (ଅକର୍ମକ କ୍ରିୟା) ତରଳ ବସ୍ତୁ ଘନରେ ପରିଣତ ହେବା; ଗୋଟା ବାନ୍ଧିବା—
17. To turn into clots; to become stiff; to coagulate.

(ଯଥା—ଏବେ ଭଲ ଗୁଣ ଦିନ ହେଲା ରୋଗୀର ମଳ ବାନ୍ଧିଲାଣି । )

୧୮ । ହାତୀ ଘୋଡ଼ା ଆଦି ପଶୁଙ୍କୁ ପୋଷିବା ବା ପାଳିବା—
18. To domesticate or maintain beasts.

ଷାଠିଏ ଟଙ୍କାର ବଳଦ ବାନ୍ଧି ନାଥେ ହେଲେ ହାତବର—ଢଗ ।

୧୯ । ପୁସ୍ତକର ଭିନ୍ନ ଭିନ୍ନ ପୃଷ୍ଠାକୁ ସୂତା ଦ୍ୱାରା ଅଟକାଇବା ବା ଗୁନ୍ଥିବା—19. To bind the pages of a book.
[ବାନ୍ଧି ଦେବା, ବାନ୍ଧି ପକା(କେ)ଇବା—ଅନ୍ୟରୂପ]

୨୦ । (ଯୋଜନା, ଦମ୍ଭ, ଆଶା, ମନସ୍ଥ) ମନରେ ସ୍ଥିର କରିବା—20. To settle; to resolve; to form in one's mind.

ବାନ୍ଧିଅଛି ମ୍ଲେଚ୍ଛ ମନେ ବଡ଼ ଆଶା
ଗଡିଛି ଅକାଶେ କନକ ଗଡ । ନନ୍ଦକିଶୋର, କୃଷ୍ଣକୁମାରୀ ।

୨୧ । କ୍ଷୁଦ୍ର ବସ୍ତୁମାନଙ୍କୁ ଏକତ୍ର କରି ଗୋଲା ବାନ୍ଧିବା— 21. To roll many small things into a ball.

( ଯଥା—ଲଡ଼ୁ ଦାନା ବାନ୍ଧିବା । )

୨୨ । ଅଳ୍ପ ମୂଲ୍ୟର ମୁଦ୍ରାମାନଙ୍କ ବଦଳରେ ଉଚ୍ଚତର ମୂଲ୍ୟର ମୁଦ୍ରା ପାଇବା— 22. To get coins of higher value in exchange for those of lower value.

[ ଦ୍ର—ଭାଙ୍ଗିବା—ଏହାର ବିପରୀତ । ]

୨୩ । (ଦେହକୁ) ବ୍ରହ୍ମଚର୍ଯ୍ୟ ଦ୍ୱାରା ଦୃଢ଼ ରଖିବା— 23. To keep ( one's body ) strong by observing continence.

ପ୍ରାଦେ. (ଗଞ୍ଜାମ) ବି—ଟଙ୍କା ଦାଖଲ କରିବା— To pay or deposit money.

( ଯଥା—ତାଙ୍କେ ଆଜ ଟ୍ରେଜରୀରେ ଦଶ ଟଙ୍କା ବାନ୍ଧିଲେ । )

**ବାନ୍ଧି ବୁନ୍ଧି**—ସଂ. କ୍ରି. ବିଣ (ବାନ୍ଧିବା ଓ ଧ୍ୱନ୍ୟନୁକରଣରେ ଗଠିତ ଇଙ୍ଗିର ସହଚର ବୁନ୍ଧିବା କ୍ରିୟାର ଦ୍ୱୟର ସମାପିକା ରୂପ କ୍ରି. ବିଣ ରୂପେ ବ୍ୟବହୃତ )—
Bāndhi bundhi
ବେଁଧେ ବୁଁଧେ
**बाँधबूँधकर**

୧ । ବହୁ ବସ୍ତୁ ଏକତ୍ର ବନ୍ଧାବନ୍ଧି କରି— 1. Tying up many things.

( ଯଥା—ମୁଁ ଏଠାରୁ ଲୁଗାପଟା ବାନ୍ଧିବୁନ୍ଧି ବାହାରିଲିଣି । )

୨ । ଉତ୍ତମ ରୂପେ ବନ୍ଧାବନ୍ଧି କରି— 2. Tightly or nicely tying up.

( ଯଥା—ପୁରୋହିତ ମହାପ୍ରଭୁ ନୈବେଦ୍ୟ ସାମଗ୍ରୀସବୁ ବାନ୍ଧିବୁନ୍ଧି ଗୋଟିଏ ଯାଜ୍ଞିକ ତିଆର କଲେଣି । )

୩ । ବନ୍ଧନ କାର୍ଯ୍ୟ ସମାପ୍ତ କରି— 3. Finishing the act of binding.

( ଯଥା—ମୁକୁଳା ବାଳତକ ବାନ୍ଧିବୁନ୍ଧି ଗୋଟିଏ ଜଟ ପାରି ଦେଲେ କେଡ଼େ ସୁନ୍ଦର ଦିଶନ୍ତା । )

[ ଦ୍ର—ତୁଳନା କର :—ଖାଇଖିଇ, ଦେଖିବାଖି, ଗୁଡ଼ିଗୁଡ଼ି, ମାରମୁର ଇତ୍ୟାଦି; କ୍ରିୟାର କ୍ରିୟାର ଏହି ଆକାର ଓ ପ୍ରୟୋଗ ଛଡ଼ା ସ୍ୱତନ୍ତ୍ର ବ୍ୟବହାର ନାହିଁ । ]

**ବାନ୍ଧି ମାରିବା**—ଦେ. କ୍ରି. ( ପ୍ରଥମେ ବାନ୍ଧିବା ପରେ ମାରିବା )—
Bāndhi māribā
ବେଁଧେ ମାରା
**बांध मारना**

କୌଣସି ବ୍ୟକ୍ତିକୁ ବା ଜୀବକୁ ବନ୍ଧନ ପୂର୍ବକ ପ୍ରହାର କରିବା—To beat a person or beast after binding him down.

ବାନ୍ଧି ମାରିଲେ ସେ, ଧରି ମାରିଲେ ସେ—ଭଗ ।

**ବାନ୍ଧି ଯିବା**—ଦେ. କ୍ରି—ବାନ୍ଧି ହେବା ୩ ଓ ୪ (ଦେଖ)
Bāndhi jibā — Bāndhi hebā 3 & 4 ( See )
ବେଁଧେ ଯାଓଯ଼ା
**बंधजाना**

**ବାନ୍ଧି ରଖିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ବା ବସ୍ତୁକୁ ଆବଦ୍ଧ କରିବା ବା ବନ୍ଦ କରି ରଖିବା—
Bāndhi rakhibā
ବେଁଧେ ରାଖା
**बांधकरके रखना**

1. To shut up a thing or person.

୨ । (ଲକ୍ଷଣାର୍ଥ) ଆପଣାର ସମ୍ପୂର୍ଣ୍ଣ ଅଧିକାରରେ ରଖିବା—2. (figurative) To keep a thing or person under one s complete control.

**ବାନ୍ଧି ହେବା**—ଦେ. କ୍ରି—୧ । ଶୃଙ୍ଖଳାବଦ୍ଧ ହେବା; ବନ୍ଧା ହେବା—
Bāndhi hebā
ବାଁଧା ହଓଯ଼ା
**बँधा होना**

1. To be bound up.

୨ । ଛନ୍ଦଣି ମନ୍ଦଣି ହେବା— 2. To be entangled.

୩ । (ତରଳ ବସ୍ତୁ) କଠିନୀଭୂତ ହେବା—3. To crystallise; to coagulate; to become solid.

୪ । ଆପଣା କାର୍ଯ୍ୟରେ ଅବଶ ହେବା; ଅଶକ୍ତ ହେବା; ଅଧିକରୁ ରୂପେ ତୃପ୍ତ ହୋଇ ବିରକ୍ତି ବୋଧ କରିବା— 4. To become incapable of further action; to be surfeited.

( ଯଥା—ଗୁଡ଼ାଏ ମିଠାଇ ଖାଇ ମୋ ମୁହଁ ବାନ୍ଧି ହୋଇ ଗଲାଣି । )

୫ । ଅନ୍ୟର ବଶୀଭୂତ ହେବା—5. To be under the full control of.

( ଯଥା—ଯାହାର ଦାନା ଖାଇବ ତା ପାଖରେ ବାନ୍ଧି ହୋଇ ପଡ଼ି ରହିବ । )

**ବାନ୍ଧୁ(ନ୍ଧେ)ଣୀ**—ଦେ. ବି. ( ସଂ. ବନ୍ଧନୀ )—୧ । ବନ୍ଧନ—
Bāndhu(ndhe)ṇi
ବାଁଧନ
**बंधनी**

1. Binding.

ଭୋର କରୁଣା ଆଜ୍ଞା ଶୁଣି
ଭେଟେ ସେ ସେହିରୂ ବାନ୍ଧେଣୀ ।
—ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୨ । ବନ୍ଧା ହେବା ଅବସ୍ଥା—2. State of being bound. ୩ । ଗ୍ରନ୍ଥି—3. Knot. ୪ । କାରାବନ୍ଧନ— 4. Confinement; imprisonment.

୫ । ବନ୍ଧନ ରଜ୍ଜୁ; କ୍ଷୁଦ୍ର ଦଉଡ଼ି—5. Small string.

୬ । ଛନ୍ଦଣୀ; ଛନ୍ଦ ଦଉଡ଼ି; ମେଣ୍ଢା ଓ ବାଛୁରୀ ଆଦିଙ୍କୁ ବାନ୍ଧିବାର କ୍ଷୁଦ୍ର ଦଉଡ଼ି—6. Tying string.

**ବାନ୍ନି**—ପ୍ରାଦେ. (ସମ୍ବଲପୁର; ବୌଦ୍ଧ) ବି.—(ତୁଳ. ହି. ବଢ଼ନୀ)—
Bānni

ଝାଡ଼ୁଣୀ ବା ଖଡ଼ିକା ମୁଠା—Broomstick.

**ବାପ୍‌ତା**—ବୈଦେ. ବି. (ଫା. ବାଫ୍‌ତା)—ଏକପ୍ରକାର ରେଶମ ମିଶା କାର୍ପାସ ବସ୍ତ୍ର—A kind of mixed stuff of cotton and silk.
Bāp-tā
ବାପ୍‌ତା
**बाफता**

(ବାପ୍ତା; ବାଫ୍‌ତା, ବାଫ୍ତା—ଅନ୍ୟରୂପ) [ ଦ୍ର—ଏଥିରେ ପାଟର ଟାଣି ଓ ସୂତାର ଭରଣୀ ଥାଏ । ]

**ବାପ୍‌ରେ**—ଦେ. ଅ.—( ସଂ. ବପ୍ତା+ସଂ. ଅରେ )—ବିସ୍ମୟ, ଭୟ, ମନସ୍ତାପ, ଯନ୍ତ୍ରଣା ପ୍ରଭୃତି ସୂଚକ ଚିତ୍କାର—An exclamation of surprize, fear, agony etc
Bāp-re
ବାପ୍‌ରେ
**बापरे**

(ବାପ୍, ବାପ୍‌ରେ ବାପ୍; ବାପ୍‌ଲେ—ଅନ୍ୟରୂପ)

**ବାପ**—ସଂ. ବି.—(ବପ୍ ଧାତୁ+ଭାବ. ଅ)—୧ । ମଞ୍ଜି ବୁଣିବା—
Bāpa

1. Sowing seed.

୨ । ଲୁଗା ବୁଣିବା—2. Weaving. ୩ । ନିଷେକ; ଗର୍ଭାଧାନ—3. The ceremony of putting

semen into the womb of the wife; impregnating. ୪ । ମୁଣ୍ଡନ; କ୍ଷୌର (ହ୍ରୁ. ଶ.)—4. Shaving. ୫ । ( +ଅଧିକରଣ. ଅ ) କ୍ଷେତ୍ର (ହ୍ରୁ. ଶ.)—5 Agricultural field; plot of cultivated land. ୬ । ( +କର୍ତ୍ତୃ. ଅ ) ବୀଜ ବୁଣିବା ବ୍ୟକ୍ତି—6. A sower of seeds.

বাপ **वाप; बाबा** ଦେ. ବି.—(ସଂ. ବପ୍ତ୍ର; ବପ୍ତ୍ରା=ଜନକ; ପିତା)- ୧ । ପିତା; ବାପା; ବାବା—1. Father.
୨ । ପିତୃ ସ୍ଥାନୀୟ ଗୁରୁଜନ—2. One's elder who is like one's father.

[ଦ୍ର—ଆପଣାଠାରୁ ଯୋଗ୍ୟତର ବା ପୂଜନୀୟ ବ୍ୟକ୍ତି ବା ଅଧିକ କ୍ଷମତାଶାଳୀ ବ୍ୟକ୍ତି ଅର୍ଥରେ ଏ ଶବ୍ଦ ବ୍ୟବହୃତ ହୁଏ ।]
(ଯଥା—ଆପଣଙ୍କ ହୁକୁମ ନ ମାନିବାକୁ ମୋ ବାପର ସାଧ୍ୟ ନାହିଁ—ଅର୍ଥାତ୍ ମୋ କଥା ଦୂରେ ଥାଉ, ମୋ ଅପେକ୍ଷା କ୍ଷମତାଶାଳୀ ବ୍ୟକ୍ତିର ମଧ୍ୟ ସାଧ୍ୟ ନାହିଁ ।]
୩ । ପ୍ରକୃତରେ ଯାହା ବୀର୍ଯ୍ୟରୁ ମାତୃଗର୍ଭରେ ମନୁଷ୍ୟ ଜନ୍ମେ—3. The real progenitor of a person, as opposed to the putative father.
ଚଉ ଜାଣେ ପାପ, ମା ଜାଣେ ବାପ—ଲୋ ।

বাবা **बाबा** ଦେ. ଅ.—ହେ ବତ୍ସ ! (ପୁତ୍ରସ୍ଥାନୀୟ ବ୍ୟକ୍ତି ପ୍ରତି ସ୍ନେହ ସମ୍ବୋଧନ)—An exclamation of fondness to one's younger.

বাবা **बाबा** ବିଣ.—ଶ୍ରେଷ୍ଠ; ଗରିଷ୍ଠ—Superior to; best of all.
ଅକ୍ଷ ଯେତେ ଛାପ । ଅନଙ୍ଗ ଦେବତା ସବୁର ବାପ ।
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି

ବାପ ଅଜା—ଦେ. ବି.—(ସଂ. ବପ୍ତ୍ର + ଆର୍ଯ୍ୟ)—୧ । ପିତୃପିତାମହ—1. Father and grandfather.
Bāpa ajā
୨ । ପୂର୍ବପୁରୁଷଗଣ—2. One's ancestors.
ବାପ ଗୋସେଇଁ ବାପ
ବାପ ଦଦା, ବାପଦାଦା } —ଅନ୍ୟରୂପ
ବାପ ବଡ଼ବାପ
বাপ দাদা **बाप दादा**

ବାପ ଅଜାଙ୍କ ନାଆଁ ଧରିବା—ଦେ. କ୍ରି.—ଅନ୍ୟ ବ୍ୟକ୍ତିର ପିତା ବା ପୂର୍ବପୁରୁଷଙ୍କ ନାମ ଧରି ଗାଳି ଦେବା—To abuse one by casting slur on one's father or ancestors.
Bāpa ajāṅka nā-āñ dhariba
বাপতোলা
**बापदादाका नाम लेना**
(ବାପ ନାଆଁ ଧରିବା, ବାପକୁ ଉଦ୍ଧାରିବା—ଅନ୍ୟରୂପ)

ବାପ ଅଜାଙ୍କ ନାଆଁ ପକା(କେ)ଇବା—ଦେ. କ୍ରି.—ମନ୍ଦ ବା ନିନ୍ଦିତ କାର୍ଯ୍ୟଦ୍ୱାରା ପିତୃ-ପିତାମହଙ୍କ ସୁନାମରେ କଳଙ୍କ ଲଗାଇବା—To cast a slur on one's own family reputation; to spoil the good name of one's ancestors by one's evil actions.
Bāpa ajāṅka nā-āñ pakā(ke)ibā
**बाप दादाका नाम डुबाना**

ବାପ ଅଜାଙ୍କ ନାଆଁ ବୁଡ଼ା(ଡ଼େ)ଇବା—ଦେ. କ୍ରି.—ଆପଣାର ଅଯୋଗ୍ୟତାଦ୍ୱାରା ବଂଶଗୌରବ ଲୋପ କରିବା—To cause the disappearance of one's family reputation by one's unfitness.
Bāpa ajāṅka nā-āñ burḍa(rḍe)ibā
[ ବାପ ଅଜାଙ୍କ ନାଆଁ ବୁଡ଼ା(ବେ)ଇବା — ଅନ୍ୟରୂପ ]
বাপদাদার নাম ডুবান

ବାପ ଅଜାଙ୍କ ନାଆଁ ରଖିବା—ଦେ. କ୍ରି.—ଆପଣାର ଯୋଗ୍ୟତା ବା ଭଲ କାର୍ଯ୍ୟଦ୍ୱାରା ବଂଶ ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବା—To maintain one's family reputation by one's good conduct.
Bāpa ajāṅka nā-āñ rakhibā

ବାପଅଜା ଚଉଦ ପୁରୁଷ—ଦେ. ବି.—ଆପଣାର ପିତୃ ପିତାମହ ପ୍ରପିତା-ମହ ଆଦି ସମସ୍ତ ପୂର୍ବପୁରୁଷ—One's ancestors beginning from one's father.
Bāpa ajā chauda purusha

ବାପ ଅମଲ—ଦେ. ବି.—ଆପଣା ପିତାଙ୍କ ଜୀବିତ କାଳ—Life-time of one's father.
Bāpa amaḷa
বাবার অমল **बाबाका अमल** (ବାପ କାଳେ, ଘୋଡ଼ା ଶାଳେ —ଲୋ)
(ବାପଙ୍କ ଅମଲ, ବାପ କାଳ—ଅନ୍ୟରୂପ)

ବାପକ—ସଂ. ବିଣ. ପୁଂ—( ବପ୍ ଧାତୁ ଣିଜନ୍ତ. ବାପି ଧାତୁ+କର୍ତ୍ତୃ. ଅକ )—୧ । ବପନ କାରୟିତା; ଯେ ଅନ୍ୟଦ୍ୱାରା ମଞ୍ଜି ବୁଣାଏ—1 Getting seeds sown by another. ୨ । ଯେ ଅନ୍ୟଦ୍ୱାରା ଲୁଗା ବୁଣାଏ—2. Getting a cloth woven by another.
Bāpaka
(ବାପିକା—ସ୍ତ୍ରୀ)

ବାପ କାଳିଆ—ଦେ. ବିଣ—୧ । ପିତାଙ୍କ ଅମଲର —1. Which had happened during the lifetime of one's father. ୨ । ପୁରାତନ—2. Old. ୩ । ମରହଟ୍ଟୀ—3. Archaic.
Bāpa kāḷiā
বাপকালী, বাপকেলে
**बाबाका अमलका**

ବାପ ଘର—ଦେ. ବି—ବଧୂର ପିତୃଗୃହ—The house of a bride's or woman's father.
Bāpa ghara
বাপের বাড়ি ପଥ ପଚ୍ଛ ବାପଘର ଯିବୁ
**पीहर; नैहर** ଅଭ ଅଯୋଧ୍ୟାକୁ ମନ ନ କରିବୁ—ଲୋ ।

ବାପ ଜନମ କଥା କହିବା—ଦେ. କ୍ରି. (ବ୍ୟଙ୍ଗ) (ଅସମ୍ଭବ କଥା କହିବା ବ୍ୟକ୍ତି ପ୍ରତି ପ୍ରଯୋଜ୍ୟ)—(ବାପର ବିଭା କଥା କହିବା—ଅନ୍ୟରୂପ) ଅସମ୍ଭବ କଥା କହିବା—To speak a thing which is impossible.
Bāpa janama kathā kahibā
বাপের জনম কথা বলা
**बापका जनमका बात बोलना**

ବାପ ଦଣ୍ଡ - ସ. ବି. ( ବାପ=ବୟନ +ଦଣ୍ଡ=ଯଷ୍ଟି )—ବୟନ ଦଣ୍ଡ; ଯେଉଁ ଦଣ୍ଡଦ୍ୱାରା ଲୁଗା ବୁଣାଯାଏ; ନରିକ୍; ତନ୍ତୁକାଠ—The weaver's yard or beam.
Bāpa daṇḍa

ବାପଧନ—ଦେ. ବି—ପିତୃଧନ; ପୈତୃକ ସମ୍ପତ୍ତି; ଯାହା ସ୍ୱୋପାର୍ଜିତ ଧନ ନୁହେଁ—Father's acquisition; ancestral property; not one's acquired property.
Bāpadhana
**बपौती; बपोती**
ଅ—(ବାତ୍ସଲ୍ୟ ସମ୍ବୋଧନ) ହେ ବତ୍ସ—An address of fondness to one's youngers.
**बाबा** বাবা

**ବାପନ**—ସ. ବି. ( ବପ୍ ଧାତୁ ଣିଚ୍=ବାପି ଧାତୁ+ଭାବ. ଅନ )—
Bāpana ୧ । ଅନ୍ୟଦ୍ୱାରା କ୍ଷେତ୍ରରେ ମଞ୍ଜି ବୁଣାଇବା—1. Causing to be sown. ୨ । ଅନ୍ୟଦ୍ୱାରା କ୍ଷୌର କରାଇବା—2. Causing to be shaven. ୩ । ଅନ୍ୟଦ୍ୱାରା ଲୁଗା ବୁଣାଇବା—3. Causing cloth to be woven.

**ବାପ ନାଆଁ ପଚାରିଲେ ଆସିବ ନାହିଁ**—ଦେ. (ବାକ୍ୟ)—(ଜାରଜ ବ୍ୟକ୍ତି
Bāpa nāān̐ pachārile āsiba nāhin̐ ପ୍ରତି କଥ୍ୟ
ବାପ ନାଆଁ ଆସିବ ନାହିଁ
ବାପ ନାଆଁ ପଇଟିବ ନାହିଁ
ବାପ ନାଆଁ କଢେଇ ପାରିବ ନାହିଁ
ବାପ ନାଆଁ ଜଣା ନାହିଁ } ଅନ୍ୟରୂପ
ଘୃଣାର୍ଥରେ ବ୍ୟବହୃତ ବାକ୍ୟ—(ଅର୍ଥାତ୍ ଅମୁକ ଜାରଜ ଅଟେ)—A sentence used in rebuking
**वावाका नामभी नहो वताना** a person, telling him thereby that he is a bastard.

**ବାପ ପୁଅ**—ଦେ. ବି. (ଦ୍ୱନ୍ଦ୍ୱ ଶବ୍ଦ) (ସ.ବପ୍ର+ପୁତ୍ର)—ପିତା ଓ ପୁତ୍ର—
Bāpa pua বাপবেটা **बावाबेटा** Father and son.

**ବାପ ବୟସୀ**—ଦେ. ବିଣ—ବୟସରେ ପିତାଙ୍କର ସମକକ୍ଷ (ବ୍ୟକ୍ତି)—
Bāpa bayasī (a person) Fit to be one's father in
(ବାପ ବୟସିଆ—ଅନ୍ୟରୂପ) age; of the age of one's
**बापके उमरका** father ( and so deserving of one's respect ).

**ବାପ ମା**—ଦେ. ବି (ଦ୍ୱନ୍ଦ୍ୱ ଶବ୍ଦ) ( ସ. ବପ୍ର+ମାତା )—ପିତା ଓ
Bāpa mā ମାତା—One's father and mother.
(ବାପ ମାଆ; ବାପ ମାଏ—ଅନ୍ୟରୂପ) କୋଡ଼ରେ ସାପ ଧରି ଶୋଇବା ପରାଏ
মা বাপ **मा बाप** ଭୂମ୍ଭଙ୍କୁ ରଖିଥିଲେ ଅମ୍ଭ ବାପ ମାଏ ।
କୃଷ୍ଣସିଂହ. ମହାଭାରତ ସଭା ।

**ବାପ ମୋର**—ଦେ. ଅ—ବାପଧନ ( ଦେଖ )
Bāpa mora বাবা আমার **बाबा मेरा** Bāpadhana (See)

**ବାପର ପୁଅ**—ଦେ. ବି—୧ । ପିତାର ସୁସନ୍ତାନ—1. A good son
Bāpara pua of a father. ୨ । ଯୋଗ୍ୟ ପିତାଙ୍କର ଯୋଗ୍ୟ
বাপের বেটা ସନ୍ତାନ—2. A fit son of a fit father.
**वापका लडका** ୩ । ଯେ ଜାରଜ ସନ୍ତାନ ନୁହେଁ; ପିତାର ଔରସ ସନ୍ତାନ—2. The begotten son of a father (not a bastard).
(ଯଥା—ତୁ ଯେବେ ବାପର ପୁଅ ହୋଇଥିବୁ ତେବେ ବଂଶ ମର୍ଯ୍ୟାଦା ଠିକ ରଖିବୁ ।)

**ବାପର ବିଭାଘର ଦେଖା(ଖେ)ଇବା**—ଦେ. କ୍ରି. (ଗାଳି)—ଜନନୀର
Bāpara bibhāghara dekhā(khe)ibā ମୃତ୍ୟୁ କାମନା ସୂଚକ
বাপের বিএ দেখান ଗାଳି—To wish a person to see his
[ବାପର ହୋମ ଘର ଦେଖା(ଖେ)ଇବା—ଅନ୍ୟରୂପ) father's marriage (after the death of the person's mother).

**ବାପ ଶ୍ରାଦ୍ଧ**—ଦେ. ବି—୧ । ପିତୃ ଶ୍ରାଦ୍ଧ—1. Annual offering of
Bāpa śrāddha oblations to one's deceased father.
পিতৃশ্রাদ্ধ **पितृश्राध** ୨ । କୌଣସି ଅପରିହାର୍ଯ୍ୟ କର୍ତ୍ତବ୍ୟ—2. Any unavoidable duty.

**ବାପର ଶ୍ରାଦ୍ଧ କରିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର
Bāpara śrāddha karibā ପିତୃ ପିତାମହଙ୍କ ନାମ ଧରି ଗାଳି
ବାପ ଅଜାଙ୍କ ଶ୍ରାଦ୍ଧ କରିବା
ବାପ ଦାଦାଙ୍କ ଶ୍ରାଦ୍ଧ କରିବା } ଅନ୍ୟରୂପ ଦେବା—1. (figurative) To call
বাপের শ্রাদ্ধ করা names to a person's ancestors.
**बापका श्राध करना** ୨ । (ଲକ୍ଷଣାର୍ଥ) କୌଣସି ଅପରିହାର୍ଯ୍ୟ ବା ଅବଶ୍ୟ କର୍ତ୍ତବ୍ୟ କର୍ମ କରିବା—2. (figurative) To perform some unavoidable act.

**ବାପର ସାଧ**—ଦେ. (ବାକ୍ୟ)—ନିଜ କ୍ଷମତାର ବହିର୍ଭୂତ କର୍ମ (ଏପରି କି,
Bāpara sādhya ପିତାଙ୍କ କ୍ଷମତାର ବହିର୍ଭୂତ କାର୍ଯ୍ୟକୁ ଲକ୍ଷ୍ୟ
বাপের সাধ্য କରି ବ୍ୟବହୃତ )—An expression used to
**बापका सधर** denote that a thing is beyond one's power (literally beyond even one's father's power ).
(ଯଥା—ମୁଁ ତାହା ନ କରିବାକୁ ମୋ ବାପର ସାଧ୍ୟ ଅଛି ?)

**ବାପ ସୁଆ(ହା)ଗିଆ**—ଦେ. ବିଣ—ଅତ୍ୟଧିକ ପିତୃ ସ୍ନେହୀ—
Bāpa suā(hā)giā Excessively fond of ones father
[ବାପସୁଆ(ହା)ଗୀ(ଗେଇ) – ସ୍ତ୍ରୀ] (ବାପସୁଆ(ହା,)ଗି—ଅନ୍ୟରୂପ)

**ବାପ ସୋରିଆ**—ଦେ. ବିଣ. ( ସ. ବପ୍ର+ସ୍ନେହ )—
Bāpa soriā ପିତୃସ୍ନେହୀ—Loving like a son.
[ ଦ୍ର—ଏପରି ବାପ ସୋରିଆ ରାଜାଙ୍କୁ ପୋଲିସ ଖୁବ୍ ଅଳ୍ପ ଦେଖାଯାନ୍ତି । ଦୈନିକ ସମାଜ । ]

**ବାପା**—ଦେ ବି. ଓ ଅ.—(ସ. ବପ୍ର)—ବାପ (ଦେଖ)
Bāpā Bāpa (See)
ପ୍ରାଦେ. (ପୁରୀ) ବି. (ବ୍ରାହ୍ମଣ ସମାଜରେ ପ୍ରଚଳିତ)—
ପିତାମହ—Paternal grand-father.
[ ଦ୍ର—ପୁରୀ ଜିଲ୍ଲା ଓ କଟକ ଜିଲ୍ଲାର କେତେକାଂଶର ବ୍ରାହ୍ମଣମାନେ ପିତାଙ୍କୁ ନନା ଓ ପିତାମହଙ୍କୁ ବାପା, ମାତାଙ୍କୁ ବୋଉ ଓ ପିତାମହୀଙ୍କୁ ମାଆ ବୋଲି ଡାକନ୍ତି । କଟକ ଜିଲ୍ଲାର ଅବଶିଷ୍ଟାଂଶ ଓ ବାଲେଶ୍ୱର ପ୍ରଭୃତିରେ ପିତାଙ୍କୁ ବାପା ଓ ମାତାଙ୍କୁ ମା ବୋଲି ଡାକନ୍ତି ।]

**ବାପା ବଡ଼ବାପା**—ଦେ. ବି—୧ । ପିତୃପିତାମହ—1. Father and
Bāpā bar̤dabāpā grandfather. ୨ । ପିତା ଓ
(ବାପା ବଡ଼ାପା—ଗ୍ରାମ୍ୟରୂପ) ଜ୍ୟେଷ୍ଠତାତ—2. Father and his elder brother.

**ବାପା(ପ୍ପା) ରାଓ**—ଦେ. ବି. (ନାମ)—ମେବାରର ରାଜପୁତ ରାଣାମାନଙ୍କ
Bāpā(ppā) rāo ଆଦି ପୁରୁଷ—Name of a Rajput king, the founder of the Rana dynasty of a Mewar.
[ ଦ୍ର—ରାଜପୁତାନାରେ ପ୍ରଚଳିତ ପୁରାଣ ପ୍ରବାଦରୁ ଜଣାଯାଏ ଯେ ବଲ୍ଲଭୀ ବଂଶର ମହାରାଜ ଗୁହାଦିତ୍ୟଙ୍କର ଏ ଅଷ୍ଟମ ବଂଶଧର ନାଗାଦିତ୍ୟଙ୍କ ପୁତ୍ର ଥିଲେ । ଏ ଶିଶୁ ଥିବା

ଅବସ୍ଥାରେ ଏହାଙ୍କ ପିତାଙ୍କୁ ଭିଲମାନେ ହତ୍ୟା କରିଥିଲେ ଓ ଏହାଙ୍କ ରକ୍ଷଣାବେକ୍ଷଣର ଭାର ଏହାଙ୍କ ମାତା ଓ ଜଣେ ବ୍ରାହ୍ମଣ ପୁରୋହିତ ଗ୍ରହଣ କରିଥିଲେ । ଏ ପିଲାଦିନେ ଜଣେ ବ୍ରାହ୍ମଣର ଗାଈ ଚରାଉଥିଲେ; ସେହି ଅବସ୍ଥାରେ ଏ ହାରୀତ ନାମକ ଋଷିଙ୍କୁ ଭେଟିଲେ ଓ ତାଙ୍କଠାରୁ ଶିବଦୀକ୍ଷା ଗ୍ରହଣ କରି 'ଏକଲିଙ୍ଗ' ନାମ କଶିବିଶ୍ୱଗ୍ରହଙ୍କୁ ପୂଜା କଲେ । ଏ ଚିତୋରକୁ ଆସି ସେଠାରେ ରାଜ୍ୟସ୍ଥାପନ କଲେ । ଏ ମେବାର ରାଜବଂଶର ଆଦି ପୁରୁଷ ଥିଲେ । ଟଡ୍ ସାହେବ ଏହାଙ୍କ ଜନ୍ମକାଳ ୭୪୪ ଖ୍ରୀଷ୍ଟାବ୍ଦ ଥିବାର କଳ୍ପନା କରନ୍ତି—ହି. ଶ. ]

ବାପି(ପୀ)—ସଂ. ବି. (ବପ୍ ଧାତୁ=ବୁଣିବା+ଅଧିକରଣ. ଇ; ଈ; ଯହିଁରେ Bāpi(pī) ପଦ୍ମାଦି ବପନ କରାଯାଏ)—୧ । ଦୀର୍ଘିକା; ପୋଖରୀ; (ବାପିକା—ଅନ୍ୟରୂପ) ଦୀଘୀ; ଚୂରକୋଣିଆଁ ଲମ୍ବ ପୋଖରୀ. ଜଳାଶୟ—1. Tank; pool; an oblong pond; ୨ । ବାଓ୍ୱୀ; ଚତୁଷ୍କୋଣ ପ୍ରସ୍ତର ନିର୍ମିତ ବୃହତ୍ କୂପ—2 A big square well with masonry walls.

ବାପିତ—ସଂ. ବିଣ. (ବାପ+ଇତ ବା ବପ୍ ଧାତୁ ଣିଜନ୍ତ ବାପି ଧାତୁ+ Bāpita କର୍ମ. ତ)—୧ । (ମଞ୍ଜି) ବୁଣାଯାଇ ଥିବା—1. Sown ୨ । (ଲୁଗା) ବୁଣା ଯାଇଥିବା—2. Woven. ୩ । ମୁଣ୍ଡିତ—3. Shaven.

ବାପୁ—ଦେ. ଅ. (ହିନ୍ଦୀରୁ ଅନୁକୃତ)—୧ । ପିତାଙ୍କ ପ୍ରତି ସମ୍ବୋଧନ-Bāpu 1. A form of address to father. ୨ । ବାତ୍ସଲ୍ୟାର୍ଥ बापू ସମ୍ବୋଧନ; ହେ ବତ୍ସ ! ବାବୁ !—2, A form of address **बापु** to youngers.

[ ଦ୍ର—ମହାତ୍ମା ଗାନ୍ଧୀଙ୍କୁ ତାଙ୍କର ଅଧିକାଂଶ ଅନୁଚର ଓ ଭକ୍ତ ଏହି ନାମରେ ସମ୍ବୋଧନ କରନ୍ତି । ]

ବାପୁ(ପ, ପେ)ଡ଼ା(ଡ଼ି)—ଦେ. ବି. ପୁଂ. ( ସହାନୁଭୂତିସୂଚକ; ଅନ୍ୟ ଶବ୍ଦ Bāpu(pa, pe)rdā(rdi) ସଙ୍ଗେ ବ୍ୟବହୃତ)—୧ । ଅନନ୍ୟୋପାୟ ବ୍ୟକ୍ତି; ବିଚାରା; ନିବିଚାର; ମୂର୍ଖ; ନିର୍ବୋଧ—1. (used in pity) The poor being.

(ବାପୁ[ପ, ପେ]ଡ଼ୀ—ସ୍ତ୍ରୀ)
बेचारा **बापुरा**

> ୪ ଯକାଶ୍ର ଦର୍ଯ୍ୟା ବସ୍ତ୍ର ଦେଶ୍ରେ କାନ୍ତ
> ପିନ୍ଧି କରି ରହିଛି ଦୁଃଖେ ସେ ବାପୁଡାନ୍ତ ।
> କୃଷ୍ଣସିଂହ. ମହାଭାରତ ବନ ।

୨ । ଉତ୍ତମ ବ୍ୟକ୍ତି—2. A good soul.

> ଯୁଧିଷ୍ଠିର ରଜା ତ ଧାର୍ମିକ ବାପୁଡ଼ା
> ଲେଉଟିଲେ ବାସେ ଫୁଲଇ କାଶୀ ପୁଡା । କୃଷ୍ଣସିଂହ. ମହାଭାରତ ବନ ।

୩ । ( ତୁଚ୍ଛାର୍ଥକ ) ନଗଣ୍ୟ ବ୍ୟକ୍ତି—3. A man of straw.

> ବନ୍ଧୁ ମୁହିଁରେ ରହି କଲୁଆ ବାପୁଡ଼ା
> ଦେହର ପାଣିଯାକ ଚକାଇଲା ଝାଡ଼ି—
> କୃଷ୍ଣସିଂହ. ମହାଭାରତ. ଶାନ୍ତି ।

ବାପୁରା—ପ୍ରାଦେ. (ଗଡ଼ଜାତ) ବି—( ତୁଲ. ହି. ବାପୁରା )—ବାପୁଡ଼ା Bāpurā (ଦେଖ)—Bāpurdā (See).

ବାପୂଦେବ ଶାସ୍ତ୍ରୀ—ଦେ. ବି. ( ନାମ )—ପ୍ରସିଦ୍ଧ ମହାରାଷ୍ଟ୍ରୀୟ ବ୍ରାହ୍ମଣ Bāpūdeba śāstri ପଣ୍ଡିତ—Name of a Marhatta Brāhmaṇa Pandit.

[ ଦ୍ର—ଏ ୧୮୨୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଏ ଗଣିତ ଶାସ୍ତ୍ରରେ ଅତ୍ୟନ୍ତ ନିପୁଣ ଥିବାରୁ କାଶୀର ସଂସ୍କୃତ କଲେଜରେ ରେଖା ଗଣିତର ଅଧ୍ୟାପକ ଓ ପରେ ଗଣିତ ଅଧ୍ୟାପକ ହୋଇଥିଲେ । ଏ ସଂସ୍କୃତ ଓ ହିନ୍ଦୀଭାଷାରେ ରେଖାଗଣିତ, ତ୍ରିକୋଣ-ମିତି ଆଦି ଅନେକ ଶାସ୍ତ୍ର ରଚନା କରିଥିଲେ । ଇଂରେଜୀ ନାବିକ ପଞ୍ଜିକା ଅବଲମ୍ବନ କରି ଏ ସଂସ୍କୃତ ପଞ୍ଚାଙ୍ଗ ରଚନା କରିଥିଲେ । ଏହାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଦର୍ଶନରେ ମୁଗ୍ଧ ହୋଇ ଗଭର୍ଣ୍ଣମେଣ୍ଟ ଏହାଙ୍କୁ ସି. ଆଇ. ଇ ( C. I. E. ) ଓ ମହାମହୋପାଧ୍ୟାୟ ଉପାଧି ଦେଇଥିଲେ । ଏ ଇଂଲଣ୍ଡର ଓ କଲିକତାର ଆସିଆଟିକ୍ ସୋସାଇଟିର ଏବଂ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ସଭ୍ୟ ହୋଇଥିଲେ । ଏହାଙ୍କର ପ୍ରକୃତ ନାମ ନୃସିଂହ ଶାସ୍ତ୍ରୀ । ]

ବାପ୍ତା(ଫ୍ତା)—ବୈଦେ. ବି—(ଫା. ବାଫ୍ତା)—୧ । ରେସମର ଟାଣୀ ଓ Bāptā(phtā) ସୂତାର ଭରଣୀରେ ବୁଣା ଏକପ୍ରକାର ଲୁଗା—बाफ्ता 1. A cloth woven with silken warp and **बाफता** cotton woof. ୨ । ବୁଟାଦାର ବା ସୂଚିକର୍ମଯୁକ୍ତ ଏକପ୍ରକାର ରେସମ ଲୁଗା—2. A kind of embroidered silken cloth.

ବାପ୍ୟ—ସଂ. ବି—୧ । (ବାପୀ+ଯ)—ବାଓ୍ୱିର ଜଳ (ହି. ଶ) Bāpya 1. Water from a wide masonry well. ୨ । (ବପ୍ ଧାତୁ ଣିଚ, ବାପି ଧାତୁ+କର୍ତ୍ତ୍ରୀ. ଯ)—ବୁଆ ଧାନ; ଯେଉଁ ଧାନ ବିହନ ବୁଣାଯାଇ ଉଠିଥାଏ (ହି. ଶ)—2. Paddy grown by sowing.

ବାଫୀ—ଦେ. ବି. ( ସଂ. ବାପୀ )—ବାଓ୍ୱୀ—A big square well Bāphi **बाउली, बावली** with masonry walls.

> ରତନ ଯୁତ ଦିବ୍ୟ ଘରନ୍ତ ମିଳାଇ
> ଘର ଭିତରେ ବାଫୀ କୂପ ଶୋଭା ଥାଇ ।
> କୃଷ୍ଣସିଂହ, ମହାଭାରତ. ଅନୁଶାସନ ।

ବାବ—ଦେ. ବି—ବବୁର ( ଦେଖ ) Bāba Babura ( See )

ବାବତ୍(ତ)—ବୈଦେ. ବିଣ. (କଚେରିଆ) (ଆ. ବାବତ୍=ସମ୍ବନ୍ଧ)—Bābat(ta) ୧ । ସମ୍ବନ୍ଧୀୟ—1. Pertaining to. ୨ । ଯଥାକ୍ରମ; କ୍ରମିକ—2. Successive; respective.

ବାବଦ୍, ବାବୁତ୍, ବାବୁଦ୍ } ଅନ୍ୟରୂପ
बाबत् **बाबत**

ବି—୧ । ସମ୍ପର୍କ; ସମ୍ବନ୍ଧ—1. Connection. ୨ । କୌଣସି ବିଷୟ—2. Head; item; any matter. ୩ । ହିସାବ—3. Account

बाबत् **बाबत्**

[ ଦ୍ର—ଏଥିର ସାଙ୍କେତିକ । ବା । ବିମ୍ବା । ବା, । ]

ଅ—୧ । ଅମୁକ ବିଷୟରେ—1. In respect of. ୨ । ଅମୁକ ସମ୍ପର୍କରେ—2. In connection with.

ବାବତ ବାବତ କରି—ଦେ. କ୍ରି. ବିଣ. (କଚେରିଆ)—Bābata bābata kari ୧ । ଯଥାକ୍ରମରେ; ଭିନ୍ନ ଭିନ୍ନ କରି; बाबत् बाबत् ଭିନ୍ନ ଭିନ୍ନ ହୋଇ—Respectively; separately; in separate blocks; item by item. **बाबत् बाबत् करके**

୪ । ଭିନ୍ନ ଭିନ୍ନ ଶୀର୍ଷକରେ—4. Under different headings or groups.

**ବାବତ ବାବତ କରିବା**—ଦେ. କ୍ରି (କଟକିଆ)—ଭିନ୍ନ ଭିନ୍ନ ବା ପୃଥକ୍ Bābata bābata karibā ପୃଥକ୍ କରିବା—To separate **बाबत बाबत करना** into different groups, heads or বাবৎ বাবৎ করা items

**ବାବଦୂକ**—ସଂ. ବିଣ. ପୁଂ. (ବଦ୍ ଧାତୁ ଯଙ୍ ଲୁଗନ୍ତ ଅର୍ଥାତ୍ ଅତିଶୟାର୍ଥେ Bābadūka ଦ୍ୱିତ୍ୱ—ବାବଦ୍ ଧାତୁ=ଅତିଶୟ କହିବା ବା ବକିବା +ଊକ; ଅଧିକ ବକିବା ଯାହାର ସ୍ୱଭାବ)—୧ । ବାଚାଳ; ଗପୁଡ଼ି—1. Talkative; babbling; garrulous. ୨ । ବକ୍ତୃତ୍ୱ ସମ୍ପନ୍ନ—2. Eloquent (Apte). ୩ । ଶାସ୍ତ୍ରଜ୍ଞାନ ସମ୍ପନ୍ନ ହୋଇଥିବାରୁ ଯୁକ୍ତିଯୁକ୍ତ ଆଲୋଚନାକାରୀ (ବ୍ୟକ୍ତି)—(ପ୍ରକୃତିବାଦ)—3. Learned in the scriptures and reasoning matters elaborately.

**ବାବନ**—ଗ୍ରା. ବି.—(ସଂ. ବାମନ)—ବାମନ (ଦେଖ) Bābana Bāmana (See)

ଦେ. ବି. ଓ ବିଣ.—ବାଆନ (ଦେଖ)—Bā—āna (See)

**ବାବନା ଭୂତ**—ଦେ. ବି.—୧ । ଭୂତ— Bābanā bhūta 1. A ghost.

୨ । ଭୂତ ପରି ବୁଲୁଥିବା ବ୍ୟକ୍ତି—2. A wanderer; a wandering person; a person stalking like a ghost. ୩ । ଅମୋଘ ପ୍ରେତ ପରି ଅଥିର ଲୋକ—3. A restless person (like a spirit). ୪ । ଜଗନ୍ନାଥଙ୍କର ରଥଯାତ୍ରା ବେଳେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଗୁଣ୍ଡିଚା ଘରକୁ ଗଲେ ସେହି ଦେଉଳକୁ ଜଗି ରହିବା କଳ୍ପିତ ଭୂତ—4. The imaginary spirit which guards the Gundichā house during Rath Jatra festival when Jagannāth, Balabhadra and Subhadrā resort to and occupy that place.

**ବାବର୍**—ବୈଦେ. ବି. (ନାମ)—ଭାରତର ପ୍ରଥମ ମୋଗଲ ସମ୍ରାଟ— Bābar The first Moghal Emperor of India. बाबर [ ଏ—ଏ ତୈମୁରଙ୍କର ବଂଶଧର ଥିଲେ । ୧୫୨୬ বাবর ଖ୍ରୀଷ୍ଟାବ୍ଦରେ ପଠାଣ ସମ୍ରାଟ ଇବ୍ରାହିମ ଲୋଦିଙ୍କୁ ଏ ପ୍ରଥମ ପାନିପଥ ଯୁଦ୍ଧରେ ପରାସ୍ତ କରି ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ । ପରେ ରାଣା ସଂଗ୍ରାମ ସିଂହ ଏହାଙ୍କୁ ଭାରତରୁ ତଡ଼ାଇବା ପାଇଁ ଚେଷ୍ଟା କରୁଥିଲେ । ସିକ୍ରିଠାରେ ୧୫୨୭ଖ୍ରୀଷ୍ଟାବ୍ଦରେ ବାବର ଓ ରାଜପୁତମାନଙ୍କ ମଧ୍ୟରେ ଯୁଦ୍ଧ ହେଲା; ତହିଁରେ ସଂଗ୍ରାମ ସିଂହ ପରାସ୍ତ ହେଲେ ଓ ବାବରୁ ସ୍ଥାୟୀଭାବରେ ମୋଗଲ ସମ୍ରାଟ ହେଲେ । ସେ ୧୫୩୦ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ । ]

**ବାବର୍ ନେ(ଲେ)ଟ୍**—ବୈଦେ. ବି.—(ଇଂ. ବବିନେଟ୍)—ମଶାରି ଅବ Bābar-ne(le)t ପାଇଁ ବ୍ୟବହୃତ ସରୁ ସରୁ ଛିଦ୍ରଯୁକ୍ତ ଜାଲି କନା- बाबिनेट Bobbinet; a stuff of net cloth used for **बॉबिनेट** making mosquito curtains.

**ବାବରା**—ଦେ. ବିଣ. ( ସଂ. ଯାଯାବର )—୧ । ବାଉଁଳା; ଯାଯାବର— Bābarā 1. Wandering. ୨ । ସ୍ଥିରତାବର୍ଜିତ— **बावरा** 2. Unsettled; out of joint.

ଜାଲ ହେଲ ବାବରା—ଡାକର ତାଲ ଗହଳ,
ବ୍ରାହ୍ମଣଙ୍କୁ ଜାବଡ଼ା—ଡଗ ।

୩ । (ସଂ. ବାତୁଳ) ବାତୁଳ—3. Mad.

**ବାବ(ବେ)ଲ୍ ମାଣ୍ଡ(ଣ୍ଡେ)ବ୍**—ବୈଦେ. ବି. ( ଫା. ନାମ )—ଆରବ Bāba(be)l mānda(nde)b ଉପସାଗର ଓ ଲୋହିତ ସାଗର বাবল মাণ্ডেব ମଧ୍ୟରେ ଥିବା ପ୍ରଣାଳୀ—The straits of **बाबेल मैंडेब** Bab-el-mandeb between the Arabian Sea and the Red Sea.

**ବାବଲ**—ଦେ. ବି—ଶରବିଶେଷ— Bābala Name of an arrow.

ବାବଲ ବ୍ରାଣୋତ୍ତମ ପ୍ରୟୋଗେ କେଉଁଭଳ
ଚାଉରମ କଲେ ଉପୁର । ଉଷ୍ଟ. ବୈଦେହୀଶ ବିଳାସ ।

**ବାବା**—ବୈଦେ. ବି. ପୁଂ. (ତୁର୍କ ଦେଶୀୟ ଭାଷା)—୧ । ବାପ (ଦେଖ) Bābā 1. Bāpa (See) ୨ । (ପୁଂ ଓ ସ୍ତ୍ରୀ) ( ଆୟାମାନଙ୍କ ଭାଷା ) ସାହେବମାନଙ୍କ ଶିଶୁ ସନ୍ତାନ—2. A generic name for European children.

(ଯଥା—ମିସି ବାବା, ଜନ୍ ବାବା ।)

୩ । ସାଧୁ ସନ୍ନ୍ୟାସୀଙ୍କ ନାମ ପରେ ସ୍ନେହସୂଚକ ଉପାଧି— 3. An affectionate title added to the name of a recluse.

(ଯଥା—ସତ୍ୟ ମହିମାଧର୍ମୀ ବୃଦ୍ଧ ଅବଧୂତ ବିଶ୍ୱନାଥ ବାବା ।)

বাবা **बाबा** ଅ—୧ । ପିତାଙ୍କ ପ୍ରତି ସମ୍ବୋଧନ—1. Papa. ୨ । ଗୁରୁଜନଙ୍କ ପ୍ରତି ସମ୍ବୋଧନ—2. (Used in addressing elders) Father ! ୩ । ବାବାଜୀମାନଙ୍କ ପ୍ରତି ସମ୍ବୋଧନ—3. Used in addressing ascetics and religious people—(similar to the Reverend). ୪ । ଆପଣାଠାରୁ ଅଳ୍ପ ବୟସ୍କ ବ୍ୟକ୍ତିଙ୍କୁ ଓ ପୁତ୍ରସ୍ଥାନୀୟ ବ୍ୟକ୍ତିଙ୍କୁ ବାତ୍ସଲ୍ୟସୂଚକ ସମ୍ବୋଧନ—4. An address of affection applied to one's youngers.

**ବାବା ଆଦ(ଦି)ମୀ**—ଦେ. ବି. (ସଂ. ବପ୍ତା+ଫା. ଆଦମୀ) (ସାଧୁ ସନ୍ନ୍ୟାସୀ- Bābā āda(di)mī ମାନଙ୍କ ପ୍ରତି ବାବା ଶବ୍ଦ ପ୍ରଯୁକ୍ତ ହେବାରୁ)— **बाबाआदमी** ଯେଉଁ ବ୍ୟକ୍ତି ସଂସାରର ସବୁ ମାୟାକୁ ଛାଡ଼ି କଟି ଦେଇ ଅଛନ୍ତି; ନିଶ୍ଚିନ୍ତ ବୈରାଗୀ ବ୍ୟକ୍ତି—A person who has cut off all his worldly connections and is care-free.

**ବାବାଜାନ୍**—ବୈଦେ. ଅ. ( ଆ. ଅବ୍ବାଜାନ୍ )—ଆଦରାର୍ଥ ବାତ୍ସଲ୍ୟସୂଚକ Bābājān ସମ୍ବୋଧନ—(Interjection) A term of fond address to youngers.

**ବାବାଜୀ**—ଦେ. ବି. ପୁଂ—୧ । ସାଧୁ; ସନ୍ନ୍ୟାସୀ; ବୈରାଗୀ; ବୈଷ୍ଣବ— Bābājī 1. An anchorite. ୨ । ଲୋକଙ୍କୁ ଦିଆଯିବା ନାମ— (ମାତାଜୀ—ସ୍ତ୍ରୀ) 2. Name given to males. ୩ । (ନାମ)

বাবাজী ମରହଟ୍ଟା ଅମଲରେ ଓଡ଼ିଶାର ଜଣେ ସୁବାଦାରଙ୍କ ନାମ—
बाबाजी 3. Name of a Marhatta Governor of Orissa.

[ ଦ୍ର—ଏ ୧୭୭୨ ରୁ ୧୭୭୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ଥିଲେ । ଏହାଙ୍କ ଅମଲରେ ଖ୍ରୀ. ୧୭୭୭ ରେ ଓଡ଼ିଶାରେ ଏକ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ଭୋଁସ୍ଲା ରାଜାଙ୍କ ପ୍ରେରିତ ମାଧୋଜୀ ହର ନାମକ ଜଣେ ସୁବାଦାର ଏହାଙ୍କୁ କାରାରୁଦ୍ଧ କରି ଓଡ଼ିଶାର ସୁବାଦାର ହେଲେ । ]

ଅ—ସ୍ନେହ ଓ ସ୍ନେହ ସ୍ଥାନୀୟ ବ୍ୟକ୍ତିଙ୍କ ପ୍ରତି ଆଦରାର୍ଥକ ସମ୍ବୋଧନ— An interjection addressed to youngers in fondness.

ବାବାଜୀ ବଇଷ୍ଣବ—ଦେ. ବ. ( ସହଚର ଶବ୍ଦ )—ବୈରାଗୀମାନେ—
Bābāji baishṇaba Anchorites.
(ବାବାଜୀ ବୈଷ୍ଣବ—ଅନ୍ୟରୂପ) (ବାବାଜୀ ବୈଷମ—ଗ୍ରାମ୍ୟରୂପ)

ବାବାଜୀ ମ(ମା)ହାରାଜ—ଦେ. ବ—ମହନ୍ତ; ମଠାଧୀଶ—
Bābāji ma(mā)hārāja A mahant.
বাবাজী মহারাজ ଅ—ବାବାଜୀମାନଙ୍କ ପ୍ରତି ସମ୍ବୋଧନ—An
बाबाजी महाराज address made to anchorites.

ବାବା ବାଚ୍ଛା—ପ୍ରାଦେ. (ସିଂହଭୂମି) ବି—ଅତ୍ୟନ୍ତ ପ୍ରୀତିଯୁକ୍ତ ସମ୍ବୋଧନ—
Bābā bāchhā An endearing term of address.

ବାବା ମୋର—ଦେ. ଅ—ବାପ ଧନ ( ଦେଖ )—
Bābā mora বাবাআমার बाबामेरा Bāpa dhana (See)

ବାବା ରାମ୍—ଦେ. ବି ଓ ବିଣ—ଉଦାସୀ ଓ ଦୟାଳୁ ବ୍ୟକ୍ତି—
Bābā rām A kind man; indifferent to worldly concerns
बाबा राम বাবারাম

ବାବାରେ—ଦେ. ଅ—୧ । ବାତ୍ସଲ୍ୟାର୍ଥ ସମ୍ବୋଧନ—1. Interjection
Bābāre used in addressing one's youngers.
ବାବା ଗୋ } ଅନ୍ୟରୂପ
ବାବା ଲୋ }
ବାପରେ }
୨ । ଆର୍ତ୍ତନାଦ—2. (Interjection) A call of distress.
বাপরে बापरे

ବାବାଲ୍—ପ୍ରାଦେ. (ଗଡ଼ଜାତ) ବି—ବବୁର (ଦେଖ)
Bābāl Babura (See)

ବାବାଲି—ପ୍ରାଦେ. (ଗଡ଼ଜାତ) ବିଣ. ସ୍ତ୍ରୀ—ବାୟାଣୀ—
Bābāli (ବାବଲା—ପୁଂ) Mad (woman).

ବାବିବା—ଗ୍ରା. କ୍ରି. ( ପ୍ରାଚୀନ ପଦ୍ୟ )—ବାଇବା; ବଜାଇବା—
Bābibā To play on a musical instrument.

ଗାବନ୍ତି ବାବନ୍ତି ନୃତ୍ୟନ୍ତି ବାଳା
ଉନ୍ମଦ ମଦନ ଶରେ ବଢ଼େଲା । ପ୍ରାଚୀ. ରହସ୍ୟମଞ୍ଜରୀ ।

[ ଦ୍ର—ବାଇବା କ୍ରିୟାର ଅନ୍ୟ ପୁରୁଷ ମାନ୍ୟାର୍ଥକ ଏକବଚନ ଓ ବହୁବଚନରେ କେବଳ 'ବାବନ୍ତି' ରୂପ ପ୍ରାଚୀନ ପଦ୍ୟମାନଙ୍କରେ ଦେଖାଯାଏ, ତୁଳନାକର କରନ୍ତି ସ୍ଥାନରେ କରବନ୍ତି; ଗାଆନ୍ତି ସ୍ଥାନରେ ଗାବନ୍ତି । ]

ବାବିଲନ୍—ବୈଦେ. ବି. (ନାମ)—ଆସିଆଟିକ୍ ତୁରସ୍କର ଅଧୁନାତନ
Bābilan ମେସୋପୋଟାମିଆଁରେ ଅବସ୍ଥିତ ପ୍ରାଚୀନ ସମୃଦ୍ଧିମନ୍ତ
বেবিলন ରାଜଧାନୀ—Babylon; a very ancient
बाबिल capital of an ancient kingdom.

[ ଦ୍ର—ପୁରାତତ୍ତ୍ୱବିତ୍‌ମାନେ ସ୍ଥିର କରି ଅଛନ୍ତି ଯେ ଖ୍ରୀଷ୍ଟପୂର୍ବ ୩୮୦୦ ପୂର୍ବେ ଏଠାରେ ତଦାନୀନ୍ତନ ସମୃଦ୍ଧ ସାମ୍ରାଜ୍ୟର ସମ୍ରାଟଙ୍କ ରାଜଧାନୀ ଥିଲା ଏବଂ ବର୍ତ୍ତମାନ ମଧ୍ୟ ସେହି ରାଜଧାନୀର ଭଗ୍ନାବଶେଷ ସ୍ତୂପମାନ ବିଦ୍ୟମାନ ଅଛି । ଏହି ନଗର ଇଉଫ୍ରେଟିସ୍ ଓ ଟାଇଗ୍ରୀସ୍ ନଦୀଦ୍ୱୟର ମଧ୍ୟସ୍ଥଳରେ ଅବସ୍ଥିତ ଥିଲା । ଏଠାରେ ବିଖ୍ୟାତ ପ୍ରାଚୀନ ସମ୍ରାଟ ନେବୁଚାଡ୍‌ରେଜର (Nebuchad Rezzar) ତାଙ୍କ ରାଣୀ ଅମିତାସ୍‌ଙ୍କ ବିଳାସାର୍ଥ ଗୋଟିଏ ଦୋଳାୟମାନ ଉଦ୍ୟାନ ତିଆର କରିଥିଲେ । ପୃଥିବୀର ୭ ଗୋଟି ଅତ୍ୟାଶ୍ଚର୍ଯ୍ୟ ବସ୍ତୁ ମଧ୍ୟରେ ଏ ଉଦ୍ୟାନଟି ଏକତମ ରୂପେ ପରିଗଣିତ ହେଉଥିଲା । ଏହି ବଗିଚାରେ ପାଣି ଦେବା ପାଇଁ ବଡ଼ ବଡ଼ ଢେଣ୍ଟା କଳ (Hydraulic pumps) ଖଞ୍ଜା ହୋଇଥିଲା । ଖ୍ରୀ. ୧୯୦୩ ସାଲରେ ମାଟି ଖୋଳା ହୋଇ ଭୂଗର୍ଭରେ ପୋତି ହୋଇ ଯାଇଥିବା ଅନେକ କୋଠା, ରାଜପ୍ରାସାଦ, ଦେଉଳ, ପୋଲ ଓ ଉଦ୍ୟାନର ଭଗ୍ନାବଶେଷ ଦେଖାଯାଇ ଅଛି—ଷ୍ଟେଟ୍‌ସ୍‌ମାନ୍. ପତ୍ରିକା । ]

ବାବୁ—ବୈଦେ. ବି. ( ଫା; ହିନ୍ଦୀ ବାପୁ ; ତୁଳ. ସଂ. ବପ୍ତା )—
Bābu ୧ । ବଙ୍ଗ ଓ ଉତ୍କଳରେ ଭଦ୍ର ବ୍ୟକ୍ତିମାନଙ୍କ ନାମ
(ବାବୁଆଣୀ—ସ୍ତ୍ରୀ) ପୂର୍ବରେ ଲାଗିବା ସମ୍ମାନସୂଚକ ଉପାଧି—
বাবু 1. A respectful address prefixed to the
बाबु names of gentlemen, corresponding to English Mr or Esq.

[ ଦ୍ର—ବାବୁ ଶବ୍ଦର ଏହି ଅର୍ଥରେ ବ୍ୟବହାର ବଙ୍ଗ ଦେଶରୁ ଆମ ଦେଶକୁ ଆସିଅଛି । ଫାରସୀରେ ପିତା, ବୃଦ୍ଧ, ମାନ୍ୟ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ 'ବାବୁ' ସମ୍ବୋଧନ କରାଯାଏ । ମୁସଲମାନ ଯୁଗ ପୂର୍ବେ ବଙ୍ଗଳାରେ ବାପୁ ଶବ୍ଦ ବ୍ୟବହାର ଥିଲା । ମୁସଲମାନ ଯୁଗରେ ଉର୍ଦ୍ଦୁରେ 'ବାବା' ବ୍ୟବହାରରୁ 'ବାବୁ' ବ୍ୟବହାର ଚଳନ୍ତି । 'ବାବା' ଶବ୍ଦର ସ୍ତ୍ରୀଲିଙ୍ଗ 'ବିବି' । ଉତ୍କଳରେ ପୂର୍ବେ ବାତ୍ସଲ୍ୟ ସମ୍ବୋଧନରେ 'ବାବୁ' ଶବ୍ଦ ବ୍ୟବହୃତ ହେଉଥିଲା ଓ ରାଜାଙ୍କ ବିରାଦରମାନଙ୍କୁ 'ବାବୁ' ବୋଲାଯାଏ । ହିନ୍ଦୁମାନଙ୍କୁ ବାବୁ ଓ ମୁସଲମାନ୍‌ମାନଙ୍କୁ ମିଆଁ ବୋଲାଯାଏ ।

ଗୁଜରାଟ ଓ ମାରୱାଡ଼ ଅଞ୍ଚଳରେ ପିତାଙ୍କୁ 'ବାପୁ' ବୋଲି ସମ୍ବୋଧନ କରାଯାଏ । ]

୨ । ପ୍ରଭୁ; କର୍ତ୍ତା; ଖାମିନ୍ଦ; ସାଆନ୍ତ—2. Lord; master

୩ । ଗୃହକର୍ତ୍ତା—3. Master of the house; lord of the house.

୪ । ରାଜାଙ୍କ ବିରାଦର—4. Kinsman of a Raja.

୫ । ଇଂରାଜୀ ଶିକ୍ଷିତ ନବ୍ୟ ସମ୍ପ୍ରଦାୟର ସଭ୍ୟ ଭବ୍ୟ ହିନ୍ଦୁ ଯୁବକ—5. An English educated Hindu youngman.

୬ । ରସିକ ପୁରୁଷ; ନାଗର ବ୍ୟକ୍ତି; ଲମ୍ପଟସ୍ୱଭାବ ବ୍ୟକ୍ତି; ସଉକିନିଆ ଲୋକ—6. A fop; a beau.

୭ । ଅଳସୁଆ ଓ ସୁଖଭୋଗୀ ଧନୀ ବ୍ୟକ୍ତି; ସୁଖଭୋଗରେ ଅଭ୍ୟସ୍ତ ବ୍ୟକ୍ତି—7. A lazy and comfortable man of means.

୮ । ଅଫିସ୍ ଅଫିସର ପ୍ରଧାନ ହିନ୍ଦୁ କର୍ମଚାରୀ—1. The head Hindu ministerial officer of an office.

୯ । ପିତା; ବାପ—9. Father.

ବାବୁ ଭଦ୍ର ପୁଅ ସେ ଦୁଅନ୍ତେ କାହିଁକି
ଦ୍ରୌପଦୀ ଦେବୀଙ୍କର ହେଲା ଶୋକ ମନ । କୃଷ୍ଣସିଂହ. ମହାଭାରତ ।

୧୦ । ଧନୀ ବ୍ୟକ୍ତିଙ୍କ ନାମ ପରେ ଲାଗିବା ଉପାଧି—10 A title added to the name of a rich man.

ବି—୧ । ବାତ୍ସଲ୍ୟାର୍ଥ ସମ୍ବୋଧନ—1. A fond address.

ଗଃକୁରେ ବାବୁ ଭୟ ନ କର । କହନ୍ତ ମାଏ ଗୋ —ଚଉତିଶା ।

୨ । ସାଧାରଣ ଭଦ୍ର ବ୍ୟକ୍ତିଙ୍କର ଅନ୍ୟ ଭଦ୍ର ବ୍ୟକ୍ତିଙ୍କୁ ସମ୍ବୋଧନ—2. A term addressed to a gentleman by another.

[ ଦ୍ର—ସାଧାରଣ କଥାବାର୍ତ୍ତାରେ ଓ ପତ୍ରାଦିରେ ପୁରା ନାମ ପୂର୍ବରେ ବାବୁ ଲାଗେ, ଯଥା—ବାବୁ ବିଚ୍ଛନ୍ଦ ଚରଣ ପଟ୍ଟନାୟକ, କିମ୍ବା କେବଳ ମୂଳ ନାମ ପରେ ବାବୁ ଶବ୍ଦ ଲାଗେ, ଯଥା—ବିଚ୍ଛନ୍ଦ ବାବୁ । ମୂଳ ନାମ ପୂର୍ବରେ ବାବୁ ଶବ୍ଦ ଲାଗିଲେ ତାହା ବାତ୍ସଲ୍ୟାର୍ଥକ ସମ୍ବୋଧନ ବୁଝାଏ । ତାଙ୍କର ଗୁରୁ ସ୍ଥାନୀୟ ବା ବୟୋଜ୍ୟେଷ୍ଠ ବନ୍ଧୁ ଉପରୋକ୍ତ ବ୍ୟକ୍ତିଙ୍କୁ ଡାକିବେ 'ବାବୁ ବିଚ୍ଛନ୍ଦ !' ]

୩ । ପ୍ରଭୁଙ୍କ ପ୍ରତି ସମ୍ବୋଧନ—3. A word used in addressing a master.

[ ଦ୍ର—ବର୍ଗୀୟମାନେ ଏ ଦେଶକୁ ଆସିବା ପୂର୍ବରୁ ଓଡ଼ିଆ ଚାକରମାନେ ପ୍ରଭୁଙ୍କୁ ସାଆନ୍ତ ଓ ପ୍ରଭୁପତ୍ନୀଙ୍କୁ ସାଆନ୍ତାଣୀ ବୋଲି ସମ୍ବୋଧନ କରୁଥିଲେ । ବର୍ତ୍ତମାନ ପ୍ରଭୁଙ୍କୁ ବାବୁ ଓ ପ୍ରଭୁପତ୍ନୀଙ୍କୁ ଠାକୁରାଣୀ, ବାବୁଆଣୀ ବା ମାଆ ବୋଲି ସମ୍ବୋଧନ କରନ୍ତି । ]

ପ୍ରାଦେ. (ସମ୍ବଲପୁର ଓ ବଣିଦ୍ଭୂମି) ବି—ଛୋଟ ପୁରୁଷ ପିଲା—A male child.

[ଦ୍ର—ବାପ ମାଆ ପୁଅକୁ ମଧ୍ୟ ଏହି ସମ୍ବୋଧନରେ ଡାକନ୍ତି ।]

**ବାବୁଆଣୀ**—ଦେ. ବି. ସ୍ତ୍ରୀ—ବାବୁର ସ୍ତ୍ରୀ ଲିଙ୍ଗ—
Bābuāṇi Feminine of Bābu.
**बबुआनी** ଗୃହକର୍ତ୍ତ୍ରୀ; ମାଲିକାଣୀ—The mistress of the house.

**ବାବୁଆନା**—ଦେ. ବି—୧ । ବିଳାସିତା; ସଉକୀ—
Bābuānā 1. Luxury; foppery.
ବାବୁଆନା } ଅନ୍ୟରୂପ
ବାବୁଗିରି }
বাবুগিরি, বাবুয়ানা, বাবুয়ানী
**बाबुआना**
୨ । ସୁଖାସକ୍ତି-ଆଳସ୍ୟ; ଅଳସୁଆ ପଣ; ଭୋଗବିଳାସିତା—2. Comfortable idleness; luxurious ease.

୩ । ଧନୀଙ୍କ ଚାଲିଚଳନ; ବଡ଼ଲୋକୀ—1. Acts or conduct becoming a rich man.

**ବାବୁଇ**—ପ୍ରାଦେ. (ମେଦିନୀପୁର) ବି—ତୃଣ ଘାସ—
Bābui A kind of rush or long grass.

**ବାବୁଇଆ**—ଦେ. ବି—ପନାସି ( ଦେଖ )
Bābuiā Panāsi ( See ) (Haines).

**ବାବୁଘର**—ଦେ. ବି—୧ । ବଧୂର ବାପଘର; ପିତୃଗୃହ—
Bābughara The house of the father of a daughter-in-law.
**नैहर; पीहर**

ତୁ ଗର୍ଭେ ଥିଲୁ ତୋର ମାତା ବାବୁଘର
ଯାଇଥିଲେ ସେଠାରେ ଜନ୍ମ ହେଲା ତୋର—
କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୨ । ବଡ଼ ଧନୀ ବ୍ୟକ୍ତିର ଘର—2. The house or home of a rich man.

**ବାବୁଜୀ**—ବୈଦେ. ଅ. (ହିନ୍ଦୀରୁ ଅନୁକୃତ)—୧ । ବାବୁମାନଙ୍କୁ କରାଯିବା ସମ୍ବୋଧନ—1. A term of address to
Bābuji
বাবুজী, বাবাজী a 'Bābu'. ୨ । ବାତ୍ସଲ୍ୟାର୍ଥକ ସମ୍ବୋଧନ—
**बाबुजी** 2. A term of fond address.

**ବାବୁନା**—ଦେ. ଅ—ପ୍ରେମ୍ସୂର୍ଚୀର ଆପଣାର ପ୍ରିୟତମ ବ୍ୟକ୍ତିପ୍ରତି ବା ସ୍ତ୍ରୀର
Bābunā ସ୍ୱାମୀ ପ୍ରତି ସ୍ନେହସୂଚକ ସମ୍ବୋଧନ—A fond
( ବାବୁନି—ଅନ୍ୟରୂପ ) address by a woman to her beloved.

**ବାବୁନା** ବୈଦେ. ବି. (ଫା)—ସୋମରାଜ୍ୟାଦି ବର୍ଗର ଶାକବିଶେଷ—
**बाबुना** Chamomile.

[ ଦ୍ର—ଏହା ଇଉରୋପ ଓ ପାରସ୍ୟର ଗଛ; ପଞ୍ଜାବରେ ଜନ୍ମେ । ଏହାର ଶୁଖିଲା ଧଳା ଫୁଲ ଔଷଧରେ ଲାଗେ; ଏହି ଫୁଲକୁ ତେଲରେ ପକାଇଲେ ସେ ତେଲଦ୍ୱାରା ଶୂଳରୋଗ, ଦୁର୍ବଳତା ନଷ୍ଟ ହୁଏ । ଏ ଫୁଲକୁ ପାଣିରେ ସିଝାଇ ପିଇଲେ ବମନ ହୁଏ ଓ ସ୍ତ୍ରୀମାନଙ୍କ ଋତୁ ବନ୍ଦ ହୋଇଥିଲେ ଇହିଁରେ ଉପକାର ଦର୍ଶେ ।]

**ବାବୁ ଭ(ଭା)ୟା**—ଦେ. ବି—(ସହଚର ଶବ୍ଦ)—୧ । ଭଦ୍ର ଓ ଧନୀ
Bābu bha(bhā)yā ବ୍ୟକ୍ତିମାନେ—1. The rich and the noble. ୨ । ରାଜ ଦରବାର ବ୍ୟକ୍ତିଗଣ—2. The noblemen of a state.
ବାବୁ ଦରବାର } ଅନ୍ୟରୂପ
ବାବୁଭୈୟା }
**बाबुभैया**

**ବାବୁର୍ ବୁଆ**—ପ୍ରାଦେ. (ସମ୍ବଲପୁର) ବି. ପୁଂ—ପୁରୁଷ ପିଲାର ବାପ;
Bābur buā ପୁଅର ବାପ—The father of a male child.

[ ଦ୍ର—ଏହା ସନ୍ତାନବାନ୍ ପୁରୁଷପ୍ରତି ଅଭିବାଦନସୂଚକ ବାକ୍ୟରୂପେ ଓ ପୁତ୍ରବତୀସ୍ତ୍ରୀର ଆପଣା ସ୍ୱାମୀ ପ୍ରତି ସମ୍ବୋଧନ ବାକ୍ୟରୂପେ ବ୍ୟବହୃତ ହୁଏ । ]

**ବାବୁର୍ ମା**—ପ୍ରାଦେ ( ସମ୍ବଲପୁର ) ବି. ସ୍ତ୍ରୀ—ପୁଅର ମା; ଆପଣାର
Bābur mā ସନ୍ତାନବତୀ ସ୍ତ୍ରୀ ପ୍ରତି ସମ୍ବୋଧନ—Oh ! mother of my son (addressed to one's wife who has got children).

ବା( )—ଦେ. ବ—ବବୁର ବାଳ (ଦେଖ)
Bāburi(li) ବାବୁରୀ बाबरी Babura bāla (See)
ସରଣୀର ମୃଦୁବାତେ ମନ୍ଦେ ଦୋଳ ଦେବାଙ୍କ ଭଲେ ବାବୁର
କୁନ୍ତଳର ଲଟ୍ ଗୁଚ୍ଛ ଉଷ୍ଣଉଚ୍ଚ ଅଶ୍ରୁ-ଜାତ ମାଧୁରୀ—
ରାଧାନାଥ, ଯଯାତି ।

ବାବୁ ସାହେ(ହା)ବ—ଦେ. ଅ—୧ । ବାତ୍ସଲ୍ୟାର୍ଥ ସମ୍ବୋଧନ—
Bābu sāhe(hā) ba 1. A term of fond address.
बाबुसाहेब ୨ । ଭଦ୍ରଲୋକଙ୍କ ପ୍ରତି ଦୁଃଖୀର ସମ୍ବୋଧନ—
2. A term of address to the rich by the poor.

ବାବେ—ପ୍ରାଦେ. (ସମ୍ବଲପୁର) ବ—ପନାସି (ଦେଖ)
Bābe (ବାବେଇ—ଅନ୍ୟରୂପ) Panāsi (See).

ବାଭ—ପ୍ରାଦେ. (ଗଡ଼ଜାତ) ବ—ପୁଅ; ବତ୍ସ—
Bābha Son; child.

ବାଭିଏ—ଗ୍ରା. ଅ—ଶୂଦ୍ର ଜାମାତାମାନଙ୍କର ଶ୍ୱଶୁରଙ୍କ ପ୍ରତି ଓ ଶ୍ୱଶୁରଙ୍କର
Bābhie ଜାମାତାଙ୍କ ପ୍ରତି ପ୍ରୟୋଗ କରିବା ସମ୍ମାନସୂଚକ ସମ୍ବୋଧନ
ବାବିଏ(ବେ), ବାବେ(ଭେ), ବାଭେଇ } ଅନ୍ୟରୂପ (ଏ ଶବ୍ଦ ପ୍ରାୟଶଃ ଏକ ବଚନରେ ପ୍ରଯୁକ୍ତ ହୁଏ)—Expression addressed by a Sudra to his
बापु father-in-law or the father-in-law to his son-in-law, used in the singular number.

ବାଭୁ(ମୁ,ମ୍ଭୁ)ଣ—ଗ୍ରା. ବ—(ସଂ. ବ୍ରାହ୍ମଣ)—ବ୍ରାହ୍ମଣ—
Bābhu(mu, mbhu)na A Brāhmaṇa
বামুন, বামণ बाभन

ବାଭ୍ରବୀ—ସଂ. ବ. ସ୍ତ୍ରୀ—(ବଭ୍ରୁ=ଶିବ+ଅ+ସ୍ତ୍ରୀ. ଈ)—ଦୁର୍ଗା—
Bābhrabī Goddess Durgā.

ବାମ୍—ବୈଦେ. ବ. (ଇଂ)—ଏକପ୍ରକାର ସୁଗନ୍ଧ ପତ୍ରବିଶିଷ୍ଟ ଗୁଳ୍ମ—
Bām বাম बाम Melissa (plant); Balm of Gilead.

बाम ଦେ. ବ—(ସଂ. ବ୍ୟାମ)—୧ । ଜାହାଜରେ ବ୍ୟବହୃତ ଜଳର ଗଭୀରତାର ମାପବିଶେଷ; ପ୍ରାୟ ୬ଫୁଟ ଦୈର୍ଘ୍ୟ; ବେଁ—
1. A nautical measure of 6 feet; fathom.
[ଦ୍ର—ମନୁଷ୍ୟ ନିଜର ଦୁଇ ବାହୁକୁ ପରସ୍ପର ବିପରୀତ ଦିଗକୁ ଦୁଇ ସ୍କନ୍ଧ ସହିତ ଏକ ସରଳରେଖାରେ ପ୍ରସାରିତ କଲେ ଏକ ହାତର ମଝି ଆଙ୍ଗୁଠିର ଅଗରୁ ଅନ୍ୟ ହାତର ମଝି ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ଦୈର୍ଘ୍ୟକୁ ବାମ୍ ବୋଲିଯାଏ । ଏହା ପ୍ରାୟ ୬ଫୁଟ୍ ଅଟେ ।]
୨ । ଜାହାଜ ଆଦିରେ ବ୍ୟବହୃତ, ଅଗରେ ସୀସାଖଣ୍ଡ ବନ୍ଧା ହୋଇଥିବା ମାପ ଦଉଡ଼ି—2. Fathom-line of a ship; line and lead.
[ଦ୍ର—ଜାହାଜ ଚାଲୁଥିବା ବେଳେ ଜାହାଜ ଉପରେ ଜଣେ ଲୋକ ଠିଆହୋଇ ସମୁଦ୍ର ଆଡ଼କୁ ଝୁଙ୍କିପଡ଼ି ଜାହାଜର କଡ଼ର ପାଣିକୁ ଏ ଦଉଡ଼ାକୁ ଫିଙ୍ଗୁଥାଏ ଓ ଉଠାଉଥାଏ, ଏବଂ ଉକ୍ତ ଦଉଡ଼ାରେ ଯେତେହାତ ଉଚ୍ଚତା ପର୍ଯ୍ୟନ୍ତ ପାଣିର ଚିହ୍ନ ରହେ ତଦନୁସାରେ ପାଣିର ଗଭୀରତା ଅନୁମିତ ହୁଏ]।
୩ । ବେଁ (ଦେଖ)—3. Beñ (See).

ବାମ୍ଣୀ(ଣି)—ପ୍ରାଦେ. (ସମ୍ବଲପୁର) ବ—ନିର୍ବିଷ ସର୍ପବିଶେଷ—
Bām-ṇī(ṇi) A kind of venomless snake.
[ଦ୍ର—ଏହାର ବେକଠାରୁ ମୁଣ୍ଡ ପର୍ଯ୍ୟନ୍ତ ହଳଦିଆ ଓ ଦେହ ଚିକ୍କଣ ଅଟେ ।]

ବାମ୍ ଦେଖ୍—ଦେ. ଅ—(ଯୁବକ ଯୋଦ୍ଧାଶ୍ରମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ
Bām dekh ଆଦେଶ ବଚନ)—ବାମ ଦିଗକୁ ଗୁହାଁ—
(a term of school drill) Left dress!

ବାମ୍ନା—ପ୍ରାଦେ. (ସମ୍ବଲପୁର) ବ.—(ଭୁଲ. ହି• ବାଭନ୍)—ବ୍ରାହ୍ମଣ—
Bām-nā (ବାମ୍ହନ୍—ଅନ୍ୟରୂପ) A Brāhmaṇa.
ଖେତ ନଖାଏ ଗରବନା ।
ନାଁ ନଖାଏ ବାମନା—ଢଗ ।

ବାମ୍ ବାଙ୍କ୍—ଦେ. ଅ.—(ଯୁବକ ଯୋଦ୍ଧାଶ୍ରମଙ୍କ ପ୍ରବର୍ତ୍ତିତ ଡ୍ରିଲ୍
Bām bāṅk ସମ୍ବନ୍ଧୀୟ ଆଦେଶ ବଚନ)—(a term of school drill) Left Wheel!

ବାମ୍ ବୁଲ୍—ଦେ. ଅ.—(ଯୁବକ ଯୋଦ୍ଧାଶ୍ରମଙ୍କ ପ୍ରବର୍ତ୍ତିତ ଡ୍ରିଲ୍
Bām bul ସମ୍ବନ୍ଧୀୟ ଆଦେଶ ବଚନ)—(a term of school drill) Left Turn!

ବାମ—ସଂ. ବିଣ•—(ବା ଧାତୁ=ଗମନ କରିବା+କର୍ତ୍ତୃ• ମ)—୧ । ବାଁଆଁ
Bāma (ପାଖ); ଅପସବ୍ୟ; ଦକ୍ଷିଣେତର—1. Left (side).
(ବାମା—ସ୍ତ୍ରୀ) ୨ । ବିପରୀତ—2. Opposite; reverse. ୩ । ବିମୁଖ; ପ୍ରତିକୂଳ; ବିପକ୍ଷ—3. Reverse; antagonistic. ୪ । ବକ୍ର; କୁଟିଳ—4. Bent; curved. ୫ । ବାମଦିଗରେ ସ୍ଥିତ—5. Situate on the left side. ୬ । ସୁନ୍ଦର; ମନୋହର; ସୁନ୍ଦର—6. Beautiful; dainty; pleasing. ୭ । ଅଧମ—7. Worthless; mean. ୮ । ଶ୍ରେଷ୍ଠ—8. Excellent. ୯ । ମନ୍ଦ; ଦୁଷ୍ଟ (ହ୍ର. ଶ.)—9. Bad; wicked.
ବ.—୧ । ବାଆଁ ପାଖ—1. Left side. ୨ । ମହାଦେବ—2. Siba. ୩ । କାମଦେବ—3. Cupid personified. ୪ । ବକ୍ଷଃ—4. Breast; chest. ୫ । ଜୀବ—5. Animal ୬ । ଧନ—6. Treasure; wealth. ୭ । କୁଚ; ସ୍ତନ—(ହ୍ର. ଶ.)—7. Female's breast. ୮ । ଏକ ରୁଦ୍ରଙ୍କ ନାମ (ହ୍ର.ଶ) 8. Name of a Rudra Deity. ୯ । ବରୁଣ—(ହ୍ର. ଶ.)—9. The sea-god. ୧୦ । (ନାମ) କୃଷ୍ଣଙ୍କ ଏକ ପୁତ୍ର (ହ୍ର.ଶ.)—10. Name of a son of Krushna. ୧୧ । ୨୪ ଅକ୍ଷରର ଏକ ବର୍ଣ୍ଣବୃତ୍ତ, ଯହିଁର ପ୍ରତି ଚରଣରେ ସାତ ଜଗଣ ଓ ଏକ ଯଗଣ ଥାଏ (ଏ ବୃତ୍ତର ଅନ୍ୟ ନାମ, ମଞ୍ଜରୀ, ମକରନ୍ଦ, ମାଧବୀ)—(ହ୍ର. ଶ.)—11. Name of a Sanscirt metre of 24 syllables.
ଦେ. ବ—୧ । ପ୍ରତିକୂଳତା—1. Unfavourableness.
ଯେଉଁମାନେ ସୁଖରେ ମାଉଥିବେ ଦେବଙ୍କ
ସେମାନେ ମଲେ ଆମ୍ଭ ଅଦୃଷ୍ଟ ବାମକୁ । କୃଷ୍ଣସିଂହ, ମହାଭାରତ ଶଲ୍ୟ

୨ । ବକ୍ରତା—2. Crookedness.

୩ । ବାମଦେବ ନାମକ ବ୍ୟକ୍ତିର ଡାକ ନାମ—
3. A name for calling 'Bāmadeba'.

**ବାମ କରିବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ବାମ ପାଖରେ ରଖି ବସିବା
Bāma karibā To sit at the right side of another
**बाँयाकरना** leaving the left side to him.

ବାମ କରିବ କି କହ ଯେ ମୋ ପ୍ରାଣେଶ୍ୱର—
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

**ବାମକେଲି**—ଦେ. ବି—ମୌଲମିନ (ଦେଖ)
Bāmakeḻi Maulamin (See).

**ବାମଦେବ**—ସଂ. ବି—( ବାମ=ସୁନ୍ଦର ବା ବକ୍ରରୂପ+ଦେବ )—
Bāmadeba ୧ । ମହାଦେବ—1. Śiba. ୨ । ଋଷିବିଶେଷ—
2. Name of a sage.

[ଦ୍ର—ଏ ଦଶରଥଙ୍କ ପୁରୋହିତ ଓ ମନ୍ତ୍ରୀ ଥିଲେ । ଋଗ୍‌ବେଦର ୪ର୍ଥ ମଣ୍ଡଳର ଅଧିକାଂଶ ସୂକ୍ତର ଦ୍ରଷ୍ଟା ବାମଦେବ ନାମକ ଜଣେ ଋଷି ଥିଲେ ।]

ଦେ. ବି—ପୁରୁଷମାନଙ୍କୁ ଦିଆଯିବା ନାମ—A name given to males.

**ବାମଦେବୀ**—ସଂ. ବି—(ବାମ+ଦେବୀ)—୧ । ଦୁର୍ଗା (ହି. ଶ)—
Bāmadebī 1. Durgā. ୨ । ସାବିତ୍ରୀ (ହି. ଶ)—
2. Sābitrī (See).

**ବାମନ୍(ନା)**—ପ୍ରାଦେ. (ସମ୍ବଲପୁର ) ବି—(ସଂ. ବ୍ରାହ୍ମଣ; ତୁଳ. ହି
Bāman(nā) ବାମ୍ହନ୍)—ବ୍ରାହ୍ମଣ—Brāhmaṇa.

କୁଲ୍ହାସ୍ତା କୁଲତା ନଷ୍ଟ ର ଭେଲ
ବାମନ୍ ସାଙ୍ଗେ ଜାତ ନ ରହେ— ଭଗ ।

**ବାମନ**—ସଂ. ବିଣ. ପୁଂ—( ବମ୍ ଧାତୁ ଣିଚ୍; ବାମି ଧାତୁ=ବିରୁଦ୍ଧ
Bāmana ଭକ୍ଷିବା+ କର୍ମ. ଅନ; ଯେ ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ
(ବାମନକ-ଅନ୍ୟରୂପ) ବିରୁଦ୍ଧ ବା ଖର୍ବ ଅଙ୍ଗବିଶିଷ୍ଟ )—୧ । ଖର୍ବ;
ବାମନା } ସ୍ତ୍ରୀ ଖର୍ବକାୟ; ଗେଡ଼ା; ହ୍ରସ୍ୱ—1. Dwarfish;
ବାମନିକା } stunted. ୨ । କ୍ଷୁଦ୍ର—2. Small ୩ । ନୀଚ—
3 Low.

ବି—୧ । ଖର୍ବକାୟ ବ୍ୟକ୍ତି—1. A dwarf. ୨ । (ବାମ=ବପଣ+ନ=ଛେଦନ )—ବିଷ୍ଣୁଙ୍କର ୪ର୍ଥ ଅବତାର—
2. The fourth incarnation of Bishṇu.

[ ଦ୍ର—ଏ ଅବତାରରେ ବିଷ୍ଣୁ ଗୋଟିଏ ଖର୍ବକାୟ ବ୍ରାହ୍ମଣ ରୂପ ଧରି ବଳିରାଜାକୁ ଦାନ ମାଗି ତାଙ୍କୁ ତାଙ୍କ ଶରୀରରୁ ନିର୍ଗତ ତୃତୀୟ ପାଦରେ ପାତାଳପୁରକୁ ଚାପିଥିଲେ । ]

୩ । ଦକ୍ଷିଣ ଦିଗର ହସ୍ତୀ—3 The mythological elephant guarding the south. ୪ । ବିଷ୍ଣୁ ( ହି. ଶ )—Bishṇu. ୫ । ଶିବ (ହି. ଶ)—5. Śiba. ୬ । ଏକ ପ୍ରକାର ଶ୍ୱେତ (ଡିମ୍ବ୍ବ) ଘୋଡ଼ା (ହି. ଶ. )—6. A species of nag. ୭ । ( ନାମ ) ହନୁମାନର ଏକ ପୁତ୍ର (ହି. ଶ)—7. Name of a son of Hanumān. ୮ । (ନାମ) ଏକ ନାଗର ନାମ (ହି. ଶ)—8. Name of a mythological serpent. ୯ । (ନାମ) ଗରୁଡ଼ବଂଶୀ ଏକ ପକ୍ଷୀ (ହି.ଶ)—
9. Name of a mythological bird.

୧୦ । (ନାମ) କ୍ରୌଞ୍ଚ ଦ୍ୱୀପର ଏକ ପର୍ବତ (ହି. ଶ)—
10. Name of a mythological mountain.

୧୧ । ଅଠର ପୁରାଣ ମଧ୍ୟରୁ ଏକ (ହି. ଶ.)—
11. The title of one of the 18 Hindu mythological treatises.

ଦେ. ବି—ପୁରୁଷ ଲୋକଙ୍କୁ ଦିଆଯିବା ନାମ—A name given to males.

**ବାମନ ଜନ୍ମ**—ସଂ. ବି—ଭାଦ୍ର ଶୁକ୍ଳଦ୍ୱାଦଶୀରେ ଅନୁଷ୍ଠିତ ପର୍ବ—
Bāmana janma The religious ceremoney observed
(ବାମନ ଦ୍ୱାଦଶୀ—ଅନ୍ୟରୂପ) on the 12th day of the bright fortnight of Bhādra.

[ଦ୍ର—ବାମନ ଅବତାରରେ ବିଷ୍ଣୁ ଏହିଦିନ ଅଦିତିଙ୍କ ଗର୍ଭରୁ ଆବିର୍ଭୂତ ହୋଇଥିଲେ ।]

**ବାମନ(ନା)ଭୂତ୍**—ପ୍ରାଦେ. (ସମ୍ବଲପୁର) ବି—ବାବନାଭୂତ (ଦେଖ)
Bāmana(nā)bhut Bābanābhūta (See).

**ବାମନୟନା**—ସଂ. ବିଣ. ସ୍ତ୍ରୀ—(ବହୁବ୍ରୀହି, ବାମ=ସୁନ୍ଦର+ନୟନ)—
Bāmanayanā ସୁନ୍ଦର ନେତ୍ରବିଶିଷ୍ଟା (ସ୍ତ୍ରୀ); ଚାରୁନେତ୍ରା—
(ବାମଲୋଚନା—ଅନ୍ୟରୂପ) Fine-eyed (damsel).

**ବାମନୀ(ଣୀ) ରାଜ୍ୟ**—ଦେ. ବି—( ସଂ. ବ୍ରାହ୍ମଣୀୟ+ରାଜ୍ୟ )—ବାହାମନୀ
Bāmanī(ṇī) rājya ରାଜ୍ୟ; ପଠାଣ ସାମ୍ରାଜ୍ୟର ପତନ ସମୟରେ
(ବାହାମଣୀ(ନୀ)ରାଜ୍ୟ—ଅନ୍ୟରୂପ) ଦକ୍ଷିଣଭାରତରେ ପ୍ରତିଷ୍ଠିତ
बाहामनीबाज्य ହୋଇଥିବା ମୁସଲମାନ ରାଜ୍ୟବିଶେଷ—The
**बाहामनी राजत्र** Bohamony kingdom; a Mahomedan kingdom established in the Deccan (modern Hyderabad) on the fall of the Pathān Empire.

[ ଦ୍ର—ପଠାଣ ସମ୍ରାଟ ଗିୟାସୁଦ୍ଦିନ୍ ଟୋଗଲକଙ୍କ ପୁତ୍ର ମହମ୍ମଦ୍ ଟୋଗଲକ୍ ବିଦ୍ୱାନ୍ ଥିଲେହେଁ ଅତି ନିର୍ଦ୍ଦୟ ଓ ବାତୁଳ-ପ୍ରାୟ ହେବାରୁ ସାମ୍ରାଜ୍ୟର ସ୍ଥାନେ ସ୍ଥାନେ ବିଦ୍ରୋହର ସୂତ୍ରପାତ ହେଲା ଓ ପ୍ରାଦେଶିକ ଶାସନକର୍ତ୍ତାମାନେ ସ୍ୱାଧୀନତା ଘୋଷଣା କଲେ । ଖ୍ରୀ ୧୩୪୭ ସାଲରେ ଦାକ୍ଷିଣାତ୍ୟ ଗୁଲବର୍ଗର ଶାସନକର୍ତ୍ତା ଜାଫର ଖାଁ ସ୍ୱାଧୀନତା ଘୋଷଣା କରି ବାମନୀ ରାଜ୍ୟ ସ୍ଥାପନ କଲେ । ଏ ରାଜ୍ୟର ସ୍ଥାପୟିତାଙ୍କୁ ବାଲ୍ୟକାଳରେ ଗଙ୍ଗୁ ନାମକ ଜଣେ ବ୍ରାହ୍ମଣ ପୁତ୍ରବତ୍ ପ୍ରତିପାଳ ଥିବାରୁ ଉକ୍ତ ପାଳକଙ୍କୁ ଚିରସ୍ମରଣୀୟ କରିବା ଉଦ୍ଦେଶ୍ୟରେ ସ୍ଥାପୟିତା ଏ ରାଜ୍ୟର ନାମ 'ବ୍ରାହ୍ମଣୀ' ବା 'ବାମନୀ' ବା 'ବାହାମନୀ' ରଖିଲେ ଓ ନିଜର ନାମ ଆଲାଉଦ୍ଦିନ ହସନ ଗଙ୍ଗୁ ବାହାମନୀ ରଖିଲେ । ଏହା ଦାକ୍ଷିଣାତ୍ୟର ଆଧୁନିକ ହାଇଦ୍ରାବାଦ ରାଜ୍ୟ । ଏ ରାଜ୍ୟ ଉତ୍ତରରେ ତାପ୍ତୀ ନଦୀଠାରୁ ଦକ୍ଷିଣରେ ତୁଙ୍ଗଭଦ୍ରା ଓ କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପ୍ରଥମେ ଏଥିର ରାଜଧାନୀ ଗୁଲବର୍ଗ; ପରେ ବିଦରରେ ହୋଇଥିଲା । ଏ

ରାଜବଂଶ ପ୍ରାୟ ୧୫୦ ବର୍ଷ ରାଜତ୍ୱ କରିବା ପରେ ଏହାର ପତନ ହେଲା ଓ ଏ ରାଜ୍ୟରୁ ପାଞ୍ଚ ଗୋଟି ସ୍ୱାଧୀନ ରାଜ୍ୟ ଓ ରାଜବଂଶ ସ୍ଥାପିତ ହେଲା :—

୧ । ଆଦିଲ୍‌ସାହାଙ୍କ ସ୍ଥାପିତ ଆଦିଲ୍‌ସାହୀ ରାଜ୍ୟ—(ସ୍ଥାପିତ ଖ୍ରୀ ୧୪୮୯, ରାଜଧାନୀ ବିଜାପୁର)—୨ । ନିଜାମ୍‌ସାହାଙ୍କ ସ୍ଥାପିତ ନିଜାମ୍‌ସାହୀ ରାଜ୍ୟ—(ସ୍ଥାପିତ ଖ୍ରୀ ୧୪୯୦, ରାଜଧାନୀ ଅହମଦନଗର —୩ । କୁତବ୍‌ସାହାଙ୍କ ପ୍ରତିଷ୍ଠିତ କୁତବ୍‌ସାହୀ ରାଜ୍ୟ—(ସ୍ଥାପିତ ଖ୍ରୀ ୧୫୧୨, ରାଜଧାନୀ ଗୋଲକୁଣ୍ଡା)—୪ । ବରିଦ୍‌ସାହାଙ୍କ ବରିଦ୍‌ସାହୀ ରାଜ୍ୟ—(ସ୍ଥାପିତ ଖ୍ରୀ ୧୫୦୪, ରାଜଧାନୀ ବିଦର)—୫ । ଇମାଦ୍‌ସାହାଙ୍କ ଇମାଦ୍‌ସାହୀ ରାଜ୍ୟ—(ସ୍ଥାପିତ ଖ୍ରୀ ୧୪୮୪, ରାଜଧାନୀ ବେରାର)—ପରେ ଏ ରାଜ୍ୟମାନ ମୋଗଲ ସମ୍ରାଟମାନଙ୍କ ଦ୍ୱାରା ମୋଗଲ ସାମ୍ରାଜ୍ୟଭୁକ୍ତ ହେଲା—ପ୍ରୋଥେରୋ ସାହେବଙ୍କ ଇଂରାଜି ସ୍କୁଲ—ଇତିହାସ । ]

ବାମମାର୍ଗ—ସଂ. ବି. (କର୍ମଧା, ବାମ=ପ୍ରତିକୂଳ, ଅର୍ଥାତ୍ ବେଦବିରୁଦ୍ଧ+ Bāmamārga ମାର୍ଗ)—ବେଦବହିର୍ଭୂତ (ଦକ୍ଷିଣ) ମାର୍ଗର ପ୍ରତିକୂଳ (ବାମମାର୍ଗୀ—ବ୍ୟକ୍ତିବାଚକ ବିଶେଷଣ) ତାନ୍ତ୍ରିକ ବିଧି, ଯହିଁରେ ବେଦବିରୁଦ୍ଧ ପଞ୍ଚମକାରଆଦିର ବିଧାନ ଅଛି—The Tantrik rituals (as opposed of the Bedic rituals).

ବାମଲୂର—ସଂ. ବି. (ବାମ=ବିପରୀତ+ଲୂ ଧାତୁ=ଛେଦନ କରିବା+ Bāmalūra ର)—ବଲ୍ମୀକ; ଉଇହୁଙ୍କା—Ant hill.

ବାମହସ୍ତ—ଦେ. ବି.—(ପୁରୁଷ ପକ୍ଷରେ) ଆପଣାର ହସ୍ତଦ୍ୱାରା ଅସ୍ୱାଭାବିକ Bāmahasta ରୀତିରେ କାମପ୍ରବୃତ୍ତି ଚରିତାର୍ଥ କରିବା; (ବାମହସ୍ତକ—ଅନ୍ୟରୂପ) ହସ୍ତମୈଥୁନ—Masturbation; **सरका कुटना** ହସ୍ତମୈଥୁନ onanism.

ବାମା—ସଂ. ବିଣ. ସ୍ତ୍ରୀ. (ବାମ+ଆ; ବାମର ସ୍ତ୍ରୀଲିଙ୍ଗ)—୧ । ପ୍ରତିକୂଳା— Bāmā 1. Antagonistic (female). ୨ । ପ୍ରତିକୂଳାଚାରିଣୀ—2. (a woman) Acting contrarily. ୩ । ସୁନ୍ଦରୀ—3. Beautiful; graceful

ବି. ସ୍ତ୍ରୀ—୧ । ନାରୀ; ସ୍ତ୍ରୀ—1. Woman. ୨ । ଦୁର୍ଗା— 2. Durgā. ୩ । ଲକ୍ଷ୍ମୀ—3. Lakshmi. ୪ । ଦଶ ଅକ୍ଷରବିଶିଷ୍ଟ ବର୍ଣ୍ଣବୃତ୍ତବିଶେଷ—4. Name of a Sanscrit metre.

[ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଏକ ତଗଣ, ଏକ ଯଗଣ ଏକ ଯୁଗଣ ଥାଏ ଓ ଶେଷ ବର୍ଣ୍ଣ ଗୁରୁ—ହି. ଶ. ]

୫ । ସରସ୍ୱତୀ—5. Saraswati (Apte).

ଦେ. ବି. ସ୍ତ୍ରୀ. (ସଂ. ବାମୀ)—୧ । ଘୋଟକୀ—1. Mare.

ବାମାକାଳେ ଭବ୍ୟବାମା—ପ୍ରସବ ସୂନୁ ସୁଷମା
ଲକ୍ଷିତ କୁଅରୀ ଅଙ୍ଗ ଅନଙ୍ଗ ପ୍ରଭା । ଉପେ. ବୈଦେହୀଶବିଳାସ ।

୨ । ବାମା ସୁନ୍ଦରୀ ବା ବାମା ପ୍ରେୟସୀ ନାମ୍ନୀ ସ୍ତ୍ରୀର ଡାକ ନାମ—2 Name by which Bāmāsundari or Bāmāpreyasi is called.

ବାମା କଣ୍ଠ—ସଂ. ବି. (୬ଷ୍ଠୀ ତତ୍; ବାମା+କଣ୍ଠ) ୧ । ସ୍ତ୍ରୀକଣ୍ଠ— Bāmā kantha 1. Woman's throat. ୨ । ସ୍ତ୍ରୀର କଣ୍ଠସ୍ୱର— 2. Female tone; female voice.

ବାମାକ୍ଷି—ସଂ. ବି. ପୁଂ. (କର୍ମଧା; ବାମ+ଅକ୍ଷି)—ବାଆଁ ଆଖି— Bāmākshi Left eye.

ବିଣ (ବହୁବ୍ରୀହି)—୧ । ସୁନ୍ଦର ନେତ୍ରବିଶିଷ୍ଟ—1. Having fine eyes. ୨ । ଯାହାର ବାଆଁ ଆଖିଟି ଅଛି; ବାଆଁ ଆଖିଆ—2. Left eyed.

ବାମାକ୍ଷୀ—ସଂ. ବିଣ. ସ୍ତ୍ରୀ. (ବାମ+ଅକ୍ଷ+ଈ)—ବାମନୟନା; ସୁନୟନା— Bāmākshi Fine-eyed (woman).

ସଂ. ବି. ସ୍ତ୍ରୀ—୧ । ସୁନ୍ଦରୀ ସ୍ତ୍ରୀ—1. A graceful lady.

୨ । ଦୀର୍ଘଈକାର (ହି ଶ.)—2. The letter long 'ī'.

ବାମାଚାର—ସଂ. ବି. (ବାମ=ଶ୍ରେଷ୍ଠ+ଆଚାର=ଧର୍ମାଚରଣ; ତନ୍ତ୍ରମତେ Bāmāchāra ଶ୍ରେଷ୍ଠାଚାର)—ତନ୍ତ୍ରୋକ୍ତ ପଞ୍ଚମକାର ସାଧନ ରୀତି; ବାମମାର୍ଗ—A method of worship or rites recommended in the Tantras.

[ ଦ୍ର—ମତ୍ସ୍ୟ, ମାଂସ, ମଦ୍ୟ, ମୈଥୁନ ଓ ମୁଦ୍ରାଦ୍ୱାରା ଏ ଉପାସନା କରାଯିବାରୁ ଏ ଉପାସନାର ନାମ ପଞ୍ଚମକାର ସାଧନ । ଏହି ମତାବଲମ୍ବୀ ସାଧକମାନେ ଆପଣାଙ୍କୁ ସାଧକ, ବୀର ନାମରେ ଓ ବିରୋଧୀ ମତବାଦୀ ସାଧକଙ୍କୁ 'କଣ୍ଟକ' ନାମରେ ଅଭିହିତ କରନ୍ତି— ହି. ଶ. ]

ବାମାଚାରୀ—ସଂ. ବିଣ. ପୁଂ—ତନ୍ତ୍ରୋକ୍ତ ବାମାଚାର ପ୍ରକ୍ରିୟାର ସାଧକ— Bāmāchāri (a devotee) Worshipping according (ବାମ ମାର୍ଗୀ—ଅନ୍ୟରୂପ) to 'Bāmāchāra' rites.

ବାମାବର୍ତ୍ତ—ସଂ. ବିଣ. (ବହୁବ୍ରୀହି; ବାମ=ବାଆଁ ଦିଗକୁ ଆବର୍ତ୍ତ= Bāmābartta ଭଉଁରି ଯାହାର)—୧ । ଯେଉଁ ଶଙ୍ଖର ଭଉଁରି (ଦକ୍ଷିଣାବର୍ତ୍ତ—ବିପରୀତ) ଡାହାଣଦିଗରୁ ବାଆଁ ଦିଗକୁ ବୁଲିଥାଏ— (ବାମାବର୍ତ୍ତୀ—ଦେଶଜରୂପ) 1. (a conch) Whose whorl winds spirally from right to left.

ସଂ. ବି—ବାମାବର୍ତ୍ତ ଶଙ୍ଖ—A conch shell whose spiral runs from right to left (Apte)

[ ଦ୍ର—ସାଧାରଣତଃ ଶଙ୍ଖମାନ ବାମାବର୍ତ୍ତ ଅଟନ୍ତି, ଦକ୍ଷିଣାବର୍ତ୍ତ ଶଙ୍ଖ କ୍ୱଚିତ୍ ମିଳେ । ]

୨ । ଯେଉଁ ପରିକ୍ରମା ଡାହାଣପାଖରୁ ବାମଆଡ଼କୁ କରାଯାଏ- (a circumambulation) Which begins from the right and is directed towards the left.

ବାମା ସ୍ୱର—ସଂ. ବି. ( ୬ଷ୍ଠୀ ତତ୍; ବାମା+ସ୍ୱର )— Bāmā swara ସ୍ତ୍ରୀର କଣ୍ଠଧ୍ୱନି-Female's voice or tone.

ବାମିକା—ସଂ. ବି. ସ୍ତ୍ରୀ. ( ବାମ+କ+ସ୍ତ୍ରୀ.ଆ )—ଚଣ୍ଡିକା (ହି. ଶ)— Bāmikā The Goddess Chandi.

ବାମୀ—ସଂ. ବି. ସ୍ତ୍ରୀ. (ବାମ+ଈ)—୧ । ମାଈ ବିଲୁଆ (ହି. ଶ)— Bāmi 1. A she-jackal.

୨ । ଘୋଡ଼ୀ ( ହି. ଶ )—2. Mare.

୩ । ମାଈ ଗଧ (ହି. ଶ)—3. She-ass.

୪ । ମାଈ ହାତୀ; ହାତୁଣୀ—4. A female elephant (Apte).

**ବାମୁ(ମ୍ହୁ, ହ୍ମୁ)ଣ** (ଇତ୍ୟାଦି)—ଗ୍ରା. ବି. ପୁଂ—ବ୍ରାହ୍ମଣ ଇତ୍ୟାଦି (ଦେଖ)
Bāmu(mhu, hmu) ṇa (etc) Brāhmaṇa etc. (See)
বামুন, বাম্ভন **बाम्हन**

**ବାମୁଣିଆ**—ଗ୍ରା. ବିଣ—ବ୍ରାହ୍ମଣସମ୍ବନ୍ଧୀୟ—
Bāmuniā Brāhmanic.

**ବାମୁ(ମ୍ହୁ, ହ୍ମୁ)ଣୀ** (ଇତ୍ୟାଦି)—ଗ୍ରା. ବି. ସ୍ତ୍ରୀ. ( ସଂ. ବ୍ରାହ୍ମଣୀ )—
Bāmu(mhu, hmu)ṇi (etc) ବ୍ରାହ୍ମଣୀ ଇତ୍ୟାଦି (ଦେଖ)
(ବାମୁଣିଆଣୀ—ଅନ୍ୟରୂପ) Brāhmaṇi etc. (See)

**ବାମୁନ୍ ହଟା**—ପ୍ରାଦେ. (ସମ୍ବଲପୁର) ବି—ବ୍ରାହ୍ମଣ ଯଷ୍ଟିକା; ବ୍ରାହ୍ମଣ
Bāmun hatā ହାଟୁଆ ଗୁଳ୍ମ—Clerodendron Sephonanthus (plant).

**ବାମେତର**—ସଂ. ବିଣ. ( ୫ମୀ ତତ୍; ବାମଠାରୁ ଇତର=ଅନ୍ୟ)—
Bāmetara ଦକ୍ଷିଣ; ଡାହାଣ—Right (side).

**ବାମୋରୁ(ରୂ)**—ସଂ. ବି. ସ୍ତ୍ରୀ. (ବାମ=ସୁନ୍ଦର+ଊରୁ=ଜଙ୍ଘ+ଊ)—
Bāmoru(rū) ୧ । ସୁନ୍ଦର ଜଙ୍ଘଥିବା ସ୍ତ୍ରୀ—1. A woman with charming thighs.
୨ । ସୁନ୍ଦରୀ ସ୍ତ୍ରୀ (ହ୍ରି. ଶ)—2. A graceful lady.
ଅହୋ, ସେ ବାମୋରୁ । କାମ-ବୈଜୟନ୍ତୀ-ଭୋଗଣ-କଳକ-ସ୍ତମ୍ଭ ।
ରଘୁନାଥ. ଯଯାତି ।

**ବାମ୍ଫ**—ଦେ. ବି. ( ସଂ. ବାଷ୍ପ; ତୁଳ· ଇଂ. ଭେପର୍ )—
Bāmpha ୧ । ବାଷ୍ପ—1. Vapour.
ভাপ, ভাপরা ୨ । ଉଷ୍ଣ ଜଳୀୟ ବାଷ୍ପ—2. Hot steam.
**भाप, भपरा** ମ. ବାଫ, ବାଫାର

**ବାମ୍ଫୀ**—ଦେ. ବି. ( ସଂ. ବାପୀ )—୧ । ବଡ଼ କୂଅ—
Bāmphi 1. Big well.
ইন্দারা, কুয়া ୨ । ଖୁବ୍ ବଡ଼ ଆୟତନ ବିଶିଷ୍ଟ ପଥର ବା ଇଟାର
**बावली, बाउली** କୂଅ—1. A stone or masonry well.
ସେହି କୂପେ ପୁଣି ଦେଖିଲ ବାମ୍ଫୀଟାଏ ।
କୃଷ୍ଣସିଂହ. ମହାଭାରତ. ସଭା ।

**ବାମ୍ଫୁଆଣି**—ଦେ. ବି. (ସଂ. ବାଷ୍ପ; ବାଷ୍ପାୟ ନାମ ଧାତୁଜ ବା ବାଷ୍ପାୟନ)—
Bāmphuāṇi ଫୁଟିବା ଜଳରୁ ବା ଔଷଧ ମିଶ୍ରିତ ଜଳରୁ ଉଠୁଥିବା
ভাপরা ବାଷ୍ପ ଦ୍ୱାରା ଶରୀରର ସେକ କ୍ରିୟା—
**भाप लेना** Vapour bath; steam bath,

**ବାମ୍ଫୁଆଣି ଘି(ଘେ)ନିବା**—ଦେ. କ୍ରି—ଜଳ ବା ଔଷଧ ସିଝା ପାଣିରୁ
Bāmphuāṇi ghi(ghe)nibā ଉଠୁଥିବା ବାଷ୍ପକୁ ଦେହରେ
ভাপরা লওয়া ଲଗାଇବା—To have a steam bath or
**भाप लेना** vapour bath.
(ବାମ୍ଫୁଆଣି ନେବା—ଅନ୍ୟରୂପ) [ ଦ୍ର—କେତେକ ରୋଗରେ ଔଷଧ ମିଶ୍ରିତ ଜଳକୁ କଣ୍ଟେଇଁରେ ଗରମ କରି ପାତ୍ରରୁ ବାମ୍ଫ ଉଠୁଥିବା ଅବସ୍ଥାରେ ପାତ୍ରକୁ ଗୋଟିଏ ଖଟିଆ ତଳେ ରଖାଯାଏ ଓ ଖଟିଆ ଉପରେ ରୋଗୀ ବସି ରୋଗୀର ରୁଗ୍ଣ ଅଙ୍ଗରେ ବା ସମଗ୍ର ଶରୀରରେ ଉକ୍ତ ପାତ୍ରରୁ ଉଠୁଥିବା ବାମ୍ଫକୁ ଲଗାଇବାର ବ୍ୟବସ୍ଥା କରାଯାଏ । ଏହି ପ୍ରକ୍ରିୟାକୁ ବାମ୍ଫୁଆଣୀ ଘେନିବା ବୋଲାଯାଏ । ]

**ବାୟ**—ସଂ. ବି. ( ବେ ଧାତୁ=ବୁଣିବା+ଭାବେ. ଅ )—
Bāya ବୟନ; ଲୁଗା ବୁଣିବା—Weaving.
বায় **बाय** ଗ୍ରା· ବି—ବାୟୁ; ପବନ—Wind.
କାଳନ୍ଦୀ ବଢ଼ ଜଳ ଭରେ
ଚଳିବ ନ ଉଡ଼ନ୍ତି ବାୟେ । ଜଗନ୍ନାଥ. ଭାଗବତ ।

**ବାୟକ**—ଦେ. ବି. ପୁଂ. ( ସଂ. ବାଦକ )—
Bāyaka ୧ । ବାଦ୍ୟକର; ବାଦକ—1. Musician.
(ବାୟେକ—ଗ୍ରାମ୍ୟରୂପ) ୨ । ଠିଆପାଲାବାଲାଙ୍କ ଦଳରେ ଯେଉଁ
বায়ক ନର୍ତ୍ତକ ମୃଦଙ୍ଗ ବଜାଏ—2. The person who
**बायक** plays on the drum in a Ṭhiāpālā performance.
[ ଦ୍ର—ପାଲା ତଳେ ନୋଟ୍ ଦେଖ । ]
ସଂ. ବିଣ. ପୁଂ. ( ବେ ଧାତୁ+କର୍ତ୍ତୃ. ଅକ )—
(ବାୟିକା—ସ୍ତ୍ରୀ) ୧ । ବୟନକାରୀ—1. Weaving.
୨ । ବୀଜ ବପନକାରୀ—2. Sowing.
ସଂ. ବି. ପୁଂ—୧ । ତନ୍ତୀ—1. Weaver.
୨ । ସମୂହ—2. Multitude; collection (Apte).

**ବାୟଣ**—ପ୍ରାଦେ. (ସମ୍ବଲପୁର) ବି. (ସଂ. ବଙ୍ଗନ)—ବାଇଗଣ—
Bāyaṇa Brinjal.

**ବାୟ ଦଣ୍ଡ**—ସଂ. ବି. ( ବାୟ= ବୟନ+ଦଣ୍ଡ )—
Bāya daṇḍa ବୟନ ଦଣ୍ଡ; ତନ୍ତ କାଠ—Weaver's yard.

**ବାୟନ**—ସଂ. ବି—୧ । ଦେବ ପୂଜା ବା ଉତ୍ସବାଦି ଉପଲକ୍ଷେ ପ୍ରସ୍ତୁତ
Bāyana ମିଷ୍ଟାନ୍ନ (ହ୍ରି. ଶ)—1. Sweetmeats prepar-
(ବାୟନକ—ଅନ୍ୟରୂପ) ed on occasions of religious worship or social festivals.
୨ । ଭେଟି; ଉପହାର (ହ୍ରି. ଶ)—2. Present.
୩ । ଉତ୍ସବାଦି ଉପଲକ୍ଷେ ବନ୍ଧୁମାନଙ୍କଠାରୁ ପ୍ରେରିତ ମିଷ୍ଟାନ୍ନ (ହ୍ରି. ଶ)—3. Present of sweets sent to friends and relations on ceremonial, or festive occassions.

**ବାୟବ**—ସଂ. ବିଣ. (ବାୟୁ+ଅ)—୧ । ବାୟୁ ସମ୍ବନ୍ଧୀୟ—
Bāyaba 1. Relating to wind; windy; ærial.
ବାୟବୀୟ, ବାୟବ୍ୟ } ଅନ୍ୟରୂପ ୨ । ବାୟୁ କୋଣ ବା ଉତ୍ତର ପଶ୍ଚିମ ଦିଗ ସମ୍ବନ୍ଧୀୟ—2. Relating to the north-western quarter of the globe.
୩ । ବାୟୁ ଚାଳିତ—3. Turned or moved by air;
୪ । ବାୟୁ ଦୈବତ; ଯାହାର ଦେବତା ବାୟୁ (ହ୍ରି. ଶ)—4. Having the wind-god as its presiding Deity.
ସଂ. ବି—୧ । ଉତ୍ତର ପଶ୍ଚିମ ଦିଗ (ହ୍ରି. ଶ)—
1. The north western quarter.
[ ଦ୍ର—ଏହି ଦିଗର ଦିକ୍ପାଳ ବାୟୁ ଅଟନ୍ତି । ].

୨ । ପୁରାଣବିଶେଷ; ବାୟୁ ପୁରାଣ ( ହି. ଶ. )—2 Name of a Hindu mythological treatise. ୩ । ପ୍ରାଚୀନ ଯୁଦ୍ଧାସ୍ତ୍ରବିଶେଷ ( ହି. ଶ. )—3. Name of an ancient weapon of offence.

ଦେ. ବି—ଶରବିଶେଷ; ବାବଲ ଶର—Name of an arrow said to have been used in ancient times.

**ବାୟୁ(ଇ)ବତା**—ଦେ.ବି—ପବନରୁ ଘରର ଚାଳକୁ ରକ୍ଷା କରିବା ପାଇଁ Bāya(i)batā ଚାଳ ଉପରେ ବନ୍ଧାଯିବା ବତା—The split bamboos which are tied on the straw of a thatch to prevent the straw from being blown away by the wind.

ଅଟ୍ଟାଳୀ ଓଲଟଣୀ ଖଞ୍ଜି ବାୟୁବତା
ମହାର୍ଦ୍ଧ ବୃଦ୍ଧନା ବଦଶେ ସେସନେକ ଛତା । ପ୍ରାଚୀ. ବୃନ୍ଦାବନବିହାରୀ ।

**ବାୟୁବୀ**—ସଂ. ବି. ( ବାୟୁ+ଅ+ଈ )—ବାୟୁକୋଣ; ଉତ୍ତରପଶ୍ଚିମ Bāyabi କୋଣ—The north-west quarter.

ଦେ. ବିଣ. ( ସ. ବାୟୁବାଯ୍ୟୁ; ବାଯୁବ; ବାଯୁବ୍ୟ—ବାୟୁକୋଣ (ବାଏଷୀ—ଅନ୍ୟରୂପ) ସମ୍ବନ୍ଧୀୟ)—୧ । ବିଦେଶାଗତ ଅଜ୍ଞାତନାମା बायबी (ବ୍ୟକ୍ତି); ଅଜ୍ଞାତକୁଳଶୀଳ—1. (a person) Who is an utter stranger; ୨ । ନବାଗତ (ବ୍ୟକ୍ତି)—2. Newly arrived (person.)

[ ଦ୍ର—ପ୍ରାଚୀନ ବୈଦିକ ଯୁଗଠାରୁ ଐତିହାସିକ ମୋଗଲ ଯୁଗ ପର୍ଯ୍ୟନ୍ତ ଭାରତକୁ ଯେତେ ବିଦେଶୀ ଆସିଥିଲେ ସେମାନେ ବାୟୁ ବା ଉତ୍ତର ପଶ୍ଚିମ କୋଣରୁ ଭାରତକୁ ଆସିଛନ୍ତି; ଅତଏବ ଏହି ଅର୍ଥରେ ଏହି ଶବ୍ଦର ପ୍ରୟୋଗ ଭାଷାରେ ଚଳିଅଛି । ]

**ବାୟୁବ୍ୟ କୋଣ**—ସ. ବି—ଉତ୍ତର ପଶ୍ଚିମ କୋଣ—Bāyabya kona The north-west quarter.

**ବାୟୁବ୍ୟ ବାୟୁ**—ସ. ବି. ( ଆଧୁନିକ ପ୍ରୟୋଗ )—ଯେଉଁ ବାୟୁ ଭାରତ Bāyabya bāyu ମହାସାଗରରେ ୬ ମାସ ନୈର୍‌ଋତରୁ ଓ ୬ ମାସ ଈଶାନକୋଣରୁ ବହେ; ମୌସୁମୀବାୟୁ—The Monsoon; the trade wind.

**ବାୟୁବ୍ୟାସ୍ତ୍ର**—ସଂ ବି—୧, । ବାୟୁ ଚାଳିତ ବନ୍ଧୁକ—1. Air gun. Bāyabyāstra ୨ । ବାୟୁଚାଳିତ ଅସ୍ତ୍ର—2. A weapon propelled or worked by the air.

**ବାୟୁଲୀ**—ପ୍ରାଦେ. (ବସ୍ତର) ବି. ସ୍ତ୍ରୀ. (ସ. ବାଲା)—ମାଇପି ଲୋକ; ସ୍ତ୍ରୀ- Bayali Female; woman.

(ଯଥା—ବାୟୁଲୀକେ ଡାହାଣୀ ଧରଲେ=ସ୍ତ୍ରୀଲୋକକୁ ଡାହାଣୀ ଲାଗିଛି । )

**ବାୟସ**—ସ. ବି. ପୁଂ. ( ବୟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅସ )—Bāyasa ୧ । କାକ; କୁଆ—1. The crow. ୨ । ଅଗୁରୁ—(ବାୟସୀ—ସ୍ତ୍ରୀ) 2. Agallochum; aloe-wood. ୩ । ତାର୍ପିନ୍ (ହି. ଶ.)—3. Turpentine.

**ବାୟସାରାତି**—ସ. ବି. ( ୬ଷ୍ଠୀ ତତ୍; ବାୟସ+ଅରାତି=ଶତ୍ରୁ )—Bāyasārāti ପେଚକ; ପେଚା—The owl. (ବାୟସାରି—ଅନ୍ୟରୂପ)

**ବାୟସୀ**—ସ. ବି. ସ୍ତ୍ରୀ. ( ବାୟସ+ସ୍ତ୍ରୀ. ଈ )—୧ । କାଉଣୀ—Bāyasi 1. A female crow. ୨ । କାକତୁଣ୍ଡୀ; କୁଆଥଣ୍ଟା ଲତା—2. Cephalandra Indica. ୩ । କାକମାଚୀ ଗୁଳ୍ମ—3. Solanum Nigrum (shrub). ୪ । ମହାଜ୍ୟୋତିଷ୍ମତୀ ଲତା—4. A kind of phosphorescent creeper.

**ବାୟସେକ୍ଷୁ**—ସଂ. ବି—କାଶ ତୃଣ ( ହି. ଶ.)—A kind of long Bāyasekshu reed grass (Apte).

**ବାୟ(ଇ, ଏ, ୟୋ)ସ୍କୋପ୍**—ବୈଦେ. ବି. ( ଇଂ. ବାୟୋସ୍କୋପ )—Bāya(i, e, yo)skop ଆଧୁନିକ ଛାୟାଚିତ୍ର ପ୍ରଦର୍ଶନୀ; ଚଳଚ୍ଚିତ୍ର; बायोस्कोप ପରଦା ଉପରେ ଆଲୋକ ସାହାଯ୍ୟରେ ନାନାପ୍ରକାର बायसकोप ଚଳନ୍ତି ଜୀବ ଓ ବସ୍ତୁ ଆଦିର ଛାୟା ପ୍ରତିଫଳିତ କରିବାର ଆଧୁନିକ ଯନ୍ତ୍ରବିଶେଷ—Bioscope.

**ବାୟ୍ୟା**—ଦେ. ବିଣ. ପୁଂ. ( ସ. ବାତୁଳ )—ବାତୁଳ; ପାଗଳ—Bāyā (ବାୟ୍ୟାଣୀ—ସ୍ତ୍ରୀ) Mad. पागल ବି—୧ । ପାଗଳ ବ୍ୟକ୍ତି—1. Mad man. ୨ । बौड़ाहा, बावला ସ୍ନେହସୂଚକ ସମ୍ବୋଧନ—2. A term of बापू बापु endearment. ୩ । ବାହୁଆ ( ଦେଖ )—3. Bāhiā ( See ) ୪ । ( ସ. ତନ୍ତୁବାୟ ବା ବାୟୁକ बाँवई =ବୟନକାରୀ; ବାୟ=ବୟନ; ତନ୍ତ୍ରୀ ଲୁଗା ବୁଣିଲାପରି बाया ଏମାନେ ଆପଣା ବସାକୁ ନଡ଼ିଆ ଓ ତାଳଆଦି ପତ୍ରର ସରୁ ତନ୍ତୁରେ ବୁଣି ଥିବାରୁ )—ବାୟ୍ୟା ଚଢ଼େଇ; ଶାଖାଶ୍ରୟୀ ବର୍ଗର ୬॥ ଆଙ୍ଗୁଳ ଲମ୍ବ ଏକପ୍ରକାର କ୍ଷୁଦ୍ର ପକ୍ଷୀ—4. The weaver bird; Ploceus Baya.

ବାୟ୍ୟା ବାୟ୍ୟାବଧୂ ବସନ୍ତୁ ନିର୍ଭୟେ । ରାଧାନାଥ ରଥଲକା ।

[ଦ୍ର—ଏମାନେ ତାଳ, ନଡ଼ିଆ ଓ ଅନ୍ୟ ବଡ଼ ବଡ଼ ଗଛର ଅଗ ଡାଳରେ ପତ୍ରମାନଙ୍କ ସରୁ ତନ୍ତୁଦ୍ୱାରା ବୋତଲ ପରି ସରୁମୁହାଁ ବସା ବୁଣି ଝୁଲାଇ ଥାଆନ୍ତି ଓ ବସାର ତଳ ପାଖେ ବାଟ ରଖି ଥାଆନ୍ତି । ଏମାନେ ଦଳ ଦଳ ଆସି ପାଚିଲା ଧାନ କ୍ଷେତରୁ ବହୁତ ଧାନ ଖାଇ ଯାଆନ୍ତି । ଏମାନଙ୍କ ମୁଣ୍ଡ ହଳଦିଆ ବା ଲୋମଶୂନ୍ୟ ।

ଆଉ ଏକ ଜାତୀୟ ବାୟ୍ୟା ଚଢ଼େଇଙ୍କୁ 'ତାଳବାୟ୍ୟା' ( ବ. ବାବୁଇ ବା ତାଲଚଟୁ ) ବୋଲାଯାଏ । ଏମାନେ ତାଳ ଗଛ ଅଗରେ ବାୟ୍ୟା ଚଢ଼େଇଙ୍କ ପରି ବସା ବାନ୍ଧନ୍ତି । ( The palm swift; Tachornis Batasseinsis ) । ଏମାନଙ୍କ ଥଣ୍ଟ ବାୟ୍ୟାଙ୍କଠାରୁ କ୍ଷୁଦ୍ର; ଥଣ୍ଟର ଅଗ ବଙ୍କା ଓ ଚଉଡ଼ା । ଏମାନେ ଉଡ଼ି ଉଡ଼ି ପୋକ ଧରି ଖାଆନ୍ତି ।

ଆମଦେଶରେ ବାୟ୍ୟା ଚଢ଼େଇଙ୍କୁ ଲକ୍ଷ୍ୟ କରି ଅନେକ ଶିଶୁଗୀତ ରଚିତ ହୋଇଅଛି । ଯଥା—

୧ । ଧୋଉରେ ବାୟ୍ୟା ଧୋ !
ଯେଉଁ କଥାରରେ ଗହଳ ମାଣ୍ଡି ଆ ସେହି କଥାରରେ ଶୋ ।
୨ । ବାୟ୍ୟାର କ ଯାଏ, ବାଆ କଲେ ବସା ଦୋହଲୁ ଥାଏ ।
୩ । ବାୟ୍ୟା ମାଆ ଯେ ସରୁ କାଟୁଣୀ, ଝିଅକୁ ପିନ୍ଧାଏ ପାଟ ପଉଣୀ, ପୁଅକୁ ପିନ୍ଧାଏ ନେତ, ଆପେ ପିନ୍ଧିଥାଏ କଳା ବୋଇତ ଲେ, ଉଡ଼େଇ ନଉଛି ଭୂତ ।

୪ । ବାୟା ଚଢ଼େଇରେ ! ବାୟା ଚଢ଼େଇ !
ତୁ ଯାଅ ଯାଅ ବଣକୁ ।
କୁମ୍ଭୀର କାକର ମାଡ଼ ଅସୁଛି ତୋ ଝାଙ୍ଗର ମୁଣ୍ଡକୁ । ]

ବୈଦେ. ବି ( କଟକିଆ ) ( ଆ. ବାୟେ )—ବିକ୍ରେତା—
बाया **बेचनेवाला, बानियाँ** Seller; vendor.
(ମୁସ୍ତରୀ—ବିପରୀତ)

**ବାୟାଁ**—ଦେ. ବିଣ. ପୁଂ—୧ । ବାଉଁଆଁ ( ଦେଖ )
Bāyāñ 1. Bāuñāñ ( See )
बायाँ ୨ । ବାମ ସମ୍ବନ୍ଧୀୟ—2. Pertaining to the left.
**बायँ**
(ବାଉଁଆଁ—ଅନ୍ୟରୂପ) ଦେ. ବି—ବାୟାଁ ତବଲା ( ଦେଖ )
Bāyāñ tabalā ( See )
କ୍ରି. ବିଣ—ବାମ ଦିଗକୁ—To the left.

**ବାୟାଁ ତ(ତା)ବଲା**—ଦେ. ବି. (ସଂ. ବାମ + ଆ. ତବଲ୍; ତବଲା)—
Bāyāñ ta(tā)balā ୧ । ଯେଉଁ ତବଲା ବା ଚର୍ମ ବାଦ୍ୟକୁ ବାଆଁ ହାତରେ ବଜା ଯାଏ; ଡୁଗୀ—
बायाँ **बायाँ**
बायाँ तबला 1, A kettle drum which can be manipulated with the left hand.
**बायाँ तबला**
୨ । ଡୁଗୀ ଓ ତବଲା; ବାୟାଁ ଓ ତବଲା ନାମକ ଦୁଇଟି ସ୍ୱତନ୍ତ୍ର ଐକତାନିକ ବାଦ୍ୟ—2. A musical instrument consisting of 2 pieces of drums; one struck by the left and the other by the right hand.

**ବାୟା ଚଟେଇ**—ପ୍ରାଦେ. (ଗଡ଼ଜାତ) ବି—ବାୟା ୪ ( ଦେଖ )
Bāyā chaṭei Bāyā 4 ( See )

**ବାୟା ଚଢ଼େଇ**—ଦେ. ବି—ବାୟା ୪ ( ଦେଖ )
Bāyā char̤dhei Bāyā 4 ( See )

**ବାୟା ମୁସ୍ତରୀ**—ବୈଦେ. ବି. (କଟକିଆ; ବିପରୀତାର୍ଥକ ସହଚର)—
Bāyā mustarī ବିକ୍ରେତା ଓ କ୍ରେତା—Vendor and vendee; seller and purchaser.
बाया मुस्तरी
**बेँचनेवाला खरिद्‌नेवाला, वानिया ओर गहकी**

**ବାୟୁ**—ସଂ. ବି. (ବା ଧାତୁ = ବହିବା + କର୍ତ୍ତୃ. ଉ)—
Bāyu ୧ । ପବନ—1, Air.
[ ଦ୍ର—ବିଜ୍ଞାନ ମତରେ ନାଇଟ୍ରୋଜେନ୍ ଅକ୍ସିଜେନ୍ ନାମକ ଦୁଇଟି ବାଷ୍ପର ସମ୍ମିଶ୍ରଣରେ ବାୟୁ ଜାତ ହୁଏ ।

ହିନ୍ଦୁମାନଙ୍କ ମତରେ ବାୟୁ ପଞ୍ଚ ମହାଭୂତ ମଧ୍ୟରୁ ଏକତମ; ବୈଶେଷିକ ଦର୍ଶନ ମତରେ ବାୟୁ ରୂପରହିତ, ସ୍ପର୍ଶବାନ୍ ଓ ନିତ୍ୟ ଦ୍ରବ୍ୟ ଅଟେ । ନ୍ୟାୟ ଦର୍ଶନ ମତରେ ବାୟୁ ପଞ୍ଚଭୂତ ମଧ୍ୟରୁ ଏକତମ ଓ ଏଥିର ଗୁଣ ସ୍ପର୍ଶ ଓ ଏଥିରୁ ସ୍ପର୍ଶେନ୍ଦ୍ରିୟର ଉତ୍ପତ୍ତି ବୋଲି ବୋଲା ଯାଇଅଛି । ବୈଶେଷିକ ଦର୍ଶନରେ ସ୍ପର୍ଶ ଗୁଣ ଛଡ଼ା ବାୟୁର ସଂଖ୍ୟା, ପରିମାଣ, ପୃଥକ୍‌ତ୍ୱ, ସଂଯୋଗ, ବିଭାଗ, ପରତ୍ୱ, ଅପରତ୍ୱ ଓ ବେଗ ଗୁଣମାନ ଅଛି । ସାଂଖ୍ୟ ଦର୍ଶନରେ ବାୟୁର ଉତ୍ପତ୍ତି ସ୍ପର୍ଶ ତନ୍ମାତ୍ରାରୁ ହୋଇଥିବାର କଥିତ । ଉପନିଷଦମାନଙ୍କରେ ଆକାଶରୁ ବାୟୁର ଉତ୍ପତ୍ତି ବୋଲି ବୋଲା ଯାଇଅଛି ।

ହିନ୍ଦୁ ଶାସ୍ତ୍ର ଅନୁସାରେ ପୃଥିବୀକୁ ବାୟୁର ୭ଟି ସ୍ତର ଉପର୍ଯ୍ୟୁପରି ବେଢ଼ିଅଛି, ଯଥା—ଆବହ, ପ୍ରବହ, ସଂବହ, ଉଦ୍‌ବହ, ବିବହ, ପରିବହ ଓ ପରାବହ । ]

୨ । ନିଃଶ୍ୱାସ ପବନ; ପ୍ରାଣ ବାୟୁ—2. The vital air; the breath of life.

[ ଦ୍ର—ହିନ୍ଦୁ ଶାସ୍ତ୍ର ମତରେ ପ୍ରାଣ ବାୟୁ ୫ଟି ଯଥା—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ । ତନ୍ତ୍ର ମତରେ ଶରୀରରେ ଥିବା ବାୟୁର ସଂଖ୍ୟା ୭ ଓ ଏହି ୭ଟି ଯଥାକ୍ରମେ ୭ ଭାଗ ଲେଖାଏଁ ହୋଇ ୪୯ଟିରେ ବିଭକ୍ତ । ]

୩ । ଶରୀରସ୍ଥ କୁପିତ ବାୟୁ; ବାତ—2. Morbid affectation of the windy humour; the deranged humour of wind in the system.

[ ଦ୍ର—ଆୟୁର୍ବେଦ ମତରେ ଶରୀରର ତ୍ରିଧାତୁ ବାତ, ପିତ୍ତ ଓ କଫ ମଧ୍ୟରେ ବାୟୁ ଏକତମ । ଏହା କୁପିତ ହେଲେ ମନୁଷ୍ୟ ବାତୁଳ ହୁଏ ଓ ପେଟ ଫମ୍ପା ମଧ୍ୟ କୁପିତ ବାୟୁର ଫଳ । ଶ୍ଲୀପଦ, ଫୁସ୍‌ଫୁସର ରୋଗ (ନିଉମୋନିଆ) ଓ ବାତ ସନ୍ନିପାତ (ଟାଇଫଏଡ୍) କୁପିତ ବାୟୁର ଫଳ ଥିବାର କଥିତ । ଆୟୁର୍ବେଦରେ କଥିତ ବାୟୁକୁ ଆଧୁନିକ ଚିକିତ୍ସା ବିଜ୍ଞାନ ଅନୁସାରେ ଦେହର ସ୍ନାୟବିକ ଯନ୍ତ୍ରମଣ୍ଡଳ (nervous system) ବୋଲାଯାଇ ପାରେ । ଯୋଗେଶଚନ୍ଦ୍ର ]

୪ । ଅଧୋବାୟୁ—4. Wind passed through the anus.

୫ । ଉତ୍ତର ପଶ୍ଚିମ କୋଣ—5. The north-west quarter.

୬ । ଉତ୍ତର ପଶ୍ଚିମ କୋଣର ରକ୍ଷକ ଦେବ; ପବନ ଦେବ—6. The wind-God according to the Hindus; the presiding Deity of the north west quarter of the earth.

बातिक ଦେ. ବି—୧ । ବାତିକ; ଖିଆଲ—
**लहर** 1. Whim; humour.
୨ । ବାତୁଳତା—2. Madness; mania.
୩ । ବ୍ୟକ୍ତିବିଶେଷଙ୍କର କୌଣସି ବିଶିଷ୍ଟ ବିଷୟ ପ୍ରତି ଜୀବନବ୍ୟାପୀ ସ୍ଥାୟୀ ଝୁଙ୍କ—3. Hobby; fixed idea; monomania.

**ବାୟୁ କରିବା**—ଦେ. କ୍ରି—୧ । ବାତାସ କରିବା; ପଙ୍ଖା କରିବା—
Bāyu karibā बातास करा **हवा करना** 1. To fan.
**बाइ छोडना** ୨ । ଅଧୋବାୟୁ ଛାଡ଼ିବା; ପାଦିବା—2. To pass wind through the anus.
बातकर्म्म करा

**ବାୟୁ କେତୁ**—ସଂ. ବି. (୬ଷ୍ଠୀ ତତ୍)—ଧୂଳି—
Bāyu ketu Dust.

**ବାୟୁ କୋଣ**—ସଂ. ବି—ଉତ୍ତର ପଶ୍ଚିମ କୋଣ—The north-west quarter of the globe.

**ବାୟୁ କୋଷ**—ସଂ. ବି—୧ । ଅନ୍ତ୍ର କୋଷ; ବାୟୁ ଜନିତ କୋଷବୃଦ୍ଧି—
Bāyu kosha 1. Hernia.

୨ । ଶରୀରସ୍ଥ ବାୟୁ ରହିବାର ମୁଣି; ଫୁସ୍‌ଫୁସ୍—
2. Air-bladder; lungs.

**ବାୟୁ ଗଣ୍ଡ**—ସଂ. ବି. (ମ. ପ. ଲୋ; ବାୟୁ ଜନିତ ଗଣ୍ଡ=ଗ୍ରନ୍ଥି)—
Bāyu gaṇḍa ଅଜୀର୍ଣ୍ଣ ଜନିତ ପେଟଫମ୍ପା—Flatulence due to indigestion (Apte).

**ବାୟୁ ଗତି**—ସଂ. ବିଣ. (ବହୁବ୍ରୀହି; ବାୟୁ ପରି ଗତି ଯାହାର)—
Bāyu gati ବାୟୁର ଗତି ପରି ଶୀଘ୍ର ଗତିବିଶିଷ୍ଟ; ବେଗଗାମୀ—Swift as wind; very fleet (Apte).

**ବାୟୁ ଗୁଲ୍ମ**—ସଂ. ବି. (୬ଷ୍ଠୀ ତତ୍)—୧ । ଝଡ଼; ତୋଫାନ—
Bāyu gulma 1. Hurricane; storm (Apte).
୨ । ଜଳଭ୍ରମି; ଘଲମଲ—2. Whirlpool (Apte).
୩ । ପେଟର ଏକ ରୋଗ—3. A kind of disease in the belly.
[ ଦ୍ର—ଏ ରୋଗରେ ପେଟ ମଧ୍ୟରେ ବାୟୁ ଗୋଟିଏ ଗୁଳା ପରି ଜଣାଯାଏ ଓ ତାହା କମିଯାଏ ଓ ବଢ଼େ । ଏଥିରେ ମଳ ମୂତ୍ରର ଅବରୋଧ ହୁଏ, ଗଳା ଶୁଖି ଯାଏ, ହୃଦୟ, ପାର୍ଶ୍ୱ ଓ ପଞ୍ଜର ଦରଜ ହୁଏ । ପେଟ ଖାଲି ଥିବା ବେଳେ ଏ ରୋଗର ପ୍ରକୋପ ବେଶି ହୁଏ—ହି. ଶ. ]

**ବାୟୁଗ୍ରସ୍ତ**—ସଂ. ବିଣ. ପୁଂ.—(୩ୟା ତତ୍)—୧ । ବାତ ରୋଗଗ୍ରସ୍ତ;
Bāyu grasta ବାଉଳ—1. Hypochondriac; insane.
(ବାୟୁଗ୍ରସ୍ତା—ସ୍ତ୍ରୀ) ୨ । ବାୟୁ ରୋଗାକ୍ରାନ୍ତ—2. Suffering from disease of wind (e.g. gout.) ୩ । କୁପିତ ବାୟୁ ଯୋଗୁଁ ଫୁଲି ଥିବା—3. Flatulent (Apte).

**ବାୟୁ ଚକ୍ର**—ଦେ. ବି.—ବାୟୁଦ୍ୱାରା ଚାଳିତ ଯନ୍ତ୍ର—Wind mill;
Bāyu chakra machine propelled by wind.
(ବାୟୁ ଘରଟ୍ଟ, ବାୟୁ ଯନ୍ତ୍ର—ଅନ୍ୟରୂପ)

**ବାୟୁନା**—ଦେ. ବି.—ବାଦକ; ବାଦ୍ୟ ବଜାଇବା ଲୋକ—
Bāyunā ବାଇୟେ, বায়ন **বজনীয়া** Musician.

**ବାୟୁ ନିଷ୍କାସନ(କ) ଯନ୍ତ୍ର**—ସଂ ବି. (ଆଧୁନିକ ପ୍ରୟୋଗ)—ଯେଉଁ ଯନ୍ତ୍ର-
Bāyu niskāsana(ka) jantra ଦ୍ୱାରା କୌଣସି ସ୍ଥାନକୁ ବାୟୁଶୂନ୍ୟ କରାଯାଏ—Air pump.

**ବାୟୁ ପୁତ୍ର**—ସଂ. ବି. (୬ଷ୍ଠୀ ତତ୍; ବାୟୁ+ପୁତ୍ର)—୧ । ହନୁମାନ୍—
Bāyu putra 1. A name of Hanumān.
ବାୟୁ ତନୟ, ବାୟୁ ଜାତ, ବାୟୁ ନନ୍ଦନ, ବାୟୁସୁତ, ବାୟୁସୂନୁ } —ଅନ୍ୟରୂପ ୨ । ଭୀମ—2. A name of Bhīma.

**ବାୟୁ ପୁରାଣ**—ସଂ. ବି.—ବାୟୁ ଦେବତାଙ୍କ ଜନ୍ମ ସମ୍ବନ୍ଧେ ଚରିତ; ପୁରାଣ
Bāyu purāṇa ବିଶେଷ—Name of a Hindu mythological treatise.

**ବାୟୁ ଫଳ**—ସଂ. ବି.—୧ । କୁଆ ପଥର—
Bāyuphaḷa 1. Hail (Apte).
୨ । ଇନ୍ଦ୍ରଧନୁ—2. Rainbow (Apte).

**ବାୟୁ ବର୍ତ୍ମ**—ସଂ. ବି.—(ବହୁବ୍ରୀହି; ୬ଷ୍ଠୀ ତତ୍ ବାୟୁ+ବର୍ତ୍ମନ୍; ୧ମା ଏକ. )—ଶୂନ୍ୟ—1. The sky. ୨ ।
Bāyu bartma
(ବାୟୁପଥ, ବାୟୁ ମାର୍ଗ—ଅନ୍ୟରୂପ) ୨ । ଆକାଶ ମାର୍ଗ; ପଥରୂପେ ବ୍ୟବହୃତ ଆକାଶ—2. Airway; passage through the sky. ୩ । ପବନ ଯିବା ଆସିବାର ବାଟ—3. Passage for circulation of wind or ventilation.

**ବାୟୁ ବାହ**—ସଂ. ବି.—(ବାୟୁ+ବାହ=ବାହନ; ବହୁବ୍ରୀହି, ଯାହାକୁ
Bāyu bāha ବାୟୁ ବହନ କରେ)—୧ । ମେଘ—1. Cloud.
୨ । ଧୂମ—2. Smoke. ୩ । ବାଷ୍ପ—3. Vapour; steam.

**ବାୟୁ ବାହନ**—ଦେ. ବି.—(ବହୁବ୍ରୀହି)—ମୃଗ—
Bāyu bāhana Deer.
ବାୟୁ ବାହନ ଉମଙ୍ଗ । ବନେ ଦର୍ଶନ ଶୁମ୍ଭର ।
ଉକ୍ତ. ବୈଦେହୀଶବିଳାସ ।

**ବାୟୁ ବାହିକା**—ସ. ବିଣ.—ଯେଉଁ ଶିରା ଶରୀର ମଧ୍ୟରେ ବାୟୁକୁ
Bāyu bāhikā ଖେଳାଏ—( vein ) Circulating the
(ବାୟୁବାହିନୀ—ଅନ୍ୟରୂପ) wind through the syster

**ବାୟୁ ବେଗ**—ସଂ. ବି.—୧ । (୬ଷ୍ଠୀ ତତ୍)—ବାୟୁ ଚଳିବାର ସମୟାନୁସାର
Bayu bega ଦୂରତ୍ୱ—1. Velocity of wind. ୨ । ପବନ ଚଞ୍ଚଳ ଗତି—The swiftness of winc
(ବାୟୁବେଗା—ସ୍ତ୍ରୀ)—ସଂ. ବିଣ. ପୁଂ.—( ବହୁବ୍ରୀହି )—ଶୀଘ୍ରଗତି ବିଶିଷ୍ଟ—Fleet; swift.

**ବାୟୁ ଭୁକ୍**—ସଂ.ବିଣ—(ବାୟୁ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍)—ଯେ ପବନ
Bāyu bhuk ଭକ୍ଷଣ କରି ବଞ୍ଚେ—Subsisting on air only.
ବାୟୁ ଭକ୍ଷ, ବାୟୁ ଭକ୍ଷଣ, ବାୟୁ ଭକ୍ଷୀ } —ଅନ୍ୟରୂପ ବି.—ସର୍ପ; ସାପ; ପନ୍ନଗାଶନ—Serpent.

**ବାୟୁ ମଣ୍ଡଳ**—ସଂ. ବି.—(୬ଷ୍ଠୀ ତତ୍; ବାୟୁ+ମଣ୍ଡଳ) —ଆକାଶମଣ୍ଡଳ-
Bāyu maṇḍaḷa The sky.

**ବାୟୁମାନ ଯନ୍ତ୍ର**—ସଂ. ବି.—( ଆଧୁନିକ ବ୍ୟବହାର )—ବାୟୁଗୁରୁତ୍ୱର
Bayumāna jantra ପରିମାଣଜ୍ଞାପକ ଯନ୍ତ୍ର—Barometer.

**ବାୟୁ ରୋଗ**—ସଂ. ବି.—୧ । ବାଉଳତା—
Bāyu roga 1. Insanity.
୨ । ବାତ ରୋଗ—2. Rheumatism; gout.
୩ । ପେଟ ଫମ୍ପା ରୋଗ—3. Tympanites; flatulence. ୪ । ବାୟୁ ଶୂଳ—4. Colic due to wind.
ବାୟୁରୋଗୀ, ବାୟୁ ରୁଗ୍‌ଣ } —ବିଣ
୫ । ଅପସ୍ମାରଜ ବାତ—5. Epileptic fit.

**ବାୟୁ ଶୂଳ**—ସଂ. ବି.—ବାୟୁ ଜନିତ ପେଟମର୍ଦ୍ଦ ରୋଗ—
Bāyu sūḷa Colic due to wind.

**ବାୟୁ ସଖ (ଖି)**—ସଂ. ବି.—(ବହୁବ୍ରୀହି; ବାୟୁ+ସଖା)—ଅଗ୍ନି—
Bāyu sakha (khi) Fire.

**ବାୟୁ(ୟୂ)ଷ**—ସଂ. ବି.—କଳାବାଇଁଶି ମାଛ—
Bāyu(yū)sha A kind of darkish fresh-water-fish;
কালবোস, কাল্‌বসী **नैनी** Lubeo Calbasu.

ବାର୍—ସଂ. ବି. ( ବୃ ଧାତୁ ଣିଚ୍=ବାର ଧାତୁ; ଆବରଣ କରିବା + କର୍ତ୍ତୃ
Bāri ଇ, ଯାହା ପୃଥିବୀକୁ ଆବରଣ କରିଅଛି )—୧ । ଜଳ; ସଲିଳ—1. Water. ୨ । ( + କର୍ତ୍ତୃ. ଇ ) ଜଳପାତ୍ର; ଘଡ଼—2 Water vessel; water jar. ୩ । (+କର୍ମ. ଅ) ସରସ୍ୱତୀ—3. Goddess Saraswatī. ୪ । (+ବୃ. ଧାତୁ ଣିଚ୍ ବାର ଧାତୁ ବନ୍ଧନ କରିବା + କରଣ. ଇ ) ହସ୍ତୀର ବନ୍ଧନ ରଜ୍ଜୁ—4. A rope for tying an elephant. ୫ । ( +ଅଧିକରଣ. ଇ ) ଯେଉଁ ସ୍ଥାନରେ ହସ୍ତୀକୁ ବନ୍ଧନ କରାଯାଏ—5. A place where an elephant is tied. ୬ । (+କର୍ମ. ଇ) ବନ୍ଦୀ; କଏଦୀ-6. Prisoner ୭ । ହାତୀ ଧରିବାପାଇଁ ଫାଶ ବା ଗର୍ତ୍ତ-7 A trap or hole for catching wild elephants (Apte). ୮ । ସୁଗନ୍ଧବେର ( ବୃ. ଶ ) କରୁବେଲୀ—8. Pavonia Odorata (plant). ୯ । ତରଳପଦାର୍ଥ; ଜଳୀୟବସ୍ତୁ ( ବୃ. ଶ )—9. Liquid; fluid (Apte). ୧୦ । ବାକ୍ୟ—10. Speech (Apte).

ଦେ. ବି—୧ । ଲୋତକ—1. Tears.

ବହିଲ, ବାରି ଯା ନୟନି ଉହୁଁ ଯେ—ଭଞ୍ଜ. ବୈଦେହୀଶବିଳାସ ।

ବାରି वारी ୨ । ( ସଂ. ବାର ) ସପ୍ତାହ ମଧ୍ୟରେ ବୋଟ ବା ଜାହାଜ କୌଣସି ସ୍ଥାନରୁ ଅନ୍ୟ ସ୍ଥାନକୁ ଛାଡ଼ିବାର ନିର୍ଦ୍ଦିଷ୍ଟ ଦିବସ—2. The weekday on which a weekly service boat leaves a place. ୩ । କୌଣସି କାର୍ଯ୍ୟ କରିବାର ପାଳି—3. A turn of service. ୪ । ଯେଉଁ ବୋଟ ବା ଡଙ୍ଗା ସପ୍ତାହର ନିର୍ଦ୍ଦିଷ୍ଟ ଦିନରେ ବା ଦିନମାନଙ୍କରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ ଅନ୍ୟ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାତ୍ରୀ ବା ମାଲମାନ ନିଅ ଅଣା କରେ; ବାରି ବୋଟ—4. A service boat for carrying passengers and goods. ୫ । ହାଟ ବସିବାର ନିର୍ଦ୍ଦିଷ୍ଟ ବାସର—5. A week day fixed for a weekly market. ୬ । ଯେଉଁ ଗ୍ରାମରେ ଡାକଘର ନ ଥାଏ ସେ ଗ୍ରାମକୁ ସପ୍ତାହର ଯେଉଁ ନିର୍ଦ୍ଦିଷ୍ଟ ଦିବସରେ ଡାକବାଲା ଅସେ—6. A weekday or days when the postal peon visits a village distant from a post office.

बारी ଗ୍ରା. ( ଉତ୍ତର ) ବି—୧ । ( ସଂ. ବାଟିକା ) ବାଡ଼; ବଗିଚ୍ଚ—1. Garden. ୨ । ( ସଂ. ବହିଃ ) ଘରର ପଛଆଡ଼ ଭୂମି; ଘରବାଡ଼ ପଟ—2. Land lying to the back of a house; the backside of a house

ବାରିଆ—ଦେ. ବି—ବାଗିଆ ( ଦେଖ )
Bāriā Bāgiā (See)

ଗ୍ରାଦେ. ( ଗଞ୍ଜାମ ) ବି—ବାରହା, ବାହ୍ରା—
Wild hog; boar.

ବାରିଆ ବାଣ—ଗ୍ରାଦେ. ( ବାଲେଶ୍ୱର ) ବି—ଢାଲ ସୁପାରି ଲୁହୁକରେ
Bāriā bāṇa ବ୍ୟବହୃତ ଏକପ୍ରକାର ମନ୍ତ୍ର ପ୍ରୟୋଗ—An incantation used in the Ḍhālasupāri charm.
[ ଦ୍ର—ସୁପାରି ହାତରୁ ମନ୍ତ୍ରର ବିପକ୍ଷର ନାମ ଧରି ଯାହା ଉଦ୍ଦେଶ୍ୟରେ ଫିଙ୍ଗି ଦିଆଯାଏ ଏବଂ ଏଥିର ଫଳରେ ଉଦ୍ଦିଷ୍ଟ ବିପକ୍ଷର ଉପରେ ବାଣବୃଷ୍ଟି ହେଲା ପରି ଶୂନ୍ୟରୁ ଆଘାତ ହୁଏ । ]

ବାରିକ୍—ବୈଦେ. ବି. ( ଅ )—୧ । ସୂକ୍ଷ୍ମ; ଖୁବ୍ ପତଳା (ଲୁଗା)—
Bārik 1. Very fine ( cloth ) ୨ । ଚାରୁ; ଉତ୍କୃଷ୍ଟ
ବାରିକ ( କାରୁକାର୍ଯ୍ୟ )—2. Excellent ( workman-
बारीक ship ). ୩ । ଅତି କ୍ଷୁଦ୍ର ଓ ସୁନ୍ଦର ( ହସ୍ତାକ୍ଷର )—3. Very small and fine (handwriting).
୪ । (ଇଂ. ବାରକ୍ସ୍ ) କାରଖାନାରେ କାମ କରୁଥିବା ମୂଲିଆମାନଙ୍କ ରହିବା ପାଇଁ ସେମାନଙ୍କ ନିର୍ମିତ ଗୃହପଂକ୍ତି—4. Rows of houses built for labourers by the owner of a factory or mill.

ବାରିକ୍ ମିସ୍ତ୍ରୀ—ବୈଦେ ବି ( ଇଂ. ବାରକ୍=ସେନାନିବାସ + ମାଷ୍ଟର;
Bārik mistri ଏମାନେ ପ୍ରଥମେ ସରକାରୀ ସେନାନିବାସ ପ୍ରସ୍ତୁତକରୁ-
बारिकमाष्टार(मिस्त्री) ଥିବାରୁ)—୧ । ସୂକ୍ଷ୍ମ ଶିଳ୍ପରେ ନିପୁଣ ବ୍ୟକ୍ତି—
बारीक माहर 1. An expert in fine arts; artist. (ବାରିକ ମିସ୍ତ୍ରୀ—ଅନ୍ୟରୂପ) ୨ । ଇଞ୍ଜିନିୟର୍—2. Engineer. ୩ । ଗଭର୍ଣ୍ଣମେଣ୍ଟଙ୍କର ପୂର୍ତ୍ତବିଭାଗ—3. The Public Works Department of Government; Engineering Department.
[ ଦ୍ର— ଗଭର୍ଣ୍ଣମେଣ୍ଟଙ୍କ ପରଗୃଳିତ ସାଧାରଣ ହିତକର କାଳ, ସଡ଼କ, ବନ୍ଧ, କୋଠା ଅଦିର ନିର୍ମାଣ ଓ ରକ୍ଷଣାଦିର ଭାର ଏହି ଇଲାକା ଉପରେ ନ୍ୟସ୍ତ ଥାଏ । ଏହି ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟ୍ (Public Works Department )ର ସାଙ୍କେତିକ ଡି. ପି. ଡବଲ୍ୟୁ ( D. P. W, ) ବା ପି. ଡବଲ୍ୟୁ ଡି ( P. W. D, ) । ଏଥିର ବଡ଼ ବଡ଼ କର୍ମଚାରୀଙ୍କୁ ଇଞ୍ଜିନିୟର ବୋଲାଯାଏ । ]

ବାରିକ—ଦେ. ବି. ପୁଂ—୧ । ଭଣ୍ଡାରୀ—1. Barber. ୨ । ଶୂଦ୍ର
Bārika ମାନଙ୍କ ବଂଶୋପାଧିବିଶେଷ—2. A family-title
नापित नाइ, of Sūdras.

ବାରିକାଣୀ } ସ୍ତ୍ରୀ ଗ୍ରାଦେ. ( ଗଞ୍ଜାମ ) ବି—ଗ୍ରାମ ଚଉକିଦାର—
ବାରିକଆଣୀ Village watchman.

ବାରିକଫ—ସଂ. ବି (ବହୁବ୍ରୀହି)—ସମୁଦ୍ର ( ବୃ. ଶ. )—
Bāri kapha The sea.

ବାରିକର୍ପୂର—ସଂ. ବି—ଇଲିଶିମାଛ—
Bārikarpūra The hilsa fish (Apte).

ବାରିକା—ବୈଦେ. ବି. ( ପା. ବାରିକ୍ )—ଚିତ୍ରକାରମାନଙ୍କର ରେଖା
Bārikā ଟାଣିବାର ସରୁ ତୂଳୀ—A very fine painter's
बारीका सरुतूली brush.

ବାରି କୁଣ୍ଡ—ଦେ. ବି—କ୍ଷୁଦ୍ର ସରୋବର; କ୍ଷୁଦ୍ର ପୋଖରୀ—
Bāri kuṇḍa A small tank.

ବାଳ ପୁଣି ସେ କାଣ୍ଡ କଣ ଚାରୁ ବିଖଣ୍ଡ ପାଳେକ ପଙ୍କ ଉତ୍ପିଅଣ ସେ.
ବାରିକୁଣ୍ଡ—ଭଞ୍ଜ. ବୈଦେହୀଶବିଳାସ ।

ବାରିକୁବ୍ଜ—ସଂ. ବି—ଶୃଙ୍ଗାଟକ; ଶିଙ୍ଘଡ଼ା ( ହି. ଶ. )—
Bārikubja Water-chestnut ( Apte ).
( ବାରିକୁବ୍ଜକ—ଅନ୍ୟରୂପ )

ବାରିକୋଳ—ସଂ. ବି. ( ୬ଷ୍ଠୀ ତତ୍; ବାରି+କୋଳ )—ବୃହତ୍ କଚ୍ଛପ;
Bārikoḻa বারিকোল बारकोल କଇଁଛ—Tortoise.
[ ଦ୍ର—ସାଧାରଣ କଇଁଛର ଖୋଲ ଉପରେ ଦାଗ ଥାଏ; ବାରିକୋଳର ଖୋଲ ଉପରେ ଦାଗ ନ ଥାଏ । ]

ବାରିଚର—ସଂ. ବିଣ. ( ବାରି=ଜଳ+ଚର୍ ଧାତୁ; କର୍ତ୍ତୃ. ଅ )—ଯେ
Bārichara ଜଳରେ ବିଚରଣ କରେ; ଜଳଚର—Frequenting the water.
ବି—୧ । ଜଳଚର ଜୀବ—1. Aquatic animal.
୨ । ମତ୍ସ୍ୟ; ମାଛ—2. Fish.
୩ । ଶଙ୍ଖ ( ହି. ଶ. )—3. Conch shell.

ବାରିଜ—ସଂ. ବିଣ. ( ବାରି+ଜନ୍ ଧାତୁ+କର୍ତ୍ତୃ. ଅ )—ଜଳଜାତ—
Bārija Born of water.
ବି—୧ । ପଦ୍ମ—1. Lotus. ୨ । ଶଙ୍ଖ—2. Conch.
୩ । ଶମ୍ବୁକ; ଶାମୁକା—3. Oyster.
୪ । ଲବଙ୍ଗ (ପ୍ରକୃତିବାଦ)—4. Cloves (Apte).
୫ । ଗେଣ୍ଡା ( ହି. ଶ. )—5. Snail. ୬ । କଉଡ଼ି ( ହି. ଶ )—6. Small sea-shells formerly used as currency. ୭ । ଖାଣ୍ଟି ସୁନା (ହି. ଶ.)—7. Pure gold.

ବାରିଜବନ୍ଧୁ—ସଂ. ବି (୬ଷ୍ଠୀ ତତ୍ )—ସୂର୍ଯ୍ୟ—The sun.
Bārijabandhu ବାରିଜବନ୍ଧୁ ଉଦେକୁ ଏଡ଼େ ବାରପଣ—ଭଞ୍ଜ. ବୈଦେହୀଶବିଳାସ
( ବାରିଜବାନ୍ଧବ; ବାରିଜମିତ୍ର—ଅନ୍ୟରୂପ )

ବାରିଜାକ୍ଷ—ସଂ. ବିଣ. ପୁଂ—ଯାହାର ଚକ୍ଷୁ ପଦ୍ମ ପରି ବିଶାଳ ଓ ସୁନ୍ଦର—
Bārijāksha ( ବାରିଜାକ୍ଷୀ—ସ୍ତ୍ରୀ ) Lotus-eyed.

ବାରିଜୌକଃ(କା)—ସଂ. ବି. ( ବହୁବ୍ରୀହି ବାରିଜ+ଓକସ )—ଜଳୌକା;
Bārijaukaḥ(kā) ଜୋକ—Leech ( Apte ).
( ବାରିକିମି—ଅନ୍ୟରୂପ )

ବାରିଝର—ଦେ. ବି ( ସଂ. ବାରି+ଝର )—୧ । ଜଳଝର; ଝରଣା—
Bārijhari 1. Spring. ୨ । ଜଳପୂର୍ଣ୍ଣ କଳସୀ—2 A jar full of water.
ବଭ୍ରାଜିତ ବାରିଝରି ଭାସିଲବ ଯହିଁ—ଭଞ୍ଜ, ବୈଦେହୀଶବିଳାସ ।

ବାରିତ—ସଂ. ବିଣ. ( ବୃ. ଧାତୁ ଣିଚ୍ ବାରି ଧାତୁ+କର୍ମ. ତ )—
Bārita ୧ । ନିବାରିତ—1. Prohibited; prevented.
୨ । ଯହାକୁ ଅଟକ ରଖାଯାଇଅଛି—
2. Restrained; checked.

ବାରିତର—ସଂ. ବି—ଉଶୀର; ବେଣାମୂଳ ( ହି. ଶ. )—
Bāritara The fragrant root of Beṇā grrss.

ବାରିତସ୍କର—ସଂ. ବି. (୬ଷ୍ଠୀ ତତ୍; ବାରି+ତସ୍କର )—୧ । ମେଘ—
Bāritaskara 1. Cloud ( Apte ).
୨ । ସୂର୍ଯ୍ୟ—2. The sun ( Apte ).

ବାରିତ୍ରା—ସଂ. ବି. ( ବାରି+ତ୍ରୈ ଧାତୁ+କର୍ତ୍ତୃ. ଅ+ଆ; ଯାହା ଜଳରୁ
Bāritrā ମନୁଷ୍ୟକୁ ରକ୍ଷା କରେ; ତୁଳ. ଆତପତ୍ର; ତୁଳନାକର; ଇଂ. ୱାଟର୍ ପ୍ରୁଫ୍—water proof )—ଛତା; ଆତପତ୍ର—Umbrella ( Apte ).

ବାରିଦ—ସଂ. ବି. ( ବାରି=ଜଳ+ଦା. ଧାତୁ; କର୍ତ୍ତୃ. ଅ )—
Bārida ( ବାରିଧର—ଅନ୍ୟରୂପ ) ଜଳଦ; ମେଘ—Cloud.

ବାରିଧି—ସଂ. ବି. ( ବାରି+ଧା ଧାତୁ=ଧାରଣ କରିବା+ଅଧିକରଣ.
Bāridhi ଇ )—ସମୁଦ୍ର—Ocean; sea.
( ବାରିନାଥ, ବାରିନିଧି, ବାରିଶ—ଅନ୍ୟରୂପ )

ବାରିଧି ଚଳୁକ—ସଂ. ବି. (ବହୁବ୍ରୀହି )—ଅଗସ୍ତ୍ୟ ଋଷି—
Bāridhi chaḻuka Sage Agastya
[ ଦ୍ର—ଏହାଙ୍କ ପିତା କୁମ୍ଭ ଋଷି କୁମ୍ଭରେ ଥିବା ଅଳ୍ପ ଜଳରେ ବୁଡ଼ି ମରିଥିବାରୁ ଏ ଋଷି ସପ୍ତସମୁଦ୍ରକୁ ଚଳୁ କରି ପିଇଦେଇଥିଲେ । ]

ବାରିଧିଜ—ସଂ. ବି. (ବାରିଧି+ଜନ୍ ଧାତୁ+କର୍ତ୍ତୃ. ଅ)—ଚନ୍ଦ୍ର—Moon.
Bāridhija ବାରିଧିଜ ଉଦେ ଅଙ୍କ-ଦୂବାଦଳ ଭରି—
ଭଞ୍ଜ. ବୈଦେହୀଶବିଳାସ ।

ବାରିପର୍ଣ୍ଣୀ—ସଂ. ବି. (୬ଷ୍ଠୀ ତତ; ବାରି+ପର୍ଣ୍ଣ+ଈ)—ଦଳ; ବୋରଝାଞ୍ଜି;
Bāriparṇṇī କୁମ୍ଭିକା—The duck weed.
( ବାରିପୃଶ୍ଣୀ, ବାରିମୂଳୀ, ପୃଶ୍ଣିପର୍ଣ୍ଣୀ—ଅନ୍ୟରୂପ )

ବାରି ପେଞ୍ଚ—ପ୍ରାଦେ. ( ବାଲେଶ୍ୱର ) ବି—ନିର୍ଦ୍ଦିଷ୍ଟ ଦିବସରେ ଖେଳା
Bāri pen̄cha ଯାଉଥିବା ଏକପ୍ରକାର ଖେଳ—Games played on some fixed days.
[ ଦ୍ର—ଏହି ଖେଳ ଖେଳିବା ଲାଗି ଲୋକେ ପ୍ରଚୁର ଖାଦ୍ୟୋପକରଣ ସଙ୍ଗରେ ନେଇ ଗୋଟିଏ ମେଲା ପଡ଼ିଆରେ ଉପସ୍ଥିତ ହୁଅନ୍ତି । ଦିନଯାକ ସେମାନେ ଦଳ ବାନ୍ଧି ଗୁଡ଼ି ଉଡ଼ାନ୍ତି ଓ ପେଞ୍ଚ ( କୁସ୍ତି ) ଖେଳନ୍ତି । ଏହା ଦେଖିବା ପାଇଁ ଅନେକ ଦେଖଣାହାରି ମଧ୍ୟ ଉପସ୍ଥିତ ହୁଅନ୍ତି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଏହି ପେଞ୍ଚ ଖେଳା ଯାଉଥିବାରୁ ଏହାକୁ 'ବାରି ପେଞ୍ଚ' କହନ୍ତି । ବର୍ତ୍ତମାନ ଏହି ପ୍ରଥା କ୍ରମେ ଲୋପ ପାଇବାକୁ ବସିଲାଣି । ]

ବାରି ପ୍ରବାହ—ସଂ. ବି. ( ୬ଷ୍ଠୀ ତତ୍; ବାରି+ପ୍ରବାହ )—୧ । ଜଳ.
Bāri prabāha ପ୍ରବାହ; ଜଳସ୍ରୋତଃ—1. Water current.
୨ । ଜଳପ୍ରପାତ—2. Waterfall.
୩ । ନିର୍ଝର; ଝରଣା—3. Spring.

ବାରିବା—ଦେ. କ୍ରି. ( ପଦ୍ୟ ) ( ସଂ. ବୃ. ଧାତୁ )—୧ । ଅଟକାଇବା;
Bāribā ବାଧା ଦେବା; ରୋଧ କରିବା—
বারা बारना 1. To obstruct; to restrain.
ଭେଟି ସମ୍ଭାଷଣ ବାରିଲେ ବାରଣ ମାନେ କି ପ୍ରେମିକ ମନ—
ରାଧାନାଥ, କେଦାରଗୌରୀ ।
୨ । ବାରଣ କରିବା—2. To prevent.
ଚମ୍ପକ ନ ଦିଏ ବାରଇ ଲଜ । ଭଞ୍ଜ. ପ୍ରେମସୁଧାନିଧି ।
୩ । ନିଷେଧ କରିବା—3. To forbid. ୪ । ନିବାରଣ କରିବା; ଦୂର କରିବା—4. To cause to disappear; to remove.
କହି ଏ ସ୍ୱୀବାରିତା ବାର ତା କ୍ଲେଶ । ରାଧାନାଥ. ମେଘଦୂତ ।

୫ । ପ୍ରଭେଦ କରିବା; ପ୍ରଭେଦ ଜାଣିବା—5. To distinguish; to discriminate; to make distinction between; to differentiate.

ତରଙ୍ଗେ ଉଦ୍ଧ୍ରୁକେ ଲବଣ୍ଡ ଗୁଣକେ ବାରିଲେ ପାଣର ।
ଉଞ୍ଜ. ବୈଦେହୀଶବିଳାସ ।

୬ । ଉରିକିବା; ଆଗରୁ ସାବଧାନ ହେବା—6. To be forewarned; to become vigilant. ୭ । ଜାଣିବା; ଠଉରାଇବା—7. To know; to recognise.

ବାରି ପାରି ନାହିଁଲେ ସ୍ୱକେଶି
ବାରି ମଧ୍ୟେ ରୁ ଥିଲୁ ବଇସି । କବିସୂର୍ଯ୍ୟ. ସଙ୍ଗୀତ ।

୮ । ବାଡ଼ଦ୍ୱାରା ପୃଥକ୍ କରିବା—8. To separate by a fence. ୯ । ମାନିବା—9 To regard; to respect. ୧୦ । କୌଣସି ବ୍ୟକ୍ତିର ବା କାର୍ଯ୍ୟରେ ଘଟୁଥିବା ଦୋଷକୁ ଦେଖାଇବା—10. To point out one's fault or defect. ୧୧ । ହେଜିବା—11. To think over.

କ ପ୍ରଭେଦ ଅବା ଗର୍ଥ ବାରିବାମାଳସ୍ୱେ
ନ ପାରିଲ ବାରି, ହାସ୍ୟ ଦୂଟଳ ଦୂର୍ବରେ — ଚନ୍ଦ୍ରାମଣି. ବଜ୍ରମାବଧ୍ୟ ।

୧୨ । ବିଚାରପୂର୍ବକ ସ୍ଥିର କରିବା — 12 To ascertain after thinking.

ବାଉବେଦ୍ୟ ସୁର ଭାଷେ ସତ ଏ ଉରକ
ବାର ଏତେ କନ୍ୟା ସେଉଁ ନାମ ଉଚାରକ ।
ଉଞ୍ଜ. ବୈଦେହୀଶବିଳାସ ।

୧୩ । ଶାନ୍ତ କରିବା; ଲଘୁକ କରିବା; ଉପଶମ କରିବା-13. To appease; to lighten.

କାମିନୀଏ ଏ ରୂପେ ବରହ କ୍ଲେଶ
ବାରନ୍ତି, ବାରିବ, ରୁ ଜାଣ୍ ବଶେଷ ।
ରଘୁନାଥ, ମେଘଦୂତ ।

ବାରିବାସ—ସଂ. ବି—(ବାରି+ବସ ଧାତୁ. ଣିଚ; ବାସି ଧାତୁ+କର୍ତ୍ତୃ. ଅ) —ମଦ ତିଆରି କରିବା ବ୍ୟକ୍ତି; ଶୁଣ୍ଡୀ (ହ୍ରି. ଶ)— Bāribāsa A distiller of wine; manufacturer of wine

ବାରି ବାହ—ସଂ. ବି—(ବାରି+ବହ. ଧାତୁ+କର୍ତ୍ତୃ. ଅ) —ମେଘ— Bāri bāho Cloud.
( ବାରିମୁଚ, ବାରି ବାହନ - ଅନ୍ୟରୂପ )

ବାରି ବୋଟ—ଦେ. ବି—(ସଂ. ବାରି+ଇଂ. ବୋଟ୍)—ଯେଉଁ ବୋଟ Bāri boṭa ବା ଡଙ୍ଗା ସପ୍ତାହର ନିର୍ଦ୍ଦିଷ୍ଟ ଓ ବନ୍ଧାପିତ ଦିନରେ ବାରିବୋଟ ବା ଦିନମାନଙ୍କରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ **वारीबोट** କେନାଲରେ ବା ଜଳପଥରେ ଯାତ୍ରୀ ଓ ମାଲମାନ ଭଡ଼ାରେ ନେଇଥାଏ କରେ—A service boat carrying passengers and goods from one place to another on fixed week days.

ବାରି ବ୍ୟାଳ—ଦେ. ବି—ପାଣିଧଣ୍ଡ ସାପ—A snake living in Bāri byāḷa water; water-snake, Hoemalapsidae.

ବାରି ବ୍ୟାଳ ଜାଳ କଳୁପ ମଣ୍ଡୁଳ ସାବେଳୀ ଅଡ଼ଣୀ ବହୁ—
ଉଞ୍ଜ. ବୈଦେହୀଶବିଳାସ ।

ବାରିଯନ୍ତ୍ର —ସଂ. ବି—୧ । ଜଳଯନ୍ତ୍ର—1. Water-mill. ୨ । ଜଳର Bāri jantra ଉତ୍ସ ବା ଫୁଆରା—2. Artificial fountain.

ବାରିଯନ୍ତ୍ର ଠାରୁ ଯହିଁ, ନସ୍ୱର ତଗାହିଁ ବହୁ—
ଉଞ୍ଜ. ବୈଦେହୀଶବିଳାସ ।

ବାରିରାଶି—ସଂ. ବି—(ଷଷ୍ଠୀ ତତ୍; ବାରି+ରାଶି)—୧ । ଜଳ ସମଷ୍ଟି— Bārirāśi 1. An expanse of water. ୨ । ସମୁଦ୍ର—2. The sea.

ବାରିରୁହ —ସଂ. ବି—(ବାରି+ରୁହ ଧାତୁ+କର୍ତ୍ତୃ. ଅ)-ପଦ୍ମ; ଜଳରୁହ— Bariruha Lotus.
ସଂ. ବିଣ—ଜଳଜାତ (ଉଦ୍ଭିଦ)—Aquatic (plant).

ବାରିଶ -ସଂ. ବି—( ବାରି+ଶୀ ଧାତୁ=ଶୋଇବା+କର୍ତ୍ତୃ. ଅ )— Bāriśa (ପ୍ରଳୟ ଜଳଶାୟୀ) ବିଷ୍ଣୁ ( ହ୍ରି. ଶ )—A name of Bishṇu.

ବାରି ଶାସ୍ତ୍ର—କେଉଁ ସ୍ଥାନରେ କେଉଁ ସମୟରେ ଓ କେତେ ପରିମାଣରେ Bāri śāstra ବର୍ଷା ହେବ, ଏହା ଯେଉଁ ଫଳିତ ଜ୍ୟୋତିଷଗ୍ରନ୍ଥରୁ ଗଣନା କରି ଯାଇପାରେ (ହ୍ରି. ଶ)—An astrological treatise with the help of which predictions about rainfall can be deduced.
[ ଦ୍ର— ଏହା ଗର୍ଗ ମୁନିଙ୍କ ରଚିତ । ]

ବାରି( ର)ଷ୍ଟର—ବୈଦେ. ବି. (ଇଂ. ବାରିଷ୍ଟର୍)—ବିଲାତରୁ ଆଇନ୍ Bāri(re)shṭar ପାଠ ହାସଲ କରି ଏ ଦେଶକୁ ଆସି ଆଇନ୍ ବାରିଷ୍ଟାର ବ୍ୟବସାୟ କରୁଥିବା ଉଚ୍ଚ ଶ୍ରେଣୀର ବ୍ୟବହାରାଜୀବ— **वारिस्टर** Barrister.
[ ଦ୍ର—ସାଧାରଣ ଲୋକେ ବଡ଼ ଓ ପ୍ରସିଦ୍ଧ ଓକିଲଙ୍କୁ ବାରିଷ୍ଟର ଆଖ୍ୟା ଦିଅନ୍ତି । ଓଡ଼ିଶାରେ ସ୍ୱର୍ଗୀୟ ମିଷ୍ଟର୍ ଦାସଙ୍କର ମଧ ବାରିଷ୍ଟର ଆଖ୍ୟା ଏଥିର ଉଦାହରଣ । ]

ବାରିଷ୍ଟରୀ —ଦେ. ବି—୧ । ବାରିଷ୍ଟରଙ୍କ ବୃତ୍ତି ବା କାର୍ଯ୍ୟ—1 The Bārishṭari profession of a barrister. ୨ । ବାରିଷ୍ଟର ବାରିଷ୍ଟାରୀ ଯୋଗ୍ୟ ବୁଦ୍ଧି—2. The intelligence of a **वारिस्टरी** barrister.
ବିଣ—୧ । ବାରିଷ୍ଟର ସମ୍ବନ୍ଧୀୟ—1. Relating to a barrister. ୨ । ବାରିଷ୍ଟର ଯୋଗ୍ୟ—2. Befitting a barrister.

ବାରିହା —ପ୍ରାଦେ, (ଗଡ଼ଜାତ) ବି—ବରାହ— Barihā Boar.
[ ଦ୍ର—ଗଡ଼ଜାତର ଲୋକେ ବିଶ୍ୱାସ କରନ୍ତି ଯେ ବରାହ ପଲର ନେତା ଦନ୍ତା ବରାହର ଦେହରେ ଚଣ୍ଡୀ ଅଧିଷ୍ଠା ହୋଇ ତାଙ୍କୁ ଚାଳିତ କରନ୍ତି । ]

ବାରିହା ବଧ ବାଉଁଶ—ପ୍ରାଦେ. ( ଗଡ଼ଜାତ )—ବି—ଏକକ ଜାତୀୟ Bārihā badha bāuṅśa ସରୁ ବାଉଁଶ—A species of slender bamboo.
[ ଦ୍ର—ଏହା ବେଲଙ୍ଗ ବାଉଁଶ ପରି ବୁଦାଳିଆ, ସରୁ ଓ ଅପେକ୍ଷାକୃତ କୋମଳ । ]

ବାରି ନହେବା—ଦେ. କ୍ରି—ଜାଣି ହେବା; ବାରଣ ପଡ଼ିବା; ପ୍ରଭେଦ
Bāri hebā ଜଣାପଡ଼ିବା—To be discriminated; to be distinguished from.

ବାରିନୋହେ ଭିନ୍ନ କରି ଯଥା ବଡଭର ବାରି
ପୁନଃ ପୁନଃ ଭରବାରିମାନ ପ୍ରହାରେ—ଭଞ୍ଜ. ବୈଦେହୀଶବିଳାସ ।

ବାରି—ସଂ. ବି. ସ୍ତ୍ରୀ. ( ବାର ଧାତୁ+ଇ )—୧ । ବାରି; ଜଳ—
Bārī 1. Water. ୨ । କୁମ୍ଭ; ମାଠିଆ—2. Waterpot water jar. ୩ । ଗଜବନ୍ଧନ ରଜ୍ଜୁ ( ହି. ଶ. )—3. A rope for fastening an elephant. ୪ । ଗଜଶାଳା—4. A house where elephants are kept.

ବାରୀନ୍ଦ୍ର—ସଂ. ବି. ( ୬ଷ୍ଠୀ ତତ୍; ବାରି+ଇନ୍ଦ୍ର )—ସମୁଦ୍ର—
Bārindra (ବାରୀଶ—ଅନ୍ୟରୂପ) The sea.

ବାରୁ—ଦେ. ବି. ( ସଂ. ବାର )—୧ । ଘୋଟକ—1. Horse. ୨ ।
Bāru ଦ୍ରୁତଗାମୀ ଘୋଟକ—2. A steed; a swift-footed horse.
ସଂ. ବି—୧ । ଯୁଦ୍ଧ ହସ୍ତୀ—1. War-eleplant. ୨ । ଜୟକୁଞ୍ଜର—2. Elephant-carrying the standard of a victor.

ବାରୁଅରି—ପ୍ରାଦେ. (ମେଦିନୀପୁର, ବାଲେଶ୍ୱର) ବି. (ସଂ. ବାର=ସମୂହ)—
Bāruāri* ୧ । ଗ୍ରାମରେ ସାଧାରଣଙ୍କ ଚାନ୍ଦାଦ୍ୱାରା ହେବା ଯାତ୍ରା—
ବାରୋୟାରୀ 1. Dancing and festivities set up by public subscription in the village.
୨ । ଯାତ୍ରା—2. Amusements and music.

ବାରୁଆଳି—ଦେ. ବି—୧ । କଳହ; କଳି—1. Quarrel. ୨ । କଳି
Bāruāli କଜିଆ; ବାଦାନୁବାଦ—2. Wrangling.
ବିଣ. ପୁଂ ଓ ସ୍ତ୍ରୀ—୧ । ବିରୋଧୀ—1. Antagonistic. ୨ । ଶତ୍ରୁଭାପନ୍ନ—2. Inimical. ୩ । କଳିହୁଡ଼ୀ—3. Quarerlsome.
ପ୍ରାଦେ· (ଯାଜପୁର ଓ ବାଲେଶ୍ୱର) ବି· (ବଙ୍ଗଳାରୁ ଅନୁକୃତ)—ବାରୁଅରି (ଦେଖ)—Bāruāri (See)

ବାରୁଠ—ସଂ. ବି. ( ବୃ ଧାତୁ ଣିଚ ବାରି ଧାତୁ+କର୍ମି. ଉଠ )—୧ ।
Bāruṭha ଅନ୍ତଶଯ୍ୟା; ମୃତ୍ୟୁଶଯ୍ୟା ( ହି. ଶ. )—1. Death-bed. ୨ । କୋକେଇ; ଯେଉଁ ଯାନରେ ଶବକୁ ସଂସ୍କାରାର୍ଥ ଶ୍ମଶାନକୁ ନିଆଯାଏ ( ହି. ଶ. )—2. A stretcher or framework in which the dead body is carried to the cremation or burial ground.

ବାରୁଣ—ସଂ. ବିଣ. ( ବରୁଣ+ଅ )—ବରୁଣସମ୍ବନ୍ଧୀୟ—Relating
Bāruṇa to the sea-God.
(ବାରୁଣୀ—ସ୍ତ୍ରୀ) ବି—୧ । ବରୁଣ ଅଧିକୃତ ଦିଗ; ପଶ୍ଚିମ ଦିଗ—1. The west. ୨ । ଜଳ—2. Water. ୩ । ଜଳଦ୍ୱାରା ସ୍ନାନ—3. Water-bath. ୪ । ଶତଭିଷା ନକ୍ଷତ୍ର—4. The 24th asterism. ୫ । ହରିତାଳ (ହି. ଶ )—5. Yellow arsenic. ୬ । ବରୁଣ ଗଛ ( ହି. ଶ. ) ( ଦେଖ )—6. Baruṇa tree ( See )

ବାରୁଣ କର୍ମ—ସଂ· ବି—ଖାତ ଖନନ; ଜଳାଶୟ ଓ କୂପାଦି ଖନନ—
Bāruṇa karma Sinking of a tank or well; waterworks

ବାରୁଣି—ସଂ. ବି. ପୁଂ. ( ବରୁଣ+ଅପତ୍ୟାର୍ଥେ. ଇ )—୧ । ଅଗସ୍ତ୍ୟ
Bāruṇi ମୁନି—1. Sage Agastya. ୨ । ବଶିଷ୍ଠ (ହି· ଶ.)—2. Sage Baśishṭa ୩ । ଦନ୍ତୀ ହାତୀ (ହି. ଶ.)—3. A tusker. ୪ । ବରୁଣ ଗଛ (ହି. ଶ.) (ଦେଖ)—4. Baruṇa tree (See)

ବାରୁଣୀ—ସଂ. ବି. ସ୍ତ୍ରୀ. ( ବରୁଣ+ଅପତ୍ୟାର୍ଥେ ଅ+ସ୍ତ୍ରୀ ଈ )—୧ ।
Bāruṇī ବରୁଣ କନ୍ୟା—1. The daughter of the sea God.

[ ଦ୍ର—ସମୁଦ୍ରମନ୍ଥନ ସମୟରେ କ୍ଷୀରୋଦ ସାଗରରୁ ଚନ୍ଦ୍ର, ସୁଧା, ସୁଧା, ଧନ୍ୱନ୍ତରି, ଅପ୍ସରା, ଉଚ୍ଚୈଃଶ୍ରବା, କୌସ୍ତୁଭ ଓ ଲକ୍ଷ୍ମୀଙ୍କ ସହିତ ବରୁଣ କନ୍ୟା ବାରୁଣୀ ମଧ୍ୟ ଉଠିଥିଲେ । ଏହି ବରୁଣ କନ୍ୟା ସୁରାର ଅଧିଷ୍ଠାତ୍ରୀ ଦେବୀ । କିନ୍ତୁ ବଙ୍ଗୀୟ କବି ମାଇକେଲ୍ ମଧୁସୂଦନ ତାଙ୍କ ମେଘନାଦ ବଧ କାବ୍ୟରେ ବରୁଣ ପତ୍ନୀ 'ବରୁଣାନୀ' ସ୍ଥଳରେ 'ବାରୁଣୀ' ଶବ୍ଦ ପ୍ରୟୋଗ କରିଅଛନ୍ତି ଓ ଏ ପ୍ରୟୋଗର ଔଚିତ୍ୟ ସମ୍ବନ୍ଧେ କହିଛନ୍ତି ଯେ 'ବାରୁଣୀ' ଶବ୍ଦ ତାଙ୍କୁ ଶ୍ରୁତିମଧୁର ହେବାରୁ ସେ ସଂସ୍କୃତ ବ୍ୟାକରଣର ନିୟମକୁ ଲଙ୍ଘନ କଲେ; କିନ୍ତୁ ହିନ୍ଦୀ ଶବ୍ଦସାଗରରେ ଏ ଶବ୍ଦର ଏକ ଅର୍ଥ ବରୁଣ ପତ୍ନୀ ଦିଆଯାଇ ଅଛି । ]

୨ । ସୁରା; ମଦିରା—2. Wine.

[ ଦ୍ର—ପୁନର୍ନବା ବା ପୁରଣୀଶାଗର, ତାଳ ବା ଖଜୁରି ରସରୁ, ଷାଠିକା ଧାନର ଚାଉଳରୁ ଓ କଦମ୍ବ ଫଳରୁ ପ୍ରସ୍ତୁତ ମଦକୁ ବାରୁଣୀ ବୋଲାଯାଏ—ହି. ଶ· ]

୩ । ଦୂର୍ବା—3. The Dūrbā grass. ୪ । ପଶ୍ଚିମ ଦିଗ—4. The west. ୫ । ଶତଭିଷା ନକ୍ଷତ୍ର—5. The 24th asterism. ୬ । ଶତଭିଷା ନକ୍ଷତ୍ର ଯୁକ୍ତ ଚୈତ୍ର କୃଷ୍ଣ ତ୍ରୟୋଦଶୀ—The 13th day of the dark fortnight of Chaitra when it tallies with the 24th asterism. ୭ । ବାରୁଣୀ ଗଙ୍ଗାସ୍ନାନ ଯୋଗ—7. The auspicious time for having a bath in the Ganges on the 13th day of the dark fortnight of Chaitra. ୮ । ଗଣ୍ଡଦୂର୍ବା ( ହି. ଶ. )—8. A kind of bulbous-rooted grass. ୯ । ଭୁଇଁ ଅଁଳା (ହି. ଶ·) ( ଦେଖ )—9. Bhūiṅ a-aṅlā ( See ) ୧୦ । ଘୋଟକର ଗତିବିଶେଷ ( ହି. ଶ. )—10 A kind of horse's motion. ୧୧ । ଇନ୍ଦ୍ରବାରୁଣୀ ଲତା (ହି· ଶ.)—11. The colocassia creeper. ୧୨ । ମାଈହାତୀ; ହାତୁଣୀ ( ହି. ଶ. )—12. A female elephant. ୧୩ । ବରୁଣାନୀ; ବରୁଣପତ୍ନୀ (ହି. ଶ.)—13. The wife of the sea-god

ଦେ. ବିଣ. ସ୍ତ୍ରୀ—ବରୁଣ ସମ୍ବନ୍ଧୀୟା—(feminine) Relating to Baruṇa.

ବଧୂ ବଧୂ ଭଲ । ବାରୁଣୀ ଶୋଭ ସାର ଚାରୁ ଦେଲ ।
ଉକ୍ତ. ବୈଦେହୀଶବିଳାସ ।

**ବାରୁଣୀ ଗଙ୍ଗାସ୍ନାନ**—ସଂ. ବି.—ଶତଭିଷା ନକ୍ଷତ୍ରଯୁକ୍ତ ଚୈତ୍ର କୃଷ୍ଣ ତ୍ରୟୋଦଶୀ ଦିନ ଘଟିବା ପ୍ରଶସ୍ତ ସ୍ନାନଯୋଗ—
Bāruṇi gaṅgāsnāna — The auspicious time to perform ablutions in the Ganges on the 13th day of the dark fortnight of Chaitra.

**ବାରୁଣୀ ବଲ୍ଲଭ**—ସଂ. ବି. (ବାରୁଣୀ=ଶତଭିଷା ନକ୍ଷତ୍ର+ବଲ୍ଲଭ=ପ୍ରିୟ)—ବରୁଣ—The God of the sea.
Bāruṇi ballabha

**ବାରୁଣୀ ସନ୍ଧ୍ୟା**—ଦେ. ବି.—ସନ୍ଧ୍ୟାକାଳୀନ ପଶ୍ଚିମାକାଶ—
Bāruṇi sandhyā — The evening sky.

ବାରୁଣୀ ସନ୍ଧ୍ୟା ଅରୁଣୀ ପ୍ରାପ୍ତେ ଦେଉଛି ମାର୍ଗ । ଉକ୍ତ. ବୈଦେହୀଶବିଳାସ ।

**ବାରୁଣୀ ସ୍ନାନ**—ସଂ. ବି.—ଚୈତ୍ର କୃଷ୍ଣ ତ୍ରୟୋଦଶୀ ଦିନ ଗଙ୍ଗାରେ ଓ ସମୁଦ୍ରରେ ଘଟିବା ସ୍ନାନଯୋଗ; ସମୁଦ୍ରରେ ସ୍ନାନ କରିବାର ପ୍ରଶସ୍ତ ଯୋଗ—An auspicious time to perform ablutions in the sea and other sacred waters
Bāruṇi snāna
(ବାରୁଣୀ ଯୋଗ—ଅନ୍ୟରୂପ)

[ଦ୍ର—ଚୈତ୍ର କୃଷ୍ଣ ତ୍ରୟୋଦଶୀ ଦିନ ଯଦି ଶନିବାର ବା ଶତଭିଷା ନକ୍ଷତ୍ର ଓ ଜ୍ୟୋତିଷମତରେ ଶୁଭଯୋଗ ପଡ଼େ ତେବେ ଏହାକୁ ବାରୁଣୀଯୋଗ ବୋଲାଯାଏ । ଯେବେ ଶନିବାର ଓ ଶତଭିଷା ନକ୍ଷତ୍ର ଉଭୟେ ସେ ଦିନ ପଡ଼ନ୍ତି ତେବେ ଏହାକୁ ମହାବାରୁଣୀ ଯୋଗ ବୋଲାଯାଏ । ଏହି ବାରୁଣୀ ଓ ମହାବାରୁଣୀ ଯୋଗରେ ଗଙ୍ଗାରେ ସ୍ନାନ କଲେ ଶତସଂଖ୍ୟକ ସୂର୍ଯ୍ୟୋପରାଗରେ ଅନୁଷ୍ଠିତ ଧର୍ମକାର୍ଯ୍ୟର ପୁଣ୍ୟ ଫଳ ମିଳେ । ତୀର୍ଥରାଜ ସମୁଦ୍ରରେ ଗଙ୍ଗାନଦୀ ପଡ଼ିଥିବାରୁ ସମୁଦ୍ରରେ ମଧ୍ୟ ଲୋକେ ଏହି ଯୋଗରେ ସ୍ନାନ କରନ୍ତି ଓ ଅନ୍ୟାନ୍ୟ ସମୁଦ୍ରଗାମିନୀ ନଦୀମାନଙ୍କରେ ମଧ୍ୟ ସ୍ନାନାର୍ଥୀଲୋକେ ବାରୁଣୀ ଭିଡ଼ ପାଇନ୍ତି ।

ପୁରୀ ସଦର ସବ୍‌ଡିଭିଜନର ବଲିଲ ବାଲୁକେଶ୍ୱର ମହାଦେବଙ୍କ ମନ୍ଦିରର ନିକଟବର୍ତ୍ତୀ ଭାର୍ଗବୀ ନଦୀରେ ଏବଂ ଅନ୍ୟ ଅନେକ ସ୍ଥାନରେ ଏହି ଦିନ ଭିଡ଼ ପଡ଼େ ।

ଋଷିକୁଲ୍ୟା ନଦୀ ଉତ୍ତରବାହିନୀ ହୋଇଥିବା ସ୍ଥାନ ଗଞ୍ଜାମର ଯୋରଡ଼ା ନିକଟସ୍ଥ ପଞ୍ଚାନନ ପ୍ରଭୁଙ୍କ ନିକଟରେ, ଧବଳେଶ୍ୱର ଚନ୍ଦ୍ରକଲେଶ୍ୱରଙ୍କ ନିକଟରେ, ଅସିକା ସ୍ୱର୍ଣ୍ଣେଶ୍ୱରଙ୍କ ନିକଟରେ, ପ୍ରତାପପୁର ଭୁମେଶ୍ୱର ଓ ଗଞ୍ଜାମ ନଗରର ପଶ୍ଚିମରେ ଲୋକନାଥ ସ୍ୱାମୀଙ୍କ ନିକଟରେ ସ୍ନାନାର୍ଥୀ ଲୋକେ ବାରୁଣୀ ସ୍ନାନ କରନ୍ତି ।
ଦୈନିକ ଆଶା ।]

**ବାରୁଦ**—ଦେ. ବି. (ତୁର୍କୀ. ବାରୁତ୍, ଫା. ବାରୁଦ୍)—ବିସ୍ଫୋଟକ ଚୂର୍ଣ୍ଣ; କୋଇଲା, ସୋରା ଓ ଗନ୍ଧକ ମିଶ୍ରିତ ଚୂର୍ଣ୍ଣ; ଦାରୁ, ଅଗ୍ନିଚୂର୍ଣ୍ଣ—Gun powder.
Bāruda
বারুদ बारूद
(ବାରଦ, ବାର୍ଦ—ଅନ୍ୟରୂପ)

[ଦ୍ର—ପ୍ରତ୍ନତତ୍ତ୍ୱ ଗବେଷଣାଦ୍ୱାରା ଜଣା ଯାଇଅଛି ଯେ ବହୁକାଳ-ପୂର୍ବେ ଚୀନ ଦେଶରେ ଓ ଭାରତରେ ବାରୁଦର ବ୍ୟବହାର ଥିଲା ଓ ଯୁଦ୍ଧରେ ଅଗ୍ନ୍ୟସ୍ତ୍ର (ବନ୍ଧୁକ, ତୋପ) ବ୍ୟବହୃତ ହେଉଥିଲା । ଅଶୋକଙ୍କ ଶିଳାଲିପିରେ ଅଗ୍ନିଖଂଧ (ସଂ. ଅଗ୍ନିସ୍କନ୍ଧ) ଆତସବାଜି ବା ବାଣ ପୋଡ଼ା ଅର୍ଥରେ ବ୍ୟବହୃତ ହୋଇଅଛି । ବାରୁଦ ଓ ବନ୍ଧୁକର ପ୍ରଚଳନ ଇଉରୋପରେ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଆରବ୍ ଦେଶବାସୀ ମୂରମାନେ ପ୍ରଥମେ କରିଥିଲେ ଓ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ କେବଳ ବନ୍ଧୁକ ପାଇଁ ବାରୁଦର ବ୍ୟବହାର ଇଉରୋପରେ ହେଉଥିଲା । ସାଧାରଣ ବାରୁଦରେ ଶତକଡ଼ା ୭୫ ଅଂଶ ସୋରା, ୧୦ ଅଂଶ ଗନ୍ଧକ ଓ ୧୫ ଅଂଶ କୋଇଲା ଚୂନା ପଡ଼େ । ଏହି ଉପକରଣମାନଙ୍କ ଭାଗମାପକୁ କମ୍ ବେଶି କରି, ଲୁହା ଚୂନା, ତମ୍ବା ଚୂନା ଆଦି ମିଶାଇ ନାନାପ୍ରକାର ଆଲୋକ ଓ ସ୍ଫୁଲିଙ୍ଗ ଉତ୍ପାଦକ ବାଣ ତିଆରି କରାଯାଏ । ହି. ଶ.]

**ବାରୁଦ କାମ**—ଦେ. ବି.—(ଫା. ବାରୁଦ୍+ସଂ. କର୍ମ)—୧ । ବାରୁଦ ଓ ବାଣ ତିଆରି କରିବାର ପ୍ରକ୍ରିୟା—1. The art of making gunpowder and fireworks; pyrotechnics.
Bāruda kāma
বারুদ কাম
बारूद काम
୨ । ବାଣ; ଆତସବାଜି—2. Fireworks.

**ବାରୁଦଖାନା**—ବୈଦେ. ବି.—(ଫା.—ବାରୁଦ୍+ଖାନାହ୍)—
Bāruda khāna ୧ । ଯେଉଁ ଘରେ ବାରୁଦ ଓ ବାଣ ତିଆରି ହୁଏ—1. Gunpowder factory. ୨ । ବାରୁଦ ସଞ୍ଚୟ କରି ରଖିବା ଘର—2. Gunpowder store; gunpowder magazine.
বারুদখানা
बारूदखाना
(ବାରୁଦ ଘର—ଅନ୍ୟରୂପ)

**ବାରୁ ଲଗି**—ଦେ. ବି.—ଘୋଡ଼ାରେ ଚଢ଼ିବା—
Bāru lāgi — Horse riding.
ବିଣ.—ଘୋଡ଼ାରେ ଚଢ଼ିଥିବା—Riding on a horse.

**ବାରେ**—ଦେ. କ୍ରି. ବିଣ.—ଥରେ; ଏକବାର—
Bāre — Once.
বারেক एकदफा (ବାରେକ—ଅନ୍ୟରୂପ)

ଶ୍ରୀପଦ ଦର୍ଶନ ଏହି ବାରେ ପୁଣି
ବାଲେ ସେ ପାଇବ କି ନା । ନନ୍ଦକିଶୋର, ଶର୍ମିଷ୍ଠା ।

**ବାରେ ଅ(ବ)ଫାଟ୍**—ବୈଦେ. ବି.—ବାରବଫାଟ୍ (ଦେଖ)
Bāre a(ba)phāt — Barabaphat (See)

**ବାରେଇ**—ପ୍ରାଦେ. (ସାକ୍ଷୀଗୋପାଳ) ବି.—ବର୍‌ହେଇ (ଦେଖ)
Bārei — Barhei (See)

**ବାରେଇବା**—ଦେ. କ୍ରି.—(ପରକାଲମ ଓ ପେନ୍‌ସିଲ୍‌କୁ) କାଟିବା—
Bāreibā — To mend (a pen or pencil).
ପ୍ରାଦେ. (ସାକ୍ଷୀଗୋପାଳ)—କ୍ରି.—ଧାନ ବିଲ ବାଛିବା; ବାଳୁଙ୍ଗା ଉପାଡ଼ିବା—To root out the weeds from a paddy field.

**ବାରେଣୀ**—ଗ୍ରା. ବି.—ବାରୁଣୀ (ଦେଖ)
Bāreṇi — Bāruṇi (See)
ପ୍ରାଦେ. (ବାମଣ୍ଡା)—ବି.—ପରିଷ୍କାର; ଝାଡ଼ୁ—Broomstick.

**ବାରେନ୍ଦ୍ର**—ସଂ. ବି.—(ବରେନ୍ଦ୍ର+ଅ)—୧ । ଆଧୁନିକ ରାଜସାହି
Bārendra ବିଭାଗ; ଗୌଡ଼ ଦେଶର ଏକ ପ୍ରାଚୀନ ଜନପଦ—
(ବାରେନ୍ଦ୍ରୀ—ସ୍ତ୍ରୀଲିଙ୍ଗ) 1, The Division of Rajsahi.
୨ । ବରେନ୍ଦ୍ର ଦେଶର ଅଧିବାସୀ—2. Inhabitant of the country of Barendra.
୩ । ବରେନ୍ଦ୍ର ଶ୍ରେଣୀୟ ବ୍ରାହ୍ମଣ—3 Brahmins of the Barendra class.

**ବାରେନ୍ଦ୍ର ଗୋଷ୍ଠୀ**—ଦେ. ବି.—ରାଜସାହି ବିଭାଗରେ ଉପନିବେଶ
Bārendra goshṭhi ସ୍ଥାପନ କରିଥିବା ବଙ୍ଗାଳୀ ବ୍ରାହ୍ମଣ ଓ
(ବାରେନ୍ଦ୍ରଶ୍ରେଣୀ—ଅନ୍ୟରୂପ) କ୍ଷତ୍ରିୟମାନଙ୍କର ଦଳ—A class of Bengalee Brāhmaṇas or Kshatriyas settled in the Rajsahi Division.

**ବାରେ ବାରେ**—ଦେ ଅ.—(ସଂ.ବାର° ବାର°)—୧ । ବାର ବାର (ଦେଖ)
Bāre bāre বারবার बारबार 1 Bāra bāra (See)
ବାରେ ବାରେ ରାବ ଶିବ ସେ ଘୋଷେ—ଲକ୍ଷ୍ମୀ ବୈଦେହୀଶ ବିଳାସ ।
୨ । କେବେ କେବେ—2. Occasionally.

**ବାରେହା ଦାଢ଼**—ଦେ. ବି.—ବରାହ ଦନ୍ତ ତୁଲ୍ୟ ପୁଷ୍ପ ବିଶେଷ—
Bārehā dārḍha A flower resembling the tusk of a boar.
ବାରେହା ଦାଢ଼ କରୁଣା କୋକନଦ,କୁରୁବକ ମୁଚୁକୁନ୍ଦ ।
ଗ୍ରାଚୀ, ରହସ୍ୟ ମଞ୍ଜରୀ ।

**ବାରୋମି(ମେ)ଟ(ଟା)ର**—ବୈଦେ ବି.—(ଇଂ.ବାରୋମେଟର)—ବାୟୁର
Bāro mi(me)ṭa(ṭā)r ଗୁରୁମାନ ଯନ୍ତ୍ର—Barometer,
বারোমিটার बारोमिटर

**ବାର୍କ୍ଷ**—ସଂ. ବିଣ.—(ବୃକ୍ଷ+ଅ)—ବୃକ୍ଷ ସମ୍ବନ୍ଧୀୟ—
Bārkshya Relating to a tree.
ସଂ. ବି.—ଗଛର ଛାଲରେ ନିର୍ମିତ ବସ୍ତ୍ର (ହି. ଶ.)—Cloth made from the bark of a tree.

**ବାର୍କ୍ଷୀ**—ସଂ.ବି.(ନାମ)—(ବାର୍କ୍ଷ+ଈ)—ପ୍ରମ୍ଳୋଚା ନାମ୍ନୀ ଅପ୍ସରାର କନ୍ୟା,
Bārkshī ପ୍ରଚେତାଗଣଙ୍କ ପତ୍ନୀ ଓ ଦକ୍ଷ ପ୍ରଜାପତିଙ୍କ ମାତା;
ମାରିଷା—Name of the mother of Daksha Prjāpati.
[ଦ୍ର—ପ୍ରମ୍ଳୋଚା ଅପ୍ସରାର ଦେହରୁ ବାହାର ଥିବା ସ୍ୱେଦ ଗୋଟିଏ ବୃକ୍ଷରେ ପଡ଼ିବାରୁ ତହିଁରୁ ଏକନ୍ୟାର ଉତ୍ପତ୍ତି ହୋଇଥିଲା । ହି. ଶବ୍ଦସାଗର ।]

**ବାର୍ଣ୍ଣକ**—ସଂ. ବି. ପୁଂ—(ବର୍ଣ୍ଣ ଧାତୁ+ଅକ)—ଲେଖକ—
Bārṇṇaka (ବାର୍ଣ୍ଣିକା—ସ୍ତ୍ରୀ) A writer; scribe.

**ବାର୍ଣ୍ଣିକ**—ସଂ.ବି. ପୁ—(ବର୍ଣ୍ଣ+ଇକ; ଶିଳ୍ପୀ ଅର୍ଥରେ)—୧ । ଲେଖକ—
Bārnnika 1. Writer.
୨ । ଚିତ୍ରକର—2. Painter.
ବିଣ—ବର୍ଣ୍ଣସମ୍ବନ୍ଧୀୟ—Relating to letters or colour.

**ବାର୍ଣ୍ଣିସ**—ବୈଦେ. ବି. (ଇଂ)—କାଷ୍ଠାଦି ଚକ୍‌ଚକ୍ କରିବା ପ୍ରଲେପ-
'nnis ବିଶେଷ—Varnish.
—ଅନ୍ୟରୂପ] বার্নিস बारनिश
ବିଣ—ବାର୍ଣ୍ଣିସ୍ ବୋଳାଯାଇଥିବା—Varnished.

**ବାର୍ତ୍ତ**—ସଂ. ବି—(ବୃତ୍ତି+ଅ)—୧ । ଆରୋଗ୍ୟ—1, Recovery
Bārtta or freedom from disease. ୨ । ସ୍ୱାସ୍ଥ୍ୟ—2. Health. ୩ । କୁଶଳ; ମଙ୍ଗଳ—3. Bliss.
୪ । ପଟୁତା—4. Dexterity; skill.
ସଂ. ବିଣ—୧ । ନିରାମୟ; ନୀରୋଗ, ସୁସ୍ଥ—1. Hale; healthy. ୨ । ମନୋହର—2 Beautiful; charming. ୩ । ପଟୁ—3. Dexterous. ୪ । ବୃତ୍ତି-ଶାଳୀ—4. Having means of livlihood; pursuing a profession. ୫ । ବୃତ୍ତି ସମ୍ବନ୍ଧୀୟ—5. Professional; relating to a profession.

**ବାର୍ତ୍ତିକ**—ସଂ. ବି—ବତର ପକ୍ଷୀ—
Bārttaka The grey quail,

**ବାର୍ତ୍ତା**—ସଂ. ବି—(ବୃତ୍ତ=ବୃତ୍ତାନ୍ତ, ଅର୍ଥାତ୍ ଲୋକ ଚରିତ୍ର+ଅସ୍ତ୍ର
Bārttā ଅର୍ଥରେ, ଅ+ସ୍ତ୍ରୀ. ଆ)—୧ । ବିବରଣ; ବୃତ୍ତାନ୍ତ—1. Description. ୨ । କଥା; ବାକ୍ୟ—2. Word. ୩ । ବୃତ୍ତି; ଜୀବିକା—3. Livelihood. ୪ । କୃଷି ଓ ବାଣିଜ୍ୟାଦି ବିଷୟକ ଶାସ୍ତ୍ର—4. Science of agriculture and trade. ୫ । ସମ୍ବାଦ; ଖବର—5, News; tidings; message; information.
ବାର୍ତ୍ତା ଔଷଧ ଶୁଣି ମୂର୍ଚ୍ଛାରେ ପଡ଼ି
ବେଗେ ଚନ୍ଦ୍ରା ଜ୍ୱରକୁ ଶାନ୍ତ କରାଇ—
ଭଞ୍ଜ, ବୈଦେହୀଶବିଳାସ ।
୬ । ଜନଶ୍ରୁତି—6. Rumour; report. ୭ । ଦୁର୍ଗା—7. Goddess Durgā. ୮ । ବିଷୟ; ପ୍ରସଙ୍ଗ—8. Matter; subject. ୯ । କଥୋପକଥନ (ହି. ଶ)—9. Conversation.

**ବାର୍ତ୍ତାକ(କୀ,କୁ)**—ସଂ. ବି—(ବୃତ୍ ଧାତୁ+ଆକ;+ସ୍ତ୍ରୀ; ଈ;+ଆକୁ)—
Bārttāka(kī,ku) ବାଇଗଣ; ବାଇଗଣ—Eggplant and fruit; brinjal plant and fruit,

**ବାର୍ତ୍ତାବହ**—ସଂ. ବିଣ. ପୁଂ—(ବାର୍ତ୍ତା+ବହ୍ ଧାତୁ+କର୍ତ୍ତୃ. ଅ)—
Bārttābaha ସମ୍ବାଦବାହକ—Carrying message.
(ବାର୍ତ୍ତାବହା—ସ୍ତ୍ରୀ) ବି—୧ । ଦୂତ—1. Messenger.
୨ । ଚର—2. Spy. ୩ । ଅର୍ଥବ୍ୟୟ ବିଷୟ ପ୍ରଦର୍ଶକ ନୀତିଶାସ୍ତ୍ର—3. Political economy. ୪ । (ଆଧୁନିକ ବ୍ୟବହାର) ସମ୍ବାଦବାହକ ଯନ୍ତ୍ର—4. Telegraph; telephone.
( ବୈଦ୍ୟୁତ ବା ତାଡ଼ିତ ବାର୍ତ୍ତାବହ=ଇଲେକ୍‌ଟ୍ରିକ୍ ଟେଲିଗ୍ରାଫ୍ )

**ବାର୍ତ୍ତାୟନ**—ସଂ. ବି. ପୁଂ—(ବନ୍ଧୁବାହୁ; ବାର୍ତ୍ତା+ଅୟନ)—୧ । ସମ୍ବାଦ
Bārttāyana ବାହକ; ଦୂତ—1. Messenger. ୨ । ଚର;
(ବାର୍ତ୍ତାୟନୀ—ସ୍ତ୍ରୀ) ଗୂଢ଼ ପୁରୁଷ—2. Spy. ୩ । ସମ୍ବାଦଦାତା—3. Correspondent.

**ବାର୍ତ୍ତିକ**—ସଂ. ବିଣ—(ବାର୍ତ୍ତା+ଇକ)—ବାର୍ତ୍ତାସମ୍ବନ୍ଧୀୟ—
Bārttika Relating to message. ୨ । ( ବୃତ୍ତି+ଇକ )

ବୃତ୍ତି ସମ୍ବନ୍ଧୀୟ—2. Relating to livelihood.
ବି—୧ । ବ୍ୟାଖ୍ୟା ଗ୍ରନ୍ଥ; ଟୀକା—1. Commentary.
୩ । ବର୍ତ୍ତିକ ପକ୍ଷୀ; ବଟର ଚଢ଼େଇ—
3. The grey quail.

ବାର୍ଦ୍ଦ—ସଂ. ବି—(ସଂ. ବାର୍=ଜଳ+ଦା ଧାତୁ+କର୍ତ୍ତୃ. ଅ; କପାଇନ)·
Bārdda ବାଦଲ; ମେଘ (ହ୍ନ. ଶ)—Cloud.

ବାର୍ଦ୍ଦର—ସଂ. ବି—(ସଂ. ବାର୍=ଜଳ+ଦର)—୧ । ଦକ୍ଷିଣାବର୍ତ୍ତ ଶଙ୍ଖ
Bārddara (ହ୍ନ. ଶ)—1. Conch having the spiral winding to the right. ୨ । ଆମ୍ବ ଟାଙ୍କୁଆ (ହ୍ନ. ଶ)—2. The stone inside the mango fruit. ୩ । ରେଶମ (ହ୍ନ. ଶ)—3. Silk. ୪ । ଜଳ—(ହ୍ନ. ଶ)—4. Water. ୫ । କାକଚିଞ୍ଚା (ହ୍ନ. ଶ) (ଦେଖ)—5. Kākachinchā (See).

ବାର୍ଦ୍ଦଲ—ସଂ. ବି—[ବାର୍=ଜଳ+ଦ (=ଦା ଧାତୁ.+ଅ)+ଲା ଧାତୁ
Bārddala +କର୍ତ୍ତୃ. ଅ]—୧ । ଦୁର୍ଦ୍ଦିନ; ବାଦଲ—1 A rainy day. ୨ । ମସୀପାତ୍ର; ଦୁଆତ—2. Inkpot.

ବାର୍ଦ୍ଧକ—ସଂ. ବି—(ବୃଦ୍ଧ+କ)—୧ । ବୃଦ୍ଧାବସ୍ଥା—1. Old age.
Bārddhaka ୨ । ବୃଦ୍ଧ ସମୂହ—2. A number of old men. ୩ । ବୃଦ୍ଧର କର୍ମ—3. The act of an old man.

ବାର୍ଦ୍ଧକୀ—ଦେ. ବି—(ସଂ. ବାର୍ଦ୍ଧକ୍ୟ)—ବୃଦ୍ଧାବସ୍ଥା—
Bārddhakī Infirmity due to old age.
ଜଗୁଷ୍ଠା ଯହିଁ ଅମଙ୍ଗଳଦା କହୁ ବାର୍ଦ୍ଧକୀ ସ୍ୱଭାବ ଦଶି ହେ—
ଭଞ୍ଜ, ବୈଦେହୀଶବିଳାସ ।

ବାର୍ଦ୍ଧକ୍ୟ—ସଂ. ବି—(ବାର୍ଦ୍ଧକ+ଭାବେ. ଯ)—୧ । ବୃଦ୍ଧାବସ୍ଥା—
Bārddhakya 1. Old age. ୨ । ଜରା—2. Infirmity due to old age.
[ଦ୍ର—ଏହା ୭୦ ବର୍ଷ ପରେ ଆରମ୍ଭ ହୁଏ ।]

ବାର୍ଦ୍ଧି—ସଂ. ବି—(ବାର୍=ଜଳ+ଧା. ଧାତୁ+ଅଧିକରଣ. ଇ)—ବାରିଧି
Bārddhi ସମୁଦ୍ର—The sea; the ocean.

ବାର୍ଦ୍ଧିଜା—ସଂ. ବି( ବାର୍ଦ୍ଧି+ଜନଧାତୁ+କର୍ତ୍ତୃ. ଅ+ଆ )—ଲକ୍ଷ୍ମୀ—
Bārddhijā Lakshmī.
ବୋଲନ୍ତେ ମଧ୍ୟ ଏକାର ଭେଦେ ମନ୍ତ୍ରଣ ଆପଣ
ବାର୍ଦ୍ଧିଜା ଦୂର୍ଗା ଲେଭେ ଯାହା ହୋଇଲେ ତାହା କ କାଣ—
ଭଞ୍ଜ—ବୈଦେହୀଶବିଳାସ ।

ବାର୍ଦ୍ଧୁଷି(ଷୀ)—ସଂ. ବିଣ. ପୁଂ—(ବୃଦ୍ଧି=ସୁଧ+ଉପଜୀବା ଅର୍ଥରେ. ଇ;
Bārddhushi(shī) ଈ; କପାଇନ)—ବୃଦ୍ଧିଜୀବୀ—Living on usury.
(ବାର୍ଦ୍ଧୁଷିକ—ଅନ୍ୟରୂପ)
(ବାର୍ଦ୍ଧୁଷିକା—ସ୍ତ୍ରୀ) ବି—ସୁଧଖୋର୍; ମହାଜନ—
A usurer.
ଏ ଦଳ କରନ୍ତୁ ବୃଦ୍ଧି ଦ୍ଵଦ ବାର୍ଦ୍ଧୁଷିକେ
ରଘୁନାଥ—ମହାଯାତ୍ରା ।

ବାର୍ଦ୍ଧୁଷ୍ୟ—ସଂ. ବି—(ବାର୍ଦ୍ଧୁଷି+ଯ; କପାଇନ)—୧ । ଟଙ୍କାକୁ ସୁଧରେ
Bārddhushya ଖଟାଇବା; ସୁଧପାଇଁ ଟଙ୍କା କରଜ ଦେବା; ମହାଜନୀ—1. Usury; advancing money on interest; money-lending. ୨ । ଧାନ ଆଦିକୁ ବଢ଼ୁଡ଼ ସୁଧରେ କରଜ ଦେବା (ହ୍ନ. ଶ)—
2. Usury in grains.

ବାର୍ଦ୍ଧ୍ର(ର୍ଦ୍ଧ୍ରୀ)—ସଂ. ବି. (ବୃଧ୍ ଧାତୁ=ବୃଦ୍ଧି ପାଇବା+ର;+ଈ)—
Bārddhra(rddhrī) ଚର୍ମ ରଜ୍ଜୁ—Thong of hide; rope made of hide.

ବାର୍ଦ୍ଧ୍ରୀଣ(ଣ)ସ—ସଂ. ବି. (ବାର୍ଦ୍ଧ୍ରୀ=ଚର୍ମ ରଜ୍ଜୁ+ନସ=ନାସିକା)—
Bārddhrīṇa(na)sa ୧ । ଗଣ୍ଡା (ପଶୁ)—1. Rhinoceros.
(ବାର୍ଦ୍ଧୀଣସ—ଅନ୍ୟରୂପ) ୨ । ଲମ୍ବ କର୍ଣ୍ଣ ବିଶିଷ୍ଟ ଶ୍ୱେତ ବର୍ଣ୍ଣ ବୃଦ୍ଧ ଛାଗ—2. Long-eared and white old goat.
[ଦ୍ର—ପାଣିରେ ମୁହଁ ଲଗାଇ ପାଣି ପିଇବା ବେଳେ ଏ ଜାତୀୟ ଛେଳିର କାନର ଅଗ ପାଣିକୁ ସ୍ପର୍ଶ କରେ ।]
୩ । ଏକ ପ୍ରକାର ପକ୍ଷୀ—3. A kind of bird.
[ଦ୍ର—ଏହାର ମୁଣ୍ଡ ନାଲି ଗଳା ନୀଳ ଓ ଶରୀରର ଅନ୍ୟ ଅଂଶ କଳା । ପ୍ରାଚୀନ କାଳରେ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଏ ପକ୍ଷୀକୁ ବଳି ଦିଆ ଯାଉଥିଲା—ହ୍ନ. ଶ]
୪ । ଯେଉଁ ପଶୁର ନାକ ଫୋଡ଼ା ହୋଇ ଫୋଡ଼ରେ ଦଉଡ଼ି ଗଳାଯାଇଥାଏ—An animal through whose nose is bored and a rope is passed.

ବାର୍ଣ୍ଣୀ—ପ୍ରାଦେ. (ସମ୍ବଲପୁର) ବି. (ସଂ. ବର୍ଦ୍ଧନୀ)—ବଢ଼ଣି; ଝାଡୁ—
Bārnī Broomstick.

ବାର୍ବଟ—ସଂ.ବି. (ବାର=ଜଳ+ବଟ୍ ଧାତୁ=ବେଷ୍ଟନ କରିବା+କର୍ମ.ଅ)-
Bārbaṭa ୧ । ଅରିତ୍ର—1 Rudder; oar.
୨ । ଜଳଯାନ; ନୌକା—2. Boat; vessel.

ବାର୍ବଟୀର—ସଂ. ବି. (ବର୍ବଟୀ+ର)—
Bārbaṭīra ୧ । ଅସତୀ ପୁତ୍ର; ଜାରଜ—1. Bastard.
୨ । ଆମ୍ର ପଲ୍ଲବ—2. Mango leaf.

ବାର୍ବଣା—ସଂ. ବି—ଏକ ଜାତୀୟ ନେଳ ମାଛି; ଭଣଭଣା ମାଛି—
Bārbaṇā A kind of blue fly (Apte).

ବାର୍ଭଟ—ସଂ. ବି. (ବାର୍=ଜଳ+ଭଟ୍ ଧାତୁ ପୋଷଣ କରିବା+କର୍ତ୍ତୃ.
Bārbhaṭa ଅ)—କୁମ୍ଭୀର—Crocodile; alligator.
ତୋଟଇକ ଗଜ ଯୂଥ ଭେଲା ହ୍ରଦ । ଭଞ୍ଜ. ବୈଦେହୀଶବିଳାସ ।

ବାର୍ମୁକ୍—ସଂ. ବି. (ବାର୍=ଜଳ+ମୁଚ୍ ଧାତୁ=ତ୍ୟାଗ କରିବା+
Bārmuk କର୍ତ୍ତୃ. କ୍ୱିପ୍)—ମେଘ—Cloud.

ବାର୍ଯ୍ୟ—ସଂ. ବିଣ. (ବାର୍ ଧାତୁ+କର୍ମ. ଯ)—
Bārjya ୧ । ବାରଣୀୟ—1. Preventible.
୨ । ନିଷେଧ ଯୋଗ୍ୟ—2. Which should be forbidden.
୩ । (ବାର+ଯ) ବାର୍ ବା ଜଳ ସମ୍ବନ୍ଧୀୟ—
3. Relating to water.
ସଂ. ବି—୧ । ବର; ଦେବତାଦିଙ୍କ ପ୍ରଦତ୍ତ ଅନୁଗ୍ରହ ବ ଆଶୀର୍ବାଦ—1. Boon; blessing (Apte).
୨ । (ବହୁବଚନ) ସମ୍ପତ୍ତି—2. (plural) Possessions; riches (Apte).

**ବାର୍ଯ୍ୟମାଣ**—ସଂ. ବିଣ. ( ବାର ଧାତୁ + କର୍ମ ମାନ )—
Bārjyamāṇa ଯାହା ନିବାରଣ କରା ଯାଉଅଛି—
Which is being prevented.

**ବାର୍ଲି**—ବୈଦେ. ବି. (ଇଂ)—୧ । ଯବ ଚୂର୍ଣ୍ଣ—
Bārli 1. Powdered barley.
बार्ली बारली ୨ । ଯବ—2. Barely

**ବାର୍ଷିକ**—ସଂ. ବିଣ. (ବର୍ଷ+ଭବ, ଦେୟ ବା ନିବୃତ୍ତ୍ୟର୍ଥେ, ଇକ)—
Bārshika ୧ । ସାମ୍ବତ୍ସରିକ; ପ୍ରତି ବର୍ଷ ଘଟିବା ବା କରାଯିବା—
(ବାର୍ଷିକୀ—ସ୍ତ୍ରୀ) 1. Annual; yearly: taking place or done every year.
୨ । ପ୍ରତି ବର୍ଷ ପାଇଁ ନିର୍ଦ୍ଦିଷ୍ଟ—2. Fixed for the year.
୩ । ବତ୍ସର ସମ୍ବନ୍ଧୀୟ—3. Relating to the year.
୪ । ପ୍ରତି ବର୍ଷ ଦେୟ—4. Payable annually.
୫ । ପ୍ରତି ବର୍ଷ ପ୍ରାପ୍ୟ—5. Falling due annually.
୬ । ଯାହା ପ୍ରତି ବର୍ଷ ନିର୍ଦ୍ଦିଷ୍ଟ ସମୟରେ କରାଯାଏ—
6 Performed at a fixed time, once every year.
( ଯଥା—ବାର୍ଷିକ ଜନ୍ମୋତ୍ସବ । )
୭ । ଯାହା ପ୍ରତି ବର୍ଷ ଜନ୍ମେ ଓ ମରେ; ବର୍ଷଜୀବୀ (ଗୁଳ୍ମ)—
7. (a plant or creeper) Which grows and dies in a year; annual; seasonal.
୮ । (ବର୍ଷା + ଇକ) ବର୍ଷାକାଳୀନ; ବର୍ଷା ସମ୍ବନ୍ଧୀୟ—
8. Relating to rain; rainy.
୯ । ବର୍ଷା ଋତୁ ସମ୍ବନ୍ଧୀୟ—9. Relating to the rainy season.
ବି—୧ । ବାତ୍ସରିକ ବେତନ—1. Annual pay.
୨ । ବାତ୍ସରିକ କର—2. Annual rent
୩ । ପ୍ରତି ବର୍ଷ କର୍ତ୍ତବ୍ୟ ପୂଜାଦି—
3. Annual religious ceremonies.
୪ । ବର୍ଷରେ ଥରେ ଦେୟ ବା ପ୍ରାପ୍ୟ ବସ୍ତୁ—3. Any thing payable once every year
ଦେ. ବି—ଚୌପଣି (ଦେଖ)—Chaupaṇi (See)

**ବାର୍ଷିକ ପରୀକ୍ଷା**—ଦେ. ବି. ( ସଂ. ବାର୍ଷିକ + ପରୀକ୍ଷା )—
Bārshika parikshā ବର୍ଷ ଶେଷରେ ଏକ ଶ୍ରେଣୀର ଅପର
सालाना इम्तिहान् ଶ୍ରେଣୀକୁ ଉଠିବାପାଇଁ ଛାତ୍ରମାନଙ୍କ ଯୋଗ୍ୟତା
বার্ষিক পরীক্ষা ବାଛିବା ନିମନ୍ତେ କରାଯିବା ପରୀକ୍ଷା—Annual examination held in a school.

**ବାର୍ଷିକି**—ଦେ. ବି. (ସଂ. ବାର୍ଷିକୀ)—ବାର୍ଷିକ ପ୍ରାପ୍ୟ ବା ଭଙ୍ଗା; ସାଲିଅାନା—
Bārshiki A due or gift payable every year.
বার্ষিকী सालाना

**ବାର୍ଷିକୀ**—ସଂ. ବି. ସ୍ତ୍ରୀ. ( ବର୍ଷା+ଇକ + ସ୍ତ୍ରୀ. ଈ )—ମୁଗୁରା ମଲ୍ଲୀ—
Bārshiki A kind of Jasmine; Jasminum Sembac.
বন চম্বা, মুগরা
ମାଗରା
ସଂ. ବିଣ—ବର୍ଷ କର୍ତ୍ତବ୍ୟ (ପୂଜାଦି);
ତା. ମଲ୍ଲୀ ଯାହା ବର୍ଷର ନିର୍ଦ୍ଦିଷ୍ଟ ସମୟରେ ଥରେ
ତେ. କୁଳ ବନ୍ଧାନ୍ତେଟ୍ଟି କରାଯାଏ (ଯଥା—ଦେବୀଙ୍କର ବାର୍ଷିକୀ ଶାରଦୀୟ ପୂଜା)—Done at a fixed time once in the year.

**ବାର୍ଷିଲା**—ସଂ. ବି. (ବର୍ଷା + ଇଲ + ଆ)—କରକା; କୁଆପଥର (ହି.ଶ)—
Bārshilā Hailstone.

**ବାର୍ଷୁକ**—ସଂ. ବିଣ. (ବୃଷ୍ ଧାତୁ + କର୍ତ୍ତୃ. ଉକ)—ବର୍ଷଣଶୀଳ—
Bārshuka Showering; raining.

**ବାର୍ଷ୍ଣ**—ସଂ. ବିଣ. ପୁଂ. ( ବୃଷ୍ଣି + ଅ )—ବାର୍ଷ୍ଣେୟ ( ଦେଖ )
Bārshṇa Bārshṇeya ( See )
(ବାର୍ଷ୍ଣୀ—ସ୍ତ୍ରୀ) ସଂ. ବି—ଶ୍ରୀକୃଷ୍ଣ—Śrikṛushṇa.

**ବାର୍ଷ୍ଣେୟ**—ସଂ. ବିଣ. ପୁଂ. ( ବୃଷ୍ଣି + ଅପତ୍ୟାର୍ଥେ. ଏୟ )—ବୃଷ୍ଣିବଂଶ-
Bārshṇeya ସମ୍ଭୂତ; ଯଦୁବଂଶୀୟ—Descended from the
(ବାର୍ଷ୍ଣେୟୀ—ସ୍ତ୍ରୀ) Jadu dynasty.
ବି—୧ । (ନାମ) ନଳରାଜାଙ୍କ ସାରଥି—1. The name of the car-driver of king Naḻa. ୨ । ଶ୍ରୀକୃଷ୍ଣ-Śrikṛushna.

**ବାର୍ହଦ୍ରଥ(ଥି)**—ସଂ. ବି. ପୁଂ ( ବୃହଦ୍ରଥ + ଅପତ୍ୟାର୍ଥେ ଅ;+ଇ )—
Bārhadratha(thi) ଜରାସନ୍ଧ—A name of King Jarāsandha.

**ବାର୍ହସ୍ପତ**—ସଂ. ବିଣ ( ବୃହସ୍ପତି + ଅ )—ବୃହସ୍ପତି ସମ୍ବନ୍ଧୀୟ—
Bārhaspata Relating to Bṛuhaspati.
ସଂ. ବି.—ଜୈବ ବତ୍ସର; ସୂର୍ଯ୍ୟଙ୍କ ଚତୁଃପାର୍ଶ୍ୱେ ଥରେ ପରିକ୍ରମା କରିବାକୁ ବୃହସ୍ପତି ଗ୍ରହକୁ ଯେତେ ସମୟ ଲାଗେ, ସୌର ୧୨ ବର୍ଷ ( ଜ୍ଞାନେନ୍ )—A period of 12 years which it takes the planet Jupiter to go round the sun.

**ବାର୍ହସ୍ପତ୍ୟ**—ସଂ. ବିଣ. ( ବୃହସ୍ପତି + ଯ )—ବୃହସ୍ପତିସମ୍ବନ୍ଧୀୟ—
Bārhaspatya Relating to Bṛuhaspati.
ବି—୧ । ବୃହସ୍ପତି ପ୍ରଣୀତ ନୀତିଶାସ୍ତ୍ର—1. Moral philosophy compiled by sage Bṛuhaspati. ୨ । ଚାର୍ବାକ ମୁନି—2. Sage Chārbāka. ୩ । ବୌଦ୍ଧ-ଦର୍ଶନ ବା ନୀତିଶାସ୍ତ୍ର—3 The Buddist philosophy or ethics.

**ବାର୍‌ହା**—ଦେ. ବି. ( ସଂ. ବରାହ )—ବନ୍ୟଶୂକର; ବରାହ—
Bār-hā Wild hog; boar.
(ବାର୍ଦ୍ଧା—ଅନ୍ୟରୂପ) [ ଦ୍ର—ବାଟା ଦୁଇ ପ୍ରକାର—୧ । ଘୋଡ଼ା-
बर्रा ଟାପୁଆ—ଏମାନଙ୍କ ଟାପୁ ବା ଖୁରା ଘୋଡ଼ା ଖୁରା ପରି
बनैला सुअर ଗୋଟିକିଆ । ଏମାନେ ନିବିଡ଼ ବଣରେ ରହନ୍ତି । ୨ । ଖାଲବଣିଆ ବା ପଦାଖିଆ—ଏମାନଙ୍କ ଖୁରା ଘୁଷୁରି ଖୁରାପରି ଦୁଇଫାଳିଆ; କେତେକ ବାଟ୍ଟାଙ୍କ ଶରୀର ପାଚିଲିଆ ଓ କେତେକଙ୍କର ଶରୀର କଳା ମଧ୍ୟ ଦେଖାଯାଏ । ]

**ବାଲ୍**—ପ୍ରାଦେ. ( ସମ୍ବଲପୁର ) ବି—୧ । ( ସଂ. ବୋଦାଲ; ବାଲ )
Bāl ବାଳିଆ ମାଛ—1. The cat fish. ୨ । ( ସଂ. ବାଳ )—କେଶ—2. Hair.

ବାଳ—ସଂ• ବି ( ବଲ୍ ଧାତୁ=ବେଷ୍ଟନ କରିବା+କର୍ତ୍ତ୍ରି. ଅ )—
Bāḷa ୧ । କେଶ—1 Hair.

[ ଦ୍ର—ବଙ୍ଗଭାଷାରେ ଏହା ଜନନେନ୍ଦ୍ରିୟର ଓ ଗୁହ୍ୟଦ୍ୱାରର ସାନ୍ନିଦେଶସ୍ଥ କେଶ ବା ଅନ୍ତର୍ଲୋମକୁ ବୁଝାଏ । ମସ୍ତକର ବାଳକୁ 'ଚୁଲ୍' ବୋଲାଯାଏ । ]

୨ । ଗୁପ୍ତାଙ୍ଗର କେଶ—2. The hairs on the private parts of a man or woman. ୩ । (ପୁଂ) ( ବଲ ଧାତୁ=ବୃଦ୍ଧି ପାଇବା+କର୍ତ୍ତ୍ରି. ଅ )—ବାଳକ; ୧୬ ବର୍ଷ ଅପେକ୍ଷା ନ୍ୟୂନ ବୟସ୍କ ଅର୍ଣ୍ଣ ର ପୁଅ—3 Boy; lad ( under the age of 16 ) ୪ । ଅର୍ଣ୍ଣ ର୍ଶିଶୁ—4. Male infant; male child ୫ । ବାଳିଆ ମାଛ—5. The cat fish. ୬ । ବାଳଧି; ଚାମର—6. Chowrie; a fly flap or fan made of the bushy tail of the yak. ୭ । ଘୋଡ଼ାଛୁଆ —7. Colt. ୮ । ପାଞ୍ଚବର୍ଷ ବୟସ୍କ ହାତୀ—8. A young ve elephant of fi years of age. ୯ । ନାଉକେଳ ବୃକ୍ଷ—9. Cocoanut tree. ୧୦ । ବାଳା; ହ୍ରୀବେର; କୁରୁବେଳ—10. Pavonia Odorata. ୧୧ । ନିର୍ବୋଧ ବା ଅବୁଝ ଲୋକ ( ବ୍ଯ. ଶ. )—11. A fool.

ବିଣ—୧ । ନୂତନ—1. New. (ଯଥା—ବାଳରବି ।)
୨ । ନବଜାତ—2. Newly born. ୩ । ଅତିକ୍ଷୁଦ୍ର—(ଯଥା—ବାଳ ମୂଷିକ)—3. Very small. ୪ । ଅଜ୍ଞାନ, ମୂର୍ଖ—4. Igeorant; illiteratn; block-headed. ୫ । ନିର୍ବୋଧ—5. Foolish.

ଗ୍ରା. ବିଣ—୧ । ନଗଣ୍ୟ—1. Insignificant. ୨ । ହେୟ—2. Despicable. ୩ । ଅଳ୍ପବୟସ୍କ—3. Of tender or young age.

ବାଳ ଉପଡ଼ା—ଦେ. ବି. ( ସ. ବାଳ ଓ ଉତ୍ପାଟନ )—କେଶ ମଳକୁ
Bāḷa upar̤ḍā ଉତ୍ପାଟ ପଡ଼ିବା; କେଶର ପତନ—
**बालउखडना** চুল উঠা The falling of hair.
(ବାଳ ଉପୁଡ଼ା, ବାଳ ଉପୁଡ଼ିବା, ବାଳ ଉପୁଡ଼ିଯିବା—ଅନ୍ୟରୂପ)

ବାଳ ଉପାଡ଼ିବା—ଦେ. କ୍ରି—୧ । କେଶକୁ ଉତ୍ପାଟନ କରିବା—
Bāḷa upārḍibā 1. To root out the hair.
(ବାଳ ଓପାଡ଼ିବା—ଅନ୍ୟରୂପ) ୨ । ( ଗାଳରେ ବ୍ୟବହୃତ )—
**बाल उखाडना** ଅନିଷ୍ଟ କରିବା—2. To injure a person.
চুল তোলা ୩ । କଷ୍ଟ ଦେବା—3. To give pain.

ବାଳ ଓପଡ଼ା—ଦେ. ବି--କେଶ ଉତ୍ପାଟନ—
Bāḷa opar̤ḍā The rooting out of hairs.
(ବାଳ ଓପୁଡ଼ା—ଅନ୍ୟରୂପ) **बाल उखाडना** চুলতোলা

ବାଳକ ଦାସ୍—ବୈଦେ. ବି (ହିନ୍ଦୀ)—ବାବାଜୀଙ୍କର ଟୋକା ଚେଲା—
Bāḷak dāa A boy disciple of a Bairāgee.
(ବାଲ୍କ ଦାସ୍—ଅନ୍ୟରୂପ) **बालकदास** বালকদাস

ବାଳକ—ସ. ବି. ପୁଂ ( ବାଳ+କ )—୧ । ଅପ୍ରାପ୍ତ ବୟସ୍କ ପୁରୁଷ
Bāḷaka ପିଲା—1. A young boy. ୨ । ଶିଶୁ ପୁତ୍ର—
(ବାଳିକା—ସ୍ତ୍ରୀ) 2. A male child. ୩ । ନିର୍ବୋଧ ବ୍ୟକ୍ତି—
3. A fool; a block-head. ୪ । ମୂର୍ଖ ବ୍ୟକ୍ତି—
4. An ignorant person. ୫ । ଅଙ୍ଗୁରୀୟକ—
5. Finger ring. ୬ । କେଶ—6. Hair. ୭ । ଲାଙ୍ଗୁଳ—7. Tail. ୮ । ବଳୟ—8. Bracelet. ୯ । ହ୍ରୀବେର; କୁରୁବେଲ—9. Pavonia Odorata. ୧୦ । ହାତୀଛୁଆ (ବ୍ଯ. ଶ.)—10. The young of an elephant. ୧୧ । ଘୋଡ଼ାଛୁଆ ( ବ୍ଯ. ଶ. )—11. Colt. ୧୨ । ଜଟାମାଂସୀ ( ବ୍ଯ. ଶ )—12. Indian spikenard.

ବିଣ—ବାଳକ ପରି ନିର୍ବୋଧ ବା ଅଜ୍ଞାନ—Foolish or ignorant as a child.

ଦେ. ବି—ଦ୍ୱାଦଶ ଗୋପାଳ ମଧ୍ୟରୁ ଜଣେ ଗୋପାଳ—One of the twelve cowherd companions of Srikrushna.

[ ଦ୍ର—ବାରସ୍ତୁତ ଭଳେ ନୋଟ୍ ଦେଖ । ]

বালক **बालिग** ବୈଦେ. ବି ଓ ବିଣ (ଫା. ବାଲିଗ୍) ସାବାଳକ—
(ନାବାଳକ—ବିପରୀତ) Major; one who has attained majority.

ବାଳକତା(ତ୍ୱ)—ସ. ବି.—୧ । ବାଲ୍ୟାବସ୍ଥା—
Bāḷakatā (twa) 1. Boyhood.
୨ । ପିଲା ବୁଦ୍ଧି; ଅବାଚୀନତା—2. Childishness.

ବାଳ କଥା—ଦେ. ବି—ବାଲ୍ୟକାଳର ଦଉଡ଼ି କଥା—
Bāḷa kathā 1. Childish language; prattle.
**खराप बात** ଗ୍ରା. (ଇତର; ଅଶିଷ୍ଟ)—ବି—୧ । ଘୃଣ୍ୟ ବିଷୟ—
1. Despicable matter. ୨ । ମୂଲ୍ୟହୀନ ବିଷୟ—
বালের কথা 2. Worthless matter.

ବାଳ କଟା(ଟେ)ଇବା—ଦେ. କ୍ରି.—ଭଣ୍ଡାରୀଦ୍ୱାରା ଅପଣାର କେଶକୁ
Bāḷa kaṭā(ṭo)ibā କଭୁର କରିଇବା—To have one's
**बाल छँटाना** চুল ছাঁটান hairs corpped up by a barber.
(ବାଳ କଭୁରା(ରେ)ଇବା, ବାଳ ଛଟା(ଟେ)ଇବା }
ବାଳଛୁଆ(ଏ)ଇବା } —ଅନ୍ୟରୂପ

ବାଳକପ୍ରିୟା—ସ. ବି.—(ସ୍ତ୍ରୀ ତତ୍; ବାଳକପ୍ରିୟ+ଆ)—୧ । କଦଳୀ
Bāḷaka priyā (ବ୍ଯ. ଶ)—1. Plantain.
୨ । ଇନ୍ଦ୍ର ବାରୁଣୀ (ବ୍ଯ. ଶ); ମହାକାଳ —2. Colocynth.

ବାଳକାଟି—ଦେ. ବି. (ଦାମ)—ପୁରୀଜିଲ୍ଲା ଭୁବନେଶ୍ୱର ନିକଟସ୍ଥ ଗ୍ରାମ—
Bāḷa kāti A village near Bhubaneswar in the District of Puri.

[ଦ୍ର—ଏଠାରେ ଉତ୍କୃଷ୍ଟ କଂସା ବାସନ ତିଆରି ହୁଏ ।]

ବାଳ କାଟିବା—ଦେ. କ୍ରି.—ଅନ୍ୟ ବ୍ୟକ୍ତିର କେଶକୁ କଭୁରୀ ଦ୍ୱାରା
Bāḷa kāṭibā କାଟିବା—To crop up another's hair.
(ବାଳ କଭୁରିବା, ବାଳ ଛାଟିବା, ବାଳ ଛାଣିବା—ଅନ୍ୟରୂପ) ;
**बाल छाँटना** চুল ছাঁটা

ବାଲ କାଣ୍ଡ—ସ. ବି.—ରାମାୟଣର ଅାଦ୍ୟ କାଣ୍ଡ—The first of the
Bā̱la kāṉda seven books of the Rāmāyaṉa (describing the doings of Rāma in his boyhood.)
[ଦ୍ର—ଏଥିରେ ରାମଚନ୍ଦ୍ରଙ୍କର ବାଲ୍ୟାବସ୍ଥାର ଚରିତ ବର୍ଣ୍ଣିତ ହୋଇଅଛି ।]

ବାଲ କାମୀ—ସ. ବିଶ. ପୁଂ—(ବାଲ+କାମ+ଇନ୍; ୧ମା. ୧ବ)—
Bā̱la kāmī ସନ୍ତାନକାମୀ; ପୁତ୍ରକାମୀ—Wishing to have a child.
(ବାଲକାମିନୀ—ସ୍ତ୍ରୀ)

ବାଲ କାଳ—ସ. ବି—ଶୈଶବ ସମୟ; ବାଲ୍ୟାବସ୍ଥା—
Bā̱la kā̱la Childhood; boyhood.

ବାଲକି—ଦେ. ବି.—(ସ. ବାଲକ) ଲାଞ୍ଜ—
Bā̱laki Tail.
ଉର୍ଦ୍ଧ୍ୱ ପିଙ୍ଗଳା ଧାମ୍ର କେଶ
ବାଲକି ପ୍ରାୟ ଦେଖ ନଶ—ତୁଳସୀ. କ୍ଷେତ୍ର ମାହାତ୍ମ୍ୟ ।

ବାଲ କିରଣ—ଦେ. ବି.—୧ । ନବୋଦିତ ସୂର୍ଯ୍ୟ କିରଣ—
Bā̱la kiraṉa 1. Early rays of the sun.
ଅନ୍ତରାଳେ ଶୋଭେ ଠାବେ ଠାବେ ବାଳ-କିରଣ ଲିହ୍ନ ।
ରାଧାନାଥ, ଉଷା ।

୨ । ଢାଳୁଆଣିଆ ରଶ୍ମି—2. Slanting rays of the evening sun.

ବାଲକୀ—ଦେ. ବି—(ପଦ୍ୟ ଓ ପ୍ରାଚୀନ) (ସ. ବାଲିକା)—ବାଲକର
Bā̱lakī ସ୍ତ୍ରୀଲିଙ୍ଗ—1. The feminine of Bā̱laka.
**बालकी** ବାଳିକା—Girl.
ବାଳକ ବାଳକୀ ହୋଇଲେ ।
ସଦାଶିବ୍ର, ପ୍ରେମଭକ୍ତି ବ୍ରହ୍ମଗୀତା ।
ବିଶ.—ବାଲ୍ୟାବସ୍ଥା ସମ୍ବନ୍ଧୀୟ—Relating to childhood

ବାଲ କୁଣ୍ଡା(ଣ୍ଡେ)ଇବା—ଦେ. କ୍ରି—ପାନିଆରେ ବାଲ ଗୁଚ୍ଛକୁ ତର
Bā̱la kuṉdā(ṉde)ibā ସୁସଜ୍ଜିତ କରିବା—To comb hair.
**बालकंघीकरना** चुलआँचड़ा

ବାଲ କୃମି—ସ. ବି. ( ୬ଷ୍ଠୀ ତତ୍ )—କେଶ କୃମି; ଉକୁଣୀ
Bā̱la krumi Louse.

ବାଲ କୃଷ୍ଣ—ସ. ବି.—ଶିଶୁ ଶ୍ରୀକୃଷ୍ଣ—
Bā̱la kṟushṉa Child Śrīkṟushṉa.
(ବାଲକୃଷ୍ଣ—ଗ୍ରାମ୍ୟରୂପ) ଦେ. ବି—ଲୋକଙ୍କୁ ଦିଆଯିବା ନାମ—Name given to males.
[ଦ୍ର—ଏହିପରି ବାଲ ଗୋବିନ୍ଦ, ବାଲ ମୁକୁନ୍ଦ ଇତ୍ୟାଦି ଶବ୍ଦ ଗଠିତ ହୁଏ ।]

ବାଲ କ୍ରୀଡ଼ା—ସ. ବି ( ୬ଷ୍ଠୀ ତତ୍ )—ପିଲା ଖେଳ—
Bā̱la krīrdā Child's play.
(ବାଲ କ୍ରୀଡ଼ନ—ଅନ୍ୟରୂପ)

ବାଲ ଖାଇବା—ଦେ. କ୍ରି—(ଅଶିଷ୍ଟ) କୌଣସି କାର୍ଯ୍ୟରେ ଅକୃତକାର୍ଯ୍ୟ
Bā̱la khāibā ହେବା—(slanj) To fail in an undertaking.
(ବାଲ ଖାଇ ଯିବା, ବାଲଶ ବାଲ ଖାଇବା—ଅନ୍ୟରୂପ)
**मजा चखना** मजा देखा

ବାଲଖିଲ୍ୟ—ସ. ବି—(ବାଲ+ଖିଲ+ଯ)—ବ୍ରହ୍ମାଙ୍କ ଶରୀରରୁ ଜାତ
Bā̱la khilya ବୃଦ୍ଧାଙ୍ଗୁଷ୍ଠପରିମିତ ୬୦ ହଜାର ମୁନି—The generic name of 60 thousand sages of the height of the thumb, born of the body of Brahmā.

ବାଲଗଡ଼ା—ଦେ. ବି—(ବର୍ଣ୍ଣିଆ ଶବ୍ଦ)—ଦାନାଗଡ଼ା (ଦେଖ)
Bā̱la garḏā Dānā garḏā (See)

ବାଲ ଗର୍ଭିଣୀ—ସ. ବି—ପ୍ରଥମ ଗର୍ଭବତୀ—A female who has
Bā̱la garbhiṉī conceived for the first time.

ବାଲ ଗୋପାଳ—ଦେ. ବି—ବାଲକୃଷ୍ଣ (ଦେଖ)
Bā̱la gopā̱la 1. Bā̱la Kṟushṉa (See)
**बाल गोपाल** ୨ । ଶିଶୁ—2. Child.
বাল গোপাল ୩ । ବାଳକ ଶିଶୁଗଣ—3. Male children.

ବାଲଗୋବିନ୍ଦ—ସ. ବି—ବାଲକୃଷ୍ଣ (ଦେଖ)
Bā̱la gobinda Bā̱la Kṟushṉa (See)
ଅକାଳ ନନ୍ଦ ବାଲଗୋବିନ୍ଦ
ବାଲ କେଳି କେଳି ପକାଏ ଛନ୍ଦ । ଭଗ ।

ବାଲଗ୍ରହ—ସ. ବି—(ବାଲ+ଗ୍ରହ୍ ଧାତୁ+କର୍ତ୍ତୃ. ଅ; ଯେ ବାଳକମାନଙ୍କୁ
Bā̱la graha ଆକ୍ରମଣ କରେ ବା ଅକାଲରେ ଇହଲୋକରୁ ଗ୍ରହଣ କରେ)—୧ । ଅକାଳରେ ଶିଶୁ ପ୍ରାଣନାଶକ ରୋଗ ବିଶେଷ—1. A fatal infantile disease.
୨ । ଶିଶୁମାନଙ୍କ ପ୍ରାଣନାଶକ ୯ଟି ଉପଦେବତା—
2. A generic name of demigods said to attack infants with fatal results.
[ ଦ୍ର—ଏମାନଙ୍କ ନାମ ସ୍କନ୍ଦ, ସ୍କନ୍ଦାପସ୍ମାର, ଶକୁନୀ, ରେବତୀ ପୂତନା, ଗନ୍ଧପୂତନା, ଶୀତପୂତନା, ମୁଖମଣ୍ଡିକା ଓ ନୈଗମେୟ । କଥିତ ଅଛି ଯେ ଯେଉଁ ପରିବାରରେ ଦେବ ପୂଜା, ଅତିଥି ପୂଜା, ସଦାଚାର ପାଳିତ ନ ହୁଏ ସେ ପରିବାରର ପିଲାଙ୍କୁ ଏ ଗ୍ରହମାନେ ଆକ୍ରମଣ କରନ୍ତି । ଏ ଗ୍ରହଜନିତ ରୋଗରେ ଆକ୍ରାନ୍ତ ଶିଶୁ ବାରମ୍ବାର, କାନ୍ଦେ, ନଖରେ ଆପଣା ଦେହ ବା ପରର ଦେହକୁ ଖାମ୍ପୁଡ଼େ, ଦାନ୍ତ ରଗଡ଼େ, ଓଠ ଚପେ, ଖାଏ ନାହିଁ, ହାତ ଗୋଡ଼ ମୁଠା ମୁଠା କରେ ଓ ମୂର୍ଚ୍ଛିତ ହୁଏ—ସୁ. ଶ. । ]

ବାଲଚର—ସ. ବି. (ଆଧୁନିକ ପ୍ରୟୋଗ)—ବଏ ସ୍କାଉଟ୍ (ଦେଖ)
Bā̱la chara Bae skāuṯ ( See )

ବାଲ ଚର୍ଯ୍ୟ—ସ. ବି. ( ବହୁବ୍ରୀହି; ବାଲ+ଚର୍ଯ୍ୟ=ଆଚରଣ )—
Bā̱la charjya ୧ । କୁମାର; କାର୍ତ୍ତିକେୟ—1. Kārttikeya
ବାଲଚର୍ଯ୍ୟ ଯେ ଅଛନ୍ତି ସମ ହେଲେ ସେହି ମନ୍ତ୍ର ଦୁଅ ରୂପେ
କର୍ଣ୍ଣଶ୍ରେ ବୋଇଲେ ଯେ । ଉଞ୍ଜ. ବୈଦେହୀଶବିଳାସ
୨ । ( ୬ଷ୍ଠୀ ତତ୍ ) ବାଲକର ଚରିତ୍ର—
2. Boyish conduct.

ବାଲ ଚର୍ଯ୍ୟ(ର୍ଯ୍ୟା)—ସ. ବି. (୬ଷ୍ଠୀ ତତ୍; ବାଲ+ଚର୍ଯ୍ୟ; ଚର୍ଯ୍ୟା)—
Bā̱la charjya(rjyā) ଶିଶୁ ପାଳନ—The bringing up of children; the care of children; midwifery.
ବାଲ ଚର୍ଯ୍ୟା } ଅନ୍ୟରୂପ
ବାଲ ଚର୍ଯ୍ୟ
ବାଲ ଚର୍ଯ୍ୟ(ର୍ଯ୍ୟା)

ବାଳ ଛାଡ଼ିବା—ଦେ. କି—୧ । ଷୌର ଆଦ ନ ହୋଇ ଆପଣାର
Bāla chhārdiba କେଶକୁ ବଢ଼ାଇବା—1. To let one's
চুল বাড়ান hairs grow long.
बाल छोडना ୨ । କେଶକୁ ଉନ୍ମୁକ୍ତ କରି ଲମ୍ବିତ କରାଇବା—
চুল এলোকরা 2. To let loose the hair.
ବାଳ ଛାଡ଼ି ବଧ ଅଣ୍ଟାରେ ପଡ଼ି
ଲଙ୍କେ ରଙ୍କା ଫୁଲ ଝଡ଼ି—ବଗ।

ବାଳ ଜ୍ଞାନ ନ କରିବା—ଦେ. କି—ସାମାନ୍ୟ ମାତ୍ର ସମ୍ମାନ ବା ଖାତିର
Bāla jnāna na kariba ନ ଦେଖାଇବା—Not to show
खातीर नहीँ करना or have the slightest regard
খাতির না করা for a person.

ବାଳଞ୍ଚ—ଦେ. ବି. (ବର୍ଣ୍ଣିଥ ଶବ୍ଦ)—ଅଳଙ୍କାର ସଫା କରିବା ପାଇଁ ବାଘୁଆ
Bālancha ବାଳରେ ବନ୍ଧା ହୋଇଥିବା ମୁଠା—
A small bundle of hair of the boar to brush or cleanse ornaments.

ବାଲଟି(ଟି)—ବୈଦେ. ବି. (ପର୍ତ୍ତୁଗୀଜ୍ ବାଲେଡ୍; ଇଂ. ବକେଟ୍)—
Bālati(ti) ଲୌହାଦ ନିର୍ମିତ ବସ୍ତୁଳ ମୁଖ ଏକ ପ୍ରକାର ପାତ୍ର—
বালতী बालटी A bucket.

ବାଳ ଡିମ୍ବିରି—ଦେ. ବି—କ୍ଷୁଦ୍ର ବୃକ୍ଷ ବିଶେଷ—
Bāla dimbiri Ficus Hispida (Hains).

[ ଦ୍ର—ଏହି ବୃକ୍ଷ ନଦୀ ଓ ନାଳ କୂଳରେ ଜନ୍ମେ । ଏହାର ଫଳ ଖିଆଯାଏ । ]

ବାଳ ତନୟ—ସ. ବି—ଖଇର ଗଛ—
Bāla tanaya Acacia Catechu (tree).
(ବାଳ ବଲକ, ବାଳ ପତ୍ର—ଅନ୍ୟରୂପ)

ବାଳ ତାଳ—ଦେ. ବି—ତାଳସଜ; ତାଳଗ୍ରିମଞ୍ଜା (ଦ୍ରବ୍ୟଗୁଣ)—
Bāla tāla The soft substance inside the hard seed of the palm fruit.

ବାଳ ତୃଣ—ସ. ବି—କଅଁଳିଆ ଘାସ; ନୂଆ ଘାସ—
Bāla truna Tender new grass.

ବାଳ ଧନ—ସ. ବି. (୬ଷ୍ଠୀ ତତ୍; ବାଳ=ନାବାଳକ+ଧନ)—
Bāla dhana ନାବାଳକର ଧନ—Minor's property.

ବାଳ ଧରାଧରି—ଦେ. କି. ବିଣ—୧ । ପରସ୍ପର ଚୁଟି ଧରାଧରି ହେବା—
Bāla dharādhari 1. Mutual catching by
চুল টানাটানী बाल खाँचाखीँची the hair.
୨ । ଭୟାନକ କଳ କଜିଆ—2. Fierce quarrel.
ହାତଭଳ, ଦନ୍ତ ଚଢ଼ା ଗାଳ କରିଛନ୍ତି
ସଇତା ସାଙ୍ଗରେ ବାଳ ଧରାଧରି,
ବଧୂର ସାଙ୍ଗରେ ବର୍ଗଭଳ—କେଳା ଗୀତ ।

ବାଳଧି(ଧୀ)—ସ. ବି. (ବାଳ ଧାତୁ+କର୍ତ୍ତୃ. ଇ; ଈ)—
Bāladhi(dhi) ୧ । ଚାମର—1. A fan made of the tail of the yak.
୨ । କେଶଯୁକ୍ତ ପୁଚ୍ଛ—2. Hairy tail; bushy tail.

ବାଳ ଧୂପ—ଦେ. ବି. (ସ. ବାଳ=ବାଳକ ଓ ଧୂପ)—
Bāla dhūpa ୧ । ଠାକୁରଙ୍କ ସକାଳେ ସର୍ବପ୍ରଥମେ ହଥାଯିବା (ବାଳ ଭୋଗ—ଅନ୍ୟରୂପ) ଅନ୍ନାଦ ନୈବେଦ୍ୟ—1. The day's
सुबहकी आरती first offering of food to the
বাল্যভোগ Deity.
୨ । ଦେବତାଙ୍କୁ ଭୋରରୁ ଭୋଗ କରାଯିବା ଜଳଖିଆ—
2. The Deity's tiffin or breakfast.

ବାଳ ପକା(କେ)ଇବା—ସ. କି—ଦେବତାଙ୍କ ଉଦ୍ଦେଶ୍ୟରେ ମାନସିକ
Bāla paka(ke)iba କରି ଛାଡ଼ିଥିବା ବା ବଢ଼ାଇବା ଦୀର୍ଘକେଶକୁ
চুল ফেলা, চুল দেওয়া କ୍ଷୌରିଦ୍ୱାରା ମୁଣ୍ଡିତ ହେବା—
बाल देना To have one's long hairs shaven.

ବାଳ ପାଚିବା—ଦେ. ବି. ( ସ. ବାଳ+ପଚ ଧାତୁ )—
Bāla pāchiba ୧ । କେଶର ପକ୍ୱତା—1. Greyness of
চুল পাকা बाल पकना hairs.
୨ । ବୃଦ୍ଧାବସ୍ଥା—2. Old age.

ବାଳ ପାଶ୍ୟା—ସ. ବି. (ବାଳ=କେଶ+ପାଶ+ଯ+ଆ)—
Bāla pāsyā ୧ । ଲଲାଟ ଭୂଷଣ; ଅଳକାପାଟି—
1. An ornament for the brow.
୨ । ସୀମନ୍ତ—2. The ringlets of small hair hanging down the brow.

ବାଳ ପୁଅ—ଦେ. ବି. ପୁଂ. (ସ. ବାଳପୁତ୍ର)—ଶିଶୁପୁତ୍ର; ପିଲା ପୁଅ—
Bāla pua Small child or boy.
(ବାଳ ପୋଇ—ଅନ୍ୟରୂପ) ପିଠା ବାଳକେ ବାଳ ପୁଅ
[ବାଳ ପୁ(ପୋ)ଏ—ବହୁବଚନ] କୋଇଲେ ଶୁଣ ପରାମାତ
छोटा लड़का ছোটছেলে ସାଠା. ଗର୍ଭ ମାହାତ୍ମ୍ୟ ।

ବାଳ ପୁଷ୍ପୀ—ସ. ବି. (ବାଳ=କେଶ+ପୁଷ୍ପ+ଇନ୍)—
Bāla pushpi ଯୂଥିକା; ଯୂଇ—A sort of tiny jasmine;
(ବାଳ ପୁଷ୍ପିକା—ଅନ୍ୟରୂପ) Jasmine Quriculatus.

ବାଳ ପ୍ରମାଣ(ଣେ)—ଦେ. କି. ବିଣ—୧ । କେଶ ପରି ଅତି ସୂକ୍ଷ୍ମ
Bāla pramāna(ne) ଭାବରେ; ସରୁ ଭାବରେ—
(ବାଳ ପରି—ଅନ୍ୟରୂପ) 1. Delicately like the thick
চুল প্রমাণ ness of a hair.
बाल बराबर ୨ । କେଶର ବ୍ୟବଧାନ ମାତ୍ର ରହି—1. Leaving a hair-breadth (distance).

ବାଳବ—ସ. ବି—ଫଳିତ ଜ୍ୟୋତିଷ ଶାସ୍ତ୍ର ସମ୍ମତ ଏକାଦଶ କରଣରୁ
Bālaba ଦ୍ୱିତୀୟ କରଣ—One of the 11 astrological conjunctions.

[ ଦ୍ର—ଏ କରଣରେ ଶୁଭ କର୍ମ କରିବି; ଏ କରଣରେ ଜନ୍ମିଥିବା ବ୍ୟକ୍ତି କାର୍ଯ୍ୟକୁଶଳ ସ୍ୱପରିବାରପାଳକ, କୁଳଶୀଳ-ସମ୍ପନ୍ନ, ଉଦାର ଓ ବଳବାନ୍ ହୁଏ—ହ୍ର. ଶ ]

ବାଳ ବଙ୍କା ହେବା—ଦେ. ବି. (ଇତର ବ୍ୟବହୃତ)—କୌଣସି ବ୍ୟକ୍ତିର
Bāla bankā heba ସାମାନ୍ୟ ମାତ୍ର ଅନିଷ୍ଟ ହେବା—
बाल बान्धना The happening of the slightest
(ବାଳ ବଙ୍କା କରିବା—କ୍ରିୟା) injury to a person (e. g.
চুলছিঁড়া touching the hair of a person's head and
[ବାଳବଙ୍କା(ଙ୍କେ)ଇବା—କ୍ରିୟା] making it bend a little).

ବାଲ ବଚ୍ଚ(ଚ୍ଛା)—ଦେ. ବି ( ସଙ୍କରର ଶବ୍ଦ; ସଂ. ବାଲ ଓ ବତ୍ସ; ହିନ୍ଦୀରୁ ଅନୁକୃତ )—୧ । ପିଲାପିଲି—
Bāḻa bachā(chchā) 1. Children. ୨ । ଆପଣାର ସନ୍ତାନସନ୍ତତି—
বালবাচ্চা
বালবাচ্চে 2. One's own children.
ସନ୍ଧ୍ୟା ନ ହେଉଣୁ କାଲି
ବାଲବଚ୍ଚା ସହ ଭାର ଛେଡ଼ ହେବ ଗଲା—ଭକାସ୍ତ, କଦ୍ଧକଳ୍ପ ।
। ପରିବାର—3. family.

ବାଲବଚ୍ଚ(ଚ୍ଛା)ବାଲା—ଦେ. ବିଣ—ବହୁ ସନ୍ତାନସନ୍ତତିବିଶିଷ୍ଟ—Having
Bāḻabachā(chchā)bāḻā a family of many
বালবাচ্চাবালা ছাপোষা children.

ବାଲ ବଢ଼(ଢୁ)ଣୀ—ଦେ. ବି ( ସଂ. ବାଲ ଓ ବର୍ଦ୍ଧନୀ )—୧ । ଶତାବରୀ
Bāḻa barḏha(rḏhu)ṇi ଗଛ—1. The asparagus.
[ ଦ୍ର—ଏହାର ଡାଳ ମୁଣ୍ଡରେ ଖୋସିଲେ ମସ୍ତକର କେଶ ବୃଦ୍ଧି ପାଏ ବୋଲି ସ୍ତ୍ରୀଲୋକଙ୍କର ବିଶ୍ୱାସ । ]
୨ । କେଶ ବୃଦ୍ଧିକାରକ ଔଷଧ—2 A preparation which causes the hair to grow.

ବାଲ ବଢ଼ା(ଢେ଼)ଇବା—ଦେ. କ୍ରି. ( ସ. ବାଲ+ବର୍ଦ୍ଧନ )—ବାଳକୁ
Bāḻa barḏhā(rḏhe)ibā ନ କାଟି ଲମ୍ବ ହେବାକୁ ଛାଡ଼
চুলবাড়ান দେବା—1. To let one's hair grow long
বালবঢ়ানা ( without cutting it ). ୨ । ଔଷଧ ବା ତୈଳାଦି ପ୍ରୟୋଗଦ୍ୱାରା କେଶ ବୃଦ୍ଧି ହେବା ଉପାୟ କରିବା—
2. To make one's hair grow long by application of medicated oil etc.

ବାଲ ବତ୍ସ(ତ୍ସ୍ୟ)—ସ. ବି ( ବହୁବ୍ରୀହି; ବାଲ+ବତ୍ସ=ପ୍ରିୟ )—
Bāḻabatsa(tsya) କପୋତ; ପାରା—Pigeon.

ଝୀଁଟି ବାନ୍ଧିବା—ଦେ· କ୍ରି—ମୁଣ୍ଡର କେଶକୁ ଏକତ୍ର କରି ଫେଣ୍ଟ ପକାଇବା;
Bāḻa bāndhibā ମୁଣ୍ଡ ବାନ୍ଧିବା—To tie up the hair
চুলবাঁধা चोटीबाँधना of the head into a knot or chignon.

ବାଲ ବାହ୍ୟ—ସ. ବିଣ ( ବାଲ + ବହ୍ ଧାତୁ + କର୍ମ· ଯ )—ଶିଶୁଦ୍ୱାରା
Bāḻa bāhya ବହନୀୟ—Capable of being carried by a child.
ବି—ବନ୍ୟ ଛାଗଳ—Wild goat.

ବାଲ ବିଧବା—ସ. ବି—ବାଳୁତ ବିଧବା ( ଦେଖ )
Bāḻa bidhabā Bāḻuta bidhabā ( See )
( ବାଲବୈଧବ୍ୟ—ଅବସ୍ଥାବାଚକ ବିଶେଷ୍ୟ )

ବାଲବିଧୁ—ସ. ବି ( କର୍ମଧା: ବାଲ+ବିଧୁ )—ଶୁକ୍ଳପକ୍ଷ ଦ୍ୱିତୀୟାର
Bāḻabidhu ଚନ୍ଦ୍ର; ନବଚନ୍ଦ୍ରମା—The new moon.

ବାଲ ବିବାହ—ସ. ବି. ( ୬ଷ୍ଠୀ ତତ୍; ବାଲ+ବିବାହ )—ବରର ବା
Bāḻa bibāha କନ୍ୟାର ବାଲ୍ୟାବସ୍ଥାରେ କରାଯିବା ବିବାହ—
Child-marriage.

ବାଲ ବୀର—ସ., ବି (ଅଧୁନାତନ ପ୍ରୟୋଗ)—ବଏ ସ୍କାଉଟ୍ ( ଦେଖ ) .
Bāḻa bīra Bae skāuṭ ( See )

ବାଲ ବୁଦ୍ଧି—ସ. ବି—ବାଳକର ବୁଦ୍ଧି ପରି ସାମାନ୍ୟ ବୁଦ୍ଧି—
Bāḻabuddhi Slight intelligence or discretion.
ସ. ବିଣ—ମନ୍ଦ ବୁଦ୍ଧି ( ବ୍ୟକ୍ତି )—
Having slight intelligence.

ବାଲବୋଧ—ସ. ବି—ଦେବନାଗର ଲିପି (ହି ଶ)—
Bāḻabodha The Debanāgara script.
ସ. ବିଣ—ବାଳକର ବୋଧଗମ୍ୟ; ଅତି ସହଜ—
Very easy
( ଯଥା— ପଣ୍ଡିତ କୁଳମଣି ଦାଶଙ୍କ ବାଲବୋଧ ବ୍ୟାକରଣ । )

ବାଲ ବ୍ୟଜନ—ସ. ବି ( ମ· ପ· ଲୋ· କର୍ମ୍ମ ୬ଷ୍ଠୀ ତତ୍; ବାଲ=କେଶ
Bāḻa byajana +ବ୍ୟଜନ=ପଙ୍ଖା )—ଚାମର; ଚାଉଁରି—
Chowrie; a fan made of the bushy tail of beasts.

ବାଲ ବ୍ରତ—ସ ବି—ମଞ୍ଜୁଘୋଷ ନାମକ ଜନୈକ ଜୈନ ଧର୍ମପ୍ରଚାରକ—
Bāḻa brata Mame of a Jaina missionary.
ବିଣ—ବାଳକ ଆଚରଣବିଶିଷ୍ଟ—
Conducting one's self like a child.

ବାଲ ବ୍ରହ୍ମଚାରୀ—ସ· ବି—ଯେଉଁ ବ୍ୟକ୍ତି ବାଲ୍ୟାବସ୍ଥାରୁ ବ୍ରହ୍ମଚର୍ଯ୍ୟ
Bāḻa brahmachārī ଅବଲମ୍ବନ କରିଅଛି; କୁମାରବ୍ରହ୍ମଚାରୀ—
(ବାଲବ୍ରହ୍ମଚର୍ଯ୍ୟ—କର୍ମ ବା ଅବସ୍ଥା ବାଚକ ବିଶେଷ୍ୟ) A person who has observed continence since his very boyhood, a lifelong celebate.

ବାଲ ଭାନୁ—ସ. ବି ( ବାଲ+ଭାନୁ )—୧ । ( କର୍ମଧା ) ଅଳ୍ପକାଳ
Bāḻa bhānu ହେଲା ଉଦିତ ହୋଇଥିବା ସୂର୍ଯ୍ୟ—1. Newly
(ବାଲସୂର୍ଯ୍ୟ, ବାଲାର୍କ, ବାଲରବି—ଅନ୍ୟରୂପ, risen sun.
୨ । ବୈଦୂର୍ଯ୍ୟ ମଣି ( ହି· ଶ· )—2, Lapis lazuli.

ବାଲ ଭାବ—ସ. ବି ( ୬ଷ୍ଠୀ ତତ୍; ବାଲ+ଭାବ )—୧ । ବାଲକତ୍ୱ—
Bāḻa bhāba 1. Childhood.
୨ । ବାଲ୍ୟଚପଳତା—2. Childishness.

ବାଲ ଭାଷଣ—ସ. ବି. ( ୬ଷ୍ଠୀ ତତ୍, ବାଲ+ଭାଷଣ )—୧ । ଶିଶୁର
Bāḻa bhāshaṇa କହିବା କଥା—1. A child's utter-
(ବାଲ ଭାଷିତ—ଅନ୍ୟରୂପ) ance. ୨ । ଶିଶୁର ଅସ୍ପଷ୍ଟ କଥା—
2. The lispings of an infant,
୩ । ଶିଶୁର ଭାଷା—3, Childish language.

ବାଲଭୋଗ—ସ. ବି—୧ । ଶ୍ରୀକୃଷ୍ଣଙ୍କ ବିଗ୍ରହକୁ ଅର୍ପିତ ନୈବେଦ୍ୟ ( ହି. ଶ. )—1. Offering made to an idol of
Bāḻabhoga Śrīkrushṇa.
୨ । ଜଳଖିଆ ( ହି. ଶ· )—2. Light refreshment.
বাল্যভোগ ଦେ. ବି—ଦେବତାଙ୍କୁ ଅର୍ପିତ ହେବା ପରେ ସମବେତ
बालभोग ଶିଶୁମାନଙ୍କୁ ବଣ୍ଟାଯିବା ନୈବେଦ୍ୟ—Offerings distributed amongst the assembled children.

ବାଲ ଭୋଜ୍ୟ—ସ. ବିଣ. ( ୬ଷ୍ଠୀ ତତ୍; ବାଲ+ଭୋଜ୍ୟ )—
Bāḻa bhojya ଶିଶୁର ପଥ୍ୟ—Fit to be taken by infants; (food) beneficial for infants.

ବାଲ(ଳା)ମ୍(ମି)— ଦେ. ବି—ବରିଶାଲ ଅଞ୍ଚଳରୁ କଲିକତାକୁ ଆମଦାନି ହେଉଥିବା
Bala(lā)m(mi) ଏକ ପ୍ରକାର ଉତ୍କୃଷ୍ଟ ଶାଳି ଚାଉଳ—
ବାଲାମ A kind of excellent rice imported to
**बालम; बिलाइती चावल** Calcutta from Barisal side.
[ଦ୍ର—ନୁଆଖାଲି ଓ ବାଖରଗଞ୍ଜ ପ୍ରଭୃତି ଅଞ୍ଚଳରେ ବ୍ୟବହୃତ ନୌକା ବିଶେଷର ନାମ 'ବାଲମ୍।' ଏହି ନୌକାର ପଟାମାନଙ୍କ ବେତ ଲଇ ଦ୍ୱାରା ପଟାଗୁଡ଼ିକ ସହିତ ଉଡ଼ା କରି ବାନ୍ଧିବାକୁ ହୁଏ। ବରିଶାଲ ଅଞ୍ଚଳରୁ ଏ ଚାଉଳ 'ବାଲମ୍' ନୌକାରେ କଲିକତା ଅଞ୍ଚଳକୁ ଆସୁଥିବାରୁ ଏ ଚାଉଳର ଏହି ନାମ ହୋଇଅଛି। ଏ ଚାଉଳ ସାଧାରଣ ଚାଉଳ ଅପେକ୍ଷା ସରୁ ଓ ଲମ୍ବ, ଓ ଏଥିରେ ଅଳ୍ପ ଗୋଟି ଗୋଟି ହୁଏ। ଏ ଚାଉଳରେ ଖେଚୁଡ଼ି, ପଲଉ ଆଦି ରନ୍ଧାଯାଏ—ଯୋଗେଶଚନ୍ଦ୍ର]

ବାଲ ମାଧବ ସଂ. ବି. ପୁଂ—ବାଳ ଶ୍ରୀକୃଷ୍ଣ (ଦେଖ)
Bāla mādhaba Bāla śrikrushna (See)

ବାଲ ମାଟୋଇ } ଦେଶଜରୂପ ଦେ. ବି. ପୁଂ—ପୁରୁଷଙ୍କୁ ଦିଆଯିବା
ବାଲ ମଧେଇ } ନାମ—A name given to
**बालमधवा** males

ବାଲ ମନ୍ଦା— ଦେ. ବି—ଦେହରେ ଚକା ଚକା ହୋଇ ସ୍ଥାନେ ସ୍ଥାନେ
Bāla mandā ଉଠିବା ବଡ଼ ଲୋମଗୁଚ୍ଛ—Hairy growth;
**लहसन** polytrichia; hirsute patches on the body.

ବାଲମିକ(କି)—ଗ୍ରା. ବି. (ସଂ ବାଲ୍ମୀକି)—ବାଲ୍ମୀକି (ଦେଖ)
Balamika(ki) Bālmika (See)
ବାଲମିକି କି ମୌଳିକ ଗୌତମ ମିଶି। ଭକ୍ତ- ବୈଦେହୀଶବିଳାସ।

ବାଲମିକ(କି) ରାମାୟଣ— ଗ୍ରା ବି—ବାଲ୍ମୀକି ମୁନିଙ୍କ ରଚିତ ସଂସ୍କୃତ
Bālamika(ki) rāmayana ରାମାୟଣ—The Rāmāyana composed by sage Bālmika.

ବାଲ ମୁକୁନ୍ଦ—ସଂ. ବି—ବାଲମାଧବ (ଦେଖ)
Bāla mukunda Bālamādhabā (See)
(ବାଲମକୁନ୍ଦ—ଦେଶଜରୂପ)

ବାଲ ମୁକୁଳା(ଳେ)ଇବା—ଗ୍ରଥିତ କେଶକୁ ଉନ୍ମୁକ୍ତ କରିବା—
Bāla mukulā(le)ibā To unloosen the knotted
**बाल खोलना चूल एलान** hair.
[ବାଲମୁକୁଳା କରିବା, ବାଲ ଫିଟା(ଟେ)ଇବା—ଅନ୍ୟରୂପ]

ବାଲମୂଳକ—ସଂ. ବି. (କର୍ମଧା; ବାଲ+ମୂଳକ)—କୋମଳ ଓ କଅଁଳିଆ
Balamūlaka ମୂଳା—Tender and young radish.
[ଦ୍ର—ବୈଦ୍ୟକ ମତରେ ଏହା କଟୁ ତିକ୍ତ, ପାଚକ, ବଳବର୍ଦ୍ଧକ; ଏହା ଶ୍ୱାସ, ଅର୍ଶ, କ୍ଷୟ ଓ ନେତ୍ର ରୋଗରେ ଉପକାରୀ—ହି. ଶ]—

ବାଲମୂଳକା ସଂ. ବି—(ବହୁବ୍ରୀହି; ବାଲ+ମୂଳକା)—ଆମ୍ବଡ଼ାଗଛ
Balamūlikā (ହି. ଶ)—Hog plum (tree).

ବାଲ ମୂଳିଆ— ଦେ. ବି—(ସଂ. ବାଲ+ମୂଳୀୟ)—ଲୋମ ମୂଳରେ
Bāla mūliā ଉତ୍ପନ୍ନ ବ୍ରଣ—Boils growing at the
**बालघाव** pores of the skin; multiple tumours, molluscum.

ବାଲ ମୂଷିକ—ସଂ. ବି—(କର୍ମଧା; ବାଲ+ମୂଷିକ)—ଛୁଞ୍ଚିଆ ମୂଷା—A
Bāla mūshika very small species of mouse.

ବାଲ ରାଜ—ସଂ. ବି—(ବାଲ+ରାଜନ୍, କର୍ମଧା)—ଶିଶୁ ରାଜା—
Bāla rāja 1. A young or boy king.
୨। (୬ଷ୍ଠୀ ତତ୍) ବାଳକ ଶ୍ରେଷ୍ଠ—2. An excellent boy. ୩। (ବାଲ+ରାଜ ଧାତୁ+କର୍ତ୍ତୃ. ଅ)—3. A ବୈଦୂର୍ଯ୍ୟ ମଣି—3. Saphire; Lapis lazuli.

ବାଲ ରୋଗ—ସଂ. ବି.—ଶିଶୁମାନଙ୍କୁ ଆକ୍ରମଣ କରିବା ରୋଗ ମାନ—
Bāla roga Diseases ordinarily attacking infants; infantile diseases.

ବାଲ ଲୀଳା—ସଂ. ବି—(୬ଷ୍ଠୀ ତତ୍)—୧। ବାଳକମାନଙ୍କର କ୍ରୀଡ଼ା—
Bāla līlā 1. Boys' game
୨। ଶିଶୁକାଳରେ କୌଣସି ବ୍ୟକ୍ତିର କ୍ରୀଡ଼ା କୌତୁକ ବି—
2. Sports of a person during childhood.
बाल्यलीला ଦେ. ବି—ଦେବତାଙ୍କ ଭୋଗକୁ ସମବେତ ବାଳକମାନଙ୍କ
**बाललीला** ମଧ୍ୟରେ ବଣ୍ଟନ—Distribution of sweets amongst the assembled boys after they are offered to a Deity.

ବାଲ ଶିଷ (ଷି)—ଗ୍ରା. ବି—(ସଂ. ବାଲ+ଶିଷ୍ୟ ବା ଶିଶୁ)—୧। ଛୋଟ
Bāla sisha (shi) ବାଳକ; ଶିଶୁ ବାଳକ—1. Young boy; malechild. ୨। ବାଳକ ସଙ୍ଗୀ—
Boy-companion.
ବୃନ୍ଦାବନରେ କରନ୍ତି ବାସ,
ସଙ୍ଗେ ଘେନି ଅନେକ ବାଲଶିଷ। ଭକ୍ତକବି ମଧୁସୂଦନ

୩। ବିଦ୍ୟାଳୟରେ ପଢ଼ୁଥିବା ସାନ ପିଲା—3. A young boy or infant reading in school.

ବାଲ ହସ୍ତ—ସଂ. ବି—(ଉପମିତ କର୍ମଧାରୟ; ବାଲ ହସ୍ତ ପରି)—୧।
Bāla hasta କେଶଗୁଚ୍ଛ—2. A tuft of hair. ୨। ଲାଙ୍ଗୁଳ—2. Tail.

ବାଲା—ସଂ. ବି. ସ୍ତ୍ରୀ—(ବାଲ+ଆ)—୧। ବାଳିକା; ଅଳ୍ପବୟସ୍କା କନ୍ୟା;
Bālā ଝିଅ—1. Girl; lass.
୨। ଯୁବତୀ; ଷୋଳବର୍ଷୀ ସ୍ତ୍ରୀ—2. A young woman aged 16 years ୩। ନାରୀ; ରମଣୀ; ଲଳନା—3. Woman ୪। ତରୁଣୀ; ନବଯୁବତୀ; ପ୍ରୌଢ଼ ଯୁବତୀ—3. A youthful girl; a girl who had recently attained puberty. ୫। କନ୍ୟା; ଝିଅ 5. Daughter.
[ଦ୍ର—ଦୁଇ ବର୍ଷ ବୟସରୁ ଅନଧିକ ବୟସ୍କା କନ୍ୟା—ହି. ଶବ୍ଦସାଗର।]
୬। ସ୍ତ୍ରୀ; ଭାର୍ଯ୍ୟା—6. Wife. ୭। କୁରୁବେଲି; ହ୍ରୀବେର (ଗୁଳ୍ମ)—7. Pavionia Odorata (plant). ୮। ନାରିକେଳ (ବୃକ୍ଷ ଓ ଫଳ)—8 Cocoanut (tree and fruit) (M. W). ୯। ହଳଦୀ—9. Turmeric. ୧୦। ଏକବର୍ଷବୟସ୍କା ମାଈ ବାଛୁରୀ—10. A female calf one year old; heifer. ୧୧। ମାଈ ଘୋଡ଼ାଛୁଆ—11. Filly. ୧୨। ପଞ୍ଚ-

ବର୍ଷୀୟ ମାଈ ହାତୀଛୁଆ—12. A female elephant aged 5 years. ୧୩ । ବାଲଧି; ପୁଚ୍ଛ—13. A tail. ୧୪ । ରୋହିତ ମତ୍ସ୍ୟ; ରୋହିମାଛ—14. A scaly fish; Cyprinus Rohita ୧୫ । ହାତଖଡ଼ୁ; ବଳୟ-ଭୂଷଣ—15. Wristlet; bracelet. ୧୬ । ଛୋଟ ଅଳାଇଚ—16 Small cardamom. ୧୭ । ନୀଳ-ଝିଣ୍ଟୀ; ଦାସକେରେଣ୍ଡା ଗୁଳ୍ମ—17. Blue Barleria. ୧୮ । ଘୃତକୁମାରୀ, ଘିକୁଆଁରୀ—18. Aloe; Aloe Perfoliata. ୧୯ । ମଲ୍ଲିଫୁଲ ବିଶେଷ—19. A kind of jasmine. ୨୦ । ଖଇର ଗଛ ( ହି· ଶ. )—20. Acacia Catechu ( plant ) ୨୧ । ଦଶ ମହା-ବିଦ୍ୟା ମଧ୍ୟରୁ ଏକଦେବୀ ( ହି. ଶ. )—21. One of the ten Mahābidyās ୨୨ ଛଅ ଲଘୁ ଓ ୧ ଗୁରୁବର୍ଣ୍ଣ ଥିବା ବର୍ଣ୍ଣବୃତ୍ତ ବିଶେଷ ( ହି. ଶ. )—22. A Sanscrit metre of 10 syllables.

ଦେ. ବି—ବାଲ ଶବ୍ଦ ଆଗରେ ଥିବା ବ୍ୟକ୍ତି (ଯଥା, ବାଲମୁକୁନ୍ଦ) ମାନଙ୍କ ଡାକ ନାମ—Name for calling persons whose names begin with the word 'Bāla'

ବାଲି—ପ୍ରା. ଦେ. ବି (ବାଲେଶ୍ୱର; ମେଦିନୀପୁର; ସଂ. ବଳୟ)---ବଳୟ— Bālā Wristlet.

[ ଦ୍ର—ବଙ୍ଗାଳୀମାନଙ୍କ ବଳୟ ଅଳଙ୍କାର 'ବାଲା'ର ଓ ଓଡ଼ିଆଙ୍କ ବଳୟ ( ହାତ ଖଡ଼ୁ )ର ଗଢ଼ଣ ପୃଥକ୍ ଅଟେ । ଯେଉଁ ଓଡ଼ିଆ ରମଣୀମାନେ ବଙ୍ଗାଳୀଙ୍କ 'ବାଲା' ଅଳଙ୍କାର ବ୍ୟବହାର କରନ୍ତି ସେମାନେ ଏହାକୁ 'ହାତଖଡ଼ୁ' ନ କହି 'ବାଲା' କହନ୍ତି । ସଂ. ବାଲ ଶବ୍ଦର ଅର୍ଥ ପ୍ରକୃତିବାଦରେ 'ବଳୟ ଭୂଷଣ' ବୋଲି ଲେଖା ଅଛି । ଏହାର ଅନ୍ୟ ଆକାର 'ବାଲୀ' ବୋଲି ମଧ୍ୟ ଲେଖାଅଛି । ]

ପ୍ରାଦେ. ( ସମ୍ବଲପୁର ) ବି—ବଡ଼ କାନ ଫାଶିଆ— A ring for the ear; big ear-ring.

ବୈଦେ. ବିଣ. ପୁଂ (ଫା. ପ୍ରତ୍ୟୟ; ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ (ବାଲୀ—ସ୍ତ୍ରୀ) ହୁଏ)—୧ । (ଅମୁକର) ଅଧିକାରୀ; ମାଲିକ; ସ୍ୱାମୀ—ଓ୍ୱାଲା वाला 1. Owning (a certain thing). (ବୁଆଲା—ଅନ୍ୟରୂପ) (ଯଥା—ଘରବାଲା ।)

୨ । ( ଅମୁକ ଦ୍ରବ୍ୟର ) ବିକ୍ରୟକାରୀ—2. Selling ( a certain thing ).

(ଯଥା – ବରଫ ବାଲା, ମାଛ ବାଲା ।)

୩ । ( ଅମୁକ ବିଷୟ ବା ପଦାର୍ଥ ) ଯାହାର ଅଛି— 3. Having ( a certain thing ).

(ଯଥା—ପଇସା ବାଲା ।)

୪ । ଯେ ( ଅମୁକ କର୍ମ ) କରେ—4, Doing ( a certain work).

(ଯଥା—ଯିବା ବାଲା; ଖାଇବା ବାଲା ।)

୫ । ଯେ ( ଅମୁକ ) କାର୍ଯ୍ୟରେ ନିଯୁକ୍ତ—5. Engaged in (a certain work); enlisted in.

(ଯଥା—କଂଗ୍ରେସ ବାଲା ।)

ଦେ. ବି. ( ଅନାଦରାର୍ଥକ )—ବାଲକୃଷ୍ଣର ଡାକ ନାମ— A name for calling Bālakrushna.

ବାଲାଖାନା—ବୈଦେ. ବି. (ଫା. ବାଲା=ଉପରର+ଖାନା=ଗୃହ)— Bālākhānā ଉପର ମହାଲା; ଏକ ମହଲା କୋଠା ଉପରେ ବାଲାଖାନା ଥିବା ଘର; ଦୋତାଲା—Second storey; upper बालाखाना storey.

ବାଲାଞ୍ଚ ବାଲା—ଦେ. ବିଣ—ବାସୁରା ( ଦେଖ ) Bālā(la)nchbālā Bāsturā ( See )

ବାଲାତପ—ସଂ. ବି. ( ବାଲ+ଆତପ )—ଉଦୟମାନ ସୂର୍ଯ୍ୟଙ୍କ କିରଣ; Bālātapa କଅଁଳଆ ଖରା—The rays of the rising sun.

ବାଲାଦସ୍ତି—ବୈଦେ. ବି (ଫା)—୧ । ଜବରଦସ୍ତି; ବଳପ୍ରୟୋଗ— Bālādasti 1. Use of force. ୨ । ବଳପୂର୍ବକ ଅଧିକାର— बालादस्ति 2. Forcible siezure or possession.

ଦେ. ବି—ବାଲାଦାସ୍ (ଦେଖ)—Bālādās (See)

ବାଲାଦାସ୍—ଦେ. ବି (ହି· ବାଲକ୍‌ଦାସ୍)—ବାବାଜୀଙ୍କର ବାଳକ ଶିଷ୍ୟ— Bālādās A boy disciple of a Bairāgi

ବାଲାପୋଷ୍—ବୈଦେ. ବି, (ଫା. ବାଲା=ଉପରର+ପୋଷ୍=ପୋଷାକ Bālāposh =ବହିର୍ବସ୍ତ୍ରାବରଣ )—ତୁଳାଦିଆ ବାଲୁକା ଗାଢ଼ ବସ୍ତ୍ର— ବାଲାପୋଷ A wrapper stuffed with cotton or बालापोष wool.

ବାଲାବର—ବୈଦେ. ବି. (ଫା)—ଏକପ୍ରକାର ଚପ୍‌କନ୍ (କୁର୍ତ୍ତା)— Bālābar बालावर A kind of Chapkan.

[ ଦ୍ର—ଏଥିରେ ୪ଟି କଳୀ ଓ ୬ଟି ବୋତାମ ବା ବାନ୍ଧିବା ଡୋରି ଥାଏ । ]

ବାଲାବାଲା—ପ୍ରାଦେ. ( ଅଠମଲ୍ଲିକ ) ଅ ( ତୁଳନା କର. ଏହି ଅର୍ଥରେ Bālābālā ହିନ୍ଦୀ ଏହି ଶବ୍ଦ )—ସିଧାଭାବରେ; ସିଧାଏ ସିଧାଏ— Straight; directly.

(ଯଥା—ତୁମେ ତୁମ ଦରଖାସ୍ତ ହାକିମଙ୍କ ଜରିଆରେ ନ ପଠାଇ ବାଲା ବାଲା ରଜାଙ୍କ ଛାମୁକୁ ପଠାଇ ଦିଅ ।)

ବାଲାମଣି—ସଂ. ବି(୭ମୀ ତତ୍)—ଶ୍ରେଷ୍ଠା ସ୍ତ୍ରୀ—Excellent woman. Bālāmani (ବାଲାରତ୍ନ—ଅନ୍ୟରୂପ)

ବାଲାରୁଣ—ସଂ. ବି—୧ । ( କର୍ମଧା; ବାଲ+ଅରୁଣ )—ଉଦୟମାନ Bālāruna ସୂର୍ଯ୍ୟ; ନବୋଦିତ ସୂର୍ଯ୍ୟ—1. Newly risen (ବାଲାର୍କ—ଅନ୍ୟରୂପ) sun; rising sun. ୨ । (ମ. ଘ. ଗୋ) କନ୍ୟାରାଶିରେ ଅବସ୍ଥିତ ସୂର୍ଯ୍ୟ—2. The sun while in the sign of Virgo.

ବାଲାଷ୍ଟ(ସ୍)—ବୈଦେ. ବି. ( ଇଂ. ବାଲାଷ୍ଟ )— Bālāsht(s) ୧ । ଖାଲି ଜାହାଜର ଭାରକେନ୍ଦ୍ର ଠିକ୍ ରଖିବା ବାଲାଷ୍ଟ ପାଇଁ ସେଥିରେ ଲଦାଯିବା ପଥର, ଇଟା, ବାଲି ଆଦି— बालिस 1. Ballast; loads of stone etc. put in an empty ship to keep it steady.

3. To locate a thing with the help of [ବାସନା ଠାବ୍ର(ରେ)ରବା —ଅନ୍ୟରୂପ] the scent it emits.

**ବାସଣୀ**—ଦେ. ବି—ଭୋଜନ ପାତ୍ର ଚେଙ୍କସପାତ୍ର—
Bāsani̇ **বাসন বাসন** A plate for eating; utensils.
ଉତ୍ତମ ବାସଣୀରେ ହୋଇଛ ପରପୂର୍ଣ୍ଣ
ଅଭ ସେପର୍ କାହିଁ ଶୁଣି ନାହିଁ କର୍ଣ୍ଣ । କୃଷ୍ଣସିଂହ. ମହାଭାରତ: ଅଦ ।

**ବାସନ୍ତ**—ସ. ବଣ. (ବସନ୍ତ+ସମ୍ବନ୍ଧାର୍ଥେ. ଅ)—୧ । ବସନ୍ତ ଋତୁ-
Bāsanta ସମ୍ବନ୍ଧୀୟ—1. Vernal; relating to the
(ବାସନ୍ତୀ—ସ୍ତ୍ରୀ) spring season. ୨ । ବସନ୍ତ ଋତୁରେ
କରାଯିବା—2. Performed during the spring.
ବି.—୧ । କୋକିଳ—1. The cuckoo. ୨ । ମଳୟ
ପବନ—2. The spring-breezee; south breeze;
breeze. ୩ । ମଦନ ବୃକ୍ଷ; ମଦଣ ଗଛ—3
Randia Longispina; Vangoria Spinosa.
୪ । ଉଷ୍ଟ୍ର—4. Camel. ୫ । ମୁଗ—5. Mung
pulse.

**ବାସନ୍ତି**—ଦେ. ବଣ—୧ । ମନୋମତ—
Bāsanti 1. Selected; choice
୨ । ଭଲ ପାଉଥିବା; ସ୍ନେହ କରୁଥିବା—2. Loving.
ବାସନ୍ତି ଅଳ ବାସନ୍ତି ଅଳପର ଗୁଞ୍ଜିବ ତୋଳ
ଉକ୍ତ. କୋଟବ୍ରହ୍ମାଣ୍ଡସୁନ୍ଦରୀ ।
ପ୍ରାଦେ. (ଗଡ଼ଜାତ) ବି—ବାସନାଯୁକ୍ତ ଔଷଧରେ ବ୍ୟବହୃତ
ବନ୍ୟ ଗୁଳ୍ମ ବିଶେଷ—A kind of shrub used in
scenting medicines.

**ବାସନ୍ତିକ**—ସ. ବଣ—(ବସନ୍ତ+ସମ୍ବନ୍ଧାର୍ଥେ. ଇକ)—୧ । ବସନ୍ତ-
Bāsantika କାଳୀନ—1. Vernal ୨ । ବସନ୍ତ ସମୟୋଦ୍ଭୂତ
2. Produced during the spring.
ବି.—୧ । ବିଦୂଷକ—1. A jester. ୨ । ନଟ—2. An
actor; a dancer.

**ବାସନ୍ତିକ ଦୁର୍ଗୋତ୍ସବ**—ସ. ବି—ଚୈତ୍ର ଶୁକ୍ଳ ପ୍ରତିପଦ୍ ଠାରୁ ଅଦ୍ୟ
Bāsantika durgotsaba କର ନବମୀ ପର୍ଯ୍ୟନ୍ତ କରାଯିବା
ଦୁର୍ଗାପୂଜା ଉତ୍ସବ—Worship of Goddess Durgā
performed during the spring season and
beginning from the first to the 9th day
of the bright fortnight of the month of
Chaitra.

**ବାସନ୍ତୀ**—ସ. ବଣ. ସ୍ତ୍ରୀ—(ବାସନ୍ତ+ଈ)—ବସନ୍ତକାଳୀନ—
Bāsanti Vernal
ବି.—୧ । ନବ ମାଳକା; କଅଳା ଫୁଲ—1. Jasminum.
Zambac. ୨ । ମାଧବୀ ଲତା—2. A flowering
creeper; Hyptaga Madablata.
[ଦ୍ର—ଏହା ବସନ୍ତ କାଳରେ ଫୁଟେ ।]
୩ । ମଦନୋତ୍ସବ—3. A festival in honour of
God Cupid held during the spring. ୪ ।
ଦୁର୍ଗା—4. Goddess Durgā. ୫ । କୃଷ୍ଣମୁଦ୍ଗ; କଳା-
ମୁଗ—5. A kind of pulse; Phasiolus Mung.
୬ । ନାଲି ଓ ହଳଦିଆ ମିଶା ରଙ୍ଗ; ନାରଙ୍ଗୀ ରଙ୍ଗ—
6. Reddish yellow colour. ୭ । ଚତୁ-
ର୍ଦ୍ଦଶାକ୍ଷର ଛନ୍ଦୋବିଶେଷ—7. A metre of 14
syllables.
ଦେ. ବି—ବସନ୍ତକାଳୀନ ଫୁଲ—
Flowers of the spring season.
ବାସନ୍ତୀର ପ୍ରକଟତ ବାସ
ବାସ ମଧ୍ୟେ ନ ହରଇ ବାସ । ଉତ୍ତ. ପ୍ରେମସୁଧାନିଧି ।

**ବାସନ୍ତୀ ପଞ୍ଚମୀ**—ସ. ବି—ବସନ୍ତ ପଞ୍ଚମୀ (ଦେଖ)
Bāsanti̇ pañchami̇ Basanta pañchami̇ (See).

**ବାସନ୍ତୀ ପୂଜା**—ସ. ବି—ବସନ୍ତକାଳୀନ ( ଚୈତ୍ରମାସରେ ଅନୁଷ୍ଠିତ )
Bāsanti̇ pūjā ଦୁର୍ଗାପୂଜା—The worship of Durgā
during the spring.

**ବାସନ୍ଦ**—ଦେ. ବି—(ସ. ବର୍ଜ୍ ଧାତୁ=ପୃଥକ୍ କରିବା)—୧ । ମନା;
Bāsanda ନିଷେଧ—1. Prevention; forbidding.
ଟୋକୁ ନଥା ପାଣି ଧୋବା ଭଣ୍ଡାରୀ ସବୁ ବାସନ୍ଦ—
ଫକୀରମୋହନ. ଗଳ୍ପସ୍ୱଳ୍ପ ।
**অলগ** ୨ । ଜାତିରୁ କିଛିକାଳ ପାଇଁ ଅଟକ କରିବା; ସମାଜ
আটক ଚ୍ୟୁତ—2. Temporary excommunication.
୩ । ପ୍ରଭେଦ; ବାରଣ—3. Distinction.
ବଣ—ଜାତିଚ୍ୟୁତ—Excommunicated.

**ବାସନ୍ଦ କରିବା**—ଦେ. କ୍ରି—୧ । ଜାତିରୁ ଅଟକ କରିବା—1. To
Bāsanda karibā excommunicate. ୨ । କୌଣସି ସ୍ଥାନକୁ
ବାସନ୍ଦିବା } ଅନ୍ୟରୂପ ଆସିବାକୁ ମନା କରିବା—2. To
ବାସେନ୍ଦିବା } forbid a person from going
**অলগ করনা** একঘরে করা somewhere.

**ବାସ ପଖାଳ**—ଦେ. ବି—ଲେମ୍ବୁ କା ଟେଭ୍ରି ପତ୍ର ଆଦି ଦିଆଯାଇ ସୁବାସିତ
Bāsa pakhāla ହୋଇଥିବା ପଖାଳ—Watered stale
rice which is perfumed by adding scented
leaves.

**ବାସପୁଷ୍ପା**—ସ. ବି—ହାଲିମ (ଦେଖ)
Bāsapushpā Hālima (See).

**ବାସ ଫୁଲ**—ପ୍ରାଦେ (ଗଡ଼ଜାତ) ବି—ଦେବୀଙ୍କ ନିକଟରେ ତାନ୍ତ୍ରିକ
Bāsa phula ପୂଜାବେଳେ ନୈବେଦ୍ୟରୂପେ ବ୍ୟବହୃତ ମଦ୍ୟ—
Wine used as an offering before a Goddess
during of tantric worship.
ଦେ. ବି—ଏକ ପ୍ରକାର ସରୁ ସୁବାସଯୁକ୍ତ ଧାନ୍ୟ —
A species of paddy emiting sweet smell.

**ବାସବ**—ସ. ବି. ପୁଂ—(ବସୁ=ଧନ+ଅ; ଯେ ଧନ ବିଶିଷ୍ଟ; ଅଥବା ବସ
Bāsaba ଧାତୁ=ବାସ କରିବା+ଅ; ଯେ ସ୍ୱର୍ଗରେ ବାସ କରନ୍ତି)-
(ବାସବୀ—ସ୍ତ୍ରୀ) ୧ । ଇନ୍ଦ୍ର; ସୁରରାଜ; ଦେବରାଜ—
1. Indra; the president of the assembly
of the gods in heaven. ୨ । ଧନିଷ୍ଠା ନକ୍ଷତ୍ର-
2. The 23rd asterism.

**ବାସବ ଆୟୁଧ**—ଦେ. ବି—(ସ. ବାସବାୟୁଧ)—ଇନ୍ଦ୍ରଙ୍କ ଅସ୍ତ୍ର; ବଜ୍ର—
Bāsaba āyudha Thunder.
ବାସବ ଅୟୁଧ ମୋଳିରେ ନ ପଡ଼େ
ପୋଡ଼ ନ ଯାଉ କଣ୍ଠା ପ୍ରବାସ । ଉଦ୍ଧୃ: ପ୍ରେମସୁଧାନିଧି ।

**ବାସବ ଦତ୍ତା**—ସ ବି. ସ୍ତ୍ରୀ—୧ । କବି ସୁବନ୍ଧୁ ରଚିତ ସଂସ୍କୃତ ଗଦ୍ୟ
Bāsaba dattā କାବ୍ୟର ନାୟିକା—1 The name of the heroine of a Sanscrit novel composed by Subandhu. ୨ । କବି ସୁବନ୍ଧୁ ରଚିତ ସଂସ୍କୃତ ଗଦ୍ୟ କାବ୍ୟ—2. The title of a Sanscrit novel by poet Subandhu.

**ବାସ ବାସ**—ଦେ. ବି—୧ । ତମ୍ବୁ—
Bāsa bāsa Tent.
ନବ ପ୍ରକାଶ କାଶ କୁଟକ ବାସ ବାସ ପରକାଶ ସଦୃଶ ଦୃଶ ।
ଉଦ୍ଧୃ. ରସିକହାରାବଳୀ ।
୨ । ସୁବାସ ସ୍ଥାନ—2. Sweet-smelling place.
ବାସବାସ ବ ରଙ୍ଗରୁ ରଙ୍ଗ ଉଚ୍ଛେ ଅଳ ଯେ—
ଉଦ୍ଧୃ. ବୈଦେହୀଶବିଳାସ ।

**ବାସବୀ**—ସ. ବି. ସ୍ତ୍ରୀ (ବାସବ+ଈ)—ଇନ୍ଦ୍ରାଣୀ; ଶଚୀ—1. The
Bāsabi queen of Indra. ୨ । ସତ୍ୟବତୀ; ବ୍ୟାସଜନନୀ—2. The mother of sage Byāsa.

**ବାସ ଯୋଗ**—ସ. ବି—( ବାସ=ସୁଗନ୍ଧ+ଯୋଗ=ମିଶ୍ରଣ )—
Bāsa joga ୧ । ସୁଗନ୍ଧିଚୂର୍ଣ୍ଣ—1. Scented powder. ୨ । ଫଗୁ ; ଅବିର—2. Coloured red powder used in sprinkling in sport during the Holi festival. ୩ । (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ) ବାସ କରିବାର ଅବଶ୍ୟମ୍ଭାବୀ ଘଟଣା—3. A concatenation of circumstances leading to one living in 'Bana' or kārā etc.
(ଯଥା—ରାମଚନ୍ଦ୍ରଙ୍କୁ ବନବାସ ଯୋଗ ଥିଲା ।)

**ବାସ ଯୋଗ୍ୟ**—ସ. ବିଣ—( ୬ଷ୍ଠୀ ତତ୍; ବାସ+ଯୋଗ୍ୟ )—
Bāsa jogya ବାସୋପଯୋଗୀ; ବାସ କରିବା ପାଇଁ ଉପଯୁକ୍ତ (ସ୍ଥାନ) —Habitable; fit for living; fit for occupation.

**ବାସର**—ସ. ବି—(ବସ୍ ଧାତୁ ଣିଚ୍=ବାସ କରାଇବା +କର୍ତ୍ତୃ. ଅର)—
Bāsara ୧ । ଦିବସ; ସପ୍ତାହର ଦିନ—1. Day; week-day. ୨ । (ବସ ଧାତୁ+ଅଧି. ଅର) ଗୃହ—2 House. ୩ । ମଧୁ ଶଯ୍ୟା—3. The bed on which the newly married couple sleep during the first few nights; the bed of the honey-moon. ୪ । ନାଗବିଶେଷ—4. Name of a serpent.

**ବାସର ଘର**—ଦେ. ବି—( ସ. ବିବାହ ବାସର )—୧ । ବାସର ୩
Bāsara ghara (ଦେଖ)—1. Bāsara 3 (See)
**कोहबरघर** ୨ । ମଧୁଶଯ୍ୟାର ଗୃହ—2. The room in which
**বাসরঘর** the newly married couple pass the honey moon.

[ ଦ୍ର—ବଙ୍ଗୀୟ ସମାଜରେ ବରକନ୍ୟାଙ୍କର ବାସର ଘରରେ ମିଳନ ଉପଲକ୍ଷରେ କନ୍ୟାର ସହଚରୀମାନେ ବରଙ୍କ ସଙ୍ଗେ ନାନା ଆମୋଦ ଓ ଥଟ୍ଟା ପରିହାସ କରିବାର ପ୍ରଥା ଥିଲେ । ]

**ବାସର ମୁଖ**—ସ. ବି—(୬ଷ୍ଠୀ ତତ୍)—ସକାଳ—
Bāsara mukha Morning.
ବାସର ମୁଖେ ସନ୍ଧ୍ୟାରେ ଗ୍ରମି ଦୁଃଖେ ଦେଖନ୍ତି ସେ ଲୁଚ ।
ଉଦ୍ଧୃ. ବୈଦେହୀଶବିଳାସ ।

**ବାସ ରହିତ**—ସ. ବିଣ—(୩ୟା ତତ୍)—୧ । ଗୃହହୀନ—1. Home
Bāsa rahita less. ୨ । ଗନ୍ଧହୀନ—2 Smell-less. ୩ । (ବାସହୀନ—ଅନ୍ୟରୂପ) ବସ୍ତ୍ରହୀନ—3. Clothless. ୪ । ନଗ୍ନ—3. Naked.

**ବାସରାନ୍ତ**—ସଂ. ବି—(୬ଷ୍ଠୀ ତତ୍)—ସନ୍ଧ୍ୟା—
Bāsarānta Evening.
ବିଣ—ସନ୍ଧ୍ୟାକାଳୀନ—Happening in the evening.
ବାସରାନ୍ତ ନର ବୁଦ୍ଧି ଲ ସମାନ ଲଭ୍ୟକ ସେ ରଣପ୍ରତ—
ଉଦ୍ଧୃ. ବୈଦେହୀଶବିଳାସ ।

**ବାସ ସମ୍ବିଧାନ**—ସ. ବି (୬ଷ୍ଠୀ ତତ୍)—୧ । ବସ୍ତ୍ର ନିର୍ମାଣ; ଲୁଗା
Bāsa sambidhāna ବୁଣିବା—1. Manufacture of cloth. ୨ । ଆବାସ ନିର୍ମାଣ—2. Building of a house. ୩ । ଗୃହପ୍ରତିଷ୍ଠା—3. Consecration or formal opening of a house.

**ବାସାଗାର**—ସ. ବି (୬ଷ୍ଠୀ ତତ୍)—୧ । ବାସଗୃହ—
Bāsāgāra 1. Dwelling house.
୨ । ଶୟନାଗାର—2. Bed room.

**ବାସାଙ୍ଗ**—ଦେ. ବି—ବାସ; ସୌରଭ—
Bāsānga Scent; smell.
ବାସାଙ୍ଗେ ଇଣେ ପାଇକ ଇବିକୁ
ବୋଲିବ ଯୋଜନଗନ୍ଧା ହୋଇ—ଉଦ୍ଧୃ. ବୈଦେହୀଶବିଳାସ ।

**ବାସାଞ୍ଚଳ**—ସ. ବି (୬ଷ୍ଠୀ ତତ୍)—୧ । ପିନ୍ଧା ବସ୍ତ୍ରର କାନ—
Bāsānchala 1. The ends of a cloth.
ବାସାଞ୍ଚଳେ ଅଶ୍ରୁ ପୋଛି ଶ୍ରୀରାମ—ଉଦ୍ଧୃ. ବୈଦେହୀଶବିଳାସ ।
୨ । କରପୃଷ୍ଠ; ପାପୁଲି—9. The back of the palm.

**ବାସାରିଷ୍ଟ**—ସ. ବି—ବାସଙ୍ଗପତ୍ର ଓ ଛେଲି ଆଦିରୁ ବୈଜ୍ଞାନିକ ପ୍ରକ୍ରିୟା-
Bāsārishta ଦ୍ୱାରା କରାଯିବା ଅର୍କ—Essence extracted from Bāsanga leaves and bark.
[ ଦ୍ର—ଏହା କାଶ ଓ ଶ୍ୱାସର ଔଷଧରୂପେ ବ୍ୟବହୃତ ହୁଏ । ]

**ବାସାର୍ହ**—ସ. ବିଣ. ( ୬ଷ୍ଠୀ ତତ୍; ବାସ+ଅର୍ହ=ଉପଯୁକ୍ତ )—ବାସ
Bāsārha କରିବାର ଉପଯୁକ୍ତ; ବାସୋପଯୋଗୀ —Habitable.

**ବାସି**—ସ. ବି. (ବସ୍ ଧାତୁ=ଛେଦନ କରିବା + ଇ)—କୁଠାରବିଶେଷ;
Bāsi ବାଇସି—Carpenter's adze.
(ସନ୍ଧି—ବିପର୍ଯ୍ୟୟ) ଦେ. ବିଣ. (ସ ପର୍ଯ୍ୟୁଷିତ, ଅବଶିଷ୍ଟ, ବାସିତ)—
**बासी** ୧ । ପର୍ଯ୍ୟୁଷିତ; ଯହା ଆଜିର ନୁହେ; ଯାହା ଟଟକା
**বাসী** ନୁହେ—1. Stale.
ଯା ହେଉଁ ସ୍ୱହାସୀ ନୁହଇ ବାସି କୁସୁମମାଳା ପ୍ରକାରେ—
କବିସୂର୍ଯ୍ୟ, ମଙ୍ଗୀତ ।

୨ । ଶୁଖିଲା ପଡ଼ିଥିବା—2. Withered.

ବଳଣ୍ଡର ଦେବେ କ ସେ ଅଳ
ଶରଭେ ମଜଳ ପୃଷ୍ଠ ବାସି ହେବାପାଏ—ରାଧାନାଥ, ମହାଯାତ୍ରା ।

୩ । ପୁରାତନ—3. Old. ୪ । ଗତ କାଲିରୁ ଅବଶିଷ୍ଟ—4. Remaining from the previous day.

ସେ ବାସି ହେଲା ନ ଗୁଣାପାରି
ତାହୁଁ ତାଳର ଦେଖେ ଅଣି—ଭୂପତି ପ୍ରେମପଞ୍ଚାମୃତ ।

୫ । ପରବର୍ତ୍ତୀ ( ଦିବସ )—5. Next ( day ).

୬ । (ସଂ. ବାସିତ) ଧୋବାଙ୍କ ପରିଷ୍କୃତ (ଲୁଗା)—6. Well cleansed and washed (cloth).

**दुसरेदिन** ବ—ପରବର୍ତ୍ତୀ ଦିବସ—Next eay.

बासि [ ଦ୍ର—ଏହା ଅନ୍ୟ କେତେକ ଶବ୍ଦ ପରେ ଲାଗେ, ଯଥା—ବବାହ ବାସି, ଯାତ୍ରା ବାସି; ପ୍ରତେଇ ବାସି ଇତ୍ୟାଦି । ]

**ବାସି ଅଇଁଠା**—ଦେ. ବ—କାଲି ଖିଆ ଯାଇଥିବା ଭୋଜନ ସ୍ଥାନରେ Bāsi aiṅṭhā ପଡ଼ିଥିବା ଉଚ୍ଛିଷ୍ଟ ଦ୍ରବ୍ୟ ଓ ବାସନ ଆଦି—( ବାସି ଶବ୍ଦ ଦ୍ର—ଅନ୍ୟରୂପ ) Leavings of yesterday's **बासीजुठ** food and plates uncleansed since बासिएँठा yesterday.

**ବାସି ଅରଡ଼ତ**—ଦେ. ବ—ଶେଯରୁ ଉଠି ଯେଉଁସବୁ ଗୃହକର୍ମ କରାଯାଏ—Bāsi ārḍati Menial works of the household, such as cleansing, sweeping, scouring etc, which are done first early in the morning.
ବାସି ପାଇଟି } ଅନ୍ୟରୂପ
ବାସି କାମ }
**सबेरका काम**
**बासी**पाट

ସାର ବାସିକାମ ସାର ଘାଞ୍ଜ ନିଜ ବଧୂମାନେ ସ୍ନାନେ—
ନନ୍ଦକିଶୋର, ଦର୍ପଦଳଣୀ ।

**ବାସିକ**—ସଂ. ବ. ( ବସ+ଇକ )—ଚର୍ବି—Bāsika Fat.

**ବାସି କରିବା**—ଦେ. କ୍ରି—୧ । କୌଣସି ସଦ୍ୟ ପଦାର୍ଥକୁ ବା ଖାଦ୍ୟକୁ Bāsi karibā ବା ଶବକୁ ରହିଁଅବଦ୍ଧ ପର୍ଯ୍ୟନ୍ତ ରଖିବା—**बासी करना** 1. To allow any fresh thing or food or बासीकरा human corpse to become stale.

୨ । (ରଜକ) ଲୁଗାକୁ ବାସି ଧୋଇ କରି କାଚିବା—2. To cleanse or wash the cloth well.

**ବାସି ଖିରିପିଠା**—ଦେ. ବ—୧ । ବିବାହ ଆଦି ଉତ୍ସବର ବାସି ବା Bāsi khiripiṭhā ପରବର୍ତ୍ତୀ ଦିବସରେ ଗୃହସ୍ୱାମୀଙ୍କର ବନ୍ଧୁବାନ୍ଧବମାନଙ୍କୁ ଦେବା ଭୋଜି—1. Feast **बासी खीरपूरी** given to friends on the next day of a family festival. ୨ । ଉତ୍ସବାଦରେ ପ୍ରସ୍ତୁତ ମିଷ୍ଟାନ୍ନାଦି ମଧ୍ୟରୁ ପରଦିନକୁ ବଳି ପଡ଼ିଥିବା ପଦାର୍ଥ—2. Food which remains over to the next day of a festival. ୩ । ପର୍ଯ୍ୟୁଷିତ ମିଷ୍ଟାନ୍ନାଦି—3. Stale sweetmeat.

**ବାସି ଘର**—ଦେ. ବ—ଯେଉଁ ଘର ସକାଳୁ ଓଳଥା ବା ଲିପା ପୋଛା Bāsi ghara ହୋଇ ନ ଥାଏ—A house wich has not **बासीघर** been cleansed or swept in the morning.

**ବାସି ଚନ୍ଦନ**—ଦେ. ବ—୧ । ପୂର୍ବ ଦିବସରୁ ଘୋରା ଯାଇଥିବା ଚନ୍ଦନ—Bāsi chandana 1. Sandal paste prepared on the **बासी चन्दन** सुवासचन्दन previous day.

୨ । ( ସଂ ବାସଚନ୍ଦନ ) ଅଗୁରୁ ବା ଉତ୍କୃଷ୍ଟ ଚନ୍ଦନ—2. Excellent or genuine sandal wood.

**ବାସିତ**—ସଂ. ବଣ. ( ବାସ୍ ଧାତୁ ଣିଚ ବାସି ଧାତୁ+କର୍ମ. ତ )—Bāsita ୧ । ସୁରଭିକୃତ; ସୁଗନ୍ଧୀକୃତ—1. Perfumed.

( ବାସିତା—ସ୍ତ୍ରୀ ) ୨ । ଖ୍ୟାତ—2. Famous; renowned.

୩ । ଧୂପିତ—3. Fumed. ୪ । (ବସ୍ ଧାତୁ=ଆଚ୍ଛାଦନ କରିବା+କର୍ମ. ତ )—ବସ୍ତ୍ରାଚ୍ଛାଦିତ—4. Clothed; dressed. ୫ । ଆର୍ଦ୍ରୀକୃତ—5. Moistened.

୬ । ପର୍ଯ୍ୟୁଷିତ—6. Stale.

୭ । ଅଧ୍ୟୁଷିତ; ବସବାସ କରାଯାଇଥିବା—7. Inhabited

୮ । ପୁରୁଣା; ପୁରାତନ—8. Old.

ବ. (ବାସ୍ ଧାତୁ. ଶବ୍ଦ କରିବା+ଭାବ. ତ)—ପକ୍ଷୀର ଶବ୍ଦ—Note of a bird.

**ବାସିତା**—ସଂ. ବ. ସ୍ତ୍ରୀ. ( ବାସିତ+ଆ )—୧ । କରିଣୀ—1. A Bāsitā female elephant. ୨ । ନାରୀ; ସ୍ତ୍ରୀ—2. Woman.

ଦେ. ବଣ. ସ୍ତ୍ରୀ—୧ । ସୌରଭାନ୍ୱିତା—1. Sweet smelling.

୨ । ବସ୍ତ୍ରାଚ୍ଛାଦିତା—2. Covered with clothes.

ଦେ. ବ. ସ୍ତ୍ରୀ - ଗୃହିଣୀ—3. Mistress of a house.

ବାସିତା ମୀତାଙ୍କୁ ଦେଲ ହଁ କାଳ ବଶନ
ବଦରର ବନ୍ଦରେ କଳକଣ୍ଠ ପୁନ—ଭଞ୍ଜ, ବୈଦେହୀଶବିଳାସ ।

**ବାସି ଥକା**—ଦେ. ବ—୧ । ସ୍ଥାନାନ୍ତରକୁ ଯାଇ ସେଠାରେ ଏକ Bāsi thakā ଦିନରୁ ଅଧିକ ରହିଯିବା—1. Staying at a **रातगमाना** place for more than a day.

ଦିନେ ମଥୁର ନ ରହେ ବାସି ଥକା । ଦାଶରଥ ତୁଳସୀହାର ।

୨ । ବାସି ଅଡ଼ତି—2. Menial household duties performable early in the morning.

୩ । କାଲି କରି ଯିବା କାର୍ଯ୍ୟ ଅଳ୍ପକୁ ବାକି ରଖିଥିବା—3. Leaving yesterday's domestic menial duties unperformed.

**ବାସିଥକା ରଖିବା**—ଦେ. କ୍ରି—ଅଳ୍ପର ଗୃହକାର୍ଯ୍ୟ ଅଳ୍ପ ଶେଷ ନ Bāsithakā rakhibā କରି କାଲିକୁ ପକାଇ ରଖିବା—To काज बाकीराखा allow the daily menial household duties to remain unperformed till the next day.

**ବାସିଥକା ରହିବା**—ଦେ. କ୍ରି—ସ୍ଥାନାନ୍ତରକୁ ଯାଇ ସେଠାରୁ ସେହି ଦିନ Bāsithakā rahibā ଘରକୁ ଫେରି ନ ଆସି ରହିର ବାସି ଦିନ ପର୍ଯ୍ୟନ୍ତ ରହିବା—To stay abroad for more **रातगमाना** than a day.

ଘରେ ମୁଁ ରହିବ ଏକା ।
ବଳଦ ଗୋରୁଣି କିଏ ମୋହିଁବ ନ ରହିବ ବାସି ଥକା । ଚଉଦଘୋଡ଼ା ଗୀତ.

ବାସି ଦୁଧ—ଦେ. ବି—ଗତକାଲି ବା ପୂର୍ବାହ୍ଣରେ ଦୋହନ କରାଯାଇଥିବା ଦୁଧ—Milk drawn from the cow yesterday or in the forenoon.
Bāsi dudha
(ସଜଦୁଧ—ବିପରୀତ)

ବାସିଧୋବ—ଦେ. ବିଣ—୧ । ଧୋବାମାନଙ୍କର ଏକଦିନରୁ ବେଶି ସମୟରେ ଲୁଗା ପରିଷ୍କାର କରିବା ବିଧି—1. The process of washing cloth which takes more than one day.
Bāsidhoba
বাসিধোপ
बासीधोब

[ ଦ୍ର—ପୂର୍ବେ ରଜକ ବସ୍ତ୍ରକୁ ପରିଷ୍କୃତରୂପେ ଧୌତ କରି ତାହାକୁ ସୁବାସିତ କରିବାର ବିଧି ଥିଲା । ଏଥିଯୋଗୁଁ 'ସୁବାସିତ'ରୁ 'ବାସି କରିବା' ଓ 'ବାସିଧୋବ' ଶବ୍ଦର ବ୍ୟବହାର ଭାଷାରେ ରହିଅଛି । ପୂର୍ବେ ଲୁଗାକୁ କାଚି ସଫା କରି ତାହାକୁ ନେଳଆଦି ରଙ୍ଗ ଦ୍ୱାରା ରଞ୍ଜିତ କରାଯାଉଥିବା ବିଧିରୁ 'ରଜକ' ଶବ୍ଦର ବ୍ୟବହାର ରହିଅଛି ।

ଧୋବାମାନେ ଯେଉଁ ମଇଲା ଲୁଗା ନେଇ କାଚକରି ଏକାଦିନକେ ଫେରାଇ ଦିଅନ୍ତି ତାହାକୁ 'ସଜଧୋବ' ବୋଲଯାଏ ଓ ଯାହା ଏକରୁ ଅଧିକ ଦିନରେ ଦିଅନ୍ତି ତାକୁ 'ବାସିଧୋବ' ବୋଲଯାଏ; ଫଳତଃ 'ସଜଧୋବ' ଲୁଗା ଅପେକ୍ଷା 'ବାସିଧୋବ' ଲୁଗା ବେଶି ଶୁଭ୍ର ଓ ସୁପରିଷ୍କୃତ ହୁଏ । ]

୨ । ଏକଦିନରୁ ଅଧିକ କାଳ ପରିଶ୍ରମ କରାଯାଇ ସୁପରିଷ୍କୃତ (ଲୁଗା)—2. Well cleansed (cloth).

ବାସିଧୋବ ପକା(କେ)ଇବା—ଦେ. କ୍ରି.—ବାସିଧୋବ କରିବା ନିମନ୍ତେ ଧୋବାକୁ ଲୁଗା ଦେବା—To give cloth to the washerman for being well cleansed and returned after a day.
Bāsidhoba pakā(ke)ibā
(ବାସି ପକାଇବା—ଅନ୍ୟରୂପ)
बासीधोबकेलियेदेना

ବାସିଧୋବ ପଡ଼ିବା—ଦେ. କ୍ରି—(ବସ୍ତ୍ର) ବାସିଧୋବ କରାଯିବା ନିମନ୍ତେ ଧୋବାଘରେ ଦିଆଯିବା—(cloth) To be given to the washerman to be well cleansed and returned after a day or more.
Bāsidhoba pa<u>r</u>dibā
(ବାସିପଡ଼ିବା—ଅନ୍ୟରୂପ)
बासीधोबकेलियेदियाहोना

ବାସି ନିଶା—ଦେ. ବି—ପୂର୍ବଦିନ ଖାଇଥିବା ମାଦକ ଦ୍ରବ୍ୟର ପରଦିନ ପର୍ଯ୍ୟନ୍ତ ଅନୁଭୂତ ହେଉଥିବା ନିଶା ବା ମାଦକତା—The remaining or after effect of yesterday's intoxicating thing.
Bāsi nisā
বাসি নেশা बासीनिशा

ବାସିନୀ—ଦେ. ବିଣ—ସୁଗନ୍ଧଯୁକ୍ତ—Scented; sweet-smelling.
Bāsini

ବିମଳ ଜଳରେ ନେଇ ନେଇ ସୁବାସିନି
ବାସିନୀ ସୁଜାତ ଜାତ ସ୍ୱଭବ ଭବନୀ । ଭକ୍ତ. ବୈଦେହୀଶବିଳାସ,

ବାସିନ୍ଦା—ବୈଦେ. ବି (ଫା)—୧ । ଅଧିବାସୀ—1. Inhabitant. ୨ । ନିବାସୀ—2. Resident. ୩ । କୌଣସି ସ୍ଥାନର ସ୍ଥାୟୀ ଅଧିବାସୀ—3. Permanent resident.
Bāsindā
বাসিন্দা बासिन्दा

ବାସି ପଖାଳ—ଦେ. ବି—ଏକ ବା ଏକାଧିକ ଦିନ ପୂର୍ବରୁ ରନ୍ଧାହୋଇ ପଖାଳ ଯାଇଥିବା ଭାତ—Boiled rice which has been kept moistened since yesterday or previously.
Bāsi pakhā<u>l</u>a
পান্তাভাত
बासीभात

[ ଦ୍ର—ଯେଉଁ ଦିନ ଭାତ ରନ୍ଧାହୋଇ ଥାଏ ସେହି ଦିନ ତାହା ପଖାଳ କରାଯାଇଥିଲେ ତାକୁ ସଜ ପଖାଳ ବୋଲଯାଏ ଓ ସଜ ପଖାଳ ଏକଦିନରୁ ଅଧିକ ରହିଗଲେ ତାକୁ ବାସି ପଖାଳ ବୋଲଯାଏ । ]

ବାସି ପାଣି—ଦେ. ବି—୧ । ଗତ ଦିବସରୁ ରଖାଯାଇଥିବା ଜଳ—Water kept since yesterday. ୨ । ମଦ—2. Wine; toddy (from its getting formented only when kept to the next day).
Bāsi pā<u>n</u>i
(ବାସିଜଳ—ଅନ୍ୟରୂପ)
বাসিজল बासी पानी

ବାସି ଫୁଲ—ଦେ. ବି—୧ । ଯେଉଁଫୁଲ ପୂର୍ବଦିନରୁ ଫୁଟି ପରଦିନକୁ ରହି ଶୁଖି ଯାଇଥାଏ—1. Withered flower. ୨ । କାଲି ବ୍ୟବହାର କରାଯାଇଥିବା ଫୁଲ—2. Flower which was used yesterday.
Bāsi phula
बासीफूल
বাসীফুল

ବାସିବା—ଦେ. କ୍ରି (ସଂ. ବାସ୍ ଧାତୁ)—୧ । ସୁବାସିତ ହେବା—1. To get scented.
Bāsibā बूदार होना

ନୋହିଲେ କର୍ପୂର ଖାସ ବେନୁସ ବାସେ. କୃଷ୍ଣସିଂହ ମହାଭାରତ, ବନ

୨ । (ଶୁଦ୍ଧବାଚକ) ଗନ୍ଧାଇବା—2. To emit a bad smell.

ବାସି ବିଛଣା—ଦେ· ବି—ଘରେ ବ୍ୟବହୃତ ଯେଉଁ ଶଯ୍ୟା ସକାଳୁ ଉଠା ଯାଇ ନ ଥାଏ—Bed used over night but not wound up in the morning.
Bāsi bichhanā
বাসি বিছানা
बासी बिछौना (ବାସି ଶେଯ—ଅନ୍ୟରୂପ)

ବାସି ବିବାହ—ଦେ. ବି—୧ । ବିବାହର ପରବର୍ତ୍ତୀ ଦିବସ—1. The next day after marriage.
Bāsi bibāha
বাসি বিয়া बयाहका दुसरा रोज

୨ । ବିବାହ ପାଇଁ ନିର୍ଦ୍ଦିଷ୍ଟ ଦିବସରେ ଓ ଲଗ୍ନରେ ସମ୍ପାଦିତ ହୋଇ ନ ପାରି ତହିଁ ପରଦିନ ସକାଳେ ସମ୍ପାଦିତ ହେବା ବିବାହ—2. Marriage rites performed on the next day after the day fixed for marriage (owing to inability of going through all the ceremonies on the fixed day).
ବାହି ବାହା } —ଗ୍ରାମ୍ୟରୂପ
ବାସି ଘଅ }

[ ଦ୍ର—କରଣ ଓ କ୍ଷତ୍ରିୟ ସମାଜରେ ବର ଯାଇ କନ୍ୟାର ଘରେ ପହଞ୍ଚିବା ପରେ ଅନୁପୂର୍ବିକ ବିଧି ଓ ତର୍କବିତର୍କାଦି ସରୁ ସରୁ ରାତି ପାହିଯାଏ; ଫଳତଃ ତହିଁ ଆର ଦିନ ହାତଗଣ୍ଠି ଆଦି କେତେକ ବିଧି ସାଧିତ ହୁଏ । ]

ବାସି ଭାତ—ଦେ.ବି.—ପୂର୍ବଦିନ ରନ୍ଧା ଯାଇଥିବା ଭାତ; ପର୍ଯ୍ୟୁଷିତାନ୍ନ—Yesterday's boiled rice.
Bāsi bhāta वासि भात বাসী ভাত

ବାସି ମଡ଼ା—ଦେ. ବି—ଯେଉଁ ମୃତ ଦେହ ମରିବା ଦିନ ଗୃହରୁ ଶ୍ମଶାନକୁ ନୀତ ହୋଇ ନ ଥାଏ—A corpse not removed to the cremation or burial ground on the very day of death.
Bāsi mar<u>d</u>ā
(ବାସି ମୁର୍ଦ୍ଦାର—ଅନ୍ୟରୂପ)
বাসী মড়া

**ବାସିମଡ଼ା କରିବା**—ଦେ. କ୍ରି—ମୃତଦେହକୁ ବା ଶବକୁ ମୃତ୍ୟୁ ଦିବସରେ ଶ୍ମଶାନକୁ ନ ନେଇ ଘରେ ପକାଇ ରଖିବା—To allow a corpse to remain in the house till a day after death.
Bāsimarḍā karibā (ବାସିମଡ଼ା ପକାଇବା—ଅନ୍ୟରୂପ) বাসিমড়া করা; বাসিমড়া রাখা **बासीमुर्दा करना**

**ବାସି ମଦୁଆ**—ଦେ. ବିଣ—ପୂର୍ବଦିନ ମଦ ଖାଇଥିବା ଯେଉଁ ବ୍ୟକ୍ତିର ନିଶା ପରଦିନକୁ ସମ୍ପୂର୍ଣ୍ଣରୂପେ ଛାଡ଼ି ନ ଥାଏ—A drunkard still suffering from the effects of yesterday's drink.
Bāsi maduā **बासीमता** বাসী মাতাল

**ବାସି ମୁହଁ**—ଦେ. ବି—ସକାଳୁ ଧୁଆ ହୋଇ ନ ଥିବା ମୁହଁ; ଅଧୁଆ ମୁହଁ—Face not washed early in the morning.
Bāsi muhan̄ বাসিমুখ **बासीमुँह**

**ବାସିମୁହଁରେ ପାଣିଦେବା**—ଦେ. କ୍ରି—୧ । ସକାଳୁ ଉଠି ମୁହଁ ଧୋଇବା—1. To wash the face, the first act in the morning. ୨ । ସକାଳେ ନିଦ ଭାଙ୍ଗିବା ପରେ ମୁହଁ ହାତ ଧୋଇ ଜଳଯୋଗ କରିବା—2 To break one's fast in the morning after washing the face.
Bāsimuhan̄re pāṇidebā বাসিমুখে জল দেওয়া **बासीमुँहमे जलदेना**

**ବାସିଯିବା**—ଦେ. କ୍ରି—୧ । ବାସି ହୋଇଯିବା; ମଳିନ ହେବା—1. To become stale; to wither,
Bāsijibā **बासीहोना**

> କ୍ଷଣେ ଯତନେ କଲେହେଁ ଅପନ୍ତ
> ନ ବାସିଯାଏ କି ଚମ୍ପକ ପୁଷ୍ପ । କବିସୂର୍ଯ୍ୟ. କବିତା ।

୨ । ବାସି ହେବାରୁ ଗନ୍ଧାଇବା—2. To emit a bad smell on becoming stale or on account of being kept long unused.

**ବାସି ରହିବା**—ଦେ. କ୍ରି—୧ । ( କୌଣସି ସଦ୍ୟ ପଦାର୍ଥ ବା ଖାଦ୍ୟ)—ପରଦିନ ପର୍ଯ୍ୟନ୍ତ ବଳି ପଡ଼ିବା—1 (any fresh food) To remain over for the next day
Bāsi rahibā (ବାସି ହେବା—ଅନ୍ୟରୂପ) **बासीरहना** বাকি থাকা

> ବାସି ରହିବାକୁ ନାହିଁ, କି ଭୁଖା ଖାଇବାକୁ ନାହିଁ —ଢଗ

୨ । (ସଦ୍ୟପଦାର୍ଥ) ପର୍ଯ୍ୟୁସିତ ହେବା; ମଉଳିଯିବା—2. To become stale; to wither.

> ସକଫୁଲ ବାସି ହେଲେ ନାହିଁ ମଳାରେ — ଗୀତ ।

**ବାସିଷ୍ଟ**—ସ. ବି—ରୁଧିର; ରକ୍ତ—Blood.
Bāsishṭa

**ବାସି[ଶି]ଷ୍ଠ**—ସଂ. ବିଣ—(ବଶିଷ୍ଠ+ ସମ୍ବନ୍ଧ ବା କୃତ ଅର୍ଥରେ+ଅ)—୧ । ବଶିଷ୍ଠ ଋଷି ସମ୍ବନ୍ଧୀୟ—1. Relating to sage Basishṭha. ୨ । ବଶିଷ୍ଠ ଗୋତ୍ରୀୟ—2. Born in the family of Basishṭha. ୩ । ବଶିଷ୍ଠପ୍ରଣୀତ—3. Made by Basishṭh.
Bāsi(śi)shṭha
ବି—୧ । ବଶିଷ୍ଠ ପ୍ରଣୀତ ଯୋଗଶାସ୍ତ୍ର—1. A book on Joga by Basishṭha. ୨ । ବଶିଷ୍ଠଙ୍କ ପୁତ୍ର—2. Son of Bashishṭha. ୩ । ରୁଧିର; ରକ୍ତ (ହି. ଶ)—3. Blood.

**ବାସିଷ୍ଠ ସିଦ୍ଧାନ୍ତ**—ସଂ. ବି (ନାମ)—ବରାହମିହିରଙ୍କଦ୍ୱାରା ସଙ୍କଳିତ ସିଦ୍ଧାନ୍ତ ଶାସ୍ତ୍ର—An astrological book compiled by Barahamihira.
Bāsishṭha siddhānta

**ବାସି[ଶି]ଷ୍ଠୀ**—ସଂ. ବି—ଗୋମତୀ ନଦୀ—The river Gomatī.
Bāsi(śi)shṭhī

> ବାସିଷ୍ଠୀ ବାଣୀ ସ୍ୱବାସୀ ସଙ୍ଗେ
> ବଢ଼ୌଚି ଜବନ୍ତି କାବେରୀ ଭଙ୍ଗେ—
> ଭଞ୍ଜ. ବୈଦେହୀଶବିଳାସ ।

**ବାସୀ**—ସଂ. ବି. ପୁଂ—(ବସ୍ ଧାତୁ=ବାସ କରିବା+ଇନ୍, ବାସିନ୍ ଶବ୍ଦ ୧ମା. ୧ବ)—ଯେ ବାସ କରେ; ନିବାସୀ—Residing in; resident of; inhabiting.
Bāsī [ବାସିନୀ—ସ୍ତ୍ରୀ]

[ ଦ୍ର—ଏ ଶବ୍ଦର ସ୍ୱତନ୍ତ୍ର ପ୍ରୟୋଗ ନାହିଁ । ଏହା ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ । ଯଥା—କାଶୀବାସୀ, ନଗରବାସୀ, ଶ୍ମଶାନବାସୀ, ଗ୍ରାମବାସୀ, ସ୍ୱର୍ଗବାସୀ, ଇତ୍ୟାଦି । ]

ବି—ବାସି (ଦେଖ)—Bāsi (See ).

**ବାସୁ**—ସଂ. ବି—(ବସ୍ ଧାତୁ=ବାସ କରିବା+ କର୍ତ୍ତୃ. ଉ)—୧ । (ସର୍ବବ୍ୟାପକ) ବିଷ୍ଣୁ—1. Bishṇu. ୨ । ପୁନର୍ବସୁ ନକ୍ଷତ୍ର—2. The 7th asterism in Hindu astronomy. ୩ । ପରମାତ୍ମା—3. The Holy spirit; the Spirit pervading the whole universe.
Bāsu
(ବାସୁଆ—ଅନାଦରାର୍ଥକ) ଦେ. ବି. (ଆଦରାର୍ଥକ) ବାସୁଦେବର ଡାକ ନାମ—Name for calling Bāsudeba.

**ବାସୁଆ ବଳଦ**—ଦେ. ବି—ମହାଦେବଙ୍କ ବାହନ ବୃଷଭ—Popular name of the bull which is said to carry Śiba on its back.
Bāsuā baḷada

**ବାସୁଆ ଭୋଗ**—ପ୍ରାଦେ. ( ବାଲେଶ୍ୱର ) ବି—ଏକ ଜାତୀୟ ସୁଗନ୍ଧ ଯୁକ୍ତ ଧାନ—Name of a sweet-scented specifics of paddy.
Bāsuā bhoga (ବାସୁ ଭୋଗ—ଅନ୍ୟରୂପ)

**ବାସୁକି**—ସଂ. ବି. (ବସୁ=ରତ୍ନ+କ=ମସ୍ତକ+ଇ; ଯାହାର ମୁଣ୍ଡରେ ରତ୍ନ ଅଛି; ନାଗ ଅଦଙ୍କ ମୁଣ୍ଡରୁ ମଣି ବାହାରିବାର ଦେଖାଯାଏ)—ସର୍ପରାଜ—The king of serpents.
Bāsuki (ବାସୁକେୟ—ଅନ୍ୟରୂପ)

[ ଦ୍ର—ପୁରାଣୋକ୍ତ ଅଷ୍ଟ ନାଗ ମଧ୍ୟରେ ଏ ଦ୍ୱିତୀୟ; କଦ୍ରୁଙ୍କ ଗର୍ଭରୁ କଶ୍ୟପ ଋଷିଙ୍କ ଔରସରେ ଏହାଙ୍କର ଜନ୍ମ । ଏ ଫଣା ଦ୍ୱାରା ପୃଥିବୀକୁ ଟେକି ଧରି ଅଛନ୍ତି । ଏହାଙ୍କର ସହସ୍ର ଫଣା ଥିବାର ବର୍ଣ୍ଣିତ ହୋଇଅଛି । ]

**ବାସୁଙ୍ଗା**—ଦେ. ବି. ( ସଂ. ବାସନ=ଆବରଣ )—କଦଳୀ ଗଛର ଶୁଖିଲା ବହିରାବରଣ ବା ବକଳା—Dry rind and branches of plantain tree.
Bāsuṅgā বাসনা **डमखोड**

> ଶିଳରୁ କଦଳୀ ବାସୁଙ୍ଗା ସହିତେ ସ୍ୱମାର ନଥଣ ଥାନ ।
> ଉକାର. ସାଆନ୍ତ୍ର ବାହା ।

ବାସୁଦେବ —ସଂ. ବି. (ବସୁଦେବ + ଅପତ୍ୟାର୍ଥେ ଅ; ବା ବାସୁ=ସର୍ବବ୍ୟାପୀ
Bāsudeba +ଦେବ; ଯେ ସର୍ବତ୍ର ବିଦ୍ୟମାନ ଅଛନ୍ତି)—
ଦେବକୀଙ୍କ ଗର୍ଭରେ ବସୁଦେବଙ୍କ ଔରସରେ ଜାତ ଶ୍ରୀକୃଷ୍ଣ—
Śrīkṛushṇa.
ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—
Name given to males.

ବାସୁଦେବ କବିଚନ୍ଦ୍ର ବଡ଼ ପଣ୍ଡା—ସଂ. ବି—କେନ୍ଦୁଝର ଆନନ୍ଦପୁରର
Bāsudeba kabichandra barḍa panḍā ବଳଭଦ୍ରପୁର
ଶାସନବାସୀ ଜଣେକ ସ୍ୱର୍ଗୀୟ ପଣ୍ଡିତ; [ଏ ସରସ ସଙ୍ଗୀତ
ରଚନାରେ ଓ ପ୍ରାଚୀନ ଓଡ଼ିଆ ଗୀତମାନଙ୍କର ଅର୍ଥ
କରିବାରେ ପଟୁଥିଲେ । ଶ୍ରୀଯୁକ୍ତ କେଶବ ମିଶ୍ର ତାଙ୍କ
ବୈତରଣୀ ପଦ୍ୟର ତୃତୀୟ ସର୍ଗରେ ଏହାଙ୍କ ବର୍ଣ୍ଣନା କରି
ଅଛନ୍ତି]—Name of a late Oriya Pandit of
the Keonjhar State.

ବାସୁଦେବ ରଥ—ଦେ. ବି. (ନାମ) —ଜଣେକ ଉତ୍କଳୀୟ ବ୍ରାହ୍ମଣ—
Bāsudeba ratha Name of a Brāhmaṇa.
[ ଦ୍ର—ଏ ଉତ୍କଳର କେଶରୀବଂଶର ଶେଷ ରାଜା ସୁବର୍ଣ୍ଣ
କେଶରୀଙ୍କର ମନ୍ତ୍ରୀ ଥିଲେ । ପରେ ତାହାଙ୍କ ସଙ୍ଗେ ବିବାଦ
ହେବାରୁ ସେ ଦକ୍ଷିଣ ରାଜ୍ୟକୁ ଯାଇ ଚୋଡ଼ଗଙ୍ଗଙ୍କୁ ଉତ୍କଳ
ସିଂହାସନରେ ବସାଇବାକୁ ଚେଷ୍ଟା କରିଥିଲେ ।
ଏ 'ଗଙ୍ଗାବଂଶାନୁଚରିତ' ନାମରେ ଖଣ୍ଡିଏ ଚମ୍ପୂ କାବ୍ୟ
ସଂସ୍କୃତ ଭାଷାରେ ଲେଖିଥିଲେ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ବାସେଚ୍ଛା—ସଂ. ବି—(କୌଣସି ସ୍ଥାନରେ) ବାସ କରିବାକୁ ଇଚ୍ଛା—
Bāsechchhā Desire to live ( at a place ).

ବାସୋପଯୁକ୍ତ—ସଂ. ବିଣ ( ୬ଷ୍ଠୀ ତତ୍ପୁରୁଷ )—ବାସ କରିବା ନିମନ୍ତେ
Bāsopajukta ଉପଯୁକ୍ତ; ବାସଯୋଗ୍ୟ—Habitable.
( ବାସୋପଯୋଗୀ—ଅନ୍ୟରୂପ )

ବାସ୍ତ—ଦେ. ବି ( ସଂ. ବାସ୍ତୁ )—ନିବାସ—
Bāsta Residence.

ବାସ୍ତବ— ସଂ. ବିଣ ( ବସ୍ତୁ + ସମ୍ବନ୍ଧାର୍ଥେ. ଅ )—୧ । ଯଥାର୍ଥ; ପ୍ରକୃତ;
Bāstaba ଯାହା କାଳ୍ପନିକ ନୁହେଁ—1. Actual; real.
(ଅବାସ୍ତବ—ବିପରୀତ) ୨ । ସାରବାନ୍—2. Substantial.

ବାସ୍ତବନ୍ଧ—ଦେ· ବି—ବାସ୍ତୁବନ୍ଧ ( ଦେଖ )
Bāstabandha Bāstubandha ( See)

ବାସ୍ତବରେ—ଦେ. କ୍ରି. ବିଣ ( ସଂ. ବାସ୍ତବ )—୧ । ପ୍ରକୃତରେ—
Bāstabare 1. Actually. ୨ । ଯଥାର୍ଥରେ—2. Really.
बास्तविक वास्तवमे ୩ । ସତେ—3. Truly.

ବାସ୍ତବିକ—ସଂ· ବି ( ବସ୍ତୁ + ଇକ )—୧ । ନିଶ୍ଚିତ—1. Certain.
Bāstabika ୨ । ଯଥାର୍ଥ—2. Actual. ୩ । ପ୍ରକୃତ—
3. Real. ୪ । ସତ୍ୟଭୂତ—4. True
बास्तविक ଦେ. କ୍ରି. ବିଣ—୧ । ଯଥାର୍ଥରେ—1. Actually.
वास्तविक ୨ । ସତେ; ସତରେ; ପ୍ରକୃତରେ—
2. Truly; really.

ବାସ୍ତବ୍ୟ—ସଂ. ବିଣ ( ବସ୍ ଧାତୁ ଣିଚ୍=ବାସି ଧାତୁ + କର୍ମ. ତବ୍ୟ)—
Bāstabya ୧ । ବାସଯୋଗ୍ୟ —1. Habitable.
୨ । ପ୍ରତିବାସୀ—2. Neighbouring. ୩ । ଅଧିବାସୀ
3. Resident; residing.
ବି.—ଗୃହ—House; residence.
ଦେ. ଅ.—ବସ୍ତୁତଃ; ବାସ୍ତବରେ, ବାସ୍ତବିକ—
Eventually.
ବାସ୍ତବ୍ୟ ଆପଣ ପଣ କେ ଅଛ
ବଇଲେ ପଦାର୍ଥ ନ ଭୁଟେ କଛ । ଉଞ୍ଜ. ବୈଦେହୀଶବିଳାସ ।

ବାସ୍ତା—ପ୍ରାଦେ. (ବସ୍ତର) ବି —ବାଉଁଶ କରଡ଼ି—
Bāstā The young shoot of bamboo.

ବାସ୍ତୁ —ସଂ. ବି. ( ବସ ଧାତୁ + ଅଧିକରଣ; ତୁ )—
Bāstu ୧ । ବାସ; ଗୃହ—1. Residence; house.
୨ । ବାସ ସ୍ଥାନ—2 Place of residence.
୩ । ପୂରୁଷାନୁକ୍ରମରେ ଯେଉଁଠାରେ ବାସ କରାଯାଏ;
ଭିଟା—3. One's ancestral residence.
୪ । ଘର ତଳ; ଗୃହର ସ୍ଥଳୀ; ଯେଉଁ ଜମି ଉପରେ ଘର
ତୋଳାଯାଏ; ଘର ଡିହ—4. The site of a house.
୫ । ଘରବାଡ଼ି; ଗୃହ ଓ ତତ୍ ସଲଗ୍ନ ଭୂମି—
5. Homestead.
୬ । ଗ୍ରାମର ଗୃହସମଷ୍ଟି ଓ ତତ୍ ସଲଗ୍ନ ଭୂମି—
6. The site of a residential village.
୭ । ବଥୁଆ ଶାଗ ( ହରେକୃଷ୍ଣ ଦ୍ରବ୍ୟଗୁଣ )—
7. Chenopodium Album (potherb).

ବାସ୍ତୁକ—ସଂ. ବି. (ବାସ୍ତୁ + କ)—୧ । ବଥୁଆ ଶାଗ—
Bāstuka 1. Chenopodium (pot-herb).
୨ । ପୁନର୍ନବା; ପୁରୁଣୀ ଶାଗ (ହି. ଶବ୍ଦସାଗର)—
2. Hogweed.

ବାସ୍ତୁଦେବ—ସଂ. ବି—ଗୃହସ୍ଥଳୀର ରକ୍ଷକ ଦେବତା—
Bāstudeba The presiding or tetular Deity of
ବାସ୍ତୁ ଦେବତା } ଅନ୍ୟରୂପ a homestead.
ବାସ୍ତୁପ, ବାସ୍ତୁ ପତି }

ବାସ୍ତୁ ପୂଜା—ସଂ. ବି—ନବୀନ ଗୃହ ପ୍ରବେଶ ଉପଲକ୍ଷରେ କରାଯିବା ବାସ୍ତୁ
Bāstu pūjā ଦେବତାଙ୍କ ପୂଜା—Worship of the pre-
(ବାସ୍ତୁଯାଗ—ଅନ୍ୟରୂପ) siding Deity of a homestead
on the occasion of coming to live in a
newly built house.

ବାସ୍ତୁ ବନ୍ଧ—ସଂ. ବି—ଗୃହର ବା ଗ୍ରାମର ସୀମା ନିରୂପକ ବନ୍ଧ ବା ଦଣ୍ଡା—
Bāstu bandha A ridge raised as the boundary-
बास्तिबंध mark of the site of a village or house.

ବାସ୍ତୁ ବିଦ୍ୟା—ସଂ. ବି—ବାସ୍ତୁର ଶୁଭାଶୁଭ ନିର୍ଣ୍ଣାୟକ ଶାସ୍ତ୍ରବିଶେଷ—
Bāstu bidyā A book dealing with the art of
constructing a house, especially the auspicious or inauspicious nature of sites
and the remedies for counteracting evil.

ବାସ୍ତୁ ଭିଟା—ଦେ. ବି. ( ସମାସର ଶବ୍ଦ; ସ. ବାସ୍ତୁ+ଭିତ୍ତି)—
Bāstu bhiṭā ୧ । ଘର ତଳ ଜମି—1. Homestead.
ঘরবাড়ী ୨ । ପୂର୍ବ ପୁରୁଷାଧିକୃତ ଘର ବାଡ଼ି ଜମି—
বাস্তুভিটা 2. Ancestral homestead.

ବାସ୍ତୁରା—ଦେ ବିଣ. ପୁଂ ( ଗାଳି )—ଯେ ଉଦ୍ଦେଶ୍ୟହୀନ ଭାବରେ
Bāsturā হাভাতে ଏଣେ ତେଣେ ବୁଲୁଥାଏ—
(ବାସୁରୀ—ସ୍ତ୍ରୀଲିଙ୍ଗ) Roving; wandering; errant
କୁକୁର ଚିତା ଦେ. ବି—ଔଷଧ ବୃକ୍ଷବିଶେଷ; କୁକୁର ଚଢା (ଦେଖ)
কুকুরচন্দী Litsæpolyanthus; Litsæa Pebifera ( See )

[ ଦ୍ର—ଏହା ଝରଣା ନିକଟରେ ବଢେ । ଗଛର ବକଳା ଔଷଧରେ ଲାଗେ; ଫୁଲ ଶ୍ୱେତ ଶ୍ୱେତ, ଗ୍ରୀଷ୍ମକାଳରେ ଫୁଲେ, ଫୁଟେ ଅଣ୍ଡିରୀ ଓ ମାଈ ଗଛ ପୃଥକ୍; ଏହା ବନ୍ୟ ଚିର ଶ୍ୟାମଳ ତରୁ । ]

ବାସ୍ତୁ(ସ୍ତୂ)କ—ସ. ବି. (ବାସ୍ତୁ=ବାସ୍ତୁ ଭୂମି, ଘର ବାଡ଼+ଭବାର୍ଥେ କ;
Bāstu(stū)ka ଯେ ବାସ୍ତୁ ଭୂମିରେ ଜନ୍ମେ )—ବଥୁଆ ଶାଗ—Chenopodium Album.

ବାସ୍ତୋଷ୍ପ(ଷ୍ପ)ତି—ସ. ବି. (ବାସ୍ତୋଃ=ଗୃହବାସ୍ତୁର+ପତି=ଦେବତା)-
Bāstoshpa(spa)ti ଦେବରାଜ; ଇନ୍ଦ୍ର—Indra.

ବାସ୍ୟ—ସଂ. ବିଣ. (ବସ୍ ଧାତୁ ଣିଚ୍=ବାସି ଧାତୁ+କର୍ମ· ଯ)—
Bāsya ବାସର ଉପଯୋଗୀ—Habitable

ବାହ—ସ. ବିଣ. ( ବହ୍ ଧାତୁ+କର୍ତ୍ତୃ· ଅ )—
Bāha ୧ । ଯେ ବହନ କରେ; ବାହକ—1. Bearing; carrying.

[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବାହକ ଅର୍ଥ ବୁଝାଏ । ଯଥା—ବାରିବାହ, ଭାରବାହ । ]

ବି—୧ । ବୋହିଆ—1. Carrier of loads; porter.
୨ । ( +କରଣ. ଅ ) ବାହୁ—3. Arm ୩ । ସ୍କନ୍ଧ—3. Shoulder ୪ । ବାୟୁ—4. Wind; air.
୫ । ବୃଷ—5. Bull. ୬ । ବଳଦ—6. Bullock.
୭ । ମହିଷ—7. Buffalo. ୮ । ଅଶ୍ୱ—8, Horse.
୯ । ଚତୁରଙ୍ଗ ବଳ—9. An army consisting of the 4 divisions.

ଦେ. ବି—ବହିବା କର୍ମ—The act of carrying load.
ମନସ୍ୱି ପବନ ଗୃହେଁ ବୋଲଇ ବଚନ
ବହନେ ବହିବା ଯାଏଁ ତୋର ବାହମାନ । ପ୍ରାଚୀ, ରସକାରୁଧି ।

ବାହକ—ସ. ବିଣ. ପୁଂ. (ବହ୍ ଧାତୁ ବା ବାହି ଧାତୁ+କର୍ତ୍ତୃ. ଅକ)—
Bāhaka ୧ । ଭାର ବହନକାରୀ—1. Carrying.
(ବାହିକା—ସ୍ତ୍ରୀ) ୨ । ଯେ ବହନ କରେ—2 Bearing load.
ବି—୧ । ରଥ ଚାଳକ; ସାରଥି—1. Charioteer; driver of a carriage. ୨ । ବୋହିଆ—2. Carrier of a load.

ବାହନ—ସଂ· ବି· (ବହ୍ ଧାତୁ ଣିଚ୍=ବାହି ଧାତୁ+କରଣ. ଅନ)—
Bāhana ୧ । ଯାନ; ଯାହା ଦ୍ୱାରା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗତ ବା ବାହିତ ହେବାକୁ ହୁଏ—1. A vehicle; conveyance.
୨ । ବୋଝକୁ ବା ମନୁଷ୍ୟକୁ ଯେଉଁ ଜୀବଜନ୍ତୁ ବହନ କରି ନିଅନ୍ତି; ଭାରବାହୀ ଜୀବ—2. An animal which carries persons or loads.
୩ । ଭିନ୍ନ ଭିନ୍ନ ଦେବତାଙ୍କୁ ପିଠିରେ ନେବା ଆଣିବା କରିବା ଭିନ୍ନ ଭିନ୍ନ ଜୀବ—3. Animals carrying respective Deities on the back.

[ ଦ୍ର—ଶାସ୍ତ୍ରରେ ପ୍ରତ୍ୟେକ ଦେବତାଙ୍କର ଭିନ୍ନ ଭିନ୍ନ ବାହନ ବା ଯାନ ବର୍ଣ୍ଣିତ ଅଛି; ଯଥା—୧ । ଶିବଙ୍କ ବାହନ—ବୃଷ, ୨ । ବିଷ୍ଣୁଙ୍କର ବାହନ—ଗରୁଡ଼; ୩ । ବ୍ରହ୍ମାଙ୍କର—ହଂସ; ୪ । ଦୁର୍ଗାଙ୍କର—ସିଂହ; ୫ । କାର୍ତ୍ତିକେୟଙ୍କ—ମୟୂର; ୬ । ଲକ୍ଷ୍ମୀଙ୍କ—ପେଚକ; ୭ । ସରସ୍ୱତୀଙ୍କ—ହଂସ, ମକର; ୮ । ଅଗ୍ନିଙ୍କ—ଛାଗ, ମେଷ; ୯ । ଗଙ୍ଗାଙ୍କ—ମକର; ୧୦ । ଇନ୍ଦ୍ରଙ୍କ—ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ; ୧୧ । ଯମଙ୍କ—ମହିଷ । ]

୪ । (ବାହ ଧାତୁ+କର୍ମ· ଅନ) ରତ୍ନ—4. Gems.
୫ । (ବହ ଧାତୁ+ଣିଚ୍+ଭାବ. ଅନ) ଭାର ବହିବା—5. Carrying; carriage. ୬ । ଅନ୍ୟଦ୍ୱାରା ବହିବା କାର୍ଯ୍ୟ କରାଇବା—6 Causing another to bear or carry.

ବାହର—ପ୍ରାଦେ (ଭଞ୍ଜିଭୂମି) ବି—ବାହାର; ବହିର୍ଦ୍ଦେଶ—
Bāhara, Outside; exterior.

ବାହା (ଇତ୍ୟାଦି)—ଗ୍ରା. ବି—ବିଭା ଇତ୍ୟାଦି (ଦେଖ)
Bāhā (etc) Bibhā etc (See).
বিয়া(য়ে) ଦେ. ବି—(ସ ବାହୁ) ୧ । ବାହୁ Arm.
বয়াহ ୨ । (ଲକ୍ଷଣାର୍ଥ) ବଳ—2. Strength; power.
ଗର୍ବିତ, ମୁଁ ବାହୁବ ପାଇ ଭୁଲୁ ବାହା
ଦୁଷ୍କର୍ମର ସାହା ହେ ଜାଣ ସାର ନାହା,
କୃଷ୍ଣସିଂହ. ମହାଭାରତ ବନ୍ଗ ।

ବାହାକ୍—ପ୍ରାଦେ (ସମ୍ବଲପୁର) ବି—୧ । ବାଦ୍ୟକାର; ବାଦକ—
Bāhāk 1. Musician. ୨ । ବାଦ୍ୟରେ ପ୍ରବୀଣ ବ୍ୟକ୍ତି—2. An expert player on music.

ବାହା କଳା(ଲେ)ଇବା—ପ୍ରାଦେ (ଯାଜପୁର) ବି—ହାତ ଝୋଲହେବା—
Bāhā kiḷā(ḷe)ibā The aching of the hand.
(ଯଥା—ପିଲାଟାକୁ କାଖେଇ ମୋ ବାହା କଳେଇଲାଣି ।)

ବାହାଘର—ଗ୍ରା. ବି—ବିବାହ ଉତ୍ସବ—
Bāhāghara বিয়েষর বয়াহ Marriage festival.

ବାହାଜୋର୍(ରୀ)—ଦେ. ବି—( ସ. ବାହୁ+ ଫା· ଜୋର୍ )—
Bāhājor(rī) ୧ । ବାହୁର ବଳ—1. The power of
বাহাজোরী one's arms. ୨ । ଶାରୀରିକ ଶକ୍ତି—2. Physical strength. ୩ । ବଳପ୍ରୟୋଗ; ଜବରଦସ୍ତି—
গায়ের জোর 3. Coercion.

ବାହାଞ୍ଚୋଦ୍(ଦ୍)—ବୈଦେ. ବି. ଓ ବିଣ—(ଅଶ୍ଳୀଳ ଗାଳି)—(ଫା. ବହିନ
Bāhānchot(d) ଚୁଦ୍)—ଭଗିନୀର ସତୀତ୍ୱ ନଷ୍ଟକାରୀ ବ୍ୟକ୍ତି—
বাহিঞ্চোৎ; ভাঞ্চোৎ (a slang term of abuse) An
बहिनचोद incestuous person.
( ବାହାଞ୍ଚୋ, ବାହିଞ୍ଚୋ—ଅନ୍ୟରୂପ )

ବାହାଡ଼ା—ଦେ. ବ—( ସ. ବଯୃସ୍ଥା, ବିଭୀତକ, ବହେଡ଼ୁକ; ପ୍ରା. Bāhārḍā ବହେଡ଼ଅ)—୧ । ତ୍ରିଫଳା ମଧ୍ୟରୁ ଏକତମ ଫଳ—

ସ—ବିଭୀତକ, ବହେଡ଼କ, ତଳଦ୍ରୁମ, କଲିବୃକ୍ଷ, ସବର୍ତ୍ତ, ଭୁସ, ଭୂତବାସ, କୃଶିକ, ବାସନ୍ତ, ବହୁବୀର୍ଯ୍ୟ, ଅକ୍ଷ, ତୈଳଫଳ, ବିଷଘ୍ନ, କଳଦ, କାସଘ୍ନ, ତୋଳଫଳ, ବାର୍ଯ୍ୟ, କର୍ଷ ଫଳ, ଭୂତାବାସ, ଛଲଘ୍ନକ—
ବୟଡ଼ା
बहेडा, भैरा
ମ. ବହେଡ଼ା, ବେହେଡ଼ା
ତେ. ତାଡ଼ିକାୟଳ, ତାଡ଼ୋଚେଟ୍ଟୁ
ତା. ତନ୍‌ଡ଼ି

1. Beleric Myrobalan; Terminalia Beleric.

[ ଦ୍ର—ଏହା ଅର୍ଜୁନାଦି ବର୍ଗର ବୃକ୍ଷ ଓ ଏହାର ଫଳ ଶ୍ଳେଷ୍ମଘ୍ନ । ଗଛରୁ ବର୍ଷକୁ ବର୍ଷ ପତ୍ର ଝଡ଼େ; କାଠ ପାଣ୍ଡୁର । ଶାଖାର ପ୍ରାନ୍ତରେ ପତ୍ର ଧରେ । ଏହାର ଫଳ କଷାୟ ଓ ଔଷଧରେ ବ୍ୟବହୃତ ହୁଏ । ଏହା କଫ, କାଶ ଓ କୃମି-ନାଶକ । ଏହା ଚମଡ଼ା ସିଝାଇବା ଓ ରଙ୍ଗିବା କାମରେ ଲାଗେ । ଏହାର କାଠ ଦୃଢ଼ ନୁହେଁ । ]

କାଠଶିମ, କାଳଶିମ ୨ । ଏକପ୍ରକାର ବିଷାକ୍ତ ଖଡ଼୍ଗାକୃତିବିଶିଷ୍ଟ ଶିମ୍ବ; बकुआशीम ମହରଡ଼ା—2. Canavalia Virosa; Dolichos Virasus; a kind of sword-bean with poisonous seeds (Haines).

[ ଦ୍ର—ଏହା ଲତା ଓ ଏହାର ତୁଳଁ ଶିମ୍ବଜାତୀୟ । ]

कुक्करदाँत; कुक्करदंत ବିଣ. ( ସ. ବ୍ୟାହତ ବା ଅଯାଚପ୍ରାପ୍ତ ଜନ୍ମା ବର୍ଦ୍ଧିତ )—୧ । ଧାଡ଼ିରୁ ପୃଥକ ହୋଇ ବାହାରିଥିବା ( ଦାନ୍ତ )—1. Redundant ( tooth ); ( tooth ) coming out of the proper line of the jaw.

ଦନ୍ତର ଉପଦାନ୍ତ ଦୁଇଗୋଟି ବାହାଡ଼ା ହୋଇ ଗୋଟିକ ଉପରେ ଗୋଟିଏ ବଢ଼ିଯାଇ ପର୍ବତ ଶୃଙ୍ଗ ପରି ଠେକି ରହିଥିବାରୁ ସେ ଶିଶୁଦଂଶନା—ଫକୀରମୋହନ, ଛମାଣ ଆଠଗୁଣ୍ଠ ।

[ ଦ୍ର—ଶିଶୁ ଅବସ୍ଥାରେ କୌଣସି କୌଣସି ଦୁଧ ଦାନ୍ତ ଝଡ଼ି ନ ପଡ଼ୁଣୁ ସେ ସ୍ଥାନରେ ଆଉ ଗୋଟିଏ ଦାନ୍ତ ଗଜୁରିଲେ ପଡ଼ି ନ ଥିବା ଦାନ୍ତ ତାକୁ ବାଧା ଦିଏ । ସେଥିପାଇଁ ନୂଆ ଦାନ୍ତ ବାଧାପ୍ରାପ୍ତ ହୋଇ ଦାନ୍ତର ପ୍ରକୃତ ଧାଡ଼ିରେ ନ ଉଠି ଧାଡ଼ିରୁ ଛାଡ଼ିଯାଇ ଉଠେ, ତାହାକୁ ବାହାଡ଼ା ଦାନ୍ତ ବୋଲାଯାଏ । ]

୨ । ଏକାଧିକ ବସନ୍ତ ବ୍ରଣ ଏକଜ ଏକ ସମୟରେ ଉଠି ମ୍ଳାନ ନ ପାଇ ଏକତ୍ର ଲେଶିଯିବା ପରି ହୋଇଯିବା—

2. ( Compound small pox sores ) Which become painful and linger for a long period.

[ ଦ୍ର—ବସନ୍ତ ରୋଗୀର ଦେହରେ ଗୋଟିଏ ସ୍ଥାନରେ ବସନ୍ତ ବ୍ରଣ ଉଠିଥିବା ଅବସ୍ଥାରେ ସେହି ସ୍ଥାନରେ ଆଉ ଗୋଟିଏ ବା ଅଧିକ ବସନ୍ତ ବ୍ରଣ ଉଠିଲେ ପୂର୍ବରୁ ଉଠିଥିବା ବ୍ରଣ ନୂଆ ବ୍ରଣକୁ ବ୍ୟାଘାତ ଦେବାରୁ ସେ ନୂଆ ବ୍ରଣ ବାହୁଡ଼ି ନ ଯାଇ ପ୍ରକୁପିତ ହୋଇ ଭୟାନକ ରୂପ ଧାରଣ କରେ । ଅତଏବ 'ବାହୁଡ଼ିବା ଶବ୍ଦରୁ' ବାହାଡ଼ା ଶବ୍ଦ ଆସିଥିବାର ଅନୁମିତ ହୁଏ । ]

ବାହାଡ଼ା ଅଙ୍ଗୁଠି(ଳି)—ଦେ. ବ. ( ସ. ବର୍ଦ୍ଧିତ+ଅଙ୍ଗୁଳ )—ଗୋଡ଼ର Bāhārḍā ānguṭhi(li) ବା ହାତର ପାଞ୍ଚ ଅଙ୍ଗୁଠି ପାଖରେ बढीअंगुली ବାହାରିଥିବା ଅଧିକା ଅଙ୍ଗୁଠି—The unnecessary additional finger in a hand or leg.

ବାହାଡ଼ା ଘିଅ—ପ୍ରାଦେ. ( ଗାଙ୍ଗପୁର ଓ ସମ୍ବଲପୁର ) ବ—ବାହାଡ଼ା Bāhārḍā ghia ମଞ୍ଜିରୁ ପ୍ରସ୍ତୁତ ତୈଳ—The oil produced from Bāhārḍā seeds.

[ ଦ୍ର—ବାହାଡ଼ା ମଞ୍ଜି ଉପରର ଖୋସଲୁ ଭୁଷି ତାକୁ କଡ଼ା ତେଲ ଘିଅବା ପରି ଚୁଲିରେ ବସାଇଲେ ତହିଁରୁ ଘିଅ ପରି ବସ୍ତୁ ବାହାରେ । ତହିଁରେ ପିଠା ଇତ୍ୟାଦି ଛଣାଯାଏ, ତରକାରୀ ଆଦି ବଘାରି ଯାଏ ଓ ସେ ଘିଅ ମଧ୍ୟ ଭାତରେ ଖିଆଯାଏ । ]

ବାହାଡ଼ା ଦନ୍ତା—ଦେ. ବିଣ—ଯାହାର ଦାନ୍ତ ବାହାଡ଼ା ହୋଇଥାଏ— Bāhārḍā dantā A person having some teeth कुक्करदंता appearing beyond the proper line ( ବାହାଡ଼ା ଦାନ୍ତୀ—ସ୍ତ୍ରୀ ) ଗଜଦନ୍ତ of the teeth.

ବାହାଡ଼ା ଦାନ୍ତ—ଦେ. ବ. ( ସ. ନାମ ଗଜଦନ୍ତ )—ଯେଉଁ ଦାନ୍ତ Bahārḍā dānta ଦାନ୍ତପାଟିର ଧାଡ଼ିରୁ ଅନ୍ୟ ସ୍ଥାନରେ ଉଠି ଗଜଦାଁତ ଥାଏ—Teeth coming out beyond the कुक्करद'(दां)त proper row of the jaw; redundant teeth.

ବାହାଡ଼ା ବସନ୍ତ— ଦେ. ବ—ବାହାଡ଼ା ହୋଇ ଯାଇଥିବା ବସନ୍ତ ବ୍ରଣ— Bāhārḍā basanta Painful compound sores of दोहरीचेचक small pox lingering after the ordinary period without being healed.

ବାହାଣ—ଦେ. ବ ( ସ. ବହନ; ବାହନ )—୧ । ମାଛ ଧରିବା ପାଇଁ Bāhāṇa ମନୁଷ୍ୟ ଡଙ୍ଗାଉପରେ ଥାଇ ଡଙ୍ଗା କ୍ରମଶଃ ଅଗ୍ରସର ହେଉ वाहाना ହେଉ ଜାଲକୁ କ୍ରମଶଃ ପାଣିରେ ମେଲିବା ପାତାନ ପ୍ରକ୍ରିୟା—1. The spreading of nets by fishermen in deep water from boats taken along the track on which the net is to be laid.

୨ । ବୁହାଇବା; ବହନ କରିବା—2. Carrying.

୩ । ବାହାଣିଆ ( ଦେଖ )—3. Bāhāṇiā ( See )

ଚାଲାନ ୪ । ଡଙ୍ଗାକୁ କାତ ଆଦି ଦ୍ୱାରା ଚଳାଇବା—5. The plying of a boat. ୫ । ଭର୍ତ୍ସନା; ଗାଳି— 5. Abuse.

बायाँ ବିଣ. ( ସ ନାମ )—୧ । ବାଆଁ ପାଖରେ ଯୋଚି ଯାଇଥିବା बायाँ ( ବଳଦ ); ବାଆଁଣ—1. (a bullock ) Yoked to the left side of the plough or cart.

୨ । ବାମପାର୍ଶ୍ୱସ୍ଥ—2. Pertaining of the left side.

ବାହାଣ କରିବା—ଦେ. କ୍ରି ( ସ. ବାହନ )—୧ । ଜାଲକୁ ପାଣିରେ Bāhāṇa karibā ମେଲିବା—1. To cast or spread a वाहना net in the water for fishing. ୨ । ଡଙ୍ଗାକୁ ( ବାହାଣ ବାହିବା—ଅନ୍ୟରୂପ ) ପାଣିରେ ଚଳାଇବା—2. To पातान, चालान move a boat forward by rowing.

୩ । ( ଲକ୍ଷଣାର୍ଥ ) ଗାଳିଦେବା—
3. (figurative) To chastise; to abuse.

ବାହାଣକାରୀ—ଦେ. ବି ( ସଂ. ବହନକାରୀ )—୧ । ନୌକା ବାହିବା
Bāhāṇakārī ଲୋକ—1. A boat driver; the person who plies a boat. ୨ । ଯେଉଁ ବ୍ୟକ୍ତି ଜାଲକୁ ପାଣିରେ ମେଲାଏ—2. A person who spreads or lays out the net for fishing.

ବାହାଣି—ଦେ. ବି—ବାହାଣ ( ଦେଖ )—
Bāhāṇi Bāhāṇa (See)
ପ୍ରାଦେ. ( ସିଂହଭୂମ ) ବି—ବଡ଼ କନ୍ଦିଆ—
A big earthen tub.

ବାହାଣିଆ(ଆଁ)—ଦେ. ବି—ବାହାଣକାରୀ ( ଦେଖ )
Bāhāṇiā(āṅ) वाहनिया Bāhāṇakārī ( See )
ନାଆ ଉପରୁ ମଙ୍ଗଧର, ବାହାଣିଆ, ବାଟକଢ଼ା ସବୁସୁଦ୍ଧାକ ଝୁପୁଝାପ
दाँड़ी ନଇରେ ପଡ଼ିଗଲେ—ଫକୀରମୋହନ, ଗଳ୍ପସ୍ୱଳ୍ପ ।
ପ୍ରାଦେ. ( ଯାଜପୁର ) ବିଣ—ସିଆଣିଆ; ଚଲାଖ; ଫାଜଲ୍—
Clever; sly. ( ଭୁଲ. ସଂ. ଜ୍ଞାନ ଓ ଓଡ଼ିଆ ବାହାନା ।)

ବାହାଦଣ୍ଡା—ଦେ. ବି. ( ସଂ. ବାହୁଦଣ୍ଡ )—୧ । ବାହୁଦଣ୍ଡ—
Bāhādaṇḍā 1. The arm. ୨ । ପ୍ରସାରିତ ବାହୁ—
बाँहदंड 2. The extended arm. ୩ । ବାହୁଦ୍ୱାରା ଆଘାତ;
पाँजाकोला ବାହାପଟ—3. A stroke with the blade of the arm. ୪ । ଭାରି ବସ୍ତୁ ଟେକିବା ପାଇଁ ଦୁଇ ଜଣଙ୍କ ବାହୁର ପରସ୍ପର ମିଳନ—4. Intertwining of the arms of two persons for lifting a heavy thing.

ବାହା ଦଣ୍ଡା କରି ଟେକି ନେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର
Bāhā dāṇḍā kari ṭekinebā ଦୁଇ ବାହାକୁ ଧରି ଉଠାଇ
बाहादण्डी (बन्दि) करके उठाना ନେବା—1. To carry a
पाँजा कोले person by lifting him up by the arms
करे लओया ୨ । ଦୁଇଜଣ ବ୍ୟକ୍ତି ପରସ୍ପରର ବାହୁ ଦ୍ୱୟକୁ ସିଧ ଭାବରେ ଛନ୍ଦି କରି କୌଣସି ଭାରି ବସ୍ତୁକୁ ଉଠାଇବା—2. (two persons) To lift up a very heavy thing with the help of their extended arms twined with each other.

ବାହାଦୁର—ବୈଦେ. ବିଣ—(ଫା ବାହାଦୁର୍=ସାହସୀ; ପରାକ୍ରମୀ)—
Bāhādur ୧ । ବୀର—1. Heroic; valiant. ୨ । ସାହସୀ
बाहादुर बाहादुर 2. Chivalrous. ୩ । ସାହସୀ—
ବାହାଦର୍, ବାହାଦଲ୍, ବାହାଦୁଲ, ବାହାଦର —ଅନ୍ୟରୂପ 3. Courageous. ୪ । ସମ୍ଭ୍ରାନ୍ତ—4. Noble; gentle; respectablle ୫ । ନିର୍ଭୀକ—5. Fearless ୬ । ବିଖ୍ୟାତ—6. Famous.
୭ । ସୁଦକ୍ଷ; ପଟୁ; କାର୍ଯ୍ୟକ୍ଷମ—7. Clever. ୮ । ଶ୍ରେଷ୍ଠ—8. Excellent ୯ । ମାନ୍ୟବର—9. Honourable. ୧୦ । ଉତ୍କୃଷ୍ଟ—10. Excellent.
ବି.—୧ । ବୀର ପୁରୁଷ—1. A hero. ୨ । ବୀର ପୁରୁଷଙ୍କର ବା ସମ୍ମାନିତ ବ୍ୟକ୍ତିଙ୍କ ଉପାଧି—2. Title of heroes or high personages.
(ଯଥା—ଜଙ୍ଗ୍ ବାହାଦୁର୍, ସରକାର ବାହାଦୁର୍, କୋମ୍ପାନୀ ବାହାଦୁର୍, ଜଜସାହେବ ବାହାଦୁର ଇତ୍ୟାଦି ।)
୩ । ସାଧାରଣ ହିତକର କର୍ମ ଓ ଅନ୍ୟ ଉପାୟଦ୍ୱାରା ଇଂରେଜ ଗଭର୍ଣ୍ଣମେଣ୍ଟଙ୍କୁ ଅପ୍ୟାୟିତ କରିଥିବା ବ୍ୟକ୍ତିଙ୍କୁ ରାଜ ପ୍ରଦତ୍ତ ସମ୍ମାନସୂଚକ କେତେକ ଉପାଧିର ଶେଷ ପଦ—3. Bahadoor, the last word of some titles bestowed on persons as a mark of approbation by the Government for public and other services rendered.
[ଦ୍ର—ବଙ୍ଗ ବିହାର ପ୍ରଦେଶରେ ହିନ୍ଦୁମାନଙ୍କୁ ଦିଆ ଯିବା ଉପାଧି ଯଥା—୧ । ରାୟ (ଏ) ବାହାଦୁର୍, ୨ । ରାଜା ବାହାଦୁର୍, ୩ । ମହାରାଜା ବାହାଦୁର୍ । ମାନ୍ଦ୍ରାଜରେ ରାଓ ବାହାଦୁର୍, ଦେବାନ୍ ବାହାଦୁର୍ । ମୁସଲମାନମାନଙ୍କ ଉପାଧି ଯଥା—ଖାଁ ବାହାଦୁର୍, ନବାବ୍ ବାହାଦୁର୍ ।]

ବାହାଦୁର(ରି) କାଠ—ଦେ. ବି—ଶାଳ, ସାଗୁଆନ ପ୍ରଭୃତି କାଠର ବଡ଼
Bāhādur(ri) kāṭha ବଡ଼ ମୁଣ୍ଡି—Logs of timber.
बाहादुरि काठ बडा काठ

ବାହାଦୁର(ରି)ପଣ—ଦେ. ବି.—୧ । ବୀରତ୍ୱ—
Bāhādur(ri) paṇa 1. Heroism.
(ବାହାଦୁର [ରି] ପଣିଆ—ଅନ୍ୟରୂପ) ୨ । ସାହସିକତା—
बाहादुरी बाहादुरि 2. Valour; bravery.
୩ । ପୌରୁଷ; ପୁରୁଷତା—3. Chivalry. ୪ । ନୈପୁଣ୍ୟ; ଦକ୍ଷତା—4. Cleverness. ୫ । ଶ୍ରେଷ୍ଠତା; ଉତ୍କର୍ଷ; ତାରଫ୍—5. Excellence. ୬ । ପୌରୁଷ ପ୍ରଶଂସା—6. Praise. ୭ । ପ୍ରଶଂସାଗାନ—7. Eulogy. ୮ । ବିଶେଷତ୍ୱ—8. Peculiarity.

ବାହାଦୁରି—ବୈଦେ. ବି—(ଫା. ବାହାଦୁରୀ)—ବାହାଦୁର ପଣ (ଦେଖ)
Bahāduri 1. Bāhādura paṇa (See)
ବାହାଦୁରି ନେବାଆଶାରେ ହୋଇ ଅଛ ବାହାର—ଭକ୍ତକବି ମଧୁ. ବଙ୍କା ଖଡ଼ଗା ।
बाहादुरी ୨ । ବାହାଦୁର ଉପାଧି—2. Title of Bahadoor.
बाहादुरी ବିଣ.—୧ । ବୀରତ୍ୱପୂର୍ଣ୍ଣ; ପୌରୁଷପୂର୍ଣ୍ଣ—1. Full of valour, chivalrous. ୨ । ବୀରଯୋଗ୍ୟ—2. Befitting a hero.
ପ୍ରାଦେ—(ଯାଜପୁର) ବି.—ପ୍ରତିମାଙ୍କର ମେଢ଼ ଉପରେ ଲଗା ଯିବା ଜରି କାମ—Lace work on the framework of images.

ବାହାଦୁରି କରିବା—ଦେ. କ୍ରି.—୧ । ଆପଣାର ନୈପୁଣ୍ୟ ବା ବୀରତ୍ୱ
Bāhāduri karibā ପ୍ରକାଶ କରିବା—1. To exhibit
बाहादुरी करा one's cleverness or heroism.
बाहादुरी करना ୨ । ପ୍ରଶଂସା କରିବା—2. To praise.
(ବାହାଦୁର ଦେଖା[ଖେ]ଇବା—ଅନ୍ୟରୂପ)

ବାହାଦୁରି ଦେବା—ଦେ. କ୍ରି—ପ୍ରଶଂସା କରିବା—To praise; to
Bāhāduri debā बाहादुरी देना बाहावा करना extol.

ବାହାଦୁରି ପାଇବା—ଦେ. କ୍ରି—ପ୍ରଶଂସା ପାଇବା; ପ୍ରଶଂସିତ ହେବା—
Bāhāduri pāibā To be praised or extolled.
বাহাদুরি পাওয়া **बाहादुरी पाना**

ବାହାନ—ଗ୍ରା. ବି. ( ସଂ. ବାହନ )—୧ । ଯାନ—
Bāhāna 1. Conveyance.
ସେ ଯାହାର ବାହାନମାନଙ୍କୁ ଚଢିଲେ । କୃଷ୍ଣସିଂହ, ମହାଭାରତ ଆଦି ।
୨ । ଭାରବାହୀ ପଶୁ—2. An animal which carries loads or persons. ୩ । ( ଲକ୍ଷଣାର୍ଥ ) ବାହାନ ପରି ସବୁଦା ସଙ୍ଗରେ ଥିବା ବ୍ୟକ୍ତି—3 ( figurative ) A dependent or constant follower of a person.

ବାହାନ ପତି —ସଂ. ବି. ( ସଂ· ବାହୁନୀ ପତି=ସେନାପତି )—
Bāhāna pati ବ୍ରାହ୍ମଣମାନଙ୍କର ରାଜଦତ୍ତ ଉପାଧିବିଶେଷ—
An honorific title given to Brāhmaṇas.
ବାହୁନ ପତି, ବାହାନି ପତି, ବାହୁନ୍ ପତି, ବାହୁନି ପତି, ବାଉନ ପତି } ଅନ୍ୟରୂପ
[ ଦ୍ର—ପୂର୍ବେ ରାଜପ୍ରଦତ୍ତ ବାହାନ ପତି ଉପାଧି କ୍ରମଶଃ ବଂଶାନୁଗତ ଉପାଧିରେ ପରିଣତ ହୋଇଅଛି । ]

ବାହାନ(ନ୍ନ)ବା—ଦେ·ବିଣ. ପୁଂ—୧ । ଛଳନାକାରୀ—1. Feigning.
Bāhāna(nna)bā ୨ । ମିଥ୍ୟାବାଦୀ—2. Lying. ୩ । ବୃଥାଗର୍ବସୂଚକ ଗଳ୍ପକାରୀ 2. Bragging.
[ ବାହାନ(ନ୍ନ)ବୀ—ସ୍ତ୍ରୀ ]

ବାହାନା—ଦେ ଓ ବୈଦେ. ବି. ( ସଂ. ଭଣ; ଫା. ବହାନହ୍=ଅଳ, ଓଜର )—୧ । ଛଳନା; ଓଜ—1. Pretext.
Bāhānā
(ବାଆନା—ଅନ୍ୟରୂପ) ସେ ବାହାନା କରି ଶୋଇ ପଡେ ।
ଫକୀରମୋହନ, ଗଳ୍ପସ୍ବଳ୍ପ ।
ভাণ ;বাহানা **बहाना**
୨ । ଛଟା ଗାଳବା—2. Feigning; pretence.
୩ । କୌଣସି କାର୍ଯ୍ୟ କରିବା ପାଇଁ ଓଜର ଆପତ୍ତି—3. Objection against doing a thing; excuse for not doing an act.

ବାହାନା କରିବା—ଦେ· କ୍ରି—୧ । ଛଳନା କରିବା; ଓଜ କରିବା—
Bāhānā karibā 1. To pretend; to make or advance excuses; to find out an excuse
ବାହାନା କାଢ଼ିବା, ବାହାନା ଖେଳିବା, ବାହାନା ଯୋଡିବା } ଅନ୍ୟରୂପ
୨ । ଛଟା ଗାଳିବା—2. To feign.
ভাণকরা **बाहाना करना**

ବାହାନା ଖୋଜିବା—ଦେ. କ୍ରି—କୌଣସି କାର୍ଯ୍ୟରୁ ନିଷ୍କୃତି ପାଇବା ଉଦ୍ଦେଶ୍ୟରେ ଛଳନାର ଅବକାଶ ଲୋଡ଼ିବା—
Bāhānā khojibā To seek an excuse.
**वहाना खोजना**

ବାହାନା(ଲା)ଦ—ଦେ· ବି—ବାହୁସ୍ଫୋଟ—Stroke of the palm
Bahānā(lā)da on the arm producing a hollow sound.
**तालठोंका; बगलबाजा**
তালঠোঁকা
କେ କଲେ ବକ୍ଷରେ ଧର
ଡାକନ୍ତି ବାହା ନାଦ କରି—ଜଗନ୍ନାଥ, ଭାରତ ।

ବାହାନା ପାଇବା—ଦେ. କ୍ରି—କୌଣସି କାର୍ଯ୍ୟପାଇଁ ଗୋଟିଏ ଓଜ ବା ଛଳନା ପାଇବା—To get an excuse.
Bahānā pāibā
**बहाना पाना**

ବାହାନି—ପ୍ରାଦେ. (ସମ୍ବଲପୁର ଓ ବସ୍ତର)—ବି—ମୁଣ୍ଡଲା; ତକିଆ—
Bāhani Pillow.

ବାହାପଟ —ଦେ. ବି. ( ସଂ. ବାହୁପଟ୍ଟ )—୧ । ବାହୁଦ୍ୱାରା ଅନ୍ୟ ବ୍ୟକ୍ତିକୁ କରିବା ଆଘାତ ବା ଧକ୍କା—1. A blow or push with the arm.
Bāhāpaṭa
**बाँहसेधक्का**
ମଧ୍ୟମର ଚୁଅନ୍ତ ଚୁଟେ ବାହାପଟ
ଉଛୁଁ କାଳ ହୋଇ ଶବଦ କଟ ଘଟ । କୃଷ୍ଣସିଂହ, ମହାଭାରତ ବନ ।
୨ । (ସଂ· ବାହୁସ୍ଫୋଟ)—ମଲ୍ଲବ୍ୟକ୍ତିର ମଲ୍ଲକ୍ରୀଡ଼ା ବା ମଲ୍ଲଯୁଦ୍ଧ ପୂର୍ବରୁ ଏକ ବାହୁ ଉପରେ ଅନ୍ୟ କରତଳଦ୍ୱାରା ମାରିବା ଫୁଟକ—2 A pat on one arm by the hollowed palm of the other hand made by an athlete before any exhibition.
**तालठोंका**
তালঠোঁকা
ଏହା ପାଶରେ ହେବ ବଳଭାସୁର ଥାଇ ବାହାପଟମାନ ମାରୁଛି ।
ବିଶ୍ୱନାଥ, ବିଚିତ୍ରରାମାୟଣ ।
୩ । ଦୁଇଜଣ ବ୍ୟକ୍ତି ପରସ୍ପର ବାହୁ ଛନ୍ଦି ତା ଉପରେ ଅନ୍ୟ ଜଣଙ୍କୁ ବେଷ୍ଟି ବା ଆଦରରେ ବସାଇ କିମ୍ବା ଭାରୀ ବସ୍ତୁକୁ ବହି ନେବା ପ୍ରକାର—3. The state of carrying a person or a heavy thing on the arms of two persons entwined with each other.
ବହୁ ଯାହାଙ୍କୁ ଗଢ ବାହାପଟ
କହୁ କି ଦୋଷୁଁ କହୁ ଛାଡ଼ା ଠଂ ।
ଯଦୁବର୍ଣ୍ଣନ କବିତା ।
୪ । ମଲ୍ଲର ଭୂମିରେ ଶୋଇ ଆପଣା ବାହୁଦ୍ୱାରା ଭୂମିକୁ ଆଘାତ କରିବା—5. A stroke on the ground given by the arm by an athlete.

ବାହାପଟ ମାରିବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିକୁ ବାହୁଦ୍ୱାରା ଆଘାତ କରିବା—1. To strike another person with the blade of the arm. ୨ । ମଲ୍ଲକ୍ରୀଡ଼ା ବା ମଲ୍ଲଯୁଦ୍ଧ ପୂର୍ବରୁ ମଲ୍ଲର ଏକ ବାହୁରେ ଅନ୍ୟ କରତଳଦ୍ୱାରା ଫୁଟକ ମାରିବା—2. To pat on one arm with the hollowed palm of the other hand (said of an athlete while stepping out to the arena). ୩ । ( ମଲ୍ଲ ) ଭୂମିରେ ଆପଣା ବାହୁକୁ ପିଟିବା—3. To strike the ground with the blade of one's arm (said of an athlete).
Bāhāpaṭa māribā
মালসাটমারা
**तालठोंकना, बगलबजाना**
ମାରନ୍ତି ଉଚେ ଟେକି ଭୂମିରେ ବାହାପଟ
ଉଛୁଁକୁ ଶୁଭେ ମହା ଧ୍ୱନି ଚଟ ଚଟ ।
କୃଷ୍ଣସିଂହ, ମହାଭାରତ ସଭା ।

ବାହାପିଅ—ଦେ· ବିଣ. ପୁଂ—୧ । ମିଛୁଆ—1. Lying.
Bāhāpiā ୨ । ଘୋର ମିଥ୍ୟାବାଦୀ—2. Mendacious, inveterate liar; having the hardihood or audacity to tell lies.
**लालबुझक्कड**
(ବାହାପେଇ—ସ୍ତ୍ରୀ)
ବାହାପିଅ—ବଳଦୁଷଣ, ତୁମ୍ଭ ପଦେ ଶୁହାର । ମଧୁସୂଦନ ।

୩ । ବାହାନାବା; ଛଳନାକାଜ୍ଞା—3. Feigning
୪ । ଯେ କୌଣସି କଥା ନ ଜାଣି ସେ ସମ୍ବନ୍ଧରେ ଖୁବ ଜାଣିବା ଲୋକପରି ଗପେ—4. Bragging.

**ବାହାପିଅା ପଣ**—ଦେ. ବି—ଘୋର ମିଥ୍ୟାବାଦିତା—
Bāhāpiā paṇa Mendacity; the habitual telling of lies.
लालबुझक्कड़ी
( ବାହାପିଅା ପଣିଅା—ଅନ୍ୟରୂପ )
ସବଙ୍କ ପଣ୍ଡେ କେହ୍ନି ନ ଦେଖି ନ ଶୁଣି
କହେ କେତେ ରଙ୍ଗେ କଥା ବାହାପିଅା ପଣେ ।
ରାଧାନାଥ, ମହାଯାତ୍ରା ।

**ବାହା ପିଟିବା**—ଦେ. କ୍ରି—(ସଂ. ବାହୁ+ପିଟ୍ ଧାତୁ )—୧ । ବାହୁ
Bāhā piṭibā ଝୋଁଟ ମାରିବା; ବାହୁ ଶବ୍ଦ କରିବା—1. To pat on one arm with the palm of the other hand. ୨ । (ମଲ୍ଲ) ନିଜର ବାହୁର ବହିଃଅଂଶକୁ ଭୂମିରେ ପିଟିବା—2. (as athlete) To strike the ground with the backside of one's arm ୬ । ( ଲକ୍ଷଣାର୍ଥ ) ନିଜ ଉପରେ ନିର୍ଭର କରି କାର୍ଯ୍ୟ କରିବା—2. (figurative) To stand on one's legs.
ताल ठोंकना
मालसाटमारा

**ବାହା ପେଷିବା**—ଦେ. କ୍ରି—( ଲକ୍ଷଣାର୍ଥ )—ଅତ୍ୟଧିକ କାୟିକ
Bāhā peshibā ପରିଶ୍ରମ କରିବା—To toil very hard.

**ବାହା ବନ୍ଧକ**—ପ୍ରାଦେ. (ଗଡ଼ଜାତ) ବି—ମୂଲଅାଲୁ ଟଙ୍କା ବା ଧାନ
Bāhā bandhaka କରଜ ଦେଇ ତାହା ସୁଝାଯିବା ପର୍ଯ୍ୟନ୍ତ ତାହାଙ୍କୁ ଦାସ ବା ଚାକରରୂପେ ରଖିବା ପ୍ରଥା—The obsolete custom or practice of keeping one as a servant so long as he does not liquidate the money or paddy taken by him from his master as loan in advance.

**ବାହା ବଳେନ୍ଦ୍ର**—ଦେ. ବି—କ୍ଷତ୍ରିୟମାନଙ୍କ ବଂଶୋପାଧିବିଶେଷ (ଜଗବନ୍ଧୁ
Bāhā baḷendra ପ୍ରାଚୀନ ଉତ୍କଳ)—A family title of the Kshatriyas.
ବାହା ବଳୀନ୍ଦ୍ର } ଅନ୍ୟରୂପ
ବାହୁ ବଳୀ(ଳେ)ନ୍ଦ୍ର }

**ବାହାବା**—ଦେ. ଅ. (ସଂ. ବାଃ; ତୁଳ. ପର୍ତ୍ତୁଗୀଜ୍ ଓ ଇଂ. ବ୍ରାଭୋ)—
Bāhābā ପ୍ରଶଂସା, ଆଶ୍ଚର୍ଯ୍ୟ ଓ ଆନନ୍ଦ ସୂଚକ ସମ୍ବୋଧନ; ବାଃ—(interjection indicating praise, wonder or joy) Bravo ! well done ! Oh !
ବା'ହବା }
ବାହାଓ୍ଵା } ଅନ୍ୟରୂପ
ବାହାରେବା }
ବାହାରେବାଃ }
ଜନତା କୁହାଟେ 'ବାହାବା ବାହାବା'
ରାଧାନାଥ, ଦରବାର ।
বাহাবা वाह
ବି—ପ୍ରଶଂସା; ଧନ୍ୟବାଦ; ବାହାଦୁରି—Praise; eulogy; extolling; thanks.
वाहवाहि

**ବାହାବା କରିବା**—ଦେ. କ୍ରି—ଧନ୍ୟବାଦ କରିବା; ପ୍ରଶଂସା କରିବା;
Bāhābā karibā ସାଧୁବାଦ କରିବା—To extol; to give thanks; to raise one to the skies.
(ବାହାବା ଦେବା—ଅନ୍ୟରୂପ)
বাহাবা করা बाहावाही करना

**ବାହା ବାହବି**—ସଂ. ଅ—( ବାହୁ+ବାହୁ+ଇ )—
Bāhā bāhabi ପରସ୍ପର ମଧ୍ୟରେ ବାହୁ ଯୁଦ୍ଧ; ହାତାହାତି—(ବାହୁ ବାହବି—ଅନ୍ୟରୂପ) Wrestling; hand to hand fight.

**ବାହାମଣି(ଣୀ) ରାଜ୍ୟ**—ଦେ. ବି—ବାମନୀ ରାଜ୍ୟ ( ଦେଖ )
Bāhāmaṇi(ṇi) rājya Bāmani rājya ( See )
[ବାହାମୁନୀ(ଣୀ) ରାଜ୍ୟ— ଅନ୍ୟରୂପ]

**ବାହାର୍**—ବୈଦେ. ବିଣ. (ଫା. ବହାର୍=ବସନ୍ତ ଋତୁ; ବସନ୍ତକାଳ)—
Bāhār ୧ । ସୁଦୃଶ୍ୟ; ସୁନ୍ଦର—1. Beautiful; graceful; elegant
বাহার बहार
୨ । ଯାକଯମକ; ଆଡ଼ମ୍ବରମୟ—2. Splendid; grand.
୩ । ଚକଚକିଆ—3. Glittering.
୪ । ବସନ୍ତ କାଳରେ ଗେୟ ରାଗବିଶେଷ—4. A tune which suits the spring season.
ବି—୧ । ସୌନ୍ଦର୍ଯ୍ୟ—1. Beauty; grace; elegance.
୨ । ବର୍ଣ୍ଣୋଜ୍ଜ୍ୱଲ୍ୟ—2. Splendour; brigt colours.
୩ । ଚକଚକ୍ୟ—3. Glitter.
ପ୍ରାଦେ. (ସମ୍ବଲପୁର) ବି—ଝାଡ଼ା—Stools; ordure.

**ବାହାର୍ ବସିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଝାଡ଼ା ଫେରିବା—
Bāhār basibā To ease one's self; to pass stools.

**ବାହାର୍ ବାନ୍ତି**—ପ୍ରାଦେ. (ସମ୍ବଲପୁର) ବି—ଝାଡ଼ା; ବାନ୍ତି; ଓଲାଉଠା—
Bāhār bānti Cholera; liquid motions with vomitting.

**ବାହାର**—ଦେ. ବି. (ସଂ. ବହିଃ, ବହିସ୍, ବହିର୍; ପ୍ରା. ବାହିର)—
Bāhāra ୧ । ପଦାର୍ଥର ବହିର୍ଦ୍ଦେଶ—1. The outside of a thing.
(ଭିତର—ଅନ୍ୟରୂପ) বাইর, বাহির बाहर
ବାହାର ଅତି କଠିନ ଭିତର ସରସ । ଭକ୍ତ. ପ୍ରେମସୁଧାନିଧି ।
୨ । ବହିର୍ଭାଗ—2. Exterior.
୩ । ମନୁଷ୍ୟର ଦେହ; ଶରୀର—3. Body.
ଗୋଳ ଦେଲ ମୋର ବାହାର ଭିତର ।
କବିସୂର୍ଯ୍ୟ, କଣୋପାଖ୍ୟାନ ଗୀତ ।
୪ । ଗୃହର ବହିର୍ଦ୍ଦେଶ—4. The outer side of a house. ୫ । ଗୃହର ଅନ୍ତଃପୁରର ବହିର୍ଭାଗସ୍ଥ ଅଂଶ—5. The portion of a house outside the inner appartments.
୬ । ଗ୍ରାମର ବହିର୍ଭାଗସ୍ଥ ପଡ଼ିଆ—6. Meadow outside the village. ୭ । ଖଞ୍ଜା; ପରସ୍ତ; ଗୃହର ଅଗଣା—7. Courtyard. ୮ । ଗ୍ରାମ ପ୍ରାନ୍ତ—8. Outskirts ୯ । ବହିର୍ଗମନ—9. Coming out; going beyond.
୧୦ । ସ୍ଥାନ, ପଦ, ଅବସ୍ଥା, ସମୟ ଓ ସମ୍ବନ୍ଧ ଆଦି ବିଷୟର କୌଣସି ନିର୍ଦ୍ଦିଷ୍ଟ ବା କଳ୍ପିତ ସୀମା (ବା ମର୍ଯ୍ୟାଦା)କୁ ଡେଇଁ ଥିବା ବସ୍ତୁ, ବିଷୟ, ସ୍ଥାନ, ପଦ, ଅବସ୍ଥା ବା ସମୟ—10. Any thing, matter, place, time or position beyond a certain or fixed limit.

ବିଣ.—୧ । ବହିର୍ଗତ; ପଦାକୁ ବାହାରି ଥିବା—
1. Come out; bulging.

ନୂଆ ଦୁହିନ ପରେ ପଦାକୁ ସେ ସବୁ ହୋଇଛି ଆଜ ବାହାର ।
ରାଧାନାଥ- ପାର୍ବତୀ । [illegible]

୨ । ନିର୍ଗତ; ବହିର୍ଗତ—2. Gone out; come out; gone forth; issued forth. ୩ । ବାହ୍ୟ; ବହିର୍ଦେଶସ୍ଥ—3. Exterior; external; outer. ୪ । ବହିସ୍ଥ; ବହିର୍ଭୂତ—4. Situate beyond or outside.

୫ । ସୀମା ଟପିଥିବା—5. Stepping out of bounds.

ଆପଣାର ଧର୍ମରୁ ଯେ ହେବ ବାହାର
କୃଷ୍ଣସିଂହ. ମହାଭାରତ- ବନ ।

୬ । ସୀମା ବହିର୍ଭୂତ—6. Outside the limit of.
୭ । ନିଃସମ୍ପର୍କୀୟ; ନିର୍ଲିପ୍ତ—7. Unconnected; unconcerned.

ଈଶ୍ୱର ହେତୁ ଏ ସଂସାର
ସଂସାରୁ ଈଶ୍ୱର ବାହାର । ଜଗନ୍ନାଥ. ଭାଗବତ ।

୮ । ପୃଥକ୍‌ଭୂତ—8. Separated.

ସାଧୁଙ୍କ ଶ୍ରେଷ୍ଠ ସେହି ନର
ସୁଖ ଦୁଃଖରୁ ସେ ବାହାର । ଜଗନ୍ନାଥ. ଭାଗବତ ।

୯ । ଜାତ; ଭୂମିଷ୍ଠ—10. Born.

ବାଳକ ହୋଇଲା ବାହାର
ଗୁଣେ ପାଣ୍ଡବ ବଣଧର । ଜଗନ୍ନାଥ ଭାଗବତ ।

୧୦ । ଗ୍ରାମାନ୍ତର ବା ନଗରାନ୍ତରରେ ସ୍ଥିତ—10. Situate in another village or town. ୧୧ । ନିପାତନସିଦ୍ଧ—11. Exceptional. ୧୨ । ଅସାଧାରଣ—12. Uncommon; extraordinary. ୧୩ । ଆଦେଶାଦିର ଅବଶୀଭୂତ—13. Disobedient or unsubservient ୧୪ । କୌଣସି ଅଧିକାରରୁ ବା ସମ୍ପର୍କରୁ ବର୍ଜିତ—14. Excluded from a privilage or connection.

ଗଲା ମଇଲା କଥାରେ ସାର
ମଲେ ହାଣ୍ଡି କୁଣ୍ଡେଇରୁ ବାହାର । ଢଗ ।

ବୈଦେ. ବିଣ. (ଫା. ବହାର୍)—୧ । ସୁନ୍ଦର—
1. Beautiful. ୨ । ଆଡ଼ମ୍ବରମୟ—2. Grand.

ସୁରେନ୍ଦ୍ର ଗୃହ ଲକ୍ଷ ଲେଖେ ବାହାର
ରାଧାନାଥ. ମେଘଦୂତ ।

୧୫ । ପୃଥକ୍; ସ୍ୱତନ୍ତ୍ର; ବିଭିନ୍ନ—
15. Separate; distinct; different.

ପ୍ରାଦେ. (ସମ୍ବଲପୁର) ବି.—ଝାଡ଼ା—Ordure; night-soil.

ବାହାର କରିବା—ଦେ, କ୍ରି—(ସଂ. ବହିଃ+କରଣ)—୧ । ଭିତରରୁ
Bāhāra karibā ପଦାକୁ ଆଣିବା—1. To bring out.
(ଯଥା—ସାପ ଗାତରୁ ମୁହଁ ବାହାର କରିଛି ।)

୨ । ପୁସ୍ତକାଦି ପ୍ରକାଶିତ କରିବା; ପ୍ରକଟିତ କରାଇବା—
बाहिरकरा **निकालना** 2. To publish.
(ଯଥା—ସ୍ୱର୍ଗୀୟ ବିଶ୍ୱନାଥ ବାବୁ 'ଉତ୍କଳସାହିତ୍ୟ' ବାହାର କରୁଥିଲେ ।)

୩ । ପଦାକୁ ଦେଖାଇବା; କାଢ଼ିବା; ପ୍ରକାଶ କରିବା—
3. To exhibit; to show forth.
( ଯଥା—କେଳା କୁକୁର ବାହାର କରୁଛି । )

୪ । ଉଦ୍‌ଗିରଣ କରିବା—
4. To vomit forth; to eject.
( ଯଥା—ରେଳଗାଡ଼ି ଧୂଆଁ ବାହାର କରି ଚାଲିଛି । )

୫ । କୌଣସି ସ୍ଥାନରୁ ତଡ଼ି ଦେବା; ସ୍ଥାନାନ୍ତରିତ କରିବା—
5. To drive away; to expel.
( ଯଥା—ଶିକ୍ଷକ ଦୁଷ୍ଟ ପିଲାକୁ ସ୍କୁଲରୁ ବାହାର କରିଦେଲେ ।)

୬ । କୌଣସି ପଦାର୍ଥରୁ ସାର ବା ନିର୍ଯ୍ୟାସ ବା ତୈଳ ବା ରସ ନିଷ୍କାଶିତ କରିବା—6. To extract.
( ଯଥା—ବସାଦହିରୁ ଲହୁଣୀ ବାହାର କରାଯାଏ । )

୭ । ଦୋଷ, ଭ୍ରମ, ପ୍ରମାଦାଦି ଧରିବା—
7. To detect (any fault or mistake).
( ଯଥା—ଶିକ୍ଷକ ଛାତ୍ରର ଲେଖାରୁ ଅନେକ ଭୁଲ ବାହାର କଲେ । )

୮ । ଆବିଷ୍କାର କରିବା—8. To discover; to invent.
( ଯଥା—ଯେ ସାପ ବିଷର ଔଷଧ ବାହାର କରିବ ତାକୁ ସରକାର ପୁରସ୍କାର ଦେବେ । )

୯ । ଦେହରୁ ଅନ୍ତର କରିବା; ଦୂର କରିବା—
9. To part with; to put off.

କେ ହିଁ ସ୍ୱେଦ ଛଳରେ କରନ୍ତି ଚାଳବନ୍ତ ନ କରନ୍ତି ବାହାର—
ଦୀନକୃଷ୍ଣ. ରସକଲ୍ଲୋଳ ।

ବାହାରକୁ—ଦେ. କ୍ରି. ବିଣ (ସଂ. ବହିର)—୧ । ପଦାକୁ; ବହିର୍ଦେଶକୁ—
Bāhāraku बाहिरे **बाहार** 1. To the outside; out.
( ଯଥା—ବାବୁ ଆଜି ବାହାରକୁ ଯାଇଅଛନ୍ତି । )

୨ । ବାହାର ବା ବହିର୍ଭାଗରୁ ଦେଖିବା ପ୍ରକାରେ—
2. To an outsider; from an outside point of view.
(ଯଥା—ମହାକାଳଫଳ ବାହାରକୁ କେଡ଼େ ସୁନ୍ଦର ଦେଖାଯାଏ)

୩ । ଗୃହର ବାହାରେ; ଦାଣ୍ଡକୁ—
3. Outside the house; to the public.
( ଯଥା—ଘର ଭିତରର କଳଙ୍କ ବାହାରକୁ ବାହାରିଲେ ମୁଣ୍ଡ ଟେକି ଚାଲିବା ଦୁର୍ଘଟ ହୋଇ ଉଠେ । )

बाह्ये; बाह्य ବି—୧ । ଝାଡ଼ା; ମଳ—1. Stools; fæcus.
**झाडा; बाहार** ୨ । ଝାଡ଼ା ଫେରିବା; ମଳତ୍ୟାଗ କରଣ—
2. Easing one's self.

[ ଦ୍ର—ପୂର୍ବେ ପାଇଖାନା ପ୍ରଥା ନ ଥିଲା । ଲୋକେ ମଳତ୍ୟାଗ କରିବା ପାଇଁ ଗୃହର ବା ଗ୍ରାମର ବାହାରକୁ ଯାଉଥିବାରୁ ଝାଡ଼ା ଫେରିବା ଅର୍ଥରେ ବାହାରକୁ ଯିବା ବାକ୍ୟ ଚଳିଅଛି । ]

ବାହାରକୁ ଆସିବା—୧ । ଗୃହରୁ ଦାଣ୍ଡକୁ ଆସିବା—
Bāhāraku āsibā 1. To come out of the house.

ବାହିରେ আসা **बाहार आना** ୨ । ଧାଧାରଣରେ ପ୍ରକାଶିତ ହେବା
2. To be published ୩ । ମଳତ୍ୟାଗ କରିବା ପାଇଁ ଗୃହର ବହିର୍ଦେଶସ୍ଥ କୌଣସି ସ୍ଥାନକୁ ଆସିବା—
3. To come to a place to pass stools.

**ବାହାରକୁ ଛୁଆଁ**—ଦେ. ବିଣ—ଯେଉଁ ଲୁଗା ପିନ୍ଧି ମନୁଷ୍ୟ ଝାଡ଼ା Bāhāraku chhuāñ ଫେରିଥାଏ ସେ ଲୁଗାକୁ ପାଲଟି କିମ୍ବା (ବାହାର ଛୁଆଁ—ଅନ୍ୟରୂପ) ଧୋଇ ନ ଥିବା ଯୋଗୁଁ ଅଶୁଚି ছুআঁ (ହୋଇଥିବା ବ୍ୟକ୍ତି ବା ବସ୍ତ୍ର); ପୋଛଣ୍ଡରୁଅଁ— (a person who or the cloth which is) Impure or untouchable for the cloth not having been changed or washed after a person's passing stools.

**ବାହାରକୁ ବସିବା**—ଦେ. କ୍ରି—ଝାଡ଼ା ଫେରିବା;ମଳ ତ୍ୟାଗ କରିବା— Bāhāraku basibā To pass stools, to ease one's বাহ্যেবসা; **झाडाफीरना** self.

**ବାହାରକୁ ଯିବା**—ଦେ. କ୍ରି—ଝାଡ଼ା ଫେରିବାକୁ ଯିବା—To go Bāhāraku jibā out to ease one's self. বাহ্যে যাওয়া; **दिशाजाना, बाहारजाना**

**ବାହାରକୁ ହେବା**—ଦେ. ବି—ଝାଡ଼ା ବେଗ ଯୋଗୁଁ ବିଶେଷ Bāhāraku hebā ପରିମାଣରେ ପାଣିଆ ମଳତ୍ୟାଗ— বাহ্যে হওয়া Passing of liquid stools; e. g. in cholera **झाडाहोना, टट्टीहोना** or diarrhœa.

**ବାହାର ଖଞ୍ଜା**—ଦେ. ବି—ଗୃହର ଅନ୍ତଃପୁରର ବହିର୍ଭାଗରେ ଥିବା Bāhāra khañjā ଅଗଣା—Outer courtyard of a house; the courtyard beyond the harem of a house.
ବାହାର ଅଗଣା } ଅନ୍ୟରୂପ
ବାହାର ପରସ୍ତ }
বাহিরেরপরস্ত **बाहरका आँगन**

**ବାହାର ଗାଁ**—ଦେ. ବି—(ସ.ବହିର୍+ଗ୍ରାମ)—ଗ୍ରାମାନ୍ତର; ଅନ୍ୟଗ୍ରାମ— Bāhāra gāñ Another village (ବାହାର ଗାଆଁ—ଅନ୍ୟରୂପ) বাহিরগ্রাম; **बाहरगाँव**

**ବାହାର ଗାଉଁଆଁ**—ଦେ. ବି—ଅନ୍ୟଗ୍ରାମବାସୀ; ଗ୍ରାମାନ୍ତର ବାସୀ— Bāhāra gāuñāñ Inhabitant of another village. (ବାହାର ଗାଉଁଲି; ବାହାର ଗାଉଆଁ)—ଅନ୍ୟରୂପ বাহিরগাঁএঁর; **बाहरगाँवका**

**ବାହାର ଘର**—ଦେ. ବି—(ସ. ବହିର୍ଗୃହ) ବାହେ ଘର; ଗୃହସ୍ଥଳରେ Bāhāra ghara ଥିବା ପ୍ରଧାନ ଗୃହର ବହିର୍ଦେଶରେ ନିର୍ମିତ বাহিরের ঘর **बाहारीघर** ଗୃହ—Out-house.

**ବାହାର ଚିଲି(ଲ)କା**—ପ୍ରାଦେ. (ଚିଲିକା ଅଞ୍ଚଳ) ବି.—ଗଭୀର ଚିଲିକା; Bāhāra chili(la)kā ହ୍ରଦର କୂଳରୁ ଛାଡ଼ ଦୂରଦେଶସ୍ଥ ଅଂଶ— The outer Chilka lake; the portion of the Chilka lake lying far away from the shore.

[ଦ୍ର—ଚିଲିକା ହ୍ରଦର ଯେଉଁ ଅଂଶ ଖରାଦିନେ ନାବ୍ୟ, ଅର୍ଥାତ୍ ଯେଉଁଠାରେ ଖରାଦିନେ ଏକପୁରୁଷରୁ ବେଶି ପାଣି ରହେ ତାକୁ ବାହାର ଚିଲିକା ବୋଲାଯାଏ ।]

**ବାହାର ଛାତ୍ର**—ଦେ. ବି—(ଆଧୁନିକ ପ୍ରୟୋଗ) ସ୍କୁଲରେ ନ ପଢ଼ି ଯେଉଁ Bāhāra chhātra ଛାତ୍ର ପରୀକ୍ଷା ଦିଅନ୍ତି— বাহিরেরছাত্র **बाहरका छात्र** Out student.

**ବାହାର ଦରିଆ**—ଦେ. ବି. (ସ. ବହିର୍+ଫା. ଦରିଆ)—ମଝି ଦରିଆ; Bāhāra dariā ସମୁଦ୍ରର ଯେଉଁ ଅଂଶ କୂଳଠାରୁ ଦୂରବର୍ତ୍ତୀ; (ବାହାର ସମୁଦ୍ର—ଅନ୍ୟରୂପ) କଳାପାଣି—The outer sea; বাহার দরিয়া **बाहार दरीया** the deep sea; the open sea.

[ଦ୍ର—ଆନ୍ତର୍ଜାତୀୟ ଆଇନ୍ (International law) ଅନୁସାରେ ସମୁଦ୍ର ଉପକୂଳଠାରୁ ତିନି ମାଇଲରୁ ଅଧିକ ଦୂରବର୍ତ୍ତୀ ଅଂଶ ବାହାର ଦରିଆ ଅଟେ ଓ ଉକ୍ତ ଅଂଶରେ ସବୁ ଜାତିଙ୍କର ଜାହାଜ ଯିବା ଆସିବା କରିବାରେ କେହି ବାଧା ଦେଇ ପାରିବ ନାହିଁ ।]

**ବାହାର ଦୋଳ**—ଦେ. ବି—ଦୋଳଯାତ୍ରାର ଯେଉଁ ସମୟରେ ଠାକୁରଙ୍କୁ Bāhāra doḷa ଘରୁ ବା ଦେଉଳରୁ ବାହାରକୁ ଅଣାଯାଇ ଯାଏ। (ବାହାର ଫଗୁ—ଅନ୍ୟରୂପ) କରାଯାଏ—The period of the (ଘରର ଦୋଳ—ବିପରୀତ) Doḷajātrā festival during which the Idol is brought out of the temple and passes the time of the festi- বাহির দোল val outside the temple.

**ବାହାର ପୋଷାକ**—ଦେ. ବି—(ଫା. ବହାର୍) ସୁନ୍ଦର ଓ ଚକଚକିଆ Bāhāra poshaka ପୋଷାକ—Grand dress.

ଦେ. ବି. (ସ. ବାହ୍ୟ) ଯେଉଁ ପୋଷାକ ପିନ୍ଧି ଲୋକ **बाहारी पोषाक** ବାହାରକୁ (କଚେରୀ ଆଦିକୁ) ଯାଏ— 1. A dress for use outside one's home. বাহিরের পোষাক ୨ । ବହିର୍ବସ୍ତ୍ର—2. Outer garment.

**ବାହାର ଭିତର**—ଦେ. ବି (ବିପରୀତାର୍ଥକ ସହଚର ଶବ୍ଦ; ସ. ବହିଃ; Bāhāra bhitara +ଅଭ୍ୟନ୍ତର)—୧ । ବହିର୍ଦେଶ ଓ বাহির ভিতর **बाहर भीतर** ଅନ୍ତର୍ଦେଶ—1, Exterior and interior. ୨ । ଦେହ ଓ ମନ—2. Body and mind.

ତୋଳବେଳ ମୋର ବାହାର ଭିତର—କବିସୂର୍ଯ୍ୟ, କଣୋଇ ଚମ୍ପୂ ଗ ଗୀତ ।

ବିଣ—ବହିଃସ୍ଥ ଓ ଅନ୍ତରସ୍ଥ—Internal and external.

କ୍ରି. ବିଣ—ବାହାରେ ଓ ଭିତରେ—In and out; externally and internally, in external appearance and in internal thoughts.

**ବାହାର ମେକାପ**—ଦେ. ବି—ଯାତ୍ରାକାଳରେ ଦେବବିଗ୍ରହଙ୍କୁ ମନ୍ଦିରର Bāhāra mekāpa ବାହାରକୁଆଣିବା ସମୟରେ ତାଙ୍କର ବସ୍ତ୍ରାଳଙ୍କାରମାନଙ୍କ ପାଇଁ ଯେଉଁ ସେବକ ଦାୟୀ ରହନ୍ତି— The sebaka who is responsible for the clothes and ornaments of an Idol during the time it is taken out of the temple on festive occasions.

**ବାହାର ଲୋକ**—ଦେ. ବି—ପରିବାରର ବହିର୍ଭୂତ ବ୍ୟକ୍ତି; ବାଜେ ଲୋକ; ଜନସମ୍ପର୍କୀୟ ଲୋକ; ବେଉଲ୍ଲକାବାଦ-ବ୍ୟକ୍ତି—An outsider.
Bāhāra loka
বাহিরের লোক
**बाहर आदमी, बहरियालोक** [ ବାହାର ଶବ୍ଦ (ଶିଁ,ଳ)ଷ—ଅନଂରୂପ ]

**ବାହାର ସେବା**—ଦେ. ବି.—(ସ. ବହିଃ+ସେବା)—ଦେବଦେବୀ ବିଗ୍ରହର ଶ୍ରୀମୁଖକୁ ନ ଯାଇ ଯେଉଁ ସେବା କରାଯାଏ (ଯଥା—ମନ୍ଦିର ବେଢ଼ା ଓଲାଇବା, ଘଣ୍ଟ, କାହାଳୀ ଆଦ ବଜାଇବା, ବାସନ ମାଜିବା, ଚନ୍ଦନ ଘୋରିବା,)—The services which are performed outside the inner sanctuary of an Idol.
Bāhāra sebā

**ବାହାର ହେବା**—ଦେ. କ୍ରି—୧ । ବାହାରିବା; ବହିର୍ଗତ ହେବା—1. To come out
Bāhāra hebā
বাহিরহওয়া ବାହାର ହେଲେ ପଦ୍ମାବତୀ ପାଠ ଘଣୀ—ଯାମ । ଗୀତ
**बाहरहोना, निकलना** ୨ । ତାଡ଼ିତ ହେବା—2. To be expelled from.
(ଯଥା—ମାସେ ହେଲା ମୁଁ ଚାକିରୁ ବାହାର ହୋଇଛି ।)
୩ । କଥା ବା ଆଦେଶ ବା ନିଯମରୁ ବହିର୍ଭୂତ ହେବା; ନିଯମାଦ ନ ମାନିବା—3. To disobey
(ଯଥା—ମୁଁ ଆପଣଙ୍କ ହୁକୁମରୁ ବାହାର ହେବି ନାହିଁ । )
୪ । ସର୍ବସାଧାରଣରେ ଦେଖା ଦେବା—
5 To appear in pub lic.
୬ । କୌଣସି ଅଧିକାରରୁ ଚ୍ୟୁତ ହେବା—6. To be excluded from a previlage.
(ଯଥା—ସ୍ତ୍ରୀମାନେ ମାସକେ ଥରେ ଦାଣ୍ଡିରୁ ବାହାର ହୁଅନ୍ତି ।)

**ବାହାରି**—ପ୍ରାଦେ. (ଲଇଥ) ବି. ( ଭୁଲ.ହି. ବୁହାରୀ )—ଝାଡ଼ୁକାମୁଠା; ଝାଡ଼ୁ—Broomstick.
Bāhāri
ଦେ. ଅ—୧ । ପୃଥକ୍—1 Separate; distinct from.
୨ । ଭିନ୍ନ—2. Different from.

> କେ ବୋଇଲେ ପୁରୁଷ କେ ବୋଇଲେ ସ୍ତ୍ରୀପ
> କେତୁ ବୋଇଲେ ସ୍ତ୍ରୀ କଥାରୁ ବାହାରି ।
> କୃଷ୍ଣସିଂହ, ମହାଭାରତ ବନ ୫ ।

**ବାହାରିଆ**—ବୈଦେ. ବିଣ—( ଫା. ବହାର )—୧ । ସୌନ୍ଦର୍ଯ୍ୟମୟ; ମନୋମୋହକର—1. Beautiful; charming.
Bāhāriā
**बाहार** ୨ । ଜାକଜମକଥା—2. Splendid; grand.
**बाहरी** ଦେ. ବିଣ (ସ. ବହିସ୍) ବାହ୍ୟ—Outer; exterior.

**ବାହାରିଆ ପିଲା**—ପ୍ରାଦେ. (ଗଡ଼ଜାତ) ବି—ଯେଉଁ ବାଳକ ଭୃତ୍ୟମାନେ ରାଜାଙ୍କ ଅନ୍ତଃପୁରରୁ ବାହାରକୁ ସମ୍ବାଦ ନେବା ଆଣିବା କରନ୍ତି—Servant boys employed in carrying messages to and from a Raja's harem.
Bāhāriā pilā

**ବାହାରି ଆସିବା**—ଦେ. କ୍ରି—ସ୍ଥାନ ତ୍ୟାଗ କରି ଚାଲି ଆସିବା—To come away.
Bāhāri āsibā
বেরিয়ে আসা **बाहरआना**

**ବାହାରି ପଡ଼ିବା**—ଦେ. କ୍ରି—୧ । ଯାତ୍ରାର୍ଥ ଅନୁକୂଳ କରିବା—1. To start on a journey.
Bāhāri paṛibā
বেরিয়ে পড়া ୨ । ମନରୁ ବା ଆପେ ଆପେ ପ୍ରକାଶିତ ହୋଇ ପଡ଼ିବା—
**बाहर निकलना** 2. To be expressed suddenly or of its own accord. ୩ । ସର୍ବସାଧାରଣରେ ପ୍ରକାଶିତ ହେବା—3. To be published or divulged.
[ ଦ୍ର—ପଇସା ଥିବା ପର୍ଯ୍ୟନ୍ତ ଜିଲ୍ଲା କଂଗ୍ରେସ କମେଟିବାଲେ ଟୁଙ୍ଗ୍ ଟୁଙ୍ଗ୍ ହେଉଥିଲେ; ଭୁଶ ଯେଉଁଠୁଁ ସରିଲା ତନ୍ତୁ ଅବସ୍ଥା ହେଲା କାପ୍ କାପ୍, ଆଉ ବାହାରି ପଡ଼ିଲା ସତକଥା—ଉତ୍କଳ ସେବକ । ]

**ବାହାରି ବଳଦ୍**—ପ୍ରାଦେ. (ସମ୍ବଲପୁର) ବି—ଶଗଡ଼ ବା ହଳର ଡାହାଣ ବଳଦ—The right side bullock of a cart or plough.
Bāhāri balad
[ ଦ୍ର—ଏହାକୁ ଅଡ଼ାଇବାରେ ବ୍ୟବହୃତ ଡାକ :—'ଅରିରେ ଅରି' । ]

**ବାହାରିବା**—ଦେ. କ୍ରି—(ସ. ବହିସ୍)—୧ । ବହିର୍ଗତ ହେବା —1. To come out.
Bāhāribā বাহিরান, বেরন
**बाहरहोना, निकलना** ୨ । ବାହାରକୁ ବା ପଦାକୁ ଯିବା—2. To go out.
(ଯଥା—ଗୁରୁଟାବେଳେ ସ୍କୁଲର୍ ଶିକ୍ଷକ ଓ ଛାତ୍ର ସମସ୍ତେ ବାହାରିଲେ ଘରେ ଶୁନ୍ୟ ପଡ଼ିବ ।)
୩ । ସ୍ଥାୟୀ ନ ହେବା—3. Not to stay.
(ଯଥା—ତୋ କଥାଗୁଡ଼ାକ ମୋର ଏ କାନରେ ପଶି ସେ କାନରେ ବାହାରୁଛି ।)
୪ । ଦୃଷ୍ଟିଗୋଚର ହେବା; ଦେଖାଯିବା; ଆବିର୍ଭୂତ ହେବା—4. To appear; to be seen.
ଅଳି ଗୋଳି ଗୋଳି ମହାଦେବ ବାହାରିଲେ—ଢଗ ।
୫ । ସ୍ଥାନାନ୍ତରକୁ ଗତି କରିବାକୁ ଆରମ୍ଭ କରିବା; ଯାତ୍ରା-ପାଇଁ ଅନୁକୂଳ କରିବା—5. To start on a journey.
(ଯଥା—ମୁଁ ଆଜ କଟକରୁ କଲିକତା ବାହାରିଲି)
୬ । ପ୍ରକଟିତ ହେବା; ସାଧାରଣରେ ପ୍ରକାଶିତ ହେବା—6. To be published
(ଯଥା—ଭାଷାକୋଷର ୪ ଗୋଟି ଖଣ୍ଡ ବାହାରିଲାଣି ।)
୭ । ଉଚ୍ଚାରିତ ହେବା—7. To be uttered.
(ଯଥା—ମୋ ମୁହଁରୁ ପୁରାଣ ବାହାରିବ ଯେ ।)
୮ । ପ୍ରସ୍ତୁତ ହେବା; ଉଦ୍ୟତ ହେବା—8. To be ready for; to prepare for.
(ଯଥା—ମୁଁ ବର୍ତ୍ତମାନ ଖାଇବାକୁ ବାହାରୁଛି ।)
୯ । ଭୂମିରୁ ଉଠିବା—9. To shoot out of the ground.
(ଯଥା—ଧାନରୁ ଗଜା ବାହାରିଲାଣି ।)
୧୦ । ( ନଦୀ ପର୍ବତାଦିରୁ ) ନିର୍ଗତ ହେବା—10. To issue forth; to rise from (said of a river from a mountain or lake).

(ଯଥା—ଗଙ୍ଗା ହିମାଳୟରୁ ବାହାରିଛି ।)

୧୧ । ଗୃହ ବା ପାତ୍ର ମଧ୍ୟରୁ ବାହାରକୁ ଆଣୀତ ହେବା—11. To be brought out of a receptacle.

(ଯଥା—ଆଜି ଖରା ଦିଆ ଯିବା ନିମନ୍ତେ ବହି ପତ୍ର ସବୁ ଆଲମାରିରୁ ବାହାରିଛି ।)

୧୨ । ଅଗ୍ରବର୍ତ୍ତୀ ହେବା; ଅଗ୍ରଗାମୀ ହେବା—12 To go ahead; to lead; to come forward.

ସାକ୍ଷାତ ହେଲା ପରେ ସାକ୍ଷୀ ଦେବାକୁ ବାହାରି

କବିସୂର୍ଯ୍ୟ, ରତ୍ନାକର, ଚମ୍ପୂ, ସଙ୍ଗୀତ ।

୧୩ । (ଜଳ ଆଦିର) ସମତଳରୁ ଉପରକୁ ଉଠିବା—13, To shoot out to rise above a level.

(ଯଥା—ପୋଖରୀରେ ଗୋଡ଼ାଏ ବାଉଁଶ ଖେଣ୍ଟା ବାହାରିଛି ।)

୧୪ । ଅନେକ ବସ୍ତୁ ବା ବ୍ୟକ୍ତି ମଧ୍ୟରୁ ଉତ୍କୃଷ୍ଟତମ ହୋଇ ଜଣା ପଡ଼ିବା—14, To rise prominently from amongst a mass.

(ଯଥା—ଆମ ବଂଶରୁ ଜଣେ କେହି ହେଲେ ପାଠପଢ଼ୁଆ ହୋଇ ବାହାରିଲେ ନାହିଁ ।)

୧୫ । ଉଇଁବା; ଉଦିତ ହେବା—15. To rise.

(ଯଥା—ପଶ୍ଚିମ କୋଣରୁ ଖଣ୍ଡେ ମେଘ ବାହାରିଲାଣି ।

୧୬ । ଜଣା ପଡ଼ିବା—16. To become known.

ବାହାର ହେବା ବରନ୍ନ ତ୍ରାହିମ ଭରସା ।

ଭକ୍ତ• ବୈଦେହୀଶ ବିଳାସ ।

୧୭ । ପୃଥକ୍ ହେବା—18. To be separated from.

୧୮ । ବିଭିନ୍ନ ହେବା—18. To be different from.

[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଆସିବା, ପଡ଼ିବା, ଯିବା କ୍ରିୟାର ସମାପିକା ରୂପ ମଧ୍ୟ ଯୁକ୍ତ ହୁଏ ।]

ବାହାରି ଯିବା—ଦେ. କ୍ରି—୧ । ଫୁଗୁଲି ଯିବା—
Bāhāri jibā 1. To be loosened.
বেরিয়ে যাওয়া ୨ । ସ୍ଥାନ ଛାଡ଼ି ଚାଲି ଯିବା—
**निकलजना; बाहार जाना** 2, To go away.

ଦଣ୍ଡ ବାଳ ଅଇଁସି ଯେ ଯାହା ଘରକୁ

ବାହାରି ଗଲେ କଥା ନ କହୁ କାହାକୁ । କୃଷ୍ଣସିଂହ. ମହାଭାରତ ବନ ।

ବାହାରେ—ଦେ. ଅ. —୧ । ଛଡ଼ା; ବ୍ୟତୀତ —
Bāhāre বাইরে **बाहर** 1. Besides; over and above.

ଏ ବାହାରେ କପିହ ହରିଣଙ୍କ ମାଂସ

ଅନ୍ନ ଭୁଲରେ ପାକ କରାଇ ବିଶେଷ । କୃଷ୍ଣସିଂହ ମହାଭାରତ ସଭା ।

୨ । ଅଧିକନ୍ତୁ—2. Moreover; in addition.

୩ । ବହିର୍ଜଗତର ଦୃଷ୍ଟିରେ—3. To the eyes of the outside public.

ଭିତରେ ଭିତରେ ସଜ୍ଜ ସୁତରି ବାହାରେ ଲଟିଛି କଳ । ଭୃଗ ।

୪ । ଆନୁସଙ୍ଗିକ ବିଷୟକୁ ପ୍ରଣିଧାନ ନ କରି—4. Without diving deep into a matter.

ସାହାରେ ମାର ବାହାରେ ଠିଆ—ଭଗ ।

୫ । (ଦେଖ)—5. Bāhābā 1 (See)

ଦେ. କ୍ରି. ବିଣ—ବାହାରେ ବାହାରେ (ଦେଖ)
Bāhāre bāhāre (See)

ବାହାରେ ବାହାରେ—ଦେ• କ୍ରି. ବିଣ—୧ । ଭିତରକୁ ନ ଯାଇ;
Bāhāre bāhāre ଅନ୍ତର୍ଦେଶକୁ ସ୍ପର୍ଶ ନ କରି—1. Without
বাইরে বাইরে **बाहर बाहार** affecting or touching the interior.

ବାଟ ମଲା, ନାଁ, ରୋଗ ବାହାରେ ବାହାରେ ଗଲା—ଭୃଗ ।

୨ । ବାହ୍ୟ ଭାବରେ—2 Externally.

(ଯଥା—ବାହାରେ ମାଳ ଚଡ଼ା ପଇତାରେ ସୀମା ନାହିଁ, ଭିତରେ ଘର ଗଲା କାଟିବାକୁ ଚଣ୍ଡାର ବରାମ ନାହିଁ )

୩ । ବାହାର ଲୋକେ ଜାଣିବାକୁ—3. As seen by an outsider. ୪ । କୌଣସି ସ୍ଥାନକୁ ସ୍ପର୍ଶ ନ କରି—4. Without touching a particular place.

୫ । ସିଧାଏ ସିଧାଏ—5. Straight; direct.

(ଯଥା—ମୁଁ କଟକରୁ ସତ୍ୟବାଦୀ ନ ଯାଇ ବାହାରେ ବାହାରେ ପୁରୀକୁ ଆସିଲି ।)

୬ । ଆନୁସଙ୍ଗିକ ବିଷୟକୁ ପ୍ରଣିଧାନ ନ କରି—6. Without diving deep into a matter.

(ଯଥା—ହାକିମ ଭିତରକୁ ନ ପଶି ବାହାରେ ବାହାରେ ଏ କଥାଟା ଫଇସଲ କରି ଦେଲେ ।)

ବାହାଲ—ପ୍ରାଦେ• (ସମ୍ବଲପୁର) ବି—୧ । (ଶାରଦ ଧାନ ହେବା) ଖାଲ
Bāhāl ଜମି—1. Low land fit for winter paddy.
(ବେରନା—ବିପରୀତ) ୨ । ବାହାଲ (ଦେଖ)—
2. Bāhāla (See)

ବାହାଲ୍—ବୈଦେ. ବିଣ—(କଚେରିଆ)—(ଫା. ବହାଲ୍=ପର୍ବବତ୍
Bāhāl ସ୍ଥିତ; ଯେଉଁପରି ଥିଲା ସେହିପରି)—୧ । ସ୍ଥିର; ସୁପ୍ରତିଷ୍ଠିତ-
বাহাল **बहाल** 1. Established; settled. ୨ । ସ୍ଥାୟୀ—
(ବାଯ୍ୟାପ୍ତ—ବିପରୀତ) 2. Permanent. ୩ । କାଏମ୍; ବହାଲ୍
3. Confirmed; upheld. ୪ । ଅପରିବର୍ତ୍ତିତ—
4. Constant; unchanged, unmodified.

୫ । ପରବର୍ତ୍ତୀ ବା ଉପରସ୍ଥ ହାକିମଙ୍କ ଦ୍ୱାରା ପୁନଃ ସିଦ୍ଧ କରା ଯାଇ ଥିବା (ଆଦେଶ)—5. Subsequently ratified (order).

୬ । ଇଂରାଜ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ନିଷ୍କରରୂପେ ମଞ୍ଜୁର କରା ଯାଇଥିବା (ମରହଟ୍ଟା ଓ ଓଡ଼ିଆ ରାଜାଙ୍କ ପ୍ରଦତ୍ତ ନିଷ୍କର ଜମି) 6. Confirmed (rent-free tenure). ୭ । କାର୍ଯ୍ୟ ବା ଚାକିରିରେ ନିଯୁକ୍ତ—7 Employed or engaged in a post. ୮ । କାର୍ଯ୍ୟ ବା ଚାକିରିରେ ପୁନଃ ନିଯୁକ୍ତ—8. Reinstated in service. ୯ । କାର୍ଯ୍ୟପଦରେ ସ୍ଥାୟୀ ଭାବରେ ନିଯୁକ୍ତ—9. Confirmed in a post.

ବି ( ଫା. ବହାଲୀ )—୧ । ପରବର୍ତ୍ତୀ ଆଦେଶଦ୍ୱାରା
ପୂର୍ବ ଆଦେଶର ସ୍ଥିରୀକରଣ; ବହାଲ୍ ରଖିବା—
বাহালী 1. Confirmation of a previous order;
**बहाली** upholding of an order.

ପୋଷ୍ୟପୁତ୍ର ବୋଲି ସରକାରରୁ ବାହାଲ ହୋଇ ଆସିଲା—ଫକୀରମୋହନ ଗଳ୍ପସ୍ୱଳ୍ପ

୨ । ଅସ୍ଥାୟୀ ନିଯୁକ୍ତି ବା ମନୋନୟନକୁ ସ୍ଥାୟୀ କରିବାର ଆଦେଶ କରଣ—2. Confirmation of a temporary employment or nomination.

ସେଥିମଧ୍ୟରୁ ଗୁରୁନସ୍ୱର ଗୃହାକୁ ବାହାଲ ରଖି ଆଉ ଆଉ ଲୋକମାନଙ୍କୁ ଗୋଳମାଳ କଲେ
ଫକୀରମୋହନ ଛ ମାଣ ଅଠ ଗୁଣ୍ଠ

୩ । ସ୍ଥାୟୀକରଣ—3. Making permanent.

୪ । ପୂର୍ବ ରାଜାଙ୍କଦ୍ୱାରା ନିଷ୍କରରୂପେ ପ୍ରଦତ୍ତ ଭୂମି, ଯାହା କି ପରବର୍ତ୍ତୀ ଇଂରାଜ ସରକାରଙ୍କଦ୍ୱାରା ପୂର୍ବ ପରି ନିଷ୍କର ରୂପେ ମଞ୍ଜୁର କରାଗଲା; ଲାଖରାଜ ବାହେଲ ସ୍ୱତ୍ୱ—4 Confirmed revenue free holding.

(ଯଥା—ଲାଖରାଜ ବାହାଲ୍, ଦେବୋତ୍ତର ବାହାଲ୍, ପୀରୋତ୍ତର ବାହାଲ୍, ବ୍ରହ୍ମୋତ୍ତର ବାହାଲ୍ ଇତ୍ୟାଦି ।)

୫ । କାମ ବା ଚାକିରିରେ ନିଯୁକ୍ତିକରଣ—5. Employing or engaging a person in service; appointing to a post. ୬ । ବରଖାସ୍ତ ହୋଇଥିବା ଚାକରକୁ ପୁନର୍ବାର ଚାକିରିରେ ନିଯୁକ୍ତ କରିବା; ପୁନର୍ନିଯୁକ୍ତି—6. Reinstatement in service; restoration.

**ବାହାଲ**—ଦେ. ବି (ସଂ. ବାହୁ)—୧ । ଯନ୍ତ୍ରଶାଳରେ (ପାଣିକୁହାରେ) କପକନା ଉପରେ ଯେଉଁ ବଡ଼ ବାଉଁଶ ଲଗା ଯାଇଥାଏ-
Bāhāla
**पछी**
1. The long bamboo pole used as crane in a water lifting contrivance.

[ଦ୍ର—ଢେଣ୍ଡା ଓ ଯନ୍ତ୍ରଶାଳର ଦୁଇ ଖୁଣ୍ଟ ଉପରେ ଆଡ଼ବାଗରେ ପଡ଼ିଥିବା ବାଉଁଶ ବା ଶାଖାଯୁକ୍ତ କାଠଖଣ୍ଡ(କପକନା)ଉପରେ ଯେଉଁ ଲମ୍ବ ଦଣ୍ଡା ଥାଏ ତାହାକୁ ବାହାଲ ବୋଲାଯାଏ;ସେ ଦଣ୍ଡାର ଗୋଟିଏ ପାଖରେ ଝାଟିମାଟି ବା ପଥର ଲଦା ହୋଇଥାଏ, ଅନ୍ୟ ପାଖରେ ଗୋଟିଏ ଲଗି ବନ୍ଧାଯାଇ ଲଗିର ନିମ୍ନରେ ଗୋଟିଏ ହାଣ୍ଡି ବା ଯନ୍ତ୍ରର ମୂଳ ଲାଗିଥାଏ । ଏହି କୋଲୋକୁ ଲଗିକୁ ହାତବାଉଁଶ କୁହାଯାଏ ।]

୨ । (ପାନ ବରଜୀ ଭାଷା) ପାନ ବରଜରେ ପାନ ଗଛ (ଲତାର ଏକଧାବସ୍ଥିତ, ୨ଟି ଶ୍ରେଣୀ)ର ଦୁଇ ପାର୍ଶ୍ୱ—2. The two sides of a row of betel creepers planted together.

[ଦ୍ର—ପାନ ଲତାର ଏକଧାବସ୍ଥିତ ୨ଟି ଧାଡ଼ିର ମଝିରେ ପୋତା ଯାଇଥିବା ଯଷ୍ଟି ଉପରେ ଲତାମାନ ମଡ଼ାଯାଏ; ଏହି ୨ଧାଡ଼ିକୁ 'ଗଛ' ବୋଲାଯାଏ । 'ଗଛର' ପାର୍ଶ୍ୱଦ୍ୱୟକୁ ବାହାଲ ଓ ମୁଣ୍ଡକୁ 'ମୁଣ୍ଡ' ବୋଲାଯାଏ ।]

୩ । (ବୈଦ୍ୟକ)—ଏକପ୍ରକାର ଗଛ—3. A kind of medicinal plant.

[ଦ୍ର—ଏହାର ମୂଳର ଛାଲର ପ୍ରଲେପ ବ୍ରଣ, ଶୋଥ ଓ ବାତବେଦନା ନିବାରଣାର୍ଥ ବ୍ୟବହୃତ ହୁଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

ବିଣ— ବାହାଲିଆ (ଦେଖ)—Bāhāliā (See)

ପ୍ରାଦେ (ଗଞ୍ଜାମ) ବି— ଚୋଡ଼ି ମାଛ—The bill fish

(ବାଲେଶ୍ୱର) ବି—ସାମୁଦ୍ରିକ ମତ୍ସ୍ୟବିଶେଷ—A kind of salt water fish.

[ଦ୍ର—ଏହା ଫିରକିଜାତୀୟ ବଡ଼ ମାଛ; ଦେଖିବାକୁ ଈଷତ୍ କଳା ଏବଂ ଓଜନରେ ଦୁଇ ସେର ପର୍ଯ୍ୟନ୍ତ ବଢ଼େ ।]

(ସିଂହଭୂମ) ବିଣ (ଭୁଲ. ହିନ୍ଦୀରେ ଏହି ଅର୍ଥରେ ଏହି ଶବ୍ଦର ପ୍ରୟୋଗ)—ପ୍ରଫୁଲ୍ଲ; ପ୍ରସନ୍ନ—Delightful; joyous.
(ଯଥା—ମନ ବାହାଲ ହେବା=ମନ ପ୍ରଫୁଲ୍ଲ ହେବା ।)

**ବାହାଲ କରିବା**—ଦେ. କ୍ରି—(ଫା. ବହାଲ୍) ୧ । ପୂର୍ବ ଆଦେଶକୁ ମଞ୍ଜୁର୍ ବା ଦୃଢ଼ କରିବା—1. To confirm a previous order; to uphold a previous order.
Bāhāla karibā
বাহালকরা
**बहालकरना**
୨ । (କୌଣସି ବ୍ୟକ୍ତିକୁ) କାମରେ ନିଯୁକ୍ତ କରିବା—2. To appoint a person to a post. ୩ । କୌଣସି ଅସ୍ଥାୟୀ କର୍ମଚାରୀକୁ ସ୍ଥାୟୀ କରିବା—3 To confirm a person in a service. ୪ । ବରଖାସ୍ତ ବ୍ୟକ୍ତିକୁ କାମରେ ପୁନର୍ନିଯୁକ୍ତ କରିବା—4. To reinstate a person in service.
୫ । ପୂର୍ବର ସନନ୍ଦକୁ ମଞ୍ଜୁର କରିବା—5. To confirm or ratify a previous grant.

**ବାହାଲ ଖୁଣ୍ଟ(ଣ୍ଟି)**—ଦେ. ବି—ଯେଉଁ ଦୁଇଖୁଣ୍ଟରେ ପଡ଼ିଥିବା ଆଡ଼ି ଧାରଣା ଉପରେ ବାହାଲ ସଲଗ୍ନ ହୋଇଥାଏ—The pillars supporting the crane in a water-lifting contrivance.
Bāhāla khuṇṭa(ṇṭi)
**ढिटकी; गोरी**

**ବାହାଲ ଫଇସଲା**—ବୈଦେ. ବି (ଫା. ବହାଲୀ+ଫୈସଲା)—ଯେଉଁ ଆଦେଶ ବା ଡିକ୍ରୀ ଦ୍ୱାରା ପୂର୍ବ ରାଜାମାନଙ୍କ ପ୍ରଦତ୍ତ ନିଷ୍କର ବର୍ତ୍ତମାନ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ କର୍ମଚାରୀମାନଙ୍କ ଦ୍ୱାରା ତଦନ୍ତ କରାଯାଇ ଆଇନ୍ କାନୁନ୍ ମୁତାବକ 'ବାହାଲ ଲାଖରାଜ' ରୂପେ ଅର୍ଥାତ୍ ପ୍ରକୃତ ଲାଖିରାଜ ବୋଲି ବାହାଲ ବା ମଞ୍ଜୁର କରାଗଲା—Decree of a court confirming a revenue-free tenure.
Bāhāla phaisalā
বাহাল ফয়সালা
**बहाली फैसला**

**ବାହାଲ(ଲି) ବରଖାସ୍(ସ୍ତ)**—ବୈଦେ ବି (ଫା ବହାଲୀ+ବରଖାସ୍ତ୍) (ବିପରୀତାର୍ଥ ସହଚର ଶବ୍ଦ) କାର୍ଯ୍ୟରେ ବା ଚାକିରିରେ ନିଯୁକ୍ତି ଓ ମାତୁଲ କରିବା--Appointing and dismissing; appointment and dismissal from service.
Bāhāla(li) barakhās(st)
বাহাল বরখাস্ত **बहाल बरखास्त**

**ବାହାଲ ବାଉଁଶ**—ଦେ. ବି—(ସଂ. ବାହୁ+ବଂଶ)— ବାହାଲ ୧ (ଦେଖ)·
Bāhāla bāuṅśa
Bāhāla 1 (See)

**ବାହାଲ ବାଯ୍ୟାପ୍ତ(ପ୍ତି)**—ବୈଦେ.ବି(ଫା.ବହାଲ୍+ବାଜ୍ୟାପ୍ତ;ବିପରୀତାର୍ଥକ ସହଚର)—୧ । ମଞ୍ଜୁର ଓ ନାମଞ୍ଜୁର—1. Granting and rejecting (a petition).
Bāhāla bājyāpta(pti)
**बहाल बाज्याप्त** ୨ । କେତେକ ନିଷ୍କର ଜମିକୁ ନିଷ୍କର ବୋଲି ସ୍ୱୀକାର କରିବା ଓ ଅନ୍ୟ କେତେକ ଭୂମିରେ କର ବସାଇବା—2. Confirmation and resumption of revenue-free tenures.
বাহাল বাজেয়াপ্ত

**ବାହାଲ ହେବା**—ଦେ. କ୍ରି (ପୂର୍ବ ମୀମାଂସା) ରକ୍ଷିତ ବା ଦୃଢ଼ୀକୃତ ହେବା; ସ୍ଥିରୀକୃତ ହେବା—To be restored; to be retained or confirmed.
Bāhāla hebā
বাহাল হওয়া **बहाल होना**

(ଯଥା—ଜମ୍ମ ଅଦାଲତଙ୍କ ସ୍ୱଏ ବାହାଲ ଦେଲ)

[ ଦ୍ର—ରାଜା, ବଡ଼ଲୋକ, ରାଣୀମାନେ ଚାଲିଲାବେଳେ ଆପଣା ଦୁଇ ବାହୁକୁ ପାଖରେ ଚାଲୁଥିବା ଦୁଇ ବ୍ୟକ୍ତିଙ୍କ ହାତରେ ଭାର ରଖି ଚାଲିବାର ପ୍ରଥା ପୂର୍ବେ ଖୁବ୍ ଚଳୁଥିଲା ।]

**ବାହାଲଦ ଦେବା**—ଦେ. କ୍ରି (ପ୍ରାଚୀନ ପଦ୍ୟ)—୧ । ବାହୁ ଆଶ୍ରୟ ଦେବା—1. To support the arm of a walking person.
Bāhālāda debā
୨ । ( ବଡ଼ଲୋକ ବା ରାଜା ) ଚାଲିଲାବେଳେ ଅପଣାର ଦୁଇବାହୁକୁ ଦୁଇପାଖରେ ଥିବା ଲୋକଙ୍କ ହାତରେ ରଖିବା—To put one's arms on the hands of 2 persons walking on both sides (of a grand or great person).
**बाँहादेना**
୩ । ଚାଲୁଥିବା ବ୍ୟକ୍ତିଙ୍କର ବାହୁକୁ ଆପଣା ହାତରେ ସମ୍ଭାଳିବା—3. To support the arm of a walker on one's hand.

ବେନ ପାଶ୍ୱରେ ସଖୀ ବାହାଲଦ ଦେଇ
ବୃନ୍ଦାବନ ମନ୍ଦରକୁ ଅଣନ୍ତି ଚଳାଇ । ପ୍ରାଚୀ—ରହସ୍ୟମଞ୍ଜରୀ ।

**ବାହାଲି**—ଦେ. ବି—୧ । ଖେଳିବା ନିମନ୍ତେ ଉପଯୁକ୍ତ ଭଲ କଉଡ଼ି—1. Excellent cowries for the purpose of playing games with.
Bāhāli
(ବାଉଳି, ବାଲି—ଅନ୍ୟରୂପ)
୨ । ଏକପ୍ରକାର କଉଡ଼ି ଖେଳ—2. A kind of game at cowries.
ବିଣ—୧ । (ସଂ. ବହ୍ ଧାତୁ ଣିଚ) ଯେ କଉଡ଼ି ଖେଳରେ କଉଡ଼ିକୁ ଚାଳେ—1. A player who moves the cowries on the play-board. ୨ । ଯେ ନାବ-ଆଦିକୁ ବାହେ ଅର୍ଥାତ୍ ଚାଳିତ କରାଏ—2 Boatman.

**ବାହାଲୁ**—ଦେ. ବି ( ସଂ, ବହୁବାର )—ଶ୍ଲେଷ୍ମାତକ; ଗର୍ଦ୍ଦଣା ( ଗଛ ) ( ହରେକୃଷ୍ଣ, ଦ୍ରବ୍ୟଗୁଣ )—Cordia Myxa.
Bāhālu

**ବାହା(ଆ)ସାଆ(ହା)**—ଦେ. ବି—୧ । (ନିରର୍ଥକ ସହଚର ଶବ୍ଦ; ତୁଳ୍ୟ ସଂ. ବିବାହ ଓ ଅ·ସାଧୁ) ବିବାହ—1.Marriage. ବିଏଥା ( ଯଥା—ସେ ଅନାଥ ହୋଇ ବୁଲୁଥିଲା, ତାକୁ ମୁଁ ଆଶ୍ରୟ ଦେଇ ବାହା ସାହା କରାଇ ଦେଲି । )
Bahā(ā) sā-ā(hā)
**बयाहसादी**
( ବାହାଭୁ[ତୋ]ଳା—ଅନ୍ୟରୂପ )
୨ । ( ସଂ. ବାହୁ+ସହାୟ ) ବାହୁର ସାହାଯ୍ୟ; ଆଶ୍ରୟ; ଅବଲମ୍ବନ—2. Shelter; protection.

ଯାହା ବାହା ସାହା ଲଭ ବସିଥିଲୁଁ—ଭକ୍ତଚରଣ, ମଥୁରାମଙ୍ଗଳ ।

**ବାହାସୂତା**—ପ୍ରାଦେ. ( ସମ୍ବଲପୁର ) ବି—ବାହୁରେ ପିନ୍ଧାଯିବା ଧାତୁମୟ ସୂତ୍ରଯୁକ୍ତ ଅଲଙ୍କାରବିଶେଷ—A kind of armlet
Bāhāsutā **बाँहसूता**

**ବାହି**—ଦେ. ବି ( ସଂ. ବାହୁ )—୧ । ଏକହାତରେ ପିନ୍ଧାଯିବା ଶଙ୍ଖା ବା କାଚମୁଠା—1. An armful of bangles; a set of bangles put on from the wrist to the elbow of one hand.
Bāhi
**बाँही**
୨ । ହାତର କଚଟିଠାରୁ କହୁଣୀ ପର୍ଯ୍ୟନ୍ତ ପିନ୍ଧାଯିବା କାଚ ବା ଶଙ୍ଖା—2. A double set of bangles worn from the wrist to the elbow.

ବାହି ଶଙ୍ଖ, ଝାଞ୍ଜ ମନ ମାନବ ନେଇ
ବାହି ଭୁଜ ଭୁବେଣୀରେ ଥୋଇ ଲୋଡଇ—ଭଞ୍ଜ ବୈଦେହୀଶବିଳାସ ।

୩ । ପାଶ୍ୱ—3. Side.

**ବାହିଆ**—ଦେ. ବି ( ସଂ. ବହ୍ ଧାତୁ )—୧ । ଧାନ ହଳାକୁ ଉପର୍ଯ୍ୟୁପରି ଏକଥାକରେ ଅଗ କରି ରଖିବା ଗଦା—1. A heap of paddy sheaves, one sheaf deep.
Bāhiā
**बलग**
(ବାଇଆ—ଅନ୍ୟରୂପ)
୨ । ( ସଂ. ବାହୁ ) ବୃକ୍ଷର ବଡ଼ ଶାଖା—2. Big branch of a tree.

**ବାହିଆ କରିବା**—ଦେ. କ୍ରି—(ଜଣେ କଟାଳି) ଆପଣାର କାଟିଥିବା ସମସ୍ତ ଧାନ ହଳାମାନଙ୍କୁ ଗୋଟିଏ ଗଦାରେ ସଜ୍ଜିତ କରିବା—To arrange the sheaves ( cut by one reaper ) in a heap.
Bāhiā karibā
**बलग करना**

**ବାହିଆ ମୁକୁଳା(ଲେ)ଇବା**—ଦେ. କ୍ରି—ଜଣେ କଟାଳିର କାଟିଥିବା ଓ ବାହିଆ କରାଯାଇଥିବା ସମସ୍ତ ହଳା-ମାନଙ୍କୁ ଗଣତି କରି ଉକ୍ତ କଟାଳିର ପାରିଶ୍ରମିକ ହଳା ତାକୁ ଦେବା—To open up a heap of sheaves reaped by a reaper and give the reaper a portion out of them as his or her wages, at a fixed customary rate.
Bāhiā mukulā(le)ibā
**बोनदेना**

**ବାହି ଆସିବା**—ଦେ. କ୍ରି ( ମାଦଳା ପାଞ୍ଜି )—ସୈନ୍ୟ ସହିତ ଯୁଦ୍ଧକୁ ଅଗ୍ରସର ହେବା; ସୈନ୍ୟ ସହ ଆକ୍ରମଣ କରିବା—To march into a country with one s army.
Bāhi āsibā

**ବାହକ**—ସଂ. ବି (ବହ ଧାତୁ ଣିଚ+କର୍ତ୍ତୃ.କ)—୧ । ଶଗଡ଼; ବଳଦଗାଡ଼ି ( ହ୍ରି ଶ )—1. Bullock cart.
Bāhika
୨ । ଢକ୍କା ( ହ୍ରି. ଶ )—2. Drum.

**ବାହକା**—ସଂ. ବି. ସ୍ତ୍ରୀ ( ବାହକ+ସ୍ତ୍ରୀ ଆ )—ସ୍ତ୍ରୀ ବାହକ; ବୋହିଆଣି—A female porter.
Bāhikā
ବିଣ. ସ୍ତ୍ରୀ—ବାହକର ସ୍ତ୍ରୀଲିଙ୍ଗ—Feminine of Bāhaka.

**ବାହି କାଚ**—ଦେ. ବି—ଯେଉଁ କାଚମୁଠା ହାତରେ କଚଟିଠାରୁ କହୁଣୀ ପର୍ଯ୍ୟନ୍ତ ପିନ୍ଧାଯାଏ—Glass bangles worn from the wrist upto the elbow.
Bāhi kācha
**काचका चुडी**

**ବାହି ଖଡ଼ୁ**—ଦେ. ବି—ଇତରଜାତୀୟା ସ୍ତ୍ରୀମାନେ କଚଟିଠାରୁ କହୁଣୀ ପର୍ଯ୍ୟନ୍ତ ଯେଉଁ କଂସାର ବା ପିତଳର ଚୁଡ଼ି ପିନ୍ଧନ୍ତି—Broad metal wristlets worn by low caste women from the wrist upto the elbow.
Bāhi khardu
**चूडी**

**ବାହିତ**—ସଂ. ବି ( ବହ ଧାତୁ ଣିଚ; ବାହି ଧାତୁ+କର୍ମ ତ )—
Bāhita ୧ । ବୁହା ଯାଇଥିବା; ଅନ୍ୟଦ୍ୱାରା ବୁହାଯାଇଥିବା—1 Caused to be carried from one place to another. ୨ । ସ୍ଥାନାନ୍ତରିତ ପ୍ରାପିତ—2. Moved from one place to another.
୩ । (ନୌକାଦି) ଚାଳିତ—3. Driven; plied.
୪ । ନୀତ—4. Taken; conveyed.
୫ । ପ୍ରବାହିତ—5. Flowing; flowed from
୬ । ପ୍ରତାରିତ; ବଞ୍ଚିତ—6. Deceived; cheated.

। ( ବାହ ଧାତୁ+କର୍ମ. ତ ) ସଯତ୍ନୀକୃତ—
7. Much cared after.

ବାହିନୀ—ସ. ବି. ( ସ' ବାହ=ସନ୍ନିକତ ସେନ୍ୟ+ଇନ୍+ସ୍ତ୍ରୀ. ଈ )—
Bāhini ୧ / ୮୧ ହସ୍ତୀ, ୮୧ ରଥ, ୨୪୩ ଅଶ୍ୱ ଓ ୪୦୫ ପଦାତି ସମ୍ମଳିତ ସେନା—1. A body of troops consisting of 81 elephants, 81 cars, 243 cavalry, and 405 infantry.
[ ତ୍ରି—୩ ଗଣରେ ଏକ ବାହିନୀ ହୁଏ । ]
୨ । ମୂଳ ସୈନ୍ୟର ଏକ ଦଳ—
2. A batallion of troops.
୩ । ମୂଳ ସୈନ୍ୟର ସମ୍ମୁଖ—
4. The front or face of an army.
୪ । (ବହ୍ ଧାତୁ+କର୍ତ୍ତ୍ରି. ଇନ୍+ଈ) ନଦୀ—3. River.
ବିଣ. ସ୍ତ୍ରୀ. ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ )—ଯାହା ବେ ହି ଯାଉଥାଏ—Flowing.
( ଯଥା—ପୂର୍ବବାହିନୀ, ବେଗବାହିନୀ, ସ୍ୱର୍ଗବାହିନୀ । )

ବାହିନୀ ପତି—ସ. ବି (୬ଷ୍ଠୀ ତତ୍, ବାହିନୀ+ପତି)—୧ । ସେନାପତି—
Bāhini pati 1. General; commander
୨ । ସରିତ୍ପତି; ସମୁଦ୍ର—2. The ocean (metaphorically, the husband of all the rivers).
ଦେ. ବି—ରାଜଦତ୍ତ ଉପାଧିବିଶେଷ—
An honorary title.
ପ୍ରାଦେ. ( ଯାଜପୁର ) ବି—ଯାଜପୁରର କୁଳୀନ ବ୍ରାହ୍ମଣ ବଂଶବିଶେଷ—A highly respectable family of Brāhmaṇas in the Jajpur subdivision of the Cuttack district

ବାହୁବଳା—ପ୍ରାଦେ. ( ବାଲେଶ୍ୱର ) ବି. ( ସ. ବାହୁ+ବଳୟ )—
Bāhi balā ବାହୁଖଡ଼ୁ ( ଦେଖ )—Bāhikhaṛdu ( See )
କମଳୀ ପାଣି ପାଖରେ ବସି ଅପଣା ହାତରେ ବାଇଶ ପାଉଥ
ପିନ୍ଧିଲ ବାହୁବଳା × × × ମର୍ଦ୍ଦନ କରୁ କରୁ × × ×
ବନ୍ଧୁଙ୍କା ଅରମ୍ଭ କରୁଅଛ – ଫକୀରମୋହନ, ଛମାଣ ଆଠଗୁଣ୍ଠ ।

ବାହିବା—ଦେ. କ୍ରି—(ସ. ବହ୍ ଧାତୁ, ହିଁ. ବାହ ଧାତୁ)—୧ । କାତ ବା ଅଣୁଲ୍ଲଦ୍ୱାରା ନୌକା ଚଳାଇବା—1. To move
Bāhibā or ply a boat by rowing or by a pole.
ବହାନ,চালান ତବକରେ ନାବ ସମ୍ଭବେ, ଭସୁଥାଏ
বাহনা ବାଳକ ବାହୁଲେ କ ଉର୍ଦ୍ଧ୍ୱେଁ କଳ ହୁଏ ।
କୃଷ୍ଣସିଂହ, ମହାଭାରତ ସଭା ।
୨ । ରଥାଦି ଯାନକୁ ଚଳାଇବା—
2. To drive a car or other conveyance.
କହୁ ଏସନ ବଂଶିଙ୍କ ଯାନ ବାହାଇ ଧୀରେ ଧୀରେ ।
(ବାହାଇବା – ଅନ୍ୟରୂପ) ଭକ୍ତ ଚରଣ, ମଥୁରାମଙ୍ଗଳ ।
୩ । ଜାଲକୁ ପାଣିରେ ମେଲାଇବା—3. To spread a net in water. ୪ । ଖେଳର ସାରକୁ ଘରରେ ଚଳାଇବା—4. To move the pawns on the board. ୫ । ରାଜ୍ୟ ଆକ୍ରମଣ କରିବା—5. To invade a country. ୬ । ସୈନ୍ୟ ସହ ପ୍ରୟାଣ କରିବା—
6. To lead an army. ୭ । ଲୁହାଇବା; ପୁଷ୍କରିଣୀରୁ ଜଳକୁ ଟେକ ଉଚ୍ଚ ସ୍ଥାନରେ ମଡ଼ାଇବା—7. To lift water from a pond to a higher level for irrigatio . ୮ । (ସ. ବାଦ୍. ଧାତୁ ବାଇବା; ବାଦ୍ୟ ବଜାଇବା—8 To set to music; to strike a musical instrument. ୯ । ଚାଲିବା; ପଥ ଅତିକ୍ରମ କରିବା—9. To walk.
ମାତାଙ୍କ ଠାରୁ ମେଲାଣି ହୋଇ ବେଗ ଘେନ
ମନ୍ତ୍ରୀ ସଙ୍ଗେ ଧୀରେ ଧୀରେ ଗଲେ ପଥ ବାହି,
ବିଶ୍ୱନାଥ, ବିଚିତ୍ର ରାମାୟଣ ।

ବାହିଯ(ଯ୍ୟ)—ଗ୍ରା. ବିଣ—(ସ' ବାହ୍ୟ)—୧ । ବାହ୍ୟ—
Bāhija(jya) 1. External.
ବାହିଯେ ସାଂସାର ଅନ୍ତରରେ ଅନ୍ତ ବ୍ୟଥା ।
ପାଠୀ, ଇନ୍ଦ୍ରସ୍ୟମନ୍ଦର ।
বাহ্য बाहिज ୨ । ଇତର—2. Vulgar.
ବାହିଯ ଲୋକ ସାହାଯ୍ୟ କେତେବେଳ ରହି ।
ଭଞ୍ଜ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
ବି—ବହିର୍ଦ୍ଦେଶ; ବାହାର—Outside; exterior.
ପାଣି ପବନ ଅସ୍ଥି ସ୍ନେହେ
ବାହାରେ ଅସ୍ଥାର ବାହିଯେ—
ପ୍ରାଚୀ, ନିର୍ଗୁଣ ମାହାତ୍ମ୍ୟ ।

ବାହିରି—ପ୍ରାଦେ. (ସାଗପୁର) ବି—ବାହାରକୁ—
Bāhiri Out.

ବାହିର୍ନାମ—ସ ବି—(ବହିଃ+ନାମ+ଅ)—ଚିଠି ଉପରେ ଲେଖା-
Bāhirnāma ଥିବା ଠିକଣା—The address written on the cover of a letter.

ବାହିଲ(ଲି) (ଇତ୍ୟାଦି)—ବୈଦେ. ବି ଓ ବିଣ—ବାହାଲ(ଲି) ଇତ୍ୟାଦି
Bāhil(li) etc (ଦେଖ)—Bāhāl(li) etc (See).

ବାହି ଶଙ୍ଖା – ଦେ. ବି—କଡଠାରୁ କହୁଣୀ ପର୍ଯ୍ୟନ୍ତ ପିନ୍ଧାଯିବା ଶଙ୍ଖା—
Bāhi śaṅkhā Conch shell bangles put on in the
লহঠী space between the wrist and the elbow.
ଶଙ୍ଖା ଚୂଡ଼ ବାହି ସେ ଚୂଡ଼ ହାତେ ଲଇ ।
କୃଷ୍ଣସିଂହ, ମହାଭାରତ, ବନପର୍ବ ।

ବାହୀ—ସ. ବିଣ. ପୁଂ—(ବହ୍. ଧାତୁ +ଇନ୍=ବାହିନ୍ ଶବ୍ଦ; ୧ମା. ୧-
Bāhi ବ)—୧ । ବହନକାରୀ; ବାହକ—1. Carrying.
(ବାହିନୀ—ସ୍ତ୍ରୀ) ୨ । ଯାହା ବହିଯାଏ; ପ୍ରବାହିତ—
2. Flowing; running towards.

ବାହୀକ—ସ. ବିଣ. ପୁଂ—( ବାହ=ବହନ+ଈକ )—
Bāhika ୧ । ବାହକ; ବାହୀ; ବହନକାରୀ—1. Carrying.
(ବାହୀକା—ସ୍ତ୍ରୀ) ୨ । ଗୁରୁ—2. Heavy. ୩ । ( ବହିସ୍+ ଈକ)—ବହିଃସ୍ଥିତ—3. Lying outside.
ବି—୧ । ଗାଡ଼ି; ଶଗଡ଼; ଯାନ—1. Cart; conveyance.
୨ । ପଞ୍ଜାବର ସ୍ଥାନବିଶେଷ—4. Name of a place in the Punjab ୩ । ବାହ୍ଲୀକ; ଜାତିବିଶେଷ—
3. Name of an ancient tribe.

ବାହୁ—ସଂ. ବି—( ବହ୍. ଧାତୁ=ବନ୍ଧନ କରିବା+କର୍ତ୍ତୃ. ଉ )—
Bāhu ୧ । ହସ୍ତ; ଭୁଜ—1. Hand; arm

[ ଦ୍ର—କାନ୍ଧଠାରୁ ଆଙ୍ଗୁଠିଅଗ ପର୍ଯ୍ୟନ୍ତ ଅଂଶକୁ ବାହୁ କୁହାଯାଏ । ]

୨ । ବାହା—2. The upper arm.

[ଦ୍ର—କାନ୍ଧ ଠାରୁ କହୁଣି ପର୍ଯ୍ୟନ୍ତ ହାତର ଅଂଶକୁ ମଧ୍ୟ ବାହୁ ବୋଲାଯାଏ ।]

୩ । ଜ୍ୟାମିତିକ କ୍ଷେତ୍ରରେ ସୀମା ରେଖା—3. The side of a geometrical figure. ୪ । ତ୍ରିଭୁଜର ପାର୍ଶ୍ୱ ରେଖା – 4. The arms of a triangle.

[ ଦ୍ର—ତ୍ରିଭୁଜର ନିମ୍ନ ରେଖାକୁ ଭୂମି ବୋଲା ଯାଏ । ବାହୁଶବ୍ଦ ବହୁବ୍ରୀହି ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଲାଗି ବିଶେଷଣ ପଦ ସୃଷ୍ଟି କରେ, ଯଥା—ସମବାହୁ, ସମଦ୍ୱିବାହୁ, ମହାବାହୁ, ଛିନ୍ନବାହୁ, ବିଷମବାହୁ, ପରାକ୍ରମବାହୁ ଇତ୍ୟାଦି ।]

ବାହୁକ—ସଂ. ବି. (ବାହୁ+କ)—୧ । ନୈଷଧ; ଋତୁପର୍ଣ୍ଣ ରାଜାଙ୍କର
Bāhuka ସାରଥି ବେଶଧାରୀ ନଳ ରାଜାଙ୍କର ଛଦ୍ମ ନାମ—
1. The name assumed by king Naḷa in the guise of a charioteer to the king of Ajodhyā.

ନଳଙ୍କ ସାରଥି ବାହୁକ ଅଟେ ମୁହିଁ
କୃଷ୍ଣସିଂହ, ମହାଭାରତ- ବନ ।

୨ । କପି—2. Monkey. ୩ । ଭୃତ୍ୟ; ଦାସ—
3 Slave; servant.

ଦେ. ବି—୧ । ବାହକ; ସାରଥି—
1. Cart driver; coachman.

ବାହିଲେ ସଲଳ ରଥ କେକଉ୍ତି ସେକାଳେ
ବାହୁକ ପ୍ରାୟେ ସେ ଦଣ୍ଡ ଧାରଣେ ହସିଲେ । ଉଞ୍ଜ. ବୈଦେହୀଶବିଳାସ ।

୨ । ନାଉରି—2. Boatman.

ନାବ ବାହୁକ ଦଧି ଦାମ
ବ୍ରଜ ବାଳକ ଚୂଡ଼ାମଣି । ଭୂପତି ପ୍ରେମପଞ୍ଚାମୃତ ।

ବାହୁ କୁଣ୍ଠ—ସଂ. ବିଣ. ପୁଂ—(ବାହୁ+କୁଣ୍ଠ)—୧ । କେମ୍ପା—
Bāhu kuṇṭha 1. Maimed in the hand.
(ବାହୁକୁବ୍ଜ—ଅନ୍ୟରୂପ) ୨ । ବଙ୍କବାହୁ—2. Of crooked hands.

ବାହୁ(ହା,ଉ,ଆ)ଙ୍ଗା—ଦେ. ବି. (ସଂ. ବାହୁ)—ତାଳ, ନଡ଼ିଆ ଓ କଦଳୀ
Bāhu(hā,u,ā)ṅgā ଗଛର ବାହୁ ବା ଶାଖା—The bough
ବାଖଡ଼ା • ଛଜ୍ଜା of cocoanut, palm and plantain trees.

ବାହୁ(ହା,ଆ,ଉ)ଙ୍ଗି—ଦେ. ବି.—(ସଂ. ବହଙ୍ଗିକା)—ବାଙ୍ଗି; ଭାର ଦଣ୍ଡ;
Bāhu(hā,ā,u)ṅgi ଦୁଇ ଅଗରେ ଭାର ଝୁଲାଇ କାନ୍ଧରେ ବହନ
ବାଙ୍ଗୀ वहगी କରାଯିବାର ବଂଶ ଦଣ୍ଡ—An elastic piece
(ବାଙ୍ଗି—ଅନ୍ୟରୂପ) of split bamboo to carry athwart the shoulder weights suspended at both ends.

ବାହୁଙ୍ଗି ବାଡ଼ି—ଦେ. ବି.—ବାହୁଙ୍ଗି ଦ୍ୱାରା ପ୍ରହାର—
Bāhuṅgi bāṛi Blow with the bāhuṅgi.

ବାହୁଜ—ସଂ. ବିଣ.—(ବାହୁ+ଜନ୍. ଧାତୁ+କର୍ତ୍ତୃ. ଅ; ଯେଉଁ ଜାତି
Bāhuja ବ୍ରହ୍ମାଙ୍କ ବାହୁରୁ ଜନ୍ମି ଥିଲେ)—ବାହୁରୁ ଜାତ—Born of the arm.

ବି.—୧ । କ୍ଷତ୍ରିୟ—1. The Kshatriyas.

ବୋଇଲେ ରଘୁନନ୍ଦନ ଅହେ ବିପ୍ରବର
ବାହୁଜ ବୃତ୍ତିରେ କପି ଅଇଲ ଏଠାର । ଉଞ୍ଜ. ବୈଦେହୀଶବିଳାସ ।

୨ । ଶୁକ ପକ୍ଷୀ—2. Parrot.

୩ । ସ୍ୱୟଂଜାତ ତିଳ—3. Sesamum plant growing wild

ବାହୁ ଟାଣ—ଦେ. ବି.—ବାହୁ ପରାକ୍ରମ—
Bāhu ṭāṇa The power of one's arms.

ଆଣିଲ ହର ଯୁଦ୍ଧେ ଦେଖାଇ ବାହୁ ଟାଣ । କୃଷ୍ଣସିଂହ ମହାଭାରତ ବନ ।

ବିଣ—ପରାକ୍ରମୀ—Strong.

ବାହୁଟୀ—ଦେ. ବି.—(ସଂ. ବାହୁସ୍ଥ; ପ୍ରା. ବାହୁଟ)—୧ ବାଜୁବନ୍ଧ—
Bāhuṭi বাহুবন্ধ, বাউটি 1. A kind of armlet.

ବାହେ ବାହୁଟି ହିବ୍ୟ ଭୂଷଣ କଟିରେ ଗାଲପଟ ।
बहुँटा, बहुटनि ଭକ୍ତଚରଣ. ମଥୁରାମଙ୍ଗଳ ।

୨ । ମନ୍ତ୍ରଦ୍ୱାରା ମନୁଷ୍ୟ ଦେହରେ ଆବିଷ୍ଟ କରାଯିବା ଭୂତ ବା ଚଣ୍ଡୀ—2. A malignant ghost or spirit which is made to possess a human
দেবী देवी being by magical charms.

ବାହୁଟୀ ପେଷିବା—ଦେ. କ୍ରି—ତାନ୍ତ୍ରିକ ମନ୍ତ୍ର ପ୍ରୟୋଗ ଦ୍ୱାରା କୌଣସି
Bāhuṭi pesibā ସ୍ଥାନରେ ବା କୌଣସି ମନୁଷ୍ୟର ଦେହରେ ଦୁଷ୍ଟ
[ବାହୁଟୀ ଲଗା(ଗେ)ଇବା—ଅନ୍ୟରୂପ) ପ୍ରେତର ବା ଚଣ୍ଡୀଙ୍କ ଆବେଶ
জাদুকরা भूतभेजना କରାଇବା—To cause a malignant spirit to possess a human being or a place by employing black magic.

[ ଦ୍ର—ବାହୁଟୀମାନେ ଅତ୍ୟନ୍ତ ଅତ୍ୟାଚାର କରନ୍ତି । ]

ବାହୁଡ଼—ଦେ. ବି (ସଂ. ବ୍ୟାବୃତ୍ତ; ପ୍ରା. ବାଉଡ୍ଡ)—୧ । ପ୍ରତ୍ୟାବର୍ତ୍ତନ—
Bāhuṛa 1. Returning. ୨ । ଲେଉଟି ଆସିବା—
(ବାହୁଡ଼ାଣି—ଅନ୍ୟରୂପ) 2. Coming back.
বাহুড়া; ফিরা बहुरना, लौटना ବିଣ.—ପ୍ରତ୍ୟାବର୍ତ୍ତିତ—Returned; come back.

ବାହୁଡ଼ା—ଦେ. ବି.—୧ । ବାହୁଡ଼ା ବିଜେ (ଦେଖ)
Bāhuṛā 1. Bāhuṛā bije (See)

ବହେଉନ ପଡ଼ନ ଯେ ଥା ଚେଉଁ ପଉନ
ବାହୁଡ଼ାକୁ ଅବର ସେ । ଉଞ୍ଜ. ବୈଦେହୀଶବିଳାସ.

୨ । ପ୍ରତ୍ୟାବର୍ତ୍ତନ; ଲେଉଟି ଆସିବା—2. Coming back,
୩ । ଲେଉଟାଇବା—3. Returning; giving back.
୪ । (ପୁଂ) ଲୋକଙ୍କ ନାମ—4. A name given to males.

[ ଦ୍ର—ଏହିଶବ୍ଦ ଅନ୍ୟ ଶବ୍ଦମାନଙ୍କ ପରେ ଓ ପୂର୍ବରେ ଯୁକ୍ତ ହୁଏ ଯଥା—ଠାଆ ବାହୁଡ଼ା, ଅଣ ବାହୁଡ଼ା, ବର ବାହୁଡ଼ା, ବଉକନ୍ୟା ବାହୁଡ଼ା, ବାହୁଡ଼ା ବିଜୟ, ବାହୁଡ଼ା ଦଶମୀ ଇତ୍ୟାଦି ।]

ଦେ. ବିଣ—ପ୍ରତ୍ୟାବୃତ୍ତ; ଫେରି ଆସିଥିବା—Returned; come back.

ବାହୁଡ଼ା(ଡ଼େ)ଇବା—ଦେ. କ୍ରି—(ବାହୁଡ଼ିବା କ୍ରିୟାର ଣିଜନ୍ତ ରୂପ—
Bāhurdā(rde)ibā The causative form of Bāhurdibā)— ୧ । ଫେରାଇବା;
ବାହුড়ান बहुराना, लौटाना
ଫେରାଇ ଆଣିବା—1. To cause to come back; to bring back.

ମୁଁ ଯେବେ ନେବ ବାହୁଡ଼ାଇ
ପୁଣି ମାଇବ କଂସ ଯାଇ । ଜଗନ୍ନାଥ, ଭାଗବତ ।

୨ । ଯାଇଥିବା ଲୋକଙ୍କୁ ବାଟରୁ ଫେରାଇ ଆଣିବା—
2. To bring back a person who has gone.

ବାହୁଡ଼ା ଏକାଦଶୀ—ଦେ. ବି—ଆଷାଢ଼ ଶୁକ୍ଳ ଏକାଦଶୀ; ହରିଶୟନ
Bāhurdā ekādaśī ଏକାଦଶୀ; ବିଷ୍ଣୁଙ୍କର ଶୟନ ଯାତ୍ରା—
The 11th day of the bright fortnight of 'Āshārdha' in which Lord Bishnu is suppooed to sleep for four months.

ବାହୁଡ଼ା କଟକାଇ—ଦେ. ବି—ସୈନ୍ୟମାନଙ୍କ ସହିତ ଯୁଦ୍ଧ କ୍ଷେତ୍ରରୁ
Bāhurdā kaṭakāi ରାଜାଙ୍କର ପ୍ରତ୍ୟାଗମନ—(ପ୍ରାଚୀନ ଓଡ଼ିଆ ସନନ୍ଦ)—A king's return march from the battlefield.

ବାହୁଡ଼ା କରିବା—( ପ୍ରାଚୀନ, ମାଦଳାପାଞ୍ଜି ), କ୍ରି—ଫେରିଯିବା—
Bāhurdā kariba To come or go back.

ବାହୁଡ଼ା ଦଶମୀ—ଦେ. ବି—ଆଷାଢ଼ ଶୁକ୍ଳ ଦଶମୀ—The 10th day
Bāhurdā daśamī of the bright fortnight of Āshārdha.

ବାହୁଡ଼ା ବର—ଦେ. ବି—ଯେଉଁ ବର ବିବାହ ପରଦିନ କନ୍ୟା ସହିତ
Bāhurdā bara କନ୍ୟା ଗୃହରୁ ନିଜ ଗୃହକୁ ଫେରି ଆସେ—
(ବାହୁଡ଼ା ବରକନ୍ୟା—ଅନ୍ୟରୂପ) The bridegroom who returns to his house accompanied with his newly married bride on the next day of marriage.

ବାହୁଡ଼ା ବିଜେ—ଦେ. ବି—୧ । ଗୁଣ୍ଡିଚା ଯାତ୍ରା ଶେଷରେ
Bāhurdā bije ଗୁଣ୍ଡିଚା ମନ୍ଦିରରୁ ବଡ଼ ଦେଉଳକୁ ଜଗନ୍ନାଥଙ୍କର
(ବାହୁଡ଼ା ବିଜୟ—ଅନ୍ୟରୂପ) ଫେରି ଆସିବା ଉତ୍ସବ—1. The
উলটারথ ceremony of the return journey of Lord
उलटारथ Jagannath in the car from the garden-house back to the temple. ୨ । (ରାଜାଙ୍କ ସମ୍ବନ୍ଧେ ବ୍ୟବହୃତ) କୌଣସି ସ୍ଥାନରୁ ଫେରି ଆସିବା—
2. Return journey; coming back from a place (said of a Raja).

ବାହୁଡ଼ା ବିଜୟ ଯଖା କଲେ ଆନନ୍ଦରେ ।
ମଧୁସୂଦନ, ବାଲ ରାମାୟଣ

ବାହୁଡ଼ି—ଦେ. କ୍ରି. ବିଣ—ଲେଉଟି; ପୁଣି; ପୁନର୍ବାର—
Bāhurdi बहुरि Again.

ବାହୁଡ଼ି ବିଜେ କରିଗଲେ
ଷୋଳ ସହସ୍ର ଏକ ବେଳେ—ଭୂପତି, ପ୍ରେମପଞ୍ଚାମୃତ

ବି.—(ଧ୍ୱନ୍ୟନୁକରଣ) ଢାକୁଟି—Eructation.

ବାହୁଡ଼ି ଦେବା—ପ୍ରାଦେ (ମେଦିନୀପୁର) କ୍ରି—ମଲା ଗାଈ ଗୋରୁଙ୍କୁ
Bāhurdi debā ନେଇ ଗୋରୁଙ୍କ ମସାଣୀ ପଡ଼ିଆରେ ପକାଇବା—
To throw away the carcass of dead cattle in a field at the extremity of the village.

ବାହୁଡ଼ିବା—ଦେ. କ୍ରି (ସଂ. ବ୍ୟାବୃତ୍, ପ୍ରା. ବାହୁଡ୍ଡ)—୧ । ଫେରି
Bāhurdibā ଆସିବା; ପ୍ରତ୍ୟାବୃତ୍ତ ହେବା—1. To return;
বাহুড়া; ফিরা बहुरना, लौटना to come back.

ବଣ୍ଡିକି ଭ୍ରମଣି ଅସ୍ତ ହେବା ଜାଣି ଜନୁ ବାହୁଡ଼ିବା ବେଳେ ।
କବିସୂର୍ଯ୍ୟ, ସଙ୍ଗୀତ.

୨ । ନିଜର ଗତି ଫେରାଇବା—2. To turn back.
୩ । ( ଲକ୍ଷଣାର୍ଥ ) ଶିଶୁ ଅବସ୍ଥାରେ ମୃତ ହେବା—
3. (figurative) To die in childhood.
( ଯଥା; ମୋର ୩ଟି ପିଲା ମଧ୍ୟରୁ ୨ଟି ବାହୁଡ଼ିଲେ; ସବୁ ସାନ ପିଲାଟି ଅଛି । )

ବାହୁଡ଼ୀ—ଦେ. ବି. ସ୍ତ୍ରୀ (ସଂ. ବାହୁଶାଳିନୀ)—ଦେବୀବିଶେଷ—
Bāhurdī [ବାହୁଡ଼ା(ଡ଼େ)ଈ-ଅନ୍ୟରୂପ] Name of a Goddess.

ବାହୁତୀ—ଦେ. ବି.—ସ୍ତ୍ରୀ (ସଂ ବାହୁମତୀ)—୧ । ଦେବୀବିଶେଷ—
Bāhutī Name of a Goddess. ୨ । ବାହୁଟୀ ୨ (ଦେଖ)
2. Bāhuṭi 2 (See).

ବାହୁତ୍ରାଣ—ସଂ. ବି ( ବାହୁ+ତ୍ରୈ ଧାତୁ+କରଣ. ଅନ. )—୧ । ଅସ୍ତ୍ରା-
Bāhutrāṇa ଘାତ ନିବାରଣାର୍ଥ ବାହୁର ଲୌହମୟ ବା ଚର୍ମମୟ ଆବରଣ—1. An armour for the arm.
୨ । କବଚ—2. Armour.

ବାହୁଦନ୍ତକ—ସଂ. ବି ( ବାହୁ+ଦନ୍ତ+କ; ଯାହାର ଦନ୍ତ ବାହୁ ପରି
Bāhudantaka ବିଶାଳ )—ଐରାବତ—
Indra's elephant.

ବାହୁଦନ୍ତୀ—ସଂ. ବି—୧ । ଇନ୍ଦ୍ର—1. Indra.
Bāhudantī ୨ । ବାହୁଦନ୍ତକ ( ଦେଖ )
2. Bāhudantaka ( See ).

ବାହୁଦା—ସଂ. ବି—୧ । ନଦୀବିଶେଷ—
Bāhudā 1. Name of a river.
୨ । ରାଜା ପରୀକ୍ଷିତଙ୍କ ପତ୍ନୀ ( ହି· ଶ. )—
2. Name of the wife of King Parīkshita.
ବିଣ ( ସ୍ତ୍ରୀ ) ( ଓଡ଼ିଆ କାବ୍ୟରେ ପ୍ରୟୋଗ )—ଯେ ଅନ୍ୟକୁ ନିଜର ବାହୁ ଧରିବାକୁ ବଢ଼ାଇ ଦିଏ—( a woman )
Extending her arm to another to support it.

ବହଇ ନର୍ମଦା ଯେନି ନର୍ମଦା—ବାହୁଦା ପ୍ଲବନେ କାନ୍ତ ବାହୁଦା—
- ଭଞ୍ଜ, ବୈଦେହୀଶବିଳାସ ।

ବାହୁନା—ଦେ· ବି. (ସଂ. ବର୍ଣ୍ଣନା)—୧ । ବାହୁନିବା; ପ୍ରିୟ ବ୍ୟକ୍ତିକୁ ବା
Bāhunā ପଦାର୍ଥକୁ ସ୍ମରଣ କରି ପାଟି କରି କାନ୍ଦିବା; ବିଳାପ କରିବା—
घाना 1. To bewail a dear departed thing.
[ ଦ୍ର— କୌଣସି କୌଣସି ସମ୍ପ୍ରଦାୟରେ ଝିଅମାନେ ଶାଶୁଘରକୁ ଯିବା ପୂର୍ବେ ବାହୁନା ଶିଖନ୍ତି; ବାହୁନିବା ପ୍ରସଙ୍ଗରେ ପୌରାଣିକ ଆଖ୍ୟାୟିକାମାନ ମଧ୍ୟ ବୋଲନ୍ତି । ବର୍ଷୀୟସୀମାନେ କନ୍ୟାମାନଙ୍କୁ ବାହୁନା ଶିଖାନ୍ତି । ]

୨ । ଦୋଷ ଦେଖାଇବା; ଖଣ୍ଡିବା; ଉଆଉବା—2. Pointing out one's faults; cavilling at a person.

**ବାହୁନା ବାହୁନି**—ଦେ. ବି—୧ । ଦୁଇଜଣ ପରସ୍ପର ଧରାଧରି ହୋଇ ବାହୁନି କରି କାନ୍ଦିବା—1. Mutual bewailing. ୨ । ଦୁଇଜଣ ପରସ୍ପରକୁ ଉଆଉବା—2. Mutual cavilling.
Bāhunā bāhuni
**घानाघानी**

**ବାହୁନିବା**—ଦେ. କ୍ରି ( ସଂ. ବର୍ଣ୍ଣ ଧାତୁ )—୧ । ଗୁଣ ବର୍ଣ୍ଣନା କରି କାନ୍ଦିବା; ଗୁଣ ସ୍ମରଣ କରି ବଡ଼ପାଟି କରି କାନ୍ଦିବା—1. To bewail. ୨ । ଉଦେଇବା; ପରର ଦୋଷ ଦେଖାଇ କହିବା; ଖୁଣ୍ଟିବା—2 To cavil at.
Bāhunibā
**घाना करके राना**

**ବାହୁ ପାଶ**—ସଂ. ବି (ରୂପକ; ବାହୁ+ପାଶ)—ବାହୁପାଶି (ଦେଖ)
Bāhu pāśa — Bāhupāśi (See).

**ବାହୁପାଶି**—ଦେ. ବି (ସଂ. ବାହୁପାଶ)-ପାଶରୂପେ କଳ୍ପିତ ଆଲିଙ୍ଗନକାରୀର ବାହୁ—The arms of an embracer compared to a noose.
Bāhupāśi
( ବାହୁପାଶ—ଅନ୍ୟରୂପ )
**बांहपास**
बाहू पाश
ଦୁହେଁ ଜାନୁରେ ଯାନୁଥାଇ କଣ୍ଠକୁ ଗଲେ ଛନ୍ଦି ବାହୁପାଶି । ଭଞ୍ଜ, ପ୍ରେମସୁଧାନିଧି ।

**ବାହୁପ୍ରଲ(ଲ)ମ୍ବ**—ସଂ. ବିଣ. ପୁଂ (ବହୁବ୍ରୀହି; ବାହୁ+ପ୍ରଲମ୍ବ)—ଆଜାନୁଲମ୍ବିତବାହୁ—Having long hands.
Bāhupraḷa(la)mba
[ବାହୁପ୍ରଲ(ଲ)ମ୍ବା—ସ୍ତ୍ରୀ]

**ବାହୁପ୍ଲବନ**—ସଂ. ବି (୩ୟା ତତ୍)—ହସ୍ତଦ୍ୱାରା ସନ୍ତରଣ କରିବା କ୍ରିୟା—The act of swimming with the help of the hands only.
Bāhupḷabana
ବାହୁପ୍ଲବନରେ କେତେଦୂର ଯିବା ଅନ୍ତର ନାହିଁ ଅର୍ଣ୍ଣବେ ଯେ । ଭଞ୍ଜ, ବୈଦେହୀଶବିଳାସ ।

**ବାହୁବନ୍ଧ(ନ୍ଧି)**—ଦେ. ବି ( ବର୍ଣ୍ଣିଆ ଶବ୍ଦ )—ତେଣାରେ ପିନ୍ଧାଯିବା ସୁନା ବା ରୁପାରେ ବାଜୁବାଜୁଆଦି ଅଳଙ୍କାରବିଶେଷ—A kind of silver or gold ornament worn on the arm.
Bāhubanda(ndi)

**ବାହୁବଳ**—ସଂ. ବି (୬ଷ୍ଠୀ ତତ୍; ବାହୁ+ବଳ)—୧ । ମନୁଷ୍ୟର ବାହୁର କ୍ଷମତା; ଭୁଜବଳ—1. The force of one's arm; prowess. ୨ । ଶାରୀରିକ ଶକ୍ତି—2. Bodily strength. ୩ । କ୍ଷାତ୍ରବଳ—3. The might of a powerful king or warrior. ୪ । ସୈନ୍ୟବଳ—4. Armed power.
Bāhubaḷa

**ବାହୁବାହବି**—ସଂ. କ୍ରି. ବିଣ (ବାହୁ+ବାହୁ+ଇ)—୧ । ବାହୁ ଯୁଦ୍ଧ—1. Hand to hand fight. ୨ । କୁସ୍ତାକୁସ୍ତି—2. Wrestling.
Bāhubāhabi

**ବାହୁଭୂଷଣ**—ସଂ. ବି (୬ଷ୍ଠୀ ତତ୍, ବାହୁ+ଭୂଷଣ)—ବାହୁର ଅଳଙ୍କାର—An ornament for the arm.
Bāhubhūshaṇa
(ବାହୁଭୂଷା—ଅନ୍ୟରୂପ)

**ବାହୁମୂଳ**—ସଂ. ବି (୬ଷ୍ଠୀ ତତ୍; ବାହୁ+ମୂଳ)—୧ । ବଗଲ; କାଖସନ୍ଧି—1. Armpit. ୨ । ତେଣା—2. The root of the arm.
Bāhumūḷa

**ବାହୁଯୁଦ୍ଧ**—ସଂ. ବି (୩ୟା ତତ୍; ବାହୁ+ଯୁଦ୍ଧ)—ଦୁଇ ଜଣଙ୍କର ମଲ୍ଲଯୁଦ୍ଧ; କୁସ୍ତାକୁସ୍ତି—Hand to hand fight; wrestling.
Bāhujuddha

**ବାହୁଳ**—ସଂ. ବି (ବହୁଳ+ଭାବ. ଅ)—୧ । ବହୁଳତା—Excess, ୨ । (ବହୁଳା=କୃତ୍ତିକାନକ୍ଷତ୍ରଯୁକ୍ତା ପୂର୍ଣ୍ଣିମା+ଅ)—କାର୍ତ୍ତିକ ମାସ—2. The month of 'Kārttika. ୩ । (ବହୁଳ=ଅଗ୍ନି+ସ୍ୱାର୍ଥେ. ଅ) ଅଗ୍ନି—3. Fire. ୪ । ବାହୁତ୍ରାଣ—4. A mail to protect the arms.
Bāhuḷa
ବାହୁଳ ପ୍ରାଣସ୍ୱ ଉପମା ଜନଲେ – ଭଞ୍ଜ. ବୈଦେହୀଶବିଳାସ ।

**ବାହୁଳଗ୍ରୀବ**—ସଂ. ବି (ବହୁବ୍ରୀହି)—ମୟୂର (ହି. ଶ.)—Peacock.
Bāhuḷagrība

**ବାହୁଳତା**—ସଂ. ବି (ରୂପକ, ବାହୁ+ଲତା)—୧ । କୋମଳ ଲତାରୂପ ବାହୁ—1. Arms tender as a creeper; entwining arms ୨ । ବାହୁପାଶି ( ଦେଖ ) Bāhupāsi (See).
Bāhulatā

**ବାହୁଳେୟ**—ସଂ. ବି ( ବହୁଳ=କୃତ୍ତିକା ନକ୍ଷତ୍ର+ଅପତ୍ୟାର୍ଥେ. ଏୟ )—ଷଡ଼ାନନ; କାର୍ତ୍ତିକେୟ—Kārttikeya.
Bāhuḷeya

**ବାହୁଲ୍ୟ**—ସଂ. ବି ( ବହୁଳ+ଭାବ. ଯ )—୧ । ବହୁଳତା; ଆଧିକ୍ୟ; ଆତିଶଯ୍ୟ—1. Excess; multiplicity; abundance. ୨ । ଅତିଶୟୋକ୍ତି—2. Exaggeration.
Bāhulya

**ବାହୁଲ୍ୟ ଭୟ**—ସଂ. ବି. ( ୬ଷ୍ଠୀ ତତ୍ )—ଅତିଶୟୋକ୍ତିର ଆଶଙ୍କା—Fear of exaggeration.
Bahulya bhaya

**ବାହୁଶୂର**—ସଂ. ବି.—ପ୍ରକୃତରେ ବା କାର୍ଯ୍ୟତଃ ଯାର; ଯେଉଁ ବ୍ୟକ୍ତି ବାହୁଦ୍ୱାରା ନିଜର ଶୌର୍ଯ୍ୟ ଦେଖାଏ—A person who shows his bravery by his arms (and not by words.)
Bāhuśūra
(ବଚନଶୂର—ବିପରୀତ)

**ବାହୁ ସହସ୍ର**—ଦେ. ବି. (ନାମ)—ସହସ୍ରାର୍ଜୁନ; ବାଣାସୁର—Bāṇāsura.
Bāhu sahasra
**बाहु हजार**

**ବାହୁସ୍ଫୋଟ**—ସଂ. ବି.—(୬ଷ୍ଠୀ ତତ୍; ବାହୁ+ସ୍ଫୋଟ)—ମଲ୍ଲ ବା ଯୋଦ୍ଧାମାନଙ୍କର ବାହୁରେ କରତଳାଘାତ ଜନିତ ଶବ୍ଦ; ବାହୁଦ୍ୱୟକୁ ଘୃଷ୍ଟତେଢ଼ାଇବା—Striking of one arm with the other hollowed palm producing a loud sound.
Bāhu sphoṭa
ବାହୁବସ୍ଫୋଟ } ଅନ୍ୟରୂପ
ବାହାସ୍ଫୋଟ
ବାହୁସ୍ଫୋଟକ

**ବାହେଲ୍(ଲି)** (ଇତ୍ୟାଦି)—ବୈଦେ. ବି. ଓ ବିଣ—ବାହାଲ୍ ଇତ୍ୟାଦି (ଦେଖ)—Bāhāl (etc) (See).
Bāhel(li) (etc)
[ବାହାଲ୍ (ଲି)—ଅନ୍ୟରୂପ]

**ବାହ୍ନି**—ପ୍ରାଦେ (ସମ୍ବଲପୁର) ବି—ଝାଡ଼ୁଣିମୁଠା; ଝାଡ଼ୁକା ମୁଠା—Broomstick.
Bāhni

**ବାହ୍ମୁଣ(ଇତ୍ୟାଦି)**—ଗ୍ରା. ବି—ବ୍ରାହ୍ମଣ ଇତ୍ୟାଦି (ଦେଖ)
Bāhmuṇa (etc) — Brāhmaṇa etc (See).
बामुन **बाम्हन** (ବାହ୍ମୁଣୀ, ବାହ୍ମୁଣିଆଣୀ—ସ୍ତ୍ରୀ)

ବାହ୍ୟ—ସଂ. ବିଣ—୧ । ( ବହ୍ ଧାତୁ + କର୍ମ. ଯ)—ବହନଯୋଗ୍ୟ;
Bāhya ବହନୀୟ—1 To be carried; bearable.
୨ । (ବହିଃ+ଯ) ବହିସ୍ଥ—2. External.
୩ । ବହିର୍ଦ୍ଦେଶରେ ସ୍ଥିତ—3 Situated outside.
ବି—୧ । ଯାନ; ବାହନ—1. Conveyance.
୨ । ଭାରବାହୀ ପଶୁ—2. A beast of burden.
ଦେ. ବି—ବାହ୍ୟଦେଶ—Outskirts; exterior
[ ଦ୍ର—ଏହି ବାହ୍ୟ ଶବ୍ଦର ବିଶେଷ୍ୟ ଅର୍ଥରେ ପ୍ରାଚୀନ ସଂସ୍କୃତରେ ବ୍ୟବହାର ନାହିଁ; କିନ୍ତୁ ପରବର୍ତ୍ତୀ ରାଜତରଙ୍ଗିଣୀ ଆଦି ସଂସ୍କୃତ ଗ୍ରନ୍ଥମାନଙ୍କରେ ଏହାର ପ୍ରୟୋଗ ଦେଖାଯାଏ । ]

ବାହ୍ୟ ଜ୍ଞାନ—ସଂ. ବି—ବାହାର ବସ୍ତୁର ଅନୁଭୂତି—The knowledge or perception of external objects.
Bāhya jñāna

ବାହ୍ୟ ଜ୍ଞାନ ଶୂନ୍ୟ—ସଂ. ବିଣ.—ଆପଣାର ଶରୀରଠାରୁ ଥିବା ବସ୍ତୁ ସମ୍ବନ୍ଧେ ଜ୍ଞାନବର୍ଜିତ; ବେହୋସ୍—Unconcious of outside matters; completely insensible to what occurs. ୨ । ଆନ୍ତରିକ ଧ୍ୟାନଯୋଗୁଁ ବାହାରରେ ଚେତା ବୁଡ଼ିଥିବା—2. Quite absorbed in an introspective contemplation.
Bāhya jñāna śūnya

ବାହ୍ୟପଟ୍ଟ(ଟୀ)—ସଂ. ବି.—ରଙ୍ଗମଞ୍ଚର ବହିରାବରଣ ପରଦା (ହି. ଶ)—Dropscene.
Bāhyapaṭa(ṭī)

ବାହ୍ୟବସ୍ତୁ—ସଂ. ବି—(କର୍ମଧା; ବାହ୍ୟ + ବସ୍ତୁ)—ମନୁଷ୍ୟର ବାହାରେ ବା ଚତୁଃପାର୍ଶ୍ୱରେ ଥିବା ପଦାର୍ଥସମୂହ—External things; environments; surroundings.
Bāhya bastu

ବାହ୍ୟବିଦ୍ରଧି—ସଂ. ବି—ଏକ ପ୍ରକାର ବ୍ରଣ ରୋଗ, ଯହିଁରେ ଶରୀରର ସ୍ଥାନ ବିଶେଷରେ ଫୁଲା ଓ ପୀଡ଼ା ହୁଏ ଓ ରୋଗୀର ମୁହଁ ବାଟେ ବା ଗୁହ୍ୟ ଦ୍ୱାର ବାଟେ ପୂଜ ବାହାରେ—A kind of dangerous internal boil.
Bāhyabidradhi

ବାହ୍ୟାଭ୍ୟନ୍ତର—ସଂ. ବି—ପ୍ରାଣାୟାମ ବିଶେଷ (ହି. ଶ)—A kind of breath control.
Bāhyabhyantara
ଦେ. ବି—ଦେହର ବହିର୍ଭାଗ ଓ ଅନ୍ତର୍ଭାଗ—The outside and inside of the body.

ବାହ୍ୟମାନ—ସଂ. ବିଣ. ପୁଂ—(ବହ୍ ଧାତୁ ଣିଚ୍. ବାହି ଧାତୁ + କର୍ମ. ଆନ)—ନୀୟମାନ, ଯାହାକୁ ବହନ କରାଯାଉଅଛି—Being carried or borne.
Bāhyamāna
(ବାହ୍ୟମାନା—ସ୍ତ୍ରୀ)

ବାହ୍ୟ ରତି—ଦେ. ବି—ଆଲିଙ୍ଗନ; କୋଳ କରିବା—Embrace.
Bāhya rati
ବାହ୍ୟ ରତି ଏହିକ୍ଷଣି କରିବେ କୋଳ ।
ଉପେ. ବୈଦେହୀଶବିଳାସ ।

ବାହ୍ୟାଚରଣ—ସଂ. ବି—( କର୍ମଧା; ବାହ୍ୟ + ଆଚରଣ )—ଲୋକଙ୍କୁ ଦେଖାଇବାପାଇଁ କରାଯିବା ଆଚରଣ (ହି.ଶ)-Conduct intended for outward show.
Bāhyācharaṇa

ବାହ୍ୟାନ୍ତେ—ଦେ. ଅ (ସଂ. ବହିଃ+ ଅନ୍ତର୍)—ବାହାରେ ଓ ଭିତରେ—Externally and internally.
Bāhyānte
ବାହ୍ୟାନ୍ତରେ } ଅନ୍ୟରୂପ
ବାହ୍ୟାଭ୍ୟନ୍ତରେ }
ସପତ ଛିଦ୍ର ଥାଇ ଯେତେ
ଦେହରେ ବହେ ଯା ବାହ୍ୟାନ୍ତେ ।
ଜଗନ୍ନାଥ, ଭାଗବତ ।

ବାହ୍ୟାୟାମ—ସଂ. ବି—ବାୟୁରୋଗ ବିଶେଷ, ଯହିଁରେ ପିଠିର ଶିରା ଟାଣି ହୁଏ ଓ ଦେହ ପିଠି ଆଡ଼କୁ ଝୁଙ୍କେ; ଧନୁଷ୍ଟମ୍ଭ ରୋଗ—A kind of tetanus.
Bāhyāyāma

ବାହ୍ୟିକ—ଗ୍ରା. ବିଣ—ବାହ୍ୟ; ବହିସ୍ଥ—External.
Bāhyika
[ ଦ୍ର—ଏହି ଶବ୍ଦର ପ୍ରୟୋଗ ଅର୍ବାଚୀନ ଗ୍ରନ୍ଥମାନଙ୍କରେ ଓ ନବ୍ୟ ଲେଖକମାନଙ୍କ ଲେଖାରେ ଲକ୍ଷିତ ହୁଏ; କିନ୍ତୁ ଏହା ଅଶୁଦ୍ଧ ପ୍ରୟୋଗ ଅଟେ । ଏହାର ଶୁଦ୍ଧ ଆକାର ବାହ୍ୟ; 'ବାହ୍ୟ' ବିଶେଷଣ ଶବ୍ଦରେ ପୁଣି 'ଇକ' ବିଶେଷଣ ପ୍ରତ୍ୟୟ ବ୍ୟାକରଣବିରୁଦ୍ଧ । ]

ବାହ୍ୟେନ୍ଦ୍ରିୟ—ସଂ. ବି—( କର୍ମଧା; ବାହ୍ୟ + ଇନ୍ଦ୍ରିୟ )—ବାହାରର ପଞ୍ଚ ଜ୍ଞାନେନ୍ଦ୍ରିୟ—The external organs of sense.
Bāhyendriya
[ ଦ୍ର—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଏହି ପାଞ୍ଚଗୋଟିକୁ ବାହ୍ୟେନ୍ଦ୍ରିୟ କୁହାଯାଏ । ]

ବାହ୍ଲି(ହ୍ଲୀ)କ—ସଂ. ବି—(ବଲ୍ହ ଧାତୁ = ପ୍ରାଧାନ୍ୟ ପାଇବା + କର୍ତ୍ତୃ. ଇକ)—୧ । ତାତାର ସାମ୍ରାଜ୍ୟର ଦେଶବିଶେଷ; ବଲ୍ଖ ପ୍ରଦେଶ; ବକ୍ଟ୍ରିଆ ଦେଶ—1 Balk; a country in Tartar. ୨ । ଗନ୍ଧର୍ବବିଶେଷ—2. Name of a heavenly chorister. ୩ । ବଲ୍କ ଦେଶୀୟ ଅଶ୍ୱ—3. A horse of the Balk country. ୪ । କୁଙ୍କୁମ—4. Saffron. ୫ । ହେଙ୍ଗୁ—5. Asafœtida.
Bālhi(lhī)ka

ବି—ସଂ. ବି—(ବେ ଧାତୁ = ବିସ୍ତାର କରିବା + ସଞ୍ଜ୍ଞାର୍ଥେ. କର୍ତ୍ତୃ. ଇ)—୧ । ଆକାଶ—1. The sky. ୨ । ସ୍ୱର୍ଗ—2. Heaven. ୩ । ପକ୍ଷୀ—Bird. ୪ । ( + କର୍ମ. ଇ ) ଚକ୍ଷୁ—4. Eye.
Bi
(ଉପସର୍ଗ)—(ଅନ୍ୟ ଧାତୁ ଓ ଶବ୍ଦ ପୂର୍ବେ ଯୁକ୍ତ ହେଲେ)—ଅବ୍ୟୟ—୧ । ସମ୍ୟକ୍ ବା ବିଶିଷ୍ଟ—1. Special; much, excellent.
(ଯଥା—ବିଜ୍ଞାନ; ବିଶୁଦ୍ଧ ।)
୨ । ବିପରୀତ; ବିରୁଦ୍ଧ—2. Adverse; opposed; opposite.
(ଯଥା—ବିପକ୍ଷ; ବିବାଦ; ବିଜାତି; ବିକ୍ରୟ ।)
୩ । ବିହୀନ; ବିରହିତ; ଶୂନ୍ୟ—3. Devoid of.
(ଯଥା—ବିବସ୍ତ୍ର; ବିକର୍ଣ୍ଣ ।)
୪ । ବିକୃତ—4. Faded (in colour); transformed
(ଯଥା—ବିବର୍ଣ୍ଣ ।)
୫ । ଅଭାବ—5. Want; absence.
(ଯଥା—ବିକଚ; ବିଷମ ।)

୬ । ବହୁ; ନାନା—6. Many; various.

(ଯଥା—ବିବିଧ, ବିଗ୍ରହ ।)

୭ । ପରସ୍ପର—7. Mutual.

(ଯଥା—ବିବାଦ ।)

୮ । ନିଶ୍ଚିତ—8. Certain.

(ଯଥା—ବିଦ୍ୱେଷ; ବିବୃତି ।)

୯ । ସମ୍ପୂର୍ଣ୍ଣରୂପେ—9. Completely.

(ଯଥା—ବିସର୍ଜନ; ବିଶ୍ୱାସ; ବିକ୍ଷିପ୍ତ ।)

୧୦ । ବିଗତ— 10. Parted with; past.

( ଯଥା—ବିଚ୍ଯୁତ । )

୧୧ । ବିଭିନ୍ନ— 11. Separated; different.

( ଯଥା—ବିଦେଶ । )

୧୨ । ନିଷିଦ୍ଧ—12. Forbidden.

( ଯଥା ବିକର୍ମ । )

**ଓ** **भी** ଦେ. ଅ· ( ସଂ. ଅପି )—୧ । ଅପି; ସୁଦ୍ଧା; ମଧ୍ୟ—1 Even.

( ଯଥା—କର୍ମକୁ ଏହା ବି ଘଟିଲା । )

୨ । ଅପିଚ; ଆହୁରି ମଧ୍ୟ—2. Also.

ତୁମେ ବି ମୋ ଧରେ ଯିବ— ମଧୁସୂଦନ. ଉତ୍ତରରାମଚରିତ ।

୩ । ଏବଂ—3, And.

( ଯଥା—ସେଠାକୁ ମୁଁ ଯିବି, ତୁମେ ବି ଯିବ । )

( କ୍ରିୟାର ବିଭକ୍ତ୍ୟର୍ଥ ପ୍ରତ୍ୟୟ ) ( ସଂ. ସ୍ୟାମି )—ଭବିଷ୍ୟତ୍‌କାଳ ଉତ୍ତମ ପୁରୁଷ ଏକବଚନରେ କ୍ରିୟାରେ ଲାଗିବା ଅଙ୍ଗ—
An inflection added to a verb in future tense, first person, singular number.

( ଯଥା—କରିବି, ଯିବି ଇତ୍ୟାଦି । )

( ସାଙ୍କେତିକ )—ବିଶେଷ୍ୟର ସାଙ୍କେତିକ—
An abbreviation for the word Biśeshya or noun.

[ ଦ୍ର—ଭାଷାକୋଷରେ ଶବ୍ଦମାନଙ୍କୁ ଚିହ୍ନାଇବା ପାଇଁ ଏହି ସାଙ୍କେତିକ ବ୍ୟବହୃତ ହୋଇଅଛି । ]

**ବି ବୀ** ବୈଦେ. ( ଇଂ. ) ( ସାଙ୍କେତିକ )—ଏହି 'ବି' ଅକ୍ଷର ଇଂରାଜୀ ବାଚେଲର୍ ବା ଅବିବାହିତ ବ୍ୟକ୍ତିର ସାଙ୍କେତିକ—
B; an abbreviation for Bachelor in the English language

[ ଦ୍ର—ଯେଉଁମାନେ ପ୍ରବେଶିକା ( ମାଟ୍ରିକ୍ୟୁଲେସନ୍ ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବିଶ୍ୱବିଦ୍ୟାଳୟର ପ୍ରଥମ (ଫାର୍ଷ୍ଟ) ପରୀକ୍ଷା ପାଶ୍ କରିବା ପରେ ଦ୍ୱିତୀୟ ପରୀକ୍ଷାରେ ପାଶ କରନ୍ତି ବା ଗ୍ରାଜୁଏଟ୍ ହୁଅନ୍ତି ସେମାନଙ୍କୁ ଇଂରାଜୀରେ ବାଚେଲର୍ ବା ସଂକ୍ଷେପରେ 'ବି' (B) ଉପାଧି ଦିଆଯାଏ । ବିଶ୍ୱବିଦ୍ୟାଳୟର ଯେଉଁ ବିଭାଗରେ ଛାତ୍ର ପଢ଼ି ପାଶ କରେ, ବି. (B) ଅକ୍ଷର ସଙ୍ଗେ ସେହି ବିଭାଗର ସାଙ୍କେତିକ ଅକ୍ଷର ଯୋଗ କରାଯାଏ । ଯଥା—ବି.ଇ. ( B. E. ) ବାଚେଲର୍ ଇନ୍ ଇଞ୍ଜିନିୟରିଙ୍ଗ୍ (ବାସ୍ତୁକର୍ମିସ୍ତ୍ରୀ ବିଭାଗ ) । ବି. ଏ. ( B. A. ) ବାଚେଲର୍ ଇନ୍ ଆର୍ଟ୍‌ସ୍ ( ସାଧାରଣ ଶିକ୍ଷା ) । ବି. ଇଡ. ( B. Ed. ) ବାଚେଲର୍ ଇନ୍ ଏଜୁକେସନ୍ ( ଶିକ୍ଷା ) । ବି. ଏସ୍‌ସି· ( B. Sc. ) ବାଚେଲର୍ ଇନ୍ ସାଏନ୍ସ ( ବିଜ୍ଞାନ ) । ବି. ଏଲ. ( B. L. ) ବାଚେଲର୍ ଇନ୍ ଲ ( ଆଇନ୍ ) । ବି. ଏମ୍· ( B. M. ) ବାଚେଲର୍ ଇନ୍ ମେଡିସିନ୍ ବା ବାଚେଲର୍ ଇନ ମିଉଜିକ ( ଚିକିତ୍ସା ବା ସଙ୍ଗୀତ ବିଦ୍ୟା ); ( ସାଧାରଣତଃ ଏହା M. B. ଲେଖାଯାଏ ) । ବି. ଡି. ( B. D. ) ବାଚେଲର୍ ଇନ୍ ଡିଭିନିଟୀ ( ଧର୍ମଶାସ୍ତ୍ର ) । ବି. ଏସ. ( B. S. ) ବାଚେଲର୍ ଇନ୍ ସର୍ଜରି ( ଅସ୍ତ୍ର ଚିକିତ୍ସା ) । ]

**ବି** ( ଧାତୁ )—ସଂ—ଗମନ କରିବା; ଗତି କରିବା—
Bi ( root ) To go; to move.

**ବିଅଁ**—ଦେ. ବି—୧ । ମୁନ୍ଦୁରି ବା ହେଁସ ବୁଣିବା ପାଇଁ ବ୍ୟବହୃତ ବାଣି-ଦଉଡ଼ିକୁ ଯଥାସ୍ଥାନରେ ରଖିବା ନିମନ୍ତେ ଘରିଯୁକ୍ତ ଦଣ୍ଡ—
Biañ 1. The long pole graduated to regulate the strings while weaving a mat.

ବମଶିରା ୨ । ବେକଠାରୁ ବେକମୁଣ୍ଡା ପର୍ଯ୍ୟନ୍ତ ଥିବା ଅସ୍ଥି; ମେରୁଦଣ୍ଡ ହାଡ଼—2. Backbone.
**रीडकी हड्डी**

ବିଅଁ ମାଉଁସକୁ ବ୍ରାହ୍ମଣ ଯେବେ ଖାଏ
ନରକେ ଶତ କଳ୍ପ ଯାଏ ପଡ଼ିଥାଏ – କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ବିଅନ୍ତ(ନ୍ତି)କ ମଣିଷ**—ଗ୍ରା. ବି. ସ୍ତ୍ରୀ—ପୋଖତୀ ସ୍ତ୍ରୀ; ପ୍ରସୂତୀ; ଅଳ୍ପଦିନ ହେଲା ସନ୍ତାନ ପ୍ରସବ କରିଥିବା ସ୍ତ୍ରୀ ଲୋକ—
Bianta(nti)ka manisha A woman who has recently given birth to a child.
বিয়ন্ত **प्रसूती**
[ବିଅଁ(ଅଁ)ତ(ତି)କ—ଅନ୍ୟରୂପ]

**ବିଅର୍**—ବୈଦେ. ( ଇଂ. )—ଏକପ୍ରକାର ବିଲାତି ମଦ; ଯବଧାନରୁ ପ୍ରସ୍ତୁତ ମଦିରା—Beer.
Biar বিয়ার **बीर**

( ବିଅର ସରାପ, ବୀର ସରାପ—ଅନ୍ୟରୂପ )

**ବିଅର୍ଥ**—ଦେ. ବିଣ ( ସଂ. ବ୍ୟର୍ଥ )—ବ୍ୟର୍ଥ; ବୃଥା; ପଣ୍ଡ—Fruitless; vain; unnecessary.
Biartha বীর্থ **व्यर्थ**

ସେ ଶ୍ରମେ ଯେତେ କାର୍ଯ୍ୟ କରେ
ବିଅର୍ଥ ସବୁ ଜାଣ ଭଲେ—ଜଗନ୍ନାଥ, ଭାଗବତ ।

କ୍ରି. ବିଣ—ବିଅର୍ଥେ ( ଦେଖ )—Biarthe (See)

**ବିଅର୍ଥେ**—ଦେ. କ୍ରି. ବିଣ (ସଂ. ବ୍ୟର୍ଥ)—ବୃଥା—
Biarthe বৃথায় **नाहक** In vain.

ବିଅର୍ଥେ ହିନ ବଞ୍ଚାଉଅଛି ମୋ ଧନ— କବିସୂର୍ଯ୍ୟ, ଉତ୍କଳରତ୍ନ ବ ଗୀତ ।

**ବିଆ(ୟା)**—ଗ୍ରା. ବି. ( ଅଶ୍ଳୀଳ ) ( ସଂ. ପାୟୁ=ଗୁହ୍ୟଦ୍ୱାର; ସଂ. ସୀ ଧାତୁ=ଗର୍ଭ ଗ୍ରହଣ କରିବା, ଉତ୍ତେଜନା କରିବା; ଜମ୍ମା ସଂ. ଯୋନ୍ୟାଧାର; ଯୋନଜନ=ବିଆଣ)—ସ୍ତ୍ରୀ ଜନନେନ୍ଦ୍ରିୟ—
Biā(yā) Female generative organ, vagina.
গুদ **बुर**

**ବିଆଁ**—ଦେ. ବି (ସଂ. ସୀ ଧାତୁ=ଗର୍ଭ ଗ୍ରହଣ କରିବା; ବି+ଜନ୍ ଧାତୁ)—ବେଇବା; ପ୍ରସବ କରିବା; ବିୟାଣ—
Biañ বিয়ান **बिआना** Act of giving birth; confinement; being delivered of a child.

**ବିଆଁତକ**—୧ । ପ୍ରାଦେ. (ପୁରୀ) ବି· ସ୍ତ୍ରୀ—କୌଣସି ସନ୍ତାନର ଜନ୍ମକର୍ତ୍ତ୍ରୀ ବିୟନ୍ତ ସ୍ତ୍ରୀ; ଜନୟିତ୍ରୀ—1. A woman who has given birth to a particular child.
Biañtaka
**बिआह हुई**

୨ । ପ୍ରାଦେ (ଗଞ୍ଜାମ ଓ ଗଡ଼ଜାତ) ବି ସ୍ତ୍ରୀ—ରାଜାନ୍ତଃପୁରର ଯେଉଁ ଦାସୀ ରାଜାଙ୍କ ଔରସରେ ଗର୍ଭବତୀ ବା ସନ୍ତାନବତୀ

ହୁଏ—2. The maid servant in the harem of a Rājā who is his mistress and becomes a mother.

୩ । ଅଳ୍ପ ଦିନ ହେଲା ସନ୍ତାନ ପ୍ରସବ କରିଥିବା ସ୍ତ୍ରୀ; ପୋଷଣ୍ଡ ସ୍ତ୍ରୀ—3. A woman who has been recently delivered of a child.

**ବିଆଇବା**—ଗ୍ରା. ( ଇତର ) କ୍ରି. ( ସଂ. ବି ଧାତୁ=ଗର୍ଭଧାରଣ କରିବା; Biāibā କିମ୍ବା ପ୍ରଥମ ଦୁଇ ଅକ୍ଷରବିଶିଷ୍ଟ ଶବ୍ଦରୁ ଗଠିତ ନାମ বিয়ান **बिआना** ଧାତୁ)—ବେଇବା (ଦେଖ)—Beibā ( See )
[ ବିଏଇବା, ବିୟାଇବା, ବିଆଇ ପକା(କେ)ଇବା—ଅନ୍ୟରୂପ ]

**ବିଆଜ**—ଦେ. ବି. ( ଫ. ବ୍ୟାଜ )—
Biāja ୧ । ବ୍ୟାଜ; ଛଳ; କପଟ—1 Excuse.
বেয়াজ ୨ । ଋଣ ଲାଗିବା ଟଙ୍କାର ସୁଧ—2. Interest on
**बिआज** money invested on loan.

ଛୁଇଁ ନ ଖାଆନ୍ତି ପିଆଜ, ପଠାଣ ନ ଖାଆନ୍ତି ବିଆଜ—ଭଗ ।

[ ଦ୍ର—ମୁସଲମାନଙ୍କ ଶାସ୍ତ୍ରରେ ଟଙ୍କା ସୁଦରେ ଖଟାଇବା ନିଷିଦ୍ଧ । ]

**ବିଆଜ ଖାଇବା**—ଦେ. କ୍ରି—ମହାଜନ ଟଙ୍କାର ସୁଧକୁ ଭୋଗ କରିବା ବା
Biāja khāibā ଗ୍ରହଣ କରିବା—To take or enjoy the
বেয়াজ খাওয়া interest on money lent.
**बिआज खाना**

**ବିଆଜ ଖୋର୍**—ଦେ. ବି—ଯେ ବେଶି ସୁଧ ନିଏ—
Biāja khor সুদ খোর **सुद खोर** Usurer.
(ବିଆଜ ଖୋରି—କର୍ମବାଚକ ବିଶେଷ୍ୟରୂପ)

**ବିଆଣ**—ଗ୍ରା. ( ଇତର ) ବି. ( ସଂ ବି ଧାତୁ=ଗର୍ଭ ଗ୍ରହଣ କରିବା;
Biāṇa କିମ୍ବା ସଂ. ବିଜନନ )—
বিয়ান ୧ । ଜନନ କ୍ରିୟା; ବେଇବା; ସନ୍ତାନ ପ୍ରସବ କରିବା—
**बिआना** 1. Giving birth; act of delivery of a child.

ବିଆଣ ଦଶ ଦିନ ନ ଯିବାର ଗାଈ
ନାରୀ, ମେଣ୍ଢା, ଗର୍ଦ୍ଦଭୀ, ମୃଗୀ, ଛେଳୀ ଏହୁ
ଦୁଗ୍ଧମାନ ଅପେୟ ଅଟଇ ବ୍ରାହ୍ମଣର
ପିଇଲେ ଦୋଷ ନଷ୍ଟେଁ ହୁଏ ନରବର । କୃଷ୍ଣଙ୍କ ମ. ମହାଭାରତ, ଶାନ୍ତି ।

୨ । ସନ୍ତାନ ସନ୍ତତି—2 Offspring.

( ଯଥା—ତାର ଘୁଷୁରି ବିଆଣ ସବୁ ଘଉଦ ମାଡ଼ି ଯାଉଛନ୍ତି । )

**ବିଆଣ ଦୁଆର**—ଗ୍ରା. ବି ( ସ. ବିଜନନ ଦ୍ୱାର )—
Biāṇa duāra ପ୍ରସବ ଦ୍ୱାର; ଯୋନି ମୁଖ—The vaginal
পিসাব দ্বার **पेसाब मार्ग** (ବିଆଣ ମୁହଁ—ଅନ୍ୟରୂପ) orifice.

**ବିଆଣୀ**—ଦେ. ବିଣ. ସ୍ତ୍ରୀ. ( ସ. ବିଜନୟିତ୍ରୀ )—ପ୍ରସବକାରିଣୀ—
Biāṇi Bringing forth children.
(ବିଆଣିଆଁ—ଅନ୍ୟରୂପ) [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ
বিয়ানী ହୁଏ । ଯଥା—ବରଷ ବିଆଣୀ, ଏକ ବିଆଣୀ ଇତ୍ୟାଦି । ]
**बियानी**

**ବିଆଳି**—ଦେ. ବି. (ସ. ଶୀଘ୍ର ଧାନ୍ୟ=ଆଶୁ ଧାନ୍ୟ )—
Biāḷi ଆଶୁ ଧାନ୍ୟ; ଶୀଘ୍ର ଫଳିବା ଏକ ପ୍ରକାର ଧାନ—
আউস ধান The Aus paddy; the early paddy;
**साठी, आउस** autumn paddy.

[ ଦ୍ର—ଏହା ବୁଣା ହେବାର ଛଅ ମାସ ମଧ୍ୟରେ ପାଚେ । ଏ ଧାନ ବର୍ଷା ଦିନରେ ବୁଣା ହୋଇ ଶରତ୍‌କାଳ ପୂର୍ବରୁ ପାଚେ । ଏ ଧାନ ନିକୃଷ୍ଟ ଓ ଉଚ୍ଚ ଜମିରେ ହୁଏ, ଏହା ଦୁଇ ପ୍ରକାର ଯଥା—
୧. (ଲଘୁ) ଷାଠିଆ, ଭୁଧସରୁ, କଳାଶୁର, ନଅଳ, ଢାଙ୍ଗୁଆ ।
୨. (ବଡ଼) ବଙ୍କି, ଇଙ୍କି, ମାଧଆ, କାରଦା, ପ୍ରାଣଢଆ, ଗୋବରୁ, ବାଲବନଡ଼, କକା, କଖାରୁଆ, ଚମ୍ପା, ଗୁଲ୍ଲି, ଖାରେଇ, ଶିଆଳ । ]

**ବି. ଇ**—ବୈଦେ. (ଇଂ) (ସାଙ୍କେତିକ)—ବି ତଳେ ନୋଟ୍ ଦେଖ—
Bi. i See notes under 'Bi'.
বি ই **बी इ** ଇଞ୍ଜିନିଅରଙ୍କ ପାଶ କରିଥିବା ଉପାଧି—B. E.

**ବିଇଞ୍ଚି**—ଦେ. ବି. ( ସଂ. ବିଚର୍ଚ୍ଚିକା )—ଦେହରେ ଫଳିଯିବା ଏକ
Bi-iñchi ପ୍ରକାର କୁଣ୍ଡିଆ—Running scab; exima;
পামা **बेरांचि, खर्रा** eczema.

**ବି-ଈନ**—ଦେ. ବି. (ବି=ପକ୍ଷୀ+ଇନ=ଶ୍ରେଷ୍ଠ; ସ.ଖଗ)—
Bi-īna ପକ୍ଷିରାଜ; ଗରୁଡ଼—Garurḍa; the King of birds.

ବନସ୍ତୁ ଲୟ ତହିଁ ନାସୃନ ଦୂକ ଦେଇ ସମ ଜାଣି ବନ୍ଧନ ସେ ।
ଭଞ୍ଜ. ବୈଦେହୀଶବିଳାସ ।

**ବିଉଗ(ଗୁ)ଲ୍**—ବୈଦେ. ବି. ( ଇଂ. ବ୍ୟୁଗଲ୍ )—
Biuga(gu)l ୧ । ଭୂରୀ ବାଦ୍ୟ—1. Bugle.
বিউগল **बिगुल** ୨ । ରଣଭେରୀ—2. War trumpet.
(ବିଉଗ୍ଲ—ଅନ୍ୟରୂପ)

**ବିଉଗ୍ଲ(ଗ୍ଲା)ର୍**—ବୈଦେ. ବି. (ଇଂ)—ଭୂରୀ ବାଦକ—Bugler.
Biugla(glā)r বিউগ্লার **बिगुलार**

**ବିଉଚି**—ପ୍ରାଦେ. (ବମ୍ବର) ବି. (ଭୁଲ. ହି. ବେ୍ୟାଂଚ)—
Biuchi ବିଇଞ୍ଚି ( ଦେଖ )—Bi-iñchi ( See )
(ବେଉଚି—ଅନ୍ୟରୂପ)

**ବିରୁତ**—ଦେ. ବିଣ—ଅତ୍ୟନ୍ତ ଉଚ୍ଚ; ଗମ୍ଭୀର (ଶବ୍ଦ)—
Biruta Very loud (sound).
ଦେ. ବି—ଅତି ଉଚ୍ଚସ୍ୱର—Very loud sound.

**ବି. ଏ**—ବୈଦେ. ବି. ( ଇଂ )—୧ । ବିଶ୍ୱବିଦ୍ୟାଳୟର ସମ୍ମତ ଉପାଧି
Bi. e ବିଶେଷ—1. Bachelor in Arts; B. A; a title
**बि. ए.** conferred on graduates by the university.
বি এ. ୨ । ବି. ଏ. ପାଶ କରିଥିବା ବ୍ୟକ୍ତି—2. A graduate.

**ବିଏଁ**—ଦେ. ବି ଓ ବିଣ ( ସଂ. ବ୍ୟାମ )—
Bieñ ଦୈର୍ଘ୍ୟରେ ଏକ ବେଁ ମାପ; ଦୁଇ ହାତକୁ ବିସ୍ତୃତ କଲେ
বেওঁ, বেঁও ଏକ ହାତର ଅଗଠାରୁ ଅନ୍ୟ ହାତର ଅଗ ପର୍ଯ୍ୟନ୍ତ
**चम** ଦୈର୍ଘ୍ୟ—A length of one Beñ or about 6 feet; fathom.

ବି. ଏନ୍. ଆର୍.—ବୈଦେ. ବି. (ଇ· ସାଙ୍କେତିକ; ଏ ବାକ୍ୟରେ ଥିବା
Bi. en. ār. ତିନି ଶବ୍ଦର ଆଦ୍ୟ ଇଂରାଜି ଅକ୍ଷର ତ୍ରୟ)—ବେଙ୍ଗଲ
বি. এন. আর নାଗପୁର ରେଲ୍ ୱେ—B. N. R; abbrevi-
बि ऐन आर ation for Bengal Nagpur Railway.

ବିଂଝାଲ୍—ଗ୍ରା ଦେ. ବି.—(ସମ୍ବଲପୁର)—ଅନାର୍ଯ୍ୟ ଜାତିବିଶେଷ—
Bimjhāl (ବିଁଝାଲ—ଅନ୍ୟରୂପ) An aboriginal tribe.

ବିଂଶ—ସଂ. ବିଣ.—କୋଡ଼ିଏ ସଂଖ୍ୟାର ପୂରକ; ଗଣନାରେ କୋଡ଼ିଏ
Bimśa ସ୍ଥାନୀୟ—Twentieth.
(ବିଂଶତିତମ—ଅନ୍ୟରୂପ) (ବିଂଶୀ; ବିଂଶତିତମା—ସ୍ତ୍ରୀ)
ସଂ ବି.—କୋଡ଼ିଏ ଭାଗରୁ ଏକ ଭାଗ—
One twentieth part (Apte).

ବିଂଶକ—ସଂ· ବି ଓ ବିଣ.—( ବିଂଶତି + ଅବସ୍ଥାର୍ଥେ. କ )—ବିଂଶତି
Bimśaka : (ବିଂଶିକା—ସ୍ତ୍ରୀ) ସଂଖ୍ୟା; ୨୦—Twenty.

ବିଂଶତି—ସଂ. ବି. ଓ ବିଣ (ସଂଖ୍ୟା ବାଚକ)—୨୦ ସଂଖ୍ୟା; କୋଡ଼ିଏ—
Bimśati Twenty.

ବିଂଶତିକରଜ—ସଂ. ବି.—(ବିଂଶତିକର=ରାବଣ+ଜନ୍ ଧାତୁ+କର୍ତ୍ତୃ
Bimśatikaraja ଅ)—ବିଂଶଭୁଜର ବା ରାବଣର ପୁତ୍ର; ଇନ୍ଦ୍ରଜିତ୍
Indrajit; the son of Rāvaṇa (who had
twenty hands.)

ବୋଲନ୍ତି ଶ୍ରବଣେ ସତୀ ବନଶ୍ୟତ ଯେ ବିଂଶତ
କରଜ ହେବ ଲକ୍ଷ୍ମଣ କରେ । ଉପ. ବୈଦେହୀଶବିଳାସ ।

ବିଂଶତିତମ—ସଂ. ବିଣ—(ବିଂଶତି+ପୂରଣାର୍ଥେ ତମ)—ବିଂଶତି
Bimśati tama ସଂଖ୍ୟାର ପୂରଣ—Twentieth.

ବିଂଶତିପ—ସଂ. ବି. ପୁଂ—(ବିଂଶତି+ପା ଧାତୁ+କର୍ତ୍ତୃ. ଅ)—କୋଡ଼ିଏଟି
Bimśatipa ଗ୍ରାମର ଅଧିପତି ବା ଜମିଦାର—The lord of
(ବିଶାଧୀଶ; ବିଂଶାଧୀଶ—ଅନ୍ୟରୂପ) twenty villages.

ବିଂଶତି ପାଣି—ଦେ. ବି· (ସଂ. ବିଂଶପାଣି)—(୨୦ ହସ୍ତ ବିଶିଷ୍ଟ) ରାବଣ
Bimśati pāṇi Rāvaṇa.

ବିଂଶପାଣି
ବିଂଶବାହୁ
ବିଂଶକର } ସଂସ୍କୃତରୂପ
ବିଂଶ ବାହୁ
ବିଂଶ ଭୁଜ

ଖଜଅ ହୋଇ ଗଲା ସେ ବିଂଶତି ପାଣି
କୃଷ୍ଣସିଂହ. ମହାଭାରତ ବନ ।

(ବିଂଶତିବାହୁ, ବିଶତି ଭୁଜ, ବିଂଶତି କର—ଅନ୍ୟରୂପ)

ବିଂଶ ଶତାବ୍ଦୀ—ସଂ. ବି.—୧୯୦୧ ଖ୍ରୀଷ୍ଟାବ୍ଦ ଠାରୁ ୨୦୦୦ ଖ୍ରୀଷ୍ଟାବ୍ଦ
Bimśa śatābdi ପର୍ଯ୍ୟନ୍ତ ୧୦୦ ବର୍ଷ କାଳର ସମାହାର—
The twentieth century

ବିଂଶାକ୍ଷ—ସଂ. ବି.—ବହୁବ୍ରୀହି; ବିଂଶତି+ଅକ୍ଷି; ସମାସରେ ସଂଖ୍ୟାବାଚକ
Bimśāksha ଶବ୍ଦର ତି ଲୋପ) କୋଡ଼ିଏ ଚକ୍ଷୁବିଶିଷ୍ଟ;
(ବିଂଶ ନୟନ; ବିଂଶ ନେତ୍ର—ଅନ୍ୟରୂପ) ରାବଣ—Rāvaṇa.

ବୋଲେ କେହୁ ବିଂଶାକ୍ଷ ଅଣୁ ଧରୁ ରେ।
ଉପ. ବୈଦେହୀଶ ବିଳାସ ।

ବିଂଶୋତ୍ତର—ସଂ. ବିଣ. (ବହୁବ୍ରୀହି) ଯେଉଁ ସଂଖ୍ୟାର ଶେଷରେ ୨୦
Bimśottara ଥାଏ—(a number) Ending with 20.

ବିଂଶୋତ୍ତର ଶତ—ସଂ ବି. ଓ ବିଣ—(ସଂଖ୍ୟାବାଚକ) (ବହୁବ୍ରୀହି—
Bimśottara sata ବିଂଶ+ଉତ୍ତର; କର୍ମଧା—ବିଂଶୋତ୍ତର+ଶତ)
ଏକଶତ କୋଡ଼ିଏ; ବିଶାଶତେ—One hundred and twenty.

ବିଂଶୋତ୍ତରୀ—ସଂ. ବି.—( ବିଂଶୋତ୍ତର+ଈ )—ଫଳିତ ଜ୍ୟୋତିଷ
Bimśottarī ଗଣନାକ୍ରମେ ମନୁଷ୍ୟର ଆୟୁ ୧୨୦ ବର୍ଷ ଗଣନା
କରାଯିବା ରୀତି—An astrological scale in
which a man's life is calculated to con-
sist of 120 years.
[ଦ୍ର—ଏହି ୧୨୦ ବର୍ଷରେ ନବଗ୍ରହମାନଙ୍କ ଦଶା ନିମ୍ନଲିଖିତ
ରୂପେ ଯଥାକ୍ରମେ ଗଣା ଯାଏ—ରବି ଦଶା—୬ ବର୍ଷ, ଚନ୍ଦ୍ର ୧୦,
ମଙ୍ଗଳ—୭, ରାହୁ—୧୮; ବୃହସ୍ପତି—୧୬; ଶନି—୧୯, ବୁଧ—
୧୭; କେତୁ—୭; ଶୁକ୍ର—୨୦ ବର୍ଷ ।]

ବିକଙ୍କଟ(ତ)—ସଂ. ବି.—(ବି+କନ୍କ ଧାତୁ=ଗମନ କରିବା+କର୍ତ୍ତୃ.
Bikaṅkaṭa(ta) ଅଟ; ଅତ)—ବଇଞ୍ଚ (ଦେଖ)—
(ବିକଣ୍ଟକ—ଅନ୍ୟରୂପ) Baiñcha (See)

ବିକଚ—ସଂ. ବିଣ.—୧ । ( ବହୁବ୍ରୀହି; ବି=ବିଗତ+କଚ=ବନ୍ଧନ
Bikacha ଯାହାର) ବିକଶିତ; ପ୍ରସ୍ଫୁଟିତ (ଫୁଲ)—1. Full blown;
(ବିକଚା—ସ୍ତ୍ରୀ) opened (flower). ୨ । (ବି=ବିଗତ+
କଚ=କେଶ ଯାହାର)—ଟାଙ୍ଗରା;—2. Bald-headed.
୩ । କେଶହୀନ—3. Destitute of hair.
୪ । ପ୍ରକାଶିତ; ପ୍ରକଟିତ—4. Manifested; dis-
tinctly apparent (Apte). ୫ । ବିସ୍ତାରିତ;
ଇତସ୍ତତଃ କ୍ଷିପ୍ତ; ବିକ୍ଷିପ୍ତ—5. Scattered over;
spreadabout (Apte)
ବି—୧ । କେଶ ଗ୍ରହଣ; ଅନ୍ୟର ଚୁଟି ବଳପୂର୍ବକ ଧରିବା—
1 Holding a person by the hair. ୨ ।
କେତୁଗ୍ରହ—2. Ketu (planet; the descend-
ing node. ୩ । ଧ୍ୱଜ; ପତାକା—3. Banner. ୪ ।
କ୍ଷପଣକ; ବୌଦ୍ଧ ଯତି—4. A Buddhist mendi-
cant. ୫ । ରାକ୍ଷସବିଶେଷ—5. The name of a
demon.

ବିକଚ୍ଛ—ସଂ. ବିଣ. ପୁଂ(ବହୁବ୍ରୀହି; ବି=ନାହିଁ+କଚ୍ଛ=କଛ ଯାହାର)—
Bikachchha ୧ । ଯେ କଛ ମାରି ଲୁଗା ପିନ୍ଧି ନଥାଏ; କଛ
(ବିକଚ୍ଛା-ସ୍ତ୍ରୀ) ହୀନ—1. Wearing the loin-cloth
without tucking down one end thereof
along the privities.
୨ । ଯେଉଁ ନଦୀର ଦୁଇ କୂଳରେ କାଦୁଅ ଜମି ନ ଥାଏ
(ଗ୍ରା. ଶ)—2. (a river) Having no mud
bank on both the shores.

ବିକଟ—ସଂ. ବିଣ ( ବହୁବ୍ରୀହି; ବି=ବିପୁଳ, ବିକୃତ+କଟ=ଆକୃତି,
Bikaṭa ଅବସ୍ଥା ଯାହାର)—୧ । ଅତି ବୃହତ୍—1. Gigantic.
(ବିକଟା—ସ୍ତ୍ରୀ) ୨ । ଅତି ଭୟଙ୍କର—2. Frightful; very
fierce; horrible. ୩ । ଅତି କଦର୍ଯ୍ୟ; କୁତ୍ସିତ—

3. Hideous; ugly. ୪ । ପ୍ରଶସ୍ତ; ବିସ୍ତୀର୍ଣ୍ଣ—4. Wide; spacious; broad (Apte) ୫ । ଗର୍ବିତ; ଦୃପ୍ତ—5. Proud; haughty (Apte). ୬ । ଦନ୍ତୁର; ଦାନ୍ତୁରା—6. Having large or prominent teeth (Apte). ୭ । ସୁନ୍ଦର—7. Beautiful (Apte). ୮ । ଭ୍ରୂକୁଟୀଯୁକ୍ତ (ମୁଖ)—8. Frowning (face) (Apte). ୯ । ବିକୃତ—9. Changed in appearance (Apte).

ସଂ. ବି—୧ । ବ୍ରଣ; ବଥ—1. Boil; tumour (Apte). ୨ । ବିସ୍ଫୋଟକ (ପ୍ରକୃତିବାଦ)—2. Blister; eruption.

**ବିକଟା**—ସଂ. ବି. ସ୍ତ୍ରୀ—ବଜ୍ରବାରାହୀ; ଦେବୀବିଶେଷ—Name of a Goddess.
Bikaṭā

ସଂ. ବିଣ. ସ୍ତ୍ରୀ—ବିକଟର ସ୍ତ୍ରୀଲିଙ୍ଗ—Feminine of Bikaṭa.

ଦେ. ବିଣ. (ସଂ. ବିକଟ)—ବିକଟ—Fierce.

**ବିକଟା(ଟେ)ଇବା**—ଦେ. କ୍ରି. (ସଂ. ବିକଟାୟିତ)—
Bikaṭā(ṭe)ibā ୧ । (ମୁହଁକୁ) ବାଆଦାନ କରି ଭୟଙ୍କର କରିବା—1. To yawn hideously; to gape horribly.
[ବିକଟା(ଟେ)ଇବା—ଅନ୍ୟରୂପ]
বিকটান বিচকানা ୨ । ଭ୍ରୂକୁଟୀ କରିବା—2. To frown.

**ବିକଟାକାର**—ସଂ. ବି (କର୍ମଧା; ବିକଟ+ଆକାର)—କରାଳ ଆକୃତି—Horrid appearance.
Bikaṭākāra
(ବିକଟାକୃତି—ଅନ୍ୟରୂପ) ବିଣ ପୁଂ (ବହୁବ୍ରୀହି)—ଭୟଙ୍କର ଆକୃତିବିଶିଷ୍ଟ—Of frightful appearance; hideous.

**ବିକଟାନନ**—ସଂ. ବି—୧ । (କର୍ମଧା, ବିକଟ+ଆନନ) ଭ୍ରୂକୁଞ୍ଚିତ ବା ଭୟଙ୍କର ମୁଖ—Horrible or hideous face. ୨ । (ବହୁବ୍ରୀହି)—ଧୃତରାଷ୍ଟ୍ରଙ୍କର ଏକ ପୁତ୍ର—Name of a son of Dhṛutarāshṭra.
Bikaṭānana

ସଂ. ବିଣ. ପୁଂ—ଯାହା ମୁହଁ ଦେଖିବାକୁ ଭୟଙ୍କର—Having a horrid face.
(ବିକଟାନନା—ସ୍ତ୍ରୀ)

**ବିକଟାୟିତ**—ସଂ. ବିଣ. (ବିକଟାୟ ନାମ ଧାତୁ+କର୍ମ. ତ)—ବିକଟ ବା ଭୟଙ୍କର କରାଯାଇଥିବା—Made horrible
Bikaṭāyita

**ବିକଟାଳ**—ଦେ. ବିଣ. (ସଂ. ବିକଟ; ବିକରାଳ)—୧ । ବିକରାଳ (ଦେଖ)—1. Bikarāḷa (See) ୨ । (ଗ୍ରା. ବେକରାର)—ବ୍ୟାକୁଳ—Agitated; troubled.
Bikaṭāḷa
[ବିକ(ଚ)ଟାଳଅ—ଅନ୍ୟରୂପ]
বিটকেল **विकरार**

**ବିକତ୍ଥନ(ନା)**—ସଂ. ବି. (ବି=ବିପରୀତ+କତ୍ଥ ଧାତୁ=ପ୍ରଶଂସା କରିବା+ଭାବ. ଅନ;+ଆ)—୧ । ଆତ୍ମ ପ୍ରଶଂସା; ଆତ୍ମଶ୍ଳାଘା—1. Self praise; bragging. ୨ । ବୃଥା ସ୍ତୁତି—2. Vain glory; flattery.
Bikatthana(nā)

ସଂ. ବିଣ. ପୁଂ (ସ୍ତ୍ରୀ)—(+କର୍ତ୍ତୃ. ଅନ) ଆତ୍ମଶ୍ଳାଘାକାରୀ—3. Arrogant; vain glorious.

**ବିକନ୍ଧି**—ଦେ. ବି (ସଂ.ଦ୍ୱିସନ୍ଧି)-ଦୁଇ ଘରର ବା କାନ୍ଥର ମଧ୍ୟବର୍ତ୍ତୀ ସଙ୍କୀର୍ଣ୍ଣ ସ୍ଥାନ; ଗୁପ୍ତ ସ୍ଥାନ—Narrow space or covert lane between two houses or walls; secret hiding place.
Bikandi
বসন্ধি **विसन्धि**

[ଦ୍ର—ଏ ଶବ୍ଦ କନ୍ଧି ସଙ୍ଗେ ସମ୍ବନ୍ଧରୂପେ ବ୍ୟବହୃତ ହୁଏ ଯଥା—କନ୍ଧି ବିକନ୍ଧି; ତୁଳ. ସନ୍ଧି ବିସନ୍ଧି ।]

**ବିକମ୍ପ**—ସଂ. ବି. (ବି=ଅତ୍ୟନ୍ତ+କମ୍ପ)—ବେପଥୁ, ଅତିଶୟ କମ୍ପନ; ଥରଥରହୋଇ ଥରି ଥରିବା—Violent trembling.
Bikampa
(ବିକମ୍ପନ—ଅନ୍ୟରୂପ)

**ବିକମ୍ପିତ**—ସଂ. ବିଣ. (ବି+କମ୍ପିତ)—୧ । ଅତିଶୟ କମ୍ପୁଥିବା—1. Trembling or shaking violently. ୨ । ଅତିଶୟ ବିଚଳିତ—2 Rudely shaken; perturbed.
Bikampita

**ବିକରାଳ**—ସଂ. ବିଣ. (ବି=ଅତ୍ୟନ୍ତ+କରାଳ=ଭୟଙ୍କର)—ଅତି ଭୟାନକ—Hideous; horrid.
Bikarāḷa (ବିକରାଳା—ସ୍ତ୍ରୀ)

**ବିକରୁଣ**—ସଂ. ବିଣ. ପୁଂ. (ବି=ନାହିଁ+କରୁଣା ଯାହାର)—ନିଷ୍କରୁଣ; ନିଷ୍ଠୁର; ନିର୍ଦ୍ଦୟ—Cruel; pitiless; unkind.
Bikaruṇa
(ବିକରୁଣା—ସ୍ତ୍ରୀ)

**ବିକର୍ଣ୍ଣ**—ସଂ. ବି. (ବହୁବ୍ରୀହି, ବି=ବିରହିତ+କର୍ଣ୍ଣ ଯାହାର)—୧ । କର୍ଣ୍ଣବିରହିତ—1. Earless; destitute of the ears ୨ । ଶ୍ରବଣଶକ୍ତିରହିତ; କାଲ—2. Deaf.
Bikarṇṇa

ବି—୧ । ଦୁର୍ଯ୍ୟୋଧନର ଏକ ଭାଇ—1. Name of one of the brothers of Durjyodhana. ୨ । ରାଜା କର୍ଣ୍ଣଙ୍କର ଏକ ପୁତ୍ର (ହି. ଶ.)—2. Name of a son of King Karṇṇa. ୩ । ଏକପ୍ରକାର ବାଣ (ହି. ଶ.)—3. A kind of arrow.

**ବିକର୍ଣ୍ଣ(ର୍ଣ୍ଣି)କ**—ସଂ. ବିଣ. (ବି=ନାହିଁ+କର୍ଣ୍ଣିକା=କେଶର+କ)—କେଶର ବିହୀନ (ପୁଷ୍ପ)—(a flower) Having no filaments.
Bikarṇṇa(rṇṇi)ka

ସଂ. ବି—୧ । ଏକପ୍ରକାର ଗ୍ରନ୍ଥିପର୍ଣ୍ଣୀ (ହି. ଶ.)—1. A kind of herb ୨ । ଶିବଙ୍କ ଗଣବିଶେଷ—2. A class of Śiba's attendants.

**ବିକର୍ତ୍ତନ**—ସଂ. ବି. (ବହୁବ୍ରୀହି; ବି=ବହୁଧା+କୃତ୍ ଧାତୁ=କାଟିବା+କର୍ମ. ଅନ)—୧ । ସୂର୍ଯ୍ୟ; ମାର୍ତ୍ତଣ୍ଡ; ବିବସ୍ୱାନ୍—A name of the sun.
Bikarttana

ପାଇଲେଣି ଏବେ ଦେବ ବିକର୍ତ୍ତନ
ଭଲେଇ ଶିଖରେ ସ୍ୱର୍ଣ୍ଣ ସିଂହାସନ—ରାଧାନାଥ ଚିଲିକା ।

[ଦ୍ର—ଏ ଖଣ୍ଡ ଖଣ୍ଡ ହୋଇ କଟା ହୋଇଥିଲେ । ପୁରାଣରେ ଅଛି ଯେ ସୂର୍ଯ୍ୟଙ୍କ ଶ୍ୱଶୁର ବିଶ୍ୱକର୍ମା ସୂର୍ଯ୍ୟଙ୍କ ତେଜକୁ ହ୍ରାସ କରିବା ପାଇଁ ସୂର୍ଯ୍ୟଙ୍କୁ ଖଣ୍ଡ ଖଣ୍ଡ କରି କାଟିବା ପରେ ସୂର୍ଯ୍ୟପତ୍ନୀ ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସମ୍ଭାଳିବାକୁ ସମର୍ଥା ହୋଇଥିଲେ ।]

୨ । ଅର୍କବୃକ୍ଷ—2. The plant Swallowort; Calotropis Gigantea. ୩ । (ବି+କୃତ୍ ଧାତୁ+କର୍ତ୍ତୃ. ଅନ)—ଯେ ଖଣ୍ଡ ଖଣ୍ଡ କରି କାଟେ; ଛେଦକ—

Cutter; chopper; one who chops up a thing.

ଦେ ବି—ଛିନ୍ନ; ଅପସାରିତ —Separated; cut asunder; removed.

ବିକର୍ତ୍ତନଜ—ସଂ. ବି. (ବିକର୍ତ୍ତନ+ଜନ୍ ଧାତୁ+କର୍ତ୍ତୃ. ଅ; ସୂର୍ଯ୍ୟପୁତ୍ର)— Bikarttanaja ସୁଗ୍ରୀବ—Sugriba, the king of monkeys (said to be a son of the Sun-god).

ବିକର୍ତ୍ତନଜା—ସଂ. ବି—ସୂର୍ଯ୍ୟକନ୍ୟା; ଯମୁନା—The Jamunā river, Bikarttanajā the daughter of the Sun-god.

ବିକର୍ତ୍ତା—ସଂ. ବି. (ବି=ସମ୍ୟକ୍, ବଶିଷ୍ଟ+କର୍ତ୍ତା=ପ୍ରଭୁ)—ବିଷ୍ଣୁଙ୍କର Bikarttā (ସହସ୍ରନାମୋକ୍ତ) ଏକ ନାମ—A name of Bishnu.

ବିକର୍ମ—ସଂ. ବି.—(ବି=ମନ୍ଦ, ନିଷିଦ୍ଧ+କର୍ମନ୍)—ନିଷିଦ୍ଧ କର୍ମ— Bikarma Forbidden act.

ସଂ. ବିଣ. (ବହୁବ୍ରୀହି)—ଦୁଷ୍ଚରିତ୍ର—Of bad conduct.

ଦେ. ବି.—କର୍ମ ଦୋଷ; ଦୁର୍ଭାଗ୍ୟ—Ill luck.

ବିକର୍ମରୁ ମୋର ହୋଇଲା ବଧିରେହା ଏମନ୍ତ ଲିଖିଲ ଅଛି ଭଳ।
ଭଞ୍ଜ. ବୈଦେହୀଶବିଳାସ।

ବିକର୍ମ କୃତ୍—ସଂ. ବିଣ. ପୁଂ—(ବିକର୍ମ+କୃ. ଧାତୁ+କର୍ତ୍ତୃ. କ୍ୱିପ୍)— Bikarma krut ନିଷିଦ୍ଧ କର୍ମକାରୀ—Doing forbidden (ବିକର୍ମସ୍ଥ—ଅନ୍ୟରୂପ) acts.

ବିକର୍ଷ—ସଂ. ବି—(ବି+କୃଷ୍ ଧାତୁ+କର୍ମ. ଅ)—ବାଣ; ଶର (କ୍ଲୀ.ଶ.)- Bikarsha Arrow.

ବିକର୍ଷଣ—ସଂ. ବି.—( ବି=ବିପରୀତ+କର୍ଷଣ=ଟାଣିବା )—୧। Bikarshaṇa ବିପରୀତ ଦିଗକୁ ଟାଣିବା—1. Pulling a-(ଆକର୍ଷଣ—ବିପରୀତ) sunder. ଆକର୍ଷଣର ବିପରୀତ—

2. Counter-attraction ୩। (ବି=ଅତ୍ୟନ୍ତ+କର୍ଷଣ)—ଆକର୍ଷଣ—

3. Attraction; pulling.

ବିକଳ—ସଂ. ବିଣ—(ବହୁବ୍ରୀହି; ବି=ବିଗତ+କଳ=କଳା ଯାହାର)— Bikaḷa ୧। କଳାହୀନ—1. Out of order; (ବିକଳା—ସ୍ତ୍ରୀ) deranged; devoid of component [ବିକଳତା(ଭା)—ବି] parts

୨। ଅଲକ୍ଷଣ; ଶ୍ରୀହୀନ—2. Shorn of beauty or grace. ୩। ଅସମ୍ପୂର୍ଣ୍ଣ—3. Incomplete. ୪। ହ୍ରାସପ୍ରାପ୍ତ; ଖଣ୍ଡିତ—4. Diminished; mutilated; maimed. ୫। ଅସ୍ତ୍ରହିତ; ଅବଶ—5. Worn out; benumbed; paralysed; impotent.

୬। ଅସମର୍ଥ—6. Incapable; unfit.

୭। ଅସ୍ୱାଭାବିକ—7. Unnatural; irregular.

୮। ଦୁର୍ଦ୍ଦଶା ଗ୍ରସ୍ତ; ଆର୍ତ୍ତ; ପ୍ରପୀଡ଼ିତ—

8. Oppressed; tortured.

୯। ବ୍ୟାକୁଳ; ଅସ୍ଥିର—9. Agitated; troubled, perturbed.

୧୦। ବିହ୍ୱଳ; ଦୈନ୍ୟଦଶାଗ୍ରସ୍ତ; କାତର—

10. Reduced to a pitiful condition; confounded; overwhelmed.

୧୧। କରୁଣ; କରୁଣାର ଉଦ୍ରେକକାରୀ—

11. Pitiable; exciting pity.

ଦେ. ବିଣ. ( ଫା. ବେକରାର; ସଂ. ବ୍ୟାକୁଳ )—

ବିକୁଳି ୧। ଚଞ୍ଚଳ; ଅତି ବ୍ୟସ୍ତ—1. Agonised; miserable.

बिकल ୨। ପରର ଦୁଃଖରେ କାତର—2. Full of pity.

ବି—୧। ପରର ଦୁଃଖରେ କାତରତା—

1. Pity; compassion; commiseration.

୨। ଦୁର୍ଦ୍ଦଶା; କାତର ଅବସ୍ଥା—2. Pitiable condition; misery; sad plight.

୩। କାତର କ୍ରନ୍ଦନ; ଶୋକ—3. Bewailing; piteous lamentation.

ସବୁଙ୍କୁ ଏକାବେଳେ ଖାଉ
ଦେଖିବା ବିକଳ ନ ଥାଉ। ଭୂପତି, ପ୍ରେମପଞ୍ଚାମୃତ।

୪। ଜ୍ୱାଳା—4. Agony.

୫। ବ୍ୟାକୁଳତା—5. Restlessness.

ବନ୍ଧୁ ବାଳକ ଦଶ ଜଣେ
ପଶିଲେ ଦୃଷ୍ଟାର ବିକଳେ। ଜଗନ୍ନାଥ. ଭାଗବତ।

୬। ଲୋକଙ୍କୁ ଦିଆଯିବା ନାମ—6. A name given to males.

ବିକଳ ଧ୍ୱନି—ସଂ. ବି—୧। ବ୍ୟାକୁଳ ଶବ୍ଦ—1. Pitiable sound; Bikaḷa dhwani piteous wail.

(ବିକଳ ନାଦ—ଅନ୍ୟରୂପ) ୨। ( ବି+କଳ ଧ୍ୱନି )—

ପକ୍ଷୀମାନଙ୍କର ଅବ୍ୟକ୍ତ ମଧୁର ଧ୍ୱନି—2. Sweet carol or cooing of birds.

(୧+୨) ବିକଳ ଧ୍ୱନିରେ ଖେଳ ସୁମନ ଭ୍ରମରେ ମେଳ କଣଉଥ ଏମନ୍ତ କଥିତ।
ଭଞ୍ଜ. ବୈଦେହୀଶବିଳାସ।

ବିକଳପ—ଗ୍ରା. (ପଦ୍ୟ) ବି—(ସଂ. ବିକଳ୍ପ)—କଳ୍ପନା— Bikaḷapa Imagination.

ବିକଳପ ଫଳ ଅଙ୍କୁର ଉଜେ ବୃକ୍ଷ କ୍ରମରେ—
ଭଞ୍ଜ. ବୈଦେହୀଶବିଳାସ।

ବିକଳ ମନ—ସଂ. ବି—(କର୍ମଧା)—ଚିନ୍ତାରେ ଅସ୍ଥିର ମନ— Bikaḷa mana Mind restless through anxiety.

ଥଳପ ଥନ ବିକଳ ମନ—ଦ୍ୱାଗ।

ବିକଳ ଲଗିବା—ଦେ. ବି—ପରର ଆର୍ତ୍ତନାଦ ବା ଦୈନ୍ୟଦଶା ଦେଖି Bikaḷa lāgibā ତାହା ପ୍ରତି କରୁଣାଗ୍ରସ୍ତ ହେବା; ହୃଦୟ ଦୁଃଖହେଓ୍ୱା ତରଳିବା—Feeling of pity for another in विकलता होना misery; commiseration with another.

ବିକଳ ସହି ନ ପାରିବା—ଦେ. କ୍ରି—ପରର ଆର୍ତ୍ତାବସ୍ଥା ଦେଖି ହୃଦୟ Bikaḷa sahi napāribā ତରଳିବା—Not to be able विकल सहिते नापारा to bear the sight of another's विकलता नहीं सहना misery.

ବିକଳ ହେବା—ଦେ. କ୍ରି—୧। ଅତି ବ୍ୟସ୍ତ ହେବା— Bikaḷa hebā 1. To be in a pitiable condition.

ଆକୁଳି ବିକୁଳି ହଓୟା ୨ । ଦୁଃଖରେ ଛଟପଟ ହେବା; ଦୁଃଖରେ
ବିକଲ होना ଅସ୍ଥିର ହେବା—2. To be restless in agony. ୩ । ଅତି କାତର ହୋଇ କାନ୍ଦିବା—3. To bewail; to lament pitiably;

ବିକଳା—ସ. ବିଣ—(ବିକଳ+ସ୍ତ୍ରୀ. ଆ)—ଋତୁରହିତାବସ୍ଥା ସ୍ତ୍ରୀ; ଋତୁହୀନା
Bikaḻā ସ୍ତ୍ରୀ—A woman whose menses have ceased.

ଦେ. ବିଣ. ପୁଂ—୧ । ଆର୍ତ୍ତ; ଆତୁର—1. Afflicted; agonised. ୨ । ଦୈନ୍ୟଦଶାଗ୍ରସ୍ତ—2. Arrived at a pitiable condition; reduced to a miserable plight. ୩ । ବିକଳ ହୋଇ କାନ୍ଦୁଥିବା—3. Bewailing. ୪ । କ୍ଷୁଧା
हाहुतास, हाभाते ଜ୍ୱାଳାରେ ବା ଖାଦ୍ୟାଭାବରେ ଅସ୍ଥିର—
हाहूती 4. Oppressed with hunger; restless on account of the pangs of hunger or for want of food. ୫ । (ଘୃଣାର୍ଥକ) କ୍ଷୁଧା ଜ୍ୱାଳାରେ ଅସ୍ଥିର ହୋଇ ଯେ ଆର୍ତ୍ତନାଦ କରେ—5. Making pitiable wails on account of hunger ୬ । ଅଭାବ ଯୋଗୁଁ ଅତି ଅସ୍ଥିର ଓ ବାଚାଳ—6. Restless and loud for want.

ସ. ବି—ଏକ କଳାର ଷାଠିଏ ଅଂଶରୁ ଏକ—One sixtieth part of a Kaḻā

ବିକଳା(ଳେ)ଇବା—ଦେ. କ୍ରି—(ସ. ବିକଳାୟିତ)—ଦୁଃଖାର୍ତ୍ତ ହୋଇ
Bikaḻā(ḻe)ibā ଆର୍ତ୍ତନାଦ କରିବା—To bewail; to
ব্যাকুল হওয়া विकल होना lament in agony.

ବିକଳାଙ୍ଗ—ସ. ବିଣ. ପୁଂ—(ବହୁବ୍ରୀହି; ବିକଳ=ହ୍ରାସପ୍ରାପ୍ତ ବା ଅବଶ
Bikaḻāṅga ହୋଇଅଛି ଅଙ୍ଗ ଯାହାର)—୧ । ଯାହାର କୌଣସି
(ବିକଳାଙ୍ଗୀ—ସ୍ତ୍ରୀ) ଅଙ୍ଗ ନାହିଁ; ହୀନାଙ୍ଗ; କୌଣସି ଗୋଟିଏ ଅଙ୍ଗହୀନ—1. Maimed; mutilated; deformed; crippled. ୨ । ଯାହାର କୌଣସି ଅଙ୍ଗ ଅବଶ ହୋଇଅଛି—2. With any limb out of order or paralysed.

[ ଦ୍ର—କୋଢ଼ିଆ, ଖୋଟା, କେମ୍ପା, ଲୁଳା, କଣା ଓ ଅନ୍ଧ ଏହି ଶ୍ରେଣୀର ଅନ୍ତର୍ଗତ । ]

ବିକଳିଆ—ଦେ. ବିଣ. ପୁଂ—ବିକଳା (ଦେଖ)
Bikaḻiā Bikaḻā (See).

ବିକଳି } ସ୍ତ୍ରୀଲିଙ୍ଗ
ବିକଳେଇ }

ଚେଡ଼ ବିକଳିଆ ମାଗିଖାଏ
ପିଠେ ବିକଳିଆ ଭେକେ ଖୁଏ ।
ଢଗ ।

हाहुतास, हाभाते
हाहूती

ବିକଳିତ—ଦେ. କ୍ରି. ବିଣ (ସ. ବିକଳ; ବ୍ୟାକୁଳ)—ବିକଳ ହୋଇ—
Bikaḻita Afflictedly; being too much embarassed
(ବିକଳତେ—ଅନ୍ୟରୂପ)

ବିକଳତେ ପୁଣବା ଲାଗେ—ଉତ୍ତ. ବୈଦେହୀଶବିଳାସ ।

ବିଣ—୧ । କଳ୍ପନାତୀତ—1. Beyond imagination. ୨ । ବିକଳ; ବ୍ୟାକୁଳ—2. Afflicted; distressed.

(୧+୨) ବିକଳତ ରଞ୍ଜନ, ବିକଳିତ ହେଲେ ଜନ—
ଉତ୍ତ. ବୈଦେହୀଶବିଳାସ ।

ବିକଳେନ୍ଦ୍ରିୟ—ସ. ବିଣ. ପୁଂ. (ବହୁବ୍ରୀହି; ବିକଳ ହୋଇଅଛି ଇନ୍ଦ୍ରିୟ
Bikaḻendriya ଯାହାର)—ଯାହାର କୌଣସି ଇନ୍ଦ୍ରିୟ ଅବଶ
(ବିକଳେନ୍ଦ୍ରିୟା—ସ୍ତ୍ରୀ) ହୋଇଅଛି—1. With any organ paralysed or out of order.

(ଯଥା—କଣା, କାଲ, ଖଞ୍ଜା ।)

୨ । ଇନ୍ଦ୍ରିୟ ଶକ୍ତିରହିତ-2. Impotent; paralysed. ୩ । ବିକଳାଙ୍ଗ—3. Destitute of any particular limb; maimed. ୪ । ଅବସନ୍ନ; କ୍ଷୁଧା ବା ଶୋକ ଆଦି ଯୋଗୁଁ ଯାହାର ଇନ୍ଦ୍ରିୟମାନଙ୍କ ଶକ୍ତି ଅବଶ ହୋଇଅଛି; ହାତ ଗୋଡ଼ ଚଳୁ ନ ଥିବା—4. Paralysed through hunger or grief.

ବିକଳ୍ପ—ସଂ. ବି. (ବି=ବିପରୀତ; ବିଭିନ୍ନ+କଳ୍ପ=କଳ୍ପନା, ବିଧି)—
Bikaḻpa ୧ । ପରବର୍ତ୍ତ୍ୟ କଳ୍ପନା ବା ଅନୁମାନ—1. Guess; fancy; imagination. ୨ । ବିପରୀତ କଳ୍ପନା—2. Contrary conception or idea. ୩ । ଇଚ୍ଛାନୁଯାୟୀ କଳ୍ପନା—3. Optional conception. ୪ । ନାନାପ୍ରକାର କଳ୍ପନା—4. Various conceptions. ୫ । ସନ୍ଦେହ—5. Doubt. ୬ । ଭ୍ରମ, ଭ୍ରାନ୍ତି—6. Mistake; delusion. ୭ । (ବ୍ୟାକରଣ) କୌଣସି ପଦର ଦ୍ୱୈଧରୂପ ବା ଅନ୍ୟବିଧରୂପ; ବିଭାଷା—7. (grammar) Optional or alternative form; option ୮ । ଅର୍ଥାଲଙ୍କାରବିଶେଷ—8. A figure in Rhetoric in which words having two senses are used, out of which the person addressed to will understand one sense or the other if he is so inclined.

[ ଦ୍ର—ବାସ୍ତବିକ ବିରୁଦ୍ଧ ପଦାର୍ଥ ଦ୍ୱୟର ତୁଲ୍ୟବଳ କଳ୍ପନାଦ୍ୱାରା ଏକ କ୍ରିୟାର ସହିତ ସମ୍ବନ୍ଧ ପ୍ରଦର୍ଶନର ନାମ ବିକଳ୍ପାଲଙ୍କାର, ଯଥା—

ବାରୁ ନାବର୍ଣ୍ଣଦାନ ଯୋଗ୍ୟ ଯୋଷାକୁ
କହର ନାଜ ନକର ଅଲଙ୍ଗନକୁ—ଉତ୍ତ. ବୈଦେହୀଶବିଳାସ ।

ବିକଳ୍ପତା—ଦେ. ବି—(ସ. ବିକଳ୍ପ) ସନ୍ଦେହ—Doubt.
Bikaḻpatā ବିକଳ୍ପତା ଉପୁଜିଲା ସୁଗ୍ରୀବେ
ବଡ଼ ଗର୍ବେ ହୋଇଥିବ ପୂର୍ବେ । ଉତ୍ତ. ବୈଦେହୀଶ ବିଳାସ ।

ବିକଳ୍ପରେ—ଦେ. କ୍ରି. ବିଣ—(ବ୍ୟାକରଣ)—ଅନ୍ୟରୂପରେ; ଦ୍ୱୈଧ
Bikaḻpare ଭାବରେ; ଅପରକ୍ଷେ—In the alternative; optionally.
(ବିକଳ୍ପେ-ଅନ୍ୟରୂପ)

ବିକଳ୍ପିତ—ସ.ବି (ବିକଳ୍ପ+ଇତ) ୧ । ବିକଳ୍ପବିଶିଷ୍ଟ—1. Fanciful; optional; alternative. ୨ । ବିପରୀତଭାବରେ
Bikaḻpita କଳ୍ପିତ—2. Conceived adversely. ୩ । ରଚିତ—3. Conceived; invented. ୪ । ସନ୍ଦିଗ୍ଧ—4. Doubtful.

**ବିକଶ(ଷ,ସ)ନ**—ସଂ. ବି ( ବି=ଅତ୍ୟନ୍ତ+କଶ୍. ଧାତୁ=ଦୀପ୍ତି
Bikaśa(sha,sa)na ପାଇବା+ଭାବ. ଅନ)—ବିକାଶ—
Expansion; evolution.

**ବିକଶା(ଶେ)ଇବା**—ଦେ. (ପଦ୍ୟ) କ୍ରି—(ସଂ. ବି+କଶ ଧାତୁ) ୧ ।
Bikaśā(śe)ibā ବିକଶିବା କ୍ରିୟାର ଣିଜନ୍ତ ରୂପ—1. The
विकशान causative form of Bikaśibā). ୨ । ଦେଖା-
**विकसाना** ଇବା; ବିକଶିତ କରାଇବା; ବିକାଶିତ କରିବା—1. To
cause to expand or become manifest; to
exhibit.

୨ । (ଫୁଲ) ଫୁଟାଇବା—To cause to bloom.

**ବିକଶି(ଷି,ସି)ତ**—ସଂ.ବିଣ (ବି+କଶ୍. ଧାତୁ=ପ୍ରକାଶିତ ହେବା+କର୍ତ୍ତୃ
Bikaśi(shi,si)ta ତ)—୧ । ବିକାଶପ୍ରାପ୍ତ—1. Expanded.
୨ । ଉନ୍ମିଳିତ—2. Unfolded. ୩ । ପ୍ରଫୁଟିତ—
3. Full blown; bloomed. ୪ । ବ୍ୟକ୍ତ—
4. Manifest; exhibited.

**ବିକଶିବା**—ଦେ. କ୍ରି—(ସଂ. ବି+କଶ ଧାତୁ)—୧ । ବିକଶିତ ହେବା—
Bikaśibā বিকসা **विकसना** 1. To be manifest.
୨ । (ଫୁଲ) ଫୁଟିବା—2. (flower) To bloom.
ଶରତପୃଷ୍ପ ବିକଶଇ ଚମ୍ପକ ଯାଣ ଭ୍ରମି । ମଧୁସୂଦନ,ବସନ୍ତ ଗାଥା ।
୩ । ବିସ୍ତୃତ ହେବା—3. To be expanded.

**ବିକସା(ଶା)**—ସଂ. ବି—୧ । ମଞ୍ଜିଷ୍ଠା (ଦ୍ରବ୍ୟଗୁଣ)—1. The Indian
Bikasā(śā) madder plant.୨ । ମାଂସ ରୋହିଣୀ (ଦ୍ରବ୍ୟଗୁଣ)-
2. Redwood tree.

**ବିକସ୍ୱ(ଶ୍ୱ,ଷ୍ୱ)ର**—ସଂ. ବିଣ [ବି+କଶ୍ ଧାତୁ+କର୍ତ୍ତୃ.ବର (ଶୀଳାର୍ଥେ)]—
Bikaswa(śwa, shwa)ra ବିକାଶଶୀଳ; ପ୍ରକାଶଶୀଳ;
(ବିକସ୍ୱରୀ—ସ୍ତ୍ରୀ) Having a tendency to expand.

**ବିକା**—ଦେ. ବି. ( ସଂ. ବିକ୍ରୟ; ପ୍ରା. ବିକ୍କଅ )—
Bikā ୧ । ବିକ୍ରୟ; ବିକିବା—1. Sale; selling.
বেচা, বিকা
**बेचना, बिक्री** ୨ । ଚାଉଳ ବିକିବାରେ ବ୍ୟବହୃତ ମାଣ ବା ପାତ୍ର—
2. A measure for selling rice.

ବି ଓ ବିଣ. ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ )—
বিক্রেন ୧ । (ସଂ. ବିକ୍ରେତା) ବିକ୍ରେତା—1. Selling; seller;
**बेचनेवाला** vender.
ଗାଇ ବିକା ଗୁଣୀ ନାହିଁକି ବ୍ରାହ୍ମଣଙ୍କୁ
ଯେ ଦେବ ଗାଇ ସିଏ ସେ ବଡ ନର୍କକୁ—କୃଷ୍ଣସିଂହ ମହାଭାରତ ସଭା ।
বিকা ୨ । ବିକ୍ରୀତ—2. Sold.
୩ । ଶରଣାଗତ; ଆଶ୍ରିତ; ଚରଣାଗତ—
3. Over-bound or obliged to a person.
ତୁମ୍ଭ ବିନୁ ଗତି ନାହିଁ ଏ ଜଗତେ
ବିକା ମୁଁ ତୁମ୍ଭ ପଦ୍ମରେ—ଯଥାନାଥ, ଯଯାତି ।
বিকা ୪ । ( ସଂ. ବିକ୍ରେୟ ) ( ବଳଦଙ୍କୁ ଗାଳି ) ଅକର୍ମଣ୍ୟ
**बिकाऊँ** ଅତଏବ ଅନ୍ୟକୁ ବିକି ଦେବାର ଯୋଗ୍ୟ ( ବଳଦ )—
ବିକେଇ } ସ୍ତ୍ରୀ 4. ( a bullock ) Unfit for work and
ବିକା } thus deserving to be sold away.

**ବିକା(କେ)ଇବା**—ଦେ. କ୍ରି. ( ବି+କି ଧାତୁ ଣିଚ; ବିକିବା କ୍ରିୟାର
Bikā(ke)ibā ଣିଜନ୍ତରୂପ—The causative form of
বিকান **बिकवाना** Bikibā. )—
୧ । ଅନ୍ୟଦ୍ୱାରା ବିକ୍ରୟ କରାଇବା—
1. To cause a person to sell.
୨ । ବିକ୍ରୟ କରିବାକୁ ବାଧ୍ୟ କରିବା—
2. To oblige or force a person to sell.
( ଯଥା—ଶଙ୍କଗ୍ରସ୍ତ ଦଶା ମତେ ଘର ବିକାଇ ବାଣ୍ଡରେ ଉଦ
ମଗାଇଲା । )
୩ । ମୂଲ୍ୟ ବିନିମୟରେ ବିକି ହେବା—3. To be sold
(at a price); to go off at a price.
କହୁ ଜାଣିଲେ କଦଳୀ ମୁଣ୍ଡା ବିକାଏ
କହୁ ନ ଜାଣିଲେ ମାଣିକ ମାଟି ସହୁଥାଏ—ଢଗ ।
୪ । ( ଲକ୍ଷଣାର୍ଥ ) ଲାଭଜନକ ହେବା; ପୋଷାଇବା—
4. ( figurative ) To be profitable; to be a
paying concern; to pay; ( e. g. this will
not pay ).
( ଯଥା—ଆମର ପୁରୁଣା କାଳଆ ପାଠ ଅଜି କାଲି ବଜାରରେ
ବିକେଇବ ନାହିଁ । )
୫ । ( ଲକ୍ଷଣାର୍ଥ ) ଲୋକଙ୍କଦ୍ୱାରା ଆଦୃତ ହେବା; ଲୋକ-
ସମାଜରେ ସମ୍ମାନିତ ବା ଆଗ୍ରହ ସହକାରେ ଗୃହୀତ ହେବା—
5. ( figurative ) To be sought after; to be
respected.
ନ ବିକାଏ ଦେହ ସଂସାରେ, ବିକାଏ ଅବସ୍ଥା ସିନା କେବଳ—
ଯଥାନାଥ, ଯଯାତି ।

**ବିକା କିଣା**—ଦେ. ବି. ( ବିପରୀତାର୍ଥକ ସହଚର ଶବ୍ଦ )—୧ । ବିକା ଓ
Bikā kiṇā କିଣା; କ୍ରୟବିକ୍ରୟ—1. Sale and purchase.
বিকিকিনি, বেচাকেনা ୨ । ପଣ୍ୟ ଦ୍ରବ୍ୟର କ୍ରୟବିକ୍ରୟ—
**बिक्री खरीद** 2. Transactions of sale and purchase
of commodities; selling and buying of
merchandise.
କାହିଁ ଲୋକ ଗହଳ ବିକା କିଣା ଚହଳ—ମଧୁସୂଦନ, ନଶ୍ୱରତା ।

**ବିକାନ୍ତ**—ଦେ. ବିଣ (ସଂ. ବିକାନ୍ତା)—ଯାହାର କାନ୍ତ ନାହିଁ—One
Bikānta who has no husband or has lost her
husband.
ଉତ୍ତରୁ ଅଇଲା ଶୀତ ବିକାନ୍ତ କୁମାର
କାନ୍ତ ଥିଲେ କାମିନୀଙ୍କି ଦୂରୁ ଅପସର—ପ୍ରାଚୀ ଋତୁସଂହାର ।

**ବିକା ବିକି**—ଦେ. ବି. ( ସହଚର ଶବ୍ଦ )—୧ । ବିକ୍ରୟାଦି କର୍ମମାନ—
Bikā biki 1. The acts of sale etc.
বেচাবেচি ୨ । ଅନେକ ବସ୍ତୁର ବିକ୍ରୟ—
**बेचाबेचि** 2. Sale of many things.

**ବିକା ଭଙ୍ଗା**—ଦେ. ବି. ( ସହଚର ଶବ୍ଦ )—ଦ୍ରବ୍ୟାଦି ବିକିବା କର୍ମ—
Bikā bhaṅgā The act of selling things.
(ବିକା ଭଙ୍ଗା କରିବା—କ୍ରିୟାରୂପ)
× × × ପାଞ୍ଚଶ ମାଣ ମଧ୍ୟରୁ ଦଶବର୍ଷ ମଧ୍ୟରେ ଗୁଣ୍ଡଶ ମାଣ
ବିକା ଭଙ୍ଗା ସରିଲାଣି—ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ବିକାଯିବା**—ଦେ. କି. (ବିକିବା କ୍ରିୟାର କର୍ମବାଚ୍ୟ ରୂପ)—୧ । ବିକ୍ରୀତ
Bikājibā ବେଚା ହଓୟା **बिकना** ହେବା—1 To be sold.
(ବିକା ହେବା—ଅନ୍ୟରୂପ) ୨ । ଲୋକଙ୍କଦ୍ୱାରା ଆଦୃତ ହେବା—
2. To be sought after by people.

**ବିକାର**—ସଂ. ବିଣ. ( ବି+କୃ ଧାତୁ+ଭାବ. ଅ. )—୧ । ବିକୃତି;
Bikāra ପ୍ରକୃତିର ବା ସ୍ୱଭାବର ବୈଲକ୍ଷଣ୍ୟ—1. Change
(ବିକୃତ—ବିଣ) of nature; deviation from the natural
state. ୨ । ଆକାରର ପରିବର୍ତ୍ତନ ବା ଅନ୍ୟଥାଭାବ;
ଅବସ୍ଥାନ୍ତର—2. Change of form; modification; transformation.
୩ । ମସ୍ତିଷ୍କ ବିଗିଡ଼ିବା—3. Derangement of brain.
୪ । ବ୍ୟାଧି; ରୋଗ; ଅସ୍ୱାସ୍ଥ୍ୟ—4. Disease.
୫ । ସ୍ଖଳନ; ଉପସ୍ଥିତ ବସ୍ତୁର ନାଶ ବା ଅବନତି—
5. Destruction or deterioration of an existing thing. ୬ । ବ୍ୟାଧିର ଭୟାନକ ପରିଣାମ—
6. Fatal condition of a disease; crisis of an illness. ୭ । ଜ୍ୱରର ପ୍ରାବଲ୍ୟ ହେତୁ ମସ୍ତିଷ୍କର
ବିକୃତି ଓ ପ୍ରଳାପ ଅବସ୍ଥା; ଜ୍ୱର ବିକାର; ସନ୍ନିପାତ—
7. Fit of delirium attending high fever. ୮ । ମନର ବା ଉଦ୍ଦେଶ୍ୟର ପରିବର୍ତ୍ତନ—8. Change
of mind or purpose ( Apte ). ୯ । ମନୋଭାବର ପ୍ରାବଲ୍ୟ—9. Emotion; feeling (Apte).
୧୦ । ବ୍ୟାକୁଳତା—10. Agitation; excitement ( Apte ). ୧୧ । ମୁଖର ବ୍ୟାଦାନ ବା ସଙ୍କୋଚନଜନିତ
ବିକଟତା—11. Contortion of the features or face ( Apte ). ୧୨ । କ୍ଷତ—12. Wound
( Apte ). ୧୩ । ଦୋଷ ( ହି. ଶବ୍ଦସାଗର )—13. Defect.
विकार ଦେ ବି—୧ । ଉପଦଂଶ ରୋଗ—1. Syphilis.
୨ । ମନରେ ଘୃଣାଭାବ—2. Sense of hate, feeling of revulsion or aversion.
୩ । ଖାଦ୍ୟ ଦ୍ରବ୍ୟ ପ୍ରତି ଅରୁଚି—3. Aversion to food. ୪ । ବମନେଚ୍ଛା—4. Tendency to vomit.

**ବିକାର ଗ୍ରସ୍ତ**—ସ. ବିଣ. ପୁଂ (ଷଷ୍ଠୀ ତତ୍)—ବିକାର ଦ୍ୱାରା ଜର୍ଜରିତ—
Bikāra grasta Affected with or suffering from 'Bikāra.
(ବିକାରଗ୍ରସ୍ତା—ସ୍ତ୍ରୀ)

**ବିକାରିଆ**—ଦେ. ବିଣ. (ସ. ବିକାରୀ)—୧ । ବିକାର ଗ୍ରସ୍ତ—
Bikāriā 1. Overtaken with Bikāra.
(ବିକାରୀ—ଅନ୍ୟରୂପ) ୨ । ଯେ ଘୃଣା କରେ—2. Hating
विकारी ୩ । ଘୃଣାଜନକ; ଯାହା ଘୃଣାର ଉଦ୍ରେକ କରାଏ—
**बिकारी** 3. Hateful; repulsive.
୪ । ଅରୁଚିକର—4. Distasteful; causing aversion.

**ବିକାରିତ**—ସ. ବିଣ. (ବିକାର+ଇତ)—ବିକାର ପ୍ରାପ୍ତ—
Bikārita Transformed; changed.

ସେ ପୁଣି କାହେ ବିକାରିତ
ହେବ ତାହାର ଚିତ୍ତ ଜାତ । ଜଗନ୍ନାଥ· ଭାଗବତ ।

**ବିକାରୀ**—ସଂ. ବିଣ ପୁଂ· ( ବିକାର+ଇନ୍; ୧ମା. ୧ବ )—
Bikārī ୧ । ବିକାର ଯୁକ୍ତ—1. Having undergone
(ବିକାରିଣୀ—ଅନ୍ୟରୂପ) change. ୨ । ମନୋବିକାରଯୁକ୍ତ—
2. Having revulsion of feeling

**ବିକାରେ**—ଦେ. କ୍ରି. ବିଣ—୧ । ଭୟଙ୍କର ଭାବରେ—
Bikāre 1. Fiercely; terribly.
विकारे ୨ । ବିକୃତ ରୂପ ଧାରଣ କରି—2. Assuming a
terrible form. ( ଉଦାହରଣ—ବିକାରେ ହୁଙ୍କାରେ
କରି ରାବଣ ଉଠିଲେ ମାରି ଉଲେ ରାମ ହେନ ଜଙ୍ଘ ଫୁଟାଇ
ଦେଲେ । ଉପେ. ବୈଦେହୀଶବିଳାସ )

**ବିକାର୍ଯ୍ୟ**—ସଂ. ବିଣ. ( ବି+କୃ ଧାତୁ+କର୍ମ. ଯ)—ବିକୃତିର ଯୋଗ୍ୟ
Bikārjya Capable of being transformed.

**ବିକାଳ**—ସଂ. ବି. ( ବି=ବିପରୀତ ବା ନିଷିଦ୍ଧ+କାଳ )—୧ । ଉପରବେଳ; ଅପରାହ୍ଣ ( ତୁଳ. ହି. ବିକାଲ )—1. Afternoon; the latter half of the day.
- Bikāḷa
(ବିକାଳକ—ଅନ୍ୟରୂପ) ୨ । ଅସମୟ; ବେକାଳ—2. Unfavourable
time. ୩ । ନିଷିଦ୍ଧକାଳ; ଦୈବ ପିତ୍ରାଦି କର୍ମର ବରୁଦ୍ଧକାଳ - 3. Inauspicious time. ୪ । ସାୟଂକାଳ
(ହି. ଶ)—4. Evening. ୫ । ଅତିକାଳ; ବିଳମ୍ବ (ହି. ଶ)—5. Delay. ୬ । ମହାଦେବଙ୍କ ଅନୁଚରବିଶେଷ—
5. Name of an attendant of Śiba. [ ଦ୍ର—କାଳ ଓ ବିକାଳ ଏହି ଦୁଇ ଜଣ ଶିବଙ୍କର ଦୂତ ବୋଲି
ପୁରାଣରେ ବର୍ଣ୍ଣିତ ହୋଇଅଛି । ] ୬ । ଯମଦୂତବିଶେଷ—
6. Name of an attendant of the God of death.

**ବିକାଳି**—ଦେ. ବି—୧ । ବିକ୍ରେତା—1. Seller; dealer; vendor.
Bikāḷi ୨ । (ସ. ବିକାଳ=ଅକାଳ) ଅସମୟ; ଅପ୍ରତ୍ୟାଶିତ
विक्रेता ସମୟ; ଅନୁପଯୁକ୍ତ ସମୟ—2. Improper time.
**बेँचने बाला** ( ଯଥା—ସେ ଆମ ଘରେ ଅସି ରାତି ବିକାଳି ପହଞ୍ଚିଗଲେ । )
असमय (ବିକାଳିଆ—ଅନ୍ୟରୂପ)

**ବିକାଳିକା**—ସଂ. ବି (ବିକାଳ+କ+ଆ)—୧ । ଜଳ ଘଡ଼ି (ହି.ଶ)—
Bikāḷikā 1. Water clock; water-glass. ୨ । ଘଡ଼ିଆଳ
କୁମ୍ଭୀରର ଥୋମଣି ଉପରେ ଥିବା କଟୋରି (ହି. ଶ)—
2. A cup-like formation on the snout of a gavial.

**ବିକାଶ(ସ)**—ସ. ବି. (ବି+କାଶ୍ ଧାତୁ=ଦୀପ୍ତି ପାଇବା+ଭାବ.ଅ)—
Bikāśa(sa) ୧ । ପ୍ରକାଶ—1. Manifestation. ୨ ।
[ବିକାଶ(ସ)—ଅନ୍ୟରୂପ] ବିସ୍ତାର—2. Expansion. ୩ । କ୍ରମପ୍ରକାଶ; କ୍ରମେ କ୍ରମେ ଫୁଟିବା—3. Evolution. ୪ ।
ପ୍ରକଟନ—4. Promulgation. ୫ । ଉଲ୍ଲାସ—5. Joy; publication. ୬ । ଆକାଶ—6. Sky. ୭ ।
ବିଷମ ଗତି—7. Circuitous motion; uneven

steps; tottering motion. ୮ । ଗୋପନ—8. Concealment. ୯ । ବିଜନ—9. Solitude.

**ବିକାଶି(ସି)ବା**—ଦେ. କ୍ରି. ( ସ. ବି+କାଶ୍ ଧାତୁ )—୧ । ବିକଶିବା; **Bikāśi(si)bā** ପ୍ରକାଶିତ ହେବା; ପ୍ରକାଶ୍ୟମାନ ହେବା—1. To be manifested to view. ୨ । ପ୍ରକଟିତ ହେବା; ବିଖ୍ୟାତ ହେବା—2. To be published. ୩ । ବିକଶାଇବା; ପ୍ରକାଶିତ କରିବା; ପ୍ରଦର୍ଶନ କରିବା—3 To exhibit; to show. ( ଉଦାହରଣ—ତାହାଙ୍କୁ ନାଶ କଲେ ବିକାଶିବ ଯଶ । କୃଷ୍ଣସିଂହ. ମହାଭାରତ. ବନ ) ୪ । ବିସ୍ତାରିତ କରିବା—4. To spread. ୫ । ପ୍ରସ୍ଫୁଟିତ ହେବା—5. To bloom; (said of a flower). ୬ । ପ୍ରକାଶ କରିବା; କହିବା—6, To disclose; to speak out. (ଉଦାହରଣ—ବିକାଶ ତୁମ୍ଭେ କେ ଭ୍ରମ ଏ ବନ ଦେଶରେ—ଉପେ. ବୈଦେହୀଶବିଳାସ )

বিকশা / विकसना / বিকাশা / बिकासना

**ବିକାଶୀ(ସୀ)**—ସ. ବିଣ. ପୁଂ ( ବିକାଶ+ଇନ୍; ୧ମା. ୧ବ )—୧ । **Bikāśī(sī)** ବିକାଶଶୀଳ—1. Expanding. ୨ । ପ୍ରକାଶମାନ—2. Manifest. ୩ । ପ୍ରକାଶକାରୀ—3. Manifesting. ୪ । ପ୍ରଫୁଲ୍ଲ; ହର୍ଷଯୁକ୍ତ—4. Delighted ୫ । ବିସ୍ତାରକାରୀ—5. Spreading.

[ବିକାଶି(ସି)ନୀ—ସ୍ତ୍ରୀ]

**ବିକି କିଣି**—ଦେ. ଅ. (ସହଚର ଶବ୍ଦ ) (ବିକିବା ଓ କିଣିବା କ୍ରିୟାର **Biki kiṇi** ଅସମାପିକା ଆକାର ହୟ )—ବିକା କିଣା କରି; ବିକ୍ରୟ କରି ଓ କ୍ରୟ କରି—By selling and purchasing.

বেচে কেনে / बिक्री खरदि करके

**ବିକିବା**—ଦେ. କ୍ରି. (ସ. ବି+କ୍ରୀ ଧାତୁ)—ମୂଲ୍ୟ ଗ୍ରହଣ କରି ଅନ୍ୟକୁ **Bikibā** କୌଣସି ବସ୍ତୁ ଦେବା; ବିକ୍ରୟ କରିବା—To sell; to vend. (ଉଦାହରଣ—ଯେ ଧନ ଅର୍ଥେ ବିକେ ପ୍ରାଣ ତାହାର କାହିଁ ପରିତ୍ରାଣ । ଜଗନ୍ନାଥ. ଭାଗବତ) (ଯଥା—ନାମ ବିକିବା, ଜାତି ବିକିବା, ହୃଦୟ ବିକିବା, ପ୍ରାଣ ବିକିବା, କନ୍ୟା ବିକିବା—ଇତ୍ୟାଦି । )

বিকা, বেচা / बेचना

[ବିକା(କେ)ଇବା—ଣିଜନ୍ତ] (କିଣିବା—ବିପରୀତ)

**ବିକିବା କିଣିବା**—ଦେ. କ୍ରି—(ବିପରୀତାର୍ଥକ କ୍ରିୟାଦ୍ୱୟ)—୧ । ବିକ୍ରୟ **Bikibā kiṇibā** କରିବା ଓ କ୍ରୟ କରିବା—1. To sell and to purchase. ୨ । ( ଲକ୍ଷଣାର୍ଥ ) ଅଧୀନରେ ରଖିବା—2. (figurative) To make a person one's own.

বেচা কেনা / बेचना खरिद्‌ना

(ଉ.—ବିକେ କିଣେ ଯେ ଯାହାକୁ ସ୍ନେହେ ।
କବିସୂର୍ଯ୍ୟ ବିଶୋରଚନ୍ଦ୍ର ବ ଗୀତ । )

**ବିକିବା ଭାଙ୍ଗିବା**—ଦେ. କ୍ରି—( ସହଚର ଶବ୍ଦ )—ଅନେକ ପଦା **Bikibā bhāṅgibā** ବିକ୍ରୟ କରିବା—To sell away many things.

[ଉ.—ପୂର୍ବପୁରୁଷର ପ୍ରତିଷ୍ଠା ବିଶାଳ
ବିକି ଭାଙ୍ଗି ଯାଉଥିବ କେତେ କାଳ । ରାଧାନାଥ. ଦରବାର ।]
[ଦ୍ର—ସୁନା ରୁପାର ଅଳଙ୍କାର ଅବିକୁ ଭାଙ୍ଗି ଅଉଟାଇ ବିକି କରିବା ଭାବରୁ ଦ୍ୱିତୀୟ ସହଚର ଶବ୍ଦ ବ୍ୟବହୃତ ।]

**ବିକିର**—ସ. ବି.— (ବି+କୃ ଧାତୁ=ବିକ୍ଷେପ କରିବା+କର୍ତ୍ତୃ. ଅ)—**Bikira** ୧ । ପକ୍ଷୀ—1 Bird. ୨ । (+କର୍ମ. ଅ)—କୁଶ—2. A sacred grass; Poa Synosuroides. ୩ । ପୂଜା ବା ଶ୍ରାଦ୍ଧ କାଳରେ ବିଘ୍ନ ନିବାରଣାର୍ଥେ ବିକ୍ଷିପ୍ତ ତଣ୍ଡୁଳାଦି—3. Grains of rice scattered about at the place of a śrāddha. ୪ । (+ଭାବ. ଅ) ବିକିରଣ—4. Scattering about; diffusion. ୫ । ଅଗ୍ନିଦଗ୍ଧ ବ୍ୟକ୍ତିଙ୍କୁ ପିଣ୍ଡଦାନ—5. Funeral cakes offered to the soul of a burnt person. ୬ । କୂଅ (ହି. ଶ)—6. Well.

**ବିକିର ଜଳ**—ସ. ବି—ନଦୀତୀରସ୍ଥ ବାଲୁକାମୟ ଭୂମିରେ କୂପ ବା ଗର୍ତ୍ତ **Bikira jala** ଖନନ କଲେ ସେ କୂପରୁ ଯେଉଁ ଜଳ ମିଳେ—Water got from a well or hole dug in the sandy shore of a river. [ଦ୍ର—ବୈଦ୍ୟଶାସ୍ତ୍ର-ମତରେ ଏହା ଶୀତଳ, ସ୍ୱଚ୍ଛ, ନିର୍ଦ୍ଦୋଷ, ଲଘୁ, କଷାୟ-ମଧୁର ରସ, ଓ ପିତ୍ତ ନାଶକ । ଏହି ଜଳ କ୍ଷାରବିଶିଷ୍ଟ ହେଲେ କିଞ୍ଚିତ୍ ପିତ୍ତକର ହୁଏ—ଦ୍ରବ୍ୟଗୁଣ ।]

**ବିକିରଣ**—ସ. ବି. (ବି+କୃ ଧାତୁ=ବିକ୍ଷେପ କରିବା+ଭାବ. ଅନ)-**Bikiraṇa** ୧ । ବିକ୍ଷେପକରଣ; ଏଣେ ତେଣେ ଫୋପାଡ଼ି ବୁଣି ଦେବା; ବିଞ୍ଚି ଦେବା—1. Scattering about; dispersion. ୨ । ବିସ୍ତାରକରଣ—2. Spreading. ୩ । (ବିଜ୍ଞାନ ପରିଭାଷା)—କୌଣସି ଉତ୍ତପ୍ତ ଦ୍ରବ୍ୟରୁ ତାପ ଚାରି ଆଡ଼େ ବିଞ୍ଚି ହୋଇଯିବା—3. ( physics ) Diffusion of heat from any heated body. ବିଣ.—( ବି.=ବିଗତ, ନାହିଁ+କିରଣ ଯାହାର)—କିରଣହୀନ—Rayless.

**ବିକିରି**—ଦେ. ବି.—(ସ. ବିକ୍ରୟ)—ବିକ୍ରୟ—Sale. **Bikiri** ଦେ. ବିଣ—ବିକ୍ରୀତ—Sold.

রিক্রী / बिक्रि

**ବିକି ହେବା**—ଦେ. କ୍ରି—( ସ. ବିକ୍ରୀତ )—୧ । ଆପଣାର ଶରୀରକୁ **Biki hebā** ପରଠାରେ ବିକି କରିବା; ପରଠାରେ ଆପଣା ଜୀବନ ସମର୍ପଣ କରିବା—1. To sell one's self to another; to dedicate one's life to another. (ଉଦାହରଣ—ସତ୍ୟେ ହରିଚନ୍ଦନ ପୃଥିବୀ ଦାନ ଦେଲା, ଚଣ୍ଡାଳ ଘରେ ଯାଇ ବିକି ସେ ହୋଇଲା । ପ୍ରତାପ. ଶଶିସେଣା)। ୨ । ପର ଘରେ ଚାକର ବା ଦାସବୃତ୍ତି କରିବା—2. To take service under another. ୩ । ପରଠାରେ ଆପଣାର ମନକୁ ବିକ୍ରୀ କରିବା; ଅନ୍ୟ ବ୍ୟକ୍ତିକୁ ଅତ୍ୟନ୍ତ ସ୍ନେହ କରିବା—3. To be very much attached to another. (ଉଦାହରଣ—ହେବି ଶ୍ରୀଚରଣେ ବିକି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।)

বিকান, বিক্রি হওয়া / विकजाना

**ବିକୀରଣ**—ସ. ବି.—ଅର୍କ ଗଛ—**Bikīraṇa** Calotropis Gigantea (M. W.)

**ବିକୀ(କି)ରିବା**—ଦେ. (ପଦ୍ୟ) କ୍ରି—(ସଂ. ବିକିରଣ)—ବିକିରଣ କରିବା-
Bikī(ki)ribā বিকীর্ণ To spread. (ଉଦାହରଣ—ସେ ରଜ ସୁବାସ ବିକୀରଇ ବାତ, ଭ୍ରମି ଭ୍ରମି ହସେ ହସେ । ଜନନକିଶୋର. କର୍ଣ୍ଣରଣୀ ।

**ବିକୀର୍ଣ୍ଣ**—ସଂ. ବିଣ—(ବି+କୃ. ଧାତୁ+ତ)—୧ । ଇତସ୍ତତଃ ବିକ୍ଷିପ୍ତ—
Bikīrṇṇa 1. Scattered about; diffused. ୨ । (ବିକୀର୍ଣ୍ଣା—ସ୍ତ୍ରୀ) ବିସ୍ତୃତ—2. Spread; expanded. ୪ । ପ୍ରସିଦ୍ଧ (ହ୍ର. ଶ)—4. Celebrated.

**ବିକୀର୍ଯ(ର୍ଯ୍ୟ)ମାଣ**—ସଂ. ବି—(ବି+କୃ. ଧାତୁ+ଆନ)—୧ । ଯାହା ବିକୀ
Bikīrja(rjya) māṇa ଯାଉଅଛି; ବିକ୍ଷିପ୍ୟମାଣ—1 Being spread or strewn

**ବିକୁକ୍ଷି**—ସଂ. ବି.—(ବି=ବିଶୀର୍ଣ୍ଣ ହୋଇ ଅଛି କୁକ୍ଷି=ଉଦର ଯାହାର)-
Bikukshi ୧ । କୃଶୋଦର; ଯାହାର ପେଟ ଶୁଖି ଯାଇଅଛି ବା ଖାଲ୍ହା ହୋଇଅଛି—1. With the belly receding inwards (through want of food) ୨ । (ନାମ) ସୂର୍ଯ୍ୟବଂଶର ରାମଚନ୍ଦ୍ରଙ୍କ ପୂର୍ବପୁରୁଷ ଜନୈକ ରାଜା—2 Name of a king of the solar dynasty, ancester of Rāmachandra. [ଉ.—ବିକୁକ୍ଷି ବଂଶେ ଜାତ ରାମ ଅଣ, ବୈବସ୍ୱତ ଏ ଗଣେ ତା ମାର୍ଗଣ । ଉଞ୍ଜ. ବୈଦେହୀଶବିଳାସ ।]

**ବିକୁଣ୍ଠ**—ସଂ. ବି—ବୈକୁଣ୍ଠ ଧାମ; ବିଷ୍ଣୁପୁରୀ—Paradise; the
Bikuṇṭha residence of Bishṇu.

**ବିକୁଣ୍ଠିତ**—ସଂ. ବିଣ (ବି+କୁଣ୍ଠି ତ)—୧ । ବାଧାପ୍ରାପ୍ତ—1. Obstracted.
Bikuṇṭhita ୨ । ବିକଳୀକୃତ—2. Maimed; paralysed. ୩ । କୁଣ୍ଠୀକୃତ; ଦନ୍ତୁରା ହୋଇଥିବା—3. Blunted.

**ବିକୃତ**—ସଂ. ବିଣ. (ବି+କୃ ଧାତୁ+କର୍ମ. ତ)—୧ । ସ୍ୱଭାବର
Bikṛuta ଅନ୍ୟଥା ପ୍ରାପ୍ତ; ଅସ୍ୱାଭାବିକ—1. Deviated from the natural state; unnatural. ୨ । ବିକାର ପ୍ରାପ୍ତ—2. Deteriorated; depraved. ୩ । ଅନ୍ୟଥାକୃତ; ପରିବର୍ତ୍ତିତ—3. Changed. ୪ । ଅବସ୍ଥାନ୍ତରପ୍ରାପ୍ତ—4. Transformed. ୫ । ବିଗିଡ଼ି ଯାଇଥିବା; ନଷ୍ଟ—5. Spoiled; deranged; disordered. ୬ । ବିକଟୀକୃତ—6. Made horrid; distorted. ୭ । ଭୟଙ୍କର; ବିକଟ—7. Horrible; ugly. ୮ । ବିକଳତାପ୍ରାପ୍ତ—8 Maimed; deformed. ୯ । ପୀଡ଼ିତ; ବ୍ୟାଧିଗ୍ରସ୍ତ; ରୁଗ୍ଣ—9. Diseased; deranged. ୧୦ । ଅରାଜକ; ବିଦ୍ରୋହୀ (ହ୍ର. ଶ.)—10. Revolted; rebellious. ବି—ବିକାର (ଦେଖ)—Bikāra (See) ଦେ. ବି—ରୋଗ—Disease. ବିଣ—ବିମନା—Dissatisfied. (ଉଦାହରଣ—ବିକୃତ ହୃଦ ମୁଁ ସୁକୃତ କରୁଛି, ତୋହ-କୃତ ରସେ ମୋର ପ୍ରୀତ । ଉଞ୍ଜ. ବୈଦେହୀଶବିଳାସ ।

**ବିକୃତ ଅବସ୍ଥା**—ସଂ. ବିଣ (କର୍ମଧା; ବିକୃତ+ଅବସ୍ଥା)—ବିଗିଡ଼ି-
Bikṛuta abasthā ଥିବା ଅବସ୍ଥା—Deranged state. (ବିକୃତାବସ୍ଥା—ଅନ୍ୟରୂପ)

**ବିକୃତ ନେତ୍ର**—ସଂ. ବିଣ. ପୁଂ (ବହୁବ୍ରୀହି; ବିକୃତ+ନେତ୍ର)—
Bikṛuta netra ଯାହାର ଆଖି ବିକଟ ହୋଇଥାଏ—(ବିକୃତନେତ୍ରା—ସ୍ତ୍ରୀ) Having distorted eyes. (ବିକୃତଦୃଷ୍ଟି—ଅନ୍ୟରୂପ)

**ବିକୃତ ବୁଦ୍ଧି**—ସଂ. ବିଣ (ବହୁବ୍ରୀହି; ବିକୃତ+ବୁଦ୍ଧି)—ମନ୍ଦବୁଦ୍ଧି—
Bikṛuta buddhi Of deranged intellect; of perverse mind.

**ବିକୃତ ଭ୍ରୂଣ**—ସଂ. ବି (ଡାକ୍ତରୀ)—ଗର୍ଭରେ ଥିବା ଭ୍ରୂଣ ମରିଯିବା
Bikṛuta bhrūṇa ଯୋଗୁଁ ପେଟରୁ ଖସି ପଡ଼ିବା ମାଂସ ବା ରକ୍ତ ପିଣ୍ଡୁଳା—(Medical term) Mole.

**ବିକୃତ ମୁଖ**—ସଂ. ବିଣ. ପୁଂ (ବହୁବ୍ରୀହି; ବିକୃତ+ମୁଖ ଯାହାର)—
Bikṛuta mukha କୁତ୍ସିତ ମୁଖଯୁକ୍ତ; ବିକଟୀକୃତମୁଖ. (ବିକୃତବଦନ, ବିକୃତାନନ—ଅନ୍ୟରୂପ) ବିକଟାଲମ୍ବିନୀ—Of (ବିକୃତମୁଖୀ, ବିକୃତବଦନା, ବିକୃତାନନା—ସ୍ତ୍ରୀ) distorted face.

**ବିକୃତ ଶରୀର**—ସଂ. ବିଣ. ପୁଂ (ବହୁବ୍ରୀହି; ବିକୃତ+ଶରୀର)—
Bikṛuta śarīra କଦର୍ଯ୍ୟ ଦେହବିଶିଷ୍ଟ; କୁତ୍ସିତାଙ୍ଗ—(ବିକୃତଦେହ, ବିକୃତାଙ୍ଗ—ଅନ୍ୟରୂପ) Deformed. (ବିକୃତ ଶରୀରା, ବିକୃତ ଦେହା, ବିକୃତାଙ୍ଗୀ—ସ୍ତ୍ରୀ)

**ବିକୃତ ସ୍ୱର**—ସଂ. ବିଣ. ପୁଂ (ବହୁବ୍ରୀହି)—୧ । ଯାହାର କଣ୍ଠସ୍ୱର ବିଗିଡ଼ି
Bikṛuta swara ଯାଇଅଛି—1. One whose tone or (ବିକୃତସ୍ୱରା—ସ୍ତ୍ରୀ) voice has become deranged ୨ । ଯେଉଁ ଯନ୍ତ୍ରର ସ୍ୱର ବିଗିଡ଼ି ଯାଇଅଛି—2. Out of tune. ସଂ. ବି. (କର୍ମଧା)—୧ । ବିଗିଡ଼ି ଯାଇଥିବା ସ୍ୱର—1. Deranged tone. ୨ । (ସଙ୍ଗୀତ) ଯେଉଁ ସ୍ୱର ଆପଣାର ନିର୍ଦ୍ଦିଷ୍ଟସ୍ଥାନରୁ ହଟି କରି ଅନ୍ୟ ଶ୍ରୁତିର ଆଶ୍ରୟ କରେ—(music) A tune which has deviated from its proper place. [ଦ୍ର—ହିନ୍ଦୁ ସଙ୍ଗୀତ ଶାସ୍ତ୍ରରେ ବିକୃତସ୍ୱରର ସଂଖ୍ୟା ୧୨ ଟି ଯଥା—୧ । ଚ୍ୟୁତଷଡ଼ଜ, ୨ । ଅଚ୍ୟୁତଷଡ଼ଜ, ୩ । ବିକୃତଷଡ଼ଜ, ୪ । ସାଧାରଣଗାନ୍ଧାର, ୫ । ଅନ୍ତରଗାନ୍ଧାର, ୬ । ଚ୍ୟୁତମଧ୍ୟମ, ୭ । ଅଚ୍ୟୁତମଧ୍ୟମ, ୮ । ତ୍ରିଶ୍ରୁତିମଧ୍ୟମ, ୯ । କୈଶିକ-ପଞ୍ଚମ, ୧୦ । ବିକୃତଧୈବତ, ୧୧ । କୈଶିକ ନିଷାଦ ଓ ୧୨ । କାକଳୀ ନିଷାଦ—ହ୍ର ଶ ]

**ବିକୃତି**—ସଂ. ବି (ବି+କୃ ଧାତୁ+ଭାବ. ତି)—୧ । ବିକାର (ଦେଖ)
Bikṛuti —1. Bikāra (See) ୨ । ବିକାରପ୍ରାପ୍ତ ରୂପ (ହ୍ର. ଶ)—2 Deformed shape. ୩ । ମନର କ୍ଷୋଭ (ହ୍ର. ଶ)—3. Grief; sorrow.

**ବିକୃଷ୍ଟ**—ସଂ. ବିଣ (ବି+କୃଷ ଧାତୁ+କର୍ମ. ତ)—ଆକୃଷ୍ଟ—
Bikṛushṭa Drawn; attracted.

**ବିକେଶ**—ସଂ. ବିଣ ପୁଂ [ବି+କେଶ]—୧ । ଯାହାର ବାଳ ମୁକୁଳା ହୋଇଅଛି [ ହ୍ରୁ ଶ ]—1 With dishevelled hair. ୨ । ଟାଙ୍ଗରା [ ହ୍ରୁ ଶ ]—2 Bald.
Bikeśa
(ବିକେଶୀ—ସ୍ତ୍ରୀ)

**ବିକୋଟି କୋଟିବା**—ଦେ. କ୍ରି [ ସଂ. ବିକର୍ତ୍ତନ+କର୍ତ୍ତନ ]—୧ । ପୁନଃ ପୁନଃ ବିକୋଟିବା ବା କାଟିବା—1. To cut repeatedly; to chop. ୨ । ଅତି କଷ୍ଟ ଦେବା—2. To afflict greatly, [ ଉଦାହରଣ—ବୋଲେ ଯେ ମୁକତି କତି ଏ କେଉଁ କାରତି ରତି ପତି ଯେ ଏବେ ବିକୋଟି କୋଟି । ଭଞ୍ଜ ପ୍ରେମସୁଧାନିଧି ।]
Bikoti kotibā

**ବିକୋଟିବା**—ଦେ. ( ପ୍ରାଚୀନ ପଦ୍ୟ ) କ୍ରି. ( ସଂ. ବି+କୃତ ଧାତୁ=କାଟିବା; ବିକୃନ୍ତନ; ବିକର୍ତ୍ତନ )—୧ । କରତରେ ଛେଦିବା—1. To saw• ୨ । କାଟିବା—2. To cut. ୩ । ( ସଂ. ବି+କୃ ଧାତୁ) ବିକୃତ କରିବା—3. To cause distortion. ୪ । ବିକଳାଙ୍ଗ କରିବା—4. To maim. ୫ । କ୍ଷତ ବିକ୍ଷତ କରିବା—5. To lacerate. ୬ । ଛିଣ୍ଡାଇବା—6. To cut asunder. ୭ । କାମୁଡ଼ି କରି ଛିଣ୍ଡାଇବା—7. To bite off. ୮ । ( ଲକ୍ଷଣାର୍ଥ ) ନାନାରୂପ କଷ୍ଟ ଦେବା—8. ( figurative ) To afflict greatly. (ଉଦାହରଣ—ବିକୋଟି ନାସା ଭୁଜେ ଶ୍ରୁତି ଛିନାଇ ପରେ ଅନୁସାରରେ ଉତ୍ପାଟିଲେ—ଭଞ୍ଜ. ବୈଦେହୀଶବିଳାସ । )
Bikotibā
( ବିକୋଟି ହେବା—କର୍ମବାଚ୍ୟରୂପ )
କାଟି କାଟିබା

**ବିକୋଷ**—ସଂ. ବିଣ• ( ବି+କୋଷ )—୧ । ଖୋଳରୁ ବା ଖାପରୁ ବାହାର କରି ଯାଇଥିବା; ନିଷ୍କାସିତ ( ଖଡ୍ଗ )—1. Drawn forth from the scabbard; unsheathed (sword). ୨ । ଆବରଣହୀନ—2. Coverless. ୩ । ଆବରଣମୁକ୍ତ—3. Uncovered; bared.
Bikosha
(ବିକୋଷିତ—ଅନ୍ୟରୂପ)

**ବିକୋଷିବା**—ଦେ (ପଦ୍ୟ) କ୍ରି (ସଂ. ବିକୋଷ)—ଖଡ୍ଗକୁ ଖାପରୁ ମୁକ୍ତ କରିବା—To draw out a sword from the scabbard; unsheathed (sword). (ଉଦାହରଣ—ବିକୋଷିଲି କୃପାଣ ସତ କୃପାବିହୀନ ମାରିବି ଜନକକୁମାରୀ ସେ । ଭଞ୍ଜ ବୈଦେହୀଶବିଳାସ ।)
Bikoshibā
বিকোষা विकोसना

**ବିକ୍କ**—ସଂ. ବି—(ବିକ୍=ଅନୁକରଣ ଶବ୍ଦ+କୈ. ଧାତୁ=ରବକା+କର୍ତ୍ତୃ. ଅ )—ହସ୍ତି ଶାବକ—The young of an elephant.
Bikka

**ବିକ୍ରମ**—ସଂ. ବି (ବି+କ୍ରମ୍ ଧାତୁ=ଯିବା+ଭାବ. ଅ)—୧ । ସାମର୍ଥ୍ୟ; ବଳ; ପରାକ୍ରମ—1. Might; strength; prowess. ୨ । ଶକ୍ତି—2. Power; energy. ୩ । ବୀରତ୍ୱ—3. Heroism; bravery. ୪ । ସାହସ—4. Courage; valour ୫ । ପାଦକ୍ଷେପଣ; ଚଳନ; ଗତି—5. Motion; movement; stride. ୬ । ବେଗ—6. Velocity. ୭ । ଆକ୍ରମଣ—7. Attacking; invading. ୮ । ପକ୍ଷୀର ଗତି—8. Flight of a bird. ୯ । ପାଦ; ଚରଣ; ଗୋଡ଼—9. Leg; foot. ୧୦ । ପଦ୍ୟର ଚରଣ; ଶ୍ଳୋକର ପାଦ—10. A foot of a verse. ୧୧ । ବିକ୍ରମାଦିତ୍ୟ (ଦେଖ)—11. Bikramāditya (See) ୧୨ । (ସହସ୍ର ନାମୋକ୍ତ) ବିଷ୍ଣୁଙ୍କର ଏକନାମ—12. A name of Bishṇu ୧୩ । କ୍ରମ ବିହୀନ ବେଦପାଠ (ହ୍ରୁ. ଶ)—13. Recital of the Beda without proper sequence. ଦେ. ବି, ପୁଂ. ପୁରୁଷଙ୍କୁ ଦିଆଯିବା ନାମ—A name given to males. [ ଦ୍ର—ଏହି ନାମବିଶିଷ୍ଟ ଜୟପୁର ରାଜ୍ୟର କବି ପଣ୍ଡିତ ରାଜା ଶ୍ରୀ ବିକ୍ରମ ଦେବ ବର୍ମାଙ୍କ କୀର୍ତ୍ତି, ବିଦ୍ୟା, ବଦାନ୍ୟତା ଓ ଉଦାରତା ଉତ୍କଳ ଓ ଆନ୍ଧ୍ର ଖଣ୍ଡରେ ସୁବିଖ୍ୟାତ । ]
Bikrama

**ବିକ୍ରମ କେଶରୀ**—ଦେ. ବି—୧ । ବଳୁଆ ସିଂହ—1. A very strong lion. (ଉଦାହରଣ—ବିକ୍ରମେ ବିକ୍ରମ କେଶରୀ ମତ । ଶିଶୁଶଙ୍କର ଉଷାଅଭିଳାଷ ।) ୨ । ଲୋକଙ୍କୁ ଦିଆଯିବା ନାମ—2. A name given to males.
Bikrama keśarī

**ବିକ୍ରମଗତି**—ଦେ. ବି—ସାହସ ସହିତ ଗମନ—Bold advance or movement. (ଉଦାହରଣ—ବିକ୍ରମ ଗତିକି ବହି—ଶରଧା ରୂପକୁ ରୂହିଁ—କେଶରୀ ଗିରି ମଧ୍ୟରୁ—ସେହି ସ୍ୱଭାବେ । ଭଞ୍ଜ. ବୈଦେହୀଶବିଳାସ ।)
Bikramagati

**ବିକ୍ରମ ପ୍ରକାଶ**—ସଂ. ବି (୬ଷ୍ଠୀ ତତ୍; ବିକ୍ରମ+ପ୍ରକାଶ)—ଆପଣାର ପରାକ୍ରମ ଦେଖାଇବା—Show of one's prowess.
Bikrama prakāśa

**ବିକ୍ରମ ରହିତ**—ସଂ. ବିଣ—ପରାକ୍ରମହୀନ—Destitute of strength,
Bikrama rahita
(ବିକ୍ରମ ହୀନ, ବିକ୍ରମ ଶୂନ୍ୟ—ଅନ୍ୟରୂପ)

**ବିକ୍ରମ ଶାଳୀ**—ସଂ. ବିଣ. ପୁଂ (ବିକ୍ରମ+ଅସ୍ତି ଅର୍ଥରେ ଶାଳିନ୍)—ମହାବଳବାନ୍—Very strong; very valiant.
Bikrama sālī
(ବିକ୍ରମଶାଳିନୀ—ସ୍ତ୍ରୀ)

**ବିକ୍ରମାଦିତ୍ୟ**—ସଂ. ବି—(ବିକ୍ରମରେ ଆଦିତ୍ୟ ତୁଲ୍ୟ)—ଉଜ୍ଜୟିନୀର ପ୍ରସିଦ୍ଧ ହିନ୍ଦୁ ରାଜା—A celebrated king of Ujjainī [ ଦ୍ର—ଏ ଶକମାନଙ୍କୁ ୪୦୦ ଖ୍ରୀଷ୍ଟାବ୍ଦରେ ପଶ୍ଚିମ ଭାରତରୁ ତଡ଼ିଦେଇ ଭାରତରେ ସମୁଦ୍ରଗୁପ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ ହିନ୍ଦୁରାଜ୍ୟକୁ ଦୃଢ଼ୀଭୂତ କରିଥିଲେ ଓ ଏହାଙ୍କର ରାଜଧାନୀ ଉଜ୍ଜୟିନୀ ଥିଲା । ଏହାଙ୍କର ଅନ୍ୟନାମ ଚନ୍ଦ୍ରଗୁପ୍ତ ଓ ଏହାଙ୍କ ରାଜତ୍ୱ କାଳ. (ଖ୍ରୀ ୩୭୫—୪୧୩) ।
Bikramāditya
(ବିକ୍ରମାର୍କ—ଅନ୍ୟରୂପ)—

ଚନ୍ଦ୍ରଗୁପ୍ତ ବୋଲି ଆଉ ଜଣେ ମୌର୍ଯ୍ୟବଂଶର ରାଜା ଏହାଙ୍କ ପୂର୍ବରୁ ମଗଧରେ ରାଜତ୍ୱ କରୁଥିଲେ, ଏଥିପାଇଁ ବିକ୍ରମାଦିତ୍ୟଙ୍କୁ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ' ବୋଲାଯାଏ । ଧନ୍ୱନ୍ତରି, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ, ବରାହ ମିହିର ଓ ବରରୁଚି ଏହି ନଅଜଣ ଏହାଙ୍କର ସଭା ପଣ୍ଡିତ ଥିଲେ, ଏମାନଙ୍କୁ ନବରତ୍ନ କୁହାଯାଏ । ଏହାଙ୍କର

ଅନ୍ୟନାମ ଭୋଜରାଜ । ଐତିହାସିକମାନେ ଏହାଙ୍କ ରାଜତ୍ୱ କାଳ ଖ୍ରୀଷ୍ଟ ଜନ୍ମର ଚତୁର୍ଥ ଶତାବ୍ଦୀ ବୋଲି ସ୍ଥିର କରିଅଛନ୍ତି, କିନ୍ତୁ ଏହାଙ୍କ ନାମର ପ୍ରଚଳିତ ଅବ୍ଦ ଖ୍ରୀଷ୍ଟପୂର୍ବ ୫୭ ବର୍ଷ ଠାରୁ ଚଳୁଅଛି । ସ୍କନ୍ଦ ପୁରାଣରେ ଲେଖାଅଛି ଯେ କଳିଯୁଗାରମ୍ଭର ୩ ହଜାର ବର୍ଷ ପରେ ବିକ୍ରମାଦିତ୍ୟ ନାମରେ ଜଣେ ପ୍ରତାପୀ ରାଜା ଥିଲେ । ଗଣନାକ୍ରମେ ଏହା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ହେଉଅଛି । କିନ୍ତୁ ଇତିହାସ ଏ ବିଷୟରେ ନୀରବ । ଗୁପ୍ତ ବଂଶୀୟ ସମୁଦ୍ର ଗୁପ୍ତଙ୍କ ପୁତ୍ର ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଉପାଧି ଗ୍ରହଣ କରିଥିଲେ । ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ କାଶ୍ମୀରରେ ବିକ୍ରମାଦିତ୍ୟ ନାମରେ ଜଣେ ରାଜା ହୋଇଥିଲେ । ଚାଲୁକ୍ୟ ବଂଶରେ ଏହି ନାମଧାରୀ କେତେ ଜଣ ରାଜା ହୋଇଥିଲେ (ହି. ଶ) । ଏଥିରୁ ଜଣାଯାଏ ଅନେକ ରାଜା କାଳକ୍ରମେ ଏହି ଶୌର୍ଯ୍ୟ ସୂଚକ ବିକ୍ରମାଦିତ୍ୟ ଉପାଧି ଗ୍ରହଣ କରିଥିଲେ । ]

**ବିକ୍ରମାବ୍ଦ**—ସଂ. ବି—ସମ୍ବତ୍ସରବିଶେଷ, ବିକ୍ରମାଦିତ୍ୟ ରାଜାଙ୍କ ନାମରେ Bikramābda ପ୍ରବର୍ତ୍ତିତ ବର୍ଷ ଗଣନା କ୍ରମ—Name of an (ବିକ୍ରମ ସମ୍ବତ୍—ଅନ୍ୟରୂପ] era running in the name Bikramāditya. [ ଦ୍ର—କେହି କେହି ଐତିହାସିକ କହନ୍ତି ଯେ ସଂସ୍କୃତ ସାହିତ୍ୟରେ ସୁପ୍ରସିଦ୍ଧ 'ବିକ୍ରମାଦିତ୍ୟ' ମାଳବଦେଶର ରାଜା 'ଯଶୋଧର୍ମ ଦେବ' ଥିଲେ । ମୂଲତାନ ଓ ଲୁଣୀର ମଧ୍ୟବର୍ତ୍ତୀ କୋରୁର ନାମକ ଯୁଦ୍ଧକ୍ଷେତ୍ରରେ ଏ ୫୩୩ ଖ୍ରୀଷ୍ଟାବ୍ଦରେ ହୂନ୍ ବା ଶକମାନଙ୍କୁ ପରାଜିତ କରିଥିବା ବିଷୟ ମାଳବଦେଶସ୍ଥ ମନ୍ଦେଶର ନାମକ ସ୍ଥାନରେ ଥିବା ଜୟସ୍ତମ୍ଭରେ ଲିପିବଦ୍ଧ ହୋଇଅଛି । ଖ୍ରୀଷ୍ଟଜନ୍ମର ୫୭ ବର୍ଷ ପୂର୍ବରୁ ଆରମ୍ଭ ହୋଇଥିବା ଗୋଟିଏ ସନ, ଯାହାକି ସେହି ସମୟରେ ମାଳବଦେଶରେ ଚଳୁଥିଲା ତାକୁ ବିକ୍ରମାଦିତ୍ୟ ଗ୍ରହଣ କରି ଆପଣାର ସାମ୍ରାଜ୍ୟରେ 'ସଂବତ୍' ନାମ ଦେଇ ଚଳାଇଲେ ଓ ଉକ୍ତ ସଂବତ୍ ବର୍ଷ ଆଜିପର୍ଯ୍ୟନ୍ତ ହିନ୍ଦୁମାନଙ୍କ ଦ୍ୱାରା ବିକ୍ରମାବ୍ଦରୂପେ ବ୍ୟବହୃତ ହେଉଅଛି । ସଂଭବତଃ ଏହି ଅବ୍ଦ ମାଳବଦେଶକୁ ପୂର୍ବେ ଜୟ କରିଥିବା କ୍ଷତ୍ରପ ମାନଙ୍କର ରାଜା 'ଗୃଷ୍ଟାନ'ଙ୍କର ଜୟଲାଭକୁ ଚିରସ୍ମରଣୀୟ କରିବା ସକାଶେ ବିକ୍ରମାଦିତ୍ୟଙ୍କ ପୂର୍ବରୁ ମାଳବଦେଶରେ ଚଳି ଆସୁଥିଲା । ଏବଂ ଏହା ଏଥିପୂର୍ବେ 'ମାଳବାବ୍ଦ' ବୋଲି ବିଖ୍ୟାତ ଥିଲା ଓ ପରେ ମଧ୍ୟ 'ମାଳବାବ୍ଦ' ଓ 'ମାଳବେଶଗ୍ରାବ୍ଦ' ନାମରେ ବିଖ୍ୟାତ ହୋଇଥିଲା ।

ଇତିହାସ ଗଣନାରୁ ଦେଖାଯାଏ ଯେ ବିକ୍ରମାଦିତ୍ୟଙ୍କ ରାଜସଭାର ନବରତ୍ନ ( ଯାହାଙ୍କ ମଧ୍ୟରେ କବି କାଳିଦାସ, ଜ୍ୟୋତିଷିକ ବରାହମିହିର, ଅମରକୋଷକାର ଅମରସିଂହ ଜଣେ ଜଣେ ଥିଲେ ) ମାନେ ସମକାଳୀନ ନ ଥିଲେ । କାରଣ କାଳିଦାସ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ଲୋକ ଥିଲେ; କିନ୍ତୁ 'ନବରତ୍ନ'ଙ୍କ ମଧ୍ୟରୁ ଅନ୍ୟମାନେ ତତ୍ପରବର୍ତ୍ତୀ ଅଟନ୍ତି । ବରାହମିହିରଙ୍କର ମୃତ୍ୟୁ ୫୮୮ ଖ୍ରୀଷ୍ଟାବ୍ଦରେ ହୋଇଥିବାର କେହି କେହି ଅନୁମାନ କରନ୍ତି ।

[ ପି. ପ୍ରଥେରୋ ସାହେବ ( Mr. P. Prothero ) ଏବଂ ମହାମହୋପାଧ୍ୟାୟ ସତୀଶଚନ୍ଦ୍ର ବିଦ୍ୟାଭୂଷଣଙ୍କର ଇଂରାଜୀ ଭାଷାରେ ଲିଖିତ ଭାରତବର୍ଷର ଇତିହାସ ( A short primer of Indian History ) ରୁ ସଂଗୃହୀତ । ]

**ବିକ୍ରମି ଆସିବା**—ଦେ. କ୍ରି ( ସଂ. ବି+କ୍ରମ ଧାତୁ )—ଦଉଡ଼ି ଆସିବା— Bikrami āsibā To run forward; to come (ବିକ୍ରମିଯିବା—ବିପରୀତ) running ( ଉଦାହରଣ—ବିକ୍ରମି ବିକ୍ରମେ ଆସ। ଆସିଲା ମନରୁ ବେଗେ । ଭଞ୍ଜ. ବୈଦେହୀଶବିଳାସ ।) बिमक्कर आना

**ବିକ୍ରମିବା**—ଦେ. ( ପଦ୍ୟ ) କ୍ରି ( ସଂ. ବି+କ୍ରମ ଧାତୁ )—୧ । ଜୋର୍ Bikramibā ବା ବଳପ୍ରକାଶ ପୂର୍ବକ ଗମନ କରିବା— विक्रमा 1. To go with great force. ( ଉ.— विक्रमना ବିକ୍ରମି ଲକ୍ଷ୍ମଣ ମିଳେ ଦକ୍ଷିଣ କାନନ, ବସନ୍ତ ମଳୟାଦ୍ରିରୁ କି ସେ ଆଗମନ । ଭଞ୍ଜ. ବୈଦେହୀଶବିଳାସ) । ୨ । ବଳପ୍ରକାଶ କରିବା—2. To show strength. ( ଉ.—ନରହେ ଅପ୍ରମତ୍ତ ହୋଇ. ସିଂହର ପ୍ରାୟେ ବିକ୍ରମଇ । ଜଗନ୍ନାଥ. ଭାଗବତ) ।

**ବିକ୍ରମୀ**—ସଂ. ବିଣ. ପୁଂ ( ବିକ୍ରମ+ଅଛି ଅର୍ଥରେ ଇନ୍; ବିକ୍ରମିନ୍ ୧ମା. Bikramī ୧ବ. )—୧ । ପରାକ୍ରମୀ; ମହାବଳ—1. Mighty. (ବିକ୍ରମିନୀ—ସ୍ତ୍ରୀ) ୨ । ସାହସଶାଳୀ—2. Valiant. ୩ । ବୀର— 3 Heroic. ବି—୧ । ସିଂହ—1. The lion. ୨ । ବୀର—2. A hero.

**ବିକ୍ରୟ**—ସଂ. ବି ( ବି+କ୍ରୀ ଧାତୁ=ଦ୍ରବ୍ୟବିନିମୟ କରିବା+ଭାବ. ଅ ) Bikraya —ଅର୍ଥ ବିନିମୟରେ ବସ୍ତୁ ଅର୍ପଣ; ବିକିରି—Sale (କ୍ରୟ—ବିପରୀତ) ଦେ. ବିଣ [ କଟକରେ ]—୧ । ବିକ୍ରୀତ— विक्री बिकी 1. Sold. ୨ । ବିକ୍ରେୟ—2. About to be sold.

**ବିକ୍ରୟ କରିବା**—ଦେ. କ୍ରି—ବିକିବା—To sell. Bikraya karibā विक्रय करना बेचना

**ବିକ୍ରୟକାରୀ**—ସଂ. ବି. ପୁଂ—ଯେ ଦ୍ରବ୍ୟ ବିକ୍ରୟ କରେ; ବିକ୍ରେତା— Bikrayakārī (ବିକ୍ରୟକାରିଣୀ—ସ୍ତ୍ରୀ) Vendor.

**ବିକ୍ରୟ ଲବ୍ଧ**—ସଂ. ବିଣ. ( ୩ୟା ତତ୍; ବିକ୍ରୟ+ଲବ୍ଧ )—ବିକ୍ରୟ ଦ୍ୱାରା Bikraya labdha ପ୍ରାପ୍ତ; ବିକ୍ରୀତ ପଦାର୍ଥର ବିନିମୟରେ ପ୍ରାପ୍ତ (ଧନ)—(money) Got by the sale of a property.

**ବିକ୍ରୟ ସଭା**—ସଂ. ବି. (କଟକରେ)—ଯେଉଁ ସଭାରେ ବିକ୍ରୀତ ବସ୍ତୁର Bikraya sabhā ଦର ଆଦି ସ୍ଥିରୀକୃତ ହୁଏ—A meeting place where sales are settled

**ବିକ୍ରୟ ସ୍ଥାନ**—ସଂ. ବି. (୭ମୀ ତତ୍; ବିକ୍ରୟ+ସ୍ଥାନ)—ଯେଉଁ ସ୍ଥାନରେ Bikraya sthāna ପଦାର୍ଥ ବିକ୍ରି ହୁଏ—Place of sale.

**ବିକ୍ରୟାର୍ଥୀ**—ସଂ. ବିଣ. ପୁଂ—କୌଣସି ପଦାର୍ଥ ବିକିବା କାମନାରେ ଇଚ୍ଛୁକ— Bikrayārthī Desirous of selling a thing. (ବିକ୍ରେଚ୍ଛୁ, ବିକ୍ରେଚ୍ଛୁକ—ଅନ୍ୟରୂପ) (ବିକ୍ରୟାର୍ଥିନୀ—ସ୍ତ୍ରୀ) (ବିକ୍ରୟାର୍ଥିନୀ, ବିକ୍ରେଚ୍ଛୁକା—ସ୍ତ୍ରୀ)

ବିକ୍ରୟିକ—ସଂ. ବିଣ. ପୁଂ (ବି+କ୍ରୀ ଧାତୁ+ଇକ)—ବିକ୍ରୟୀ; ବିକ୍ରେତା - Bikrayika Vendor; seller. (ବିକ୍ରୟିକା—ସ୍ତ୍ରୀ)

ବିକ୍ରୟୀ—ସଂ. ବିଣ. ପୁଂ ( ବିକ୍ରୟ+ଇନ୍=ବିକ୍ରୟିନ୍; ୧ମା. ୧ବ )— Bikrayī ବିକ୍ରେତା; ବାପୃ—Vendor; seller [ ବୃ—ଏହା (ବିକ୍ରୟିନୀ[ଣୀ]—ସ୍ତ୍ରୀ) ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ତାମ୍ବୂଳ ବିକ୍ରୟୀ, ବସ୍ତ୍ର ବିକ୍ରୟୀ ଇତ୍ୟାଦି । )

ବିକ୍ରାନ୍ତ—ସଂ. ବିଣ. ପୁଂ (ବି=ବିଶିଷ୍ଟ ରୂପେ+କ୍ରମ୍ ଧାତୁ=ଯୁଦ୍ଧାଦି Bikrānta କରିବା+କର୍ତ୍ତୃ. ତ)—୧ । ବିକ୍ରମୀ; ପରାକ୍ରମୀ; (ବିକ୍ରାନ୍ତା—ସ୍ତ୍ରୀ) ମହାବଳ—1. Mighty; strong. ୨ । ବୀର—2. Heroic; valiant. ୩ । ପ୍ରଭାଯୁକ୍ତ—3. Splendid. ବି. (+କର୍ତ୍ତୃ. ତ)—୧ । ସିଂହ—1. The lion. ୨ । ବୈକ୍ରାନ୍ତ ମଣି—2. A sort of gem. ୩ । (+କର୍ମ. ତ) ବଳ; ବିକ୍ରମ—3. Prowess; might. ୪ । (+କର୍ତ୍ତୃ. ତ) ବୀର; ଯୋଦ୍ଧା - 4. Warrior; hero. ୫ । (+ଭାବ.ତ) ଗୋଳମାଳ; କୋଳାହଳ, ଘୋଷା(ହି. ଶ)—5. Noise; uproar. ୬ । (ନାମ) ହିରଣ୍ୟାକ୍ଷ ଅସୁରର ଏକ ପୁତ୍ର (ହି. ଶ)—6. Name of a son of demon Hiraṇāksha. ୭ । (ବ୍ୟାକରଣ) ଏକ ପ୍ରକାର ସନ୍ଧି ଯହିଁରେ ବିସର୍ଗ ଅବିକୃତ ରହେ (ହି. ଶ)—7. (grammar) A process of grammatical blending of letters in which Bisarga is not eliminated. ୮ । ମଦାଳସା ଗର୍ଭଜାତ କୁବଳୟାଶ୍ୱଙ୍କ ପୁତ୍ର (ହି. ଶ)—8. Name of a son of Kubaḷayāśwa. ୯ । ସାହସ (ହି. ଶ) - 9. Valour; bravery. ୧୦ । ଚାଲିବାର ଢଙ୍ଗ (ହି. ଶ)—10. Manner of walking; gait ୧୧ । ଏକ ପ୍ରକାର ପେୟ ମାଦକ (ହି. ଶ)—11. A kind of intoxicating drink.

ବିକ୍ରାନ୍ତା—ସଂ. ବି. (ବିକ୍ରାନ୍ତ+ଆ)—୧ । ଅଗ୍ନିମନ୍ଥ ବୃକ୍ଷ; ଅଗରଥୁ— Bikrāntā 1. Premna Integrifolia (tree). ୨ । ଜୟନ୍ତୀ (ହି. ଶ) (ଦେଖ)—2. Jayantī (See) ୩ । ମୂଷାକାନି (ହି. ଶ) (ଦେଖ)—3. Mūshākāni (See) ୪ । ମନ୍ଦାର (ହି. ଶ)—4. China rose. ୫ । ଅପରାଜିତା (ହି. ଶ) (ଦେଖ)—5. Aparājitā (See) ୬ । ନାଲି ଲାଜକୋଳି ଲତା (ହି. ଶ)—6. The red variety of Lājakoḷi creeper. ୭ । ହଂସପଦୀ ଲତା (ଦେଖ)—7. Haṁsapadī (See)

ବିକ୍ରାନ୍ତି—ସଂ. ବି. ( ବି+କ୍ରମ୍ ଧାତୁ+ଭାବ. ତି )—୧ । ପରାକ୍ରମ; Bikrānti ବିକ୍ରମ—1 Might; prowess. ୨ । ପ୍ରଭା— 2. Splendour; glory. ୩ । ଅଶ୍ୱର ଗତିବିଶେଷ; ଘୋଡ଼ାର ଛନ୍ଦକ ଦଉଡ଼ —3. A motion of the horse; gallop. ୪ । ବୀରତା; ଶୂରତା—4. Valour; heroism. ୫ । ଗତି (ହି. ଶ) —5. Motion.

ବିକ୍ରି—ଦେ. ବି ଓ ବିଣ—ବିକ୍ରୀ (ଦେଖ)—Bikrī (See) Bikri (ଶବ୍ଦ —ଅପଭ୍ରଂଶ)

ବିକ୍ରି କରିବା—ଦେ. କ୍ରି—(ସଂ. ବିକ୍ରୟ)—ବିକ୍ରୟ କରିବା; ବିକିବା — Bikri karibā বিক্রি করা **बिक्री करना** To sell

ବିକ୍ରି ଖରଦି—ଦେ. ବି—(ଅପଭ୍ରଂଶାର୍ଥକ ସହଚର ଶବ୍ଦ; ସଂ. ବିକ୍ରୟ; ଫା. Bikri kharadi ଖରୀଦ)—ବିକା କିଣା—Sale and pur- বিক্রী খরিদ **बिक्री खरीद** [ବିକ୍ରି ଖରଦ(ଦି)—ଅନ୍ୟରୂପ] chase.

ବିକ୍ରି ଜମି—ଦେ. ବି—(କଚେରୀ) (ସଂ. ବିକ୍ରୀତ; ବିକ୍ରେୟ+ଫା. ଜମୀନ୍) Bikri jami ୧ । ବିକ୍ରୀତ ଭୂମି—1. Land sold. (ବିକ୍ରୀ ଭୂଇଁ—ଅନ୍ୟରୂପ) ୨ । ଯେଉଁ ଜମି ବିକ୍ରୀତ ହେବାକୁ ଅଛି— বিক্রি জমি **बिकाउ जमीन** 2. The land which is going to be sold.

ବିକ୍ରି ଜରସମନ—ଦେ. ବି—(କଚେରୀ) (ସଂ. ବିକ୍ରୟ+ଫା. ଜରସମନ Bikri jarasamana ଯେଉଁ ମୂଲ୍ୟରେ କୌଣସି ପଦାର୍ଥକୁ ବିକ୍ରି (ବିକ୍ରି ଦାମ, ବିକ୍ରି ମୂଲ୍ୟ—ଅନ୍ୟରୂପ) କରି ଯାଏ—Sale-price; দাম **जरसमन** consideration money.

ବିକ୍ରି ଦର—ଦେ. ବି—(ସଂ. ବିକ୍ରୟ+ଫା.ଦର୍)—୧ । ଯେଉଁ ଦର ବା Bikri dara ନିର୍ଦ୍ଦିଷ୍ଟ ରେଟ୍‌ରେ କୌଣସି ଜିନିଷ ବିକ୍ରି ହୁଏ— বিক্রীদর **बिक्री भावो** 1. The settled rate in which a (ବିକ୍ରି ଦାଣ୍ଡ; ବିକ୍ରି ଭାଉ, ବିକ୍ରି ରେଟ୍—ଅନ୍ୟରୂପ) thing is sold. ୨ । ପ୍ରଚଳିତ ବଜାର ଭାଉ—2. Market rate of an article.

ବିକ୍ରିୟା—ସଂ ବି—(ବି+କୃ ଧାତୁ+କର୍ତ୍ତୃ. ଯ+ସ୍ତ୍ରୀ. ଆ)—୧ । ବିକାର Bikriyā (ଦେଖ)—1. Bikāra (See) ୨ । ବିପରୀତ କ୍ରିୟା—1. Opposite or contrary action. ୩ । ପ୍ରତିକ୍ରିୟା—3. Reaction.

ବିକ୍ରି ସମ୍ପତ୍ତି—ଦେ. ବି—( କଚେରୀ )—୧ । ବିକ୍ରୀତ ସମ୍ପତ୍ତି— Bikri sampatti বিক্রী সম্পত্তি 1. Property sold. **बिकाउ सम्पत्ति** ୨ । ବିକ୍ରେୟ ସମ୍ପତ୍ତି—2. Property which বিক্রী সম্পত্তি is going to be sold.

ବିକ୍ରୀ—ଦେ. ବି—( ସଂ. ବି+କ୍ରୀ. ଧାତୁ )—ବିକ୍ରୟ—Sale. ଦେ. Bikrī ବିଣ—(ସଂ. ବିକ୍ରେୟ)—୧ । ବିକ୍ରେୟ; ଯାହା ବିକ୍ରି କରି- বিক্রী **बिक्री** ହେବ—1. Going to be sold. ୨ । ବିକ୍ରୀତ- 2. Sold.

ବିକ୍ରୀଡ଼ିତ—ସଂ. ବି—(ବି=ବିବିଧ ପ୍ରକାରେ+କ୍ରୀଡ଼ ଧାତୁ=ଖେଳିବା। Bikrīṛdita +ଭାବ. ତ)—୧ । ବିବିଧ କ୍ରୀଡ଼ା—1. Various sports. ୨ । ନାନା ପ୍ରକାର ଲୀଳାଗତି—2. Contortious; tortuous movements; artistic movements. [ଯଥା—ଶାର୍ଦ୍ଦୂଳ ବିକ୍ରୀଡ଼ିତ =ବ୍ୟାଘ୍ର ଗତି]

ବିକ୍ରୀତ—ସଂ. ବିଣ.—(ବି+କ୍ରୀ ଧାତୁ+କର୍ମ. ତ)—ଯାହା ବିକା ହୋଇ Bikrīta ଅଛି—Sold.

ବିକ୍ରୁଷ୍ଟ—ସଂ. ବିଣ—( ବି+କ୍ରୁଶ୍ ଧାତୁ=ଆକ୍ରୋଶ, କ୍ରନ୍ଦନ, ଆହ୍ୱାନ Bikrushṭa କରିବା+କର୍ତ୍ତୃ. ତ)—୧ । ଅକ୍ରୋଶକାରୀ—

[ବିକ୍ରୁଷ୍ଟା—ସ୍ତ୍ରୀ] 1. Reproaching; imprecating. ୨ । ରୋଦନକାରୀ—2. Bewailing. ୩ । ଆହ୍ୱାନକାରୀ—3 Summoning. ୪ । (+କର୍ମ· ତ)—ଆହୂତ—4, Called; summoned. ୫ । ନିମନ୍ତ୍ରିତ-5. Invited. ୬ । ନିଷ୍ଠୁର; ନିର୍ଦ୍ଦୟ—6. Cruel; merciless.

ବିକ୍ରେତବ୍ୟ—ସଂ. ବିଣ—(ବି+କ୍ରୀ ଧାତୁ+କର୍ମ. ତବ୍ୟ)—ବିକ୍ରେୟ Bikretabya (ଦେଖ)—Bikreya (See)

ବିକ୍ରେତା—ସଂ. ବିଣ. ପୁଂ—(ବି+କ୍ରୀ ଧାତୁ+କର୍ତ୍ତୃ. ତୃ; ବିକ୍ରେତୃ; ୧ମା Bikretā [ବିକ୍ରେତ୍ରୀ—ସ୍ତ୍ରୀ] ୧ବ)—ବିକ୍ରୟିତା—Vendor.

ବିକ୍ରେୟ—ସଂ. ବିଣ—(ବି+କ୍ରୀ ଧାତୁ+କର୍ମ. ଯ)—୧ । ବିକ୍ରୟଯୋଗ୍ୟ—1 Saleable. ୨ । ଯାହା ବିକ୍ରି କରି Bikreya ହେବ—2 About to be sold. ବି—୧ । ପଣ୍ୟ-1 Merchandise. ୨ । ବଜାରର ସଉଦାପତ୍ର—2. Commodities for sale.

ବିକ୍ଳବ—ସଂ ବି ( ବି+କ୍ଳବ୍ ଧାତୁ=ବିହ୍ୱଳ ହେବା+ଭାବ. ଅ )—Biklaba ୧ । ଭୟବିହ୍ୱଳତା—1 Mental confusion; alarm. ୨ । କିଂକର୍ତ୍ତବ୍ୟବିମୂଢ଼ତା—2. Bewilderment. ୩ । ବ୍ୟାକୁଳତା—3. Consternation; agitation. ୪ । ଜଡ଼ତା—4. Numbness. ୫ । ଔଦାସୀନ୍ୟ-5. Indifference. ୬ । ଭ୍ରାନ୍ତି—6. Delusion. ୭ । ଭୀତି—7. Alarm. ବିଣ—୧ । ( +କର୍ତ୍ତୃ. ଅ ) ବିହ୍ୱଳ; ବ୍ୟାକୁଳ—1. Confused; agitated; perturbed. ୨ । ଭୀତ—2. Alarmed. ୩ । ଉଦାସୀନ— 3, Indifferent. ୪ । ଦଶାଗ୍ରସ୍ତ—4. Afflicted, ୫ । କିଂକର୍ତ୍ତବ୍ୟବିମୂଢ଼; କର୍ତ୍ତବ୍ୟାବଧାରଣରେ ଅକ୍ଷମ—5. Bewildered. ୬ । ବିପନ୍ନ—6. Involved in danger.

ବିକ୍ଳିନ୍ନ—ସ. ବିଣ. ( ବି+କ୍ଳିଦ୍ ଧାତୁ=ଆର୍ଦ୍ର ହେବା+କର୍ତ୍ତୃ. ତ )—Biklinna ୧ । ଆର୍ଦ୍ର; ଓଦା—1. Wet. ୨ । ସିକ୍ତ—2. Moistened. ୩ । ଦ୍ରବୀଭୂତ—3. Melted; liquefied. ୪ । ଜୀର୍ଣ୍ଣ—4. Worn out; wasted; grown old; debilitated. ୫ । ପଚା; ସଢ଼ା—5. Rotten; putrefied.

ବିକ୍ଳେଶରେ—ଦେ. କ୍ରି· ବିଣ—ବିନା କଷ୍ଟରେ; ଅନାୟାସରେ—Biklesare Without any trouble; easily. ଅକ୍ଲେଶେ (ଉ:—ବିକ୍ଳେଶରେ କେ ମୋ ବିନା କରତା, ବ୍ରହ୍ମାଣ୍ଡେ ସେ ଏକା ମୋତେ ବନତା—ଭଞ୍ଜ. ବୈଦେହୀଶବିଳାସ । )

ବିକ୍ଷତ—ସଂ. ବିଣ ( ବି=ବିଶେଷରୂପେ+କ୍ଷତ )—୧ । ଆହତ; Bikshata ଘାଇଲା—1. Wounded; smitten, ୨ । ବିଶେଷରୂପେ ଆଘାତପ୍ରାପ୍ତ—2. Injured; much hurt. ୩ । ବିଦାରିତ—3. Torn; rent. ୪ । ଖଣ୍ଡିତ; ବିଖଣ୍ଡିତ—4. Cut or torn into pieces. ୫ । କ୍ଷୟପ୍ରାପ୍ତ—5, Wasted; decayed.

ବିକ୍ଷୟ—ସ. ବି (ବି+କ୍ଷୟ) ( ବୈଦ୍ୟକ )—ଅଧିକ ମଦ୍ୟପାନ Bikshaya ଯୋଗୁ ଜାତ ରୋଗବିଶେଷ—A disease resulting from excessive drinking.

ବିକ୍ଷିପ୍ତ—ସଂ. ବିଣ ( ବି+କ୍ଷିପ୍ ଧାତୁ=ଫୋପାଡ଼ିବା+କର୍ମ· ତ )—Bikshipta ୧ । ଇତସ୍ତତଃ ଫୋପଡ଼ା ହୋଇଥିବା—1. Scattered about. ୨ । ଇତସ୍ତତଃ ସଞ୍ଚାଳିତ—2. Propelled hither and thither. ୩ । କ୍ଷିପ୍ତ; ବିକୃତ ( ମନ )—3. Insane; distracted (said of the mind). ୪ । ତ୍ୟକ୍ତ—4. Abandoned; cast off. ୫ । ଫୋପଡ଼ା ଯାଇଥିବା—5. Thrown. ୬ । ବ୍ୟାକୁଳ 6, Perturbed, ୭ । ପାଗଳ—7, Mad, ସ. ବି—ଯୋଗଶାସ୍ତ୍ରୋକ୍ତ ଚିତ୍ତର ଚଞ୍ଚଳ ଅବସ୍ଥାବିଶେଷ—A sort of mental abstraction described in the joga,

(ବିକ୍ଷିପ୍ତକ, ବିକ୍ଷିପ୍ତି, ବିକ୍ଷେପ — ଅନ୍ୟରୂପ)

ବିକ୍ଷିପ୍ତକ—ସଂ ବି (ବିକ୍ଷିପ୍ତ+କ)—ଯେଉଁ ମୁର୍ଦ୍ଦାରକୁ ଦଗ୍ଧ କରି ନ ଯାଇ Bikshiptaka ବା ପୋତା ନ ଯାଇ ଫିଙ୍ଗି ଦିଆଯାଇଥାଏ ( ସ୍ମୃ. ଶା)—A dead body which is neither cremated nor buried, but thrown away,

ବିକ୍ଷିପ୍ତ ଗତି—ସଂ. ବି ( ବିଜ୍ଞାନ ପରିଭାଷା )—ଫୋପଡ଼ା ଯିବା ଦ୍ରବ୍ୟର Bikshipta gati ଗତି—Force or motion generated ( ବିକ୍ଷେପ ଗତି—ଅନ୍ୟରୂପ ) in a body while it is thrown or propelled; momentum of a body which is thrown or pushed,

ବିକ୍ଷିପ୍ତ ଚିନ୍ତା—ସଂ. ବି—କୌଣସି ବିଷୟର ଧାରବାହିକ ଆଲୋଚନା Bikshipta chintā କରି ନ ଯାଇ ନାନା ବିଷୟର ଅସଂବଦ୍ଧ ଚିନ୍ତା—Stray thoughts; random thoughts, [ଦ୍ର—ଶ୍ରୀ ଶଶିଭୂଷଣ ରାୟ ଏହି ନାମରେ ଉତ୍କଳ ସାହିତ୍ୟ ପତ୍ରିକାରେ ଅନେକ ବର୍ଷ ହେଲା ନାନାବିଷୟକ ସନ୍ଦର୍ଭମାନ ଲେଖି ଆସୁଅଛନ୍ତି । ]

ବିକ୍ଷିପ୍ତି—ସଂ. ବି. ( ବି+କ୍ଷିପ୍ ଧାତୁ+ଭାବ. ତି )—୧ । ବିକିରଣ, Bikshipti ଇତସ୍ତତଃ ଫୋପାଡ଼ିବା—1, Scattering about; (ବିକ୍ଷେପ—ଅନ୍ୟରୂପ ) dispersion, ୨ । ବିସ୍ତାର—2. Expansion; diffusion, ୩ । ସଞ୍ଚାଳନ—3, Moving to and fro, ୪ । ତ୍ୟାଗ—4, Abandonment. ୫ । ( +କର୍ମ. ତ ) ରାଜସ୍ୱ—5, Revenue, ୬ । (+ଭାବ. ତି) ପ୍ରେରଣ—6, Sending out, ୭ । ନିକ୍ଷେପ—7, Throwing. ୮ । ଚିତ୍ତର ଚାଞ୍ଚଲ୍ୟ—8, Distraction, ୯ । ବେହେଲା ସୀତାର ଆଦି ଯନ୍ତ୍ରରେ କୌଣସି ସୁର ବଜାଇବା ପରେ ସେହି ସୁର ଠାରୁ ନିମ୍ନ ବା ତତୋଧିକ ସୁର ବ୍ୟବଧାନରେ ବାମହସ୍ତର ଅଙ୍ଗୁଳି ଘର୍ଷଣ ଦ୍ୱାରା ଅବଚ୍ଛେଦରେ ଊର୍ଦ୍ଧ୍ୱଗତି କରଣ—9, A sort of melody produced by the dexterous movement of the fingers of the

left hand on a stringed instrument, while playing a tune with the right hand. ୧୦ । ପାଗଳପଣ; ବାଉଳତା—10. Madness.

**ବିକ୍ଷୁବ୍ଧ**—ସଂ. ବିଣ (ବି+କ୍ଷୁବ୍ଧ)—୧ । ମଥିତ; ଘାଣ୍ଟାଯିବା—1. Agitated; churned. ୨ । ଦୁଃଖପ୍ରାପ୍ତ—2. Afflicted. ୩ । ଶଙ୍କିତ; ତ୍ରସ୍ତ—3. Alarmed. ୪ । ଯାହାର ମନରେ କ୍ଷୋଭ ଜାତ ହୋଇଅଛି—4 Grieved.
Bikhshubdha [ବିକ୍ଷୁବ୍ଧତା, ବିକ୍ଷୁବ୍ଧି, ବିକ୍ଷୋଭ—ବିଶେଷ୍ୟ]

**ବିକ୍ଷେପ**—ସଂ. ବି (ବି+କ୍ଷିପ୍ ଧାତୁ+ଭାବ, ଅ)—୧ । ବିକିରଣ—1. Scattering about; dispersion. ୨ । (ବିକ୍ଷେପଣ—ଅନ୍ୟରୂପ) ବ୍ୟାପ୍ତି; ବିସ୍ତାର—2. Diffusion. spreading. ୩ । ତ୍ୟାଗ—3. Abandonment. ୪ । ପ୍ରେରଣ—4. Sending; despatching (Apte); transmission. ୫ । ନିକ୍ଷେପ—5. Throwing away. ୬ । (ଜ୍ୟୋତିଷ ପରିଭାଷା) ତାରା ବା ଗ୍ରହାଦିର ଅବସ୍ଥିତିସୂଚକ ଅକ୍ଷାଂଶ—6 (Astronomy) Celestial or polar latitude (Apte). ୭ । (ଅଙ୍ଗାଦିର) ଇତସ୍ତତଃ ସଞ୍ଚାଳନ—7. Spreading out (of the limbs). ୮ । ଧନୁରେ ଗୁଣ ଚଢ଼ାଇବା (ହି. ଶ)—8. Stringing of a bow. ୯ । ମନକୁ ସଂଯତ ନ କରି ଏଣେତେଣେ ଚଳାଇବା (ହି. ଶ)—9. Letting the mind wander or go astray. ୧୦ । ଇନ୍ଦ୍ରିୟମାନଙ୍କୁ ଆପଣା ବଶ ନ ରଖିବା (ହି. ଶ)—10. Absence of control on one's senses. ୧୧ । (+କର୍ମ. ଅ) ପ୍ରାଚୀନ କାଳରେ ବ୍ୟବହୃତ ଦୂରକୁ ଫିଙ୍ଗାଯିବା ଅସ୍ତ୍ରବିଶେଷ (ହି. ଶ)—11. A kind of ancient weapon which was used to be flung; boomerang. ୧୨ । (ଅଧିକରଣ. ଅ) ସେନାଙ୍କ ଡେରା; ଛାଉଣୀ (ହି. ଶ)—12. Camp of an army. ୧୩ । ବାଧା; ବିଘ୍ନ (ହି. ଶ)—13. Obstruction; impedement. ୧୪ । ଏଣେତେଣେ ହଲାଇବା (ହି. ଶ)—14. Moving to and fro; waving (Apte). ୧୫ । ବ୍ୟାକୁଳତା—15. Perplexity (Apte). ୧୬ । (+କରଣ. ଅ) ଭୟ—16. Alarm; fear (Apte). ୧୭ । ଯୁକ୍ତିର ଖଣ୍ଡନ—17. Refutation of an argument (Apte). ୧୮ । ଇତସ୍ତତଃ ଅନିର୍ଦ୍ଦିଷ୍ଟ ରୂପେ ଚାହିଁବା—18. Looking about vaguely or wildly (Apte); staring vacantly.
Bikshepa

**ବିକ୍ଷେପକ**—ସଂ. ବିଣ. ପୁଂ (ବି+କ୍ଷିପ୍ ଧାତୁ+କର୍ତ୍ତୃ. ଅକ)—ବିକ୍ଷେପକାରୀ, ବିକିରଣକାରୀ—Sprinkling,
Bikshepaka

**ବିକ୍ଷୋଭ**—ସଂ. ବି (ବି+କ୍ଷୁଭ୍ ଧାତୁ+ଭାବ.ଅ)—୧ । ଚାଞ୍ଚଲ୍ୟ; ମଥିତ—1 Agitation; perturbation; disturbance. ୨ । ବ୍ୟଥା; ଦୁଃଖ—2. Misery; agony. ୩ । ଗୁରୁତର ଭୟ—3. Alarm ୪ । ଉତ୍କଣ୍ଠା—4 Anxiety; ୫ । ଔଦାସ୍ୟ—5. Indifference. ୬ । ଚିତ୍ତ ବିଭ୍ରମ—6. Distraction; mental disturbance. ୭ । କମ୍ପ—7. Shaking; tremor.
Bikshobha

**ବିଖ** (ଖୁ, ଖ୍ୟ, ଖ୍ର, ଖ୍ରୁ, ଗ୍ର)—ସଂ. ବିଣ: ପୁଂ (ବି=ବିଗତ+ନାସିକା; ବହୁବ୍ରୀହି)—(ବିଖା—ସ୍ତ୍ରୀ) ୧ । ବିଗତନାସିକ; ଯାହାର ନାକ ନାହିଁ—1. Noseless (Apte). ୨ । ଯାହାର ନାକ କଟା ହୋଇଅଛି—Having the nose cut or lopped off.
Bikha(khu, khya, khra, khru, gra)

**ବିଖଡ଼ା**—ବୈଦେ. ବି. (ସଂ. ବିଘ୍ନ)—୧ । କଳି—1. Quarrel. ୨ । ଗୋଳମାଳ—2. Confusion. ୩ । ଦୁର୍ଘଟଣା—3. Mishap, ୪ । ବ୍ୟାଘାତ—4, Obstacle, [ ଦ୍ର—ଏହା ଅନ୍ୟ ଶବ୍ଦ ପରେ ସହଚର ରୂପେ ବ୍ୟବହୃତ ହୁଏ । ଯଥା—ଝଖଡ଼ ବିଖଡ଼ ]
Bikharda
বাখড়া; बखेडा

**ବିଖଡ଼ିଆ**—ବୈଦେ. ବିଣ. ପୁଂ ଓ ସ୍ତ୍ରୀ—ବଖଡ଼ିଆ (ଦେଖ)—(ବିଖଡ଼ୀ, ବିଖଡ଼େଇ—ସ୍ତ୍ରୀ) Bakhardia (See)
Bikhardia

**ବିଖଣ୍ଡ**—ଦେ. ବି ୧ । କୁବଚନ—1. Evil names, ୨ । କୁବାକ୍ୟ—Evil language, [ ଉ.—ଚଣ୍ଡ ହୋଇ ଦେଖ ବିଖଣ୍ଡ କହୁଛି ମଧୁର ନାହିଁ ଭୁଣ୍ଡରେ । ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣି । ]
Bikhanda

**ବିଖଣ୍ଡିତ**—ସଂ. ବିଣ—(ବି+ଖଣ୍ଡ ଧାତୁ+କର୍ମ. ତ)—୧ । କ୍ଷତ ବିକ୍ଷତ—1, Wounded and scratched, [ବଳସାକ, ବିଖଣ୍ଡିତ ଚରମ ଯେ । ଉଞ୍ଜ. ବୈଦେହୀଶବିଳାସ । ] ୨ । ଦ୍ୱିଖଣ୍ଡିତ—2. Cleft in two (Apte). ୩ । ଖଣ୍ଡିତାଙ୍ଗ—3. Mutilated (Apte). ୪ । ଖଣ୍ଡିତ (ଯୁକ୍ତି)—4. Refuted (Apte).
Bikhandita

**ବିଖଣ୍ଡିବା**—ଦେ (ପଦ୍ୟ) କ୍ରି—୧ । ଖଣ୍ଡ ଖଣ୍ଡ କରିବା—1. To make into pieces. [ଉ.—ବିଖଣ୍ଡ ପଦ ପଦ୍ମ ବିଖଣ୍ଡୀ ଯେ । ଉଞ୍ଜ. ବୈଦେହୀଶବିଳାସ ।] ୨ । ଜିଣିବା; ପରାସ୍ତ କରିବା—2. To defeat; to overcome, [ଉ.—ନୀଳ ନଳିନ ସୁନ୍ଦର ନୟନ ଗଞ୍ଜନ ତୋର ନାସାତିଳ—ପ୍ରସୂନ ବିଖଣ୍ଡେ । ପ୍ରାଚୀ. ରସବାରିଧି ।]
Bikhandiba
बिखराडाना

**ବିଖନ**—ଦେ. ବି—(ସଂ. ବିଖନସ)—୧ । ବ୍ରହ୍ମା—1. Brahmā. [ଉ.—ସ୍ୱପନେ ସମେ ବାଲ୍ୟକାଳେ ଶ୍ରବଣେ କେହୁ କମଳା ଏ ବିଖନେ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ] ୨ । ବ୍ରହ୍ମ—2. The Divine Quintessence (Apte).
Bikhana

**ବିଖାସା**—ସଂ. ବି—ଜିହ୍ୱା—The tongue (Apte).
Bikhāsā

**ବିଖ୍ୟ**—ସଂ. ବିଣ. ପୁଂ—(ବହୁବ୍ରୀହି; ବି=ବିଗତ+ନାସିକା ଯାହାର; ନଯାଉନ)—ବିଖ (ଦେଖ)—Bikha (See). ( ବିଖ୍ୟା—ସ୍ତ୍ରୀ )
Bikhya

**ବିଖ୍ୟାତ**—ସଂ. ବିଣ—(ବି+ଖ୍ୟାତ)—ପ୍ରସିଦ୍ଧ; ସୁବିଦିତ—
Bikhyāta Celebrated; famous. [ ଦ୍ର—ଏହି ଶବ୍ଦ (ବିଖ୍ୟାତା—ସ୍ତ୍ରୀ) ଅନ୍ୟ ଶବ୍ଦ ପରେ ମଧ୍ୟ ଯୋଗ ହୁଏ ଯଥା—ସୁବିଖ୍ୟାତ; ଭୁବନବିଖ୍ୟାତ, ଜଗଦ୍‌ବିଖ୍ୟାତ ଇତ୍ୟାଦି । ]

**ବିଖ୍ୟାତ କରିବା**—ଦେ. କ୍ରି—ସୁନାମ ବିସ୍ତାର କରିବା—To make famous.
Bikhyāta karibā ৰখ্যাত করা **विख्यात करना**

**ବିଖ୍ୟାତ ହେବା**—ଦେ· କ୍ରି—(ସୁନାମ) ଚତୁର୍ଦ୍ଦିଗରେ ପ୍ରକାଶିତ ହେବା—
Bikhyāta hebā To be renowned; to be famous.
বিখ্যাত হওয়া **विख्यात होना**

**ବିଖ୍ୟାତି**—ସଂ. ବି—(ବି+ଖ୍ୟାତି)—୧ । ପ୍ରସିଦ୍ଧି—1. Celebrity.
Bikhyāti ୨ । କୀର୍ତ୍ତି; ଯଶଃ—2. Fame. ଦେ. ବିଣ—ବିଖ୍ୟାତ; ପ୍ରସିଦ୍ଧ—Celebrated.

**ବିଖ୍ୟାତିବା**—ଦେ. କ୍ରି ( ପଦ୍ୟ )—୧ । ପ୍ରକାଶ କରିବା—To
Bikhyātibā express; to publish. ୨ । ବିସ୍ତାର କରିବା;
বিখ্যাতা ବିସ୍ତାରିବା—2. To spread; to extend. [ଉ.—
**विख्यात करना** ବିଧାତ୍ରୀରୁ ହିତ ହେଲେ କୀର୍ତ୍ତି, ବିଖ୍ୟାତିବେ ଅସୁର ନାଶେ କୀର୍ତ୍ତି । ଭଞ୍ଜ. ବୈଦେହୀଶବିଳାସ ।]

**ବିଖ୍ୟାପନ**—ସଂ. ବି—(ବି+ଖ୍ୟା ଧାତୁ ଣିଚ୍ ଖ୍ୟାପି ଧାତୁ+ଭାବ. ଅନ)
Bikhyāpana —୧ । ବିଖ୍ୟାତ କରଣ—1. Publication; proclaiming; making famous (Apte). ୨ । ସ୍ୱୀକାର କରିବା—2. Confessing; acknowledging (Apte).

**ବିଖ୍ର(ଖ୍ରୁ)**—ସଂ. ବିଣ ପୁଂ.—(ନିପାତନ)—ବିଖ (ଦେଖ)
Bikhra(khru) Bikha (See).

**ବିଗ(ଗି)ଡ଼(ଡ଼ା)**—ଦେଦେ. ବିଣ—(ସଂ. ବିକୃତ; ଭୁଲ; ସଂ· ବି+
Biga(gi)rda(rdā) ଘଟ. ଧାତୁ)—୧ । ଦୁଷ୍ଟ—1. Wicked
(ସଜଡ଼ା—ବିପରୀତ) ୨ । ଅନିଷ୍ଟକାରୀ—2. Mischievous;
বিগড়া harmful. ୩ । ନଷ୍ଟ—3. Spoiled. ୪ । ବେଅଡ଼ା—
**बिगडा हुआ** 4. Irregular. ୫ । ବିକୃତ—5. Deranged. ୬ । ଅଧଃପତିତ—6. Fallen down. ୭ । ଅପ୍ରସନ୍ନ; ବିରକ୍ତ—7. Irritated; displeased. ୮ । ବିଗାଡୁ (ଦେଖ)—8. Bigārdu (See). ବି—୧ । ବିଗିଡ଼ି
বিগড়া যিবା; ନଷ୍ଟ ହେବା; ଅଧଃପତନ—1. Derangement.
**बिगडाना, बिगाड** ୨ । ବିକୃତି; ଖରାପ ହେବା—2. Being spoiled. [ଉ.—ଯେ ଅଳିଲରୁ ବିଗଡ଼ା, ସେ କେବେ ନୁହେଁ ସଜଡ଼ା । ଢଗ । ] ୩ । ଗୋଳମାଳ; ବ୍ୟାଘାତ—3. Disorder. (ଯଥା—ପେଟ ବିଗଡ଼ା)

**ବିଗ(ଗି)ଡ଼ା(ଡ଼େ)ଇବା**—ଦେ· କ୍ରି—(ସଂ. ବିକୃତ; ସଂ. ବିକାର)
Biga(gi)rdā(rde)ibā (ବିଗିଡିବା କ୍ରିୟାର ଣିଜନ୍ତରୂପ—(ବିଗାଡ଼ିବା—ଅନ୍ୟରୂପ) The causative form of Bigi-
(ସଜାଡ଼ିବା—ବିପରୀତ) rdibā) ୧ । ନଷ୍ଟ କରିବା—1. To
বিগড়ান, বিগড়া spoil. ୨ । ବିକୃତ କରିବା—2. To der-
**बिगडाना** ange. ୩ । ଗୋଳମାଳ ଘଟାଇବା—3. To confuse; to create confusion. ୪ । ଭଲକୁ ମନ୍ଦ କରିବା—4. To change a good thing to bad; to vitiate. ୫ । କୌଣସି ବ୍ୟକ୍ତିକୁ ଚିଡ଼ାଇବା ବା ବିରକ୍ତ କରିବା—5. To irritate a person.

**ବିଗ(ଗି)ଡ଼ିବା**—ଦେ· କ୍ରି ( ସଂ. ବିକୃତ )—୧ । ଖରାପ ହେବା; ନଷ୍ଟ
Biga(gi)rdibā ହେବା—1. To be spoiled; to be
বিগড়া vitiated. ୨ । ବିକୃତ ହେବା—2. To deteriorate.
**बिगडना** ୩ । ମନ୍ଦ ବାଟ ଧରିବା—3. To go to the dogs. ୪ । ଅଧଃପତିତ ହେବା; ଜାତିଭ୍ରଷ୍ଟ ହେବା—4. To be depraved. ୫ । ବିରକ୍ତ ବା ଅପ୍ରସନ୍ନ ହେବା—5. To be displeased or irritated. ୬ । ସାଧାରଣ ଅବସ୍ଥାରୁ ମନ୍ଦ ଅବସ୍ଥାଯୁକ୍ତ ହେବା—6. To be deranged; to be out of order. ୭ । କ୍ରୁଦ୍ଧହେବା—7. To be enraged. ୮ । ତ୍ରୁଟିଯୁକ୍ତ ହେବା—8. To be defective.

**ବିଗଣ**—ସଂ. ବି ( ବି+ଗଣ )—ବିପକ୍ଷ—
Bigaṇa Antagonist.

**ବିଗଣନ(ନା)**—ସଂ. ବି ( ବି+ଗଣନ )—୧ । ସଂଖ୍ୟାକରଣ—1.
Bigaṇana(nā) Reckoning; enumeration. ୨ । ଋଣମୋଚନ—2. Discharge of debt. ୩ । ଅବଜ୍ଞା—3. Disregard.

**ବିଗଣିତ**—ସଂ. ବିଣ ( ବି+ଗଣିତ )—ସଂଖ୍ୟାତ; ସଂଖ୍ୟା କରାଯାଇ ଥିବା—
Bigaṇita Reckoned; counted.

**ବିଗତ**—ସଂ. ବିଣ ( ବି+ଗତ )—୧ । ଯେ ଗତ ହୋଇଅଛି ବା
Bigata ଯାଇଅଛି—1. Gone. ୨ । ପ୍ରସ୍ଥିତ—2. Departed; gone away; parted. ୩ । ନଷ୍ଟ—3. Perished; lost; exhausted. ୪ । ( ସମାସରେ ) ବିହୀନ—4. Destitute or devoid of. ୫ । ଅତୀତ—5. Past; previous. ୬ । ସମ୍ପାଦିତ—6. Accomplished. ୭ । ମୃତ—7. Dead; deceased. ଦେ. ବିଣ—ଅତୀତର ପୂର୍ବେ ଘଟିଥିବା ( ହ୍ରୀ· ଶ. )—Previous to the last. ସ. ବି—ପକ୍ଷୀର ଗତି—The flight of birds (Apte).

**ବିଗତ କଲ୍ମଷ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଗତ+କଲ୍ମଷ )—୧ ।
Bigata kalmasha ପାପଶୂନ୍ୟ—1. Sinless. ୨ । ଯାହାର
(ବିଗତ କଲ୍ମଷା—ସ୍ତ୍ରୀ) ପାପ ପ୍ରାୟଶ୍ଚିତ୍ତଦ୍ୱାରା ଖଣ୍ଡିତ ହୋଇଅଛି—
ବିଗତ କିଲ୍ୱିଷ } ଅନ୍ୟରୂପ 2. One whose sin has been
ବିଗତ ପାପ } removed by expiation.

**ବିଗତଜ୍ୱର**—ସଂ. ବିଣ. ପୁଂ ( ବିଗତ+ଜ୍ୱର; ବହୁବ୍ରୀହି )—୧ ।
Bigatajwara ଭୟଶୂନ୍ୟ—1. Fearless. ୨ । କମ୍ପଶୂନ୍ୟ—
(ବିଗତଜ୍ୱରା—ସ୍ତ୍ରୀ) 2. Free from trembling.

**ବିଗତ ବର୍ଷ**—ଦେ. ବି—ଗତବର୍ଷର ପୂର୍ବ ବର୍ଷ; ତଦସ୍ତା—Year
Bigata barsha before last; last but one year.
বিগতবৎসর

**ବିଗତ ଭୟ**—ଦେ. ବିଣ. ପୁଂ ( ବହୁବ୍ରୀହି; ବିଗତ+ଭୟ )—୧ ।
Bigata bhaya ଯାହାଠାରୁ ଭୟ ଦୂର ହୋଇଥାଏ—1.
(ବିଗତଭୟା—ସ୍ତ୍ରୀ) Having shaken out one's fears.
(ବିଗତଭୀ—ଅନ୍ୟରୂପ) ୨ । ନିର୍ଭୟ—2. Fearless.

**ବିଗତ ଯୌବନ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଗତ+ଯୌବନ )—
Bigata jaubana ଯେ ଯୌବନକୁ ଅତିକ୍ରମ କରିଅଛି—
(ବିଗତ ଯୌବନା—ସ୍ତ୍ରୀ) Having passed the youth.

**ବିଗତ ରୟ**—ସଂ. ବିଣ ( ବହୁବ୍ରୀହି; ବିଗତ+ରୟ )—ଯାହାର ତେଜ
Bigata raya କମିଅଛି; କ୍ଳାନ୍ତ—Fed up; fatigued;
(ବିଗତରୟା—ସ୍ତ୍ରୀ) whose energy is exhausted.

**ବିଗତଶଯ୍ୟା**—ଦେ. ବିଣ—ଶଯ୍ୟା ତ୍ୟାଗ କରିଥିବା—Having left
Bigata śajyā the bed. [ ଉ—ବିଗତଶଯ୍ୟା ପ୍ରାତରେ,
ରୁଡ଼ କରେ ସାଧୁ ମାରେ । ଭଞ୍ଜ. ବୈଦେହୀଶବିଳାସ ।]

**ବିଗତସ୍ପୃହ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଗତ+ସ୍ପୃହା )—ଯାହା
Bigataspruha ମନରୁ ସ୍ପୃହା ଦୂର ହୋଇଅଛି—Indifferent;
(ବିଗତସ୍ପୃହା—ସ୍ତ୍ରୀ) void of desise.

**ବିଗତାର୍ତ୍ତବା**—ସଂ. ବି. ସ୍ତ୍ରୀ (ବିଗତ+ଆର୍ତ୍ତବ=ସ୍ତ୍ରୀରଜଃ+ଆ, ବହୁବ୍ରୀହି)—
Bigatārttabā ନିବୃତ୍ତରଜସ୍କା ନାରୀ—A woman past
her menses; a women past childbearing
( in whom the menstrual discharge has
ceased ).

**ବିଗତି**—ଦେ. ବି—ବିଶେଷ ଗତି; ଚଞ୍ଚଳ ଗତି—Quick motion.
Bigati [ ଉ—ବିଗତି ଦେବାକୁ କ୍ଷିଣିକ ନବ୍ଦ୍ରକ ମନ୍ଦୋଦର
ଅତି କାସ୍ତିକ । ଭଞ୍ଜ. ବୈଦେହୀଶବିଳାସ । ]
ସ. ବି.—ପକ୍ଷୀର ଗତି—The flight of birds.

**ବିଗନ୍ଧ**—ସ. ବିଣ—( ବି+ଗନ୍ଧ )—୧ । ଗନ୍ଧହୀନ—1. Having
Bigandha no smell. ୨ । ଦୁର୍ଗନ୍ଧମୟ—2. Foul-smelling; foetid.

**ବିଗମ**—ସ. ବି—( ବି+ଗମ୍ ଧାତୁ+ଭାବ. ଅ )—୧ । ପ୍ରସ୍ଥାନ—
Bigama 1. Departure. ୨ । ବିନାଶ—2. Destruc-
(ବିଗମନ—ଅନ୍ୟରୂପ) tion. ୩ । ଶେଷ—3. Finish;
completion; end.

**ବିଗମ୍ୟ**—ଦେ. ବିଣ—ଅଗମ୍ୟ—Impassable. [ଉ.—ବିଗମ୍ୟ
Bigamya ଅରଣ୍ୟ ମଧ୍ୟେ ବିହର । ଭଞ୍ଜ. ବୈଦେହୀଶବିଳାସ ।]

**ବିଗର୍**—ବୈଦେ. ଅ—(ଆ. ବେଗଏର୍)—୧ । ବେଗର୍; ବ୍ୟତୀତ;
Bigar ବିନା—1. Without. ୨ । ବାହାରେ ଥିବା—2
বেগর **बिगर** 2. Outside. [ଯଥା—ବିଗର୍ କଜ୍ଜା ।]

**ବିଗର୍ହଣ(ଣା)**—ସ. ବି—(ବି+ଗର୍ହଣ)—୧ । କୁତ୍ସା; ଅପବାଦ—
Bigarhaṇa(ṇā) 1. Vilification; defamation. ୨ ।
ଭର୍ତ୍ସନା—2. Censure; rebuke.

**ବିଗର୍ହିତ**—ସ. ବିଣ—(ବି+ଗର୍ହିତ)—୧ । ଅତ୍ୟନ୍ତ ନିନ୍ଦିତ—1. Very
Bigarhita blameworthy. ୨ । ନିନ୍ଦ୍ୟ—2. Censurable; reproachable. ୩ । ନିଷିଦ୍ଧ—3.
Forbidden. ୪ । ଦୂଷିତ—4. Contaminated.
୫ । ଘୃଣ୍ୟ—5. Detestible. ବି.—ନିନ୍ଦା—
Reproach; blame.

**ବିଗଳ**—ଦେ. (ପ୍ରାଚୀନ ପଦ୍ୟ) କ୍ରି. ବିଣ—(ସ. ବିଗଳିତ)—ଝର ଝର
Bigaḷa ହୋଇ—Profusely; in torrent. [ଉ—
ମୁଦ୍ରିତ ନୟନେ ଜଳ ବହଇ ବିଗଳ । ପ୍ରାଚୀ. ରସକଲ୍ଲୋଳ]

**ବିଗଳ କରିବା**—ଦେ. (ପ୍ରାଚୀନ ପଦ୍ୟ) କ୍ରି—(ସ. ବିଗଳିତ)—ଖସାଇ
Bigaḷa karibā ଦେବା; ମୁକ୍ତ କରିବା—To set free; to
loosen. [ଉ.—ବିଗଳ କର ବସନ ହରଷ ଶୃଙ୍ଗ ବଚନ,
ଜଘନେ ଜଘନ ଗୁରୁ ଘଟଣ କର । ପ୍ରାଚୀ. ରସକଲ୍ଲୋଳ ।]

**ବିଗଳିତ**—ସ. ବିଣ—( ବି+ଗଳିତ )—୧ । କ୍ଷରିତ; ଝରୁ ଥିବା—
Bigaḷita 1. Trickling; oozing; dropping.
(ବିଗଳନ—ବି) ୨ । ପତିତ—2. Fallen. ୩ । ସ୍ଖଳିତ—3
3. Slipped away. ୪ । ତରଳିତ—4. Melted
away. ୫ । ସ୍ଥାନଚ୍ୟୁତ; ଭ୍ରଷ୍ଟ—5. Displaced;
detached. ୬ । ଶିଥିଳୀକୃତ—6. Loosened.
୭ । ମୁକୁଳା ହୋଇଥିବା; ମୁକ୍ତ; ଆଲୁଳାୟିତ—7. Dishevelled.

**ବିଗଳିତ କେଶ**—ସଂ. ବିଣ—(ବହୁବ୍ରୀହି; ବିଗଳିତ+କେଶ ଯାହାର)—
Bigaḷita keśa ଯାହାର ବାଳ ମୁକୁଳା ହୋଇଥାଏ—With
(ବିଗଳିତ କେଶା—ସ୍ତ୍ରୀ) dishevelled hair.

**ବିଗଳିତାଙ୍କ**—ସଂ. ବିଣ—(ବହୁବ୍ରୀହି; ବିଗଳିତ+ଅଙ୍କ)—କଳଙ୍କହୀନ—
Bigaḷitāṅka Spotless; stainless; [ଉ—ବିଗଳିତାଙ୍କ
ଅର୍କ ଶଶାଙ୍କ ଯୋଷିବା ନ ଯୋଷିବା । ଭଞ୍ଜ. ବୈଦେହୀଶ
ବିଳାସ ।]

**ବିଗଳିବା**—ପ୍ରାଦେ.—(ସମ୍ବଲପୁର) କ୍ରି—( ସଂ ବିଗଳିତ=ତରଳିତ)
Bigalibā ଏଣେ ତେଣେ ବ୍ୟାପ୍ତ ହେବା—To spread all
round; to be diffused.

**ବିଗାଡ଼ି**—ବୈଦେ. ବି—(ଫା. ବେଗାରୀ)—୧ । ବେଠିଆ; ଯେଉଁମାନେ
Bigārḍi କେବଳ ଖୋରାକ ଖାଇ ରାଜାଙ୍କର ବେଠି କରନ୍ତି—
বেগারিয়া 1. Labourers who work without wages
**बेगार, बिगाड़** but on subsistence allowance only.
বেগার, বেগারী ୨ । ବେଗାର; ବେଠି—2. Work without
**बेगारी, बिगारी** wages but with subsistence allowance
only; free labour; forced labour.

**ବିଗାଡ଼ିଆ**—ଦେ. ବି—ବିଗାଡ଼ି (ଦେଖ)—Bigārḍi (See) ବିଣ-
Bigārḍiā ବିଗାଡ଼ୁ (ଦେଖ)—Bigārḍu (See)

**ବିଗାଡ଼ୁ**—ଦେ. ବିଣ—୧ । ଯେ ବିଗାଡ଼େ ବା ନଷ୍ଟ କରେ—1. One
Bigārḍu who spoils. [ଯଥା—ଫଉଜ ବିଗାଡ଼ୁ ।]
বিগড়া **बिगड़ैल** ୨ । ଯେ ଗୋଳମାଳ ଉପସ୍ଥିତ କରେ—
2. Creating confusion. ୩ । ଯେ କଥା
କଥାକେ କଳି କରେ; ଚଡ଼ାଲ—3. Quarrelsome;
surly. ୪ । ଜିଦ୍‌ଖୋର—4. Obstinate; insistent.

ବିଗାଢ଼—ସଂ. ବିଣ—(ବି+ଗାହ ଧାତୁ+କର୍ତ୍ତୃ. ତ)—୧ । ସ୍ନାତ—
Bigārḍha 1, Bathed. ୨ । ମଗ୍ନ—2, Immersed.
୩ । ବିଲୋଡ଼ିତ—3, Churned; agitated. ୪ ।
(ବି+ଗାଢ଼) ବିଶେଷ ଗାଢ଼—4. Very thick.

ବିଗାନ—ସଂ. ବି.—( ବି=ବିପରୀତ+ଗାନ )—୧ । ନିନ୍ଦା—
Bigāna Censure. ୨ । ଅପବାଦ—2. Defamation.

ବିଗାହ—ସଂ. ବି ( ବି+ଗାହ ଧାତୁ+ଭାବ. ଅ )—୧ । ସ୍ନାନ; ଅବ-
Bigāha ଗାହନ—1. Bath; ablution.
୨ । ଆଲୋଡ଼ନ; ମନ୍ଥନ—2. Churning.

ବିଗାହମାନ—ସଂ. ବିଣ ପୁଂ. ( ବି+ଗାହ୍ ଧାତୁ+କର୍ତ୍ତୃ. ଆନ )—୧ ।
Bigāhamāna ଯେ ଗାଧୋଉଛି—1 Bathing. ୨ । ଯେ
( ବିଗାହ୍ୟମାନ—ଅନ୍ୟରୂପ ) ବିଲୋଡ଼ନ କରୁଅଛି—
2. Churning; agitating.

ବିଗୀତ—ସଂ. ବିଣ ( ବି=ବିପରୀତ+ଗୈ ଧାତୁ=ଗାନ କରିବା+
Bigīta ତ )—୧ । ନିନ୍ଦିତ—1, Blamed; condemned.
୨ । ଭର୍ତ୍ସିତ—2, Censured. ୨ । ବିଗର୍ହିତ—
2. Very bad; deplorable.

ବିଗୁଣ—ସଂ. ବିଣ ( ବହୁବ୍ରୀହି, ବି=ବିଗତ, ନାହିଁ+ଗୁଣ ଯାହାର )—
Biguṇa ୧ । ଗୁଣହୀନ—1. Destitute of good quali-
ties ୨ । ବିକୃତ; ନଷ୍ଟ—2 Spoiled. ୩ । ବିପରୀତ;
ପ୍ରତିକୂଳ—3. Opposite. ଦେ ବି—୧ । ଅବିଗୁଣ;
ଅନିଷ୍ଟ—1. Injury. ୨ । ମନ୍ଦଗୁଣ; ଦୁର୍ଗୁଣ—
2. Bad quality. ୩ । ଅଭିମାନ 3. Taking
offence. ( ଉ :—ବିଗୁଣ ନ ଘେନିବ ଦେବୀ
ଲେଖି—ଭଞ୍ଜ. ବୈଦେହୀଶବିଳାସ । ) ୪ । ଦୁଃଖ—
4. Sorrow. ( ଉ :—ସନ୍ତୋଷ କର ଆହେ ନୃପକୁଳ
ରାଣ । ନ ରଖ ଚିତ୍ତ କାହିଁ ଚିତ୍ତରେ ବିଗୁଣ—କୃଷ୍ଣସିଂହ.
ମହାଭାରତ ଅନୁଶାସନ । )—୫ । ଈର୍ଷ୍ୟା—5. Envy;
jealousy. ( ଉ :—ଲକ୍ଷ୍ମୀଙ୍କୁ ନ ଲଭି ଅସୁରେ ।
ବିଗୁଣ ବହିଲେ ଅନ୍ତରେ—ଜଗନ୍ନାଥ. ଭାଗବତ । )

ବିଗୁଣିଆ—ଦେ. ବିଣ. ପୁଂ.—ଯେ ସାମାନ୍ୟ ବିଷୟରେ ବିରକ୍ତ ହୁଏ;
Biguṇiā ଅତିରକ୍ତରୂପେ ଅଭିମାନୀ—Irascible; prone to
বিগুণ take offence at petty things; thin-skinned.
बिगडैल ( ବିଗୁଣେଇ—ସ୍ତ୍ରୀ )

ବିଗୁଲ୍—ବୈଦେ. ବି ( ଇଂ. ବ୍ୟୁଗ୍ଲ୍ )—ରଣଭୂରୀ; ଭେରୀ—Bugle.
Bigul বিগুল बिगुल

ବିଗୁଲ(ଲା)ର୍—ବୈଦେ. ବି ( ଇଂ. ବ୍ୟୁଗ୍ଲର୍ )—ରଣଭୂରୀବାଦକ—
Bigula(lā)r বিগুলার बिगुलार Bugler.

ବିଗୂଢ଼—ସଂ. ବିଣ ( ବି+ଗୂଢ଼ )—୧ । ଗୁପ୍ତ—1. Concealed.
Bigūrḍha ( ବିଗୂହନ—ବି ) ୨ । ବିଗର୍ହିତ—2. Bad.

ବିଗୁ(ଘୁ)ତି—ଗ୍ରା. ବି ( ସଂ. ବିଭୂତି )—ଯଜ୍ଞର ବା ହୋମର ପାଉଁଶ—
Bigu(ghu)ti বিভূতি भभूती The ashes of a
sacrificeal fire.

ବିଗୋନିୟା—ବୈଦେ. ବି ( ଇଂ; ଲାଟିନ୍ ବେଗୋନିଆ )—ପାର୍ଶ୍ୱସ୍ଥ
Bigoniyā ଶାକଗୁଳ୍ମବିଶେଷ—Begonia; a foreign shrub;
বিগোনিয়া Elephant's eye. [ ଦ୍ର—ଏ ବିଦେଶାଗତ ଗୁଳ୍ମ
बेगोनिया ନାନାଜାତୀୟ ଅଛି ଓ ଶୋଭାର୍ଥ ଆଧୁନିକ ଉଦ୍ୟାନ
ମାନଙ୍କରେ ରୋପିତ ହୁଏ । ଆସାମ ଓ ଚଟ୍ଟଗ୍ରାମ ଅଞ୍ଚଳରେ
ଏହା ବନ୍ୟ ହୋଇ ଯାଇଅଛି । ଏହା ଛାଇରେ ଜନ୍ମେ ।
ଏଥିର ପତ୍ର ହାତୀ କାନ ବା ଲମ୍ବପର । ]

ବିଗ୍ନ—ସଂ. ବିଣ ( ବିଜ୍ ଧାତୁ=ଭୀତ ହେବା+କର୍ତ୍ତୃ. ତ )—୧ । ସନ୍ତ୍ରସ୍ତ;
Bigna ଭୀତ—1. Alarmed; terrified. ୨ । ଚକିତ—
2. Anxious; agitated. ୩ । ଦୁଃଖିତ—
3. Dejected.

ବିଗ୍ର—ସଂ. ବିଣ. ପୁଂ ( ବହୁବ୍ରୀହି; ବି=ବିଗତ+ନାସିକା ଯାହାର;
Bigra ନିପାତନସିଦ୍ଧ )—ଛିନ୍ନନାସିକ—Deprived of nose;
( ବିଗ୍ରା—ସ୍ତ୍ରୀ ) having the nose clipped up.

ବିଗ୍ରହ—ସଂ. ବି ( ବି+ଗ୍ରହ ଧାତୁ+କର୍ମ. ଅ )—୧ । ବପୁ; ଦେହ;
Bigraha ଶରୀର—1. Body. ୨ । ମୂର୍ତ୍ତି; ଆକୃତି—
2. Image; form; shape. ୩ । ଦେବମୂର୍ତ୍ତି—
3. Idol; image of a Deity. ୪ । ( +ଭାବ.
ଅ; ବ୍ୟାକରଣ ) ସମାସର ବାକ୍ୟ ବିଶ୍ଳେଷଣ ( ଯାହାଦ୍ୱାରା
ସମାସବଦ୍ଧ ପଦର ପ୍ରକୃତ ଅର୍ଥ ବୁଝାଯାଏ ହୁଏ )—
4 (Grammar) The separating or analysis
of a compound word into its component
parts. ୫ । ( +କରଣ. ଅ ) ସଂଗ୍ରାମ; ଯୁଦ୍ଧ—
5. Fight; war. ୬ । ବିବାଦ—6. Dispute;
quarrel; dissension. ୭ । ( +ଭାବ. ଅ )
ବିସ୍ତାର—7. Extension; expansion. ୮ ।
( +କର୍ମ. ଅ ) ଅଂଶ; ବିଭାଗ—8. Portion; share.
[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ଲାଗେ; ଯଥା—
ପାଷାଣ ବିଗ୍ରହ, ମଣି ବିଗ୍ରହ, ଦାରୁ ବିଗ୍ରହ, ଧାତୁ ବିଗ୍ରହ
ଓ ସନ୍ଧି ବିଗ୍ରହ ଇତ୍ୟାଦି । ] ୯ । ( +ଭାବ. ଅ )
ପୃଥକ୍ କରଣ (ହ୍ରୀ. ଶ)—9, Separating, ୧୦ । ନୀତି-
ଶାସ୍ତ୍ର କଥିତ କର୍ମବିଶେଷ; ଶତ୍ରୁପକ୍ଷ ମଧ୍ୟରେ ବିବାଦ ବା
କଳହ ଉତ୍ପାଦନ (ହ୍ରୀ. ଶ)—10, Creating dissen-
sion in the enmy's camp, ୧୧ । ( +କର୍ତ୍ତୃ.
ଅ ) ଶିବ ( ହ୍ରୀ. ଶ )—11, Śiba. ୧୨ । ସ୍କନ୍ଦଙ୍କ
ଅନୁଚରବିଶେଷ ( ହ୍ରୀ ଶ )—12, Name of an
attendant of Kārttikeya.

ବିଗ୍ରହଣ—ସଂ. ବି (ବି+ଗ୍ରହ ଧାତୁ+ଭାବ. ଅନ)—ରୂପ ଗ୍ରହଣ—
Bigrahaṇa Assumption of form; materialisation

ବିଗ୍ରହୀ—ସଂ. ବିଣ. ପୁଂ (ବିଗ୍ରହ+ଇନ୍; ୧ମା. ୧ବ)—୧ । ଯୁଦ୍ଧକାରୀ—
Bigrahī 1, Fighting. ୨ । କଳହକାରୀ—2. Quarrel-
( ବିଗ୍ରହିଣୀ—ସ୍ତ୍ରୀ ) ling. ସ. ବି—ଯୁଦ୍ଧବିଭାଗର ମନ୍ତ୍ରୀ—
War minister

ବିଗ୍ରାହ୍ୟ—ସ. ବଣ. ପୁଂ ( ବି+ଗ୍ରହ ଧାତୁ+କର୍ମ. ଯ )—ଯାହା ସଙ୍ଗେ Bigrāhya ଯୁଦ୍ଧ କରିବା ଉପଯୁକ୍ତ ( ବ୍ର. ଶ )—Fit to be ( ବିଗ୍ରାହ୍ୟା—ସ୍ତ୍ରୀ ) fought with.

ବିଘଂସିତ—ଦେ. ( ପ୍ରାଚୀନ ପଦ୍ୟ ) ବିଣ ( ସ. ବିକଶିତ )—ବିକଶିତ; Bighamsita ଫୁଲ୍ଲ ଉଠିବା—Fullblown; expanded. ( ଉ :—ମଳୟ ସମୀର ମନ୍ଦର ନାସା ଅଟଇ ତାର। ବସନ୍ତ ଆଶେ ବିଘଂସିତ ହୋଏ କିଂଶୁକାଧର—ପ୍ରତାପ. ଶଶିରେଖା। )

ବିଘଂସିବା—ଦେ. ( ପ୍ରାଚୀନ ପଦ୍ୟ ) କ୍ରି—ବିକଶିତ ହେବା— Bighamsiba To be fullblown; to expand. ( ଉ—କମଳମା ବିଘଂସିଲେ ଅବମା ଉଲ୍ଲସି—ପ୍ରାଚୀ. ରହସ୍ୟମଞ୍ଜରୀ। )

ବିଘଞ୍ଚ—ଦେ. ବିଣ ( ସ. ବି+ଘନ ) —ସାନ୍ଦ୍ର; କିବଡ଼—Dense. Bighancha ঘন **ঘনা** ( ଉ :—ବିହଙ୍ଗସ୍ୱନ ତରୁ ଝୁଲ, ବିଘଞ୍ଚ ସଞ୍ଚ ପତ୍ରାବଳୀ—ଉଞ୍ଜ. ବୈଦେହୀଶବିଳାସ।

ବିଘଟଣ—ଦେ. —(ସଂ. ବିଘଟନ)—୧। ଆଶ୍ଚର୍ଯ୍ୟ ଘଟଣା; ଅଘଟଣ— Bighatana 1. Wonderful thing. ୨। ବିଡ଼ମ୍ବଣା— বিঘটন 2. An awkward thing. ଦେ. ବିଣ.—୧। ଆଶ୍ଚର୍ଯ୍ୟ-ଜନକ—1. Wonderful. ୨। ଅଦ୍ଭୁତରୂପ— 2. Extraordinary. ୩। କୁତ୍ସିତ—3. Awkward; nasty.

ବିଘଟନ(ନା)—ସଂ. ବି, ( ବି=ବିପରୀତ, ବିଭିନ୍ନ+ଘଟନ )—୧। Bighatana(nā) ୧। ଆଶ୍ଚର୍ଯ୍ୟ ଘଟନା—1. Wonderful event. ୨। ଅଘଟନ—2 The happening of an unexpected matter. ୩। ଅମଙ୍ଗଳ; ଦୁର୍ଭାଗ୍ୟ—3. Misfortune. ୪। ବିଶ୍ଳେଷଣ— 4. Dissolution; analysis; disjunction. ୫। ଅନିଷ୍ଟ—5. Injury. ୬। ବିରୋଧ—6. Antagonism. ୭। ବ୍ୟାଘାତ—7. Obstruction. ୮। ବିନାଶ—8. Destruction. ୯। ଭଞ୍ଜନ; ଭାଙ୍ଗି ଦେବା—9. Breaking.

ବିଘଟିତ—ସ. ବିଣ. (ବି+ଘଟ ଧାତୁ ଣିଜନ୍ତ ଘଟ୍ଟ ଧାତୁ+କର୍ମ. ତ)- Bighatita ୧। ବିଶ୍ଳେଷିତ—1. Dissolved; broken up. ୨। ବିନଷ୍ଟ—2. Destroyed. ୩। ବିକଶିତ— 3. Spread; expanded. ଦେ. ବିଣ—ବୃଥା; ମିଥ୍ୟା—False. [ଉ.—ସ୍ୱବେଦସ୍ୱ ବାକ୍ୟ ଏକ୍ଷୁ ନୁହେ ବିଘଟିତ। ପ୍ରାଚୀ. ଶିବ ସ୍ୱବେଦସ୍ୱ।]

ବିଘଟିବା—ଦେ. କ୍ରି—ବିଶେଷରେ ଘଟିବା—To happen parti- Bighatibā cularly or excellently. [ଉ—ବିକାଶ ହାସ ଦଶନେ, ବିଘଟେ ନଖ ପ୍ରସଙ୍ଗେ। ଉଞ୍ଜ. ବୈଦେହୀଶ ବିଳାସ।]

ବିଘଟ୍ଟନ—(ବି+ଘଟ୍ଟ. ଧାତୁ=ଚଳିବା+ଅନ)-୧। ସଂଘଟ୍ଟ; ଆଘାତ— Bighattana 1. Stroke. ୨। ଆଲୋଡ଼ନ; ଘାଣ୍ଟିବା— 2. Agitating; churning; shaking. ୩। ଦୃଢ଼ ସଂଯୋଗ; ସଂଘଟ୍ଟନ—3. Firm contact; close connection. ୪। ବିଶ୍ଳେଷଣ—4. Analysis; dissolution; disjunction. ୫। ସଞ୍ଚାଳନ; ହଲଚଲ ହେବା—5. Movement. ୬। ଲାଗିଯିବା— 6. Firm attachment. ୭। ରଗଡ଼ିବା— 7. Grinding. ୮। ବାଟିବା—8. Bruising. ୯। ଖୋଲିବା (ବ୍ର. ଶ)—9. Opening. ୧୦। କଚାଡ଼ିବା (ବ୍ର. ଶ)—10. Dashing. ୧୧। ବିନାଶକରଣ (ବ୍ର. ଶ)—11. Destroying.

ବିଘଟ୍ଟିତ—ସ. ବିଣ—(ବି+ଘଟ୍ଟ. ଧାତୁ+କର୍ମ. ତ)—୧। ଘାଣ୍ଟି Bighattita ହୋଇଥିବା, ଆଲୋଡ଼ିତ; ମଥିତ—1. Churned; shaken; thoroughly agitated. ୨। ବିଶ୍ଳେଷିତ; ବିଭକ୍ତ—2. Analysed; broken up. ୩। ସଞ୍ଚାଳିତ- 3. Moved. ୪। କୃତ—4. Caused; done. ୫। ରଗଡ଼ା ହୋଇଥିବା—5. Ground. ୬। ବଟା ହୋଇଥିବା—6. Bruised. ୭। ବିନାଶିତ (ବ୍ର. ଶ)— 7. Destroyed.

ବିଘତ—ଦେ. ବି—(ସ. ବିତସ୍ତି; ବଙ୍ଗଳାରୁ ଅନୁକୃତ)—ଅର୍ଦ୍ଧହସ୍ତ; Bighat ଖୁଣ୍ଟ; ୧୨ ଅଙ୍ଗୁଳ—A unit of lineal meas- বিঘৎ ure from the tip of the little finger to the **बालिस्त** tip of the thumb of the extended palm; the span of the palm.

ବିଘନ—ସ. ବି—(ବି+ହନ. ଧାତୁ+ଭାବ. ଅ)—୧। ଆଘାତ କରିବା- Bighana 1. Striking. ୨। (+କରଣ ଅ) ଏକପ୍ରକାର ଖୁବ୍ ବଡ଼ ହାତୁଡ଼ି—2. Sledge hammer. ୩।(+ କର୍ତ୍ତୃ. ଅ) ଇନ୍ଦ୍ର—3. Indra.

ବିଘସ—ସ. ବି—(ବି+ଅଦ୍. ଧାତୁ=ଭୋଜନ କରିବା+ଭାବ. ଅ; Bighasa ଅଦ ସ୍ଥାନରେ ଘସ ଆଦେଶ)—୧। ଭୋଜନ— 1. Eating; taking meal. ୨। ଭୋଜନାବଶିଷ୍ଟ; ଉଚ୍ଛିଷ୍ଟ; ଅଇଁଠା—2. Leavings of a dinner; remnant of food; orts. ୩। (ମହୁମାଛିର ଉଚ୍ଛିଷ୍ଟ) ମହଣ—3. Wax. ୪। ଦେବତା, ପିତୃ ଓ ଅତିଥିମାନଙ୍କୁ ଦିଆଯିବା ପରେ ବଳିପଡ଼ିବା ଖାଦ୍ୟ—4. Food left after it is offered to guests, Deities and deceased ancestors.

ବିଘସାଶୀ—ସ. ବିଣ. ପୁଂ—(ବିଘସ+ଅଶ୍ ଧାତୁ=ଭକ୍ଷଣ କରିବା+ Bighasāsi କର୍ତ୍ତୃ. ଇନ୍)—ଯେଉଁମାନେ ପ୍ରାତଃରେ ଓ ସନ୍ଧ୍ୟାରେ ପିତୃଲୋକ, ଅତିଥି ଓ ଦେବତାମାନଙ୍କୁ ଅନ୍ନ ପ୍ରଦାନ କରି ସ୍ୱୟଂ ଅବଶିଷ୍ଟ ଅନ୍ନ ଭୋଜନ କରନ୍ତି—Partaking of the food after feeding the guests and offering to Deities and to the deceased ancestors.

[ଉ.—ସାୟଂ ପ୍ରାତଃକାଳେ ଅନ୍ନର ବିଭାଗ, କରି ଯେ ଲୋକମାନେ କରୁଛନ୍ତି ଭୋଗ, ସେହିମାନଙ୍କୁ ବିଘସାଶୀ ବୋଲି କହି, ଆହେ ଦ୍ୱିଜମାନେ ଏଥି ସନ୍ଦେହ ନାହିଁ—କୃଷ୍ଣସିଂହ. ମହାଭାରତ ଶାନ୍ତିପର୍ବ । ]

ବିଘସିବା—ଦେ. କ୍ରି—ସଞ୍ଚରଣ କରିବା; ଭ୍ରମଣ କରିବା—To walk;
Bighasibā to travel. [ ଉ—ବ୍ୟାକୁଳ ରାବଣ ମନ ଛନ୍ନକାରୀ, ପୁଷ୍ପକପୁରେ ବିଘସୁଁ । ଭଞ୍ଜ. ବୈଦେହୀଶବିଳାସ ]

ବିଘା—ପ୍ରାଦେ ( ମେଦିନୀପୁର ) ବି ( ସଂ. ବର୍ଗ; ବିଗ୍ରହ )—୧ । ଭୂମିର
Bighā ପରିମାଣବିଶେଷ, ୮୦ ହାତ ଲମ୍ବ ଓ ୮୦ ହାତ ଓସାର ପରିମିତ ଭୂମି—6400 square cubits of land.
বিঘা বীঘা [ ଦ୍ର—ଏକ ଏକର=ପ୍ରାୟ ୩ ବିଘା । ୧ ବିଘା=୨୦ କାଠା । ] ୨ । ( ସିଂହଭୂମ ) ବି—୧୦୦ ହାତ ଲମ୍ବ ଓ ୧୦୦ ହାତ ଓସାର ପରିମିତ ଭୂମି—2. 10000 square cubits of land. [ ଦ୍ର—ଏହି ବିଘାର ପରିମାଣ=½ ଏକର; ଏକ ଏକର=୧ ବିଘା ୧୯ କାଠା । ]

ବିଘାତ—ସଂ. ବି ( ବି+ହନ୍ ଧାତୁ+ଭାବ. ଅ )—୧ । ବିନାଶ—
Bighāta 1. Destruction; ruin. ୨ । ଆଘାତ—2. Stroke. ୩ । କ୍ଷତ—3. Injury. ୪ । ବ୍ୟାଘାତ; ବିଘ୍ନ; ପ୍ରତିବନ୍ଧକ—4. Obstacle; obstruction; hindrance. ୫ । ବାରଣ—5. Prohibition. ୬ । ସଙ୍ଗୀତ ଶାସ୍ତ୍ରର ସ୍ୱରବିଶେଷ—6. Name of a musical tune. ୭ । ଟିକି ଟିକି କରିବା ( ହି. ଶ )—7. Breaking into pieces. ୮ । ବିଫଳତା (ହି.ଶ) —8. Non fulfilment; fruitlessness.

ବିଘାତକ—ସଂ ବିଣ. ପୁଂ ( ବି+ହନ୍ ଧାତୁ+କର୍ତ୍ତୃ. ଅକ )—୧ ।
Bighātaka ବାଧାପ୍ରଦ; ବ୍ୟାଘାତକାରୀ—1. Hindering;
(ବିଘାତୀ—ଅନ୍ୟରୂପ) obstructing; marring. ୨ । ବିନାଶକ—2. Destructive. ୩ । ଆଘାତକାରୀ
ବିଘାତିକା } ସ୍ତ୍ରୀ
ବିଘାତିନୀ } —3. Striking. ୪ । ଘାତକ—4. Killing.
[ ଉ—ବିଘାତୀ ଦୈତ୍ୟ ବୃତ୍ତିରେ ହୋଇଥିଲେ ଶତ୍ରୁର ପ୍ରମୁଖ ଗ୍ରହେ । ଭଞ୍ଜ. ବୈଦେହୀଶବିଳାସ । ]

ବିଘାତନ—ସଂ. ବି ( ବି+ହନ୍ ଧାତୁ+ଅନ )—୧ । ହତ୍ୟାକରଣ—
Bighātana 1. Murdering; slaughtering. ୨ । ଆଘାତ କରଣ—2. Striking. ୩ । ହତ୍ୟା—3. Slaughter. [ ଉ—ବହି ଅଛି । ବିଘାତନ ସ୍ଥାନରେ ଗାଲିଲ । ଭଞ୍ଜ. ବୈଦେହୀଶବିଳାସ । ]

ବିଘାତିକ—ଦେ. ବିଣ ( ସଂ. ବିଘାତକ; ବିଘାତୀ )—ଆଘାତକ; ଆଘାତ-
Bighātika କାରୀ—Striking. [ ଉ—ବଲ୍ଲବହିଁ କହୁଛନ୍ତି ତାହି, ବିଘାତିକ ପଦ ହେଲା ନାହିଁ । ଭଞ୍ଜ. ବୈଦେହୀଶ-ବିଳାସ । ]

ବିଘାତିବା—ଦେ ( ପଦ୍ୟ ) କ୍ରି ( ସଂ. ବିଘାତ )—ଆଘାତ କରିବା;
Bighātibā ବିଗୁଡ଼ିବା—To strike; to dash down.

বিঘাতী विघातिन् [ ଉ—ବଳବାନ, ବିଘାତି ବେନି ସାନୁମାନ । ଭଞ୍ଜ. ବୈଦେହୀଶବିଳାସ । ]

ବିଘୋଡ଼(ର)—ଦେ. ବିଣ ଓ କ୍ରି ବିଣ ( ସଂ. ବି+ଘୋର )—୧ ।
Bighorda(ra) ଅତ୍ୟନ୍ତ—1. Very much; excessive.
(ଯଥା—ସେ ବିଘୋର କାନ୍ଦରେ ଶୋଇଛି ।)

ବିଘିନ—ଗ୍ରା. ବି ( ସଂ. ବିଘ୍ନ )—୧ । ବିଘ୍ନ—1. Hindrance;
Bighina obstacle; ୨ । ବିଘ୍ନେଶ୍ୱରର ଡାକ ନାମ—2. A
বিঘিনি विघन name for calling Bighneśwara.

ବିଘୂର୍ଣ୍ଣନ—ସଂ. ବି ( ବି+ଘୂର୍ଣ୍ଣନ )—ଶୂନ୍ୟରେ ଘୁରାଇବା—
Bighūrṇṇana Whirling.
( ବିଘୂର୍ଣ୍ଣିତ—ବିଣ; ବିଘୂର୍ଣ୍ଣକ—ବ୍ୟକ୍ତିବାଚକ ବିଶେଷଣ )

ବିଘୂର୍ଣ୍ଣିକା—ସଂ, ବି—ନାସିକା; ନାକ ( ହି, ଶ )—Nose.
Bighūrṇṇikā

ବିଘୋଷ—ସଂ, ବି ( ବି+ଘୋଷ )—ଅତି ଉଚ୍ଚ ନାଦ—Roar;
Bighosha loud sound.

ବିଘୋଷକାଶ୍ରୟା—ଦେ, ବିଣ—ଅଦ୍ଭୁତ ନାଦକାରୀ; ଗର୍ଜନକାରୀ—
Bighoshakāśrayā Thundering; roaring.
[ ଉ.—ବିଘୋଷକାଶ୍ରୟା ପ୍ରଲମ୍ବ ସ୍ତନତ, ହେବ ଋଷି ପ୍ରଭା ନଉଁ । ଭଞ୍ଜ, ବୈଦେହୀଶବିଳାସ । ]

ବିଘ୍ନ—ସଂ. ବି (ବି=ବିବିଧ ପ୍ରକାରେ+ହନ୍. ଧାତୁ+କରଣ. ଅ; ଯାହା
Bighna ଦ୍ୱାରା କାର୍ଯ୍ୟସିଦ୍ଧିର ନାଶହୁଏ)—୧ । ବାଧା; ପ୍ରତିବନ୍ଧକ—
1. Obstacle; obstruction; hindrance.
୨ । ବ୍ୟାଘାତ—2. Interruption impediment.
୩ । ପାକଫଳା (ହି. ଶ) କରଦା କୋଳି (ଦେଶ)—
3. A kind of acid berry.

ବିଘ୍ନକର—ସଂ. ବିଣ. ପୁଂ—ଯାହା ବାଧା ଦିଏ—Obstructing; im-
Bighnakara peding; causing obstruction.

ବିଘ୍ନକ, ବିଘ୍ନକାରକ, ବିଘ୍ନ ଜନକ,
ବିଘ୍ନଦାୟକ, ବିଘ୍ନପ୍ରଦ, ବିଘ୍ନପ୍ରଦାୟକ, } ଅନ୍ୟରୂପ
ବିଘ୍ନକାରୀ, ବିଘ୍ନଦାତା, ବିଘ୍ନକର୍ତ୍ତା

(ବିଘ୍ନକରୀ—ସ୍ତ୍ରୀ)

ବିଘ୍ନ ଧ୍ୱଂସ—ସଂ. ବି (ଷଷ୍ଠୀ ତତ୍; ବିଘ୍ନ+ଧ୍ୱଂସ)—ବାଧାର ଲୋପ—
Bighna dhwamśa The removal of obstacles.
(ବିଘ୍ନ ନାଶ; ବିଘ୍ନ ବିନାଶ, ବିଘ୍ନବିଧ୍ୱଂସ—ଅନ୍ୟରୂପ)

ବିଘ୍ନ ଧ୍ୱଂସକ—ସଂ. ବିଣ. ପୁ—ଯେ ବିଘ୍ନକୁ ଲୋପ କରେ—
Bighna dhwamśaka 1. Removing obstacles.

ବିଘ୍ନଧ୍ୱଂସୀ, ବିଘ୍ନ ନାଶକ, ବିଘ୍ନ ନାଶନ,
ବିଘ୍ନନାଶୀ, ବିଘ୍ନ ବିଧ୍ୱଂସୀ, ବିଘ୍ନ ବିନାଶନ, } ଅନ୍ୟରୂପ
ବିଘ୍ନବିନାଶୀ, ବିଘ୍ନ ହର, ବିଘ୍ନହନ୍ତା, ବିଘ୍ନହାରୀ

(ବିଘ୍ନଧ୍ୱଂସିକା—ସ୍ତ୍ରୀ) ବି—ଗଣେଶ—God Ganeśa.

ବିଘ୍ନ ବିନାୟକ—ସଂ. ବି—ଗଣପତି; ଗଣେଶ—God Gaṇeśa.
Bighna bināyaka [ଦ୍ର—ହିନ୍ଦୁମାନେ ବିଘ୍ନ ବିନାଶାର୍ଥ ପୂଜା
(ବିଘ୍ନ ନାୟକ, ବିଘ୍ନରାଜ—ଅନ୍ୟରୂପ) ଆଦିର ପ୍ରଥମେ ଗଣେଶଙ୍କର ପୂଜା କରନ୍ତି]

**ବିଘ୍ନ ରହିତ**—ସଂ. ବିଣ—( ଷଷ୍ଠୀ ତତ୍ )—ବିଘ୍ନ ଶୂନ୍ୟ; ନିର୍ବିଘ୍ନ—
Bighna rahita  Having no obstacles to cope with.

**ବିଘ୍ନିତ**—ସଂ. ବିଣ—( ବିଘ୍ନ+ଜାତାର୍ଥେ ଇତ )—୧ । ପ୍ରତିହତ—
Bighnita  1. Opposed; obstructed; impeded. ୨ । ବାଧା ପ୍ରାପ୍ତ—2. Hindered.

**ବିଘ୍ନେଶ**—ସଂ. ବି—(ବିଘ୍ନ+ଈଶ=ଶାସ୍ତା; ଷଷ୍ଠୀ ତତ୍ )—ଗଣନାଥ;
Bighnesa  ଗଣେଶ—Gaņesa.  ଦେ. ବି—ଲୋକଙ୍କୁ (ବିଘ୍ନେଶ୍ୱର—ଅନ୍ୟରୂପ) ଦିଆଯିବା ନାମ—A name given to males

**ବିଙ୍ଗିଟନ**—ଗ୍ରାଦେ. (ଗଡ଼ଜାତ) ବି (ସଂ. ବିଘଟନ)—ବିଡ଼ମ୍ବଣା;
Biṅgitaṇa  ଅଘଟଣ କଥା — An awkward thing. (ଯଥା—ମଲ୍ଲ ! ଏକ ବିଙ୍ଗିଟନ ମୁଁ ! କୁଆଡ଼ା ମାଠିଆ ଉପରେ ବିଲେଇଟାଏ ଉଭି କରୁଛି ?)

**ବିଚ୍**—ଦେ. ଅ (ହିନ୍ଦିରୁ ଅନୁକୃତ; କଚିତ୍ରିଆ; ସଂ. ବିଚ୍‌ଧାତୁ=ପୃଥକ୍
Bich  କରିବା)—୧ । କୌଣସି ସୀମା, ସ୍ଥାନ ଅବା ମଧ୍ୟରେ—
ମাঝে, মধ্যে, **बीच**  1. Within (the bounds of). ୨ । ଦୁଇ ଜଣଙ୍କର ବା ଦୁଇ ସ୍ଥାନର ମଧ୍ୟରେ—2. Between (two persons or places).

**ବିଚ୍ ଅଦାଲତରେ**—ଦେ. ଅ (ହିନ୍ଦୀରୁ ଅନୁକୃତ; କଚିତ୍ରିଆ)—ପ୍ରକାଶ୍ୟ
Bich adālatare  ଅଦାଲତରେ--In open court.
আদালতের মাঝে, **बीच अदालतमे**

**ବିଚ୍(ଚି, ଜି, ଝି)କିଟା(ଟିଆ)**—ଦେ. ବିଣ (ସଂ. ବିକୃତ; ବିକଟ; ବିଚି-
Bich(chi, j, ji)kiṭā(ṭā)  କିତ୍ସ୍ୟ)—୧ । ବିକଟାକୃତ—
বিতিকিছি; বিজকুটে; বিজকুটিআ  1. Horrible; contorted.
**चिचकाहुआ** ୨ । ବିକୃତ—2. Spoiled. ୩ । ବିକୃତସ୍ୱାଦ-ବିଶିଷ୍ଟ; କୁସ୍ୱାଦ—3. Having a bad taste. ୪ । ବିରକ୍ତିକର—4. Annoying; teasing; producing annoyance. ୫ । ବିରକ୍ତିସୂଚକ—5. Indicating displeasure. ୬ । ଅଶ୍ରାବ୍ୟ; ଅଶ୍ଳୀଳ—6. Profane; indecent (language). ୭ । ଘୃଣ୍ୟ; କୁତ୍ସିତ—7 Nasty; ugly; filthy; distorted. ୮ । ବିକୃତସ୍ୱାଦବିଶିଷ୍ଟ—8. Of very bad taste.

**ବିଚ୍(ଚି, ଜି, ଝି)କିଟା(ଟେ)଼ଇବା**—ଦେ. କ୍ରି (ସଂ. ବିକଟୀକରଣ)—
Bich(chi, j, ji)kiṭā(ṭe)ibā  ୧ । (ମୁହଁକୁ) ବିକଟ କରିବା—
বিজকুটে করা  1. To contort (one's face); to distort;
**चिचकाना**  to make wry (face). ୨ । (ମୁଖକୁ) ବିରକ୍ତିସୂଚକ ଭଙ୍ଗୀଯୁକ୍ତ କରିବା—2. To show signs of annoyance (in the face).

**ବିଚ୍କିଟି(ଟି)ଆ କଥା**—ଦେ. ବି—୧ । ଦୁର୍ବୋଧ ବାକ୍ୟ—1. Words
Bich-kiṭi(ti)ā kathā  which are difficult to under-
বিজকুটে কথা  stand. ୨ । କର୍କଶ ବାକ୍ୟ—2. Harsh words. ୩ । ଅଶ୍ଳୀଳ ଭାଷା—3. Filthy language.
[ ଦ୍ର—ଏହିପରି ବିଚ୍‌କିଟିଆ କାମ ଶବ୍ଦ ହୁଏ । ]

**ବିଚ୍କିଟି(ଟି)ଆ ଗାଳି**—ଦେ. ବି—୧ । କର୍କଶ ଗାଳି—1. Cruel or
Bich-kiṭi(ti)ā gāli  harsh abuse. ୨ । ଅଶ୍ଳୀଳ ଗାଳି;
বিতিকিছি গালাগালী  କୁତ୍ସିତ ଭାଷା—2. Filthy abuse.

**ବିଚ୍କିଟିଆ ମୁହଁ**—ଦେ. ବି—୧ । ବିକଟାଳ ମୁଖ; ବିକଟ ବଦନ—
Bich-kiṭiā muhaṅ  1. Horrible face; contorted
বিজকুটে মুখ  face. ୨ । ବିରକ୍ତିସୂଚକ ମୁଖଭଙ୍ଗୀ—2. Facial
**चिचका हुआ मुहँ**  appearance; indicating annoyance.

**ବିଚ୍କିଟିଆ ଲୋକ**—ଦେ. ବି—୧ । କୁତ୍ସିତ ଲୋକ—1. Filthy
Bich-kiṭiā loka  or nasty person. ୨ । କପଟୀ ବ୍ୟକ୍ତି
বিজকুটে লোক **बुरा आदमि**  2. Hypocrete.

**ବିଚ୍ ଦାଣ୍ଡରେ**—ଦେ. ଅ—୧ । ଦାଣ୍ଡ ମଝିରେ—1. In the middle
Bich dāṇḍare  of the road. ୨ । ପ୍ରକାଶ୍ୟଭାବ—
রাস্তার মাঝে  2. Openly; publicly; in broad day-
**बिच रास्तामे**  (ବିଚ୍ ରାସ୍ତାରେ—ଅନ୍ୟରୂପ)  light.

**ବିଚ୍ନା**—ଗ୍ରାଦେ. (ବସ୍ତର)—ବି—ବିଞ୍ଚଣା—
Bich-nā  Fan

**ବିଚ୍ ବଜାରରେ**—ଦେ. ଅ—୧ । ବଜାର ମଝିରେ—1. In the
Bich bajārare  open market. ୨ । ପ୍ରକାଶ୍ୟରେ—
বাজারের মাঝে  2 Openly; publicly. ୩ । ବହୁଲୋକଙ୍କ
**बीच बाजारमे**  ସମ୍ମୁଖରେ—3. In the presence of many people.

**ବିଚକ୍**—ବୈଦେ. ବି (ହିନ୍ଦୀ)—ବିଜକ୍ (ଦେଖ)
Bichak  Bijak (See)

**ବିଚକିଲ**—ସଂ. ବି—(ବି+ଚକ୍ ଧାତୁ=ପ୍ରତିଘାତ କରିବା+କରଣ.
Bichakila  ଇଲ)—୧ । ଏକ ପ୍ରକାର ମଲ୍ଲିଫୁଲ—1. A species of jasmine. [ଦ୍ର—ବିଚକିଲ-ବିଲାସରେ । କବିସୂର୍ଯ୍ୟ. ସଙ୍ଗୀତ । ] ୨ । ମଦନ ବୃକ୍ଷ—2. The Madana tree.

**ବିଚକ୍ର**—ଦେ. ବି—ଘୂର୍ଣ୍ଣିବାୟୁ; ଗଣ୍ଡିଆଭୂତ—Whirlwind.
Bichakra  ঘূর্ণি বায়ু  [ଦ୍ର. ବଳୋବରେ ଉଡ଼ିବାକୁ ବିଚକ୍ର
**बबण्डर, विरो**  ବାଦ ସେ—ଉତ୍କ. ବୈଦେହୀଶବିଳାସ ।]

**ବିଚକ୍ଷଣ**—ସଂ. ବିଣ. ପୁଂ (ବି=ବିଶିଷ୍ଟ ରୂପେ+ଚକ୍ଷ୍ ଧାତୁ=ସ୍ପଷ୍ଟ କରି
Bichakshaṇa  କହିବା+କର୍ତ୍ତୃ ଅନ; ଯେ ବିବେଚନା ପୂର୍ବକ
(ବିଚକ୍ଷଣା—ସ୍ତ୍ରୀ)  ସ୍ପଷ୍ଟକରି କହେ)—୧ । ବିଦ୍ୱାନ୍; ପଣ୍ଡିତ—
[ବିଚକ୍ଷଣତା(ତ୍ୱ)—ବିଶେଷ୍ୟ]  1. Learned. ୨ । ଜ୍ଞାନୀ—2. Wise. ୩ । ସୁବକ୍ତା—3. Excellent in discoursing. ୪ । ବୁଦ୍ଧିମାନ୍—4. Intelligent. ୫ । ତୀକ୍ଷ୍ଣ ବୁଦ୍ଧିବିଶିଷ୍ଟ—5. Sharp-witted. ୬ । ପଟୁ; କାର୍ଯ୍ୟଦକ୍ଷ; କର୍ମକୁଶଳ—6. Clever; able; skilful. ୭ । ଅଭିଜ୍ଞ—7. Experienced. ୮ । ତୀକ୍ଷ୍ଣ (ବୁଦ୍ଧି)—8. Sharp (intellect).

ବିଚକ୍ଷୁଃ—ସଂ. ବିଣ (ବହୁବ୍ରୀହି; ବି=ବିଗତ, ନାହିଁ+ଚକ୍ଷୁସ୍=ନେତ୍ର Bichakshuḥ ଯାହାର)—୧ । ଚକ୍ଷୁହୀନ—1. Blind. ୨ । ଚଳଳଚିମନା; ବିମନା; ବିଷଣ୍ଣ—2. Dejected. ୩ । ଉଦ୍‌ବେଗ ଯୁକ୍ତ—3. Anxious; concerned. ୪ । ବିପର୍ଯ୍ୟସ୍ତ—4. Upturned; inverted.

ବିଚଞ୍ଚଳ—ସଂ. ବିଣ. ପୁଂ -ଅତି ବ୍ୟାକୁଳ—Very much agitated. Bichañchaḷa (ବିଚଞ୍ଚଳା—ସ୍ତ୍ରୀ; ବିଚଞ୍ଚଳତା—ବିଶେଷ୍ୟ)

ବିଚ(ଞ୍ଚ)ଣା(ଣି)—ଦେ. ବି—(ସଂ. ବ୍ୟଜନ)—୧ । ବ୍ୟଜନ; ପଙ୍ଖା—Bicha(ñcha)ṇā(ṇi) 1. Fan. (ଉ. ବିଞ୍ଚଣାରେ ବହୁତ ଯତ୍ନରେ ପାଖା ପଂଖା; বিচনী ବିଞ୍ଚିଲେ । କୃଷ୍ଣସିଂହ ମହାଭାରତ. ସଭା ।) ୨ । ବ୍ୟଜନଚାଳନ—2. Fanning.

ବିଚୟ—ସଂ. ବି (ବି+ଚୟ)—୧ । ସଂଗ୍ରହକରଣ; ଏକତ୍ରୀକରଣ—Bichaya 1. Gathering; collecting, ୨ । ଅନ୍ୱେଷଣ; (ବିଚୟନ, ବିଚିତ—ଅନ୍ୟରୂପ) ଖୋଜିବା—2, Searching; seeking, ୩ । ଅନୁସନ୍ଧାନ—3, Investigating.

ବିଚରଣ—ସଂ. ବି (ବି+ଚର୍‌. ଧାତୁ+ଭାବ. ଅନ)—୧ । ଭ୍ରମଣ—Bicharaṇa 1. Walking. ୨ । ଏଣେତେଣେ ବୁଲିବା—2. Roaming; wandering.

ବିଚରଣ କରିବା—ଦେ. କ୍ରି (ସଂ. ବିଚରଣ)—ବୁଲିବା—To walk; Bicharaṇa karibā (ବିଚରିବା—ଅନ୍ୟରୂପ) to roam, বিচরণকরা; বিচরা (ଉ.— ବିଚରିଥିଲେ ଇନ୍ଦ୍ରଦେବ ସଙ୍ଗେ ଧର । বিচরণাকরনা, বিচরনা କୃଷ୍ଣସିଂହ, ମହାଭାରତ ସଭା ।)

ବିଚ(ଚା)ର—ବୈଦେ. ପୁଂ (ଅ. ବେଚାର୍=ଶକ୍ତିଶୂନ୍ୟ; ଭୁଲ.ସଂ. ବିଗ୍ରହ Bicha(chā)ra ଅନୁକମ୍ପାର୍ଥକ ପ୍ରୟୋଗ)—୧ । ଗରିବ ବା ଦୁଃଖୀ (ବିଚ୍ଚାରା—ଅନ୍ୟରୂପ) ଲୋକଟି; ବାପୁଡ଼ା—1 The poor man. (ବିଚରୀ, ବିଚାରୀ—ସ୍ତ୍ରୀ) (ଉ :—ଉଚିଅ ବିଚର ବଡ଼ ସାଦାସିଧା, বেচারা বেচারা, বিচারা ଲୋକ— ଫକୀରମୋହନ ଛମାଣଆଠଗୁଣ୍ଠ) ୨ । ଉପର୍ଯ୍ୟୁକ୍ତ ଜୀବ ବା ବ୍ୟକ୍ତି—2. That poor being. ୩ । ଅନାଥ, ଅସହାୟ ବ୍ୟକ୍ତିଟି; ଅକ୍ଷମ ବ୍ୟକ୍ତି—3. The helpless being. [ ଦ୍ର—ସାଧାରଣତଃ ଏହା ଅନ୍ୟ ଶବ୍ଦର ପରେ ଲାଗେ । ଯଥା—ଲୁଅ ହଜିଦେଇ ଡମ୍ପିଟି, ବଗ ବିଚର ମଲା । ] ଦେ. ବିଣ—ଉପାୟାନ୍ତରହୀନ; ନିରାଶ୍ରୟ—Resourceless; helpless.

ବିଚରାବିଚରି—ଦେ. ବି ( ସ ବିଚାର )—ଅନ୍ୟୋନ୍ୟରେ ବିଚାର ବା Bicharābichari ପରାମର୍ଶ—Consultation with each পরামর্শ করে বিচারাবিচারি other. ଦେ. ବିଣ—ଅନ୍ୟୋନ୍ୟ ପରାମର୍ଶ କରୁଥିବା—Consulting with one another.

ବିଚର୍ଚ୍ଚିକା—ସଂ. ବି.[ସ୍ତ୍ରୀ] ( ବି+ଚର୍ଚ୍ଚ ଧାତୁ=କହିବା+କର୍ତ୍ତୃ ଅକ+ Bicharchchikā ଆ )—ଚର୍ମ ରୋଗ; ଦେହର ଏକ ସ୍ଥାନରେ ( ବିଶେଷତଃ ନଳୀ ଗୋଡ଼ରେ ) ବାହାରିବା ଅନେକ ଶୁଷ୍କ ଶୁଖିଲା କାଛୁ—Eczema; scabies; herpes.

ବିଚଳ—ସଂ ବିଣ. ପୁଂ ( ବି+ଚଳ ଧାତୁ+କର୍ତ୍ତୃ. ଅ )—୧ । ସ୍ଖଳିତ; Bichaḷa ଚ୍ୟୁତ; ଭ୍ରଷ୍ଟ—1. Slipped; dislocated; ( ବିଚଳା—ସ୍ତ୍ରୀ ) moved. ୨ । ସନ୍ମାର୍ଗଚ୍ୟୁତ—2. Fallen from the path of virtue. ୩ । ଅସ୍ଥିର; ଚଞ୍ଚଳ—3. Restless; fickle. ୪ । ଅବ୍ୟବସ୍ଥିତ—4. Unstable; capricious. ୫ । ଥରୁଥିବା; ବିକମ୍ପିତ; ଟଳୁଥିବା—5. Shaking; quivering; tottering ୬ । ଗର୍ବୀ—6 Concieted; proud; arrogant. ( Apte )

ବିଚଳନ—ସଂ. ବି ( ବି+ଚଳନ )—୧ । ଭ୍ରମ 1. Mistake. Bichaḷana ୨ । ସ୍ଖଳନ 2. A slip; diviation; a false step, ୩ । ଗର୍ବ—3. Conceit; pride (Apte).

ବିଚଳିତ—ସଂ. ବିଣ—(ବି+ଚଳ ଧାତୁ+କର୍ତ୍ତୃ. ତ)—୧ । ସ୍ଖଳିତ; Bichaḷita ଚ୍ୟୁତ; ଭ୍ରଷ୍ଟ—1. Slipped; dislocated. ୨ । ( ଅବିଚଳିତ—ବିପରୀତ ) ସ୍ଥାନଚ୍ୟୁତ—2. Removed. ୩ । ସନ୍ମାର୍ଗଚ୍ୟୁତ; ପତିତ—3, Fallen from the path of virtue; depraved ୪ । ଅସ୍ଥିର; ଚଞ୍ଚଳ—4, Unstable; restless; fickle; unsteady. ୫ । ଅବ୍ୟବସ୍ଥିତ ଚିତ୍ତ—5. Capricious. ୬ । ବିକମ୍ପିତ—6. Shaken; trembling. ୭ । ଚିନ୍ତାହେତୁ ଅସ୍ଥିର—7 Uneasy through anxiety.

ବିଚଳିତ ହେବା—ଦେ. କ୍ରି—୧ । ଅସ୍ଥିର ହେବା;(ମନ) ଚଞ୍ଚଳ ହେବା—Bichaḷitahebā 1. To be moved; to be agitated. (ବିଚଳିବା— ଅନ୍ୟରୂପ) ୨ । (ମନ) ଟଳିବା—2, (The mind) বিচলিতহওয়া; বিচলনা To be shaken ୩ । ଉଦ୍‌ବିଗ୍ନ ହେବା—3. To be uneasy or anxious.

ବିଚଳିତ ମତି—ସଂ. ବିଣ (ବହୁବ୍ରୀହି, ବିଚଳିତ+ମତି ଯାହାର)—Bichaḷita mati ଅବ୍ୟବସ୍ଥିତ ଚିତ୍ତ;ଅସ୍ଥିର ମତି; ଚଞ୍ଚଳମନା—( ବିଚଳିତାନ୍ତଃକରଣ—ଅନ୍ୟରୂପ ) Fickle-minded; unsteady.

ବିଚା—ପ୍ରାଦେ. ୧ । (ଗଞ୍ଜାମ) ବି—(ସଂ. ବୀଜ)—ବୃଷଣ; ଅଣ୍ଡକୋଷ—1. Bichā Testicle. ୨ । (ମେଦିନୀ ପୁର) ମାଛମଞ୍ଜି—2. Fish roe.

ବିଚାର—ସଂ. ବି (ବି+ଚର ଧାତୁ=ଗମନ କରିବା, ନିର୍ଣ୍ଣୟ କରିବା+ Bichāra ଭାବ. ଅ)—୧ । ତତ୍ତ୍ୱ ନିର୍ଣ୍ଣୟ; ଯାଥାର୍ଥ୍ୟ ନିର୍ଣ୍ଣୟ—1 Ascertainment of the actual state of things, ୨ ।ତର୍କବିତର୍କ—2 Discussion, ୩ । ବ୍ୟବସ୍ଥା—3 Prescription. ୪ । ବିବେଚନା, ଚିନ୍ତା;—4 Consideration; thought; reflection; deliberation, ୫ । ପ୍ରଭେଦ ଜ୍ଞାନ—4. Discrimination; discernment, ୬ । ମୀମାଂସା; ନିଷ୍ପତ୍ତି; ନିର୍ଣ୍ଣୟ—5. Dicision; settlement. ୭ । ଭଲ ଓ ମନ୍ଦର ପରୀକ୍ଷା—6. Examination; discrimination between right an..

wrong. ୭ । ବିପକ୍ଷ ପକ୍ଷଙ୍କ ବିବାଦର ସତ୍ୟାସତ୍ୟ ନିରୂପଣ—7 Finding: out of the truth between the opposite parties, ୮। ଅଦାଲତରେ ବିଚାର; ନ୍ୟାୟ ନିଷ୍ପାଦ—8 A judicial trial. ୯ । ଅନୁସନ୍ଧାନ—9. Investigation ( Apte ). ୧୦ । ନିର୍ବାଚନ; ମନୋନୟନ—10 Selection (Apte). ୧୧ । ସନ୍ଦେହ—11. Doubt; hesitation (Apte). ୧୨ । ଦୂରଦୃଷ୍ଟିପର ବିବେଚନା—12. Prudence; circumspection. ଦେ. ବି—୧ । ପରାମର୍ଶ—1. Advice; consultation. [ଉ—ଏହି ବିଷୟରେ ଯେ ଶମ୍ଭର ଅସୁର, ପୁରନ୍ଦରଙ୍କର ପଡ଼ିଛି ଯା ବିଚାର । କୃଷ୍ଣସିଂହ ମହାଭାରତ ଅନୁଶାସନ । ] ୨ । ଉପାୟ ସମ୍ବନ୍ଧେ ଚିନ୍ତା—2. Thought about some plan or means.

**ବିଚାର ଅଦାଲତ**—ଦେ. ବି—(କଚରୀଆ) (ସଂ• ବିଚାର+ଫା. ଅଦାଲତ) Bichāra adālata ୧ । ଯେଉଁ ନିମ୍ନ କୋର୍ଟରେ ମକଦ୍ଦମା ବିଚାର ଆଦାଲত ପ୍ରଥମେ ବିଚାର ହୁଏ—1. Original court **বিচার অদালত** of trial; trial court. ୨ । ବିଚାରାଳୟ—2. Court of justice.

**ବିଚାର ଉଚ୍ଚାର**—ଦେ. ବି—(ନିରର୍ଥକ ଧ୍ୱନିମୂଳକ ସହଚର ଶବ୍ଦ)— Bichāra uchāra ବିବେଚନା—Deliberation. বিচার টিচার **विचारउचार**

**ବିଚାରକ**—ସ. ବିଣ. ପୁଂ—(ବି+ଚର ଧାତୁ ଣିଚ=ଚାର ଧାତୁ+ କର୍ତ୍ତ୍ରି. Bichāraka ଅକ) ଯେ ବିଚାର କରେ—Deciding; deliberating; considering. ବି.—୧ । ବିଚାରପତି; ଜଜ; ବିଚାରକର୍ତ୍ତା; ବିବାଦ ମୀମାଂସକ—1. A judge; adjudicator; the decider of a dispute. ୨ । ସମାଲୋଚକ—2. A critic. ୩ । ଯେଉଁ ବ୍ୟକ୍ତି ସମ୍ୟକ୍ ଭାବରେ ବୁଝି ସୁଝି କିଷ୍ଟ କରେ—3. A good and intelligent thinker. ୪ । ପରୀକ୍ଷକ— (ବିଚାରିକା—ସ୍ତ୍ରୀ) 4. Examiner.

**ବିଚାର କରିବା**—ଦେ. କ୍ରି—୧ । ବିବେଚନା କରିବା—1. To deli- Bichāra karibā berate, ୨ । ଚିନ୍ତା କରିବା—2. To বিচারকরা think, ୩ । ବିପକ୍ଷଙ୍କ ମଧ୍ୟରେ ବିବାଦ ତୁଟାଇବା— **विचार करना** 3. To adjudicate between two antagonists. ୪ । ମକଦ୍ଦମା ବୁଝିବା—4. To judge; to try a case.

**ବିଚାରକର୍ତ୍ତା**—ଦେ. ବି—(କଚରୀଆ) ମକଦ୍ଦମା ବିଚାର କରୁଥିବା ହାକିମ; Bichārakarttā ଜଜ—A judge. [ ଦ୍ର—କିମ୍ବ (ବିଚାରପତି—ଅନ୍ୟରୂପ) କର୍ମଚାରୀ ବା ପିଆଦାମାନେ ହାକିମଙ୍କ বিচারকর্তা (পতি) **विचारपति** ନିକଟକୁ କୌଣସି ରପୋର୍ଟ ଲେଖିବା ବେଳେ ତାହାର ଶିରୋନାମାରେ 'ବିଚାରପତି' ବା 'ଧର୍ମାବତାର' ଶବ୍ଦ ଲେଖି ପରେ ବକ୍ତବ୍ୟ ଲେଖନ୍ତି । ଏଥିର ଅର୍ଥ 'ହେ ନ୍ୟାୟ ବିଚାରକ' ! ମୋର ନିବେଦନ ହଜୁରଙ୍କ ହୃଦ୍ୟ ଅବଧାନକୁ ଅସୁ' ।]

**ବିଚାରକ୍ଷମ**—ସ. ବିଣ. ପୁଂ—(୭ମୀ ତତ୍)—କୌଣସି ବିଷୟ ବିଚାର Bichārakshama କରିବାକୁ ସମର୍ଥ—Able to judge or (ବିଚାରକ୍ଷମା – ସ୍ତ୍ରୀ) decide a matter.

**ବିଚାରକ୍ଷମତା**—ସଂ. ବି—୧ । (୬ଷ୍ଠୀ ତତ୍) ବିଚାର କରିବାର ଅଧିକାର— Bichārakshamatā 1. Power of decision; power to try cases. ୨ । (ବିଚାରକ୍ଷମ+ତା) ବିବେଚନା କରିବାର ସାମର୍ଥ୍ୟ—2. Ability for judging.

**ବିଚାରଣ(ଣା)**—ସଂ. ବି—(ବି+ଚର ଧାତୁ ଣିଚ, ଚାର ଧାତୁ+ଭାବ. Bichārana(nā) ଅନ)—୧ । ବିଚାର; ବିବେଚନା—1. Consideration. ( ଉ.—ଏଥିକି ଉପାୟ ଲୋଡ଼ା ହେଉ ବିଚାରଣା । ରାଧାନାଥ. ବାଣହରଣ । ) ୨ । ଅଦାଲତରେ ବିଚାର ବା ମୀମାଂସା—2. Judicial trial; adjudication. ୩ । ଯାଥାର୍ଥ୍ୟ ନିର୍ଣ୍ଣୟ— 3. Ascertainment of the truth or actual facts. ୪ । ସମାଲୋଚନା—4. Criticism. ୫ । ଯୁକ୍ତି; ତର୍କ—5. Argument; discussion. ୬ । ମୀମାଂସା ଶାସ୍ତ୍ର—6. One of the systems of Hindu philosophy. ୭ । ନ୍ୟାୟ ବିଚାର; ସୁମୀମାଂସା; ସୁବିଚାର—7. Just dicision. ପ୍ରାଦେ. (ଗଞ୍ଜାମ) ବି.—୧ । ମକଦ୍ଦମାରେ ପ୍ରମାଣାଦି ଉପସ୍ଥାପିତ ହେବା ପରେ ପକ୍ଷମାନଙ୍କର ବାଦାନୁବାଦ—1. Argument in a case. ୨ । ମକଦ୍ଦମାର ଶୁଣାଣି— 2. The hearing of a case.

**ବିଚାରଣା ମାଗିବା**—ଦେ. କ୍ରି—ହାକିମଙ୍କ ନିକଟରେ ଉପସ୍ଥିତ ହୋଇ Bichāranā māgibā ସୁବିଚାର ପ୍ରାର୍ଥନା କରିବା—To sue সুবিচার প্রার্থনা করা for justice; to pray for just consideration; to pray for judgment.

**ବିଚାରଣୀ**—ଦେ. (ପ୍ରାଚୀନ ପଦ୍ୟ) ବି—ବିଚାର—Consideration. Bichārani (ଉ—କି ଭଲ ମନ୍ଦ ଲାଭ ହାନି, କି ଅଛି ପଛ ବିଚାରଣୀ—ଭୂପତି. ପ୍ରେମପଞ୍ଚାମୃତ ।)

**ବିଚାରଣୀୟ**—ସ. ବିଣ—(ବି+ଚର. ଧାତୁ ଣିଚ୍=ଚାର ଧାତୁ+ କର୍ମ. Bichāraniya ଅନୀୟ )—ବିବେଚ୍ୟ; ବିଚାରଯୋଗ୍ୟ— ବିଚାରୟିତବ୍ୟ } ଅନ୍ୟରୂପ Deserving consideration; ବିଚାର୍ଯ୍ୟ requiring to be examined.

**ବିଚାର ପ୍ରଚାରେ**—ଦେ. କ୍ରି. ବିଣ—ବିବେକପୂର୍ବକ—Deliberately Bichāra prachāre (ଉ:—ବିଚାର ପ୍ରଚାରେ ପଚାରେ ଯାହାକୁ, ଯେତକ ଛନ୍ଦନ ସେ ଜଣାଏ । ଉଞ୍ଜ. ବୈଦେହୀଶବିଳାସ । )

**ବିଚାର ପ୍ରାର୍ଥକ**—ସ. ବିଣ. ପୁଂ—ଯେ ବିବାଦର ବିଚାରପାଇଁ ହାକିମଙ୍କ Bichāra prārthaka ନିକଟରେ ଉପସ୍ଥିତ ହୁଏ—Suitor; (ବିଚାର ପ୍ରାର୍ଥୀ—ଅନ୍ୟରୂପ) praying for justice; suing. (ବିଚାର ପ୍ରାର୍ଥିକା, ବିଚାର ପ୍ରାର୍ଥିନୀ—ସ୍ତ୍ରୀ)

ବିଚାର ପ୍ରାର୍ଥନ(ନା)—ସଂ. ବି—ବିଚାର ନିମନ୍ତେ ଅନୁରୋଧ—Prayer
Bichāra prārthana(nā) for getting justice.

ବିଚାର ବିଭାଗ—ଦେ. ବି—ସରକାରଙ୍କର ଅଧୀନ ମକଦ୍ଦମା ବିଚାର
Bichāra bibhāga କରିବା କାର୍ଯ୍ୟ ବିଭାଗ—The judicial
বিচার বিভাগ department under a Government.
**बिचारमहक्कमा** (ଶାସନ ବିଭାଗ—ବିପରୀତ)

ବିଚାର ବିଭ୍ରାଟ—ସଂ. ବି—(ଆଧୁନିକ ପ୍ରୟୋଗ)—୧ । ନ୍ୟାଯ୍ୟ ବିଚାର
Bichāra bibhrāṭa ସମ୍ବନ୍ଧେ ଗୋଳମାଳ—1. Abuse of justice. ୨ । ଅବିଚାର—2. Failure or mil-carriage justice.

ବିଚାର ବିରୁଦ୍ଧ—ସଂ. ବିଣ—ସୁବିବେଚନାର ପ୍ରତିକୂଳ—
Bichāra biruddha Contrary to judgment.

ବିଚାର ମାଗିବା—ଦେ, କ୍ରି—(ଅନ୍ୟ ଲୋକର) ପରାମର୍ଶ ଲୋଡ଼ିବା—
Bichāra māgibā To seek advice of another. [ଉ—
সুবিচার চাওয়া ରାମ ଶୁଣି ସମସ୍ତଙ୍କୁ ବିଚାର ମାଗିଲେ । ମାଳକଣ୍ଠ,
**बिचार मंगना** ପିଲାଙ୍କ ରାମାୟଣ ।]

ବିଚାର ମୂଢ଼—ସଂ. ବିଣ. ପୁଂ—(୭ମୀ ତତ୍, ବିଚାର ବିଷୟରେ ମୂଢ଼)—
Bichāra mūḍha ଭଲ ମନ୍ଦ ବିଚାର କରିବାକୁ ଅକ୍ଷମ;
(ବିଚାର ମୂଢ଼ା—ସ୍ତ୍ରୀ) ଅବିବେଚକ—Incapable of forming
[ବିଚାର ମୂଢ଼ତା(ତ୍ୱ)—ବି] a sound judgment.

ବିଚାର ମୂଳକ—ସଂ. ବିଣ—( ବହୁବ୍ରୀହି ) ସୁବିଚାର ଦ୍ୱାରା ନିର୍ଣ୍ଣୀତ—
Bichāra mūḷaka Arrived at after due and
(ବିଚାରସିଦ୍ଧ—ଅନ୍ୟରୂପ) mature consideration.

ବିଚାର ଯୋଗ୍ୟ—ସଂ. ବିଣ—ବିଚାର୍ଯ୍ୟ; ବିଚାରଣୀୟ; ବିଚାର କରିବାର
Bichāra jogya ଉପଯୁକ୍ତ (ବିଷୟ)—Fit to be considered.

ବିଚାର ସଙ୍ଗତ—ସଂ. ବିଣ—ନ୍ୟାଯ୍ୟ ସଙ୍ଗତ—Just; equitable.
Bichāra saṅgata (ବିଚାର ସମ୍ମତ—ଅନ୍ୟରୂପ)

ବିଚାର ସ୍ଥାନ—ସଂ. ବି—୧ । ଯେଉଁ ସ୍ଥାନରେ କୌଣସି ବିଷୟ ବିଚାର
Bichāra sthāna କରାଯାଉ ଥାଏ—1. Place of trial.
(ବିଚାରସ୍ଥଳ—ଅନ୍ୟରୂପ) ୨ । ବିଚାର କରିବାର ବିଷୟ—2 Matter for consideration. ୩ । ବିଚାର କରିବାର ସୁଯୋଗ ବା ଅବସର—3. Occasion or opportunity for considering a matter. ୪ । ଅଦାଲତ—4. Tribunal (Apte).

ବିଚାରା—ବୈଦେ. ବିଣ. ପୁଂ—ବିଚରା ( ଦେଖ )
Bichārā (ବିଚାରୀ—ସ୍ତ୍ରୀ ) Bicharā ( See )

ବିଚାରାକ୍ଷମ—ସଂ. ବିଣ. ପୁଂ—( ୭ମୀ ତତ୍; ବିଚାର + ଅକ୍ଷମ )—ବିଚାର
Bichārākshama କରିବା ନିମନ୍ତେ ଅକ୍ଷମ—Unable to
( ବିଚାରାକ୍ଷମା—ସ୍ତ୍ରୀ ) consider or judge; unfit to
[ବିଚାର କ୍ଷମତା(ତ୍ୱ)—ବି] judge.

ବିଚାରାଧୀନ—ଦେ. ବି (୬ଷ୍ଠୀ ତତ୍)—୧ । ବିଚାର କରା ଯାଉଥିବା;
Bichārādhīna ଯେଉଁ ବିଷୟର ବିଚାର ଚାଲୁଥାଏ ଓ ଶେଷ ହୋଇ ନ ଥାଏ—1. (a matter) Pending trial; under consideration. ୨ । ବିଚାର୍ଯ୍ୟ—2. Being considered.

ବିଚାରାନ୍ତର—ସଂ. ବି (ଅନ୍ୟ + ବିଚାର)—୧ । ଅନ୍ୟ ବିଚାର—1. An-
Bichārāntara other consideration. ୨ । ପୁନର୍ବିଚାର—2. Reconsideration.

ବିଚାରାଳୟ—ସଂ. ବି—( ୬ଷ୍ଠୀ ତତ୍ )—ଅଦାଲତ; ଧର୍ମାଧିକରଣ—
Bichārāḷaya A court of justice; the bench;
(ବିଚାରଭୂଃ—ଅନ୍ୟରୂପ) seat of justice.

ବିଚାରାସନ—ସଂ. ବି—(ମ. ପ. ଲୋ; ବିଚାରପତିଙ୍କ ଆସନ; ଇଜଲାସ—
Bichārāsana The seat of a judge; judge's seat; the bench.

ବିଚାରିତ—ସଂ. ବିଣ—(ବି+ଚର୍ ଧାତୁ ଣିଚ୍=ଚାରିଧାତୁ+କର୍ମ. ତ)—
Bichārita ୧ । ଯାହା ବିଚାର କରାଯାଇଥାଏ—1. Judged; tried. ୨ । ମୀମାଂସିତ—2. Decided upon. ୩ । ଯାହା ସମ୍ବନ୍ଧେ ଯୁକ୍ତି ବା ତର୍କ କରାଯାଇ ଥାଏ—3. Discussed. ୪ । ଅବଧାରିତ; ସଙ୍କଳ୍ପିତ—4. Contemplated. ସଂ. ବି (+ଭାବ.ତ) ବିବେଚନା—Consideration; deliberation (Apte).

ବିଚାରିବା—ଦେ. କ୍ରି (ପଦ୍ୟ) (ସଂ ବିଚାର)—୧ । ମନରେ ଭାବିବା—
Bichāribā 1. To think. ୨ । ବିବେଚନା କରିବା—2.
বিচার করা, বিচারা To consider. (ଉଦାହରଣ—ବିଚାର
**बिचारना** ଭରସା ବଢ଼ାଅ ଅପରିମିତ । କବିସୂର୍ଯ୍ୟ ବଳଦେବରଥଙ୍କ ସ ଗୀତ । ) ୩ । ଅନୁସନ୍ଧାନ କରିବା—2 To investigate. ୪ । ପରାମର୍ଶ କରିବା—4. To consult. ୫ । ଉତ୍ତମ ରୂପେ ବୁଝିବା ବା ବିବେଚନା କରିବା—5. To consider well. ( ଉ.—ବିଚାର କାର୍ଯ୍ୟ କରୁଥିଲେ, ପ୍ରମାଦ ନ ପଡ଼ଇ ଭଲେ—ଜଗନ୍ନାଥ ଭାଗବତ ।)

ବିଚାରୀ—ସଂ. ବିଣ. ପୁଂ (ବିଚାର+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Bichārī ୧ । ବିଚାରକ; ମୀମାଂସକ—1. Deciding; trying;
বেচারী judging. ୨ । କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଦ୍ଧାରଣକାରୀ—
**बेचारी** 2. Discriminating. ୩ । (ବି+ଚର ଧାତୁ+କର୍ତ୍ତୃ
(ବିଚାରିଣୀ—ସ୍ତ୍ରୀ) ଇନ୍; ୧ମା. ୧ବ) ବିଚରଣକାରୀ—3. Roaming. ୪ । ଦୁଷ୍ଟ; ଦୁଷ୍ଟଚରିତ୍ର—4. Wanton; dissolute (Apte). ବୈଦେ. ବିଣ. ସ୍ତ୍ରୀ—ବିଚାରାର ସ୍ତ୍ରୀ ଲିଙ୍ଗ—Feminine of Bichārā.

ବିଚାର୍ଯ୍ୟ—ସଂ. ବିଣ (ବି+ଚର ଧାତୁ ଣିଚ୍=ଚାର ଧାତୁ+କର୍ମ. ଯ)—
Bichārjya ୧ । ମୀମାଂସାର ବିଷୟୀଭୂତ—1. Forming the subject of trial or consideration ୨ । ଯାହାର ବିଚାର କରିବା ଉଚିତ—2. Deserving consi-

deration. ୩ । ଯାହା ବିଚାର କରାଯିବ—3. About to be considered or tried.

ବିଚାଳ—ସଂ. ବିଣ (ବି + ଚଲ ଧାତୁ + କର୍ମ ଅ)—
Bichāla ଅଭ୍ୟନ୍ତରସ୍ଥ; ମଧ୍ୟବର୍ତ୍ତୀ—Inmost; internal.

ବିଚାଳ—ଦେ. ବି ଓ ବିଣ—ବେଚାଳ ( ଦେଖ )
Bichāla Bechāla ( See )

ବିଚା(ଛା)ଳି—ଦେ. ବି. ( ସଂ. ବିଚାଳ=ନଡ଼ା; ଶୁଷ୍କ ତୃଣ )—
Bichā(chhā)li ୧ । ବିଛାଲି; ନଡ଼ା; କୁଟା—1 Straw. ୨ ।
বিচালি, বিচিলি, বিচুলি ଶୁଖିଲା ଘାସ—2. Hay, ୩ । ଯେଉଁ
उछड़ा, बिचाली ଶୁଖିଲା କୁଟା ବା ଘାସକୁ ଘୋଡ଼ା ଆଦି ପଶୁଙ୍କ ଶୋଇବା ନିମନ୍ତେ ଭୂଇଁରେ ବିଛା ଯାଏ—2. Litter for domestic animals; straw or hay spread on the ground for horses and animals to lie on. ବି ଓ ବିଣ—ବେଚାଳ ( ଦେଖ )
Bechāla (See)

ବିଚି—ସଂ. ବି—ବୀଚି; ତରଙ୍ଗ; ଲହରୀ (ହି. ଶ)—Wave, ପ୍ରାଦେ.
Bichi (ମେଦିନୀପୁର) (ମୂଳ ବଂ. ବୀଚ)—୧ । ବୀଜ—1. Seed
୨ । ଆମ୍ବ ଆଦି ଫଳର ଟାକୁଆ—2. The stone inside some fruits. (e. g. mango).

ବିଚିକିତ୍ସା—ସଂ. ବି (ବି=ବିବିଧ ପ୍ରକାର+କିତ୍ ଧାତୁ=ସଂଶୟ କରିବା
Bichikitsā +ସ (ଦ୍ୱିତ୍ୱ)+ଭାବ. ଅ+ଆ)—୧ । ସନ୍ଦେହ—
1. Doubt; suspicion; vacillation. ୨ ।
ଭ୍ରମ—2. Error; mistake.

ବିଚିକିତ୍ସ୍ୟ—ସଂ. ବି ( ବି+ଚିକିତ୍ସା+କର୍ମ ଯ )—୧ । କୁତ୍ସିତ—
Bichikitsya 1. Ugly; nasty. ୨ । ସନ୍ଦେହଜନକ—
2. Suspicious; doubtful.

ବିଚିଟିବା—ଦେ. କ୍ରି (ସଂ. ବିକଟୀକୃତ ବା ବିସ୍ତୃତ)—୧ । ବାତଜ୍ୱରର
Bichiṭibā ଆକ୍ରମଣ ବା ବାତଜ୍ୱରର ପୂର୍ବ କୌଣସି ଭୟାନକ ରୂପ
ବିଚିଟି ଯିବା } ଅନ୍ୟରୂପ ଧାରଣ କରି ମାରାତ୍ମକ ଅବସ୍ଥାରେ
ବିଚିଟି ହେବା } ପରିଣତ ହେବା; (ରୋଗ) ବିକୃତାକାର
বিষিয়ে যাওয়া ଧାରଣ କରିବା—1. (Said of an attack of
बिसाना moon fever or any other disease) To take a fatal turn. [ ଦ୍ର—ବାତଜ୍ୱରରୁଆ ରୋଗୀଙ୍କୁ ସାଧାରଣତଃ ବାତଜ୍ୱର ଆକ୍ରମଣ କରୁଥାଏ ଓ ୨।୩ ଦିନ ପରେ ଛାଡ଼ିଯାଇ ଥାଏ । କିନ୍ତୁ କୌଣସି କୌଣସି ସମୟରେ ରୋଗୀକୁ ଥରେ ତାହା ଆକ୍ରମଣ କରି ଆଉ ଛାଡ଼େ ନାହିଁ ଓ ମାରାତ୍ମକ ହୋଇ ଉଠେ । ଏପରି ଅବସ୍ଥାରେ ରୋଗୀ-ଠାରେ ବାତଜ୍ୱର ବିଚିଟିଲା ବୋଲି କହନ୍ତି । ]
୨ । (ଔଷଧ) ରୋଗୀର ଦେହ ତମାମ ଭୟାନକ ବିଷମୟ ଫଳ ସହିତ ବ୍ୟାପିବା—2. (said of any drug) To be diffused throughout the system ending in blood poisoning; to spread throughout the system with a fatal effect.

ବିଚିତ—ସଂ. ବିଣ ( ବି+ଚି ଧାତୁ+କର୍ମ ତ )—ଯାହାର ଅନ୍ୱେଷଣ
Bichita କରାଯାଇ ଥାଏ ( ହି. ଶବ୍ଦସାଗର )—Searched; sought after.

ବିଚିତି—ସଂ. ବି ( ବି+ଚି ଧାତୁ+ଭାବ ତି )—୧ । ଅନ୍ୱେଷଣ—
Bichiti 1, Search. ୨ । ବିଚାର—2. Consideration.

ବିଚିତ୍ତ—ସଂ. ବିଣ. ପୁଂ (ବି+ଚିତ୍ତ)—୧ । ବେହୋସ; ଅଚେତ (ହି.
Bichitta ଶ)—1. Unconscious. ୨ । ଅସ୍ଥିରଚିତ୍ତ—2.
(ବିଚିତ୍ତା—ସ୍ତ୍ରୀ) Inattentive; fickle-minded.

ବିଚିତ୍ତି—ସଂ. ବି—୧ । ବେହୋସ ଅବସ୍ଥା—1. Unconsciousness.
Bichitti ୨ । ମନର ଅସ୍ଥିରତା—2. Restlessness of mind.

ବିଚିତ୍ର—ସଂ. ବି ( ବି=ବିବିଧ ପ୍ରକାରେ+ଚିତ୍ର ଧାତୁ=ବିସ୍ମିତ କରିବା
Bichitra +କର୍ତ୍ତୃ. ଅ )—୧ । ନାନା ବର୍ଣ୍ଣ—1. Various colours placed together. ୨ । ଅଲୌକିକ ଘଟଣା; ଆଶ୍ଚର୍ଯ୍ୟଜନକ ବିଷୟ ବା ଘଟଣା—2. A wonder; miracle; wonderful thing; a surprise. ୩ । ଅଦ୍ଭୁତ ବସ୍ତୁର ବା ଉପମାର ବର୍ଣ୍ଣନ; କାବ୍ୟରେ ଅର୍ଥାଲଙ୍କାର ବିଶେଷ—3. A figure of speech; a depiction of wonderful thing. ବିଣ—୧ । ନାନାବର୍ଣ୍ଣ ରଞ୍ଜିତ-
(ବିଚିତ୍ରା—ସ୍ତ୍ରୀ) 1. Variegated; mottled; multicoloured.
[ବିଚିତ୍ରତା(ତ୍ୱ)—ବି] ୨ । ବିସ୍ମୟକର; ଆଶ୍ଚର୍ଯ୍ୟଜନକ—2. Wonderful; astonishing; surprising; strange. ୩ । ଅଲୌକିକ—3. Miraculous. ୪ । ରମଣୀୟ; ମନୋଜ୍ଞ; ସୁନ୍ଦର—4. Charming; beautiful.

ବିଚିତ୍ରକ—ସଂ. ବି ( ବିଚିତ୍ର+ସ୍ୱାର୍ଥେ. କ )—ଭୂର୍ଜ୍ଜବୃକ୍ଷ—The birch
Bichitraka tree.

ବିଚିତ୍ର କଥା—ଦେ. ବି—ବିସ୍ମୟକର ଘଟଣା—A strange thing.
Bichitra kathā a wonderful thing; a miracle.
[ବିଚିତ୍ର ଘଟଣା (ଣା)—ଅନ୍ୟରୂପ] বিচিত্র ঘটনা; विचित्रबात

ବିଚିତ୍ର କର୍ମା—ସଂ. ବିଣ—(ବିଚିତ୍ର+କର୍ମନ୍; ୧ମା. ୧ବ)-ବିଚିତ୍ର ବା
Bichitra karmā ଅବୋଧ କର୍ମକଳାପ ଯାହାଙ୍କର—
Capable of performing miracles.
ବି—୧ । ଭଗବାନ୍; ବିଷ୍ଣୁ—1. God; Bishṇu;
୨ । ଈଶ୍ୱର; ଶିବ—2. Śiba. ୩ । ବ୍ରହ୍ମା—
3. Brahmā.

ବିଚିତ୍ର ଦେହ—ସଂ. ବିଣ (ବହୁବ୍ରୀହି; ବିଚିତ୍ର+ଦେହ)—୧ । ନାନାବର୍ଣ୍ଣ-
Bichitra deha ରଞ୍ଜିତ ଦେହବିଶିଷ୍ଟ—1. Having a multicoloured body. ୨ । ଛିପଛିପିକିଆ—
2. Mottled; spotted. ବି — ମେଘ —The cloud.

ବିଚିତ୍ରପୁରୀ ପାନ—ପ୍ରାଦେ(ଯାଜପୁର)ବି—ବିଚିତ୍ରପୁର ଗ୍ରାମର ପ୍ରସିଦ୍ଧପାନ—
Bichitrapurī pāna The famous betel produced in Bichitrapura in Jajpur.

ବିଚିତ୍ର ବୀର୍ଯ୍ୟ—ସଂ. ବିଣ ( ବହୁବ୍ରୀହି; ବିଚିତ୍ର=ବିସ୍ମୟକର+ବୀର୍ଯ୍ୟ=
Bichitra birjya ବୀରତ୍ୱ ଯାହାର )—ଅଦ୍ଭୁତପରାକ୍ରମଶାଳୀ—
Of wonderful prowess. ବି—(ନାମ) ଚନ୍ଦ୍ରବଂଶୀୟ ରାଜା ଶାନ୍ତନୁଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭଜାତ ଏକ ପୁତ୍ର—

A son of Raja Sāntanu by Satyabatī of the Lunar dynasty of ancient India. [ଦ୍ର—ଚନ୍ଦ୍ରବଂଶୀୟ ରାଜା ଶାନ୍ତନୁଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଜାତ ହୋଇଥିଲେ । ଚିତ୍ରାଙ୍ଗଦ କୁମାର ଅବସ୍ଥାରେ ଏକ ଗନ୍ଧର୍ବ ଦ୍ୱାରା ହତ ହୋଇଥିଲେ । ବିଚିତ୍ର ବୀର୍ଯ୍ୟ ଶାନ୍ତନୁଙ୍କ ପରେ ରାଜା ହେଲେ । ସେ କାଶୀରାଜଙ୍କ ଦୁଇ କନ୍ୟା ଅମ୍ବିକା ଓ ଅମ୍ବାଲିକାଙ୍କୁ ବିବାହ କରିଥିଲେ । କିନ୍ତୁ ନିଃସନ୍ତାନ ଅବସ୍ଥାରେ ବିଚିତ୍ରବୀର୍ଯ୍ୟଙ୍କର ମୃତ୍ୟୁ ହେବାରୁ ସତ୍ୟବତୀଙ୍କର ଆଦେଶ କ୍ରମେ ତାଙ୍କ କାନୀନ ପୁତ୍ର ବ୍ୟାସଦେବଙ୍କ ଔରସରେ ବିଚିତ୍ରବୀର୍ଯ୍ୟଙ୍କ ବିଧବା ସ୍ତ୍ରୀଦ୍ୱୟଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜାତ ହେଲେ ଓ ବିଧବା ଦାସୀ ଗର୍ଭରୁ ବିଦୁର ଜାତ ହେଲେ ।]

**ବିଚିତ୍ର ରାମାୟଣ**—ଦେ. ବି—କବି ବିଶ୍ୱନାଥ ଖୁଣ୍ଟିଆଙ୍କ କୃତ ଓଡ଼ିଆ ଛନ୍ଦ Bichitra rāmāyaṇa ରାମାୟଣବିଶେଷ—The title of an Oriya metrical Rāmāyaṇa composed by poet Biśwanātha Khuṇṭiā.

**ବିଚିତ୍ର ଲକ୍ଷଣା**—ଦେ. ବି—ବାକ୍ୟାଲଙ୍କାରବିଶେଷ—A figure of Bichitra lakshaṇā speech. [ଦ୍ର—ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣିର ନିମ୍ନଲିଖିତ ପଦ ଗୁଡ଼ିକ ବିଚିତ୍ର ଲକ୍ଷଣାଯୁକ୍ତ ଅଟେ—ଯଥା—ଆସ୍ୟ କଞ୍ଜେ ବସାନେତ୍ର ଖଞ୍ଜରୀଟ ଯୁଗ, ଦେଖି ଭାଲେ ଅଙ୍ଗଦେଶ ହେବ କି ମୋ ଭୋଗ । ଯକ୍ଷ ଜ୍ୱରଜ ବସନ୍ତ ତହିଁରେ ତ ଭାବ, ଗଉରୀ ପ୍ରସବେ ଶିଖରଶ୍ରେଣୀକି ନୋହିବ ।]

**ବିଚିତ୍ର ଶାଳା**—ସଂ. ବି.—ଯେଉଁ ଘରେ ବିଚିତ୍ର ବସ୍ତୁମାନ ସଂଗୃହୀତ ହୋଇ Bichitra śālā ଥାଏ; ଜାଦୁଘର (ହି. ଶ)-Museum.

**ବିଚିତ୍ରାଙ୍ଗ**—ସଂ. ବିଣ (ବହୁବ୍ରୀହି; ବିଚିତ୍ର+ଅଙ୍ଗ. ଯାହାର)—୧ । ଚିତ୍ରିତ Bichitrāṅga ଅଙ୍ଗବିଶିଷ୍ଟ; ଚିତ୍ରିତାଙ୍ଗ—1. Having one's body painted in various paints. ୨ । ନାନାବର୍ଣ୍ଣ ରଞ୍ଜିତ ଶରୀରବିଶିଷ୍ଟ; ଛିଟିଛିଟିକିଆ—3. Having a mottled body. ବି—୧ । ମୟୂର—1. The peacock. ୨ । ଚିତାବାଘ; କଲରାପତ୍ରିଆ ବାଘ—2. The leopard; the spotted tiger

**ବିଚିତ୍ରାନନ୍ଦ ଦାସ**—(ନାମ) ଉତ୍କଳର କରଣ ବଂଶୀୟ ସ୍ୱର୍ଗୀୟ ଦେଶ Bichitrānanda dāsa ହିତୈଷୀ—Name of a late Oriya patriot. [ଦ୍ର—ଓଡ଼ିଶାରେ ଇଂରାଜମାନଙ୍କ ଅଧିକାର ପରେ ଯେଉଁ କେତେ ଜଣ ଓଡ଼ିଆ ପ୍ରଥମେ ସରକାରୀ ଚାକିରି ପାଇଥିଲେ ସେମାନଙ୍କ ମଧ୍ୟରୁ ଏ ଜଣେ । ଓଡ଼ିଆ ଜାତିର ଓ ଭାଷାର ଉନ୍ନତି ଓ ଓଡ଼ିଆଙ୍କ ଜାତୀୟତା ରକ୍ଷା ବିଷୟରେ ଏ ବହୁତ ଯତ୍ନ କରିଥିଲେ । ଓଡ଼ିଶାରେ ବଙ୍ଗଳା ଭାଷାର ପ୍ରଚଳନ ବିରୋଧରେ ଯେଉଁମାନେ ଚେଷ୍ଟା କରି ସରକାରଙ୍କ ଦ୍ୱାରା ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷା ରୂପେ ସ୍ୱୀକୃତ କରାଇ ଥିଲେ ସେମାନଙ୍କ ମଧ୍ୟରୁ ଏ ଜଣେ । ଏହାଙ୍କ ଘର ଯାଜପୁର ଅଞ୍ଚଳରେ ଥିଲା ।]

**ବିଚିତ୍ରିତ**—ସଂ. ବିଣ. (ବି+ଚିତ୍ରିତ)—୧ । ନାନା ବର୍ଣ୍ଣରେ ଚିତ୍ରିତ; Bichitrita ଚିତ୍ରିତ ହୋଇଥିବା—1. Painted in motley colours. ୨ । ନାନାବର୍ଣ୍ଣବିଶିଷ୍ଟ—2. Mottled; particoloured; multicoloured.

**ବିଚିନ୍ତିତ**—ସଂ. ବିଣ. ପୁଂ. (ବି+ଚିନ୍ତିତ)—୧ । ବିଶେଷ ଭାବରେ Bichintita ଚିନ୍ତା କରା ଯାଇଥିବା (ବିଷୟ)—1. Contemplated, well-considered. ୨ । ବିଶେଷରୂପେ ଚିନ୍ତାଗ୍ରସ୍ତ—Very anxious or uneasy.

**ବିଚିନ୍ତ୍ୟମାନ**—ସଂ. ବିଣ—(ବି+ଚିନ୍ତ୍ ଧାତୁ ଣିଚ ଚିନ୍ତି=ଭାବନା+ Bichintyamāna କର୍ମି. ଆନ)—୧ । ଯାହା ଭାବନା କରାଯାଉ ଥାଏ; ଚିନ୍ତାର ବିଷୟୀଭୂତ—1. Which is being thought over. ୨ । ବିବେଚନାଧୀନ—2. Subject to consideration.

**ବିଚିବା**—ପ୍ରାଦେ (ମେଦିନୀପୁର) କ୍ରି.—(ଭୁଲ. ବ. ବେଚ୍; ବିକ୍ରି)— Bichibā ବିକିବା—To sell.

**ବିଚିଲି**—ପ୍ରାଦେ.—(ଯାଜପୁର) ବି. (ସଂ.ବୀଚୁଲ=ଶୁଷ୍କ ତୃଣ)— Bichili ଗୋରୁଙ୍କୁ ଦିଆଯିବା କଟା ନଡ଼ା—Chopped hay or straw used as fodder.

**ବିଚିହ୍ନ**—ଦେ. ବିଣ—ଚିହ୍ନରହିତ; ଦାଗଶୂନ୍ୟ—Spotless; having Bichihna no marks. (ଉ.—ବିଚିହ୍ନ କ୍ରିଦଶନରେ, ବିରୋଧୀ ମୋ ଅଶନରେ । ଭଞ୍ଜ ବୈଦେହୀଶବିଳାସ ।)

**ବିଚୀ**—ସଂ. ବି—ବୀଚୀ; ତରଙ୍ଗ (ହି. ଶ) Bichī Wave.

**ବିଚୂନ(ନ୍ନ)**—ଗ୍ରା. ବିଣ—(ସଂ. ବିଚୂର୍ଣ୍ଣ)—ବିଚୂର୍ଣ୍ଣିତ— Bichūn(nna) Powdered to dust

**ବିଚୂର୍ଣ୍ଣ**—ସଂ. ବି—(ବି+ଚୂର୍ଣ୍ଣ)—ଖୁବ୍ ସରୁ ଚୂନା—Fine powder. Bichūrṇṇa ବିଣ.—ବିଚୂର୍ଣ୍ଣିତ—Powdered to fine minute dust. (ଦ୍ର—ଏହା ଚୂର୍ଣ୍ଣ ଶବ୍ଦ ସହିତ ସହଚରରୂପେ ବିଶେଷଣରେ ବ୍ୟବହୃତ ହୁଏ ଯଥା—ଚୂର୍ଣ୍ଣବିଚୂର୍ଣ୍ଣ ।)

**ବିଚୂର୍ଣ୍ଣନ**—ସଂ. ବି.—ଗୁଣ୍ଡ କରି ଚୂନା କରିବା କର୍ମ—Powdering Bichūrṇṇana of a thing to dust; disintegration

**ବିଚୂର୍ଣ୍ଣିତ**—ସଂ. ବିଣ.—(ବି+ଚୂର୍ଣ୍ଣିତ)—ବିଶେଷରୂପେ ଚୂନା କରାଯାଇ Bichūrṇṇita ଥିବା—Finely powdered; powdered into dust; disintegrated; pulverised.

**ବିଚେତନ**—ସଂ.ବିଣ.ପୁଂ (ବହୁବ୍ରୀହି; ବି=ବିଗତ, ନାହିଁ+ଚେତନା)— Bichetana ୧ । ଚୈତନ୍ୟହୀନ; ସଂଜ୍ଞାଶୂନ୍ୟ; ବେହୋସ୍— (ବିଚେତନା—ସ୍ତ୍ରୀ) 1. Unconscious. ୨ । ଅଚେତନ— 2. Inanimate. ୩ । (ବି=ବିଶିଷ୍ଟ+ଚେତନା ଯାହାର)—ସଚେତନ; ସଜାଗ—3. Animate; fully conscious. ବି—(କର୍ମଧା; ବି=ବିଶିଷ୍ଟ+ଚେତନ)- ବିଶିଷ୍ଟ ଜ୍ଞାନ—Special or intimate or thorough knowledge.

**ବିଚେତନା**—ଦେ. ବି.—(ବି+ଚେତନା)—ସଂଜ୍ଞା; ଚେତନା— Bichetanā Consciousness. (ଛୁଟି ଯାଇ ବିଚେତନା ଉଠି ପଡ଼ି ହେବ ସିନା—କବିସୂର୍ଯ୍ୟ, କଶୋରଚନ୍ଦ୍ର ଚ ଗୀତ) ।

**ବିଚେତା(ତ)**—ଦେ. ବିଣ (ସଂ. ବିଚେତନ)—ଜ୍ଞାନହୀନ; ଅଚେତା—
Bichetā (ta) অচেতন; बेहोस, अचेत Unconscious.

**ବିଚେତାଃ**—ସଂ. ବିଣ (ବି+ଚେତସ୍; ବିଚେତସ୍ ୧ମା ୧ବ; ବି=
Bichetāḥ ବିପରୀତ; ବିମୁଖ ହୋଇଅଛି ଚେତସ୍=ମନ ଯାହାର)—
୧। ଉଦ୍ବିଗ୍ନ—1. Uneasy; agitated; bewildered; distracted. ୨। ବିମନା; ଅସୁଖୀ—2. Unhappy; miserable. ୩। ଅଜ୍ଞ—3. Ignorant. ୪। ଦୁଷ୍ଟ (ହ୍ରୁ.ଶ)—4. Wicked.

**ବିଚେୟ**—ସଂ. ବି—(ବି+ଚି. ଧାତୁ=ଅନ୍ୱେଷଣ କରିବା+କର୍ମ. ଯ)—
Bicheya ୧। ଅନ୍ୱେଷଣୀୟ—1. To be searched after. ୨। ସଂଗ୍ରହାର୍ହ—2. Fit to be collected together. ୩। ଅଳ୍ପ; ସାମାନ୍ୟ—3. A little; a few.

**ବିଚେଷ୍ଟ**—ସଂ. ବିଣ. ପୁଂ—(ବି+ଚେଷ୍ଟା, ବହୁବ୍ରୀହି)—୧। ବେହୋସ;
Bicheshṭa ଚୈତନ୍ୟ ରହିତ—1. Unconscious. ୨। ବିସ୍ତ
(ବିଚେଷ୍ଟା—ସ୍ତ୍ରୀ) ପଦାଦି ଚାଳନରେ ଅକ୍ଷମ—2. Unable to
(ବିଚେଷ୍ଟତା—ବି) move one's limbs. ୩। ନିଶ୍ଚେଷ୍ଟ—3. Devoid of exertion.

**ବିଚେଷ୍ଟା**—ଦେ. ବିଣ—ବିଚେଷ୍ଟ (ଦେଖ)—Bicheshṭa (See).
Bicheshṭā ବି—୧। ସ୍ପୃହାହୀନତା—1. Want of attachment; disinclination. [ଉ—ବିଚେଷ୍ଟାକୁ ଦେଖି ରଘୁ ନନ୍ଦନ, ବଳ ଦେଲେ କରଣ ଆଲିଙ୍ଗନ। ଭଞ୍ଜ. ବୈଦେହୀଶବିଳାସ। ] ୨। ଚେତନାହୀନତା—2. Unconsciousness. [ଉ—ବିଚେଷ୍ଟା ନ ଭଜଇ ଶୁଦ୍ଧି ପାର୍ଶ୍ୱେ ଭୁହାଇ, ବିବିଧ ବାଦ୍ୟକୁ ଜାଇ ସେ। ଭଞ୍ଜ. ବୈଦେହୀଶବିଳାସ।] ୩। ବିଶେଷ ଚେଷ୍ଟା; ଅତ୍ୟଧିକ ଯତ୍ନ—3. Great care; particular care. [ଉ—ଶୋଭି ବିଚେଷ୍ଟା ବାହାର ଉଚରେ, ପାପ୍ରମତ୍ତ ହେଲେ ସ୍ଥାନ ସ୍ଥିତରେ। ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି। ] ସଂ. ବି—୧। ମନ୍ଦ ଚେଷ୍ଟା (ହ୍ରୁ. ଶ)—1. Evil endeavour. ୨। ପୀଡ଼ା ବା ଶୋକ ହେତୁ ମୁଖର ଓ ଅଙ୍ଗାଦିର ବିକ୍ଷେପ (ହ୍ରୁ. ଶ)—2. Contortions of the face and striking of the limbs on account of grief or disease. ( ବିଚେରେଷ୍ଟା—ଗ୍ରାମ୍ୟରୂପ )

**ବିଚେଷ୍ଟିତ**—ସଂ. ବି—(ବି+ଚେଷ୍ଟ ଧାତୁ+ଭାବ. ତ)—୧। ବ୍ୟାପାର;
Bicheshṭita କ୍ରିୟା—1. Action; affair; act; deed. ୨। ବିଶେଷ ଚେଷ୍ଟା—2. Special effort. ୩। ଭୂଇଁରେ ବାଡ଼େଇ କଷ୍ଟିତ ହେବା—3. Act of striking the limbs on the ground. ବିଣ—୧। ଚେଷ୍ଟାବିହୀନ-1. Effortless. ୨। ଅନ୍ୱେଷିତ—2. Sought after. ଦେ. ବି—ଆଚରଣ-Conduct; dealing. [ ଉ—ହେ ନାଥ ତୋର ବିଚେଷ୍ଟିତ, ବିଶ୍ୱ ସଂସାରେ ବିପରୀତ। ଜଗନ୍ନାଥ. ଭାଗବତ।]

**ବିଚ୍ଛନ୍ଦ**—ଦେ. ବି: ପୁଂ—ଲୋକଙ୍କୁ ଦିଆଯିବା ନାମ—A name given
Bichchhanda to males. ବିଣ—ଧନ୍ଦାବାଜ୍—Fraudulent;
(ବିଚ୍ଛନ୍ଦ—ଅନ୍ୟରୂପ) deceitful. (ଉ—ବିଚ୍ଛନ୍ଦ ମାରଣରେ ବଣା ହେଲେ ରଣରେ, ରାମ ଲକ୍ଷ୍ମଣ ତଥି ଯେ। ଭଞ୍ଜ. ବୈଦେହୀଶବିଳାସ।)

**ବିଚ୍ଛନ୍ଦ(ର୍ଦ୍ଦ)କ**—ସଂ. ବି (ବି+ଛନ୍ଦ୍ ଧାତୁ=ଇଚ୍ଛା କରିବା+କର୍ତ୍ତୃ.
Bichchhanda(rdda)ka ଅକ)—୧। ଉପର୍ଯ୍ୟୁପରି ନିର୍ମିତ ଦେବାଳୟବିଶେଷ—1. A sort of temple; pagoda. ୨। ପ୍ରାସାଦ (ହ୍ରୁ. ଶ.)—2. Mansion.

**ବିଚ୍ଛନ୍ଦ ପଟ୍ଟନାୟକ**—ଦେ. ବି (ନାମ)—ଜନୈକ ସ୍ୱର୍ଗୀୟ ଓଡ଼ିଆ
Bichchhanda paṭṭanāyaka ଦେଶହିତୈଷୀ—Name of a late Oriya patriot. [ ଦ୍ର—ଏ ୧୮୪୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୨ ତାରିଖରେ ଜନ୍ମିଥିଲେ। ଏହାଙ୍କର ପିତା ପୁରୀର ରାମଚନ୍ଦ୍ର ଗଜପତି ରାଜାଙ୍କର ଛାମୁକରଣ ଥିଲେ। ପରେ ଇଂରାଜମାନେ ତାଙ୍କୁ ଅଣାଇ ଟ୍ରେଜେରୀ ଅଫିସର ଓ ଡେପୁଟୀକଲେକ୍ଟର ପଦରେ ନିଯୁକ୍ତ କରିଥିଲେ। ବିଚ୍ଛନ୍ଦ ୧୮୬୦ ଖ୍ରୀଷ୍ଟାବ୍ଦରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଢାକା କଲେଜକୁ ଯାଇଥିଲେ। ସେଠାରେ ଅକୃତକାର୍ଯ୍ୟ ହୋଇ ଫେରି ଆସି ପ୍ରଥମେ ସମ୍ବଲପୁରରେ ଡିଷ୍ଟ୍ରିକ୍ଟ ଇନ୍‌ସ୍‌ପେକ୍ଟର ହୋଇଥିଲେ। ପରେ ଅନୁଗୁଳର ତହସିଲଦାର ହେଲେ। ତାହାଙ୍କର ଚାକିରି କାଳରେ ସେ ସମ୍ବଲପୁର ଜିଲ୍ଲାସ୍କୁଲକୁ ଛାଡ଼ି ୩୬୫ ଦିନରେ ୩୬୫ଟି ସ୍କୁଲ ବସାଇଥିଲେ। ଏ ସମ୍ବଲପୁରରେ ଥିବା ସମୟରେ ଗୌରୀଶଙ୍କର ରାୟ ଓ ଭଗବାନନ୍ଦ ଦାସଙ୍କ ସହିତ ମିଳି ଓଡ଼ିଶାରେ ବଙ୍ଗଳା ରାଜକୀୟ ଭାଷାରୂପେ ସ୍ୱୀକୃତ ହେବାପାଇଁ କେତେକ ବଙ୍ଗାଳୀଙ୍କ ଉଦ୍ୟମକୁ ପଣ୍ଡ କରି ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷାରୂପେ ପ୍ରତିଷ୍ଠିତ କରାଇଥିଲେ। ଓଡ଼ିଆରେ ଉପଯୁକ୍ତ ପାଠ୍ୟପୁସ୍ତକ ନ ଥିବାରୁ ବର୍ଣ୍ଣପରିଚୟଠାରୁ ଆରମ୍ଭ କରି ଚାରୁପାଠ, ବୋଧୋଦୟ, କାଦମ୍ବରୀ ଓ ରଘୁବଂଶ ପ୍ରଭୃତି ପୁସ୍ତକ ବଙ୍ଗଳାଭାଷାରୁ ଓଡ଼ିଆରେ ଅନୁବାଦ କରି ପ୍ରକାଶ କରିଥିଲେ। ଏହି ସବୁ ପୁସ୍ତକ ଏଣ୍ଟ୍ରାନ୍ସ ଓ ଭର୍ଣ୍ଣାକୁଲର ସ୍କୁଲମାନଙ୍କରେ ପାଠ୍ୟପୁସ୍ତକରୂପେ ଗୃହୀତ ହୋଇଥିଲା। ଅନୁଗୁଳରେ ଥିବା ସମୟରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହେବାରୁ ସେ କଟକ ଆସିଲେ ଓ ୧୮।୧୦।୮୨ ରେ କଟକଠାରେ ପ୍ରାଣତ୍ୟାଗ କରିଥିଲେ। ]

**ବିଚ୍ଛନ୍ଦ ସୁତ**—ଦେ. ବି—ନଳ ନାମଧେୟ ବାନର—A monkey
Bichchhanda suta named Naḷa.
( ଉ—ବ୍ୟାପିକପି ଶିଖରୀ ଉପାଟିଲେ ଅଦ୍ଭୁତ, ବିଚ୍ଛନ୍ଦସୁତ ସ୍ୱରସେ ଉଦକେ ପକାନ୍ତେ—ଭଞ୍ଜ. ବୈଦେହୀଶବିଳାସ। )

**ବିଚ୍ଛତ୍ରକ**—ସଂ. ବି—ସୁନୁସୁନିଆ ଶାଗ ( ହ୍ରୁ. ଶ. )—
Bichchhatraka An aquatic pot-herb.

**ବିଚ୍ଛନ୍ନ**—ଦେ. ବିଣ—ଛନ୍ନ; ଅତିଚିନ୍ତାଯୁକ୍ତ—Very anxious. (ଉ.—
Bichchhanna ବିଚ୍ଛନ୍ନ ମନ ଉଚିତ ବଚନ ଉଚ୍ଚେ ରଚିତ—ଭଞ୍ଜ. ବୈଦେହୀଶବିଳାସ। )

ବିଚ୍ଛର୍ଦ୍ଦକ—ସଂ. ବି. ( ବି+ଛର୍ଦ୍ଦ+କ )—ବମନ ( ହ୍ରି. ଶ. )—
Bichchharddaka ( ବିଚ୍ଛର୍ଦ୍ଦିକା—ଅନ୍ୟରୂପ ) Vomiting.

ବିଚ୍ଛର୍ଦ୍ଦିତ--ସଂ. ବିଣ—୧ । ଯାହାକୁ ବାନ୍ତି କରାଯାଇଅଛି; ଉଦ୍ଗୀର୍ଣ୍ଣ—
Bichchharddita 1. Vomited forth ୨ । ଉପେକ୍ଷିତ (ହ୍ରି. ଶ)—2. Disregarded; slighted.

ବିଚ୍ଛାୟ—ସଂ. ବି. ( ବି=ପକ୍ଷୀ + ଛାୟା )—୧ । ପକ୍ଷିଚ୍ଛାୟା; ପକ୍ଷୀ
Bichchhāya ଉଡ଼ିଗଲାବେଳେ ଭୂମିରେ ଯେଉଁ ଛାଇ ପଡ଼େ—
1. The shade of a flying bird appearing on the ground. ୨ । (ବି=ଅଭାବ+ଛାୟା) ଛାୟାର ଅଭାବ—2. Want of shade. ୩ । { ବି=ବିଶିଷ୍ଟ +ଛାୟା=କାନ୍ତି ) ମଣି—3. A gem. ବିଣ—(ବି= ଅଭାବ+ଛାୟା )—୧ । ଛାୟାରହିତ—1. Shadeless; destitute of shadow. ୨ । ଯେଉଁ ବସ୍ତୁର ବା ପ୍ରାଣୀର ଛାୟା ପଡ଼େ ନାହିଁ; ( ଯଥା—ଦେବତା, ଦାନବ, ଭୂତ, ପ୍ରେତ )—2. Casting no shadow.

ବିଚ୍ଛିତ୍ତି—ସ ବି (ବି+ଛିଦ୍ ଧାତୁ=ଛେଦନ କରିବା+ଭାବ. ତି )—
Bichchhitti ୧ । ବିଚ୍ଛେଦ—1. Separation; ୨ । ବିନାଶ—
2. Destruction. ୩ । ବୈଚିତ୍ର୍ୟ—3. Wonderfulness. ୪ । କାଟିକରି ଅଲଗା କରିବା—
4. Severance. ୫ । କମତି; ତ୍ରୁଟି ( ହ୍ରି. ଶ. )—
5. Loss. ୬ । (+କର୍ମ.ତି)କଣ୍ଠହାର—6.Necklace.
୭ । ସ୍ତ୍ରୀଜନଙ୍କ ଶୋଭନ କେଶରଚନା ଓ ଅଙ୍ଗରଞ୍ଜନାଦି କାର୍ଯ୍ୟ—7. Toilette of a lady ୮ । କବିତାର ଯତି ( ହ୍ରି. ଶ )—8. Harmonic pause in metre. ୯ । ଏକପ୍ରକାର ହାବ, ଯହିଁରେ ସ୍ତ୍ରୀ ସାମାନ୍ୟ ଶୃଙ୍ଗାରରେ ପୁରୁଷକୁ ମୋହିତ କରିବାକୁ ଚେଷ୍ଟା କରେ ( ହ୍ରି. ଶ )—9. A kind of amorous dalliance on the part of a woman who by a little equipment tries to charm a male.

ବିଚ୍ଛିନ୍ନ—ସଂ ବିଣ. ପୁଂ ( ବି+ଛିଦ୍ ଧାତୁ+କର୍ମ ତ )—୧ । ବିଯୁକ୍ତ-
Bichchhinna 1. Separated. ୨ । ବିଭକ୍ତ; ପୃଥକ୍କୃତ—
(ବିଚ୍ଛିନ୍ନା—ସ୍ତ୍ରୀ) 2. Separated; severed ୩ । ବିନଷ୍ଟ—
3. Destroyed. ୪ । ଛିଣ୍ଡା ହୋଇଥିବା—4. Torn.
[ ଦ୍ର—ଏହି ଶବ୍ଦ ଛିନ୍ନ ଶବ୍ଦ ସହିତ ସମାନରୂପେ ବ୍ୟବହୃତ ହୁଏ । ] ୫ । ଯାହାର ଅନ୍ତ ହୋଇଅଛି ( ହ୍ରି. ଶ )—5. Finished. ୬ । କୁଟିଳ (ହ୍ରି. ଶ)—
6. Tortuous.

ବିଚ୍ଛୁରିତ—ସ. ବିଣ ( ବି+ଛୁର୍ ଧାତୁ=ଛେଦନ ବା ରଞ୍ଜନ+କର୍ମ
Bichchhurita ତ )—୧ । ଅନୁଲିପ୍ତ—1. Annointed.
୨ । ଅନୁରଞ୍ଜିତ—2. Painted. ୩ । ବିକୀର୍ଣ୍ଣ; ଖେଳେଇ ହୋଇ ପଡ଼ିବା—3. Scattered about; suffused; diffused.

ବିଚ୍ଛେଦ—ସ. ବି ( ବି+ଛିଦ୍ ଧାତୁ+ଭାବ. ଅ )—୧ । ବିରହ;
Bichchheda ଛଡ଼ାଛଡ଼ି—1, Separation. ୨ । ପାର୍ଥକ୍ୟ;
ପ୍ରଭେଦ—2, Difference. ୩ । ବିଯୋଗ—
3. Disjunction; disunion. ୪ । ବିଭାଗ—
4. Division. ୫ । ପୁସ୍ତକର ବିଭାଗ ବା ପରିଚ୍ଛେଦ—
5. Division or chapter of a book. ୬ । ଖଣ୍ଡ—6. A piece. ୭ । ପ୍ରଣୟୀ ପ୍ରଣୟିନୀ ବା ସ୍ୱାମୀ ସ୍ତ୍ରୀ ବା ବନ୍ଧୁମାନଙ୍କର ପରସ୍ପର ପରସ୍ପରଠାରୁ ଭିନ୍ନ ଭିନ୍ନ ହୋଇ ରହିବା; ବିରହ—7. Separation between friends or a couple. ୮ । ବିରାମ—8. Intermission. ୯ । କାଟି କରି ଅଲଗା କରିବା—
9. Severance. ୧୦ । ନାଶ—10. Loss. ୧୧ । ଦୁଇବସ୍ତୁ ମଝିରେ ଥିବା ଖାଲି ସ୍ଥାନ; ବ୍ୟବଧାନ ( ହ୍ରି. ଶ )—11. Interval; space between two things. ୧୨ । କବିତାରେ ଯତି ( ହ୍ରି.ଶ )—
12. Harmonic pause in metre. ୧୩ । କ୍ରମଭଙ୍ଗ ( ହ୍ରି. ଶ )—13. Break of continuity.

ବିଚ୍ଛେଦିତ } ବିଣ
ବିଚ୍ଛେଦ୍ୟ }

ବିଚ୍ଛେଦକ—ସ. ବିଣ. ପୁଂ ( ବି+ଛିଦ୍ ଧାତୁ+କର୍ତ୍ତୃ. ଅକ )—
Bichchhedaka ପୃଥକ୍କାରୀ—Separating [ ଉ—
(ବିଚ୍ଛେଦିକା—ସ୍ତ୍ରୀ) ମୁଁ ସୁନାରୀ ଲେଖି ଦନ ଦନ ଯେ । ଭଞ୍ଜ. ବୈଦେହୀଶବିଳାସ । ]

ବିଚ୍ଛେଦ ଦୁଃଖ—ସ. ବି—ପ୍ରିୟ ବ୍ୟକ୍ତିର ବିରହ ଜନିତ ଦୁଃଖ—
Bichchheda duhkha Pangs of separation.

ବିଚ୍ଛେଦନ—ସ. ବି ( ବି+ଛେଦନ )—୧ । ଭଞ୍ଜନ; ଦୂରୀକରଣ—
Bichchhedana 1. Removal; breaking. [ ଉ—
ବିଚ୍ଛେଦନ କଲା ମୋ ଚିତ୍ତ ସଂଶୟ । ଭଞ୍ଜ. ବୈଦେହୀଶବିଳାସ । ] ୨ । ନଷ୍ଟକରଣ—2. Destruction ୩ । ପୃଥକ୍କରଣ—3. Severing; separating

ବିଚ୍ଛେଦନୀୟ—ସ. ବିଣ ( ବି + ଛେଦନୀୟ )—୧ । ପୃଥକ୍ କରଣୀୟ—
Bichchhedaniya 1. Separable; divisible. ୨ । ଭଙ୍ଗୁର
(ବିଚ୍ଛେଦ୍ୟ—ଅନ୍ୟରୂପ) —2. Fragile.

ବିଚ୍ଛେଦାଇବା—ଦେ ( ପଦ୍ୟ ) କ୍ରି—( ବିଚ୍ଛେଦିବା କ୍ରିୟାର ଣିଜନ୍ତ-
Bichchhedāibā ରୂପ— The causative form of Bichchhedibā. )—ଅନ୍ୟଦ୍ୱାରା ବିଚ୍ଛେଦ କ୍ରିୟା କରାଇବା— To cause separation by another. [ ଉ—ବିଚ୍ଛେଦାଇଲେ ତମ ବନ୍ଧୁ ଉତ୍ତମ ଏ । ଭଞ୍ଜ. ବୈଦେହୀଶବିଳାସ । ]

ବିଚ୍ଛେଦାଗ୍ନି—ସ. ବି ( ରୂପକ; ବିଚ୍ଛେଦ+ଅଗ୍ନି )—ଅଗ୍ନିପରି ସନ୍ତାପକ
Bichchhedāgni ବିଚ୍ଛେଦଜନିତ ଦୁଃଖ—Burning pangs
(ବିଚ୍ଛେଦାନଳ—ଅନ୍ୟରୂପ) of separation ( compared to fire ).

ବିଚ୍ଛେଦିତ—ସ. ବିଣ—୧ । ବିରହିତ; ପୃଥକ୍କୃତ—1, Separated
Bichchhedita from; deprived of. ୨ । କର୍ତ୍ତିତ; ଆହତ
2. Cut; wounded. [ ଉ—ବିଚ୍ଛେଦିତ ହୋଇ ପ୍ରିୟବଗରେ, ବିଚ୍ଛେଦିତ ନଖରେ ହୁଳ ଗରେ— ଭଞ୍ଜ. ବୈଦେହୀଶବିଳାସ । ] ୩ । ବିଖଣ୍ଡିତ—
2. Cut asunder, severed.

ବିଚ୍ଛେଦିବା—ଦେ. (ପଦ୍ୟ) କ୍ରି—କାଟିବା; ଛେଦନ କରିବା—To
Bichchhedibā cut; to fell down. [ଉ—ବିଶାଳ ଭୁଙ୍ଗ
বিচ্ছেদা ଶାଳ ମହୀରୁହ, ବିଚ୍ଛେଦିଲା ପ୍ରାୟେ ପଡ଼ିଲା ଦେହ ।
**बिच्छेदना** ଉଞ୍ଜ. ବୈଦେହୀଶବିଳାସ ।]

ବିଚ୍ଛେଦୀ—ଦେ. ବିଣ.ପୁଂ—୧ । ଦୁଇ ବା ତତୋଽଧିକ ଖଣ୍ଡରେ ବିଭକ୍ତ ହୋଇ
Bichchhedī ଥିବା (ବ୍ୟକ୍ତି ବା ବସ୍ତୁ)—1. (a person or
**बिछोई** thing) Cut down into two or more pieces.
(ବିଚ୍ଛେଦିନୀ—ସ୍ତ୍ରୀ) ୨ । ବିୟୋଗୀ; ବିରହୀ—2. Who is undergoing the pangs of separation.
[ଉ-ବିକ୍ତପୂର୍ବକୁ ଭକ୍ଷିବା ଇଚ୍ଛା କଲେ, ବିଚ୍ଛେଦୀ ହୋଇଥିଲା ଜନେ । ଉଞ୍ଜ. ବୈଦେହୀଶବିଳାସ ।] ସ. ବିଣ. ପୁଂ—
ଯେ ବିଚ୍ଛେଦ ଘଟାଏ [ହି. ଶ]—Causing separation or severance.

ବିଚ୍ୟୁତ—ସ. ବିଣ—(ବି+ଚ୍ୟୁତ)—୧ । ଆପଣା ସ୍ଥାନରୁ ସ୍ଖଳିତ; ଭ୍ରଷ୍ଟ।
Bichyuta 1 Dislocated; disjoined. ୨ । ପତିତ—
2. Fallen down. ୩ । ପୃଥକ୍‌କୃତ—3. Separated. ୪ । କ୍ଷରିତ—4. Oozed out. ୫ ।
ବିରହିତ—5. Deprived of; stripped of. ୬ ।
(ବୈଦ୍ୟକ) ଜୀବିତ ଅଙ୍ଗରୁ କଟା ଯାଇ ଥିବା (ଅଙ୍ଗ)
(ହି. ଶ)—6. (surgery) Amputated (limb).

ବିଚ୍ୟୁତି—ସ. ବି—(ବି+ଚ୍ୟୁତି)—୧ । ପତନ—1. Fall. ୨ ।
Bichyuti କ୍ଷରଣ—2. Oozing. ୩ । ପୃଥକ୍‌କରଣ—
3. Separation. ୪ । ସ୍ଖଳନ—4 Dislocation.
୫ । ଗର୍ଭପାତ (ହି. ଶ)—6. Abortion. ୬ ।
୭ । (ବୈଦ୍ୟକ) ଜୀବିତ ଅଙ୍ଗରୁ କୌଣସି ଅଂଶ କାଟିବା
7. Amputation.

ବିଚ୍ରା—ପ୍ରାଦେ. (ସମ୍ବଲପୁର) ବି—ବିଚରା (ଦେଖ)
Bichrā (ବିଚ୍ରୀ—ସ୍ତ୍ରୀ) Bicharā (See)

ବିଛ—ଦେ. ବି—ବାଇବିଛ (ଦେଖ)
Bichha Bāibichha (See)

ବିଛ(ଛା)ଉଣି—ଦେ. ବି (ସ. ବିସ୍ତରଣ)—୧ । ବିଛଣି; ବିଛାଇବା ବା
Bichha(chhā)uṇi ବିସ୍ତାରିତ କରିବା କର୍ମ—1. Act
বিছান; বিছানী of spreading out or apportioning.
**बिछौनी, बिछावनी** ୨ । ବଣ୍ଟନ—2. Distribution. ୩ ।
ଜାହାଜର ବା ଡଙ୍ଗାର ତଳ ମହଲରେ ରଖା ଯିବା
ଜିନିଷମାନ ତଳ ବାଟେ ପଶିବା ପାଣିରେ ଓଦା ନ ହେବା
ପାଇଁ ଜାହାଜର ବା ଡଙ୍ଗାର ତଳରେ ଯେଉଁ କାଠ ବା
ଡାଳେଇ ଆଦି ବିଛା ଯାଏ—3, Logs or sticks spread on the bottom of a boat or ship to prevent the articles kept there from being affected by the water accumulating in the hold. ୪ । ଯେଉଁ ବସ୍ତୁ
(ଯଥା—ଲୁଗା, ନଡ଼ା) ଭୂମିରେ ବା ଘରର ତଳରେ
ବିସ୍ତୃତ କରି ଯାଏ—4. Any thing spread on the ground or floor.

ବିଛଣା—ଦେ. ବି—(ସ. ବିସ୍ତାରଣ)—୧ । ଶୋଇବାର ଆସ୍ତରଣ;
Bichhaṇā ଶଯ୍ୟା—1. Bed; bedding. ୨ । ବହୁଲୋକ
বিছানা ବସିବାର ବଡ଼ ଆସନ—2. A big seat or mat
**बिछौना** for many people. ପ୍ରାଦେ.—(ସମ୍ବଲପୁର ଓ ଗଡ଼ଜାତ) ବି.—ବିଞ୍ଚଣୀ ମହୁ ଫେଣା; ଛୋଟ ମହୁ ଫେଣା—Small fan-shaped honeycomb.

ବିଛଣା ଉଠା(ଠେ)ଇବା—ଦେ. କ୍ରି—ଭୂମିରେ ବିସ୍ତୃତ ବା ରଚିତ
Bichhaṇā uṭhā(ṭhe)ibā ଶଯ୍ୟାକୁ ଟେକିବା—To tuck
বিছানা তোলা; বিছানা উঠান **बिछौना उठाना** up the bed.
[ବିଛଣା ଟେକିବା—ଅନ୍ୟରୂପ]

ବିଛଣା କରିବା—ଦେ. କ୍ରି.—୧ । ଶଯ୍ୟା ରଚନା କରିବା—1. To
Bichhaṇā karibā make up a bed. ୨ । ଭୂମିରେ
বিছানা করা (পাতা) ଶଯ୍ୟା ବିସ୍ତାର କରିବା—2. To lay
**बिछौना करना** the bed.
ବିଛଣା ପକା(କେ)ଇବା, ବିଛଣା ପାଡ଼ିବା }
ବିଛଣା ପାରିବା, ବିଛଣା ବିଛା(ଛେ)ଇବା } —ଅନ୍ୟରୂପ

ବିଛଣା ଚା(ଚ)ଦର—ଦେ. ବି.—ଶଯ୍ୟା ଉପରେ ପକାଯିବା ବସ୍ତ୍ର—
Bichhaṇā chā(cha)dara বিছানা চাদর Bedsheet;
**बिछौना चादर** bedspread.

ବିଛଣା ଜମା(ମେ)ଇବା—ଦେ. କ୍ରି.—୧ । କୌଣସି ସ୍ଥାନରେ ବିଛଣା ବା
Bichhaṇā jamā(me)ibā ଆସନ ପକାଇ ସ୍ଥିର ଭାବରେ ବସିବା—
বিছানা জমান 1. To settle on a seat or mat at a
**बिछौना जमाना** place. ୨ । ବିଛଣା କରିବା (ଦେଖ)
2. Bichhaṇā karibā (See)

ବିଛଣା ଦେବା—ଦେ. କ୍ରି—ସମାଗତ ବ୍ୟକ୍ତିଙ୍କୁ ବସିବା ପାଇଁ ଆସନ
Bichhaṇā debā ଦେବା—To give a person a seat.
বিছানা দেওয়া **बिछौना देना**

ବିଛଣା ଧରିବା—ଦେ. କ୍ରି—୧ । ଶୋଇବା ନିମନ୍ତେ ଶଯ୍ୟାକୁ ଆଶ୍ରୟ
Bichhaṇā dharibā କରିବା—1. To take to bed.
বিছানা ধরা ୨ । ଶୋଇବା—2. To sleep. ୩ । (ରୋଗୀ)
**बिछौना धरना** ପୀଡ଼ାଜନିତ ଯୋଗୁ ଶଯ୍ୟାଶାୟୀ ହେବା—
3. To be bedridden; to be confined to one's bed.

ବିଛଣାପତ୍ର—ଦେ. ବି (ସହଚର ଶବ୍ଦ)—ବିଛଣା ଆଦି—Beddings
Bichhaṇāpatra বিছানা টিছানা **बिछौना पत्तर**
(ବିଛଣା ପତର, ବିଛଣା ବିଛଣି—ଅନ୍ୟରୂପ)

ବିଛଣା ମାଡ଼ିବା—ଦେ. କ୍ରି—ଅଳ୍ପକାଳ ପାଇଁ ବିଧିରକ୍ଷାର୍ଥ ଶଯ୍ୟାକୁ
Bichhaṇā māṛibā ସ୍ପର୍ଶ କରିବା—To touch the bed.
বিছনায় পা দেওয়া [ଦ୍ର—ବିବାହ ଦିନ ରାତିରେ ବରକନ୍ୟାଙ୍କର
**बिछौना छूना** ମଧୁଶଯ୍ୟାରେ ଏକତ୍ର ଶୟନ କରିବାର ବିଧି
(ବିଛଣା ଛୁଇଁବା—ଅନ୍ୟରୂପ) ଅଛି । କିନ୍ତୁ ବିବାହ ବେଦିର କର୍ମୀବି
ସମାପ୍ତ ହେଉଁ ହେଉଁ ଯେବେ ରାତି ଭୋର ହୋଇଯାଏ
ତେବେ ବିଧିରକ୍ଷାର୍ଥ ବରକନ୍ୟା ମଧୁଶଯ୍ୟାକୁ ନାମମାତ୍ର
ଯାଇ ବିଛଣା ମାଡ଼ି ଆସନ୍ତି । ]

**ବିଛଣି**—ଦେ. ବି. ( ସଂ. ବିଚ୍ଛୁରଣ )—ଇତସ୍ତତଃ ଖେଳେଇ ହେବା; Bichhaṇi ବିସ୍ତାର—Scattering about; being spread

**ବିଛଣା ଘର**—ପ୍ରାଦେ. (ସମ୍ବଲପୁର) ବି—ମହୁଫେଣା—
Bichhanā gharā The bee-hive.

**ବିଛନ୍ଦ**—ଦେ. ବିଣ—ବିଷମ—Irregular. ( ଉ—ବିଛନ୍ଦବିଛନ୍ଦେ Bichhanda ଏହି ବଚ° କବଚେ ସ୍ୱନାମେ ଆପଣା ଦେଖ—ଭଞ୍ଜ. ବୈଦେହୀଶବିଳାସ । )

**ବିଛା**— ଦେ. ବି. ( ସଂ. ବୃଶ୍ଚିକ; ପ୍ରା. ବିଚ୍ଛୁଅ )—୧ । କଙ୍କଡ଼ାବିଛା—Bichhā 1. Scorpion. [ ଦ୍ର—ଏହା ଅଷ୍ଟପଦ, ସରୀସୃପର ବିଚ୍ଛୁ ହିଂସ୍ରପ୍ରାଣୀ । ଏହାର ସମ୍ମୁଖରେ କଙ୍କଡ଼ା ପରି ୨ଟି ହାତ **बिच्छू; बिच्छु; गोजर** ଥାଏ; ପୁଚ୍ଛ ଦୀର୍ଘ । ଏହା ଗତି କଲାବେଳେ ପୁଚ୍ଛ ପିଠି ଉପରକୁ ଟେକିଥାଏ । ଏହାର ପୁଚ୍ଛ ଅଗରେ ତୀବ୍ର ବିଷଯୁକ୍ତ ନାହୁଡ଼ ଅଛି । ] ୨ । ଡିମ୍ବିଲିଆ ବିଛା—2. Centepede. [ ଦ୍ର—ଏହା ଶତପଦୀ ଓ ଏହାର ନାହୁଡ଼ରେ ବିଷ ଅଛି; ମୁହଁର ଦୁଇ ପାଖରେ ଦୁଇଟି ନଖ; ସରୀସୃପ । ] ୩ । କାଳ ବିଛା; କାନକଟୁଲି ବିଛା—3. Chilognath. [ ଦ୍ର—ଏ ଅତି ସରୁ ଓ ୩।୪ ଅଙ୍ଗୁଳ ଲମ୍ବ । ଏହାକୁ ଦଳିଲେ ଏହା ଦେହରୁ ପାପକ ଜ୍ୟୋତି ବାହାରେ । ] ୪ । ଅଗ୍ରହାୟଣ; ମାର୍ଗଶିର; ବୃଶ୍ଚିକ ମାସ—4. The month of Mārgaśira. ୫ । ବୃଶ୍ଚିକରାଶି—5 The sign of Scorpion; the eighth of the 12 signs of the zodiac. ୬ । ତେନ୍ତୁଲିଆ ବିଛାର ଆକୃତି ବିଶିଷ୍ଟ ଏକସରିଆ ଅଣ୍ଟାସୁତା ବା ଅଣ୍ଟାର ଶିକୁଳି ବା ବେକର ହାର—6. A one-stringed waist-chain or neck-chain in the shape of a centepede, consisting of interwoven rings.

**ବିଛା(ଛେ)ଇ**—ଦେ. ବି. ( ସଂ· ବିସ୍ତରଣ )—୧ । ବିଛାଣି; ଭୂମିରେ Bichhā(chhe)i ଇଟା ବା ଗୋଡ଼ି ବା ଚୂନ ଆଦି ସ୍ତର ସ୍ତର କରି ବିଛାନ୍, বিছাই ବିସ୍ତୃତ କରିବା କ୍ରିୟା—1. The laying out **बिछाइ** of bricks, mortar and metal on the surface of the ground. ୨ । ଗୋଡ଼ି ଆଦି ଭୂମିରେ ବିଛାଇବା ନିମନ୍ତେ କାରିଗର ଆଦିଙ୍କୁ ଦିଆଯିବା ମୂଲ ବା ଖରଚ—2. Cost or wages paid for the laying of bricks or metal on the ground.

**ବିଛା(ଛେ)ଇବା**—ଦେ. କ୍ରି. ( ସଂ ବି+ସ୍ତୃ ଧାତୁ )—୧ । ପାରିବା; Bichhā(chhe)ibā ଭୂମିରେ ଶଯ୍ୟାକୁ ବିସ୍ତୃତ କରିବା—1. To বিছান **बिछाना** spread out the bed on the ground; to lay the bed. ୨ । ମାଟି, ଗୋଡ଼ି, ଇଟା ଆଦିର ସ୍ତର ଭୂମିରେ ବିସ୍ତୃତ କରିବା—2. To lay layers of brick, earth etc on the ground. ୩ । ସ୍ତର ସ୍ତର କରି ପକାଇବା—3. To set in layers. ୪ । ଘର ଛପର ବେଳେ ନଡ଼ା ବିଡ଼ାକୁ ଖୋଲି ପତଳାଭାବରେ ଚାଳ ଉପରେ ମେଲାଇ ଦେବା—4. To spread straw evenly on the thatch ভাগকরা after untying the sheaves. ୫ । ଦେୟ ଧନକୁ **बाँटना** ବହୁଲୋକଙ୍କ ମଧ୍ୟରେ ବାଣ୍ଟି ବା ବିଭାଗ କରି ହିସାବ କରିବା; ବିଛାଣି କରିବା—5. To apportion a big sum amongst various persons. ( ଯଥା—ତିନି ଟଙ୍କାକୁ ୧୨ ଜଣଙ୍କ ମଧ୍ୟରେ ବିଛାଇଲେ ଜଣେ ଲୋକ କେତେ ପାଇବ ? ) ପ୍ରାଦେ. ( ବାଲେଶ୍ୱର ) କ୍ରି—ତୋଳିବା - To pick; to pluck. ( ଯଥା—ହରି ଗଛରେ ଚଢ଼ି କେତେ ଆମ୍ବ ବିଛାଇ ଦେଖିଲା ଯେ ୪ଟା କଞ୍ଚା ଓ ୧୦ଟା ପାଚିଲା—ନାରାୟଣପ୍ରସାଦ· ନବବିଧାନ ମାନସାଙ୍କସାର । )

**ବିଛା କାମୁଡ଼ା**—ଦେ. ବି—ବୃଶ୍ଚିକ ଦଂଶନ—The stinging of Bichhā kāmurdā a scorpion. [ ଦ୍ର—ବିଛାମାନେ বিছা কামড়ান ଲାଙ୍ଗୁଡ଼ର ନାହୁଡ଼ଦ୍ୱାରା ଲୋକଙ୍କୁ ଆଘାତ **बिच्छाका डँक मारना** କରନ୍ତି । ଏହାକୁ ଲୋକେ 'ବିଛା କାମୁଡ଼ିଲା' ବୋଲି କହନ୍ତି । ବିଛା କାମୁଡ଼ାରେ ବିଶେଷ ଯନ୍ତ୍ରଣା ହୁଏ । ଏଥିପାଇଁ ଲକ୍ଷଣାର୍ଥରେ ଗୁରୁତର ମାନସିକ ଯନ୍ତ୍ରଣା ହେଲେ ଲୋକେ କହନ୍ତି 'ତା ତାଳୁରେ ତେନ୍ତୁଳିଆ ବିଛା କାମୁଡ଼ୁଛି ।']

**ବିଛାଣି**—ଦେ. ବି. ( ସଂ. ବିସ୍ତାରଣ )—୧ । ବହୁ ଲୋକଙ୍କଠାରୁ ଆଦାୟ Bichhāṇi କରାଯିବା ଧନକୁ ଜଣଜଣଙ୍କଠାରୁ ଆଦାୟ କଲେ বাঁটা, বাঁট ଜଣଜଣକେ କେତେ ଦେୟ ହେବ ଏହା ସ୍ଥିର କରିବା—**बँटाइ** 1. Apportionment of a big sum amongst individual payers. ୨ । ବହୁଲୋକଙ୍କୁ ବାଣ୍ଟି ଦେବା; ବଣ୍ଟନ—2. Distribution amongst many persons. ( ଉ—ଏହି ଲବଣର ମୂଲ୍ୟ ଅଡ଼ଙ୍ଗର ସମସ୍ତ ଚୁଲିଆଙ୍କୁ ବିଛାଣି କରିଦିଆଯାଏ—ଫକୀରମୋହନ· ଗଳ୍ପସ୍ୱଳ୍ପ । ) ୩ । ବିସ୍ତୃତ କରିବା କ୍ରିୟା—3. The act of spreading out or laying in layers.

**ବିଛା ବାଉଳି**—ପ୍ରାଦେ. (ଗଞ୍ଜାମ) ବି—କର୍ଣ୍ଣଭୂଷଣବିଶେଷ; ବିଛା ପରି Bichhā bāuḻi ତିଆରି କାନର ଏକ ପ୍ରକାର ଅଳଙ୍କାର—A species of ear-ring used in Ganjam.

**ବିଛା ବା(ମା)ଳିଆ ଚି(ଚୁ)ଙ୍ଗୁଡ଼ି**—ଦେ. ବି—ତେନ୍ତୁଳିଆ ବିଛା ପରି ଗାତ Bichhā bā(mā)ḻiā chi(chu)ṅgurdi ରକ୍ତ ବର୍ଣ୍ଣ ଖୋଲ বাদার চিঙ্গড়ী ଓ ଗୋଡ଼ବିଶିଷ୍ଟ ସାମୁଦ୍ରିକ ଚିଙ୍ଗୁଡ଼ି; କାଳିଆ **बडा झिंगा, समुद्री झिंगा** ଖଡ଼ା ଚିଙ୍ଗୁଡ଼ି—Prawn; large sea-shrimp. [ ଦ୍ର—ଏହାଙ୍କର ଗୋଡ଼ ଛୋଟ ଓ ଦୁଇଟି ବଡ଼ ନଖ ଥାଏ । ]

**ବିଛା ମନ୍ତ୍ର**—ଦେ. ବି—ବିଛା କାମୁଡ଼ାର ବିଷକୁ ଝାଡ଼ିବା ନିମନ୍ତେ Bichhā mantra ବ୍ୟବହୃତ ମନ୍ତ୍ର—Incantations used বিছার মন্ত্র to cure scorpion-sting. [ ଦ୍ର—ବିଛା ମନ୍ତ୍ର **बिच्छाका मन्तर** ନ ଜାଣି ସାପ ଗାତରେ ହାତ ପୂରେଇବା-ନ୍ୟାୟ । ଏହାର ତାତ୍ପର୍ଯ୍ୟ ଏହି ଯେ, ସହଜ କାର୍ଯ୍ୟ କରିବାର ବିଦ୍ୟା ବା ଶକ୍ତି ନ ଥାଇ କଠିନ କାର୍ଯ୍ୟ କରିବାକୁ ଅଗ୍ରସର ହେବା ରୂପ ଦୁଃସାହସିକତା । ]

**ବିଛା ଯି(ହେ)ବା**—ଦେ. କ୍ରି—ବିଛାଇବା କ୍ରିୟାର କର୍ମବାଚ୍ୟ ରୂପ—
Bichhā ji(he)bā Passive voice of Bichhāibā.
বিছান হওয়া **बिछा जाना** ବିସ୍ତୃତ ହେବା—To be spread.

**ବିଛା ହେବା**—ପ୍ରାଦେ. (ବିଡ଼ଭୂମ) କ୍ରି—ଦୁଷ୍ଟ ହେବା—To be
Bichhā hebā naughty or wicked; to be notorious.

**ବିଛିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ବିଛାଇବା; ଶଯ୍ୟା ଆଦିକୁ
Bichhibā ତଳେ ପାରିବା—To lay the (bed) on the ground.

**ବିଛୁ(ଚ୍ଛୁ)**—ପ୍ରାଦେ. (ସମ୍ବଲପୁର) ବି (ସଂ. ବୃଶ୍ଚିକ; ତୁଳ ହି. ବିଚ୍ଛୂ)—
Bichhu(chchhu) କଙ୍କଡ଼ା ବିଛା—Scorpion.
ଦେ. ବିଣ—ବିରକ୍ତ—Vexed. ( ଯଥା—ମୋ ମନ ବିଛୁ ହୋଇ ଗଲାଣି । )

**ବିଛୁଆଁ(ଆ)**—ପ୍ରାଦେ. (ସମ୍ବଲପୁର) ବି. (ତୁଳ ହି. ଏହି ଅର୍ଥରେ ବିଛୁଆ)—
Bichhuāṅ(ā) ସ୍ତ୍ରୀମାନଙ୍କର ଗୋଡ଼ର ମଝି ଆଙ୍ଗୁଠିରେ ପିନ୍ଧିବା ଏକ ପ୍ରକାର ଝୁଣ୍ଟିଆ (ଏଥିର ଉପର ପାଖରେ ବିଛା ଆକୃତିର ଫୁଲ ବସାଯାଇ ଥାଏ)—A kind of ring worn on the middle finger of the leg

**ବିଛୁଆତି**—ଦେ. ବି ( ସଂ. ବୃଶ୍ଚିକାଳୀ )—ଜ୍ୱାଳାପ୍ରଦ, ଲୋମଶ ଗୁଳ୍ମ
Bichhuāti ବିଶେଷ—Stinging nettle; Fleurya Interrupta; Laportea Cremulata(Haines); Tragia Involucarata. (ଉ—ତୁଳସୀ ସମୂଳେ ଉପାଡ଼ି ରୋପି ବିଛୁଆତି କି ? ମଧୁସୂଦନ କବିତା ।) [ଦ୍ର—ଏହାର ପତ୍ରରେ, ବୃନ୍ତରେ ଓ ଫୁଲରେ କଣ୍ଡୁ ଉତ୍ପାଦକ ଓ ଜ୍ୱାଳାପ୍ରଦ ତୀକ୍ଷ୍ଣ ଲୋମ ଥାଏ । ଏ ଲୋମ ଦେହରେ ଲାଗିଲେ ଅତିଶୟ ଯନ୍ତ୍ରଣା ହୁଏ ଓ ଦେହ ଫୁଲି ଯାଏ । ଏଥିପାଇଁ ଦଣ୍ଡିତ ବ୍ୟକ୍ତିଙ୍କୁ ବିଛୁଆତି ଡାଳରେ ପ୍ରହାର କରାଯାଏ ।

ସଂ. ବୃଶ୍ଚିକାଳୀ, ନାଗଦନ୍ତିକା
ନେତ୍ରରୋଗହା, ସର୍ପଦଂଷ୍ଟ୍ରା,
କାଳ
বিছুটী, বিছাটী, বিছাতী
**बिछाति, बर्हण्टा, वडहण्टा**
ମ. ବୃଶ୍ଚିକାଳୀ
ତେ. ତୁଲଦୋଣ୍ଡୀ,
ଦୋଲଗୁଣ୍ଡେ
ତା. କଞ୍ଚୁରି

ଏହା ସାଧାରଣତଃ ଦୁଇ ପ୍ରକାର—

୧ । ନାଲି ବିଛୁଆତି ବା ଘୋଡ଼ା ବିଛୁଆତି । ଏହା ବର୍ଷାୟୁଃ ଶାକବିଶେଷ; ପତ୍ର ଏକୋତ୍ତର ଦନ୍ତୁରିତ ଓ ତ୍ରିଶିର; ଡେମ୍ଫ ଈଷତ୍ ରକ୍ତ ବର୍ଣ୍ଣ; ପତ୍ର ଲୋମଶ ଓ ତୀକ୍ଷ୍ଣାଗ୍ର—Fleurya Interrupta.

୨ । ଧଳା ବିଛୁଆତି—ଏହା ଲତା ଓ ଦୀର୍ଘାୟୁ । ବାଡ଼ରେ ମାଡ଼େ; ପତ୍ର ଏକୋତ୍ତର ତ୍ରିକର୍ଣ୍ଣ; ପତ୍ରର ମୂଳ ପାନ ପତ୍ର; ଡେମ୍ଫ ଧଳା; ପତ୍ର ଓ ଡେମ୍ଫ ଆଦି ଲୋମଶ ଓ ବିଶେଷ ଜ୍ୱାଳାପ୍ରଦ । ଏହା ସାଧାରଣତଃ ବିଛୁଆତି ନାମରେ କଥିତ । Fragia Involucrata.

ଦୁଷ୍ଟ ଓ ପରର ଅନିଷ୍ଟକାରୀ ବ୍ୟକ୍ତିଙ୍କୁ ବିଛୁଆତି ସଙ୍ଗେ ତୁଳନା କରାଯାଏ । ] ବିଣ—ଅତି ଦୁଷ୍ଟ; ଖଳ—Very wicked; wanton.

**ବିଛୁଆତି ଗାଈ**—ପ୍ରାଦେ. (ଗଡ଼ଜାତ) ବି—ଓଲେଇ ଗାଈ ( ଦେଖ )
Bichhuāti gāī Oleī gāī ( See )

**ବିଛୁଆତି ଗୁଳି**—ଦେ. ବି—ବିଛୁଆତି ଗଛର ଗୋଲାକାର କଢ଼—
Bichhuāti guḷi The leaf-buds of stinging nettle.
বিছুটীরকুঁড়ী
**बिछुटीकी कोंढी**
[ ଦ୍ର—ରକ୍ତ ଗଡ଼ୁଥିବା ଅଙ୍ଗରେ ଜଡ଼ା ତେଲ ଲଗାଇ ଏହାକୁ ମଡ଼ାଇ ଦେଲେ ରକ୍ତ ଶୁଖି ଯାଏ ଓ ଫୁଲା କମିଯାଏ ।]

**ବିଛୁଆତି ବାଇଦଙ୍କ**—ଦେ. ବି. (ସହଚର ଶବ୍ଦ)—୧ । ଦୁଇଟି କଣ୍ଡୁ
Bichhuāti bāidhaṅka ଉତ୍ପାଦକ ବସ୍ତୁ—1. Two itching things. ୨ । (ଲକ୍ଷଣାର୍ଥ) ଦୁଇ ଜଣ ଦୁଷ୍ଟ ବ୍ୟକ୍ତିଙ୍କର ମିଳନ—2. Combination of two equally wicked persons.
(ବାଇଦଙ୍କ ବିଛୁଆତି—ଅନ୍ୟରୂପ)
বিছুটী আলকুশী
**बिछाता और कोंच**

**ବିଛୁଆତି ଲାଗିଲା ପରି ହେବା**—ଦେ. କ୍ରି—ଅସ୍ଥିର ହେବା—To be
Bichhuāti lāgilā pari hebā restless like a person stung with the stinging nettle.
বিছুটী লাগবার মত হওয়া
**बिछाता लगनेका ऐसा होना**
(ତୁଳ. ଏହି ଅର୍ଥରେ ମାଛି ଲାଗିଲା ଭଳି ହେବା)

**ବିଛୁରିବା**—ଦେ. କ୍ରି. ( ସଂ. ବିଚ୍ଛୁରିତ )—ବିକ୍ଷିପ୍ତ ହେବା—To be
Bichhuribā strown or scattered. (ଉ—ପୁଷ୍ପ ପଡ଼ୁଛି ବିଛୁରି କେଶୁ ବିଛୁଟି, ତାର ଗୁଣ କି କହିବ ପାରି । ପ୍ରାଚୀ. ରସ କାଉଥି । )
বিছুরা
**बिछुरना**

**ବିଛେ(ଚ୍ଛେ)ଦିବା**—ଦେ. (ପଦ୍ୟ) କ୍ରି. (ସଂ. ବିଚ୍ଛେଦନ)—୧ । ଛେଦନ
Bichhe(chchhe)dibā କରିବା; କାଟି ପକାଇବା—1. To cut; cut down. (ଉ—ବିଚ୍ଛେଦି ପକାଇଲେ ଶିଶୁପାଳ ଶିର । କୃଷ୍ଣସିଂହ. ମହାଭାରତ. ସଭା ।) ୨ । ବିଚ୍ଛେଦ ଘଟାଇବା—2. To bring about separation.
বিছেদা
**बिछुडवाना**

**ବିଜ୍(ଜି)କା(କି)ଟା(ଟା)**—ଦେ. ବିଣ—ବିଚ୍‌କିଟା ଇତ୍ୟାଦି (ଦେଖ)
Bij(ji)kā(ki)ṭā(tā) Bich-kiṭā etc, (See)
[ବିଜ୍(ଜି)କା(କି)ଟି(ତି)ଆ—ଅନ୍ୟରୂପ]

**ବିଜ୍(ଜି)ତାଡ଼(ର)କ**—ଦେ. ବି. ( ସଂ. ବୃଦ୍ଧଦାରକ )—ବୃଦ୍ଧଦାରକ
Bij-(ji)tāṛda(ra)ka (ଦେଖ)—Bṛuddhadāraka (See)
বিজতাড়ক **बिधारा**

**ବିଜ୍‌ଲି**—ପ୍ରାଦେ. (ସମ୍ବଲପୁର) ବି. (ସଂ. ବିଦ୍ୟୁତ୍; ତୁଳ ହି. ବିଜ୍‌ଲୀ)—
Bij-li ବିଦ୍ୟୁତ—Lightning.

**ବିଜଏ**—ଗ୍ରା. ବିଣ. (ସଂ. ବିଜୟ)—୧ । ଅବସ୍ଥିତ—1. Situated;
Bijae placed; appearing. ୨ । ଉପସ୍ଥିତ—2. Present.
বিজয় (ଉ—ପଥର ଶାଳଗ୍ରାମ ମୂର୍ତ୍ତି, ତହିଁ ବିଜଏ ଶ୍ରୀପତି । ପ୍ରାଚୀ. ନର୍ଗୁଣ ମାହାତ୍ମ୍ୟ ।) ୩ । ଉପବିଷ୍ଟ—3. Seated.
ଦେ. ବି—ରାଜା ଓ ଦେବତାଙ୍କର ଯାତ୍ରା ଆରମ୍ଭ—
Starting in a journey of a Raja or Idol.

**ବିଜ(ଜୁ)କ୍**—ଦେ. ବି [ହିନ୍ଦୀରୁ ଅନୁକୃତ; ସଂ. ବୀଜକ=ସୂଚି (ହି ଶ)]—
Bija(ju)k ୧। ଚଲାଣ; ରେଲ ବା ଜାହାଜରେ କୌଣସି ଦ୍ରବ୍ୟ
बिलटी ଦୂରସ୍ଥ ବ୍ୟକ୍ତିଙ୍କଠାକୁ ପ୍ରେରଣ କରିବା ଲୋକକୁ ଯେଉଁ
**बिजक** ସାର୍ଟିଫିକେଟ୍ ବା ଟିକଟ୍ ମିଳେ ଓ ଯେଉଁ ଟିକଟକୁ ଦେଖାଇ ଗ୍ରାହକ ଉକ୍ତ ମାଲକୁ ରେଲର ବା ଜାହାଜର ଅଧ୍ୟକ୍ଷଙ୍କଠାରୁ ନିଏ—1. A bill of lading, ୨। ଟିକଟ—2. Ticket; label, ୩। ପଣ୍ୟଦ୍ରବ୍ୟମାନ ଦୂରସ୍ଥ ବ୍ୟକ୍ତିଙ୍କ ନିକଟକୁ ଡାକରେ, ରେଲରେ ବା ଜାହାଜରେ ପ୍ରେରଣ କରିବା ବ୍ୟକ୍ତିଙ୍କଠାକୁ ଉକ୍ତ ଦ୍ରବ୍ୟାଦିର ପ୍ରେରକ ଯେଉଁ ତାଲିକା ପଠାନ୍ତି—Invoice.

**ବିଜନ**—ସଂ. ବିଣ—(ବି=ଅଭାବ, ନାହିଁ+ଜନ; ଯହିଁରେ)—୧। Bijana ନିର୍ଜନ—1. Lonely. ୨। ଜନଶୂନ୍ୟ—2. Solitary.
[ବିଜନତା(ତ୍ୱ)—ବିଶେଷ୍ୟ]

**ବିଜନନ**—ସଂ. ବି—(ବି+ଜନ୍. ଧାତୁ+ଭାବ. ଅନ)—୧। ଜନ୍ମ—
Bijanana 1. Birth. ୨। ଉତ୍ପତ୍ତି—2. Production. ୩। ଉଦ୍ଭବ—3 Coming into being. ୪। ପ୍ରସବ କରିବା—4. Act of bringing forth.

**ବିଜନିତ**—ଦେ. ବିଣ—ଜାତ—Born; produced. (ଉ—
Bijanita ବିଜନିତ କଲା ସ୍ଥାନ ଅନ୍ଧାରରେ ଚମକ ଉଠିଲା ଗଗନେ। ଉପେ. ବୈଦେହୀଶବିଳାସ।)

**ବିଜନ୍ମା**—ସଂ. ବି (ବି+ଜନ୍ମନ୍ ୧ମା, ୧ବ)—୧। ଜାରଜ—
Bijanmā 1. Bastard; illegitimate. ୨। ନୀଚ-କୁଳୋଦ୍ଭବ—2. Base-born. ୩। ଜାତିଚ୍ୟୁତ (ହି. ଶ)—3. Excommunicated. ସଂ. ବି-(ମନୁ) ବର୍ଣ୍ଣସଙ୍କର ଜାତିବିଶେଷ (ହି. ଶ)—Name of a mixed caste.

**ବିଜନ୍ୟ**—ଦେ. ବିଣ (ସଂ. ବିଜନିତ)—ଜାତ—Brought forth.
Bijanya (ଉ—ବାସବ ବିଗେ ଅଦ୍ଭୁତ କରଣୀ ବିଜନ୍ୟ କଲା ରକ୍ତ ପିଣ୍ଡ ଆଣି। ଉପେ. ବୈଦେହୀଶବିଳାସ।)

**ବିଜୟ**—ସଂ. ବି (ବି+ଜି ଧାତୁ=ଜୟ କରିବା+ଭାବ. ଅ)—୧।
Bijaya ୧। ଜିଣା; ବିପକ୍ଷର ପରାଭବ; ଜୟ—1, Truimph; victory; conquest. ୨। ଅର୍ଜୁନଙ୍କ ନାମାନ୍ତର—2, A name of Arjuna. ୩। ଯମ—3.The God of death. ୪। ରଥ; ବିମାନ—4. Car.
ଦେ ବି—୧। (ସଂ ବିଜୟ ଯାତ୍ରା) ବିଜେ; (ଦେବତା ଓ
(ବିଜୟେ—ଅନ୍ୟରୂପ) ରାଜାଙ୍କର) ଗମନ ବା ଯାତ୍ରା—1. The
विजय act of going or coming of a Deity or
**विराजमान** Raja. (ଉ—ଏବେ କହି ତନ୍ତ୍ର ବିଜୟେ କଲାକ ଲଙ୍କସାଇଁ। ବିଶ୍ୱନାଥ. ବିଚିତ୍ର ରାମାୟଣ।). ୨। ଜୟଲାଭ-ସୂଚକ ଶୋଭାଯାତ୍ରା—2. A triumphal procession. ୩। ରାଜାଙ୍କ ସିଂହାସନାରୋହଣ—3. The installation of a king on a throne. ୪। ଉପସ୍ଥିତି—4. Presence; arrival, ଦେ. ବିଣ—୧। ଯାତ୍ରାର୍ଥ ପ୍ରସ୍ଥିତ; ଯାତ୍ରା କରୁଥିବା; ଯାଉଥିବା; ଗମନ କରୁଥିବା—1. Going; starting. (ଉ—ଏକା ବିଜୟେ ବୀରମଣି, ଗୋଡ଼ାଇ ମିଳନ୍ତି ସଇନ। ଭୂପତି. ପ୍ରେମପଞ୍ଚାମୃତ।) ୨। ଅଜେୟ—2. Invincible. ୩। ବିଜୟୀ—3. Victorious, (ଉ—ବିଜୟ ତୁ ହୁଅ ଆଜ୍ଞ ଜଗତ। ଉପେ ବୈଦେହୀଶବିଳାସ।)—୪। ଉପବିଷ୍ଟ—4. Sitting, (ଉ—ବିଚିତ୍ର ମୃଗସ୍ଥଳ ଉପରେ ବିଜୟ, ସୁଗ୍ରୀବ ଉଭେ ଆଉଜିଣି। ବିଶ୍ୱନାଥ, ବିଚିତ୍ର ରାମାୟଣ)। ୫। ବର୍ଦ୍ଧିତ—5. Grown; increased. (ଉ—ବିଜୟ ହୋଇଲା କାମୁକ ତାଲେ ସରକ। ବିଜୟ ହୃଦରେ ସ୍ୱୟମ୍ଭୁ ରୂପେ କଲେ ଶମ୍ଭୁ କି। ଉପେ ବୈଦେହୀଶ ବିଳାସ)। ୬। ଆଗତ; ଆଗମନ କରିଥିବା; ଫେରି ଆସିଥିବା; ଫେରନ୍ତା—6. Coming; returned. (ଉ—ସଂଗ୍ରାମେ କରି ଶତ୍ରୁଜୟ, ସବୁରି ପଛରେ ବିଜୟ। ଭୂପତି ପ୍ରେମପଞ୍ଚାମୃତ)। ୭। ଅବସ୍ଥିତ; ବିରାଜି—7. Present. (ଉ—ସକଳ ବିଶ୍ୱରନ୍ତ୍ର ବସି। ମଧ୍ୟେ ବିଜୟ ବ୍ରହ୍ମଋଷି। ଜଗନ୍ନାଥ, ଭାଗବତ)। ୮। ଉପସ୍ଥିତ; ପହଞ୍ଚିଥିବା—Arrived,

**ବିଜୟ ଅମାବାସ୍ୟା**—ସଂ. ବି—ଆଷାଢ଼ ଅମାବାସ୍ୟା; ଜଗନ୍ନାଥଙ୍କର
Bijaya amābāsya ନେତ୍ରୋତ୍ସବ—The new moon day of the month of Āshārdha.

**ବିଜୟକ**—ସଂ. ବିଣ. ପୁଂ—(ବି+ଜି ଧାତୁ+କର୍ତ୍ତୃ ଅକ)—ବିଜୟୀ; ଯେ
Bijayaka ଜିତେ—Victorious; conquering.
(ବିଜୟିକା—ସ୍ତ୍ରୀ)

**ବିଜୟ କରିବା**—ଦେ. କ୍ରି (ରାଜା ଓ ଦେବତାଙ୍କ ପ୍ରତି ପ୍ରଯୁଜ୍ୟ)—
Bijaya kariba ୧। କୌଣସି ସ୍ଥାନରେ ଉପବେଶନ କରିବା;
বিজয় করা To sit at a place ୨। କୌଣସି ସ୍ଥାନରୁ ଯିବା-
**विराजमान होना** 2. To go away from a place. ୩। କୌଣସି ସ୍ଥାନକୁ ଆସିବା—3. To come to or
বিজয়করা arrive at a place. ୪। ଜିତିବା; ଜିଣିବା—
**विजय करना** 4. To conquer; to win.

**ବିଜୟ କୁଞ୍ଜର**—ସଂ. ବି—୧। ରାଜାଙ୍କ ଚଢ଼ିବା ହାତୀ; ପାଟହାତୀ—
Bijaya kuñjara 1. The royal elephant. ୨। ଯୁଦ୍ଧହସ୍ତୀ (ହି. ଶ)—2. An elephant employed in the battle-field.

**ବିଜୟ କେତୁ**—ସଂ. ବି (ମ. ପ. ଲୋ)—୧। ଜୟଲାଭ କରିବା ପରେ
**Bijaya ketu** ଉଡ଼ାଯିବା ଜୟଲାଭ ସୂଚକ ପତାକା—1. A flag flown by the victor as an indication of victory.
ବିଜୟ ପତାକା } ଅନ୍ୟରୂପ
ବିଜୟ ଧ୍ୱଜା }
୨। (ଦୃଷ୍ଟି ଚିହ୍ନ) ଜୟଲାଭ ସୂଚକ ଚିହ୍ନ—2. Any indication of victory

**ବିଜୟ ଘୋଷ**—ସଂ. ବି—୧। ଜୟ ଢକ୍କା—1. A war drum; a
Bijaya ghosha kind of drum beaten to announce the conquest of a king. ୨। ବିଜୟ ସୂଚକ ହୃଷ୍ଟଧ୍ୱନି—2. Exclamation of joy by the victorious party.
ବିଜୟ ମର୍ଦ୍ଦଳ
ବିଜୟ ଡିଣ୍ଡିମ } ଅନ୍ୟରୂପ
ବିଜୟ ଢକ୍କା
ବିଜୟ ବାଦ୍ୟ

ବିଜୟ ଦଶମୀ—ସଂ. ବି— ବିଜୟା ଦଶମୀ (ଦେଖ)
Bijaya daśamī Bijayā daśamī (See).

ବିଜୟ ପୂର୍ଣ୍ଣିମା—ସଂ. ବି—ଆଶ୍ୱିନ ପୂର୍ଣ୍ଣିମା (ହି. ଶ)—The full moon of the month of Āświna.
Bijaya pūrṇṇimā

ବିଜୟ ପ୍ରତିମା – ସଂ. ବି—ଠାକୁରଙ୍କର ଚଳନ୍ତି ପ୍ରତିମା—The moveable image of a Deity, whose idol is immoveable on account of the massiveness of the latter. [ଉ—ଏହିରୂପେ ରାଜ-ପ୍ରଚ୍ଛେ ଦୁର୍ଗପୁର ଦକ୍ଷିଣ ଭାଗେ, ହଠ ହେଲେ ଦେବୀ-କରାଳୀ ବିଜୟ-ପ୍ରତିମା ଆଗେ । ରାଧାନାଥ. ଉଷା ।]
Bijaya pratimā
( ବିଜେ ପ୍ରତିମା—ଦେଶଜରୂପ )

ବିଜୟ ମଙ୍ଗଳ—ଦେ. ବି—ବିଜୟ ଘୋଷ ୨ (ଦେଖ)
Bijaya maṅgaḷa Bijaya ghosha 2 (See).

ବିଜୟ ଯାତ୍ରା—ସଂ. ବି—୧ । ବିଜୟଲାଭପରେ ବିଜୟୀଙ୍କର ଶୋଭା ଯାତ୍ରା —1 Triumphal procession. ୨ । ଶତ୍ରୁ ଜୟ କରିବାପାଇଁ ଯାତ୍ରା—2. Starting for conquest. ୩ । ଶୋଭାଯାତ୍ରା—3. Procession.
Bijaya jātrā

ବିଜୟରାମ --ଦେ. ବି (ନାମ)—୧ । ପୁରୁଷ ଲୋକଙ୍କୁ ଦିଆଯିବା ନାମ—1. Name given to males. ୨ । ଏକ ପ୍ରକାର ଲୁଣିମାଛ – 2. A kind of salt-water fish.
Bijayarāma
विजयराम
**वजयराम**

ବିଜୟ ଲକ୍ଷ୍ମୀ—ସଂ. ବି (ରୂପକ)—୧ । ଦେବୀରୂପେ କଳ୍ପିତ ଜୟଲାଭ – 1. Victory personified. ୨ । ଜୟଲାଭ ଜନିତ ଶୋଭା—2. Splendour or glory resulting form victory.
Bijaya lakshmī
(ବିଜୟ ଶ୍ରୀ—ଅନ୍ୟରୂପ)

ବିଜୟସାର(ଳ)—ସଂ. ବି.—୧ । ସାଳ ଜାତୀୟ ଜଙ୍ଗଲୀ ଗଛ—1, A kind of wild timber tree. [ ଉ—ଏହା ବଡଗଛ ପତ୍ର ଖୁବ ବଡ଼େ, ପତ୍ର ଓସ୍ତ ପତ୍ର ଅପେକ୍ଷା ଶ୍ରେଷ୍ଠ; ଫଳ ଅଁଳା କୋଳି ପରି ଓ ହଳଦିଆ; ଫୁଲ ପାଚକ; କାଠ କଳା ମିଶା ନାଲି ଓ ଖୁବ୍ ଦୃଢ଼ । କାଠକୁ ପାଣିରେ ସିଝାଇ କାଳା ଛଆର କରି ଯାଏ । ବୈଦ୍ୟକ ମତରେ ଏ କାଠ କୁଷ୍ଠ, ବିସର୍ପ, ପ୍ରମେହ, ଗୁହ୍ୟଦ୍ୱାରର ରୋଗ, କ୍ରିମି କଫ, ରକ୍ତ-ଦୋଷ ଓ ପିତ୍ତ ଦୋଷ ନାଶକ [ହି. ଶ] ୨ । ପିଆସାଳ (ଦେଖ) —2. Piyāsāḷa (See).
Bijayasāra(ḷa)
विजयसाल **बिजेसार बिजयशार**

ବିଜୟ ସିଂହ—ଦେ. ବି. (ନାମ) - ଲାଟ (ଗୁଜରାଟ) ଦେଶର ପ୍ରାଚୀନ ରାଜାଙ୍କ ପୁଅ—The son of an ancient king of Gujerat [ଉ—ଏ କଳିଙ୍ଗ ରାଜକନ୍ୟାଙ୍କୁ ବିବାହ କରିଥିଲେ ।]
Bijaya simha

ବିଜୟା—ସଂ. ବି. ସ୍ତ୍ରୀ – (ବିଜୟ + ସ୍ତ୍ରୀ. ଆ —୧ । ଦୁର୍ଗାଙ୍କର ନାମ—1. A name of Durgā. ୨ । ଦୁର୍ଗାଙ୍କର ସଖୀ-ବିଶେଷ – 2. Name of a companion of Durgā.— [ ଉ—ଏ ଗୋତମଙ୍କ କନ୍ୟା ଥିଲେ ।] ୩ । ଶ୍ରବଣା ନକ୍ଷତ୍ର ଯୁକ୍ତ ଶୁକ୍ଳା ଦ୍ୱାଦଶୀ—3. The 12th day of a bright fortnight in conjunction with the constellation of Śrābaṇa. ୪ । ବିଜୟାଦଶମୀ; ଆଶ୍ୱିନ ଶୁକ୍ଳ ଦଶମୀ; ଦଶହରା—4. The 10th day of the bright fortnight of the month of Āświna. [ ଉ—ଏ ଦିନ ରାମଚନ୍ଦ୍ର ଲଙ୍କା ଅଭିମୁଖରେ ବିଜୟ ଯାତ୍ରା କରିଥିଲେ । ] ୫ । ଯମର ସ୍ତ୍ରୀ—5. The wife of Jama. ୬ । ହରିଡଙ୍କି; ହରିଡ଼ା—6. Myrobalan; Terminalia Chebula. ୭ । ବଚ—7. A medicinal root; Acorus Calamus. ୮ । ଶେଫାଳିକା; ଗଙ୍ଗ ଶିଉଳୀ ଫୁଲ—8. A flower; Nyctanthus Arbortristes ୯ । ମଞ୍ଜିଷ୍ଠା— 9. Indian madder; Rubia Munjistha. ୧୦ । ସିଦ୍ଧି; ଭାଙ୍ଗ; ଗଞ୍ଜେଇ—10. Indian hemp; bruised or pasted Gunja-leaves. ୧୧ । ଅଗ୍ନିମନ୍ଥ; ଅଗବଥୁ (ହି. ଶ) (ଦେଖ)—11. Agabathu (See) ୧୨ । ଦକ୍ଷଙ୍କର ଏକ କନ୍ୟା (ହି. ଶ)—12. Name of a daughter of Daksha. ୧୩ । ଜୟନ୍ତୀ (ହି. ଶ) —13. Indian Mallow. ୧୪ । ପ୍ରାଚୀନ କାଳର ଏକ ପ୍ରକାର ବଡ଼ ତମ୍ବୁ (ହି. ଶ)—14. A kind of big tent used in ancient India. ୧୫ । ଶ୍ରୀକୃଷ୍ଣଙ୍କ ବନମାଳା (ହି. ଶ) —15. The garland of wild flowers put on by Śrīkrushṇa.
Bijayā

ବିଜୟା ଦଶମୀ—ସଂ. ବି—ଆଶ୍ୱିନ ଶୁକ୍ଳ ଦଶମୀ—The 10th day of the bright fortnight of Āświna. [ ଉ—ଏ ଦିନ ଦୁର୍ଗାଙ୍କ ମୃଣ୍ମୟୀ ପ୍ରତିମା ଜଳରେ ବିସର୍ଜନ କରାଯାଏ ଓ ଏହାକୁ ଉତ୍କଳରେ ଦଶହରା କହନ୍ତି । ରାମଚନ୍ଦ୍ର ଏ ଦିନ ଦେବୀ ପୂଜାନନ୍ତର ଲଙ୍କାକୁ ଯୁଦ୍ଧ ଯାତ୍ରା କରିଥିଲେ । କ୍ଷତ୍ରିୟଙ୍କର ଓ ରାଜାମାନଙ୍କର ଏହା ଗୋଟିଏ ପ୍ରଧାନ ଉତ୍ସବ । ]
Bijayā daśamī

ବିଜୟା ସପ୍ତମୀ—ସଂ. ବି—ରବିବାରରେ ପଡ଼ିବା କୌଣସି ମାସର ଶୁକ୍ଳ-ପକ୍ଷର ସପ୍ତମୀ—A sunday falling on the 7th day of the bright fortnight of any lunar month. [ ଉ—ଏ ଦିନ ରାମଚନ୍ଦ୍ରଙ୍କ ପୂଜା କରାଯାଏ । ]
Bijayā saptamī

ବିଜୟିବା—ଦେ. ( ପଦ୍ୟ ) କ୍ରି – ବିଜୟ କରିବା ( ଦେଖ )—Bijaya karibā ( See ) ( ଉ—ବିଜୟି ନନ୍ଦଘୋଷରେ, ବିଜୟି ଧନୁଘୋଷରେ, କଇଳାସ ବଳାୟ ଛଡ଼ାଇ ଅଣାଇ— ଭଞ୍ଜ· ବୈଦେହୀଶବିଳାସ । )
Bijayibā
विजयी
**विजय करना**

ବିଜୟୀ—ସଂ. ବିଣ. ପୁଂ. (ବିଜୟ + ଇନ୍; ବିଜୟିନ୍ ଶବ୍ଦ ୧ମା- ୧ବ)—ଜୟଯୁକ୍ତ; ଜୟପ୍ରାପ୍ତ; ଜେତା — Victorious; triumphant.
Bijayī
( ବିଜୟିନୀ — ସ୍ତ୍ରୀ )

ବିଜୟୋଲ୍ଲାସ—ସଂ. ବି. ( ଷ. ପ. ଲୋ. )—ଜୟ କରିବା ଯୋଗୁ
Bijayollāsa ବିଜୟୀର ମନରେ ଜନ୍ମିବା ଆନନ୍ଦ—The joy felt by the victor.

ବିଜୟୋତ୍ସବ—ସଂ. ବି. ( ୬ଷ୍ଠୀ ତତ୍; )—୧ । ବିଜୟା ଦଶମୀର
Bijayotsaba ଉତ୍ସବ—1. The festival observed on the Bijayā daśamī day. ୨ । ବିଜୟଲାଭ ଉପଲକ୍ଷରେ ଅନୁଷ୍ଠିତ ଉତ୍ସବ—2. Rejoiceings on the occasion of a victory.

ବିଜର—ସଂ. ବିଣ. ପୁଂ. ( ବି+ଜର୍+ଅ )—୧ । ଜରାରହିତ—
Bijara 1. Free from old age. ୨ । ନୂଆ (ବ୍ରି. ଶ)—
(ବିଜରା—ସ୍ତ୍ରୀ) 2. New.

ବିଜଳ—ସଂ. ବି. ( ବି+ଜଳ )—୧ । ଜଳର ଅଭାବ ( ବ୍ରି. ଶ )—
Bijaḷa 1. Want of water. ୨ । ବର୍ଷାର ଅଭାବ (ବ୍ରି. ଶ)—2. Want of rain.

ବିଜଳ୍ପ—ସଂ. ବି ( ବି+ଜଳ୍ପ ଧାତୁ+ଭାବ. ଅ )—୧ । ବ୍ୟର୍ଥ ବାକ୍ୟ
Bijaḷpa କଥନ—1. Vain talk. ୨ । ସଜ୍ଜନ ବ୍ୟକ୍ତିଙ୍କ
( ବିଜଳ୍ପନ[ନା]—ଅନ୍ୟରୂପ ) ନାମରେ ଦ୍ୱେଷପୂର୍ଣ୍ଣ ମିଥ୍ୟାପବାଦ ଦେବା ( ବ୍ରି. ଶ )—2. Vilification.

ବିଜା—ପ୍ରାଦେ. ( ଯାଜପୁର ଓ ସମ୍ବଲପୁର ) ବି. ( ଭୁଲ. ସଂ. ବିଜୟ-
Bijā ସାର )—ପିଆଶାଳ ଗଛ—The Indian kino tree.

ବିଜାତ—ସଂ. ବିଣ. ପୁଂ. ( ବି+ଜାତ )—୧ । ବିଜନ୍ମା; ଜାରଜ—
Bijāta 1. Bastard. ୨ । ନୀଚକୁଳୋଦ୍ଭବ—2
(ବିଜାତକ—ଅନ୍ୟରୂପ) Baseborn. ୩ । ବର୍ଣ୍ଣ ସଙ୍କର—3. Of
(ବିଜାତା—ସ୍ତ୍ରୀ) mixed descent

ବିଜାତା—ସଂ. ବିଣ. ସ୍ତ୍ରୀ—( ବି+ଜାତ+ଆ )—ଯେଉଁ ସ୍ତ୍ରୀର ସନ୍ତାନ
Bijātā ଜନ୍ମ ହୋଇ ଅଛି—(a woman) Who has been a mother.

ବିଜାତି—ସଂ. ବି.—(ବି+ଜାତି)—୧ । ଭିନ୍ନ ଜାତି—1. A diffe-
Bijāti rent caste. ୨ । ଭିନ୍ନ ଶ୍ରେଣୀ—2. Different class, kind or species. ୩ । ନୀଚ ଜାତି—3. Low caste. ୪ । ସ୍ୱାଭାବିକ ଜାତି; ଶୂଦ୍ର ଜାତି—4. The Śūdra caste. ୫ । ପକ୍ଷୀ ଜାତି—5. Bird species. [ଉ:—ବିଜାତି କେତେ ମାତ୍ରକ-ବେଳେ ବିଭର୍ଷେ ଯେ । ଭଞ୍ଜ. ବୈଦେହୀଶବିଳାସ] । ସଂ. ବିଣ—ଭିନ୍ନ ଜାତୀୟ (ବ୍ରି. ଶ)—Of a different caste. ଦେ. ବିଣ—ଧୃଷ୍ଟ; ପ୍ରଗଲ୍ଭ—Audacious; rude; impolite; impudent.

ବିଜାତିଆ—ଦେ. ବିଣ—(ସଂ. ବିଜାତୀୟ)—ବିଜାତୀୟ (ଦେଖ)
Bijātiā Bijātiya (See)

ବିଜାତୀୟ—ସଂ. ବିଣ—( ବିଜାତି+ଈୟ )—୧ । ଭିନ୍ନଜାତିର—
Bijatiya 1. Belonging to a different caste, class or nationality. ୨ । ଭିନ୍ନ ଧର୍ମାବଲମ୍ବୀ—2. Professing different religion. ୩ । ଯାହା ସମଜାତୀୟ ନୁହେଁ—3. Which does not belong to the same caste or class. ୪ । ଅସମ; ଭିନ୍ନ—4. Dissimilar.

ବିଜାତୀୟ ଘୃଣା—ଦେ. ବି—୧ । ବେଜାୟ ଘୃଣା—1. Extreme
Bijātiya ghruṇā hatred ୨ । ବିଜାତୀୟ ବ୍ୟକ୍ତି ପ୍ରତି ଘୃଣା—2. Hatred for a person not belonging to one's caste or nationality

ବିଜାନ—ବୈଦେ. ବି. (ଅ)—ମୃତ୍ୟୁ—Death. ବିଣ. ମୃତ-Dead.
Bijāna [ ଉ—ବେଗେ ଅଙ୍ଗଦ, ଅଙ୍ଗ ତର, ବିଜାନ ସାଦ ଗଣ କର । ଭଞ୍ଜ. ବୈଦେହୀଶବିଳାସ ।]

ବିଜାର—ପ୍ରାଦେ. (ସମ୍ବଲପୁର) ବି—ମୁଷ୍କ ଛିନ୍ନ ହୋଇ ନ ଥିବା ଯୋଗୁଁଅ
Bijāra ବା ଅଣ୍ଡିରା ମଇଁଷି—An uncastrated buffalo bull.

ବିଜାସାର—ପ୍ରାଦେ. (ଯାଜପୁର) ବି—(ସଂ. ବିଜୟସାର)—ବିଜା (ଦେଖ)
Bijāsāra Bijā (See)

ବିଜିଗୀଷା—ସଂ. ବି.—(ବି+ଜି ଧାତୁ=ଜୟ କରିବା+ଇଚ୍ଛାର୍ଥେ ସନ୍
Bijigishā +ଭାବ. ଅ+ଆ)—୧ । ଜୟ କରିବାର ଇଚ୍ଛା—1. Desire to conquer.

ବିଜିଗୀଷୁ—ସଂ. ବିଣ—(ବି+ଜି ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ)—
Bijigishu ଜୟ କରିବାକୁ ଇଚ୍ଛୁକ—Desirous of conquering; desiring victory.

ବିଜିଗ୍ରାହୟିଷୁ—ସଂ. ବିଣ—(ବି+ଗ୍ରହ୍ ଧାତୁ ଣିଚ୍; ଗ୍ରାହି ଧାତୁ+
Bijigrāhayishu ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ)—ଅନ୍ୟମାନଙ୍କ
(ବିଜିଗ୍ରାହୟିଷା—ବି) ମଧ୍ୟରେ ଯୁଦ୍ଧ ଲଗାଇବାକୁ ଇଚ୍ଛୁକ—Desirous of fomenting or bringing about a battle.

ବିଜିଘୃକ୍ଷୁ—ସଂ. ବିଣ—(ବି+ଗ୍ରହ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ)—
Bijighrukshu ଯୁଦ୍ଧ କରିବାକୁ ଇଚ୍ଛୁକ—Desiring to
(ବିଜିଘୃକ୍ଷା—ବି) fight; desirous of war.

ବିଜିଘୋଷ—ଦେ. ବି—( ସଂ. ବିଜୟଘୋଷ )—ଜୟଡଙ୍କା—A war-
Bijighosha drum. [ଉ—ବିଜିଘୋଷ ଆଦି ବାଦ୍ୟ ବାଜେ ଏ ବିজয় ডংকা विजय डंका କାଳେ । ଭଞ୍ଜ. ବୈଦେହୀଶବିଳାସ ।]

ବିଜିତ—ସଂ. ବିଣ. ପୁଂ—( ବି+ଜିତ )—୧ । ପରାଭୂତ; ପରାଜିତ
Bijita (ବ୍ୟକ୍ତି)—1. Vanquished; defeated (person).
(ବିଜିତା—ସ୍ତ୍ରୀ) ୨ । ବିଜେତାଦ୍ୱାରା ଅଧିକୃତ (ପ୍ରଦେଶ)—2. Conquered (country)

ବିଜିତ ଶତ୍ରୁ—ସଂ. ବିଣ (ବି=ବହୁବ୍ରୀହି, ହୋଇଅଛି+ଶତ୍ରୁ ଯାହାଦ୍ୱାରା)
Bijita śatru ଯେ ଶତ୍ରୁକୁ ପରାଜିତ କରିଅଛି—Victorious
(ବିଜିତାରି—ଅନ୍ୟରୂପ) over one's enemies.

ବିଜିତାତ୍ମା—ସଂ. ବିଣ—(ବହୁବ୍ରୀହି; ବିଜିତ+ଆତ୍ମନ୍; ୧ମା. ୧ବ)—
Bijitātmā ଯେ ଆପଣାର ଚିତ୍ତବୃତ୍ତିକୁ ଜୟ କରିଅଛି—One who has controlled his passions; self-subdued. ସଂ. ବି—ଶିବ (ବ୍ରି. ଶ)—Śiba.

ବିଜିବା—ଦେ. କ୍ରି ( ପଦ୍ୟ )—ବିଞ୍ଚିବା; ବାୟୁକୁ ପଙ୍ଖା ପ୍ରଭୃତିଦ୍ୱାରା
Bijibā ଆନ୍ଦୋଳିତ କରିବା—To fan [ଉ—ପକ୍ଷବାତେ ଯହିଁ
ବିଜନ୍ତି ବିଜନେ ପକ୍ଷଘାତେ ରମନ୍ତା । ରାଧାନାଥ. ପାର୍ବତୀ]

ବିଜି ବିଜିମା—ପ୍ରାଦେ (ଯାଜପୁର) ବି—(ଭୁଲ. ବିରେ କୁଜୁ)—କୋକ
Biji bijimā ବାୟା (ଦେଖ)—Kokabāyā (See).

ବିଜୁ—ଗ୍ରା. ବି—(ସଂ. ବିଦ୍ୟୁତ୍; ବିଦ୍ୟୁଲ୍ଲତା)—ବିଜୁଳି (ଦେଖ)—
Biju Bijuḷi (See) [ଉ—ବିଜୁଳିତାଙ୍କ ଆକାରେ ଚଞ୍ଚଳ ।
(ବିଜୁଳିତା—ଅନ୍ୟରୂପ) ଚାରୀ. ରସବାରିଧି ।]

ବିଜୁଖୁରି—ଦେ. ବିଣ. ପୁଂ ଓ ସ୍ତ୍ରୀ—ଉଦ୍ଧଟ (ପିଲା)—Obstinate;
Bijukhuri (ବିଜୁଖୁରିଆ—ଅନ୍ୟରୂପ) refractory (boy or girl).

ବିଜୁଳି—ଦେ ବି (ସଂ. ବିଦ୍ୟୁତ୍; ଭୁଲ. ପ୍ରା. ବିଜ୍ଜୁ; ବିଜ୍ଜୁରି )—
Bijuḷi ୧ । ବିଦ୍ୟୁତ୍; ସୌଦାମିନୀ; ତଡ଼ିତ୍—1. Lightning.
বিজলী; বিজ্‌লী ୨ । ତଡ଼ିତ୍ପ୍ରବାହ; ତଡ଼ିତ୍ଶକ୍ତି—2. Electricity.
बिजली ୩ । (ସଂ. ପାରେବତ ଫଳ) ପିଚୁଡ଼ି; ପିଜୁଳି—
ମ. ବିଜଲୀ পেয়ারা अमरूत 3. Guava.

ବିଜୁଳି ଚମକ—ଦେ. ବି—୧ । ବିଜୁଳି ମାରିବାର କ୍ଷଣିକ ଆଲୋକ—
Bijuḷi chamaka 1. Flash of lightning. ୨ । ବିଜୁଳିର
(ବିଜୁଳି ଝଟକ—ଅନ୍ୟରୂପ) ବେଗଜନିତ ଆଘାତ—
বিজলি চমক बिजलीचमकना 2. Electric shock

ବିଜୁଳି ପଡ଼ି ଗୁଣା—ଦେ ବି (ବଣିଆ ଶବ୍ଦ)-ବାଦାମୀ ବା ଉମ୍ବର ଆକାରର
Bijuḷi paṛi guṇā ନାକରେ ପିନ୍ଧିବା ସୁନାର ଅଳଙ୍କାର—
A kind of golden ornament for the nose

ବିଜୁଳି ପୋକ—ପ୍ରାଦେ (ବାଲେଶ୍ୱର ଓ ମେଦିନୀପୁର) ବି—ଜୁଳୁଜୁଳା
Bijuḷi poka ପୋକ; ଖଦ୍ୟୋତ—Firefly.

ବିଜୁଳି ପୋକା—ପ୍ରାଦେ (ସିଂହଭୂମ) ବି—ବିଜୁଳି ପୋକ (ଦେଖ)
Bijuḷi pokā Bijuḷi poka (See)

ବିଜୁଳି ବତି—ଦେ. ବି (ସଂ. ବିଦ୍ୟୁତ୍+ବର୍ତ୍ତୀ)—୧ । କୃତ୍ରିମ ଉପାୟରେ
Bijuḷi bati ଉତ୍ପାଦିତ ତଡ଼ିତ୍ ଶକ୍ତିରେ ପ୍ରଜ୍ୱଳିତ ଆଲୋକମୟ
(ବିଜୁଳି ଆଲୁଅ—ଅନ୍ୟରୂପ) ପ୍ରଦୀପ; ବୈଦ୍ୟୁତିକ ଆଲୋକ—
বিজ্‌লী বাতী 1. Electric light. ୨ । ଟର୍ଚ୍ଚଲାଇଟ—
बिजली बत्ती 2. Electric torchlight.

ବିଜୁଳି ମାରିବା—ଦେ. ବି—ବିଦ୍ୟୁତର ପ୍ରକାଶ; ବିଦ୍ୟୁତର ସ୍ଫୁରଣ—
Bijuḷi māribā The flashing of lightning.
বিদ্যুৎ চমকান बिजली मारना

ବିଜୃମ୍ଭଣ—ସଂ. ବି—(ବି+ଜୃମ୍ଭ ଧାତୁ=ହାଇମାରିବା+ଭାବ. ଅନ)—
Bijṛumbhaṇa ୧ । ହାଇମାରିବା—1. Yawning ୨ ।
ପ୍ରକାଶ—2. Exhibition; manifestation. ୩ ।
ବିସ୍ତାର—3. Expansion. ୪ । ଇଚ୍ଛା—4. Desire;
hankering. ୫ । ଅଙ୍ଗ ମାର୍ଜ୍ଜନ—5. Cleansing
of the limbs. ୬ । କ୍ରୀଡ଼ା—6. Pastime; short.
୭ । ମୁଖ ବ୍ୟାଦାନ—7. Opening of the mouth;
gaping.

ବିଜୃମ୍ଭମାଣ—ସଂ. ବିଣ. ପୁଂ ( ବି+ଜୃମ୍ଭ ଧାତୁ+କର୍ତ୍ତୃ. ଆନ )—୧ ।
Bijṛumbhamāṇa ଯେ ହାଇ ମାରୁଅଛି—1. Yawning.
(ବିଜୃମ୍ଭମାଣା—ସ୍ତ୍ରୀ) ୨ । ପ୍ରକାଶମାନ—2. Manifest.

ବିଜୃମ୍ଭା—ସଂ. ବି ( ବି+ଜୃମ୍ଭ ଧାତୁ+ଅ+ଆ )—ହାଇ—
Bijṛumbhā Yawn.

ବିଜୃମ୍ଭିତ—ସଂ. ବିଣ ( ବି+ଜୃମ୍ଭ ଧାତୁ+କର୍ମ ତ )—୧ । ବିସ୍ତାରିତ—
Bijṛumbhita 1. Expanded; opened; extended.
୨ । ବ୍ୟାପ୍ତ—2. Permeated; diffused. ୩ ।
ବିକଶିତ—3. Manifested. [ ଉ—ବାମାକେ
ବିଜୃମ୍ଭିତ ହୋଇ ବସେ । ଭଞ୍ଜ. ବୈଦେହୀଶବିଳାସ । ] ୪ ।
ବିଲସିତ—4. Displayed; sportive. ସଂ. ବି ( +
ଭାବ ତ )—ବିଜୃମ୍ଭଣ; ହାଇ ମାରିବା—Yawning.

ବିଜେ—ଦେ. ବି ଓ ବିଣ—ବିଜୟ ( ଦେଖ )—Bijaya ( See )
Bije [ ଉ—ଶ୍ରୀକୃଷ୍ଣ ନିଜ କାର୍ଯ୍ୟ ଲଭେ, ନିଜ ଭୁବନେ ବିଜେ
ଯେବେ । ଜଗନ୍ନାଥ. ଭାଗବତ । ]

ବିଜେ କରା(ରେ)ଇବା—ଦେ. କ୍ରି—୧ । ରାଜା ବା ଦେବମୂର୍ତ୍ତିଙ୍କୁ ଏକ-
Bije karā(re)ibā ସ୍ଥାନରୁ ଆଣି ଅନ୍ୟ ସ୍ଥାନରେ ଉପସ୍ଥିତ
বিজয় করান କରାଇବା—1. To cause Raja or a Deity
बिजय कराना to come to a place or move from a
place. ୨ । ବସାଇବା—2. To cause to sit
[ ଉ—ବିଚିତ୍ର ମଣ୍ଡପେ ଥୋଇଲେ, ମୁନିଙ୍କି ବିଜେ
କରାଇଲେ । ଭୂପତି. ପ୍ରେମପଞ୍ଚାମୃତ । ] [ ଦ୍ର—ନିର୍ଜ୍ଜୀବ
ଦେବ ମୂର୍ତ୍ତିମାନଙ୍କ ଅନ୍ୟ ସେବକମାନେ ବିଜେ କରାଇବା
ଆବଶ୍ୟକ ହୁଏ । ସଜୀବ ରାଜାଙ୍କୁ ମଧ୍ୟ ଜଣେ ସେବକ
ଆଗରେ ଗୁଳି ବାଟକଢ଼ାଇ ( ପହଣ୍ଡି ମଣାଇ ) ନ ନେଲେ
ଅର୍ଥାତ୍ ବିଜେ ନ କରାଇଲେ ସେମାନେ ସ୍ଥାନାନ୍ତରକୁ
ଯାଆନ୍ତି ନାହିଁ । ]

ବିଜେ କରିବା—ଦେ. କ୍ରି. ( ରାଜା ଓ ଦେବତାଙ୍କ ପ୍ରତି ବ୍ୟବହୃତ )—
Bije karibā ୧ । ଗମନ କରିବା—1 To go. ( ଉ—
(ବିଜେ ହେବା—ଅନ୍ୟରୂପ) ମିଳି ସଖୀ ବ୍ରଜେ ମୋଦେ କଲେ ବିଜେ
বিজয় করা କୁଞ୍ଜରୁ କୁସୁମ ତୋଳିବାକୁ । କବିସୂର୍ଯ୍ୟ ସଙ୍ଗୀତ । )
बिजय करना, बिराजमान होना ୨ । ଯାତ୍ରା କରିବା—2. To
start. ( ଉ—ବିଜେ ହେଉ ବଳି ମନ୍ଦିରକୁ ବୋଲି,
ଅଳି କଲେ ଆସି ଠାରେ । କବିସୂର୍ଯ୍ୟ. ସଙ୍ଗୀତ । ) ୩ ।
ବିରାଜିତ ହେବା; ଉପସ୍ଥିତ ହେବା—3. To attend;
to arrive at. ( ଉ—କରନ୍ତି ବିଜେ ଶ୍ରୀପୁରୁଷୋତ୍ତମ
ତୀର୍ଥ । କୃଷ୍ଣସିଂହ. ମହାଭାରତ ଉଦ୍ଯୋଗ । ) ୪ । ଆସିବା—
4. To come. ୫ । ଅବସ୍ଥିତ ହେବା; ଉପବିଷ୍ଟ ହେବା—
5. To sit. ( ଉ—ତର୍ପଣ ଦେବାର୍ଚ୍ଚନ ସାରି, ହରି
ମନ୍ଦିରେ ଦଣ୍ଡଆରି, ଆନନ୍ଦେ କରନ୍ତି ବିଜେ, ସଭାରେ
ପୂରନ୍ତି ଦ୍ୱିଜେ । ଭୂପତି. ପ୍ରେମପଞ୍ଚାମୃତ ।) ୬ । (ଦେବତା)
ମନୁଷ୍ୟଠାରେ ଆବିଷ୍ଟ ହେବା—6. To possess
the mind of a person ( said of a Deity ).

**ବିଜେ କର୍ଣ୍ଣକଟାର(ରି)**—ଦେ. ବି—ହାଣିବାର ଅସ୍ତ୍ରବିଶେଷ—
Bije karnnakaṭāra (ri) A cutting weapon.

**ବିଜେତା**—ସଂ. ବିଣ. ପୁଂ ( ବି+ଜି ଧାତୁ+କର୍ତ୍ତୃ ତୃ; ବିଜେତୃ ଶବ୍ଦ
Bijetā ୧ମା. ୧ବ. )—ବିଜୟୀ; ଜୟୀ—Victorious; triumphant.
(ବିଜେତ୍ରୀ—ସ୍ତ୍ରୀ)

**ବିଜେୟ**—ସଂ. ବିଣ ( ବି+ଜି ଧାତୁ+କର୍ମ ଯ )—ଜୟ କରିବାର
Bijeya ଯୋଗ୍ୟ; ଯାହାକୁ ଜୟ କରାଯିବ—Fit to be conquered.
(ବିଜେତବ୍ୟ—ଅନ୍ୟରୂପ)

**ବିଜୋଡ଼**—ଦେ. ବିଣ ( ସଂ. ବି+ଯୁଗ୍ମ )—୧ । ଯୋଡ଼ା ବା ଦ୍ୱନ୍ଦ
Bijorḍa ମଧ୍ୟରୁ ଗୋଟିଏ ଶୂନ୍ୟ ବା ଅନ୍ତର୍ହିତ ହୋଇଥିବା—
বিজোড় 1. Shorn of one of a pair. ୨ । ଅଯୁଗ୍ମ
बेजोड ( ସଂଖ୍ୟା ); ବିଷମ—2. Odd ( number ). ୩ ।
ପରସ୍ପର ସହିତ ମିଳୁ ନ ଥିବା—3. Not tallying with each other.

**ବିଜ୍ଞ**—ସଂ. ବିଣ. ପୁଂ ( ବି+ଜ୍ଞା ଧାତୁ+କର୍ତ୍ତୃ ଅ )—୧ । ପଣ୍ଡିତ—
Bijña 1. Learned. ୨ । ଜ୍ଞାନୀ—2. Wise. ୩ ।
(ବିଜ୍ଞା—ସ୍ତ୍ରୀ) ବୁଦ୍ଧିମାନ୍—3. Intelligent.
[ ବିଜ୍ଞତା(ତ୍ୱ)—ସ୍ତ୍ରୀ ]

**ବିଜ୍ଞ(ଜ୍ଞା)ପ୍ତି**—ସଂ. ବି. (ବି+ଜ୍ଞା ଧାତୁ+ଣିଚ ଜ୍ଞପି ବା ଜ୍ଞାପି ଧାତୁ+ତି)
Bijña(jñā)pti ୧ । ନିବେଦନ—1. Report; announcement. ୨ । ଜ୍ଞାପନ—2. Informing. ୩ ।
ବିଶେଷ ବିବରଣ—3. Detailed information.

**ବିଜ୍ଞାତ**—ସଂ. ବିଣ—( ବି+ଜ୍ଞା ଧାତୁ+କର୍ମ. ତ )—୧ । ପରିଜ୍ଞାତ;
Bijñāta ବିଦିତ—1. Well known. ୨ । ସୁପ୍ରସିଦ୍ଧ—
2. Celebrated; famous.

**ବିଜ୍ଞାତବ୍ୟ**—ସଂ. ବିଣ. (ବି+ଜ୍ଞା ଧାତୁ+କର୍ମ. ତବ୍ୟ)—ଜ୍ଞାତବ୍ୟ—
Bijñātabya Comprehensible; knowable.

**ବିଜ୍ଞାତ ଯୌବନା**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି, ବିଜ୍ଞାତ+ଯୌବନ+
Bijñāta jaubanā ସ୍ତ୍ରୀ. ଆ )—ଯୌବନପ୍ରାପ୍ତା; ଯୁବତୀ—
(a girl) Having attained puberty.

**ବିଜ୍ଞାତା**—ସଂ. ବିଣ. ପୁଂ ( ବି+ଜ୍ଞା ଧାତୁ+କର୍ତ୍ତୃ. ତୃ; ବିଜ୍ଞାତୃ ଶବ୍ଦ
Bijñātā ୧ମା. ୧ବ )—ଯେ ଉତ୍ତମ ରୂପେ ଜାଣିଥାଏ—
(ବିଜ୍ଞାତ୍ରୀ—ସ୍ତ୍ରୀ) Knowing well.

**ବିଜ୍ଞାତି**—ସଂ. ବି (ବି+ଜ୍ଞା ଧାତୁ+ଭାବ ତି)—୧ । ଜ୍ଞାନ—1 Knowledge. ୨ । ଦେବ ଯୋନିବିଶେଷ ( ହି. ଶ )—
Bijñāti 2. A class of divine beings.

**ବିଜ୍ଞାନ**—ସଂ. ବି (ବି=ବିଶେଷ+ଜ୍ଞା ଧାତୁ+ଭାବ. ଅନ)—୧ । ବିଶିଷ୍ଟ
Bijñāna ଜ୍ଞାନ; କୌଣସି ବିଷୟ ସମ୍ବନ୍ଧେ ଜ୍ଞାତବ୍ୟ ତତ୍ତ୍ୱ—
1. Science; special knowledge. ୨ । ଜଗତର ତାବତୀୟ ବିଷୟ ସମ୍ବନ୍ଧେ ତତ୍ତ୍ୱ ନିରୂପକ ଜ୍ଞାନ—2. Special branch of knowledge. [ ଦ୍ର—ଅଧୁନା ଅନେକ ବିଜ୍ଞାନ ଆଲୋଚିତ ହେଉଅଛି । ଯଥା—ଜଡ଼ ବିଜ୍ଞାନ ବା ପଦାର୍ଥ ବିଜ୍ଞାନ, ମନୋବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ (ଗଣିତ, ଫଳିତ), ଜନ୍ତୁ ବା ଜୀବ ବିଜ୍ଞାନ, ପ୍ରାଣି ବିଜ୍ଞାନ, ଭୂ ବିଜ୍ଞାନ, ଦେହ ବିଜ୍ଞାନ, ଦର୍ଶନ ବିଜ୍ଞାନ, ଭାଷା ବିଜ୍ଞାନ, ପ୍ରତ୍ନତତ୍ତ୍ୱ, ଧାତୁ ବିଜ୍ଞାନ, ମାଟି ବିଜ୍ଞାନ । ]
୩ । ତତ୍ତ୍ୱଜ୍ଞାନ—3. Knowledge of fundamental truths about any matter. ୪ । ତତ୍ତ୍ୱବୁଦ୍ଧି—4. Intelligence ୫ । (ହିନ୍ଦୁ ମତେ) ଜ୍ୟୋତିଷ ବିଦ୍ୟା ବ୍ୟାକରଣାଦି ସପ୍ତ ବିଜ୍ଞାନ (ଯଥା—ଜ୍ୟୋତିଷ-ବ୍ୟାକରଣ, ଅଲଙ୍କାର, ନ୍ୟାୟ, ଗଣିତ, ସଙ୍ଗୀତ, ଷେତ୍ର ତତ୍ତ୍ୱ)—5. The seven sciences (according to the Hindus). ୬ । ଆତ୍ମଜ୍ଞାନ—6. Spiritual knowledge. ୭ । ଦର୍ଶନ ଶାସ୍ତ୍ର—7. Philosophy. ୮ । ଆତ୍ମା ( ହି. ଶ )—8. Soul. ୯ । ବ୍ରହ୍ମ (ହି. ଶ)—9. The Divine Spirit. ୧୦ । ଆକାଶ (ହି. ଶ)—10. The sky. ୧୧ । ନିଶ୍ଚୟାତ୍ମିକା ବୁଦ୍ଧି (ହି. ଶ)—11. Firm conviction. ୧୨ । ମୋକ୍ଷ (ହି. ଶ)—12. Salvation. ୧୩ । ଅନୁଭବଜନିତ ଜ୍ଞାନ—13. Perception; direct knowledge.
ଦେ. ବିଣ—ଜ୍ଞାନଶୂନ୍ୟ—Devoid of knowledge.
(ଉ—ବାମା ବଚନ ଶୁଣି, ବିଜ୍ଞାନ ସେ ଜ୍ଞାନେ କହେ ବାଣୀ । ଉଞ୍ଜ. ବୈଦେହୀଶବିଳାସ ।)

**ବିଜ୍ଞାନ କଲେଜ୍**—ଦେ. ବି (ସଂ. ବିଜ୍ଞାନ+ଇଂ. କଲେଜ୍)—ଯେଉଁ ଉଚ୍ଚ
Bijñāna kalej ବିଦ୍ୟାଳୟରେ ବିଜ୍ଞାନ ଶାସ୍ତ୍ରର ଶିକ୍ଷା ଦିଆଯାଏ—
বিজ্ঞান কালেজ Science college; the college of
**विज्ञान कलेज** Science.

**ବିଜ୍ଞାନ ବିଦ୍**—ସଂ. ବିଣ. ଓ ବି ( ବିଜ୍ଞାନ+ବିଦ୍ ଧାତୁ ଜାଣିବା+କର୍ତ୍ତୃ.
Bijñāna bid କ୍ୱିପ୍)—ବିଜ୍ଞାନ ସମ୍ବନ୍ଧେ ତତ୍ତ୍ୱଦର୍ଶୀ—A scientist.
(ବିଜ୍ଞାନ ବିଶାରଦ, ବିଜ୍ଞାନ ବେତ୍ତା—ଅନ୍ୟରୂପ)

**ବିଜ୍ଞାନମୟ କୋଷ**—ସଂ. ବି—୧ । (ବେଦାନ୍ତ) ପଞ୍ଚ ଜ୍ଞାନେନ୍ଦ୍ରିୟ ରୂପ
Bijñānamaya kosha କୋଷ ଦ୍ୱାରା ଆଚ୍ଛାଦିତ ମନୋବୃତ୍ତି—
1. (Bedānta) The sheath of intelligence. ୨ । ମନୁଷ୍ୟର ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ବୁଦ୍ଧି—2. The five organs of perception and intelligence in man.

**ବିଜ୍ଞାନାଗାର**—ସଂ. ବି. ( ବିଜ୍ଞାନ+ଆଗାର=ଗୃହ )—ବୈଜ୍ଞାନିକ
Bijñānāgāra ପରୀକ୍ଷା ମନ୍ଦିର—Scieoce laboratory.
(ବିଜ୍ଞାନ ମନ୍ଦିର—ଅନ୍ୟରୂପ)

**ବିଜ୍ଞାନାଚାର୍ଯ୍ୟ**—ସଂ. ବି ( ବିଜ୍ଞାନ+ଆଚାର୍ଯ୍ୟ )—ବିଜ୍ଞାନ ଶାସ୍ତ୍ର ବିଷୟକ
Bijñānāchārjya ଶିକ୍ଷା ଦାତା—Professor of science.
(ବିଜ୍ଞାନାଧ୍ୟାପକ—ଅନ୍ୟରୂପ)

**ବିଜ୍ଞାନିକ**—ସଂ ବିଣ ( ବିଜ୍ଞାନ+ଇକ )—୧ । ବିଜ୍ଞାନ ସମ୍ବନ୍ଧୀୟ;
Bijñānika ବୈଜ୍ଞାନିକ—1. Scientific. ୨ । ବିଜ୍ଞ—
Wise. ୩ । ବିଚକ୍ଷଣ—3. Clever; of sharp intellect.

ବିଜ୍ଞାନୀ—ସଂ. ବିଣ ପୁଂ—୧ । ଜ୍ଞାନବାନ୍—1. Wise. ୨ । ବିଜ୍ଞାନ
Bijñānī ସମ୍ବନ୍ଧେ ବିଶିଷ୍ଟ ଜ୍ଞାନୀ—2. Expert in any science. ୩ । ପଣ୍ଡିତ—3 Learned. ଦେ. ବିଣ—ଜ୍ଞାନଶୂନ୍ୟ; ମୂର୍ଖ—Devoid of knowledge; ignorant. (ଉ—ବିଜ୍ଞାନୀ କୈବର୍ତ୍ତ ଧୋଇଲା, ବିଶେ ପତିତ ପାବନ ନାମ ରହିଲା । ଉଞ୍ଜ. ବୈଦେହୀଶବିଳାସ । )

ବିଜ୍ଞାନୀୟ—ସଂ. ବିଣ (ବିଜ୍ଞାନ+ଈୟ)—ବିଜ୍ଞାନ ସମ୍ବନ୍ଧୀୟ—
Bijñānīya Scientific.

ବିଜ୍ଞାପକ—ସଂ. ବିଣ. ପୁଂ ( ବି+ଜ୍ଞା ଧାତୁ ଣିଚ+କର୍ତ୍ତୃ. ଅକ )—
Bijñāpaka ଯେ ଜଣାଏ—Notifying; informing.
(ବିଜ୍ଞାପୀ—ଅନ୍ୟରୂପ) ସଂ. ବି—ବିଜ୍ଞାପନକାରୀ ବ୍ୟକ୍ତି—
(ବିଜ୍ଞାପିକା, ବିଜ୍ଞାପିନୀ—ସ୍ତ୍ରୀ) Notifier; informant.

ବିଜ୍ଞାପନ(ନା)—ସଂ. ବି. (ବି+ଜ୍ଞା ଧାତୁ ଣିଚ୍ ଜ୍ଞାପି ଧାତୁ+ଭାବ. ଅନ)-
Bijñāpana(nā) ୧ । ଜଣାଣ—1. Prayer. ୨ । ଜଣାଇବା—2. Informing; announcement. ୩ । ନୋଟିସ୍; ସମ୍ବାଦ—3. Notification; advertisement. ୪ । ପ୍ରଚାର—4. Publication. ୫ । (+କରଣ.ଅନ) ବିଜ୍ଞାପନ ଲେଖାଥିବା ପତ୍ର; ଇସ୍ତାହାର—A notice; a notification.

ବିଜ୍ଞାପନ କରିବା—ଦେ. କ୍ରି—୧ । ଜଣାଇବା—1. To inform.
Bijñāpana karibā ୨ । ପ୍ରଚାର କରିବା—2. To pub-
বিজ্ঞাপন করা विज्ञापन करना lish; to notify; to advertise

ବିଜ୍ଞାପନ ଦେବା—ଦେ. କ୍ରି - ସମ୍ବାଦପତ୍ରାଦିରେ ସର୍ବସାଧାରଣଙ୍କ
Bijñāpana debā ଅବଗତି ନିମନ୍ତେ ନୋଟିସ୍ ଦେବା—
বিজ্ঞাপন দেওয়া To advertise in a newspaper; to
विज्ञापन देना notify; to give public notice.

ବିଜ୍ଞାପନ ପତ୍ର—ସଂ. ବି—୧ । ଯେଉଁ କାଗଜରେ ବିଜ୍ଞାପନ ଲେଖାଥାଏ—
Bijñāpana patra 1. Notice paper. ୨ । ଯେଉଁ ଲେଖାରେ ବିଜ୍ଞାପନ ବାହାରି ଥାଏ; ଇସ୍ତାହାର—
(ବିଜ୍ଞାପନ ପତ୍ରିକା, ବିଜ୍ଞାପନ ପତ୍ରୀ, ବିଜ୍ଞାପନ ଲିପିକା, ବିଜ୍ଞାପନ ଲିପୀ, ବିଜ୍ଞାପନ ଲେଖ } ଅନ୍ୟରୂପ)
2; Notice; notification; proclamation.

ବିଜ୍ଞାପନ ମାରିବା—ଦେ. କ୍ରି—କୌଣସି ପ୍ରକାଶ୍ୟ ସ୍ଥାନରେ ବିଜ୍ଞାପନ
Bijñāpana māribā ପତ୍ର କାନ୍ଥ ଆଦିରେ ଲଗାଇ ଦେବା—
বিজ্ঞাপন মারা To stick a notice to a wall in a pub-
विज्ञापन मारना lic road or other public place.
[ବିଜ୍ଞାପନ ଲଗା(ଗେ ଇବା—ଅନ୍ୟରୂପ]

ବିଜ୍ଞାପନୀ—ସଂ. ବି—(ବି+ଜ୍ଞାପି ଧାତୁ+କରଣ. ଅନ+ସ୍ତ୍ରୀ. ଈ)—
Bijñāpanī ବିଜ୍ଞାପନ ପତ୍ର—Notice paper.

ବିଜ୍ଞାପନୀୟ—ସଂ. ବିଣ—(ବି+ଜ୍ଞାପି ଧାତୁ+କର୍ମ.ଅନୀୟ)—ସାଧାରଣରେ
Bijñāpanīya ବିଜ୍ଞାପିତ ହେବାର ଯୋଗ୍ୟ—Fit to be
(ବିଜ୍ଞାପ୍ୟ—ଅନ୍ୟରୂପ) published by notice.

ବିଜ୍ଞାପିତ—ସଂ. ବିଣ— (ବି+ଜ୍ଞାପି ଧାତୁ+କର୍ମ. ତ)—ନିବେଦିତ; ଯାହା
Bijñāpita ଜଣାଇ ଦିଆ ହୋଇ ଅଛି—Notified; announced.

ବିଜ୍ଞେୟ—ସଂ. ବି—( ବି+ଜ୍ଞା ଧାତୁ+କର୍ମ. ଯ )—ବିଶେଷଭାବରେ
Bijñeya ଜ୍ଞାତବ୍ୟ; ଜାଣିବାର ଉପଯୁକ୍ତ—Knowable; fit to be known.

ବିଜ୍ୱର—ସଂ. ବିଣ. ପୁଂ—୧। ଜ୍ୱର ଶୂନ୍ୟ—1. Free from fever.
Bijwara ୨ । ନିଶ୍ଚିନ୍ତ—2. Free from anxiety. ୩ ।
(ବିଜ୍ୱରା—ସ୍ତ୍ରୀ) ଭୟ ଶୂନ୍ୟ—3. Fearless. ୩ । ଯାହାକୁ ଜ୍ୱର ଛାଡ଼ି ଯାଇ ଅଛି; ବିଗତଜ୍ୱର—3. One whose fever has gone down.

ବିଜ୍ୱଳ—ଦେ. ବିଣ—ଅତିଶୟ ଦୀପ୍ତିମନ୍ତ—Very shining; res-
Bijwaḷa plendent.
(ବିଜ୍ୱଳିତ—ଅନ୍ୟରୂପ) (ଉ.—ବିଳାସ ବଣରେ ଘନସାର ପ୍ରଚରିତ, ବିଜ୍ୱଳ ଛପ୍ପା ମଣ୍ଡପ କନ୍ୟାସ୍ତମ୍ଭ କୃତ । ଉଞ୍ଜ. ବୈଦେହୀଶବିଳାସ.)

ବିଝା—ଦେ. ବି. ସ୍ତ୍ରୀ—୧ । ( ସଂ. ବିନ୍ଧ୍ୟବାସିନୀ )—ଦେବୀବିଶେଷ—
Bijhā 1. Name of a popular Goddess. ୨ । ଖଣିରୁ ବାହାରିବା ମିଶ୍ରିତ ଲୌହ ଧାତୁ—2. Iron ore.

ବିଞ୍ଚଣା—ଦେ. ବି (ସଂ. ବ୍ୟଜନ)—୧ । ବ୍ୟଜନ; ପଙ୍ଖା; ତାଳବୃନ୍ତ—
Biñchaṇā হাতপাখা; পাখা 1. A fan. ୨ । ହାତ-
विजन, बेना, मोरछल ପଙ୍ଖା—2. A hand fan [ଉ—ବିଞ୍ଚଣାରେ ବିଞ୍ଚି ଉଡ଼ିଲେ ଘୃତ ନେଇ, ନ ଜଳିଲେ ଅଗ୍ନି-ଦେବତା ଦୁଃଖୀ ହୋଇ । କୃଷ୍ଣସିଂହ. ମହାଭାରତ ଶାନ୍ତି]

ବିଞ୍ଚ(ଞ୍ଚି)ଣି—ଦେ. ବି—ବିଞ୍ଚଣା (ଦେଖ)—Biñchaṇā (See)
Biñcha(ñchi)ṇi विजनी, बेनी [ ଉ—ବିଞ୍ଚନ୍ତି ଢାଳନ୍ତି କର, ବିଞ୍ଚଣି ପୁଚ୍ଛ ଚାମର—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]
ଦେ. ବିଣ—ବିଞ୍ଚଣା ପରି ପ୍ରସାରିତ—Spread or shaped like a fan. [ ଯଥା—ବିଞ୍ଚଣି ପଣନ୍ତ; ବିଞ୍ଚଣି ମନ୍ଥ ଫେଣା ।]

ବିଞ୍ଚ(ଞ୍ଚି)ଣି ପଣନ୍ତ(ତ)—ଦେ. ବି—(ସଂ. ବ୍ୟଜନ+ବସ୍ତ୍ରପ୍ରାନ୍ତ)—ସ୍ତ୍ରୀଲୋକେ
Biñcha(ñchi)ṇi paṇanta(ta) ଲୁଗା ପିନ୍ଧିବା ପରେ ଲୁଗାର ଯେଉଁ ଶେଷ ମୁଣ୍ଡ ବା କାନି ଜଙ୍ଘ (ଊରୁ) ଠାରୁ କାନ୍ଧ ପର୍ଯ୍ୟନ୍ତ ବିଞ୍ଚଣା ପରି ମେଲାଇ କରି ସଜାଇ ଥାଆନ୍ତି—The outer end of a woman's scarf (saree) arranged in the shape of a fan and spreading from the thighs to the shoulders in the front. [ଉ—ବ୍ୟକ୍ତ ବିଞ୍ଚଣି ପଣନ୍ତ । ଊରୁ ଉପରେ ଲମ୍ବିତ । ଉଞ୍ଜ. ଲାବଣ୍ୟବତୀ ]

ବିଞ୍ଚା—ଦେ. ବି—୧ । (ସଂ. ବୀଜ୍ ଧାତୁ)—୧ । ବ୍ୟଜନଦ୍ୱାରା ବାୟୁ-
Biñchā ଚାଳନ କ୍ରିୟା—1. Act of fanning. ୨ । (ସଂ.
বাতাস করা ছড়ান ବିସ୍ତରଣ)—ଇତସ୍ତତଃ ବିକ୍ଷିପ୍ତ କରଣ—
बिजन झलाना, बीखराना 2. Strewing, scattering.

**ବିଞ୍ଚା(ଞ୍ଚେ)ଇବା**—ଦେ. କ୍ରି—୧ । ('ବିଞ୍ଚିବା' କ୍ରିୟାର ଣିଜନ୍ତରୂପ)
Binchā(nche)ibā ଅନ୍ୟଦ୍ୱାରା ବ୍ୟଜନଚାଳନ କରାଇବା—
पाखा करान् To cause another to fan ୨ । ('ବିଞ୍ଚିବା'
**बिजन कराना** କ୍ରିୟାର ଣିଜନ୍ତରୂପ) ଅନ୍ୟଦ୍ୱାରା କୌଣସି ପଦାର୍ଥ
छड़ान ଭୂମିଅଧରେ ବୁଣାଇବା—2. To cause to be
**बिखरवाना** strewn. [ଉ—ସେବତୀ ପାଖୁଡ଼ା ବିଞ୍ଚାଇ ପଲଙ୍କରେ ।
କୃଷ୍ଣସିଂହ. ମହାଭାରତ ଦ୍ରୋଣ । ]

**ବିଞ୍ଚା ଘଷା**—ଦେ. ବି ( ସହଚର ଶବ୍ଦ ) —କୌଣସି ବ୍ୟକ୍ତିକୁ ବିଞ୍ଚିବା ଓ
Binchā ghashā ଆଉଁସିବା—The act of fanning and
**बजना घसना** shampooing of a person.

**ବିଞ୍ଚାବିଞ୍ଚି**—ଦେ. ବି—୧ । ବିଞ୍ଚିବା କାର୍ଯ୍ୟ—1. Act of fanning.
Binchābinchi ୨ । ପରସ୍ପରକୁ ବିଞ୍ଚିବା—2 Fanning
each other. ୩ । ବିଞ୍ଚାବିଞ୍ଚି; ଇତସ୍ତତଃ ବୁଣିଦେବା—
3. Scattering about.

**ବିଞ୍ଚିବା**—ଦେ. କ୍ରି ( ସଂ. ବୀଜ୍ ଧାତୁ )—୧ । ବ୍ୟଜନ ଚାଳନ କରିବା—
Binchibā 1. To fan [ ଉ—ବିଞ୍ଚଣାରେ ବିଞ୍ଚି ଲଢ଼ିଲେ
पाखाकरा ଘୃତ ନେଇ, ନ ଜଳିଲେ ଅଗ୍ନି ଦେବତା ଦୁଃଖୀ ହୋଇ ।
**हवादेना, बेना चलाना** କୃଷ୍ଣସିଂହ. ମହାଭାରତ ଶାନ୍ତି । ] ୨ ।
छड़ान ବିଞ୍ଚିବା; ଭୂମିରେ ବୁଣିବା;ଇତସ୍ତତଃ ବୁଣିଦେବା—
**तीतरबीतर करना;** 2. To scatter on the ground
**बखराना, बडाना** [ଉ—ଜଗତୀ ଅଟ୍ଟାଳ ଅଶେଷ, ପୁଷ୍ପ ବିଞ୍ଚନ୍ତି କୃଷ୍ଣ
**छींटना** ଗୃହେଁ । ଜଗନ୍ନାଥ. ଭାଗବତ । ] ୩ । ବପନ କରିବା—3. To
बुना sow. [ ଉ—ଖେଦ ବୀଜ ନିଜ ହୃଦକେଦାରେ ବିଞ୍ଚିଲୁରେ ।
କବିସୂର୍ଯ୍ୟ. କିଶୋରଚନ୍ଦ୍ର, ୩ ଗୀତ । ] ୪ । ବିଛେଇବା;
**बिछाना** ପ୍ରସାରିତ କରିବା—4. To spread. [ ଉ—ବିଞ୍ଚି ପଲ୍ଲବ
बिछान ନାବରେ ପଦବିକଳ୍ପି ମନରେ, ପ୍ରତିହାରୀ ପରିରେ ମଣାଇ
ବସାଇ । ଭଞ୍ଜ. ବୈଦେହୀଶବିଳାସ । ]

**ବିଞ୍ଚିଣି**—ଦେ. ବି—୧ । ବିଞ୍ଚଣା (ଦେଖ)—1. Binchanā (See)
Binchini [ ଉ—ବିଞ୍ଚିଣି ବିଞ୍ଚଇ ସଧୀର । ଯଶୋବନ୍ତ. ପ୍ରେମଭକ୍ତି
पाखा ବ୍ରହ୍ମଗୀତା । ] ୨ । କଳରେ ଚାଳିତ ବିଞ୍ଚଣା ସଦୃଶ ଶାଖାଯୁକ୍ତ
**विजनी** ବା ବିସ୍ତୃତ ବସ୍ତୁବିଶେଷ—2. The fan of a
machine; fly-wheel of a machine. [ ଦ୍ର—
ଏହି ବିଞ୍ଚିଣି ଅତି ଦ୍ରୁତ ଗତିରେ ବୁଲୁଥିବାରୁ କୌଣସି
ବ୍ୟକ୍ତିର କାର୍ଯ୍ୟ କରିବାରେ କ୍ଷିପ୍ରତାକୁ ବିଞ୍ଚିଣିର ଗତି ସଙ୍ଗେ
ତୁଳନା କରାଯାଏ; ଯଥା—କହ୍ନେଇଲା ମାତ୍ରକେ ସେ ବିଞ୍ଚିଣି
ପରି କାମ କରୁଛି । ] ୩ । କଳ ଚାଳିତ ପଂଖା—3. Fan
worked by machine; machine-driven fan.
୪ । ବିଞ୍ଚିଣି ମହୁମାଛି ( ଦେ )—4 Binchini mahu-
māchhi ( See )

**ବିଞ୍ଚିଣି ମହୁ**—ଦେ. ବି—ବିଞ୍ଚିଣି ମହୁମାଛିଙ୍କ ଦ୍ୱାରା ସଂଗୃହୀତ ମଧୁ—
Binchini mahu Honey gathered by Binchini
bees. [ ଦ୍ର—ଏ ମହୁ ବାଘରା ମହୁମାଛିଙ୍କ ସଂଗୃହୀତ
ମହୁ ଅପେକ୍ଷା ପତଳା ଓ ଆପୀତ ବର୍ଣ୍ଣ । ]

**ବିଞ୍ଚିଣି ମହୁଫେଣା**—ଦେ. ବି—ବିଞ୍ଚିଣି ମହୁମାଛିଙ୍କ ରଚିତ କ୍ଷୁଦ୍ର
Binchini mahuphenā ବ୍ୟଜନାକାର ମଧୁଚକ୍ର—A small
fan-shaped hive built by Apis Floria.

**ବିଞ୍ଚିଣି ମହୁମାଛି**—ଦେ. ବି—ଏକପ୍ରକାର ମହୁମାଛି—Apis Floria.
Binchini mahumāchhi [ ଦ୍ର—ଏମାନେ ବାଘରା ମହୁମାଛିଙ୍କ
ଠାରୁ ଛୋଟ ଓ ନକ୍ସୀ ମହୁମାଛିଙ୍କଠାରୁ ବଡ଼ । ଏମାନେ
ଛୋଟ ଗଛରେ ଫେଣା ବାନ୍ଧନ୍ତି । ଏମାନଙ୍କର ନାହୁଡ଼
ନାହିଁ । ଏମାନଙ୍କ ମହୁ ବାଘରା ମହୁମାଛିଙ୍କ ମହୁ ଅପେକ୍ଷା
ଅଳ୍ପ ଓ ତରଳ; ଏମାନଙ୍କ ଫେଣା ଛୋଟ ବିଞ୍ଚଣା
ଆକାରର ହେବାରୁ ଏମାନଙ୍କୁ ବିଞ୍ଚିଣି ମହୁମାଛି ବୋଲା-
ଯାଏ । ]

**ବିଞ୍ଚି ହେବା**—ଦେ. କ୍ରି—୧ । ନିଜର ଦେହକୁ ପଙ୍ଖାଦ୍ୱାରା ପବନ
Binchi hebā ଲଗାଇବା—1 To fan one's self by a
**खुद देना चलाना** hand fan. ୨ । ଇତସ୍ତତଃ ବିକ୍ଷିପ୍ତ ହେବା—
**विखराना** 2 To be scattered.

**ବିଞ୍ଛଣା**—ଦେ. ବି—୧ । ବିଛଣା ( ଦେଖ )—1. Bichhanā
Binchhanā ( See ). ୨ । (ପାଜବରଜୀ) ମୁଠାସରି (ଦେଖ)
2. Muthāsāri ( See )

**ବିଞ୍ଛା**—ଦେ. ବି ( ସଂ. ବିଚ୍ଛୁରଣ )—ଏଣେ ତେଣେ ବୁଣିବା—
Binchhā छड़ान **बखराना** Scattering about.

**ବିଞ୍ଛିବା**—ଦେ. କ୍ରି ( ସଂ. ବିଚ୍ଛୁରଣ )—ଏଣେ ତେଣେ ବୁଣିବା—
Binchhibā To scatter about; to strew.
छड़ान **बिखारना**

**ବିଞ୍ଜା**—ପ୍ରାଦେ. ( ବାଲେଶ୍ୱର ) ବି—୧ । ଓଲୁଅ ଦେହରେ ବାହାରି
Binjā ଥିବା ଛୋଟ ଛୋଟ ଆଳୁ ମାନ୍ଦା ଭଳି ପଦାର୍ଥ—1. Escu-
lent bulbs growing on the wild arum.
୨ । ଛୁଦ୍ର ଛୋଟ ଛୋଟ ଓଲ—2. Small arum.

**ବିଞ୍ଜୋଳି**—ସଂ. ବି—ଶ୍ରେଣୀ; ପଂକ୍ତି—Line; row.
Binjoli

**ବିଞ୍ଜ୍ୱାରି**—ଦେ. ବି ( ନାମ )—ଛତିଶଗଡ଼ ଭାଷାର ଅନ୍ତର୍ଗତ ଭାଷା
Binjwāri ବିଶେଷ—A sub-dialect of the Chhatis-
**विंझवारी** gardi language.

**ବିଞ୍ଝା(ଞ୍ଝା)ଲ୍**—ପ୍ରାଦେ. (ସମ୍ବଲପୁର) ବି—ଉଚ୍ଚ ଅନାର୍ଯ୍ୟ ଜାତିବିଶେଷ—
Binjā(njhā)l A high class of non-Aryans in
(ବିଝାଲ୍, ବିଝଲ—ଅନ୍ୟରୂପ ) Sambalpur.

**ବିଟ୍ (ଧାତୁ)**—ସଂ—୧ । ଆକ୍ରୋଶ କରିବା—1. To envy. ୨ ।
Bit (root) ଗାଳିଦେବା—2. To chide. ୩ । ଅଭିଶାପ ଦେବା
—3. To curse. ୪ । ଶବ୍ଦ କରିବା—4. To make
a sound. ୫ । ବଞ୍ଚନା କରିବା—5. To cheat.

**ବିଟ୍**—ସଂ. ବି (ବିଶ୍ ଧାତୁ = ବ୍ୟାପିବା + କର୍ତ୍ତୃ. କ୍ୱିପ୍; ବିଟ୍ ଶବ୍ଦ; ୧ମା.
Bit ୧ବ)—୧ । ବିଷ୍ଠା; ଗୁହ—1. Night soil. ୨ । ବୈଶ୍ୟ—
बीट 2. Baisya. ବୈଦେ. ବି—୧ । (ଇଂ. ବୀଟ୍) ଏକ ପ୍ରକାର
**बीट** ରକ୍ତିମ ନାଲି ମୂଳା—1. The Beet root [ଦ୍ର—ଏହାର

ମୂଳ ମୂଲାପର; ଭଲୁ କାଲ ଓ ମିଠା । ଏଥିରୁ ଆଧୁନିକ ବିଜ୍ଞାନ ପ୍ରକ୍ରିୟାଦ୍ୱାରା ଚିନି ପ୍ରସ୍ତୁତ ହେଉଅଛି ।] ୨ । (ଇଂ, ବୀଟ୍ )—ଚଉକିଦାରର ନିର୍ଦ୍ଦିଷ୍ଟ ଗସ୍ତ—2. A watchman's beat or round. ୩ । ପ୍ରତ୍ୟେକ ଚଉକିଦାରର ଜଗିବାର ନିର୍ଦ୍ଦିଷ୍ଟ ସୀମା—3. The respective jurisdiction of a watchman.

**ବିଟ୍ କଲ୍ଲା**—ପ୍ରାଦେ (ସମ୍ବଲପୁର; ଗଡ଼ଜାତ) ବିଣ—ଭିପଣ୍ଡ କଳା—
Bit-kalā (ବିଟ୍ କଲ୍ଲିଆ—ଅନ୍ୟରୂପ) Deep black.

**ବିଟ୍(ଟି) କାଲିଆ**—ଦେ. ବିଣ (ସଂ. ବିକଟ+କାଲ)—ଗାଢ଼ କୃଷ୍ଣବର୍ଣ୍ଣ—
Bit-(ti) kālia 1. Deep black. ୨ । ( ସଂ. ବିକଟ
बिट्केल, बिटकाल ବିକରାଳ) ବିକଟ; ଭୀଷଣ—2. Horrid.
**विकट काला, बिकराल**

**ବିଟ୍‌ଖଦିର**—ସଂ. ବି—ପାକଡ଼ା ଖଇର—
Bit-khadira Brown catechu.

**ବିଟ୍ ଘର**—ଦେ. ବି (ଇଂ. ବୀଟ୍+ ସଂ. ଗୃହ)—ପ୍ରହରୀମାନଙ୍କ ନିମନ୍ତେ
Bit-ghara बीटघर **बिटघर** ଆଶ୍ରୟ ଗୃହ—Beat house.

**ବିଟ୍‌ଚର**—ସଂ. ବି (ବିଟ୍=ବିଷ୍ଠା+ଚର୍ ଧାତୁ+କର୍ତ୍ତୃ. ଅ)—୧ । ଗ୍ରାମ୍ୟ-
Bit-chara ଶୂକର—1. Domestic pig. ୨ । ଗୋବର ପୋକ—2. Beetle; insect boring in cow-dung. ୩ । ବିଷ୍ଠାକୃମି—3. Insect boring in human dung.

**ବିଟ୍ ପତି**—ସଂ. ବି—ଜାମାତା (କ୍ଲାନେକ୍ସ)—
Bit-pati Son-in-law.

**ବିଟ୍ ପ୍ରିୟ**—ସଂ. ବି—ଶିଶୁମାର (କ୍ଲାନେକ୍ସ)—
Bit-priya Gangetic porpoise.

**ବିଟ ବିଟ୍**—ପ୍ରାଦେ (ସମ୍ବଲପୁର) ବିଣ ର ବିଣ- ଭିପଣ୍ଡ (କଳା); ଅତ୍ୟନ୍ତ—
Bit-bit Very (dark); deep (black).

**ବିଟ୍‌ବିଟ୍ କ(କା)ଲିଆ**—ପ୍ରାଦେ (ସମ୍ବଲପୁର) ବିଣ—ଭିପଣ୍ଡ କଳା—
Bit-bit ka(kā)liā Deep black.

**ବିଟ୍ ଲିହା**—ପ୍ରାଦେ (ସମ୍ବଲପୁର) ବିଣ—୧ । ବିଟାଳିଆ; ଅଛୁଆ—
Bit-lihā 1. Outcasted. ୨ । ଯେ ଯାହାରିହାତାହା ଘରେ ଅନ୍ନ ଭୋଜନ କରେ—2. Taking food cooked by others, irrespective of caste.

**ବିଟ୍‌ସଙ୍ଗ**—ସଂ. ବି—ମଳରୋଧ (କ୍ଲାନେକ୍ସ)—
Bit-sanga Constipation.

**ବିଟ୍(ଟ) ସାରିକା**—ସଂ. ବି ( ବିଟ୍=ବିଷ୍ଠା +ସାରିକା=ସାରି )—ଗୁଳ୍ମ
Bit-(ta) sārikā କାଳିକା ଚଢ଼େଇ—A kind of myna;
(ବିଟକାରିକା—ଅନ୍ୟରୂପ) Tordus Salica.

**ବିଟ**—ସଂ. ବି (ବିଟ୍ ଧାତୁ=ଗାଳି ଦେବା; ଶବ୍ଦ କରିବା +କର୍ତ୍ତୃ. ଅ)—
Bita ୧ । ଲମ୍ପଟ; କାମୁକ—1. A lecher; an adulterer; a fornicator. ୨ । ଉପପତି; ଇଆର—2. A paramour. ୩ । କପଟ—3. Hypocricy; deceit. ୪ । ଧୂର୍ତ୍ତ ବ୍ୟକ୍ତି—4. A rogue. ୫ । କାମଶାସ୍ତ୍ରବେତ୍ତା—5. A person well versed in the amatory science. ୬ । ପର୍ବତବିଶେଷ—6. Name of a mountain. ୭ । ପକ୍ଷୀ—7. Bird. ୮ । ଏକପ୍ରକାର ଖନିଜ ଦୁର୍ଗନ୍ଧମୟ ଲବଣ; କଳା ଲବଣ; ଖଣ୍ଡ ଲବଣ—8. A kind of salt; black salt; foetid salt. ୯ । ନାରଙ୍ଗ ଗଛ—9. Orange tree. ୧୦ । ମୂଷିକ—10. Rat ୧୧ । ବିସ୍ତାର—11. Divergence; expansion. ୧୨ । ପାକଡ଼ା ବା ପାଖରି ଖଇର; ପାଞ୍ଚୁଁଶିଆ ଖଇର—12. Brown catechu. ୧୩ । କାବ୍ୟାଦିରେ ବର୍ଣ୍ଣିତ ନାୟକବିଶେଷ—1, A class of heroes in fiction or romance; a dissolute and spendthrift person. [ ଦ୍ର—ସାହିତ୍ୟ ଦର୍ପଣ ମତରେ ଯେଉଁ ନାୟକ ବିଷୟ ଭୋଗ ଯୋଗୁଁ ଆପଣାର ସବୁ ସମ୍ପତ୍ତି ନଷ୍ଟ କରେ, ଭାରି ଧୂର୍ତ୍ତ, ବେଶଭୂଷାରେ ଆଡ଼ମ୍ବର କରେ ଓ କଥାରେ ଭାରି ଚତୁର ତାହାକୁ ବିଟ ବୋଲାଯାଏ—ହି. ଶ. । ]

ଦେ. ବି—ପୁଲ୍ଲଙ୍ଗଗଡ଼ି ବା ମାର୍ବଲ୍ ଖେଳରେ ବ୍ୟବହୃତ ମାରବଲ୍ ଆଦି ଗୋଲାକାର ବସ୍ତୁ—Marbles or nuts used in the game of marbles. ବୈଦେ. କୋର; बेनी ବି. ( ଇଂ. ବୀଡ୍=ମାଳା )—୧ । କାଠର ବା ଧାତୁର बीट ଲମ୍ବ, ବର୍ତ୍ତୁଳ ଓ ସରୁଆ ପଟି ( ଯାହା ପଟାର ଧଡ଼ିରେ ଲମ୍ବ ହୋଇ ମରାଯାଏ )—1. A convex strip of metal or wood put on the frieze of a plate. ୨ । ( ଇଂ. ବୀଡ୍=ମାଳା ) କାନ୍ଥ ଆଦିର କାନ୍ଥସଠାରୁ ଖଣ୍ଡିଏ ଛାଡ଼ି ତଳେ ଚୂନର ଯେଉଁ ସରୁ ପଟି ରଚିତ ହୁଏ—2. An astragal.

**ବିଟକ**—ସଂ. ବି—ବିଟିକା ( ଦେଖ )
Bitaka Bitikā ( See )

**ବିଟ ଖଇର**—ଦେ. ବି (ସଂ. ବିଟ୍‌ଖଦିର; ବିଟ୍=ବିଷ୍ଠା+ଖଦିର; ଏହାର
Bita khaira ବୃକ୍ଷ ଦୁର୍ଗନ୍ଧମୟ ଥିବାରୁ )—ବବୁରଜାତୀୟ ଏକ-
ଗୁୟେବାବଲା ପ୍ରକାର ଦୁର୍ଗନ୍ଧମୟ ବୃକ୍ଷ—A kind of foul-smel-
**गन्धाबबुल; दुर्गन्धखैर** ling tree of the Acacia species; Mimosa; sponge tree.

**ବିଟ ଖେଳ**—ଦେ. ବି—ଏକପ୍ରକାର ଖେଳ ( 'ପୁଲ୍ଲଙ୍ଗଗଡ଼ି ଖେଳ'
Bita khela ତଳେ ନୋଟ୍ ଦେଖ )—A kind of game ( see notes under Pulāngagardi khela ).

**ବିଟଙ୍କ**—ସଂ. ବି ( ବି=ପକ୍ଷୀ+ଟଙ୍କ୍ ଧାତୁ=ବନ୍ଧନ କରିବା+ଅଧିକରଣ.
Bitanka ଅ )—୧ । ପାରାଭାଡ଼ି; କପୋତପାଳିକା—1. A pigeon hole. ୨ । ଗୃହପାଳିତ ପକ୍ଷୀର ଉପବେଶନ ଯୋଗ୍ୟ T, ଏହି ଚିହ୍ନ ଅକୃତିର ଆସନ; ଆଡ଼ା—2. A perch for a bird to sit upon. ୩ । (+କରଣ ଅ ) ପକ୍ଷୀ ଧରିବା ଫାଶ ( କ୍ଲାନେକ୍ସ )—3. Bird-net; snare.

**ବିଟପ**—ସଂ. ବି ( ବିଟ=ଲମ୍ପଟ; ପକ୍ଷୀ ଆଦି+ପା ଧାତୁ=ରକ୍ଷା କରିବା; ଆଶ୍ରୟ ଦେବା+କର୍ତ୍ତୃ. ଅ, ଅଥବା ବିଟ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅପ )—୧ । ବୃକ୍ଷଶାଖା; ଡାଳ—
Bitapa
1, Branch of a tree. ୨ । ପଲ୍ଲବ—2. Tender leaves of trees. ୩ । (ପୁଂ) ସିଦ୍ଧ;ଅତିଶୟ ଲମ୍ପଟ ବ୍ୟକ୍ତି—3. A very lecherous person; an adulterer.

**ବିଟପତି**—ସଂ. ବି ( ବିଟ୍=କନ୍ୟା, ବୈଶ୍ୟ+ପତି )—୧ । ଜାମାତା; ଜୋଇଁ—1. Son-in-law. ୨ । ପ୍ରଧାନ ବଣିକ; ବଡ଼ ମହାଜନ—2. A big merchant.
Bitapati

**ବିଟପ ଯୁବତୀ**—ଦେ. ବି. ସ୍ତ୍ରୀ ( ସଂ. ବିଟପ+ଯୁବତୀ )—ବିଟପୀ; କୁଳଟା ସ୍ତ୍ରୀ—An adulteress. ( ଉ—ଦୁର୍ଗନ୍ଧ ପଥ ଆବୋରନ୍ତି, ଯେସନ ବିଟପ ଯୁବତୀ—ଜଗନ୍ନାଥ. ଭାଗବତ । )
Bitapa jubati

**ବିଟପାଚାର**—ସଂ. ବି ( ବିଟପ+ଆଚାର )—୧ । ଅସଚ୍ଚରିତ୍ର—1. Bad character. ୨ । କଦାଚାର—2. Evil ways.
Bitapāchāra

**ବିଟପାଚାରୀ**—ସଂ. ବିଣ ପୁଂ—କଦାଚାରୀ; ଯେ ମନ୍ଦ ଆଚରଣ କରେ—Immoral; of evil ways.
Bitapāchāri
( ବିଟପାଚାରିଣୀ—ସ୍ତ୍ରୀ ).

**ବିଟପୀ**—ସଂ. ବି (ବିଟପ=ଶାଖା+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—୧ । ବୃକ୍ଷ—1, Tree. ୨ । ବଟବୃକ୍ଷ—2. Banian tree. ଦେ. ବି. ସ୍ତ୍ରୀ—କୁଳଟା ସ୍ତ୍ରୀ; ବ୍ୟଭିଚାରିଣୀ—Adulteress.
Bitapi

**ବିଟପୋଦର**—ଦେ. ବି ( ୬ଷ୍ଠୀ ତତ୍ )—କୁଞ୍ଜ—Grove. ( ଉ—ଯେସନେ ଚକୋର୍ଯ୍ୟା ପକ୍ଷୀ, କାରୁଣ କରଇ କାଶି ତେସନ ମୋ ଅଭ୍ୟର୍ଥନା ବିଟପୋଦରେ—ଗ୍ରାତୀ. ରସବାରିଧି । )
Bitapodara

**ବିଟପ୍ରିୟ**—ସଂ. ବି—ମୁଗ—A kind of pulse; Phaseolus Mungo.
Bitapriya

**ବିଟଲବଣ**—ଦେ. ବି ( ସଂ. ବିଡ଼୍ଲବଣ )—କଳା ଦୁର୍ଗନ୍ଧମୟ ଲବଣ-ବିଶେଷ—Black salt.
Bitalabana
बिटनून **साँचर नमक**

**ବି ଟାଇମ୍ ପୀସ୍**—ବୈଦେ. ବି ( ଇଂ )—ଟେବଲ ଉପରେ ରଖାଯିବା କ୍ଷୁଦ୍ର ଘଣ୍ଟା—The Bee time-piece. [ଦ୍ର—ଏହା ଆମେରିକାରେ ନିର୍ମିତ । ଏଥିର ଟ୍ରେଡ୍ ମାର୍କ ( Trade mark bee ) ମହୁମାଛି ) । ]
Bi taim pis
बी टाईम पीस
**बी टाइम पीस**

**ବିଟାକାଣ୍ଡ**—ପ୍ରାଦେ. (ସମ୍ବଲପୁର) ବି—ଚଉଡ଼ାମୁହାଁ ଏକପ୍ରକାର ଶର—A kind of broad-edged arrow. ପ୍ରାଦେ. (ବିଟାକାଣ୍ଡ—ଅନ୍ୟରୂପ) , (ଗଡ଼ଜାତ) ବି—ଏକପ୍ରକାର କାଣ୍ଡ—A kind of ball-topped arrow. [ଦ୍ର—ଏହାର ଅଗ ଗୋଟାଳିଆ ବା ମୋଟା । ଏହା ଯାହା ଦେହରେ ବାଜେ ତାକୁ ଭାଙ୍ଗ କରେ । ]
Bitākānrd

**ବିଟାପରା**—ପ୍ରାଦେ. ( କଳାହାଣ୍ଡି ) ବିଣ—ଅଳ୍ପ—A little.
Bitāparā

**ବିଟା(ଟ)ଳ**—ସଂ. ବିଣ. ପୁଂ ( ବିଟ୍ ଧାତୁ=ବଞ୍ଚନା କରିବା+ଆଳ; ଅଳ )—୧ । ପ୍ରତାରକ; ଧୂର୍ତ୍ତ—1. Cheating. ୨ । କାମୁକ—2. Lascivious libertine. ୩ । ଦୁଷ୍ଟ—3. Wicked ଦେ. ବିଣ—ବିଟାଳିଆ ( ଦେଖ )—Bitālia ( See )
Bitā(ta)la
( ବିଟାଳୀ—ସ୍ତ୍ରୀ )

**ବିଟାଳିଆ**—ଦେ. ବିଣ. ପୁଂ ( ସଂ. ବିଟାଳ )—୧ । ଉଦରଜ୍ୱାଳା ନିବାରଣାର୍ଥ ଯେ ନୀଚଜାତୀୟ ବ୍ୟକ୍ତି ଘରେ ଅନ୍ନ ଭୋଜନ କରି ଜାତି ହରାଏ; ବିକଳା—1. ( a person ) Who loses his caste on account of dining in the house of persons of lower caste to satisfy the pangs of hunger. ୨ । ଉଦରଜ୍ୱାଳାରେ ହିତାହିତ ଜ୍ଞାନଶୂନ୍ୟ—2. Devoid of all sense of proportion on account of hunger ୩ । ଅଜାତିଆ; ଜାତିଚ୍ୟୁତ—3. Outcasted; excommunicated. ୪ । ଅପବିତ୍ର; ଅନାଚାର ଯୋଗୁଁ ଅପବିତ୍ର—4. Made impure on account of doing forbidden acts ୫ । ଦାରିଦ୍ର୍ୟ; ଅତି ଦରିଦ୍ରତା ଯୋଗୁଁ ନିର୍ଲଜ୍ଜ 5. Shameless through poverty. ଦେ. ବି—ଯେଉଁ ଖାଦ୍ୟ ଖାଇଲେ ଜାତି ନଷ୍ଟ ହୁଏ—The food which makes a man lose his caste if taken.
Bitālia
बिटाल
बेइज्जता;
ବିଟାଳୀ }
ବିଟାଳେଇ } ସ୍ତ୍ରୀ

**ବିଟାଳିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଜାତିଚ୍ୟୁତ କରିବା—1. To excommunicate a person. ୨ । ଅପବିତ୍ର କରିବା—2. To make impure. ୩ । ଅପଣା ପରିବାରରୁ ବାହାର କରିଦେବା—3. To drive out from one's family.
Bitāliba

**ବିଟିକା**—ସଂ, ବି—ପାନ ଖିଲ—A roll of betel filled with nut, spices etc. (ଉ—ବାମା ବାମ ପାଦ ଲାଗି ଗମନେ, ବିଟିକା ଶେଷ ପାନର ପଡନେ—ଉପେ. ବୈଦେହୀଶବିଳାସ । )
Bitikā

**ବିଟୁ(ଟୋ)ଳ(ଳା)** ଦେ. ବିଣ—(ସଂ. ବିଟାଳ)—୧ । ଦୁଷ୍ଟ—1 Wicked; villanous ୨ । ଅନିଷ୍ଟକାରୀ—2. Injurious. ( ଉ—ପିଠାଯାକରେ ମଣ୍ଡା ବିଟୋଳ ମଣିଷ ଯାକରେ ଲଣ୍ଡା ବିଟୋଳ । ରଗ ।) ୩ । ଚରିତ୍ର ଦୁଷିତ—3. Scandalised, ୪ । ଜାତିଚ୍ୟୁତ 4. Outcasted. ୫ । ନୀଚକୁଳୋଦ୍ଭବ—5 Base-born.
Bitu(to)la(lā)
बिटुल बिटोल
**अजात**

**ବିର୍ଦ୍ଦ (ଧାତୁ)**—ସ—୧ । —
Bird (root)

୦୯

ବିଡ଼୍ ଘାତ—ସଂ. ବି—ମଳମୂତ୍ର ରୋଧ—
Bird-ghāta Stoppage of urine and stool.

ବିଡ଼୍ଜ—ସଂ. ବିଣ (ବିଟ୍=ବିଷ୍ଠା+ଜନ୍ ଧାତୁ+କର୍ତ୍ତୃ. ଅ)—ବିଷ୍ଠାଜାତ-
Bird-ja Produced from excrements.

ବିଡ଼୍ ବନ୍ଧ—(୬ଷ୍ଠୀ ତତ୍; ବିଟ୍+ ବନ୍ଧ)—ମଳାବରୋଧ—
Bird-bandha Constipation.

ବିଡ଼୍ ବରାହ—ସଂ. ବି (ବିଟ୍=ବିଷ୍ଠା+ବରାହ)—ଗ୍ରାମ୍ୟଶୂକର—
Bird-barāha Domestic pig.

ବିଡ଼୍ ଭଙ୍ଗ—ସଂ. ବି—ବହୁତ ଝାଡ଼ା ହେବା—Profuse evacuation.
Bird-bhanga (ବିଡ଼୍ଭେଦ—ଅନ୍ୟରୂପ)

ବିଡ଼୍ ଭେଦୀ—ସଂ. ବି ଓ ବିଣ—ଜୁଲାପ; ଝାଡ଼ା କରାଇବା ଔଷଧ—
Bird-bhedī Cathartic; purgative.

ବିଡ଼୍ ଲବଣ—ସଂ. ବି (ବିଟ୍+ଲବଣ)—ବିଟଲୁଣ—Black salt.
Bird-labana (ବିଡ଼୍ଗନ୍ଧ—ଅନ୍ୟରୂପ)

ବିଡ଼—ଦେ. ବି (ସଂ. ବିଟ୍)—ମଳ; ଗୁହ—Ordure. ଦେ. ବିଣ—
Birda ଦୁର୍ଗନ୍ଧମୟ—Of offensive smell; fœtid

ବିଡ଼ଙ୍ଗ—ସଂ. ବି (ବିଡ଼୍ ଧାତୁ=ଭେଦ କରିବା+କର୍ତ୍ତୃ. ସଞ୍ଜ୍ଞାର୍ଥେ. ଅଙ୍ଗ)-
Birdanga ୧ । ନାତି ବୃହତ୍ ଗୁଳ୍ମ ବିଶେଷ—1. Embellia Ribes. [ଦ୍ର—ଏହା ଲଟେଇ ଲଟେଇ ମାଡ଼େ । ଏହାର ପତ୍ର ରୋମଶୂନ୍ୟ । ଏହା ବୋମ୍ବାଇ, ଆସାମ ଓ ବ୍ରହ୍ମ ଦେଶରେ ଜନ୍ମେ । ] ୨ । ବାଇବିଡ଼ଙ୍ଗ—2. Embellia Robusta. ସଂ. ବିଣ—ଅଭିଜ୍ଞ; ବିଜ୍ଞ—Learned; experienced.

ବିଡ଼ମ୍ବ—ସଂ. ବି ( ବି=ବିଶେଷଣରୂପେ+ଡମ୍ବ ଧାତୁ=କ୍ଲେଶ
Birdamba ଦେବା+ଭାବ. ଅ)—୧ । କ୍ଲେଶ; ଯନ୍ତ୍ରଣା—1. Anguish; pain. ୨ । ପ୍ରତାରଣା; ବଞ୍ଚନା—2. Cheating; deception. ୩ । କ୍ଲେଶ ଦେବା—3. Afflicting; distressing. ୪ । ଅନୁକରଣ—4. Imitation (Apte). ଦେ. ବି—ବିଳମ୍ବ—Delay. ଉ—ବିଡ଼ମ୍ବ କୋହଳ ଅଭିଶୟରେ, ବାଳ ରବିଦ୍ୟୋତ ଜବା ବି ଧରେ । ଭଞ୍ଜ. ବୈଦେହୀଶବିଳାସ ।] ଦେ. ବିଣ—ବିଲମ୍ବିତ; ଯାହା ତଳକୁ ଲମ୍ବିଅଛି—Hanging; pendant. [ଉ—ବିଡ଼ମ୍ବ ନୂତନ ମଞ୍ଜୁଳ ଚଳିତକ ଗଗନେ । ଭଞ୍ଜ. ବୈଦେହୀଶବିଳାସ ।] । ଦେ (ପ୍ରାଚୀନପଦ୍ୟ) ଅ—(ସଂ. ବିଡ଼ମ୍ବ=ଅନୁକରଣ) ପରି; ସଦୃଶ—Like. [ଉ—ବିଡ଼ମ୍ବ ଓଷ୍ଠ କେଶାନ୍ତ, କନକଚରଣ ହସ୍ତ, ବିଦ୍ରୁମ ମାଣିକ୍ୟ ଅମୂଲ୍ୟ ଛବିରେ ଚଉ ହୁଏ ଅନୁରକ୍ତ । ଭଞ୍ଜ. ବୈଦେହୀଶବିଳାସ ।]

ବିଡ଼ମ୍ବକ—ସଂ. ବିଣ (ବି+ଡମ୍ବ ଧାତୁ+ଅକ)—ମିଥ୍ୟାଆଶା ପ୍ରଦାନ
Birdambaka (ବିଡ଼ମ୍ବିକା—ସ୍ତ୍ରୀ) କାରୀ—Tantalising.

ବିଡ଼ମ୍ବଣ(ଣା)—ଦେ. ବି ( ସଂ. ବିଡ଼ମ୍ବନ )—୧ । ଯନ୍ତ୍ରଣା; କ୍ଲେଶ—
Birdambana(nā) 1. Trouble. ୨ । ଦୁଃଖ-2. Distress.
विड़म्बन ୩ । ବଞ୍ଚନା; ପ୍ରତାରଣା—2. Deceit; knavery. [ଉ—ଅଜ୍ଞାନ ବିଡ଼ମ୍ବଣ ଏହୁ, ଏବେ ଗୋବିନ୍ଦଙ୍କୁ ନ ପାଇ । ଜଗନ୍ନାଥ. ଭାଗବତ ।] ୪ । ହଟହଟା ବା ଅକଡ଼ୁଆ ଅବସ୍ଥା—4. Awkward predicament; ୫ । ଅମଙ୍ଗଳଜନକ ଘଟଣା—5. Portentous event; an event foreboding evil. ୬ । ଅଶ୍ରୁତପୂର୍ବ ବା ଅଦୃଷ୍ଟପୂର୍ବ ଅମଙ୍ଗଳଜନକ ଘଟଣା—6. An unheard of bad event. ୭ । ପ୍ରାକୃତିକ ଘଟଣାର ବିପର୍ଯ୍ୟୟ—7. Happening of unnatural events; preter-natural event. [ଉ—ସବୁହିଁ ବିଡ଼ମ୍ବଣ ଗାଉ, ଯୋଗୀଙ୍କ ଅର୍ଦ୍ଧାଙ୍ଗେ ଯୁବତୀ । ଭୂପତି, ପ୍ରେମପଞ୍ଚାମୃତ ।] ୮ । ନିନ୍ଦିତ କର୍ମ; କୁକର୍ମ—8. An evil deed. [ଉ—ଭେଟିଲେ ମାତା ପୁତ୍ରଗଣ, ସେ କୁନ୍ତୀ ସଙ୍ଗେ ବିଡ଼ମ୍ବଣ । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।] ଦେ. ବିଣ—୧ । ମନ୍ଦ ପ୍ରକୃତିକ;
(ବିଡ଼ମ୍ବଣିଆ—ଅନ୍ୟରୂପ) କୁତ୍ସିତ; ପରପଞ୍ଚ—1. Vile. ୨ ।
(ବିଡ଼ମ୍ବଣୀ—ସ୍ତ୍ରୀ) ଅଖାଡ଼ୁଆ—2. Awkward ୩ । ଅସାଧାରଣ ଭାବରେ ମନ୍ଦ (ବ୍ୟକ୍ତି)—3. Uncommonly bad (person). ୪ । ଯନ୍ତ୍ରଣାଦାୟକ—4. Painful; afflicting. ୫ । ମିଥ୍ୟା ଆଶା ଦେଇ ଭଣ୍ଡାଉଥିବା—5. Tantalising. ୬ । ହଟହଟା ହେବା—6 Placed in a queer or awkward predicament ୭ । ଦହଗଞ୍ଜ ହେଉଥିବା—7. Suffering. ୮ । ଅମଙ୍ଗଳସୂଚକ—8. Portentous. ୯ । (ମନ୍ଦ ଅର୍ଥରେ) ଅପ୍ରାକୃତିକ; ପ୍ରକୃତିର ନିୟମବିରୋଧୀ—9. Unnatural; uncommon; preter-natural. ୧୦ । ବୃଥା—10. Useless. [ଉ—ବିଡ଼ମ୍ବଣ ଅନ୍ୟ ଦୃଷ୍ଟି ଯେ ଟଳ ଟଳ ଗଗନେ ଭଞ୍ଜ. ବୈଦେହୀଶବିଳାସ । ]

ବିଡ଼ମ୍ବନ(ନା)—ସଂ. ବିଣ [ବି+ଡମ୍ବ ଧାତୁ+ଭାବ. ଅନ; +( ସ୍ତ୍ରୀ. ଆ)]—୧ । ଦୁଃଖ; ଯନ୍ତ୍ରଣା; କ୍ଲେଶ—
Birdambana(nā) 1. Trouble; pain; distress. ୨ । ବଞ୍ଚନା; ପ୍ରତାରଣା—2. Deceit; cheating. ୩ । କ୍ଲେଶପ୍ରଦାନ—3. Distressing; paining. ୪ । ଅନୁକରଣ—4. Copying; imitation. ୫ । ସଦୃଶୀକରଣ—5. Equalising. ୬ । ଦୂରୀକରଣ—6. Driving away; expulsion. ୭ । ମିଥ୍ୟାଆଶା ଦେଖାଇବା—7. Tantalisation. ଦେ. ବି—ବିଡ଼ମ୍ବଣ କଥା; ଅପ୍ରାକୃତିକ ବିଷୟ—Uncommon thing. [ଉ—ଯାହା ଶୁଣି କହିଲେ ଉଠେ ବିସ୍ମୟଣ, କହୁଛ କପାଇଁ ମନ୍ତ୍ରୀ ଏ ବିଡ଼ମ୍ବନ । କୃଷ୍ଣସିଂହ, ମହାଭାରତ ବନ ।] ଦେ. ବିଣ—
विडंबना ୧ । ଅସାଧାରଣ—1. Extraordinary; uncommon. ଉ—ମସ୍ତକରେ ମଣ୍ଡନ୍ତେ ଫୁଲମାଳମାନ, ଶୋଭା ଦିଶି ଦିଶିଲା ସେ କଥା ବିଡ଼ମ୍ବନ । କୃଷ୍ଣସିଂହ, ମହାଭାରତ ସଭା] ୨ । ଅସୁନ୍ଦର—2. Ungraceful. ୩ । ଅଡ଼ୁଆ; ଅଶ—

ହୋଇଥ—3. Awkward. ୪ । ଯନ୍ତ୍ରଣା ପ୍ରାପ୍ତ; କ୍ଲେଶିତ—4. Troubled; distressed· [ଉ—କପୁରୀ ହୋଇଣ ବିଡ଼ମ୍ବନା ସେହୁ କର । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା । ]

ବିଡ଼ମ୍ବନୀୟ—ସ. ବି (ବି+ଡମ୍ବ ଧାତୁ+କର୍ମ ଅନୀୟ)—ବଞ୍ଚନୀୟ—Birdambaniya Fit to be deceived.

ବିଡ଼ମ୍ବିତ—ସ. ବିଣ (ବି+ଡମ୍ବ ଧାତୁ+କର୍ମ, ତ)—୧ । କ୍ଲେଶିତ—Birdambita 1. Distressed; troubled; affected· ୨ । ପ୍ରତାରିତ—2. Deceived; cheated. ୩ । ମିଥ୍ୟାଆଶା-ଦ୍ୱାରା ଆକୃଷ୍ଟ ହୋଇ ଶେଷରେ ନିରସ୍ତ—3. Tantalised. ୪ । ଅନୁକୃତ—4. Copied; imitated. ୫ । ସଦୃଶୀକୃତ—5. Equalised.

ବିଡ଼ମ୍ବିବା—ଦେ. କ୍ରି (ପଦ୍ୟ)କ୍ରି (ସ· ବିଡ଼ମ୍ବନ)—ଅନୁକରଣ କରିବା—Birdambiba To imitate. (ଉ—ପ୍ରଭୁ ଶୃଙ୍ଗ ବିଡ଼ମ୍ବିଲା ବିଡ଼ମ୍ବା ମାହେଶ୍ୱରୀ ଅର୍ଦ୍ଧ ନାରୀଶ୍ୱର ଛବି । ରାଧାନାଥ. ଉର୍ବଶୀ । )

ବିଡ଼ା—ଦେ. ବି ( ସ ବୀଟ; ବୀଟକା=ବସ୍ତ୍ର ଗ୍ରନ୍ଥି )—୧ । ଗୋଛ—Birda 1. A bundle; a roll. ୨ । ଧାନ ଆଦି ଶସ୍ୟ ଗଛର ଆଁଟି, बीड़ा ଗୁଚ୍ଛ; ବିଡ଼ା; କଳେଇ—2. Sheaf of corn. अँटिया ୩ । ( ବିଡ଼ ଧାତୁ=ଭେଦ କରିବା ) ବିଡ଼ିବା; ପରୀକ୍ଷା परीक्षा କରିବା—3. Testing; examining; gauging. जाँचना ପ୍ରାଦେ. (ସମ୍ବଲପୁର ଓ ବସ୍ତର) ବି ଭୁଲ ହି. ବୀଡ଼ା)—ପାନ ଖିଲି—A roll made up of spices and nut put inside a betel-leaf. ଦେ. ବିଣ—୧ । ଗୁଚ୍ଛୀକୃତ—1. Tied into a roll or bundle. ୨ । ଆଲୁଳାୟିତ; ଜଟିଳୀକୃତ—2. Tangled; matted. ୩ । ପରୀକ୍ଷିତ—3. Tested; gauged.

ବିଡ଼ା ଓ(ଔ)ଷଧ—ଦେ. ବି—ପରୀକ୍ଷିତ ଔଷଧ—Well tested Birda o(au)shadha जाची हुइ दवा medicine.

ବିଡ଼ା କରିବା—ଦେ. କ୍ରି—ଲମ୍ବ ପଦାର୍ଥମାନଙ୍କୁ ଗୋଛ କରି ବାନ୍ଧିବା—Birda kariba To tie long articles into a sheaf बीड़ा बाँधा बीडा बाँधना or bundle. (ବିଡ଼ା ବାନ୍ଧିବା—ଅନ୍ୟରୂପ)

ବିଡ଼ାନାସି—ଦେ. ବି. ( ନାମ )—କଟକର ପଶ୍ଚିମରେ ଏକ ମାଇଲ Birdanasi ଦୂରରେ ଅବସ୍ଥିତ ପ୍ରାଚୀନ ଗ୍ରାମବିଶେଷ—A old village situated one mile to the west to the town of Cuttack proper. (ଉ—ବିଡ଼ାନାସି ଗଡ଼େ ସୁବର୍ଣ୍ଣ କେଶରୀ ଭୂବ, ଭୂବ ଯଥା ପିଣ୍ଡରେ କେଶରୀ—ରାଧାନାଥ. ନନ୍ଦିକେଶ୍ୱରୀ ।) [ ଦ୍ର—କେଶରୀ ବଂଶର ରାଜା ନୃପକେଶରୀ ବାରଣାସୀ କଟକ ବା ବର୍ତ୍ତମାନ ବିଡ଼ାନାସି ନାମକ ନଗର ବସାଇ ସେଠାରେ ଦୁର୍ଗ ନିର୍ମାଣ କରିଥିଲେ । ବର୍ତ୍ତମାନ ଏ କ୍ଷୁଦ୍ର ଗ୍ରାମ କାଠଯୋଡ଼ି ନଦୀର ଗର୍ଭ ଓ କଟକ ମଧ୍ୟରେ ଅବସ୍ଥିତ । ]

ବିଡ଼ା ବାନ୍ଧିବା—ଦେ. କ୍ରି—ବିଡ଼ା କରିବା (ଦେଖ) Birda bandhiba Birda kariba (See)

ବିଡ଼ା ବାଜିଯିବା } ଅନ୍ୟରୂପ ଦେ. କ୍ରି(ମୁଣ୍ଡର କେଶ) ସହାଗ୍ରହରୁ
ବିଡ଼ା ବିଡ଼ା ହେବା } ଜଟା ବାନ୍ଧିଯିବା—To become
जटा बेंधे जाना matted or tangled (said of hair)
जटा होजाना owing to neglect and want of combing.

ବିଡ଼ା ବାଳ—ଦେ. ବି—୧ । (ମୁଣ୍ଡରେ) ଘନ ସନ୍ନିବିଷ୍ଟ ଓ ଲମ୍ବ କେଶ—Birda bala 1. Thick and long hair (of the घनकेश head). ୨ । ଜଟିଳ କେଶ—2. Tangled hair.

ବିଡ଼ା ବିଡ଼ା—ଦେ. କ୍ରି. ବିଣ—୧ । ଗୋଛ ପରେ ଗୋଛ (ଅଣିବା ବା Birda birda ରଖିବା)—1. Sheaf after sheaf. ୨ । (ବିଡ଼ାକୁ ବିଡ଼ା—ଅନ୍ୟରୂପ) ଗୋଛ ଗୋଛ ହୋଇ; ଗୁଚ୍ଛୀକୃତ बीडा बीडा ଭାବରେ—2· In sheaves. ପ୍ରାଦେ. (ଗଡ଼ଜାତ) ବିଣ—ଅସ୍ତବ୍ୟସ୍ତ; ଅଡ଼ୁଆଝଡ଼ୁଆ (ବାଳ)—Dishevelled and matted (hair).

ବିଡ଼ାଳ—ସ. ବି. ପୁଂ (ବିଡ଼ ଧାତୁ=ଶବ୍ଦ କରିବା; ଭେଦ କରିବା+ Birdala କର୍ତ୍ତୃ. ଆଲ)—୧ । ମାର୍ଜାର; ବିରାଡ଼ି—1. Cat.
ବିଡ଼ାଲକ } ୨ । ନେତ୍ର ପିଣ୍ଡ; ଅକ୍ଷି ପିତୁଳା—2. The
ବିଡ଼ାଲ } ଅନ୍ୟରୂପ pupil of the eye; eye ball.
ବିଲ୍ଲାଲ } (ବିଡ଼ାଳୀ—ସ୍ତ୍ରୀ)

ବିଡ଼ାଳକ—ସ. ବି. ( ବିଡ଼ାଳ=ନେତ୍ର ପିଣ୍ଡ+କ )—ନେତ୍ରୌଷଧ Birdalaka ବିଶେଷ—A medicine for the eye.

ବିଡ଼ାଳ ଚକ୍ଷୁଃ—ସ. ବିଣ ( ବହୁବ୍ରୀହି; ବିଡ଼ାଳ+ଚକ୍ଷୁଃ )—ଯାହାର Birdala chakshuh ଅକ୍ଷି ବିରାଡ଼ିର ଅକ୍ଷି ପରି ପାଣ୍ଡୁର; (ବିଡ଼ାଳାକ୍ଷି—ଅନ୍ୟରୂପ) ଚଣ୍ଡ ଆଖିଆ —Brown-eyed; pale-eyed.

ବିଡ଼ାଳ ତପସ୍ୱୀ—ସ. ବି—ଭଣ୍ଡ ତପସ୍ୱୀ—A hypocrite; a Birdala tapaswi person who shows himself to (ବିଡ଼ାଳ ବ୍ରତୀ—ଅନ୍ୟରୂପ) the world as a pious man. [ ଦ୍ର—ହିତୋପଦେଶରେ ବିଡ଼ାଳତପସ୍ୱୀ ସମ୍ବନ୍ଧେ ନିମ୍ନ ଲିଖିତ ଗଳ୍ପ ଅଛି—ଗୋଟିଏ ବିରାଡ଼ି ଏକ ଗ୍ରାମରେ ଆହାର ନ ପାଇ ବୃକ୍ଷ କୋଟରସ୍ଥ ପକ୍ଷିଶାବକମାଂସାର୍ଥୀ ହୋଇ ସେଠାରେ ପହଞ୍ଚି ପକ୍ଷୀମାନଙ୍କୁ କହିଲା;—ମୁଁ ତପସ୍ୱିଶାଳୀ ତପସ୍ୱୀ, ମୁଁ ଧର୍ମୋପଦେଶ ଶୁଣିବାକୁ ଆସିଅଛି । ବିରାଡ଼ିର କପଟ-ତପସ୍ୱିତା ପକ୍ଷୀମାନେ ବୁଝି ନ ପାରି ତାଠାରେ ବିଶ୍ୱାସ କରି ବିରାଡ଼ିକୁ ସେଠାରେ ରହିବାକୁ ଅନୁମତି ଦେଲେ ଓ ବିରାଡ଼ି ସୁବିଧା ଓ ସୁଯୋଗ ଦେଖି ପକ୍ଷିଶାବକମାନଙ୍କୁ ଖାଇଲା । କ୍ରମଶଃ ଶାବକମାନଙ୍କର ସଂଖ୍ୟା କମିବାର ଦେଖି କେତେ ଦିନ ପରେ ପକ୍ଷୀମାନଙ୍କର ବିରାଡ଼ି ଉପରେ ସନ୍ଦେହ ହେବାରୁ ବିରାଡ଼ି ସେଠାରୁ ପଳାଇ ଆସିଲା । ]

ବିଡ଼ାଳ ପଦ—ସ. ବି—୧ । ବିରାଡ଼ିର ପାଦ—1. Cat's foot. Birdala pada ୨ । ଦୁଇ ତୋଳା ପରିମାଣ ବା ଓଜନ—2. A standard weight of 2 Tolas.

ବିଡ଼ାଳ ବୈରାଗ୍ୟ—ସ. ବି—ବାହ୍ୟ ବୈରାଗ୍ୟ—Hypocritical Birdala bairagya indifference to worldly (ବିଡ଼ାଳ ବ୍ରତ—ଅନ୍ୟରୂପ) affairs.

**ବିଡ଼ାଲ ଶାବକ**—ସଂ. ବି ( ୬ଷ୍ଠୀ ତତ୍; ବିଡ଼ାଲ+ଶାବକ )—
Birḍāla śābaka ବିରାଡ଼ି ଛୁଆ—Kitten. (ବିଡ଼ାଲ ଶିଶୁ — ଅନ୍ୟରୂପ)

**ବିଡ଼ି**—ଦେ. ବି. (ସଂ. ବାଟିକା)—୧ । ଛୋଟ ବିଡ଼ା—1. A small
Birḍi sheaf. (ଉ—ଦକ୍ଷିଣ କରେ କୁଶବିଡ଼ି, ମନ୍ତ୍ରକ କଲେ ବିଡ଼ୀ ବେଦ ପଢ଼ି—ଜଗନ୍ନାଥ. ଭାଗବତ ।) ୨ । ସାନ କଳସି; ଘଡ଼ି—2. A small earthen water jug. ୩ । ( ସଂ. ବୀଟିକ ) ବିଡ଼ିଆ; ପାନ ଖିଲ—3. Betel leaf made up into a packet or conical roll containing slices of nut, spices etc. (ଉ.—ବିଡ଼ିଆ ବିଡ଼ି ବଢ଼ାଇଲ ସଜାଡ଼ି । କବିସୂର୍ଯ୍ୟ. ରତ୍ନାକର ଚମ୍ପୂ ।) ୪ । ଛୋଟ ପିକା; ଦୋକତାର ଚୂର୍ଣ୍ଣକୁ ବା କ୍ଷୁଦ୍ର ବିଡ଼ୀ ବୀଡ़ी କ୍ଷୁଦ୍ର ଖଣ୍ଡକୁ କାଠ ପତ୍ରରେ ଗୁଡ଼ାଇ କରି ଯାଇଥିବା ଛୋଟ ଛୋଟ ପିକା—4. Cigarette; biree.

**ବିଡ଼ିଆ**—ଦେ. ବି—(ସଂ. ବାଟିକା; ବିଡ଼ିକ)—ପାନଖିଲ—Betel leaf
Birḍiā made into a roll containing spices, nuts etc. [ ଉ—ଖିଲ ଖିଲ କରି ଖୁଆଇବ ଶିରୀ ମୁଖେ କର୍ପୂର ବିଡ଼ିଆ । କବିସୂର୍ଯ୍ୟ. ରତ୍ନାକର ଚମ୍ପୂ । ]

**ବିଡ଼ିଆ ଲାଗି**—ଦେ. ବି. (ରାଜା ଓ ଦେବତାମାନଙ୍କ ପ୍ରତି ପ୍ରଯୋଜ୍ୟ)—
Birḍiā lāgi ୧ । ( ରାଜାଙ୍କର ) ଭୋଜନ ପରେ ମୁଖଶୁଦ୍ଧ୍ୟର୍ଥ ( ବିଡ଼ିଆ ଯୋଗଣ—ଅନ୍ୟରୂପ ) ପାନଖିଲ ସେବାଇବା—1 Chewing of betel after meal. (ଉ—ପାଞ୍ଚ ଗ୍ରାସ ମଣୋହି ସାରି ବିଡ଼ିଆ ଲାଗି । ବିଶ୍ୱନାଥ. ବିଚିତ୍ର ରାମାୟଣ ) । ୨ । ଦେବତାଙ୍କୁ ଭୋଗ ଲଗା ଯିବା ପରେ ପାନଖିଲ ଅର୍ପଣ କରାଯିବା ବିଧି—2. The rite of offering rolled betel to a Deity after the offering of food. ଦେ. ବିଣ—୧ । ପାନଖିଲ ସେବାଇ ଥିବା (ରାଜା)—1. (a Rajā) Chewing betel. ୨ । ଯେଉଁ ଦେବତାଙ୍କୁ ପାନଖିଲ ଅର୍ପଣବିଧି କରି ଯାଇ ଥାଏ—( an idol ) Having undergone the ceremony of being presented with a roll of betel.

**ବିଡ଼ିଆଳୀ**—ଦେ. ବିଣ—ରାଜା ଓ ରାଣୀଙ୍କୁ ପାନ ଖିଲ ଯୋଗାଇବା
Birḍiāli (ଦାସ ଦାସୀ)—(Servant) Whose duty it is to supply dressed betel to a Rājā or Rāṇi. (ଉ—କର୍ପୂର ବିଡ଼ିଆ ବିଡ଼ିଆଳୀ ଘେନି ହାଜର ହୁଏ ପଛେ । କବିସୂର୍ଯ୍ୟ. ଚନ୍ଦ୍ରକଳା । )

**ବିଡ଼ିକ**—ସଂ. ବି.—ପାନ ଖିଲ (ହ. ଶ)—A rolled packet of
Birḍika betel.

**ବିଡ଼ି କାଠ**—ଦେ. ବି—ଛୋଟ ଛୋଟ ବିଡ଼ାରେ ବନ୍ଧା ହୋଇ ବଜାରରେ
Birḍi kāṭha ବିକ୍ରି କରା ଯାଉଥିବା ଜାଳେଣି କାଠ—Faggots tied into small bundles and offered for sale.

**ବିଡ଼ି ଖାଇବା**—ଦେ. କ୍ରି—ବିଡ଼ି ବା ଛୋଟ ପିକାରେ ନିଆଁ ଧରାଇ
Birḍi khāibā ଧୂମ୍ରପାନ କରିବା—To smoke cigarette. (ବିଡ଼ି ପିଇବା—ଅନ୍ୟରୂପ) ବିଡ଼ୀ ଖାଓୟା बीडी पीना

**ବିଡ଼ିବା**—ଦେ. କ୍ରି—[ସଂ. ବିଡ଼୍ ଧାତୁ=ଭେଦ କରିବା (କାହାରି ମନକୁ)]
Birḍibā ୧ । କୌଣସି ବ୍ୟକ୍ତିର ମନକୁ ପରୀକ୍ଷା କରିବା—ପରୀକ୍ଷା କରା 1 To gauge the mind of a person. जांचना (ଉ—କହେ କର ଅର୍ଯ୍ୟମା, ମୁଁ ଦୋଷ କଲେ କ୍ଷମା, ହେବ ନାହିଁ କି ଏହା ବଡ଼ିଲରେ । କବିସୂର୍ଯ୍ୟ. ସଙ୍ଗୀତ ।) ୨ । ପରୀକ୍ଷା କରିବା—2. To test ( ଉ—ନଜେ ବିଡ଼ି ଆମ୍ଭେ ତାହା ଜାଣି ଅଛୁଁ ଭଲେ । ସାରଳା. ମହାଭାରତ) । ୩ । ବାନ୍ଧିବା; ବନ୍ଧନ କରିବା; ମନ୍ତ୍ର ଯନ୍ତ୍ର ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତିର ମନକୁ ବାନ୍ଧି ଦେବା ବା ଅବଶ କରିବା 3. To enchant a person; to silence a person by means of charms.

**ବିଡ଼ିବିଡ଼ା**—ପ୍ରାଦେ ( ଗଡ଼ଜାତ ) ବିଣ—ଜଟିଳୀକୃତ ( କେଶ )—
Birḍibirḍā Matted; tangled (hair).

**ବିଡ଼ିବିଡ଼ି**—ଦେ. କ୍ରି. ବିଣ—ଛୋଟ ଛୋଟ ବିଡ଼ାରେ—In small
Birḍibirḍi sheaves or bundles; by sheaves. (ବିଡ଼ିକବିଡ଼ି—ଅନ୍ୟରୂପ) ଆଁଟିଆଁଟି

**ବିଡ଼ୀନ**—ସଂ. ବି ( ବି+ଡ଼ୀ ଧାତୁ=ଉଡ଼ିବା+ଭାବ ତ )—ପକ୍ଷୀର
Birḍīna ଗତିବିଶେଷ—A kind of bird's motion.

**ବିଡ଼ୁଦୁଲା**—ପ୍ରାଦେ ( ଗଞ୍ଜାମ ) ବି (ତେଲଗୁ)—ଦାଖଲଖାରଜ (ଦେଖ)
Birḍudulā Dākhalakhāraj (See)

**ବିଡ଼ୋ(ଡ଼ୌ)ଜା**—ସଂ. ବି [ ବହୁବ୍ରୀହି; ବିଡ଼=ବିଜ୍+ଓଜସ୍=ବଳ;
Birḍo(rḍau)jā ବିଡ଼ୋ(ଡ଼ୌ)ଜସ୍ ୧ମା. ୧ବ ]—ବଜ୍ରଧର; ଦେବରାଜ; ଇନ୍ଦ୍ର—Indra.

**ବିଣ୍ଡ**—ଦେ. ବି ( ସଂ. ପିଣ୍ଡ )—୧ । ରୁଟିଆଦି ନିମନ୍ତେ ପ୍ରସ୍ତୁତ ମଇଦା-
Binḍa ଆଦିର ଚକଟା ପିଣ୍ଡ—1. Ball of flour prepared ଗୋଲା; ତାଲ for being made into bread etc. ୨ । ବିଣ୍ଡା ଡଣ୍ଟା ( ଦେଖ )—2. Binḍā ( See )

**ବିଣ୍ଡା**—ଦେ. ବି ( ସଂ. ପିଣ୍ଡ )—୧ । ପିଣ୍ଡୁଳୀ; ପିଣ୍ଡାକାର ବସ୍ତୁ; ଗୁଟିକା;
Binḍā ଗୋଟାଳ—1. Something rolled into a ball. गुटली; नेची ୨ । ଅଟା, ମଇଦାଆଦି ଗୋଟା ବାନ୍ଧି ଯାଇ ପ୍ରସ୍ତୁତ पोंडी, पिंडा ହୋଇଥିବା ପିଣ୍ଡୁଳୀ ବା ଗୋଟାଳୀ—2 Flour ବିଡ଼ୀ etc rolled into a ball. ୩ । ଗାତର ବା ଛିଦ୍ରର ମୁହଁ ବନ୍ଦ କରିବା ପାଇଁ ମରାଯିବା କନାଆଦିର ପିଣ୍ଡୁଳା—3. Plugs made by rolling rags ୪ । କନ୍ଦୁକ; ଲୁଡ଼ୀ ଛୋଟ ଫେଣ୍ଡୁ—4. Small ball. ୫ । ଲୁଣ୍ଡା; ଶୁଖିଲା ଘାସ ଲୁଡ଼ୀ ବା କୁଟାଆଦି ଗୁଡ଼ାଇ କରଯାଇ ଥିବା ପିଣ୍ଡାକୃତ ଆଧାର ବିଶେଷ (ଯହିଁରେ ନିଆଁ ରଖି ଲୁହୁଳା ପକାଇବାକୁ ହୁଏ)—5. Hay or straw etc rolled into a ball for igniting fire. ( ଉ—ଅଗ୍ନି ସଙ୍ଗେ ତୃଣବିଣ୍ଡାରେ ସେ ଲଭିଲେ । କୃଷ୍ଣସିଂହ. ମହାଭାରତ. ବନ ।) ୬ । ପ୍ରାଦେ

( ସିଂହଭୂମ ) ବି ( ଭୂଲ ଏହି ଅର୍ଥରେ ବ. ଖାଡ଼ା )—ବୋହିଅମାନଙ୍କର ବୋଝ ମୁଣ୍ଡାଇବା ପାଇଁ ମୁଣ୍ଡଉପରେ ରଖିବା ପତ୍ରଆଦିର ମୁଠୁଲା—A circlet or cushion of leaves etc used by porters on the head to carry loads on. ବି—୧ । ଖଣ୍ଡ ହୋଇ ବନ୍ଧା ହୋଇଥିବା ଗୋଛା—1. A bundle tied up tightly. ୨ । ବୋତଲ ଇତ୍ୟାଦିର ଠିପି—2. Cork ଛିପି or stopper for a bottle etc. ୩ । ମୁହଁରେ ମଦ୍ଧିବା ଠିପି—3. A gag or plug or wisp to stop the mouth.

**ବଣ୍ଡା ଧରିବା**—ଦେ. କ୍ରି—ଢେଲା ବାନ୍ଧିବା; ଗୋଟା ବାନ୍ଧିବା; ପିଣ୍ଡାକାର Binda dhariba ଧାରଣ କରିବା—To form into clods. [ ବଣ୍ଡ ଧରିବା, ବଣ୍ଡ(ଣ୍ଡା) ବାନ୍ଧିବା —ଅନ୍ୟରୂପ ] ଗୁଟଲୀବାଁଧା ଗୁଠଲୀ ବଂଧଜାନା

**ବିଣ୍ଡା ମାରିବା**—ଦେ. କ୍ରି—ବିଣ୍ଡାଦ୍ୱାରା କୌଣସି ଛିଦ୍ର ବନ୍ଦ କରିବା—Binda mariba To stop a hole with a plug or ନୁଡୀ ମାରନା ଛିପିମାରା a ball of rags or straw.

**ବିଣ୍ଡି**—ଦେ. ବି—୧ । ବିଣ୍ଡା ( ଦେଖ )—1. Binda ( See ) Bindi ୨ । କୁମ୍ଭାରମାନେ ବାଆଁ ହାତରେ ଯେଉଁ ଗୋଲାକାର ପିଂଡ ପଥରଖଣ୍ଡ ହାଣ୍ଡିର ଭିତରପାଖରେ ଧରି ହାଣ୍ଡିର ଉପରପାଖକୁ ଡାହାଣ ହାତରେ ପିଟଣାରେ ପିଟନ୍ତି—2. A round piece of stone held by a potter in the left hand inside a pot while hammering it on ଜାମଡ଼ା; ଜାମୁଡ଼ା; କଡ଼ା the outside with the right hand. ଠେଲା ୩ । ଘର୍ଷିତାଦିର ମାଂସଗୁଣ୍ଠିକା; ଦେହର ଚମଉପରେ ହେବା ଘର୍ଷଣଜନିତ ପିଣ୍ଡାକୃତି କର୍କଶ ମାଂସବୃଦ୍ଧି—3. Hard skin formed on parts of the body due to constant friction of those parts; corn; calluse; clavus; bunion. (ଉ—ବିଣ୍ଡି ହେଲା ମୁଣ୍ଡ ପଛ ଗୋଡ଼ ତଳେ, ଗରୁଡ଼ ନ ହେଲା ଅଙ୍କ । ଉକାଣ୍ଡ-ସାଅନ୍ତାଅ ବାହା । ) [ ଦ୍ର—କେତୋ ଦିନ୍ଦ୍ରବାଦ୍ୱାରା ଗୋଡ଼ର ଅଙ୍ଗୁଠି ଆଦି ଉପରେ, ସବାର 'ଓ ଭାର ବୋହିବାଦ୍ୱାରା କାନ୍ଧରେ ଏବଂ ବୋଝବୋହିବା ଯୋଗୁଁ ବୋହିଅଙ୍କ ମୁଣ୍ଡରେ ବିଣ୍ଡି ବସିଯାଏ । ଏହା ଦୁଇପ୍ରକାର । ଗୋଟିଏ ପ୍ରକାର ବିଣ୍ଡି ଅତ୍ୟନ୍ତ ଯନ୍ତ୍ରଣା ଦିଏ ଏବଂ ଅନ୍ୟ ପ୍ରକାରର ବିଣ୍ଡିରେ କୌଣସି କଷ୍ଟ ହୁଏ ନାହିଁ । ] ୪ । ଧାନ ବିଲ ବାଛିବା ବେଳେ ଆଁଟି ଯେଉଁ ଘାସଆଦି କାଢ଼ିଆରୁ ଓପାଡ଼ି ହାତରେ ବିଣ୍ଡା ମଳି ନୁଡୀ ଭୂଇଁତଳେ ମାଡ଼ିଦେବାକୁ ହୁଏ ( ଯାହା ସଢ଼ିଯାଇ ଭୂମିକୁ ଉର୍ବର କରେ )—୪. Weeds uprooted from a paddy field and rolled into a ball and thrust into the ground. ( ଉ —ଫଗୁଣଗୁଣ୍ଡି ଗୋଡୁଅବିଣ୍ଡି । କୃଷିବଚନ । )

**ବିଣ୍ଡିଆ**—ଦେ. ବି—୧ । ହିଶୂଳ ପରି କଳାଥିବା ମଶାଲର ଶୂଳରେ Bindia ମାରି, ତେଲରେ ବୁଡ଼ାଇ ଜଳାଇବା ନିମନ୍ତେ ପ୍ରସ୍ତୁତ କନାବିଣ୍ଡା; ବନ୍ଦୁଆ—1. Balls of rags prepared to be attached to the prongs of a forked torch after being moistened with oil. ବୀଡ଼ା, ଚିମଳା ୨ । ବୋହିଅମାନଙ୍କର ମୁଣ୍ଡ ଉପରେ ବୋଝ ରଖିବା ବୀଠା ନିମନ୍ତେ ଗ୍ରଥିତ କନାର ବା ପାଳର ମଳା; ମୁଠୁଲା; ଚୁମୁଲା—2. Rags or straw rolled into circular cushions put by porters over the head to carry loads on. ୩ । ହାଣ୍ଡି, ମାଠିଆ ଆଦିକୁ ଭୂମିରେ ଅଟଳ କରି ବସାଇବା ପାଇଁ ବ୍ୟବହୃତ କନାର ବା ପାଳର ମଳା—3 Circular cushions used for setting firmly round-buttomed pots on the ground.

**ବିଣ୍ଡି ବସିବା**—ଦେ. ବି—ବାରମ୍ବାର ଘର୍ଷଣ ଯୋଗୁଁ ଅଙ୍ଗ ବିଶେଷରେ Bindi basiba କଣ ବା କର୍କଶ ମାଂସ ଗୁଣ୍ଠିକା ଜାତ ହେବା—କଡ଼ା ପଡ଼ା Formation of corns or callosities on a ଠେଲା ହୋଗା (ବିଣ୍ଡି ବସିଯିବା—ଅନ୍ୟରୂପ) part of the body.

**ବିଣ୍ଡି ମାରିବା**—ଦେ. କ୍ରି—୧ । ଧାନ କ୍ଷେତରେ ଫାଙ୍କ ଥିବା ସ୍ଥଳରେ Bindi mariba ଧାନ ଗଛ ରୋଇ ଦେବା—1. To transplant paddy plants in blank ନୁଡୀ ମାରନା ଛିପିମାରା spaces of a field. ୨ । ବୋତଲ ଆଦିର ମୁହଁ ବନ୍ଦ କରିବା—2 To stop the mouth by a plug or gag or stopper.

**ବିତ୍(ଦ୍)**—ସଂ. ବିଣ ପୁଂ (ବିଦ୍ ଧାତୁ+କ୍ୱିପ୍)—ଯେ ଜାଣେ; ଜ୍ଞ; ଜ୍ଞାତା Bit(d) Knowing; versed in. [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ । ଯଥା—ବେଦବିତ୍, ଶାସ୍ତ୍ରବିତ୍ । ]

**ବିତ୍‌ପାତ**—ଦେ ବି (ସଂ. ବ୍ୟତୀପାତ)—ବ୍ୟତୀପାତ (ଦେଖ) Bit-pata ଉତପାତ ବିତପାତ Byatipata (See)

**ବିତ୍‌ବିତା**—ପ୍ରାଦେ. ( ସମ୍ବଲପୁର ) ବି—ବିରକ୍ତି—Vexation; Bit-bita indignation. ବିଣ—ବିରକ୍ତ—Vexed.

**ବିତ୍‌ସନ**—ସଂ. ବି—ବୃଷଭ —Bull. Bit-sana (ବିତ୍ସନ—ଅନ୍ୟରୂପ)

**ବିତ**—ଗ୍ରା. ବି ( ସଂ. ବିତ୍ତ )—ବିତ୍ତ; ଧନ—Riches; wealth. Bita ( ଉ—ଅଧର୍ମ ବିତ ଫଳେ ବଢ଼ିତ, ଗଲାବେଳେ ଯାଏ ମୂଳ ସହିତ । ଡଗ ।)

**ବିତଂସ**—ସଂ. ବି ( ବି+ତନ୍ସ ଧାତୁ=ଭୂଷିତ କରିବା; ବନ୍ଧନ କରିବା Bitamsa +କରଣ ଅ )—୧ । ଅଳଙ୍କାରବିଶେଷ—1. A kind of ornament. ୨ । ପଶୁପକ୍ଷୀଙ୍କୁ ଭୁଲାଇବା ପାଇଁ ଶିକାରୀଦ୍ୱାରା ବ୍ୟବହୃତ ପ୍ରାବରଣ ବା ପରିଚ୍ଛଦ—2 A cloak used by a hunter to mislead animals. ୩ । ପକ୍ଷୀଙ୍କୁ ଧରିବା ଫାଶ—3. A bird-snare; a bird-net. ୪ । ପଞ୍ଜୁରୀ—4. Cage. ୫ । ପଶୁପକ୍ଷୀଙ୍କୁ ବାନ୍ଧିବା ନିମନ୍ତେ ବ୍ୟବହୃତ ଦଉଡ଼ି ବା ଡୋର—5. A string or rope used for tying animals.

**ବିତଣ୍ଡା**—ସଂ. ବି ( ବି+ତନ୍ଡ୍ ଧାତୁ=ଆଘାତ କରିବା+ଭାବ ଅ+ ସ୍ତ୍ରୀ. ଆ )—୧ । ବିତର୍କ; ଯୁକ୍ତି; ବାଦାନୁବାଦ—1. Refutation; debate; controversy. ୨ । ପରର ମତ ଖଣ୍ଡନ କରିବା ପାଇଁ ବୃଥା ବାଦାନୁବାଦ—2. Perverse argument. ୩ । ନିଷ୍ଫଳ ତର୍କ—3. Fruitless discussion. ୪ । ଅଖାଡୁଆ ଯୁକ୍ତି—4. Hair-splitting argument. ଦେ. ବି—୧ । ବାଗ୍‌ଯୁଦ୍ଧ—1. Wordy duel. ୨ । ବୃଥା ବାକ୍ୟବ୍ୟୟ—2. Bragging; boasting. ଦେ. ବିଣ—୧ । ବେତଣ୍ଡା; ବେଆଡ଼ା. ଅନୁଚିତ—1. Improper. ୨ । ବୈତଣ୍ଡିକ; ଯେ ବୃଥା ତର୍କ କରେ—2 Argumentative. ୩ । ଅଖାଡୁଆ—3. Perverse; bumptious. ୪ । ଅବାଧ୍ୟ—4. Insubordinate.
Bitaṇḍā
বিতণ্ডা
वितडा

**ବିତଣ୍ଡା କରିବା**—ଦେ. କ୍ରି—୧ । ବୃଥା ବାଦଯୁଦ୍ଧ କରିବା—1. To make perverse argument ୨ । ବୃଥାରେ କଳି ଲଗାଇବା—2. To quarrel unnecessarily.
Bitaṇḍā karibā
[ବିତଣ୍ଡାଲଗା(ଗେ)ଇବା—ଅନ୍ୟରୂପ]
বিতণ্ডা করা
वितन्डा लगाना

**ବିତତ**—ସଂ. ବିଣ ( ବି+ତନ୍ ଧାତୁ=ବିସ୍ତାର କରିବା+କର୍ମ ତ )—୧ । ବିସ୍ତୃତ; ବ୍ୟାପ୍ତ—1. Spread. ୨ । ପ୍ରସାରିତ—2. Extended. ସଂ. ବି—ବୀଣା ପ୍ରଭୃତି ତାର ଯୁକ୍ତ ଯନ୍ତ୍ର—Harp and other stringed musical instruments
Bitata

**ବିତତି**—ସଂ. ବି ( ବି+ତନ୍ ଧାତୁ+ଭାବ ତି )—୧ । ବିସ୍ତୃତି—1. Expansion; expanse; extension ୨ । ଶ୍ରେଣୀ; ଧାଡ଼ି—2. Row. ୩ । ସମୂହ—3. Collection; gathering; multitude.
Bitati

**ବିତଥ**—ସଂ. ବିଣ ( ବହୁବ୍ରୀହି; ବି=ବିଗତ+ତଥ୍ୟ=ସତ୍ୟ; 'ଯ'; ଲୋପ )—୧ । ଅସତ୍ୟ; ମିଥ୍ୟା—1. False, untrue. ୨ । ଅଳୀକ; ଅମୂଳକ—2. Groundless unsubstantial. ୩ । ବୃଥା; ଅନର୍ଥକ—3. Fruitless. ସଂ. ବି—ପ୍ରବଞ୍ଚନା; ଛଳ—Deceit; deception. ଦେ ବି—ଦୁଃଖ; ବ୍ୟଥା—Trouble. (ଉ—ଧ୍ୟାନେ ଦେଖୁଛି ତା ପୁର ଗତାଗତେ କରିବେ ବିତଥ ପାଇ । ପ୍ରାଚୀ, ରସବାରିଧି ।)
Bitatha

**ବିତଥ୍ୟ**—ସଂ, ବିଣ ( ବହୁବ୍ରୀହି; ବି=ନାହିଁ+ତଥ୍ୟ )—ଅସତ୍ୟ; ଅଳୀକ; ମିଥ୍ୟା—Untrue; false.
Bitathya

**ବିତନୁ**—ସଂ, ବିଣ ( ବହୁବ୍ରୀହି; ବି=ବିଶୀର୍ଣ୍ଣ+ତନୁ )—୧ । କ୍ଷୀଣ—1. Tender; weak. ୨ । ରୁଗ୍ଣ; ରୋଗୀ—2 Sickly; of delicate health. ୩ । କମନୀୟ; ସୁନ୍ଦର—3. Graceful.
Bitanu

**ବିତନ୍ତ୍ରୀ**—ସଂ, ବି ( ବହୁବ୍ରୀହି; ବି+ତନ୍ତ୍ରୀ )—ଯେଉଁ ବୀଣାଆଦିର ତାର ଇପ୍ସିତ ସ୍ୱର ଅନୁରୂପ ସଜଡ଼ା ହୋଇ ନାହିଁ—Musical instruments, the strings of which have not been properly tuned and so have become discordant.
Bitantrī
(ସୁତନ୍ତ୍ରୀ—ବିପରୀତ)

**ବିତପନ**—ଦେ. ( ପଦ୍ୟ ) ବିଣ—ଦୀପ୍ତ; ଶୋଭାଯୁକ୍ତ—Dazzling; bright. (ଉ—ନାନା ତରୁମାନଙ୍କରେ ବିଶୋଭିତ, ହେମ ତରୁମାନ ବିତପନ । ବିଶ୍ୱନାଥ. ବିଚିତ୍ରରାମାୟଣ ।) ଗ୍ରା. ବିଣ—( ସଂ. ବ୍ୟୁତ୍ପନ୍ନ )—ବ୍ୟୁତ୍ପନ୍ନ; ବିଶାରଦ—2. Well versed in. [ ଉ—ସଙ୍ଗୀତବିଦ୍ୟା ବିତପନ, ଅପୂର୍ବ ପୁରୁଷରତନ । ଭୂପତି ପ୍ରେମପଞ୍ଚାମୃତ ।]
Bitapana

**ବିତର**—ଦେ. (ପଦ୍ୟ) ବି—ବିସ୍ତୃତି—Expansion. [ଉ—ବିତରରୁ ରାମ କହିବେ ଅଭୁରେ, ବୋଲନ୍ତି ଭୁ ରଭୁ ବ୍ୟାଧି ଭୁରେ । ଭଞ୍ଜ. ବୈଦେହୀଶବିଳାସ । ]
Bitara

**ବିତରଣ**—ସଂ. ବି—(ବି+ତୃ ଧାତୁ=ଦାନ କରିବା+ଭାବ. ଅନ)—୧ । ଖଏରାତି—1 Free gift; donation. ୨ । ଦାନ—2. Gift. ୩ । ବଣ୍ଟନ; ବାଣ୍ଟିବା—3 Distribution. ଦେ. ( ପଦ୍ୟ ) ବି.—ନଦୀ ଆଦି ପାରି ହେବା; ଉତ୍ତରଣ—Crossing over; passing over. (ଉ—ବିତରଣେ ସାଗର ବି ପାଞ୍ଚ ପଚିଶଲ, କହେ ରାମ କୁଶ ଶଯ୍ୟା ପ୍ରତ୍ୟୁତ୍ତର ଦେଲ । ଭଞ୍ଜ ବୈଦେହୀଶବିଳାସ । )
Bitaraṇa

**ବିତରଣୀୟ**—ସଂ. ବିଣ—(ବି+ତୃ ଧାତୁ+କର୍ମ. ଅନୀୟ)—ବିତରଣ ଯୋଗ୍ୟ; ଯାହା ଦାନ ବା ବଣ୍ଟନ କରାଯିବା ଉପଯୁକ୍ତ—Fit to be distributed or donated.
Bitaraṇīya

**ବିତରତି**—ସଂ. କ୍ରି (ବି+ତୃ ଧାତୁ ବର୍ତ୍ତମାନକାଳ ୧ମ. ୧ବ. କ୍ରିୟା)—ବିତରଣ କରେ ବା କରୁଅଛି—Is distributing. (ଉ—ବିତରତି କି ହେମ ଶୀତଳ । ପ୍ରାଚୀ. ରସବାରିଧି ।)
Bitarati

**ବିତରିତ**—ସଂ. ବିଣ. (ବି+ତୃ ଧାତୁ ଣିଚ୍+କର୍ମ. ତ)—ବଣ୍ଟା ହୋଇଥିବା—Distributed; given away.
Bitarita

**ବିତରିବା**—ଦେ. (ପଦ୍ୟ) କ୍ରି (ବି+ତୃ ଧାତୁ)—ବିତରଣ କରିବା; ବାଣ୍ଟିବା—To distribute; to give away.
Bitaribā
বিতরা
वितरणकरना

**ବିତର୍କ**—ସଂ ବି. (ବି+ତର୍କ ଧାତୁ=ଯୁକ୍ତି କରିବା+ଭାବ. ଅ)—୧ । ପରସ୍ପର ମଧ୍ୟରେ ଆଲୋଚନା—1 Discussion. ୨ । ବାଦାନୁବାଦ; ଯୁକ୍ତି—2. Argument. ୩ । ବାଗ୍‌ଯୁଦ୍ଧ—3. Wordy duel. ୪ । ତତ୍ତ୍ୱାନୁସନ୍ଧାନ 4. Ivestigation. ୫ । ସଂଶୟ; ସନ୍ଦେହ—5. Doubt. ୬ । ଅନୁମାନ—6 Inference; guess. ୭ । ଯୁକ୍ତିର ଉତ୍ତରରେ ଦଆଯିବା ଯୁକ୍ତି—7. Counter-argument. ଦେ. ବିଣ—ତତ୍ତ୍ୱାନୁସନ୍ଧିତ୍ସୁ—Desirous to investigate. ( ଉ—ବାଲ ସ୍ୱଭାବ ଗୁଣ ବହି, ସଙ୍ଗ ଅସଙ୍ଗ ନ ଜାଣଇ । ବିତର୍କ ସ୍ୱାମୀ ସେହି ମତେ, କ୍ରୀଡ଼ା କରଇ ଏ ଜଗତେ । ଜଗନ୍ନାଥ ଭାଗବତ ।)
Bitarka

**ବିତର୍କକ**—ସଂ. ବିଣ. ପୁଂ—(ବିତର୍କ+କୃ ଧାତୁ+ଅ)—୧ । ବାଦାନୁ-
Bitarkaka ବାଦକାରୀ—1 Discussing. ୨ । ଅନୁସନ୍ଧାନ
( ବିତର୍କିକା—ସ୍ତ୍ରୀ ) କାରୀ—2. Investigating. ୩ ।
ବିଚାରକ—3. Adjudicating; judging

**ବିତର୍କଣ(ଣା)**—ସଂ. ବି—(ବି+ତର୍କ ଧାତୁ+ଭାବ ଅନ;+ସ୍ତ୍ରୀ. ଆ)]—
Bitarkaṇa(ṇā) ୧ । ବାଦାନୁବାଦକରଣ—1. Act of dis-
(ବିତର୍କିତ—ବିଣ) cussing. ୩ । ଅନୁମାନ କରିବା—3.
Inferring. ୪ । ସନ୍ଦେହ କରିବା—4. Doubting.

**ବିତର୍ଦ୍ଦି(ର୍ଦ୍ଦୀ)**—ସଂ. ବି—(ବି+ତର୍ଦ୍ଦ ଧାତୁ=ଉପବେଶନ କରିବା+କର୍ମ-
Bitarddi (rddī) ଇ+( ସ୍ତ୍ରୀ. ଈ )—୧ । ବେଦୀ; ମଞ୍ଚ—A
raised platform; an altar; a pulpit. ୨ ।
୨ । ଚୌକି—2. A chair.

**ବିତର୍ଦ୍ଦିକା**—ସଂ. ବି. (ବିତର୍ଦ୍ଦି+କ+ସ୍ତ୍ରୀ. ଆ)—ବେଦିକା; ଶ୍ରେଷ୍ଠ ବେଦୀ-
Bitarddikā A small pulpit.

**ବିତଳ**—ସଂ. ବି. ( ବି+ତଳ )—୧ । ସପ୍ତ ପାତାଳ ମଧ୍ୟରୁ ୨ୟ
Bitaḷa ପାତାଳ—1. The 2nd of the 7 divisions of
the nether world. (ପାତାଳ ତଳେ ନୋଟ୍ ଦେଖ)
୨ । ଗଭୀର ଭୂମଧ୍ୟ—2. A great depth under
ground. [ଉ—ବିତଳକୁ ଅଲଗନ, କର ଜାହ୍ନବୀ
ଶୋଭନ । ଉଞ୍ଜ. ବୈଦେହୀଶବିଳାସ ।]

**ବିତସ୍ତା**—ସଂ. ବି. (ବି+ତସ୍ ଧାତୁ=ଉତ୍କ୍ଷେପ କରିବା+କର୍ମ ତ+ଆ-
Bitastā ସିନ୍ଧୁ ନଦର ଶାଖାବିଶେଷ; ପଞ୍ଜାବ ଅନ୍ତର୍ଗତ ଝେଲମ
ନଦୀ—The Jhelum river in the Panjab; a
tributary of the Indus. [ଦ୍ର—ହିନ୍ଦୁ ଶାସ୍ତ୍ର
ମତେ ଏହି ନଦୀର ଜଳ ତୀର୍ଥ ବାରି ରୂପେ ବିବେଚିତ ]

**ବିତସ୍ତି**—ସଂ. ବି. (ବି+ତସ୍ ଧାତୁ=ଉତ୍କ୍ଷେପଣ କରିବା+କର୍ମ. ତି)—
Bitasti ଗୃଖଣ୍ଡ; ୧୨ ଅଙ୍ଗୁଳ ପରିମାଣ; ପ୍ରସାରିତ କରତଳର
ବୃଦ୍ଧାଙ୍ଗୁଷ୍ଠର ଅଗରୁ କନିଷ୍ଠାଙ୍ଗୁଳି ଅଗ ପର୍ଯ୍ୟନ୍ତ ଦୈର୍ଘ୍ୟ —
A span measured from the tip of the
thumb to that of the little finger of the
fully extended palm.

**ବିତା**—ଦେ. ବି. (ସଂ ବ୍ୟତ୍ୟୟ)—(କାଳ) କ୍ଷେପଣ—Passing (of
Bitā time). ପ୍ରାଦେ. (ସମ୍ବଲପୁର) ବି. [ସଂ. ବିତସ୍ତି; ତୁଳ
କାଟାନ **বিতনা** ହି ବିତ୍ତା ] ଗୃଖଣ୍ଡ—A span (linear
বিতান measure) ].

**ବିତା(ତେ)ଇବା**—ଦେ. କ୍ରି (ସଂ. ବ୍ୟତ୍ୟୟ; 'ବିତିବା' କ୍ରିୟାର ଣିଜନ୍ତ
Bitā(te)ibā ରୂପ)—୧ । (ସମୟ) କ୍ଷେପଣ ବା ଯାପନ କରିବା-
কাটান 1. To pass or spend (time). ୨ । ଅତିବାହିତ କରିବା;
**বিতানা** (ରୋଗ ଆଦି) କିଛିକାଳ ଭୋଗ କରିବା—2. To suffer
from a disease for some time. ୩ । ସମୟ ନଷ୍ଟ
କରିବା—3. To waste time. ୪ । ନିର୍ଦ୍ଦିଷ୍ଟ କାଳକୁ
କଟାଇବା—4. To let the due time pass. ୫ ।
କୌଣସି ବ୍ୟକ୍ତିଠାରେ ବୃଥା ଦୋଷାରୋପ କରିବା—
5. To accuse a person for nothing.
(ଯଥା—ଗାଁ ମହାଜନେ କିଛି ନ ବୁଝି ନ ସୁଝି, ତା ଉପରେ
ଦୋଷ ବିତାଇ ଦେଲେ ।)

**ବିତାର୍ଦ୍ଦନ**—ସଂ. ବି (ବି+ତର୍ଦ୍ଦ ଧାତୁ=ଆଘାତ କରିବା+ଭାବ. ଅନ)—
Bitārdana କୌଣସି ବ୍ୟକ୍ତିକୁ କୌଣସି ସ୍ଥାନରୁ ତଡ଼ି ଦେବା—
Driving away; expulsion.

**ବିତାର୍ଦ୍ଦିତ**—ସଂ. ବିଣ (ବି+ତାର୍ଦ୍ଦ ଧାତୁ+କର୍ମ. ତ)—୧ । ତାଡ଼ିତ—
Bitārdita 1. Expelled. ୨ । ଉତ୍ପାଟିତ—2. Uprooted.
୩ । ବିଶେଷ ରୂପେ ଚାଳିତ—3. Violently moved
or shaken.

**ବିତାନ**—ସଂ. ବି ( ବି+ତନ୍ ଧାତୁ=ବିସ୍ତୃତ ହେବା+କର୍ତ୍ତୃ. ଅ )—
Bitāna ୧ । ମଣ୍ଡପ - 1. An arbour; an open shed.
୨ । ପଟ୍ଟ ମଣ୍ଡପ; ତମ୍ବୁ—2. Tent. ୩ । ଛାମୁଣ୍ଡିଆ—
3. A temporary shed ୪ । ଚାନ୍ଦୁଆ; ଚନ୍ଦ୍ରାତପ—
4. Awning; canopy ୫ । ଯଜ୍ଞ—5. Vedic
sacrifice. ୬ । ସମୂହ—6. Collection ୭ ।
(+ଭାବ. ଅ) ବିସ୍ତାର—7. Expansion. ୮ ।
ଅବସର; ଅବକାଶ 8. Leisure. ୯ । ଛନ୍ଦୋବିଶେଷ—
9. Name of a Sanskrit metre. ବେ. ବିଣ-
୧ । ସାମାନ୍ୟ—1. Simple; ordinary. ୨ । ତୁଚ୍ଛ;
ହେୟ—2 Insignificant. ୩ । ମନ୍ଦ—3. Bad. ୪ ।
ଶୂନ୍ୟ 4. Vacant. ୫ । ଜଡ଼—5. Solid;
inert.

**ବିତାନକ**—ସଂ. ବି ( ବିତାନ+ସ୍ୱାର୍ଥେ. କ )—ପଟ୍ଟମଣ୍ଡପ; ବସ୍ତ୍ରଗୃହ —
Bitānaka Tent.

**ବିତାନ ମୂଳକ**—ସଂ. ବି [ ବହୁବ୍ରୀହି; ବିତାନ=ବିସ୍ତାର(ଯୁକ୍ତ)+ମୂଳ
Bitāna mūḷaka +କ ]—ବେଣା; ସୁଗନ୍ଧ ଚେର ଯୁକ୍ତ ତୃଣ
ବିଶେଷ; ଉଶୀର—The Beṇā grass; a kind of
reed-grass with sweet-scented fibrous
roots.

**ବିତି**—ଦେ. ବି—୧ । ପଶାଖେଳରେ ୩ ଗୋଟି କାଠି ମଧ୍ୟରୁ ୨ ଗୋଟି
Biti କାଠରେ ୩ ସଂଖ୍ୟକ ଦାନ ପଡ଼ିବା ଘଟନା—1. The
state of 2 (out of the 3) dice turning
up 3 points. ( ଉ—ବିତିପାତ ଯୋଗ ପୁନ, ଦଶ
ପ୍ରମୁଖରେ ଦାନ, କାଠି ପଡନାହିଁ ଅନୁଯଶ ଯେ । ଉଞ୍ଜ.
বিত্তি ବୈଦେହୀଶବିଳାସ ।) ୨ । (ସଂ ବିତ୍ତ) ଦେବକାର୍ଯ୍ୟ ବା
**বিত্তি** ଅନ୍ୟ ଧର୍ମ କାର୍ଯ୍ୟ ପାଇଁ ଲୋକ ସାଧାରଣଙ୍କଠାରୁ ଆଦାୟ
କରାଯିବା ଧନ ବା ଚାନ୍ଦା; ଧର୍ମଚାନ୍ଦା; ଭେଦା—2. Sub-
scription realised from people in general
for the service of certain idols or for
some religious purpose. ପ୍ରାଦେ. (ଗଡ଼ଜାତ) ବି-
ଡୁଡୁ (ଦେଖ)—Ḍuḍu (See).

**ବିତି(ତୁ)କି(କୁ)ଚ୍ଛି(ଚ୍ଛି)ଆ**—ଗ୍ରା. ବିଣ—୧ । (ସଂ ବିକୃତଶ୍ରୀ) ବିକୃତିଥିବା; Biti(tu)ki(ku)chhi(ti)a ବିଶ୍ରୀ; କୁତ୍ସିତ—1. Ugly. ୨ । **बिर्तिकिच्छि विकराल** (ସଂ ବିଚିକିତ୍ସ୍ୟ) ଅସାଧ୍ୟ (ରୋଗ)—2. Incurable (disease).

**ବିତିପାତ**—ଦେ. ବି. ( ସଂ. ବ୍ୟତୀପାତ )—ବ୍ୟତୀପାତ ( ଦେଖ )—Bitipata Byatipata ( See ) [ଦ୍ର—ନାହିଁ କିଛି ବିତିପାତ **व्यतीपात बितिपात** ବିଶ୍ୱେଷରେ ଯାତ୍ରା—ପ୍ରାଚୀ. ଶିବସ୍ୱରୋଦୟ । ]

**ବିତିବା**—ଦେ. କ୍ରି. ( ସଂ. ବ୍ୟତ୍ୟୟ; ବ୍ୟତୀତ )—୧ । ( କାଳ ) Bitiba ଯାପିତ ହେବା; ( କାଳ ) କଟିବା—1. To pass **काटा बीतना** ( said of time ). [ ଦ୍ର—ଯୁଗ ଯାଉଥିଲା ବିତି—ମଧୁସୂଦନ. କୁସୁମାଞ୍ଜଳି । ] ୨ । ( ରୋଗ ) ଶରୀରରେ କିଛିକାଳ ପାଇଁ ଅନୁଭୂତ ହେବା—2 To attack a person for some period ( said of a disease ). ୩ । ( ନିର୍ଦ୍ଦିଷ୍ଟ ସମୟ ) ଅତିକ୍ରାନ୍ତ ହେବା—3. To be allowed to pass ( said of a fixed time or date ).

**ବିତୀର୍ଣ୍ଣ**—ସଂ. ବିଣ ( ବି+ତୃ ଧାତୁ+କର୍ମ. ତ )—୧ । ଅର୍ପିତ—Bitirnna 1. Entrusted. ୨ । ପ୍ରଦତ୍ତ—2. Given. ୩ । ବିତରିତ—3. Distributed ୪ । ବ୍ୟାପ୍ତ—4. Spread. ୫ । ଆଚ୍ଛାଦିତ—5. Covered. ୬ । ଉତ୍ତୀର୍ଣ୍ଣ; ଅତିକ୍ରାନ୍ତ—6. Passed over; got over a difficulty.

**ବିତୁନ୍ନ**—ସଂ. ବି (ବି+ତୁଦ୍ ଧାତୁ=ବ୍ୟଥା ଉପଶମ କରିବା+କର୍ତ୍ତୃ ଅ)-Bitunna ୧ । ସୁନିଷଣ୍ଣକ ଶାକ; ( ସୁନୁସୁନିଆ ଶାଗ )—1 A kind of pot herb growing near water; Marsilia Quadrifolia. [ ଦ୍ର—ଏହା ପାଣି-କୂଳରେ ଜନ୍ମେ । ଏହାକୁ ଖାଇଲେ କ୍ଳାନ୍ତି ଦୂର ହୋଇ ସୁନିଦ୍ରା ହୁଏ । ] ୨ । ଶୈବାଳ; ଶିଉଳ—2. Moss.

**ବିତୁନ୍ନକ**—ସଂ. ବି ( ବିତୁନ୍ନ+କ )—୧ । ଧନିଆ—1. Coriander. Bitunnaka ୨ । ତୁତିଆ—2. Blue vitriol.

**ବିତୁଲ**—ଦେ. ବିଣ—ଅତୁଲ, ଅତୁଳନୀୟ—Incomparable. ( ଦ୍ର—Bitula ବିତୁଲ ମଥାମଣି ମାଣିକ୍ୟରେ—ଉପେ. ବୈଦେହୀଶବିଳାସ । )

**ବିତୁଷ୍ଟ**—ସଂ. ବିଣ ( ବି+ତୁଷ ଧାତୁ+କର୍ତ୍ତୃ. ତ )—ଅସନ୍ତୁଷ୍ଟ—Bitushta Dissatisfied; discontented; displeased. ( ବିତୁଷ୍ଟି—ବି )

**ବିତୁଷ୍ଟିକର**—ସଂ. ବିଣ ( ବିତୁଷ୍ଟି+କୃ ଧାତୁ+କର୍ତ୍ତୃ. ଅ )—ଅସ-Bitushtikara ନ୍ତୋଷଜନକ—Causing dissatisfaction. ( ବିତୁଷ୍ଟିକାରକ, ବିତୁଷ୍ଟିଜନକ, ବିତୁଷ୍ଟିପ୍ରଦ—ଅନ୍ୟରୂପ )

**ବିତୃଷ୍ଣ**—ସଂ. ବିଣ. ପୁଂ ( ବହୁବ୍ରୀହି; ବି+ତୃଷ୍ଣା )—୧ । ତୃଷ୍ଣାରହିତ—Bitrushna 1 Devoid of intense desire. ୨ । ନିସ୍ପୃହ, ( ବିତୃଷ୍ଣା—ସ୍ତ୍ରୀ ) କାମନାରହିତ—2. Disinterested; free ( ବିତୃଷ୍ଣତା—ବି ) from hankering. ୩ । ବିରାଗୀ; ଉଦାସୀନ—3. Indifferent; averse

**ବିତୃଷ୍ଣା**—ସଂ. ବି ( ବି+ତୃଷ୍ଣା )—୧ । ଅନିଚ୍ଛା—1. Disinclina-Bitrushna tion. ୨ । ଅରୁଚି—2. Aversion; disgust ୩ । ପିପାସାର ଶାନ୍ତି—3. Satiety of one's thirst ୪ । ଅନାସକ୍ତି—4. Indifference; want of attachment.

**ବିତ୍ତ**—ସଂ. ବି (ବିଦ ଧାତୁ=ଲାଭ କରିବା+କରଣ. ତ; ଯାହାଦ୍ୱାରା ଧର୍ମ, Bitta ଅର୍ଥ, କାମ, ମୋକ୍ଷାଦି ଲାଭ କରାଯାଏ )—ବିଭବ; ଧନ; ସମ୍ପତ୍ତି—Wealth; riches. ସଂ. ବିଣ ( ବିଦ ଧାତୁ=ଜାଣିବା+କର୍ମ. ତ)—୧ । ଜ୍ଞାତ; ବିଦିତ—1. Known. ୨ । ବିଚାରିତ—2. Judged. ୩ । ବିଖ୍ୟାତ—3. Renowned. ୪ । ଲବ୍ଧ—4. Gained.

**ବିତ୍ତବାନ୍**—ସଂ. ବିଣ. ପୁଂ. ( ବିତ୍ତ+ବତ୍; ୧ମା. ୧ବ )—ଧନବାନ୍—Bittaban ( ବିତ୍ତବତୀ—ସ୍ତ୍ରୀ ) Wealthy.

**ବିତ୍ତରହିତ**—ସଂ. ବିଣ. ପୁଂ ( ୩ୟା ତତ୍; ବିତ୍ତ+ରହିତ )—ନିର୍ଦ୍ଧନ; Bittarahita ଧନଶୂନ୍ୟ—Poor; destitute of property, ( ବିତ୍ତଶୂନ୍ୟ, ବିତ୍ତହୀନ—ଅନ୍ୟରୂପ ) indigent.

**ବିତ୍ତଶାଠ୍ୟ**—ସଂ. ବି—(୭ମୀ ତତ୍; ବିତ୍ତ+ଶାଠ୍ୟ)—କୃପଣତା—Bitta sathya Niggardlinees.

**ବିତ୍ତ ସମ୍ପତ୍ତି**—ଦେ. ବି (ଏକାର୍ଥ ସହଚର)—୧ । ଧନ—1, Riches, Bitta sampatti ୨ । ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତି—2. Moveable and immoveable property,

**ବିତ୍ତାର୍ଜନ**—ସଂ ବି—(୬ଷ୍ଠୀ ତତ୍; ବିତ୍ତ+ଅର୍ଜନ)—ଧନ ଉପାର୍ଜନ; ଧନ Bittarjana କମେଇବା—Earning of riches. ( ବିତ୍ତୋପାର୍ଜନ—ଅନ୍ୟରୂପ ) (ବିତ୍ତାର୍ଜକ—ବ୍ୟକ୍ତିବାଚକ ବିଣ)

**ବିତ୍ତି**—ସଂ. ବି (ବିଦ୍ ଧାତୁ+ଭାବ. ତି)—୧ । ବିଚାର—1. Consi-Bitti deration; judgment ୨ । (+କର୍ମ. ତି)—ଲାଭ—2. Profit; gain; benefit. ୩ । ଜ୍ଞାନ—3. Wisdom; knowledge ୪ । ସମ୍ଭାବନା—4 Probability. ୫ । ଖ୍ୟାତି—5. Fame; reputation. ୬ । ଅନୁସନ୍ଧାନ—6, Investigation,

ବିତି **बित्ति** ଦେ. ବି—ଦେବପୂଜାଦି ପାଇଁ ଗ୍ରାମବାସୀମାନଙ୍କଠାରୁ ବା ସାଧାରଣଙ୍କଠାରୁ ଆଦାୟ ହେବା ଧନ; ଭେଦା—Subscriptions raised from villagers or from the public for some religious object. [ଦ୍ର—ବଡ଼ ବଡ଼ ମହାଜନ ଓ ବ୍ୟବସାୟୀମାନେ ପଣ୍ୟ ଦ୍ରବ୍ୟ-କ୍ରେତାମାନଙ୍କ ଠାରୁ ଶତକଡ଼ା ନିର୍ଦ୍ଦିଷ୍ଟ ରେଟ୍‌ରେ ଯେଉଁ ବିତ୍ତି ଆଦାୟ କରନ୍ତି, ତାହା ଗୋଟିଏ ସ୍ୱତନ୍ତ୍ର ପଣ୍ଡରେ ରଖନ୍ତି ଓ ପରେ ପ୍ରାପ୍ତ ବିତ୍ତକ ଧର୍ମ କାର୍ଯ୍ୟରେ ଦିଅନ୍ତି ।]

**ବିତ୍ତେଶ**—ସଂ. ବି (୬ଷ୍ଠୀ ତତ୍; ବିତ୍ତ+ଈଶ=ପ୍ରଭୁ) ୧ । ଧନୀବ୍ୟକ୍ତି—Bittesa 1. A rich man. ୨ । କୁବେର—2. The God of riches. ୩ । ଯକ୍ଷ—3. A class of fabulous demigods who are said to be the guards of the treasury of Kubera. ୪ । ପ୍ରଭୁ—4. Master; lord.

ବିତ୍ର(ତ୍ରି,ତ୍ରେ)କେ—ଗ୍ରା. (ପ୍ରାଚୀନ ପଦ୍ୟ) ଅ. (ସଂ. ବ୍ୟତିରେକ)—
Bitra(tri, tre)ke Except; without. [ଉ—ତୁମ୍ଭ ବିତ୍ରିକେ
ব্যতিরেকে ଏ ବିଷୟ, ଆନ କେ ଫେଡ଼ିବ ସଂଶୟ । ଯଶୋବନ୍ତ.
बेतिरिके ପ୍ରେମଭକ୍ତି ବ୍ରହ୍ମଗୀତା ।]

ବିତ୍ରପ—ସଂ. ବିଣ. ପୁଂ (ବିଗତା ତ୍ରପା ଯସ୍ୟ; ବି+ତ୍ରପା=ଲଜ୍ଜା)—ନିର୍ଲଜ୍ଜ;
Bitrapa (ବିତ୍ରପା—ସ୍ତ୍ରୀ) ଅଲଜ୍ଜକ—Shameless

ବିତ୍ରସ୍ତ—ସଂ. ବିଣ (ବି+ତ୍ରସ୍ ଧାତୁ+ଭାବ ତ)—ଅତି ଭୀତ; ସନ୍ତ୍ରସ୍ତ—
Bitrasta Frightened; alarmed

ବିତ୍ରାସ—ସଂ. ବି (ବି+ତ୍ରସ୍ ଧାତୁ+ଭାବ. ଅ)—ବିଶେଷ ଭୟ—
Bitrāsa Fright; terror; alarm.

ବିଥ୍ (ଧାତୁ)—ସ—ଯାଚଞ୍ଚା କରିବା—
Bith (root) To ask for; to beg.

ବିଥୟ—ଗ୍ରା. ବିଣ—ବିଥିର (ଦେଖ)
Bithaya Bithira (See).

ବିଥିଡ୍ରା—ବୈଦେ. ପ୍ରାଦେ (ଗଞ୍ଜାମ, କଟକିଆ ଭାଷା) ବି (ଇଂ. ୱିଥ୍ଡ୍ର)—
Bithirdrā ବାଦୀର ମକଦ୍ଦମା ଉଠାଇ ନେବା କାର୍ଯ୍ୟ—
Withdrawal of a case by the plaintiff.

ବିଥିର—ଦେ. (ପ୍ରାଚୀନ ପଦ୍ୟ) ବିଣ. (ସଂ. ବି+ସ୍ଥିର)—ଅସ୍ଥିର;
Bithira ଚଞ୍ଚଳ—Restless. [ଉ—ବିଥିର ଚିତ୍ତ ବିଷାଣୀ
অস্থির बेचैन ଯେସନେ ସାରଙ୍ଗୀ । ଭଞ୍ଜ, ବୈଦେହୀଶବିଳାସ ।]
(ବିଥଏ—ଅନ୍ୟରୂପ)

ବିଥୀ ବିଥୀ—ଦେ. ଅ (ସଂ. ବୀଥି; ପାଥୀ)—୧ । ଧାଡ଼ି ଧାଡ଼ି ହୋଇ—
Bithī bithī 1. In rows. ୨ । ଯୂଥ ଯୂଥ ହୋଇ; ଦଳ ଦଳ
ହୋଇ—2. In crowds or gangs. [ଉ—ବିଥୀ
ବିଥୀ ଶୋଭି ବସି କୁମୁଦ କୁମୁଦ । ଭଞ୍ଜ- ବୈଦେହୀଶବିଳାସ ।]

ବିଥୁର—ସଂ. ବି—(ବ୍ୟଥ୍ ଧାତୁ=ଖିନ୍ନ ହେବା+ଅପାଦାନ ଉର)—୧ ।
Bithura ଚୋର—1. Thief. ୨ । ରାକ୍ଷସ—2. Goblin; demon.

ବିଥେଇ—ଗ୍ରା. ବିଣ (ସଂ ବିଚଳିତ; ଅସ୍ଥିର;)—୧ । ବ୍ୟାକୁଳ; କାତର;
Bithei ବ୍ୟସ୍ତ—1. Distracted; agitated; perturbed.
বিথয় बेचैन ୨ । ବିଚଳିତ; ଅଥୟ; ଅସ୍ଥିର—2. Restless.

ବିଦ୍—ସଂ. ବିଣ. ପୁଂ (ବିଦ୍ ଧାତୁ=ଜାଣିବା+କ୍ୱିପ୍)—୧ । ବେତ୍ତା; ଯେ
Bid ଜାଣେ—1. Knowing; versed in. ୨ । ପଣ୍ଡିତ—
(ବିଦା—ସ୍ତ୍ରୀ) 2. Learned in. [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ
ଯୁକ୍ତ ହୁଏ । ଯଥା—ବିଶ୍ୱବିଦ୍; ଶାସ୍ତ୍ରବିଦ୍ ।

ବିଦ—ସଂ. ବି (ବିଦ୍ ଧାତୁ+କର୍ତ୍ତୃ ଅ)—୧ । ପଣ୍ଡିତ—1. Learned
Bida man; philosopher. ୨ । ବୁଧଗ୍ରହ—2. The
planet Mercury. ଦେ. ବି—୧ । ଅନେକ ଗୁଡ଼ିଏ
ଜମଜ ଢେଙ୍କିଆ ଗୁନ୍ଥା ହୋଇ ମାଳାପରି ହୋଇଥିବା ବାହୁର
उसकी गेंडो ଅଳଙ୍କାରବିଶେଷ—1. An ornament for the
arm like a collar made up of several
drum-like pieces. (କୁଣ୍ଡ ଦାମ ପରି ବିଦ, ବାହୁଟି
ଉପରେ-ବାନ୍ଧ । ପ୍ରାଚୀ, ବିଦଗ୍ଧମଞ୍ଜରୀ ।) ୨ । ଗୁପଚିନ୍ନ;
ଚିକ୍ ପରି ବେକର ଚଉଡ଼ା ଅଳଙ୍କାରବିଶେଷ—2. A
collar ornament for the neck.

ବିଦଂଶ—ସଂ. ବି (ବି+ଦନ୍ଶ ଧାତୁ+କର୍ମ ଅ)—୧ । ସୁସ୍ୱାଦୁ ବସ୍ତୁ—
Bidamśa 1. A sweet or palatable thing. ୨ ।
ଦଂଶନ; କାମୁଡ଼ା—2. A bite.

ବିଦଗଧ—ଗ୍ରା (ପଦ୍ୟ) ବିଣ (ସଂ. ବିଦଗ୍ଧ)—୧ । ଦହଗଞ୍ଜ; ବିଶେଷ
Bidagadha କ୍ଲେଶପ୍ରାପ୍ତ—1. Troubled; afflicted.
বিজগধ (ଉ—ବିଦଗଧ ଯକ୍ଷ କର୍ମରେ ସର୍ବଦାରେ ସେ ଅଛି,
विदगध ବିଦଗଧ ଚିତ୍ତ ପ୍ରାପତ ନୋହିବାରେ ଦୁହିତା । ଭଞ୍ଜ-
ବୈଦେହୀଶବିଳାସ ।) ୨ । ବିଦଗ୍ଧ (ଦେଖ)—2.
Bidagdha (See)

ବିଦଗ୍ଧ—ସଂ. ବିଣ (ବି+ଦହ୍ ଧାତୁ=ଦାହ କରିବା+କର୍ମ ତ;
Bidagdha କାମଦ୍ୱାରା ଦଗ୍ଧ)—୧ । ରସିକ—1 Witty;
(ବିଦଗ୍ଧା—ସ୍ତ୍ରୀ) jovial; humorous ୨ । ନାଗର—
2. Lustful; gallant; amorous. ୩ । ଚତୁର—
3. Clever; shrewd. ୪ । ପଟୁ; ନିପୁଣ—4.
Able; skilful. ସଂ. ବି—୧ । ପଣ୍ଡିତ—1. A
learned man. ୨ । ରସିକ ବ୍ୟକ୍ତି—2 A beau;
a wit. ୩ । ନାଗର—3. A gallant.

ବିଦଗ୍ଧ ଚିନ୍ତାମଣି—ଦେ. ବି—ଅଭିମନ୍ୟୁ ସାମନ୍ତସିଂହାରଙ୍କ ପ୍ରଣୀତ ପ୍ରାଚୀନ
Bidagdha chintāmaṇi ଉତ୍କଳୀୟ କାବ୍ୟବିଶେଷ—
An Oriya epic composed by Abhimanyu
Sāmantasimhāra.

ବିଦଗ୍ଧତା(ତ୍ୱ)—ସଂ. ବି [ବିଦଗ୍ଧ+ଭାବ. ତା(ତ୍ୱ)]—୧ । ରସିକତା—
Bidagdhatā(twa) 1. Wittiness. ୨ । ପାଣ୍ଡିତ୍ୟ—
2. Learning; wisdom. ୩ । ଚତୁରତା—3.
Cleverness. ୪ । ନାଗରତା—4. Gallantry.

ବିଦଗ୍ଧ ମାଧବ—ସଂ. ବି—୧ । ରସିକ ଶ୍ରୀକୃଷ୍ଣ—1. The beau or
Bidagdha mādhaba gallant Śrikṛushṇa. ୨ ।
ଶ୍ରୀକୃଷ୍ଣଙ୍କର ରାଧିକାଙ୍କ ସହ ପ୍ରଣୟାଦି ବର୍ଣ୍ଣନାତ୍ମକ ସଂସ୍କୃତ
ନାଟକବିଶେଷ—2. Name of Sanskrit drama
depicting the love stories of Śrikṛushṇa.

ବିଦଗ୍ଧା—ସଂ. ବି. ସ୍ତ୍ରୀ—୧ । ରସିକା ନାୟିକା—1. A witty
Bidagdhā woman; a jovial lady. ୨ । କଥାରେ ଓ
କାର୍ଯ୍ୟରେ ଯେଉଁ ସ୍ତ୍ରୀ ରସିକତାପୂର୍ଣ୍ଣା; ନାଗରୀ—2.
Lustful lady; an amorous woman. ସଂ. ବିଣ.
ସ୍ତ୍ରୀ—ବିଦଗ୍ଧର ସ୍ତ୍ରୀଲିଙ୍ଗ—Feminine of Bidagdha.

ବିଦଗ୍ଧାଜୀର୍ଣ୍ଣ—ସଂ. ବି (ବିଦଗ୍ଧ+ଅଜୀର୍ଣ୍ଣ)—ଅମ୍ଳରୋଗ ବିଶେଷ; ଯେଉଁ
Bidagdhājirṇṇa ଅଜୀର୍ଣ୍ଣ ରୋଗରେ ରୋଗୀର ଖାଇବା ଖାଲି ଖଟା
ହୁଏ—Acid dyspepsia.

ବିଦନ୍ତମୁଦ୍ରା—ଦେ. ବିଣ (ବି+ଦନ୍ତମୁଦ୍ରା)—ଦନ୍ତଚିହ୍ନ ବସି ନ ଥିବା;
Bidantamudrā ଯହିଁରେ ଦନ୍ତର କ୍ଷତ ଚିହ୍ନ ନାହିଁ—
Having no mark of biting left on it.

( ଉ— ବିଦଗ୍ଧମୁଦ୍ରା ରସାଳ, ବିଯୋଗ କଲେ ବିଷାଳ, ବନଜାକ୍ଷ ବିଦପର, ବସୁଧାପର ଯେ । ଉଞ୍ଜ, ବୈଦେହୀଶ-ବିଳାସ । )

**ବିଦପର**—ଦେ, ବିଣ (ସଂ, ବିଦ =ପଣ୍ଡିତ+ପର=ପରମ; ଅତ୍ୟନ୍ତ)—
Bidapara ପରମପଣ୍ଡିତ; ବିଶେଷଜ୍ଞ—Highly learned; very wise. ( ଉ—ବିଦପର ତାପସ-ଦତ୍ତ ହବି, ବିହିତ ଦଶରୂପ ରଣ ଭୂବ । ଉଞ୍ଜ, ବୈଦେହୀଶବିଳାସ । )

**ବିଦମାଳ(ଳି)**— ଦେ ବି—ବିଦ ( ଦେଖ )—Bida ( See ) ( ଉ
Bidamāla(li) —କର ପଯୂର ଶିକାଭାଳ, ଶଙ୍ଖ ମୁକୁତା ବିଦମାଳି । ଜଗନ୍ନାଥ, ଭାଗବତ । )

**ବିଦର**—ସ ବି ( ବି+ଦୃ ଧାତୁ=ବିଦାରଣ କରିବା+ଭାବ ଅ )—
Bidara ୧ । ବିଦାରଣ—1. Splitting. ୨ । ( ବି= ଅତ୍ୟନ୍ତ+ଦର=ଭୟ )—ଅତ୍ୟନ୍ତ ଭୟ—2. Terror; fright. ୩ । ବିକଶନ; ପ୍ରସ୍ଫୁଟନ—3. Opening or blooming (of flowers). ୪ । (+କର୍ତ୍ତୃ. ଅ) ନାଗଫେଣିଆ ଗଛ—4. Cactus.
ଦେ. ବି—ନାମ (ସଂ. ବିଦର୍ଭ) ପ୍ରାଚୀନ ବିଦର୍ଭର ଆଧୁନିକ ନାମ—The modern name of Bidarbha.

**ବିଦରବ**—ଗ୍ରା (ପଦ୍ୟ) ବିଣ. (ସଂ. ବିଦ୍ରବ)—ଦ୍ରବୀଭୂତ—1. Melted; Bidaraba molten. [ଉ—ବରଦ ବିରସାନନ ସାର ବିଦରବ ବଧମାନ ଜରତ ଉରଜନ ମାଧବ । ଉଞ୍ଜ. ବୈଦେହୀଶ ବିଳାସ । ]

**ବିଦର୍ପକର**—ଦେ. ବିଣ—ଗର୍ବ ବିନାଶକ—Crushing one's Bidarpakara arrogance. [ ଉ— ବିଦର୍ପକର ଦର୍ପକର ରୁଚ ଯେ ଭାରତୀ ରତ ସେ ବିତନ୍ତେ । ଉଞ୍ଜ. ବୈଦେହୀଶ ବିଳାସ ।]

**ବିଦର୍ଭ**—ସ. ବି—(ବହୁବ୍ରୀହି; ବି=ନାହିଁ+ଦର୍ଭ=କୁଶ)—ଆଧୁନିକ
Bidarbha ବେରାର ପ୍ରଦେଶ—The morden Berar.
[ବି—ପୁରାଣରେ ଅଛି ଯେ ଏହି ଦେଶରେ କୁଶର ଆଘାତରେ ଗୋଟିଏ ଋଷିକୁମାରଙ୍କର ମୃତ୍ୟୁ ହେବାରୁ ଏ ଦେଶରେ କୁଶ ଜନ୍ମିବ ନାହିଁ ବୋଲି ଉକ୍ତ ଋଷି-କୁମାରଙ୍କର ପିତା ଉକ୍ତ ଦେଶକୁ ଅଭିଶାପ ଦେଲେ । ସେ ଅଭିଶାପ ଫଳରେ ଏ ଦେଶରେ କୁଶ ଜନ୍ମେ ନାହିଁ ।]
ଦେ. ବି—( ବି+ଦର୍ଭ ) କଶ ଫୁଲ; କାଇଁଶ ଫୁଲ—The flower of kāśa grass.

**ବିଦର୍ଭଜା**—ସ. ବି—(ବିଦର୍ଭ+ଜନ ଧାତୁ+କର୍ତ୍ତୃ.ଅ+ସ୍ତ୍ରୀ. ଆ)—
Bidarbhajā ୧ । ବିଦର୍ଭ ରାଜା ଭୀମସେନଙ୍କ କନ୍ୟା ଦମୟନ୍ତୀ; ନଳ ରାଜାଙ୍କ ସ୍ତ୍ରୀ—1. Damayanti; the wife of King Nala.

ବିଦର୍ଭ କନ୍ୟକା, ବିଦର୍ଭ ତନୟା,
ବିଦର୍ଭ ନନ୍ଦନୀ, ବିଦର୍ଭ ପୁତ୍ରୀ, } —ଅନ୍ୟରୂପ
ବିଦର୍ଭ ରାଜ ତନୟା, ବିଦର୍ଭସୁତା

୨ । ବିଦର୍ଭର ରାଜା ଭୀଷ୍ମକଙ୍କ କନ୍ୟା ରୁକ୍ମିଣୀ, ଶ୍ରୀକୃଷ୍ଣଙ୍କ ସ୍ତ୍ରୀ—2. Rukmiṇi, the wife of Śrikṛushṇa. ୩ । ଅଗସ୍ତ୍ୟଋଷିଙ୍କ ପତ୍ନୀ, ଲୋପା ମୁଦ୍ରା—3. Wife of sage Agastya.

**ବିଦର୍ଭହାସୀ**—ଦେ. ବିଣ. ସ୍ତ୍ରୀ—(ସଂ. ବିଦର୍ଭହାସା) କାଶହାସୀ; ଶୁକ୍ଳ-
Bidarbha hāsī ହାସ୍ୟଯୁକ୍ତା—Laughing brightly; laughing by exhibiting a white set of teeth. (ଉ—ବିଦର୍ଭ ବିଦର୍ଭହାସୀ କମ୍ପିତ ଦେଖ । ଉଞ୍ଜ. ବୈଦେହୀଶବିଳାସ ।)

**ବିଦଳ**—ସ. ବି (ବି+ଦଲ ଧାତୁ=ବିଦାରଣ କରିବା+କର୍ମ. ଅ)—
Bidaḷa ୧ । ଦୁଇଫାଳିଆ ହର ମୁଗ ଆଦିର ଡାଲି—1. Split peas; pulse etc ୨ । ଡାଳିମ୍ବର ଛେଲି—2. The bark of pomegranate. ୩ । ବାଉଁଶ ପାତିଆ-ଆଦିରେ ନିର୍ମିତ ପାତ୍ରବିଶେଷ—3. A basket of wicker work. ୪ । ରୁଟି—4. A cake; bread
ସ. ବିଣ—(ବି+ଦଲ)—୧ । ଦଳହୀନ—1. Having no petals ୨ । ବିକଶିତ—2 Opened. ୩ । ବିପକ୍ଷ; ପ୍ରତିପକ୍ଷ; ଶତ୍ରୁ ପକ୍ଷୀୟ—3. Antagonistic.

**ବିଦଳନ**—ସ. ବି—( ବି+ଦଲ୍ ଧାତୁ+ଭାବ. ଅନ )—ଉତ୍ତମରୂପେ
Bidaḷana ଦଳିବା; ବିମର୍ଦ୍ଦନ; ପେଷଣ—Thorough grinding or crushing.

**ବିଦଳିତ**—ସ. ବିଣ—(ବି+ଦଲ୍ ଧାତୁ+କର୍ମ. ତ)—୧ । ବିମର୍ଦ୍ଦିତ—
Bidaḷita 1. Crushed; well ground. ୨ । ବିଦାରିତ—2. Cleft; lacerated. ୨ । ବିକଶିତ 3. Expanded; blossomed.

**ବିଦଳିବା**—ଦେ. (ପଦ୍ୟ) କ୍ରି. (ସଂ. ବିଦଳନ)—ବିଶେଷଭାବରେ ଦଳିବ
Bidaḷibā To thoroughly crush or grind.
विदला **विदलना** ଉ—ବିଦଳେ ମାତଙ୍ଗ ଲୋକ ଇନ୍ଦ୍ରଗୋପ କଣ୍ଟକକୁ ଅଷ ହେ ଘନ ଗର୍ଜନେ ଜାଇ । ଉଞ୍ଜ. ବୈଦେହୀଶ ବିଳାସ ।)

**ବିଦା**—ସ. ବିଣ. ସ୍ତ୍ରୀ—ବିଦ୍ (ଦେଖ)—Bid (See) ସ. ବି—
Bidā (ବିଦ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—ବୋଧଶକ୍ତି; ବୁଦ୍ଧି—Intelligence; understanding. ଦେ. ବି.—
बिदा; बिधाशाल (ସଂ. ବିଦାରକ; ବର୍ଦ୍ଧକ)—୧ । କ୍ଷେତରେ ଧାନ
हेंगा; पहटा ଗଛ ସଙ୍ଗେ ଉଠିଥିବା ତୃଣମାନଙ୍କୁ ପାଣିଆରେ ବୁଡ଼ାଇବା ପାଇଁ ଓପାଡ଼ି ଆଣିବା ପାଇଁ ବ୍ୟବହୃତ ଲୌହ କଣ୍ଟକ ବା ଶଲ୍ୟଯୁକ୍ତ କାଷ୍ଠ ଫଳକବିଶେଷ—1. A harrow; ୨ । ପ୍ରହାର—2. Striking; beating. (ଉ—ବିଦା ସଦା ମେଦା ଗଦା ଗଦଧର ବର ଭାର ଭାହି ବିହି—ଉଞ୍ଜ. ବୈଦେହୀଶବିଳାସ । ) ଗ୍ରା. ବି. ପୁଂ—ବିଦ୍ୟାଧରର ଡାକ ନାମ—A name or calling Bidyādhara.
ବୈଦେ. ବି. ( ଅ. ବିଦାଅ=ଯିବାକୁ ଅନୁମତି )—୧ ।
विदाय ବିଦାୟ; ମେଲାଣି—1. Farewell; permission to
विदा go. ୨ । ଅନୁମତି ସହ ସ୍ଥାନାନ୍ତରକୁ ପ୍ରସ୍ଥାନ—2. Starting for a place with permission. ୨। କୌଣସି ବ୍ୟକ୍ତିକୁ ସ୍ଥାନାନ୍ତରକୁ ପଠାଇବା—3. Act of send-

ing out a man. ବଣ—ବିଦାୟ ପ୍ରାପ୍ତ; ସ୍ଥାନାନ୍ତରକୁ ଯିବାକୁ ଅନୁମତି ପ୍ରାପ୍ତ—Permitted to leave a place.

ବିଦାବ—ବୈଦେ. ବି—ବିଦାୟ ( ଦେଖ )
Bidāe Bidāya ( See )

ବିଦାଂବର—ସଂ. ବଣ. ପୁଂ (ବ୍ରହ୍ମ, ଶାସ୍ତ୍ର, ବେଦ ଆଦି ଶବ୍ଦ ପରେ ପ୍ରଯୋଜ୍ୟ Bidāmbara ଯଥା—ବେଦ ବିଦାଂବର) —(ବ୍ରହ୍ମ, ବେଦ, ଶାସ୍ତ୍ର ଆଦିରେ) ବିଜ୍ଞ ଲୋକମାନଙ୍କ ମଧ୍ୟରେ ଶ୍ରେଷ୍ଠ—Chief amongst persons versed in (the Bedas etc). (ଉ—ଜ୍ୟୋତି ଯଥା ଏବାୟୁ ବ୍ରହ୍ମବିଦାଂବର, କାମକ୍ରୋଧ ବିଜୟୀ ଅଜୟୀ ଓଁକାର—କୃଷ୍ଣସିଂହ. ମହାଭାରତ ଶାନ୍ତି ।)

ବିଦା କରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ବିଦାୟ ଦେବା—
Bidā karibā 1. To bid adieu to a person. ( ଉ—
বিদায় করা ସମସ୍ତଙ୍କୁ ବିଦା କରି ବିଧ ଏକୁସରି । ରାଧାନାଥ.
विदाई करना କାଶୀଦର୍ଶନ ।) ୨ । କୌଣସି ବ୍ୟକ୍ତିଙ୍କୁ କୌଣସି ସ୍ଥାନକୁ ପଠାଇବା—2. To send out a person.
୩ । କୌଣସି ବ୍ୟକ୍ତିଙ୍କୁ ସ୍ଥାନ ତ୍ୟାଗ କରି ଯିବାକୁ ଅନୁମତି ଦେବା—3. To permit a person to go.

ବିଦାକି—ବୈଦେ. ବି. ( ଅ. ବିଦାଅ )—୧ । ବନ୍ଧୁମାନଙ୍କୁ ବିଦାୟ
Bidāki ଦେବା—1. Act of bidding adieu to
বিদায়ী friends. ୨ । ଉତ୍ସବାଦି ଉପଲକ୍ଷେ ସମାଗତ ବନ୍ଧୁ ଓ
विदायगी, बिदायी ଭୃତ୍ୟାଦିଙ୍କୁ ଦିଆଯିବା ବିଦାୟକାଳୀନ ଦେୟ ଅର୍ଥାତ୍ ଧନ ବସ୍ତ୍ରାଦି; ମେଲାଣି; ଦକ୍ଷିଣା—2. Money or clothes presented to relatives and servants who attend social and other festivites.

ବିଦାରିବା—ଦେ. କ୍ରି (ବି+ଦୃ ଧାତୁ)—ବିଦାରଣ କରିବା—
Bidārdibā বিদারা बिदारना To lacerate.

ବିଦାଡ଼(ଡ଼ି) ଦେ. ବି—ଏକ କଉଡ଼ିର ୬୪୦ ଭାଗରୁ ଏକ ଭାଗ—
Bidārdha(rdhi) $\frac{1}{640}$ of a cowrie or shell-money.

ବିଦା ଦେବା—ଦେ. କ୍ରି—୧ । ମେଲାଣି ଦେବା; ଯିବା ପାଇଁ ଅନୁମତି
Bidā debā ଦେବା—1. To bid farewell to a de-
বিদায় দেওয়া parting person; to give permission to
विदा करना go. ୨ । ଧାନ କିଆରିରେ ବିଦା ଚଳାଇବା—2. To
বিদা দেওয়া drive the harrow in the paddy field.
पहटा (हेंगा) चलाना

ବିଦାବିଦି—ଦେ. ବି—୧ । ବିଦାୟ—1. Farewell. ୨ । ଅନ୍ୟୋ-
Bidābidi ନ୍ୟରେ ବିଦାୟ ଗ୍ରହଣ—2. Mutual farewell.
বিদায় টিদায় बिदाविदी

ବିଦାୟ—ସଂ. ବି. ( ବି+ଦା ଧାତୁ=ତ୍ୟାଗ କରିବା+ଭାବ. ଅ )—
Bidāya ୧ । ଦାନ—1. Giving away. ୨ । ବିସର୍ଜନ—
বিদায় 2. Relinquishing; abandonment. ବୈଦେ. ବି.
विदा, विदाई ( ଅ. ବିଦାଅ=ଯିବା ପାଇଁ ଅନୁମତି )—୧ । ସ୍ଥାନାନ୍ତରକୁ ଯିବା ପାଇଁ ଦିଆଯିବା ଅନୁମତି—
ସ. ବିଦାୟୁକ୍ତ 1. Farewell; permission to depart. ୨ । କାର୍ଯ୍ୟରୁ ବରଖାସ୍ତ ଦେବା; କର୍ମଚ୍ୟୁତି—2. Dismissal from service. ୩ । ସ୍ଥାନ ତ୍ୟାଗ—3. Departure from a place. ୪ । କାର୍ଯ୍ୟରୁ ସ୍ଥାୟୀ ଅବସର ଗ୍ରହଣ—4. Leave from service; retirement from service. [ ଦ୍ର—ଏ ଶବ୍ଦ ବୈଦେଶିକ ହେଲେ ମଧ୍ୟ ସାଧୁଭାଷା ବ୍ୟବହାର ପ୍ରିୟ ବ୍ୟକ୍ତିମାନେ ଏଥି ସଙ୍ଗେ କାଳୀନ, ଗ୍ରହଣ, ସଙ୍ଗୀତ, ଭାଷଣ ଆଦି ସଂସ୍କୃତ ଶବ୍ଦମାନ ଯୋଗ କରନ୍ତି । ]

ବିଦାୟ କରିବା—ଦେ. କ୍ରି. (ଅ. ବିଦାଅ)—୧ । ବିବାହାଦି ଉପଲକ୍ଷେ
Bidāya karibā ସମାଗତ ବନ୍ଧୁବାନ୍ଧବ, ଭୃତ୍ୟ, ବ୍ରାହ୍ମଣ ଆଦିଙ୍କର
বিদায় করা ପ୍ରସ୍ଥାନ କରିବା ପୂର୍ବରୁ ସେମାନଙ୍କୁ ଉପହାର ଦାନ ବା
बिदा करना ଦକ୍ଷିଣା ଦେବା—1. To give presents to friends, relatives, servants and Brāhmaṇas while preparing to depart after attending social or other festivities.
୨ । ଯିବାକୁ ଛାଡ଼ିଦେବା—2. To let one go.
୩ । କାହାରିକୁ ଯିବାକୁ ଅନୁମତି ଦେବା—3. To give a person permission to go. ୪ । କୌଣସି ବ୍ୟକ୍ତିଙ୍କୁ କର୍ମଚ୍ୟୁତ କରିବା—4. To dismiss a person. ୫ । ଦୂର କରିବା; ତଡ଼ି ଦେବା—5. To drive away ( a person ).
୬ । କୌଣସି ବ୍ୟକ୍ତିଙ୍କୁ କୌଣସି ସ୍ଥାନକୁ ପଠାଇବା—6. To send out a person.

ବିଦାୟ କାଳୀନ—ଦେ. ବଣ ( ଅ, ବିଦାଅ+ସଂ. କାଳୀନ )—କୌଣସି
Bidāya kālīna ବ୍ୟକ୍ତିର ବିଦାୟକାଳ ସମ୍ବନ୍ଧୀୟ—Relating to or composed on the occasion of a person's departure. ( ଯଥା—କଳସାହେବଙ୍କ ବିଦାୟକାଳୀନ ଲେଖା ।)

ବିଦାୟ ଗ୍ରହଣ—ଦେ. ବି (ଅ. ବିଦାଅ+ସଂ. ଗ୍ରହଣ )—୧ । କାର୍ଯ୍ୟରୁ
Bidāya grahaṇa ଛୁଟି ନେବା—1. Taking leave.
বিদা গ্রহণ ୨ । କାର୍ଯ୍ୟରୁ ଚିରକାଳ ପାଇଁ ଅବସର ଗ୍ରହଣ—2. Retiring from service. ୩ । କାର୍ଯ୍ୟରୁ ଇସ୍ତଫା ଦେବା—3. Resigning a service. ୪ । ଯିବା ପାଇଁ ଅନୁମତି ନେବା—4. Taking leave to go.

ବିଦାୟ ଗ୍ରହଣ କରିବା—ଦେ. କ୍ରି—୧ । ଯିବା ପାଇଁ ଛୁଟି ନେବା—
Bidāya grahaṇa karibā 1. To take leave. ୨ ।
বিদায় গ্রহণকরা; বিদায় লওয়া କାର୍ଯ୍ୟରୁ ଚିରକାଳ ପାଇଁ ଅବସର
विदाय लेना ନେବା—2. To retire from service.
(ବିଦାୟ ନେବା—ଅନ୍ୟରୂପ) ୩ । ଯିବା ପାଇଁ ଅନୁମତି ନେବା—3. To take permission to go.

**ବିଦାୟ ଦେବା**—ଦେ. କ୍ରି—୧ । କାର୍ଯ୍ୟରୁ ଅନ୍ତର କରିବା; ଡିସ୍‌ମିସ୍ କରିବା—1. To dismiss or discharge from service. ୨ । ଯିବାକୁ ଅନୁମତି ଦେବା; ଛୁଟି ମଞ୍ଜୁର କରିବା—2. To grant leave to go
Bidāya debā
বিদায় দেওয়া
**विदा देना**

**ବିଦାୟ ପାଇବା**—ଦେ. କ୍ରି—୧ । ଛୁଟି ପାଇବା—1. To get leave. ୨ । ଯିବାକୁ ଅନୁମତି ପାଇବା—2. To get permission to depart.
Bidāya pāibā
বিদায় পাওয়া **विदा पाना**

**ବିଦାୟ ଭୋଜ(ଜି)**—ଦେ. ବି—କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର କୌଣସି ସ୍ଥାନ ଛାଡ଼ିବା ପୂର୍ବରୁ ବନ୍ଧୁମାନଙ୍କର ତାଙ୍କ ଦେବା ଭୋଜି—Farewell dinner.
Bidāya bhoja(ji)
বিদায় ভোজ **विदाभोगी**
( ବିଦାୟ ଭୋଜନ—ଅନ୍ୟରୂପ )

**ବିଦାୟ ମାଗିବା**—ଦେ. କ୍ରି—୧ । ଛୁଟି ମାଗିବା—1. To ask for leave. ୨ । ପ୍ରସ୍ଥାନ କରିବାକୁ ଅନୁମତି ପ୍ରାର୍ଥନା କରିବା; ମେଲାଣି ମାଗିବା—2. To ask for permission to go.
Bidāya māgibā
বিদায় চাওয়া; বিদায় প্রার্থনা করা
**विदा चाहना**
( ବିଦାୟ ଗୁହାରିବା—ଅନ୍ୟରୂପ )

**ବିଦାୟ ସଙ୍ଗୀତ**—ଦେ. ବି ( ଅ. ବିଦାଅ+ସଂ. ସଙ୍ଗୀତ )—କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର କୌଣସି ସ୍ଥାନ ତ୍ୟାଗ କରି ଚାଲି ଯିବାର ହେଲେ ତାହାଙ୍କ ବନ୍ଧୁମାନଙ୍କର ତାହାଙ୍କୁ ଅଭ୍ୟର୍ଥନା କରିବା ସମୟରେ ଯେଉଁ ଗୀତ ବୋଲା-ଯାଏ—Parting song; farewell song; a valedictory song.
Bidāya saṅgita
বিদায় সংগীত
**विदासंगीत**
ବିଦାୟ ଗାଥା, ବିଦାୟ ଗାନ, ବିଦାୟ ଗୀତ, ବିଦାୟ ଗୀତିକା—ଅନ୍ୟରୂପ

**ବିଦାର**—ସଂ. ବି ( ବି+ଦୃ ଧାତୁ+ଭାବ. ଅ )—୧ । ବିଦାରଣ; ଚିରି ଦେବା—1. Laceration; tearing. ୨ । ( ଅଧି-କରଣ. ଅ ) ଯୁଦ୍ଧ; ରଣ—2. Fight; battle ୩ । ଜଳୋଚ୍ଛ୍ୱାସ; ତେଉ—3. The swelling of water; wave.
Bidāra

**ବିଦାରକ**—ସଂ. ବିଣ (ବି+ଦୃ ଧାତୁ+କର୍ତ୍ତୃ. ଅକ)—ବିଦାରକାରୀ—Piercing; lacerating; tearing; rending. ସଂ. ବି—୧ । (+କର୍ମ. ଅ +କ) ଶୁଷ୍କ ନଦୀ ବା ପୁଷ୍କରିଣୀ ଗର୍ଭସ୍ଥ କୂପ—1. A well in the dry bed of a river or tank. ୨ । ସମୁଦ୍ର ଗର୍ଭସ୍ଥ ବୃକ୍ଷ ବା ପର୍ବତ—2. A tree or hill rising from the bed of a sea; submarine rock or tree. ୩ । ଚଳ୍ପକ୍ଷାର—3. Unrefined alkali.
Bidāraka
( ବିଦାରିକା ସ୍ତ୍ରୀ )

**ବିଦାରଣ**—ସଂ. ବି ( ବି+ଦୃ ଧାତୁ ଣିଜନ୍ତ ଦାରି ଧାତୁ+ଭାବ. ଅନ )—୧ । ବିଦ୍ଧକରଣ—1. Piercing. ୧ । ଚିରି ଦେବା; ଛିଣ୍ଡାଇ ପକାଇବା—2. Lacerating; tearing. ୩ । ( +ଅଧିକରଣ. ଅନ ) ଯୁଦ୍ଧ—3. Fight; battle. ୪ । (+କରଣ. ଅନ ) ବାଣ, ଶର—4. Arrow. ୫ । ( +ଭାବ ଅନ ) ହନନ, ପ୍ରାଣରେ ମାରିବା—5. Killing. ଦେ. ବି—ଭେଦ; ପ୍ରଭେଦ—Distinction; difference.
Bidāraṇa
[ଉ—ବିଦାରଣ ବେନି ସମାନ ଭାବ ଉକ୍ତି, ବିଦାରଣ ବୁଦ୍ଧି କେବଳ ଅଛି ରହି—ଉଞ୍ଜ, ବୈଦେହୀଶବିଳାସ । ]

**ବିଦାରଣୀୟ**—ସଂ. ବିଣ (ବି+ଦୃ ଧାତୁ+କର୍ମ ଅନୀୟ )—ବିଦୀର୍ଣ୍ଣ ହେବା ଯୋଗ୍ୟ—Lacerable; capable of being rent.
Bidāraṇiya
(ବିଦାର୍ଯ୍ୟ—ଅନ୍ୟରୂପ)

**ବିଦାରିତ**—ସଂ. ବିଣ (ବି+ଦୃ ଧାତୁ ଣିଚ୍ ଦାରି ଧାତୁ+କର୍ମ. ତ)—୧ । ଭେଦିତ; ଚିରି ହୋଇଥିବା—1. Pierced; rent. ୨ । ଛିନ୍ନ ବିଚ୍ଛିନ୍ନ—2. Lacerated; torn.
Bidārita
(ବିଦାରଣ—ବି)

**ବିଦାରିବା**—ଦେ. କ୍ରି (ସଂ. ବିଦାରଣ)—୧ । ବିଦାରଣ କରିବା; ଭେଦ କରିବା—1. To pierce through; to penetrate. [ଉ—ବଳ ଆଡ଼ ବିଦାରି ଉଠିଲେ ଅଗ୍ରଣୀ-କୃଷ୍ଣସିଂହ. ମହାଭାରତ ଅଦି । ] ୨ । ଦୂର କରିବା—2. To drive away. [ ଉ - ନଳଙ୍କ ଏ ବଚନଚନ୍ଦ୍ର ପ୍ରକାଶିଲ, ପୁଷ୍କରଙ୍କ ଉଦ୍ୟମକୁ ବିଦାରିଲା । କୃଷ୍ଣସିଂହ. ମହାଭାରତ ବନ ।] ୩ । ଫାଡ଼ିଦେବା; ଚିରିଦେବା—3. To lacerate; to split up. ୪ । ନଖ ବା ଅସ୍ତ୍ରାଦି ଦ୍ୱାରା ଗଭୀରରୂପେ ଭେଦ କରିବା—4. To scratch deeply.
Bidāribā
বিদারা
**विदारना**

**ବିଦାରି ହେବା**—ଦେ କ୍ରି—୧ । ବିଦୀର୍ଣ୍ଣ ହେବା—1 To be rent or lacerated. ୨ । କ୍ରୋଧରେ ବା ଈର୍ଷାରେ ଅସ୍ଥିର ହେବା—2. To be restless with anger or malice; to become furious with rage.
Bidāri hebā
ফেটো যাওয়া
**फटना**

**ବିଦାରୀ**—ସଂ. ବି—୧ । (ବି+ଦୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ ବୈଦ୍ୟକ)—ଗଳନାଳୀର ଶ୍ଳୈଷ୍ମିକ ପ୍ରଦାହ (ରୋଗ); ଶରଦ ଯୋଗୁଁ ଗଳାରେ କଫ ଜମି ଗଳା ଚିରି ହେବାପରି ଜଣାଯିବା ରୋଗ—1. Phlegmonous pharyngites. [ ଦ୍ର—ଏହା ୧୮ ପ୍ରକାର କଣ୍ଠ ରୋଗମଧ୍ୟରୁ ଏକତମ—ହି. ଶ । ] ୨ । ( ବିଦାର+ସ୍ତ୍ରୀ. ଈ ) ଭୂମି କୁଷ୍ମାଣ୍ଡ; ଭୂଇଁ କଖାରୁ—2. Ipomœa Paniculata. ୩ । ଶାଳପର୍ଣ୍ଣୀ; ଶାଳପର୍ଣ୍ଣୀ—3 Desmodium Gangeticum (medicinal plant). ୪ । କ୍ଷୀରକାକୋଲି (ହି.ଶ)(ଦେଖ)—5. Kshirakākoli (See) ସଂ. ବିଣ ପୁଂ—ବିଦାରଣକାରୀ—Lacerating; piercing.
Bidāri
(ବିଦାରିଣୀ—ସ୍ତ୍ରୀ) [ଉ—ଜୟ ଦୁଷ୍ଟ ହିରଣ୍ୟକଶିପୁ-ବିଦାରୀ; କୃଷ୍ଣ-ସିଂହ. ମହାଭାରତ ବିରାଟ । ] [ ଦ୍ର—ଏହା ଅନ୍ୟ ଶବ୍ଦ ପରେ ବ୍ୟବହୃତ ହୁଏ । ]

**ବିଦାରୀ କନ୍ଦ**—ସଂ. ବି—ଭୂମିକୁଷ୍ମାଣ୍ଡ—Ipomœa Paniculata·
Bidāri kanda

**ବିଦାରୀ ଗନ୍ଧା**—ସଂ. ବି—୧ । ଶାଳପର୍ଣ୍ଣୀ ( ହି. ଶ ) 1: Desmodium Gangeticum,
Bidāri gandhā

୨ । ( ସୁଶ୍ରୁତ ) ଶାଳପର୍ଣ୍ଣୀ, ଭୂଇଁକଖାରୁ, ଗୋକ୍ଷୁର, କ୍ଷତାବରୀ, ଅନନ୍ତ ମୂଳ, ମୁଦ୍ଗପର୍ଣ୍ଣୀ, ପୁନର୍ନବା ଆଦି ଔଷଧର ଗଣ—2. A class of herbs having some common curative preperties.
[ ଦ୍ର—ଏ ଗଣର ଦ୍ରବ୍ୟମାନ ବାୟୁନାଶକ, ପିତ୍ତନାଶକ ଏବଂ ଶ୍ୱାସ, ଗୁଳ୍ମ, ଶୋଥ, ଊର୍ଦ୍ଧ୍ୱଶ୍ୱାସ ଓ କାଶ ରୋଗରେ ହିତକର—ହି. ଶ. ]

ବିଦାରୁ—ସଂ. ବି (ବି + ଦୃ ଧାତୁ + କର୍ତ୍ତୃ. ଉ)—କୃକଳାସ; ଏଣ୍ଡୁଅ—
Bidāru A kind of lizard; Lace Scutata.

ବିଦାହ—ସଂ. ବି ( ବି + ଦାହ )—୧ । ପିତ୍ତାଧିକ୍ୟ ଯୋଗୁଁ ଅନୁଭୂତ
Bidāha ଜଳାପୋଡ଼ା—1. Burning sensation. ୨ । ହାତ ଓ ଗୋଡ଼ରେ ଜଳାପୋଡ଼ା (ହି. ଶ)—2. Burning sensation in the hands and legs.

ବିଦାହୀ— ସଂ. ବିଣ ( ବିଦାହ-। -ଇନ୍; ୧ମା. ୧ବ )—ଯେଉଁ ଦ୍ରବ୍ୟ
Bidāhī ଖାଇଲେ ଅମ୍ଳ ଜାତ ହୁଏ—(foods) Producing
(ବିଦାହକ—ଅନ୍ୟରୂପ) acidity or indigestion.

ବିଦିଆ — ଗ୍ରା. ବି—୧ । (ସଂ. ବିଦ୍ୟା) ବିଦ୍ୟା ( ଦେଖ ) —Bidyā
Bidiā (See). ୨ । (ପୁଂ) ବିଦ୍ୟାଧରର ଅନାଦରାର୍ଥକ ଡାକନାମ—2, A name for calling Bidyādhara.

ବିଦିକ୍—ସଂ. ବି (ବିଦିଶ୍; ୧ମା. ୧ବ)—ଦିଗର ମଧ୍ୟସ୍ଥାନ; ଦିକ୍‌କୋଣ
Bidik ( ଈଶାନ, ବାୟୁ, ନୈର୍ଋତ ଓ ଅଗ୍ନିକୋଣ )—The corners between the four cardinal points of the compass; the intermediate points of the compass.

ବିଦିଗ—ଦେ. ବି ବିଦିକ୍ (ଦେଖ)
Bidiga Bidik (See).

ବିଦିତ —ସଂ. ବିଣ (ବିଦ୍ ଧାତୁ=ଜାଣିବା + କର୍ମ. ତ )—୧ । ପରିଜ୍ଞାତ,
Bidita ଅବଗତ—1. Known; understood. ୨ । (କର୍ତ୍ତୃ. ତ) ଯେ ଜାଣେ; ଜ୍ଞାତା—2. Knowing; one who knows. ୩ । ପ୍ରାର୍ଥିତ-3. Prayed for. ୪ । ଲବ୍ଧ—4. Obtained. ୫ । ବିଶ୍ରୁତ; ଖ୍ୟାତ—5. Celebrated. ସଂ. ବି —(+ ଭାବ ତ) ୧ । ଜ୍ଞାନ—1. Knowledge. ୨ । ଖ୍ୟାତି—2. Reputation; fame. ୩ । ଲାଭ—3. Gain; profit. ୪ । (+ କର୍ତ୍ତୃ. ତ)—କବି (ହି, ଶ)—4. Poet.

ବିଦଥ—ସଂ. ବି. ପୁଂ (ବିଦ୍ ଧାତୁ + କର୍ତ୍ତୃ. ଅଥ)—୧ । ପଣ୍ଡିତ, ବିଦ୍ୱାନ୍
Biditha ବ୍ୟକ୍ତି (ହି, ଶ)—1. A learned person.
୨ । ଋଷି; ଯୋଗୀ (ହି, ଶ)—2. An ascetic.

ବିଦିଶ—ଦେ. ବି. ସ୍ତ୍ରୀ (ସଂ. ବିଦିଶ୍)—ବିଦିକ୍ (ଦେଖ)
Bidiśa Bidik (See).

ବିଦିଶା—ସଂ. ବି (ବିଦିଶ + ଆ)—୧ । ମାଳବ ଦେଶାନ୍ତର୍ଗତ ବେତ୍ରବତୀ
Bidiśā ନଦୀ ତୀରସ୍ଥ ନଗରୀ—1. Name of an ancient town of India standing on the river Betrabatī. [ ଦ୍ର—ଏହାର ଅଧୁନାତନ ନାମ ଭେଲସା* (ହି: ଶ)]—୨ । ପୌରାଣିକ ପାରିପାତ୍ର ପର୍ବତରୁ ବାହାରିଥିବା ନଦୀବିଶେଷ (ହି. ଶ)—2 Name of river mentioned in the Hindu mythologies.

ବିଦୀପ୍ତ—ସଂ. ବିଣ (ବି + ଦୀପ୍ ଧାତୁ + କର୍ତ୍ତୃ ତ )—ସନ୍ତପ୍ତ; ତାପିତ—
Bidīpta Burnt. [ଉ—ବିଦୀପ୍ତ ହେବାରୁ କର ତାପ ଘନକାଳ —ଉଷ୍ଣ. ବୈଦେହୀଶବିଳାସ ।]

ବିଦୀର୍ଣ୍ଣ—ସଂ.ବିଣ (ବି + ଦୃ ଧାତୁ + କର୍ମ.ତ) —୧ । ଚିରି ଯାଇ ଖଣ୍ଡ ଖଣ୍ଡ
Bidīrṇṇa ହୋଇଥିବା; ବିଦାରିତ—1. Rent; cleft; lacerated. ୨ । ଫାଟି ଯାଇଥିବା; ଭଗ୍ନ ଯାଇଥିବା—3. Broken. ୩ । ହତ—3 Killed. ୪ । ବିସ୍ତୀର୍ଣ୍ଣ—4. Spread; expanded.

ବିଦୀର୍ଯ୍ୟମାଣ—ସଂ. ବିଣ (ଯଙନ୍ତ ବି + ଦୃ ଧାତୁ=ବିଦୀର୍ଯ୍ୟ ଧାତୁ +
Bidīrjyamāṇa କର୍ମ. ଆନ )—ଯାହା ବିଦୀର୍ଣ୍ଣ ହେଉଅଛି—Being rent or lacerated.

ବିଦୁ—ଦେ. ବି—୧ । (ସ ଦ୍ୱି) ପଶାଖେଳରେ ୨ଟି ପଶାକାଠିରେ ଦୁଇ
Bidu ଦୁଇ ପଡ଼ିବା ଦାନ—1. A throw resulting in 2 points turning out in each of 2 dice.
विजुरि(ळि) ୨ । ( ସଂ. ବିଦ୍ୟୁତ୍—2. Lightning. [ ଉ—
ବିଜୁ ଦେଖିଲି ଗୋଷ୍ଠେ, ଗୋପାଳ ମେଘେ, ଗାବ ଦୁଅନ୍ତି ହରି; ନୀଳ ଜୀମୂତ, ବରନ ପୀତ, ବସନ ବିଦୁ ପରି । ଭକ୍ତଚରଣ. ମଥୁରାମଙ୍ଗଳ । ] ଗ୍ରା. ବି—୧ । (ପୁଂ) ବିଦ୍ୟାଧରର ଆଦରାର୍ଥକ ଡାକ ନାମ—1 A name for calling males named Bidyādhara. ୨ । (ସ୍ତ୍ରୀ) ବିଦ୍ୟୁଲ୍ଲତା ଆଦି ସ୍ତ୍ରୀଲୋକଙ୍କ ଡାକ ନାମ—2. A name
(ବିଦେଇ—ଅନ୍ୟରୂପ) for calling females.

ବିଦୁଡ଼ି—ପ୍ରାଦେ. ( ଯାଜପୁର ) ବି—ପିଜୁଳି (ଫଳ ଓ ବୃକ୍ଷ)—
Bidurdi Guava.

ବିଦୁଡ଼ୁ—ପ୍ରାଦେ ( କଟକ ) ବି—ପିଜୁଳି (ଫଳ ଓ ବୃକ୍ଷ)—Guava.
Bidurdu

ବିଦୁର—ସଂ.ବି (ବିଦ୍ ଧାତୁ=ଜାଣିବା + ଶୀଳାର୍ଥରେ ଉର)—ଯୁଧିଷ୍ଠିରଙ୍କ
Bidura ପିତୃବ୍ୟ, ଧୃତରାଷ୍ଟ୍ରଙ୍କ ବୈମାତ୍ରେୟ ଭ୍ରାତା—Uncle of Judhisṭhira and step brother of Dhṛutarāshṭra. [ ଦ୍ର —ଏ ମୃତ ଶାନ୍ତନୁଙ୍କ ଦାସୀ ଗର୍ଭଜାତ ବ୍ୟାସଦେବଙ୍କ ଔରସ ସନ୍ତାନ । ଏ ଖୁବ୍ ଜ୍ଞାନୀ, ବୁଦ୍ଧିମାନ୍ ଓ ଦୂରଦର୍ଶୀ ଥିଲେ; ରାଜନୀତି, ଧର୍ମନୀତି ଓ ଅର୍ଥନୀତିରେ ଖୁବ ପ୍ରବୀଣ ଥିଲେ । ଏ ପ୍ରଥମେ କୌରବଙ୍କ ମନ୍ତ୍ରୀ ଥିଲେହେଁ ପାଣ୍ଡବମାନଙ୍କ ପ୍ରତି ଏହାଙ୍କର ଗଭୀର ସ୍ନେହ ଥିଲା । ଦୁର୍ଯ୍ୟୋଧନଙ୍କୁ ଏ ଯୁଦ୍ଧରୁ ବହୁତ ନିବର୍ତ୍ତାଇ ଥିଲେ; କିନ୍ତୁ ଏଥିରେ ବିଫଳ ହୋଇ ପାଣ୍ଡବ ପକ୍ଷରେ ଯୁଦ୍ଧ କରିଥିଲେ ଓ ଯୁଦ୍ଧ ପରେ ପାଣ୍ଡବମାନଙ୍କ ମନ୍ତ୍ରୀ ହୋଇଥିଲେ, ପରେ ଅରଣ୍ୟକୁ ଯାଇ ତପଃସାଧନ କରି ଶେଷରେ ଯୋଗମାର୍ଗରେ ଦେହ ତ୍ୟାଗ କଲେ । 'ବିଦୁରନୀତି' ନାମକ

ମାଇଶାଁଷ୍ଟ ଏହାଙ୍କ ଉଚିତ ( ହି. ଶ ) ଶ୍ରୀକୃଷ୍ଣ ଏହାଙ୍କ ଗୃହରେ ଆତିଥ୍ୟ ସ୍ୱୀକାର କରିଥିଲେ । ] ସ. ବିଣ. ପୁଂ— ଜ୍ଞାନୀ; ପଣ୍ଡିତ—Wise; learned. ପ୍ରାଦେ (ଗଡ଼ଜାତ) ବି—ପିଜୁଳି—Guava.

ବିଦୁର ଘର ଖୁଦ—ଦେ. ପ୍ରବଚନ—ବନେ ଶ୍ରୀକୃଷ୍ଣ ହସ୍ତିନାପୁରକୁ Bidura ghara khuda ଆସିଥିଲେ । ସେ ଅଧର୍ମପରାୟଣ ବିଦୁର ଘର ଖୁଦସାଗ ବିଦୁର ଘର ଶାଗ ବିଦୁର ଘର ଶାଗଖୁଦ } ଅନ୍ୟରୂପ — କୁରୁରାଜ ଦୁର୍ଯ୍ୟୋଧନଙ୍କର ପ୍ରଦତ୍ତ ରାଜଭୋଗ ଓ ପକ୍ୱାନ୍ନ ଗ୍ରହଣ ନ କରି ଶ୍ରଦ୍ଧା ଭକ୍ତି ବିଦୁରେର ଖୁଦ ସମନ୍ୱିତ, ଧାର୍ମିକପ୍ରବର ଅଥଚ ଦରିଦ୍ର ବିଦୁରଙ୍କ ଘରେ **बिदुर घरका शाग** ପହଞ୍ଚି ତାହାଙ୍କ ପ୍ରଦତ୍ତ ଖୁଦସାଗୁ ଓ ଶାକାନ୍ନ ଖାଇଥିବା କଥିତ ଅଛି । ଅତଏବ ଅଶ୍ରଦ୍ଧାପ୍ରଦତ୍ତ ପକ୍ୱାନ୍ନ ଅପେକ୍ଷା ଶ୍ରଦ୍ଧାପ୍ରଦତ୍ତ ଶାକାନ୍ନ ଉପାଦେୟ ଏହି ଉପଦେଶ ଶ୍ରୀକୃଷ୍ଣ ଏତଦ୍ୱାରା ଜଗତକୁ ଦେଇଅଛନ୍ତି । କେହି ଧନୀବ୍ୟକ୍ତି ସ୍ନେହବନ୍ଧନ ଯୋଗୁଁ କୌଣସି ଗରିବ ବନ୍ଧୁ ଘରେ ଆତିଥ୍ୟ ଗ୍ରହଣ କଲେ ଗରିବ ବନ୍ଧୁ ଏ ଉପମାସୂଚକ ବାକ୍ୟ ପ୍ରୟୋଗ କରନ୍ତି—A proverb meaning,—preferring a poor dinner at a poor man's house, which is accompanied with affection, to a delicious dish in a rich man's house when unattended with attachment.

ବିଦୁଳ—ସ. ବି ( ବିଦ୍ ଧାତୁ+ଉଳ )—୧ । ଜଳବେତସ— Bidula 1. A kind of ratan growing near water; Calamus Rotang. ୨ । ବେତ—2 Ratan cane. ୩ । ବୋଳ; ଗନ୍ଧରସ (ହି. ଶ)—3 A kind of incense. ୪ । ଅମ୍ଳବେତସ ( ହି. ଶ )—4. A kind of acid pot-herb.

ବିଦୁଷ—ଦେ. ବି ( ସ. ବିଦ୍ୱସ୍ ଶବ୍ଦ )—ପଣ୍ଡିତ—Learned man. Bidusha ( ଉ—ବିଦୁଷ ! ଦୂଷଣ ବିବର୍ଜିତ ଗୀତେ ରସ । ଉଞ୍ଜ. ବୈଦେହୀଶବିଳାସ ।]

ବିଦୁଷୀ—ସ. ବିଣ. ସ୍ତ୍ରୀ (ବିଦ୍ୱସ୍+ସ୍ତ୍ରୀ. ଈ)—ବିଦ୍ୟାବତୀ; ପଣ୍ଡିତା (ସ୍ତ୍ରୀ)— Bidushī Learned ( woman ).

ବିଦୁଷ୍ମତୀ—ସ. ବିଣ. ସ୍ତ୍ରୀ ( ବିଦ୍ୱସ୍+ଅସ୍ତି ଅର୍ଥରେ ମତ୍+ସ୍ତ୍ରୀ. ଈ )— Bidushmatī ବିଦୁଷୀ—Learned (woman).

ବିଦୂର—ସ. ବିଣ ( ବି+ଦୂର )—ଅତି ଦୂରବର୍ତ୍ତୀ—Very far; Bidūra very distant; remote. ( ଉ—କଷ୍ଟସ୍ୱ ହୋଇ [ବିଦୂରତା(ତ୍ୱ)—ବି] ବିଦୂର । କବିସୂର୍ଯ୍ୟ. ବଳୋଗୋପାଳ । ) ସ.ବି—୧ । ବହୁଦୂରତା—1. A great distance. ୨ । ପର୍ବତବିଶେଷ—2 Name of a mountain. [ ଦ୍ର—ଏଥିରୁ ବୈଦୂର୍ଯ୍ୟମଣି ମିଳୁଥିବା କଥିତ—ହି. ଶ ] ୩ । ଦେଶବିଶେଷ—3. Name of a country. ୪ । ବୈଦୂର୍ଯ୍ୟମଣି—4. A gem; Lapis Lazuli. ୫ । ବହୁଦୂରବର୍ତ୍ତୀ ଦେଶ ( ହି. ଶ )—5. A very distant country. ଦେ. ବିଣ—ବିଗତ; ବିତାଡ଼ିତ— Removed; disappeared; gone.

ବିଦୂରଗ—ସ. ବିଣ. ପୁଂ—( ବିଦୂର+ଗମ ଧାତୁ+କର୍ତ୍ତୃ. ଅ )—୧ । Bidūraga ସୁଦୂରଗାମୀ—1. Going to a great dis- (ବିଦୂରଗା—ସ୍ତ୍ରୀ) tance. ୨ । ବହୁଦୂର ବିସ୍ତୃତ—3. Spreading far and wide (Apte).

ବିଦୂରଜ—ସ. ବି—(ବିଦୂର=ପର୍ବତବିଶେଷ+ଜନ୍ ଧାତୁ+କର୍ତ୍ତୃ. ଅ) Bidūraja ବୈଦୂର୍ଯ୍ୟ ମଣି—Lapis Lazuli. ସ. ବିଣ— ବହୁଦୂରବର୍ତ୍ତୀ ଦେଶରେ ଜାତ—Produced in a far off country.

ବିଦୂରତଃ—ସ. ଅ—( ବିଦୂର+ତସ୍ )—୧ । ବହୁଦୂରରୁ— Bidūratah 1. From a great distance. ୨ । ବହୁଦୂରରେ—2. At a great distance; far off (Apte).

ବିଦୂର ବିଗତ—ସ. ବିଣ. ଓ ବି—(ସ. ବିଦୂର+ବିଗତ)—ଅନ୍ତ୍ୟଜ— Bidūra bigata A person of depressed caste.

ବିଦୂରିତ—ଗ୍ରା. ବିଣ—(ସ. ବିଦୂର; ଅଶୁଦ୍ଧ ବ୍ୟବହାର)—ବିତାଡ଼ିତ; Bidūrita ଦୂରୀକୃତ—Driven away; expelled; removed. [ଦ୍ର— ଶିକ୍ଷିତ ବ୍ୟକ୍ତିମାନଙ୍କ ଲେଖାରେ ଏ ଅଶୁଦ୍ଧ ଶବ୍ଦର ବ୍ୟବହାର ବେଳେ ବେଳେ ଦେଖା ଯାଏ; ଏପରି ବ୍ୟବହାର ପରିହାର୍ଯ୍ୟ । ]

ବିଦୂଷକ—ସ. ବିଣ. ପୁଂ—(ବି+ଦୂଷ୍ ଧାତୁ+କର୍ତ୍ତୃ. ଅକ)—୧ । Bidūshaka ନିନ୍ଦକ—1. Reproaching. ୨ । ଅପବାଦ (ବିଦୂଷିକା—ସ୍ତ୍ରୀ) ଦେବା (ବ୍ୟକ୍ତି)—2. Defaming (person.) ୩ । କାମୁକ—3. Lascivious. ୪ । ଲମ୍ପଟ— 4. Adulterous; dissolute. ୫ । ନିନ୍ଦାଜନକ; କୁତ୍ସାତ୍ମକ—5. Defamatory. ୬ । ଖଳ— 6. Wicked; wanton. ସ. ବି.—୧ । ଭଣ୍ଡ— 1. A fool; buffoon; clown. ୨ । ନାଟକରେ ନାୟକର ମନୋରଞ୍ଜନକାରୀ ନଟବିଶେଷ — 2. A jester in a drama. [ ଦ୍ର—ପ୍ରାଚୀନ କାଳରେ ପ୍ରାୟ ସବୁ ଦେଶର ରାଜା ଓ ବଡ଼ଲୋକଙ୍କ ସଭାରେ ଏବଂ ନାଟକରେ ରାଜା ଆଦିଙ୍କର ଓ ଶ୍ରୋତୃବର୍ଗଙ୍କ ମନୋରଞ୍ଜନାର୍ଥ ବିଦୂଷକ ଦୃଷ୍ଟ ହୁଅନ୍ତି । ଏ ଅନେକ ପ୍ରକାର ହାସ୍ୟରସ, କୌତୁକ ଓ ପରିହାସରେ ପଟୁ । ସାହିତ୍ୟ ଦର୍ପଣ ମତରେ ବିଦୂଷକ କୌଶଳକ୍ରମେ ଲୋକଙ୍କୁ ହସାଏ, ଲୋକଙ୍କ ମଧ୍ୟରେ କଳି ଲଗାଇ ଦିଏ, ଆପଣା ଉଦରପୂର୍ତ୍ତି ଓ ସ୍ୱାର୍ଥ ସାଧନ ପାଇଁ ସର୍ବଦା ଲାଳାୟିତ ହୁଏ ଓ ମାନିନୀ ନାୟିକାର ମାନଭଞ୍ଜନରେ ନାୟକର ସହାୟ ହୁଏ— ହି. ଶ ।] ୩ । ରାଜା ମହାରାଜାଙ୍କ ମନୋରଞ୍ଜନକାରୀ ସହଚର; ବୟସ୍ୟ—3 A jester in the court of a king. ୪ । କାବ୍ୟୋକ୍ତ ୪ ପ୍ରକାର ନାୟକ ମଧ୍ୟରୁ ହାସ୍ୟରସିକ ନାୟକ—4. A class of

heroes in romance; a witty hero of romance. [ବି—ଏ ଆପଣା କୌତୁକ ଓ ପରିହାସ ଯୋଗୁଁ କାମକେଳି ରସବାହକ ହୁଏ । ହି. ଶ]

**ବିଦୂଷଣ**—ସଂ. ବି—(ବି+ଦୂଷ ଧାତୁ+ଭାବ. ଅନ)—୧ । କୁତ୍ସା; Bidūshaṇa ଗାଳି—1. Reproach; censure. ୨ । ନିନ୍ଦା—2. Blame. ୩ । ଅପବାଦ—3. Defamation. ୪ । ଦୂଷିତକରଣ—4. Pollution; corruption (Apte). ଦେ.—(ପ୍ରାଚୀନ ପଦ୍ୟ) ବିଣ—ଦୋଷରହିତ; ନିର୍ଦ୍ଦୋଷ—Faultless; free from blemish. ( ଉ—ବିଦୂଷଣ ଗୀତ ସ୍ୱନନେ ଶୁଣ—ଭଞ୍ଜ. ବୈଦେହୀଶବିଳାସ ।)

**ବିଦୂଷିବା**—ଦେ. (ପଦ୍ୟ) କ୍ରି.—(ସଂ, ବି+ଦୂଷ ଧାତୁ)—୧ । କୁତ୍ସା Bidūshibā କରିବା; ଅପବାଦ କରିବା—1 To defame. ବିଦୂଷା ୨ । ଦୂଷିତ କରିବା; ନଷ୍ଟ କରିବା—2. To spoil; to ବିଦୂଷନା pollute; to contaminate.

**ବିଦୃଶ**—ଦେ. ବିଣ—ଅଦୃଶ୍ୟ—Invisible. (ଉ—ବିଦୃଶ ପାଶଜନ Bidṛuśa ତମ ରଞ୍ଜନ ଲୋଚନର ଜାଲ କୋଣାଲ । ଭଞ୍ଜ. ବୈଦେହୀଶବିଳାସ ।) ସଂ. ବିଣ—ଅନ୍ଧ; ଦୃଷ୍ଟିଶକ୍ତିହୀନ (ହି. ଶ)—Blind.

**ବିଦୃଶ୍ୟ**—ଦେ. (ପ୍ରାଚୀନ ପଦ୍ୟ) ବିଣ—ବିଦୃଶ (ଦେଖ)—Bidṛuśya Bidṛuśa (See) (ଉ—ବାଦେ ଜଣେ କଳ୍ପଦ୍ରୁମ ଯହିଁ ବୃକ୍ଷ ପନ୍ତି; ବିଦୃଶ୍ୟ ଫଳ ସେ ଦୃଶ୍ୟ ଫଳେ ଏ ରାଜନ୍ତି । ଭଞ୍ଜ. ବୈଦେହୀଶବିଳାସ ।) ଦେ. ବି—ଦୃଷ୍ଟିଶକ୍ତିହୀନତା; ଅନ୍ଧତା—Blindness.

**ବିଦୃଷ୍ଟ**—ଦେ. ବିଣ—ଯାହା ଦେଖା ଯାଏ ନାହିଁ; ଅଦୃଶ୍ୟ—Invisible. Bidṛushṭa (ଉ—ବିଦୃଷ୍ଟ ସ୍ଥାନରେ କି ସୃଷ୍ଟି ଚିତ୍ର—ଭଞ୍ଜ. ବୈଦେହୀଶବିଳାସ ।)

**ବିଦେଇ**—ପ୍ରାଦେ. (ସିଂହଭୂମି) ବି—ବିଦାୟ—Farewell. ଗ୍ରା. ବି. Bidei ପୁଂ—ବିଦ୍ୟାଧରର ଆଦରାର୍ଥକ ଡାକ ନାମ—A name for calling Bidyādhara.

**ବିଦେଶ**—ସଂ ବି—(ବି=ଭିନ୍ନ+ଦେଶ)-ଦେଶାନ୍ତର—1. A foreign Bideśa country. ୨ । ବହୁଦୂରବର୍ତ୍ତୀ ଦେଶ—2. A far (ସ୍ୱଦେଶ—ବିପରୀତ) off country. ୩ । ପ୍ରବାସ—3. Sojourn.

**ବିଦେଶ କରିବା**—ଦେ. କ୍ରି—୧ । ପ୍ରବାସକୁ ଯିବା—1. To travel Bideśa karibā abroad. ୨ । ପ୍ରବାସ ଜନିତ କଷ୍ଟ ସହିବା—বিদেশ করা 2 To bear the privations of sojourn. परदेश करना (ବିଦେଶ ଯିବା—ଅନ୍ୟରୂପ)

**ବିଦେଶ ଗତ**—ସଂ. ବିଣ. ପୁଂ (୨ୟା ତତ୍; ବିଦେଶ+ଗତ)—ପ୍ରବାସକୁ Bideśa gata ଯାଇଥିବା—Sojourning; gone abroad

**ବିଦେଶଜ**—ସଂ. ବିଣ ( ବିଦେଶ+ଜନ୍ ଧାତୁ+କର୍ତ୍ତୃ. ଅ )—ଦେଶା-Bideśaja ନ୍ତରରେ ଉତ୍ପନ୍ନ—Produced in a foreign (ବିଦେଶ ଜାତ—ଅନ୍ୟରୂପ) country; exotic.

**ବିଦେଶ ନିବାସ**—ସଂ. ବି—ପ୍ରବାସ ବାସ—Sojourn; residence Bideśa nibāsa abroad; residence in a foreign (ବିଦେଶ ବାସ—ଅନ୍ୟରୂପ) country.

**ବିଦେଶ ନିବାସୀ**—ସଂ. ବିଣ. ପୁଂ—ଭିନ୍ନ ଦେଶରେ ବାସ କରୁଥିବା—Bideśa nibāsī Residing in a foreign country. (ବିଦେଶବାସୀ—ଅନ୍ୟରୂପ) [ବିଦେଶ ନିବାସିନୀ(ବାସିନୀ)—ସ୍ତ୍ରୀ]

**ବିଦେଶ ପ୍ରତ୍ୟାଗତ**—ସଂ. ବିଣ. ପୁଂ (୫ମୀ ତତ୍; ବିଦେଶ+ପ୍ରତ୍ୟାଗତ)-Bideśa pratyāgata ବିଦେଶରୁ ଘରକୁ ଫେରି ଆସିଥିବା—(ବିଦେଶ ପ୍ରତ୍ୟାଗତା—ସ୍ତ୍ରୀ) Returned home from abroad. (ବିଦେଶ ପ୍ରତ୍ୟାଗମନ—ବି)

**ବିଦେଶ ଯାତ୍ରା**—ସଂ. ବି. (୨ୟା ତତ୍; ବିଦେଶ ପ୍ରତି ଯାତ୍ରା)—ପ୍ରବାସକୁ Bideśa jātrā ଯିବା; ଦେଶାନ୍ତର ଗମନ—Going abroad. [ବିଦେଶ ଗମନ (ପ୍ରସ୍ଥାନ)—ଅନ୍ୟରୂପ] (ବିଦେଶ ଯାତ୍ରୀ—ବିଣ. ପୁଂ)

**ବିଦେଶସ୍ଥ**—ସଂ. ବିଣ ( ବିଦେଶ+ସ୍ଥା ଧାତୁ+କର୍ତ୍ତୃ. ଅ )—୧ । ଭିନ୍ନ Bideśastha ଦେଶୀୟ—1. Living in a foreign country. ୨ । ପ୍ରବାସରେ ଥିବା (ବ୍ୟକ୍ତି)—2. Living abroad.

**ବିଦେଶାଗତ**—ସଂ. ବିଣ. ପୁଂ ( ୫ମୀ ତତ୍; ବିଦେଶ+ଆଗତ )—Bideśāgata ବିଦେଶରୁ ଆସିଥିବା—Come from abroad; (ବିଦେଶାଗତା—ସ୍ତ୍ରୀ) come from a foreign country. (ବିଦେଶାଗମନ—ବି)

**ବିଦେଶୀ**—ସଂ ବିଣ. ପୁଂ ( ବିଦେଶ+ଅସ୍ତି ଅର୍ଥରେ ଇନ୍ )—୧ । ଭିନ୍ନ Bideśī ଦେଶବାସୀ—1. Living in a different coun-(ବିଦେଶିନୀ—ସ୍ତ୍ରୀ) try. ୨ । ବିଦେଶ ଜାତ—2. Foreign; বিদেশী परदेशी exotic. ଦେ. ବିଣ—ପରବାସିଆ; ପ୍ରବାସୀ—Sojourning. ଦେ. ବି—୧ । ବିଦେଶୀୟ ବ୍ୟକ୍ତି—ପରଦେଶୀ ଲୋକ—2, Foreigner. ୨ । ପ୍ରବାସୀ ବ୍ୟକ୍ତି—2. A sojourner.

**ବିଦେଶୀୟ**—ସଂ. ବିଣ. ପୁଂ (ବିଦେଶ+ସମ୍ବନ୍ଧାର୍ଥେ ଈୟ)—୧ । ବିଦେଶ Bideśiya ସମ୍ବନ୍ଧୀୟ—1. Relating to a foreign coun-(ବିଦେଶୀୟା—ସ୍ତ୍ରୀ) try. ୨ । ବିଦେଶରେ ଜାତ—2. Produced or manufactured in a foreign country; exotic.

**ବିଦେହ**—ସଂ. ବି. (ବି=ବିଶିଷ୍ଟ ରୂପେ+ଦିହ୍ ଧାତୁ=ଉପଚୟ ବା Bideha ବୃଦ୍ଧି ପାଇବା+ଅଧିକରଣ ଅ; ଯେଉଁଠାରେ ଧନାଦିର ବୃଦ୍ଧି ହୁଏ)—ଆଧୁନିକ ବିହାର ପ୍ରଦେଶ; ମିଥିଳା—The modern country of Bihar. ୨ । (ବହୁବ୍ରୀହି; ବି=ନାହିଁ+ଦେହ; ଶାପହେତୁ ଦେହହୀନ ହୋଇ ଥିବାରୁ ) ରାଜା ନିମି; ଜନକବଂଶର ଆଦ୍ୟ ପୁରୁଷ—2. The progenitor of the family of King Janaka. ୩ । ରାଜା ଜନକ—3. A name of a King Janaka. ସଂ.ବିଣ—୧ । ଦେହହୀନ; ନିରବୟବ—1. Formless;

bodiless; ୨ । ଯାହାର ଗଣ୍ଡି ନାହିଁ—2. Trunkless (Apte). ଦେ. ବି—କନ୍ଦର୍ପ; କାମ—Cupid.

**ବିଦେହ ପ୍ରେତ**—ସଂ. ବି—କାମ ଭୂତ; ଭୂତ ସଙ୍ଗେ ତୁଳିତ ମଦନ— Bideha preta Excitement of the feeling of love (ବିଦେହ ଭୂତ—ଅନ୍ୟରୂପ) compared to a ghost which is said to possess persons. (ଉ—ବିଦେହ ପ୍ରେତ ଝାଡ଼ିବାକୁ ଅନ୍ତର ଗତୁ ତୋ ବାଣୀ ମନ୍ତ୍ରକୁ ଭଞ୍ଜ: ବୈଦେହୀଶବିଳାସ ।)

**ବିଦ୍ଦଣ**—ଦେ. ବି ( ନାମ )—ଶକ ୧୭ଶ ଶତାବ୍ଦୀର 'ବାର୍ଷିକ Biddana ତନ୍ତ୍ର'ର ରଚୟିତା ଜଣେକ ପ୍ରସିଦ୍ଧ ଜ୍ୟୋତିଷ— An astronomer of this name who lived in the seventeenth century of the Saka era and composed Bārshika Tantra.

**ବିଦ୍ଧ**—ସଂ. ବିଣ (ବ୍ୟଧ୍ ଧାତୁ=ଫୋପାଡ଼ିବା, ଭେଦିବା, ବଧ କରିବା+ Biddha କର୍ମ. ତ)—୧ । ଫୋଡ଼ା ହୋଇଥିବା; ଛିଦ୍ରିତ; ବିଦାର୍ଣ୍ଣ— 1. Pierced; perforated; penetrated. ୨ । ଆହତ—2. Smitten; stricken. ୩ । ତାଡ଼ିତ— 3. Driven out. ୪ । କ୍ଷିପ୍ତ—4. Thrown out. ୫ । ପ୍ରେରିତ—5. Sent. ୬ । ବକ୍ର—6 Crooked ୭ । ସଦୃଶ—7. Similar; like. ୮ । ବାଧା ପ୍ରାପ୍ତ— 8. Obstructed; hindered. ୯ । ଆବଦ୍ଧ—9. Confined. ଦେ. ବି. (ସ ବେଧ)—୧ । ବାଧା— 1. Obstacle; impediment. ୨ । ଗ୍ରହଜନିତ ଦୋଷ—2. Evil effect of malignant planets.
बांधा बाधा

**ବିଦ୍ଧକ**—ସ ବି. ( ବ୍ୟଧ୍ ଧାତୁ+କର୍ତ୍ତୃ. ଅକ )—ପ୍ରାଚୀନ କାଳରେ Biddhaka ବ୍ୟବହୃତ ମାଟି ଖୋଳିବା ଯନ୍ତ୍ର (ହି. ଶ)—An instrument for digging earth.

**ବିଦ୍ଧ କର୍ଣ୍ଣ**—ସଂ. ବିଣ. ପୁଂ (ବହୁବ୍ରୀହି; ବିଦ୍ଧ+କର୍ଣ୍ଣ )—ଯାହାର କାନ Biddha karnna ଫୋଡ଼ା ହୋଇଅଛି—Having the ears bored ସ. ବି—ଲତାବିଶେଷ; ଅକାଳବନ୍ଧୁ— A creeper; Cissampelos Hexandra.

**ବିଦ୍ଧ କର୍ଣ୍ଣୀ**—ସଂ. ବି—ଦ୍ରୁତି ବାରକ ( ଦେଖ ) Biddha karnni Druti bāraka ( See )

**ବିଦ୍ଧ ବ୍ରଣ**—ସଂ. ବି. ( ବୈଦ୍ୟକ ଶାସ୍ତ୍ର )—ଅସ୍ତ୍ର କ୍ଷତ— Biddha brana Punctured wound.

**ବିଦ୍ଧା**—ସଂ. ବି—ଦେହ ତମାମ ଫୁଣ୍ଡିଅ ବାହାରି ଯିବା, ଏକ ପ୍ରକାର କ୍ଷୁଦ୍ର Biddhā ରୋଗ (ହି. ଶ)—A kind of disease in which eruptions come out over the whole body. ଦେ. ବି—ବିଧା (ଦେଖ)—Bidhā (See)

**ବିଦ୍ଧି**—ସ. ବି. (ବ୍ୟଧ ଧାତୁ+ଭାବ. ତି)—ଆଘାତ କରିବା— Biddhi Striking.

**ବିଦ୍ୱଜ୍ଜନ**—ସ. ବି. ପୁଂ. ତ ଷ୍ଠୀ ( ବିଦ୍ୱସ୍=ବିଦ୍ୱତ୍+ଜନ )—ପଣ୍ଡିତ Bidwajjana ବ୍ୟକ୍ତି—Learned person.

**ବିଦ୍ୱଜ୍ଜନ ମଣ୍ଡଳୀ(ଳ)**—ସ. ବି ( ୬ଷ୍ଠୀ ତତ୍; ବିଦ୍ୱଜ୍ଜନ+ମଣ୍ଡଳୀ )— Bidwajjana mandalī(la) ପଣ୍ଡିତସମୂହ—The society ( ବିଦ୍ୱତ୍କୁଳ,ବିଦ୍ୱତ୍ସମାଜ—ଅନ୍ୟରୂପ ) of learned persons.

**ବିଦ୍ୱତ୍କଳ୍ପ**—ସ. ବିଣ. ପୁଂ. ( ବିଦ୍ୱସ୍+ସାମାନ୍ୟ ନ୍ୟୁନାର୍ଥେ କଳ୍ପ )— Bidwat-kalpa ପଣ୍ଡିତ ସଦୃଶ; ପଣ୍ଡିତ ତୁଲ୍ୟ ( ବ୍ୟକ୍ତି )— (ବିଦ୍ୱତ୍କଳ୍ପା—ସ୍ତ୍ରୀ) Approaching a learned man in wisdom.

**ବିଦ୍ୱତ୍ତମ**—ସ. ବିଣ ( ବିଦ୍ୱସ୍=ବିଦ୍ୱତ୍+ତମ )—୧ । ବହୁଲୋକଙ୍କ Bidwattama ମଧ୍ୟରେ ବଡ଼ ବିଦ୍ୱାନ୍; ଅଦ୍ୱିତୀୟ ପଣ୍ଡିତ— 1. Most learned. ୨ । ସର୍ବଶ୍ରେଷ୍ଠ—2. Best.

**ବିଦ୍ୱତ୍ତର**—ସ. ବିଣ ( ବିଦ୍ୱସ୍=ବିଦ୍ୱତ୍+ତର )—ଦୁଇଜଣଙ୍କ ମଧ୍ୟରେ Bidwattara ଅଧିକତର ବିଦ୍ୱାନ୍—More learned.

**ବିଦ୍ୱତ୍ତା(ତ୍ୱ)**—ସ. ବି ( ବିଦ୍ୱସ୍=ବିଦ୍ୱତ୍+ତା, ତ୍ୱ—ପାଣ୍ଡିତ୍ୟ— Bidwattā(ttwa) Learning.

**ବିଦ୍ୱାନ୍**—ସ. ବିଣ ( ବିଦ୍ ଧାତୁ+କର୍ତ୍ତୃ. ବସ୍; ଶତୃ ପ୍ରତ୍ୟୟ ସ୍ଥାନରେ Bidwān ବସ୍=ବିଦ୍ୱସ୍, ୧ମା. ୧ବ)—ପଣ୍ଡିତ; ଶାସ୍ତ୍ରାଭିଜ୍ଞ— ( ବିଦୁଷୀ—ସ୍ତ୍ରୀ ) Learned; learned in religious lore.

**ବିଦ୍ୱିଷ୍**—ସ. ବି ( ବି+ଦ୍ୱିଷ୍ ଧାତୁ+କର୍ତ୍ତୃ. କ୍ୱିପ୍ )—୧ । ବୈରୀ; Bidwish ଶତ୍ରୁ—Enemy. ୨ । ପ୍ରତିଦ୍ୱନ୍ଦ୍ୱୀ—2 Antago- (ବିଦ୍ୱିଟ୍—ଅନ୍ୟରୂପ) nistic; rival. ୩ । ( +ଭାବ. କ୍ୱିପ୍) ଚେଷ୍ଟା—3. Attempt. ( ପ୍ରକୃତିବାଦ )

**ବିଦ୍ୱିଷ୍ଟ**—ସ. ବିଣ. ପୁଂ ( ବି+ଦ୍ୱିଷ୍ ଧାତୁ+କର୍ମ. ତ )—୧ । ଯାହାକୁ Bidwishta ବିଦ୍ୱେଷ କରଯାଏ; ବିଦ୍ୱେଷଭାଜନ—1. Object (ବିଦ୍ୱିଷ୍ଟା—ସ୍ତ୍ରୀ) of hatred or enmity. ୨ । ଘୃଣିତ— 1. Hated; disliked.

**ବିଦ୍ୱେଷ**—ସ. ବି ( ବି+ଦ୍ୱିଷ୍ ଧାତୁ+ଭାବ. ଅ )—୧ । ଈର୍ଷା— Bidwesha 1. Grudge; malice. ୨ । ଶତ୍ରୁତା— ( ବିଦ୍ୱିଷ୍ଟି—ବି ) 2. Enmity.

**ବିଦ୍ୱେଷକ**—ସ. ବିଣ. ପୁଂ ( ବି+ଦ୍ୱିଷ୍ ଧାତୁ+କର୍ତ୍ତୃ. ଅକ )—ଈର୍ଷୀ; Bidweshaka ଯେ ଈର୍ଷା କରେ—Malicious. ସ. ବି— ( ବିଦ୍ୱେଷିକା—ସ୍ତ୍ରୀ ) ଶତ୍ରୁ—Antagonist; enemy.

**ବିଦ୍ୱେଷଜନକ**—ସ. ବିଣ ( ବିଦ୍ୱେଷ+ଜନ୍ ଧାତୁ+ଅକ )—୧ । Bidweshajanaka ଈର୍ଷାଯୁକ୍ତ—1. Malicious; malevolent ୨ । ଯେଉଁ କାର୍ଯ୍ୟଦ୍ୱାରା ଈର୍ଷା ଜାତ ହୁଏ ବା ବଢ଼େ— 2. Producing malice.

**ବିଦ୍ୱେଷଣ**—ସ. ବି ( ବି+ଦ୍ୱିଷ୍ ଧାତୁ+ଭାବ. ଅନ )—୧ । ବିଦ୍ୱେଷ Bidweshana ( ଦେଖ )—1. Bidwesha ( See ). ୨ । ଦୁଇଜଣଙ୍କ ମଧ୍ୟରେ କଳି ଲଗାଇବା ପାଇଁ କରାଯିବା ତାନ୍ତ୍ରିକ ପ୍ରୟୋଗ—2. Tantric appliances to bring about quarrel between two persons. ୩ । (+କର୍ତ୍ତୃ.ଅନ)ଶତ୍ରୁ; ବୈରୀ (ହି.ଶ)—3 Enemy. ୪ । ଦୁଷ୍ଟତା ( ହି. ଶ )—4. Wickedness.

**ବିଦ୍ୱେଷଣୀୟ**—ସ. ବିଣ. ପୁଂ ( ବି+ଦ୍ୱିଷ୍ ଧାତୁ+କର୍ମ. ଅନୀୟ )—Bidweshaniya ୧ । ଘୃଣାର୍ହ—1. Deserving to be hated; abominable. ୨ । ଯାହା ସହିତ ବିଦ୍ୱେଷ କରାଯିବା ଉଚିତ; ବିଦ୍ୱେଷଭାଜନ—2. Deserving to be treated with malice.

ବିଦେଷାର୍ହ, ବିଦ୍ୱେଷ୍ୟ } ଅନ୍ୟରୂପ

ବିଦ୍ୱେଷଣୀୟା, ବିଦ୍ୱେଷାର୍ହା, ବିଦ୍ୱେଷ୍ୟା } ସ୍ତ୍ରୀ

**ବିଦ୍ୱେଷ ବୁଦ୍ଧି**—ସ. ବି(ମ. ପ. ଲୋ)—ବିଦ୍ୱେଷଯୁକ୍ତ ବୁଦ୍ଧି; ଈର୍ଷାବୁଦ୍ଧି—Bidwesha buddhi Malicious propensity.

**ବିଦ୍ୱେଷଭାବ**—ଦେ. ବି—କୌଣସି ବ୍ୟକ୍ତି ପ୍ରତି ମନରେ ଜାତ ହେବା ଈର୍ଷାଭାବ—Bidweshabhāba Malice entertained against any person.

**ବିଦ୍ୱେଷୀ**—ସ. ବିଣ. ପୁଂ ( ବିଦ୍ୱେଷ+ଇନ୍; ୧ମା. ୧ବ )—ବିଦ୍ୱେଷ-କାରୀ—Malicious; spiteful. ସ. ବି. ପୁଂ—Bidweshī ଶତ୍ରୁ—Enemy.
( ବିଦ୍ୱେଷ୍ଟା—ଅନ୍ୟରୂପ )
( ବିଦ୍ୱେଷିଣୀ, ବିଦ୍ୱେଷ୍ଟ୍ରୀ—ସ୍ତ୍ରୀ )

**ବିଦ୍ୟ**—ଦେ. ( ପ୍ରାଚୀନ ପଦ୍ୟ ) ବିଣ ( ସ. ବିଦିତ )—ବିଦିତ; ବିଖ୍ୟାତ—Wellknown; famous. ( ଉ—Bidya ବିଦ୍ୟ ହୈମବତୀ ପଦରେ—ଉଞ୍ଜ. ବୈଦେହୀଶବିଳାସ । )

**ବିଦ୍ୟକ**—ଦେ. ( ପ୍ରାଚୀନ ପଦ୍ୟ ) ବିଣ ( ସ. ବିଦିତ )—ବିଖ୍ୟାତ—Bidyaka Famous. (ଉ—ବିରଲେ ଆଦ୍ୟ ଯମକେ ବିଦ୍ୟକ—ଉଞ୍ଜ. ବୈଦେହୀଶବିଳାସ । )

**ବିଦ୍ୟମାନ**—ସଂ. ବିଣ. ପୁଂ ( ବିଦ୍ ଧାତୁ=ରହିବା; ହେବା+କର୍ତ୍ତୃ. ଶାନଚ୍ )—ବର୍ତ୍ତମାନ; ଉପସ୍ଥିତ—Present; Bidyamāna existing. ଦେ. ବିଣ—ଜୀବିତ—Living. ଗ୍ରା. ( କଟକିଆ ) ବି (ସ. ବିଦ୍ୟମାନତା)—
( ବିଦ୍ୟମାନା—ସ୍ତ୍ରୀ )
विद्यमान
**विद्यमान** ୧ । ଜୀବନକାଳ—1. Lifetime. ୨ । ନୈକଟ୍ୟ; ସାମୀପ୍ୟ—2. Vicinity. ୩ । ଉପସ୍ଥିତି—3. Presence. ୪ । ଅସ୍ତିତ୍ୱ—4. Existence. ( ଯଥା—ପିତାଙ୍କ ବିଦ୍ୟମାନରେ ପୁତ୍ର ଘରେ ମୁରବୀ ହୋଇ ନ ପାରେ । ) ଦେ. ଅ—ସମ୍ମୁଖରେ; ଉପସ୍ଥିତରେ—Before; in front of. ( ଉ—ଭମର ଶୁଣି ତା ବଚନ । କହନ୍ତି ସଭା ବିଦ୍ୟମାନ—ଜଗନ୍ନାଥ. ଭାଗବତ । )

**ବିଦ୍ୟମାନତା(ତ୍ୱ)**—ସଂ. ବି (ବିଦ୍ୟମାନ+ଭାବ. ତା)—୧ । ଉପସ୍ଥିତି—Bidyamānatā(twa) 1. Presence; existence. ୨ । ସାମୀପ୍ୟ, ସାନ୍ନିଧ୍ୟ—2. Proximity; vicinity. ୩ । ଜୀବଦ୍ଦଶା—3. Living state. ୪ । ଜୀବନକାଳ—4. Lifetime.

**ବିଦ୍ୟମାନରେ**—ଗ୍ରା. (କଟକିଆ) କ୍ରି. ବିଣ—୧ । ଉପସ୍ଥିତ ସମୟରେ—Bidyamānare 1. During the presence of; in the presence of. ୨ । ଜୀବନକାଳ ମଧ୍ୟରେ, ବିଦ୍ୟମାନ ଥାଉଁ ଥାଉଁ; ବଞ୍ଚି ଥାଉଁ ଥାଉଁ—2. While living or alive; during the lifetime of. ( ଯଥା—ପୁତ୍ରର ବିଦ୍ୟମାନରେ ସ୍ତ୍ରୀ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇ ନ ପାରେ । )
( ଅବିଦ୍ୟମାନରେ—ବିପରୀତ )

**ବିଦ୍ୟା**—ସଂ. ବି. ସ୍ତ୍ରୀ (ବିଦ୍ ଧାତୁ=ଜାଣିବା+କରଣ ଯ+ସ୍ତ୍ରୀ. ଆ)—Bidyā ୧ । ଜ୍ଞାନ ( ଯାହାଦ୍ୱାରା ବ୍ରହ୍ମଠାରୁ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ଯାବତୀୟ ବିଷୟର ସତ୍ୟଜ୍ଞାନ ଲାଭ କରାଯାଏ )—1. Knowledge. [ ଦ୍ର—ହିନ୍ଦୁ ଶାସ୍ତ୍ରମତରେ ବିଦ୍ୟାର ସଂଖ୍ୟା ୧୮ । ଯଥା—ଚାରି ବେଦ, ଛଅ ବେଦାଙ୍ଗ (ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ ଓ ଜ୍ୟୋତିଷ ); ମୀମାଂସା, ନ୍ୟାୟ, ଧର୍ମଶାସ୍ତ୍ର ବା ସ୍ମୃତି, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ ଓ ଅର୍ଥଶାସ୍ତ୍ର—ହି. ଶ. । ଅମର-କୋଷ ମତରେ ବିଦ୍ୟା ଚତୁର୍ଦ୍ଦଶ, ଯଥା—ଚାରି ବେଦ, ଛଅ ବେଦାଙ୍ଗ, ମୀମାଂସା, ନ୍ୟାୟ, ପୁରାଣ ଓ ଧର୍ମଶାସ୍ତ୍ର । ] ୨ । ଅଧ୍ୟୟନାଦି ଜନିତ ବୋଧ—2 Understanding derived from reading; learning. ୩ । ପାଠ—3. Reading; study. ୪ । ପାଣ୍ଡିତ୍ୟ—4. Learning. ୫ । ଦର୍ଶନ ଶାସ୍ତ୍ର—5 Philosophy. ୬ । ତତ୍ତ୍ୱଜ୍ଞାନ—6. Knowledge of fundamental principles or realities. [ ଦ୍ର—ବିଦ୍ୟା ଦୁଇ ପ୍ରକାର:—ପରା ଓ ଅପରା; ଯଦ୍ଦ୍ୱାରା ବ୍ରହ୍ମଜ୍ଞାନ ହୁଏ ତାହା ପରା ଓ ଏତଦ୍ବ୍ୟତିରିକ୍ତ ଅନ୍ୟ ଲୌକିକ ବା ପଦାର୍ଥ ବିଷୟକ ଜ୍ଞାନ ଯଦ୍ଦ୍ୱାରା ହୁଏ ତାକୁ ଅପରା ବୋଲାଯାଏ—(ହି. ଶ) । ] ୭ । ଦେହାତ୍ମବୋଧ—7. Knowledge regarding the body and soul. ୮ । ବିଜ୍ଞାନ; ବିଶେଷ ବିଷୟ ସମ୍ବନ୍ଧୀୟ ଜ୍ଞାନ ସମ୍ବଳିତ ବୋଧଶାସ୍ତ୍ର—8. Science. [ ଦ୍ର—ବିଜ୍ଞାନର ଭିନ୍ନ ଭିନ୍ନ ଶାଖା ଭିନ୍ନ ଭିନ୍ନ ବିଦ୍ୟା ନାମରେ ପରିଚିତ; ଯଥା—ପଦାର୍ଥବିଦ୍ୟା ବା ଜଡ଼ବିଜ୍ଞାନ, ଉଦ୍ଭିଦବିଦ୍ୟା, ପ୍ରାଣିବିଦ୍ୟା, ଗଣିତବିଦ୍ୟା; ସୁପ୍ରଜନନବିଦ୍ୟା, ଭୂଗୋଳବିଦ୍ୟା, ଭୂତତ୍ତ୍ୱବିଦ୍ୟା, ଗାନ୍ଧର୍ବ-ବିଦ୍ୟା, ଜୀବବିଦ୍ୟା, ଭୈଷଜ୍ୟ ବିଦ୍ୟା, ପ୍ରତ୍ନବିଦ୍ୟା, ସମାଜମାନବ-ବିଦ୍ୟା ଇତ୍ୟାଦି । ] ୯ । କଳାବିଦ୍ୟା—9. An art; fine art. ୧୦ । ଦୁର୍ଗା—10; Durgā. ୧୧ । ସରସ୍ୱତୀ—11. Goddess of learning. ୧୨ । ଧର୍ମ ଶାସ୍ତ୍ର—12. Scripture. ୧୩ । ଇନ୍ଦ୍ରଜାଲ—13. Magic. ୧୪ । ମନ୍ତ୍ର—14. A vedic text. ୧୫ । ଅଗବଥୁ (ହି. ଶ)—15. Premna Integrifolia tree. ୧୬ । ସୀତାଙ୍କର ଏକ ସଖୀ ( ହି. ଶ )—16. Name of a female companion of Sitā. ୧୭ । ଆର୍ଯ୍ୟା ଛନ୍ଦର ଏକ ଭେଦ—18. One of the Sanscrit vedic metres. (ଦ୍ର—ଏଥିରେ ୨୩ ଗୁରୁ ଓ ୧୧ ଲଘୁ ମାତ୍ରା ରହେ । ହି. ଶ) ଦେ. ବି—୧ । (ପୁଂ)—ବିଦ୍ୟାକର, ବିଦ୍ୟାସୁନ୍ଦର, ବିଦ୍ୟାଧର ଡାକ ନାମ—A name for calling males named Bidyākara etc. ୨ । (ସ୍ତ୍ରୀ.)—

ବିଦ୍ୟାଧରୀ, ବିଦ୍ୟାସୁନ୍ଦରୀ ଆଦିଙ୍କ ଡାକ ନାମ—2. A name for calling females named Bidyādharī etc.

ବିଦ୍ୟାକର—ସଂ. ବି. ପୁଂ ଓ ସ୍ତ୍ରୀ—(୬ଷ୍ଠୀ ତତ୍; ବିଦ୍ୟା+ଆକର)—
Bidyākara ବିଦ୍ୟାର ଖଣି; ପଣ୍ଡିତ—Learned person; a mine of learning. ସଂ. ବି. ପୁଂ—( ବିଦ୍ୟା+କୃ ଧାତୁ +କର୍ତ୍ତୃ. ଅ)—ଜ୍ଞାନପ୍ରଦ—Imparting knowledge. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
(ବିଦ୍ୟାକରୀ—ସ୍ତ୍ରୀ)

ବିଦ୍ୟାକର ରାଜଗୁରୁ—ଦେ. ବି—(ନାମ)—ଉତ୍କଳର ଜଣେ ପ୍ରସିଦ୍ଧ
Bidyākara rājaguru ସ୍ମୃତିକାର—An Oriya social lawgiver in Sanskrit. ( ଦ୍ର—ଏ ୧୮ଶ ଶତାବ୍ଦୀର ପଣ୍ଡିତ; 'ବାଜପେୟୀ' ଉପାଧି ଲାଭ କରିଥିଲେ। 'ନିତ୍ୟାଚାର ପ୍ରଦୀପ' ନାମକ ସଂସ୍କୃତ ପୁସ୍ତକ ଏହାଙ୍କଦ୍ୱାରା ପ୍ରଣୀତ। ଜଗବନ୍ଧୁ ପ୍ରାଚୀନ ଉତ୍କଳ।
'ଧର୍ମ ଶାସ୍ତ୍ର ପ୍ରଦୀପ' ନାମକ ଗ୍ରନ୍ଥ ମଧ୍ୟ ଏହାଙ୍କ କୃତ। ଏହାଙ୍କ ବଂଶଧରମାନେ ବର୍ତ୍ତମାନ ପୁରୀ ଜିଲ୍ଲା ବୀରନରସିଂହପୁରରେ ଅଛନ୍ତି।)

ବିଦ୍ୟାଗମ—ସଂ. ବି—(୬ଷ୍ଠୀ ତତ୍; ବିଦ୍ୟା+ଆଗମ)—୧। ଜ୍ଞାନୋନ୍ମେଷ
Bidyāgama 1. The dawning of knowledge. ୨। ବିଦ୍ୟାର ପ୍ରାପ୍ତି—2. Attainment of learning.

ବିଦ୍ୟାଗାର—ସଂ. ବି—( ୬ଷ୍ଠୀ ତତ୍; ବିଦ୍ୟା+ଆଗାର )—ବିଦ୍ୟାଳୟ;
Bidyāgāra (ବିଦ୍ୟାଗୃହ—ଅନ୍ୟରୂପ) ପାଠଶାଳା—School.

ବିଦ୍ୟାଗୁରୁ—ସଂ. ବି.—ଯେ ପାଠ ପଢ଼ାନ୍ତି; ଶିକ୍ଷକ—
Bidyāguru Teacher.
[ଦ୍ର—ଯେ ମନ୍ତ୍ର ଦିଅନ୍ତି ସେ ମନ୍ତ୍ର ଗୁରୁ; ଯେ ଧର୍ମୋପଦେଶ ଦିଅନ୍ତି ସେ ଧର୍ମ ଗୁରୁ। ]

ବିଦ୍ୟାଚଣ—ସଂ. ବି (ବିଦ୍ୟା+ପ୍ରସିଦ୍ଧାର୍ଥରେ ଚଣ)—ପ୍ରସିଦ୍ଧ ବିଦ୍ୱାନ୍—
Bidyāchaṇa A celebrated learned man. ସଂ. ବିଣ—
(ବିଦ୍ୟାଚୁଞ୍ଚୁ—ଅନ୍ୟରୂପ) ବିଦ୍ୟାଯୋଗୁଁ ପ୍ରସିଦ୍ଧ—Famous for deep learning.

ବିଦ୍ୟାଚର୍ଚ୍ଚା—ସଂ. ବି ( ୬ଷ୍ଠୀ ତତ୍; ବିଦ୍ୟା+ଚର୍ଚ୍ଚା )—ବିଦ୍ୟାର୍ଜ୍ଜନ ପ୍ରତି
Bidyācharchchā ମନୋଯୋଗ ବା ନିଷ୍ଠାପରତା; ବିଦ୍ୟାର୍ଜ୍ଜନ ପାଇଁ ସାଧନା—Devotion to study; cultivation of learning

ବିଦ୍ୟାଦଳ—ସଂ. ବି ( ବହୁବ୍ରୀହି, ଏ ଗଛର ଦଳ ବା ପତ୍ରରେ ବିଦ୍ୟା
Bidyādaḷa ଲେଖାଯାଉ ଥିବାରୁ )—ଭୂର୍ଜ ଗଛ ( ହି. ଶ )—Birch tree.

ବିଦ୍ୟାଦାତା—ସଂ. ବି. ପୁଂ ( ଉପପଦ; ବିଦ୍ୟା+ଦାତୃ; ୧ମା· ୧ବ )—
Bidyādātā ଶିକ୍ଷକ—Teacher; tutor
( ବିଦ୍ୟାଦାତ୍ରୀ—ସ୍ତ୍ରୀ )

ବିଦ୍ୟାଦାନ—ସଂ, ବି ( ୬ଷ୍ଠୀ ତତ୍; ବିଦ୍ୟା+ଦାନ)—୧। ଜ୍ଞାନଦାନ—
Bidyādāna 1. The imparting of knowledge. ୨। ଶିକ୍ଷାଦାନ; ଶିକ୍ଷକଙ୍କ ପଢ଼ାଇବା—2. The imparting of education; teaching.

ବିଦ୍ୟାଦେବୀ—ସଂ. ବି· ସ୍ତ୍ରୀ—୧। ସରସ୍ୱତୀ; ବାଗ୍‌ଦେବୀ—1.
Bidyādebī 1. The Goddess of learning. ୨। ଜୈନ-ଦେବୀବିଶେଷ— 2. A Goddess worshipped by the Jainas. [ ଦ୍ର—ଏ ଜୈନପୂଜ୍ୟା ୧୬ ଦେବୀଙ୍କ ମଧ୍ୟରୁ ଏକତମା। ]

ବିଦ୍ୟାଧନ—ସଂ. ବି—୧। ( ରୂପକ କର୍ମଧା; ବିଦ୍ୟା+ଧନ )—
Bidyādhana ବିଦ୍ୟାରୂପ ଧନ; ବିଦ୍ୟାହିଁ ଧନସ୍ୱରୂପ—1. Learning compared to riches; learning constituting one's riches, ୨। ( ମ. ପ. ଲୋ ) ବିଦ୍ୟାଦ୍ୱାରା ଉପାର୍ଜ୍ଜିତ ଧନ—2. Wealth earned by learning.

ବିଦ୍ୟାଧର—ସଂ, ବି, ପୁଂ (ବିଦ୍ୟା=ଇନ୍ଦ୍ରଜାଲ+ଧୃ ଧାତୁ+କର୍ତ୍ତୃ ଅ)—
Bidyādhara ୧। ଦେବଯୋନିବିଶେଷ; ସ୍ୱର୍ଗଗାୟକ—1. An
(ବିଦ୍ୟାଧରୀ·-ସ୍ତ୍ରୀ) order of Hindu demigods; a class of
(ବିଦ୍ୟାଧ୍ର—ଅନ୍ୟରୂପ) heavenly choristers. [ଦ୍ର—ଖେଚର, ଗନ୍ଧର୍ବ ଓ କିନ୍ନରମାନେ ଏହି ଦେବଯୋନି ଶ୍ରେଣୀର ଅନ୍ତର୍ଗତ-ହି.ଶ ] ୨। ୧୬ ପ୍ରକାର ରତିବନ୍ଧର ଏକତମ—2. One of the 16 postures during coition. ୩। ପାରଦଶୋଧନ କରିବାର ଆୟୁର୍ବେଦୀୟ ଯନ୍ତ୍ରବିଶେଷ— 2. An ayurbedic contrivance for purifying mercury. [ ଦ୍ର—ଗୋଟିଏ ଥାଳ ବା ହାଣ୍ଡିରେ ପାରଦ ଧାତୁ ରଖି ତା ଉପରେ ଆଉ ଗୋଟିଏ ଥାଳରେ ପାଣି ଭରତି କରି ରଖାଯାଏ ଓ ଏ ଦୁଇ ସମ୍ମିଳିତ ପାତ୍ରକୁ ୫ ପ୍ରହରକାଳ ନିଆଁ ଉପରେ ବସାଇ ରଖାଯାଏ। ଉପରେ ପାଣି ଥଣ୍ଡା ହେଲେ ପାରଦକୁ କାଢ଼ି ନେବାକୁ ହୁଏ—ହି. ଶ] ଦେ. ବି. ପୁଂ—୧। ଲୋକଙ୍କୁ ଦିଆଯିବା ନାମ—1. Name given to males. ୨। କ୍ଷତ୍ରିୟଙ୍କ ଉପାଧିବିଶେଷ—2. A family title of the Kshatriyas.

ବିଦ୍ୟାଧର ପାଲା—ଦେ. ବି—ଯେଉଁ ପାଲାରେ ବିଦ୍ୟାଧର ନାମକ
Bidyādhara pālā ବ୍ୟକ୍ତିର ଜୀବନରେ ପ୍ରତ୍ୟକ୍ଷୀଭୂତ ସତ୍ୟ-
विद्याधर पाला ନାରାୟଣ ବା ସତ୍ୟପୀରଙ୍କର ମାହାତ୍ମ୍ୟ ଗଳ୍ପାକାରରେ ବର୍ଣ୍ଣିତ ହୋଇଅଛି—A religious ballad describing the life of one 'Bidyādhara'.
[ଦ୍ର—ପାଲା ତଳେ ନୋଟ୍ ଦେଖ।]

ବିଦ୍ୟାନଗର(ରୀ)—ଦେ. ବି ( ନାମ )—ମାନ୍ଦ୍ରାଜ ପ୍ରଦେଶର ବିଶାଖା-
Bidyānagara(rī) ପଟ୍ଟଣା ଜିଲ୍ଲାର ଆଧୁନିକ ବିଜୟନଗର—The
विद्यानगरी modern Vizanagram in Madras
**विद्यानगर** Presidency. ଦ୍ର—ରାଜା ପ୍ରତାପରୁଦ୍ରଙ୍କ ସମୟରେ ଏହା ଉତ୍କଳ ରାଜ୍ୟଭୁକ୍ତ ଥିଲା। ପ୍ରବାଦ ଅଛି ଯେ କାଳିଦାସ ନିଜ ପାଣ୍ଡିତ୍ୟ ବଳରେ ଭାରତର ସବୁ ଦେଶର ପଣ୍ଡିତମାନଙ୍କୁ ଜୟ କରିଥିଲେ, ମାତ୍ର ବିଦ୍ୟାନଗରୀକୁ ଜିଣି ପାରି ନ ଥିଲେ। ]

ବିଦ୍ୟାନିଧି—ସଂ. ବି (୬ଷ୍ଠୀ ତତ୍; ବିଦ୍ୟାର ନିଧି, ଅର୍ଥାତ୍ ସ୍ଥାନ, ଆଧାର)—
Bidyānidhi ମହାପଣ୍ଡିତ—A very larned person.
ବିଦ୍ୟାବାରିଧି, ବିଦ୍ୟାରତ୍ନ, ବିଦ୍ୟାର୍ଣ୍ଣବ, ବିଦ୍ୟାଧିରାଜ — ଅନ୍ୟରୂପ — ଦେ. ବି—ପଣ୍ଡିତଙ୍କୁ ଦିଆଯିବା ଉପାଧି ବିଶେଷ—Title given to very larned Pandits. विद्यानिधि **विद्यानिधि**
ବିଦ୍ୟାସାଗର, ବିଦ୍ୟାବାଗୀଶ, ବିଦ୍ୟାବିନୋଦ, ବିଦ୍ୟାବିଶାରଦ, ବିଦ୍ୟା ବାଚସ୍ପତି—ଅନ୍ୟରୂପ )

ବିଦ୍ୟାନୁରାଗ—ସଂ. ବି ( ୭ମୀ ତତ୍; ବିଦ୍ୟା+ଅନୁରାଗ )—ବିଦ୍ୟା ପ୍ରତି
Bidyānurāga ସ୍ନେହ ବା ଆସକ୍ତି—Attachment to learning; love of learning.

ବିଦ୍ୟାନୁରାଗୀ—ସଂ. ବିଣ. ପୁଂ ( ୭ମୀ ତତ୍ )—ଯାହାର ବିଦ୍ୟା ପ୍ରତି
Bidyānurāgi ପ୍ରଗାଢ଼ ଆସକ୍ତି ଥାଏ—Having a great (ବିଦ୍ୟାନୁରାଗିଣୀ—ସ୍ତ୍ରୀ) attachment towards learning.

ବିଦ୍ୟାବତ୍ତା—ସଂ. ବି. (ବିଦ୍ୟା+ବତ୍+ଭାବ ତା)—ପାଣ୍ଡିତ୍ୟ—
Bidyābattā Learning.

ବିଦ୍ୟାବ(ମ)ନ୍ତ—ଦେ. ବିଣ (ସଂ. ବିଦ୍ୟାବତ୍ )—ବିଦ୍ୱାନ୍—Learned
Bidyāba(ma)nta (ଉ—ବିଦ୍ୟାବନ୍ତ ଜନେ ଯେ କମଳା ସାର ଭଣି । ଭଞ୍ଜ, ବୈଦେହୀଶବିଳାସ ।) विद्यावंत **विद्यावन्त**

ବିଦ୍ୟାବାନ୍—ସଂ. ବିଣ.ପୁଂ (ବିଦ୍ୟା+ଅସ୍ତି ଅର୍ଥରେ ବତ୍; ୧ମା ୧ବ)—
Bidyābān ବିଦ୍ୱାନ୍; ପଣ୍ଡିତ—Learned.
(ବିଦ୍ୟାବତ୍—ଅନ୍ୟରୂପ) (ବିଦ୍ୟାବତୀ—ସ୍ତ୍ରୀ)

ବିଦ୍ୟା ବିନୋଦ—ସଂ. ବି ( ୩ୟା ତତ୍; ବିଦ୍ୟା+ବିନୋଦ )—ବିଦ୍ୟା
Bidyā binoda ଚର୍ଚ୍ଚା ଦ୍ୱାରା ଅନୁଭୂତ ଆନନ୍ଦ—Pleasure derived from learned discussion. ସଂ. ବି ପୁଂ (ବହୁବ୍ରୀହି) ପଣ୍ଡିତମାନଙ୍କୁ ଦିଆଯିବା ଉପାଧି—A title given to Sanscrit scholars. ସଂ. ବିଣ. ପୁଂ (ବହୁବ୍ରୀହି) ବିଦ୍ୟା ଚର୍ଚ୍ଚା କରିବା ଯାହାର ସୁଖପ୍ରଦ ଅଟେ-Deriving pleasure from learned discussions or study.

ବିଦ୍ୟା ବିବାଦ—ସଂ. ବି. ( ୭ମୀ ତତ୍; ବିଦ୍ୟା+ବିବାଦ )—ଏକାଧିକ
Bidyā bibāda ବ୍ୟକ୍ତିଙ୍କ ମଧ୍ୟରେ ବିଦ୍ୟା ବିଷୟକ ବାଦାନୁ-(ବିଦ୍ୟା ବିରୋଧ –ଅନ୍ୟରୂପ) ବାଦ—Hot discussion or dispute between two or more learned persons; wrangling.

ବିଦ୍ୟା ବିରୁଦ୍ଧତା—ସଂ. ବି — ଅର୍ଥଦୋଷବିଶେଷ—A fault in
Bidyā biruddhatā rhetoric. [ ବ୍ର—କୌଣସି ଶାସ୍ତ୍ର-ବିରୁଦ୍ଧ କଥାର ବର୍ଣ୍ଣନା ହେଲେ ବିଦ୍ୟାବିରୁଦ୍ଧତା ଦୋଷ ହୁଏ, ଯଥା—କାମିନୀମାନେ ହୋଇ ଯୂଥ ଯୂଥ, କରନ୍ତେ ଗମନ ନ ପାନ୍ତି ପଥ—ପାନକୃଷ୍ଣ, ରସକଲ୍ଲୋଳ ।]
(ଏଠାରେ 'ଯୂଥ' ଶବ୍ଦର ପ୍ରୟୋଗ ଦୋଷାବହ)

ବିଦ୍ୟା ବିଶାରଦ—ସଂ. ବିଣ ପୁଂ ( ୭ମୀ ତତ୍; ବିଦ୍ୟା+ବିଶାରଦ )—
Bidyā bisārada ସୁପଣ୍ଡିତ—Very learned.
(ବିଦ୍ୟା ବିଶାରଦା—ସ୍ତ୍ରୀ)

ବିଦ୍ୟା ବିସ୍ତାର—ଦେ. ବି ( ୬ଷ୍ଠୀ ତତ୍; ବିଦ୍ୟା+ବିସ୍ତାର )—ଶିକ୍ଷାର
Bidyā bistāra ପ୍ରଚାର—Diffusion of knowledge; spread of education.

ବିଦ୍ୟା ବିହୀନ—ସଂ. ବିଣ. ପୁଂ ( ୩ୟା ତତ୍; ବିଦ୍ୟା+ବିହୀନ )—
Bidyā bihīna ମୂର୍ଖ; ଅଶିକ୍ଷିତ—Illiterate.
(ବିଦ୍ୟାହୀନ, ବିଦ୍ୟା ଶୂନ୍ୟ—ଅନ୍ୟରୂପ; ବିଦ୍ୟା ବିହୀନା—ସ୍ତ୍ରୀ)

ବିଦ୍ୟା ବ୍ୟବସାୟୀ—ଦେ. ବିଣ—୧ । ଯେଉଁ ପଣ୍ଡିତ ଆପଣାର ବିଦ୍ୟାକୁ
Bidyā byabasāyi ଗୁଣୀମାନଙ୍କ ନିକଟରେ ପ୍ରକାଶ କରି ଅର୍ଥ ଉପାର୍ଜନ କରନ୍ତି—1. Earning money through exhibition of learning. ୨ । ବିଦ୍ୟାଦାନ ବା ପାଠ ପଢ଼ାଇବାକୁ ଯେ ଆପଣାର ପେଶା କରି ଅଛନ୍ତି—2 Following teaching as one's profession. ସଂ. ବି. ବେତନ ଭୋଗୀ ଅଧ୍ୟାପକ—A paid teachor.

ବିଦ୍ୟା ବ୍ରତ—ସଂ. ବି (ରୂପକ —ଗୁରୁଙ୍କ ଘରେ ବାସ କରି ବିଦ୍ୟାଧ୍ୟୟନ
Bidyā brata କରିବା ବ୍ରତ—The vow of studying by residing in the house of the preceptor.
(ବିଦ୍ୟାବ୍ରତୀ—ବ୍ୟକ୍ତିବାଚକ ବିଶେଷଣ)

ବିଦ୍ୟାଭ୍ୟାସ—ସଂ. ବି ( ୬ଷ୍ଠୀ ତତ୍; ବିଦ୍ୟା+ଅଭ୍ୟାସ )—୧ । ପାଠରୁ
Bidyābhyāsa ଅନୁଶୀଳନ କରିବା; ବିଦ୍ୟା ଚର୍ଚ୍ଚା—1. Devotion to study. ୨ । ପାଠ ଘୋଷାଇବା; ପାଠ ଘୋଷିବା—2. Practice of studying or getting lessons by heart.

ବିଦ୍ୟା ମନ୍ଦିର—ସଂ. ବି. (୬ଷ୍ଠୀ ତତ୍)—ବିଦ୍ୟାଳୟ; ପାଠଶାଳା—
Bidyā mandira School.

ବିଦ୍ୟାରମ୍ଭ—ସଂ. ବି. (୬ଷ୍ଠୀ ତତ୍; ବିଦ୍ୟା+ଆରମ୍ଭ)—୧ । ଶିକ୍ଷାରମ୍ଭ—
Bidyārambha 1. Beginning of education. ୨ । ଖଡ଼ିଛୁଆଁ; ଶିଶୁର ପ୍ରଥମେ ପାଠ ଆରମ୍ଭ କରିବା ଉତ୍ସବ—2. The ceremony of a child being first taught to learn. [ ବ୍ର—ହିନ୍ଦୁ ବାଳକର କର୍ଣ୍ଣବେଧ ସଙ୍ଗେ ବିଦ୍ୟାରମ୍ଭ କରାଯାଏ । ]

ବିଦ୍ୟାର୍ଜନ—ସଂ. ବି (୬ଷ୍ଠୀ ତତ୍; ବିଦ୍ୟା+ଅର୍ଜନ)—୧ । ବିଦ୍ୟାଲାଭ—
Bidyārjana 1. Acquisition of learning ୨ । ପାଠ ପଢ଼ିବା—2. Studying.

ବିଦ୍ୟାର୍ଣ୍ଣବ—ସଂ. ବି (ରୂପକ କର୍ମଧାରୟ; ବିଦ୍ୟା+ଅର୍ଣ୍ଣବ)—୧ । ବିଦ୍ୟା-
Bidyārnnaba ରୂପ ମହାସମୁଦ୍ର—1. Learning compared to an ocean in its vastness. ୨ । ବିଦ୍ୟାନିଧି ( ଦେଖ )—2. Bidyānidhi ( See )

ବିଦ୍ୟାର୍ଥୀ—ସଂ. ବିଣ. ପୁଂ ( ଉପପଦ ତତ୍ପୁରୁଷ; ବିଦ୍ୟା+ଅର୍ଥ+ଣିନ୍.
Bidyārthī ଇନ୍; ୧ମା, ୧ବ)—୧ । ବିଦ୍ୟା ପଢ଼ିବା ନିମନ୍ତେ ( ବିଦ୍ୟାର୍ଥିନୀ—ସ୍ତ୍ରୀ ) ଗୁରୁଙ୍କ ନିକଟରେ ଉପସ୍ଥିତ—1. Appearing before a teacher to study with him. ୨ । ବିଦ୍ୟା ଶିକ୍ଷା କରିବାକୁ ଇଚ୍ଛୁକ—2 Desirous

of education. ସ. ବି—ଶିଷ୍ୟ; ଛାତ୍ର—Student; pupil.

ବିଦ୍ୟାଳୟ—ସ. ବି (୬ଷ୍ଠୀ ତତ୍; ବିଦ୍ୟା+ଆଳୟ)—ବିଦ୍ୟାମନ୍ଦିର; Bidyālaya ପାଠଶାଳା; ଇସ୍କୁଲ; ଶିକ୍ଷାଗାର—School.

ବିଦ୍ୟାଲାଭ—ସ. ବି (୬ଷ୍ଠୀ ତତ୍; ବିଦ୍ୟା+ଲାଭ)—ବିଦ୍ୟା ଉପାର୍ଜନ— Bidyālābha Acquisition of learning or knowledge.

ବିଦ୍ୟାଶିକ୍ଷା—ସ. ବି (୬ଷ୍ଠୀ ତତ୍; ବିଦ୍ୟା+ଶିକ୍ଷା)—ପାଠ ପଢ଼ିବା— Bidyāsikshā Education; study.

ବିଦ୍ୟାସାଗର—ସ. ବି—ବିଦ୍ୟାର୍ଣ୍ଣବ (ଦେଖ)—Bidyārṇṇaba Bidyāsāgara (See) ଦେ. ବି (ନାମ)—ବଙ୍ଗର ସୁନାମଧନ୍ୟ ମହାପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର— The late Īswarachandra Bidyāsāgara, the renowned Pandit of Bengal.

ବିଦ୍ୟୁ—ଦେ. (ପଦ୍ୟ) ବି (ସଂ. ବିଦ୍ୟୁତ୍)—ବିଦ୍ୟୁତ୍; ବିଜୁଳି— Bidyu Lightning. (ଉ—ସେ କରୁଁ ଉପୁଜି ଚହଟ ବିଦ୍ୟୁରାଜି—କୃଷ୍ଣସିଂହ. ମହାଭାରତ. ବନ।)

ବିଦ୍ୟୁଚ୍ଚାଳକ—ସଂ. ବି ଓ ବିଣ (ଆଧୁନିକ ବିଜ୍ଞାନପରିଭାଷା)—ଯେଉଁ ଦ୍ରବ୍ୟର Bidyuchchālaka ମଧ୍ୟ ଦେଇ ବିଦ୍ୟୁତ୍ ଅବ୍ୟାହତରୂପେ ଗତି (ବିଦ୍ୟୁତ୍ ପରିଚାଳକ—ଅନ୍ୟରୂପ) କରି ପାରେ—Conductor of electricty.

ବିଦ୍ୟୁଚ୍ଚିକିତ୍ସା—ସଂ. ବି (୩ୟା ତତ୍; ଆଧୁନିକ ପ୍ରୟୋଗ)—ତଡ଼ିତ୍ Bidyuchchikitsā ଶକ୍ତି ପ୍ରୟୋଗଦ୍ୱାରା ନାନାରୋଗର ଚିକିତ୍ସା— Electrotherapy; electropathy.

ବିଦ୍ୟୁଜ୍ଜାଳ—ସଂ. ବି (୬ଷ୍ଠୀ ତତ୍; ବିଦ୍ୟୁତ୍+ଜାଳ)—ବିଦ୍ୟୁତ୍ସମୂହ— Bidyujjāla A succession or spontaneous manifestation of lightning or electric flashes,

ବିଦ୍ୟୁଜ୍ଜିହ୍ୱ—ସଂ. ବି—ରାମାୟଣୋକ୍ତ ମାୟାବୀ ରାକ୍ଷସବିଶେଷ—Name Bidyujjihwa of a demon described in the Rāmāyaṇa. (ଉ—ବିଦ୍ୟୁଜ୍ଜିହ୍ୱ ତ୍ରିବେଣୀକ, ଯାଇ ଏକ ସୁବେଣୀକ, ବୁଡ଼ାଇ ମାୟା ଜାନକୀ, କରୁ ସମର—ଉପେ. ବୈଦେହୀଶବିଳାସ।) [ଦ୍ର—ଇନ୍ଦ୍ରଜିତ ଏହାଙ୍କୁ ମାୟାସୀତା କରାଇଥିଲେ। ଏ ସୂର୍ପଣଖାର ସ୍ୱାମୀ ଥିଲା—ହ. ଶ।]

ବିଦ୍ୟୁତ୍—ସଂ. ବି (ବହୁବ୍ରୀହି, ବି=ଅଳ୍ପକ୍ଷଣସ୍ଥାୟୀ+ଦ୍ୟୁତ୍=ଦୀପ୍ତି; Bidyut ଅଥବା ବି+ଦ୍ୟୁତ୍ ଧାତୁ+କର୍ତ୍ତୃ. କ୍ୱିପ୍)—୧। ସୌଦାମିନୀ; ବିଜୁଳି—1. Lightning. ୨। ତଡ଼ିତ୍ଶକ୍ତି— 2. Electricity. [ଦ୍ର—ତଡ଼ିତ ତଳେ ନୋଟ୍ ଦେଖ] ୩। ସନ୍ଧ୍ୟା—3. Evening. ୪। (+ଭାବ. କ୍ୱିପ୍)କାନ୍ତି —4. Beauty; lustre. ସଂ. ବିଣ (ବହୁବ୍ରୀହି; ବି+ଦ୍ୟୁତ୍)—୧। ନିଷ୍ପ୍ରଭ; ଅଭାହୀନ—1. Lustreless. ୨। ଅତ୍ୟନ୍ତ ଦୀପ୍ତିମାନ୍ (ହ. ଶ)—2. Very shining; brilliant.

ବିଦ୍ୟୁତ୍କମ୍ପନ—ସଂ. ବି (ଆଧୁନିକ ପ୍ରୟୋଗ)—ତଡ଼ିତ୍ପ୍ରବାହଜନିତ Bidyut-kampana ବସ୍ତୁର କମ୍ପନ—Electric oscillation.

ବିଦ୍ୟୁତ୍କେଶ—ସଂ. ବି—ରାମାୟଣୋକ୍ତ ରାକ୍ଷସବିଶେଷ—Name of Bidyut-keśa a demon. [ଦ୍ର—ଏ ହେତି ନାମକ ରାକ୍ଷସର ଔରସରେ କାଳ ରାକ୍ଷସର କନ୍ୟା ଭୟା ଗର୍ଭରୁ ଜନ୍ମିଥିଲା ଏହା ଔରସରେ ପୌଲୋମୀ ଗର୍ଭରୁ ରାକ୍ଷସବଂଶର ବୃଦ୍ଧି ହୋଇଥିଲା—ହ. ଶ।]

ବିଦ୍ୟୁତ୍କୋଷମାଳା—ସଂ. ବି (ଆଧୁନିକ ବିଜ୍ଞାନ)—ଯେଉଁ Bidyut-koshamālā ବୈଜ୍ଞାନିକ ଯନ୍ତ୍ରରେ ତଡ଼ିତ୍ ଉତ୍ପାଦକ ବସ୍ତୁମାନ ରକ୍ଷିତ ହୋଇଥାଏ; ବାଟେରି—Electric battery.

ବିଦ୍ୟୁତ୍ଘଣ୍ଟ(ଣ୍ଟା, ଣ୍ଟି)—ଦେ. ବି—ତଡ଼ିତ୍ ଶକ୍ତିଦ୍ୱାରା ବାଦିତ ଘଣ୍ଟା— Bidyut-ghaṇṭa(ṇṭā, ṇṭi) Electric bell; electric alarm,

বিদ্যুৎঘণ্টা बिजलीघण्टा

ବିଦ୍ୟୁତ୍ପାତ—ସଂ. ବି (୭ମୀ ତତ୍; ବିଦ୍ୟୁତ୍+ପାତ୍)—୧। ବିଜୁଳି ମାରିବା— Bidyut-pāta 1. A flash of lightning ୨। କୌଣସି ଦ୍ରବ୍ୟରେ ବିଦ୍ୟୁତ୍ର ପ୍ରଖର ସଂଘର୍ଷ— 2. A stroke of lightning.

ବିଦ୍ୟୁତ୍ ପ୍ରବାହ—ସ. ବି (ଆଧୁନିକ ବିଜ୍ଞାନ)—ତଡ଼ିତ୍ ଶକ୍ତିର ସ୍ରୋତଃ Bidyut-prabāha ବା ତରଙ୍ଗ—Electric current or wave.

ବିଦ୍ୟୁତ୍ପ୍ରଦୀପ—ସ. ବି—(ଆଧୁନିକ)—ବିଜୁଳିବତି; ତଡ଼ିତ୍ଶକ୍ତି Bidyut-pradīpa ସାହାଯ୍ୟରେ ଜଳୁଥିବା ଦୀପ— Electric lamp; electric light.

ବିଦ୍ୟୁଦ୍ଦୀପ
ବିଦ୍ୟୁଦ୍ବର୍ତ୍ତି(ର୍ତ୍ତୀ)
ବିଦ୍ୟୁଦ୍ବର୍ତ୍ତିକା
ବିଦ୍ୟୁଦାଲୋକ } ଅନ୍ୟରୂପ

ବିଦ୍ୟୁତ୍ପ୍ରଭ—ସ. ବିଣ (ବହୁବ୍ରୀହି; ବିଦ୍ୟୁତ୍+ପ୍ରଭା)—ବିଜୁଳିପରି Bidyut-prabha ଉଜ୍ଜ୍ୱଳ—Shining or bright like lightning. (ବିଦ୍ୟୁତ୍ପ୍ରଭା—ସ୍ତ୍ରୀ) (ବିଦ୍ୟୁଜ୍ଜ୍ୱାଳ, ବିଦ୍ୟୁଦାଭ—ଅନ୍ୟରୂପ)

ବିଦ୍ୟୁତ୍ପ୍ରିୟ—ସ. ବି—କଂସା ଧାତୁ ବା ତନ୍ନିର୍ମିତ ବାସନ (ହ. ଶ)— Bidyut-priya Bellmetal or any utensil of that metal. [ଦ୍ର—ଏ ଖୁବ୍ ବିଦ୍ୟୁଚ୍ଚାଳକ ଥିବାରୁ ଏହି ନାମ।]

ବିଦ୍ୟୁତ୍ପ୍ରଭା—ସ. ବି—(୬ଷ୍ଠୀ ତତ୍)—୧। ବିଦ୍ୟୁତର ତେଜଃ— Bidyut-prabhā The glamour of lightning. ୨। ତଡ଼ିତ୍ ଶକ୍ତି— 2. Electricity.

ବିଦ୍ୟୁଜ୍ଜାଳା,
ବିଦ୍ୟୁତ୍ତେଜ
ବିଦ୍ୟୁଦାଭା } —ଅନ୍ୟରୂପ

ବିଦ୍ୟୁତ୍(ଦ୍) ବାର୍ତ୍ତା—ଦେ. ବି—(ଆଧୁନିକ ପ୍ରୟୋଗ)—ତାର ଖବର— Bidyut(d) bārttā Telegraphic news; telegram; (ବିଦ୍ୟୁଦ୍ବାର୍ତ୍ତା—ସଂସ୍କୃତରୂପ) telephonic message.

ବିଦ୍ୟୁତ୍ସ୍ପନ୍ଦନ—ସ. ବି—୧। ବିଜୁଳି ମାରିବା— Bidyut-spandana 1. A flash of lightning. ୨। (ବିଜ୍ଞାନ) ତଡ଼ିତ୍ ପ୍ରବାହର କ୍ଷଣିକ ପ୍ରକାଶ—2. Electric flash.

ବିଦ୍ୟୁଦ୍ବିକାଶ
ବିଦ୍ୟୁଦ୍ବିଳାସ
ବିଦ୍ୟୁତ୍ସ୍ଫୁରଣ } ଅନ୍ୟରୂପ

**ବିଦ୍ୟୁତଶକ୍ତିବିଜ୍ଞାନ**—ସଂ. ବି.—(ବିଦ୍ୟୁତ୍ ଶକ୍ତି+ବିଜ୍ଞାନ)—ତଡ଼ିତର ଶକ୍ତି
Bidyut-śaktidbijñāna ବିଷୟକ ତଥ୍ୟମାନ ଯେଉଁ ବିଜ୍ଞାନରେ ଆଲୋଚିତ ହୋଇଥାଏ—The science dealing with the energy of electricity; electrodynamics.

**ବିଦ୍ୟୁତ୍ ସ୍ଫୁଲିଙ୍ଗ**—ଦେ. ବି—ତଡ଼ିତ୍‌ର ଅଗ୍ନିକଣା—
Bidyut-sphuliṅga Electric spark.

**ବିଦ୍ୟୁତ**—ଦେ. ବି—(ସଂ. ବିଦ୍ୟୁତ୍)—୧ । ବିଜୁଳି—1. Lightning.
Bidyuta ୨ । ତଡ଼ିତ୍‌ତେଜ; ବିଦ୍ୟୁତଶକ୍ତି—2. Electricity.

**ବିଦ୍ୟୁତା**—ସଂ. ବି—(ବି+ଦ୍ୟୁତ ଧାତୁ+କର୍ତ୍ତ୍ରି, ଅ+ଆ)—ବିଜୁଳି;
Bidyutā ସୌଦାମିନୀ (ହି ଶ)—Lightning.

**ବିଦ୍ୟୁତ୍ତରଙ୍ଗ**—ସଂ. ବି—(ଆଧୁନିକ ବିଜ୍ଞାନ) ତଡ଼ିତ୍‌ପ୍ରବାହର ପ୍ରବଳ
Bidyuttaraṅga ଢେଉ—Electric wave.

**ବିଦ୍ୟୁତ୍ୱାନ୍**—ସଂ. ବି—(ବିଦ୍ୟୁତ୍+ଅଛି ଅର୍ଥରେ ବତ୍; ୧ମା. ୧ବ)—
Bidyutwān ମେଘ—Cloud. ସଂ. ବିଣ. ପୁଂ--ବିଦ୍ୟୁତଶକ୍ତି-
(ବିଦ୍ୟୁତ୍ୱତୀ—ସ୍ତ୍ରୀ) ବିଶିଷ୍ଟ—Full of electricity.

**ବିଦ୍ୟୁତ୍ୟ**—ସଂ. ବିଣ (ବିଦ୍ୟୁତ୍+ଯ)—ବିଦ୍ୟୁତରୁ ଉତ୍ପନ୍ନ (ହି ଶ)—
Bidyutya Produced by electricity or lightning

**ବିଦ୍ୟୁଦ୍‌ଗର୍ଭ**—ସଂ. ବିଣ (ବହୁବ୍ରୀହି; ବିଦ୍ୟୁତ୍+ଗର୍ଭ)—ଯାହାର ଗର୍ଭ ବା
Bidyudgarbha ଅନ୍ତରରେ ବିଦ୍ୟୁତ୍ ଅଛି—Full of
(ବିଦ୍ୟୁଦ୍‌ଗର୍ଭା—ସ୍ତ୍ରୀ) electricity.

**ବିଦ୍ୟୁଦାବେଶ**—ସଂ. ବି—(୭ମୀ ତତ୍; ଆଧୁନିକ ବିଜ୍ଞାନ)—କୌଣସି
Bidyudābeśa ବସ୍ତୁରେ ତଡ଼ିତ୍ ଶକ୍ତିର ପ୍ରବେଶ—Electric charge.

**ବିଦ୍ୟୁଦାବେଶନ**—ସଂ. ବି (ଆଧୁନିକ ବିଜ୍ଞାନ)—କୌଣସି ଦ୍ରବ୍ୟରେ
Bidyudābeśana ତଡ଼ିତ୍ ଶକ୍ତି ପୁରାଇବା—Electrification.

**ବିଦ୍ୟୁଦ୍ଦାମ**—ସଂ. ବି (ବିଦ୍ୟୁତ୍+ଦାମ)—୧ । ଖୁବ୍ ଦୀପ୍ତିମୟ ମାଳା—
Bidyuddāma 1. Very shining or bright garland.
୨ । ମାଳାପରି ପ୍ରକାଶିତ ହେବା ବିଦ୍ୟୁତ୍ -2. Lightning flashes like a garland of light.

**ବିଦ୍ୟୁଦ୍ଦ୍ୱାର**—ସଂ. ବି (୬ଷ୍ଠୀ ତତ୍, ଆଧୁନିକ ବିଜ୍ଞାନ)—ଯେଉଁ ଦ୍ୱାର
Bidyuddwāra ବାଟେ ତଡ଼ିତ୍ ପ୍ରବାହ ବସ୍ତୁମାନଙ୍କୁ ଯାଏ—Electrode.

**ବିଦ୍ୟୁଦୁତ୍କୀର୍ଣ୍ଣନ**—ସଂ. ବି—(୩ୟା ତତ୍; ଆଧୁନିକ ବିଜ୍ଞାନ)—ତଡ଼ିତ୍ ଶକ୍ତି
Bidyudutkirṇṇana ଦ୍ୱାରା ଧାତୁ ଆଦି ଉପରେ ଅକ୍ଷର
(ବିଦ୍ୟୁଦୁତ୍କୀର୍ଣ୍ଣ--ବିଣ) ଆଦି ଖୋଳିବା କର୍ମ—Electro-engraving.

**ବିଦ୍ୟୁଦ୍ଦୀପ୍ତ**—ସଂ. ବି (୩ୟା ତତ୍; ବିଦ୍ୟୁତ୍+ଦୀପ୍ତ)—୧ । ବିଦ୍ୟୁତ୍‌ଦ୍ୱାରା
Bidyuddipta ଆଲୋକିତ—1. Lighted by lightning.
୨ । ବିଦ୍ୟୁତ୍‌ପରି ଜ୍ୟୋତିର୍ବିଶିଷ୍ଟ—2. Flashing like
(ବିଦ୍ୟୁଦ୍ଦୀପ୍ତି—ବି) lightning.

**ବିଦ୍ୟୁଦ୍(ତ୍)ବାର୍ତ୍ତାବହ**—ସଂ. ବି (ଆଧୁନିକ)--ତଡ଼ିତ୍ ଶକ୍ତିଦ୍ୱାରା ଏକସ୍ଥାନରୁ
Bidyud(t)bārttābaha ଅନ୍ୟ ସ୍ଥାନକୁ ସମ୍ବାଦ ପ୍ରେରଣକାରୀ ଯନ୍ତ୍ର—Electric telegraph or telephone.

**ବିଦ୍ୟୁଦ୍ବିଚ୍ଛେଦ**—ସଂ. ବି—(୬ଷ୍ଠୀ ତତ୍; ଆଧୁନିକ ବିଜ୍ଞାନ)—ତଡ଼ିତ୍ ଶକ୍ତି
Bidyudbichchheda ଦ୍ୱାରା ବସ୍ତୁର ଉପାଦାନମାନଙ୍କର ରାସାୟନିକ ବିଶ୍ଳେଷଣ—Electrolysis

**ବିଦ୍ୟୁଦ୍‌ବିଜ୍ଞାନ**—ସଂ. ବି—(ଆଧୁନିକ) (ମ. ପ. ଜୋ)—ତଡ଼ିତ୍ ଶକ୍ତି
Bidyud-bijñāna ସମ୍ବନ୍ଧେ ବିଶେଷ ଜ୍ଞାନସମ୍ବଳିତ ଶାସ୍ତ୍ର -
The science dealing with electricity.

**ବିଦ୍ୟୁଦ୍‌ବିଦ୍**—ସଂ. ବି ଓ ବିଣ (ଆଧୁନିକ ବିଜ୍ଞାନ)—ତଡ଼ିତ୍ ସମ୍ବନ୍ଧେ
Bidyud-bid ବିଶେଷଜ୍ଞ—Electrician; versed in the electrical science.

**ବିଦ୍ୟୁଦ୍‌ବୀକ୍ଷଣ**—ସଂ. ବି (ଆଧୁନିକ ବିଜ୍ଞାନ)—ବିଦ୍ୟୁତ୍ ବା ତଡ଼ିତ୍ ଶକ୍ତି
Bidyud-bīkshaṇa ବା ପ୍ରବାହର ଅବସ୍ଥିତି ଗତି ଓ ବେଗ ଆଦି ପ୍ରଦର୍ଶନ କରିବା ଯନ୍ତ୍ରବିଶେଷ—Electroscope. [ଦ୍ର—ଏହା ଦୁଇ ପ୍ରକାର; ୧ । ସ୍ୱର୍ଣ୍ଣପତ୍ର ବିଦ୍ୟୁଦ୍ବୀକ୍ଷଣ—Gold leaf electroscope ଏବଂ ୨ । ସଞ୍ଚାୟୀ ବିଦ୍ୟୁଦ୍ବୀକ୍ଷଣ]—Condensing electroscope.

**ବିଦ୍ୟୁଦ୍‌ବେଗ**—ସଂ. ବି—(୬ଷ୍ଠୀ ତତ୍, ବିଦ୍ୟୁତ୍+ବେଗ)—ତଡ଼ିତର ଗତି
Bidyudbega ପରି ଦ୍ରୁତଗତି—Velocity of lightning.
ସଂ. ବିଣ (ବହୁବ୍ରୀହି)—ବିଦ୍ୟୁତ୍ ପରି ଗତିବିଶିଷ୍ଟ—
Having the velocity of lightning.

**ବିଦ୍ୟୁଦ୍‌ବ୍ୟଜନ**—ଦେ. ବି—(ସଂ. ବିଦ୍ୟୁତ୍+ବ୍ୟଜନ)—ବିଦ୍ୟୁତ ଶକ୍ତି-
Bidyudbyajana ପରିଚାଳିତ ପଙ୍ଖା; ବୈଦ୍ୟୁତିକ ପଙ୍ଖା—
Electric fan; fan propelled by electricity.

**ବିଦ୍ୟୁନ୍ମାପକ**—ସଂ. ବିଣ—ଆଧୁନିକ ବିଜ୍ଞାନ)—ଯଦ୍ଦ୍ୱାରା ତଡ଼ିତ୍ ପ୍ରବାହର
Bidyunmāpaka ପରିମାଣ ସ୍ଥିର କରାଯାଏ—Measuring the electric current.
ବିଦ୍ୟୁନ୍ମାନ } ଅନ୍ୟରୂପ—
ବିଦ୍ୟୁତ୍ ପରିମାପକ }
ସଂ. ବି—ନାଯୋଜିତ ତଡ଼ିତ୍‌ଶକ୍ତିର ଓ ପ୍ରବାହର ପରିମାଣ ସ୍ଥିର କରିବା ଯନ୍ତ୍ର—
A scientific instrument for measuring electric force or current; electrometer; electro-dynamometer.

**ବିଦ୍ୟୁନ୍ମାଳା**—ସଂ. ବି(୬ଷ୍ଠୀ ତତ୍, ବିଦ୍ୟୁତ୍+ମାଳା)-୧ । ଏକତ୍ର ମାରୁଥିବା
Bidyunmālā ବିଜୁଳି ସମୂହ—Sheets of ligtning;
( ବିଦ୍ୟୁଦ୍ଦାମ—ଅନ୍ୟରୂପ ) simultaneous sparks of
lightning. ୨ । ସଂସ୍କୃତ ଛନ୍ଦୋବିଶେଷ—2. A Sanskrit metre

**ବିଦ୍ୟୁନ୍ମାଳୀ**—ସଂ. ବି. ପୁଂ ( ବିଦ୍ୟୁନ୍ମାଳିନ୍; ୧ମା. ୧ବ )—୧ ।
Bidyunmālī ପୌରାଣିକ ଅସୁରବିଶେଷ—1. The name of mythological demon. [ଦ୍ର—ଏ ଶିବଙ୍କୁ ଉପାସନା କରି ତାଙ୍କ ବରରେ ଗୋଟିଏ ଜ୍ୟୋତିର୍ମୟ ବିମାନ ପାଇଥିଲା; ସେ ବିମାନ ଦିବାନିଶି ସୂର୍ଯ୍ୟଙ୍କ ପଛରେ ରହୁଥାଏ ଓ ସୂର୍ଯ୍ୟକିରଣଦ୍ୱାରା ଉଦ୍ଭାସିତ ହେଉଥାଏ । ସୂର୍ଯ୍ୟ ତଦ୍ଦ୍ୱାରା ବିରକ୍ତ ହୋଇ ନିଜ ତେଜରେ ସେ ବିମାନକୁ ତରଳାଇ ଦେବାରୁ ବିମାନ ଭୂମିରେ ଖସି ପଡ଼ିଲା । ଧର୍ମଯୁଦ୍ଧ ସୁଷେଣଙ୍କ ସଙ୍ଗେ ଏହାର ଯୁଦ୍ଧ ହୋଇଥିଲା । ରାମାୟଣରେ ଓ ମହାଭାରତରେ ଏହି ନାମଧାରୀ ୨ଟି ଅସୁରଙ୍କର ଉଲ୍ଲେଖ ଅଛି—ହି. ଶ । ] ୨ । ଛନ୍ଦୋବିଶେଷ—2. Name of

a Sanscrit metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଏକ ତଗଣ, ଏକ ମଗଣ ଓ ଅନ୍ତରେ ୨ଟ ଗୁରୁ ବର୍ଣ୍ଣ ଥାଏ—ହି. ଶ । ]

**ବିଦ୍ୟୁଲ୍ଲତା**—ସଂ. ବି (ବିଦ୍ୟୁତ୍+ଲତା)—୧ । ଲତା ଆକୃତିବିଶିଷ୍ଟ Bidyullatā ବିଦ୍ୟୁତ୍; ବିଜୁଳିର ରେଖା—1. A streak of (ବିଦ୍ୟୁଲ୍ଲେଖା—ଅନ୍ୟରୂପ) lightning ୨ । ମେଘଜ୍ୟୋତିଃ; ବଜ୍ରାଗ୍ନି—2. Lightning. ୩ । ତଡ଼ିତ୍ ଶକ୍ତି—3. Electricity.

**ବିଦ୍ୟୁଲ୍ଲେଖ**—ସଂ. ବି (୬ଷ୍ଠୀ ତତ୍; ଆଧୁନିକ ବିଜ୍ଞାନ)—ଯେଉଁ ଯନ୍ତ୍ରଦ୍ୱାରା Bidyullekha ତଡ଼ିତ୍ପ୍ରବାହଦ୍ୱାରା ପରମାଣ ସ୍ୱୟଂ ସ୍ୱୟଂ ଲିପିବଦ୍ଧ ହୋଇଯାଏ—Electrograph.

**ବିଦ୍ୟୁଲ୍ଲେପ**—ସଂ. ବି (୬ଷ୍ଠୀ ତତ୍; ବିଦ୍ୟୁତ୍+ଲେପ; ଆଧୁନିକବିଜ୍ଞାନ)—Bidyullepa ତଡ଼ିତ୍ ଶକ୍ତିଦ୍ୱାରା କୌଣସି ବସ୍ତୁ ଉପରେ ସୁନାରୂପା ବିଦ୍ୟୁଲ୍ଲିପ୍ତ / ବିଦ୍ୟୁଲ୍ଲେପିତ } ବିଣ. ରୂପ ଅଥବା ଲେପ ବା ସ୍ତର ପକାଇବା କ୍ରିୟା—Electroplating; electrogilding.

**ବିଦ୍ୟୋତ୍**—ସଂ. ବି (ବି+ଦ୍ୟୁତ୍ ଧାତୁ+କର୍ତ୍ତୃ. କ୍ୱିପ୍)—୧ । ବିଦ୍ୟୁତ୍ Bidyot (ହି. ଶ)—1. Lightning. ୨ । ଦୀପ୍ତି; ପ୍ରଭା; କାନ୍ତି; ଦ୍ୟୁତି—2. Lustre; splendour. ୩ । ଅପ୍ସରୋବିଶେଷ (ହି. ଶ)—3. Name of a heavenly nymph.

**ବିଦ୍ୟୋତ**—ସଂ. ବି (ବି+ଦ୍ୟୁତ୍ ଧାତୁ+ଭାବ. ଅ)—ପ୍ରଭା; ଦୀପ୍ତି—Bidyota Lustre; gleam.

**ବିଦ୍ୟୋତମାନ**—ସଂ. ବିଣ. ପୁଂ (ବି+ଦ୍ୟୁତ୍ ଧାତୁ+କର୍ତ୍ତୃ. ଆନ)—Bidyotamāna ଦ୍ୟୁତିମାନ୍; ଉଜ୍ଜ୍ୱଳ—Shining; lustrous (ବିଦ୍ୟୋତମାନା—ସ୍ତ୍ରୀ)

**ବିଦ୍ୟୋତ୍ସାହୀ**—ସଂ. ବିଣ. ପୁଂ (୭ମୀ ତତ୍; ବିଦ୍ୟା+ଉତ୍ସାହିନ୍, ୧ମା Bidyotsāhi ୧ବ.) ବିଦ୍ୟାର ଉନ୍ନତି ବିଷୟରେ ଉତ୍ସାହଦାତା—(ବିଦ୍ୟୋତ୍ସାହିନୀ—ସ୍ତ୍ରୀ) uraging the spread of education; patronising learning.

**ବିଦ୍ୟୋପାର୍ଜ୍ଜନ**—ସଂ. ବି (୬ଷ୍ଠୀ ତତ୍; ବିଦ୍ୟା+ଉପାର୍ଜ୍ଜନ)—ବିଦ୍ୟାଲାଭ; Bidyopārjjana ଶିକ୍ଷାଲାଭ—Acquisition of knowledge.

**ବିଦ୍ର**—ସଂ. ବି (ବିଧ୍ ଧାତୁ=ବିଦ୍ଧ କରିବା+ର)—ଛିଦ୍ର; ବିବର—Bidra Hole; perforation.

**ବିଦ୍ରଧ**—ସଂ. ବିଣ. ପୁଂ ( ବିଧ୍ ଧାତୁ+କର୍ତ୍ତୃ. ରଧ )—୧ । ହୃଷ୍ଟପୁଷ୍ଟ Bidradha (ହି. ଶ)—1. Stout and strong. ୨ । ଦୃଢ଼ (ହି. ଶ—2. Strong; firm. ୩ । କୌଣସି କାର୍ଯ୍ୟ ପାଇଁ ଉଦ୍ୟମରୂପେ ପ୍ରସ୍ତୁତ (ହି. ଶ)—3. Ready to do a certain work.

**ବିଦ୍ରଧି**—ସଂ. ବି (ବିଦ୍ର+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ )—ପେଟ Bidradhi ମଧ୍ୟରେ ଜନ୍ମିବା କଷ୍ଟଦାୟକ ଓ ମାରାତ୍ମକ ବ୍ରଣରୋଗ ବିଶେଷ—A kind of painful boil or abscess inside the stomach.

**ବିଦ୍ରଧିକା**—ସଂ. ବି ( ବିଦ୍ରଧି+କ+ଆ )—ପ୍ରମେହରୋଗ ବଢ଼ିଗଲେ Bidradhikā ଉଠିଲେ ଦେହରେ ଜାତ ଏକପ୍ରକାର ଛୋଟ ବ୍ରଣ; ପ୍ରମେହପୀଡ଼କା (ହି. ଶ)—A kind of small boil coming out in the body of patients suffering from chronic gonerrhoea.

**ବିଦ୍ର(ଦ୍ରା)ବ**—ସଂ. ବି (ବି+ଦ୍ରୁ ଧାତୁ=ପଳାଇବା+ଭାବ. ଅ)—Bidra(drā)ba ୧ । ପଳାୟନ—1. Flight; retreat. ୨ । ଭୟ—2. Fear; terror ୩ । କ୍ଷରଣ; ତରଳ ଦ୍ରବ୍ୟ ଗଳିପଡ଼ିବା—3. Oozing of liquid. ୪ । ଦ୍ରବୀଭବନ—4. Melting ୫ । ଥଟ୍ଟା; ପରିହାସ—5. Jesting ୬ । ନିନ୍ଦା—6. Rebuke; censure. ୭ । ଯୁଦ୍ଧ—7. Battle. ୮ । ବୁଦ୍ଧି—Intellect; understanding. ଦେ ବିଣ ଗଳି ପଡ଼ୁଥିବା—Oozing out. [ଉ—ବିଦ୍ରାବ ବିଧାଇ ରକ୍ତ ବସନ ବୁଡ଼ି, କାଢେ ସୁଷିତ ମନାର ବୃଷ କି ଉଡ଼ି । ବଞ୍ଜ. ବୈଦେହୀଶବିଳାସ ।]

**ବିଦ୍ରାବକ**—ସଂ. ବିଣ. ପୁଂ (ବି+ଦ୍ରୁ ଧାତୁ ଣିଚ୍+କର୍ତ୍ତୃ. ଅକ)—୧ । ଯେ Bidrābaka ଥଟ୍ଟା କରେ—1. Jesting. ୨ । ଦ୍ରବକାରୀ; (ବିଦ୍ରାବିକା—ସ୍ତ୍ରୀ) ଯାହା ତରଳାଏ—2. Melting.

**ବିଦ୍ରାବଣ**—ସଂ. ବି ( ବି+ଦ୍ରୁ ଧାତୁ ଣିଚ୍+ଭାବ ଅନ)—୧ । ତରଳା । Bidrābaṇa ଇବା—1. Melting. ୨ । ଫାଡ଼ି ଦେବା (ହି. ଶ)—2. Splitting up; tearing. ୩ । ତାଡ଼ନ; ତଡ଼ି ଦେବା—3. Driving away. ୪ । ଉଡ଼ାଯିବ (ହି. ଶ)—4. Flying. ୫ । ପ୍ରହାର ଦେବା—5. Beating. ସଂ. ବିଣ ( +କର୍ତ୍ତୃ. ଅନ )—୧ । ପଳାଇ ଯାଉଥିବା—1. Running away; retreating. [ଉ—ବିଦ୍ରାବଣ କରୁଣପଗଣ ହେଲେ ତରମ୍ନେ ଜନକଯାତା । ଉଞ୍ଜ. ବୈଦେହୀଶବିଳାସ ।] ୨ । ନଷ୍ଟକାରୀ (ହି. ଶ)—2. Spoiling; ruining.

**ବିଦ୍ରାବିତ**—ସଂ. ବିଣ (ବି+ଦ୍ରୁ ଧାତୁ ଣିଚ୍ ଦ୍ରାବି ଧାତୁ+କର୍ମ. ତ)—Bidrābita ୧ । ଦ୍ରବୀକୃତ—1. Molten; liquefied. ୨ । ବିତାଡ଼ିତ; ତାଡ଼ନାର୍ଥ ପଛାବାବିତ—2. Driven from behind; chased.

**ବିଦ୍ରାବୀ**—ସଂ. ବିଣ. ପୁଂ—(ବି+ଦ୍ରୁ ଧାତୁ+ଇନ୍, ୧ମା, ୧ବ)—୧ । Bidrābi ପଳାୟନକାରୀ (ହି. ଶ)—1. Fleeing away; re- (ବିଦ୍ରାବିଣୀ—ସ୍ତ୍ରୀ) treating. ୨ । ତରଳୁଥିବା (ହି. ଶ)—2. Melting (thing). ୩ । (ବି+ଦ୍ରୁ ଧାତୁ ଣିଚ୍+ଇନ୍) ତରଳାଉଥିବା; ଦ୍ରବକାରୀ—3. Liquefying (person). ୪ । ଯେ ଫାଡ଼ିଦିଏ—4. Splitting up.

**ବିଦ୍ରୁତ**—ସଂ. ବିଣ ( ବି+ଦ୍ରୁ ଧାତୁ+କର୍ତ୍ତୃ. ତ )—୧ । ପଳାୟିତ—Bidruta 1. Fled away. ୨ । ଦ୍ରବୀଭୂତ; ଗଳିତ—2. Mol- (ବିଦ୍ରୁତି—ବି) ten; liquefied. ୩ । ସନ୍ତ୍ରସ୍ତ—3. Terrified; alarmed.

**ବିଦ୍ରୁମ**—ସଂ. ବି (ବି+ଦ୍ରୁମ=ବୃକ୍ଷ)—୧ । ରକ୍ତ ପ୍ରବାଳ—1. Red Bidruma coral. [ଦ୍ର—ପ୍ରବାଳ ଏକ ପ୍ରକାର ସାମୁଦ୍ରିକ କୀଟର

ସମଷ୍ଟି । ଏ ଖଣ୍ଡମାନେ ପରସ୍ପର ସଲଗ୍ନ ହୋଇ ଶାଖାଯୁକ୍ତ ବୃକ୍ଷ ପରି ସମୁଦ୍ର ଗର୍ଭରେ ବଢ଼ନ୍ତି । ] ୨ । ବୃକ୍ଷର ନବ-ପଲ୍ଲବ—2. Young shoots of plants. ୩ । ପଦ୍ମରାଗ ମଣି—3. Ruby; spinal ruby. ୪ । ମୁକ୍ତା-ଫଳ ବୃକ୍ଷ ( ପ୍ରକୃତିବାଦ ଓ ହ୍ରୁ. ଶ )—4. A kind of tree. ୫ । ପ୍ରବାଳ ବୃକ୍ଷ—5. The coral tree, bearing reddish precious gems called corals (Apte).

**ବିଦ୍ରୂପ**—ଦେ. ବି. (ସଂ. ବିଦ୍ରୂପ, ବିରୂପ; ବଙ୍ଗୀୟ ଲେଖକଙ୍କ ଲେଖାରୁ Bidrūpa ଆଧୁନିକ ଓଡ଼ିଆରେ ଗୃହୀତ) —୧ । ପରିହାସ— विद्रूप 1. Jesting; redicule; mockery. ୨ । ବ୍ୟଙ୍ଗ- ठठोली 2. Irony; satire [ ଧ୍ରୁ—ଏହା ବ୍ୟଙ୍ଗ ଶବ୍ଦ ପରେ **बोलीठोली, ताना** ଏକାର୍ଥକ ସହଚର ରୂପେ ବ୍ୟବହୃତ ହୁଏ ।]

**ବିଦ୍ରୂପ କରିବା**—ଦେ. କ୍ରି—ଥଟ୍ଟା କରିବା—To jeer at; to cut Bidrūpa kariba capers; to play pranks.

**ବିଦ୍ରୂପ ପ୍ରିୟ** —ଦେ. ବିଣ. ପୁଂ—ଥଟ୍ଟାଳିଆ—Fond of mockery. Bidrūpa priya विद्रूप प्रिय **ठट्ठाबाज** (ବିଦ୍ରୂପ ପ୍ରିୟା—ସ୍ତ୍ରୀ)

**ବିଦ୍ରୂପାତ୍ମକ**—ଦେ. ବିଣ—ବ୍ୟଙ୍ଗ ପୂର୍ଣ୍ଣ—Ironical; satirical Bidrūpātmaka (ବିଦ୍ରୂପ ସୂଚକ—ଅନ୍ୟରୂପ) विद्रूपात्मक

**ବିଦ୍ରୂପୋକ୍ତି**—ଦେ. ବି (ବିଦ୍ରୂପ+ଉକ୍ତି)—ବ୍ୟଙ୍ଗୋକ୍ତି; ଥଟ୍ଟାଳିକଥା— Bidrūpokti Ironical or satirical expression. विद्रूपोक्ति **बोलीठोली**

**ବିଦ୍ରୋହ**—ସଂ. ବି. (ବି+ଦ୍ରୁହ୍ ଧାତୁ=ହିଂସା କରିବା+ଭାବ.ଅ)— Bidroha ୧ । ପ୍ରଭୁଙ୍କର ବା ରାଜାଙ୍କର ବିରୋଧାଚରଣ—1. Treason. ୨ । ମେଳ—2. Revolt; rebellion; mutiny. ୩ । ବିଦ୍ୱେଷ—3. Malice.

**ବିଦ୍ରୋହାଚରଣ** —ସଂ. ବି. ( ଷଷ୍ଠୀ ତତ୍; ବିଦ୍ରୋହ+ଆଚରଣ )— Bidrohācharana ୧ । ବିରୋଧାଚରଣ; ଅନନୁଷ୍ଠାଚରଣ—1. Rising or acting against an authority. ୨ । ରାଜଶାସନ ପ୍ରତି ଅସମ୍ମାନ ପ୍ରଦର୍ଶନ—2. Raising of a revolt; disregard of lawful authority or established government.

**ବିଦ୍ରୋହାନଳ**—ସଂ. ବି. ( ରୂପକ କର୍ମଧା; ବିଦ୍ରୋହ+ଅନଳ )—ଅଗ୍ନି Bidrohānaḷa ପରି ଶୀଘ୍ର ଆଡ଼େ ବ୍ୟାପିଯିବା ମେଳ—Mutiny spreading like wild fire. (ବିଦ୍ରୋହାଗ୍ନି, ବିଦ୍ରୋହବହ୍ନି—ଅନ୍ୟରୂପ)

**ବିଦ୍ରୋହୀ**—ସଂ. ବିଣ. ପୁଂ(ବି+ଦ୍ରୁହ୍ ଧାତୁ+କର୍ତ୍ତୃ ଇନ୍; ୧ମା ୧ବ)— Bidrohī ୧ । ମେଳିଆ—1. Mutinous. ୨ । ରାଜାଙ୍କ ପ୍ରତି (ବିଦ୍ରୋହିଣୀ—ସ୍ତ୍ରୀ) ଅସମ୍ମାନ ପ୍ରଦର୍ଶକ—1. Rebellious. ୩ । ଅନିଷ୍ଟାଚରଣକାରୀ—3. Injurious. ୪ । ଦ୍ୱେଷୀ—4. Malcious.

**ବିଧ୍ (ଧାତୁ)**—ସଂ—୧ । ବିଦ୍ଧ କରିବା; ଫୋଡ଼ିବା—1. To pierce Bidh (root) (Apte). ୨ । ପୂଜା କରିବା; ସମ୍ମାନ କରିବା—2. To honour; to worship. (Apte). ୩ । ଶାସନ କରିବା—4. To rule; to administer (Apte). ୪ । ଯାଚଞ୍ଚା କରିବା; ମାଗିବା—4. To beg; to ask (Apte).

**ବିଧ**—ସଂ. ବି (ବି+ଧା ଧାତୁ+କର୍ମ ଅ)—୧ । ପ୍ରକାର—1. Kind; Bidha sort. ୨ । ଧାରା—2. Style; mode; manner. ୩ । ବିଧାନ; ନିୟମ; ବିଧି—3. Rule; formula. ୪ । ରୀତି—4. Custom; practice. ୫ । ଗଜଗ୍ରାସ; ଗଜ-ଭକ୍ଷ୍ୟ ଅନ୍ନ—5. An elephant's food. ୬ । ସମୃଦ୍ଧି—6. Wealth; prosperity. ୭ । ବିଦ୍ଧକରଣ; ଫୋଡ଼ିବା—7. Perforating; penetrating. ୮ । ବେତନ—8. Salary; remuneration. ୯ । ମୂଲ—9. Wages. ସଂ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ (ବିଧା—ସ୍ତ୍ରୀ) ହେଲେ, ଯଥା ବହୁବିଧ; ନାନାବିଧ)—୧ । ପ୍ରକାରର; ଜାତୀୟ—1. ( a prefix meaning) Of kinds; of sorts; like or similar to. ୨ । ଆକାରର—2. Of the form of. ପ୍ରାଦେ. (ସମ୍ବଲପୁର) ବି—ଗୋଇଠା—Kick. ଦେ. ବି. (ସଂ. ବେଧ) ୧ । ବିବାଦ— बाधा 1. Dispute. ୨ । କଳି—2. Quarrel. ୩ । ପ୍ରତିବନ୍ଧକ, ବାଧା—3 Obstacle.

**ବିଧଂ(ଧ୍ୱଂ)ସିବା**—ଦେ. (ପଦ୍ୟ) କ୍ରି—ବିଧ୍ୱଂସ କରିବା— Bidham(dhwam)sibā विध्वंस **विधांसना** To destroy.

**ବିଧ ପଡ଼ିବା**—ଦେ. କ୍ରି—କୌଣସି କାର୍ଯ୍ୟରେ ବାଧା ଉପସ୍ଥିତ ହେବା— Bidha pardibā The appearance of an obstacle in the way in the course of a certain work.
ବିଧ ପକ୍ଷ(ଡ଼)ଥିବା } ଅନ୍ୟରୂପ
ବିଧ ହାରୁ(ବୋ)ଡ଼ିବା }
बाधा पड़ा **बाधा पडना**

**ବିଧବନ**—ସଂ. ବି. (ବି+ଧୂ ଧାତୁ+ଭାବ ଅନ)—୧ । କମ୍ପନ; ଥରୁ— Bidhabana 1. Trembling; tremour. ୨ । (ବି+ଧୂ ଧାତୁ ଣିଚ ଧବ ଧାତୁ+ଭାବ ଅନ ) କମ୍ପାଇବା— 2. Agitating; shaking.

**ବିଧବ ଯୋଗ**—ସଂ. ବି. ( ବିଧବ+ଯୋଗ )—୧ । ବୈଧବ୍ୟ ଯୋଗ, Bidhaba joga ସ୍ତ୍ରୀର ବିଧବା ହେବାର ଦୈବ ନିର୍ଦ୍ଦିଷ୍ଟ ଘଟନା— 1. The preordination of a woman becoming a widow. ୨ । ବୈଧବ୍ୟ—2. Widowhood.

**ବିଧବା**—ସଂ. ବି. ସ୍ତ୍ରୀ. ( ବହୁବ୍ରୀହି, ବି=ବିଗତ+ଧବ=ସ୍ୱାମୀ+ସ୍ତ୍ରୀ. Bidhabā ଆ )—ମୃତଭର୍ତ୍ତୃକା ସ୍ତ୍ରୀ; ରାଣ୍ଡ—A widow. ସଂ. ବିଣ. (ବହୁବ୍ରୀହି; ବି=ନାହିଁ+ଧବ=ବସ୍ତ୍ର+ସ୍ତ୍ରୀ. ଆ)—୧ । ବିବସ୍ତ୍ରା (ସ୍ତ୍ରୀ)—1. Clothless or naked (woman). ୨ । ମୃତ ଭର୍ତ୍ତୃକା (ସ୍ତ୍ରୀ)—2. (woman) Who has lost her husband.

**ବିଧବାଗାମୀ**—ସଂ. ବିଣ. ପୁଂ (ବିଧବା+ଗମ ଧାତୁ+କର୍ତ୍ତୃ ଇନ; ୧ମା ୧ବ)—ବିଧବା ସଙ୍ଗମକାରୀ ( ପୁରୁଷ )— Bidhabāgāmī (a male) Having sexual intercourse with a widow. (ବିଧବାଗମନ—ବି)

**ବିଧବା ବିବାହ**—ସଂ. ବି. (୬ଷ୍ଠୀ ତତ୍; ବିଧବା + ବିବାହ) — ମୃତଭର୍ତ୍ତୃକା
Bidhabā bibāha ନାରୀର ପୁନର୍ବିବାହ—Widow-marriage.
(ବିଧବା ବେଦନ—ଅନ୍ୟରୂପ)

**ବିଧର୍ମ**—ସଂ. ବି—ଆପଣାର ଧର୍ମ ଛଡ଼ା ଅନ୍ୟ ଧର୍ମ; ଧର୍ମାନ୍ତର; ଭିନ୍ନଧର୍ମ—
Bidharma A religion other than one's own.

**ବିଧର୍ମା**—ସଂ. ବିଣ. ( ବି+ଧର୍ମ=ବିଧର୍ମନ୍, ୧ମା. ୧ବ; ବହୁବ୍ରୀହି )—
Bidharmā ଭିନ୍ନ ଧର୍ମାବଲମ୍ବୀ—Professing a different religion.

**ବିଧର୍ମୀ**—ଦେ. ବିଣ ( ସଂ. ବିଧର୍ମା )—୧ । ଆପଣା ଧର୍ମ ଛଡ଼ା ଅନ୍ୟ ଧର୍ମ
Bidharmi ଅବଲମ୍ବନ କରିଥିବା (ବ୍ୟକ୍ତି); ଅନ୍ୟ ଧର୍ମାବଲମ୍ବୀ—
विधर्मी 1. ( a person ) Professing another religion.
୨ । ଯେ ଆପଣା ଧର୍ମ ତ୍ୟାଗ କରି ଧର୍ମାନ୍ତର ଗ୍ରହଣ କରେ—
2. Apostate. [ 'ଦ୍ର—ଧର୍ମାଦନିଚ୍ କେବଲାତ୍' ଏହି ସୂତ୍ର ଅନୁସାରେ 'ବିଧର୍ମା' ଶବ୍ଦ ସଂସ୍କୃତମୂଳକ, ତେଣୁ ବିଧର୍ମୀ ଶବ୍ଦ ଦେଶଜଶବ୍ଦରୂପେ ଗୃହୀତ ହେଲା । ]

**ବିଧା**—ସଂ. ବି ( ବି+ଧା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—୧ । ବିଧ
Bidhā ( ଦେଖ )—1. Bidha ( See ) ୨ । ଭଡ଼ା—
घूसी, कील 2. Hire ( Apte ), ୩ । ମୂଲ—3. Wages
मुक्का ( Apte ), ୪ । କର୍ମ; କାର୍ଯ୍ୟ—4. Act; action ( Apte ). ଦେ. ବି. ( ସଂ. ବଦ୍ଧ ମୁଷ୍ଟ୍ୟାଘାତ ) ମୁଷ୍ଟ୍ୟାଘାତ; ମୁଷ୍ଟି ପ୍ରହାର; ହାତକୁ ମୁଠା କରି ମୁଷ୍ଟିବଦ୍ଧ କରତଳର କନିଷ୍ଠାଙ୍ଗୁଳି ପାର୍ଶ୍ୱଦ୍ୱାରା କୌଣସି ବ୍ୟକ୍ତିକୁ କରାଯିବା ଆଘାତ—Fisticuff; a blow with the fist
[ ଉ—ପାଖକୁ ବଳାଅନ୍ତେ ଦେଖାଇଣ ବିଧା । ହେଲା ତାର ପ୍ରାଣପବନଯାକ ଲୁହା—କୃଷ୍ଣସିଂହ. ମହାଭାରତ. ବନ । ]
[ଦ୍ର—କରତଳକୁ ମୁଠା କରି କନିଷ୍ଠାଙ୍ଗୁଳି ଆଡ଼ର ପାର୍ଶ୍ୱଦ୍ୱାରା କରାଯିବା ଆଘାତକୁ ବିଧା ଓ ବୃଦ୍ଧାଙ୍ଗୁଳି ଆଡ଼ର ପାଖଦ୍ୱାରା ଆଘାତକୁ ମୁଥ ବା ମୁଖୀ ବୋଲାଯାଏ । ମୁଥ ବା ମୁଖୀ ଆକ୍ରାନ୍ତ ବ୍ୟକ୍ତିର ମୁଖରେ ବା ଗାଲରେ ବଜାଯାଏ । ମୁଠା କରାଯାଇଥିବା କରତଳଦ୍ୱାରା ଆଗକୁ ଭୁଷିବା ଆଘାତକୁ ଭୁଷା ବା ଠଣା ବୋଲାଯାଏ । ]

**ବିଧା ଉଞ୍ଚା(ଞ୍ଚେ, ଚ୍ଚେ)ଇବା**—ଦେ. କ୍ରି (ସଂ. ବଦ୍ଧମୁଷ୍ଟି + ଉତ୍ତୋଳନ )—
Bidhā uñchā(ñche, chche)ibā ବିଧା ମାରିବା ପାଇଁ ବଦ୍ଧ
कीलतोला; कील पाकाना ମୁଷ୍ଟିକୁ ଉତ୍ତୋଳନ କରିବା—To lift
मुक्का उठाना up or raise the closed fist for dealing fisticuffs.

**ବିଧା ଖାଇବା**—ଦେ. କ୍ରି – କୌଣସି ବ୍ୟକ୍ତିଦ୍ୱାରା ମୁଷ୍ଟ୍ୟାଘାତରେ
Bidhā khāibā ପ୍ରହାରିତ ହେବା—To be struck with fisticuffs
कील खाओया मुक्काखाना
( ବିଧା ପାଇବା—ଅନ୍ୟରୂପ )

**ବିଧା ଗୋଇଠା**—ଦେ. ବି ( ସହଚର )—ମୁଷ୍ଟ୍ୟାଘାତ ଓ ପଦାଘାତ—
Bidhā goiṭhā Fisticuffs and kicks
लाथी कील मुक्का लात

**ବିଧା ଚାପ(ପୁ, ପେ, ପୋ)ଡ଼ା**—ଦେ. ବି ( ସହଚର )—ମୁଷ୍ଟ୍ୟାଘାତ ଓ
Bidhā chāpa(pu, pe, po)ṛdā ବିସ୍ତାରିତ କରତଳଦ୍ୱାରା
चड़कील मुक्काथपड़ ଆଘାତ—Fisticuffs and slaps.
[ ବିଧା ଚାବ(ବୁ)ଡ଼ା—ଅନ୍ୟରୂପ ]

**ବିଧାତଃ**—ସଂ. ଅ ( ବିଧାତୃ ଶବ୍ଦର ସମ୍ବୋଧନ )—ହେ ବିଧାତା !—
Bidhātaḥ Oh God !; Oh Creator !.

**ବିଧାତବ୍ୟ**—ସଂ. ବିଣ ( ବି+ଧା ଧାତୁ+କର୍ମ. ତବ୍ୟ )—୧ । ବିଧାନ
Bidhātabya କରାଯିବା ଯୋଗ୍ୟ—1. Fit to be regulated or provided for. ୨ । କର୍ତ୍ତବ୍ୟ—2 Fit to be done.

**ବିଧାତା**—ସଂ. ବିଣ. ପୁଂ ( ବି+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ତୃ;
Bidhātā ବିଧାତୃ, ୧ମା. ୧ବ )—୧ । ନିର୍ମାତା—1. Building; making; creating.
( ବିଧାତ୍ରୀ—ସ୍ତ୍ରୀ ) ୨ । ଯେ ବିଧାନ କରେ; ନିୟାମକ; ବିଧାନକାରୀ—2. Regulating; making provision for. ୩ । ଦାତା—3. Giving; bestowing. [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଭାଗ୍ୟବିଧାତା । ]
ସଂ. ବି. ପୁଂ—୧ । ବିଧି; ବ୍ରହ୍ମା; ପୃଥିବୀର ସୃଷ୍ଟିକର୍ତ୍ତା—1. Brahmā, the Creator. ୨ । ଭଗବାନ୍; ଈଶ୍ୱର; ଯେ ପୃଥିବୀର ସମସ୍ତ ବିଷୟ ପରିଚାଳନା କରନ୍ତି—2. God; Providence. ୩ । ପ୍ରଜାପତି ( ଯେ ପୁରୁଷ ଓ ସ୍ତ୍ରୀଙ୍କୁ ବିବାହଦ୍ୱାରା ବାନ୍ଧନ୍ତି )—3. The God who brings about marriages. ୪ । ଭାଗ୍ୟ; କର୍ମ; କପାଳ—4. Luck; fortune. ୫ । ନିର୍ମାଣକାରୀ ବ୍ୟକ୍ତି—5 Maker; builder; creator. ୬ । ଦାତା ବ୍ୟକ୍ତି—6. Giver; bestower ( Apte ). ୭ । ବିଶ୍ୱକର୍ମା—7. The divine architect ( Apte ). ୭ । କାମଦେବ—7. Kāmadeba; the God of love ( Apte). ୯ । ସୁରା—9. Spirituous liquor ( Apte ).

**ବିଧାତାକୁ କହିବା**—ଦେ. କ୍ରି—କୌଣସି ଦୁର୍ଦ୍ଦଶା ପଡ଼ିଲେ ଭଗବାନଙ୍କ
Bidhātāku kahibā ଆଗେ ଫେରିଦ୍ ହେବା ବା ଭଗବାନଙ୍କୁ
विधाताके जानाना ଉକ୍ତ ଦୁର୍ଦ୍ଦଶାର କର୍ତ୍ତା ବୋଲି ପ୍ରକାଶ କରିବା—
To attribute a thing to one's fate.

**ବିଧାତା କୂଟ**—ଦେ. ବି—ମନୁଷ୍ୟର ଅବୋଧ୍ୟ ଦୈବୀ ଘଟଣା—
Bidhātā kūṭa A providential event which is an enigma to man

**ବିଧାତା ଛାଡ଼ିବା**—ଦେ. ବି—କୌଣସି ବ୍ୟକ୍ତିକୁ ଦୁର୍ଦ୍ଦଶା ଘୋଟିବା; ବିଧି
Bidhātā chhāṛdibā ବାମ ହେବା; କର୍ମ ବାମ ହେବା;
विधि वाम हओया ଦୁର୍ଭାଗ୍ୟ ଘଟିବା—The state of God
विधाता वाक होना being cruel to a person; the happening of misfortune to a person.
ବିଧାତା ଅବଳ ହେବା,
ବିଧାତା ବାମ ହେବା,
ବିଧାତା ପ୍ରତିକୂଳ ହେବା } ଅନ୍ୟରୂପ

**ବିଧାତାଦ୍ରି**—ଦେ. ବି—ଗନ୍ଧମାଦନ ପର୍ବତ—The Gandhamādana
Bidhātādri mountain. [ଉ—ବିଧାତାଦ୍ରି ଶୃଙ୍ଗ ସ୍ଥାନେ, ଥୋଇ ଯାଇଁ ହନୁମାନେ, ସୈନ୍ୟ ପେଷୁଁ ଲଙ୍ଘିଲେ ସେ ଧ୍ୱଂସୀ ସେ—ଭଞ୍ଜ. ବୈଦେହୀଶବିଳାସ । ]

**ବିଧାତା ପୁରୁଷ**—ଦେ. ବି ( ସଂ. ବିଧାତୃ ପୁରୁଷ )—ସୃଷ୍ଟିକାର୍ଯ୍ୟ ନିୟାମକ
Bidhātā purusha ନିୟାମକ ଭଗବାନ୍—God; the sole
विधातापुरुष **बिधातापुरुख** regulator of the affairs of the world.

**ବିଧାତା ଲି(ଲେ)ଖନ**—ଦେ. ବି ( ସଂ. ବିଧାତୃ-ଲିଖନ )—ମନୁଷ୍ୟର
Bidhātā li(le)khana ଜୀବନରେ ଯାହା ଯାହା ଘଟିବ ବୋଲି
विधाता लिखन ମନୁଷ୍ୟର ଜନ୍ମ ପୂର୍ବରୁ ବିଧାତା କପାଳରେ ଲେଖି
**बिधाताका लेखा** ଥାଆନ୍ତି—An event which has been preordained by God and noted on the brow of a person before he is born.

**ବିଧାନ**—ସଂ. ବି ( ବି+ଧା ଧାତୁ+ଭାବ. ଅନ )—୧ । ଶାସ୍ତ୍ରବିହିତ
Bidhāna ନିୟମ—1. A rule laid down in the scriptures. ୨ । ବିଧି; ବ୍ୟବସ୍ଥା—2. Prescription; ordinance; precept. ୩ । ରୀତି—3. Custom. ୪ । ନିୟମ—4. Rule. ୫ । ବିଧିବଦ୍ଧ ନିୟମ—5. Codified rules. ୬ । ( +କରଣ. ଅନ) ଉପାୟ—6. Means; expedient; contrivance. ୭ । ନିର୍ମାଣ; ସର୍ଜନ—7. Building; making, creating. ୮ । ପ୍ରେରଣ—8. Sending out. ୯ । କରଣ; ସମ୍ପାଦନ—9. Accomplishment; doing; performing. ୧୦ । ପଦ୍ଧତି—10 Method; procedure; mode. ୧୧ । ବନ୍ଦୋବସ୍ତ; ସଂସ୍ଥାନ—11. Arrangement; disposition. ୧୨ । (+କର୍ମ. ଅନ)ଗଜଗ୍ରାସ—12. An elephant's food. ୧୩ । ପୂଜା; ଅର୍ଚ୍ଚନା—13. Worship; adoration. ୧୪ । ଶତ୍ରୁତାଚରଣ—14. Enmity; inimical conduct. ୧୫ । ଗ୍ରହଣ—15. Acceptance. ୧୬ । ଧନ; ସମ୍ପତ୍ତି—16 Wealth; riches. ୧୭ । ଅନୁଭବ—17. Experience. ୧୮ । ଉପାର୍ଜ୍ଜନ—18. Earning; acquisition; gaining. ୧୯ । ଜନନ—20. Giving birth to; procreation. ୨୦ । ଆଜ୍ଞାକରଣ—20. Ordering. ୨୧ । ବ୍ୟବସ୍ଥା—21. Management. ୨୨ । ପ୍ରୟୋଗ—22. Application; employment ୨୩ । ଶାସ୍ତ୍ର ବିହିତ କର୍ମକରଣ—23. Performance of prescribed acts or rites (Apte) ୨୪ । ଶାସ୍ତ୍ର ବିହିତ କର୍ମ ବା ଅନୁଷ୍ଠାନ—24. Rite; ceremony; ritual. ୨୫ । ପ୍ରାପ୍ତି—25. Obtaining. ୨୬ । ଧାତୁ ବା ଶବ୍ଦାଦିରେ ପ୍ରତ୍ୟୟାଦିର ଯୋଗକରଣ—26. Affixing; or prefixing (Apte.) ୨୭ । ହସ୍ତୀଙ୍କୁ ମତ୍ତ କରିବା ପାଇଁ ଦିଆ ଯିବା ଖାଦ୍ୟ—27. The food given to elephants to make them intoxicated (Apte.) ୨୮ । ଦୁଃଖ; ବ୍ୟଥା—28. Pain; agony; (Apte). ୨୯ । ଶତ୍ରୁତାଚରଣ—29. An act of hostility (Apte). ୩୦ । କର୍ମ ପଦ୍ଧତି—3. Procedure. ଦେ. ଅ—ପରି; ସଦୃଶ—Like. [ଉ—କ୍ରୋଧେ କ ସ୍ଫୁରଇ ବଚନ, ନ କାନ୍ଦ କାନ୍ଦିଲ ବିଧାନ । ଭୂପତି. ପ୍ରେମ ପଞ୍ଚାମୃତ ।]

**ବିଧାନକ**—ଦେ. ବିଣ—(ବିଧାନ+କୃ ଧାତୁ+କର୍ତ୍ତୃ. ଅ)—ବିଧାନକାରୀ;
Bidhānaka ସଂଘଟନକାରୀ; ଉଦ୍ଧାୟକ—Bringing about; dispensing; causing; producing. [ଉ—ବିଧାନକ, ବଳ ଯେବେ ତାଙ୍କ କାରଣେ କାରଣେ । ଭଞ୍ଜ. ବୈଦେହୀଶବିଳାସ । ସଂ. ବି—(ବିଧାନ+କ)—ଦୁଃଖ Pain; agony; distress (Apte).

**ବିଧାନଜ୍ଞ**—ସଂ. ବିଣ. ପୁଂ—(ବିଧାନ+ଜ୍ଞା ଧାତୁ+କର୍ତ୍ତୃ. ଅ)—ବିଧିଜ୍ଞ;
Bidhānajña ନିୟମାଭିଜ୍ଞ—Well versed in the rules
(ବିଧାନଜ୍ଞା—ସ୍ତ୍ରୀ) or procedure; acquainted with law.
(ବିଧାନବିଦ୍—ଅନ୍ୟରୂପ)

**ବିଧାନ ଶାସ୍ତ୍ର**—ସଂ. ବି—(ଆଧୁନିକ)—୧ । ଆଇନ୍; ବ୍ୟବସ୍ଥା ଶାସ୍ତ୍ର—
Bidhāna śāstra 1. Law. ୨ । ନୀତିଶାସ୍ତ୍ର—2. Ethics; the science of morals.

**ବିଧାନୀ**—ଦେ. ବିଣ—(ସଂ. ବିଧାୟକ)—ଯେ ବିଧାନ କରେ; ବିଧାୟକ-
Bidhānī Doing; practising. [ ଉ—କେହି ଗଲେ ସନ୍ନିଧି ଗୃହ ପାଶେ, ବିଧାନୀ ସେ ନୋହିଲେ ପରିହାସେ । ଭଞ୍ଜ. ବୈଦେହୀଶବିଳାସ ।]

**ବିଧା ବସିବା**—ଦେ. ବି—ବିଧା ମାଡ଼ ହେବା; ବିଧା ବାଜିବା—
Bidhā basibā The dealing of some
कौलबसा **मुक्का जमना** fisticuffs on a person.
(ବିଧା ବାଜିବା—ଅନ୍ୟରୂପ) (ବିଧା ବସା[ସେ]ଇବା—କ୍ରିୟାରୂପ)

**ବିଧାବିଧି ହେବା**—ଦେ. ବି—ଅନ୍ୟୋନ୍ୟରେ ମୁଷ୍ଟ୍ୟାଘାତ କରିବା—
Bidhā bidhi hebā The dealing of fisticuffs to
कौल मारामारि हओया **मुक्कामुक्की होना** each other.
(ବିଧା ମରା ମରି ହେବା—ଅନ୍ୟରୂପ)

**ବିଧା ମାଡ଼**—ଦେ. ବି—ମୁଷ୍ଟ୍ୟାଘାତ—Blows with the fisti-
Bidhā mārda ঘুসীর মার **मुक्काकी मार** fisticuffs.

**ବିଧା ମାରିବା**—ଦେ. କ୍ରି—ମୁଷ୍ଟ୍ୟାଘାତ କରିବା—To deal fisti-
Bidhā māribā ঘুসী মারা **मुक्का मारना** cuffs

ବିଧା ଦେବା, ବିଧାବଜା (ଜେ)ଇବା,
ବିଧା ପକା(କେ)ଇବା, ବିଧା ଲଗା(ଗେ)ଇବା । }—ଅନ୍ୟରୂପ
ବିଧା ବସା(ସେ)ଇବା

**ବିଧାୟକ**—ସଂ. ବିଣ. ପୁଂ—(ବି+ଧା ଧାତୁ+କର୍ତ୍ତୃ. ଅକ)—୧ | Bidhāyaka ନିୟାମକ—1. Controlling. ୨ | ବ୍ୟବସ୍ଥାପକ; (ବିଧାୟିକା—ସ୍ତ୍ରୀ) ବ୍ୟବସ୍ଥାକାରୀ—2. Laying down; prescribing; legislative; arranging. ୩ | ସଂଘଟନକାରୀ—3. Bringing about; dispensing. ୪ | ଉତ୍ପାଦକ—4. Causing; producing. ୫ | ଅର୍ପଣକାରୀ—5. Consigning; delivering to the care of; entrusting.

**ବିଧାୟୀ**—ସଂ. ବିଣ. ପୁଂ—(ବି+ଧା ଧାତୁ+ଇନ୍; ୧ମା. ୧ବ,)—Bidhāyī ବିଧାୟକ (ଦେଖ)—Bidhāyaka (See) (ବିଧାୟିନୀ—ସ୍ତ୍ରୀ)

**ବିଧାରା**—ଦେ. ବି—୧ | ଅନିୟମ—1. Irregularity. ୨ | ଅସତ୍ Bidhārā ଆଚରଣ—2. Bad or improper conduct. বেধারা ଦେ. ବିଣ-- ୧ | ଅନିୟମିତ—1. Irregular; un- बेधारा methodical. ୨ | ବେଆଡ଼ା—2. Improper. ୩ | ଦୁର୍ନୀତିକ—3. Immoral.

**ବିଧି**—ସ. ବି. ( ବି+ଧା ଧାତୁ+କର୍ତ୍ତୃ ଇ )—୧ | ପ୍ରଜାପତି; ବ୍ରହ୍ମା; Bidhi ବିଧାତା—1. Brahmā, the Creator. ୨ | ବିଷ୍ଣୁ—2 Bishṇu. ୩ | ଭଗବାନ୍; ଈଶ୍ୱର—3. God; Providence. ୪ | ଦୈବ; ଭାଗ୍ୟ—4. Fortune; luck; fate. ୫ | ( +ଭାବ. ଇ ) ପଦ୍ଧତି; କ୍ରମ—5. Step; procedure; style. ୬ | ନିୟମ—6. Rule; regulation. ୭ | ନିୟୋଗ—7. Precept; command; appointment. ୮ | ଅନୁଷ୍ଠାନ-8. Institution; act; deed. ୯ | ପ୍ରଥା; ରୀତି—9. Custom; practice. ୧୦ | ଆଚାର—10. Usage. ୧୧ | (+କରଣ ଇ) ଶାସ୍ତ୍ରବିଧାନ—11. Religious precept. ୧୨ | ପ୍ରକାର—12 Sort; kind; mode; manner. ୧୩ | ବିଧାନ—13. Statute; formula. ୧୪ | ଆଇନ୍—14. Law; legistation. ୧୫ | ଆଚରଣ—15. Conduct. ୧୬ | ଉପାୟ; ପ୍ରଣାଳୀ—16. Means; method; ways. ୧୭ | ଯଜ୍ଞ—17. Vedic sacrifice. ୧୮ | ଲକ୍ଷଣ—18. Mark; sign; badge. ୧୯ | ସୂତ୍ର—19. A clue. ୨୦ | ସ୍ୱତଃସିଦ୍ଧ ବଚନ—20. Axiom. [ଦ୍ର—କୌଣସି କାର୍ଯ୍ୟ କରିବା ନିମନ୍ତେ ଆଦେଶକୁ ବା ନିୟମକୁ 'ବିଧି' ଏବଂ କୌଣସି କାର୍ଯ୍ୟ କରିବାକୁ ମନା କରୁଥିବା ନିୟମକୁ 'ନିଷେଧ' ବୋଲି ଯାଏ | ] ୨୧ | (+କର୍ମ. ଇ) ଅବସ୍ଥା—21. Condition ୨୨ | ବ୍ୟାପାର—22, Incident, ୨୩ | ଗଜଖାଦ୍ୟ—23, The food of elephants (Apte) ୨୪ | ସମୟ—24, Time (Apte), ୨୫ | ବୈଦ୍ୟ—25, Physician (Apte), ଦେ. ବି—୧ | ଶପଥ—1. Oath. (ଉ—ବିଧି କରିଛି ନଯିବା ଗ୍ରାମ ବନ୍ଧୁ କନ୍ୟାଯିବ ନାହିଁ ଚିତ୍ତ ଆନେ ଗୋ | ଭଞ୍ଜ, ବୈଦେହୀଶ ବିଳାସ |) ୨ | ନିର୍ଦ୍ଦିଷ୍ଟ ପଦ୍ଧତି ବା କ୍ରମ ଅନୁସାରେ କରାଯିବା ବ୍ରତ ଆଦି—2, Any vow observed according to a fixed practice or procedure. ୩ | ରାଜା ଓ ଦେବତାଙ୍କର ବିଭିନ୍ନ ନୈମିତ୍ତିକ ନୀତି ବା କ୍ରିୟାକଳାପ—3, The different ceremonial rites observed in the case of kings and Deities.

**ବିଧି କର୍ମ**—ପ୍ରାଦେ• ( ଗଡ଼ଜାତ ) ବି ( କଟକୀଆ )—ବିଧିମତ କାର୍ଯ୍ୟ Bidhi karma ଆଇନ୍ ସଙ୍ଗତ କାର୍ଯ୍ୟ—Legal steps or (ବିଧି କାର୍ଯ୍ୟ—ଅନ୍ୟରୂପ) actions, (ଯଥା—ଏ ନଥି ବିଧିକର୍ମ ସକାଶେ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟକୁ ପଠାଗଲା |)

**ବିଧିଜ୍ଞ**—ସ. ବିଣ• ପୁଂ, (ବିଧି+ଜ୍ଞା ଧାତୁ+କର୍ତ୍ତୃ. ଅ)—୧ | ଯେ ବିଧାନ Bidhijnā ମାନ ଜାଣେ—1, Versed in rules or pro- (ବିଧିଜ୍ଞା—ସ୍ତ୍ରୀ) cedure or rituals. ୨ | ବିଧାନ ଶାସ୍ତ୍ରଜ୍ଞ; ଯେ ଆଇନ ଜାଣେ; ବ୍ୟବହାର ଶାସ୍ତ୍ରଜ୍ଞ—2, Versed in law.

**ବିଧିତ୍ସା**—ସ. ବି. ( ବି+ଧା ଧାତୁ+ଇଚ୍ଛାର୍ଥରେ ସନ୍+ଭାବ ଅ+ଆ) Bidhit-sā —ବିଧାନ କରିବାର ଇଚ୍ଛା; କରଣେଚ୍ଛା; ଚିକୀର୍ଷା—A wish to do something; a desire to (ବିଧିତ୍ସା—ଅନ୍ୟରୂପ) provide for.

**ବିଧିତ୍ସିତ**—ସ. ବିଣ—(ବି+ଧା ଧାତୁ, ଇଚ୍ଛାର୍ଥରେ ସନ୍+କର୍ମ. ତ)-Bidhit-sita ଯାହା କରିବାକୁ କେହି ଇଚ୍ଛା କରୁ ଥାଏ—Intended to be done. ସ• ବି—ଉଦ୍ଦେଶ୍ୟ—(ବିଧିତ୍ସିତ—ଅନ୍ୟରୂପ) Design; intention (Apte).

**ବିଧିତ୍ସୁ**—ସ. ବିଣ—(ବି+ଧା ଧାତୁ, ଇଚ୍ଛାର୍ଥରେ. ସନ୍+କର୍ତ୍ତୃ. ଉ)-Bidhit-su ବିଧାନ କରିବାକୁ ଇଚ୍ଛୁକ—Desirous of doing (ବିଧିତ୍ସୁ—ଅନ୍ୟରୂପ) a thing; intending to provide for

**ବିଧିଦର୍ଶୀ**—ସ. ବିଣ. ପୁଂ—(ବିଧି+ଦୃଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. Bidhidarsī ୧ବ)—ବିଧିଜ୍ଞ—Versed in rules or law. (ବିଧିଦର୍ଶିନୀ—ସ୍ତ୍ରୀ)

**ବିଧିଦ୍ୱୈଧ**—ସ. ବି—(୬ଷ୍ଠୀ ତତ୍; ବିଧି+ଦ୍ୱୈଧ)—ନିୟମ ବା ବିଧାନ Bidhi dwaidha ମାନଙ୍କ ମଧ୍ୟରେ ବିଭିନ୍ନତା—Diversity of (ବିଧିବିରୋଧ—ଅନ୍ୟରୂପ) rules; variance of precept.

**ବିଧିଦ୍ରଷ୍ଟା**—ସ.ବି ଓ ବିଣ.ପୁଂ—(୬ଷ୍ଠୀ ତତ୍; ବିଧି+ଦ୍ରଷ୍ଟା)—୧ | ଯେଉଁ Bidhidrashṭā ବ୍ୟକ୍ତି ନିୟମ ଦେଖାଏ—1. One who points out the law or the rules.
ବିଧିଦର୍ଶକ, ବିଧିଦେଶକ }—ଅନ୍ୟରୂପ
୨ | ପୁରୋହିତ—1. A priest who directs the performance of ceremonials. ୩ | ଗୁରୁ—(ବିଧିଦ୍ରଷ୍ଟ୍ରୀ—ସ୍ତ୍ରୀ) 3. Preceptor; teacher (Apte).

ବିଧି ନିର୍ଦ୍ଦିଷ୍ଟ—ସଂ. ବିଣ—(୭ମୀ ତତ୍; ବିଧି+ନିର୍ଦ୍ଦିଷ୍ଟ)—ବିଧିବିହିତ
Bidhi nirddishṭa (ଦେଖ)—Bidhibihita (See)
(ବିଧି ନିର୍ଦ୍ଦେଶ—ବି)

ବିଧିନିର୍ଦ୍ଦେଶକ—ସଂ. ବିଣ ଓ ବି. ପୁଂ—୧ । ବ୍ୟବସ୍ଥାପକ—1.Legisla-
Bidhi nirddeśaka ting. ୨ । ବିଧାନୋପଦେଶକ—2.
(ବିଧିନିର୍ଦ୍ଦେଶିକା—ସ୍ତ୍ରୀ) Advising about the procedure.

ବିଧି ନିଷେଧ—ସଂ. ବି—(ବିପରୀତାର୍ଥ ସହଚର)—କୌଣସି କାର୍ଯ୍ୟ
Bidhi nishedha କରିବା ପାଇଁ ନିୟମ ଓ କୌଣସି
କାର୍ଯ୍ୟ ନ କରିବା ପାଇଁ ନିୟମ—Positive pre-
cepts and prohibitive rules. [ଦ୍ର—ସର୍ବଦା
ସତ୍ୟ କହିବ—ବିଧି; ମିଥ୍ୟା କହିବ ନାହିଁ—ନିଷେଧ ।]

ବିଧିପୂର୍ବ—ସଂ. କ୍ରି. ବିଣ—( ବିଧି+ପୂର୍ବ; ବହୁବ୍ରୀହି ) ଯଥାବିଧି; ନିୟମ
Bidhi pūrba ଅନୁସାରେ—According to law or
established practice. [ ଉ—ବିଧିପୂର୍ବ କରି
ଋଷି ସମସ୍ତ ଚଳିତ, ଭାଷି, ତପୀତ ଭୁଇଁର ଯାଇ ଲାଗେ
କୂଳରେ ।—ଭଞ୍ଜ. ବୈଦେହୀଶବିଳାସ ।]

ବିଧିପୂର୍ବକ—ସଂ. ବିଣ—( ବହୁବ୍ରୀହି; ବିଧି+ପୂର୍ବ; କ ଆଗମ )—
Bidhi pūrbaka ନିୟମାନୁଯାୟୀ—Customary; confor-
ming to rules or procedure laid down.
କ୍ରି. ବିଣ—ନିୟମ ଅନୁସାରେ—According to
law or rule.

ବିଧି ପ୍ରବର୍ତ୍ତକ—ସଂ. ବିଣ. ପୁଂ—(ଉପପଦ ତତ୍; ବିଧି+ପ୍ରବର୍ତ୍ତକ)—
Bidhi prabarttaka ଯେ କୌଣସି ବିଧିକୁ ପ୍ରଥମେ ଚଳାଏ—
(ବିଧିପ୍ରବର୍ତ୍ତିକା—ସ୍ତ୍ରୀ) Promulgating a law or rule.
(ବିଧିପ୍ରବର୍ତ୍ତନ—ବି)

ବିଧି ପ୍ରୟୋଗ—ସଂ. ବି—( ୭ମୀ ତତ୍; ବିଧି+ପ୍ରୟୋଗ)—ନିୟମକୁ
Bdhi prayoga କାର୍ଯ୍ୟରେ ଖଟାଇବା—Application of a
rule.

ବିଧି ବଢ଼ା(ଢେ଼)ଇବା—ଦେ. କ୍ରି—( ରାଜାଙ୍କ ପ୍ରତି ପ୍ରଯୋଜ୍ୟ )—
Bidhi bar̤dhā(r̤dhe)ibā କୌଣସି ଦୈନିକ କାର୍ଯ୍ୟ
(ବିଧି ସାରିବା—ଅନ୍ୟରୂପ) ସମାଧା କରିବା—To finish one's
দৌনিক কাজ শেষ করা नितकरमसेनिबटना daily act.

ବିଧି ବଢ଼ିବା—ଦେ. ବି.—ରାଜାଙ୍କର କୌଣସି 'ବିଧିର' ସମାପନ—
Bidhi bar̤dhibā The completion of a daily act
দৌনিক কাজ শেষ করা नितकरम निपटना of a Raja.

ବିଧିବତ୍—ସଂ. ଅ.—( ବିଧି+ବତ୍ )—ଯଥାବିଧି; ବିଧିପୂର୍ବକ; ଶାସ୍ତ୍ରବିଧି
Bidhibat ବା ଆଇନ୍ ଅନୁସାରେ—According to rules.

ବିଧିବଦ୍ଧ—ସଂ. ବିଣ ( ୭ମୀ ତତ୍; ବିଧି+ବଦ୍ଧ )—୧ । ବ୍ୟବସ୍ଥାପିତ—
Bidhibaddha 1. Legalised; codified; enacted.
(ବିଧିନିବଦ୍ଧ—ଅନ୍ୟରୂପ)
୨ । ନିୟମବଦ୍ଧ—2. Regulated. ୩ । ଶାସ୍ତ୍ରଦ୍ୱାରା
ନିରୂପିତ—3. Regulated by scriptural rules.

ବିଧିବନ୍ଧନ—ସଂ. ବି—୧ । (୬ଷ୍ଠୀ ତତ୍)—ବିଧାନମାନଙ୍କ ରଚନା—
Bidhi bandhana Legislation; laying down rules.
୨ । ( ୭ମୀ ତତ୍ ) ନିୟମମାନଙ୍କଦ୍ୱାରା ନିୟନ୍ତ୍ରଣ—
2. Regulation; controlling by rules.

ବିଧି ବନିବା—ଦେ. ବି—ଦୁଇ ବା ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ମତର
Bidhi banibā ବା ମନର ମେଳ ହେବା—Agreement
মনেরমীল হওয়া between two or more persons.
दीलका मेल होना [ ଯଥା—ତାଙ୍କର ମୋର ବିଧି ବନୁ ନାହିଁ । ]

ବିଧି ବାମ ହେବା—ଦେ. ବି—(କୌଣସି ବ୍ୟକ୍ତିର) ଭାଗ୍ୟ ମନ୍ଦହେବା;
Bidhi bāma hebā ଦୁର୍ଭାଗ୍ୟ ଘଟିବା—The happening
(ବିଧି ପ୍ରତିକୂଳ ହେବା—ଅନ୍ୟରୂପ) of misfortune; the
বিধিবাম হওয়া Fates being averse to a person.
बिधिबाम होना

ବିଧି ବିଡ଼ମ୍ବନା—ସଂ. ବି. (୬ଷ୍ଠୀ ତତ୍; ବିଧି+ବିଡ଼ମ୍ବନା)—୧ । ଅଦୃଷ୍ଟର
Bidhi bir̤dambanā ବଞ୍ଚନା ବା ପ୍ରତାରଣା; ବିଧାତାର ଛଳନା
ବିଧିବିପାକ, ବିଧିବିପର୍ଯ୍ୟୟ, ବିଧିନିଗ୍ରହ } ଅନ୍ୟରୂପ 1. Tantalisation by Fate,
irony of fate. ୨ । ଦୁର୍ଭାଗ୍ୟ—
2. A bad turn of one's fate; misfortune

ବିଧି ବିଡ଼ମ୍ବିତ—ସଂ. ବିଣ ( ୭ମୀ ତତ୍, ବିଧି+ବିଡ଼ମ୍ବିତ )—୧ ।
Bidhi bir̤dambita ଅଦୃଷ୍ଟଦ୍ୱାରା ପ୍ରତାରିତ—1. Tantalised,
by Fate. ୨ । ଦୁର୍ଦ୍ଦଶାଗ୍ରସ୍ତ—2. Overpowered
(ବିଧିନିଗୃହୀତ—ଅନ୍ୟରୂପ) with misfortune.

ବିଧିବିଦ୍—ସଂ. ବିଣ. ପୁଂ ( ବିଧି+ବିଦ୍ ଧାତୁ+କର୍ତ୍ତୃ କ୍ୱିପ୍ )—ବିଧିଜ୍ଞ
Bidhibid ( ଦେଖ )—Bidhijña ( See )
(ବିଧିବେତ୍ତା—ଅନ୍ୟରୂପ)

ବିଧି ବିଧାନ—ସଂ. ବି (୬ଷ୍ଠୀ ତତ୍)—୧ । ବିଧିର ଲିଖନ; ଈଶ୍ୱରାଦେଶ—
Bidhi bidhāna 1. Providence; the decree of Fate.
( ଉ—ବିଧିବିଧାନ ପୁଣ୍ୟମୟ, ଗାଅ ହେ ସେହି ବିଧି ଜୟ ।
ମଧୁସୂଦନ. ଛନ୍ଦମାଳା ।) ୨ । (ଏକାର୍ଥକ ସହଚର) ବିଧି ବା
ନିୟମ—2. Rules and regulations. ୩ । ନିୟତି,
ଭାଗ୍ୟ—Fate. ୪ । ବିଧିବନ୍ଧନ (ଦେଖ)—
4. Bidhibandhana (See).

ବିଧିବିରୁଦ୍ଧ—ସଂ. ବିଣ—ନିୟମର ବିରୁଦ୍ଧ ବା ପ୍ରତିକୂଳ—
Bidhibiruddha Contrary to law of rules.
(ବିଧି ବିରୋଧ; ବିଧି ବିରୁଦ୍ଧତା—ବି)

ବିଧିବିହିତ—ସଂ. ବିଣ ( ୭ମୀ ତତ୍ )—୧ । ଯଥାରୀତି, ଯଥାନିୟମ—
Bidhibihita 1. According to precepts or rules.
(ବିଧିମତ—ଅନ୍ୟରୂପ) ୨ । ନିୟମାନୁସାରେ—2. Prescribed by
rules. ୩ । ଅଦୃଷ୍ଟଲିଖିତ—3. Preordained by
fate; providential.

ବିଧିବୋଧିତ—ସଂ. ବିଣ (୭ମୀ ତତ୍, ବିଧି+ବୋଧିତ)—୧ । ଶାସ୍ତ୍ରସମ୍ମତ
Bidhibodhita —1. Prescribed by rules. ୨ ।
ବିଧିସଙ୍ଗତ, ବିଧିସମ୍ମତ, ବିଧିମତ } ଅନ୍ୟରୂପ ଆଇନ୍‌ସଙ୍ଗତ; ବିଧାନାନୁଯାୟୀ—2. Legal;
conforming to law.

**ବିଧିମତ(ତେ)**—ଦେ. କ୍ରି. ବିଣ—ଧର୍ମାଧାରମତେ; ନିୟମିତରୂପେ—
Bidhimata(te) 1. Regularly; as usual. ୨ । ଆଇନ ଅନୁସାରେ—2. According to law; legally.

**ବିଧିମନ୍ତ(ନ୍ତେ)**—ଦେ. କ୍ରି. ବିଣ—ବିଧିମତ ( ଦେଖ )—Bidhimata
Bidhimanta(nte) ( See ) [ ଉ—ବିଧିମନ୍ତ କର ଶଙ୍କୁନ୍ତଳାର ବିଧିମନ୍ତ କର, ଗାନ୍ଧର୍ବ ବିବାହରେ ଯଉଲେ ନୃପବର । କୃଷ୍ଣସିଂହ. ମହାଭାରତ ଆଦି । ] ଦେ. ବିଣ—ବିଧିଜ୍ଞ ( ଦେଖ ) Bidhijña (See).

**ବିଧିରେ**—ଦେ. ଅ—ଫଳତଃ; କାର୍ଯ୍ୟତଃ—Virtually; in the
Bidhire end; actually. [ଉ—ବିଧିରେ ଅସୁର ବିଧୀରେ କାଳେଇ ସୁର କଲେ ପୁରନ୍ଦର । ଭଞ୍ଜ. ବୈଦେହୀଶବିଳାସ । ]

**ବିଧି ଲ(ଲେ)ଖନ**—ସଂ. ବି (୬ଷ୍ଠୀ ତତ୍; ବିଧି+ଲଖନ)—କର୍ମଲଖନ,
Bidhi li(le)khana ଅଦୃଷ୍ଟ; ଭାଗ୍ୟ; ଯାହା ଘଟିବ ବୋଲି [ବିଧିଲିପି—ଅନ୍ୟରୂପ] କପାଳରେ ଲେଖାଥାଏ—The decree of Fate; Providence; events preordained by God.

**ବିଧିଶାସ୍ତ୍ର**—ସଂ. ବି—୧ । ସ୍ମୃତିଶାସ୍ତ୍ର; ଧର୍ମଶାସ୍ତ୍ର—1. Ethical
Bidhiśāstra codes. ୨ । ବ୍ୟବହାର ଶାସ୍ତ୍ର; ଆଇନ—2. The science of law.

**ବିଧି ସଙ୍କଳନ**—ସଂ. ବି—(୬ଷ୍ଠୀ ତତ୍)—ସୂତ୍ରାଦି ନିୟମର ସଂଗ୍ରହକରଣ—
Bidhi saṁkalana Compilation of rules.

**ବିଧିହୀନ**—ସଂ. ବିଣ (୩ୟା ତତ୍; ବିଧି+ହୀନ)—୧ । ଶୃଙ୍ଖଳାବିହୀନ;
Bidhihīna ଅନିୟମିତ—1. Unregulated; unmethodical. ୨ । ଅନିୟମିତ—2. Irregular. ୩ । ଅଶାସ୍ତ୍ରୀୟ—3. Against the rules of the Scriptures.

**ବିଧୀର**—ଦେ. ବି—ମୂର୍ଖଲୋକ; ନିର୍ବୋଧ ବ୍ୟକ୍ତି—An ignorant
Bidhīra person. [ ଉ—ବୈଦେହୀ ଦାସୀ ଏ ବିଧୀର ଲୋକ ହୋଇବ; ବିଧୀରେ ଇନ୍ଦ୍ର ପ୍ରଶଂସା ଭୂମେ ପାଇବ—ଭଞ୍ଜ. ବୈଦେହୀଶବିଳାସ ।]

**ବିଧୀରେ**—ଦେ. କ୍ରି. ବିଣ—ମୂର୍ଖଭାବଶତଃ—Out of ignorance.
Bidhīre [ଉ—ବିଧିରେ ଅସୁର, ବିଧୀରେ ସୁର କଲେ ପୁରନ୍ଦର । ଭଞ୍ଜ. ବୈଦେହୀଶବିଳାସ ।]

**ବିଧୁ**—ସଂ. ବି (ବି+ଧେ ଧାତୁ=ପାନ କରିବା+କର୍ତ୍ତୃ. ଉ)—୧ । ଚନ୍ଦ୍ର
Bidhu —1. The moon. ୨ କର୍ପୂର—2. Camphor. ୩ । ବିଧାତା; ବ୍ରହ୍ମା—3. Brahmā; the creator. ୪ । ବିଷ୍ଣୁ—4. Bishṇu. ୫ । ବାୟୁ—5. Air. ୬ । ଜଳ-6. Water. ୭ । (ବ୍ୟଧ ଧାତୁ=ତାଡ଼ନା କରିବା+କର୍ତ୍ତୃ. ଉ) ରାହୁ—7. The ascending node; the dragon's head. ୮ । କେତୁ—8. The dragon's tail; the descending node. ୯ । ରାକ୍ଷସ—9. Demon. ୧୦ । ବାଣ—10. A shaft; an arrow. ୧୧ । (+କରଣ. ଉ) ଯୁଦ୍ଧ—11. War. ୧୨ । ଆୟୁଧ—12. Weapon. ୧୩ । ଜଳସ୍ନାନ—13. A bath by immersion.

**ବିଧୁକ୍ଷୟ**—ସଂ. ବି—(୬ଷ୍ଠୀ ତତ୍; ବିଧୁ+କ୍ଷୟ)—୧ । (କୃଷ୍ଣପକ୍ଷରେ)
Bidhukshaya ଚନ୍ଦ୍ରଙ୍କର ହ୍ରାସ—1. The moon's wane; the waning of the moon. ୨ । ( ଦିବସରେ ବା ଗ୍ରହଣ ସମୟରେ ବା ଅମାବାସ୍ୟାରେ) ଚନ୍ଦ୍ରଙ୍କର ଅଦର୍ଶନ ବା ଲୋପ—2. The disappearance of the moon (during daytime or an eclipse or on the new moon).

**ବିଧୁଚୂଡ଼**—ସଂ. ବି (ବହୁବ୍ରୀହି, ବିଧୁ+ଚୂଡ଼ା)—ଚନ୍ଦ୍ରଶେଖର; ମହାଦେବ;
Bidhuchūrda ଶିବ—Siba. [ଉ—ବିଧୁଚୂଡ଼ ଗଉରୀ, ବିଘ୍ନହର ଗ୍ରାମର୍ଣୀତା ଧର । ଭଞ୍ଜ, ବୈଦେହୀଶବିଳାସ । ]

**ବିଧୁ(ଧୂ)ତ**—ସଂ. ବିଣ ( ବି+ଧୁ ଧାତୁ=କମ୍ପିବା+କର୍ମ. ତ )—
Bidhu(dhū)ta ୧ । କମ୍ପିତ—1. Shaking; trembling. ୨ । ବିସର୍ଜିତ; ତ୍ୟକ୍ତ—2. Abandoned; relinquished. ୩ । କ୍ଷାଳିତ—3. Washed. ୪ । ଅପସାରିତ—4. Removed. ୫ । ନିଷ୍କାଶିତ—5. Taken out; tossed; extracted. ୬ । ଅସ୍ଥିର—6. Unsteady (Apte).

**ବିଧୁ(ଧୂ)ତ କଲ୍ମଷ**—ସଂ. ବିଣ. ପୁଂ—(ବହୁବ୍ରୀହି; ବିଧୁତ+କଲ୍ମଷ)—
Bidhu(dhū)ta kalmasha ପାପରୁ ମୁକ୍ତ ହୋଇଥିବା—Free (ବିଧୂ(ଧୁ)ତ ପାପ—ଅନ୍ୟରୂପ) from sin (Apte). (ବିଧୂ(ଧୁ)ତ କଲ୍ମଷା—ସ୍ତ୍ରୀ) [ବିଧୂ(ଧୁ)ତ କଲ୍ମିଷ—ଅନ୍ୟରୂପ]

**ବିଧୁ(ଧୂ)ନନ**—ସଂ. ବି (ବି+ଧୁ ଧାତୁ+ଭାବ. ଅ; ଣିଚ୍ ଘଟିତ)—
Bidhu(dhū)naka ୧ । କମ୍ପନ—1. Trembling; shaking. ୨ । ବିସର୍ଜନ; ପରିତ୍ୟାଗ—1. Abandonment; relinquishment. ୩ । ନିଷ୍କାଶନ—3. Bringing out; extraction. ୪ । ଝାଡ଼ିବା; କମ୍ପନଦ୍ୱାରା ଫିଙ୍ଗି ଦେବା—4. Shaking off.

**ବିଧୁ(ଧୂ)ନିତ**—ସଂ. ବିଣ ( ବି+ଧୁ ଧାତୁ+କର୍ମ. ତ; ଣିଚ୍ ଘଟିତ )—
Bidhu(dhū)nita ୧ । ପ୍ରକମ୍ପିତ—1. Shaken. ୨ । ବିହ୍ୱଳ—2. Agitated; overwhelmed. ୩ । ତ୍ୟକ୍ତ—3. Abandoned. ୪ । ଭୀତ—4. Terrified. ୫ । ଅଭିଭୂତ—5. Afflicted; overwhelmed; overtaken. ୬ । ଦୂରୀକୃତ—6. Removed; ୭ । ଅପସାରିତ—7. Held back; kept aloof. ୮ । ନିଃସାରିତ; ନିଷ୍କାଶିତ—8. Extracted. ୯ । ଝଡ଼ା ହୋଇ ଫିଙ୍ଗା ଯାଇ ଥିବା—9. Shaken off.

**ବିଧୁନ୍ତୁଦ**—ସଂ. ବି (ବିଧୁଂ=ଚନ୍ଦ୍ରଙ୍କୁ+ତୁଦ୍ ଧାତୁ=ବ୍ୟଥା ଦେବା+
Bidhuntuda କର୍ତ୍ତୃ, ଅ; ଯେ ଚନ୍ଦ୍ରଙ୍କୁ ବ୍ୟଥା ଦିଏ )—ରାହୁ—The ascending node; the dragon's head.

**ବିଧୁପଞ୍ଜର**—ସଂ. ବି—ଖଡ୍ଗ; ଖଣ୍ଡା—
Bidhupañjara Sword; scimitar.

**ବିଧୁବଦନ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଧୁ+ବଦନ )—ଚନ୍ଦ୍ରାନନ;
Bidhubadana ଯାହାର ମୁଖ ଚନ୍ଦ୍ର ପରି କାନ୍ତିଯୁକ୍ତ ବା ସୁନ୍ଦର—

ବିଧୁବଦନା } ସ୍ତ୍ରୀ Having a face as amiable as the moon.
ବିଧୁମୁଖୀ
( ବିଧୁମୁଖ—ଅନ୍ୟରୂପ )

ବିଧୁବଦନୀ—ଦେ. ବିଣ. ସ୍ତ୍ରୀ—(ସଂ. ବିଧୁବଦନା)—ବିଧୁ ବଦନର ସ୍ତ୍ରୀଲିଙ୍ଗ; Bidhubadanī ବିଧୁମୁଖୀ—(a woman) Having a face as fair as the moon.

ବିଧୁର—ସଂ. ବିଣ ପୁଂ ( ବିଜୁଗୁପ୍ତ; ବି=ବିଶେଷ+ଧୁର=ଭାର ବା Bidhura ଦୁଃଖ)—୧ । କାତର—1. Distressed; troubled; overcome. ୨ । ଦୁଃଖିତ— [ ବିଧୁରତା(ତ୍ୱ)—ବି ] ( ବିଧୁରା—ସ୍ତ୍ରୀ ) 2. Agitated; afflicted with grief. ୩ । ଭୀତ; ତ୍ରସ୍ତ—3. Terrified; alarmed. ୪ । ଅସମର୍ଥ—4. Incapable; incapacitated. ୫ । ବିମୂଢ଼—5. Bewildered; overwhelmed. ୬ । ବିକଳ—6. Confused; defective; imperfect. ୭ । ପୀଡ଼ାଦାୟକ—7. Distressing; painful. ୮ । ପ୍ରିୟ ବ୍ୟକ୍ତିର ବିୟୋଗରେ ବା ବିଚ୍ଛେଦରେ ଅତି ଦୁଃଖ ପ୍ରାପ୍ତ—8. Lovelorn; bereaved; suffering on account of separation from one's wife or beloved (Apte). ୯ । ( ସମାସରେ; ଯଥା—କଳଙ୍କବିଧୁର ) (ଅମୁକରୁ) ମୁକ୍ତ—9 Freed from (Apte). ୧୦ । ଶତ୍ରୁଭାପନ୍ନ; ପ୍ରତିକୂଳ—10. Adverse; hostile; unfriendly (Apte). ସଂ ବି—୧ । ବିୟୋଗ; ବିଚ୍ଛେଦ—1. Separation; disunion. ୨ । ବୈକଲ୍ୟ—2. Defect; imperfection. ୩ । ପୀଡ଼ା; କ୍ଲେଶ—3. Distress; trouble; suffering. ୪ । ଶତ୍ରୁ—4. An enemy; adversary. ୫ । ଉତ୍ପୀଡ଼କ ବ୍ୟକ୍ତି—5. An oppressor. ୬ । ମୃତଦାର ବ୍ୟକ୍ତି—6. A widower (Apte). ୭ । ତ୍ରାସ—7. Alarm (Apte) ୮ । ଉତ୍କଣ୍ଠା—8. Anxiety (Apte), ୯ । କୈବଲ୍ୟ; ମୋକ୍ଷ—(ହି. ଶ) 9. Beatitude. ଦେ. ବିଣ—୧ । ତ୍ୟକ୍ତ—1. Shunned, ( ଉ—ବିଧୁର ଯେ, ବିରସଜନ ସବୁଙ୍କର । ଭଞ୍ଜ. ବୈଦେହୀଶବିଳାସ । ) ୨ । ( ସଂ. ବିଦୂର ) ବିଦୂରିତ, ଦୂରକୁ ଗତ—2, Removed to a distance. ( ଉ—ବି କରମ ହେଲା ପୁଣ ପାସୋରରୁ ପର ହୋଇଲେ ବିଧୁର—ଭଞ୍ଜ. ବୈଦେହୀଶବିଳାସ । )

ବିଧୁରା—ସଂ. ବିଣ. ସ୍ତ୍ରୀ ( ବିଧୁର+ଆ )—ବିଧୁରର ସ୍ତ୍ରୀଲିଙ୍ଗ—Feminine of Bidhurā. ସଂ. ବି—ମିଠା ଓ ମସଲା ମିଶ୍ରିତ ଦହି—Curd mixed with sugar and spices (Apte).

ବିଧୁଶିଳ—ଦେ. ବି. (ସଂ. ବିଧୁଶିଳା)—ଚନ୍ଦ୍ରକାନ୍ତ ମଣି—A fabu-Bidhusila lous gem; having the peculiarity of melting under moon's rays; jasper. (ବିଧୁଶିଳା—ସଂସ୍କୃତ ରୂପ) ( ଉ—ବିଧୁଶିଳ ପ୍ରାୟେ କି ହୋଇଲା ମୋର ଦେହୀ । ଭଞ୍ଜ. ପ୍ରେମସୁଧାନିଧି ।)

ବିଧୁନନ ରତି—ଦେ. ବି—ବିପରୀତ ରତି—Sexual embrace Bidhūnana rati in a reverse order. ( ଉ—ବିଧୁନନ ରତି କରି ମତ୍ତ ହୋଇନ୍ତି—ଭଞ୍ଜ. ବୈଦେହୀଶବିଳାସ । )

ବିଧୂ(ଧୁ)ବନ—ସଂ. ବି ( ବି+ଧୂ ଧାତୁ=କମ୍ପିବା+ଭାବ. ଅନ )—Bidhū(dhu)bana କମ୍ପନ—Shaking; tremor.

ବିଧୂମିତ—ଦେ. ବିଣ ( ବିଧୂମ+ଇତ )—ଧୂମଯୁକ୍ତ; ଧୂମପୂର୍ଣ୍ଣ—Full Bidhūmita of smoke. ( ଉ—ଆକାଶକୁ ବ୍ୟାପିଲେ ବିଧୂମିତ ହୋଇ—କୃଷ୍ଣସିଂହ. ମହାଭାରତ. ଆଦି । )

ବିଧୂୟମାନ—ସଂ. ବିଣ ( ବି+ଧୂ ଧାତୁ—କମ୍ପିବା+କର୍ତ୍ତୃ. ଆନ )—Bidhūyamāna କମ୍ପମାନ—Trembling; shaking.

ବିଧୃତ—ସଂ. ବିଣ ( ବି+ଧୃ ଧାତୁ=ଧରିବା+କର୍ମ. ତ )—୧ । ଧୃତ—Bidhṛuta 1. Cought; seized; grasped. ୨ । ଗୃହୀତ; ଅବଲମ୍ବିତ—2 Depended upon; taken. ୩ । ଆକ୍ରାନ୍ତ—3. Invaded; overcome; subdued. ୪ । ଅଧିକୃତ—4. Possessed (Apte). ୫ । ପୃଥକ୍‌କୃତ—5. Separated; kept asunder (Apte), ୬ । ନିଯନ୍ତ୍ରିତ; ବ୍ୟାହତ—6. Checked; restrained (Apte). ୭ । ବାହିତ; ଯାହାକୁ ଟେକି ରଖାଯାଇଥାଏ—7. Supported; borne up (Apte). ୮ । ରକ୍ଷିତ—8. Protected (Apte). ସଂ. ବି. ( +ଭାବ. ତ )—୧ । ଆଦେଶର ଅବମାନନା—1. Disregard of a command (Apte). ୨ । ଅସନ୍ତୋଷ—2. Dissatisfaction (Apte).

ବିଧୃତି—ସଂ. ବି ( ବି+ଧୃ ଧାତୁ+ଭାବ. ତି )—୧ । ବୈଧୃତି ଯୋଗ; Bidhṛuti ଜ୍ୟୋତିଷଶାସ୍ତ୍ରୋକ୍ତ ୨୭ ଗୋଟି ଯୋଗ ମଧ୍ୟରୁ ଏକତମ ଅଶୁଭଯୋଗ—One of the 27 special conjunctions in astrology. [ ଦ୍ର—ଏ ଯୋଗରେ କୌଣସି କାର୍ଯ୍ୟ କଲେ ଅଶୁଭ ଘଟେ । ] ୨ । ବ୍ୟବସ୍ଥା—2. Arrangement; regulation (Apte). ଗ୍ରା. ବି—୧ । ବିବାଦ; କଳି—1. Dispute; quarrel. ୨ । ପରସ୍ପର ମନୋମାଳିନ୍ୟ—2. Mutual misunderstanding; bad terms.

ବିଧେ—ସଂ. ବି (ବିଧି ଶବ୍ଦର ସମ୍ବୋଧନ)—ବିଧାତଃ !; ହେ ବିଧାତା—Bidhe Oh God ! Oh Lord !

ବିଧେୟ—ସଂ. ବିଣ ( ବି+ଧା ଧାତୁ+କର୍ମ. ଯ )—୧ । କରିବା Bidheya ଉଚିତ; କର୍ତ୍ତବ୍ୟ—1. Proper to be done or [ ବିଧେୟତା(ତ୍ୱ)—ବି ] accomplished. ୨ । ନ୍ୟାଯ୍ୟ; ଆଇନସମ୍ମତ—2. Legal; lawful; just. ୩ । (ବ୍ୟାକରଣ) କ୍ରିୟାବାଚକ—3. Predicable; verbal. ୪ । ବଶ୍ୟବାଧ—4. Obliged; ୫ । ଅଧୀନ—5. Subservient; subordinate. ୬ । ବିଧାନଯୋଗ୍ୟ—

6. Fit to be provided for. ୭ । ସୁବିଧାଜନକ—7. Convenient. ୮ । ବିନୟୀ—8. Humble; modest. ୯ । ଅଜ୍ଞାଧୀନ—9. Obedient. ସ. ବି—୧ । ( ବାକ୍ୟାଲଙ୍କାର ) ଅପରିଜ୍ଞାତ ବିଷୟ ବା ବସ୍ତୁ—1. ( rhetoric ) An unkuown matter. ୨ । ( ବ୍ୟାକରଣ ) କୌଣସି ବାକ୍ୟର କ୍ରିୟାଂଶ—2. The predicate of a proposition. [ ଦ୍ର—ନ୍ୟାୟ ଓ ବ୍ୟାକରଣରେ ବାକ୍ୟର ୨ଟି ମୁଖ୍ୟଭାଗ କରାଯାଇଅଛି—ଉଦ୍ଦେଶ୍ୟ ଓ ବିଧେୟ । ଯାହା ସମ୍ବନ୍ଧେ କିଛି ବୋଲାଯାଏ ତାହା ଉଦ୍ଦେଶ୍ୟ ଓ ଯାହା କିଛି ବୋଲାଯାଏ ତାହା ବିଧେୟ —ହି. ଶ. । ]

**ବିଧେୟ ପଦ**—ସ. ବି—୧ । (ବ୍ୟାକରଣ) କ୍ରିୟାପଦ; କୌଣସି ବାକ୍ୟ-
Bidheya pada ଦ୍ୱାରା ବୁଝା ଯାଉଥିବା କାର୍ଯ୍ୟ ଯେଉଁ ପଦ ଦ୍ୱାରା ପ୍ରକାଶିତ ହୁଏ—1. The predicate; the word in a proposition which expresses what is affirmed of a subject. ୨ । ସମ୍ପାଦ୍ୟ ପଦ—2. A word wh'ch affirms a thing.

**ବିଧେୟ ବିଶେଷ୍ୟ**—ସ. ବି (ବ୍ୟାକରଣ)—ଯେଉଁ ବିଶେଷ୍ୟବାଚକ ପଦ
Bidheya biseshya ଉଦ୍ଦେଶ୍ୟ ପଦର ଗୁଣ ବା ଅବସ୍ଥା ପ୍ରକାଶ କରେ—( grammar ) Predicative noun. ( ଯଥା—'ରାମ ରାଜା ହେଲେ' ଏ ବାକ୍ୟରେ 'ରାଜା' ପଦଟି ବିଧେୟ ବିଶେଷ୍ୟରୂପେ ବ୍ୟବହୃତ ହୋଇଅଛି । )

**ବିଧେୟ ମାର୍ଗ**—ସ. ବି—୧ । ଉଚିତ ମାର୍ଗ—1. Right path; the
Bidheya mārga path of rectitude. ୨ । କର୍ତ୍ତବ୍ୟପଥ—2. The way of duty. ୩ । ବିଧିସିଦ୍ଧ ପଥ—3. Customary way.

**ବିଧେୟାବିମର୍ଷ**—ସ. ବି—ବାକ୍ୟଦୋଷବିଶେଷ—A rhetorical
Bidheyābimarsha defect. [ ଦ୍ର—ବାକ୍ୟର ବିଧେୟ ଅଂଶ ଯେଉଁଠାରେ ସମାସଦ୍ୱାରା ଗୁଣୀଭୂତ ହୋଇଥାଏ କିମ୍ବା ଅସ୍ଥାନରେ ପ୍ରଯୁକ୍ତ ହୋଇଥାଏ ସେଠାରେ ବିଧେୟ ବିମର୍ଷ ଦୋଷ ହୁଏ, ଯଥା—ବ୍ୟର୍ଥେ ଅନ୍ତରେ ବ୍ୟଜନ ବିଞ୍ଚିଲେ ସିଞ୍ଚିଲେ ଜଳ । ଏଠାରେ ବ୍ୟର୍ଥେ ଶବ୍ଦର ପ୍ରୟୋଗ ଦୋଷାବହ । ]

**ବିଧ୍ୱଂସ**—ସ. ବି ( ବି+ଧ୍ୱଂନ୍ସ ଧାତୁ=ନଷ୍ଟ ହେବା+ଭାବ. ଅ )—
Bidhwaṁsa ୧ । ବିନାଶ; ବିଲୋପ—1. Utter destruction; extinction. ୨ । କ୍ଷୟ;—2. Ruin; overthrow. ୩ । ଅପକାର—3. Mischief; injury. ୪ । ବୈର(ହି. ଶ)—4. Enmity. ୫ । ଅନାଦର—5. Disregard. ୬ । ବୈମନସ୍ୟ ( ହି. ଶ. )—6. Dejection.

ବିଧ୍ୱଂସକ—ପୁଂ } ବିଧେୟବିଶେଷ୍ୟ
ବିଧ୍ୱଂସିକା—ସ୍ତ୍ରୀ }

**ବିଧ୍ୱଂସନ**—ସ. ବି (ବି+ଧ୍ୱନ୍ସ ଧାତୁ+ଭାବ. ଅନ)—ବିନାଶକରଣ—
Bidhwaṁsana Act of destroyng; ruination.

**ବିଧ୍ୱଂସିତ**—ସ. ବିଣ (ବି+ଧ୍ୱନ୍ସ ଧାତୁ ଣିଚ୍ ଧ୍ୱନ୍ସି ଧାତୁ+କର୍ମ. ତ)—
Bidhwaṁsita ୧ । ବିନାଶିତ—1. Utterly ruined; destroyed. ୨ । ଅପକାରିତ—2. Injured.

**ବିଧ୍ୱଂସିବା**—ଦେ. ( ପଦ୍ୟ ) କ୍ରି ( ସ. ବିଧ୍ୱଂସ )—ବିନାଶ କରିବା—
Bidhwaṁsibā বিধ্বংশা बिध्वंसना To destroy. ( ଉ—ବିଧ୍ୱଂସି ଦୈତ୍ୟ ରକ୍ଷିବେ ମୋ ଯାଗ—ଉଞ୍ଜ. ବୈଦେହୀଶବିଳାସ । )

**ବିଧ୍ୱଂସୀ**—ସ. ବିଣ. ପୁଂ (ବି+ଧ୍ୱନ୍ସ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Bidhwaṁsī ୧ । ପତନୋନ୍ମୁଖ—1. About to fall. ( ବିଧ୍ୱଂସିନୀ—ସ୍ତ୍ରୀ ) ୨ । ବିନାଶଶୀଳ—2. Subject to decay. ୩ । ବିନାଶକାରକ—3. Destructive. ୪ । ଅନି. ତାପୀ; ଶତ୍ରୁତାପନ୍ନ—4. Inimical.

**ବିଧ୍ୱସ୍ତ**—ସ. ବିଣ ( ବି+ଧ୍ୱନସ୍ ଧାତୁ+କର୍ମ. ତ )—୧ । ବିନଷ୍ଟ—
Bidhwasta 1. Utterly ruined. ୨ । ବିଲୁପ୍ତ—2. Extinguished. ୩ । ଅପକୃତ—3. Injured.

**ବିଧ୍ୟ**—ସ. ବିଣ ( ବେଧ ଧାତୁ+କର୍ମ. ଯ )—ଯାହାକୁ ଭେଦ କରିବା
Bidhya ଉଚିତ—Fit to be pierced.

**ବିଧ୍ୟମାନ**—ସ. ବି (ବ୍ୟଧ୍ ଧାତୁ=ପୀଡ଼ା ଦେବା; ବିଦ୍ଧ କରିବା+
Bidhyamāna କର୍ମ. ଆନ)—୧ । ପୀଡ୍ୟମାନ—1. Being oppressed. ୨ । ବିଦ୍ଧ କରାଯାଉଥିବା—2. Being pierced.
(ବିଧ୍ୟମାନା—ସ୍ତ୍ରୀ)

**ବିଧ୍ୟାତ୍ମକ**—ସ. ବିଣ ( ବିଧି ବହୁ; ବିଧି+ଆତ୍ମା )—ବିଧିପୂର୍ବକ; ବିଧି-
Bidhyātmaka ସଙ୍ଗତ—Conforming to rules.

**ବିଧ୍ୟାଭାସ**—ସ. ବି—ଅର୍ଥାଲଙ୍କାରବିଶେଷ—A figure of speech
Bidhyābhāsa in rhetoric. [ ଦ୍ର—ଘୋର ଅନିଷ୍ଟ ବା ଅମଙ୍ଗଳର ସମ୍ଭାବନାସୂଚକ ବାକ୍ୟ କଥକର ଅନିଚ୍ଛାସତ୍ତ୍ୱେ ପ୍ରକାଶିତ ହେଲେ ଏ ଅଳଙ୍କାର ହୁଏ—ହି. ଶ । ]

**ବିନ୍**—ପ୍ରାଦେ. (ସମ୍ବଲପୁର) ଅ. (ତୁଳ. ହି. ବିନ୍, ସ. ବିନା)—ବିନା—
Bin Without.

**ବିନ୍ତି**—ବୈଦେ, ବି (ସ୍ପେନ୍‌ଦେଶୀୟ ଭାଷା ବିନ୍ତେ=ବିଂଶ; ତୁଳ. ସ.
Bin-ti ବିଂଶତି)—୧ । ଏକପ୍ରକାର ତାସ୍ ଖେଳ (ଯହିଁରେ ୨ଜଣ (ବିନତି, ବିନ୍ତି—ଅନ୍ୟରୂପ) ଖେଳାଳି ଖେଳନ୍ତି)—1. Vinte; a kind of game at cards played by 2 players.
বিন্তী
बिन्ति ୨ । ତାସ୍ ଖେଳରେ କ୍ରମାନ୍ୱୟ ୩ ଖଣ୍ଡି ତାସ୍ ଜଣେ ଖେଳାଳିର ହାତରେ ପଡ଼ିବା ଅବସ୍ଥା—A state in the game of cards in which one player gets 3 successive cards. [ ଦ୍ର—ଏକ ପକ୍ଷର ହାତରେ ଏକ ରଙ୍ଗର କ୍ରମିକ ୩ଖଣ୍ଡ ତାସ ପଡ଼ିଗଲେ ଉକ୍ତ ପକ୍ଷର ବିନ୍ତି ହୁଏ । ଏକ ପକ୍ଷର ବିନ୍ତି ହେଲେ ଅପର ପକ୍ଷକୁ ୨୦ ପୋଇଁଟା ଅଧିକ (୬୨ ପୋଇଁଟା) ଦେଖାଇବାକୁ ହୁଏ । ତାସ୍ ତଳେ ନୋଟ୍ ଦେଖ । ]

**ବିନ୍‌ପାଣି(ଣି)ଆ**—ପ୍ରାଦେ. (ବାମଣ୍ଡା) ବି—ମିଷ୍ଟାନ୍ନବିଶେଷ—A kind
Bin-pāṇi(ṇi)ā of sweetmeat. [ ଦ୍ର—ଏଥିରେ ଅଳ୍ପେ ପାଣି ଦିଆ ହୁଏ ନାହିଁ । ]

ବିନ୍‌ବାପିଆ—ପ୍ରାଦେ. (ସମ୍ବଲପୁର) ବିଣ—୧ । ଅଜ୍ଞାତପିତୃକ; ଅଣ-
Bin-bāpiā ବାପୁଆ—1. One whose father can not be traced; of unknown parentage. ୨ । ମୃତପିତୃକ—2. One who has lost his father.

ବିନ୍‌ବାପିଆ ଛୁଆ—ପ୍ରାଦେ. (ସମ୍ବଲପୁର) ବି—ଜାରଜ ପିଲା; ବର୍ଣ୍ଣସଙ୍କର
Bin-bāpiā chhuā ଛୁଆ; ଅଜ୍ଞାତପିତୃକ ସନ୍ତାନ—Mongrel; illegitimate child.

ବିନ୍‌ବେରି—ପ୍ରାଦେ. (ବସ୍ତର) ବିଣ—ଶତ୍ରୁରହିତ—
Bin-bairi Without enemy.

ବିନ୍‌ମାଗେ(ଙ୍ଗେ)—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ (ଭୁଲ, ହି. ବିନ୍-
Bin-māge(ṅge) ମାଗେ)—ଅଯାଚିତ ଭାବରେ—Without asking.

ବିନ୍(ନା,ନି,ନୁ)—ଦେ. ବି—ବିନୋଦବିହାରୀର ଡାକ ନାମ—
Bin(nā,ni,nu) Name for calling Binodabihāri.

ବିନତ—ସଂ. ବିଣ, ପୁଂ ( ବି+ନମ୍ ଧାତୁ=ନଇଁବା+କର୍ତ୍ତୃ. ତ )—
Binata ୧ । ଅବନତ; ପ୍ରଣତ; ତଳକୁ ନଇଁଥିବା—1. Inclined; bent down; bowed; prostrate.
(ବିନତା—ସ୍ତ୍ରୀ) ୨ । ନମ୍ର; ବିନୟୀ; ବିନୀତ; ଶିଷ୍ଟ—2. Modest; humble. ୩ । ଶିକ୍ଷିତ—3. Educated. ୪ । ବିନୟ ଦ୍ୱାରା ସୁସଜ୍ଜିତ—4. Well disciplined. ୫ । ସଙ୍କୁଚିତ ( ହି. ଶ. )—5. Contracted. ୬ । କୁଜା—6. Humpbacked. ସଂ. ବି—୧ । (ନାମ) ସୁଗ୍ରୀବ ସେନାର ମର୍କଟବିଶେଷ ( ହି. ଶ )—1. Name of a monkey soldier in the army of Sugriba. ୨ । ଶିବ (ହି. ଶ)—2. Siba.

ବିନତା—ସଂ. ବି. ସ୍ତ୍ରୀ (ବିନତ+ସ୍ତ୍ରୀ. ଆ)—୧ । କଶ୍ୟପମୁନିଙ୍କ ପତ୍ନୀ;
Binatā ଅରୁଣ ଓ ଗରୁଡ଼ଙ୍କର ମାତା—1. The wife of sage Kasyapa. ୨ । ପ୍ରମେହ ବା ବହୁମୂତ୍ର ରୋଗୀଙ୍କ ଦେହରେ ବାହାରିବା ଭୟଙ୍କର ବ୍ରଣ (ହି. ଶ)—1. A kind of boil appearing on the body of diabetic and gonerrhoic patient. [ଦ୍ର—ଯେଉଁ ସ୍ଥାନରେ ଏ ବ୍ରଣ ହୁଏ ସେ ସ୍ଥାନର ମାଂସ ମରିଯାଏ ଓ ନେଳ ପଡ଼ିଯାଏ ଓ ଏଥିଯୋଗୁଁ ରୋଗୀର ଶରୀର କ୍ରମଶଃ ସଢ଼େ; ପ୍ରଥମରୁ ସେ ବ୍ରଣ ଓ ତନ୍ନିକଟବର୍ତ୍ତୀ ଦେହାଂଶକୁ କାଟି ଫିଙ୍ଗି ଦେଲେ ରୋଗୀ ବଞ୍ଚିପାରେ-ହି. ଶ । ] ୩ । ଅଶୋକ ବନରେ ସୀତାଙ୍କ ନିକଟରେ ରକ୍ଷଣ କର୍ତ୍ତ୍ରୀ ରକ୍ଷିତା ଜଣେ ରାକ୍ଷସୀ ( ହି. ଶ )—3. Name of a demoness kept to guard Sita in her captivity.
ସଂ. ବିଣ. ସ୍ତ୍ରୀ—'ବିନତ'ର ସ୍ତ୍ରୀଲିଙ୍ଗ—Feminine form of 'Binata'.

ବିନତା ନନ୍ଦନ—ସଂ. ବି ( ୬ଷ୍ଠୀ ତତ୍; ବିନତା+ନନ୍ଦନ )—ଅରୁଣ ଓ
Binatā nandana ଗରୁଡ଼—Aruṇa (Aurora or twilight) and Garurḍa (the King of birds).
ବିନତାସୂନୁ } ଅନ୍ୟରୂପ
ବିନତାସୁତ }
ବିନତା ତନୟ }

ବିନତି—ସଂ. ବି ( ବି+ନମ୍ ଧାତୁ+ଭାବ ତି )—୧ । ନମ୍ରତା—
Binati 1. Submission. ୨ । ବିନୟ; ଶିଷ୍ଟତା—2 Politeness; humility; modesty. ୩ । ଅନୁନୟ—3. Entreaty; request. ୪ । ସୁଶୀଳତା—4. Goodness of disposition. ୫ । ନିବାରଣ—5. Prevention. ୬ । ଶାସନ; ଦମନ—6. Exercise of restraint, discipline. ୭ । ଦଣ୍ଡ—7. Punishment. ୮ । ଶିକ୍ଷା—8. Instruction. ୯ । ପରିଶୋଧ—9. Repayment; recompense. ୧୦ । ବିନିଯୋଗ—10. Appointment to offiec. ୧୧ । ନଇଁ ପଡ଼ିବା—11. Bending. ବୈଦେ ବି—ବିନତି (ଦେଖ)—Bin-ti (See).

ବିନମନ—ସଂ. ବି ( ବି+ନମ୍ ଧାତୁ+ଭାବ ଅନ )—୧ । ନମ୍ରତା—
Binamana 1. Politeness. ୨ । ନୁଆଇଁବା—2. Bending.

ବିନମିତ—ସଂ. ବିଣ.(ବି+ନମ୍ ଧାତୁ ଣିଚ୍+କର୍ମ ତ)—ଅତିଶୟ ନମିତ;
Binamita ବହୁତ ତଳକୁ ନଇଁଥିବା—Bent low.

ବିନମ୍ର—ସଂ. ବିଣ ପୁଂ(ବି+ନମ୍ ଧାତୁ+କର୍ତ୍ତୃ ର)—୧ । ଅତି ନମ୍ର—
Binamra 1. Very humble. ୨ । ବିନୟୀ—2. Modest;
(ବିନମ୍ରତା—ବି) polite; affable. ୩ । ପ୍ରଣତ—3. Incli-
(ବିନମ୍ରା—ସ୍ତ୍ରୀ) ned; bent. ୪ । ମୃଦୁ; କୋମଳ—4. Tender. ୫ । ଅତ୍ୟନ୍ତ ନଇଁ ପଡ଼ିଥିବା—5. Bent low. ସଂ. ବି—ତଗର ଫୁଲ (ହି. ଶବ୍ଦସାଗର)—Tagara (See)

ବିନୟ—ସଂ. ବି ( ବି+ନୀ ଧାତୁ=ନେବା, ନଇଁବା+ଭାବ ଅ )—
Binaya ୧ । ବିନତି ( ଦେଖ )—1. Binati (See) ୨ । କୋମଳତା (କ୍ଷୀରୋଦ)—2. Tenderness.

ବିନୟ କରିବା—ଦେ. କ୍ରି (ସଂ. ବିନୟ)—୧ । ବିନୟ ପୂର୍ବକ କହିବା-
Binaya karibā 1. To speak with modesty.
(ବିନୟ ହେବା—ଅନ୍ୟରୂପ) ୨ । ବିନୀତ ଭାବରେ ପ୍ରାର୍ଥନା ବିନୟ କରା **बिनय करना** କରିବା—2. To entreat.

ବିନୟଗ୍ରାହୀ—ସଂ. ବିଣ ପୁଂ—୧ । ବଚନରେ ସ୍ଥିତ; କଥାର ବାଧ୍ୟ—
Binayagrāhi 1. Submissive; obedient; obliging.
(ବିନୟସ୍ଥ—ଅନ୍ୟରୂପ) ୨ । ବିନୀତ—2. Humble; modest.
(ବିନୟଗ୍ରାହିଣୀ, ବିନୟସ୍ଥା—ସ୍ତ୍ରୀ)

ବିନୟ ଧର—ସଂ. ବି—ପୁରୋହିତ (ହି. ଶ)—
Binaya dhara Priest.

ବିନୟନ—ସଂ. ବି ( ବି=ନୀ ଧାତୁ+ଭାବ. ଅନ )—୧ । ଶିକ୍ଷା—
Binayana 1. Instruction. ୨ । ନମ୍ରତା—2. Humility; modesty. ୩ । ଅପନୟନ; ଅପନୋଦନ; ନିରାକରଣ—3. Wiping out; clearing of a thing; refutation.

ବିନୟ ନମ୍ର—ସଂ. ବିଣ ପୁଂ ( ୩ୟା ତତ୍; ବିନୟ+ନମ୍ର )—ବିନୟ
Binaya namra ଯୋଗୁଁ ନତ—Bowed down through
(ବିନୟ ନମ୍ରା—ସ୍ତ୍ରୀ) modesty; very submissive.

**ବିନୟ ପତ୍ର**--ସଂ. ବି. ( ବିନୟ ପୂର୍ଣ୍ଣ ପତ୍ର; ମ. ପ ଲୋ)—୧ । ପ୍ରାର୍ଥନା-
Binaya patra ପତ୍ର—1. An humble petition. ୨ ।
ବିନୟ ପତ୍ରିକା } ସବିନୟ ଲିପି 2. A modest letter; a letter
ବିନୟ ଲିପି } ଅନ୍ୟରୂପ containing entreaties.
ବିନୟ ଲେଖ

**ବିନୟ ପିଟକ**—ସଂ. ବି—ଅନ୍ଦ ବୌଦ୍ଧଧର୍ମଶାସ୍ତ୍ରବିଶେଷ—
Binaya piṭaka Name of a Buddhist scripture.
[ଦ୍ର—ବୌଦ୍ଧ ଧର୍ମଶାସ୍ତ୍ର ବା ତ୍ରିପିଟକ ପାଲୀ ଭାଷାରେ ଲିଖିତ । ଏହା ୩ ଭାଗରେ ବିଭକ୍ତ; ବିନୟ ପିଟକ, ସୂତ୍ର ପିଟକ ଓ ଅଭିଧର୍ମ ପିଟକ । ବିନୟ ପିଟକରେ ବୁଦ୍ଧ ଦେବଙ୍କର ଶିଷ୍ୟ ମଣ୍ଡଳୀଙ୍କୁ ପ୍ରଦତ୍ତ ଭିକ୍ଷୁ ଧର୍ମର ଉପଦେଶମାନ ସଂଗୃହୀତ ହୋଇଅଛି । କଥିତ ଅଛି ଯେ ବୁଦ୍ଧଦେବ ଓ ତାଙ୍କର ପ୍ରଧାନ ଶିଷ୍ୟମାନଙ୍କ ମୃତ୍ୟୁ ପରେ ବୌଦ୍ଧ ଶାସ୍ତ୍ରର ଲୋପ ହେବା ଦେଖି ଅଜାତଶତ୍ରୁଙ୍କ ରାଜତ୍ୱକାଳରେ ମହାକାଶ୍ୟପ ରାଜଗୃହ ନିକଟସ୍ଥ ବୈଭାର ପର୍ବତର ସପ୍ତପର୍ଣ୍ଣୀ ଗୁମ୍ଫାରେ ୫୦୦ ସ୍ଥବିରଙ୍କୁ ନିମନ୍ତ୍ରଣ କରି ଗୋଟିଏ ସଭା କଲେ । ସେହି ସଭାରେ ଉପାଳି ବୁଦ୍ଧଙ୍କ ଉପଦିଷ୍ଟ 'ବିନୟ'କୁ ପ୍ରକାଶ କଲେ । ତତ୍ପରେ କେତେ ଦିନ ଅନ୍ତେ ବୈଶାଳୀରେ ଆଉ ଗୋଟିଏ ସଭା ହୋଇ ବିନୟପିଟକର ପୁନଃ ସଂଗ୍ରହ ହୋଇଥିଲା । ସର୍ବଶେଷରେ ଅଶୋକଙ୍କ ରାଜତ୍ୱକାଳରେ ବିନୟପିଟକ ପୂର୍ଣ୍ଣ ରୂପେ ସଂକଳିତ ହେଲା । ତ୍ରିପିଟକ ତଳେ ନୋଟ୍ ଦେଖ । ହି. ଶ ]

**ବିନୟ ପୂର୍ବକ**—ସଂ. ବିଣ ( ବହୁବ୍ରୀହି )—ସବିନୟ—Humble.
Binaya pūrbaka ଦେ. କ୍ରି ବିଣ—ବିନୀତ ଭାବରେ—
বিনয় পূর্বক **विनयसे** Humbly; modestly.

**ବିନୟ ବଚନ**—ଦେ. ବି—୧ । କୋମଳ କଥା; ବିନୟ ବାକ୍ୟ—
Binaya bachana 1. Polite or modest words.
ବିନୟ ବାକ୍ୟ } ଅନ୍ୟରୂପ ୨ । ନମ୍ର ବାକ୍ୟ—2. Submissive
ବିନୟ ଭାଷା } speech. (ଉ—ବାହୁଡ଼ିବା ଲାଗି ସ୍ୱବାସେ ମାଗିଲି ବିନୟ ଭାଷେ ମେଲାଣି । ରାଧାନାଥ. ଯଯାତି ।)

**ବିନୟାକାଂକ୍ଷୀ**—ସଂ. ବିଣ. ପୁଂ (ଉପପଦ; ବିନୟ+ଆକାଂକ୍ଷା)—ବିନୀତ
Binayākāṅkshmī ହେବା ନିମନ୍ତେ ଇଚ୍ଛୁକ—Willing to
ବିନୟାକାଂକ୍ଷିଣୀ } ସ୍ତ୍ରୀ. submit; submissive.
ବିନୟାଭିଳାଷିଣୀ }

**ବିନୟାବନତ**—ସଂ.ବିଣ.ପୁଂ (୩ୟା ବା ୭ମୀ ତତ୍; ବିନୟ+ଅବନତ)—
Binayābanata ବିନୟ ନମ୍ର—Bowed down through
(ବିନୟାବନତା—ସ୍ତ୍ରୀ) modesty.

**ବିନୟୀ**—ସଂ. ବିଣ. ପୁଂ ( ବିନୟ+ଇନ୍; ୧ମା. ୧ବ )—୧ । ବିନୀତ;
Binayī ନମ୍ର—1. Humble; modest; condescending.
(ବିନୟିନୀ—ସ୍ତ୍ରୀ) ୨ । ଶିଷ୍ଟ—2. Polite. ୩ । ଶାନ୍ତ—
3. Gentle. (ଉ—ଚରଣେ ବନ୍ଦନ ଫେଡ଼ାଇ, କହନ୍ତି ବଚନ ବିନୟୀ—ଜଗନ୍ନାଥ. ଭାଗବତ ।)

**ବିନି(ନି)ର୍ବଇ**—ଦେ. ବିଣ—ଅପବ୍ୟୟୀ—Squandering.
Bina(ni)rba অপব্যয়ী **उजड्ड**

**ବିନି(ନି)ର୍ବଏ(ୟ)**—ଦେ. ବି—(ବି+ନି+ବ୍ୟୟ) ଅପବ୍ୟୟ--Waste.
Bina(ni)rbae(ya) অপব্যয় **उजाड** ଦେ. ବିଣ—ଅପ-
[ବିନିର୍ବଏ(ୟ)—ଅନ୍ୟରୂପ] ବ୍ୟୟିତ—Wasted.

**ବିନଶନ**—ସଂ. ବି ( ବି+ନଶ୍ ଧାତୁ=ନଷ୍ଟ ହେବା+ଭାବ. ଅନ )—
Binaśana ୧ । ବିନାଶ; ଧ୍ୱଂସ; କ୍ଷୟ—1. Destruction; ruin. ୨ । ( +ଅଧି ଅନ; ଏଠାରେ ପାପର ବିନାଶ ହୁଏ ବୋଲି ) କୁରୁକ୍ଷେତ୍ରସ୍ଥ ତୀର୍ଥବିଶେଷ—2. Name of a sacred place in N. W. India. [ଦ୍ର—ଏହା ପ୍ରଭାସତୀର୍ଥ ଓ ନିଷାଦପୁରୀ ନିକଟରେ । ] ୩ । ସରସ୍ୱତୀ ନଦୀ ଯେଉଁଠାରେ ଅନ୍ତର୍ହିତ ହୋଇଅଛି—3. The site where the river Saraswatī is said to have disappeared.

**ବିନଶ୍ୱର**—ସଂ. ବି ( ବି+ନଶ୍ ଧାତୁ+ଶୀଳାର୍ଥରେ ବର )—୧ ।
Binaśwara ଅନିତ୍ୟ; ଅଚିରସ୍ଥାୟୀ—1. Temporary. ୨ ।
[ବିନଶ୍ୱରତା(ତ୍ୱ)—ବି] ଧ୍ୱଂସଶୀଳ—2. Perishable; destruc-
(ଅବିନଶ୍ୱର—ବିପରୀତ) tible; subject to decay.

**ବିନଶ୍ୟ(ଶ୍ୱ)ତି**—ଗ୍ରା. ବି ( ପ୍ରାଚୀନ ପଦ୍ୟ; ସଂ. କ୍ରିୟା ବିନଶ୍ୟତି=
Binaśya(śwa)ti ତାହା ବିନାଶପ୍ରାପ୍ତ ହେଲା )—ବିନାଶ—
বিনাশ; বিনশ্যতি Ruin; destruction. [ ଉ—ବିନିଦ୍ରରେ
**बिनाश** ରଭସ ବିନଶ୍ୟତି ଅବଶ୍ୟ କରିବ ବଇରି ସାହସେ
বিনষ্ট; বিনশ্যতি ସେ, ବଂଶଧ୍ୱଂସ—ଭଞ୍ଜ. ବୈଦେହୀଶବିଳାସ । ]
**विनष्ट** ବିଣ—ବିନଷ୍ଟ—Ruined. [ ଉ—ବିନଶ୍ୟତି ହେବ ଏତେ କହି, ବିବେକୀରେ ବି କହିବ ମୁହିଁ । ଭଞ୍ଜ. ବୈଦେହୀଶବିଳାସ । ]

**ବିନଷ୍ଟ**—ସଂ. ବିଣ ( ବି+ନଶ୍ ଧାତୁ+କର୍ତ୍ତି ତ )—୧ । ସମ୍ପୂର୍ଣ୍ଣରୂପେ
Binashṭa ନଷ୍ଟ ବା ନାଶପ୍ରାପ୍ତ; ଧ୍ୱଂସପ୍ରାପ୍ତ—1. Ruined;
(ବିନଷ୍ଟା—ସ୍ତ୍ରୀ) completely destroyed; perished. ୨ ।
(ବିନଷ୍ଟି—ବି) ପତିତ—2. Fallen; corrupted. ୩ । ମୃତ—3. Dead; deceased. ୪ । ( ସମୟ ) ଅତୀତ—4. Gone; past; elapsed. ୫ । ଅପବ୍ୟୟିତ—5. Squandered; wasted. ୬ । କ୍ଷୟିତ—6. Decayed; spoiled. ୭ । ଯାହାର ଆଚରଣ ମନ୍ଦ ହୋଇଅଛି ( ହି. ଶ )—7. Of spoiled character.

**ବିନସ୍(ସ)**—ସଂ. ବିଣ. ପୁଂ ( ବହୁବ୍ରୀହି; ବି=ନାହିଁ+ନାସିକା;
Binas(sa) ନାସିକାସ୍ଥାନରେ 'ନସ୍' )—ବିଗତନାସିକ; ନାସିକା-
[ବିନସା(ସୀ)—ସ୍ତ୍ରୀ] ହୀନ—Bereft of the nose.

**ବିନା**—ସଂ. ଅ—୧ । ଅଭାବରେ—1. In the absence of;
Binā for want of. ୨ । ବ୍ୟତୀତ; ବ୍ୟତିରେକେ—2. Without. ୩ । ଭିନ୍ନ; ଛଡ଼ା—3. Except; besides. [ ଦ୍ର—ସଂ. ରେ ଯେଉଁ ଶବ୍ଦ 'ବିନା' ଶବ୍ଦ ସଙ୍ଗେ ଲାଗେ ତାହାର ତୃତୀୟା ବିଭକ୍ତି ହୁଏ, ବିଲୁ ଓଡ଼ିଆରେ

୭ମୀ ବିଭକ୍ତି ହୁଏ । ଯଥା—ତାଙ୍କ ବିନା ମୋର ଅନ୍ୟ ଗତି ନାହିଁ । ବିଶେଷ୍ୟ ସଙ୍ଗେ 'ବିନା' ଶବ୍ଦ ଲାଗିଲେ ବିଭକ୍ତି ହୁଅ ନ ଗଲେ ମଧ୍ୟ ଚଳେ; ଯଥା—ପଇସାବିନା ମୁଁ ଭାରି ଦରିଦ୍ର ହେଲିଣି । ଅନ୍ୟ ମଧ୍ୟ ଓଡ଼ିଆରେ ବାକ୍ୟ ପୂରଣାର୍ଥ ନଞର୍ଥ କ୍ରିୟା ସଙ୍ଗେ ଏହି 'ବିନା' ଶବ୍ଦ ବ୍ୟବହୃତ ହୁଏ; ଯଥା—ସେ ବିନା ନ ଖାଇଲେ ଏଠାରୁ ଉଠିବ ନାହିଁ । ଯେଉଁ ଶବ୍ଦ ସଙ୍ଗେ 'ବିନା' ବ୍ୟବହୃତ ହୁଏ ତାହା 'ବିନା' ଶବ୍ଦର ପରବର୍ତ୍ତୀ ହେଲେ ଉକ୍ତ ଶବ୍ଦର ୭ମୀ ବିଭକ୍ତି ହୁଏ; ଯଥା—ମୁଁ ବିନାପଇସାରେ ରାଜ୍ୟଯାକ ବୁଲି ଅଇଲି । ]
ଦେ. ବି—୧ । ଗଞ୍ଜପାସାରେ ୧ ଠାରୁ ୧୦ ପର୍ଯ୍ୟନ୍ତ ଫୁଟଚିହ୍ନଯୁକ୍ତ ଅପ୍ରଧାନ ସାର; ଦସ୍ତଖେଳର ଅପ୍ରଧାନ ସାର—1. The cards containing 1 to 10 points in the Ganjapā game of cards, the inferior cards in a card game. ୨ । ବିନୋଦ ବିହାରୀର ଅନାଦରାର୍ଥକ ଡାକ ନାମ—2. A name for calling Binod bihāri

**ବିନାକୃତ**—ସଂ. ବିଣ ( ବିନା+କୃ ଧାତୁ+କର୍ମ ତ )—୧ । ପରିତ୍ୟକ୍ତ—Binākruta 1. Abandoned; deserted. ୨ । ବିଯୋଜିତ—2. Separated; bereft. ୩ । ବିଶ୍ଳିଷ୍ଟ ( କ୍ୱଚିତ୍ )—3. Analysed.

**ବିନାଚଳିତ**—ଦେ. ବିଣ—ଅଚଳ—Motionless. [ ଉ—ସାତ-Binachalita ବାହୁ, ବିନାଚଳିତ ଲୁମ୍ବିତ ହାସ । ଭଞ୍ଜ; ବୈଦେହୀଶବିଳାସ । ]

**ବିନାର୍ଡ଼ୀ**—ସଂ. ବି—ଏକ ଘଡ଼ିର ୬୦ ଭାଗରୁ ଏକ ଭାଗ; ଏକପଳ ସମୟ Binārdi ( ହି. ଶ )—A small unit of time; about (ବିନାଡ଼ିକା—ଅନ୍ୟରୂପ) 24 seconds ( Apte ).

**ବିନା ପଇସାରେ**—ଦେ. କ୍ରି. ବିଣ—ମାଗଣାରେ—Gratis. Bina paisāre ବିନିପଇସାୟ बिनापैसासे

**ବିନାପୂଜା**—ଦେ. ବିଣ ( ସଂ. ବିନା+ପୂଜା )—ଅପୂଜିତ; ଯାହାଙ୍କର Binapūjā ପୂଜା କରାଯାଇ ନାହିଁ— Unworshipped. [ ଉ—ବିନାପୂଜା ଦେବତା, ବରରଲେ ହୋଇବା ପୂଜିତା । ଭଞ୍ଜ. ବୈଦେହୀଶବିଳାସ । ]

**ବିନାମ**—ସଂ. ବି ( ବି+ନମ ଧାତୁ+ଭାବ ଅ )—୧ । ନଇଁବା ( ହି. Bināma ଶ )—1. Bending. ୨ । ରୋଗ ଯୋଗୁଁ ଶରୀର ନଇଁ ପଡ଼ିବା, [ ହି. ଶ ଭାବପ୍ରକାଶ ]—2. The bending of the body due to disease. ୩ । [ ବ୍ୟାକରଣ ] ଦନ୍ତ୍ୟ ବର୍ଣ୍ଣର ମୂର୍ଦ୍ଧଣ୍ୟ ବର୍ଣ୍ଣରୂ ପରିବର୍ତ୍ତନ; ଷତ୍ୱବିଧାନ ଓ ଣତ୍ୱବିଧାନ—3.(grammar) Change of a dental letter into a cerebra (Apte); the substitution of sha for sa and na for na.

**ବିନାମା**—ଦେ. ବି [ ବଙ୍ଗଳାରୁ ଅନୁକୃତ ]—୧ । ଚଟିଯୋତା—Binamā 1. Slippers. ୨ । ପାଦପୋଛ—2. Door-mattress. ସଂ. ବିଣ [ବି+ନାମନ]—ନାମଶୂନ୍ୟ—Nameless.

**ବିନା ମାଗିବା**—ଦେ. କ୍ରି—ତାସ୍ ବା ଗଞ୍ଜପା ଖେଳ ଆରମ୍ଭରେ ସାଙ୍ଗ Binā māgibā ଖେଳାଳିଙ୍କୁ ସାର ବଦଳ ମାଗିବା—To ask for exchange of cards in a game of cards

**ବିନା ମାରିବା**—ଦେ. କ୍ରି—ତାସ୍ ବା ଗଞ୍ଜପା ଖେଳରେ ହାତରେ ସାର ନ Binā māribā ଥିଲେ ଅନ୍ୟରଙ୍କର ତାସ୍ ପକାଇବା—To give a pass card in a game of cards.

**ବିନାୟକ**—ସଂ. ବି. ପୁଂ [ ବି+ନୀ ଧାତୁ+କର୍ତ୍ତୃ ଅକ ]—୧ । ଗଣନାଥ Bināyaka ଗଣେଶ—1. Ganesa. ୨ । ଶିକ୍ଷାଗୁରୁ—2. Teacher; tutor. ୩ । ଦୀକ୍ଷାଗୁରୁ; ମନ୍ତ୍ରଗୁରୁ—3. Spiritual guide. ୪ । ପକ୍ଷିରାଜ ଗରୁଡ଼—4. Garurda, the king of birds. ୫ । ବୁଦ୍ଧଦେବ—5 The Buddha. ୬ । ବିଘ୍ନ—6. Obstacle. ୭ । ବୌଦ୍ଧମତାବଲମ୍ବୀ ଅମରସିଂହ [ ଦ୍ର—ଏ ଜଣେ ବୌଦ୍ଧଗୁରୁ ଥିଲେ । ]—7. 'Amarasimha, the Buddhist saint. [ ଉ—ଏଣୁଟ ସୁଧାକର କଳାକାଏ, ପର୍ଯ୍ୟାୟେ କଲେ ବିନାୟକେ ସିଦ୍ଧି । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]

**ବିନାୟକ ପୂଜନ**—ଦେ. ବି—(ଗରୁଡ଼ଦ୍ୱାରା ପୂଜିତ)—ନାରାୟଣ; ବିଷ୍ଣୁ—Bināyaka pūjana Bishnu. [ ଉ—ବିନାୟକପୂଜନ ହେଲେ ଏ ବେଳ ଜନ ଦୂର ଆସିବ ଖରେ ଯେ । ଭଞ୍ଜ. ବୈଦେହୀଶବିଳାସ । ]

**ବିନାୟକ ବ୍ରତ**—ସଂ. ବି—ଗଣେଶ ଚତୁର୍ଥୀ; ଭାଦ୍ର ଶୁକ୍ଳ ଚତୁର୍ଥୀ—Bināyaka brata The 4th. day of the bright fortnight of Bhādra.

**ବିନାୟକ (ରାଓ ବାହାଦୁର୍)**—ସଂ ବି—(ନାମ)—ଜଣେକ ମହାରାଷ୍ଟ୍ରୀ Bināyaka (rāo bāhādur) ଜ୍ୟୋତିଷୀ—An astronomer belonging to the Marhatta country. [ ଦ୍ର—ଏ ଇଂରାଜୀ ଓ ଫରାସୀ ଜୋତିଷ ଗ୍ରନ୍ଥ ଅବଲମ୍ବନରେ ମରହଟ୍ଟୀଭାଷାରେ କୋଷ୍ଠାଙ୍କ ନାମରେ ଏକ ସାରଣୀ ଗ୍ରନ୍ଥ ରଚନା କରିଥିଲେ । ଏ ଶକ ୧୭୪୬—୧୮୦୬ ମଧ୍ୟରେ ଜୀବିତ ଥିଲେ । ]

**ବିନାୟିକା**—ସଂ. ବି. ସ୍ତ୍ରୀ—(ବିନାୟକ+ସ୍ତ୍ରୀ. ଆ)—ଗରୁଡ଼ ପତ୍ନୀ—Bināyikā The wife of Garurda

**ବିନାଶ(ଷ) କାରଣେ**—ଗ୍ରା. କ୍ରି. ବିଣ—(ସ. ବିନା+କାରଣ)—ବିନା Binās(ṣa) kārane କାରଣରେ; ବୃଥା; ଅକାରଣ—বিনা কারণে बिना कारणे In vain; without any cause. (ଯଥା—ସାଆନ୍ତ ବିନାଶ କାରଣେ ମୋ ଉପରେ ରାଗିଛନ୍ତି ।)

**ବିନାଶ**—ସଂ ବି —(ବି+ନଶ୍ ଧାତୁ+ଭାବ. ଅ)—୧ । ଧ୍ୱଂସ; ଉଚ୍ଛେଦ; Bināsa ସର୍ବନାଶ—1. Ruin ୨ । ଲୋପ; ଅଦର୍ଶନ—2 Extinction; disappearance. ୩ । ମୃତ୍ୟୁ—3. Death. ୪ । କ୍ଷୟ; କ୍ଷତି—4. Decay; loss.

[ଉ—ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର । ଉପେ. ବୈଦେହୀଶବିଳାସ । ] ୫ । ଅପଚୟ—5. Waste; depredation. ୬ । ଅଭାବ—6. Want; nonexistence. ୭ । ସଙ୍ଗୀତର ଶେଷ ସ୍ୱରବିଶେଷ—7. The closing note of a strain.

ବିନାଶକ—ସଂ. ବିଣ. ପୁଂ—(ବି+ନଶ୍ ଧାତୁ+କର୍ତ୍ତୃ. ଅକ)—୧ । Bināśaka ଧ୍ୱଂସକାରକ—1. Ruinous; destructive. (ବିନାଶିକା—ସ୍ତ୍ରୀ) ୨ । ଘାତକ—2. Killing; destroying. ୩ । ଅପକାରକ—3. Injurious. ସଂ. ବି—୧ । ଘାତକ ବ୍ୟକ୍ତି—1. A murderer. ୨ । ବିନାଶକାରୀ ବସ୍ତୁ—2. A thing that destroys.

ବିନାଶନ—ସଂ. ବି—(ବି+ନଶ୍ ଧାତୁ; ଣିଚ+ଭାବ. ଅନ)—ବିନାଶ Binā́sana କରଣ—Act of destroying. ସଂ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ; ଯଥା—ପାପ ବିନାଶନ) ବିନାଶକ; ବିଲୋପକାରୀ—Destroying. ଦେ. ବି—(ସଂ. ବିନା+ଅଶନ) ଅନାହାର; ଅନଶନ—Fasting. ବିଶ୍ୟାତ ଅନନ୍ତ ଶାରଙ୍ଗମାନ; ବିନାଶନରେ ଅନୁଜ ସମାନ । ଉପେ. ବୈଦେହୀଶବିଳାସ । ଦେ. ବିଣ.—୧ । ମୃତ—1. Dead (ଉ—ବିନାଶନ ମୋ ବଳ୍ଲଭ, ଭାଷେ ଚପଳ । ଉପେ. ବୈଦେହୀଶବିଳାସ ।) ୨ । ନଷ୍ଟ—2 Spoiled. (ଉ—ବଳାହକ ବିନା ବିନାଶନ ପ୍ରବୃତ୍ତି ଭୃନୁ ଭୃନୁ କାହିଁ ପାଇଁ ସେ । ଉପେ. ବୈଦେହୀଶବିଳାସ ।)

ବିନାଶନ ବ୍ରତ—ଦେ. ବି—ପ୍ରାୟୋପବେଶନ; ଅନାହାରରେ ମରିବା ପାଇଁ Binā́sana brata ବସିରହିବା—Fasting unto death. (ଉ—ବିନାଶନ ବ୍ରତେ ମରିବା ଇଚ୍ଛନ୍ତି ଖଣ୍ଡିଛି ଅଧରପାନ. ଉପେ. ପ୍ରେମ ସୁଧାନିଧି ।)

ବିନାଶନୀ—ଦେ. ବିଣ. ସ୍ତ୍ରୀ—(ସଂ. ବିନାଶିନୀ)—ନାଶକାରିଣୀ—Binā́sanī Destroying. (ଉ—ସେ କୂପ ପୁଣ୍ୟ ବିନାଶନୀ, ନିର୍ମିତ କଲେ ପଦ୍ମଯୋନି । ଜଗନ୍ନାଥ, ଭାଗବତ ।)

ବିନାଶନୀୟ—ସଂ. ବିଣ—(ବି+ନଶ ଧାତୁ; ଣିଚ+କର୍ମ. ଅନୀୟ) Binā́sanīya ଧ୍ୱଂସନୀୟ; ଧ୍ୱଂସର ଯୋଗ୍ୟ—Perishable; (ବିନାଶନୀୟତା—ଅନ୍ୟରୂପ) destructible.

ବିନାଶପ୍ରାପ୍ତ—ସଂ. ବିଣ—(୨ୟା ତତ୍; ବିନାଶ+ପ୍ରାପ୍ତ)—ବିନଷ୍ଟ—Binā́sa prāpta Ruined; spoiled.

ବିନାଶ ରହିତ—ସଂ. ବିଣ—(୩ୟା ତତ୍)—ଅବିନାଶୀ—Binā́sa rahita (ବିନାଶରହିତ—ଅନ୍ୟରୂପ) Indestructible.

ବିନାଶଶୀଳ—ସଂ. ବିଣ. (ବହୁବ୍ରୀହି)—ଧ୍ୱଂସଶୀଳ—Binā́sasīla Subject to decay.

ବିନାଶିତ—ସଂ. ବିଣ—(ବି+ନଶ୍ ଧାତୁ ଣିଚ+କର୍ମ. ତ)—୧ । Binā́sita ନିହତ—1. Killed; destroyed. ୨ । ବିନାଶପ୍ରାପ୍ତ—2. Ruined; spoiled.

ବିନାଶିବା—ଦେ. (ପଦ୍ୟ) କ୍ରି (ସଂ. ବିନାଶ)—୧ । ବିନାଶ କରିବା—Binā́siba विनाशना 1. To ruin; to destroy. ୨ । ବିନଷ୍ଟ ହେବା—2. To be destroyed. (ଉ—ଏ କୁଳେ ଯେବା ଅଧିପତି, ଶୁଣନ୍ତେ ପାପ ବିନାଶନ୍ତି । ଜଗନ୍ନାଥ. ଭାଗବତ ।)

ବିନାଶୀ—ସଂ. ବିଣ (ବିନାଶ+ଇନ୍; ୧ମା. ୧ବ)—୧ । ବିନାଶଶୀଳ; Binā́sī ନଶ୍ୱର—1. Perishable; liable to decay. (ବିନାଶିନୀ—ସ୍ତ୍ରୀ) ୨ । (ବି+ନଶ ଧାତୁ ଣିଚ୍+କର୍ତ୍ତୃ. ଇନ୍)—2. Destroying. ଦେ. ବିଣ—ବିନା ନିମନ୍ତ୍ରଣରେ ଖାଇବାକୁ ଉପସ୍ଥିତ—Come to a feast without invitation. [ ଦ୍ର—ଏହା ଅନାଶୀ ଶବ୍ଦ ସଙ୍ଗେ (ଅନାଶୀ—ଉପସ୍ଥିତ ସହିତରରୁପେ ବ୍ୟବହୃତ ହୁଏ ।]

ବିନାଶୋନ୍ମୁଖ—ସଂ. ବିଣ (୭ମୀ ତତ୍ ବା ୪ର୍ଥୀ ତତ୍; ବିନାଶ+ Binā́sonmukha ଉନ୍ମୁଖ)—୧ । ମରଣୋଦ୍ୟତ—1. About to die. ୨ । ପତନୋନ୍ମୁଖ—2. Going; to fall. ୩ । ପକ୍ୱ—3. Ripe. ୪ । ବିନଷ୍ଟପ୍ରାୟ—4. Almost destroyed. ୫ । ମୃତପ୍ରାୟ—5. Almost dead. ୬ । ମ୍ରିୟମାଣ—6. Dying; moribund

ବିନାଶ୍ୟ—ସଂ. ବିଣ (ବି+ନଶ୍ ଧାତୁ ଣିଚ୍+କର୍ମ. ଯ)—ଧ୍ୱଂସନୀୟ; Binā́sya ବିନାଶଯୋଗ୍ୟ—Perishable.

ବିନାସ(ସି)କ—ସଂ. ବିଣ. ପୁଂ—ବିଗତନାସିକ; ନାସିକାହୀନ—Binā́sa(si)ka (ବିନାସିକା—ସ୍ତ୍ରୀ) Noseless (Apte).

ବିନାହ—ସଂ. ବି (ବି+ନହ୍ ଧାତୁ=ଆଚ୍ଛାଦନ କରିବା+କରଣ. ଅ)—Bināha କୂପର ମୁଖାଚ୍ଛାଦନ—A lid for the mouth of a well.

ବିନାହକ୍—ପ୍ରାଦେ (ସମ୍ବଲପୁର) କ୍ରି. ବିଣ (ଭୁଲ. ହି. ନାହକ୍)—Binā́hak ଅକାରଣରେ; ବୃଥା—In vain; fruitlessly.

ବିନିଃସରଣ—ସଂ. ବି (ବି+ନିର୍+ସୃ ଧାତୁ=ବାହାରିବା+ଭାବ. ଅନ)—ବହିର୍ଗମନ—Coming out; Binihsaraṇa emerging; issuing out.

ବିନିଃସୃତ—ସଂ. ବିଣ (ବି+ନିର୍+ସୃ ଧାତୁ+କର୍ତ୍ତୃ. ତ)—୧ । ବହି- Binihsruta ର୍ଗତ—1. Issued out. ୨ । ବହିଃପତିତ—2. Come out.

ବିନିକ୍ଷିପ୍ତ—ସଂ. ବିଣ (ବି+ନି+କ୍ଷିପ ଧାତୁ+କର୍ମ. ତ)—୧ । ଯାହା Binikshipta ଏଣେ ତେଣେ ଫୋପଡ଼ା ଯାଇଥାଏ—1. Propelled; tossed. (ବିନିକ୍ଷେପ—ବି) ୨ । ବହିଃକ୍ଷିପ୍ତ—2. Thrown away.

ବିନିଗଡ଼—ସଂ. ବିଣ (ବି=ବିଗତ+ନିଗଡ଼)—୧ । ଶୃଙ୍ଖଳହୀନ—Binigarda 1. Unfettered. ୨ । ଅନିୟନ୍ତ୍ରିତ—2. Unrestrained. ୩ । ସ୍ୱାଧୀନ—3. Free (Apte)

ବିନିଗମକ—ସଂ. ବି. ପୁଂ (ବି+ନି+ଗମ୍ ଧାତୁ ଣିଚ୍+କର୍ତ୍ତୃ. ଅକ)—Binigámaka ୧ । ପ୍ରତିପାଦକ—1. Accomplishing; (ବିନିଗମିକା—ସ୍ତ୍ରୀ) demonstrating. ୨ । ନିର୍ଣ୍ଣାୟକ—

2. Ascertaining. ୩ । ସଂଶୟନିବାରକ—3. Removing doubt. ୪ । ବ୍ୟବଚ୍ଛେଦକ—4. Dissecting. ୫ । ଦୁଇ ପକ୍ଷ ମଧ୍ୟରୁ ଏକ ପକ୍ଷର ସିଦ୍ଧି ଘଟାଇବା ବାକ୍ୟ ( ସୂ. ଶ )—5. Bringing success to one of the two parties.

ବିନିଗମନ(ନା)—ସଂ. ବି ( ବି+ନି+ଗମ୍ ଧାତୁ ଣିଚ୍+ଭାବ. ଅନ; ସ୍ତ୍ରୀ. Binigamana(nā) ଆ )—୧ । ବ୍ୟବଚ୍ଛେଦନ—1. The cutting of a thing into parts. ୨ । (+ କରଣ ଅନ ) ନିଶ୍ଚୟୋପାୟ—2. Sure way; sure means. ୩ । ମୀମାଂସା—3. Decision. ୪ । କୌଣସି ସିଦ୍ଧାନ୍ତରେ ଉପସ୍ଥିତ ହେବାର କାରଣ—4. Reasons leading to a decision

ବିନିଗ୍ରହ—ସଂ. ବି ( ବି+ନିଗ୍ରହ )—୧ । ନିଯନ୍ତ୍ରଣ; ସଂଯମନ— Binigraha 1. Restraining; curbing ( Apte ); ୨ । ପରସ୍ପର ବିରୋଧ—2. Antithesis; mutual opposition ( Apte ).

ବିନିଘ୍ନ—ସଂ. ବି ( ବି+ନି+ହନ୍ ଧାତୁ+କର୍ମ. ଅ )—୧ । ନଷ୍ଟ ( ସୂ. Binighna ଶ )—1. Spoilt. ୨ । ଗୁଣିତ ( ସୂ. ଶ )— 2 Multiplied.

ବିନିଦ୍ର—ସଂ. ବିଣ ( ବହୁବ୍ରୀହି; ବି=ବିଗତ+ନିଦ୍ରା )—୧ । ନିଦ୍ରା- Binidra ରହିତ—1. Sleepless. ୨ । ଜାଗରିତ— ( ବିନିଦ୍ରା—ସ୍ତ୍ରୀ ) 2 Awake. ୩ । ଉନ୍ମିଳିତ—3. Opened ( not closed ). ୪ । ବିକାଶିତ—4. Expanded; bloomed(as a flower). ୫ । ପ୍ରକାଶିତ—5. Manifested; disclosed; revealed. ୬ । ସାବଧାନ— 6. Cautious. ସଂ. ବି—ଅସ୍ତ୍ର ପ୍ରୟୋଗରେ ନିଦ୍ରିତ ବା ମୂର୍ଚ୍ଛିତ ବ୍ୟକ୍ତିର ନିଦ୍ରାଭଙ୍ଗ ବା ମୂର୍ଚ୍ଛାଭଙ୍ଗ କରାଇବା ଅସ୍ତ୍ରର ପ୍ରଭାବବିଶେଷ ( ସୂ. ଶ )—A withdrawal of the effect of a weapon which has caused sleep or coma.

ବିନିନ୍ଦିତ—ସଂ. ବିଣ (ବି+ନିନ୍ଦ୍ ଧାତୁ+କର୍ମ. ତ)—ଲାଞ୍ଛିତ— Binindita Censured; much blamed. (ବିନିନ୍ଦିତା—ସ୍ତ୍ରୀ) [ବିନିନ୍ଦା—ବି]

ବିନିନ୍ଦ୍ୟ—ସଂ. ବିଣ (ବି+ନିନ୍ଦ୍ ଧାତୁ+କର୍ମ. ଯ)—ଅନିନ୍ଦ୍ୟ; ପ୍ରଶଂସ- Binindya ନୀୟ—Praiseworthy. [ଉ—ବିନିନ୍ଦ୍ୟ ଦୃଢ଼ କୋଦଣ୍ଡପଦ, ବିକାଶେ ସ୍ମରଣ ପ୍ରମୋଦ । ଉପ. ବୈଦେହୀଶବିଳାସ ।] ୨ । ଲାଞ୍ଛନୀୟ—2. Deserving censure.

ବିନିପାତ—ସଂ. ବି (ବି+ନି+ପତ୍ ଧାତୁ+ଭାବ. ଅ)—୧ । ଅଧଃ- Binipāta ପତନ—1. Fall; fall from a high position; fall from virtue; downfall. (ବିନିପାତକ—ବ୍ୟକ୍ତିବାଚକ ବିଶେଷଣ ) ୨ । ଅପମାନ; ଅବମାନନା— 2. Dishonour; disrespect. ୩ । ବଂଶକ୍ଷୟ— 3. Extinction of a family. ୪ । କ୍ଳେଶ; ଦୁଃଖ— 4. Misery; distress; pain (Apte). ୫ । ମୃତ୍ୟୁ— 5. Death. ୬ । ଦୈବ ଦୁଃଖ—6. Mishap; misfortune; accident. ୭ । ବିନାଶ; ଧ୍ୱଂସ— 7. Ruin; destruction (Apte). ୮ । ଘଟନା— 8. Occurrence; happening (Apte).

ବିନିପାତିତ—ସଂ. ବିଣ (ବି+ନି+ପତ୍ ଧାତୁ ଣିଚ୍+କର୍ମ. ତ)— Binipātita ୧ । ଅଧଃପାତିତ—1. Overthrown. ୨ । ବିନାଶିତ—2. Destroyed; ruined. ୩ । ଅବମାନିତ—3. Disgraced; dishonoured.

ବିନିବର୍ତ୍ତିତ—ସଂ. ବିଣ (ବି+ନି+ବୃତ୍ ଧାତୁ ଣିଚ୍+କର୍ମ. ତ)— Binibarttita ପ୍ରତ୍ୟାବର୍ତ୍ତିତ—Brought back; returned; (ବିନିବର୍ତ୍ତନ—ବି) caused to return.

ବିନିବୃତ୍ତ—ସଂ. ବିଣ (ବି+ନି+ବୃତ ଧାତୁ+କର୍ତ୍ତୃ. ତ)—ପ୍ରତ୍ୟାବୃତ୍ତ— Binibrutta Returned; come back.

ବିନିବେଶ—ସଂ. ବି (ବି+ନି+ବିଶ୍ ଧାତୁ+ଭାବ. ଅ)—ପ୍ରବେଶ; Binibesa (ବିନିବିଷ୍ଟ, ବିନିବେଶିତ—ବିଣ) ପଶିବା—Entering. [ବିନିବେଶକ, ବିନିବେଶୀ—ବ୍ୟକ୍ତିବାଚକ ବିଣ]

ବିନିମୟ—ସଂ. ବି (ବି+ନି+ମୀ ଧାତୁ+ଭାବ. ଅ)—୧ । ପରିବର୍ତ୍ତନ; Binimaya ବଦଳ; ଏକ ବସ୍ତୁକୁ ଦେଇ ତତ୍ପରିବର୍ତ୍ତେ ଅନ୍ୟ ବସ୍ତୁର ଗ୍ରହଣ—1. Exchange; barter. ୨ । ପ୍ରତିଦାନ—2. Requital; return-gift; a return; retaliation. ୩ । ବନ୍ଧକ—3. Pledge. ୪ । ଗଚ୍ଛିତ ଧନ— 4. Deposit. ୫ । ଅକ୍ଷରମାନଙ୍କର ପରସ୍ପର ପରିବର୍ତ୍ତନ— 5. Transmutation of letters.

ବିନିମିଷ—ଦେ. ବିଣ (ସଂ. ବି+ନିମେଷ)—ନିର୍ନିମେଷ; ପକ୍ଷ୍ମପାତଶୂନ୍ୟ— Binimisha Winkless. [ଉ—ବିନିମିଷେ ସେ, ମୀନ ସମାଜେ, ଖଞ୍ଜନ ଜଣ୍ଟେ ଭସ୍ମେ । ଉପ. ବୈଦେହୀଶବିଳାସ ।]

ବିନିମିତ—ସଂ. ବିଣ (ବି+ନି+ମୀ ଧାତୁ+କର୍ମ. ତ)—୧ । ଦ୍ରବ୍ୟ- Binimita ବିନିମୟ; ବଦଳା ଯାଇଥିବା—2 Exchanged; bartered. ୨ । ବନ୍ଧକ ରଖା ଯାଇଥିବା-2. Pledged. ୩ । ପ୍ରତିଦତ୍ତ—3. Given in return.

ବିନିମେଷ—ସଂ. ବି—ଅକ୍ଷି ମିଟିକା— Binimesha Twinkling of the eyes (Apte).

ବିନିୟତ—ସଂ. ବିଣ (ବି+ନି+ଯମ୍ ଧାତୁ+କର୍ମ. ତ)—୧ । ସଂଯତ— Biniyata 1 Restrained; curbed. ୨ । ନିରୁଦ୍ଧ— 2. Confined. ୩ । ଶାସିତ—3. Ruled; controlled; kept under discipline. ୪ । ନିବାରିତ— 4. Prevented.

ବିନିୟମ—ସଂ ବି (ବି+ନି+ଯମ୍ ଧାତୁ+ଭାବ. ଅ)—୧ । ବିଶିଷ୍ଟ Biniyama ନିୟମ—1. Special rule. ୨ । ନିବାରଣ 2. Warning; preventing. ୩ । ନିରୋଧ— 3. Stopping. ୪ । ନିଷେଧ—4. Forbidding.

ବିନିଯୁକ୍ତ—ସଂ. ବିଣ (ବି+ନି+ଯୁଜ୍ ଧାତୁ+କର୍ମ. ତ)—୧ । ନିୟୋଜିତ- Binijukta 1. Employed; commissioned; engaged. ୨ । ପ୍ରେରିତ—2. Sent. ୩ । ପ୍ରଦତ୍ତ—3. Given.

**ବିନିଯୋଗ**—ସ. ବି- ( ବି+ନି+ଯୁଜ୍ ଧାତୁ+ଭାବ. ଅ )—୧ । Binijoga ପ୍ରେରଣ—1. Sending. ୨ । ପ୍ରତିଦାନର ଭବିଷ୍ୟତ୍ ଆଶାରେ ପ୍ରଦାନ ବା ଅର୍ପଣ—2. Giving or parting with a thing in expectation of a suitable return; investment. ୩ । ପ୍ରୟୋଗ—3. Employment; engagement. ୪ । ନିଯୋଜନ—4. Appointing. ୫ । ଆଦେଶ; ଅନୁମତି—5. Permission; order. ୬ । ବୈଦିକ ଅନୁଷ୍ଠାନରେ କୌଣସି ମନ୍ତ୍ରର ପ୍ରୟୋଗ (ହି. ଶ)—6. Applying of a vedic formula in connection with a particular ritual.

**ବିନିଯୋଜିତ**—ସ' ବିଣ—(ବି+ନି+ଯୁଜ୍ ଧାତୁ, ଣିଚ୍+କର୍ମ. ତ)— Binijojita ୧ । ଭବିଷ୍ୟତ ଆଶାରେ ଅର୍ପିତ—1. Given in (ବିନିଯୋଜକ—କର୍ତ୍ତୃବାଚକ) anticipation of suitable return; invested. ୨ । ସ୍ଥାପିତ—2. Established. ୩ । ନିଯୁକ୍ତ—3. Appointed. ପ୍ରେରିତ—4. Sent; commissioned. ୫ । ପ୍ରବର୍ତ୍ତିତ—5. Promulgated.

**ବିନିର୍ଗତ**—ସ. ବିଣ—(ବି+ନିର୍+ଗମ ଧାତୁ+କର୍ତ୍ତୃ. ତ)—୧ । Binirgata ନିଃସୃତ; ବହିର୍ଗତ—1. Gone forth; issued. (ବିନିର୍ଗମ—ବି) ୨ । ନିଷ୍କ୍ରାନ୍ତ—2. Gone out; departed. ୩ । ଅପସୃତ—3. Expelled; displaced. ୪ । ପ୍ରସ୍ଥିତ—4. Started; gone. ୫ । ଅଗତ—5. Past; elapsed.

**ବିନିର୍ଗମ**—ସ. ବି—(ବି+ନିର୍+ଗମ ଧାତୁ+ଭାବ. ଅ)—୧ । ବହିର୍ଗମନ—1. Going forth; issuing out. Binirgama (ବିନିର୍ଗମନ—ଅନ୍ୟରୂପ) ୨ । ପ୍ରସ୍ଥାନ—2. Departure

**ବିନିର୍ଜ୍ଜି(ର୍ଜି)ତ**—ସ. ବିଣ—(ବି+ନିର୍+ଜି ଧାତୁ+କର୍ମ. ତ)—ପରାଭୂତ; Binirjji(rji)ta ପରାଜିତ—Vanquished; defeated. (ବିନିର୍ଜ୍ଜୟ—ବି)

**ବିନିର୍ଣ୍ଣୀତ**—ସ. ବିଣ—(ବି+ନିର୍+ନୀ ଧାତୁ+କର୍ମ. ତ)—ଅବଧାରିତ Binirnnita (ବିନିର୍ଣ୍ଣୟ—ବି) Ascertained

[ଦ୍ର—ଏହିପରି 'ବି' ଉପସର୍ଗ ଯୋଗରେ ବହୁ ପଦ ନିଷ୍ପନ୍ନ ହୁଏ; ଯଥା—ବିନିର୍ଧୂତ, ବିନିର୍ଭିନ୍ନ, ବିନିର୍ଦ୍ଦିଷ୍ଟ, ବିନିର୍ମୁକ୍ତ, ବିନିଷ୍କ୍ରମ, ବିନିଶ୍ଚିତ, ବିନିଷ୍ଫଳ, ବିନିକ୍ଷେପ, ବିନିହତ ଇତ୍ୟାଦି ।]

**ବିନି(ର୍)ର୍ଧୂତ**—ସ. ବିଣ—(ବି+ନିର୍ଦ୍ଧୂତ)—୧ । ବିତାଡ଼ିତ—1. Binir(ddhu)rdhuta Expelled. ୨ । ବିକମ୍ପିତ ହୋଇ ପାତିତ; ଝଡ଼ାଯାଇ ଫିଙ୍ଗିପଡ଼ିଥିବା—2. Shaken off; dispelled. ୩ । ଅବମାନିତ—3. Insulted

**ବିନିର୍ମୁକ୍ତ**—ସ. ବିଣ—(ବି+ନିର୍ମୁକ୍ତ)—୧ । ବହିର୍ଗତ—1 Come Binirmukta out. ୨ । ଅନାଚ୍ଛନ୍ନ—2. Open. ୩ । (ବିନିର୍ମୁକ୍ତି—ବି) ବନ୍ଧନ ରହିତ—3. Free from a bond.

**ବିନିର୍ମୋକ**—ସ. ବିଣ. ପୁଂ—(ବି+ନିର୍ମୋକ)—୧ । ପରିଧାନ ଶୂନ୍ୟ—Binirmoka 1. Devoid of clothing. ୨ । ଗାତ୍ର ତ୍ୱଚ୍-(ବିନିର୍ମୋକା—ସ୍ତ୍ରୀ) ଥିବା (ସର୍ପ)—2. (a snake) Which has cast off its slough.

**ବିନିହତ**—ସ. ବିଣ—(ବି+ନିହତ)—୧ । ବିଶେଷରୂପେ ଆହତ—Binihata 1. Wounded. ୨ । ମାରିତ; ହତ—2. Killed ୩ । ଧ୍ୱସ୍ତ; ବିନଷ୍ଟ—3. Destroyed. ୪ । ଲୁପ୍ତ; ଦୂରୀଭୂତ—4. Extinct; eradicated.

**ବିନୀତ**—ସ. ବିଣ. ପୁଂ—(ବି+ନୀ ଧାତୁ+କର୍ତ୍ତୃ. ତ)—୧ । ବିନମ୍ର—Binita Humble. ୨ । ବିନୟୀ—2. Modest. ୩ । ( ବିନୀତା—ସ୍ତ୍ରୀ ) [ ବିନୀତତା(ତ୍ୱ)—ବି ] ଶିଷ୍ଟ, ଅନୁଦ୍ଧତ—3. Gentle; decent. ୪ । ଶାନ୍ତ—4. Meek. ୫ । ଜିତେନ୍ଦ୍ରିୟ—5. Of subdued passions self-controlled. ୬ । ଧାର୍ମିକ—6. Pious religious; god-fearing. ୭ । ଶିକ୍ଷିତ—7. Educated; trained. ୮ । ଶାସିତ—8. Punished; ruled. ୯ । ସ୍ଥାନାନ୍ତରକୁ ନୀତ—9. Taken out; carried from one place to another. ୧୦ । କ୍ଷିପ୍ତ—10. Dispersed-thrown about. ୧୧ । ନିଭୃତ—11. Concealed; secret. ୧୨ । ଗୃହୀତ—12. Taken. ୧୩ । ଉପଭୁକ୍ତ—13. Enjoyed. ୧୪ । ସୁନ୍ଦର—14. Beautiful. ସ. ବି—୧ । ବଣିକ—1. Merchant; trader. ୨ । ଶିକ୍ଷିତ ଅଶ୍ୱ—2. Trained horse. ୩ । ଯୁଦ୍ଧାଶ୍ୱ—3. War-steed. ୪ । ଶିକ୍ଷିତ ଜୀବ—4. Trained animal. ୫ । ଦମନକ ଗୁଳ୍ମ (ହି. ଶ)—5. Damanaka (See) ୬ । (ନାମ) ପୁଲସ୍ତ୍ୟଙ୍କର ଏକ ପୁତ୍ର (ହି.ଶ.)-6. Name of a son of sage Pulastya.

**ବିନୀତକ**—ସ. ବି—(ବି+ନୀ ଧାତୁ+କରଣ. ତକ)—୧ । ଯାନ—Binitaka 1. Conveyance (Apte). ୨ । (+କର୍ତ୍ତୃ ଅକ)—ବାହକ—2. A carrier; a bearer (Apte).

**ବିନୀତ ବେଶ**—ସ. ବିଣ. ପୁଂ—(ବହୁବ୍ରୀହି; ବିନୀତ+ବେଶ)—ଉତ୍କୃ-Binita besa ବେଶଧାରୀ—Decently clad. (ବିନୀତବେଶା—ସ୍ତ୍ରୀ)

**ବିନୀତାତ୍ମା**—ସଂ. ବିଣ—(ବହୁବ୍ରୀହି; ବିନୀତ+ଆତ୍ମନ୍; ୧ମା. ୧ବ.)—Binitātmā ୧ । ନମ୍ର ପ୍ରକୃତିବିଶିଷ୍ଟ—1. Humble-minded. ୨ । ଧର୍ମୀତ୍ମା—2. God-fearing. ୩ । ଜିତାତ୍ମା—3. Self-controlled.

**ବିନୀୟ**—ସଂ. ବି—(ବି+ନୀ ଧାତୁ+କର୍ମ. ଯ, ନିପାତନ)—୧ । କାପଟ୍ୟ; Biniya ଛଳ—1. Deceit; trick. ୨ । ପାପ—2. Sin. ୩ । କଲ୍କ; ପିଡ଼ିଆ—3. Oil cake. ୪ । କାଞ୍ଜି—4. Sediment; dregs (Apte). ୫ । ଅପରାଧ-5. Crime (Apte).

**ବିନୀୟମାନ**—ସଂ. ବିଣ. ପୁଂ—( ବି+ନୀ ଧାତୁ+କର୍ମ. ଆନ)—
Biniyamāna ଶିକ୍ଷ୍ୟମାଣ; ଯାହାଙ୍କୁ ଶିକ୍ଷା ଦିଆଯାଉଅଛି—
(ବିନୀୟମାନା—ସ୍ତ୍ରୀ) Being trained or educated; undergoing training.

**ବିନୁ(ନେ)**—ଦେ. ଅ—ବିନା ( ଦେଖ )
Binu(ne) Binā ( See )
(ବିନୁରୁ—ଅନ୍ୟରୂପ) (ଉ—ତୋ ରୂପ ନ ଦେଖି ନୟନେ, ଇନ୍ଦ୍ରପୁ
विनु विन ଯେସନେ ଅସ୍ଥା ଦିନେ । ଜଗନ୍ନାଥ, ଭାଗବତ )

**ବିନୁକ୍ତି**—ସ. ବି ( ବି+ନୁଦ୍ ଧାତୁ+ଭାବ ତି, କୃଦନ୍ତ )—ପ୍ରଶଂସା
Binukti ( ହ୍ରି. ଶ )— Praise.

**ବିନେତବ୍ୟ**—ସ. ବିଣ ( ବି+ନୀ ଧାତୁ+ କର୍ମ ତବ୍ୟ )—ଶାସନୀୟ—
Binetabya Governable.

**ବିନେତା**—ସ. ବି ପୁଂ ( ବି+ନୀ ଧାତୁ+କର୍ତ୍ତୃ. ତୃ; ୧ମା ୧ବ )—
Binetā ୧ । ଶିକ୍ଷକ—1. Instructor. ୨ । ଶାସନକର୍ତ୍ତା;
(ବିନେତ୍ରୀ—ସ୍ତ୍ରୀ) ନିୟମକର୍ତ୍ତା—2. Ruler. ୩ । ରାଜା—
3. King. ୪ । ଦଳର ନେତା—4. Leader.

**ବିନେୟ**—ସ. ବିଣ ( ବି+ନୀ ଧାତୁ+କର୍ମ ଯ )—୧ । ଶିକ୍ଷଣୀୟ—
Bineya 1. Fit to be trained. ୨ । ଦଣ୍ଡନୀୟ—2. Punishable. ୩ । ଗ୍ରାହ୍ୟ—3. Acceptable.

**ବିନୋଇ(ୟୀ)**—ଗ୍ରା. କ୍ରି ବିଣ ( ସ ବିନୟୀ )—ବିନୀତ ହୋଇ; ନମ୍ର
Binoi(yi) ଭାବରେ—Modestly; humbly. (ଉ—କର
विनय करे ଯୁଇ ଯୋଡ଼ି ଅଞ୍ଜଳି ବିନୋଇ ବୋଲଇ ଶୁଣିମା
विनती करके ଶଶିସେଣା ଜେମାଦେଈ । ପ୍ରଭାପ. ଶଶିସେଣା ।)

**ବିନୋଇ(ୟି)ବା**—ଦେ. କ୍ରି (ସ ବିନୟ)—୧ । ବିନୀତ ହୋଇ କହିବା-
Binoi(yi) 1. To speak humbly. ୨ । ବିନୀତ ହେବା—
मिनति करा 2. To be submissive. ୩ । ନିବେଦନ
विनती करना କରିବା—3. To submit respectfully,
( ଉ—କର ଅଞ୍ଜଳି ଶିରେ ଦେଇ, ମୁନିଙ୍କ ଚରଣେ
ବିନୋଇ । ଭୂପତି, ପ୍ରେମପଞ୍ଚାମୃତ । )

**ବିନୋକ୍ତି**—ସ. ବି (ବିନା+ଉକ୍ତି)—ବିନା ଶବ୍ଦ ପ୍ରୟୋଗ କରାଯାଇଥିବା
Binokti ଅର୍ଥାଳଙ୍କାରବିଶେଷ—A figure of speech.
(ଏହାର ଉଦାହରଣ—ଘୃତ ବିନା ଭୋଜନ ଭୋଜନ ନୁହେଁ ।)

**ବିନୋଦ**—ସ. ବି ( ବି+ନୁଦ୍ ଧାତୁ+ଭାବ. ଅ )—୧ । ମନସ୍ତୁଷ୍ଟି;
Binoda ଆନନ୍ଦ—1. Gratification of mind; pleas-
(ବିନୋଦନ—ବିଣ) ure; happines , ୨ । ଔତ୍ସୁକ୍ୟ—
2. Eagerness; vehemence. ୩ । ବିହାର; ଲୀଳା-
3. Pastime. ୪ । ଆମୋଦ ପ୍ରମୋଦ; କ୍ରୀଡ଼ାକୌତୁକ-
4. Pleasures; amusements; merriment; sports; play. ୫ । ଅପନୟନ; ଅପନୋଦନ—
4. Relieving of distress; alleviating; palliating. ୬ । ପ୍ରବୋଧନ; ସାନ୍ତ୍ୱନାଦାନ—6. Consolation. ୭ । (+କରଣ ଅ) ସମୟ ଯାପନୋପାୟ—
7. Diversion; relaxation. ୮ । ରସିକତା
ପ୍ରକାଶ—8. Witticism; humour. ୯ । (+ଅଧିକରଣ ଅ) ରାଜ ଗୃହ ବିଶେଷ; ପ୍ରମୋଦ ଗୃହ (ହ୍ରି. ଶ)—
8. A King's pleasure house. ୯ । (+କରଣ ଅ ) ଆଲିଙ୍ଗନବିଶେଷ—9. A sort sexual enjoyment (Apte) or of embrance. ସ. ବିଣ—
ମନୋହର; ସୁନ୍ଦର—Beautiful. ଦେ. ବି—ବିନୋଦ-
ବିହାରୀର ଡାକ ନାମ—A popular name for Binodabihāri.

**ବିନୋଦ ଗୃହ**—ସ. ବି (୬ଷ୍ଠୀ ତତ୍; ବିନୋଦ+ଗୃହ)—ବିଳାସଭବନ;
Binoda gruha ବୈଠକଖାନା—Drawing room; par-
(ବିନୋଦ ଭବନ, ବିନୋଦଶାଳା, ବିନୋଦବାସ—ଅନ୍ୟରୂପ) lour.

**ବିନୋଦନ**—ସ. ବି ( ବି+ନୁଦ୍ ଧାତୁ+ଭାବ ଅନ )—୧ । ବିନୋଦ
Binodana (ଦେଖ)—1. Binoda (See) ୨ । ମନସ୍ତୋଷଣ-
2. Gratifying of the mind. ୩ । କ୍ରୀଡ଼ାକରଣ—
3. Playing.

**ବିନୋଦିଆ**—ଦେ. ବିଣ ( ସ ବିନୋଦୀ )—୧ । ଆମୋଦ ପ୍ରିୟ—
Binodiā 1. Fond of sports or amusements. ୨ ।
(ଅନ୍ୟକରେ) କ୍ରୀଡ଼ା କରିବାକୁ ଯେ ଭଲପାଏ—2. Fond
विनोदियाँ of sporting with ( ଉ—ଫୁଲେ ଫଲେ ସବୁ
विनोदिया ଉଆଣ ଯେଣୁ ସେ ପ୍ରଭୁ ଫୁଲ ବିନୋଦିଆ । ପାନକୃଷ୍ଣ,
ଜଗମୋହନ । ) ୩ । କ୍ରିଡ଼ାପ୍ରିୟ—3. Sportive.
୪ । ସୁନ୍ଦର—4. Charming; graceful. ୫ ।
ଆନନ୍ଦପ୍ରଦ—5. Gratifying. ୬ । ରସିକ—6.
Witty; humorous ଦେ. ବି—An epithet of Śrīkrushna.

**ବିନୋଦ ବିହାରୀ**—ସ. ବିଣ; ପୁଂ—କ୍ରୀଡ଼ାକାରୀ—Spoxting.
Binoda bihāri ସ, ବି—ଶ୍ରୀକୃଷ୍ଣ—Śrīkrushna. ଦେ. ବି
ପୁଂ—୧ । ଲୋକଙ୍କ ନାମ—1. A name given to males. ୨ । ଦେବ ବିଗ୍ରହଙ୍କ ନାମ—2. A name of an image of Śrīkrushna.

**ବିନୋଦୀ**—ସ. ବିଣ ପୁଂ ( ବିନୋଦ +ଯୁକ୍ତାର୍ଥେ ଇନ୍; ୧ମା ୧ବ )—
Binodī ୧ । ପ୍ରମୋଦଯୁକ୍ତ; କ୍ରୀଡ଼ାପ୍ରିୟ; କ୍ରୀଡ଼ାଶୀଳ—
(ବିନୋଦିନୀ—ସ୍ତ୍ରୀ) 1. Sportive. ୨ । ଆମୋଦପ୍ରଦ—
2. Gratifying ୩ । ପରିହାସପ୍ରିୟ—4. Fond of jests; jestive; jocular. ୪ । ରସିକ—4. Witty; humorous.

**ବିନ୍ତି**—ବୈଦେ. ବି—ବିନ୍ତି ( ଦେଖ )
Binti Bin-ti ( See )

**ବିନ୍ଦ୍ (ଧାତୁ)**—ସ—ଅବୟବୀଭୂତ ହେବା—
Bind (root) To be embodied in.

**ବିନ୍ଦ**—ଦେ. (ପ୍ରାଚୀନ ପଦ୍ୟ) ବି. (ସ. ବିନ୍ଦୁ)—ବିନ୍ଦୁ; କ୍ଷୁଦ୍ର ଚିହ୍ନ; ଟୋପି-
Binda Small mark; sign; dot. (ଉ—ଭାଳ ଲଲାଟେ ଚନ୍ଦ
टीप बुँद ବିନ୍ଦ, ଭୁବ ଦେଖି ପାଇବୁ ବିଭେଦ । ପ୍ରାଚୀ. ରସ-
କାରିଧ ।)

ବିନ୍ଦି—ଦେ. ବି (ସଂ. ବିନ୍ଦୁ)—ସ୍ତ୍ରୀ ଲୋକଙ୍କ ମୁଣ୍ଡର ଅଳକା ବା କେଶଗୁଚ୍ଛ-
Bindi A crescent-shaped ornament put on
মাথার চাঁদ बिंदी the hair over the brow of a woman.

ବିନ୍ଦିଆ—ଦେ. ବି—ତ୍ରିଶୂଳାକୃତି ମଶାଲରେ ଜଳିବା ପାଇଁ ପ୍ରସ୍ତୁତ
Bindiā ତେଲାକ୍ତ କନାର ବଣ୍ଡା—Circular rolls of rags
মসালের বিড়ী moistened with oil and fixed to the forks of trident-shaped torches.

ବିନ୍ଦୁ—ସଂ. ବି (ବିନ୍ଦ୍ ଧାତୁ+ସଜ୍ଞାର୍ଥେ କର୍ମ ଉ)—୧ । କଣିକା ମାତ୍ର;
Bindu କଣା—1. A very minute portion. ୨ । ତରଳ ଦ୍ରବ୍ୟର ଟୋପା—2 Drop. ୩ । ଚୂନା; କ୍ଷୁଦ୍ର ଚିହ୍ନ—3. A very small mark; spot; a dot ୪ । ଅନୁସ୍ୱାର—4. The nasal alphabet representing 'm' and represented by a dot. ୫ । ବୀର୍ଯ୍ୟ; ଶୁକ୍ର—5. Semen. ୬ । (ଜ୍ୟାମିତି) ଦୈର୍ଘ୍ୟ, ବିସ୍ତାର ଓ ବେଧରହିତ ଅବସ୍ଥିତିଜ୍ଞାପକ ଚିହ୍ନ—(Geometry) A point that has no magnitude but has only position. ୭ । ଭ୍ରୂମଧ୍ୟ—7. The middlemost point of the forehead between the eyebrows. ୮ । ହସ୍ତୀଶୁଣ୍ଡରେ ଚିତ୍ରିତ ରଙ୍ଗର ଟୋପା—8. Spots painted on the trunk of an elephant. ୯ । କପାଳରେ ଦିଆଯିବା ଚନ୍ଦନାଦିର ଟୋପା—9. Small circular mark of sandalpaste, vermillion etc put on the middle of the brow. ୧୦ । ( ନାଟକରେ ) ଗୁମ୍ଫୀଭୂତ ପରସ୍ପର ଘଟଣା—10. Inter-related incidents in a drama. ୧୧ । ପାଣ୍ଡୁଲିପିଆଦିରେ କଟା ହୋଇଥିବା ଶବ୍ଦମାନଙ୍କ ଉପରେ ଦିଆଯିବା ବିନ୍ଦୁଚିହ୍ନ, (ଯଦ୍ୱାରା ଉକ୍ତ ଶବ୍ଦମାନ କଟା ନ ହେବାର ସୂଚିତ ହୁଏ—11. (In manuscripts) Marks of points put over an erased word indicating that the word should not be erased (Apte.)
ସଂ. ବିଣ ( ବିଦ ଧାତୁ+କର୍ତ୍ତୃ ଉ ) – ୧ । ବେତ୍ତା; ଜ୍ଞାତା; ଜ୍ଞାନୀ—1. Knowing; wise (Apte.) ୨ । ଦାତା; ଦାନଶୀଳ—2. Bestowing; munificent; liberal (Apte.)

ବିନ୍ଦୁକ—ସଂ. ବି ( ବିନ୍ଦୁ+କ )—ଛୋଟବିନ୍ଦୁ—A driblet; small
Binduka drop or point.

ବିନ୍ଦୁଚୁଲିବା—ଦେ. କ୍ରି—୧ । ସାମାନ୍ୟ ବିନ୍ଦୁପାତପୂର୍ବକ ବୃଷ୍ଟିକରିବା—
Binduchāliba 1. To rain in small drops,
[ବିନ୍ଦୁପକା(କେ)ଇବା—ଅନ୍ୟରୂପ] to dribble. ୨ । ବିନ୍ଦୁ-
বিন্দু বিন্দু জল ফেলা ଟାଳିବା; ( ପୁରୁଷ ପକ୍ଷରେ ) ରେତଃପାତ
बूंदगीराना କରିବା—2. To discharge one's semen.

ବିନ୍ଦୁ ଚିତ୍ରକ—ସଂ. ବି ( ବିନ୍ଦୁ+ଚିତ୍ରକ )—୧ । ଚିତ୍ରକର—1. A
Bindu chitraka painter. ୨ । ଚିତ୍ର ମୃଗ—2. Spotted deer.

ବିନ୍ଦୁ ଜାଲ—ସଂ. ବି. ( ବିନ୍ଦୁ=କ୍ଷୁଦ୍ର ଚିହ୍ନ+ଜାଲ=ସମୂହ )—୧ ।
Bindu jāla ବିନ୍ଦୁ ସମୂହ—1. A number of drops.
( ବିନ୍ଦୁ ଜାଲକ—ଅନ୍ୟରୂପ ) ୨ । ହସ୍ତୀର ଗଣ୍ଡ ସ୍ଥଳରେ ଥିବା କ୍ଷୁଦ୍ର କ୍ଷୁଦ୍ର ଚିହ୍ନ; ପଦ୍ମକ—2. The white or reddish spots on the temples of an elephant. ୩ । ହାତୀର ମୁଖ ଓ ଶୁଣ୍ଡରେ ଚିତ୍ରିତ ବିନ୍ଦୁସମୂହ—3. Marks of coloured paint on the trunk and face of an elephant (Apte).

ବିନ୍ଦୁ ଟଳିବା—ଦେ. ବି—ରେତଃ ପାତ, ହେବା—The discharge
Bindu ṭaliba বিন্দু পড়া; বিন্দুপাত of one's semen
बिंदु टलना

ବିନ୍ଦୁ ଟାଳିବା—ଦେ. କ୍ରି—ରେତଃପାତ କରିବା—To discharge
Bindu ṭāliba বিন্দু ঢালা बिंदुटालना one's semen.

ବିନ୍ଦୁ ଧାରଣ—ସଂ. ବି—(୬ଷ୍ଠୀ ତତ୍, ବିନ୍ଦୁ+ଧାରଣ)—ବ୍ରହ୍ମଚର୍ଯ୍ୟ
Bindu dhārṇa ବ୍ରତ ଅବଲମ୍ବନପୂର୍ବକ ବୀର୍ଯ୍ୟକୁ ଶରୀରରେ ରକ୍ଷଣ-The act of restraining the discharge of semen by observing continence.

ବିନ୍ଦୁ ପତନ—ସଂ. ବି—(୬ଷ୍ଠୀ ତତ୍; ବିନ୍ଦୁ+ପତନ)—୧ । ଜଳୀୟ
Bindu patana ବସ୍ତୁର ଟୋପାମାନ ପଡ଼ିବା—1. The fall-
(ବିନ୍ଦୁପାତ—ଅନ୍ୟରୂପ) ing of a liquid by drops. ୨ । ଛୋଟ ଛୋଟ ଟୋପାରେ ବର୍ଷା ହେବା—2. Raining in drops; dribble. ୩ । ଶୁକ୍ରକ୍ଷରଣ—3. The discharge of semen.

ବିନ୍ଦୁ ପତ୍ର—ସଂ. ବି—(ବହୁବ୍ରୀହି; ବିନ୍ଦୁ ଅଛି ପତ୍ରରେ ଯାହାର)—
Bindu patra ଭୂର୍ଜ ବୃକ୍ଷ—The birch tree.

ବିନ୍ଦୁ ପାତନ—ସଂ. ବି—(୬ଷ୍ଠୀ ତତ୍; ବିନ୍ଦୁ+ପାତନ)—ବୀର୍ଯ୍ୟପାତନ-
Bindu pātana The letting of one's semen to be discharged; the discharge of one's semen.

ବିନ୍ଦୁ ବିନ୍ଦୁ—ଦେ. କ୍ରି. ବିଣ—୧ । ଟୋପା ଟୋପା ହୋଇ—1. By
Bindu bindu বিন্দু বিন্দু drops,
୨ । ଅଳ୍ପ ଅଳ୍ପ—2. In driblets. ୩ । ଗୋଲ ଚୋପି ମାନଙ୍କରେ—3. In circular spots.

ବିନ୍ଦୁବିସର୍ଗ—ଦେ. ବି—କୌଣସି ଘଟଣାର କ୍ଷୁଦ୍ରାତିକ୍ଷୁଦ୍ର ସମ୍ବାଦ—
Bindu bisarga Any slightest information about
বিন্দুবিসর্গ any matter. (ଯଥା—ମୁଁ ଏ କଥାର ବିନ୍ଦୁ ବିସର୍ଗ ଜାଣେ ନାହିଁ । ) ସଂ. ବି—୧ । କୌଣସି ଲେଖାରେ ଅକ୍ଷରମାନଙ୍କରେ ଥିବା ବିନ୍ଦୁ (ଅନୁସ୍ୱାର) ଓ ବିସର୍ଗ ଚିହ୍ନମାନ—1. The dots and dashes in a writing. ୨ । ଅନୁସ୍ୱାର ଓ ବିସର୍ଗର ଚିହ୍ନମାନ—2. The signs of Anuswāra and bisarga.

ବିନ୍ଦୁସର(ରଃ)—ସଂ. ବି—(ନାମ)—ତିବ୍ବତ ଦେଶାନ୍ତର୍ଗତ ପ୍ରସିଦ୍ଧ ଜଳାଶୟ-
Bindu sara(rah) An inland lake in Tibet.
(ବିନ୍ଦୁ ସରୋବର; ବିନ୍ଦୁ ହ୍ରଦ—ଅନ୍ୟରୂପ) [ଦ୍ର—ଏହା 'ମୈନାକ ପର୍ବତ ସମୀପରେ ଥିବା ମହାଭାରତରେ ଉଲ୍ଲିଖିତ

ଅଛି, ଯଥା—ମଇନାକ ପର୍ବତେ ହୋଇଲେ ପ୍ରବେଶ । ××× ତାହା ସମୀପେ ଯେଉଁ ବିନ୍ଦୁସର ଅଛି । କୃଷ୍ଣସିଂହ. ମହାଭାରତ. ସଭା । ଭଗୀରଥ ଗଙ୍ଗାଙ୍କୁ ପୃଥିବୀରେ ଅବତରଣ କରାଇବା ପାଇଁ ଏହିଠାରେ ତପସ୍ୟା କରିଥିଲେ ।]

**ବିନ୍ଦୁ ସରୋବର**—ସଂ. ବି. (ନାମ)—ଭୁବନେଶ୍ୱରରେ ଥିବା ସ୍ୱନାମପ୍ରସିଦ୍ଧ ଜଳାଶୟ—A tank in Bhubaneśwra.
Bindu sarobara
ବିନ୍ଦୁସାଗର } ଅନ୍ୟରୂପ
ବିନ୍ଦୁହ୍ରଦ }
[ ଦ୍ର—ଏକାମ୍ର ପୁରାଣ ମତରେ ସବୁ ତୀର୍ଥରୁ ଜଳବିନ୍ଦୁମାନ ସଂଗୃହୀତ ହୋଇ ଏ ଜଳାଶୟରେ ଅଛି । ଫଳତଃ ଏ ଜଳରେ ନେଳ ଉଦ୍ଭିଦ କଣାମାନ ପୂର୍ଣ୍ଣ ହୋଇଅଛି ଏବଂ ଦେଖାଯାଇଅଛି ଯେ ଏ ଜଳକୁ ଦଶ ବାର ପ୍ରସ୍ଥ କାଚରେ ଛାଣିଲେ ସୁଦ୍ଧା ଏ ନେଳ ବିନ୍ଦୁ ଚଲାବିନ୍ଦୁରେ ପରିଣତ ହୁଏ, କିନ୍ତୁ ପାଣି ବିନ୍ଦୁମୟ ଦେଖାଯାଉଥାଏ । ଏଠାରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କ ଦ୍ୱାରା ଚନ୍ଦନଯାତ୍ରା ଉତ୍ସବ କରାଯାଏ । ଏ ହ୍ରଦର ମଝିରେ ଗୋଟିଏ ବଡ଼ବେଦୀ ଓ ଚନ୍ଦନ ମଣ୍ଡପ ଅଛି । ଏ ହ୍ରଦ କ୍ରମଶଃ ପଙ୍କରେ ପୋତି ହୋଇ ଯାଉଛି । ]

**ବିନ୍ଦୁସାର**—ଦେଃ ବି. (ନାମ)—ମଗଧର ନରପତି ଅଶୋକଙ୍କର ପିତା—The father of King Asoka.
Bindusāra
বিন্দুসার **बिन्दुसार**

**ବିନ୍ଧନି**—ପ୍ରାଦେ. (ସମ୍ବଲପୁର) ବି (ସଂ. ବେଧନୀ)—ଲିହଣ; କହାଣ—Iron chisel.
Bindh-ni

**ବିନ୍ଧ**—ଦେ, ବି (ବ୍ୟଧ୍ ଧାତୁ=ବିନ୍ଧ କରିବା)—ଛିଦ୍ର; କଣା; ଫୋଡ଼—Bore; chink; hole; perforation.
Bindha
বিঁধ, ছেঁদা **छेद**

**ବିନ୍ଧ କରିବା**—ଦେ, କ୍ରି—ଫୋଡ଼ିବା; ଛିଦ୍ର କରିବା—To bore through a thing.
Bindha kariba
বিঁধা, ছেঁদা করা **छेदना**

**ବିନ୍ଧନ**—ଦେ. ବି (ସଂ· ବେଧନ)—ରତି ସମୟରେ ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ପରସ୍ପର ଆକର୍ଷଣ—Mutual drawing or attracting of each other during coition.
Bindhaṇa

**ବିନ୍ଧଣା**—ଦେ. ବିଣ (ସଂ. ବ୍ୟଧ ଧାତୁ)—୧ । ମାରଣା (ଗାଈ, ବଳଦ ଆଦି); ଯେଉଁ ଶୃଙ୍ଗଯୁକ୍ତ ପଶୁ ଶୃଙ୍ଗ ଦ୍ୱାରା ମନୁଷ୍ୟଙ୍କୁ ଭୁସେ—1. Given to goring people with horns (said of a horned animal). ୨ । (ଲକ୍ଷଣାର୍ଥ) ଯେଉଁ ଲୋକ ନିଷ୍ଠୁର ବାକ୍ୟ କହେ; କଟୁଭାଷୀ—2. Of foul speech ପ୍ରାଦେ. (କଳାହାଣ୍ଡି) ବି (ସଂ. ବେଧନାସ୍ତ୍ର) ବଟାଳି—Chisel.
Bindhaṇā
যে শিংগ দিয়ে ফোড়ে **मरखन्ना, मरकहा**
[ବିନ୍ଧ(ନ୍ଧୁ)(ନ୍ଧେ)ଣୀ—ସ୍ତ୍ରୀ]

**ବିନ୍ଧ(ନ୍ଧୁ; ନ୍ଧେ)ଣୀ**—ଦେ. ବି. (ସଂ. ବେଧନୀ)—ତାତଲା ଲୁହାରେ ଛିଦ୍ର କରିବା ପାଇଁ ବ୍ୟବହୃତ ସୂଚୀବିଶେଷ—An iron drill. ଦେ· ବିଣ—'ବିନ୍ଧଣା'ର ସ୍ତ୍ରୀ ଲିଙ୍ଗ—Feminine of 'Bindhaṇā'.
Bindha(ndhu; ndhe)ṇī
বিঁধনী **बरमा**

**ବିନ୍ଧ ବୁଜିବା**—ଦେ. କ୍ରି—ଛିଦ୍ର ବନ୍ଦ କରିବା—To stop a hole.
Bindha bujibā
ছেঁদা বন্দ করা, ছেঁদা বুজান **छेद बन्द करना**

(ବିନ୍ଧ ବୁଜି ହେବା, ବିନ୍ଧ ମରିବା—ବିଶେଷ୍ୟ ରୂପ)
(ବିନ୍ଧ ମାରିବା—ଅନ୍ୟରୂପ)

**ବିନ୍ଧସ**—ସଂ. ବି (ବ୍ୟଧ୍ ଧାତୁ + କର୍ମ ଅସ)—ଚନ୍ଦ୍ର—The moon.
Bindhasa

**ବିନ୍ଧା**—ଦେ. ବି. ( ସଂ. ବ୍ୟଧ୍ ଧାତୁ )—୧ । ବିନ୍ଧିବା; ଶୃଙ୍ଗଦ୍ୱାରା ଭେଦ କରଣ—1. Goring with the horns. ୨ । ବ୍ରଣାଦିର ବ୍ୟଥା—2. Aching pain of boils. ୩ । ଫୋଡ଼ିବା; ଛିଦ୍ରକରଣ—3. Act of drilling or piercing. ୪ । ଶରନିକ୍ଷେପ କରିବା—4. Throwing of a dart. ଦେ.ବିଣ—ବିନ୍ଧ ହୋଇଥିବା—Gored.
Bindhā
বিদ্ধম **शींगमारना**
ব্যথা; বিঁধা **टीस**
টনটনানী **छेदना** বিঁধা **वेधना**

**ବିନ୍ଧା ଛିଟ୍(ଟି)କା**—ଦେ. ବି ( ସହରର ଶବ୍ଦ )—ଦେହ ବଥାଇବା ବା ବିନ୍ଧିବା ଓ ଜ୍ୱାଳାମୟ ହେବା—Aching and burning sensation in the body.
Bindhā chhiṭ-(ṭi)kā
ବିନ୍ଧାଜଳା }
ବିନ୍ଧାପୋଡ଼ା } ଅନ୍ୟରୂପ
ବିନ୍ଧାଛିଟା }
বেদনা; টনটনানি **टीसटास**

**ବିନ୍ଧାଣ**—ଦେ. ବି ( ସଂ. ବେଧନ )—ମଲ୍ଲଯୁଦ୍ଧ—Wrestling. [ଉ—ସେ ବି ଶିଷ୍ୟଗଣ କରନ୍ତି ବିନ୍ଧାଣ ବଳବାନ କସାକସି । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]
Bindhāṇa
কুস্তী **कुस्ती**

**ବିନ୍ଧାଣି**—ଦେ. ବି—୧ । କାରିଗର—1. A mechanic; an artist. ୨ । ବିନ୍ଧକାରୀ ବ୍ୟକ୍ତି—2. A borer.
Bindhāṇi
কারিগর **बिंधीया**

**ବିନ୍ଧାଣି ରତ୍ନ**—ପ୍ରାଦେ. ( ଗଡ଼ଜାତ ) ବି—ଉତ୍କୃଷ୍ଟ କାରିଗରଙ୍କୁ ରାଜପ୍ରଦତ୍ତ ଉପାଧିବିଶେଷ—A title given to an excellent artist.
Bindhāṇi ratna

**ବିନ୍ଧାଣି ରାଇ(ଏ, ୟ)**—ପ୍ରାଦେ ( ଗଡ଼ଜାତ ) ବି—ବଢ଼େଇମାନଙ୍କ କୁଳାଧିକାରୀ ବ୍ୟକ୍ତିର ଉପାଧିବିଶେଷ—A title of a headman amongst carpenters.
Bindhāṇi rāi(e, ya)

**ବିନ୍ଧାବିନ୍ଧି**—ଦେ. ବି—୧ । ପରସ୍ପରକୁ ବିନ୍ଧିବା—1. Mutual goring. ୨ । ( ସହରର ) ଶରୀରର ଅନେକ ସ୍ଥାନ ବଥାଇବା—2. Aching sensation in many parts of the body.
Bindhābindhi
বিঁধাবিঁধি **टींसटास**

**ବିନ୍ଧିଣି**—ଦେ. ବି ( ବଣିଆ ଶବ୍ଦ )—ଅଳଙ୍କାର ଉପରେ ପଥର ବସାଇବା କାମ—Fixing of gems on ornaments. ପ୍ରାଦେ· ( ସମ୍ବଲପୁର ଓ ଗଡ଼ଜାତ ) ବି—ଲିହଣ—Iron chisel.
Bindhiṇi
পাথর বসান

**ବିନ୍ଧିବା**—ଦେ. କ୍ରି (ସଂ.ବ୍ୟଧ୍ ଧାତୁ)—୧ । (ଅକର୍ମକ) (ବ୍ରଣାଦି) ବ୍ୟଥା କରିବା—1. To ache. ୨ । (ସକର୍ମକ) କାଠ ଆଦିରେ ଛିଦ୍ର କରିବା—2. To bore through wood etc. ୩ । ଫୁଟାଇବା; ଫୋଡ଼ିବା—3. To pierce. ୪ । ଶୃଙ୍ଗଦ୍ୱାରା ଆଘାତ କରିବା—4. To gore. ୫ । ଶର ପ୍ରୟୋଗ କରିବା—5. To shoot an arrow; to use the bow. [ ଉ—ଟାଣେ ବିନ୍ଧେ ଶମ୍ଭୁ ସଦୃଶ କଳମ୍ବୁ ଭୂମିକୁ ଏକା ଅଛନ୍ତି । କବିସୂର୍ଯ୍ୟ. ବିଶୋରଭଞ୍ଜ. ୨ ଗୀତ ।]
Bindhibā
বেদনাকরা **बंधना**
বিঁধা
শিংগেফোড়া; গুঁতান
বিঁধা **मारना**

**ବିନ୍ଧ୍ୟ**—ସଂ. ବି—୧ । ( ବି=ବିରୁଦ୍ଧ+ଧ୍ୟୈ ଧାତୁ=ଚିନ୍ତା କରିବା+ Bindhya ଅ; କାପାତନ । ପୁରାଣମତେ ସେ ସୂର୍ଯ୍ୟଙ୍କ ଗତିରୋଧ କରି ତାହାଙ୍କଠାରୁ ଉନ୍ନତ ହେବା ପାଇଁ ଚିନ୍ତା କରିଥିଲେ )— ଭାରତବର୍ଷର ମଧ୍ୟଦେଶରେ ଅବସ୍ଥିତ ଗିରିମାଳା—1. The Bindhya range of mountains in the middle of India. [ ଦ୍ର—ଏହା ଦାକ୍ଷିଣାତ୍ୟକୁ ଆର୍ଯ୍ୟାବର୍ତ୍ତରୁ ପୃଥକ୍ କରିଅଛି । ଆର୍ଯ୍ୟମାନେ ବିନ୍ଧ୍ୟାଚଳର ଉତ୍ତରରେ ରହୁଥିଲେ ଏବଂ ଅନାର୍ଯ୍ୟମାନେ ଦକ୍ଷିଣରେ ରହୁଥିଲେ । ଏହା ପୌରାଣିକ ସପ୍ତକୁଳାଚଳ ମଧ୍ୟରୁ ଏକତମ । ପୁରାଣରେ କଥିତ ଅଛି ଯେ, ବିନ୍ଧ୍ୟଗିରି ମେରୁପର୍ବତ ପ୍ରତି ଈର୍ଷାନ୍ୱିତ ହୋଇ, ସୂର୍ଯ୍ୟ ପ୍ରତିଦିନ ମେରୁକୁ ପ୍ରଦକ୍ଷିଣ କରିବା ପରି ଏ ପର୍ବତକୁ ପ୍ରତିଦିନ ପ୍ରଦକ୍ଷିଣ କରିବେ ବୋଲି ସୂର୍ଯ୍ୟଙ୍କୁ ଅନୁରୋଧ କଲେ; କିନ୍ତୁ ସୂର୍ଯ୍ୟ ସେଥିରେ ସ୍ୱୀକୃତ ନ ହେବାରୁ ସୂର୍ଯ୍ୟଙ୍କ ପଥରୋଧ କରିବା ଉଦ୍ଦେଶ୍ୟରେ ବିନ୍ଧ୍ୟଗିରି ଆକାଶକୁ ବଢ଼ିବାକୁ ଲାଗିଲେ । ଏଥିରେ ଦେବତାମାନେ ଭୀତ ହୋଇ ଅଗସ୍ତ୍ୟ ଋଷିଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ଅଗସ୍ତ୍ୟ ବିନ୍ଧ୍ୟପର୍ବତଙ୍କ ଗୁରୁ ଥିବାରୁ ସେ ବିନ୍ଧ୍ୟ ନିକଟରେ ଉପସ୍ଥିତ ହେବାରୁ ବିନ୍ଧ୍ୟ ତାଙ୍କୁ ଦେଖି ମସ୍ତକ ନୁଆଁଇଲେ । ଅଗସ୍ତ୍ୟ ବିନ୍ଧ୍ୟଙ୍କୁ କହିଲେ ଆମ୍ଭେ ଦକ୍ଷିଣଦିଗକୁ ତୀର୍ଥଯାତ୍ରା କରୁଅଛୁଁ, ତେଣୁ ଆମ୍ଭେ ଫେରି ଆସିବା ପର୍ଯ୍ୟନ୍ତ ତୁମ୍ଭେ ଏହିପରି ନତମସ୍ତକ ହୋଇ ରହିଥାଅ । ଗୁରୁଆଦେଶ ପାଳନ କରି ବିନ୍ଧ୍ୟଗିରି ମସ୍ତକ ଅବନତ କଲେ । ଅଗସ୍ତ୍ୟ ଆଉ ଦକ୍ଷିଣରୁ ଫେରି ଆସିଲେ ନାହିଁ ଓ ବିନ୍ଧ୍ୟ ସେହିଦିନଠାରୁ ନତମସ୍ତକ ହୋଇ ରହିଲେ, ଆଉ ବଢ଼ିଲେ ନାହିଁ ( Apte ) ] ୨ । (ବ୍ୟଧ୍ ଧାତୁ+କର୍ତ୍ତୃ ଅ; କାପାତନ)—ବ୍ୟାଧ—3. A hunter ( Apte ).

( ବିନ୍ଧ୍ୟଗିରି, ବିନ୍ଧ୍ୟଗିରିମାଳା, ବିନ୍ଧ୍ୟପର୍ବତ, ବିନ୍ଧ୍ୟାଚଳ, ବିନ୍ଧ୍ୟାବଳୀ—ଅନ୍ୟରୂପ )

**ବିନ୍ଧ୍ୟକୂଟ**—ସଂ. ବି ( ବିନ୍ଧ୍ୟ+କୁଟ୍ ଧାତୁ=ଅପ୍ରସନ୍ନ ହେବା+କର୍ତ୍ତୃ Bindhyakūṭa ଅ )—ଅଗସ୍ତ୍ୟ ମୁନି—Sage Agastya ( ବିନ୍ଧ୍ୟକୂଟନ—ଅନ୍ୟରୂପ ) who was the spiritual preceptor of the Bindhya hills.

**ବିନ୍ଧ୍ୟବାସିନୀ**—ସଂ. ବିଣ. ସ୍ତ୍ରୀ—ବିନ୍ଧ୍ୟବାସୀର ସ୍ତ୍ରୀଲିଙ୍ଗ—Feminine Bindhyabāsinī form of Bindhyabāsī. ସଂ. ବି. ସ୍ତ୍ରୀ—୧ । ଦୁର୍ଗା—1. Durgā. ୨ । ବିନ୍ଧ୍ୟାଚଳରେ ପ୍ରତିଷ୍ଠିତା ଦୁର୍ଗାଦେବୀ—2. The name of an idol of Durgā worshipped in the Bindhya hills.

**ବିନ୍ଧ୍ୟବାସୀ**—ସଂ. ବିଣ. ପୁଂ—ବିନ୍ଧ୍ୟ ପର୍ବତରେ ବାସ କରୁଥିବା—Bindhyabāsī Living in the Bindhya hills. (ବିନ୍ଧ୍ୟବାସିନୀ—ସ୍ତ୍ରୀ) ସଂ. ବି—ମୁନିବିଶେଷ; ବ୍ୟାଡ଼ିମୁନି—Name of a sage. [ ଦ୍ର—ଏ ପ୍ରସିଦ୍ଧ ସଂସ୍କୃତ ବୈୟାକରଣିକ ଥିଲେ । ]

**ବିନ୍ଧ୍ୟବିରୋଧୀ**—ଦେ. ବି—ଅଗସ୍ତ୍ୟ ମୁନି—Sage Agastya. (ଉ—Bindhyabirodhī ବିଚକ୍ଷଣେ ଚୂଡ଼ରେ ହୋଇଥିଲା, ବିନ୍ଧ୍ୟବିରୋଧୀ ସମୁଦ୍ର ପିଇଲା—ଭଞ୍ଜ· ବୈଦେହୀଶବିଳାସ । ) [ ଦ୍ର—ଅଗସ୍ତି ଚାଲେ ଦୋଳୀ ଦ୍ରଷ୍ଟବ୍ୟ । ]

**ବିନ୍ଧ୍ୟ ଭୂଲୋକ**—ଦେ. ବି—ଅଗସ୍ତ୍ୟ—Sage Agastya. (ଉ—Bindhya bhūloka ବିନ୍ଧ୍ୟଭୂଲୋକ ସମେ ଜହ୍ନି, କୁମ୍ଭାକ୍ଷଗୃହ ଭୂଷା ଦେଇ—ଭଞ୍ଜ· ବୈଦେହୀଶବିଳାସ । )

**ବିନ୍ଧ୍ୟା**—ସଂ. ବି—୧ । ଲବଲୀ; ନଅରକୋଳ ଗଛ ( ହ. ଶ )—Bindhyā 1. The Labalī tree. ୨ । ଛୋଟ ଅଳାଇଚ—2. Small cardamom ( Apte ).

**ବିନ୍ଧ୍ୟାଟବୀ**—ସଂ. ବି ( ବିନ୍ଧ୍ୟ+ଅଟବୀ )—ବିନ୍ଧ୍ୟପର୍ବତସ୍ଥ ଅରଣ୍ୟ—Bindhyāṭabī The forest in the Bindhya hills. ( ବିନ୍ଧ୍ୟାରଣ୍ୟ—ଅନ୍ୟରୂପ )

**ବିନ୍ଧ୍ୟାବଳୀ**—ସଂ. ବି. ସ୍ତ୍ରୀ—୧ । ଅସୁର ବାଣରାଜାଙ୍କ ମାତା—1. The Bindhyābaḷī mother of demon King Bāṇa. ୨ । ବିନ୍ଧ୍ୟଗିରିମାଳା—2. The Bindhya hills.

**ବିନ୍ନ**—ସଂ. ବିଣ ( ବିଦ୍ ଧାତୁ+କର୍ମ· ତ )—୧ । ପ୍ରାପ୍ତ—1. Got; Binna obtained. ୨ । ବିଚାରିତ—2. Considered; (ବିନ୍ନା—ସ୍ତ୍ରୀ) judged. ୩ । ବିବାହିତ—3. Married. ୪ । ଅବସ୍ଥିତ—4. Situated. ୫ । ଜ୍ଞାତ—5. Known. ୬ । ପରିଚିତ—6. Acquainted with. ୭ । ଆଲୋଚିତ—7. Discussed ( Apte ).

**ବିନ୍ୟସ୍ତ**—ସଂ. ବିଣ (ବି+ନି+ଅସ୍ ଧାତୁ+କର୍ମ. ତ)—ସଜ୍ଜିତ; ଯଥା— Binyasta କ୍ରମରେ ରଚିତ; ଖଚିତ—1. Arranged in order; methodically arranged; paved; inlaid. ୨ । ସ୍ଥାପିତ—2 Set; placed; put down; fixed ୩ । କ୍ଷିପ୍ତ—3. Scattered; thrown. ୪ । ଅର୍ପିତ—4. Deposited; presented. ୫ । ହସ୍ତରେ ଦତ୍ତ; ନ୍ୟସ୍ତ—5. Delivered ( Apte ).

**ବିନ୍ୟାସ**—ସଂ. ବି ( ବି+ନି+ଅସ୍ ଧାତୁ+ଭାବ. ଅ )—୧ । ସଜ୍ଜା; Binyāsa ରଚନା—1. Orderly arrangement, ୨ । ମନ୍ତ୍ରୋଚ୍ଚାରଣପୂର୍ବକ ହୃଦୟାଦିରେ ଅଙ୍ଗୁଳ ଅର୍ପଣ—2 The touching of the heart, head etc while uttering a Mantra. ୩ । ରକ୍ଷଣ; ସ୍ଥାପନ—3. Depositing. ୪ । ଗ୍ରନ୍ଥନ—4. Laying down; masonry. ୫ । ଅର୍ପଣ—5. Entrusting; making over. ୬ । (+କର୍ମ ଅ) ନ୍ୟସ୍ତବସ୍ତୁ—7. A deposit (Apte). ୮ । ସମୂହ—8. Collection; assemblage (Apte). ୯ । (+ଅଧିକରଣ. ଅ) ଯେଉଁ ପାତ୍ରରେ ବା ସ୍ଥାନରେ କୌଣସି ବସ୍ତୁ ବିନ୍ୟସ୍ତ ହୁଏ, ଆଧାର—9, A site; receptacle.

ବିନ୍ୟାସିବା—ଦେ. (ପଦ୍ୟ) କ୍ରି (ସଂ. ବିନ୍ୟାସ)—୧ । ସ୍ଥାପନ କରିବା; Binyāsibā ଥୋଇବା—1. To place; to lay. विन्यासि [ ଉ—କଚ-ପଦ୍ମେ ଗଣ୍ଡମଣ୍ଡଳ ବିନ୍ୟାସି କରୁଥାଇ बिनऽसना କାଲା ଧ୍ୟାନ । ଗ୍ରନ୍ଥନାଥଂ ଯଯାଞ୍ଚ ।] ୨ । (ମନ) ବଳାଇବା—2 To hanker after; to be bent upon. [ ଉ—ବିଧି କରିଛ ନଶାନା ଗ୍ରମ ବିନା ବିନ୍ୟାସିବ ନାହିଁ ଚିତ୍ତ ଆନେ ଗୋ ବୈଦେହି । ଉଙ୍. ବୈଦେହୀଶବିଳାସ ।]

ବିପକ୍ତ୍ରିମ—ସଂ. ବିଣ (ବି+ପଚ୍ ଧାତୁ+ଜାତାର୍ଥେ, ତ୍ରିମ)—୧ । ପାକ Bipaktrima ଦ୍ୱାରା ଜାତ; ଯାହା ପାକ କରିବାରେ ପ୍ରସ୍ତୁତ ହୁଏ—1. Obtained by cooking; cooked. ୨ । ସୁପରିପକ୍ୱ—2. Well ripened. ୩ । ସୁଜୀର୍ଣ୍ଣ—3. Well digested.

ବିପକ୍ୱ—ସଂ. ବିଣ (ବି=ବିଶେଷ+ପଚ୍ ଧାତୁ+କର୍ତ୍ତୃ. ତ)—୧ । Bipakwa ସୁପକ୍ୱ; ପରିପକ୍ୱ—1. Well ripened; well (ବିପକ୍ୱତା—ବି) matured. ୨ । ବଳାଯାଇଥିବା—2. Twisted. ୩ । ବକ୍ର—3. Oblique. ୪ । ବୃଦ୍ଧିଅବସ୍ଥା ପ୍ରାପ୍ତ—4. Well developed. ୫ । ଅପରିପକ୍ୱ; କଞ୍ଚା (ବ୍ର. ଶ)—5. Unripe.

ବିପକ୍ଷ—ସଂ. ବି (ବି=ବିରୁଦ୍ଧ+ପକ୍ଷ=ପାର୍ଶ୍ୱ, ସହାୟ)—୧ । ଶତ୍ରୁ—Bipaksha 1. Enemy. ୨ । ବିରୁଦ୍ଧପକ୍ଷୀୟ ବ୍ୟକ୍ତି—2. Adversary; antagonist. ୩ । ବିବାଦରେ ଅପର ପକ୍ଷ; ପ୍ରତିବାଦୀ-3. The opposite party in a dispute ୪ । ନ୍ୟାୟ ଆଦିରେ ଏକ ଯୁକ୍ତିର ବିରୁଦ୍ଧ ଯୁକ୍ତି—4. The opposite side of an argument. ୫ । ଶତ୍ରୁର ଦଳ-5. The party of one's enemy. ୬ । କୌଣସି ଉକ୍ତିର ବା ଅଭିଯୋଗର ଖଣ୍ଡନ (ବ୍ର.ଶ)—6. Refutation or reply to a saying or charge. ୭ । (ବ୍ୟାକରଣ) ବାଧକ ନିୟମ, କୌଣସି ନିୟମର ବିରୁଦ୍ଧ ବ୍ୟବସ୍ଥା (ବ୍ର. ଶ)—7. Opposition to a grammatical rule. ୮ । (୬ଷ୍ଠୀ ତତ୍; ବି+ପକ୍ଷ )—ପକ୍ଷୀର ଡେଣା—8. Bird's wing.

[ବିପକ୍ଷତା(ତ୍ୱ)—ବି] ସଂ. ବିଣ—୧ । ପକ୍ଷରହିତ—1 Wingless. ୨ । ଶତ୍ରୁ ପକ୍ଷୀୟ—2. Adverse; belonging to the enemy's camp. ୩ । ଶତ୍ରୁତାପନ୍ନ—3. Hostile; inimical. ୪ । ଅପର ପକ୍ଷୀୟ—4. Belonging to the opposite party; antagonistic. ୫ । ଯାହାର କେହି ସହାୟକ ନାହିଁ; ଅସହାୟ (ବ୍ର. ଶ)—5. Helpless. ୬ । ପ୍ରତିଦ୍ୱନ୍ଦ୍ୱୀ—6. Rival.

ବିପକ୍ଷତାଚରଣ—ସଂ. ବି—୧ । ଶତ୍ରୁତା କରିବା—1 Committing Bipakshatācharaṇa acts of hostility; acting in opposition. ୨ । ପ୍ରତିଦ୍ୱନ୍ଦ୍ୱିତା କରିବା—2. Emulating; rivalling.

ବିପକ୍ଷତାଚାରୀ—ସଂ. ବିଣ. ପୁଂ—ଯେ ଶତ୍ରୁତାଚରଣ କରେ—Acting Bipakshatāchārī in opposition to; committing (ବିପକ୍ଷତାଚାରିଣୀ—ସ୍ତ୍ରୀ) hostilities.

ବିପକ୍ଷ ଦଳ—ଦେ. ବି—ଅପରପକ୍ଷୀୟ ବ୍ୟକ୍ତି ସମୂହ; ବିରୁଦ୍ଧପକ୍ଷ—Bipaksha daḷa Opposite party.

ବିପକ୍ଷପାତ—ସଂ. ବିଣ (ବି+ପକ୍ଷପାତ)—ଅପକ୍ଷପାତ; ଯେ କୌଣସି ପକ୍ଷ Bipakshapāta ଧରେ ନାହିଁ—Impartial.

ବିପକ୍ଷୀ—ସଂ. ବିଣ. ପୁଂ—୧ । ଅପରପକ୍ଷୀୟ—1. Belonging to Bipakshī the adverse party. ୨ । ପ୍ରତିଦ୍ୱନ୍ଦ୍ୱୀ—(ବିପକ୍ଷୀୟ—ଅନ୍ୟରୂପ) (ବିପକ୍ଷିଣୀ, ବିପକ୍ଷୀୟା—ସ୍ତ୍ରୀ)—2. Rival.

ବିପଚ୍ଛୂନ୍ୟ—ସଂ. ବିଣ ( ୩ୟା ତତ୍; ବିପଦ୍+ଶୂନ୍ୟ )—ବିପଦମୁକ୍ତ—Bipachchhūnya Free from danger or disaster.

ବିପଜ୍ଜନକ—ସଂ. ବିଣ ( ଉପପଦ ତତ୍; ବିପଦ୍+ଜନକ)—ଯାହା ବିପଦ Bipajjanaka ଥାଏ—Dangerous; disastrous; producing calamity.

ବିପଜ୍ଜନିତ—ସଂ. ବିଣ (ବିପଦ୍+ଜନିତ)—ଆପଦରୁ ଉତ୍ପନ୍ନ; ବିପଦର Bipajjanita ଫଳରୂପେ ଘଟିବା—Arising from misfortune or disaster.
ବିପଜ୍ଜନ୍ୟ } ଅନ୍ୟରୂପ
ବିପଜ୍ଜାତ

ବିପଞ୍ଚୀ—ସଂ ବି ( ବି+ପଚ୍ ଧାତୁ ଣିଚ୍; ପଞ୍ଚ ଧାତୁ=ଶବ୍ଦ ଉତ୍ପାଦନ Bipañchī କରିବା+କର୍ତ୍ତୃ. ଅ+ସ୍ତ୍ରୀ. ଈ)—୧ । ବୀଣା—(ବିପଞ୍ଚିକା—ଅନ୍ୟରୂପ) 1. Harp; lute. ୨ । ବଂଶୀ-2. Flute. ୩ । (+ଭାବ. ଅ) ଆମୋଦ ପ୍ରମୋଦ; କ୍ରୀଡ଼ାକୌତୁକ; କେଳି (ବ୍ର. ଶ)—3. Play; sports; pastime.

ବିପଣ—ସଂ. ବି (ବି+ପଣ୍ ଧାତୁ=ବଣିବା; ବିକିବା+ଭାବ. ଅ)—Bipaṇa ୧ । ବିକିବା; ବିକ୍ରୟ; ବିକା—1. Sale. ୨ । ବିକ୍ରୟର ଚୁକ୍ତି—2. Contract of sale.

ବିପଣନ—ସଂ. ବି (ବି+ପଣ୍ ଧାତୁ+ଭାବ. ଅନ)—ବିକ୍ରୟ; ବିକିବା; Bipaṇana ବିକା—Selling.

ବିପଣି—ସଂ. ବି (ବି+ପଣ୍ ଧାତୁ+ଅଧିକରଣ ଇ)—Bipaṇi ୧ । ଦୋକାନ—1. Shop; a stall. ୨ । ହାଟ; ପଣ୍ୟଶାଳିକା—2. Fair. ୩ । ବଜାର—3. Bazar; row of shops.

ବିପଣୀ—ସଂ. ବି. ପୁଂ ( ବିପଣ+ଇନ୍; ୧ମା. ୧ବ)—୧ । ବଣିକ୍; Bipaṇī ବ୍ୟବସାୟୀ—1. Trader. ୨ । ଦୋକାନୀ—2. Shopkeeper. ସଂ. ବି. ସ୍ତ୍ରୀ - 'ବିପଣି' (ଦେଖ)—Bipaṇi (See).

ବିପତ୍କାରକ—ସଂ. ବିଣ (ବିପଦ୍+କାରକ)—ବିପଜ୍ଜନକ; ଯାହା ବିପଦ Bipat-kāraka ଘଟାଏ—Bringing about calamity.

ବିପତ୍କାଳ—ସଂ. ବି (୬ଷ୍ଠୀ ତତ୍; ବିପଦର କାଳ; ସନ୍ଧିରେ 'ଦ'ଠାରେ Bipat-kāla 'ତ'—୧ । ଆପତ୍କାଳ; ଆପଦ ଘଟିବା ସମୟ—1. Time of calamity. ୨ । ଦୁର୍ଦ୍ଦଶା ଘଟିବା ଦିନ—2. A day of danger.

**ବିପତ୍ପାତ**—ସଂ. ବି (ବିପଦ୍+ପାତ; ୬ଷ୍ଠୀ ତତ୍, ସନ୍ଧିରେ ଦ=ତ)—
Bipat-pāta ଆପଦ୍ ଘଟିବା—The happening of a calamity or mishap.

**ବିପତ୍ପ୍ରତୀକାର**—ସଂ. ବି (୬ଷ୍ଠୀ ତତ୍; ବିପଦ୍+ପ୍ରତୀକାର)—ବିପଦରୁ
Bipat-pratīkāra ଉଦ୍ଧାର ପାଇବାର ଉପାୟ—Remedy against any calamity.

**ବିପତି**—ଗ୍ରା. ବି (ସଂ. ବିପତ୍ତି)—ବିପତ୍ତି (ଦେଖ)—Bipatti (See).
Bipati [ଉ—ଘୋଡ଼ାଚଢ଼ା ଠାଉଁ ସମ୍ପତ୍ତି ନାହିଁ; ଘରପୋଡ଼ା ଠାଉଁ ବିପତି ନାହିଁ । ଡଗ । ]
বিপত্তি विपति

**ବିପତି ଘଟିବା**—ଦେ. କ୍ରି—ବିପତ୍ତି ଉପସ୍ଥିତ ହେବା—The state of
Bipati ghaṭibā being overtaken by calamity.
ବିପତିଗିରିବା, ବିପତି ପଡ଼ିବା, ବିପତି ପହଞ୍ଚିବା, ବିପତି ମିଳିବା } ଅନ୍ୟରୂପ
বিপত্তিপড়া **विपति पडना**

**ବିପତିତ**—ଦେ. ବିଣ—ଶୂନ୍ୟରୁ ଆସି ଉପସ୍ଥିତ—Befallen; come
Bipatita all on a sudden; fallen from nowhere.
[ଉ—ବିପତିତ ଯେ ପତିତ ତ୍ରାହି ଦୂତ ସୁବେଳେ ସୁବେଳ ଗିର ଯେ । ଉଞ୍ଜ. ବୈଦେହୀଶବିଳାସ । ]

**ବିପତ୍ତରଣ**—ସଂ. ବି (୬ଷ୍ଠୀ ତତ୍; ବିପଦ୍+ତରଣ)—ବିପଦକୁ ଅତିକ୍ରମ
Bipattaraṇa କରିବା; ବିପଦରୁ ଉତ୍ତୁରିବା—Surmounting a danger or calamity.

**ବିପତ୍ତାରକ**—ସଂ. ବିଣ. ପୁଂ (ବିପଦ୍+ତୃ ଧାତୁ+କର୍ତ୍ତୃ. ଅକ)—
Bipattāraka ଯେ ବିପଦରୁ ଉଦ୍ଧାର କରେ—One who
(ବିପତ୍ତ୍ରାତା—ଅନ୍ୟରୂପ) delivers a person from calamity; delivering a person from danger.
ବିପତ୍ତାରିକା, ବିପତ୍ତାରିଣୀ } ସ୍ତ୍ରୀ

**ବିପତ୍ତାରଣ**—ସଂ. ବି (ବିପଦ୍+ତାରଣ)—୧ । ଅନ୍ୟକୁ ବିପଦରୁ
Bipattāraṇa ଉଦ୍ଧାର କରିବା—1. Delivering a person from danger. ୨ । ଅନ୍ୟଦ୍ୱାରା ବିପଦରୁ ଉତ୍ତୁରିବା—2. Deliverance from danger. ସଂ. ବିଣ—ବିପତ୍ତାରକ—Delivering a person from danger

**ବିପତ୍ତି**—ସଂ. ବି (ବି+ପଦ୍ ଧାତୁ+ଭାବ ତି)—୧ । ମହା ବିପଦ୍—
Bipatti 1. Great danger; calamity. ୨ । ଆପଦ୍; ବିପଦ୍—2. Danger ୩ । ନାଶ; କ୍ଷୟ—3. Ruin; decay. ୪ । ବିନାଶ—4. Destruction. ୫ । ଦୁରବସ୍ଥା; ଦୁର୍ଦ୍ଦଶା; ଦୁର୍ଭାଗ୍ୟ—5. Misfortune. ୬ । ସମ୍ପତ୍ତି ନଷ୍ଟ—6. Adversity.
(ସମ୍ପତ୍ତି—ବିପରୀତ)

**ବିପତ୍ତିକର**—ସଂ. ବିଣ (ବିପତ୍ତି+କୃ ଧାତୁ+କର୍ତ୍ତୃ ଅ)—ଯାହା ବିପତ୍ତି
Bipattikara ଘଟାଏ—Bringing about calamity or adversity.
(ବିପତ୍ତିକାରକ, ବିପତ୍ତିଜନକ—ଅନ୍ୟରୂପ)

**ବିପତ୍ତିକାଳ**—ସଂ. ବି (୬ଷ୍ଠୀ ତତ୍; ବିପତ୍ତି+କାଳ)—ଆପଦ୍ ଘଟିବା କାଳ—
Bipattikāḷa Time of adversity.

**ବିପତ୍ତିଖଣ୍ଡନ**—ସଂ. ବି (୬ଷ୍ଠୀ ତତ୍; ବିପତ୍ତି+ଖଣ୍ଡନ)—ବିପତ୍ତିର
Bipattikhaṇḍana ବିନାଶନ ବା ଦୂରୀକରଣ—The removal of calamity.

**ବିପତ୍ତି ଖଣ୍ଡିବା**—ଦେ. କ୍ରି—ଅନ୍ୟର ବିପତ୍ତି ଦୂର କରିବା—To
Bipatti khaṇḍibā alleviate another's calamity.
বিপত্তিখণ্ডা **विपत्तीका खन्डन करना**

**ବିପତ୍ତି ଗ୍ରାସିବା**—ଦେ. କ୍ରି—ଉପର୍ଯ୍ୟୁପରି ବିପଦ ଉପସ୍ଥିତ ହେବା—
Bipatti grāsibā The happening of great calamity to a person.
(ବିପତ୍ତି ଘୋଟିବା—ଅନ୍ୟରୂପ)
বিপত্তিগ্রাস করা **विपत्ति ढहना**

**ବିପତ୍ତିଗ୍ରସ୍ତ**—ସଂ. ବିଣ (୩ୟା ତତ୍; ବିପତ୍ତି+ଗ୍ରସ୍ତ)—ବିପତ୍ତି ଦ୍ୱାରା
Bipattigrasta ଜର୍ଜରିତ—Ovortakeu by or overwhelmed with misfortune, calamity or adversity; beset with danger.
(ବିପତ୍ତିଜଡ଼ିତ—ଅନ୍ୟରୂପ)

**ବିପତ୍ତି ଧ୍ୱଂସ**—ସଂ. ବି (୬ଷ୍ଠୀ ତତ୍; ବିପତ୍ତି+ଧ୍ୱଂସ)—ବିପତ୍ତି ଖଣ୍ଡନ,
Bipatti dhwaṁsa ବିପତ୍ତିର ଦୂରୀକରଣ—The disappearance of calamity.
(ବିପତ୍ତି ନାଶ, ବିପତ୍ତିବିଧ୍ୱଂସ—ଅନ୍ୟରୂପ)

**ବିପତ୍ତି ଧ୍ୱଂସକ**—ସଂ. ବିଣ. ପୁଂ—ଯେ ବିପତ୍ତିକୁ ଖଣ୍ଡନ ବା ନାଶ କରେ
Bipatti dhwaṁsaka —One who frees a person from danger; alleviating one's misery or misfortune.
ବିପତ୍ତିଧ୍ୱଂସୀ, ବିପତ୍ତିନାଶକ, ବିପତ୍ତିନାଶୀ, ବିପତ୍ତିଭଞ୍ଜକ, ବିପତ୍ତିଭଞ୍ଜୀ } ଅନ୍ୟରୂପ
(ବିପତ୍ତିଧ୍ୱଂସିକା, ବିପତ୍ତିଧ୍ୱଂସିନୀ, ବିପତ୍ତିନାଶିକା, ବିପତ୍ତିନାଶିନୀ, ବିପତ୍ତିଭଞ୍ଜିକା, ବିପତ୍ତିଭଞ୍ଜିନୀ—ସ୍ତ୍ରୀ)

**ବିପତ୍ତି ନାଶନ**—ସଂ. ବି (୬ଷ୍ଠୀ ତତ୍; ବିପତ୍ତି+ନାଶନ)—ଅନ୍ୟବ୍ୟକ୍ତିର
Bipatti nāśana ବିପତ୍ତିକୁ ଖଣ୍ଡନ କରିବା—Alleviation of another's misfortuno.
ସଂ. ବିଣ. ପୁଂ—ବିପତ୍ତିଧ୍ୱଂସକ—Removing or alleviating another's misery or misfortune.
ବିପତ୍ତିଧ୍ୱଂସନ, ବିପତ୍ତିଭଞ୍ଜନ, ବିପତ୍ତିସଂହାରଣ, ବିପତ୍ତିଖଣ୍ଡନ } ଅନ୍ୟରୂପ
(ବିପତ୍ତିନାଶିନୀ, ବିପତ୍ତିଧ୍ୱଂସିନୀ, ବିପତ୍ତିଭଞ୍ଜିନୀ, ବିପତ୍ତିସଂହାରିଣୀ—ସ୍ତ୍ରୀ)

**ବିପତ୍ତି ପଡ଼ିବା**—ଦେ. କ୍ରି—ଘୋର ବିପଦ ଉପସ୍ଥିତ ହେବା—
Bipatti paṛibā The happening of a calamity.
(ବିପତ୍ତି ଘଟିବା—ଅନ୍ୟରୂପ) বিপত্তিপড়া **विपत्तिपडना**

**ବିପତ୍ତି ବାରଣ**—ସଂ. ବିଣ—ଯେ ଅନ୍ୟ ବ୍ୟକ୍ତି ଉପରେ ପଡ଼ିବା ବିପତ୍ତିକୁ
Bipatti bāraṇa ପୂର୍ବରୁ ବନ୍ଦ କରାଏ—Preventing the happening of a calamity. ବି—ବିପତ୍ତି ପଡ଼ିବାକୁ ନ ଦେବା—Prevontion of a calamity.
(ବିପଦ୍‌ବାରଣ, ବିପନ୍ନିବାରଣ—ଅନ୍ୟରୂପ)

**ବିପତ୍ତି ବେଳ(ଳା)**—ଦେ. ବି—ବିପତ୍ତିକାଳ; ବିପଦ୍‌ସମୟ—Time of
Bipatti beḷa(ḷā) calamity or misfortunc. (ଉ—ସମ୍ପତ୍ତିବେଳେ ଗୁମର ନ କରିବ, ବିପତ୍ତିବେଳେ କାତର ନ ହେବ । ଡଗ ।
বিপত্তির সময় **विपत्तिकावखत**

**ବିପତ୍ତି ମୋଚନ**—ସଂ. ବି—୧ । ବିପତ୍ତିରୁ ଉଦ୍ଧାର ପାଇବା—
Bipatti mochana Deliverance from calamity.
୨ । ବିପଦରୁ ଉଦ୍ଧାର କରିବା—2. Delivering one from danger. ସଂ. ବିଣ—ଯେ ବିପତ୍ତିରୁ ଉଦ୍ଧାର କରନ୍ତି—Delivering from danger or calamity.

**ବିପତ୍ତି ହେତୁକ**—ସଂ. ବିଣ—(ବହୁବ୍ରୀହି; ବିପତ୍ତି+ହେତୁ; କ. ଆଗମ)-
Bipatti hetuka ବିପତ୍ତିରୁ ଜାତ—Caused by or arising from calamity.
(ବିପତ୍ତିଜନିତ, ବିପତ୍ତିଜନ୍ୟ—ଅନ୍ୟରୂପ)

**ବିପତ୍ନୀକ**—ସଂ. ବିଣ. ଓ ବି. ପୁଂ—( ବହୁବ୍ରୀହି; ବି=ବିଗତ+ପତ୍ନୀ; କ. ଆଗମ)—୧ । ବିଗତପତ୍ନୀକ; ଯାହାର ପତ୍ନୀ-
Bipatnika
ବିୟୋଗ ଘଟି ଅଛି; ମୃତଦାର—1. Widower.
୨ । ଯାହାର ଭାର୍ଯ୍ୟା ନାହିଁ; ପତ୍ନୀ-ବିହୀନ—2. Having no wife; unmarried; single.

**ବିପଥ**—ସଂ. ବି—(ବି=ବିରୁଦ୍ଧ, କୁତ୍ସିତ+ପଥ)—୧ । ଅବାଟ; ଅପଥ,
Bipatha ଯାହା ରାସ୍ତା ନୁହେଁ—1. A wrong road
୨ । ବେରାସ୍ତା; ଅସତ୍ପଥ; କୁମାର୍ଗ; ମନ୍ଦ ପଥ—2. A bad road. ୩ । ଅମଡ଼ା—3. Unused or unbeaten track. ୪ । (ଲକ୍ଷଣାର୍ଥ) ନିନ୍ଦିତ କର୍ମମାନ 3. (figurative) Blameworthy acts. ୫ । ନିନ୍ଦିତ ଆଚରଣ—5. Evil conduct. ୬ । (୬ଷ୍ଠୀ ତତ୍; ବି+ପନ୍ଥା; ପକ୍ଷୀମାନଙ୍କ ମାର୍ଗ) ଆକାଶ—6. The sky. [ବିପଥ ଦୃଶ୍ୟ ତମ ଜନିତାବଧି । ଭଞ୍ଜ. ବୈଦେହୀଶବିଳାସ ।]

**ବିପଥଗ**—ସଂ. ବିଣ. ପୁଂ—(ବିପଥ+ଗମ୍ ଧାତୁ+କର୍ତ୍ତୃ. ଅ)—୧ । ଯେ
Bipathaga ପ୍ରକୃତ ରାସ୍ତା ଛାଡ଼ି ଅବାଟରେ ଯାଏ—1. Taking a wrong road. ୨ । କୁମାର୍ଗାବଲମ୍ବୀ—2. Following evil ways.
(ବିପଥଗାମୀ—ଅନ୍ୟରୂପ)
(ବିପଥଗା, ବିପଥଗାମିନୀ—ଅନ୍ୟରୂପ)

**ବିପଦ୍(ଦା)**—ସଂ. ବି· [ବି=ବିପରୀତରୂପେ+ପଦ୍ ଧାତୁ+ଭାବ. କ୍ୱିପ୍; +ଆ]—୧ । ଆପଦ; ସଙ୍କଟ—1. Danger.
Bipad (dā)
୨ । ଦୁର୍ଘଟଣା—2. Mishap. ୩ । ବିନାଶ—3. Destruction. ୪ । ବିପତ୍ତି, ଅମଙ୍ଗଳ—4. Calamity; adversity; disaster. ୫ । ଦୁର୍ଦ୍ଦଶା—Misfortune. ୬ । ମରଣ—6. Death. ୭ । ମହାକ୍ଳେଶ; ଘୋର ଦୁଃଖ—7. Misery; great difficulty.

**ବିପଦ୍ ଗର୍ଭ**—ସଂ. ବିଣ—( ବହୁବ୍ରୀହି; ବିପଦ୍+ଗର୍ଭ )—ବିପଦାତ୍ମକ;
Bipad-garbha ବିପଜ୍ଜନକ—Dangerous; disastrous.
(ବିପଦ ଗର୍ଭକ—ଅନ୍ୟରୂପ)

**ବିପଦ୍ଗ୍ରସ୍ତ**—ସଂ. ବିଣ. ପୁଂ—(୭ମୀ ତତ୍; ବିପଦ୍+ଗ୍ରସ୍ତ)—ବିପନ୍ନ; ଯେ
Bipad-grasta ବିପଦରେ ପଡ଼ି ଥାଏ—Beset with calamities.
(ବିପଦ୍ଗ୍ରସ୍ତା—ସ୍ତ୍ରୀ) (ବିପଜ୍ଜର୍ଜରିତ—ଅନ୍ୟରୂପ)

**ବିପଦ୍ ବିନାଶକ**—ସଂ. ବିଣ. ପୁଂ—( ଉପପଦ ତତ୍; ବିପଦ୍+ବି+ନାଶି ଧାତୁ+କର୍ତ୍ତୃ. ଅକ)—ଯେ ବିପଦକୁ
Bipad binā́saka
ନାଶ କରନ୍ତି ଅର୍ଥାତ୍ ବିପନ୍ନ ବ୍ୟକ୍ତିକୁ ବିପଦରୁ ରକ୍ଷା କରନ୍ତି—Saving a person from calamity.
ବିପଦ୍ ବିନାଶନ, ବିପଦ୍ ବିନାଶୀ, ବିପଦ୍ଭଞ୍ଜକ, ବିପଦଭଞ୍ଜନ }—ଅନ୍ୟରୂପ
ବିପଦ୍ ବିନାଶିକା, ବିପଦ୍ ବିନାଶିନୀ, ବିପଦ୍ ଭଞ୍ଜିକା, ବିପଦ୍ ଭଞ୍ଜିନୀ } ସ୍ତ୍ରୀ—

**ବିପଦ୍ବିଶିଷ୍ଟ**—ସଂ. ବିଣ (୩ୟା ତତ୍)—ବିପଦ୍ ସଙ୍କୁଳ—
Bipad-bisishṭa Dangerous.

**ବିପଦ ବିହୀନ**—ସଂ. ବିଣ (୩ୟା ତତ୍)—ବିପଦ୍ଶୂନ୍ୟ—Free from
Bipad-bihīna danger; not beset with danger.
(ବିପଦ୍ ବିରହିତ; ବିପଦ୍ରହିତ, ବିପଚ୍ଛୂନ୍ୟ—ଅନ୍ୟରୂପ)

**ବିପଦ୍ ବେଷ୍ଟିତ**—ସଂ. ବିଣ—(୩ୟା ତତ୍; ବିପଦ୍+ବେଷ୍ଟିତ)—ଯାହାକୁ
Bipad beshṭita ଗୁରୁ ଆପଦ୍ ବିପଦ ଘେରି ଅଛି—Beset with or surrounded by difficulties.

**ବିପଦ୍ସଙ୍କୁଳ**—ସଂ. ବିଣ—(୩ୟା ତତ୍ )—ଯାହାର ଚତୁର୍ଦ୍ଦିଗରେ ବିପଦ
Bipad-saṅkuḷa ବେଢି ରହି ଥାଏ—1. Full of danger; beset with danger; surrounded by danger; risky.
(ବିପତ୍ପୂର୍ଣ୍ଣ—ଅନ୍ୟରୂପ)

**ବିପଦ୍ସମୁଦ୍ର**—ସଂ. ବି—(ରୂପକ)—ସମୁଦ୍ର ପରି ମହା ବିପଦ—A sea
Bipad-samudra of calamity; a great calamity (compared to the wide ocean.
ବିପଦ୍ସରିତ୍, ବିପଦ୍ସାଗର } ଅନ୍ୟରୂପ

**ବିପଦ ସରିତ୍**—ସଂ. ବି—( ରୂପକ )—ନଦୀ ପରି ମହା ବିପଦ—
Bipad-sarit A great danger (compared to a river).

**ବିପଦ**—ଦେ. ବି—(ସଂ. ବିପଦ୍)—ବିପଦ୍ (ଦେଖ)
Bipada विपद **बिपद** Bipad (See)

**ବିପଦ ଆପଦ**—ଦେ. ବି—( ଏକାର୍ଥକ ସହଚର; ବିପଦ+ଆପଦ )—
Bipada āpada 1. A great many calamities.
୨ । କୌଣସି ନା କୌଣସି ବିପଦ—2. Any calamity (great or small).
(ବିପଦାପଦ—ଅନ୍ୟରୂପ)

**ବିପଦକୁ ଡାକିବା**—ଦେ. କ୍ରି—ଆପଣା ଉପରେ ବିପଦ ପଡ଼ିବାର ଉପାୟ
Bipadaku ḍakibā ଆପେ ନିଜେ କରିବା—To bring down disaster upon oneself, to invite danger.
विपदको वरण करा
**विपत्ति मोल लेना**
ବିପଦକୁ ଡାକି ଆଣିବା, ବିପଦକୁ ବରଣ କରିବା, ବିପଦକୁ ମୁଣ୍ଡେଇବା }—ଅନ୍ୟରୂପ

**ବିପଦାକୁଳ**—ସଂ. ବିଣ. ପୁଂ ( ୩ୟା ତତ୍; ବିପଦ୍+ଆକୁଳ )—ବିପଦ-
Bipadā́kuḷa ଦ୍ୱାରା ଜର୍ଜରିତ—Overwhelmed with danger or calamity.
( ବିପଦାକୁଳିତ—ଦେ. ରୂପ )
( ବିପଦାକୁଳା—ସ୍ତ୍ରୀ )

**ବିପଦାକ୍ରାନ୍ତ**—ସଂ. ବିଣ ( ୩ୟା ତତ୍; ବିପଦ୍+ଆକ୍ରାନ୍ତ )—ବିପଦ୍ଗ୍ରସ୍ତ—
Bipadāgrasta Beset with calamities.
( ବିପଦାପନ୍ନ—ଅନ୍ୟରୂପ )

ବିପଦାର୍ଣ୍ଣବ—ସଂ. ବି ( ରୂପକ କର୍ମଧା; ବିପଦ୍+ଅର୍ଣ୍ଣବ )—ସମୁଦ୍ର ପରି
Bipadārṇṇaba ଦୁର୍ଲଙ୍ଘ୍ୟ ବିପଦ—Insurmountable difficulty.

ବିପଦାର୍ତ୍ତ—ସଂ. ବିଣ ପୁଂ ( ୩ୟା ତତ୍; ବିପଦ୍+ଆର୍ତ୍ତ )—ବିପଦଦ୍ୱାରା
Bipadārtta ବ୍ୟାକୁଳ ବା ଜର୍ଜରିତ—Overwhelmed with
(ବିପଦାର୍ତ୍ତା—ସ୍ତ୍ରୀ; ବିପଦାର୍ତ୍ତି—ବି) calamities.

ବିପଦୁତ୍ତରଣ—ସଂ. ବି ( ୫ମୀ ତତ୍; ବିପଦ୍+ଉତ୍ତରଣ )—ବିପଦରୁ
Bipaduttaraṇa ନିସ୍ତାର ପାଇବା—Safely getting over or surmounting a calamity.

ବିପଦୁତ୍ତୀର୍ଣ୍ଣ—ସଂ. ବିଣ ( ୫ମୀ ତତ୍; ବିପଦ୍+ଉତ୍ତୀର୍ଣ୍ଣ )—ବିପଦରୁ
Bipaduttīrṇṇa ନିସ୍ତାର ପାଇଥିବା—Having got safely over a calamity.

ବିପଦୁତ୍ପନ୍ନ—ସଂ. ବିଣ (୫ମୀ ତତ୍; ବିପଦ୍+ଉତ୍ପନ୍ନ)—ବିପଦରୁ ଜାତ—
Bipadutpanna Due to misfortune; arising from calamity.

ବିପଦୁତ୍ପାଦକ—ସଂ. ବିଣ. ପୁଂ ( ଉପପଦ ତତ୍, ବିପଦ୍+ଉତ୍ପାଦକ )—
Bipadutpādaka ବିପଜ୍ଜନକ—Dangerous; causing
(ବିପଦୁତ୍ପାଦିକା—ସ୍ତ୍ରୀ) calamity.

ବିପଦୁଦ୍ଧରଣ—ସଂ. ବି ( ୫ମୀ ତତ୍; ବିପଦ୍+ଉଦ୍ଧରଣ )—ଆପଦରୁ
Bipaduddharaṇa ଉଦ୍ଧାର କରିବା—Rescuing a person from danger.

ବିପଦୁଦ୍ଧରଣକ୍ଷମ—ସଂ. ବିଣ. ପୁଂ ( ୫ମୀ, ୭ମୀ ତତ୍ପୁରୁଷ; ବିପଦ୍+
Bipaduddharaṇakshama ଉଦ୍ଧରଣ+କ୍ଷମ )—ଯେ ଅନ୍ୟ
(ବିପଦୁଦ୍ଧରଣକ୍ଷମା—ସ୍ତ୍ରୀ) ଲୋକଙ୍କୁ ବିପଦରୁ ଉଦ୍ଧାର କରିପାରେ—
Capable of saving a person from calamity.

ବିପଦୁଦ୍ଧାର—ସଂ. ବି ( ୫ମୀ ତତ୍; ବିପଦ୍+ଉଦ୍ଧାର )—ବିପଦରୁ ନିଷ୍କୃତି
Bipaduddhāra ଲାଭ—Deliverance from a calamity.

ବିପଦୁଦ୍ଧାରକ—ସଂ. ବିଣ. ପୁଂ ( ଉପପଦ ତତ୍; ବିପଦ୍+ଉଦ୍ଧାରକ )—
Bipaduddhāraka ଯେ ବିପଦରୁ ରକ୍ଷା କରେ—Saving a
( ବିପଦୁଦ୍ଧାରିକା—ସ୍ତ୍ରୀ ) person from danger.

ବିପଦ୍ଧୀନ—ସଂ. ବିଣ ( ୩ୟା ତତ୍; ବିପଦ୍+ହୀନ )—ବିପଦ୍ଶୂନ୍ୟ—
Bipaddhīna Free from calamity or risk.

ବିପଦ୍ଧେତୁକ—ସଂ. ବିଣ ( ବହୁବ୍ରୀହି; ବିପଦ୍+ହେତୁକ )—ବିପଦ୍
Bipaddhetuka ଜନିତ—Caused by calamity.

ବିପଦ୍ରହିତ—ସଂ. ବିଣ ( ୩ୟା ତତ୍; ବିପଦ୍+ରହିତ )—ବିପଦହୀନ—
Bipadrahita Free from calamity.

ବିପନ—ଗ୍ରା. ବି—୧ । (ସଂ. ବପନ ) କ୍ଷୌରକର୍ମ—1. Shaving.
Bipana ୨ । ( ସଂ. ବିପିନ ) ବିପିନବିହାରୀର ଡାକ ନାମ—
2. Name for calling Bipinabihārī.

ବିପନ୍ଥ(ନ୍ଥା)—ଗ୍ରା. ବି ( ସଂ. ବିପଥ )—ବିପଥ (ଦେଖ)—Bipatha
Bipantha(nthā) विपथ विपथ ( See )

ବିପନ୍ନ—ସଂ. ବିଣ. ପୁଂ ( ବି+ପଦ୍ ଧାତୁ+କର୍ମ. ତ )—ବିପଦଗ୍ରସ୍ତ—
Bipanna In distress; beset with calamity.
ସଂ. ବି (ବି=ବିଲୁଣ୍ଠିତଭାବରେ+ପଦ୍ଧାତୁ=ଗମନ କରିବା +କର୍ତ୍ତୃ. ତ )—ସର୍ପ—Snake; serpent.

ବିପନ୍ନତାରକ—ସଂ. ବିଣ. ପୁଂ (ବିପନ୍ନ+ତୃ ଧାତୁ ଣିଚ୍+କର୍ତ୍ତୃ. ଅକ)—
Bipannatāraka ବିପନ୍ନ ବ୍ୟକ୍ତିର ଉଦ୍ଧାରକର୍ତ୍ତା—Saving a
( ବିପନ୍ନରକ୍ଷକ—ଅନ୍ୟରୂପ ) man from distress.

ବିପନ୍ନତାରଣ—ସଂ. ବି ( ବିପନ୍ନ+ତୃ ଧାତୁ ଣିଚ୍+ଭାବ ଅନ )—
Bipannatāraṇa ବିପଦ୍‌ଗ୍ରସ୍ତ ବ୍ୟକ୍ତିକୁ ବିପଦରୁ ରକ୍ଷା କରିବା—
( ବିପନ୍ନରକ୍ଷକ—ଅନ୍ୟରୂପ ) Saving a man in distress.
ସଂ. ବିଣ (+କର୍ତ୍ତୃ. ଅନ)—ବିପନ୍ନ ବ୍ୟକ୍ତିର ରକ୍ଷାକାରୀ—
Delivering a man from calamities.

ବିପନ୍ନବତ୍ସଳ—ସଂ. ବିଣ. ପୁଂ (୬ଷ୍ଠୀ ତତ୍)—ଯେ ବିପନ୍ନ ବ୍ୟକ୍ତିଙ୍କୁ ସ୍ନେହ
Bipannabatsaḷa କରେ ଏବଂ ତାଙ୍କୁ ବିପଦରୁ ରକ୍ଷା କରେ—
Having attachment towards persons in
(ବିପନ୍ନବତ୍ସଳା—ସ୍ତ୍ରୀ; ବିପନ୍ନବତ୍ସଳତା—ବି) distress.

ବିପନ୍ନଶରଣ—ସଂ. ବି—ବିପଦ୍‌ଗ୍ରସ୍ତ ବ୍ୟକ୍ତିର ଆଶ୍ରୟସ୍ଥଳ—The final
Bipannaśaraṇa refuge of a person in distress.

ବିପନ୍ନାର୍ତ୍ତିହର—ସଂ. ବିଣ. ପୁଂ ( ବିପନ୍ନ+ଆର୍ତ୍ତି+ହୃ ଧାତୁ+କର୍ତ୍ତୃ.
Bipannārttihara ଅ )—ଯେ ବିପନ୍ନ ବ୍ୟକ୍ତିର ଦୁଃଖ ଦୂର
( ବିପନ୍ନାର୍ତ୍ତିହରା—ସ୍ତ୍ରୀ ) କରେ—Relieving the misery of a person in distress.

ବିପନ୍ନାଶ୍ରୟ—ସଂ. ବି ( ୬ଷ୍ଠୀ ତତ୍; ବିପନ୍ନ+ଆଶ୍ରୟ )—ବିପନ୍ନ ବ୍ୟକ୍ତିର
Bipannāśraya ଏକମାତ୍ର ସହାୟ—The refuge or patron of a person in distress.

ବିପନ୍ନିବର୍ତ୍ତକ—ସଂ. ବିଣ. ପୁଂ (ବିପଦ୍+ନିବର୍ତ୍ତକ)—୧ । ବିପଦ୍‌ଭଞ୍ଜନ—
Bipannibarttaka 1. Saving people from disaster.
୨ । ବିପନ୍ନିବାରକ (ଦେଖ)—2. Bipannibāraka (See).
( ବିପନ୍ନାଶକ, ବିପନ୍ନାଶୀ—ଅନ୍ୟରୂପ )
( ବିପନ୍ନିବର୍ତ୍ତିକା, ବିପନ୍ନାଶିକା, ବିପନ୍ନାଶିନୀ—ସ୍ତ୍ରୀ )

ବିପନ୍ନିବାରକ—ସଂ. ବିଣ. ପୁଂ ( ଉପପଦ ତତ୍; ବିପଦ୍+ନିବାରକ )—
Bipannibāraka ଯେ ବିପଦକୁ ନିବାରଣ କରେ—Warding
( ବିପନ୍ନିବାରିକା—ସ୍ତ୍ରୀ ) off other peoples' dissaster; preventing calamities.

ବିପନ୍ନିବାରଣ—ସଂ. ବି (ବିପଦ୍+ନିବାରଣ)—ବିପଦ୍ ଘଟିବାକୁ ନ ଦେବା—
Bipannibāraṇa The warding off of disaster;
(ବିପନ୍ନାଶନ—ଅନ୍ୟରୂପ) prevention of calamities.
ସଂ. ବିଣ. ପୁଂ—ବିପନ୍ନିବାରକ (ଦେଖ)—Bipannibāraka (See).

ବିପନ୍ନିବୃତ୍ତି—ସଂ. ବି ( ବିପଦ୍+ନିବୃତ୍ତି )—ବିପଦର ଶାନ୍ତି—
Bipannibṛutti The cessation of calamities.

ବିପନ୍ନିଷ୍କୃତି—ସଂ. ବି ( ବିପଦ୍+ନିଷ୍କୃତି )—ବିପଦରୁ ଉଦ୍ଧାର ଲାଭ—
Bipannishkṛuti Relief from danger; deliverance from disaster.

ବିପରିଣତ—ସଂ. ବିଣ. ( ବି+ପରି+ନମ୍ ଧାତୁ+କର୍ତ୍ତୃ. ତ )—
Bipariṇata ୧ । ବିପର୍ଯ୍ୟସ୍ତ; ବ୍ୟତିବ୍ୟସ୍ତ—1. Confused; overwhelmed; upturned ୨ । ପରିବର୍ତ୍ତିତ—2. Changed; transfigured; transformed. ୩ । ବିନଷ୍ଟ—3. Ruined. ୪ । ମୃତ—4. Dead. ୫ । ବିପରୀତ—5. Contrary. ୬ । ଅବନତ—6. Deteriorated.
(ବିପରିଣତି, ବିପରିଣାମ—ବି)

**ବିପରିଣତି**—ସଂ. ବି—(ବି+ପରି+ନମ୍ ଧାତୁ+ଭାବ. ତି)—୧ । Biparinati ବିପର୍ଯ୍ୟାସ; ବୈପରୀତ୍ୟ—1 Contrariety; con- ( ବିପରିଣାମ—ଅନ୍ୟରୂପ ) fusion. ୨ । ପରିବର୍ତ୍ତନ—2. change; transformation. ୩ । ମୃତ୍ୟୁ—3 Death. ୪ । ବିନାଶ—4 Ruin; destruction ୫ । ବିକୃତି—5., Deterioration; change for the worse.

**ବିପରିଣାମୀ**—ସଂ. ବିଣ ( ବିପରିଣାମ+ଇନ୍; ୧ମା ୧ବ )—୧ । ପରି- Biparināmī ବର୍ତ୍ତନଶୀଳ—1. Changeable; liable to (ବିପରିଣାମିନୀ—ସ୍ତ୍ରୀ) change. ୨ । ବୈପରୀତ୍ୟବିଶିଷ୍ଟ—2. Full of contrarieties.

**ବିପରିବର୍ତ୍ତନ**—ସଂ. ବି. ( ବି+ପରି+ବୃତ୍ ଧାତୁ+ଭାବ. ଅନ )—Biparibarttana ୧ । ବିପର୍ଯ୍ୟାସ; ଓଲଟାଇବା—1. Uptur- (ବିପରିବର୍ତ୍ତିତ—ବିଣ) ning; inverting. ୨ ବଦଳାଇବା—2. Changing. ୩ । ସମ୍ପୂର୍ଣ୍ଣ ପରିବର୍ତ୍ତନ—3. Transformation.

**ବିପରୀତ**—ସଂ.ବିଣ(ବି+ପରି=ପ୍ରତିକୂଳ+ଇ ଧାତୁ=ଯିବା+କର୍ତ୍ତୃ ତ)- Biparīta ୧ । ବିରୁଦ୍ଧ—1. Adverse; contrary. ୨ । (ବିପରୀତା—ସ୍ତ୍ରୀ) ଓଲଟା—2. Reverse; inverted; in re- [ବିପରୀତତା(ତ୍ୱ)—ବି] verse order. ୩ । ପ୍ରତିକୂଳ—3, Opposite; untoward. ୪ । ଅସ୍ୱାଭାବିକ—4. Un-natural. ୫ । ଅନିଷ୍ଟାଚରଣରେ ତତ୍ପର (ହି.ଶ)—5.Injurious. ସଂ. ବି—ରତିବନ୍ଧବିଶେଷ; ଓଲଟ ରତି; ପୁରୁଷାୟିତ—An inverted pose in sexual embrace. [ଦ୍ର—ଏହା ରତିଶାସ୍ତ୍ରୋକ୍ତ ୧୬ ପ୍ରକାର ରତିବନ୍ଧ ମଧ୍ୟରୁ ଦଶମ । ହି. ଶ] ଦେ. ବି—୧ । ଓଲଟା ପାଖ—1. The reverse. ୨ । ଅଶାତରିକ୍ତ ଘଟଣା—2. An unexpected thing; the reverse of what was expected. [ଉ—ଏ କଥା ଅତି ବିପରୀତ, ଗର୍ଭ ତା ବହିଲା ଏମନ୍ତ—ଜଗନ୍ନାଥ ଭାଗବତ]

**ବିପରୀତ ଗତି**—ସଂ. ବି (କର୍ମଧାରୟ)—ବିରୁଦ୍ଧ ଦିଗରେ ଗମନ—Biparīta gati Retrograde motion.
ସଂ. ବିଣ (ବହୁବ୍ରୀହି)—ଯେ ବିପରୀତ ଦିଗରେ ଗତି କରୁଥାଏ—Retrograde.

**ବିପରୀତ ବନ୍ଧ**—ସଂ. ବି—ପୁରୁଷାୟିତ ରତିବନ୍ଧ ବିଶେଷ; ଓଲଟ ରତି—Biparīta bandha A sexual embrace in reverse (ବିପରୀତ ରତି—ଅନ୍ୟରୂପ) order.

**ବିପରୀତା**—ସଂ. ବିଣ. ସ୍ତ୍ରୀ ( ବିପରୀତ+ଆ )—ବିପରୀତର ସ୍ତ୍ରୀଲିଙ୍ଗ—Biparītā Feminine of Biparīta. ସଂ. ବି. ଓ ବିଣ. ସ୍ତ୍ରୀ—ଦୁଷ୍ଟରିତା ସ୍ତ୍ରୀ ( ହି. ଶବ୍ଦସାଗର )—A dissolute woman.

**ବିପରୀତାର୍ଥ**—ସଂ. ବି. (କର୍ମଧା)—ଓଲଟା ଅର୍ଥ ବା ମର୍ମ—Opposite Biparītārtha meaning; a contrary sense. ସଂ. ବିଣ-ବିପରୀତାର୍ଥକ (ଦେଖ)—Biparītārthaka (See)

**ବିପରୀତାର୍ଥକ**—ସଂ. ବିଣ. ( ବିପରୀତାର୍ଥ+କ )—୧ । ଯେ କୌଣସି Biparītārthaka କଥାର ବିପରୀତ ଅର୍ଥ କରେ—1. Interpreting a thing in an opposite sense. ୨ । ଯହିଁରୁ ବିପରୀତାର୍ଥ ବୁଝାଯାଏ—2. Conveying an opposite meaning.

**ବିପର୍ଣ୍ଣକ**—ସଂ. ବି. (ବି+ପର୍ଣ୍ଣ+କ)—ପଳାଶ ଗଛ—Biparnnaka A tree; Butea Frondosa.

**ବିପର୍ଯ୍ୟ(ର୍ଯ୍ୟା)ୟ**—ସଂ. ବି. ( ବି+ପରି+ଇ ଧାତୁ+ଭାବ. ଅ )—Biparjya(rjyā)ya ୧ । ବୈପରୀତ୍ୟ—1 Contrariety. ୨ । ବ୍ୟତିକ୍ରମ; ଓଲଟା; ଓଲଟ ପାଲଟ—2. Inversion; reversion. ୩ । ବିନାଶ—4. Destruction. ୪ । ଦୁଇ ବସ୍ତୁର ଅନ୍ୟୋନ୍ୟରେ ସ୍ଥାନ ପରିବର୍ତ୍ତନ—4. Mutual change of places between two things.

**ବିପର୍ଯ୍ୟସ୍ତ**—ସଂ. ବିଣ (ବି+ପରି+ଅସ୍ ଧାତୁ=କ୍ଷେପଣ କରିବା+ Biparjyasta କର୍ମ. ତ)—୧ । ବ୍ୟତିକ୍ରାନ୍ତ; ବ୍ୟତିକ୍ରମପ୍ରାପ୍ତ—(ବିପର୍ଯ୍ୟାସ—ବି) 1. Reversed. ୨ । ଲେଉଟା ହୋଇଥିବା; ଓଲଟା—2. Inverted; retrogade; tupsy-turvy; turned upside down. ୩ । ଛିନ୍ନଭିନ୍ନ; ସମ୍ପୂର୍ଣ୍ଣ ରୂପେ ପରାଭୂତ ହୋଇ ଏଣେତେଣେ ପଳାଇଥିବା—3. Routed; confused. ୪ । ପରସ୍ପର ଓଲଟପାଲଟ-ହୋଇଥିବା—4. Mutually changing places.

**ବିପର୍ଯ୍ୟାସ**—ସଂ. ବି. ( ବି+ପରି+ଅସ୍ ଧାତୁ+ଭାବ. ଅ )—Biparjyāsa ୧ । ବ୍ୟତିକ୍ରମ—1. Inversion. ୨ । ବୈପରୀତ୍ୟ—2. Contrariety; opposition. ୪ । ଛତ୍ରଭଙ୍ଗ—3. Rout of an army. ୪ । କାଳ୍ପନିକ ବିଷୟର ଅସ୍ତିତ୍ୱ ସ୍ୱୀକାର—4. False assumption; assuming the existence of an unreal substance. ୫ । ପରସ୍ପର ସ୍ଥାନ ପରିବର୍ତ୍ତନ—5. Mutual change of places.

**ବିପଳ**—ସଂ. ବି (ବି+ପଳ)—୧ । ଏକ ପଳ (କାଳ)ର ୬୦ ଭାଗରୁ Bipala ୧ ଭାଗ—1. One sixtieth part of a 'Pala' or moment of time; one sixtieth of 12 seconds or ⅕ of a second. [ଦ୍ର—ଦିନ ରାତି=୨୪ ଘଣ୍ଟା=୬୦ ଦଣ୍ଡ; ୧ ଦଣ୍ଡ=୨୪ ମିନିଟ, ୧ ପଳ=୧୨ ସେକେଣ୍ଡ; ୧ ବିପଳ=⅕ ସେକେଣ୍ଡ ।] ୨ । ଅତି ସୂକ୍ଷ୍ମ କାଳ—2. A very minute part of time.

**ବିପଶ୍ଚିତ୍**—ସଂ. ବି. (ବି+ପ୍ର+ଚି ଧାତୁ=ସଂଗ୍ରହ କରିବା+କର୍ତ୍ତୃ. କ୍ୱିପ୍; Bipaśchit ନିପାତନ; ଯେ ଅତି କଠିନ ବିଦ୍ୟାକୁ ସଂଗ୍ରହ କରେ)—ପଣ୍ଡିତ; ବିଜ୍ଞ; ବିଦ୍ୱାନ୍ ବ୍ୟକ୍ତି—A learned person; philosopher.

**ବିପାକ**—ସଂ. ବି. ( ବି+ପଚ୍ ଧାତୁ=ପାକ କରିବା+ଭାବ. ଅ )—Bipāka ୧ । ଉତ୍ତମ ରୂପେ ରନ୍ଧନ—1, Good cooking.

୨ । ପରିପକ୍ୱତା; ପୂର୍ଣ୍ଣଦଶାପ୍ରାପ୍ତି—2. Ripeness; maturity. ୩ । ପରିଣାମ; ଫଳ—3. Result; consequence. ୪ । କର୍ମର ବିପରୀତ ଫଳ; ବିପରିଣାମ—4. Contrary or untoward effect of an act ୫ । ପୂର୍ବଜନ୍ମର କର୍ମର ଫଳ; କର୍ମ ଫଳ—5. The result of the actions of one's previous existence. ୬ । ବିଡ଼ମ୍ବନା; ବିପଦ୍; ଦୁର୍ଗତି; ଦୁର୍ଭାଗ୍ୟ—6. Distress; calamity; evil luck; misfortune. ୭ । ସ୍ୱାଦ—7. Taste; flavour. ୮ । ପରିପାକ; ଖାଦ୍ୟ ଦ୍ରବ୍ୟ ଜୀର୍ଣ୍ଣ ହେବା—8. Digestion of food. ୯ । ଭୋଗ—9. Enjoyment. ୧୦ । ଅବସ୍ଥାର ପରିବର୍ତ୍ତନ—10. Change of state (Apte). ୧୧ । ଦୁର୍ଘଟଣା—11. Mishap. ଦେ. ବି—ଅଜୀର୍ଣ୍ଣ; ଖାଦ୍ୟ ଦ୍ରବ୍ୟ ଉତ୍ତମ ରୂପେ ଜୀର୍ଣ୍ଣ ନ ହେବା ଅବସ୍ଥା—Indigestion.

ବିପାକ କର୍ମ—ଦେ. ବି—ଦୁର୍ଭାଗ୍ୟ; କର୍ମଦଶା; ମନ୍ଦ ଭାଗ୍ୟ—Evil; Bipāka karma misfortune. (ଉ—ବିପାକ କର୍ମ ଯାକ ହେଲା ସିଦ୍ଧ । ଉଷା. ବୈଦେହୀଶବିଳାସ ।)

ବିପାକିଆ—ଦେ. ବି—ଅଜୀର୍ଣ୍ଣ—Indigestion. ଦେ. ବିଣ—୧ । Bipākiā ଅଜୀର୍ଣ୍ଣ ଜନିତ; ଅପାକିଆ (ଝାଡ଼ା)—1. (Motion) ଅଜୀର୍ଣ Due to indigestion. ୨ । ଅଜୀର୍ଣ୍ଣକର (ଖାଦ୍ୟ); ଅପାକ, ଅପଚ ଗୁରୁପାକ—2. Producing indigestion; indigestible (food).

ବିପାକିଆ ଝାଡ଼ା—ଦେ. ବି—ଅଜୀର୍ଣ୍ଣ ଝାଡ଼ା; ଡାଇରିଆ—Diarrhoea. Bipākiā jhāṛā ଅଜୀର୍ଣ ବାହ୍ୟୀ ଅପାକ ଝାଡା, ଅପଚ ଦିସା (ବିପାକିଆ ପୋଖରୀ, ବିପାକିଆ ବାହାରିବା—ଅନ୍ୟରୂପ)

ବିପାଠ—ସ. ବି (ବି+ପଠ୍ ଧାତୁ=ଯିବା, ଭେଦ କରିବା+କର୍ତ୍ତୃ. ଅ)—Lipāṭa ବାଣ; ଶର—Arrow; dart.

ବିପାଟନ—ସ. ବି. (ବି+ପଟ୍ ଧାତୁ+ଭାବ. ଅନ)—୧ । ଭେଦନ—Bipāṭana 1. Piercing. ୨ । ଖୋଳିବା ( ହି. ଶ )—2. Digging. ୩ । ଉତ୍ପାଟନ (ହି. ଶବ୍ଦସାଗର)—3. Uprooting.

ବିପାଟିତ—ସ. ବି. (ବି+ପଟ୍ ଧାତୁ ଣିଚ୍+କର୍ମ. ତ)—୧ । ବିଦାରିତ—Bipāṭita 1. Pierced. ୨ । ଉତ୍ପାଟିତ—2. Uprooted

ବିପାଠ—ସ. ବି. ( ବି+ପଠ୍ ଧାତୁ=ବ୍ୟକ୍ତ କରିବା+କର୍ତ୍ତୃ. ବା କର୍ମ Bipāṭha ଅ )—ଶର; ବାଣ—Arrow.

ବିପାଣ୍ଡୁକ(କା)—ସ. ବିଣ—୧ । ଅପାଣ୍ଡୁକା; ବୁଦ୍ଧିହୀନ; ଜବୋଧ—Bipāṇḍuka(kā) 1. Foolish. ୨ । ଅସଭ୍ୟ—2. Uncivi- ଅସଭ୍ୟ lized. ୩ । ଅଯୋଗ୍ୟ—3 Worthless. ୪ । ମୂର୍ଖ— ଅପହତ 4. Illiterate

ବିପାଣ୍ଡୁର—ସ. ବିଣ ( ବି+ପାଣ୍ଡୁର )—ଅତିଶୟ ପାଣ୍ଡୁ ବର୍ଣ୍ଣ; ଅତିଶୁକ୍ଳ Bipāṇḍura ଶ୍ୱେତ—Very tawny; very pale-white. (ବିପାଣ୍ଡୁ—ଅନ୍ୟରୂପ) (ବିପାଣ୍ଡୁରତା, ବିପାଣ୍ଡୁତା—ବି)

ବିପାଦକ—ସ. ବିଣ. ପୁଂ—(ବି+ପଦ ଧାତୁ ଣିଚ୍+କର୍ତ୍ତୃ. ଅକ) ଘାତକ—Bipādaka Murderous. ସ°. ବି. ପୁଂ—ହତ୍ୟାକାରୀ (ବିପାଦୟିତା—ଅନ୍ୟରୂପ) ବ୍ୟକ୍ତି—Murderer. (ବିପାଦିକା, ବିପାଦୟିତ୍ରୀ—ସ୍ତ୍ରୀ)

ବିପାଦନ—ସ. ବି· ( ବି+ପଦ୍ ଧାତୁ ଣିଚ୍+ଭାବ. ଅନ )—ହତ୍ୟା; Bipādana ବଧ—Murder; slaughter.

ବିପାଦିକା—ସ. ବି. ସ୍ତ୍ରୀ ( ବି+ପଦ୍ ଧାତୁ+କରଣ ଅକ+ସ୍ତ୍ରୀ ଆ )—Bipādikā ୧ । ପ୍ରହେଳିକା—1. Riddle; enigma. ୨ । ପାଦଫୋଟା; ଗୋଡ଼ଫଟା ରୋଗ—2. Chilblain; kibes in the feet; chipped soles (a disease). ୩ । କୁଷ୍ଠରୋଗବିଶେଷ ( ହି. ଶ )—3. A kind of leprosy.
ସ. ବି. ଓ ବିଣ. ସ୍ତ୍ରୀ—ବିପାଦକର ସ୍ତ୍ରୀଲିଙ୍ଗ—Feminine of Bipādaka.

ବିପାଦିତ—ସ. ବିଣ. ପୁଂ (ବି+ପଦ୍ ଧାତୁ ଣିଚ୍=ପାଦି ଧାତୁ+କର୍ମ ତ) Bipādita —୧ । ବିନାଶିତ—1. Destroyed; ruined (ବିପାଦିତା—ସ୍ତ୍ରୀ) ୨ । ହତ—2. Murdered; killed.

ବିପାଳ—ସ. ବିଣ—ଯେଉଁ ପଶୁର କେହି ପାଳକ ବା ମାଲିକ ନ ଥାଏ Bipāla ( ହି. ଶ )—( a beast ) Having no owner or keeper.

ବିପାଶ—ସ. ବି—ବିପାଶା ( ଦେଖ )—Bipāśā ( See ). ସ. ବିଣ. Bipāśa ପୁଂ (ବହୁବ୍ରୀହି; ବି=ବିଗତ+ପାଶ)—ପାଶବିମୁକ୍ତ—(ବିପାଶା—ସ୍ତ୍ରୀ) Released from chains; unfettered.

ବିପାଶା—ସ. ବି (ବି=ବିଗତ+ପାଶ=ରଜ୍ଜୁ+ଆ)—ପଞ୍ଜାବର ପଞ୍ଚନଦ Bipāśā ମଧ୍ୟରୁ ଏକତମ; ବେଉଆ ନଦୀ—The Bipasa or Bewa; one of the 5 tributaries of the Indus [ ବ୍ର—ବଶିଷ୍ଠ ମୁନି ପୁତ୍ରଶୋକରେ ଅଧୀର ହୋଇ ନିଜ ଦେହକୁ ପାଶବଦ୍ଧ କରି ଏ ନଦୀରେ ଝାମ୍ପ ଦେଲେ । ଏ ନଦୀ ତାଙ୍କୁ ବିପାଶ କରିଥିବାରୁ ଏହାର ଏପରି ନାମ ହୋଇଅଛି । ଏହାର ଅନ୍ୟ ନାମ ବ୍ୟାସ ବା ବିଜ୍ନ ନଦ; ଏହା ପଞ୍ଚନଦ ମଧ୍ୟରୁ ସର୍ବପଶ୍ଚିମରେ ଅବସ୍ଥିତ । ]
ସ. ବିଣ. ସ୍ତ୍ରୀ—(ବିପାଶ+ଆ)—ବିପାଶର ସ୍ତ୍ରୀଲିଙ୍ଗ—Feminine of Bipāśa.

ବିପିନ—ସ. ବି ( ବେପ୍ ଧାତୁ=କମ୍ପିବା+ଅଧିକରଣ ଇନ; ନିପାତନ; Bipina ଯହିଁରେ ବୃକ୍ଷ ଲତାଦି ପତ୍ରାଦି ସର୍ବଦା କମ୍ପିତ ହୁଏ )—ବନ; ଅରଣ୍ୟ; ଅଟବୀ—Forest; the woods.
ଦେ· ବି—ବିପିନବିହାରୀ ନାମକ ବ୍ୟକ୍ତିର ଡାକନାମ—Name for calling Bipinabihāri.

ବିପିନବିହାରୀ—ସ. ବିଣ ପୁଂ (ବିପିନ+ବିହାର+ଇନ୍; ୧ମା. ୧ବ)—Bipinabihāri କାନନବିହାରୀ; ଯେ ଅରଣ୍ୟରେ ବିହାର କରେ—Sporting in the woods. ସ. ବି—ଶ୍ରୀକୃଷ୍ଣଙ୍କ ନାମ—A name of Śrikṛushṇa. ଦେ. ବି. ପୁଂ—

(ଭପିନ ବିହାରଣୀ—ସ୍ତ୍ରୀ) ଲୋକଙ୍କର ନାମ—A name given to males.

**ବିପୁଂସକ**—ସଂ. ବିଣ. ପୁଂ (ବି+ପୁମସ୍+ଅକ)—ପୁରୁଷତ୍ୱହୀନ (ହି. ଶ); ଅଣପୁରୁଷ—Impotent.
Bipuṁsaka

**ବିପୁଂସୀ**—ସଂ. ବି—ପୁରୁଷର ସ୍ୱଭାବ, ଆକୃତି ଓ ଚେଷ୍ଟା ବିଶିଷ୍ଟା ସ୍ତ୍ରୀ (ହି. ଶ); ଅଣ୍ଡିରିଚଣ୍ଡୀ—Amazon; a masculine woman.
Bipuṁsī

**ବିପୁତ୍ର**—ସଂ. ବିଣ. ପୁଂ (ବି+ପୁତ୍ର)—ପୁତ୍ରହୀନ (ହି. ଶ)—Sonless.
Biputra (ବିପୁତ୍ରା—ସ୍ତ୍ରୀ)

**ବିପୁଳ**—ସଂ, ବିଣ, ପୁଂ (ବି+ପୁଲ୍ ଧାତୁ=ବଡ଼ ହେବା+କର୍ତ୍ତୃ ଅ)
Bipuḻa —୧। ବୃହତ୍; ବଡ଼—1. Great; big; large.
(ବିପୁଳା—ସ୍ତ୍ରୀ) ୨। ମହତ୍—2. Noble. ୩। ପ୍ରଶସ୍ତ—3,
[ବିପୁଳତା(ତ୍ୱ)—ବି] Expansive; extensive; broad. ୪। ଅଗାଧ ଗମ୍ଭୀର—4 Very deep; unfathomable. ୫। ବିଶାଳ—5. Vast. ୬। ବହୁ; ଅନେକ—6. Many; much ୭। ଶାନ୍ତ; ପ୍ରଶାନ୍ତ—7. Calm. ୮। ଯାହାର ରୋମାଞ୍ଚ ହୋଇଅଛି—8. With the hairs standing on end (Apte) ସଂ. ବି—୧। ସୁମେରୁ ପର୍ବତ—1. A fabulous mountain. ୨। ଉତ୍ତରମେରୁ—2. The north pole. ୩। ହିମାଳୟ ପର୍ବତ—3. The Himalayan mountain. ୪। ସମ୍ଭ୍ରାନ୍ତ ବ୍ୟକ୍ତି; ଭଦ୍ରଲୋକ—4. A noble man; gentleman. ୫। ମହାମାନ୍ୟ ବ୍ୟକ୍ତି—5. A very respectable man; ୬। (ନାମ) ରୋହିଣୀ ଗର୍ଭଜାତ ବସୁଦେବଙ୍କ ଏକ ପୁତ୍ର—6. Name of a son of Basudeba.

**ବିପୁଳକାୟ**—ସଂ. ବିଣ. ପୁଂ—(ବହୁବ୍ରୀହି; ବିପୁଳ+କାୟ=ଦେହ)—
Bipuḻakāya ବିଶାଳ ଶରୀରବିଶିଷ୍ଟ (ବ୍ୟକ୍ତି)—Big-bodied,
(ବିପୁଳକାୟା—ସ୍ତ୍ରୀ) gigantic; giant.

**ବିପୁଳଘର ଦାନ**—ଦେ. ବି—କୌଣସି ବ୍ରାହ୍ମଣଙ୍କୁ ଜମି, ଘର, ଲୁଗା,
Bipuḻaghara dāna ଅଳଙ୍କାର, ଧନ, ଧାନ୍ୟ, ଭୋଜ୍ୟବସ୍ତୁ,
विपुल दान ଶଯ୍ୟାଦି ଓ ତାହାଙ୍କ ପରିବାରର ଯାବତୀୟ ଆବଶ୍ୟକ
(ବିପୁଳ ଦାନ—ଅନ୍ୟରୂପ) ଦ୍ରବ୍ୟର ଦାନ—A gift made to a Brāhmaṇa consisting of cash ornaments, land, cloth, victuals and every other thing wanted by a householder. [ଦ୍ର—ଯେଉଁ ଲୋକ ବିପୁଳଘର ଦାନ ଗ୍ରହଣ କରେ ସେ ଅନ୍ତତଃ ବର୍ଷେ କାଳ ପର୍ଯ୍ୟନ୍ତ କୌଣସି ବସ୍ତୁ ଅନ୍ୟ କାହା ଠାରୁ ସାହାଯ୍ୟ ପାଇବାକୁ ଲୋଡ଼େ ନାହିଁ। ଦାନ ସାମଗ୍ରୀ ମଧ୍ୟରେ ସବୁ ପ୍ରୟୋଜନୀୟ ବସ୍ତୁ ଥାଏ।]

**ବିପୁଳ ଜଘନା**—ସଂ. ବିଣ ସ୍ତ୍ରୀ—(ବହୁବ୍ରୀହି; ବିପୁଳ+ଜଘନ+ଆ)—
Bipuḻa jaghanā ସ୍ଥୂଳନିତମ୍ବଯୁକ୍ତା (ସ୍ତ୍ରୀ)—(a woman)
(ବିପୁଳ ନିତମ୍ବା—ଅନ୍ୟରୂପ) Having large or stout hips.

**ବିପୁଳ ଧନ**—ସଂ ବି—(କର୍ମଧା; ବିପୁଳ+ଧନ)—ବହୁ ଧନ; ବିଭବ—
Bipuḻa dhana Much wealth; opulence.
ସଂ. ବିଣ. ପୁଂ—ଖୁବ୍ ଧନୀ—Very rich; opulent.
(ବିପୁଳଧନା—ସ୍ତ୍ରୀ; ବିପୁଳଧନତା—ବି)

**ବିପୁଳ ଭୋଗ**—ଦେ. ବି—୧। ଅଯୁସ ଭୋଗ; ମଉଜ—1. Enjoy-
Bipuḻa bhoga ment of luxury. ୨। ଅଯୁସରେ ରହିବା
विपुलभोग ନିମନ୍ତେ ମନୁଷ୍ୟର ଦରକାରୀ ସମସ୍ତ ବସ୍ତୁ—2,
विपुल भोग Everything required for a man's luxurious living.

**ବିପୁଳ ଭୋଗ କରିବା**—ଦେ. କ୍ରି—ଅଯୁସ କରିବା—To lead a life
Bipuḻa bhoga karibā of luxury; to live
विपुल ভোগকরা विपुल भोग करा luxuriously.

**ବିପୁଳ ମତି**—ସଂ. ବିଣ—(ବହୁବ୍ରୀହି; ବିପୁଳ+ମତି)—ଅତି ବୁଦ୍ଧିମାନ୍—
Bipuḻa mati Very intelligent.

**ବିପୁଳ ରସ**—ସଂ. ବି—(ବହୁବ୍ରୀହି; ବିପୁଳ+ରସ)—ଇକ୍ଷୁ; ଆଖୁ—
Bipuḻa rasa Sugarcane.

**ବିପୁଳ(ଳା)ସ୍ରବା**—ସଂ. ବି—ଘୃତକୁମାରୀ; ଘିଅକୁଆଁରି ଗୁଳ୍ମ—
Bipuḻa(ḻā)srabā The Indian Aloe.

**ବିପୁଳା**—ସଂ. ବି. ସ୍ତ୍ରୀ—(ବିପୁଳ+ସ୍ତ୍ରୀ. ଆ)—୧। ପୃଥିବୀ—1. The
Bipuḻā earth. ୨। ଆର୍ଯ୍ୟା-ଛନ୍ଦୋବିଶେଷ—2. Name of a Sanskrit metre. ୩। ଦେବୀବିଶେଷ—3. Name of a Goddess.
ସଂ. ବିଣ. ସ୍ତ୍ରୀ—ବିପୁଳର ସ୍ତ୍ରୀଲିଙ୍ଗ—Feminine of Bipuḻa.

**ବିପୁଳୋରସ୍କ**—ସଂ. ବିଣ. ପୁଂ—(ବହୁବ୍ରୀହି; ବିପୁଳ+ଉରସ୍=ବକ୍ଷଃ
Bipuḻoraska +କ)—ବିଶାଳ ବକ୍ଷୋବିଶିଷ୍ଟ; ଯାହାର ଛାତି
(ବିପୁଳୋରସ୍କା—ସ୍ତ୍ରୀ) ବଡ଼ ବା ଓସାର—Having a broad breast; broad-chested.

**ବିପୂୟ**—ସଂ. ବି—ମୁଞ୍ଜ ତୃଣ (ହି. ଶ)—
Bipūya The Muñja grass (Apte).

**ବିପ୍ର**—ସଂ. ବି.—(ବି+ପ୍ରା. ଧାତୁ=ପୂରଣ କରିବା+କର୍ତ୍ତୃ. ଅ; ଯେ
Bipra ଯଜନ-ଯାଜନାଦି ଷଟ୍ କର୍ମ ବିଶେଷରୂପେ ପୂରଣ କରେ)—
୧। ବ୍ରାହ୍ମଣ; ଦ୍ୱିଜ—1. A Brāhmaṇa. ୨। ଦ୍ୱିଜୋତ୍ତମ; ବେଦଜ୍ଞ ବ୍ରାହ୍ମଣ—2. A Brāhmaṇa versed in vedic lore; a learned and pious Brāhmaṇa. ୩। ମୁନି; ଋଷି—3. Sage (Apte). ୪। ପୁରୋହିତ (ହି. ଶ)—4. Priest. ୫। ଜ୍ଞାନୀ ବ୍ୟକ୍ତି—5 A wise man (Apte). ୬। ସ୍ତୁତିଗାୟକ—6. A singer of hymns (Apte); panegyrist. ୭। ଅଶ୍ୱତ୍ଥଗଛ—7. The Aswattha tree (Apte). ୮। ଶିରୀଷ ବୃକ୍ଷ (ହି. ଶ)—8. The Śirīsha tree; ୯। ରେଣୁକ ବୃକ୍ଷ (ହି. ଶ)—9. Reṇuka tree. ସଂ. ବିଣ—ମେଧାବୀ; ବୁଦ୍ଧିମାନ୍ (ହି. ଶ)—Intelligent;

sharp-witted. ବୈ, ବି—ବିପ୍ରଚରଣର ଡାକ ନାମ—Name for calling Bipracharaṇa.

**ବିପ୍ର କଣ୍ଠ ଦାସ**—ଦେ. ବି (ନାମ)—ଜଣେ ପ୍ରାଚୀନ ଓଡ଼ିଆ କବି Bipra kaṇṭha dāsa (ଜଗବନ୍ଧୁ ପ୍ରାଚୀନ ଉତ୍କଳ)—An ancient Oria poet. [ଦ୍ର—କଳୋଲ, ଛନ୍ଦୋଳ ଏହାଙ୍କ ରଚିତ ପୁସ୍ତକ ।]

**ବିପ୍ରକର୍ଷ**—ସଂ. ବି ( ବି+ପ୍ରକର୍ଷ )—୧ । ଦୂରତ୍ୱ—1. Distance; Biprakarsha remoteness. ୨ । ବନ୍ଧୁତାର ବା ସମ୍ପର୍କର ଦୂରତ୍ୱ—2 Distance of relationship.

**ବିପ୍ରକର୍ଷଣ**—ସଂ. ବି ( ବି=ବିପରୀତ ଦିଗକୁ+ପ୍ର+କୃଷ୍ ଧାତୁ=ଆକର୍ଷଣ Biprakarshaṇa କରିବା+ଭାବ. ଅନ)—୧ । ବିକର୍ଷଣ; ଆକର୍ଷଣର (ବିପ୍ରକୃଷ୍ଟ—ବିଣ) ବିପରୀତ; ବିପରୀତ ଦିଗକୁ ଆକର୍ଷଣ; ଠେଲି କରି ହଟାଇଦେବା—1. Repulsion; pushing away. ୨ । କୌଣସି କର୍ମର ଅନ୍ତ ( ହି. ଶ )—2. The end of a work.

**ବିପ୍ରକର୍ଷଣ ଶକ୍ତି**—ଦେ. ବି ( ଜଡ଼ବିଜ୍ଞାନ )—ଯେଉଁ ଶକ୍ତିଦ୍ୱାରା ପଦାର୍ଥର Biprakarshaṇa śakti ପରମାଣୁସକଳ ପରସ୍ପରକୁ ପରସ୍ପର- ଠାରୁ ପୃଥକ୍ କରି ରଖନ୍ତି—The force which repels atoms of a thing from one another

**ବିପ୍ରକାର**—ସଂ. ବି ( ବି+ପ୍ର+କୃ ଧାତୁ+ଭାବ. ଅ )—୧ । ଅନିଷ୍ଟ; Biprakāra ଅପକାର—1. Injury; harm; mischief. [ବିପ୍ରକୃତ—ବିଣ] ୨ । ତିରସ୍କାର—2. Censure; rebuke. ୩ । ଉପଦ୍ରବ—3. Tyranny; oppression; ravage. ୪ । ଅନାଦର ( ହି, ଶ )—4. Slight; disregard; ୫ । ଅବମାନନ—5. Insult.

**ବିପ୍ରକୀର୍ଣ୍ଣ**—ସଂ. ବିଣ (ବି+ପ୍ର+କୃ ଧାତୁ=ବିକ୍ଷେପ କରିବା+କର୍ମ ତ)- Biprakīrṇṇa ୧ । ଇତସ୍ତତଃ ବିକ୍ଷିପ୍ତ—1. Strewn; scattered about. ୨ । ବିପର୍ଯ୍ୟସ୍ତ—2. Overwhelmed; upturned; overturned. ୩ । ଅଲୁଳାୟିତ; ଅସ୍ତବ୍ୟସ୍ତ—3. Disordered; confused; dishevelled.

**ବିପ୍ରକୃତ**—ସଂ. ବିଣ (ବି+ ପ୍ର +କୃ ଧାତୁ+କର୍ମ. ତ)-୧ । ତିରସ୍କୃତ— Biprakṛuta 1. Abused. ୨ । ଅପକୃତ—2. Injured. ୩ । ଅବମାନିତ—3. Disregarded; insulted; slighted. ୪ । ଉପଦ୍ରୁତ; ଯାହା ଉପରେ ଉପଦ୍ରବ କରି ଯାଇଅଛି—6. Oppressed; ravaged.

**ବିପ୍ରକୃତି**—ସଂ. ବି (ବି+ପ୍ର+କୃ ଧାତୁ+ଭାବ. ତି)—୧ । ଅପମାନ— Biprakṛuti 1. Insult. ୨ । ଗାଳି; ଭର୍ତ୍ସନା— 2. Censure

**ବିପ୍ରକୃଷ୍ଟ**—ସଂ. ବିଣ (ବି+ପ୍ର+କୃଷ୍ ଧାତୁ+କର୍ମ. ତ)—୧ । ଦୂରବର୍ତ୍ତୀ Biprakṛushṭa ଦୂରସ୍ଥ—1. Distant; remote. ୨ । ଅନ୍ତରିତ-2. Separated. ୩ । ଠେଲିକରି ଦୂରୀକୃତ— 3. Pushed away. ୪ । ବର୍ଦ୍ଧିତ—4. Lengthened; extended; protracted (Apte).

**ବିପ୍ରଚରଣ**—ସଂ. ବି ( ଷଷ୍ଠୀ ତତ୍; ବିପ୍ର+ଚରଣ )—୧ । ବ୍ରାହ୍ମଣର Bipracharaṇa ଗୋଡ଼—1, The leg of a Brāhmaṇa. ୨ । ବିଷ୍ଣୁଙ୍କ ହୃଦୟରେ ଅଙ୍କିତ ଭୃଗୁମୁନିଙ୍କ ଗୋଇଠାର ଚିହ୍ନ (ହି. ଶ)—2. The mark of the kick left on the breast of Bishṇu by Sage Bhṛugu. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

**ବିପ୍ରଚିତ୍(ତ୍ତି, ତ୍ତି)**—ସଂ. ବି — ଦାନବବିଶେଷ—Name of a Biprachit(tta, tti) demon. [ଦ୍ର—ଏହାର ପତ୍ନୀ ସିଂହିକାର ଗର୍ଭରୁ ରାହୁର ଜନ୍ମ ହୋଇଥିଲା—ହି. ଶ ।]

**ବିପ୍ରତା(ତ୍ୱ)**—ସଂ. ବି(ବିପ୍ର+ଭାବ. ତା, ତ୍ୱ)—ବ୍ରାହ୍ମଣତ୍ୱ —The state Bipratā(twa) of being a Brāhmaṇa; Brahminism.

**ବିପ୍ରତାରକ**—ସଂ. ବିଣ. ପୁଂ ( ବି+ପ୍ରତାରକ )—ଅତି ପ୍ରତାରକ— Bipratāraka (ବିପ୍ରତାରିକା—ସ୍ତ୍ରୀ) Very fraudulent.

**ବିପ୍ରତି(ତୀ)କାର**—ସଂ. ବି ( ବି+ପ୍ରତିକାର )—୧ । ବିରୋଧ— Biprati(tī)kāra 1. Opposition; contradiction (ବିପ୍ରତିକୃତ—ବିଣ) (Apte). ୨ । ପ୍ରତିଶୋଧ—2. Retaliation (Apte).

**ବିପ୍ରତିପତ୍ତି**—ସଂ. ବି ( ବି+ପ୍ରତିପତ୍ତି )—୧ । ସଂଶୟ; ସନ୍ଦେହ— Bipratipatti 1. Doubt. ୨ । ବିବାଦ; ବିରୋଧ—2. Opposition; dispute; contest (Apte). ୩ । ବୈସାଦୃଶ୍ୟ—3. Dissimilarity. ୪ । ପାର୍ଥକ୍ୟ; ଭେଦ— 4. Difference. ୫ । ଅସ୍ୱୀକାର—5. Refusal; denial. ୬ । (ନ୍ୟାୟ) ପରସ୍ପର ବିରୁଦ୍ଧ ଭାବଦ୍ୟୋତକ ବାକ୍ୟ (ହି. ଶ)—6. A speech conveying two dissimilar meaning. ୭ । ପରସ୍ପର ବିରୋଧ— 7. Mutual discrepancy (Apte).

**ବିପ୍ରତିପନ୍ନ**—ସଂ. ବିଣ (ବି+ପ୍ରତିପନ୍ନ)—୧ । ବିରୁଦ୍ଧ—1. Opposed Bipratipanna to. ୨ । ବିରୋଧୀ-2. Hostile. ୩ । ଅସ୍ୱୀକୃତ-3. Denied; unacknowledged; refused. ୪ । ସନ୍ଦିଗ୍ଧ—4. Suspecting; doubting. ୫ । ପରସ୍ପର ବିରୁଦ୍ଧ—5. Mutually opposed; dissentient (Apte). ୬ । କିଂକର୍ତ୍ତବ୍ୟବିମୂଢ଼— 6. Bewildered (Apte).

**ବିପ୍ରତିସିଦ୍ଧ**—ସଂ. ବି ( ବି+ ପ୍ରତିଷିଦ୍ଧ=ନିଷିଦ୍ଧ )—୧ । ନିଷିଦ୍ଧ— Bipratishiddha 1. Prohibited; forbidden. ୨ । ବିରୁଦ୍ଧ—2. Contrary; hostile.

**ବିପ୍ରତିଷେଧ**—ସଂ. ବି (ବି+ପ୍ରତିଷେଧ)—୧ । ତୁଲ୍ୟବଳ ବଳିଷ୍ଠ ବ୍ୟକ୍ତି- Bipratishedha ଦ୍ୱୟ ବା ସ୍ୱାର୍ଥଦ୍ୱୟ ମଧ୍ୟରେ ବିରୋଧ—1. Opposition between 2 equally strong persons; conflict between two even matched interests (Apte). ୨ । ନିଷେଧ—2. Prohibition. ୩ । (ନ୍ୟାୟ) ତୁଲ୍ୟବଳ ବିରୋଧ—3. (Logic)

Conflict between two equally important propositions. ୪ । ନିୟନ୍ତ୍ରଣ—4. Controlling; keeping under control (Apte). ୫ । (ବ୍ୟାକରଣ) ଦୁଇଟି ପରସ୍ପର ବିରୋଧୀ ନିୟମ ବା ବିଧି ମଧ୍ୟରେ ପରସ୍ପର ବିରୋଧ । 5. (grammar) The conflict of two different grammatical operations, become possible according to 2 different rules (Apte). [ଦ୍ର—ବ୍ୟାକରଣରେ ୨ଟି ପରସ୍ପର ବିରୋଧୀ ସୂତ୍ର ଦେଖାଗଲେ ପରବର୍ତ୍ତୀ ସୂତ୍ର ଅନୁସାରେ କାର୍ଯ୍ୟ କରିବାକୁ ହେବ, ଏହାହିଁ ବ୍ୟାକରଣର ଉପଦେଶ; ବିପ୍ରତିଷେଧେ ପରଂ କାର୍ଯ୍ୟଂ—ପାଣିନି ୧-୪-୨ । ]

ବିପ୍ରତି(ତୀ)ସାର—ସଂ. ବି ( ବି+ପ୍ରତି+ସୃ ଧାତୁ+ଭାବ. ଅ )—
Biprati(tī)sāra ୧ । କ୍ରୋଧ; କୋପ—1. Anger; wrath; fury. ୨ । ପଶ୍ଚାତ୍ତାପ; ଅନୁଶୋଚନା—2. Repentance; regret. ୩ । ଖଳତା—3. Wickedness; ୪ । ଅମଙ୍ଗଳ—4. Evil (Apte).

ବିପ୍ରତୀପ—ସଂ. ବିଣ (ବି+ପ୍ରତୀପ)—୧ । ପ୍ରତିକୂଳ—1. Opposed.
Bipratīpa ୨ । ବିପରୀତ—2. Contrary.

ବିପ୍ରଦାସ—ସଂ. ବି (୬ଷ୍ଠୀ ତତ୍)—ବ୍ରାହ୍ମଣମାନଙ୍କର ଦାସ ବା ସେବକ—
Bipradāsa A servant of Brāhmaṇas.
ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.

ବିପ୍ରଦୁଷ୍ଟ—ସଂ. ବିଣ (ବି+ପ୍ରଦୁଷ୍ଟ)—୧ । ପାପିଷ୍ଠ—1. Sinful.
Bipradushṭa ୨ । ଅଧାର୍ମିକ—2. Irreligious. ୩ । ବିନଷ୍ଟ—3. Vitiated; spoiled (Apte).

ବିପ୍ରବର—ସଂ. ବି ( ୭ମୀ ତତ୍; ବିପ୍ର+ବର )—ଦ୍ୱିଜୋତ୍ତମ; ବ୍ରାହ୍ମଣ-
Biprabara ଶ୍ରେଷ୍ଠ—A very pious Brāhmaṇa

ବିପ୍ରବାସ—ସଂ. ବି (ବି+ପ୍ରବାସ)—୧ । ବିଦେଶବାସ; ଦେଶାନ୍ତର
Biprabāsa ବାସ—1. Living abroad; exile. ୨ । ସନ୍ନ୍ୟାସ ଆଶ୍ରମରେ ଥାଇ ଆପଣା ଲୁଗାକୁ ଅନ୍ୟକୁ ପିନ୍ଧିବାକୁ ଦେବାରୂପ ଅପରାଧ (ହ୍ରି. ଶ)—2. The guilt due to an anchorite giving his cloth to another to put on.

ବିପ୍ରବାସନ—ସଂ. ବି ( ବି+ପ୍ରବାସନ )—ନିର୍ବାସନ—Sending to
Biprabāsana (ବିପ୍ରୋଷିତ—ବିଣ) exile; transportation.

ବିପ୍ରବୁଦ୍ଧ—ସଂ. ବିଣ (ବି+ପ୍ରବୁଦ୍ଧ=ଜାଗରିତ)—୧ । ବିନିଦ୍ର; ନିଦ୍ରାହୀନ-
Biprabudhha 1. Sleepless. ୨ । ଜାଗରିତ—2. Awaken.

ବିପ୍ରବ୍ରଜନୀ—ସଂ. ବି. ସ୍ତ୍ରୀ—ଦୁଇ ପୁରୁଷଙ୍କ ସଙ୍ଗେ ସମ୍ବନ୍ଧ ରଖିଥିବା ସ୍ତ୍ରୀ
Biprabrajanī (ହ୍ରି. ଶ)—A woman having connection with 2 males.

ବିପ୍ରମୁକ୍ତ—ସଂ. ବିଣ (ବି+ପ୍ରମୁକ୍ତ)—୧ । ବନ୍ଧନମୁକ୍ତ; ଉନ୍ମୁକ୍ତ—
Bipramukta 1. Set free; liberated (Apte) ୨ । (ବାଣ ଆଦି) କ୍ଷିପ୍ତ—2. Shot; discharged (arrow) (Apte).
ବିପ୍ରମୁକ୍ତି } ବି
ବିପ୍ରମୋଚନ }

ବିପ୍ରୟାଣ—ସଂ. ବି (ବି+ପ୍ର+ଯା ଧାତୁ=ଗମନ କରିବା+ଭାବ. ଅନ)-
Biprayāṇa ୧ । ପଳାୟନ—1. Flying away; flight. ୨ । ପ୍ରସ୍ଥାନ—2. Going away; starting.

ବିପ୍ରଯୁକ୍ତ—ସଂ. ବିଣ (ବି+ପ୍ର+ଯୁଜ୍ ଧାତୁ+ତ)—୧ । ବିଶ୍ଳିଷ୍ଟ—
Biprajukta 1. Separated. ୨ । ବିଯୁକ୍ତ; ପୃଥକୀକୃତ—
(ବିପ୍ରଯୁକ୍ତା—ସ୍ତ୍ରୀ) 2. Severed. ୩ । ବିରହିତ—3. Bereft; destitute. ୪ । ପ୍ରିୟବ୍ୟକ୍ତିଠାରୁ ବିଚ୍ଛେଦପ୍ରାପ୍ତ—4. Separated, absent or away from one's beloved (Apte).

ବିପ୍ରୟୋଗ—ସଂ. ବି (ବି+ପ୍ର+ଯୁଜ୍ ଧାତୁ+ଭାବ. ଅ)-୧ । ପାର୍ଥକ୍ୟ—
Biprayoga 1. Separation; difference. ୨ । ବିଚ୍ଛେଦ; ବିରହ—2. Bereavement; dissociation. ୩ । ବିବାଦ—3. Dispute. ୪ । ବିରୋଧ—4. Opposition. ୫ । ପୃଥକ୍‌କରଣ; ପୃଥକ୍‌ଭାବ—5. Severance.

ବିପ୍ରରାମ—ସଂ. ବି (ବିପ୍ର+ରାମ; ରାମନାମଧାରୀ ବିପ୍ର)—ପରଶୁରାମ—
Biprarāma Paraśurāma.

ବିପ୍ରଲବ୍ଧ—ସଂ. ବିଣ, ପୁଂ (ବି+ପ୍ର+ଲଭ୍ ଧାତୁ=ଲାଭ କରିବା; ବଞ୍ଚନା
Bipralabdha କରିବା+କର୍ମ. ତ)—୧ । ପ୍ରତାରିତ—
(ବିପ୍ରଲବ୍ଧା—ସ୍ତ୍ରୀ) 1. Deceived. ୨ । ଈପ୍ସିତ ବସ୍ତୁରୁ ବଞ୍ଚିତ—2. Disappointed. ୩ । ପ୍ରିୟ ସମାଗମ ବିରହିତ—3. Deprived of the society of one's beloved.
ସଂ. ବି. ପୁଂ—ନାୟକଭେଦ; ଯେଉଁ ନାୟକ ଗୋପନରେ ଓ ଛଦ୍ମବେଶରେ ନାୟିକା ସହିତ ମିଳିତ ହେବା ଆଶାରେ ସଙ୍କେତ ସ୍ଥାନକୁ ଯାଇ ବ୍ୟର୍ଥମନୋରଥ ହୋଇ ଫେରିଆସେ—A disappointed lover who does not meet his sweet heart at the appointed rendezvous, having gone there in secret and wearing a mask.

ବିପ୍ରଲବ୍ଧା—ସଂ. ବି. ସ୍ତ୍ରୀ ( ବିପ୍ରଲବ୍ଧ+ସ୍ତ୍ରୀ. ଆ )—ନାୟିକାଭେଦ; ଯେଉଁ
Bipralabdhā ନାୟିକା ସଙ୍କେତ ସ୍ଥାନରେ ନାୟକଙ୍କୁ ନ ଦେଖି ହତାଶ ହୁଏ—A lady who is disappointed at not finding her paramour in the promised meeting place.

ବିପ୍ରଲ(ଲ)ମ୍ଭ—ସଂ. ବି (ବି+ପ୍ର+ଲଭ୍ ଧାତୁ+ଭାବ. ଅ)—୧ । କଳହ;
Bipraḷa(la)mbha ବିବାଦ—1. Dispute; wrangling. ୨ । ପ୍ରତାରଣା; ଛଳନା—2. Deceit; fraud. ୩ । ବିରହ—3. Separation. ୪ । ବିୟୋଗ—3. Bereavement. ୫ । ଶୃଙ୍ଗାରବିଶେଷ—5. A love-sentiment (out of nine) appearing between

lovers. [ ଦ୍ର— କାବ୍ୟାଦିରେ ଦୁଇ ପ୍ରକାର ରସ କଥିତ;— ସମ୍ଭୋଗ ବା ସଂଯୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ବା ବିୟୋଗ ଶୃଙ୍ଗାର । ବିପ୍ରଲମ୍ଭ ଶୃଙ୍ଗାରରେ ନାୟକ ନାୟିକାଙ୍କ ବିରହଜନିତ ସନ୍ତାପ ଆଦିର ବର୍ଣ୍ଣିତ ହୋଇଅଛି—ହି. ଶ । ] ୬ । ବିରୁଦ୍ଧ କର୍ମ—6. Contrary act.

**ବିପ୍ରଲମ୍ଭକ**—ସ. ବିଣ—ପ୍ରତାରକ—Fraudulent. Bipralambhaka ( ବିପ୍ରଲମ୍ଭିକା—ସ୍ତ୍ରୀ )

**ବିପ୍ରଲମ୍ଭ ଶୃଙ୍ଗାର**—ସ. ବି—ନାୟକ ନାୟିକାର ପରସ୍ପର ବିଚ୍ଛେଦକାଳୀନ Bipralambha srungāra ଚୁମ୍ବନପ୍ରସାଦବିଶେଷ—Loving embrace and other acts of leave-taking done at the time of the parting of the lovers.

**ବିପ୍ରଲାପ**—ସ. ବି ( ବି+ପ୍ର+ଲପ୍ ଧାତୁ=କହିବା=ଭାବ. ଅ )— Bipralāpa ୧ । ନିରର୍ଥକ କଥନ—1. Gibberish talk. ୨ । କଳହ—2. Quarrel; wrangling. ୩ । ବୃଥା କଳହ; ଅନର୍ଥକ ବିବାଦ—3. Unnecessary dispute. ୪ । ବିରୋଧବଚନ; ବିରୋଧୋକ୍ତି; ବିରୋଧାଭାସ—4. Words not expressing the intended meaning.

**ବିପ୍ରଲିପ୍ସା**—ସ. ବି ( ବି+ପ୍ରଲିପ୍ସା )—ବିରୋଧୋକ୍ତି; ଯେଉଁ କଥାରୁ Bipralipsā ଉଦ୍ଦିଷ୍ଟ ଅର୍ଥ ସୂଚିତ ହୁଏ ନାହିଁ—Words not expressing the intended meaning.

**ବିପ୍ରଲୀନ**—ସ. ବିଣ (ବି+ପ୍ର+ଲୀନ)—ଇତସ୍ତତଃ ବିକ୍ଷିପ୍ତ (ହି. ଶ)— Bipralīna Scatterd; strewn.

**ବିପ୍ରଲୁମ୍ପକ**—ସ. ବିଣ. ପୁଂ ( ବି+ପ୍ର+ଲୁମ୍ପ ଧାତୁ+ଅକ )— Bipralumpaka ୧ । ଅତି ଲୋଭୀ ( ହି. ଶ )—1. Very ( ବିପ୍ରଲୁମ୍ପିକା—ସ୍ତ୍ରୀ ) avaricious. ୨ । ଆପଣାର ଲାଭ ପାଇଁ ପରର ଉତ୍ପୀଡ଼କ ( ହି. ଶ )—2. Oppressing others for one's own gain. ୩ । ଅଧିକ ନେବା ବାଲା ( ହି. ଶ )—3. Taking too much.

**ବିପ୍ରଲୋକ**—ସ. ବି—ବ୍ୟାଧ; ଚଢ଼େଇ ଧରିବା ବାଲା ( ହି. ଶ )— Mipraloka Bird-catcher.

**ବିପ୍ରଶ୍ନ**—ସ. ବି—ଫଳିତ ଜ୍ୟୋତିଷ ସାହାଯ୍ୟରେ ସମାହିତ ପ୍ରଶ୍ନ Biprasna ( ହି. ଶ )—A question which is solved with the help of astrology.

**ବିପ୍ରଶ୍ନକ**—ସ. ବି. ପୁଂ ( ବିପ୍ରଶ୍ନ+କ )—ଦୈବଜ୍ଞ; ଜ୍ୟୋତିଷୀ— Biprasnaka Astrologer; fortune-teller.

**ବିପ୍ରଶ୍ନିକା**—ସ. ବି. ସ୍ତ୍ରୀ ( ବି+ପ୍ରଶ୍ନ+କ+ଆ )—୧ । ଗଣକପତ୍ନୀ; Biprasnikā ଦୈବଜ୍ଞା—1. A female astrologer. ୨ । ଜିଜ୍ଞାସା—2. Query; interrogatory.

**ବିପ୍ରସାତ୍**—ସ. ବିଣ (ବିପ୍ର+ଦେୟ ଆଦି ଅର୍ଥରେ ସାତ୍)—୧ । ବ୍ରାହ୍ମଣକୁ Biprasāt ଦେୟ—1. Fit to be given away to a Brāhmana. ୨ । ବ୍ରାହ୍ମଣକୁ ପ୍ରଦତ୍ତ—2. Given to a Brāhmana. ୩ । ବ୍ରାହ୍ମଣାଧୀନ—3. Under the control of a Brāhmana.

**ବିପ୍ରସାରଣ**—ସ. ବି ( ବି+ପ୍ରସାରଣ )—ବିସ୍ତାର କରିବା— Biprasārana ( ବିପ୍ରସାରିତ—ବିଣ ) Spreading.

**ବିପ୍ରସିଂହ(ହା)**—ଦେ. ବି—୧ । ଏକ ପ୍ରଚୀନ ଓଡ଼ିଆ ଚଉତିଶାର ବାଣୀ Biprasimha(hā) ବା ଗୁଣ—1. The metre of an Oria Chautisā. ୨ । ଗୋଟିଏ ପ୍ରାଚୀନ ଓଡ଼ିଆ ଚଉତିଶାର କବିଙ୍କ ନାମ—2. The name of the author of an Oriyā Chautisā.

**ବିପ୍ରହରଣ**—ସ. ବି ( ବି+ପ୍ରହରଣ )—୧ । ତ୍ୟାଗ ( ହି. ଶ — Bipraharana 1. Abandonment. ୨ । ମୁକ୍ତି (ହି. ଶ)— 2. Deliverance.

**ବିପ୍ରିୟ**—ସ. ବିଣ ( ବି=ନୁଦ୍ଦେଁ+ପ୍ରିୟ )—୧ । ଅପ୍ରିୟ; ବିରକ୍ତିକର— Bipriya 1. Unpleasant; disgusting. ୨ । ଘୃଣିତ— 2. Hated. ୩ । ବିରକ୍ତିପାତ୍ର—3. Fit to be disliked. ୪ । ଅବହେଳିତ; ଅବଜ୍ଞାତ—4. Insulted; disregarded. ୫ । ଅପକାରକ—5. Injurious. ୬ । ଅତ୍ୟନ୍ତ ପ୍ରିୟ ( ହି. ଶ )—6. Very dear; fondly cherished. ୭ । କଡ଼ା ସ୍ୱାଦବିଶିଷ୍ଟ; ରଗ । 7. Pungent. (ହି. ଶ)—ସ. ବି—୧ । ଅନିଷ୍ଟ; ଅପକାର—1. Injury. ୨ । ବିୟୋଗ ( ହି. ଶ )— 2. Separation; disappearanuce.

**ବିପ୍ରୁ(ପ୍ଳୁ)ଟ୍**—ସ. ବି ( ବି+ପ୍ରୁ [ପ୍ଳୁ ]ଷ୍ ଧାତୁ=ଦଗ୍ଧ କରିବା+ Bipru(plu)t କର୍ତ୍ତି. କ୍ୱିପ୍; ୧ମା. ୧ବ )—୧ । ଦ୍ରବ ବସ୍ତୁର ( ବିପ୍ରୁ[ପ୍ଳୁ]ଷ୍[ଷ] - ଅନ୍ୟରୂପ ) ବିନ୍ଦୁ ବା ଠୋପା—1. Drop of a liquid. ୨ । ଜଳକଣା—2, Minute particle of water. ୩ । ବେଦପାଠକାଳୀନ ମୁଖନିଃସୃତ ଲାଳକଣା ( ଯାହା ପୁସ୍ତକ ଗାତ୍ରରେ ପଡ଼େ )—3. Particles of saliva coming out of the mouth while reading the Bedas aloud. [ ଦ୍ର—ମନୁସ୍ମୃତି ଅନୁସାରେ ଏହା ଅପବିତ୍ର ନୁହେଁ—ହି. ଶ । ]

**ବିପ୍ରୋଷିତ**—ସ. ବିଣ. ପୁଂ ( ବି+ପ୍ର+ବସ୍ ଧାତୁ=ବାସ କରିବା Biproshita +କର୍ତ୍ତି. ତ; ବସ୍ ସ୍ଥାନରେ ଉଷ୍)—୧ । ବିଦେଶସ୍ଥ; ପ୍ରବାସବାସୀ—1. Sojourning; living abroad. ୨ । ଅନୁପସ୍ଥିତ ( ହି. ଶ )—2. Absent.

**ବିପ୍ଳବ**—ସଂ. ବି ( ବି+ପ୍ଳୁ ଧାତୁ=ଗମନ କରିବା+ଭାବ. ଅ )— Biplaba ୧ । ବିବାଦ; ଝଗଡ଼ା—1. Dispnte. ୨ । ବିନାଶ—2. Ruin; destruction. ୩ । ଭୟ ପ୍ରଦର୍ଶନ—3. Terrifying; frightening. ୪ । ଲୁଟପାଟ; ଲୁଣ୍ଠନ—4. Looting. ୫ । ବିଦ୍ରୋହ— 5. Mutiny. ୬ । ଅରାଜକତା—6. Anarchy. ୭ । ଉପଦ୍ରବ—7. Tyranny; oppression. ୮ । ଦେଶ ଲୁଣ୍ଠନ—8. Plundering a country;

depredation; devastation; predatory; incursion. ୯ । ଉତ୍ପୀଡ଼ନ—9. Affright. ୧୦ । ଗୋଳମାଳ—10. Confusion; tumult; disorder. ୧୧ । ପ୍ରଜାଦ୍ରୋହ; ରାଜ୍ୟ ମଧ୍ୟରେ ପ୍ରଜାଙ୍କ ଜନିତ ଅଶାନ୍ତି—11. Rebellion; a rising; general breach of peace in the kingdom; revolution. ୧୨ । କଷ୍ଟ; କ୍ଳେଶ—12. Trouble; distress. ୧୩ । ବିପଦ; ଆପଦ—13. Adversity; calamity; misfortune. ୧୪ । ପାପ—14. Sin. ୧୫ । ଅପରାଧ—15. Crime. ୧୬ । ଦୁଷ୍ଟତା—16. Wickedness. ୧୭ । ଛଦ୍ମ-ଯୁଦ୍ଧ—17 Mock fight; contest. ୧୮ । ଭଙ୍ଗୀ ବା ରବଦ୍ୱାରା ଶତ୍ରୁକୁ ଭୟ ପ୍ରଦର୍ଶନ—18. Act of terrifying an enemy by show or sound. ୧୯ । ପରରାଜ୍ୟର; ପରରାଷ୍ଟ୍ରଦ୍ୱାରା ଷଡ଼ଯନ୍ତ୍ରରେ ଘଟିବା ଅଶାନ୍ତି—19. Rebellion brought about by the machination of another country. ୨୦ । ନୌକା ବୁଡ଼ା (ତୁ. ଶ)—20, The sinking of a ship or boat; shipwreck. ୨୧ । ବଢ଼ି; ବନ୍ୟା (ତୁ. ଶ)—21. Flood; inundation; deluge. ୨୨ । ଘୋଡ଼ାର ଖୁବ୍ ବେଗରେ ଦଉଡ଼ (ତୁ. ଶ)—22. Swift gallop of a horse. ୨୩ । ଶାନ୍ତିଭଙ୍ଗ; ଘଉକବାସ୍; ଦଙ୍ଗା ହେଙ୍ଗାମା—23. Affray; breach of the peace.

**ବିପ୍ଳବବାଦ**—ସ. ବି—(ଆଧୁନିକ ବ୍ୟବହାରରେ)—ସମାଜ ବା ରାଜତନ୍ତ୍ରର Biplababāda ସଂସ୍କାର ପାଇଁ ବିପ୍ଳବର ପ୍ରୟୋଜନ, ଏରୂପ ମତ-(ବିପ୍ଳବବାଦୀ—ବିଣ ପୁଂ. ବିପ୍ଳବବାଦିନୀ—ସ୍ତ୍ରୀ) Revolutionism.

**ବିପ୍ଳାବ**—ସ. ବି—(ବି+ପ୍ଳୁ ଧାତୁ+ଭାବ.ଅ)—୧ । ଜଳପ୍ଳାବନ; ବନ୍ୟା; Biplāba ବଢ଼ି—1. Deluge; flood; inundation. ୨ । ଉଚ୍ଛେଦ—2. Destruction; overthrow. ୩ । ଶାନ୍ତିଭଙ୍ଗ—3. Breach of peace; disturbance of the peace of a country. ୪ । ଦେଶ-ଧ୍ୱଂସ—4. Laying waste or devastation of a country. ୫ । ଅଶ୍ୱର ଗତିବିଶେଷ; ଘୋଡ଼ାଦଉଡ଼—5. Gallop of a horse.

**ବିପ୍ଳାବକ**—ସ. ବିଣ. ପୁଂ (ବି+ପ୍ଳୁ+କର୍ତ୍ତୃ ଅକ)—୧ । ବିପ୍ଳବକାରୀ-Biplābaka 1. Rebellious; revolutionary. ୩ । (ବିପ୍ଳାବୀ—ଅନ୍ୟରୂପ) ମେଳଅ—3. Combining. ୪ । ବନ୍ୟା [ବିପ୍ଳାବିକା, ବିପ୍ଳାବିନୀ—ସ୍ତ୍ରୀ) ଉତ୍ପାଦକ; ପ୍ରଳୟଙ୍କର—3. Producing or bringing about flood or deluge

**ବିପ୍ଳାବନ**—ସ. ବି [ବି+ପ୍ଳୁ (ପ୍ଳବ୍) ଧାତୁ ଣିଚ୍ ପ୍ଳାବି ଧାତୁ+ଭାବ. Biplābana ଅନ)—୧ । ବିଘ୍ନ; ବ୍ୟାଘାତ—1. Obstacle; hinderance. ୨ । ଧ୍ୱଂସ—2. Ruin; destruction. ୩ । ହାନି; କ୍ଷତି—3. Detriment; injury; mischief. ୪ । ଜଳ ପ୍ଳାବନ—4. Flood; deluge. ୫ । ବିପର୍ଯ୍ୟାସ; ଓଲଟ ପାଲଟ—5. Upturning; utter confusion.

**ବିପ୍ଳାବିତ**—ସ. ବିଣ (ବି+ପ୍ଳୁ ଧାତୁ ଣିଚ୍ ପ୍ଳାବି ଧାତୁ+କର୍ମ. ତ)—Biplābita ୧ । ବିପର୍ଯ୍ୟସ୍ତ—1. Utterly confused; upturned. ୨ । ପ୍ଳାବିତ, ବନ୍ୟାକ୍ରାନ୍ତ—2, Overflooded. ୩ । ବିପନ୍ନ—3. Beset with calamity. ୪ । ବିନଷ୍ଟ—4. Devastated; ruined. ୫ । ଉପଦ୍ରୁତ—5. Overrun; oppressed. ୬ । ବ୍ୟାହତ—6. Defeated; baffled.

**ବିପ୍ଳୁତ**—ସ. ବିଣ. ପୁଂ ( ବି+ପ୍ଳୁ ଧାତୁ+କର୍ତ୍ତୃ. ତ )—୧ । Bipluta ବ୍ୟସନାସକ୍ତ—1. Lascivious. ୨ । ବିଗତ—(ବିପ୍ଳୁତା—ସ୍ତ୍ରୀ) 2. Gone; departed. ୩ । (+କର୍ମ. ତ) ଦୂଷିତ—3. Contaminated. ୪ । ଉପଦ୍ରୁତ—4. Oppressed; overrun. ୫ । (+କର୍ତ୍ତୃ. ତ) ଭ୍ରାନ୍ତ—5. Mistaken. ୬ । ଅପରାଧୀ—6. Guilty. ୭ । ବିପର୍ଯ୍ୟସ୍ତ—7. Confused; upturned; inverted. ୮ । ପ୍ରତିକୂଳ—8. Adverse. ୯ । ବିପରୀତ—9. Contrary. ୧୦ । (+କର୍ମ. ତ) ଇତସ୍ତତଃ ବିକ୍ଷିପ୍ତ (ତୁ. ଶ)—10. Scattered. ୧୧ । କ୍ଷୁବ୍ଧ (ତୁ. ଶ)—11. Agitated; perturbed. ୧୨ । ନଷ୍ଟ (ତୁ. ଶ)—12. Spoilt. ସ. ବି (+ଭାବ ତ)—୧ । ବ୍ୟାଘାତ—1. Impediment. ୨ । ଜଳ ପ୍ଳାବନ—2. Deluge; flood. ୩ । ଧ୍ୱଂସ—3. Destruction; overthrow. ୪ । ହାନି—4. Detriment; injury.

**ବିପ୍ଳୁତା**—ସ. ବି—ଯୋନିରେ ସର୍ବଦା ପୀଡ଼ା ଅନୁଭୂତ ହେବା ଯୋନି-Biplutā ରୋଗବିଶେଷ ( ତୁ. ଶବ୍ଦସାଗର )—A disease of the female organ causing extreme local pain.

ସ. ବିଣ ସ୍ତ୍ରୀ—ବିପ୍ଳୁତର ସ୍ତ୍ରୀ ଲିଙ୍ଗ—Feminine of Bipluta.

**ବିଫଳ**—ସ. ବିଣ ( ବି+ଫଳ )—୧ । ନିଷ୍ଫଳ—1. Fruitless; Biphala abortive. ୨ । ବୃଥା; ବ୍ୟର୍ଥ—2. Vain; useless. ୩ । ନିରର୍ଥକ—3. Meaningless; futile. ୪ । ଫଳହୀନ (ବୃକ୍ଷ) (ତୁ. ଶ)—4. (tree) Bearing no fruit. ୫ । ଅକୃତକାର୍ଯ୍ୟ - 5. Unsuccessful. (ବିଫଳା—ସ୍ତ୍ରୀ) (ବିପରୀତ—ସଫଳ) [ବିଫଳତା(ତ୍ୱ)—ବି]

**ବିଫଳ ମନୋରଥ**—ସ. ବିଣ ପୁଂ (ବହୁବ୍ରୀହି; ବିଫଳ+ମନୋରଥ)—Biphala manoratha ଯାହାର ମନୋରଥ ସିଦ୍ଧ ହୋଇ ନାହିଁ—Unsuccessful. (ବିଫଳ ମନୋରଥା—ସ୍ତ୍ରୀ)

[ ଦ୍ର—ଏହିପରି ବିଫଳ ପ୍ରୟତ୍ନ, ବିଫଳ ପ୍ରୟାସ, ବିଫଳ ଯତ୍ନ, ବିଫଳ ପରିଶ୍ରମ, ବିଫଳ ଶ୍ରମ ଆଦି ପଦ ବ୍ୟବହୃତ ହୁଏ । ]

**ବିଫଳା**—ସଂ. ବି. ସ୍ତ୍ରୀ ( ବିଫଳ+ସ୍ତ୍ରୀ ଆ )—କେତକୀ ଗଛ—The Biphala screwpine; Pandanus Odorotissimus. ସଂ. ବିଣ ସ୍ତ୍ରୀ—ବିଫଳର ସ୍ତ୍ରୀଲିଙ୍ଗ—Feminine of Biphala.

**ବିଫଳିବା**—ଦେ. (ପଦ୍ୟ) କ୍ରି (ପଦ୍ୟ) (ସଂ. ବିଫଳ)—ବିଫଳ ହେବା; Biphaliba ବୃଥା ହେବା—To be futile. (ଉ—ନିର୍ବାଣ (ବିଫଳାଇବା—ଣିଜନ୍ତ ରୂପ) ଅଶେ ହିମବଳ ବିଫଳେ । ରାଧାନାଥ. ବିଫଲା ବିଫଲ ହୋନା ମେଘଦୂତ ।)

**ବିଫଳୀକୃତ**—ସଂ. ବିଣ ( ବିଫଳ+ଅଭୂତ ତଦ୍ଭାବେ ଚ୍ୱି+କୃତ )—Biphalikruta ବିଫଳ କରି ଯାଇଥିବା—Nullified. (ବିଫଳୀକରଣ—ବି)

**ବିଫଳୀଭୂତ**—ସଂ. ବିଣ. ( ବିଫଳ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—Biphalibhūta ବୃଥା ହୋଇଥିବା—Become unsuccessful; ending in failure. (ବିଫଳୀ ଭାବ—ବି)

**ବିବକ୍ଷା**—ସଂ. ବି (ବଚ୍ ଧାତୁ=କହିବା+ଇଚ୍ଛାର୍ଥରେ ସନ୍+ଭାବ ଅ+ଆ)—Bibaksha ୧ । କହିବାର ଇଚ୍ଛା—1. Desire to speak. ୨ । ଅଭିଳାଷ; ବାସନା—2. Desire; intention. ୩ । ଅର୍ଥ; ମାନେ—3. Meaning; sense (Apte). ୪ । ଉଦ୍ଦେଶ୍ୟ—4. Intention; purpose (Apte).

**ବିବକ୍ଷିତ**—ସଂ. ବିଣ ( ବଚ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ମ. ତ )—Bibakshita ୧ । କହିବାକୁ ଇଚ୍ଛା କରି ଯାଇଥିବା—2. Intended to be spoken. ୨ । ଇପ୍ସିତ—2. Desired; wished for. ୩ । ପ୍ରିୟ—3. Favorite (Apte) ସଂ. ବି· (+ଭାବ. ତ)—୧ । ଉଦ୍ଦେଶ୍ୟ—1. Purpose; intention (Apte). ୨ । ଅର୍ଥ—2. Meaning; sense (Apte)·

**ବିବକ୍ଷୁ**—ସଂ. ବିଣ. ପୁଂ (ବଚ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—Bibakshu କହିବାକୁ ଇଚ୍ଛୁକ—Desiring to speak.

**ବିବଞ୍ଚିଷା**—ସଂ. ବି. ( ବଂଚ୍ ଧାତୁ+ଇଚ୍ଛାର୍ଥରେ ସନ୍+ଅ+ଆ )—Bibanchisha ଠକିବାର ଇଚ୍ଛା—Desire to defraud. (ବିବଞ୍ଚିଷୁ—ବିଣ)

**ବିବତ୍ସା**—ସଂ. ବି. (ବସ୍ ଧାତୁ+ଇଚ୍ଛାର୍ଥରେ ସନ୍+ଭାବ. ଅ+ଆ)—Bibat-sa ବାସ କରିବାର ଇଚ୍ଛା—Intention to reside. ସଂ. ବି. ସ୍ତ୍ରୀ (ବି—ନଷ୍ଟ ହୋଇଅଛି+ବତ୍ସ=ବାଛୁରି ଯାହାର; ବହୁବ୍ରୀହି)—ଯେଉଁ ଗାଈର ବାଛୁରି ମରିଅଛି—A cow which has lost her calf.

**ବିବତ୍ସୁ**—ସଂ. ବି. ( ବସ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ )—Bibat-su ବାସ କରିବାକୁ ଇଚ୍ଛୁକ—Desirous of residing.

**ବିବଦମାନ**—ସଂ. ବି. ପୁଂ ( ବି+ବଦ୍ ଧାତୁ+କର୍ତ୍ତୃ. ଅନ୍ )—Bibadamāna ୧ । ବିବାଦକାରୀ; କଳହକାରୀ—1, Quarrelling; wrangling. ୨ । ମକଦ୍ଦମାରେ ଲଢ଼ୁଥିବା—2, Contending or contesting in a court of law. ( ବିବଦମାନା—ସ୍ତ୍ରୀ )

**ବିବଦ୍ଧ**—ସଂ ବିଣ ( ବି+ବଧ ଧାତୁ+କର୍ମ ତ )—୧ । ଆବଦ୍ଧ—Bibaddha 1. Fastened; tied. ୨ । ବ୍ୟାହତ—Obstructed; stopped ( Apte ).

**ବିବଧ**—ସଂ. ବି ( ବି+ବଧ୍ ଧାତୁ=ବନ୍ଧନ କରିବା+ଭାବ. ଅ )—Bibadha ୧ । ଧାନ୍ୟାଦି ପ୍ରାପ୍ତି—1. Acquisition of grains. ୨ । ( +କରଣ ଅ ) କ୍ଷୀର ବା ଦୁଗ୍ଧର ଭାର; ଦୁଧଭାର—2. A yoke for carrying milk pails suspended at both ends. ୩ । ( +ଅଧିକରଣ ଅ; କର୍ମ୍ମ କର୍ମ ଅ ) ପଥ—3. Road. ୪ । ବାର୍ତ୍ତା—4. News; tidings. ୫ । ( +କର୍ମ୍ମ ଅ ) ବୋଝ—5. Load; burden ( Apte ). ୬ । ( +ଭାବ ଅ ) ଶସ୍ୟାଦିର ସଞ୍ଚୟ—6. Storage of grains ( Apte ). ୭ । ( +କର୍ମ ଅ ) କୁମ୍ଭ—7. Pitcher ( Apte ).

**ବିବଧିକ**—ସଂ. ବି ( ବିବଧ+ଇକ )—୧ । ଭାରିଆ; ଭାରୁଆ—1. Bibadhika A person carrying loads suspended at both the ends of a yoke. ୨ । ବୋଝିଆ—2. Porter ( Apte ). ୩ । ଫେରିବାଲା—3. Pedlar; hawker ( Apte ).

**ବିବନ୍ଦିଷୁ**—ସଂ. ବିଣ ( ବନ୍ଦ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ· ଉ )—Bibandishu ଅଭିବାଦନେଚ୍ଛୁ—Wishing to make obeisance. (ବିବନ୍ଦିଷା—ବି)

**ବିବନ୍ଧ**—ସଂ. ବି ( ବି+ବନ୍ଧ୍ ଧାତୁ+କରଣ ଅ )—୧ । ବ୍ୟାଧି; ରୋଗ Bibandha —1. Disease; illness. ୨ । କୋଷ୍ଠବଦ୍ଧ ରୋଗ—2. Constipation; costiveness. ୩ । ମଳମୂତ୍ରରୋଧ ରୋଗ—3. Stoppage of urine and stools. ୪ । ବାଧା—4. Obstruction ( Apte ). ଦେ. ବି—ବନ୍ଧନ—Tying. ( ଉ—ବୋଲୁ ଏମନ୍ତ ଶୁଭିଲା, ବିବନ୍ଧ କୁଚେ ଲୋଭିଲା । ଉଞ୍ଜ. ବୈଦେହୀଶବିଳାସ । ) ଦେ. ବିଣ—ମୁକୁଳା (କେଶ)—Untied; let loose. ( ଉ—ବର୍ଣ୍ଣିନ୍ତୁ ଥାଇଛି ଶ୍ରୀକୁନ୍ତଳକୁ, ବିବନ୍ଧ ଯା ସମ ଶ୍ୟାମଳ୍ପମର । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )

**ବିବନ୍ଧୁ**—ସଂ. ବିଣ ( ବି+ବନ୍ଧୁ )—ବନ୍ଧୁହୀନ—Bibandhu Friendless.

**ବିବମିଷା**—ସଂ. ବି ( ବମ୍ ଧାତୁ+ଇଚ୍ଛାର୍ଥରେ ସନ୍+ଭାବ ଅ+ଆ )—Bibamisha ବମନ କରିବାର ଇଚ୍ଛା; ଅଇ ଦେଖାଇବା; ବାନ୍ତି ମାଡ଼ିବା—Tendency to vomit.

**ବିବମିଷୁ**—ସଂ. ବି ( ବମ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ ଉ )—Bibamishu ଯାହାକୁ ବାନ୍ତି ମାଡ଼ୁଥାଏ—Feeling a tendency to vomit.

ବିବର—ସଂ. ବି ( ବି+ବୃ ଧାତୁ=ଆବରଣ କରିବା+କର୍ତ୍ତୃ ଅ )—
Bibara ୧ । ରନ୍ଧ୍ର; କଣା; ଗର୍ତ୍ତ; ଛିଦ୍ର—1. Hole; fissure
୨ । ଗହ୍ୱର; ପର୍ବତଗୁହା—2. Mountain-cave.
୩ । ବିଲ—3. Den. ୪ । ବିଚ୍ଛେଦ—4. Separation, ୫ । ବ୍ୟବଧାନ—5. Interval; intervening space (Apte). ୬ । ନିର୍ଜନ ସ୍ଥାନ—6. Solitary place (Apte). ୭ । ଦୋଷ—7. Fault; flaw. (Apte) ୮ । ନଅ ( ସଂଖ୍ୟା )—8. The number nine (Apte). ୯ । ବିସ୍ତାର—9. Expansion (Apte). ୧୦ । ପକ୍ଷିରାଜ ଗରୁଡ଼—10. Garurda, the king of birds. [ ଉ—ବିବର ଗତ ସୁଗ୍ରୀବ ଦେଖି ସେ ଉଭୟ, ବିବର ଲୋକନେ ଯଥା ଅନଙ୍ଗ ସଭୟ । ଭଞ୍ଜ, ବୈଦେହୀଶବିଳାସ । ] ଦେ. ବି
विवर —୧ । ମାଛମାନଙ୍କର ବସା କରିବା ପାଇଁ ପାଣିତଳେ ମାଟିରେ ଖୋଳିବା ଗାତ; ଡମ୍ବର — 1. Holes made by big fishes in tanks in breeding season. ବୈଦେ. ବି ( ଇଂ. ବୀଭର୍ )—ଏକପ୍ରକାର
वीवर ଉଭୟଚର ପଶୁ—The beaver. [ ଦ୍ର—ବିବର—
बीबर ମୂଷା ଜାତୀୟ କିନ୍ତୁ ମୂଷାଠାରୁ ବଡ଼ ଉଭୟଚର ଜୀବ; ଏହା ଦେହର ଲୋମ ଖୁବ୍ କୋମଳ ଓ ପାଶ୍ଚାତ୍ୟ ପୋଷାକ-ସଉକୀମାନେ ଏ ଲୋମ ପୋଷାକ ଉପରେ ମଡ଼ାନ୍ତି । ଏହାର ପଛଗୋଡ଼ ଲିପ୍ତ । ବିବରମାନେ ଦଳ ବାନ୍ଧି ନଈ ବା ଜଳାଶୟ କୂଳରେ ବସା କରି ରହନ୍ତି । ଏମାନେ ବଡ଼ ବଡ଼ ଗଛମାନ ତୀକ୍ଷ୍ଣଦାନ୍ତରେ କାଟି ନଈସ୍ରୋତରେ ଭସାଇ ଆଣି ନିର୍ଦ୍ଦିଷ୍ଟ ସ୍ଥାନରେ ସେମାନ ଅଟକାଇ ପାଣିର ଅତଡ଼ରେ ଉକ୍ତ ଗଛର ଗଣ୍ଡିମାନଙ୍କରେ କାଦୁଅ ଲଗାଇ ନିଜର ବସା ବାନ୍ଧନ୍ତି ଓ ପାଣିକୁ ଅଟକାଇ ରଖିବା ପାଇଁ ଦୃଢ଼ ବନ୍ଧ ପକାନ୍ତି । ଏମାନଙ୍କ କୋଡ଼ଗାତରୁ କସ୍ତୂରୀ ପରି ଏକପ୍ରକାର ବହୁ-ମୂଲ୍ୟ ସୁଗନ୍ଧଦ୍ରବ୍ୟ ( castor ) ମିଳେ, ଏହା ସୁବାସିତ ଏସେନ୍ସଆଦି ପାଇଁ ପାଶ୍ଚାତ୍ୟଦେଶରେ ବ୍ୟବହୃତ ହୁଏ । ]

ବିବରଣ—ସଂ, ବି ( ବି+ବୃ ଧାତୁ+ଭାବ ଅନ )—୧ । ବିସ୍ତାର—
Bibarana 1. Expansion. ୨ । ବର୍ଣ୍ଣନ—2. Description; statement. ୩ । ପୁଙ୍ଖାନୁପୁଙ୍ଖ ବା ବିସ୍ତାରିତ ବର୍ଣ୍ଣନା—3. Detailed description; specification. ୪ । କୌଣସି ଘଟଣାର ସମସ୍ତ ଅବସ୍ଥା—4. Circumstances regarding a particular event. ୫ । ବ୍ୟାଖ୍ୟା; ଟୀକା; ବିଶଦାର୍ଥ ପ୍ରକାଶ — 5. Annotation; gloss. ୬ । ପ୍ରକାଶ—6. Unfolding; manifestation, ୭ । ଖୋଲି କରି ଦେଖାଇବା—7. Displaying; laying bare or open (Apte). ୮ । ବାକ୍ୟ—1, Sentence (Apte),

ବିବରଣୀ—ସଂ. ବି ( ଆଧୁନିକ ପ୍ରୟୋଗ; ବିବରଣ+ଈ )—ବିବରଣ
Bibaraṇi ( ଦେଖ )—Bibaraṇa ( See )

ବିବରଣୀୟ—ସଂ. ବିଣ ( ବି+ବୃ ଧାତୁ+କର୍ମ ଅନୀୟ )—୧ ।
Bibaraṇiya ବର୍ଣ୍ଣନୀୟ—1, Describeable, ୨ । ପ୍ରକଟନୀୟ —2, Expressible,

ବିବର ନାଳିକା—ସଂ. ବି [ ବିବର=ଛିଦ୍ର+ନାଳ+କ+ଆ ]—
Bibara nālikā ବଂଶୀ—A flute.

ବିବରା—ସଂ. ବି ଓ ବିଣ [ ଆଧୁନିକ ପ୍ରୟୋଗ; ବହୁବ୍ରୀହି; ବି=ବିଗତ
Bibarā ବର=ସ୍ୱାମୀ ]—ଅକ୍ଷତଯୋନୀ ବିଧବା; ସ୍ୱାମି ସହବାସ ପୂର୍ବରୁ ଯେଉଁ କନ୍ୟା ବିଧବା ହୋଇ ଥାଏ—A virgin widow who has lost her husband before consummation of marriage. [ ଦ୍ର—ପ୍ରାଚୀନ ଶାସ୍ତ୍ରମାନଙ୍କରେ 'ବିଧବା' ଶବ୍ଦ ମୃତଭର୍ତ୍ତୃକା ଅର୍ଥରେ ପ୍ରଯୁକ୍ତ; ମାତ୍ର ବର୍ତ୍ତମାନ ଯୁଗର ଓଡ଼ିଶାର ସମାଜ ସଂସ୍କାରକାମିଗଣ ମୃତଭର୍ତ୍ତୃକାମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରିଅଛନ୍ତି, ସ୍ୱାମିସହବାସ ପୂର୍ବରୁ ଯେଉଁମାନେ ଧବହୀନା ସେମାନେ 'ବିବରା' ଓ ତତ୍ପରେ ଧବହୀନା ହେଲେ 'ବିଧବା' । ]

ବିବରା ବିବାହ—ସଂ. ବି [ ଆଧୁନିକ ବ୍ୟବହାର ]—ଅକ୍ଷତଯୋନୀ ବିଧବାର
Bibarā bibāha ଦ୍ୱିତୀୟବାର ସ୍ୱାମିପରିଗ୍ରହ—The second marriage of a virgin widow.

ବିବରିବା—ଦେ. କ୍ରି [ ପଦ୍ୟ, ସଂ. ବିବରଣ ]—ବର୍ଣ୍ଣନା କରିବା—
Bibaribā To describe. [ ଉ—ଜୟନ୍ତକୁ ଦେଖି
विवरा ନୃପଙ୍କର ହେଲା ହର୍ଷେ ବିଷାଦ, ବିବରି କହିଲେ ପଶ୍ଚାତର
विवरना ଯେତେ ପୂର୍ବ ସମ୍ବାଦ । ରାଧାନାଥ. ଉଷା । ]

ବିବର୍ଜନ—ସଂ. ବି—(ବି+ବୃଜ୍ ଧାତୁ=ତ୍ୟାଗ କରିବା+ଭାବ. ଅନ)
Bibarjana ପରିତ୍ୟାଗକରଣ; ବିସର୍ଜନ— Abandonment; (ବିବର୍ଜକ—ବ୍ୟକ୍ତିବାଚକ ବିଶେଷ୍ୟ, ପୁଂ) relinquishment.

ବିବର୍ଜନୀୟ—ସଂ. ବିଣ—(ବି+ବୃଜ୍ ଧାତୁ+କର୍ମ. ଅନୀୟ)—ପରିତ୍ୟାଜ୍ୟ-
Bibarjaniya Relinquishable; fit to be shunned. (ବିବର୍ଜନୀୟା—ସ୍ତ୍ରୀ)

ବିବର୍ଜିତ—ସଂ. ବିଣ—(ବି+ବୃଜ୍ ଧାତୁ+କର୍ମ. ତ)—୧ । ପରିତ୍ୟକ୍ତ—
Bibarjita 1. Abandoned; relinquished. ୨ । (ସମାସରେ) ଶୂନ୍ୟ; ରହିତ—2. Debarred from; deprived of. ୩ । ପ୍ରଦତ୍ତ—3. Given; distributed. ୪ । (ସମାସରେ) ହୀନ—4. Devoid of; destitute of.

ବିବର୍ଣ୍ଣ—ସଂ. ବିଣ—(ବହୁବ୍ରୀହି; ବି=ବିଗତ+ବର୍ଣ୍ଣ)—୧ । ବର୍ଣ୍ଣହୀନ-
Bibarnna 1. Colourless. ୨ । ମଳିନ—2. Pale; (ବିବର୍ଣ୍ଣା—ସ୍ତ୍ରୀ) wan. ୩ । ବିକୃତବର୍ଣ୍ଣ—3, Discoloured. ୪ । ଫିକା ପଡ଼ି ଯାଇଥିବା—4. Turned pale.
ସଂ. ବି—ନୀଚ ଜାତି—Low caste.

ବିବର୍ତ୍ତ—ସଂ. ବି—(ବି+ବୃତ ଧାତୁ+ଭାବ. ଅ)—୧ । ପରିବର୍ତ୍ତନ—
Bibartta 1. Evolution; change; alteration. ୨ ।

ପରିଣାମ—2. Result. ୩ । ବିଶେଷରୂପେ ସ୍ଥିତ—3. Peculiar position. ୪ । ନୃତ୍ୟ—4. Dancing. ୫ । ସମୂହ; ରାଶି—5. Multitude; heap; collection. ୬ । ଘୂର୍ଣ୍ଣନ—6. Revolving; turning round; whirling round. ୭ । ଭ୍ରମଣ—7. Roaming; wandering. ୮ । ଭ୍ରମ—8. Mistake. (ଯଥା—ରଜ୍ଜୁରେ ସର୍ପ ଭ୍ରମ)—୯ । (ବେଦାନ୍ତ) ଅବିଦ୍ୟା ବା ମାୟା ଜନିତ ଭ୍ରାନ୍ତିରୂପ ବା ଦୃଶ୍ୟ 9. (Bedanta philosophy) An illusory form or an unreal appearance caused by human error.

ବିବର୍ତ୍ତନ—ସଂ. ବି(ବି+ବୃତ୍ ଧାତୁ+ଭାବ. ଅନ)—୧। କ୍ରମିକ ପରିବର୍ତ୍ତନ Bibarttana 1, Change; evolution. ୨ । ଘୂର୍ଣ୍ଣନ—2, Whirling; revolving. ୩ । ପ୍ରତ୍ୟାବର୍ତ୍ତନ—3. Returning, coming back. ୪ । ଭ୍ରମଣ—2, Travelling. ୫ । କଡ଼ ଲେଉଟାଇବା—5. Rolling about;turning on one's sides, ୬ । ନୃତ୍ୟ—6. Dancing, ୭ । ପ୍ରଦକ୍ଷିଣୀକରଣ—7. Going round; walking round an image or revered person or thing with one's right hand towards the latter; circumambulation. ୮ । ନାନା ଅବସ୍ଥାର ମଧ୍ୟ ଦେଇ ଗମନ—8. Passing through various states or existence. ୯ । ନମସ୍କାର 9. Reverential salutation (Apte). ୧୦ । ପରିବର୍ତ୍ତିତ ଅବସ୍ଥା—10. An altered condition (Apte). ୧୧ । ଅପନୟନ—11. Obliteration. ୧୨ । ଅପସାରଣ—12. Displacement.

ବିବର୍ତ୍ତବାଦ—ସଂ. ବି—(ଆଧୁନିକ ପ୍ରୟୋଗ)—୧ । ଜୀବ ଜଗତର କ୍ରମବିକାଶ ବା ଅଭିବ୍ୟକ୍ତିରୂପକ ମତବାଦ—Bibarttabāda (ବିବର୍ତ୍ତନବାଦ—ଅନ୍ୟରୂପ) 1. The theory of evolution [ଦ୍ର—ଡାରୱିନ୍ ନାମକ ଜଣେ ଇଂରେଜ ପଣ୍ଡିତ ଏହି ମତ ପ୍ରତିଷ୍ଠା କରିଥିଲେ । ଏହି ମତ ଅନୁସାରେ ସୃଷ୍ଟିର ଆଦ୍ୟରେ ନିକୃଷ୍ଟ ଜୀବ ସୃଷ୍ଟ ହୋଇଥିଲେ ଏବଂ ସେମାନେ କ୍ରମଶଃ ଉନ୍ନତି ଲାଭ କରି ଓ ବିକାଶପ୍ରାପ୍ତ ହୋଇ ଶେଷକୁ ମନୁଷ୍ୟରୂପ ଧାରଣ କରି ଅଛନ୍ତି । ସର୍ପଠାରୁ ପକ୍ଷୀ, ପକ୍ଷୀରୁ ପଶୁ, ପଶୁରୁ ବାନର ଓ ବାନରରୁ ମନୁଷ୍ୟ ଏହିପରି କ୍ରମବିକାଶ ଘଟିବା ଏହି ମତରେ ପ୍ରକାଶିତ ।] ୨ । (ବେଦାନ୍ତ ଦର୍ଶନ) ମାୟାବାଦ—2. The theory of illusion or illusory appearance in Bedānta. [ଦ୍ର—ଏକ ମାତ୍ର ବ୍ରହ୍ମରୁ ପ୍ରକୃତି, ପ୍ରକୃତିରୁ ସତ୍ତ୍ୱାଦି ଗୁଣତ୍ରୟ ଓ ଗୁଣତ୍ରୟକୁ ଆଶ୍ରୟ କରି ପ୍ରକୃତି ମାୟା ଓ ଅବିଦ୍ୟାରୂପରେ ଦ୍ୱିଧା ବିଭକ୍ତ ହେବାରୁ ମାୟାଶ୍ରିତ ଚୈତନ୍ୟ ଈଶ୍ୱରରୂପରେ ଓ ଅବିଦ୍ୟାଶ୍ରିତ ଚୈତନ୍ୟ ଜୀବ ରୂପରେ ପ୍ରକାଶିତ ହେଲେ । ଏହି ମତ ଅନୁସାରେ ବ୍ରହ୍ମ ସତ୍ୟ ଏବଂ ଏ ଦୃଶ୍ୟମାନ ଜଗତ ମିଥ୍ୟା ବୋଲି କଥିତ ।]

ବିବର୍ତ୍ତିତ—ସଂ ବିଣ—(ବି+ବୃତ୍ ଧାତୁ+କର୍ମ. ତ)—୧ । ଘୂର୍ଣ୍ଣିତ—Bibarttita 1. Revolved; whirled round. ୨ । ଅପସାରିତ—2. Displaced; dislocated; removed. ୩ । ପ୍ରତ୍ୟାବର୍ତ୍ତିତ—3. Returned. ୪ । ଅପନୀତ—4. Obliterated. ୫ । ଭ୍ରାନ୍ତ—5. Mistaken. ୬ । ଖଣ୍ଡ ଖଣ୍ଡ ହୋଇ କଟା ହୋଇଥିବା—6, Mangled; hacked; cut into pieces (Apte). ୭ । ନମିତ—7. Bent down (Apte). ୮ । ବିକୃତ—8. Distorted (Apte); detririorated.

ବିବର୍ତ୍ତିତ ସନ୍ଧିଭଗ୍ନ(ଙ୍ଗ)—ସଂ. ବି ( ଆୟୁର୍ବେଦ ପରିଭାଷା )—ଶରୀରସ୍ଥିତ Bibarttita sandhibhagna(ṅga) ସମ୍ପୂର୍ଣ୍ଣ ସ୍ଥାନଚ୍ୟୁତ; ଅସ୍ଥିସନ୍ଧିଚ୍ୟୁତ; ହାଡ଼କାରୁ ହାଡ଼ ଖସିଯିବା—Complete dislocation of bone from the joint.

ବିବର୍ଦ୍ଧକ—ସଂ. ବିଣ. ପୁଂ ( ବି+ବୃଧ୍ ଧାତୁ+କର୍ତ୍ତୃ ଅକ )—ଯେ Bibarddhaka ବଢ଼ାଏ—Lengthening; increasing; (ବିବର୍ଦ୍ଧୀ—ଅନ୍ୟରୂପ) (ବିବର୍ଦ୍ଧିକା, ବିବର୍ଦ୍ଧିନୀ—ସ୍ତ୍ରୀ) enhancing.

ବିବର୍ଦ୍ଧନ—ସଂ. ବି ( ବି+ବୃଧ୍ ଧାତୁ+ଭାବ ଅନ )—୧ । ସମ୍ୟକ୍ Bibarddhana ବୃଦ୍ଧିକରଣ—1. Lengthening, elonga- (ବିବର୍ଦ୍ଧିତ—ବିଣ) ting. ୨ । ଛେଦନ—2. Cutting. ୩ । ସମ୍ୟକ୍ ବୃଦ୍ଧି—2. Increase; enlargement (Apte).

ବିବଶ—ସଂ. ବିଣ. ପୁଂ ( ବି+ବଶ୍ ଧାତୁ=ଇଚ୍ଛା କରିବା+ଭାବ ଅ, Bibaśa ଅଥବା ବି=ବିଗତ+ବଶ=ଅଧୀନତା; ବହୁବ୍ରୀହି)—(ବିବଶା—ସ୍ତ୍ରୀ) ୧ । ଅବଶ—1. Out of control, ୨ । [ବିବଶତା(ତ୍ୱ)—ବି] ଅବାଧ୍ୟ—2.Disobedient; insubordinate. ୩ । ନିଶ୍ଚେଷ୍ଟ—3. Stupefied; disabled. ୪ । ଗମନ ଶକ୍ତିରହିତ—4, Paralysed. ୫ । ବିହ୍ୱଳ; ଆର୍ତ୍ତ; ବ୍ୟାକୁଳ—5 Overwhelmed. ୬ । ଅସହାୟ—6. Helpless. ୭ । ସ୍ୱାଧୀନ—7. Independent. ୮ । ମୃତ୍ୟୁପ୍ରାର୍ଥୀ—8. Wishing death. ୯ । ମୃତ୍ୟୁକାଳରେ ନିର୍ଭୀକ—9. Not afraid of death ୧୦ । ପ୍ରଶାନ୍ତ ଚେତାଃ—10, Tranquil in mind; calm in disposition.

ବିବସନ—ସଂ. ବିଣ. ପୁଂ ( ବହୁବ୍ରୀହି; ବି=ନାହିଁ+ବସନ ]—୧ । Bibasana ନଗ୍ନ; ଲଙ୍ଗଳା—1 Naked. ୨ । ବସ୍ତ୍ରହୀନ—[ବିବସ୍ତ୍ର—ଅନ୍ୟରୂପ] 2. Clothless; undressed. (ବିବସନା, ବିବସ୍ତ୍ରା—ସ୍ତ୍ରୀ)

ବିବସନ କରିବା—ଦେ. କ୍ରି—ଲଙ୍ଗଳା କରିବା; କୌଣସି ବ୍ୟକ୍ତିର Bibasana kariba ଦେହରୁ ପରିହିତ ବସ୍ତ୍ର କାଢ଼ି ନେବା—To make a person naked.

ବିବସ୍ୱତୀ—ସଂ. ବି. ସ୍ତ୍ରୀ (ବିବସ୍ୱତ୍+ଙୀ. ଈ)—ସୂର୍ଯ୍ୟନଗରୀ—
Bibaswatī The imaginary city of the Sun-god.

ବିବସ୍ୱାନ୍—ସଂ. ବି. ପୁଂ [ବିବସ୍ (ବି=ବିବିଧ ପ୍ରକାର+ ବସ୍ ଧାତୁ= Bibaswān ବାସ କରିବା+କର୍ତ୍ତୃ. କ୍ୱିପ୍=ବିବସ୍=ତେଜୋମୟ ଆବରଣ)+ଅସ୍ତ ଅର୍ଥରେ ବତ୍; ବିବସ୍ୱତ୍; ୧ମା. ୧ବ]—
୧ । ଦେବତା-1. Deity. ୨ । ସୂର୍ଯ୍ୟ—2, The sun.
୩ । ବୈବସ୍ୱତ ମନୁ ରାଜା—3. A king, the son of the Sun-god. ୪ । ଅରୁଣ—4. Twilight personified. ୫ । ଅରଖ ଗଛ; ଅର୍କବୃକ୍ଷ—
5, Calotropis Gigantea; swallowwort.

ବିବାକ୍—ବୈଦେ. ଅ (ଫା. ବେବାକ୍)—୧ । ଡମାମ୍; ସମ୍ପୂର୍ଣ୍ଣ- Bibāk ରୂପେ—1. Totally; wholly; completely. ୨ । বেবাক্, বিবাক্ ବାକି ନ ରହି—2. Without leaving **बेबाक** any remainder. ୩ । ସମସ୍ତେ—3, One and all. ୪ । ସମସ୍ତ—4. All; entire; whole.

ବିବାକ—ସଂ. ବିଣ ( ବି+ବଚ୍ ଧାତୁ+କର୍ତ୍ତୃ. ଅ )—ବିବେଚକ—
Bibāka Considerate. ବୈଦେ. ଅ (ଫା)-ବିବାକ୍ (ଦେଖ)- Bibāk (See).

ବିବାଦ—ସଂ. ବି (ବି+ବଦ୍ ଧାତୁ+ଭାବ. ଅ)—୧ । କଳି; କଳହ;
Bibāda ଝଗଡ଼ା—1. Quarrel; wrangling. ୨ । ବିସମ୍ବାଦ; ବିରୋଧ—2. Dispute; opposition; controversy. ୩ । ମତଭେଦ—3. Difference of opinion. ୪ । ମକଦ୍ଦମା; ମାମଲା—4. Litigation.

ବିବାଦକ—ସଂ. ବିଣ (ବିବାଦ+କୃ ଧାତୁ+କର୍ତ୍ତୃ. ଅକ)— ଯେ ବିବାଦ
Bibādaka କରେ—Disputing; wrangling.
(ବିବାଦକା—ସ୍ତ୍ରୀ)

ବିବାଦ କରିବା—ଦେ. କ୍ରି—୧ । କଳି କରିବା—1. To quarrel.
Bibāda karibā ୨ । ମକଦ୍ଦମା କରିବା—2, To sue; to বিবাদ করা **विवाद करना** file case against a person; to litigate.

ବିବାଦ ପଦ—ସଂ. ବି (୬ଷ୍ଠୀ ତତ୍) (ହିନ୍ଦୁ ସ୍ମୃତି)—୧ । ମକଦ୍ଦମାର
Bibāda pada ବିଷୟ—1. (Hindu Law) Subject (ବିବାଦ ସ୍ଥଳ—ଅନ୍ୟରୂପ) matter of a suit. ୨ । ମକଦ୍ଦମା ଦାଏର୍ କରିବାର ମୁଖ୍ୟ କାରଣ—2. Cause of action.

ବିବାଦ ପ୍ରିୟ—ସଂ. ବିଣ. ପୁଂ (ବହୁବ୍ରୀହି; ବିବାଦ ପ୍ରିୟ ଅଟେ ଯାହାର)—
Bibāda priya ୧ । କଳହପ୍ରିୟ—1. Quarrelsome. ୨ ।
(ବିବାଦ ପ୍ରିୟା—ସ୍ତ୍ରୀ) ମକଦ୍ଦମାବାଜ୍—2. Given to or fond
(ବିବାଦ ପ୍ରିୟତା—ବି) of litigation; litigous.

ବିବାଦ ବଢ଼ିବା—ଦେ. କ୍ରି—ଦିନକୁ ଦିନ ବିବାଦ ଗୁରୁତର ହେବା—
Bibāda bardhibā A dispute taking a graver বিবাদ বাঢ়া turn from day to day; the aggravation **विवादबढना** of a dispute.
[ବିବାଦ ବଢ଼ା(ଢ଼େ)ଇବା—ଣିଜନ୍ତ ରୂପ]

ବିବାଦ ବିଷୟ—ସଂ. ବି ( ୬ଷ୍ଠୀ ତତ୍; ବିବାଦ+ବିଷୟ; କଳହବସ୍ତୁ )—
Bibāda bishaya ଯେଉଁ ବିଷୟ ପାଇଁ ଦୁଇ ଜଣଙ୍କର କଳି ଲାଗିଥାଏ; କଳହର ବସ୍ତୁ—Bone of contention; subject matter of dispute; matter in dispute.

ବିବାଦ ବିସମ୍ବାଦ—ସଂ, ବି (ସହଚର) ( ବହୁବଚନାର୍ଥ ସୂଚକ )—
Bibāda bisambāda ୧ । କଳିକଜିଆ—1. Quarrel.
୨ । ମାମଲା; ମକଦ୍ଦମା—2. Litigation. ୩ । ବିରୋଧ- 3. Dispute.

ବିବାଦ ବିହୀନ—ସଂ. ବିଣ ( ୩ୟା ତତ୍; ବିବାଦ+ବିହୀନ )—କଳହ
Bibāda bihīna ଶୂନ୍ୟ—Free from dispute.
(ବିବାଦ ଶୂନ୍ୟ, ବିବାଦହୀନ—ଅନ୍ୟରୂପ)

ବିବାଦ ବୃଦ୍ଧି—ସଂ. ବି (୬ଷ୍ଠୀ ତତ୍, ବିବାଦ+ବୃଦ୍ଧି)—କଳି ବଢ଼ିବା—
Bibāda bruddhi The aggravation of a dispute,

ବିବାଦ ଭଞ୍ଜକ—ସଂ. ବିଣ ପୁଂ—ଯେ ବିବାଦ ମୀମାଂସା କରେ—
Bibāda bañjaka Settling a dispute.
(ବିବାଦଭଞ୍ଜୀ—ଅନ୍ୟରୂପ) (ବିବାଦଭଞ୍ଜିକା, ବିବାଦଭଞ୍ଜିନୀ—ସ୍ତ୍ରୀ)

ବିବାଦ ଭଞ୍ଜନ—ସଂ. ବି (୬ଷ୍ଠୀ ତତ୍; ବିବାଦ+ଭଞ୍ଜନ)—ଦୁଇ ଜଣଙ୍କ
Bibāda bhañjana ମଧ୍ୟରେ ଜାତ ବିବାଦର ମୀମାଂସା—
Settlement of a dispute.

ବିବାଦ ଭାଙ୍ଗିବା—ଦେ. କ୍ରି—ଦୁଇ ଜଣଙ୍କ ମଧ୍ୟରେ ହୋଇଥିବା
Bibāda bhāngibā ବିବାଦକୁ ଆପୋସରେ ରଫା କରିବା— বিবাদ মেটান To settle a dispute amicably.
**विवाद तोडना** (ବିବାଦ ତୁଟାଇବା, ବିବାଦ ମିଟାଇବା, ବିବାଦ ମେଣ୍ଟାଇବା—ଅନ୍ୟରୂପ)

ବିବାଦ ମଚା(ଚେ)ଇବା—ଦେ. କ୍ରି—ଦୁଇ ଜଣଙ୍କ ମଧ୍ୟରେ କଳହର
Bibāda matā(te)ibā ସୂତ୍ରପାତ ଘଟାଇବା—To bring বিবাদ মাতান about dispute between 2 persons;
**विवाद लगाना** to fan up a quarrel between two persons.

ବିବାଦ ମୀମାଂସା—ସଂ. ବି ( ୬ଷ୍ଠୀ ତତ୍; ବିବାଦ+ମୀମାଂସା )—
Bibāda mimāmsā ବିବାଦର ନିଷ୍ପତ୍ତି—Settlement of a dispute.

ବିବାଦ ମେଣ୍ଟିବା—ଦେ. କ୍ରି—ଆପୋସରେ ବିବାଦର ମୀମାଂସା—
Bibāda mentibā Amicable settlement of a বিবাদ মেটা, বিবাদ মিটা **विवाद मिटजाना** dispute.
(ବିବାଦ ତୁଟିବା, ବିବାଦ ମେଣ୍ଟିଯିବା, ବିବାଦ ମିଟିବା—ଅନ୍ୟରୂପ)
[ବିବାଦ ମେଣ୍ଟା(ଣ୍ଟେ)ଇବା, ବିବାଦ ତୁଟା(ଟେ)ଇବା—ଣିଜନ୍ତ]

ବିବାଦ ଲଗା(ଗେ)ଇବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତି ସଙ୍ଗେ
Bibāda lagā(ge)ibā ବିବାଦ କରିବା—1. To pick up বিবাদ লাগান a quarrel with another. ୨ । ଦୁଇ
**विवाद लगाना** ଜଣଙ୍କ ମଧ୍ୟରେ କଳହର ସୂତ୍ରପାତ କରିବା—
2. To bring about a quarrel between 2 persons; to set two persons to quarrel.

ବିବାଦ ଲାଗିବା—ଦେ. କ୍ରି—ଦୁଇ ଜଣଙ୍କର କଳି ଲାଗିବା—
Bibāda lāgibā Happening of a dispute
বিবাদ লাগা **बिवाद लगना** between 2 persons.
(ବିବାଦ ଗୁଳିବା; ବିବାଦ ଉପୁଜିବା—ଅନ୍ୟରୂପ)

ବିବାଦାର୍ଥୀ—ସଂ ବିଣ ପୁଂ (ଉପପଦ ତତ୍; ବିବାଦ+ଅର୍ଥ୍+ଇନ୍)—
Bibādārthī ୧ । କଳିହୁଡ଼ା—1. Quarrelsome.
(ବିବାଦାର୍ଥିନୀ—ସ୍ତ୍ରୀ) ୨ । କଳି କରିବାକୁ ପ୍ରସ୍ତୁତ—
2. Ready to quarrel.

ବିବାଦୀ—ସଂ ବିଣ ପୁଂ ( ବି+ବଦ୍ ଧାତୁ+ଇନ୍; ୧ମା. ୧ବ )—
Bibādī କଳହକାରୀ—Quarrelling; contesting.
(ବିବାଦିନୀ—ସ୍ତ୍ରୀ) ଦେ, ବି—ମକଦ୍ଦମାରେ ପ୍ରତିବାଦୀ—The defendant in a suit.

ବିବାଦୀୟ—ସଂ ବିଣ ( ବିବାଦ+ଈୟ )—୧ । ବିବାଦ ସମ୍ବନ୍ଧୀୟ—
Bibādīya 1. Pertaining to a dispute. ୨ । ମକଦ୍ଦମା ସମ୍ପର୍କୀୟ—2. Relating to a suit. ୩ । ବିବାଦର ବିଷୟୀଭୂତ (ବିଷୟ)—2. Being the subject matter of a dispute or bone of contention.

ବିବାଦୀୟ ସମ୍ପତ୍ତି—ସଂ ବି (କର୍ମଧାରୟ)—ଯେଉଁ ସମ୍ପତ୍ତି ପାଇଁ ମକଦ୍ଦମା
Bibādīya sampatti ଲାଗିଥାଏ—Disputed property;
(ବିବାଦୀୟ ବୃତ୍ତି—ଅନ୍ୟରୂପ) the property in suit

ବିବାନ(ଇତ୍ୟାଦି)—ଗ୍ରା. ବି (ସଂ. ବିମାନ)—ବିମାନ ଇତ୍ୟାଦି ( ଦେଖ )
Bibāna(etc) Bimāna etc. ( See )

ବିବାନ ପିଠିଆ—ଗ୍ରା. ବିଣ—ଯେଉଁ ଘୋଡ଼ାର ପିଠି ବିମାନର ବସିବା
Bibāna piṭhiā ସ୍ଥାନ ବା ପୀଠ ପରି ଚଉଡ଼ା ବା ପରସରବିଶିଷ୍ଟ;
ପଲଙ୍କ ପିଠିଆ—(a horse) Having a broad back.

ବିବାସ—ସଂ ବି (ବି+ବସ୍ ଧାତୁ ଣିଜନ୍ତ ବାସି ଧାତୁ+ଭାବ. ଅ);
Bibāsa ନ )—ନିର୍ବାସନ—Transportation; sending
(ବିବାସନ—ଅନ୍ୟରୂପ) into exile; banishment.

ବିବାସିତ—ସଂ ବିଣ. ପୁଂ (ବି+ବସ୍ ଧାତୁ ଣିଜନ୍ତ ବାସି ଧାତୁ+କର୍ମ. ତ)—ନିର୍ବାସିତ—Exiled; banished; transported.
Bibāsita
(ବିବାସିତା—ସ୍ତ୍ରୀ)

ବିବାହ—ସଂ. ବି. ( ବି+ବହ୍ ଧାତୁ=ପ୍ରାପ୍ତ ହେବା+ଭାବ. ଅ )—
Bibāha ବଂଶ ରକ୍ଷା ଓ ସମାଜ ରକ୍ଷା ସକାଶେ ପୁରୁଷ ଓ ସ୍ତ୍ରୀର ମିଳନ; ପରିଣୟ—Marriage; wedding. [ ଦ୍ର—ବିବାହ ହିନ୍ଦୁମାନଙ୍କର ଦଶବିଧ ସଂସ୍କାର ମଧ୍ୟରୁ ଗୋଟିଏ । ପ୍ରାଚୀନ ହିନ୍ଦୁମାନଙ୍କ ମଧ୍ୟରେ ଅଷ୍ଟବିଧ ବିବାହ ପ୍ରଚଳିତ ଥିଲା—୧. ବ୍ରାହ୍ମ—କନ୍ୟାପିତା କନ୍ୟାକୁ ବସ୍ତ୍ରାଲଙ୍କାର ଦ୍ୱାରା ଭୂଷିତ କରି ବିଦ୍ୱାନ୍ ଓ ସଦାଚାରସମ୍ପନ୍ନ ବରକୁ ସ୍ୱୟଂ ଆମନ୍ତ୍ରଣ ପୂର୍ବକ ବେଦୋକ୍ତ ବିଧିରେ କନ୍ୟାଦାନ କରିବା; ୨. ଦୈବ—ଜ୍ୟୋତିଷ୍ଟୋମାଦି ଯଜ୍ଞରେ ଯଜ୍ଞକର୍ତ୍ତା ପୁରୋହିତଙ୍କୁ ଦୈବ କାର୍ଯ୍ୟ ସିଦ୍ଧି କାମନାରେ ଅଳଙ୍କୃତ କନ୍ୟାକୁ ସମ୍ପ୍ରଦାନ କରିବା । ୩. ଆର୍ଯ—ଯାଗାଦି ଅବଶ୍ୟକର୍ତ୍ତବ୍ୟ କର୍ମର ସାହାଯ୍ୟାର୍ଥେ ବରଠାରୁ ଗୋଟିଏ ବା ହଳେ ବଳୀବର୍ଦ୍ଦ ନେଇ ତାହାଙ୍କ ହସ୍ତରେ ବିଧି ଅନୁରୂପ କନ୍ୟା ଦାନ କରିବା । ୪. ପ୍ରାଜାପତ୍ୟ—'ତୁମ୍ଭେମାନେ ଉଭୟେ ଗାର୍ହସ୍ଥ୍ୟ ଧର୍ମ ଆଚରଣ କର' କନ୍ୟାପିତା ଏହା କହି ଯଥାବିଧି ବରକୁ କନ୍ୟା ଦାନ କରିବା । ୫. ଆସୁର ବିବାହ—କନ୍ୟାକୁ କିଣି କରି ଗ୍ରହଣ ପୂର୍ବକ ବିବାହ କରିବା । ୬. ଗାନ୍ଧର୍ବ ବିବାହ—କନ୍ୟାର ଓ ବରର ପରସ୍ପର ଅନୁରାଗ ବଶତଃ ମିଳନ । (ଏ ମିଳନ ପରେ ହୋମାଦି ବିଧି ସମ୍ପାଦନ ପୂର୍ବକ ବିବାହ ସିଦ୍ଧ ହୁଏ) । ୭. ରାକ୍ଷସ ବିବାହ—କନ୍ୟାପକ୍ଷୀୟ ଲୋକମାନ ହାଣି ମାରି ରୋରୁଦ୍ୟମାନା କନ୍ୟାକୁ ବଳପୂର୍ବକ ହରଣ କରି ବିବାହ କରିବା । ୮. ପୈଶାଚ—ନିର୍ଜନରେ ନିଦ୍ରା ବା ମଦ୍ୟପାନ ଦ୍ୱାରା ଅଚେତନା ବା ଉନ୍ମତ୍ତା କନ୍ୟାର ସହବାସ ପୂର୍ବକ ତାହାକୁ ପତ୍ନୀ ରୂପେ ଗ୍ରହଣ । ଆଧୁନିକ ହିନ୍ଦୁ ସମାଜରେ କେବଳ ୪ର୍ଥ ଓ ୫ମ ପ୍ରକାରର ବିବାହ ଚଳୁଅଛି । ଇଉରୋପୀୟ ସମାଜରେ ଗାନ୍ଧର୍ବ ବିବାହ ପ୍ରଚଳିତ । ହିନ୍ଦୁମାନଙ୍କର ବିବାହବନ୍ଧନ ଅଚ୍ଛେଦ୍ୟ ଏବଂ ସ୍ତ୍ରୀ ସ୍ୱାମୀର ଧର୍ମପତ୍ନୀ ବା ସହଧର୍ମିଣୀ । ମୁସଲମାନ୍‌ମାନଙ୍କ ମଧ୍ୟରେ ବିବାହ ଗୋଟିଏ ସାମାଜିକ ଚୁକ୍ତି ମାତ୍ର ଏବଂ ଏହି ଚୁକ୍ତି ଆଇନ ଅନୁସାରେ (ଅର୍ଥାତ୍ ଜେର୍ ମେର୍ ରାଜ ନ୍ୟାୟରେ) ସମ୍ପାଦିତ ଓ ଭଗ୍ନ କରାଯାଏ । ଖ୍ରୀଷ୍ଟିଆନ୍‌ମାନଙ୍କ ମଧ୍ୟରେ ବିବାହ ନାମତଃ ଧର୍ମବନ୍ଧନ ରୂପେ ପାଦ୍ରୀମାନଙ୍କ ସାହାଯ୍ୟରେ ସମ୍ପାଦିତ ହେଉଥିଲେ ମଧ୍ୟ ତାହା ଅଚ୍ଛେଦ୍ୟ ନୁହେଁ । ଅନାର୍ଯ୍ୟମାନଙ୍କ ମଧ୍ୟରେ ଆସୁର, ପୈଶାଚ ଓ ରାକ୍ଷସ ବିବାହ ପ୍ରଥା ଦୃଷ୍ଟ ହୁଏ । ]

ବିବାହ କରିବା—ଦେ. କ୍ରି—ପତି ବା ପତ୍ନୀ ଗ୍ରହଣ କରିବା—To
Bibāha karibā বিবাহ করা **बिबाह करना** marry.
(ବିବାହ ହେବା—ଗ୍ରାମ୍ୟରୂପ)

ବିବାହ ଯୋଗ୍ୟ—ସଂ. ବିଣ. ପୁଂ—ବିବାହ କରିବା ନିମନ୍ତେ ଉପଯୁକ୍ତ
Bibāha jogya ବୟସ୍କ—Marriageable; of marriageable age.
(ବିବାହ ଯୋଗ୍ୟା—ସ୍ତ୍ରୀ)

ବିବାହ ଯୋଗ୍ୟ ବୟସ—ସଂ. ବି—ବାଳକର ବା ବାଳିକାର ବିବାହ
Bibāha jogya bayasa କରିବା ନିମନ୍ତେ ଉପଯୁକ୍ତ ବୟସ—Marriageable age.

ବିବାହାଙ୍ଗ—ସଂ.ବି (୬ଷ୍ଠୀ ତତ୍; ବିବାହ+ଅଙ୍ଗ)—ବିବାହ କର୍ମରେ ବର-
Bibāhāṅga କନ୍ୟାଙ୍କର କର୍ତ୍ତବ୍ୟ ଉତ୍ସବନ୍ନ ଅନୁଷ୍ଠାନ Ceremonies and functions in which the husband and the wife together have to take part in connection with the sacrament of marriage according to the Hindu scriptures. [ ଦ୍ର—ଗୃହ୍ୟସୂତ୍ରମାନଙ୍କରେ ବିବାହର ୧୩ ଗୋଟି ଅଙ୍ଗ ଉଲ୍ଲିଖିତ ଅଛି; ଯଥା—ପାଣିଗ୍ରହଣ, ବିବାହ ହୋମ, ଲାଜା ହୋମ, ଅଶ୍ମାରୋହଣ, ସପ୍ତପଦୀ, ଧ୍ରୁବଦର୍ଶନ, ଯାନାରୋହଣ, ବିବାହାଗ୍ନିକୁ ସଙ୍ଗରେ ନେଇ ଗମନ, ଗୃହପ୍ରବେଶ, ଚତୁର୍ଥୀ କର୍ମ, ଗୃହାଗ୍ନି ପରିଚରଣ, ପଶ୍ଚାତରେ ସ୍ଥାଲୀପାକ ଓ ଗର୍ଭାଧାନ । ]

ବିବାହାର୍ଥୀ—ସଂ. ବିଣ. ପୁଂ ( ଉପପଦ ତତ୍; ବିବାହ+ଅର୍ଥ୍ ଧାତୁ+କର୍ତ୍ତୃ. ଇନ୍ )—ବିବାହିତ ହେବା ନିମନ୍ତେ ଇଚ୍ଛୁକ—Desirous of marrying.
Bibāharthī
( ବିବାହାର୍ଥିନୀ—ସ୍ତ୍ରୀ )

ବିବାହିତ—ସଂ. ବିଣ. ପୁଂ ( ବି+ବହ୍ ଧାତୁ ଣିଚ୍ ବାହି ଧାତୁ+କର୍ମ. ତ )—୧ । ପରିଣୀତ; କୃତବିବାହ; ଯେ ବିବାହ କରିଅଛି—Married; wedded.
Bibāhita
( ଅବିବାହିତ—ବିପରୀତ )
(ବିବାହିତା—ସ୍ତ୍ରୀ)

ବିବାହ୍ୟ—ସଂ. ବିଣ. ପୁଂ ( ବି+ବହ୍ ଧାତୁ+କର୍ମ. ଯ )—୧ । ବିବାହ ଯୋଗ୍ୟ—1. Marriageable; fit to be married or to be given in marriage. ୨ । ବହନୀୟ—2. Portable. ୩ । ପ୍ରବାହିତ—3. Flowing. ସଂ. ବି—୧ । ଜାମାତା—1. Son-in law. ୨ । ବର—2. Bridegroom.
Bibāhya
(ବିବାହ୍ୟା—ସ୍ତ୍ରୀ)

ବିବି(ବୁ)—ବୈଦେ. ବି. ସ୍ତ୍ରୀ ( ଫା. ବିବୀ; ଫା. 'ବାବା'ର ସ୍ତ୍ରୀଲିଙ୍ଗ )—୧ । ମୁସଲ୍‌ମାନ୍ ଭଦ୍ରନାରୀ—1. Mahomedan lady. ୨ । ମହିଳା; ସ୍ତ୍ରୀ—2. Woman. ୩ । ପତ୍ନୀ—3. Wife. ୪ । ଇଉରୋପୀୟ ରମଣୀ; ସାହାବାଣୀ; ମେମ୍—4. An European lady. ୫ । (ଲକ୍ଷଣାର୍ଥ) ସାଜସଜ୍ଜାପ୍ରିୟା ବିଳାସିନୀ ନାରୀ—5 (figurative) A belle. ୬ । ତାସ୍ ଖେଳରେ ରାଣୀଚିତ୍ର ଚିହ୍ନିତ ତାସ୍—6. The card representing the queen in a pack of cards.
Bibi(bu)
বিবী **विवी**

ବିବିଆନା(ନି)—ବୈଦେ. ବି—ବିବି ବା ମେମ୍‌ମାନଙ୍କ ଚାଲିଚଳନ ବା ସାଜସଜ୍ଜା ପଦ୍ଧତି—The conduct or mode of dress of an European lady ବୈଦେ. ବିଣ—ମେମ୍‌ମାନଙ୍କ ଯୋଗ୍ୟ—Befitting an European lady.
Bibiānā(ni)
বিবিয়ানা
**विवियाना**

ବିବିଆନା ଚାଲ୍(ଲି)—ଦେ. ବି—ମେମ୍‌ମାନଙ୍କ ଚାଲିଚଳନ—The style or fashion of European ladies.
Bibiānā chāl(li)
( ବିବିଆନା ଢଙ୍ଗ—ଅନ୍ୟରୂପ ) বিবিয়ানা চাল **विवियाना चाल**

ବିବିଆନା ପହରଣ—ଦେ. ବି—ମେମ୍‌ଯୋଗ୍ୟ ପରିଚ୍ଛଦ—Dress befitting an European lady.
Bibiānā paharaṇa
বিবিয়ানা পোষাক **विवियाना पहनावा**
( ବିବିଆନା ପୋଷାକ—ଅନ୍ୟରୂପ )

ବିବିକ୍ତ—ସଂ. ବିଣ ( ବି+ବିଚ୍ ଧାତୁ=ପୃଥକ୍ ହେବା+କର୍ତ୍ତୃ. ତ )—୧ । ବିଜନ; ନିର୍ଜନ—1. Lonely. ୨ । ପବିତ୍ର—2. Pure; holy; sacred. ୩ । ଶୁଭ—3. Auspicious; favourable. ୪ । ପୃଥକ୍ କୃତ—5. Separated. ୫ । ଏକାଗ୍ର—5. Devoted to one pursuit. ୬ । ବିବେଚକ—6. Considerate. ୭ । ବିବେକୀ—7. Discriminating; conscientious.
Bibikta

ବିବିକ୍ତା—ସଂ. ବିଣ. ସ୍ତ୍ରୀ ( ବିବିକ୍ତ+ସ୍ତ୍ରୀ. ଆ )—ଭାଗ୍ୟହୀନା; ଦୁର୍ଭାଗା; ସ୍ୱାମୀସୁଖବଞ୍ଚିତା ( ଜୀବିତପତିକା ସ୍ତ୍ରୀ )—Unfortunate; (a woman) deprived of the affection of her husband.
Bibiktā

ବିବିକ୍ଷା—ସଂ. ବି (ବିଶ୍ ଧାତୁ ଇଚ୍ଛାର୍ଥେ ସନ୍ ବିବିକ୍ଷ ଧାତୁ+ଭାବ. ଅ+ଆ)—ପ୍ରବେଶ କରିବା ଇଚ୍ଛା—Desire to enter.
Bibikshā

ବିବିକ୍ଷୁ—ସଂ. ବିଣ ( ବିଶ୍ ଧାତୁ+ଇଚ୍ଛାର୍ଥରେ ସନ୍, ଦ୍ୱିତ୍ୱ+କର୍ତ୍ତୃ. ଉ )—ପ୍ରବେଶ କରିବାକୁ ଇଚ୍ଛୁକ—Intending or wishing to enter.
Bibikshu

ବିବିଗ୍ନ—ସଂ. ବିଣ ( ବି+ବିଜ୍ ଧାତୁ=ଭୀତ ହେବା+କର୍ତ୍ତୃ. ତ )—୧ । ଶଙ୍କିତ; ଭୀତ—1. Alarmed; afraid. ୨ । ଉଦ୍‌ବିଗ୍ନ—2. Anxious; perplexed; agitated.
Bibigna

ବିବିଜାନ୍—ବୈଦେ. ଅ ( ଫା. ବିବିଜାନ୍=ଜୀବନ ପରି ପ୍ରିୟତମା ବିବି )—ମୁସଲ୍‌ମାନଙ୍କର ସ୍ତ୍ରୀ ପ୍ରତି ସ୍ନେହସମ୍ଭାଷଣ—A term of endearment addressed by a Mahomedan to his beloved lady.
Bibijān
বিবিজান
**विवीजान**

ବିବିଜୀ—ବୈଦେ. ବି ( ଫା. ବିବି+ସମ୍ମାନସୂଚକ ଜୀ)—ମୁସଲମାନ ଭଦ୍ରମହିଳାଙ୍କ ପ୍ରତି ସମ୍ମାନାର୍ଥ ପ୍ରୟୋଗ—A term used in respect to Mahomedan ladies.
Bibijī

ବିବିଧ—ସଂ. ବିଣ ( ବହୁବ୍ରୀହି; ବି=ବିଭିନ୍ନ+ବିଧା=ପ୍ରକାର )—୧ । ନାନାବିଧ; ବହୁବିଧ; ନାନାପ୍ରକାରର—2. Various; diverse; of different kinds or sorts. ୨ । ଅନେକ—2. Many; sundry; miscellaneous. ଦେ. ବି ( ନାମ )—ରାମାୟଣୋକ୍ତ କପିବିଶେଷ—Name of a monkey described in the Rāmāyaṇa (ଉ—ବିବିଧ ବିବିଧ ମାଡ଼ ମାରି ମାରି ପକାଇ ସୁମିତ୍ର ଘନ—ଭଞ୍ଜ. ବୈଦେହୀଶବିଳାସ ।)
Bibidha

ବିବି ଧରା—ପ୍ରାଦେ. ( ବାଲେଶ୍ୱର ) ବି—ଏକପ୍ରକାର ତାସ୍ ଖେଳ—A kind of play in cards. [ଦ୍ର—ଏଥିରେ କଳାପାନ ରଙ୍ଗର ବିବି ତାସ୍ ଯାହା ହାତରେ ପଡ଼େ ତା ଉପରେ ବୋଝ ହୁଏ । ]
Bibi dharā

ବିବି ସାଜିବା—ଦେ. କ୍ରି—ମେମ୍‌ମାନଙ୍କ ଅନୁକରଣରେ ପୋଷାକ ପିନ୍ଧିବା—To imitate the dress of an European lady.
Bibi sājibā
বিবি সাজা **विवी साजना**

ବିବି ସାହେ(ହା)ବ—ବୈଦେ. ବି ( ଫା. ବିବି+ସାହେବ )—ମେମ୍ ଓ ସାହେବ—An European lady and gentleman. ଦେ. ଅ—ମେମ୍‌ମାନଙ୍କ ପ୍ରତି ସମ୍ମାନସୂଚକ ପ୍ରୟୋଗ—1. An expression used in addressing European ladies. ୨ । ବିବିସାହେବା ( ଦେଖ ) 2. Bibisāhebā ( See )
Bibi sāhe(hā)ba
বিবি সাহেব
**विवी साहिब**

ବିବି ସାହେ(ହି)ବା—ବୈଦେ. ବି. ସ୍ତ୍ରୀ (ଫା)—ମୁସଲମାନ୍ ସ୍ତ୍ରୀମାନଙ୍କ ପ୍ରତି ମାନ୍ୟାର୍ଥ ପ୍ରୟୋଗ—A respectable Mahomedan lady
Bibisāhe(hi)bā
বিবিসাহেব **विविसाहिबा**

ବିବୀତ—ସଂ. ବି (ବି=ନୃତ୍ୟେ+ବୀତ=ଗତ)—୧ । ପ୍ରଚୁର ତୃଣାଦିବିଶିଷ୍ଟ ପରିରକ୍ଷିତ ଗୋଚରଭୂମି—1. A grazing
Bibīta

land abounding in grass and reserved exclusively for cattle grazing. ୬ । ଗୋଚାରଣ ଭୂମି—2. Pasture. ସଂ. ବିଣ—୧ । ପରିରକ୍ଷିତ—2. Reserved. ୬ । ବାଡ଼ ଦିଆ ହୋଇ ଥିବା—2. Fenced; enclosed.

ବିବୁଧ—ସଂ. ବି (ବି=ବିଶେଷରୂପେ+ବୁଧ୍ ଧାତୁ=ଜାଣିବା+କର୍ତ୍ତୃ. ଅ)—୧ । ଦେବତା—1. Deity. ୬ । ପଣ୍ଡିତ—2. Learned man; philosopher. ୩ । ଚନ୍ଦ୍ର—3. The moon.
Bibudha

ବିବୁଧ ବନିତା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍; ବିବୁଧ+ବନିତା)—ଦେବ ରମଣୀ; ଅପ୍ସରା—The heavenly virgins or nymphs (of Hindu mythology).
Bibudha banitā

ବିବୁଧାଦ୍ରି—ସଂ. ବି (୬ଷ୍ଠୀ ତତ୍; ବିବୁଧ+ଅଦ୍ରି)—ସୁମେରୁ ପର୍ବତ—The mythological mountain to the north of India. [ଦ୍ର-ବିବୁଧାଦ୍ରିରେ ଯେସନେକ ହୋଇ, ବାରଣେନ୍ଦ୍ର ଦଶନ ଭେଦ ରହି । ଉପେ. ବୈଦେହୀଶବିଳାସ]
Bibudhādri

ବିବୁଧାନ—ସଂ. ବି (ବି+ବୁଧ୍ ଧାତୁ+କର୍ତ୍ତୃ. ଅନ)—୧ । ପଣ୍ଡିତ—1. Learned man. ୬ । ଆଚାର୍ଯ୍ୟ—(ବିବୁଧାନା—ସ୍ତ୍ରୀ) 2. Teacher; preceptor. ୩ । ଦେବ—3. A Deity; a god. ସଂ. ବିଣ ପୁଂ—ପଣ୍ଡିତ—Learned.
Bibudhāna

ବିବୃତ—ସଂ. ବିଣ (ବି+ବୃ ଧାତୁ+କର୍ମ. ତ)—୧ । ବିସ୍ତୃତ; ପ୍ରସାରିତ—1. Extended; expanded. ୬ । ବର୍ଣ୍ଣିତ—2. Described; narrated. ୩ । ସ୍ପଷ୍ଟ—3 Clear. ୪ । ପ୍ରକଟିତ—4. Expressed; published. ୫ । ବ୍ୟାଖ୍ୟାତ—5. Explained; amplified. ୬ । (ବିବୃତା—ସ୍ତ୍ରୀ) ପ୍ରକାଶିତ—6. Manifested; disclosed; displayed. ୭ । ମହତ୍—7. Great. ୮ । ଉନ୍ମୁକ୍ତ; ଅନାବୃତ—8. Open; uncovered; opened. ସଂ. ବି—୧ । ବାତରୋଗବିଶେଷ—1. A sort of gout ୬ । ବିବରଣ—2. Description. ୩ । ବ୍ୟାଖ୍ୟା; ଟୀକା—3. Explanation; a key. ୪ । ପ୍ରକଟନ—4 Publication; manifestation; specification. ୫ । ବିସ୍ତାର—5. Expansion. ୬ । ଉଜ୍ଜୃମ୍ଭଣ; ହାଇ ମାରିବା—6 Yawning. ଦେ. ବିଣ—୧ । ବେଷ୍ଟିତ—1. Surrounded. ୬ । ବ୍ୟାପ୍ତ—2. Diffused. [ଦ୍ର—ବିବୃତ ବଦନଗର ଗଜବର ବହୁ ଭଞ୍ଜ. ବୈଦେହୀଶବିଳାସ । ]
Bibruta

ବିବୃତ କରିବା—ଦେ. କ୍ରି—ଦେ. କ୍ରି—ବିସ୍ତାରିତରୂପେ ବର୍ଣ୍ଣନା କରିବା—To describe in detail; to explain.
Bibruta karibā
ବିବୃତକରା **विवृतकरना**

ବିବୃତ ଦ୍ୱାର—ସଂ ବିଣ (ବହୁବ୍ରୀହି; ବିବୃତ+ଦ୍ୱାର)—ଯେଉଁ ଗୃହର ଦ୍ୱାର ଖୋଲି ଯାଇଥାଏ—With the doors opened wide.
Bibruta dwāra

ବିବୃତାକ୍ଷ—ସଂ. ବିଣ. ପୁଂ (ବହୁବ୍ରୀହି; ବିବୃତ=ବିସ୍ତାରିତ+ଅକ୍ଷି)—ବିସ୍ତାରିତ ଲୋଚନବିଶିଷ୍ଟ—Having eyes wide open. ସଂ. ବି—କୁକ୍କୁଟ—Cock.
Bibrutāksha (ବିବୃତାକ୍ଷୀ—ସ୍ତ୍ରୀ)

ବିବୃତାସ୍ୟ—ସଂ ବିଣ ପୁଂ(ବହୁବ୍ରୀହି, ବିବୃତ=ବିସ୍ତାରିତ+ଆସ୍ୟ=ମୁଖ)—ଯେ ମୁଖବ୍ୟାଦାନ କରିଥାଏ—Having the mouth agape; with a gaping mouth
Bibrutāsya (ବିବୃତ ମୁଖ, ବିବୃତ ବଦନ—ଅନ୍ୟରୂପ) (ବିବୃତାସ୍ୟା, ବିବୃତ ମୁଖା, ବିବୃତ ବଦନା—ସ୍ତ୍ରୀ)

ବିବୃତି—ସଂ. ବି (ବି+ବୃ ଧାତୁ+ଭାବ. ତି)—୧ । ପୁନରାବୃତ୍ତି—1. Revision. ୬ । ବର୍ଣ୍ଣନା—2. Description. ୩ । ବ୍ୟାଖ୍ୟା—3. Explanation; exposition; interpretation. ୪ । ଟୀକା—4. Annotation, gloss.
Bibruti

ବିବୃତ୍ତ—ସଂ. ବିଣ (ବି+ବୃତ୍ ଧାତୁ+କର୍ତ୍ତୃ. ତ)—୧ । ଘୂରୁଥିବା, ଘୂର୍ଣ୍ଣିତ—1. Revolving; whirling. ୬ । ଲୁଣ୍ଠିତ—2. Rolling on the ground; grovelling. ୩ । ତିର୍ଯ୍ୟକ୍ ଚଳିତ—3. Moving in a distorted manner.
Bibrutta

ବିବୃତ୍ତି—ସଂ. ବି (ବି+ବୃତ୍ ଧାତୁ+ଭାବ. ତି)-ଚକ୍ରବତ୍ ଭ୍ରମଣ; ଘୂର୍ଣ୍ଣନ—Whirling round; turning round.
Bibrutti

ବିବୃଦ୍ଧ—ସଂ. ବିଣ (ବି+ବୃଧ୍ ଧାତୁ=ବଢ଼ିବା+କର୍ତ୍ତୃ. ତ)—୧ । ବୃଦ୍ଧି ପ୍ରାପ୍ତ—1. Increased; augmented. ୬ । ଅତି ବୃଦ୍ଧ—2. Very old.
Bibruddha

ବିବୃଦ୍ଧି—ସଂ. ବି (ବି+ବୃଧ୍ ଧାତୁ+ଭାବ. ତି)—ସମ୍ୟକ୍ ବୃଦ୍ଧି—Increase; augmentation.
Bibruddhi

ବିବେକ—ସଂ.ବି (ବି+ବିଚ୍ ଧାତୁ=ବିଚାର କରିବା,ପୃଥକ୍ କରିବା+ଭାବ. ଅ)—୧ । ଭଲମନ୍ଦ ବିଚାର—1. Discrimination. ୬ । ବିବେଚନା—2. Consideration ୩ । ତତ୍ତ୍ୱଜ୍ଞାନ—3. Knowledge of fundamental truths. ୪ । ଧର୍ମାଧର୍ମର ବୋଧ—4. Knowledge of what is right and what is wrong. ୫ । ହିତାହିତ ବିବେଚନା—5. Conscience. ୬ । ଔଦାସ୍ୟ—6. Indifference to worldly affairs ୭ । ବୈରାଗ୍ୟ—7. Freedom from passions. ୮ । ସ୍ନାନାଗାର—8. Bath room. ୯ । ଚୌବାଚ୍ଛା—9. A cistern. ୧୦ । କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାର; ଭବିଷ୍ୟତ୍ ସମ୍ବନ୍ଧରେ ବିବେଚନା—10. Consideration about one's future actions. ୧୧ । ଦେହରୁ ବ୍ରହ୍ମକୁ ପୃଥକ୍ ଜ୍ଞାନ କରିବାର କ୍ଷମତା; ପ୍ରକୃତି ଓ ପୁରୁଷର ଭେଦଜ୍ଞାନ—11 The discrimination between the Creator and the created ସଂ. ବିଣ—ବିବେକୀ; ହିତାହିତ ଜ୍ଞାନଯୁକ୍ତ—Conscientious. [ଦ୍ର—ଲେଖିବା ପଢ଼ିବାର ଲୋକ, ସେ ଯେବେ ହୋଇବ ବିବେକ । ମାନକୃଷ୍ଣ. ରସବିନୋଦ ]
Bibeka

ବିବେକ ଖ୍ୟାତି—ସଂ. ବି—ଯେଉଁ ବିଚାରଶକ୍ତିଦ୍ୱାରା ମନୁଷ୍ୟ ଆତ୍ମା ଓ
Bibeka khyāti ପ୍ରକୃତିର ସ୍ୱାତନ୍ତ୍ର୍ୟ ବୁଝିବାକୁ ସମର୍ଥ ହୁଏ—Discriminative knowledge; the perfet cognizance of the distinction between the Supreme Soul and the qualities of the universe

ବିବେକ ବିରୁଦ୍ଧ—ସଂ. ବିଣ—ଯାହା ଆପଣାର ବିବେକ ଶକ୍ତିଦ୍ୱାରା
Bibeka biruddha ଅନୁମୋଦିତ ନୁହେଁ—Against one's conscience; unconscientious.

ବିବେକ ବିହୀନ—ସଂ. ବିଣ. ପୁଂ—(ଷଷ୍ଠୀ ତତ୍)—ହିତାହିତ ବିବେଚନା
Bibeka bihīna ଶୂନ୍ୟ—Unconscientious; destitute of the power of discriminatian.
(ବିବେକବିହୀନା—ସ୍ତ୍ରୀ)
ବିବେକ ରହିତ, ବିବେକଶୂନ୍ୟ, ବିବେକହୀନ — ଅନ୍ୟରୂପ

ବିବେକ ବୁଦ୍ଧି—ସଂ. ବି—ହିତାହିତ ଜ୍ଞାନ ଶକ୍ତି—The faculty of
Bibeka buddhi conscience; discriminating faculty.
(ବିବେକ ଶକ୍ତି—ଅନ୍ୟରୂପ)

ବିବେକ ଶାସ୍ତ୍ର – ସଂ. ବି—ବିଚାରଶାସ୍ତ୍ର; ନ୍ୟାୟଶାସ୍ତ୍ର—
Bibeka śāstra The science of Logic.

ବିବେକ ସମ୍ମତ—ସଂ. ବି—(ଷଷ୍ଠୀ ତତ୍; ବିବେକ+ସମ୍ମତ)—ଯେଉଁ
Bibeka sammata କାର୍ଯ୍ୟକୁ ଆପଣାର ବିବେକ ବୁଦ୍ଧି ସମର୍ଥନ କରୁଅଛି—Approved by one's conscience; conscientious.
ବିବେକାନୁମତ, ବିବେକାନୁକୂଳ, ବିବେକାନୁମୋଦିତ —ଅନ୍ୟରୂପ

ବିବେକାନନ୍ଦ—ଦେ. ବି. ପୁଂ—(ନାମ)—୧ । ଲୋକଙ୍କୁ ଦିଆଯିବା ନାମ
Bibekānanda 1. A name given to males. ୨ । ରାମକୃଷ୍ଣ ପରମହଂସଙ୍କର ଭୁବନପ୍ରସିଦ୍ଧ ଶିଷ୍ୟ—2. The world-celebrated disciple of Śrī Ramakrushna Paramahamsa.

ବିବେକିବା—ଦେ. କ୍ରି (ପଦ୍ୟ) (ସଂ. ବିବେକ)—ବିଚାର କରିବା—
Bibekibā বিচার করা বিচারনা To consider.
(ଉ—ଉପାୟ ଅଛଇ ଯେ ଏକ । ଭୋ ନୃପ ମନେ ବିବେକ । ଜଗନ୍ନାଥ. ଭାଗବତ ।)

ବିବେକୀ—ସଂ. ବିଣ. ପୁଂ—(ବିବେକ+ଇନ; ୧ମା. ୧ବ.)—୧ ।
Bibekī ବିବେକଯୁକ୍ତ—1. Discriminating. ୨ । ହିତାହିତ ଜ୍ଞାନଯୁକ୍ତ—2. Conscientious. ୩ । ବୈରାଗ୍ୟବିଶିଷ୍ଟ—3. Indifferent to worldly concerns. ସଂ. ବି, ପୁଂ—ଦେବସେନ ରାଜାଙ୍କ ପୁତ୍ର—Name of the son of king Debasena.
( ବିବେକିନୀ—ସ୍ତ୍ରୀ ) ( ବିବେକିତା—ବି )

ବିବେଚକ—ସଂ. ବିଣ—(ବି+ବିଚ୍ ଧାତୁ+କର୍ତ୍ତୃ. ଅକ)—୧ । ଯେ
Bibechaka ଭଲ ମନ୍ଦ ବିବେଚନା କରେ—1. Distinguishing between good and bad. ୨ । ବିଚାରକ—2. Reasoning; thoughtful; considerate. ୩ । ଜ୍ଞାନୀ—3. Wise. ୪ । ଭଲ ମନ୍ଦର ପରୀକ୍ଷାକାରକ—4. Able to test good and bad.
(ଅବିବେଚକ—ବିପରୀତ)
(ବିବେଚିକା – ସ୍ତ୍ରୀ)

ବିବେଚନ(ନା)—ସଂ. ବି ( ବି+ବିଚ୍ ଧାତୁ+ଭାବ. ଅନ;+ଆ )—
Bibechana (nā) ୧ । ସଦସଦ୍‌ବିଚାରକରଣ)—1. Discriminating between good and bad. ୨ । ବିଚାର—2. Consideration. judgment. ୩ । ଅନୁସନ୍ଧାନକରଣ—3. Investigation. ୪ । ବିଶେଷରୂପେ ଆଲୋଚନା ବା ବିଚାର ପୂର୍ବକ ନିର୍ଣ୍ଣୟ—4 Ascertainment after consideration; considered judgment.
(ଅବିବେଚନା—ବିପରୀତ)

ବିବେଚନା ରହିତ—ସଂ. ବିଣ—ବିଚାରଶୂନ୍ୟ—Destitute of dis-
Bibechanā rahita crimination or consideration
(ବିବେଚନା ଶୂନ୍ୟ, ବିବେଚନା ହୀନ; ବିବେଚନା ବିହୀନ—ଅନ୍ୟରୂପ)

ବିବେଚନୀୟ—ସଂ. ବିଣ—(ବି+ବିଚ୍ ଧାତୁ+କର୍ମ. ଅନୀୟ)—ବିବେଚିତ
Bibechanīya ହେବାର ଯୋଗ୍ୟ; ବିଚାର୍ଯ୍ୟ—Deserving consideration; to be considered
(ବିବକ୍ତବ୍ୟ, ବିବେଚ୍ୟ—ଅନ୍ୟରୂପ)

ବିବେଚୟିତା—ସଂ. ବିଣ. ପୁଂ—(ବି+ବିଚ୍ ଧାତୁ ଣିଚ୍+କର୍ତ୍ତୃ. ତୃ;
Bibechayitā ୧ମା. ୧ବ.) ବିବେଚନ କାରୀ; ବିବେଚକ—Considerate; thoughtful.
(ବିବେଚୟିତ୍ରୀ—ସ୍ତ୍ରୀ)

ବିବେଚିତ—ସଂ. ବିଣ—(ବି+ବିଚ୍ ଧାତୁ ଣିଚ୍=ବେଚ ଧାତୁ+ତ)—
Bibechita ୧ । ବିଚାରିତ—Considered; judged; discriminated. ୨ । ନିରୂପିତ—2 Ascertained. ୩ । ତର୍କିତ—3. Reasoned. ୪ । ସିଦ୍ଧ—4. Finally settled.

ବିବୋଢ଼ା—ସଂ. ବିଣ. ପୁଂ—(ବି+ବହ୍ ଧାତୁ+କର୍ତ୍ତୃ. ତୃ; ୧ମା, ୧ବ)-
Biborḍhā ୧ । ବର .1. Bridegroom. ୨ । ପତି; ସ୍ୱାମୀ—2. Husband.

ବିବୋଧ—ସଂ. ବି—(ବି+ବୁଧ୍ ଧାତୁ+ଭାବ. ଅ)—୧ । ଜାଗରଣ—
Bibodha 1. Waking up. ୨ । ସମ୍ୟକ୍ ବୋଧ—2. Understanding. ୩ । ବିକାଶ—3. Expansion. ୪ । ଜ୍ଞାନ—4. Knowledge. ଦେ. ବିଣ—ଅଧୀର; ଧୈର୍ଯ୍ୟହୀନ—Impatient. [ ଉ—ବିବୋଧ ନୁହ ହେ ଜନକ । ଭଞ୍ଜ. ବୈଦେହୀଶବିଳାସ ।]

ବିବୋଧନ—ସଂ. ବି—(ବି+ବୁଧ୍ ଧାତୁ ଣିଚ=ବୋଧି ଧାତୁ ଭାବ. ଅନ)—୧ । ଜାଗରଣ—1. Awaking. ୨ ।
Bibodhana ଉଦ୍‌ବୋଧନ; ନିଦରୁ ଉଠାଇବା—2. Awakening; rousing up. ୩ । ବୁଝାଇବା—3. Demonstrating; explaining; dilating upon a matter. ୪ । ଜ୍ଞାପନ—4. Informing; intimating; communicating. ୫ । ବିକାଶକରଣ—5. Act of causing to expand; showing; exhibiting. ୬ । ଚେତାଇବା; ସ୍ମରଣ କରାଇବା—6. Reminding.

**ବିବୋଧିତ**—ସଂ. ବିଣ ( ବି+ବୋଧ ଧାତୁ+କର୍ମ. ତ)—୧ । ଜାଗରିତ
Bibodhita —1. Awakened; wakeful. ୨ । ଜ୍ଞାପିତ—2. Informed. ୩ । ଯାହାକୁ ଚେତାଇ ଦିଆଯାଇ ଥାଏ—3. Reminded. ୪ । ବିକଶିତ—4. Expanded; dilated; exhibited.

**ବିବ୍ବୋକ**—ସଂ. ବି—୧ । ସ୍ତ୍ରୀମାନଙ୍କର ଅଭିମତବସ୍ତୁପ୍ରାପ୍ତିରେ ଗର୍ବ
Bibboka ହେତୁକ ଅନାଦର; ( ଏହିପରି କରିବାଦ୍ୱାରା ନାୟକର ପ୍ରଣୟ ବୃଦ୍ଧି ହୁଏ )—1. Affectation of in difference towards a beloved object (Apte). ୨ । ଗର୍ବଯୁକ୍ତ ଅନାଦର—2. Haughty indifference ( Apte ). ୩ । ସ୍ତ୍ରୀମାନଙ୍କ ଶୃଙ୍ଗାର ଭାବକ ଚେଷ୍ଟା—3. Amorous gestures (Apte).

**ବିବ୍ରତ**—ସ. ବିଣ. ପୁଂ ( ବି+ବ୍ରତ )—୧ । (ବୈଦିକ) ଅନଚ୍ଛୁକ—
Bibrata 1. Reluctant ( M. W. ). ୨ । (ବୈଦିକ) (ବିବ୍ରତା—ସ୍ତ୍ରୀ) ମଗଗ୍ର; ଉତ୍ତରଦାୟକ; ଆଦେଶ ଲଙ୍ଘନକାରୀ—2. Refractory ( M. W. ). ୩ । ବହୁ କର୍ମ ବା ବ୍ରତ ଅନୁଷ୍ଠାନକାରୀ—3. Performing various actions or ceremonies ( M. W. ). ଦେ. ବିଣ—୧ । ଉଦ୍ବେଗରୁ ବା ବିଶୃଙ୍ଖଳାରୁ ବିବ୍ରତ—1. Disorganised. ୨ । ବ୍ୟତିବ୍ୟସ୍ତ—2. Perplexed; overwhelmed; confounded; troubled. ୩ । ବିପନ୍ନ—3. Beset with danger or difficulties. ୪ । କିଂକର୍ତ୍ତବ୍ୟବିମୂଢ଼—4. Dumbfounded; confounded. [ ଦ୍ର—ବିବ୍ରତ ଶବ୍ଦର ଉକ୍ତ ଦେଶଜ ଅର୍ଥମାନ ସଂସ୍କୃତ କୋଷ ଗ୍ରନ୍ଥମାନଙ୍କରେ ମିଳେ ନାହିଁ । ]

**ବିଭକ୍ତ**—ସ. ବିଣ ( ବି+ଭଜ୍ ଧାତୁ+କର୍ମ ତ )—୧ । ପୃଥକ୍‌କୃତ;
Bibhakta ବିଭିନ୍ନ—1. Divided; separated. ୨ । ଭିନ୍ନ ଭିନ୍ନ ଅଂଶରେ ପୃଥକ୍ କୃତ—2. Partitioned; shared out. ୩ । ସଂକ୍ରମିତ—3. Conveyed by contagion. ଦେ. ବିଣ (ଗଣିତ)—ପରବର୍ତ୍ତୀ ସଂଖ୍ୟା ଦ୍ୱାରା ହରଣ କରା ଯାଇଥିବା ( ପୂର୍ବବର୍ତ୍ତୀ ସଂଖ୍ୟା )—( mathematics; a number ) Divided by another. [ ଦ୍ର—ଗଣିତରେ ଗୋଟିଏ ରାଶିକୁ ଅନ୍ୟ ରାଶି ଦ୍ୱାରା ବିଭକ୍ତ କରା ଗଲେ 'ପ୍ରଥମ ରାଶି ବିଭକ୍ତ ଦ୍ୱିତୀୟ ରାଶି' ବୋଲି ମୁଖରେ ବୋଲିବାକୁ ହୁଏ; ଯଥା—୩ କୁ ୩ ବିଭକ୍ତ ୪ ବୋଲାଯାଏ । ଏହାର ଅର୍ଥ ୩ ସଂଖ୍ୟାକୁ ୪ ଦ୍ୱାରା ବିଭକ୍ତ କରାଗଲା । ]

**ବିଭକ୍ତି**—ସ. ବି ( ବି+ଭଜ୍ ଧାତୁ+ଭାବ ତି )—୧ । ଭାଗକରଣ;
Bibhakti ବିଭାଜନ—1. Partitioning; division. ୨ । ରଚନା—2. Orderly arrangement; composition. ୩ । ( ବ୍ୟାକରଣ ) ଶବ୍ଦରେ ଓ ଧାତୁରେ କାରକ, ବଚନ ଓ ପୁରୁଷ ବିଜ୍ଞାପକ ପ୍ରତ୍ୟୟ—3. ( grammar ) An affix or termination denoting the case, person and number of a verb or word.

**ବିଭକ୍ଷଣ**—ଦେ. ବି ( ସ. ବୁଭୁକ୍ଷା )—ଖାଇବା ଇଚ୍ଛା—Desire to
Bibhakshana eat. ( ଉ—ଖାଦ୍ୟ ଏ ସମସ୍ତକୁ କଲେ, ବିଭକ୍ଷଣେ ମନ ବଳାଇଲେ । ଉଞ୍ଜ. ବୈଦେହୀଶବିଳାସ । )

**ବିଭଙ୍ଗ**—ସ. ବି ( ବି+ଭଞ୍ଜ ଧାତୁ=ଭାଙ୍ଗିଯିବା+ଭାବ ଅ )—୧ ।
Bibhanga ଭାଙ୍ଗିଯିବା—1. Fracture. ୨ । ବିନ୍ୟାସ; ରଚନା—2. Arrangement; setting in order; composition. ୩ । ସଙ୍କୋଚ—3. Contraction. ୪ । ( +କର୍ମ ଅ ) ଖଣ୍ଡ; ଛେଦ—4. A piece; section; part. ୫ । ବଳିପଳିତ ଚର୍ମ—5. 5. Wrinkle. ଦେ. ବି ( ସଂ ବିଭଙ୍ଗ )—୧ । ରୋଗାଦି ହେତୁ ମୁଖର ମଳିନତା ବା ବର୍ଣ୍ଣମ୍ଳାନତା—1. Paleness brought about by disease. ୨ । ମନୁଷ୍ୟର ସ୍ୱାଭାବିକ ଭଙ୍ଗିର ବୈଲକ୍ଷଣ୍ୟ—2. Change of one's countenance. ୩ । ଚେହେରାର ବିରୂପତା 3. Change of appearance for the worse. ଦେ. ବିଣ—୧ । ରୋଗାଦି ହେତୁ ବର୍ଣ୍ଣମ୍ଳାନ ବା ବିବର୍ଣ୍ଣ-1. Pale or discoloured owing to disease. ୨ । ଆପଣାର ସ୍ୱାଭାବିକ ଭଙ୍ଗିହୀନ—2. Crestfallen. ୩ । ବିରୂପ; ବେଢଙ୍ଗ—3. Of changed appearance (for the worse). ୪ । 'ଭଙ୍ଗ' ରୋଗଗ୍ରସ୍ତ ବ୍ୟକ୍ତିର ମୁଖ ପରି ବିବର୍ଣ୍ଣ—4. Having one's face discoloured. ୫ । ଅସ୍ତବ୍ୟସ୍ତ; ଅଡୁଆଅଡୁଆ—5. Confused; disordered. (ଉ—ଖସି ଖୋସିବା ବସନ, ବିଭଙ୍ଗ କେଶ ବସନ, କେତେ ପ୍ରସନ୍ନ । ଉଞ୍ଜ. ପ୍ରେମସୁଧାନିଧି ।) ୬ । ନିରୁତ୍ସାହ; ଉତ୍ସାହ ଶୂନ୍ୟ—6. Devoid of zeal. ୭ । ମଳିନ ମୁଖ; ବିରସ—7. Pale in countenance. ( ଉ—ଏତେ ବୋଲି ଶର ବୃଷ୍ଟି କଲେ ତାର ଅଙ୍ଗ. ଦିଶଇ ଅସୁରବୀର ନୃଦୟ ବିଭଙ୍ଗ—ବିଶ୍ୱନାଥ.ବିଚିତ୍ର ରାମାୟଣ ।)

**ବିଭଙ୍ଗ ରସ**—ଦେ. ବି ( ସ. ବିଭଙ୍ଗ ଓ ରସ )—୧ । ରସଭଙ୍ଗ—
Bibhanga rasa 1. Break of a sentiment. ୨ । ( କାବ୍ୟରେ ) କରୁଣ ରସ—2. Tragical sentiment ( in fiction ). ( ଉ—ବିଭଙ୍ଗ ରସ ବୋଲିଣ ନ ବର୍ଣ୍ଣିଲି ଏତେ, ବୁଧେ ବୋଲିଛନ୍ତି ଏହା ଦୋଷ ଛନ୍ଦ ଗୀତେ । ଉଞ୍ଜ. ବୈଦେହୀଶବିଳାସ । )

**ବିଭଙ୍ଗି**—ସ. ବି ( ବି+ଭଞ୍ଜ ଧାତୁ+ଇ )—ଭଙ୍ଗୀ; ହାବଭାବ—
Bibhangi Countenance.

**ବିଭଜନ**—ସଂ. ବି ( ବି+ଭଜ୍ ଧାତୁ+ଭାବ ଅନ )—ବିଭାଗକରଣ;
Bibhajana ଖଣ୍ଡ ଖଣ୍ଡ କରିବା—Dividing a thing into parts.

**ବିଭଜନୀୟ**—ସଂ. ବି ( ବି+ଭଜ୍ ଧାତୁ+କର୍ମ ଅନୀୟ )—ବିଭାଜ୍ୟ;
Bibhajaniya ବିଭକ୍ତ ହେବାର ଯୋଗ୍ୟ—Divisible into parts

**ବିଭଜ୍ୟମାନ**—ସଂ. ବିଣ ( ବି+ଭଜ୍ ଧାତୁ+କର୍ମ ଆନ )—ଯାହା
Bibhajya māna ବିଭକ୍ତ ହେଉଅଛି—Being divided into parts.

**ବିଭଞ୍ଜନ**—ଦେ. ବିଣ—ଭଗ୍ନ—Broken. ( ଉ—ବିଭଞ୍ଜନ ରଥକୁ
Bibhañjana ଦେଖିଲେ ଶ୍ରୁପ ପାଣି । ଉଞ୍ଜ. ବୈଦେହୀଶବିଳାସ ।)

**ବିଭଞ୍ଜିବା**—ଦେ. କ୍ରି. —(ପଦ୍ୟ) (ସଂ. ବିଭଙ୍ଗ)—୧ । ଭାଙ୍ଗିବା—
Bibhañjibā 1. To break. (ଉ—ବିଭଞ୍ଜେ ଇଷୁ ଦଣ୍ଡ ପର ପ୍ରଚଣ୍ଡ କଣ୍ଠଙ୍କୁ ଗନ୍ଧମାଦନ । ଉଞ୍ଜ. ବୈଦେହୀଶବିଳାସ ।) ୨ । ଜୋରରେ ବା ବଳପୂର୍ବକ ଅଣିବା—2. To bring forcibly. (ଉ—ମଗ୍ନ ପ୍ରଳୟ ଜଳରେ ଥିଲା ବିଜ, ଦନ୍ତ ଅଗ୍ରେ ତୋଳି ଧଇଲ ବିଭଞ୍ଜି । ପ୍ରାଚୀ. ରସବାରିଧି ।) ୩ । ଗୋଟି ଗୋଟି କରିବା—3. To separate; to deal separately one by one. (ଉ—ଶୁଣ ବିଭଞ୍ଜି କହିବା ବିବେକ । ପ୍ରାଚୀ. ରସବାରିଧି ।)

**ବିଭବ**—ସଂ. ବି (ବି=ପ୍ରଧାନ; ଉତ୍କୃଷ୍ଟ+ଭୂ ଧାତୁ=ହେବା+ଭାବ.
Bibhaba ଅ)—୧ । ବିଭୁତ୍ୱ; ପ୍ରଭୁତ୍ୱ—1. Mastery; supreme power. ୨ । (+କରଣ ଅ) ଧନ; ସମ୍ପତ୍ତି—2. Property; wealth. ୩ । ଐଶ୍ୱର୍ଯ୍ୟ; ଅର୍ଥ; ସମ୍ପଦ—3. Prosperity; riches. ୪ । ମୋକ୍ଷ; ମୁକ୍ତି—4. Emancipation; beatitude. ୫ । ଔଦାର୍ଯ୍ୟ—5. Liberality of mind; magnanimity. ୬ । ମହତ୍ତ୍ୱ—6. Greatness; grandeur. ୭ । ପଦମର୍ଯ୍ୟାଦା; ଗୌରବ—7. Rank; dignity; glory. ୮ । (ଅଧିକରଣ,ଅ) ବର୍ଷର ବିଶେଷ—8 Name of a certain year. ୯ । ଶକ୍ତି; କ୍ଷମତା—9. Power; potency ଗ୍ରାଦେ. (କଟକ) ବି—୧ । ଅପମାନ—1. Indignity. ୨ । ଦୁଃଖ; କଷ୍ଟ—2 Misery. ୩ । ଗାଳିମନ୍ଦ—3 Abuse.

**ବିଭବ ବୃଦ୍ଧି**—ସଂ. ବି (୬ଷ୍ଠୀ ତତ୍; ବିଭବ+ବୃଦ୍ଧି)—ଐଶ୍ୱର୍ଯ୍ୟ ବୃଦ୍ଧି—
Bibhaba bruddhi Increase of wealth or prosperity.

**ବିଭବ ରହିତ**—ସଂ. ବିଣ. ପୁଂ (୩ୟା ତତ୍)—ଧନହୀନ; ନିର୍ଧନ—
Bibhaba rahita Poor; destitute,
(ବିଭବ ଶୂନ୍ୟ; ବିଭବ ହୀନ—ଅନ୍ୟରୂପ; ବିଭବରହିତା—ସ୍ତ୍ରୀ)

**ବିଭବଶାଳୀ**—ସଂ. ବିଣ. ପୁଂ ( ବିଭବ+ଶାଳିନ୍; ୧ମା. ୧ବ )—
Bibhabasāli ଐଶ୍ୱର୍ଯ୍ୟବାନ୍; ଧନୀ—Wealthy; very
(ବିଭବଶାଳିନୀ—ସ୍ତ୍ରୀ) rich; prosperous.

**ବିଭବ ହାନି**—ସଂ. ବି (୬ଷ୍ଠୀ ତତ୍; ବିଭବ+ହାନି)-ଐଶ୍ୱର୍ଯ୍ୟର ବିନାଶ—
Bibhaba hāni Loss of wealth, adversity.
(ବିଭବନାଶ—ଅନ୍ୟରୂପ)

**ବିଭରଣ**—ଦେ. ବିଣ—ପରିହିତ; ପିନ୍ଧା ହୋଇଥିବା—Worn; cloth-
Bibharaṇa ed; clad. ଦେ ବି—ପରିଧାନ—Wearing; dress. [ଉ- ବିଭରଣ ଉଷ୍ଣୀଷ ହୁଣ୍ଡୀରମାନ ସହି । ଉଞ୍ଜ. ବୈଦେହୀଶବିଳାସ ।]

**ବିଭର୍ତ୍ତି**—ସଂ. କ୍ରି (ଭୃ ଧାତୁ ବର୍ତ୍ତମାନକାଳ ୩ୟ ପୁରୁଷ; ସଂସ୍କୃତ ପ୍ରଥମ
Bibharti ପୁରୁଷ; ଏକବଚନର ଆକାର )—୧ । ଧାରଣ କରୁଅଛି; ପୋଷଣ କରୁଅଛି—1 Is holding; is bearing. ୨ । ଚକଚକ କରୁଅଛି, ଶୋଭା ପାଉଅଛି—2 Is glittering; is shining; is looking nice. { ଉ—ବିଭର୍ତ୍ତି ମୋହପଲ୍ଲ ଦନ୍ତ ଓଷ୍ଠ ମାଣିକ୍ୟ ପାହେ । ଉଞ୍ଜ. ବୈଦେହୀଶବିଳାସ । ]

**ବିଭ(ଭୋ)ଳିତ**—ଗ୍ରା. ବିଣ (ସଂ. ବିହ୍ୱଳ; ପ୍ରା· ବିବ୍ଭଳ )—୧ । ବିହ୍ୱଳ—
Bibha(bho)lita 1. Perplexed; confounded. ୨ । ଯେ ସବୁ କଥା ଭୁଲିଯାଏ—2. Forgetful.
ବିଭଳ } ଅନ୍ୟରୂପ ୩ । ଉନ୍ମତ୍ତ—3 Intoxicated ୪ ।
ବିଭୋଳ(ଳ) } କିଂକର୍ତ୍ତବ୍ୟବିମୂଢ଼—4 Bewildered.
বিভল, বিভোল, বিভোর घबडाया हुआ

**ବିଭ(ଭୋ)ଳିବା**—ଦେ କ୍ରି (ସଂ. ବିହ୍ୱଳ)—ବିହ୍ୱଳ ହେବା; ଶୋକାଦି
Bibha(bho)liba ଦ୍ୱାରା ଆତୁର ହେବା—To be perplex-
घबडाना ed; to be bewildered. [ଉ—ବୋଲୁ ବାଛି ସକଳେ, ଭ୍ରମଶର, ବିକଳେ, ଯେତେ ତା ଶିର ନ ଛେଦିଲେ ସେ; ବିଭଳଲେ । ଉଞ୍ଜ. ବୈଦେହୀଶବିଳାସ । ]

**ବିଭା**—ସଂ, ବି, ସ୍ତ୍ରୀ (ବି=ବିଶେଷ ଭାବରେ+ଭା ଧାତୁ=ଦୀପ୍ତି ପାଇବା+
Bibhā ଭାବ. ଅ+ଆ)—୧ । ପ୍ରଭା; ଦୀପ୍ତି—1 Splendour; brilliancy. ୨ । କିରଣ—2. Ray; beam of light ୩ । ପ୍ରକାଶ—3. Exhibition; manifestation. ୪ । ଆଲୋକ—4. Light; illumination. ୫ । ଶୋଭା; ସୌନ୍ଦର୍ଯ୍ୟ—5. grace; beauty· ଦେ.ବି—
বিবাহ; বিভা ब्याह (ସଂ ବିବାହ) ବିବାହ—Marriage.

**ବିଭାଇ**—ଦେ. ବିଣ. ସ୍ତ୍ରୀ—ବିବାହିତା; ଯାହାକୁ ବିବାହ କରାଯାଇଥାଏ,
Bibhāi ବେଭା—Married (wife) ଦେ. ବି. ସ୍ତ୍ରୀ—ନିଜର
বিবাহিতা ବିବାହିତା ସ୍ତ୍ରୀ—One's married wife [ ଉ—
ब्याही ସ୍ତ୍ରୀଙ୍କ ମଧ୍ୟରେ ବଡ଼ ପାଟ ମୁହିଁ, ମୋହର ପଛେ ଆଉ ଯେ
বিবাহিতা স্ত্রী ବିଭାଇ । ପ୍ରାଚୀ ରହସ୍ୟମଞ୍ଜରୀ । ]

**ବିଭାକର**—ସଂ. ବିଣ (ବିଭା+କୃ ଧାତୁ+କର୍ତ୍ତୃ. ଅ)—ଦୀପ୍ତିଜନକ—
Bibhākara Illuminating ସଂ. ବି—୧ । ସୂର୍ଯ୍ୟ—1. The sun. ୨ । ଅଗ୍ନି—2. Fire. ୩ । ଅର୍କ ବୃକ୍ଷ—3. Calotropis Gigantea ( plant ).

**ବିଭା କରା(ରେ)ଇବା**—ଦେ. କ୍ରି—୧ । କୌଣସି ବରକୁ ବା କନ୍ୟାକୁ
Bibhā karā(re)ibā କନ୍ୟା ବା ବର ସଙ୍ଗେ ବିବାହିତ କରାଇବା-
বিবাহ(বিয়ে) দেওয়া 1. To bring about a marriage;
ब्याह करना to give a girl or a boy in marriage.
( ବିଭା ଦେବା—ଅନ୍ୟରୂପ )

**ବିଭା କରିବା**—ଦେ. କ୍ରି—୧ । (ବରକୁ ବା କନ୍ୟାକୁ କନେ) ବିବାହିତ
Bibhā karibā ହେବା—1. To marry. ୨ । ବିଭା
বিয়ে করা **बयाह करना** କରାଇବା—2. To give a boy or a girl in marriage.

**ବିଭାଗ**—ସ. ବି (ବି + ଭଜ୍ ଧାତୁ + ଘଞ୍, ଅ)—୧ । ଭାଗ; ଅଂଶ—
Bibhāga 1. A share. ୨ । ବଣ୍ଟନ—2. Division. ୩ । ବଣ୍ଟା—3. Partition. ୪ । (+କର୍ମ. ଅ) ଦାୟ ବା ପୈତୃକ ସମ୍ପତ୍ତିର ଦାୟାଦମାନଙ୍କ ମଧ୍ୟରେ; ବଣ୍ଟନ—4. Partition of paternal estate. ୫ । ଖଣ୍ଡ—5. Piece; lot. ୬ । (ଗଣିତ) ଭଗ୍ନାଂଶର ଭାଜ୍ୟ ସଂଖ୍ୟା—6. (mathematics) The numerator of a fraction. ୭ । (ଗଣିତ) ଭଗ୍ନାଂଶ—7. (mathematics) Fraction. ଦେ. ବି—୧ । ସରକାରୀ ବା ସାଧାରଣ
বিভাগ କର୍ମର ଓ କର୍ମଚାରୀଙ୍କର ବିଭାଗ; ଡିପାର୍ଟମେଣ୍ଟ; ଇଲାକା—
**इलाका** 1. A department of Government; public department, an establishment. ୨ । ରାଜ୍ୟ ଶାସନାର୍ଥ କୃତ ପ୍ରଦେଶର ସ୍ୱତନ୍ତ୍ର ଅଂଶ—2. A division of a province. (ଯଥା—ଓଡ଼ିଶା ବିଭାଗ) [ ଦ୍ର—ଇଂରେଜ ଶାସିତ ଭାରତବର୍ଷ କେତେଗୁଡ଼ିଏ ପ୍ରଦେଶରେ, ପ୍ରତ୍ୟେକ ପ୍ରଦେଶ କେତେକ ବିଭାଗରେ, ପ୍ରତ୍ୟେକ ବିଭାଗ ଗୁଡ଼ିଏ ଜିଲ୍ଲାରେ, ପ୍ରତ୍ୟେକ ଜିଲ୍ଲା କେତେକ ସବ୍‌ଡିଭିଜନ୍ ବା ମହକୁମାରେ ପ୍ରତି ସବ୍‌ଡିଭିଜନ୍ କେତେକ ଥାନାରେ ଓ ପ୍ରତ୍ୟେକ ଥାନା କେତେଗୁଡ଼ିଏ ଗ୍ରାମପୁଞ୍ଜ ବା ପ୍ରଗନାରେ ବିଭକ୍ତ ହୋଇଅଛି । ]

**ବିଭାଗ କରିବା**—ଦେ. କ୍ରି—ସମ୍ପତ୍ତି ଅଂଶକୁ ବାଣ୍ଟିବା—To partition a joint property.
Bibhāga karibā
বিভাগ করা **विभाग करना**

**ବିଭାଗ ପତ୍ର**—ସ. ବି ( କଚିତ୍‌ଅ )—୧ । ବଣ୍ଟନ ପତ୍ର—1. Deed of partition. ୨ । ଗୋସ୍ୱାରା—2. Document of allotment different shares.
Bibhāga patra
(ବିଭାଗ ପତ୍ରିକା—ଅନ୍ୟରୂପ)

**ବିଭାଗ ଯୋଗ୍ୟ**—ସ. ବି—ବଣ୍ଟନ କରାଯିବାର ଉପଯୁକ୍ତ—Divisible; capable of being partitioned into shares.
Bibhāga jogya
(ବିଭାଗାର୍ହ—ଅନ୍ୟରୂପ)

**ବିଭାଗୀ**—ସ. ବିଣ ପୁଂ ( ବିଭାଗ+ଇନ୍; ୧ମା. ୧ବ )—ବଣ୍ଟନକାରୀ—Partitioning. ଦେ. ବି ଅଂଶୀଦାର—
Bibhāgi
(ବିଭାଗିନୀ—ସ୍ତ୍ରୀ) 2. Cosharer; partner.

**ବିଭାଗୀୟ**—ଦେ. ବି—୧ । କୌଣସି ସାଧାରଣ ବା ସରକାରୀ କର୍ମବିଭାଗ ସମ୍ପର୍କୀୟ—1. Departmental. ୨ । (ସ.
Bibhāgiya
বিভাগীয় ବିଭାଜ୍ୟ) (କଚିତ୍‌ଅ) ଯେଉଁ ସମ୍ପତ୍ତି ବଣ୍ଟନ କରାଯିବ—2. (property) To be partitioned.

**ବିଭା ଘର**—ଦେ. ବି—ବିବାହ ଉତ୍ସବ—Marriage festival.
Bibhā ghara বিএবাড়ী **विवाह**

**ବିଭା ଘରି(ରୁ)ଆ**—ଦେ. ବି—ଯେଉଁମାନେ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଇ ଥାଆନ୍ତି—Persons joining a marriage festival.
Bibhā ghari(ru)ā
বিয়ে বাড়ির লোক
**बरात् सरात्** ଦେ. ବିଣ—ବିବାହ ଉତ୍ସବ ସମ୍ପର୍କୀୟ—Relating to a marriage festival.

**ବିଭା ଚୁଡ଼ା**—ଗ୍ରା. ବି (ଜନର୍ଥକ ସହଚର)—୧ । ବିବାହ—1. Marriage. ୨ । ବିବାହ ଓ ତତ୍ ସମ୍ପର୍କୀୟ ସମସ୍ତ କର୍ମମାନ—2. Marriage and its concurrent acts and rites.
Bibhā churdā
বিএ টিএ
**बयाह सादी**

**ବିଭାଜକ**—ସ.ବିଣ. ପୁଂ(ବି + ଭଜ୍ ଧାତୁ + କର୍ତ୍ତୃ.ଅକ)—ବଣ୍ଟନକାରୀ—Dividing; distributing. ସ.ବି—୧ । ଯେଉଁ ବ୍ୟକ୍ତି ବଣ୍ଟନ କରେ—1. A person who divides a thing into different shares. ୨ । (ଗଣିତ) ଭଗ୍ନାଂଶର ହର ସଂଖ୍ୟା—2. (mathematics) The denominator of a fraction. ୩ । ଯେଉଁ ସଂଖ୍ୟା ଦ୍ୱାରା ଅନ୍ୟ କୌଣସି ସଂଖ୍ୟା ହରଣ କରାଯାଏ—A number by which another is divided.
Bibhājaka

**ବିଭାଜ୍ୟ**—ସ. ବିଣ ( ବି+ଭଜ୍ ଧାତୁ+କର୍ମ. ଯ )—୧ । ବିଭାଗ ଯୋଗ୍ୟ—1. Divisible. ୨ । ଯାହା ଭିନ୍ନ ଭିନ୍ନ ଅଂଶରେ ପୃଥକ୍ କରାଯିବା ଉପଯୁକ୍ତ—2. Fit to be partitioned into different shares ୩ । ଖଣ୍ଡନୀୟ—3. Partible. ସ.ବି (ଗଣିତ) ଭଗ୍ନାଂଶର ଲବ—(mathematics) The numerator of a fraction.
Bibhājya
[ବିଭାଜ୍ୟତା(ତ୍ୱ)—ବି]

**ବିଭାଜ୍ୟତା(ତ୍ୱ)**—ସ. ବି (ବିଭାଜ୍ୟ+ଭାବ. ତା, ତ୍ୱ)—୧ ବିଭକ୍ତ କରାଯିବାର ଯୋଗ୍ୟତା—1. Divisibility. ୨ । ( ଜଡ଼ ବିଜ୍ଞାନ ) ଜଡ଼ ପଦାର୍ଥ ପ୍ରତି କୌଣସି ବଳ ପ୍ରୟୋଗ କଲେ ଯେଉଁ ଗୁଣ ଦ୍ୱାରା ଉକ୍ତ ପଦାର୍ଥ ନାନା ଖଣ୍ଡରେ ବିଭକ୍ତ ହୁଏ—Divisibility of a thing; the quality of a thing owing to which it is split up into parts when force is applied to it.
Bibhājyatā(twa)

**ବିଭାଣ୍ଡ**—ଦେ. ବି (ନାମ) (ସ. ବିଭାଣ୍ଡକ)—ଋଷିବିଶେଷ—Name of a sage. (ଉ—ଉଚଳେ ମିଳ ଭାଷେ ବିଭାଣ୍ଡ ବି ହେଲେ ବାଉନାରୀ ବଶ ହୋଇ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।)
Bibhānda

**ବିଭାଣ୍ଡକ**—ସ. ବି—ଋଷ୍ୟଶୃଙ୍ଗ ମୁନିଙ୍କର ପିତା—Name of the father of Rushyasrunga.
Bibhāndaka

**ବିଭାତ**—ସ. ବି (ବି+ଭା ଧାତୁ=ଦୀପ୍ତ ହେବା+ଅଧିକରଣ ତ)—ପ୍ରଭାତ; ସକାଳ—Morning; early morning.
Bibhāta

**ବିଭାତି**—ସ. ବି—୧ । ସୌନ୍ଦର୍ଯ୍ୟ—1. Beauty. (ଉ—ବାମଦେବ ବାମା କେତେ, ବିଭାତି ସମାଜଗତେ । ଉପେ. ବୈଦେହୀଶ ବିଳାସ ।) ୨ । କିରଣ; ତେଜଃ—2. Rays (of the sun). (ଉ—ବିଭା ବପୁର ବିଭାତି, ଖ୍ୟାତ ଲାଗର ଜଗତି,
Bibhāti

ସେ ଯେମନ୍ତେ ସ୍ୱର୍ଗକୁ ଅହ୍ଲାଦ ଦେ । ଭଞ୍ଜ. ବୈଦେହୀଶ ବିଳାସ ।)

**ବିଭା ତିଥି**—ଦେ॰ ବି ( ସଂ. ବିବାହ+ତିଥି )—୧ । ବିବାହ ପାଇଁ Bibhā tithi ନିର୍ଦ୍ଧାରିତ ଦିବସ—1. The day fixed for a বিবাহের তিথি marriage. ୨ । ଜ୍ୟୋତିଷ ମତରେ ବିବାହ ପାଇଁ बयाह तिथि ପ୍ରଶସ୍ତ ଦିବସମାନ—2. Days which are considered auspicious according to astrology for the celebration of marriage ceremony.

**ବିଭାତିବା**—ଦେ.(ପଦ୍ୟ)କ୍ରି.(ସଂ.ବିଭାତ)—୧ । ଶୋଭା ପାଇବା—1. To Bibhātibā look beautiful. ୨ । ଉଜ୍ଜ୍ୱଳତା ସହ ପ୍ରକାଶିତ বিভাতা বিমানা ହେବା—2. To shine. (ଉ—ବିଧୂତୁଣ୍ଡ ଗଉସ୍ତ, ବିଭାତିବ ଘର୍ମ ସୀତା ଧର । ଭଞ୍ଜ. ବୈଦେହୀଶବିଳାସ ।)

**ବିଭା ତୋଏ(ଇ)ନା**—ବୈଦେ. ବି (ଅ)—ବିବାହ କର—Marriage Bibhā toe(i)nā tax; cess or customary present বিবাহের বাব payable to the Raja by the marबयाह सलामी riage party.

(ବିଭା ତଇନା, ବାହାତଇନା—ଅନ୍ୟରୂପ)

**ବିଭାନ**—ଗ୍ରା. ପ୍ରାଦେ (ସମ୍ବଲପୁର) ବି (ସଂ. ବିମାନ)—ଖଟୁଲି (ଦେଖ) Bibhāna Khaṭuli (See).

**ବିଭାପାଞ୍ଚି**—ଦେ. ବି—ବର ଓ କନ୍ୟା ବିବାହ ବେଦିରେ ଯେଉଁ ଲୁଗା, Bibhā pāñchi ପିନ୍ଧନ୍ତି—Pieces of cloth worn by the বিবাহের কাপড় bride and the bridegroom at the केहबर पट, सोहाग कपडा, marriage altar. [ଦ୍ର— विहौति कपडा କନ୍ୟାର ବିବାହ କାଳୀନ ପରିଧେୟ ବସ୍ତ୍ରକୁ ବଉଳ ବା(ପା)ଟ ବୋଲାଯାଏ ଓ ବରର ବସ୍ତ୍ରକୁ ପାଞ୍ଚି ବୋଲାଯାଏ ।]

**ବିଭାବ**—ସଂ. ବି. (ବି=ବିଶେଷ+ଭୂ ଧାତୁ+ଣିଚ୍. ଅ )—୧ । ନିଜର Bibhāba ପରିଚୟ ଦାନ—1. Introducing one's self to another's acquaintance or notice. ୨ । (+କରଣ ଅ) କାବ୍ୟ ନାଟକାଦିରେ ବର୍ଣ୍ଣିତ ରସ (ଯଥା—ଶୋକ, କ୍ରୋଧ, ପ୍ରେମ, ଉତ୍ସାହ ଇତ୍ୟାଦି) ଆଦି ସ୍ଥାୟୀ ଭାବର କାରଣ—2. The mental condition which gives rise to or develops an emotion or sentiment (in works of fiction). [ ଦ୍ର—ବିଭାବ ୨ ପ୍ରକାର, ଯଥା—ଉଦ୍ଦୀପନ ଓ ଆଲମ୍ବନ] ଦେ. ବି—ବିଶେଷ ଭାବନା; ଚିନ୍ତା—Anxiety. (ଉ—ବିଭାବ ସାଗରୁ ନିଦ୍ରା ନ ଅସେ । ଭଞ୍ଜ. ବୈଦେହୀଶ ବିଳାସ ।)

**ବିଭାବନ(ନା)**—ସଂ. ବି ( ବି+ଭୂ ଧାତୁ ଣିଚ୍=ଭାବି ଧାତୁ+ଭାବ ଅନ; Bibhābana(nā) +ଆ )—୧ । ବିବେଚନା—1. Discrimination; consideration. ୨ । ଅନୁଭବ କରଣ—2. Perception. ୩ । ଚିନ୍ତନ—3. Reflection; thought; act of pondering over a thing. ୪ । ଅବଧାରଣ—4. Determination, settling of a thing in one's mind. ୫ । ପ୍ରକାଶନ; ଆବିଷ୍କରଣ—5. Discovering. ୬ । ଭୂୟୋ ଦର୍ଶନ—6. Observation. ୭ । ମିଳନ; ଭେଟ—7. Interview. ୮ । କାବ୍ୟାଲଙ୍କାରବିଶେଷ—8. A figure of speech depicting an effect or event without any apparent or approximate cause. [ ଦ୍ର—କାରଣ ବ୍ୟତିରେକେ କାର୍ଯ୍ୟର ଉତ୍ପତ୍ତି ହେଲେ ବିଭାବନା ଅଲଙ୍କାର ହୁଏ;ଯଥା—"ନୃହେ ଚନ୍ଦ୍ରକର କରେ ଅହ୍ଲାଦ, ଅମୃତ ନୁହେ ସେ ତନ୍ତି ସୁଆଦ, ଚନ୍ଦ୍ରା ନୁହେ ଜାତ କରେ ବିଷାଦ, ବଢ଼ାଏ ଗରବ ନୁହେ ସମ୍ପଦ ।" କବିସୂର୍ଯ୍ୟ. କବିକଳ୍ପଲ୍ଲୀ । ]

**ବିଭାବନୀୟ**—ସଂ. ବିଣ ( ବି+ଭୂ ଧାତୁ ଣିଚ୍+କର୍ମ ଅନୀୟ )—୧ । Bibhābaniya ୧ । ବିବେଚନୀୟ; ଚିନ୍ତନୀୟ—1. Fit to be ବିଭାବୟିତବ୍ୟ } ଅନ୍ୟରୂପ considered; deserving consiବିଭାବ୍ୟ deration or reflection. ୨ । ଦର୍ଶନୀୟ—3. Visible. ୪ । ସୁନ୍ଦର—4. Beautiful; charming to the eye, graceful,

**ବିଭାବରୀ**—ସଂ ବି. ସ୍ତ୍ରୀ ( ବିଭା=ଦୀପ୍ତି+ଆ+ବୃ ଧାତୁ+କର୍ତ୍ତୃ. ଅ+ଈ Bibhābari ଇ; ଯେ ସୂର୍ଯ୍ୟଙ୍କ ଦୀପ୍ତିକୁ ଘୋଡ଼ାଇ ପକାଏ )—୧ । ରଜନୀ; ରାତ୍ରି—1. Night. ୨ । କୁଟ୍ଟନୀ; କୁଟୁଣୀ; ଦୂତୀ—2. A procuress. ୩ । ଦୁଇଜଣଙ୍କ ବିବାଦ ବା ଧସ୍ତାଧସ୍ତି ସମୟରେ ଚିରିଯାଇଥିବା ବସ୍ତ୍ରର ଖଣ୍ଡ ବା ଟୁକୁରା; ବିବାଦ ବସ୍ତ୍ର ମୁଣ୍ଡି—3. Shreds of a garment or cloth torn during a scuffle. ୪ । ହଳଦୀ—4. Turmeric. ୫ । ମୌଖର୍ଯ୍ୟ; ମୁଖରତା—5. Scurrility; abusiveness. ୬ । ମେଦା ଲତା—6. Name of a creeper ୭ । ବକ୍ରଯୋଷିତ୍; କଳହପ୍ରିୟା ସ୍ତ୍ରୀ—7. A churlish woman; a shrew. ୮ । ବେଶ୍ୟା—8. Harlot.

**ବିଭାବରୀ ନାହା**—ଦେ. ବି ( ସଂ. ବିଭାବରୀ+ନାଥ ବା ନାୟକ )—Bibhābari nāhā ରଜନୀପତି; ଚନ୍ଦ୍ର—The moon. ( ଉ—କୁଳନରୁ ବଳ ସେହିଦିନୁ କେଳ, କରେ ବିଭାବରୀନାହାକର । କବିସୂର୍ଯ୍ୟ. କଣୋଗ୍ୱରଜ୍ଞ. ଜ ଗୀତ । )

**ବିଭାବସୁ**—ସଂ. ବି ( ବହୁବ୍ରୀହି; ବିଭା=ପ୍ରଭା+ବସୁ=ଧନ )—୧ । Bibhābasu ସୂର୍ଯ୍ୟ—1. The sun. ୨ । ଚନ୍ଦ୍ର—2. The moon. ୩ । ଅଗ୍ନି—3. Fire. ୪ । ଚିତ୍ରକ ଗୁଳ୍ମ—4. A plant; Plumbago Zeylanica. ୫ । ହାରବିଶେଷ—5. A sort of necklace.

**ବିଭାବସୁଜା**—ସଂ. ବି—ସୂର୍ଯ୍ୟକନ୍ୟା; ଯମୁନାନଦୀ—The river Bibhābasujā Jamuna. ( ଉ—ବିଭାବସୁଜା କଲ୍ଲୋଳରେ ଭାସେ । ଭଞ୍ଜ. ବୈଦେହୀଶବିଳାସ ।)

ବିଭା ବାସି—ଦେ. ବି—ବିବାହଦିବସର ପରଦିନ—The morrow
Bibhā bāsi of a marriage. ( ଉ—ବିଭାବାସି
বাসীবিয়ে ବେଗମୁଣ୍ଡି ଯୋଡ଼ା । ଛଗ । )
ब्याहका दुसरा दिन; मरदादी

ବିଭାବି(ବୁ)କ—ଦେ. ବି (ବି+ଭାବୁକ)—ଅତ୍ୟନ୍ତ ଚିନ୍ତାଶୀଳ ବ୍ୟକ୍ତି—
Bibhābi(bu)ka A great thinker. ( ଉ— ବିଭାବିକରେ
ଖେଦ ଭେଦ ପଦ । ଉଞ୍ଜ. ବୈଦେହୀଶବିଳାସ । )

ବିଭାବିତ—ସ. ବିଣ ( ବି+ଭୂ ଧାତୁ ଣିଚ୍+କର୍ମ ତ )—୧ । ଅନୁଭୂତ
Bibhābita —1. Experienced. ୨ । ବିବେଚିତ—
2. Considered; judged ୩ । ଚିନ୍ତିତ—
3. Pondered over; thought over. ୪ ।
ଦୃଷ୍ଟ—4. Seen. ୫ । ଅବଧାରିତ—5 Ascertained; observed. ୬ । ପ୍ରସିଦ୍ଧ—6. Famous; celebrated. ୭ । ପ୍ରତିଷ୍ଠିତ—7. Established.

ବିଭାବିବା—ଦେ. କ୍ରି ( ପଦ୍ୟ; ସ. ବିଭାବନା )—ଭାବିବା; ଚିନ୍ତା
Bibhābibā କରିବା—To think; to ponder over.
বিভাবা ( ଉ—ଖାଣ ପ୍ରଭୁ ସଦ୍ଭେକ ବିଭାବ । ଉଞ୍ଜ.
विभावना ବୈଦେହୀଶବିଳାସ । )

ବିଭା ବେଦୀ—ଦେ. ବି ( ସ. ବିବାହବେଦୀ )—ଯେଉଁ ବେଦିକା ବା
Bibhā bedī ମୃତ୍ତିକାସ୍ତୂପ ଉପରେ ବିବାହକର୍ମ ସମ୍ପାଦିତ ହୁଏ—
বিয়েরবেদী ब्याहवेदी The marriage altar.

ବିଭାବ୍ୟ—ସ. ବିଣ ( ବି+ଭୂ ଧାତୁ ଣିଚ୍=ଭାବି ଧାତୁ+କର୍ମ ଯ )—
Bibhābya ୧ । ବିବେଚ୍ୟ; ଚିନ୍ତନୀୟ—1. Fit to be
considered. ୨ । ଦର୍ଶନୀୟ—2. Observable.
୩ । କଳ୍ପନୀୟ—3. Conceivable.

ବିଭା ବ୍ରତ—ଦେ. ବି (ସଦତର)—ବିବାହ ଓ ଉପନୟନ—The ceremonies of marriage and upanayana.
Bibhā brata
উপনয়ন বিবাহ ब्याहआउरजनेउ (ବାହାବରତ—ଗ୍ରାମ୍ୟରୂପ)

ବିଭାର୍ଯ୍ୟ—ସ. ବିଣ. ପୁଂ ( ବହୁବ୍ରୀହି; ବି+ଭାର୍ଯ୍ୟା )—ଯାହାର ଭାର୍ଯ୍ୟା
Bibhārjya ମରି ଯାଇଅଛି; ବିପତ୍ନୀକ—Widower.

ବିଭାଷା—ସ. ବି ( ବି+ଭାଷା )—୧ । ଏକପ୍ରକାର ପ୍ରାକୃତ ଭାଷା—
Bibhāshā 1. A class of prākruta or vernacular language. ୨ । ବିକଳ୍ପ; ଦ୍ୱୈଧଭାବ; ଇଚ୍ଛାନୁରୂପ କଳ୍ପନା—2. Optional form; an alternative. ୩ । ସଙ୍ଗୀତର ରାଗିଣୀବିଶେଷ—3. A musical note. ୪ । ପ୍ରାଦେଶିକ ଭାଷା; ଦେଶାଂଶ ପ୍ରଚଳିତ ଭାଷା—4. Dialect. ୫ । ଅପଭ୍ରଷ୍ଟ ଭାଷା, ଯାହା କୌଣସି ବ୍ୟାକରଣଗତ ନିୟମାନୁବର୍ତ୍ତୀ ନୁହେଁ; ଇତର ବ୍ୟବହୃତ ଭାଷା—5. Colloqual language that defies the rules of grammar. ଦେ. ବି—୧ । ଗାଳିମନ୍ଦ—1. Abuse. ୨ । ଅଶ୍ଳୀଳବାକ୍ୟ—2. Indecent language.

ବିଭାସ—ସ. ବି.ସ୍ତ୍ରୀ (ବି=ପକ୍ଷୀ+ଭାଷ୍ ଧାତୁ=କହିବା+କର୍ମ. ଅ )—
Bibhāsa ( ପକ୍ଷୀ ଯାହାର ସ୍ୱରକୁ ବାରମ୍ବାର ବୋଲିବା ପ୍ରକାରେ (ବିଭାଷା—ଅନ୍ୟରୂପ) ବୋଲାଯିବା ) ସଙ୍ଗୀତର ରାଗିଣୀବିଶେଷ—
A tune in Hindu music ( in which the note is repeated like that of a bird repeating its note ). [ ଦ୍ର—ଏହା ପ୍ରଭାତରେ ଗାଇବାର ଉପଯୁକ୍ତ ଓ ଖାଉରସାଶ୍ରିତ । ]

ବିଭାସ କେଦାର—ଦେ. ବି—ରାଗବିଶେଷ ( ରାଗ ତଳେ ନୋଟ
Bibhāsa kedāra ଦେଖ )—A note of music ( See notes under Rāga ).

ବିଭାସ ଗୁଜ୍ଜ(ର୍ଜ)ରୀ—ସ. ବି—ବିଭାସ ଓ ଗୁର୍ଜ୍ଜରୀ ନାମକ ରାଗଦ୍ୱୟର
Bibhāsa gujja(rja)rī ମିଶ୍ରଣରେ ଗୀତ ହେବା ରାଗିଣୀବିଶେଷ—Name of a tune in Hindu music.

ବିଭାସା—ସ. ବି (ବି+ଭାସ୍ ଧାତୁ+ଭାବ. ଅ+ଆ)—୧ । ପ୍ରକାଶ—
Bibhāsā 1. Manifestation exhibition. ୨ । ଦୀପ୍ତି—
2. Lustre.

ବିଭାସିତ—ସ ବିଣ (ବି+ଭାସ୍ ଧାତୁ ଣିଚ୍=ଭାସି ଧାତୁ+କର୍ମ୍ମ. ତ)—
Bibhāsita ୧ । ପ୍ରକାଶିତ—1. Revealed; manifested; disclosed. ୨ । ଆଲୋକିତ—2. Lighted; illuminated. ୩ । ସୁଶୋଭିତ—3. Adorned; beautified. ୪ । ଫୁଟିଥିବା; ପ୍ରସ୍ଫୁଟିତ—4. Blown; blooming ( said of a flower ).

ବିଭାସିବା—ଦେ. କ୍ରି ( ପଦ୍ୟ ) ( ସ. ବିଭାସିତ )—ପ୍ରକାଶିତ ହେବା—
Bibhāsibā To be manifested. [ ଉ—ଦରହାସ-ଲତା
ବିଭାସିଲା ଗୁରୁ-ଅଶ୍ୱ-ବିମ୍ବେ କମଳାର—ରାଧାନାଥ.
বিভাসা विभासना ଯଯାତି ।]

ବିଭିନ୍ନ—ସ. ବିଣ ( ବି+ଭିଦ୍ ଧାତୁ=ଭେଦ କରିବା+କର୍ମ. ତ )—
Bibhinna ୧ । ଅଲଗା ଅଲଗା; ପୃଥକ୍‌ଭୂତ—1. Separated distinct; separate. ୨ । ଖଣ୍ଡିତ; ବିଭକ୍ତ—2. Divided; partitioned. ୩ । ବିଘଟ୍ଟିତ; ଘାଣ୍ଟା ହୋଇଥିବା—3. Agitated. ୪ । ବିଦୀର୍ଣ୍ଣ; ବିଦାରିତ—4. Lacerated; torn. ୫ । ଚୂର୍ଣ୍ଣିତ—5. Bruised. ୬ । ମିଶ୍ରିତ—6. Mixed. ୭ । (+କର୍ତ୍ତୃ.ତ)ପୃଥକ୍‌ବିଧ-7. Of distinct or separate kinds. ୮ । ନାନାବିଧ—8. Of various kinds ୯ । ବିକଶିତ—9. Expanded; opened. ୧୦ । ନିଃଶେଷିତ—10. Exhausted; emptied. ୧୧ । ହତବୁଦ୍ଧି—11. Confounded. ୧୨ । ହତାଶ—12. Hopeless; desperate; bereft of hope. ଦେ. ବି—ପ୍ରଭେଦ—Distinction; difference. ଦେ. ବିଣ—ପୃଥକ୍ ଅନ୍ନ ଓ ପୃଥକ୍ ବାସ ହୋଇଥିବା; ଭିନ୍ନହୋଇଥିବା (ବ୍ୟକ୍ତି)—Separated in mess and property.

ବିଭିନ୍ନତା(ତ୍ୱ)—ସଂ. ବି ( ବିଭିନ୍ନ+ଭାବ. ତା; ତ୍ୱ)—୧ । ପୃଥକ୍‌ଭାବ—
Bibhinnatā(twa) . 1. Separtion; distinctness.
୨ । ପ୍ରଭେଦ—2. Difference.

ବିଭିନ୍ନ ଦେଶୀୟ—ସଂ. ବିଣ—୧ । ବିଦେଶୀୟ—1. Belonging to
Bibhinna deśīya a foreign country. ୨ । ଭିନ୍ନ ଭିନ୍ନ
ଦେଶୀୟ—2. Belonging to different countries. ୩ । ଅନ୍ୟ ଦେଶୀୟ—3. Of another country.

ବିଭିନ୍ନ ଧର୍ମାବଲମ୍ବୀ—ସଂ. ବିଣ. ପୁଂ—୧ । ଅନ୍ୟ ଧର୍ମାବଲମ୍ବୀ—1.
Bibhinna dharmābalambī Professing a different religion. ୨ । ନାନା ଧର୍ମାବଲମ୍ବୀ—2. Professing
(ବିଭିନ୍ନଧର୍ମୀ—ଅନ୍ୟରୂପ) various or different religions.

ବିଭୀତ—ସଂ. ବିଣ (ବି=ବିଗତ+ଭୀ ଧାତୁ+କର୍ତ୍ତୃ. ତ)—ନିଃଶଙ୍କ—
Bibhīta Fearless; undaunted. ଦେ. ବି—ବିଶେଷ
ଭୟ—Great fear; terror [ଉ—ବିଭୀତରେ ଦୈତ୍ୟମାନେ ବିସ୍ମରଲେ—ଭଞ୍ଜ. ବୈଦେହୀଶବିଳାସ । ]

ବିଭୀତକ—ସଂ. ବି ( ବି+ଭୀତ=ଭୟ+କ; ଯାହା ସେବନ କଲେ
Bibhītaka ରୋଗଭୟ ରହେ ନାହିଁ, ଅଥବା ଯେଉଁ ଗଛରେ
(ବିଭୀତକା-ସ୍ତ୍ରୀ) ଭୂତମାନେ ଆଶ୍ରୟ ନେଇଥିବାରୁ ଲୋକେ ବିଶେଷ
ଭୟ କରନ୍ତି )—ବାହାଡ଼ା ( ଗଛ ଓ ଫଳ )—
Terminalia Bellerica; the Belleric myrobalan. ଦେ. ବିଣ—ନିର୍ଭୀକ; ନିଃଶଙ୍କ—Fearless.
[ ଉ—ବିଭୀତକ କେହି କରି ଭୂମ ମଧ୍ୟେ ଓକ—ଭଞ୍ଜ. ବୈଦେହୀଶବିଳାସ । ]

ବିଭୀଷଣ—ସଂ. ବିଣ ( ବି+ଭୀ ଧାତୁ ଣିଚ୍+କର୍ତ୍ତୃ. ଅନ )—୧ । ଅତି
Bibhīshaṇa ଭୟଙ୍କର—1. Terrible; alarming; frightful. ୨ । ଦୃଢ଼—2. Firm; strong. ୩ । ଘନ—
3. Thick; hard. ସଂ. ବି—ରାବଣର ସାନ ଭାଇ—
1. The younger brother of Rābaṇa.
୨ । ନଳତୃଣ; କାଣ୍ଡଶର ଗଛ—2. The reed
grass; Arundo Tibialis. ୩ । ଭୃତ୍ୟ—
3. Servant. ୪ । ଆତ୍ମା—4. Soul; spirit.
୫ । କାଳ—5. Time. ୬ । ମୃତ୍ୟୁ; କାଳ—
6. Death ( personified ).

ବିଭୀଷଣ ପୁଷ୍ପ—ଦେ. ବି—(ସଂ. ବିଭୀଷଣ)—୧ । କାଣ୍ଡଶର ଗଛର
Bibhīshaṇa pushpa ଫୁଲ—1. The flower of Kāṇḍa
( ବିଭୂଷଣ ପୁଷ୍ପ, ବିଭୂଷଣ ପୁଷ୍ପ—ଅନ୍ୟରୂପ ) śara grass.
୨ । (ସଂ. ଶଣ) ଛଣପଟ ଫୁଲ—2. The flower of the
wild flax plant; Crotalaria. [ ଦ୍ର—
ଏହାର ବର୍ଣ୍ଣ ଟୋପା ହଳଦିଆ ଥିବାରୁ କବି
ବୈଦେହୀଶବିଳାସରେ ସୀତାଙ୍କ କାନ୍ତିକୁ ଏହି ପୁଷ୍ପ
ସଙ୍ଗେ ତୁଳନା କରିଅଛନ୍ତି ଃ—( ଯଥା—"ବିଭୀଷଣ
ପୁଷ୍ପେ ଯା କାନ୍ତି ଜାଣ, ବିଭୂଷଣ କରି କନ୍ୟାକୁ ଆଣ" ।
ବୈଦେହୀଶବିଳାସରେ ଏହି ଶବ୍ଦର ପ୍ରୟୋଗ ସମ୍ବନ୍ଧେ
ନାନା ପ୍ରକାର ପାଠ ଓ ଅର୍ଥ ଦେଖାଯାଏ ଃ—(ଯଥା—
୧ । ବିଭୀଷଣ ପୁଷ୍ପ—କାଣ୍ଡଶର ଗଛର ଫୁଲ ପରି ଗୌରବର୍ଣ୍ଣ । ୨ । ବିଭୂଶଣ ପୁଷ୍ପ—ହେ ବିଭୁ ! ଅର୍ଥାତ୍ ହେ
ରାଜନ୍ ! ଶଣପୁଷ୍ପ ବା ଛଣପଟ ଫୁଲ ପରି ଯାହା ଦେହ
ହଳଦିଆ, ୩ । ବିଭୂଷଣ ପୁଷ୍ପ—ସ୍ତ୍ରୀର ସ୍ୱାମୀ ଯେପରି ଭୂଷଣ
ଫୁଲର ଭ୍ରମର ସେହିପରି ଭୂଷଣ । ତେଣୁ ଯେଉଁ ଫୁଲ
ନିକଟକୁ ଭ୍ରମର ନ ଯାଏ ତାହା ବିଭୂଷଣ ପୁଷ୍ପ, ( ଯଥା—
କେତକୀ, ଚମ୍ପା ଆଦି ) ସେହି ଫୁଲ ପରି ଯାହାର ବର୍ଣ୍ଣ
ହଳଦିଆ । ୪ । କେହି କେହି କହନ୍ତି,—ଯାହାର (ସୀତାଙ୍କର)
କାନ୍ତି ଶଣପୁଷ୍ପର ବିଭୁ ବା ଶ୍ରେଷ୍ଠ ଅର୍ଥାତ୍ ଶଣପୁଷ୍ପ ଅପେକ୍ଷା
ଅଧିକ ମନୋହର । ଏହା ଛଡ଼ା ଅନ୍ୟ ଅର୍ଥ ମଧ୍ୟ କରାଯାଇ
ପାରେ । ]

ବିଭୀଷିକା—ସଂ.ବି, ସ୍ତ୍ରୀ—(ବି+ଭୀ ଧାତୁ ଣିଚ୍=ଭୀଷି ଧାତୁ+ଭାବ.ଅକ+
Bibhīshikā ସ୍ତ୍ରୀ. ଆ)—୧ । ଭୟ ପ୍ରଦର୍ଶନ; ଭୟ ଦେଖାଇବା—
1. Frightening; terrifying. ୨ । ଅତ୍ୟନ୍ତ
ଭୟ—2. Terror. ୩ । ଭୟ ଦେଖାଇବାର ଉପାୟ—
3. Means used to terrify or scare away others.

ବିଭୁ—ସଂ. ବି, ପୁଂ—(ବି+ଭୂ ଧାତୁ+କର୍ତ୍ତୃ. ଉ)—୧ । ପ୍ରଭୁ—
Bibhu 1. Master; lord. ୨ । ଦେବତା—2. Deity.
୩ । ପରମେଶ୍ୱର—3. The Supreme God; God.
୪ । ବ୍ରହ୍ମା—4. The Creator of the universe.
୬ । ଭୃତ୍ୟ—6. Servant. ସଂ. ବିଣ—୧ । ସର୍ବବ୍ୟାପୀ—1. All pervading. ୨ । ସବୁଠାରେ
ବିରାଜିତ—2. Omnipresent. ୩ । ନିତ୍ୟ; ଶାଶ୍ୱତ—
3. Constant; eternal.

ବିଭୁକ୍ତ—ଦେ. ବିଣ—ସନ୍ତୋଷରେ ଭୋଜନ କରିଥିବା (ବ୍ୟକ୍ତି)—
Bibhukta Having had a satisfying meal.
ଦେ. ବି—ପୂର୍ଣ୍ଣ ବା ସସନ୍ତୋଷ ଭୋଜନ—Full meal.
[ଉ—ବିଜୟ ରାମ କରିବେ, ବିଭୁକ୍ତେ ମୋତେ ତାରିବେ ।
ଭଞ୍ଜ. ବୈଦେହୀଶବିଳାସ । ]

ବିଭୂତି—ସଂ. ବି—(ବି+ଭୂ ଧାତୁ+କରଣ. ତି)—୧ । ଐଶ୍ୱର୍ଯ୍ୟ;
Bibhūti ଈଶ୍ୱରଙ୍କର ଅମାନୁଷିକ ଗୁଣମାନ—1. Divinity;
superhuman qualities of the Godhead. ୨ ।
ଐଶ୍ୱର୍ଯ୍ୟ; ଅତୁଳାଚଳ ସମ୍ପତ୍ତି—2. Affluence; riches;
wealth. ୩ । ଋଦ୍ଧି; ସମୃଦ୍ଧି—3 Glory; prosperity. ୪ । ମହତ୍ତ୍ୱ—Greatness. ୫ । ଭସ୍ମ;
ପାଉଁଶ—5. Ashes. ୬ । ମହାଦେବଙ୍କର ଅଷ୍ଟବିଧ
ଐଶ୍ୱର୍ଯ୍ୟ—6. The eight special divine
qualities of Śiba. [ଦ୍ର—ଅଷ୍ଟବିଧ ଐଶ୍ୱର୍ଯ୍ୟ; ଯଥା—
ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ,
ବଶିତ୍ୱ ଓ କାମାବସାୟିତ୍ୱ । ] ୭ । (ବୈଦିକ ସାହିତ୍ୟ)
ପ୍ରାଚୁର୍ଯ୍ୟ; ପ୍ରଭୂତତା—7. Plenty (in vedic use).
ଦେ. ବି—ଶ୍ରୀମଦ୍ଭଗବଦ୍‌ଗୀତାର ଏକାଦଶ ଅଧ୍ୟାୟ, ଯହିଁରେ

ଭଗବାନଙ୍କର ବିଭୂତି ବର୍ଣ୍ଣିତ ହୋଇଅଛି—The 11th chapter of Bhagabadgitā. [ଉ—ବିଭୂତିରେ କରିବେଁ କଥନ ଯେ। ଭଞ୍ଜ. ବୈଦେହୀଶବିଳାସ।]

ବିଭୂତି ବୋଳିବା—ଦେ. କ୍ରି—ଶରୀର ଦେହରେ ଭସ୍ମ ଲେପିବା—To besmear the body with ashes. Bibhūti boḷibā. বিভূতি মাখা. बिभूति लगाना [ବିଭୂତି ଲଗା(ଗେ)ଇବା, ବିଭୂତି ମାଖିବା (ମାଖିହେବା)—ଅନ୍ୟରୂପ]

ବିଭୂତିଭୂଷଣ—ସ. ବିଣ—( ବହୁବ୍ରୀହି; ବିଭୂତି+ଭୂଷଣ )—ଯାହା Bibhūtibhūshaṇa ଦେହରେ ପାଉଁଶ ବୋଳା ହୋଇଥାଏ—Besmeared with ashes all over the body. ସ. ବି—ମହାଦେବ; ଶିବ—Siba.

ବିଭୂତି ଲେପନ—ସ. ବି—(୬ଷ୍ଠୀ ତତ୍, ବିଭୂତି+ଲେପନ)—ପାଉଁଶ Bibhūti lepana ବୋଳିବା—The besmearing of the (ବିଭୂତି ବିଲେପନ—ଅନ୍ୟରୂପ)—body with a coating of ashes. ( ବିଭୂତିଲିପ୍ତ, ବିଭୂତି ବିଲେପିତ, ବିଭୂତି ଲେପିତ—ବିଣ )

ବିଭୂଷଣ—ସ. ବି—( ବି+ଭୂଷ୍ ଧାତୁ+ଭାବ. ଅନ )—୧ । ଅଳ-Bibhūshaṇa କରଣ—1. Decorating. ୨ । (+କରଣ (ବିଭୂଷା—ଅନ୍ୟରୂପ) ଅନ)—ଆଭରଣ; ଅଳଙ୍କାର—2. Ornament; jewellery; decorations. ୩ । ଶୋଭା—Beauty; splendour. ଦେ. ବିଣ—ମନୋହର; ସୁନ୍ଦର—Beautiful. [ ଉ—ବିଭୂଷା ଗନ୍ଧ ଜବ- ଭଞ୍ଜ. ବୈଦେହୀଶବିଳାସ । ] ( ଦ୍ର—ବିଭୂଷଣ ପୃଷ୍ଠ ତଳେ ଟୀକା ଦେଖ । )

ବିଭୂଷଣ କରିବା—ଦେ. କ୍ରି—ଅଳଙ୍କାରାଦିଦ୍ୱାରା ଭୂଷିତ ବା ସଜ୍ଜିତ କରିବା-Bibhūshaṇa karibā To adorn a person with বিভূষণ করা ornaments; to decorate. [ଉ—ବିଭୂଷଣ विभूषणा ପୂର୍ବେ ଯା କାନ୍ତି ଜାଣ, ବିଭୂଷଣ କରି କନ୍ୟାକୁ ଆଣ । ଭଞ୍ଜ. ବୈଦେହୀଶ ବିଳାସ । ]

(ଦ୍ର—ବିଭୂଷଣ ପୃଷ୍ଠ ତଳେ ଟୀକା ଦେଖ । )

ବିଭୂଷିତ—ସ. ବିଣ. ପୁଂ (ବି+ଭୂଷ୍ ଧାତୁ+ କର୍ମ. ତ)—୧ । ବିଶିଷ୍ଟ-Bibhūshita ରୂପେ ସଜ୍ଜିତ ବା ଅଳଙ୍କୃତ—1. Well adorned; (ବିଭୂଷିତା—ସ୍ତ୍ରୀ) decorated. ୨ । (ସମାସରେ) ଶୋଭିତ—2. Refulgent with; shining with.

ବିଭୂଷିବା—ଦେ. (ପଦ୍ୟ) କ୍ରି ( ସ. ବିଭୂଷଣ )—୧ । ବିଶିଷ୍ଟରୂପେ Bibhūshibā ମଣ୍ଡନ କରିବା—1. To well adorn. [ଉ— বিভূষা ବିଭୂଷି ବିଅଥରୀ ମୋହିଜାଲି । ଭଞ୍ଜ. ବୈଦେହୀଶ विभूषना ବିଳାସ ।] ୨ । ବଳପୂର୍ବକ ପ୍ରବିଷ୍ଟ କରାଇବା—2. To thrust; to ram; to push in.

ବିଭୃତ—ସ. ବି (ବି+ଭୃ ଧାତୁ=ଧାରଣ କରିବା; ପାଳନ କରିବା+ Bibhṛuta କର୍ମ. ତ )—୧ । ଧୃତ—1. Held; upheld; sustained. ୨ । ପ୍ରତିପାଳିତ; ପୁଷ୍ଟ—2. Maintained; cherished; supported.

ବିଭେଦ—ସ. ବି (ବି+ଭିଦ୍ ଧାତୁ+ଭାବ. ଅ)—୧ । ପ୍ରଭେଦ; Bibheda ପାର୍ଥକ୍ୟ—1. Difference; distinction. ୨ । ଅସାଦୃଶ୍ୟ—2. Dissimilarity. ୩ । ବିଦାରଣ—3. Piercing; splitting up. ୪ । ଦ୍ୱିଧାକରଣ—4 Dividing. ୫ । ମିଶ୍ରଣ—5. Mixing up. ଦେ. ବିଣ—ମିଶ୍ରିତ—Mixed up with. [ଉ—ଭକ୍ତି ପ୍ରେମପଞ୍ଚାମୃତ, ଭକ୍ତିବିଭେଦ ଭାଗବତ । ଭୂପତି. ପ୍ରେମ ପଞ୍ଚାମୃତ । ]

ବିଭେଦକ—ସ. ବିଣ ପୁଂ ( ବି+ଭିଦ୍ ଧାତୁ+କର୍ତ୍ତୃ. ଅକ )—Bibhedaka ୧ । ପୃଥକ୍‌କାରୀ—1. Dividing; separating. ୨ । ବିଦାରକ—2. Piercing; rending. ( ବିଭେତ୍ତା—ଅନ୍ୟରୂପ ) ( ବିଭେଦିକା, ବିଭେଦିନୀ—ସ୍ତ୍ରୀ )

ବିଭେଦନ—ସ. ବି (ବି+ଭିଦ୍ ଧାତୁ+ଭାବ. ଅନ)-୧ । ବିଦାରଣ—Bibhedana 1. Piercing. ୨ । ପୃଥକ୍‌କରଣ—2. Dividing; separating.

ବିଭୋ—ସ. (ସମ୍ବୋଧନ)—( ବିଭୁ ଶବ୍ଦର ସମ୍ବୋଧନ )—ହେ ପ୍ରଭୁ । Bibho ପ୍ରଭୋ !—Oh Lord ! Oh master !

ବିଭୋଗ—ଦେ. ବି—୧ । ସମ୍ଭୋଗ—1. Sexual enjoyment. Bibhoga [ଉ—ବିଭୋଗକାଳ ବିସ୍ମରି, ବନ୍ଧୁ କଲ ବନଗୃହୀ— বিভোগ ଭଞ୍ଜ. ବୈଦେହୀଶବିଳାସ ।] ୨ । ସୁଖ ଭୋଗ—2. Enjoyment. [ଉ—ବିଭୋଗରେ ରତି ସାର, ବିଦ୍ୟ ସଂସାର ଏ । ଭଞ୍ଜ. ବୈଦେହୀଶବିଳାସ । ] ୩ । ବିଷୟଭୋଗ—3. Worldly enjoyment. [ଉ—ବିତରଇ ଫଳ ପୁଷ୍ପ ସେବନ, ବିଭୋଗ ଅପବର୍ଗ ବେନ । ଜଗନ୍ନାଥ. ଭାଗବତ । ]

ବିଭୋଗୀ—ଦେ. ବିଣ—ଉପଭୋଗୀ—Enjoying. [ ଉ—ବିଭୋଗୀ Bibhogī ଏହାର ଯେଉଁ ଦିବ୍ୟପୁରୁଷ, ବିହ୍ୱଳର ନାହିଁ ପରୁ ମୋହେ ମାନସ । ଭଞ୍ଜ. ବୈଦେହୀଶବିଳାସ ।]

ବିଭୋଜନ—ଦେ. ବି—ଅନାହାର; ଉପବାସ—Fasting. [ ଉ— Bibhojana ବୋଲି ଏତେ ମହନ; ବିଭୋଜନେ ହଉଲେ ସେ ଦିନ । ଭଞ୍ଜ. ବୈଦେହୀଶବିଳାସ ।]

ବିଭୋର—ଦେ. ବିଣ(ସ.ବିହ୍ୱଳ)—୧ । ଅତି ଉଜ୍ଜ୍ୱଳ—1. Dazzling; Bibhor brilliant. ୨ । ଆନନ୍ଦରେ ଉନ୍ମତ୍ତ—2. Maddened বিভোর विभोर with joy. ୩ । ବିହ୍ୱୋଳ ( ଦେଖ )—3. Bibhoḷa (See).

ବିହ୍ୱୋଳ(ଳା)—ଦେ. ବିଣ ( ସ ବିହ୍ୱଳ )—୧ । ବିହ୍ୱଳ; ବ୍ୟାକୁଳ—Bibhoḷa(ḷā) 1. Perplexed; bewildered. ୨ । ବାଉଳ; বিভোর; বিভোল ଉନ୍ମତ୍ତ—2. Intoxicated; maddened. घबरायाहुआ ୩ । ଯେ ଗଡକଥା ପାସୋରି ଦିଏ—3. Forgetful. (ଉ—ଏକେ ସେ ବିହ୍ୱୋଳ ବାଳକେ, ଦୁଜେ ସେ ମଉଥିଲେ ଭୋଖେ । ପ୍ରାଚୀ. ନର୍ଗୁଣମାହାତ୍ମ୍ୟ । )

ବିହ୍ୱୋଳିବା-ଦେ. କ୍ରି (ସ. ବିହ୍ୱଳ)-୧ । ବିହ୍ୱଳ ହେବା; ବ୍ୟାକୁଳ ହେବା-Bibhoḷibā 1.To be bewildered. ୨ । ଉନ୍ମତ୍ତ ହେବା— বিভোল হওয়া 2. To be maddened. (ଉ—ଶୁଣି ଏହା घबराना ଭୂମିକାମା ଆନନ୍ଦେ ବିହ୍ୱୋଳ ଭଇଲା । ଚନ୍ଦ୍ରାମଣି. ବିକ୍ରମାଦିତ୍ୟ ।)

ବିଭ୍ରକ୍ଷା—ସଂ. ବି ( ଭ୍ରସଜ୍ ଧାତୁ=ପୋଡ଼ିବା+ଇଚ୍ଛାର୍ଥରେ ସନ୍+ଭାବ
Bibhrakshā ଅ; ଆ )—ପୋଡ଼ିଦେବାର ଇଚ୍ଛା—A desire to set fire to or burn.

ବିଭ୍ରକ୍ଷୁ—ସଂ. ବିଣ (ବି+ଭ୍ରସଜ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—
Bibhrakshu ୧ । ପୋଡ଼ିଦେବା ପାଇଁ ଇଚ୍ଛୁକ; ଦହନେଚ୍ଛୁ—1. Wishing to set fire to; wishing to scorch. ୨ । ନଷ୍ଟ କରିବାକୁ ଇଚ୍ଛୁକ—2. Desiring to destroy ସଂ ବି—ଅଗ୍ନି—Fire.

ବିଭ୍ରଜ୍ଜି—ସଂ. ବିଣ ( ଭ୍ରସଜ୍ ଧାତୁ+ଇଚ୍ଛାର୍ଥରେ ସନ୍+ଇ )—ପୋଡ଼ି-
Bibhrajji ଦେବାପାଇଁ ଇଚ୍ଛୁକ—Wishing to burn or scorch.

ବିଭ୍ରଜ୍ଜିଷୁ—ସଂ. ବି. ପୁଂ ( ବି+ଭ୍ରସ୍ଜ ଧାତୁ=ପୋଡ଼ି ଦେବା+କର୍ତ୍ତୃ.
Bibhrajjishu ଇଷ୍ )—ଅଗ୍ନି; ନିଆଁ—Fire.

ବିଭ୍ରତ୍—ସଂ. ବିଣ, ପୁଂ ( ବି+ଭୃ ଧାତୁ+କର୍ତ୍ତୃ ଅତ୍ [ଶତୃ] )—୧ ।
Bibhrat ଧାରଣକାରୀ - 1. Holding. ୨ । ପୋଷଣକାରୀ-
2. Supporting; maintaining. ୩ । ଯେ ପିନ୍ଧି-
( ବିଭ୍ରାଣ—ଅନ୍ୟରୂପ ) ଥାଏ; ପରିଧାନକାରୀ—3. Wearing.
(ବିଭ୍ରତୀ, ବିଭ୍ରାଣା—ସ୍ତ୍ରୀ)

ବିଭ୍ରମ—ସଂ. ବି ( ବି+ଭ୍ରମ୍ ଧାତୁ+ଭାବ ଅ )—୧ । ସ୍ତ୍ରୀମାନଙ୍କର
Bibhrama ଶୃଙ୍ଗାରଭାବଜାତ କ୍ରିୟାବିଶେଷ ( ଯଥା—ବିନା-କାରଣରେ ବସିବା ଥାନରୁ ଉଠି ଅନ୍ୟତ୍ର ଚାଲିଯିବା, ନାୟକ ବିଷୟକ କଥାସକ୍ତା ସଖୀମାନଙ୍କ ସହିତ ଆଳାପ, ଉଚ୍ଚ-ହାସ୍ୟ, କୃତ୍ରିମ କ୍ରୋଧପ୍ରକାଶ,ପୁଷ୍ପାଦି ପ୍ରାର୍ଥନା, ସହସା ବସ୍ତ୍ରାଦି ଛାଡ଼ିଦେବା )—1. Covert acts of coquetry displayed by an amorous lady, connoting attachment, though not openly indicating it; indirect amorous displays by a lady in love. ୨ । ଲୀଳା—2. Sport; play: lasciviousness. ୩ । ପ୍ରମାଦ; ଭ୍ରମ—3. Blunder; error. ୪ । ବିଳାସ—4. Pastime; enjoyment. ୫ । ଖିଆଲ—5. Whim; caprice. ୬ । ସଂଶୟ—6. Doubt. ୭ । ଘୂର୍ଣ୍ଣନ—7. Whirling about; rotation. ୮ । ପରିଭ୍ରମଣ—8. Wandering about; roving. ୯ । ବିଚିତ୍ରିବା; ଗୋଳମାଳ—9. Derangement, confusion. ୧୦ । ବିଜୃମ୍ଭଣ; ହାଇମାରିବା—10. Yawning. ୧୧ । ସାଦୃଶ୍ୟ—11. Likeness; similitude. ୧୨ । ଶୋଭା—12. Beauty; grace. ୧୩ । ସ୍ମୃତି ଶକ୍ତିର ହ୍ରାସ—13. Loss of memory; forgetfulness. ୧୪ । ପ୍ରେମଚିନ୍ତାଜନିତ ଅନ୍ୟମନସ୍କତା ବା ତ୍ୱରା-ପ୍ରଯୁକ୍ତ ଭୂଷଣାଦିର ଅସ୍ଥାନ ବିନ୍ୟାସ ( ଯଥା—ଅଣ୍ଟାରେ ହାର ପିନ୍ଧି ପକାଇବା, ଗୋଡ଼ରେ ବାଜୁବନ୍ଧ ପିନ୍ଧିବା, ନାକରେ କଜ୍ଜଳ ଘେନିବା ଇତ୍ୟାଦି )—14. Hasty misplacement of ornaments or putting on ornaments in wrong places on account of absent-mindedness due to the thoughts about one's sweet-heart, or being in haste to see him or her. ୧୫ । ମାୟାଜନିତ ଚିତ୍ତର ଭ୍ରାନ୍ତ ଅବସ୍ଥା—15. Illusion; delusion. ୧୬ । ବିଷୟାନ୍ତରରେ ମନ ଥିବା ଅବସ୍ଥା—16. Absent-mindedness. ୧୭ । ବୁଦ୍ଧି ଭ୍ରମ; ମସ୍ତିଷ୍କ ବିକୃତି—17, Derangement of the brain, ୧୮ । ମୁଣ୍ଡ ଘୂରିଇବା—18 Dizziness. ୧୯ । ବିପଦ—19. Danger; calamity,

ବିଭ୍ରମା—ସଂ. ବି, ସ୍ତ୍ରୀ—( ବିଭ୍ରମ+ଆ )—ବାର୍ଦ୍ଧକ୍ୟ—Old age.
Bibhramā ଦେ. ବିଣ—ଉନ୍ମାଦିନୀ—Maddened (woman) (ଉ—ହେଲା ଗଦ୍ଗଦ ବାଣୀ ଜନନୀ, ପୁଣି ହୋଇଲା ଚିତ୍ତବିଭ୍ରମା । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

ବିଭ୍ରମିବା—ଦେ.କ୍ରି (ପଦ୍ୟ) (ସଂ. ବିଭ୍ର—ମ)—୧ । ଭ୍ରମଯୁକ୍ତ ହେବା—
Bibhramibā 1. To be bewildered.
विभ्रमा [ଉ—ବିଭ୍ରମିଲା ଚିତ୍ତ ଶଯ୍ୟା ମଣ୍ଡପକୁ ଗଲି ନାହିଁ । ଭଞ୍ଜ.
विभ्रमना ବୈଦେହୀଶବିଳାସ ।] ୨ । ଇତସ୍ତତଃ ଭ୍ରମଣ କରିବା—2. To wander about, [ ଉ—ବିଭ୍ରମେ ଖଣ୍ଡ ଖଣ୍ଡ ଅଣ୍ଡ ବଇର ଗଣ୍ଡ ଖଣ୍ଡରେ ପରକଟ । ଭଞ୍ଜ, ବୈଦେହୀଶବିଳାସ ।]

ବିଭ୍ରମୀ—ସଂ. ବିଣ. ପୁଂ ( ବିଭ୍ରମ+ଇନ୍ )—ବିଳାସୀ—Sportive.
Bibhramī (ବିଭ୍ରମିଣୀ—ସ୍ତ୍ରୀ)
[ଉ—ବନେ ଭ୍ରମେ ବିଭ୍ରମୀ ଭ୍ରମର—ମଧୁସୂଦନ. କବିତାବଳୀ ।]

ବିଭ୍ରଷ୍ଟ—ସଂ. ବିଣ. ପୁଂ—( ବି+ଭ୍ରଂଶ ଧାତୁ+କର୍ମ. ତ )—୧ ।
Bibhrashta ଇତସ୍ତତଃ କ୍ଷିପ୍ତ 1. Scattered. ୨ । ସ୍ଥାନ-
(ବିଭ୍ରଷ୍ଟା—ସ୍ତ୍ରୀ) ପରିଭ୍ରଷ୍ଟ—2. Displaced. ୩ । ବିନଷ୍ଟ—3. Spoiled.

ବିଭ୍ରାଜ—ସଂ. ବିଣ—(ବି+ଭ୍ରାଜ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ)—
Bibhrāja ୧ । ଭ୍ରାଜିଷ୍ଣୁ; ଦୀପ୍ତିମାନ୍—1. Dazzling; lustrous; brilliant. ୨ । ଶୋଭାଯୁକ୍ତ—2. Beautiful. ସଂ. ବି ଆପଦ୍; ବିପଦ; ସଙ୍କଟ—
(ବିଭ୍ରାଜା—ସ୍ତ୍ରୀ) (ବିଭ୍ରାଜିଷ୍ଣୁ—ଅନ୍ୟରୂପ) Danger; calamity.

ବିଭ୍ରାଜମାନ—ସଂ. ବିଣ. ପୁଂ—(ବି+ଭ୍ରାଜ୍ ଧାତୁ=ଦୀପ୍ତି ପାଇବା+
Bibhrājamāna କର୍ତ୍ତୃ. ଆନ)—ଶୋଭମାନ—Shining.
[ଉ—ବିଭ୍ରାଜମାନ ସାୟକରେ ଅଛି ।
(ବିଭ୍ରାଜମାନା—ସ୍ତ୍ରୀ) ଭଞ୍ଜ. ବୈଦେହୀଶବିଳାସ ।]

ବିଭ୍ରାଜିତ—ସଂ. ବିଣ-(ବି+ଭ୍ରାଜ୍ ଧାତୁ ଣିଚ୍=ଭ୍ରାଜି ଧାତୁ+କର୍ମ. ତ)-
Bibhrājita ୧ । ଉଜ୍ଜ୍ୱଳୀକୃତ—1. Made splendid or bright; brightened.
[ଉ—ବିଭ୍ରାଜିତ ହୋଇ କୁନ୍ଦ ଦନ୍ତରେ ।
ଭଞ୍ଜ. ବୈଦେହୀଶବିଳାସ ।]
୨ । ଶୋଭିତ—2, Shining; beautiful.
୩ । ଦୀପ୍ତ; ଆଲୋକିତ—3, Illuminated.

**ବିଭ୍ରାଜିବା**—ଦେ. କ୍ରି (ପଦ୍ୟ) (ସଂ. ବିଭ୍ରାଜ)—ଶୋଭା ପାଇବା—
Bibhrājibā বিভাজা **विभ्राजना** To look grand; to shine forth. [ଉ—ବିଭ୍ରାଜନ୍ତି ଚକ୍ରବର୍ତ୍ତୀ ପରି ଗୃହଧାରୀ । ଉଞ୍ଜ. ବୈଦେହୀଶବିଳାସ ।]

**ବିଭ୍ରାଟ୍**—ସଂ. ବି—(ବି+ଭ୍ରାଜ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. କ୍ୱିପ୍; ବିଭ୍ରାଜ୍; ୧ମା. ୧ବ.)—ସଙ୍କଟ; ଆପଦ; ବିପଦ—
Bibhrāṭ Calamity; danger; adversity. ସଂ. ବିଣ.—୧। ଦୀପ୍ତିଶୀଳ—1. Dazzling. ୨। ସୁନ୍ଦର—2. Elegant. ଦେ. ବି—୧। ବିପ୍ଲବ; ଗୋଳମାଳ 1. Confusion; muddle; perplexity. ୨। ଅପବାଦ—2. Scandal. ୩। ଶତ୍ରୁ ମର୍ଦ୍ଦନ—3. The act of crushing one's foes. [ଉ—ହୁଙ୍କାର ଦେବାର ଦେଲେ ବଇରି-ବିଭ୍ରାଟେ । ରାଧାନାଥ. ମହାଯାତ୍ରା ।) ଦେ. ବିଣ—(ସଂ. ଭ୍ରଷ୍ଟ)—୧। ବିନଷ୍ଟ—1. Spoiled. ୨। ପ୍ରକ୍ଷିପ୍ତ—2. Scattered about. ୩। ଗୋଳମାଳିଆ—3. Confused; muddled. ୪। ଦୁର୍ନୀତିକ—4. Immoral. ୫। ସାଧାରଣରେ ପ୍ରକଟିତ; ପ୍ରଘଟ—5. Published; made public. ୬। କୁମାର୍ଗଗତ; କୁକ୍ରିୟାରତ—6. Gone astray; taking to evil ways. ୭। ଅବ୍ୟବସ୍ଥିତ—7. Mismanaged.

**ବିଭ୍ରାଟ**—ଦେ. ବି—(ସଂ, ବିଭ୍ରାଟ୍=ଆପଦ) ୧। ଗୋଳମାଳ—1.
Bibhrāṭa Ado; confusion. ୨। ଅବ୍ୟବସ୍ଥା; ବେବନ୍ଦୋବସ୍ତ
বিভ্রাট 2. Mismanagement; ୩। କୌଣସି ଗୁପ୍ତ ବିଷୟର
**विभ्राट** ସର୍ବତ୍ର ପ୍ରଚାର—3. Wide publication of a secret. ୪। ଦୁର୍ନୀତି—4. Immorality.

**ବିଭ୍ରାଟ କରିବା**—ଦେ. କ୍ରି—୧। ରଷ୍ଟ କରିବା; କୌଣସି ଗୁପ୍ତ ବିଷୟକୁ
Bibhrāṭa kariba ସାଧାରଣରେ ପ୍ରଘଟ ବା ପ୍ରଚାର କରିବା—
বিভ্রাট বাধান 1. To make a secret thing public; to
**विभ्राट करना** broadcast a matter. ୨। ବିଭ୍ରାଟ ଘଟାଇବା ( ଦେଖ )—2. Bibhrāṭa ghaṭāibā ( See )

**ବିଭ୍ରାଟ ଘଟା(ଟେ)ଇବା**—ଦେ. କ୍ରି—୧। ଗୋଳମାଳ ଘଟାଇବା—
Bibhrāṭa ghaṭā(ṭe)ibā 1. To cause confusion; to
বিভ্রাট বাধান **बखेड़ा मचाना** muddle up. ୨। ବିନଷ୍ଟ କରିବା—2. To spoil.

**ବିଭ୍ରାଟିଆ**—ଦେ. ବିଣ ( ସଂ. ବିଭ୍ରାଟ )—୧। ଗୋଳମାଳିଆ—
Bibhrāṭiā 1. Confused; muddled. ୨। କଳଙ୍କଯୁକ୍ତ—
গোলমেলে **बखेड़िया** 2. Scandalous. ୩। ଦୁର୍ନୀତିକ—3. Immoral.

**ବିଭ୍ରାଡ଼ିବା**—ଦେ. ( ପଦ୍ୟ ) କ୍ରି ( ସଂ. ବିଭ୍ରାଜ୍ ଶବ୍ଦର ୧ମା. ୧ବ.
Bibhrāṛibā ବିଭ୍ରାଟ୍ )—ବିନାଶ କରିବା—To kill.
বিনাশা **विनाशना** ବାହୁଲେୟ ପ୍ରାୟେ ହେଲା ପ୍ରାତ ଉପୃତ, ବିଭ୍ରାଡ଼ି ତାରକାସୁର ପ୍ରମୋଦ ଅତି । ଉଞ୍ଜ. ବୈଦେହୀଶବିଳାସ ।)

**ବିଭ୍ରାନ୍ତ**—ସଂ. ବିଣ—(ବି+ଭ୍ରମ ଧାତୁ+କର୍ତ୍ତୃ. ତ)—୧। ବିଶେଷ
Bibhrānta ରୂପେ ଭ୍ରମଯୁକ୍ତ—1. Greatly mistaken.
(বিভ্রান্ত—বি) ୨। ତ୍ୱରାନ୍ୱିତ—2. Hurried. ୩। ଚଞ୍ଚଳିତ; ଚଞ୍ଚଳ—3. Agitated. ୪। ଭୀତ; ତ୍ରସ୍ତ—4. Alarmed. ୫। ବିହ୍ୱଳ—5. Bewildercsd.

**ବିଭ୍ରାନ୍ତି**—ସଂ. ବି—(ବି+ଭ୍ରମ ଧାତୁ+ଭାବ. ତି)—୧। ଅତ୍ୟନ୍ତ ଭ୍ରମ
Bibhrānti 1. Grave error; mistake. ୨। ତ୍ୱରାନ୍ୱିତ ଅବସ୍ଥା—2 Precipitation; hurry; flurry.

**ବିମ୍**—ବୈଦେ. ବି (ଇଂ. ବୀମ୍)—୧। କୋଠାର ବା ଜାହାଜର କଡ଼ି—
Bim Beam of a building or ship. ୨। ଗାଡ଼ିର ବିମ୍—
বিম **बिम** 2. The pole of a carriage.

**ବିମତ୍ସର**—ସଂ. ବିଣ (ବହୁବ୍ରୀହି; ବି+ମତ୍ସର)—୧। ମାତ୍ସର୍ଯ୍ୟରହିତ;
Bimatsara ଈର୍ଷାଶୂନ୍ୟ—1 Free from jealousy or envy. ୨। ପ୍ରତିହିଂସାଭାବ ରହିତ-2. Unrevengeful.
(ବିମତ୍ସରୀ—ସ୍ତ୍ରୀ, ବିମତ୍ସରତା—ବି)

**ବିମତ**—ସଂ. ବିଣ ( ବି=ବିରୁଦ୍ଧ, ବିପରୀତ+ମନ୍ ଧାତୁ=ବୋଧ
Bimata କରିବା+କର୍ମ. ତ)—୧। ଅସମ୍ମତ; ଅମତ—1. Averse; reluctant; disagreeing; disinclined. ୨।(+କର୍ମ. ତ) ଅନଭିମତ—2. Unapproved. ୩। ବିରୁଦ୍ଧମତ ଯୁକ୍ତ—3. Opposed to. ୪। ଅଗ୍ରାହ୍ୟ—4 Unacceptable ୫। ଅପ୍ରିୟ-5. Disagreeable.
( ବିମତା—ସ୍ତ୍ରୀ ) ୬। ଅଶୁଭସୂଚକ—6. Ominous.

**ବିମତି**—ସଂ. ବି ( ବି+ମନ୍ ଧାତୁ+ଭାବ. ତି )—୧। ଅନିଚ୍ଛା—
Bimati 1. Reluctance; disinclination. ୨। ଅସମ୍ମତି—2. Refusal. ସଂ. ବିଣ—ପାଗଳ—Mad.

**ବିମଥିତ**—ସଂ. ବି (ବି+ମଥ୍ ଧାତୁ=ମନ୍ଥନ କରିବା+କର୍ମ. ତ)—
Bimathita ୧। ବିନାଶିତ—1. Destroyed. ୨। ବିଧ୍ୱସ୍ତ; ଧ୍ୱଂସପ୍ରାପ୍ତ—2. Ruined. ୩। ବିଦଳିତ—3. Downtrodden; ଉତ୍ତମରୂପେ ମନ୍ଥାଯାଇଥିବା—Thoroughly churned.

**ବିମନ**—ଦେ. ବିଣ ( ସଂ. ବିମନାଃ )—୧। ବିମନସ୍କ ( ଦେଖ )—
Bimana 1. Bimanaska ( See ) ୨। କ୍ରୁଦ୍ଧ; ବିରକ୍ତ—2. Angry; displeased. ୩। ଅପ୍ରସନ୍ନ—3. Unfavoarable. ୪। ଦୁଃଖିତ—4. Sad. ଦେ. ବି—୧। କ୍ରୋଧ; ବିରକ୍ତି—1. Anger; displeasure. ୨। ମନୋଦୁଃଖ—2. Sorrow; sadness. ୩। ବେଖାପ—3. Disasrcment.

**ବିମନସ୍କ**—ସଂ. ବିଣ (ବହୁବ୍ରୀହି; ବି=ବିଚଳିତ+ମନଃ; ଯାହାର+କ)-
Bimanaska ବି+ମନସ୍+କ)—୧। ବିହ୍ୱଳ—1. Per-
(ବିମନାଃ—ଅନ୍ୟରୂପ) plexed; bewildered. ୨। ଅପ୍ରସନ୍ନ; ବିଶେଷ ଚିନ୍ତାନ୍ୱିତ—2. Very anxious. ୩। ବିଷଣ୍ଣ; ଦୁଃଖିତ—3. Sad; distressed. ୪। ବ୍ୟାକୁଳ—4. Mentally agitated. ୫। ଅନ୍ୟମନସ୍କ—
(ବିମନସ୍କା -ସ୍ତ୍ରୀ; ବିମନସ୍କତା—ବି)5. Inattentive; absent-minced.

**ବିମନାୟମାନ**--ସଂ. ବିଣ, ପୁଂ (ବି+ମନଃ+ନାମ ଧାତୁ ଅର୍ଥରେ ଯ୍ର +କର୍ତ୍ତୃ. ଆନ )—୧ । ଦୁର୍ମନାୟମାନ; ଉଦ୍ବିଗ୍ନମନାଃ—1. Bewildered, ୨ । ବିଶେଷ ଚିନ୍ତିତ; ଚିନ୍ତାଗ୍ରସ୍ତ—2, Perplexed; distressed. ୩ । ଅପ୍ରସନ୍ନ—3, Having drooping spirits.
Bimanāyamāna
(ବିମନାୟମାନା—ସ୍ତ୍ରୀ)

**ବିମନୀକୃତ**—ସଂ. ବିଣ. ପୁଂ (ବିମନସ୍+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Bimanikṛuta ଯାହାର ମନ ବର୍ତ୍ତମାନ ଉଦ୍ବିଗ୍ନ ହୋଇଅଛି—
(ବିମନୀକୃତା—ସ୍ତ୍ରୀ) Bewildered by recent events.

**ବିମୟ**—ସଂ. ବି (ବି+ମି ଧାତୁ=କ୍ଷେପଣ କରିବା+ଭାବ. ଅ)—୧ ।
Bimaya ବିନିମୟ—1. Exchange. ୨ । ପ୍ରତିଶୋଧ—2. Requital.

**ବିମର୍ଦ୍ଦ**—ସଂ. ବି ( ବି+ମୃଦ୍ ଧାତୁ=ଚୂର୍ଣ୍ଣ କରିବା+ଭାବ. ଅ )—
Bimardda ୧ । ପେଷଣ; ଗୁଣ୍ଡିବା—1. Crushing or pounding into dust. ୨ । ମନ୍ଥନ—2. Churning. ୩ । ପରିମଳ—3, Sweet smell, ୪ । ସୁଗନ୍ଧ ମଲମ—4. Scented unguent, ୫ । ସମ୍ପର୍କ—5. Relationship; connection. ୬ । ବିନାଶ—6. Destruction; ruin. ୭ । ଦୁର୍ବାଧ; ସଙ୍କଟ—7, Danger. ୮ । ଘାତନ—8. Murder. ୯ । କାସମର୍ଦ୍ଦ; କାଶୁଣ୍ଡି ଗୁଳ୍ମ-9. A small plant; Cassia Sop hora. ୧୦ । ବାଟିବା—10. Bruising.

**ବିମର୍ଦ୍ଦକ**—ସଂ. ବିଣ. ପୁଂ (ବି+ମୃଦ୍ ଧାତୁ+କର୍ତ୍ତୃ. ଅକ)--୧ । ଯେ ପେଷଣ
Bimarddaka କରେ—1, Grinding. ୨ । ବିନାଶକ—2. Destroying. ସଂ. ବି—ଚକ୍ରମର୍ଦ୍ଦ ବା ଚକୁଣ୍ଡା ଗଛ—
(ବିମର୍ଦ୍ଦିକା—ସ୍ତ୍ରୀ) Cassia Tora ( plant ).

**ବିମର୍ଦ୍ଦନ**—ସଂ. ବିଣ (ବି+ମୃଦ୍ ଧାତୁ+କର୍ତ୍ତୃ. ଅନ )—ବିନାଶକ—
Bimarddana Destroying; crushing. ସଂ. ବି—ବିମର୍ଦ୍ଦ (ଦେଖ)— imardda (See).

**ବିମର୍ଦ୍ଦିତ**—ସଂ. ବିଣ (ବି+ମୃଦ୍ ଧାତୁ+କର୍ମ. ତ)—୧ । ପିଷ୍ଟ; ପିଷ୍ଟ;
Bimarddita ଦଳିତ—1. Pressed; crushed; trodden; ground. ୨ । ବିଲୋଡ଼ିତ; ମନ୍ଥିତ—2. Churned. ୩ । ଚୂର୍ଣ୍ଣିତ—3. Pounded; pulverised.

**ବିମର୍ଦ୍ଦିବା**—ଦେ. କ୍ରି (ପଦ୍ୟ) (ସଂ. ବିମର୍ଦ୍ଦନ)—ଦଳନ କରିବା;
Bimarddiba ଦଳିବା—To crush. [ ହି—ବୃଷ ଚକ୍ଷି ବିମର୍ଦ୍ଦୀ विमरदना ବିମର୍ଦ୍ଦି ହୋଇ ଚଳିବ ପଡ଼ି । ଉଞ୍ଜ. ବୈଦେହୀଶ ବିଳାସ ।]

**ବିମର୍ଦ୍ଦୋତ୍ଥ**—ସଂ. ବି. ( ବିମର୍ଦ୍ଦ+ଉତ୍+ସ୍ଥା ଧାତୁ+କର୍ତ୍ତୃ. ଅ )—
Bimarddottha ବିମର୍ଦ୍ଦ ବା ଘର୍ଷଣ ଦ୍ୱାରା ଉତ୍ପନ୍ନ ମନୋହର ଗନ୍ଧ—A sweet scent produced by crushing a thing. ସଂ. ବିଣ—ବିମର୍ଦ୍ଦନ ବା ଘର୍ଷଣରୁ ଉତ୍ପନ୍ନ—Produced by crushing.

**ବିମର୍ଶ**—ସଂ. ବି ( ବି+ମୃଶ୍ ଧାତୁ=ବିବେଚନା କରିବା+ଭାବ. ଅ )—
Bimarśa ୧ । ବିଶେଷ ବିବେଚନା—1. Careful consideration. ୨ । ବିତର୍କ—2. Reasoning; discussion. ୩ । ତଥ୍ୟାନୁସନ୍ଧାନ—3. Investigation. ୪ । ବିଚାର—4. Judgment. ୫ । ଯୁକ୍ତି ଦ୍ୱାରା ପରୀକ୍ଷାକରଣ—5. Examinatin by discussion. ୬ । ଅସନ୍ତୋଷ—6. Displeasure; dissatisfaction. ୭ । ଅଧୈର୍ଯ୍ୟ—7. Impatience. ୮ । ମନୋଦୁଃଖ—8. Mental misery; sadness; mental agony. ଦେ. ବିଣ (ସଂ. ବିମର୍ଶୀ)—ଦୁଃଖିତ; ବିଷଣ୍ଣ—Sorry; drooped down in spirits; agonised; sad.

**ବିମର୍ଶନ**—ସଂ. ବି (ବି+ମୃଶ୍ ଧାତୁ+ଭାବ. ଅନ)—୧ । ବିମର୍ଶ (ଦେଖ)
Bimarśana 1. Bimarśa (See) ୨ । ଅସନ୍ତୋଷ ବା ମନୋଦୁଃଖର ଉତ୍ପାଦନ—2. Causing or creating of grief or discontent

**ବିମର୍ଶୀ**—ସଂ. ବିଣ. ପୁଂ ( ବିମର୍ଶ+ଇନ୍; ୧ମା. ୧ବ )—
Bimarśī ବିଷଣ୍ଣ; ଅତି ଦୁଃଖିତ—Dejected; sad.
(ବିମର୍ଶିନୀ—ସ୍ତ୍ରୀ)

**ବିମର୍ଷ**—ସଂ. ବି (ବି+ମୃଷ୍ ଧାତୁ=ସହିବା+ଭାବ. ଅ)—୧ । ଅସହନ;
Bimarsha ଅକ୍ଷମା—1. Want of forgiveness or forbearance. ୨ । ଅସନ୍ତୋଷ—2. Dissatisfaction. ୩ । ଅଧୈର୍ଯ୍ୟ—3. Impatience. ୪ । ନାଟ୍ୟାଙ୍ଗ—4. A part of a drama. ଦେ. ବିଣ (ସଂ. ବିମର୍ଷୀ)—ଦୁଃଖିତ; ବିଷଣ୍ଣ—Sorry; sad; dejected.

**ବିମର୍ଷଣ**—ସଂ. ବି. (ବି+ମୃଷ୍ ଧାତୁ+ଭାବ. ଅନ)—୧ । ବିମର୍ଷ (ଦେଖ)
Bimarshaṇa 1. Bimarsha (See) ୨ । ଅସନ୍ତୋଷ ଉତ୍ପାଦନ—2. Causing of discontent.

**ବିମର୍ଷକର**—ସଂ. ବିଣ. ( ବିମର୍ଷ+କୃ ଧାତୁ+କର୍ତ୍ତୃ. ଅ )—ଅସନ୍ତୋଷ-
Bimashakara ଜନକ—Causing dissatisfaction.
(ବିମର୍ଷକାରକ, ବିମର୍ଷଜନକ—ଅନ୍ୟରୂପ)

**ବିମର୍ଷୀ**—ସଂ. ବିଣ. ପୁଂ ( ବିମର୍ଷ+ଇନ୍; ୧ମା. ୧ବ )—
Bimarshī ଅତି ଦୁଃଖିତ—Dejectod; very sad.
(ବିମର୍ଷିଣୀ—ସ୍ତ୍ରୀ)

**ବିମଳ**—ସଂ. ବିଣ. (ବହୁବ୍ରୀହି; ବି+ମଳ)—୧ । ନିର୍ମଳ—1. Clean;
Bimaḷa clear. ୨ । ସ୍ୱଚ୍ଛ—2. Transparent. ୩ । ପବିତ୍ର-
(ବିମଳା—ସ୍ତ୍ରୀ) 3. Pure. ୪ । ମନୋହର; ସୁନ୍ଦର—4. Beautiful; graceful; pleasant. ୫ । ଶୁଭ୍ର—5. Bright; white. ୬ । ନିଷ୍କଳଙ୍କ—6. Uncontaminated; stainless; immaculate; spotless. ୭ । ନିଷ୍ପାପ—7. Sinless. ସଂ. ବି—୧ । ପର୍ବତ ବିଶେଷ—1. Name of a mountain. ୨ । ଜୈନ ମୁନି—2. Jaina sage or anchorite. ୩ । ରୂପା (ହ୍ରି. ଶ)—3. Silver. ୪ । ସୈନ୍ଧବ ଲବଣ (ହ୍ରି. ଶ)—4. Rock salt. ୫ । ପଦ୍ମକାଷ୍ଠ (ହ୍ରି. ଶ)

(ଦେଖ)—5, Padmakāshtha (See) ୬ । ଜୈନ ତୀର୍ଥଙ୍କର ବିଶେଷ (ହି; ଶ)—6. Name of a Jaina saint. [ଦ୍ର—ଏ ଗତ ଉତ୍ସର୍ପିଣୀର ୫ମ ଓ ବର୍ତ୍ତମାନ ଉତ୍ସର୍ପିଣୀର ୧୩ଶ ଅର୍ହତ୍ ବା ତୀର୍ଥଙ୍କର । ହି. ଶ. ] ୭ । ଉପେନ୍ଦ୍ର ସାରେଙ୍କୁ ଉପଧାତୁ ବିଶେଷ (ହି. ଶବ୍ଦସାଗର)—7. Name of a mixed or composite metal.

ବିମଳ ଚନ୍ଦ୍ର—ସ. ବି. ( କର୍ମଧା; ବିମଳ+ଚନ୍ଦ୍ର )—ନିର୍ମଳ ଚନ୍ଦ୍ର—Bimala chandra Bright moon; clear moon (ବିମଳ ଚନ୍ଦ୍ରମା; ବିମଳକେନ୍ଦୁ—ଅନ୍ୟରୂପ)

ବିମଳ ଚିତ୍ତ—ସ. ବି. ( କର୍ମଧା; ବିମଳ+ଚିତ୍ତ )—ପବିତ୍ର ମନ—Bimala chitta Pure mind. ସଂ. ବିଣ. ପୁଂ (ବହୁବ୍ରୀହି)—(ବିମଳଚିତ୍ତା—ସ୍ତ୍ରୀ) ପବିତ୍ର ହୃଦୟ ବିଶିଷ୍ଟ—Of pure mind.

ବିମଳ ଚେତାଃ—ସଂ. ବିଣ(ବିମଳ+ଚେତସ୍ )—ପବିତ୍ର ହୃଦୟ ଯୁକ୍ତ—Bimala chetāh Of pure mind.

ବିମଳତା(ତ୍ୱ)—ସ. ବି. [ବିମଳ+ଭାବ. ତା(ତ୍ୱ)]—୧ । ବିମଳ ଭାବ; Bimalatā(twa) ପବିତ୍ରତା—1. Purity. ୨ । ସ୍ୱଚ୍ଛତା—2. Clearness; transparency.

ବିମଳ ତୀର୍ଥ—ସ. ବି—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—A sacred Bimala tirtha tank of the Hindus. ( ଉ—ବିମଳ ତୀର୍ଥେ ରୂପା ସୁନା ବର୍ଣ୍ଣି ମାଡ଼, ଅଛ ଦେଖିଲେ ତାହା ଦୁଃଖ ହୁଏ ଧଛ । କୃଷ୍ଣସିଂହ ମହାଭାରତ ବନ ।)

ବିମଳ ଦାନ—ସ. ବି—ନିତ୍ୟ, ନୈମିତ୍ତିକ ଓ କାମ୍ୟ ଦାନର ଅତିରିକ୍ତ Bimala dāna ଯେଉଁ ଦାନ କେବଳ ଭଗବତ୍ପ୍ରୀତ୍ୟର୍ଥ ଦିଆଯାଏ (ଗରୁଡ଼ ପୁରାଣ; ହି. ଶ)—A gift bestowed solely for pleasing God.

ବିମଳ ମଣି—ସଂ. ବି—ସ୍ଫଟିକ ମଣି—Bimala mani Crystal gem.

ବିମଳା—ସଂ. ବି. ସ୍ତ୍ରୀ—୧ । ପୁରୀରେ ଜଗନ୍ନାଥଙ୍କ ମନ୍ଦିରର ବେଢ଼ା Bimalā ମଧ୍ୟରେ ପ୍ରତିଷ୍ଠିତା ଦୁର୍ଗା ଦେବୀ—1. The image of Durgā inside the compound of the Jagannath temple at Puri. [ଦ୍ର—ଏ ବିଷ୍ଣୁମନ୍ଦିରର ବେଢ଼ା ମଧ୍ୟରେ ଥିଲେ ମଧ୍ୟ ଶାରଦୀୟ ଦୁର୍ଗାପୂଜା ସମୟରେ ଏହାଙ୍କ ନିକଟରେ ମତ୍ସ୍ୟ ବଳି ଦିଆଯାଏ । ମାଛ ନରେନ୍ଦ୍ର ପୁଷ୍କରିଣୀରୁ ଧରି ହୋଇ ଜଗନ୍ନାଥଙ୍କ ଦେଉଳର ସିଂହଦ୍ୱାର ବାଟେ ବେଢ଼ା ମଧ୍ୟକୁ ଅଣା ନ ଯାଇ ପାଚିରି ଉପର ବାଟେ ଉଠାଇଁ କରି ଅଣାଯାଏ । ] ୨ । ଶ୍ୱେତଚାମର; ଚମରୀ ଗାଈର ଲାଙ୍ଗୁଡ଼—2. The tail of the Yak. ୩ । ରୂପାର ଗିଲ୍‌ଟି—3. Guilding with silver. ୪ । ସପ୍ତଲା; ନାଥଲ (ହି. ଶ)—4. A sort of Jasmine. ୫ । କାଳିକା ପୁରାଣୋକ୍ତ ବାସୁଦେବ-ନାସିକା ଦେବୀ ବିଶେଷ (ହି. ଶ)—4. Name of a mythological Goddess. ୬ । ସରସ୍ୱତୀ (ହି. ଶ)—6. The Goddess of learning. ସ. ବିଣ. ସ୍ତ୍ରୀ—ବିମଳର ସ୍ତ୍ରୀଲିଙ୍ଗ—Feminine of Bimala. ଦେ.

ବି ସ୍ତ୍ରୀ—ସ୍ତ୍ରୀ ଲୋକଙ୍କୁ ଦିଆଯିବା ନାମ—A name given to females

ବିମଳା(ଲେ)ଈ—ଗ୍ରା. ବି. ସ୍ତ୍ରୀ—ବିମଳାଠାକୁରାଣୀ ଓ ବିମଳା ନାମ୍ନୀ ସ୍ତ୍ରୀ Bimalā(le)i ଡାକିବା ନାମ—Name by which the ବିମଲା Deity Bimalā and females named Bimalā **दिमला** are called

ବିମଳାତ୍ମକ—ସ.ବିଣ.ପୁଂ—(ବିମଳ+ଆତ୍ମନ୍+କ, ବହୁବ୍ରୀହି)—ନିର୍ମଳ Bimalātmaka Transparent; pure; clear (ବିମଳାତ୍ମିକା—ସ୍ତ୍ରୀ)

ବିମଳାତ୍ମା—ସ. ବିଣ—(ବହୁବ୍ରୀହି; ବିମଳ+ଆତ୍ମନ୍; ୧ମା. ୧ବ.)—Bimalātmā ଶୁଦ୍ଧ ହୃଦୟ—(a man) Of pure heart. ସ. ବି—ଚନ୍ଦ୍ରମା (ହି.ଶ.)—The moon.

ବିମଳାନନ୍ଦ—ସ. ବି—(କର୍ମଧା; ବିମଳ+ଆନନ୍ଦ)—ପବିତ୍ର ଆନନ୍ଦ Bimalānanda ଯେଉଁ ଆନନ୍ଦରେ ଲେଶ ମାତ୍ର ଦୁଃଖ ମିଶି ନ ଥାଏ—Pure joy; unalloyed happiness unmixed pleasure

ବିମଳିନ—ଦେ. ( ପ୍ରାଚୀନ ପଦ୍ୟ ) ବିଣ—ଶ୍ୱେତ; ଧଳା—White. Bimalina [ଉ—ବିମଳିନ ଛତ୍ର ଶ୍ରମର ପୁଞ୍ଜ, ବିରାଜିତ ଭ୍ରମଣରେ ସହିତ । ଉଞ୍ଜ. ବୈଦେହୀଶବିଳାସ ।

ବିମା—ବୈଦେ. ବି—(ଫା. ବିମାହ୍; ଫା. ବିମ୍=ଭୟ)—୧ । ଭବି Bimā ଷ୍ୟତରେ କୌଣସି ବିଷୟରେ ଘଟିବା କ୍ଷତି ବା ଆପଦପାଇଁ ବିମା **बीमा** କ୍ଷତିପୂରଣ ପାଇବା ଲାଗି ଭଗା ସହାୟକ ବ୍ୟକ୍ତିର ସଙ୍ଗେ ଅଗରୁ କରାଯିବା ବନ୍ଦୋବସ୍ତ—1. Insurance. [ ଦ୍ର—ମନୁଷ୍ୟର ଜୀବନକୁ ବିମା କରିବା ପାଇଁ ଆଜିକାଲି ବହୁତ କମ୍ପାନୀ ଦେଶବିଦେଶରେ ପ୍ରତିଷ୍ଠିତ ହୋଇ ଅଛି । ଯେଉଁ ବ୍ୟକ୍ତି ନିଜର ଜୀବନକୁ ବିମା କରନ୍ତି ସେ ଉକ୍ତ କମ୍ପାନୀକୁ ବର୍ଷଥିବା ଯାକେ ବାର୍ଷିକ ନିର୍ଦ୍ଧାରିତ ଧନ (ପ୍ରିମିୟମ୍) ଦେଉଥାନ୍ତି; ଓ ସେ ମରିଗଲେ ତାହାଙ୍କ ଉତ୍ତରାଧିକାରୀମାନଙ୍କୁ ଉକ୍ତ କମ୍ପାନୀ ନିର୍ଦ୍ଧାରିତ କ୍ଷତିପୂରଣ ଦିଅନ୍ତି; ଏହିପରି ସ୍ଥଳରେ କାହାର ରୁଡ଼ ଯିବା ବିଷୟରେ ଘର ପୋଡ଼ିଯିବା ବିଷୟରେ, ରେଳରେ ବା ଜାହାଜରେ ଅଗ୍ରେସ୍ତ ପ୍ରତି ଦୁର୍ଘଟଣା ଘଟିବା ବିଷୟରେ ମଧ୍ୟ ଧନ କରି ଯାଉଅଛି ।]

୨ । ଡାକରେ ପଠା ଯିବା ଚିଠି ଆଦି ହଜିଲେ ତାହାର ପ୍ରେରକକୁ କ୍ଷତିପୂରଣ ମିଳିବା ନିମନ୍ତେ ଚିଠି ଆଦି ଉପରେ ଅଧିକା ମାସୁଲ ଦିଆ ଯିବାରୀତି—2. Postal insurance

ବିମାଂସ—ସଂ. ବି—ଅପବିତ୍ର ବା ଅଖାଦ୍ୟ ବା ନିଷିଦ୍ଧ ମାଂସ (ହି. ଶ)—Bimamsa Impure or prohibited or uneatable meat

ବିମା କ(କୁ, କୋ)ମ୍ପାନୀ—ବୈଦେ. ବି (ଫା. ବିମାହ୍+ଇଂ. କମ୍ପାନୀ)—Bimā ka(ku, ko)mpani ଯେଉଁ କମ୍ପାନୀ ବା ସଙ୍ଘ ଲୋକଙ୍କର ବିମା କୁମ୍ପନୀ ଜୀବନ ଆଦିର ନାଶ ନିମନ୍ତେ କ୍ଷତି ପୂରଣ କରିବାକୁ **बीमा कुपानी** ଦାୟିତ୍ୱ ଗ୍ରହଣ କରନ୍ତି—Insurance Company

ବିମା କରିବା—ଦେ. କ୍ରି—୧ । ଜୀବନ ଆଦିକୁ 'ବିମା' ପ୍ରଥା ଦ୍ୱାରା ଚୁକ୍ତି-
Bimā karibā ବଦ୍ଧ କରିବା—1. To effect an insurance on one's life etc.
বিমা করনা **बीमा करना**
(ବିମା ଦେବା—ଅନ୍ୟରୂପ) ୨ । 'ବିମା' ପ୍ରଥା ଅନୁସାରେ ଅଧିକା ମାସୁଲ ଦେଇ ଚିଠି ପତ୍ର ଆଦି ଡାକରେ ପଠାଇବା—
2 To have any postal article insured.

ବିମା ଚିଠି—ବୈଦେ. ବି—(ଫା. ବୀମାହ୍+ଚିଠି)—ଯେଉଁ ଚିଠି ପାଇଁ
Bimā chiṭhi ଅଧିକା ଡାକମାସୁଲ ଦିଆଯାଇ ତାହାକୁ ନିରାପଦ
বিমা চিঠি **विमाचिट्ठी** କରାଯାଇ ଥାଏ—An insured letter.

ବିମା ଡାକ—ଦେ. ବି—'ବିମା' ପ୍ରଥାଦ୍ୱାରା ଚିଠି ଆଦି ଡାକରେ ପଠା-
Bimā ḍāka ଯିବା—Insured post; post office insurance.
বীমা ডাক **विमाडाँक**

ବିମାତା—ସଂ. ବି. ସ୍ତ୍ରୀ—(ବିମାତୃ ୧ମା. ୧ବ; ବି=ଭିନ୍ନ+ମାତୃ=ମାତା)
Bimātā ଆପଣାର ମାତାଙ୍କ ସପତ୍ନୀ; କନିଅଁ ମା; ସାବତ ମା—
Step-mother.

ବିମାତୃକ—ଦେ. ବିଣ—( ସଂ. ବିମାତୃକ )—ବୈମାତ୍ରେୟ; ବିମାତାଙ୍କ
Bimātṛuka ଗର୍ଭଜାତ—Born of one's stepmother.

ବିମାତୃଜ—ସଂ. ବି. ପୁଂ—( ବିମାତୃ+ଜନ୍ ଧାତୁ+କର୍ତ୍ତୃ. ଅ )—
Bimātṛuja ବୈମାତ୍ରେୟ ଭାଇ; ସାବତ ଭାଇ—Step-brother.
(ବିମାତୃଜା—ସ୍ତ୍ରୀ) ବିଣ, ପୁଂ—ବିମାତାଙ୍କଠାରୁ ଜାତ
—Born of one's stepmother.

ବିମାଦାର—ବୈଦେ. ବି—(ଫା. ବିମାହ୍+ଫା. ପ୍ରତ୍ୟୟ ଦାର୍)—୧ ।
Bamādār ଯେଉଁ ବ୍ୟକ୍ତି ଆପଣା ଜୀବନକୁ ବିମା କରିଥାଏ—
বিমাদার **वीमादार** 1. A person who has insured his or her life.
(ବିମାକାରୀ—ଦେ. ରୂପ)

ବିମାନ—ସଂ. ବି—(ବି+ମନ୍ ଧାତୁ=ବୋଧ କରିବା+କରଣ. ଅ; ବିମ୍ବା
Bimāna ବି+ମା ଧାତୁ=ପରିମାଣ କରିବା+କରଣ. ଅନ, ଯହିଁରେ ବସିଲେ ଆକାଶକୁ ଉତ୍ତମରୂପେ ବୋଧ କରି ଯାଇ ପାରେ କିମ୍ବା ଆକାଶର ପରିମାଣ ସମ୍ବନ୍ଧେ ଜ୍ଞାନ ଜନ୍ମେ)—୧ । ଦେବ ରଥ; ଦେବତାମାନଙ୍କର ପୁରାଣୋକ୍ତ ଆକାଶଗାମୀ ରଥ—1. A celestial car, a chariot of the gods, said to move in the sky. ୨ । ବ୍ୟୋମଯାନ; ବେଲୁନ୍—2. Balloon; aeroplane. ୩ । ଯାନ; ରଥ—3. Car; carriage, ୪ । ସିଂହାସନ—4. Throne ୫ । ମଣ୍ଡପ—5 A roofed temple open on all sides; a canopied shade; pavilion. ୬ । ସାତମହଲା କୋଠା—6. Seven-storied building. ୭ । ଅଶ୍ୱ; ଘୋଟକ—7. Horse. ୮ । ରାଜପ୍ରାସାଦ—8. Royal palace. ୯ । (ବି+ମାନ) ଅସମ୍ମାନ—9. Disrespect. ୧୦ । ପରିମାଣ—10. Measure. ୧୧ । ଦେଉଳର କାନ୍ଥ ଉପରେ ଥିବା ବ୍ରକୋଣ ବା କ୍ରମ ସୂକ୍ଷ୍ମ ଛାତ—11. The tapering upper part or the roof of a temple. ୧୨ । ଶବବାହୀ-ଯାନ—13. Coffin; a conveyance for conveying the dead body to the cremation or burial ground.
ଦେ. ବି—ଯେଉଁ ମଣ୍ଡପାକୃତି କାଷ୍ଠଯାନରେ ଦେବମୂର୍ତ୍ତି-ମାନଙ୍କୁ ବସାଇ ସ୍ଥାନାନ୍ତରକୁ ନିଆଅଣା କରାଯାଏ—A canopied sedan in which idols are placed and carried from place to place.
ଦେ. ବିଣ—ଅତୁଳନୀୟ—Incomparable. (ଉ—ବେଶକୁ ଶିଖଣ୍ଡ ବିମାନ, ଚନ୍ଦନ କୁସୁମ ବସନ । ପ୍ରାଚୀ. ପୂର୍ଣ୍ଣତମଚନ୍ଦ୍ରୋଦୟ । )

ବିମାନ କାନ୍ଧି(ନ୍ଧୁ)ଆ—ଦେ. ବି ଓ ବିଣ—ଯେଉଁମାନେ କାନ୍ଧରେ ବିମାନକୁ
Bimāna kāndhi(ndhu)ā ବହନ କରି ଦେବପ୍ରତିମାଙ୍କୁ ନେବା ଆଣିବା କରନ୍ତି—Carriers of sedans containing images of Deities.
ବିମାନବନ୍ଧୁ, ବିମାନବୁହାଳି, ବିମାନଆପଟ—ଅନ୍ୟରୂପ
বিমান বাহক **विमानबाही**

ବିମାନଚାରୀ—ସଂ. ବିଣ. ପୁଂ ( ବିମାନ+ଚର ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—ଯେ ବିମାନଦ୍ୱାରା ଆକାଶମାର୍ଗରେ
Bimānachāri ଯିବା ଆସିବା କରେ—Flying in the sky in balloons or aeroplanes.
(ବିମାନଚାରିଣୀ—ସ୍ତ୍ରୀ)

ବିମାନନ(ନା)—ସଂ. ବି ( ବି+ମାନ ଧାତୁ=ପୂଜା କରିବା+ଭାବ ଅନ,
Bimānana(nā) ସ୍ତ୍ରୀ ଆ )—୧ । ଅପମାନ—1. Insult; disrespect. ୨ । ତିରସ୍କାର—2. Abuse.

ବିମାନ ବାହକ—ସଂ, ବି. ପୁଂ—ବିମାନକୁ ଯେ କାନ୍ଧରେ ବା ମସ୍ତକରେ
Bimāna bāhaka ବହନ କରି ନିଅନ୍ତି—Carriers of sedans.
(ବିମାନବାହୀ—ଅନ୍ୟରୂପ)
(ବିମାନବାହିକା, ବିମାନବାହିନୀ—ସ୍ତ୍ରୀ)

ବିମାନାମା—ବୈଦେ. ବି. ( ଫା. ବିମାହ୍+ଫା. ପ୍ରତ୍ୟୟ ନାମେହ୍ )—
Bimānāmā ଯେଉଁ ଦଲିଲରେ ବିମାସମ୍ବନ୍ଧୀୟ ଚୁକ୍ତି ଲେଖାପଢ଼ି ହୋଇଥାଏ—A policy or agreement of insurance; a receipt acknowledging the contract of insurance.
ବିମାପତ୍ର, ବିମାରସୀଦ୍—ଅନ୍ୟରୂପ
বিমানামা **बीमानामा**

ବିମାନିତ—ସଂ. ବିଣ. ପୁଂ ( ବି+ମାନ ଧାତୁ+କର୍ମ ତ )—ଅବମାନିତ
Bimānita (ବିମାନିତା—ସ୍ତ୍ରୀ) Insulted.

ବିମା ନେବା—ଦେ. କ୍ରି—ଭବିଷ୍ୟତ୍ ଘଟଣାପାଇଁ କୌଣସି ବ୍ୟକ୍ତିକୁ
Bimā nebā କ୍ଷତିପୂରଣ ଦେବାର ଚୁକ୍ତି କରି ଅର୍ଥାଦି ଗ୍ରହଣ କରିବା
বিমা লওয়া —To accept a contract of insurance from an insured person
**बिमालेना**

ବିମା ମାସୁଲ୍-ବୈଦେ. ବି (ଫା. ବୀମାହ୍+ମହସୁଲ୍)—୧ । ବିମା କରିବା-
Bima māsul ପାଇଁ ବିମାକାରୀ ବ୍ୟକ୍ତିଙ୍କର ବିମା ନେବା ବ୍ୟକ୍ତିଙ୍କୁ ଯେଉଁ ଧନ ଦେବାକୁ ପଡ଼େ—1. Life insurance premium. ୨ । ଚିଠିଆଦି ବିମା କରିବାପାଇଁ ଡାକ-ମାସୁଲ—2. Fees for postal insurance
বিমামাসুল **बीमा महसुल, बीमा कराई**
(ବିମା ମାହାସୁଲ୍—ଅନ୍ୟରୂପ)

ବିମାର୍ଗ—ସଂ. ବି ( ବି=ଅସତ୍+ମାର୍ଗ=ପଥ )—୧ । ଅସଦାଚରଣ; ଅସତ୍‌ପଥ—1. Bad conduct; evil ways. ୨ । ଦୁରାଚାର—2. Wickedness. ୩ । କୁପଥ—3. Bad road. ୪ । ନିଷିଦ୍ଧ କର୍ମ—4. Forbidden acts. ୫ । ଅବାଟ—5. A path not used as a road; a wrong way. ୬ । ( ବି+ମୃଜ୍ ଧାତୁ+କରଣ ଅ )—ସମ୍ମାର୍ଜନୀ—6. A broom; a sweeping brush.
Bimārga

ବିମାର୍ଗଗାମୀ—ସଂ. ବିଣ. ପୁଂ ( ବିମାର୍ଗଗାମିନ୍ ୧ମା ୧ବ )—କୁପଥଗାମୀ—Treading on evil ways.
Bimārgagāmī
(ବିମାର୍ଗଗାମିନୀ—ସ୍ତ୍ରୀ)

ବିମିତ—ସଂ. ବି ( ବି+ମା ଧାତୁ+କର୍ମ ତ )—୧ । ଚାରିସ୍ତମ୍ଭ ଉପରେ ନିର୍ମିତ ଗୃହ—1. A house supported by 4 pillars. ୨ । ବଡ଼ କୋଠରୀ—Big room; hall. ସଂ. ବିଣ—ପରିମିତ—Measured.
Bimita

ବିମିଶ୍ର—ସଂ. ବିଣ ( ବି+ମିଶ୍ର ଧାତୁ=ମିଶ୍ରିତ କରିବା+କର୍ମ ଅ )—୧ । ମିଶ୍ରିତ—1 Mixed. ୨ । ଗୋଳା ହୋଇଥିବା—2. Adulterated.
Bimiśra
(ବିମିଶ୍ରିତ—ଅନ୍ୟରୂପ)

ବିମୁକ୍ତ—ସଂ. ବିଣ ( ବି+ମୁଚ୍ ଧାତୁ+କର୍ମ ତ )—୧ । ପରିତ୍ରାଣ ପ୍ରାପ୍ତ 1. Redeemed; delivered. ୨ । ପୁନର୍ଜନ୍ମ ରହିତ—2. Freed from future birth. ୩ । କାରାମୁକ୍ତ; ବନ୍ଧନରୁ ମୁକ୍ତ—3. Released from confinement, liberated. ୪ । ପରିତ୍ୟକ୍ତ—4. Abandoned. ୫ । ମୁକୁଳା କରାଯାଇଥିବା—5. Untied; dishevelled; loosened. ୬ । ଫିଙ୍ଗା ଯାଇଥିବା—6. Discharged; ejected.
Bimukta
(ବିମୁକ୍ତି—ବି)
(ବିମୁକ୍ତା—ସ୍ତ୍ରୀ)

ବିମୁକ୍ତ ସଙ୍ଗ—ସଂ. ବିଣ. ପୁଂ ( ବହୁବ୍ରୀହି; ବିମୁକ୍ତ+ସଙ୍ଗ )—ସାଂସାରିକ ବିଷୟ ବାସନାରୁ ମୁକ୍ତିପ୍ରାପ୍ତ; ନିଃସଙ୍ଗ; ନିର୍ଲିପ୍ତ—Free from worldly ties.
Bimukta saṅga
(ବିମୁକ୍ତସଙ୍ଗା—ସ୍ତ୍ରୀ)

ବିମୁକ୍ତି—ସଂ. ବି ( ବି+ମୁଚ୍ ଧାତୁ+ଭାବ ତି )—୧ । କାରାମୋଚନ; ବନ୍ଧନମୋଚନ—1. Release from confinement. ୨ । ମୋକ୍ଷ—2. Salvation; beatitude; redemption. ୩ । ଦୁଃଖ ନିବୃତ୍ତି—3. Release from misery; deliverance from misery.
Bimukti

ବିମୁଖ—ସଂ. ବିଣ. ପୁଂ ( ବହୁବ୍ରୀହି; ବି=ବିପରୀତ ଦିଗକୁ+ମୁଖ )—୧ । ପରାଙ୍ମୁଖ—1. Disinclined; with the face averted or turned back. ୨ । ନିବୃତ୍ତ; ନିରସ୍ତ—2. Prevented; obstructed. ୩ । ନିଷ୍ପୃହ—3. Averse. ୪ । ଅପ୍ରସନ୍ନ—4. Unpropitious; untoward. ୫ । ମୁଖ ହୀନ—5. Faceless ୬ । ଉଦାସୀନ—6. Indifferent. ୭ । ବିରୁଦ୍ଧ; ପ୍ରତିକୂଳ—7. Unfavourable; opposed. ୮ । ଅପ୍ରାପ୍ତମନୋରଥ—8. One whose wish has not been fulfilled. ଦେ. ବି—ଅପ୍ରସନ୍ନତା—Unfavourableness. ( ଉ—କାଳ ସକାଶରୁ ହେଉଛି ଦୁଃଖ ସୁଖ,କାଳ ଯୋଗ ହେଉଛି ସମ୍ମୁଖ ବିମୁଖ । କୃଷ୍ଣସିଂହ. ମହାଭାରତ ଶାନ୍ତି । ) ଦେ. ବିଣ—୧ ।ଦୁଃଖିତ—1. Sorry sad dejected; desponding. ( ଉ—ଅନେକ ଦୂର ଜଳେ ଯାଇ, ବିମୁଖ ହୋଇ ଲେଉଟିଲେ । ଭୂପତି. ପ୍ରେମପଞ୍ଚାମୃତ ।) ୨ । ନିରାଶାକ୍ରାନ୍ତଚିତ୍ତ—2. Desperate.
Bimukha
(ବିମୁଖୀ—ସ୍ତ୍ରୀ)
[ବିମୁଖତା(ତ୍ୱ)—ବି]

ବିମୁଖ କରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ନିରାଶ କରିବା—To turn out a person without fulfilling his hopes.
Bimukha karibā
বিমুখ কৰা बिमुख करना

ବିମୁଖାଇ—ଦେ. ( ପ୍ରାଚୀନ ପଦ୍ୟ ) ବିଣ. ( ସଂ. ବିମୁଖ )—ବିମୁଖ; ଦୁଃଖିତ—Sad; dejected. [ ଉ—ଲବୁପଣ୍ଡି ରଜା ତା ଶୁଣି ବିମୁଖାଇ, ହେଲା ପର ବୋଇଲେ ଗଣ ଏବେ ଯାଇ—କୃଷ୍ଣସିଂହ. ମହାଭାରତ ବନ । ]
Bimukhāi
विमुखाइ

ବିମୁଗ୍ଧ—ସଂ. ବିଣ. ପୁଂ ( ବି+ମୁହ୍ ଧାତୁ+କର୍ତ୍ତୃ. ତ )—୧ । ମୋହପ୍ରାପ୍ତ—1. Stupefied. ୨ । ସାଧାରଣ ଜ୍ଞାନଶୂନ୍ୟ—2. Confused; bereft of one's natural senses. ୩ । ସମ୍ପୂର୍ଣ୍ଣରୂପେ ମୁଗ୍ଧ; ଅତ୍ୟନ୍ତ ମୋହିତ—3. Fascinated; enamoured. ୪ । ଭ୍ରାନ୍ତ—4. Mistaken; erring.
Bimugdha
( ବିମୁଗ୍ଧା—ସ୍ତ୍ରୀ )

ବିମୁଗ୍ଧଚେତାଃ—ସଂ. ବିଣ (ବହୁବ୍ରୀହି, ବିମୁଗ୍ଧ+ଚେତସ୍; ୧ମା. ୧ବ)—ଯାହା ହୃଦୟ ମୋହଗ୍ରସ୍ତ ହୋଇଯାଇଥାଏ—Enamoured; fascinated.
Bimugdhachetāḥ
(ବିମୁଗ୍ଧଚିତ୍ତ, ବିମୁଗ୍ଧହୃଦୟ, ବିମୁଗ୍ଧାନ୍ତଃକରଣ—ଅନ୍ୟରୂପ )

ବିମୁଚ୍ୟମାନ—ସଂ. ବିଣ. ପୁଂ ( ବି+ମୁଚ୍ ଧାତୁ+କର୍ମ. ଆନ )—ଯାହାକୁ ମୁକ୍ତ କରାଯାଉଅଛି—Being released.
Bimuchyamāna
( ବିମୁଚ୍ୟମାନା—ସ୍ତ୍ରୀ )

ବିମୁଦ୍ର—ସଂ. ବିଣ ( ବହୁବ୍ରୀହି; ବି=ନାହିଁ+ମୁଦ୍ରା=ମୋହର )—୧ । ବିକଶିତ—1. Expanded; opened. ୨ । ପ୍ରଫୁଲ୍ଲ—2. Smiling. ୩ । ଯହିଁରେ ମୁଦ୍ରା ବା ମୋହର ବା ଚିହ୍ନ ନ ଥାଏ—3. Not sealed; unmarked.
Bimudra

ବିମୂଢ଼—ସଂ. ବିଣ. ପୁଂ ( ବି+ମୁହ୍ ଧାତୁ+କର୍ତ୍ତୃ. ତ )—୧ । ଇତିକର୍ତ୍ତବ୍ୟଜ୍ଞାନଶୂନ୍ୟ—1. Insensible; bewildered. ୨ । ହିତାହିତବୋଧରହିତ—2. Incapable of knowing the good from the bad; stupid. ୩ । ମୂର୍ଖ—3. Illiterate; ignorant. ୪ । ଅଚେତ; ମୋହପ୍ରାପ୍ତ—4. Fainted; senseless.
Bimūḍha
( ବିମୂଢ଼ା—ସ୍ତ୍ରୀ )
( ବିମୂଢ଼ତା[ତ୍ୱ]—ବି )

ବିମୂଢ଼ଗର୍ଭ—ସଂ. ବି—ଯେଉଁ ଗର୍ଭରେ ଶିଶୁ ମୃତ ବା ସଂଜ୍ଞାଶୂନ୍ୟ ହୋଇଥାଏ ଓ ଯହିଁର ପ୍ରସବରେ ବହୁତ କଷ୍ଟ ହୁଏ ( ବୈ. ଶା )—Pregnancy in which there is a dead or senseless child in the womb.
Bimūḍhagarbha

ବିମୂର୍ଦ୍ଧମତି—ସଂ. ବିଣ ( ବହୁବ୍ରୀହି; ବିମୂର୍ଦ୍ଧ+ମତି )—୧ । ଜଡ଼ବୁଦ୍ଧି—
Bimūrdhamati 1. Dunce. ୨ । ଅଜ୍ଞ—2. Ignorant.

ବିମୂର୍ଦ୍ଧସଂଜ୍ଞ—ସଂ. ବିଣ. ପୁଂ ( ବହୁବ୍ରୀହି; ବିମୂର୍ଦ୍ଧ+ସଂଜ୍ଞା )—୧ ।
Bimūrdhasaṁjña ଅଜ୍ଞ—1. Ignorant. ୨ । ମୋହ-
ପ୍ରାପ୍ତ—2. Confused; infatuated. ୩ । ଅଚେତ—
(ବିମୂର୍ଦ୍ଧସଂଜ୍ଞା—ସ୍ତ୍ରୀ) 3. Senseless.

ବିମୂଳ—ସଂ. ବିଣ ( ବି+ମୂଳ )—୧ । ମୂଳରହିତ—1, Rootless.
Bimūḷa ୨ । ନିର୍ମୂଳ; ଉନ୍ମୂଳିତ—3. Uprooted; eradi-
cated. ୩ । ବିନଷ୍ଟ—3. Destroyed,

ବିମୂଳନ—ସଂ. ବି—୧ । ଉନ୍ମୂଳନ—1. Uprooting. ୨ । ବିନାଶ—
Bimūḷana 2. Destruction.

ବିମୃଷ୍ଟ—ସଂ. ବିଣ ( ବି+ମୃଷ୍ ଧାତୁ=ଶୋଧନ କରିବା+କର୍ମ. ତ )—
Bimṛushṭa ୧ । ବିବେଚିତ—1. Considered. ୨ ।
ବିଚାରିତ—2. Judged; discriminated; exa-
mined. ୩ । ଆଲୋଚିତ—3. Discussed.

ବିମୃଷ୍ୟ(ଶ୍ୟ)କାରୀ—ସଂ. ବିଣ. ପୁଂ ( ବିମୃଷ୍ୟ=ବିବେଚନା+କୃ
Bimṛushya(ṡya)kārī ଧାତୁ+ଇନ୍; ୧ମା. ୧ବ )—
(ବିମୃଷ୍ୟକାରିଣୀ—ସ୍ତ୍ରୀ) ବିବେଚନାପୂର୍ବକ କାର୍ଯ୍ୟକାରୀ—Acting
(ବିମୃଷ୍ୟକାରିତା—ବି) after due deliberation; discri-
minating; considerate.

ବିମୃଷ୍ୟ(ଶ୍ୟ)ବାଦୀ—ସଂ. ବିଣ. ପୁଂ ( ବିମୃଷ୍ୟ+ବଦ୍ ଧାତୁ+ଇନ୍;
Bimṛushya(ṡya)bādī ୧ମା. ୧ବ )—ଯେ ସୁବିବେଚନା କରି
( ବିମୃଷ୍ୟବାଦିନୀ—ସ୍ତ୍ରୀ ) କଥା କହେ—Speaking after
(ବିମୃଷ୍ୟବାଦିତା—ବି) mature consideration.

ବିମୋକ୍ଷ—ସଂ. ବି ( ବି+ମୋକ୍ଷ୍ ଧାତୁ=ମୁକ୍ତ ହେବା+ଭାବ. ଅ )—
Bimoksha ୧ । ପରିତ୍ରାଣ; ମୁକ୍ତି—1. Redemption;
deliverance; salvation, ୨ ।
ବିମୋକ୍ଷଣ } ଅନ୍ୟରୂପ
ବିମୋଚନ }
ବନ୍ଧନମୋଚନ—2. Release from
confinement, ୩ । ସୂର୍ଯ୍ୟର ବା ଚନ୍ଦ୍ରର ଗ୍ରହଣରୁ
ମୋକ୍ଷ—3, The sun's or moon's release from
eclipse, ୪ । ହାତରୁ ଫିଙ୍ଗିବା—4, Throwing.

ବିମୋଚନ—ସଂ. ବି ( ବି+ମୋଚନ )—୧ । ବନ୍ଧନରୁ ମୁକ୍ତ କରଣ—
Bimocana 1. Releasing from confinement,
୨ । ଗ୍ରନ୍ଥିମୋଚନ; ଗଣ୍ଠି ଫିଟାଇବା—
2. Untying. ୩ । [ ଅଶ୍ରୁ ] ତ୍ୟାଗ
କରିବା—3. Shedding ( of
tears ). ୪ । (ବାଣ) ଫିଙ୍ଗିବା—4, Dis-
charging (of an arrow ),
ବିମୁକ୍ତ }
ବିମୋଚିତ } ବିଣ
ବିମୋଚନୀୟ }
ବିମୋଚ୍ୟ }

ବିମୋଦିତ—ଦେ. ବିଣ—୧ । ସୁବାସିତ—1, Sweet-scented.
Bimodita ୨ । ଅତ୍ୟନ୍ତ ଆନନ୍ଦିତ—2, Very glad, [ଉ—
[ ୧-୨ ] ବିମୋଦିତ ଏକପକ୍ଷ ବାସ ସୁମନରେ—ଭଞ୍ଜ.
ବୈଦେହୀଶବିଳାସ । ]

ବିମୋହ—ସଂ. ବି [ ବି+ମୁହ୍ ଧାତୁ+ଭାବ. ଅ ]—୧ । ଜଡ଼ତା—
Bimoha 1. Idiocy. ୨ । ମୋହ—2. Stupefaction;
fascination; infatuation, ୩ । ଭ୍ରମ; ଭ୍ରାନ୍ତି—
3. Mistake; error. ୪ । ଅଚେତ ହେବା; ମୂର୍ଚ୍ଛା—
4. Swoon; fainting.

ବିମୋହନ—ସଂ. ବି.—(ବି+ମୁହ ଧାତୁ ଣିଚ୍+ଭାବ. ଅନ)—୧ ।
Bimohana ମୁଗ୍ଧ କରିବା; ମୋହ ଜନ୍ମାଇବା; ଭୁଲାଇବା—
(ବିମୋହକ—ବ୍ୟକ୍ତିବାଚକ ବିଶେଷଣ. ପୁଂ) 1. Fascinating;
infatuating. ୨ । ଜଡ଼ତା ଉତ୍ପାଦନ—2. Stu-
pefying. ସଂ. ବିଣ. ପୁଂ—(+କର୍ତ୍ତୃ. ଅନ) ୧ । ମୋହ-
ଜନକ—Fascinating. [ଉ—ବିମୋହନ କାମନା
ବିଳାସ, ଟାଣେ ମନ ମାୟା ଯନ୍ତ୍ରେ, ଭୁଲାଏ କପଟ ମନ୍ତ୍ରେ ।
ମଧୁସୂଦନ. ଜୀବନଚିନ୍ତା । ] ୨ । ଜଡ଼ତା ଉତ୍ପାଦକ—2,
( ବିମୋହନା—ସ୍ତ୍ରୀ ) Stupefying.

ବିମୋହିତ—ସଂ. ବିଣ. ପୁଂ—( ବି+ମୁହ୍ ଧାତୁ ଣିଚ୍ ମୋହି ଧାତୁ
Bimohita +କର୍ମ. ତ)—୧ । ମୋହପ୍ରାପ୍ତ; ମୁଗ୍ଧ—
(ବିମୋହିତା—ସ୍ତ୍ରୀ) 1. Fascinated; charmed; stupe-
fied. ୨ । ମୂର୍ଚ୍ଛିତ—2. Swooned; fainted.
୩ । ହିତାହିତ ଜ୍ଞାନ ରହିତ—3, Bereft of dis-
crimination. ୪ । ଅଚେତ—4. Senseless.

ବିମୋହିବା—ଦେ. (ପଦ୍ୟ) କ୍ରି—(ସଂ. ବିମୋହନ)—୧ । ବିମୋହିତ
Bimohibā ହେବା—1. To be fascinated, ୨ ।
বিমোহা विमोहना ବିମୋହିତ କରିବା—2, To fascinate.

ବିମୋହୀ—ସଂ. ବିଣ. ପୁଂ—( ବିମୋହ+ଇନ୍; ୧ମା. ୧ବ )—୧ ।
Bimohī ବିମୁଗ୍ଧକାରୀ—1. Charming; enchanting.
(ବିମୋହିନୀ, ବିମୋହକାରୀ, ବିମୋହକ—ଅନ୍ୟରୂପ) ୨ । ଭ୍ରମରେ
ପକାଇବା (ବ୍ୟକ୍ତି)—2. Causing a person to
commit errors. ୩ । ଯେ ମୂର୍ଚ୍ଛିତ କରାଏ—
3. Causing senselessness. ୪ । କଠୋର-
ହୃଦୟ; ନିଷ୍ଠୁର (ହି. ଶ)—4. Cruel.

ବିମ୍ବ—ସଂ. ବି—(ବୀ ଧାତୁ=ଗମନ କରିବା, ବ୍ୟାପ୍ତି ପାଇବା+ବ; ନିପାତନ)
Bimba ୧ । ବୁଦ୍‌ବୁଦ—1. Bubble. ୨ । ଚନ୍ଦ୍ର ବା ସୂର୍ଯ୍ୟର
ମଣ୍ଡଳ—2. The disc of the sun or the
moon. ୩ । ପ୍ରତିବିମ୍ବ; କୌଣସି ପଦାର୍ଥର ଜଳାଦିରେ
ପ୍ରତିଫଳିତ ଛାୟା—3. Reflected image. ୪ ।
ମଣ୍ଡଳାକାର; ଗୋଲାକୃତି (ଯଥା—ନିତମ୍ବ ବିମ୍ବ)—
4. Roundness; rotundity. ୫ । ମୂର୍ତ୍ତି—
ପ୍ରତିମୂର୍ତ୍ତି—5. Image; likeness. ୬ । କୃକଳାସ;
ଏଣ୍ଡୁଅ—6. Chameleon. ୭ । କଇଁଚ କାକୁଡ଼ି
ଫଳ—7. The fruit of Memordica Meno-
delpha creeper. ୮ । ସୂର୍ଯ୍ୟ (ହି. ଶ)—8, The
sun. ୯ । ଉଜ୍ଜ୍ୱଳତା; ଦୀପ୍ତି (ହି. ଶ)—9. Lustre.
୧୦ । କମଣ୍ଡଳୁ (ହି. ଶ)—10. A wooden water-
pot carried by anchorites.
ଦେ. ବି—୧ । ଦର୍ପଣ—1. Looking glass.

[ ଉ—କାଳାର, ବିମ୍ବଗଣ୍ଡଚନ୍ଦ୍ର ଅନାଇ । ଉଞ୍ଜ. ବୈଦେହୀଶବିଳାସ ।] ୨ । ବୃତ୍ତ—2. A circle. [ଉ—ବିମ୍ବ ବେଷ୍ଟନ ନୋହିଲା ବର୍ଣ୍ଣି ଭ୍ରବେଷ୍ଟ କାଟଦେଇ। ଉଞ୍ଜ. ବୈଦେହୀଶବିଳାସ ।]

ବିମ୍ବକ—ସଂ. ବି—(ବିମ୍ବ+ସ୍ୱାର୍ଥେ. କ)—୧ । ଚନ୍ଦ୍ର ବା ସୂର୍ଯ୍ୟର ମଣ୍ଡଳ—
Bimbaka 1. The disc of the sun or of the moon. ୨ । କଇଁଚକାକୁଡ଼—2. The memordica fruit. ୩ । ଚର୍ମୀନଙ୍କ ପ୍ରାଚୀନ ବାଦ୍ୟ ବିଶେଷ (ହି. ଶ)—3. A kind of ancient drum. ୪ । ଛାଞ୍ଚ ( ହି. ଶ )—4. A mould.

ବିମ୍ବଜା—ସଂ. ବି—(ବିମ୍ବ+ଜନ ଧାତୁ+ଅ+ଆ)—କଇଁଚକାକୁଡ଼—
Bimbjā . The memordica fruit.

ବିମ୍ବଟ—ସଂ. ବି—(ବିମ୍ବ+ଅଟ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ)—ସର୍ଷପ;
Bimbaṭa ସୋରିଷ—Mustard seed and plant.

ବିମ୍ବ ଫଳ—ସଂ. ବି—କଇଁଚ କାକୁଡ଼—
Bimba phaḻa The momordica fruit.

ବିମ୍ବ(ମ୍ଭ)ର—ଗ୍ରା. ବି—(ସଂ. ବିବର)—୧ । ଗହ୍ବର; ବିବର—1. Hole.
Bimba (mbha)ra [ ଉ—ସୂଚରକାଳ ଥାଇ ଜଳେ, ନାସାବିମ୍ବର ବାୟୁ ବଳେ । ଜଗନ୍ନାଥ. ଭାଗବତ ।] ୨ । ବଡ଼ ବଡ଼ ମାଛ ଡିମ୍ବ ପାରିବା ପାଇଁ ଜଳାଶୟ ଗର୍ଭରେ କରିଥିବା ଗାତ—2. Holes made by big fishes in the bottom of tanks for laying eggs or roe. ୩ । କୂଅର ତଳରେ ଫୁଟିଯିବା ଜଳୋଦ୍ଗାରକ ଗର୍ତ୍ତ—3. A hole in the bottom of a well through which the subterranean water rushes up.

ବିମ୍ବଲା(ଳୀ)—ଗ୍ରା. ବି. ସ୍ତ୍ରୀ—୧ । ବିମଳାର ଡାକନାମ—1. A name
Bimbaḻā(ḻī) for calling Bimaḻā. ୨ । ପୁରୀର ବିମଳା ( ବିମ୍ବଳେଇ—ଅନ୍ୟରୂପ ) ଠାକୁରାଣୀ—The Goddess
বিমলা **विमला** Bimaḻā of Puri.

ବିମ୍ବା—ସଂ. ବି ( ବିମ୍ବ+ଆ )—୧ । କଇଁଚକାକୁଡ଼ ଲତା ଓ ଫଳ—
Bimbā 1. A creeper and its fruit; Memordica Menodelpha. ୨ । ଜଳବୁଦ୍ବୁଦ—2 Water bubble. ୪ । ଚନ୍ଦ୍ର ବା ସୂର୍ଯ୍ୟର ମଣ୍ଡଳ—3. The disc of the sun or of the moon. ଦେ. ବି ( ଅନାଦରାର୍ଥକ ) ବିମ୍ବାଧରର ଡାକ ନାମ—A name for calling Bimbādhara.
ବିମ୍ବିକା } ଅନ୍ୟରୂପ
ବିମ୍ବୀ }

ବିମ୍ବାକାର—ସଂ. ବିଣ ( ବହୁବ୍ରୀହି; ବିମ୍ବ+ଆକାର )—ଗୋଲାକାର;
Bimbākāra ବର୍ତ୍ତୁଳ—Circular.

ବିମ୍ବାଗତ—ସଂ. ବିଣ ( ବିମ୍ବ+ଆଗତ )—ପ୍ରତିବିମ୍ବିତ; ପ୍ରତିଫଳିତ—
Bimbāgata Reflected.

ବିମ୍ବାଧର—ସଂ. ବିଣ. ପୁଂ ( ବହୁବ୍ରୀହି; ବିମ୍ବ=ପାଚିଲା କଇଁଚକାକୁଡ଼
Bimbādhara +ଅଧର )—ପକ୍ୱବିମ୍ବ ପରି ରକ୍ତବର୍ଣ୍ଣ ଓଷ୍ଠବିଶିଷ୍ଟ
(ବିମ୍ବାଧରା—ସ୍ତ୍ରୀ) —Having bright red lips. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.
(ବିମ୍ବାଧରୀ—ଦେ. ସ୍ତ୍ରୀ)
বিম্বাধর
[ ଉ—ରଖିଲା ମନ ବିମ୍ବାଧରୀ ଧରି ରେ—ସଙ୍ଗୀତ । ]

ବିମ୍ବାଫଳ—ସଂ. ବି—ବିମ୍ବ; କଇଁଚକାକୁଡ଼ ଫଳ—
Bimbāphaḻa The fruit of momordica.

ବିମ୍ବିତ—ସଂ. ବିଣ ( ବିମ୍ବ+ଇତ )—ପ୍ରତିଫଳିତ—
Bimbita Reflected.

ବିମ୍ବି(ମ୍ବ)ସାର—ଦେ. ବି (ନାମ)—ବୌଦ୍ଧନରପତି ବିଶେଷ—Name
Bimbi(mba)sāra of a Buddhist king. [ଦ୍ର—ଏ ଅଜାତଶତ୍ରୁଙ୍କ ପିତା ଓ ଗୌତମ ବୁଦ୍ଧଙ୍କ ସମକାଳୀନ ମଗଧରାଜା ଥିଲେ । ଏ ପ୍ରଥମେ ଶାକ୍ତ ଥିଲେ, ପରେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ—ହି. ଶ । ]
বিম্বিসার **चिम्बिसार**

ବିମ୍ବୁ—ସଂ. ବି ( ବୀ ଧାତୁ=ଗମନ କରିବା; ପ୍ରାପ୍ତି ପାଇବା+କର୍ତ୍ତୃ ରୁ )
Bimbu —ଗୁବାକ; ଗୁଆ; ସୁପାରି—Betelnut.

ବିମ୍ବୋ(ମ୍ବୌ)ଷ୍ଠ—ସଂ. ବିଣ. ପୁଂ ( ବହୁବ୍ରୀହି; ବିମ୍ବ+ଓଷ୍ଠ )—
Bimbo(mbau)shṭha ବିମ୍ବାଧର (ଦେଖ)—Bimbādhara ( See )
[ବିମ୍ବୋ(ମ୍ବୌ)ଷ୍ଠା(ଷ୍ଠୀ)—ସ୍ତ୍ରୀ]

ବିମ୍ଳାନ—ସଂ. ବିଣ ( ବି+ମ୍ଳୈ ଧାତୁ+କର୍ତ୍ତୃ, ତ )—୧ । ନିର୍ମଳ—
Bimḻāna 1. Bright. ୨ । ଅମଳିନ—2. Unsoiled; unfaded. ୩ । ତାଜା—3. Fresh.
(ବିମ୍ଳାନା—ସ୍ତ୍ରୀ)

ବିମ୍ସ—ବୈଦେ. ବି (ନାମ)—ସର ଜନ୍ ବିମ୍ସ; ପ୍ରସିଦ୍ଧ ପ୍ରାଚ୍ୟ ଭାଷା ତତ୍ତ୍ୱ-
Bim-s ବିଦ୍ ସ୍ୱର୍ଗୀୟ ଇଂରାଜ ପଣ୍ଡିତ—Sir John Beams, the great philologist of Indian languages. [ ଦ୍ର—ଏ ଭାରତରେ ସିଭିଲ୍ ସର୍ଭିସ୍‌ରେ ଉଚ୍ଚ ଚାକିରି କରିଥିଲେ । ଏ କଟକର ଓ ବାଲେଶ୍ୱରର କଲେକ୍ଟର୍ ଓ ପରେ ଓଡ଼ିଶାର କମିସନର୍ ହୋଇଥିଲେ । ଏହାଙ୍କ ସଙ୍କଳିତ ହିନ୍ଦୀ, ଓଡ଼ିଆ, ବଙ୍ଗଳା ଓ ଗୁଜରାଟୀ ଭାଷାର ତୁଳନାମୂଳକ ବ୍ୟାକରଣ ପ୍ରସିଦ୍ଧ ପ୍ରାମାଣିକ ଗ୍ରନ୍ଥ ଅଟେ । ]
বিম্‌স **विमस**
(ବିମ୍ସ୍—ଅନ୍ୟରୂପ)

ବିୟଚ୍ଚାରୀ—ସଂ. ବିଣ. ପୁଂ ( ବିୟଚ୍ଚାରିନ୍ ୧ମା. ୧ବ; ବିୟତ୍+ଚରିନ୍ )
Biyachchārī —୧ । ଆକାଶଗାମୀ—1. Roaming in the sky. ୨ । ଉଡ଼ୁଥିବା—2. Flying. ସଂ. ବି—ଚିଲପକ୍ଷୀ—The kite; Falco Ator.
(ବିୟଚ୍ଚାରିଣୀ—ସ୍ତ୍ରୀ)

ବିୟତ୍—ସଂ. ବି ( ବି=ନ୍ୟୁନେ+ଯମ୍ ଧାତୁ=ବିରତ କରିବା+କର୍ତ୍ତୃ କ୍ୱିପ୍ )—ଆକାଶ—The sky.
Biyat

ବିୟତ୍ପତାକା—ସଂ. ବି ( ୬ଷ୍ଠୀ ତତ୍ )—ବିଦ୍ୟୁତ୍ ( ହି. ଶ )—
Biyat-patākā Lightning.

ବିୟତ—ଦେ. ବି (ସଂ. ବିୟତ୍)—ଆକାଶ—The sky. ( ଉ—
Biyata ବିୟତୁଁ ଖସାଇ ରଥପୁରେ ଯାଇ ଅଶୋକ ବସିଲେ । ଉଞ୍ଜ. ବୈଦେହୀଶବିଳାସ । )

ବିୟତି—ଦେ. ବି ( ସଂ. ବିୟତ୍ ଶବ୍ଦର ୭ମୀ ବିଭକ୍ତି ଏକବଚନରେ
Biyati ଆକାର )—ଆକାଶ—The sky. ( ଉ—ବିୟତିରେ ଜଳଧାର ପ୍ରାୟେ ବସିଲେ । ଉଞ୍ଜ. ବୈଦେହୀଶବିଳାସ ।)

**ବିୟଦ୍‌ଗଙ୍ଗା** — ସଂ. ବି. ସ୍ତ୍ରୀ (ବିୟତ୍+ଗଙ୍ଗା; ୬ଷ୍ଠୀ ତତ୍) — ସ୍ୱର୍ଗଗଙ୍ଗା; ମନ୍ଦାକିନୀ — The celestial Ganges (a mythological river).
Biyadgaṅā

**ବିୟନ୍ମଣି** — ସଂ. ବି (ବିୟତ୍ = ଆକାଶ + ମଣି; ୬ଷ୍ଠୀ ତତ୍) — ସୂର୍ଯ୍ୟ — The sun.
Biyanmaṇi

**ବିଯମ** — ସଂ. ବି (ବି-।-ଯମ୍ ଧାତୁ = ନିବୃତ୍ତ କରିବା + ଭାବ. ଅ) — ୧ । ସଂଯମ; ଇନ୍ଦ୍ରିୟଦମନ — 1. Self restraint; self-control; controlling one's passions. ୨ । ନିବୃତ୍ତି — 2. Cessation; stoppage. ୩ । (+କର୍ମ. ଅ) ଯାତନା — 3. Pain; agony.
Bijama

**ବିଯାତ** — ସଂ. ବିଣ, ପୁଂ (ବି = ନିଷେଧ + ଯାତ = ଇପ୍ସିତ; ଯେ ନିଷିଦ୍ଧ ବିଷୟ ପ୍ରତି ଇଚ୍ଛା କରେ) — ୧ । ଧୃଷ୍ଟ; ପ୍ରଗଳ୍ଭ — 1. Audacious; impudent. ୨ । ନିର୍ଲଜ୍ଜ — 2. Shameless. ୩ । ଅଶିଷ୍ଟ; ଅଭଦ୍ର — 3. Impolite; rude.
Bijāta (ବିଯାତା — ସ୍ତ୍ରୀ)

**ବିଯୁକ୍ତ(ତ)** — ସଂ. ବିଣ (ବି-।-ଯୁଜ୍ ଧାତୁ+କର୍ମ. ତ) — ୧ । ବିରହିତ — 1. Bereft of; destitute of. ୨ । ବିଚ୍ଛିନ୍ନ — 2. Separated. ୩ । ତ୍ୟକ୍ତ — 3. Left; abandoned. ୪ । ବ୍ୟବକଳିତ; ବିଶ୍ଳିଷ୍ଟ — 4. Subtracted; minus
Bijukta(ta)

**ବିଯୁକ୍ତ ଚିହ୍ନ** — ଦେ. ବି (ଗଣିତ) — '—' ଏହି ଚିହ୍ନ; ଗୋଟିଏ ରାଶିରୁ ଅନ୍ୟ ରାଶିକୁ ବିୟୋଗ କରିବାକୁ ହେଲେ ବଡ଼ ରାଶି ପରେ ବିଆଯିବା ଚିହ୍ନ — The minus sign.
Bijukta chihna
বিয়োগ চিন্হ
**वियोग चिन्ह** (ବିଯୋଗ ଚିହ୍ନ — ଅନ୍ୟରୂପ)

**ବିଯୁକ୍ତ ତଡ଼ିତ୍(ବିଦ୍ୟୁତ୍)** — ସଂ. ବି (ଆଧୁନିକ ପ୍ରୟୋଗ) — ବିଦ୍ୟୁତ୍ ଶକ୍ତିର ଯେଉଁ ଅଂଶରେ ବିପରୀତ 'ଯୁକ୍ତ' ଅଂଶ ଆସି ସଂଯୁକ୍ତ ହୁଏ — Negative electricity
Bijukta taṛit (bidyut) [ଯୁକ୍ତ ତଡ଼ିତ୍(ବିଦ୍ୟୁତ୍) — ବିପରୀତ]

**ବିଯୋ(ୟୋ)ଗ** — ସଂ. ବି (ବି+ଯୁଜ୍ ଧାତୁ-।-ଭାବ. ଅ) — ୧ । ବିଚ୍ଛେଦ; ବିରହ — 1. Bereavement; separation; disunion. ୨ । ଅଭାବ — 2. Want. ୩ । (ଗଣିତ) ଏକ ରାଶିରୁ ଅନ୍ୟ ରାଶିକୁ ବାଦ୍ ଦେବା; ଫେଡ଼ାଣ — 3. (mathematics) Subtraction.
Bijo(yo)ga (ବିପରୀତ — ସଂଯୋଗ)
ଦେ. ବି — ୧ । ମୃତ୍ୟୁ — 1. Death. ୨ । ବିନାଶ — 2. Destruction. [ଉ — ରମଣୀମଣିଙ୍କ ଯୋଗେ ଗୃହିଁଲେ; ଯୋଗ ବିଯୋଗ ହୋଇବ ଯାଇଲେ । ଉଞ୍ଜ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ] ଦେ. ବିଣ — ବିରହିତ — Destitute of. [ଉ — ତେଜିଲି ଧର୍ମ କାମ ଭୋଗ, ସକଳ ସୁଖେ ମୁଁ ବିଯୋଗ । ଜଗନ୍ନାଥ. ଭାଗବତ ।]
বিয়োগ
**वियोग**

**ବିଯୋ(ୟୋ)ଗ କରିବା** — ଦେ. କ୍ରି — ୧ । (ଗଣିତ) ଏକ ରାଶିରୁ ଅନ୍ୟ ରାଶିକୁ ଫେଡ଼ିବା — 1. (math) To subtract. ୨ । (ପ୍ରାଚୀନ ପଦ୍ୟ) ଫୋପାଡ଼ି ଦେବା — 2. To throw away; to fling away. [ଉ — ବିଦଳିମୁଦ୍ରା ରସାଳ, ବିଯୋଗ କଲେ ବିଶାଳ — ଉଞ୍ଜ. ବୈଦେହୀଶବିଳାସ ।]
Bijo(yo)ga karibā
বিয়োগ করনা
**वियोग करना**

**ବିଯୋ(ୟୋ)ଗ ଫଳ** — ସଂ. ବି — (ଗଣିତ) ଗୋଟିଏ ରାଶିରୁ ଅନ୍ୟରାଶିକୁ ଫେଡ଼ିଲେ ଯାହା ବାକି ରହେ — (math) Remainder of a subtraction.
Bijo(yo)ga phala

**ବିୟୋଗ ବିଧୁର** — ସଂ. ବିଣ. ପୁଂ (୭ମୀ ତତ୍; ବିୟୋଗ+ବିଧୁର) — ପ୍ରିୟଜନଙ୍କ ବିଚ୍ଛେଦ ଯୋଗୁଁ କାତର — Much troubled on account of bereavement or separation.
Biyoga bidhura [ବିୟୋଗ ବିଧୁରତା — ବି] (ବିୟୋଗବିଧୁରା — ସ୍ତ୍ରୀ)

**ବିୟୋଗ ଶୃଙ୍ଗାର** — ସଂ. ବି (ମ. ପ. ଲୋ; ବିୟୋଗାତ୍ମକ ଶୃଙ୍ଗାର) — ଯେଉଁ ଶୃଙ୍ଗାରରସ ନାୟକ ନାୟିକାଙ୍କର ବିଚ୍ଛେଦକୁ ଅବଲମ୍ବନ କରେ — A sentiment in romance depicting the separation between 2 lovers [ଦ୍ର — ସାହିତ୍ୟରେ ଶୃଙ୍ଗାର ବା ଆଦିରସକୁ ୨ ପ୍ରକାରରେ ବିଭକ୍ତ କରାଯାଇଅଛି । ସଂଯୋଗ ବା ସଂଭୋଗ ଶୃଙ୍ଗାର; ବିଯୋଗ ବା ବିପ୍ରଲମ୍ଭ ଶୃଙ୍ଗାର; ବିପ୍ରଲମ୍ଭ ଶୃଙ୍ଗାରର ୩ଟି ଦଶା; ଯଥା — ପୂର୍ବରାଗ, ମାନ ଓ ପ୍ରବାସ — ହି. ଶ । ]
Biyoga śṛuṅgāra
(ବିପ୍ରଲମ୍ଭ ଶୃଙ୍ଗାର — ଅନ୍ୟନାମ)
ସଂଯୋଗ ଶୃଙ୍ଗାର, ସଂଭୋଗ ଶୃଙ୍ଗାର } ବିପରୀତ

**ବିୟୋଗାତ୍ମକ** — ସଂ. ବିଣ (ବିୟୋଗ+ଆତ୍ମନ୍+କ) — ଯାହାର ଆତ୍ମା ବା ପ୍ରକୃତି ବିୟୋଗ ଅଟେ — Negative.
(B)iyogātmaka (ବିୟୋଗାତ୍ମିକା — ସ୍ତ୍ରୀ) (ବିୟୋଗ ପ୍ରକୃତିକ — ଅନ୍ୟରୂପ)

**ବିୟୋଗାନ୍ତ** — ସଂ. ବିଣ (ବହୁବ୍ରୀହି) — ଯାହାର ଶେଷରେ ମୃତ୍ୟୁ ବା ବିଚ୍ଛେଦ ଘଟେ ବା ବର୍ଣ୍ଣିତ ହୁଏ — Terminating in death or by the description of death or separation.
Biyogānta (ବିୟୋଗାନ୍ତକ — ଅନ୍ୟରୂପ) (ବିପରୀତ — ମିଳନାନ୍ତକ)

**ବିୟୋଗାନ୍ତ ନାଟକ** — ସଂ. ବି (ଆଧୁନିକ) — ଯେଉଁ ନାଟକର ଶେଷରେ ମୃତ୍ୟୁ ବିଷୟ ବର୍ଣ୍ଣିତ ହୋଇଥାଏ — Tragedy.
Biyogāntaka nāṭaka

**ବିଯୋ(ୟୋ)ଗିନୀ** — ସଂ. ବି. ସ୍ତ୍ରୀ [ବିଯୋ(ୟୋ)ଗିନ୍+ସ୍ତ୍ରୀ. ଈ) — ୧ । ବିରହିଣୀ ସ୍ତ୍ରୀ — 1. A woman separated from her lover; a forsaken woman. ୨ । ଛନ୍ଦୋବିଶେଷ — 2. Name of a Sanscrit metre.
Bijo(yo)gini
ସଂ. ବିଣ, ସ୍ତ୍ରୀ — ବିୟୋଗୀର ସ୍ତ୍ରୀଲିଙ୍ଗ — Feminine of Biyogi.

**ବିଯୋ(ୟୋ)ଗିବା** — ଦେ. କ୍ରି — ୧ । ନିଯୁକ୍ତ କରିବା — 1. To engage. [ଉ — ବିଯୋଗିଲେ ଭକ୍ତ ପାପ୍ୟମାନ କ୍ଷମୁବାଣି । ଉଞ୍ଜ. ବୈଦେହୀଶବିଳାସ ।] ୨ । ବିଯୁକ୍ତ କରିବା — 2. To subtract; to separate.
Bijo(yo)gibā

**ବିଯୋ(ୟୋ)ଗୀ**—ସଂ. ବିଣ. ପୁଂ [ବିଯୋଗିନ୍; ୧ମା. ୧ବ; ବିଯୋ-
Bijo(yo)gī (ୟୋ)ଗ+ଇନ୍]—୧ । ପୃଥକ୍‌ଭୂତ—1. Destitute; bereft. ୨ । ବିରହୀ; ବିଚ୍ଛେଦ
[ବିଯୋ(ୟୋ)ଗିନୀ—ସ୍ତ୍ରୀ] ଯୁକ୍ତ—2 Separated from one's beloved. ୩ ।
ଯାହାର ସ୍ତ୍ରୀ ମରିଯାଇଅଛି—3. Surviving one's wife.
ସଂ. ବି-ଚକ୍ରବାକ ପକ୍ଷୀ—The ruddy drake; Anas Casarca.

**ବିଯୋ(ୟୋ)ଜିତ**—ସଂ. ବିଣ (ବି+ଯୁଜ୍ ଧାତୁ ଣିଚ+କର୍ମ. ତ)—୧ ।
Bijo(yo)jita ବିଚ୍ଛେଦ ପ୍ରାପିତ—1. Caused to be separated. ୨ । ବିଶ୍ଳିଷ୍ଟ—2. Disunited. ୩ । ଶୂନ୍ୟୀକୃତ—3. Deserted; vacated. ୪ । ବିରହିତ—4. Destitute;

**ବିର୍**—ବୈଦେ. ବି (ଇଂ. ବିଅର୍)—ଯବଧାନରୁ ପ୍ରସ୍ତୁତ ଏକପ୍ରକାର
Bir বিয়র **बियर, बीर** ବିଲାତି ଅନୁଗ୍ର ସଫେନ୍ ବା ମଦ—Beer.

**ବିର୍‌ଜା**—ପ୍ରାଦେ. (ସମ୍ବଲପୁର) ବିଣ—ଚିଡ଼ିଲ; ଯେ ସାମାନ୍ୟ କଥାରେ
Bir-jā ଚିଡ଼େ—Irascible; irritable.

**ବିର୍‌ଜି(ଝି)ବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ବିରକ୍ତ)—୧ । ବିରକ୍ତ
Bir-ji(jhi)bā ହେବା—1. To be displeased. ୨ ।
বিরক্ত হওয়া **रूठना** ଚିଡ଼ିବା—2. To fret; to be irritated.

**ବିର୍‌ଝାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ଖତେଇହେବା—
Bir-jhāibā 1. To make faces. ୨ । ଖେଙ୍କିବା—To
বিরক্ত করা **रुठाना** snarl. ୩ । ଚିଡ଼ାଇବା—3. To irritate a person.

**ବିର୍‌ନି**—ପ୍ରାଦେ (ସମ୍ବଲପୁର) ବି—୧ । ଆଖିର ଉପର ପତାର ବାଳ—
Bir-ni 1. The hair of the upper eyelid. ୨ । (ସଂ ବୀରଣ) ବେଣା—2. Benā grass.

**ବିର୍‌ରୁ କୋଲି**—ପ୍ରାଦେ (ବସ୍ତର) ବି (ସଂ. ବଦ୍ରୀ; ଭୁଲ, ହି. ବୈର୍)—
Bir-ru koli ବରକୋଳି—Jujube; Zezyphus Jujuba.

**ବିର(ରି)କତ**—ଗ୍ରା. ବିଣ (ସଂ. ବିରକ୍ତ)—୧ । ବିରକ୍ତ—1. vexed, bothered. (ଉ—ଅଇଲେ ତୋର ମାୟା
Bira(ri)kata ମୋହେ, କେବେହେଁ ବିରକତ
[ବିର(ରି)କତିଆ—ଅନ୍ୟରୂପ] ନୋହେଁ—ଜଗନ୍ନାଥ. ଭାଗବତ ।) ୨ । ବିରକ୍ତିକର—
বিরক্ত 2. Troublesome.

**ବିର(ରି)କତି**—ଗ୍ରା. ବି (ସଂ. ବିରକ୍ତି)—ବିରକ୍ତି—
Bira(ri)kati বিরক্তি Vexation; botheration.

**ବିରକ୍ତ**—ସଂ. ବିଣ. ପୁଂ (ବି+ରଞ୍ଜ ଧାତୁ+କର୍ତ୍ତୃ. ତ)—୧ । ଅନନୁ-
Birakta ରକ୍ତ—1. Unattached. ୨ । ଅସନ୍ତୁଷ୍ଟ—
( ଅନୁରକ୍ତ—ବିପରୀତ ) 2. Dissatisfied; vexed. ୩ ।
କ୍ଳିଷ୍ଟ—3. Troubled. ୪ । ବୈରାଗ୍ୟଯୁକ୍ତ; ଉଦାସୀନ—4. Averse to worldly ties; having renounced worldly connections ୫ । ବିରତ—5. Desisted. ୬ । ( +କର୍ମ ତ ) ପରିତ୍ୟକ୍ତ—6. Forsaken. ୭ । ପ୍ରବୀଣ—7. Experienced.
[ବିରକ୍ତା—ସ୍ତ୍ରୀ] ଦେ ବିଣ—୧ । ଚିଡ଼ିଲ, ଚିଡ଼ିଚିଡ଼ା—1.
[ବିରକ୍ତତା—ବି] Irritable; surly. ୨ । ଦିକ୍‌ଦଗ୍ଧ—2. Bothered; annoyed; teased.

**ବିରକ୍ତ କରିବା**—ଦେ. କ୍ରି—୧ । ଚିଡ଼ାଇବା—1. To tease. ୨ ।
Birakta karibā ମନରେ କଷ୍ଟ ଦେବା—2. To trouble;
বিরক্ত করা **बिरक्त करना** to annoy.

**ବିରକ୍ତ(କ୍ତି)ଭାବ**—ସଂ. ବି—୧ । ସଂସାରଜନଙ୍କ ପ୍ରତି ମନରେ ଦ୍ରୋହଭାବ
Birakta(kti)bhāba 1. Misanthropy. ୨ । ସଂସାର ବିରାଗ; ବୈରାଗ୍ୟ—2. Freedom from worldly attachment. ୩ । ଅନନୁରାଗ—3. Want of attachment. ୪ । ଔଦାସ୍ୟ—4 Indifference. ୫ । ଅରୁଚି; ଅନିଚ୍ଛା—5. Disrelish; distaste. ୬ । ପ୍ରତିକୂଳତା—6. Opposition; untowardness. ୭ । ବୈମୁଖ୍ୟ; ବିମୁଖତା—7. Dislike; aversion; disinclination. ୮ । ଅସନ୍ତୋଷ—8. Disgust; annoyance; discontent. ୯ । ଚିଡ଼ିଲ ଅବସ୍ଥା—9. Surliness; irritation.

**ବିରକ୍ତ(କ୍ତି) ଲାଗିବା**—ଦେ. କ୍ରି—ବିରକ୍ତି ବୋଧ ହେବା—Feeling
Birakta(kti) lāgibā of annoyance or disgust;
বিরক্ত লাগা **बिरक्त मालुमहोना** ennui. [ ଯଥା—ଖାଲି ବସିରହିବାଯୋଗୁଁ ମୋତେ ଭାରି ବିରକ୍ତ ଲାଗିଲାଣି । ]
ଦେ. କ୍ରି—ବିରକ୍ତି ଜାତକରିବା—To cause annoyance or tedium. (ଯଥା—ଖାଲି ବସିରହିବା ମୋତେ ଭାରି ବିରକ୍ତ ଲାଗେ ।)

**ବିରକ୍ତା**—ସଂ. ବିଣ. ସ୍ତ୍ରୀ ( ବିରକ୍ତ+ସ୍ତ୍ରୀ. ଆ )—୧ । ଦୁର୍ଭଗା (ସ୍ତ୍ରୀ)—
Biraktā 1. Unfortunate or forsaken ( wife ).
୨ । ( ଜୀବତ୍‌ସ୍ୱାମିକା ସ୍ତ୍ରୀ ପ୍ରତି ପ୍ରଯୋଜ୍ୟ ) ସ୍ୱାମୀପ୍ରତି ଅନନୁକୂଳ ( ସ୍ତ୍ରୀ )—2. Displeased with the husband; disgusted (wife).

**ବିରକ୍ତି**—ସଂ. ବି ( ବି+ରଞ୍ଜ ଧାତୁ+ଭାବ. ତି )—୧ । ବୈରାଗ୍ୟ—
Birakti 1. Aversion to worldly affairs. ୨ । ଉଦାସୀନତା—2. Indifference. ୩ । ଅସନ୍ତୋଷ—3. Dissatisfaction; discontent. ୪ । ମନୋବେଦନା—4. Mental anguish. ୫ । ବିରତି—5. Cessation. ଦେ. ବି—ଘୃଣା—Disgust; hatred.

**ବିରକ୍ତିଆ**—ଦେ. ବିଣ—୧ । ବିରକ୍ତିଜନକ—1. Producing
Biraktiā annoyance or disgust; disgusting.
বিরক্তিকর ୨ । ଯେ ବିରକ୍ତ କରେ—2. Annoying; teasing.
**विरक्ति करनेवाला** ୩ । ମନର କଷ୍ଟଦାୟକ—3. Troublesome
୪ । ଚିଡ଼ିଚିଡ଼ିଆ; ଚିଡ଼ିଲ—4 Surly; chafing. ୫ ।
ମନୋବେଦନା ଯୁକ୍ତ—5. Anguished; troubled.

**ବିରକ୍ତିକର**—ସଂ. ବିଣ ( ବିରକ୍ତି+କୃ ଧାତୁ+କର୍ତ୍ତୃ. ଅ )—ବୈରାଗ୍ୟ
Biraktikara ଜନକ—Producing aversion or indif-
( ବିରକ୍ତିଜନକ, ବିରକ୍ତିପ୍ରଦ—ଅନ୍ୟରୂପ ) ference to the
বিরক্তিকর world. ଦେ. ବିଣ—ଯାହା ମାନସିକ କଷ୍ଟ ଦିଏ;
[ବିରକ୍ତିକରୀ—ସ୍ତ୍ରୀ] ମନୋବେଦନା ଦାୟକ—Annoying; troublesome; grievous.

ବିରଙ୍ଗ—ସଂ. ବିଣ. [ ବି+ରଙ୍ଗ ]—୧ । ବିବର୍ଣ୍ଣ—1. Pale.
Biranga ୨ । ବହୁବର୍ଣ୍ଣବିଶିଷ୍ଟ; ଚିତ୍ରିତ—2. Multicoloured.
বেৰংগ ୩ । ମନ୍ଦବର୍ଣ୍ଣବିଶିଷ୍ଟ—3, Bad-coloured.
बिरंग ସଂ. ବି—କୁକ୍କୁଟ; କୁକୁଡ଼ା—A cock.

ବିରଙ୍ଗା—ପ୍ରାଦେ. (ବାମଣ୍ଡା) ବି—କନ୍ଧମାନେ ଜଙ୍ଗଲ ପୋଡ଼ି ଯେଉଁ
Birangā ଜମିରେ ମକା ଆଦି ଫସଲ କରନ୍ତି; ତଇଲା ଜମି—
Land reclaimed by the Khonds for growing maize etc.

ବିରଚକ—ସଂ, ବି ଓ ବିଣ, ପୁଂ ( ବି+ରଚ୍ ଧାତୁ+କର୍ତ୍ତୃ ଅକ )—
Birachaka ବିରଚୟିତା (ଦେଖ)—Birachayitā (See)
(ବିରଚିକା—ସ୍ତ୍ରୀ)

ବିରଚନ(ନା)—ସଂ.ବି (ବି+ରଚ୍ ଧାତୁ+ଭାବ ଅନ;+ଆ)—୧ । ଗଢ଼ା;
Birachana(nā) ନିର୍ମାଣ—1. Building; construction. ୨ । (ପ୍ରବନ୍ଧ, କବିତା ଆଦିର) ରଚନ; ପ୍ରଣୟନ—2. Composing (of books, poems etc.) ୩ । ଗ୍ରଥନ; ସୁସଂସ୍ଥାପନ—3. Composition; orderly arrangement. ୪ । ଚିତ୍ରଣ—4. Delineation,

ବିରଚନୀୟ—ସଂ, ବିଣ (ବି+ରଚ୍ ଧାତୁ+କର୍ମ. ଅନୀୟ)—୧ । ବିରଚିତ
Birachaniya ହେବା ଯୋଗ୍ୟ—Fit to be composed or constructed. ୨ । ଯାହା ରଚିତ ହେବ—2. About to be composed.

ବିରଚୟିତା—ସ, ବି ଓ ବିଣ ପୁଂ (ବି+ରଚ୍ ଧାତୁ+କର୍ତ୍ତୃ, ତୃ; ୧ମା,
Birachayitā ୧ବ)—୧ । ନିର୍ମାତା—1. Builder. ୨ ।
(ବିରଚୟିତ୍ରୀ—ସ୍ତ୍ରୀ) ପ୍ରଣେତା—2. Composer; author. ୩ । ଚିତ୍ରକ—3. Painter. ୪ । ବର୍ଣ୍ଣନାକାରୀ—4, Describer.

ବିରଚିତ—ସଂ, ବିଣ ( ବି+ରଚ୍ ଧାତୁ+କର୍ମ, ତ )—୧ ।
Birachita ନିର୍ମିତ—1. Built; constructed. ୨ । ରଚିତ; ପ୍ରଣୀତ—2. Composed. ୩ । ଚିତ୍ରିତ—3. Delineated; pictured. ୪ । ଗ୍ରଥିତ—4. Arranged or laid in order. ୫ । ବର୍ଣ୍ଣିତ—5. Described.
ସଂ. ବି ( +ଭାବ. ତ )—ରଚନା—Composition.
(ଉ—ଦବିଷ୍ଟ ଏ କଷ୍ଟ, ଯାକ ହେବ ଅଷ୍ଟ, ଦୁର୍ଗ ନାଥର ଏ ବିରଚିତ । କବିସୂର୍ଯ୍ୟ. ବିଶୋଷିତାକ୍ଷ୍, ଦ. ଗୀତ । )

ବିରଚିବା—ଦେ. (ପଦ୍ୟ) କ୍ରି (ସଂ. ବିରଚନ)—୧ । ନିର୍ମାଣ କରିବା—
Birachibā 1. To build; to construct. ୨ । କହିବା—
বিরচা 2. To speak; to utter. (ଉ—ଏପରି ନବଘନ
विरचना ଶ୍ୟାମ ଗୃହୁ ବିରଚି ଲଭୁଁ ବିରାମ । କବିସୂର୍ଯ୍ୟ. ସଙ୍ଗୀତ ।)
୩ । (ପ୍ରବନ୍ଧାଦି) ରଚନା କରିବା—3. To compose.
(ଉ—ବାଳ ପଦେ ଏ ସ୍ତନ ମନୋହର, ବିରଚେ ଉପରକୁ ଖୀରବର । ଭଞ୍ଜ. ବୈଦେହୀଶବିଳାସ ।) ୪ । ଗ୍ରଥନ କରିବା—4. To arrange in order. ୫ । ବର୍ଣ୍ଣନ କରିବା—5. To describe. ୬ । ଚିତ୍ରଣ କରିବା—6. To draw up; to delineate. ୭ । ସମ୍ପାଦନ କରିବା—7. To do. ( ଉ—ବାନ୍ଧନ ବନ୍ଧୁ ବିରଚିବାର ମୁଁ ଧନ ! ମୁଁ ପରଶୁର । କବିସୂର୍ଯ୍ୟ. ସଙ୍ଗୀତ । )

ବିରଜ—ସଂ. ବିଣ ( ବି+ରଜଃ )—୧ । ନିର୍ମଳ; ସଫା—
Biraja 1. Neat and clean. (ଉ—ବିରଜ ବସ୍ତ୍ର ପରିଧାନ, ସୁସ୍ନିଗ୍ଧ ମୁଖ ଶୋଭାବନ । ଜଗନ୍ନାଥ. ଭାଗବତ ।) ୨ । ଧୂଳି ଶୂନ୍ୟ—2. Free from dust (Apte), ୩ । କ୍ରୋଧାଦି ରିପୁର ଅବଶୀଭୂତ—3. Not swayed by passions (Apte). ୪ । ନିର୍ଦ୍ଦୋଷ—4. Faultless. ୫ । ରଜୋଗୁଣରହିତ—5. Free from Rajoguna.
ସଂ, ବି—୧ । ବିଷ୍ଣୁ—1 Bishnu. ୨ । ଶିବ—
(ବିରଜା—ସ୍ତ୍ରୀ) 2. Siba.

ବିରଜମଣ୍ଡଳ—ସଂ, ବି—ଓଡ଼ିଶାର ଯାଜପୁର ଅଞ୍ଚଳ—A name of
Birajamandala Jājapura in Orissa. [ଦ୍ର—ଏଠାରେ ଦୁର୍ଗାଙ୍କର ମହାଜମ୍ବା ନାମକ ମୂର୍ତ୍ତି ଅଛନ୍ତି—ପ୍ରଭାସଖଣ୍ଡ; ହ, ଶବ୍ଦସାଗର । ]

ବିରଜସ୍କ—ସ. ବିଣ ପୁଂ ( ବି+ରଜସ୍+ଅକ )—୧ । ଧୂଳି ଶୂନ୍ୟ—
Birajaska 1. Free from dust. ୨ । କାମ କ୍ରୋଧାଦିଶୂନ୍ୟ—
(ବିରଜଃ—ଅନ୍ୟରୂପ) 2. Free from passions.
(ବିରଜସ୍କା—ସ୍ତ୍ରୀ)

ବିରଜସ୍କା—ସଂ. ବିଣ. ସ୍ତ୍ରୀ (ବିରଜସ୍କ+ଆ)—୧ । ବିରଜସ୍କର ସ୍ତ୍ରୀ ଲିଙ୍ଗ—
Birajaskā 1. Feminine of Birajaska. ୨ । ଯେଉଁ ସ୍ତ୍ରୀର ଋତୁସ୍ରାବ ରହିତ ହୋଇଅଛି—2. (a woman) Whose menstrual discharge has ceased.
ସ. ବି. ସ୍ତ୍ରୀ—ଯେଉଁ ବର୍ଷୀୟସୀ ସ୍ତ୍ରୀର ଋତୁସ୍ରାବ ବାହୁଡ଼ ହୋଇଅଛି—A woman of advanced age in whom the menstrual secretion has ceased.

ବିରଜା—ସ. ବି. ସ୍ତ୍ରୀ (ବି+ରଜ୍ ଧାତୁ=ରଞ୍ଜିତ କରିବା+ଅ+ସ୍ତ୍ରୀ.
Birajā ଆ)—୧ । ଦୂବ—1. A species of creeping grass useful as fodder. ୨ । ଯଯାତି ରାଜାଙ୍କ ମାତା ଓ ନହୁଷଙ୍କ ସ୍ତ୍ରୀ—2. The mother of King Jajāti. ୩ । ରାଧିକାଙ୍କ ସଖୀବିଶେଷ—3. One of the companions of Rādhikā.
୪ । ଉତ୍କଳର ଶ୍ରୀକ୍ଷେତ୍ରରେ ବିରାଜିତା ବିମଳାଠାକୁରାଣୀ—4. Name of the Goddess Bimalā at Puri.
୫ । ଶ୍ରୀକ୍ଷେତ୍ର; ଜଗନ୍ନାଥ କ୍ଷେତ୍ର; ପୁରୁଷୋତ୍ତମ; ପୁରୀ ( ମତାନ୍ତରରେ ଯାଜପୁର )—5. The holy place of Puri (in Orissa) or Jajpur. ୬ । ଯାଜପୁରରେ ପୂଜିତ ଦୁର୍ଗାଦେବୀ—6. Name of the image of Durga worshipped at Jajpur.
୭ । ନଦୀବିଶେଷ—7. Name of a river. ୮ । କପିତ୍ଥ ବୃକ୍ଷ—8. The wood apple tree

ବିରଜାଃ—ସଂ. ବି. ସ୍ତ୍ରୀ ( ବହୁବ୍ରୀହି; ବି=ବିଗତ+ରଜସ୍ )—ନିବୃତ୍ତ-
Birajāḥ ରଜସ୍କା ସ୍ତ୍ରୀ—A woman who has passed her age of menstruation; a woman of advanced age ( above 50 ). ସଂ. ବିଣ ( ବି =ବିଗତ+ରଜଃ=ରଜୋଗୁଣ; ଧୂଳି )—୧ । ରଜୋ-ଗୁଣ ରହିତ—1. Free from carnal desires or worldly passions. ୨ । ଧୂଳିଶୂନ୍ୟ—2. Free from dust.

ବିରଜା କ୍ଷେତ୍ର—ସଂ. ବି—୧ । ଶ୍ରୀ ଜଗନ୍ନାଥ କ୍ଷେତ୍ର—1. The sacred
Birajā kshetra town of Puri and its precincts.
(ବିରଜାପୀଠ—ଅନ୍ୟରୂପ) ୨ । ( ମତାନ୍ତରରେ ) ଯାଜପୁର ( ଏଠାରେ ବିରଜାନାମ୍ନୀ ଠାକୁରାଣୀ ଥିବାରୁ )—2. Jajpur ( in Orissa ).

ବିରଜା ଦେଶ—ଦେ. ବି—ବିରଜାପୀଠ; ଯାଜପୁର—Jajpur ( in
Birajā deśa Orissa ). ( ଉ—କେଶବ ନାମ ବହିବ ବିରଜା ଦେଶରେ । ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା । )

ବିରଜା ମଣ୍ଡଳ—ସଂ. ବି—୧ । ପୁରାଣମତେ ପୁରୁଷୋତ୍ତମଠାରୁ ଯାଜପୁର
Birajā maṇḍala ପର୍ଯ୍ୟନ୍ତ ଅଞ୍ଚଳ—1. (according to the Purāṇas) The tract of country extending from Puri to Jajpur in Orissa. ୨ । ଯାଜପୁର ଅଞ୍ଚଳ—2. The country round Jajpur. ( ଉ—ବିରଜାମଣ୍ଡଳେ ଯେବେ ସାରପଲ୍ଲୀ । ରାଧାନାଥ. ନନ୍ଦିକେଶ୍ୱରୀ । ) [ ଦ୍ର—ପୁରାଣମତେ ଦକ୍ଷଙ୍କର ଯଜ୍ଞ ଭଙ୍ଗ ପରେ ସତୀଙ୍କର ମୃତଦେହର ଅଂଶ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ପଡ଼ିବାରୁ ୫୧ ପୀଠ ଓ ୨୬ ଉପପୀଠର ସୃଷ୍ଟି ହୋଇଥିଲା । ସତୀଙ୍କର ନାଭି ଉତ୍କଳରେ ( ପୁରୀ ବା ଯାଜପୁରରେ ) ପଡ଼ିଥିଲା । ପୀଠତଳେ ନୋଟ୍ ଦେଖ ]

ବିରଜୀକୃତ—ସଂ. ବିଣ ( ବିରଜ+ଅଭୂତ ତଦ୍ଭାବେ ଚ୍ୱି+କୃତ )—
Birajīkruta ୧ । ରଜୋଗୁଣ ରହିତ—1. Freed from
(ବିରଜୀକରଣ—ବି) worldly passions and hankerings ୨ । ଧୂଳିଶୂନ୍ୟକୃତ—2. Freed from dust; cleansed of dust.

ବିରଞ୍ଚ—ସଂ. ବି ( ବି=ବିବିଧ+ରଚ୍ ଧାତୁ+କର୍ତ୍ତୃ ଅ; ମ ଆଗମ )—
Birañcha ବ୍ରହ୍ମା—Brahmā; the Creator.

ବିରଞ୍ଚନ(ନା)—ଗ୍ରା. ବି ( ସଂ. ବିରଚନ )—ବିରଚନ ( ଦେଖ )
Birañchana(nā) Birachana ( See )

ବିରଞ୍ଚି—ସଂ. ବି ( ବି=ବିବିଧ ଅର୍ଥାତ୍ ବିବିଧ ପ୍ରାଣୀ+ରଚ୍ ଧାତୁ ସୃଷ୍ଟି
Birañchi କରିବା+କର୍ତ୍ତୃ. ଇ; ଯେ ପୃଥିବୀର ପ୍ରାଣୀଙ୍କୁ ସୃଷ୍ଟି କରିଅଛନ୍ତି )—ବ୍ରହ୍ମା—Brahmā. ଦେ. ବି—ସୂର୍ଯ୍ୟ —The sun. ( ଉ—ପ୍ରାଚୀଦିଗରେ ବିରଞ୍ଚି ଉଦୟେ, ଉଦ୍ଭିଦ୍ ବାମୀ ସୁଖେ ନିଦ୍ରାଯାଏ । ପ୍ରତାପ. ଶଶିସେଣା । )

ବିରଞ୍ଚି ନାରାୟଣ—ସଂ. ବି ( ସହଚର )—୧ । ବ୍ରହ୍ମା ଓ ବିଷ୍ଣୁ—
Birañchi nārāyaṇa 1. Brahmā and Bishṇu. ବାଲେଶ୍ୱର ଜିଲ୍ଲା ପାଳିଆ ଗ୍ରାମରେ ପ୍ରତିଷ୍ଠିତ ଦେବତା—( ଉ—ମାଗଧି ଅନୁପେ ସୀମାସ୍ତମ୍ଭରୂପେ ଥୋଇଛି ଶିର, ଯେ ଦେଶେ ବିରଞ୍ଚିନାରାୟଣଙ୍କର ଭଗ୍ନ ମନ୍ଦିର । ରାଧାନାଥ. ଉଷା । ) ଦେ. ବି—ସୂର୍ଯ୍ୟଦେବ—The Sun-god. ପ୍ରାଦେ ( ଗଞ୍ଜାମ ) ବି—ବିଷ୍ଣୁରୂପୀ ସୂର୍ଯ୍ୟ-ମୂର୍ତ୍ତି—Name of an idol reprsenting the Sun-god. [ ଦ୍ର—ଗଞ୍ଜାମର ବୁଗୁଡ଼ା ଗ୍ରାମର ଗୋଟିଏ ମଠରେ ଏ ଦେବତାଙ୍କର ମୂର୍ତ୍ତି ପୂଜିତ ହେଉଅଛନ୍ତି । ଲୋକଙ୍କର ବିରଞ୍ଚି ରୋଗ ହେଲେ ଲୋକେ ଏହାଙ୍କଠାରେ ଭୋଗ ମନାସି କରନ୍ତି । ଶମ୍ଭର ଦଶମୀଦିନ ଏହାଙ୍କର ପ୍ରଧାନ ପର୍ବ ଓ ମେଳା ହୁଏ । ]

ବିରଞ୍ଚିବା—ଗ୍ରା ( ପଦ୍ୟ ) କ୍ରି ( ସଂ. ବିରଚନ )—ବିରଚିବା; ରଚିବା;
Birañchiba ରଚନା କରିବା—To compose; to
ବିବଚା **বরচনা** construct; to compile.

ବିରତ—ସଂ. ବିଣ ( ବି+ରମ୍ ଧାତୁ+କର୍ତ୍ତୃ କ୍ତ )—୧ । କ୍ଷାନ୍ତ; ନିବୃତ୍ତ
Birata 1. Stopped; ceased from; desisted. ୨ । ପରାଙ୍ମୁଖ; ବିମୁଖ—2. Averse. ୩ । ଭ୍ରାନ୍ତ—3. Erring; mistaken.

ବିରତି—ସଂ. ବି ( ବି+ରମ୍ ଧାତୁ+ଭାବ କ୍ତି )—୧ । ନିବୃତ୍ତି; ବିରାମ
Birati —1. Cessation; stoppage. ୨ । ଶାନ୍ତି—2. Peace; satiety. ୩ । ବିଶ୍ରାମ—3. Rest; relaxation. ୪ । ଅଭାବ—4. Want. ( ଉ—ସଂବେଶ ଅଶନ ବିରତିରେ । କବିସୂର୍ଯ୍ୟ. କଶୋରଚନ୍ଦ୍ର କ, ଗୀତ । ) ୫ । ବିରାଗ—5. Aversion; dislike; disgust.

ବିରତି ବ୍ୟଞ୍ଜକ ପ୍ରତିକ୍ରିୟା—ସଂ. ବି ( ବିଜ୍ଞାନ ପରିଭାଷା )—ଯେଉଁ
Birati byañjaka pratikriyā ପ୍ରତିକ୍ରିୟା ନିବୃତ୍ତିମୂଳକ ଅଟେ—Negative response or reaction.

ବିରଥ—ସଂ. ବିଣ. ପୁଂ(ବହୁବ୍ରୀହି; ବି=ବିଗତ+ରଥ)—ରଥଚ୍ୟୁତ—
Biratha Deprived of a war-chariot; unseated. (ଉ—ବିରଥ ହୋଇ ସେ ପଡ଼ିଛନ୍ତି ରଣାଙ୍ଗନେ । ମଧୁସୂଦନ. (ବିରଥା—ସ୍ତ୍ରୀ) କର୍ଣ୍ଣବଧ । )

ବିରଥୀ—ଦେ. ବିଣ(ସଂ. ବିରଥ)—୧ । ରଥଚ୍ୟୁତ—1. Deprived
Birathī of a war-chariot; unseated. [ ଉ—ପାଣ୍ଡବ ସୁତମାନେ ସମସ୍ତେ ମହାରଥୀ, କେ ତାହାଙ୍କୁ କରିବ ମୋହର ବିରଥୀ । କୃଷ୍ଣସିଂହ ମହାଭାରତ ବନ । ] ୨ । ସାରଥି ହୀନ—2. Deprived of a charioteer. [ ଉ—ମୋହ ଯାଇଣ ସ୍ୱବଶ ହୋଇଲେ ବିରଥୀ, ଦେଖି ମନେ ମନେ ଡରୁଥିନ୍ତି ଦାଶରଥୀ । ବିଶ୍ୱନାଥ. ବିଚିତ୍ରରାମାୟଣ । ]

ବିରବ—ଦେ (ପ୍ରାଚୀନ ପଦ୍ୟ) ବି—ଗର୍ଜନ—Roaring sound.
Biraba [ଉ—ବେତାଳ ଭଇରବ ସବୁସ୍ୱେ ଭଇରବ କରିବ ଖଣ୍ଡୁକରୀ ବନ୍ଧ । ଉଞ୍ଜ. ବୈଦେହୀଶବିଳାସ ।]

ବିରମିବା—ଦେ(ପଦ୍ୟ)କ୍ରି(ସଂ.ବି+ରମ ଧାତୁ)—୧ । ବିରତ ହେବା—
Birmibā 1. To stop; to cease; to desist. ୨ । ବିଶ୍ରାମ
ବିରମା **বিরমনা** କରିବା—2. To rest.

ବିରଳ—ସଂ. ବିଣ (ବି=ପୃଥକ୍+ର ଧାତୁ=ଦେବା+କର୍ତ୍ତୃ. ଅଳ)—
Birala ୧ । ଅନିବିଡ଼; ଛଡ଼ାଛଡ଼ା; ଫାଙ୍କଫାଙ୍କିଆ—1. Thin; loose; sparse. ୨ । ଶିଥିଳ; ଢ଼ିଲା—2. Slack; relaxed. ୩ । ବ୍ୟବହିତ—3. Interposed. ୪ । ଅଳ୍ପ—4. Few; small; little. ୫ । ନିର୍ଜନ—5. Lonely; secluded. ସଂ. ବି—୧ । ନିର୍ଜନ ସ୍ଥାନ—1. A secluded place. ୨ । ଦଧି—2. Curd. ଦେ. ବିଣ—୧ । ସୁନ୍ଦର—1. Beautiful. [ ଉ—ବିରଳ ଅଙ୍ଗୁଳି ନଷ୍ଟେ ଚମ୍ପାକଳୀ ଶିରୀଷ କୋମଳ ଦେହ । ଉଞ୍ଜ. ବୈଦେ ହୀଶବିଳାସ । ] ୨ । ସ୍ପଷ୍ଟ—2. Distinct. [ ଉ—ବିରଳ ଗନ୍ଧବଗାନେ ଶ୍ୟାମ ସାର ସ୍ୱର । ଭଞ୍ଜ. ବୈଦେହୀଶ ବିଳାସ । ]

ବିରଳଜାନୁକ—ସଂ. ବିଣ (ବହୁବ୍ରୀହି; ବିରଳ+ଜାନୁ, କ ଆଗମ)—
Biralajānuka ୧ । ଲମ୍ବାଜାନୁବିଶିଷ୍ଟ-1. Having long knees. ୨ । ବକ୍ରଜାନୁବିଶିଷ୍ଟ (ପ୍ରକୃତ ବାଦ)—2. Having crooked knees.
(ବିରଳଜାନୁକା—ସ୍ତ୍ରୀ)

ବିରସ—ସଂ. ବିଣ (ବହୁବ୍ରୀହି; ବି=ନାହିଁ+ରସ)—୧ । ରସବିହୀନ; ନୀରସ—1. Sapless; juiceless. ୨ । ଶୁଷ୍କ—2. Dry. ୩ । ରସିକତାଶୂନ୍ୟ; ଅରସିକ—3. Devoid of wit or humour. ୪ । ବିରକ୍ତିଜନକ—4 Disgusting. ୫ । ଅତୃପ୍ତିକର—5. Unplaasant. ୬ । ବିସ୍ୱାଦୁ—6. Tasteless; vapid; insipid; ill-flavoured. ୭ । ବିଷଣ୍ଣ—7. Dejected. ସଂ. ବି—୧ । ଅଶ୍ରଦ୍ଧା—1. Distrust; disregard; dislike. ୨ । ଅଭକ୍ତି—2. Disaffection. ୩ । ବିଷାଦ—3. Dejection; sadness. ଦେ. ବିଣ—୧ । ହର୍ଷଶୂନ୍ୟ—1. Devoid of joy. ୨ । ହାସ୍ୟଶୂନ୍ୟ—2. Devoid of laugh or smile.
Birasa
(ବିପରୀତ—ସରସ)
(ବିରସତା—ବି)
विरस
उदास, विरस

ବିରସ କଥା—ଦେ. ବି—୧ । ବିଷାଦସୂଚକ ବାକ୍ୟ—1. Sad words. ୨ । ହର୍ଷ ବା ପ୍ରଫୁଲ୍ଲତାଶୂନ୍ୟ ବଚନ—2. Words uttered without gladness.
Birasa kathā
(ବିରସ ବଚନ—ଅନ୍ୟରୂପ)
विरस कथा विरस बात

ବିରସ କରିବା—ଦେ. କ୍ରି—(ମୁହଁକୁ) ଶୁଖାଇବା ବା ହର୍ଷଶୂନ୍ୟ କରିବା—
Birasa karibā विरसकरा विरस करना To have a sad face.

ବିରସ ମୁଖ—ସଂ. ବିଣ, ପୁଂ ( ବହୁବ୍ରୀହି; ବିରସ+ମୁଖ )—ଯାହାର ମୁହଁ ବିଷଣ୍ଣ ବା ଶୁଖିଲା ଦେଖାଯାଏ—Having a dejected countenance. ସଂ. ବି (କର୍ମଧା)—ବିଷଣ୍ଣ ବଦନ; ଶୁଖିଲା ମୁହଁ—Sad face; dejected countenance
Birasa mukha
(ବିରସବଦନ—ଅନ୍ୟରୂପ)
ବିରସମୁଖୀ } ସ୍ତ୍ରୀ
ବିରସବଦନା }
(ବିରସବଦନୀ—ଦେ. ସ୍ତ୍ରୀ)

ବିରସ ମୁଖା(ହାଁ)—ଦେ. ବିଣ—ବିରସ ମୁଖ—(ଦେଖ)
Birasa mukhā(hā̃) Birasa mukha (See)
( ବିରସମୁହାଁ—ଅନ୍ୟରୂପ ) [ ବିରସମୁହାଁ—ସ୍ତ୍ରୀ ]
विरस मुखो विरसमुहाँ; कनमुहाँ

ବିରସିତ(ତା)—ଦେ. ବିଣ. ପୁଂ (ସଂ. ବିରସ)—ବିଷାଦିତ; ଦୁଃଖିତ—
Birasita(tā) Sad (ଉ—ବାହରେ ଅନ୍ତର ଭେଟ, ମନ ବିରସ ବିରସିତା—ଭଞ୍ଜ. ବୈଦେହୀଶବିଳାସ । )

ବିରହ—ସଂ. ବି ( ବି+ରହ୍ ଧାତୁ=ତ୍ୟାଗ କରିବା+ଭାବ. ଅ)—
Biraha ୧ । ବିଚ୍ଛେଦ—1. Separation. ୨ । ବିୟୋଗ—2. Bereavement. ୩ । ପ୍ରେମିକ ପ୍ରେମିକାଙ୍କର ପରସ୍ପରଠାରୁ ଅନ୍ତରରେ ରହିବା ବା ଅନୁପସ୍ଥିତି—3. Separation between lovers. ୪ । ତ୍ୟାଗ—4. Relinquishment; abandonment. ୫ । ଅଭାବ—5. Want. ୬ । ଶୃଙ୍ଗାର ରସରେ ବିରହୀ ବ୍ୟକ୍ତିର ଅବସ୍ଥା ବିଶେଷ—6. The state of mind and body of a separated lover during the progress of love ୭ । ନ ଘଟିବା ଅବସ୍ଥା—7. Case of a thing not happening or coming to pass. [ଉ—ଘଟନା ବିରହରେ, ଅବଶ୍ୟ ତ ଜାହରେ, ତୋ ଯୋଗ ଆମ୍ଭମାନେ ହୋଇଲୁରେ । କବିସୂର୍ଯ୍ୟ. କଳୋଲ୍ଲାସଲହରୀ ଘ ଗୀତ । ]

ବିରହ କାତର—ସଂ.ବିଣ.ପୁଂ—(୭ମୀ, ୬ଷ୍ଠୀ ବା ୩ୟା ତତ୍)—ପ୍ରିୟଜନ ବିଚ୍ଛେଦରେ ଅତି ଦୁଃଖିତ—Grieved on account of living saparated from one's sweet heart.
Biraha kātara
(ବିରହବିଧୁର—ଅନ୍ୟରୂପ)
(ବିରହ କାତରା,ବିରହବିଧୁରା—ସ୍ତ୍ରୀ)

ବିରହ ଜ୍ୱାଳା—ସଂ. ବି—ପ୍ରିୟଜନ ବିଚ୍ଛେଦ ଜନିତ କଷ୍ଟ—Pangs or torment due to separation from a lover; pangs of separation.
Biraha jwālā
ବିରହଦୁଃଖ, ବିରହବେଦନା, } (ବିରହଜ୍ୱାଳା—ଦେ. ରୂପ)
ବିଚ୍ଛେଦବ୍ୟଥା, ବିରହ ଯନ୍ତ୍ରଣା, } —ଅନ୍ୟରୂପ
ବିରହ ଯାତନା }

ବିରହ ଦଶା—ସଂ. ବି—ବିଚ୍ଛେଦ ଘଟିବା ଯୋଗୁଁ ପ୍ରେମିକ ପ୍ରେମିକାଙ୍କଠାରେ ଲକ୍ଷିତ କ୍ରମିକ ବିଭିନ୍ନ ଅବସ୍ଥା—The different stages which separated lovers pass successively through. [ଦ୍ର—ଏହା ଦଶବିଧ—ଅଭିଳାଷ, ଚିନ୍ତା; ସ୍ମୃତି, ଗୁଣ କଥନ, ଉଦ୍‌ବେଗ, ସମ୍ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ଶେଷରେ ମୃତ୍ୟୁ । ]
Biraha dasā

ବିରହାଗ୍ନି—ସଂ. ବି—(ରୂପକ କର୍ମଧା, ବିରହ+ଅଗ୍ନି)—ବିଚ୍ଛେଦରୂପ ଅଗ୍ନି; ଅଗ୍ନି ବତ୍ ଶରୀରକୁ ପୀଡ଼ା ଦେଉଥିବା ବିରହଦୁଃଖ—Torment due to separation from one's beloved (compared to the pangs of burning).
Birahāgni
(ବିରହାନଳ—ଅନ୍ୟରୂପ)

ବିରହିତ—ସଂ. ବିଣ—(ବିରହ+ଇତ)—୧ । ବିହୀନ; ରହିତ—1. Bereft. ୨ । ବିଚ୍ଛେଦପ୍ରାପ୍ତ—2. Separated; left alone. ୩ । ପରିତ୍ୟକ୍ତ—3. Forsaken; deserted; relinquished.
Birahita

ବିରହୀ—ସ. ବିଣ. ତି°—(ବିରହ+ଇନ୍; ୧ମା. ୧ବ)—ପ୍ରିୟଜନଠାରୁ
Birahī ବିଚ୍ଛେଦଯୁକ୍ତ—Separated from one's beloved.
(ବିରହିଣୀ—ସ୍ତ୍ରୀ)

ବିରହୋତ୍କଣ୍ଠା—ସ. ବି—(୬ଷ୍ଠୀ ତତ୍; ବିରହ+ଉତ୍କଣ୍ଠା)—ପ୍ରିୟଜନ
Birahotkanthā ବିରହଜନିତ ବ୍ୟାକୁଳତା—Anxiety or
(ବିରହୋତ୍କଣ୍ଠିତ—ବିଣ. ପୁଂ) agony of a separated lover.

ବିରହୋତ୍କଣ୍ଠିତା—ସ. ବି. ସ୍ତ୍ରୀ—କାବ୍ୟାଦିରେ ବର୍ଣ୍ଣିତ ନାୟିକାବିଶେଷ;
Birahotknanthitā ସ୍ୱାମୀ ବିରହଦ୍ୱାରା କାତର ସ୍ତ୍ରୀ—A lady suffering from agony due to separation from her lover.
ସ. ବିଣ. ସ୍ତ୍ରୀ—ପ୍ରିୟବିରହ ଯୋଗୁଁ ଉତ୍କଣ୍ଠା ଜର୍ଜରିତା—(a woman) Suffering agony on account of teparation from her lover or husband.

ବିରା—ପ୍ରାଦେ.—(ଗଞ୍ଜାମ) ବି.—ବ୍ରଣ—A boil.
Birā ଦେ. ବି—(ରାଜପୁତାନା) (ସଂ. ବୀଟକା)—ରାଜପୁତାନାରେ ଦୁଇଜଣ ବନ୍ଧୁ ବା ପ୍ରେମିକ ପ୍ରେମିକା ପରସ୍ପରଠାରୁ ବିଦାୟ ନେଉଥିବା ବେଳେ ଯେଉଁ ତାମ୍ବୁଲ ବା ପାନଖିଲ ବିଅଦଳ କରନ୍ତି—Betel packets exchanged between two parting friends or lovers in Rajputana. ବୈଦେ. ବି—
बिड़ा बीरसपाप (ଇଂ ବିଅର୍) ଯବ ଧାନରୁ ପ୍ରସ୍ତୁତ ଏକପ୍ରକାର
(ବିରସପାପ—ଅନ୍ୟରୂପ) ଅଳ୍ପ ମଦ—Beer.

ବିରାଗ—ସ. ବି (ବି+ରଞ୍ଜ ଧାତୁ+ଭାବ. ଅ)—୧ । ଔଦାସ୍ୟ;
Birāga ନିସ୍ପୃହତା—1. Apathy; indifference. ୨ । ଅସନ୍ତୋଷ; ବିରକ୍ତି—2. Dissatisfaction; displeasure; annoynce. ୩ । ଅନନୁରାଗ—3. Dislike. ୪ । ବୈରାଗ୍ୟ—3. Indifference to worldly concerns; relinquishment of worldly cares. ୫ । ବର୍ଣ୍ଣର ପରିବର୍ତ୍ତନ—5. Change of colour. ଦେ. ବି—କ୍ରୋଧ—Rage; anger.
ସ. ବିଣ—ରାଗଶୂନ୍ୟ—Free from anger or passions. ଗ୍ରା. ବିଣ କ୍ରୁଦ୍ଧ—Angry.

ବିରାଗ ଭାଜନ—ସ.ବିଣ. ପୁଂ ଓ ସ୍ତ୍ରୀ—ଅସନ୍ତୋଷର ପାତ୍ର—Subject of
Birāga bhājana dislike; having incurred the displeasure of.

ବିରାଗୀ—ସ. ବିଣ.ପୁ° (ବିରାଗ+ଇନ୍; ୧ମା. ୧ବ)—୧ । ଉଦାସୀନ—
Birāgī 1. Indifferent. ୨ । ବିରାଗଯୁକ୍ତ—2. Enter-
(ବିରାଗିଣୀ—ସ୍ତ୍ରୀ) taining an aversion or dislike.

ବିରାଜ୍(ଜ)—ସ. ବି (ବି+ରାଜ୍ ଧାତୁ+ଭାବ. କ୍ୱିପ୍; ଅ)—୧ । ପ୍ରକାଶ—
Birāj(ja) 1. Manifestation. ୨ । ଶୋଭା; ସୌନ୍ଦର୍ଯ୍ୟ—2. Beauty (Apte). ୩ । ଦୀପ୍ତି—3. Lustre. ୪ । ଦର୍ଶନ ଯୋଗ୍ୟ ବସ୍ତୁ—4. An object worth seeing ୪ । (+କର୍ତ୍ତୃ. କ୍ୱିପ୍; ଅ) କ୍ଷତ୍ରିୟ—5. A member of the Kshatriya caste (Apte). ୬ । ବ୍ରହ୍ମାଙ୍କ ପ୍ରଥମ ପୁତ୍ର—6. The first progeny of Brahmā (Apte). ୭ । ଶରୀର; ଦେହ—7. The body (Apte). ୮ । (ନ୍ୟାୟ ଦର୍ଶନ) ଦେହ ଉପରେ ଅଧିକାରୀ ବୁଦ୍ଧି—8. (Nyāya philosophy) Intellect which rules over the aggregate of bodies (Apte) ସ. ବିଣ—ଉଜ୍ଜ୍ୱଳ—1. Shining; brilliant. ଦେ. ବିଣ—୧ । ପ୍ରକାଣ୍ଡ; ବିରାଟ—1. Gigantic; huge. (ଉ—ବିରାଜ ରୂପ ଯାହାର ପୁଣି, ଦ୍ୱିଜ ଭକ୍ତ ଯା ଦର୍ଶନ ଗୁଣି, ଅସ୍ତ ଭୂଧର ଶିଖରେ ଭଣି, ଭ ଶ୍ରଭ୍ର ଜାଣି ସେ । ଉଞ୍ଜ. ବୈଦେହୀଶବିଳାସ ।) ୨ । ବିରାଜିତ; ଶୋଭିତ—2 Shining. ୩ । ବିରଜମାନ (ଦେଖ)—3. Birajamāna (See) (ଉ—ଫଣାର ଉପରେ ମଣି ହୋଇଛି ବିରାଜ । ପ୍ରାଚୀ ବ୍ରହ୍ମକରୂପଣ ଗୀତା ।)

ବିରାଜ କରିବା—ଦେ. କ୍ରି—୧ । ବିରାଜିତ ହେବା; ବିଜେ କରିବା—
Birāja kariba 1. To be present; to appear. विराज करा ୨ । (କୌଣସି ସ୍ଥାନରେ) ଶୋଭା ପାଇବା—2 To
बिराजना shine or look grand.

ବିରାଜମାନ—ସ. ବିଣ. ପୁ° (ବି+ରାଜ୍ ଧାତୁ+କର୍ତ୍ତୃ. ଆନ)—
Birājamāna ୧ । ଶୋଭମାନ; ଦୀପ୍ତି ବିଶିଷ୍ଟ—1. Shining;
(ବିରାଜମାନା—ସ୍ତ୍ରୀ) splendid. ୨ । ବିରାଜିତ; ଉପସ୍ଥିତ; ବିଦ୍ୟମାନ—2. Present.

ବିରାଜମାନ ହେବା—ଦେ. କ୍ରି (ଦେବତା, ରାଜା ଓ ମାନ୍ୟ ବ୍ୟକ୍ତିଙ୍କ ପ୍ରତି
Birājamāna hebā ପ୍ରଯୋଜ୍ୟ)—୧ । ବିଜେ କରିବା; विराजमान हওয়া ଉପସ୍ଥିତ ହେବା—1. To be present. ୨ । विराजमान होना ଉପବେଶନ କରିବା—2. To sit. ୩ । ଯିବା-
(ବିରାଜମାନ କରିବା—ଗ୍ରାମ୍ୟରୂପ) 3. To go. ୪ । ଆସିବା—4. To come. [ଦ୍ର—ବିରାଜମାନ ଯଦ୍ୟପି ବିଶେଷଣ ପଦ ଅଟେ ଓ 'ବିରାଜମାନ ହେବା' ଶୁଦ୍ଧ ପ୍ରୟୋଗ ଅଟେ; କିନ୍ତୁ ଲୋକେ ବିରାଜମାନ କରିବା ରୂପରେ ବ୍ୟବହାର କରନ୍ତି ।]

ବିରାଜି—ସ. ବି (ବି=ପକ୍ଷୀ+ରାଜି=ସମୂହ)—ପକ୍ଷୀମାନେ; ପକ୍ଷୀ ସମୂହ—
Birāji Birds; a flock or brood of birds. (ଉ—ବିରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ, ରାଜୀବ ରାଜୀବନୟନା ତହିଁ ଖେଳା କରଇ । ଉଞ୍ଜ. ଲାବଣ୍ୟବତୀ ।)
ଦେ.ବି—୧ । ବିରାଦର (ଦେଖ)—1. Birādara (See)
୨ । ସମୂହ—2. Multitude.
(ଉ—ବଡ ବିରାଜିଙ୍କୁ ଶିଖାଏ ସରିତ, ଧୂନବାଙ୍କୁ ବନ୍ଦୀ-ସମାଧି-ସଙ୍ଗୀତ । ଅଜୟଚନ୍ଦ୍ର ଶେଷ ବନ୍ଦୀ ଭାରତୀ ।)

ବିରାଜିତ—ସ. ବିଣ. ପୁ° (ବି=ରାଜ୍ ଧାତୁ+କର୍ମ. ତ)—୧ । ପ୍ରକାଶିତ-
Birājita 1. Manifested; displayed. ୨ । (+କର୍ତ୍ତୃ. ତ) ଉପସ୍ଥିତ—2. Present; attending. ୩ । ଶୋଭମାନ; ଶୋଭିତ—3. Splendid; shining; beautiful. ୪ । ଯାହାର ଶୋଭମାନ ମୂର୍ତ୍ତି ଦୃଷ୍ଟିଗୋଚର ହୁଏ—4. Exhibited to view view.

ବିରାଜିବା—ଦେ. କ୍ରି ( ସଂ. ବି+ରାଜ୍ ଧାତୁ )—୧ । ଆସିବା; ବିଜେ
Birājibā କରିବା—1. To come. (ଉ—ବିଜନ ସ୍ଥଳେ ସେ
ବିରାଜା ବଳେ ବିରାଜିବ କ୍ଷଣରୁତ ଉଚିତ ରେ । କବିସୂର୍ଯ୍ୟ
**विराजना** ବଳୋଗ୍ରଚମ୍ପୂ ୦ ଗୀତ । ) ୨ । ବିରାଜିତ ହେବା;
ଶୋଭିବା; ଶୋଭା ପାଇବା—2. To shine; to look
grand. ୩ । ଉପସ୍ଥିତ ହେବା—3. To appear;
to be present. (ଉ—ବିରାଜ ବିରାଜ ଅଛନ୍ତି ମୀନ
ଭକ୍ଷଣ ପାଇ । ଉପେ. ଲାବଣ୍ୟବତୀ । )—୪ । ବିଜେ
କରିବା; ବସିବା—4. To be seated.
[ଉ—ମୋ ଅଙ୍କେ ବିରାଜି ଖେଳବାକୁ—କବିସୂର୍ଯ୍ୟ. ସଙ୍ଗୀତ ।]
୫ । ବିଦ୍ୟମାନ ବା ଅବସ୍ଥିତ ହେବା—5. To exist.
[ ଉ—ସୂର୍ପାରକେ ଜମଦଗ୍ନିଙ୍କ ଦେଖା ଅଛି, ଅଶୋକତୀର୍ଥ
ମଧ୍ୟ ତହିଁ ବିରାଜିଛି—କୃଷ୍ଣସିଂହ. ମହାଭାରତ. ବନ । ]

ବିରାଟ୍—ସଂ. ବି ( ବି+ରାଜ୍ ଧାତୁ+କର୍ତ୍ତି. କ୍ୱିପ୍; ୧ମା. ୧ବ )—
Birāṭ ୧ । କ୍ଷତ୍ରିୟ—1. A person of the warrior
caste. ୨ । (+ଭାବ କ୍ୱିପ୍) କାନ୍ତି—2. Splendour;
lustre. ୩ । ସର୍ବବ୍ୟାପୀ ପୁରୁଷ; ପରମେଶ୍ୱର—3. The
all-pervading God.

ବିରାଟ—ଦେ. ବିଣ ( ବି+ରାଜ୍ ଧାତୁ )—୧ । ପ୍ରକାଣ୍ଡ; ବିଶାଳ—
Birāṭa विराट **विराट** 1. Gigantic; enormous; huge.
୨ । ମହତ୍—2. Splendid; great; grand.
ସଂ ବି (ବି+ରଟ ଧାତୁ+କର୍ମ. ଅ )—୧ । ବଙ୍ଗଦେଶର
ଉତ୍ତରାଂଶରେ ଅବସ୍ଥିତ ଅଧୁନିକ ବଗୁଡ଼ାଜିଲ୍ଲାର ସନ୍ନିହିତ
ପ୍ରାଚୀନ ରାଜ୍ୟ ଓ ନଗର ( ମତାନ୍ତରେ ଆର୍ଯ୍ୟାବର୍ତ୍ତର
ଜୟପୁର ରାଜ୍ୟ )—1. An ancient country in
the north of Bengal, adjoining the district
of Bogra. [ ଦ୍ର—ଏହି ଦେଶର ରାଜାଙ୍କ ନିକଟରେ
ପାଣ୍ଡବମାନେ ଅଜ୍ଞାତ ବନବାସର ତ୍ରୟୋଦଶ ବର୍ଷରେ
ପ୍ରଚ୍ଛନ୍ନଭାବରେ ଛଦ୍ମବେଶରେ ଅବସ୍ଥାନ କରିଥିଲେ । ଏହି
ରାଜାଙ୍କର ଶ୍ୟାଳକ ଓ ସେନାପତି କୀଚକଦ୍ୱାରା ଦ୍ରୌପଦୀ
ଅପମାନିତା ହୋଇଥିବାରୁ କୀଚକ ଭୀମଙ୍କଦ୍ୱାରା ହତ ହୋଇ
ଥିଲା । ଏ ରାଜାଙ୍କ କନ୍ୟା ଉତ୍ତରାଙ୍କ ସଙ୍ଗେ ଅର୍ଜୁନପୁତ୍ର
ଅଭିମନ୍ୟୁଙ୍କର ବିବାହ ହୋଇଥିଲା । ] ୨ । ବିରାଟଦେଶର
ରାଜା—2. The king of Birāṭa country.
୩ । ମହାଭାରତୋକ୍ତ ପଞ୍ଚପାଣ୍ଡବଙ୍କର ଆଶ୍ରୟଦାତା ବିରାଟର
ବା ମତ୍ସ୍ୟଦେଶର ରାଜା—3. (specially applied to)
The king of Birāṭa country in whose court
the exiled Pāndaba brothers had taken
shelter. ୪ । ( ଦର୍ଶନଶାସ୍ତ୍ର ) ସମସ୍ତ ବ୍ରହ୍ମାଣ୍ଡରେ
ସମଷ୍ଟିଭାବରେ ବିରାଜିତ ଚୈତନ୍ୟ ବା ସର୍ବବ୍ୟାପୀ ଭଗବାନଙ୍କ
ସତ୍ତା—4. (Hindu philosophy) The Supreme
consciousness or Soul pervading
the universe. ୫ । ପରମେଶ୍ୱର—5. The
omnipresent God. ୬ । କ୍ଷତ୍ରିୟ—6. A
Kshatriya; a man of the military caste
amongst the Hindus. ୭ । ସ୍ୱାୟମ୍ଭୁବ ମନୁ—
7. The 1st progeny of Brahmā; the
first ancestor of mankind. ୮ । କାନ୍ତି;
ଦୀପ୍ତି—8. Lustre; splendour; beauty, ୯ ।
ଛନ୍ଦୋବିଶେଷ—9. Name of a Sanskrit metre.
୧୦ । ଏକପ୍ରକାର ନାଗସାପ—10. A species of
cobra. ଦେ. ବି(ସଂ, ବିରାଜ)—ଗରୁଡ଼—Garurda,
the king of birds. [ ଉ—ବିରାଟ ମୁକୁଟ ସେହି,
ବିରାଟ ଧ୍ୱଜରେ ରହି, ବିରାଟମୂର୍ତ୍ତିରେ ହେଲା, ହୋଇଲେ ତହିଁ
ସେ ଉପେ. ବୈଦେହୀଶବିଳାସ । ]

ବିରାଟକାୟ—ଦେ. ବିଣ. ପୁଂ ଓ ସ୍ତ୍ରୀ—ବିଶାଳକାୟ; ଯାହାର ଶରୀର
Birāṭakāya ଅତି ବୃହତ୍—Gigantic.
ଦେ. ବି—ବିଶାଳ ଦେହ—Big body.

ବିରାଟଜ(କ)—ସଂ. ବି ( ବିରାଟ+ଜନ୍ ଧାତୁ+କର୍ତ୍ତି. ଅ )—ବିରାଟ
Birāṭaja(ka) ଦେଶଜାତ ଏକପ୍ରକାର ନିକୃଷ୍ଟ ହୀରକ—A kind
of inferior diamond got in the Birāṭa
country.

ବିରାଟ ତନୟ—ସଂ ବି. ପୁଂ ( ୬ଷ୍ଠୀ ତତ୍ )—ମହାଭାରତୋକ୍ତ ବିରାଟ
Birāṭa tanaya ରାଜାଙ୍କର ପୁତ୍ର, ଉତ୍ତର – The son of
the king of Birāṭa.

ବିରାଟ ତନୟା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—ମହାଭାରତୋକ୍ତ ବିରାଟରାଜାଙ୍କ
Birāṭa tanayā କନ୍ୟା, ଉତ୍ତରା—The daughter of the
king of Birāṭa. [ଦ୍ର—ବୃହନ୍ନଳା ନାମ ଗ୍ରହଣ କରି-
ଥିବା ନପୁଂସକ ବେଶଧାରୀ ଅର୍ଜୁନ ଏହାଙ୍କୁ ସଙ୍ଗୀତ ଓ
ନୃତ୍ୟବିଦ୍ୟା ଶିକ୍ଷା ଦେଉଥିଲେ ଏବଂ ଶେଷରେ ଏ ଅର୍ଜୁନଙ୍କ
ପୁତ୍ର ଅଭିମନ୍ୟୁଙ୍କୁ ବିବାହ କରିଥିଲେ । ଏହାଙ୍କଠାରୁ
ଯୁଧିଷ୍ଠିରଙ୍କ ଉତ୍ତରାଧିକାରୀ ପରୀକ୍ଷିତ ଜନ୍ମଗ୍ରହଣ କରିଥିଲେ ।]

ବିରାଟ ଦେଶ—ସଂ. ବି—ମହାଭାରତୋକ୍ତ ମତ୍ସ୍ୟଦେଶ ( ଯେଉଁଠାରେ
Birāṭadesa ପାଣ୍ଡବମାନେ ପ୍ରଚ୍ଛନ୍ନଭାବରେ ଆଶ୍ରୟ ନେଇଥିଲେ);
( ବିରାଟରାଜ୍ୟ – ଅନ୍ୟରୂପ ) ଅଧୁନିକ ଉତ୍ତରବଙ୍ଗର ବଗୁଡ଼ା
ସନ୍ନିହିତ ପ୍ରାଚୀନ ଦେଶବିଶେଷ—Name of an ancient
kingdom in the north of Bengal.

ବିରାଟନଗର—ସଂ. ବି—ପ୍ରାଚୀନ ବିରାଟଦେଶର ରାଜଧାନୀ—The
Birāṭanagara capital of the ancient kingdom of
ବିରାଟପୁର(ରୀ) Birāṭa.
ବିରାଟନଗରୀ } ଅନ୍ୟରୂପ [ ଦ୍ର—ନେପାଳ ରାଜ୍ୟର ଦକ୍ଷିଣ
ବିରାଟ ରାଜଧାନୀ } ସୀମା ଓ ପୂର୍ଣ୍ଣିଆଜିଲ୍ଲାର ସୀମାନ୍ତ
ପ୍ରଦେଶରେ ନେପାଳର ଯୋଗବାଣୀ ସହର ନିକଟରେ
ବିରାଟନଗର ବୋଲି ଗୋଟିଏ ସହର ଅଛି । ଏହା ଗୋଟିଏ
ବାଣିଜ୍ୟସ୍ଥଳୀ । ସ୍ଥାନୀୟ ଜନଶ୍ରୁତି ଓ କେତେକ ଭଗ୍ନାବ-
ଶେଷରୁ ଲୋକେ ଏହାକୁ ପ୍ରାଚୀନ ବିରାଟ ରାଜଧାନୀ
ବୋଲି କହନ୍ତି । ]

**ବିରାଟ ପର୍ବ**—ସଂ. ବି—ମହାଭାରତର ୧୮ ପର୍ବ ମଧ୍ୟରୁ ଏକତମ—One
Birāṭaparba the 18 books of the Mahābhārata.
[ଦ୍ର—ଏଥିରେ ପାଣ୍ଡବମାନେ ବିରାଟ ରାଜାଙ୍କ ଗୃହରେ ଆଶ୍ରୟ ନେବା ବିଷୟ ବର୍ଣ୍ଣିତ ହୋଇଅଛି ।] ଦେ. ବି—୧ । ଭୟାନକ କାଣ୍ଡ—1. A hubbub; a serious state of affairs ୨ । ମହା ଆଡ଼ମ୍ବରପୂର୍ଣ୍ଣ ବିଷୟ—2. A grand display.

**ବିରାଟ ମୂର୍ତ୍ତି**—ଦେ. ବି—ଭୟଙ୍କର ରୂପ—1. Dreadful appear-
Birāṭa mūrtti ance. ୨ । ବିଶାଳ ଶରୀର—2. Gigantic body. [ ଉ—( ୧+୨ ) ବାର୍ତ୍ତିଗର୍ଭସ୍ଥିତ ଏବେ କମଳାଅବଧି, ବିରାଟ ମୂର୍ତ୍ତିମାନେ ଭୁମୁର ବଡ଼ ସିଦ୍ଧି—ଭଞ୍ଜ. ବୈଦେହୀଶବିଳାସ । ]

**ବିରାଟ ରଜା**—ଦେ. ବି ( ସଂ ବିରାଟରାଜ )—ବିରାଟ ଦେଶର ନୃପତି—
Birāṭa rājā The king of Birāṭa country.
ବିରାଟ ରାଜ—ସଂ. ରୂପ) (ବିରାଟ ରାଜନ—ଅନ୍ୟରୂପ)

**ବିରାଟ ରୂପ**—ଦେ. ବି—ବିଶାଳ ଶରୀର—Gigantic body ଦେ.
Birāṭarūpa ବି—ବିରାଟକାୟ; ବିଶାଳମୂର୍ତ୍ତି—Gigantic.
বিরাটরূপ; বিশ্বরূপ [ଦ୍ର—ମହାଭାରତ ଯୁଦ୍ଧକ୍ଷେତ୍ରରେ ଅର୍ଜୁନଙ୍କ ରଥ ଚାଳକ ସାରଥି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଭଗବଦ୍‌ଗୀତା ଉପଦେଶ ଦେଉଥିବା ସମୟରେ ଆପଣାର ଯେଉଁ ସର୍ବବ୍ରହ୍ମାଣ୍ଡବ୍ୟାପୀ ବିଶାଳରୂପ ବା ବିଶ୍ୱରୂପ ଦେଖାଇଥିଲେ, ଗୀତାର ୧୧ଶ ଅଧ୍ୟାୟରେ ତାହା ବିସ୍ତାରିତରୂପେ ବର୍ଣ୍ଣିତ ହୋଇଅଛି । ]
(ବିରାଟକାୟା, ବିରାଟମୂର୍ତ୍ତି—ଅନ୍ୟରୂପ)

**ବିରାଟି**—ଦେ. ବି ( ସଂ. ବୈରାଟି=ବିରାଟତନୟ )—ବିରାଟରାଜପୁତ୍ର
Birāṭi ଉତ୍ତର—The son of the king of Birāṭa.

**ବିରାଡ଼ି**—ଦେ. ବି ( ସଂ. ବିରାଳ )—ଗୃହପାଳିତ ଚତୁଷ୍ପଦ ଜନ୍ତୁବିଶେଷ;
Birārḍi ମାର୍ଜାର; ବିଡ଼ାଳ—The domestic
ସଂ. ପର୍ଯ୍ୟାୟ. ବିରାଳ, ବିଡ଼ାଳ, ବିଲ୍ଲାଲ, ମାର୍ଜାର, ଆଖୁଭୁକ୍
বিড়াল, বিরাল, বেরাল
बिल्ली, बिलार
ମ. मांजर
cat; Felis Catus. [ ଦ୍ର—ନାନାବର୍ଣ୍ଣର ବିରାଡ଼ି ଦେଖାଯାଆନ୍ତି । ଏମାନେ ମତ୍ସ୍ୟ, ମାଂସ, ଦୁଗ୍ଧ, ଅନ୍ନ ଆଦି ଖାଆନ୍ତି । ଏମାନେ ଖୁବ୍ ପୋଷ ମାନନ୍ତି । ପୋଷା ବିରାଡ଼ିକୁ ସ୍ନେହରେ ପୁଷି ସମ୍ବୋଧନ କରାଯାଏ । ଏମାନଙ୍କ ପାଦର ପଞ୍ଝାରେ ନଖ ଥାଏ । ସାଧାରଣତଃ ଏ ନଖମାନ ପାଦ ତଳର ମାଂସଳ ଅଂଶ ମଧ୍ୟରେ ଲୁଚି ରହିଥାଏ । ବିରାଡ଼ି ରାଗିଗଲେ ସେ ନଖମାନ ଖୋପ ମଧ୍ୟରୁ ବାହାରି ପଡ଼େ । ଏମାନେ ନଖକୁ ଶସ୍ତ୍ରରୂପେ ବ୍ୟବହାର କରନ୍ତି ଓ ଘରର ଚାଳ, କାନ୍ଥ ଓ ଗଛ ଉପରେ ଚଢ଼ି ମୂଷା ଓ କ୍ଷୁଦ୍ର ପକ୍ଷୀ ଆଦିଙ୍କୁ ଧରି ଖାଆନ୍ତି । ଏମାନଙ୍କ ଆଖି ରାତିରେ ଭଲ ଦେଖାଯାଏ । ଏମାନଙ୍କ ଋତୁକାଳ ଆଶ୍ୱିନ ଓ କାର୍ତ୍ତିକ, ଏବଂ ପୁଷ ମାଘରେ ଏମାନଙ୍କର ପିଲା ଜନ୍ମ ହୁଅନ୍ତି । ଜନ୍ମ ବେଳେ ଶିଶୁମାନଙ୍କର ଆଖି ଫିଟି ନ ଥାଏ । ଏକଜାତୀୟ ବିରାଡ଼ି ବଣରେ ଥାଆନ୍ତି । ଏମାନଙ୍କୁ ବଣଭୁଆ ବା କଟାସ ବୋଲାଯାଏ । ଅଣ୍ଡିରା ବିରାଡ଼ିକୁ 'ଭୁଆ' ବୋଲାଯାଏ । ଭୁଆମାନେ ବିରାଡ଼ିଛୁଆଙ୍କୁ ଖାଇଯାଆନ୍ତି ବୋଲି ମାଈ ବିରାଡ଼ି ଆପଣାର ଛୁଆଙ୍କୁ ଲୁଚାଇ ରଖିଥାଏ ଏବଂ ଛୁଆଙ୍କୁ ବେକଚମଡ଼ାରୁ କାମୁଡ଼ି ଧରି ବହୁବାର ସ୍ଥାନାନ୍ତରିତ କରିବାରେ ଲାଗିଥାଏ । ଏଥିପାଇଁ କୌଣସି ବ୍ୟକ୍ତି କୌଣସି ପଦାର୍ଥକୁ ବାରମ୍ବାର ସ୍ଥାନାନ୍ତରିତ କଲେ 'ସେ ଅମୁକ ଜିନିଷକୁ ବିରାଡ଼ିଛୁଆ ଭଳି କରୁଛି' ବୋଲି କୁହାଯାଏ । ବିରାଡ଼ିମାନେ କୋମଳଶଯ୍ୟା ଓ ନିଭୃତ ଚୂଲିମୁଣ୍ଡ ଆଦି ଉଷ୍ମ ସ୍ଥାନରେ ଶୋଇବାକୁ ସୁଖ ପାଆନ୍ତି । ପୋଷା ବିରାଡ଼ିଙ୍କୁ ଅନୁଲୋମ କରି ଆଉଁସିଲେ ସେ ଆନନ୍ଦରେ ଘୁଡ଼ୁଘୁଡ଼ୁ ଶବ୍ଦ କରେ । ଏମାନେ ମନୁଷ୍ୟଙ୍କ ଦେହରେ ଘଷି ହେବାକୁ ସୁଖ ପାଆନ୍ତି । କୁକୁରମାନେ ପ୍ରଭୁଭକ୍ତ ଏବଂ ପ୍ରଭୁ ସାଥିରେ ରହିବାକୁ ସୁଖ ପାଆନ୍ତି, ମାତ୍ର ବିରାଡ଼ିମାନଙ୍କର ପ୍ରଭୁ ଅପେକ୍ଷା ପ୍ରଭୁର ଗୃହ, ଅର୍ଥାତ୍ ଆପଣାର ରହିବା ସ୍ଥାନ ପ୍ରତି ବେଶୀ ମାୟାବନ୍ଧନ ଥିବାର ଦେଖାଯାଏ । ଏମାନେ ଜିଭଦ୍ୱାରା ଦୁଧ, ଜଳ ଆଦି ପିଇବା ବେଳେ ଚୁକୁ ଚୁକୁ ଶବ୍ଦ କରନ୍ତି । ବିରାଡ଼ି ବାଘଠାରୁ ଅତି ଛୋଟ, ମାତ୍ର ତାର ସବୁଅଙ୍ଗର ଗଢ଼ଣ ବାଘ ପରି । ]

**ବିରାଡ଼ି ଅଇଁଠା**—ଦେ. ବି—ଯେଉଁ ଖାଦ୍ୟଦ୍ରବ୍ୟରେ ବିରାଡ଼ି ମୁହଁ ଲଗାଇ
Birārḍi ainṭhā ଥାଏ—Food already touched by
বেরালের এঠোঁ बिल्लिकाजूठा the mouth of a cat.

**ବିରାଡ଼ି ଅନ୍ତଖାଇ ନାତି**—ପ୍ରାଦେ. (ଯାଜପୁର) ବି.ପୁଂ—ଏକପ୍ରକାର ଗାଳି-
Birārḍi antakhāi nāti A term of abuse. to males

**ବିରାଡ଼ିଆ**—ଦେ. ବିଣ—ବିରାଡ଼ିସମ୍ବନ୍ଧୀୟ—Relating to the cat;
Birārḍiā feline. ଦେ. ବି—୧ । ବିରାଡ଼ି ପରି ମାଟିଆ ରଙ୍ଗର ଏକପ୍ରକାର ଛୋଟ ନିର୍ବିଷ ସାପ, ମାଟିବିରାଡ଼ିଆ ସାପ—1. A species of earth-coloured small snake having no poison. [ ଦ୍ର—ଏମାନେ ନିର୍ବିଷ ଓ ଫଣାହୀନ; ଲମ୍ବରେ ହାତେ ପର୍ଯ୍ୟନ୍ତ ବଢ଼ନ୍ତି ।] ୨ । ଗୋରୁମାନଙ୍କୁ ଧରିବା ଏକପ୍ରକାର ଶରଦ ରୋଗ—2. A cattle disease; catarrh. [ ଦ୍ର—ଏଥିରେ ଗୋରୁଙ୍କ ଗଳାରୁ ଘୁଡ଼ୁ ଘୁଡ଼ୁ ଶବ୍ଦ ବାହାରେ । ୩ । ବାଛୁରୀମାନଙ୍କୁ ଧରିବା ଏକପ୍ରକାର କଣ୍ଡୁ ରୋଗ—3. A wasting disease attacking calves; eczema on the tail of calves.

**ବିରାଡ଼ି ଆଖି**—ଦେ. ବି—ବିରାଡ଼ିର ଦୃଷ୍ଟିପରି ତୀକ୍ଷ୍ଣ ଦୃଷ୍ଟି—Sharp-
Birārḍi ākhi ness of eyesight (like that of the
বেরালচোখ cat which can see in the dark). ଦେ. ବିଣ—ବିରାଡ଼ି ଆଖିଆ (ଦେଖ)—Birārḍi ākhiā (See).

**ବିରାଡ଼ିଆଖିଆ**—ଦେ. ବିଣ. ପୁଂ—୧ । ବିରାଡ଼ିର ଚକ୍ଷୁପରି ଚକ୍ଷୁର୍ବିଶିଷ୍ଟ;
Birārḍi ākhiā ଚିଲଆଖିଆ—1. Cat-eyed; grey-eyed.
ବିରାଡ଼ିଆଖୀ }
ବିରାଡ଼ିଆଖେଇ } ସ୍ତ୍ରୀ ୨ । ବିରାଡ଼ିର ଦୃଷ୍ଟିପରି ତୀକ୍ଷ୍ଣ ଦୃଷ୍ଟିଶକ୍ତିବିଶିଷ୍ଟ—2. Sharp-eyed like the cat.
বিড়াল চোখো कुञ्जरा

ବିରାଡ଼ି ଅଞ୍ଚ(ମ୍ପୁ)ଡ଼ା—ଦେ. ବି— ବିରାଡ଼ିର ନଖଦ୍ୱାରା ଶଯ୍ୟା ବା କାନ୍ଥ Birārdi ānchu(mpu)rdā ଆଦି ରାମ୍ପୁଡ଼ିବା—Scratching of a cat with the nails of its paw.
ବିରାଡ଼ି ଅଞ୍ଚୁଡ଼ା, ବିରାଡି ରାମ୍ପୁଡ଼ା } ଅନ୍ୟରୂପ
বিরালেবআঁচোড় बिल्लीका नोचाड

ବିରାଡି ଖୁଆ ଖୋଇ—ଦେ. ବି—ମାର୍ଜାରଯୁଦ୍ଧ; ବିରାଡ଼ିମାନଙ୍କ ମଧ୍ୟରେ Birrdi khuā khoi ନଖ ଓ ଦନ୍ତଦ୍ୱାରା ହେବା ଯୁଦ୍ଧ— বিরালেব ঝগড়া बिल्लीकी लड़ाइ A fight between cats.

ବିରାଡ଼ିଖୋଜିଆ—ଦେ. ବି—ଭୂତଅଇର ( ଦେଖ )—Bhuta airi Birārdikhojiā (See); Premmā Integrifolia. (ବିରାଡ଼ିଖୋଜା—ଅନ୍ୟରୂପ)

ବିରାଡ଼ି ଛୁଆ—ଦେ. ବି—ମାର୍ଜାରଶାବକ; ବିରାଡ଼ିର ପିଲା—Kitten Birārdi chhuā বিড়ালছানা बिलोटा

ବିରାଡ଼ି ଝାମ୍ପ—ଦେ. ବି—ବିରାଡ଼ିର କୌଣସି ଖାଦ୍ୟ ଦ୍ରବ୍ୟ ବା ଶିକାରକୁ Birārdi jhāmpa ଆଗ ଗୋଡ଼ର ପଞ୍ଝାଦ୍ୱାରା ଟାଣି ନେବା— বিবালেবঠোঁ(ঝো)নামাবা The swoop of a cat with its paw. बिल्लीकी झपट

ବିରାଡ଼ିପରି ଗାଉଁ ଗାଉଁ ହେବା—ଦେ. କ୍ରି—(ବିରାଡ଼ି କୌଣସି ଖାଦ୍ୟ Birārdipari gāun gāun hobā ଦ୍ରବ୍ୟ ଖାଇବାବେଳେ, বিরালেব মতন গোঁ গোঁ করা କାଳେ ଅନ୍ୟ ବିରାଡ଼ି ତାହା ନେଇ बिल्लीसागुँगुँ करना ଯିବ, ଏଥିପାଇଁ ଗାଉଁ ଗାଉଁ ଶବ୍ଦ କରେ) ବିରାଡ଼ି ପରି ଅବ୍ୟକ୍ତ ଅସନ୍ତୋଷସୂଚକ ଧ୍ୱନି ପ୍ରକାଶ କରିବା—To grumble (like the cat while eating).

ବିରଣୀ—ସଂ. ବି. ପୁଂ (ବି+ରଣ=ଯୁଦ୍ଧ+ଇନ୍, ୧ମା. ୧ବ)— Birani (ବିରଣିନୀ—ସ୍ତ୍ରୀ) ୧ । ହସ୍ତୀ—Elephant.

ବିରାଦର—ବୈଦେ. ବି (ଫା. ବିରାଦର୍,ଭୁଲ. ଇଂ. ବ୍ରଦର୍; ଲାଟୀନ୍. ଫ୍ରାଟର୍ Birādara ଗ୍ରୀକ୍. ଡ୍ରାଭର୍ )—୧ । ଭାଇଅ; କୁଟୁମ୍ବୀ ବ୍ୟକ୍ତି— বেবাদর 1. An agnatic relation. ୨ । ଦୂର ସମ୍ପର୍କୀୟ बिरादर କୁଟୁମ୍ବୀ—2. Distant agnate. ୩ । କୌଣସି ଅଫିସ୍ ବା କାରଖାନାରେ ସର୍ଦାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ବ୍ୟକ୍ତିଗଣ—3. Subordinates working under the headman in an office or workshop. ୪ । ରାଜବଂଶୀୟ ଓ ରାଜାଙ୍କର କୁଟୁମ୍ବୀ ବ୍ୟକ୍ତି—4. An agnate of a Raja's family. ୫ । ଏକଜାତି ବା ଏକ ସମାଜର ଅନ୍ତର୍ଭୁକ୍ତ ବ୍ୟକ୍ତିମାନେ—5. Members of the same caste or social group.

ବିରାଦରାନ୍—ବୈଦେ. ବି (ଫା. ବିରାଦରାନ୍; ବହୁବଚନ)—ବିରାଦର-Birādarān ମାନେ—(plural); Kinsmen; brethren. বেবাদরান बिरादरान्

ବିରାଦରି—ବୈଦେ. ବି (ଫା)—କୁଟୁମ୍ବିତା—Kinship. Birādari বেরাদরী बिरादरी

ବିରାଦରିଆ—ବୈଦେ. ବି—କୁଟୁମ୍ବୀ—Kinsman. ବୈଦେ. ବିଣ— Birādariā ୧ । ବିରାଦର ସମ୍ବନ୍ଧୀୟ-1.Relating to kinsmen. বেরাদরী बिरादरी ୨ । କୁଟୁମ୍ବୀ—2. Kindred.

ବିରାଦ୍ଧ—ସଂ. ବିଣ. ପୁଂ (ବି+ରାଧ୍ ଧାତୁ=ଅପକାର କରିବା; ପୀଡ଼ା- Birāddha ଦେବା+କର୍ମ. ତ)—୧ । ଅପକୃତ—1. Injured. (ବିରାଦ୍ଧା—ସ୍ତ୍ରୀ) ୨ । ଉତ୍ପୀଡ଼ିତ; ଅତ୍ୟାଚାରିତ—2. Oppressed. ୩ । ଅପମାନିତ—3. Insulted. ୪ । କୋପାନ୍ୱିତ; କ୍ରୁଦ୍ଧ—4. Enraged.

ବିରାଦ୍ଧା—ସଂ. ବିଣ. ପୁଂ (ବି+ରାଧ୍ ଧାତୁ=ଅପକାର କରିବା ଇତ୍ୟାଦି Birāddhā +କର୍ତ୍ତୃ ତୃ; ବିରାଦ୍ଧୃ ଶବ୍ଦର ୧ମା. ୧ବ )—୧ । (ବିରାଦ୍ଧ୍ରୀ—ସ୍ତ୍ରୀ) ଅପମାନ କାରକ—1, Insulting. ୨ । ଉତ୍ପୀଡ଼କ—2. Oppressive. ୩ । ଅପକାରକ—3. Injurious
ସଂ. ବିଣ. ସ୍ତ୍ରୀ—ବିରାଦ୍ଧର ସ୍ତ୍ରୀଲିଙ୍ଗ—Feminine of Birāddha.

ବିରାଧ—ସଂ. ବି (ବି+ରାଧ୍ ଧାତୁ=ଅପକାର କରିବା+କର୍ତ୍ତୃ. ଅ)— Birādha ୧ । ଦଣ୍ଡକାରଣ୍ୟବାସୀ ରାକ୍ଷସବିଶେଷ—1. Name of a demon met and slain by Rāmachandra in the forest of Dandakā. ( ଉ—ବିରାଧ ବଧ-ପଣ୍ଡିତ ଯୁବକୁ ଗତ । ଉତ୍ତ. ବୈଦେହୀଶ ବିଳାସ । ) [ ପୂ—ଏ ପୂର୍ବଜନ୍ମରେ ତୁମ୍ବୁରୁ ଗନ୍ଧର୍ବ ଥିଲା ଓ କୈଶବଶ ବା କୁବେରଙ୍କ ଶାପରେ ଅସୁର ଯୋନିରେ ପିତା ସୁପର୍ଯ୍ୟନ୍ୟ ଓ ମାତା ଶତହ୍ରଦାଙ୍କଠାରୁ ଜନ୍ମ ହେଲା । ଦଣ୍ଡକାରଣ୍ୟରେ ସୀତାଙ୍କୁ ହରଣ କରି ପଳାଉଥିବା ସମୟରେ ରାମ ଲକ୍ଷ୍ମଣ ତା ସଙ୍ଗେ ଯୁଦ୍ଧ କଲେ ଓ ଯୁଦ୍ଧ ବେଳେ ସେ ରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ନେଇ ଯାଉଥିଲା । ରାମ ଲକ୍ଷ୍ମଣ ଶେଷକୁ ତାର ଦୁଇ ବାହୁକୁ କାଟି ଗୋଟିଏ ଗାତ ଖୋଳି ସେ ଖାତରେ ବିରାଧକୁ ପୋତିବାରୁ ସେ ଶାପମୁକ୍ତ ହୋଇ ପୂର୍ବଜନ୍ମର ରୂପ ଧାରଣ କରି ଅସୁର ଦେହ ତ୍ୟାଗ କଲା ।] ୨ । ( ବି+ରାଧ୍ ଧାତୁ+ଭାବ ଅ )—ଅତ୍ୟାଚାର—2. Oppression. ୩ । ଅପକାର—3. Injury. ୪ । ପୀଡ଼ା; ବ୍ୟଥା—4. Pain. ୫ । ଅପରାଧ—5. Guilt. ୬ । ଦୋଷ—6. Fault. ୭ । ବିରକ୍ତି—7. Displeasure; disgust. ୮ । ବୋଧ—8. Perception.

ବିରାଧନ—ସଂ. ବି ( ବି+ରାଧ୍ ଧାତୁ=ଅପକାର କରିବା ଇତ୍ୟାଦି+ Birādhana ଭାବ ଅନ )—୧ । ଅପକାର କରଣ—1. Injuring. ୨ । ଅତ୍ୟାଚାର କରଣ—2. Oppressing. ୩ । ପୀଡ଼ନ; ପୀଡ଼ା ଦେବା—3. Giving pain.

ବିରାବ—ସଂ. ବି ( ବି+ରୁ ଧାତୁ=ଶବ୍ଦ କରିବା+ଭାବ ଅ )— Birāba କୋଳାହଳ—Noise. ସଂ. ବିଣ ( ବି+ରାବ ) —ରବଶୂନ୍ୟ— Noiseless.

ବିରାବୀ—ସଂ. ବିଣ. ପୁଂ ( ବିରାବ+ଅସ୍ତ୍ୟର୍ଥେ ଇନ୍; ବିରାବିନ୍; ୧ମା. Birābi ୧ବ )—୧ । କୋଳାହଳକାରୀ—1. Noisy; boisterous; (ବିରାବିଣୀ—ସ୍ତ୍ରୀ) ୨ । ବଡ଼ ପାଟିଆ—2 Loud-voiced. ୩ । କୋଳାହଳ ମୟ—3. Full of noise.

ବିରାମ—ସଂ. ବି ( ବି+ରମ୍ ଧାତୁ=ଅନୁରକ୍ତ ହେବା+ଭାବ ଅ )—
Birāma ୧ । ବିରତି; ନିବୃତ୍ତି; ବିରତି—1. Cessation; stoppage; desisting. ୨ । ବିଶ୍ରାମ—2. Rest; remission. ୩ । ଶେଷ; ଅବସାନ—3. End; finish. ୪ । ବିନାଶ—4. Destruction; ruin. ୫ । ପତନ; ଅବନତି—5. Decline. ୬ । ବୈରାଗ୍ୟ 6. Aversion to worldly concerns. ୭ । ( ବ୍ୟାକରଣ ) ପରବର୍ଣ୍ଣର ଅଭାବ—7. (grammar) The want of the next letter.

ବିରାମ କାଳ—ସଂ. ବି ( ୬ଷ୍ଠୀ ତତ୍; ବିରାମ+କାଳ )—୧ । ବିଶ୍ରାମକାଳ
Birāma kāla —1, Time of rest. ୨ । ଅବସର-କାଳ—2. Leisure. ୩ । ଛୁଟି—3. Vacation; a recess.

ବିରାଲ—ସଂ. ବି. ପୁଂ ( ବିଡ଼୍ ଧାତୁ+କର୍ତ୍ତୃ ଆଲ )—ବିଡ଼ାଲ; ମାର୍ଜାର;
Birāla (ବିରାଳୀ—ସ୍ତ୍ରୀ) ବିରାଡ଼ି—Cat.

ବିରା(ଡ଼ା)ଲାକ୍ଷ—ସଂ. ବିଣ. ପୁଂ ( ବହୁବ୍ରୀହି; ବିରାଲ+ଅକ୍ଷି )—ବିରାଡ଼ି
Birā(rdā)lāksha ପରି ପିଙ୍ଗଳ ଚକ୍ଷୁବିଶିଷ୍ଟ; ଚଲ୍ଲ ଆଖିଆ—
(ବିରାଲାକ୍ଷୀ—ସ୍ତ୍ରୀ) Cat-eyed. ସଂ. ବି. ପୁଂ—ରଣ୍ଡୀପୁରାଣୋକ୍ତ ରାକ୍ଷସ ବିଶେଷ—Name of a demon.

ବିରାସୀ—ପ୍ରାଦେ ( ବାଲେଶ୍ୱର ) ବି ( ବି. ବିରାଶୀ=୮୨=ଅଥାତ୍
Birāsi ବିଯାଅଶି ସେର )—ଦୁଇମହଣିଆ ଧାନ ବସ୍ତା ( ୮୦ ସେର )ରେ ଖରଦଦାରୁ ମହାଜନ ଓ ଦଣ୍ଡିଦାରମାନେ ବଳଦଆ ଓ ସଗଡ଼ଆ ବିକ୍ରେତାଙ୍କଠାରୁ ଶୁକତି, ଭୁଟଆଦି ପାଇଁ ଅଧିକା ଯେଉଁ ଦୁଇ ସେର ନଅନ୍ତି; ଅର୍ଥାତ୍ ପ୍ରତି ମହଣରେ ଯେଉଁ ଅଧିକା ଏକ ସେର ନଆଯାଏ ( ଦୈନିକ ଆଶା ୧୦।୭।୩୪ )—An extra one seer in a maund of paddy sold to a trader or commission agent by cartmen and pack-bullock owners who come to sell paddy.

ବିରି—ଦେ. ବି—(ସଂ. ବ୍ରୀହି)—ମାଷ; ମୁଗ ଜାତୀୟ ଶସ୍ୟ ବିଶେଷ—
Biri Phaseolus Mungo,

| | |
|---|---|
| ସଂ. ନାମ—ମାଷ, ପିତୃଭୋଜନ, | [ ଦ୍ର—ଏହା ଗ୍ରୀଷ୍ମାଦି ବର୍ଷରେ |
| ବଳାଢ୍ୟ, ମାଂସଲ | ଲତା ଓ ଗଛିର ତୁଲ ଉପରେ ଥିବା |
| କଳାଇ, ମାଷକଳାଇ, ବିରି | ଦାନା; ଲତା ଧୁମ୍ପୁଡ଼ା,ଛୁଇଁ ଚଅଇଲ |
| **उड़द, उरिद्** | ଲମ୍ବ, ଛୁଇଁ ପାଚିଲେ କଳା ହୁଏ । |
| ତେ. ମିନୁ ମୁଲୁ | ବିରି ଦୁଇ ପ୍ରକାର—ଲଦି ବିରି, |
| ମ. ଉଡ଼ିଦ | ଏହାର ବର୍ଣ୍ଣ ପିଙ୍ଗ; ଆଉ ଏକ |
| ଗୁ. ଅଡ଼ଦ | ପ୍ରକାର ଖୁବ୍ କଳା । ବିରିକୁ ରଗଡ଼ି |
| ଫା. ମାସ | କରି ଡାଲି କରନ୍ତି । ଏହାକୁ ବାଟି |
| ଆ. ମାସା | ବଡ଼ା, ଯୋଡ଼ ପିଠା ଓ ଏଣ୍ଡୁରି ଆଦି |

ପିଠା କରାଯାଏ । ବଟା ବିରିକୁ ଶୁଖାଇ ବଡ଼ି କରନ୍ତି । ବିରିଚୁନାରେ ପାମ୍ପଡ଼ ପ୍ରସ୍ତୁତ ହୁଏ । ବିରି ରଗଡ଼ି କରି ଗୋରୁଙ୍କୁ ଖୁଆନ୍ତି ଓ ସିଝାଇ କରି ଘୋଡ଼ାଙ୍କୁ ଖୁଆନ୍ତି । ଏହା ସଙ୍ଗେ ତେଲ ମିଶାଇ ଆୟୁର୍ବେଦ ମତେ ମାଷ ତୈଳ ଓ ମହାମାଷ ତୈଳ ଆମବାତ ପାଇଁ ଔଷଧ କରାଯାଏ । ବିରିବଟାରେ ପିଆଜ, ବାଇଗଣ ଓ ଲଙ୍କାମରିଚ ବୁଡ଼ାଇ ଘିଅରେ ବା ତେଲରେ ଛାଣିଲେ ବରା, ବାଇଗଣି, ପିଆଜି ଗୁଲୁଗୁଲା ଆଦି ତିଆରି ହୁଏ ।] ଦେ.ଅ—(ହାତୀକୁ ମାହୁନ୍ତର ନିଷେଧାତ୍ମକ ଡାକ)—( A call of the elephant-driver to an elephant directing him to desist) Desist ! Do not do so ! [ଦ୍ର—ହାତୀ ଯାଉ ଯାଉ ବାଟରେ କୌଣସି ଡାଳ ବା ଲୋଭନୀୟ ବସ୍ତୁ ପ୍ରତି ଶୁଣ୍ଢ ବଢ଼ାଇବାର ଦେଖିଲେ ମାହୁନ୍ତ ଏ ଡାକ ଡାକେ, ଓ ହାତୀ ଉକ୍ତ ନିଷିଦ୍ଧ କର୍ମରୁ ବିରତ ହୁଏ ।]

ବିରି ଉ(ଓ)ପଡ଼ା—ଦେ. ବି—(ସଂ. ବ୍ରୀହି+ଉତ୍ପାଟନ)—ବିରି ଗୁଛିମାନ
Biri u(o)pardā ଗଛରେ ସୁପକ୍ୱ ହୋଇ ଶୁଖି ଗଲେ ବିରି ଅମଳ କରିବା ପାଇଁ ସେହି ଗଛମାନଙ୍କୁ ଓପାଡ଼ିବା—The uprooting of the Biri plants for harvesting. [ଦ୍ର—ବିରିଗୁଲୁକୁ ଓପାଡ଼ି ଆଣି ଖଳାରେ ଶୁଖାଇ ତାକୁ ବେଙ୍ଗଳା ପକାନ୍ତି, କିମ୍ବା ବିରି ଗୁଛିମାନଙ୍କୁ ବାଉଁଶ ଠେଙ୍ଗାରେ ବାଡ଼ଉଅନ୍ତି; ତାହା ହେଲେ ବିରି ଶସ୍ୟମାନ ଗୁଛିରୁ ବାହାରି ପୃଥକ୍ ହୋଇ ଯାଏ; ବିରି ଗୁଛିର ଶସ୍ୟ ବିହୀନ ଖୋସାମାନଙ୍କୁ ବିରି ବୋଡ଼ ବୋଲି ଯାଏ ।]

ବିରି ଓଳିଆ—ଦେ. ବି—ବିରିକୁ ବାନ୍ଧି କରି ରଖିବା ପାଇଁ ପ୍ରସ୍ତୁତ
Biri oliā କୁଟାର ପୁଡ଼ା—Packet made of straw for storing Biri grain. [ଦ୍ର—ଏତେ ଖାଇ ନ ପୂରିଲା ପେଟ, ବିରି ଓଳିଅରେ ମାରୁଛି ହାତ । ଢଗ ।]

ବିରିକ୍—ବୈଦେ.—( ଇଂ=ବ୍ରେକ୍; ବ୍ରେକ୍‌ଭ୍ୟାନ୍ ) ବି. (ଗ୍ରାମ୍ୟ)—
Birik बिरिक **विरिक** ବ୍ରେକ୍, ବ୍ରେକ୍‌ଭ୍ୟାନ୍ (ଦେଖ)—
[ବିରିକ୍‌ଭ(ଭେ)ନ୍—ଅନ୍ୟରୂପ] Brake; brakevan.

ବିରିକ୍ ମା(ମେ, ମ୍ୟା)ନ୍—ବୈଦେ.—( ଇଂ—ବ୍ରେକ୍‌ମ୍ୟାନ୍ )—ବି—
Birik-mā(me,myā)n (ଗ୍ରାମ୍ୟ)—ବ୍ରେକ୍‌ମ୍ୟାନ୍ (ଦେଖ)
बिरिकमेन **विरिकमेन** Brakesman.

ବିରିକତ—ଗ୍ରା. ବିଣ—(ସଂ. ବିରକ୍ତ)—ବିରକ୍ତ—
Birikata **दिक,** विरक्त Vexed; displeased.
(ବିରିକତି—ବି) ବି—୧ । ବିରକ୍ତି—1. Vexation; displeasure. ୨ । କିଛି କାର୍ଯ୍ୟ ନ କରିବା ଜନିତ ଅବସାଦ—2. Ennui; tedium.

ବିରିକତିଆ—ଗ୍ରା. ବିଣ—( ସଂ. ବିରକ୍ତି, କିର )—୧ । ବିରକ୍ତିପୂର୍ଣ୍ଣ—
Birikatiā 1. Full of displeasure. ୨ । ବିରକ୍ତିଜନକ—
**मूसकील, दुखदाई** 2. Causing displeasure; vexatious. (ଯଥା, ଏ କାମ ଭାରି ବିରିକତିଆ ଲାଗୁଛି । ) ୩ । ଭୁଙ୍କା ବସି ରହିବା ଯୋଗ୍ୟ ଅବସାଦଜନକ—3. Tedious.

ବିରିକା(କି)ଟିଆ—ଗ୍ରା. ବିଣ—୧ । ( ସଂ. ବିରକ୍ତ ); ବିରକ୍ତିକର—
Birikā(ki)tiā 1. Vexatious. ୨ । (ସଂ. ବିକଟ)—ବିକଟାକାର; ବିକଟ—2. Fierce; ugly.

ବିରି କୋଳଥ—ଦେ. ବି—(ସମାହାର ଶବ୍ଦ)—(ସଂ. ବ୍ରୀହି+କୁଳତ୍ଥ)—
Biri kolatha ବିରି ଆଦି ଶସ୍ୟ—Biri and other
(ବିରି ମୁଗ—ଅନ୍ୟରୂପ) cereals.

ବିରିକ୍ତ—ସଂ. ବିଣ. (ବି+ରିଚ୍ ଧାତୁ=ମଳ ତ୍ୟାଗ କରିବା+କର୍ତ୍ତୃ.
Birikta ଣ)—ବିରେଚନ ହୋଇଥିବା; ଯାହାର ଅନେକ ଝାଡ଼ା
ହୋଇଥିଛି—One who has passed copious
stools; with the bowels completely
evacuated.

ବିରିଙ୍ଗା—ପ୍ରାଦେ—(ଗଡ଼ଜାତ) —ବି—୧ । କୃଷି ପାଇଁ ବଣ ପୋଡ଼ିବା
Biringā 1 Reclamation of a forest for raising
crops. ୨ । କ୍ଷୁଦ୍ର ବଣ ବୁଦା—2. Small bushes.

ବିରିଙ୍ଗା ମାରିବା—ପ୍ରାଦେ. (ଗଡ଼ଜାତ, ସମ୍ବଲପୁର) କ୍ରି—(କୋଲ୍ହ ଆଦି
Biringā māribā ଜାତି) ବଣ କାଟିବା ପରେ ଫସଲ କରିବା
ପାଇଁ ଜମିକୁ ପୋଡ଼ିବା—To burn a newly reclaimed land after the trees thereon are
cut, for the purpose of cultivation.

ବିରିଙ୍ଗି କୁ(କୋ)ଟରା—ପ୍ରାଦେ. (ଗଡ଼ଜାତ) ବି—ଅତି ସାନ ମୃଗ—
Biringi ku(ko)tarā A very tiny species of deer.

ବିରି ଗୁଣ୍ଡଳ ଚୋବା(ବେ)ଇବା—ଦେ. କ୍ରି (ଲକ୍ଷଣାର୍ଥ)—କ୍ରୋଧରେ
Biri chāuḷa chobā(be)ibā ଦାନ୍ତ ଘଷିବା—
**दाँत पीसना** (figurative) To grind one's teeth
দাঁত কড়মড় করা in rage.

ବିରିଜ—ଗ୍ରା. ବି (ସଂ. ବୀର୍ଯ୍ୟ)—ଶୁକ୍ର—
Birija **बीर्ज** বীজ Semen.

ବିରିଜା—ଗ୍ରା. ବିଣ. ପୁଂ—ଚଞ୍ଚଳ—Surly; peevish, ଗ୍ରା. ବି. ସ୍ତ୍ରୀ-
Birijā (ନାମ) (ସଂ. ବିରଜା)—ଯାଜପୁରରେ ପ୍ରତିଷ୍ଠିତା ବିରଜା
[ ବିରିଜା(ଜେ)ଈ—ଅନ୍ୟରୂପ ] ଠାକୁରାଣୀ—Name of the
Goddess Birajā at Jajpur (in Orissa).

ବିରିଜାଇ—ଦେ. ବି—ବ୍ରୀହି ରଗଡ଼ା ହୋଇ ଚୋପା ଛଡ଼ା ଯାଇଥିବା
Birijāi ଡାଲମାନ—Biri pulse ground and freed
from chaff.

ଦେ. ବି. ସ୍ତ୍ରୀ—ବିରିଜା (ଦେଖ)—Birijā (See)

ବିରିଜା(ଜେ)ଇବା—ଦେ. କ୍ରି. (ସଂ. ବି+ରଞ୍ଜ୍ ଧାତୁ)—୧ । ଚଢ଼ିବା;
Birijā(je)ibā ଚଢ଼ଚଢ଼ ହେବା—1. To warm up. ୨ ।
(ବିରଜିବା—ଅନ୍ୟରୂପ) (ଅଶ୍ୱିନୀ ଘୋଡ଼ା) ନିଜର ଉଦ୍‌ବୃତ୍ତ ଲିଙ୍ଗକୁ
**बिरझना, बिगडना** ନାଗ୍ରି ପାଖେ ବାଢ଼େଇ ବୀର୍ଯ୍ୟ କ୍ଷରଣ
গরমহওয়া କରିବା—2. (said of a horse) To be in heat.
୩ । ଉନ୍ମତ୍ତତା ପ୍ରକାଶ କରିବା—3. To show signs
of madness. ୪ । ରାଗରେ ଅସ୍ଥିର ହେବା—4. To
fly into a rage. ୫ । କାମାତୁର ହେବାର ଚିହ୍ନ
ପ୍ରକାଶ କରିବା—5. To show signs of amorousness. ପ୍ରାଦେ. (ଗଡ଼ଜାତ) କ୍ରି—(ବାଘ ଆଦି ହିଂସ୍ର
ଜୀବକୁ ଦେଖି ଗାଈ, ମଇଁଷି ଆଦି) ହୁରୁଡ଼ିବା ଓ ରାବି
କରିବା—To be startled and to low (said
**भुकरना** of cows and buffaloes when they see a
ভয়েহামলান tiger or smell its presence in the
vicinity). ପ୍ରାଦେ. (ସମ୍ବଲପୁର) ବି—ବିରକ୍ତ ହେବା—
To be vexed.

ବିରିଜା(ଜେ)ଈ—ଗ୍ରା. ବି (ନାମ)—୧ । ବାଣପୁରର ପ୍ରାଚୀନ ରାଜଧାନୀ
Birijā(je)ī ବଙ୍କାଡ଼ରେ ଥିବା ଦେବୀ ମୂର୍ତ୍ତି—1. Name of
an image of Goddess in Bāṇapur in Puri
District. [ ଦ୍ର—ଏହାଙ୍କର ବାହନ—ବାଘ, ଏ
ସ୍ଥାନରେ ମଧ୍ୟ ବହୁତ ବାଘ ଦେଖାଯାଆନ୍ତି । ] ୨ । ବିରଜା
(ଦେଖ)—2. Birajā (See)

ବିରିଝିବା—ପ୍ରାଦେ. (ସମ୍ବଲପୁର) କ୍ରି—ବିରଜାଇବା (ଦେଖ)
Birijhibā Birijāibā (See)

ବିରି ଡାଲି—ଦେ. ବି—୧ । ବିରିକୁ ରଗଡ଼ି ଚୋପା ଛଡ଼ାଇ ତିଆରି
Biri ḍāli ହୋଇଥିବା ଡାଲି—1. Dal or curry made of
বিরি ডাল split Biri after it is freed from chaff.
**उडदकी दाल** ୨ । ରଗଡ଼ା ହୋଇ ଚୋପା ଛଡ଼ା ଯାଇଥିବା ବିରି—
2. Split Biri pulse.

ବିରିଞ୍ଚ(ଞ୍ଚି)—ସଂ.ବି [ବି=ବିବିଧ (ପ୍ରାଣୀ)+ରଚ୍ ଧାତୁ=ସୃଷ୍ଟି କରିବା+
Birincha(nchi) କର୍ତ୍ତୃ. ଅ; ନିପାତନ ]—୧ । ବ୍ରହ୍ମା—
1. Brahmā. ୨ । ବିଷ୍ଣୁ—2. Bishṇu. ୩ । ଶିବ—
3. Siba.

ବିରିଡ଼ି—ପ୍ରାଦେ. (ଗଡ଼ଜାତ) ବି—ବିରୁଡ଼ି (ଦେଖ)
Birirḍi Birurḍi (See)

ବିରିଣା—ଦେ. ବିଣ.—[ଫା. ବେଗୁନା=ବାହାରର; ଫା. ବେଗାନା]—
Biriṇā ୧ । ପର; ଅନାତ୍ମୀୟ [ବ୍ୟକ୍ତି]—1. Not related to
বিরানা **बिराना, बिरान** one's self. ୨ । ନିଃସମ୍ପର୍କୀୟ
[ଲୋକ]—2. Having no connection;
unconnected. ୩ । ଅନ୍ୟ ବ୍ୟକ୍ତିର—3. Belonging to another person. ଦେ. ବି—୧ ।
ଅନ୍ୟ ବ୍ୟକ୍ତି—1. Another person. ୨ । ନିଃସମ୍ପର୍କୀୟ ବ୍ୟକ୍ତି—2. An outsider; stranger.

ବିରି ପିଠା—ଦେ. ବି. (ସଂ. ବ୍ରୀହି ପିଷ୍ଟକ)—ବିରିକୁ ରଗଡ଼ି ପାଣିରେ
Biri piṭhā ବତୁରାଇ ଚୋପା ଛଡ଼ାଇ ବାଟି ତହିଁରେ କରାଯିବା
মাসকালাইর পীঠে ପିଷ୍ଟକ—Cake made Biri-paste.
**उडदका पिठा** [ଦ୍ର—ବିରି ବଟାରେ ନାନାପ୍ରକାର ପିଠା ତିଆରି
ହୁଏ । ଯଥା—ବିରି ଲଡ୍ଡୁ, ବରବଡ଼ା ବା ବିରି ବରା, ଝିଲି,
କାକରା, ଇଣ୍ଡୁରି ବା ଏଣ୍ଡୁରି । ବିରି ବଟାରେ ଚାଉଳ ବଟା
ମିଶାଇ କିମ୍ବା କେବଳ ବିରି ବଟାରେ ମଧ୍ୟ ପିଠା ତିଆରି
ହୁଏ । ବିରି ବଟାକୁ କିଛି ସମୟ ରଖି ଦେଲେ ତାହା ଫୁଲିଯାଏ
ଓ ତାହାକୁ ବହୁବାର ହାତରେ ଘାଣ୍ଟିଲେ (ଫେଣାଇଲେ)
ତାହା ଫେନିଲ ଓ ହାଲୁକା ହୁଏ; ଫେଣିଥା ହୋଇଥିବା
ବିରି ବଟାର ପିଠା ସୁସ୍ୱାଦୁ ହୁଏ ।]

ବିରି ଫୁଲା—ଦେ. ବି—ଗୋଟା ବିରିକୁ ପାଣିରେ ସିଝାଇ, ତହିଁରେ ପ୍ରସ୍ତୁତ
Biri phulā କରାଯିବା ତରକାରି—Curry made of whole
সিদ্ধমাষকালাই Biris moistened with water and
उडद्‌का उसना (ବିରି ସିଝା—ଅନ୍ୟରୂପ) boiled.

ବିରି ଫେଣା(ଣେ)ଇବା—ଦେ. କ୍ରି (ସ. ବ୍ରୀହି+ଫେନାୟ ଧାତୁ)—
Biri phenā(ne)ibā ବଟା ବିରିକୁ ହାତ ଦ୍ୱାରା ବିଶେଷ
বাটা মাসকলাই ফেনান পରିମାଣରେ ଉପର୍ଯ୍ୟୁପରି ଘାଣ୍ଟି ତାକୁ
उदड फेनना ଫେନଯୁକ୍ତ ଓ ଫୁଲିକା କରିବା—To agitate
(ବିରି ଫେଣାଇବା—ଅନ୍ୟରୂପ) pasted Biri for a long
ବିରି ଫେଣ। } ବିଶେଷ୍ୟ time and make it bloated.
ବିରି ଫେଣିଆ(ଆଁ) }

ବିରି ବଟା—ଦେ. ବି—୧। ଉଗଡ଼ା ବିରିକୁ ବଡ଼ିପାଇଁ ପିଠା ବା ବଡ଼
Biri batā କରିବା ପାଇଁ ବାଟିବା—1. Pestling of Biri.
মাষকালাই বাটা ୨। ବଟା ହୋଇଥିବା ବିରି—
उडद् पीसना 2. Paste made of Biri.

ବିରି ବରା(ରା)—ଦେ. ବି. (ସ. ଗ୍ରାହ୍ୟ+ବଟକ)—ବିରି ବଟାରୁ ପ୍ରସ୍ତୁତ
Biri bardā(rā) ଘିଅ ବା ତେଲରେ ଭଜା ବର୍ତ୍ତୁଳ ମୋଟ ପିଠା—
মাষকলাইয়ের বড়া Thick flat cakes of Biri-paste
उडद्‌का बडा fried in ghee or oil.
বাটা মাষকলাই पीसाहुआ उडद्

ବିରି ବଡ଼ି—ଦେ. ବି—ବିରିର ଅନୁଚ୍ଛ ବର୍ତ୍ତିଷ୍ଣୁ ବଟା ବିରିର ଅତପଶୁଷ୍କ
Biri bardi ବର୍ତ୍ତୁଳ ପିଣ୍ଡ (ଏହା ବ୍ୟଞ୍ଜନ ରୂପେ ବ୍ୟବହୃତ ହୁଏ)
মাষকলাইর বড়ী Sun-dried balls of Biri paste used
उडद्‌की बडी for curry. [ଦ୍ର—ବିରି ବଟା ସଙ୍ଗେ ପାଣିକଖାରୁ
ବାଟି ବଡ଼ି ପ୍ରସ୍ତୁତ କଲେ ତାକୁ କଖାରୁ ବଡ଼ି, ବୋଇତି
କଖାରୁ ଆଦିର ମଞ୍ଜି ଦେଲେ ତାକୁ ମଞ୍ଜି ବଡ଼ି; ରାଶି ଦେଲେ
ରାଶି ବଡ଼ି, ମୂଳା ଦେଲେ ମୂଳା ବଡ଼ି ବୋଲାଯାଏ।]

ବିରି ବାଡ଼ିଆ—ଦେ. ବି—୧। ବିରି ଗଛଗୁଡ଼ିକୁ ବିରିରୁ ପୃଥକ୍ କରିବା
Biri bārdiā ନିମନ୍ତେ ବଡ଼ ଠେଙ୍ଗାରେ କୁଟିଣ୍ଡିଥିବା ଗଛମାନଙ୍କୁ
उडदडेँगाना ଏକତ୍ର ବାଡ଼େଇବା—1. To strike the
(ବିରି ମାଡ଼—ଅନ୍ୟରୂପ) harvested Biri plants to make
the grains separated from the pods.
୨। (ଲକ୍ଷଣାର୍ଥ) (ବିରିକୁ ଠେଙ୍ଗାରେ ନିର୍ଦ୍ଦୟ ପ୍ରହାର
କରିବା ପରି) ନିର୍ଦ୍ଦୟ ମାଡ଼; ଗୋଟିଏ ବାଡ଼ିଆ—
2. Copious beating; sound thrashing.

ବିରି ବାଡ଼ିଆ ଦେଖି କୋଳଥ ଚମକିବା ନ୍ୟାୟ—(ଢଗ)—
Biri bardiā dekhi kolatha chamakibā nyāya
बेटीकी मार पुतोहुको त्रास (କୋଳଥ ଛୁଇଁଙ୍କୁ ଖରାରେ ଶୁଖାଇଲେ
ତାହା ବିରି ଛୁଇଁ ଅପେକ୍ଷା ଶୀଘ୍ର ଫାଟି ଯାଇ ତହିଁରୁ
କୋଳଥ ଶସ୍ୟସବୁ ବାହାରି ପଡ଼େ। ବିରି ଅଗେ ବିଲରୁ
ଅମଦାନି ହୁଏ, ପରେ କୋଳଥ ଆମଦାନି ହୁଏ। କୋଳଥ
ଛୁଇଁ ବିରିଛୁଇଁ ଅପେକ୍ଷା ସହଜରେ ଫାଟି ଯିବାରୁ ଲୋକେ
ମନେ କରନ୍ତି ଯେ ବିରି ବାଡ଼ିଆ ଦେଖି କୋଳଥ ଶସ୍ୟସବୁ
ବିରି ଛୁଇଁ ପରି ପ୍ରହାର ଖାଇବା ଭୟରେ ଆଗରୁ ମନକୁ
ଫାଟି ଯାଏ।)
ଜଣେ ଅପରାଧୀ ବ୍ୟକ୍ତିକୁ ମାଡ଼ ଦେଲେ ତାହାର ସଙ୍ଗୀ-
ମାନଙ୍କ ମନରେ ଆଶୁ ପ୍ରହାରର ଆଶଙ୍କା ଉପସ୍ଥିତ ହେବା
ସ୍ଥଳରେ ଏ ଢଗ ବୋଲାଯାଏ।
(ଅର୍ଥାତ୍ ଜଣକ ଉପରେ ମାଡ଼ ହେବାର ଦେଖି ତାହାର
ସଙ୍ଗୀମାନେ ମାଡ଼ ନ ଖାଇଣ୍ଡ ଦୋଷ ସ୍ୱୀକାର କରି ପ୍ରହାର
ଜର୍ଜରିତ ସଙ୍ଗୀର ଦଶାରୁ ରକ୍ଷା ପାଆନ୍ତି)—An analogy
applied to cases where birds of the same
feather (e.g. co-accused) become enervated
and do confess their guilt on seeing
their companions being beaten.

ବିରି ବିରି—ଦେ. ଅ—ଛୋଟ ଛୋଟ ବିରି ଦାନା ପରି ଦେହରେ
Biri biri ବାହାରିବା ଘିମିରି ଆଦି ବ୍ରଣ—The copious
उडद् केतरह coming out of pimples or eruptions
on the body.

ବିରି ବିରି କାଣ୍ଡେ(ଣ୍ଡୋ)ଇ—ଗ୍ରା. ବିଣ. ଓ ବି. ସ୍ତ୍ରୀ—ଅତି କଳହପ୍ରିୟା;
Biri biri kānde(ndo)i ଯେଉଁ ସ୍ତ୍ରୀ ଅନ୍ୟର ଉପରେ ପଡ଼ି
କଳି କରେ—Shrewish (woman); vixen.

ବିରିବିରି ଫଳି ଯିବା—ଦେ. ବି—ଦେହରେ ଘିମିରି ପରି ଛୋଟ ଛୋଟ
Biri biri phali jibā ବ୍ରଣ ବାହାରି ଯିବା; ଝିକ ଝିକ ଫଳି-
सघनपुसी बरबराकर निकलना ଯିବା—The copious
(ବିରି ବିରି ହୋଇ ଫଳି ଯିବା—ଅନ୍ୟରୂପ) appearance of
pimples or eruptions on the body.

ବିରି ବୋଟି—ଦେ. ବି—ଶାଳ ଶୂନ୍ୟ ଶୁଷ୍କ ବିରି ଛୁଇଁର ଚୋପା—
Biri boti The chaffs of Biri-pods after the
उडद्‌कि भूसी grains are separated there-
কালায়ের ভূষী form.

(ମୁହଁ) ବିରିଭାଡ଼ି ପରି (କରିବା)—ଦେ. ବିଣ—(ଲକ୍ଷଣାର୍ଥ) ବିରସ—
(muhañ) Biri bhārdi pari (karibā) (to have a
dejected face.

ବିରି ମୁଠିଆ ଘୋଷା—ଦେ. ବି.—ପାଠ ମନେ ରହିବା ପାଇଁ ପାଠକୁ
Biri muthiā ghoshā ବାରମ୍ବାର ଘୋଷିବାର ପ୍ରଣାଳୀବିଶେଷ-
A mode of persistent and repeated
learning a thing by heart for as many
times as there are grains in the hand.
[ଦ୍ର—ହାତରେ ମୁଠାଏ ବିରି ଧରି ଥରେ ଘୋଷିବା ପରେ
ମୁଠାରୁ ଗୋଟିଏ ବିରି କଢ଼ା ଯାଏ; ଏହିପରି ଗୋଟି
ଗୋଟି ହୋଇ ମୁଠାର ସବୁ ବିରି ହାତରୁ ନିଃଶେଷ ହେବା
ଯାଏ ପାଠ ଘୋଷିବାକୁ ବିରିମୁଠିଆ ଘୋଷା ବୋଲାଯାଏ।]

ବିରିଲଡ଼ୁ—ଦେ. ବି—(ସ. ବ୍ରୀହି+ଲଡ୍ଡୁକ)—ବଟା ବିରିକୁ ଲଡ଼ୁ
Birilardu ଆକାରରେ ଘିଅ ବା ତେଲରେ ଭଜା ପ୍ରସ୍ତୁତ
মাসকলাই লাড়ু କରାଯିବା ପିଠା—Ball-cakes of Biri
उडदकालड्डू paste fried in oil or ghee.

ବିରସ—ଦେ. ବି—ରାଜସ୍ଥାନର ନଦୀ ବିଶେଷ—Name of a river
Birisa in Rajputana. ( ଉ—ଯହିଁ ନିକାଶିରେ ବିରସ ସ୍ନାନରେ, ବସି କିଂପୁରୁଷ କାମିନୀଗଣ । ନନ୍ଦକିଶୋର-କୃଷ୍ଣଲୀଳାମୃତ । )

ବିରସା(ସେ)ଇବା—ଗ୍ରା·କ୍ରି (ସଂ. ବିରସ)—୧ । ବିରକ୍ତ ହେବା; ଅନୁରାଗ-
Birisā(se)ibā ରହିତ ହେବା—1. To be displeased or vexed with a person. ( ଉ—ତା ମନ ଯାହା ଠେଇଁ ବିରସେଇଗଲା । କୁନ୍ତଳାକୁମାରୀ. ନଅଭୁଣ୍ଡୀ । ) ୨ । ଏକ ବ୍ୟକ୍ତିର ମନକୁ ଅନ୍ୟ ବ୍ୟକ୍ତି ପ୍ରତି ଅପ୍ରସନ୍ନ କରାଇବା—2. To cause a person to be estranged from another.

ବିରୁଆ(ଆଁ)—ପ୍ରାଦେ (ଗଞ୍ଜାମ) ବୈଦେ. ବି (ଇଂ. ଫରାସୀ; ବ୍ୟୁରୋ)—
Biruā(āṅ) ଆଲମାରି—Almirah; bureau.

ବିରୁଚି—ଦେ. ବିଣ (ସଂ. ବି=ଅତ୍ୟନ୍ତ+ରୁଚି)—ଅତି ମନୋହର—
Biruchi Very beautiful. ଦେ. ବି—ଅରୁଚି—
অরুচি **अरुचि** Aversion.

ବିରୁଡ଼ି(ଳି)—ଦେ. ବି (ସଂ. ଭୃଙ୍ଗରୋଳ; ବରଟ; ବରଳା )—ଭରୁଡ଼ି;
Birurdi(li) ଭଅଁର; ହଳଦିଆ ଓ ନାଲିରଙ୍ଗ ବିଶିଷ୍ଟ ଭୃଙ୍ଗ; ପୀତ
ভীমরুল ଭ୍ରମର—The yellow wasp; Vespa; hornet.
**बरैया, बिढनी** [ଦ୍ର—ଏମାନଙ୍କ ଦେହରେ ହଳଦିଆ ଓ ନାଲି ଡୋରା ଥାଏ । ଏମାନେ ମହୁମାଛିମାନଙ୍କପରି ଫେଣା ବାନ୍ଧନ୍ତି; କିନ୍ତୁ ଏମାନଙ୍କୁ ମଧୁସଞ୍ଚୟ କରିବାର ଦେଖାଯାଏ ନାହିଁ । ଏମାନଙ୍କର ନାହୁଡ଼ି ଅଛି ଓ ଏମାନଙ୍କ ଦଂଶନ ବିଶେଷ ଯନ୍ତ୍ରଣାପ୍ରଦ । ଏମାନେ ମହୁମାଛିମାନଙ୍କଠାରୁ ଲମ୍ବ ଓ ଏମାନଙ୍କ କଟି ଅତି କ୍ଷୀଣ । ଏମାନଙ୍କର ଦୁଇଟି ଲେଖାଏଁ ଡେଣା ଅଛି । ଡେଣାଦ୍ୱୟ ଦୁଇଟି ରେଫ୍ ( ʼ ) ପରି ଦେଖାଯାଏ; ଏଥିପାଇଁ ଏମାନଙ୍କୁ ଦ୍ୱିରେଫ ବୋଲାଯାଏ । ଏମାନେ ଦଳବଦ୍ଧ ହୋଇ ବାସକରନ୍ତି; ଗୋଟା ହଳଦିଆ, ଗୋଟା-କଳା, ନେଳ, ନାଲି ଓ ହଳଦିଆ ଡୋରାଯୁକ୍ତ ନାନା ଜାତିର ବିରୁଡି ଦେଖାଯାଆନ୍ତି । ]

ବିରୁଡ଼ି ବସା-ଦେ. ବି (ସଂ. ବରଳା + ବାସ)—ଭରୁଡ଼ିମାନେ କରିଥିବା ମହୁ
Birurdi basā ଫେଣାପରି ବସା—Hive made by
ভীবরুলের চাক **बिढनीका छत्ता** yellow wasps.
( ବିରୁଡି ଘର—ଅନ୍ୟରୂପ )

ବିରୁଡ଼ି ମାଇଲା ଭଳି ହେବା—ଦେ. କ୍ରି—୧ । ବିରୁଡ଼ି ମନୁଷ୍ୟକୁ ନାହୁଡ଼ି
Birurdi māilā bhali hebā ଦ୍ୱାରା ଆଘାତ କଲେ ମନୁଷ୍ୟ (ବିରୁଡ଼ି ମାରିବା[ଲା]ଭଳି ହେବା—ଅନ୍ୟରୂପ) ଯେଉଁ ପରି ଅସ୍ଥିର ହୁଏ
ভীমরুলমারা মতন হওয়া ସେହିପରି ଅସ୍ଥିରତା ପ୍ରକାଶ କରିବା—
**बिढनी काटनेके ऐसा होना** 1. To be restless like a person stung by wasps. ୨ । ଚିଡ଼ିଚିଡ଼ି ହେବା—2. To be peevish; to be in sulks; o be irritated; to warm up.

ବିରୁଡ଼ି ମାରିବା—ଦେ. ବି—ବିରୁଡ଼ିର ନାହୁଡ଼ି ଦ୍ୱାରା ଆଘାତ—
Birurdi māribā The stinging of a wasp.
ভীমরুল কাটা **बिढनीकाटना**

ବିରୁଡ଼ି(ଳି)ମୁହାଁ—ଦେ· ବିଣ. ପୁଂ—ଯାହାର ମୁହଁରେ ସବୁବେଳେ
Birurdi(li)muhāṅ କ୍ରୋଧର ଲକ୍ଷଣ ପ୍ରକାଶିତ ହେଉଥାଏ-
**बिढ़नीमुहाँ** କ୍ରୁଦ୍ଧମୁଖ—Having a wrathful countenance.
[ବିରୁଡି(ଳି)ମୁହିଁ—ସ୍ତ୍ରୀ]

ବିରୁତ—ସଂ· ବି—(ବି+ରୁ ଧାତୁ=ଶବ୍ଦ କରିବା+ଭାବ. ତ)—
Biruta ୧ । ସ୍ୱର; ରବ—1. Sound; voice. ୨ । ପକ୍ଷୀର କୂଜନ—2 The note or cooing of a bird. ୩ । ଅବ୍ୟକ୍ତ ଧ୍ୱନି—3. Inaudible or muffled sound; whisperings. ୪ । କଳରବ—4. Murmuring sound. ସଂ. ବିଣ—କୂଜିତ—Uttered. (said of a tone).

ବିରୁଦ—ସଂ. ବି—(ବି+ରୁଦ୍ ଧାତୁ=ରୋଦନ କରିବା+ଭାବ, ଅ)—
Biruda ଗଦ୍ୟପଦ୍ୟମୟୀ ରାଜସ୍ତୁତି ବା ଦେବସ୍ତୁତି—A panegyric in prose and poetry.

ବିରୁଦ୍ଧ—ସଂ. ବିଣ—(ବି+ରୁଧ୍ ଧାତୁ=ରୋଧ କରିବା+କର୍ମ· ତ)—
Biruddha ୧ । ପ୍ରତିକୂଳ; ବିପରୀତ—1. Opposite; opposed to; hostile to.
[ ବିରୋଧ, ବିରୁଦ୍ଧତା, ବିରୁଦ୍ଧତା—ବି] ୨ । ପ୍ରତିବନ୍ଧ—2. Confined; shut up. ୩ । ବିଦ୍ୱେଷୀ; ବିରୋଧୀ—3. Antagonistic.

ବିରୁଦ୍ଧ ମତିକାରିତା—ସଂ. ବି—ଶବ୍ଦ ଦୋଷବିଶେଷ—A defect in
Biruddha matikāritā in literary composition. [ଉ—"ଏଣେ କରେ ବୋଲି ଅମର ସରଣୀ, ବିରାଜନ୍ତି ଚନ୍ଦ୍ରଚୂଡ଼ ଚୂଡ଼ାମଣି" । ଶଂସିତ ପଦ୍ୟାଂଶରେ ଚନ୍ଦ୍ରଚୂଡ଼ଙ୍କର ଚୂଡ଼ାମଣି କହିବାଦ୍ୱାରା ବୋଧ ହେଉଅଛି ଯେତେ ଯେପରି ଚନ୍ଦ୍ର ଛଡ଼ା ଅନ୍ୟ କିଛି ମହାଦେବଙ୍କର ଶିରୋଭୂଷଣ । କିନ୍ତୁ ଚନ୍ଦ୍ର ଏଠାରେ ବର୍ଣ୍ଣିନୀୟ ବୋଲି ବିରୁଦ୍ଧ ମତିକାରିତା ଦୋଷ ହୋଇଅଛି । ]

ବିରୁଦ୍ଧ ରସାଙ୍ଗ ବର୍ଣ୍ଣନା—ସଂ. ବି—ରସଦୋଷ ବିଶେଷ—A defect
Biruddha rasāṅga barṇṇanā in literary sentiment. [ ଦ୍ର—କୌଣସି ରସରେ ଯେବେ ତଦ୍ୱିରୋଧୀ ରସର ବିଭାବାଦି ପରିଗୃହୀତ ହୁଏ, ତାହାହେଲେ ବିରୁଦ୍ଧ ରସାଙ୍ଗ ବର୍ଣ୍ଣନା ନାମକ ଦୋଷ ହୁଏ । ]

ବିରୁଦ୍ଧରେ—ସଂ· କ୍ରି. ବିଣ—ବିପକ୍ଷରେ—Againist; in opposi-
Biruddhare tion to. (ଯଥା—ତାଙ୍କ ବିରୁଦ୍ଧରେ ମୋର ଗୋଟିଏ
বিরুদ্ধে **विरोधमें** ଗୁହାରି ଅଛି ।) [ଦ୍ର—ବିରୁଦ୍ଧ ଶବ୍ଦ ସାଧାରଣତଃ
(ବିରୁଦ୍ଧେ—ଅନ୍ୟରୂପ) ବିଶେଷଣ ପଦ ଥିବାରୁ 'ତାଙ୍କ ବିରୁଦ୍ଧରେ' ବ୍ୟବହାର ଦୋଷଯୁକ୍ତ ଅଟେ; କିନ୍ତୁ ବିରୁଦ୍ଧ ଶବ୍ଦର 'ବିରୋଧ' ଅର୍ଥ କେତେକ ସଂସ୍କୃତ କୋଷ (ଯଥା—ଆପ୍ଟେ)ରେ ଦେଖାଯିବାରୁ ଏ ବ୍ୟବହାର ଦୋଷାବହ ନୁହେ । ]

ବିରୁଦ୍ଧାଚରଣ—ସଂ. ବି ( କର୍ମଧା; ବିରୁଦ୍ଧ+ଆଚରଣ )—୧ । ବିପରୀତ
Biruddhāacharaṇa ବ୍ୟବହାର; ପ୍ରତିକୂଳାଚରଣ—1. Acting
(ବିରୁଦ୍ଧାଚାର—ଅନ୍ୟରୂପ) in opposition. ୨ । ଶତ୍ରୁତାଚରଣ—2. Acting inimically; inimical or hostile conduct.

ବିରୁଦ୍ଧାଚାରୀ—ସଂ. ବିଣ. ପୁଂ ( ବିରୁଦ୍ଧାଚାରିନ୍; ବିରୁଦ୍ଧାଚାର+ଇନ୍ )—
Biruddhāchārī ୧ । ଶତ୍ରୁତା ଆଚରଣକାରୀ—1. Acting
(ବିରୁଦ୍ଧାଚାରିଣୀ—ସ୍ତ୍ରୀ) inimically or in a hostile manner
୨ । ବିପରୀତାଚରଣକାରୀ—
2. Acting in opposition.

ବିରୁଲ—ଦେ. ବି—ବନ୍ୟ ବୃକ୍ଷବିଶେଷ—
Biurla Name of a wild tree.

ବିରୂଢ଼—ସଂ. ବିଣ ( ବି+ରୁହ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ. ତ )—
Birūrdha ୧ । ଅଙ୍କୁରିତ—1. Sprouted. ୨ । ଉତ୍ପନ୍ନ; ଜାତ 2. Born; produced. ୩ । ବଦ୍ଧମୂଳ—
3. Fixed at the root; rooted. ୪ । ଆରୋହଣ କରୁଥିବା—4. Ascending; riding. ୫ । ଗଭୀରରୂପେ ନିମଗ୍ନ—5. Sunk deep.

ବିରୂପ—ସଂ. ବିଣ ( ବି=ନିନ୍ଦିତ+ରୂପ=ଆକୃତି)—କୁରୂପ; କୁତ୍ସିତ—
Birūpa 1. Ugly-looking. ( ଉ —ବୃଷାଳ ବଣ୍ଟକ,
( ବିରୂପକ—ଅନ୍ୟରୂପ ) ବିରୂପ ବିଠିକ, ବଢ଼ାଇ ସମ୍ବାଦ-
( ବିରୂପୀ—ସ୍ତ୍ରୀ ) ଉଞ୍ଜ. ବୈଦେହୀଶବିଳାସ । ) ୨ । ପ୍ରତିକୂଳ—
2. Adverse; opposite. ସଂ. ବି—ପିପଳୀମୂଳ—
1. The root of long pepper. ୨ । ସୁଗନ୍ଧଯୁକ୍ତ ଗୁଳ୍ମ—2. Name of a flower plant.

ବିରୂପା—ଦେ. ବି—ମହାନଦୀର ଶାଖା ନଦୀବିଶେଷ—A branch of
Birūpā the river Mahanadi in Orissa. (ଉ—ଚନ୍ଦନ କୁଞ୍ଜ-ମଞ୍ଜୁଳ ଅଳକା, ସୁରୂପା ବିରୂପା ଯହିଁ କରେ ଗତି—ରାଧାନାଥ· ଚନ୍ଦ୍ରଭାଗା । ) [ ଦ୍ର—ମହାନଦୀର ଏ ଶାଖା କଟକର ୩।୪ ମାଇଲ ପଶ୍ଚିମରେ ଚଉଦ୍ୱାରଠାରେ ମହାନଦୀରୁ ବାହାରିଅଛି । ଏହି ନଦୀରେ ଆଣିକଟ୍ ଦିଆଯାଇ ଉକ୍ତ ଜଳଭଣ୍ଡାରରୁ ହାଇଲେଭେଲ୍ କେନାଲ ବାହାରିଅଛି । ] ସଂ. ବିଣ. ସ୍ତ୍ରୀ—ବିରୂପର ସ୍ତ୍ରୀଲିଙ୍ଗ—
Feminine of Birūpā.
ସଂ. ବି—୧ । ଦୁରାଳଭା ( ଦେଖ )—1. Durālabha (See) ୨ । ଅତିବିଷା ( ଦେଖ )—2. Atibisha
विरूप(पा) (See). ଦେ. ବିଣ (ପୁଂ. ଓ ସ୍ତ୍ରୀ) ( ସଂ. ବିରୂପ )—
କୁତ୍ସିତରୂପବିଶିଷ୍ଟ—Of ugly appearance. [ଉ—
ବିରୂପା ବିରୂପାକ୍ଷକୁ କଲ୍ଲ ମାଲ ପ୍ରକଟ କଟକ ଗ୍ରାଙ୍ଗେ—ଉଞ୍ଜ ବୈଦେହୀଶବିଳାସ ।

ବିରୂପାକ୍ଷ—ସଂ. ବି ( ବହୁବ୍ରୀହି; ବିରୂପ=କୁତ୍ସିତ+ଅକ୍ଷି; ଯାହାଙ୍କର
Birūpāksha ତିନୋଟି ଆଖି ଥିବାରୁ ଯେ କୁତ୍ସିତ ଦେଖାଯାଆନ୍ତି)—୧ । ମହାଦେବ; ତ୍ରିଲୋଚନ—1. Siba.
୨ । ବ୍ରହ୍ମାଙ୍କ ମସ୍ତକରୁ ଜାତ ରୁଦ୍ରବିଶେଷ – 2. Name of a class of Rudra Deities. ୩ । ରାକ୍ଷସବିଶେଷ-
3. Name of a demon. ( ଉ—ବିରୂପାକ୍ଷ ଶ୍ଳୋକେ ଦଶବଦନ ଯେ ଦ୍ୱିବିଧ ଅର୍ଥରେ ଯୋଡ଼—ଉଞ୍ଜ. ବୈଦେହୀଶବିଳାସ ।) ସଂ· ବିଣ—କୁତ୍ସିତ ବା ବିକୃତ ଚକ୍ଷୁର୍ବିଶିଷ୍ଟ—
Having an ugly eye or eyes ଦେ· ବି. ପୁଂ—
ଲୋକଙ୍କୁ ଦିଆଯିବା ନାମ—A name given to males.

ବିରୂପିକା—ସଂ. ବିଣ. ସ୍ତ୍ରୀ ( ବିରୂପ+କ+ସ୍ତ୍ରୀ. ଆ )—୧ । କୁରୂପା—
Birūpikā 1. Ill-shaped; deformed ( woman ).
( ବିରୂପକ—ପୁଂ ) ୨ । କୁତ୍ସିତା—2. Ugly ( woman ).

ବିରେକ—ସଂ. ବି ( ବି+ରିଚ୍ ଧାତୁ=ପୁନଃ ପୁନଃ ମଳ କ୍ଷରଣ ହେବା
Bireka +ଭାବ. ଅ )—ପୁନଃ ପୁନଃ ମଳ ନିଃସରଣ; ଅନେକ ଥର ଝାଡ଼ା ହେବା—Repeated evacuations; dirrohea; purging. ସଂ. ବିଣ ( +କର୍ତ୍ତୃ. ଅ )—
ଯାହା ଖାଇ ଝାଡ଼ା କରାଏ; ବିରେଚକ—Cathartic; purgative.

ବିରେଚକ—ସଂ. ବିଣ ( ବି+ରିଚ୍ ଧାତୁ ଣିଜନ୍ତ, ରେଚ ଧାତୁ=
Birechaka ନିଃସାରଣ କରିବା+କର୍ତ୍ତୃ. ଅକ )—ଭେଦକାରକ;
ଯାହା ସେବନ କଲେ ଝାଡ଼ା ହୁଏ; ଜୁଲାପ—Purgative.

ବିରେଚନ—ସଂ. ବି ( ବି+ରିଚ୍ ଧାତୁ+ଭାବ. ଅନ )—ମଳ ନିଃସରଣ;
Birechana ଝାଡ଼ା ହେବା—Purging; passing of stools. ସଂ. ବିଣ (ବି+ରିଚ୍ ଧାତୁ+କର୍ତ୍ତୃ. ଅନ )—
ବିରେଚକ—Purgative.

ବିରେନ୍—ପ୍ରାଦେ. ( ସମ୍ବଲପୁର ) ବି ( ସଂ. ବୀରଣ )—ବେଣା—
Biren The Benā grass.

ବିରୋକ୍—ଦେ. ବିଣ—ଅବାଧ—Unobstructed. ବି—ବାଧାର
Birok ଅଭାବ—Absence of any restraint or
अबाध बेरोक hindrance.

ବିରୋକ—ସଂ. ବି ( ବି+ରୁଚ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ )—
Biroka ୧ । ଛିଦ୍ର; ଗର୍ତ୍ତ; ବିବର—1. Hole. ୨ । ସୂର୍ଯ୍ୟକିରଣ—2. The rays of the sun.

ବିରୋଚନ—ସଂ. ବି ( ବି+ରୁଚ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅନ )
Birochana —୧ । ସୂର୍ଯ୍ୟ—1. The sun. ୨ । ଚନ୍ଦ୍ର—
2 The moon. ୩ । ଅଗ୍ନି—3. Fire. ୪ ।
ପ୍ରହ୍ଲାଦଙ୍କ ପୁତ୍ର ଓ ବଳି ରାଜାଙ୍କ ପିତା—4. Father of king Bali. ୫ । ଅର୍କ ଗଛ—5. Calotropis Gigantea ( plant ). ୬ । ଫଣଫଣା; ଶ୍ୟୋନାକ ବୃକ୍ଷ– 6. Bignonia Indica ( tree ). ୭ ।
ପୁତି କରଞ୍ଜ—7. A plant. ୮ । ରୋହିତକ ବୃକ୍ଷ—
8. A tree; Andersonia Rohitaka. ୯ ।
ବଡ଼ବାଗ୍ନି—9. Submarine fire· ଦେ. ବିଣ—
अरुचक ଅରୁଚିକର—Disgusting to the taste; distasteful ( ଉ—ବିରୋଚନ ଏ ବଣିଷ୍ଟ ମନକୁ ।

ଭଞ୍ଜ. ବୈଦେହୀଶବିଳାସ । ) ଦେ. ବି—ହସନ୍ତିକାଗ୍ନି; ଅଙ୍ଗାରର ଅଗ୍ନି—The fire of a brazier. (ଉ—କାଞ୍ଚନାସାନଳୀ ଯୋଗେ ଉଦ୍ଧି, ବିରୋଚନ ଅଗ୍ନି ଜ୍ୟୋତି ଏଣୁ ବହି । ଭଞ୍ଜ. ବୈଦେହୀଶବିଳାସ । )

**ବିରୋଚନ ନାରୀ**—ସ. ବି (୬ଷ୍ଠୀ ତତ୍; ବିରୋଚନ+ନାରୀ)—Birochana nāri ବିରୋଚନର ସ୍ତ୍ରୀ; ମାଳତୀ କନ୍ୟା—The wife of Birochana. [ ଉ—ବିରୋଚନନାରୀ ଛନ୍ଦେ ହୋଇ ହରି ତା ଜୀବ ଯେମନ୍ତ ହରି । ଭଞ୍ଜ. ବୈଦେହୀଶବିଳାସ । ] [ ତ୍ର—ପୁରାଣରେ ବର୍ଣ୍ଣିତ ଅଛି ବିରୋଚନ ରାକ୍ଷସକୁ ବଧ କରିବାପାଇଁ ଭଗବାନ୍ ମାୟାରେ ମାଳତୀ କନ୍ୟାରୂପ ଧାରଣ କରି ତାହାର ସ୍ତ୍ରୀ ହୋଇଥିଲେ । ]

**ବିରୋଧ**—ସ. ବି (ବି+ରୁଧ୍ ଧାତୁ=ରୁଦ୍ଧ କରିବା+ଭାବ ଅ)—Birodha ୧ । ଶତ୍ରୁତା—1. Enmity; hostility ୨ । ବୈପରୀତ୍ୟ; ପ୍ରତିକୂଳତା—2. Opposition; contradiction. ୩ । ଅବରୋଧ—3. Obstruction. ୪ । ଅମେଳ; ଅନୈକ୍ୟ—4. Disagreement. ୫ । (+କର୍ତ୍ତୃ ଅ ବା ଅଧିକରଣ ଅ) ଯୁଦ୍ଧ—5. Battle. (ଉ—ବିପୁଳ ଗଲାକ ସଙ୍ଗ, ଯୁଦ୍ଧେ ଯୁଝିଲାର ପରି, ଏ ସଙ୍ଗେ ବିରୋଧ କରିବାର ଉଚିତ । ଭଞ୍ଜ. ବୈଦେହୀଶବିଳାସ । ) ୬ । ବିପଦ୍—6. Calamity. ୭ । ଅଟକ; ବାଧା—7. Obstruction; obstacle. ୮ । ଅର୍ଥାଲଙ୍କାର ବିଶେଷ; ବିରୋଧାଭାସ (ଦେଖ)—8. A figure of speech in which there is apparent contradiction. ୯ । କଳି—9. Quarrel. ୧୦ । ବିବାଦ—10 Dispute; dessension. ଦେ. ବି—ନିଷେଧ—Prohibition. [ଯଥା—ପିକା ଖାଇବାକୁ ଓଡ଼ିଆ ବ୍ରାହ୍ମଣ ସମାଜରେ ବିରୋଧ ଅଛି ।] ଦେ. ବିଣ—ନିଷିଦ୍ଧ—Forbidden; prohibited. (ଉ—ବିରୋଧ ବିଷୟମାନ ଖାଆନ୍ତି ସେ ଲୋକେ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା । )

**ବିରୋଧକ**—ସ.ବିଣ.ପୁଂ (ବି+ରୁଧ୍ ଧାତୁ+କର୍ତ୍ତୃ ଅକ)—୧ । ବିବାଦ-Birodhaka କାରୀ—1. Disputing. ୨ । କଳହା—(ବିରୋଧିକା—ସ୍ତ୍ରୀ) 2. Quarrelsome. ୩ । ମାମଲାବାଜ୍—3. Litigious

**ବିରୋଧ କରିବା**—ଦେ. କ୍ରି—୧ । ବିବାଦ କରିବା - 1. To dis-Birodha karibā pute. ୨ । ନିଷେଧ କରିବା—2. To forbid; to prohibit. ୩ । ଅଟକ କରିବା; ବାଧା ଦେବା—3 To obstruct; to hinder. ୪ । କଳି ଲଗାଇବା—4. To quarrel.
ବିରୋଧ କରା
**विरोध करना**

**ବିରୋଧନ**—ସ. ବି (ବି+ ରୁଧ୍ ଧାତୁ=ରୁଦ୍ଧ କରିବା+ଭାବ. ଅନ)—Birodhana ବିରୋଧ (ଦେଖ)—Birodha (See). ସ. ବିଣ—(ବି+ରୁଧ୍+କର୍ତ୍ତୃ· ଅନ)—୧ । ବିରୋଧକାରକ—1. Obstructing. ୨ । ବିବାଦକାରୀ—2. Disputing. ୩ । କଳହକାରୀ—3· Quarrelling.

**ବିରୋଧ ପରିହାର**—ସ. ବି—(୬ଷ୍ଠୀ ତତ୍; ବିରୋଧ+ପରିହାର)—Birodha parihāra ୧ । ବିବାଦ ତ୍ୟାଗକରଣ—1. Giving up a dispute or quarrel. ୨ । ବୈପରୀତ୍ୟର ପରିତ୍ୟାଗ—2. Removal of a contradiction or opposition.

**ବିରୋଧ ଭଙ୍ଗ**—ସ· ବି (୬ଷ୍ଠୀ ତତ୍; ବିରୋଧ+ଭଙ୍ଗ)—ବିବାଦ Birodha bhaṅga ମେଣ୍ଟିଯିବା—The settlement of a dispute.

**ବିରୋଧ ଭଞ୍ଜନ**—ସ. ବି (୬ଷ୍ଠୀ ତତ୍; ବିରୋଧ+ଭଞ୍ଜନ)—୧ । ବିବାଦ Birodha bhañjana ମେଣ୍ଟିଯିବା—1. The settlement of a dispute. ୨ । ଅନ୍ୟମାନଙ୍କ ମଧ୍ୟରେ ଥିବା ବିରୋଧକୁ ମେଣ୍ଟାଇ ଦେବା—2. Settling a dispute between others.

**ବିରୋଧାଗ୍ନି**—ସ. ବି (ରୂପକ କର୍ମଧା; ବିରୋଧ+ଅଗ୍ନି)—ଅଗ୍ନିପରି Birodhāgni ଭୟାନକ ବିରୋଧ ବା ବିବାଦ—A hot or (ବିରୋଧାନଳ—ଅନ୍ୟରୂପ) fiery dissension

**ବିରୋଧାଭାସ**—ସ. ବି (୬ଷ୍ଠୀ ତତ୍; ବିରୋଧ+ଆଭାସ)—A figure Birodhābhāsa of speech in which there is apparent contradiction. [ ତ୍ର—ଯେଉଁଠାରେ ବର୍ଣ୍ଣନା ପ୍ରକୃତରେ ପରସ୍ପର ବିରୋଧୀ ନଥାଇ ଆପାତତଃ ବିରୋଧୀ ବୋଲି ଜଣାଯାଏ ସେଠାରେ ଏହି ଅଳଙ୍କାର ହୁଏ; ଯଥା—ଭାବୁଛି ଦେବାକୁ ସେତ ଏ ରୂପ ବଧୂର, ନ ଭାବୁଛି ସେ ଦେବାକୁ ଏ ରୂପ ବଧୂର; ଭାବ ନ ଭାବ ସେ ଧୀର; ଶୋକ ପାଶୋରି ହେଉଛି ଅଶୋକ ପାଶୋରି—ଗୋଲକ—ଇନ୍ଦୁରେଖା । ]

**ବିରୋଧି**—ଦେ. ବିଣ (କଚରିଆ) (ସ. ବିରୋଧୀପ୍ସୁ)—୧ । ବିରୋଧୀପ୍ସୁ; Birodhi ବିବାଦୀପ୍ସୁ; ବିବାଦର ବିଷୟୀଭୂତ—1. Disputed; (ବିରୋଧିଅ[ଯୁ]—ଅନ୍ୟରୂପ] subject of controversy; controversial. ୨ । ମକଦ୍ଦମାରେ ପକ୍ଷମାନଙ୍କ ମଧ୍ୟରେ ଯେଉଁ ବିଷୟ ଲାଗି ବିବାଦ ହୋଇଥାଏ—2. (a matter) In dispute in a case.

**ବିରୋଧିବା**—ଦେ. କ୍ରି (ପଦ୍ୟ) (ସ. ବି+ରୁଧ୍ ଧାତୁ)—୧ । ବିରୋଧ Birodhibā କରିବା—1. To obstruct. ୨ । ନିଷେଧ କରିବା; ମନା କରିବା—2. To forbid [ ଉ—ବିରୋଧିଲେ ଶୁଣି ସେ ବାଣୀ ଲକ୍ଷ୍ମଣ, କି ବନ୍ତ୍ର ନ ଜାଣି ଜନକ । ଭଞ୍ଜ. ବୈଦେହୀଶବିଳାସ ।]
ବିରୋଧା
**विरोधना**

**ବିରୋଧୀ**—ସ. ବିଣ. ପୁଂ (ବିରୋଧିନ୍; ବିରୋଧ+ଅସ୍ତ୍ୟର୍ଥେ. ଇନ୍, ୧ମା. Birodhī ୧ବ)—୧ । ବିରୋଧକାରୀ—1. Disputing; (ବିରୋଧିନୀ—ସ୍ତ୍ରୀ) opposing. ୨ । ପ୍ରତିକୂଳ; ବିରୁଦ୍ଧ—1. Opposed to. ୩ । ବିପକ୍ଷ; ଶତ୍ରୁତାପନ୍ନ—3. Inimical. ୪ । ବିନାଶକ—4. Destroying; destructive. [ ଉ—ବନରୁହରୁ ଜନମ ହୋଇ ଭୂଷାର, ବିରୋଧୀ କାହିଁ ଅଧିକେ ଦର୍ଶି ବୁଡ଼ଇ । ଭଞ୍ଜ. ବୈଦେହୀଶବିଳାସ । ] ସ· ବି—ବସ୍ତ୍ରର ବିଶେଷ—

Name of a particular year. ଦେ.ବି—୧ । ଅପର ପକ୍ଷୀୟ ବ୍ୟକ୍ତି—1. A person belonging to the other party. ୨ । ଶତ୍ରୁ—2. Enemy ଦେ. ବିଣ—( କଟଗଅ )—ବିରୋଧି ( ଦେଖ )— Birodhi ( See ).

ବିରୋଧୀୟ—ସଂ. ବିଣ ( ବିରୋଧ+ଈୟ )—ବିବାଦୀୟ; ବିବାଦସମ୍ବନ୍ଧୀୟ
Birodhiya —Relating to the disdute; controversial.

ବିରୋଧୋକ୍ତି—ସଂ. ବି—(ମ. ପ. ଲୋ; ବିରୋଧଜନକ ଉକ୍ତି; ବିରୋଧ+
Birodhokti ଉକ୍ତି—୧ । ବିରୋଧାଭାସ (ଦେଖ)—
1 Birodhābhāsa (See) ୨ । କଟୁ କଥା—
2. Harsh speech. [ଉ-ବିରୋଧୋକ୍ତି ନ ଭାଷିବେ ଅନୁରୋଧରୁ—ଭଞ୍ଜ. ବୈଦେହୀଶବିଳାସ ।] ୩ । ବିପ୍ରଳାପ (ଦେଖ)—3, Bipraḷāpa (See). ୪ । ଅନର୍ଥକ ବିବାଦ ( ଶବ୍ଦ କଳ୍ପଦ୍ରୁମ )—4. Vain dispute.

ବିରୋବାଏ—ପ୍ରାଦେ· (ସମ୍ବଲପୁର) ବି—(ଭୁଲ· ହି. ବିରୋବାନ୍)—
Birobāe ଭୂତ; ତାନ୍ତ୍ରିକ ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତିର ଗୃହକୁ ପ୍ରେରିତ ଅତ୍ୟାଚାରକ ଭୂତ—An evil spirit sent to a person's house by means of magical charms.

ବିରୋଳ—ଦେ· ବି—(ସଂ. ବିରଳ)—୧ । ସୁବ୍ୟକ୍ତ; ସୁସ୍ପଷ୍ଟ—
Biroḷa 1. Clear. ୨ । ପରସ୍ପରଠାରୁ ପୃଥକ୍—2. Separate from each other.

ବିର୍ଜ—ଗ୍ରା. ବି—(ସଂ. ବୀର୍ଯ୍ୟ)—ଶୁକ୍ର; ବୀର୍ଯ୍ୟ—
Birja ৰীজ **বির্জ** Semen virile.

ବିର୍ଜା(ର୍ଜେ)ଇବା—ଦେ. କ୍ରି—ବିରଜାଇବା (ଦେଖ)
Birja(rje)ibā (ବିର୍ଜିବା—ଅନ୍ୟରୂପ) Birijāibā (See)

ବିର୍ଝିବା—ପ୍ରାଦେ. (ସମ୍ବଲପୁର) - କ୍ରି. (ଭୁଲ. ହି. ବିରଝନା)—
Birjhibā ବିରଝିବା (ଦେଖ)—Birijhibā (See)

ବିର୍ଣ୍ଣି(ର୍ନି)—ପ୍ରାଦେ. (ସମ୍ବଲପୁର) ବି—(ସଂ. ବର୍ଣ୍ଣନୀ; ଭୁଲ. ହି. ବିରନୀ);
Birṇṇi(rni) ବିରନି (ଦେଖ)—Bir-ni (See)

ବିର୍ହୁତ୍—ଦେ. ବି—୧ । ଓଡ଼ିଶା ଗଡ଼ଜାତମାନଙ୍କରେ ବାସ କରୁଥିବା
Birhut ଅନାର୍ଯ୍ୟ ଜାତି ବିଶେଷ—1. A non-aryan caste
বিরহুত **बीरहुत** residing in the Oriya states.
୨ । ବିର୍ହୁତ ଜାତିର କଥିତ ଭାଷା—
2. The language spoken by the Birhuts.

ବିର୍ହି—ଦେ. ବି—(ସଂ. ବ୍ରୀହି)—ବିରି (ଦେଖ)—Biri (See)
Birhi [ଉ—ଏ ଅନ୍ତରେ ଘୋଡ଼ାଙ୍କୁ ସ୍ନାନ କରାଇଲେ । ବିର୍ହି (ବିର୍ହୁ—ଅନରୂପ) ଘାସ ଖୁଆଇ ମଦ ପିଆଇଲେ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।]

ବିଲ୍ (ଧାତୁ)—ସଂ.—ଭେଦ କରିବା—
Bil (root) To pierce.

ବିଲ୍—ବୈଦେ. ବି ( ଇଂ. ବିଲ୍ )—୧ । ପ୍ରାପ୍ୟ ଟଙ୍କାର ଦାବୀ-ତାଲିକା;
Bil ପ୍ରାପ୍ୟ ଟଙ୍କା ପାଇବା ନିମନ୍ତେ ଯେଉଁ ପତ୍ର ଦାବୀଦାର ଦାଖଲ
বীল **बील** କରେ—1. A bill drawn up for payment of one's dues. ୨ । ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ କରାଯିବା ଆଇନର ପାଣ୍ଡୁଲିପି—2. A bill put up before a legislative council for being passed into law.

ବିଲ୍ କିରାନି—ବୈଦେ· ବି—(ଇଂ ବିଲ୍+ଫା. କିରାନି )—ଯେଉଁ
Bil kirani କ୍ଲର୍କ୍ କୌଣସି ଇଲାକାର ବିଲ୍‌ମାନ ତିଆର କରେ-
বীলক্লার্ক **बील किरानी** Bill clerk.
(ବିଲ୍ କ୍ଲର୍କ୍; ବିଲ୍ କ୍ଲାର୍କ୍—ଅନ୍ୟରୂପ)

ବିଲ୍‌କୁଲ୍—ବୈଦେ. କ୍ରି. ବିଣଓ ବିଣର ବିଣ—( ଫା. ବିଲ୍=ଏମନ୍ତ;
Bil-kul କୂଲ୍=ସମୁଦାୟ )—ସମ୍ପୂର୍ଣ୍ଣରୂପେ; ବିବାକ୍; ସମସ୍ତ—
বিলকুল **बिलकुल** Wholly; all; entirely. [ଉ—ପ୍ରେଷ୍ଟା
[ବିଲ(ଲୁ)କୁଲ୍(ଲୁ)—ଅନ୍ୟରୂପ] ମିଅଁ ପଦର ବର୍ଷ ମଧ୍ୟରେ ପାରସ୍ୟ ଭାଷାର ବିଲ୍‌କୁଲ ବର୍ଣ୍ଣମାଳା ଓ ବନାନ ଶିଖି ପକାଇଥିଲେ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।] ବୈଦେ. ବିଣ—ସମୁଦାୟ—Whole; all of. [ଯଥା—ତା ବିଲ୍‌କୁଲ୍ ହାତ ଘାଆ ହୋଇଛି । ] ପ୍ରାଦେ.—( ସମ୍ବଲପୁର ) ଅ. ନିଶ୍ଚୟ—Certainly; surely. [ଯଥା—ଆଜି ବିଲ୍‌କୁଲ ମେଘ ବର୍ଷିବ ।]

ବିଲ୍‌ଟି—ବୈଦେ. ବି. ( ଇଂ. ବିଲେଟ୍; ବିଲ୍ ଅଫ୍ ଲେଡିଙ୍ଗ୍ )—
Bil-ṭi ଜାହାଜରେ ଓ ରେଲଗାଡ଼ିରେ ମାଲ୍ ଲଦାଇ ପଠାଇବା
(ବିଲ୍ଟି—ଅନ୍ୟରୂପ) ବ୍ୟକ୍ତିକୁ ମିଳିବା ନିଦର୍ଶନ ପତ୍ର; ମାଲ ଚାଲାଣି
বিল্টী ପର୍ଚ୍ଚି—A bill of lading; a ralway-receipt.
**बिल्टी** [ ଦ୍ର—ଏହି ବିଲ୍‌ଟିକୁ ପ୍ରେରକ ଗ୍ରାହକଙ୍କ ନିକଟକୁ ପଠାନ୍ତି । ଗ୍ରାହକ ଠିକଣାମୁଣ୍ଡରେ କମ୍ପାନିକୁ ଏହି ବିଲ୍‌ଟି ଦେଖାଇ ପ୍ରେରିତ ମାଲ ଗ୍ରହଣ କରନ୍ତି । ]

ବିଲ୍‌ଟି କରିବା—ଦେ. କ୍ରି—୧ । (ଜାହାଜର ବା ରେଲର ଭାରପ୍ରାପ୍ତ
Bil-ṭi karibā କର୍ମଚାରୀ) ପ୍ରେରକଠାରୁ ପ୍ରେରିତ ଦ୍ରବ୍ୟ ଗ୍ରହଣ
বিল্টী কাটনা କରି ତାକୁ ପ୍ରାପ୍ତିସ୍ୱୀକାର ପତ୍ର ଦେବା—1. To grant
**बिल्टी काटना** a bill of lading or railway reciept for goods entrusted to a steamer or railway for carriage. ୨ । (ପ୍ରେରିତ ଦ୍ରବ୍ୟର ପ୍ରେରକ) ପ୍ରେରିତ ଦ୍ରବ୍ୟକୁ ଜାହାଜରେ ବା ରେଲରେ ବୋଝାଇ କରାଇବା ପରେ ଅଧ୍ୟକ୍ଷଙ୍କଠାରୁ ରସିଦ ନେବା—2 To get a bill of lading or receipt for goods consigned to a carrier of goods.
(ବିଲ୍‌ଟି କାଟିବା, ବିଲ୍ଟି କରିବା, ବିଲ୍ଟି କାଟିବା—ଅନ୍ୟରୂପ)

ବିଲ୍ ନାମଞ୍ଜୁର(ରି)—ବୈଦେ. ବି—୧ । ବିଲ୍‌ରେ ଦାବୀ କରାଯାଇଥିବା
Bil nāmañjur(ri) ଟଙ୍କାକୁ ଅଗ୍ରାହ୍ୟ କରିବା—1. Rejection of a bill for payment.
বিল নামঞ্জুর(রি)
**बील नामंजूर(रि)** ୨ । ବ୍ୟବସ୍ଥାପକ ସଭାରେ ଉପସ୍ଥାପିତ ଆଇନର ପାଣ୍ଡୁଲିପି ଆଇନ୍‌ରୂପେ ଗୃହୀତ ନ ହେବା—2. Rejection of a legislative bill by the Council

**ବିଲ୍ ପାସ୍**— ବୈଦେ. ବି ( ଇଂ. ବିଲ୍ + ପାସ୍ )—୧ । ବିଲ୍‌ରେ ଯେଉଁ ଟଙ୍କା ଦାବୀ କରାଯାଇଥାଏ, ତାହା ଦାବୀଦାରଙ୍କୁ ଦିଆଯିବା ନିମନ୍ତେ ମଞ୍ଜୁର—1. Passing or sanctioning of a bill for payment. ୨ । ବ୍ୟବସ୍ଥାପକ ସଭାରେ ପ୍ରସ୍ତାବିତ ଆଇନ୍‌ର ପାଣ୍ଡୁଲିପି ଆଇନ୍‌ରୂପେ ଗୃହୀତ ହେବା—2. The passage of a legislative bill into law.
Bil pās
বিলপাশ
बीलपास
[ବିଲ୍ ମଞ୍ଜୁର(ରି)—ଅନ୍ୟରୂପ]

**ବିଲ୍‌ଫଇ(ଏ)ଲ୍**— ବୈଦେ. କ୍ରି. ବିଣ ( ଫା )—୧ । ବର୍ତ୍ତମାନ—1. Now. ୨ । ଯଥାକାଳ ବିଳମ୍ବ ନ କରି; ସାଙ୍ଗେସାଙ୍ଗେ—2. Immediately; at once.
Bil-phai(e)l
বীলফেল
बिलफेल
(ବିଲ୍‌ଫେଲ୍—ଅନ୍ୟରୂପ)

**ବିଲ୍‌ଫ(ଫା)ର୍ମ୍**—ବୈଦେ. ବି ( ଇଂ. ବିଲ୍ + ଫର୍ମ୍ )—ବିଲ୍ ଲେଖାଯିବା ପାଇଁ ଛପା ହୋଇଥିବା ପତ୍ର—Bill-form. [ଦ୍ର—ଏ ଫର୍ମରେ ବିଲ୍‌ରେ ଲେଖା ହେବା ପାଇଁ ଭିନ୍ନ ଭିନ୍ନ ହେଡିଙ୍ଗ୍ ବା ଶିରୋନାମା ମୁଦ୍ରିତ ହୋଇଥାଏ । ବିଲ୍ ପୂରଣକାରୀ ଉକ୍ତ ହେଡିଙ୍ଗ୍‌ମାନଙ୍କ ତଳେ ଜ୍ଞାତବ୍ୟ ବିଷୟ ବା ସଂଖ୍ୟାମାନ ପୂରଣ କରନ୍ତି । ]
Bil-pha(phā)rm
বীলফর্ম
बीलफारम
[ବିଲ୍‌ଫ(ଫା)ରମ୍—ଅନ୍ୟରୂପ]

**ବିଲ୍ ଭଙ୍ଗା(ଙ୍ଗେ)ଇ**—ଦେ. ବି (ଇଂ. ବିଲ୍ + ସଂ. ଭଞ୍ଜ୍ ଧାତୁ )—୧ । ପାଶ୍ ହୋଇଥିବା ବିଲ୍ ଦାଖଲ ପୂର୍ବକ ଟଙ୍କା ଦେବାବାଲାଙ୍କଠାରୁ ଉକ୍ତ ବିଲ୍‌ବାବଦ୍ ଟଙ୍କା ଆଣିବା—1. Encashment of a bill passed for payment. ୨ । ବିଲ୍ ବାବଦ୍ ଟଙ୍କା ପାଇବା-ପାଇଁ ଗ୍ରାହକଙ୍କୁ ଯେଉଁ କମିସନ୍ ଦେବାକୁ ପଡ଼େ—2. Commission charged by the payer of a bill for cashing a bill.
Bil-bhaṅgā(ṅge)i
বিলভাঙ্গান
बीलभजाई

**ବିଲ ଭଙ୍ଗା(ଙ୍ଗେ)ଇବା**—ଦେ. କ୍ରି—ମଞ୍ଜୁର ହୋଇଥିବା ବିଲ୍ ଅର୍ଥ-ଦାତାଙ୍କଠାରେ ଦାଖଲ କରି ତାଙ୍କଠାରୁ ଟଙ୍କା ଆଣିବା—To get payment for a passed bill.
Bil bhaṅgā(ṅge)ibā
বিলভাংগান
बीलभजाना

**ବିଲ୍ ସରକାର**—ବୈଦେ. ବି ( ଇଂ. ବିଲ୍ + ଫା· ସର୍କାର୍ )—ଯେଉଁ ଲୋକ ଦାବୀଦାରଙ୍କଠାରୁ ପାଉଣାଦାର-ମାନଙ୍କ ନିକଟକୁ ବିଲ୍‌ମାନ ନେଇ ଟଙ୍କା ଆଦାୟ କରନ୍ତି—Bill agent; a bill sarkar.
Bil-sar-kār
বিল সর্কার
बील सरकार
( ବିଲ୍‌ସର୍କାର୍—ଅନ୍ୟରୂପ )

**ବିଲ**— ସଂ. ବି· ( ବିଲ୍ ଧାତୁ=ଭେଦ କରିବା + କର୍ମ. ଅ )—୧ । ଗର୍ତ୍ତ; ଗାତ; ବିବର—1. A hole. (ଉ—ଧରଣୀରେ ବିଲ ହୋଇଣ ଥିଲା ତଲେ, ତହିଁ ମଧ୍ୟେ ତକ୍ଷକ ଯାଇଣ ପଶିଲେ । କୃଷ୍ଣସିଂହ. ମହାଭାରତ ଆଦି ।) ୨ । ଗୁହା; ଗହ୍ୱର—2. Cave; cavern. ୩ । ଉଚ୍ଚୈଃ-ଶ୍ରବା ଅଶ୍ୱ—3. The horse of Indra. ୪ । ବେତ ଲତା—4. The ratan creeper. ୫ । ନଦୀର ଗତି ପରିବର୍ତ୍ତନ ଯୋଗୁଁ ଉତ୍ପନ୍ନ ଜଳାଶୟ—5. A deep pool formed as a result of change in the course of a river.
Bila

**ବିଲ**—ଦେ. ବି. ( ସଂ. ବିଲ୍ଲ; ତା. ବଲେ )—ଶସ୍ୟ କ୍ଷେତ୍ର—A field for raising any crop. ( ଉ—ଦକ୍ଷିଣାଯୁକ୍ତ ହୋଇ ମଧ୍ୟାହ୍ନ ଆସିଲେ, ବିଲ ବିଆରିଙ୍କ ସଙ୍ଗତରେ ମିଶିଲେ । କୃଷ୍ଣସିଂହ· ମହାଭାରତ. ବନ । ) [ ଦ୍ର— ବଙ୍ଗଳା ଭାଷାରେ ବିସ୍ତୃତ ଜଳାଭୂମିକୁ ମଧ୍ୟ ବିଲ ବୋଲା-ଯାଏ; ହିନ୍ଦୀରେ ନିମ୍ନ ଓ ଜଳମୟ ଭୂମିକୁ ବିଲ ବୋଲାଯାଏ ।] ପ୍ରାଦେ. (ଗଞ୍ଜାମ) ବି—ଶସ୍ୟାଦିର ମାପ ବିଶେଷ—A particular measure of corn. [ ଦ୍ର—ଏକ ବିଲ=୪ ଭରଣ ୧୬ ନଉତି ।]
Bila
বিল
खेत, बील

**ବିଲଇ**—ପ୍ରାଦେ. (ଉତ୍ତରଭାଷା) ବି—ବିଲେଇ; ବିରାଡ଼ି—Cat.
Bilai

**ବିଲ(ଲା)କ୍**—ଗ୍ରା· ବୈଦେ. ବି. (ଇଂ. ବ୍ଲକ୍)—୧ । କାର୍ଯ୍ୟର ଭିନ୍ନ ଭିନ୍ନ ଅଂଶ—1. A block of work. ୨ । ଗୃହ ଶ୍ରେଣୀର ଭିନ୍ନ ଭିନ୍ନ ଅଂଶ—2 A particular block of a row of houses.
Bila(lā)k

**ବିଲ କଙ୍କଡ଼ା**—ଦେ. ବି—ବିଲୁଆ କଙ୍କଡ଼ା; ବର୍ଷା ଋତୁରେ ଧାନ ବିଲରେ ଯେଉଁ ସବୁ କ୍ଷୁଦ୍ର କ୍ଷୁଦ୍ର କଙ୍କଡ଼ା ଦେଖାଯାଆନ୍ତି—Crabs found in paddy and other fields during the rains.
Bila kaṅkarḍā
বিল কাঁকড়া
केँकडा

**ବିଲ କ(କେ)ରଣ୍ଡି**—ଦେ· ବି—ବିଲରେ ମିଳୁଥିବା ଏକ ପ୍ରକାର ଛୋଟ କେରଣ୍ଡି ମାଛ—A kind of very small Kerāṇḍi fish found in water-logged corn-fields during the rains.
Bila ka(ke)rāṇḍi
পুঁটী
[ଦ୍ର—ଏହା ଖାଇବାକୁ ଖୁବ ପିତା ଲାଗେ ।]

**ବିଲ କାମ**—ଦେ. ବି. (ସଂ· ବିଲ୍ଲ + କର୍ମ)—ବିଲ ଧନ୍ଦା (ଦେଖ)
Bila kāma — Bila dhandā (See)
খেতের(মাঠের)কাজ
खेती, खेतका काम
(ଉ—ବିଲ କାମ ସାରି କୃଷକ ଫେରି ଯାଉଛନ୍ତି ଘରେ । ନନ୍ଦକିଶୋର ନିର୍ଝରିଣୀ ।)

**ବିଲକ୍ଷ**—ସଂ. ବିଣ. ( ବି+ଲକ୍ଷ ଧାତୁ=ଦେଖିବା+କର୍ତ୍ତୃ. ଅ )—୧ । ବିସ୍ମୟାପନ୍ନ; ଚମତ୍କୃତ—1. Astonished. ୨ । ଅଚିହ୍ନିତ—2. Not marked. ୩ । ଅନୁଦ୍ଦିଷ୍ଟ—3. Untraced. ୪ । ଅନିଶ୍ଚିତ—4. Uncertain. ୫ । ନିର୍ଗୁଣ—5. Worthless; devoid of any quality. ୬ । ଲଜ୍ଜିତ—6. Ashamed. ୭ । ପ୍ରକୃତି-ବିରୁଦ୍ଧ—7. Opposed to one's nature. ଦେ. ବିଣ (ସଂ. ବିଲକ୍ଷଣ)—୧ । ଅନୁପମ—1. Incomparable. (ଉ—ବିଲକ୍ଷ ଏତେ ହରି ବନେ ପାଦେ. । ଭଞ୍ଜ. ବୈଦେହୀଶବିଳାସ ।) ୨ । ଅସାଧାରଣ—2. Uncommon; extraordinary. ୩ । ଅସଂଖ୍ୟ—3. Innumerable. (ଉ—ବିଲକ୍ଷ ଲକ୍ଷ ବୃକ୍ଷ କ୍ୱେୟାଡ଼ ପ୍ରକାର, ଜଗାତର ଖଗକୁଳ । ଭଞ୍ଜ. ବୈଦେହୀଶବିଳାସ ।)
Bilaksha
বিলক্ষণ

**ବିଲକ୍ଷଣ**—ସ. ବିଣ. (ବହୁବ୍ରୀହି; ବି=ନାହିଁ+ଲକ୍ଷଣ=ଚିହ୍ନ; ସ୍ୱରୂପ)—
Bilakshaṇa ୧ । ଅସାଧାରଣ; ଅସାମାନ୍ୟ—1. Uncommon; extraordinary. ୨ । ବିଶିଷ୍ଟ—2. Particular. (ଉ—ବିଲକ୍ଷଣ ବନ ବିହାର ଉତ୍ସବ ବେଳେ, ଯା ଦେଲୁ ପାଶୋରରେ । କବିସୂର୍ଯ୍ୟ, ବଶୋଗାଚମ୍ପୁ ବ ଗୀତ ।) ୩ । ସ୍ୱତନ୍ତ୍ର; ଭିନ୍ନ; ପୃଥକ୍—3. Separate. ୪ । ପରୀକ୍ଷକ, ଦର୍ଶକ—4. Examining; visiting ୫ । ସ୍ପଷ୍ଟ—5. Clear. ୬ । ଅତି ସୁନ୍ଦର—6. Very fine. ୭ । ଉତ୍କୃଷ୍ଟ—7. Excellent. ୮ । ବିପରୀତ—8 Opposite.
বিলক্ষণ ଦେ. କ୍ରି. ବିଣ—୧ । ଉତ୍ତମରୂପେ—1. Very well. **आच्छा** [ ଯଥା—ମୁଁ ତାଙ୍କୁ ବିଲକ୍ଷଣ ଜାଣେ । ] ୨ । ସୁନ୍ଦରରୂପେ—2. Nicely. ୩ । ସ୍ପଷ୍ଟଭାବରେ—3 Clearly.

**ବିଲକ୍ଷବତୀ**—ଦେ. ବିଣ—ନିରୁପମା ସୁନ୍ଦରୀ (ସ୍ତ୍ରୀ)—Incomparably
Bilakshabatī fine (woman). [ ଉ—ବିଲକ୍ଷ ଲକ୍ଷ ଯେତେକ ବିଲକ୍ଷବତୀବ—ଭଞ୍ଜ. ବୈଦେହୀଶବିଳାସ । ]

**ବିଲକ୍ଷିତ**—ଦେ. ବିଣ—୧ । ଉପମାର ଅଯୋଗ୍ୟ—1. Not deser-
Bilakshita ving to be compared. [ ଉ—ବିମାନେ ଯେ, ବିଲକ୍ଷିତ ହୋଇବେ ତାଙ୍କୁ—ଭଞ୍ଜ. ବୈଦେହୀଶବିଳାସ] ୨ । ସମାନ; ଯୋଗ୍ୟ—2. Equal; befitting. ୩ । ତୁଳନୀୟ—3. Comparable. [ ଉ—ବିଲକ୍ଷିତ କେଉଁ ରମ୍ଭା ଏହାରେ—ଭଞ୍ଜ. ବୈଦେହୀଶବିଳାସ । ]

**ବିଲକ୍ଷିବା**—ଦେ. କ୍ରି (ପଦ୍ୟ) (ସ. ବି+ଲକ୍ଷ ଧାତୁ)—୧ । ତୁଳନାରେ ହେୟ ଜ୍ଞାନ କରିବା—1. To judge a
Bilakshibā thing as undeserving of comparison.
বিলক্ষা **बिलछना**
୨ । ଦେଖିବା—2. To see. [ ଉ—ବିଲକ୍ଷିଲେ ଲଙ୍କାଗଡ଼ ପାତାଳର ପର—ଭଞ୍ଜ. ବୈଦେହୀଶବିଳାସ । ] ୩ । ପରୀକ୍ଷା କରିବା—3. To examine. ୪ । ନିରେଖି ଦେଖିବା—4. To observe; to mark.

**ବିଲଗ**—ଦେ. ବିଣ (ସ. ବିଲଗ୍ନ)—୧ । ବିଲଗ୍ନ; ଅଲଗା—
Bilaga 1. Separate. [ ଉ—ବିଯୋଗ ଯେ ନାହୁଁ, ବିନ୍ଦୁ ଅଲଙ୍ଗନେ ବିଲଗ ହୁହୁଁ—ଭଞ୍ଜ. ବୈଦେହୀଶବିଳାସ । ]
আলগা **विलग**
୨ । ଅସଂଲଗ୍ନ—2. Unconnected. ୩ । ବିତାଡ଼ିତ—3. Driven away; expelled. [ ଉ—ବିଲଗ କରି, ରଖି ନ ଦେଲି କଟକରେ—ଭଞ୍ଜ. ବୈଦେହୀଶବିଳାସ । ] ଦେ. ବି—ସଂଯୋଗର ଅଭାବ—Want of connection.

**ବିଲଗନ**—ଗ୍ରା. (ପଦ୍ୟ) ବିଣ (ସ. ବିଲଗ୍ନ)—୧ । ବିଶେଷରୂପେ ସଂଯୁକ୍ତ; ଦୃଢ଼ଲଗ୍ନ—1. Well-connected; intimately
Bilagana attached. [ ଉ—ବିଲଗନ ତଳରେ ଉପରେ ରମ୍ଭା ସ୍ଥିତ—ଭଞ୍ଜ. ବୈଦେହୀଶବିଳାସ । ] ୨ । ଅସଂଯୁକ୍ତ—2. Unconnected.
বিলগন **बिलगन**

**ବିଲଗା(ଗୋ)ଇବା**—ଦେ. (ପଦ୍ୟ) କ୍ରି (ସ. ବିଲଗ୍ନ)—୧ । ପୃଥକ୍
Bilagā(go)ibā କରିବା; ଅଲଗା କରିବା—1. To separate.
আলগাকরা **बिलगाना**
୨ । ଢିଲା କରିବା—2. To slaken, to loosen.

**ବିଲଗିବା**—ଦେ. କ୍ରି—୧ । ପୃଥକ ହେବା; ଅଲଗା ହେବା—1. To
Bilagibā be separated. ୨ । ଢିଲା ହେବା—2. To become loose.
অলগা হওয়া **बिलगा होना**

**ବିଲଗ୍ନ**—ସ. ବିଣ (ବି+ଲଗ୍ ଧାତୁ=ଲାଗିଯିବା+କର୍ମ କ୍ତ)—
Bilagna ୧ । ସଂଯୁକ୍ତ—1. Conneched. ୨ । ବୃଦ୍ଧ—2. Old. ୩ । କୃଶ—3. Emaciated; thin. ୪ । ବିଯୁକ୍ତ—4. Subtracted; separated. ୫ । ଢିଲା; ଶ୍ଳଥ—5. Slack; loosened. ସ. ବି—୧ । କଟିଦେଶ—1. Waist; loins. ୨ । ଜନ୍ମଲଗ୍ନ—2. The natal astrological mark or sign of a person. ୩ । ମେଷାଦି ଦ୍ୱାଦଶ ରାଶି—3. The 12 signs of the zodiac.

**ବିଲ ଘଷି**—ଦେ. ବି—୧ । ପଡ଼ିଆରେ ବା ବିଲରେ ପଡ଼ିଥିବା ଗୋରୁ
Bila ghashi ଗାଈଙ୍କ କର୍ତ୍ତୃକ ତ୍ୟକ୍ତ ଶୁଷ୍କ ଗୋମୟ—1. The
বিলঘুঁটে **बनगोंठ** dried cowdung left in the pasture or fields by the grazing cattle.
( ବିଲଘଷି—ଗ୍ରାମ୍ୟରୂପ )
বিল বাতাসা
୨ । ( ବ୍ୟଙ୍ଗ ପ୍ରୟୋଗ ) ଗ୍ରାମ ପଦାରେ ପଡ଼ିଥିବା ଶୁଖିଲା ଗୁହ—2. ( ironical ) Dry flakes of excrements left in the village common easing ground.

**ବିଲଙ୍କା**—ଦେ. ବି—ଉତ୍କଳୀୟ କବି ସାରଳା ଦାସଙ୍କର କଳ୍ପନାସମ୍ଭୂତ
Bilaṅkā ଓ ପୌରାଣିକ 'ସହସ୍ର ରାବଣ'ର ଆଶ୍ରୟସ୍ଥଳୀ ଅବ-
ବିଲଙ୍କାନଗର(ସ୍ତ୍ରୀ) } ଅନ୍ୟରୂପ
ବିଲଙ୍କାପୁର(ସ୍ତ୍ରୀ) }
ଲମ୍ବନରେ କଳ୍ପିତ ବିଲଙ୍କା ରାବଣର ରାଜଧାନୀ—The capital of a demon with 1000 heads described in an Oriya Purāṇa by poet Sāralā Dāsa.

**ବିଲଙ୍କା ରାବଣ**—ଦେ. ବି—ସହସ୍ର ରାବଣ; ଉତ୍କଳୀୟ କବିଙ୍କ କଳ୍ପିତ
Bilaṅkā rābaṇa ସହସ୍ର ଶିରସ୍କ ଅସୁରବିଶେଷ—A demon with 1000 heads described in the Bilaṅkā Rāmāyaṇa of the Oriya poet Sāralā Dāsa.

**ବିଲଙ୍କା ରାମାୟଣ**—ଦେ. ବି—ସାରଳା ଦାସ କବିଙ୍କ ରଚିତ 'ବିଲଙ୍କା
Bilaṅkā rāmāyaṇa ରାବଣ'ର ବଧ ବର୍ଣ୍ଣନାତ୍ମକ ପଦ୍ୟ ଗ୍ରନ୍ଥ
( ବିଲଙ୍କା ରବାୟଣ—ଗ୍ରାମ୍ୟରୂପ ) ବିଶେଷ—Name of an Oriya mythological work describing the slaying of a thousand-headed demon by Rāma.

[ ଦ୍ର—ଏଥିର ବର୍ଣ୍ଣିତ ବିଷୟ—ରାମାୟଣରେ ରାମଚନ୍ଦ୍ର ରାବଣଙ୍କୁ ମାରି ସୀତାଙ୍କୁ ଉଦ୍ଧାର କରିବା ପରେ ଧୁନବାର ସୀତା ଓ ରାମଚନ୍ଦ୍ରଙ୍କ ମଧ୍ୟରେ ରାମଚନ୍ଦ୍ରଙ୍କ

ସାମର୍ଥ୍ୟ ସମ୍ବନ୍ଧେ ତର୍କବିତର୍କ ହେବାରୁ ସୀତା ତର୍କବଳରେ ରାବଣବଧରେ ରାମଚନ୍ଦ୍ରଙ୍କ ଲୁଣ୍ଠନ ଥିବା ବିଷୟରେ ସନ୍ଦେହ ହେବାର ଦେଖି ସୀତାଙ୍କ ମନରୁ ସନ୍ଦେହ ଦୂର କରିବା ଲାଗି ରାମଚନ୍ଦ୍ର ପାତାଳକୁ ଆକ୍ରମଣ କରି ସେଠାରେ ଥିବା ବିଲଙ୍କା ରାବଣର ରାଜଧାନୀ ବିଲଙ୍କାପୁରୀକୁ 'ଲଙ୍ଘି' ଅର୍ଥାତ୍ ଧ୍ୱଂସ କରି ଉକ୍ତ ରାବଣଙ୍କୁ ବଧ କରିଥିଲେ । ଏହା ଓଡ଼ିଆ କବି ସାରଳା ଦାସଙ୍କ ରଚିତ । ଏଥିର ମୂଳ ବିଷୟ କୌଣସି ସଂସ୍କୃତ ପୁରାଣରେ ମିଳୁ ନାହିଁ । ]

**ବିଲଙ୍ଘକ**—ସଂ. ବିଣ. ପୁଂ (ବି+ଲଙ୍ଘ୍ ଧାତୁ=ଲଙ୍ଘିଯିବା+କର୍ତ୍ତୃ. ଅକ) — Bilanghaka ୧ । ଆଜ୍ଞା ଆଦିର ଲଙ୍ଘନକାରୀ—1. Disobeying (ବିଲଙ୍ଘିକା—ସ୍ତ୍ରୀ) the orders of one's superior. ୨ । ଅବାଧ୍ୟ—2. Insubordinate.

**ବିଲଙ୍ଘନ**—ସଂ. ବି (ବି+ଲଙ୍ଘ୍ ଧାତୁ=ଲଙ୍ଘିଯିବା+ଭାବ. ଅନ) — Bilanghana ୧ । ଉଲ୍ଲଙ୍ଘନ; ଅତିକ୍ରମଣ—1. Overtopping; passing over. ୨ । ଆଜ୍ଞା ଆଦିକୁ ଅବଜ୍ଞା କରିବା—2. Disobeying an order.

**ବିଲଙ୍ଘନୀୟ**—ସଂ. ବିଣ (ବି+ଲଙ୍ଘ୍ ଧାତୁ=ଲଙ୍ଘିଯିବା+କର୍ମ. ଅନୀୟ) — Bilanganiya ଉଲ୍ଲଙ୍ଘନୀୟ; ଅତିକ୍ରମଣୀୟ—To be disobeyed.

**ବିଲଙ୍ଘିତ**—ସଂ. ବିଣ (ବି+ଲଙ୍ଘ୍ ଧାତୁ=ଲଙ୍ଘିଯିବା+କର୍ମ. ତ) — Bilanghita ୧ । ଅତିକ୍ରାନ୍ତ; ଉଲ୍ଲଙ୍ଘିତ—1. Overtopped; passed over ୨ । ଅବଜ୍ଞାତ—2. Disobeyed; disregarded.

**ବିଲଙ୍ଘିବା**—ଦେ. କ୍ରି (ପଦ୍ୟ) (ସଂ. ବିଲଙ୍ଘନ)—ଉଲ୍ଲଙ୍ଘନ କରିବା; Bilanghiba ଉପରେ ଡେଇଁବା—To jump over. विलङ्घना [ ଉ—ବେଗରେ ବିଲଙ୍ଘନ କରି ସିନ୍ଧୁ ସେ— **विलंघना** ଭଞ୍ଜ. ବୈଦେହୀଶବିଳାସ ]

**ବିଲଜ୍ଜ**—ସଂ. ବିଣ. ପୁଂ (ବହୁବ୍ରୀହି; ବି+ଲଜ୍ଜା)—ନିର୍ଲଜ୍ଜ; ଲଜ୍ଜାହୀନ— Bilajja Shameless. [ବିହଗରହି ବିଲୋକି; ବିଲଜ୍ଜ ଲୋକ ଭୁ (ବିଲଜ୍ଜା—ସ୍ତ୍ରୀ) ଭଞ୍ଜ. ବୈଦେହୀଶବିଳାସ ]

**ବିଲ ଡାକିବା**—ଦେ. ବି—ଖରା ଯୋଗୁଁ କ୍ଷେତରୁ ଜଳ ଶୁଖିଯାଇ ଫାଟି Bila dakiba ଯିବା—Dryness of a corn field **खेत फटाना** due to sun's rays. (ବିଲ ଡାକିଯିବା, ବିଲଫାଟିବା—ଅନ୍ୟରୂପ)

**ବିଲ(ଲି)ଣା**—ବୈଦେ. ବିଣ—ବିରଣା (ଦେଖ) Bila(li)na Birina (See)

**ବିଲ ଧନ୍ଦା**—ଦେ. ବି—କ୍ଷେତକର୍ମ; କୃଷିକର୍ମ; କୃଷିସମ୍ପର୍କୀୟ କାର୍ଯ୍ୟ— Bila dhanda କ্ষেতের কাজ **खेती** ବଲୀ—Agriculture.

**ବିଲ ନାଶ(ଛ)**—ଦେ. ବି (ସଂ. ଛିକ୍କଣୀ)—ସୋମରାଜ୍ୟାଦି ବର୍ଗର Bila nasa(chha) ବର୍ଷାୟୁ ଲୋମଶ କ୍ଷୁଦ୍ର ଶାକବିଶେଷ— (ବିଲନାଶ—ଗ୍ରାମ୍ୟରୂପ) Centipeda Orbicularis. নাকছিকনী, মেচেতা, হেঁচেতা **नक छिकनी** [ ଦ୍ର—ଏହା ଶୀତକାଳରେ ଧାନବିଲରେ ଉଠେ । ପତ୍ର ଦନ୍ତୁର । ଫୁଲ ବିଲବିଆ ରେଣୁବିଶିଷ୍ଟ ଓ ଗୋଲକ । ଏହାର ଫୁଲକୁ ମନ କରି ଶୁଙ୍ଘିଲେ ଖୁବ୍ ଛିଙ୍କ ହୁଏ । ]

**ବିଳପ**—ଦେ. ବି (ସଂ. ବିଳାପ)—ବିଳାପ—Wail. [ ଉ— Bilapa ବିଳପି ଘନେ ବୈଦେହୀ ବାସକସଜ୍ଜା ସ୍ୱେ— विलाप **विलाप** ଦ୍ରୋଣୀ. ରସବାରିଧି ]

**ବିଳପନ**—ସଂ. ବି (ବି+ଲପ୍ ଧାତୁ=କହିବା; ଶୋକ କରିବା+ଭାବ. Bilapana ଅନ)—୧ । ବିଳାପ; ପରିତାପ; ଦୁଃଖୋକ୍ତି— 1. Lamentation; wail. ୨ । ମଇଳା; ମଳ— 2. Filth.

**ବିଳପାଇବା**—ଦେ. କ୍ରି—ବିଳପିବାର ଣିଜନ୍ତରୂପ—Causative of Bilapaiba বিলাপান **विलपाना** Bilapiba.

**ବିଳପମାନ**—ସଂ. ବିଣ. ପୁଂ (ବି+ଲପ୍ ଧାତୁ=ଶୋକ କରିବା+ Bilapamana କର୍ତ୍ତୃ. ଆନ)—ବିଳାପକାରୀ; ଯେ ବିଳାପ କରୁ (ବିଳପମାନା—ସ୍ତ୍ରୀ) ଅଛି—Lamenting; bewailing.

**ବିଳପିତ**—ସଂ. ବିଣ (ବି+ଲପ୍ ଧାତୁ=ଶୋକ କରିବା+କର୍ତ୍ତୃ. ତ)— Bilapita ୧ । କାନ୍ଦୁଥିବା—1. Lamenting. ୨ । (+କର୍ମ. ତ) ଯାହା ନିମନ୍ତେ ବିଳାପ କରାଯାଉଥାଏ—2. Lamented. ସଂ. ବି (ବି+ଲପ୍ ଧାତୁ+ଭାବ. ତ)— ବିଳପନ, ବିଳାପକରଣ—Lamentation.

**ବିଳପିବା**—ଦେ. କ୍ରି (ପଦ୍ୟ) (ସଂ. ବି+ଲପ୍ ଧାତୁ)—ବିଳାପ କରିବା; Bilapiba କାନ୍ଦିବା; ଉଚ୍ଚୈଃସ୍ୱରରେ ଶୋକ କରିବା—To বিলাপা; বিলপা bewail; to lament. [ ଉ—ବିଳପିଲୁ **विलपना; विलपाना** ବିଳପିଲୁ ଏବେ ଉରେ କରି ତାଡ଼ ରେ— କବିସୂର୍ଯ୍ୟ. ସଙ୍ଗୀତ ]

**ବିଲ ପୋକଶୁଂଘା**—ଦେ. ବି—ପୋକଶୁଂଘା (ଦେଖ) Bila pokasumgha Pokasumgha (See)

**ବିଲ ବଛା**—ଦେ. ବି—ଧାନବିଲରୁ ଘାସ ଓ ବାଳୁଙ୍ଗା ଆଦି ବାଛିବା Bila bachha କ୍ରିୟା—Weeding out the tares from বিলবাছা **निकौनी** cornfields.

**ବିଲ ବାଛିବା**—ଦେ କ୍ରି—ଧାନ ବିଲରୁ ଘାସ ଆଦି ଉପାଡ଼ିବା— Bila bachhiba To uproot weeds from cornfields. বিলবাছা **निकौनी करना**

**ବିଲବାଡ଼ି(ରି)**—ଦେ ବି (ସମାହାର)—୧ । ଭୂସମ୍ପତ୍ତି—1. Immo- Bilabardi(ri) veable property. ୨ । ଚାଷ ଜମି— जमिबाड़ी **खेतीबाडी[री]** 2. Agricultural land. (ଉ—କେହି ବିଲବାଡ଼ିକୁ ଯିବାକୁ ନାହିଁ—ଫକୀର. ଛମାଣ ଆଠଗୁଣ୍ଠ; ଉ—ବିଲବାଡ଼ି କାମ ନ ଥିବାରୁ ××× ସ୍ନାନଯାତ୍ରା ଦେଖିବାକୁ ଯାଉଛନ୍ତି—ଫକୀର. ଛମାଣ ଆଠଗୁଣ୍ଠ ।) ୩ । ଚାଷଜମି ଓ ଘରବାଡ଼ି ଜମି— 3. Agricultural and homestead lands.

**ବିଲ ବାଳୁଙ୍ଗା**—ଦେ. ବି—ବାଳୁଙ୍ଗା; ଧାନବିଲରେ ଧାନ ଗଛରୁ ଝଡ଼ି Bilabalunga ପଡ଼ିଥିବା ଧାନରୁ ପର ବର୍ଷ ଯେଉଁ ଗଛ ହୁଏ ঊড়ী ধান, **झड** ବୁଣି ନ ହୋଇ ଉଠୁଥିବା ଧାନ; ବାଳୁଙ୍ଗା—Paddy growing in fields without regular sowing.

**ବିଲମ୍**—ପ୍ରାଦେ. (ସମ୍ବଲପୁର) ବି—ବିଳମ୍ବ— Bilam Delay.

ବିଲମ—ଗ୍ରା. ବିଣ ଓ ବି—ବିଲୋମ ( ଦେଖ )
Bilama Biloma ( See )

ବିଲମାଛ—ଦେ. ବି (ସଂ. ବିଲ+ମତ୍ସ୍ୟ)—ବର୍ଷାଦିନେ ଧାନ୍ୟକ୍ଷେତ୍ର ଓ
Bilamāchha ପୁଷ୍କରିଣୀ ଆଦି ଜଳପୂର୍ଣ୍ଣ ହେବା ସମୟରେ ଯେଉଁ
বিলের মাছ କ୍ଷୁଦ୍ର ମାଛମାନେ ପୋଖରୀରୁ ଉଠିଆସି ଧାନବିଲ ଆଦିରେ
खेतकी मछली ବିଚରଣ କରନ୍ତି ଓ ବିଲରୁ ପାଣି ଶୁଖିଗଲେ ଲୋକେ
ଯେଉଁଗୁଡ଼ିକୁ ଧରନ୍ତି—Small fishes caught from paddy fields when the rain water is dried up. ( ଉ—କଳା ବାଘ୍ୟା ହୋ ! ମୋର ବୋଲ ଶୁଣ, ବିଲ ମାଛ ଚଳ ଖାଇଗଲେ ଧରିଳ ଖଣ୍ଡିବ ଭୁଣ—ଶିଶୁଗୀତ । ) [ ଦ୍ର—ପାଣି ଶୁଖିଗଲେ ଯେଉଁ ମାଛଗୁଡ଼ିକ ବିଲର ଏକ ଅଂଶରେ ରହିଯାଆନ୍ତି, ସେଗୁଡ଼ିକୁ 'କଣ ମାଛ' ବା 'କଣ ମଛ' ବୋଲାଯାଏ । ]

ବିଲମୁଗ—ଦେ. ବି ( ସଂ. ବନମୁଦ୍ଗ; ଲୁଳୀନକ; ମୁଦ୍ଗପର୍ଣ୍ଣୀ )—ଲୁଳୀନକ;
Bilamuga ଏକପ୍ରକାର ବନ୍ୟମୁଦ୍ଗ—A kind of wild
মুগানী, খেঁড়ী কলাই pulse; Phaseolus Aconitifolius.
मुँगानी

ବିଲମ୍ବ—ସଂ. ବି ( ବି+ଲମ୍ବ ଧାତୁ=ଲମ୍ବିବା+ଭାବ. ଅ )—
Bilamba ୧ । ଡେରି—1. Delay. ୨ । ଅଶୀଘ୍ରତା—2. Slowness. ୩ । ମଧ୍ୟମ ନୃତ୍ୟ—3. A kind of slow dance.

ବିଲମ୍ବ—ସଂ. ବି ( ବି+ଲମ୍ବ ଧାତୁ=ଲମ୍ବିବା+କ. ଅ )—
Bilamba ୧ । ତଳକୁ ଲମ୍ବିବା; ଝୁଲିବା; ଓହଳିବା—1. Hanging down. ୨ । (…+କର୍ତ୍ତୃ. ଅ) ଟୁଙ୍ଗୁଡ଼ା; ଟୁଲ—2. Pendant, ଦେ. ବିଣ—ବିଲମ୍ବିତ—Hanging down.

ବିଲମ୍ବ କରିବା—ଦେ. କ୍ରି—ଡେରି କରିବା—To delay.
Bilamba kariba বিলম্ব করা विलम्ब करना

ବିଲମ୍ବ ଘଟିବା—ଦେ. କ୍ରି—ଡେରି ହେବା—Delay.
বিলম্ব হওয়া विलम्ब होना ( ବିଲମ୍ବ ହେବା—ଅନ୍ୟରୂପ )

ବିଲମ୍ବନ—ସଂ. ବି ( ବି+ଲମ୍ବ ଧାତୁ=ଲମ୍ବିବା+ଭାବ. ଅନ )—
Bilambana ବିଲମ୍ବକରଣ—Delaying.

ବିଲମ୍ବନ—ସଂ. ବି ( ବି+ଲମ୍ବ ଧାତୁ=ଲମ୍ବିବା+ଭାବ. ଅନ )—
Bilambana ବିଲମ୍ବ ( ଦେଖ )—Bilamba ( See )

ବିଲମ୍ବା(ମ୍ବେ)ଇବା—ଦେ. କ୍ରି—(ବିଲମ୍ବରୁ ଗଠିତ ଦେଶଜ ଧାତୁ)—
Bilambā(mbe)iba ବିଲମ୍ବ କରିବା; ଡେରି କରିବା—
বিলম্বান विलमाना To delay.

ବିଲମ୍ବା(ମ୍ବେ)ଇବା—ଦେ. କ୍ରି—(ବିଲମ୍ବିବାର ଣିଜନ୍ତ)—୧ । ବିଶେଷ
Bilambā(mbe)iba ରୂପେ ଲମ୍ବାଇବା—1. To suspend.
বিলম্বান ୨ । ଧାରଣ କରିବା—2. To hold. [ ଉ—ବାଳା
विलमाना ଯେ ! ବିଲମ୍ବାଇ ବେନି ପ୍ରତାପ । ଉଞ୍ଜ. ବୈଦେହୀଶ-ବିଳାସ ] ୩ । ମାଳାଦ୍ୱାରା ଭୂଷିତ କରିଦେବା—3. To bedeck with a garland; to put on a garland. [ ଉ—ବନମାଳୀମାଳା କରି ରଚନ, ବିଲମ୍ବାଇ କଣ୍ଠରେ କଲେ ତତ୍ତ । ଉଞ୍ଜ. ବୈଦେହୀଶବିଳାସ ]

ବିଲ(ଲି)ମ୍ବି—ବୈଦେ. ବି—(ମାଲକ୍କାଦ୍ୱୀପର ଭାଷା-ବିଲମ୍ବୀ; ଭୁଳନାକର
Bila(li)mbi ସଂ. ବିଲମ୍ବିତ; ଏଥିର ଫଳମାନ ବେଙ୍କଙ୍କୁ
বিলম্বি ଲମ୍ବିଥାଏ)—କରମଙ୍ଗାଜାତୀୟ କ୍ଷୁଦ୍ର ତରୁ—Averrhoa
बिलिंबि Bilimbi(tree). [ ଦ୍ର—ଏଥିର ଫଳ କରମଙ୍ଗା ଆକାରର; ବିଲୁ ଫଳର କୋଣମାନ କରମଙ୍ଗା ପରି ବାହାରିଆ ବା ଉଚ୍ଚ ନୁହେଁ । ଫଳ କରମଙ୍ଗା ପରି ସ୍ୱାଦୁ । ଗଛର ଗଣ୍ଡିରୁ ସରୁ ଡେଙ୍କମାନ ବାହାରେ ଓ ପ୍ରତି ଡେଙ୍କରେ ୮ । ୧୦ଟି ଫଳ ଲମ୍ବିଥାଏ । ଏ ଗଛର ଆଦିବାସ ମାଲକା ଦ୍ୱୀପରେ । ଏହାକୁ ଭାରତର ଗଛବଗିଚାମାନେ ଅଳି ବଗିଚାରେ ଲଗାଇଅଛନ୍ତି—ଯୋଗେଶଚନ୍ଦ୍ର ]

ବିଲମ୍ବିତ—ସଂ. ବିଣ—(ବିଲମ୍ବ+ଯୁକ୍ତ ଅର୍ଥରେ. ଇତ)—ବିଲମ୍ବଯୁକ୍ତ—
Bilambita Delayed. ୧ । ମଧ୍ୟମ ନୃତ୍ୟ—1. A slow dance. ୨ । ବିଲମ୍ବ; ଡେରି—2. Delay. [ଉ—ଅଳ ପୁଷ୍ପାଳକଗୁ ବିଳମ୍ବ ମୁହୂର୍ତ୍ତ, ହୋଇଛି ଜାଣ ହେ ନ କର ବିଲମ୍ବିତ—କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ ]

ବିଲମ୍ବିତ—ସଂ. ବିଣ—( ବି+ଲମ୍ବ ଧାତୁ+କର୍ତ୍ତୃ. ଇତ )—୧ । ଲମ୍ବିତ;
Bilambita ଲମ୍ବମାନ—1. Hanging. ୨ । ଝୁଲୁଥିବା—2. Dangling.

ବିଲମ୍ବିବା—ଦେ. କ୍ରି (ପଦ୍ୟ) (ସଂ. ବିଲମ୍ବ)—ବିଲମ୍ବ କରିବା; ଡେରି
Bilambibā କରିବା—To delay. [ ଉ—ବିଲମ୍ବର କେବେ
বিলম্বা ବି ସେ ଅଳ, ଶଯ୍ୟରେ ମଉଳ ପୁଷ୍ପ ବାସି ହେବାଯାଏ ।
विलमना ରାଧାନାଥ. ମହାଯାତ୍ରା ]

ବିଲମ୍ବିବା—ଦେ. କ୍ରି—( ସଂ. ବି+ଲମ୍ବ ) ତଳକୁ ଲମ୍ବିବା—
Bilambibā To hang down.
[ ବିଲମ୍ବା ( ମ୍ବେ ) ଇବା—ଣିଜନ୍ତ ]

ବିଲମ୍ବୀ—ସଂ. ବିଣ. ପୁଂ—( ବିଲମ୍ବିନ୍; ବିଲମ୍ବ+ଅସ୍ତ୍ୟର୍ଥେ. ଇନ୍ )—
Bilambi ୧ । ବିଲମ୍ବକାରୀ—1. Delaying; dilatory.
(ବିଲମ୍ବିନୀ—ସ୍ତ୍ରୀ) ୨ । ଅଶୀଘ୍ର; ଅଳସୁଆ—2. Idle; slow.

ବିଲମ୍ବୀ—ସଂ. ବିଣ. ପୁଂ—(ବି+ଲମ୍ବ ଧାତୁ=ଲମ୍ବିବା+କର୍ତ୍ତୃ. ଇନ୍)—
Bilambi ଝୁଲୁଥିବା; ଲମ୍ବମାନ—Pendant; hanging
(ବିଲମ୍ବିନୀ—ସ୍ତ୍ରୀ) down.

ବିଲମ୍ଭ—ସଂ. ବି—(ବି+ଲଭ୍ ଧାତୁ=ଲାଭ କରିବା+ଭାବ. ଅ)—
Bilambha ୧ । ଅତି ଦାନ—1. Excessive gift. ୨ । ଦାନ—2. Donation; gift. ୩ । ଅତିସର୍ଜନ—3. Giving away. ୪ । ବିତରଣ—4. Distribution.

ବିଲ(ଲ)ୟ—ସଂ. ବି—(ବି+ଲୀ ଧାତୁ=ଲୀନ ହେବା+ଭାବ. ଅ)—
Bila(la)ya ୧ । ପ୍ରଳୟ—1. Dissolution. ୨ । ଧ୍ୱଂସ; ବିନାଶ—2 Ruin. ୩ । ବିଲୋପ; ଅନ୍ତର୍ଦ୍ଧାନ—3. Disappearance; extinction. ସଂ. ବିଣ—

(ବି+ଲୟ)—ଲୟବହିର୍ଭୂତ; ଲୟ ବା ତାଳଶୂନ୍ୟ—Devoid of cadence. ଦେ. ବି—ବିସ୍ମୃତ—Forgetfulness.

**ବିଲୟନ**—ସଂ. ବି—(ବି+ଲୀ ଧାତୁ=ଲୋପ ପାଇବା+ଭାବ. ଅନ)—୧ । ବିନାଶନ—1. Destroying.
Bilayana
୨ । ବିଲୟକରଣ—2. Causing disappearance or extinction.

**ବିଲଶୟ**—ସଂ. ବି—(ବିଲ=ଗର୍ତ୍ତ+ଶୀ ଧାତୁ=ଶୋଇବା+କର୍ତ୍ତି. ଅ; ବିଲ ବା ଗର୍ତ୍ତରେ ଯେ ଶୟନ କରେ)—
Bilaśaya
୧ । ସର୍ପ; ଭୁଜଙ୍ଗ—1. Serpent; snake. ୨ । ଗାତ କରି ରହୁବା ଜନ୍ତୁ—2. Reptile; an animal which lives in dens or holes.

**ବିଲଶଯ୍ୟା**—ଦେ. ବି. (ସଂ. ବିଲ+ଶଯ୍ୟା)—ସର୍ପ; ବିଲଶୟ—Snake. (ଉ—ବିଲଶଯ୍ୟା ଗନ୍ଧସାର ଗନ୍ଧରେ ବାହତ । ଉଞ୍ଜ. ବୈଦେହୀଶବିଳାସ)
Bila śajyā

**ବିଳସନ**—ସଂ. ବି. (ବି+ଲସ୍ ଧାତୁ=କ୍ରୀଡ଼ା କରିବା; ବିଳାସ କରିବା +ଭାବ. ଅନ)—୧ । ବିଳାସ—1. Enjoyment; pleasure; felicity. ୨ । କ୍ରୀଡ଼ା; ଲୀଳା—2. Play; sport; diversion. ୩ । ଦୀପ୍ତି; ଆଭା—3. Lustre; splendour. ୪ । ଶୋଭା—4. Beauty. ୫ । ପ୍ରକାଶ—5. Manifestation; appearance; exhibition. ୬ । ସ୍ଫୁରଣ—6. Flashing. ୭ । ବାକ୍ୟସ୍ଫୂର୍ତ୍ତି—7. Utterance; verbal expression.
Bilasana

**ବିଳସା(ସେ)ଇବା**—ଦେ. (ପଦ୍ୟ) କ୍ରି. (ବିଳସିବାର ଣିଜନ୍ତ ରୂପ; ବି+ଲସ୍ ଧାତୁ)—୧ । କ୍ରୀଡ଼ା କରାଇବା—1. To cause to play. (ଉ—ବିଳସାଇଲେ ବୃଷ୍ଟି ନବେ ଚଞ୍ଚଳ । ଉଞ୍ଜ. ବୈଦେହୀଶବିଳାସ) ୨ । ନଚାଇବା—2. To cause to dance; to dangle. ୩ । ବିହାର କରାଇବା—3. To cause to frequent. (ଉ—ବିଳସାଇ ଯଥା ଅଳକା ଟେକାଇ ଈଶ୍ୱରଙ୍କୁ ଶମଶାନେ । ଉଞ୍ଜ. ବୈଦେହୀଶବିଳାସ)
Bilasā(se)ibā
बिलसाना
**बिलसाना**

**ବିଳସିତ**—ସଂ. ବି. (ବି+ଲସ୍ ଧାତୁ=କ୍ରୀଡ଼ା କରିବା+ଭାବ. ତ)—ବିଳସନ (ଦେଖ)—Bilasana (See) ସଂ. ବିଣ. (ବି+ଲସ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତି. ତ)—୧ । କ୍ରୀଡ଼ିତ—1. Playing; sporting ୨ । ଶୋଭିତ—2. Glittering; splendid.
Bilasita

**ବିଳସିବା**—ଦେ. କ୍ରି. (ପଦ୍ୟ) (ବି+ଲସ୍ ଧାତୁ)-୧ । କ୍ରୀଡ଼ା କରିବା—1. To play; to sport. (ଉ—ବାର ପାର ନାହିଁ ରେ ସୁକେଶୀ, ବାର ମଧ୍ୟେ ତୁ ଥିଲୁ ବିଳସି । କବିସୂର୍ଯ୍ୟ. ସଙ୍ଗୀତ) ୨ । ବିରାଜିବା; ଦୀପ୍ତି ପାଇବା—2. To shine forth. (ଉ—ତୁମ୍ଭଙ୍କୁ କି ଉପକାର କରି ରୂପବନ୍ତ ହୋଇ ବିଳସିଲ ହେ, ମହାପ୍ରଭୁ ! କବିସୂର୍ଯ୍ୟ. ସଙ୍ଗୀତ) ୩ । ପ୍ରକାଶିତ ହେବା—3. To appear. (ଉ—ଭଲ ସୁନା ବୋଲି ଭବେ ଯେ ବିଳସେ, ଭେଳ ସିନା ତହିଁ ଗୁପ୍ତର ନିକଷେ । ରାଧାନାଥ. ଦରବାର) ୪ । ସ୍ଫୂର୍ତ୍ତି ହେବା—4. To flash. ୫ । ବ୍ୟାପ୍ତ ହେବା; ଖୋଷିହେବା—5. To spread; to be diffused. (ଉ—ତେଝଙ୍କ ଜନ୍ମିଲ ତୃଷା ତିମିର ବିଳସିଲା ହେ । କବିସୂର୍ଯ୍ୟ. କଶୋଶଚମ୍ପୂ. ଚ. ଗୀତ) ୬ । ବିହାର କରିବା; ନିଜ ଇଚ୍ଛାରେ ଚଳିବା—6. To roam at ease. (ଉ—ଶାରଙ୍ଗ ଅରଣ୍ୟେ ବିଳସ । ଉଞ୍ଜ. ବୈଦେହୀଶବିଳାସ) ୭ । ବିଚରଣ କରିବା; ବୁଲିବା; ବୁଲିବା—7. To walk; to move about. (ଉ—ଅନ୍ଧାର ଘରେ କଣା ବିଳସେ, ଯାହା ପାଉଥାଏ ଅଣ୍ଟାରେ ଖୋସେ । —ଢଗ)
Bilasibā
बिलसा
**बिलसना**

**ବିଳହିବା**—ଦେ. କ୍ରି—ବିଲୋହିବା (ଦେଖ)—Bilohibā (See) (ଉ—ନଟନାୟକର ପ୍ରାୟେ ମୋତେ ତୁ ବିଳହୁ । ବଳରାମ. ରାମାୟଣ)
Bilahibā

**ବିଲା**—ପ୍ରାଦେ. (ବାଲେଶ୍ୱର) ବି. (ସଂ. ବିଲ)—୧ । ବିଲ; କଣା—1. Hole. ୨ । ହୁଙ୍କା—2. Ant-hill. (ଉ—ତାଙ୍କର ଦେହଯାକ ଉଇବିଲା ହେଲା । କୃଷ୍ଣସିଂହ. ମହାଭାରତ. ବନ) ପ୍ରାଦେ. (ଗଞ୍ଜାମ) ବି—ବାଗି—Bubo.
Bilā

**ବିଲା(ଲେ)ଇ**—ଗ୍ରା. (ଇତର ବ୍ୟବହୃତ) ବି. (ସଂ. ବିରାଳ; ବିଡ଼ାଳ; ତେଲ. ତା. ପିଲ୍ଲି)—ବିରାଡ଼ି—Cat (ଉ—ମେଷ ମୂଷା ବିଲାଇ ବୋମେ ବାଛି ବାଛି, କୁଦର ଆଣିଥିଲେ ତା ନୋହେ ମୂରୁଛି । କୃଷ୍ଣସିଂହ. ମହାଭାରତ. ସଭା)
Bilā(le)i
बिलाई, बिड़ाल
**बिलाव, बिलार**
(ବିଲ—ଅନ୍ୟରୂପ)

**ବିଲା(ଲେ)ଇବା**—ଦେ. କ୍ରି. (ସଂ. ବିଲୟ)—୧ । ବହୁଲୋକଙ୍କ ମଧ୍ୟରେ ବାଣ୍ଟି ଦେବା—1. To distribute amongst many. ୨ । ଦାନ କରିବା; ବିତରଣ କରିବା—2. To give away. ୩ । ଅପବ୍ୟୟିତ କରିବା—3. To spend lavishly; to waste.
Bilā(le)ibā
बिलाना
**बाँटना**

**ବିଲଙ୍କି(ଙ୍ଖି)**—ଦେ. ବିଣ—ଯେ ସୁସଜ୍ଜିତ ପଦାର୍ଥକୁ ଅଲଗା କରି ପକାଏ—Disorganising a well-arranged thing; causing disorder
Bilāṅki(ṅkhi)

**ବିଲଙ୍କି(ଙ୍ଖି)ବା**—ଦେ. କ୍ରି (ସଂ. ବିଲଙ୍କା; ରାମଚନ୍ଦ୍ର ଯେପରି ବିଲଙ୍କାନଗରକୁ ଧ୍ୱଂସ କରିଥିଲେ, ସେହିପରି କରିବା)—୧ । ସୁସଜ୍ଜିତ ପଦାର୍ଥକୁ ଘାଣ୍ଟିବା; ଅଲଗା ବା ଅଳଥା କରିବା; ଲେଙ୍ଗେଡ଼ିମେଙ୍ଗେଡ଼ି କରିବା—1. To disorganise or spoil a good arrangement. ୨ । ନଷ୍ଟ କରିବା; ଛାରଖାର କରିବା—2. To depradate; to lay waste.
Bilāṅki(ṅkhi)bā
**उधेड़बुन करना: बिलोरना**

**ବିଲାତ**—ବୈଦେ. ବି (ଆ. ବିଲାୟତ୍, ବିଲାୟତ୍=ସହର)—୧ । ଇଂଲଣ୍ଡ ଦେଶ—1. England. ୨ । ଲଣ୍ଡନ ସହର—
Bilāt

विलात 2. London. ୩ । ୟୁରୋପ—3. Europe. ୪ ।
**विलायत** ଭାରତବହିର୍ଭୂତ ଦେଶ—4. A country outside India. ୫ । ମୁସଲ୍‌ମାନ ରାଜ୍ୟର ଭିନ୍ନ ଭିନ୍ନ ପ୍ରଦେଶ—5. Different provinces of a Muslim kingdom. [ ଦ୍ର—ମୁସଲମାନ୍‌ମାନେ ଆପଣା ଦେଶ ଛଡ଼ା, ଅନ୍ୟ-ଦେଶକୁ ବିଲାତ୍ କହନ୍ତି, କିନ୍ତୁ ପାରସ୍ୟରେ ବିଲାତ୍‌ର ଅର୍ଥ ସ୍ୱଦେଶ । ]

ବିଲାଇତ୍, ଭିଲାଏତ୍, ବିଲାୟତ୍, ବିଲାୟେତ୍—ଅନ୍ୟରୂପ

**ବିଲାତ୍ ପାର୍ଲି(ର୍ଲେ)ମେଣ୍ଟ୍**—ବୈଦେ. ବି ( ଅ. ବିଲାତ+ଇ°. ପାର୍ଲିଅ-ମେଣ୍ଟ୍ )—୧ । ଇଂଲଣ୍ଡରେ ପ୍ରତିଷ୍ଠିତ ସାମ୍ରାଜ୍ୟପରିଚାଳକ ସଭା—1. British Parliament. ୨ । ଇଂଲଣ୍ଡରେ ପ୍ରତିଷ୍ଠିତ ବ୍ରିଟିଶ୍ ସାମ୍ରାଜ୍ୟର ସର୍ବୋଚ୍ଚ ବିଚାରାଳୟ; ପ୍ରିଭିକାଉନ୍‌ସିଲ୍—2. The Privy Council of England.
Bilāt pārli(rle)ment
( ବିଲାତ ପାର୍ଲିଅମେଣ୍ଟ୍—ଅନ୍ୟରୂପ )
विलात पार्लिआमेंट
**विलायत पार्लियामेन्ट**

**ବିଲାତ୍ ପ୍ରତ୍ୟାଗତ**—ଦେ. ବିଣ—ବିଲାତ୍ ଫେରନ୍ତ; ବିଲାତକୁ ଯାଇ କିଛି ଦିନ ପରେ ସେଠାରୁ ଫେରି ଆସିଥିବା ( ଭାରତୀୟ ବ୍ୟକ୍ତି )—Returned from England ( applied to an Indian ).
Bilāt pratyāgata
विलात फेरत
**विलयत फिरता**

**ବିଲାତ ଫି(ଫେ)ରନ୍ତ(ତା)**—ବୈଦେ· ବି—ଯେଉଁ ଭାରତୀୟ ବ୍ୟକ୍ତି ବିଲାତ୍ ବା ଇଂଲଣ୍ଡରେ କିଛି କାଳ ରହିବା ପରେ ଦେଶକୁ ଫେରି ଆସିଛି—England-returned Indian. ବୈଦେ. [ବିଲାଇ(ଏ)ତ୍ ଫି(ଫେ)ରତ୍(ତା, ନ୍ତା)—ଅନ୍ୟରୂପ] ବିଣ—ବିଲାତକୁ ଯାଇ ସେ ଦେଶରୁ ଫେରି ଆସିଥିବା—Returned from England.
Bilāt phi(phe)rat(tā)
**विलात फेरत(ता)**
**विलायत फीरता**

**ବିଲାତ୍ ମର୍ଡ଼ା**—ଦେ. ବିଣ ( ବ୍ୟଙ୍ଗୋକ୍ତି )—ଯେ ଥରେ ବିଲାତ ଯାଇ-ଥିଲା; ବିଲାତ୍ ଫେରନ୍ତା—One who has once set foot in or touched the shores of England; England-returned.
Bilāt mardā
विलात छुआँ
**विलायतको जातमारके आनेवाला; विलायत छुआ**
(ବିଲାତଛୁଆଁ—ଅନ୍ୟରୂପ)

**ବିଲାତି**—ବୈଦେ. ବିଣ ( ଅ )—୧ । ବିଲାତବାସୀ; ଇଂଲଣ୍ଡୀୟ; ଇଂଲଣ୍ଡବାସୀ—1. English. ୨ । ୟୁରୋପୀୟ; ଧଳାବାଳା—2. European. ୩ । ଇଂଲଣ୍ଡରେ ଉତ୍ପନ୍ନ—3. Produced in England. ୪ । ଇଂଲଣ୍ଡରେ ପ୍ରସ୍ତୁତ—4. Of English make. ୫ । ପ୍ରଥମେ ବିଲାତରୁ ଅର୍ଥାତ୍ ବିଦେଶରୁ ଏ ଦେଶକୁ ଆଗତ—5. Originally brought from a foreign country. [ ଦ୍ର—ଯେଉଁ ଫଳ, ଫୁଲ ଓ ଗଛ ଆଦି ପୂର୍ବେ ଏ ଦେଶରେ ଉତ୍ପନ୍ନ ହେଉ ନ ଥିଲା ଓ ଯାହା ବିଦେଶରୁ ଆସି ଏ ଦେଶରେ ଚଳିଅଛି, ତାହାକୁ ସାଧାରଣ ଲୋକେ ବିଲାତି ବୋଲି କହନ୍ତି ଯଥା—ବିଲାତି ଆଳୁ, ବିଲାତି ବାଇଗଣ, ବିଲାତି ବାଇଗବା, ବିଲାତି ଦଳ ଇତ୍ୟାଦି । ]
Bilāti
विलाति
**विलायति**
[ବିଲାଇ(ଏ)ତି—ଅନ୍ୟରୂପ]

**ବିଲାତି ଆମ(ମ୍ବ)ଡ଼ା**—ଦେ. ବି—ବୃକ୍ଷ ବିଶେଷ—Hog-plum; Otaheite apple. [ ଦ୍ର—ଦେଶୀ ଆମ୍ବଡ଼ା ଫଳ ଅପେକ୍ଷା ବିଲାତି ଆମ୍ବଡ଼ା ଫଳ ମାଂସଳ ଓ ସୁମିଷ୍ଟ ।]
Bilāti āma(mba)rdā
বিলাতি আমড়া
**बीलायति अमरा**

**ବିଲାତି ଆଳୁ**—ଦେ. ବି—କନ୍ଦଜାତୀୟ ବର୍ଷେକ ଗୁଳ୍ମ ଓ ତାହାର ଚେରରେ ଜାତ ଫଳ; ଗୋଲ ଆଳୁ—Potato. [ଦ୍ର—ଏହା ପ୍ରଥମେ ଆମେରିକାରୁ ଇଂଲଣ୍ଡକୁ ଆସିଥିଲା ଓ ପରେ ଇଂଲଣ୍ଡରୁ ଏ ଦେଶକୁ ଆସିଥିଲା । ଏହା ଦୁଇ ପ୍ରକାର—(୧) ବିଲାତି ଆଳୁ । (୨) ବମ୍ବେ ବା ନାଇନିତାଲ ଆଳୁ ।]
Bilāti ālu
ବିଲାଇତି ଆଳୁ, ବିଲାଏତି ଆଳୁ, ବିଲେଇତି ଆଳୁ—ଅନ୍ୟରୂପ
বিলাতি আলু; গোল আলু
**विलायति आलु, आलु**

**ବିଲାତି କପଡ଼ା**—ଦେ. ବି—ବିଲାତରେ ବୁଣା ହୋଇ ଏ ଦେଶକୁ ବିକ୍ରି ହେବା ସକାଶେ ଆସୁଥିବା ଲୁଗା—English mill-made cloth.
Bilāti kapardā
বিলা(লি)তি কাপড়
**विलायति कपडा**
ବିଲାଇ(ଏ)ତି କପଡ଼ା, ବିଲାଇ(ଏ)ତି ଧୋତି, ବିଲାଇ(ଏ)ତି ଲୁଗା, ବିଲାତି ଧୋତି, ବିଲାତି ଲୁଗା, ବିଲେଇତି କପଡ଼ା, ବିଲେଇତି ଧୋତି, ବିଲେଇତି ଲୁଗା—ଅନ୍ୟରୂପ

**ବିଲାତି କୟାଁ**—ଦେ. ବି—ବିଦେଶାଗତ କଣ୍ଟକ ବୃକ୍ଷ ବିଶେଷ—Inga Dulcis; A kind of thorny tree. [ଦ୍ର—ଏ ଗଛ ଉଚ୍ଚରେ ୧୫ ଫୁଟ ପର୍ଯ୍ୟନ୍ତ ବଢ଼େ; ଦୁର୍ଭେଦ୍ୟ କଣ୍ଟକମୟ ବାଡ଼ ପାଇଁ ଏ ଗଛ ଲଗାଯାଏ । ଏଥିର ଫଳ ଉନ୍ତୁଳ ପରି, କିନ୍ତୁ କୁଣ୍ଡଳାକାର । ଫଳର ଚୋପା ଚଲେ ଭିତର୍ ମିଷ୍ଟ ଧଳା ଶସ ଥାଏ । ଏଥିର ମଞ୍ଜି ଚେପଟା ଓ କଳା ।]
Bilati kayān
জিলেবি গাছ
**जिलेबी पेड**

**ବିଲାତି କସ**—ଗ୍ରାଦେ. (ସମ୍ବଲପୁର) — ବି—ବୃକ୍ଷବିଶେଷ—A kind of tree. [ଦ୍ର—ଏହା ଉଚ୍ଚରେ ୧୦ ଫୁଟ ହୁଏ; ଫଳ କଣ୍ଟାଳଥି; ମଞ୍ଜି ଖୁବ୍ ନାଲ; ଏହାକୁ ପାଣିରେ ଗୋଳି ଲୁଗା ରଙ୍ଗାନ୍ତି ।]
Bilati kasa

**ବିଲାତି କାମ**—ଦେ. ବି—ବିଲାତରେ ତିଆର ବା ସାହେବ ବା ଗୋରା ମିସ୍ତ୍ରୀମାନଙ୍କର ହାତର ତିଆର ଉତ୍କୃଷ୍ଟ କାର୍ଯ୍ୟ—Excellent work which is the workmanship of English artisans.
Bilāti kāma
বিলাতি কায
**विलायति काम**
(ବିଲାତି କାରଗର—ଅନ୍ୟରୂପ)

**ବିଲାତି କୁକୁର**—ଦେ ବି—୧ । ବହୁ ପ୍ରକାରର ବିଦେଶୀୟ କୁକୁର—1. British or European dogs. [ଦ୍ର—ଏମାନଙ୍କୁ ସଉକରେ ବା ଶିକାର କରିବାକୁ ବଡ଼ଲୋକେ ପାଳନ୍ତି । ଏମାନେ ନାନା ଶ୍ରେଣୀର, ନାନା ଆକାରର ଓ ନାନା ରଙ୍ଗର ଅଛନ୍ତି । ଯଥା—ଡାହାଲ, ଟେରିଅର୍, ଷ୍ପାନିଏଲ୍, ମୁଷ୍ଟୀ—ଇତ୍ୟାଦି ।] ୨ । ବିଦେଶୀ କୁକୁରଙ୍କ ଠାରୁ ଏ ଦେଶରେ ଜାତ କୁକୁର—2. Dog of foreign or English breed.
Bilāti kukura
বিলা(লি)তি কুকুর **विलायति कुत्ता**

**ବିଲାତି ଖାଆଣା(ନା)**—ଦେ ବି—୧ । ସାହାବାନ୍ଙ୍କ ଢଙ୍ଗରେ ଭୋଜନ—
Bilāti khā-āṇā(nā) 1. European dinner.
[ବିଲାତି ଖାଆଣ ପିଅ(ଆ)ଣ—ଅନ୍ୟରୂପ] ୨ । ବିଦେଶରୁ ପ୍ରସ୍ତୁତ
বিলাতি খানা ହୋଇ ଆସିଥିବା ଖାନା—2. Dinner or pre-
**विलायति खाना** pared food imported from foreign countries.

**ବିଲାତି ଚାକୁଣ୍ଡା**—ଦେ. ବି—ଚାକୁଣ୍ଡା ଗଛର ପତ୍ର ପରି ପତ୍ରବିଶିଷ୍ଟ
Bilāti chākuṇḍā ବୃହତ୍ ବୃକ୍ଷବିଶେଷ —Dalbergia Lanceolaria. [ଦ୍ର—ଏହା ବିଦେଶରୁ ଅଣା ଯାଇ ଏ ଦେଶରେ ସଡ଼କ କିନାରରେ ଲଗା ହୋଇ ଅଛି । ଏଥିର କାଠ ଧଳା ଓ ମଞ୍ଜି କଳା, ଡାଳ ମସୃଣ, ଏ କାଠ ଭଲ ଜଳେ ।]

**ବିଲାତି ଝାପରା**—ପ୍ରାଦେ. ( ସମ୍ବଲପୁର ) ବି—କୁଙ୍କୁମ ଗଛ ଓ ତାହାର
Bilāti jhāparā ଫଳ ( ଦେଖ )—A Kuṅkuma (See).

**ବିଲାତି ଦଳ**—ଦେ. ବି—ବିଦେଶରୁ ଆନୀତ ଦଳବିଶେଷ—Water
Bilāti daḷa Hyacinth; Eichhornia; Pickerel
কচুরী কুন্তী weed; Pontederia Cordata. [ ଦ୍ର—ଏହା
**कचुरी पाना** ଆଜିକାଲି ଆମ ଦେଶର ନଈ, ପୋଖରୀରେ ଏପରି ମାଡ଼ି ଯାଉଅଛି ଯେ ତଦ୍ୱାରା ସମଗ୍ର ଦେଶର ସ୍ୱାସ୍ଥ୍ୟ ନଷ୍ଟ ହେଉଅଛି । ତେଣୁ ତାହାର ଲୋପ ସାଧନ କରିବା ପାଇଁ ଗଭର୍ଣ୍ଣମେଣ୍ଟ ଓ ସର୍ବସାଧାରଣ ବିଶେଷ ଚିନ୍ତିତ । ଏହାର ଫୁଲ ଫେଣ୍ଟା ଫେଣ୍ଟା ଓ ବିଗାଣି । ବିଦେଶରୁ ଏ ଦେଶକୁ ଏହା ଆସିଥିବାରୁ ଏହାକୁ ଲୋକେ ବିଲାତି ଦଳ କହନ୍ତି । କିନ୍ତୁ ଏହା ବିଲାତି ନୁହେଁ । ଏହା ଦକ୍ଷିଣ ଅମେରିକାର ବ୍ରାଜିଲରେ ଦେଖାଯାଏ । ଏହି ଦଳ ତିବ୍ବତ ଦେଶଆଡ଼ୁ ବ୍ରହ୍ମପୁତ୍ର ନଦୀରେ ଭାସି ଆସି ବଙ୍ଗଦେଶର ନଦୀ ଓ ପୋଖରୀରେ ପୂର୍ଣ୍ଣ ହୋଇ ନଦୀପଥମାନ ବନ୍ଦ କରିଅଛି । ଏହାକୁ ବଙ୍ଗଦେଶରୁ ପ୍ରବାସୀ ଓଡ଼ିଆମାନେ ସଉକରେ ଏ ଦେଶକୁ ଆଣିଥିଲେ । ୧୯୨୮ ସାଲଠାରୁ ଡିଷ୍ଟ୍ରିକ୍ଟ-ବୋର୍ଡ଼ମାନଙ୍କ ଓ ବିଶେଷତଃ ଓଡ଼ିଶାର ପୂର୍ବତନ କମିଶନର ଓ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଏନ୍.ଏସ୍.ପେକ୍ ସାହେବଙ୍କ ଅମଳରେ ଓଡ଼ିଶାରୁ ଓ ବିଶେଷତଃ କଟକରୁ ଏହା ନିର୍ମୂଳ କରିବାକୁ ବହୁ ଚେଷ୍ଟା କରାଯାଇଥିଲା ଓ ଗଭର୍ଣ୍ଣମେଣ୍ଟ ଏହାକୁ ଲୋପ କରିବା ପାଇଁ ଆଇନ ଜାରି କରିଅଛନ୍ତି । ]

**ବିଲାତି ପାଣି**—ଦେ. ବି (ବ୍ୟଙ୍ଗ)— ନାଲି ପାଣି; ବିଲାତି ମଦ; ବରାଣ୍ଡି—
Bilāti pāṇi Foreign wine or spirit. (ଯଥା—ବ୍ରାଣ୍ଡି,
(ବିଲାତିସୁଧା—ଅନ୍ୟରୂପ) ହ୍ୱିସ୍କି, ପୋର୍ଟ, ସେରି, ବିଅର୍, ଏଲ୍ । )
বিলীতী পানী **विलाती पानी**

**ବିଲାତି ଫୁଲଗଛ**—ଦେ. ବି—ଫେଣ୍ଟି କନିଅର—Tecoma.
Bilāti phulagachha (ବିଲାତି କନିଅ[ଆ]ର—ଅନ୍ୟରୂପ)

**ବିଲାତି ବବୁର**—ଦେ. ବି ( ସଂ. ବବୂଲ; ବର୍ବୁର )—ବବୁରଜାତୀୟ
Bilāti babura ବୃକ୍ଷବିଶେଷ—Farnesiana; Acacia
গুয়া বাবলা **गुकिकार; बिलर्यात किकार** ( Kirtikar )

**ବିଲାତି ବାଇଗଣ**—ଦେ. ବି—ଏକପ୍ରକାର ବିଦେଶାଗତ ବୃକ୍ଷ ଓ ତହିଁର
Bilāti bāigaṇa ଫଳ; ଟମାଟୋ—Tomato; Lycoper-
চাটনী বেগুন; বিলিতী বেগুন sicum Esculentum ( ଦ୍ର—
**बिलायती बैंगन** ଏହାର ଫଳ ପାଚିଲେ ଲାଲବର୍ଣ୍ଣ ଦେଖାଯାଏ ଓ ଅଳ୍ପ ଖଟା ହୁଏ । ଏହାକୁ ତରକାରି କରାଯାଏ । ଫଳ-
ବିଲାଇ(ଏ)ତି ବାଇଗଣ } ଅନ୍ୟରୂପ
ବିଲେଇତି ବାଇଗଣ }
ଗୁଡ଼ାକ ବହୁଖୁଆ ପରି ଚାରୁଡ଼ାଯୁକ୍ତ । ଏହା ଶୀତଦିନରେ ଫଳେ । ଏହି ଗଛ ଉଚ୍ଚରେ ୨ ହାତ ପର୍ଯ୍ୟନ୍ତ ବଢ଼େ । ଏହି ଗଛର କାଣ୍ଡ କୋମଳ । ଏଥିରେ କଣ୍ଟା ନାହିଁ । ଏହା ଦକ୍ଷିଣ ଆମେରିକାର ଗଛ । )

**ବିଲାତି ବାଇଗ(ଗେ)ବା**—ଦେ. ବି—ଶ୍ୱେତ ଓ ନାଲି ବାଇଗବା ଗୁଳ୍ମ—
Bilāti bāiga(ge)bā Jatropha Gossifolia; Jatropha
লাল্ ভেরেণ্ডা **लाल भेरण्डा** Multifia (Kirtikar).
( ଦ୍ର—ଏହା ଦକ୍ଷିଣଆମେରିକାସ୍ଥ ବ୍ରାଜିଲ ଦେଶର ଗଛ । ଏ ଦେଶରେ ଏହା ବନ୍ୟ ହୋଇଯାଇଅଛି । ଏହା ପଡ଼ିଆରେ ମନକୁ ହରେ । ଏହା ଉଚ୍ଚରେ ଦୁଇ ହାତ ପର୍ଯ୍ୟନ୍ତ ବଢ଼େ । ଦାନ୍ତକାଠିରୂପେ ବ୍ୟବହୃତ ହୁଏ । ଏହାର ଫୁଲ ଲାଲବର୍ଣ୍ଣ । ଫଳ ବାଇଗବା ଫଳ ପରି । ଯାଜପୁର ଅଞ୍ଚଳରେ ଏହାକୁ ଲଙ୍କା ଆମ୍ବ କହନ୍ତି । )

**ବିଲାତି ବାଦାମ**—ଦେ ବି—ବାଦାମ ୨. ( ଦେଖ )—Bādāma
Bilāti bādāma বিলাতী বাদাম **बिलाती बादाम** 2. (See)

**ବିଲାତି ମଦ**—ଦେ. ବି—ବରାଣ୍ଡି; ବିଲାତି ବା ବିଦେଶରୁ ଆମ ଦେଶକୁ
Bilāti mada ଆମଦାନି କରାଯାଉଥିବା ମଦ—Brandy;
বিলাতী মদ **बिलाती सराब** foreign liquors ( ଦ୍ର—ଏ
( ବିଲାତି ସରାପ—ଅନ୍ୟରୂପ ) ଦେଶରେ ଗୁଡ଼ଳ ସିଝା ଆଦିରୁ ବୈଜ୍ଞାନିକ ପ୍ରକ୍ରିୟାରେ ବାହାର କରାଯାଉଥିବା ମଦକୁ ଅରକି ବୋଲାଯାଏ । )

**ବିଲାତି ମଦରଙ୍ଗା**—ଦେ. ବି—ବିଦେଶାଗତ ଶାକବିଶେଷ—A kind
Bilāti madaraṅgā of potherb planted in gardens
লাল শাগ for ornamental borders. ( ଦ୍ର—ବଗିଚାର ହୁଡ଼ମାନଙ୍କ ପାଖରେ ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଏ ଶାକ ଲଗାଯାଏ । ଏଥିର ପତ୍ରମାନ ନାଲି ଓ ସବୁଜବର୍ଣ୍ଣ ଓ ଚକ୍ରି ତା )

**ବିଲାତି ମାଟି**—ଦେ. ବି—୧ । ଚିନା ମାଟି; ଚିନ ମାଟି—1. Kiolin;
Bilāti māṭi বলাতী মাটি **बिलायती मिट्टी** China clay.
[ଦ୍ର—ଏକପ୍ରକାର ଧଳା ମାଟି; ଏଥିରୁ କାଚ ପରି ବାସନ ତିଆରି ହୁଏ ।] ୨ । ବିଲାତରୁ ଆମଦାନି ପଥର ଚୂନ ବିଶେଷ—2. Cement. [ଦ୍ର—ଏଥିରେ ପାଣି ମିଶାଇ କୌଣସି ସ୍ଥାନରେ ବୋଳି ଦେଲେ ୨ ଘଣ୍ଟା ମଧ୍ୟରେ ଏହା ପଥର ପରି ଟାଣ ହୋଇଯାଏ ।] ୩ । ସର୍ଜୀମାଟି, ଖାରି ମାଟି-
Alkaline earth; fuller's earth

**ବିଲାତି ମେହେନ୍ଦି**—ଦେ. ବି—ମେହେନ୍ଦି ପତ୍ର ପରି ପତ୍ରବିଶିଷ୍ଟ ଓ
Bilāti mehendi କଣ୍ଟକଯୁକ୍ତ ଏକପ୍ରକାର ଗୁଳ୍ମ; ଲିଷ୍ଟି କଣ୍ଟା
বিলাতী মেঁদী ଗଛ—A kind of thorny Lawsonia.
**बिलायती मेहुदि; प्रमुराद** [ଦ୍ର—ଏହା ବାଡ଼ରେ ଲଗାଯାଏ ।]

ବିଲାତି ଶାକସବଜୀ—ଦେ. ବି—ଯେଉଁ ଶାକଜାତୀୟ ଫସଲମାନ
Bilāti śākasabaji ବିଦେଶରୁ ପ୍ରଥମେ ଏ ଦେଶକୁ ଆମଦାନି
বিলাতী শাকসবজী ହୋଇ ଅଳ୍ପ କାଳ କୃଷି କରାଯାଉଅଛି—
**विलायती तरकारी**
ବିଲାତି ଫସଲ } —ଅନ୍ୟରୂପ Vegetables and kitchen herbs
ବିଲାଇ(ଏ)ତି ଶାକସବଜୀ }
introduced into India from foreign countries. [ଦ୍ର—ଯଥା—କୋବି, ସାଲଗମ, ଗାଜର, ଅଙ୍ଗୁରେକ ।]

ବିଲାତି ଶିଶୁ—ଦେ. ବି—ଶିଶୁ ଜାତୀୟ ବନ୍ୟ ବୃକ୍ଷବିଶେଷ—A kind
Bilāti śiśu of timber tree; Sapium Sebiferum; the Chinese Tallow tree [ଦ୍ର—ଏହା ଶିଶୁ ଗଛ ପରି । Hainesଙ୍କ ମତରେ ଏହା ଆମେରିକାର ବୃକ୍ଷ ।]

ବିଲାତି ସନ—ଦେ. ବି—ଫସଲୀ ସନ; ବଙ୍ଗୀୟାବ୍ଦ—The agri-
Bilāti sana বিলায়তী সন; ফসলী সন cultural year
**बिलायती सन; फसली सन** of Orissa.
ବିଲାଇ(ଏ)ତି ସନ } —ଅନ୍ୟରୂପ
ବିଲାୟତି ସନ }
[ଦ୍ର—ଓଡ଼ିଶାରେ ଏହା ସୁନିଆଁ ଠାରୁ ଆରମ୍ଭ ହୁଏ । ଅର୍ଥାତ୍ ଭାଦ୍ର ଶୁକ୍ଳ (ସୁନିଆ ଦ୍ୱାଦଶୀ) ଦିନ ନୂଆ ସନ ଆରମ୍ଭ ହୁଏ । ଏଥିରେ ବଡ଼ଭାରୀ ଏକ ଦୋଷ ଯେ—ଏହା ଚାନ୍ଦ୍ରମାନ ଭାଦ୍ର ମାସର ଦ୍ୱାଦଶୀ ଦିନ ଆରମ୍ଭ ହେଲେ ମଧ୍ୟ ସୌରମାନ ହିଁ ମାସ ଓ ଦିନ ଅନୁସାରେ ଏହାର ଗଣନା କରାଯାଏ । ଭାଦ୍ର ମାସ ଦ୍ୱାଦଶୀ ଯେବେ ୧୩୩୧ ସାଲ ହିଁ ଦ୍ୱି ୨୭ ନ ପଡ଼େ, ତେବେ ୧୩୩୦ ହିଁ ୨୫ ଦିନର ପରବର୍ତ୍ତୀ ଦିବସ ୧୩୩୧ ହିଁ ୨୭ ଅଟେ । ଏହି ଗଣନା ଅନୁସାରେ ମଧ୍ୟ ଉତ୍କଳପ୍ରଚଳିତ ଯୁଗ୍ମ ରାଜାଙ୍କ ଅଙ୍କ (ବର୍ଷ) ଚଳେ ।

ଆକବର ବାଦ୍‌ସାହ ୧୪୭୮ ଶକରେ ଏ ସନ ପ୍ରବର୍ତ୍ତିତ କରିଥିଲେ । ବଙ୍ଗ ଦେଶରେ ସୌରମାନ ବୈଶାଖ ଦି ୧ ନ (ପଣା ସଂକ୍ରାନ୍ତି) ଠାରୁ ଓ ଉତ୍ତର ଭାରତରେ ଚାନ୍ଦ୍ରମାନ ଆଶ୍ୱିନ ୧ ଦିନ ଠାରୁ ଫସଲୀ ସନ ଗଣାଯାଏ ।

ଶାଳିବାହାନାବ୍ଦ ସୌରମାନ ବୈଶାଖ ୧ ଦିନ ଠାରୁ ଆରମ୍ଭ ହୁଏ ଓ ଏ ଦେଶର ନୂତନ ପଞ୍ଜିକାମାନ ବୈଶାଖ ୧ ଦିନ ଠାରୁ ଆରମ୍ଭ ହୁଏ । ଏଥିପାଇଁ ସାଧାରଣ ଲୋକଙ୍କ ମଧ୍ୟରେ ବର୍ଷ, ମାସ ଓ ଦିନର ଗଣନାରେ ନାନା ପ୍ରକାର ଗୋଳମାଳ ଅଛି । ଉଦାହରଣ ସ୍ୱରୂପ ଦେଖା ଯାଉ—ଶାଳିବାହାନାବ୍ଦ ୧୮୪୭ (ସୌରମାନ ବୈଶାଖ ୧ ଦିନ ଆରମ୍ଭ ।)=ବଙ୍ଗୀୟାବ୍ଦ—୧୩୩୨—୩୩ (ଚାନ୍ଦ୍ରମାନ ଭାଦ୍ରବର ଆରମ୍ଭ ।)=ଇଂରେଜ୍ୟାବ୍ଦ—୧୯୨୫—୨୬ (ଇଂରାଜ ଗଣନାରେ ଜାନୁଆରୀ ପହିଲାରୁ) =ମୁକୁନ୍ଦଦେବ ଅଙ୍କ—୫୪—୫୫ (ସୁନିଆଁ ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଠାରୁ, =ସାର ବିକ୍ରମାବ୍ଦ—୧୯୮୨ (ଚାନ୍ଦ୍ରମାନ ଚୈତ୍ର ୧ ଦିନ ଠାରୁ ।]

ବିଲାତି ସାହା(ହି,ହେ)ବ—ଦେ. ବି—ଅସଲ ଗୋରା ଲୋକ—A
Bilāti sahā(hi;he)ba true Englishman or
বিলাতী সাহেব **बिलायती साहेब** European; a white
(ଦେଶୀ ସାହେବ; ମାଟିଆଫିରିଙ୍ଗି; ଫିରଙ୍ଗୀ—ଅନ୍ୟରୂପ) man.
[ଦ୍ର—ଯେଉଁ ସାହେବଙ୍କର ଜନ୍ମ ବିଲାତରେ ଓ ଯାହାଙ୍କର ପିତାମାତା ମଧ୍ୟ ସାହେବ ସେମାନଙ୍କୁ ବିଲାତି ସାହେବ ବୋଲାଯାଏ ।]

ବିଲାତି ହଳଦୀ—ଦେ. ବି—ଗୁଲୁବାସ (ଦେଖ)
Bilāti haḷadī Gulubāsa (See)

ବିଲାତୀ—ପ୍ରାଦେ (ବୌଦ୍ଧ) ବି—ବନ୍ୟ ବୃକ୍ଷବିଶେଷ—A kind of
Bilāti wild tree. [ଦ୍ର—ଏହାର ମଞ୍ଜିକୁ ଛେଚି ସିଝାଇଲେ ସୁନ୍ଦର ରଙ୍ଗ ବାହାରେ । ଏହା ଲୁଗା ଗାମୁଛା ପଟ୍ଟାଇବାକୁ ବ୍ୟବହୃତ ହୁଏ ।]

ବିଲାପ—ସ. ବି—(ବି+ଲପ୍ ଧାତୁ=ଖେଦ କରିବା+ଭାବ. ଅ)—
Bilāpa ୧ । ଖେଦୋକ୍ତିପୂର୍ବକ କ୍ରନ୍ଦନ; କାନ୍ଦୁଣା କାନ୍ଦ—
1. Bewailing. ୨ । ପରିବେଦନ; ଖେଦୋକ୍ତି—
2. Lamentation.

ବିଲାପକ—ସ. ବିଣ. ପୁଂ—(ବି+ଲପ୍ ଧାତୁ+କର୍ତ୍ତୃ. ଅକ)—
Bilāpaka ୧ । ଯେ ବିଲାପ କରେ—1 Lamenting;
(ବିଲାପିକା—ସ୍ତ୍ରୀ) sorrowing. ୨ । ଖେଦଜନକ; ବିଲାପ-
ଜନକ—5. Plaintive; doleful.

ବିଲାପ କରିବା—ଦେ. କ୍ରି—ଖେଦୋକ୍ତିପୂର୍ବକ କାନ୍ଦିବା; କାନ୍ଦୁଣିବା—
Bilāpa kariba To lament; to bewail.
বিলাপকরা **विलाप करना; बिलख(ख)ना**

ବିଲାପିବା—ଦେ. କ୍ରି—(ପଦ୍ୟ)—କାନ୍ଦୁଣିବା; କ୍ରନ୍ଦନ କରିବା—
Bilāpibā To bewail. (ଉ—ଏସନ ଆକ୍ଷେପି ସୀତା ବିଲାପି
বিলাপা **बिलखना** ବିକଳେ । ନନ୍ଦକିଶୋର. ସୀତାବନବାସ ।)

ବିଲାପୀ—ସ. ବିଣ. ପୁଂ—(ବି+ଲପ୍ ଧାତୁ+କର୍ତ୍ତୃ. ଇନ୍; ବିଲାପିନ୍;
Bilāpī ୧ମା. ୧ବ)—ଖେଦକାରୀ—Sorrowing.
(ବିଲାପିନୀ—ସ୍ତ୍ରୀ)

ବିଲାବଳୀ—ଦେ. ବି (ସ. ବେଲାବଳୀ)—ରାଗିଣୀବିଶେଷ—Name
Bilābaḷi of a musical air. [ଦ୍ର—ଏହା ମଲ୍ଲାର ରାଗର
বিলাঅল, বেলাওল ରାଗିଣୀବିଶେଷ । ଏହା କେଦାର ଓ କଲ୍ୟାଣ
**विलावल** ରାଗର ମିଶ୍ରଣ ଅଟେ; ଏହା ଗାୟକ ରାଗର ପୁତ୍ର ଓ ଏହା ଗାଇବା ସମୟ ବଡ଼ଭୋର; ହି. ଶ—ଯୋଗେଶ୍ୱର ।]

ବିଲାୟତି କାନୁନଗୋ—ବୈଦେ. ବି-ଭାରତରେ ମୁସଲମାନ ରାଜାମାନଙ୍କ
Bilāyati kānungo ଅମଳରେ ସବଡିଭିଜନର ରାଜସ୍ୱ ହିସାବ
বিলায়তী কানুনগো ରଖୁଥିବା କର୍ମଚାରୀ—Subdivisional
**विलायती कानुनगो** accountant during the Mahomedan reign.

ବିଲ୍ଲାଲ—ସ. ବି—(ବି+ଲଲ୍ ଧାତୁ=ପାଇବାକୁ ଇଚ୍ଛା କରିବା+
Bilāla କର୍ତ୍ତୃ. ଅ)—୧ । ଯନ୍ତ୍ର; କଳ—1. Machine.
୨ । ବିରାଡ଼ି; ମାର୍ଜାର—2. Cat.

ବିଲଶ୍—ପ୍ରାଦେ (ସମ୍ବଲପୁର)—ବିଣ ଓ ଅ—୧ । ଆଦୌ; ବିଲକୁଲ୍;
Bilāś ମୋଟେ—1. At all; completely. ୨ । ଅଲବତ୍;
ନିଶ୍ଚୟ—2. Certainly; perforce.

ବିଲାଶ—ଦେ. ବି—(ସଂ. ବିଲାସ=ଶୋଭା)—୧ । କାନ୍ଥ ଦେହରୁ
Bilāśa ମାତ୍ର ବା ଚୂନଦ୍ୱାରା ବାହାରକୁ ବାହାର କରି ନ ଯାଇ ରଚିତ
कार्निस ହୋଇଥିବା ଠଣା ବା କାନ୍ଥଲୁଗ—1. A projecting
**ताक; कार्नी** wall niche; a protruding wall-shelf
or cornice. ୨ । କାନ୍ଥରୁ ବାହାରକୁ ବାହାରିଥିବା ଲମ୍ବ
କାନ୍ଥସ—2. Cornice; wallplate; corbel. ୩ ।
ବଟାଲିର ଗଡ଼ାଣିଆ ଧାର—3. The sloping side
of the edge of a chisel.

ବିଲାସ—ସଂ. ବି—(ବି+ଲସ୍ ଧାତୁ=କ୍ରୀଡ଼ା କରିବା+ଭାବ. ଅ)—
Bilāsa ୧ । ଲୀଳା—1. Sport. ୨ । କ୍ରୀଡ଼ା—2. Play.
विलास ୩ । ଆମୋଦ ଉପଭୋଗ—3. Enjoyment of
pleasure. ( ଉ—କେତେବେଳେ ଜଗତ ବିଳାସ;
କେତେବେଳେ ତରୁତଳେ ବାସ—ଗୀତ । ) ୪ ।
କୌତୁକ—4. Amusements. ୫ । ଆମୋଦ—
5. Pleasure. ୬ । ଆନନ୍ଦ—6. Playfulness; joy;
merriment. ୭ । ମଉଜ—7. Sport. ୮ । ଥଟ୍ଟା—
8. Jest; joking. ୯ । ନାୟକ ନାୟିକାଙ୍କର ଶୃଙ୍ଗାର-
ଚେଷ୍ଟାବିଶେଷ—9 Dalliance; amorous ex-
hibitions exchanged between lovers.
୧୦ । ସ୍ତ୍ରୀଲୋକଙ୍କର ଶୃଙ୍ଗାରରସ ଉଦ୍ଦୀପକ ଅଙ୍ଗଭଙ୍ଗୀ ବା
ହାବଭାବ; ମୁଖ ନେତ୍ରାଦି ଓ ଅଙ୍ଗାଦିର କାମୋଦ୍ଦୀପକ ଭାବ-
ଭଙ୍ଗୀ; ଛଇ—10. Coquetry. ୧୧ । ପୁରୁଷର
ରସିକତା—11. Gallantry. ୧୨ । ସୁଖ ବା ଆରାମ
ଭୋଗ—12. Diversion; enjoyment of ease.
୧୩ । ସଉକିନ—13. Foppishness. ୧୪ । ଛବି—
14. Picture. ( ଉ—ବିଜୟୀ ନନ୍ଦଘୋଷରେ ବିଜୟୀ
ଧନୁର୍ଘୋଷରେ କଇଳାସ ବିଳାସ ଛଡ଼ାଇ ଅଣାଇ । ଭଞ୍ଜ,
ବୈଦେହୀଶବିଳାସ । ) ୧୫ । ଶୋଭା—15. Beauty;
splendour. ୧୬ । ବ୍ୟସନ, ଇନ୍ଦ୍ରିୟବୃତ୍ତି ଚରିତାର୍ଥ
କରଣ—16. Sensual enjoyment. ୧୭ । ବିକାଶ;
ପ୍ରକାଶ; ସ୍ଫୁରଣ—17. Manifestation; flash.
୧୮ । ପ୍ରାଦୁର୍ଭାବ—18. Appearance.

ବିଲାସକ—ସଂ. ବିଣ. ପୁଂ—(ବି+ଲସ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ.
Bilāsaka ଅକ )—ଆମୋଦପରାୟଣ—Sport-ful.
(ବିଲାସିକା—ସ୍ତ୍ରୀ)

ବିଲାସ କରିବା—ଦେ. କ୍ରି—୧ । କ୍ରୀଡ଼ା କରିବା—1. To amuse
Bilāsa kariba one's self. ୨ । ସୁଖ ଉପଭୋଗ କରିବା—
विलास करा 2. To enjoy. ୩ । ଆମୋଦ ପ୍ରମୋଦ କରିବା;
**विलास करना** ମଉଜ କରିବା—3. To make merry.
୪ । ଛଇ ଦେଖାଇବା—4. To show off.

ବିଲାସ କାନନ—ସଂ. ବି—( ବିଲାସ+କାନନ )—ପ୍ରମୋଦ ବନ;
Bilāsa kānana ପ୍ରମୋଦ ଉଦ୍ୟାନ—A pleasure
garden.

ବିଲାସ ତୃଷ୍ଣା—ସଂ. ବି—(ବିଲାସ+ତୃଷ୍ଣା)—ମଉଜ କରିବାର ଇଚ୍ଛା—
Bilāsa trushṇā Desire of enjoyment or sport.
(ବିଲାସ ବାସନା—ଅନ୍ୟରୂପ)

ବିଲାସ ପରାୟଣ—ସଂ. ବିଣ ପୁଂ—(୭ମୀ ତତ୍; ବିଲାସ+ପରାୟଣ=
Bilāsa parāyaṇa ଆସକ୍ତ)—୧ । କ୍ରୀଡ଼ାରତ—1. Spor-
ବିଲାସଶୀଳ, ବିଲାସରତ } ଅନ୍ୟରୂପ tive. ୨ । ସଉକୀ; ମଉଜୀ—
2. Given to luxury, amuse-
(ବିଲାସପରାୟଣା—ସ୍ତ୍ରୀ) ments or dalliance.

ବିଲାସପୁର—ଦେ. ବି—ମଧ୍ୟପ୍ରଦେଶାନ୍ତର୍ଗତ ଗୋଟିଏ ଜିଲ୍ଲା ଓ ନଗର—
Bilāsapura Bilaspura in Central Provinces.
विलासपुर [ ଦ—ଏହା ବେଙ୍ଗଲ ନାଗପୁର ରେଲୱାଇର ଗୋଟିଏ
**विलासपुर** ବଡ଼ ସଂଯୋଜକ ଷ୍ଟେସନ ବା ଜଙ୍କ୍ସନ । ଏଠାରେ
ଭଲ ପଥରଚୂନ ଆମଦାନୀ ହୁଏ ।]

ବିଲାସପ୍ରିୟ—ସଂ. ବିଣ. ପୁଂ (ବହୁବ୍ରୀହି; ବିଲାସ+ପ୍ରିୟ)—ଯେ ବିଲାସ
Bilāsapriya କରିବାକୁ ସୁଖ ପାଏ; ମଉଜିଆ—Fond of
(ବିଲାସପ୍ରିୟା—ସ୍ତ୍ରୀ) pleasure, luxury or sport

ବିଲାସ ଭବନ—ସଂ. ବି ( ୬ଷ୍ଠୀ ତତ୍; ବିଲାସ+ଭବନ)—୧ । କ୍ରୀଡ଼ା-
Bilāsa bhabana ଗୃହ—1. Play house; pleasure
( ବିଲାସ ମନ୍ଦିର—ଅନ୍ୟରୂପ ) house. ୨ । କେଳିଗୃହ—
2. The house of amorous enjoyments.
୩ । ବଇଠକଖାନା—3. Drawing room;
parlour. ୪ । ନୃତ୍ୟଶାଳା; ନାଚଶାଳା—4. Danc-
ing hall; ball room.

ବିଲାସିଆ—ଦେ. ବିଣ. ପୁଂ ( ସଂ. ବିଲାସୀ )—୧ । ବିଲାସପରାୟଣ;
Bilāsiā ରସିକ—1. Sportful; gallant. ୨ । ସୁଖୀ—
बाबूलोक **विलासिया** 2. Ease-loving.

ବିଲାସିନୀ—ସଂ. ବି. ସ୍ତ୍ରୀ ( ବି+ଲସ୍ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ )—
Bilāsinī ୧ । ସ୍ତ୍ରୀ; ନାରୀ—1. Woman. ୨ । ବେଶ୍ୟା—
चटकदार 2. Prostitute. ୩ । ଛଇଲା; ରସିକା; ସଉକିନୀ ସ୍ତ୍ରୀ;
**पताका** 3. Coquette. ୪ । ମନୋହର ଅଙ୍ଗଭଙ୍ଗୀ ଓ ହାବ-
ଭାବରେ ପ୍ରବୀଣା ସ୍ତ୍ରୀ; ଛଇଳୀ—4. A woman who
is expert in amorous expressions. ୫ ।
ଉତ୍କୃଷ୍ଟା ସ୍ତ୍ରୀ—5. An excellent lady.

ବିଲାସୀ—ସଂ. ବିଣ. ପୁଂ ( ବିଲାସିନ୍; ବି+ଲସ୍ ଧାତୁ=କ୍ରୀଡ଼ା କରିବା
Bilāsī +କର୍ତ୍ତୃ. ଇନ୍ )—୧ । ବିଲାସପରାୟଣ; ବ୍ୟସନ ଓ
(ବିଲାସିନୀ—ସ୍ତ୍ରୀ) ବିଲାସରତ—1. Addicted to pleasures.
୨ । ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାରେ ରତ—
2. Sensuous. ୨ । ଥଟ୍ଟାଳିଆ—2. Jestful;
jocular. ୪ । ରସିକ; ମଉଜୀ—4. Gallant.
୫ । ଭୋଗବାନ୍—5. Enjoying. ୬ । ଛଇଲ—

6. Coquettish; foppish. ସଂ. ବି ( ବିଳ+ଅସ୍ ଧାତୁ+କର୍ତ୍ତୃ. ଇନ୍ )—୧ । ସର୍ପ—1. Snake. ୨ । ବୃକ୍ଷବିଶେଷ—2. Name of a tree. ୩ । ଅଗ୍ନି—3. Fire. ୪ । ଚନ୍ଦ୍ର—4. Moon. ୫ । ଶିବ—5. Siba. ୬ । କନ୍ଦର୍ପ—6. Cupid. ୭ । କୃଷ୍ଣ—7. Krushna. ଦେ. ବିଣ—ଆଗ୍ରହୀ—Eager. [ ଉ—ବଡ଼ଦେଉଳ ଅଗ୍ରତରେ ଗୁଣ୍ଡିଚାରଥ ଯେ ଦେଖିଛି ତରକ, ବିଲୋକନେ ବିଳାସୀ ସବାଲୋକ—ଭଞ୍ଜ. ବୈଦେହୀଶବିଳାସ । ]

**ବିଳାସୁଣୀ**—ଦେ. ବି. ସ୍ତ୍ରୀ ( ସଂ. ବିଳାସିନୀ )—୧ । ଛଇଳୀ—Bilasuni 1. Coquette. ୨ । ବେଶ୍ୟା—2. Whore. **पटाका** ୩ । ଶ୍ରେଷ୍ଠା ସ୍ତ୍ରୀ; ରସିକା—3. An excellent lady. ୫ । କେଳିକଳାରେ ପଟୁ ସ୍ତ୍ରୀ—5. A woman well versed in dalliance. ୪ । ଗ୍ରାମଦେବୀବିଶେଷ—4. Name of a popular village goddess.

**ବିଲି**—ଦେ. ବି—୧ । ବଣ୍ଟନ—1. Distribution. ୨ । ବନ୍ଦୋବସ୍ତ—2. Settlement. ୩ । ବ୍ୟବସ୍ଥାପନ—3. Arrangement. ୪ । ( ସଂ. ବିଡ଼ାଳ ) ବିରାଡ଼ି—2. Cat. ବୈଦେ. ବି ( ଇଂ. ବିଲ୍ )—ବିଲ୍ ( ଦେଖ )—Bil ( See )
Bili बिली बन्दोबस्त वेराल बिल्ली

**ବିଲିଆର୍ଡ଼(ର୍ଡ)**—ବୈଦେ. ବି—ଖୋଳ ବଲ ଓ ଲମ୍ବ ସରୁ ବାଡ଼ିଦ୍ୱାରା ଟେବୁଲ ଉପରେ ଖେଳାଯିବା ଏକପ୍ରକାର ଖେଳ ( ବିଲିଆର୍ଡ଼[ର୍ଡ] ଗେମ୍[ପ୍ଲେ]—ଅନ୍ୟରୂପ ) ଖେଳ—The game of billards. [ ବ୍ର—ସ୍ଲେଟ ବା ଶକ୍ତ-ମର୍ମର ପଥରର ଟେବଲ ଉପରେ ବନାତ କନା ମଡ଼ା ଯାଇଥାଏ; ଟେବଲର ଚାରିପାଖେ ରବର କୁଆଁଣି ବାଡ଼ ଥାଏ । ଟେବଲର କୋଣରେ ଓ ଲମ୍ବ ପାଖର ମଝିରେ ଗୋଟିଏ ଲେଖାଏଁ କଣା ଥାଏ ଓ ସେ କଣାରେ ଜାଲି ମୁଣି ଥାଏ । କେତେ ଫଳ ପର ୨ ଇଞ୍ଚ ବ୍ୟାସବିଶିଷ୍ଟ ପେଣ୍ଡୁ ( ବଲ୍ )କୁ ନିର୍ଦ୍ଦିଷ୍ଟ ସ୍ଥାନରେ ଟେବଲ ଉପରେ ରଖି ଖେଳାଳି ଧରିଥିବା ସରୁ ଲମ୍ବ ଡାଙ୍ଗ ( ଷ୍ଟିକ୍ )ର ଅଗରେ ବଲ୍‌କୁ ଠେଲି ଗଡ଼ାଇବାକୁ ହୁଏ; ଯେପରି କି ଏକ ଖେଳାଳୀର ବଲ୍ ବିପକ୍ଷର ବଲ୍‌କୁ ଆଘାତ କରି ଗୋଟିଏ ଗାତର ମୁଣିରେ ପଡ଼ିବ । ଏହି ସୂତ୍ରରେ ଏ ଖେଳ ହୁଏ ।
Biliard(rd) बिलियार्ड बिलियर्ड

ଏହି ଶବ୍ଦ ସଙ୍ଗେ ଇଂରାଜୀ ଭାଷାରେ ବ୍ୟବହୃତ ଅନ୍ୟ ଇଂରାଜୀ ଶବ୍ଦସମନ୍ୱିତ ବାକ୍ୟମାନ ମଧ୍ୟ ଓଡ଼ିଆରେ ଚଳନ୍ତି, ଯଥା—ବିଲିଆର୍ଡ଼ ଟେବଲ—ବିଲିଆର୍ଡ଼ ଖେଳ ଯେଉଁ ଟେବଲ ଉପରେ ଖେଳାଯାଏ—Billiard table. ବିଲିଆର୍ଡ଼ ବଲ—ବିଲିଆର୍ଡ଼ ଖେଳିବା ପେଣ୍ଡୁ—Billiard ball. ବିଲିଆର୍ଡ଼ ରୁମ—ବିଲିଆର୍ଡ଼ ଖେଳ ଯେଉଁ କୋଠିରେ ହୁଏ—Billiard room. ବିଲିଆର୍ଡ଼ ଷ୍ଟିକ—ଯେଉଁ ସରୁ ଲମ୍ବ ବାଡ଼ିର ଅଗଦ୍ୱାରା ବିଲିଆର୍ଡ଼ ବଲ୍‌କୁ ଠେଲାଯାଏ—Billiard stick.

**ବିଲି କରିବା**—ଦେ. କି ( ସଂ. ବିଲସ୍ )—୧ । ବାଣ୍ଟିବା; ବଣ୍ଟନ କରିବା—1. To distribute. ୨ । ( ଜମିକୁ ) ପ୍ରଜାଙ୍କୁ ପଟ୍ଟା ଦେବା—2. To lease out land to a raiyat. ୩ । କାର୍ଯ୍ୟଚାଳନର ଉପଯୁକ୍ତ ବ୍ୟବସ୍ଥା କରିବା—3. To make suitable arrangements for the conduct of a work.
Bili kariba बिलीकरा, बिलान बाँटना बन्दोबस्त करना

**ବିଲିଖନ**—ସଂ. ବି ( ବି+ଲିଖ୍ ଧାତୁ=ଲେଖିବା+ଭାବ. ଅନ )—୧ । ଲେଖିବା; ଲେଖା—1. Writing. ୨ । ଚିରିବା; ବିଦାରଣ—2. Tearing; splitting. ୩ । ନଖ ଆଦି ଦ୍ୱାରା ସ୍କନ୍ଦ ଉଡ଼ା—3. Scratching. ୪ । ଖନନ—4. Digging; delving. ୫ । ବିଭାଗକରଣ—5. Dividing. ୬ । କର୍ଷଣ—6. Ploughing. ୭ । ମୂଳୋତ୍ପାଟନ—7. Uprooting.
Bilikhana

**ବିଲିତା**—ଦେ. ବି ( ସଂ. ବିଲିପ୍ତା )—ଏକ ଲିତାର ୬୦ ଭାଗରୁ ଏକ ଭାଗ—ଚତ୍ତ of a lita of time. ( ବିଲିତ୍ୟା—ଗ୍ରାମ୍ୟରୂପ )
Bilita विलिता बिलिता

**ବିଲିପ୍ତ**—ସଂ. ବିଣ ( ବି+ଲିପ୍ ଧାତୁ=ଲେପିବା+କର୍ମ. ତ )—୧ । ଲିପା ହୋଇଥିବା—1. Besmeared. ୨ । ବୋଳା ହୋଇଥିବା—2. Anointed.
Bilipta

**ବିଲିପ୍ତା**—ଦେ. ବି—୧ ଲିପ୍ତାର ସମସ୍ତ—One sixtieth of one lita of time. [ ଉ—ବସୁମତୀକା-ମୂର୍ତ୍ତି ବହିଲ୍ଲ ଯନ୍ତ୍ରେ ଧୃଟିଇ ଧୃଟିଇଟ ବିଦ୍ୟୁତ୍‌ପ୍ରାୟ ଦେହି;—ବିଲିପ୍ତା କେ—ଭଞ୍ଜ. ବୈଦେହୀଶବିଳାସ । ]
Bilipta

**ବିଳିବିଳା**—ଦେ. ବି—୧ । ଅନର୍ଥକ ବାକ୍ୟ ଗପିବା—1. Incoherent talk. ୨ । ବାତୁଳ ପ୍ରଳାପ—2. Ravings of a mad man. ୩ । ନିଦ୍ରିତ ବ୍ୟକ୍ତିର ନିଦ୍ରାବସ୍ଥାରେ ଗପିବା—3. Talking during sleep. ୪ । ଏକପ୍ରକାର ମସ୍ତିଷ୍କବିକୃତି—4. Raving madness.
Bilibila बिड़बिड़ बिलिबिलि

**ବିଲବିଲି**—ଦେ. ବିଣ ( ସଂ. ବି+ଲାବଣ୍ୟ )—୧ । କୁତ୍ସିତ; ଅସୁନ୍ଦର—1. Nasty; disfigured; slovenly. ୨ । ଅସୁନ୍ଦରରୂପେ ଚିତ୍ରିତ ବା ଲିଖିତ—2. Painted or written in a clumsy or slovenly fashion.
Bilibila बिच्छिरी बिलोन

**ବିଳବିଳା(ଲେ)ଇବା**—ଦେ. କ୍ରି—୧ । ବାତୁଳ ପରି ପ୍ରଳାପ କରିବା—1. To rave like a mad man. ୨ । ଶୋଇବା ଅବସ୍ଥାରେ ଗପିବା, ନିଦ ବାଉଳାରେ ବକିବା—2. To rave while asleep. ( ଉ—ଭେଣ୍ଡ କରନ୍ତି ଶୋକ ଉଚ୍ଚବାଣୀ, ବିଳବିଳାଇ ସକଳ ତରୁଣୀ । ପ୍ରତାପ—ଶଶିସେଣା—୩ । ଅନର୍ଥକ ବାକ୍ୟ କହିବା—3. To speak incoherently. ( ଉ—ବୃଦ୍ଧା ବିଳବିଳେଇଲେ ବେଦ—ଚଗ । )
Bilibila(le)iba बिड़बिड़ करा बिलबिलाना

**ବିଲିବିଲି(ଲି) କରିବା**—ଦେ. କ୍ରି—୧ । ଚିରିଚିରି କରି ଚିରିଦେବା—
Bilibilā(li) karibā 1. To tear into splinters or
**चिथरा चिथरा करना** rags. ୨ । ବିଭିନ୍ନଥରକୁ ମାଆ
(ବିଲ୍ଲି ବିଲ୍ଲି କରିବା—ଅନ୍ୟରୂପ) ଉପର୍ଯ୍ୟୁପରି ସ୍ଥାନାନ୍ତର କରିବା
ପରି କୌଣସି ବସ୍ତୁକୁ ଉପର୍ଯ୍ୟୁପରି ସ୍ଥାନାନ୍ତର କରିବା—
2. To remove a thing repeatedly from one place to another.

**ବିଲିଯିବା**—ପ୍ରାଦେ. (କଳାହାଣ୍ଡି) କ୍ରି ( ସଂ. ବିଲୟ; ତୁଳ. ହି. ବିଲ୍ଲନା )
Bilijibā ମିଳେଇଯିବା—To be dissolved.

**ବିଲି(ଲ୍ଲି)**—ଦେ. ବି—ବିରାଡ଼ି—Cat.
Bilī(llī)

**ବିଲୀନ**—ସଂ. ବିଣ (ବି + ଲୀ ଧାତୁ = ଲୟ ପ୍ରାପ୍ତ ହେବା + କର୍ତ୍ତୃ. ତ)—
Bilīna ୧ । ଲୟପ୍ରାପ୍ତ—1. Absorbed; dissolved. ୨ ।
(ବିଲୀନା—ସ୍ତ୍ରୀ) ବିନଷ୍ଟ—2. Destroyed; perished. ୩ ।
ଅନ୍ତର୍ହିତ; ଲୁଚିଯାଇଥିବା, ଅଦୃଶ୍ୟ ହୋଇଯିବା—
3. Vanished; disappeared. ୪ । ନିବିଷ୍ଟ—
4. Engaged in; devoted to. ୫ । ଦ୍ରବୀଭୂତ;
ଗଳିତ; ତରଳି ଯାଇଥିବା—5. Melted; molten.
୬ । ( କୌଣସି ପଦାର୍ଥ ) ରାସାୟନିକ ପ୍ରକ୍ରିୟାଦ୍ୱାରା ଅନ୍ୟ
ବସ୍ତୁ ମଧ୍ୟରେ ସମ୍ପୂର୍ଣ୍ଣରୂପେ ମିଶିଯିବା—6. To be
dissolved or absorbed by chemical
process. ୭ । କ୍ଷରିତ—7. Oozed out. ୮ ।
ମଗ୍ନ, ନିମଗ୍ନ—8. Immersed. ୯ । ମିଶ୍ରିତ—9.
Mixed with; blended with. ଦେ. ବି—
ବିନାଶ—Destruction. ( ଉ—ବିଲୀନ କୃତେ
କ୍ଷମ ଶ୍ରମ ଅନୁଜ ଶ୍ରମ ଆସିଣ ଆଗେ ତା ବିଶ୍ରାମ । ଉପେ.
ବୈଦେହୀଶବିଳାସ )

**ବିଲୁଅଁ**—ପ୍ରାଦେ ( ସମ୍ବଲପୁର ) ବି ( ସଂ. ବିଳ )—ଉଇହୁଙ୍କା—
Biluāṅ Ant-hill.

**ବିଲୁଅ**—ଦେ. ବି ( ସଂ. ବିଲ = ଗର୍ତ୍ତ; ଏମାନେ ଭୂମିରେ ଗାତ କରି
Biluā ରହୁବାରୁ; ତୁଳ. ସଂ. ବିଲଶୟ; ବିଲେଶୟ )—କୁକୁର
ସ. ନାମ—ଶୃଗାଳ, ବର୍ଗର ଗ୍ରାମ ନିକଟସ୍ଥ ବନବାସୀ କ୍ଷୁଦ୍ର ଜନ୍ତୁ
ଗୋମାୟୁ, ଫେରୁ ବିଶେଷ; ଶୃଗାଳ—Jackal; Canis
**शियाल** Aureus. [ ଦ୍ର—ଏମାନେ ପ୍ରାୟ ୧½ ହାତ
**गिदड़; शियार** ପର୍ଯ୍ୟନ୍ତ ଉଚ୍ଚରେ ବଢ଼ନ୍ତି । 'ହୁକେ ହୁକେ' ଡାକ
ଛାଡ଼ନ୍ତି । ରାତିର ପ୍ରତ୍ୟେକ ପ୍ରହର ଆରମ୍ଭରେ ଓ ଶେଷରେ
ଅର୍ଥାତ୍ ସନ୍ଧ୍ୟା ଓ ସକାଳକୁ ମିଶାଇ ୫ ଥର ବୋବାନ୍ତି;
ହେହ ପାଞ୍ଚିଥିଆ ବଞ୍ଚି, ଥରକେ ଏକାଧିକ ଛୁଆ ଜନ୍ମ
କରନ୍ତି । ଗୋଟିଏ ବିଲୁଅ ଡାକ ଛାଡ଼ିଲେ ନିକଟବର୍ତ୍ତୀ
ଅନ୍ୟ ସ୍ଥାନର ବିଲୁଆମାନେ ଡାକ ଛାଡ଼ନ୍ତି । ଅଣ୍ଡିରା
ବିଲୁଆମାନେ ଏକୁଟିଆ ହୋଇ ସମୟେ ସମୟେ ବୋବାନ୍ତି ।
ଏମାନଙ୍କ ବୋବାଳି ଭୟଙ୍କର । ଏମାନଙ୍କ ବୋବାଳି
ଶୁଣିଲେ ଗ୍ରାମରେ କୌଣସି ଲୋକର ଆଶୁ ମୃତ୍ୟୁ ଘଟିବ
ବୋଲି ଲୋକେ ଆଶଙ୍କା କରନ୍ତି । ଗ୍ରାମ ନିକଟକୁ ବାଘ
ବା ହେଟା ଆସିଲେ ଅଣ୍ଡିରା ବିଲୁଅ ବୋବାଳି ଛାଡ଼ି ତାହାର
ଅନୁସରଣ କରେ । ବିଲୁଅ ବାଇଆ ହୋଇ ମନୁଷ୍ୟ, ପଶୁଙ୍କୁ
କାମୁଡ଼ିଲେ ଦଷ୍ଟଜୀବ ଜଳାତଙ୍କ ରୋଗଗ୍ରସ୍ତ ହୋଇ ମରିଯାଏ ।
ବିଲୁଅ ଭାରି ଧୂର୍ତ୍ତ ଓ ଅହମ୍ମା ରଖି ଅନିଷ୍ଟକାରୀକୁ ଦଣ୍ଡ
ଦିଏ । ସମୟେ ସମୟେ ଦେଖାଯାଏ ଯେ, ବିଲୁଆମାନେ
ଘରେ ପଶି ଶିଶୁମାନଙ୍କୁ ନେଇ ଯାଆନ୍ତି । ବିଲୁଆମାନେ
ପକ୍ଷୀ, ମେଣ୍ଢା ଓ ଛେଳି ଆଦି ଶିକାର କରନ୍ତି, ପାଚିଲା
ଜାମୁକୋଳି, ଖଜୁରିକୋଳି ଓ ବରଫଳ ଖାଆନ୍ତି; ବିଲରେ
କଙ୍କଡ଼ାଗାତରେ ଲାଙ୍ଗୁଡ଼ ପୂରାଇ ସେ ଲାଙ୍ଗୁଡ଼କୁ ଧରିଥିବା
କଙ୍କଡ଼ାକୁ ଓଟାରିଆଣି ଖାଆନ୍ତି; ଏମାନେ କଙ୍କଡ଼ା, ଗେଣ୍ଡା,
ମାଛ ଓ ଶ୍ମଶାନର ପଚା ଶବମାଂସ ମଧ୍ୟ ଖାଆନ୍ତି ।
ଏମାନଙ୍କର ଅଧୋବାୟୁ ବିଶେଷ ଦୁର୍ଗନ୍ଧମୟ । କୁକୁରମାନେ
ଏହାଙ୍କୁ ଶିକାର କରିବାକୁ ଗୋଡ଼ାଇଲେ ଓ କୁକୁର
ଏମାନଙ୍କର ଅତି ନିକଟବର୍ତ୍ତୀ ହେଲେ ଏମାନେ ଅଧୋବାୟୁ
ତ୍ୟାଗ କରନ୍ତି ( ଭୁରୁଡ଼ୁକା ଦିଅନ୍ତି ) । ସେହି ଦୁର୍ଗନ୍ଧରେ
ଅଗ୍ରସର ହେଉଥିବା କୁକୁର ପଶ୍ଚାତ୍ପଦ ହୋଇ ଶିକାରରୁ
ବିରତ ହୁଏ । ଲୋକେ ଶିକାରୀ କୁକୁରଙ୍କ ସାହାଯ୍ୟରେ
ବିଲୁଅ ଶିକାର କରନ୍ତି । ଗ୍ରାମ ପ୍ରାନ୍ତ ଶ୍ମଶାନ ଓ ବଣ-
ବୁଦାରେ ଏମାନେ ରହନ୍ତି । ଶିଶୁଗୀତରେ ଏମାନଙ୍କୁ
ଶିଶୁମାନେ 'ବିଲୁଅ ନନା' ବୋଲି ସମ୍ବୋଧନ କରନ୍ତି ।
ଲୋକ ପ୍ରବାଦ ଅଛି ଯେ—ଦିନ ବେଳେ ସୂର୍ଯ୍ୟଙ୍କ ଖରାଥିବା
ଅବସ୍ଥାରେ ଅର୍ଥାତ୍ ସୂର୍ଯ୍ୟଙ୍କୁ ମେଘ ନ ଘୋଡ଼ାଇ ବର୍ଷା
ହେଲେ—ସେହି ସମୟରେ ବିଲୁଅଙ୍କ ବିଭାଘର ଉତ୍ସବ
ସମାହିତ ହେଉଥାଏ । ବିଲୁଅଙ୍କ ମାଂସକୁ ଦହିରେ ସଢ଼ାଇ
ଉକ୍ତ ଦହିକୁ ଆମବାତ ରୋଗର ଔଷଧରୂପେ ସେବନ
କରାଯାଏ । ଏହାକୁ ବିଲୁଅ ଦହି ବୋଲାଯାଏ । ଏହା ଛଡ଼ା
କବିରାଜ ପ୍ରକ୍ରିୟାରେ ପ୍ରସ୍ତୁତ 'ଶିବାଘୃତ' କଠିଣ ବାତାଦି
ରୋଗର ଗୋଟିଏ ଉତ୍କୃଷ୍ଟ ଔଷଧ ।

କୌଣସି ଶୁଭକାମନା କରି ଅନୁକୂଳ କରିବା ସମୟରେ
ଆପଣାର ବାମପାର୍ଶ୍ୱରେ ବିଲୁଅଟିଏ ଦେଖିଲେ ଉକ୍ତ କାର୍ଯ୍ୟ
ସିଦ୍ଧ ହେବ ବୋଲି ଲୋକଙ୍କର ବିଶ୍ୱାସ । ବାମପାଖରେ
ଦେଖାଯିବା ବିଲୁଅକୁ ବାଆଁ ବିଲୁଅ ବା ବାଆଁଶିଆଳ(ଳ)
ବୋଲାଯାଏ । ବିଲୁଅ ବୁଦ୍ଧିମାନ୍ ଓ ଧୂର୍ତ୍ତ ବୋଲି ଧୂର୍ତ୍ତବ୍ୟକ୍ତି
ପ୍ରତି "ବୁଦ୍ଧିଆ ବିଲୁଅ, ଗାତକୁ କୋଳ" ରଗ ବୋଲା-
ଯାଏ ।

ଲୋକବିଶ୍ୱାସ ଯେ—ଶୁଣାଯାଇଥରେ ରାତିରେ ଦେଖାଯିବା
"ଚରଗୁଣି ଆଲୁଅ" ଏକ ଜାତୀୟ ବିଲୁଅ (ଉଲ୍କାମୁଖୀ)ର
ମୁଖଗହ୍ୱରରୁ ବାହାରିବା ଆଲୋକ । ସେ ପାଟି ବନ୍ଦ
କରି ଦେଲେ ନିଆଁ ଲିଭିଯାଏ । ଲୋକବିଶ୍ୱାସ ଯେ, ବିଲୁଅ
ବାଘର ଭଣଜା; ଏଥିପାଇଁ ବିଲୁଅ ବାଘକୁ ଦେଖିଲେ
ତା ପଛରେ ଗୋଡ଼ାଇ ମାମୁକୁ ଖାଦ୍ୟ ପ୍ରାର୍ଥନା କରି ବୋବାଳି
ଛାଡ଼େ । ବିଲୁଆମାନେ ଝାଡ଼ା ଫେରି ସାରି ବିଲର ହୁଡ଼ା ଆଦି
ଉଚ୍ଚ ଜାଗାରେ ଗୁହ୍ୟଦ୍ୱାରକୁ ଘୋଷାରି ଦେଇ ନିର୍ମଳ
କରନ୍ତି । ଏହାକୁ 'ଗାଣ୍ଡିଘଷରା ପାଡ଼ିବା' ବୋଲାଯାଏ । ]

ଖେତକା ଦେ. ବିଣ—ବିଲ ବା ଶସ୍ୟ କ୍ଷେତ୍ର ସମ୍ବନ୍ଧୀୟ—Relating to an agricultural field. (ଯଥା—ବିଲୁଅ ମୂଷା, ক্ষেতের মালিক ବିଲୁଅ କଙ୍କଡ଼ା । ) ଦେ. ବି—କୌଣସି ବିଲର **जमिनवाला** ମାଲିକ; କ୍ଷେତ୍ରସ୍ୱାମୀ—The owner of an agricultural field.

ବିଲୁଅ କଙ୍କଡ଼ା—ଦେ. ବି—ବର୍ଷାକାଳରେ ଯେଉଁ କଙ୍କଡ଼ାମାନେ ଧାନ Biluā kankarḍā ବିଲରେ ଗାତ କରି ରହନ୍ତି—Crabs ক্ষেতের কাংকড়া frequenting paddy fields during **केँकडा** the rains. [ଦ୍ର—ଏମାନେ ସାଧାରଣତଃ ପୋଖରୀରେ ଥିବା ମାଣ୍ଡିଆ କଙ୍କଡ଼ାଙ୍କଠାରୁ ଛୋଟ ଓ ଫିକା ଧଳା । ଧାନ କଟା ହେବା ପରେ ମଧ୍ୟ ଶୁଖିଲା ବିଲରେ ଗାତ ଖୋଳିଲେ ଏ କଙ୍କଡ଼ାମାନେ ମୃତ୍ତିକା ନିମ୍ନଦେଶରେ ଥିବାର ଦେଖାଯାନ୍ତି ।]

ବିଲୁଅ କାମୁଡ଼ା—ଦେ. ବି—କ୍ଷିପ୍ତ ଶୃଗାଳର ଦଂଶନ—Biluā kāmurḍā A bite by a rabid jackal. শিয়াল কামড়ান ଦେ. ବିଣ—କ୍ଷିପ୍ତ ଶୃଗାଳ ଦ୍ୱାରା ଦଷ୍ଟ—**शियारका काटना** Bitten by rabid jackal.

ବିଲୁଅ ଗାଡ଼(ତ)—ଦେ ବି—ବିଲୁଅମାନେ ବସା କରି ରହୁଥିବା ଗର୍ତ୍ତ—Biluā gārḍa(ta) The den of a jackal. শিয়ালের গাত **शियारका माँद** (ବିଲୁଅ ବିଲ - ଅନ୍ୟରୂପ)

ବିଲୁଅ ଡକା—ଦେ. ବି—ବିଲୁଅମାନଙ୍କର 'ହୁଆହୁଆ, ହୁକେହୁକେ' Biluā ḍakā ରବ—The braying of jackal. শেয়ালের ডাক **शिआरका भूँकना** (ବିଲୁଅ ଡାକ, ବିଲୁଅ ରଡ଼ି, ବିଲୁଅ ବୋବାଳି, ବିଲୁଅ ବୋବ, ବିଲୁଅ ଭୁକା—ଅନ୍ୟ ରୂପ)

ବିଲୁଅଣୀ—ଗ୍ରାମ୍ୟ. ବି. ସ୍ତ୍ରୀ—ମାଈ ବିଲୁଅ—A she-jackal. Biluāṇi (ଉ—ବିଲୁଅ ବିଲୁଅଣୀ ଡାକୁ ଖାଇ ସାରି, ବରଷା শেয়ালনী ଶେଷ ଦେଖି ଦୂରରୁ ବାହାରି । କୃଷ୍ଣସିଂହ. ମହାଭାରତ **शिआरिन** ଶାନ୍ତି )

ବିଲୁଅ ଦହି—ଦେ. ବି—ଦହିରେ ପକାଇ ସଢ଼ା ଯାଇଥିବା ବିଲୁଅର Biluā dahi ମାଂସ; ଏହା ଏକ ପ୍ରକାର ବାତ ରୋଗର ଔଷଧ ରୂପେ ବ୍ୟବହୃତ ହୁଏ—Curd seasoned with the flesh of jackal and used as an antidote against acute rheumatism.

ବିଲୁଅ ନନା—ଦେ. ବି. ପୁଂ—(ଶିଶୁ ଗୀତ) ବିଲୁଅ ପ୍ରତି ଶିଶୁମାନଙ୍କର Biluā nanā ଆଦର ସମ୍ବୋଧନ—(Nursery rhyme) A শিয়াল ভাই term of endearment addressed to the (ବିଲୁଅ ନାନୀ—ସ୍ତ୍ରୀ) jackal by children. (ଉ—ବିଲୁଅ ନନା ! ଘର ଯୋଡ଼ି ଗଲା ପଛକୁ ଅନା—ଶିଶୁଗୀତ )

ବିଲୁଅ ବାହା—ଦେ. ବି. (ଶିଶୁ ଭାଷା)—ବିଲୁଅ ନନା ଓ ବିଲୁଅ Biluā bāhā ନାନୀଙ୍କର କାଳ୍ପନିକ ବିବାହ ଉତ୍ସବ—The im-শিয়ালের বিয়ে aginary marriage festival of jackals **डका बराह** which is assumed to be performed

ବିଲୁଅ ବାଘ / ବିଲୁଅ ବାହା / ବିଲୁଅ ବେହା / ବିଲୁଅ ଭୁଆ } ଅନ୍ୟରୂପ

when there is a shower of rain while the sun is shining. [ଦ୍ର—ଖରା ପଡ଼ୁଥିବା ସମୟରେ ବୃଷ୍ଟି ହେଲେ ବିଲୁଅ ନନା ବାଘ ହେଉଅଛି ବୋଲି ଶିଶୁମାନଙ୍କର ବିଶ୍ୱାସ । ଏହା ସୂର୍ଯ୍ୟ ଯେଉଁଆଡ଼େ ବିରାଜିତ ଥାଆନ୍ତି, ତାହାର ବିପରୀତ ଦିଗରୁ ମେଘ ଘୋଟି ବର୍ଷା ହେବା ଅବସ୍ଥା ।]

ବିଲୁଅ ବିଚାର—ଦେ. ବି—ବହୁ ଲୋକ ଏକତ୍ର ହୋଇ ପରାମର୍ଶ କରି Biluā bichāra ଶେଷରେ କାର୍ଯ୍ୟରେ କିଛି ନ କରିବା; ନିଷ୍ଫଳ শিয়ালের বিচার ବିଚାର—Fruitless consultation. **बुढिआ पूँसी**

ବିଲୁଅ ବୁଦ୍ଧି—ଦେ. ବି—୧ । ତୀକ୍ଷ୍ଣ ବୁଦ୍ଧି—1. Sharp intellect. Biluā buddhi শিয়াল বুদ্ধি ୨ । ଧୂର୍ତ୍ତତା—2. Slyness.

ବିଲୁଅ ମୂଷା—ଦେ. ବି—ମୂଷାବିଶେଷ—Mouse frequenting Biluā mushā paddy fields. [ଦ୍ର—ଏମାନେ ବିଲରେ খেতের ইঁদুর ପାଚିଥିବା ଧାନ ଗଛରୁ ଧାନ ଅପହରଣ କରି ବିଲ **खेतका चूहा** ନିକଟରେ ଗାତ କରି ସେଠାରେ ରଖନ୍ତି । ଗୋଟିଏ ଗୋଟିଏ ବିଲୁଅ ମୂଷାଙ୍କ ଗାତ ଖୋଳିଲେ ଗାତ ମଧ୍ୟରୁ ୫ ଗୌଣୀ ପର୍ଯ୍ୟନ୍ତ ଅପହୃତ ଧାନ ବାହାରିବାର ଦେଖା ଯାଇଅଛି ।]

ବିଲୁଗା—ଦେ. ବି—ଭେରୁ ( ଦେଖ ) Bilugā Bheru ( See )

ବିଲୁଣ୍ଠନ—ସଂ. ବି. (ବି+ଲୁଠ୍ ଧାତୁ+ଭାବ.ଅନ)—ଭୂମିରେ ଗଡ଼ିବା—Bilunṭhana Wallowing; rolling on the ground. (ବିଲୁଣ୍ଠିତ—ବିଣ)

ବିଲୁପ୍ତ—ସଂ. ବିଣ (ବି+ଲୁପ୍ ଧାତୁ=ଲୋପ କରିବା+କର୍ମ. ତ)—Bilupta ୧ । ଲୋପ ପ୍ରାପ୍ତ—1. Annihilated. ୨ । ବିନଷ୍ଟ—2. Spoilt; destroyed. ୩ । ଅନ୍ତର୍ହିତ; ତିରୋଭୂତ; ତିରୋହିତ—3. Vanished; disappeared. ୪ । ଲୁଣ୍ଠିତ—4. Plundered; sacked. ୫ । ଛିନ୍ନ—5. Cut off. ୬ । ଆକ୍ରାନ୍ତ—6. Invaded. ୭ । ଗୃହୀତ—7. Seized; taken away.

ବିଲୁଭିତ—ସଂ. ବିଣ—ଚଞ୍ଚଳ; ଅସ୍ଥିର; ଅବ୍ୟବସ୍ଥିତ—Bilubhita Fickle; restless; unsettled.

ବିଲୁରି—ଦେ. ବି—ବିଲୋରି ( ଦେଖ ) Biluri Bilori ( See )

ବିଲୁଳିତ—ସଂ. ବିଣ. (ବି+ଲୁଲ୍ ଧାତୁ=ଚଞ୍ଚଳ ହେବା+କର୍ତ୍ତୃ. ତ)—Bilulita ୧ । କମ୍ପିତ—1. Quivering; trembling. ୨ । ଦୋଦୁଲ୍ୟମାନ; ଝୁଲୁଥିବା—2. Swinging; oscillating. ୩ । ଚଞ୍ଚଳ; ଚାଳିତ—3. Caused to move; moving. ୪ । ବିଦୂରିତ—4. Removed; driven away.

ବିଲେଖନ—ସଂ. ବି. (ବି+ଲିଖ୍ ଧାତୁ=ବିଦାରି କରିବା+ଭାବ. ଅନ)—Bilekhana ବିଲିଖନ (ଦେଖ)—Bilikhana (See)

ବିଲେଇ ଖୋଜା—ପ୍ରାଦେ. (ଗଡ଼ଜାତ) ବି—ବିସ୍ତଡ଼ଂଖୋଜଥି; ଭୂଟ୍ଟୈର-
Bilei khojā A kind of flowering shrub.
(ବିଲେଇ ଖୋଜଥି—ଅନ୍ୟରୂପ)

ବିଲେପ—ସଂ. ବି—(ବି+ଲିପ୍ ଧାତୁ=ଲେପନ କରିବା+କରଣ. ଅ)—
Bilepa ୧। ଲେପିବା ଦ୍ରବ୍ୟ; ପ୍ରଲେପ ଦ୍ରବ୍ୟ—1. A plaster. ୨। ମଲମ—2. Ointment. ୩। (…+ଭାବ. ଅ) ବୋଳିବା—2. Besmearing; anointing. ୪। ଘୃଷ୍ଟ ଚନ୍ଦନ—4. Sandal paste. ୫। (…+କର୍ମ. ଅ) ଭାତର ପେଜ—5. The skimmings of boiled rice.

ବିଲେପନ—ସଂ. ବି—(ବି+ଲିପ୍ ଧାତୁ=ଲେପିବା+ଭାବ. ଅନ)—୧।
Bilepana ଲେପିବା—1. Plastering. ୨। (…+କରଣ. ଅନ) ଲେପନ ଦ୍ରବ୍ୟ—2. A plaster; ointment paste. ୩। ଲେପନଯୋଗ୍ୟ ସୁଗନ୍ଧ ଦ୍ରବ୍ୟ—3. Perfumery used for rubbing on the body. ୪। (ବି+ଲିପ୍ ଧାତୁ+ଭାବ. ଅନ) ଦେହରେ ଚନ୍ଦନ କୁଙ୍କୁମାଦି ଲେପନ—4. The act of besmearing the body with perfumes.

ବିଲେପନୀ—ସଂ. ବି. ସ୍ତ୍ରୀ (ବିଲେପନ+ସ୍ତ୍ରୀ. ଈ)—୧। ସୁବେଶା ସ୍ତ୍ରୀ—
Bilepanī 1. A nicely dressed lady. ୨। ଭାତର ପେଜ—2. The skimmings of boiled rice.

ବିଲେପୀ—ସଂ. ବି. (ବୈଦ୍ୟକ)—୧। ତଣ୍ଡୁଳର ଚାରି ଗୁଣ ଜଳରେ
Bilepī ତଣ୍ଡୁଳ ସିଦ୍ଧ କରି ଯେଉଁ ଯବାଗୂ ପ୍ରସ୍ତୁତ କରାଯାଏ (ଦ୍ରବ୍ୟ—ଗୁଣ. କଳ୍ପଦ୍ରୁମ)—1. A gruel prepared by boiling rice with 4 times its quantity of water. ୨। ଜ୍ୱରବିଶେଷ—2. Hectic fever. ୩। ଭାତର ପେଜ—3. The skimmings of boiled rice.

ବିଲେବାସୀ—ସଂ. ବି—(ବିଲେବାସିନ୍; ୧ମା. ୧ବ. ସଂ. ବିଲେ=
Bilebāsī ଗର୍ତ୍ତରେ+ବାସୀ=ଯେ ଗାତରେ ରହେ ବା ଯେ ବାସ କରେ ) ସରୀସୃପ—Reptile. (ଯଥା—ସାପ, ମୂଷା, ଗୋଧି ଆଦି )

ବିଲେଶୟ—ସଂ. ବି—(ବିଲେ=ଗର୍ତ୍ତରେ+ଶୀ ଧାତୁ+କର୍ତ୍ତି. ଅ; ଯେ
Bileśaya ଗାତରେ ବାସ କରେ); ବିଲେବାସୀ (ଦେଖ) Bilebāsī (See)

ବିଲୋଇବା—ଦେ. କ୍ରି—(ସଂ. ବିନୟ)—୧। ସମ୍ମାନ କରିବା; ସ୍ୱାଗତ
Biloibā କରିବା—1. To show respect. [ଉ– ବଇ-**अरियातना** ଦେଖାକି ମନୋଦରୀ ଚହିଁ; ବିଲୋଇ ରହିଲେ ଶ୍ରୀରାମ ସବଳେ ବସନ୍ତେ ଗମନେ ଯାଇ ସେ । ଉଦ୍ଧ. ବୈଦେହୀଶ ବିଳାସ ] ୨। ସମ୍ମାନନୀୟ ପ୍ରସ୍ଥାନକାରୀ ବ୍ୟକ୍ତିଙ୍କ ସଙ୍ଗେ କିଛି ଦୂର ଯିବା, ବାଟ ବଳେଇବା—7. To accompany a respectable person to a distance and take leave of him.

ବିଲୋକ—ସଂ. ବିଣ—(ବି+ଲୋକ)—୧। ବାସ କରିବାର ଅଯୋଗ୍ୟ—
Biloka 1. Uninhabitable. ୨। ନିର୍ଜନ—2. Lonely. ୩। (ବି+ଲୋକ ଧାତୁ+କର୍ମ. ଅ) ଗୁପ୍ତ—3. Private. ସଂ. ବି—ବିଲୋକନ; ଦର୍ଶନ—Seeing. (ଉ—ବିଲୋକ କରି ଅଳକ ଫେରି ଏଥିକି ସମ ନୋହି । ଉଦ୍ଧ. ବୈଦେହୀଶବିଳାସ ) ଦେ. ବିଣ—ପ୍ରକାଶିତ; ଦୃଷ୍ଟ—Seen; manifested. (ଉ—ବିଲୋକ ହେଲା ହେଲା ବାସ ତାର । ଉଦ୍ଧ. ବୈଦେହୀଶବିଳାସ )

ବିଲୋକନ—ସଂ. ବି—୧। (ବି+ଲୋକ୍ ଧାତୁ=ଦେଖିବା+ଭାବ.
Bilokana ଅନ )—ଅବଲୋକନ; ଦର୍ଶନ—1. Seeing; viewing. ୨। (ବି+ଲୋକ୍ ଧାତୁ+କରଣ. ଅନ)—ନେତ୍ର; ନୟନ; ଚକ୍ଷୁ—2. Eye.

ବିଲୋକନ କରିବା—ଦେ. (ପଦ୍ୟ) କ୍ରି.—ଦେଖିବା—To see; to
Bilokana karibā বিলোকন করা **बिलोकन करना** perceive

ବିଲୋକନୀୟ—ସଂ. ବିଣ—(ବି+ଲୋକ୍+ଦେଖିବା+କର୍ମ. ଅନୀୟ)—
Bilokanīya ୧। ଦର୍ଶନୀୟ—1. Visible; perceptible. (ବିଲୋକ୍ୟ—ଅନ୍ୟରୂପ) ୨। ସୁଦୃଶ୍ୟ—2. Graceful; beautiful.

ବିଲୋକିତ—ସଂ. ବିଣ—(ବି+ଲୋକ୍ ଧାତୁ=ଦେଖିବା+କର୍ମ. ତ)—
Bilokita ଅବଲୋକିତ; ଦୃଷ୍ଟ—Seen. ସଂ. ବି—(ବି+ଲୋକ୍ ଧାତୁ+ଭାବ. ତ)—ଦୃଷ୍ଟି; ଦର୍ଶନ—Seeing; viewing.

ବିଲୋକିତା—ଦେ. (ପଦ୍ୟ) ବିଣ ( ସଂ. ବିଲୋକିତ )—ଅବଲୋକିତ—
Bilokitā Viewed; seen. ( ଉ—ବିଗ୍ରହ ବଧ ପରିଶୁଣ୍ଡାମ ଗବ ଏହା ତାକୁ ବିଲୋକିତା । ଉଦ୍ଧ. ବୈଦେହୀଶବିଳାସ )

ବିଲୋକିବା—ଦେ (ପଦ୍ୟ) କ୍ରି ( ସଂ. ବି+ଲୋକ୍ ଧାତୁ )—ଦେଖିବା
Bilokibā —To see. ( ଉ—ବିଲୋକ ଯା ମନେ বিলোকা **बिलोकना** ଉଠି ଲାଜସ୍ତେ । କବିସୂର୍ଯ୍ୟ, ସଙ୍ଗୀତ । )

ବିଲୋଚନ—ସଂ. ବି—୧। ( ବି+ଲୋଚ୍ ଧାତୁ=ଦେଖିବା+କରଣ.
Bilochana ଅନ )—ଚକ୍ଷୁ; ନେତ୍ର—1. The eye. ୨। ( ବି+ଲୋଚ୍ ଧାତୁ+ଭାବ. ଅନ )—ଦର୍ଶନ—Seeing. ସଂ. ବିଣ. ପୁଂ ( ବି+ଲୋଚନ; ବହୁବ୍ରୀହି ) (ବିଲୋଚନା—ସ୍ତ୍ରୀ) —୧। କୁତ୍ସିତ ଚକ୍ଷୁବିଶିଷ୍ଟ—1. Having ugly eyes. ୨। ଚକ୍ଷୁବିରହିତ—2. Deprived of the eyes.

ବିଲୋଟ(ଠ)କ—ସଂ. ବି [ ବି+ଲୁଟ୍(ଠ) ଧାତୁ+କର୍ତ୍ତି. ଅକ ]—
Bilota(tha)ka ଜଳମୀନ; ବାଲିଗରଡ଼ା ମାଛ—A kind of fresh water fish.

ବିଲୋଠନ—ସଂ. ବି ( ବି+ଲୁଠ୍ ଧାତୁ=ଲୋଟିବା+ଭାବ. ଅନ )—
Bilothana ଭୂମିରେ ଲୁଣ୍ଠିତ ହେବା; ଲୋଟିବା—Rolling on the ground.

ବିଲୋଡ଼କ—ସଂ. ବିଣ. ପୁଂ (ବି+ଲୁଡ଼୍ ଧାତୁ=ମନ୍ଥିବା+କର୍ତ୍ତି. ଅକ)
Bilorḍaka —୧। ମନ୍ଥନକାରୀ, ଯେ ଘାଣ୍ଟେ—1. (ବିଲୋଡ଼ିକା—ସ୍ତ୍ରୀ) Churning. ୨। ଯେ ବାଟେ—2.

Bruising; pounding. ୩ । ଆନ୍ଦୋଳନକାରୀ—
3. Agitating.

**ବିଲୋଡ଼ନ**—ସଂ. ବି (ବି+ଲୁଡ଼୍ ଧାତୁ=ମନ୍ଥିବା+ଭାବ. ଅନ)—
Bilordana ୧ । ମନ୍ଥନ, ଆଲୋଡ଼ନ, ଘୋଟିବା, ଗୋଳାଇବା, ମୋହିବା; ଦଳିବା—1. Bruising; thoroughly agitating; pounding; churning; crushing.

**ବିଲୋଡ଼ିତ**—ସଂ. ବିଣ [ ବି+ଲୁଡ଼୍ ଧାତୁ (ଣିଚ)+କର୍ମ. ତ ]—୧ ।
Bilordita ମଥିତ, ଆଲୋଡ଼ିତ, ଘୋଟା ଯାଇଥିବା—1 Churned; agitated; pounded. ୨ । ତକ୍ର, ଘୋଳଦହି—2. Churned milk; buttermilk.

**ବିଲୋଡ଼ିବା**—ଦେ (ପଦ୍ୟ) କ୍ରି ( ସଂ. ବିଲୋଡ଼ନ )—୧ । ମନ୍ଥିବା—
Bilordiba 1. To churn. ୨ । ଦଳିବା—2. To crush.
বিলোড়া **विलोडना**

**ବିଲୋପ**—ସଂ. ବି (ବି+ଲୋପି ଧାତୁ=ଲୋପ କରିବା+ଭାବ. ଅ)—
Bilopa ୧ । ଲୋପ—1. Obliteration. ୨ । ଧ୍ୱଂସ; ବିନାଶ; ଉଚ୍ଛେଦ—2. Ruin; destruction; overthrow. ୩ । ତିରୋଭାବ—3. Disappearance. ୪ । ମୃତ୍ୟୁ—4. Death. ଦେ. ବିଣ—ଲୁକାୟିତ—Concealed; hidden. (ଉ—ବିଲୋପ ନୋହିବ ରସବତୀ ସୁରତମେ— ଭଞ୍ଜ. ବୈଦେହୀଶବିଳାସ )

**ବିଲୋପକ**—ସଂ. ବିଣ. ପୁଂ (ବି+ଲୁପ୍ ଧାତୁ ଣିଚ୍, ଲୋପି ଧାତୁ+କର୍ତ୍ତୃ.
Bilopaka ଅକ)—୧ । ବିନାଶକ—1. Destructive,
(ବିଲୋପିକା—ସ୍ତ୍ରୀ) ruinous. ୨ । ନେଇକରି ଯେ ପଳାଏ—
2. Fleeing away after taking a thing.

**ବିଲୋପନ**—ସଂ. ବି (ବି+ଲୋପି ଧାତୁ+ଭାବ. ଅନ)—ବିନାଶକରଣ;
Bilopana ଉଚ୍ଛେଦସାଧନ=Destroying; ruining; obliterating; expunging.

**ବିଲୋପ ସାଧନ**—ସଂ. ବି (୬ଷ୍ଠୀ ତତ୍; ବିଲୋପ+ସାଧନ)—ବିନାଶ-
Bilopa sādhana ସାଧନ; ଉଚ୍ଛେଦ ସାଧନ—Bringing about of ruin or overthrow.

**ବିଲୋପିବା**—ଦେ. (ପଦ୍ୟ) କ୍ରି—ବିଲୋପ ସାଧନ କରିବା—
Bilopibā বিলোপা **विलोपना** To destroy.

**ବିଲୋଭନ**—ସଂ. ବି (ବି+ଲୁଭ୍ ଧାତୁ (ଣିଚ), ଲୋଭି ଧାତୁ=ଲୋଭ-
Bilobhana କାଙ୍କ୍ଷୀ ହେବା+ଭାବ. ଅନ)—୧ । ଲୋଭ ଦେଖାଇବା—1. Tempting. ୨ । ପ୍ରଲୋଭନ ଦେଖାଇବା—2. Alluring. ୩ । ମନ ଭୁଲାଇବା—3. Charming; fascinating; enchanting. ୪ । ( ବି+ଲୋଭି ଧାତୁ+କରଣ. ଅନ )—ଲୋଭନୀୟ ବସ୍ତୁ—4. A tempting thing.

**ବିଲୋମ**—ସଂ. ବିଣ (ବହୁବ୍ରୀହି; ବି=ଭିନ୍ନ, ଓଲଟା, ବିପରୀତ+ଲୋମନ୍=
Biloma ଶରୀର ଲୋମ)—୧ । ପ୍ରତିକୂଳ; ବିପରୀତ—1. Adverse; contrary. ୨ । ଓଲଟା; ବ୍ୟତିକ୍ରାନ୍ତ—2. Inverted; reversed; reverse. ( ଉ—କପଟରେ କହୁଛ ସେ କଥା ବିଲୋମ, କରଣ ପୂରାଇଲ ସୁଯୋଧନ କାମ । କୃଷ୍ଣସିଂହ. ମହାଭାରତ. ବନ ) ୩ । ଲୋମଶୂନ୍ୟ—3. Furless; hairless. ୪ । ଲୋମର ସ୍ରୋତବିରୁଦ୍ଧ—4. Against the grain. ୫ । ଭିନ୍ନ—5. Different.

ସଂ. ବି—୧ । ବ୍ୟତିକ୍ରମ; ବ୍ୟୁତ୍କ୍ରମ; ସ୍ୱାଭାବିକ ଧାରାର ବ୍ୟତିକ୍ରମ—1. Inversion of natural order. ୨ । ସର୍ପ—2. Snake. ୩ । ବରୁଣ ଦେବତା—3. The Hindu God of ocean. ୪ । ବରୁଣ ଗଛ—4. Capparia Trifolia; Crataeva Religiosa (tree) ୫ । କୁକୁର—5. Dog. ୬ । (ଗଣିତ) ତ୍ରୈରାଶିକ ଫଳ ଜ୍ଞାପକ କ୍ରିୟାବିଶେଷ—6. (mathematics) The process of the simple rule of three. ୭ । ପାଣି କାଢ଼ିବାର ଯନ୍ତ୍ର ବିଶେଷ—7. A kind of wheel for lifting water. ୮ । ସଙ୍ଗୀତରେ ୭ ଗୋଟି ସ୍ୱରର କ୍ରମାନୁସାରେ ନିମ୍ନ ଗତି— . The gradually diminishing course of the tunes in music. ୯ । ସ୍ୱାଭାବିକ ଧାରାର ବିପରୀତ କ୍ରମ—9. Reverse of the natural order. ଦେ. ବି—୧ । କଥାର ବେଠିକଣା—1. Want of consistency in one's words or promise. ୨ । କଥା କହିବାର ଅସମ୍ବନ୍ଧ ଅବସ୍ଥା—2. Want of sequence in one's expressions or speech. (ଯଥା—ବୃଦ୍ଧ ବୟସରେ ତାଙ୍କ କଥାର ବିଲୋମ ଘଟିଲାଣି ।) ୩ । ମାତୃକୁଳଠାରୁ ପିତୃକୁଳ ନୀଚ ହେବା ଅବସ୍ଥା—3. The state of the caste of one's father being lower than that of one's mother. (ଉ—ବିଲୋମେ ଜନ୍ମ ମୋର ଦେହ, ଏଣୁ ଦୂଷିତ କୁଳ ପାଇ । ଜଗନ୍ନାଥ. ଭାଗବତ ) ଦେ. ବିଣ—ଅସମ୍ବନ୍ଧ—Disjointed; incoherent.

**ବିଲୋମ କରିବା**—ଦେ. କ୍ରି—କୌଣସି କଥା କହିବା ସମୟରେ
Biloma karibā ବକ୍ତବ୍ୟ ବିଷୟ ଛାଡ଼ିଯିବା—To leave
কথা রাখা out parts of a narration unsaid.

**ବିଲୋମକ୍ରିୟା**—ସଂ. ବି ( ବିଲୋମ+କ୍ରିୟା )—ବୈପରୀତ୍ୟ; ପ୍ରପଞ୍ଚ—
Bilomakriyā Inversion; inverse operation.

**ବିଲୋମଜ**—ସଂ. ବିଣ. ପୁଂ ( ବିଲୋମ=ବ୍ୟୁତ୍କ୍ରମ+ଜନ୍ ଧାତୁ=ଜାତ
Bilomaja ହେବା+କର୍ତ୍ତୃ. ଅ )—ଜାତିର ନିୟମର ବ୍ୟତିକ୍ରମରେ
ବିଲୋମଜାତ, ବିଲୋମପ୍ରସୂତ } ଅନ୍ୟରୂପ
ବିଲୋମଜା, ବିଲୋମଜାତା, ବିଲୋମପ୍ରସୂତା } ସ୍ତ୍ରୀ
ଜନ୍ମ ହୋଇଥିବା ( ସନ୍ତାନ ), ଉଚ୍ଚଜାତିର ମାତା ଓ ନୀଚଜାତିର ପିତାଙ୍କଠାରୁ ଉତ୍ପନ୍ନ (ସନ୍ତାନ)—Born of a mother of superior caste by a father of inferior caste. [ଦ୍ର—ବ୍ରାହ୍ମଣୀ ଗର୍ଭରେ କ୍ଷତ୍ରିୟ ଔରସରୁ, କ୍ଷତ୍ରିୟା ଗର୍ଭରେ ବୈଶ୍ୟ ଔରସରୁ ଓ ବୈଶ୍ୟା ଗର୍ଭରେ ଶୂଦ୍ର ଔରସରୁ ଜାତ ସନ୍ତାନକୁ ବିଲୋମଜ ବୋଲାଯାଏ । ]

ବିଲୋମଜିହ୍ୱ—ସଂ. ବି ( ବହୁବ୍ରୀହି; ବିଲୋମ+ଜିହ୍ୱା )—ହସ୍ତୀ—
Bilomajihwa Elephant.

ବିଲୋମବର୍ଣ୍ଣ—ସଂ. ବି ( ବିଲୋମ= ବିବାହର କ୍ରମବିପର୍ଯ୍ୟୟ+ବର୍ଣ୍ଣ
Bilomabarnna =ଜାତି )—ବର୍ଣ୍ଣସଙ୍କର—A mixed caste consisting of persons born of lower caste father and higher caste mother.

ବିଲୋମ ବିଧି—ସଂ. ବି ( କର୍ମଧା; ବିଲୋମ+ବିଧି )—ବିପରୀତ ନିୟମ;
Biloma bidhi ଓଲଟା ନିୟମ—Inverse rule.

ବିଲୋମ ବିବାହ—ସଂ. ବି ( ବିଲୋମ+ବିବାହ )—ଉଚ୍ଚବର୍ଣ୍ଣା ସ୍ତ୍ରୀ ସଙ୍ଗେ
Biloma bibāha ନୀଚବର୍ଣ୍ଣ ପୁରୁଷର ବିବାହ—Marriage between a woman of a higher caste and a man of lower caste.

ବିଲୋମଲୋମ—ଦେ. ବି—୧ । ଓଲଟାପାଲଟା—1. Topsy-turvy.
Bilomaloma ( ଉ—ବିଲୋମ ଲୋମ ବର୍ଣ୍ଣିସ୍ତୋମ ଏ କାମଦରକୁ ଓଲଟାପାଲଟା କରନ୍ତା ତାରକ—ଭଞ୍ଜ. ବୈଦେହୀଶବିଳାସ ।) ୨ । ଛନ୍ଦୋବିଶେଷ; ଲୋମବିଲୋମ ( ଦେଖ )—2. Lomabiloma (See) ୩ । ଘୋଷରାଘୋଷରି—3. Mutual dragging. ( ଉ—ବିଲୋମଲୋମ ଗତାଗତ ବଶେ, ବିରଥ ବଧ ଖ୍ୟାତ ଖାତ ଜୋଶେ—ଭଞ୍ଜ. ବୈଦେହୀଶବିଳାସ । )

ବିଲୋମୀ—ସଂ. ବି. ସ୍ତ୍ରୀ—ଆମଳକୀ; ଅଁଳା—
Bilomī Embelic Myrobalan.

ବିଲୋରି—ବୈଦେ. ବି· (ଫା, ବିଲ୍ଲୁର; ବିଲୌରି=ସ୍ଫଟିକ; ତୁଳ. ସଂ· ବୈଦୂର୍ଯ୍ୟ)—୧ । କାଚ—1. Glass. ୨ । ସ୍ୱଚ୍ଛ ଧଳା
Bilori
বেলোয়ারি ପଥର; ସ୍ଫଟିକ—2. Quartz ୩ । ବହୁ କୋଣ-
बिलूर; बिल्लौर ବିଶିଷ୍ଟ କାଚ—3. Prism glass; cut glass. ବୈଦେ. ବିଣ—୧ । କାଚରେ ନିର୍ମିତ—1. Made of glass. ୨ । ସ୍ଫଟିକମୟ—2. Made of quartz.

ବିଲୋରି ଚୁଡ଼ି—ଦେ. ବି—କାଚର ବଳୟ—Glass bangles.
Bilori churdi বেলোয়ারি চুড়ী बिल्लौरी चूड़ियाँ
( ବିଲୋର କାଚ—ଅନ୍ୟରୂପ )

ବିଲୋରି ଝାଡ଼—ବୈଦେ· ବି (ଫା)—କାଚର ବହୁଶାଖାବିଶିଷ୍ଟ ପ୍ରଦୀପ—
Bilori jhārda Glass lamp; glass chandollier.
বেলোয়ারী ঝাড় बिल्लौरी झाड़

ବିଲୋରି ବର୍ତ୍ତନ—ବୈଦେ. ବି—କାଚ ବାସନ—Glassware;
Bilori barttan বেলোয়ারী বাসন glass utensil.
बिल्लौरी बरतन (ବିଲୋର ବରତନ, ବିଲୋର ବାସନ—ଅନ୍ୟରୂପ)

ବିଲୋଳ—ସଂ· ବିଣ. ପୁଂ ( ବି+ଲୁଲ୍ ଧାତୁ=ଚଞ୍ଚଳ ହେବା+କର୍ତ୍ତୃ. ଅ )—୧ । ଚଞ୍ଚଳ; ଚପଳ—1. Quick; fickle;
Bilola
(ବିଲୋଳା—ସ୍ତ୍ରୀ) rest-less. ୨ । କମ୍ପମାନ—2. Quivering; shivering.

ବିଲୋଳନ—ସଂ. ବି ( ବି+ଲୁଲ୍ ଧାତୁ+ଣିଚ୍+ଭାବ. ଅନ )—
Bilolana ହଲାଇବା—Shaking.

ବିଲୋଳିତ—ସଂ. ବିଣ ( ବି+ଲୁଲ୍ ଧାତୁ+କର୍ମ୍ମ. ତ )—୧ । ଲମ୍ବିତ—
Bilolita 1. Hanging. ୨ । ଆନ୍ଦୋଳିତ—2. Waving; dishevelled.

ବିଲୋ(ଲୋ)ହିବା—ଦେ. (ପଦ୍ୟ) କ୍ରି ( ସଂ. ବିଲୋଭନ )—୧ । ମନକୁ
Bilo(lo)hibā ମୁଗ୍ଧ କରାଇବା; ମନ ରଞ୍ଜାଇବା—1. To charm;
বিলোভন করা to enchant. ୨ । ଲୋଭ ଦେଖାଇବା—2. To allure; to tempt. ୩ । ପୁରସ୍କାର ବା ଉପଢୌକନ ଦେବା—3. To make a present. ( ଉ—ବଧୂ ତାଙ୍କୁ ସ୍ତ୍ରୀରତନ ଯେନ; ବିଲୋହିଲେ ଅମୂଲ୍ୟ ରତନ ଘନ—ଭଞ୍ଜ. ବୈଦେହୀଶବିଳାସ । ) ୪ । (ବନ୍ଧୁ ଆଦିଙ୍କୁ) ସମ୍ମାନ କରିବା; ସତ୍କାର କରିବା; ଚର୍ଚ୍ଚା କରିବା—4. To entertain or welcome friends and guests. ୫ । ଅନ୍ନ ଆଦି ପରଷିବା; ଦ୍ରବ୍ୟାଦି ବ୍ୟକ୍ତିମାନଙ୍କୁ ବାଣ୍ଟିବା—5. To distribute; to serve food. (ଉ—ବିଲୋହିବା ପାଇଁ ଆସ୍ଥାନ ଭବନେ, ଆସିଥିଲେ ଜେମା ମହିଷୀଗଣଙ୍କେ । ଅଜ୍ଞସୁତନ୍ତ୍ର. ଶେଷବନୀ ଭାରତୀ ।) ୬ । ଆଦର କରିବା—6. To show respect. ୭ । ଅଦରିବା; ଗ୍ରହଣ କରିବା—7. To admit or accept a person or thing as one' own. ୮ । ବରଣ କରିବା—8. To choose. ୯ । ଦେବା; ବିତରଣ କରିବା—9. To give; to distribute. (ଉ—ବିଲୋହିଲେ ନାହିଁ ଆନେ, ବିଭବକ ପ୍ରଭୁ ସମାନେ, ନାହିଁ ବସ ସିଂହାସନେ ଅଭିଷେକ ରର । ଭଞ୍ଜ. ବୈଦେହୀଶବିଳାସ ।) ୧୦ । (ସଂ. ବିଲୋଡ଼ନ)
গোলান ମନ୍ଥିବା; ଗୋଳାଇବା—10. To agigate; to mix
बलोना, विलोड़ना up; to churn ୧୧ । (ସଂ· ବିଲୋଳନ
গুলিয়ে দেওয়া ଛିନ୍ନଭିନ୍ନ ବା ଅସ୍ତବ୍ୟସ୍ତ କରିବା—11. To ruin
बिलोरना to depredate.

ବିଲ୍ୱ—ସଂ. ବି. ( ବିଲ୍ ଧାତୁ=ଭେଦ କରିବା+ସଂଜ୍ଞାର୍ଥେ. ବ )—
Bilwa ୧ । ଶ୍ରୀଫଳ; ବେଲ (ଗଛ ଓ ଫଳ)—1. The Bael fruit; Aeglo Marmelos (tree and fruit ୨ । ଏକ ପଲ ପରିମାଣ—2. The measure of one pala; $\frac{1}{20}$ of a seer.

ବିଲ୍ୱ ପେଶିକା—ସଂ. ବି—ଯେଉଁ କଞ୍ଚା ବେଲ ଖଣ୍ଡମାନ ଖରାରେ
Bilwa peśikā ଶୁଖାଇ ରଖାଯାଇ ଥାଏ; ବେଲ ଶୁଣ୍ଠା—
(ବିଲ୍ୱ ଶଲାଟୁ—ଅନ୍ୟରୂପ) Raw Bael fruit cut into slices and driod.

ବିଲ୍ୱାନ୍ତର—ସଂ. ବି—ନର୍ମଦା ନଦୀ ତୀରବର୍ତ୍ତୀ ବନ୍ୟ କଣ୍ଟକୀ ବୃକ୍ଷ-
Bilwāntara ବିଶେଷ—A tree growing wild on the
ଦେ. ବେଣୁରୁରୁଟେଟ୍ଟୁ, banks of the Nerbudda river.
[ଦ୍ର—ଏହାର ପତ୍ର ଶମୀ ବୃକ୍ଷର ପତ୍ର ପରି ଏବଂ ଫୁଲ କାଶ ଫୁଲ ପରି, ବୃକ୍ଷର ଗାତ୍ର କଣ୍ଟକଯୁକ୍ତ ।]

ବିଲ୍ଲ—ସଂ. ବି. ( ବିଲ+ଲ )—୧ । ଜଳମୟ ଭୂମି—1. Marshy
Billa place. ୨ । ଜଳାଶୟ—2. Tank. ୩ । ଆଳବାଳ; ଗଛ ମୂଳେ ପାଣି ଡାଳିବା ନିମନ୍ତେ କରାଯାଇଥିବା ମଳା—3. A basin raised round the root of a

tree for watering it. ୪ । ହେଙ୍ଗୁ—4. Assafœtida. ୫ । ଭେରୁ ଗଛ (ଦେଖ) 5. Bheru tree (See)

ବିଲ୍ଲସୂ—ସ. ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ଦଶ ଗୋଟି ସନ୍ତାନ ଜନ୍ମ କରି ସାରି
Billasū ଅଛି—A mother of ten children.

ବିଶ୍ (ଧାତୁ)—ସ—ପ୍ରବେଶ କରିବା—
Bis (root) To enter.

ବିଶ୍—ସ. ବି. ( ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. କ୍ୱିପ୍ )—
Biṡ ପୁଂ—୧ । ବୈଶ୍ୟ; ବଣିକ୍ ଜାତି—1. The trading caste amongst the Hindus. ୨ । ମନୁଷ୍ୟ—2. Man. ସ୍ତ୍ରୀ—୩ । କନ୍ୟା—3. Daughter. ୪ । କୁମାରୀ—4. A virgin; a maid. ସ. ବିଣ—ବ୍ୟାପକ—Pervading; spreading. ଗ୍ରା. ବି. (ସ. ବିଷୟ)—୧ । ସମ୍ପର୍କ; ସମ୍ବନ୍ଧ—1. Connection. ୨ । ବିଷୟ—2. Matter. (ଯଥା—ମୋ ଭଲଆ ଅବା ବେପାରୀର ଜାହାଜ ଖବରରେ କି ବିଶ୍ ଅଛି ?) ଦେ. ବି ଓ ବିଣ. (ସ. ବିଂଶତି; ପ୍ରା· ବୀସଇ, ବୀସା)—କୋଡ଼ିଏ—
(ବିଶି—ଅନ୍ୟରୂପ) Twenty. (ଉ—ଠାରୁ ଠିରୁ ଉଣେଶ୍ ବିଶ୍—
ବିଶ ଇତ୍ୟ।) [ଦ୍ର—ଓଡ଼ିଆ ଭାଷାରେ କୋଡ଼ିଏ ସ୍ଥାନରେ ବିଶ୍
बीस କ୍ୱଚିତ୍ ବ୍ୟବହୃତ ହୁଏ । ପୂର୍ବେ ଓଡ଼ିଆରେ କୋଡ଼ିଏ ଅର୍ଥରେ ବିଶ୍ ବ୍ୟବହାର ହେଉଥିବାର ପ୍ରମାଣ ମିଳେ,ଯଥା-ବିଶି ଦସ୍ତି ପଦ୍ଧତି=ଯେଉଁ ପଦ୍ଧତିର ଲମ୍ବ ୨୦ ଦସ୍ତି; ବିଶା ଶତେ=୧୨୦; ବିଶା ଦୁଇଶ=୨୨୦]

ବିଶ୍କୁଟ୍—ବୈଦେ. ବି. (ଇଂ. ବିସ୍କୁଟ୍)—ଦୁଇଥର ଭଜା ହୋଇଥିବା
Bis-kuṭ ଓ ବହୁଦିନସ୍ଥାୟୀ ମଇଦାର ବା ଯବ ଅଟାର ପିଷ୍ଟକ-
ବିସ୍କୁଟ୍ बिसकुट ବିଶେଷ—Biscuit.
(ବିଶ୍କୁଟି, ବିଶିକୁଟ୍, ବିଶିକୁଟି, ବିଶୁକୁଟି, ବିଶ୍କୁଟୁ, ବିଷ୍କୁଟ—ଅନ୍ୟରୂପ)

ବିଶ୍ରାମ୍—ଦେ. ବି—( ଯୁବକ ସ୍ୱାଧୀନ୍ୟାମଙ୍କ ପ୍ରବର୍ତ୍ତିତ ସ୍ୱଚ୍ଛନ୍ଦଭାବରେ
Biś-rām ଠିଆ ହେବା ବିଷୟକ ଡ୍ରିଲ୍ ସମ୍ବନ୍ଧୀୟ ଆଦେଶ ବଚନ. ବିଶେଷ )—ଦୁଇ ହାତ ଲମ୍ବାଇ ସ୍ଥିର ଭାବରେ ଠିଆ ହୁଅ—(a term of drill) Stand-easy.

ବିଶ—ସ. ବି ( ବିଶ୍ ଧାତୁ=ପ୍ରବେଶ କର+କର୍ତ୍ତୃ. ଅ )—୧ । (କ୍ଳୀ)
Biśa ମୃଣାଳ; ପଦ୍ମକାଣ୍ଡ—1, The stalk or stem of lotus· ୨ । (ପୁଂ) ବୈଶ୍ୟ ଜାତି—2. The Baiśya caste. ୩ । ମନୁଷ୍ୟ—3. Man. (ଉ-ବିଶ ପ୍ରଭୁ ପ୍ରେମ କାଣିନ୍ଥେ୍ୟ ବିଶ । ଉଞ୍ଜ. ବୈଦେହୀଶବିଳାସ ।) ୪ । (ସ୍ତ୍ରୀ) କନ୍ୟା—4. Daughter; girl. ୫ । କୁମାରୀ—5. Virgin; maid· ସ· ବିଣ—ବ୍ୟାପକ—Pervading. ପ୍ରାଦେ (ଗଡ଼ଜାତ) ବି (ବୋଧ ହୁଏ ବଂଶ ଗ୍ରାମ ସମଷ୍ଟି ରୁ) ପ୍ରଗନ୍ନା; ରାଜ୍ୟର ବିଭାଗ; ଗ୍ରାମପୁଞ୍ଜ—Pergannah; a group of villages.

ବିଶ ଆଙ୍ଗୁଳି—ପ୍ରାଦେ (ସିଂହଭୂମି) ବି—ତର୍ଜନୀ; ବଶିଅଙ୍ଗୁଠି—
Biśa āṅguli The index finger.

ବିଶଙ୍କ—ସ. ବିଣ. ପୁଂ ( ବହୁବ୍ରୀହି; ବି=ନାହିଁ+ଶଙ୍କା=ଭୟ )—
Biśaṅka ୧ । ନିର୍ଭୟ; ଶଙ୍କାରହିତ—1. Fearless; free
(ବିଶଙ୍କା—ସ୍ତ୍ରୀ) from apprehension or misgivings. ୨ । ନିରାପଦ—2· Safe; secure.

ବିଶ(ସ)ଙ୍କଟ—ସ· ବିଣ (ବି+ସନ୍+କଟ୍ ଧାତୁ=ଗମନ କରିବା+
Biśa(sa)ṅkaṭa କର୍ତ୍ତୃ· ଅ)—ବିଶାଳ; ଅତି ବୃହତ୍—Huge; gigantic.

ବିଶଙ୍କମାନ—ସ. ବିଣ. ପୁଂ (ବି+ଶଙ୍କ୍ ଧାତୁ=ଆଶଙ୍କା କରିବା+
Biśaṅkamāna କର୍ତ୍ତୃ. ଆନ)—ଆଶଙ୍କା କରୁଥିବା; ଅନିଷ୍ଟ
(ବିଶଙ୍କମାନା—ସ୍ତ୍ରୀ) ଆଦିର ଆଶଙ୍କାକାରୀ—Fearing; apprehensive.

ବିଶଙ୍କିତ—ସ. ବିଣ. ପୁଂ (ବି+ଶଙ୍କ୍ ଧାତୁ+କର୍ତ୍ତୃ. ତ)—୧ । ବିଶେଷ
Biśaṅkita ଶଙ୍କାପ୍ରାପ୍ତ; ଭୀତ—1. Apprehensive; fright-
(ବିଶଙ୍କିତା—ସ୍ତ୍ରୀ) ened. ୨ । ଶଙ୍କାମୁକ୍ତ—2. Free from misgivings or apprehension.

ବିଶଦ—ସ. ବିଣ (ବି+ଶଦ୍ ଧାତୁ=ଗମନ କରିବା; ନିର୍ମଳ ହେବା+
Biśada କର୍ତ୍ତୃ. ଅ )—୧ । ଶୁଭ୍ର; ଧଳା—1. White. ୨ । ନିର୍ମଳ; ପରିଷ୍କୃତ—2. Clean; purified. ୩ । ସ୍ୱଚ୍ଛ—3. Transparent; pellucid. ୪ । ସ୍ପଷ୍ଟ—4. Clear. ୫ । ସୁସ୍ପଷ୍ଟ; ସ୍ଫୁଟ—5. Manifest-apparent. ୬ । ପ୍ରସନ୍ନ; ଅନୁକୂଳ—6. Favourable; gracious. ୭ । ସୁନ୍ଦର; ମନୋହର—7. Graceful; beautiful· ୮ । ବିଦଗ୍ଧାବଯବ; ଶୁଦ୍ଧଶରୀର-ଯୁକ୍ତ—8. Pure-bodied. ସ. ବି—ଶୁଭ୍ର ବର୍ଣ୍ଣ—White colour.

ବିଶଦକର—ସ. ବି ( ବହୁବ୍ରୀହି, ବିଶଦ+କର=କିରଣ )—ଚନ୍ଦ୍ର—
Biśadakara The moon. [ ଉ—ବିଶଦକର ଗୋଟାଏ ଅନୁଚର, ବିଶଦ ମାର୍ଗରେ ଗମନ କର । ଉଞ୍ଜ. ବୈଦେହୀଶ-ବିଳାସ । ]

ବିଶଦଭାନୁ—ସ· ବି—ଚନ୍ଦ୍ର—The moon. [ ଉ—ବିଶଦଭାନୁ
Biśada bhānu ଭାନୁ ଏ କଳବିଶ । ଉଞ୍ଜ. ବୈଦେହୀଶବିଳାସ ]

ବିଶପ୍—ବୈଦେ· ବି(ଇଂ. ବିଶପ୍)—ଖ୍ରୀଷ୍ଟିଆନ୍‌ମାନଙ୍କର ପ୍ରଧାନ ଧର୍ମଯାଜକ-
Biśap बिशप बिसप Bishop.

ବିଶପ୍ରିକ୍—ବୈଦେ. ବି (ଇଂ. ବିଶପ୍ରିକ୍)—ବିଶପ୍‌ଙ୍କ ଇଲାକାଭୁକ୍ତ
Biśaprik ଦେଶାଂଶ—Bishopric.

ବିଶୟ—ସ. ବି (ବି+ଶୀ ଧାତୁ=ସନ୍ଦେହ କରିବା+ଭାବ. ଅ)—
Biśaya ସଂଶୟ; ସନ୍ଦେହ—Doubt.

ବିଶର—ସ. ବି (ବି+ଶୃ ଧାତୁ=ବଧ କରିବା+ଭାବ. ଅ) —
Biśara ହତ୍ୟା; ବଧ—Murder; slaughter.

ବିଶର୍ବ(ର୍ବା)—ଗ୍ରା. ବି (ସ. ବିଶ୍ରବସ୍; ବିଶ୍ରବାଃ )—ବିଶ୍ରବା; ରାବଣର
Biśarba(rbā) ପିତା; ଋଷିବିଶେଷ—Name of a sage; the father of Rābaṇa.

ବିଶର୍ମା(ର୍ମୀ)—ବୈଦେ• ବିଣ. ପୁଂ ଓ ସ୍ତ୍ରୀ ( ଫା. ବେସରମ୍ )—
Biśarmā(rmī) ବେଶରମା; ନିର୍ଲଜ୍ଜ—Shameless.
[ବିଶରମା(ମୀ)—ଅନ୍ୟରୂପ] ବେସରମ **बेसरमा**

ବିଶ(ଶା)ଳ ପାତି—ଦେ. ବିଣ. (ମନାର୍ଥ) (ସଂ• ବିସର୍ପୀ=ଇତସ୍ତତଃ
Biśa(śā)la pāti ଗମନଶୀଳ; କିମ୍ବା ବିସଳ=ଛୁଦ୍ର ଡାଳ;
**विषाह** ପଲ୍ଲବ ଓ ପତ୍ର)—୧ । ଅତି ଦୁଷ୍ଟ—1. Very
[ବିଷ(ଶା)ଳ ପାଢିଆ—ଅନ୍ୟରୂପ] wicked. ୨ । ଶୀର୍ଣ୍ଣ ଦେହ—
2. Very thin-bodied;emaciated. ୩ । ଅସ୍ଥିର;
ଅଶାନ୍ତ; ଚଞ୍ଚଳ—3. Restless. ଦେ. ବି—ଶୀର୍ଣ୍ଣ ଦେହ-
ବିଶିଷ୍ଟ ଦୁଷ୍ଟ ବ୍ୟକ୍ତି—A thin-bodied wicked
person.

ବିଶଲ୍ୟ—ସଂ. ବିଣ. ପୁଂ ( ବହୁବ୍ରୀହି; ବି=ନାହିଁ+ଶଲ୍ୟ=ଶେଳ )—
Biśalya ୧ । ଶଲ୍ୟରହିତ; ଶଙ୍କୁରହିତ; ଯାହା ଦେହରୁ ବିଦ୍ଧ
(ବିଶଲ୍ୟା—ସ୍ତ୍ରୀ) ଶର କଢ଼ା ଯାଇଅଛି—1. Having an
arrow extracted from the body. ୨ । ଯାତନା
ଶୂନ୍ୟ—2. Free from agony or pain. ୩ ।
ଚିନ୍ତାମୁକ୍ତ—3. Relieved from anxiety. ଦେ.
ବି—ବିଷହର ଔଷଧ—An antidote against
poison. (ଉ—ବିଶଲ୍ୟକୁ କରିବା ଗ୍ରାମ ଭଷି, ବଇଦ୍ୟନ୍ତୁ
ମୋତେ ବାଟ ବଶି । ଭଞ୍ଜ. ବୈଦେହୀଶବିଳାସ ।) ଦେ.
ବିଣ—ବିଷହାରୀ—Freeing from the effects
of poisoning; preventive of poisoning.
(ଉ—ବିଶଲ୍ୟ ଗ୍ରମା ପ୍ରାପତେ ହବିଷ । ଭଞ୍ଜ. ବୈଦେହୀଶ-
ବିଳାସ ।)

ବିଶଲ୍ୟ କରଣ—ସଂ. ବି—ଦେହରେ ବିଦ୍ଧ ହୋଇଥିବା ବାଣ ଆଦିକୁ
Biśalya karaṇa କାଢ଼ି ଦେବା ପ୍ରକ୍ରିୟା— Extraction of
an arrow which has entered the body.

ବିଶଲ୍ୟ କରଣୀ—ସଂ. ବି. ସ୍ତ୍ରୀ. (ବିଶଲ୍ୟ+କୃ ଧାତୁ+କରଣ. ଅନ+ଈ.
Biśalya karaṇī ଈ)—ବିଦ୍ଧ ବାଣର ବହିଷ୍କାରକ ଓ ମୃତସଞ୍ଜୀବନୀ
ଲତାବିଶେଷ; ଅମର ମହୌଷଧ ଲତା—A plant
said to possess the property of restoring a dead man to life and extracting a
dart. [ଦ୍ର—ଲକ୍ଷ୍ମଣଙ୍କଠାରେ ଇନ୍ଦ୍ରଜିତ୍ ଶକ୍ତିଭେଦ
କରିବାରୁ ଲକ୍ଷ୍ମଣ ମୂର୍ଚ୍ଛିତ ହେଲେ ଓ ହନୁମାନ୍ ଗନ୍ଧମାଦନ
ପର୍ବତକୁ ଲଙ୍କାକୁ ଉଠାଇ ଆଣିବାରୁ ସେହି ପର୍ବତରେ
ଥିବା ଏହି ଲତାକୁ ପ୍ରୟୋଗ କରିବା ଦ୍ୱାରା ଲକ୍ଷ୍ମଣ 'ବିଶଲ୍ୟ'
ହୋଇ ଉଠି ବସିଲେ ।] ୨ । ଏକ ପ୍ରକାର ଔଷଧ-ଗୁଳ୍ମ—
2. A kind of herbarious plant. [ବୈଦ୍ୟକ
ମତରେ ଏହା ବଲକାରକ, କୃଶସନ୍ଧାନକ, ରକ୍ତସ୍ରାବ
ନିବାରକ ଓ ରକ୍ତାତିସାରନାଶକ । ଦ୍ରବ୍ୟଗୁଣ ।] ଦେ.ବି—
**संजीवनी बुटी,** ୧ । ଅବ୍ୟର୍ଥ ମହୌଷଧ—1. A never-failing
**लक्ष्मन जड़ी** medicine. ୨ । ମୃତସଞ୍ଜୀବନୀ ଔଷଧ—2. A
life-restoring medicine. (ଉ—ଏବେ ଔଷଧ
ମୃତ୍ୟୁ ସଞ୍ଜୀବନୀ, ବିଶଲ୍ୟ କରଣୀକ ଯେନ ବେନ, ସନ୍ଧାନ
କରଣୀ ଔଷଧ ତିନ, ଚତୁର୍ଥେ ସବର୍ଣ୍ଣ କରଣୀ ଯେନ ।
ବିଶ୍ୱନାଥ. ବିଚିତ୍ର ରାମାୟଣ ।) ୨ । ସୋମରାଜ୍ୟାଦି ବର୍ଗର
ଆୟାପାନା ବିଦେଶୀ ଶାକଜାତୀୟ ଗୁଳ୍ମବିଶେଷ; ବଣ ସେବତୀ—
2· A herbarious plant; Eupatorium
Ayapana. [ଦ୍ର—ଏହାର ପତ୍ର ଅଗ୍ରମୁଖୀ ଓ ମାଛ ପରି
ଲମ୍ବା ଓ କ୍ରମଶଃ ସରୁ ହୋଇ ଡେଙ୍ଗରେ ମିଶିଥାଏ । କୌଣସି
ଅଙ୍ଗ ଛେଚ ବା କାଟ ହୋଇଗଲେ ଏ ଗଛର ପତ୍ର ଛେଚ
କରି ସେହି ସ୍ଥାନରେ ବାନ୍ଧି ଦେଲେ ବ୍ୟଥା କମିଯାଏ ଓ
କ୍ଷତ ମଧ୍ୟ ଭଲ ହୋଇଯାଏ । ଏଥିର ଫଳ ପଞ୍ଚଶିରାଳ ଓ
ବହୁଶ୍ଳେଷ୍ମଯୁକ୍ତ ।] ୩ । ଭଗବାନ୍ଦ ବର୍ଗର ଲଟାଳିଆ
ହାପରମାଳୀ ଗୁଳ୍ମ—Vallaris Heyani. [ଦ୍ର—ଏଥିର ପତ୍ର ଅଗ୍ର-
**रामशर** ମୁଖୀ ଓ ସୂକ୍ଷ୍ମ ଚିତ୍ରବିଶିଷ୍ଟ, ଫୁଲ ଧଳା ଓ ସୁଗନ୍ଧ ଏବଂ
ଥୋପା ଥୋପା ଫୁଟେ । ଫଳ ଲମ୍ବା; ଶୀତ ଓ ଗ୍ରୀଷ୍ମରେ ଫଳ
ଧରେ । ଯୋଗେଶ୍ଚନ୍ଦ୍ର । ଏଥିର ସଂ. ନାମ ଭଦ୍ରବଲ୍ଲୀ, ଶୀତଗ୍ରାହୁ,
ଭୂମିମଣ୍ଡ, ଅଷ୍ଟାପାଦିକା, ଭଦ୍ରମଲ୍ଲୀ, ଭଦ୍ରମୁଞ୍ଜ; ଏହା ବ୍ରଣ,
ଭଗ୍ନ କ୍ଷତ ଓ ନାଡ଼ୀବ୍ରଣବିନାଶକ । ଦ୍ରବ୍ୟଗୁଣ]

ବିଶଲ୍ୟ କରଣୀ କାଠି—ପ୍ରାଦେ. (ଗଡ଼ଜାତ) ବି—କାଠି ବିଶେଷ—
Biśalya karaṇī kāṭhi A twig selected from the
twigs of the nest of a Kumbhāṭuā bird;
said to possess the miraculous property of
opening a locked door. [ଦ୍ର—କୁମ୍ଭାଟୁଆ ଯେଉଁ
ବସାରେ ପିଲା କରି, ପିଲା ବଢ଼ିଲା ପରେ ବସା ଛାଡ଼ି ଚାଲି
ଯାଇଥାଏ, ସେହି ବସା ଯେଉଁ କାଠିମାନଙ୍କରେ ନିର୍ମିତ
ହୋଇଥାଏ, ସେହି କାଠିମାନଙ୍କୁ ନେଇ ସୁଅ ଚାଲୁଥିବା
ନଦୀରେ ପକାଇ ଦେଲେ କାଠିମାନ ଭାସିଯାଏ; ମାତ୍ର
ଯେଉଁ ଖଣ୍ଡିକ ଉଜାଣି ଉଠେ, ସେହି କାଠିକୁ ବିଶଲ୍ୟ-
କରଣୀ କାଠି ବୋଲାଯାଏ । ପ୍ରବାଦ ଅଛି ଯେ, ଏ
କାଠିକୁ ଯେ କୌଣସି କବାଟର କୋଲପରେ ଲଗାଇ
ଦେଲେ କୋଲପ ମନକୁ ଫିଟିଯାଏ । ଚୋରମାନେ ଏହାକୁ
ବ୍ୟବହାର କରନ୍ତି ।]

ବିଶଲ୍ୟକୃତ୍—ସଂ. ବିଣ.—(ବିଶଲ୍ୟ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—୧ ।
Biśalya krut ଯାତନାମୁକ୍ତ—1. Freed from pain.
୨ । ଯାତନାନାଶକ—2. Alleviating pain. ୩ ।
ଯାହା ଦେହରେ ପ୍ରବିଷ୍ଟ ଶରକୁ କାଢ଼ି ପାରେ--3. Having
the powers of extracting an arrow
which has penetrated into the body.
ସଂ. ବି—ବିଶଲ୍ୟକରଣୀ (୩) (ଦେଖ) କ୍ଷତ ଓ ବେଦନା-
ନାଶକ ଲତାବିଶେଷ—Echites Dichotoma;
ହାପରମାଳି; ରାମଶର Vallarius Heynei (Kirtikar); a
**रामशर; चमरिका वेल** kind of herbarious creeper.

ବିଶଲ୍ୟା—ସଂ. ବିଣ. ସ୍ତ୍ରୀ—( ବିଶଲ୍ୟ+ସ୍ତ୍ରୀ. ଆ )—ଗର୍ଭବେଦନାରୁ ମୁକ୍ତା
Biśalyā (ସ୍ତ୍ରୀ)—( a woman ) Delivered from
travail. ସଂ. ବି—୧ । ଗୁଳଞ୍ଚ ଲତା (ଦେଖ)—

1. Gulancha creeper (See) ୬ । ଅଗ୍ନିଶିଖା ବୃକ୍ଷ—2. Gloriosa Superba (tree). ୩ । ଦନ୍ତୀ (ବୃକ୍ଷ) (ଦେଖ)—3. Danti (tree) (See). ୪ । ଅଜମୋଦା—4. Carum Roxburghillm.

ବିଶସ—ସଂ. ବି.—(ବି+ଶସ୍ ଧାତୁ=ବଧ କରିବା+ଭାବ. ଅ)—୧ । Bisasa ବଧ; ହତ୍ୟା—1. Slaughter. ୨ । (...+କରଣ. ଅ)—ଖଡ୍ଗ—2. Sword.

ବିଶସ୍ତ—ସଂ. ବିଣ.—(ବି+ଶସ୍ ଧାତୁ=ବଧ କରିବା+କର୍ମ. ତ)—Bisasta ୧ । ହତ—1. Killed. ୨ । ଛିନ୍ନ—2. Cut off. ୩ । ସୁସଭ୍ୟ—3. Civilized. ୪ । ଅତୀତ—4. Past.

ବିଶା—ଦେ. ବି—(ସଂ. ବିଶ୍ୱା=ପରିମାଣ ବିଶେଷ=୨୦ ପଲ; ପ୍ରା. ବିଶା; Bisa ହିନ୍ଦୀ ସଂ. ବଂଶ=କୋଡ଼ିଏ; ସାଧାରଣତଃ ବିଶାକୁ ୨୦ ପଲ ବିଶ୍‌। ଥିବାରୁ; ହିନ୍ଦୀ ସଂ. ବିଶିଖ)—୧ । ଅଠର, କୋଡ଼ିଏ, बीसि ବାଇସି ବା ପଚିଶି ପଲ ଓଜନ କରିବାର ଯନ୍ତ୍ର; ତୁଲା ଯନ୍ତ୍ର—1. A weighing instrument having one pan suspended from one end of a rod, the other end acting as a fulcrum; the Roman balance; steel yard. [ଦ୍ର—ଏଥିରେ ଗୋଟିଏ କାଠିର ଗୋଟିଏ ପାଖରେ ଖଣ୍ଡେ ପରୁଡ଼ି ଝୁଲୁଥାଏ ଓ ସେ କାଠିର ଅନ୍ୟ ଅର୍ଦ୍ଧାଂଶରେ ଖଣ୍ଡିଏ ସୂତା ଲାଗିଥାଏ; ସେହି ସୂତାକୁ କାଠିର ଚିହ୍ନିତ ସ୍ଥାନମାନଙ୍କ ମଧ୍ୟରେ ଘୁଞ୍ଚାଇବା ଦ୍ୱାରା ପରୁଡ଼ିରେ ରଖାଯିବା ଜିନଷର ଓଜନ ଜଣା ପଡ଼େ ।] ୨ । ଏକ ବିଶା ଓଜନ ପଦାର୍ଥ—2. An article weighing a Bisa. ଦେ. ବିଣ—ଏକ ବିଶା ପରିମିତ—Weighing one Bisa. [ଦ୍ର—ଏକ ବିଶା=ପ୍ରାୟ କଚ୍ଚା ୧ ସେର; ସାଧାରଣ ବିଶା=୨୦ ପଲ; ବିଶା ଯନ୍ତ୍ରର ଏକ ପାଖରେ ଯେଉଁ ପାଦଖଣ୍ଡି ଝୁଲୁଥାଏ ଓ ଯହିଁରେ ଓଜନ କରାଯିବା ଦ୍ରବ୍ୟ ରଖାଯାଇ ଓଜନ କରାଯାଏ, ତାକୁ ପରୁଡ଼ି କହନ୍ତି; ଯେଉଁ ଦଣ୍ଡର ଏକ ମୁଣ୍ଡରେ ପରୁଡ଼ି ଝୁଲୁଥାଏ ତାକୁ ବିଶାକାଠି ବୋଲାଯାଏ । ତିନ ପ୍ରକାର ବିଶା ଚଳିବାର ଦେଖାଯାଏ । ଯଥା—ନଗିଜା ବିଶା=୧୮ ପଲ (ଏଥିରେ ବାସନକୁସନ ତଉଲ ହୁଏ ।) କାଟୁଆ ବିଶା=୨୫ପଲ (ଏଥିରେ ତେଲ ଆଦି ତଉଲ ହୁଏ । ଏହା ଗଡ଼ଜାତରେ ଚଳେ ।) ଦେଶୀ ବିଶା=୨୦ ପଲ (ଏଥିରେ ମାଛ ଆଦି ତଉଲ ହୁଏ ।)]

ବିଶାଂପତି—ସ. ବି. (ସଂ. ବିଶାଂ=ମନୁଷ୍ୟମାନଙ୍କର+ପତି) Bisampati ରାଜା—A king.

ବିଶାକାଠି—ଦେ. ବି—ବିଶାଯନ୍ତ୍ରର ଦଣ୍ଡ (ଯହିଁର ଏକ ମୁଣ୍ଡରେ ପରୁଡ଼ି Bisakathi ଝୁଲୁଥାଏ)—The yard or beam of a বিশার দাঁড় तराजूका डंटा Bisa contrivance.

ବିଶାଖ—ସ. ବି (ବିଶାଖା=ନକ୍ଷତ୍ର ବିଶେଷ+ଅପତ୍ୟାର୍ଥେ ଅ; ଏହାଙ୍କୁ Bisakha ବିଶାଖା ନକ୍ଷତ୍ର ଶିଶୁକାଳରେ ପାଳଥିଲେ)—୧ । କାର୍ତ୍ତିକେୟ—1. Karttikeya. ୨ । ଯାଚକ; ଭିକ୍ଷୁକ—2. A beggar. ୩ । ପୁନର୍ନବା; ପୁରୁଣିଶାଗ—3. Hogweed. ସ. ବିଣ (ବି+ଶାଖା)—(ବିଶାଖା—ସ୍ତ୍ରୀ) Branchless.

ବିଶାଖ ଯୂପ—ଦେ. ବି—ପୌରାଣିକ ବନବିଶେଷ—Name of a Bisakha jupa mythological forest. [ଉ—ବିଶାଖ ଯୂପ ବନ ସେ ପର୍ବତ ସ୍ଥାନେ, ଥିଲା ତହିଁ ରହିଲେ ପାଣ୍ଡୁଙ୍କ ନନ୍ଦନେ । କୃଷ୍ଣସିଂହ. ମହାଭାରତ. ବନ ।]

ବିଶାଖା—ସ. ବି. ସ୍ତ୍ରୀ (ବି+ଶାଖ୍ ଧାତୁ=ବ୍ୟାପ୍ତ ହେବା+କର୍ତ୍ତୃ. ଅ+ Bisakha ସ୍ତ୍ରୀ. ଆ)—୧ । ଷୋଡ଼ଶ ନକ୍ଷତ୍ର—1. The 16th asterism. [ଦ୍ର—ଏହାର ରୂପ ତୋରଣାକାର ଓ ଏହା ଉଜ୍ଜ୍ୱଳ ଦ୍ୱିତାରକାଯୁକ୍ତ ।] ୨ । ରାଧିକାଙ୍କର ଅଷ୍ଟସଖୀ ମଧ୍ୟରୁ ଜଣେ ସଖୀ—2. Name of one of the eight female companions of Radha. ଦେ. ବିଣ—୧ । ଶାଖାବିହୀନ—1. Branchless. [ଉ—ବିଶାଖା ସ୍ୱଭାବେ-ବିଶାଖାପତି ମୁଖ ଛବି ଭାବି । ଉପ. ବୈଦେହୀଶବିଳାସ ।] ୨ । (ଲକ୍ଷଣାର୍ଥ) ପ୍ରିୟ-ବିହୀନ—2. (figurative) Bereft of or separated from one's beloved one. ଦେ. ବି—ଉଚ୍ଚ ଡାଳ—A high branch. [ଉ—ବିଶାଖା ଆଶ୍ରିଲା, ବରଗମନା କରଗତ କଲା । ଅଭିମନ୍ୟୁ. ବିଦଗ୍ଧ-ଚିନ୍ତାମଣି ।]

ବିଶାଖାପତି—ସ. ବି (୬ଷ୍ଠୀତତ୍; ବିଶାଖା+ପତି)—ଚନ୍ଦ୍ର—The moon. Bisakhapati [ଉ—ବିଶାଖାପତି ମୁଖଛବି ଭାବେ । ଉପ. ବୈଦେହୀଶବିଳାସ ।]

ବିଶାଖା ପ(ପା)ଟଣ(ନ,ଣା,ନା)—ଦେ. ବି (ସଂ. ବିଶାଖ+ପତ୍ତନ)—Bisakha pa(pa)tana(na,na,na) ମାନ୍ଦ୍ରାଜ ପ୍ରଦେଶସ୍ଥ ଗଞ୍ଜାମ ବିଶାଖାପତ୍ତନ } ଅନ୍ୟରୂପ ଜିଲ୍ଲାର ଦକ୍ଷିଣରେ ଥିବା ଗୋଟିଏ ଜିଲ୍ଲା ବିଶାଖପତ୍ତନ ଓ ନଗର—Name of a district বিশাখা পাটনা and town of the Madras Presidency विशाखा पटना to the south of the Ganjam district. [ଦ୍ର—ଏହାକୁ ଇଂରେଜମାନେ ସଂକ୍ଷେପ କରି 'ଭାଇଜାଗ୍' ନାମ ଦେଇଅଛନ୍ତି । ଏହା ଗୋଟିଏ ସ୍ୱାସ୍ଥ୍ୟକର ସମୁଦ୍ରୋପକୂଳସ୍ଥ ସ୍ଥାନ ବୋଲି ପ୍ରସିଦ୍ଧ ।]

ବିଶା ଦୁଇଶ—ଦେ. ବି ଓ ବିଣ (ସଂଖ୍ୟାବାଚକ) (ସଂ. ବଂଶ ଅଧିକ Bisa duisa ଦ୍ୱିଶତ)—ଦୁଇଶତ ବିଂଶ; ୨୨୦—220; two দুশবিশ [ବିଶା ଦୁଇଶଅ(ହ)—ଅନ୍ୟରୂପ] hundred and दोसौबीश twenty.

ବିଶା ଧରିବା—ଦେ. କ୍ରି—ବିଶାଦ୍ୱାରା କୌଣସି ବସ୍ତୁ ଓଜନ କରିବା—Bisa dhariba To weigh a thing by the Bisa. ওজনদণ্ড ধরা

ବିଶାବଳି—ଦେ. ବି ( ସଂ. ବିଷ+ବଳି )—୧ । ଦେବୀଙ୍କ ନିକଟରେ
Biśābaḻi ଦିଆଯିବା ବଳି ବା ବୋଦା—1. A victim
बली **बली** slaughtered in front of a Goddess.
୨ । ଅତ୍ୟନ୍ତ ପ୍ରହାର—2. Excessive beating. ୩ ।
ହତ୍ୟା; ମାରଣ; ବଧ—3. Slaughter.

ବିଶାବଳି ଦେବା—ଦେ. ସ. କ୍ରି—୧ । ବଳିଦେବା—1. To slaughter
Biśābaḻi debā an animal as a victim to a
(ବିଶାବଳି କରିବା—ଅନ୍ୟରୂପ) Goddess. ୨ । ହତ୍ୟା କରିବା
बली देओया 2. To kill. ୩ । ଖୁବ୍ ପ୍ରହାର କରିବା—
**बली देना, बलीदान करना** 2. To beat soundly.

ବିଶାବଳି ପାଇବା—ଦେ. କ୍ରି—୧ । ଦେବୀଙ୍କ ନିକଟରେ ବଳିରୂପେ
Biśābaḻi pāibā ହତ ହେବା—1. To be slaughtered
(ବିଶାବଳି ହେବା—ଅନ୍ୟରୂପ) as a victim to a Goddess.
बली पाओया ୨ । ହତ ହେବା—2. To be killed. ୩ ।
**बलीदन होना** ଖୁବ୍ ମାଡ଼ ଖାଇବା—3. To be beaten excessively.

ବିଶାର—ସଂ. ବି—୧ । ମତ୍ସ୍ୟ; ମାଛ—1. Fish. (ଉ—ବକ ପାଖରେ
Biśāra ଜଳ ଘାଟେ, ବିଶାର କୁଳକୁ ଚହଟେ । ଭଞ୍ଜ.
ବୈଦେହୀଶ ବିଳାସ ।) ୨ । ମତ୍ସ୍ୟ ବିଶେଷ; ( ଶେଉଳ
ମାଛ ? )—2. A kind of fish. ( ଉ—ବିଶାରଃ
ଶକୁଳୀ ଗୃଥ ଗଡ଼କଃ ଶକୁଳାର୍ଭକଃ । ଅମରକୋଷ । )

ବିଶାରଣ—ସଂ. ବି ( ବି+ଶୃ ଧାତୁ ଣିଜନ୍ତ, ଶାର ଧାତୁ=ବଧ କରିବା
Biśāraṇa +ଭାବ ଅନ )—ମାରଣ; ବଧ; ହତ୍ୟା—
Slaughter, murder.

ବିଶାରଦ—ସଂ. ବିଣ. ପୁଂ ( ବିଶାଳ=ବୃହତ୍+ଦା ଧାତୁ=ଦାନ କରିବା
Biśārada +କର୍ତ୍ତୃ ଅ; ଳ ସ୍ଥାନରେ ର )—୧ । ଦକ୍ଷ; ନିପୁଣ;
ଚତୁର—1. Clever; expert; skilful; capable.
୨ । ପାରଙ୍ଗମ; କୌଣସି ବିଦ୍ୟାରେ ପ୍ରବୀଣ ବା ପଣ୍ଡିତ—
2. Versed in any branch of learning
(ବିଶାରଦା—ସ୍ତ୍ରୀ) ୩ । ପଣ୍ଡିତ; ବିଦ୍ୱାନ୍—3. Learned; wise.
୪ । ପ୍ରସିଦ୍ଧ; ବିଖ୍ୟାତ—4. Famous; celebrated.
୫ । ଶ୍ରେଷ୍ଠ—5. Chief; superior. ୬ । ବିସ୍ତୃତ—
6. Extended. ୭ । ଗର୍ବିତ—7. Proud;
vainglorious. ୮ । ନିଜର କ୍ଷମତା ବା ବଳ ଉପରେ
ଆସ୍ଥାବାନ୍—8. Confident of one's power or
strength. ସଂ. ବି—ବକୁଳ ବୃକ୍ଷ—Mimusops
Elengi ( tree ). ଦେ. ବିଣ—ବିଶାଳକାୟ, ପ୍ରକାଣ୍ଡ
—Gigantic. ( ଉ—ବିଶାରଦ ମହାଦ୍ରୁମ, ଅଗ୍ରତେ
ଯେମନ୍ତ ଦ୍ରୁମ, ତଥା ଅପୂର୍ବ ସଗ୍ରାମ, ଖାଗ୍ରାମ ରଚେ । ଭଞ୍ଜ.
ବୈଦେହୀଶବିଳାସ । )

ବିଶାରଦା—ସଂ. ବି. ସ୍ତ୍ରୀ—କ୍ଷୁଦ୍ର ଦୁରାଳଭା ( କଣ୍ଟକୀ ଗୁଳ୍ମ )—Alhagi
Biśāradā Mourorum ( thorny plant ). ସଂ.
ବିଣ. ସ୍ତ୍ରୀ ( ବିଶାରଦ+ଆ )—ବିଶାରଦର ସ୍ତ୍ରୀଲିଙ୍ଗ—
Feminine of Biśārada.

ବିଶାଳ—ସଂ. ବିଣ ( ବି+ଶାଳଚ୍, କିମ୍ବା ବିଶ୍ ଧାତୁ=ପ୍ରବେଶ କରିବା
Biśāḻa +କର୍ତ୍ତୃ ଅଲ )—୧ । ଅତି ବୃହତ୍; ଖୁବ୍ ବଡ଼—
1. Gigantic, huge; vast ୨ । ବିସ୍ତୃତ; ଚଉଡ଼ା;
ବିସ୍ତୀର୍ଣ୍ଣ—2. Wide; broad; extensive. ୩ ।
ସୁବିଖ୍ୟାତ—3. Renowned; celebrated. ୪ ।
ଅତି ଉଦାର—4. Very liberal-minded. ସଂ.
ବି—୧ । ମୃଗ ବିଶେଷ—1. A kind of deer. ୨ ।
ପକ୍ଷିବିଶେଷ—2 A kind of bird. ୩ । ବୃକ୍ଷ
ବିଶେଷ—3. A kind of tree. ୪ । ନୃପବିଶେଷ
—4. Name of a king. ଦେ. ବି—୧ । ( ସଂ.
ବିଶାଳତା ) ବିସ୍ତାର—1. Extent. ( ଉ—ବିଭୂଷଣ
ରତ୍ନପୁର ଖାନଗର, ବିଶାଳରେ କରିଅଛି ସେ ଆଦର ।
ଭଞ୍ଜ. ବୈଦେହୀଶବିଳାସ । ) ୨ । ବିଶ୍ୱାଳ ( ଦେଖ )
2. Biśwāḻa ( See )

ବିଶାଳକାୟ—ସଂ ବିଣ (ବହୁବ୍ରୀହି; ବିଶାଳ+କାୟ)—ବୃହତ୍ ଶରୀର-
Biśāḻa kāya ବିଶିଷ୍ଟ—Huge-bodied; gigantic in
(ବିଶାଳଶରୀର, ବିଶାଳଦେହ—ଅନ୍ୟରୂପ) stature.
(ବିଶାଳକାୟା—ସ୍ତ୍ରୀ)

ବିଶାଳତା(ତ୍ୱ)—ସଂ. ବି [ବିଶାଳ+ଭାବାର୍ଥେ ତା(ତ୍ୱ)]—୧ । ପ୍ରକାଣ୍ଡତା;
Biśāḻatā(twa) ବୃହତ୍ତ୍ୱ—1. Vastness; greatness.
୨ । ଓସାର—2. Width. ୩ । ବିସ୍ତାର—3.
Extent.

ବିଶାଳ ହୃଦୟ—ସଂ. ବିଣ. ପୁଂ ( ବହୁବ୍ରୀହି; ବିଶାଳ+ହୃଦୟ )—
Biśāḻa hṛudaya ଉଚ୍ଚମନାଃ; ଉଦାରହୃଦୟ—Magnanimous; liberal-minded.
(ବିଶାଳହୃଦୟା—ସ୍ତ୍ରୀ)

ବିଶାଳା—ସଂ. ବି. ସ୍ତ୍ରୀ ( ବିଶାଳ+ସ୍ତ୍ରୀ ଆ )—୧ । ଗଙ୍ଗା ଓ ଗଣ୍ଡକୀ
Biśāḻā ନଦୀର ସଙ୍ଗମ ସ୍ଥାନରେ ଅବସ୍ଥିତ ନଗରବିଶେଷ—
1. Name of a town at the junction of the
Ganges and the Gaṇḍakī. ୨ । ଉଜ୍ଜୟିନୀ ନଗରୀ—
2. The ancient city of Ujjain. ୩ । ମହେନ୍ଦ୍ର-
ବାରୁଣୀ (ଦେଖ)—3. Mahendra bāruṇī (See)
୪ । ତୀର୍ଥବିଶେଷ—4. Name of a sacred place
of Hindu pilgrimage. ୫ । ଦକ୍ଷକନ୍ୟା ସତୀ—
5. A name of Satī, the daughter of Daksha.
୬ । ନଦୀବିଶେଷ; ସରସ୍ୱତୀ ନଦୀ—6. Name of a
river; the Saraswatī.
ସଂ. ବିଣ. ସ୍ତ୍ରୀ—ବିଶାଳର ସ୍ତ୍ରୀଲିଙ୍ଗ—Feminine of
Biśāḻa.

ବିଶାଳାକ୍ଷ—ସଂ. ବିଣ. ପୁଂ—(ବହୁବ୍ରୀହି; ବିଶାଳ=ବଡ଼+ଅକ୍ଷି=ଚକ୍ଷୁଃ)—
Biśāḻākshа ୧ । ବିଶାଳ ଚକ୍ଷୁର୍ବିଶିଷ୍ଟ; ଆକର୍ଣ୍ଣବିସ୍ତୃତଲୋଚନ—
( ବିଶାଳାକ୍ଷୀ—ସ୍ତ୍ରୀ ) 1. Having large eyes. ୨ ।
ସୁଲୋଚନା—2. Having graceful eyes.
ସଂ. ବି—୧ । ଶିବ—1. Śiba. ୨ । ଗରୁଡ଼—
2. Garuḍa. ୩ । ବିଷ୍ଣୁ—3. Bishṇu.

ବିଶାଳାକ୍ଷୀ—ସ. ବି. ସ୍ତ୍ରୀ—୧ । ଦୁର୍ଗା—1. Durgā. ୨ । ବରସ୍ତ୍ରୀ—
Biśālakshī 2 A graceful or excellent woman. ୩ । ଯୋଗିନୀବିଶେଷ—3. Name of a female companion of Durgā. ୪ । ନାଗଦନ୍ତୀ—4. A medicinal plant. ସ. ବିଣ. ସ୍ତ୍ରୀ—ବିଶାଳାକ୍ଷର ସ୍ତ୍ରୀଲିଙ୍ଗ—Feminine of Biśālaksha.

ବିଶାଳ—ଦେ. ବି—(ସ. ବଂଶଶଳାକା)—କୁଡ ଓ ବିବାହ ବେଦୀ
Biśālā ନିକଟରେ ଯେଉଁ ବଂଶ ସର୍ଷି ପୋତା ଯାଏ—A bamboo stake or stick driven into the ground near the alter erected for marriage or Upanayana.

ବିଶାଲୀ—ସ. ବି. ସ୍ତ୍ରୀ—(ବିଶାଲ+ଈ)—ସୁଗନ୍ଧ ଲତାବିଶେଷ—The
Biśālī caraway creeper.

ବିଶାଶଏ(ହେ)—ଦେ. ବି. ଓ ବିଣ (ସଂଖ୍ୟାବାଚକ) (ସ. ବିଂଶ ଅଧିକଶତ)—
Biśāśae(he) ଏକ ଶହ କୋଡ଼ିଏ—120. (ଉ—ବିଶାଶହେ ବିଶାଶତ(ତେ) **बिशाशे** ପାଣ୍ଡୁଆ ହୋଇଲା ଯେଣୁ ପୁର । ପ୍ରାଚୀ. [ବିଶାଶତ(ତେ), ବିଶାଶେ—ଅନ୍ୟରୂପ] ବ୍ରହ୍ମନିରୂପଣ ଗୀତା ।]

ବିଶାସରା—ଗ୍ରା. ପ୍ରାଦେ. (ଗଡ଼ଜାତ)—ବି—ବିଶ୍ୱାସରା (ଦେଖ)—
Biśāsara Biśwāsarā (See)
[ବିଶାସରାଏ(ସ୍ତ୍ରୀ)—ଅନ୍ୟରୂପ]

ବିଶି—ଦେ. ବି—୧ । (ଆଦରାର୍ଥକ) ବିଶ୍ୱନାଥ ବା ବିଶ୍ୱମ୍ଭର ନାମକ
Biśi ବିଶେ ବ୍ୟକ୍ତିଙ୍କୁ ଡାକିବା ନାମ—1. Name for calling Biswanātha or Biswambhara

ବିଶିକ, ବିଶିଆ, ବିଶେଇ, ବିଶିନାଥ, ବିଶୁ, ବିଶୋଇ —ଅନ୍ୟରୂପ

(ବିଶିଆ, ବିଶୁଆ—ଅନାଦରାର୍ଥକ ରୂପ) ୨ । ଜନୈକ ଉତ୍କଳୀୟ କବି; ବିଶ୍ୱନାଥ ଖୁଣ୍ଟିଆ—2. Name of an Oriya poet, the author of Bichitra Rāmāyaṇa. [ଦ୍ର—ଏ ବିଚିତ୍ର ରାମାୟଣ ରଚନା କରିଥିଲେ ।] ୩ । ବିଶ; ପ୍ରାଚୀନ ଉତ୍କଳର ଆଧୁନିକ ପ୍ରଗନା ବା ତଲ୍ଲା—3. A name by which a fiscal division of ancient Orissa was called. [ଦ୍ର—ମୁସଲମାନ୍‌ମାନଙ୍କ ଅମଳରେ 'ବିଶି'ର ନାମ 'ପ୍ରଗନା' ହେଲା । ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ଏହା କେତେ ଗୁଡ଼ିଏ ତାଲୁକାର ସମଷ୍ଟି । ଏଥିରୁ 'ବିଷୟୀ' ଶବ୍ଦର ଉତ୍ପତ୍ତି ହୋଇଅଛି ।] ୪ । ଗ୍ରାମପୁଞ୍ଜ, କେତେଗୁଡ଼ିଏ ମଉଜାର ସମଷ୍ଟି—4. A unit of many villages.

ବିଶିକେଶନ—ଦେ. ବି—(ସଂ. ବିଶ୍ୱକସେନ)—ଦାତାକର୍ଣ୍ଣଙ୍କର ଏକ-
Biśikeśana ମାତ୍ର ପୁତ୍ର—Name of the son of king ବିଶିକେଶନ **बिशिकेशन** Karṇṇa. ( ଏକୋଇକ ବଳା ବିଶିକେଶନ—ଭଗ ।) ଦ୍ର—ଦାତାକର୍ଣ୍ଣଙ୍କର ସତ୍ୟ ପାଳନ ପରୀକ୍ଷା କରିବା ନିମନ୍ତେ ଭଗବାନ୍ ମାୟାରେ କ୍ଷୁଧାର୍ତ୍ତ ବ୍ରାହ୍ମଣ ବେଶ ଧରି ଏହାଙ୍କୁ ସତ୍ୟ କରାଇ ରାଜା ଆପଣା ହାତରେ ପୁତ୍ର 'ବିଶିକେଶନ'ର ଗଳାକୁ କାଟି ଉକ୍ତ ମାଂସ ଖାଇବାକୁ ଦେବାପାଇଁ ପ୍ରାର୍ଥନା କଲେ । ରାଜା କର୍ଣ୍ଣ ସତ୍ୟ ପାଳନ କରି ସ୍ୱହସ୍ତରେ ପୁତ୍ରର ଶିରଚ୍ଛେଦନ କଲେ । ତାହାଙ୍କ ସ୍ତ୍ରୀ ପଦ୍ମାବତୀ ଧୁତ୍ରର ମାଂସକୁ ରନ୍ଧନ କରି କ୍ଷୁଧାର୍ତ୍ତ ବ୍ରାହ୍ମଣଙ୍କ ପାଇଁ ପତ୍ରରେ ବାଢ଼ି ସତ୍ୟ ରକ୍ଷା କରିଥିଲେ । ପରେ ବିଶିକେଶନ ବଞ୍ଚି ଉଠିଲା । ପିତା ମାତାଙ୍କର ଏକମାତ୍ର ସ୍ନେହର ପାତ୍ର ପୁତ୍ରକୁ 'ବିଶିକେଶନ' ବୋଲାଯାଏ ।]

ବିଶିଖ—ସ. ବି—(ବି=ବର୍ଜିତ+ଶିଖା=ଅଗ୍ର; ବହୁବ୍ରୀହି)—୧ । ବାଣ;
Biśikha ଶର; ଇଷୁ—1. Arrow. ୨ । ଶରନାମକ ତୃଣ; କାଣ୍ଡଶର ଗୁଳ୍ମ—2. A reed; Saccharum Sara. ୩ । ତୋମରଅସ୍ତ୍ର; (ପ୍ରାଚୀନ ଯୁଦ୍ଧାସ୍ତ୍ର ବିଶେଷ)—3. Name of an ancient weapon of offence. ୪ । ଚରଖାର ବା ଅରଟର ଡାକୁଡ଼ି—4. The spindle of a spinning wheel ସ. ବିଣ. ପୁଂ—ଶିଖାରହିତ—Having no tuft.

ବିଶିଖା—ସ. ବି. ସ୍ତ୍ରୀ (ବିଶିଖ+ସ୍ତ୍ରୀ. ଆ)—୧ । ରଥ—1. Car. ୨ ।
Biśikhā ଖନିତ୍ର; ଖଣତି—2. A spud; a kind of digging instrument. ୩ । ଚରଖାର ଡାକୁଡ଼ି—3. The spindle of a spinning wheel. ୪ । ନାପିତର ସ୍ତ୍ରୀ; ଭଣ୍ଡାରୁଣୀ—4. A barber woman. ୫ । ଆତୁରାଗାର; ଯେଉଁ ଘରେ ରୋଗୀଙ୍କୁ ଶୁଶ୍ରୂଷାର୍ଥ ରଖାଯାଏ; ହାସପାତାଳ—5. A sick room; hospital. ସଂ. ବିଣ. ସ୍ତ୍ରୀ—ବିଶିଖର ସ୍ତ୍ରୀଲିଙ୍ଗ—Feminine of Biśikha.

ବିଶିଦସ୍ତି ପଦିକା—ଦେ. ବି—ଭୂମି ମାପିବାର ଦଣ୍ଡବିଶେଷ—A rod
Biśidasti padikā for measuring land and 4½ ବିଶଦସ୍ତି लग्गी cubits long. [ ଦ୍ର—ଏହାର ପରିମାଣ ୨୦ଦସ୍ତି **सबाचार हातकी लग्गी; बोसा नालियाँ** =୧୦୪ ଅଙ୍ଗୁଳ= ୪½ ହାତ ]

ବିଶିଦସ୍ତି ମାଣ—ଦେ. ବି—ବିଶିଦସ୍ତି ପଦିକାରେ ଏକ ମାଣ—A
Biśidasti māṇa māṇa of land measured with **बोसी** the biśidasti rod. ( ଯଥା—ଏହା ଚବିଶି ଦସ୍ତି ମାଣ ବା ଏକ ଏକରରୁ କମ୍ ।)

ବିଶିରାମ—ଗ୍ରା. ବି (ସ. ବିଶ୍ରାମ)—ବିଶ୍ରାମ (ଦେଖ)—
Biśirāma Biśrāma (See).

ବିଶି ରାମାୟଣ—ଦେ. ବି—କବି ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ ଓଡ଼ିଆ
Biśi rāmāyaṇa ବିଚିତ୍ର ରାମାୟଣ—The popular name of the Bichitra Rāmayaṇa by Biswanātha Khunṭiā.

ବିଶିରି—ଗ୍ରା. ବିଣ (ସ. ବିଶ୍ରୀ)—ବିଶ୍ରୀ; ଅସୁନ୍ଦର—Ugly.
Biśiri ବିଚ୍ଛିରି

ବିଶିରି କାଣ୍ଡ—ପ୍ରାଦେ (ବାଲେଶ୍ୱର) ବି—ଜନ୍ତୁକାଣ୍ଡ; ତର୍ଜ୍ଜନୀଅଗ୍ରରେ
Biśiri kāṇḍa ଉଠିଥିବା ଯନ୍ତ୍ରଣାଦାୟକ ବ୍ରଣ ବିଶେଷ—A painful boil on the index finger.

ବିଶିଷ୍ଟ—ସ. ବିଣ (ବି+ଶିଷ୍ ଧାତୁ=ବିଶେଷ କରିବା+କର୍ତ୍ତୃ. ତ)—
Biśishṭa ୧ । ଯୁକ୍ତ; ମିଳିତ—1. Connected; joined.

ବିଶିଷ୍ଟତା, ବିଶିଷ୍ଟତ୍ୱ } ବିଶେଷ୍ୟ
ବୈଶିଷ୍ଟ୍ୟ }
୨ । ବିଚକ୍ଷଣ; ବିଲକ୍ଷଣ; ଉତ୍କୃଷ୍ଟ 2. Excellent. ୩ । ଅସାଧାରଣ; ଅନନ୍ୟସାଧାରଣ--3. Extraordinary; uncommon. ୪ । ଭିନ୍ନ—4. Separate; distinct. ୫ । ପ୍ରସିଦ୍ଧ; ଖ୍ୟାତ—5. Celebrated; renowned. ୬ । ଉଲ୍ଲେଖଯୋଗ୍ୟ—6. Worth mention. ୭ । ସିଦ୍ଧ--7. Effected; accomplished. ୮ । ଶ୍ରେଷ୍ଠ—8. Eminent. ୯ । ଅସାଧାରଣ ଗୁଣଯୁକ୍ତ—9. Special; peculiar. ୧୦ । ଯଥେଷ୍ଟ—10. Sufficient. ୧୧ । ଅତ୍ୟନ୍ତ ଶିଷ୍ଟ—11. Very gentle. ୧୨ । ସ୍ମରଣୀୟ—12. Memorable. ୧୩ । ଜ୍ଞାନୀ; ପଣ୍ଡିତ—13. Wise; learned. ସଂ. ବି—ବିଷ୍ଣୁ—A name of Bishṇu.

ବିଶିଷ୍ଟଜ୍ଞ—ସଂ. ବିଣ. ପୁଂ—୧ । କୌଣସି ବିଷୟରେ ବିଶେଷରୂପେ Bisishtajña ପାରଦର୍ଶୀ—1. Skilled in a particular (ବିଶିଷ୍ଟଜ୍ଞା—ସ୍ତ୍ରୀ) branch of knowledge; expert. [ବିଶିଷ୍ଟଜ୍ଞାନୀ—ଅନ୍ୟରୂପ] ୨ । ବିଜ୍ଞ—2. Wise.

ବିଶିଷ୍ଟ ପ୍ରମାଣ—ସଂ. ବି (କର୍ମଧା; ବିଶିଷ୍ଟ+ପ୍ରମାଣ)—ସିଦ୍ଧ ପ୍ରମାଣ—Bisishṭa pramāṇa Sufficient or particular proof.

ବିଶିଷ୍ଟ ବନ୍ଧୁ—ସଂ. ବି ( କର୍ମଧା. ବିଶିଷ୍ଟ+ବନ୍ଧୁ )—ଅତି ଘନିଷ୍ଠ ବା Bisishṭa bandhu ଅନ୍ତରଙ୍ଗ ବନ୍ଧୁ—One's particular or very intimate friend

ବିଶିଷ୍ଟ ବ୍ୟକ୍ତି—ସଂ. ବି. (ବିଶିଷ୍ଟ+ବ୍ୟକ୍ତି)—ଅତ୍ୟନ୍ତ ସମ୍ଭ୍ରାନ୍ତ ବା ପ୍ରସିଦ୍ଧ Bisishṭa byakti ବ୍ୟକ୍ତି--A distinguished personage.

ବିଶିଷ୍ଟାଦ୍ୱୈତବାଦ—ସଂ. ବି (କର୍ମଧା; ବିଶିଷ୍ଟ+ଅଦ୍ୱୈତବାଦ)-ବେଦାନ୍ତ Bisishṭādwaitabāda ଦର୍ଶନର ମତବିଶେଷ; ଯେଉଁ ଶାସ୍ତ୍ରମତ ଅନୁସାରେ ଏକମାତ୍ର ବ୍ରହ୍ମ-ପ୍ରକୃତି ଓ ପୁରୁଷ ଏହି ଦ୍ୱୈତଗୁଣବିଶିଷ୍ଟ ବୋଲି ସ୍ୱୀକୃତ ହୁଅନ୍ତି—The theory of theology of the Rāmānuja sect to the effect that God consists of the spirit and matter in one ( like the monism propounded in Europe by Dr Bain). [ ଦ୍ର—ଦ୍ୱୈତ, ଅଦ୍ୱୈତ ଓ ବିଶିଷ୍ଟାଦ୍ୱୈତ ଭେଦରେ ବେଦାନ୍ତ ଦର୍ଶନରେ ସାଧାରଣତଃ ତିନିଗୋଟି ପ୍ରସିଦ୍ଧ ମତ ଅଛି । ରାମାନୁଜ ସମ୍ପ୍ରଦାୟର ବୈଷ୍ଣବମାନେ ବିଶିଷ୍ଟାଦ୍ୱୈତ ମତବାଦୀ ।]

ବିଶିଷ୍ଟାଦ୍ୱୈତବାଦୀ—ସଂ. ବିଣ. ପୁଂ (ବିଶିଷ୍ଟ+ଅଦ୍ୱୈତବାଦୀ)—ବିଶିଷ୍ଟା- Bisishṭādwaitabādi ଦ୍ୱୈତ ମତର ଗ୍ରହଣକାରୀ---Holding the theory of Indian monism.

ବିଶିଷ୍ଟାଦ୍ୱୈତ ସମ୍ପ୍ରଦାୟ—ସଂ. ବି ( କର୍ମଧା. ବିଶିଷ୍ଟ+ଅଦ୍ୱୈତ+ସମ୍ପ୍ର- Bisishṭādwaita sampradāya ଦାୟ )—ରାମାନୁଜ ବୈଷ୍ଣବ ସମ୍ପ୍ରଦାୟ—The sect of Baishṇabas following Rāmānuja.

ବିଶିଷ୍ଟାର୍ଥ—ସଂ. ବି ( କର୍ମଧା; ବିଶିଷ୍ଟ+ଅର୍ଥ )—ବାକ୍ୟର ବା ଶବ୍ଦପୁଞ୍ଜର Bisishṭārtha ଅକ୍ଷରିକ ସାଧାରଣ ଅର୍ଥ ଛଡ଼ା ତହିଁରୁ ପ୍ରକାଶିତ ହେବା ଶବ୍ଦସଙ୍ଗତ ବା ଶବ୍ଦଯୋଜନାଜନିତ ଅସାଧାରଣ ଅର୍ଥ—Special meaning of a word or expression, as distinct from its literal or ordinary sense.

ବିଶିଷ୍ଟାର୍ଥକ—ସଂ. ବିଣ (ବିଶିଷ୍ଟାର୍ଥ+ଅସ୍ତି ଅର୍ଥରେ କ)—ଯେଉଁ ବାକ୍ୟର Bisishṭārthaka ବା ଶବ୍ଦପୁଞ୍ଜର ବିଶିଷ୍ଟାର୍ଥ ଥାଏ ବା ଅଛି—Idiomatic ( word or sentence ).

ବିଶିଷ୍ଟାର୍ଥକ ବାକ୍ୟ—ସଂ. ବି ( କର୍ମଧା. ବିଶିଷ୍ଟାର୍ଥକ+ବାକ୍ୟ )—Bisishṭārthaka bākya ବିଶିଷ୍ଟାର୍ଥବୋଧକ ବାକ୍ୟ—Idiomatic sentence; Idiom.
ବିଶିଷ୍ଟାର୍ଥବୋଧକ ବାକ୍ୟ }
ବିଶିଷ୍ଟାର୍ଥଦ୍ୟୋତକ ବାକ୍ୟ } ଅନ୍ୟରୂପ
ବିଶିଷ୍ଟାର୍ଥସୂଚକ ବାକ୍ୟ }
[ ଦ୍ର—ବିଶିଷ୍ଟାର୍ଥକ ବାକ୍ୟ ଓ ଶବ୍ଦପୁଞ୍ଜ ( phrase ) ପ୍ରତ୍ୟେକ ଭାଷାର ବିଶେଷତ୍ୱ । ବାକ୍ୟମାନ ବିଶିଷ୍ଟାର୍ଥକରୂପେ ବ୍ୟବହୃତ ନ ହେଲେ ଭାଷାର ମାଧୁର୍ଯ୍ୟ ରହେ ନାହିଁ ଓ ତାହା ଶ୍ରୁତିକଟୁ ହୁଏ । ସାଧାରଣତଃ ବିଶିଷ୍ଟାର୍ଥକ ବାକ୍ୟକୁ ଅନ୍ୟ ଭାଷାରେ ଅକ୍ଷରିକ ବା ଶାବ୍ଦିକ ଅନୁବାଦ କଲେ ଓ ଉକ୍ତ ବାକ୍ୟ ଅନୁବାଦିତ ଭାଷାରେ ମଧ୍ୟ ତଦ୍ରୂପ ବିଶିଷ୍ଟାର୍ଥକ ( idiomatic ) ହୋଇ ନ ଥିଲେ ଅନୁବାଦିତ ଭାଷାରେ ତହିଁର ମୌଳିକ ବିଶିଷ୍ଟାର୍ଥ ପ୍ରତିଫଳିତ ହୁଏ ନାହିଁ । ଉଦାହରଣସ୍ୱରୂପ—"ଅମୁକ ଅମୁକକୁ ସୁଖ ପାଏ ବା ଦେଖି ପାରେ" ଏହି ବାକ୍ୟ ଓଡ଼ିଆ ଭାଷାର ଗୋଟିଏ ବିଶିଷ୍ଟାର୍ଥକ ବାକ୍ୟ । ଏହାକୁ ଇଂରାଜୀରେ ଶବ୍ଦମୂଳକ ଅନୁବାଦ କଲେ ବାକ୍ୟ ହେବ 'So and so gets happiness to so and so କିମ୍ବା Can see him' ଅନୁବାଦିତ ଇଂରାଜୀ ବାକ୍ୟରେ ଓଡ଼ିଆର ବିଶିଷ୍ଟାର୍ଥ ପ୍ରକାଶ ପାଇଲା ନାହିଁ । ବଙ୍ଗଳାରେ ଅନୂଦିତ ହେଲେ—'ସୁଖ ପାୟ ଓ ଦେଖ୍‌ତେ ପାରେ' ହେବ ଏବଂ ଏତଦ୍ଦ୍ୱାରା ମଧ୍ୟ ଓଡ଼ିଆର ବିଶିଷ୍ଟାର୍ଥ ଫୁଟିଲା ନାହିଁ । କିନ୍ତୁ ବଙ୍ଗଳାରେ ଅମୁକ ଅମୁକକେ 'ଭାଲ ପାୟ ବା ଭାଲ ବାସେ' କହିଲେ ଏହା ଓଡ଼ିଆର 'ସୁଖ ପାଇବା ଓ ଦେଖି ପାରିବା'ର ବିଶିଷ୍ଟାର୍ଥ ପ୍ରକାଶ କରେ । ଆଧୁନିକ କେତେକ ଓଡ଼ିଆ ଲେଖକ ବଙ୍ଗଳାର ଏହି ବିଶିଷ୍ଟାର୍ଥକ ବାକ୍ୟକୁ ଓଡ଼ିଆରେ 'ଭଲ ପାଇବା ଓ ଭଲ ବାସିବା'ରୂପେ ବ୍ୟବହାର କରୁଥିବାର ଦେଖାଯାଏ । ]

ବିଶୀର୍ଣ୍ଣ—ସଂ. ବିଣ ( ବି+ଶୃ ଧାତୁ=ହିଂସା କରିବା+କର୍ମ ତ )—Bisirṇṇa ୧ । ଶୁଷ୍କ—1. Dry; sapless. ୨ । ଅତି କୃଶ—( ବିଶୀର୍ଣ୍ଣା—ସ୍ତ୍ରୀ ) 2. Emaciated. ୩ । ଜୀର୍ଣ୍ଣ—3. Worn out. ୪ । ବିଶ୍ଳିଷ୍ଟ—4. Disjoined. ୫ । ପତିତ—5. Fallen. ୬ । ମଉଳି ଯାଇଥିବା—6. Withered.

ବିଶୀର୍ଯ୍ୟମାଣ—ସଂ. ବିଣ ( ବି+ଶୃ ଧାତୁ=ହିଂସା କରିବା+କର୍ତ୍ତୃ. Bisirjyamāṇa ଆନ )—ଯାହା ବିଶୀର୍ଣ୍ଣ ହେଉଅଛି; ମଉଳି ଯାଉଥିବା—Drying up; withering.

**ବିଶୁଆ**—ଗ୍ରା. ବି—୧ । ( ସଂ. ବିଶ୍ୱା )—ବିଶ୍ୱା (ଦେଖ)—1. Biśwā
Biśuā ( See ) ୨ । ବିଶ୍ୱନାଥର ଅନାଦରାର୍ଥକ ଡାକ ନାମ—
2. A name for calling Biśwanātha.

**ବିଶୁଆଳ(ଳି)**—ଗ୍ରା. ବି—ବିଶ୍ୱାଳ(ଳି) ( ଦେଖ )
Biśuāḷa(ḷi) Biśwāḷa(ḷi) ( See )

**ବିଶୁଆସ(ସି)** ( ଇତ୍ୟାଦି )—ଗ୍ରା. ବି ଓ ବିଣ—ବିଶ୍ୱାସ(ସୀ) ଇତ୍ୟାଦି
Biśuāsa(si) (etc) ( ଦେଖ )—Biśwāsa(sī) etc (See).
বিশ্বাস **विसुआस, विसवास**

**ବିଶୁଦ୍ଧ**—ସଂ. ବିଣ ( ବି+ଶୁଦ୍ଧ )—୧ । ପବିତ୍ର—1. Holy; sacred.
Biśuddha ୨ । ନିର୍ମଳ—2. Pure; clean. ୩ । ଅମିଶ୍ରିତ—
ବିଶୁଦ୍ଧତା, ବିଶୁଦ୍ଧି } ବିଶେଷ୍ୟ
3. Unmixed; unadulterated. ୪ । ପାପରହିତ—4. Sinless.
୫ । ଅସଲ; ଖାଣ୍ଟି—5. Genuine. ୬ । ଭ୍ରମପ୍ରମାଦଶୂନ୍ୟ—
6. Correct; free from error.

**ବିଶୁଦ୍ଧ କବି**—ଦେ. ବି ( ସଂ. ବିଶୁଦ୍ଧ+କବି )—ଶୁଦ୍ଧାଶୁଦ୍ଧଜ୍ଞ କବି—
Biśuddha kabi A poet who knows what is correct and what is incorrect. [ ଉ—ବିଶୁଦ୍ଧ କବି ହୋଇ ସେ ବନ କାବ୍ୟରୁ, ବିଶୋଧିଲେ ଦୂଷଣକୁ ଗୁଣ ଘେନିବୁ—ଭଞ୍ଜ. ବୈଦେହୀଶବିଳାସ ]

**ବିଶୁଦ୍ଧ ଗଣିତ**—ସଂ. ବି ( ବିଶୁଦ୍ଧ+ଗଣିତ ) ( ଆଧୁନିକ ପ୍ରୟୋଗ )—
Biśuddha gaṇita ଅମିଶ୍ର ଗଣିତ; ଗଣନାମାତ୍ରରେ ଅବସ୍ଥିତ ଗଣିତ ଶାସ୍ତ୍ର—Pure or higher mathematics. [ଦ୍ର—ବିଶୁଦ୍ଧ ଗଣିତରେ ପଦାର୍ଥ ସଙ୍ଗେ କୌଣସି ସମ୍ବନ୍ଧ ନ ରଖି କେବଳ ରାଶି ମାତ୍ର ନିରୂପଣ କରାଯାଏ । ]

**ବିଶୁଦ୍ଧ ସୁବର୍ଣ୍ଣ**—ସଂ. ବି ( ବିଶୁଦ୍ଧ+ସୁବର୍ଣ୍ଣ )—ଖାଣ୍ଟି ସୁନା—
Biśuddha subarṇṇa Pure gold.

**ବିଶୁଦ୍ଧ ପ୍ରେମ**—ସଂ. ବି ( କର୍ମଧା; ବିଶୁଦ୍ଧ+ପ୍ରେମ )—୧ । ଯେଉଁ
Biśuddha prema ପ୍ରେମରେ ପାଶବିକତାର ସତ୍ତା ନାହିଁ—
(ବିଶୁଦ୍ଧ ପ୍ରଣୟ—ଅନ୍ୟରୂପ) 1. Pure love; love which has no carnality in it ୨ । ନିଷ୍କାମ ବା ନିଃସ୍ୱାର୍ଥ ପ୍ରେମ—2. Unselfish love. ଦେ. ବି ( ବ୍ୟଙ୍ଗ )—ଯେଉଁ ପ୍ରେମ ସମାଜବନ୍ଧନ ବା ସାମାଜିକ ନିୟମକୁ ମାନେ ନାହିଁ—( ironical ) Love untramelled by the rules and restraints of society.

**ବିଶୁଦ୍ଧି**—ସଂ. ବି ( ବି+ଶୁଦ୍ଧି )—୧ । ନିର୍ମଳତା—1. Cleanliness.
Biśuddhi ୨ । ପବିତ୍ରତା—2. Purity; holiness. ୩ । ପବିତ୍ରୀକରଣ—3. Purification. ୪ । ଶୋଧନ; ସଂଶୋଧନ—4. Correction. ୫ । ପ୍ରାୟଶ୍ଚିତ୍ତଦ୍ୱାରା ଶୁଦ୍ଧି—5. Expiation. ୬ । କୌଣସି ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁ ମିଳି ନ ଥିବା ଅବସ୍ଥା—6. The state of a thing being unadulterated or unmixed.

**ବିଶୁଳ(ଳି)ପାତି**—ଦେ. ବିଣ—୧ । ବିଶଳପାତି (ଦେଖ)—1. Biśaḷa
Biśuḷa(ḷi)pāti pāti (See) ୨ । ଆଦେଶ ଲଙ୍ଘନକାରୀ—
2. Disregarding or disobeying orders.

୩ । ବିଶ୍ୱାସଘାତକ—3. Perfidious ୪ । ବିଷପ୍ରୟୋଗ ଦ୍ୱାରା ହତ୍ୟାକାରୀ—4. Killing people by poisoning. ଦେ. ବି—୧ । ବିଷ ଆଦି ପ୍ରୟୋଗଦ୍ୱାରା ହତ୍ୟାକାରୀ ବ୍ୟକ୍ତି—1. A poisoner. ୨ । ବିଷ ପ୍ରୟୋଗଦ୍ୱାରା ହତ୍ୟା—2. Killing people or animals by administering poison. ( ଉ—ଗୋହତ୍ୟା, ବ୍ରହ୍ମହତ୍ୟାମାନ, ବିଶୁଳପାତି ସୁରାପାନ—ପ୍ରାଚୀ. ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା )

**ବିଶୁଷ୍କ**—ସଂ. ବିଣ ( ବି+ଶୁଷ୍ ଧାତୁ=ଶୁଷ୍କ ହେବା+କର୍ତ୍ତୃ. ତ )—
Biśushka ୧ । ନୀରସ—1. Sapless. ୨ । ଶୁଷ୍କ -2. Dry.
( ବିଶୁଷ୍କତା—ବିଶେଷ୍ୟ ) ୩ । ମ୍ଳାନ—3. Faded; pale. ୪ । ମଉଳି ଯାଇଥିବା—4. Withered.

**ବିଶୃଙ୍ଖଳ**—ସଂ. ବିଣ. ( ବହୁବ୍ରୀହି; ବି=ନାହିଁ+ଶୃଙ୍ଖଳା=ଶିକୁଳି )—
Biśṛuṅkhaḷa ୧ । ଦୁର୍ଦ୍ଦାନ୍ତ—1. Indomitable. ୨ ।
(ବିଶୃଙ୍ଖଳା—ସ୍ତ୍ରୀ) ଯାହାର ଶୃଙ୍ଖଳ ବା ବନ୍ଧନ ଫିଟି ଯାଇଅଛି—
(ବିଶୃଙ୍ଖଳତା—ବି) 2. Unfettered. ୩ । ଅବାଧ୍ୟ—3. Insubordinate; recalcitrant. ୪ । ଉଚ୍ଛୃଙ୍ଖଳ—4. Disorderly. ୫ । ଅନିୟମିତ—5. Irregular. ୬ । ଗୋଳମାଳିଆ; ଅବ୍ୟବସ୍ଥିତ—6. Confused; disorganised.

**ବିଶୃଙ୍ଖଳା**—ସଂ. ବି. (ବି+ଶୃଙ୍ଖଳା)—୧ । ଅନିୟମ—1. Irregular-
Biśṛuṅkhaḷā ity. ୨ । ନିୟମାଭାବ—2. Want of discipline; anomaly. ୩ । ଗଣ୍ଡଗୋଳ—2. Confusion. ସଂ. ବିଣ. ସ୍ତ୍ରୀ—ବିଶୃଙ୍ଖଳର ସ୍ତ୍ରୀଲିଙ୍ଗ—Feminine of Biśṛuṅkhaḷa.

**ବିଶେଇ**—ଦେ. ବି—ବିଶୋଇ ( ଦେଖ )
Biśei Biśoi ( See )

**ବିଶେଇ ଟେଣ୍ଡ୍‌କି**—ପ୍ରାଦେ. (ବସ୍ତର) ବି—ଝିଟିପିଟି—
Biśoi ṭeṇḍ-ki House lizard.

**ବିଶେଷ**—ସଂ. ବି. (ବି+ଶିଷ୍ ଧାତୁ=ବିଶେଷ କରିବା+ଭାବ. ଅ)—
Biśesha ୧ । ପ୍ରଭେଦ—1. Difference; distinction. (ଉ—ତାଙ୍କ ଆମ୍ଭ ମଧ୍ୟେ ବିଶେଷ ନ ରହିଲା । କୃଷ୍ଣସିଂହ. ମହାଭାରତ. ଆଦି ) ୨ । ପ୍ରକାର; ରକମ—2. Kind; sort; species. ୩ । ନିୟମ—3. Rule; regulation. ୪ । ପ୍ରାକୃତିକ ନିୟମ—4. Law of nature. ୫ । ବୈଚିତ୍ର୍ୟ—5. Variety. ୬ । ବ୍ୟକ୍ତି—6. Person. ୭ । ସାର—7. Essence; pith; substance. ୮ । ତାରତମ୍ୟ; ବୈଲକ୍ଷଣ୍ୟ—8. The state of being more or less; dissimilarity. ୯ । ଆଧିକ୍ୟ—9. Abundance; excess. ୧୦ । ଅବୟବ—10. Limb. ୧୧ । ଦ୍ରଷ୍ଟବ୍ୟ ବସ୍ତୁ—11. A thing worth seeing. ୧୨ । କପାଳର ତିଳକ—12. Marks painted on the forehead indicating a

person's sect. ୧୩ । ଉଲ୍ଲେଖଯୋଗ୍ୟ ବସ୍ତୁ ବା ବିଷୟ—13. A thing or matter worth mentioning. ୧୪ । ସ୍ମରଣୀୟ ବିଷୟ—14. Memorable matter. ୧୫ । ବିଶିଷ୍ଟତା;ଅସାଧାରଣତା—15. Peculiarity. ୧୬ । ବ୍ୟକ୍ତିଗତ ବିଶିଷ୍ଟତା—16. Individuality. ୧୭ । କୌଣସି ଶ୍ରେଣୀର ବା ଜାତିର ଏକତମ ବ୍ୟକ୍ତି ବା ବସ୍ତୁ—17. One of a class or species. ( ଯଥା; ବ୍ୟାଘ୍ର—ହିଂସ୍ର ଜନ୍ତୁବିଶେଷ; ଇଂଲଣ୍ଡ—ଦେଶବିଶେଷ; ଆମ୍ବ—ବୃକ୍ଷବିଶେଷ; କେତକୀ—ପୁଷ୍ପବିଶେଷ ) ୧୮ । କାବ୍ୟର ଅଳଙ୍କାର ବିଶେଷ—18. A figure of speech. [ଉ—ଯହିଁ ଆଧେୟ ବସ୍ତୁ ଆଧାରଶୂନ୍ୟ ହୁଏ, କିମ୍ବା ଏକ ବସ୍ତୁ ଅନେକଙ୍କର ଗୋଚର ହୁଏ ଓ ଯହିଁ କୌଣସି କାର୍ଯ୍ୟ ଦେବାର କରାଯାଏ, ତେବେ ଏହି ଅଳଙ୍କାର ହୁଏ ।] ୧୯ । କଣାଦଙ୍କର ବୈଶେଷିକ ଦର୍ଶନରେ ସ୍ୱୀକୃତ ପଦାର୍ଥ—19. Name of a form of matter according to the Baiseshika philosophy. ୨୦ । ଜ୍ଞାତବ୍ୟ ବିଷୟ—20. A matter worth knowing. ( ଉ—କାହିଁ ଅଇଲ କେଉଁ ଦେଶ, ନ ଜାଣି ଅସ୍ମାର ବିଶେଷ । ଜଗନ୍ନାଥ. ଭାଗବତ) ବେ. ବିଣ—୧ । ବିଶିଷ୍ଟ—1. Peculiar. ୨ । ଉତ୍କୃଷ୍ଟ—2. Excellent. ୩ । ଭିନ୍ନ—3. Separate. ୪ । ଅତ୍ୟନ୍ତ; ଅଧିକ; ବହୁତ—4. Excessive; too much. (ଉ—ତେବେକ ଗ୍ରାମ ଧନ ଦେବି ମୁଁ ବିଶେଷ । କୃଷ୍ଣସିଂହ. ମହାଭାରତ. ବନ ] ୫ । ବିଶେଷଜ୍ଞ; ପାରଙ୍ଗମ—5. Expert or versed in a particular branch of learning. (ଉ—ଅଷ୍ଟାବକ୍ର ବୋଇଲେ ବେଦେ ମୁଁ ବିଶେଷ । କୃଷ୍ଣସିଂହ. ମହାଭାରତ. ବନ )

**ବିଶେଷକ**—ସ. ବିଣ. [ ବି+ଶିଷ୍ ଧାତୁ, ଣିଜନ୍ତ ଶେଷି ଧାତୁ+ Biśeshaka କର୍ତ୍ତୃ. ଅକ)—୧ । ପ୍ରଭେଦକାରକ—1. Differentiating; distinctive. ୨ । ବିଶେଷକାରକ—2. Particularising; characteristic. ସ. ବି—୧ । ତିଳକ ବୃକ୍ଷ ବା ତମାଳ ବୃକ୍ଷ; ଏକପ୍ରକାର କେନ୍ଦୁଗଛ—1. A kind of Diospyrus Tomentosa (tree). ୨ । କପାଳର ତିଳକ—2. Sectarian marks painted on the forehead. ୩ । ଏକକ୍ରିୟାନ୍ୱିତ ଶ୍ଳୋକତ୍ରୟ—3. Three stanzas or ślokas governed by a single verb.

**ବିଶେଷକଚ୍ଛେଦ୍ୟ**—ସ. ବି—ଚଉଷଠି କଳାନ୍ତର୍ଗତ ଷଷ୍ଠ କଳା—Biśeshaka chhhedya One of 64 fine arts specified in the Hindu works on art.

**ବିଶେଷ କାମ**—ଦେ. ବି—୧ । ବିଶିଷ୍ଟ କାର୍ଯ୍ୟ—1. A particular Biśesha kāma work. ୨ । ଜରୁରି କାମ—2 Urgent (ବିଶେଷ କାର୍ଯ୍ୟ—ଅପଭ୍ରଂଶ) work. ୩ । ଯେଉଁ କାର୍ଯ୍ୟରେ ଫୁରୁସତ୍ ମିଳେ ନାହିଁ—2. A work admitting of no leisure. ୪ । ବହୁତ ବା ଅଧିକର କାର୍ଯ୍ୟ—বিশেষ কাজ विशेष काम Extra or excessive work.

**ବିଶେଷ ଗୁଣ**—ଦେ. ବି—ଅନନ୍ୟସାଧାରଣ ଗୁଣ—Peculiar or Biśesha guna বিশেষ গুণ special quality.

**ବିଶେଷଜ୍ଞ**—ସ. ବିଣ (ବିଶେଷ+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ)—Biśeshajña ୧ । ଅଭିଜ୍ଞ—1. Experienced. ୨ । ସୁପଣ୍ଡିତ—(ବିଶେଷଜ୍ଞା—ସ୍ତ୍ରୀ) 2. Very learned. ୩ । କୌଣସି ବିଷୟରେ [ବିଶେଷଜ୍ଞତା—ବି] ବିଶିଷ୍ଟ ଜ୍ଞାନ ଥିବା (ବ୍ୟକ୍ତି)—3 (a person) Having expert knowledge. ଦେ. ବି—କୌଣସି ବିଦ୍ୟାରେ ବା କଳାରେ ବିଶିଷ୍ଟ ଜ୍ଞାନବାନ୍ ବ୍ୟକ୍ତି An expert.

**ବିଶେଷ ଜ୍ଞାନ**—ଦେ. ବି—କୌଣସି ବିଦ୍ୟା ବା କଳା ସମ୍ବନ୍ଧେ ବିଶିଷ୍ଟ Biśesha jñāna ବା ଗଭୀର ଜ୍ଞାନ—Expert knowledge.

**ବିଶେଷଣ**—ସ. ବି—(ବି=ସମ୍ୟକ୍+ଶିଷ୍ ଧାତୁ=ବୋଧ କରିବା+ Biśeshana କରଣ. ଅନ)—୧ । ପ୍ରଭେଦକାରକ ଗୁଣ ବା କ୍ରିୟା—1. A distinguishing quality or act; attribute; predicate. ୨ । ବିଶିଷ୍ଟ ଚିହ୍ନ—2. A characteristic sign or mark. [ଉ—ସେ ଦିର ଅମ୍ଳାନ ଯେନ, ଚହ୍ନିଚ ନାହିଁ ବିଶେଷଣ । ଜଗନ୍ନାଥ ଭାଗବତ ।] ୩ । ଉପାଧି—3. Title. ୪ । (ବ୍ୟାକରଣ) ବିଶେଷ୍ୟର ଗୁଣ ବା ଅବସ୍ଥା ପ୍ରକାଶକ ପଦ—4. (grammar) An adjective. [ଦ୍ର-ବିଶେଷଣ ୩ପ୍ରକାର ଯଥା-(୧) ବିଶେଷ୍ୟର ବିଶେଷଣ ଯଥା—ମିଷ୍ଟ ଫଳ, (୨) ବିଶେଷଣର ବିଶେଷଣ ଯଥା—ପରମ ଧାର୍ମିକ, (୩) କ୍ରିୟାର ବିଶେଷଣ ଯଥା—ଶୀଘ୍ର ଯାଉଅଛି ।]

**ବିଶେଷତଃ**—ସ. ଅ (ବିଶେଷ+ତସ୍)—ବିଶିଷ୍ଟ ରୂପେ—Specially. Biśeshatah [ଉ—ବିଶେଷତ ସୁରତ ଶ୍ରାନ୍ତମ କଣ୍ଠାଶ୍ଲେଷପାତେ ହେ (ବିଶେଷତ—ଦେଶଜରୂପ) ଉଞ୍ଜ. ବୈଦେହୀଶବିଳାସ ।]

**ବିଶେଷତା(ତ୍ୱ)**—ସ. ବି [ବିଶେଷ+ଭାବାର୍ଥେ. ତା (ତ୍ୱ)]—୧ । Biśeshatā (twa) ବିଶିଷ୍ଟତା—1. Peculiarity, ୨ । ବ୍ୟକ୍ତିତ୍ୱ—2. Individuality.

**ବିଶେଷ ବିଧି**—ସ. ବି ( ବିଶେଷ+ ବିଧି )—ସାଧାରଣ ବିଧାନର Biśesha bidhi ଅପବାଦକ ବିଧାନ; କୌଣସି ନିର୍ଦ୍ଦିଷ୍ଟ ବିଷୟ (ବିପରୀତ—ସାମାନ୍ୟ ବିଧି) ନିମନ୍ତେ ରଚିତ ସ୍ୱତନ୍ତ୍ର ବିଧି—Special rule; a rule which qualifies or does not follow a general rule.

**ବିଶେଷ ବୁଦ୍ଧି**—ଦେ. ବି (ବିଶେଷ+ବୁଦ୍ଧି)—ପ୍ରଭେଦ ବୁଦ୍ଧି; ଏକାଧିକଙ୍କ Biśesha buddhi ମଧ୍ୟରେ ଜଣକୁ ଅନ୍ୟଠାରୁ ଭିନ୍ନରୂପେ ଦୃଷ୍ଟି କରିବାର ବୁଦ୍ଧି—Discrimination; differentiation. [ଉ—ମୋର ପୁତ୍ର ପାଣ୍ଡୁ ପୁତ୍ରଙ୍କର ଠାରେ, ବିଶେଷ ବୁଦ୍ଧି ମୋର ନ ଥିଲା କଷ୍ଟରେ । କୃଷ୍ଣସିଂହ. ମହାଭାରତ ଆଦି ।]

ବିଶେଷ ଭାବରେ—ଦେ. କ୍ରି. ବିଣ—୧ । ସୂକ୍ଷ୍ମ ଭାବରେ; ତନ୍ନ ତନ୍ନ କରି—
Biśesha bhābare 1. Minutely. ୨ । ବିଶିଷ୍ଟ ରୂପରେ—
বিশেষ ভাবে 2 Particularly. ୩ । ବେଶି ପରିମାଣରେ—
**विशेषभावमे** 3. Greatly; largely. ୪ । ଅତିରିକ୍ତ ପରିମାଣରେ—4. Excessively.
ବିଶେଷରୂପେ
ବିଶେଷ ପ୍ରକାରେ } ଅନ୍ୟରୂପ
ବିଶେଷ ଭାବେ

ବିଶେଷା ବିଶେଷି—ଦେ. କ୍ରି. ବିଣ—ବିସ୍ତୃତ ଭାବରେ-Extensively.
Biśeshā biśeshi [ଉ—ଲୋମଶ ବୋଇଲେ ତା ବିଶେଷା ବିଶେଷି, ଶୁଣିଲେ ସିନା ନୃପ ହେବ ତୁମ୍ଭେ ତୋଷୀ—କୃଷ୍ଣସିଂହ. ମହାଭାରତ ବନ ।]

ବିଶେଷି—ଦେ. କ୍ରି. ବିଣ (ପଦ୍ୟ) (ବିଶେଷିବା କ୍ରିୟାର ଅସମାପିକାରୂପ;
Biśeshi କ୍ରି. ବିଣ ରୂପେ ବ୍ୟବହୃତ)—ବିଶିଷ୍ଟ ଭାବରେ;
বিশেষ ভাবে ବିଶଦ ଭାବରେ—In detail; clearly [ଉ—ଯାହା ଦେଖି ତୁମ୍ଭେ ଯାଉଅଛ ମହରଷି, କହିବ ନଷ୍ଟେ ଏହା ତାହାଙ୍କୁ ବିଶେଷି । କୃଷ୍ଣସିଂହ. ମହାଭାରତ ଆଦି ।]

ବିଶେଷିତ—ସଂ. ବିଣ (ବିଶେଷ=ପ୍ରଭେଦ+ଜାତାର୍ଥେ. ଇତ, ବା ବି+
Biśeshita ଶିଷ୍ ଧାତୁ, ଣିଜନ୍ତ, ଶେଷି ଧାତୁ+କର୍ମ. ତ)—
୧ । ଭେଦ କୃତ-1. Distinguished. ୨ । ଚିହ୍ନିତ—2. Marked. ଦେ. ବିଣ—ବିଶେଷ; ଅତିଶୟ—Very much. [ଉ—ବଲ୍କଲ ଭଳର ଯଥା ଉତ୍କଣ୍ଠେ ରହିଲା, ବିଶେଷିତ ଅଦ୍ଭୁତ ଏ ସେ ସମାନେ ହେଲା—ଭଞ୍ଜ. ବୈଦେହୀଶବିଳାସ ।]

ବିଶେଷିବା—ଦେ. କ୍ରି (ପଦ୍ୟ) (ସଂ. ବିଶେଷ)—୧ । ବିଶଦ ଭାବରେ
Biśeshibā ବର୍ଣ୍ଣନା କରିବା—1. To describe clearly
বিশেষা or in detail. [ଉ—ମହାଭାରତ ପୁରାଣେ ବ୍ୟାସଋଷି,
**विशेषना** କରିଛନ୍ତି ଜାଣ ବର୍ଣ୍ଣନା ବିଶେଷି । କୃଷ୍ଣସିଂହ. ମହାଭାରତ ଆଦି ।] ୨ । (ସଂ. ବିଶିଷ୍ୟତେ) ବଳିବା; ଅନ୍ୟଠାରୁ ଅଧିକତର ହେବା—2 To exceed. [ଉ—କୃଷ୍ଣ ମହିମା ପରଶଂସି, ଏକକୁ ଆରେକ ବିଶେଷି । ଭୂପତି—ପ୍ରେମପଞ୍ଚାମୃତ ।] ୩ । ପ୍ରଭେଦ କରିବା; ପୃଥକ୍ କରିବା—3. To separate, to discriminate.

ବିଶେଷେ—ଦେ. ଅ—ବିଶେଷତଃ—Specially. [ଉ—ବିଶେଷେ
Biśeshe ବାଟ ଅତି ବାଲି, ତକାତ କଲା ଏ ଗୁଆଳି । ଭୂପତି—
বিশেষত: ପ୍ରେମପଞ୍ଚାମୃତ ।]

ବିଶେଷୋକ୍ତି—ସଂ. ବି (କର୍ମଧା; ବିଶେଷ+ଉକ୍ତି)—କାବ୍ୟର ଅଳଙ୍କାର
Biśeshokti ବିଶେଷ; (କାରଣ ଉପସ୍ଥିତ ଥିଲେ ମଧ୍ୟ ଯେଉଁଠାରେ ଉପଯୁକ୍ତ କାର୍ଯ୍ୟ ବା ଫଳ ଦେଖାଯାଏ ନାହିଁ ସେଠାରେ ବିଶେଷୋକ୍ତି ଅଳଙ୍କାର ହୁଏ)—A figure of speech where the effect is absent though the cause is present. [ଦ୍ର—ଉଦାହରଣ ଯଥା—ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ଼, ଅଛି ଚକ୍ଷୁ ଥାଇ, ହେଲେହେଁ ଜାଗ୍ରତ ଗାଢ଼ନିଦ୍ରାଅଭିଭୂତ, ଦରିଦ୍ରି ହୁଅନ୍ତି ଅହା ! ମହାଘୋର ତମେ, ପାପ ସତ୍ତ୍ୱେ, ମମତାର ଦୁଷ୍ଛେଦ୍ୟ ବନ୍ଧନେ । ରାଧାନାଥ (ମହାଯାତ୍ରା) କୁଳମଣି—ଅଳଙ୍କାର ତରଙ୍ଗିଣୀ ।]

ବିଶେଷ୍ୟ—ସଂ. ବି (ବି+ଶିଷ୍ ଧାତୁ=ସମ୍ୟକ୍‌ରୂପେ ବୋଧ କରିବା+
Biśeshya କର୍ମ. ଯ)—୧ । (ବ୍ୟାକରଣ) ଧର୍ମୀ; ଯେଉଁ ପଦଦ୍ୱାରା କୌଣସି ବ୍ୟକ୍ତିର ବା ବସ୍ତୁର ବା ସ୍ଥାନର ବୋଧ ହୁଏ—1. (Grammar) Noun; a substantive; name of any person, place or thing. [ଦ୍ର—ବସ୍ତୁ, ବ୍ୟକ୍ତି, ଜାତି, ଗୁଣ ଓ କ୍ରିୟାଭେଦରେ ବିଶେଷ୍ୟ ପାଞ୍ଚ ପ୍ରକାର ।] ୨ । ଆଦି କାରଣ—2. The primary cause. ସଂ. ବିଣ—୧ । ବିଶିଷ୍ଟ ଗୁଣାଦିଦ୍ୱାରା ପ୍ରଭେଦନୀୟ—1. Distinguishable by particular qualities. ୨ । ଅବଚ୍ଛେଦ୍ୟ—2. Limited. ୩ । ପ୍ରଧାନ—3. Chief; principal. ୪ । ଆଦ୍ୟ; ଆଦି—4. Prior; primary. ୫ । ଶ୍ରେଷ୍ଠ; ଉତ୍କୃଷ୍ଟ—5. Excellent; superior.

ବିଶେହରୀ—ଦେ. ବି (ସଂ. ବିଶ୍ୱେଶ୍ୱରୀ)—୧ । ଦୁର୍ଗା ଠାକୁରାଣୀ—
Beśeharī 1. A name of Durgā. ୨ । (ସଂ. ବିଷହାରିଣୀ)
বিশহরী ମନସା ଦେବୀ—2. Goddess Manasā (ଉ—ଅଛି
**विखहरी** ମାଣିକ୍ୟ ବିଶେହରୀ ସୁତ, ମାତା ଅଞ୍ଜାରୁ ପେ; ମନ୍ତ୍ରେ ମଣ୍ଡଳେ ହୋଇଲେ ଜାତ ସେ । ପ୍ରାଚୀ. ପ୍ରତାପ ଶଶିରେଖା)

ବିଶୋଇ—ଦେ ବି ୧ । (ପ୍ରାଚୀନ ଓଡ଼ିଆ) (ସଂ. ବିଷୟୀ; ବିଷୟପତି)—
Biśoi ମୁସଲମାନଙ୍କ ଅମଳରେ ବିଷୟ ବା ବିଶେରୁ ଖଜଣା ଆଦାୟକାରୀ ଓ ଶାସନକାର୍ଯ୍ୟରେ ଶାନ୍ତିରକ୍ଷକ କର୍ମଚାରୀ; ତାଲୁକା-ଚଉଧୁରୀ—1. Title of a collector of revenue of a Pergunna during the Mahomedan rule. [ଦ୍ର—ମୁସଲମାନଙ୍କ ଅମଳରେ ବିଶୋଇ ଓ ଖଣ୍ଡାୟତପତିମାନଙ୍କୁ ତାଲୁକା-ଚଉଧୁରୀ ବୋଲାଯାଉଥିଲା ଓ ପାଇକ ସର୍ଦ୍ଦାରଙ୍କୁ ଫଉଜଦାର କୁହାଯାଉଥିଲା ।] ୨ । ଦଳର ପ୍ରଧାନ ବ୍ୟକ୍ତି—2. The headman of a class. (ଯଥା—ଗୁଡ଼ିଆବିଶୋଇ; କୁମ୍ଭାରବିଶୋଇ ।) ୩ । ଖଣ୍ଡାଏତମାନଙ୍କ ଉପାଧି—3. A family-title of the Khaṇḍāetas.

ବିଶୋଇବା—ଦେ. କ୍ରି—୧ । (ସଂ. ବିଶ୍ରାମ)—ବିଶ୍ରାମ କରିବା—1. To
Biśoibā take rest ୨ । (ବି+ସ୍ପୃଶ୍ ଧାତୁ)—ସ୍ପର୍ଶ କରିବା—
জিবান **सुस्ताना** ছোঁআ **छूना** 2. To touch. [ଉ—ବାଟେ ସେ ବନରେ ପଡ଼ିଥିଲା ଦିବ୍ୟ ଶିଳା, ବିଶୋଇଁ ରାମ ଚରଣ ଜାତି ସେ ଅବଳା । ଭଞ୍ଜ ବୈଦେହୀଶବିଳାସ)
মারা **लगना** ୩ । (ବିଶ୍ ଧାତୁ=ପ୍ରବେଶ କରିବା)—ଆଘାତ କରିବା—3. To strike. [ଉ—ବିଶୋଇଲା ସେ ଲକ୍ଷଣ ଅଙ୍ଗେ; ବିଜ୍ଞାନ ସେ ଯଥା ଛୁଇଁ ନାଗେ । ଭଞ୍ଜ. ବୈଦେହୀଶ ବିଳାସ] । ୪ । ପ୍ରବେଶ କରିବା—4. To enter. ୫ । ପହଞ୍ଚିବା—5. To reach; to arriveat. ୬ । (ବି+ସମ୍+ଚି ଧାତୁ)—ସଞ୍ଚିତ କରି ରଖିବା—6. To keep; to store up. ୭ । ପାଦତଳେ ପଡ଼ିବା; ଗୋଡ଼ ତଳେ ପଡ଼ିବା—7. To fall at another's feet in supplication.

[ଉ—ବିଶୋଭ଼ ଅନୁସର, ଯହିଁ କୋଦଣ୍ଡଧାରୀ, ପ୍ରଶଂସି କୋଳକୁ ଆଦର । ଭଞ୍ଜ. ବୈଦେହୀଶବିଳାସ । ୭ । (ସ. বিসরা बिसारना ବି+ସ୍ମରଣ) ପାଶୋରିବା—7. To forget.

ବିଶୋକ—ସ. ବିଣ. ପୁ—(ବହୁବ୍ରୀହି; ବି=ନାହିଁ+ଶୋକ)—ଶୋକ-
Biśoka ରହିତ—Free from sorrow or grief.
(ବିଶୋକା—ସ୍ତ୍ରୀ) ସ. ବି—୨ । ଅଶୋକ ଗଛ—1. The Aśoka tree.

ବିଶୋକା—ସ. ବି—(ବିଶୋକ+ଆ)—( ଯୋଗ ଶାସ୍ତ୍ର ) ଚିତ୍ତବୃତ୍ତି
Biśokā ବିଶେଷ—A state of mind in which one becomes free from grief.
[ଦ୍ର—ଏଥିରେ ମନୁଷ୍ୟ ଶୋକ ଯୋଗୁଁ ଉଦ୍‌ବିଗ୍ନ ହୁଏ ନାହିଁ ।]

ବିଶୋଧକ—ସ. ବିଣ. ପୁଂ [ବି+ଶୁଧ୍ ଧାତୁ (ଣିଚ)+କର୍ତ୍ତୃ. ଅକ]—
Biśodhaka (ବିଶୋଧିକା-ସ୍ତ୍ରୀ) ବିଶୁଦ୍ଧିକାରୀ—Puriffying.

ବିଶୋଧ କରିବା—ଦେ. କ୍ରି—(ସ. ବିଶୋଧନ)—ଋଣ ବାକି ଶୁଝି
Biśodha karibā ଦେବା; ପରିଶୋଧ କରିବା—To liquidate a debt.
শোধকরা बिशोधकरना

ବିଶୋଧନ—ସ. ବି—(ବି+ଶୋଧନ)—୧ । ବିଶୁଦ୍ଧୀକରଣ; ପବିତ୍ରୀ-
Biśodhana କରଣ—1. Purification; sanctification.
୨ । ସଂଶୋଧନ—2. Correction; rectification.
বোকসোদ ଦେ. ବି.—୧ । କୌଣସି ହିସାବର ଅନ୍ତିମ ନିଷ୍ପତ୍ତି—
फारकती 1. Final settlement of accounts. ୨ ।
রোকসোদ পাউতী ଋଣର ପୂର୍ଣ୍ଣ ପରିଶୋଧ—2. Liquidation
फारकती रसिद of a debt. ୩ । ଋଣ ପରିଶୋଧ ହେବାର
ବିଶୋଧନ ପତ୍ର } ପରିଚାୟକ ବା ସମାପ୍ତି ରସିଦ-
ବିଶୋଧନ ପାଉତି } —ଅନ୍ୟରୂପ 3. A receipt of full
ବିଶୋଧନ } satisfaction granted by a creditor to a debtor. ୪ । ଜମିଦାର ପ୍ରଜାଠାରୁ ନେଇଥିବା ବର୍ଷକ ଖଜଣାର ବର୍ଷର ହିସାବକାଣି ରସିଦ—4. A final rent-receipt granted by a landlord to a royat when the balance of a year's rent is paid in full.

ବିଶୋଧନୀୟ—ସ. ବିଣ—(ବି+ଶୁଧ୍ ଧାତୁ=ଶୋଧନ କରିବା+କର୍ମ.
Biśodhanīya ଅନୀୟ)—୧ । ପବିତ୍ରୀକରଣୀୟ 1. Sanctifiable. ୨ । ସଂଶୋଧନୀୟ—2 Corrigible.
( ବିଶୋଧ୍ୟ—ଅନ୍ୟରୂପ )

ବିଶୋଧିତ—ସ. ବିଣ—( ବି+ଶୋଧିତ )—୧ । ପବିତ୍ରୀକୃତ—
Biśodhita 1. Sanctified. ୨ । ସଂଶୋଧିତ—
(ବିଶୋଧିତା—ସ୍ତ୍ରୀ) 2. Corrected; rectified.

ବିଶୋଧିବା—ଦେ. (ପଦ) କ୍ରି. (ସଂ. ବିଶୋଧନ)—୧ । ବିନାଶ କରିବା
Biśodhiba বিশোধা विशोधना 1. To destroy.
୨ । ବିଶୁଦ୍ଧ କରିବା—2. To purify. [ଉ—ବିଶୁଦ୍ଧ କବି ହୋଇ ସେ ବନ କାବ୍ୟରୁ ବିଶୋଧିଲେ ଦୂଷଣକୁ ପ୍ରବୃତ୍ତ । ଭଞ୍ଜ. ବୈଦେହୀଶବିଳାସ ।]

ବିଶୋଧୀ—ସଂ. ବିଣ. ପୁଂ—ବି+ଶୁଧ୍ ଧାତୁ (ଣିଚ୍)=ଶୋଧି ଧାତୁ=
Biśodhī ନିର୍ମଳ ହେବା ବା କରିବା—କର୍ତ୍ତୃ. ଇନ୍; ବିଶୋଧିନ୍;
(ବିଶୋଧିନୀ—ସ୍ତ୍ରୀ) ୧ମା. ୧ବ]—ଶୋଧନକାରକ—Purifying.

ବିଶୋଭିବା—ଦେ. କ୍ରି ( ପଦ୍ୟ ) ( ସ. ବି+ଶୋଭ )—ବିଶିଷ୍ଟ
Biśobhibā ରୂପେ ଶୋଭା ପାଇବା—To shine; to be
বিশোভা brilliant; to appear in glory. ( ଉ-
शोभापाना ବିଶୋଭିଲା ଉଲ୍ଲସିତା ରମଣୀଯୂ ବେଶେ । ଚିନ୍ତାମଣି—ବିଜୟମହୋଦୟ । )

ବିଶୋଷଣ—ସ. ବି (ବି+ଶୁଷ୍ ଧାତୁ=ଶୁଷ୍କ ହେବା +ଭାବ ଅନ )—
Biśoshaṇa ସମ୍ପୂର୍ଣ୍ଣରୂପେ ଶୋଷିନେବା; ଶୋଷଣ; ଶୁଷ୍କକରଣ—Sucking up
(ବିଶୋଷଣୀୟ, ବିଶୋଷ୍ୟ, ବିଶୋଷିତ, ବିଶୋଷକ—ବିଣ)

ବିଶ୍ୱେଦେବ—ସ. ବି—ବିଶ୍ୱଦେବ ( ଦେଖ )
Biśwedeba Biśwadeba ( See )

ବିଶ୍ୱେଶ—ସ. ବି ( ୬ଷ୍ଠୀ ତତ୍; ବିଶ୍ୱ+ଈଶ )—୧ । ଶିବ—
Biśweśa 1. Śiba. ୨ । କାଶୀସ୍ଥ ବିଶ୍ୱନାଥ ନାମକ ଶିବ—
(ବିଶ୍ୱେଶ୍ୱର—ଅନ୍ୟରୂପ) 2. The name of the image of Śiba at Benares.

ବିଶ୍ୱୌଷଧ—ସ. ବି—ଶୁଣ୍ଠି—Dry ginger.
Biśwaushadha (ବିଶ୍ୱା—ଅନ୍ୟରୂପ)

ବିଶ୍ରଣନ—ସ. ବି ( ବି+ଶ୍ରଣ୍ ଧାତୁ=ଦାନ କରିବା+ଭାବ. ଅନ )—
Biśraṇana ୧ । ବିତରଣ; ଦାନ—1. Donation; bestowal. ୨ । ଭିକ୍ଷାଦାନ—2. Almsgiving.
୩ । ଦତ୍ତଭିକ୍ଷା—3. Alms. ୪ । ପାତ୍ରସାତ୍ କରଣ—
4. Consignment of a thing to the hands of a proper person.

ବିଶ୍ରବଣ—ଦେ. ବି ( ସ. ବୈଶ୍ରବଣ )—ବୈଶ୍ରବଣ; ଋଷି ବିଶେଷ—
Biśrabaṇa Name of a sage.

ବିଶ୍ରବା—ଦେ. ବି ( ସ. ବିଶ୍ରବସ୍ ଶବ୍ଦର ୧ମା. ୧ବ=ବିଶ୍ରବାଃ )—
Biśrabā ରାବଣର ପିତା—Name of the father of Rābaṇa. ( ଉ—ବିଶ୍ରବାଋଷିରୁ ବୈଶ୍ରବଣ ହେଲେ ଜାତ, ସୁଲକ୍ଷଣ ବୋଲି କୋଳେ ଘେନ ଜଗନ୍ନାଥ । ବିଶ୍ୱନାଥ. ବିଚିତ୍ରରାମାୟଣ । )

ବିଶ୍ରବାଃ—ସ. ବି ( ବିଶ୍ରବସ୍; ବି=ନାହିଁ+ଶ୍ରବସ୍=କାନ ଯାହାର )—
Biśrabāḥ ଋଷିବିଶେଷ; ରାବଣର ପିତା—Name of a sage; father of Rābaṇa.

ବିଶ୍ରବ୍ଧ—ସ. ବିଣ. ପୁଂ ( ବି+ଶ୍ରମ୍ଭ୍ ଧାତୁ=ବିଶ୍ୱାସ କରିବା+କର୍ତ୍ତୃ.
Biśrabdha ତ )—୧ । ସାଧାରଣରେ ଅପ୍ରକାଶିତ—1.
(ବିଶ୍ରବ୍ଧା—ସ୍ତ୍ରୀ) 1. Confidential; private. ୨ । ବିଶ୍ୱସ୍ତ—2. Trusted. ୩ । ନିଃଶଙ୍କ—3. Fearless; free from dread or suspicion. ୪ । ବିଶ୍ରାନ୍ତ; ବିଗତଶ୍ରମ—4. Refreshed; rested. ୫ । ପ୍ରଶାନ୍ତ—5. Calm, tranquil. ୬ । ଦୃଢ—

6. Firm; strong. ୭ । ଗାଢ଼—7 Tight; ୮ । ଧୀର—8. Patient. ୯ । ନୀଚମନାଃ—9. Mean-minded. ୧୦ । ଅଧିକ; ଅତିରିକ୍ତ—10. Excessive.

ବିଶ୍ରବ୍ଧ ବନ୍ଧୁ—ସଂ. ବି ( କର୍ମଧା; ବିଶ୍ରବ୍ଧ+ବନ୍ଧୁ )—ବିଶ୍ବସ୍ତ ମିତ୍ର—
Bisrabdha bandhu A trusted friend.

ବିଶ୍ରବ୍ଧାଳାପ—ସଂ. ବି ( କର୍ମଧା; ବିଶ୍ରବ୍ଧ+ଆଳାପ )—ବିଶ୍ବାସପୂର୍ଣ୍ଣ କଥା; Bisrabdhālāpa ବନ୍ଧୁଜନଙ୍କ ମଧ୍ୟରେ ଗୋପନୀୟ କଥାବାର୍ତ୍ତା—Confidential talk.

ବିଶ୍ରମ—ସଂ. ବି ( ବି+ଶ୍ରମ୍ ଧାତୁ=କ୍ଲାନ୍ତ ହେବା+ଭାବ. ଅ )—୧ ।
Bisrama ବିରାମ—1. Stoppage; discontinuance ୨ । ବିଶ୍ରାମ—2. Rest. ଦେ. ବିଣ—ବେଶରମୀ; ଲଜ୍ଜାହୀନ—Shame-less. ( ଉ—କଷ୍ଟଭଶ୍ରମ ପାଇ ବିଶ୍ରମ ହେବାରୁ କେଉଁ କାର୍ଯ୍ୟ । ପାନକୃଷ୍ଣ. ରସକଲ୍ଲୋଳ । )

ବିଶ୍ରମିବା—ଦେ. କ୍ରି. ( ସଂ. ବିଶ୍ରାମ )—ବିଶ୍ରାମିବା; ବିଶ୍ରାମ ନେବା—
Bisramibā विश्रामा **विश्रमना** To take rest.

ବିଶ୍ର(ସ୍ର)ମ୍ଭ—ସଂ. ବି ( ବି+ଶ୍ରମ୍ଭ୍ ଧାତୁ=ବିଶ୍ବାସ କରିବା+ଭାବ. ଅ )—୧ । ବିଶ୍ବାସ; ପ୍ରତ୍ୟୟ—1. Confidence; trust. ୨ । ପ୍ରଣୟ—2. Love; attachment. ୩ । ସ୍ବଚ୍ଛନ୍ଦ ବିହାର—3. Hilarity. ( ଉ—ମଧ୍ୟାହ୍ନେ ଅକାଳ ଜଳଦ ଅଳକ୍ଷ୍ୟ, କନ୍ଦର୍ପୀମନ୍ତ୍ରୀମା ବିଶ୍ରମ୍ଭ ବନ୍ଧୁ । ରାଧାନାଥ ଚିଲିକା । ) ୪ । କେଳି କଳହ—4. Amatory quarrel. ( ଉ—ବିଶ୍ରମ୍ଭ ପଦର ଅଦର କରି କେ ସୁମନେ ଭ୍ରମିଲ । ଉତ୍କ. ବୈଦେହୀଶବିଳାସ । )

ବିଶ୍ର(ସ୍ର)ମ୍ଭାଳାପ—ସଂ. ବି ( ବିଶ୍ରମ୍ଭ+ଆଳାପ )—୧ । ଦୁଇ ବନ୍ଧୁଙ୍କ
Bisra(sra)mbhālāpa ମଧ୍ୟରେ ଗୁପ୍ତ ବା ଏକାନ୍ତରେ କଥାଭାଷା—1. Confidential talk between 2 friends; a tete-a-tete. ୨ । ପ୍ରଣୟାଳାପ—2. Love-talk; a talk between lovers.

ବିଶ୍ର(ସ୍ର)ମ୍ଭୀ—ସଂ. ବିଣ. ପୁଂ ( ବିଶ୍ରମ୍ଭ+ଇନ୍ ଅସ୍ତ୍ୟର୍ଥେ; ବିଶ୍ରମ୍ଭିନ୍; ୧ମା. ୧ବ )—୧ । ଯାହାଠାରେ ବିଶ୍ବାସ ବା ପ୍ରତ୍ୟୟ
Bisra(sra)mbhī (ବିଶ୍ରମ୍ଭିନୀ—ସ୍ତ୍ରୀ) କରାଯାଇ ପାରେ; ବିଶ୍ବସ୍ତ—1. Trustworthy; trusted. ୨ । ପ୍ରଣୟୀ—2. Loving; affectionate. ୩ । ପ୍ରିୟ—3. Dear; beloved. ୪ । ସୁପରିଚିତ—4. Familiar.

ବିଶ୍ରାଣନ—ସଂ. ବି ( ବି+ଶ୍ରଣ୍ ଧାତୁ ଣିଚ୍, ଶ୍ରାଣି ଧାତୁ=ଦାନ କରିବା
Bisrāṇana +ଭାବ. ଅନ )—୧ । ବିଶଣନ ( ଦେଖ )—1. Bisranana ( See ) ୨ । ଅନ୍ୟଦ୍ବାରା ଦିଆଇବା, 2. Causing another to give.

ବିଶ୍ରାଣିତ—ସଂ. ବିଣ ( ବି+ଶ୍ରଣ୍ ଧାତୁ (ଣିଚ)+କର୍ମ ତ )—୧ ।
Bisrāṇita ପ୍ରଦତ୍ତ—1. Given away. ୨ । ବିତରିତ—2. Distributed

ବିଶ୍ରାନ୍ତ—ସଂ. ବିଣ—( ବି+ଶ୍ରମ୍ ଧାତୁ=କ୍ଲାନ୍ତ ହେବା+କର୍ତ୍ତୃ. ତ)—
Bisrānta ୧ । ବିଶ୍ରାମଯୁକ୍ତ—1. Rested. ୨ । ନିବୃତ୍ତ; କ୍ଷାନ୍ତ. (ବିପରୀତ—ଅବିଶ୍ରାନ୍ତ) ବିରତ—2. Stopped; ceased.

ବିଶ୍ରାନ୍ତି—ସଂ. ବି—( ବି+ଶ୍ରମ୍ ଧାତୁ=କ୍ଲାନ୍ତ ହେବା+ଭାବ. ତି )—
Bisrānti ୧ । ବିରାମ; ନିବୃତ୍ତି; କ୍ଷାନ୍ତି—1. Cessation; stoppage. ୨ । ଖେଦାପନୟନ; ଶ୍ରମାପନୟନ; ବିଶ୍ରାମ; ଆଳସ୍ୟ ମେଣ୍ଟାଇବା—2. Refreshment; recreation. ୩ । ପରିଶ୍ରମରୁ ଆରାମ ନେବା—3. Cessation from toil. ୪ । (+ଅଧି. ତି) ବିଶ୍ରାମ ଘାଟ; ତୀର୍ଥ ବିଶେଷ—4. Name of a sacred place of Hindu pilgrimage.

ବିଶ୍ରାବ - ସଂ. ବି—(ବି+ଶ୍ରୁ ଧାତୁ=ଶୁଣିବା+କର୍ମ. ଅ) —୧ । ଖ୍ୟାତି;
Bisrāba ପ୍ରସିଦ୍ଧି—1. Fame; renown; notoriety. ୨ । ଧ୍ବନି—2. Sound; noise. ୩ । ଦ୍ରବବସ୍ତୁର କ୍ଷରଣ—3. Oozing; leaking of a liquid.

ବିଶ୍ରାମ—ସଂ. ବି—( ବି+ଶ୍ରମ୍ ଧାତୁ=କ୍ଲାନ୍ତ ହେବା+ଭାବ. ଅ )—
Bisrāma ୧ । ବିରାମ; ନିବୃତ୍ତି—1. Cessation. ୨ । ଆରାମ; ଶ୍ରମାପନୋଦନ-2. Rest; recreation. ୩ । କାର୍ଯ୍ୟରୁ ଛୁଟି—3. Leave; vacation; recess. ୪ । ପରିଶ୍ରମ ପରେ କାର୍ଯ୍ୟରୁ ନିବୃତ୍ତି; ଶ୍ରମରୁ ବିରତି—4. Retiring from work; respite from toil. ୫ । ଅବସର—5. Leisure. ୬ । କ୍ଷଣକାଳ ପାଇଁ ଶ୍ରମାପନୋଦନ 6. Taking temporary or brief rest. ୭ । ଶାରଦୀୟ ଦୁର୍ଗାପୂଜା ସମୟରେ ଆଶ୍ବିନ ଶୁକ୍ଳ ସପ୍ତମୀଠାରୁ ନବମୀ ପର୍ଯ୍ୟନ୍ତ ୩ଟି ତିଥି ଯେବେ ୨ଦିନରେ ପଡ଼େ, ତେବେ ତହିଁ ମଧ୍ୟରୁ ନବମୀର ପରବର୍ତ୍ତୀ ଯେଉଁ ଦିନରେ ଦୁର୍ଗାଙ୍କର ପୂଜାଦି ସ୍ଥଗିତ ରଖାଯାଏ—7 A day of rest or cessation of worship of Goddess Durga in the course of the 7th, 8th and 9th days of the bright lunar fortnight of the month of Āswina, if these 3 tithis cover a period of 2 days. ଦେ. ବି—ଭୂତ ପ୍ରେତଆଦିଙ୍କର ଓ ଦେବଦେବୀଙ୍କର ମନୁଷ୍ୟ ଦେହରେ ବା ଗୃହାଦିରେ ଆବେଶ—Possession of a house or person by an evil spirit Deity.

ବିଶ୍ରାମ କରିବା—ଦେ. କ୍ରି ( ସଂ. ବିଶ୍ରାମ )—୧ । ପରିଶ୍ରମ ପରେ ଆରାମ
Bisrāma karibā କରିବା—1. To take rest or rereation to take repose. ୨ । ଶ୍ରମାପନୋଦନ କରିବା—2. To refresh one's self. ୩ । ( ଭୂତପ୍ରେତାଦି ) ମନୁଷ୍ୟ ଶରୀରରେ ପ୍ରବେଶ କରିବା—3. To possess the body of a person ( said of ghosts and evil spirits. ୪ । ( ଭୂତପ୍ରେତାଦି ) କୌଣସି ବୃକ୍ଷ ବା ସ୍ଥାନରେ ଆଶ୍ରୟ

ନେବା—4. To possess a tree, place or house (said of ghosts and evil spirits). ୫ । ଶୋଇବା—5. To sleep. ୬ । କୌଣସି ସ୍ଥାନରେ ଆଶ୍ରୟ ନେବା—6. To take shelter at a place.

ବିଶ୍ରାମ କାରକ—ସଂ. ବିଣ. (ବିଶ୍ରାମ+କାରକ)—ଯେ ବିଶ୍ରାମ କରୁଥାଏ । Biśrāma kāraka Taking rest; taking repose. (ବିଶ୍ରାମକାରୀ—ଅନ୍ୟରୂପ)

ବିଶ୍ରାମ କାଳ—ସଂ. ବି. (୬ଷ୍ଠୀ ତତ୍; ବିଶ୍ରାମ+କାଳ)—୧ । ବିଶ୍ରାମ Biśrāma kāḷa କରିବାର ସମୟ—1. The time of rest or recreation. ୨ । ଛୁଟି ସମୟ—2. Time of leave; vacation.

ବିଶ୍ରାମ କୁଟୀର—ସଂ. ବି. (ବିଶ୍ରାମ+କୁଟୀର)—ଯେଉଁ ଗୃହରେ ଶ୍ରାନ୍ତ Biśrāma kuṭira ବ୍ୟକ୍ତିମାନେ ଆରାମ ପାଆନ୍ତି—Refreshment room; rest house; rest shed. (ବିଶ୍ରାମଗୃହ, ବିଶ୍ରାମଭବନ, ବିଶ୍ରାମାଗାର, ବିଶ୍ରାମାଳୟ)—ଅନ୍ୟରୂପ ।

ବିଶ୍ରାମ ଗ୍ରହଣ—ସଂ. ବି—୧ । କାର୍ଯ୍ୟରୁ ସାମୟିକ ଛୁଟି ନେବା— Biśrāma grahaṇa 1. Taking of leave from work. ୨ । ଚିରକାଳ ପାଇଁ କାର୍ଯ୍ୟରୁ ଅବସର ନେବା—2. Retirement from service.

ବିଶ୍ରାମ ଘାଟ—ସଂ. ବି. (ବିଶ୍ରାମ+ଘାଟ)—କାଶୀ ନିକଟସ୍ଥ ଗଙ୍ଗା Biśrāma ghāṭa କୂଳରେ ଥିବା ତୀର୍ଥବିଶେଷ—Name of a bathing place on the bank of the Ganges in Benares.

ବିଶ୍ରାମ ଢାଳିବା—ପ୍ରାଦେ. (ବାଲେଶ୍ୱର) କ୍ରି—(ଠାକୁର ଠାକୁରାଣୀଙ୍କର) Biśrāma ḍhāḷibā କୌଣସି ମନୁଷ୍ୟ ଦେହରେ ସାମୟିକ ଭାବରେ ଆବିର୍ଭୂତ ହେବା—To possess the soul of a person (said of a Deity).

ବିଶ୍ରାମ ଦିନ—ସଂ. ବି. (ବିଶ୍ରାମ+ଦିନ)—୧ । ଯେଉଁ ଦିନ କାର୍ଯ୍ୟରୁ Biśrāma dina ବିଶ୍ରାମ ନେବାକୁ ହୁଏ— 1. Day of rest. ୨ । ଛୁଟି ଦିନ—2. Holiday. ୩ । (ଆଧୁନିକ ପ୍ରୟୋଗ) ଖ୍ରୀଷ୍ଟିଆନ୍‌ମାନଙ୍କର ରବିବାର—3. Sabbath or Sunday of the Christians. [ଦ୍ର—ଖ୍ରୀଷ୍ଟଧର୍ମଶାସ୍ତ୍ର ମତରେ ଭଗବାନ୍ ୬ ଦିନ କାଳ ପୃଥିବୀକୁ ସୃଷ୍ଟି କରିବାରେ ପରିଶ୍ରମ କରି ରବିବାର ଦିନ ବିଶ୍ରାମ ଗ୍ରହଣ କରିଥିଲେ ।]
(ବିଶ୍ରାମ ଦିବସ, ବିଶ୍ରାମ ବାର, ବିଶ୍ରାମ ବାସର—ଅନ୍ୟରୂପ)

ବିଶ୍ରାମ ଦେବା—ଦେ. କ୍ରି—୧ । କାର୍ଯ୍ୟରୁ ଛୁଟି ଦେବା—1. To Biśrāma debā grant leave; to give rest. ୨ । ଆଶ୍ରୟ ଦେବା—2. To give shelter. ପ୍ରାଦେ. (ବାଲେଶ୍ୱର) କ୍ରି—ବିଶ୍ରାମ ଢାଳିବା (ଦେଖ) Biśrāma ḍhāḷibā (See)
বিশ্রাম দেওয়া **विश्राम देना**

ବିଶ୍ରାମ ନେବା—ଦେ. କ୍ରି—୧ । ଆଳସ୍ୟ ମେଣ୍ଟାଇବା; ଆଳସ୍ୟ Biśrāma nebā ମେଣ୍ଟାଇବା—1. To take rest. ୨ । ବିଶ୍ରାମ କରିବା—2. To rest. ୩ । ଛୁଟି ଗ୍ରହଣ କରିବା—3. To take leave. ୪ । ଆଶ୍ରୟ ନେବା—4. To take shelter.
বিশ্রাম লওয়া **विश्राम लेना**

ବିଶ୍ରାମ ପାଇବା—ଦେ. କ୍ରି—୧ । କାର୍ଯ୍ୟରୁ ଫୁରୁସତ୍ ପାଇବା— Biśrāma pāibā 1. To have leisure from work. ୨ । ଛୁଟି ପାଇବା—2. To get leave; to be relieved from work. ୩ । ବିଶ୍ରାମ କରିବା—3. To take rest. ୨ । ଆଶ୍ରୟ ପାଇବା—2. To get shelter.
(ବିଶ୍ରାମ ପ୍ରାପ୍ତ ହେବା, ବିଶ୍ରାମ ଲଭିବା, ବିଶ୍ରାମ ଲାଭ କରିବା—ଅନ୍ୟରୂପ)
বিশ্রাম পাওয়া, বিশ্রাম লাভ করা **विश्राम पाना**

ବିଶ୍ରାମ ମିଳିବା—ଦେ. ବି—କାର୍ଯ୍ୟରୁ ବା ପରିଶ୍ରମରୁ ଅବସର ପ୍ରାପ୍ତି; Bisrāma miḷibā ଅବସରଲାଭ—Getting rest; having rest after work.
বিশ্রাম মিলা **विश्राम मिलना**

ବିଶ୍ରାମ ପ୍ରାପ୍ତି—ସ.ବି. (୭ମୀ ତତ୍; ବିଶ୍ରାମ+ପ୍ରାପ୍ତି)—୧ । ବିଶ୍ରାମ ନେବା— Biśrāma prāpti 1. Taking rest. ୨ । ବିଶ୍ରାମ ଭୋଗ କରିବା—2. Enjoyment of rest. ୩ । ଆଶ୍ରୟପ୍ରାପ୍ତି—3. Getting of shelter. ୪ । ଛୁଟି ମିଳିବା—4. Getting of leave. ୫ । କାର୍ଯ୍ୟରୁ ବିଦାୟ ମିଳିବା—5. Retirement from service.
(ବିଶ୍ରାମ ଲାଭ—ଅନ୍ୟରୂପ)

ବିଶ୍ରାମ ପ୍ରାର୍ଥନ(ନା)—ସଂ. ବି—(ମ. ପ. ଲୋ, ବିଶ୍ରାମ+ପ୍ରାର୍ଥନା)— Biśrāma prārthana(nā) ୧ । କାର୍ଯ୍ୟରୁ ଛୁଟି ପାଇବା ପାଇଁ ଅନୁନୟ—1. Application for getting leave; leave-application. ୨ । ପରିଶ୍ରମରୁ ବିଶ୍ରାମ ପ୍ରାପ୍ତିନିମନ୍ତେ ଅନୁନୟ—2. Prayer for being allowed rest. ୩ । ଆଶ୍ରୟ ପ୍ରାର୍ଥନା—3. Prayer for being granted shelter.

ବିଶ୍ରାମ ପ୍ରାର୍ଥୀ—ସଂ. ବିଣ. ପୁଂ—(ବିଶ୍ରାମ+ପ୍ରାର୍ଥିନ୍; ୧ମା, ୧ବ)— Biśrāma prārthi ଯେ ବିଶ୍ରାମ ପ୍ରାର୍ଥନା କରେ—Praying for leave or rest. (ସ୍ତ୍ରୀ—ବିଶ୍ରାମ ପ୍ରାର୍ଥିନୀ)

ବିଶ୍ରାମାର୍ଥୀ—ସଂ. ବିଣ. ପୁଂ—(ବିଶ୍ରାମ+ଅର୍ଥ୍ ଧାତୁ+କର୍ତ୍ତୃ. ଅନ୍)— Biśrāmārthi ୧ । ବିଶ୍ରାମ ଲାଭ କରିବା ନିମନ୍ତେ ଇଚ୍ଛୁକ— 1. Wishing to take rest. ୨ । ବିଶ୍ରାମପ୍ରାର୍ଥୀ—2. Praying for shelter or leave. (ସ୍ତ୍ରୀ—ବିଶ୍ରାମାର୍ଥିନୀ)

ବିଶ୍ରାମିବା—ଦେ. କ୍ରି (ପଦ୍ୟ) (ସଂ. ବିଶ୍ରାମ)—୧ । ବିଶ୍ରାମ କରିବା; Biśrāmibā ଆଳସ୍ୟ ମେଣ୍ଟାଇବା—1. To take rest. [ଉ—ବିଶ୍ରାମନ୍ତେ କଳ୍ପତରୁରେ ବସିବେ ନରେ ବନରେ ଚଢ଼ିବା ପୁଣ । ଭଞ୍ଜ. ବୈଦେହୀଶବିଳାସ ] ୨ । (ଭୂତ ପ୍ରେତ ଓ ଦେବତା ଆଦି) ମନୁଷ୍ୟ
বিশ্রামা **विश्रामना**

ଅଧିକାର ଆଶ୍ରୟ କରିବା—2. To possess (said of ghosts and evil spirits and Deities). [ ଉ—ବୋଲନ୍ତି ଭୂତ ଭ୍ରମାଇଲା; କେହିଁ ଦେବତା ବିଶ୍ରମିଲା । ଭୂପତି—ପ୍ରେମପଞ୍ଚାମୃତ ] । ୩ । କିଛିକାଳ ପାଇଁ ଆଶ୍ରୟ ନେବା—3. To take shelter for a time.

ବିଶି—ସଂ. ବି.—ମୃତ୍ୟୁ (ହି. ଶ)—
Bisri Death.

ବିଶ୍ରି ଗନ୍ଧ—ଦେ. ବିଣ—(ସଂ. ବିସ୍ର=ଚରାଧୂମରୁ ଉଠିବା ଗନ୍ଧ)—ଅତି
Bisri gandha ଦୁର୍ଗନ୍ଧ—very offensive smell.
বিশ্রী গন্ধ **बिस्री गन्ध**

ବିଶ୍ରୀ—ସ. ବିଣ (ବହୁବ୍ରୀହି; ବି=ନାହିଁ+ଶ୍ରୀ=ଶୋଭା)—୧ । ଶ୍ରୀହୀନ,
Bisri ଶ୍ରୀଭ୍ରଷ୍ଟ; ହତଶ୍ରୀ—1. Shorn of beauty. ୨ । କୁତ୍ସିତ—2. Depraved;ugly. ୩ । କଦାକାର; ଅସୁନ୍ଦର; ଘରପଞ୍ଚ; କୁରୂପ—3. Deformed. ୪ । ଅତିନୀଚ—4. Very low; mean. ୫ । ହତଭାଗ୍ୟ—5. Unfortunate; ill fated; luckless.

ବିଶ୍ରୁତ—ସଂ. ବିଣ—(ବି+ଶ୍ରୁ ଧାତୁ=ଶୁଣିବା+କର୍ମ. ତ)—୧ ।
Bisruta ୧ । ବିଖ୍ୟାତ; ପ୍ରସିଦ୍ଧ—1. Famous; famed; celebrated. ୨ । ଧ୍ୱନିତ—2. Sounded; resounded. ୩ । ଜ୍ଞାତ—3. Known. ୪ । ହୃଷ୍ଟ—4. Gladdened; merry.

ବିଶ୍ରୁତ କୀର୍ତ୍ତି—ସ. ବିଣ. ( ବହୁବ୍ରୀହି; ବିଶ୍ରୁତ+କୀର୍ତ୍ତି)—ଯାହାର କୀର୍ତ୍ତି
Bisruta kirtti (ସତ୍କୃତ) ଶୁଣାଯାଏ—Well known or
(ବିଶ୍ରୁତଯଶାଃ—ଅନ୍ୟରୂପ)— celebrated for his actions.

ବିଶ୍ରୁତି—ସ. ବି—(ବି+ଶ୍ରୁ ଧାତୁ=ଶୁଣିବା+ଭାବ. ତି)—୧ । ଖ୍ୟାତି,
Bisruti ପ୍ରସିଦ୍ଧି—1. Fame; renown; celebrity. ୨ । ଦ୍ରବ ପଦାର୍ଥର କ୍ଷରଣ—2. Oozing of any liquid. ୩ । ସ୍ରୋତ—3. Current.

ବିଶ୍ଳଥ—ସ. ବି—(ବି+ଶ୍ଳଥ୍ ଧାତୁ=ଶିଥିଳ ହେବା+କର୍ତ୍ତୃ. ଅ)—
Bislatha ୧ । ଢିଲା; ଶିଥିଳ—1. Loose; slack. ୨ । ଶିଥିଳୀକୃତ—2. Slackened [ଉ—ବିଶ୍ଳଥ ହୋଇଛିରେ, ବାସ ସିକ୍ତ ଥାଇ ଯହିଁ କାଞ୍ଚ—କବିସୂର୍ଯ୍ୟ—ଭଗୋଶ୍ୱ ଚମ୍ପୂ ବ ଗୀତ ] ୩ । ଲୁଳିତ (ଚର୍ମ) —3. Wrinkled (skin).

ବିଶ୍ଳିଷ୍ଟ—ସଂ. ବିଣ—(ବି+ଶ୍ଳିଷ୍ ଧାତୁ=ସଂଯୁକ୍ତ ହେବା+କର୍ତ୍ତୃ.ତ)—
Bislishta ୧ । ବିଯୁକ୍ତ; ବିଚ୍ଛିନ୍ନ—1. Separated. ୨ । ବିଭିନ୍ନ—2. Distinct; disconnected; separate. ୩ । ବିମୁକ୍ତ—3. Released; liberated. ୪ । ଅସଂଯୁକ୍ତ—4. Unconnected. ୫ । ୫ । ବିକସିତ; ପ୍ରକାଶିତ; ପ୍ରସ୍ଫୁଟିତ—5. Expanded; blown; revealed; manifested. ୬ । ଯହିଁରୁ ବିଭିନ୍ନ ଉପାଦାନମାନ ପୃଥକ୍ କରାଯାଇ ଥାଏ—6. Analysed. ୭ । ଶିଥିଳୀକୃତ—7. Slackened; loosened; relaxed.

ବିଶ୍ଳେଷ—ସ. ବି.—(ବି+ଶ୍ଳିଷ୍ ଧାତୁ=ସଂଯୁକ୍ତ ହେବା+ଭାବ. ଅ)—
Bislesha ୧ । ବିଚ୍ଛେଦ; ବିୟୋଗ—1. Separation; disjunction. ୨ । ପ୍ରକାଶ; ବିକାଶ—2. Expansion; manifestation ୩ । ଶୈଥିଲ୍ୟ—3. Slackness; relaxation; dilatoriness. ୪ । ବିଭାଗ; ବସ୍ତୁର ବିଭିନ୍ନ ଉପାଦାନମାନଙ୍କର ପୃଥଗ୍‌ଗ୍ରହ—4. Analysis. ୫ । ବିରାଗ—5. Disgust; disrelish; apathy; unconcern.

ବିଶ୍ଳେଷଣ—ସ. ବି—(ବି+ଶ୍ଳିଷ୍ ଧାତୁ=ସଂଯୁକ୍ତ ହେବା+ଭାବ. ଅନ)
Bisleshana କୌଣସି ଯୌଗିକ ପଦାର୍ଥର ଭିନ୍ନ ଭିନ୍ନ ଉପାଦାନର ପୃଥକ୍‌କରଣ—Analysis of the different components of a compound

ବିଶ୍ଳେଷଣ କରିବା—ଦେ. କ୍ରି—ପଦାର୍ଥର ଭିନ୍ନ ଭିନ୍ନ ଉପାଦାନକୁ ପୃଥକ୍
Bisleshana kariba କରିବା—To analyse.
বিশ্লেষণ করা **विश्लेषण करना**

ବିଶ୍ଳେଷଣ କ୍ରିୟା—ସ. ବି—(ବିଶ୍ଳେଷଣ+କ୍ରିୟା )—ଯୌଗିକ ପଦାର୍ଥର
Bisleshana kriya ବିଭିନ୍ନ ଉପାଦାନମାନଙ୍କର ପୃଥକ୍‌କରଣ
(ବିଶ୍ଳେଷଣ ପ୍ରକ୍ରିୟା—ଅନ୍ୟରୂପ) ପ୍ରଣାଳୀ—The operation of chemical analysis

ବିଶ୍ୱ—ସ. ବି.—(ବିଶ୍ ଧାତୁ=ପ୍ରବେଶ କରିବା+ଅ (ସଜ୍ଞାର୍ଥେ) ବ—
Biswa ୧ । ସୃଷ୍ଟି; ବ୍ରହ୍ମାଣ୍ଡ; ଜଗତ୍—1. The creation; the universe. ୨ । ଗଣଦେବତାବିଶେଷ—2. Ten groups of Deities. [ଦ୍ର—ଏମାନେ ସଂଖ୍ୟାରେ ୧୦; ବସୁ, ସତ୍ୟ, କ୍ରତୁ, ଦକ୍ଷ, କାଳ, କାମ ଧୃତି, କୁରୁ, ପୁରୁରବାଃ ଓ ମାଦ୍ରବ ।] ୩ । (ବେଦାନ୍ତ) ବ୍ରହ୍ମାଣ୍ଡର ସମସ୍ତ ଜଡ଼ ଶରୀରରେ ବିଦ୍ୟମାନ ଚୈତନ୍ୟ—3. The consciousness pervading all the material beings of the universe ୪ । ବିଶ୍ୱକର୍ମା—4. The Divine architect of the creation. ୫ । ପରିମାଣବିଶେଷ; ଏକ ଛଟାଙ୍କି; ଏକ ବିଶ୍ୱା—5. A unit of measure or weight ୬ । ଆତ୍ମା—6. The soul (Apte). ୭ । ନାଗର-7. A citizen (Apte). ସ. ବିଣ—୧ । ସମୁଦାୟ; ସମସ୍ତ—1. All; whole. ୨ । ସମଗ୍ର ବ୍ରହ୍ମାଣ୍ଡସମ୍ବନ୍ଧୀୟ—2. Univeasal.

ବିଶ୍ୱକ୍-ସେନ—ସ. ବି—(ବହୁବ୍ରୀହି; ବିଷ୍ୱକ୍=ସର୍ବବ୍ୟାପୀ+ସେନା)—
Biswak-sena ୧ । ବିଷ୍ଣୁ—1. Bishnu. ୨ । (ନାମ)
(ବିଷ୍ୱକ୍‌ସେନ—ଅନ୍ୟରୂପ) ତ୍ରୟୋଦଶ ମନୁ; ମନୁଙ୍କର ତ୍ରୟୋଦଶ ପୁରୁଷର ଜନ୍ମ ବଂଶଧର—2. The name of the descendant of Manu in the 13th generation. ୩ । ବିଷ୍ଣୁଙ୍କର ନିର୍ମାଲ୍ୟବଳଗ୍ରାହୀ ଦେବ—3. A Deity who gets a portion of the food after it is offered to Bishnu.

ବିଶ୍ୱକ୍‌ସେନା—ସଂ. ବି. ସ୍ତ୍ରୀ—( ବିଶ୍ୱକ୍‌ସେନ+ସ୍ତ୍ରୀ. ଆ )—ପ୍ରିୟଙ୍ଗୁ ଲତା, Biśwak-senā Aglaia Roxburghiana (creeper).

ବିଶ୍ୱକଦ୍ରୁ—ସଂ. ବିଣ—( ବିଶ୍ୱ+କ+ଦ୍ରୁ ଧାତୁ=ପଛରେ ଦଉଡ଼ିବା +କର୍ତ୍ତୃ. କ୍ୱିପ୍)—କ୍ରୂର; ଖଳ; ଦୁଷ୍ଟ— Biśwakadru Wicked; vile. (Apte). ସଂ. ବି.—୧ । ଶିକାରୀ କୁକୁର—1. A dog trained for the chase. (Apte) ୨ । ଶବ୍ଦ; ଧ୍ୱନି—2. Sound. (Apte.)

ବିଶ୍ୱକର୍ମଜା—ସଂ. ବି. ସ୍ତ୍ରୀ ( ବିଶ୍ୱକର୍ମନ୍=ଦେବଶିଳ୍ପୀ+ଜନ୍ ଧାତୁ=ଜାତ ହେବା+କର୍ତ୍ତୃ. ଅ+ସ୍ତ୍ରୀ. ଆ )— Biśwakarmajā (ବିଶ୍ୱକର୍ମସୁତା—ଅନ୍ୟରୂପ) ବିଶ୍ୱକର୍ମାଙ୍କର କନ୍ୟା ସୂର୍ଯ୍ୟପତ୍ନୀ ଛାୟା ଓ ସଂଜ୍ଞା ଦେବୀ—The two daughters of Biśwakarmā and wives of the Sun-god.

ବିଶ୍ୱକର୍ମା—ସଂ. ବି ( ବିଶ୍ୱକର୍ମନ୍; ବହୁବ୍ରୀହି; ବିଶ୍ୱ=ସର୍ବବ୍ୟାପୀ+କର୍ମନ୍=କାର୍ଯ୍ୟ )—୧ । ବ୍ରହ୍ମାଙ୍କର Biśwakarmā ପୁତ୍ର; ଦେବଶିଳ୍ପୀ—1. Name of the Divine architect in Hindu mythology. ୨ । ସୂର୍ଯ୍ୟ ଦେବ—2. The Sun-god. ୩ । ମୁନିବିଶେଷ—3. Name of a sage. ୪ । ସର୍ବସ୍ରଷ୍ଟା ପରମେଶ୍ୱର—4. God, the Creator of the universe. [ ଦ୍ର—ପୁରାଣମତରେ ଅଷ୍ଟମ ବସୁଦେବତା ପ୍ରଭାସଙ୍କ ଔରସରେ ଯୋଗସିଦ୍ଧାଙ୍କ ଗର୍ଭରେ ବିଶ୍ୱକର୍ମା ଜନ୍ମଗ୍ରହଣ କରିଥିଲେ । ବେଦରେ ବିଶ୍ୱକର୍ମା 'ତ୍ୱଷ୍ଟା' (ତ୍ୱଷ୍ଟୃ) ନାମରେ ପ୍ରସିଦ୍ଧ । ବିଶ୍ୱକର୍ମା ସ୍ଥାପତ୍ୟ ବିଜ୍ଞାନର ପ୍ରଥମ ପ୍ରକାଶୟିତା । ] ଦେ. ବି—ବଢ଼େଇ—A carpenter.

ବିଶ୍ୱକର୍ମାସୁତ—ଦେ. ବି ( ଷଷ୍ଠୀତତ୍; ସଂ. ବିଶ୍ୱକର୍ମସୁତ )—ନଳ ନାମକ Biśwakarmā suta ବାନର—A name of the monkey Naḷa. [ ଉ—ବାନ୍ଧ ସେତୁ ହେତୁ ଅଛି ବିଶ୍ୱକର୍ମା ସୁତ । ଭଞ୍ଜ. ବୈଦେହୀଶବିଳାସ । ]

ବିଶ୍ୱକା—ସଂ. ବି. ସ୍ତ୍ରୀ (ବିଶ୍ୱ+କ+ସ୍ତ୍ରୀ. ଆ)—ଗଙ୍ଗାଚିଲି; ଚିଲ ପକ୍ଷିବିଶେଷ Biśwakā —A kind of kite. [ ଦ୍ର—ଏମାନେ ନଦୀକୂଳରେ ବସା କରି ରହନ୍ତି । ]

ବିଶ୍ୱକୃତ୍—ସଂ. ବି. ପୁଂ ( ବିଶ୍ୱ+କୃ ଧାତୁ=କରିବା+କର୍ତ୍ତୃ. କ୍ୱିପ୍)— Biśwakṛut ୧ । ବିଶ୍ୱକର୍ମା—1. The Divine architect. ୨ । ପରମେଶ୍ୱର—2. God. ୩ । ବିଷ୍ଣୁ—3 Bishṇu. ୪ । ଜଗତ୍‌ସ୍ରଷ୍ଟା—4. The Creator of the universe.

ବିଶ୍ୱକେତୁ—ସଂ. ବି ( ବହୁବ୍ରୀହି; ବିଶ୍ୱ=ଜଗଦ୍‌ବ୍ୟାପୀ+କେତୁ=ଧ୍ୱଜ)—ଶ୍ରୀକୃଷ୍ଣଙ୍କ ନାତି, ଅନିରୁଦ୍ଧ; ଉଷାପତି— Biśwaketu The name of Aniruddha; the grand son of Kṛushṇa.

ବିଶ୍ୱକୋଷ—ସଂ. ବି ( ଆଧୁନିକ ପ୍ରୟୋଗ )—୧ । ବଙ୍ଗୀୟ ପଣ୍ଡିତ Biśwakosha ନଗେନ୍ଦ୍ରନାଥ ବସୁ ପ୍ରାଚ୍ୟବିଦ୍ୟାମହାର୍ଣ୍ଣବଙ୍କ ସଙ୍କଳିତ ବଙ୍ଗ ଭାଷାର ଜ୍ଞାନଗବେଷଣାପୂର୍ଣ୍ଣ କୋଷଗ୍ରନ୍ଥ— 1. Title of an encyclopedia in Benglee compiled by Babu Nagendranath Basu. ୨ । ଭାଷା ପ୍ରଚଳିତ ଶବ୍ଦମାନଙ୍କ ବିଷୟରେ ଆବଶ୍ୟକୀୟ ଜ୍ଞାତବ୍ୟ ବିଷୟ ଲେଖାଥିବା ଜ୍ଞାନଗବେଷଣାପୂର୍ଣ୍ଣ ଅଭିଧାନ ଗ୍ରନ୍ଥ— 2. Encyclopedia.

ବିଶ୍ୱଖଣ୍ଡକ—ସଂ. ବିଣ. ପୁଂ ( ବିଶ୍ୱ+ଖଣ୍ଡ୍ ଧାତୁ+କର୍ତ୍ତୃ. ଅକ )— Biśwakhaṇḍaka ୧ । ଯେ ସକଳ ବିଷୟରେ ଅସନ୍ତୁଷ୍ଟ— (ବିଶ୍ୱଖଣ୍ଡିକା—ସ୍ତ୍ରୀ) 1 Discontented in every matter. ୨ । ଯାହାକୁ ସନ୍ତୁଷ୍ଟ କରାଯାଇ ନ ପାରେ— 2. Hard to please.

ବିଶ୍ୱଗ୍‌ବାୟୁ—ସଂ. ବି—ଚତୁର୍ଦ୍ଦିଗରୁ ଏକ ସମୟରେ ପ୍ରବାହିତ ହେଉଥିବା Biśwag-bāyu ବାୟୁ—Wind simultaneously blowing from all sides

ବିଶ୍ୱଗନ୍ଧ—ସଂ. ବି ( ବହୁବ୍ରୀହି; ବିଶ୍ୱ=ସମନ୍ତାତ୍+ଗନ୍ଧ )—ପଳାଣ୍ଡୁ, Biśwagandha ପିଆଜ—Onion.

ବିଶ୍ୱଗନ୍ଧା—ସଂ. ବି. ସ୍ତ୍ରୀ (ବିଶ୍ୱଗନ୍ଧ+ସ୍ତ୍ରୀ. ଆ)—ପୃଥିବୀ— Biśwagandhā The earth.

ବିଶ୍ୱଚରାଚର—ସଂ. ବି (ବିଶ୍ୱ+ଚରାଚର)—ଜଗତର ସ୍ଥାବର ଓ ଜଙ୍ଗମ Biśwa charāchara ସମୁଦାୟ; ଜଡ଼ ଓ ଜୀବଜଗତ୍— The whole creation; the universe.

(ବିଶ୍ୱ ଜଗତ୍, ବିଶ୍ୱ ବ୍ରହ୍ମାଣ୍ଡ, ବିଶ୍ୱ ସୃଷ୍ଟି — ଅନ୍ୟରୂପ)

ବିଶ୍ୱଜନ—ସଂ. ବି (ବିଶ୍ୱ+ଜନ)—ପୃଥିବୀର ସମସ୍ତ ଲୋକ; ସର୍ବଜନ— Biśwajana The people of the whole world; the mankind.

ବିଶ୍ୱଜନୀନ—ସଂ. ବିଣ (ବିଶ୍ୱଜନ+ହିତାର୍ଥେ. ଈନ)—ପୃଥିବୀର ସର୍ବ Biśwajanīna ଲୋକଙ୍କର ହିତଜନକ; ସର୍ବଜନହିତକର— (ବିଶ୍ୱଜନୀନତା—ବି) Universal; beneficial to the [ବିଶ୍ୱଜନୀନା—ସ୍ତ୍ରୀ] universe.

ବିଶ୍ୱଜନୀନ ଭ୍ରାତୃଭାବ—ସଂ. ବି ( ବିଶ୍ୱଜନୀନ+ଭ୍ରାତୃଭାବ )—ଜାତି ଧର୍ମ Biśwajanīna bhrātṛubhāba ନିର୍ବିଶେଷରେ ପୃଥିବୀର (ବିଶ୍ୱଜନୀନ ଭ୍ରାତୃତା—ଅନ୍ୟରୂପ) ସମସ୍ତ ବ୍ୟକ୍ତିଙ୍କ ସଙ୍ଗେ ଆତ୍ମୀୟତା—Universal brotherhood

ବିଶ୍ୱଜନୀନ ମୈତ୍ରୀବ୍ରତ—ସଂ. ବି ( ବିଶ୍ୱଜନୀନ+ମୈତ୍ରୀବ୍ରତ )—ସର୍ବ Biśwajanīna maitribrata ଲୋକର ମଙ୍ଗଳସାଧନରୂପବ୍ରତ—The feeling of friendship for the whole universe

ବିଶ୍ୱଜନୀୟ—ସଂ. ବିଣ ( ବିଶ୍ୱଜନ+ସମ୍ବନ୍ଧାର୍ଥେ. ଈୟ )—ବିଶ୍ୱଜନ Biśwajanīya ସମ୍ବନ୍ଧୀୟ; ସାର୍ବଜନୀନ—Universal. (ବିଶ୍ୱଜନ୍ୟ—ଅନ୍ୟରୂପ)

ବିଶ୍ୱଜୟ—ସଂ. ବି (ଷଷ୍ଠୀ ତତ୍; ବିଶ୍ୱ+ଜୟ)—୧ । ତ୍ରିଲୋକ ଜୟ— Biśwajaya 1. Winning the universe. (ବିଶ୍ୱବିଜୟ—ଅନ୍ୟରୂପ) ୨ । ସମଗ୍ର ପୃଥିବୀକୁ ପରାଭୂତ କରିବା— 2. Defeating the whole world.

**ବିଶ୍ୱଜୟୀ**—ସଂ. ବିଣ. ପୁଂ (ବିଶ୍ୱ+ଜି ଧାତୁ=ଜୟ କରିବା+କର୍ତ୍ତୃ. ଇନ୍; Biśwajayī ୧ମା.୧ବ)—୧ । ଯେ ସମଗ୍ର ପୃଥିବୀକୁ ଜୟକରିଅଛି— (ବିଶ୍ୱଜୟିନୀ—ସ୍ତ୍ରୀ) 1. Conquering the whole world.

ବିଶ୍ୱବିଜୟୀ, ବିଶ୍ୱଜେତା, ବିଶ୍ୱବିଜେତା } ଅନ୍ୟରୂପ

୨ । ତ୍ରୈଲୋକ୍ୟବିଜୟୀ; ଯେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳକୁ ଜୟ କରି ଅଛନ୍ତି—2. Victorious over the three worlds.

**ବିଶ୍ୱଜିତ୍**—ସଂ. ବିଣ. ପୁଂ (ବିଶ୍ୱ+ଜି ଧାତୁ=ଜୟ କରିବା+କର୍ତ୍ତୃ. କ୍ୱିପ୍)—ବିଶ୍ୱଜୟୀ (ଦେଖ)—Biśwajayī (See). Biśwajit ସଂ. ବି—୧ । ସର୍ବସ୍ୱଦକ୍ଷିଣ ଯଜ୍ଞବିଶେଷ; ଯେଉଁ ଯଜ୍ଞରେ ସର୍ବସ୍ୱ ଦକ୍ଷିଣା ଦିଆଯାଏ—1. Name of a vedic sacrifice in which the performer's all worldly belongings are given as present to the priests. ୨ । ବରୁଣ ଦେବତାଙ୍କର ପାଶ ନାମକ ଅସ୍ତ୍ର—2. Name of the noose of the Baruṇa God. ୩ । ନ୍ୟାୟବିଶେଷ—3. Name of a system of logic.

**ବିଶ୍ୱତଃ**—ସଂ. ଅ (ବିଶ୍ୱ=ସମସ୍ତ+ସପ୍ତମୀରେ. ତସ୍)—୧ । ସର୍ବତ୍ର— Biśwataḥ 1. Everywhere. ୨ । ସବୁ ଦିଗରେ—2. On all sides. ୩ । ସବୁ ପ୍ରକାରେ—3. In every way. ୪ । ସମ୍ପୂର୍ଣ୍ଣରୂପେ—4. Entirely; wholly.

**ବିଶ୍ୱତୁଳସୀ**—ସଂ. ବି—ବନ୍ୟ ତୁଳସୀ ବିଶେଷ; ଲଣ୍ଡାବଗୁଲି— Biśwa tulasī The common sweet Basil; Ocymum Basilicum.

ଅନ୍ୟ ସଂ. ନାମ—
ବର୍ବରୀ, ତୁବରୀ, ତୁଙ୍ଗୀ, ଖରପୁଷ୍ପା, ଅଜଗନ୍ଧିକା, ଓ ପର୍ଣ୍ଣାସ
ତେ. ରୁଦ୍ର ଜେଡ଼ ତୁଳସୀ
ତା. ତିରୁନେତ୍ର ତୁଳସୀ
ମ. ବାଘଇ ତୁଳସୀ
বারুইতুলসী; তোকমারি **সবজাতুলসী**

[ଦ୍ର—ଏହାର କ୍ୱାଥ ମେହ, ଉଦରାମୟ ଓ ଅତିସାର ରୋଗରେ ଉପକାରୀ । ଏହାର ପତ୍ରର ରସ କୃମି ଓ ସର୍ପବିଷ-ନାଶକ । ଏଥିର ବୀଜ ଗରମ ପାଣିରେ ପଡ଼ିଲେ ଫୁଲି ଉଠେ । କୃଷ୍ଣ ଓ ଶ୍ୱେତପତ୍ର ଭେଦରେ ଏହା ଦୁଇ ପ୍ରକାର ।]

**ବିଶ୍ୱତ୍ରାସୀ**—ସଂ. ବିଣ—(ବିଶ୍ୱ+ତ୍ରସ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.) Biśwatrāsī ଯାହା ସମଗ୍ର ବିଶ୍ୱବାସୀଙ୍କ ହୃଦୟରେ ଆତଙ୍କ (ବିଶ୍ୱତ୍ରାସିନୀ—ସ୍ତ୍ରୀ) ଉପସ୍ଥିତ କରାଏ—Creating terror throughout the universe.

**ବିଶ୍ୱଦକ୍ଷିଣ**—ସଂ. ବି (ବହୁବ୍ରୀହି; ବିଶ୍ୱ=ସମଗ୍ର+ଦକ୍ଷିଣା; ଯହିଁରେ Biśwadakshiṇa ଯଜ୍ଞକାରୀଙ୍କର ସମସ୍ତ ସମ୍ପତ୍ତି ଦକ୍ଷିଣା ଦିଆଯାଏ)—ବିଶ୍ୱଜିତ୍ ନାମକ ଯଜ୍ଞବିଶେଷ—Name of a vedic sacrifice in which the performer's all worldly belongings are given as present to the priests.

**ବିଶ୍ୱଦୂତ**—ସଂ, ବି, ପୁଂ (ବିଶ୍ୱ+ଦୂତ)—ଯେ ସମଗ୍ର ବିଶ୍ୱର ଦୂତ ବା Biśwadūta ବାର୍ତ୍ତାବହରୂପେ କାର୍ଯ୍ୟ କରେ—The (ବିଶ୍ୱଦୂତୀ—ସ୍ତ୍ରୀ) messenger of the universe.

**ବିଶ୍ୱଦେବ**—ସଂ. ବି (ବିଶ୍ୱ=ସକଳ+ଦିବ୍ ଧାତୁ=କ୍ରୀଡ଼ା କରିବା+ Biśwadeba କର୍ତ୍ତୃ. ଅ)—୧ । ଅଗ୍ନି ଦେବତା—1. The Fire god. ୨ । ଗଣଦେବତା ବିଶେଷ—2. Name of ten groups of Deities. [ଦ୍ର—ଏମାନଙ୍କର ସଂଖ୍ୟା ୧୦; ଯଥା—ବସୁ, ସତ୍ୟ, କ୍ରତୁ, ଦକ୍ଷ, କାମ, କାଳ, ଧୃତି, କୁରୁ, ପୁରୁରବାଃ, ମାଦ୍ରବ ।]

**ବିଶ୍ୱଦେବା**—ସଂ. ବି—କ୍ଷୁଦ୍ର ଗବେଧୁକା; ଗୋରକ୍ଷ ତଣ୍ଡୁଳ, ନାଗବଳା, Biśwadebā ଗରଗଡ଼; ବଳା (ଦେଖ)—Name of a medicinal plant.

**ବିଶ୍ୱଧାତା**—ସଂ. ବି. ପୁଂ (ବିଶ୍ୱ+ଧାତୃ; ୧ମା. ୧ବ)—୧ । Biśwadhātā ପରମେଶ୍ୱର—1. God. ୨ । ବ୍ରହ୍ମା—2. Brahmā.

**ବିଶ୍ୱଧାତ୍ରୀ**—ସଂ. ବି. ସ୍ତ୍ରୀ (୬ଷ୍ଠୀତତ୍; ବିଶ୍ୱ+ଧାତ୍ରୀ)—୧ । ଧରିତ୍ରୀ; Biśwadhātrī ପୃଥିବୀ—1. The earth. ୨ । ଜଗନ୍ମାତା (ବିଶ୍ୱବିଧାତ୍ରୀ—ଅନ୍ୟରୂପ) —2. The mother of the universe. ୩ । ଜଗଦ୍ଧାତ୍ରୀ—3. A name of Durgā

**ବିଶ୍ୱଧାରିଣୀ**—ସଂ. ବି. ସ୍ତ୍ରୀ (ବିଶ୍ୱ+ଧୃ ଧାତୁ=ଧରିବା+କର୍ତ୍ତୃ. ଇନ୍ Biśwadhāriṇī +ସ୍ତ୍ରୀ. ଈ)—ଧରଣୀ—The earth.

**ବିଶ୍ୱନାଥ**—ସଂ. ବି (୬ଷ୍ଠୀତତ୍; ବିଶ୍ୱ+ନାଥ)—୧ । ମହାଦେବ, Biśwanātha ଶିବ—1, Śiba. ୨ । କାଶୀସ୍ଥିତ ଶିବମୂର୍ତ୍ତି; ବିଶ୍ୱେଶ୍ୱର—2. Name of the image of Śiba worshipped at Benares. ଦେ. ବି. ପୁଂ. (ନାମ)—୧ । ମନୁଷ୍ୟଙ୍କୁ ଦିଆଯିବା ନାମ—1. A name given to males. ୨ । ପୁରୀ ଜିଲ୍ଲା ନିକଟବର୍ତ୍ତୀ ଗୋଟିଏ କ୍ଷୁଦ୍ର ପର୍ବତର ନାମ—2. Name of a hill in the district of Puri near Delang station. B. N. Ry. [ଦ୍ର—ଆସି ଅଛି ରଶ୍ମି ଗୁଳ୍ମ ଜଟାଧର ବିଶ୍ୱନାଥ ପରବତେ । ରାଧାନାଥ. ପାର୍ବତୀ ।] ୩ । ବିଶ୍ୱନାଥ ଖୁଣ୍ଟିଆ (ଦେଖ)— 3. Biśwanatha khuṇṭiā (See)

**ବିଶ୍ୱନାଥ କର**—ଦେ. ବି. (ନାମ)—ଉତ୍କଳର ପ୍ରସିଦ୍ଧ ସାହିତ୍ୟିକ ଓ Biśwanātha kara ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ— The late Viswanatha Kar; one of the distinguished men of letters and the editor of the Utkal Sahitya.

[ଦ୍ର—ନବଯୁଗରେ ଯେଉଁ କେତେ ଜଣ ଉତ୍କଳୀୟ ମନୀଷୀ ଓଡ଼ିଶାର ଅଜ୍ଞାନ ଅନ୍ଧକାର ଦୂର କରିବା ପାଇଁ ହସ୍ତରେ ଜ୍ଞାନବର୍ତ୍ତୀ ଧରି ମହାପ୍ରେମରେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ, ସେମାନଙ୍କ ମଧ୍ୟରେ ବିଶ୍ୱନାଥ ଅନ୍ୟତମ । ୧୮୬୪ ମସିହା ଡିସେମ୍ବର ମାସରେ କଟକ ଜିଲ୍ଲା ଟୁଲବସନ୍ତ ଗ୍ରାମରେ ପ୍ରସିଦ୍ଧ କରବଂଶରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ନାରାୟଣ କର । ଗ୍ରାମ୍ୟ ପାଠଶାଳାରେ ଶିକ୍ଷା ସମାପ୍ତ କରି ସେ ଚତୁଷ୍ପାଠୀରେ ସଂସ୍କୃତ କାବ୍ୟ-

ନାଟକାଦି ପାଠ କରି ଇଂରେଜୀ ଶିକ୍ଷା ଉଦ୍ଦେଶ୍ୟରେ କଟକ ଆସିଥିଲେ । ପ୍ୟାରୀମୋହନ ଏକାଡ଼େମି ଓ ମିସନ୍ ସ୍କୁଲରେ ଅଧ୍ୟୟନ କରି ପ୍ରଥମେ ସେ ଶିକ୍ଷକତା ବ୍ୟବସାୟ ଆରମ୍ଭ କରିଥିଲେ । ଏହି ସମୟରେ ପ୍ରଚଳିତ ହିନ୍ଦୁ ଧର୍ମର କୁସଂସ୍କାରାଦି ଆଲୋଚନା କରି ପୌତ୍ତଳିକତାପ୍ରଧାନ ହିନ୍ଦୁ ଧର୍ମରେ ତାଙ୍କର ଆଉ ବିଶ୍ୱାସ ରହିଲା ନାହିଁ । ତାଙ୍କର ଅଗ୍ରଜ ଭୋଳାନାଥ ଓ ଲୋକନାଥଙ୍କ ସଙ୍ଗେ ସେ ହିନ୍ଦୁଧର୍ମ ତ୍ୟାଗ କରି ଏକେଶ୍ୱରବାଦମୂଳକ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । ଉତ୍କଳର ବରେଣ୍ୟ କବି ମଧୁସୂଦନ ଓ ରାଧାନାଥ ବିଶ୍ୱନାଥଙ୍କ ଠାରେ ସାହିତ୍ୟିକ ପ୍ରତିଭାର ପରିଚୟ ପାଇ ତାଙ୍କୁ 'ଉତ୍କଳ ସାହିତ୍ୟ' ନାମକ ମାସିକ ପତ୍ରିକା ପ୍ରକାଶ କରିବାକୁ ଉତ୍ସାହିତ କଲେ । ବହୁ ବାଧା-ବିଘ୍ନ ଅତିକ୍ରମ କରି ବିଶ୍ୱନାଥ ତାଙ୍କ ଜୀବଦ୍ଦଶାରେ ପ୍ରାୟ ୩୮ ବର୍ଷ ସେହି ପତ୍ରିକାକୁ ପରିଚାଳନ କରିଥିଲେ । ବିଶ୍ୱନାଥହିଁ ନବଯୁଗରେ ଓଡ଼ିଆ ସାହିତ୍ୟରେ ମାର୍ଜିତ ଭାଷା ଓ ଭାବର ପ୍ରବର୍ତ୍ତକ । ଏହି ଉତ୍କଳସାହିତ୍ୟ ପତ୍ରିକା ସାହାଯ୍ୟରେ ବିଶ୍ୱନାଥ ଓଡ଼ିଶାରେ ବହୁ ଲେଖକ ଓ ସାହିତ୍ୟିକ ସୃଷ୍ଟି କରି ଜାତିର ପ୍ରଭୂତ କଲ୍ୟାଣ ସାଧନ କରି ଯାଇଅଛନ୍ତି । ତାଙ୍କ ରଚିତ 'ବିବିଧ ପ୍ରବନ୍ଧ' ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଖଣ୍ଡିଏ ଆଦର୍ଶ ଗଦ୍ୟ ଗ୍ରନ୍ଥ ଅଟେ । ସମାଲୋଚକରୂପେ ବିଶ୍ୱନାଥଙ୍କ ସ୍ଥାନ ଉତ୍କଳ ସାହିତ୍ୟ-କ୍ଷେତ୍ରରେ ଅଦ୍ୱିତୀୟ ଥିଲା । କଟକର ଉତ୍କଳ ସାହିତ୍ୟ-ସମାଜ ର ପ୍ରତିଷ୍ଠାକାଳରୁ ସେ ତହିଁର ଜଣେ ବିଶିଷ୍ଟ କର୍ମୀ ଥିଲେ । ତାଙ୍କ ପ୍ରତିଷ୍ଠିତ ଉତ୍କଳସାହିତ୍ୟ ପ୍ରେସ୍ ଉତ୍କଳରେ ଗୋଟିଏ ବିଶିଷ୍ଟ ମୁଦ୍ରଣଶାଳାରୂପେ ପରିଗଣିତ ହେଉଅଛି । ଅସହଯୋଗ ଆନ୍ଦୋଳନର ଅପକାରିତା ପ୍ରଚାରାର୍ଥ ପ୍ରତିଷ୍ଠିତ ହୋଇଥିବା 'ସତ୍ୟସମାଚାର' ସମ୍ବାଦପତ୍ରର ସେ ଓ ଏ ଭାଷାକୋଷର ସଂଗ୍ରାହକ ଯୁଗ୍ମ ସମ୍ପାଦକ ଥିଲେ ।

ବିଶ୍ୱନାଥ ନବଯୁଗରେ ଓଡ଼ିଶାର ଜଣେ ପ୍ରଧାନ ବକ୍ତା ଥିଲେ । ବକ୍ତୃତା ମଣ୍ଡପରେ ତାଙ୍କର ଭାବମୟୀ ଅନର୍ଗଳ ବକ୍ତୃତା ଯେ ଶୁଣିଅଛନ୍ତି, ସେ ମୁଗ୍ଧ ନ ହୋଇ ରହି ପାରି ନାହାନ୍ତି । ଏକାନ୍ତ ଈଶ୍ୱରନିଷ୍ଠା, ସାହିତ୍ୟସାଧନା, ସ୍ୱାଧୀନ ମତବାଦ ପାଇଁ ବିଶ୍ୱନାଥ ସମସାମୟିକ ଭଦ୍ରମଣ୍ଡଳୀରେ ନାନା ଭାବରେ ସମ୍ମାନିତ ହେଉଥିଲେ । ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ମଧ୍ୟ ବିହାର ଓଡ଼ିଶା କାଉନ୍‌ସିଲରେ ତାଙ୍କୁ ସଦସ୍ୟରୂପେ ମନୋନୀତ କରିଥିଲେ । ସାଧାରଣ କର୍ମକ୍ଷେତ୍ରରେ ବିଶ୍ୱନାଥଙ୍କ ଉତ୍ସାହ ଓ ସାହାଯ୍ୟ ଅନନ୍ୟସାଧାରଣ ଥିଲା । ସେ ମୃତ୍ୟୁ ପର୍ଯ୍ୟନ୍ତ ଉତ୍କଳ ବ୍ରାହ୍ମ ସମାଜର ଆଚାର୍ଯ୍ୟ ଥିଲେ । ଏହି ଭାଷାକୋଷର ପ୍ରକାଶରେ ବିଶ୍ୱନାଥହିଁ ଜଣେ ବିଶିଷ୍ଟ ଉତ୍ସାହଦାତା ଓ ପୃଷ୍ଠପୋଷକ ଥିଲେ । ତାଙ୍କ ଠାରୁ ଆନ୍ତରିକ ସହାନୁଭୂତି ପାଇ ନ ଥିଲେ ଭାଷାକୋଷର ମୁଦ୍ରଣ ଏପରି ଦ୍ରୁତଗତିରେ ଅଗ୍ରସର ହୋଇ ପାରି ନ ଥାନ୍ତା । ଏହାର ସଂଗ୍ରାହକ ନାନାଭାବରେ ତାଙ୍କ ନିକଟରେ ଋଣୀ । ଗତ ୧୯୩୪ ମସିହା ଅକ୍ଟୋବର ମାସ ୧୯ ତାରିଖ ସକାଳେ ସେ ପ୍ରାୟ ୭୦ ବର୍ଷ ବୟସରେ ଇହଧାମ ତ୍ୟାଗ କରି ଗଲେ ।]

**ବିଶ୍ୱନାଥ ଖୁଣ୍ଟିଆ**—ଦେ. ବି—ଓଡ଼ିଆ ବିଚିତ୍ରରାମାୟଣ ପଦ୍ୟ ଗ୍ରନ୍ଥର Biswanātha khuṇṭiā ରଚୟିତା କବି—Name of an Oriya poet. [ଦ୍ର—ଏହାଙ୍କର ବାସସ୍ଥାନ ପୁରୀ ସହର; ଏ ରାଜା ଦିବ୍ୟସିଂହ ଦେବ (ଖ୍ରୀ.୧୬୯୨—୧୭୨୦)ଙ୍କ ସମକାଳୀନ ଥିଲେ । ଏହାଙ୍କ ରଚିତ ଓଡ଼ିଆ ବିଚିତ୍ର ରାମାୟଣର ଭାଷା ସରଳ ଓ ମଧୁର; ଛନ୍ଦମାନ ସୁଲଳିତ । ଏ ଭଞ୍ଜୀୟ ଯୁଗର କବି ଥାଇ ମଧ୍ୟ ଏହାଙ୍କ ଗ୍ରନ୍ଥରେ ଆଦିରସକୁ ପ୍ରଶ୍ରୟ ଦେଇ ନାହାନ୍ତି । ଉତ୍କଳରେ ସ୍ଥାନେ ସ୍ଥାନେ ଯେଉଁ "ରାମନବମୀ" ଯାତ୍ରା ଅଭିନୀତ ହୁଏ, ସେଥିରେ ଏହି ବିଚିତ୍ର ରାମାୟଣର ଛାନ୍ଦଗୁଡ଼ିକ ରାଗରାଗିଣୀ ସହିତ ବୋଲାଯାଏ ।]

**ବିଶ୍ୱନାଥ ପାଟଯୋଷୀ**—ଦେ. ବି.—(ନାମ)—ଊଷା ପରିଣୟ ନାଟକର Biswanātha pāṭajoshī ରଚୟିତା ଓଡ଼ିଆ କବି (ଜଗବନ୍ଧୁ, ପ୍ରାଚୀନ ଉତ୍କଳ)—Name of the author of the Oria drama Ushā Pariṇaya.

**ବିଶ୍ୱନାଥ ମହାପାତ୍ର**—ଦେ. ବି.—( ନାମ )—ଓଡ଼ିଶାର ରାଜା Biswanātha mahāpātra ପୁରୁଷୋତ୍ତମ ଦେବ ( ଖ୍ରୀ—( ବିଶ୍ୱନାଥ କବିରାଜ—ଅନ୍ୟରୂପ ) ୧୪୭୨—୧୪୯୭ ) ଙ୍କ ରାଜସଭାର ପଣ୍ଡିତ—Name of the Oriya author of Sāhitya Darpaṇa, an authoritative Sanscrit work on Rhetoric. [ଦ୍ର—ଏ ଭାରତ-ବର୍ଷରେ ପ୍ରାମାଣ୍ୟ ସଂସ୍କୃତ ଅଲଙ୍କାର ସମ୍ବନ୍ଧୀୟ ଗ୍ରନ୍ଥରୂପେ ଆଦୃତ ସାହିତ୍ୟଦର୍ପଣର ରଚୟିତା ।]

**ବିଶ୍ୱନିନ୍ଦକ**—ସଂ. ବିଣ. ପୁଂ—(ଆଧୁନିକ ପ୍ରୟୋଗ)—(ବିଶ୍ୱ+ନିନ୍ଦ୍ ଧାତୁ Biswanindaka =ନିନ୍ଦା କରିବା+କର୍ତ୍ତୃ. ଅକ )—ଯେ (ବିଶ୍ୱନିନ୍ଦିକା—ସ୍ତ୍ରୀ) ପୃଥିବୀର ସମସ୍ତ ବିଷୟକୁ ନିନ୍ଦା କରେ—(ବିଶ୍ୱନିନ୍ଦୁକ—ଅଶୁଦ୍ଧ ଦେଶଜ ରୂପ) Finding fault with everything; misanthropic. ସଂ. ବି.—ବିଶ୍ୱଜନନିନ୍ଦାକାରୀ ବ୍ୟକ୍ତି—A misanthrope.

**ବିଶ୍ୱନିନ୍ଦକତା**—ସଂ. ବି.—(ଆଧୁନିକ ପ୍ରୟୋଗ)—(ବିଶ୍ୱନିନ୍ଦକ+ଭାବ.ଥି. Biswanindakatā ତା)—ସମଗ୍ର ଜଗତକୁ ନିନ୍ଦା କରିବା (ବିଶ୍ୱନିନ୍ଦା, ବିଶ୍ୱନିନ୍ଦା ବୃତ୍ତି—ଅନ୍ୟରୂପ) ସ୍ୱଭାବ—Misanthropy.

**ବିଶ୍ୱନିୟନ୍ତା**—ସଂ. ବିଣ. ଓ ବି. ପୁଂ—(ବିଶ୍ୱ+ନିୟନ୍ତୃ; ୧ମା. ୧ବ)—Biswaniyantā ବ୍ରହ୍ମାଣ୍ଡର ନିୟାମକ—Regulator of the (ବିଶ୍ୱନିୟନ୍ତ୍ରୀ—ସ୍ତ୍ରୀ) universe.

**ବିଶ୍ୱପର୍ଣ୍ଣୀ**—ସଂ. ବି. ସ୍ତ୍ରୀ—ଭୂମ୍ୟାମଲକୀ; ଭୁଇଁଅଁଳା—Biswaparṇṇī A kind of herbarious plant.

**ବିଶ୍ୱପା**—ସଂ.ବି. ପୁଂ (ବିଶ୍ୱ+ପା ଧାତୁ=ପାଳନ କରିବା+କର୍ତ୍ତୃ.ଅ+ଆ) Biswapā ୧ । ବିଶ୍ୱର ପାଳନକର୍ତ୍ତା; ପରମେଶ୍ୱର—1. The sustainer, or nourisher of the

universe; God. ୨ । ସୂର୍ଯ୍ୟ—2. The sun. ୩ । ଚନ୍ଦ୍ର—3. The moon. ୪ । ଅଗ୍ନି—4. Fire.

**ବିଶ୍ୱପାତା**—ସଂ. ବି. ପୁଂ (୬ଷ୍ଠୀ ତତ୍; ବିଶ୍ୱ+ପା+ତୃ; ୧ମା. ୧ବ)—Biśwapātā ସୃଷ୍ଟିପାଳନକର୍ତ୍ତା; ଈଶ୍ୱର—God, the sustainer of the universe. (ବିଶ୍ୱପାଳକ, ବିଶ୍ୱପିତା—ଅନ୍ୟରୂପ)

**ବିଶ୍ୱପୂଜ୍ୟ**—ସଂ. ବିଣ. ପୁଂ (୩ୟା ତତ୍; ବିଶ୍ୱ+ପୂଜ୍ୟ)—ଜଗତରେ Biśwapūjya ସର୍ବତ୍ର ପୂଜ୍ୟ—Adored throughout the world. (ବିଶ୍ୱବନ୍ଦ୍ୟ—ଅନ୍ୟରୂପ) (ବିଶ୍ୱପୂଜ୍ୟା, ବିଶ୍ୱବନ୍ଦ୍ୟା—ସ୍ତ୍ରୀ)

**ବିଶ୍ୱପ୍ରପଞ୍ଚ**—ସଂ. ବି (୬ଷ୍ଠୀ ତତ୍; ବିଶ୍ୱ+ପ୍ରପଞ୍ଚ=ସଂସାର)—Biśwaprapañcha ସମଗ୍ର ସଂସାର—The whole universe or creation. (ଉ—ବିଶ୍ୱପ୍ରପଞ୍ଚରେ ଏଡ଼େ ସୁସଞ୍ଚରେ ସୌନ୍ଦର୍ଯ୍ୟ ଅନ ବି । ଭଞ୍ଜ. ବୈଦେହୀଶବିଳାସ । )

**ବିଶ୍ୱ ପ୍ରଯତ୍ନ**—ସଂ.ବି (ଆଧୁନିକ ପ୍ରୟୋଗ)—ମହତୀ ଚେଷ୍ଟା; ଅତ୍ୟନ୍ତ ଯତ୍ନ—Biśwa prajatna Great attempt.

**ବିଶ୍ୱପ୍ରୀତି**—ସଂ. ବି (ବିଶ୍ୱ+ପ୍ରୀତି)—୧ । ପୃଥିବୀର ସମସ୍ତ ଜୀବ ଓ Biśwapriti ବସ୍ତୁ ପ୍ରତି ସ୍ନେହ—1. Love of the whole creation. ୨ । ବିଶ୍ୱଜନୀନ ମୈତ୍ରୀ—2. Universal friendship. (ବିଶ୍ୱପ୍ରେମ—ଅନ୍ୟରୂପ)

**ବିଶ୍ୱପ୍ରେମିକ**—ସଂ. ବିଣ. ପୁଂ (ବିଶ୍ୱ+ପ୍ରେମିକ)—ଯେ ସମଗ୍ର ବିଶ୍ୱକୁ Biśwapremika ସ୍ନେହ କରେ—Loving the whole universe. (ବିଶ୍ୱପ୍ରେମୀ—ଅନ୍ୟରୂପ) (ବିଶ୍ୱପ୍ରେମିକା—ସ୍ତ୍ରୀ)

**ବିଶ୍ୱପ୍ସା**—ସଂ. ବି (ବିଶ୍ୱ+ପ୍ସା ଧାତୁ=ଖାଇବା+ଅଚ୍; ୧ମା. ୧ବ)—Biśwapsā ୧ । (ସର୍ବଭକ୍ଷକ) ଅଗ୍ନି—1. Fire (personified). ୨ । ସୂର୍ଯ୍ୟ—2. The sun ୩ । ଚନ୍ଦ୍ର—3. The moon. ୪ । ଦେବ—4. A deity; a god. ୫ । ବିଶ୍ୱକର୍ମା—5. The divine architect.

**ବିଶ୍ୱବଞ୍ଚକ**—ସଂ. ବିଣ ଓ ବି (ବିଶ୍ୱ+ବଞ୍ଚକ)—ଯେ ସମସ୍ତଙ୍କୁ ପ୍ରତାରଣା Biśwabañchaka କରେ; ଭଣ୍ଡଶିରୋମଣି—One who cheats the whole world. (ବିଶ୍ୱଭଣ୍ଡ—ଅନ୍ୟରୂପ)

**ବିଶ୍ୱବାସୀ**—ସଂ. ବିଣ. ପୁଂ (ବିଶ୍ୱ+ବସ୍ ଧାତୁ=ବାସ କରିବା+କର୍ତ୍ତୃ. ଣିନ୍)—ଜଗଦ୍‌ବାସୀ—Living in the Biśwabāsi world. ସଂ. ବି. ପୁଂ—ଜଗତର ସମସ୍ତ ଜୀବ; ଜୀବଜଗତ—The animal world. (ବିଶ୍ୱବାସିନୀ—ସ୍ତ୍ରୀ)

**ବିଶ୍ୱବିଦ୍ୟାଳୟ**—ସଂ. ବି (ଆଧୁନିକ ପ୍ରୟୋଗ)—ଉଚ୍ଚଶିକ୍ଷାର କେନ୍ଦ୍ର-Biśwabidyālaya ସ୍ଥଳ; ଜଗତର ସମସ୍ତ ବିଦ୍ୟା ଶିଖିବାର ସ୍ଥାନ—University.

[ ଦ୍ର—ଏଣ୍ଟ୍ରାନ୍ସ୍ ବା ମାଟ୍ରିକ୍ୟୁଲେସନ୍ ବା ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଶିକ୍ଷାର୍ଥୀ ବିଶ୍ୱବିଦ୍ୟାଳୟରେ ପ୍ରବେଶ ଲାଭ କରେ; କ୍ରମଶଃ ଏଫ୍. ଏ. ବା ଆଇ. ଏ., ବି. ଏ., ଏମ୍. ଏ. ଓ ଡାକ୍ତର ଆଦି ଉପାଧି ଲାଭ କରେ ଏବଂ ଜ୍ଞାନର ଯେଉଁ ଶାଖା ଅଲୋଚନା କରିବାକୁ ଛାତ୍ର ଇଚ୍ଛା କରେ, ବିଶ୍ୱବିଦ୍ୟାଳୟର ସେହି ଶାଖାରେ ସେ ଅଧ୍ୟୟନ କରିପାରେ । ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ସେମାନଙ୍କ ଇଲାକା—

୧ । କଲିକତା ବିଶ୍ୱବିଦ୍ୟାଳୟ—ବଙ୍ଗ ପ୍ରଦେଶ, ଆସାମ ଓ ନିକଟବର୍ତ୍ତୀ ଦେଶୀୟ ରାଜ୍ୟସମୂହ । ୨ । ବମ୍ବେ ବିଶ୍ୱବିଦ୍ୟାଳୟ—ବମ୍ବେ ପ୍ରଦେଶ ଓ ନିକଟବର୍ତ୍ତୀ ଦେଶୀୟ ରାଜ୍ୟମାନ । ୩ । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ—ମାନ୍ଦ୍ରାଜ ପ୍ରଦେଶ, ଅନ୍ଧ୍ରଦେଶ ଓ କୁର୍ଗ ବ୍ୟତୀତ ଅନ୍ୟ ରାଜ୍ୟମାନ । ୪ । ପଞ୍ଜାବ ବିଶ୍ୱବିଦ୍ୟାଳୟ—(ରାଜଧାନୀ ଲାହୋର) ପଞ୍ଜାବ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ବେଲୁଚସ୍ଥାନ । ୫ । ଅଲ୍ଲାହାବାଦ ବିଶ୍ୱବିଦ୍ୟାଳୟ—ଯୁକ୍ତ ପ୍ରଦେଶ, ଅଜମୀର, ମେରୱାଡ଼ । ୬ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ—ବନାରସ ଜିଲ୍ଲା ଓ ସମଗ୍ର ଭାରତ । ୭ । ମହୀଶୂର ବିଶ୍ୱବିଦ୍ୟାଳୟ—ମହୀଶୂର ରାଜ୍ୟ । ୮ । ପାଟନା ବିଶ୍ୱବିଦ୍ୟାଳୟ—ବିହାର ଓଡ଼ିଶା ଓ ନିକଟବର୍ତ୍ତୀ ରାଜ୍ୟ । ୯ । ଓସ୍‌ମାନିଆ ବିଶ୍ୱବିଦ୍ୟାଳୟ—(ସିକନ୍ଦରାବାଦ) ହାଇଦ୍ରାବାଦ ନିଜାମ ରାଜ୍ୟ । ୧୦ । ଢାକା ବିଶ୍ୱବିଦ୍ୟାଳୟ—ଢାକାଠାରୁ ୫ ମାଇଲ ବ୍ୟାସାର୍ଦ୍ଧରେ ଗୃହଆଡ଼ ଅଞ୍ଚଳ । ୧୧ । ଅଲିଗଡ଼ ବିଶ୍ୱବିଦ୍ୟାଳୟ—ଅଲିଗଡ଼ଠାରୁ ୧୦ ମାଇଲ ବ୍ୟାସାର୍ଦ୍ଧରେ ଗୃହଆଡ଼ । ୧୨ । ରେଙ୍ଗୁନ ବିଶ୍ୱବିଦ୍ୟାଳୟ—ବ୍ରହ୍ମଦେଶ । ୧୩ । ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ—ଲକ୍ଷ୍ନୌ । ୧୪ । ଦିଲ୍ଲୀ ବିଶ୍ୱବିଦ୍ୟାଳୟ—ଦିଲ୍ଲୀ । ୧୫ । ନାଗପୁର ବିଶ୍ୱବିଦ୍ୟାଳୟ—ମଧ୍ୟପ୍ରଦେଶ, ବେରାର । ୧୬ । ଅନ୍ଧ୍ର ବିଶ୍ୱବିଦ୍ୟାଳୟ—ମାନ୍ଦ୍ରାଜ ପ୍ରଦେଶର ଅନ୍ଧ୍ର ବା ତେଲୁଗୁଭାଷୀ ଅଞ୍ଚଳ । ]

**ବିଶ୍ୱବିଦ୍ୟାଳୟ ଉପାଧି**—ଦେ. ବି—ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ Biśwabidyālaya upādhi ବିଶ୍ୱବିଦ୍ୟାଳୟରୁ ମିଳିବା ଉପାଧି—বিশ্ববিদ্যালয়ের উপাধি (ଯଥା—ବି. ଏ., ଏମ୍. ଏ., ବି. ଏଲ୍) **विश्वविद्यालयका उपाधि** University titles or degrees.

[ ଦ୍ର—ଆଧୁନିକ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ସଙ୍ଗେ ଆମ ଦେଶରେ ଓ ଭାଷାରେ ଅନେକ ଗୁଡ଼ିଏ ଇଂରାଜୀ ଶବ୍ଦ ପ୍ରବେଶ କରିଅଛି । ଯଥା—ପ୍ରଫେସର୍, ଲେକଚରର୍, ଚାନ୍‌ସେଲର୍, ଭାଇସ୍ ଚାନ୍‌ସେଲର୍, ରେଜିଷ୍ଟ୍ରାର୍, କନଭୋକେସନ୍, ସିଣ୍ଡିକେଟ୍, ସିନେଟ୍, କଲେଜ୍, ସାଏନ୍‌ସ୍, ବୋର୍ଡ଼ିଙ୍ଗ, ବି. ଏ.; ଏମ୍. ଏ.; ବି. ଏଲ୍.; ବି. ଏସ୍‌ସି.; ପ୍ରିନ୍‌ସିପାଲ, ଆର୍ଟ୍‌ସ୍ ଇତ୍ୟାଦି । ]

**ବିଶ୍ୱବିଧାତା**—ସଂ. ବି (୬ଷ୍ଠୀତତ୍; ବିଶ୍ୱ+ବିଧାତୃ; ୧ମା. ୧ବ)—Biśwabidhātā ୧ । ବ୍ରହ୍ମା—1. Brahmā ୨ । ବିଭୁ; ପରମେଶ୍ୱର—2. God. (ବିଶ୍ୱବିଧ, ବିଶ୍ୱବିଧାୟୀ—ଅନ୍ୟରୂପ)

**ବିଶ୍ୱବିମୋହନ**—ସଂ. ବିଣ. ପୁଂ (ବିଶ୍ୱ+ବିମୋହନ)—ଭୁବନମୋହନ-Biśwabimohana କାରୀ—Charming the universe. (ବିଶ୍ୱବିମୋହୀ—ଅନ୍ୟରୂପ) (ବିଶ୍ୱବିମୋହିନୀ—ସ୍ତ୍ରୀ)

ବିଶ୍ୱବିଶ୍ରୁତ—ସଂ. ବିଣ ( ୭ମୀ ତତ୍; ବିଶ୍ୱ+ବିଶ୍ରୁତ )—ଭୁବନବିଖ୍ୟାତ
Biśwabiśruta Celebrated throughout the world.
(ବିଶ୍ୱବିଖ୍ୟାତ, ବିଶ୍ୱପ୍ରସିଦ୍ଧ—ଅନ୍ୟରୂପ)

ବିଶ୍ୱବିଶ୍ରୁତ କୀର୍ତ୍ତି—ସଂ. ବିଣ ( ବହୁବ୍ରୀହି; ବିଶ୍ୱବିଶ୍ରୁତ+କୀର୍ତ୍ତି )—
Biśwabiśruta kīrtti ଯାହାର କୀର୍ତ୍ତି ଜଗତ ବ୍ୟାପି ଅଛି—
(ବିଶ୍ୱବିଶ୍ରୁତଯଶାଃ—ଅନ୍ୟରୂପ) Of world-wide celebrity.

ବିଶ୍ୱବେଦାଃ—ସଂ. ବିଣ ( ବିଶ୍ୱ+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. ଅସ୍.
Biśwabedāḥ ୧ମା. ୧ବ )—ସର୍ବଜ୍ଞ—Omniscient.
ସଂ. ବି—୧ । ଋଷି—1. Sage. ୨ । ଦେବତା—
2. Deity.

ବିଶ୍ୱବୋଧ—ସଂ. ବି—ବୁଦ୍ଧଦେବ—The Buddha.
Biśwabodha

ବିଶ୍ୱବ୍ୟାପକ—ସଂ. ବିଣ. ପୁଂ (ବିଶ୍ୱ+ବ୍ୟାପକ)—ସର୍ବବ୍ୟାପୀ; ସମସ୍ତ
Biśwabyāpaka ପୃଥିବୀକୁ ଘୋଟିଥିବା; ସର୍ବତ୍ର ବ୍ୟାପିଥିବା—
(ବିଶ୍ୱବ୍ୟାପୀ—ଅନ୍ୟରୂପ) All-pervading.
(ବିଶ୍ୱବ୍ୟାପିକା, ବିଶ୍ୱବ୍ୟାପିନୀ—ସ୍ତ୍ରୀ)

ବିଶ୍ୱଭାବନ—ସଂ. ବିଣ—ସଂସାର ବିଷୟ ଯେ ଭାବେ—
Biśwabhābana Thoughtful about the world.
(ଉ—ତୁ ଯେ ଅନନ୍ତ ବପୁଧାରୀ, ହେ ବିଶ୍ୱଭାବନ ମୁରାରି । ଜଗନ୍ନାଥ. ଭାଗବତ ।)

ବିଶ୍ୱମ୍ଭର—ସଂ. ବିଣ. ପୁଂ (ବିଶ୍ୱମ୍=ବିଶ୍ୱକୁ+ଭୃ ଧାତୁ=ଭରଣ ଓ
Biśwambhara ପାଳନ କରିବା+କର୍ତ୍ତୃ. ଅ)—୧ । ବିଶ୍ୱ-
(ବିଶ୍ୱମ୍ଭରୀ—ସ୍ତ୍ରୀ) ପାଳକ—1. Sustaining the universe.
୨ । ବିଶ୍ୱର ଧାରଣକର୍ତ୍ତା—2. Holding the universe.
ସଂ. ବିଣ. ପୁଂ—୧ । ନାରାୟଣ; ବିଷ୍ଣୁ—
1. Bishṇu. ୨ । ଇନ୍ଦ୍ର—2 Indra. ଦେ. ବି. ପୁଂ—
ପୁରୁଷ ଲୋକଙ୍କୁ ଦିଆଯିବା ନାମ—A name given to males.

ବିଶ୍ୱମ୍ଭର ଦାସ—ଦେ. ବି. ( ନାମ )—ଜନୈକ ଉତ୍କଳୀୟ କବି—
Biśwambhara dāsa Name of an Oriya poet.
[ଦ୍ର—'ବିଚିତ୍ର ମହାଭାରତ' ଏହାଙ୍କ ଦ୍ୱାରା ରଚିତ । ତାରିଣୀ. ଉତ୍କଳ ସାହିତ୍ୟର ଇତିହାସ ।]

ବିଶ୍ୱମ୍ଭର ମିଶ୍ର—ଦେ. ବି. (ନାମ)—ଜନୈକ ଉତ୍କଳୀୟ କବି—
Biśwambhara miśra Name of an Oriya poet.
[ଦ୍ର—'ବିଚିତ୍ର ଭାରତ' ଏହାଙ୍କ ଦ୍ୱାରା ରଚିତ । ତାରିଣୀ. ଉତ୍କଳ ସାହିତ୍ୟର ଇତିହାସ ।]

ବିଶ୍ୱମ୍ଭରା—ସଂ. ବି. ସ୍ତ୍ରୀ (ବିଶ୍ୱମ୍ଭର+ସ୍ତ୍ରୀ. ଆ)—ପୃଥିବୀ—
Biśwambharā The earth.

ବିଶ୍ୱଯୁ(ୟୁ)—ସଂ. ବି—ବାୟୁ—
Biśwaju(yu) The wind (Apte).

ବିଶ୍ୱରୂପ—ସଂ. ବି—୧ । ମହାଭାରତୋକ୍ତ ଭଗବଦ୍‌ଗୀତାରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ
Biśwarūpa ବୁଝାଇ ଉପଦେଶ ଦେଉଥିବା ସମୟରେ ଅର୍ଜୁନଙ୍କୁ
(ବିଶ୍ୱମୂର୍ତ୍ତି—ଅନ୍ୟରୂପ) ସ୍ୱଶରୀରରେ ବିଶ୍ୱବ୍ରହ୍ମାଣ୍ଡବ୍ୟାପୀ ଯେଉଁ
ବିରାଟ ରୂପ ଦେଖାଇଥିଲେ—1. The all-pervading form which Srīkṛushṇa showed to Arjuna in the Kurukshetra war-field.
୨ । ବିଷ୍ଣୁ—2. Bishṇu. ୩ । ଅନନ୍ତ; ବାସୁକି;
ସର୍ପରାଜ—3. A name of Bāsuki. ସଂ. ବିଣ.
( ବହୁବ୍ରୀହି )—ସର୍ବତ୍ର ବିଦ୍ୟମାନ—Omnipresent;
existing everywhere. ଦେ. ବି—ଶ୍ରୀ ଚୈତନ୍ୟ
বিশ্বরূপ ଦେବଙ୍କ ଜ୍ୟେଷ୍ଠ ଭ୍ରାତା—Name of the elder
বিশ্বরূপ brother of Srī Chaitanya.

ବିଶ୍ୱରେତାଃ—ସଂ. ବି. (ବିଶ୍ୱ=ସମସ୍ତ+ରେତସ୍=ବୀଜ; ୧ମା.୧ବ)—
Biśwaretāḥ ୧ । ବ୍ରହ୍ମା—1. Brahmā. ୨ । ବିଷ୍ଣୁ—
2. Bishṇu.

ବିଶ୍ୱଶ୍ରବାଃ—ସଂ. ବି. (ବିଶ୍ୱ+ଶ୍ରବସ୍=କର୍ଣ୍ଣ; ୧ମା. ୧ବ)—ମୁନିବିଶେଷ—
Biśwaśrabāḥ Name of a sage.

ବିଶ୍ୱସନ—ସଂ. ବି. ( ବି+ଶ୍ୱସ୍ ଧାତୁ=ବିଶ୍ୱାସ କରିବା+ଭାବ.
Biśwasana ଅନ )—ବିଶ୍ୱାସ; ପ୍ରତ୍ୟୟ—
Confidence; trust.

ବିଶ୍ୱସନୀୟ—ସଂ. ବିଣ. ( ବି+ଶ୍ୱସ୍ ଧାତୁ=ବିଶ୍ୱାସ କରିବା+କର୍ମ.
Biśwasanīya ଅନୀୟ )—୧ । ବିଶ୍ୱାସଯୋଗ୍ୟ; ଯେଉଁ ବ୍ୟକ୍ତି-
(ବିଶ୍ୱସନୀୟା—ସ୍ତ୍ରୀ) ଠାରେ ବିଶ୍ୱାସ ସ୍ଥାପନ କରାଯାଇ ପାରେ—
1. Reliable. ୨ । ଯେ ବା ଯାହା ଅନ୍ୟର ମନରେ
ବିଶ୍ୱାସ ଜନ୍ମାଇ ପାରେ—2. Capable of inspiring confidence (Apte).

ବିଶ୍ୱସହା—ସଂ. ବି. (ବିଶ୍ୱ+ସହ୍ ଧାତୁ+କର୍ତ୍ତୃ. ଅ+ଆ)—୧ । ପୃଥିବୀ-
Biśwasahā 1. The earth. ୨ । ଅଗ୍ନିର ଏକ ଜିହ୍ୱା—
2 One of the tongues of fire (Apte).

ବିଶ୍ୱସାର—ସଂ. ବି. (୬ଷ୍ଠୀ ତତ୍; ବିଶ୍ୱ+ସାର=ସାରାଂଶ)—୧ । ସଂସାରର
Biśwasāra ସାର ବସ୍ତୁ—1. The essential thing in the world. ୨ । ତନ୍ତ୍ର ଗ୍ରନ୍ଥବିଶେଷ—2. The title of a Tantric treatise.

ବିଶ୍ୱସିତ—ସଂ. ବିଣ. ପୁଂ ( ବି+ଶ୍ୱସ୍ ଧାତୁ=ବିଶ୍ୱାସ କରିବା+କର୍ମ.
Biśwasita ତ )—୧ । ବିଶ୍ୱାସପାତ୍ର; ବିଶ୍ୱାସଯୋଗ୍ୟ—
(ବିଶ୍ୱସିତା—ସ୍ତ୍ରୀ) 1. Trustworthy; reliable. ୨ । ଯାହା-
ଠାରେ ବିଶ୍ୱାସ ସ୍ଥାପନ କରାଯାଇ ଥାଏ—
2. Trusted.

ବିଶ୍ୱସୃକ୍—ସଂ. ବି. (ବିଶ୍ୱ+ସୃଜ୍ ଧାତୁ=ସୃଷ୍ଟି କରିବା+କର୍ତ୍ତୃ. କ୍ୱିପ୍;
Biśwasṛuk ୧ମା. ୧ବ)—୧ । ବିଧି; ବିଧାତା; ପରମେଶ୍ୱର—
(ବିଶ୍ୱସୃଜ—ଦେଶଜରୂପ) 1.The Creator; God. ୨ । ବ୍ରହ୍ମା—
2. Brahmā. (ଉ—ବିଶ୍ୱସୃଜ ବିଶ୍ୱଯାକ ଏ କପଟ କରି ବିକଳ୍ପ ଚକିତ । ଉପେ. ବୈଦେହୀଶବିଳାସ ।)

ବିଶ୍ୱସ୍ତ—ସଂ. ବି. ପୁଂ. (ବି+ଶ୍ୱସ୍ ଧାତୁ=ବିଶ୍ୱାସ କରିବା+କର୍ମ. ତ)—
Biśwasta ୧ । ବିଶ୍ୱାସପାତ୍ର; ଯାହା ଉପରେ ବିଶ୍ୱାସ ସ୍ଥାପନ କରାଯାଇ
(ବିଶ୍ୱସ୍ତା—ସ୍ତ୍ରୀ) ପାରେ—1. Reliable; trustworthy (Apte)
୨ । ଯାହାଠାରେ ବିଶ୍ୱାସ କରାଯାଇ ଥାଏ—2. Trusted
(Apte). ୩ । (ବି+ଶ୍ୱସ୍ ଧାତୁ+କର୍ତ୍ତୃ. ତ) ଯେ ଅନ୍ୟ
ଉପରେ ବିଶ୍ୱାସ କରେ) ବିଶ୍ୱାସୀ—3. Confiding; re-

lying (Apte). ୪ । ନିର୍ଭୟ; ନିଶ୍ଚିନ୍ତ—4. Fearless; confident (Apte).

**ବିଶ୍ୱସ୍ତ ସୂତ୍ରରେ**—ଦେ. କ୍ରି. ବିଣ—୧ । ବିଶ୍ୱାସଯୋଗ୍ୟ ଭାବରେ—
Biswasta sūtrare 1. Confidentially. ( ଯଥା—ମୁ
विश्वस्त सूत्रे ଏ ବିଷୟ ବିଶ୍ୱସ୍ତ ସୂତ୍ରରେ ଅବଗତ ହେଲି) । ୨ । ଗୁପ୍ତ
**विश्वस्त सूत्रसे** ଭାବରେ—2. Secretly.
(ବିଶ୍ୱସ୍ତ ସୂତ୍ରେ—ଅନ୍ୟରୂପ)

**ବିଶ୍ୱସ୍ତା**—ସ. ବି. ସ୍ତ୍ରୀ. (ବି=ବିଫଳରେ+ଶ୍ୱସ୍ ଧାତୁ=ନିଶ୍ୱାସ ପକାଇବା
Biswastā +ଭାବ. ତ+ସ୍ତ୍ରୀ.ଆ; ଯେ ବିଫଳରେ ନିଶ୍ୱାସ ପକାଉଥାଏ)—ବିଧବା—A widow (Apte).

**ବିଶ୍ୱସ୍ରଷ୍ଟା**—ସ.ବି.-(୬ଷ୍ଠୀତତ୍; ବିଶ୍ୱ+ସୃଷ୍ଟ୍)--ସୃଷ୍ଟିକର୍ତ୍ତା; ପରମେଶ୍ୱର—
Biswasrashtā God; the Creator.

**ବିଶ୍ୱା**—ଦେ. ବି—(ସ. ବିଶ୍ୱ=ପରିମାଣବିଶେଷ)—୧ । (ଭୂମି ପରିମାଣ)
Biswā ଗୁଣ୍ଠର ୧୬ ଭାଗରୁ ଏକ ଭାଗ; ମାଣକର ୪୦୦ ଭାଗରୁ
ଏକଭାଗ—1. $\frac{1}{16}$ of a guṇthā; $\frac{1}{400}$ of an
विश्वा **विस्वह; विस्वा** acre. ୨ । (ଦ୍ରବ୍ୟର ଓଜନ) ସେରର
୧୬ ଭାଗରୁ ଏକଭାଗ ବା ମହଣର ୬୪୦ ଭାଗରୁ ଏକ
ଭାଗ; ଛଟାଙ୍କି—2. $\frac{1}{16}$ of a seer. ୩ । (ଶସ୍ୟ-
ପରିମାଣ) ଗଉଣୀର ୧୬ ଭାଗରୁ ଏକ ଭାଗ ବା ଭରଣର
୨୫୬୦ ଭାଗରୁ ଏକ ଭାଗ—3. $\frac{1}{16}$ of a gauṇi.
୪ । (ମୁଦ୍ରା ପରିମାଣ) ପାହୁଲାର ୧୬ ଭାଗରୁ ଏକଭାଗ—
4. $\frac{1}{16}$ of a pie. ୫ । (କଉଡ଼ି ପରିମାଣ) ଏକ କଡ଼ା
କଉଡ଼ିର ଚତୁର୍ଥାଂଶ—5. $\frac{1}{4}$ of a courie. ୬ ।
(ସମଷ୍ଟି ପରିମାଣ) କୌଣସି ପୂର୍ଣ୍ଣ ପଦାର୍ଥକୁ ଏକ କାହାଣ
କଳ୍ପନା କରାଯାଇ ତହିଁର ୧୬ ଭାଗରୁ ୧ ଭାଗ—6. $\frac{1}{16}$
of any whole thing. ୭ । (ଜହ୍ନରିମାନଙ୍କର ସୁନା
ମାଳା ଆଦିର ଓଜନ) ୧ ରତିର ୨୦ ଭାଗରୁ ୧ ଭାଗ—
7. $\frac{1}{20}$ of a Rati ( goldsmith's standard of weight)

**ବିଶ୍ୱାଏ**—ଦେ. କ୍ରି. ବିଣ—୧ । ଏକ ବିଶ୍ୱା ମାତ୍ର ପରିମାଣରେ—1. In
Biswāe the quantity of a Biswā. ୨ । ଟିକିଏ ମାତ୍ର—
एकआना **एकविस्वा** 2. A little. [ ଉ—ବୋଲେ ଖଡ୍ଗ
ପ୍ରହାରୁ ଖଡ୍ଗ ପରସ୍ପରେ; ବିଶ୍ୱାଏ ନ ଭେଦି ଦେହେ
ବିକମ୍ପିତ ହୋଏ । ଭଞ୍ଜ—ବୈଦେହୀଶବିଳାସ ।]

**ବିଶ୍ୱାଚୀ**—ସଂ. ବି ସ୍ତ୍ରୀ—( ବିଶ୍ୱ+ଅଞ୍ଚ୍ ଧାତୁ=ଗମନ କରିବା+
Biswāchī କ୍ୱିପ୍+ସ୍ତ୍ରୀ. ଈ)—୧ । ଜଣେ ଅପ୍ସରା—1. Name
of a heavenly nymph. ୨ । ବାହୁରୋଗ-
ବିଶେଷ—2. A kind of disease affecting
the arm.

**ବିଶ୍ୱାତ୍ମା**—ସଂ ବି—(୬ଷ୍ଠୀ ତତ୍; ବିଶ୍ୱ+ଆତ୍ମନ୍; ୧ମା. ୧ବ)—୧ ।
Biswātmā ବ୍ରହ୍ମା—1. Brahmā. ୨ । ବିଷ୍ଣୁ—2.
Bishṇu. ୩ । ମହେଶ୍ୱର—3. Siba. ୪ ।
ପରମେଶ୍ୱର—4. God

**ବିଶ୍ୱାବସୁ**—ସଂ. ବି. ପୁଂ—(ବହୁବ୍ରୀହି; ବିଶ୍ୱ=ବହୁତ+ବସୁ=ଧନ)—
Biswābasu ୧ । ଗନ୍ଧର୍ବବିଶେଷ—1. Name of a
gandharba.
ସଂ. ବି. ସ୍ତ୍ରୀ—୨ । ରାତ୍ରି—2. The night. ଦେ.ବି—
ଦୋକାନରେ ପଣ୍ୟଦ୍ରବ୍ୟ ଓଜନ କରିବାପାଇଁ ବ୍ୟବହୃତ
(ସେର, ଅଧସେର, ପାଅ, ଛଟାଙ୍କି, ରତି ଓ କାଣି ଆଦି
ଓଜନର) ବଟକରା—The standard weight
used in weighing merchandise. [ଉ—
ବଣିକାର ବସ୍ତୁ ସ୍ୱର୍ଣ୍ଣ ପ୍ରଭାତି; ବିଶ୍ୱାବସୁ ଛନ୍ତି ସବୁ ଜାଣନ୍ତି ।
ଭଞ୍ଜ—ବୈଦେହୀଶ ବିଳାସ ।]

**ବିଶ୍ୱାମିତ୍ର**—ସଂ. ବି (ବହୁବ୍ରୀହି; ବିଶ୍ୱ=ସମଗ୍ର ସଂସାର+ମିତ୍ର=ବନ୍ଧୁ; ଅ
Biswāmitra ସ୍ଥାନରେ ଆ; କିମ୍ବା ବିଶ୍ୱ+ଅମିତ୍ର)—ଗାଧିରାଜାଙ୍କ
ପୁତ୍ର; ମୁନିବିଶେଷ—Name of a sage.

[ ଉ—ବିଶ୍ୱାମିତ୍ର ବୋଇଲେ ଅମିତ୍ର ମୋ ଦେବେ,
ହେବାରୁ ବିଶ୍ୱାମିତ୍ର ବୋଲନ୍ତି ସର୍ବେ । କୃଷ୍ଣସିଂହ—
ମହାଭାରତ. ଅନୁଶାସନ । ] [ ବ୍ର—ଏ କାନ୍ୟକୁବ୍ଜର
ଗାଧିରାଜାଙ୍କ ପୁତ୍ର ଥିଲେ । ଦିନେ ଏ ମୃଗୟାର୍ଥ ଯାଇ
ବଶିଷ୍ଠଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ବଶିଷ୍ଠଙ୍କ
କାମଧେନୁକୁ ଦେଖି ଲୋଭାକୃଷ୍ଟ ହୋଇ ତାହାକୁ କିଣିବ
ପାଇଁ ବଶିଷ୍ଠଙ୍କୁ ପ୍ରଭୂତ ଅର୍ଥ ମାଗିଲେ । ବଶିଷ୍ଠ ସେଥିରେ
ଅସ୍ୱୀକୃତ ହେବାରୁ ବିଶ୍ୱାମିତ୍ର ଉକ୍ତ ଗାଭୀକୁ ବଳପୂର୍ବକ
ନେବାକୁ ବସିଲେ; କିନ୍ତୁ ବଶିଷ୍ଠଙ୍କ ତପଃପ୍ରଭାବରୁ ପରାଜିତ
ହେଲେ । ଏଥିରୁ ସେ ବ୍ରହ୍ମତେଜର ମହିମା ଅବଗତ ହୋଇ
କଠୋର ତପସ୍ୟାରେ ରତ ହେଲେ ଓ ତପସ୍ୟାର ଫଳରେ
କ୍ରମଶଃ ରାଜର୍ଷି, ଋଷି, ମହର୍ଷି ଓ ବ୍ରହ୍ମର୍ଷି ଆଖ୍ୟା ପ୍ରାପ୍ତ
ହେଲେ ଏବଂ ଶେଷରେ ବଶିଷ୍ଠ ତାଙ୍କୁ ବ୍ରହ୍ମର୍ଷି ନାମରେ
ଡାକିଲେ । ଏ ବଶିଷ୍ଠଙ୍କ ଶତ ପୁତ୍ରଙ୍କୁ ହତ୍ୟା କରିଥିଲେ;
ତଥାପି ବଶିଷ୍ଠ ତହିଁରେ କ୍ରୁଦ୍ଧ ହୋଇ ନ ଥିଲେ । ତ୍ରିଶଙ୍କୁ
ନାମକ ଜଣେ ରାଜାଙ୍କୁ ଦେବତାମାନେ ପାତାଳକୁ ଖସାଇ
ପକାଉଥିଲେ; ବିଶ୍ୱାମିତ୍ର ନିଜର ତପଃପ୍ରଭାବରେ ତାଙ୍କୁ ପତନରୁ
ରକ୍ଷା କରି ଆକାଶର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖାଇଲେ ।
ବିଶ୍ୱାମିତ୍ର କିଛି କାଳ ଯୁବକ ରାମଚନ୍ଦ୍ରଙ୍କ ପରାମର୍ଶଦାତା
ଓ ସଙ୍ଗୀ ଥିଲେ ଏବଂ ତାଙ୍କୁ କେତେଗୁଡ଼ିଏ ମନ୍ତ୍ର ଓ ମନ୍ତ୍ରପୂତ
ଅସ୍ତ୍ର ପ୍ରଦାନ କରିଥିଲେ । (Apte). ବିଶ୍ୱାମିତ୍ରଙ୍କ ବ୍ରହ୍ମା ଋଷିରୂପ
ରୂପରେ ସୃଷ୍ଟି କରିଥିଲେହେଁ ସେ ତପସ୍ୟା ବଳରେ ବହ୍ମାଙ୍କ
ନିୟମକୁ ବଦଳାଇ ପାରି ବ୍ରାହ୍ମଣ ହୋଇଥିଲେ । ସମ୍ଭବତଃ
ଏହି କାରଣରୁ ଲୋକଙ୍କ ମଧ୍ୟରେ କଥିତ ଅଛି ଯେ—
ବ୍ରହ୍ମା ଯାହା ସର୍ଜନା କରିଥିଲେ, ବିଶ୍ୱାମିତ୍ର ତହିଁର ଓଲଟା
କଥାମାନ ସୃଷ୍ଟି କଲେ । ଏଥିପାଇଁ ବିଧାତାଙ୍କ ନିୟମର
ବହିର୍ଭୂତ ବିଷୟକୁ ବିଶ୍ୱାମିତ୍ରୀ ସର୍ଜନା ବୋଲି ଲୋକେ
କହିଥାଆନ୍ତି । ଯଥା—ସ୍ତ୍ରୀ ସଙ୍ଗେ ପୁରୁଷ ସହବାସ କରିବା
ବିଷୟ ବ୍ରହ୍ମା ସୃଷ୍ଟି କଲେ । ଅପ୍ରାକୃତ କାମବୃତ୍ତି ଚରିତାର୍ଥ-
କରଣ ( ପୁଂମୈଥୁନ; ହସ୍ତମୈଥୁନାଦି ) ବିଶ୍ୱାମିତ୍ର ସୃଷ୍ଟି

କଲେ ବୋଲି ଲୋକେ କହୁଥାଆନ୍ତି । ] ଦେ. ବିଣ. ( ବିଶ୍ୱ + ଅମିତ୍ର )—ଜଗଦ୍‌ବୈରୀ—An enemy of the universe. [ ଉ—ବିଶ୍ୱାମିତ୍ର ସୁବାହୁର ବିନାଶ କଲୁର—ଭଞ୍ଜ. ବୈଦେହୀଶବିଳାସ । ]

**ବିଶ୍ୱାମିତ୍ର ଜୀମୂତ**—ଦେ. ବି—କୁହୁଡ଼ି—Mist; fog. [ ଉ— Biswāmitra jīmūta ଦିନେ ମୁଁ ଦେଖି ବିଶ୍ୱାମିତ୍ରଜୀମୂତ— ଭଞ୍ଜ. ପ୍ରେମସୁଧାନିଧି । ] [ ଦ୍ର—ପୁରାଣ ମତରେ ପରାଶର ଋଷି ବିବାହକାଳରେ ଦାସରାଜକନ୍ୟା ମତ୍ସ୍ୟଗନ୍ଧାଙ୍କ ସଙ୍ଗେ ରମଣ କରିବାବେଳେ ଲୋକଚକ୍ଷୁର ଅଦୃଶ୍ୟ ହେବା ପାଇଁ କୁହୁଡ଼ି ସୃଷ୍ଟି କରିଥିଲେ ।]

**ବିଶ୍ୱାମିତ୍ର ବ୍ରାହ୍ମଣ**—ପ୍ରାଦେ. ( ଗଞ୍ଜାମ ) ବି—ମାସ୍ତାନ ବ୍ରାହ୍ମଣଜାତୀୟ Biswāmitra brāhmana ନୀଚ ବ୍ରାହ୍ମଣବିଶେଷ—A class of low caste Brāhmanas. [ ଦ୍ର—ଏମାନଙ୍କର ପଇତା ଥାଏ । ମାତ୍ର ଏମାନେ ଶୂଦ୍ରବତ୍ ଆଚରଣ କରନ୍ତି ।]

**ବିଶ୍ୱାମିତ୍ର(ତ୍ରି) ସର୍ଜନ(ନା)**—ଦେ. ବି—ବିଧାତାଙ୍କ ସୃଷ୍ଟିର ନିୟମବହିର୍ଭୂତ Biswāmitra(tri) sarjana(nā) କାର୍ଯ୍ୟ—Any extra- ( ବିଶ୍ୱାମିତ୍ର ସୃଷ୍ଟି—ଅନ୍ୟରୂପ ) ordinary doing.
বিশ্বামিত্রী সর্জনা; বিশ্বামিত্রের সৃজন **विश्वामित्री सृष्टि**

**ବିଶ୍ୱାମିତ୍ରି**—ଦେ. ବିଣ ( ସଂ. ବିଶ୍ୱାମିତ୍ରୀୟ )—ବିଶ୍ୱାମିତ୍ରଙ୍କ ପରି ପ୍ରାକୃତିକ Biswāmitri ନିୟମ ବହିର୍ଭୂତ ( କାର୍ଯ୍ୟ ) · ( any act ) Done or performed in an unnatural manner. ଦେ. ବି—ଅପ୍ରାକୃତିକ ବା ପୈଶାଚିକ ପ୍ରଣାଳୀରେ ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବା ପ୍ରକ୍ରିୟା ( ଯଥା—ମୁଖମୈଥୁନ, ପୁଂମୈଥୁନ )—Unnatural modes of satisfying one's lust.

**ବିଶ୍ୱାଳ**—ଦେ. ବି.—(ସଂ. ବିଷୟପାଳ)—୧ । ମରହଟ୍ଟା ଓ ମୁସଲମାନଙ୍କ Biswāla ଅମଳର ଗ୍ରାମରକ୍ଷକ କର୍ମଚାରୀବିଶେଷ—1. Title (ବିଶୁଆଳ—ଅନ୍ୟରୂପ) of a village official during the Mahomedan and Marhatta rules. [ଦ୍ର—ଏମାନେ ଦରମା ନିମନ୍ତେ ଜାଗିର ଜମି ଭୋଗ କରୁଥିଲେ ।] ୨ । କ୍ଷତ୍ରିୟ ଓ ଖଣ୍ଡାୟତମାନଙ୍କର ଉପାଧି— ବିଶେଷ—2. Family title of some Kshatriyas and Khandāyats.

**ବିଶ୍ୱାଳସିଂହ**—ପ୍ରାଦେ.—( ଗଞ୍ଜାମ ) – ରାଜଦତ୍ତ ଉପାଧିବିଶେଷ— Biswāla sinha A title given by Rajas. (ବିଶୁଆଳ ସିଂହ—ଅନ୍ୟରୂପ)

**ବିଶ୍ୱାଳି**—ଦେ. ବିଣ.—ବିଶ୍ୱାଳକର୍ମସମ୍ବନ୍ଧୀୟ—Relating to the Biswāli service of Biswāla. ଦେ. ବି.—'ବିଶ୍ୱାଳ' (ବିଶୁଆଳି—ଅନ୍ୟରୂପ) ପଦର ବା କାର୍ଯ୍ୟ—The post or duties of a Biswāla.

**ବିଶ୍ୱାଳି ଜାଗିର**—ଦେ. ବି.—'ବିଶ୍ୱାଳ' କାର୍ଯ୍ୟର ପାରିଶ୍ରମିକ ସ୍ୱରୂପ Biswāli Jāgiri. ରାଜଦତ୍ତ ନିଷ୍କର ବୃତ୍ତି—Service land (ବିଶ୍ୱାଳ ହେତା—ଅନ୍ୟରୂପ) held by a Biswāla.

[ଦ୍ର—ବର୍ତ୍ତମାନ ଇଂରେଜ ରାଜତ୍ୱରେ ଓଡ଼ିଶାରୁ ଏହି ବିଶ୍ୱାଳପ୍ରଥା କ୍ରମଶଃ ଉଠି ଯାଉଅଛି; କିନ୍ତୁ ବିଶ୍ୱାଳି ଜାଗିରମାନ ବିଶ୍ୱାଳର ବଂଶଧରମାନେ ଭୋଗ କରୁଥିବା ପର୍ଯ୍ୟନ୍ତ ସେଥିରେ ସାଧାରଣ ହାରର ଜମାର ଅର୍ଦ୍ଧେ କର ଧାର୍ଯ୍ୟ ହୋଇଅଛି ଓ ସେ ଜମି ଯଦି ବିଶ୍ୱାଳର ବଂଶଧର ମାନଙ୍କଠାରୁ ଅନ୍ୟ ବଂଶୀୟ ବ୍ୟକ୍ତିଙ୍କ ହସ୍ତକୁ ଯାଏ, ତେବେ କ୍ରେତାମାନେ ପୂର୍ଣ୍ଣ ଜମା ରାଜସ୍ୱ ଦେବେ ଏହିପରି ଆଦେଶ ହୋଇଅଛି ।]

**ବିଶ୍ୱାସ**—ସଂ. ବି —(ବି + ଶ୍ୱସ୍ ଧାତୁ = ବିଶ୍ୱାସ କରିବା + ଭାବ. ଅ)— Biswāsa ୧ । ପ୍ରତ୍ୟୟ; ଆସ୍ଥା; ନିର୍ଭର—1. Trust; confidence; reliance. ୨ । ଶ୍ରଦ୍ଧା—2. Respect. ୩ । ଧର୍ମସମ୍ବନ୍ଧୀୟ ବିଶ୍ୱାସ—3. Religious faith. ୪ । ଧାରଣା—4. Conception; conviction. ୫ । ଆଶା—5. Hope. ଦେ. ବି—୧ । ଗୁପ୍ତକଥା— 1. Secret matter. [ଉ—ଆସ ମଇତ୍ର ମୋର ପାଶ କହିବି ଏକାନ୍ତ ବିଶ୍ୱାସ । ଗଜନିସ୍ତାରଣ । ଦେ. ବିଣ- (ସଂ. ବିଶ୍ୱାସୀ)—ବିଶ୍ୱସ୍ତ; ବିଶ୍ୱାସର ପାତ୍ର, ବିଶ୍ୱାସର ସ୍ଥଳ— Trusted [ଉ—ମୋର ବିଶ୍ୱାସ ତୁ, ଏଣୁ କହୁଛି, ଆର୍ତ୍ତି ଦେବୁ ନାନର ବେନି ବଚ୍ଛ । ଭକ୍ତଚରଣ. ମଥୁରାମଙ୍ଗଳ ।]

**ବିଶ୍ୱାସ ଉଠିବା**—ଦେ. କ୍ରି.—କୌଣସି ବ୍ୟକ୍ତିଠାରେ ଆଜି ପର୍ଯ୍ୟନ୍ତ Biswāsa uṭhibā ରଖା ଯାଇଥିବା ଆସ୍ଥାର ଲୋପ ବା ବିନାଶ- বিশ্বাস তুটে যাওয়া The loss of confidence or trust in **विश्वास टूट जाना** a person.

ବିଶ୍ୱାସ ତୁଟିଯିବା, ବିଶ୍ୱାସ ତୁଟିବା } —ଅନ୍ୟରୂପ
ବିଶ୍ୱାସ ଉଠିଯିବା, ବିଶ୍ୱାସ ବୁଡ଼ିବା }

**ବିଶ୍ୱାସ କଥା**—ଦେ. ବି —୧ । ଗୋପନୀୟ କଥା—1. Confiden- Biswāsa Kathā tial talk. ୨ । ଗୋପନୀୟ ବିଷୟ— বিশ্বাসী কথা **गुप्त बात** 2. Confidential matter

**ବିଶ୍ୱାସ କରିବା**—ଦେ. କ୍ରି—(ସଂ. ବିଶ୍ୱାସ)—୧ । କୌଣସି ବିଷୟକୁ Biswāsa karibā ମନ ମଧ୍ୟରେ ସତ୍ୟ ବୋଲି ଜାଣିବା— বিশ্বাস করা **विश्वास करना** 1. To believe a thing. (ବିଶ୍ୱାସ ରଖିବା —ଅନ୍ୟରୂପ) ୨ । କୌଣସି ବ୍ୟକ୍ତିର ସାଧୁତା ଆଦି ସମ୍ବନ୍ଧରେ ନିର୍ଭର କରିବା—2. To believe in the honesty of a person. ୩ । କୌଣସି ବ୍ୟକ୍ତିକୁ ଆପଣାର ଗୁପ୍ତ କଥା କହିବା—3. To entrust a person with one's secrets. ୪ । କୌଣସି ଧର୍ମମତରେ ଆସ୍ଥା ସ୍ଥାପନ କରିବା—4. To put faith on a religious tenet.

**ବିଶ୍ୱାସ କହିବା**—ଦେ. କ୍ରି.—କୌଣସି ବ୍ୟକ୍ତି ନିକଟରେ ଗୁପ୍ତ କଥା Biswāsa kahibā ପ୍ରକାଶ କରିବା—To speak one's বিশ্বাসীকথা বলা **गुप्तबात कहना** secrets.

ବିଶ୍ୱାସ ଖୋଲିବା, ବିଶ୍ୱାସ ଫେଇବା } —ଅନ୍ୟରୂପ
ବିଶ୍ୱାସ ଫେଡ଼ିବା, ବିଶ୍ୱାସ ଫିଟା(ଟେ)ଇବା }

ବିଶ୍ୱାସଘର(ଘ)—ଦେ· ବି—୧ । ଅଣ୍ଡକୋଷ—1. Testicles.
Biśwāsaghara(rā) ୨ । ଲିଙ୍ଗ—2. Penis. ୩ । ବିଶ୍ୱାସ-ପାତ୍ର—3. A trusted person.

ବିଶ୍ୱାସଘାତ—ସଂ· ବି (ବିଶ୍ୱାସ+ଘାତ)—ବିଶ୍ୱାସ କରୁଥିବା ବ୍ୟକ୍ତିପ୍ରତି
Biśwāsaghāta ପ୍ରତାରଣା କାର୍ଯ୍ୟ—Treachery to a
বিশ্বাসঘাতক person who trusts on you; perfidy.
**बिसवासघात** (ଉ—ତୁଳ ବିଶ୍ୱାସେ କଲେ ନାଶ, ନାହିଁ ବିଶ୍ୱାସଘାତ ଦୋଷ—ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । ) ଦେ· ବିଣ (ସଂ. ବିଶ୍ୱାସଘାତକ )—ବିଶ୍ୱାସଘାତକ—Perfidious; treacherous.

ବିଶ୍ୱାସଘାତକ—ସଂ. ବିଣ. ପୁଂ ( ବିଶ୍ୱାସ+ଘାତକ )—ଅବିଶ୍ୱାସୀ;
Biśwāsaghātaka ଯେଉଁ ଲୋକ ତାହା ଉପରେ ବିଶ୍ୱାସ କରିଥିବା ବ୍ୟକ୍ତିର ଅନିଷ୍ଟ କରେ; ଯେ ବିଶ୍ୱାସରେ ବିଷ ଦିଏ—Perfidious. ସଂ. ବି—ପ୍ରତାରକ; ବଞ୍ଚକ—A cheat.
( ବିଶ୍ୱାସଘାତୀ—ଅନ୍ୟରୂପ )
( ବିଶ୍ୱାସଘାତିକା, ବିଶ୍ୱାସଘାତିନୀ—ସ୍ତ୍ରୀ )
( ବିଶ୍ୱାସଘାତକତା[ତ୍ୱ], ବିଶ୍ୱାସଘାତିତା[ତ୍ୱ]—ବିଶେଷ୍ୟ )

ବିଶ୍ୱାସଘାତ(ତି, ତେ)କା—ଗ୍ରା. ବିଣ. ପୁଂ. ( ସଂ. ବିଶ୍ୱାସଘାତକ )—
Biśwāsaghāta(ti, te)kā ଅବିଶ୍ୱାସୀ; ବିଶ୍ୱାସଘାତକ—
বিশ্বাসঘাতক Perfidious. ଦେ. ବି—ବିଶ୍ୱାସଘାତକତା—Perfidy.
( ବିଶ୍ୱାସଘାତ[ତି, ତେ]ଣୀ—ସ୍ତ୍ରୀ )

ବିଶ୍ୱାସଜନକ—ସଂ· ବିଣ ( ବିଶ୍ୱାସ+ଜନକ )—ଯାହା ମନରେ ବିଶ୍ୱାସ
Biśwāsajanaka ଜନ୍ମାଏ—Producing belief.

ବିଶ୍ୱାସନ—ସଂ. ବି ( ବି+ଶ୍ୱସ୍ ଧାତୁ+ଭାବ. ଅନ )—ବିଶ୍ୱାସ ( ଶ୍ରି. ଶ. ) ( ଦେଖ )—Biśwāsa ( See )
Biśwāsana

ବିଶ୍ୱାସ ନାଶ—ସଂ. ବି ( ୬ଷ୍ଠୀ ତତ୍; ବିଶ୍ୱାସ+ନାଶ )—୧ । କୌଣସି
Biśwāsa nāśa ବ୍ୟକ୍ତିଠାରେ ପୂର୍ବରୁ କରାଯାଇଥିବା ପ୍ରତ୍ୟୟର ବିନାଶ ଘଟିବା—1. Loss of confidence in a person.
ବିଶ୍ୱାସଭଙ୍ଗ, ବିଶ୍ୱାସଲୋପ } ଅନ୍ୟରୂପ
୨ । ଆଶାଭଙ୍ଗ—2. Disappointment.

ବିଶ୍ୱାସ ପାତ୍ର—ସଂ. ବିଣ ( ପୁଂ ଓ ସ୍ତ୍ରୀ. ପ୍ରତି ବ୍ୟବହୃତ ) ( ୬ଷ୍ଠୀ ତତ୍;
Biśwāsa pātra ବିଶ୍ୱାସ+ପାତ୍ର )—୧ । ବିଶ୍ୱାସଯୋଗ୍ୟ—1. Trustworthy; reliable.
ବିଶ୍ୱାସଭାଜନ, ବିଶ୍ୱାସଭୂମି, ବିଶ୍ୱାସସ୍ଥାନ } ଅନ୍ୟରୂପ
୨ । ଯାହାକୁ ବିଶ୍ୱାସ କରାଯାଇଥାଏ—2. Trusted.

ବିଶ୍ୱାସପ୍ରଦ—ସଂ. ବିଣ—ଯାହା ବିଶ୍ୱାସ ଜନ୍ମାଏ—
Biśwāsaprada Producing belief.

ବିଶ୍ୱାସଯୋଗ୍ୟ—ସଂ. ବିଣ ( ବିଶ୍ୱାସ+ଯୋଗ୍ୟ )—୧ । ଯେଉଁ ବ୍ୟକ୍ତିକୁ
Biśwāsajogya ବିଶ୍ୱାସ କରାଯାଇ ପାରେ—1. Fit to be trusted; reliable; trustworthy ( person ). ୨ । ଯେଉଁ କଥାକୁ ବିଶ୍ୱାସ କରାଯାଇ ପାରେ—2. Reliable ( matter ).
( ବିଶ୍ୱାସାର୍ହ—ଅନ୍ୟରୂପ )

ବିଶ୍ୱାସରା—ପ୍ରାଦେ. (ଗଡ଼ଜାତ) ବି—ରାଜାଙ୍କ ଖାଦ୍ୟପାନ ଆଦି ତତ୍ତ୍ୱା-
Biśwāsarā ବଧାରଣ କରିବା କର୍ମଚାରୀ—Title of a servant who supervises and tests Raja's food and drink.
ବିଶ୍ୱାସ ରାଏ, ବିଶ୍ୱାସ-ରାୟ, ବିଶାସରା } ଅନ୍ୟରୂପ

ବିଶ୍ୱାସରେ ବିଷ ଦେବା—ଦେ. କ୍ରି—୧ । ବିଶ୍ୱାସଘାତକତା କରିବା—
Biśwāsare bisha debā 1. To act perfidiously.
বিশ্বাসে বিষ দেওয়া ୨ । ଯେଉଁ ଲୋକ କାହାର ଉପରେ ବିଶ୍ୱାସ ସ୍ଥାପନ
**बिसवासमे बीस् देना** କରିଥାଏ ସେ ତାକୁ ବିଷ ପ୍ରୟୋଗ କରିବା—2. To administer poison to a person who has implicit faith on you.

ବିଶ୍ୱାସହନ୍ତା—ସଂ. ବିଣ. ପୁଂ—ବିଶ୍ୱାସଘାତକ—Perfidious.
Biśwāsahantā ( ବିଶ୍ୱାସହନ୍ତ୍ରୀ—ସ୍ତ୍ରୀ )

ବିଶ୍ୱାସିବା—ଦେ. କ୍ରି ( ପଦ୍ୟ )—ବିଶ୍ୱାସ କରିବା—
Biśwāsibā [ ଉ—ମୁଁ ମୂଢ଼ ନ ଜାଣି ଅଜ୍ଞାନେ, ବିଶ୍ୱାସି ବ୍ରହ୍ମାର
বিশ্বাসা **बिश्वसना** ବଚନେ—ଜଗନ୍ନାଥ. ଭାଗବତ । ]

ବିଶ୍ୱାସୀ—ସଂ. ବିଣ (ବିଶ୍ୱାସିନ୍; ବିଶ୍ୱାସ+ଅସ୍ତ୍ୟର୍ଥେ. ଇନ୍; ୧ମା. ୧ବ)—
Biśwāsī ୧ । ଯାହାର ଅନ୍ୟଠାରେ ବିଶ୍ୱାସ ଅଛି, ବିଶ୍ୱାସକାରୀ—
(ବି. ଅବିଶ୍ୱାସୀ) 1. Believing; confident. ୨ । ଯାହାଠାରେ ଅନ୍ୟର ବିଶ୍ୱାସ ଅଛି—2. Trusted. ୩ । ଯାହାକୁ ବିଶ୍ୱାସ କରାଯାଇ ପାରେ; ବିଶ୍ୱାସଯୋଗ୍ୟ—3. Trustworthy; reliable. ୪ । ପ୍ରଭୁଭକ୍ତ—4. Faithful ୫ । କୌଣସି ଧର୍ମମତରେ ବା ଈଶ୍ୱରଙ୍କଠାରେ ଆସ୍ଥାବାନ୍—5. Having firm faith in a religious tenet or in God.

ବିଶ୍ୱାସୀ ନେବା—ଦେ. କ୍ରି. (ମାଦଳାପାଞ୍ଜି)—ବିଶ୍ୱାସ ବା ପ୍ରତ୍ୟୟ ଜନ୍ମାଇ
Biśwāsī nebā ଆୟତ୍ତ କରିବା—To bring a person under one's control by producing confidence in his mind.

ବିଶ୍ୱାସେ—ଦେ. କ୍ରି. ବିଣ—୧ । ନିଶ୍ଚୟ—1. Certainly. ୨ । ମୁଁ
Biśwāse ବିଶ୍ୱାସ କରୁଛି—2. I trust. (ଉ—ଅତୀତ ଦ୍ୱାଦଶ
নিশ্চয় ବରଷେ, ଜାତ ମୁଁ ହୋଇବି ବିଶ୍ୱାସେ । ଜଗନ୍ନାଥ. ଭାଗବତ ।)

ବିଶ୍ୱାସ୍ୟ—ସଂ. ବିଣ. (ବି+ଶ୍ୱସ୍ ଧାତୁ=ବିଶ୍ୱାସ କରିବା+କର୍ମ. ଯ)—
Biśwāsya ବିଶ୍ୱସନୀୟ; ବିଶ୍ୱାସଯୋଗ୍ୟ—Reliable; trustworthy.

ବିଷ୍ (ଧାତୁ)—ସ—୧ । ବ୍ୟାପିବା—1. To spread. ୨ । ବିଶ୍ଳେଷଣ
Bish (root) କରିବା—2. To analyse. ୩ । ସେଚନ କରିବା—3. To sprinkle ୪ । ବିପ୍ରୟୋଗ କରିବା-4. To separate; to bring about dissolution. ୫ । ସେବନ କରିବା—5. To drink; to enjoy. ୬ । ଭେଦ କରିବା; ବିଦ୍ଧ କରିବା—6. To pierce.

**ବିଷ୍**—ସଂ. ବିଂ ସ୍ତ୍ରୀ. (ବିଷ୍ ଧାତୁ=ବ୍ୟାପିବା+କର୍ତ୍ତୃ. କ ପ୍; ଯେଉଁ ମଳ
Bish ନାଡ଼ିରେ ବ୍ୟାପେ)—ବିଷ୍ଠା; ମଳ—Ordure; dung.

**ବିଷ**—ସଂ. ବି. (ବିଷ୍ ଧାତୁ=ବ୍ୟାପିବା+କର୍ତ୍ତୃ. ଅ; ଯାହା ଦେହ
Bisha ତମାମ୍ ବ୍ୟାପିଯାଏ)—୧ । ଗରଳ; କାଳକୂଟ; ହଳାହଳ; ପ୍ରାଣନାଶକ ଦ୍ରବ୍ୟ—1. Poison; virus; venom. [ଦ୍ର—ଯେଉଁ ବସ୍ତୁଦ୍ୱାରା ପ୍ରାଣୀର ପ୍ରାଣନାଶ ଘଟେ, ତାହାର ନାମ ବିଷ । ସ୍ଥାବର ଓ ଜଙ୍ଗମ ଭେଦରେ ବିଷ ଦୁଇ ପ୍ରକାର । ସର୍ପାଦି ପ୍ରାଣୀଙ୍କର ବିଷକୁ ଜଙ୍ଗମ ଓ ବୃକ୍ଷ, ପ୍ରସ୍ତରାଦି ଓ ଖଣିରୁ ଜାତ ବିଷକୁ ସ୍ଥାବର ବିଷ ବୋଲାଯାଏ । ବିଷ ଶରୀରରେ ପ୍ରବେଶ କରି ପ୍ରଥମେ ରକ୍ତରେ ମିଶି ହଠାତ୍ ଦେହ ତମାମ ବ୍ୟାପିଯାଏ ଓ ଶେଷକୁ ପ୍ରାଣନାଶ କରେ । ବିଷ ପ୍ରାଣନାଶକ ହେଲେ ମଧ୍ୟ ଯଥାର୍ଥରୂପେ ଶୋଧିତ ହୋଇ ରୋଗର ଅବସ୍ଥାନୁସାରେ ପ୍ରୟୋଗ କରାଗଲେ ଜରା ବ୍ୟାଧି ନିବାରଣ କରେ । ଅଧିକାଂଶ ସ୍ଥାବର ବିଷକୁ ତିନି ଦିନ ଗୋ ମୂତ୍ରରେ ବତୁରାଇ ତା ପରେ ନାନା ଉପାୟଦ୍ୱାରା ଶୋଧନ କରି ଔଷଧରେ ପ୍ରୟୋଗ କରାଯାଏ । ଶାସ୍ତ୍ର ଅନୁସାରେ ପ୍ରଥମେ ବିଷ କ୍ଷୀର-ସମୁଦ୍ର ମନ୍ଥନରୁ ଗରଳରୂପେ ବାହାରିଥିଲା ।] ୨ । ଜଳ; ବାରି—2. Water. ୩ । ପଦ୍ମାଦିଙ୍କର ମୃଣାଳ—3. Stalk of lotus. ୪ । ବସ୍ତନାଭ; ମେଣ୍ଢାସିଂଘା —4. Aconite. [ଦ୍ର—ଏହା ଏକ ପ୍ରକାର ପାର୍ବତୀୟ ବୃକ୍ଷ । ଏହାର ଛାଲରୁ ନାଲି ରଙ୍ଗ ହୁଏ । ଏହାର ମୂଳ ଅତି ବିଷାକ୍ତ ।] ୫ । ସ୍ୱାସ୍ଥ୍ୟର ଅନିଷ୍ଟକର ଯେ କୌଣସି ବିଷୟ—5. Any thing injurious to health. (ଯଥା—"ଅଜୀର୍ଣ୍ଣେ ଭୋଜନଂ ବିଷଂ;—ବୃଦ୍ଧସ୍ୟ ତରୁଣୀ ବିଷଂ" ଚାଣକ୍ୟ ଶ୍ଳୋକ) [ଦ୍ର—ବୈଦ୍ୟଙ୍କ ମତରେ ବିଷ, ଗରଳ ଓ କ୍ଷେଡ଼ ବିଷର ପର୍ଯ୍ୟାୟ । ବିଷ ୯ ପ୍ରକାର—୧ । ବତ୍ସନାଭ, (ଏ ଗଛର ପତ୍ର ବେଗୁନିଆ ପତ୍ର ପରି ଓ ଏ ଗଛ ପାଖରେ ଥିବା ଅନ୍ୟ ଗଛ ବଢ଼େ ନାହିଁ । ଏ ବିଷର ଆକୃତି ବାଛୁରିର ନାଭି ପରି) ୨ । ହାରିଦ୍ର (ଏ ଗଛର ମୂଳ ହଳଦି ପରି) । ୩ । ସକ୍ତୁକ (ଏ ଗଛର ଗ୍ରନ୍ଥିସମୂହ ଛତୁଆ ପରି ଚୂର୍ଣ୍ଣରେ ପୂର୍ଣ୍ଣ ଥାଏ) । ୪ । ପ୍ରଦୀପନ (ଏ ବିଷ ରକ୍ତବର୍ଣ୍ଣ, ଦୀପ୍ତିଶୀଳ ଓ ଅଗ୍ନି ପରି ପ୍ରଭାଯୁକ୍ତ; ଏହା ସେବନ କଲେ ଅତ୍ୟନ୍ତ ଦାହ ଉପସ୍ଥିତ ହୁଏ) । ୫ । ସୌରାଷ୍ଟ୍ରିକ (ସୁରାଷ୍ଟ୍ର ବା ଗୁଜରାଟରେ ଉତ୍ପନ୍ନ) । ୬ । ଶୃଙ୍ଗିକ (ଏ ବିଷକୁ ଗାଈ ଶିଂଘରେ ବାନ୍ଧି ଦେଲେ ସେ ଗାଈର ଦୁଧ ରକ୍ତବର୍ଣ୍ଣ ହୁଏ), ୭ । କାଳକୂଟ (କଥିତ ଅଛି, ଦେବାସୁର ଯୁଦ୍ଧରେ ଦେବ-ନିହତ ପୃଥୁମାଳି ଦୈତ୍ୟର ରକ୍ତରୁ ଅଶ୍ୱତ୍ଥବୃକ୍ଷ ପରି ଗୋଟିଏ ଗଛ ଜନ୍ମିଥିଲା, ସେହି ଗଛର ନିର୍ଯ୍ୟାସ କାଳକୂଟ, ଏହା ଅହିକ୍ଷେତ୍ର, ଶୃଙ୍ଗବେର, କୋଙ୍କଣ ଓ ମଲୟ ଦେଶରେ ଜନ୍ମେ) । ୮ । ହଳାହଳ (ଏ ଗଛର ଫଳ ଦ୍ରାକ୍ଷା ସଦୃଶ ଓ ଗୁଚ୍ଛାକାର, ଏଥିର ପତ୍ର ତାଳପତ୍ର ପରି, ଏ ଗଛର ତେଜରେ ନିକଟସ୍ଥ ବୃକ୍ଷମାନ ପୋଡ଼ି ଯାଆନ୍ତି, ଏହା କିଷ୍କିନ୍ଧ୍ୟା, ହିମାଳୟ, ଦକ୍ଷିଣ ସମୁଦ୍ରର ତୀରଭୂମିରେ ଓ କୋଙ୍କଣ ପ୍ରଦେଶରେ ଜନ୍ମେ) ଓ ୯ । ବ୍ରହ୍ମପୁତ୍ର (ଏ ବୃକ୍ଷର ବର୍ଣ୍ଣ ଓ ସାରଭାଗ କପିଳବର୍ଣ୍ଣ; ଏହା ମଲୟ ପର୍ବତରେ ଉତ୍ପନ୍ନ ହୁଏ) । ବିଷମାନଙ୍କୁ ୪ ଜାତିରେ ବିଭକ୍ତ କରାଯାଇଅଛି । ୧ । ପାଣ୍ଡୁବର୍ଣ୍ଣ—ବ୍ରାହ୍ମଣ—ଏହା ରସାୟନ କାର୍ଯ୍ୟରେ ବ୍ୟବହୃତ ହୁଏ । ୨ । ରକ୍ତବର୍ଣ୍ଣ, କ୍ଷତ୍ରିୟ, ଏହା ଶରୀରପୋଷଣ କାର୍ଯ୍ୟରେ ଲାଗେ; ୩ । ପୀତବର୍ଣ୍ଣ, ବୈଶ୍ୟ, ଏହା କୁଷ୍ଠବିନାଶନରେ ବ୍ୟବହୃତ ହୁଏ, ଓ ୪ । କୃଷ୍ଣବର୍ଣ୍ଣ, ଶୂଦ୍ର, ଏହା ପ୍ରାଣନାଶକ । ବିଷମାନ ସାଧାରଣତଃ ପ୍ରାଣନାଶକ, ବାତଘ୍ନ, କଫନାଶକ, ଯୋଗବାହୀ, ମତ୍ତତାଜନକ, ସମସ୍ତଶରୀରବ୍ୟାପକ, ଦେହ-ସନ୍ଧିବନ୍ଧନର ଶିଥିଳକାରକ । ଶୋଧିତ ହୋଇ ଉପଯୁକ୍ତ ମାତ୍ରାରେ ପ୍ରୟୋଗ କରାଗଲେ ବିଷ ପ୍ରାଣପ୍ରଦ, ରସାୟନ, ତ୍ରିଦୋଷଘ୍ନ, ପୁଷ୍ଟିକାରକ ଓ ବୀର୍ଯ୍ୟବର୍ଦ୍ଧକ ହୁଏ । ମନ୍ତ୍ରୀ ନାମକ ବିଷକୁ ଅମୃତ ବୋଲାଯାଏ, ଏହା ଉପଯୁକ୍ତ ମାତ୍ରାରେ ପ୍ରୟୋଗ କରାଗଲେ କଫଜ, ବାତଜ ରୋଗମାନ, ସନ୍ନିପାତ ଜ୍ୱର, ଉତ୍କଟ ଆମବାତ ଓ ଦାରୁଣ ହୃଦ୍‌ରୋଗ ନିବାରିତ ହୁଏ । ଅର୍କକ୍ଷୀର, ମନସା ସିଝୁର ଅଠା, ଲଙ୍ଗଳିଆ, କରବୀର, କାଇଁଚ, ଅଫିମ ଓ ଧତୁରା ଏ ସାତଟି ଉପବିଷ—ଦ୍ରବ୍ୟଗୁଣ ।] ଦେ. ବି.—୧ । ବିଷୟା (ଦେଖ)—1. Bishayā (See) ୨ । ବିଷୟ—2. Matter. [ଉ—ପ୍ରଭାବୃତ୍ତି ମୁଖଚନ୍ଦ୍ରର, ପଳାଇ ଯାଉଛି ବ ଅନ୍ଧକାର ସେ, ସଖୀଏ ଜାଣନ୍ତି ବିଷ ଯେ । ଭଞ୍ଜ. ଲାବଣ୍ୟବତୀ । ] ୩ । ହେତୁ—3. Cause. [ଉ—କ୍ଷଣରୁଚିର କ୍ଷଣ ରୁଚିର ପ୍ରାୟେ ଲୀନ କି ବିଷେ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୪ । ବିଷଦୃଷ୍ଟି ଭୟ—4. Apprehension of an unfavourable look. [ଦ୍ର—ଅଠମଙ୍ଗଳାଠାରୁ ତିନି ଦିନ ପର୍ଯ୍ୟନ୍ତ ନୂଆ ବୋହୂ କାହା ମୁହଁକୁ ଚାହେଁ ନାହିଁ । କାରଣ ଲୋକ ବିଶ୍ୱାସ ଯେ—ଏହି ତିନି ଦିନ ଯେ ନୂଆବୋହୂର ମୁହଁକୁ ଚାହିଁବ, ସେ ବୋହୂକୁ ବିଷଦୃଷ୍ଟିରେ ଦେଖିବ । ତତ୍ପରେ ବୋହୂ ବାପଘରୁ ଗୁଡ଼ ବେଭାର ଆସେ । ଦଶମଙ୍ଗଳା ଦିନ ସେହି ନୂଆବୋହୂ ଗୁଡ଼ ଗିନା ଧରି ବାହାରିଲା ପରେ, ଯାହାକୁ ଦେଖିବ, ସେ ନୂଆବୋହୂକୁ ଅମୃତ ଦୃଷ୍ଟିରେ ଚାହିଁବ ।] ୫ । ଗରଜ—5. Urgency ଉ—ମୋର କି ବିଷ ପଡ଼ିଛି । ପ୍ରାଦେ.—(ଗଡ଼ଜାତ) ବି—(ସଂ. ବିଷୟ)—ଗ୍ରାମପୁଞ୍ଜ; (ବିଷେ—ଅନ୍ୟରୂପ) ପ୍ରଗଣା—Pergunna; a group of villages.

**ବିଷଇ**—ଦେ. ବି.—(ସଂ. ବିଷୟୀ)—୧ । ବିଶୋଇ—(ଦେଖ)—
Bishai Bisoi (See) ୨ । ହିସାବ ପତ୍ର ଲେଖିବା ରାଜ-
(ବିଷେଇ, ବିଶୋଇ—ଅନ୍ୟରୂପ) କର୍ମଚାରୀ—2. An accountant; a clerk. ୩ । ଶୂଦ୍ରଙ୍କ ଉପାଧିବିଶେଷ—3. Family title of Śudras. ଦେ. ବିଣ.—

ବିଷୟାଦିବିଷୟାସକ୍ତ — Addicted to worldly concerns.

**ବିଷ ଉତାରିବା**—ଦେ. କ୍ରି. ( ସ. ବିଷ+ଉତ୍ତରଣ )—୧ । ସାପ Bisha utāribā ଇତ୍ୟାଦିର ବିଷକୁ ଔଷଧ ଦ୍ୱାରା କିମ୍ବା ମନ୍ତ୍ର বিষ নাবা(মা)ন ସାହାଯ୍ୟରେ ଦୂରୀଭୂତ କରିବା—1 To coun- **बिष उतारना** teract the effect of serpent or other (ବିଷ ଉତୁରିବା—ବିଶେଷ୍ୟ ରୂପ) poison from a person. ୨ । (ଲକ୍ଷଣାର୍ଥ) ଅନ୍ୟ ଲୋକର ମନରୁ କ୍ରୋଧ, ଗର୍ବ ପ୍ରଭୃତିକୁ ଦୂର କରି ତାକୁ ପ୍ରକୃତିସ୍ଥ କରିବା—2. To remove anger, pride etc from the mind of a person.

**ବିଷ କଣ୍ଟକିନୀ**—ସ. ବି—ବନ୍ଧ୍ୟା କର୍କ୍କୋଟିକା ( ଦେଖ )— Bisha kantakinī Bandhyā karkkotaki ( See ) (ବିଷ କଣ୍ଟକିନୀ—ଅନ୍ୟରୂପ) [ଦ୍ର—ଏ ଗଛ ଯେଉଁ ସ୍ଥାନରେ ଥାଏ, ସେ ସ୍ଥାନକୁ ସାପ ଆସେ ନାହିଁ ।]

**ବିଷ କଣ୍ଠ**—ସ. ବି. (ବହୁବ୍ରୀହି; ବିଷ+କଣ୍ଠ)—୧ । ଶିବ; ମହାଦେବ— Bisha kontha 1. Śiba. ୨ । ସର୍ପ—2. Snake. (ଉ— ବିଷକଣ୍ଠେ ଶୀତକଣ୍ଠ ବୋଲୁଥିଲେ କେହି । ଭଞ୍ଜ. ବୈଦେହୀଶବିଳାସ ।) ୩ । (ବିଷ ପଦ୍ମନାଡ଼ ପରି କଣ୍ଠ ଯାହାର) ବଗ—3. The paddy bird; Ardea Nivea (bird). ୪ । ମୟୂର—4. Peacock.

**ବିଷ କୁମ୍ଭ**—ସ. ବି. (ମ. ପ. ଲୋ; ବିଷ+କୁମ୍ଭ)—୧ । ଗରଳ ଥିବା Bisha kumbha ମାଠିଆ—1. A jar full of poison. **बिष खपरा, बिषकी खान** ୨ । (ଲକ୍ଷଣାର୍ଥ) ହିଂସାପୂର୍ଣ୍ଣ ହୃଦୟ— 2. (figurative) Malicious heart.

**ବିଷକୁମ୍ଭ ପୟୋମୁଖ**—ସ. ବି—୧ । ଯେଉଁ ପାତ୍ରର ଭିତରେ ବିଷ ଓ Bishakumbha payomukha ମୁହଁ ପାଖେ ଦୁଗ୍ଧ ଥାଏ— 1. A pot which contains poison in the inside and milk at the mouth. ୨ । (ଲକ୍ଷଣାର୍ଥ) ଯେଉଁ ଲୋକ ମୁହଁରେ ମିତ୍ରତା ଦେଖାଇ ଅନ୍ତରରେ ଶତ୍ରୁତା ରଖିଥାଏ—2 (figurative) A person who entertains inimical feelings in the heart and exhibits friendly feelings outside. [ଦ୍ର—ପ୍ରତ୍ୟକ୍ଷରେ ପ୍ରିୟବାଦୀ ଓ ପରୋକ୍ଷରେ କାର୍ଯ୍ୟହନ୍ତା ବନ୍ଧୁମାନଙ୍କ ସମ୍ବନ୍ଧେ ଗୁଣକ୍ୟ ଶ୍ଳୋକର ଶେଷ ଚରଣ ।]

**ବିଷ କୃମି**—ସ. ବି. (ମ. ପ. ଲୋ; ବିଷ+କୃମି)—ବିଷରୁ ଜାତ ହେବା Bisha krumi ବା ବଢ଼ିଥିବା ପୋକ—A worm born in or bred by poison.

**ବିଷ କୋଷ**—ସ. ବି. (ମ. ପ. ଲୋ; ବିଷ+କୋଷ)—ବିଷପୂର୍ଣ୍ଣ ମୁଣି— Bisha kosha A bag full of poison.

**ବିଷକ୍ତ**—ସ. ବିଣ. (ବି+ସନ୍ଜ ଧାତୁ=ଆଲିଙ୍ଗନ କରିବା; ଲାଗିବା+ Bishakta କର୍ତ୍ତୃ. କ୍ତ; ଷତ୍ୱ ବିଧାନ)—୧ । ଆସକ୍ତ—1. Addicted to. ୨ । ସଲଗ୍ନ—2. Attached.

**ବିଷକ୍ରିୟା**—ସ. ବି ( ଷଷ୍ଠୀ ତତ୍; ବିଷ+କ୍ରିୟା )—ଜୀବ ବା ବୃକ୍ଷାଦିର Bishakriyā ଦେହରେ ବିଷର କାର୍ଯ୍ୟ—The action of poison on the body of an animal or vegetable.

**ବିଷ ଖାଇବା**—ଦେ. କ୍ରି—ଆତ୍ମଘାତ ପ୍ରାଣନାଶ ପାଇଁ ବିଷସେବନ Bisha khāibā କରିବା—To take poison to বিষ খাওয়া **बिष खाना** commit suicide.

**ବିଷ ଖିଆ**—ବି—ବିଷ ଖାଇ ଛଟପଟ ହେବା ଅବସ୍ଥା—The state Bisha khiā of restlessness due to one's having বিষ খাওয়া imbibed poison. ଦେ. ବି—ବିଷ ଖାଇଥିବା **बिष खाना** ( ବ୍ୟକ୍ତି ) – ( a person ) Who has taken বিষ খাওয়া **बिषखायाहुआ** poison.

**ବିଷ ଖୋଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ହତ୍ୟା କରିବାପାଇଁ ତାକୁ Bisha khoibā ଖାଦ୍ୟଦ୍ରବ୍ୟ ସଙ୍ଗେ ବିଷ ସେବନ କରାଇବା— ( ବିଷ ଦେବା, ବିଷ ଖୁଆଇବା—ଅନ୍ୟରୂପ ) To poison a বিষ খাওয়ান; বিষ দেওয়া person to kill him; to **बिष खिलाना** administer poison to a person.

**ବିଷ ଗୋଡ଼ ଧୁଆ**—ପ୍ରାଦେ ( ଯାଜପୁର ) ବି—ବିବାହ ପରେ ବଧୂ Bisha gorda dhuā ସ୍ୱାମିଗୃହରୁ ବାପଘରକୁ ଫେରିଯିବା ପୂର୍ବରୁ ନିମନ୍ତ୍ରିତ ଜାଇଁ ଶ୍ୱଶୁରଘରକୁ ଯିବା—The going of the bridegroom to his father-in-law's house on invitation before the bride comes back to it after marriage.

**ବିଷ ଗୋଳିବା**—ଦେ କ୍ରି—ଜହର ଗୋଳିବା; ଖାଦ୍ୟଦ୍ରବ୍ୟରେ ବିଷ- Bishagolibā ମିଶାଇବା—To mix poison with one's [ ବିଷଗୋଳା(ଲେ)ଇବା—ଅନ୍ୟରୂପ ] food. বিষ গোলা **बिष घोलदेना**

**ବିଷଘଟିତ**—ସ. ବିଣ ( ତୃତୀୟା ତତ୍; ବିଷ+ଘଟିତ )—ବିଷମିଶ୍ରିତ; Bishaghatita ଯହିଁରେ ବିଷ ମିଶିଥାଏ ( ଔଷଧ )— ( a medicine ) Mixed with poison.

**ବିଷଘା**—ସ. ବି. ସ୍ତ୍ରୀ—ଗୁଳୁଚୀ ( ଦେଖ )— Bishaghā Guluchī ( See )

**ବିଷଘାତୀ**—ସ. ବିଣ ( ବିଷ+ହନ୍ ଧାତୁ+କର୍ତ୍ତୃ. ଇନ୍=ବିଷଘାତିନ୍ Bishaghāti ୧ମା. ୧ବ )—ବିଷନାଶକ; ଯାହା ବିଷର କ୍ରିୟାକୁ (ବିଷଘାତିନୀ—ସ୍ତ୍ରୀ) ନାଶକରେ—Antidotal; serving as (ବିଷନାଶକ—ଅନ୍ୟରୂପ) an antidote. ସ. ବି—୧ । ଚମ୍ପକ ଗଛ—1. The Champka tree ୨ । ଶିରୀଷ ଗଛ—2. The Śirisha tree. ୩ । ଭଲିଆ ( ବୃ. ଶ. )—3. Marking nut. ୪ । ଭୂକଦମ୍ବ ବୃ. ଶ. ( ଦେଖ )—4. Bhukadamba ( See ). ୫ । ଗନ୍ଧତୁଳସୀ ବୃ. ଶ. ( ଦେଖ )—5. Gandhatulasī ( See )

**ବିଷଘ୍ନ**—ସ. ବି ଓ ବିଣ—(ବିଷ+ହନ୍ ଧାତୁ+କର୍ତ୍ତୃ. ଅ)—ବିଷଘାତୀ Bishaghna (ଦେଖ)—Bishaghāti (See). (ବିଷଘ୍ନୀ, ବିଷଘ୍ନା—ସ୍ତ୍ରୀ)

ବିଷଘ୍ନୀ—ସ. ବିଣ. ସ୍ତ୍ରୀ—( ବିଷ+ହନ୍ ଧାତୁ=ବଧ କରିବା+ କର୍ତ୍ତୃ. ଅ+ଈ. ଲି)—( ବିଷଘ୍ନ+ଈ ) ବିଷଘ୍ନର ସ୍ତ୍ରୀ. ଲିଙ୍ଗ—Feminine of bishaghna.
Bishaghni
ସ. ବି— ୧ । ହିଲମୋଚିକା; ହିଞ୍ଚଣ୍ଡିଚ ଶାଗ—1. A kind of aquatic potherb. ୨ । ହଳଦୀ; ହଳଦୀ— 2. Turmeric. ୩ । ରକ୍ତ ପୁନର୍ନବା; ନାଲିପୁରୁଣୀ— 3. The red variety of hogweed. ୪ । ବୃଶ୍ଚିକାଲୀ; ବିଛୁଆତି ଗୁଳ୍ମ—4. The stinging nettle ୫ । ମହାକାଳ; ଇନ୍ଦ୍ରବାରୁଣୀ; ଘାଷକୋଡମେଇଲତା— 5. Colocynth. ୬ । ମହାକରଞ୍ଜ ଗଛ—6. A large species of Karañja tree. ୭ । ଭୂଇଁ ଅଁଳା ( ହି. ଶ ) ( ଦେଖ )—7. Bhuiñ a-añlā (See) ୮ । ବନ ତୁଳସୀ ( ହି. ଶ )—8. The wild basil plant. ୯ । ଦେବଦାଲୀ ( ହି. ଶ ) ( ଦେଖ )— 9 Debadāli (See). ୧୦ । କାଠିଆ କଦଳୀ (ହି. ଶ)—10. A varity of plantain used in curry. ୧୧ । ଧଳା ଅପାମାର୍ଗ (ହି. ଶ)—11. The white variety of Apāmārga. ୧୨ । ରାସ୍ନା (ହି. ଶ)—12. Rāsnā (See).

ବିଷଚକ୍ର—ସ. ବି—ଚକୋର ପକ୍ଷୀ (ହି. ଶ) (ଦେଖ)—
Bishachakra Chakora bird (See).

ବିଷ ଚହଟିବା—ଦେ. କ୍ରି—ଦେହସାରା ବିଷ ବ୍ୟାପିବା—The
Bisha chahaṭibā diffusion or taking effect of
বিষউঠা বিষচড়না poison in the system.
(ବିଷ ଘାରିବା, ବିଷ ଚଢ଼ିବା, ବିଷ ଚହଟିଯିବା—ଅନ୍ୟରୂପ)

ବିଷ ଚିକିତ୍ସା—ସ. ବି—( ବିଷ+ଚିକିତ୍ସା )—ବିଷର ମନ୍ଦ ଫଳର ପ୍ରତି-
Bisha chikitsā କାର—Treatment for poisoning.

ବିଷ ଜୁଷ୍ଟ—ସ. ବିଣ—(ଷଷ୍ଠୀ ତତ୍; ବିଷ+ଜୁଷ୍ଟ)—୧ । ବିଷମୟ—
Bisha jushṭa 1. Poisonous. ୨ । ବିଷଜର୍ଜ୍ଜରିତ— 2. Poisoned; affected by poison.

ବିଷ ଜ୍ୱର—ସ. ବି—(ବହୁବ୍ରୀହି; ମହିଷ ପକ୍ଷରେ ଜ୍ୱରରୋଗ ମାରାତ୍ମକ
Bisha jwara ଥିବାରୁ)—ମହିଷ—Buffalo (Apte).

ବିଷଜ୍ୱାଳା—ସ. ବି—ଶରୀରରେ ବିଷଜନିତ ଦାହ—The burning
Bishajwālā sensation or smartings or bad
বিষের জ্বালা effect caused by poison.
(ବିଷଜାଳା—ଗ୍ରାମ୍ୟରୂପ) [ବିଷଦାହ—ଅନ୍ୟ ଦେଶଜ ରୂପ]

ବିଷ ଜର୍ଜ୍ଜରିତ—ସ. ବିଣ. ପୁଂ ( ଷଷ୍ଠୀ ତତ୍; ବିଷ+ଜର୍ଜ୍ଜରିତ )—ବିଷ-
Bisha jarjarita ଜ୍ୱାଳାରେ ଅସ୍ଥିର—Restless on
( ବିଷଜର୍ଜ୍ଜରିତା—ସ୍ତ୍ରୀ ) account of poisoning.

ବିଷ ଝଡ଼ା(ଡ଼େ)ଇବା—ଦେ. କ୍ରି—ମନ୍ତ୍ର ଓ ଔଷଧାଦିଦ୍ୱାରା ଶରୀରରୁ
Bisha jharḍā(ṛḍe)ibā ବିଷକୁ କାଢ଼ିନେବା—To
বিষ ঝাড়ান; বিষ তোলান extract poison from the
বিষ ঝাড়ানা body of a poisoned person.
( ବିଷ ଝାଡ଼ିବା—ଅନ୍ୟରୂପ ) ( ବିଷ ଝଡ଼ିବା—ବିଶେଷ୍ୟରୂପ )

ବିଷଣୀ—ସ. ବି—ହଳାହଳ; ଗରଳ—
Bishaṇi Violent or fatal poison.

ବିଷଣ୍ଣ—ସ. ବିଣ. ପୁଂ ( ବି+ସଦ୍ ଧାତୁ=ଅବସନ୍ନ ହେବା+କର୍ତ୍ତୃ.
Bishaṇṇa ତ )—୧ । ବିଷାଦଯୁକ୍ତ; ଦୁଃଖିତ—1. Dejected;
( ବିଷଣ୍ଣତା—ବିଶେଷ୍ୟ ) cast down; sorrowful.
( ବିଷଣ୍ଣା—ସ୍ତ୍ରୀ ) ୨ । ମଳିନ—2. Pale.

ବିଷଣ୍ଣ ଚିତ୍ତ—ସ. ବିଣ. ପୁଂ ( ବହୁବ୍ରୀହି; ବିଷଣ୍ଣ+ଚିତ୍ତ )—ଯାହାର
Bishaṇṇa chita ମନ ଦୁଃଖପୂର୍ଣ୍ଣ—Sorrowful. ସ. ବି.
ବିଷଣ୍ଣଚେତାଃ, ବିଷଣ୍ଣମନାଃ, ବିଷଣ୍ଣହୃଦୟ } ଅନ୍ୟରୂପ (କର୍ମଧା, ବିଷଣ୍ଣ+ଚିତ୍ତ)— ଦୁଃଖପୂର୍ଣ୍ଣ ମନ— Sorrowful mind.

ବିଷଣ୍ଣ ବଦନ—ସ. ବିଣ. ପୁଂ. (ବହୁବ୍ରୀହି; ବିଷଣ୍ଣ+ବଦନ )—
Bishaṇṇa badana ଯାହାର ମନ ଦୁଃଖରେ ପୂର୍ଣ୍ଣ ହୋଇଥାଏ—
( ବିଷଣ୍ଣ ମୁଖ—ଅନ୍ୟରୂପ ) With a dejected face.
( ବିଷଣ୍ଣବଦନା, ବିଷଣ୍ଣମୁଖୀ[ଖା]—ସ୍ତ୍ରୀ ) ସ. ବି ( କର୍ମଧା; ବିଷଣ୍ଣ +ବଦନ )—ମଳିନମୁଖ—Dejected face.

ବିଷତନ୍ତ୍ର—ସ. ବି.—ସର୍ପ ଆଦିଙ୍କ ବିଷ ଦୂର କରିବା ପ୍ରକ୍ରିୟା (ହି. ଶ )—
Bishatantra The mode of extracting serpent poison from the body.

ବିଷତରୁ—ସ. ବି—କୋଚିଲା ଗଛ ( ହି. ଶ. )—Nux Vomica
Bishataru (ବିଷଦ୍ରୁମ—ଅନ୍ୟରୂପ) tree.

ବିଷତିନ୍ଦୁ—ସ. ବି—କୋଚିଲା ( ଦ୍ରବ୍ୟଗୁଣ )—
Bishatindu Nux Vomica.

ବିଷଦ—ସ. ବିଣ. ପୁଂ ( ବିଷ+ଦା ଧାତୁ=ଦାନ କରିବା+କର୍ତ୍ତୃ.
Bishada ଅ )—୧ । ଯେ ଜୀବକୁ ମାରି ପକାଇବା ପାଇଁ ବିଷ
( ବିଷଦାତା—ଅନ୍ୟରୂପ ) ପ୍ରୟୋଗ କରେ; ଆତତାୟୀ—
ବିଷଦା, ବିଷଦାୟୀ } ସ୍ତ୍ରୀ 1. Poisoning; administering poison for killing. ୨ । ବିଶଦ ( ଦେଖ )—2. Bisada ( See ). ୧ । ସ. ବି— ମେଘ—1. Cloud. ୨ । ବିଶଦ ( ଦେଖ ) — 2. Bisada ( See ) ୩ । ଗରଳ ବା ବିଷ ଦେଇ ଯେ ଲୋକଙ୍କୁ ମାରି ପକାଏ—3. Poisoner.

ବିଷଦଂଷ୍ଟ୍ରା—ସ ବି—୧ । ( ମ. ପ. ଲୋ )—ସାପର ବିଷମୟ ଦାନ୍ତ—
Bishadaṁshṭrā 1. Fangs of a poisonous snake. ୨ । ( ବହୁବ୍ରୀହି ) ସର୍ପକଙ୍କାଳିକା ଲତା ( ହି. ଶ. ) — 2. A kind of herbal creeper. ୩ । (ବହୁବ୍ରୀହି) ନାଗଦମନୀ (ହି. ଶ.)—3. Indian wormwood.

ବିଷଦଂଶ—ସ. ବି. ( ବହୁବ୍ରୀହି )—ବିରାଡ଼ି—
Bishadaṁsa Cat.

ବିଷଦନ୍ତ—ସ. ବି. ( ମ. ପ. ଲୋ; ବିଷ+ଦନ୍ତ )—୧ । ସର୍ପର ଯେଉଁ
Bishadanta ଦନ୍ତରେ ବିଷ ଥାଏ—1. Poisonous fangs of serpents. ୨ । ଜୀବମାନଙ୍କର ଯେଉଁ ଦନ୍ତରେ ବିଷ ଥାଏ—2 Poisonous teeth of certain animals. ୩ । ( ବହୁବ୍ରୀହି; ବିଷ+ଦନ୍ତ )—

୩ । ଅଶୀବିଷ; ସର୍ପ—3. Serpent. ୪ । ବିଲୁଆ ( ଗ୍ରା. ଶ. )—4. Cat.

**ବିଷଦମାର୍ଗ**—ଦେ. ବି—ଆକାଶମାର୍ଗ; ଆକାଶପଥ—The sky; Bishadamārga aerial route. ( ଉ—ବିଶଦକର ଗୋଟାଏ ଅଶ୍ୱର, ବିଷଦମାର୍ଗରେ ଗମନ କର—ଉଞ୍ଜ. ବୈଦେହୀଶବିଳାସ । ]

**ବିଷଦାନ**—ସଂ. ବି. ( ୬ଷ୍ଠୀ ତତ୍; ବିଷ+ଦାନ )—ପ୍ରାଣନାଶକ ଦ୍ରବ୍ୟ Bishadāna ଖାଇବାକୁ ଦେବା—Administration of ( ବିଷ ପ୍ରଦାନ—ଅନ୍ୟରୂପ ) fatal poison.

**ବିଷ ଦାନ୍ତ**—ଦେ. ବି. (ସଂ. ବିଷ ଦନ୍ତ)—ସର୍ପର ଯେଉଁ ଦାନ୍ତରେ ବିଷ Bisha dānta ଥାଏ—The poisonous fangs of a (ବିଷି ଦାନ୍ତ—ଗ୍ରାମ୍ୟ ରୂପ) serpent. [ଦ୍ର—ନାଗ ଅହି ବିଷଧର
विष दाँत ସର୍ପର ପାଟିର ଦୁଇ ପାଖରେ ଯେଉଁ ଦୁଇଟି ଦାନ୍ତ ଥାଏ,
**बिसाही, बिषैला दाँत** ତାହାକୁ 'କାଳ' ଓ 'ବିକାଳ' ବୋଲଯାଏ
ଏହି ଦାନ୍ତର ମୂଳରେ ବିଷକୋଷ ଥାଏ । ସର୍ପ ଦନ୍ତାଘାତ କରିବା ମାତ୍ରେ ସେହି ଥଳୀରୁ ଗରଳ ବାହି ସେହି କ୍ଷତ ସ୍ଥାନରେ ପଶେ ଓ ସେଠାରୁ ଦେହଯାକ ବିଷ ଚହଟି ଯାଏ । ବିଷ ଦାନ୍ତ ଛଡ଼ା ସାପର ଅନ୍ୟ ଦାନ୍ତକୁ ଅହାର ଦାନ୍ତ ବୋଲଯାଏ ।]

**ବିଷ ଦାନ୍ତ ଓ(ଉ)ପାଡ଼ିବା**—ଦେ. କ୍ରି. (ସଂ. ବିଷଦନ୍ତ+ଉତ୍ପାଟନ)—Bisha dānta o(u)pāṛdibā ୧ । ସାପର ବିଷ ଦାନ୍ତକୁ ଭାଙ୍ଗି ସାପକୁ ବିଷହୀନ କରିବା—1. Extracting the fangs of a serpent. [ଦ୍ର—ସାପର ବିଷ ଦାନ୍ତ ଭାଙ୍ଗି
ବିଷ ଦାନ୍ତ ଭାଙ୍ଗିବା, ବିଷ ଦାନ୍ତ ଭାଙ୍ଗିଦେବା, ବିଷ ଦାନ୍ତ ଝଡ଼ା(ଡ଼େ)ଇ ଦେବା } ଅନ୍ୟରୂପ ଦେବା ପରେ ଯେବେ ସେ ଦଂଶନ କରେ ସେ ଅପାତରେ ଆପଦ
विष दाँत भाँगा(तोला) ଘଟିବାର ସମ୍ଭାବନା ନ ଥାଏ ।]
**विषैला दाँत उखाड़ना** ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତି ହାତରୁ
ବିଷ ଦାନ୍ତ ଉପୁଡ଼ିବା, ବିଷ ଦାନ୍ତ ଭାଙ୍ଗିଯିବା, ବିଷ ଦାନ୍ତ ଝଡ଼ିବା } ବିଶେଷ୍ୟ ରୂପ ଅନ୍ୟର ଅନିଷ୍ଟ କରିବାର କ୍ଷମତା ଛଡ଼ାଇ ନେବା—2. (figurative) To deprive a person of the power of injuring others.

**ବିଷଦିଆ**—ଦେ. ବିଣ.—(ସଂ. ବିଷଦିଗ୍ଧ, ବିଷଦାତ୍ରୀ)—୧ । ବିଷଲିପ୍ତ—Bishadia 1. Smeared with poison. ୨ । ବିଷଦାନ-
विष देनेवाला କାରୀ—2. Administering poison for
**विषैला** killing animals or men. [ଉ—ଗୃହଦାହୀ
**विष देनेवाला** ଜାରଜାରକେଳୀ ବିଷଦିଆ, ସୋମବଳକର୍ମୀ ମିତ୍ର—ଦ୍ରୋହକ ଖଟୁଆ । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।]

**ବିଷଦିଗ୍ଧ**—ସଂ. ବିଣ. ପୁଂ—(୬ଷ୍ଠୀ ତତ୍; ବିଷ+ଦିଗ୍ଧ)—୧ । ବିଷ-Bishadigdha ଜର୍ଜରିତ—1. Overpowered with (ବିଷଦିଗ୍ଧା—ସ୍ତ୍ରୀ) poison. ୨ । ବିଷଲିପ୍ତ—2. Besmeared with poison. ବିଷଦିଗ୍ଧ ବାଣ ପ୍ରାୟେ ବିନ୍ଧିଥିଲୁ, ଶଙ୍କା ଉପୁଜାଏ ବିକଟ ଶାଙ୍କୁର । ରାଧାନାଥ. ଚିଲିକା ।]

**ବିଷଦୁଷ୍ଟ**—ସଂ. ବିଣ.—(୩ୟା ତତ୍; ବିଷ+ଦୁଷ୍ଟ)—ବିଷାକ୍ତ—Bishadushṭa Poisoned.

**ବିଷଦୂଷଣ**—ସଂ. ବିଣ.—ବିଷଦୂରକାରୀ (ବ୍ର. ଶ.) Bishadūshaṇa Removing the effects of poison.

**ବିଷଦୃଷ୍ଟି**—ସଂ. ବି.—(ମ. ପ. ଲୋ; କର୍ମଧା, ବିଷ+ଦୃଷ୍ଟି)—ବିଷନୟନ Bisha drushṭi (ଦେଖ) Bishanayana (See)

**ବିଷଦୋଷ**—ସଂ. ବି.—(ବିଷ+ଦୋଷ)—ଶରୀରରେ ବିଷ ପ୍ରବେଶ-Bishadosha ଜନିତ ଉପଦ୍ରବ—The bad results due to the entry of poison into the system.

**ବିଷଧର**—ସଂ. ବି. ପୁଂ ( ବିଷ+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ; Bishadhara —ଯେ ବିଷଧାରଣ କରିଅଛି)—ଭୁଜଙ୍ଗ; ସର୍ପ; (ବିଷଧରୀ—ସ୍ତ୍ରୀ) ଯେଉଁ ସର୍ପର ବିଷଦନ୍ତ ଅଛି; ( ଯଥା—ନାଗ, ଗୋଖରେ, ଚନ୍ଦ୍ର, ବୋଡ଼ା)—Poisonous snake. ସଂ. ବିଣ. ପୁଂ—ଯାହାର ବିଷଥାଏ—Poisonous.

**ବିଷଧାତ୍ରୀ**—ସଂ. ବି. ସ୍ତ୍ରୀ ( ବିଷ+ଧାତ୍ରୀ=ଧାଈ )—ମନସା ଦେବୀ—Bishadhātrī The Goddess Manasā.

**ବିଷଧାରଣ**—ସଂ. ବି ( ବିଷ+ଧୃ ଧାତୁ+କର୍ତ୍ତୃ. ଅନ )—ସର୍ପ—Bishadhāraṇa Snake. ( ଉ—କିବର ହରଣ କି ବିଷଧାରଣ ବେନି ସଂଶୟ ଉପୁଜିଲା । ଉଞ୍ଜ. ବୈଦେହୀଶ-ବିଳାସ । )

**ବିଷନୟନ**—ସଂ. ବି ( ମ. ପ. ଲୋ; କର୍ମଧାରୟ ବିଷ+ନୟନ )—Bishanayana ୧ । ବିଷଦୃଷ୍ଟି; ହିଂସାପୂର୍ଣ୍ଣ ଦୃଷ୍ଟି—1 Malignant glance. ୨ । ପ୍ରତିକୂଳ ଦୃଷ୍ଟି—2. Unfavourable look. ୩ । ବୈଅନୁଗ୍ରହ—3. Disfavour. ସଂ. ବିଣ. ପୁଂ ( ବହୁବ୍ରୀହି )—ଯାହାର ଦୃଷ୍ଟି ବିଷମୟ ଅଟେ; ଯାହାର ଦୃଷ୍ଟି ପଡ଼ିବା ମାତ୍ରେ ବ୍ୟକ୍ତି ବା ଜୀବ ବିଷଜର୍ଜରିତ ହୁଏ—(one) Having an eye which poisons the object.
ବିଷନୟନା, ବିଷନେତ୍ରା } ସ୍ତ୍ରୀ

**ବିଷନାଶ**—ସଂ. ବି ( ୬ଷ୍ଠୀ ତତ୍; ବିଷ+ନାଶ )—ବିଷକ୍ରିୟାର ଲୋପ Bishanāsa ବା ନିଷ୍ଫଳୀକରଣ—The nullification or (ବିଷଧ୍ୱଂସ—ଅନ୍ୟରୂପ) counteracting of the effect of poison.

**ବିଷନାଶନ**—ସଂ. ବିଣ ( ବିଷ+ନାଶନ )—ବିଷଦୋଷନାଶକ; Bishanāsana ବିଷଘ୍ନ—Antidotal; counteracting the effects of poison.
ବିଷଧ୍ୱଂସୀ, ବିଷନାଶକ, ବିଷନାଶୀ, ବିଷହରଣ, ବିଷହାରକ } ଅନ୍ୟରୂପ ସଂ. ବି—୧ । ଶିରୀଷଗଛ ( ହ୍ର. ଶ )—1. The Sirisha tree. ୨ । ମାଣସାରୁ ( ହ୍ର. ଶ. )—2. A kind of big arum.
ବିଷଧ୍ୱଂସିନୀ, ବିଷନାଶିନୀ, ବିଷହାରିକା, ବିଷହାରିଣୀ } ସ୍ତ୍ରୀ

**ବିଷନାଶିନୀ**—ସଂ. ବିଣ. ସ୍ତ୍ରୀ ( ବିଷନାଶିନ୍+ସ୍ତ୍ରୀ. ଈ )—ବିଷନାଶୀର Bishanāsinī ସ୍ତ୍ରୀଲିଙ୍ଗ—Feminine of Bishanāsi.
ସଂ. ବି. ସ୍ତ୍ରୀ—୧ । ସର୍ପକଙ୍କାଳୀ ଲତା ( ହ୍ର. ଶ. )—1. A kind of creeper. ୨ । ବନ୍ଧ୍ୟା କର୍କୋଟକୀ ହ୍ର. ଶ. ( ଦେଖ )—2. Bandhyā karkoṭakī

( See ) ୩ । ଗନ୍ଧନାକୁଳୀ ଦ୍ବି. ଶ. ( ଦେଖ )—
3. Gandhanākulī ( See )

ବିଷପନ୍ନଗ—ସଂ. ବି ( ମ. ପ. ଲୋ )—ବିଷଧର ସର୍ପ—
Bishapannaga Poisonous snake.

ବିଷପାନ—ସଂ. ବି ( ୬ଷ୍ଠୀ ତତ୍; ବିଷ + ପାନ )—ନିଜର ମୃତ୍ୟୁ ଘଟାଇବା
Bishapāna ପାଇଁ ବିଷ ବା ଗରଳ ପିଇବା—Drinking of poison for bringing about one's death.

ବିଷପାୟୀ—ସଂ. ବିଣ. ପୁଂ ( ବିଷ + ପା ଧାତୁ = ପାନ କରିବା + କର୍ତ୍ତୃ.
Bishapāyī ଇନ୍; ୧ମା. ୧ବ )—ଯେ ବିଷ ପିଏ; ବିଷପାନକାରୀ
(ବିଷପାୟିନୀ—ସ୍ତ୍ରୀ) —Drinking poison.

ବିଷ ପିଆଇବା—ଦେ. କ୍ରି—ଅନ୍ୟର ପ୍ରାଣନାଶାର୍ଥ ତାକୁ ବାଧ୍ୟ କରି ବିଷ-
Bisha piāibā ପାନ କରାଇବା—To cause a person to
বিষ পিয়ান बिष पिलाना drink poison to kill himself.
[ବିଷ ପିଏଇବା, ବିଷ ପେଇବା, ବିଷପୀ(ପେ)ଇବା—ଅନ୍ୟରୂପ]

ବିଷ ପିଇବା—ଦେ. କ୍ରି (ବିଷ + ପା ଧାତୁ )—୧ । ଗରଳ ପାନ କରିବା
Bisha pi-ibā —1. To drink poison. ୨ । ପ୍ରାଣ-
বিষ পিয়া সংହାରକ ବା ବିଷାକ୍ତ ଦ୍ରବ୍ୟ ପିଇବା = (ଯଥା—
विष पीना ମଦ୍ୟପାନ । ) 2. To drink any thing (e. g. wine ) which is poisonous

ବିଷ(ଷି)ପିତା—ଦେ· ବିଣ ( ସଂ. ବିଷତିକ୍ତ )—୧ । ବିଷପରି କଟୁ—
Bisha(shi)pitā 1. Bitter like poison. ୨ ।
বিষতীত ଅତ୍ୟନ୍ତ ପିତା—2 Very bitter. ୩ ।
बहुत कडुआ; विषतीता ( ଲକ୍ଷଣାର୍ଥ ) ଅତି ଅପ୍ରିୟ—3. ( figurative ) Very unpleasant. [ ଦ୍ର—
କୌଣସି ବ୍ୟକ୍ତି ଅନ୍ୟ କୌଣସି ବ୍ୟକ୍ତି ପ୍ରତି କୁପିତ ହୋଇ ତାକୁ ଗାଳିଦେବା ଦ୍ୱାରା ବିରକ୍ତ ହେଲେ ଲୋକେ କହନ୍ତି—
ଦ୍ୱିତୀୟ ବ୍ୟକ୍ତି ପ୍ରଥମ ବ୍ୟକ୍ତିକୁ ବିଷପିତା ଲାଗୁଛି । ]

ବିଷପୁଚ୍ଛ—ସଂ. ବିଣ· ପୁଂ ( ବହୁବ୍ରୀହି )—ଯାହା ଲାଙ୍ଗୁଡ଼ରେ ବିଷଥାଏ
Bishapuchchha —Having poison in the tail.
ସଂ. ବି. ପୁଂ—୧ । କଙ୍କଡ଼ାବିଛା—1. Scorpion.
୨ । ତେନ୍ତୁଳିଆ ବିଛା—2. Centiped.

ବିଷପୁଷ୍ପ—ସଂ. ବି ( ବହୁବ୍ରୀହି; ବିଷ + ପୁଷ୍ପ )—୧ । ନୀଳପଦ୍ମ—1.
Bishapushpa The blue waterlily. ୨ । ଅତସୀଗୁଳ୍ମ ( ଦ୍ବି. ଶ. )—2. Linseed ( plant ) ୩ । ମଦନ
ଫଳ ଗଛ ( ଦ୍ବି· ଶ. )—3. The Madana tree.
୪ । ( ମ. ପ ଲୋ ) ବିଷାକ୍ତ ପୁଷ୍ପ—4. A poisonous flower.

ବିଷପୋକ ବିଷରେ ବଞ୍ଚିବା (ନ୍ୟାୟ)—ବିଷାକ୍ତ ବସ୍ତୁରେ ଯେଉଁ କୃମି ଜାତ
Bishapoka bishare bañchibā ହୁଅନ୍ତି, ସେମାନେ ସେହି
বিষের পোকা বিষে বাঞ্চা ବିଷ ପଦାର୍ଥ ମଧ୍ୟରେ ବଞ୍ଚି ରହନ୍ତି ଓ
विषका कोडा विषमे ही जीना ଉକ୍ତ ବିଷ ସେମାନଙ୍କର ଅନିଷ୍ଟ କରେ ନାହିଁ; ସେହିପରି ଯେଉଁ ବ୍ୟକ୍ତି ଦୁଷ୍ଟ ଲୋକଙ୍କ ସହବାସ
କରେ, ଦୁଷ୍ଟ ଲୋକମାନେ ତାହାର କିଛି ଅନିଷ୍ଟ କରି-
ପାରନ୍ତି ନାହିଁ—An analogy from worms produced from poisonons matter subsisting in the poison; a person brought up in unhealthy or immoral sorroundings can withstand the same in after life.

ବିଷ ପ୍ରୟୋଗ—ସଂ. ବି. ( ୬ଷ୍ଠୀ ତତ୍; ବିଷ + ପ୍ରୟୋଗ )—ହତ୍ୟା ଅବା
Bisha prayoga ଔଷଧାର୍ଥ ବିଷଦାନ—Administration of poison for medicinal or murderous purpose.

ବିଷ ପ୍ରସୂନ—ସଂ. ବି. ( ମ. ପ. ଲୋ; ବିଷ + ପ୍ରସୂନ )—ପଦ୍ମ—
Bisha prasūna Lotus. ( ଉ—ବିଷପ୍ରସୂନ ଇନ୍ଦୁ ନାହିଁ ଦେଖେ । ଉପେ. ବୈଦେହୀଶବିଳାସ ।)

ବିଷ ବଞ୍ଚିକା—ସଂ. ବି—ବିଛୁଆତି—
Bisha bañchikā The stinging nettle.

ବିଷବତ୍—ସଂ. ଅବ୍ୟୟ-(ବିଷ + ତୁଲ୍ୟାର୍ଥେ. ବତ୍)—୧ । ବିଷ ତୁଲ୍ୟ—
Bishabat 1. Similar to or like poison. ୨ । ମାରା-
ତ୍ମକ—2. Fatal; deadly.

ବିଷ ବଇଦ୍ୟ—ଗ୍ରା. ବି· (ସଂ. ବିଷବୈଦ୍ୟ)—ବିଷ ବୈଦ୍ୟ (ଦେଖ)
Bisha badya Bisha baidya (See)
(ବିଷ ବଇଦ—ଅନ୍ୟରୂପ) বিষবদ্যী विषबैद्

ବିଷବଲ୍ଲୀ—ସଂ. ବି—ଇନ୍ଦ୍ରବାରୁଣୀ ଲତା (ଦ୍ବି. ଶ)—
Bishaballī Colocynth creeper.

ବିଷ ବିଦ୍ୟା—ସଂ. ବି. ସ୍ତ୍ରୀ. ( ବିଷ + ବିଦ୍ୟା )—୧ । ବିଷଘ୍ନ ମନ୍ତ୍ରାଦି—
Bisha bidyā 1. The art of counteracting the effects of poison by means of incantation.
୨ । ବିଷଘ୍ନ ଔଷଧ ପ୍ରୟୋଗ ଓ ବିଷମାରଣ ବିଧି ଥିବା
ବୈଦ୍ୟ ଶାସ୍ତ୍ର—2. The art dealing with antidotes and rectification of poisons.

ବିଷ ବୃକ୍ଷ—ସଂ. ବି. (ମ. ପ. ଲୋ; ବିଷ + ବୃକ୍ଷ)—୧ । ଯେଉଁ ବୃକ୍ଷର
Bisha bruksha ପତ୍ର ବା ଫଳାଦି ବିଷାକ୍ତ—1. Poisonous tree. ୨ । ଡିମ୍ବିରି ଗଛ (ଦ୍ବି. ଶ)—2. The fig tree.
୩ । (ଲକ୍ଷଣାର୍ଥ) ମନ୍ଦ ବା ଦୁଷ୍ଟ ବ୍ୟକ୍ତି—2. (figurative) A wicked or depraved person. ଦେ.
ବି—ବଙ୍ଗୀୟ ଲେଖକ ବଙ୍କିମଚନ୍ଦ୍ରଙ୍କ କୃତ ପ୍ରସିଦ୍ଧ
ଉପନ୍ୟାସ—The title of a Bengalee novel by Bankima chandra.

ବିଷ ବୈଦ୍ୟ—ସଂ. ବି. (୬ଷ୍ଠୀ ତତ୍; ବିଷ + ବୈଦ୍ୟ; କିମ୍ବା ବିଷ ବିଦ୍ୟା
Bisha baidya + ଜ୍ଞାନାର୍ଥେ. ଅ)—ମନ୍ତ୍ରୌଷଧି ଦ୍ୱାରା ବିଷକ୍ରିୟା
(ବିଷ ଭିଷକ୍—ଅନ୍ୟରୂପ) ନଷ୍ଟ କରିବାକୁ କ୍ଷମ ଚିକିତ୍ସକ—
A physician who cures snake-bites and counteracts the effects of various poisons by means of charms or medicines

ବିଷ ଭକ୍ଷଣ—ସଂ. ବି. (୬ଷ୍ଠୀ ତତ୍; ବିଷ + ଭକ୍ଷଣ)—ବିଷ ଖାଇବା—
Bisha bhakshana Taking of poison.

**ବିଷ ଭକ୍ଷିବା**—ଦେ. (ପଦ୍ୟ) କ୍ରି. (ସଂ. ବିଷ+ଭକ୍ଷ୍ ଧାତୁ)—
Bisha bhaksbiba ବିଷ ଖାଇବା—To take poison.
বিষ ভক্ষা বিষ भक्षना

**ବିଷ ଭଦ୍ରା**—ସଂ ବି—ବଡ଼ ଦନ୍ତୀ ବୃକ୍ଷ ( ଦ୍ର. ଶବ୍ଦସାଗର )—
Bisha bhadra The big species of Danti tree.
(ବିଷ ଭଦ୍ରିକା—ଅନ୍ୟରୂପ)

**ବିଷଭୃତ୍**—ସଂ. ବି. ( ବିଷ+ଭୃ ଧାତୁ=ପୋଷଣ କରିବା+କର୍ତ୍ତୃ.
Bishabhrut କ୍ୱିପ୍)—ସର୍ପ; ସାପ; ବିଷଧର ସର୍ପ—Poisonous snake; serpent.

**ବିଷମ**—ସଂ. ବିଣ. ( ବି=ନୁହେଁ+ସମ=ସମାନ )—୧ । ଅସମାନ;
Bishama ବିସଦୃଶ—1. Unlike; dissimilar; unequal.
( ବିଷମା—ସ୍ତ୍ରୀ ) (ବିଷମତା—ବି) (ବିପରୀତ—ସମ)
୨ । ଅଯୁଗ୍ମ (ସଂଖ୍ୟା); ଯେଉଁ ସଂଖ୍ୟାକୁ ୨ ରେ ହରଲେ ଅଂଶ ରହେ—2. Odd number; uneven number.
୩ । ବିଯୋଡ଼—3. Not in pairs; unmatched.
୪ । ଅସାଧାରଣ; ଅସାମାନ୍ୟ—4. Extraordinary; uncommon.
୫ । କଷ୍ଟଦାୟକ; କ୍ଳେଶକର—5. Painful.
୬ । ଦୁର୍ଗମ—6. Difficult to pass.
୭ । ଦୁଃସହ—7. Difficult to bear.
୮ । ମାରାତ୍ମକ—8. Fatal; deadly.
୯ । ଅଗ୍ରାହ୍ୟ—9. Unacceptable.
୧୦ । ଦୁର୍ବୋଧ—10. Unintellegible.
୧୧ । ଜଟିଳ—11. Knotty.
୧୨ । ସଙ୍କଟମୟ; ସଙ୍କୀର୍ଣ୍ଣ—12. Narrow.
୧୩ । ଦାରୁଣ; ଉତ୍କଟ—13. Hard; horrible; terrific. [ଉ—ବିଷରୁ ବିଷମ ସ୍ଥୂଳକଂଧରର ଘାତରେ ହର ହୋଇଲେ । ଭଞ୍ଜ. ବୈଦେହୀଶବିଳାସ । ]
୧୪ । ଯାହାର ବାହୁମାନ ସମାନ ନୁହେଁ ( କ୍ଷେତ୍ର )—14. (a geometrical figure) Having its sides unequal. (ଯଥା—ବିଷମ ତ୍ରିଭୁଜ; ବିଷମ ଚତୁର୍ଭୁଜ)
୧୫ । ବନ୍ଧୁର; ଉଚ୍ଚନୀଚ—15. Uneven; rough; undulating.
୧୬ । ଦୁଃସାଧ୍ୟ; କଷ୍ଟସାଧ୍ୟ—16. Hard of solution; difficult to solve unmanageable.
୧୭ । ଅସରଳ; ଯାହା ସିଧା ନୁହେଁ—17. Not straight; tortuous. ( ଯଥା—ବିଷମ ରେଖା)
୧୮ । ବିପଦସଙ୍କୁଳ—18. Dangerous; beset with danger.

ସଂ. ବି—୧ । ଉଚ୍ଚନୀଚ ଭୂମି—1. Uneven ground.
୨ । ଖାଇବା ସମୟରେ ତଣ୍ଟିରେ କିଛି ଖାଦ୍ୟଦ୍ରବ୍ୟ ଅଟକି ଯାଇ ସାମୟିକ ଶ୍ୱାସପ୍ରଶ୍ୱାସ ବନ୍ଦ ହେବା—2 Temporary suffocation or obstruction of the air pasage due to food sticking in the throat (Ganguly).
୩ । ନଦୀ ଗର୍ଭରୁ ଉପରକୁ ଉଠିଥିବା ଉଚ୍ଚନୀଚ ବଡ଼ ବଡ଼ ପଥର ଖଣ୍ଡ ବା ଟେକଡ଼ାମାନ—3 Projecting boulders in the bed of flowing rivers. [ଉ—ଅବଗାହୁଛନ୍ତି କଣ୍ଠ ଦଳେ ଦଳେ, ବିଷମ ପରାୟେ ହଣି ସୋତକଳେ । ରାଧାନାଥ. ନନ୍ଦିକେଶ୍ୱରୀ । ]
୪ । ନଦୀଗର୍ଭରେ ଦୁଇ ପାର୍ଶ୍ୱରେ ବଡ଼ ବଡ଼ ପଥର ଥାଇ ମଝିରେ ନଈପାଣି ଖୁବ୍ ଦ୍ରୁତଗତିରେ ବୋହିଯିବା ସଙ୍କୀର୍ଣ୍ଣ ଜଳପଥ—4. Stony rapids in the beds of flowing rivers. [ ଦ୍ର—ସମ୍ବଲପୁରଠାରୁ ଅଠମଲ୍ଲିକ ପର୍ଯ୍ୟନ୍ତ ମହାନଦୀର ଗର୍ଭ ସହସ୍ର ସହସ୍ର ବିଷମରେ ପୂର୍ଣ୍ଣ; ଏ ସ୍ଥାନରେ ନୌକାକୁ ନିରାପଦରେ ନେବାପାଇଁ ଅଭିଜ୍ଞ କଣ୍ଡୁଆଳଙ୍କୁ ନିଯୁକ୍ତ କରାଯାଏ । ସେମାନେ ନିରାପଦ ବାଟ ଠଉରାଇ ଡଙ୍ଗାକୁ ଏ ବାଟେ ନଅନ୍ତି । ଟିକିଏ ଅସାବଧାନ ହେଲେ ଡଙ୍ଗା ଉକ୍ତ ବିଷମମାନଙ୍କରେ ମାଡ଼ ଖାଇ ଚୂର୍ଣ୍ଣ ହୋଇଯାଏ । ]
୫ । ଗିରିସଙ୍କଟ—5. Mountain pass.
୬ । ଅର୍ଥାଲଙ୍କାର ବିଶେଷ 6. A figure of speech. [ ଦ୍ର—ଏଥିରେ ଦୁଇ ବିରୋଧୀ ବସ୍ତୁର ବର୍ଣ୍ଣନା କରାଯାଏ ବା ଯଥାଯୋଗ୍ୟ ବସ୍ତୁର ଅଭାବ ବର୍ଣ୍ଣିତ ହୋଇ ଥାଏ—ଦ୍ର. ଶ । ]
୭ । ପଦ୍ୟବିଶେଷ—7. A kind of verse; irregular verse. [ ଦ୍ର—ଏଥିରେ ଚରଣମାନଙ୍କର ଅକ୍ଷରସଂଖ୍ୟା ସମାନ ନ ଥାଏ ।]
୮ । ତାଳବିଶେଷ—8. Name of a musical measure.
୯ । (ଗଣିତ) ଅଯୁଗ୍ମ ରାଶି—9. (Mathematics). Odd number.
୧୦ । (ଜ୍ୟୋତିଷ) ଅଯୁଗ୍ମ ରାଶି—10. (astrology) The signs of the zodiac which occupy odd places ( e. g. the 1st, 3rd, 5th, 7th, 9th and 11th signs). [ଯଥା—୧. ମେଷ, ୩. ମିଥୁନ, ୫. ସିଂହ, ୭. ତୁଳା, ୯. ଧନୁ ଓ ୧୧. କୁମ୍ଭ]
୧୧ । (ବୈଦ୍ୟକ) ବାୟୁର ପ୍ରକୋପରୁ ଉତ୍ପନ୍ନ ଜଠରାଗ୍ନି ( ଦ୍ର. ଶ )—11. The state of the digestive function due to the morbidity of wind or rheum in the system.

ଦେ. ବିଣ—୧ । (ମନ୍ଦ ଅର୍ଥ) ଅଘଟଣ; ବିଡ଼ମ୍ବଣ ( କଥା ); ଅଶ୍ରୁତପୂର୍ବ ବା ଅଦୃଷ୍ଟପୂର୍ବ; ଯାହା କେବେ ଘଟି ନାହିଁ—1. Unheard of or unthought of (matter) ( ଉ—ଏ ବିଷମ କଥା ଏ ସଂସାରେ କେହି ଶୁଣି ନାହିଁ କେଉଁ କାଳେ । ରାଧାନାଥ. ପାର୍ବତୀ ।)
୨ । ମନ୍ଦ—2. Bad. (ଉ—ବିଷମ ବୁଦ୍ଧି ପ୍ରକାଶ, କେବେ ନୋହିବ ନନ୍ଦୁଷ ପ୍ରାୟ ନାଶ ଯିବାକୁ ମୋ ଚିତ୍ତ । ଭଞ୍ଜ. ବୈଦେହୀଶବିଳାସ । ]

ଦେ. ବି—୧ । ଜଟିଳ ଘଟଣା—1. A confused state of things.
୨ । ଜଟିଳ ସମସ୍ୟା—2. Dilemma; riddle.
୩ । ଭୟାନକ ଘଟଣା—3. Terrible event.
বিষম

**ବିଷମ କର୍ଣ୍ଣ**—ସଂ. ବି. ( କର୍ମଧାରୟ )—(ଜ୍ୟାମିତି) ବିଷମ ଚତୁର୍ଭୁଜର କର୍ଣ୍ଣ ରେଖା—( geometry ) The diagonal of a trapezoid.
Bishama karnna

**ବିଷମ କୋଣ**—ସଂ. ବି. (କର୍ମଧା)—(ଜ୍ୟାମିତି) ଯେଉଁ କୋଣ ସମକୋଣରୁ ଊଣା ବା ବେଶି—(geometry) An acute or obtuse angle.
Bishama koṇa

**ବିଷମ କୋଣୀ**—ସଂ. ବିଣ. (ବିଷମ କୋଣ+ଇନ୍)—(ଜ୍ୟାମିତି) ଯେଉଁ କ୍ଷେତ୍ରର କୌଣସି କୋଣ ସମକୋଣ ନୁହେଁ—(geometry) (a figure) Which has got no right angle in it.
Bishama koṇī

**ବିଷମ ଖାତ**—ସଂ. ବି. (କର୍ମଧା; ବିଷମ+ଖାତ)—ଅସମାନ ବାହୁବିଶିଷ୍ଟ ଗର୍ତ୍ତ—A hole or pit of unequal sides.
Bishama khāta

**ବିଷମ ଚତୁରସ୍ର**—ସଂ. ବି. (ବିଷମ+ଚତୁରସ୍ର)—ଯେଉଁ କ୍ଷେତ୍ରର ଚାରି ବାହୁ ଓ ଚାରି କୋଣ ପରସ୍ପର ଅସମାନ—Trapezoid.
Bishama chaturasra
ବିଷମ ଚତୁର୍ଭୁଜ, ବିଷମ ଚତୁଷ୍କୋଣ—ଅନ୍ୟରୂପ

**ବିଷମଚ୍ଛଦ**—ସଂ. ବି. (ବହୁବ୍ରୀହି; ବିଷମ+ଛଦ; ସନ୍ଧି ଯୋଗୁ ଛ ସ୍ଥାନରେ ଚ୍ଛ)—ସପ୍ତବର୍ଣ୍ଣି ବା ଛତିଆନା ଗଛ—Alstonia Scholaris (tree).
Bishamachchhada
(ବିଷମ ପଲାଶ—ଅନ୍ୟରୂପ)

**ବିଷମ ଜ୍ୱର**—ସଂ ବି. (କର୍ମଧା; ବିଷମ+ଜ୍ୱର)—୧। କଠିନ ସବିରାମ ବା ଅବିରାମ ଜ୍ୱରବିଶେଷ; ମଜ୍ଜାଗତ ଜ୍ୱର; ଜୀର୍ଣ୍ଣ ଜ୍ୱର—1. A chronic intermittent fever of an obstinate type. [ଦ୍ର—ଏ ଜ୍ୱର ପ୍ରତିଦିନ ରୋଗୀକୁ ଆକ୍ରମଣ କରେ, କିନ୍ତୁ ଏଥିରେ ଶରୀରର ତାପ ବା ନାଡ଼ୀର ଗତି ସବୁବେଳେ ସମାନ ନ ଥାଏ, କମ୍ପ ଜର ଆସିବା ସମୟ ଠିକ୍ ନ ଥାଏ। ସାଧାରଣ ଜ୍ୱରର ଚିକିତ୍ସା ନ ହେଲେ ବା ଜ୍ୱର ସମ୍ପୂର୍ଣ୍ଣ ରୂପେ ଭଲ ନ ହେଉଣୁ ରୋଗୀ ଅପଥ୍ୟ କଲେ ତାହା ବିଷମ ଜ୍ୱରରେ ପରିଣତ ହୁଏ। ଏହାର ଅନେକ ଭେଦ ଅଛି, ଯଥା—ସନ୍ତତ ଜ୍ୱର, ସତତ ଜ୍ୱର, ତୃତୀୟକ, ଚତୁର୍ଥକ।] ୨। ଖୁବ ଶୀତବୋଧ ସହ ଆସିବା ଜ୍ୱର (ହି. ଶ)—2. Fever attacking a person with a feeling of cold. ୩। କ୍ଷୟ ବା ରାଜଯକ୍ଷ୍ମା ରୋଗରେ ହେବା ଜ୍ୱର (ହି. ଶ)—3 Fever due to consumption.
Bishama jwara

**ବିଷମ ତ୍ରିଭୁଜ**—ସଂ. ବି. (କର୍ମଧା; ବିଷମ+ତ୍ରିଭୁଜ)—ଯେଉଁ ତ୍ରିଭୁଜର ତିନି ବାହୁ ସମାନ ନୁହେ—A scalene triangle.
Bishama tribhuja
(ବିଷମବାହୁ ତ୍ରିଭୁଜ—ଅନ୍ୟରୂପ)

**ବିଷମ ନୟନ**—ସଂ ବି. (ବହୁବ୍ରୀହି; ବିଷମ=ଅଯୁଗ୍ମ+ନୟନ; ଏହାଙ୍କର ୩ ନେତ୍ର ଥିବାରୁ)—ମହାଦେବ—Śiba.
Bishama nayana
(ବିଷମ ଲୋଚନ, ବିଷମନେତ୍ର—ଅନ୍ୟରୂପ)

**ବିଷମ ବିଶିଖ**—ସଂ. ବି. (ବିଷମ+ବିଶିଖ)—୧। (ବହୁବ୍ରୀହି; ଏହାଙ୍କ ଧନୁର ଶର ସଂଖ୍ୟା ୫) କନ୍ଦର୍ପ—1. Cupid. ୨। (କର୍ମଧା) ସୁତୀକ୍ଷ୍ଣ ବା ଦାରୁଣ ଶର—2. Terrible or very sharp arrow. (ଉ—ବିଷମ ବିଶିଖେ ତାକୁ କର ହତ ବଣା। ଭଞ୍ଜ. ବୈଦେହୀଶବିଳାସ)
Bishama biśikha
(ବିଷମ ବାଣ—ଅନ୍ୟରୂପ)

**ବିଷମ ରାଶି**—ସଂ. ବି. (କର୍ମଧା; ବିଷମ+ରାଶି)—ଅସମ ବା ଅଯୁଗ୍ମ ରାଶି—An odd number. [ଯଥା—୧, ୩, ୫, ୭, ୯, ୧୧, ୧୩।] ଯେଉଁ ରାଶି ଦୁଇ ସମାନ ପୂର୍ଣ୍ଣସଂଖ୍ୟାରେ ବିଭକ୍ତ ହୋଇ ନ ପାରେ।
Bishama rāśi

**ବିଷମ ଲାଗିବା**—ଦେ. କ୍ରି—ଖାଦ୍ୟଦ୍ରବ୍ୟାଂଶ ହଠାତ୍ ଶ୍ୱାସନଳୀରେ ଲାଗିଯିବା; ତୋଣ୍ଟିରେ ଲାଗିବା—The sticking of a particle of food in the wind pipe. [ଦ୍ର—ବଙ୍ଗଦେଶରେ ଓ ଓଡ଼ିଶାରେ ଲୋକବିଶ୍ୱାସ ଏହି କି, ତୁମ୍ଭେ ଖାଇଲା ବେଳେ ବିଷମ ଲାଗିଲେ କେହି ବନ୍ଧୁ ସେହି ସମୟରେ ତୁମ୍ଭଙ୍କୁ ସ୍ମରଣ କରୁଅଛି।]
Bishama lāgibā
বিষম লাগা (খাওয়া)

**ବିଷମ ଶର**—ସଂ. ବି. (ବହୁବ୍ରୀହି; ବିଷମ+ଶର)—୧। କନ୍ଦର୍ପ—1. Cupid (ଉ—ବିଷମ ଶର ବ୍ୟାଧ ହରିଣୀ କରି, ବିଚ୍ଛେଦ ଘାଟ ଜଗି ବାଣ ପ୍ରହାରେ ଯେ। ଭଞ୍ଜ. ବୈଦେହୀଶବିଳାସ।) ୨। (କର୍ମଧା) ଦାରୁଣ ବାଣ—2. Terrible arrow
Bishama śara

**ବିଷମ ସଙ୍କଟ**—ସଂ. ବି. (କର୍ମଧା; ବିଷମ+ସଙ୍କଟ)—ମହାବିପଦ୍—A great danger.
Bishama saṅkaṭa

**ବିଷମ ସପ୍ତମ**—ସଂ. ବି. (ବିଷମ+ସପ୍ତମ)—(ଫଳିତ ଜ୍ୟୋତିଷ) ବିବାହରେ ନିଷିଦ୍ଧ ଯୋଗ ବିଶେଷ—(astrology) An astrological conjunction of signs of the bride and bridegroom which is considered inauspicious for marriage [ଦ୍ର—ବର କନ୍ୟାଙ୍କର ଯଥାକ୍ରମେ ମେଷ ଓ ତୁଳା, ମିଥୁନ ଓ ଧନୁ, ସିଂହ ଓ କୁମ୍ଭ ଏପରି ରାଶି ହେଲେ ଏହାକୁ ବିଷମ ସପ୍ତମ କହନ୍ତି। ଏପରି ଅବସ୍ଥାରେ ବିବାହ ହେଲେ ବରର ଓ କନ୍ୟାର ମୃତ୍ୟୁ ଘଟେ।]
Bishama saptama

**ବିଷମ ସମୟ**—ସଂ. ବି (ବିଷମ+ସମୟ)—ବିପଦ୍‌କାଳ; ଦୁଃସମୟ—Time of danger; evil days.
Bishama samaya

**ବିଷମ ସମସ୍ୟା**—ସଂ. ବି (କର୍ମଧା; ବିଷମ+ସମସ୍ୟା)—୧। ଉତ୍କଟ ବା ଅସାଧ୍ୟ ପ୍ରଶ୍ନ ବା ବିଷୟ—1. Dilemma; a riddle which is very hard to solve. ୨। ଅର୍ଥାଲଙ୍କାର ବିଶେଷ—2. A figure of speech. [ଦ୍ର—ଏଥିରେ ଅଯଥାର୍ଥ ବିଷୟ ଲକ୍ଷଣାର୍ଥରେ ବ୍ୟବହୃତ ହୋଇଥାଏ। ଯଥା—କବି ବର୍ଣ୍ଣିଲା ବଚନ ହେଲା ତୁମ୍ବୀ ବୁଡ଼ିଲା, ନ ବୁଡ଼ି ଶିଳା ସଲିଳ ଉପରେ ଯା ଉହ୍ଲା। ଭଞ୍ଜ. ଲାବଣ୍ୟବତୀ।]
Bishama samasyā

**ବିଷମ ସାହସ**—ସଂ. ବି (କର୍ମଧା; ବିଷମ+ସାହସ)—ଅସମ ସାହସ; ଅନୁଚିତ ସାହସ—Foolhardiness; rashness. [ଉ—ମନସ୍ୱିନୀ ବାଳାର ଏ ବିଷମ ସାହସ, ଦେଖି ହେବେ ସମବେତ ରାଜନ୍ୟ ଚକିତ—ରାଧାନାଥ. ମହାଯାତ୍ରା।]
Bishama sāhasa

**ବିଷମ ସାହସିକ**—ସଂ. ବିଣ. ପୁଂ (ବିଷମ+ସାହସିକ)—ଅସମସାହସିକ; ହାଇଁସାହାସିଆ—Foolhardy, rash.
Bishama sāhasika
(ବିଷମ ସାହସିକା—ସ୍ତ୍ରୀ) (ବିଷମ ସାହସୀ—ଅନ୍ୟରୂପ)

ବିଷମସ୍ଥ—ସଂ. ବିଣ. ପୁଂ ( ବିଷମ+ସ୍ଥା ଧାତୁ=ରହିବା+କର୍ତ୍ତୃ. ଅ ) Bishamastha —୧ । ବିପଦ୍‌ଗ୍ରସ୍ତ—1. Involved or (ବିଷମସ୍ଥା—ସ୍ତ୍ରୀ) fallen in danger. ୨ । ଉଚ୍ଚନୀଚ ପ୍ରଦେଶସ୍ଥ—2. Situate in an uneven country.

ବିଷମା—ସଂ. ବିଣ. ସ୍ତ୍ରୀ ( ବିଷମ+ଆ )—ବିଷମର ସ୍ତ୍ରୀଲିଙ୍ଗ—Bishama Feminine of Bishama. ସଂ. ବି—୧ । ମହୁର ( ଦ୍ର. ଶ. )—1. Aconite. ୨ । ବଣ ବର-କୋଳି ( ଦ୍ର. ଶ. )—2. The wild jujube berry and tree.

ବିଷମାକ୍ଷ—ସଂ. ବି ( ବହୁବ୍ରୀହି; ବିଷମ+ଅକ୍ଷି )—ବିଷମଲୋଚନ; Bishamākoha ମହାଦେବ—Siba.

ବିଷମାୟୁଧ—ସଂ. ବି ( ବହୁବ୍ରୀହି; ବିଷମ=ଅଯୁଗ୍ମ+ଆୟୁଧ=ଶର )—Bishamāyudha ପଞ୍ଚଶର; କନ୍ଦର୍ପ—Cupid.

ବିଷମାରଣ—ସଂ. ବି ( ୬ଷ୍ଠୀ ତତ୍; ବିଷ+ମାରଣ )—ବିଷଶୋଧନ Bishamārana ( ଦେଖ )—Bisha sodhana ( See )

ବିଷମାଳଙ୍କାର—ସଂ. ବି ( ବିଷମ+ଅଳଙ୍କାର )—ଅର୍ଥାଳଙ୍କାରବିଶେଷ Bishamālankāra A figure of speech. [ ଦ୍ର—କାର୍ଯ୍ୟ ଓ କାରଣର ଗୁଣ ଓ କ୍ରିୟା ବିରୁଦ୍ଧରୂପେ ବର୍ଣ୍ଣିତ ହେଲେ ଅଥବା ଆରବ୍ଧ କ୍ରିୟାର ବିଫଳତା, ବିଶେଷତଃ ଅନିଷ୍ଟଜନକତା ବର୍ଣ୍ଣିତ ହେଲେ ବିଷମାଳଙ୍କାର ହୁଏ । ଯଥା—ତବ ଖଡ୍ଗ ଅସିଲତା ତମାଲ ବରଣ, କର ସ୍ପର୍ଶେ ଶୁକ୍ଳଭାବ କରଣ ଧାରଣ, ଶାରଦ ସୁଧାଂଶୁ ସମ ଜଗତର ସାର, ତବ ଯଶ ହେ ରାଜନ ! କରୁଛି ବିସ୍ତାର । ଲୁଳମଣି. ଅଳଙ୍କାରତରଙ୍ଗିଣୀ । ]

ବିଷମାଶନ—ସଂ. ବି—ଅନିୟମିତ ସମୟରେ ଭୋଜନ—Irregularity Bishamāsana in the time of taking meal. [ ଦ୍ର—ଏଥିର ଫଳରେ ମନୁଷ୍ୟର ଆଳସ୍ୟ ଓ ଦୁର୍ବଳତା ଜନ୍ମେ—ଦ୍ର. ଶ. ]

ବିଷମିବା—ଦେ. କ୍ରି ( ପଦ୍ୟ ) ( ସଂ. ବିଷମ )—ବିଷମରୂପେ ପରିଣତ Bishamibā ହେବା—To turn into rapids or boulders in the bed of a river [ ଉ—ଛଳଗିଲା ପୁଞ୍ଜ ଯାର ବିଷମି କୋଳେ, ନଦୀଶଯ୍ୟା, ଉତ୍ପନ୍ନାନ୍ତି ଅସଂଖ୍ୟ ପ୍ରପାତ ଠାବେ ଠାବେ । ରାଧାନାଥ. ମହାଯାତ୍ରା ]

ବିଷମିଶ୍ରିତ—ସଂ. ବିଣ ( ୩ୟାତତ୍; ବିଷ+ମିଶ୍ରିତ )—ବିଷ ମିଶାଯାଇ Bishamiśrita ଥିବା—Mixed with poison.

ବିଷମୁଖ—ସଂ. ବି ( ବହୁବ୍ରୀହି; ବିଷ+ମୁଖ )—ବିଷଧର ସର୍ପ—Bishamukha Poisonous snake. ସଂ. ବିଣ—ଯେଉଁ ଅସ୍ତ୍ରଶସ୍ତ୍ରାଦିର ଧାରରେ ବିଷ ଦିଆଯାଇ ଥାଏ—Any weapon whose edge has been poisoned.

ବିଷମୁଷ୍ଟି—ସଂ. ବି—୧ । କୋଚିଲା ଗଛ ଓ ତାହାର ଫଳ—1. Nux Bishamushti Vomica. ୨ । ଜାବନ୍ତୀ ( ଦ୍ର. ଶ. )—2. A rare herb. ୩ । ଅଗସ୍ତି ଗଛ ( ଦ୍ର. ଶ. )—3. Sesbania Grandiflora ( tree ) ୪ । ମାହାଳ ଗଛ ( ଦ୍ର. ଶ. )—4. Persian Lilac ( tree ) ୫ । ଏକପ୍ରକାର କ୍ଷୁଦ୍ର ଗୁଳ୍ମ—5. A kind of medicinal plant. [ ଦ୍ର—ହିନ୍ଦୀରେ ଏହାକୁ ବିଷ-ଡୋଡ଼ୀ, କଡ଼ୁଶିଂଗେ କହନ୍ତି; ଏହାର ଅନ୍ୟ ସଂ. ନାମ—କେଶମୁଷ୍ଟି, ସୁମୁଷ୍ଟି, ରଣମୁଷ୍ଟିକ, କ୍ଷୁପାଡ୍ରୋଡ୍ରମୁଷ୍ଟି । ଏହା କଟୁତିକ୍ତରସ, ରୁଚିକର, ଅଗ୍ନିବର୍ଦ୍ଧକ, କଫବାତନାଶକ ଏବଂ ରକ୍ତପିତ୍ତ, ଦାଦ ଓ କଣ୍ଠରୋଗରେ ଉପକାରକ—ବଙ୍ଗଳା. ଦ୍ରବ୍ୟଗୁଣଶିକ୍ଷା । ]

ବିଷ ମୃତ୍ୟୁ—ସଂ. ବି—ଚକୋର ପକ୍ଷୀ—The Chakora bird. Bisha mrutyu [ଉ—ବିଷମୃତ୍ୟୁ ବିଷ ସଙ୍ଗ ଯିବା ପ୍ରାୟେ ଭୂଲି । ଭଞ୍ଜ. ବୈଦେହୀଶବିଳାସ । ]

ବିଷମେକ୍ଷଣ—ସଂ. ବି—(ବହୁବ୍ରୀହି; ବିଷମ+ଈକ୍ଷଣ)—ଶିବ—Bishameksh ṇa Siba.

ବିଷମେଷୁ—ସଂ. ବି— ( ବହୁବ୍ରୀହି; ବିଷମ=ଅଯୁଗ୍ମ+ଇଷୁ=ବାଣ )—Bishameshu ପଞ୍ଚବାଣ; କନ୍ଦର୍ପ—Cupid. [ ଉ—ବିଷମେଷୁ ସୁର୍ପଯୁକ୍ତ ନାସ୍ତ କେଲଭରେ । ଭଞ୍ଜ. ବୈଦେହୀଶବିଳାସ । ]

ବିଷମୋଭୟ କଣ୍ଟକା—ସଂ. ବି—କ୍ଷୁଦ୍ର ବରକୋଳି ( ଦ୍ରବ୍ୟଗୁଣ )—Bishamobhaya kaṇṭakā The small variety of ujube.

ବିଷୟ ସଂ. ବି—(ବି=ବିଶିଷ୍ଟରୂପେ+ସି ଧାତୁ=ବନ୍ଧନ କରିବା+Bishaya କର୍ତ୍ତୃ ଅ; ଯାହା ଇନ୍ଦ୍ରିୟଗଣଙ୍କୁ ବନ୍ଧନ କରେ ବା ଆକର୍ଷଣ କରେ)—୧ । ଇନ୍ଦ୍ରିୟଗ୍ରାହ୍ୟ ପଦାର୍ଥ—1. A matter perceptible to the senses; any object of sense. ୨ । ଧନ; ସମ୍ପତ୍ତି; ବିଭବ—2. Wealth; riches; property. ୩ । ସଂସାରରେ କରାଯିବା ଭୋଗ—3. Worldly enjoyment. ୪ । ଭୋଗ୍ୟ ବସ୍ତୁ—4. Object of enjoyment. ୫ । ପଦାର୍ଥ—5. Thing, object. ୬ । ଦେଶ—6. Country; region. ୭ । ସ୍ଥାନ—7. Place; locality. ୮ । ପାତ୍ର—8. Receptacle. ୯ । ବର୍ଣ୍ଣନୀୟ ପଦାର୍ଥ—9. Anything to be described. ୧୦ । ଭୂତ—10. Ghost. ୧୧ । ଗୃହ—11. House. ୧୨ । ସ୍ୱାମୀ—12. Husband. ୧୩ । ପ୍ରେମିକ ବ୍ୟକ୍ତି; ପ୍ରିୟ ଜନ—13. Lover. ୧୪ । ନେତା; ନିୟାମକ—14. Regulator; leader; guide. ୧୫ । ଶୁକ୍ର; ବୀର୍ଯ୍ୟ—15. Semen virile. ୧୬ । ରାଜ୍ୟର ଅଂଶ ବିଶେଷ; ଗ୍ରାମପୁଞ୍ଜ; ପ୍ରଗନା—16. A group of villages; perganna. ୧୭ । ବର୍ଣ୍ଣିତ, ଆଲୋଚିତ ବା କଥିତ ବସ୍ତୁ—17. Subject matter of a description or speech; topic. ୧୮ । ବିଚାର୍ଯ୍ୟ ବସ୍ତୁ—18. Subject matter; subject of discussion ୧୯ । ଘଟଣା; କର୍ମ—18. Affair. ୨୦ । ସମ୍ବନ୍ଧ; ସମ୍ପର୍କ—20. Relation; connection. (ଯଥା—ତାଙ୍କ ବିଷୟରେ ମୋର କେତେ କଥା କହିବାର ଅଛି)

**ବିଷୟ ଆଶୟ**—ଦେ. ବି—( ବିରର୍ଥକ ଧ୍ୱନ୍ୟନୁରୂପ ଦ୍ୱିତୀୟ ସହଚର ଶବ୍ଦ )—ଧନସମ୍ପତ୍ତି—Riches; property.
Bishaya āśaya
বিষয়আসয়

**ବିଷୟକ**—ସଂ. ବିଣ—(ବିଷୟ+କ)—ସମ୍ବନ୍ଧୀୟ—Related to; concering.
Bishayako
(ଯଥା—ଧର୍ମବିଷୟକ ପ୍ରବନ୍ଧ)

**ବିଷୟ କର୍ମ**—ଦେ. ବି—(ସହଚର ଶବ୍ଦ; ସଂ. ବିଷୟ+କର୍ମନ୍)—୧ । ସାଂସାରିକ କାର୍ଯ୍ୟ—1. Worldly affair; worldly concern. ୨ । ସାଂସାରିକ ଅବଲମ୍ବନ—2. Worldly pursuit or business. ୩ । ଜୀବିକା; ବୃତ୍ତି; ପେଶା—3. Livelihood; profession. ୪ । ଚାକିରି—4. Service.
Bishaya karma
বিষয়কর্ম্ম
विषयकर्म
(ବିଷୟ କାର୍ଯ୍ୟ; ବିଷୟଧନ୍ଦା—ଅନ୍ୟରୂପ)

**ବିଷୟ ଗର୍ବ**—ସଂ. ବି—(ମ. ପ. ଲୋ. ବିଷୟ+ଗର୍ବ)—ଧନଜନିତ ଗର୍ବ—Pride of being rich.
Bishya garba
(ବିଷୟ ଗର୍ବିତ—ବିଣ)

**ବିଷୟ ଚିନ୍ତା**—ସଂ. ବି—( ୭ମୀ ତତ୍, ବିଷୟ+ଚିନ୍ତା )—ସାଂସାରିକ ବିଷୟରେ ଭାବନା—The thought about worldly matters; mundane thoughts.
Bishay chintā

**ବିଷୟ ତୃଷ୍ଣା**—ସଂ. ବି—(୬ଷ୍ଠୀ ତତ୍; ବିଷୟ+ତୃଷ୍ଣା)—୧ । ସାଂସାରିକ ସୁଖଭୋଗର ଅଭିଳାଷ—1. Hankering after worldly happiness or material prosperity. ୨ । ଧନଲୋଭ—2. Avarice; greed of money.
Bishaya trushṇā
ବିଷୟ ପିପାସା, ବିଷୟ ବାସନା, ବିଷୟ ଲୋଭ, ବିଷୟ କାଙ୍କ୍ଷା, ବିଷୟ ସ୍ପୃହା—ଅନ୍ୟରୂପ
(ବିଷୟ ବିତୃଷ୍ଣା—ବିପରୀତ)

**ବିଷୟ ତ୍ୟାଗ**—ସଂ. ବି ( ବିଷୟ+ତ୍ୟାଗ )—ସାଂସାରିକ ଭୋଗ୍ୟ ବସ୍ତୁକୁ ଛାଡ଼ିଦେବା—Renunciation of worldly enjoyment.
Bishaya tyāga
ବିଷୟତ୍ୟାଗୀ—ପୁଂ, ବିଷୟତ୍ୟାଗିନୀ—ସ୍ତ୍ରୀ—ବିଣ

**ବିଷୟ ନିରୂପଣ**—ସଂ. ବି ( ୬ଷ୍ଠୀ ତତ୍; ବିଷୟ+ନିରୂପଣ )—କୌଣସି ଜ୍ଞାତବ୍ୟ ବା ବକ୍ତବ୍ୟ ବିଷୟର ସ୍ଥିରୀକରଣ—Ascertainment of any subject.
Bishaya nirūpaṇa

**ବିଷୟପତି**—ସଂ. ବି ( ୬ଷ୍ଠୀ ତତ୍; ବିଷୟ+ପତି )—୧ । ଗ୍ରାମପୁଞ୍ଜର ବା ପ୍ରଗନ୍ନାର ବା କ୍ଷୁଦ୍ର ଦେଶର ଶାସକ ବା ଅଧିପତି ( ହି. ଶ )—1. Zamindar or ruler of a group of villages, or pergunna or small province. ୨ । ବିଷୟୀ (ଦେଖ)—2. Bishayī ( See ) [ ଦ୍ର—ଏହି ଶବ୍ଦରୁ ଓଡ଼ିଆ ବିଷୋୟୀ ଶବ୍ଦର ଉଦ୍ଭବ ହୋଇଥିବାର ଅନୁମିତ ହୁଏ । ]
Bishayapati
ବିଷୟାଧିପ, ବିଷୟାଧିପତି—ଅନ୍ୟରୂପ

**ବିଷୟ ପରାୟଣ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଷୟ+ପରାୟଣ )—ସାଂସାରିକ ବିଷୟ ପ୍ରତି ଆସକ୍ତ—Addicted to worldly affairs.
Bishaya parāyaṇa
( ବିଷୟପରାୟଣା—ସ୍ତ୍ରୀ )
( ବିଷୟପରାୟଣତା—ବି )

**ବିଷୟ ପ୍ରସଙ୍ଗ**—ସଂ. ବି ( ୬ଷ୍ଠୀ ତତ୍; ବିଷୟ+ପ୍ରସଙ୍ଗ )—୧ । ସାଂସାରିକ ବିଷୟ ସମ୍ବନ୍ଧେ ଗଳ୍ପ ବା କଥାଭାଷା; ଦୁଃଖସୁଖ ହେବା—1. Talk about each other's worldly affairs. ୨ । ବର୍ଣ୍ଣିତ ବିଷୟ ସଙ୍ଗେ ଥିବା ସମ୍ପର୍କ—2. Relation to the subject matter.
Bishaya prasaṅga

**ବିଷୟବାଡ଼ି**—ଦେ. ବି ( ସହଚର )—ସ୍ଥାବର ଓ ଅସ୍ଥାବର ସମ୍ପତ୍ତି—Property, both moveable and immoveable.
Bishayabārḍi
বিষয়বাড়ী
( ବିଷୟ ସମ୍ପତ୍ତି, ବିଷୟ ସଂସାର, ବିଷୟ ବୃତ୍ତି—ଅନ୍ୟରୂପ )

**ବିଷୟ ବିରକ୍ତି**—ସଂ. ବି ( ୭ମୀ ତତ୍; ବିଷୟ+ବିରକ୍ତି )—ସଂସାର ପ୍ରତି ଅନାସକ୍ତି—Indifference to worldly concerns.
Bishaya birakti
(ବିଷୟବିରାଗ, ବିଷୟବୈରାଗ୍ୟ, ବିଷୟବିତୃଷ୍ଣା—ଅନ୍ୟରୂପ)
( ବିଷୟବିରକ୍ତ, ବିଷୟବିରାଗୀ, ବିଷୟବିତୃଷ୍ଣ—ପୁଂ. ବିଣ )

**ବିଷୟ ବୁଦ୍ଧି**—ସଂ. ବି ( ୭ମୀ ତତ୍; ବିଷୟ+ବୁଦ୍ଧି )—୧ । ବୈଷୟିକ ଜ୍ଞାନ—1. Worldly knowledge; Commonsense. ୨ । ସାଂସାରିକ ଅଭିଜ୍ଞତା—2. Worldly experience.
Bishaya buddhi
(ବିଷୟବୋଧ—ଅନ୍ୟରୂପ)

**ବିଷୟଭେଦ ଉଲ୍ଲେଖାଲଙ୍କାର**—ସଂ. ବି—ଅର୍ଥାଲଙ୍କାର ବିଶେଷ; ଉଲ୍ଲେଖାଲଙ୍କାର ( ଦେଖ ) A figure of speech; Ullekhālankāra (see).
Bishayabheda ullekhālaṅkāra

**ବିଷୟଭୋଗ**—ସଂ. ବି ( ୬ଷ୍ଠୀ ତତ୍; ବିଷୟ+ଭୋଗ )—ଧନ ସମ୍ପତ୍ତିର ଉପଭୋଗ—Enjoyment of riches or worldly prosperity.
Bishayabhoga
( ବିଷୟଭୋଗୀ ପୁଂ. ବିଣ )

**ବିଷୟମଗ୍ନ**—ସଂ ବିଣ. ପୁଂ ( ୭ମୀ ତତ୍; ବିଷୟ+ମଗ୍ନ )—ସାଂସାରିକ ବିଷୟରେ ଆସକ୍ତ—Addicted to worldly concerns.
Bishayamagna
( ବିଷୟମଗ୍ନା—ସ୍ତ୍ରୀ )

**ବିଷୟମତ୍ତ**—ସଂ. ବିଣ. ପୁଂ ( ୭ମୀ ତତ୍; ବିଷୟ+ମତ୍ତ )—ସଂସାର ସୁଖରେ ମାତିଥିବା ଯୋଗୁଁ ଗର୍ବୀ; ଧନଗର୍ବୀ—Mad after the enjoyment of worldly pleasures.
Bishayamatta
(ବିଷୟମତ୍ତତା—ବିଶେଷ୍ୟ )
( ବିଷୟମତ୍ତା—ସ୍ତ୍ରୀ )

**ବିଷୟମଦ**—ସଂ. ବି ( ବିଷୟ+ମଦ )—୧ । ( ମ. ପ. ଲୋ ) ସଂସାର ସୁଖଭୋଗଜାତ ମତ୍ତତା—1. Madness resulting from worldly enjoyment ୨ । ( ରୂପକ ) ବିଷୟଭୋଗରୂପ ଗର୍ବ—2. Pride of worldly enjoyment.
Bishayamada

**ବିଷୟଲାଭ**—ସଂ. ବି ( ୬ଷ୍ଠୀ ତତ୍; ବିଷୟ+ଲାଭ )—ସମ୍ପତ୍ତିଲାଭ—Acquisition of property.
Bishayalābha

**ବିଷୟଲୁବ୍ଧ**—ସଂ. ବିଣ. ପୁଂ ( ୭ମୀ ଓ ୬ଷ୍ଠୀ ତତ୍; ବିଷୟ+ଲୁବ୍ଧ )—ବିଷୟ ପ୍ରତି ଲୋଭଗ୍ରସ୍ତ—Coveting after worldly prosperity.
Bishayalubdha
( ବିଷୟଲୁବ୍ଧା—ସ୍ତ୍ରୀ )

**ବିଷୟସୁଖ**—ସଂ. ବି (୬ଷ୍ଠୀ ତତ୍; ବିଷୟ+ସୁଖ)—ସାଂସାରିକ ବସ୍ତୁ ମାନଙ୍କ Bishaysukha ଭୋଗଜନିତ ସୁଖ—Happiness due to worldly enjoyment.

**ବିଷୟହୀନ**—ସଂ. ବିଣ (୩ୟା ତତ୍; ବିଷୟ+ହୀନ)—ଭୂଇଁହୀ; ଗରିବ—Bishayahīda Poor.

**ବିଷୟା**—ଦେ. ବି (ସଂ. ବିଷୟ)—ସାଂସାରିକ ଭୋଗ ଓ ସୁଖ—Bishayā
ବିষয় Worldly enjoyment and happiness. (ଉ—ସ୍ୱଭାବେ ଯେତୁ ଦେହେ ଥାଇ, ବିଷୟାଭୋଗଲୁ କରଇ—ଜଗନ୍ନାଥ. ଭାଗବତ ।)

**ବିଷୟାକାଙ୍କ୍ଷା**—ସଂ. ବି (୬ଷ୍ଠୀ ତତ୍; ବିଷୟ+ଆକାଙ୍କ୍ଷା)—୧ । ସାଂସାରିକ Bishayākānkshā ବିଷୟ ଭୋଗ କରିବାର ଇଚ୍ଛା—1. Hankering after worldly matters or enjoyment. ୨ । ସମ୍ପତ୍ତି ବା ଧନାକାଙ୍କ୍ଷା—Hankering after riches or property.
(ବିଷୟାଭିଳାଷ—ଅନ୍ୟରୂପ)
ବିଷୟାକାଙ୍କ୍ଷୀ, ବିଷୟାଭିଳାଷୀ } ପୁଂ ; ବିଷୟାକାଙ୍କ୍ଷିଣୀ, ବିଷୟାଭିଳାଷିଣୀ } ସ୍ତ୍ରୀ — ବିଣ

**ବିଷୟାନୁରକ୍ତ**—ସଂ. ବିଣ. ପୁଂ (୭ମୀ ତତ୍; ବିଷୟ+ଅନୁରକ୍ତ)—Bishayānurakta ସାଂସାରିକ ବିଷୟରେ ମଗ୍ନ—Addicted to worldly affairs.
(ବିଷୟାସକ୍ତ—ଅନ୍ୟରୂପ)
(ବିଷୟାନୁରାଗ, ବିଷୟାନୁରକ୍ତି, ବିଷୟାସକ୍ତି—ବିଶେଷ୍ୟ)

**ବିଷୟାନ୍ତର**—ସଂ. ବି (କର୍ମଧା ବା ନିତ୍ୟସମାସ; ଅନ୍ୟ+ବିଷୟ, 'ଅନ୍ୟ' Bishayāntara ସ୍ଥାନରେ 'ଅନ୍ତର'ର ନିପାତ)—ଅନ୍ୟ ବିଷୟ—Another matter

**ବିଷୟାବିଷ**—ଦେ. ବି (ରୂପକ କର୍ମଧା; ବିଷୟ+ବିଷ)—ସାଂସାରିକ Bishayābisha ବିଷୟରୂପ ବିଷ—Worldly affairs compared to poison.

**ବିଷୟାର୍ଥୀ**—ସଂ. ବିଣ. ପୁଂ (ବିଷୟ+ଅର୍ଥ ଧାତୁ+କର୍ତ୍ତୃ. ଇନ୍)—Bishayārthī ବିଷୟାଭିଳାଷୀ; ଧନାଭିଳାଷୀ—Bent on worldly affairs or riches. (ଉ—ଦ୍ୱିତୀୟ ପ୍ରହର ସାନ ବିଷୟାର୍ଥୀ ଜାଣ । ତୃତୀୟ ପ୍ରହର ସ୍ନାନ କାହିଁରେ ନ ଗଣ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।)
(ବିଷୟାର୍ଥିନୀ—ସ୍ତ୍ରୀ)

**ବିଷୟୀ**—ସଂ. ବିଣ. ପୁଂ. (ବିଷୟିନ୍; ବିଷୟ+ଅସ୍ତ୍ୟର୍ଥେ. ଇନ୍)—Bishayī ୧ । ଧନୀ; ସମ୍ପତ୍ତିବାନ୍; ବିଭବଶାଳୀ—1 Rich; prosperous. ୨ । ବିଷୟାସକ୍ତ; ଭୋଗ ବିଳାସରତ—2. Addicted towardly concerns or enjoyment. ସଂ. ବି—୧ । ନୃପତି; ରାଜା—1. King. ୨ । କନ୍ଦର୍ପ—2. Cupid. ୩ । ଧନୀ ବ୍ୟକ୍ତି—3. Rich man. ୪ । ଇନ୍ଦ୍ରିୟ—4. Organ of sense. ୫ । ଗ୍ରାମପୁଞ୍ଜର ବା ପ୍ରଗଣାର ଶାସକ—5. Ruler of a group of villages or pergunna. ଦେ. ବ—ଶୋଇ (ଦେଖ)—Bisoi (See)
(ବିଷୟିନୀ—ସ୍ତ୍ରୀ)

**ବିଷୟୀଭୂତ**—ସଂ. ବିଣ (ବିଷୟ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—Bishayībhūta ୧ । ପ୍ରତ୍ୟକ୍ଷୀଭୂତ—1. Perceived by the senses. ୨ । କୌଣସି ବିଷୟର ଅନ୍ତର୍ଭୁକ୍ତ—2. Included in any subject.

**ବିଷୟେଚ୍ଛା**—ସଂ. ବି. (୬ଷ୍ଠୀ ତତ୍; ବିଷୟ+ଇଚ୍ଛା)—ବିଷୟ ତୃଷ୍ଣା (ଦେଖ) Bishayechchhā Bishaya trushnā (See)
(ବିଷୟେଚ୍ଛୁ—ଅନ୍ୟରୂପ)

**ବିଷ ଯୋଗ**—ସଂ. ବି. (ଜ୍ୟୋତିଷ)—ନକ୍ଷତ୍ରାମୃତ ଯୋଗ ଓ ସିଦ୍ଧି ଯୋଗର Bisha joga ଏକତ୍ର ମିଳନରେ ଘଟିବା ଅଶୁଭକର ଯୋଗବିଶେଷ—An inauspicious astrological conjunction. [ଦ୍ର—ଘୃତ ଓ ମଧୁ ଯେପରି ପୃଥକ୍ ଅବସ୍ଥାରେ ଶରୀରର ପୁଷ୍ଟି ସାଧକ, କିନ୍ତୁ ଏକତ୍ର ମିଶ୍ରିତ ହେଲେ ବିଷ ହୁଏ, ସେହିପରି ଉକ୍ତ ଯୋଗଦ୍ୱୟ ପୃଥକ୍ ଅବସ୍ଥାରେ ଯାତ୍ରାଦି ଶୁଭ କାର୍ଯ୍ୟରେ ଶୁଭ ସୂଚକ, କିନ୍ତୁ ଏକତ୍ର ଘଟିଲେ ଅଶୁଭକର ।]

**ବିଷ ରୂପା**—ସଂ. ବି—୧ । ଅତି ବିଷା; ମହୁରୀ—1. Aconite. Bisha rūpā ୨ । ମହାଳ (ବୃ. ଶ)—2. Persian Lilac.

**ବିଷଳ**—ସଂ. ବ (ବିଷ+ସ୍ୱାର୍ଥେ. ଲ)—ବିଷ—Poison (Apte). Bishala

**ବିଷ ଲଡ଼ୁ**—ଦେ. ବି—ବିଷମିଶ୍ରିତ ଲଡ଼ୁ—Sweetmeat ball Bisha lardu mixed with poison [ଦ୍ର—ଯାହା ଖାଇଲେ ମୃତ୍ୟୁ ଘଟେ ।]
বিষলাড়ু विषकालड्डु

**ବିଷଲାଙ୍ଗଲ**—ସଂ. ବି—ଈଶ୍ୱଲାଙ୍ଗଳିଆ; ଲଙ୍ଗଳଙ୍ଗଳିଆ; ଅଗ୍ନିଶିଖା; Bishalāngala ପାଞ୍ଚଆଙ୍ଗୁଳିଆ—Gloriosa Superba
ସଂ. ନାମ—ଈଶ୍ୱଲାଙ୍ଗଳ, ଲାଙ୍ଗଳୀ, ହଳନୀ, ଶୁକ୍ରପୁଷ୍ପୀ, ଲଙ୍ଗଲକୀ, ଅଗ୍ନିଶିଖା, ବିଶଲ୍ୟା, ଅନନ୍ତା, ଗର୍ଭଘାତିନୀ, କଳହାରୀ, ବହ୍ନିବକ୍ତ୍ରା
ঈষলাঙ্গলা
कलिहारी
ବିଷଲାଙ୍ଗଳ, ବିଷଲାଙ୍ଗ(ଙ୍ଗ)ଳିଆ, ବିଷଲାଙ୍ଗୁଳ(ଡ଼), ବିଷଲାଙ୍ଗଳିଆ, ବିଷଲାଙ୍ଗୁଳିଆ, ବିଷଲାଙ୍ଗଳା(ଲା), ବିଷଲାଙ୍ଗଡ଼ିଆ, ବିଷଲାଙ୍ଗୁଡ଼ା(ଲା)—ଅନ୍ୟରୂପ
ମ. ଖଡ୍ୟାନାଗ, ଚଗମୋଡ୍ୟା
ଗୁ. ଭୁଖଡ଼ୋ
[ଦ୍ର—ଏହା ବନ୍ୟଲତା ବିଶେଷ ; ଉଜ୍ଜଳମୋଗରାଦ୍ଧ ବର୍ଗର ବୃହତୀ; (?) ବର୍ଷାକାଳରେ ଏହା ଭୂମିରୁ ଜନ୍ମେ । କିନ୍ତୁ ଶରତ୍‌କାଳରେ ଫଳ ପାଚିଲେ ଏ ଗଛ ଶୁଖି ମରଯାଏ ଓ ଗଛର ତଳମାଳ ରହେ ନାହିଁ । ପତ୍ର ଏକୋତ୍ତର ଓ ମଞ୍ଜ୍ୟାକାର; ପତ୍ରର ଅଗ୍ରଭାଗ ଆକୁଞ୍ଚିଆ । ଫୁଲ ବଡ଼ ବଡ଼ ଓ ଅଗ୍ନିବର୍ଣ୍ଣ । ଏହାର ଦଳ ୬ଟି ଓ କୁଞ୍ଚକୁଞ୍ଚିଆ; ଗର୍ଭକେଶର ୬ଟି । ଗର୍ଭକେଶର ବଙ୍କା ହୋଇ ପୁଂକେଶର ଉପରେ ପଡ଼େ । ଏହା ଦେଖିବାକୁ ଲଙ୍ଗଳ ବା ଲଙ୍ଗଳର ଫାଳ ପରି । ଫୁଲର ଡେମ୍ଫ ଅଧୋମୁଖ ଓ ଫୁଲ ଅଧୋମୁଖ ହୋଇ ଫୁଟେ । ଫଳ ପାଚିଲେ ଫାଟିଯାଏ । ପ୍ରାଚୀନକାଳରୁ ଏହାର ମୂଳ ଗର୍ଭପାତନ ପାଇଁ ବ୍ୟବହୃତ । ଏହା ବିଷାକ୍ତ । ଏଥିରୁ ଏକପ୍ରକାର ତୈଳ ପ୍ରସ୍ତୁତ ହୋଇ ବିଲିଷ୍ଟ ଇତ୍ୟାଦିରେ ଦିଆଯାଏ । ଏହା ଏକପ୍ରକାର ମହୁରୀ; ଆମଦେଶର ବୈଦ୍ୟମାନେ ମହୁରୀ ଅଭାବରେ ଏହାର ମୂଳକୁ ଔଷଧରେ ବ୍ୟବହାର କରନ୍ତି । ଭନ୍ଦୁଡିଠାରୁ ଏହା ପୃଥକ୍ । ଏହା କୁଷ୍ଠ, ଶୋଥ, ଅର୍ଶ,

ବ୍ରଣ, ଶୂଳ, କଫ ଓ କ୍ରିମିନାଶକ; ଏହା ମିତ୍ରବର୍ଦ୍ଧକ ଓ ଗର୍ଭ ନାଶକ । ]

**ବିଷ ଶୋଧନ**—ସଂ. ବି—( ୬ଷ୍ଠୀ ତତ୍; ବିଷ+ଶୋଧନ )—
Bisha śodhana ଆୟୁର୍ବେଦୋକ୍ତ ବିଧିରେ ବିଷପ୍ରଭୃତି ବସ୍ତୁକୁ କୌଣସି ଔଷଧ ସଙ୍ଗେ ମିଶାଇବା ପୂର୍ବରୁ ତାକୁ ଗୋମୂତ୍ର ଆଦିରେ ସିଝାଇ ତହିଁର ଉଗ୍ରତା ନିବାରଣ ପ୍ରକ୍ରିୟା—The rectification or purification of poison by processes enjoined in the Āyurbeda.

**ବିଷହର**—ସଂ. ବିଣ. ପୁଂ—(ବିଷ+ହୃ ଧାତୁ=ହରଣ କରିବା+କର୍ତ୍ତୃ.
Bishahara ଅ )—ବିଷଘାତି ( ଦେଖ )—Bishaghāti (See).
(ବିଷହରା, ବିଷହରୀ, ବିଷହାରିଣୀ—ସ୍ତ୍ରୀ)
[ବିଷହା, ବିଷହାରକ, ବିଷହାରୀ—ଅନ୍ୟରୂପ]

**ବିଷହରା(ରୀ)**—ସଂ. ବି. ସ୍ତ୍ରୀ—(ବିଷହର+ସ୍ତ୍ରୀ. ଆ; ଈ)- ମନସାଦେବୀ—
Bishaharā(rī) Goddess Manasā. ସ. ବିଣ. ସ୍ତ୍ରୀ—ବିଷହରର ସ୍ତ୍ରୀଲିଙ୍ଗ—Feminine of Bishahara.

**ବିଷହ୍ୟ**—ସଂ. ବିଣ—( ବି+ସହ ଧାତୁ+କର୍ମ. ଯ; ଷତ୍ୱବିଧାନ)—
Bishahyā ୧ । ସହନୀୟ—1. Endurable (Apte). ୨ ।
(ବିଷହ୍ୟତା—ବି) ନିର୍ଣ୍ଣେତବ୍ୟ; ନିର୍ଣ୍ଣେୟ—2. Possible to be settled or determined (Apte). ୩ । ସମ୍ଭବପର—3. Possible (Apte)

**ବିଷା**—ସଂ. ବି—(ବିଷ+ଆ)—୧ । ଅତିବିଷା; ଆଉଷି—1. Aco-
Bishā nitum Heterophyllum. ୨ । ପିତା ତରଡ଼ା (ବୃ ଶ) (ଦେଖ)—2. Bitter Luffa (creeper and fruit). ୩ । କୁଆମଇତା ( ବୃ ଶ ) ( ଦେଖ )—3. Kuāmaitā (See). ୪ । ବିଷଲାଙ୍ଗଳ (ବୃ. ଶ) (ଦେଖ)—4. Wolfsbane. ୫ । କାକୋଲି (ବୃ. ଶ) (ଦେଖ)—5 Kākoḻi (See). ୬ । ବୁଦ୍ଧି (ବୃ. ଶ)—6. Intelligence.

**ବିଷାଇ**—ପ୍ରାଦେ (ସିଂହଭୂମ) ବି—ଗଡ଼ବିଷାଇ (ଦେଖ)—
Bishāi Gardabishāi (See).

**ବିଷା(ଷେ)ଇବା**—ଦେ. କ୍ରି—(ସଂ. ବିଷଶବ୍ଦରୁ ଓଡ଼ିଆ ନାମଧାତୁ)—
Bishā(she)iba ୧ । ବିଷଯୁକ୍ତ କରିବା; ବିଷମୟ କରିବା—
बिषान 1. To poison; to make poisonous. ( ଉ—
**विसैला करना** ବିଷାଇ ମଧୁପତ୍ରିକୁ, ବନେ ଭ୍ରମନ୍ତ ତନୁ । ଭଞ୍ଜ. ବୈଦେହୀଶବିଳାସ । ) ୨ । ବିଷ ବୋଳିବା—2. To besmear with poison. ( ଉ—ଲୋଚନ ଅମୋଘ ଶର କଜ୍ଜଳ ବିଷାଇ । ଶିଶୁଶଙ୍କର. ଉଷା ଅଭିଳାଷ । ) ୩ । ବିଷମୟ ହେବା—3. To become poisonous

**ବିଷାକ୍ତ**—ସଂ. ବିଣ—(ବିଷ+ଅକ୍ତ=ଲେପିତ; ୩ୟା ତତ୍)—୧ ।
Bishākta ବିଷମିଶ୍ରିତ—1. Mixed with poisons;
**विसैला** poisoned. ୨ । ଗରଳପୂର୍ଣ୍ଣ—2. Full of poison. ୩ । ଯହିଁରେ ବିଷ ବୋଳାଯାଇଥାଏ; ବିଷଦିଗ୍ଧ—3. Smeared with poison.

**ବିଷାଣ(ଣି)**—ସଂ. ବି—(ବିଷ୍ ଧାତୁ=ବିଯୁକ୍ତ କରିବା+କର୍ତ୍ତୃ. ଆନ;+
Bishāṇa(ṇi) ଈ)—୧ । ପଶୁର ଶୃଙ୍ଗ—1. The horn of a beast. ୨ । ହସ୍ତୀ, ଶୂକର ଆଦିଙ୍କ ମୁନିଆ ଦାନ୍ତ—2. The pointed tusk of an elephant or boar. ୩ । ମେଷଶୃଙ୍ଗ ପରି ଫଳଯୁକ୍ତ ମେଷଶୃଙ୍ଗୀ ନାମକ ବୃକ୍ଷ; ମେଣ୍ଢାଶିଂଘା ଗୁଳ୍ମ—3 Screw tree. (ଅନ୍ୟ ସଂ ନାମ—ମେଷଶୃଙ୍ଗୀ, ବିଷାଣୀ, ମେଷବଲ୍ଲୀ, ଅଜଶୃଙ୍ଗିକା; ହି. ମେଢାଶୀଂଗୀ; ବ. ଛାଗଲବେଁଟେ, ମେଡ଼ାଶିଙ୍ଗୀ; ମ—ମେଣ୍ଢଫଳୀ, ଗୁ. ମର୍ଡ଼ାଶିଙ୍ଗୀ, ଫା. କିସ୍ତ, ଅ. ବାର୍କିସ୍ତ ।) ୪ । ଶିଂଘା ବାଦ୍ୟ—4. A sounding horn [ଉ—ବେଣୁ ବଂଶୀ ଯେ କାହାଳ, ବିଷାଣ ବେଢ଼ ଧର କର । ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ ।] ୫ । କୁଡ଼ି କୁଢ଼ ନାମକ ଔଷଧ (ବୃ. ଶ)—5. Kurdha (See). ୬ । ବାରାହୀ କନ୍ଦ (ବୃ. ଶ)—6. A kind of yam. ୭ । ଋଷଭକ (ବୃ. ଶ)—7. A rare medicinal herb. ୮ । ତେନ୍ତୁଳି (ବୃ ଶ)—8. Tamarind. ଦେ ବି—୧ ।
बिषान (ସଂ. ବିଷାନ୍ନ) ବିଷଘଟିତ ଔଷଧ—1. Any medicine
**विषौलि दवा, विष(ख) घटी** of which poison is an ingredient. ୨ । (ସଂ. ବିଷ) ବିଷ—2. Poison. ୩ । ବିଷାକ୍ତ ଦ୍ରବ୍ୟ-3. Any poisonous thing. ଦେ. ବିଣ—୧ । ବିଷଘଟିତ -1. Composed of poison. ୨ । ବିଷାକ୍ତ—2. Poisonous.

**ବିଷାଣ ପ୍ରୟୋଗ**—ଦେ. ବି—ରୋଗୀପ୍ରତି ବିଷଘଟିତ ଔଷଧର ପ୍ରୟୋଗ
Bishāṇa prayoga —Administration of poisonous medicine to a patient.

**ବିଷାଣ ଧରିବା**—ଦେ କ୍ରି—ରୋଗୀଠାରେ ବିଷର ଗୁଣ ପ୍ରକାଶ ପାଇବା—
Bishāṇa dharibā The taking effect of a
बिषान धवा **विषवटी लगना** poisonous medicine on a patient.

**ବିଷାଣିକା**—ସଂ. ବି ( ବିଷାଣ+କ+ଆ )—୧ । ମେଣ୍ଢାଶିଂଘା ( ବୃ.
Bishāṇikā ଶ. )—1. The screw tree. ୨ । ସପ୍ତଲା; ସପ୍ତଫେଣିଆ ( ବୃ. ଶ. )—2. Euphorbia (tree). ୩ । କକଡ଼ା ଶୃଙ୍ଗୀ ( ବୃ. ଶ )—3. Kakarda śrungi (See). ୪ । ଶିଂଘଡ଼ା ( ବୃ. ଶ. )—4. Water chestnut. ୫ । ଋଷଭକ ( ବୃ. ଶ. )—5. A rare herb. ୬ । କାକୋଳୀ ( ବୃ. ଶ. )—6. Kākoḻi (See). ୭ । ଉତୁରୁଡ଼ି ( ବୃ. ଶ. )—7. Uturuṛdi (See).

**ବିଷାଣୀ**—ସଂ. ବିଣ. ପୁଂ ( ବିଷାଣିନ୍; ବିଷାଣ+ଅସ୍ତ୍ୟର୍ଥେ ଇନ୍; ୧ମା.
Bishāṇi ୧ବ. )—ଶୃଙ୍ଗବିଶିଷ୍ଟ—Horned. ସଂ. ବି. ପୁଂ—୧ । ହସ୍ତୀ—1. Elephant. ୨ । ବାରହା; ଶୂକର—2. Boar. ୩ । ଷଣ୍ଢ ( ବୃ. ଶ. )—3. Bull. ୪ । ଶିଂଘଡ଼ା ( ବୃ. ଶ. )—4. Water chestnut ୫ । ଋଷଭକ—5. A rare herb

୭ । ( ବିଧାଶ+ଇ ) ସ୍ତ୍ରୀ—କ୍ଷୀରକାକୋଳୀ ( ବ୍ର. ଶ । —6. Kshirakākoḷī ( See ), ୭ । ମେଣ୍ଢାଶିଂଘା ( ବ୍ର. ଶ. )—7. The screw tree, ୮ । ବିଛୁଆତି ( ବ୍ର. ଶ. )—8. The stinging nettle. ୯ । ତେନ୍ତୁଳି ( ବ୍ର. ଶ. )—9. Tamarind. ୧୦ । ଶିଂଘଡ଼ା ( ବ୍ର. ଶ. )—10. Water chestnut. ୧୧ । ବିଷ; ଗରଳ ( ବ୍ର. ଶ. )—11. Poison. ୧୨ । ଉତୁରୁଡ଼ୀ ( ବ୍ର. ଶ. )—12. Uturuṛdi ( See )

ବିଷାଦ୍—ସ. ବି ( ବିଷ+ଅଦ ଧାତୁ+କର୍ତ୍ତୃ. କ୍ୱିପ୍; ଯେ ହଳାହଳ Bishād ବିଷପାନ କରିଥିଲେ )—ଶିବ ( ବ୍ର. ଶ. )—Siba.

ବିଷାଦ—ସ. ବି ( ବି+ସଦ୍ ଧାତୁ=ଅବସନ୍ନ ହେବା+ଭାବ. ଅ )—Bishāda ୧ । ସ୍ଫୂର୍ତ୍ତିହୀନତା—1. Want of high spirits; (ହର୍ଷ—ବିପରୀତ) low spiretedness. ୨ । ଇଷ୍ଟନାଶ ଜନିତ ମନୋବେଦନା—2. Sadness due to the loss of one's wished for object. ୩ । ଖେଦ; ମନୋଭଙ୍ଗ; ମନୋଦୁଃଖ—3. Dejection; grief; dismay; mental distress. ୪ । ନିଶ୍ଚେଷ୍ଟତା; ଜଡ଼ତା—4. Want of exertion. ଦେ. ବିଣ—ବିଷଣ୍ଣ; ଦୁଃଖପୂର୍ଣ୍ଣ—Sorrowful; sad; dejected. [ ଉ—ବିଷାଦ ବଦନ ଛୋଡ଼ିର, ଯେ ମୁଖ ସ୍ୱଭାବେ ସୁନ୍ଦର । ଜଗନ୍ନାଥ. ଭାଗବତ । ]

ବିଷାଦ କରିବା—ଦେ. କ୍ରି—ଖେଦ କରିବା; ବିଷଣ୍ଣ ହେବା—Bishāda karibā To grieve; to be sorrowful. বিষাদকরা विषादकरना

ବିଷାଦଗ୍ରସ୍ତ—ସ. ବିଣ. ପୁଂ ( ତତ୍ପୁରୁଷ; ବିଷାଦ+ଗ୍ରସ୍ତ )—ବିଷଣ୍ଣ—Bishādagrasta (ବିଷାଦଗ୍ରସ୍ତା—ସ୍ତ୍ରୀ) Sad; dejected. (ବିଷାଦପ୍ରାପ୍ତ, ବିଷାଦ ନିମଗ୍ନ, ବିଷାଦଯୁକ୍ତ, ବିଷାଦମଗ୍ନ—ଅନ୍ୟରୂପ)

ବିଷାଦ ଜନକ—ସ. ବିଣ ( ବିଷାଦ+ଜନକ )—ଯାହା ବିଷାଦ ଜନ୍ମାଏ Bishād janaka —Causing sadness; saddening.

ବିଷାଦମୂଳକ—ସ. ବିଣ ( ବହୁବ୍ରୀହି; ବିଷାଦ+ମୂଳ )—ଯେଉଁ Bishādmūḷaka ଘଟଣାର ମୂଳରେ ବିଷାଦ ଥାଏ—Resulting from grief.

ବିଷାଦ ରହିତ—ସ. ବିଣ ( ତତ୍ପୁରୁଷ; ବିଷାଦ+ରହିତ )—ଖେଦ Bishāda rahita ବିହୀନ—Free from grief. (ବିଷାଦଶୂନ୍ୟ—ଅନ୍ୟରୂପ)

ବିଷାଦାନ୍ତକ—ସ. ବିଣ (ବିଷାଦ+ଅନ୍ତ+କ)—ଯାହା ବିଷାଦରେ ସମାପ୍ତ Bishādantaka ହୁଏ—Ending in grief; tragic

ବିଷାଦିତ—ସ. ବିଣ. ପୁଂ ( ବିଷାଦ+ଜାତାର୍ଥେ ଇତ )—ଦୁଃଖିତ; Bishādita ଖେଦିତ—Grieved; saddened. ( ବିଷାଦିତା—ସ୍ତ୍ରୀ )

ବିଷାଦୀ—ସ. ବିଣ. ପୁଂ ( ବିଷାଦ+ଇନ୍ )—ଯେ ବିଷାଦ କରୁଥାଏ—Bishādī (ବିଷାଦିନୀ—ସ୍ତ୍ରୀ) Sorrowing.

ବିଷାନ୍ତକ—ସ. ବିଣ ( ବିଷ+ଅନ୍ତକ=ନାଶକ )—ଗରଳ ନାଶକ, Bishantaka ବିଷ ନାଶକ—Counteracting the effect of poison. ସଂ. ବି—ଶିବ; ମହାଦେବ—Śiba. [ ଦ୍ର—ଏ ସମୁଦ୍ର ମନ୍ଥନରୁ ଉତ୍ଥିତ ଗରଳ ପାନ କରିଥିଲେ । ]

ବିଷାନନ—ସ. ବି ( ବହୁବ୍ରୀହି; ବିଷ+ଆନନ )—Bishānana ସର୍ପ—Snake. (ବିଷାସ୍ୟ—ଅନ୍ୟରୂପ)

ବିଷାପହ—ସ. ବିଣ. ପୁଂ (ବିଷ+ଅପ+ହନ ଧାତୁ+କର୍ତ୍ତୃ. ଅ)—ଯାହା Bishāpaha ବିଷକୁ ନାଶ କରେ—Counteracting or (ବିଷାପହା—ସ୍ତ୍ରୀ) destroying the effect of poison.

ବିଷାପହା—ସ. ବିଣ. ସ୍ତ୍ରୀ. (ବିଷାପହ+ଆ)—ବିଷାପହର ସ୍ତ୍ରୀ ଲିଙ୍ଗ—Bishāpahā Feminine of Bishāpaha. ସ. ବି—୧ । ନାଗଦମନୀ ଗୁଳ୍ମ ( ଦ୍ରବ୍ୟଗୁଣ )—1. Indian wormwood. ୨ । ଇନ୍ଦ୍ର ବାରୁଣୀ; ମହାକାଳ ଲତା (ବ୍ର. ଶ)—2. Colocynth. ୩ । କର୍ବିଷା ନାମକ ତୃଣ (ବ୍ର. ଶ)—2. A kind of grass. ୪ । ସର୍ପଦଂଷ୍ଟ୍ରା (ବ୍ର. ଶ); ବିଛୁଆତି—4. The stinging nettle; Fragia Involucrata. ୫ । ଚଂଶପର୍ଣ୍ଣୀ (ବ୍ର. ଶ) ଶାଳପର୍ଣ୍ଣୀ—5. Desmodium Gangeticum (plant).

ବିଷାୟନ—ସ. ବି. ( ଆୟୁର୍ବେଦ )—ବିଷ ଘଟିତ ଔଷଧ ଦ୍ରବ୍ୟ—Bishāyana Medicine of which the ingredient (ବିପରୀତ—ରସାୟନ) is poison. [ଦ୍ର—ଧାତୁ ଘଟିତ ଔଷଧକୁ ରସାୟନ ବୋଲାଯାଏ । ବିଷକୁ ଶୋଧନ କରି ଔଷଧରେ ପକାଇବାକୁ ହୁଏ ।]

ବିଷାୟୁଧ—ସ. ବି. ( ବହୁବ୍ରୀହି; ବିଷ+ଆୟୁଧ=ଅସ୍ତ୍ର )—୧ । ବିଷଧର Bishāyudha ସର୍ପ—1. Poisonous snake. ୨ । (ମ. ପ. (ବିଷାସ୍ତ୍ର—ଅନ୍ୟରୂପ) ଲୋ; ବିଷ+ଆୟୁଧ) ବିଷଦିଗ୍ଧ ଶସ୍ତ୍ରାସ୍ତ୍ର—2. Poisoned weapon. ୩ । (ରୂପକ) ବିଷରୂପ ଆୟୁଧ—3. Poison used as a weapon for injuring others.

ବିଷାର—ସ. ବି. (ବିଷ+ଅର ଧାତୁ=ଗମନ କରିବା+ଅ)—ସର୍ପ—Bishāra Snake.

ବିଷାଳୁ—ସ. ବିଣ. (ବିଷ+ଆଳୁ)—ବିଷାକ୍ତ—Bishāḷu Poisonous.

ବିଷି ଆଙ୍ଗୁଠି(ଳି)—ଦେ. ବି. ( ସ. ବିଷ+ଅଙ୍ଗୁଷ୍ଠ )—ତର୍ଜନୀ—The Bisha āṅguṭhi(ḷi) index finger. [ଦ୍ର—ଏହି ଆଙ୍ଗୁଠିରେ ଔଷଧ ଇତ୍ୟାଦି ଗୋଳାଇଲେ ତାହା ବିଷାକ୍ତ ହୁଏ ବୋଲି ଲୋକ ବିଶ୍ୱାସ ।] विष आङ्गुल तर्जनी

ବିଷିକପୁରୀ—ସ. ବି. (ବୈଦ୍ୟକ)—ବୃକ୍ଷ ବିଶେଷ—A herbarious Bishikapuri tree. [ଦ୍ର—ଏହାର ପତ୍ର ଦହି ସହିତ ବାଟି पान କଲେ ରକ୍ତାତିସାର ନିବୃତ୍ତ ହୁଏ । ଏହି ପତ୍ରର विष खपरा

ସ୍ଥଲେପ ସଦ୍ୟୋବ୍ରଣ, ବ୍ରଣ ଶୋଥ ଓ ଆଘାତ ଜନିତ ବ୍ୟଥା ଦୂର କରେ । ଦ୍ରବ୍ୟଗୁଣ• କଳ୍ପଦ୍ରୁମ ]

**ବିଷି ଫୋଟକା**—ଦେ. ବି. (ସଂ. ବିସ୍ଫୋଟକ)—ବିସ୍ଫୋଟକ (ଦେଖ)
Bishi photakā Bisphotaka (See)
বিষ ফোড়া **फोडा, फँका**

**ବିଷୀ**—ସଂ. ବି. ପୁଂ• ( ବିଷ+ଇନ୍; ୧ମା. ୧ବ )—ବିଷମୟ; ବିଷଧର
Bishī (ହି. ଣ)—Poisonous. ସଂ. ବି—୧ । ବିଷଧର ସର୍ପ (ବିଷିଣୀ—ସ୍ତ୍ରୀ) (ହି. ଣ)—1. Poisonous snake. ୨ । ବିଷମୟ ପଦାର୍ଥ—2. Any poisonous article.

**ବିଷୁ**—ସଂ• ବି. ( ବିଷ ଧାତୁ+କର୍ତ୍ତୃ. ଉ )—୧ । ସାମ୍ୟ; ସମାନତା—
Bishu 1. Equality. ୨ । ନାନାରୂପତା—2. The state of having many forms. ଗ୍ରା• ବି. (ସଂ. ବିଷୟର ଗ୍ରାମ୍ୟ ରୂପ 'ବିଷ'ର ରୂପ ୫ମୀ ବିଭକ୍ତିରେ)—୧ । ବିଷୟରୁ—1. From the matter. ୨ । (ଆଦରାର୍ଥକ) ବିଷ୍ଣୁର ଡାକ ନାମ—2. A name for calling Bishṇu.

**ବିଷୁନ(ନି, ନୁ)**—ଗ୍ରା. ବି. (ଆଦରାର୍ଥକ) ବିଷ୍ଣୁ ନାମ ବ୍ୟକ୍ତିଙ୍କୁ ଡାକିବା
Bishuna(ni, nu) ନାମ—A name for calling Bishṇu.
বিষ্টু **बिसुन**
[ବିଷୁନିଆ(ଆଁ)—ଅନାଦରାର୍ଥକ ରୂପ]

**ବିଷୁନ(ନୁ)ପୁର**—ଦେ. ବି—କଟକ ଜିଲ୍ଲାର ଗୋଟିଏ କିଲ୍ଲାଜାତ
Bishuna(nu)pura ଜମିଦାରୀ—Name of a permanently settled estate in the district of Cuttack.

**ବିଷୁପ(ବ)**—ସଂ. ବି• (ବିଷୁ=ଦିବା ରାତ୍ରିର ସମତା+ପା ଧାତୁ=ପାଳନ,
Bishupa(ba) ବା ଧାତୁ=ଗମନ କରିବା+କର୍ତ୍ତୃ. ଅ; ଯେଉଁ ସମୟରେ ଦିନ ରାତ୍ରି ଠିକ୍ ସମାନ ହୁଏ)—୧ । ସମରାତ୍ରିନ୍ଦିବ କାଳ—1. The time when the night and day are equal; equinox. ୨ । ଖଗୋଳର ମେଷ ଓ ତୁଳ ରାଶିରେ ଯେଉଁ କଳ୍ପିତ ବିନ୍ଦୁଦ୍ୱୟରେ ସୂର୍ଯ୍ୟ ସମରାତ୍ରିନ୍ଦିବକାଳ ପରେ ପ୍ରବେଶନ୍ତି—2. The equinoxial points; the first peints of Aries and Libra into which the sun enters at the vernal and autumnal eqinox (Apte). [ଦ୍ର—ସୂର୍ଯ୍ୟ ବିଷୁବରେଖାର ଠିକ୍ ଉପରକୁ ବର୍ଷକେ ଦୁଇ ଥର ଆସନ୍ତି । ଥରେ ବସନ୍ତ କାଳରେ ଓ ଥରେ ଶରତ୍ କାଳରେ । ବସନ୍ତ କାଳରେ ସୌର ଚୈତ୍ର ବା ମୀନ ମାସର ନବମ ବା ଦଶମ ଦିନ, ଇଂରାଜି ମାର୍ଚ୍ଚ ମାସର ୨୧ ବା ୨୨ ତାରିଖରେ ଓ ଶରତ୍ କାଳରେ ସୌର ଆଶ୍ୱିନ ବା କନ୍ୟା ମାସର ନବମ ବା ଦଶମ ଦିନ, ଇଂରାଜି ସେପ୍ଟେମ୍ବର ମାସର ୨୨ ବା ୨୩ ତାରିଖରେ । ଏହି ଦୁଇ ଦିନ ଦିନ ଓ ରାତ୍ରି ସମାନ ଅର୍ଥାତ୍ ଠିକ୍ ୧୨ ଘଣ୍ଟା ଲେଖାଏଁ ହୁଏ । ଏହି ଦୁଇ ଦିନର ପରବର୍ତ୍ତୀ ସଂକ୍ରାନ୍ତିମାନ (କାର୍ତ୍ତିକ ସଂକ୍ରାନ୍ତି ଓ ବୈଶାଖ ସଂକ୍ରାନ୍ତି)ଙ୍କୁ ବିଷୁବ ସଂକ୍ରାନ୍ତି ବୋଲାଯାଏ । କାର୍ତ୍ତିକ ସଂକ୍ରାନ୍ତିର ନାମ ଜଳ ବିଷୁବ ଓ ବୈଶାଖ ସଂକ୍ରାନ୍ତିର ନାମ ମହା ବିଷୁବ ସଂକ୍ରାନ୍ତି ଅଟେ ।] ୩ । ମେଷ ବା ବୈଶାଖ ସଂକ୍ରାନ୍ତି; ପଣା ସଂକ୍ରାନ୍ତି; ମହାବିଷୁବ ସଂକ୍ରାନ୍ତି—3. The Saṁkrānti or the 1st day of the month of solar Baiśākha; the first point of Aries which the sun enters after the vernal equinox (Apte). ୪ । ତୁଳ ବା କାର୍ତ୍ତିକ ସଂକ୍ରାନ୍ତି; ଗର୍ଭଣା ସଂକ୍ରାନ୍ତି; ଜଳ ବିଷୁବ ସଂକ୍ରାନ୍ତି—4. The Saṁkrānti or the 1st day of the month of solar Kārttika; the first point of Libra which the sun enters after the autumnal equinox.

**ବିଷୁବଚ୍ଛାୟା**—ସଂ. ବି (ଗଣିତ ଜ୍ୟୋତିଷ)—ଠିକ୍ ଦ୍ୱିପ୍ରହରବେଳେ ସୂର୍ଯ୍ୟ-
Bishubachchayā ଘଡ଼ିର ଦଣ୍ଡର ଯେଉଁ ଛାୟା ତଳେ ପଡ଼େ—The shadow of the gnomon at noon (Apte).

**ବିଷୁବତ୍**—ସଂ. ବି—(ଜ୍ୟୋତିଷ ପରିଭାଷା; ବିଷୁ=ଦ୍ୱି=ଦୁଇ
Bishubat ଭାଗରେ+ଅସ୍ତି ଅର୍ଥରେ ବତ୍; ଯାହା ମଧ୍ୟସ୍ଥଳରେ ଅବସ୍ଥିତ ଥାଇ ବର୍ଷକୁ ଦୁଇଭାଗରେ ଅର୍ଥାତ୍ ଦକ୍ଷିଣାୟନ ଓ ଉତ୍ତରାୟଣରେ ବିଭକ୍ତ କରେ ।)—୧ । କ୍ରାନ୍ତିପାତ—(ଦେଖ)—1. Krantipāta (See); the equinox (Apte) [ଦ୍ର—ଏପରି ବିଷୁବତ୍ ବା କ୍ରାନ୍ତିପାତ ଦୁଇଗୋଟି ଅଛି । ଯଥା—(୧) ମହାବିଷୁବ ସଂକ୍ରାନ୍ତି । (୨) ଜଳ ବିଷୁବ ସଂକ୍ରାନ୍ତି ।] ୨ । ବିଷୁବ (ଦେଖ)
2, Bishuba (See)

**ବିଷୁବତ୍ ରେଖା**—ସଂ. ବି—(ଜ୍ୟୋତିଷ)—ଆକାଶ ମଣ୍ଡଳରେ ଯେଉଁ
Bishubat-rekhā କଳ୍ପିତ ରେଖା ଦୁଇ ବିଷୁବତ୍ କାଟି ବୁଲି
ବିଷୁବଜ୍ଜ ରେଖା, ବିଷୁବରେଖା } ଅନ୍ୟରୂପ
ଆକାଶକୁ ଉତ୍ତର ଭୂଗୋଲାର୍ଦ୍ଧ ଓ ଦକ୍ଷିଣ ଭୂଗୋଲାର୍ଦ୍ଧରେ ବିଭକ୍ତ କରିଅଛି—The ecliptic. [ଦ୍ର—ପୃଥିବୀର ବିଷୁବ ରେଖାର ପ୍ରତ୍ୟେକ ବିନ୍ଦୁ ଆକାଶର ବିଷୁବତ୍ ରେଖାର ପ୍ରତ୍ୟେକ ବିନ୍ଦୁର ତଳେ । ରବିମାର୍ଗ ବିଷୁବତ୍‌ରେଖା ସଙ୍ଗେ ୨୩ ଡିଗ୍ରୀ ୨୭ ମିନିଟ୍ କୋଣରେ ଅବସ୍ଥିତ ବୋଲି କଳ୍ପିତ ।]

**ବିଷୁବନ୍ତୀ**—ଦେ. ବି.—(ଦେ. ବି—( ସଂ. ବିଷୁବତ୍ )—ସୁଷୁମ୍ନା—
Bishubanti (ନାଡ଼ି ବିଶେଷ)—Name of one of the principal long veins in the body [ଉ—ଏ ନାଡ଼ିରେ ଅବସ୍ଥିତ କାଳରୂପୀ ସେହି; ସର୍ବ କାର୍ଯ୍ୟ ବିନାଶକୁ ବିଷୁବନ୍ତୀ କହି । ପ୍ରାଚୀ. ଶିବସ୍ୱରୋଦୟ ।] [ଦ୍ର—ଏହି ନାଡ଼ିରେ ବାୟୁ ପ୍ରବାହିତ ହେଉଥିବା ସମୟରେ କୌଣସି କାର୍ଯ୍ୟ କଲେ ତାହା ବିନଷ୍ଟ ହୁଏ ।]

**ବିଷୁବ ରେଖା**—ସଂ. ବି—୧ । ନିରକ୍ଷରେଖା; ପୃଥିବୀର ଉତ୍ତର ମେରୁ
Bishuba rekhā ଓ ଦକ୍ଷିଣ ମେରୁଠାରୁ ଉଭୟ ଦିଗରେ ସମ-

ଦୂରବର୍ତ୍ତୀ ପୃଥିବୀ ଗୋଲକର ଊର୍ଦ୍ଧ୍ୱାଂଶରେ ଅବସ୍ଥିତ ମଣ୍ଡଳାକାର କଳ୍ପିତ ରେଖା—1. The equator. [ ଦ୍ର—ଏହି ରେଖା ଉପରେ ସୂର୍ଯ୍ୟ ଥିବା ସମୟରେ ଦିନରାତ୍ରି ସମାନ ହୁଏ ।]

୨ । ଖଗୋଳରେ ପୃଥିବୀର ବିଷୁବ ରେଖାର ଠିକ୍ ଊର୍ଦ୍ଧ୍ୱରେ କଳ୍ପିତ ରେଖା; ବିଷୁବତ୍ ରେଖା—2. The celestial ecliptic; the equinoxial line (Apte).

ବିଷୁବ ସଂକ୍ରାନ୍ତି—ସଂ. ବି—ସୂର୍ଯ୍ୟ ବର୍ଷକରେ ଯେଉଁ ଦିନଦ୍ୱୟ ବିଷୁବ Bishuba Samkrānti ରେଖା ଉପରେ ଗମନ କରନ୍ତି, ତହିଁର ପରବର୍ତ୍ତୀ ସଙ୍କ୍ରାନ୍ତି ଦ୍ୱୟ; ଜଳବିଷୁବ ସଙ୍କ୍ରାନ୍ତି ଓ ମହାବିଷୁବ ସଂକ୍ରାନ୍ତି; ବର୍ଷକରେ ଯେଉଁ ଦିନଦ୍ୱୟ ସୂର୍ଯ୍ୟ ପ୍ରଥମେ ଯଥାକ୍ରମେ ମେଷ ରାଶିକୁ ଓ ତୁଳ ରାଶିକୁ ସଂକ୍ରମଣ (ଗମନ) କରନ୍ତି—The two Samkrānti days in the year falling after the equinozes; the passage of the sun to the next sign at the vernal and autumnal equinoxes; the passage of the sun to the first points of Aries and Libra after the vernal and autumnal equinoxes; the equinoxial passage (Apte) (ବିଷୁବ ତଳେ ନୋଟ୍ ଦେଖ) (See notes under Bishuba).

ବିଷୁଚିକା—ସଂ. ବି—ବିସୂଚିକା; ହଇଜା—Bishuchika Cholera (Apte).

ବିଷେ—ଗ୍ରା. ବି—(ସଂ. ବିଷୟ)—ବିଷୟ—Matter. ( ଉ—Bishe ଅବଧାନ ବିଷେ କହିଲେ କହିଲେ ମୋ ଯେତେ ବଚନ । ଉଞ୍ଜ - କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।)

ବିଷେ(ଷୋ)ଇ—ଦେ. ବି—(ସଂ. ବିଷୟୀ)—୧ । ବିଶୋଇ— ଦେଖ) - Bishe(sho)i 1. Bisoi (See) ୨ । ହିସାବପତ୍ର ଲେଖିବା ରାଜ କର୍ମଚାରୀ—2. An accountant. ୩ । ଖଣ୍ଡାଏତ ଓ ଶୂଦ୍ରଙ୍କର ବଂଶ ଉପାଧି ବିଶେଷ—3. Name of a family-title of Khandaets and Sudras ଗ୍ରା, ବିଣ—ସଂସାର ବିଷୟାସକ୍ତ—Addicted to worldly concerns.

ବିଷୋଇବା—ଦେ. କ୍ରି—ଆଲିଙ୍ଗନ କରିବା—To embrace [ଉ—Bishoiba ବିଷୋଇଁ ପଥେ କୋଳ ରଚନେ ବନ୍ଧୁ ସଖୀ ନାମ ସ୍ନେହ ଚୁମ୍ବନେ—ଉଞ୍ଜ. ବୈଦେହୀଶ ବିଳାସ ]

ବିଷ୍କନ୍ଦ—ସଂ. ବି ( ବି + ସ୍କନ୍ଦ ଧାତୁ = ଖେଳେଇ ହେବା; ଶୁଖିଯିବା + Bishkanda ଭାବ. ଅ )—୧ । ଇତସ୍ତତଃ ଖେଳେଇ ହେବା—1 Dispersing (Apte). ୨ । ପ୍ରସ୍ଥାନ—2. Going away (Apte).

ବିଷ୍କମ୍ଭ—ସଂ. ବି ( ବି + ସ୍କମ୍ଭ ଧାତୁ = ସ୍ତବ୍ଧ କରିବା + କରଣ. ଅ )—Bishkambha ୧ । ( ଜ୍ୟୋତିଷ ) ଜ୍ୟୋତିଃଶାସ୍ତ୍ରୋକ୍ତ ୨୭ ଯୋଗ ମଧ୍ୟରୁ ଏକତମ ବା ପ୍ରଥମ ଯୋଗ—1. One of the 27 astrological periods. [ ଦ୍ର—ଯେଉଁ ଦିନ ବିଷ୍କମ୍ଭ ଯୋଗ ପଡେ ସେ ଦିନ ଦିବାରମ୍ଭରୁ ୫ ଦଣ୍ଡ ବର୍ଜନ କରି ଶୁଭକାର୍ଯ୍ୟ କରିବ । ] ୨ । ବ୍ୟାଘାତ, ବାଧା—2. Obstruction; hindrance. ୩ । ନାଟକର ଅଙ୍ଗବିଶେଷ; ବିଷ୍କମ୍ଭକ ( ଦେଖ )—3. Bishkambhaka (See) ୪ । ଗୋଲକର ମଧ୍ୟରେଖା; ବୃତ୍ତର ବ୍ୟାସ—4. The diameter of a circle. ୫ । ଅର୍ଗଳ; କଳଣୀ; ଖିଲ; ହୁଡ଼ୁକା—5. Bolt; bar of a door. ୬ । ବୃକ୍ଷ—6. Tree. ୭ । ସ୍ତମ୍ଭ; ଖୁଣ୍ଟ—7. Pillar; post. ୮ । ମନକୁ ସ୍ଥିର କରିବା ପାଇଁ ଯୋଗୀମାନଙ୍କର ଆସନବନ୍ଧବିଶେଷ—8. A posture during Joga exercise. ୯ । ବିସ୍ତାର—9. Extension (Apte) ୧୦ । ଦୈର୍ଘ୍ୟ—10. Length (Apte).

ବିଷ୍କମ୍ଭକ—ସଂ. ବି. ପୁଂ ( ବିଷ୍କମ୍ଭ + କ )—ନାଟକର ଅଙ୍ଗବିଶେଷ; Bishkambhaka ନାଟକର ନୀରସ ଅଂଶମାନ ଯଥାବତ୍ ବର୍ଣ୍ଣିତ ହେଲେ ଦର୍ଶକଙ୍କର ବିରକ୍ତି ଜାତ ହେବ, ଏହି ଆଶଙ୍କାରେ ଉକ୍ତ ନୀରସ ଅଂଶମାନ କୌଣସି ଅପ୍ରଧାନ ନାୟକଙ୍କ ମୁଖରେ ସଂକ୍ଷେପରେ ବର୍ଣ୍ଣନ କରିବା ନାଟକାଂଶ—Interlude. [ ଦ୍ର—ନାଟକ ଅଭିନୟରେ ଦୁଇଟି ଅଙ୍କର ମଧ୍ୟରେ ଏକ ବା ଏକାଧିକ ଅପ୍ରଧାନ ନାୟକ ଅଙ୍କ ଦୃଶ୍ୟର ନହିଁବେ ଘଟିବା ବିଷୟକୁ ସଂକ୍ଷିପ୍ତରୂପେ ବର୍ଣ୍ଣନା କରନ୍ତି ଏବଂ ପରବର୍ତ୍ତୀ ଅଙ୍କମାନଙ୍କରେ କଥିତ ବର୍ଣ୍ଣିତ ହେବ ତାହାର ସୂଚନା କରନ୍ତି । ସାହିତ୍ୟଦର୍ପଣକାର ବିଷ୍କମ୍ଭକ ଏହିରୂପେ ବର୍ଣ୍ଣନା କରିଅଛନ୍ତି—ବୃତ୍ତବର୍ତ୍ତିଷ୍ୟମାଣାନାଂ କଥାଂଶାନାଂ ନିଦର୍ଶକଃ । ସଂକ୍ଷିପ୍ତାର୍ଥସ୍ତୁ ବିଷ୍କମ୍ଭଃ ଆଦାବଙ୍କସ୍ୟ ଦର୍ଶିତଃ । ମଧ୍ୟେନ ମଧ୍ୟମାଭ୍ୟାଂ ବା ପାତ୍ରାଭ୍ୟାଂ ସମ୍ପ୍ରଯୋଜିତଃ । ଶୁଦ୍ଧଃ ସ୍ୟାତ୍ ସା ତୁ ସଂକୀର୍ଣ୍ଣୋ ନୀଚମଧ୍ୟମକଳ୍ପିତଃ । ]

ବିଷ୍କଲ—ସଂ. ବି ( ବି + କୃ ଧାତୁ = ବିକ୍ଷେପ କରିବା; ଖେଳାଇବା + Bishkala କର୍ତ୍ତୃ. ଅ )—ଗ୍ରାମ୍ୟଶୂକର A village hog.

ବିଷ୍କିବା—ଦେ. କ୍ରି ( ସଂ ବିଶୁଷ୍କ; ତୁଳ ସଂ. ବିଷ୍କପ୍ରସୂତୀ = ଚିରପ୍ରସୂତା Bishkibā ଗାଈ —( ବାଛୁରୀ ବଡ଼ ହୋଇଯାଇଥିବା ଗାଈ ) ଦୁଧବନ୍ଦ କରିବା ଦୁଗ୍ଧହୀନ ହେବା—To run dry (said of बिसुखना a cow with a grown up calf).
( ବିଷ୍କେଇବା, ବିଷିଯିବା, ବିଷ୍କେଇଯିବା—ଅନ୍ୟରୂପ )

ବିଷ୍କିର—ସଂ. ବି ( ବି + କୃ ଧାତୁ = ବିକ୍ଷେପ କରିବା; ଖେଳାଇବା + Bishkira କର୍ତ୍ତୃ. ଅ )—୧ । ପକ୍ଷୀ—1. A bird. [ ଉ—ବିଷ୍କିର କାଦ ମଧୁର, କାନ୍ତି ବଧୂର ମୋ—ଉଞ୍ଜ. ବୈଦେହୀଶ-ବିଳାସ । ] ୨ । ( ଯେ ନଖରେ ଭୂମି ଆଦି ଖେଳାଏ ) କୁକୁଡ଼ା—2. Cock (Apte) ୩ । କୁକୁଡ଼ାଜାତୀୟ ପକ୍ଷୀ—3. Gallinaceous bird (Apte) ୪ । (+ ଭାବ. ଅ ) ଖେଳାଇବା—4. Scattering about.

( Apte ). ୪ । ଚିର ପକାଇବା—Tearing up ( pte ) [ ଦ୍ର—ଯେଉଁ ସବୁ ପକ୍ଷୀ ନଖଦ୍ୱାରା ଖାଦ୍ୟ ବସ୍ତୁକୁ ଖେଳାଇ ଖେଳାଇ ବା ଛଡ଼ାଇ ଛଡ଼ାଇ ଖାଆନ୍ତି ତାଙ୍କୁ ବିଷ୍କିର ବୋଲାଯାଏ; ଯଥା—କୁକୁଡ଼ା, ଘାସ । ବୈଦ୍ୟକ ମତରେ ଏମାନଙ୍କର ମାଂସ କଷାୟ ମଧୁର ରସ, ଶୀତଳ, କଟୁବିପାକ, ଲଘୁ, ଶୁକ୍ରବର୍ଦ୍ଧକ, ଗୁଡକର ଓ ତ୍ରିଦୋଷ ନାଶକ—ଦ୍ରବ୍ୟଗୁଣ ଶିକ୍ଷା । ]

ବିଷ୍କମ୍ଭ—ସଂ. ବି. ( ବି+ସ୍କନ୍ଭ୍ ଧାତୁ=ସ୍ତବ୍ଧ କରିବା+କରଣ. Bishkumbha ଅ )—ବିଷ୍କମ୍ଭ ( ଦେଖ )—Bishkambha ( ବିଷ୍କମ୍ଭକ ଅନ୍ୟରୂପ ) See )

ବିଷ୍କମ୍ଭୀ—ସ. ବି ( ବିଷ୍କମ୍ଭିନ୍; .ବିଷ୍କମ୍ଭ+ଇନ୍; ୧ମା. ୧ବ. )—କବାଟର Bishkumbhi ଅର୍ଗଳ ବା କଳଣି; ହୁଡୁକା—Bolt of a door.

ବିଷ୍ଟ—ସ. ବିଣ ( ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. ତ )—Bishta ୧ । ପ୍ରବିଷ୍ଟ—1. Entered. ୨ । ଅବିଷ୍ଟ—2. Engrossed; possessed ( as by a ghost ). ୩ । ଆଶ୍ରିତ—3. Sheltered; protected. ଗ୍ରା. ବି—ବିଷ୍ଠା—Dung; ordure.

ବିଷ୍ଟପ—ସଂ. ବି. (ବିଶ୍ ଧାତୁ=ପ୍ରବେଶ କରିବା+ଅଧିକରଣ ତପ)—Bishtapa ୧ । ଭୁବନ; ଜଗତ୍—1. The world; creation. ୨ । ଲୋକ; ଜୀବଜଗତ୍—2. The animal kingdom. ୩ । ପାତ୍ର—3. Cup; vessel ( Apte ).

ବିଷ୍ଟବଦ୍ଧ—ଦେ. ବି (ସଂ. ବିଷ୍ଟବ୍ଧ)—କୋଷ୍ଠବଦ୍ଧତା; ମଳ କଠିନତା—Bishtabaddha Constipation.

ବିଷ୍ଟବ୍ଧ—ସଂ. ବିଣ ( ବି+ସ୍ତନ୍ଭ୍ ଧାତୁ=ସ୍ତବ୍ଧ କରିବା+କର୍ମ. ତ )—Bishtabdha ୧ । ପ୍ରତିବନ୍ଧ; ବାଧା ଦିଆଯାଇଥିବା—1. Obstructed; hindered. ୨ । ଅବରୁଦ୍ଧ—2. Restrained. ୩ । ରୁଦ୍ଧ—3. Confined. ୪ । ( ମଳ ଆଦି ) ପେଟ ମଧ୍ୟରେ ରୁଦ୍ଧ—4. Constipated. ୫ । ଦୃଢ଼ରୂପେ ବସା ଯାଇଥିବା—5. Fixed firmly (Apte). ୬ । ଜଡ଼ୀଭୂତ—6. Paralysed ( Apte ); made motionless. ୭ । ଉତ୍ତୋଳିତ; ଧୃତ—7. Propped; supported ( Apte ).

ବିଷ୍ଟମ୍ଭ—ସଂ. ବି. ( ବି+ସ୍ତନ୍ଭ ଧାତୁ=ସ୍ତବ୍ଧ କରିବା+ଭାବ. ଅ)—Bishtambha ୧ । ବାଧା; ପ୍ରତିବନ୍ଧକ—Obstacle. ୨ । ଅଟକ; ରୋଧ—2. Restraint. ୩ । ଅନାହ ରୋଗ; ମୂତ୍ରକୃଚ୍ଛ୍ର—3. Obstruction of urine; strangury. ୪ । ଦୃଢ଼ତା—4. Firmness. ୫ । ସ୍ଥିରଭାବ—5. Fixedness. ୬ । ମଳରୋଧ—6. Constipation. ୭ । ପରର ସମ୍ପତ୍ତିକୁ ଆକ୍ରମଣ ବା ଅଟକ କରିବା—7. Attacking or occupying another's property. ୮ । ସମ୍ପତ୍ତି କୋରକ—8. Attachment of property. ୯ । ବନ୍ଦ କରିବା—9. Stopping ( Apte ). ୧୦ । ପଦନ୍ୟାସ ପକାଇବା—10. Stepping; placing the feet ( Apte ).

ବିଷ୍ଟମ୍ଭୀ—ସ. ବିଣ. ପୁଂ ( ବିଷ୍ଟମ୍ଭିନ୍; ବିଷ୍ଟମ୍ଭ+ଅସ୍ତ୍ୟର୍ଥେ. ଇନ୍ )—Bishtambhi ୧ । ଅବରୋଧକାରୀ—1. Obstructing. ( ବିଷ୍ଟମ୍ଭିନୀ—ସ୍ତ୍ରୀ ) ୨ । ମଳରୋଧଜନକ—2. Causing or inducing constipation. ୩ । ଗତିରୋଧକାରୀ—3. Making motionless; benumbing ( Apte ).

ବିଷ୍ଟର—ସ. ବି ( ବି+ସ୍ତୃ ଧାତୁ=ବିସ୍ତାର କରିବା+କର୍ମ. ଅ )—Bishtara ୧ । ବୃକ୍ଷ—1. Tree. ୨ । ଉପବେଶନ କରିବା ପାଇଁ ଆସନ—2. A seat. ୩ । କୁଶାସନ—3. A seat or mat made of kuśa grass. [ ଦ୍ର—ବିଷ୍ଟର କରକପାତ୍ରୀ ବହିବାକୁ ଦେବା—ଭକ୍ତ. ବୈଦେହୀଶ-ବିଳାସ । ] ୪ । ଦର୍ଭମୁଷ୍ଟି—4. A handful of kuśa grass. ୫ । ଦୈବପୈତ୍ର କର୍ମରେ ବ୍ରାହ୍ମଣ ସ୍ଥାନରେ କଳ୍ପିତ କୁଶର ମୋଡ଼ା—5. A ring of kuśa grass placed to represent a Brāhmaṇa in vedic rituals. ୬ । ଦୈବପୈତ୍ର କର୍ମରେ କର୍ମସ୍ଥଳକୁ ନିମନ୍ତ୍ରିତ ବ୍ରାହ୍ମଣଙ୍କୁ ଦିଆଯିବା କୁଶାସନ—6. A seat of kuśa grass given to a Brāhmaṇa to sit upon during vedic rites. ଦେ. ବି ( ସ. ବିଷ୍ଟର )—୧ । ( ଲକ୍ଷଣାର୍ଥ ) ଛୋଟ ମନୁଷ୍ୟ—1. A small man; mannikin. ୨ । ଗେଡ଼ା ଲୋକ—2. A dwarfish person. ୩ । ଗେଡ଼ା ବାଳକ—3. A dwarfish bay. [ ଦ୍ର—ବ୍ରାହ୍ମଣ ସ୍ଥାନରେ କଳ୍ପିତ କ୍ଷୁଦ୍ରାକୃତିବ କୁଶ ମୋଡ଼ା ( ବିଷ୍ଟର ) ପରି କ୍ଷୁଦ୍ରାକୃତିବ ବ୍ୟକ୍ତିଙ୍କୁ ବିଷ୍ଟର ବୋଲାଯାଏ ]

ବିଷ୍ଟର ଶ୍ରବାଃ—ସ. ବି ( ବିଷ୍ଟର ଶ୍ରବସ୍; ବିଷ୍ଟର=ବୃକ୍ଷ+ଶ୍ରୁ ଧାତୁ=Bishtara śrabāḥ ଶ୍ରବଣ କରିବା+ଅସ୍)—ବିଷ୍ଣୁ; ନାରାୟଣ—Bishnu.

ବିଷ୍ଟରୁହା—ସ. ବି—ସ୍ୱର୍ଣ୍ଣକେତକୀ; କେତକୀ ଗଛ—Bishtaruhā Pandanus Odoratissimus.

ବିଷ୍ଟା—ସ. ବି—ବିଷ୍ଠା ( ଦେଖ ) Bistā Excrement; ordure; dung ( Apte ).

ବିଷ୍ଟାର—ସ. ବି ( ବି+ସ୍ତୃ ଧାତୁ ଣିଚ+ଅ )—ଧାଡ଼ି; ପଂକ୍ତି—Bishtāra Line; row.

ବିଷ୍ଟି—ସ. ବି ( ବିଶ ଧାତୁ=ପ୍ରବେଶକରିବା + ଅଧିକରଣ ତି; Bishti ଅର୍ଥାତ୍ କ୍ଲେଶ ବା ଦୁଃଖ ମଧ୍ୟରେ ପ୍ରବେଶ କରିବା)—୧ । ବିନା ବେତନରେ ପରିଶ୍ରମ; ବେଠି; ବେଗାର—1. Gratuitous or unpaid labour. ୨ । ବେତନ; ମୂଲ; ମଜୁରି—2. Wages; salary. ୩ । ନିକ୍ଷେପକରଣ—3. Throwing. ୪ । ବିଛେଇଦେବା—4. Strewing. ୫ । ଯନ୍ତ୍ରଣାଦେବା—5. Giving pain. ୬ । ପାପର ଫଳସ୍ୱରୂପ ନରକରେ

ବାସ—6. Residence in hell to which one is condemned ( Apte ). ୭ । (ଲକ୍ଷଣାର୍ଥ) ଅଶୁଭ ଘଟଣା—7. (figurative) The happening of evil. (ଉ—ବିଷ୍ଟି ହେଲା ଅଜୁ ମୋ ପୁତ୍ରଙ୍କ ଅନୁକୂଳ—ଭଞ୍ଜ. ବୈଦେହୀଶବିଳାସ । ) ୮ । ବିଘ୍ନ; ବାଧା—8. Obstruction; hindrance ୯ । ( ଫଳିତ ଜ୍ୟୋତିଷ ) କରଣ-ବିଶେଷ; ୧୧ ଗୋଟି କରଣ ମଧ୍ୟରୁ ସପ୍ତମ ଓ ଅଶୁଭଜନକ ଯୋଗ—8. (astrology) One of the 11 Karaṇas or astrological conjunctions. (ଉ-ବିଧ୍ୱଂସିଲା, ବାନର ଯୋଦ୍ଧାକୁଳକୁ ତ— ବିଷ୍ଟି ହୋଇଣ ଅପଣ ବିଗତ୍ତ ଶୂଳଗଣ ଲକ୍ଷଣାରେ ତମଗୁଣ ଗ୍ରସ୍ତ—ଭଞ୍ଜ. ବୈଦେହୀଶବିଳାସ । ) [ ଦ୍ର— ଏ କରଣରେ ଯାତ୍ରାଦି ଶୁଭକର୍ମ ନିଷିଦ୍ଧ; ଭିନ୍ନ ଭିନ୍ନ ତିଥିରେ ଭିନ୍ନ ଭିନ୍ନ କାଳ 'ବିଷ୍ଟି' ବୋଲି ଜ୍ୟୋତିଷରେ ଉଲ୍ଲେଖ କରା ଯାଇଅଛି । ] ୧୦ । ( +ଭାବ. ତି ) ବ୍ୟାପିବା—10. Pervading ( Apte ). ୧୧ । ପ୍ରେରଣ—11. Sending (Apte).

ବିଷ୍ଟିକରଣ } ବିଷ୍ଟିଯୋଗ } —ଅନ୍ୟରୂପ

**ବିଷ୍ଟି ପଡ଼ିବା**—ଦେ. କ୍ରି—ଅଶୁଭ ଘଟିବା—1. The happening Bishṭi paṛdbā of evil. ୨ । କୌଣସି କାର୍ଯ୍ୟରେ **भद्दुआ लगना** ବିଘ୍ନ ଜାତ ହେବା—2. The appearance of a hindrance in any work.

**ବିଷ୍ଟିଭଦ୍ରା**—ସଂ. ବି (ବିଷ୍ଟି + ଭଦ୍ରା; ବିଷ୍ଟିଯୋଗ ବିଶିଷ୍ଟ ଭଦ୍ରା ତିଥି)— Bishṭibhadrā (ଜ୍ୟୋତିଷ ) ଅଶୁଭ ଯୋଗଯୁକ୍ତ ତିଥିବିଶେଷ—Name of an astrologically evil day. [ ଦ୍ର—କୃଷ୍ଣପକ୍ଷର ତୃତୀୟାର ଓ ଦଶମୀର ଶେଷାର୍ଦ୍ଧ; ଓ ସପ୍ତମୀର ଓ ଚତୁର୍ଦ୍ଦଶୀର ପୂର୍ବାର୍ଦ୍ଧ; ଶୁକ୍ଳପକ୍ଷର ଚତୁର୍ଥୀର ଓ ଏକାଦଶୀର ଶେଷାର୍ଦ୍ଧ; ଅଷ୍ଟମୀର ଓ ପୂର୍ଣ୍ଣିମାର ପୂର୍ବାର୍ଦ୍ଧ ବିଷ୍ଟିଭଦ୍ରା ଅଟେ । ଏଥିରେ ବିବାହ ଓ ଯାତ୍ରାଦି ଶୁଭକର୍ମ ନିଷିଦ୍ଧ । ]

**ବିଷ୍ଟୁଁ**—ଗ୍ରା. ବି ( ସଂ. ବିଷ୍ଣୁର ଅଶୁଦ୍ଧ ଉଚ୍ଚାରଣ )—୧ । ବିଷ୍ଣୁ— Bishṭuñ ( ଦେଖ )—1. Bishṇu ( See ). बिष्टुँ **बिस्नुन** [ ଦ୍ର—'ଷ+ଣ'ର ଉଚ୍ଚାରଣକୁ ଆମ ଦେଶରେ 'ଷ୍ଟ' ଉଚ୍ଚାରଣ କରନ୍ତି; କିନ୍ତୁ ଏହା ଭୁଲ ଉଚ୍ଚାରଣ । ] ଦେ. ଅ—୨ । ମାନ୍ୟ ବ୍ୟକ୍ତି, ଗୁରୁଜନ ବା ପୂଜ୍ୟ ବସ୍ତୁ ( ଯଥା—ପୁସ୍ତକାଦି ) ରେ ଗୋଡ଼ ଲାଗିଗଲେ, ସେଠାରେ ହାତ ଲଗାଇ 'ବିଷ୍ଟୁ' ଶବ୍ଦ ଉଚ୍ଚାରଣ କରି ମୁଣ୍ଡରେ ହାତ ଲଗାଇବାକୁ ହୁଏ, ଅର୍ଥାତ୍ ବିଷ୍ଣୁଙ୍କ ନାମ ଉଚ୍ଚାରଣ କଲେ 'ପୂଜ୍ୟ ପୂଜା ବ୍ୟତିକ୍ରମ' ଜନିତ ଅପରାଧ ଦୂର ହୁଏ—2. An exclamation uttered while touching the body of one's elder when one's leg accidentally comes in contact with the elder's body.

**ବିଷ୍ଠ**—ଗ୍ରା. ବି (ସଂ. ବିଷ୍ଠା)—ବିଷ୍ଠା (ଦେଖ)
Bisṭha Excrement.

**ବିଷ୍ଠବଦ୍ଧ**—ଗ୍ରା. ବି (ସଂ. ବିଷ୍ଟମ୍ଭ)—ମଳରୋଧ—
Bisṭhabaddha Constipation.

**ବିଷ୍ଠଳ**—ସଂ. ବି (ବି+ସ୍ଥଳ)—ଦୂର ସ୍ଥାନ—
Bishṭhala A remote place.

**ବିଷ୍ଠା**—ସଂ. ବି (ବି=ବିବିଧପ୍ରକାର+ସ୍ଥା ଧାତୁ=ରହିବା+କର୍ତ୍ତୃ. ଅ+ଆ; Bishṭhā ଯାହା ଉଦର ମଧ୍ୟରେ ଥାଏ)—୧ । ପୁରୀଷ; ମଳ; ଗୁହ— 1. Dung; excrement; ordure. [ ଦ୍ର—ଗୋବିଷ୍ଠାକୁ ଗୋମୟ କହନ୍ତି । କୌଣସି ଜୀବର ବିଷ୍ଠା ସେହି ଜୀବବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା—ଶୂକର ବିଷ୍ଠା, ନର ବିଷ୍ଠା ଇତ୍ୟାଦି । ଲୋକେ ବିଷ୍ଠାକୁ ନରକ ବୋଲି କହିଥାନ୍ତି । କାରଣ, ନରକରେ ମହାପାପୀମାନଙ୍କୁ ବିଷ୍ଠାକୁଣ୍ଡରେ ବୁଡ଼ାଇ ଯମ-ଦୂତମାନେ ଦଣ୍ଡ ଦିଅନ୍ତି ବୋଲି ପୁରାଣାଦିରେ ଲେଖାଅଛି । ଶୂକର ଓ କୁକୁରମାନେ ନରବିଷ୍ଠା ଭକ୍ଷଣ କରନ୍ତି । ସାମୁଦ୍ରିକ ପକ୍ଷୀମାନେ ପ୍ରଶାନ୍ତ ମହାସାଗରସ୍ଥ ଦ୍ୱୀପମାନଙ୍କରେ ତ୍ୟାଗ କରିଥିବା ବିଷ୍ଠା ସହସ୍ର ସହସ୍ର ମହଣ ଲୋକେ ଆଣି ସାର ରୂପେ ବ୍ୟବହାର କରନ୍ତି । ପଶୁ ପକ୍ଷୀ ଓ ମନୁଷ୍ୟାଦିଙ୍କ ବିଷ୍ଠା କ୍ଷେତରେ ସାରରୂପେ ବ୍ୟବହୃତ ହୁଏ । ଗୋବିଷ୍ଠା ବା ଗୋମୟ ହିନ୍ଦୁମାନଙ୍କର ପରମ ପବିତ୍ର ବସ୍ତୁ । ପ୍ରାୟଶ୍ଚିତ୍ତରେ ଗୋମୂତ୍ରାଦିସହିତ ଗୋମୟ ମିଶ୍ରିତ ପଞ୍ଚଗବ୍ୟ ପ୍ରାୟଶ୍ଚିତ୍ତକାରୀ ସେବନ କରେ । ଗୋମୟ ମିଶ୍ରିତ ଜଳରେ ହିନ୍ଦୁମାନେ ଘରଦ୍ୱାର ଲିପନ୍ତି । ପାରିର ବିଷ୍ଠା ପାଚୁ ନ ଥିବା ବଥ ଉପରେ ଲଗାଇ ଦେଲେ ବଥରେ କଣା ହୋଇ ପୂଜ ବାହାରେ । ମହମ୍ମଦଧର୍ମୀମାନେ ମଧ୍ୟ ଗୋମୟକୁ ପବିତ୍ର ଜ୍ଞାନ କରନ୍ତି । ] ୨ । ପେଟ—2. Belly (Apte).

**ବିଷ୍ଠା ଉଖୁରା(ରେ)ଇଲେ ଗନ୍ଧାଏ**—ଦେ. ପ୍ରବଚନ—ଗୁପ୍ତ କଥାମାନ Bshtha ukhura(re)ile gandhae ଆଲୋଚନା କଲେ बिष्ठाय काठी दिले गन्ध बेरोय़ ଆଲୋଚକର କଳଙ୍କ ମାତ୍ର ପ୍ରକଟିତ **बिष्ठा गीजनेसे बू आती है** ହୁଏ । ଗୃହଚ୍ଛିଦ୍ରମାନଙ୍କର ଅଧିକ ଆଲୋଚନା ଫଳରେ ଏହା ହୁଏ ଯେ—ଆପଣାର ଗୁଡ଼ାଏ କଳଙ୍କ କଥା ପ୍ରକାଶ ପାଏ । (a proverb) Washing dirty linen in public ends in scandal.

**ବିଷ୍ଠାକୀଟ**—ସଂ. ବି—(ବିଷ୍ଠା+କୀଟ)—୧ । ବିଷ୍ଠାରେ ଜନ୍ମିବା କ୍ଷୁଦ୍ର Bishṭha kita କୃମି—1. Maggots or worms found in ordure. ୨ । ବିଷ୍ଠା ଖାଦକ ଏକ ପ୍ରକାର ଦୃଢ଼ପକ୍ଷୀ ଷଟ୍‌ପଦ କୀଟ—2. A kind of beetle living on excrement; the tumbledung insect. [ ଦ—ଏମାନେ ବିଷ୍ଠା ମଧ୍ୟରେ ଡିମ୍ବ ପାରି, ଡିମ୍ବର ଚାରି-ପାଖରେ ବିଷ୍ଠାକୁ ଗୁଳା କରି ତାକୁ ଆଗ ଗୋଡ଼ରେ ଗଡ଼ାଇ ଗଡ଼ାଇ ନେଇ ଆପଣାର ବସାରେ ସଞ୍ଚିତ କରି ରଖନ୍ତି ।] ୩ । ଗୋବର ପୋକ—3. A kind of large

black beetle. [ ଦ୍ର—ଏମାନେ ଶୁଖିଲା ଗୋବରରେ ବାସ କରନ୍ତି । ଏମାନେ ମଧ୍ୟ ଦୁଇପଟା ଷଟ୍‌ପଦୀ ପୋକ । ]

ବିଷ୍ଠା କୁଣ୍ଡ—ସଂ. ବି—(ମ. ପ. ଲୋ; ବିଷ୍ଠା+କୁଣ୍ଡ)—୧ । ବିଷ୍ଠାପୂର୍ଣ୍ଣ
Bishṭhā kuṇḍa ପାତ୍ର—1. A pot full of ordure.
୨ । ନରକରେ ମହାପାପୀଙ୍କୁ ଦଣ୍ଡ ପ୍ରଦାନ ପୂର୍ବକ ବୁଡ଼ାଇବା ନିମନ୍ତେ ଧାରଣକରିଥିବା ବିଷ୍ଠାପୂର୍ଣ୍ଣ କୁଣ୍ଡ । ନରକର ଅଂଶ ବିଶେଷ—2. A part of the hell where condemned sinners are put in ordure pits. ୩ । (ଲକ୍ଷଣାର୍ଥ) ଅତି ଘୃଣ୍ୟ ସ୍ଥାନ—3 (figurative) A very hated place. (ଯଥା—ବେଶ୍ୟାର ଗୃହ ବିଷ୍ଠାକୁଣ୍ଡ ଅଟେ । ୪ । ପାଇଖାନାରେ ରଖାଯିବା ପାତ୍ର; ଯେଉଁ ପାତ୍ର ମଧ୍ୟରେ ଉତ୍ସୃଷ୍ଟ ମଳ ପତିତ ହୁଏ—4. The pot put at the bottom of a privy as receptable for the ordure.

ବିଷ୍ଠାକୁ ମାଇଲେ ମୁହଁକୁ ପଡ଼େ (ଛିଡ଼ିକେ)—ଦେ. ପ୍ରବଚନ—
Bishṭhāku māile muhaṅku paṛḍe (chhiṛḍike)
বিষ্ঠায় ঢিল মারলে গায়ে পড়ে (ଯେପରି ବିଷ୍ଠା ଜମା ହୋଇଥିବା
**बिष्ठापर ढेला मारनेसे देहपर पडताहै** ସ୍ଥାନରେ ବିଷ୍ଠାକୁ ଯଷ୍ଟ୍ୟାଦି ଦ୍ୱାରା ପ୍ରହାର କଲେ, ତାହାର ଅଂଶ ଛିଡ଼ିକ କରି ପ୍ରହାରକାରୀ ବ୍ୟକ୍ତିର ମୁହଁରେ ପଡ଼େ ଓ ତଜ୍ଜନିତ ଦୁର୍ଗନ୍ଧ ଓ ମଇଳା ଦ୍ୱାରା ପ୍ରହାରକ ଜର୍ଜରିତ ହୁଏ ସେହିପରି) ଛୋଟଲୋକଙ୍କ ସଙ୍ଗେ ରୁକ୍ଷ ବ୍ୟବହାର କଲେ, ଆକ୍ରମଣକାରୀ ସେଥିର ଫଳରେ ଅପମାନିତ ହୁଏ ।
କିମ୍ବା ଗୃହଚ୍ଛିଦ୍ର ମାନ ଘାଣ୍ଟିଲେ ବା ଅତିରିକ୍ତ ଭାବରେ ଆଲୋଚନା କଲେ ଆଲୋଚକ ବ୍ୟକ୍ତି କଳଙ୍କିତ ହୁଏ—An analogical saying applied to cases of dealing rudely with mean people or publicy discussing one's family secrets, which rebound unfavourably on the dealer.

ବିଷ୍ଠାକୃ(କ୍ରି)ମି—ସଂ. ବି. ( ମ. ପ. ଲୋ; ବିଷ୍ଠା+କୃମି)—୧ । ବିଷ୍ଠାରେ
Bishṭhākṛu(kri)mi ଜନ୍ମିବା କୃମି—1.Maggots appearing in ordure. ୨ । ପେଟ ଭିତରୁ ବାହାରିବା ବିଷ୍ଠା ସଙ୍ଗେ ମିଶ୍ରିତ କୃମି ପୋକ—2. Worms in the intestines. [ଦ୍ର—କ୍ଷୁଦ୍ର କୃମିକୁ କୁରୁମି ଓ ବଡ଼ କୃମିକୁ କେଞ୍ଚୁଆ ବା କାଉଁଟ ବୋଲାଯାଏ ।] ୩ । (ଲକ୍ଷଣାର୍ଥ) ଅତି ହେୟ ଜୀବ—3. (figurative) A detestable being. [ଦ୍ର—ଲୋକେ ଅନ୍ୟ ବ୍ୟକ୍ତିକୁ ଗାଳି ଦେଲା ବେଳେ କହି ଥାଆନ୍ତି;—ଆର ଜନ୍ମରେ ତୁ ବିଷ୍ଠାରେ କୃମି ହେବୁ ।]

ବିଷ୍ଠା ଖାଇବା—ଦେ. କ୍ରି—୧ । (ଗାଳି) ଗୁହ ଖାଇବା; ଅଖାଦ୍ୟ ଭୋଜନ
Bishṭhā khāibā କରିବା—1. (a term of abuse) To
গুহ খাওয়া eat ordure. ୨ । କୌଣସି ଘୃଣିତ କାର୍ଯ୍ୟ କରିବା—
**भरम गमाना** 2 To do any nasty thing. [ଦ୍ର—ଘୃଣାର୍ଥ ସୂଚନାରେ ଓ ଗାଳିରେ 'ବିଷ୍ଠା ଖାଇବା' ଶବ୍ଦ ବ୍ୟବହୃତ ହୁଏ । ଯଥା—୧ । ମୁଁ ଯେବେ ପୁଣି ଜାଣି ହୁଏଁ ତେବେ ମୁଁ ବିଷ୍ଠା ଖାଏଁ । ୨ । ଯେ ଟଙ୍କା ମହାଜନୀ କରି ଖାତକଠାରୁ ବହୁତ ସୁଧ ନିଏ, ସେ ବିଷ୍ଠା ଖାଏ । ୩ । ତୋ ସାତ ପୁରୁଷ ବିଷ୍ଠା ଖାଆନ୍ତୁ ।]

ବିଷ୍ଠା ଖାଦକ—ସଂ. ବି. (ବିଷ୍ଠା+ଖାଦକ)—ବିଷ୍ଠା ଭୋଜନକାରୀ—
Bishṭhā khādaka Partaker of ordure.

ବିଷ୍ଠାଖିଆ—ଦେ. ବି. (ଲକ୍ଷଣାର୍ଥ)—୧ । ବିଷ୍ଠା ଭୋଜନ ପରି ଘୃଣ୍ୟ କାର୍ଯ୍ୟ
Bishṭhākhiā କରଣ—1. (figurative) The doing of
গুহ খাওয়া any nasty work. ୨ । (ଗାଳି) ଯେ ଘୃଣ୍ୟ କାର୍ଯ୍ୟ କରେ—2. Doer of nasty acts.
**बिष्ठाखाना** [ ଦ୍ର—ଚୋରି କରିବା, ଘୁଷ୍ ନେବା, ବହୁତ ସୁଧ
ବିଷ୍ଠା ଖୋର } ଅନ୍ୟରୂପ ନେବା, ପରସ୍ତ୍ରୀ ହରଣ କରିବା,
ବିଷ୍ଠା ଖୋରିଆ } ମାଦକ ସେବନ କରିବା, ବ୍ୟକ୍ତିକୁ
(ବିଷ୍ଠାଖାଇ—ସ୍ତ୍ରୀ) 'ବିଷ୍ଠାଖିଆ' ବୋଲି କହନ୍ତି । ପୂର୍ବ କାଳରେ
গু খোব, বিষ্ঠা খেগো—পুং ଲୋକଙ୍କୁ ଦଣ୍ଡ ଦେବା ପାଇଁ ତାଙ୍କୁ
বিষ্ঠা খাগী—স্ত্রী ବିଷ୍ଠା କିମ୍ବା ବିଷ୍ଠାଗୋଳିଆ ଜଳ ପିଆଇ
**बिष्ठाखोर** ଥିଲେ । ଆଜି କାଲି ମଧ୍ୟ କେତେକ ଅନାର୍ଯ୍ୟ ମୁଲକରେ ଏପରି ଜଘନ୍ୟ ଦଣ୍ଡ ଦିଆ ଯାଉଥିବାର ଉଦାହରଣ ଆମ୍ଭମାନଙ୍କ କାନକୁ ଆସେ । ]

ବିଷ୍ଠା ଖୁଆଇବା—ଦେ. କ୍ରି—ଦଣ୍ଡ ବା ଅପମାନ ଦେବାପାଇଁ କୌଣସି
Bishṭhā khuāibā ବ୍ୟକ୍ତିର ପାଟିରେ ବିଷ୍ଠା ପୂରାଇବା—To
(ବିଷ୍ଠା ଖୋଇବା—ଅନ୍ୟରୂପ) put ordure in the mouth
বিষ্ঠা খাওয়ান of a person to punish or insult him.
**बिष्ठाखिलाना** [ଦ୍ର—ବିଷ ଖାଇଥିବା ବ୍ୟକ୍ତିକୁ ବମନ କରାଇ ତା ପେଟରୁ ବିଷ ବାହାର କରିବା ପାଇଁ ତାଙ୍କୁ ମାନ୍ଧାରବିଷ୍ଠା ଗୋଳାହୋଇଥିବା ପାଣି ପିଆଇ ଦିଅନ୍ତି ଓ ସେହି ଦୁର୍ଗନ୍ଧର ପ୍ରତିକ୍ରିୟା ସ୍ୱରୂପ ତା ପେଟ ମଧ୍ୟରେ ଥିବା ଖାଦ୍ୟାଦି ଓ ତାହିଁ ସଙ୍ଗେ ସଙ୍ଗେ ଉଦରସ୍ଥ ବିଷମଧ୍ୟ ବାହାରିପଡ଼େ । ]

ବିଷ୍ଠା ଗଦା—ଦେ. ବି—୧ । ସ୍ତୂପୀକୃତ ବିଷ୍ଠା—1. A heap of
Bishṭhā gadā ordure. ୨ । (ଲକ୍ଷଣାର୍ଥ) ଘୃଣ୍ୟ ସ୍ଥାନ—
গুয়ের গাদা 2. (figurative) A hated place
**बिष्ठादेर**

ବିଷ୍ଠା ଢାଳିବା—ଦେ. କ୍ରି—( ଲକ୍ଷଣାର୍ଥ ) କଳଙ୍କାର୍ଥରେ 'କୌଣସି
Bishṭhā ḍhāḷibā ବ୍ୟକ୍ତି ମୁହଁରେ କିମ୍ବା ତାହାର ପୂର୍ବପୁରୁଷଙ୍କ
ବିଷ୍ଠା ଅଜାଡ଼ିବା } ଅନ୍ୟରୂପ ମୁହଁରେ ବିଷ୍ଠା ପଡ଼ୁ' ଅର୍ଥାତ୍ ସେ
ବିଷ୍ଠା ଦେବା } କିମ୍ବା ତାହାର ପୂର୍ବପୁରୁଷମାନେ
বিষ্ঠা ঢালা ବିଷ୍ଠା ଖାଆନ୍ତୁ ବୋଲି ଗାଳି ଦେବା—(figurative)
**बिष्ठा ढालना** To call evil names to a person by saying that ordure be poured on him

or on his ancestors. (ଯଥା—ଅମୁକ ଅମୁକର ବାପ ଅଜାଙ୍କ ମୁହଁରେ ବିଷ୍ଠା ଢାଳୁଛି ।)!

**ବିଷ୍ଠା ତ୍ୟାଗ**—ସଂ. ବି—(୬ଷ୍ଠୀ ତତ୍; ବିଷ୍ଠା + ତ୍ୟାଗ )—ମଳତ୍ୟାଗ; ମଳୋତ୍ସର୍ଗ—Passing of stools.
Bishṭhā tyāga

**ବିଷ୍ଠାତ୍ୟାଗ କରିବା**—ଦେ. କ୍ରି—ଝାଡ଼ା ଫେରିବା; ହଗିବା—To pass stool.
Bishṭhātyāga karibā বিষ্ঠাত্যাগ করা
**विष्ठात्याग करना**

**ବିଷ୍ଠା ପୋକ**—ଦେ· ବି—(ବିଷ୍ଠା + ପୋକ)—ବିଷ୍ଠାକୀଟ (ଦେଖ)—Bishṭhā kiṭa (See).
Bishṭhā poka গুয়েরপোকা
**विष्ठाकाकीडा; गुहकीडी**

**ବିଷ୍ଠା ବଣ**—ଦେ. ବି— (ବିଷ୍ଠା + ବଣ)—୧ । ବିଷ୍ଠାପୂର୍ଣ୍ଣ ସ୍ଥାନ; ଗୁହବଣ—1. A place full of excrements. ୨ । ଗୁହପଡ଼ିଆ; ଯେଉଁଠାରେ ଗ୍ରାମବାସୀମାନେ ଝାଡ଼ା ଫେରନ୍ତି—2. The village easing ground.
Bishṭhā baṇa বিষ্ঠা বন
**विष्ठामयस्थान, खत्ता; गुहपडती**

**ବିଷ୍ଠାବଦ୍ଧ**—ଦେ. ବି, (ସଂ. ବିଷ୍ଟମ୍ଭ)—କୋଷ୍ଠବଦ୍ଧତା—Constipation.
Bishṭhābaddha

**ବିଷ୍ଠା ବନ୍ଧନ**—ସଂ. ବି—(୬ଷ୍ଠୀ ତତ୍; ବିଷ୍ଠା+ବନ୍ଧନ)—କୋଷ୍ଠବଦ୍ଧତା—Constipation.
Bishṭhā bandhana
( ବିଷ୍ଠାରୋଧ—ଅନ୍ୟରୂପ )

**ବିଷ୍ଠାଭକ୍ଷକ**—ସଂ. ବିଣ—( ଉପପଦ ତତ୍ପୁରୁଷ; ବିଷ୍ଠା+ଭକ୍ଷକ )—୧ । ବିଷ୍ଠାଖାଦକ; ଯେ ବିଷ୍ଠା ଖାଏ—1 Eating ordure. ଦେ. ବି—୧ । (ଗାଳି ବିଶେଷ) ଗୁହଖୋର—2. (a term of abuse) Eater of ordure. ୨ । ( ଲକ୍ଷଣାର୍ଥ ) ଘୁଷଖୋର—2. ( figurative ) A person who takes bribe. ୩ । ସୁଧଖୋର—3 Userer.
Bishṭhā bhakshaka
( ବିଷ୍ଠାଭୋଜୀ—ଅନ୍ୟରୂପ )

**ବିଷ୍ଠାମୟ**—ସଂ. ବିଣ—( ବିଷ୍ଠା+ମୟ )—୧ । ବିଷ୍ଠାରେ ପୂର୍ଣ୍ଣ—1. Full of odure. ୨ । ବିଷ୍ଠାପରି ଦୁର୍ଗନ୍ଧ ଯୁକ୍ତ—2. Evil smelling; having very obnoxious smell.
Bishṭhāmaya
(ବିଷ୍ଠାପୂର୍ଣ୍ଣ—ଅନ୍ୟରୂପ)

**ବିଷ୍ଠା ମୂତ୍ର**—ସଂ. ବି (ସଦ୍ଵନ୍ଦ)—(ବିଷ୍ଠା + ମୂତ୍ର)—ଗୁହ ଓ ମୂତ—Ordure and urine.
Bishṭhā mūtra

**ବିଷ୍ଣୁ**—ସଂ. ବି. ( ବିଷ୍ ଧାତୁ=ବ୍ୟାପିବା+କର୍ତ୍ତୃ. ନୁକ୍ (ଣୁ ); ଯେ ବିଶ୍ୱକୁ ବ୍ୟାପି ଅଛନ୍ତି; ବା, ବିଶ୍ ଧାତୁ=ପ୍ରବେଶ କରିବା +ନୁକ୍ ( ଣୁ ); ଯେ ଚରାଚର ଜଗତର ସମସ୍ତ ପଦାର୍ଥ ମଧ୍ୟରେ ପ୍ରବେଶ କରି ଅଛନ୍ତି; ଅଥବା ଯାହାଙ୍କଠାରେ ଭୂତ ସକଳ ପ୍ରବେଶ କରନ୍ତି । ବା, ବିଷ୍ ଧାତୁ=ସେଚନ କରିବା+ନୁକ (ଣ); ଯେ ଚରାଚର ବିଶ୍ୱରେ ଚୈତନ୍ୟ ସେଚନ କରି ଅଛନ୍ତି ବା ଚରାଚର ବିଶ୍ୱକୁ ଅପ୍ୟାୟିତ କରନ୍ତି । ]
Bishṇu

୧ । ନାରାୟଣ; ହରି; ଭଗବାନ୍—1. Nārāyaṇa, Bhagabān. [ଦ୍ର—ହିନ୍ଦୁମାନଙ୍କ ତ୍ରିମୂର୍ତ୍ତି ମଧ୍ୟରୁ ଏ ଏକ ଅଟନ୍ତି । ଜଗତ୍ ସ୍ରଷ୍ଟା—ବ୍ରହ୍ମା, ଜଗତ୍ପାଳକ—ବିଷ୍ଣୁ ଓ ଜଗତ୍ ସଂହାରକ—ଶିବ । ହିନ୍ଦୁ ପୁରାଣ ମତରେ ଏ ଦିବ୍ୟଦେବ ଯୁଗେ ଯୁଗେ ଦୁଷ୍ଟ ଦଳନାର୍ଥ ଓ ଶିଷ୍ଟପାଳନାର୍ଥ ଓ ଧର୍ମରକ୍ଷାର୍ଥ ଜଗତରେ ଅବତୀର୍ଣ୍ଣ ହୁଅନ୍ତି । ] ୨ । ପରମେଶ୍ୱର—2, God. ୩ । ବସୁଦେବତା ବିଶେଷ—3. One of the Basu Deities. ୪ । ଧର୍ମଶାସ୍ତ୍ରକର୍ତ୍ତା ମୁନିବିଶେଷ—4. Name of a sage, the compiler of a code of Hindu law. [ ଦ୍ର—ଏହାଙ୍କ ସଙ୍କଳିତ ସ୍ମୃତିର ନାମ ବିଷ୍ଣୁ ସ୍ମୃତି । ] ୫ । ଶୁଦ୍ଧତା; ଶୁଦ୍ଧି—5. Purity. ୬ । ଅଗ୍ନି ଦେବତା, ପୂର୍ବଦିଗର ଅଧିପତି—6. The fire God. ୭ । ଧାର୍ମିକ ବ୍ୟକ୍ତି—7. A pious man (Apte). ୮ । ଶ୍ରବଣା ନକ୍ଷତ୍ର ( ଏଥିର ଅଧିପତି ବିଷ୍ଣୁ )—8. The 22nd lunar mansion ( Apte ). [ ଦ୍ର—ପୁରାଣରେ ଲେଖା ଅଛି, ପୃଥିବୀର ସୃଷ୍ଟି ପୂର୍ବରୁ ବ୍ରହ୍ମାଣ୍ଡ ଜଳରେ ବୁଡ଼ି ମହାପ୍ରଳୟ ଘୋଟି ଥିଲା । ସେ ସମୟରେ କଳ୍ପବଟ ନାମକ ଗୋଟିଏ ବିଶାଳ ବୃକ୍ଷର ଅଗରେ ଥିବା ଗୋଟିଏ ପତ୍ରରେ ଏକମାତ୍ର ବିଷ୍ଣୁ ଭାସୁଥିଲେ । ତାହାଙ୍କ ନାଭିରୁ ଗୋଟିଏ ପଦ୍ମ ବାହାରିଲା ଓ ସେହି ପଦ୍ମରେ 'ବ୍ରହ୍ମା' ଜାତ ହୋଇ ବିଷ୍ଣୁଙ୍କ ଆଜ୍ଞାନୁସାରେ ଅପଣା ଦେହରୁ ଏ ଜଗତକୁ ସୃଷ୍ଟି କଲେ । ବ୍ରହ୍ମାଙ୍କର ସୃଷ୍ଟ ଜଗତକୁ ବିଷ୍ଣୁ ପାଳନ କଲେ ଓ ଶେଷରେ ମହାଦେବ ସଂହାର କରିବେ ଏହିପରି ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟି, ବିଷ୍ଣୁଙ୍କ ଦ୍ୱାରା ସ୍ଥିତି ଓ ମହାଦେବଙ୍କ ଦ୍ୱାରା ପ୍ରଳୟ କ୍ରିୟା ବରାବର ଚାଲିଅଛି । ଶିବ ଏ ସୃଷ୍ଟିକୁ ବିନାଶ କଲେ ପୁଣି ପ୍ରଳୟ ହୁଏ; ପୁଣି ବିଷ୍ଣୁ କଳ୍ପବଟର ପତ୍ରରେ ଭାସି ବ୍ରହ୍ମାଙ୍କ ଜାତ କରନ୍ତି ଓ ପୁଣି ଶିବ ସୃଷ୍ଟିକୁ ସଂହାର କରନ୍ତି । ଫଳରେ—ଜଗତର ସୃଷ୍ଟି ସ୍ଥିତି ପ୍ରଳୟ କର୍ତ୍ତା ଏହି ୩ ଜଣ ଦେବତା ଏକମାତ୍ର ପରମ ପୁରୁଷଙ୍କଠାରୁ ସମ୍ଭୂତ । ପୁରାଣରେ ଅଛି ଯେ—କଳ୍ପାଦ୍ୟରେ ବିଷ୍ଣୁଙ୍କଠାରୁ ସୃଷ୍ଟି ଜାତ ହେଲା ଓ କଳ୍ପାନ୍ତ ପ୍ରଳୟରେ ପୁଣି ସେହି ବିଷ୍ଣୁଙ୍କଠାରେ ବିଲୀନ ହେବ, ହୋଇଅଛି ଓ ହେଉଅଛି । ବିଷ୍ଣୁହିଁ ଏ ବ୍ରହ୍ମାଣ୍ଡର ଆଦି ପୁରୁଷ ଓ ସନାତନ । ଏହାଙ୍କର ଆଦି କେଉଁଠାରେ ତାହା କାହାରିକୁ ଜଣା ନାହିଁ । ପୃଥିବୀର ସମସ୍ତ ଧର୍ମର ( କେବଳ ନାସ୍ତିକତା ମତ ବ୍ୟତୀତ ) ମତ ଅନୁସାରେ ଏହି ବିଷ୍ଣୁ ନାନା ନାମରେ ଜଗତର ସ୍ରଷ୍ଟା ଓ ଆଦିପୁରୁଷ ବୋଲି ସ୍ୱୀକୃତ ହୋଇଅଛନ୍ତି । ସୃଷ୍ଟି କରିବା, ପାଳନ କରିବା ଓ ସଂହାର କରିବା ଏହି ତିନୋଟି ଏକ ବିଷ୍ଣୁଙ୍କର ୩ଟି ପ୍ରକୃତି ବା କର୍ମ ମାତ୍ର ।

ହିନ୍ଦୁମାନେ ଏହାଙ୍କୁ ବିଷ୍ଣୁ, ମୁସଲମାନ୍‌ମାନେ ଅଲ୍ଲା, ଇହୁଦୀମାନେ Jehova ( ଯିହୋଭା ), ଖ୍ରୀଷ୍ଟାନ୍‌ମାନେ God ( ଗଡ୍ ) କହନ୍ତି । ବିଷ୍ଣୁ ରଜୋଗୁଣ ଅବଲମ୍ବନ କରି ସୃଷ୍ଟି କରନ୍ତି, ସତ୍ତ୍ୱଗୁଣ ଅବଲମ୍ବନ କରି ପାଳନ କରନ୍ତି ଓ ତମୋଗୁଣ ଅବଲମ୍ବନ କରି ବିନାଶ ବା ପ୍ରଳୟ କରନ୍ତି । ହିନ୍ଦୁଙ୍କମତରେ ବିଷ୍ଣୁଙ୍କର ନିବାସ କ୍ଷୀରସମୁଦ୍ର ମଧ୍ୟସ୍ଥ

ବୈକୁଣ୍ଠ । ଏହାଙ୍କର ଦୁଇଟି ସ୍ତ୍ରୀ—ଲକ୍ଷ୍ମୀ ଓ ସରସ୍ୱତୀ । ଲକ୍ଷ୍ମୀ ଚଞ୍ଚଳା, ତଥାପି ବିଷ୍ଣୁ ତାଙ୍କୁ ଟିକିଏ ବେଶୀ ଦେଖି ପାରନ୍ତି । ବିଷ୍ଣୁଙ୍କ ବାହନ ଗରୁଡ଼ । ବିଷ୍ଣୁଙ୍କ ରଥରେ ଚାରିଗୋଟି ଅଶ୍ୱ ଲାଗନ୍ତି । ସେମାନଙ୍କର ନାମ, ( ୧ ) ଶୈବ୍ୟ, ( ୨ ) ସୁଗ୍ରୀବ, ( ୩ ) ମେଘ ପୁଷ୍ପ, ( ୪ ) ବଲାହକ । "ଶୈବ୍ୟ ସୁଗ୍ରୀବ ମେଘପୁଷ୍ପ, ଯୋଚିଲା ବଲାହକ ଅଶ୍ୱ ।" ଜଗନ୍ନାଥ—ଭାଗବତ ।

ଏହି ପୃଥିବୀରେ କ୍ରମଶଃ ପୁଣ୍ୟ କମିଯାଇ ପାପଭାର ବୃଦ୍ଧି ହେଲେ ବିଷ୍ଣୁ ପୃଥିବୀରେ ରୂପଧାରଣ କରି ଅବତୀର୍ଣ୍ଣ ହୋଇ ଭିନ୍ନ ଭିନ୍ନ ଅବତାରରେ ଦୁଷ୍ଟ ସଂହାର କରି ଧର୍ମ ସଂସ୍ଥାପନ ପୂର୍ବକ ପୃଥିବୀର ପାପଭାର କମାନ୍ତି । ଏହି ଅବତାରମାନଙ୍କ ମଧ୍ୟରେ ୧୦ ଗୋଟି ପ୍ରଧାନ । ଯଥା—ମତ୍ସ୍ୟ, କଚ୍ଛପ, ବରାହ, ବାମନ, ନୃସିଂହ, ରାମ, ପରଶୁରାମ, କୃଷ୍ଣ, ବୁଦ୍ଧ ଓ କଳ୍କୀ । ଏହି କଳିଯୁଗରେ ବିଷ୍ଣୁ କଳ୍କୀ ଅବତାରରେ ଅବତୀର୍ଣ୍ଣ ହେବେ । ବିଷ୍ଣୁ ବର୍ତ୍ତମାନ ବୌଦ୍ଧାବତାର ଧରି ଜଗନ୍ନାଥରୂପେ ପୁରୀରେ ବିରାଜମାନ । ବିଷ୍ଣୁଙ୍କର ବାର ୧୨ ମାସରେ ପୂଜନୀୟ ରୂପ ଓ ନାମ—ମାର୍ଗଶିର—କେଶବ, ପୌଷ—ନାରାୟଣ, ମାଘ—ମାଧବ, ଫାଲ୍‌ଗୁନ—ଗୋବିନ୍ଦ, ଚୈତ୍ର—ବିଷ୍ଣୁ, ବୈଶାଖ—ମଧୁସୂଦନ, ଜ୍ୟେଷ୍ଠ—ତ୍ରିବିକ୍ରମ, ଆଷାଢ଼—ବାମନ, ଶ୍ରାବଣ—ଶ୍ରୀଧର, ଭାଦ୍ର—ହୃଷୀକେଶ, ଆଶ୍ୱିନ—ପଦ୍ମନାଭ, କାର୍ତ୍ତିକ—ଦାମୋଦର । ବିଷ୍ଣୁଭକ୍ତମାନଙ୍କୁ ବୈଷ୍ଣବ ବୋଲାଯାଏ । ]

ଦେ. ଅ—୧ । ଶ୍ରୀବିଷ୍ଣୁ; କୌଣସି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ମଙ୍ଗଳାଚରଣରୂପରେ ଉଚ୍ଚାରିତ ହେବା 'ବିଷ୍ଣୁ' ଶବ୍ଦ

ହିଂ ବିଷ୍ଣୁ

—1. Interjection used at the beginning of any act as an invocation to God. ୨ । ପୂଜ୍ୟ ବ୍ୟକ୍ତିଙ୍କ ଦେହରେ କିମ୍ବା ପୂଜ୍ୟ ପଦାର୍ଥରେ ଅଜ୍ଞାତରେ ଆପଣାର ଗୋଡ଼ ବାଜିଗଲେ ଉକ୍ତ ଅଙ୍ଗକୁ ବା ବସ୍ତୁକୁ ହାତରେ ସ୍ପର୍ଶ କରି, ହାତକୁ ଆଣି ଆପଣା ମୁଣ୍ଡରେ ଲଗାଇବାବେଳେ ଅପରାଧ ଖଣ୍ଡନାର୍ଥ ଉଚ୍ଚାରିତ ଶବ୍ଦ—2. An exclamation uttered by a person while touching the limb or body of an elderly person which the former has strkuc inadvertently. [ ଦ୍ର—ମୁସଲମାନ୍‌ମାନେ 'ତୋବା' ବା 'ବିସିମିଲ୍ଲା' ଶବ୍ଦ ଏହି ସ୍ଥଳରେ ଉଚ୍ଚାରଣ କରନ୍ତି । ] ଦେ. ବି. ପୁଂ—ପୁରୁଷଙ୍କୁ ଦିଆଯିବା ନାମ—A name given to males. [ ଦ୍ର—ବିଷ୍ଣୁ ଶବ୍ଦ-ସଙ୍ଗେ ଅନ୍ୟ ଶବ୍ଦ ଯୁକ୍ତ ହୋଇ ରଚିତ ନାମ ପୁରୁଷଙ୍କୁ ଓ ସ୍ତ୍ରୀଙ୍କୁ ଦିଆଯାଏ,ଯଥା—ପୁରୁଷଙ୍କ ନାମ—ବିଷ୍ଣୁଗୁପ୍ତ, ବିଷ୍ଣୁଚରଣ, ବିଷ୍ଣୁପ୍ରସାଦ, ବିଷ୍ଣୁଦାସ, ବିଷ୍ଣୁପଦ । ସ୍ତ୍ରୀଙ୍କ ନାମ—ବିଷ୍ଣୁପ୍ରିୟା, ବିଷ୍ଣୁଦାସୀ, ବିଷ୍ଣୁପଦା ।]

**ବିଷ୍ଣୁ ଅରି**—ଦେ. ବି. ( ସଂ. ବିଷ୍ଣ୍ୱରି; ବିଷ୍ଣୁ+ଅରି=ଚକ୍ର )—ବିଷ୍ଣୁଙ୍କର
Bishṇuari ଚକ୍ର; ସୁଦର୍ଶନ ଚକ୍ର—The discus; the weapon of Bishṇu. [ ଉ—ବିଷ୍ଣୁଅରି ପ୍ରକ୍ଷ୍ୟଲେ, ଅର୍ଦ୍ଧଚନ୍ଦ୍ରର ଛଳେ, ଗୁପ୍ତ ହେଳ ପ୍ରୟୋଗ କଲେ ସେ । ଉଞ୍ଜ. ବୈଦେହୀଶବିଳାସ । ]

**ବିଷ୍ଣୁ ଋକ୍ଷ**—ସଂ. ବି (ମ. ପ. ଲୋ; ବିଷ୍ଣୁଦୈବତ ଋକ୍ଷ ବା ନକ୍ଷତ୍ର)—ଶ୍ରବଣା
Bishṇuṛuksha ନକ୍ଷତ୍ର—The 22nd lunar mansion,

**ବିଷ୍ଣୁକନ୍ଦ**—ସଂ. ବି—କୋଙ୍କଣ ପ୍ରଦେଶ ଜାତ ଔଷଧ ମୂଳବିଶେଷ—
Bishṇukanda Name of a medicinal bulbous root. [ ଦ୍ର—ଏହାର ଅନ୍ୟ ସଂ. ନାମ ବିଷ୍ଣୁଗୁପ୍ତ, ସୁପ୍ରୁଷ୍ଠ, ବନ୍ଧୁରପୃଷ୍ଠ ଦୀର୍ଘପତ୍ର, ହରିପ୍ରିୟ, ଜଳବାସା, ବୃହତ୍‌କନ୍ଦ । ଏହା ମଧୁର, ଶୀତଳ, ରୁଚିକର, ତୃପ୍ତିକର ଏବଂ ଦାହ, ପିତ୍ତ ଓ ଶୋଥ ଦୂର କରେ—ହି. ଶ. ]

**ବିଷ୍ଣୁକରିବା**—ଦେ. କ୍ରି—୧ । ପୂଜ୍ୟ ବ୍ୟକ୍ତିଙ୍କ ଦେହରେ ବା ପୂଜ୍ୟ
Bishṇu karibā ବସ୍ତୁରେ ( ଗୁରୁଜନଙ୍କ ଅଙ୍ଗ, ପୁସ୍ତକ, ଦେବ-
ଶ୍ରୀବିଷ୍ଣୁକବା ବିଗ୍ରହରେ) ଅକସ୍ମାତ୍ ମନୁଷ୍ୟର ପାଦଆଦି ବାଜି ଗଲେ ଉକ୍ତ ଅଜ୍ଞାନକୃତ ଅପରାଧ ଖଣ୍ଡନାର୍ଥ 'ବିଷ୍ଣୁ' ବା 'ଶ୍ରୀବିଷ୍ଣୁ' ନାମ ଉଚ୍ଚାରଣ କରି ସ୍ପୃଷ୍ଟ ବସ୍ତୁରେ ବା ଅଙ୍ଗରେ ହାତ ଲଗାଇ ହାତକୁ ଆଣି ମୁଣ୍ଡରେ ଲଗାଇବା—1. To expiate for striking inadvertently the body of one's elder, by touching the struck limb with one's fingers and touching the brow with the fingers ( ଉ—ଗୋଇଠାମାରି ବିଷ୍ଣୁ କରିବା ନ୍ୟାୟ—ଢଗ । ) [ ଦ୍ର—ଜାଣି ଶୁଣି ଗୋଇଠା ମାରି "ବିଷ୍ଣୁ" କଲେ ସେ ପାପ ଖଣ୍ଡନ ହୁଏ ନାହିଁ । ] ୨ । ଭୋଜନ କରି ବସିବା ବେଳେ ପ୍ରଥମ ଗୁଣ୍ଡା ଭାତ ପାଟିକୁ ନେବା ପୂର୍ବରୁ 'ବିଷ୍ଣୁ' ଶବ୍ଦ ଉଚ୍ଚାରଣ

विष्णुग्रास करना

କରିବା—2. To utter the word Bishṇu while putting the 1st morsel of food in the mouth. ୩ । ହଠାତ୍ ଅକଥ୍ୟ ବା ମିଛକଥା ମୁହଁରୁ ବାହାରି ଗଲେ ପାପ ଖଣ୍ଡନାର୍ଥ 'ବିଷ୍ଣୁ'

विष्णुकरना

ନାମ ଉଚ୍ଚାରଣ କରିବା—3 To pronounce the word Bisnṇu in expiation for the sin of inadvertently speaking a falsehood or saying any improper thing. ୪ । ଅନ୍ୟର ମୁଖରୁ ମିଥ୍ୟା ବା ଅଶ୍ଳୀଳ ବା ଅକଥ୍ୟ ଭାଷା ଶୁଣିଲେ, ସେହି ପାପ ଖଣ୍ଡନାର୍ଥ ବିଷ୍ଣୁ ନାମ ଧରିବା—4. To pronounce the word Bishṇu on hearing another person speak a lie or an improper thing. ୫ । ଦେବପୂଜା ଆଦି ଅନୁଷ୍ଠାନରେ ସଂକଳ୍ପର ଆଦ୍ୟରେ 'ଓଁ ବିଷ୍ଣୁ, ଓଁ ବିଷ୍ଣୁ, ଓଁ ବିଷ୍ଣୁ' ଉଚ୍ଚାରଣ କରିବା—5. To prononce the word Bishṇu thrice at the beginning of any ritual or worship. ୬ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ ଆରମ୍ଭ କରିବା—6. To begin any work. [ ଦ୍ର—ମୁସଲମାନ୍‌ମାନେ ଏପରି ସ୍ଥଳରେ 'ତୋବା' 'ବିସ୍‌ମିଲ୍ଲା' କହୁଥାଆନ୍ତି । ]

**ବିଷ୍ଣୁ କାଞ୍ଚୀ**—ସଂ. ବି—ଦାକ୍ଷିଣାତ୍ୟର ତୀର୍ଥ ବିଶେଷ—Name of a
Bishṇu kānchi place of pilgrimage in the Deccan. [ଦ୍ର—ଏହା କାଞ୍ଚୀ ନଗରର ଗୋଟିଏ ଅଂଶ । ଏଠାରେ ବରଦା ସ୍ୱାମୀ ନାମକ ବିଷ୍ଣୁ ପ୍ରତିମା ଓ ମନ୍ଦିର ପ୍ରତିଷ୍ଠିତ । ନଗରୀର ଅପର ଅଂଶରେ ପ୍ରତିଷ୍ଠିତ ଶିବ-କାଞ୍ଚୀଠାରୁ ଏହା ପ୍ରାୟ ୩ ମାଇଲ୍ ଦୂରରେ ଅବସ୍ଥିତ । ମନ୍ଦିରବେଢ଼ାର ୬ଟି ଗୋପୁରମ୍ (ଦ୍ୱାର) ମଧ୍ୟରୁ ପୂର୍ବଦିଗର ଗୋପୁରମ୍ ୧୩୩ ଫୁଟ୍ ଉଚ୍ଚ । ପ୍ରଥମ ଅଗଣା ମଧ୍ୟରେ ଶତସ୍ତମ୍ଭ ବିଶିଷ୍ଟ ମଣ୍ଡପ ମଧ୍ୟରେ ଅଶ୍ୱାରୋହୀମାନଙ୍କର କାରୁକାର୍ଯ୍ୟ ମଣ୍ଡିତ ଚିତ୍ର ଅଛି । ମଣ୍ଡପ ନିକଟରେ କୋଟି-ତୀର୍ଥ ନାମକ ଗୋଟିଏ ପୁଷ୍କରିଣୀ ଅଛି । ଦ୍ୱିତୀୟ ଅଗଣାରେ ଥିବା ମନ୍ଦିରରେ ବିଷ୍ଣୁଙ୍କର ପ୍ରସ୍ତରଖୋଦିତ ଦଶାବତାର ମୂର୍ତ୍ତି, ବରଦା ସ୍ୱାମୀଙ୍କ ବିଗ୍ରହ, କୃଷ୍ଣପ୍ରସ୍ତର ନିର୍ମିତ ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ଅବସ୍ଥିତ । କାଞ୍ଚୀର ପୂର୍ବତନ ଶାସନକର୍ତ୍ତା ଭିଙ୍ଗୋଗୋପାଳ ରାୟ ଏ ମନ୍ଦିର ନିର୍ମାଣ କରାଇଥିଲେ । ମହାତ୍ମା ରାମାନୁଜ ଏହିଠାରେ ବିଦ୍ୟା ଶିକ୍ଷା କରିଥିଲେ ଓ ସ୍ୱମତ ପ୍ରଚାର ଆରମ୍ଭ କରିଥିଲେ । ବୈଶାଖ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଦେବଙ୍କ ବିଜେ ପ୍ରତିମା ରଥ ଚଢ଼ି ନଗର ବୁଲନ୍ତି । ଏଠାରେ ଲକ୍ଷ୍ମୀ ନୃସିଂହଙ୍କ ମୂର୍ତ୍ତି ମଧ୍ୟ ଅଛନ୍ତି । ଗଭର୍ଣ୍ଣମେଣ୍ଟ ଏହି ଦେବସ୍ଥାନର ବାର୍ଷିକ ଖରଚ ସକାଶେ ୮୦୦ ଟଙ୍କା ଦିଅନ୍ତି । ଏହା ଛଡ଼ା ଏ ଦେବଙ୍କ ସେବାପୂଜା ପାଇଁ ୩୦୦ ଟଙ୍କା ବାର୍ଷିକ ଆୟଉତ୍ପାଦକ ସମ୍ପତ୍ତି ଖଞ୍ଜା ଅଛି । ଏହାଙ୍କର ଅଳଙ୍କାର ଓ ଯାନବାହନାଦିର ମୂଲ୍ୟ ପ୍ରାୟ ୨ ଲକ୍ଷ ଟଙ୍କା ହେବ । ମଦନମୋହନ-ତୀର୍ଥ ଦର୍ଶନ ।]

**ବିଷ୍ଣୁ କାନ୍ତା**—ସଂ. ବି—ନୀଳ ଅପରାଜିତା (ହି. ଶ)—The blue
Bishṇu kāntā variety of clitoris flower and creeper.
(ବିଷ୍ଣୁକାକ—ଅନ୍ୟରୂପ)

**ବିଷ୍ଣୁକ୍ରାନ୍ତା**—ସଂ. ବି. ( ବିଷ୍ଣୁ + କ୍ରାନ୍ତ=ଅତିକ୍ରାନ୍ତ + ସ୍ତ୍ରୀ· ଆ )—
Bishṇukrāntā ୧ । ଅପରାଜିତା ଫୁଲ ( ଧଳା ଓ ନେଳି ଦୁଇ ପ୍ରକାର)—1. The clitoris flower and creeper (of blue and white varieties); Clitoria Ternatia. ୨ । ନେଳି ଫୁଲ ଯୁକ୍ତ ବନବନା ଗୁଳ୍ମ—2. The blue-flowered variety of Banabanā. ୩ । ବାରାହୀ କନ୍ଦ (ହି. ଶ) ଭୂଇଁକଖାରୁ—3. A kind of yam. ୪ । ନେଳି ଅପରାଜିତା—4. The blue variety of clitoris flower. [ଦ୍ର—ଏହା କଟୁତିକ୍ତ ରସ, ମେଧ ବର୍ଦ୍ଧକ, କଫବାତନାଶକ, ମଙ୍ଗଳ ପ୍ରଦ, ଏବଂ କୃମି, ବ୍ରଣ ଓ ବିଷ ଦୋଷ ନାଶକ—ଦ୍ରବ୍ୟଗୁଣ ଶିକ୍ଷା ।] ୫ । (ତନ୍ତ୍ରୋକ୍ତ) ପୃଥିବୀର ଦେଶ ବିଦେଶ—5. Name of a part of the earth described in the Tantras [ଦ୍ର—ତନ୍ତ୍ର ମତରେ ପୃଥିବୀ ୩ ଭାଗରେ ବିଭକ୍ତ । ଅଶ୍ୱକ୍ରାନ୍ତା, ରଥକ୍ରାନ୍ତା ଓ ବିଷ୍ଣୁକ୍ରାନ୍ତା ।]

ଅନ୍ୟ ସଂ. ନାମ— ନୀଳପୁଷ୍ପା, ନୀଳକ୍ରାନ୍ତା, ସୁନୀଳା, ହରିକ୍ରାନ୍ତା, ଓ ଛର୍ଦ୍ଦିକା
ନୀଳ ଅପରାଜିତା
ମ· ବିଷ୍ଣୁକ୍ରାନ୍ତା

**ବିଷ୍ଣୁ କ୍ଷେତ୍ର**—ସଂ. ବି. (୬ଷ୍ଠୀ ତତ୍)—ଯେଉଁ କ୍ଷେତ୍ରର ବା ତୀର୍ଥ ସ୍ଥାନର
Bishṇu kshetra ବିଷ୍ଣୁ ରକ୍ଷକ ଅଟନ୍ତି—A sacred place of which the tutelary Deity is Bishṇu. [ଦ୍ର—ଭୁବନେଶ୍ୱରର ପ୍ରସିଦ୍ଧ ଦେବତା ଶିବ ଅଟନ୍ତି; ତଥାପି ଏହା ବିଷ୍ଣୁ କ୍ଷେତ୍ର ଅଟେ ଓ ବାସୁଦେବ ଏ କ୍ଷେତ୍ରର ରକ୍ଷକ । ସେହିପରି ପୁରୁଷୋତ୍ତମରେ ବିଷ୍ଣୁ ପ୍ରସିଦ୍ଧ ଦେବତା ଥିଲେହେଁ ଏହା ଶିବକ୍ଷେତ୍ର ଅଟେ ଓ ଏଥିର ରକ୍ଷକ ଲୋକନାଥ ।]

**ବିଷ୍ଣୁ ଗୁପ୍ତ**—ସ. ବି. ପୁଂ (ନାମ) (୩ୟା ତତ୍; ବିଷ୍ଣୁ + ଗୁପ୍ତ; ବିଷ୍ଣୁଙ୍କ
Bishṇu gupta ଦ୍ୱାରା ଗୁପ୍ତ=ରକ୍ଷିତ; ବିଷ୍ଣୁଭକ୍ତ)—୧ । ନନ୍ଦ ବଂଶୀୟ ରାଜା ଚନ୍ଦ୍ରଗୁପ୍ତଙ୍କର ସଭାପଣ୍ଡିତ ଚାଣକ୍ୟ—1. A name of Chāṇakya. [ଦ—ଏ ନୀତିଶାସ୍ତ୍ର, ନୀତିକଥା, ହିତୋପଦେଶ ଓ ନୀତିଶ୍ଳୋକ ଆଦିର ରଚୟିତା । ଏହାଙ୍କର ଆଉ ଗୋଟିଏ ନାମ କୌଟିଲ୍ୟ ।] ୨ । କୌଣ୍ଡିଲ୍ୟ ମୁନି—2. Sage Kauṇḍilya. ୩ । ବିଷ୍ଣୁକନ୍ଦ (ଦେଖ)—2. Bishṇukanda (See) ୪ । ବଡ଼ ମୂଳା (ହି, ଶ)—4. A big variety of radish. ଦେ. ବି—ପୁରୁଷଙ୍କୁ ଦିଆଯିବା ନାମ—A name given to males.

**ବିଷ୍ଣୁ ଚକ୍ର**—ସ. ବି. ( ୬ଷ୍ଠୀ ତତ୍; ବିଷ୍ଣୁ + ଚକ୍ର )—ବିଷ୍ଣୁଙ୍କ ଅସ୍ତ୍ର,
Bishṇu chakra ସୁଦର୍ଶନ ଚକ୍ର—The discus, weapon of Bishṇu.

**ବିଷ୍ଣୁ ତିଥି**—ସ. ବି—ଏକାଦଶୀ ଓ ଦ୍ୱାଦଶୀ ତିଥି—The 11th and
Bishṇu tithi 12th days of the lunar fortnight.

**ବିଷ୍ଣୁତୈଳ**—ସଂ. ବି—ବାତ ରୋଗରେ ଉପକାରୀ ଆୟୁର୍ବେଦୋକ୍ତ
Bishṇu taila ପ୍ରକ୍ରିୟାରେ ପ୍ରସ୍ତୁତ ତୈଳ ବିଶେଷ—A medicinal oil used for curing rheumatism

**ବିଷ୍ଣୁଦୂତ**—ସ. ବି—( ୬ଷ୍ଠୀ ତତ୍; ବିଷ୍ଣୁ + ଦୂତ )—ମୃତ୍ୟୁ ସମୟରେ
Bishṇu dūta ବିଷ୍ଣୁଭକ୍ତ ବ୍ୟକ୍ତିଙ୍କୁ ବୈକୁଣ୍ଠକୁ ଆଦରପୂର୍ବକ ନେଇ ଯିବାପାଇଁ ବିଷ୍ଣୁଙ୍କ ପ୍ରେରିତ ଦୂତ—The angels or messengers sent by Bishṇu to a pious devotee on his deathbed, to lead his soul to the abode of Bishṇu. [ ଦ୍ର—ସାଧାରଣଙ୍କର ବିଶ୍ୱାସ ଯେ ବିଷ୍ଣୁଦୂତମାନେ ପୁଣ୍ୟାତ୍ମା ବୈଷ୍ଣବଙ୍କ ଆତ୍ମାକୁ ବୈକୁଣ୍ଠକୁ ନେଇଯାଆନ୍ତି ଓ ଯମଦୂତମାନେ ପାପୀଙ୍କ ଆତ୍ମାକୁ ଦଣ୍ଡ ଦେବାପାଇଁ ନରକକୁ ନେଇଯାଆନ୍ତି । କୌଣସି ମୃତବ୍ୟକ୍ତିର ଆତ୍ମାକୁ ନେବାପାଇଁ ଯମଦୂତମାନେ ଆସି ତା ମୃତ୍ୟୁଶଯ୍ୟା ପାଖେ ପହଞ୍ଚିବା ଅବସ୍ଥାରେ ବିଷ୍ଣୁଦୂତ ଆସି ପହଞ୍ଚିଲେ ଯମଦୂତମାନେ ନିରସ୍ତ ହୋଇ ଫେରିଯାଆନ୍ତି ଓ ମୃତବ୍ୟକ୍ତିର ଆତ୍ମାକୁ ବିଷ୍ଣୁଦୂତମାନେ ସମାଦରପୂର୍ବକ ବୈକୁଣ୍ଠକୁ ନେଇ ଯାଆନ୍ତି । ]

**ବିଷ୍ଣୁଦୈବତ**—ସଂ. ବିଣ—(ବହୁବ୍ରୀହି; ବିଷ୍ଣୁ+ଦୈବତ=ଅଧିଷ୍ଠାତୃ—Bishṇu daibata ଦେବତା )—୧ । ବିଷ୍ଣୁଦେବତାଙ୍କଦ୍ୱାରା (ବିଷ୍ଣୁଦୈବତା—ସ୍ତ୍ରୀ) ଅଧିଷ୍ଠିତ—1. Presided over by Bishṇu. ୨ । ବିଷ୍ଣୁ ଯାହାର ଇଷ୍ଟଦେବ; ବୈଷ୍ଣବ—2. (a person) Whose tutelary Deity is Bishṇu; devoted to Bishṇu. ସଂ. ବି—୧ । ଶ୍ରବଣା ନକ୍ଷତ୍ର—1. The 22nd lunar mansion. ୨ । ବୈଷ୍ଣବ; ବିଷ୍ଣୁଉପାସକ—2. A devotee or worshipper of Bishṇu.

**ବିଷ୍ଣୁପଞ୍ଜର**—ସଂ. ବି—(ଷଷ୍ଠୀ ତତ୍; ବିଷ୍ଣୁ+ପଞ୍ଜର=ଅସ୍ଥିମାତ୍ରାକୃତ ଶରୀର)—Bishṇu pañjara ୧ । ପୁରୀରେ ବିରାଜିତ ଦାରୁମୟ ବିଷ୍ଣୁବିଗ୍ରହଙ୍କର କଳେବର—1. The wooden image of Bishṇu worshipped as Jagannātha at Puri. [ ଦ୍ର—ଏହି ବିଗ୍ରହ ୧୨ ବର୍ଷରେ ଥରେ ବଦଳାଯାଇ କୋଇଲି ବୈକୁଣ୍ଠରେ ଥିବା କୂଅରେ ନିକ୍ଷିପ୍ତ ହୁଅନ୍ତି । ] ୨ । ମନୁଷ୍ୟର କଙ୍କାଳ—2. Human skeleton.

**ବିଷ୍ଣୁପଦ**—ସଂ. ବି—( ବହୁବ୍ରୀହି, ବିଷ୍ଣୁ=ବ୍ୟାପକ+ପଦ=ସ୍ଥାନ; ଯେ Bishṇupada ସର୍ବସ୍ଥାନକୁ ବ୍ୟାପିଛନ୍ତି; ଅଥବା ବିଷ୍ଣୁ ତାଙ୍କ ତୃତୀୟ ପାଦ ରଖିଥିଲେ ଯେଉଁଠାରେ) —୧ । ବ୍ୟୋମ; ଆକାଶ—1, The sky, [ ଦ୍ର—ବିଷ୍ଣୁ ବାମନ ଅବତାରରେ ଗୋଟିଏ ପଦ ଆକାଶରେ ସ୍ଥାପନ କରିଥିବାରୁ ଆକାଶକୁ ବିଷ୍ଣୁପଦ ବୋଲାଯାଏ । ] ( ଉ—ବିଷ୍ଣୁପଦୀ ବିଷ୍ଣୁନଦ, ଇକାର ଭେଦ ଶବଦ, ତରଣିର ଗତାଗତ, ତହିଁ ଉଚିତ । ଉଷ. ବୈଦେହୀଶବିଳାସ । ) ୨ । ଶୂନ୍ୟ—2. The void. ୩ । (ଷଷ୍ଠୀ ତତ୍) କ୍ଷୀରୋଦ ସମୁଦ୍ର (ଏଥିମଧ୍ୟରେ ବୈକୁଣ୍ଠ ଅବସ୍ଥିତ )—3. The mythological Sea of Milk ( in which Bishṇu's abode is situate. ୪ । ପଦ୍ମ—4. Lotus. ୫ । ଗୟାରେ ଥିବା ପ୍ରସ୍ତରରେ ଅଙ୍କିତ ବିଷ୍ଣୁଙ୍କର ପାଦଚିହ୍ନ ଓ ପାଦଚିହ୍ନ ଥିବା ମନ୍ଦିର—4. The soles of Bishṇu engraved on stone and worshipped at Gayā in a temple of that name. [ଦ୍ର—ଏହିଠାରେ ହିନ୍ଦୁ ଯାତ୍ରୀମାନେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଅର୍ପଣ କରନ୍ତି । ] ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.

**ବିଷ୍ଣୁପଦା**—ସଂ. ବି. ସ୍ତ୍ରୀ—( ବିଷ୍ଣୁପଦ+ ସ୍ତ୍ରୀ. ଆ; ବିଷ୍ଣୁଙ୍କ ପଦରୁ ନିର୍ଗତ Bishṇupadā ହୋଇଥିବାରୁ, ଏପରି ନାମ ହୋଇଅଛି)—୧ । ଗଙ୍ଗା ନଦୀ—1 The Ganges, ୨ । ବିଷ୍ଣୁପଦୀ ସଂକ୍ରାନ୍ତି—2. Name of 4 particular Samkrāntis of the solar year. [ଦ୍ର—ସୌର ଭାଦ୍ର (ସିଂହ) ସଂକ୍ରାନ୍ତି; ସୌର ଜ୍ୟେଷ୍ଠ (ବୃଷ) ସଂକ୍ରାନ୍ତି; ସୌର ମାର୍ଗଶିର (ବୃଶ୍ଚିକ) ସଂକ୍ରାନ୍ତି ଓ ସୌର ଫାଲ୍ଗୁନ (କୁମ୍ଭ) ସଂକ୍ରାନ୍ତିକୁ ବିଷ୍ଣୁପଦୀ ସଂକ୍ରାନ୍ତି ବୋଲାଯାଏ । ] ୩ । ବିଷୁବରେଖା ସହିତ ସୂର୍ଯ୍ୟମଣ୍ଡଳର ସଂଯୋଗ ସ୍ଥଳ—3. The vernal point. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to females.

**ବିଷ୍ଣୁପଦୀ**—ସଂ. ବି. ସ୍ତ୍ରୀ—(ବିଷ୍ଣୁପଦ+ସ୍ତ୍ରୀ. ଈ)—୧ । ଜ୍ୟେଷ୍ଠ (ବୃଷ), Bishṇupadī ଭାଦ୍ର (ସିଂହ), ମାର୍ଗଶିର (ବିଛା) ଓ ଫାଲ୍ଗୁନ ( କୁମ୍ଭ ) ମାସର ରବି ସଂକ୍ରମଣ ଦିବସ—1. Name of 4, particulr Samkrānti days of the solar year.

[ ଦ୍ର—ଜ୍ୟେଷ୍ଠମାସରେ ରବି ମେଷ ରାଶିରୁ ବୃଷ ରାଶିକୁ; ଭାଦ୍ରରେ କର୍କଟରୁ ସିଂହକୁ, ମାର୍ଗଶିରରେ ତୁଳରୁ ବିଛାକୁ ଓ ଫାଲ୍ଗୁନରେ ମକରରୁ କୁମ୍ଭକୁ ସଂକ୍ରମଣ କରନ୍ତି । ଏହି ୪ଟି ସଂକ୍ରାନ୍ତିକୁ ବିଷ୍ଣୁପଦୀ ସଂକ୍ରାନ୍ତି ବୋଲାଯାଏ । ] ୨ । ଗଙ୍ଗାନଦୀ—2. The Ganges. [ଉ—ଉଦେ ଏହାଙ୍କର ନାମ ମହାନଦୀ । ଉତ୍କଳଭୁବନେ ଏହି ବିଷ୍ଣୁପଦୀ—ରାଧାନାଥ. ନନ୍ଦିକେଶରୀ । ] ୩ । ବିଷୁବରେଖା ସଙ୍ଗେ ଅୟନମଣ୍ଡଳର ସଂଯୋଗସ୍ଥଳ—3. The vernal point.

**ବିଷ୍ଣୁପରାୟଣ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିଷ୍ଣୁ+ପର+ଅୟନ )—Bishṇu parāyaṇa ହରିଭକ୍ତିପରାୟଣ; ବିଷ୍ଣୁଙ୍କ ପ୍ରତି ଭକ୍ତି-(ବିଷ୍ଣୁପରାୟଣତା—ବି) ଯୁକ୍ତ—Devoted to Lord Bishṇu. ( ବିଷ୍ଣୁପରାୟଣା—ସ୍ତ୍ରୀ )

**ବିଷ୍ଣୁପୁର**—ଦେ. ବି—ଉତ୍ତର ବଙ୍ଗର ନଗରବିଶେଷ—Name of a Bishṇupura town of north Bengal. [ଦ୍ର—ଉତ୍କୃଷ୍ଟ ପାଟ ବିଷ୍ଣୁପুর বিষ্ণুপুর ଖଦି ଓ ଗୁଡ଼ାଖୁ ଏଠାରେ ତିଆରି ହୁଏ । ]

**ବିଷ୍ଣୁପୁରାଣ**—ସଂ. ବି. ( ମ. ପ. ଲୋ; ବିଷ୍ଣୁ+ପୁରାଣ )—ଅଷ୍ଟାଦଶ Bishṇu purāṇa ପୁରାଣମଧ୍ୟରୁ ଏକତମ; ବିଷ୍ଣୁଙ୍କ ମାହାତ୍ମ୍ୟ ବର୍ଣ୍ଣନାତ୍ମକ ପୁରାଣବିଶେଷ ( ପୁରାଣ ତଳେ ନୋଟ୍ ଦେଖ (—Name of one of the 18 chief mythological treatises of the Hindus ( see notes under Purāṇa).

**ବିଷ୍ଣୁପୁରୀ**—ଦେ. ବିଣ—ବିଷ୍ଣୁପୁରରେ ଉତ୍ପାଦିତ—Belonging to Bishṇupuri or manufactured in Bishṇupura. ( ଯଥା—ବିଷ୍ଣୁପୁରୀ ପାଟ, ଗୁଡ଼ାଖୁ ଓ ଧୂଆଁପତ୍ର ପ୍ରଭୃତି । ସଂ. ବି ( ଷଷ୍ଠୀ ତତ୍; ବିଷ୍ଣୁ+ପୁରୀ)—ବୈକୁଣ୍ଠ ଭୁବନ—The mythological abode of Bishṇu.

**ବିଷ୍ଣୁପ୍ରୟାଗ**—ସଂ. ବି—ତୀର୍ଥବିଶେଷ—Name of a place of Bishṇu prayāga Hindu pilgrimage. [ ଦ୍ର—ହିମାଳୟର ବଦରିନାଥଙ୍କ ନିକଟରେ ଥିବା ଯୋଶି ମଠଠାରୁ ଏହା ଦୁଇ ମାଇଲ୍ ଦୂରବର୍ତ୍ତୀ; ଏହା ମାନସରୋବର ନିକଟରୁ ପ୍ରବାହିତା ବିଷ୍ଣୁଗଙ୍ଗା ବା ଧବଳୀ ଗଙ୍ଗା ସହିତ ଅଲକାନନ୍ଦାର ସଙ୍ଗମ ସ୍ଥଳ । ଏହା ଗୋଟିଏ ହିନ୍ଦୁ

ତୀର୍ଥସ୍ଥାନ । ଏଠାରେ ସ୍ନାନ ତର୍ପଣ କରି ଯାତ୍ରୀମାନେ କୃତାର୍ଥ ହୁଅନ୍ତି—ମଦନମୋହନ. ତୀର୍ଥଦର୍ଶନ । ]

**ବିଷ୍ଣୁପ୍ରିୟା**—ସ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ବିଷ୍ଣୁ+ପ୍ରିୟା=ଭାର୍ଯ୍ୟା )—Bishnupriyā ୧ । ଲକ୍ଷ୍ମୀ—1. Lakshmi ୨ । ତୁଳସୀ ଗୁଳ୍ମ ( ହି. ଶ. )—2. The holy Basil plant. ଦେ. ବି—୧ । ସ୍ତ୍ରୀମାନଙ୍କୁ ଦିଆଯିବା ନାମ—1. A name given to females. ୨ । ଶ୍ରୀ ଚୈତନ୍ୟଦେବଙ୍କର ଦ୍ୱିତୀୟା ସ୍ତ୍ରୀଙ୍କ ନାମ—2. Name of the second wife of Chaitanya Deba. [ ଦ୍ର—ଚୈତନ୍ୟଙ୍କ ପ୍ରଥମା ସ୍ତ୍ରୀଙ୍କ ନାମ ଲକ୍ଷ୍ମୀପ୍ରିୟା; ସେ ମୃତା ହେବାରୁ ଚୈତନ୍ୟ ବିଷ୍ଣୁପ୍ରିୟାଙ୍କୁ ବିବାହ କରିଥିଲେ । ଏ ପଣ୍ଡିତ ସନାତନ ମିଶ୍ରଙ୍କ କନ୍ୟା ଥିଲେ । ]

**ବିଷ୍ଣୁବଲ୍ଲଭା**—ସ. ବି. ସ୍ତ୍ରୀ (୬ଷ୍ଠୀ ତତ୍; ବିଷ୍ଣୁ+ବଲ୍ଲଭା)—୧ । ଲକ୍ଷ୍ମୀ—Bishnu ballabhā 1. Lakshmi. ୨ । ତୁଳସୀ ଗୁଳ୍ମ—2. The holy Basil plant. ୩ । ଅଗ୍ନିଶିଖା ବୃକ୍ଷ; ବିଷଲାଙ୍ଗୁଳିଆ ଗଛ—3. Wolfsbane (plant).

**ବିଷ୍ଣୁବାହନ**—ସ. ବି ( ୬ଷ୍ଠୀ ତତ୍; ବିଷ୍ଣୁ+ବାହନ )—ଗରୁଡ଼—Bishnu bāhana The great bird Garurda, the carrier of Bishnu. ( ବିଷ୍ଣୁବାହ୍ୟ, ବିଷ୍ଣୁରଥ—ଅନ୍ୟରୂପ )

**ବିଷ୍ଣୁଭକ୍ତ**—ସ. ବିଣ. ପୁଂ ( ୬ଷ୍ଠୀ ତତ୍; ବିଷ୍ଣୁ+ଭକ୍ତ )—ବିଷ୍ଣୁପରାୟଣ—Bishnu bhakta Devoted to Bishnu. ସ. ବି. ପୁଂ—ବିଷ୍ଣୁପୂଜକ ବ୍ୟକ୍ତି; ବୈଷ୍ଣବ—A devotee or worshipper of Bishnu.

**ବିଷ୍ଣୁଭକ୍ତି**—ସ. ବି ( ୭ମୀ ତତ୍; ବିଷ୍ଣୁ+ଭକ୍ତି )—ବିଷ୍ଣୁଙ୍କ ପ୍ରତି ଭକ୍ତି—Bishnu bhakti Devotion to Bishnu.

**ବିଷ୍ଣୁମାୟା**—ସ. ବି. (ବିଷ୍ଣୁ+ମାୟା )—୧ । ବିଷ୍ଣୁଙ୍କ ରଚିତ ମାୟା ବା ଭ୍ରମ—1. The illusion created by Bishnu. [ ଦ୍ର—ଏହି ମାୟାବଳରେ ବିଷ୍ଣୁ ଜଗତ୍ ପାଳନ କରନ୍ତି ଓ ଦୁଷ୍ଟମାନଙ୍କୁ ସଂହାର କରନ୍ତି । ] ୨ । ଦୁର୍ଗା; ଭଗବତୀ—2. Durgā.

**ବିଷ୍ଣୁଯଶା(ଶାଃ)**—ସ. ବି ( ବିଷ୍ଣୁ+ଯଶସ୍; ୧ମା. ୧ବ )—ବ୍ରହ୍ମଯଶାଙ୍କ Bishnujasā(sāh) ପୁତ୍ର ଓ କଳ୍କୀ ଅବତାରଧାରୀ ବିଷ୍ଣୁଙ୍କ ପିତା ( ହି. ଶ )—Name of the father of Bishnu in his last or Kalki incarnation.

**ବିଷ୍ଣୁଯାମଳ**—ସ. ବି—ତାନ୍ତ୍ରିକ ଧର୍ମଗ୍ରନ୍ଥବିଶେଷ—Name of a Bishnu jāmala Tantric treatise. ( ଉ—ବିଷ୍ଣୁଯାମଳେ ଛନ୍ତି କହି । ଅଷ୍ଟାଦଶ ଦୋଷଟି ନୋହି—ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ । )

**ବିଷ୍ଣୁରାତ**—ସ.ବି(୩ୟାତତ୍; ବିଷ୍ଣୁ+ରା ଧାତୁ=ଦାନ କରିବା+କର୍ମ. ତ) Bishnu rāta —ଚନ୍ଦ୍ରବଂଶୀୟ ରାଜା ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତ; ଜନମେଜୟଙ୍କ ପିତା—Rājā Parikshita. ( ଦ୍ର—କଥିତ ଅଛି ଯେ ଏ ମାତୃଗର୍ଭରେ ଥିବା ଅବସ୍ଥାରେ ଅଶ୍ୱତ୍ଥାମା ବାଣ ପ୍ରୟୋଗ କରି ଏହାଙ୍କୁ ମାରି ପକାଇଥିଲେ, ବିନ୍ତୁ ବିଷ୍ଣୁ ଏହାଙ୍କୁ ବଞ୍ଚାଇ ଦେଲେ । ଏଥିପାଇଁ ତାଙ୍କ ଏହି ନାମ । ) ସ. ବିଣ. ପୁଂ—ବିଷ୍ଣୁଙ୍କ ଅନୁଗ୍ରହ ପ୍ରଦତ୍ତ—Given as a favour by Bishnu. ( ଉ—ସେ ବାଳ ରାତ ପରୀକ୍ଷିତ । ତାଙ୍କୁ ସହାରୁ କଲ ମୁକ୍ତ—ଜଗନ୍ନାଥ. ଭାଗବତ । )

**ବିଷ୍ଣୁଲିଙ୍ଗୀ**—ସ. ବି—ବାର୍ତ୍ତିକ ପକ୍ଷୀ; ବଡ଼ର ଚଢ଼େଇ—Bishnulingi The gray quail ( bird ).

**ବିଷ୍ଣୁଲୋକ**—ସ. ବି ( ୬ଷ୍ଠୀ ତତ୍; ବିଷ୍ଣୁ+ଲୋକ )—ଗୋଲୋକ; Bishnu loka ବୈକୁଣ୍ଠ—The abode of Bishnu. [ ଦ୍ର—ବୈଷ୍ଣବ ଓ ପୁଣ୍ୟକର୍ମୀ ଭକ୍ତମାନେ ଦେହାନ୍ତେ ଏହି ଲୋକରେ ଚିରକାଳ ପାଇଁ ସ୍ଥାନ ପାଆନ୍ତି । ]

**ବିଷ୍ଣୁଶର୍ମା**—ସ. ବି ( ନାମ )—ସଂସ୍କୃତ ପଞ୍ଚତନ୍ତ୍ର ଓ ହିତୋପଦେଶ ନାମକ Bishnu sasmā ନୀତି-ଉପଦେଶପୂର୍ଣ୍ଣ ଗ୍ରନ୍ଥଦ୍ୱୟର ରଚୟିତା ପଣ୍ଡିତ-Name of the author of the Sanscrit moral tales, Panchatantra and Hitopadesa. ଦେ. ବି —ଉତ୍କଳସାହିତ୍ୟ ପତ୍ରିକାରେ ସମ୍ମାର୍ଜନୀ ଶୀର୍ଷକ ଧାରାବାହିକ ପ୍ରବନ୍ଧମାନଙ୍କର ଲେଖକ ପଣ୍ଡିତ ଶ୍ରୀ କୁଳମଣି ଦାଶଙ୍କ ଗୃହୀତ ଛଦ୍ମନାମ—The pseudonym assumed by Pandit Kulamani Dāsa in a series of articles named Sammārjani in the oriya Utkal Sahitya magazine.

**ବିଷ୍ଣୁଶିଳା**—ସ. ବି-ଶାଳଗ୍ରାମ ଶିଳା; ଗଣ୍ଡକୀ ନଦୀର ଗର୍ଭରୁ ପ୍ରାପ୍ତ ବିଷ୍ଣୁରୂପେ Bishnu silā ପୂଜିତ ଶାଳଗ୍ରାମ—The round and naturally polished balls of pebbles found in the bed of the Gandaki river and worshipped by the Hindus as Bishnu.

**ବିଷ୍ଣୁଶୃଙ୍ଖଳ**—ସ. ବି—ଶ୍ରବଣାନକ୍ଷତ୍ରଯୁକ୍ତା ଦ୍ୱାଦଶୀ ତିଥି ( ହି. ଶ )—Bishnu srunkhala The 12th day of a lunar fortnight falling on the 22nd lunar mansion.

**ବିଷ୍ଣୁସଂହିତା**—ସ. ବି—ବିଷ୍ଣୁଋଷିଙ୍କ ସଙ୍କଳିତ ସ୍ମୃତିଶାସ୍ତ୍ର—Name of Bishnu samhitā a treatise on Hindu Law and usage compiled by sage Bishnu. ( ବିଷ୍ଣୁସ୍ମୃତି—ଅନ୍ୟନାମ )

**ବିଷ୍ଣୁସହସ୍ରନାମ**—ସ. ବି—ମହାଭାରତର ଅନୁଶାସନିକ ପର୍ବରେ ଥିବା Bishnu sahasranāma ଭୀଷ୍ମ ଯୁଧିଷ୍ଠିର ସମ୍ବାଦରେ ବିଷ୍ଣୁଙ୍କର ଏକସହସ୍ରନାମ ଉଲ୍ଲେଖ ହୋଇଥିବା ସ୍ତୋତ୍ର—A hymn ( found in the Mahābhārata ) containing one thousand names of Bishnu. [ ଦ—ଏହି ସ୍ତୋତ୍ର ପାଠକଲେ ସର୍ବପ୍ରକାର ଅମଙ୍ଗଳ ଦୂରହୁଏ । ଏହା ୧୪୬ ଶ୍ଳୋକରେ ପୂର୍ଣ୍ଣ । ଉକ୍ତ ସହସ୍ରନାମରେ ଲେଖାଅଛି ଯେ —ଯେଉଁ ଭକ୍ତ ସମୁଦାୟ ସ୍ତୋତ୍ରଟି ପଠ କରିବାକୁ ଅକ୍ଷମ ହେବେ, ସେ ଗୋଟିଏ ମାତ୍ର ଶ୍ଳୋକ ବୋଲି ଦେଲେ ସହସ୍ରନାମ ସ୍ତୋତ୍ର ପାଠର ଫଳ ପାଇବେ । ସେ ଶ୍ଳୋକଟି ଏହି—

"ନମୋ ବ୍ରହ୍ମଣ୍ୟଦେବାୟ ଗୋବ୍ରାହ୍ମଣହିତାୟ ଚ,
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋନମଃ । ]

ବିଷ୍ଣୁହିତା—ସଂ. ବି. ସ୍ତ୍ରୀ—୧ । ତୁଳସୀଗୁଳ୍ମ ( ହ୍ମି. ଶ )—1 The
Bishṇuhita holly Basil plant ୨ । ମରୁବକ;
ମରୁଆ ଗୁଳ୍ମ (ହି. ଶ)—The sweet marjoram (plant).

ବିଷ୍ପତ୍ରୀ—ସଂ. ବି—ପକ୍ଷୀ (ହି. ଶ)—
Bishpatri Bird.

ବିଷ୍ପନ୍ଦ—ସଂ. ବି (ବି+ସ୍ପନ୍ଦ୍ ଧାତୁ+ଭାବ ଅ)—କ୍ଷରଣ; ଝରିବା—
Bishpanda (ବିଷ୍ୟନ୍ଦ—ଅନ୍ୟରୂପ) Trickling (Apte).

ବିଷ୍ପର୍ଧା—ସଂ. ବିଣ. (ବି+ସ୍ପର୍ଦ୍ଧା; ୧ମା. ୧ବ)—ସ୍ପର୍ଦ୍ଧା ବା ମତ୍ସର ବିରହିତ
Bishpardhā (ବ୍ୟକ୍ତି) (ହି. ଶ)—(a person) Free from envy or haughtiness. ସଂ. ବି—ସ୍ୱର୍ଗ (ହି. ଶ)—Heaven.

ବିଷ୍ଫାର—ସଂ. ବି—(ବି+ସ୍ଫାର ଧାତୁ+ଭାବ ଅ)—୧ । ଧନୁର ଟଙ୍କାର
Bisphāra (ହି. ଶ)—1. The twanging of a bow. ୨ । କମ୍ପନ—2. Vibration (Apte).

ବିଷ୍ୱ—ସଂ. ବିଣ. (ବିଷ+ବ)—ଅନିଷ୍ଟକର—
Bishwa Injurious (Apte).

ବିଷ୍ୱକ୍ (ଙ୍)—ସଂ. ବିଣ. ପୁଂ (ବିଷ୍ୱ ଚ୍ ଶବ୍ଦ ୧ମା ୧ବ)—୧ । ସର୍ବତ୍ର
Bishwak(ṅ) ପରିଭ୍ରମଣଶୀଳ (ହି, ଶ)—1. Going every
(ବିଷ୍ୱଚୀ—ସ୍ତ୍ରୀ) where (Apte). ୨ । ସର୍ବତ୍ର ବ୍ୟାପକ—
All pervading. ଅ-ସର୍ବତ୍ର—Everywhere.

ବିଷ୍ୱକ୍ସେନ—ସଂ. ବି—୧ । ବିଷ୍ଣୁ—1. Bishṇu. ୨ । ତ୍ରୟୋଦଶ
Bishwak-sena ବା ଚତୁର୍ଦ୍ଦଶ ମନୁଙ୍କ ନାମ (ହି. ଶ)—2. The descendant of Manu in the 13th or 14th generation. ୩ । ଶିବ ( ହି. ଶ )—3. Śiba. ୪ । ଏକ ପ୍ରାଚୀନ ଋଷି ( ହି. ଶ )—4. Name of an ancient sage.

ବିଷ୍ୱ(ଷ୍ୱା)ଣ—ସଂ. ବି—(ବି+ସ୍ୱନ୍ ଧାତୁ=ଶବ୍ଦ କରିବା+ଭାବ ଅ)—
Bishwa(shwā)ṇa ୧ । ଭୋଜନ—1. Eating (Apte).
(ବିଷଣନ—ଅନ୍ୟରୂପ) ୨ । ସୋଡ଼ିକାଇ ଖାଇବା; ହାପୁରି; ଚୋଡ଼ପା; ସଶବ୍ଦ ଭୋଜନ—2. The act of eating by making a sound. ୩ । (+ବର୍ତ୍ତି. ଅ) ଦାକ୍ଷିଣାତ୍ୟର ଧର୍ମ ସମ୍ପ୍ରଦାୟ ବିଶେଷ (ପ୍ରକୃତିବାଦ)—3. Name of a religious sect of southern India.

ବିଷ୍ୟ—ସଂ. ବିଣ—(ବିଷ+ଯ)—୧ । ବିଷ ଦ୍ୱାରା ବଧ୍ୟ—1. Deserv-
Bishya ing to be killed by the administration of poison ୨ । ବିଷ ପ୍ରୟୋଗାର୍ହ—2. (a case) Fit for the application of poison. ୩ । ବିଷମୟ; ବିଷାକ୍ତ—3. Poisonous.

ବିସ୍(ଧାତୁ)—ସଂ.—୧ । କ୍ଷେପଣ କରିବା—1. To cast; to
Bis (root) throw (Apte). ୨ । ପ୍ରେରଣ କରିବା—2. To send (Apte) ୩ । ପ୍ରବେଶ କରିବା—3. To enter. ୪ । ଗମନ କରିବା—4. To go; to move (Apte). ୫ । ମତାଇବା; ଉତ୍ତେଜିତ କରିବା—5. To incite; to urge (Apte). ୬ । ଚିରିବା—6. To split (Apte).

ବିସ୍—ଦେ. ବି ଓ ବିଣ. (ସଂ. ବିଂଶ)—କୋଡ଼ିଏ—
Bis বিশ बीस Twenty.

ବିସ୍ଖପରା—ଦେ. ବିଣ—(ସଂ. ବିଷ+ଖର୍ପର)—୧ । ଅତି କ୍ରୁଦ୍ଧ; ଅଗ୍ନିଶର୍ମା—1 Enraged. ୨ । ଅତି ବିରକ୍ତ—
Bis-khaparā
গোসাপ विसखपरा 2. Much annoyed. ଦେ. ବି. ସୋରିଷିଆ ଗୋଧି—A poisonous variety of iguana. [ ଦ୍ର—ଏହାର ବର୍ଣ୍ଣ ଚମ୍ପେଇନେଉଳ ପରି ଓ ଦେହସାକ ଆରକ୍ତ ବିନ୍ଦୁମୟ । ଏହାର ଜିଭ ଲମ୍ବ ଓ ନାଲି ଓ ଏ ବାରଂବାର ଲମ୍ବ ଜିଭକୁ ପଦାକୁ ବାହାର କରୁଥାଏ । ଏହାଦ୍ୱାରା ଦଷ୍ଟ ଜୀବ ତତ୍କ୍ଷଣାତ୍ ମରିଯାଏ । ]

ବିସ୍-ତାର୍—ଦେ. ବି—(ଯୁବକ ଗୁଆଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ
Bis-tār ଆଦେଶ ବଚନବିଶେଷ)—ତୁମ୍ଭେମାନେ ଛଡ଼ା ଛଡ଼ା ହୋଇଯାଅ—( a term of school drill) Extend !

ବିସ୍-ପଥର—ଦେ. ବି (ସଂ. ବିଷ+ପ୍ରସ୍ତର)—ଜାର ମହୁରି—Bezoar
Bis-pathara stone. [ ଦ୍ର—ଏହା କୋଚଲା ମଞ୍ଜି ଆକୃତିର
বিষপাথর ଓ ଖୁବ ଚକଚକଣ ଦେଖାଯାଏ; ବର୍ଣ୍ଣ ଆକୃଷ୍ଟ ଅରକ୍ତ
बाजहर ପାଣ୍ଡୁର । ସାପ କାମୁଡ଼ିଥିବା ଅଙ୍ଗରେ ଏହାକୁ
ଅ. ବେଜାହର ଲଗାଇଲେ ଏହା ସେ କ୍ଷତରେ ଲାଗି ରହେ ଓ ବିଷ
ପା. ପଦଜହର ଝୁଲିଗଲେ ସେ ସ୍ଥାନରୁ ଖସି ପଡ଼େ । ଏହାକୁ ଲୋକେ ପଥର ବୋଲି ଭ୍ରମ କରନ୍ତି; କିନ୍ତୁ ଏହା ଖଣିଜ ପଥର ନୁହେ । ଏହା ଗୋରୁ, ଚରଡ଼ ପକ୍ଷୀ, ଛେଳି ଆଦିଙ୍କ ପେଟରୁ ଭୁକ୍ତ ଖାଦ୍ୟ ବସ୍ତୁମଧ୍ୟରୁ ମିଳେ; କେଳାମାନେ ଏହା ସଂଗ୍ରହ କରି ରଖିଥାଆନ୍ତି । ]

ବିସ୍ନି—ଦେ. ବିଣ ଓ ବି—ବିସିନି (ଦେଖ)—
Bis-ni Bisini (See).

ବିସ୍ମିଲ୍ଲା(ଲ୍ଲା)—ବୈଦେ. ବି—(ଅ; ବିସ୍ମିଲ୍ଲାହ୍=ପରମେଶ୍ୱରଙ୍କ ନାମରେ
Bis-milā(llā) ସ୍ତୋତ୍ର ପାଠ କରିବା)—୧ । ଅଲ୍ଲା ବା ଈଶ୍ୱରଙ୍କ ନାମ ସ୍ମରଣ—1. Taking the name of God.

ବିସ୍ମଲ୍ଲା(ଲ୍ଲା), ବିସିମିଲ୍ଲା(ଲ୍ଲା), ବିସିମୋଲ୍ଲା(ଲ୍ଲା), ବିସ୍ମିଲ୍ଲା (ଲ୍ଲା) } ଅନ୍ୟ ଅଶୁଦ୍ଧ ରୂପ

( ଦ୍ର—ଅଖୁନ୍‌ଜୀ ସାହେବ ଏହି ମାଉଶାଣ୍ଡି ଅନୁସାରେ
বিসমিল্লা, বিসমোল্লা ଅଧାଅଧି ଦାଢ଼ି ଆବୃତ୍ତି ପୂର୍ବକ ବିସ୍ମିଲ୍ଲା,
बिस्मिल्ला ବିସମିଲ୍ଲ କହି ସେବନ ରାତିରେ କବାଟ ଭିଡ଼ି ରହିଲେ । ଫକୀରମୋହନ—ଛମାଣ ଆଠଗୁଣ୍ଠ)
୨ । କୌଣସି କର୍ମର ଆରମ୍ଭ—2. The beginning or commencing of any work. ବୈଦେ, ଅ—ହେ ଈଶ୍ୱର !—O God । [ ଦ୍ର—ଧାର୍ମିକ ମୁସଲମାନ୍

ବ୍ୟକ୍ତି ଅଜ୍ଞାଣତରେ ମନ୍ଦ କାର୍ଯ୍ୟ କଲେ ବା ଅକଥା ଭାଷା କହିଲେ କିମ୍ବା ଅଶ୍ରାବ୍ୟ କଥା ଶୁଣିଲେ ତଜ୍ଜନିତ ପାପକ୍ଷାଳନ ପାଇଁ 'ବିସ୍ମିଲ୍ଲା' ଶବ୍ଦ ଉଚ୍ଚାରଣ କରନ୍ତି ଓ କୌଣସି କର୍ମ ଆରମ୍ଭ କରିବା ପୂର୍ବରୁ ମଙ୍ଗଳାଚରଣରୂପେ 'ବିସ୍ମିଲ୍ଲା' ଉଚ୍ଚାରଣ କରନ୍ତି ।]

**ବିସ୍‌ମିଲ୍ଲାରେ ଗଲତ୍(ତି)**—ବୈଦେ. ବି (ଅ. ବିସ୍‌ମଲ୍ଲାହ୍+ଗଲ୍‌ତୀ; Bis-millāre galat(ti) ଭୁଲ. ପ୍ରଣବରୁ ଅଶୁଦ୍ଧି)—ଟେଗ ଦ୍ୱାରେ বিষসমোল্লায়গলদ্ ଗଲତ୍ (ଦେଶ); କୌଣସି କାର୍ଯ୍ୟରେ **विसमिल्लाही गलत्** ପ୍ରଥମରୁ ବା ଆରମ୍ଭରୁ ଭୁଲ;—Commission of mistake at the outset.

**ବିସ(ଶ,ଷ)**—ସଂ. ବି—(ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. ଅ; ଯେ Bisa(śa, sha) ଜଳରେ ଅନବରତ ପ୍ରବେଶ କରି ରହିଛି)—୧ । ପଦ୍ମ ପ୍ରଭୃତିର ମୃଣାଳ—1. The stalk of lotus. ୨ । ପଦ୍ମର ସୂକ୍ଷ୍ମ ତନ୍ତୁ—2. The fibre of a lotus (Apte).

**ବିସଂଜ୍ଞ**—ସଂ. ବିଣ. ପୁଂ (ବି+ସଂଜ୍ଞ)—ସଂଜ୍ଞାହୀନ; ଚେତନାରହିତ—Bisaṁjnā Unconscious; insensible. (ବିସଂଜ୍ଞା—ସ୍ତ୍ରୀ) (ବିସଂଜ୍ଞତା—ବି)

**ବିସଂବାଦ**—ସଂ. ବି—(ବି+ସମ୍+ବଦ୍‌ଧାତୁ=କହିବା+ଭାବ ଅ)—Bisaṁbāda ୧ । ପ୍ରତାରଣା—1. Deception. ୨ । ଅମେଳ—(ବିସମ୍ବାଦ—ଅନ୍ୟରୂପ) 2. Incongruity; disagreement. ୩ । କଳି; ତକରାର—3. Quarrel. ୪ । ବିରୋଧ—4. Opposition; contradiction. [ଦ୍ର—ଭାଷାରେ ଏହା ବିବାଦ ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ ।] ୫ । ପ୍ରତିଜ୍ଞାଭଙ୍ଗ—5. Breach of one's promise (Apte). ୬ । ଆଶାକରିଥିବା ଅବସ୍ଥାରେ ନିରାଶହେବା—6. Disappointment (Apte). ୭ । ବିବାଦ—7. Dispute.

**ବିସଂବାଦୀ**—ସଂ. ବିଣ. ପୁଂ (ବି+ସମ୍+ବଦଧାତୁ+କର୍ତ୍ତୃ ଇନ୍; ୧ମା. Bisambādī ୧ବ)—୧ । ଯେ ଆଶା ଦେଇ ନିରାଶକରେ—(ବିସଂବାଦିନୀ—ସ୍ତ୍ରୀ) 2. Disappointing. ୨ । ଧପ୍ପାବାଜ୍—(ବିସମ୍ବାଦୀ—ଅନ୍ୟରୂପ) 2. Deceiving; fraudulent. ୩ । ପରସ୍ପର ବିରୋଧୀ—3. Contradictory; inconsistent. ୪ । ଯେ ଅନ୍ୟର ସହିତ ଏକମତ ନ ହୁଏ—4. Differing; disagreeing. ୫ । ବିବାଦକାରୀ—5. Disputing; contesting. ୭ । ମିଥ୍ୟା—7. False; untrue (Apte).

**ବିସଂଯୋଗ**—ସଂ. ବିଣ—(ବି+ସଂଯୋଗ)—ଅସଂଲଗ୍ନ—Un-Bisaṁjoga connected. ସଂ ବି—୧ । ଅସୁବିଧା—(ବିସଂଯୁକ୍ତ—ବିଣ) 1. Inconvenience. ୨ । ମିଳନର ଅଭାବ—2. Want of contact or union. ୩ । ବିଚ୍ଛେଦ—3. Separation; disjunction.

**ବିସଂସ୍ଥୁଳ**—ସଂ. ବିଣ—(ବି+ସମ୍+ସ୍ଥା ଧାତୁ=ରହିବା+କର୍ତ୍ତୃ ଉଳ)—Bisaṁshthuḻa ୧ । ବିଶୃଙ୍ଖଳ—1. Unmethodical; disorganised. ୨ । ଅବ୍ୟବସ୍ଥିତ—2. Unsteady. ୩ । ଅସମତଳ—3. Uneven (Apte). ୪ । ଆନ୍ଦୋଳିତ; ଅସ୍ଥିର—4. Agitated (Apte).

**ବିସକଣ୍ଠିକା**—ସଂ. ବି (ବହୁବ୍ରୀହି, ବିସ+କଣ୍ଠ+କ+ଆ; ବିସ=ମୃଣାଳ Bisakaṇṭhikā ପରି ଧଳା କଣ୍ଠ ଯାହାର ।)—ବଳାକା; (ବିସକଣ୍ଠୀ—ଅନ୍ୟରୂପ ଛୋଟ ଧଳା ବଗ—A small variety of paddy bird.

**ବିସ କୁସୁମ**—ସଂ. ବି—(ମ. ପ. ଲୋ ବିସ=ମୃଣାଳ+କୁସୁମ)—୧ । Bisha kuśuma ପଦ୍ମଫୁଲ—1. The lotus. (ବିସପୁଷ୍ପ; ବିସପ୍ରସୂନ; ବିସସୂନ—ଅନ୍ୟରୂପ)

**ବିସ ଗ୍ରନ୍ଥି**—ସଂ.ବି. (୬ଷ୍ଠୀ ତତ୍)—୧ । ପଦ୍ମର ମଳ (ହି.ଶ)—1. The Bisa granthi bulb root of lotus. ୨ । ପଦ୍ମନାଡ଼ରେ ଥିବା ଗଣ୍ଠି—2. A knot on the stalk of a lotus (Apte)

**ବିସଙ୍କଟ**—ସଂ. ବି—(ବି+ସମ୍+କଟ୍‌ଧାତୁ=ଭ୍ରମଣ କରିବା+କର୍ତ୍ତୃ. Bisaṅkaṭa ଅ)—୧ । ସିଂହ—Lion. ୨ । ଇଙ୍ଗୁଦୀବୃକ୍ଷ—2. Ingudī (tree). ସଂ. ବିଣ (ବି+ସଙ୍କଟ)—୧ । ବିଶାଳ; ବୃହତ୍—1. Vast; gigantic. ୨ । ଭୟଙ୍କର—2. Frightful; dreadful (Apte).

**ବିସଙ୍କୁଳ**—ସଂ. ବିଣ—(ବି+ସଙ୍କୁଳ)—ଜଟିଳ; ଗୋଳମାଳିଆ—Bisaṁkuḻa Knotty; confused.

**ବିସଙ୍ଗତ**—ସଂ. ବିଣ (ବି+ସଙ୍ଗତ)—ପରସ୍ପର ସଙ୍ଗେ ଅମେଳ—Bisaṅgata Incongruous; ill-fitted; unharmonious.

**ବିସଜ**—ସଂ. ବି—(ବିସ=ମୃଣାଳ+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ)—Bisaja ପଦ୍ମ (ହି. ଶ)—Lotus.

**ବିସଦୃଶ**—ସଂ. ବିଣ—(ବି+ସଦୃଶ)—୧ । ବିପରୀତ—1. Opposite. Bisadṛuśa ୨ । ବିରୁଦ୍ଧ—2. Opposed. ୩ । ଅସମଞ୍ଜସ—3. Unequal. ୪ । ଅଦ୍ଭୁତ—4. Wonderful.

**ବିସନାଭି**—ସଂ. ବି—(ବିସ=ମୃଣାଳ+ନାଭି)—୧ । ପଦ୍ମିନୀ; ପଦ୍ମ Bisanābhi ସମୂହ—1. A collection of lotus. ୨ । ପଦ୍ମ ଗୁଳ୍ମ—2. The lotus plant (Apte).

**ବିସ ନାଳ**—ସଂ.ବି-(ବିସ+ନାଳ)—ମୃଣାଳ—The stalk of lotus. Bisa nāḻa [ଉ—ବିଶେଷେ ବିସନାଳ, ବଳିଷ୍ଠଣି ପୁଥୁଳ, ଆଜି କାହିଁକି ସେହି ବାହାକୁ ଗୋ—କବିସୂର୍ଯ୍ୟ. ସଙ୍ଗୀତ ]

**ବିସନି**—ଦେ. ବିଣ (ସଂ,ବ୍ୟସନୀ)—୧ । ବ୍ୟସନାସକ୍ତ—1. Addicted Bisani to evil acts; dissolute ୨ । ବେଶଭୂଷା ପ୍ରିୟ—ଈୟାର; **विसनी** 2. Foppish; fond of gorgeous dress. **आशना** ଦେ. ବି—୧ । ଜାର; ଉପପତି; ଇୟାର—1. Paramour. ୨ । ବେଶ୍ୟାର ରକ୍ଷିତ ପୁରୁଷ—2. Paramour or retained lover of a prostitute. ୩ । ବ୍ୟସନାସକ୍ତ ବ୍ୟକ୍ତି—A dissolute person; ୪ । ସଉକ ଲୋକ—4. Beau; a fop.

ବିସନିପଣ—ଦେ. ବି—୧ । ବ୍ୟସନାସକ୍ତି—1. Dissoluteness.
Bisanipaṇa ୨ । ସୌଖିନ ପଣିଆ—2. Foppery.
आशनाइ [ବିସନି ପଣିଆ(ଆଁ)—ଅନ୍ୟରୂପ]

ବିସନି ପୁରା(ରେ)ଇବା—ଗ୍ରା. କ୍ରି.—ଗୃହକୁ ଉପପତିଙ୍କୁ ଆଣିବା—
Bisani pūrā(re)ibā To entertain a paramour or
বাড়ীতে ইয়ার ভরতি করা lover in one's house (said
यार बुलाना of a woman of loose character).

ବିସନ୍ଧି—ସ. ବି—ରଚନାର ଦୋଷ ବିଶେଷ; ଯେଉଁ ରଚନାରେ ମନ୍ଦ ବା
Bisandhi ଶ୍ରୁତିକଟୁ ସନ୍ଧି ଥାଏ, କିମ୍ବା ପଦମାନଙ୍କରେ ସନ୍ଧି ନଥାଏ-
Bad or disagreeable euphony or absence of Sandhi, regarded as a fault in composition. ଦେ. ବି—ବିକନ୍ଦି (ଦେଖ)—Bikandi ( See )

ବିସନ୍ଧିକ—ସ. ବି—ଯେଉଁ ପଦର ସନ୍ଧି ସାଧିତ ହୋଇ ନ ପାରେ (ଯଥା-
Bisandhika ଣ)—Word which is incapable of undergoing Sandhi.

ବିସବତୀ—ସ. ବି. ( ବିସ+ବତ୍+ଈ )—ପଦ୍ମନାଳବହୁଳ ସ୍ଥାନ—
Bisaatbī A place abounding in lotus fibres (Apte).

ବିସମ କଟକ—ଦେ. ବି—ବିଶାଖାପଟଣା ମାଲ ଅଞ୍ଚଳରେ ଥିବା ଜୟପୁର
Bisama kaṭaka ରାଜ୍ୟର ଗୋଟିଏ ଜମିଦାରୀ—Name of an estate in the Jeypore agency of Vizag.

ବିସମ୍ମତି—ଦେ. ବି—ଅସମ୍ମତି—Want of consent; disagree-
Bisammati ment. (ଉ—ବିସମ୍ମତି ସମ୍ମତି କି କିଛି ନ ଜାଣିଲେ —ଉପେ. ବୈଦେହୀଶବିଳାସ ।]

ବିସରୁ—ଗ୍ରାଦେ. (ସମ୍ବଲପୁର) ବି—ଆଇଁଷ—
Bisar Fish or meat.

ବିସର—ସ. ବି. (ବି+ସୃ ଧାତୁ=ଯିବା+କର୍ମି. ଅ)—୧ । ସମୂହ; ଦଳ-
Bisara 1. Collection; crowd; multitude. ୨ । (ବି+ସୃ ଧାତୁ=ଯିବା+ଭାବ. ଅ) ବିସ୍ତାର—2. Expansion;
বিসরন spreading; extending. (ଉ—ମୟୂଖ ଶିଖାମୟ
बसरना ମଞ୍ଜରୀ ବିସର ସୁଷମାରେ । କବିସୂର୍ଯ୍ୟ. ବିଶୋରାଚନ୍ଦ୍ରିକା. ମ ଗୀତ ।) ୩ । ସଞ୍ଚାର—3. Movement. ୪ । ଗଦା;ରାଶି
4. Heap(Apte). ଦେ. ବି. (ସ. ବିସ୍ମରଣ)—ବିସ୍ମରଣ; ପାସୋରା; ପାସୋରିବା—Forgetting.
ବିସୋର } —ଅନ୍ୟରୂପ
ବିସୋରଣ }

ବିସରଣ—ସ. ବି. (ବି+ସୃ ଧାତୁ=ଯିବା+ଭାବ. ଅନ)—୧ । ବିସ୍ତାର—
Bisaraṇa 1. Extension. ୨ । ପ୍ରବାହ—2. Flow.
୩ । ଘଟନାର ସ୍ରୋତ—3. The trend of events.
বিসরন ୪ । ଉତ୍ପତ୍ତି—4. Production. ଦେ. ବି. (ସ. ବିସ୍ମରଣ
बिसरन ଗ୍ରା. ବିସ୍ସରଣ) ବିସ୍ମରଣ—Forgetting

ବିସରିବା—ଦେ. କ୍ରି. (ସ. ବିସ୍ମରଣ)—୧ । ପାସୋର ପକାଇବା; ବିସ୍ମୃତ
Bisaribā ହେବା—1. To forget. ( ଉ—ବିଦାସୁରେ
বিসরা ନୃସିଂହାସନକୁ ନ ବିସରେ । ଉପେ. ବୈଦେହୀଶବିଳାସ ।)
बसरना ୨ । ବିନଷ୍ଟ ହେବା—2. To be lost or spoiled.
ବିସରି ପକା(କେ)ଇବା } —ଅନ୍ୟରୂପ ୨ । ନିଃଶେଷ ହେବା—
ବିସରି ଦେବା } 2. To be emptied.
[ବିସରା(ରେ)ଇବା—ଣିଜନ୍ତ ରୂପ]

ବିସର୍ଗ—ସ. ବି. ( ବି+ସୃଜ୍ ଧାତୁ=ତ୍ୟାଗ କରିବା+ଭାବ. ଅ )—
Bisarga ୧ । ବିସର୍ଜନ; ତ୍ୟାଗ—1. Abandonment.
୨ । ମଳୋତ୍ସର୍ଗ; ମଳ ତ୍ୟାଗ—2. Discharge or evacuation of the bowels. ୩ । ବିୟୋଗ—
3. Separation. ୪ । ମୋକ୍ଷ—4. Emancipation. ୫ । ଦାନ—5. Giving away; donation. ୬ । ଦୀପ୍ତି—6. Splendour; light. ୭ । ପ୍ରେରଣ—7. Sending forth. ୮ । ଦେହରୁ ଝାଡ଼ିବା; ନିଜ ଦେହରୁ ଖସାଇବା—8. Shedding; dropping; emitting (Apte). ୯ । ଅଜାଡ଼ିବା—9. Pouring down (Apte) ୧୦ । ପ୍ରସ୍ଥାନ—10. Departure. ୧୧ । (ବି+ସୃଜ ଧାତୁ+କର୍ମି. ଅ )—ଦକ୍ଷିଣାୟନ—11. The sun's course towards the south of the equator. ୧୨ । (+କର୍ମି.ଅ)ତ୍ୟକ୍ତ ବସ୍ତୁ—12. Abandoned thing. ୧୩ । ଦତ୍ତ ବସ୍ତୁ—13. A gift. ୧୪ । ଦ୍ୱିବିନ୍ଦୁ ବର୍ଣ୍ଣ-ବିଶେଷ; ଏହାର ଆକୃତି '8'—14. A letter indicated by two points, one over the other, indicating the hard aspirate 'h'. ୧୫ । (+କରଣ. ଅ ) ଲିଙ୍ଗ; ମେଢ୍ର—15. The penis (Apte). ୧୬ । (+ଭାବ. ଅ) ସୃଷ୍ଟି; ସର୍ଜନ—16. Creation. ୧୭ । (+କର୍ମି. ଅ) ସୃଷ୍ଟ ବସ୍ତୁସମୂହ—17. Created things. (ଉ—ଏହାଙ୍କ ସଙ୍ଗତରେ ପୁଣ, ପୁରୁଷ ସଂଯୋଗ ଭୁଗେଣ । ଏହାଙ୍କ ବାସନାର ଅଙ୍ଗ, ସ୍ଥାବର ଜଙ୍ଗମ ପତଙ୍ଗ । କୀଟ ଆଦି ଗୃହ ଉପୁଜି, ଏମାନେ ବିସର୍ଗ ବୋଲାନ୍ତି । ଜଗନ୍ନାଥ. ଭାଗବତ । )

ବିସର୍ଜକ—ସ. ବିଣ. ପୁଂ—( ବି+ସୃଜ୍ ଧାତୁ=ତ୍ୟାଗ କରିବା+
Bisarjaka କର୍ତ୍ତୃ. ଅକ)—୧ । ତ୍ୟାଗକାରୀ—1. Abandoning. ୨ । ସୃଷ୍ଟିକାରୀ—2. Creating ୩ ।
(ବିସର୍ଜିକା—ସ୍ତ୍ରୀ) ଦାନକାରୀ—3. Giving away. ୪ । ଉତ୍ସର୍ଗକାରୀ—4. Discharging; shedding; emitting. ୫ । ପ୍ରେରକ—5. Sending.

ବିସର୍ଜନ—ସ. ବି-(ବି+ସୃଜ୍ ଧାତୁ=ତ୍ୟାଗ କରିବା+ଭାବ. ଅନ)—
Bisarjana ୧ । ପରିତ୍ୟାଗ-1. Abandoning. ୨ । ଦାନ—2. Giving; donation. ୩ । ନିକ୍ଷେପଣ—3. Throwing. ୪ । ପ୍ରେରଣ—4. Sending. ୫ । ପୂଜା ଶେଷରେ ପ୍ରତିମାକୁ ଜଳସାତ୍ କରିବା—5. Consignment of an image to water after its worship is

over. ୬ । ପୂଜାଶେଷରେ ପୂଜାସ୍ଥାନରୁ ଆହୂତ ଦେବତାଙ୍କୁ ସ୍ୱସ୍ଥାନକୁ ବାହୁଡ଼ିଯିବାପାଇଁ ପ୍ରାର୍ଥନା (ବିପରୀତ-ଆବାହନ)—6. The ritual of asking a Deity (invited to attend a particular function or worship) to go back after accepting the homage rendered. ୭ । ପ୍ରାଣତ୍ୟାଗାର୍ଥ ଜଳରେ ବା ଅଗ୍ନିରେ ଆପଣାର ଶରୀରକୁ ଅର୍ପଣ; ଝାସ—7 Consigning one' body into water or fire; self-immolation. ୮ । ପ୍ରସ୍ଥାନ—8. Departure. ୯ । ସମାପ୍ତି; ଅନ୍ତ (ତ୍ରି ଶ)—9. Completion; finis ୧୦ । ବିଦାୟ; କାର୍ଯ୍ୟଚ୍ୟୁତି—10. Dismissal.

**ବିସର୍ଜନ କରିବା**—ଦେ. କ୍ରି-୧ । ତ୍ୟାଗ କରିବା; ପରିତ୍ୟାଗ କରିବା—Bisarjana karibā 1. To abandon; to relinquish. (ବିସର୍ଜନ ଦେବା—ଅନ୍ୟରୂପ) ୨ । ଫୋପାଡ଼ି ଦେବା—विसर्जन करना 2. To throw away. ୩ । ଦାନ ଦେବା—3. **विसर्जन करना** To give away. ୪ । ପୂଜାନ୍ତେ ପ୍ରତିମାକୁ ଜଳରେ ନିକ୍ଷେପ କରିବା—4. To consign an image to water after its worship is over. ୫ । ପ୍ରାଣକୁ ଝାସ ଦେବା—5. To consign onee's body unto fire or water.

**ବିସର୍ଜନ ଶ୍ରାଦ୍ଧ**—ସଂ. ବି-(ବିସର୍ଜନ+ଶ୍ରାଦ୍ଧ)—ମୃତାହର ଏକାଦଶ Bisarjana śrāddha ଦିନ ପ୍ରେତ ଉଦ୍ଦେଶ୍ୟରେ କରଣୀୟ ଶେଷ ଶ୍ରାଦ୍ଧ—The final obsequal Śrāddha performed on the 11th day of a person's death.

**ବିସର୍ଜନୀୟ**—ସଂ. ବିଣ—(ବି+ସୃଜ୍ ଧାତୁ=ତ୍ୟାଗ କରିବା+କର୍ମ. Bisarjanīya ଅନୀୟ)—ତ୍ୟାଜ୍ୟ—To be abandoned. ସଂ. ବି—ବିସର୍ଗ ବର୍ଣ୍ଣ; 'ଃ'—The letter Bisarga.

**ବିସର୍ଜିତ**—ସଂ. ବିଣ (ବି+ସୃଜଧାତୁ ଣିଚ+ତ) ୧ । ତ୍ୟକ୍ତ—1. Ab-Bisarjita andoned. ୨ । ମୁକ୍ତ—2. Liberated. [ଉ—ବିଭୀଷଣାଶ୍ରୟନ ବୋଇଲେ ଧୂର୍ଜଟି ସ୍ତ୍ରୀ, ସୁତ ବନ୍ଧନରୁ ହୋଇଣ ବିସର୍ଜିତ । କୃଷ୍ଣସିଂ. ମହାଭାରତ ବନ ।] ୩ । ପ୍ରଦତ୍ତ—2 Given away. ୪ । ପ୍ରେରିତ—4. Sent; despatched.

**ବିସର୍ଜିବା**—ଦେ (ପଦ୍ୟ) କ୍ରି (ବି+ସୃଜ୍ ଧାତୁ)—୧ । ବିସର୍ଜନ କରିବା; Bisarjibā ଅଜାଡ଼ିବା—1. To send forth; to rain; to विसर्जी pour out. [ଉ—କିଭାଭି ଦାବାନଳ ବିସର୍ଜିବାର । ରାଧାନାଥ. **विसरजना** ମେଘଦୂତ । ] ୨ । ତ୍ୟାଗ କରିବା—2. To abandon; to leave. [ଉ—ବିସର୍ଜି ଆସିଲେ ଦୁଃଖେ ଗହନ କାନ୍ତାରେ । ନନ୍ଦକିଶୋର. ସୀତାବନବାସ । ]

**ବିସର୍ପ**—ସଂ. ବି (ବି+ସୃପ୍ ଧାତୁ=ଗମନ କରିବା+ଭାବ. ଅ)—Bisarpa ୧ । ଗମନ—1. Going; moving to and fro ୨ । ବିସ୍ତୃତ ହେବା; ପ୍ରସରଣ; ବ୍ୟାପ୍ତି—2. Spreading; circulation; diffusion. ୩ । (+କର୍ତ୍ତୃ. ଅ) ଏକପ୍ରକାର ଜ୍ୱର ସହିତ ଦେହଯାକ ଫଳଯିବା ରୋଗ—3. Simultaneous eruption of boils on the body accompanied with fever. ୪ । ସ୍ଫୋଟକ ଓ ବ୍ରଣାଦିର ଉଦ୍ରେକ; ଘାଆ ଓ ବ୍ରଣଆଦି ବିସ୍ତୃତ ହୋଇ ପାଚିବା ଓ ଫୁଲିବା—4. The swelling and ripening of sores and boils. ୫ । ଶୁଖିଲା କୁଣ୍ଡିଆ—5. Dry spreading itch (Apte) ୬ । କୌଣସି କାର୍ଯ୍ୟର ଅପ୍ରତ୍ୟାଶିତ ଫଳ An unexpected or unwished for consequence of an act (Apte). ୭ । ସାପକଙ୍କାଳି (ଦେଖ)—7. Sāpakankāli (See)

**ବିସର୍ପଣ**—ସଂ. ବି (ବି+ସୃପ୍ ଧାତୁ=ଗମନ କରିବା+ଭାବ ଅନ)—Bisarpaṇa ବିସର୍ପ ୧, ୨, ୪, (ଦେଖ)—Bisarpa. 1, 2 and 4 (See)

**ବିସର୍ପି**—ସଂ. ବି (ବି+ସୃପ ଧାତୁ+କର୍ତ୍ତୃ. ଇ)—ବିସର୍ପ ୩, ୪, ୫, ୬ Bisarpi (ଦେଖ)—Bisarpa 3, 4, 5, 6 (See) (ବିସର୍ପିକା—ଅନ୍ୟରୂପ)

**ବିସର୍ପିତ**—ସଂ. ବିଣ (ବି+ସୃପ୍ ଧାତୁ ଣିଜନ୍ତ=ସର୍ପି ଧାତୁ+କର୍ମ ତ) Bisarpita —ଚତୁର୍ଦ୍ଦିଗରେ ବିସ୍ତାରିତ—Spread or duffused on all sides.

**ବିସର୍ପିବା**—ଦେ. କ୍ରି (ସଂ. ବିସର୍ପ)—(ବଥ, ଘାଆଆଦି) ଦେହରେ Bisarpibā ବିସ୍ତୃତ ହୋଇ ପାଚି ଫୁଲିବା—To spread and विषान् supporate and swell (said of sores **विसाना; शानिहोना** and boils). (ବିସରପିବା, ବିସିରପିବା, ବିସିରପିଯିବା, ବିସିର୍ପିବା—ଅନ୍ୟରୂପ)

**ବିସର୍ପୀ**—ସଂ. ବିଣ (ବିସର୍ପିନ୍; ବି+ସୃପ୍ ଧାତୁ=ଗମନ କରିବା+ Bisarpī କର୍ତ୍ତୃ. ଇନ୍; ୧ମା. ୧ବ)—୧ । ବିସର୍ପଣଶୀଳ—(ବିସର୍ପିଣୀ—ସ୍ତ୍ରୀ) —1. Having a tendency to spread. ୨ । ଇତସ୍ତତଃ ଗମନ ଶୀଳ—2. Moving about.

**ବିସଲ**—ସଂ. ବି (ବି=ବିବିଧ ପ୍ରକାରେ+ସଲ୍ ଧାତୁ=ଯିବା+ଅ)—Bisaḷa ୧ । ନବ ପଲ୍ଲବ; କଅଁଳ ଜୁଆଁ—1. A young shoot; sprout. ୨ । କଢ଼—2. Bud (Apte).

**ବିସାର**—ସଂ. ବି (ବି+ସୃ ଧାତୁ=ଗମନ କରିବା; ବିସ୍ତୃତ ହେବା+ Bisāra ଭାବ. ଅ)—୧ । ବିସ୍ତାର—1. Diffusion; spreading out; expansion. ୨ । ପ୍ରବାହ—2. Current; flow. ୩ । ଉତ୍ପତ୍ତି—3. Production. ୪ । (ବି+ସୃ ଧାତୁ+କର୍ତ୍ତୃ. ଅ)—ମତ୍ସ୍ୟ—4. Fish. ୫ । କାଠ—5. Wood; timber.

**ବିସାର ମହାନ୍ତି**—ଦେ. ବି (ନାମ) କଳାପାହାଡ଼ ଜଗନ୍ନାଥଙ୍କ ବିଗ୍ରହକୁ Bisāra mahānti ଗଙ୍ଗାକୂଳରେ ଅଗ୍ନିସାତ୍ କରିବା ସମୟରେ ତାଙ୍କର ବିଗ୍ରହାଂଶ (ନାଭି)କୁ ଅଗ୍ନିରୁ ଉଦ୍ଧାର କରି ଯେକ ଆସି ଭୁଜଙ୍ଗ ରାଜାଙ୍କୁ ଅର୍ପଣ କରିଥିବା ଜଣେ ଓଡ଼ିଆ

ଭକ୍ତ। (ସେହି ନାର ଜଗନ୍ନାଥଙ୍କ ଦାରୁମୂର୍ତ୍ତି ମଧ୍ୟରେ ଅବଧି ରହିଅଛି )—Name of an Oriya who saved the essental portion (navel) of the image of Lord Jagannātha of Puri when Kalāpāhārda consigned it to the flames on the bank of the Ganges

**ବିସାରିତ**—ସ. ବିଣ.—(ବି+ସୃ ଧାତୁ ଣିଚ+କର୍ମି. ତ)—ବିସ୍ତାରିତ-- Bisārita Spread; diffused.

**ବିସାରୀ**—ସ. ବିଣ.—(ବିସାରିନ୍; ବି+ସୃ ଧାତୁ=କର୍ତ୍ତୃ. ଇନ)— Bisāri ୧। ବିସ୍ତୃତଶୀଳ—1. Spreading. ୨। ଗମନ- (ବିସାରିଣୀ—ସ୍ତ୍ରୀ) ଶୀଳ—2. Roving; moving. ସ ବି. ମତ୍ସ୍ୟ—Fish.

**ବିସିଦ୍ଧ**—ଦେ. ବିଣ.—(ସ. ବି+ସିଦ୍ଧ)—ବ୍ୟାଘାତଯୁକ୍ତ; ବ୍ୟାହତ; Bisiddha ବାଧାପ୍ରାପ୍ତ—Obstructed; hindered. [ଉ—ବିଶୁଦ୍ଧ ସିଦ୍ଧ ବନେ ମୁକ୍ତ ଯାଗ, ବିସିଦ୍ଧ କରଣେ ଗ୍ରାସସବର୍ଗ। ଉଞ୍ଜ. ବୈଦେହୀଶବିଳାସ।]

**ବିସିନୀ**—ସ. ବି. ସ୍ତ୍ରୀ—(ବିସ=ମୃଣାଳ+ଅସ୍ତ୍ୟର୍ଥେ ଇନ୍+ସ୍ତ୍ରୀ. ଈ)— Bisini ୧। ପଦ୍ମିନୀ; ମୃଣାଳିନୀ—1. A lotus with the stalk. ୨। ସୁନ୍ଦରୀ କ୍ଷୀଣଦେହା ସ୍ତ୍ରୀ—A beautiful and slender-bodied lady. ଦେ. ବି. ଓ ବିଣ. ପୁଂ—ବିସନି (ଦେଖ)—Bisani (See) [ଉ— ମିଶ ଘସି ଥିବା ବିସିନୀ ଯେସନ, କରୁଥାଏ ଦନ୍ତ୍ୟବର୍ଣ୍ଣି ଉଚ୍ଚାରଣ। ରାଧାନାଥ. ଦରବାର।]

**ବିସି ଫୋ(ଫୁ)ଟ(ଟୁ)କା**—ଦେ. ବି.—(ସ. ବିସ୍ଫୋଟକ)—ବିସ୍ଫୋଟକ Bisi pho(phu)ṭa(ṭu) kā (ଦେଖ)—Bisphoṭaka (ବିସିଫୋଡ଼ା—ଅନ୍ୟରୂପ) (See).

**ବିସୁଖ(କ)**—ଦେ. ବି.—(ସ. ବି=ବିଗତ+ସୁଖ)—୧। ଦୁଃଖ; Bisukha(ka) ସୁଖର ଅଭାବ—1. Want of happiness; ବିସୁଖ **विसुख** misery. [ଉ—ଯେଉଁ ଦିନ ମୋର ବିଷୟରେ ପଡ଼ି ବିସୁଖ ହୁଅଇ ଯେତେ, ନାନା କୋପଭର ତାପ କରିଲେହେଁ ଶରଧା ଲାଗଇ ମୋତେ। ପୀନକୃଷ୍ଣ. ଗୁଣ-ସାଗର। ] ୨। ଅସୁସ୍ଥତା; ରୋଗ—2. Illness. ଦେ. ବିଣ.—ରୁଗ୍ଣ, ଅସୁସ୍ଥ (ରୋଗୀ)—Sick; ill.

**ବିସୁଲି ପାତକ**—ଦେ. ବି.—(ସ. ବିଷଦାନ+ପାତକ)—ପାପବିଶେଷ; Bisuḷi pātaka ବିଷଦାନଦ୍ୱାରା ହତ୍ୟା ଜନିତ ପାପ—Sin due to killing by poisoning. [ଉ—ମାତୃ ଯେ ହରଣ ଦୋଷ ହୃଦ ଭାରେ ନାଶେ, କରମାଲେ ବିସୁଳି ପାତକ ଯେ ବିନାଶେ। ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା।]

**ବିସୁଳିପାତି**—ଦେ. ବି ଓ ବିଣ—ବିଷଲପାତି (ଦେଖ)— Bisuḷipāti Bishauḷapāti (See). ( ବିସୁଳିପାତିଆ—ଅନ୍ୟରୂପ )

**ବିସୂଚିକା**—ସ. ବି.—(ବି+ସୂଚ ଧାତୁ=ଖଳତା କରିବା+କର୍ତ୍ତୃ. କ+ Bisūchikā ସ୍ତ୍ରୀ. ଆ)—୧। ଓଲାଉଠା ରୋଗ; ଝାଡ଼ା ବାନ୍ତି (ବିସୂଚି[ଚୀ]—ଅନ୍ୟରୂପ) ରୋଗ; ହଇଜା— 1. Cholera. [ ଉ—ଆୟୁର୍ବେଦାନୁସାରେ ଏହା ଆଧୁନିକ କଲେରା ରୋଗ ନୁହେଁ; ଅଜୀର୍ଣ୍ଣ ରୋଗୀର ବାୟୁ ପ୍ରକୁପିତ ହେଲେ ସୂଚିକା ବେଦନାବତ୍ ସର୍ବାଙ୍ଗରେ ବେଦନା ଅନୁଭୂତ ହୁଏ, ପେଟ ଦରଜ ହୁଏ, ଖୁବ ଝାଡ଼ା ହୁଏ, ଶୋଷ ଓ ଜଳା ପୋଡ଼ା, ଭ୍ରମ, ମୂର୍ଚ୍ଛା ଓ କମ୍ପ, ହାଇ, ଦୁର୍ବଳତା, ମୂତ୍ରରୋଧ, ନାଡ଼ୀକ୍ଷୀଣତା ହୁଏ; ଆଖି ପଶିଯାଏ, ଦେହର ବର୍ଣ୍ଣ ପାଣ୍ଡୁର ହୁଏ, ସ୍ୱର କ୍ଷୀଣ ହୁଏ। ଏହାହିଁ ବିସୂଚିକା ରୋଗ। ଏକ ପ୍ରକାର ବିଷାକ୍ତ କୃମି ଦେହରେ ପ୍ରବେଶ କରିବାରୁ କଲେରା ରୋଗ ଜନ୍ମେ। ]

**ବିସୂରିତ**—ସ. ବି.—(ବି+ସୂର ଧାତୁ=ବଧ କରିବା+କର୍ତ୍ତୃ. ତ)— Bisūrita ୧। ଅନୁତାପ; ପଶ୍ଚାତ୍ତାପ—1. Repentance (ବିସୂରଣ—ଅନ୍ୟରୂପ) ୨। ଦୁଃଖ—2. Sorrow; grief.

**ବିସୂରିତା**—ସ. ବି. ସ୍ତ୍ରୀ—(ବିସୂରିତ+ସ୍ତ୍ରୀ. ଆ—ଜ୍ୱର— Bisuritā Fiver.

**ବିସୃତ**—ସ. ବିଣ—(ବି+ସୃ ଧାତୁ=ଯିବା+କର୍ତ୍ତୃ. ଓ କର୍ମି. ତ)—୧। Bisṛuta ସ୍ଥାନାନ୍ତରିତ—1. Transferred. ୨। ବିସ୍ତୃତ; ପ୍ରସାରିତ; ବ୍ୟାପ୍ତ—2. Spread; diffused. ୩। କଥିତ—3. Spoken; uttered.

**ବିସୃତ୍ୱର**—ସ. ବିଣ.—(ବି+ସୃ ଧାତୁ=ଯିବା, ବ୍ୟାପିବା+କର୍ତ୍ତୃ. ବର) Bisṛutwara ବ୍ୟାପନଶୀଳ; ବିସ୍ତାରୀ—Spreading; havng (ବିସୃବର, ବିସୃମର—ଅନ୍ୟରୂପ) a tendency to expand.

**ବିସୃଷ୍ଟ**—ସ. ବିଣ.—(ବି+ସୃଜ ଧାତୁ+କର୍ମି. ତ)—୧। ତ୍ୟକ୍ତ— Bisrushṭa 1. Abandoned; quitted. ୨। କ୍ଷିପ୍ତ— 2. Thrown; emitted; hurled; sent forth; ejected. ୩। ପ୍ରେରିତ—3. Sent; despatched. ୪। ଦତ୍ତ—4. Given away; granted (Apte). ୫। ପାତିତ—5; Shed; cast. ୬। ଛଡ଼ା ଯିବା— 6 Let go; discharged (Apte). ୭। ଅପସାରିତ—7. Expelled; removed (Apte).

**ବିସୃଷ୍ଟି**—ସ. ବିଣ—(ବି+ସୃଜ୍ ଧାତୁ+ଭାବ. ତି)—୧। ବିସର୍ଜନ; Bisrushṭi ତ୍ୟାଗ—1. Abaudonmet. ୨। ଦାନ— 2. Gift. ୩। କ୍ଷେପଣ—3. Emitting; hurling. ୪। ପ୍ରେରଣ—4. Sending forth.

**ବିସୋର**—ଦେ. ବି—(ସ. ବିସ୍ମରଣ)—ବିସ୍ମରଣ—Forgetting. Bisora ବିଣ—ବିସ୍ମୃତ—Forgotten. (ଉ—ବାଲ୍ୟେ ଜଗତୀ ବିସ୍ମବନ ରଚନା ନୋହେ ବିସୋର। ଉଞ୍ଜ. ବୈଦେହୀଶବିଳାସ। ) **विसरना; विसारना** (ବିସୋରଣ—ଅନ୍ୟରୂପ)

**ବିସୋରିବା**—ଦେ. କ୍ରି—(ସ. ବି+ସ୍ମୃ ଧାତୁ)—ପାସୋରିବା— Bisoribā To forget. (ଉ—ଏହା ନ ବିସୋରି, ରଖିବ ବିସ୍ମବା ଶିଶୁଙ୍କୁ ନିଜ ଦେହ ଆବରଣେ। ରାଧାନାଥ. ମହାଯାତ୍ରା।) **विसरना** (ବିସୋରି ଯିବା [ପକାଇବା, ଦେବା]—ଅନ୍ୟରୂପ)

ଵସ୍କା—ଦେ. ଵି—(ସଂ ଵସ୍କୟଣୀ—ଚିରପ୍ରସୂତା ଗାଈ; ଵଶୁଷ୍କତା)—ଦୁଧ
Biskā ଦେଉଥିବା ଗାଈଠାରୁ କାଳକ୍ରମେ ଦୁଧର ପରିମାଣ କମି ଯିବା ବା ଶୁଖିଯିବା—The drying up of milk in a milch cow, when her calf grows up.

ଵସ୍କା(ସ୍କେ)ଇବା—ଦେ. କ୍ରି—୧ । ( ଵସ୍କିବା କ୍ରିୟାର ଣିଜନ୍ତରୂପ )—
Biskā(ske)ibā ମନ୍ତ୍ର ଔଷଧ ଆଦି ପ୍ରୟୋଗ ଦ୍ୱାରା ଦୁଗ୍ଧବତୀ
ଦୁଧଶୁଖିଯେ ଦେଓୟା ଗାଈର ଦୁଗ୍ଧ ଊଣା କରାଇବା—To cause
विसुखाना a cow to run dry by appliance of charms. ୨ । ଵସ୍କିବା ( ଦେଖ )—2. Biskibā (See)

ଵସ୍କିବା—ଦେ. କ୍ରି—(ସ. ଵକ୍ଷୀର; ଵଶୁଷ୍କ)—(ଦୁଧ ଦେଉଥିବା ଗାଈ )
Biskibā ଊଣା କରି ଦୁଧ ଦେବା—To run dry (said of
दुध बन्दकरा विसुखना a cow).

ଵସ୍କିର—ସ. ଵି—(ଵି+କୃ ଧାତୁ=ବିକ୍ଷେପ କରିବା+କର୍ତ୍ତୃ. ଅ; ସ୍
Biskira ଆଗମ )—ପକ୍ଷୀ—Bird ( ଉ—ବାଜ ନାମ୍ଁ; ଵସ୍କିରେ ଲାଗି ମିହିତା କରି । ଭଞ୍ଜ. ବୈଦେହୀଶ-ବିଳାସ । )

ଵିସ୍ତ—ସ. ବି—( ବିସ୍ ଧାତୁ=କ୍ଷେପଣ କରିବା+କର୍ମ. ତ )—୧ ।
Bista ମୋହର; ସ୍ୱର୍ଣ୍ଣମୁଦ୍ରା—1. A gold mohar or coin. ୨ । ଏକ ଭରି ସୁନା—2. One tola of gold. ୩ । ଏକତୋଲା ଓଜନ—3. The weight of one Tolā.

ଵିସ୍ତର—ସ. ବି—( ଵି+ସ୍ତୃ ଧାତୁ=ବିସ୍ତାର କରିବା; ଅଚ୍ଛାଦନ
Bistara କରିବା+କର୍ମ. ଅ)—୧ । ପ୍ରାଚୁର୍ଯ୍ୟ; ପ୍ରଚୁରତା—1. Abundance. ୨ । ସମୂହ—2. Collection; multitude. ୩ । ଅନୁରାଗ; ପ୍ରଣୟ—3. Attachment; love ୪ । ଆସନ—4. A seat. ୫ । ବାକ୍ୟ-ପ୍ରପଞ୍ଚ—5 Verbosity. ୬ । ବିଶେଷ ବର୍ଣ୍ଣନ—6. Profuse description. ୭ । ସଂଖ୍ୟା—7 Number. ୮ । ଶଯ୍ୟା—8. Bed. ୯ । (ଵି+ସ୍ତୃ ଧାତୁ+ଭାବ. ଅ)—ବିସ୍ତାର—9. Expansion.
विस्तर ଦେ. କ୍ରି. ବିଣ—୧ । ବହୁତ; ଅନେକ—1. Much;
विस्तार greatly. (ଉ—ପ୍ରାତେ ପାଦପ ପର୍ଣ୍ଣ ଝରେ ବିସ୍ତର—ରାଧାନାଥ. ମେଘଦୂତ । ) ଦେ. ବିଣ—ବେଶି—
विस्तर Great. ୩ । ଅତ୍ୟଧିକ; ବେକାର୍ଯ୍ୟ—3. Excessive.
विस्तार ବି—ଆଧିକ୍ୟନ—Excess. ( ଉ—ଉତ୍ତମ ଦ୍ରବ୍ୟ ଭୁଞ୍ଜାଇବ, ଶ ବେ ବିସ୍ତର ନ କରିବ । ଜଗନ୍ନାଥ.)

ଵିସ୍ତରଣ—ସ. ବି—(ଵି+ସ୍ତୃ ଧାତୁ+ଭାବ. ଅନ)—ବିସ୍ତାରକରଣ—
Bistaraṇa Spreading.

ଵିସ୍ତରଶଃ—ସ. କ୍ରି ବିଣ—( ବିସ୍ତର+ଶସ୍ )—ବିସ୍ତାରିତରୂପେ; ବିସ୍ତୃତ
Bistaraśah ରୂପେ—In detail.

ଵିସ୍ତରା—ଦେ. ବି—( ସ. ବିସ୍ତର; ପା. ବିସ୍ତରହ୍ )—ବିଛଣା; ଶଯ୍ୟା—
Bistarā Bed; bedding.
बिछाना विस्तरा

ଵିସ୍ତାର—ସ. ବି. ( ଵି+ସ୍ତୃ ଧାତୁ=ବିସ୍ତାର କରିବା+ଭାବ. ଅ )—
Bistāra ୧ । ବ୍ୟାପ୍ତି; ବିସ୍ତୃତି—1. Expanse. ୨ । ବିଶାଳତା-
(ବିଣ—ବିସ୍ତୃତ) 2. Greatness; extent. ୩ । ବିସ୍ତୃତ ବିବରଣ—3. Detailed description. ୪ । ବୃତ୍ତର ବ୍ୟାସ-4. Diameter. ୫ । ଓସାର; ଚଉଡ଼ା—5. Width; breadth. ୬ । (ଵି+ସ୍ତୃ ଧାତୁ+କର୍ମ. ଅ) ସମାସ ବାକ୍ୟ—6. A compound word. ୭ । (ଵି+ସ୍ତୃ ଧାତୁ+କର୍ତ୍ତୃ. ଅ ) ବିଟପ; ଶାଖା—7. Branch. ୮ । ଗୁଚ୍ଛ; ଗୋଛା—8. Bunch; bundle. ୯ । ଶିବ (ହ୍ରି. ଶ)—9 Śiba. ୧୦ । ଵିଷ୍ଣୁ (ହ୍ରି. ଶ)—10. Bishṇu.
ଦେ. ବିଣ—୧ । ବିସ୍ତୃତ; ବିଶାଳ; ବଡ଼—1. Extensive; great. (ଉ—ଏ ମହାଭାରତଙ୍କୁ କେତେ ଦ୍ୱିଜ-ମାନେ, ବିସ୍ତାର କରି ଧରି ଅଛନ୍ତି ଯେ ମନେ । କୃଷ୍ଣସିଂହ. ମହାଭାରତ. ଆଦି ।) ୨ । ଖ୍ୟାତ; ପ୍ରକାଶିତ—2. Published. (ଉ—ବଧୂର ବଧୂର ଲୀଳା ହୋଇବ ବିସ୍ତାର । ଭଞ୍ଜ. ବୈଦେହୀଶବିଳାସ ।)

ଵିସ୍ତାରକ—ସ. ବିଣ.ପୁଂ (ଵି+ସ୍ତୃ ଧାତୁ=ବିସ୍ତାର କରିବା+କର୍ତ୍ତୃ.ଅକ)—
Bistāraka ୧ । ଯେ ବିସ୍ତାର କରେ—1. Spreading. ୨ ।
(ବିସ୍ତାରିକା—ସ୍ତ୍ରୀ) ବିଶେଷ ରୂପେ ପ୍ରକାଶକ—2. Publishing widely. ଦେ. ବି. (ସ. ବୃଦ୍ଧଦାରକ )—ବୃଦ୍ଧଦାରକ (ଦେଖ)—Bṛuddhadāraka (See) ଦେ. ବିଣ—ବିସ୍ତୃତ—Spread. (ଉ—ବିସ୍ତାରକ ସୁମନସ-ପକ୍ଷକ ଅଙ୍କୁର । ଭଞ୍ଜ. ବୈଦେହୀଶବିଳାସ)

ଵିସ୍ତାର କରିବା—ଦେ. କ୍ରି. ( ସ. ବିସ୍ତାର )—୧ । ମେଲି ଦେବା;
Bistāra karibā ମେଲାଇବା—2. To spread ୨ ।
विस्तार करना ବିଞ୍ଚି ଦେବା—2. To scatter; to strew. ୩ ।
विस्तार करना ଖୋଲି ଦେବା—3. To open up. ୪ । ଚଉଡ଼ା କରିବା—4. To widen. ୫ । ଚାରିଆଡ଼େ ବିସ୍ତୃତ ହେବା—5. To spread on all sides. ୬ । ବଢ଼ାଇବା- 6. To enlarge. ୭ । ବୃଦ୍ଧି ପାଇବା—7. To increase. ୮ । ଅଗ୍ରସର ହେବା—8. To advance. ୯ । ଖେଳି ଯିବା; ବ୍ୟାପ୍ତ ହେବା—9. To be diffused or scattered.

ଵିସ୍ତାରିତ—ସ. ବିଣ. (ବିସ୍ତାର+ସଂଜାତ ଅର୍ଥେ ଇତ; ଵି+ସ୍ତୃ ଧାତୁ
Bistārita ଣିଚ+କର୍ମ. ତ)—୧ । ପ୍ରସାରିତ—1. Expanded; spread. ୨ । ବୃଦ୍ଧିକୃତ; ବର୍ଦ୍ଧିତ—2. Increased. ୩ । ବିସ୍ତୃତ ବିବରଣ ଯୁକ୍ତ—3. Detailed. ୪ । ବିଞ୍ଚି ହୋଇ ଯାଇଥିବା—4. Scattered; ୫ । ବ୍ୟାପ୍ତ—5. Diffused.

ଵିସ୍ତାରିବା—ସ. ବି. (ପଦ୍ୟ) ( ସ. ବିସ୍ତାର )—୧ । ବିସ୍ତୃତ କରିବା;
Bistāribā ପ୍ରସାରିବା—1. To spread out. ୨ । ମେଲାଇବା-
विस्तारा 2. To open. (ଉ—ବିସ୍ତାରଣ ବାହାଯୁଗ, ଦଉ
विस्तारना ନଯୁଗ ଖଯୁଗ, ଚେଳକ ଅଯୁଗ ପୂର୍ଣ୍ଣ ସେହି ସେ । ଭଞ୍ଜ. ବୈଦେହୀଶବିଳାସ) ୩ । ବଢ଼ାଇବା—3. To extend.

(ଉ—ଦୁର୍ଦ୍ଦମ ଶକ ଜାତିର ଲଭି ସହାୟତା, ବିସ୍ତାରିଲା ସ୍ୱଭାବ, ଜଣିଲା ସେ ବନ୍ଧୁ ରାଜ୍ୟ ବାନ୍ଧୁବଳେ । ଚନ୍ଦ୍ରମଣି. ବିକ୍ରମାଦିତ୍ୟ ।) ୪ । ବିସ୍ତାରିବା—4. To spread out. ୫ । ବିଶଦ ବିବରଣ ଦେବା—5. To describe in detail. (ଉ—ବିସ୍ତାରି କହ ମୋତେ ଋଷି କୁଳବର । କୃଷ୍ଣସିଂହ. ମହାଭାରତ ସଭା)

ବିସ୍ତାର୍ଯ୍ୟ—ସଂ. ବିଣ. (ବି+ସ୍ତୃ ଧାତୁ ଣିଚ+କର୍ମ. ଯ)—୧ । ବିସ୍ତୃତ ଯୋଗ୍ୟ—
Bistārjya 1. Fit to be spread. ୨ । ବିସ୍ତାରିତ ଭାବରେ ପ୍ରକାଶ ଯୋଗ୍ୟ—2 Deserving to be described in detail.

ବିସ୍ତାର୍ଯ୍ୟତା—ସଂ. ବି. ( ବିଜ୍ଞାନ ପରିଭାଷା )—ଜଡ଼ ପଦାର୍ଥର ଗୁଣ
Bistārjyatā ବିଶେଷ; ଯେଉଁ ଗୁଣ ଦ୍ୱାରା ଜଡ଼ ପଦାର୍ଥ ପୂର୍ବାପେକ୍ଷା ଅଧିକ ସ୍ଥାନରେ ବିସ୍ତୃତ ହୁଏ—(science) Elasticity or expansion of matter.

ବିସ୍ତାରୀ—ସଂ. ବିଣ. ପୁଂ. (ବି+ସ୍ତୃ ଧାତୁ=ବିସ୍ତୃତ ହେବା+କର୍ତ୍ତୃ. ଇନ୍;
Bistārī ୧ମା. ୧ବ)—୧ । ସୁବିସ୍ତୃତ; ବଡ଼; ପ୍ରକାଣ୍ଡ—
(ବିସ୍ତାରିଣୀ—ସ୍ତ୍ରୀ) 1. Extensive; large; great; mighty. ୨ । ଯେ ବିସ୍ତାର କରେ—2 Spreading.

ବିସ୍ତୀର୍ଣ୍ଣ—ସଂ. ବିଣ. (ବି+ସ୍ତୃ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ତ)—
Bistīrṇṇa ୧ । ବିସ୍ତୃତ—1. Spread out. ୨ । ପ୍ରଶସ୍ତ—
(ବିସ୍ତୀର୍ଣ୍ଣା—ସ୍ତ୍ରୀ) 2. Wide. ୩ । ବହୁଦୂର ବିସ୍ତୃତ—3. Exten-
(ବିସ୍ତୀର୍ଣ୍ଣତା—ବି) sive. ୪ । ବିଶାଳ—4. Huge; vast. ୫ । ବ୍ୟାପ୍ତ—5. Diffused. ୬ । ଗୃହଆଦେ ଖେଳିଅ ହୋଇଥିବା—6. Strewn; scattered

ବିସ୍ତୀର୍ଣ୍ଣ ପର୍ଣ୍ଣ—ସଂ. ବି ( ବହୁବ୍ରୀହି; ବିସ୍ତୀର୍ଣ୍ଣ+ପର୍ଣ୍ଣ )—୧ । ମାନକ;
Bistīrṇṇa parṇṇa ମାଣ ସାରୁ ଗଛ—1. Arum Indica. ୨ । କଦଳୀ (ଗଛ)—2. Plantain (tree).

ବିସ୍ତୃତ—ସଂ. ବିଣ. ( ବି+ସ୍ତୃ ଧାତୁ=ବିସ୍ତାର କରିବା+କର୍ମ. ତ )—
Bistṛuta ୧ । ପ୍ରସାରିତ—1. Extended; spread. ୨ । ବିଶାଳ; ବିସ୍ତୀର୍ଣ୍ଣ—2. Vast. ୩ । ବ୍ୟାପ୍ତ—3. Diffused. ୪ । ଲମ୍ବା ଓସାରିଆ—4. Long and broad.

ବିସ୍ତୃତ ମୁଖ—ସଂ. ବି. ପୁଂ (ବହୁବ୍ରୀହି; ବିସ୍ତୃତ+ମୁଖ )—୧ । ଓସାରିଆ-
Bistṛuta mukha ମୁହାଁ—1. Wide-mouthed. ୨ । ପାଟି
(ବିସ୍ତୃତ ମୁଖା, ବିସ୍ତୃତାନନା—ସ୍ତ୍ରୀ) ଆଁ କରିଥିବା—2. With the
(ବିସ୍ତୃତାନନ—ଅନ୍ୟରୂପ) mouth wide agape.

ବିସ୍ତୃତି—ସଂ. ବି. ( ବି+ସ୍ତୃ ଧାତୁ=ବିସ୍ତାର କରିବା+ଭାବ. ତି )—
Bistṛuti ୧ । ବ୍ୟାପ୍ତି—1. Spreading; diffusion. ୨ । ବିସ୍ତାର କରଣ—2. Expansion; amplification. ୩ । ବିସ୍ତୃତ ବର୍ଣ୍ଣନା—3 Ditailed description. ୪ । ବୃତ୍ତର ବ୍ୟାସ—4. Diameter. ୫ । ଦୈର୍ଘ୍ୟ, ପ୍ରସ୍ଥ ଓ ବେଧର ପରିମାଣ—5. The length, breadth and thickness of a thing.

ବିସ୍ପଷ୍ଟ—ସଂ. ବିଣ. ( ବି+ସ୍ପଷ୍ଟ )—୧ । ବ୍ୟକ୍ତ—1. Manifest.
Bispashṭa ୨ । ସ୍ଫୁଟ; ସୁସ୍ପଷ୍ଟ—2. Clear; apparent. ୩ । ପ୍ରକାଶିତ—3. Expressed.

ବିସ୍ଫା(ଷ୍ଫା)ର—ସଂ. ବି. (ବି+ସ୍ଫୁର ଧାତୁ=ପ୍ରକାଶିତ ହେବା; ଚଞ୍ଚଳ
Bisphā(shphā)ra ହେବା+ଭାବ. ଅ, ବା ବି+ସ୍ଫାର ଧାତୁ=ବୃଦ୍ଧି ପାଇବା+ଭାବ. ଇ; ନିପାତନ)—୧ । କମ୍ପ; ସ୍ପନ୍ଦନ—1. Quivering; oscillation. ୨ । ଧନୁର ଟଙ୍କାର ଧ୍ୱନି—2. The twanging sound of a bow. ୩ । ବିସ୍ତାର—3. Extension. ୪ । ସ୍ଫୂର୍ତ୍ତି—4. Stimulation; shining. ୫ । (+କର୍ତ୍ତୃ. ଅ) ଧନୁର୍ଗୁଣ—5. Bowstring. ୬ । ବୃତ୍ତଖଣ୍ଡର ଜ୍ୟା—6. The chord of an arc.

ବିସ୍ଫା(ଷ୍ଫା)ରିତ—ସଂ. ବିଣ ( ବି+ସ୍ଫାର ଧାତୁ=ଚଞ୍ଚଳ ହେବା ଇତ୍ୟାଦି
Bisphā(shphā)rita +କର୍ମ ତ )—୧ । କମ୍ପିତ—1. Trembling. ୨ । ସ୍ଫୂର୍ତ୍ତିଯୁକ୍ତ—2. Stimulated. ୩ । ବିସ୍ତାରିତ—3. Spread; expanded. ୪ । ପ୍ରକାଶିତ—4. Revealed; manifested. ୫ । ଟଙ୍କାରିତ—5. Twanged. ୬ । ଧ୍ୱନିତ—6. Sounded; resounding.

ବିସ୍ଫୁ(ଷ୍ଫୁ)ରିତ—ସଂ. ବିଣ ( ବି+ସ୍ଫୁର ଧାତୁ=ଚଞ୍ଚଳ ହେବା ଇତ୍ୟାଦି+
Bisphu(shphu)rita କର୍ତ୍ତୃ. ତ )—୧ । କମ୍ପିତ—1. Trembling. ୨ । ସ୍ଫୂର୍ତ୍ତିଯୁକ୍ତ—2. Stimulated. ୩ । ଧ୍ୱନିତ—3. Resounding. ୪ । ସ୍ଫୀତ—Swollen; elated. ୫ । ବିସ୍ତାରିତ—5. Spread; widened. ସଂ. ବି ( ବି+ସ୍ଫୁର ଧାତୁ+ଭାବ. ତ )—୧ । ସ୍ଫୁରଣ—1. Titilation; stimulation. ୨ । (+କରଣ ତ) ଧ୍ୱନି—2. Sound.

ବିସ୍ଫୂର୍ଜିତ—ସଂ. ବି ( ବି+ସ୍ଫୂର୍ଜ ଧାତୁ=ଶବ୍ଦ କରିବା, ବଢ଼ିବା, ଦୀପ୍ତ
Bisphurjita ହେବା+ଭାବ. ତ )—୧ । ଗର୍ଜ୍ଜନ—1. Roar; shout ( Apte ). ୨ । ( +କର୍ତ୍ତୃ. ତ ) ଫଳ; ପରିଣାମ—2. Fruit; result (Apte).

ବିସ୍ଫୁଲିଙ୍ଗ—ସଂ. ବି ( ବି+ସ୍ଫୁ=ଅନୁକରଣ ଶବ୍ଦ+ଲିଙ୍ଗ ଧାତୁ=
Bisphuliṅga ଗମନ କରିବା+କର୍ତ୍ତୃ. ଅ )—୧ । ଅଗ୍ନିକଣା—1. Spark of fire. ୨ । ବିଷବିଶେଷ—2. A kind of poison.

ବିସ୍ଫୋଟ(ଟା)—ସଂ.ବି (ବି+ସ୍ଫୁଟ୍ ଧାତୁ=ଭେଦ କରିବା+ଭାବ. ଅ;+ଆ)
Bisphoṭa(ṭā) —୧ । ଦେହରେ ବାହାରିବା କ୍ଷୁଦ୍ର ବ୍ରଣ—1. Boil; pimple. ୨ । ଦେହରେ ବାହାରିବା ଫୋଟକା—2. Pistules or blisters coming out on the body. ୩ । ବସନ୍ତ ବ୍ରଣ—3. Smallpox ( Apte ).

ବିସ୍ଫୋଟକ—ସଂ. ବି ( ବିସ୍ଫୋଟ+ସ୍ୱାର୍ଥେ କ)—ବିସ୍ଫୋଟ ( ଦେଖ )
Bisphoṭaka Bisphoṭa ( Sea )

**ବିସ୍ଫୋଟକା**—ଦେ. ବି ( ସଂ. ବିସ୍ଫୋଟକ )—୧ । ବିଷଫୋଟକା; Bisphoṭaka ବିସ୍ଫୋଟକ (ଦେଖ)—1. Bisphoṭaka (See) বিষফোড়া **विषफोडा** ୨ । ବିଷଦୋଷରେ ବାହାରିଥିବା ଫୋଟକା—2. Blister caused by poison; poisonous eruption.
(ବିଷ୍ଫୁଟକା, ବିଷ୍ଫୁଟୁକା, ବିସ୍ଫୋଟୋକା—ଗ୍ରାମ୍ୟରୂପ)

**ବିସ୍ଫୋରକ**—ସଂ. ବିଣ ( ବିଜ୍ଞାନ ପରିଭାଷା )—ଯେଉଁ ଦ୍ରବ୍ୟ ହଠାତ Bisphoraka ଜଳି ଉଠେ—Explosive; inflammable. ବି—ହଠାତ୍ ଜଳି ଉଠିବା ଦ୍ରବ୍ୟ—Inflammable article; an explosive.

**ବିସ୍ଫୋରଣ**—ଦେ. ବି ( ବିଜ୍ଞାନ ପରିଭାଷା ) ( ସଂ. ବିସ୍ଫୁରଣ )—Bisphoraṇa ବାରୁଦଆଦିରେ ନିଆଁ ଲାଗି ହଠାତ୍ ଜଳି ଉଠିବା বিস্ফোরণ **विस्फोरण** —Explosion ( of explosives ).

**ବିସ୍ଫୋରିତ ହେବା**—ଦେ. କ୍ରି ( ବିଜ୍ଞାନ ପରିଭାଷା )—ହଠାତ୍ ଜଳି Bisphorita hebā ଉଠିବା—To explode. বিস্ফোরিত হওয়া **विस्फोरित होना**

**ବିସ୍ୱ(ସ୍ୱା)ନ**—ସଂ. ବି ( ବି+ସ୍ୱନ୍ ଧାତୁ=ଶବ୍ଦ କରିବା+ଭାବ. ଅ )—Biswa(swā)na ୧ । ଧ୍ୱନି—1. Voice. ୨ । ଶବ୍ଦ—2. Sound; noise.

**ବିସ୍ୱାଁୟ(ୟେ)**—ଗ୍ରା. ବି ( ସଂ. ବିସ୍ମୟ )—ବିସ୍ମୟ—Wonder. Biswañya(ye) ବିଣ—୧ । ବିସ୍ମିତ—1. Astonished. ୨ । ଦୁଃଖିତ—2. Dejected.

**ବିସ୍ୱର**—ଦେ. ବିଣ—ନୀରବ; ନିଃଶବ୍ଦ—Silent. [ ଉ—ବିସ୍ୱର Biswara କଲା ଅଗ, ବେଗେ ଯୁଡ଼ନ୍ତ ବର୍ଗ, ଶରଦ ଛବି ଝଳ । ଉଞ୍ଜ. ବୈଦେହୀଶବିଳାସ । ]

**ବିସ୍ୱରଣ**—ଗ୍ରା. ବି ( ସଂ. ବିସ୍ମରଣ )—ବିସ୍ମରଣ—Oblivion Biswaraṇa ବିଣ. ବିସ୍ମୃତ—Forgotten.

**ବିସ୍ୱରେ**—ଦେ. କ୍ରି. ବିଣ—ନିଃଶବ୍ଦରେ—Silently. [ ଉ—Bisware ବିସ୍ୱରେ କ୍ରୀଡ଼େ ହଂସ ଶ୍ରେଣୀ । ଉଞ୍ଜ. ବୈଦେହୀଶ ବିଳାସ । ]

**ବିସ୍ୱର୍ଗ**—ଦେ. ବି—ଯାହା ସ୍ୱର୍ଗ ନୁହେଁ; ଅସ୍ୱର୍ଗ—The worlds other Biswarga than heaven. [ ଉ—ମୋର ମନ ବୈକୁଣ୍ଠ ନ ରହଇ, ସ୍ୱର୍ଗ ବିସ୍ୱର୍ଗ ଯେତେ ସୁଖ ଭୁଇଁ । ପ୍ରାଚୀ. ଉଦ୍ଧବମଞ୍ଜରୀ । ]

**ବିସ୍ୱାଦ**—ସଂ. ବି ( ବି+ସ୍ୱାଦ )—ମନ୍ଦ ସ୍ୱାଦ—Bad taste. Biswada

**ବିସ୍ୱାଦୁ**—ସଂ. ବି ( ବି+ସ୍ୱାଦୁ )—୧ । ଅସ୍ୱାଦଯୁକ୍ତ—1. Tasteless. Biswādu ୨ । ବିକୃତ ସ୍ୱାଦ ବଶିଷ୍ଟ—2. Having a bad taste.

**ବିସ୍ମୟ**—ସଂ. ବି ( ବି+ସ୍ମି ଧାତୁ=ଈଷତ୍ ହାସ୍ୟ କରିବା; ଆଶ୍ଚର୍ଯ୍ୟାନ୍ୱିତ Bismaya ହେବା+ଭାବ. ଅ )—୧ । ସଂଶୟ—1. Doubt; uncertainty. ୨ । ପ୍ରଶଂସା ମିଶ୍ରିତ ଆଶ୍ଚର୍ଯ୍ୟ—2. Awe. ୩ । ଈଷତ୍ ହାସ୍ୟ—Smile. ୪ । ଆଶ୍ଚର୍ଯ୍ୟ—4. Wonder; astonishment. ୫ । ଗର୍ବ; ଅହଙ୍କାର ( ହି. ଶ )—5. Pride. ୬ । ଅଦ୍ଭୁତ ନାମକ ସ୍ଥାୟୀ ଭାବ ବା ରସବିଶେଷ—6. The sentiment of wonder in rhetoric. ୭ । ଲୋକାତୀତ ପଦାର୍ଥମାନଙ୍କ ଦର୍ଶନରେ ଚିତ୍ତରେ ଯେଉଁ ବିସ୍ତାର ଜାତ ହୁଏ ( ସାହିତ୍ୟ ଦର୍ପଣ )—7. Feeling which is excited on seeing an extraordinany thing ଦେ.ବିଣ—୧ । ବିସ୍ମିତ, ଆଶ୍ଚର୍ଯ୍ୟାନ୍ୱିତ—1. Astonished. [ ଉ—ଅକସ୍ମାତ ତାହାର ଶରୀର । ଦେଖି ବିସ୍ମୟ ଶୂଳଧର—ଜଗନ୍ନାଥ. ଭାଗବତ । ] ୨ । କ୍ଷଣକାଳ ସ୍ତବ୍ଧ—2. Awe-struck; struck dumb for a moment. [ ଉ—ବିସ୍ମୟ ହୋଇ ଅନାଇ ଭାବ ରଘୁପତି—ଉଞ୍ଜ. ବୈଦେହୀଶବିଳାସ । ] ୩ । ଦୁଃଖିତ—3. Sorry; dejected.

**ବିସ୍ମୟକର**—ସଂ. ବିଣ ( ବିସ୍ମୟ+କୃ ଧାତୁ+କର୍ତ୍ତୃ. ଅ )—ଯାହା ବିସ୍ମୟ Bismayakara ଜନ୍ମାଏ—Wonderful.
( ବିସ୍ମୟଜନକ, ବିସ୍ମୟୋତ୍ପାଦକ—ଅନ୍ୟରୂପ )

**ବିସ୍ମୟଚିହ୍ନ**—ସଂ. ବି (ଆଧୁନିକ ପ୍ରୟୋଗ; ଏହି ଚିହ୍ନର ବ୍ୟବହାର ଇଂରାଜୀ Bismayachihna ଭାଷାରୁ ଗୃହୀତ )—୧ । ଯେଉଁ ଚିହ୍ନଦ୍ୱାରା ( ବିସ୍ମୟସୂଚକ ଚିହ୍ନ—ଅନ୍ୟରୂପ ) ଲେଖାରେ ବିସ୍ମୟ ସୂଚିତ ହୁଏ; ଯଥା—'!'—1. Note of admiration ! ୨ । କୌଣସି ବ୍ୟକ୍ତିର ହୃଦୟରେ ବିସ୍ମୟ ଜାତ ହୋଇଥିବା ସ୍ଥଳରେ ମୁଖାଦିରେ ପ୍ରକାଶିତ ଲକ୍ଷଣ—2. The external signs on the face of a wondering person.

**ବିସ୍ମୟ ବିସ୍ଫା(ଷ୍ଫା)ରିତ**—ସଂ. ବିଣ ( ୩ୟା ତତ୍—ବିସ୍ମୟଦ୍ୱାରା ବିସ୍ତାରିତ Bismaya bisphā (shphā)rita ହୋଇଥିବା ( ନେତ୍ର )—( eyes ) Wide agape with wonder.

**ବିସ୍ମୟବିହ୍ୱଳ**—ସଂ. ବିଣ. ପୁଂ ( ୩ୟା ତତ୍; ବିସ୍ମୟ+ବିହ୍ୱଳ )—Bismaya bihwala ଆଶ୍ଚର୍ଯ୍ୟାନ୍ୱିତ—Astonished; awe-struck.
( ବିସ୍ମୟବିହ୍ୱଳା—ସ୍ତ୍ରୀ )
(ବିସ୍ମୟାନ୍ୱିତ, ବିସ୍ମୟାପନ୍ନ, ବିସ୍ମୟାବିଷ୍ଟ, ବିସ୍ମୟାଭିଭୂତ—ଅନ୍ୟରୂପ)

**ବିସ୍ମୟ ଲଗିବା**—ଦେ. ବି—ବିସ୍ମୟର ଅନୁଭୂତି—Bismay lāgibā Feeling of wonder. বিস্ময় লাগা **विस्मय लगना**

**ବିସ୍ମୟ ହେବା**—ଦେ. କ୍ରି—୧ । ବିସ୍ମିତ ହେବା, ଆଶ୍ଚର୍ଯ୍ୟାନ୍ୱିତ ହେବା—Bismaya hebā 1. To wonder; to be astonished. বিস্মিত হওয়া ୨ । କ୍ଷଣକାଳ ସ୍ତବ୍ଧ ହେବା—2. To be struck **विस्मित होना** with wonder ୩ । ଦୁଃଖିତ ହେବା—3. To be sorry.

**ବିସ୍ମୟାବହ**—ସଂ. ବିଣ ( ବିସ୍ମୟ+ଆବହ )—ଆଶ୍ଚର୍ଯ୍ୟଜନକ—Bismayābaha Wonderful

**ବିସ୍ମୟୋତ୍ପାଦନ**—ସଂ. ବି ( ୬ଷ୍ଠୀ ତତ୍; ବିସ୍ମୟ+ଉତ୍ପାଦନ )—ମନରେ Bismayotpādana ବିସ୍ମୟର ଉଦ୍ରେକ କରଣ—Causing of wonder.

**ବିସ୍ମର**—ଦେ. ବିଣ ( ସଂ. ବିସ୍ମୃତ)—ବିସ୍ମୃତ—Forgotton (ଉ—
Bismara বিস্মরিত **विस्मरन** ଯମ ବିଯୁମ ଶ୍ରଦ୍ଧା ଯେତେ ।
ବିସ୍ମର ହେଲା ନୃପ ଚିତ୍ତେ—ଜଗନ୍ନାଥ. ଭାଗବତ ।)

**ବିସ୍ମରଣ**—ସଂ. ବି ( ବି+ସ୍ମୃ ଧାତୁ=ସ୍ମରଣ କରିବା+ଭାବ. ଅନ )—
Bismaraṇa ବିସ୍ମୃତି—Forgetting; oblivion

**ବିସ୍ମରଣଶୀଳ**—ସଂ. ବିଣ. ପୁଂ ( ବହୁବ୍ରୀହି; ବିସ୍ମରଣ+ଶୀଳ )—ଯେ
Bismaraṇaśīḻa ଚଞ୍ଚଳ ପାସୋରି ପକାଏ; ଭୋଳା—Forgetful,
( ବିସ୍ମରଣଶୀଳା—ସ୍ତ୍ରୀ ) ( ବିସ୍ମରଣଶୀଳତା—ବି )

**ବିସ୍ମରଣ ହେବା**—ଦେ. କ୍ରି—୧ । ପାସୋରି ପକାଇବା—1. To
Bismaraṇa hebā বিস্মরণ হওয়া **विस्मरना** forget.
(ବିସ୍ମରଣ କରିବା—ଅନ୍ୟରୂପ) **बिसर जाना** ୨ । ପାସୋରି ଯିବା—
2. To be forgetten.

**ବିସ୍ମରଣୀୟ**—ସଂ. ବିଣ (ବି+ସ୍ମୃ ଧାତୁ+କର୍ମ ଅନୀୟ)—ପାସୋରିବାର
Bismaraṇīya ଯୋଗ୍ୟ—Forgettable.

**ବିସ୍ମରିବା**—ଦେ. କ୍ରି (ପଦ୍ୟ) ( ସଂ. ବି+ସ୍ମୃ ଧାତୁ )—ପାସୋରିବା—
Bismaribā বিস্মরা **बिसरना** To forget. ( ଉ—
ଏମନ୍ତ ମନେ ପ୍ରସନ୍ନ, ନାରୀଙ୍କ ସେ ନାରୀ ସତ, ଧଇର୍ଯ୍ୟ
କର କେଶବ, ନୋହେ ବିସ୍ମର—ଭଞ୍ଜ ପ୍ରେମସୁଧାନିଧି । )

**ବିସ୍ମାପ(ୟ)ନ**—ସଂ. ବି ( ବି+ସ୍ମି ଧାତୁ ଣିଚ୍; ସ୍ମାପି, ସ୍ମାୟି ଧାତୁ=
Bismāpa(ya)na ଭାବ, ଅନ )—୧ । ବିସ୍ମୟୋତ୍ପାଦନ—
1. Producing wonder. ୨ । ବି+ସ୍ମି ଧାତୁ
ଣିଚ୍+କରଣ. ଅନ )—କୁହୁକ; ମାୟା—2, Magic,
illusion. ୩ । (+କର୍ତ୍ତୃ. ଅନ) ଗନ୍ଧର୍ବପୁର—3 The
town or abode of the Gandharbas ୪ ।
( ବି+ସ୍ମି ଧାତୁ ଣିଚ୍+କର୍ତ୍ତୃ. ଅନ )—କାମଦେବ—
4. Cupid. ସଂ. ବିଣ—ବିସ୍ମୟଜନକ—Wonderful.

**ବିସ୍ମାରକ**—ସଂ. ବିଣ. ପୁଂ ( ବି+ସ୍ମୃ ଧାତୁ ଣିଚ୍+କର୍ତ୍ତୃ. ଅକ )—
Bismāraka ଯେ ଭୁଲାଇ ଦିଏ—Causing oblivion.
( ବିସ୍ମାରିକା—ସ୍ତ୍ରୀ )

**ବିସ୍ମାରଣ**—ସଂ. ବି ( ବି+ସ୍ମୃ ଧାତୁ ଣିଚ୍+ଭାବ. ଅନ )—୧ । ଲୀନ
Bismāraṇa ହେବା ( ହି. ଶ )—1. Merging. ୨ । ନଷ୍ଟ
ହେବା ( ହି. ଶ )—2. Destruction

**ବିସ୍ମିତ**—ସଂ. ବିଣ ( ବି+ସ୍ମି ଧାତୁ=ଆଶ୍ଚର୍ଯ୍ୟାନ୍ୱିତ ହେବା+କର୍ତ୍ତୃ.
Bismita ତ )—ଆଶ୍ଚର୍ଯ୍ୟାନ୍ୱିତ; ବିସ୍ମୟାପନ୍ନ; ଚକିତ—Astoni-
shed. ଦେ. ବି—ଅଦ୍ଭୁତ ମନୋଦୁଃଖ—Grief
mixed with wonder. (ଉ—ହେବ ତୋ ଏକାନ୍ତ
କାନ୍ତ, ଛଡ଼ରେ ବିସ୍ମିତ ସ୍ମିତ,-ହାସି ସେ ତୋରେ ନାରତେ
ରତେ ହେ—ଭଞ୍ଜ. ପ୍ରେମସୁଧାନିଧି । )

**ବିସ୍ମୃତ**—ସଂ. ବିଣ (ବି+ସ୍ମୃ ଧାତୁ=ସ୍ମରଣ କରିବା+କର୍ମ ତ)—
Bismṛuta ୧ । ଯାହା ମନରୁ ପାସୋରିଯାଏ; ଯାହାକୁ ଭୁଲି
( ବିସ୍ମୃତା—ସ୍ତ୍ରୀ ) ଯାଆନ୍ତି; ସ୍ମରଣାତୀତ—1. Forgotten.
୨ । ( +କର୍ତ୍ତୃ. ତ ) ଯେ ପାସୋରିପକାଏ—
2. Forgetful; oblivious.

**ବିସ୍ମୃତ ହେବା**—ଦେ. କ୍ରି ( ସଂ. ବିସ୍ମୃତ )—୧ । ପାସୋରି ଯିବା—
Bismṛuta hebā 1. To be forgotten.
বিস্মৃত হওয়া **विस्मृतहोना** ୨ । ପାସୋରିବା—2 To
forget.

**ବିସ୍ମୃତି**—ସଂ. ବି ( ବି+ସ୍ମୃ ଧାତୁ=ସ୍ମରଣ କରିବା+ଭାବ. ତି)—
Bismṛuti ୧ । ବିସ୍ମରଣ; ପାସୋରି ଯିବା—1. Forgetting;
oblivion. ୨ । ଶୀଘ୍ର ମନରୁ ପାସୋରିହେବାର
ମାନସିକ ଅବସ୍ଥା—2. Forgetfulness.

**ବିସ୍ମୃତିଶୀଳ**—ସଂ. ବିଣ. ପୁଂ (ବିସ୍ମୃତି+ଶୀଳ)—ଯେ ଚଞ୍ଚଳ ଭୁଲିଯାଏ;
Bismṛutiśīḻa ଭୋଳା—Forgetful, prone to forget.
(ବିସ୍ମୃତିଶୀଳା—ସ୍ତ୍ରୀ; (ବିସ୍ମୃତିଶୀଳତା—ବି)

**ବିସ୍ର**—ସଂ. ବି ( ବିସ୍ ଧାତୁ=କ୍ଷେପଣ କରିବା+କର୍ମ ର )—୧ । କଞ୍ଚା
Bisra ମାଂସର ଗନ୍ଧ—1. Smell of raw meat. ୨ । ଚିତା
ଧୂମର ଗନ୍ଧ; ପୋଡ଼ା ମାଂସର ଗନ୍ଧ—The smell aris-
ing out of a funeral pyre ୩ । ବଡ଼ ମୂଳା
(ହି. ଶ.)—3. Large variety of radish.
ସଂ. ବିଣ—କଞ୍ଚା ମାଂସର ଗନ୍ଧବିଶିଷ୍ଟ—Having the
smell of raw meat.

**ବିସ୍ରଂସ**—ସଂ. ବି (ବି+ସ୍ରନ୍ସ୍ ଧାତୁ=ପତିତ ହେବା+ଭାବ ଅ,—
Bisraṁsa ୧ । ପତନ—1. Falling. ୨ । ଖସିପଡ଼ିବା—
( ବିସ୍ରଂସନ—ଅନ୍ୟରୂପ ) 2. Dropping down. ୩ ।
୩ । ଝୁଲା ହୋଇ ଖସିଯିବା—3 Slipping off.
୪ । ତରଳପଦାର୍ଥର କ୍ଷରଣ—4. Oozing; falling
by drops ୫ । ମେଘ ବରଷିବା—5. Showering;
raining.

**ବିସ୍ରଂସା**—ସଂ. ବି ସ୍ତ୍ରୀ (ବି+ସ୍ରନ୍ସ୍ ଧାତୁ+ଅଧିକରଣ. ଅ+ସ୍ତ୍ରୀ. ଆ)—
Bisraṁsā ଜରା; ବାର୍ଦ୍ଧକ୍ୟ—Old age.
(ବିସ୍ରସା—ଅନ୍ୟରୂପ)

**ବିସ୍ରଂସିନୀ**—ସଂ.ବି-(ବି+ସ୍ରନ୍ସ୍ ଧାତୁ+ଇନ୍+ଈ)ଯୋନିରୋଗବିଶେଷ—
Bisraṁsini A vaginal disease.
ସଂ ବିଣ. ସ୍ତ୍ରୀ—ବିସ୍ରଂସୀର ସ୍ତ୍ରୀଲିଙ୍ଗ—Feminine of Bisraṁsi.

**ବିସ୍ରଂସୀ**—ସଂ. ବିଣ (ବିସ୍ରଂସିନ୍, ବି+ସ୍ରନ୍ସ୍ ଧାତୁ=ପତିତ ହେବା+
Bisraṁsī କର୍ତ୍ତୃ. ଇନ୍; ୧ମା. ୧ବ )—୧ । ପତନଶୀଳ—
1. Falling. ୨ । କ୍ଷରଣଶୀଳ—2. Oozing,
Having the smell of raw flesh.

**ବିସ୍ରଗନ୍ଧ**—ସଂ. ବିଣ ( ବହୁବ୍ରୀହି )-କଞ୍ଚା ମାଂସର ଗନ୍ଧଯୁକ୍ତ—
Bisra gandha Having the smell of raw flesh.
(ବିସ୍ରଗନ୍ଧା—ସ୍ତ୍ରୀ) ସଂ. ବି—୧ । ପିଆଜ (ହି. ଶ.)—1. Onion.
୨ । ଗୋଦନ୍ତୀ ହରିତାଳ—2. Yellow orpiment.

**ବିସ୍ରଗନ୍ଧା**—ସଂ. ବି ( ବହୁବ୍ରୀହି; ବିସ୍ର+ଗନ୍ଧ+ଆ )—୧ । ପିଆଜ
Bisragandhā ( ହି. ଶ. )—1. Onion. ୨ ।
ଗୋଦନ୍ତୀ ହରିତାଳ ( ହି. ଶ. )—2. Yellow
orpiment.

**ବିସ୍ରଗନ୍ଧି**—ସଂ. ବି (ବହୁବ୍ରୀହି, ବିସ୍ର=କଞ୍ଚା ମାଂସର ଗନ୍ଧ+ଗନ୍ଧ=ଆଘ୍ରାଣ
Bisragandhi +ଇ)—ଗୋଦନ୍ତୀ ହରିତାଳ—Yellow orpiment.

**ବିସ୍ରବଣ**—ସଂ. ବି ( ବି+ସ୍ରୁ ଧାତୁ+ଭାବ. ଅନ )—୧। କ୍ଷରଣ; ଝରିବା (ହି. ଶ)—1. Oozing. ୨। ବହିବା (ହି. ଶ.) 2. Flowing
Bisrabaṇa
(ବିସ୍ରବିତ—ବିଣ)

**ବିସ୍ରବାଇବା**—ଦେ (ପଦ୍ୟ) କ୍ରି—୧। ଦ୍ରବ କରିବା; ତରଳାଇବା—
Bisrabāibā 1. To melt. ୨। ଝରାଇବା—2 To cause to ooze or flow. (ଉ—ବିସ୍ରବାଇ ଓଷ୍ଠୁ ପିଅ ମଧୁର ମଧୁ—ଭଞ୍ଜ. ବୈଦେହୀଶବିଳାସ ।)
বিস্রবান बस्रबाना

**ବିସ୍ରବିବା**—ଦେ, କ୍ରି (ସଂ. ବି+ସ୍ରୁ ଧାତୁ; ବିସ୍ରବ)—୧। ସ୍ରବିବା; ଝରିବା—1. To ooze. ୨। ଦ୍ରବିବା—2. To melt.
Bisrabibā
বিস্রবা बस्रबना

**ବିସ୍ରମ୍ଭ**—ସଂ. ବି (ବି+ସ୍ରମ୍ଭ୍ ଧାତୁ=ବିଶ୍ୱାସ କରିବା+ଭାବ. ଅ)—
Bisrambha ୧। ବିଶ୍ରମ୍ଭ (ଦେଖ)—1. Bisrambha (See)
(ବିଶ୍ରମ୍ଭ—ଅନ୍ୟରୂପ) ୨। ବଧ; ହତ୍ୟା (ହି. ଶ.)—2. Slaughter; murder.

**ବିସ୍ରସ୍ତ**—ସଂ. ବିଣ ( ବି+ସ୍ରଂସ୍ ଧାତୁ=ପତିତହେବା+କର୍ତ୍ତୃ. ତ )—
Bisrasta ୧। ପତିତ—1. Fallen; dropped. ୨। ସ୍ୱସ୍ଥାନଚ୍ୟୁତ; ସ୍ଥାନଭ୍ରଷ୍ଟ-2 Dislocated; displaced. ୩। କ୍ଷରିତ—3 Oozed. ୪। ସ୍ଖଳିତ—4 Slipped. ୫। ପୁଣ୍ୟରୁ ବା ଧର୍ମମାର୍ଗରୁ ଚ୍ୟୁତ—5. Fallen from virtue. ୬। କାର୍ଯ୍ୟରୁ ଅପସୃତ—6. Dismissed from office.

**ବିସ୍ରୁତ**—ସଂ. ବି ( ବି+ସ୍ରୁ ଧାତୁ=ବହିଯିବା+କର୍ତ୍ତୃ. ତ )—
Bisruta ୧। ବିସ୍ତୃତ—I. Extended; spread. ୨। ପ୍ରବାହିତ—2. Flowing. ୩। କ୍ଷରିତ—3. Oozing. ୪। ସ୍ଥାନଚ୍ୟୁତ; ଭ୍ରଷ୍ଟ—4. Dislocated.

**ବିସ୍ରା**—ସଂ. ବି ( ବିସ୍ର+ଆ)—ଚର୍ବି (ହି. ଶ.)—Fat. ଦେ. ବି.
Bisrā ମଧ୍ୟଭାରତରେ ବିସ୍ରା ନାମକ ସ୍ଥାନର ପାହାଡ଼ରୁ ମିଳୁଥିବା ପଥର ଚୂନ ଓ ତହିଁ ସ୍ଥାନ—Bisra lime found in Bisra in C. P.

**ବିସ୍ରାବ**—ସଂ. ବି (ବି+ସ୍ରୁ ଧାତୁ ଣିଚ ସ୍ରାବ ଧାତୁ=ଗାଳିବା+କର୍ମ.
Bisrāba ଅ)—ପେଜ ( ହି. ଶ. )—Watery scum extracted from boiled rice.

**ବିହକ୍**-ଦେଦେ. ବିଣ—( ଫା. ବେହକ୍ )—ବେହକ; ଅନ୍ୟାୟ—
Bihak অন্যায় बेहक Wrong.

**ବିହକ**—ଦେ. ବିଣ ( ସଂ. ବିଧାୟକ ); ବିଧାନକର୍ତ୍ତା—Directing;
Bihaka prescribing. (ଉ—ବିହଙ୍ଗ ପୋଡ଼ାଏ, ବିହକ ପୁଣି ଏକାକୀ ପୀଡ଼ାଏ—ଭଞ୍ଜ. ବୈଦେହୀଶବିଳାସ ।)

**ବିହଗ(ଙ୍ଗ)**—ସଂ. ବି (ବିହାୟସ୍=ଆକାଶ+ଗମ୍ ଧାତୁ=ଗମନକରିବା
Bihaga(nga) +କର୍ତ୍ତୃ. ଅ, ନିପାତନସିଦ୍ଧ)—୧। ପକ୍ଷୀ—Bird ୨। ମେଘ—2 Cloud. ୩। ବାଣ—3. Arrow. ୪। ସୂର୍ଯ୍ୟ—4. The sun. ୫। ଚନ୍ଦ୍ର—5. The moon. ୬। ମହାଭାରତୋକ୍ତ ନାଗବିଶେଷ—6. Name of a mythological serpent.
(ବିହଙ୍ଗକ—ଅନ୍ୟରୂପ)
[ବିହଗୀ(ଙ୍ଗୀ)—ସ୍ତ୍ରୀ]

**ବିହଗ(ଙ୍ଗ)ବର**—ସଂ. ବି ( ୭ମୀ ତତ୍; ବିହଗ+ବର )—ପକ୍ଷିରାଜ;
Bihaga(ṅga)bara ଗରୁଡ଼—Garurda, the king of birds.
[ବିହଗ(ଙ୍ଗ)ରାଜ—ଅନ୍ୟରୂପ]

**ବିହଙ୍କୁଡ଼ୀ**—ପ୍ରାଦେ. (ଗଞ୍ଜାମ) ବି. (ଦେ.ବୃହତୀ; କୁଳୀ)—ଲଥ ବେଙ୍କୁଡ଼ୀ;
Bihaṅkurdī ଲତା ବେଏଁକୋଳି ( ଦେଖ )—Solanum Indicum (a creeper).

**ବିହଙ୍ଗମ**—ସଂ. ବି. ( ବିହାୟସ+ଗମ ଧାତୁ+କର୍ତ୍ତୃ. ଅ; ନିପାତନ)—
Bihaṅgama ବିହଗ (ଦେଖ)—Bihaga (See)
(ବିହଙ୍ଗମା—ସ୍ତ୍ରୀ)

**ବିହଙ୍ଗମା**—ସଂ. ବି. ସ୍ତ୍ରୀ. ( ବିହଙ୍ଗମ+ଆ )—୧। ମାଈ ଚଢ଼େଇ—
Bihaṅgamā 1. A female bird. ୨। ସୂର୍ଯ୍ୟଙ୍କର ଏକ ପ୍ରକାର କିରଣ (ହି. ଶ)—2. A kind of sun's rays. ୩। ବାହୁଙ୍ଗି; ଯେଉଁ ଦଣ୍ଡର ଦୁଇ ମୁଣ୍ଡରେ ଭାର ଲଟକା ଯାଇ ତାହା କାନ୍ଧରେ ବାହିତ ହୁଏ—3. A pole with slings hung at each end for carrying loads by the shoulder.

**ବିହଙ୍ଗିକା**—ସଂ. ବି. (ବିହଙ୍ଗ+କ+ସ୍ତ୍ରୀ. ଆ)—୧। ବାହୁଙ୍ଗି; ଭାର-
Bihaṅgikā ଦଣ୍ଡ—1. A pole with slings attached to both ends for carrying loads by the shoulder. ୨। ପକ୍ଷିଣୀ—2. A female bird.

**ବିହଡ଼**—ଦେ. ବିଣ. (ସଂ. ବିକଟ)—ବିକଟ—
Biharda बीहड Frightful.

**ବିହଡ଼ ନୃସିଂହ**—ଦେ. ବି. (ନାମ) ( ସଂ. ବିକଟ+ନୃସିଂହ )—
Biharda nrusiṁha ପୀତାମ୍ବର ଦାସଙ୍କ କୃତ ଓଡ଼ିଆ ନୃସିଂହ ପୁରାଣୋକ୍ତ ନୃସିଂହ (ବିଷ୍ଣୁଙ୍କ ଅବତାର)ଙ୍କର ମୂର୍ତ୍ତି ବିଶେଷର ନାମ—Name of one of the forms assumed by Bishṇu during his Nrusiṁha incarnation.

**ବିହ(ହୁ)ଡ଼ା**—ଦେ. ବି—ବେଉଡ଼ା; ବେଉଷଣ—Puddling oper-
Biha(hu)rdā ation in paddy fields.
মাঠে কাদাকরা, কাডান बिराहना, बिहियाना

**ବିହ(ହୁ)ଡ଼ିବା**—ଦେ. କ୍ରି—୧। ବେଉଡ଼ିବା (ଦେଖ)—1. Bourdibā
Biha(hu)rdibā (See) ୨। ହୁରୁଡ଼ିବା—2. To shy.
কাড়ান করা (ଉ—ମୋର ରୂପ ଦେଖି ବିହଡ଼ିଲେ ସବୁ ଗାଈ ।
बिराहना, बिहियाना ସାରଳା. ମହାଭାରତ. ଆଦ୍ୟ ।) ୩। ରୋଷାବିଷ୍ଟ ହେବା—3. To be enraged (ଉ—ବିହଡ଼ନ୍ତି ହିଡ଼ିମ୍ବରେ ମାରନ୍ତେ ଗରଷ୍ଟ । ସାରଳା. ମହାଭାରତ. ଆଦ୍ୟ)

**ବିହତ**—ସଂ. ବିଣ—(ବି+ହନ୍ ଧାତୁ=ବଧ କରିବା ଇତ୍ୟାଦି+କର୍ମ. ତ)
Bihata ୧। ବ୍ୟାହତ—1. Restrained; obstructed; repelled. ୨। ବିଫଳ—2. Frutile; fustrated; baffled. ୩। ଭଗ୍ନ—3 Broken.

ବିହତି—ସ. ବି—(ବି+ହନ୍ ଧାତୁ+ଭାବ.ତି)—୧ । ଭଙ୍ଗ—Being
Bihati split up, ୨ । ବିଘ୍ନ; ବ୍ୟାଘାତ—2. Obstruction. ୩ । ହତ୍ୟା—3. Murder. ୪ । ହିଂସା—4. Injuring. ୫ । (+କରଣ. ତି)—ତୁଳା ଧୁଣିବା ଧନୁ—5. Bow for carding cotton. ୬ । ବ୍ୟାହତି—6. Repulsion.

ବିହଦ୍ (ଦ୍)—ଦେଶ. ବିଣ—ବେହଦ୍ (ଦେଖ)
Bihad(dd) Behad (See)

ବିହ(ହା)ନ—ଦେ. ବି—(ସ. ବୀଜ ଧାନ୍ୟ; ସ. ବୀଜମ୍=ପ୍ରା. ବିଅନ)
Biha(hā)na ୧ । ଆଗାମୀ ବର୍ଷ ଲାଗିବା ଓଳିଆରେ ବନ୍ଧା ହୋଇ
বীচ ধান, বিহন ସଞ୍ଚିତ ହେବା ଶସ୍ୟ ବୀଜ—1. Corn-seeds
बीया, बिहन kept for the next year's sowing; seed grain; seed corn. [ଉ—ବିହନ ଭୋଜ୍ୟ ଘରେ ରଖି କ ଅଛନ୍ତି । କୃଷ୍ଣସିଂହ. ମହାଭାରତ ସଭା ।] [ଦ୍ର—ଅମଳ ହେବା ପରେ ଧାନରୁ ଯେଉଁ ଧାନ ମଞ୍ଜି ପାଇଁ ରଖା ଯାଏ, ତାକୁ ବିହନ ଓ ଯାହା ଖାଇବା ପାଇଁ ରଖା ଯାଏ ତାକୁ ଭୁଜ (ଭୋଜ୍ୟ) ଧାନ ବୋଲି ଯାଏ । ଧାନଗୁଡ଼ିକ ଉତ୍ତମରୂପେ ବାଛି' ସେଥିରୁ ଅନ୍ୟ ଜାତି ଶସ୍ୟ ଓ କଳୁଷ୍ଣ ଓ ଅଗାଡ଼ି ଧାନ ବାଛି ବିହନ ଧାନ କାଢ଼ିବାକୁ ହୁଏ । ଭୁଜ ଧାନ ପ୍ରତି ସେତେ ଯତ୍ନ ଆବଶ୍ୟକ ହୁଏ ନାହିଁ ।]
ডিম ୨ । ମାଛ ପେଟରେ ଥିବା ମଞ୍ଜି; ମାଛ ମଞ୍ଜି—2. Roe of
अंडा fish, spawn of fishes; seed fish. ୩ । (ସ.
বীজ ବୀଜ) ବୀର୍ଯ୍ୟ—3. Semen virile. ୪ । ବଂଶର ଆଦି
बीज ପୁରୁଷ—4. The progenitor of a family or race. [ଉ—ଗୋପାଳ କୁଳରେ ତୁମ୍ଭେ ବିହନ ହୋଇଲ । ପ୍ରାଚୀ. ଗୁରୁଭକ୍ତି ଗୀତା ] ୫ । (ସଂ. ବୀଜାଙ୍କୁର) ଧାନ ଗଛର ତଳି—5. Paddy seedling. ୬ । (ଲକ୍ଷଣାର୍ଥ) ମୂଳ; ଉତ୍ପତ୍ତି—6. Origin. ୭ । (ଲକ୍ଷଣାର୍ଥ) ମୂଳ କାରଣ—7. Root cause.

ବିହନ ଓଳିଆ—ଦେ. ବି—ଯେଉଁ ଓଳିଆରେ ବା କୁଟା ପୁଡ଼ାରେ ବୀଜ
Behana olia ଧାନ ସଞ୍ଚିତ ହୋଇ ରହେ ।
বীজ ধানের পুটলী Straw packets for storing
बिआकामोडीआ seed-grain.

ବିହନ ଛାଟିବା—ଦେ. କ୍ରି—କାଦୁଅ ଜମିରେ ବିହନ ବୁଣିବା—
Behāna chhātibā To sow or throw seeds in a
বীচ ছড়ান बिहन छाटना clayey field.

ବିହନ ଛାଡ଼ିବା—ଦେ. କ୍ରି—୧ । (ମାଛମାନେ) ଡିମ୍ବ ପ୍ରସବ କରିବା—
Bihana chhārdibā 1 (the fish) To bring forth
ডিমছড়া roe; to spawn. ୨ । କ୍ଷେତ୍ରରେ ମଞ୍ଜି ବୁଣିବା—
अंडा छेड़ना 2. To sow seeds in a field.
বীজ ছাড়ান ୩ । (ପୁରୁଷ ପକ୍ଷରେ) ସ୍ତ୍ରୀ ସହବାସ କରିବା; ସ୍ତ୍ରୀ
बिहन बोना ଗର୍ଭରେ ସହବାସଦ୍ୱାରା ରେତଃପାତ କରିବା—
ବିହନ ବୁଣିବା, ବିହନ ପକା(କେ)ଇବା } ଅନ୍ୟରୂପ 3 (said of a male) To have sexual intercourse with a woman; to impart semen into the womb. ୪ । ସ୍ତ୍ରୀକୁ ଗର୍ଭବତୀ କରିବା—4 To impregnate a woman

ବିହନ ବାନ୍ଧିବା—ଦେ. କ୍ରି.—ଆଗାମୀ ବର୍ଷ ପାଇଁ ଶସ୍ୟବୀଜ ସଞ୍ଚୟ
Bihana bāndhiba କରିବା—To store seed-grains
বীচিরাখা बिहन रखना for next year's sowing.
(ବିହନ ରଖିବା, ବିହନ ସାଇତିବା, ବିହନ ସଞ୍ଚାଇବା—ଅନ୍ୟରୂପ)

ବିହନ ଭୁଜ—ଦେ. ବି (ସମାହାର)—( ସ. ବୀଜଧାନ୍ୟ ଓ ଭୋଜ୍ୟ )—
Bihana bhuja ମଞ୍ଜିପାଇଁ ରଖାଯାଇଥିବା ଓ ଖାଇବାପାଇଁ
বীজধান ও খাবার ধান ସ୍ୱତନ୍ତ୍ର ରଖାଯାଇଥିବା ଧାନ—Paddy
बिहन और भोजनी kept separate for sowing and for domestic consumption. (ଉ—ଘରେ ବିହନ ଭୁଜ ରଖି ଧାନ ସବୁ ବିକିଦେଲ । ଫକୀରମୋହନ—ଗଳ୍ପସ୍ୱଳ୍ପ ।)

ବିହନଲଗା—ଦେ. ବିଣ (ସ. ବୀଜ+ଲଗ୍ନ)—ଯେଉଁ ମାଛଠାରେ ମଞ୍ଜି
Bihanalagā ଲାଗିଥାଏ; ଗର୍ଭବତୀ (ମାଛ)—Spawn (fish)
ডিমাওয়ালা ডিম ভরা अंडाजार spawner.

ବିହନ ଲାଗିବା—ଦେ. ବି—ମାଛଙ୍କଠାରେ ମଞ୍ଜି ସଞ୍ଚିତ ହେବା; ମାଛ
Bihana lāgibā ଗର୍ଭବତୀ ହେବା—1. The state of a
ডিমথাকা fish having roes in the belly. ୨ ।
अन्डाहोना (ସ୍ତ୍ରୀ) ଗର୍ଭବତୀ ହେବା—2. Becoming pregnant; pregnancy; conceiving.

ବିହନ୍ତା—ଦେ. ବି ( ସ. ବିଧାତା; ବିଧାନ କର୍ତ୍ତା )—ବିଧାତା—The
Bihantā Creator. ଦେ. ବିଣ—କାର୍ଯ୍ୟ ବିଧାନକାରୀ—
বিধাতা Creating; providing; provident.
बिधाई [ ଉ—ଭୁ ସଙ୍ଗ ବିହନ୍ତା ଈଶ୍ୱର, ଏ ତୋର ମାୟା ଖେଳ ଘର । ଜଗନ୍ନାଥ. ଭାଗବତ । ]

ବିହବ—ସ. ବି ( ବି+ହୁ ଧାତୁ+ଅଧିକରଣ ଅ )—୧ । ଯୁଦ୍ଧ ( ହୁ.
Bihaba ଣ )—1. War; fight. ୨ । ଯଜ୍ଞ (ହୁ. ଣ )—
2. Offering of ghee unto fire.

ବିହର—ସ. ବି ( ବି+ହୃ ଧାତୁ=ହରଣ କରିବା; କ୍ରୀଡ଼ା କରିବା+
Bihara ଭାବ. ଅ )—୧ । ବିହାର—1. Walking for sport. ୨ । କ୍ରୀଡ଼ା—2. Sport; play. ୩ । ବିୟୋଗ; ବିଚ୍ଛେଦ—3 Separation.

ବିହରଣ—ସ. ବି ( ବି+ହୃ ଧାତୁ=ହରଣ କରିବା ଇତ୍ୟାଦି+ଭାବ
Biharana ଅନ )—୧ । ବିହାର; କ୍ରୀଡ଼ା—1. Sport; play. ୨ । ଭ୍ରମଣ—2. Walking. ୩ । ବିୟୋଗ; ବିଚ୍ଛେଦ—3. Separation.

ବିହରା(ରେ)ଇବା—ଦେ. କ୍ରି ( ବିହରିବାର ଣିଜନ୍ତରୂପ )—ବିହାର
Biharā(re)ibā କରାଇବା—To cause to sport or
বিহরান walk. [ ଉ—ବନେ ଯେବେ ମୋତେ ବିହରାଇ
विहराना ରଖେ । ଉପେନ୍ଦ୍ର. ବୈଦେହୀଶବିଳାସ । ]

**ବିହରିତ**—ଦେ. ବିଣ—୧ । ଇତସ୍ତତଃ ଗମିତ—1. Moved to
Biharita and fro; waved. ୨ । ବିହାର କରୁଥିବା
—2. Sporting. ୩ । ତ୍ୟକ୍ତ—3. Given up,
[ ଉ—ବିହରିତ(୨) ବିଶେଷ ହୋଇଛନ୍ତି, ବିହରିତ
(୩) ବିବାଦେ ପ୍ରାଣ ସେ କରନ୍ତି । ଭଞ୍ଜ. ବୈଦେହୀଶବିଳାସ । ] ୪ । ଚତୁର୍ଦ୍ଦିଗରେ ଭ୍ରମଣ କରୁଥିବା—4.
Roaming; walking about. ଦେ. ବି·
( ସଂ. ବି+ହରିତ=ଦିଗ )—୧ । ଚତୁର୍ଦ୍ଦିଗ—1.
All sides. [ ଉ—ବିହରିତ ପୁନଃ ପୁନଃ କି ସୁଧା
ପିଇ ଚକୋର, ବିହରିତ ରେ ସେ ବହୁଛି ନଦୀ
ମନୋହର । ଭଞ୍ଜ. ବୈଦେହୀଶବିଳାସ । ] ୨ । ବିନାଶ
—2 Destruction; ruin.

**ବିହରିବା**—ଦେ (ପଦ୍ୟ) କ୍ରି ( ସଂ. ବିହାର )—୧ । ବିହାର କରିବା;
Biharibā କ୍ରୀଡ଼ା କରିବା; ବିଚରଣ କରିବା—1. To sport;
विहरना to walk about; to roam. [ ଉ—ନ ବିହର
ଗୋପ, ସଙ୍ଖାଳ ଏ ଯାଏ, ଗହନରେ ବିଚ୍ଛ ଦିନ । କଳସୂର୍ଯ୍ୟ-
ବିଶୋଗ୍ରକ୍ଷ୍ମ ଡ ଗୀତ । ] ୨ । ( ସଂ. ବି+ହୃ ଧାତୁ )
ଛେଦନ କରିବା; ହରଣ କରିବା—2. To cut; to
take away. [ ଉ—ବାଲି ନାକ ଶିରୀ ଦାନ ଯୋଗ୍ୟ
ଯୋଷାଙ୍କୁ, ବିହର କାନ ନ କର ଅଲଙ୍କାରକୁ । ଭଞ୍ଜ.
ବୈଦେହୀଶବିଳାସ । ] ୩ । କାଳ ହରଣ କରିବା—
3. To while away time; to pass time.
[ ଉ—ବନମାଳୀ କୃଷ୍ଣ ହରି, ବୋଲି ବିହର ଯେ ।
ଭଞ୍ଜ. ବୈଦେହୀଶବିଳାସ । ] ୪ । ଶେଷ କରିବା—
4. To end. [ ଉ—ବ୍ରହ୍ମାୟୁଷ; ବିହରିଲ୍ଲ କର
ନିଃଶ୍ୱାସକେ । ଭଞ୍ଜ. ବୈଦେହୀଶବିଳାସ । ]

**ବିହସନ**—ସଂ. ବି ( ବି+ହସ୍ ଧାତୁ=ହାସ୍ୟ କରିବା+ଭାବ ଅନ )—
Bihasana ମନ୍ଦହାସ୍ୟ କରିବା—Smiling.

**ବିହସନୀୟ**—ସଂ. ବିଣ ( ବି+ହସ୍ ଧାତୁ=ହାସ୍ୟ କରିବା+କର୍ମ
Bihasaniya ଅନୀୟ )—ହାସ୍ୟୋଦ୍ଦୀପକ—Ludicrous.

**ବିହସିତ**—ସଂ. ବି ( ବି+ହସ୍ ଧାତୁ=ହାସ୍ୟ କରିବା+ଭାବ ତ )—
Bihasita ମଧୁର ହାସ୍ୟ; ସ୍ମିତ—Sweet-smile; gentle
smile.

**ବିହ(ହି)ସ୍ତ**—ବୈଦେ. ବି (ଫା. ବିହସ୍ତ)—ସ୍ୱର୍ଗ—Heaven.
Biha(hi)st ବେହସ୍ତ विहिश्त

**ବିହସ୍ତ**—ସ. ବିଣ—(ବି=ବିନା+ହସ୍ତ=ହାତ)—୧ । ହସ୍ତହୀନ—
Bihasta 1. Armless. ୨ । ବ୍ୟାକୁଳ; ବ୍ୟସ୍ତ—2. Agita-
(ବିହସ୍ତା—ସ୍ତ୍ରୀ) ted. ୩ । ଉଦ୍ଭ୍ରାନ୍ତମନା—3. With the
mind confused. ୪ । କିଂକର୍ତ୍ତବ୍ୟବିମୂଢ଼—
4 Bewildered; perplexed. ସ ବି—ବିଦ୍ୱାନ୍
ବ୍ୟକ୍ତି; ପଣ୍ଡିତ—Learned man.

**ବିହସ୍ତିତ**—ସ. ବିଣ—(ବିହସ୍ତ+ଇତ; ଭୁଲ. ଦେଶଜ—ବ୍ୟସ୍ତ, ବ୍ୟସ୍ତିତ)
Bihastita ବ୍ୟାକୁଳ—Agitated.

**ବିହା**—ଗ୍ରା. ବି—(ହି ବିବାହ)—ବିବାହ—
Bihā ବିଏ ब्याह Marriage.

**ବିହାଇବା**—ଦେ କ୍ରି —(ବିହୁବାର ଣିଜନ୍ତରୂପ)-୧ । କରାଇବା; ବିଧାନ
Bihāibā କରାଇବା—1. To cause to be prescribed.
(ଉ —ବିହାଇ ସେତ, ପରେ ଦଳନ, ଗୁପତ ସମ୍ପୁଟିତ—
ଭଞ୍ଜ. ବୈଦେହୀଶବିଳାସ । )
୨ । ଅନ୍ୟଦ୍ୱାରା ରଚିତ କରାଇବା—2. To cause to
make.

**ବିହାଙ୍କୁର୍ଡ଼ି(ଲି)**—ଦେ. ବି—(ସ. ନାମ; ବୃହତୀ ଓ କୁଲୀ)—ବୃହତୀ;
Bihāṅkur̤di(li) ଲତା ବେଙ୍ଗକୋଳ (ଦେଶୀ)—Solanum
ব্যাকুড় बरहटा Indicum (creeper).

**ବିହାନ**—ପ୍ରାଦେ (ଉତ୍ତର ବାଲେଶ୍ୱର) ବି ( ଭୁଲ; ସ. ବୀଜଧାନ୍ୟ )—
Bihāna ଧାନଗଛର ଚାରା—Paddy seedlings.

**ବିହାୟସ୍(ସ)**—ସ. ବି—(ବି+ହା ଧାତୁ=ତ୍ୟାଗ କରିବା+ସଂଜ୍ଞାର୍ଥେ.
Bihāyas(sa) ଅସ୍; ଅଥବା ବି+ହାସ୍ଥି ଧାତୁ+ସଂଜ୍ଞାର୍ଥେ. ଅସ୍; ଅ)
୧ । ଆକାଶ—1. The sky. ୨ । ପକ୍ଷୀ—2. Bird.
(ଉ—ସାର ଉଦ୍ ଭଣୀ ଚରଣାୟୁଧ, ବିହାୟସେ ଭୁ ଖଡ଼ିଗ୍ର
ପ୍ରସିଦ୍ଧ । ଭଞ୍ଜ. ବୈଦେହୀଶବିଳାସ । ) ୩ । ଦାନ (ହ୍ର. ଶ)-
3. Bestowal; gift.

**ବିହାର**—ସଂ. ବି—(ବି+ହୃ ଧାତୁ =ହରଣ କରିବା; କ୍ରୀଡ଼ା କରିବା+
Bihāra ଭାବ. ଅ)—୧ । ମନକୁ ଖୁସି କରିବାପାଇଁ ଭ୍ରମଣ;
(ସାହାର —ଅନ୍ୟରୂପ) ହାଉଆ ଖାଇବା—1. Taking a
walk for pleasure; airing; stroll (Apte).
୨ । କ୍ରୀଡ଼ା—2. Recreation; sport; play. ୩ ।
ଉପଭୋଗ--3. Enjoyment. ୪ । କୌତୁକ; ଖେଳ —
4. Amusements; diversion. ୫ । ରତିକ୍ରୀଡ଼ା
(ହ୍ର. ଶ)—5. Copulation. ୬ । (ବି+ହୃ ଧାତୁ=
ହରଣ କରିବା+ଅଧି. ଅ)—କ୍ରୀଡ଼ା ସ୍ଥାନ—6. Place
of recreation; play ground. ୭ । ସଂଘାରାମ;
ବୌଦ୍ଧ ମଠ—7. A Buddistic monastery. ୮ ।
କ୍ରୀଡ଼ୋଦ୍ୟାନ—8. A pleasure garden; park
(Apte). ୯ । ପଦ କ୍ଷେପଣ—9. Tread; stepping
(Apte). ୧୦ । ହସ୍ତପଦାଦିର ଗମନ—10. Move-
ment of hands, feet etc (Apte). ୧୧ ।
ଦେବ ମନ୍ଦିର—11. A temple in general
(Apte). ୧୨ । ଇନ୍ଦ୍ର ଭବନ—12. The palace
of Indra (Apte). ୧୩ । (+କର୍ତ୍ତୃ. ଅ) ବିନ୍ଦୁରେଖକ
ପକ୍ଷୀ; ପକ୍ଷିବିଶେଷ—13. A kind of bird. ୧୪ ।
(+ଭାବ. ଅ) ପ୍ରସ୍ଫୁଟନ; ବିକଶନ; ବିସ୍ତାର—14. Open-
ing; expansion (Apte). ୧୫ । (ବି+ହୃ ଧାତୁ+
କରଣ. ଅ) ସ୍କନ୍ଧ—15. Shoulder. ୧୬ । (+
କର୍ମ ଅ) ଗଛର ଗଣ୍ଡି—16. The trunk of a
tree. ୧୭ । ଇନ୍ଦ୍ରଙ୍କ ପତାକା—17. The banner

of Indra (Apte). ଦେ. ବି—୧ । ମିଥିଳା ପ୍ରଦେଶ; ଆଧୁନିକ ଓଡ଼ିଶା ପ୍ରଦେଶର ଉତ୍ତରରେ ଥିବା ରାଜକୀୟ ଶାସନ ବିଭାଗ—1. Bihar (Province); modern name of ancient Mithilā. [ଦ୍ର—ବୌଦ୍ଧଯୁଗରେ ଏ ଅଞ୍ଚଳରେ ଅନେକ 'ବିହାର' ବା ବୌଦ୍ଧମଠ ଥିବାରୁ ଏଅଞ୍ଚଳର ନାମ 'ବିହାର' ହୋଇଅଛି । ଆଧୁନିକ ବିହାର ବା ପାଟନା ନଗରୀର ପ୍ରାଚୀନ ନାମ ପାଟଳୀପୁତ୍ର ବା ପୁଷ୍ପପୁର । ଏ ବିଭାଗ ପୂର୍ବେ ବଙ୍ଗପ୍ରଦେଶର ଅଧୀନ ଥିଲା । ବଙ୍ଗ ଦେଶରୁ ସ୍ୱତନ୍ତ୍ର ହୋଇ ଓଡିଶା ସଙ୍ଗେ ଏହା 'ବିହାର ଓଡ଼ିଶା' ପ୍ରଦେଶ ହୋଇଅଛି । ବର୍ତ୍ତମାନ ଅଳ୍ପଦିନେ ଓଡ଼ିଶା ସ୍ୱତନ୍ତ୍ରପ୍ରଦେଶ ହେବ ଏବଂ ବିହାର ଗୋଟିଏ ସ୍ୱତନ୍ତ୍ର ପ୍ରଦେଶର ନାମ ହେବ । ] ୨ । ବିହାର ପ୍ରଦେଶର ଏକ ଜିଲ୍ଲା ଓ ନଗର (ଏହା ପାଟଣା ଡିଭିଜନର ଅନ୍ତର୍ଗତ)—2. Name of a district and town in the Province of Bihar.

ବିହାର ଓଡ଼ିଶା—ଦେ. ବି—ବିହାର, ଛୋଟ ନାଗପୁର ଓ ଓଡ଼ିଶା ଏହି Bihāra orḍiśā ତିନି ବିଭାଗ ଦ୍ୱାରା ଗଠିତ ଏକ ଗଭର୍ଣ୍ଣରଙ୍କ বিহার উড়ীশা ଅଧୀନ ପ୍ରଦେଶ—The Province of Bihar बिहार उडीशा and Orissa. [ଦ୍ର—୧୯୩୪।୩୫ ସାଲରେ ପାର୍ଲିଆମେଣ୍ଟଙ୍କ ନିର୍ଦ୍ଧାରଣ ମତେ ଏ ପ୍ରଦେଶରୁ ଓଡ଼ିଶା ବାହାର ଯାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ା ହେବାରୁ ଏ ପ୍ରଦେଶର ବାକି ଅଂଶ ବିହାର ପ୍ରଦେଶ ହୋଇଅଛି । ]

ବିହାର କରିବା—ଦେ. କ୍ରି—କ୍ରୀଡ଼ା କରିବା; କେଳି କରିବା—Bihāra karibā To disport. [ ଉ—ସେ ନପାଚଟି বিহারকরা ରହି ସୁଖରେ ବିନ୍ଧର, ବିନ୍ଧସି ସଙ୍ଗତରେ କରନ୍ତି बिहार करना ବିହାର । କୃଷ୍ଣସିଂହ. ମହାଭାରତ ଆଦି । ]

ବିହାରସ୍ଥଳ—ସ. ବି (୬ଷ୍ଠୀ ତତ୍; ବିହାର+ସ୍ଥଳ)—କ୍ରୀଡ଼ାସ୍ଥଳ—Bihārasthaḷa Play ground.

ବିହାରିଆ—ଦେ, ବିଣ—ବିହାର ଦେଶୀୟ—Biharee. Bihāriā বিহারী बिहारी

ବିହାରିକା—ସ. ବି ( ବିହାର+କ+ଆ )—ମଠ—Bihārikā Convent ( Apte )

ବିହାରି କାୟ(ଏ)ସ୍ଥ(ଥ)—ଦେ. ବି—ବିହାର ପ୍ରଦେଶରୁ ଓଡ଼ିଶାକୁ ଆସି Bihāri kāya(e)stha(tha) ବହୁପୁରୁଷାବଧି ଉପନିବେଶ ସ୍ଥାପନ লালাকাএথ କରିଥିବା 'ଲାଲା' ଉପାଧିଧାରୀ କାୟସ୍ଥ ଜାତି—लालाकायेथ The Kāyasthas of Bihar who have been long domiciled in Orissa.

ବିହାରୀ—ସ. ବିଣ. ପୁଂ ( ବିହାରିନ୍; ବିହାର+ଅସ୍ତ୍ୟର୍ଥେ ଇନ୍ ୧ମା. Bihārī ୧ବ )—୧ । କ୍ରୀଡ଼ାକାରୀ—1. Sporting; (ବିହାରିଣୀ—ସ୍ତ୍ରୀ) amusing one's self. ୨ । ବିଳାସାର୍ଥ ଭ୍ରମଣକାରୀ—2. Walking for pleasure. [ ଉ—ଜୟ ଶ୍ରୀ ରାଧା ଚନ୍ଦ୍ରମୁଖୀଙ୍କ ବିହାରୀ, ଜୟ କଂସ କେଶୀ ମଲ୍ଲ ପ୍ରାଣହାରୀ । କୃଷ୍ଣସିଂହ. ମହାଭାରତ ବିରାଟ । ] ୩ । ବିହାର ପ୍ରଦେଶୀୟ—3. Pertaining to Bihar. ୪ । ମେଲା ହେଉଥିବା—5 Expanding ( Apte ) ୫ । ସୁନ୍ଦର—5. Lovely ( Apte ). ଦେ. ବି—୧ । ବିହାର ପ୍ରଦେଶବାସୀ ବ୍ୟକ୍ତି—1. A Biharee; a resident of Bihar. ୨ । ବିହାର ଅଞ୍ଚଳରେ ବ୍ୟବହୃତ ଭାଷା—2. The Biharee language. ୩ । ବ୍ୟକ୍ତି ବିଶେଷର ନାମ—3. Name given to males. ୪ । ବନବିହାରୀ, କୁଞ୍ଜବିହାରୀ ଇତ୍ୟାଦିଙ୍କ ଡାକ ନାମ—4. A name for calling Banabihāri etc.

ବିହାରୀଲାଲ୍ ପଣ୍ଡିତ—ଦେ ବି (ନାମ)—ଉତ୍କଳବାସୀ କାଶ୍ମୀରୀ ବ୍ରାହ୍ମଣ Bihārīlal paṇḍita ସ୍ୱର୍ଗୀୟ ଜମିଦାର—The late Bihrilal Pandit. [ ଦ୍ର—ଏ କଟକର ଜଣେ ବଡ଼ ଜମିଦାର ଥିଲେ; ଏ ବହୁବ୍ୟୟରେ ଓଡ଼ିଆରେ ବିଶଦ ଓ ବୃହଟ୍ଟୀକା ସମ୍ବଳିତ ଭଗବଦ୍‌ଗୀତା, ନିତ୍ୟକର୍ମ ପଦ୍ଧତି, ଆୟୁର୍ବେଦ ସଂଗ୍ରହ ନାମକ ଗ୍ରନ୍ଥମାନ ପଣ୍ଡିତମାନଙ୍କ ଦ୍ୱାରା ସଂକଳିତ ଓ ମୁଦ୍ରିତ କରାଇ ବିତରଣ କରିଥିଲେ । ]

ବିହାଲ୍—ବୈଦେ. ବିଣ—୧ । ବେହାଲ୍ ( ଦେଖ )—1, Behāl Bihāl ( See ) ୨ । ବିହ୍ୱଳ—2, Overwhelmed. बेहाल विहाल

ବିହାହା—ପ୍ରାଦେ ( ଉତ୍ତର ଭାଷା ) ବି—ବିବାହ—Bihawā Marriage.

ବିହାସ—ସ. ବି ( ବି+ହାସ )—ଈଷତ୍ ହାସ୍ୟ—Bihāsa Smile.

ବିହାସ୍ୟ—ସ. ବିଣ ( ବି+ହାସ୍ୟ )—ହସନୀୟ; ହାସ୍ୟାସ୍ପଦ—Bihāsa Laughable; rediculous.

ବିହି—ଦେ. ବି ( ସ. ବିଧି )—ବିଧାତା—Bihi বিধি विधि The Creator

ବିହିତ—ସ. ବିଣ ( ବି+ଧା ଧାତୁ=ଧାରଣ କରିବା+କର୍ମ କ୍ତ; ତୁଳ Bihita ପା. ବିହିତଭୂ=ଅତି ଉତ୍ତମ )—୧ । ଅନୁଷ୍ଠିତ—1, Started; founded, ୨ । କୃତ; ସମ୍ପାଦିତ—2, Done; performed; accomplished. ୩ । ଦତ୍ତ—3, Given, ୪ । ଉଚିତ; ବିଧେୟ; କର୍ତ୍ତବ୍ୟ; ଯୋଗ୍ୟ—4, Proper. ୫ । ଆବଶ୍ୟକ—5. Necessary. ୬ । କଥିତ—6, Spoken. ୭ । ବିଧିସଙ୍ଗତ—7. Conformable to rules; regular. ସଂ. ବି ( ବି+ଧା ଧାତୁ+ଭାବ କ୍ତ )—ବିଧାନ—Dispensation; rule; law, ଦେ. ବି ( ବି+ହିତ; ଯାହା ହିତ ନୁହେ ) ଅମଙ୍ଗଳ କର; ଅନିଷ୍ଟକାରକ—Injurious, [ ଉ—ବିହିତ ମଣି ଅମରହିତ ସେ ରୁଷିଲେ । ଭଞ୍ଜ. ବୈଦେହୀଶବିଳାସ । ]

ବିହିତ ସମ୍ମାନ—ସଂ. ବି ( କର୍ମଧା; ବିହିତ+ସମ୍ମାନ )—ଯଥାଯୋଗ୍ୟ Bihita sammāna ମର୍ଯ୍ୟାଦା—Due respect.

ବିହିତ ସମ୍ମାନ ପୁରଃସର ନିବେଦନମିଦଂ—(ସଂ ବାକ୍ୟାଂଶ )—ଭଦ୍ର ଓ Bihita sammāna puraḥsara nibedanamidaṁ ମାନ୍ୟ

(ବିହିତ ସମ୍ମାନପୂର୍ବକ ନିବେଦନମିଦଂ—ଅନ୍ୟରୂପ) ବ୍ୟକ୍ତିଙ୍କ ନିକଟକୁ ଲେଖିବା ପତ୍ରର ଆରମ୍ଭରେ ଏହି ପଦ ଲେଖାଯାଏ; ଏହାର ଅର୍ଥ—ପତ୍ର ଯାହାଙ୍କ ନିକଟକୁ ଲେଖାଯାଉ ଅଛି, ତାଙ୍କ ପ୍ରତି ଲେଖକଙ୍କର ଯେଉଁ ସମ୍ମାନ ଦେଖାଇବା ଉଚିତ ସେହି ସମ୍ମାନ ସହକାରେ ଏହି ନିବେଦନ (କରାଯାଉଅଛି)—A sentence written at the beginning of a letter to a respectable person; meaning,-I make this submission with due respect,

**ବିହିଦାନା**—ଦେ. ବି (ଫା ବିହ୍ଦାନା)—ପଶ୍ଚିମ ହିମାଳୟରେ ଓ ପଞ୍ଜାବରେ Bihidānā ଜନ୍ମିବା ବୃକ୍ଷବିଶେଷର ଞ୍ଜି—Quince seed. विहिदाना **विहीदाना** [ ଦ୍ର—ଏଥିର ଫଳ ଗ୍ରୀଷ୍ମକାଳରେ ପାଚେ; ସ୍ଥାନୀୟ ଲୋକେ ଏହା ଖାଆନ୍ତି । ଏହା ଆମଦେଶକୁ ଔଷଧ ପାଇଁ ଆସେ । ଏ ଗଛ ( Cydonia Vulgaris) କାବୁଲ ଓ ପେଶାବର ଅଞ୍ଚଳରେ ହୁଏ; ଏଥିର ଫଳ ପିଚୁଳ ପରି ଓ ସୁଖାଦ୍ୟ । ଏ ମଞ୍ଜିକୁ ପାଣିରେ ବତୁରାଇଲେ ତହିଁରୁ ଲାଳୁଆ ରସ ବାହାରେ ଓ ଲୋକେ ତାକୁ ସରବତ୍ କରି ପିଅନ୍ତି । ]

**ବିହିନେ**—ଦେ. (ପଦ୍ୟ) ଅ—(ସଂ. ବିନା; ଭୁଲ ସଂ. ବିହୀନ—ପରତ୍ୟକ୍ତ) Bihine विहने **बीन** ବିନା—Without.

**ବିହିବା**—ଦେ. (ପଦ୍ୟ) କ୍ରି—(ସଂ. ବି+ଧା—ଧାତୁ)—୧ । ବିଧାନ Bihibā କରିବା—To arrange. [ ଉ—ଦୋଷୀ ଦେଖି विहा **विहना** ପୁଣି, ନ ହେବାର ବିହୁଥିଲ ସ୍ୱସ୍ତି ବ୍ରମାରେ. ବ୍ରଧାନାଥ—ମହାଯାତ୍ରା ।] ୨ । ସମ୍ପାଦନ କରିବା—2, To do; to accomplish. [ ଉ—କଷ୍ଟେ ଦନ-କୃତ୍ୟ ବିହି ମହାଦେବୀ, ଦୁଃଖ ଭୁରି ବହି କଷ୍ଟେ, ବ୍ରଧାନାଥ ପାର୍ବତୀ ।] ୩ । ସୃଷ୍ଟି କରିବା—3. To create. ୪ । ନିୟମ ବାନ୍ଧିବା—4. To frame rule. ୫ । ନିର୍ମାଣ କରିବା—5. To build. [ଉ—ମାଧବେଶ୍ୱର କହିଲେ ମଣ୍ଡପ ବିହ—ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ୬ । ଘଟା-ଇବା—6. To bring about; to cause. [ଉ—ଭ୍ରମ ଯେଉଁରୂପେ କର୍ମୀର ପ୍ରାଣ ନାଶ, ବିହିଲେ ତା ମୋ ଆଗେ କର ତା ପ୍ରକାଶ । କୃଷ୍ଣସିଂହ, ମହାଭାରତ ବନ ।] ୭ । ଭାର ଦେବା; ନ୍ୟସ୍ତ କରିବା—7. To entrust. (ଉ—ଦ୍ୱାର ନିରୂପଣ ତାହାରେ ବିହିଲେ, ଜଗିଲା ସେକୁ ପାହାସ୍ତ । ଶିଶୁଶଙ୍କର—ଉଷାଅଭିଳାଷ ।) ୮ । ଆଚରଣ କରିବା—8. To practise. (ଉ—କଠୋର ତପସ୍ୟା ବିହି ରଥୀ ଭଗୀରଥ । ମଧୁସୂଦନ—ଋଷିଭାରସମତରଙ୍ଗ । ୯ । କହିବା—9. To speak. (ଉ—ବିହି ବିହିଲେ ଶୁଣି ତାଙ୍କ ଉକ୍ତି ବଚନ । ଭଞ୍ଜ ବୈଦେହୀଶ ବିଳାସ) । ୧୦ । ପଡ଼ିବା; ଘଟିବା—10. To befall. (ଉ—ଜଗସନ୍ଧ ପୂର୍ବରେ ସେବ ଉମାପତି, ତାଙ୍କ ବରେ ରାଜାଙ୍କ ବିହିଲା ବିପତ୍ତି । କୃଷ୍ଣସିଂହ—ମହାଭାରତ. ସଭା ।)

**ବିହି ବିଧାତା**—ଦେ. ବି (ଏକାର୍ଥ ସହଚର)—ବିଧାତା; ସୃଷ୍ଟିକର୍ତ୍ତା Bihi bidhata विधिविधाता **विधविधाता** The Creator.

**ବିହିସ୍ତ**—ବୈଦେ. ବି (ଫା) (ମୁସଲମାନଙ୍କ କଳ୍ପିତ) ସ୍ୱର୍ଗ—Heaven Bihist विहिस्त **विहश्त** (of the Mahomedans).

**ବିହୀନ**—ସଂ. ବିଣ—(ବି+ହା ଧାତୁ=ତ୍ୟାଗ କରିବା+କର୍ମ. ତ)—୧ । Bihīna ରହିତ—1. Bereft; destitute of. ୨ । ଅଭାବ-(ବିହୀନା—ସ୍ତ୍ରୀ) ଗ୍ରସ୍ତ—2. Wanting in; devoid of ୩ । ବର୍ଜିତ; ତ୍ୟକ୍ତ—3. Abandoned; deserted. [ ଦ୍ର—ହୀନ ଶବ୍ଦ ପରି ଏ ଶବ୍ଦ ମଧ୍ୟ ଅନ୍ୟ ଶବ୍ଦ ମାନଙ୍କ ସଙ୍ଗେ ଯୁକ୍ତହୋଇ ବ୍ୟବହୃତ ହୁଏ । ଯଥା—ଧନବିହୀନ ]

विहने **विहीन** ଦେ. କ୍ରି. ବିଣ—(ସଂ. ବିନା ) ବ୍ୟତୀତ; ବ୍ୟତି-ରେକେ; ଅଭାବରେ; ବିନା—Without. (ଉ—ବିସ୍ତାର କରି କହି, ତାରକ ଅନ୍ତ ନାହିଁ, ତାର ସାର ବିହୀନ । ଭଞ୍ଜ ବୈଦେହୀଶ ବିଳାସ ।)

**ବିହି(ହୁ)ନେ**—ଦେ. (ପଦ୍ୟ) ଅ (ସଂ. ବିନା)—୧ । ବିନା; ବ୍ୟତୀତ—Bihi(hu)ne Without. (ଉ—ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବ କାହା ପେନି । ଜଗନ୍ନାଥ ଭାଗବତ) । ୨ । ୨ । ଛଡ଼ା—2. Except.

**ବିହୁଡ଼ା**—(ଇତ୍ୟାଦି)—ଦେ. ବ.—ବେହୁଡ଼ା ଇତ୍ୟାଦି (ଦେଖ)—Bihurdā (etc) काड़ान **विहियाना** Beurdā etc (See)

**ବିହୁଡ଼ିବା**—ଦେ. କ୍ରି—ବେହୁଡ଼ିବା (ଦେଖ)—Bihurdibā काड़ानकरा **विहियाना** Beurdibā (See).

**ବିହୁନ**—ଗ୍ରା. ବିଣ—(ପ୍ରାଚୀନ ପଦ୍ୟ)—ବିହୀନ—Destitute of. Bihuna (ଉ—ଗୁଣ ବିହୁନ ସେହୁ ଯେବେ, ତଥାପି ନାନା ରୂପ ଲଭେ । ଜଗନ୍ନାଥ ଭାଗବତ ।

**ବିହୁନେ**—ଦେ. ଅ. (ସଂ. ବିନା)—ବିନା—Without. (ଉ—Bihune ଅନ୍ନ ବିହୁନେ ହଂସ ହାନି । ଯୋଗ ସାଧିବୁ କାହା ପେନି ଜଗନ୍ନାଥ ଭାଗବତ ।)

**ବିହୁଳିବା**—ପ୍ରାଦେ. (ଗଡ଼ଜାତ), କ୍ରି—(ସଂ. ବ୍ୟୂହ)—(ବହୁ ସଂଖ୍ୟକ Bihulibā ଗାଈ) ଚରିବାବେଳେ ଏଣେ ତେଣେ ଖେଳେଇ ହୋଇ ବୁଲିବା—To be scattered. (said of a herd of cows while grazing) ଦେ. କ୍ରି—(ସଂ. ବିତୁଲ) ୧ । ପ୍ରକାଶ କରିବା; ପ୍ରଚାର କରିବା—1. To publish. ୨ । ବାଣ୍ଟିବା—2. To distribute.

**ବିହୃତ**—ସଂ. ବି ( ବି+ହୃ ଧାତୁ=ହରଣ କରିବା+ଭାବ. ତ )—Bihṛuta ସ୍ତ୍ରୀମାନଙ୍କର ବିହାର ବା କ୍ରୀଡ଼ା ବିଶେଷ—A kind of female sport or game.

**ବିହୃତି**—ସଂ. ବି ( ବି+ହୃ ଧାତୁ=ହରଣ କରିବା+ଭାବ. ତି )—Bihṛuti ୧ । ବିହାର; କ୍ରୀଡ଼ା—1. Sport. ୨ । ଚୋରି; ହରଣ—2. Stealing; robbing ୩ । ଉଦ୍ଘାଟନ—3. Opening. ୪ । ବିସ୍ମୃତି—4. Oblivion.

**ବିହୃଦ**—ଦେ. ବି (ସଂ ଦୁର୍ହୃଦ)—ଶତ୍ରୁ—Enemy. Bihṛuda (ଉ—ଚନ୍ଦ୍ର ବିହୃଦ ପଣ ପୁଣ ବିହିଛି । ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।)

**ବିହେଠନ**—ସଂ. ବି. (ବି+ହେଠ୍ ଧାତୁ=ପୀଡ଼ନ କରିବା+ଭାବ. ଅନ)-Bihethana ୧ । ଆଘାତ କରଣ—1. Act of striking.

୨ । ବଧ କରଣ—2. Killing. ୩ । ମର୍ଦ୍ଦନ—3. 3. Rubbing; bruising. ୪ । ପ୍ରତାରଣା—4. Fraud; deception. ୫ । ଦୁଃଖ; ଯାତନା; କଷ୍ଟ—5. Trouble; pain; misery. ଦେ. ବିଣ—ଆନତ—Drooped; bent low. (ଉ—ବିହେଠନ ମୁଖ ପୟୋଧର ଶିଖ, ଦେଖି କେତେ ଯୋଗି ଉପମା । ଭଞ୍ଜ. ବୈଦେହୀଶ ବିଳାସ ।)

**ବିହ୍ନ**—ଗ୍ରାଦେ. ( ସମ୍ବଲପୁର)ବି (ସଂ. ବିରଣ ) ବି—ବଢ଼ଣି ମୂଠା ତିଆରି
Bihna କରିବାରେ ବ୍ୟବହୃତ ତୃଣ ବିଶେଷ—A kind of reed used in making broomsticks. [ଦ୍ର—ଏହାର ଫୁଲ ଗୋଛା ହୋଇ କାଣ୍ଡର ଅଗରେ ଲାଗିଥାଏ । ସେହି କାଣ୍ଡରୁ ଗୋଛାଏ ବାନ୍ଧି ବଢ଼ଣିମୁଠା କରାଯାଏ । ଏହାର କାଣ୍ଡ ଏ ଅଞ୍ଚଳ କାଇଁଶ ବା କାଶ ତୃଣର କାଣ୍ଡ ପରି ।]

**ବିହ୍ବ**—ଗ୍ରା.ବି. (ସଂ. ବ୍ୟୂହ)—ବ୍ୟୂହ; ସୈନ୍ୟ ରଚନା—Battle-array;
Bihwa disposition of the troops for fight. (ଉ—ଆପଣା ବିହ୍ବଦ୍ବାରେ ଲାଗିଣ ଏକ ଥିବ । ପୀତାମ୍ବର. ନୃସିଂହପୁରାଣ ।)

**ବିହ୍ବଳ**—ସଂ. ବିଣ. ପୁଂ ( ବି+ହ୍ବଳ୍ ଧାତୁ=କମ୍ପିବା+କର୍ତ୍ତୃ. ଅ )—
Bihwaḷa ୧ । ଶୋକାଦି ଦ୍ବାରା ଆର୍ତ୍ତ—1. Overcome
(ବିହ୍ବଳତା—ବି) with grief. ୨ । ଅଭିଭୂତ—2. Over-
(ବିହ୍ବଳା—ସ୍ତ୍ରୀ whelmed. ୩ । ଅଚେତନ; ବିଭୋଳ; ବିବଶ—3, Benumbed; turned senseless. ୪ । ଦ୍ରବୀଭୂତ. 4. Melted; liquefied. [ଦ୍ର—ଏହା ଅନ୍ୟ ଶବ୍ଦ ପରେ ସମାସରେ ଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ, ଯଥା—ଶୋକ ବିହ୍ବଳ, କ୍ରୋଧ ବିହ୍ବଳ, ଭୟ ବିହ୍ବଳ ।)

**ବିହ୍ବଳା(ଳେ)ଇବା**—ଦେ. (ପଦ୍ୟ) କ୍ରି. (ବିହ୍ବଳବାର ଣିଜନ୍ତ ରୂପ)—
Bihwaḷā(ḷe)ibā ୧ । ବିଚଳିତ କରାଇବା —1. To over-
**बिह्वलाना** whelm; to over power. ୨ । ବିମୋହିତ
बिह्वलान करना—2. To enchant. (ଉ—କଣ୍ଠକମ୍ବୁ କେତେ ମାତ୍ର, ବିହ୍ବଳାଇ ମୋର ଚିତ୍ତ । ଭଞ୍ଜ. ବୈଦେହୀଶବିଳାସ ।)

**ବିହ୍ବଳିତ**—ଗ୍ରା. ବିଣ (ସଂ. ବିହ୍ବଳ)—ବିହ୍ବଳ (ଦେଖ)
Bihwaḷita Bihwaḷa (See)

**ବିହ୍ବଳିବା**—ଦେ. (ପଦ୍ୟ) କ୍ରି (ସଂ. ବିହ୍ବଳ)—୧ । ବିଚଳିତ ହେବା—
Bihwaḷibā 1. To be overwhelmed. ୨ । ବିମୋହିତ
विह्वल होना ହେବା—2. To be enchanted. (ଉ—
**बिह्वलना** ବିହ୍ବଳିବ ନାହିଁ ପରା ମୋରେ ମାନସ । ଭଞ୍ଜ. ବୈଦେହୀଶ ବିଳାସ)

**ବୀ** (ଧାତୁ)—ସଂ – କ୍ଷେପଣ କରିବା—
Bī (root) To throw.

**ବୀ**—ସଂ. ବି. ସ୍ତ୍ରୀ – (ବି+ସ୍ତ୍ରୀ. ଈ)—ମାଈ ଚଢ଼େଇ; ପକ୍ଷିଣୀ—
Bi A female bird.

**ବୀଅର୍**—ବୈଦେ. ବି (ଇଂ, ବୀଅର୍)—ବିଲାତି ଅଳ୍ପ ମଦ୍ୟ ବିଶେଷ—
Bīar बियार **बीर सराप** Beer.
(ବୀଅର୍ ସରାପ୍—ଅନ୍ୟରୂପ)

**ବୀକ**—ସଂ. ବି (ଅକ୍ ଧାତୁ=ଗମନ କରିବା+ସଂଜ୍ଞାର୍ଥେ କ; ନିପାତନ—
Bīka ସିଦ୍ଧ)—୧ । ବାୟୁ; ପବନ—1. Wind; air. ୨ । ପକ୍ଷୀ—2. Bird.

**ବୀକାଶ**—ସଂ. ବି ( ବି+କାଶ୍ ଧାତୁ=ଦୀପ୍ତି ପାଇବା+ଭାବ. ଅ )—
Bikāśa ୧ । ବିକାଶ; ପ୍ରକାଶ—1. Manifestation; exhibition. ୨ । ଗୋପନ—2. Concealment; privacy. ୩ । ନିଭୃତ; ଏକାନ୍ତ ସ୍ଥାନ—3. Lonely place; loneliness.

**ବୀକ୍ଷକ**—ସଂ. ବିଣ ପୁଂ(ବି+ଈକ୍ଷ୍ ଧାତୁ=ଦେଖିବା+କର୍ତ୍ତୃ. ଅକ )—
Bīkshaka ୧ । ନିରୀକ୍ଷଣକାରୀ—1. Observing; preceiv-
(ବୀକ୍ଷିକା—ସ୍ତ୍ରୀ) ing; seeing. ୨ । ପରିଦର୍ଶନକାରୀ—2. Inspecting. ସଂ. ବି—ପରିଦର୍ଶକ ବ୍ୟକ୍ତି—Observer; visitor; inspectar.

**ବୀକ୍ଷଣ**—ସଂ. ବି ( ବି+ଈକ୍ଷ୍ ଧାତୁ= ଦେଖିବା+ଭାବ. ଅନ )—
Bīkshaṇa ୧ । ମନୋଯୋଗ ପୂର୍ବକ ଦେଖିବା ଓ ପରୀକ୍ଷା କରିବା—1. Examining very carefully; observation. ୨ । ନିରୀକ୍ଷଣ—2. Perceiving; beholding; seeing; viewing. ୩ । ପରିଦର୍ଶନ—3. Inspection. ୪ । ଭୋଗ ଦେବା ପୂର୍ବରୁ ଦେବତାଙ୍କୁ ଭୋଗ ହିଆଯିବା ବସ୍ତୁକୁ ମନୋଯୋଗ ସହିତ ଦେଖି ପରୀକ୍ଷା କରିବା—4. Carefully examining and observing a thing before it is offered to a Deity.

**ବୀକ୍ଷଣ ପ୍ରୋକ୍ଷଣ**—ସଂ. ବି (ସହଚର)-ଭୋଗ ଦେବାପୂର୍ବରୁ ଭୋଗ ହିଆଯିବା
Bhoga prokshaṇa ବସ୍ତୁକୁ ମନୋଯୋଗ ପୂର୍ବକ ଦେଖି ପରୀ କରି ବା ଓ ଶେଷରେ ତହିଁ ଉପରେ ପାଣି ଛିଞ୍ଚିବା—Inspection of an offering and then sprinkling water on it before it is offered to a Deity.

**ବୀକ୍ଷଣୀୟ**—ସଂ. ବିଣ (ବି+ଈକ୍ଷ୍ ଧାତୁ+କର୍ମ. ଅନୀୟ)—୧ । ଦର୍ଶନୀୟ—
Bīkshaṇīya 1. Visible. ୨ । ମନୋଯୋଗ ସହକାରେ ଦେଖିବାର ଯୋଗ୍ୟ—2. Observable. ୩ ।ସୁନ୍ଦର—3. Beautiful.

**ବୀକ୍ଷିତ**—ସଂ. ବି ( ବି+ଈକ୍ଷ୍ ଧାତୁ=ଦେଖିବା+କର୍ମ. ତ )—
Bīkshita ନିରୀକ୍ଷିତ—1 Viewed; inspected; examined. ସଂ. ବି. ( +ଭାବ. ତ)—ଦର୍ଶନ—Viewing; observing.

**ବୀକ୍ଷ୍ୟ**—ସଂ. ବିଣ ( ବି+ଈକ୍ଷ୍ ଧାତୁ=ଦେଖିବା+କର୍ମ. ଯ )—୧ ।
Bīkshya ଦର୍ଶନୀୟ—1. Visible; perceptible. ୨ । ସୁନ୍ଦର—2. Beautiful. ସଂ. ବି—୧ । ବିସ୍ମୟ—1. Wonder. ୨ । ନୃତ୍ୟ—2. Dancing. ୩ । ୫ । ଘୋଟକ—5 Horse, ୪ । ନର୍ତ୍ତକ—4. Dancer.

ବୀଚ୍ଳ(ଳୀ)—ସ. ବି (ବୀଚି+ଆଳୀ=ଶ୍ରେଣୀ )—ଶୁଖିଲା ଭୂଷା, ନଡ଼ା,
Bichāḻi(ḻī) ଘାସ ପ୍ରଭୃତି—Dry straw; hay.

ବୀଚି( ଚୀ )—ସ. ବି—( ବେ ଧାତୁ=ବୁଣିବା+କର୍ମ. ଇଚ )—
Bichi(chī) ୧ । ତରଙ୍ଗ; ଢେଉ—1. Wave. ୨ । କିରଣ; ଆଲୋକତରଙ୍ଗ—2. Ray; a wave of light. ୩ । ଦୀପ୍ତି-3. Lustre; radiance. ୪ । ଅବକାଶ—4. Leisure. ୫ । ଆନନ୍ଦ; ସୁଖ—5. Joy; pleasure; delight

ବୀଚି ତରଙ୍ଗ ନ୍ୟାୟ—ସ—ଯେଉଁପରି ଗୋଟିଏ ତରଙ୍ଗ ଅନ୍ୟତରଙ୍ଗ
Bichi taraṅga nyāya ଉତ୍ପାଦନ କରେ ଓ ତହିଁରୁ ପୁଣି ଅନ୍ୟ ତରଙ୍ଗ ଉତ୍ପନ୍ନ ହୁଏ, ସେହିପରି କୌଣସି ଗୋଟିଏ କଥାରୁ ଅନେକ କଥା ବାହାରିଲେ, ସେହି ସ୍ଥଳରେ ଏହି ନ୍ୟାୟ ପ୍ରଯୁକ୍ତ ହୁଏ—An analogy from one wave producing a succession of waves.

ବୀଚିତରଙ୍ଗବାଦ—ସ. ବି—(ଆଧୁନିକ ବିଜ୍ଞାନ )—'ଆଲୋକ ଓ ଧ୍ୱନି
Bichitaraṅgabāda ଆଦି ତରଙ୍ଗରୂପେ ଚାଳିତ ହୋଇ ଦୂରକୁ ଗମନ କରେ' ଏହି ବୈଜ୍ଞାନିକ ମତ—The scientific theory of propagation in waves (e. g. of ether, of light, of sound).

ବୀଚିବିକ୍ଷୁବ୍ଧ—ସ. ବିଣ—(ଷଷ୍ଠୀ ତତ୍; ବୀଚି+ବିକ୍ଷୁବ୍ଧ)-ତରଙ୍ଗାକୁଳିତ—
Bichibikshubdha Billowy; agitated by waves; lashed by waves.

(ବୀଚିବିକ୍ଷୋଭିତ—ଅନ୍ୟରୂପ; ବିଚିବିକ୍ଷୋଭ—ବିଶେଷ୍ୟ )

ବୀଚିମାଳା—ସ. ବି—(ଷଷ୍ଠୀ ତତ୍; ବୀଚି+ମାଳା)—ତରଙ୍ଗମାଳା; ତରଙ୍ଗ
Bichimāḻā ଉପରେ ବା ପରେ ଉଠିବା ତରଙ୍ଗମାନ—
(ବୀଚିଶ୍ରେଣୀ—ଅନ୍ୟରୂପ) 1. A succession of waves.

ବୀଚିମାଳୀ—ସ. ବି—( ବୀଚିମାଳା+ଅସ୍ତ୍ୟର୍ଥେ. ଇନ୍=ବୀଚିମାଳିନ୍;
Bichimāḻī ୧ମା. ୧ବ)—୧ । ସୂର୍ଯ୍ୟ—1. The sun. ୨ । ସମୁଦ୍ର—2. The sea.

ବୀଚୁ—ଦେ. ବି (ନାମ)—(ଆଦରାର୍ଥକ) ବିଚିତ୍ରାନନ୍ଦଙ୍କୁ ଡାକିବା ନାମ—
Bichu A name for calling Bichitrānanda.

**विचितिश्या** (ବିଚିଥ, ବିଚିତିଶ, ବିଚୁଥ—ଅନାଦରାର୍ଥକ ରୂପ)

ବୀଜ୍ (ଧାତୁ)—ସ—ବ୍ୟଜନ କରିବା; ବିଞ୍ଚିବା—
Bij (root) To fan.

ବୀଜ—ସ. ବି—(ବି=ବିବିଧରୂପେ+ଜନ୍ ଧାତୁ=ଜନ୍ମିବା+ଅ; ଇ=
Bija ଈ; କିମ୍ବା ବ୍ୟେ ଧାତୁ=ଆଚ୍ଛାଦନ କରିବା+ଭାବେ. କ୍ୱିପ୍; ବୀ=ଆଚ୍ଛାଦନ+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ—ଯାହା ମୃତ୍ତିକାଗର୍ଭରେ ଏକରୂପ ଓ ମୃତ୍ତିକା ଭେଦ କଲେ ଅନ୍ୟରୂପ, ଏହିପରି ବିବିଧରୂପ ଧାରଣ କରେ; କିମ୍ବା ଯାହା ମୃତ୍ତିକାଦ୍ୱାରା ଆଚ୍ଛାଦିତ ହେଲେ, ଅଙ୍କୁର ଉତ୍ପାଦନ କରେ)—୧ । ମଞ୍ଜି—1. Seed; germ. ୨ । ଆମ୍ୱଆଦି ଫଳର. ଟାକୁଆ—2. The stone inside some fruits (e. g. mango). ୩ । କୌଣସି ବସ୍ତୁର ମୂଳ କାରଣ; ମୂଳ; ହେତୁ—3. Origin; source; primary cause. ୪ । ତତ୍ତ୍ୱ—4. The first or underlying principle. ୫ । ବୀର୍ଯ୍ୟ; ଶୁକ୍ର—5. Semen virile. ୬ । ତେଜଃ—6. Vigour; spirit. ୭ । (ଗଣିତ) ଅବ୍ୟକ୍ତ ରାଶି—7, (mathematics) An unknown number or quantity; an algebraic quantity. ୮ । ମୂଳମନ୍ତ୍ର; ଦେବତାମାନଙ୍କର ମନ୍ତ୍ରର ନିର୍ଦ୍ଧାରିତ ମୌଳିକ ଅକ୍ଷର ବା ଅକ୍ଷରମାନ—8. A mystic syllable or letter which is considered as the essential element of the incantation of a particular Diety (Apte).
[ଦ୍ର-ଯଥା,ଶ୍ରୀକୃଷ୍ଣଙ୍କର ବୀଜମନ୍ତ୍ର 'କ୍ଳୀଂ',ଦୁର୍ଗାଙ୍କର ହ୍ରୀଂ, କ୍ରୀଂ, ଶ୍ରୀଂ ।]
୯ । ଗଜା; ଅଙ୍କୁର; ଗଜା—9. Sprout; seedling. ୧୦ । ଆଧାର—10. Receptacle. ୧୧ । ରତ୍ନ—11. Gem. ୧୨ । ବିହନ—12. Seed kept for sowing in the next season. ୧୩ । କୌଣସି ବିଷୟର ମୂଳ; ନଡ଼—13. The primary root or root cause or a thing. ୧୪ । ଫେଡ଼; ଭେଦ; କୌଣସି ବିଷୟ ବା ସମସ୍ୟାର ଗୁପ୍ତତତ୍ତ୍ୱ; ସୂତ୍ର—14 The clue or key to the solution of any problem. ୧୫ । କୌଣସି ଗଣିତ ପ୍ରଶ୍ନ ସମାଧା କରିବା ନିମନ୍ତେ କଳ୍ପିତବ୍ୟ ମୂଳ ସଂଖ୍ୟା ବା ପିଣ୍ଡ—15. A token number for the solution of a mathematical problem. ୧୬ । ମଜ୍ଜା—16. Marrow (Apte). ୧୭ । ନାଟକର, ଉପନ୍ୟାସର ବା ଗଳ୍ପର ଉପାଖ୍ୟାନର ଉତ୍ପାଦକ ଘଟନା—17. The germ or seed of the plot of a play or story (Apte) ୧୮ । ବୀଜଗଣିତ—18. Algebra ( Apte ). ୧୯ । ଟଭ୍ରଗଛ—19. The citron tree ( Apte ). ୨୦ । ସାଧାରଣଙ୍କ ଅବୋଧ୍ୟ ଭାବପୂର୍ଣ୍ଣ ସାଙ୍କେତିକ ଶବ୍ଦ ବା ଅକ୍ଷର ( ହି. ଶ )—20. An abbreviated letter or word to indicate certain matters.

ବୀଜକ—ସ. ବି ( ବୀଜ+ପୂର୍ଣ୍ଣାର୍ଥେ. କ )—୧ । ବୀଜପୂର, ଟଭ୍ର—
Bījaka 1. Citron ( tree and fruit ). ୨ । ସନ୍ତାନ ଜନନ ସମୟରେ ଶିଶୁର ଦୁଇ ହାତ ମଧ୍ୟରେ ମୁଣ୍ଡ ରହିଯାଇ ପ୍ରସବ ଦ୍ୱାରରେ ବାହାରିବା ଅବସ୍ଥା ( ହି. ଶ )—2 The position of the head between the arms of a child, coming aganist the vaginal door at its birth. ୩ । ( +ସ୍ୱାର୍ଥେ. କ ) ମଞ୍ଜି—3. Seed. ୪ । ସୂଚୀ; ତାଲିକା (ହି. ଶ)—4. Index; list. ୫ । ପୋତା ଧନ ସଙ୍ଗେ ରଖାଯିବା ତାଲିକା ( ହି. ଶ )—5. A list of the hoarded wealth kept along with the buried treasure. ୬ । ପଣ୍ୟଦ୍ରବ୍ୟକୁ କ୍ରେତାଙ୍କ ନିକଟକୁ ପଠାଇବା ବେଳେ ବିକ୍ରେତା କ୍ରେତାଙ୍କଠାରୁ ମାଲ୍‌ମାନଙ୍କର ବିବରଣ ଓ ମୂଲ୍ୟ

ଆଦି ଲେଖି ଯେଉଁ ତାଲିକା ପଠାନ୍ତି ( ହି. ଶ )—6. Invoice accompanying the articles sent to a purchaser by the vendor. ୭ । ଅସନ ଗଛ ( ହି. ଶ )—7. Buchanania Latifolia (tree).

**ବୀଜକୃତ**—ସଂ. ବି (ବୀଜ+କୃତ)—ବାଜୀକରଣ ( ହି. ଶ ) ( ଦେଖ )
Bijakruta Bājikaraṇa ( See )

**ବୀଜ କୋଶ(ଷ)**—ସଂ. ବି ( ୬ଷ୍ଠୀ ତତ୍; ବୀଜ+କୋଶ=ଆଧାର )—
Bija kośa(sha) ୧ । ଯେଉଁ ପାତ୍ରରେ ମଞ୍ଜି ଆଦି ରଖାଯାଏ—(ବୀଜାଧାର—ଅନ୍ୟରୂପ) 1. A receptacle for storing seeds. ୨ । ପୁଷ୍ପାଦିର ଯେଉଁ ଅଂଶରେ ବୀଜ ଥାଏ—2. The seed-vessel of a flower. ୩ । ଲେମ୍ବୁ, ପଣସ ଆଦି ଫଳର କୋଷା—3. The seed-vessels or pods of orange and some other fruit; pericarp ୪ । ଜୀବର ଅଣ୍ଡକୋଷ—4. Testicle. ୫ । କଇଁଫୁଲର ବା ପଦ୍ମଫୁଲର ଯେଉଁ ପାତ୍ରାକୃତି ଅଂଶ ମଧ୍ୟରେ ମଞ୍ଜି ଥାଏ—5. The seed-vessel of lotus, water-lily etc.

**ବୀଜ ଖଇଚ୍ଛା**—ଦେ. ବିଣ—ବୁଣା ହେବା ସମୟରେ ଯେଉଁ ଫସଲର ବା
Bija kaichhā ଗଛର ମଞ୍ଜି ନିକୃଷ୍ଟ ଥାଏ—(trees or plants) Germinating from inferior seeds.

**ବୀଜ ଖ(ଖେ)ଚ(ଚ୍ଚ)ଡ଼(ଡ଼ା)**—ଦେ. ବିଣ, ପୁଂ—(ଗାଳି)—(ସଂ. ବୀଜ+
Bija kha(khe)cha(chcha)rḍa(rḍā) ଖଚ୍ଚର=ପୁଂଶ୍ଚଳ, खचर, तिवखचव ବା ଖେସର=ଘୋଡ଼ା ଓ ଗଧ ମିଶା ଜୀବ)—୧ । **खचरा; बीजखचर** ଅତି ଦୁଷ୍ଟ; ଖଚଡ଼; ନଷ୍ଟ ଚରିତ୍ର—1. Very wicked; wanton; dissolute; depraved.

ବୀଜ ଖ(ଖେ)ଚ(ଚ୍ଚ)ଡ଼(ଡ଼ା)
ବୀଜ(ଜି) ଖେ(ଖ)ଚ(ଚ)ଡ଼ିଆ } ଅନ୍ୟରୂପ
ବୀଜ(ଜି)ଖେଚେଡ଼ା

୨ । ଜାରଜ—2. Bastard

ବୀଜ(ଜି) ଖଚ(ଚ୍ଚ)ଡ଼ୀ
ବୀଜ(ଜି) ଖେଚ(ଚ୍ଚ)ଡ଼ୀ } ସ୍ତ୍ରୀ

୩ । ଦୁଷ୍ଟ ପିତାମାତାଙ୍କଠାରୁ ଉତ୍ପନ୍ନ ହେବା (ବୀଜ[ଜି] ଖ[ଖେ]ଚ[ଚ୍ଚ]ଡ଼ାମି[ମି]—ବିଶେଷ୍ୟ) ଯୋଗୁଁ ଦୁଷ୍ଟ; ପୁରୁଷାନୁକ୍ରମେ ଦୁଷ୍ଟ ବା ଖଳ—3. One who has inherited wickedness from his parents. ୪ । ବେଶ୍ୟାପୁତ୍ର—4. Whoreson. ୫ । ଯେଉଁ ଫସଲ ନାନାମିଶ୍ରିତ ବା ନୀରସ ମଞ୍ଜିରୁ ଉତ୍ପନ୍ନ ହୋଇଥାଏ—5. (plant or tree) Raised from mixed or inferior seeds. [ ଦ୍ର—କୌଣସି ଗଛର ମଞ୍ଜି ଖରାପ ବା ମିଶା ଥିଲେ ସେ ଗଛ ଯେପରି ଭଲ ହୁଏ ନାହିଁ, ସେହିପରି ଜାରଜ ସନ୍ତାନ ଜନ୍ମରୁ ଦୁଷ୍ଟ ହୁଏ ।]

**ବୀଜ ଖଲାସ(ସି)କରିବା**—ଦେ. କ୍ରି ( ସଂ. ବୀଜ+ଆ. ଖଲାସ୍ )—ସ୍ତ୍ରୀ
Bija khalāsa(si)karibā ସଙ୍ଗମାଦିଦ୍ୱାରା ଆପଣାର ରେତଃପାତ କରିବା—To dicharge one's semen after coition.
बीज खालास कवा
**बीज खलास करना**

**ବୀଜଗଣିତ**—ସଂ. ବି ( ମ. ପ. ଲୋ; ବୀଜ[=ଅବ୍ୟକ୍ତ ରାଶି] ବିଷୟକ
Bijagaṇita ଗଣିତ )—ଅବ୍ୟକ୍ତ ରାଶି ସମ୍ବନ୍ଧୀୟ ସମସ୍ୟା ସାଧନରୂପ ଗଣିତଶାସ୍ତ୍ର; ଅଙ୍କଶାସ୍ତ୍ରର ଅନ୍ତର୍ଗତ ଶାସ୍ତ୍ରବିଶେଷ—Algebra. [ ଦ୍ର—ଏଥିରେ ଅବ୍ୟକ୍ତ ସଂଖ୍ୟା ବା ରାଶିମାନଙ୍କୁ ବର୍ଣ୍ଣମାଳାର ଅକ୍ଷରରୂପେ ଲେଖି କେତେଗୁଡ଼ିଏ ସାଙ୍କେତିକ ଚିହ୍ନ ବ୍ୟବହାରପୂର୍ବକ ଗାଣିତିକ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ।

ଯଥା—$\frac{କ}{ଖ}+\frac{ଗ}{ଖ}+\frac{ଘ}{ଖ}=\frac{କ+ଗ+ଘ}{ଖ}$, ଏହିପରି ଅକ୍ଷରମାନଙ୍କଦ୍ୱାରା କାଳ୍ପନିକ ଗଣନା ଓ ସମସ୍ୟାମାନ ସାଧିତ ହୁଏ । ]

**ବୀଜ ଗର୍ଭ**—ସଂ. ବି ( ବହୁବ୍ରୀହି )—ପଟୋଳ ( ହି. ଶ ) ( ଦେଖ )
Bija garbha Paṭoḷa ( See )

**ବୀଜଗୁପ୍ତି**—ସଂ. ବି(ବହୁବ୍ରୀହି)—୧ । ଶିମ୍ବ—1. Kidney bean.
Bijagupti ୨ । ଛୁଇଁ—2. Pod; legume. ୩ । ଭୁଷି—3. Chaff.

**ବୀଜ ଛାଡ଼ିବା**—ଦେ. କ୍ରି—ଯୋନି ମଧ୍ୟରେ ବୀର୍ଯ୍ୟ ପାତନ କରିବା—
Bija chhāḍibā To discharge one's semen into the female organ after-coition.
बीज छाड़ा **बीजा गिराना**
(ବୀଜ ଢାଳିବା, ବୀଜ ଝାଳିବା, ବୀଜ ପକେଇବା—ଅନ୍ୟରୂପ)

**ବୀଜତାଡ଼(ର)କ**—ଦେ. ବି ( ସଂ. ବୃଦ୍ଧଦାରକ )—ବୃଦ୍ଧଦାରକ (ଦେଖ)
Bijatāḍa(ra)ka Bṛuddhadāraka ( See )
बीजताड़क **विधारा**

**ବୀଜଦାତା**—ସଂ. ବି ପୁଂ (ବୀଜ+ଦାତୃ)—ସନ୍ତାନର ପ୍ରକୃତ ଜନକକାରକ
Bijadātā ପିତା; ଯେଉଁ ବ୍ୟକ୍ତି ସ୍ତ୍ରୀ ଗର୍ଭରେ ସନ୍ତାନଜନନାର୍ଥ ବୀର୍ଯ୍ୟ ସ୍ଥାପନ କରିଥାଏ; ପିତା; ଜନକ—The begetter or progenetor of a child. [ ଦ୍ର—କୌଣସି ପୁରୁଷ ମୃତ, ବନ୍ଧ୍ୟ ବା କ୍ଲୀବ ହେଲେ ତାଙ୍କ ପତ୍ନୀଙ୍କଠାରେ ଅନ୍ୟ ପୁରୁଷ ବୀଜଦାତା ରୂପରେ ସନ୍ତାନ ଉତ୍ପାଦନ କରି ତାଙ୍କ କୁଳ ରକ୍ଷା କରିବାର ବିଧାନ ହିନ୍ଦୁଶାସ୍ତ୍ରରେ ଅଛି ଏହିପରି ସନ୍ତାନଙ୍କୁ କ୍ଷେତ୍ରଜ ସନ୍ତାନ କୁହାଯାଏ । ]

**ବୀଜଧାନ୍ୟ**—ସଂ. ବି ( ମ. ପ. ଲୋ, ବୀଜରୂପେ ବ୍ୟବହୃତ ବା ଅଭିପ୍ରେତ
Bijadhānya ଧାନ୍ୟ )—୧ । ଧାନର ବିହନ—1. Seed-grains of paddy. ୨ । ଧାନଗଛର ତଳି—2. Seedlings of paddy.

**ବୀଜନ**—ସଂ. ବି ( ବି+ଅଜ୍ ଧାତୁ=କ୍ଷେପଣ କରିବା ବା ବ୍ୟଜ୍ ଧାତୁ
Bijana +ଭାବ. ଅନ )—୧ । ବ୍ୟଜନ; ବିଞ୍ଚିବା—1. Fanning. ୨ । ( +କରଣ. ଅନ ) ପଙ୍ଖା; ବିଞ୍ଚଣା—2. A fan. ୩ । ଚାମର—3. A chowrie fan. ୪ । (କର୍ତ୍ତୃ. ଅନ) ଚକ୍ରବାକ; ଚକୁଆ ଚଢ଼େଇ—4. The ruddy goose; Anas Casarca.

**ବୀଜ ପୁରୁଷ**—ସଂ. ବି—୧ । ବଂଶର ପ୍ରଥମ ପୁରୁଷ; ଆଦିପୁରୁଷ; ଗୋତ୍ର-
Bija purusha ପ୍ରବର୍ତ୍ତକ ବ୍ୟକ୍ତି—1. The progonitor

or source of a family. ବଂଶର ପ୍ରଧାନ ବ୍ୟକ୍ତି; ପରିବାରର କର୍ତ୍ତା—2. The headman of a family.

ବୀଜପୁଷ୍ପ—ସ. ବି ( ବହୁବ୍ରୀହି )—୧ । ମରୁବକ; ମରୁଆ ଗୁଳ୍ମ—Bija pushpa 1. Sweet Marjoram ( plant ). ୨ । ମଦନ ବୃକ୍ଷ; ମଦଣ ଗଛ—2. The Bushy Gardenia (tree).

ବୀଜପୂର—ସ. ବି (ବୀଜ+ପୂର=ଯାହା ପରିପୂର୍ଣ୍ଣ ହୁଏ)—ଟାଭ ଲେମ୍ବୁ—Bijapūra Citron; Citrus Medica. (ବୀଜପଲକ, ବୀଜପୂର୍ଣ୍ଣ— ଅନ୍ୟରୂପ)

ବୀଜପେଶିକା—ସ. ବି—ଅଣ୍ଡକୋଷ (ହି. ଶ.)—Bijapesikā Testicle.

ବୀଜ ବପନ—ସ. ବି (୬ଷ୍ଠୀ ତତ୍; ବୀଜ+ବପନ=ବୁଣିବା)—ମଞ୍ଜି ବୁଣା—Bija bapana The sowing of seeds.

ବୀଜବାପୀ—ସ. ବିଣ ଓ ବି. ପୁଂ(ବୀଜ+ବପ୍ ଧାତୁ=ବୁଣିବା+କର୍ତ୍ତୃ.ଇନ୍; Bijabāpi ବୀଜବାପିନ୍, ୧ମା. ୧ବ )—ଯେ ମଞ୍ଜି ବୁଣେ The sower of seeds; sowing seeds.

ବୀଜ ମନ୍ତ୍ର—ସ. ବି (ବୀଜ+ମନ୍ତ୍ର)—କୌଣସି ଦେବତାଙ୍କର ମନ୍ତ୍ର ପୂର୍ବେ Bija mantra ଉଚ୍ଚାରିତ ହେବା କଳ୍ପସ୍ଥ ଅକ୍ଷରବିଶିଷ୍ଟ ସାଙ୍କେତିକ ମନ୍ତ୍ର—Mystic letter or letters or syllable or syllables pronounced before uttering a mantra of a particular Deity. ଦେ.ବି—୧ । ଗୁରୁ ଶିଷ୍ୟର କାନରେ ଯେଉଁ ମନ୍ତ୍ର ଫୁଙ୍କନ୍ତି; ଦୀକ୍ଷା ମନ୍ତ୍ର—1. The mystic formula which the spiritual preceptor whispers into the ear of the disciple at the initiation. ୨ । (ଲକ୍ଷଣାର୍ଥ) ଗୋପ୍ୟ; ଭେଦ; କୌଣସି ବିଷୟର ରହସ୍ୟ—2. The clue to a matter.

ବୀଜ ମାତୃକା—ସ. ବି. ସ୍ତ୍ରୀ ( ବୀଜ+ମାତୃକା=ଜନନୀ )—ପଦ୍ମବୀଜ—Bija mātrukā The seed of lotus.

ବୀଜ ରକ୍ଷଣ—ସ. ବି (୬ଷ୍ଠୀ ତତ୍ ବୀଜ+ରକ୍ଷଣ)—ବିହନ ସାଇତିବା—Bija rakshaṇa Storing of seeds for next sowing. (ବୀଜସ୍ଥାପନ, ବୀଜସଞ୍ଚୟ, ବୀଜସଂରକ୍ଷଣ—ଅନ୍ୟରୂପ)

ବୀଜରୁହ—ସ. ବି ( ବୀଜ+ରୁହ=ଯେ ଜନ୍ମେ )—ଧାନ ଆଦି ଶସ୍ୟ—Bijaruha Corn.

ବୀଜରେଚକ(ନ)—ସ. ବି ( ବହୁବ୍ରୀହି )—ଜୟପାଳ ( ହି. ଶ. )—Bijarechaka(na) Croton. ( ବୀଜାଖ୍ୟ—ଅନ୍ୟରୂପ )

ବୀଜ ରୋପଣ—ସ. ବି (୬ଷ୍ଠୀ ତତ୍;ବୀଜ+ରୋପଣ)—ଚଳ ରୋଇବା—Bija ropaṇa The planting of seedlings.

ବୀଜଲ—ସ. ବିଣ (ବୀଜ+ବାହୁଲ୍ୟାର୍ଥେ ଲ)—ବୀଜବହୁଳ; ମଞ୍ଜିଆ—Bijala Full of seeds; seedy.

ବୀଜସାର—ସ. ବି—ବାଇ ବିଡ଼ଙ୍ଗ (ହି. ଶ.) (ଦେଖ) Bijasāra Bāibirdanga (See)

ବୀଜସାଲ—ସ. ବି—ପିଆସାଳ (ଦେଖ) Bijasāla Piyāsāla (See).

ବୀଜସୂ—ସ. ବି (ବୀଜ+ସୂ ଧାତୁ=ପ୍ରସବକରିବା+କର୍ତ୍ତୃ. କ୍ୱିପ୍)—Bijasū ପୃଥିବୀ—The earth.

ବୀଜା—ପ୍ରାଦେ (ସାମନ୍ତୀ) ବି (ସ. ବୀଜସାଲ)—ପିଆସାଳ (ଦେଖ) Bija Piyāsāla (See).

ବୀଜାଙ୍କୁର—ସ. ବି ( ବୀଜ+ଅଙ୍କୁର )—ମଞ୍ଜିରୁ ବାହାରିବା ଗଜା—Bijānkura Seedling; sprout coming out of a seed.

ବୀଜାଙ୍କୁର ନ୍ୟାୟ—ସ—ସୃଷ୍ଟିରେ ଆଗ ବୀଜ ଜାତ ହେଲା କି ଆଗ Bijānkura nyāya ଅଙ୍କୁର ଜାତ ହେଲା, ଏହା ନିରୂପଣ ( ବୀଜାଙ୍କୁର ପ୍ରବାହ ନ୍ୟାୟ— ଅନ୍ୟରୂପ ) କରିବା ଅସମ୍ଭବ; ସୁତରାଂ ବୀଜାଙ୍କୁରପ୍ରବାହ ଅନାଦି; ଏହିପରି ନ୍ୟାୟ—The theory of corelation of the seed and the sprout in the creation (whether in the beginning the seed came from the tree or the tree from the seed).

ବୀଜାଙ୍କୁର ପ୍ରବାହ—ସ. ବି—ବୀଜରୁ ଅଙ୍କୁର ଜାତ ହେବା, ପୁଣି ସେ Bijānkura prabāha ଅଙ୍କୁର ବଢ଼ିକରି ଗଛ ହୋଇ ଫୁଲ ଫଳ ଧରି ତହିଁରୁ ବୀଜ ଜାତ ହେବା, ପୁଣି ତାକୁ ବୀଜରୁ ଅଙ୍କୁର ହେବା, ଏହିପରି ଧାରାବାହିକ ସୃଷ୍ଟିସ୍ରୋତ—The corelation of the seed and the sprout in the creation in succession.

ବୀଜାଧାର—ସ. ବି (୬ଷ୍ଠୀ ତତ୍; ବୀଜ+ଆଧାର)—ବୀଜକୋଷ—Bijādhāra Seed vessel

ବୀଜିତ—ସ. ବିଣ ( ବି+ଅଜ୍ ଧାତୁ = ବ୍ୟଜନ କରିବା + କର୍ମ Bijita ତ )—ଯାହାକୁ ବିଞ୍ଚା ଯାଇଥାଏ; କୃତବ୍ୟଜନ—Fanned.

ବୀଜିକା(କି)ଟି(ଡି)ଆ—ଦେ. ବିଣ—(ସ. ବିରକ୍ତ, କର, ବିକଟ, ବିକୃତ Bijika(ki)ṭi(ṭi)ā ୧ । ବିରକ୍ତ କର—1. Annoying. ବିତିକିଚ୍ଛି ঘিঘিত ୨ । ବିକଟ—2. Fierce. ୩ । କୁତ୍ସିତ—3. Ugly. ୪ । ବିକୃତ—4. Deformed.

[ ବୀଜକଟା(ଡା), ବୀରକା(କି)ଟ(ଢ଼)ଆ—ଅନ୍ୟରୂପ ]

[ବୀଜକଟି(ଟା), ବୀଜକଟେ(ଟେ)ଇ, ବିରକଟେ(ଟେ)ଇ—ସ୍ତ୍ରୀ]

ବୀଜ ରି)କା(କି)ଟା(ଡା,ଟେ,ଟେ)ଇବା—ଦେ. କ୍ରି—(ସ. ବିକଟୀକରଣ) Biji(ri)kā(ki)ṭā(ṭā,ṭe,ṭe)iba ବିରକ୍ତାଇବା (ଦେଖ)—সিটকান বিচিত্রকরনা Bich-kiṭāibā (See)

ବିଜ(ରି)କା(କି)ଟି(ଡି)ବା—ଦେ. କ୍ରି—୧ । (ସ. ବିକଟ) ବିକଟ ହେବା—Biji(ri)kā(ki)ṭi(ṭi)ba 1. To become hideous. ୨ । (ସ. ବିକୃତ) ବିକୃତ ହେବା—2. To deteriorate. ୩ । ବିରକ୍ତ ହେବା—3. To show signs of displeasure; to be sullen.

ବୀଜୀ—ସ. ବି. ପୁଂ—(ବୀଜ=ଶୁକ୍ର, ବୀର୍ଯ୍ୟ+ଅସ୍ତ୍ୟର୍ଥେ ଇନ୍)—୧ । ପିତା Biji ଜନକ—1. Father; begettor. ୨ । ବୀଜ ପୁରୁଷ (ଦେଖ)—2. Bija purusha (See). ୩ ।

ଲେଉଟିଆ ଶାଗ (ହ୍ର.ଶ)—3. A kind of pot-herb.
ସଂ. ବିଣ—୧ । ଔରସ ଜାତ—1. Begotten of one's loins. ୨ । ବୀଜମୟ—2. Full of seeds.

ବୀଜୋଦକ—ସଂ. ବି—(ବହୁବ୍ରୀହି; ବୀଜ=କାରଣ+ଉଦକ=ଜଳ)—
Bījodaka
କରକା; କୁଆପଥର—Hailstone.

ବୀଜ୍ୟ—ସଂ. ବିଣ—(ବୀଜ+ଜାତାର୍ଥେ ଯ)—୧ । ବଂଶ ସମ୍ଭୂତ—1.
Bījya
Born of a family. ୨ । ବୀଜ ସମ୍ଭୂତ—2. Grown from a seed. ୩ । (ବୀଜ୍ ଧାତୁ+କର୍ମ ଯ) ବ୍ୟଜନ ଯୋଗ୍ୟ; ଯାହାକୁ ବିଞ୍ଚାଯିବା ଉଚିତ—3. Requiring or deserving to be fanned. ୪ । ବୁଣିବା ଯୋଗ୍ୟ (ହ୍ର; ଶ)—4. Fit to be sown.

ବୀଜ୍ୟମାନ—ସଂ. ବିଣ ପୁଂ-(ବୀଜ୍ ଧାତୁ+କର୍ମ ଆନ)—ଯାହାକୁ ଅନ୍ୟଲୋକ
Bījyamāna
ପଙ୍ଖା ଆଦି ଦ୍ୱାରା ବିଞ୍ଚୁଥାଏ—Being fanned by another.
(ବୀଜ୍ୟମାନା—ସ୍ତ୍ରୀ)

ବୀଟ—ସଂ. ବି—(ବୈଦ୍ୟକ)—ବିଛୁଆତି (ବଳେରକୃଷ୍ଣ ଦ୍ରବ୍ୟଗୁଣ)—
Bīṭa
The stinging nettle.

ବୀଟା—ଦେ. ବି—ପେଣ୍ଡୁ—Ball. (ଉ—ସେ ବୀଟା ଆଣିବାକୁ ସମସ୍ତ
Bīṭā
ଗେନ୍ଦ
କୁମରେ, ଯତ୍ନ କଲେ ଛଡ଼ା ହୋଇଣ କୂପ ଠାବେ । କୃଷ୍ଣସିଂହ ମହାଭାରତ ଆଦି) । ସଂ. ବି. ପ୍ରାଚୀନକାଳର ଏକ ପ୍ରକାର ଖେଳ, ଯହିଁରେ ପିଲ୍ଲମାନେ କାଠର ଦଣ୍ଡ (ବାଟ) ଓ ଧାତୁର ଗୋଲକ (ବଲ୍) ବ୍ୟବହାର କରୁଥିଲେ (ହ୍ର. ଶ)—A kind of game practised in ancient India in which a wooden bat and a metal ball was used.

ବୀଟିକା—ସଂ. ବି. ସ୍ତ୍ରୀ—(ବ+ଇଟ୍ ଧାତୁ=ଯିବା+କର୍ତ୍ତୃ ଅକ+ସ୍ତ୍ରୀ ଆ)—
Bīṭikā
୧ । ବିଡ଼ିଆ; ପାନଖିଲ; ଗୁଆ ମସଲା ଆଦି ଦ୍ୱାରା ସଜ୍ଜିତ-ପାନ—1. A roll of betel leaf enclosing sliced betel-nut, spices etc.
(ବୀଟ, ବୀଟୀ—ଅନ୍ୟରୂପ)
(ଉ—ବୀଟିକା ନାଗବଲ୍ଲୀର ଭୁଞ୍ଜଇ—ଭଞ୍ଜ ବୈଦେହୀଶ ବିଳାସ) । ୨ । ଗୁଛାଏ ପାନ ପତ୍ରର ବିଡ଼ା—2. A bundle of betel leaves. ୩ । (+ଭାବ ଅକ+ଆ)—ବନ୍ଧନ—3. Binding.

ବୀଡ଼—ସଂ. ବି—(ବୈଦ୍ୟକ)—ବିଛୁଆତି (ବଳେରକୃଷ୍ଣ ଦ୍ରବ୍ୟଗୁଣ)—
Bīrḍa
The stinging nettle.

ବୀଣା—ସଂ. ବି. ସ୍ତ୍ରୀ—(ବୀ ଧାତୁ=କ୍ଷେପଣ କରିବା+କର୍ତ୍ତୃ ନ+ସ୍ତ୍ରୀ ଆ)—
Bīṇā
୧ । ସପ୍ତ ତନ୍ତ୍ରି-ବିଶିଷ୍ଟ ବାଦ୍ୟଯନ୍ତ୍ରବିଶେଷ—1. Harp; lyre; a seven-stringed musical instrument [ଦ୍ର—ଏହା ଅତି ପ୍ରାଚୀନ କାଳରେ ହିନ୍ଦୁମାନଙ୍କର ଯନ୍ତ୍ର ରୂପେ ବ୍ୟବହୃତ ହେଉଥିଲା । ସରସ୍ୱତୀଙ୍କର ଏହା ଅତି ପ୍ରିୟ । ନାରଦ ମଧ୍ୟ ଏହା ବ୍ୟବହାର କରୁଥିଲେ । ଏଥିରେ ୩ ଠାରୁ ୭ ପର୍ଯ୍ୟନ୍ତ ତାର ଥିଲା । ଏହା ନାନାପ୍ରକାର, ଯଥା—ବିତନ୍ତ୍ରୀ, କଚ୍ଛପୀ, ବିପଞ୍ଚୀ, ରଞ୍ଜନୀ, ରୁଦ୍ର, ନାଦେଶ୍ୱର, ଶାରଙ୍ଗୀ ଓ କଣ୍ଟୋ(ଣ୍ଡୋ)ଲ । ବାଉଁଶ ବା କାଷ୍ଠ ଦଣ୍ଡର ଉଭୟ ପାର୍ଶ୍ୱରେ ଦୁଇଟି ଲାଉ ସଂଯୋଜିତ ହୋଇଥାଏ, ଏଥିରେ ଗ୍ରନ୍ଥିମାନଙ୍କ ଦ୍ୱାରା ସଂଯତ ଲୁହାର ଓ ପିତଳର ତାର ମାନ ଲାଗିଥାଏ । ସୀତାର, ଇସରାଜ୍, ବେହେଲା କେନେରା ଆଦି ଏହି ବୀଣାର ବଂଶଧର ।
ଅନ୍ୟ ସଂ. ନାମ ବଲ୍ଲକୀ, ପରିବାଦିନୀ, ଧ୍ୱନିମାଳା, ବର୍ଣ୍ଣମଞ୍ଜୀ, ଘୋଷବତୀ, କଣ୍ଠ କୂଣିକା

ପୁରାଣ ମାନଙ୍କରେ ଭିନ୍ନ ଭିନ୍ନ ବୀଣାଧାରୀମାନଙ୍କର ବୀଣାର ଭିନ୍ନ ଭିନ୍ନ ନାମ ଅଛି, ଯଥା ମହାଦେବଙ୍କ ବୀଣାର ନାମ ଲମ୍ବୀ, ସରସ୍ୱତୀଙ୍କ ବୀଣାର ନାମ କଚ୍ଛପୀ, ନାରଦଙ୍କ ବୀଣାର ମହତୀ, ଓ ତୁମ୍ବୁରଙ୍କ ବୀଣାର ନାମ କଳାବତୀ ।] ୨ । ବିଦ୍ୟୁତ୍—2. Lightning. ( ଉ—ବୀଣା ପ୍ରଭାରେ । ଅନା ତୋଳାକୁ ଖେଳାଇ । ଭଞ୍ଜ, ବୈଦେହୀଶ-ବିଳାସ ।

ବୀଣାକ—ସଂ. ବି—(ବୀଣା+ସ୍ୱାର୍ଥେ. କ)—ବୀଣା—
Bīṇāka
Harp; lyre.

ବୀଣାକର—ସଂ. ବୀଣ ପୁଂ—(ବୀଣା+କର)-ବୀଣା ଧରିଥିବା (ବ୍ୟକ୍ତି)—
Bīṇākara
(a person) Holding a harp. ସଂ. ବି—(ବୀଣାକରୀ—ସ୍ତ୍ରୀ) ଉପପଦ ତତ୍; ବୀଣା+କୃ ଧାତୁ+କର୍ତ୍ତୃ. ଅ)—ଯେଉଁ ବ୍ୟକ୍ତି ବୀଣା ତିଆରି କରେ—The manufacturer or maker of harps. ଦେ. ବି-ବୀଣାବାଦକ-A player on the harp.
बीनकार बीणाकार

ବୀଣାକାର—ସଂ. ବିଣ—( ବହୁବ୍ରୀହି; ବୀଣା+ଆକାର )—ବୀଣାପରି
Bīṇākāra
ଆକାର ବିଶିଷ୍ଟ—Lyre-shaped.
(ବୀଣାକୃତ—ଅନ୍ୟରୂପ) ଦେ. ବି—( ସଂ. ବୀଣାକର )—ଯେ ବୀଣା ବଜାଏ—A musician playing on the harp.
बीनकार
बीणाकार

ବୀଣାଦଣ୍ଡ—ସଂ. ବି—(୬ଷ୍ଠୀ ତତ୍; ବୀଣା+ଦଣ୍ଡ)—ବୀଣାର ଦୁଇ ମୁଣ୍ଡରେ
Bīṇādaṇḍa
ଥିବା ଦୁଇ ତୁମ୍ବୀକୁ ସଂଯୁକ୍ତ କରିଥିବା ଦଣ୍ଡ—The bar of a lyre.
(ବୀଣାପ୍ରବାଳ—ଅନ୍ୟ ରୂପ)

ବୀଣା ଧ୍ୱନି—ସଂ. ବି—(୬ଷ୍ଠୀ ତତ୍; ବୀଣା+ଧ୍ୱନି)—୧ । ବୀଣାବାଦନର
Bīṇā dhwani
ଶବ୍ଦ—1. The twang or tune or melody of a harp. (ଉ—ପଞ୍ଚମସ୍ୱରସରେ ଭ୍ରମରମଣୀ, ବୀଣାଧ୍ୱନି ଶୁଣି ଏଣୀନୟନା । ମଧୁସୂଦନ କବିତାବଳୀ ।) ୨ । ବୀଣାଧ୍ୱନିପରି ମଧୁର ଶବ୍ଦ-2. Melodious tune; a tune as sweet as that of the harp. ସଂ. ବିଣ—(ବହୁବ୍ରୀହି) ଯାହାର କଣ୍ଠସ୍ୱର ବୀଣାର ଧ୍ୱନିପରି ମଧୁର—Having a very sweet or melodious tone; sweet-toned.
(ବୀଣାସ୍ୱର—ଅନ୍ୟରୂପ)

ବୀଣାନିନ୍ଦିତ—ସଂ. ବିଣ—( ବହୁବ୍ରୀହି; ବୀଣା+ନିନ୍ଦିତ )—ବୀଣାଧ୍ୱନିଠାରୁ
Bīṇānindita
ଉତ୍କୃଷ୍ଟତର ବା ମଧୁରତର ( ସ୍ୱର )—Sweeter or more melodious than the melody of a lute.
ବୀଣାବିନିନ୍ଦିତ, ବୀଣାଲଞ୍ଛିତ, ବୀଣାନିନ୍ଦୀ } ଅନ୍ୟରୂପ

**ବୀଣା ପରି ହେବା**—ଦେ. କ୍ରି—୧ । (କୌଣସି ବ୍ୟକ୍ତିର ସ୍ୱର) ବୀଣାର
Bīṇā pari hebā ସ୍ୱରପରି ମଧୁର ହେବା—1. (a person's
**বীণার মতন হওয়া** tone) To be melodious like the
**वीनकासा होना** tune of a harp. ୨ । ଥଣ୍ଡି ହେତୁରୁ
( ଗଳାର ସ୍ୱର ) ଅନୁନାସିକ ଉଚ୍ଚାରଣଯୁକ୍ତ ହେବା—
2. To have a nasal or twanging sound due to catarrh.

**ବୀଣାପାଣି**—ସଂ. ବିଣ—( ବହୁବ୍ରୀହି, ବୀଣା + ପାଣି )—ଯେ ହାତରେ
Bīṇāpāṇi ବୀଣା ଧରଥାଏ—Holding a lute. ସଂ. ବି. ପୁଂ
ନାରଦ ମୁନି—Sage Nārada. ସଂ. ବି. ସ୍ତ୍ରୀ-ସରସ୍ୱତୀ—
The Goddess of learning. [ ଉ—ଦେବୀ
ବୀଣାପାଣି ! କେଉଁ ତପଫଳେ, ତୋ କରୁଣା ଉଣା ଏ ଯାକ
ହୋଇଲେ । ରାଧାନାଥ ଚଳକା । ]

**ବୀଣା ପୁସ୍ତକ**—ସଂ. ବି—(ଦ୍ୱନ୍ଦ୍ୱ; ବୀଣା + ପୁସ୍ତକ)—ସରସ୍ୱତୀଙ୍କର ଏକ
Bīṇā pustaka ହାତରେ ଥିବା ବୀଣା ଓ ଅନ୍ୟ ହାତରେ
ଥିବା ବେଦପୁସ୍ତକ—The lyre, held in one
hand, and the book, the Beda, held in
the other, by Goddess Saraswatī.

**ବୀଣା ବଜା(ଜେ)ଇବା**—ଦେ. କ୍ରି—(ସଂ. ବୀଣା ବାଦନ )—ବୀଣାଯନ୍ତ୍ର
Bīṇā bajā(je)ibā ବାଦନ କରିବା—To play on the
বীণাবাজান **बीनबजाना** (ବୀଣା ବାଇବା—ଅନ୍ୟରୂପ) harp.

**ବୀଣା ବାଦକ**—ସଂ. ବିଣ ଓ ବି. ପୁଂ—( ବୀଣା + ବାଦକ )—ଯେ ବୀଣା
Bīṇā bādaka ବଜାଏ—A player on the harp; play-
(ବୀଣାବାଦ—ଅନ୍ୟରୂପ) ing on the harp.
[ବୀଣାବାଦିକା—ସ୍ତ୍ରୀ]

**ବୀଣା ବାଦନ**—ସଂ ବି—(ଷଷ୍ଠୀ ତତ୍, ବୀଣା + ବାଦନ)-ବୀଣା ବଜାଇବା-
Bīṇā bādana Playing on the harp.

**ବୀଣାସ୍ୟ**—ସଂ. ବି—[ବୀଣା + ଆସ୍ୟ = ମୁଖ (ମୂର୍ତ୍ତି)]—ନାରଦ ମୁନି—
Bīṇāsya Sage Nārada. [ ଦ୍ର—କଥିତ ଅଛି ଯେ ନାରଦ
ଏ ଯନ୍ତ୍ରକୁ ପୃଥିବୀରେ ଚଳାଇଥିଲେ ।]

**ବୀଣା ହସ୍ତ**—ସଂ. ବି. ପୁଂ (ବହୁବ୍ରୀହି)—ବୀଣାଧାରୀ—
Bīṇā hasta Holding a lute.
(ବୀଣାହସ୍ତା—ସ୍ତ୍ରୀ) ସଂ. ବି—ଶିବ; ମହାଦେବ—Siba.

**ବୀତ**—ସଂ. ବିଣ ( ବି + ଇ ଧାତୁ = ଗମନ କରିବା; ତ୍ୟାଗ କରିବା
Bīta ଇତ୍ୟାଦି + କର୍ତ୍ତୃ. ତ )—୧ । ବିଗତ; ଅପଗତ—
1. Gone; departed. ୨ । ଅତୀତ—2 Past.
୩ । ପରିତ୍ୟକ୍ତ—3. Abandoned. ୪ । ମୁକ୍ତ—
4. Freed. ୫ । ବନ୍ଧନ ମୁକ୍ତ—5. Delivered. ୬ ।
ଶାନ୍ତ—6. Satiated; alleviated ୭ । ନିବୃତ୍ତ—
7. Ceased. ୮ । ସମାପ୍ତ—8. Finished. ୯ । ସୁନ୍ଦର
(ଶ୍ଳୋ. ଶ)—9. Graceful. [ଦ୍ର—ସାଧାରଣତଃ ଏହା ଅନ୍ୟ
ବିଶେଷ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—ବୀତଶୋକ
ବୀତଭୟ, ବୀତରାଗ । ] ସଂ. ବି. (+ କର୍ମ. ତ)—୧ ।
ଯୁଦ୍ଧ କାର୍ଯ୍ୟ ପାଇଁ ଅକର୍ମଣ୍ୟ ଗଜ, ଅଶ୍ୱ ଓ ସୈନ୍ୟ—
1. Elephant, horse or soldier which has
become unfit for active service in war.
୨ । (ବି ଧାତୁ + ଭାବ. ତ) (ହସ୍ତୀକୁ) ପଦ ଓ ଅଙ୍କୁଶ
ଦ୍ୱାରା ଆଘାତ କରିବା—2. Striking an elephant
with the feet and the goad ୩ । (+ କର୍ମ. ତ)
ଗୋଚାରଣ ସ୍ଥାନ; ଗୋଚର—3. Pasturage; grazing ground

**ବୀତଂସ**—ସଂ. ବି (ବି + ତନ୍ସ ଧାତୁ = ଭୂଷିତ କରିବା + କରଣ. ଅ)—
Bītaṁsa ୧ । ବନ୍ୟ ମୃଗାଦି ଜୀବଙ୍କୁ ଓ ପକ୍ଷୀଙ୍କୁ ଧରିବାର ଫାଶ—
1. Snare to catch wild birds and animals.
୨ । ମୃଗ ଓ ପକ୍ଷୀମାନଙ୍କର ବିଶ୍ୱାସ ଜନ୍ମାଇବା ପାଇଁ
ଆବରଣ—2. A cover or ambush laid for
catching wild animals. ୩ । ପଶୁ ପକ୍ଷୀଙ୍କୁ ଆବଦ୍ଧ
କରି ରଖିବାର ପଞ୍ଜୁରୀ—3. A cage for keeping
birds and beasts. ୪ । ଅଳଙ୍କାର ବିଶେଷ—4. A
kind of ornament.

**ବୀତନ**—ସଂ. ବି. (ବି + ଇ ଧାତୁ = ଗମନ କରିବା ଇତ୍ୟାଦି + ତନ)—
Bītana ଗଳଦେଶର ପାର୍ଶ୍ୱଦ୍ୱୟ; ବେକର ବଗଲ—The sides
of the neck.

**ବୀତ ଭୟ**—ସଂ. ବିଣ. ପୁଂ ( ବହୁବ୍ରୀହି; ବୀତ = ବିଗତ + ଭୟ )—
Bīta bhaya ଭୟରହିତ; ନିର୍ଭୟ—Fearless. ସଂ. ବି
(ବୀତଭୟା—ସ୍ତ୍ରୀ) —ବିଷ୍ଣୁ—Bishṇu.

**ବୀତ ମଳ**—ସଂ. ବିଣ. ପୁଂ ( ବହୁବ୍ରୀହି, ବୀତ = ବିଗତ + ମଳ = ପାପଆଦି,
Bīta mala ଯାହାଠାରୁ )—୧ । ନିର୍ମଳ; ବିମଳ—1. Clear;
(ବୀତମଳା—ସ୍ତ୍ରୀ) pure. ୨ । ନିଷ୍ପାପ—2 Sinless. ୩ ।
ଅକଳଙ୍କ—3. Spotless. ୪ । ଜୋଲାପଦ୍ୱାରା ଯାହା
ଦେହରୁ ମଳଯାକ ବାହାରି ଯାଇଅଛି—4. One whose
intestines have been cleared by evacuation; purged of stools.

**ବୀତ ରାଗ**—ସଂ. ବିଣ. ପୁଂ ( ବହୁବ୍ରୀହି; ବୀତ = ବିଗତ + ରାଗ = ଅନୁରାଗ
Bīta rāga ସ୍ପୃହା)—୧ । ବିରାଗୀ—1. One who has
(ବୀତରାଗା—ସ୍ତ୍ରୀ) renounced worldly aspirations.
୨ । ବୀତସ୍ପୃହ; ନିସ୍ପୃହ—2. Free from passion
or eagerness ସଂ. ବି—ବୁଦ୍ଧଦେବ—The
Buddha.

**ବୀତଶୋକ**—ସଂ. ବିଣ. ପୁଂ ( ବହୁବ୍ରୀହି, ବୀତ = ବିଗତ + ଶୋକ)—
Bītaśoka ୧ । ଶୋକଶୂନ୍ୟ—1. Griefless. ୨ । ଶୋକ-
( ବୀତଶୋକା—ସ୍ତ୍ରୀ ) ନିବୃତ୍ତ—2. Freed from grief.
ସଂ. ବି—ଅଶୋକ ବୃକ୍ଷ—The Janesia
Asoka tree.

**ବୀତଶ୍ରଦ୍ଧ**—ସଂ. ବିଣ. ପୁଂ (ବହୁବ୍ରୀହି; ବୀତ + ଶ୍ରଦ୍ଧା)—ଶ୍ରଦ୍ଧାହୀନ—
Bītasraddha One who has lost his affection
( ବୀତଶ୍ରଦ୍ଧା—ସ୍ତ୍ରୀ) or regard.

**ବୀତସୂତ୍ର**—ସଂ. ବି—ଯଜ୍ଞୋପବୀତ—The sacred thread worn
Bītasūtra by the twice-born amongst the
Hindus.

ବୀତ ସ୍ନେହ—ସ. ବଣ. ପୁଂ—( ବହୁବ୍ରୀହି; ବୀତ+ସ୍ନେହ )—
Bīta sneha ଯାହା ହୃଦୟରୁ ସ୍ନେହ ଦୂର ହୋଇଅଛି—
(ବୀତସ୍ନେହା—ସ୍ତ୍ରୀ) One who has shaken himself free from love or attachment.

ବୀତସ୍ପୃହ—ସ. ବଣ. ପୁଂ—(ବହୁବ୍ରୀହି; ବୀତ+ସ୍ପୃହା)—୧ । ନିସ୍ପୃହ;
Bītaspṛuha ସ୍ପୃହାଶୂନ୍ୟ—1. Free from eagerness.
(ବୀତସ୍ପୃହା—ସ୍ତ୍ରୀ) ୨ । ବିରାଗଯୁକ୍ତ—2. Indifferent. ୩ । ନିରସ୍ତ—3. Discouraged; desisted.

ବୀତି—ସ. ବି. ସ୍ତ୍ରୀ—(ବି+ଇ ଧାତୁ=ଗମନ କରିବା+ଭାବ. ତି; ବା
Bīti ବି+ଇତି)—୧ । ନିବୃତ୍ତି—1. Cessation. ୨ । ମୁକ୍ତି—2. Deliverance; liberation. ୩ । ଗତି—3. Motion; progress. ୪ । ଘଟଣାଚକ୍ର; କାଳର ଗତି—4. Course of time; course of events. ୫ । ଧାରଣ—5. Holding. ୬ । ଭୋଜନ—6. Eating. ୭ । ଦୀପ୍ତି-7. Lustre. ୮ । ଆଲୋକ—8. Light. ୯ । ଉତ୍ପାଦନ—9. Production. ୧୦ । (ଯଜ୍ଞସ୍ଥାନକୁ) ପଶୁ ପ୍ରେରଣ—10. The sending of a victim to the sacrificial altar. ୧୧ । ପରିଷ୍କରଣ-11. Cleansing. ୧୨ । ଗର୍ଭଧାରଣ (ପ୍ରା.ଶ)—12. Conception. ୧୩ । ପୁଂ (+କର୍ତ୍ତୃ. ତି) ଘୋଟକ—13. Horse. ୧୪ । (+କର୍ମ. ତି) ଯଜ୍ଞ (ପ୍ରା. ଶ)—14. Vedic sacrifice.

ବୀତି ହୋତ୍ର—ସ. ବି—( ବୀତି=ଭୋଜନ+ହୁ ଧାତୁ=ହୋମ
Bīti hotra କରିବା+ଅଧିକରଣ. ତ୍ର; କିମ୍ବା ହ୍ୱେ ଧାତୁ= ଆହ୍ୱାନ କରିବା+କର୍ମ. ତ୍ର; ଅଗ୍ନିରେ ଓ ଯଜ୍ଞଦ୍ୱାରା ଯେଉଁଠାକୁ ଦେବତାମାନେ ହବ୍ୟ ଆଦି ଭୋଜନ କରିବା ପାଇଁ ଆହୂତ ହୁଅନ୍ତି)—୧ । ଅଗ୍ନି-1 Fire. ୨ । ସୂର୍ଯ୍ୟ—2. The sun. ୩ । (+କର୍ତ୍ତୃ. ତ) ଯଜ୍ଞକାରୀ ବ୍ୟକ୍ତି (ପ୍ରା. ଶ)—3. The perfomer of a vedic sacrifice. ୪ । ରାଜା ପ୍ରିୟବ୍ରତଙ୍କ ପୁତ୍ର—4. Name of the son of Raja Priyabrata. ୫ । ହୈହୟ ବଂଶୀୟ ଏକ ରାଜା—5. Name of a king of the Haihaya dynasty.

ବୀଥି(ଥୀ)—ସ. ବି—( ବିଥ୍ ଧାତୁ=ଯାଚଞ୍ଚା କରିବା+କର୍ମ. ଇ, ଈ )
Bīthi(thī) ୧ । ଧାଡ଼ି; ପଂକ୍ତି—1. A row; line.
(ବୀଥିକା—ଅନ୍ୟରୂପ) ( ଉ—ବଳବାନ ଶ୍ୟାତ ଅର୍ଥୀ, ବିବେକ ସଯାତ ଉଥି,ବୀଥି ବୀଥି ବିରାଜିତ ଶିଳଦେ । ଉଞ୍ଜ. ବୈଦେହୀଶ ବିଳାସ ।) ୨ । ଉଭୟ ପାର୍ଶ୍ୱରେ ବୃକ୍ଷଥିବା ପଥ—2. A road on both sides of which trees are planted;avenue. (ଉ—ବହୁତ ବନ୍ଧୁତ,ଅକାରଣଉତ୍ତ, ଶୁଭେ ମଣିମା ମଣିମା ସ୍ୱନ ସେ ବୀଥିରେ । ଉଞ୍ଜ. ବୈଦେହୀଶ ବିଳାସ ।) ୩ । ଶ୍ରେଣୀବଦ୍ଧ ଦୋକାନ—2. Shops arranged in rows. ୪ । ଦୃଶ୍ୟକାବ୍ୟ ବିଶେଷ—୫. A kind of drama [ଦ୍ର—ବୀଥୀ ଦୃଶ୍ୟକାବ୍ୟର ବା ରୂପକର ୨୨ ଭେଦରୁ ଏକତମ । ଏଥିରେ ଗୋଟିଏ ମାତ୍ର ଅଙ୍କ ଓ ଏକମାତ୍ର ନାୟକ ଥାଏ । ଏଥିରେ ଆକାଶଭାଷିତର ଓ ଶୃଙ୍ଗାର ରସର ଆଧିକ୍ୟ ଥାଏ । ପ୍ରାଚୀନକାଳରେ ଏହା ସ୍ୱତନ୍ତ୍ର କିମ୍ବା ଅନ୍ୟ ନାଟକ ସଙ୍ଗେ ଅଭିନୀତ ହେଉଥିଲା । ସାହିତ୍ୟଦର୍ପଣ ମତରେ ବୀଥୀର ଅଙ୍ଗ ପ୍ରହସନର ଅଙ୍ଗ ମଧ୍ୟ ହୋଇପାରେ—(ପ୍ରା ଶ) । ] ୫ । ଆକାଶରେ ରବିମାର୍ଗ (ପ୍ରା. ଶ)—5. The sun's orbit. ୬ । ଆକାଶରେ ନକ୍ଷତ୍ରମାନଙ୍କ ଅବସ୍ଥିତିର ବିଶିଷ୍ଟ ଅଂଶମାନ, ଯାହା ସଡ଼କ-ପରି କଳ୍ପିତ ହୋଇଅଛି – 6 Particular portions of the sky which have been compared to roads. [ଦ୍ର—ଯଥା ନାଗବୀଥୀ, ଗଜବୀଥୀ, ଐରାବତବୀଥୀ, ଗୋବୀଥୀ, ମୃଗବୀଥୀ; ଆକାଶରେ ଉତ୍ତର, ମଧ୍ୟ ଓ ଦକ୍ଷିଣରେ କ୍ରମଶଃ ଐରାବତ, ଜରଦ୍ଗବ ଓ ବୈଶ୍ୱାନର, ୩ଟି ସ୍ଥାନରେ ପ୍ରତ୍ୟେକରେ ୩ଟି ଲେଖାଏଁ ବୀଥୀ କଳ୍ପିତ ହୋଇଅଛି । ଅତଏବ ମୋଟ ୯ଟି ବୀଥୀରେ ୨୭ଟି ନକ୍ଷତ୍ର କଳ୍ପିତ ହୋଇ ଅଛି । ଅତଏବ ପ୍ରତ୍ୟେକ ବୀଥୀରେ ୩ଟି ଲେଖାଏଁ ନକ୍ଷତ୍ର ଅବସ୍ଥିତ—ପ୍ରା.ଶ. । ] ଦେ. ବି—ଯୂଥ; ଦଳ—Flock. (ଉ—ବୀଥିର ଚକ୍ରବର୍ତ୍ତୀ ଯେତେ ସାରଙ୍ଗ, ବୀଥୀ ବୀଥୀ ହୋଇ କଲେ କକଟେ ରଙ୍ଗ । ଉଞ୍ଜ ବୈଦେହୀଶବିଳାସ ।)

ବୀଥିରେ—ଦେ· କ୍ରି. ବଣ —ଅଧୀରେ; ଅସ୍ଥିର ହୋଇ—Restlessly.
Bīthire [ ବୀଥିରେ ଶ୍ୟାମଳ କମଳବାସୀ, ବୀଥିରେ ଦେଖିବା ଅଯୋଧ୍ୟାବାସୀ । ଉଞ୍ଜ. ବୈଦେହୀଶବିଳାସ । ]

ବୀଧ୍ର—ସ. ବଣ ( ବି+ଇନ୍ଧ୍ ଧାତୁ=ଦୀପ୍ତି ପାଇବା+କର୍ମ ର )—
Bīdhra ୧ । ନିର୍ମଳ –1. Pure; clear. ୨ । ପରିଷ୍କୃତ—2. Clean. ସ. ବି ( +କର୍ତ୍ତୃ· ର )—୧ । ବାୟୁ—1. Air. ୨ । ଅଗ୍ନି—2. Fire. ୩ । ଆକାଶ—3. The sky.

ବୀନ୍—ବୈଦେ. ବି ( ଇଂ. ବୀନ୍ )—ଶିମ୍ବପରି ବିଦେଶୀ ଲତା ଓ ତାହାର
Bīn ଛୁଇଁ—Bean. [ ଦ୍ର—ପ୍ରଥମେ ଏ ଦେଶକୁ ଫ୍ରାନ୍ସରୁ
बीन ଆସି ଏଠାରେ ଉତ୍ପାଦିତ ହେଉଥିବା ଏକପ୍ରକାର ଶିମ୍ବକୁ ଫରାସି
**बिलाती शीम** ବୀନ୍ (French been) କହନ୍ତି । ]

ବୀନାହ—ସ. ବି ( ବି+ନହ୍ ଧାତୁ=ବନ୍ଧନ କରିବା+କରଣ ଅ)
Bīnāha ବିକଳ୍ପେ ଦୀର୍ଘ ? )—୧ । କୂପର ମୁଖବନ୍ଧନ—1. A frame put on the mouth of a well. ୨ । କୂଅର ଘୋଡ଼ାଜାଳ—2. The broad mouth-piece ring of a well.

ବୀପା—ସ. ବି ( ବି+ଆପ୍ ଧାତୁ=ବ୍ୟାପିବା+କର୍ତ୍ତୃ. ଅ+ସ୍ତ୍ରୀ ଆ )—
Bīpā ବିଦ୍ୟୁତ—Lightning.

ବୀପ୍ସା—ସ. ବି· ସ୍ତ୍ରୀ ( ବି+ଆପ୍ ଧାତୁ=ପାଇବା; ବ୍ୟାପିବା+ଇଚ୍ଛାର୍ଥେ
Bīpsā ସନ୍+ଭାବ. ଅ+ଆ )—୧ । ଯୁଗପତ୍ ବ୍ୟାପିବାର ଇଚ୍ଛା—1. A desire to occupy a place simultaneously. ୨ । ( ବ୍ୟାକରଣ ) ବାକ୍ୟର ବା

ଶବ୍ଦର ପୁନଃ ପୁନଃ କଥନ—2. Repetition of a word or sentence (e. g. for emphasis ). ( ଯଥା—ଦିନେ ଦିନେ, ଘରେ ଘରେ, ଯାଯା, ଖାଖା, ପଟ୍‌ପଟ୍, ବକ୍‌ବକ୍, ବିରବିର, କୁଟୁକୁଟୁ, ଧଡ଼ଫଡ଼, ଭୁନଭାନ ଇତ୍ୟାଦି । ) [ ଦ୍ର—ବୀପ୍ସା ଅନେକ ଅର୍ଥରେ ଓ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଏ । ( ୧ ) ଶବ୍ଦାନୁକରଣାର୍ଥେ, ଯଥା—ତୃଷା କଣ୍ଠର କଣ୍ଠର କାଟୁଛି । ( ୨ ) ବାକ୍ୟ ଅଳଙ୍କାରଣାର୍ଥେ, ଯଥା—ମୋ ହାତ ଫିଅ ଭଲ ଅଛି । ମୁଁ କଣ୍ଟକ ଫଣ୍ଟକ ଯିବି ନାହିଁ । ( ୩ ) ଶ୍ରୋତାର ମନୋଯୋଗ ଆକର୍ଷଣାର୍ଥ, ଯଥା—ଯା ଯା ଏଠାରୁ ବାହାର ଯା । ନେ ନେ ଟଙ୍କାଟା ନେ । ( ୪ ) ବହୁବଚନ ବୋଧନାର୍ଥ, ଯଥା—ଶହ ଶହ ଲୋକ ଜମା ହେଉଛନ୍ତି । ( ୫ ) ବ୍ୟାପକାର୍ଥେ, ଯଥା—ଘର ଭିତର ଅନ୍ଧାର କଟ କଟ ଦିଶୁଛି । ( ୬ ) ଇତ୍ୟାଦି ଅର୍ଥରେ, ଯଥା—ମୁଁ ଭାତ ଫାତ ଖାଇବି ନାହିଁ । ( ୭ ) ଏକମାତ୍ର କ୍ରିୟା ବୋଧକ, ଯଥା—ଖବରକାଗଜରେ ମୁଁ ଆଉ ଲେଖା ଲେଖି କରିବି ନାହିଁ । ( ୮ ) ଅନ୍ୟ ବ୍ୟକ୍ତିର ବିଷୟ ବା କାର୍ଯ୍ୟ ବର୍ଣ୍ଣନାର୍ଥ, ଯଥା—ସେ ମତେ ଦୂର ଦୂର, ମାର ମାର, ଭୁ ଭା ରେ ଗ କଲା । ]

**ବୀପ୍ସା ପ୍ରୟୋଗ**—ସଂ. ବି—ବାକ୍ୟର ବା ଶବ୍ଦର ବୀପ୍ସା ବା ଯୁଗପତ୍ **Bipsā prayoga** ବ୍ୟବହାର କରିବାର ସ୍ଥଳ—Instances (ବୀପ୍ସାର୍ଥ ପ୍ରୟୋଗ—ଅନ୍ୟରୂପ) where words or sentences or sounds are used repeatedly. [ ଦ୍ର—ଭାଷାରେ ଏହି 'ବୀପ୍ସା ପ୍ରୟୋଗ' ନାନାରୂପ ଧାରଣ କରେ, ଯଥା—(୧) କେତେକ ସ୍ଥଳରେ ଦ୍ୱିତୀୟ ଶବ୍ଦର କିଛି ଅର୍ଥ ନ ଥାଏ । ଯଥା—ମୁଁ ନାଟ ଫାଟ ଦେଖିବି ନାହିଁ । (୨) ପ୍ରଥମ ଓ ଦ୍ୱିତୀୟ ଶବ୍ଦର ସମାନ ଉଚ୍ଚାରଣ କେତେକ ସ୍ଥଳରେ ଦେଖାଯାଏ । ଯଥା—ସେ ଗଡ଼ ଗଡ଼ କରି କହି ଚାଲି ଯାଉଛି । (୩) ବେଳେ ବେଳେ ଅକ୍ଷରମାନ ଭିନ୍ନ ହୁଏ । ଯଥା—ତୁମେ ସେଠାରୁ ଝଟ ପଟ ଚାଲି ଆସିବ । (୪) କେତେକ ସ୍ଥଳରେ ଶବ୍ଦ ମଧ୍ୟ ଭିନ୍ନ ହୁଏ । ଯଥା—ମୁଁ ତାକୁ ଟଙ୍କା ଟୋକର କିଛି ମାଗୁ ନାହିଁ । (୫) ଅର୍ଥ ମଧ୍ୟ ଭିନ୍ନ ହୁଏ । ଯଥା—ସକାଳୁ ଉଠି ମାଇପେ ହାଣ୍ଡି କୁଣ୍ଡେଇ ଧୋଉଛନ୍ତି ଓ ଘରଦ୍ୱାର ଲିପାପୋଛା କରୁଛନ୍ତି । (୬) କେତେକ ସ୍ଥଳରେ ସହରର ଶବ୍ଦମାନ ଏକାର୍ଥବୋଧକ ହୁଏ । ଯଥା—ମୋ ପାଖେ ଦଲିଲ ଦସ୍ତାବିଜ ଯାକ ରଖାଯାଇ ଅଛି । ]

**ବୀବଧ**—ସଂ. ବି ( ବି+ବଧ୍ ଧାତୁ=ବନ୍ଧନ କରିବା+ଭାବ. ଅ )—**Bibadha** ବିବଧ ( ଦେଖ )—Bibadha ( See )

**ବୀଭତ୍ସ**—ସଂ. ବି. ( ବଧ୍ ଧାତୁ=ନିନ୍ଦା କରିବା+ସ୍ୱାର୍ଥେ ସନ୍+ଅ )—**Bibhatsa** ସାହିତ୍ୟରେ ରସ ବିଶେଷ; ଯେଉଁ ରସରେ ଘୃଣା ବା ଜୁଗୁପ୍ସା ସ୍ଥାୟୀ ଭାବ ଅଟେ—( in literature ) The sentiment of disgust. ସଂ. ବିଣ—୧। ଅତିଶୟ ଘୃଣ୍ୟ; ଘୃଣାକର; ମନରେ ଯାହା ଘୃଣା ଭାବର ଉଦ୍ରେକ କରେ—1. Detestible; loathsome. ୨ । କ୍ରୂର—2. Cruel. ୩ । ବିରକ୍ତିଜନକ—3. Disgusting; unpleasant. ୪ । ଘୃଣିତାତ୍ମା—4. Of detestable nature.

**ବୀଭତ୍ସ ଭାବ**—ସଂ. ବି—ମନରେ ଘୃଣାର ଉଦ୍ରେକ—A feeling **Bibhatsa bhāba** or sense of disgust.

**ବୀଭତ୍ସ ରସ**—ସଂ. ବି. ( ବୀଭତ୍ସ+ରସ )—ସାହିତ୍ୟର ନବ ରସ ମଧ୍ୟରୁ **Bibhatsa rasa** ଗୋଟିଏ ରସ; ଘୃଣାବ୍ୟଞ୍ଜକ ରସ—(in literature) The sentiment of disgust.

**ବୀଭତ୍ସୁ**—ସଂ. ବି—(ବିଭତ୍ସ+ଉ)—ଅର୍ଜ୍ଜୁନ—Arjuna. [ଦ୍ର—**Bibhatsu** ମହାଭାରତ ବିରାଟ ପର୍ବରେ ଅର୍ଜୁନ କହି ଅଛନ୍ତି 'ଯୁଦ୍ଧ କରୁ କରୁ ମୁଁ କଦାପି ବୀଭତ୍ସ ବା ଘୃଣିତ କାର୍ଯ୍ୟ କରେ ନାହିଁ ବୋଲି ନର ଓ ଦେବତାମାନେ ମୋତେ 'ବୀଭତ୍ସୁ' ବୋଲି କହନ୍ତି' ।]

**ବୀର୍ (ଧାତୁ)**—ସଂ—ଶୌର୍ଯ୍ୟ ପ୍ରକାଶ କରିବା—To exhibit brav- **Bir (root)** ery or heroism.

**ବୀର**—ସଂ. ବିଣ. (ବୀର୍ ଧାତୁ=ଶୌର୍ଯ୍ୟ ପ୍ରକାଶ କରିବା+କର୍ତ୍ତୃ. ଅ)—**Bira** ୧ । ଶ୍ରେଷ୍ଠ—1. Eminent; prime. ୨ । ପ୍ରଧାନ—(ବୀରା—ସ୍ତ୍ରୀ) 2. Chief; principal. ୩ । ବୀର୍ଯ୍ୟବାନ୍—4. Mighty. ୪ । ଶୂର; ବିକ୍ରମଶାଳୀ; ସାହସୀ—4. Courageous; valiant. ୫ । ଯୁଦ୍ଧକାରୀ—5. Fighting. ସଂ. ବି. ପୁଂ—୧ । ସାହସୀ ବ୍ୟକ୍ତି—1. A valiant person. ୨ । ଯୋଦ୍ଧା—2. Warrior. ୩ । ମାଙ୍କଡ଼ ଦଳର ନେତା ଅଣ୍ଡିରା ମାଙ୍କଡ଼; ଗେଧ—3. The male leader of a herd of monkeys. ୪ । ସାହିତ୍ୟର ରସ ବିଶେଷ; ଯେଉଁ ରସ ବିଷୟ ପାଠ କଲେ ମନରେ ସାହସ ଉଦ୍ରେକ ହୁଏ—(in literature) The heroic sentiment. ୫ । ବିଷ୍ଣୁ—5. Bishṇu. ୬ । ମହାବୀର; ହନୁମାନ୍—6. The great monkey-hero, the devoted servant of Rāma. ୭ । ନଟ—7. An actor. ୮ । କାବ୍ୟନାଟକାଦିରେ ବର୍ଣ୍ଣିତ ବିକ୍ରମୀ ନାୟକ—8. A valiant hero of a drama or epic. ୯ । ଅନ୍ନର ମଣ୍ଡ ବା ପେଜ—9. The scum extracted from boiled rice. ୧୦ । ଔଷଧିକ ଆଚାର ବିଶେଷ; ବୀରାଚାର (ଦେଖ)—13. Birāchāra (See) ୧୧ । ମରିଚ—11. Black pepper. ୧୨ । ପୁଷ୍କର ମୂଳ—12. The root of lotus. ୧୩ । (ଅଜ୍ ଧାତୁ=ଗମନ କରିବା+କର୍ତ୍ତୃ. ର) ଉଶୀର; ବେଣା—13. Beṇa grass. ୧୪ । ବ୍ରାହ୍ମଣ ଗୃହର ପବିତ୍ର ଯଜ୍ଞାଗ୍ନି—14 The sacrificial fire maintained in a Brāhmaṇa's house. ୧୫ । ଦାନ,

ଧର୍ମ, ଦୟା ବା ଯୁଦ୍ଧରେ କୁଶଳ ବ୍ୟକ୍ତି—15. A person who is habitually liberal, religious, kind or heroic. [ଦ୍ର—ବୀର ଗୁଣର ପ୍ରକାର, ଯଥା—ଦାନ ବୀର, ଧର୍ମବୀର, ଦୟାବୀର, ଯୁଦ୍ଧବୀର ।] ଦେ. ବି—୧ । ତନ୍ତ୍ର ମତରେ କୌଣସି ବ୍ୟକ୍ତି ବା ସ୍ଥାନ ପ୍ରତି ପ୍ରେରିତ ହେବା ଉପଯୋଗୀ ଭୂତ—1. An evil spirit employed against a person or place by black magic ୨ । ଲୋକଙ୍କ ନାମ ବିଶେଷ—2. A name given to males. ୩ । ବୀର କିଶୋର, ବୀରେନ୍ଦ୍ର, ବୀରଭଦ୍ର ଆଦିଙ୍କ ଡାକ ନାମ—3. A name for calling people whose names begin with Bīra.

भूत बीर

ବୀରକ—ସଂ. ବି—କରବୀ ଫୁଲ, କରବୀର—
Bīraka Karabī flower; oleander.

ବୀର କଡ଼ାଏ—ଦେ. ବି—୧ । (ବାହାଦୁରୀ ଦେବା ଅର୍ଥରେ) ଜଣେ ବୀର ପଦବାଚ୍ୟ ବ୍ୟକ୍ତି—1. A person deserving the appellation of a hero. ୨ । ପ୍ରଧାନ ବୀର—2. A pre-eminent hero. ୩ । ବାହାଦୁର ବ୍ୟକ୍ତି—3. An admirable person. ୪ । ପ୍ରଶଂସାଭାଜନ ବ୍ୟକ୍ତି—4. A praiseworthy person. (ଯଥା—ଏତେ ଲୋକଙ୍କ ଭିତରେ ଦେଖିଲି ତୁ ଏକା ବୀର କଡ଼ାଏ ।)
Bīra kaṛāe

বীর একজনা
बीर आदमी

ବୀର ଜଣେ, ବୀର ମୂର୍ତ୍ତିଏ, ବୀର ପଟେ } ଅନ୍ୟରୂପ

ବୀର କର୍ମା—ସଂ. ବିଣ. ପୁଂ (ବହୁବ୍ରୀହି; ବୀର+କର୍ମନ୍; ୧ମା. ୧ବ)—ଯେ ବୀରୋଚିତ କର୍ମ କରେ—Acting heroically.
Bīra karmā

ବୀର କାମ—ସଂ.ବିଣ. ପୁଂ (ବହୁବ୍ରୀହି; ବୀର+କାମ)—ଯେ ପୁତ୍ର କାମନା କରୁଅଛି; ପୁତ୍ରକାମୀ—Wishing for a son.
Bīra kāma
(ବୀରକାମା—ସ୍ତ୍ରୀ) (ବୀରକାମୀ—ଅନ୍ୟରୂପ)

ବୀର କାଳୀ—ପ୍ରାଦେ· (ଜୟପୁର, ଗଡ଼ଜାତ) ବି. (ସଂ. ବୀର କାହଳା)—ବୀର କାହାଳୀ (ଦେଖ)—Bīra kāhāḷī (See)
Bīra kāḷī
(ବୀରକାଳୀ, ବୀରକାହାଳୀ—ଅନ୍ୟରୂପ)

ବୀର କାହାଳୀ—ଦେ. ବି. (ସଂ. ବୀର+କାହଳା)—୧ । ଯୁଦ୍ଧତୂରୀ ବିଶେଷ—1. A kind of war trumpet. ୨ । ରାଜାମାନଙ୍କ ଦେବାର୍ଚ୍ଚନ ଓ ଅନ୍ୟାନ୍ୟ ନୀତି ବଢ଼ିବା ସମୟରେ ବାଜିବା ତୂରୀ—1. A trumpet blown in a Raja's palace to indicate the Raja's performance of daily rites.
Bīra kāhāḷī

বীর কাহ্নী
बीर तुरही

ବୀର କିଶୋର—ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ବୀର ଯୁବକ—2. Brave young man.
Bīra kiśora

বীরকিশোর बीरकिसोर

ବୀରକୁକ୍ଷି—ସଂ. ବିଣ (ବହୁବ୍ରୀହି)—ବୀରପ୍ରସବିନୀ—(a woman) Who gives birth to heroes.
Bīrakukshi

ବୀର କୁଞ୍ଜର—ସଂ. ବି—(୭ମୀ ତତ୍ ବା ଉପମିତ)—ବୀରମାନଙ୍କ ମଧ୍ୟରେ ପ୍ରଧାନ ବା ଅଗ୍ରଣୀ; ପ୍ରଧାନ ବୀର; ମହା ବୀର—The chief amongst heroes.
Bīra kuñjara
[ଦ୍ର—ବୀରକୁଳ ଗର୍ବ, ବୀରକୁଳ ଶ୍ରେଷ୍ଠ, ବୀରକୁଳର୍ଷଭ, ବୀରକେଶରୀ, ବୀରଚୂଡ଼ାମଣି, ବୀରବର, ବୀରସିଂହ, ବୀର ଶିରୋମଣି, ବୀରଶ୍ରେଷ୍ଠ—ଅନ୍ୟରୂପ ]

ବୀରକୁଳ—ଦେ. ବି—ବାଲେଶ୍ୱରର ଉତ୍ତର ପୂର୍ବ କୋଣରେ ଥିବା ସମୁଦ୍ର ସନ୍ନିହିତ ସ୍ଥାନ ବିଶେଷ । (ଏ ଅଞ୍ଚଳର ପାନ ବାଲେଶ୍ୱର ଜିଲ୍ଲାରେ ପ୍ରସିଦ୍ଧ)—Name of a sea-side village of the Balasore district (famous for its betel leaves). [ଉ—ବୀରକୁଳ ନାମେ ବୀର ପତ୍ରପୂର୍ଣ୍ଣ ସ୍ଥଳୀ କଥିତ । ରାଧାନାଥ. ଉଷା ।] ସଂ. ବି—୧ । (ବୀରଗଣ—ଅନ୍ୟରୂପ) ବୀରସଙ୍ଘ—1. A number of warriors or heroes.
Bīra kuḷa

ବୀରକେଶ—ଦେ.ବି·—(ବୀର+କେଶ; ବୀରମାନେ ମୁଛ ରଖୁଥିବାରୁ)—୧ । ମୁଛ—1. Mustaches. ୨ । ଗାଲମୁଛ—2. Whiskers. [ଉ—ବୀର କେଶ ଧରି ଆଉଁସି ବୋଲେ ଲଙ୍କା ନାୟକ । ଭଞ୍ଜ. ବୈଦେହୀଶବିଳାସ ।]
Bīra keśa
बीर केश

ବୀର କେଶରୀ—ସଂ. ବି.—(୭ମୀ ତତ୍) ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ—The chief amongst heroes. ଦେ. ବି. ପୁଂ (ନାମ)—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ଓଡ଼ିଶାର ପ୍ରାଚୀନ ନରପତି ବିଶେଷ—2. Name of a king of ancient Orissa. [ ଦ୍ର—ପୁରୀଜିଲ୍ଲାର ବୀରକେଶରୀପୁର ଶାସନ ଏହାଙ୍କ ପ୍ରତିଷ୍ଠିତ । ଏ ଜଗନ୍ନାଥଙ୍କ ଠାରେ ବୀର-କେଶରୀ ବଲ୍ଲଭ ନାମକ ବାଲଭୋଗ ଆଜ୍ଞା କରିଥିଲେ ।]
Bīra keśarī

ବୀର ଖଣ୍ଡୀ—ପ୍ରାଦେ. (ମେଦିନୀପୁର, ଉତ୍ତର ବାଲେଶ୍ୱର) ବି.—(ତୁଳନା କର ବ. ଏହି ଅର୍ଥରେ ଏହି ଶବ୍ଦ; ସଂ. ଖଣ୍ଡ) ତିଳଥିଆ ଖଜା—A cake or ball of bloated sugar sprinkled over with sesamum seeds.
Bīra khaṇḍi

ବୀର ଗତି—ସଂ. ବି—(୬ଷ୍ଠୀ ତତ୍)—୧ । ରଣକ୍ଷେତ୍ରରେ ମରିବା ଯୋଗୁଁ ବୀରର ସ୍ୱର୍ଗଲାଭ—1. The attainment of heaven by a hero killed in the battlefield. ୨ । (ବହୁବ୍ରୀହି) ସ୍ୱର୍ଗ—2. Heaven.
Bira gati

ବୀର ଜନନୀ—ସଂ. ବି—(ବୀର+ଜନନୀ=ମାତା)—ଯେଉଁ ସ୍ତ୍ରୀ ବୀର ସନ୍ତାନ ଜନ୍ମ କରନ୍ତି—The mother of heroes.
Bira janani
(ବୀର ମାତା—ଅନ୍ୟରୂପ)

ବୀର ଜୟନ୍ତିକା—ସଂ. ବି. ସ୍ତ୍ରୀ (ବୀର+ଜୟନ୍ତିକା)—୧ । ଯୁଦ୍ଧ କ୍ଷେତ୍ରରେ ବିଜୟୀ ଯୋଦ୍ଧାମାନଙ୍କର ନୃତ୍ୟ—1. The dance of the victors in the battlefield. ୨ । ବୀରଙ୍କ ସ୍ମରଣାର୍ଥ ଅନୁଷ୍ଠିତ ଉତ୍ସବ—2. Festival performed in honour of heroes.
Bira jayantikā
(ବୀର ଜୟନ୍ତୀ—ଅନ୍ୟରୂପ)

**ବୀର ଜାୟା**—ସଂ. ବି. ସ୍ତ୍ରୀ—(୬ଷ୍ଠୀ ତତ୍; ବୀର+ଜାୟା)—୧ । ବୀରର ଭାର୍ଯ୍ୟା—1. The wife of a hero ୨ । ବୀରର ଉପଯୁକ୍ତା ଭାର୍ଯ୍ୟା—2. A wife befitting for a hero. ୩ । (କର୍ମଧା; ବୀର୍+ଜାୟା)—ବୀରାଙ୍ଗନା; ବୀର୍ଯ୍ୟବତୀ ରମଣୀ—3. A valiant woman.
Bira jāyā
ବୀରବଧୂ, ବୀର ପତ୍ନୀ, ବୀର ବନିତା; ବୀର ଭାର୍ଯ୍ୟା—ଅନ୍ୟରୂପ

**ବୀର ଡାକ**—ଦେ. ବି.—(ସଂ. ବୀର+ଓଡ଼ିଆ ଡାକ)—ଯୁଦ୍ଧ କରିବା ପୂର୍ବରୁ ବିପକ୍ଷକୁ ଯୁଦ୍ଧ କରିବା ପାଇଁ ବୀରର ଅସ୍ଫାଳନମୟ ଆହ୍ୱାନ—A challenge to the adversary for fight. [ଉ—ବଳ ବାଜଣ ଦୂଷଣ ତ୍ରିଶିର ଖର, ତାହାର ବୀରଡାକରେ ଉଚ୍ଛନ୍ନ ସୁର । ଭଞ୍ଜ. ବୈଦେହୀଶ ବିଳାସ ।]
Bira dāka
ବୀର ରଡ଼ି, ବୀର କୁହାଟ—ଅନ୍ୟରୂପ
বীরের ডাক ललकारा

**ବୀରଣ**—ସଂ. ବି.—(ବି=ପକ୍ଷୀ; ଈର୍ ଧାତୁ=ଗମନ କରିବା+କର୍ତ୍ତୃ. ଅନ)—୧ । ଉଶୀର ତୃଣ; ବେଣା—1. Andropogen Muricata. ୨ । ଘାସ; ତୃଣ (ହି. ଶ.)—2. Grass.
Bīraṇa
(ବୀରଣାଯୁକ—ଅନ୍ୟରୂପ)

**ବୀରଣ ମୂଳ**—ସଂ. ବି—( ବୀରଣ+ମୂଳ )—ବେଣା ଚେର—The fragrant root of the Beṇā grass.
Bīraṇa mūla

**ବୀରଣା**—ସଂ. ବି. ସ୍ତ୍ରୀ—( ବୀରଣ+ସ୍ତ୍ରୀ. ଆ )—୧ । ବକ୍ରଦୃଷ୍ଟି—1. Squint look. ୨ । ଗଭୀର ସ୍ଥାନ—2 A deep place. ବୈଦେ. ବି. ଓ ବିଣ—ବିରଣା (ଦେଖ)—Biriṇā (See)
Biraṇā

**ବୀରତର**—ସଂ. ବି.—୧ । ଉଶୀର, ବେଣା—1. The Beṇā grass. ୨ । ବୀର ଶ୍ରେଷ୍ଠ; ବୀରବର—2. A warrior. ୩ । ବାଣ; ଶର (ହି. ଶ.)—Arrow.
Bīratara

**ବୀରତରୁ**—ସଂ. ବି —(ବୀର+ତରୁ=ବୃକ୍ଷ)—୧ । ଅର୍ଜୁନ ଗଛ—1. The Arjuna tree. ୨ । ବିଲ୍ୱାନ୍ତର ବୃକ୍ଷ—2. A kind of wild tree. [ଦ୍ର—ଏହା ନର୍ମଦା ନଦୀ ତୀରସ୍ଥ ବନ୍ୟ ବୃକ୍ଷବିଶେଷ । ଏହାର ପତ୍ର ଶମୀ ବୃକ୍ଷର ପତ୍ର ପରି; ଫୁଲ ଜାଫ୍ରି ଫୁଲ ପରି; ଡାଳରେ କଣ୍ଟା ଥାଏ ।] ୩ । ଭଲ୍ଲାତକ ବୃକ୍ଷ—3. The marking nut plant. ୪ । ପିୟାଶାଳ (ହି. ଶ) (ଦେଖ)—4 Piyāśāḷa (See). ୫ । ଶର ତୃଣ (ହି. ଶ)—5. A kind of reed grass.
Bīrataru

**ବୀରତା(ତ୍ୱ)**—ସଂ. ବି.—(ବୀର+ଭାବାର୍ଥେ. ତା)—୧ । ବୀରର ଭାବ; ଶୌର୍ଯ୍ୟ—1. Heroism. ୨ । ସାହସ—2. Courage; valour.
Bīratā (twa)

**ବୀରତୂର(ରୀ)**—ସଂ. ବି—(ବୀର+ତୂର) —ରଣତୂରୀ—A war trumpet.
Bīratūra(ri)
[ଉ—ବୀରହୋ ପରସ୍ପେ ସ୍ୱଭାବେ ତେଜୋବନ୍ତ, ବୀରତୂର ଧ୍ୱନାହୂତ ଲାଗି ପ୍ରଜ୍ୱଳିତ । ଭଞ୍ଜ. ବୈଦେହୀଶବିଳାସ]

**ବୀର ଦର୍ପ**—ସଂ. ବି (ବୀର+ଦର୍ପ)—ବୀରର ଅହଙ୍କାର—The pride of a hero; pride of a warrior.
Bīra darpa
( ବୀରଗର୍ବ, ବୀରଦମ୍ଭ—ଅନ୍ୟରୂପ )

**ବୀର ଦ୍ରୁମ**—ସଂ. ବି ( ବୀର+ଦ୍ରୁମ )—ବୀରତରୁ; ଅର୍ଜୁନଗଛ—The Arjuna tree. [ଉ—କୁମାରବା ଆବ ସ୍ଥଳୀ ବୀରଦ୍ରୁମ କଲୁଞ୍ଜମାଳ—ରାଧାନାଥ. ଉଷା । ]
Bīra druma

**ବୀର ଧଟୀ**—ସଂ. ବି—୧ । ଯୁଦ୍ଧ ସମୟରେ ଯୋଦ୍ଧାର ପରିଚ୍ଛଦ ପୋଷାକ—1. War-dress. ୨ । ମାଲକଚ୍ଛ—2. A mode of wearing of the loin cloth by tugging up all its hanging parts and turning the cloth into a sort of drawyers.
Bīra dhaṭī
বীরধড়া
ବୀରପରିଚ୍ଛଦ, ବୀରପଟ୍ଟି, ବୀରବେଶ, ବୀରସଜ୍ଜା—ଅନ୍ୟରୂପ

**ବୀରଧୂ**—ଦେ. ବି—ବୀରତ୍ୱ—Heroism. [ ଉ—ବୀରଧୂ ପ୍ରକାଶ ଭବ ହେଉ ଅତିଶୟେ—ଭଞ୍ଜ. ବୈଦେହୀଶବିଳାସ । ]
Bīradhū

**ବୀରନାରୀ**—ସଂ. ବି ( କର୍ମଧା. ବୀର+ନାରୀ )—୧ । ବୀରାଙ୍ଗନା—1. A heroine. ୨ । ବୀରପତ୍ନୀ—2. The wife of a hero
Bīranārī
( ବୀରବନିତା—ଅନ୍ୟରୂପ )

**ବୀରପଞ୍ଚମୀ ବ୍ରତ**—ସଂ. ବି ( ବୀରପଞ୍ଚମୀ+ବ୍ରତ )—ବୀରପୁତ୍ରଲାଭ କାମନାରେ ସ୍ତ୍ରୀମାନଙ୍କର ଅନୁଷ୍ଠିତ ବ୍ରତବିଶେଷ—A religious vow undertaken by women with a view to give brith to heroes.
Bīrapañchamī brata

**ବୀରପଣ**—ଦେ. ବି ( ବୀର+ପଣ )—୧ । ବୀରତ୍ୱ—1. Heroism. ୨ । ବୀରୋଚିତ ଆଚରଣ—2. The conduct befitting a hero.
Bīrapaṇa
বীরপণা वीरपना(न)
( ବୀରପଣିଆ[ଆଁ]—ଅନ୍ୟରୂପ )

**ବୀରପତ୍ନୀ**—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ବୀରର ଭାର୍ଯ୍ୟା—The wife of a hero.
Bīrapatnī

**ବୀରପତ୍ରା**—ସଂ. ବି —ବିଜୟା; ଗଞ୍ଜେଇ—Indian hemp
Bīrapatrā

**ବୀରପଥ**—ସଂ. ବି ( ବୀର+ପଥିନ୍=ମାର୍ଗ )—ଯୁଦ୍ଧରେ ପ୍ରାଣତ୍ୟାଗ (ଯେଉଁ ପଥରେ ବୀରମାନେ ସ୍ୱର୍ଗକୁ ଯାଆନ୍ତି)—(the way of the warrior), Death while fighting. [ ଉ—କୁରୁ ପାଣ୍ଡବ ଯୁଦ୍ଧ ଅନ୍ତେ । ବୀରେ ଗମିଲେ ବୀରପଥେ—ଜଗନ୍ନାଥ. ଭାଗବତ । ]
Bīrapatha

**ବୀରପାନ**—ସଂ. ବି ( ୬ଷ୍ଠୀ ତତ୍ )—ଯୁଦ୍ଧଶ୍ରମ ନେଣ୍ଟାଇବା ପାଇଁ ବୀରମାନଙ୍କ ପୀତ ପାନୀୟ ( ହି. ଶ )—A drink imbibed by warriors to mitigate the fatigues of fighting.
Bīrapāna

**ବୀର ପୁତ୍ର**—ସଂ. ବି ( ବୀର+ପୁତ୍ର )—୧ । ( କର୍ମଧା ) ବୀର୍ଯ୍ୟବାନ୍ କୁମାର—1. A heroic son. ୨ । ( ୬ଷ୍ଠୀ ତତ୍ ) ବୀରର ପୁତ୍ର—2. The son of a hero.
Bīra putra
(ବୀରସନ୍ତାନ, ବୀରସନ୍ତୁ—ଅନ୍ୟରୂପ)

ବୀର ପେଷିବା—ଦେ. କ୍ରି—ମନ୍ତ୍ରତନ୍ତ୍ର ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତି Bira peshibā ବା ସ୍ଥାନ ପ୍ରତି ଉପଦ୍ରବକାରୀ ଭୂତକୁ ପ୍ରେରଣ କରିବା—To cause a malignant spirit to possess a place or person, by the employment of black magic.
वीर पाठाना; भूत लागाना
**बीर भेजना**
( ବୀର ଲଗା[ଗେ]ଇବା—ଅନ୍ୟରୂପ )
[ ଦ୍ର—ଯେଉଁ ବ୍ୟକ୍ତି ପ୍ରତି ବା ସ୍ଥାନପ୍ରତି ବୀର ପେଷା ଯାଇଥାଏ, ସେଠାରେ ଶୂନ୍ୟରୁ ଢେଲା ପଡ଼େ, ହଠାତ୍ ଅଗ୍ନି ଲାଗିଯାଏ, ବିଷ୍ଠା ପଡ଼େ, ଘରର ଜିନିଷପତ୍ର ବାହାରେ ଫୋପଡ଼ା ହେବାର ଦେଖାଯାଏ, ଲୁଗାପଟାରେ, ପାକପାତ୍ର ଆଦିରେ ବିଷ୍ଠା ଜମା ହୁଏ; ଅଥଚ ଅତି ସତର୍କ ହୋଇ ଜଗିଲେ ମଧ୍ୟ ଏ ସବୁ କାର୍ଯ୍ୟ କିଏ କରୁଛି ବୋଲି କେହି ମାତ୍ର ଧରା ପଡ଼େ ନାହିଁ । ଏହା ଏକପ୍ରକାର ଭୌତିକ କାଣ୍ଡ । ଗୁଣିଆ ଆଣି ଏଥିର ଲେଉଟ ଉପାୟ କଲେ ଏହା ବନ୍ଦ ହୋଇଯିବାର ଦେଖା ଯାଇଅଛି । ]

ବୀରପ୍ରସୂ—ସଂ. ବିଣ ଓ ବି. ସ୍ତ୍ରୀ ( ବୀର+ପ୍ର+ସୂ ଧାତୁ+କ୍ୱିପ୍ )—Biraprasū ବୀର ସନ୍ତାନବତୀ ସ୍ତ୍ରୀ—A mother of heroes.

ବୀରବ(ବା)ଉଳ(ଳି)—ଦେ. ବି ( ସଂ. ବୀରବଳୟ )—କର୍ଣ୍ଣାଳଙ୍କାର ବିଶେଷ; Biraba(bā)uḷi(ḷi) କର୍ଣ୍ଣବଳୟବିଶେଷ; ମକରକୁଣ୍ଡଳ—A kind of earring. ( ଉ—କେଡ଼େ ଶୋଭିଥରେ ଶ୍ରୁତି କର୍ଣ୍ଣଯୁଗେ ବୀରବଉଳ—ରାଧାନାଥ. ଉଷା । )
वीरवौली, वीरवउली
**वीरछुमक**
ବୀରବଳ
ବୀରବଳି } ଅନ୍ୟରୂପ
ବୀରବୋଲି
[ ଦ୍ର—ପୂର୍ବେ ବୀରମାନେ ଏହି ଅଳଙ୍କାର ପିନ୍ଧୁଥିଲେ । ଏହାର ଆକୃତି ମଗର ପରି । ମଗରର ପେଟ ଅଂଶ ଗୋଲ ବୁଲି ମୁହଁ ଓ ଲାଞ୍ଜ ଉପରକୁ ଉଠିଥାଏ । ମୁହଁ ଓ ଲାଞ୍ଜ ମଧ୍ୟସ୍ଥ ଫାଙ୍କରେ ଖଣ୍ଡିଏ କାଠି ଲାଗିଥାଏ, ସେହି କାଠି କାନର ଛିଦ୍ରରେ ପଶେ । ଏହି ମଗରର ପାଟରେ ଓ ମୁହଁରେ ମଣି ଖଚିତ ହୋଇଥାଏ । ଉତ୍କଳର ଗଡ଼ଜାତର ରଜାମାନେ ପଣ୍ଡିତମାନଙ୍କୁ 'ବୀରବଳି' ବା କୁଣ୍ଡଳ ଉପହାର ଦେଇଥାଆନ୍ତି । ପଣ୍ଡିତମାନେ ବୃଦ୍ଧାବସ୍ଥାରେ ସୁଦ୍ଧା ତାହା ପିନ୍ଧି ରାଜସଭା ଓ ରାଜଦରବାରମାନଙ୍କରେ ଉପସ୍ଥିତ ହୁଅନ୍ତି । ]

ବୀରବର—ସଂ. ବି ( ୭ମୀ ତତ୍; ବୀର+ବର=ଶ୍ରେଷ୍ଠ )—ବୀରଶ୍ରେଷ୍ଠ; Birabara ମହାବୀର—The chief amongst heroes; a prominent hero. ଦେ. ବି—କ୍ଷତ୍ରିୟମାନଙ୍କ ଉପାଧିବିଶେଷ—A title of Kshatriyas. [ ଦ୍ର—ଏହା ଉପେନ୍ଦ୍ରଭଞ୍ଜଙ୍କର ଉପାଧି ଥିଲା । କେତେକ ସ୍ଥାନରେ ଭଣିତାରେ ସେ ଆପଣାର ନାମ 'ବୀରବର' ଲେଖିଅଛନ୍ତି । ଯଥା—ବୀରବର ରଚନା ଏପଦ କୋଡ଼ି—ସୁବର୍ଣ୍ଣରେଖା । ]

ବୀରବଲ୍(ଳ)—ଦେ. ବି ( ନାମ )—ମୋଗଲ ସମ୍ରାଟ ଅକବରଙ୍କ Birabal(la) ସଭାର ଜଣେକ ବିଦ୍ୱାନ୍ ପଣ୍ଡିତ ଓ ସେନାପତି—Name of a court poet and commander of the Moghul Emperor Ākbar.
वीरवल
**वीरबल**
[ଦ୍ର—ଏହାଙ୍କ ପୂର୍ବ ନାମ ମହେଶ ଦାସ, ଜନ୍ମ ସ୍ଥାନ ବୁନ୍ଦେଲ ଖଣ୍ଡ । ଏହାଙ୍କ କବିତ୍ୱ ଶକ୍ତିରେ ଓ ସଙ୍ଗୀତ ନୈପୁଣ୍ୟରେ ମୁଗ୍ଧ ହୋଇ ସମ୍ରାଟ ଅକବର ଏହାଙ୍କୁ କବିରାୟ ଉପାଧି ଦେଇଥିଲେ ଓ ନିଜର ସଭା ପଣ୍ଡିତ କରିଥିଲେ, ପରେ ଏହାଙ୍କୁ ରାଜା ଉପାଧି ଓ ଜାଗିର ଦେଇ ସହସ୍ର ସୈନ୍ୟଙ୍କ ଅଧିନାୟକ କରିଥିଲେ । ଏହି ସମୟରେ ଏ ବୀରବଳ ନାମରେ ଆଖ୍ୟାତ ହେଲେ । ବୀରବଳ ସେନାପତି ରୂପେ ବିଚକ୍ଷଣତା ସହକାରେ ରାଜକାର୍ଯ୍ୟ ନିର୍ବାହ କରୁଥିଲେ । କୌଣସି ଗୁରୁତର ରାଜକାର୍ଯ୍ୟ ପଡ଼ିଲେ ଅକବର ବୀରବଳଙ୍କ ପରାମର୍ଶ ଲୋଡ଼ୁଥିଲେ । ୧୫୮୬ ଖ୍ରୀଷ୍ଟାବ୍ଦରେ ବିଦ୍ରୋହୀ ଆଫଗାନଙ୍କ ବିରୁଦ୍ଧରେ କାବୁଲର ସେନାପତି ଜୈନଖାଁଙ୍କ ସାହାଯ୍ୟ କରିବା ପାଇଁ ଯେଉଁ ସୈନ୍ୟଗଣ ପ୍ରେରିତ ହୋଇଥିଲେ ବୀରବଳ ତହିଁର ଅଧିନାୟକରୂପେ ପ୍ରେରିତ ହୋଇଥିଲେ ଓ ସେହି ଅଭିଯାନରେ ସେ ଆଫଗାନ୍‌ମାନଙ୍କଦ୍ୱାରା ୧୫୯୦ ଖ୍ରୀଷ୍ଟାବ୍ଦରେ ନିହତ ହେଲେ—ସୁବଳଚନ୍ଦ୍ର । ]

ବୀରବଳ—ସଂ. ବି—୧ । ବୀରୋଚିତ ବଳ—1. The might of Birabaḷa a hero. ୨ । ବାହୁବଳ—2. The might of one's arms; physical strength; prowess.

ବୀରବହ—ସଂ. ବିଣ (ବୀର+ବହ ଧାତୁ+କର୍ମ. ଅ)—ଯାହା ଘୋଡ଼ା Birabaha ଦ୍ୱାରା ଟଣାଯାଏ(ହ୍ରୁ. ଶ.)—Driven by the horse. ସଂ. ବି. ରଥ ( ହ୍ରୁ ଶ. )ଘୋଡ଼ା ଗାଡ଼ି—Car; carriage drawn by horses

ବୀର ବାଉ(ହୁ)ଟୀ(ଟା)—ଦେ. ବି (ସମ୍ବଲପୁର)—(ସଂ. ବୀର+ବଧୂଟୀ)—Bira bāu(hu)ṭi(tā) ତାନ୍ତ୍ରିକ ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତି ଉପରେ ବା ସ୍ଥାନରେ ଉପଦ୍ରବ କରିବା ଭୂତ ଓ ଯୋଗିନୀ—Evil spirits and Deities which are made to possess persons or places by the employment of charms.
[ବୀରବାଉ(ହୁ)ଟିଆ—ଅନ୍ୟରୂପ]
भूतप्रेत **देवादेवी**

ବୀରବାଜା—ଦେ. ବି ( ସଂ. ବୀରବାଦ୍ୟ )—ବୀରବାଦ୍ୟ; ରଣବାଦ୍ୟ—Birabājā War drum; war-music. (ଉ—ବାଜେ ବୀରବାଜା, ଉଡ଼େ ରଣଧ୍ୱଜା, କର୍ମେ ଅଭେଦୀ ଗିର କାନନ—ନନ୍ଦକିଶୋର. କୃଷ୍ଣକୁମାରୀ । )
(ବୀରବାଦ୍ୟ—ସଂ. ରୂପ)
वीरवाद्य, वीरवाजना **वीरबाजा**

ବୀରବାହୁ—ସଂ. ବି (ବୀର+ବାହୁ)—୧ । ଶୂରଶ୍ରେଷ୍ଠ; ବୀରଶ୍ରେଷ୍ଠ—Birabāhu 1. A prominent warrior. ୨ । ରାବଣର ପୁତ୍ର—2. Son of Rābaṇa. ୩ । ବିଷ୍ଣୁ—3. Bishṇu.

ବୀରବିକ୍ରମ ଦେବ—ଦେ. ବି (ନାମ)—ଖଡିଆଳର ସ୍ୱର୍ଗୀୟ ରାଜା—Birabikrama deba Name of a late Raja of Kharial who was an Oriya author [ଦ୍ର—'ପ୍ରେମଲତା' ନାଟକ ଏହାଙ୍କଦ୍ୱାରା ରଚିତ—ତାରିଣୀ ଉତ୍କଳ ସାହିତ୍ୟର ଇତିହାସ । ଏ ମଧ୍ୟ ଅନ୍ୟ କେତେ-

ଗୁଡ଼ିଏ ଓଡ଼ିଆ ନାଟକ, ଚଉତିଶା ଓ ସଙ୍ଗୀତ ରଚନା କରିଥିଲେ ।]

**ବୀର ବିପ୍ଳାବକ—ସଂ. ବି—**ଯେଉଁ ବ୍ରାହ୍ମଣ ଶୂଦ୍ରଠାରୁ ଧନ ଗ୍ରହଣ କରି
Bīra biplābaka ହୋମ କରେ (ହି. ଶ.)—A Brāhmaṇa who performs homa by accepting money from a Śūdra.

**ବୀରବୋହୂ—ଦେ ବି** (ସଂ. ବୀର + ବଧୂ)—ସାଧବଣର ବୋହୂ ପୋକ
Birabohū The velvet insect.
वीरबउटी **वीरबहुटी** ( ବୀରବୋହୁଟୀ—ଅନ୍ୟରୂପ )

**ବୀରବ୍ରତ—ସଂ. ବି. ପୁଂ** ( ବହୁବ୍ରୀହି; ବୀର + ବ୍ରତ )—୧ । ଯେ ବୀରତା
Birabrata ସହକାରେ ଆପଣା ସଙ୍କଳ୍ପ ପାଳନ କରେ (ହି.ଶ) I. A person who carries out his resolve heroically. ୨ । ନିଷ୍ଠାବାନ୍ ଓ ଆଗ୍ରହବାନ୍ ବ୍ରହ୍ମଚାରୀ (ହି. ଶ.)—2. A sturdy and orthodox Brahmachāri.

**ବୀରଭଦ୍ର—ସଂ. ବି** (୭ମୀ ତତ୍; ବୀର + ଭଦ୍ର = ଶ୍ରେଷ୍ଠ)—୧ । ବୀରଶ୍ରେଷ୍ଠ;
Birabhadra ମହାବୀର—1. A preeminent hero. ୨ । ରୁଦ୍ରବିଶେଷ—2. Name of a Rudra Deity. ୩ । ଶିବାନୁଚରବିଶେଷ—3. Name of an attendant of Śiba. ( ଉ—ରୁଦ୍ରର ଯେ ଜଟାର ମଧ୍ୟ, ପ୍ରକୁଟେ ଜାତ ବୀରଭଦ୍ର—ଜଗନ୍ନାଥ ଭାଗବତ ) । [ ଦ୍ର—ଦକ୍ଷଯଜ୍ଞ ବିନାଶ କରିବା ସମୟରେ ମହାଦେବ ଏହି ବୀରଙ୍କୁ ନିଜ ଜଟାରୁ ସୃଷ୍ଟି କରିଥିଲେ ।] ୪ । ଅଶ୍ୱମେଧ ଯଜ୍ଞର ଅଶ୍ୱ—4. A horse dedicated as a victim for a horse-sacrifice
वीरभद्र **वीरभद्र** ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males, ୨ । ଶ୍ରୀଚୈତନ୍ୟ ଦେବଙ୍କ ସହଚର ନିତ୍ୟାନନ୍ଦ ଦେବଙ୍କ ପୁତ୍ର—2. Name of the son of Nityānanda, the companion of Sri Chaitanya Deba.

**ବୀରଭା—ଦେ ବି.** ( ସଂ. ବୀର + ଭାବ )—ବୀରତ୍ୱ—
Birabhā ( ଉ—ବୀରଭା ନୁ ତ କମ୍ପ ଭି ପ୍ରସବି—ଉପେ. ବୈଦେହୀଶବିଳାସ । )

**ବୀରଭୁକ୍ତି—ସଂ. ବି—** ଅଧୁନାତନ ବୀରଭୂମର ପ୍ରାଚୀନ ନାମ ( ହି. ଶ )—
Bira bhukti The ancient name of Birbhum.

**ବୀରଭୂମ(ମି)—ଦେ. ବି** (ନାମ) ( ସଂ. ବୀରଭୁକ୍ତି )—ବଙ୍ଗ ଦେଶର
Birabhūma(mi) ପଶ୍ଚିମ ସୀମାରେ ଥିବା ଗୋଟିଏ ଜିଲ୍ଲାର
वीरभूम ନାମ—Birbhum; name of a western
**वीरभूम** (ବୀରଭୂଇଁ—ଅନ୍ୟରୂପ) district of Bengal.

**ବୀରମଣି—ସଂ. ବି.** ( ୬ଷ୍ଠୀ ବା ୭ମୀ ତତ୍ )—୧ । ବୀର ଶ୍ରେଷ୍ଠ—
Bīra maṇi 1. A prominent hero. ୨ । (ନାମ) ଦେବପୁରର ଏକ ରାଜା, ଯାହାଙ୍କ ପୁତ୍ର ରୁକ୍ମାଙ୍ଗଦ ରାମଚନ୍ଦ୍ରଙ୍କ ଯଜ୍ଞ ଘୋଡ଼ାକୁ ବାନ୍ଧି ଥିଲେ ଓ ମହାଦେବଙ୍କ ସହାୟତାରେ ଶତ୍ରୁଘ୍ନଙ୍କୁ ପରାସ୍ତ କରିଥିଲେ ଓ ଯାହାଙ୍କଠାରୁ ରାମଚନ୍ଦ୍ର ଶେଷରେ ଯଜ୍ଞଘୋଡ଼ାକୁ ଛଡ଼ାଇ ଆଣିଥିଲେ—1. Name of a king of Debapura; a contemporary of Rāma chandra.

**ବୀରମର୍ଦ୍ଦଳ—ସଂ. ବି.** (୬ଷ୍ଠୀ ତତ୍)—ଯୁଦ୍ଧ ମର୍ଦ୍ଦଳ; ଯୁଦ୍ଧ ଢକ୍କା (ହି.ଶ)-
Bīra marddaḷa War drum.
(ବୀର ମାଦଳ—ଦେଶଜରୂପ)

**ବୀର ମାଟି—ଦେ. ବି.** ( ସଂ. ବୀର + ମୃତ୍ତିକା )—୧ । ବୀରମାନେ ଯୁଦ୍ଧ
Bīra māṭi ପୂର୍ବରୁ ବା ମଲ୍ଲ କ୍ରୀଡ଼ା ପୂର୍ବରୁ ଦେହରେ ଯେଉଁ
वीरमाटि ହଳଦିଆ ମାଟି ବୋଳ ହେଉଥିଲେ—1. A kind of
**वीरमिट्टी** coloured earth with which warriors and athletes used to besmear their bodies before fighting or wrestling. ୨ । (ବ୍ୟଙ୍ଗ) ଯେଉଁ ସ୍ଥାନର ମୃତ୍ତିକାର ଏପରି ମାହାତ୍ମ୍ୟ ଅଛି ଯେ ସେ ସ୍ଥାନରେ ପାଦ ଦେବା ମାତ୍ରେ ଲୋକର ପ୍ରଚ୍ଛନ୍ନ ବୀରତ୍ୱ ପ୍ରକାଶିତ ହୁଏ ( ଯଥା—କଟକ ପଗ୍ ବୀରମାଟି )—2. A place said to possess the potency of infusing heroism in a person who sets foot on it (ironical).

**ବୀର ମାତା—ସଂ. ବି ଓ ବିଣ. ସ୍ତ୍ରୀ.** (ବୀର + ମାତୃ)—ବୀର ପୁତ୍ରର ମାତା
Bīra mātā ବା ମାଆ; ବୀର ପୁତ୍ର ପ୍ରସବକାରୀ ସ୍ତ୍ରୀ—
A mother of heroes.
(ବୀରପୁତ୍ର ଧାତ୍ରୀ, ବୀର ପ୍ରସବିନୀ, ବୀର ପ୍ରସୂ, ବୀରବଧୂ, ବୀରସୂ—ଅନ୍ୟରୂପ)

**ବୀର ମାର୍ଗ—ସଂ. ବି.** (୬ଷ୍ଠୀ ତତ୍; ବୀର + ମାର୍ଗ)—
Bīra mārga ସ୍ୱର୍ଗ (ହି. ଶବ୍ଦସାଗର)—Heaven.
(ବୀରଗତି, ବୀର ଲୋକ—ଅନ୍ୟରୂପ)

**ବୀର ରଜଃ—ସଂ. ବି—**ସିନ୍ଦୂର (ହି. ଶ)—
Bīra rajaḥ Vermilion.

**ବୀର ରସ—ସଂ. ବି.—**(ବୀର + ରସ)—କାବ୍ୟ ଶାସ୍ତ୍ରର ୯ ଗୋଟି ରସ
Bīra rasa ମଧ୍ୟରୁ ଗୋଟିଏ ପ୍ରଧାନ ରସ—The heroic sentiment in literature. [ ଦ୍ର—ଯେଉଁ ବିଷୟର ଶ୍ରବଣ, ପାଠ ବା ଦର୍ଶନଦ୍ୱାରା ହୃଦୟରେ ବୀରୋଚିତ ଉତ୍ସାହ ଜାତ ହୁଏ, ତାହାର ରସ ବୀର ରସ ।]

**ବୀର ରାମଚନ୍ଦ୍ରପୁର—ଦେ. ବି.—**(ବୀର + ରାମଚନ୍ଦ୍ର + ପୁର)—ପୁରୀ ଜିଲ୍ଲା
Bīra rāmachandra pura ସତ୍ୟବାଦୀ ଅଞ୍ଚଳର ଗୋଟିଏ ବଡ଼
(ବୀର ରାମଚନ୍ଦ୍ରପୁର—ଗ୍ରାମ୍ୟରୂପ ) ବ୍ରାହ୍ମଣ ଶାସନ—Name of a big Brāhmaṇa village near Sakhigopal in the Puri district. [ଦ୍ର—ଉତ୍କଳର ଜନୈକ ସ୍ୱାଧୀନ ନରପତି ରାମଚନ୍ଦ୍ର ବା ବୀର ରାମଚନ୍ଦ୍ର ଦେବଙ୍କ ଦ୍ୱାରା ଏ ଶାସନ ପ୍ରତିଷ୍ଠିତ ହୋଇଥିବାରୁ ତାଙ୍କ ନାମ ଅନୁସାରେ ଏ ଶାସନର ନାମକରଣ ହୋଇଥିଲା ।]

**ବୀର ବାହୁ—ସଂ. ବି—**(ବୀର + ବାହୁ; ୬ଷ୍ଠୀ ତତ୍; ଏ ପୃଥିବୀକୁ ୭ ବାର
Bīra bāhu କ୍ଷତ୍ରିୟଶୂନ୍ୟ ବା ନିର୍ବୀର କରି ଥିବାରୁ)—୧ । ବିଷ୍ଣୁ

ବୀରମାନଙ୍କର ବିନାଶକ—The destroyer of the Kshatriya heroes. [ଉ—ବୀର ରକ୍ତ ଭୃଗୁସୁତ ଲାଗ ଦେବା ପାଇଁ, ବାସ କଲ୍ପ ଗିରି ଭୃଗୁ ଉମକନ୍ତେ ଚହିଁ। ଉଞ୍ଜ. ବୈଦେହୀଶବିଳାସ।] ୨। ପରଶୁରାମ—2. An epithet of Paraśurāma.

ବୀର ଲଗିବା—ଦେ. କ—ଅନ୍ୟ ବ୍ୟକ୍ତିଙ୍କ ମନ୍ତ୍ର ଯନ୍ତ୍ରାଦି ପ୍ରୟୋଗ ବଳରେ Bīra lāgibā କୌଣସି ମନୁଷ୍ୟ ଠାରେ ବା ଗୃହରେ ଦୁଷ୍ଟ ଭୂତ ଭୂତ ଲାଗି ଆବିଷ୍ଟ ହେବା—The possession of a house or person by a malignant spirit by the employment of charms.

ବୀରଶୟ୍ୟ—ସଂ ବି.—( ବୀର+ଶୀ ଧାତୁ+ଅଧି. ଅ; ବୀରର ଶଯ୍ୟା) Bīraśaya ଯୁଦ୍ଧରେ ମୃତ୍ୟୁ—Death while fighting.

ବୀର ଶୟନ—ସଂ ବି.—୧। (୭ମୀ ତତ୍ ବୀର+ଶୟନ)—ଯୁଦ୍ଧରେ Bīra śayana ମୃତ୍ୟୁ—Death while fighting. [ଉ—(ବୀରଶଯ୍ୟା—ଅନ୍ୟରୂପ) ବୀର ଶୟନେ ଭୁ ଆନନ୍ଦେ, ଶୋଇବୁ କୁରୁଙ୍କ ମଧ୍ୟେ। ଜଗନ୍ନାଥ. ଭାଗବତ।] ୨। (ବହୁବ୍ରୀହି)—ରଣଭୂମି—Battlefield.

ବୀର ଶାକ—ସଂ. ବି.—ଧଳା ବଥୁଆ ଶାଗ (ହି. ଶ.)— Bīra śāka Chenopodum Album.

ବୀର ଶାର୍ଦ୍ଦୂଳ—ସଂ. ବି ( ଉପମିତ କର୍ମଧାରୟ ବା ୭ମୀ ତତ୍; ବୀର+ Bīra śārddula ଶାର୍ଦ୍ଦୂଳ )—୧। ବୀରଶ୍ରେଷ୍ଠ—1. A pre-eminent hero. [ ଉ—ବୀରଶାର୍ଦ୍ଦୂଳ ଲୋକନେ ଭାଜେ ସୈନ୍ୟ ମୃଗ। ଉଞ୍ଜ. ବେଦେହୀଶବିଳାସ।] ୨। ପରାକ୍ରମୀ ବ୍ୟାଘ୍ର—2. A naughty tiger.

ବୀରଶିଖ—ଦେ. ବି. ( ସଂ. ବୀର+ଶିଖର )—ବୀରମାନଙ୍କ ମଧ୍ୟରେ Biraśikha ଶ୍ରେଷ୍ଠ; ଶ୍ରେଷ୍ଠବୀର—A pre-eminent hero. [ ଉ—ବରୁଣଙ୍କ ସମ୍ବନ୍ଧୀ ଦେବଦତ୍ତ ଶଙ୍ଖ, ସେ ସର୍ବେବରେ ମଧ୍ୟ ଅଛୁ ବୀରଶିଖ। କୃଷ୍ଣସିଂହ. ମହାଭାରତ ବନ।]

ବୀରଶୂନ୍ୟ—ସଂ. ବିଣ ( ୬ଷ୍ଠୀ ତତ୍; ବୀର+ଶୂନ୍ୟ )—ଯେଉଁ ସ୍ଥାନରୁ Bīraśūnya ବୀରମାନଙ୍କ ଲୋପ ହୋଇ ଅଛୁ—( a place ) Shorn of all its heroes.

ବୀର ସର୍ବସ୍ୱ—ସଂ. ବି ( ବୀର+ସର୍ବସ୍ୱ )—ସଂସ୍କୃତ ସ୍ମୃତିଗ୍ରନ୍ଥ ବିଶେଷ— Bīra sarbaswa Tetle of a Sanscrit code of Law [ ଦ୍ର—ଗୋବିନ୍ଦ ସାମନ୍ତରାୟ ନାମକ ଜନୈକ ଉତ୍କଳୀୟ ୩୦୦ ବର୍ଷ ତଳେ ଉକ୍ତ ପୁସ୍ତକ ରଚନା କରିଥିଲେ। ଏଥିରେ ବ୍ୟବହାର ରଚନା ଓ ଅଷ୍ଟ ଶାସ୍ତ୍ର ବ୍ୟବହାରର ବ୍ୟବସ୍ଥାନ ବିଶଦଭାବରେ ବର୍ଣ୍ଣିତ ହୋଇଅଛି। ଏ ଗ୍ରନ୍ଥକୁ ନାଗରାକ୍ଷରରେ ସୋନପୁରର ମହାରାଜ ସର ବୀରମିତ୍ରୋଦୟ ସିଂହଦେବ ମୁଦ୍ରିତ କରାଇ ଅଛନ୍ତି।]

ବୀର ସାଧନ(ନା)—ସଂ. ବି [ ବୀର+ସାଧନ(ନା) ]—'ବୀର' ନାମକ Bīra sādhana(nā) ଉପଦ୍ରବକାରୀ ଭୂତକୁ ବଶୀଭୂତ କରିବା ଓ ପ୍ରେରଣ ବିଷୟରେ ତାକୁ ଅନ୍ୟବ୍ୟକ୍ତିଠାରେ ପ୍ରବେଶ କରାଇ, ଅନ୍ୟର ଅନିଷ୍ଟ ଘଟାଇବା ନିମନ୍ତେ କରାଯିବା ତାନ୍ତ୍ରିକ ସାଧନ ବିଶେଷ—A tantric ritual for keeping a maligrant spirit under one's control and making it possess people and places.

ବୀର ସିଂହ—ସଂ. ବି. ( ୭ମୀ ତତ୍; ବୀର+ସିଂହ )—ବୀରଶ୍ରେଷ୍ଠ— Birā simha A pre-eminent hero. [ ଉ—ବୀରସିଂହ ଅରଣ୍ୟେ ବିଳସ। ଉଞ୍ଜ. ବୈଦେହୀଶବିଳାସ।]

ବୀରସୂ—ସଂ. ବି ( ବୀର+ସୂ ଧାତୁ=ପ୍ରସବ କରିବା+କର୍ତ୍ତୃ. କ୍ୱିପ୍ )— Birasū ବୀରମାତା—The mother of heroes. [ ଉ—ବୀରସୂ ସନ୍ନିଧେ ହେଉ ବଧୂ ଅଲୋକରେ। ଉଞ୍ଜ. ବୈଦେହୀଶବିଳାସ।]

ବୀର ସେନ—ସଂ. ବି ( ବୀର+ସେନ )—୧। ନଳରାଜାଙ୍କ ପିତା— Bira sena 1. Name of the father of king Naḷa. ୨। ଆରୁକ; ଅଲୁବୋଖାରା ନାମକ କାବୁଲୀ ଫଳ ଓ ବୃକ୍ଷ —2. Prunus Communis (tree and plum); prune ( fruit ).

ବୀରସ୍ଥ—ସଂ. ବି—ଯଜ୍ଞରେ ବଳି ଦିଆଯିବା ପଶୁ ( ହି. ଶ )— Birastha An animal sacrificed at an animal sacrifice.

ବୀର ସ୍ଥାନ—ସଂ. ବି ( ୬ଷ୍ଠୀ ତତ୍; ବୀର=ସ୍ଥାନ )—୧। ବୀରାସନ Bira sthāna ହି. ଶ ( ଦେଖ )—1. Birāsana (See) ୨। ସ୍ୱର୍ଗ ( ହି. ଶ. )—2. Heaven.

ବୀରହା—ସଂ. ବି. ପୁଂ (ବୀର=ଯଜ୍ଞାଗ୍ନି+ହନ୍ ଧାତୁ=ନାଶକରିବା+ Birahā କର୍ତ୍ତୃ. କ୍ୱିପ୍; ବୀରହନ୍ ଶବ୍ଦ )—୧। ନଷ୍ଟାଗ୍ନି ବ୍ରାହ୍ମଣ; ପ୍ରମାଦ ବା କାରଣାନ୍ତର ବଶତଃ ଯେଉଁ ସାଗ୍ନିକ ବ୍ରାହ୍ମଣଙ୍କ ଗୃହରୁ ଯଜ୍ଞାଗ୍ନି ଲିଭି ଯାଇଅଛି—1. A Brāhmaṇa in whose house the sacrificial fire has been extinguished through negligence. ୨। ବିଷ୍ଣୁଙ୍କର ନାମ—2. A name of Bishṇu ସଂ. ବିଣ—୧। ବୀରନାଶକ—1. Destructive of heroes. ୨। ମହାବୀର—2 Valiant.

ବୀରା—ସଂ. ବି. ସ୍ତ୍ରୀ ( ବୀର୍ ଧାତୁ=ଶୌର୍ଯ୍ୟ ପ୍ରକାଶ କରିବା+କର୍ତ୍ତୃ. Birā ଅ+ସ୍ତ୍ରୀ. ଆ)—୧। ପତିପୁତ୍ରବତୀ ନାରୀ—1. A woman ( ଅବୀରା—ବିପରୀତ ) having her husband living & blessed with a son or sons. ୨। (ଭୁଲ. ଇଂ. ବ୍ୟାର୍‌ରୁ) ମଦିରା—2. Wine. ୩। ମୁରା ନାମକ ଗନ୍ଧଦ୍ରବ୍ୟ; ମୁରାମାଂସୀ—3. A medicinal scent. ୪। କ୍ଷୀରକାକୋଲୀ ( ଦେଖ )—4. Kshīrakākolā ( See ) ୫। ଆମଳକୀ—5. Embelic myrobalan. ୬। ରମ୍ଭା; କଦଳୀ—6. Plantain. ୭। ବିଦାରୀ; ଭୂଇଁକଖାରୁ—7. A kind of yam. ୮। ମଦୁରୀ; ଅତିବିଷା—8. Aconite. ୯। ଶିଂଶପା, ଶିଶୁଗଛ— 9. Dalbergia Sissu. ୧୦। ଏଲବାଲୁକ ( ହି. ଶ ) (ଦେଖ)—10. Elabāluka ( See ) ୧୧।

ଶତାବରୀ ( ଉ୍ଭି. ଶ )—11. Asparagus Raccmosa. ୧୨ । ବ୍ରାହ୍ମୀ ଶାକ (ଉ୍ଭି. ଶ )—12. Brāhmī ( See ) ୧୩ । ଗମ୍ଭାରୀ ଗଛ ( ଉ୍ଭି. ଶ ) ( ଦେଖ ) 13. Gambhārī ( See ) ୧୪ । ପୃଶ୍ନିପର୍ଣ୍ଣୀ ( ଉ୍ଭି. ଶ )—14. Prusniparṇṇī ( See ) ୧୫ । କଟୁରୋହିଣୀ; କଟୁକା (ଉ୍ଭି. ଶ)—15. Black hellebore. ୧୬ । ଜଟାମାଂସୀ ( ଉ୍ଭି. ଶ )—16. Indian spikenard. ୧୭ । ଭୂଇଁ ଅଁଳା ( ଉ୍ଭି. ଶ )—17 Phyllanthus Niruro ( plant ). ୧୮ । ଘିକୁଆଁରି ( ଉ୍ଭି. ଶ )—18. Indian Aloes. ଦେ. ବି—୧ । ବିର ( ଦେଖ )—1. Birā ( See ) [ ଉ—ଅଙ୍ଗମ କାଳରେ ମାଳାମ୍ବର ପିଜି ଏକତ୍ର କରଣ 'ବୀର' ଗ୍ରହଣ—ନନ୍ଦକିଶୋର. କୃଷ୍ଣକୁମାରୀ । ] ୨ । ବୀର; ବଳିଷ୍ଠ ବ୍ୟକ୍ତି; ବଳବାନ୍ ବ୍ୟକ୍ତି—2. Hero; a mighty person. [ ଉ—ମାର ମଣ୍ଟମାନଙ୍କୁ ଭୁଗଣିବା ବୀର । ନିଜ ରଥେ ବସିଲେ ପୃଷ୍ଠେ ମାର ତରି—କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ] ଗ୍ରାଦେ. ( ଗଡ଼ଜାତ ) ବି ( ସଂ. ବ୍ରଣ )—ବ୍ରଣ; ବଥ—Boil.

**ବୀରାଙ୍ଗନା**—ସଂ. ବି—(କର୍ମଧା; ବୀର+ ଅଙ୍ଗନା)—୧ । ବୀରନାରୀ; Bīrāngana ଶୌର୍ଯ୍ୟବତୀ ସ୍ତ୍ରୀ—1. A heroic woman; amazon. ୨ । ( ୬ଷ୍ଠୀ ତତ୍ ) ବୀରର ସ୍ତ୍ରୀ—2. The wife of a hero. ଦେ. ବି—ବଙ୍ଗୀୟ କବି ମାଇକେଲ୍ ମଧୁସୂଦନ ଦତ୍ତଙ୍କ ବଙ୍ଗଳା କାବ୍ୟର ଉପାଧି—Title of a poem by the late Michael Madhusūdana Dutta of Bengal.

**ବୀରାଚାର**—ସଂ. ବି—( ବୀର+ଆଚାର )—୧ । ବୀର ଜନୋଚିତ Bīrāchāra ଆଚରଣ—1. Conduct befitting a hero. (ବୀରଚରିତ୍ର—ବିଣ. ପୁଂ) ୨ । ତାନ୍ତ୍ରିକ କ୍ରିୟାବିଶେଷ—2. A class of Tantric rites. [ ଦ୍ର—ଏହା ଏକପ୍ରକାର ତାନ୍ତ୍ରିକ ବାମମାର୍ଗ ବା ଶକ୍ତି ଉପାସନା । ଏଥିରେ ସାଧକମାନେ ଦେବତାଙ୍କୁ ବୀର ଭାବରେ ଉପାସନା କରନ୍ତି; ଏମାନେ ମଦ୍ୟକୁ ଶକ୍ତି ଓ ମାଂସକୁ ଶିବରୂପେ ଓ ଏ ଦୁଇ ବସ୍ତୁର ଭକ୍ତଙ୍କୁ ଭୈରବରୂପେ ମାନନ୍ତି । ଏ ସାଧକମାନେ 'ଚକ୍ର' (ଚକ୍ରପୂଜାପୀଠ) ରେ ବସି ପୂଜା କରନ୍ତି ଓ କୌଣସି ସ୍ତ୍ରୀଙ୍କୁ କାଳୀରୂପେ ବରଣ କରି ତାଙ୍କୁ ମଦ୍ୟ ଓ ମାଂସ ଅର୍ପଣ କରନ୍ତି । ଏମାନେ ଶବ ଉପରେ ବସି ତାନ୍ତ୍ରିକ ସାଧନ କରନ୍ତି—ହି. ଶ. । ]

**ବୀରାଧିବୀର**—ଦେ. ବି—( ସଂ. ବୀର+ଅଧିବୀର=ଶ୍ରେଷ୍ଠବୀର )—Bīrādhibīra ବୀରଶ୍ରେଷ୍ଠ—A great hero. ( ଉ—ବୀରାଧିବୀର କେତେଦୂର ଚଳେ । ଉପେନ୍ଦ୍ର. ବୈଦେହୀଶବିଳାସ ) ବୀରବର वीराधी

**ବୀରାଧିବୀରବର**—ଦେ. ବି—(ବୀର+ଅଧିବୀର+ବର)—ମହାବୀର—Bīrādhibirabara 1. A great hero. ୨ । ପ୍ରାଚୀନ ଓଡ଼ିଶା ରାଜାଙ୍କ ଉପାଧି ବିଶେଷ—2. One of the titles of the ancient kings of Orissa. ବୀରବର वीराही

**ବୀରାମ୍ଳ**—ସ ବି—ଅମ୍ଳବେତସ (ଦେଖ)—Amlabetasa (See). Birāmla ( ବୀର ବେତସ—ଅନ୍ୟରୂପ )

**ବୀରାସନ**—ସଂ. ବି—(ବୀର + ଆସନ)—୧ । ଉପବେଶନ ବିଶେଷ; ଏକ Bīrāsana ଜାନୁ ଭୂମିରେ ପକାଇ ଅନ୍ୟ ଏକ ଜାନୁକୁ ଭିଆରକରି ବସିବା—1. A posture in sitting by laying one thigh and the sole of the other leg on the ground. ୨ । ଯୋଗ ସାଧନର ଆସନବିଶେଷ; ଦକ୍ଷିଣପାଦକୁ ବାମ ଜଙ୍ଘ ଉପରେ ଓ ବାମ ପାଦକୁ ଦକ୍ଷିଣ ଜଙ୍ଘ ଉପରେ ପକାଇ ଚେକାମାଡ଼ିଲି ପକାଇ ବସିବା; ପଦ୍ମାସନ—2. A posture in joga exercise which consists of sitting cross-legged.

**ବୀରାହି**—ଦେ. ବି—(ସଂ. ବୀରାଧିଶ୍ୱର)—୧ । ମହାବୀର ବ୍ୟକ୍ତି—1. A Bīrāhi preeminent hero. (ଉ—ତେଣେ ନାଶ ହୋଇବ ସେ ଦଇତ ବୀରାହି । ସାରଳା. ମହାଭାରତ. ଆଦ୍ୟ ।) ୨ । ବୀବବର वीराही ବୀରର ଉପାଧି—2. The title of a hero.

**ବୀରିଜ**—ଗ୍ରା. ବି—(ସଂ. ବୀର୍ଯ୍ୟ; ବୀଜ)—ଶୁକ୍ର—Semen. Birija बीज बीज

**ବୀରୁ**—ଦେ. ବି—(ସଂ. ବିରୁଧ୍)—ଲତା—Creeper. (ଉ—ବାଣଧନୁ Biru ଦୃଢ଼େ ଧରି ଶ୍ରୀରାମ ଲକ୍ଷ୍ମଣ, ବୀରୁ ଅନ୍ତରୁ ବାହାରି ଏ ରବି ଶ୍ରବଣ । ଉପେ. ବୈଦେହୀଶବିଳାସ ।)

**ବୀରୁଧ୍(ଧ, ଧା)**—ସଂ. ବି—( ବି+ରୁଧ୍ ଧାତୁ=ଆବରଣ କରିବା+ Bīrudh(dha,dhā) କର୍ତ୍ତୃ. କ୍ୱିପ୍;+ଅ; + ସ୍ତ୍ରୀ. ଆ )—୧ । ବିସ୍ତୃତବଲ୍ଲୀ—1 A spreading creeper. ୨ । ଗୁଳ୍ମ; ଲତା-2. A creeper. ୩ । ଓଷଧି (ଉ୍ଭି.ଶ.)—3. An annual plant. ୪ । ବୃକ୍ଷ ଓ ଲତା ଆଦି (ଉ୍ଭି.ଶ)—4. Plants, creepers and trees.

**ବୀରେଶ**—ସଂ. ବି—(୭ମୀ ତତ୍; ବୀର+ଈଶ)—୧ । ବୀରଶ୍ରେଷ୍ଠ; Bīresa ମହାବୀର—1. A great hero. ୨ । ବୀରଭଦ୍ର; (ବୀରେଶ୍ୱର—ଅନ୍ୟରୂପ) ମହାଦେବଙ୍କ ଅନୁଚର—2. Bīrabhadra; an attendant of Sibā. ୩ । ଶିବ (ହି. ଶ)—3. Siba. ଦେ. ବି. ପୁଂ--ଲୋକଙ୍କ ନାମ—A name givin to males.

**ବୀର୍ଡାଲି**—ଗ୍ରା. ବି ( ସଂ. ବ୍ରୀହି+ଦାଲି )—ବିରି ରଗଡ଼ା ହୋଇ Birdāli ଚୋପା ଛଡ଼ାଯାଇ ରନ୍ଧା ଯାଇଥିବା ଡାଲି—କଡ଼ାୟୈବ ଡାଲ Curry consisting of boiled split उरदकी दाल pulse of Brihi.

**ବୀର୍ଯ୍ୟ**—ସଂ ବି ( ବୀର+ଭାବାର୍ଥେ ଯ )—୧ । ବୀରତ୍ୱ; ଶୌର୍ଯ୍ୟ—Bīrjya 1. Heroism; valour. ୨ । ତେଜଃ; ପ୍ରତାପ—2. Glory; vigour. ୩ । ଶୁକ୍ର; ରେତଃ—3. Semen virile. [ ଦ୍ର—ଏହା ଶରୀରସ୍ଥ ସପ୍ତଧାତୁର ଏକତମ । ଅନ୍ୟ ସବୁ ଧାତୁର ଶେଷରେ ଏହା .

ଶରୀରରେ ଉତ୍ପନ୍ନ ହୁଏ । ଏଥିପାଇଁ ଏହାର ନାମ ଚରମଧାତୁ; ଏତଦ୍ଦ୍ୱାରା ଶରୀରରେ ବଳ ଓ କାନ୍ତି ଉତ୍ପନ୍ନେ । ଏହା ସ୍ତ୍ରୀ-ସଙ୍ଗମ ସମୟରେ ବା ରୋଗଯୋଗୁଁ ମୂତ୍ରେନ୍ଦ୍ରିୟ ବାଟେ ନିର୍ଗତ ହୁଏ । ଏହା ଧାରଣ କଲେ, ଅର୍ଥାତ୍ ଏହା ପାତନ ନ କଲେ ବ୍ରହ୍ମଚର୍ଯ୍ୟ ରକ୍ଷା ହୁଏ ଓ ମନୁଷ୍ୟ ଚିରାୟୁ ହୁଏ; ଏଥିର ଅନ୍ୟ ସଂ. ନାମ—ଶୁକ୍ର, ରେତଃ, ତେଜଃ, ବୀଜ, ଇନ୍ଦ୍ରିୟ—ହି. ଶ. ] ୪ । କ୍ଷମତା—4. Power; might. ୫ । ଶକ୍ତି; ସାମର୍ଥ୍ୟ—5. Ability; strength. ୬ । ସାର—6. Essence. ୭ । ବୀଜ; ମଞ୍ଜି—7. Seed. ୮ । ମୂଳକାରଣ—8. Origin; prime cause.

**ବୀର୍ଯ୍ୟକର**—ସଂ. ବି (ଉପପଦ ତତ୍; ବୀର୍ଯ୍ୟ + କର)—୧ । ବଳକାରକ
Birjyakara —1. Producing or giving strength.
(ବୀର୍ଯ୍ୟଜନକ, ବୀର୍ଯ୍ୟକୃତ୍; ବୀର୍ଯ୍ୟପ୍ରଦ, ବୀର୍ଯ୍ୟପ୍ରସୂ—ଅନ୍ୟରୂପ)

**ବୀର୍ଯ୍ୟକୃତ**—ସଂ. ବିଣ—ବଳବାନ୍ ( ହି. ଶ )—
Birjyakruta Strong.

**ବୀର୍ଯ୍ୟ କ୍ଷୟ**—ସଂ. ବି ( ୬ଷ୍ଠୀ ତତ୍; ବୀର୍ଯ୍ୟ + କ୍ଷୟ )—୧ । ବଳକ୍ଷୟ—
Birjya kshaya 1, Loss of strength. ୨ । ଶୁକ୍ରକ୍ଷୟ
(ବୀର୍ଯ୍ୟନାଶ, ବୀର୍ଯ୍ୟହାନି—ଅନ୍ୟରୂପ) —2, Loss of semen.

**ବୀର୍ଯ୍ୟଜ**—ସଂ. ବି· ପୁଂ—(ବୀର୍ଯ୍ୟ + ଜନଧାତୁ + କର୍ତ୍ତୃ ଅ) ପୁତ୍ର(ହି.ଶ)—
Birjyaja (ବୀର୍ଯ୍ୟଜା—ସ୍ତ୍ରୀ) Son.

**ବୀର୍ଯ୍ୟ ପାତ**—ସଂ. ବି ( ୬ଷ୍ଠୀ ତତ୍, ବୀର୍ଯ୍ୟ + ପାତ )—ଶୁକ୍ରପାତ—
Birjya pāta The discharge or loss of semen,

**ବୀର୍ଯ୍ୟବତ୍ତ୍ୱ(ତ୍ତ୍ୱ)**—ସଂ. ବି (ବୀର୍ଯ୍ୟବତ୍ + ଭାବାର୍ଥେ ତା)—୧ । ବୀରତ୍ୱ—
Birjyabattā(ttwa) 1. Heroism, ୨ । ବଳବତ୍ତ୍ୱ—2. Mightiness; potency.

**ବୀର୍ଯ୍ୟ ବର୍ଦ୍ଧକ**—ସଂ. ବିଣ ( ଉପପଦ ତତ୍; ବୀର୍ଯ୍ୟ + ବର୍ଦ୍ଧକ )—୧ ।
Birja barddhaka ସାମର୍ଥ୍ୟର ବୃଦ୍ଧିକାରକ—1. Increasing one's strength. ୨ । ରତିଶକ୍ତିର ବୃଦ୍ଧିକାରକ ରସାୟନ; ବାଜୀକରଣ—2. Increasing potency.

**ବୀର୍ଯ୍ୟ ବର୍ଦ୍ଧନ**—ସଂ. ବି ( ୬ଷ୍ଠୀ ତତ୍ )—ତେଜୋବୃଦ୍ଧି; ବଳବୃଦ୍ଧି—
Birjya barddhana Increase of strength.
ସଂ. ବିଣ—ବୀର୍ଯ୍ୟବର୍ଦ୍ଧକ ( ଦେଖ )—Birjya-barddhaka ( See ).

**ବୀର୍ଯ୍ୟବାନ୍**—ସଂ. ବିଣ. ପୁଂ (ବୀର୍ଯ୍ୟ + ଅସ୍ତ୍ୟର୍ଥେ ବତ୍; ୧ମା, ୧ବ)—
Birjyabān ୧ । ବଳବାନ୍—1, Strong; mighty. ୨ ।
(ବୀର୍ଯ୍ୟବତୀ—ସ୍ତ୍ରୀ) ମାଂସଳ; ହୃଷ୍ଟପୁଷ୍ଟ ( ହି. ଶ )—2. Stout.

**ବୀର୍ଯ୍ୟ ବିହୀନ**—ସଂ. ବିଣ ( ୩ୟା ତତ୍; ବୀର୍ଯ୍ୟ + ବିହୀନ )—୧ ।
Birjya bihina ବଳହୀନ; ନିର୍ବୀର୍ଯ୍ୟ—1. Powerless. devoid of strength. ୨ । ପୁରୁଷତ୍ୱ ବିହୀନ—2. Impotent. ୩ । ଶୌର୍ଯ୍ୟହୀନ—3. Devoid of courage or valour.
(ବୀର୍ଯ୍ୟହୀନ, ବୀର୍ଯ୍ୟଶୂନ୍ୟ } ଅନ୍ୟରୂପ)

**ବୀର୍ଯ୍ୟ ଯୁକ୍ତ**—ସଂ· ବିଣ. ପୁଂ (୩ୟା ତତ୍, ବୀର୍ଯ୍ୟ + ଯୁକ୍ତ)—ବଳବାନ୍—
Birjya jukta 1. Strong; mighty.
(ବୀର୍ଯ୍ୟଶାଳୀ—ଅନ୍ୟରୂପ; ବୀର୍ଯ୍ୟଯୁକ୍ତା, ବୀର୍ଯ୍ୟଶାଳିନୀ—ସ୍ତ୍ରୀ)

**ବୀର୍ଯ୍ୟ ଶୁଳ୍କ**—ସଂ. ବି (ବହୁବ୍ରୀହି)—କୌଣସି ସ୍ତ୍ରୀ ବା କୌଣସି ପୁରୁଷ
Birjya śulka ଅମୁକ ବଳସାଧ୍ୟ କର୍ମ ସମ୍ପାଦନ କଲେ ତାଙ୍କ ସହିତ ଅମୁକ ପୁରୁଷର ବା ସ୍ତ୍ରୀର ବିବାହ ହେବ ଏବଂଭୂତ ପଣ ବା ପ୍ରତିଜ୍ଞା ( ହି. ଶ )—A vow of marrying a person if he or she is able to achieve such or such an act of valour.

**ବୀଶ**—ସଂ· ବି ( ବି = ପକ୍ଷୀ + ଈଶ )—ଗରୁଡ଼—
Bisa The mythological king of birds; Garurda.

**ବୀଶ ପ୍ରଭୁ**—ସଂ. ବି ( ୬ଷ୍ଠୀ ତତ୍; ବୀଶ + ପ୍ରଭୁ )—ରାମ; କୃଷ୍ଣ; ବିଷ୍ଣୁ—
Bisa prabhu Bishnu. [ ପ୍ର—ବୀଶ ପ୍ରଭୁ ପ୍ରେମବାଣିଜ୍ୟେ ବଶ । ଉପେ. ବୈଦେହୀଶବିଳାସ । ]

**ବୀହାର**—ସଂ. ବି ( ବି + ହୃ ଧାତୁ = କ୍ରୀଡ଼ା କରିବା ଇତ୍ୟାଦି + ଅ )
Bihāra —ବିହାର (ଦେଖ)—Bihāra ( See )

**ବୁ**—ପ୍ରାଦେ ( ସମ୍ବଲପୁର ) ବି ( ତୁଳ. ଏହି ଅର୍ଥରେ ହିନ୍ଦୀ ବୂ )—
Bu ମାତୃସ୍ତନ—Mother's breast [ ଦ୍ର—ପୁରୀରେ ସ୍ତନକୁ ବୋ 'ଦୁଦ୍' କହନ୍ତି । ] ବୈଦେ. ବି ( ଫା. ବୂ ) ଗନ୍ଧ—
बू Smell,

**ବୁଅ(ଆ)ର**—ବୈଦେ ( ଇ. ବୋଅର ) ବି—ବୁର୍; ଦକ୍ଷିଣ ଆଫ୍ରିକାରେ
Bua(ā)r ଉପନିବେଶ ସ୍ଥାପନ କରିଥିବା ଡେନ୍ମାର୍କରୁ ଆଗତ ଖ୍ରୀଷ୍ଟାନ୍ ବୁଯାର ଜାତିବିଶେଷ—The Boers. [ ଦ୍ର—ଏମାନେ ब्रुअर ଇଂରେଜଙ୍କ ସଙ୍ଗେ ଯୁଦ୍ଧରେ ସ୍ୱାଧୀନତା ଲାଭ କରି, ବର୍ତ୍ତମାନ ଇଂରେଜ ସାମ୍ରାଜ୍ୟଭୁକ୍ତ ହୋଇ ସ୍ୱରାଜ୍ୟଶାସନ କ୍ଷମତା ପାଇ ଅଛନ୍ତି । ]

**ବୁଆ**—ଦେ. ବି—(ସଂ. ବପ୍ ଧାତୁ)—୧ । ବେଉଷଣ—1. The
Buā काड़ान puddling of paddy plants. ୨ ।
**बिहियाना; चराधान, बिया** ବୁଣା ଧାନର ଗଛ ୪ ଅଙ୍ଗୁଳଠାରୁ
বোনা ধান **ब्रुआ** ୧୨ ଅଙ୍ଗୁଳ ପର୍ଯ୍ୟନ୍ତ ଉଚ୍ଚ ହେବାର ଅବସ୍ଥା—
(ଭୁଅ—ବିପରୀତ) 2. The state of sown paddy plants when they are between 2 inches and 10 inches. ୩ । ବୁଣା ଯାଇ ଉଠିଥିବା ଧାନ ଫସଲ—3. Plants of sown (not transplanted) paddy. [ଦ୍ର—ଯେଉଁ ଧାନଗଛ ରୋପିତ ହୋଇ ଥାଏ, ତାକୁ ଭୁଅ କହନ୍ତି । ଏ ବିଷୟରେ ଗୋଟିଏ କୃଷି ବଚନ ଅଛି । ଯଥା—ବୁଆ ଶୁଖିଲେ ଥୋଇବୁ କାହିଁ ? ଭୁଅ ଶୁଖିଲେ ପାଇବୁ ନାହିଁ । ଅର୍ଥାତ୍ ଭୁଅ ଧାନ ବହୁତ ପାଣି ଲୋଡ଼େ; ବୁଆ ଧାନ ତେତେ ପାଣି ଲୋଡ଼େ ନାହିଁ ।] ୪ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିଙ୍କ ଘରେ ମିଳିବା ପର୍ଯ୍ୟାପ୍ତ ଭୋଜନ—4. (figurative) Sumptuous meal got at another person's house. ପ୍ରାଦେ. (ଗଡ଼ଜାତ) ଅ. (ପୁଂ)—୧ । ନିଜର ପିତାଙ୍କୁ ସମ୍ବୋଧନ A term of endearment to call one's father. ୨ । ସାନ ପିଲାଙ୍କୁ ସମ୍ବୋଧନ (ତୁଳ. ହି. ଏହି ଶବ୍ଦର ଏହି ପ୍ରୟୋଗ)—2, A term of endearing address to infants. ପ୍ରାଦେ. (ସମ୍ବଲପୁର) ବି.—୧ । ବାପ;

ପିତା—1. Father, (ଯଥା—ବାବୁଙ୍କ ବୁଆ ।)— ୨ । ଟୋକା; ବାଳକ—2. Boy. ୩ । ପୁଅ; ସନ୍ତାନ—3. Son. [ ଦ୍ର—ସମ୍ବଲପୁର କୁଲତା ଜାତିର ଲୋକେ ଶିଶୁକୁ ସ୍ନେହରେ 'ବୁଅ' ସମ୍ବୋଧନ କରନ୍ତି ଓ କେଉଁଠି କୁମ୍ଭାର ଜାତିର ଲୋକେ ବାପକୁ ବୁଆ ଡାକନ୍ତି । ] ପ୍ରାଦେ. (ବୌଦ) ବି—( ତୁଳ. ହି. ଏହି ଶବ୍ଦର ଏହି ପ୍ରୟୋଗ)— ପୁତ୍ର ପ୍ରତି ସ୍ନେହ ସମ୍ବୋଧନ—A term of endearment addressed to one's son. ପ୍ରାଦେ. (ବସ୍ତର ଓ ଖଡ଼ିଆଳ) ବି.—ପିତା; ବାପ—Father.

**ବୁଆ ଖାଇବା**— ଦେ. କ୍ରି—୧ । (ଗୋରୁମାନେ) ବୁଆ ଧାନ ଚରି ଯିବା— Buā khāibā 1 (cattle) To graze on sown paddy plants when they are 2 to 10 inches high. ୨ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିଙ୍କ ଘରେ ପର୍ଯ୍ୟାପ୍ତ ଭୋଜନ କରିବା— 2. To eat one's fill at another's table.

ତୃପ୍ତିଭୋজন করা, **বিয়া খানা**

(ବୁଆ ଚରିବା—ଅନ୍ୟରୂପ)

**ବୁଆ ଖିଆ**— ଦେ. ବି—୧ । ଗୋରୁ ଗାଈମାନଙ୍କର ବୁଆଧାନ ଗଛକୁ ଚରିବା—1. The grazing of cattle on sown paddy plants when they are 2 to 10 inches high. [ ଦ୍ର—ଖାଇବ ଧାନ ଗଛକୁ 'ବୁଆ' ହୋଇଥିବା ଅବସ୍ଥାରେ ବେଉଷିବା ପୂର୍ବରୁ ଗୋରୁଗାଈ ଖାଇଲେ ଉକ୍ତ ଗଛ ହୃଷ୍ଟପୁଷ୍ଟ ହୋଇ ବଢ଼େ ।] ୨ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତି ଘରେ ପର୍ଯ୍ୟାପ୍ତ ଭୋଜନ ଲାଭ—2. (figurative) Sumptuous meal at another's house. ୩ । ଓପର ଭୋଜନ; ଅନ୍ୟର ଘରେ ଭୋଜି—3. Feast held at another person's house.

Buā khiā, **বিয়া খানা**

[ ଦ୍ର—ଧାନଗଛ ବୁଆ ହୋଇଥିବା ଅବସ୍ଥାରେ ଗୋରୁଗାଈମାନଙ୍କୁ ଧାନ ଜମିର ଅଟକ କରାଯାଏ ନାହିଁ । ଏଥିପାଇଁ ଗୋରୁମାନେ କଅଁଳ ଧାନଗଛ ଖାଇ ମହା ଆନନ୍ଦରେ ଥାଆନ୍ତି । ଏଥି ସକାଶେ ଓପର ଭୋଜନ ଓ ଭୂରିଭୋଜନ ମିଳିଲେ ଲୋକେ କହନ୍ତି ତାକୁ "ବୁଆଖିଆ" ପଡ଼ିଛି । ]

**ବୁଆ ତଲି**—ପ୍ରାଦେ. (ଗଡ଼ଜାତ) ବି—ରୁଆଯିବା ଧାନ ଗଛର ତଳି— Buā tali Seedlings of paddy for transplantation.

**ବୁଆ ଧାନ**—ଦେ. ବି—ଧାନଗଛର 'ବୁଆ' ଅବସ୍ଥା—The sown Buā dhānā paddy plants when they are 2 to 10 inches high.

বোনা ধান, **বিয়া ধান**

(ବୁଆ ଧାନ—ବପସ୍ଥିତ)

**ବୁଆଲି**—ଦେ. ବି—୧ । ଧାନ କଟାଳି—1. Reaper of paddy. Buāli ୨ । ଶସ୍ୟାଦିର ଗଞ୍ଜ—2. A place or warehouse where grains are stored up. ପ୍ରାଦେ. (ବାଲେଶ୍ୱର) ବି—ବଢ଼ିଥିବା ଧାନ ଗଛ— Grown up paddy plant.

**वनिहारा**

**ବୁଆ ବି(ବେ)ଉ(ହୁ)ଡ଼ା**—ଦେ. ବି—ଧାନଗଛ ୨ରୁ୧୦ ଇଞ୍ଚ ପର୍ଯ୍ୟନ୍ତ ବଢ଼ିଲେ, କିଆରିରେ ପାଣି ଭର୍ତ୍ତି କରି ହଳ ବୁଲାଇ ତା ଉପରେ ମଇ ଦେବା ପ୍ରକ୍ରିୟା—The process of Buā bi(be)u(hu)ṛdā puddling the paddy field when the plants are to 2 to 10 inches high.

কাড়ান, **बिहियाना**

[ବୁଆ ବେଉଷଣ, ବେଉ(ହୁ)ଡ଼ା, ବେଉଷଣ—ଅନ୍ୟରୂପ]

**ବୁଇ**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ—(ତୁଳ. ହି. ଏହି ଅର୍ଥରେ ଏହି Bui ପ୍ରୟୋଗ; ତୁଳ. ଇଂ. ବଏ=ପୁଂ. ବାଳକ)—୧ । ବାଳିକା; ଟୋକୀ—1. Girl; lass. [ ଦ୍ର—ସମ୍ବଲପୁରରେ ଟୋକାମାନଙ୍କୁ 'ବାବୁ' ଓ ଟୋକୀମାନଙ୍କୁ 'ବୁଇ' କହନ୍ତି । କେତେକ ଅଞ୍ଚଳରେ ଶୂଦ୍ର ଟୋକୀମାନଙ୍କୁ 'ବୁଇ' ଓ ବ୍ରାହ୍ମଣ ଟୋକୀମାନଙ୍କୁ 'ନୁନୀ' ବୋଲାଯାଏ । ସମ୍ବଲପୁରର ଜଣେ ଭୂତପୂର୍ବ ଇଂରାଜୀ କର୍ମଚାରୀ—'Colonel Bui'ଙ୍କ ନାମ ଅନୁସାରେ ବାଳିକାମାନଙ୍କର 'ବୁଇ' ନାମକରଣ ହୋଇ ଥିବାର ଜନ ପ୍ରବାଦ ଅଛି । ] ୨ । ଯୁବତୀ— 2. A young woman; a youthful girl.

(ବୁଆ—ପୁଂ)

**ବୁଇତ**—ପ୍ରାଦେ. (ବାଲେଶ୍ୱର, ମେଦିନୀପୁର) (ସଂ. ବହିତ୍ର; ବୋଇତ Buita ସ୍ଥାନରେ ବୁଇତ ଉଚ୍ଚାରଣ; ତୁଳ. ବ. ବୁହିତ)— ଜାହାଜ—A ship.

**ବୁଇତାଳ**—ପ୍ରାଦେ. (ମେଦିନୀପୁର, ବାଲେଶ୍ୱର) ବି—(ତୁଳ. ବ. ବୁହିତାଲ୍)—୧ । ବୋଇତିଆଳ; ଜାହାଜଦ୍ୱାରା ବାଣିଜ୍ୟକାରୀ—1. A merchant carrying on trade by ship. ୨ । ବୋଇତିକଖାରୁ— 2. Red gourd. ୩ । ଜାହାଜର ମାଲିକ ବା ଅଧ୍ୟକ୍ଷ— 3. The owner or the captain of a ship.

Buitala

(ବୁଇତିଆଳ—ଅନ୍ୟରୂପ)

**ବୁଇତାଳୁ**—ପ୍ରାଦେ. (ବାଲେଶ୍ୱର) ବି—ବୋଇତିକଖାରୁ— Buitalu Red gourd.

(ବୁଇତିଆଳୁ; ବୁଇତିକଖାରୁ—ଅନ୍ୟରୂପ)

**ବୁଇଲା**—ପ୍ରାଦେ. (ବୌଦ. ) ବି (ସଂ ବଳୀବର୍ଦ୍ଦ)—ବଳଦ— Buila Bullock.

**ବୁଁଆଳୁ**—ପ୍ରାଦେ. ( ବାଲେଶ୍ୱର ) ବି—ଜାତିବୃହତ୍ ଅରଣ୍ୟ ବୃକ୍ଷବିଶେଷ—A kind of wild tree. [ ଦ୍ର—ଏହାର ପତ୍ର ଛୋଟ ଛୋଟ ଓ ପଳାଶ ପତ୍ରପରି; ଫୁଲ ନାମକଟି ପରି ପେନ୍ଥା ପେନ୍ଥା; ଫଳ ଗୋଲ ଗୋଲ ଅଙ୍ଗୁର ଭଳି; ଫଳ ପାଚିଲେ ହଳଦିଆ ବା ମାଟିଆ ରଙ୍ଗ ହୋଇଯାଏ ଓ ତହିଁ ଭିତରେ ଗୁନ ଅଠାଭଳି ଅଠାଳିଆ ରସ ଓ ମଞ୍ଜି ଥାଏ । ପିଲାମାନେ ଏ ଫଳକୁ ଖାଆନ୍ତି । ଆଉର ମଧ୍ୟ ବୁଆଁଳ କାଠକୁ ଲୋକେ ବ୍ୟବହାର କରନ୍ତି ।] ପ୍ରାଦେ.—(ଚିଲିକା ଅଞ୍ଚଳ) ବି—ଲୁଣର ଗୋଲା— A warehouse for storing salt.

Buāñlu

(ବୁଆଁଳ—ଅନ୍ୟରୂପ)

**ବୁଁଖିଆ**—ପ୍ରାଦେ (ବାଲେଶ୍ୱର ଓ ଗଡ଼ଜାତ) ବି. ( ଫା. ବଖିୟା=ଏକ ପ୍ରକାର ଦୃଢ଼ ଓ ଦୋହରା ସିଲାଇ )—ମୋଟା କପାସୁତାରେ ଛେଞ୍ଚି ଭଳିଆ ବୁଣାଯାଇ ଥିବା ହାର—A necklace of braided cotton thread. [ ଦ୍ର—ଅନାର୍ଯ୍ୟଲୋକେ ଏହା ବେକରେ ପିନ୍ଧନ୍ତି ।]

Buñkhiā

ବୁକ୍ (ଧାତୁ)—ସ—୧ । ଶବ୍ଦ କରିବା—1. To sound; to make
Buk (root) a sound. ୨ । ଭୁକିବା—2. To bark. ବୈଦେ-
ବୁକ ବ—୧ । (ଇଂ ବୂକ୍) ବହି; ପୁସ୍ତକ-Book. ୨ । ପୁସ୍ତକର
बुक एକ ଖଣ୍ଡ—2. One volume of a work. ୩ । (ଇଂ, ବକ୍‌ରାମ୍) ଏକପ୍ରକାର ଖୁବ୍ ପତଳା ଓ ଟାଆଁସା ସୂତାଲୁଗା-Buckram.

ବୁକନି—ଦେ. ବ—ବୁକୁନି (ଦେଖ)—
Buk-ni Bukuni (See).

ବୁକ୍‌ପୋଷ୍ଟ—ବୈଦେ. ବ ( ଇଂ )—ଦୁଇପାଖ ଖୋଲା ଧୂଳିନାରେ ବା
Buk-posht ପାର୍ସେଲରେ ସ୍ଥାନାନ୍ତରକୁ ପୁସ୍ତକାଦ ଡାକରେ
বুকপোষ্ট बुकपोष्ट ପଠାଯିବା ରୀତ—Bookpost.

ବୁକ୍‌ଷ୍ଟଲ୍—ବୈଦେ (ଇଂ. ବୁକ୍‌ଷ୍ଟଲ୍) ବ—ବହି ବା ପୁସ୍ତକର ଉଠା ବା
Buk-shtal ଅସ୍ଥାୟୀ ଦୋକାନ—Book stall.
বুকষ্টাল बुक स्टल

ବୁକ୍‌ସପ—ବୈଦେ. (ଇଂ. ବୁକ୍ ସପ୍) ବ—ବହିର ସ୍ଥାୟୀ ଦୋକାନ—
Buk-sap বুক্সপ बुकसप Book shop.

ବୁକ୍‌ସେଲ୍ଫ—ବୈଦେ. (ଇଂ, ବୁକ୍‌ସେଲ୍ଫ) ବ—ବହି ରଖିବାର ଥାକ-
Buk-selph ଯୁକ୍ତ ଖୋଲା ଆଲମାରି—Book shelf.
বুক্সেলফ बुकसेलफ

ବୁକ୍‌ସେଲ(ଲା)ର୍—ବୈଦେ. (ଇଂ. ବୁକ୍ ସେଲର) ବ—ପୁସ୍ତକବିକ୍ରେତା;
Buk sela(lā)r ବହି ଦୋକାନି—Book seller; the
বুকসেলার बुकसेलर keeper of a book-shop.

ବୁକ(କ୍କ)—ଦେ. ବ—( ଚୁମ୍ବନବେଳେ ଉତ୍ପନ୍ନ ଧ୍ୱନିର କାଳ୍ପନିକ
Buka(kka) ଅନୁକରଣ ଜନିତ ଶବ୍ଦ; ଧ୍ୱନ୍ୟନୁକରଣ)—୧ ।
চুম चूमा ଚୋକ; ଚୁମ୍ବନ—Kissing; kiss. (ଉ—ଅଣ୍ଟିସିଲା ଭୁଲୁର ମୁହଁରେ ବୁକ । ଛଗ । ) ୨ । (ସ. ବକ୍ଷଃ; ବୁକ୍କମ୍)
বুক ଛାତି; ହୃଦୟ; ବକ୍ଷସ୍ଥଳ—Breast. ୩ । ସାହସ—
छाती 3. Courage. ୪ । ସ୍ତ୍ରୀ ସ୍ତନ—4. Female breast.

ବୁକ(କ୍କ) ଦେ(ନେ)ବା—ଦେ. କ୍ରି—ଚୁମ୍ବନ ଦେବା—To kiss.
Buka(kka) de(ne)bā চুম খাওয়া चूमदेना

ବୁକ(କୁ) ପଟ(ଟା)—ଦେ· ବ (ସ. ବୁକ୍କ+ପଟ)—ଛାତି; ବକ୍ଷସ୍ଥଳ—
Buka(ku) paṭa(ṭā) বুকের পাটা The breast.

ବୁକା(କ୍କା)—ପ୍ରାଦେ (ସମ୍ବଲପୁର) ବ—( ସ. ବୁକ୍କ=ଛେଳି; ଭୁଲ; Bukā(kkā) ବ. ବୋକା ପାଁଠା )—ବୋଦା; ବଳ ଦଆଯିବା ମେଣ୍ଢା ବା ଛେଳି—A goat or sheep sacrificed to a Goddess.

ବୁକା କ୍କା,କେ,କ୍କେ)ଇବା—ଦେ. କ୍ରି—୧ । ଛାତିଦ୍ୱାରା ଠେଲିବା—
Bukā(kkā,ke,kke)ibā 1. To push with one's
छातीसे धक्कादेना breast. ୨ । କୌଣସି ମନୁଷ୍ୟକୁ ବେଦମ
বুক পাতা କରିବା—2. To cause one to be tired.
छातीतक आना (ଯଥା—ଏ ବୋଝ ମତେ ବୁକେଇଲାଣି)
୩ । (ଜଳ) ମନୁଷ୍ୟର ଛାତି ପର୍ଯ୍ୟନ୍ତ ହେବା—
3. (water) To reach one's breast.
୪ । ଅକଣ୍ଠ ଭୋଜନ କରିବା ପରେ (ଖାଦ୍ୟ) ଛାତି ପର୍ଯ୍ୟନ୍ତ ଉଠିଛି ହେବାପରି ଜଣାଯିବା—4. (food) To seem to rise to one's breast (after an overfull meal). ୫ । କୌଣସି ଆଘାତକୁ ବା ଧକ୍କାକୁ ବା ଲହରୀକୁ ଛାତିଦ୍ୱାରା ସମ୍ଭାଳିବା—5 To breast a rushing wave or push. ୬ । ଆସନ୍ତା ଆଦକୁ ସହିବାପାଇଁ ଛାତିକୁ ପଡାଇବା—6. To keep oneself prepared by protruding one's breast for any coming
বুকভাঁগা blow. ୭ । (ଲକ୍ଷଣାର୍ଥ) ବଳାଇବା; ଜଣକର ଶକ୍ତିର ବା ସହନଶୀଳତାର ଅତିରିକ୍ତ ହେବା—7. (figurative) To exceed the limit of one's power or endurance.

ବୁକିଙ୍ଗ୍—ବୈଦେ. (ଇଂ. ବୁକିଙ୍ଗ୍) ବ—ରେଲଗାଡ଼ିରେ ବା ଜାହାଜରେ
Buking ମନୁଷ୍ୟ ବା ଜିନିଷ ଯିବା ପାଇଁ ଟିକଟ କଣାଯିବା—
বুকিঙ্ Booking of tickets for a railway or
बुकिङ्ग steamer journey.
[ବୁକିନ(ନି)—ଗ୍ରାମ୍ୟ ରୂପ]

ବୁକିଙ୍ଗ୍ ଅ(ଆ)ପି(ଫି)ସ୍—ବୈଦେ. ବ ( ଇଂ. ବୁକିଙ୍ଗ୍ ଅଫିସ୍ )—ଟିକଟ
Buking a(ā)pi(phi)s ଘର; ଯେଉଁଠାରେ ରେଲ ବା
বুকিঙ্ অফিস ଜାହାଜ ପାଇଁ ଟିକଟ କଣାଯାଏ—Booking
बुकिङ्ग अफिस office of a railway or steamer.
[ବୁକିନ(ନି)ଅପ୍ସି—ଗ୍ରାମ୍ୟ ରୂପ]

ବୁକିଙ୍ଗ୍ କ୍ଲ(କ୍ଲା)ର୍କ୍—ବୈଦେ. ବ (ଇଂ. ବୁକିଙ୍ଗ୍ କ୍ଲର୍କ) —ରେଲଗାଡ଼ିରେ
Buking kla(klā)rk ବା ଜାହାଜରେ ବସିବା ଲୋକ ବା
বুকিঙ্ ক্লার্ক ବୋଝାଇ ମାଲ ପାଇଁ ମାସୁଲ ନେଇ ଟିକଟ ଦେବା
बुकिङ्ग क्लर्क କର୍ମଚାରୀ—Booking clerk.
(ବୁକିଙ୍ଗ୍ କଲାରକ୍—ଗ୍ରାମ୍ୟରୂପ; ବୁକିଙ୍ଗ କିରାଣି—ଅନ୍ୟରୂପ)

ବୁକୁ(କ, କ୍କ, କ୍କୁ)—ଦେ. ବ. ( ସ. ବକ୍ଷ, ବୃକ୍କ )—୧ । ହୃଦୟର
Buku(ka, kka, kku) ବହିର୍ଭାଗ; ଛାତି ବକ୍ଷସ୍ଥଳ—1.
বুক; বুকু Breast. ( ଉ—ବୁକୁର ଶାଢ଼ୀର ଉଣି ଦେଉନାହିଁ,
छाती ମୁଁ କରିଲେ ଅଛାଦର କେତେ । କବିସୂର୍ଯ୍ୟ ସଙ୍ଗୀତ ) ୨ । ହୃଦୟ; ହୃଦୟାଭ୍ୟନ୍ତର; ଅନ୍ତଃକରଣ—3. Heart; chest. (ଉ—ତୋର ଏ କଥାକୁ ବୁକୁ କି ଗଲା ପୋଡ଼ି । କୃଷ୍ଣସି ହ. ମହାଭାରତ. ସଭା ।) ୩ । ଦମ୍; ଧୈର୍ଯ୍ୟ—
3. Patience. ୪ । ସାହସ—4. Courage; pluck.

ବୁକୁ କୁଣ୍ଢେ ମୋଟ ହେବା—ଦେ. ବ—ଆନନ୍ଦରେ ହୃଦୟ ଖୁସି
Buku kundhe moṭa hebā ହେବା—A feeling of
বুক ফোলে উঠা छाति फुलजाना great delight.

ବୁକୁକୁ ମାରିବା—ଦେ. ବ—ବୁକୁରେ ବା ଛାତିରେ ଶୂଳ ବେଦନା
Bukuku māribā ଅନୁଭୂତ ହେବା—Pain in the chest.
বুক চাপড়ান ଦେ. କ୍ରି—ଶୋକରେ ଅଧୀର ହୋଇ ବକ୍ଷରେ
छातीको मारना କର ବାଡ଼େଇବା—To strike one's hands on the breast in a paroxysm of grief.

**ବୁକୁ(କ,କି)ଚ୍ଚ (ଇତ୍ୟାଦି)**—ଦେ. ବି—ବୋକଚ୍ଚ ଇତ୍ୟାଦି (ଦେଖ)
Buku(ka,ki)chā (etc) Bokachā etc. (See)
বুচকা **बुकचा**

**ବୁକୁଚ୍ଚ ବୁକୁଚି**—ଦେ. ବି. (ସହଚର) (ବହୁବଚନ)—ବୋକଚ୍ଚମାନ—
Bukuchā bukuchi Bag and baggage; luggage.
বুচকা বুচকী **बुकचा बुकची**

**ବୁକୁ ଜ(ଜା)ଳା**—ଦେ. ବି. ( ସଂ· ବୁକ୍କ+ଜ୍ୱାଳା )—ଅଜୀର୍ଣ୍ଣ ଦୋଷରୁ
Buku ja(jā)ḷā ବକ୍ଷସ୍ଥଳ ମଧ୍ୟରେ ବେଦନା; ଛାତି ପୋଡ଼ିବା—
বুক জালা Burning sensation inside the breast
**छाती जलना** due to indigestion.
[ବୁକ(କୁ) ଜଳିବା, ବୁକ(କୁ) ପୋଡ଼ିବା—ଅନ୍ୟରୂପ]

**ବୁକୁ ଥରିବା**—ଦେ. ବି—୧ । ଭୟରୁ ବା ରୋଗରୁ ଛାତିଭିତର ଥରିବା—
Buku tharibā 1. Palpitation of the heart due to
বুক ধড়পড় করা, বুক ধড়ফড়ানি, বুক কাঁপা fear or disease.
**छाती धड़कना** ୨ । ହୃଦୟର ସ୍ପନ୍ଦନ—2. Throbbing of the heart.
[ବୁକୁ ଥର, ବୁକୁ ଥରଥର, ବୁକୁ ଧଡ଼ଧଡ଼, ବୁକୁ ଧଡ଼ପ(ଫ)ଡ଼, ବୁକୁ ଦୁର (ଦୁ)ଦୁର(ଦୁ)—ଅନ୍ୟରୂପ]

**ବୁକୁ ଧରିବା**—ଦେ. କ୍ରି—୧ । ଛାତି ଧରିବା; ଜୀବନ ଧାରଣ କରିବା;
Buku dharibā ବଞ୍ଚିବା—1. To live. ୨ । ସହିବା; ଧୈର୍ଯ୍ୟ
বুক ধরা ଧରିବା—2. To bear with patience. (ଉ—
**छाति धरना** ଏଡ଼େ ବଡ଼ ଦୁଃଖରେ ତୁ କିମିତି ବୁକୁ ଧରି ରହିଲୁ ।?
(ବୁକୁ ସହିବା—ବିଶେଷ୍ୟରୂପ)

**ବୁକୁନି**—ଦେ. ବି. ( ସଂ. ବୁକ୍ଣ=ଭଗ୍ନ )—
Bukuni ଚୂର୍ଣ୍ଣ; ଗୁଣ୍ଡା—Powder.
বুকুনি **बुकनी**

**ବୁକୁ ପଟ(ଟା)**—ଦେ. ବି. (ସଂ. ବକ୍ଷଃ ପଟ)—୧ । ହୃଦୟର ବହିର୍ଭାଗ,
Buku paṭa(ṭā) ବକ୍ଷଃ ପଟ୍ଟ—1. The breast; the ex-
বুকের পাটা, panse of the breast or chest,
বুকপাটি, বুকপাটা ୨ । ଦମ୍; ଧୈର୍ଯ୍ୟ—2. Patience. ୩ ।
**छाती** ସାହସ—3 Courage,

**ବୁକୁ ପଥର କରିବା**—ଦେ. କ୍ରି—କୌଣସି ଅତ୍ୟନ୍ତ ଦୁଃଖ ସହିବା;
Buku pathara karibā ଦେଖିବାକୁ ହୃଦୟକୁ କଠୋର ବା
বুক পাথর করা ସହନଶୀଳ କରିବା—To harden one's
**छाती पत्थरकी करना** heart against a provocation
(ବୁକୁଲୁହା କରିବା—ଅନ୍ୟରୂପ) or hard matter.

**ବୁକୁ ପତା(ତେ)ଇବା**—ଦେ. କ୍ରି—୧ । ଆଘାତ ଆଦି ସମ୍ଭାଳିବା ପାଇଁ
Buku patā(te)ibā ଛାତିକୁ ଦେଖାଇବା—1. To show
বুক পাতান one's breast to take a blow. ୨ । କୌଣସି
**सीना तान देना** ବିପଦକୁ ସହିବା ପାଇଁ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବା—2, To wait with patience for a coming danger. ୩ । କୌଣସି ଦୁଷ୍କର କାର୍ଯ୍ୟ କରିବା ପାଇଁ ମନରେ ସାହସ ବାନ୍ଧିବା—3. To muster courage to do a hard work. ଦେ.ବି—କୌଣସି ଦୁଃସାଧ୍ୟ କାର୍ଯ୍ୟ ପାଇଁ ମନରେ ସାହସର ଉଦ୍ରେକ—The mustering of courage for doing a difficult piece of work. (ଯଥା—ବୁଢ଼ା ଦିନେ ଦୂର ବିଦେଶକୁ ଏକାକୀ ଯିବାକୁ ମୋର ବୁକୁ ପତାଏ ନାହିଁ ।)

**ବୁକୁ ଫଟା**—ଦେ. ବିଣ—୧ । ହୃଦୟ ବିଦାରକ—1. Heart-rending.
Buku phaṭā ୨ । ଅସହ୍ୟ—2. Unbearable.
বুক ফাটা **छाती फटा**

**ବୁକୁ ଫଟା ବୋଝ**—ଦେ. ବି—ଯେଉଁ ଅତି ଭାରି ବୋଝ ମୁଣ୍ଡାଇଲେ
Buku phaṭa bojha ଛାତି ଫାଟିଗଲା ପରି ବୋଧ ହୁଏ—
বুক ফাটা বোঝা A very heavy load.
**करेज तोडा बोझ**

**ବୁକୁ ଫାଟିବା**—ଦେ. କ୍ରି—୧ । ଦୁଃଖରେ ବା କଷ୍ଟରେ ହୃଦୟ ବିଦୀର୍ଣ୍ଣ
Buku phāṭibā ହେବା—1. The heart being rent
বুক ফাটা owing to misery or grief. ୨ । ପ୍ରାଣରେ
**छाती फटना** ଅସହ୍ୟ ବେଦନା ଅନୁଭୂତ—2. Great mental suffering. ୩ । ହୃଦୟର ଆକୁଳତା ବୃଦ୍ଧି—3. Increase of one's mental agony.

**ବୁକୁ ଫୁଲା**—ଦେ. ବି ( ସଂ. ବୁକ୍କ+ସ୍ଫୀତ )—୧ । ଗର୍ବାଧିକ୍ୟ—
Buku phulā 1. Excess of pride. ୨ । ଆନନ୍ଦା-
বুক ফোলা **छाति फुलना** ଧିକ୍ୟ; ହର୍ଷାଧିକ୍ୟ—2. Excess of
(ବୁକୁଫୁଲିବା, ବୁକୁ ଫୁଲିଉଠିବା—ଅନ୍ୟରୂପ) joy. ଦେ. ବିଣ.
( ବୁକୁଫୁଲୀ, ବୁକୁଫୁଲେଇ—ସ୍ତ୍ରୀ ) ପୁଂ—୧ । ଗର୍ବସ୍ଫୀତ—
**छाति फुला** 1. Puffed up with pride. ୨ । ଆନନ୍ଦସ୍ଫୀତ—2. Puffed up with joy.

**ବୁକୁ ଫୁଲା(ଲେ)ଇ ଚାଲିବା**—ଦେ. କ୍ରି—ଗର୍ବସ୍ଫୀତଭାବ ଦେଖାଇ
Buku phulā(le)i chāliba ଚାଲିବା—To strut or
বুক ফুলিয়ে চলা walk with a proud gait.
**सीना तानकर चलना; छाती फुलाकर चलना**

**ବୁକୁ ଫୁଲା(ଲେ)ଇବା**—ଦେ. କ୍ରି—୧ । ଗର୍ବସ୍ଫୀତ ହେବା—1. To
Buku phulā(le)ibā be puffed up with pride.
বুক ফোলান ୨ । ଆନନ୍ଦୋତ୍‌ଫୁଲ୍ଲ ହେବା—2. To be overjoyed.
**छाति फुलाना**

**ବୁକୁ ବଢ଼ିବା**—ଦେ. ବି ( ସଂ· ବୁକ୍କ+ବୃଦ୍ଧି )—୧ । ସାହସ ବଢ଼ିବା—
Buku barḏhibā 1. Increase of one's courage.
বুকবাড়া ୨ । ନିର୍ଭୟ ହେବା—2. Becoming fearless.
**छाति बढ़ना** ୩ । ମୁହଁ ବଢ଼ିଯିବା—3. Becoming cheeky,

**ବୁକୁ ବାନ୍ଧିବା**—ଦେ. କ୍ରି—୧ । ବୁକୁ ଧରିବା (ଦେଖ)—1.
Buku bāndhibā Buku dharibā (See) ୨ । କୌଣସି
বুক বাঁধা ଦୁଷ୍କର କାର୍ଯ୍ୟ କରିବାକୁ ମନରେ ସାହସ ବା
**हम्मत करना** ଦମ୍ ବାନ୍ଧିବା—2. To gird up one's loins to do a difficult work. ୩ । ଧୈର୍ଯ୍ୟ ସହକାରେ କୌଣସି ମନ୍ଦ ଘଟଣା ଦେଖିବାକୁ ବା ଶୁଣିବାକୁ ବା କଷ୍ଟ ସହିବାକୁ ଅପେକ୍ଷା କରିବା—3. To wait with patience for some evil sight or news or misery.

ବୁକୁ ରଗଡ଼ି—ପ୍ରାଦେ, (ବାଲେଶ୍ୱର) ବି—ସାମୁଦ୍ରିକ କ୍ଷୁଦ୍ର ମତ୍ସ୍ୟବିଶେଷ—
Buku ragardi A kind of small sea fish. [ଦ୍ର—
ଏହି ମାଛ ପ୍ରାୟ ୩ ଇଞ୍ଚ ଲମ୍ବ, ଏହାର ଛାତିପାଖ କଣ୍ଟା-
ଗୁଡ଼ିକ ମୃଦୁ ଭଳି ଫମ୍ପା ହୋଇ କ୍ରମେ କ୍ରମେ ବଢ଼ି ଉଠି
ଥିବାରୁ ଏହାର ଏପରି ନାମ ହୋଇଅଛି । ]

ବୁକୁରୁ ଲୁଗା କାଢ଼ିବା—ଦେ. କ୍ରି—ଗୋପନୀୟ ଅଙ୍ଗ ଆଦି ନ ଘୋଡ଼ାଇ
Bikuru lugā kārdhibā (ସ୍ତ୍ରୀ ଲୋକ) ନିର୍ଲଜ୍ଜଭାବ ପ୍ରକାଶ
বুকের কাপড় খোলা କରିବା—(said of a woman)
**छातिसे कपडा निकालना** To exhitit indecency in
(ବୁକୁରୁ ଲୁଗା ଖସା[ସେ]ଇବା—ଅନ୍ୟରୂପ) dress. [ଦ୍ର—
ଭାରତୀୟ ହିନ୍ଦୁ ଓ ମୁସଲମାନ୍ ସ୍ତ୍ରୀମାନେ ମୁଖ, ସ୍ତନ ଓ
ଜଘନାଦିରେ ଲୁଗା ଘୋଡ଼ାଇ ଚଳାଚଳ କରୁଅଛନ୍ତି ଓ ଏହି
ଅଙ୍ଗମାନ ଲୁଗାଦ୍ୱାରା ଆବୃତ ନ ହେଲେ ଏହା ନିର୍ଲଜ୍ଜତାର
ପରିଚାୟକ । ]

ବୁକୁରେ **ଧରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ସ୍ନେହସହକାରେ
Bukure dharibā ଆଲିଙ୍ଗନ କରିବା ବା କୋଳରେ ଧାରଣ
বুকে করা କରିବା—1. To have a great fondness or
**छातितले रखना** attachment for a person; to hold a
person in one's lap. ୨ । କୌଣସି ପ୍ରିୟ ବ୍ୟକ୍ତିକୁ
ନିଜ ପାଖରୁ ଦଣ୍ଡେ ମାତ୍ର ଅନ୍ତର ନ କରିବା—2. Not
to let a dear person leave one's side for
even a few minutes. ୩ । ଖୁବ୍ ଆଦର କରିବା—
3. To fondle a person. ୪ । କୌଣସି ବିଷୟକୁ
ସର୍ବଦା ସ୍ମରଣ କରିବା—4. To remember or
cherish a matter with fondness.

ବୁକୁରେ ପଥର ଲଦା ହେବା—ଦେ. ବି—ବିଶେଷ ଚିନ୍ତାନ୍ୱିତ ଅବସ୍ଥା
Bukure pathara ladā hebā ଘଟିବା—A state of
বুকে পাথর চাপান হওয়া great risk or anixiety.
**छातिपर पथर चापा होना** (ବୁକୁରେ ପଥର ଲଦିବା—କ୍ରିୟାରୂପ)
(ବୁକୁରେ ପାଣିହାଣ୍ଡି ବସିବା—ଅନ୍ୟରୂପ)

ବୁକୁରେ ବାଉଁଶ **ପକା(କେ)ଇବା**—ଦେ· କ୍ରି—କୌଣସି ବ୍ୟକ୍ତିକୁ ମାରି
Bukure bāunsa pakā(ke)ibā ପକାଇବା ପାଇଁ ତାକୁ
বুকে বাঁশ দেওয়া ଚିତ କରି ଶୁଆଇ ତା ବକ୍ଷଃସ୍ଥଳରେ ବାଉଁଶ
**छातिपर दण्डा देना** ପକାଇ ବାଉଁଶର ଦୁଇ ମୁଣ୍ଡକୁ ମାଡ଼ିବସିବା—
(ବୁକୁରେ ବାଉଁଶ ପକାଇ ମାଡ଼ିବସିବା—ଅନ୍ୟରୂପ) To press
a bamboo over the breast of a person to
punish or kill him. [ଦ୍ର—ପୂର୍ବକାଳରେ ଏହିପରି
କରି ଲୋକଙ୍କ ଉପରେ ଅତ୍ୟାଚାର କରାଯାଉଥିଲା । ]

ବୁକୁରେ ହାତ ଦେବା [ଛୁ(ଛୋ)ଇଁବା]—ଦେ. କ୍ରି—୧ । ସ୍ତ୍ରୀଲୋକର
Bukure hāta debā [chu(cho)inbā] ବକ୍ଷଃସ୍ଥଳରେ ହସ୍ତାର୍ପଣ
বুকে হাত দেওয়া କରିବା—1. To touch or press the
**छातिपर हात लगाना** breast of a woman. ୨ । (ଲକ୍ଷଣାର୍ଥ)
(ବୁକୁରେ ହାତ ଲଗା[ଗେ]ଇବା—ଅନ୍ୟରୂପ) ସ୍ତ୍ରୀଲୋକକୁ ଅବ-
ମାନିତ କରିବା—2. (figurative) To insult a
woman; to outrage the modesty of a
woman.

ବୁକୁ(କ) ଶୂଳ—ଦେ. ବି—ବକ୍ଷଃସ୍ଥଳର ଶୂଳ ବେଦନା—Colic;
Buku(ka) śūla sharp pain inside the breast
বুকশূল **छातिका दर्द**

ବୁକେ(କ୍କେ) ପାଣି—ଦେ. ବି—ଛାତି ପର୍ଯ୍ୟନ୍ତ ଗଭୀର ଜଳ—
Buke(kke) pāni Breast-deep water.
একবুক জল **भरछाति पानी**

ବୁକ୍କ୍ (ଧାତୁ)—ସ—୧ । ଶବ୍ଦ କରିବା—1. To make a
Bukk (root) sound. ୨ । ଭୁକିବା—2. To bark.
୩ । କହିବା; କହିବା—
3. To speak; to talk (Apte).

ବୁକ୍କ—ସଂ. ବି (ବୁକ୍କ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ)—୧ । ଛାତି;
Bukka ବକ୍ଷଃସ୍ଥଳ—1. Breast; chest; bosom. ୨ । ଅନ୍ତଃ-
(ବୁକ୍କନ୍, ବୁକ୍କା, ବୁକ୍କୀ—ଅନ୍ୟରୂପ) କରଣ; ହୃତ୍‌ପିଣ୍ଡ—2. The
heart; the cardiac region. ୩ । ଛାଗ—
3. Goat. ୪ । ରକ୍ତ; ଲହୁ (ହ୍ରି. ଶ)—4. Blood.
୫ । କଲିଜା; ଅଗ୍ରମାଂସ (ହ୍ରି. ଶ)—5. Liver.
୬ । ସମୟ—6. Time (Apte). ୭ । ମୁହଁରେ
ଫୁଙ୍କାଯାଇ ବଜା ଯାଉଥିବା ପ୍ରାଚୀନକାଳର ବାଦ୍ୟବିଶେଷ
(ହ୍ରି. ଶ)—7. A kind of flute or pipe used in
ancient times.

ବୁକ୍କନ—ସଂ. ବି (ବୁକ୍କ୍ ଧାତୁ+ଭାବ. ଅନ)—କୁକୁରର ଭୁକା;
Bukkana କୁକୁରର ଭୋ ଭୋ ରଡ଼ି—1. Barking of a
dog; bow-wow. ୨ । ସିଂହର ଗର୍ଜନ—2. The
roar of a lion. ୩ । ବିଲୁଆ ଆଦିଙ୍କର ଭୁକିବା—
3. The yelping or barking of jackals.
୪ । ପଶୁମାନଙ୍କର ରଡ଼ି—4. The noise or bray-
ing of beasts (Apte).

ବୁକ୍କ ଫଳକ—ସଂ. ବି (ବକ୍ଷୀନ ସରଭାଷା)—ବକ୍ଷୋମଧ୍ୟସ୍ଥ ଅସ୍ଥି—
Bukka phalaka Breast-bone.

ବୁକ୍କସ—ସଂ. ବି (ବୁକ୍କ ଧାତୁ+କର୍ତ୍ତୃ. ଅସ)—ଚଣ୍ଡାଳ—
Bukkasa A Chāndāla (Apte).

ବୁକ୍କାଗ୍ରମାଂସ—ସଂ. ବି (ବୁକ୍କ=ଛାତି+ଅଗ୍ର=ପ୍ରଧାନ+ମାଂସ)—
Bukkāgramāmsa ୧ । ହୃତ୍‌ପିଣ୍ଡ—1. The heart.
୨ । କଲିଜା; ଫୁଲବୁକୁ—2 Liver.

ବୁକ୍କାର—ସଂ. ବି (ବୁକ୍କ୍ ଧାତୁ=ଶବ୍ଦ କରିବା+ଭାବ. ଆର)—
Bukkāra ବୁକ୍କନ (ଦେଖ)—Bukkana (See).

ବୁଗ୍‌ଦା—ବୈଦେ, ବି (ଫା)—କଂସେଇର ଛୁରି—
Bug-dā বুগ্‌দা **बुगदा** Butcher's knife.

ବୁଗୁଡ଼ା—ପ୍ରାଦେ (ବାଲେଶ୍ୱର) ବି—ଘରଛପରରେ ଗଣ୍ଠି ରୂପେ ବ୍ୟବହୃତ
Bugurdā ବୋବେଇ ଘାସରେ ବଳା ଦଉଡ଼ି (ଏହାର ବର୍ଣ୍ଣ ନାଲି)
A rope or string of a kind of grass used
in thatching.

ବୁଙ୍ଖୀ—ପ୍ରାଦେ (ବାଲେଶ୍ୱର) ବି—(ସଂ. ବୃନ୍ତ)—ଡେମ୍ଫ; ବୃନ୍ତ—
Bunkhi Stalk of a flower or fruit.

ବୁଙ୍ଗରା—ପ୍ରାଦେ ( ସମ୍ବଲପୁର ) ବି—ବଡ଼ ଗଛର ଗଣ୍ଡିର ଖଣ୍ଡ—
Bung-ra A piece of the trunk of a big tree.

ବୁଙ୍ଗା—ଗ୍ରା. ବି—କବଳ; ଥରକେ ପାଟି ଭର୍ତ୍ତିହେବା ପରିମିତ ଖାଦ୍ୟ
Bungā ଦ୍ରବ୍ୟ; ବଡ଼ ଗୁଣ୍ଡା—A big mouthful.
ଗାଲ ( ଯଥା—ବୁଙ୍ଗାଏ ମୁଢ଼ି ପାଟିରେ ପୂରେଇ ସେ
कौर ଦଉଡ଼ିଲା । )

ବୁଚ୍‌କା—ପ୍ରାଦେ ( ସମ୍ବଲପୁର ବି—୧ । ବୁଜୁଲି; ବୋକଚି—
Buch-kā 1. A bundle; package. ୨ । ଗଣ୍ଠିରି—
2, Bale.

ବୁଚ୍‌କି—ପ୍ରାଦେ (ସମ୍ବଲପୁର) ବି · କ୍ଷୁଦ୍ର ବୋକଚି—
Buch-ki A small bundle.

ବୁଚ୍‌କିବା—ପ୍ରାଦେ (ସମ୍ବଲପୁର) କ୍ରି—(ଢେଲା ଅାଦି) ଲକ୍ଷ୍ୟଭ୍ରଷ୍ଟ ହେବା;
Buch-kibā ଲକ୍ଷ୍ୟ ସ୍ଥାନରୁ ଖସିଯିବା—(a missile) To miss the aim.
ବୁଚୁକିବା, ବୁଚୁକିଯିବା; ବୁଚୁଣିବା, ବୁଚୁଣିଯିବା; ବୁଚୁଡ଼ିଯିବା; ବୁଚୁଡ଼ିବା } —ଅନ୍ୟରୂପ

ବୁଚଡ଼୍(ର୍)—ବୈଦେ. ବି (ଇଂ. ବୁଚର୍)—କଂସେଇ—
Buchard(r) बुचर बुचड़ Butcher.

ବୁଚର୍‌ଖାନା—ବୈଦେ ( ଇଂ. ବୁଚର୍+ଫା. ଖାନାହ୍=ଗୃହ) ବି—
Buchar-khānā ୧ । କଂସେଇଖାନା—1. Butcher
बुचरखाना बुचड़खाना house. ୨ । କଂସେଇ ଦୋକାନ—
2 Butchers stall.

ବୁଚି—ପ୍ରାଦେ (ବସ୍ତର) ବି—ମାଟିରେ ତିଆରି ସରୁ; କ୍ଷୁଦ୍ର ମୃତ୍‌ପାତ୍ର—
Buchi A small pot made of earth.

ବୁଜ୍(ଜୁ)କାଣି—ପ୍ରାଦେ (ବାଲେଶ୍ୱର) ବି—(ଭୁଲ. ବ. ଏହି ଅର୍ଥରେ
Buj-(ju)kāṇi ବୁଜକୁଡ଼ୀ)—ପାଣିଫୋଟକା; ଜଳ ବୁଦ୍‌ବୁଦ—
Water bubble.

ବୁଜ୍(ଜୁ)ରୁକ୍(ଗ୍)—ବୈଦେ ( ଫା. ବୁଜୁର୍ଗ୍=ମହତ୍ ବ୍ୟକ୍ତି)—ବି—
Buj-(ju)ruk(g) ୧ । ମହତ୍ (ବ୍ୟକ୍ତି)—1. Great.
बुजरूक बुज़ुर्ग ୨ । ଚତୁର; ଶଠ; ଧୂର୍ତ୍ତ—2. Sly; cunning.
୩ । ପାଜି; ଦୁଷ୍ଟ—3. Wicked. ୪ । ଫାଜିଲ୍—
4. Forward; officious; pert; presumptious.
୫ । ଯୋଗ୍ୟ; ଉତ୍କୃଷ୍ଟ—5. Excellent. ବୈଦେ. ବି.
(ଫା) ୬ । ବାଜିଗର୍—6. Magician.

ବୁଜ୍(ଜୁ)ରୁକ(ଗି)—ବୈଦେ (ଫା. ବୁଜୁର୍ଗୀ) ବି—୧ । ଅଦ୍ଭୁତ କାର୍ଯ୍ୟ
Buj-(ju)ruki(gi) ଦେଖାଇବା; ଭୋଜବାଜି; କୁହୁକ—
1. Magic; legerdemain.
(ବୁଜୁକୀ(ର୍ଗୀ)) ଅନ୍ୟରୂପ—୩ । ଫାଜିଲମି—3 Forwardness;
pertness. ୪ । ଧୂର୍ତ୍ତତା-4. Slyness.
बुजरुकी बुज़ुर्गी ୫ । ବାହାଦୁରୀ; ଅାତ୍ମପ୍ରଶଂସା—
5. Bragging; self-praise. ୬ । ଚତୁରତା—
6. Cleverness. ୭ । ଉତ୍କର୍ଷ—7 Excellence.

ବୁଜ୍(ଜୁ)ରୁକ(ଗି) କରିବା—ଦେ. କ୍ରି—୧ । ଦୁଷ୍ଟାମି ଦେଖାଇବା—
Buj-(ju)ruki(gi) kariba 1. To show signs of wickedness.
ବୁଜ୍(ଜୁ)ରୁକ(ଗି) କାଢ଼ିବା
ବୁଜ୍(ଜୁ)ରୁକ(ଗି) ଦେଖା(ଖେ)ଇବା
ବୁଜ୍(ଜୁ)ରୁକ(ଗି) ବତା(ତେ)ଇବା
ବୁଜ୍(ଜୁ)ରୁକ(ଗି) ବାହାର କରିବା } ଅନ୍ୟରୂପ] ୨ । କୁହୁକ ଦେଖାଇବା—2. To show magic.
बुजरुकीकरा (देखाना) ୩ । ଧୂର୍ତ୍ତତା ଦେଖାଇବା—3. To
बुज़ुर्गी दिखलाना exhibit slyness. ୪ । ଅାପଣାର
ବାହାଦୁରୀ ବଖାଣିବା—4. To brag.

ବୁଜା—ଦେ. ବି ( ସଂ. ମୁଦ୍ ଧାତୁ )—ବନ୍ଦ କରିବା ବା ବୁଜିବା କ୍ରିୟା
Bujā —Shutting; closing. (ଯଥା—ବାଡ଼ବୁଜା)—
बुजा मुँदना ଦେ. ବଣ—ମୁଦ୍ରିତ—Shut up; closed.
बुजा बन्द

ବୁଜା(ଜେ)ଇବା—ଦେ. କ୍ରି ( ବୁଜିବା କ୍ରିୟାର ଣିଜନ୍ତରୂପ, Causa.
Bujā(je)ibā tive of Bujibā )—୧ । ଅନ୍ୟଦ୍ୱାରା
बुजान ବୁଜିବା କ୍ରିୟା କରାଇବା—1. To cause to be shut.
बुझाना [ ଉ—ସେକାଳେ ଭ୍ରମ ସେନ ଛେଦ ଅର୍ଜୁନ ଦୃଷ୍ଟି, କର
ଦେଲେ ସବୁର ବୁଜାଇ ସେ ଦୃଷ୍ଟି । କୃଷ୍ଣସିଂହ. ମହାଭାରତ
ସଭା । ] ୨ । (ଦୀପ ) ନିଭାଇବା—2. To extinguish ( a lamp ).

ବୁଜାବୁଜି—ଦେ. ବି ( ସଙ୍କର )—ବୁଜିବା କ୍ରିୟା—
Bujābuji बुजिबुजि Act of closing.

ବୁଜିବା—ଦେ. କ୍ରି ( ସଂ. ମୁଦ ଧାତୁ )—୧ । ମୁଦିବା; ମୁଦ୍ରିତ କରିବା—
Bujibā 1. To close; to shut up. [ ଉ—ବୋଲେ
बुजा ଶ୍ରୀ ମୁକୁନ୍ଦ ଦେବ ଅଛ ଯହେଁ ବୁଜିଲ ନୟନ ପୁଣି ।
बन्दकरना; मुँदना କବିସୂର୍ଯ୍ୟ. ସଙ୍ଗୀତ । ] ୨ । ବାଡ଼ ପ୍ରଭୃତି
बुजा ଦ୍ୱାରା କୌଣସି ସ୍ଥାନକୁ ବେଷ୍ଟିତ କରିବା—
2. To enclose a place with a
घेराना fence. ୩ । ବାଡ଼ ବସାଇବା—3. To set up a fence.

ବୁଜି ଯି(ହେ)ବା—ଦେ· କ୍ରି—୧ । (ଦୀପ) ନିଭିଯିବା—1. To be
Buji ji,hi)bā extinguished. ୨ । (ଗର୍ତ୍ତ ବା ଛିଦ୍ର) କ୍ରମଶଃ
बुजेयाओया बुझना ମୁଦ୍ରିତ ହୋଇଯିବା—2. ( a hole ) To
be closed or filled up gradually.

ବୁଜୁ(ଜ, ଜି)ଲା—ଦେ. ବି ( ସଂ· ବନ୍ଧ; ଏକତ୍ର ବନ୍ଧା ହୋଇଥିବା
Buju(ja, ji)lā ପଦାର୍ଥ )—ବଡ଼ପୋଟଳା; ପୁଡ଼ା; ଗଣ୍ଠିରି—
बु(बो)चका; बुजला A big packet; bundle. [ ଉ—ଟଙ୍କା
गठरी; पोटली ସୁନା ରତନ ବୁଜୁଲା ବାନ୍ଧିଲେ । କୃଷ୍ଣସିଂହ.
ମହାଭାରତ ବନ । ]

ବୁଜୁଲା ବାନ୍ଧିବା—ଦେ. କ୍ରି—ଲୁଗାପଟାଲୁ ବା କୌଣସି ବସ୍ତୁକୁ ଗୋଟିଏ
Bujula bāndhibā ପୋଟଳା କରି ବାନ୍ଧିବା—To make
बुजला(बुचका)बाँधा up a bundle; to tie up things
गठली बाँधना (ବୁଜୁଲା ବନ୍ଧା—ବି) into a bundle.

**ବୁଜୁଲା ବୁଜୁଲି**—ଦେ. ବି ( ସହଚର )—ବଡ଼ ଓ ସାନ ପୁଡ଼ା ମାନ—
Bujuḷa bujuḷi  Large small packets; luggage.
বু(বো)চকাবু(বো)চকী **गठरीगठ्ठी**

**ବୁଜୁ(ଜ, ଜି)ଳି**—ଦେ. ବି—ଛୋଟ ବୁଜୁଲା; ଛୋଟ ପୁଡ଼ା—
Buju(ja, ji) ḷi  A small packet or bundle,
বুচকী **गठरी; बुकची**

**ବୁଝ(ଝୁ)ବୁଝ(ଝୁ)**—ଦେ. କ୍ରି. ବିଣ—ସମସ୍ତ ବିଷୟ ଉତ୍ତମରୂପେ
Bujh-(jhu) bujh(jhu)  ବୁଝିବାରେ; ସମସ୍ତ ବିଷୟ ଅନୁସନ୍ଧାନ
বুঝতে বুঝতে  କରିବାରେ ଜଣାଗଲା ଯେ—It appears as
**बुझते बुझते**  a result of enquiry. ( ଯଥା—ମୁଁ ଚୋରି ହୋଇଥିବା କଥା ଶୁଣି ଗ୍ରାମରେ ଯାଇ ପହଞ୍ଚିଲି, ବୁଝ୍ ବୁଝ୍ ଚୋର ଆଉ କେହି ନୁହେଁ, ଆମର ଘରର ଚାକରମାନେ । )

**ବୁଝ**—ଦେ. ବି—(ସଂ. ବୁଧ ଧାତୁ; ପ୍ରା. ବୁଝ ଧାତୁ)—୧ । ବୋଧଶକ୍ତି;
Bujha  ସମଜ—1, Understanding. ୨ । ତଦନ୍ତ—2. Enquiry.
বোঝ **बूझ**

**ବୁଝକ**—ଦେ. ବିଣ—୧ । ବୋଧଶକ୍ତି ସମ୍ପନ୍ନ; ବୁଝି ପାରୁଥିବା—
Bujhaka  সমজদার  1. Capable of understanding.
**बूझनेवाला: बुझक्कड**  ୨ । ଯୁକ୍ତି ସମ୍ପନ୍ନ—2. Reasonable.

**ବୁଝକ ପଣ**—ଦେ. ବି—ବୋଧଶକ୍ତି; ବୁଝିବାର ସାମର୍ଥ୍ୟ—Capacity
Bujhaka paṇa  বোঝ  to understand.
**बुझक्कडपना**  [ବୁଝକପଣିଆ(ଆଁ)—ଅନ୍ୟରୂପ]

**ବୁଝ(ଝୋ)ଟ୍**—ବୈଦେ. ବି—୧ । ଉତ୍ତମରୂପେ ବୋଧଗମ୍ୟ କରିବା—
Bujha(jho)ṭ  1. Understanding a thing well;
বোঝা **बुझावट**  comprehension. ୨ । ଉତ୍ତମରୂପେ ବିବେଚନା—2, Thorough consideration. ୩ । କୌଣସି ହିସାବ ସହଜରେ ବୁଝାଯିବା ନିମନ୍ତେ ପ୍ରସ୍ତୁତ କରାଯିବା ସଂକ୍ଷିପ୍ତ ଟିପ୍ପଣୀ—3. A memorandum for the easy understanding of a complicated account.

বোঝ  ବୈଦେ. ବିଣ—୧ । ବୋଧଗମ୍ୟ—1. Comprehensible. ୨ । ଯାହା ସମସ୍ତେ ବୁଝି ପାରିବେ—2 Which can be understood by all.

**ବୁଝଟ କରିବା**—ଦେ. ବି—କୌଣସି ଜଟିଳ ବିଷୟକୁ ବୁଝିବା—
Bujhaṭa karibā  To enquire into or understand a complex matter.
বোঝা, বোঝাপড়াকরা,
**बुझावट करना**

**ବୁଝଟ କାଗଜ**—ବି.—ଜଟିଳ ଓ ଲମ୍ବା ହିସାବର ସଂକ୍ଷିପ୍ତ ଟୀକା (ଯାହା
Bujhaṭa kāgaja  ସାହାଯ୍ୟରେ ବଡ଼ ହିସାବ ସହଜରେ ବୁଝା
বোঝাপড়া কাগজ  ଯାଇ ପାରେ)—A memo or concise
**बुझावट कागज**  statement or note with the help of which a long and complicated account can be easily understood.
ବୁଝଟ ଫରଦ
ବୁଝଟ ଫର୍ଦ୍ଦ, } — ଅନ୍ୟରୂପ

**ବୁଝ ସମଜ**—ଦେ. ବି—(ଏକାର୍ଥକ ସହଚର)—୧ । ବୋଧଶୋଧ; ଉତ୍ତମ
Bujha samaja  ରୂପେ ଅନୁସନ୍ଧାନ—Thorough enquiry.
ବୁଝା(ଜା)ସୁଝା
ବୁଝାସମଝା(ଜା)
ବୁଝାସମୁଜା(ଝା) } ଅନ୍ୟରୂପ
ବୁଝ ବିଚାର
ବୁଝା ସୁଝା(ଜା)
বুঝ্ সমজ্
**बुझ समझ**
୨ । କୌଣସି ବିଷୟର ଭିନ୍ନ ଭିନ୍ନ ବିଚାର—2, Thorough consideration. ୩ । କୌଣସି ବ୍ୟକ୍ତିକୁ ଉତ୍ତମ ରୂପେ ବୁଝାଇ କରି କହିବା—3. Explaining a matter fully to a person. ୪ । ପ୍ରବୋଧ ଦାନ—4. Consoling.

**ବୁଝା**—ଦେ. ବି. ( ସଂ. ବୁଧ୍ ଧାତୁ; ପ୍ରା. ବୁଝ ଧାତୁ )—୧ । ବୁଝିବା—
Bujhā  1. Understanding, ୨ । ବିବେଚନା—
বুঝা  2 Consideration. ୩ । ବୁଝାଇବା—3. Explain-
**बुझना**  ing. ୪ । ସାନ୍ତ୍ୱନା; ପ୍ରବୋଧ—4. Consoling.
୫ । ତତ୍ତ୍ୱାବଧାନ; ତଦାରଖ—5. Supervision.
ପ୍ରାଦେ. (ବସ୍ତୁର) ବି—ବୋଝ—Load. ଦେ. ବିଣ—
(ବିପରୀତ—ଅବୁଝା)  ଯେ ସହଜରେ ବୁଝିଯାଏ—Amenable to reason.

**ବୁଝା(ଝେ)ଇବା**—ଦେ. କ୍ରି. (ସଂ. ବୁଧ୍ ଧାତୁ; ପ୍ରା. ବୁଝ ଧାତୁ ଣିଚ୍)—
Bujhā(jhe)ibā  ୧ । ବୁଝିବା କ୍ରିୟାର ଣିଜନ୍ତ ରୂପ; ସମୁଝାଇବା;
[ବୁଝା(ଝେ)ଇ ଦେବା—ଅନ୍ୟରୂପ)  ବୋଧ ଗମ୍ୟ କରାଇବା; ଅନ୍ୟ
বুঝান, বোঝান  ବ୍ୟକ୍ତି ଯେପରି କୌଣସି ବିଷୟ ବୁଝି ପାରିବ, ସେହି-
**बुझाना**  ପରି କରିବା—1. To make a thing plain to a person. (ଉ—ସୁଦେବ ବ୍ରାହ୍ମଣଙ୍କୁ ପଠାଅଇ ମୁହିଁ, ବୁଝାଇଛି ନଳ ସେ ହୋଇବେ କି ନାହିଁ । କୃଷ୍ଣସିଂ. ମହାଭାରତ ବନ ।) ୨ । ଭିନ୍ନ ଭିନ୍ନ ଭାବରେ ବା ପରିଷ୍କାର କରି କୌଣସି ବିଷୟ ପ୍ରକାଶ କରିବା—1, To explain a matter. (ଉ—ଯଶୋଦା କୋଳେ କୃଷ୍ଣ ଦେଇ, ପଛେ ଗୋ କହିବା ବୁଝାଇ । ଭୂପତି. ପ୍ରେମପଞ୍ଚାମୃତ ।) ୩ । ପରାମର୍ଶ ଦେବା; ଉପଦେଶ ଦେବା—3. To advise. ୪ । କୌଣସି ବ୍ୟକ୍ତିକୁ ଟଙ୍କାପଇସାର ହିସାବ ସମଜାଇ ମୁଝିଆ କରାଇ ଦେବା—4. To explain or render an account to a person. ୫ । ପ୍ରବୋଧ ଦେବା; ବୋଧ ସୋଧ କରି କହିବା; ସାନ୍ତ୍ୱନା ଦେବା—5. To console. ୬ । କହିବା ଦ୍ୱାରା କୌଣସି ବ୍ୟକ୍ତିକୁ ଶାନ୍ତ କରାଇବା—6. To assuage a person's feelings. ୭ । କହିବା ଦ୍ୱାରା ସନ୍ତୁଷ୍ଟ କରାଇବା—7. To satisfy a person by speaking to him. ୮ । ମନ ମନାଇବା; ପ୍ରବର୍ତ୍ତାଇବା—8. To persuade.

**ବୁଝା(ଝେ)ଇବା ସମ(ମୁ)ଜା(ଝା, ଜେ, ଝେ)ଇବା**—ଦେ. କ୍ରି—୧ ।
Bujhā(jhe)ibā sama(mu)jā(jhā, je, jhe)ibā  ଉତ୍ତମ-
[ବୁଝାଇବା ସୁଝା(ଜା)ଇବା—ଅନ୍ୟରୂପ] ରୂପେ ବୁଝାଇବା—1. To
বোঝান সোঝান  explain clearly. ୨ । ଉତ୍ତମରୂପେ
**बूझा समझाना**  ସାନ୍ତ୍ୱନା ଦେବା—2. To console. [ଉ —

× ତାଙ୍କୁ ଅନେକ ପ୍ରକାରେ ବୁଝାଇ ସୁଝାଇ ଭୁଜ କରାଇଲେ—ଫକୀରମୋହନ. ଛମାଣ ଆଠଗୁଣ । ]

**ବୁଝା କରିବା**—ଦେ. କ୍ରି—ବୁଝିବା—To understand. (ଉ—
Bujhā karibā ବେଦ ଶାସ୍ତ୍ର କର ବୁଝା, ସେ ମୋତେ କରୁଥାନ୍ତି
বুঝা **बूझना** ଖୋଜା—ପ୍ରାଚୀ. ଜଗୁର୍ଣ୍ଣ ମାହାତ୍ମ୍ୟ ।)

**ବୁଝା ପଡ଼ିବା**—ଦେ. କ୍ରି (ବୁଝିବା କ୍ରିୟାର କର୍ମବାଚ୍ୟରୂପ)—୧ ।
Bujhā pa**ṛ**ibā ଅନୁମିତ ହେବା—1. To be inferred.
বুঝা যাওয়া ୨ । ସ୍ଥିରରୂପେ ଜଣା ହେବା—2. To be known
**बूझा जाना** for certain. ୩ । ସ୍ଥିରୀକୃତ ହେବା—3. To
(ବୁଝାଯିବା—ଅନ୍ୟରୂପ) be ascertained. ୪ । ଅବସ୍ଥା ଅନୁସାରେ କର୍ମ କରାଯିବା—4. To be acted upon according to the circumstances. (ଉ—
ସଖୀ ଶରହାସ ଶୁଣି, ଲଜ୍ଜେ ହସି ଠାକୁରାଣୀ, ମନେ କଲେ ପୁଣି ବୁଝାଯିବ—କବିସୂର୍ଯ୍ୟ. ସଙ୍ଗୀତ ।)

**ବୁଝାବୁଝି କରିବା**—ଦେ. କ୍ରି—୧ । ଉତ୍ତମରୂପେ ବୁଝିବା—1. To
Bujhābujhi karibā understand well. ୨ । କୌଣସି
বুঝাসুঝা করা; বোঝাসোঝা করা ବିଷୟର ତତ୍ତ୍ୱ ନେବା; ତଦାରଖ
(ବୁଝାସୁଝା କରିବା—ଅନ୍ୟରୂପ) କରିବା—2. To super-
বোঝান **बूझाबुझा करना** vise; to make enquiries.
(ଉ—ଏହାଙ୍କୁ ଧରି ସାନ୍ତାଣୀ ସବୁ ମାମଲତ ବୁଝାସୁଝା କରୁଥିଲେ ଫକୀରମୋହନ. ଗଳ୍ପସ୍ୱଳ୍ପ ।)

**ବୁଝାବୁଝି ହେବା**—ଦେ. କ୍ରି—କାର୍ଯ୍ୟ କ୍ଷେତ୍ରରେ ବା ଭବିଷ୍ୟତରେ ବଳ
Bujhābujhi hebā ପରୀକ୍ଷା ପରଖି ହେବା ବା; ଦାଉ ସାଧିବା—
বোঝাবুঝী হওয়া To measure each other's strength
**बूझाबूझी होना** when opportunity arises; to be avenged. (ଉ—ସ୍ଥାନମାନ ଧରି ଯେ ଯାହାର ରହିଲେ । ବୁଝାବୁଝି ହୋଇବା ବୋଲି ଗରଜିଲେ—କୃଷ୍ଣସିଂହ. ମହାଭାରତ. ଖିଷ୍ମ ।)

**ବୁଝାମ(ଣ,ଣ)ଣା**—ଦେ. ବି—୧ । ବିଚାରଣା; ତଦନ୍ତ—1. Consi-
Bujhāma(pa,ba)ṇā deration; enquiry. (ଉ—ତତକ୍ଷଣେ ବିଚାର ବୁଝାମଣା କରି, ଶତ୍ରୁ ମଇତ୍ର ସମ ସରି । ଭୂପତି. ପ୍ରେମ
**बुझाविचार** ପଞ୍ଚାମୃତ) । ୨ । ସୁବିଚାର; ନ୍ୟାଯ୍ୟ ବିଚାର—2. Just
(ବିପରୀତ- ଅବୁଝାମଣା) consideration; justice. (ଉ—
ଭକ୍ତ ବୁଝାମଣା ଥିବ ଜନକ ହୃଦରେ । ପ୍ରାଚୀ ଶ୍ରୀରଘୁଭକ୍ତି ଗୀତ । ) ୩ । ବିଚାର; ବିଚାର—3. Trial. (ଉ—
ଏକା ଆଖିଆ କଣା, ତାର ନାହିଁ ବୁଝାମଣା ।) ଦେ. ବିଣ-
୧ । ନ୍ୟାଯ୍ୟ ବିଚାରକ—1. Just; righteous.
୨ । ସୁବିବେଚକ—2. Considerate.

**ବୁଝାରତ(ତି)**—ଦେ. ବି—(ହି. ବୁଝାରତ; ସେଟଲମେଣ୍ଟ ବିଭାଗର
Bujhārat(ti) ହାକିମକର୍ମଚାରୀଙ୍କଦ୍ୱାରା ପ୍ରବର୍ତ୍ତିତ ଶବ୍ଦ)—୧ । ହିସାବ
বুঝারত ବୁଝିବା କ୍ରିୟା—1. The act of examination of
**बुझारत** an account. ୨ । ସେଟଲମେଣ୍ଟର ଅମିନଙ୍କ କାର୍ଯ୍ୟ ଉପରସ୍ଥ କର୍ମଚାରୀଙ୍କଦ୍ୱାରା ଚେକ୍ ହେବା—2. The checking of the entries made by the amins, by superior officers during settlement operations.

**ବୁଝାରତ(ତି) ଅମିନ**—ଦେ ବି (ସେଟଲମେଣ୍ଟ ଶବ୍ଦ)—(ହି. ବୁଝା-
Bujhārat(ti) amina ରତ୍+ଆ. ଅମିନ୍)—ଯେଉଁ ଅମିନ
বুঝারত অমিন ପୂର୍ବବର୍ତ୍ତୀ ଅମିନର ମାପକୁ ଚେକ୍ କରନ୍ତି—An
**बुझारत अमीन** amin deputed to check the mesurements done by a former amin.

**ବୁଝାରତ୍ କରିବା**—ଦେ. କ୍ରି (ସେଟଲମେଣ୍ଟ ଶବ୍ଦ)—(ହି. ବୁଝାରତ୍+ଓ
Bujhārat karibā କରିବା)—ପ୍ରତାଳ ବା ଚେକ୍ କରିବା—
বুঝারত করা **बुझारत करना** To check and verify.

**ବୁଝାର ତ(ତି) ଫରଦ(ଫର୍ଦ୍ଦ)**—ଦେ. ବି—(ହି. ବୁଝାରତ+ଫା.
Bujhārat(ti) pharada(phardd) ଫର୍ଦ୍) ବୁଝନ୍ତି କାଗଜ
বুঝারতফর্দ **बुझारतफरद** (ଦେଖ)—Bujhata kāgaja (See).

**ବୁଝି**—ଦେ. ଅ ସାବଧାନ! ଜୁସିଆର !—(interjection) Take
Bujhi বুঝে **देखो** care ! Beware !

**ବୁଝିବା**—ଦେ. କ୍ରି.—(ସଂ. ବୁଧ୍ ଧାତୁ=ଜ୍ଞାନ କରିବା; ଅବଗମନ
Bujhibā କରିବା; ପ୍ରା. ବୁଝ୍ ଧାତୁ)—୧ । ଅର୍ଥବୋଧ କରିବା;
বুঝা **बूझना** ଅର୍ଥ ହୃଦୟଙ୍ଗମ କରିବା—1. To understand the meaning of. (ଯଥା—ସେ ହିନ୍ଦୀକଥା ବୁଝି ପାରୁ ନାହିଁ ।) ୨ । ଅନୁଭବ କରିବା; ବୋଧ କରିବା—2. To experience; to feel (ଯଥା—ମୁଁ ପାପ କରିଛି ବୋଲି ପାପର ଦୁରନ୍ତ ତାଡ଼ନ ବୁଝିଛି ।) ୩ । ଜ୍ଞାତ ହେବା; ଜାଣିବା—3. To know. (ଯଥା—ମନୁଷ୍ୟ କାହୁଁ ନିଜର ଭବିଷ୍ୟତ କଥା ବୁଝିବ?) ୪ । ପରୀକ୍ଷା କରିବା—4. To examine; to test. (ଉ—ଶିବଙ୍କି ବୁଝିବାକୁ ଇନ୍ଦ୍ର ଅଗ୍ନି ଭଲେ, ସଞ୍ଚାଣ କପୋତର ସ୍ୱରୂପ ଘେନିଲେ । କୃଷ୍ଣସିଂହ. ମହାଭାରତ ବନ ।) ୫ । ବୁଦ୍ଧି ପ୍ରୟୋଗ କରିବା; ମନୋଯୋଗ ଦେବା—5. To apply one's mind to; to attend to. (ଯଥା—ସେ ଆସିଲାଦିନୁ ପିଲାପିଲିଙ୍କ ଖବର ବୁଝୁ ନାହିଁ ।) ୬ । ବିଚାର କରିବା—6. To judge. (ଯଥା—କଥାଟା ଶୁଣିଲା ବେଳକୁ ଏଡ଼େ ବଡ଼, ବୁଝିଲା ବେଳକୁ କିଛି ନୁହେଁ) ୭ । ବିବେଚନା କରିବା—7. To consider. (ଉ—ବନାନ୍ତରେ ପୂର୍ବ ପୁରୁଷ କୀର୍ତ୍ତି, ବୁଝିବା ବୋଲି ରାମ ବୋଲନ୍ତି । ଭଞ୍ଜ. ବୈଦେହୀଶବିଳାସ । ) ୮ । ଆଲୋଚନା କରିବା; ତର୍କାଦିଦ୍ୱାରା ସ୍ଥିର କରିବା—8. To discuss. (ଯଥା—ପଣ୍ଡିତମାନେ ସଭାରେ ଶାସ୍ତ୍ର ବୁଝୁଛନ୍ତି) ୯ । ସିଦ୍ଧାନ୍ତରେ ଉପନୀତ ହେବା; ସ୍ଥିର କରିବା—9. To settle; to ascertain. (ଯଥା—ବୈଜ୍ଞାନିକମାନେ ବୁଝିଅଛନ୍ତି ଯେ ଉଲ୍କାପିଣ୍ଡରେ ଧାତବ ପଦାର୍ଥ ଅଛି ) ୧୦ । ତୁଳନା କରିବା—10. To compare. (ଯଥା—ଭଲ ମନ୍ଦ ନ ବୁଝିଲେ ପଛକୁ ହଟହଟାରେ ପଡ଼ିବ ) ୧୧ । ଭଲ ମନ୍ଦ

ବାଛିବା—11. To discriminate. (ଯଥା—ଦୋଷ ବା ଗୁଣ ବୁଝି ଦଣ୍ଡ ବା ପୁରସ୍କାର ଦେବା ଉଚିତ)୍ର ୧୨। ଜ୍ୟୋତିଷ ମତରେ ପାଞ୍ଜିରୁ ଓ ଜାତକ ଆଦିରୁ ଗ୍ରହନକ୍ଷତ୍ରାଦିଙ୍କ ଅବସ୍ଥିତି ଗଣନାକରି ଦଶା ଓ ବିବାହ ତିଥି ଆଦି ସ୍ଥିର କରିବା—12. To ascertain the future by astrological calculations. (ଯଥା—ନାହାକ ଡକାଇ ବଧୂଘର ପାଇଁ ଗୋଟିଏ ତିଥି ବୁଝିବାକୁ ଦେବ) ୧୩। ମୁକାବିଲା କରିବା; ତୁଳନା କରିବା—13. To compaire, ୧୪। କର୍ମର ତତ୍ତ୍ୱ ନେବା—14. To supervisle. ୧୫। ଜମିଦାରୀ ଆଦି ଚଳାଇବା—15. To manage. ୧୬। କୌଣସି ବିଷୟ ଠିକ୍ ଅଛି କି ନାହିଁ, ଏହା ଦେଖିବା—16. To check. ୧୭। ଠଉରାଇବା—17. To realise. ୧୮। ମାପିବା—18. To fathon; to mesure. ୧୯। ଶାନ୍ତ ହେବା; (ମନ) ମାନି ଯିବା—19. (the mind) To be pursuaded to accept; to be pacified. (ଯଥା—ଅବୁଝା ମନ ମୋର କମାରୁ ବୁଝୁ ନାହିଁ) ୨୦। ଅନୁମାନ କରିବା; ଅନୁମାନଦ୍ୱାରା ସ୍ଥିର କରିବା—20. To suppose; to infer; to conclude. (ଉ—ସେ ବୁଝିଲେ ରାମଙ୍କୁ ବଣ ଭିତରେ ବିପତ୍ତି ପଡ଼ିଲା। ନୀଳକଣ୍ଠ ପିଲାଙ୍କ ରାମାୟଣ।) ୨୧। ଠିକଣା କରିବା; ପତା ଲଗାଇବା—21. To ascertain the whereabouts of. (ଉ—ଏହା କହିଣ ଦ୍ୱିଜମାନଙ୍କୁ ଡକାଇ, ବୋଇଲେ ବୁଝି ଆସ ନଳଙ୍କୁ ଏବେ ଯାଇ। କୃଷ୍ଣସିଂହ. ମହାଭାରତ ବନ।) ୨୨। ତନଖିବା; ତତ୍ତ୍ୱ ନେବା—22. To enquire after. (ଉ-ଏ ବାହାରେ ଗୃହିଣୀକୁ ବ୍ରହ୍ମଯାଏ ମୁହିଁ, ଇନ୍ଦ୍ରପ୍ରସ୍ଥବାସିଙ୍କ ସମସ୍ତ ବୁଝିଲି। କୃଷ୍ଣସିଂହ. ମହାଭାରତ ବନ।) ୨୩। ହିସାବ ଆଦି ଠିକ୍ଅଛି କି ନାହିଁ ଏହା ପରୀକ୍ଷା କରିବା; ଚେକ୍ କରିବା—23. To examine or check accounts. ୨୪। ପଣ୍ୟଦ୍ରବ୍ୟର ଭାଉ ସମ୍ବନ୍ଧେ ଏକାଧିକ ସ୍ଥାନରୁ ତତ୍ତ୍ୱ ନେବା—24. To a certain the market price from several places. ୨୫। ଫଳରେ ଦେଖିବା—25. To see or find out by the result. (ଉ—ମୁହିଁ ଜୀଇଁଥିଲେ କିରୂପେ ରାମ ଭାର୍ଯ୍ୟା, ନେବୁ ଆଜ ବୁଝିବା ତୋର ବଳମନ୍ତା। କୃଷ୍ଣସିଂହ. ମହାଭାରତ ବନ।) ୨୬। ଉପଲବ୍ଧି କରିବା—26. To realise. (ଯଥା—ବର୍ତ୍ତମାନ ମୋ କଥା ଶୁଣୁ ନାହଁ, ପରେ ମୋ କଥାର ମୂଲ୍ୟ ବୁଝିବୁ ଯେ) ୨୭। ଅନ୍ୟର ମନୋଗତ ଭାବକୁ ହୃଦୟଙ୍ଗମ କରିବା—27. To read another's mind (ଉ—ନଗ୍ନ ଘନ ମୋ ମନ ବୁଝିଲୁ ନାହିଁ ରେ। କାମପାଳ. ସୀତାବିବାହ।) ଦେ. ବିଣ—ବୋଧଶକ୍ତିମାନ୍—Considerate; reasonable. ଦେ. ବି—ବୋଧଶକ୍ତି—Understanding; intellegence.

(ବୁଝିଲା—ଅନ୍ୟରୂପ)
ସମଜଦାର
समझदार

ବୁଝିବା ବିଚାରିବା—ଦେ. କ୍ରି—(ସ. ବୋଧ; ବିଚାର)—ଉତ୍ତମରୂପେ ବିଚାର କରିବା; ଅଗ୍ର ପଶ୍ଚାତ୍ ଚିନ୍ତା କରିବା—To consider well.
Bujhibā bichāribā
ବୁଝା ସୁଝା
बुझना सुझना
[ବୁଝିବା ସମ(ମୁ)ଝିବା, ବୁଝିବା ସୁଝିବା—ଅନ୍ୟରୂପ]

ବୁଝିବା(ଳା) ସୁଝିବା[ଳା]—ଦେ. ବିଣ—ବୋଧଶକ୍ତିବାନ୍ [ବ୍ୟକ୍ତି]—Considerate; reasonable (person).
Bujhibā(lā) sujhibā(lā)
ସମଜଦାର
बुझनेसमझनेवाला; समझदार

ବୁଝେଇ ବାଝେଇ—ଦେ. କ୍ରି. ବିଣ—(ବୁଝେଇବା କ୍ରିୟା ଓ ଧ୍ୱନିମୂଳକ ବାଝେଇବା କ୍ରିୟାର ଅସମାପିକାରୂପ)—ବୋଧ କରାଇ; ଉତ୍ତମରୂପେ ବୋଧଗମ୍ୟ କରାଇ—By explaining a thing clearly.
Bujhei bājhei
ବୁଝିୟେସୁଝିୟେ
बुझासुझाकर, बुझासमझाकर
[ବୁଝେଇ ସୁଝେଇ, ବୁଝେଇ ସମଝେଇ—ଅନ୍ୟରୂପ]

ବୁଟ୍—ବୈଦେ. ବି—(ଇଂ ବୁଟ୍)—ଗୋଡ଼ ଭଣ୍ଡା ପର୍ଯ୍ୟନ୍ତ ଉଚ୍ଚ ଜୋତା—Boots.
But
ବুট
बुट

ବୁଟ୍ ପାଲ(ଲି)ସ—ବୈଦେ. ବି—(ଇଂ ବୁଟ୍ ପଲିସ୍)—ବୁଟ୍‌କୁ ଚାକଚକ୍ୟ କରିବା ପାଇଁ ବ୍ୟବହୃତ ଲେପ—Boot-palish.
But-pāl(li)s
বুটপালিস
बुटपालिस

ବୁଟ୍ ଫିତା—ବୈଦେ. ବି—(ଇଂ ବୁଟ୍+ପର୍ତ୍ତୁଗୀଜ୍. ଫୀତା)—ବୁଟ୍‌ଜୋତାର ଛିଦ୍ରରେ ଗଳାଯାଇ ଭିଡ଼ାଯିବା ଫିତା—Boot-lace.
But-phitā
বুটফিতা
बुट्‌फिता
[ବୁଟ୍‌ଲେସ୍—ଅନ୍ୟରୂପ]

ବୁଟ[ଣ୍ଟ]—ଦେ. ବି—(ସ ବୃନ୍ତ, ପ୍ରା. ବୋଣ୍ଟ)—ଚୋଲା; ଚଣା ଜାତୀୟ ଗୋଲାକାର ଶସ୍ୟ—Chickpea; Benga gram; Cicer Arietinum.
Buta(nta)
ସଂ. ନାମ—ଚଣକ, ହରିମନ୍ଥ, ସକଳପ୍ରିୟା
ବୁଁଟ
ବୋଣ୍ଟ } ଅନ୍ୟରୂପ
ବୋଂଟ
বুট, ছোলা, বুঁটকলাই
चना, बुं(बू)ट्
ମ. ହରଭରେ
ଗୁ. ଚଣା
ତେ. ଶଲଂଗାଲୁ
ଫା. ନଖୁଦ୍
ଆ. ହୁମମ୍

[ଦ୍ର—ଏ ଶିମ୍ବାଦି ବର୍ଗର କୃଷିଜାତ ଶାକର ଛୁଇଁ ଭିତରୁ ବାହାରିବା ଶସ୍ୟ, ଏହା ରଗଡ଼ା ହେଲେ ଦୁଇଫାଳ ହୁଏ, ଏହା ଡାଲି ହୁଏ। ଘୋଡ଼ାମାନଙ୍କୁ ଏହା ପାଣିରେ ବତୁରେଇ କରି ଦିଆଯାଏ। ଏହାକୁ ଘିଅରେ ବା ତେଲରେ ଭାଜି 'ବୁଟଭଜା' କରି ଖାଆନ୍ତି। ବୁଟର ଶାଗ ମଧ୍ୟ ଖିଆଯାଏ। କଞ୍ଚାବୁଟର ଚୂନାକୁ ବେସନ ଓ ଭଜାବୁଟର ଚୂନାକୁ ବୁଟଛତୁ ବୋଲାଯାଏ। ବେସନ ସାହାଯ୍ୟରେ ନାନାବିଧ ମିଷ୍ଟାନ୍ନ ପ୍ରସ୍ତୁତ ହୁଏ। ବୈଦ୍ୟଶାସ୍ତ୍ରମତରେ ଏହା ଶୀତବୀର୍ଯ୍ୟ, ରୁକ୍ଷ, ଲଘୁ କଷାୟରସ, ବସ୍ତ୍ରମ୍ଭୀ ଓ ଜ୍ୱରନାଶକ।]

ବୁଟ ଛତୁ—ଦେ. ବି.—(ଓ. ବୁଟ+ସ. ସକ୍ତୁ)—ଭଜା ବୁଟ ଚୂରିଯାଇ ପ୍ରସ୍ତୁତ ହୋଇଥିବା ଚୂନା—Flour made from fried gram.
Buta chhatu
বুটের ছাতু
बुटकी सत्तु
(ବୁଟ ଛତୁଆ—ଅନ୍ୟରୂପ) ପ୍ରାଦେ. (ଗଡ଼ଜାତ) ବି—ଛତାର ବିଶେଷ; ଗ୍ରୀଷ୍ମରେ ନାଡ଼ା ଓ ବାନ୍ଧୁଳି ପର ମୁଣ୍ଡି ଥାଇ ଭୂମି ଭିତରୁ ଉଠିଥିବା ଛତୁ—A kind of mushroom.

ବୁଟ ଭଜା—ଦେ. ବି—(ଓ.ବୁଟ+ସ, ଭର୍ଜନ)—ତେଲରେ ବା ଘିଅରେ ଭଜା ହୋଇ ଥିବା ଲବଣାଦି ମିଶ୍ରିତ ବୁଟ; ତେଲ
Buta talā

ଛୋଲାଭାଜା ଭୃଷ୍ଟ ଚଣକ—Gram fried in oil or
**बूट भूजा** ghee.

ବୁଟ ବେସନ—ଦେ. ବି—କଞ୍ଚା ବୁଟର ଚୂନା—Flour made of
Buṭa besana বুট বেসন **बूट बेसन** unfried gram.

ବୁଟା(ଣ୍ଟା)—ବୈଦେ. ବି—(ସ. ବୃନ୍ତ; ହି. ବୁଟା, ବୁଣ୍ଟା)—ଲୁଗାରେ
Buṭā(nṭā) ଛୁଞ୍ଚ ଫୋଡ଼ ସୂତାରେ ବା ଜରିରେ ତିଆର ହୋଇ
বুটা, বুটি ଥିବା ଛୋଟ ଫୁଲ ବା ଗୋଲ ଗୋଲ ଝିପଝିପ ଚିହ୍ନ—
**बू(बुं)टा** Small circular marks or spangles wrought on cloth with the needle. [ଉ—ଆକାଶ ବାସେ ଉଷ ପନ୍ତି ବୁଟା ପ୍ରାୟେ, କେତୁକୁ ଦଶିଲେ ସବୁର ଜର ଦ୍ୱୟେ । କୃଷ୍ଣସିଂହ. ମହାଭାରତ ଶଲ୍ୟ ।]

ବୁଟା ଛିନ୍ଦ—ପ୍ରାଦେ. (ବସ୍ତର) ବି.—ଭୂଇଁଖଜୁର
Buṭa chhind A species of stunted date palm.

ବୁଟା(ଣ୍ଟା)ଦାର—ଦେ. ବଣ—ଯେଉଁ ଲୁଗାରେ ବୁଟା ପଡ଼ି ଥାଏ—
Buṭā(nṭā)dār (cloth) Having circular marks
বুটীদার or spangles wrought on it with the
**बुटादार** needle.

ବୁଟି(ଣ୍ଟି)—ଦେ. ବି—(ସ. ବଟୀ, ବଟିକା)—୧ । ଔଷଧ ବଟିକା—
Buṭi(nṭi) বুটী **बुटी** 1. Medicinal pill. [ଉ—ହୋଇଛୁ ଜୀବନ ମରଣର ବୁଟୀ । ରାଧାନାଥ. ଦରବାର ।]
୨ । ଭୁଟୁକା ଔଷଧ—2. Simple herb. ୩ । ଔଷଧ—3. Medicine; drug. ( ଦ୍ର—ଏ ଶବ୍ଦ ଜଡ଼ି ପରେ ମଧ୍ୟ ସହଚରରୂପେ ବ୍ୟବହୃତ ହୁଏ; ଜଡ଼ି ବୁଟି ।)
ପ୍ରାଦେ. (ଗଡ଼ଜାତ) ବି—ବଉଁଶରେ ନିର୍ମିତ ପାତ୍ର—
A pot made of bamboo

ବୁଟିଆ—ପ୍ରାଦେ. (ସମ୍ବଲପୁର) ବଣ.—(ଭୁଲ. ହି. ବୁଟା; ବ. ବେଁଟେ)—
Buṭiā ଖର୍ବକାୟ; ବାମନ—Dwarfish.

ବୁଟୀ—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି—ବୁଠି (ଦେଖ)
Buṭi Buṭhi (See)

ବୁଠି—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି—(ଭୁଲ. ହି. ବୁଟା)—
Buṭhi କ୍ଷୁଦ୍ରକାୟ ଲୋକ—A dwarf

ବୁଡ଼ (ଧାତୁ)—ସ.—୧ । ତ୍ୟାଗ କରିବା—1. To abandon. ୨ ।
Burd(root) ସ୍ନାନ କରିବା—2. To bathe; to take a bath by immersion ୩ । ଆଚ୍ଛାଦନ କରିବା—3. To cover; to envelop.

ବୁଡ଼(ଡୁ) ଗଳା—ପ୍ରାଦେ. (ଗଡ଼ଜାତ) ବି—ମୁଣ୍ଡ ବୁଡ଼େଇ ଗାଧୋଇବା
Burd-(rdu) gaḷā A bath by immersion.

ବୁଡ଼ ଗାଳିବା—ପ୍ରାଦେ. (ଗଡ଼ଜାତ) କ୍ରି—ମୁଣ୍ଡ ବୁଡ଼େଇ ଗାଧୋଇବା—
Burd-gāḷibā To bathe by immersion.

ବୁଡ଼(ଡୁ)ବକ—ଦେ. ବି ଓ ବଣ.—(ହି. ବୁଡ଼=ବୁଢ଼ା+ବୋକା)—
Burd-(rdu)bak ୧ । ଓଲୁ; ନିର୍ବୋଧ—1. A fool;
বুড়বাক **बुडवक** foolish person. ୨ । ବୃଦ୍ଧ ଓଲୁ—2. An old fool. ୩ । ଗଣ୍ଡ ମୂର୍ଖ—3. A blockhead; an ignoramus.

ବୁଡ଼(ଡୁ) ବୁଡ଼(ଡୁ)—ଦେ.ଅ—୧ । ପାଣିରେ ବୁଡ଼ି ଯିବାର ଅବ୍ୟବହିତ
Burd-(rdu) burd-(rdu) ପୂର୍ବ ଅବସ୍ଥା; ଡୁବି ଯିବାର ଆସନ୍ନ ଅବସ୍ଥା; ମଗ୍ନପ୍ରାୟ—1. About to be drowned; about to sink in water.

ବୁଡ଼(ଡୁ) ବୁଡ଼(ଡ଼ା,ଡ଼ି,ଡୁ)—ଦେ. ବି—୧ । (ଧ୍ୱନ୍ୟର୍ଥକ) ଭୁଡ଼ୁ ଭୁଡ଼ୁ
Burd-(rdu) burd-(rdā,rdi,rdu) ଶବ୍ଦ; ବୋତଲକୁ [ବୁଡ଼(ଡୁ) ବୁଡ଼(ଡୁ)କା (କ)—ଅନ୍ୟରୂପ] ପାଣିରେ ବୁଡ଼ାଇଲେ
বুড় বুড় ବୋତଲରେ ପାଣି ପଶିବାବେଳେ ଯେଉଁ ଶବ୍ଦ ହୁଏ—
**बुडबुड** 1. Bubbling sound produced when a bottle is dipped in water for filling it up.
୨ । (ସ. ବୁଦ୍ ବୁଦ୍)—Bubble.

ବୁଡ଼ବା—ପ୍ରାଦେ. (ସମ୍ବଲପୁର) କ୍ରି.—(ସ. ବୁଡ଼ ଧାତୁ)—ବୁଡ଼ିବା—
Burd-bā Burdibā (See)

ବୁଡ଼—ଦେ. ବି—(ସ. ବୁଡ଼ ଧାତୁ ବା ବ୍ରୁଡ଼ ଧାତୁ=ନିମଜ୍ଜନ)—୧ ।
Burda ପାଣିରେ ନିମଜ୍ଜନ ପୂର୍ବକ ସ୍ନାନ—1. A bath by immersion; bath by plunging into water a plunge. [ଉ—ବୁଡ଼ ଦେଇ ପରଭୃତ ପଦ୍ମକୁ ନାମେ । ଭଞ୍ଜ. ବୈଦେହୀଶବିଳାସ ।] ୨ । ନିର୍ଦ୍ଦିଷ୍ଟ ତିଥି ଆଦିରେ ଘଟିବା ସ୍ନାନଯୋଗ; ବାରୁଣୀ ଯୋଗ—2. An
ডুব, ডুবন auspicious time for taking a bath in
**बुड, बुड** sacred water. ୩ । ଡୁବା; ନିମଜ୍ଜନ; ଜଳରେ ଡୁବିବା—3. Dipping; immersion; diving.
୪ । ଜଳରେ ଡୁବାଇ ଦେବା—4. Drowning. ୫ । ଖ୍ରୀଷ୍ଟିୟାନଙ୍କର ପାପାପହରଣାର୍ଥ ଡୁବନ—5. Baptism.

ବୁଡ଼ଇବା—ପ୍ରାଦେ. (କୋରାପୁଟ) କ୍ରି—ବୁଡ଼ାଇବ—To drown; to
Burdaibā dip a thing in a liquid.

ବୁଡ଼ କରିବା—ଦେ. କ୍ରି—କାର୍ତ୍ତିକାଦି ପୁଣ୍ୟ ମାସରେ ସୂର୍ଯ୍ୟୋଦୟ
Burda karibā ପୂର୍ବରୁ ନଦୀରେ ବା ବାରୁଣୀ ଯୋଗରେ
ডুব দেওয়া ତୀର୍ଥରେ ସ୍ନାନ କରିବା—To take an early
**डुब देना** morning bath in a river or sacred water in the month of Kārttika or other sacerd time. [ଉ—ବିଗତ ଶର୍ବରୀ ପ୍ରାତରେ; ବୁଡ଼ କରେ ସାଧୁ ମାନେ । ଭଞ୍ଜ. ବୈଦେହୀଶବିଳାସ । ]

ବୁଡ଼ଣା—ଦେ. ବି—(ସ. ବୁଡ଼ ଧାତୁ)—୧ । ବୁଡ଼ିବା; ଜଳରେ ଡୁବି
Burdaṇā ଯିବା ଅବସ୍ଥା—1. Immersion. [ଉ—
ডুবন **डुबना** ବୁଡ଼ଣା ହୋଇଲା ସ୍ଥଳେ; ଅନଳ ଲାଗିଲା ଜଳେ, ଅନଳ ପାଶେ କନକ ହୋଇ ଯେ । ଭଞ୍ଜ. ବୈଦେହୀଶବିଳାସ । ]
বান ୨ । ବଢ଼ି; ବନ୍ୟା—2. Flood; inundation. ଦେ.
**बाढ** ବିଣ—ବୁଡ଼ିଯିବା ଭଳି ଗଭୀରତା ଯୁକ୍ତ (ଜଳ)—(water)
ডুবন, ডুবন Having the depth of more than a
**अथाह** man's height. (ଉ—ବୁଡ଼ଣାମାନେ, ପଡ଼ି ଲଙ୍ଘତେ ଦୃଢ଼ ଆୟୁଷ ଜାଣି । ଭଞ୍ଜ. ବୈଦେହୀଶବିଳାସ ।)

ବୁଡ ଦେବା—ଦେ· କ୍ରି—ମୁଣ୍ଡ ବୁଡ଼ାଇ ସ୍ନାନ କରିବା; ପାଣିରେ ନିମଜ୍ଜିତ Burda debā ହୋଇ ସ୍ନାନ କରିବା—1. To take a bath by immersion; to take a plunge. ୨ । ବାରୁଣୀ ଯୋଗ ସମୟରେ ତୀର୍ଥରେ ସ୍ନାନ କରିବା—2 To take a bath in some sacred water on some auspicious occasion. ୩ । କୁଟୁମ୍ବିଙ୍କର ବା ନିକଟ ସମ୍ପର୍କୀୟ ବନ୍ଧୁଙ୍କ ମୃତ୍ୟୁର ଦଶାହ ଉପଲକ୍ଷରେ ଶୁଦ୍ଧିସ୍ନାନ କରିବା – 3. To take a purificatory bath on the 10th day of a relative's or kinsman's death. ୩ । କାର୍ତ୍ତିକ, ମାଘ, ବୈଶାଖ ଓ ଆଷାଢ଼ ମାସରେ ବ୍ରତ ପାଳନର ଅଙ୍ଗ ରୂପେ ପ୍ରାତଃସ୍ନାନ କରିବା—4. To take a bath early in the morning before sunrise as a part of the religious vow during the months of Kārttika, Māgha, Baiśākha and Āshārdha. ଦେ. କ୍ରି—କୌଣସି ବ୍ୟକ୍ତିକୁ ପାଣିରେ ବୁଡ଼ାଇବା—1. To drown a person. ୨ । ଭୁବନ କରିବା; ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିବା ପାଇଁ (ପାଦ୍ରୀ) ଭକ୍ତକୁ ପାଣିରେ ବୁଡ଼ାଇବା—3. To baptise

ଡୁବମାରା, ଡুব দেয়া ডুবকী লগানা; ବୁଡ ପକା(କେ)ଇବା, ବୁଡ ମାରିବା, ବୁଡ ଗାଳିବା, ବୁଡୁ ଗାଳିବା (ଅନ୍ୟରୂପ); ডুব দেওয়া ডুবকী দেনা

ବୁଡ଼ନ୍ତର—ଦେ· ବି—ଗ୍ରାମ୍ୟ ବୈଦ୍ୟଙ୍କ ପ୍ରସ୍ତୁତ ଜ୍ୱରନାଶକ ବଟିକା-ବିଶେଷ—A pill prepared by village physicians as a febrifuge. Burdantarā (ବୁଡ଼ନ୍ତର ରସ—ଅନ୍ୟରୂପ)

ବୁଡ଼ନ୍ତା(ନ୍ତି)—ଦେ. ବିଣ—୧ । ବୁଡ଼ି ଯାଇଥିବା—1. Drowned. Burdantā(nti) ୨ । ବୁଡୁଥିବା—2. Diving. ডুবন্ত जलडुबी

ବୁଡ଼ ପଡ଼ିବା—ଦେ. କ୍ରି—ଗଙ୍ଗା ଆଦି ନଦୀରେ ବା ସମୁଦ୍ରରେ ବାରୁଣୀ ସ୍ନାନ ଯୋଗ ଘଟିବା—The auspicious occasion for taking a bath in the Ganges or in the sea. Burda pardibā যোগ পড়া डुब पडना

ବୁଡ଼ ପାଳି(ଡ଼ି,ଳି)ବା—ଦେ. କ୍ରି. ( ସଂ. ବୁଡ଼ ଧାତୁ+ପାଳନ )—Burda pāli(rdi,li)bā ୧ । କାର୍ତ୍ତିକ, ମାଘ ଆଦି ଧର୍ମ ମାସରେ ସଂକଳ୍ପ ପୂର୍ବକ ନିୟମିତ ରୂପେ ପ୍ରତିଦିନ ପ୍ରାତଃସ୍ନାନ କରିବା—1. To regularly take early morning bath in observance of the religious vow during Kārttika and other months. ୨ । ଗାଧୋଇବା; ସ୍ନାନ କରିବା—2. To bathe. (ଉ—ବୁଡ଼ ପାଳିଲା ବଥା ମୁଣ୍ଡ ଶୁଖେଇଲା ବେଳକୁ ନ ଥାଏ—ଉଗ ।) সান করা डुबकी लगाना

ବୁଡ଼(ଡ଼ୁ)ବୁଡ଼(ଡ଼ୁ)କା—ଦେ. ବି—୧ । ରସୁଆଳ ଲତା ବିଶେଷ—1. A kind of juicy creeper ୨ । ବୁଡ଼ୁବୁଡ଼ୁ (ଦେଖ)—2. Burd-burd (See). Burda(rdu)burda(rdu)kā

ବୁଡ଼(ଡ଼ୁ)ବୁ(ଡ଼)ଆଣୀ—ଦେ. ବି—ବୁଢ଼ିଆଣୀ; ଊର୍ଣ୍ଣନାଭ; ମାକଡ଼ସା—Spider. Burda(rdu)burdiāni [ବୁଡ଼ୁ(ଡ଼ୁ)ବୁଡ଼ାଣୀ—ଅନ୍ୟରୂପ] মাকড়সা मकडी

ବୁଡ଼ା—ଦେ. ବି. (ସଂ. ବୁଡ଼ ଧାତୁ)—୧ । ଡୁବା; ବୁଡ଼; ଜଳରେ ବୁଡ଼ିବା କ୍ରିୟା; ନିମଜ୍ଜନ—1. Immersion. ୨ । ଡୁବୁରି; ଯେ ପାଣିରେ ବୁଡ଼େ—2. A diver. ୩ । ମନୁଷ୍ୟର ବା ଅନ୍ୟ ଜୀବର ବୁଡ଼ିଯିବା ପରିମିତ ଗଭୀରତା; ଏକ ତାଳ ଗଭୀରତା—3. The depth of a man's height; enough depth to drown a person or animal. (ଯଥା—ଏ ନଈରେ ହାତିକୁ ପାଣି ବୁଡ଼ାଏ ହେଲାଣି ।) Burdā ডুবা डुब; ডুবরী डुबकुड; ডুবন জল अथापानी

ବିଣ—ଏକତାଳ ଗଭୀର (ଜଳ)—Enough to drown a man.

ପ୍ରାଦେ. (ଗଞ୍ଜାମ)ବି—ପରିମାଣ ପାତ୍ର—A measuring pot ପ୍ରାଦେ.(ମେଦିନୀପୁର,ବାଲେଶ୍ୱର)ବି. (ସଂ.ବୋଡ଼)—ବୋଡ଼ା ସାପ—Viper. ଦେ· ବିଣ—୧ । ନିମଜ୍ଜିତ—1. Immersed. (ଯଥା—ଘିଅବୁଡ଼ା ବଣିତା ।) ୨ । (ଲାକ୍ଷଣିକ) ଯାହା ସମୁଦ୍ରର ବା ନଦୀର ଜଳ ତଳେ ବୁଡ଼ି ଥାଏ—2. Immersed below the surface; hidden below the surface, sub-surface. (ଯଥା—ବୁଡ଼ା ପାହାଡ଼ ।) ୩ । (ଜାହାଜ) ଯାହା ପାଣି ତଳେ ବୁଡ଼ି ବୁଡ଼ି ଗତି କରେ—3. Submarine (boat); moving below the surface of water. (ଯଥା—ବୁଡ଼ା ଜାହାଜ ।) ୪ । ଯାହା (ଯେଉଁ ଜଳ) ଫସଲ ଆଦିର ଗଛକୁ ବନ୍ୟାଜଳଦ୍ୱାରା ବୁଡ଼ାଇ ଦିଏ—4. (water) Which drowns plants and crops by overflowing. (ଯଥା—ବୁଡ଼ା ପାଣି, (ବୁଡ଼େଇ—ସ୍ତ୍ରୀ) ବୁଡ଼ା ବରଷା ।) ୫ । (ପୁଂ) ଯେଉଁ ବ୍ୟକ୍ତି ଅନ୍ୟର ବା ପରିବାରର ମହତ୍ତ୍ୱ ବା ଇଜ୍ଜତ୍ ନାଶ କରେ—5. Lowering or spoiling the prestige or honour of a person or family. (ଯଥା—କୁଳବୁଡ଼ା, ଘରବୁଡ଼ା ।) ୬ । ଯେ ପରର କଳଙ୍କ ରଟନା କରେ—6. Publishing the scandals of others; slandering; blasphemous. [ଦ୍ର—ଏହି 'ବୁଡ଼ା' ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ମନୁଷ୍ୟର ବିଶେଷଣରେ ବ୍ୟବହୃତ ହୁଏ । ଯଥା—କୁଳବୁଡ଼ା, ଘରବୁଡ଼ା ଇତ୍ୟାଦି । ଏହାର ସ୍ତ୍ରୀଲିଙ୍ଗରେ 'ବୁଡ଼ୀ, ବୁଡ଼ାଈ, ବୁଡ଼େଇ' ହୁଏ । ଯଥା—ଘର ବୁଡ଼େଇ ।] ୭ । ଯେ ପରର ଧନକୁ ବା ପ୍ରାପ୍ୟକୁ ନ ଦେଇ ମାଡ଼ି ବସେ—7. (a person) Who does not pay up the due of other people; usurping the due of another; withholding payment of another's due. ୮ । ଲୁକ୍କାୟିତ—8. Hidden. ୯ । ଗୁପ୍ତ ଅପ୍ରକାଶିତ—9. Secret. (ଯଥା—ବୁଡ଼ା ପ୍ରେମ ।)

ডুবা ডুবা ডুবা डुबा हुआ; ডুবা জাহাজ; ডুবা (জল); যে ডুবিয়েছে; যে অন্যকে ডুবায় বুডানে বালা; যে লোক ডুবায় बुडाने वाला

୧୦ । ଯେ ନାଶ ଘଟାଏ; ବିନାଶକାରୀ—10. Destroying; ruining; causing ruin. ୧୧ । ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ) ସର୍ବାଙ୍ଗ ( ଧୂଳିଆଦିରେ ) ଆଚ୍ଛାଦିତ ହୋଇଥିବା—11. With the whole body thickly bedaubed with (something e. g. sweat, dust). ( ଯଥା—ଦମ୍ୟ ଝାଳବୁଡ଼ା ଭୂପତିଗଣ ବୁଡ଼ା ଶ୍ରୀଅଙ୍ଗ କି ସୁନ୍ଦର । କବିସୂର୍ଯ୍ୟ. ସଙ୍ଗୀତ) ୧୨ । ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ, ଯଥା କୂଅବୁଡ଼ା, ସମୁଦ୍ରବୁଡ଼ା ଲୋକ )—12. Diving ( e. g. in wells, in the sea ). ୧୩ । ଯାହା ଦେହର ଚର୍ମରେ ଛିଦ୍ର ଦ୍ୱାର ଗଭୀରତା ପର୍ଯ୍ୟନ୍ତ ଭେଦ ଥାଏ; (ଗଭୀର—13. More than skin-deep. ( ଯଥା—ବୁଡ଼ା ବୋକ । )

**ବୁଡ଼ା(ଡ଼େ)ଇ ପକା(କେ)ଇବା**—ଦେ. କ୍ରି ( କଥାରେ ଜୋର୍ ଦେବା-Burdā(rde)i pakā(ke)ibā ପାଇଁ ଓ ବୁଡ଼ାଇବା କ୍ରିୟାର ଡବିଏ ଦେଓ୍ୱା ବହିଷ୍ଠତା ସୂଚିତ କରିବାପାଇଁ ବ୍ୟବହୃତ )—**ଢାକ ଦେନ୍‌;** ୧ । ଉପର ଆଚ୍ଛାଦନ କରିବା; ଘୋଡ଼ାଇ [ବୁଡ଼ା(ଡ଼େ)ଇ ଦେବା—ଅନ୍ୟରୂପ] ପକାଇବା—1. To cover the surface of; to overcloud; to overspread. ୨ । (ଉଚ୍ଚତର ବା କଠୋରତର ବସ୍ତୁ) ନୀଚତର ବା କୋମଳତର ବସ୍ତୁର ସ୍ୱାତନ୍ତ୍ର୍ୟକୁ ଲୁଚାଇ ଦେବା—2. To destroy the prominence or individullity of a lower or softer thing. ( ଯଥା, ମେଘଗର୍ଜନ ସଙ୍ଗୀତର ସ୍ୱରକୁ ବୁଡ଼ାଇ ପକାଇଲା ) ୩ । ଜଳପ୍ଲାବିତ କରିବା—3. To inundate; to flood.

**ବୁଡ଼ା(ଡ଼େ)ଇବା**—ଦେ• କ୍ରି ( ସଂ ବ୍ରୁଡ୍, ବୁଡ଼ ଧାତୁ ବୁଡ଼ିବା କ୍ରିୟାର Burdā(rde)ibā ଣିଜନ୍ତରୂପ )—୧ । ଡୁବାଇବା; ଅନ୍ୟ ବୁଡ଼ାନ୍; ଡୁବାନ ବ୍ୟକ୍ତିର ବା ବସ୍ତୁର ଡୁବିବାର ଉପାୟ କରିବା—**बुडाना; डुबाना** 1. To cause to sink or dive. ୨ । କୌଣସି ବ୍ୟକ୍ତିକୁ ବା ପଦାର୍ଥକୁ ଜଳମଗ୍ନ କରିବା; ଜଳରେ ନିମଜ୍ଜିତ କରିବା—2. To immerse or plunge a person or thing in water. ( ଯଥା—ଶାଳଗ୍ରାମକୁ ପ୍ରତିଦିନ ମୁଁ ଜଳରେ ବୁଡ଼ାଏଁ । ) ୩ । ( ଲକ୍ଷଣାର୍ଥ ) ଅନ୍ୟବ୍ୟକ୍ତିଙ୍କୁ ଦେୟ ଅର୍ଥ ବା ଅନ୍ୟ ବ୍ୟକ୍ତିର ପ୍ରାପ୍ୟ ଧନକୁ ବା ପଦାର୍ଥକୁ ବହୁକାଳ ପର୍ଯ୍ୟନ୍ତ ନ ଦେବା; ମାଡ଼ି ବସିବା—3. (figurative) To withhold payment or delivery; to deprive a person of the receipt of his due by nonpayment. ( ଯଥା—ମୋ ସ୍ୱର୍ଗୀୟ ପିତାଙ୍କ ଶ୍ରାଦ୍ଧର ବାବଦ୍ ବାକି ଦରମାଟକ ତାଙ୍କ ଅନ୍ତେ ମୁଁ ସାଆନ୍ତଙ୍କ ମାଗି ମାଗି ଥକିଲି, ତାଙ୍କୁ ସାଆନ୍ତ ବୁଡ଼ାଇ ଦେଲେ । ) ୪ । ( ଲକ୍ଷଣାର୍ଥ ) ବହୁକାଳ ପର୍ଯ୍ୟନ୍ତ, ଅର୍ଥାତ୍ ନିର୍ଦ୍ଦିଷ୍ଟ କାଳ ଅତୀତ ହେବାର ପରବର୍ତ୍ତୀକାଳ ପର୍ଯ୍ୟନ୍ତ ଅନ୍ୟ ବ୍ୟକ୍ତିକୁ ଦେୟକୁ ନ ଦେଇ ତାହାକୁ ଆଇନ୍ ଅନୁସାରେ ଆଦାୟର ଅଯୋଗ୍ୟ କରାଇବା; ପରର ପ୍ରାପ୍ୟ ତମାଦି କରାଇବା—4. ( figurative ) To cause a person's due to be barred by lapse of time ( ଯଥା—ତମସୁକ ବାବଦ୍ ଟଙ୍କାଟକ ମୁଁ ଖାତକଙ୍କୁ ମାଗି ମାଗି ଥକିଲି । ସେ ୩ ବର୍ଷ କାଳ ଟାଳଟୋଳ କରି ଶେଷକୁ ମୋ ଟଙ୍କାଟକ ବୁଡ଼ାଇ ଦେଲେ । ) ୫ । ( ଲକ୍ଷଣାର୍ଥ ) ବ୍ୟବସାୟରେ ଖଟା ଯାଇଥିବା ମୂଳଧନର ବିନାଶ ଘଟାଇବା; ଧନ ନଷ୍ଟ କରାଇବା—5. ( figurative ) To cause the extinction or loss of capital invested in a business ୬ ( ଲକ୍ଷଣାର୍ଥ ) ବିନାଶ କରିବା—6. ( figurative ) To destroy; to ruin. [ ଉ—ବୁଡ଼ାଇବା ତା ସନ୍ଧିଦ କହୁ ରାଘବଙ୍କୁ । ଉପେ. ବୈଦେହୀଶବିଳାସ । ] ୭ । ( ଲକ୍ଷଣାର୍ଥ ) କୌଣସି ବଂଶଗତ ବା ଦେଶ ପ୍ରଚଳିତ ପ୍ରଥାକୁ ପାଳନ ନ କରି ଲୁପ୍ତ କରାଇବା—7. ( figurative ) To make a custom or practice obsolete by not observing it; to discontinue a custom or long-standing practice. (ଯଥା—ଆଜିକାଲିର ଇଂରେଜି ପାଠୁଆ ପାଠୋଇମାନେ ପୁରୁଣାକାଳିଆ ଶ୍ରାଦ୍ଧଯାକ ବୁଡ଼ାଇଲେଣି । )

୮ । (ଲକ୍ଷଣାର୍ଥ) କୁକ୍ରିୟାଦ୍ୱାରା ଆପଣାର କୁଳକୁ କଳଙ୍କିତ କରିବା; ବଂଶର ମର୍ଯ୍ୟାଦାକୁ ବା ସୁନାମକୁ ଲୁପ୍ତ କରାଇବା—8. (figurative) To cause the loss of the prestige of one's family by doing evil acts ( ଯଥା—ସେ ବାପଅଜାଙ୍କ ନାଆଁ ବୁଡ଼େଇଲା । ) ୯ । (ଲକ୍ଷଣାର୍ଥ) ପରର ନାମରେ କଳଙ୍କ ବା ମିଥ୍ୟା ଅପବାଦ ରଟନା କରିବା; ଅନ୍ୟକୁ କଳଙ୍କମଗ୍ନ କରାଇବା—9. (figurative) To scandalise a person; to slander. ୧୦ । (ଲକ୍ଷଣାର୍ଥ) ଅବିବାହିତ ରହି କିମ୍ବା ବନ୍ଧ୍ୟାତ୍ୱ ଦୋଷରୁ ସନ୍ତାନାଦି ପ୍ରଜନନ ନ କରିବାଦ୍ୱାରା, କିମ୍ବା ବଂଶର ସନ୍ତାନମାନଙ୍କ ମୃତ୍ୟୁର କାରଣ ହେବା ଦ୍ୱାରା ଆପଣାର ବଂଶର ଲୋପ ଘଟାଇବା—10. (figurative) To be the cause of the extinction of a family by remaining unmarried or on account of barrenness or sterelity or by causing the members to be killed. ( ଉ—ସେହିଗଲା କେଉଁଆଡ଼େ ସେ ଉଡ଼ାଇ, କ କରିବ ଘର ମୁଁ ବସିଛୁ ବୁଡ଼ାଇ—କୃଷ୍ଣସିଂହ ମହାଭାରତ ବନ । ) ୧୧ । (ଲକ୍ଷଣାର୍ଥ) ପରର ପରିବାର ମଧ୍ୟରେ ଅନ୍ତର୍ବିବାଦ ଉପସ୍ଥିତ କରାଇ ତାକୁ ପରିବାରର ଧ୍ୱଂସ ଘଟାଇବା—11. (figurative) To bring about the ruin of a family by fomenting internal dissensions in it.

୧୨ । ଜଳ ପ୍ଲାବିତ କରିବା—12. To overflow; to inundate. ( ଉ—ବେଙ୍ଗୁଲି ବେଙ୍ଗୁଲି ! ପାଣି ଦେ, ନଈ ବଢ଼ି କରି ବୁଡ଼େଇ ଦେ—ଶିଶୁଗୀତ ।) ୧୩ । (ଲକ୍ଷଣାର୍ଥ) ନିର୍ଦ୍ଦିଷ୍ଟକାଳ ମଧ୍ୟରେ ଋଣ ପରିଶୋଧ ନ କରିବା ଦ୍ୱାରା ଋଣପାଇଁ ଅବନ୍ଧ ବା ବନ୍ଧା ଦିଆ ଯାଇଥିବା ସମ୍ପତ୍ତିକୁ ମୁକୁଳାଇ ନ ପାରିବା—13. (figurative) To cause a mortgaged or pledged property to become forfeited or unredeemable by nonpayment of the loan during the specified time-limit; to cause the foreclosure of a mortgaged property. ୧୪ । (ଲକ୍ଷଣାର୍ଥ) (ଉଚ୍ଚତର ସ୍ୱର) ନିମ୍ନତର ସ୍ୱରକୁ ଅନୁଭୂତ କରାଇ ନ ଦେବା—14. ( figurative) (said of louder sound) To cause a feebler sound not to be distinguished; to drown a feebler sound by its loudness. ( ଯଥା—ସମୁଦ୍ର ଗର୍ଜନ ମୋ କାନ୍ଦଣା ସ୍ୱରକୁ ବୁଡ଼ାଇ ଦେଲା । ) ୧୫ । (ଲକ୍ଷଣାର୍ଥ) (ଅଧିକତର କଡ଼ା ସ୍ୱାଦ ବା ଗନ୍ଧବିଶିଷ୍ଟ ବସ୍ତୁ ) କୋମଳତର ସ୍ୱାଦ ବା ଗନ୍ଧବିଶିଷ୍ଟ ବସ୍ତୁର ସ୍ୱାଦକୁ ବା ଗନ୍ଧକୁ ଅନୁଭୂତ କରାଇ ନ ଦେବା—15. ( figurative ) ( said of a thing with a stronger scent or stronger smell ) To drown the taste or smell of a lesser thing by its stronger taste or smell. (ଯଥା—ଏ ତିଅଣରେ ବହୁତ ଲୁଣ ପଡ଼ିବାରୁ ଲୁଣ ଏଥିର ମିଠାପଣକୁ ବୁଡ଼ାଇଦେଲା; ପିନାଇଲ୍ ଗନ୍ଧ ଅତର ଗନ୍ଧକୁ ବୁଡ଼ାଇଦିଏ ।) ୧୬ । (ଲକ୍ଷଣାର୍ଥ) (ଗୁରୁତର ଘଟନା) ଲଘୁତର ଘଟନାର ଗୁରୁତ୍ୱ ଉପଲବ୍ଧି କରାଇ ନ ଦେବା-16. (figurative)(said of a more serious matter or event) To drown the seriousness or importance of a less serious matter (ଯଥା—ତାଙ୍କର ପୁତ୍ରଶୋକ ଧନନାଶ ଦୁଃଖକୁ ବୁଡ଼ାଇ ଦେଲା ।) ୧୭ । (ଲକ୍ଷଣାର୍ଥ) ( ଉଜ୍ଜ୍ୱଳତର ବସ୍ତୁ ) ଔଜ୍ଜ୍ୱଲ୍ୟଦ୍ୱାରା କମ୍ ଉଜ୍ଜ୍ୱଳ ବସ୍ତୁର ଔଜ୍ଜ୍ୱଲ୍ୟକୁ ଉପଲବ୍ଧି କରାଇ ନ ଦେବା—17. (figurative) (said of a brighter thing) Not to cause the colour of a less bright thing to be noticed by its brighter effulgence. (ଯଥା—ଅଳକାତିରି ବଦନକୁ ବୁଡ଼ାଇଦେଲା ।) [ ଦ୍ର—କୌଣସି ଉଚ୍ଚତର ବସ୍ତୁ ବା ଘଟନା ବା ଚିନ୍ତା ନିମ୍ନତର ବସ୍ତୁର, ଘଟନାର ବା ଚିନ୍ତାର ବିଶିଷ୍ଟତାକୁ ଅନୁଭୂତ କରାଇ ନ ଦେଲେ ଉଚ୍ଚତର ବସ୍ତୁ ନୀଚତର ବସ୍ତୁକୁ 'ବୁଡ଼ାଇଦେଲା' ବୋଲି ବୁଝାଯାଏ ।] ୧୮ । ( ଲକ୍ଷଣାର୍ଥ ) ବହୁପରିମାଣରେ ଜଳୀୟ ବସ୍ତୁ ବା ଧୂଳି ବା ମଇଳା ଢାଳିବା ବା ଦେହ ତମାମ ଅଜାଡ଼ି ଦେବା—18 ( figurative ) To pour any liquid or dust or filth all over one's body in a large quantity. ( ଯଥା—ହୋଲି ସମୟରେ ଅବିରରେ ଓ ପିଚକାରୀରେ ଗାଁଅଁର ପିଲାମାନେ ମତେ ବୁଡ଼ାଇଦେଲେ ।) ୧୯ । (ଲକ୍ଷଣାର୍ଥ) ବହୁପରିମାଣରେ ବା ପ୍ରଚୁରଭାବରେ ଖାଦ୍ୟାଦି ବିତରଣ କରିବା । ) 19. (figurative) To distribute or serve up any food in profusion. (ଯଥା—ବାବୁ ଆମକୁ ତାଙ୍କ ପୁଅ ବାହାଘର ସମୟରେ ଖିର ମିଠାରେ ବୁଡ଼ାଇ ଦେଲେ ।) ୨୦ । ( ଲକ୍ଷଣାର୍ଥ ) କୌଣସି ବିଷୟକୁ ଗୋପନ କରିବା; ଘୋଡ଼ାଇବା—20. (figurative) To conceal; to hide; to hush up. (ଯଥା—ନରହତ୍ୟା ଅପରାଧକୁ କେତେ ଦିନ ସରକାରଙ୍କଠାରୁ ବୁଡ଼ାଇକରି ରଖିବା ? ) ୨୧ । (ଲକ୍ଷଣାର୍ଥ) ମନୁଷ୍ୟକୁ ପ୍ରେମାଦିଦ୍ୱାରା ବାନ୍ଧିପକାଇବା; ପ୍ଲାବିତ କରିବା ପରି ବିଶେଷ ପ୍ରେମ ଆଦି ଦେଖାଇ ମନୁଷ୍ୟକୁ ଅପ୍ୟାୟିତ କରିବା—21. (figurative) To overpower or greatly oblige a person with excessive love or fondness. ୨୨ । ( ଲକ୍ଷଣାର୍ଥ ) ନିଜର ହୃଦୟକୁ ଅନ୍ୟ ବ୍ୟକ୍ତିଙ୍କୁ ପୂର୍ଣ୍ଣରୂପେ ସମର୍ପଣ କରିବା—22. ( figurative ) To devote or surrender ore's heart complefely to another person. [ ଉ—ହରିଙ୍କୁ ତୁମ୍ଭଠାରେ ଦେଇଣ ବୁଡ଼ାଇ, ଦିଏଟିକ ତୁମ୍ଭର ଶତ୍ରୁକୁ ଉଡ଼ାଇ—କୃଷ୍ଣସିଂହ. ମହାଭାରତ. ସଭା । ] ୨୩ । ( ଲକ୍ଷଣାର୍ଥ ) କୌଣସି ବସ୍ତୁର ବା ବ୍ୟକ୍ତିର ଉତ୍ସନ୍ନଦଶା ଘଟାଇବା; ବିନାଶ ସାଧନ କରିବା—23. (figurative) To cause ruin. ( ଯଥା—୨୪ ଜଣ ମାମଲତକାର ପଣି ଏ ଗାଆଁଟାକୁ ମାମଲା ମକଦ୍ଦମାରେ ବୁଡ଼ାଇ ଦେଲେ । ) ୨୪ । ବିଗାଡ଼ିଦେବା; ନଷ୍ଟ କରିଦେବା—24. To spoil. ( ଯଥା—ମୋର କେତେ ବଡ଼ ସୁଖ ତୁ ପଦେ କଥାରେ ବୁଡ଼ାଇଦେଲୁ । ) ୨୫ । ଆଚ୍ଛାଦିତ କରିବା; ଘୋଡ଼ାଇ ପକାଇବା—25. To overshadow; to cover up (ଯଥା—ମେଘ ଚନ୍ଦ୍ରଙ୍କୁ ବୁଡ଼ାଇଛି ।) ୨୬ । ଖ୍ରୀଷ୍ଟଧର୍ମରେ ଦୀକ୍ଷିତହେବା ବ୍ୟକ୍ତିକୁ ବା ଶିଶୁକୁ ଜୁର୍ଦ୍ଦନ କୁଣ୍ଡରେ (ପାଣି) ବୁଡ଼ାଇବା—26. To baptise. ୨୭ । ( ଲକ୍ଷଣାର୍ଥ ) ଲୋପ କରିବା—27. (figurative) To cause to disappear. [ ଉ—ତାହା ଦେଖି ସେହିକ୍ଷଣେ ମୋର ବ୍ୟଥା ଜାତ, ହୋଇ ବୁଡ଼ାଇଣ ଦେଲା ମୋର ଧୈର୍ଯ୍ୟ ତତ୍ତ୍ୱ—କୃଷ୍ଣସିଂହ. ମହାଭାରତ. ବନ ।] ୨୮ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟରେ ଏକାନ୍ତ ଅଭିନିବେଶ କରିବା ବା ମନୋଯୋଗୀ ହେବା—28. (figurative) To devote or concentrate one's attention to a particular matter. [ ଉ—ମନ ବୁଡ଼ାଇଛନ୍ତି ଯଜ୍ଞେ, ବ୍ରାହ୍ମଣଜନର ସ୍ୱଭାବେ—ଜଗନ୍ନାଥ. ଭାଗବତ । ]

୨୯ । ( କୂଳ ଅବ ) ଲଙ୍ଘନ କରିବା—29. To overflow. [ ଯଥା— ବର୍ଷା ଘନଘନରେ ଅଛ, ବୁଡ଼ାଇ କୂଳ ସଦା ଗଛ—ଭଞ୍ଜ. ବୈଦେହୀଶବିଳାସ । ] ୩୦ । (ଲକ୍ଷଣାର୍ଥ) (ସନ୍ଧ୍ୟାକାଳ ବା ବେଳକୁ) ଅତୀତ କରାଇବା; କଟାଇବା; ଅତିବାହିତ କରିବା—30. (figurative) To cause (the evening time) to pass. (ଯଥା—ସେ ବେଳ ବୁଡ଼ାଇ ଘରେ ଆସି ପହଞ୍ଚିଲା) । ୩୧ । ( ଲକ୍ଷଣାର୍ଥ ) ଆପଣା ହାତରେ ଅନ୍ୟ ଦ୍ୱାରା ପ୍ରେରିତ ସମ୍ବାଦକୁ ଅଭିପ୍ରେତ ସ୍ଥାନରେ ବା ବ୍ୟକ୍ତିଙ୍କଠାରେ ନ ପହଞ୍ଚାଇବା—31. To withhold the delivery of a message sent through one's self. [ ଦ୍ର— ଇଂରେଜୀରେ To drown କ୍ରିୟା ଓଡ଼ିଆ ବୁଡ଼ାଇବା କ୍ରିୟା ପରି ମୌଳିକାର୍ଥରେ ଓ ଲକ୍ଷଣାର୍ଥରେ ନାନା ସ୍ଥଳରେ ବ୍ୟବହୃତ ହୁଏ । ବୁଡ଼ାଇବା କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକାଇବା ଆଦି କ୍ରିୟାର ସମାପିକାରୂପ ସହକାରୀରୂପେ ଯୁକ୍ତ ହୋଇ 'ବୁଡ଼ାଇବା' କ୍ରିୟାର୍ଥ ଉପରେ ଜୋର (emphasis) ହୁଏ । ଯଥା—ବୁଡ଼ାଇ ଦେବା; ବୁଡ଼ାଇ ପକାଇବା ।]

ବୁଡ଼ା(ଡ଼େ)ଇ ମାରିବା—ଦେ. କ୍ରି—୧ । ଜଳରେ ନିମଜ୍ଜିତ କରି ପ୍ରାଣ Burdā(rde)i māribā ନାଶ କରିବା—1. To kill a ডুবিয়ে মারা person by drowning. ୨ । (ଲକ୍ଷଣାର୍ଥ) **डुबा मारना** କୌଣସି ବ୍ୟକ୍ତିର ବିନାଶ ସାଧନ କରିବା—2. (figurative) To cause the ruin of a person.

ବୁଡ଼ା(ଡ଼େ)ଇ ରଖିବା—ଦେ. କ୍ରି—୧ । କିଛିକାଳ ପର୍ଯ୍ୟନ୍ତ ଜଳରେ Burdā(rde)i rakhibā ନିମଜ୍ଜିତ କରିବା; କଚୁଡ଼ାଇବା— ডুবিয়ে রাখা 1. To cause a thing to be under water **डुबा रखना** for some time; to keep a thing immersed in water. ୨ । (ଲକ୍ଷଣାର୍ଥ) ଗୋପନ ରଖିବା; ଲୁଚାଇବା—2. (figurative) To conceal; to keep a matter secret.

ବୁଡ଼ାଏ ପାଣି—ଦେ ବି—୧ । ମନୁଷ୍ୟର ବା ଅନ୍ୟ ଜୀବର ବୁଡ଼ିଯିବା ପରିମିତ Burdāe pāni ଗଭୀର ଜଳ—1. Water which is be- ডুবন জল yond the depth of a man or other **अथाह पानी** animal; water sufficient to drown a person or animal. [ ଦ୍ର—ଏହିପରି କଳାଗଣ୍ଠିଏ, ଅଣ୍ଟୁଏ, ଅଣ୍ଟାଏ, ପେଟେ, ଛାତିଏ, ବେକେ, ଭୁଣ୍ଡୁଳାଏ, କାନେ ଓ ଡାଳେ ପାଣି ବୋଲି କୁହାଯାଏ । ମନୁଷ୍ୟ ବୁଡ଼ିଯିବାର ଗଭୀର ଜଳକୁ 'ମନୁଷ୍ୟକୁ ବୁଡ଼ାଏ ପାଣି' ବୋଲାଯାଏ । ଏହିପରି ହାତୀ ସମ୍ବନ୍ଧେ ମଧ୍ୟ 'ହାତୀକୁ ବୁଡ଼ାଏ ପାଣି' ବୋଲାଯାଏ । ] ୨ । କୌଣସି ଫସଲକୁ ପ୍ଲାବିତ କରିବା ନିମନ୍ତେ କିଆରିରେ ଥରେ ମଡ଼ାଯିବା ଭଳି ଜଳ—2. Irrigation of a field with copious water for the standing crop. ୩ । ଏକ ଅସମ୍ଭବ ଭୁମୁକା ବର୍ଷା, ଯେଉଁ ବର୍ଷା ଦ୍ୱାରା ଜଳ ପୋଖରୀ ବୁଡ଼ିଯାଏ—3. A deluge of rain; a very heavy shower of rain.

ବୁଡ଼ା ଖବର—ଦେ. ବି—ଗୁପ୍ତ ସମ୍ବାଦ; ସାଧାରଣରେ ଅପ୍ରକାଶିତ Burdā khabara ସମ୍ବାଦ—Secret news; inform- গুপ্ত খবর ation which has not yet been made **गुप्त खबर** public.

ବୁଡ଼ା ଗାଧୁଆ—ଦେ. ବି. ( ସ. ବୁଡ଼ ଧାତୁ + ଗାହ + ଧାବନ )— Burdā gādhuā ପାଣିରେ ବୁଡ଼ି କରି ସ୍ନାନ କରିବା—Bath ডুব স্নান **डुब स्नान** by taking a plunge. [ବୁଡ଼ା ସ୍ନା(ସ୍ନା)ନ—ଗ୍ରାମ୍ୟରୂପ]

ବୁଡ଼ା ଜାହାଜ—ଦେ. ବି—( ସ. ବୁଡ଼ ଧାତୁ+ଫା. ଜାହାଜ୍ )— Burdā jāhāja ୧ । ଯେଉଁ ଜାହାଜ ପାଣି ଭିତରେ ବୁଡ଼ିକରି ডুবরি জাহাজ, ডুবা জাহাজ ଗତି କରେ ଓ ଶତ୍ରୁକୁ ଆକ୍ରମଣ **डुबकर चलनेवाला जाहाज** କରେ—1. A submarine; a বুডা জাহাজ torrpedo boat. ୨ । ଯେଉଁ ଜାହାଜ ଜଳରେ **बुडा जाहाज** ବୁଡ଼ି ଯାଇଛି; ଜଳମଗ୍ନ ଅର୍ଣ୍ଣବ ପୋତ—2. A wrecked ship which has gone down under water.

ବୁଡ଼ାଣିଆ କଥା—ଦେ. ବି—୧ । ପରର ଅନିଷ୍ଟ ସାଧନ ବା କଳଙ୍କ Burdāniā kathā ରଟନା—1. Scandal; defama- ঘরডুবানকথা **डुबानेवालीवात** tory words. ୨ । ଗୁପ୍ତ ବିଷୟ—2. A secret matter.

ବୁଡ଼ା ଦେବା—ଦେ. ବି—୧ । କୌଣସି ବ୍ୟକ୍ତିକୁ ଜଳରେ ବୁଡ଼ାଇ Burdā debā ଦେବା—1. To dip another person ডুবিয়ে দেওয়া **डुबादेना** in water. ୨ । ନିଜେ ପାଣିରେ ডুবদেওয়া **डुबदेना** ବୁଡ଼ିବା—1. To dip oneself under water; to take a plunge.

ବୁଡ଼ା ପଡ଼ିବା—ଦେ କ୍ରି—୧ । ଲୁଚି କରି ରହିବା; ଲୁକ୍କାୟିତ ରହିବା— Burdā pardibā 1. To keep oneself concealed. ডুব দিয়ে থাকা **छीप रहना** ୨ । ନିଜ କୃତ କୌଣସି କାର୍ଯ୍ୟରେ
ବୁଡ଼ା ମାରିବା } —ଅନ୍ୟରୂପ
ବୁଡ଼ା ରହିବା }
ନିଜର କର୍ତ୍ତୃତ୍ୱକୁ ପ୍ରକାଶ ନ କରିବା 2. To pull the wire from behind.

ବୁଡ଼ା ପଥର—ଦେ. ବି—(ସଂ ବୁଡ଼ ଧାତୁ + ପ୍ରସ୍ତର; ପ୍ରା. ପତ୍ଥର)-ନଦୀ Burdā pathara ବା ସମୁଦ୍ର ଗର୍ଭସ୍ଥ ଯେଉଁ ପଥର ବା ପର୍ବତ ଜଳର
ବୁଡ଼ା ପାହାଡ଼ } —ଅନ୍ୟରୂପ
ବୁଡ଼ା ପର୍ବତ }
ନିମ୍ନରେ ଥାଇ ବାହାରକୁ ଦେଖା ପଡ଼ୁ ନ ଥାଏ—Sunken ডুবোপাথর **डुबापत्थर** rock; submarine rock.

ବୁଡ଼ା ପାଣି—ଦେ. ବି—ଦେ ବି—(ସ ବୁଡ଼ ଧାତୁ + ପାନୀୟ) ୧ । Burdā pāni ଯେଉଁ ବର୍ଷା ବା ବନ୍ୟାଜଳ ଫସଲଆଦିକୁ ବୁଡ଼ାଇ **बूडा** ଦିଏ; ବଢ଼ି—1. A deluge of rain. ୨ । ଦେଶ- ডুবনজল **अथाहपानी** ପ୍ଲାବନକାରୀ ପ୍ରବଳ ବନ୍ୟା—2.

Deluge; a devastating flood ୩ । ମନୁଷ୍ୟର ବୁଡ଼ିଯିବା ପରିମିତ ଗଭୀରତାଯୁକ୍ତ ଜଳ—3. Water beyond the depth of a man.
ଯଥା—ଏ ପୋଖରୀରେ ବୁଡ଼ା ପାଣି ଅଛି ।

ବୁଡ଼ା ପ୍ରକୃତି—ଦେ. ବି—(ସଂ ବୁଡ଼ ଧାତୁ+ପ୍ରକୃତି)—୧ । କଥା
Burda prakruti ଗୋପନ କରିବାର ବ୍ୟକ୍ତିଗତ ପ୍ରକୃତି;
মন্দপ্রকৃতি 1. The nature of a person who con-
बुराप्रकृति ceals matters or keeps matters
(ବୁଡ଼ା ପକୁଁଡି—ଗ୍ରାମ୍ୟରୂପ) secret ୨ । ଗୋପନରେ ପରର ଅନିଷ୍ଟ କରିବା ପ୍ରକୃତି—2. The nature of a person who injures others secretly. ୩ । ଅସରଳ ପ୍ରକୃତି—3. Crooked nature; insincerity. ଦେ. ବିଣ—୧ । ଅସରଳ ପ୍ରକୃତି ବିଶିଷ୍ଟ (ବ୍ୟକ୍ତି)—1. (a person) Of crooked nature; insincere ୨ । ଗୋପନରେ ପରର ଅନିଷ୍ଟକାରୀ—2 Injuring other people behind their back.

ବୁଡ଼ା ବୁ(ବୋ)କ—ଦେ. ବି—(ସଂ ବୁଡ଼ ଧାତୁ+ଧନ୍ୟର୍ଥକ ବୁକ)—
Burdā bu(bo)ka ୧ । ଅତି ପ୍ରେମ ସହିତ ଦିଆଯିବା
গভীরচুম্বন गाढ़चुम्बन ଚୁମ୍ବନ, ଯାହାକି ଚୁମ୍ବିତ ବ୍ୟକ୍ତିକୁ ଆହ୍ଲାଦରେ ବୁଡ଼ାଇଦିଏ—1. A hearty or exhiliarating kiss. ୨ । ଯେଉଁ ଚୁମ୍ବନ ଚୁମ୍ବିତ ଅଙ୍ଗରେ ଗଭୀରରୂପେ ମୁଦ୍ରିତ ହୁଏ; ଗାଢ଼ ଚୁମ୍ବନ—2. A pressing kiss; a kiss which makes a a deep impression on the limb kissed.

ବୁଡ଼ା ବୁଡ଼ି—ଦେ. ବି—ଅତ୍ୟନ୍ତ ବା ବାରଂବାର ବୁଡ଼ିବା କ୍ରିୟା—Act
Burdā burdi of taking several diving plunges
ডুবাডুবী डुबीडुबी for a long time

ବୁଡ଼ା ବ୍ୟାଧି—ଦେ. ବି—(ସଂ. ବୁଡ଼ଧାତୁ+ସଂ ବ୍ୟାଧି)—୧ । ଯେଉଁ
Burdā byādhi ରୋଗର ଲକ୍ଷଣ ବାହାରେ ପ୍ରକାଶ ପଡ଼େ ନାହିଁ,
(ବୁଡ଼ାରୋଗ—ଅନ୍ୟରୂପ) ଅଥଚ ଶରୀର ମଧ୍ୟରେ ରହିଁ ରହି
গুপ্তরোগ भितरिया रोग ଅନିଷ୍ଟ କରେ; ଗୁପ୍ତ ରୋଗ—1. A hidden disease; a disease of which the symptoms are not manifest on the body. ୨ । ଯେଉଁ ରୋଗର ଲକ୍ଷଣ ଜଣା ପଡ଼େ ନାହିଁ; ଅଜ୍ଞାତ ବ୍ୟାଧି—2. A disease which cannot be diagnosed.

ବୁଡ଼ା ମାଛ—ଦେ. ବି—୧ । ଯେଉଁ ମାଛମାନେ ଗଭୀର ଜଳ ମଧ୍ୟରେ
Burdā māchha ଅଧିକାଂଶ ସମୟ ବୁଡ଼ି ରହନ୍ତି ଓ ପାଣି
ডুবনজলের মাছ; গভীরজলের মাছ ଉପରକୁ ଉଠନ୍ତି ନାହିଁ ।
अथाह पानिका माछ (ଯଥା—ରୋହି, ଭାକୁଡ଼, ଚିତଳ ଇତ୍ୟାଦି ବଡ଼ ମାଛ)—Fish which remain long below the surface of water; deep-water-fish. ୨ । ପଙ୍କୁଆ ମାଛ; ଯେଉଁ ମାଛମାନେ ଜଳାଶୟ ତଳର ପଙ୍କରେ ବୁଡ଼ି କରି ରହନ୍ତି—2. Fish which live in the mire at the botton of water.

ବୁଡ଼ା ମାରିବା—ଦେ. କ୍ରି—୧ । ପାଣିରେ ସନ୍ତରଣ କରିବାବେଳେ ବୁଡ଼
Burdā māribā ମାରିବା ବା ବୁଡ଼ିବା—1. To plunge while
ডবা খাওয়া swimming; to move below the sur-
डुबकि मारना face of water while swimming. ୨ । ଜଳରେ ବୁଡ଼ି କରି କିଛିକ୍ଷଣ ରହିବା—2. To dive into water; to remain plunged for some time. [ଯଥା— ମୁଁ ଏଠାରେ ବୁଡ଼ା ମାରି ୧୦୦ ଫୁଟ ଦୂରରେ ଉଠିବି ।] ୩ । ବୁଡ଼ା ପଡ଼ିବା ଦେଖ)—3. Burdā pardibā (See) ୪ । ଏକଥର ପାଣିରେ ବୁଡ଼ିବା—4. To plunge or dip into water; to take a plunge.

ବୁଡ଼ାଳି—ଦେ. ବି—ବୁଡ଼ିବାବାଲା—Diver. [ଯଥା—କୂଅ ବୁଡ଼ାଳି;
Burdāli ডুবারী, ডুবরী पनडुबा ସମୁଦ୍ର ବୁଡ଼ାଳି ।]

ବୁଡ଼ା ଲିଙ୍ଗ—ଦେ. —ଯେଉଁ ମହାଦେବଙ୍କ ଲିଙ୍ଗବିଗ୍ରହ ଶକ୍ତିର ମଧ୍ୟରେ
Burdā linga ବୁଡ଼ି କରି ଥାଏ, ଅର୍ଥାତ୍ ଶକ୍ତିର ବାହାରକୁ
গুপ্তলিঙ্গ ଦେଖା ପଡ଼େ ନାହିଁ; ଅଦୃଶ୍ୟ ଲିଙ୍ଗ—A phallic-
गुप्तलिङ्ग image of Śiba which does not rise above the level of the sorrounding Śakti. [ଦ୍ର—ଏ ଅର୍ଥରେ ପ୍ରୟୋଗର ପ୍ରହେଳିକା—'ଶକ୍ତି ଅଛି, ଲିଙ୍ଗ ବୁଡ଼ିଛି, ତମ୍ବା ଫୁଲଟିଏ ନାଗ ଧରିଛି—ନାଆଁ ଦିଅ; ଉତ୍ତର ଏ ପ୍ରହେଳିକାର; ପ୍ରଦୀପ ।]

ବୁଡ଼ି—ପ୍ରାଦେ. (ବାଲେଶ୍ୱର) ବି—(ତୁଳ.ବଂ. ବୁଡ଼ୀ)—ବୋଡ଼ି (୧)—
Burdi (ଦେଖ) Bordi (See)

ବୁଡ଼ିଆ—ପ୍ରାଦେ.(ସମ୍ବଲପୁର,ଗଡ଼ଜାତ) ବି—୧ । ଛୋଟ କୁରାଢ଼ି; ଟାଙ୍ଗିଆ—
Burdiā 2 Small axe; hatchet.
୨ । କଥାଁ ବଳିଆ; ଅଟା—2. A braid of crushed straw to preserve fire. ପ୍ରାଦେ (ବାଲେଶ୍ୱର) ବି—କୁରାଢ଼ି—Axe. ପ୍ରାଦେ (କେନ୍ଦ୍ରାପଡ଼ା) ବି (ସଂ. ପରଶୁ)—ଫାର୍ଶା—Poleaxe; battle-axe. ପ୍ରାଦେ (ସିଂହଭୂମ) ବି—ଛୋଟ କୁରାଢ଼ି; ଟାଙ୍ଗିଆ—Hatchet.

ବୁଡ଼ିଆଣୀ—ଦେ. ବି. ସ୍ତ୍ରୀ—ବୁଢ଼ିଆଣୀ ( ଦେଖ )
Burdiāni Burdhiāni ( See )

ବୁଡ଼ି ଆସିବା—ଦେ.କ୍ରି—୧ । ନଦୀଆଦିରେ ସ୍ନାନ କରି ସେଠାରୁ ଆସିବା—
Burdi āsibā 1. To come back after taking a
ডবদিয়ে আসা डुबदेकर आना hasty plunge.
୨ । (ସୂର୍ଯ୍ୟ, ଚନ୍ଦ୍ର) ଅସ୍ତୋନ୍ମୁଖ ହେବା—
2. (the sun, the moon) To be about te set.

ବୁଡ଼ି କପା—ଦେ. ବି (ସଂ. ବଦର+କାର୍ପାସ, ଏହାର ବଜଡ଼ା ରେ
Burdi kapā କୋଳି ପତ୍ର ସାନ ଥିବାରୁ; ସଂ. ବନକାର୍ପାସିକା)·
বুড়ীকাপাস ଏକପ୍ରକାର କପା—A species of cotto
बूरीकपास Gossypum Arboreum. [ଦ୍ର—ଏହା ଏକ ଜାତୀୟ ନିକୃଷ୍ଟ କପା, କିନ୍ତୁ ଏହାକୁ ଏ ଦେଶରେ ସାଧାରଣ କୃଷକ ଅବାଦ କରେ ।]

**ବୁଡ଼ି କରି ପାଣି ପିଇବା**—ଦେ. କ୍ରି—୧ । ଜଳରେ ନିମଜ୍ଜିତ ହୋଇଥିବା
Burdi kari pāni pi-ibā ଅବସ୍ଥାରେ ଜଳ ପିଇବା—
(ବୁଡ଼ି ପାଣି ପିଇବା—ଅନ୍ୟରୂପ) 1. To drink water while
ডুবে ডুবে জল খাওয়া under water. ୨ । (ଲକ୍ଷଣାର୍ଥ)
**डुबकर पानी पीना** ଲୋକଚକ୍ଷୁର ଅଗୋଚରରେ କୌଣସି କାର୍ଯ୍ୟ
କରିବା—2. (figurative) To do a thing
secretly. [ ଉ—ବୁଡ଼ି କରି ପାଣି ପିଇଲେ ମହାଦେବ
(ଏକାଦଶୀ)ଙ୍କ ବାପା ମଧ୍ୟ ଜାଣିପାରିବେ ନାହିଁ । ଊଗ ।]

**ବୁଡ଼ି ପଡ଼ିବା**—ଦେ. କ୍ରି—ବୁଡ଼ି କରି ଶୀଘ୍ର ସ୍ନାନ କ୍ରିୟା ସମାପନ କରିବା
Burdi pardibā To have a bath by taking a
ডুবেপড়া **डुबपड़ना** hasty plunge.

**ବୁଡ଼ିବା**—ଦେ. କ୍ରି ( ସଂ ବୁଡ଼, ବ୍ରୁଡ଼ ଧାତୁ=ନିମଜ୍ଜନ; ବୁଲ୍ ଧାତୁ=
Burdibā Beams )—୧ । ଜଳରେ ଡୁବିବା; ନିମଜ୍ଜିତ
(ବୁଡ଼ିଯିବା—ଅନ୍ୟରୂପ) ହେବା—1 To dive in water;
বুড়া, ডুবা; ডুবেযাওয়া to plunge into water. [ ଉ—
**डूबना; बुड़ना** ଗଙ୍ଗେଇ ଚଢ଼େଇରେ । ଗଙ୍ଗେଇ ଚଢ଼େଇ !
ମୋ ପାଇଁ ଥରେ ବୁଡ଼୍ । ଶିଶୁଗୀତ । ] ୨ । ଜଳରେ
ମୁଣ୍ଡ ବୁଡ଼ାଇ ସ୍ନାନ କରିବା; ଗାଧୋଇବା; ବୁଡ଼ ପକାଇବା—
2. To have a bath by immersion.
( ଯଥା—ମୁଁ ଗାଆଁ ପୋଖରୀରେ ନିତି ଭୋର୍‌ରୁ ବୁଡ଼େଁ )
—୩ । ଜଳମଗ୍ନ ହେବା—3. To sink under
water. [ ଉ—ହରିବୋଲ ଭାଇ । ଗୋବିନ୍ଦ ବୋଲ !
ଭାସିଲା ପଥର ବୁଡ଼ିଲା ସୋଲ । ଊଗ । ] ୪ ।
( ଲକ୍ଷଣାର୍ଥ ) ଲୋପ ପାଇବା; ଲୁପ୍ତ ହେବା—4.
(figurative) To be extinct; to disappear.
୫ । ଅନ୍ୟ ବସ୍ତୁ ମଧ୍ୟରେ ଅନ୍ତର୍ହିତ ହେବା—5. To
merge in another thing. [ ଉ—ଅହମିକା
ଗଲା ବଣ୍ଟି ପ୍ରେମେ ବୁଡ଼ି । ମଧୁସୂଦନ. କବିତା । ] ୬ ।
( ଲକ୍ଷଣାର୍ଥ ) ବିନଷ୍ଟ ହେବା; ଧ୍ୱଂସ ପ୍ରାପ୍ତ ହେବା; ଉତ୍ସନ୍ନ
ହେବା—6. (figurative) To be ruined.
[ ଉ—ଏ ଯେ ଆମ୍ଭର କର୍ଣ୍ଣ ବେନି, ଆମ୍ଭେ ବୁଡ଼ିଲୁ ଏହା
ଘେନି । ଭୂପତି. ପ୍ରେମପଞ୍ଚାମୃତ । ] ୭ । ( ସୂର୍ଯ୍ୟ
ଚନ୍ଦ୍ରଆଦି ) ଅସ୍ତ ହେବା—7 (the sun, the moon
etc) To sink; to set. [ ଉ—ବୁଡ଼ି ଗଲେ ଅଞ୍ଜ
ଳି, ବାହୁଡ଼ିବେ କାଲିକି ଗଉରବ ତପନ । ଉକାସି.
ଗୀତଲହରୀ । ] ୮ । ନିଷ୍ଫଳ ହେବା—7. To be
fruitless. [ ଉ—ସେ ଧର୍ମଯାଜ ମୋର ସବୁ ତ
ବୁଡ଼ିଲା । କୃଷ୍ଣସିଂହ. ମହାଭାରତ ବନ । ] ୯ । ନଷ୍ଟ
ହେବା; ଅପଚିତ ହେବା—9. To be spoiled. ୧୦ ।
( ଲକ୍ଷଣାର୍ଥ ) ମଜ୍ଜିବା; ଏକାନ୍ତ ଅନୁରକ୍ତ ହେବା—10.
(figurative) To be devoted exclusively
to; to be bent on. [ ଉ—ନିରତେ ଗୁଣି ପଦେ
ପଦେ, ମନ ବୁଡ଼ିଲା କୃଷ୍ଣପାଦେ । ଜଗନ୍ନାଥ. ଭାଗବତ । ]
୧୧ । କୌଣସି ବୃହତ୍ତର ପଦାର୍ଥଦ୍ୱାରା ଆବୃତ ହୋଇ
ଅଦୃଶ୍ୟ ହେବା—11. To be overclouded or
overspread; to disappear under a bigger
thing. ( ଯଥା—ଅପରାହ୍ଣ ବେଳେ ସୂର୍ଯ୍ୟ ମେଘ-
ଭିତରେ ବୁଡ଼ିଗଲେ । ]
୧୨ । ଆଚ୍ଛନ୍ନ ହେବା—12 To be covered by; to
be overcast or enveloped. ( ଉ—ଅନ୍ଧକାରେ
ବୁଡ଼ିଗଲା ଧରଣୀ । ମଧୁସୂଦନ. ସନ୍ଧ୍ୟା ।) ୧୩ । ( କୁଳ,
ବଂଶ, ଏକଜାତୀୟଜୀବ)—ଲୁପ୍ତ ହେବା—13. To become
extinct (said of a family or species).
(ଉ—କୁଳ ବୁଡ଼ିବାର ଏମନ୍ତ ଯାଇ, ଅଜା ଥାଉଁ ଥାଉଁ
ମରଇ ନାତି । ଊଗ ।) ୧୪ । ଧନ ବା ପ୍ରାପ୍ୟ ପଦାର୍ଥ ଅନ୍ୟ
ବ୍ୟକ୍ତିଠାରୁ ଆଦାୟ କରି ନ ଯାଇ ତମାଦି ବା ଆଦାୟର
ଅଯୋଗ୍ୟ ହେବା—14. To become unreali-
seable or barred by limitation. (ଯଥା—
ମିଆଦ ମଧ୍ୟରେ ନାଲିସ୍ କରି ନ ପାରିବାରୁ ମୋର
ଅନେକଗୁଡ଼ିଏ ଧନ ବୁଡ଼ିଗଲା ) । ୧୫ । ବଂଶଧରମାନଙ୍କ
କୁକ୍ରିୟାଦ୍ୱାରା କୁଳର ମର୍ଯ୍ୟାଦା ବା ଗୌରବ ନଷ୍ଟ ହେବା—
15. To lose its prestige or glory on
account of the evil acts of its members
(said of a family). (ଉ—କୁଳ ବୁଡ଼ିଲା ବେଳକୁ
ଘୋଡ଼ାମୁହାଁ ପୁଅ ଜାତ । ଊଗ ।) ୧୬ । ବଦନାମ ହେବା—
16. To become notorious; to lose the good
name (said of a family). ( ଉ—ବାହୁଡ଼ାଇଲେ
ରାଘବ ସୂର୍ଯ୍ୟବଂଶ ବୁଡ଼ିଯିବ, ଶୁଣି ଉଠ ଯଉବେଶ
କହୁ ଯେ । ଉଞ୍ଜ. ବୈଦେହୀଶବିଳାସ ।) ୧୭ । ପୂର୍ବରୁ
ଚଳି ଆସୁଥିବା ପ୍ରଥା ବା ରୀତି ସ୍ଥଗିତ
ହେବା—17. To be discontinued (said
of any old or prevaling custom or
practice. (ଯଥା—ଆମର ଦୋଳ ଦଶହରା ଇତ୍ୟାଦି ସେ
ସବୁ ଏଣିକି ବୁଡ଼ିଲାଣି ) ୧୮ । ( ଆଶା, ବିଶ୍ୱାସ ) ନିରସ୍ତ
ହେବା; ଲୁପ୍ତ ହେବା—18. To be blasted ( said
of one's hope). (ଯଥା—ସେ ମରିଯିବା ଦିନଠାରୁ
ସେ ବୁଆରୁ ଯୋଗୀ ଭକାରୀଙ୍କ ଆଶା(ବା ବିଶ୍ୱାସ) ବୁଡ଼ିଲାଣି)
୧୯ । କୌଣସି କାର୍ଯ୍ୟକୁ ଗୋପନ ଭାବରେ କରିବା—
19. To do a thing secretly. ( ଉ—ବୁଡ଼ି କରି
ପାଣି ପିଇଲେ ମହାଦେବଙ୍କ ବାପା ମଧ୍ୟ ଜାଣି ପାରିବେ
ନାହିଁ । ଊଗ ।) ୨୦ । ବାହାରେ ଜଣା ନ ପଡ଼ିବା; ଗୁପ୍ତ
ଭାବରେ ରହିବା—10. To remain concealed;
not to be apparent or patent. ( ଯଥା—
ତା ଦେହରେ ଜର ବର୍ତ୍ତମାନ ବୁଡ଼ି କରି ଅଛି ) ୨୧ ।
(ମନ୍ଦ ଅର୍ଥ) (ଋଣ, ନିଶା, ଦୁଃଖ, ବିପଦ, ଚିନ୍ତା, ନିରାଶା
ଆଦି ଦ୍ୱାରା) ବିପନ୍ନ ହେବା; ଜଡ଼ିତ ବା ଗ୍ରସ୍ତ ହେବା;
ଅଭିଭୂତ ହେବା—12. To be involved or over-

whelmed ( with debt, intoxication, sorrow, danger, anxiety, despair) (ଉ—ତାହା ଜାଣି ବୁଡ଼ିଗଲ ମଁ ଭୟ ଶୋକେ । କୃଷ୍ଣସିଂହ. ମହାଭାରତ ବନ ।) ୨୨ । ବିପଦ୍‌ଗ୍ରସ୍ତ ହେବା; ବିପନ୍ନ ହେବା—22. To be afflicted with calamity; to be beset with danger. (ଉ—ଆପେ ବୁଡ଼ିଲେ ଯୁଗବୁଡ଼ । ଲଗ ।) ୨୩ । ଜାତିଚ୍ୟୁତ ବା ସମାଜଚ୍ୟୁତ ହେବା—23. To be outcasted or excommunicated. ୨୪ । ଜଳାବିତ୍ତାଗ୍ର ପ୍ଲାବିତ ହେବା—24. To be flooded or inundated. [ଉ—ଘର ବୁଡ଼ି ପାଣି ଅଣ୍ଟୁଏ ହେଲାଣି; କଣା ବୋଲେ ମେଘ ଦୁଲୁଲୁଛି । ଲଗ ।] ୨୫ । ଅତ୍ୟନ୍ତ ଆର୍ଦ୍ର ହେବା; ଭିଜି ଯିବା; ଜୁଡ଼ୁବୁଡ଼ୁ ହେବା—25. To be besmeared, to be bedaubed; to be soaked. (ଉ—ଦୁଇ ସେନା ଯାଙ୍କର ବସନ ରକତେ, ବୁଡ଼ନ୍ତେ ପାଟପର ଦିଶିଲେ ସେ ନେତ୍ରେ । କୃଷ୍ଣସିଂହ. ମହାଭାରତ ଦ୍ରୋଣ ।) ୨୬ । କୌଣସି ବସ୍ତୁକୁ ବିଶେଷ ପରିମାଣରେ ପାଇବା ବା ଭୋଗ କରିବା—26 To get or enjoy in profusion. ( ଯଥା—ମୋ ସାଆନ୍ତଙ୍କ ଘାଟରେ ମୁଁ ଅସୂସରେ ଓ ଆଦରରେ ବୁଡ଼ିଛି) ୨୭ । ବହୁ କାଳ ଜଳରେ ନିମଜ୍ଜିତ ହୋଇ ସ୍ନାନ କରିବା—27. To bathe in water for a long time. ( ଯଥା—ଦୁଷ୍ଟ ପିଲାଗୁଡ଼ାକ ପୋଖରୀ ପାଣିରେ ବୁଡ଼ି ବୁଡ଼ି ପାଣିର ସାତ ପରସ୍ତ ଗୋଳେଇ ସାରିଲେଣି ) ୨୮ । ମଜ୍ଜିବା; ମାତିଯିବା; ବ୍ୟସନାକ୍ତ ହେବା—29. To be addicted to. (ଉ—ଭୁମୁରତ ଅଧର୍ମେ ବୁଡ଼ିଲାଣି ବୁଦ୍ଧି । କୃଷ୍ଣସିଂହ. ମହାଭାରତ ଉଦ୍ଯୋଗ ।) ୨୯ । ( ବେଳ ) ସୂର୍ଯ୍ୟାସ୍ତର ସୀମାକୁ ଟପିବା; ଶେଷ ହେବା; ଅନ୍ତ ହେବା—29. To pass the time of sunset. [ଉ-ବୁଡ଼ି ନାହିଁ ବେଳ ଗୋଟିଏ ଅକାଳେ । ଉକାଶ. ଗୀତଲହରୀ ] [ ଦ୍ର—ଏହି ଅର୍ଥରେ ଏହା ସନ୍ଧ୍ୟା ବୁଡ଼ିବା, ବେଳବୁଡ଼ିବା ଏହି ଦୁଇ ଶବ୍ଦରେ ବ୍ୟବହୃତ ହୁଏ ।] ୩୦ । (ଯଥାକାଳରେ ଋଣର ପରିଶୋଧ ନ ହେବାରୁ ବନ୍ଧକ ଥିବା ବସ୍ତୁ ବା ସମ୍ପତ୍ତି) ମୁକୁଳାଇ ନ ହେବା—30. To be foreclosed; to become unredeemable (said of a pledged article or mortgaged property, when the loan is not repaid in time). (ଯଥା—ଟଙ୍କା ସଙ୍କୁଲ୍ ନ ହେବାରୁ ମୋ ବନ୍ଧକ ଅଳଙ୍କାରଯୋକ ମହାଜନ ଘରେ ବୁଡ଼ିଲା ) ୩୧ । ତୀର୍ଥରେ ସ୍ନାନ କରିବା—31. To take a bath in any sacred water. ୩୨ । ଜଳର ଗଭୀରତା ମଧ୍ୟରେ ( ମନୁଷ୍ୟର, ଯନ୍ତ୍ରିର ବା ଅନ୍ୟଜୀବର ) ସମ୍ପୂର୍ଣ୍ଣ ଉଚ୍ଚତା ନିମଜ୍ଜିତ ହେବା; କୌଣସି ସ୍ଥାନର ଜଳର ଗଭୀରତା ଅପେକ୍ଷା ଉଚ୍ଚତାରେ କମ୍ ହେବା—32. To sink. (ଯଥା—ଏ କୂଅରେ ୧୦ ହାତର ଲଗି ବୁଡ଼ିଗଲା । ମହାନଦୀର ପାଣିରେ ହାତୀ ବୁଡ଼ିଯିବ ।) [ ଦ୍ର—ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ; ବୁଡ଼ିଯିବ । ]

ବୁଡ଼ି ମରିବା—ଦେ. କ୍ରି—୧ । ଜଳକୁ ଡେଇଁ ପଡ଼ି ପ୍ରାଣ ହରାଇବା; Burdi maribā ଜଳରେ ପ୍ରାଣ ହାରିବା—1. To commit ডুবে মরা suicide by drowning. ୨ । ଜଳମଗ୍ନ ହେବା **डुबमरना** ଅବସ୍ଥାରେ ମୃତ ହେବା—2. To die by drowning; to be drowned to death. (ଉ—ପଞ୍ଚାଏ ଲେକ ଗୋଟିଏ ଗଢ ପାଇଁ ଧରାଧରି ହୋଇ ପାଣିରେ ବୁଡ଼ି ମରିବା ନ୍ୟାୟ । ଲଗ ।) ୩ । (ମନୁଷ୍ୟ) ଧ୍ୱଂସପ୍ରାପ୍ତ; ଉତ୍ସନ୍ନ ହେବା—3. ( a person ) To be ruined. (ଯଥା—ସେ ଋଣରେ ବୁଡ଼ି ମଲେଣି )

ବୁଡ଼ିଯିବା—ପ୍ରାଦେ (ବାଲେଶ୍ୱର) କ୍ରି—ଗୁଡ଼ି ବା ପାର ଆକାଶରେ ଖୁବ୍ Burdijibā ଉଚ୍ଚକୁ ଉଠି ଶେଷରେ ଅଦୃଶ୍ୟ ହୋଇଯିବା—To ডুবেযাওয়া disappear in the sky (said of a soar- **डूबयाना** ing pigeon or paper-kite). ଦେ. କ୍ରି—ବୁଡ଼ିବା (ଦେଖ)—Burdibā (See).

ବୁଡ଼ି ରହିବା—ଦେ. କ୍ରି—୧ । (ଦାଗ ବା ଚିହ୍ନ) ଦେହରେ ବସିଯିବା—Burdi rahibā 1. (a mark) To be left on the ডুবেথাকা body. (ଉ—ଅଙ୍ଗଦ ମନ୍ତ୍ରୀ ବୁଡ଼ିଚଣ୍ଡ ବୁଡ଼ି ରହେ **डूबरहना** ଦେହେ । କବିସୂର୍ଯ୍ୟ. ସଙ୍ଗୀତ ।) ୨ । ଜଳ ମଧ୍ୟରେ କିଛି ସମୟ ବୁଡ଼ିକରି ଅବସ୍ଥାନ କରିବା—2. To stay for some time under water. ୩ । ଅନୁରାଗରେ ବା ପ୍ରୀତିରେ ନିମଜ୍ଜିତ ହେବା—3. To remain greatly attached to a person. ୪ । କୌଣସି କାର୍ଯ୍ୟରେ ବା ଚିନ୍ତାରେ ସର୍ବଦା ମଗ୍ନ ରହିବା—4. To be always busy or engrossed in any work or thought.

ବୁଡ଼ୁଙ୍ଗା—ପ୍ରାଦେ (ଗଞ୍ଜାମ) ବି—ମାଛର ବା ଶୁଖୁଆର ପୁଡ଼ା—Burdungā A packet of fish or dried fis

ବୁଡ଼େଇ—ଦେ.ବିଣ. ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ ପରକୁ କଳଙ୍କରେ ବୁଡ଼ାଇ ଦିଏ Burdei ଅପବାଦ ରଟନା କରିବା ଦ୍ୱାରା ଯେଉଁ ସ୍ତ୍ରୀ ବ୍ୟକ୍ତିର ଅନିଷ୍ଟ ଘଟାଏ—1. (a woman) ডুবিয়েদেবার লোক defames another; scand **बूरी; डुबानेवाली** bearing (woman) ୨ । ଯେ ଉ... ବା ନଷ୍ଟ କରେ—2, Spoiling. [ ଦ— ଅନ୍ୟ ଶବ୍ଦ ପରେ ଲାଗେ । ଯଥା—କୁଳ (ବୁଡ଼ା—ସ୍ତ୍ରୀଲିଙ୍ଗ ଆକାର) ବୁଡ଼େଇ; ବଂଶ

ବୁଢ୍ହା କାଙ୍କ—ପ୍ରାଦେ (ବାଲେଶ୍ୱର) ବି—ବଢ଼ିଆ କାଙ୍କ—Burdhākānka Bardhiā kānka (ଦେ

ବୁଢ଼—ଦେ. ବି. ସ୍ତ୍ରୀ (ସଂ ବୃଦ୍ଧା)—ବୁଢ଼ୀ ଗାଈ—Burdha বুড়ীগাই **बुढ़ीगाय** An old cow.

ବୃଦ୍ଧାନ୍ତର ରସ—ଦେ. ବି (ସଂ ବୃଦ୍ଧାନ୍ତର ରସ)—ମନ୍ଥର, ହିଙ୍ଗୁଳ,
Bur<u>dh</u>antara rasa ମନଃଶିଳା ଓ ଟାଙ୍ଗଣା ସମଭାଗରେ ଅଦା-
(ବୃଦ୍ଧାନ୍ତର ବଟିକା—ଅନ୍ୟରୂପ) ରସରେ ମର୍ଦ୍ଦନ କରାଯାଇ ପ୍ରସ୍ତୁତ ହେବା ରସ ବା ବଟିକା—A pill or compound made of aconite, sulphate of mercury, red arsenic, borax in equal proportions rubbed in ginger-juice. [ଦ୍ର—ଏହାକୁ ପିପ୍ପଳି ଚୂର୍ଣ୍ଣ ସହିତ ଖାଇଲେ ଆମଜ୍ୱର ଭଲ ହୁଏ ।]

ବୁଢ଼ା—ଦେ. ବି. ପୁଂ—(ସଂ ବୃଦ୍ଧ; ପ୍ରା. ବୁଡ୍ଢ, ବୁଡ୍ଢ)—୧ । ବୃଦ୍ଧ ବ୍ୟକ୍ତି—
Bur<u>dh</u>ā 1. Old man; a person of advanced age.
বুড়া ୨ । ପ୍ରବୀଣ ବ୍ୟକ୍ତି—2. A person of large
**बूढ़ा, बुड्ढा** experience. ୩ । (ବାତ୍ସଲ୍ୟାର୍ଥ) ଶିଶୁ—3.
(ବୁଢ଼ୀ—ସ୍ତ୍ରୀ) Child (a term of endearment). ୪ । ଗୃହର ବା ପରିବାରର ବା ଦଳର ସମସ୍ତଙ୍କ ଠାରୁ ବୃଦ୍ଧତମ ବ୍ୟକ୍ତି—4. The oldest person in the family or in a company. (ଡ଼—ଅଧଡ଼ ଧଡ଼ । ଘରେ ଭାତ ନାହିଁ ବୁଢ଼ାକୁ ଭଡ଼ । ଢଗ) । ୫ । ଗୃହର ବୟୋବୃଦ୍ଧ କର୍ତ୍ତା—5. The master of a family who has become old. ବିଣ.(ପୁଂ)୧ । ବୃଦ୍ଧ;ଜରାଗ୍ରସ୍ତ—1.
(ବୁଢ଼ୀ—ସ୍ତ୍ରୀ) Old. ୨ । ବୟୋବୃଦ୍ଧ; ପ୍ରବୀଣବୟସ୍କ—2. Advanced in age. ୩ । ପ୍ରାଚୀନ; ପୁରାତନ—3. Old; ancient. ୪ । ଅଧିକତରବୟସ୍କ—4. Older; senior in age. (ଯଥା-ବୁଢ଼ା ବାପା) ୫ । ବୃହତ୍; ବଡ଼—5. Large; big. (ଯଥା—ବୁଢ଼ା ଚୁଙ୍ଗୁଡ଼ି; ବୁଢ଼ା କଙ୍କଡ଼ା ।) ୬ । ପୋଖତ; ସୁପକ୍ୱ; ଅତି ପକ୍ୱ (ଫଳ)—6. Very ripe; over-ripe (fruit) (ଯଥା—ବୁଢ଼ା କାକୁଡ଼ି; ବୁଢ଼ା ଲାଉ) । [ଦ୍ର—ଯେଉଁ ଫଳ ଅତି ପାଚିଗଲେ ସଢ଼ିଯାଏ (ଯଥା, ଆମ୍ବ, ପଣସ, ସପୁରି) ତାକୁ ବୁଢ଼ା କୋହାଯାଏ ନାହିଁ; ଯେଉଁ ଫଳ ଅତି ପକ୍ୱ ହେଲେ କେଶି ଟାଣୁଆ ହୁଏ (ଯଥା—ଲାଉ, କଖାରୁ, କାକୁଡ଼ି, ମୂଳା, ସଜନା ଛୁଇଁ, ବରଗଡ଼ା ଛୁଇଁ) ତାକୁ ବୁଢ଼ା କୋହାଯାଏ । ୭ । ଦଳ ବା ବର୍ଗ ମଧ୍ୟରେ ବୃହତ୍ତମ—7. Biggest. (ଯଥା ବୁଢ଼ା ଆଙ୍ଗୁଠି)—୮ । ଖୁବ୍ ମୋଟା—8. Very thick or coarse. (ଯଥା—ବୁଢ଼ା ଲୁଗା ।) ପ୍ରାଦେ. (ସମ୍ବଲପୁର) ବି.—୧ । କାର୍ଯ୍ୟ—1. Work. (ଯଥା—ସେ ବୁଢ଼ା କରିବାକୁ ବଡ଼ ଚେମଟ) । ୨ । କୋକମିନା (ଦେଖ —
2. Kokaminā (See).

ବୁଢ଼ା ଅସୁର—ଦେ. ବି (ସଂ ବୃଦ୍ଧ ଓ ଅସୁର)—୧ । କାହାଣୀରେ ବର୍ଣ୍ଣିତ
Bur<u>dh</u>ā asura ବୃଦ୍ଧ ରାକ୍ଷସ—1. Old demon of folk-
বুড়োরাক্ষস tales. ୨ । (ଘୃଣାର୍ଥକ) ଉଦରମ୍ଭରି ବୃଦ୍ଧଲୋକ;
**बूढा असुर** ପେଟୁ ବୁଢ଼ା—2. A greedy old man.

ବୁଢ଼ା ଆଙ୍ଗୁଠି—ଦେ. ବି (ସଂ. ବୃଦ୍ଧାଙ୍ଗୁଷ୍ଠ)—ବୃଦ୍ଧାଙ୍ଗୁଳ; ହାତର ଓ
Bur<u>dh</u>ā ānguṭhi ଗୋଡ଼ର ସର୍ବାପେକ୍ଷା ସ୍ଥୂଳ ଅଙ୍ଗୁଷ୍ଠ—
বুড়াআঙ্গুল The thumb (of the hand); the
**अङ्गूठा, बूढीअङ्गुली** great toe (of the foot).

ବୁଢ଼ା କଉଡ଼ି—ଦେ. ବି. (ସଂ. ବୃଦ୍ଧ+କପର୍ଦ୍ଦକ)—
Bur<u>dh</u>ā kaur<u>d</u>i ବେଙ୍ଗୀ କଉଡ଼ି; ବଡ଼ ଆକୃତି ବିଶିଷ୍ଟ କଉଡ଼ି—
**बूढा कौडी** A big cowree (sea-shell).

ବୁଢ଼ା କଙ୍କଡ଼ା—ଦେ. ବି. (ସଂ. ବୃଦ୍ଧ+କର୍କଟ)—
Bur<u>dh</u>ā kaṅkar<u>d</u>ā ମାଣ୍ଡିଆ କଙ୍କଡ଼ା—A big crab.
**बूढा केँकडा** বড় কেঁকড়া

ବୁଢ଼ା କାକୁଡ଼ି—ଦେ. ବି. (ସଂ. ବୃଦ୍ଧ+କର୍କଟୀ)—ଅତି ପକ୍ୱ କାକୁଡ଼ି—
Bur<u>dh</u>ā kākur<u>d</u>i A very ripe cucumber.
**बूढा खीरा** [ଦ୍ର—ଏହି ଶବ୍ଦ କଖାରୁ, ଲାଉ, ବାଇଗଣ, ଜହ୍ନି ଓ ଭେଣ୍ଡି ଆଦି ଫଳ ପ୍ରତି ଓ ଛୁଇଁ ପ୍ରତି ମଧ୍ୟ ପ୍ରଯୋଜ୍ୟ ।]

ବୁଢ଼ା କାଙ୍କ—ଦେ. ବି. (ସଂ. ବୃଦ୍ଧ+କଙ୍କ)—ଚିଲିକାରେ ଦେଖାଯିବା
Bur<u>dh</u>ā kāṅka ଏକ ପ୍ରକାର ଲମ୍ବପାଦ ପକ୍ଷୀ—A species
লাল কাঁক of birds found in the Chilkā. Area
**बूढा कंक** Manillensis.

ବୁଢ଼ା କାଳ—ଦେ. ବି. (ପୁରୁଷଙ୍କ ପ୍ରତି) (ସଂ. ବୃଦ୍ଧକାଳ)—
Bur<u>dh</u>ā kā<u>l</u>a ବୃଦ୍ଧକାଳ; ବୃଦ୍ଧାବସ୍ଥା—Old age. (ଡ଼—ଗାଁଆଁ ମୁଣ୍ଡ ଘର ଚୋରକୁ, ବୁଢ଼ା କାଳ ବାହା ପରକୁ—ଢଗ) (ବୁଢ଼ା ଦିନ, ବୁଢ଼ା ବୟସ, ବୁଢ଼ାପଣ—ଅନ୍ୟରୂପ; ପୁରୁଷଙ୍କ ପ୍ରତି) (ବୁଢ଼ୀକାଳ, ବୁଢ଼ୀ ଦିନ, ବୁଢ଼ୀ ବୟସ, ବୁଢ଼ୀପଣ—ଅନ୍ୟରୂପ;
বুড়ামী **बुढापा** ସ୍ତ୍ରୀଙ୍କ ପ୍ରତି)

ବୁଢ଼ା ଗଛ—ଦେ. ବି—ବହୁକାଳର ବୃକ୍ଷ—
Bur<u>dh</u>ā gachha An old tree.

ବୁଢ଼ା ଗୋସା(ସେ)ଇଁ—ଦେ. ବି—ବୃଦ୍ଧ ବ୍ରାହ୍ମଣମାନଙ୍କ ପ୍ରତି ସମ୍ମାନ
Bur<u>dh</u>ā gosā(se)iṅ ଉକ୍ତି—A respectful term of address to old Brāhmaṇas.

ବୁଢ଼ା ଚି(ଚୁ)ଙ୍ଗୁଡ଼ି—ଦେ. ବି. (ସଂ. ବୃଦ୍ଧ+ଚଙ୍ଗଟ)—
Bur<u>dh</u>ā chi(chu)ṅgur<u>d</u>i ବଡ଼ ଚୁଙ୍ଗୁଡ଼ି—A big shrimp.
**बूढा झींगा** বড় চিঙ্গড়ী

ବୁଢ଼ା ଚାନ୍ଦ—ଦେ. ବି. (ବୃଦ୍ଧ+ଚନ୍ଦ୍ର)—୧ । (ଶିଶୁ ବଚନ) କୁମାର-
Bur<u>dh</u>ā chānda ପୂର୍ଣ୍ଣିମା ସନ୍ଧ୍ୟାବେଳେ ନବୋଦିତ ଚନ୍ଦ୍ରଙ୍କୁ ନୈବେଦ୍ୟ କରା ଯାଇଥିବା ଛେନାଗୁଡ଼ ଚକଟା । (ଯାହାକୁ ଶିଶୁମାନେ ପରସ୍ପର ଖୁଆଖୋଇ ହୋଇ ପରସ୍ପର ସଙ୍ଗେ 'ଚାନ୍ଦ' ବସନ୍ତି), ଯାହାକୁ ନୈବେଦ୍ୟ ହେବା ସଙ୍ଗେ ସଙ୍ଗେ ବ୍ୟବହାର କରା ନ ଯାଇଥାଏ—1. An offering of sweets made to the moon in the evening of the Kumāra Purṇṇimā, if kept unused for some time. ୨ । ବହୁକାଳ ହେଲା ଉଦିତ ପୂର୍ଣ୍ଣଚନ୍ଦ୍ର—2. A long-risen full moon. [ଦ୍ର—ଚାନ୍ଦ ବୁଢ଼ା ହେବା ପୂର୍ବରୁ ଶିଶୁମାନଙ୍କ ମଧ୍ୟରେ ତାହା ବ୍ୟବହୃତ ହେବା ପାଇଁ ବର୍ଷିୟସୀମାନେ କହନ୍ତି ।]

ବୁଢ଼ା ଚୋର—ଦେ. ବି. (ସଂ. ବୃଦ୍ଧ+ଚୌର)—୧ । ଚୋର ବିଦ୍ୟାରେ
Bur<u>dh</u>ā chora ଅଭ୍ୟସ୍ତ ବା ପାରଙ୍ଗମ ବ୍ୟକ୍ତି; ପୁରୁଣା ଚୋର—
**बूढा चोर** 1. An old thief. (ଡ଼—ବୁଢ଼ା ଚୋରକୁ ଚୋର
বৃদ্ধচোর ଶିଖଉଛି !—ଢଗ ।) ୨ । ଚୋରି କରୁଥିବା ବୃଦ୍ଧ ବ୍ୟକ୍ତି—
2. An old man who is a thief.

ବୁଢ଼ା ଛୁ(ଛୋ)ଇଁ—ଦେ. ବି. ( ସ. ବୃଦ୍ଧ+ଶିମ୍ବୀ )—ଯେଉଁ ଛୁଇଁର Burdhā chhu(chho)iṅ (ଯଥା–ସଜନା, ବରଗଡ଼ା) ସୁପକ୍ୱଣତ ବୁଡ୍ଡା छीमी ଓ ସୁଖାଦ୍ୟ ବା ସୁପାଚ୍ୟ ବା କୋମଳ ହେବା ଅବସ୍ଥା ଟପି ଯାଇଅଛି—Pod which passed the state of tendrness. [ଦ୍ର—ଛୁଇଁ ବୁଢ଼ା ହୋଇଗଲେ ତାହାର ଚୋପା ଓ ମଞ୍ଜି ଟାଣୁଆ ଓ ଅଖାଦ୍ୟ ହୋଇଯାଏ । ]

ବୁଢ଼ା ଟମ୍ପା—ଗ୍ରାଦେ. ( ଯାଜପୁର ) ବି—ଉଦ୍ଧତ ବଦମାସ୍; ଗୁପ୍ତ Burdhā tampa ସଇତାନ୍ ଲୋକ—A person who is very wicked but assumes an innocent-looking exterior.

ବୁଢ଼ା ତା(ଦା)ରକ—ଦେ. ବି. (ସ.ବୃଦ୍ଧଦାରକ)—ବୃଦ୍ଧଦାରକ (ଦେଖ) Burdhā tā(dā)raka Elephat creeper; Gmelini বীজ তাড়ক बिधारा Asiatica.

ବୁଢ଼ା ତାଳସଜ—ଦେ. ବି—ଯେଉଁ ତାଳସଜ କଞ୍ଚା ଫଳ ମଧ୍ୟରୁ କାଢ଼ା Burdhā tālasaja ହୋଇ ବେଶି ସମୟ ପବନରେ ରହିଯାଏ ଓ বুড়ো তাল শাঁস ସେଥିଲାଗି ଯାହାର କୋମଳାଂଶ ଟାଣ ହୋଇ- कड़ा ताडकूल ଯାଇଥାଏ—The pith or kernel inside a raw palm fruit which has become hardened by being exposed to the air for a long time.

ବୁଢ଼ା ଥୋବଡ଼ା—ଦେ. ବି. ପୁଂ. (ସ. ବୃଦ୍ଧ ବ୍ୟକ୍ତି ପ୍ରତି ଅନାଦରାର୍ଥକ Burdhā thobardā ପ୍ରୟୋଗ) ( ସ. ବୃଦ୍ଧ+ସ୍ଥବିର )— বুড়া হাবড়া ଅପ୍ରୀତିକର ବୃଦ୍ଧ—An unpleasant old man.

ବୁଢ଼ା ଦାସ—ଦେ. ବି—(ସ୍ନେହରେ) ଶିଶୁ ବାଳକଙ୍କୁ ଡାକିବା ନାମ— Burdhā dās Name for calling a male child in बूढ़ा राम (ବୁଢ଼ା ରାମ—ଅନ୍ୟରୂପ) affection.

ବୁଢ଼ା ପଣ—ଦେ. ବି. ( ପୁରୁଷଙ୍କ ପ୍ରତି ପ୍ରଯୋଜ୍ୟ )—୧ । ବାର୍ଦ୍ଧକ୍ୟ; Burdhā pana ବୃଦ୍ଧାବସ୍ଥା—1. Old age. ୨ । ଅକାଳ- [ବୁଢ଼ା ପଣିଆ(ଅଁ)—ଅନ୍ୟରୂପ] ବୃଦ୍ଧତା—2. Untimely old [ବୁଢ଼ୀପଣ—(ସ୍ତ୍ରୀଙ୍କ ପ୍ରତି)] বুড়াপনা बुढ़ापा age.

ବୁଢ଼ା'ପା—ଗ୍ରା. ବି—୧ । ବଡ଼ା'ପା; ଜ୍ୟେଷ୍ଠ ପିତୃବ୍ୟ—1. Father's Burdhā'pā elder brother. ୨ । ପିତାମହ—3. Paternal बुढा बाबा, बुढा दादा grandfather. ୩ । ପ୍ରପିତାମହ— (ବୁଢ଼ା ବାପା—ଅନ୍ୟରୂପ) 3. Paternal great grand-father.

ବୁଢ଼ା ପାପୀ—ଦେ. ବି. ପୁଂ.(ସ. ବୃଦ୍ଧ ପାପୀ)—୧ । ମହାପାପୀ ବ୍ୟକ୍ତି— Burdhā pāpi 1. A great sinner; an unrepentant बूढा पापी sinner. ୨ । ପାପୀ ଓ ବୃଦ୍ଧ ବ୍ୟକ୍ତି—1. A sin- বৃদ্ধপাপী ful old man.

ବୁଢ଼ା ବର—ଦେ. ବି. (ସ. ବୃଦ୍ଧ+ବର—ତରୁଣୀଙ୍କୁ ବା ବାଳକାଙ୍କୁ Burdhā bara ବିବାହ କରିଥିବା ବୃଦ୍ଧ ବର; ଯେଉଁ ବରର বুড়া বর ବୟସ କନ୍ୟାର ବୟସଠାରୁ ଅତ୍ୟନ୍ତ ଅଧିକ—An old बुढा वर man bridegroom (for a girl wife).

(ଦ୍ର—ଉଦ୍ଧ ଗଲେ ଗେଣ୍ଡାଳଥ ଛାଡ଼ି ଦେଲେ ପର, କେମନ୍ତେ ବଞ୍ଚିବ କାନ୍ଦ ଛନ୍ତି ଦେଖି ବୁଢ଼ା ବର । ଶିଶୁ ଗୀତ ।)

ବୁଢ଼ା ବଳଙ୍ଗ—ଦେ. ବି. (ନାମ)—ମୟୂରଭଞ୍ଜର ଶିମିଳିପାଳ ପାହାଡ଼ରୁ Burdhā balanga ବାହାରି ବାଲେଶ୍ୱର ନଗର ବାଟେ ବଙ୍ଗୋପସାଗରରେ ପଡ଼ିଥିବା ନଦୀ—Name of a river rising from Mayurbhanj and falling in the sea of Bengal via Balasore.

ବୁଢ଼ା ବଳଦ—ଦେ. ବି ( ନାମ )—୧ । ( ମୟୂରଭଞ୍ଜ ) ବୁଢ଼ାବଳଙ୍ଗ Burdhā balada ନଦୀର ଯେଉଁ ଅଂଶ ମୟୂରଭଞ୍ଜରେ ପ୍ରବାହିତ বুড়োবলদ —1. That part of the river Burdhā- बुढाबधल balanga which flows through the state of Mayurbhanj. ୨ । ବୁଢ଼ା—2. An old ox.

ବୁଢ଼ା ବିଭା—ଦେ. ବି ( ସ. ବୃଦ୍ଧବିବାହ )—ବୃଦ୍ଧ ବ୍ୟକ୍ତିର ବାଳକା Burdhā bibhā ସହିତ ବିବାହ—Marriage of an old বৃদ্ধবিবাহ बुढाकाविवाह man with a girl. [ବୁଢ଼ାକାଳ ବିଭା (ବାହା, ଭଆ), ବୁଢ଼ାବାହା—ଅନ୍ୟରୂପ]

ବୁଢ଼ାବୁଢ଼ୀ ଘାଟି—ଦେ. ବି ( ନାମ )—ନରସିଂହପୁର ରାଜ୍ୟର ପ୍ରଧାନ Burdhāburdhi ghāti ଗିରି ସଙ୍କଟ ବା ଘାଟ—A famous mountain pass in the state of Narsnigpur.

ବୁଢ଼ା ବେଉଷା—ଦେ. ବି—୧ । ଧାନଗଛ ଅତି ବଡ଼ ହୋଇଯିବା Burdhā beushā ଅବସ୍ଥାରେ କରାଯିବା ବେଉଷଣ—1. Puddling of paddy plants which have grown too big. ୨ । ଦୋଓଡ଼ା ବେଉଷା (ଦେଖ)— 2. Do-orda beushā ( See )

ବୁଢ଼ା ମଉସା—ଦେ. ବି. ପୁଂ—ସାଧାରଣ ବୃଦ୍ଧ ବ୍ୟକ୍ତିମାନଙ୍କ ପ୍ରତି Burdhā mausā ଯୁବକ ଯୁବତୀଙ୍କର ସମ୍ମାନସୂଚକ ଡାକ— बुढावावा A respectful term used by youngsters (ବୁଢ଼ୀମାଉସୀ—ସ୍ତ୍ରୀ) in respect of old people.

ବୁଢ଼ା ମଣ୍ଡା—ଦେ. ବି—୧ । ଗଜମଣ୍ଡା—1. Big Mandā cake. Burdhā mandā ୨ । ଏକପ୍ରକାର ମୋଟା ବା ବଡ଼ ଧାନ— 2. A species of coarse paddy.

ବୁଢ଼ା ମାକ(ଙ୍କ)ଡ଼—ଦେ. ବି—ଗୋଧ; ବାନରଯୂଥର ଦଳପତି— Burdhā māka(ṅka)rda The male leader of a बुढावन्दर flock of female monkeys. [ ଦ୍ର—ସବୁ ସୁନ୍ଦର ! ବୁଢ଼ାମାଙ୍କଡ଼ କହୁଯାଉଛି ମୁହଁଟା ବାଁଦର । ଶିଶୁ ଗୀତ । ]

ବୁଢ଼ା ମାଣ୍ଡିଆ—ଦେ. ବି—ଏକପ୍ରକାର ମାଣ୍ଡିଆ—A kind of food Burdhā māndiā grain; Eleusine Coracana. [ ଦ୍ର—ମାଣ୍ଡିଆ ତଳେ ନୋଟ୍ ଦେଖ । ]

ବୁଢ଼ାମି—ଦେ. ବି ( ବଙ୍ଗଳାରୁ ଅନୁକୃତ )—( ବ୍ୟଙ୍ଗ ) କୌଣସି Burdhāmi ଯୁବକଠାରେ ଦେଖାଯିବା ବୃଦ୍ଧଭାବ; ଅକାଳ ପକ୍ୱତା বুড়োমী; বুঢ়ামী बुढ़ापा Precocity in a young man.

**ବୁଢ଼ା ମିଆଁ**—ଦେ. ବ—୧ । ବୃଦ୍ଧ ମୁସଲ୍‌ମାନ୍—1. An old Mahomedan. ୨ । ଦଳ ମଧ୍ୟରେ ବୃଦ୍ଧ ଲୋକ—2. The eldest person in a group. ୩ । ଦଳର ନେତା—3. The leader of a group. ୪ । (ଶିଶୁବଚନ) ବୁଢ଼ା ଅଙ୍ଗୁଠି—4. The thumb. [ ଦ୍ର—ଏଇଟି ବୋଇଲା, କଷ କରିବା ? ଏଇଟି ବୋଇଲା, କଷ ଖାଇବା ? ଏଇଟି ବୋଇଲା, କାହୁଁ ଆଣିବା ? ଏଇଟି ବୋଇଲା, ଋଣ କରିବା । ବୁଢ଼ାମିଆଁ ଥାଇ ବୋଇଲା, ଖାଇବା ପିଇବା ପଳେଇବା । ପାଞ୍ଚଅଙ୍ଗୁଠି ସମ୍ବନ୍ଧେ ଶିଶୁବାକ୍ୟ । ]

Burdhamiañ — ବୁଢାମିଆଁ

**ବୁଢ଼ା ମିଛୁଆ**—ଦେ. ବ ଓ ବଣ—ଘୋର ମିଥ୍ୟାବାଦୀ—A black liar; an inveterate liar.

Burdha michhua — पूरानाझूठा घोर मिथ्यावादी

**ବୁଢାଳ(ଳି)ଆ**—ଦେ. ବଣ—୧ । ବୃଦ୍ଧ ବ୍ୟକ୍ତିର ଉପଯୋଗୀ—1. Befitting an old man. ( ଯଥା—ବୁଢ଼ାଳିଆ ଢଙ୍ଗ । ) ୨ । ପ୍ରାୟ ସୁପରିପକ୍ୱ (ଫଳ)—2. Almost ripe. ( ଯଥା—ବୁଢ଼ାଳିଆ କାଇଗଣ । ) ୩ । ଅକାଳ ପକ୍ୱ—3. Untimely ripe.

Burdhali(li)a — ବୁଡ଼ାଳେ, बुढ़केपेसामो

**ବୁଢ଼ା ଲୁଗା**—ଦେ. ବ—ବଗଡ଼ା ଲୁଗା; ମୋଟା ଲୁଗା—A very coarse cloth. [ ଦ୍ର—ଏହିପରି ବୁଢ଼ା ଶବ୍ଦ, ବୁଢ଼ା ଗାମୁଛା, ବୁଢ଼ା ପଣ୍ଡାଳକରି ହୁଏ । ]

Burdha luga

**ବୁଢ଼ା ଲେଙ୍କା**—ଦେ. ବ—ରାଜଦତ୍ତ ଉପାଧି ବିଶେଷ—A title given by kings.

Burdha lenka

**ବୁଢ଼ା ଶୁଆ**—ଦେ.ବ (ସଂ. ବୃଦ୍ଧ ଶୁକ)—୧ । ଅଧିକ ବୟସ୍କ ଶୁକପକ୍ଷୀ—1. A parrot grown old. ୨ । (ଲକ୍ଷଣାର୍ଥ)—ବାଲ୍ୟାବସ୍ଥା ଗତ ହେବା ପରେ ଯେ ବିଦ୍ୟାଶିକ୍ଷା କରେ—2. (figurative) A student past his boyhood. [ ଦ୍ର—ଶୁଆଙ୍କୁ ପିଲାଦିନରୁ ଧରଅଣି ପଦ ପଢ଼ାଇଲେ ସେମାନେ ପଦ ଧରନ୍ତି, କିନ୍ତୁ ବୁଢ଼ା ଶୁଆଙ୍କୁ ଧରଅଣି ପଢ଼ାଇଲେ ସେ ପଦ ଧରେ ନାହିଁ, କେବଳ 'କଟର କଟର' ହେଉଥାଏ; ସେହିପରି ବାଲ୍ୟକାଳରେ ବିଦ୍ୟାରମ୍ଭ ନ କରି ଯେ ବଡ଼ ହୋଇଗଲେ ପାଠ ପଢ଼େ ତାକୁ ପାଠ ପଇଠେ ନାହିଁ; ଏଥିପାଇଁ ସେପରି ବିଦ୍ୟାର୍ଥୀଙ୍କୁ ଲକ୍ଷ୍ୟ କରି ଲୋକେ କହି ଥାଆନ୍ତି 'ବୁଢ଼ାଶୁଆ କଟର କଟର' । ]

Burdha sua — बुढ़ासुगा

**ବୁଢ଼ା ଶେ(ଶ)ଉଳ**—ଦେ. ବ (ସଂ. ବୃଦ୍ଧ ଶକୁଲ)—ବଡ଼ ଶେଉଳ ମାଛ A big fish [ଦ୍ର—ବୁଢ଼ା ଶେଉଳକୁ ତେଙ୍ଗ ଭଳିଏ । ଢଗ । ]

Burdha se(sa)ula — बुढ़ासौरा

**ବୁଢ଼ା ସିଂଘାଣି**—ଦେ. ବ—ନାକରୁ ବାହାରିବା ଖଣ୍ଡ ଘନ ସିଂଘାଣି—Thick flake of mucus coming out of the nostril.

Burdha simghani

**ବୁଢ଼ା ହଡା**—ଦେ. ବ. ପୁଂ (ସହଚର ଶବ୍ଦ)—୧ । ବୃଦ୍ଧବ୍ୟକ୍ତିଗଣ—1. Old people. ୨ । ବୃଦ୍ଧ ଓ ଦୁର୍ବଳ ବ୍ୟକ୍ତିଗଣ—2. Old and weak persons. ୩ । ବୃଦ୍ଧ ଓ ଶୀର୍ଣ୍ଣ ବଳଦ—3. Old and incapable bullock. ୪ । ବୃଦ୍ଧ ଓ ଅକ୍ଷମ ବ୍ୟକ୍ତି—4. An old and weak person.

(ବୁଢ଼ାହଡ଼ୀ, ବୁଢ଼ୀହଡ଼ୀ—ସ୍ତ୍ରୀ)

ଦେ. ବଣ. ପୁଂ—ଅତିଶୟ ବୁଢ଼ା ଓ ଅସମର୍ଥ—Old and incapable; decrepit.

Burdha harda — बूढ़ोखाड़ो, पकाआम, बुढ़ावपल

**ବୁଢ଼ାହେବା**—ଦେ. କ୍ରି—୧ । ବାର୍ଦ୍ଧକ୍ୟ ପ୍ରାପ୍ତ ହେବା—1. To become old; to attain a good old age. [ ଦ୍ର—ବୁଢ଼ା ହେବା ପଣିକ ନଖାନା ତରୁଣୀ । କୃଷ୍ଣସିଂ. ମହାଭାରତ ବନ । ] ୨ । ( କାଇଗଣ କାକୁଡ଼ି ଆଦି ଫଳ ) ବେଶି ପକ୍ୱ ହେବା—2. To become over-matured (said of fruits). [ ଦ୍ର—ଯେଉଁ ଫଳ ପାଚଲେ ସଢ଼ିଯାଏ ( ଯଥା—ଆମ୍ବ, ପଣସ ), ତା ପ୍ରତି ବୁଢ଼ା ଶବ୍ଦ ପ୍ରୟୋଗ କରାଯାଏ ନାହିଁ, କିନ୍ତୁ ଯେଉଁ ଫଳ ପାଚଲେ ବେଶି ଟାଣୁଆ ହୁଏ ( ଯଥା—କଖାରୁ, କାକୁଡ଼ି, ଲାଉ, କାଇଗଣ) ତା ପ୍ରତି ଏ ଶବ୍ଦ ପ୍ରୟୋଗ କରାଯାଏ । କୁଇଁପ୍ରତି ମଧ୍ୟ ବୁଢ଼ାଶବ୍ଦ ପ୍ରଯୁକ୍ତ ହୁଏ । ]

Burdha heba — बुढ़ाहोना

**ବୁଢ଼ା ହୋ**—ଦେ. ଅ. (ବୃଦ୍ଧଙ୍କର ବାଳକ ପ୍ରତି ଆଶିର୍ବଚନ)—ଦୀର୍ଘ ଜୀବୀ ହୋ (ଅର୍ଥାତ୍ ତୁ ବୃଦ୍ଧ ହେବାଯାଏ ବଞ୍ଚିରହ, ଅଳ୍ପବୟସରେ ମର୍ ନାହିଁ)—(A sentence of blessing uttered by an old man to a boy) Live to a good old age ! Live long !

Burdha ho — बेक्षेथाक, बुढ़ाहोओ

(ବୁଢ଼ା ହୋଇଥା—ଅନ୍ୟରୂପ)

**ବୁଢ଼ିଆଣୀ**—ଦେ. ବ—୧ । ମାକଡ଼ସା; ଅଷ୍ଟପଦା ପକ୍ଷହୀନ କୀଟ ବିଶେଷ—1. A spider; Araneæ. [ଦ୍ର—ବୁଢ଼ିଆଣୀର ଉଦରରେ ସୂତା କାଟିବାର ଯନ୍ତ୍ର ଅଛି ସେଥିରୁ ନାଳ ବାହି ସୂତା ଅକାରରେ ପରିଣତ ହୁଏ, ସେହି ସୂତାରେ ବୁଢ଼ିଆଣୀ ଶୂନ୍ୟ ମାର୍ଗରେ ଜାଲ ବୁଣେ ଓ ସେ ଜାଲରେ କୀଟ ପତଙ୍ଗ ଆଦି ପଡ଼ିଲେ ସେମାନଙ୍କୁ ଧରି ଆହାର କରେ । ] ୨ । ଶିଶୁମାନଙ୍କର ଏକ ପ୍ରକାର ଲୁଚକାଳି ଖେଳ—2. A kind of indoor game of hide and seek amongst children. [ ଦ୍ର—ଏଥିରେ ଜଣେ ପିଲା ବୁଢ଼ୀ ବା ବୁଢ଼ିଆଣୀ ହୋଇ ମଝିରେ ବସେ; ଜଣେ ପିଲା ଚୋର ହୁଏ; ତା ଆଖି ବୁଜା ହେବା ବେଳେ ଅନ୍ୟ ପିଲାମାନେ ଲୁଚନ୍ତି; ତା ପରେ ଚୋରର ଆଖି ଫିଟାଇ ଦିଆଯାଏ ଓ ସେ ବୁଢ଼ିଆଣୀର ଘର ପାଖରେ ବୁଲୁଥାଏ ଓ ଛକି ଥାଏ । କିଛିକ୍ଷଣ ପରେ ଲୁଚିଥିବା ପିଲାମାନେ ଆସି ବୁଢ଼ିଆଣୀକୁ ଛୁଇଁବାକୁ ଚେଷ୍ଟା କରନ୍ତି । ତହିଁ ମଧ୍ୟରୁ ଯେଉଁ ପିଲା ବୁଢ଼ିଆଣୀକୁ ଛୁଇଁ ପକାଇବା ପୂର୍ବରୁ ଚୋର ତାକୁ ଛୁଇଁ ଦିଏ ସେ ପୁଣି ଚୋର ହୁଏ । ]

Burdhiani — ସଂ.—ଊର୍ଣ୍ଣନାଭ, ମର୍କଟକ, ଲୂତା; ମ. କୋଳୀ; मकड़ा, माकड़सा; अरसपरस खेल

ବୁଢ଼ିଆଣୀ ଜାଲ—ଦେ. ବି—ମାକଡ଼ସା ଶୂନ୍ୟମାର୍ଗରେ ବୁଣିଥିବା ସୂତାର
Burdhiani jala     ଜାଲ—Spider's web.
मकडाका जाल   মাকড়সার জাল

ବୁଢ଼ିଆଣୀ ସୂତା—ଦେ. ବି—ମାକଡ଼ସା କାଟିଥିବା ସୂକ୍ଷ୍ମ ସୂତ୍ର—
Burdhiani suta   मकडाका सूत   Spider's thread.

ବୁଢ଼ି ଖୋଲ—ଦେ. ବି—( ନାମ )—ଗଞ୍ଜାମଜିଲ୍ଲାର ବୁଗୁଡ଼ାରୁ ଦୁଇ
Burdhi khola   ମାଇଲ୍ ଦୂରରେ ଅବସ୍ଥିତ ଘୁମୁସରର ପର୍ବତ—
A mountain of Ghumsar in Ganjam
[ ଦ୍ର—ଏଠାରେ ବାଣାସୁର ପ୍ରତିଷ୍ଠିତ କବୁତ ଶିବଲିଙ୍ଗ ଅଛନ୍ତି । ]

ବୁଢ଼ି ଚଉଁରି—ପ୍ରାଦେ. (ଗଡ଼ଜାତ) ବି.—ଲହଣିଆ ମସୁ ( ଦେଖ )—
Burdhi chaunri     Lahania masu (See)

ବୁଢ଼ୀ—ଦେ. ବି—( ସ. ବୃଦ୍ଧା )—୧ । ବୁଢ଼ାର ସ୍ତ୍ରୀଲିଙ୍ଗ—
Burdhi   বুঢ়ী   बुढी     1. Old woman.
୨ । ପିଲାଙ୍କ ବୁଢ଼ିଆଣୀ ଖେଳରେ ଯେଉଁ ପିଲା ବୁଢ଼ୀ ବା ବୁଢ଼ିଆଣୀ ସାଜି ବସେ ଓ ଯାହାକୁ ଅନ୍ୟ ପିଲାମାନେ ଛୁଇଁବାରେ ପ୍ରତିଯୋଗିତା କରନ୍ତି—2. The boy or girl in the Burdhiani game who acts the part of a Burdhi or Burdhiani and to touch whom other players compete. [ ଦ୍ର—ବୁଢ଼ିଆଣୀ ତଳେ ନୋଟ୍ ଦେଖ ।] ୩ । ଶିଶୁ ବାଳିକାଙ୍କ ପ୍ରତି ସ୍ନେହସୂଚକ ଡାକ—3 A term of endearment addressed to infant girls. ୫ । ପରିବାରର ବୃଦ୍ଧତମା ସ୍ତ୍ରୀ—5. The oldest or seniormost lady in the family.
ବିଣ. ସ୍ତ୍ରୀ.—ବୃଦ୍ଧା (ସ୍ତ୍ରୀ)—Old (woman).

ବୁଢ଼ୀ ଅସୁରୁଣୀ—ଦେ. ବି. ସ୍ତ୍ରୀ—( ସ. ବୃଦ୍ଧା ଓ ଅସୁରୀ )—୧ ।
Burdhi asuruni   କାହାଣୀରେ କଥିତ ବୃଦ୍ଧା ରାକ୍ଷସୀ—
बुडी असुरनी   1. The old hag ( demoness ) of the
বুড়ী ডাইন(নী)   बुढी डाईन   folk tales.   ୨ । ( ଗାଳି )
(ବୁଢ଼ୀଡାହାଣୀ—ଅନ୍ୟରୂପ)   ଯେଉଁ ବୁଢ଼ୀ ସୁକୁମାର ଶିଶୁମାନଙ୍କ ଉପରେ କୁ ଦୃଷ୍ଟି ପକାଇ ତାଙ୍କର ରକ୍ତ ଶୋଷି ନିଏ—
3, An old blood-sucking witch.

ବୁଢ଼ୀ(ଢ଼ୀ)କପା—ଦେ. ବି—(ସ. ବଦରୀ; କାର୍ପାସୀ)—ଏକ ପ୍ରକାର
Burdhi (rdi)kapa   ବନ୍ୟ   କପା—A kind of wild
বুড়ী কাপাস   cotton; The Bori cotton; Gossypium
बोंडी कपास   (ବୁରି କପା—ଅନ୍ୟରୂପ)     Arboreum.

ବୁଢ଼ୀ ଗାଈ—ଦେ. ବି. ସ୍ତ୍ରୀ—(ସ. ବୃଦ୍ଧା + ଗୌ)—ବୃଦ୍ଧା ଗାଭୀ; ବୁଢ଼ା—
Burdhi gai   বুড়ীগাই     An old cow.
बुढीगाय

ବୁଢ଼ୀଗାଈ ଦାନ—ଦେ. ବି—(ଲକ୍ଷଣାର୍ଥ)—ଅକର୍ମଣ୍ୟ ପଦାର୍ଥର ଦାନ
Burdhi gai dana   Gift of a worthless or useless
বুড়ীগাই দান   बुढीगाय दान   thing. (e.g. an old cow).
[ଉ—ଅଧା ଭୋଜନ, ବୁଢ଼ୀଗାଈ ଦାନ, କଣା ଗୁଆକୁ ସଢ଼ା ପାନ । ଢଗ ।]

ବୁଢ଼ୀ ଦାରି—ଦେ. ବି—୧ । ପାପିନୀ ବୃଦ୍ଧା—1. An old sinner
Burdhi dari   ( woman ).   ୨ । ବୃଦ୍ଧା ବେଶ୍ୟା—2.
बुढी कसबी   (ବୁଢ଼ୀ କସବି—ଅନ୍ୟରୂପ)   A harlot grown
বৃদ্ধাবেশ্যা     old.

ବୁଢ଼ୀ ଦିନ—ଦେ. ବି—ସ୍ତ୍ରୀର ବାର୍ଦ୍ଧକ୍ୟ—A woman's old age.
Burdhi dina   বুঢ়ী বয়স   बुढापा   [ଉ—ବୁଢ଼ୀଦିନେ ହରିମନ୍ଦିର ।
(ବୁଢ଼ୀକାଳ, ବୁଢ଼ୀ ବଅ(ୟ)ସ, ବୁଢ଼ୀବେଳ—ଅନ୍ୟରୂପ)   ତଡା—ଢଗ]

ବୁଢ଼ୀ ଧଡ଼ୀ—ଦେ. ବି—(ସହଚର ଶବ୍ଦ)—୧ । ବୃଦ୍ଧା ଓ ଜୀର୍ଣ୍ଣକାୟା
Burdhi dhardi   ସ୍ତ୍ରୀ—1. Old and worn out woman.
বুড়ী সুড়ী   पका आम   ୨ । ବିଗତଯୌବନା ଓ ବିଗତସୌନ୍ଦର୍ଯ୍ୟା ସ୍ତ୍ରୀ—2. A woman past her youth and who has lost her plumpness and beauty.

ବୁଢ଼ୀ ବାହ୍ମୁଣୀ-ଦେ. ବି. ସ୍ତ୍ରୀ—ବୃଦ୍ଧା ବ୍ରାହ୍ମଣୀ—An old Brahmna
Burdhi bahmuni     woman.

ବୁଢ଼ୀ ରାଣ୍ଡୀ—ଦେ. ବି. ସ୍ତ୍ରୀ—ବୃଦ୍ଧା ବିଧବା—
Burdhi randi   बुढी विधवा     An old widow.

ବୁଢ଼ୀମା—ଦେ. ବି—(ସ. ବୃଦ୍ଧା ମାତା)—୧ । ବୃଦ୍ଧା ମାତା—2 Old
Burdhi ma   mother.   ୨ । ପିତାମହୀ—2 Grand-
(ବୁଢ଼ୀ ମାଆ—ଅନ୍ୟରୂପ)   mother.   ୩ । ପ୍ରପିତାମହୀ—3.
great grandmother.   ୪ । ବୁଢ଼ୀ ଠାକୁରାଣୀ; ବିସୂଚିକା ଦେବୀ—4. Cholera personified as a Goddess.

ବୁଢ଼ୀ ମାଉସୀ—ଦେ. ବି—ବୃଦ୍ଧା ସ୍ତ୍ରୀଲୋକଙ୍କ ପ୍ରତି ସାଧାରଣ ଯୁବକ
Burdhi mausi   ଯୁବତୀଙ୍କର ସମ୍ବୋଧନ—A term of adress
बुढीदादी     to old women by youngsters.

ବୁଢ଼ୀମାଉସୀ ଖେଳ—ଦେ. ବି—ପିଲାମାନଙ୍କର ଏକପ୍ରକାର ଖେଳ—
Burdhimausi khela   A play amongst children.
বুঢ়ীখেলা; বডাইবুড়ী   [ ଦ୍ର—ଏଥିରେ ଜଣେ ବାଳିକା ବୁଢ଼ୀ-
बुढिया   ମାଉସୀ ସାଜି ହାତରେ ଖଣ୍ଡିଏ ବାଡ଼ି ଧରି ଅଣ୍ଟା ନଇଁ ନଇଁ ବୁଢ଼ୀ ପରି ଧୀରେ ଧୀରେ ବୁଲୁଥାଏ, ଅନ୍ୟ ପିଲାମାନେ ତା ଚାରି ପାଖରେ ବିଚରଣ କରୁଥାଆନ୍ତି ଓ ତାକୁ କହୁ ଥାଆନ୍ତି 'ବୁଢ଼ୀ ମାଉସୀ ! କୁଆଡ଼େ ବାଟ ?' । ବୁଢ଼ୀ ସେମାନଙ୍କୁ 'କୁଆଡ଼େ ବାଟ ?' ପ୍ରଶ୍ନ ପଚାରୁ ଥାଏ ଓ ସେମାନେ ମଧ୍ୟ ବୁଢ଼ୀକୁ ପ୍ରଶ୍ନ ପଚାରୁ ଥାଆନ୍ତି ଏବଂ ପରସ୍ପର ମଧ୍ୟରେ ଉତ୍ତର ଦିଆ ଦେଇ ହେଉ ଥାଆନ୍ତି ଓ ବୁଲୁଥାଆନ୍ତି ।)

ବୁଢ଼ୀ ମା ଖିଆ—ଦେ. ବିଣ. ପୁଂ—ପୁରୁଷମାନଙ୍କୁ ଦିଆଯିବା ଅଭିଶାପ
Burdhi ma khia   ବ୍ୟଞ୍ଜକ ଗାଳି—A term of abuse addressed to males implying a course that the man will succomb to cholera.
[ ଦ୍ର—ଏଥିର ସୂଚିତାର୍ଥ, ତୋତେ ବୁଢ଼ୀ ମା ଖାଉ, ଅର୍ଥାତ୍ ତୁ ହଇଜାରେ ମର । ]

ବୁଢ଼ୀ ହେବା—ଦେ. କ୍ରି—( ସ୍ତ୍ରୀ ) ବୃଦ୍ଧା ହେବା; ବୃଦ୍ଧାବସ୍ଥା ପ୍ରାପ୍ତ
Burdhi heba   ହେବା—To grow old ( said of a
বুড়ী হওয়া   बुढी होना     woman ).

**ବୁଢ଼େଲ୍**—ପ୍ରାଦେ. ( ସମ୍ବଲପୁର ) ବି—ପାରା ପରି ବଡ଼ କପୋତ—
Burdhel A kind of dove as big as a pigeon.

**ବୁଣ(ଣା, ଣୋ)ଟ**—ଦେ. ବି ( ସ. ବେ. ଧାତୁ—ବୟନ )—୧ । ଲୁଗା ବୁଣିବା ବା ଚଉକରେ ବେତ ବୁଣିବା ଆଦି କର୍ମ—1. Act of weaving cloth or cane.
Buṇa(ṇā, ṇo)ṭa
**बुनट बुनावट; बुनाई; विनावट; बिनाई**
୨ । ବସ୍ତ୍ରର ସୂତା ବୁଣା ହେମା ଚଉକର ବେତ ବୁଣାର ଜାବଡ଼ତା—2. The density of the texture of a cloth or chair or other woven work. ୩ । ଘର ଚାଳର ଭୁଅରେ ବତା ପକାଇ ବତାକୁ ବେତ ଲଇରେ ବା ଦଉଡ଼ିରେ ବୁଣିବା କର୍ମ-3. The act of tying split bamboos to the rafters of a thatched frame with strings or strips of cane.

**ବୁଣା**—ଦେ. ବି ( ସ. ବପନ, ବୟନ )—୧ । କ୍ଷେତ୍ରରେ ଧାନ ଆଦିର ମଞ୍ଜି ବୁଣିବା କ୍ରିୟା—1. The act of sowing seeds in a field. ୨ । ଲୁଗା ଆଦି ବୁଣିବା କ୍ରିୟା—2. The act of weaving cloth. ୩ । ଘର ଚାଳର ଭୁଅ ଉପରେ ବତା ପକାଇ ଉକ୍ତ ବତାକୁ ଭୁଅ ସଙ୍ଗେ ବେତ ବା ସରୁଲ ଦଉଡ଼ିଦ୍ୱାରା ବାନ୍ଧିବା କର୍ମ—3. The act of tying by means of fibrous strips of cane the layer of split bamboos to the rafters of a thatched house ୪ । ଚଉକି ଆଦିରେ ବେତ ବୁଣିବା କର୍ମ—4. The act of interlacing a chair with strips of cane. ୫ । ବିକ୍ଷେପଣ; ଛିଞ୍ଚି ଦେବା—5. The act of scattering. ୬ । ଉଲ୍ ବୁଣିବା; କଣ୍ଟାରେ ବା ମୋଜା ଆଦିକୁ କୁଞ୍ଚ ଓ ଉଲ୍ ସାହାଯ୍ୟରେ ବୁଣିବା—6 Knitting. [ ଦ୍ର—ଯେଉଁ ଉପାଦାନଦ୍ୱାରା ବୁଣିବା କ୍ରିୟା କରାଯାଏ ତା ପ୍ରତି 'ବୁଣିବା' ଏବଂ ଉକ୍ତରୂପ 'ବୁଣିବା' କ୍ରିୟାଦ୍ୱାରା ଯେଉଁ ବସ୍ତୁ ଉତ୍ପନ୍ନ ହୁଏ ତା ତ ମଧ୍ୟ 'ବୁଣିବା' କ୍ରିୟା ପ୍ରୟୋଗ କରାଯାଏ ।
Buṇā
**बुना, बोना, बुनन बोन; बुना बुनना; बुनाई; बेतीबाँधा बाँधना; बुनी बुनाना; बुना, छाँटना; बोना, बुनना**

*ଯଥା*—ଉଲ୍ ବୁଣିବା ଓ ଉଲ୍‌ରେ କଣ୍ଟା ବୁଣିବା, ଧାନ ବୁଣିବା ଓ ବିଲରେ ଧାନ ବୁଣିବା, ବେତ ବୁଣିବା ଓ ବେତରେ ଚଉକି ବୁଣିବା, ବାଉଁଶ ବୁଣିବା ଓ ବାଉଁଶରେ ଚୋକେଇ ବୁଣିବା ଆଦି ପ୍ରୟୋଗ ହୁଏ । ] ୭ । ନୀଚ ଜାତୀୟ ତନ୍ତ୍ରୀବିଶେଷ—7. A class of low caste weavers. ଦେ. ବିଣ—୧ । ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ବେତବୁଣା ଖଟ, ଦଉଡ଼ିବୁଣା ଖଟିଆ ) କୌଣସି ସୂତ୍ର ବା ତନ୍ତୁଦ୍ୱାରା ବୟନ କରାଯାଇଥିବା—1. Woven with certain fibrous materials. ୨ । ( ବୀଜ ) ବପନ କରାଯାଇଥିବା—2. Sown. ୩ । ( ବସ୍ତ୍ର ) ବୟନ କରାଯାଇଥିବା—3. Woven. ୪ । (ଘରର ଚାଳରେ ବତା) ଭୁଅ ସଙ୍ଗେ ବେତ ଗର୍ଣ୍ଣିଦ୍ୱାରା ବନ୍ଧା ହୋଇଥିବା—4. Interlaced into wicker work. ୫ । ଚଲେ ଛିଞ୍ଚା ହୋଇଥିବା—5. Strewn; scattered. ୬ । ( ମୋଜା, କଣ୍ଟାରେ ) ଉଲ୍‌ରେ କୁଞ୍ଚ ସାହାଯ୍ୟରେ ବୁଣା ଯାଇଥିବା—6. Knitted.
**बोना; बोयाहुआ; बु(बि)नाहुआ; छींटाहुआ**

**ବୁଣାଇ**—ଦେ. ବି—ବୁଣିବା ସକାଶେ ଯେ ମଜୁରି ଦିଆଯାଏ—
Buṇāi **बुनवाई; बुनाई** Wages paid for weaving.

**ବୁଣା(ଣେ)ଇବା**—ଦେ. କ୍ରି—ବୁଣିବା କ୍ରିୟାର ଣିଜନ୍ତରୂପ—
Buṇā(ṇe)ibā ବୋନାନ Causative form of Buṇibā
**विनवाना; बुनाना; बुआना** ଯେ ବୋନେ

**ବୁଣା କାମ**—ଦେ. ବି—ବେତ ଆଦି ବୁଣିବା କାର୍ଯ୍ୟ—Canework; wicker work.
Buṇā kāma **बुननेका काम**

**ବୁଣାବୁଣି**—ଦେ. ବି ( ସନ୍ଧତର )—ବିଶେଷ ପରିମାଣରେ ବୁଣିବା କ୍ରିୟା
Buṇā buṇi —Brisk weaving operation.
**बुनाबुनी: बोनाबोनी**

**ବୁଣାଳି**—ଦେ. ବି ଓ ବିଣ—ଯେ ବୁଣିବା କ୍ରିୟା କରେ—
Buṇāli Weaver; sower, interlacer.
**बोनेवाला; बुननेवाला** ଯେ ବୋନେ

**ବୁଣିବା**—ଦେ. କ୍ରି. (ସ. ବେ, ବପ ଧାତୁ ବୟନ; ବପନ)—୧ । ଲୁଗା ଆଦି ବୟନ କରିବା; ବସ୍ତ୍ର ନିର୍ମାଣ କରିବା—1. To weave cloth. (ଯଥା—ଲୁଗା, ସତରଞ୍ଜି, ଗାଲିଚ୍ଚ) । ୨ । (ସ. ବପନ) କ୍ଷେତରେ ମଞ୍ଜି ବୁଣିବା—2. To sow seeds broadcast. (ଯଥା—ଧାନ ବୁଣିବା; ଶାଗ ବୁଣିବା) । ୩ । ଇତସ୍ତତଃ ବିକ୍ଷିପ୍ତ କରିବା; ଭୂମିରେ ବିଞ୍ଚିବା—3. To strew or scatter on the ground. (ଦ୍ର—ଛାମ୍ବ ନଜର ମଣି-ମୟୂ ମଣ୍ଡନ ଶ୍ରେଣୀ ବୁଣିଦେଲୁ ପୁଣି ମୃଗଦୃଶାରେ । ବଇଦେହୀ. ସର୍ଗାଭ) । ୪ । (ବେ ଧାତୁ) ସୂତା, ବେତଲଇ ହେମା ଅନ୍ୟ କୌଣସି ପତଳା ସରୁ ଜିନସକୁ ପରସ୍ପର ଛନ୍ଦିବା—4. To interlace; to darn; to knit. (ଦ୍ର—ମାନ ତାଙ୍କ ଦେବେ, ଉର୍ଣ୍ଣନାଭ ଠାବେ, ଠାବେ ବୁଣିଥିଲି ଜାଲ । ବଧାନାଥ ଯଯାତି କେଶରୀ) । ୫ । ( ଲକ୍ଷଣାର୍ଥ ) ଦେଶର ସବୁ ଆଡ଼େ ପ୍ରଚାର କରିବା—5. ( figurative ) To publish any thing broadcast. (ଯଥା— (ସରକାର) ଦେଶ ସାରା ଜ୍ଞାନ ବୁଣୁଛନ୍ତି) । ୬ । (ଟଙ୍କା) ବହୁତ ବ୍ୟୟ କରିବା ବା ଲଗାଣ କରିବା—6. To invest or spend a large amount of money. ( ଦ୍ର—କଣ୍ଢୁଆ ବହୁତ ଟଙ୍କା ବୁଣିଦେଲା । ଲୁଚୁଲା ଲୁମାଣ୍ଡ ନଅଡୁଣ୍ଡୀ ।
Buṇibā
**बुनना; बोना; छींटना; बुनना; बोना; छींटना**

**ବୁଣ୍ଡ଼କି**—ପ୍ରାଦେ. (ସମ୍ବଲପୁର) ( ତୁଳ. ହି. ଡ଼ୋଁଡ଼ୀ )—ନାଭିଗର୍ତ୍ତ—
Bund-ki The hole of the navel.

**ବୁଟଲ୍**—ପ୍ରାଦେ (ସମ୍ବଲପୁର) ବୈଦେ. ବି—(ଇଂ. ବଟ୍‌ଲ୍)-ବୋତଲ—
Butal A bottle.

**ବୁଟା**—ପ୍ରାଦେ (ସମ୍ବଲପୁର) ବି—କାର୍ଯ୍ୟ; କର୍ମ; ଆବଶ୍ୟକ କାର୍ଯ୍ୟ—
Butā Business; work in hand. (ଯଥା—ମୁଁ ଅଛ

ସେଠାକୁ ଯାଇ ପାରୁନ ନାହିଁ ମୋର ଏଠାରେ ବୁଟା ଅଛି । )

**ବୁଟା ବର୍‌ଗାଇବା**—ପ୍ରାଦେ (ସମ୍ବଲ ପୁର) କ୍ରି—କୌଣସି ବ୍ୟକ୍ତିକୁ
Butā bargāibā କୌଣସି କାର୍ଯ୍ୟ କରିବା ପାଇଁ ବରାଦ କରି ପଠାଇ ଦେବା—To order or depute a person
(ବୁଟା ବରଗିବା—ଅନ୍ୟରୂପ) to do a particular work.

**ବୁଟି**—ପ୍ରାଦେ. (ସମ୍ବଲପୁର) ବି—ଭୃତ୍ୟ; ଚାକର—
Buti Servant.

**ବୁଥିବା**—ପ୍ରାଦେ (ସମ୍ବଲପୁର) କ୍ରି—ପାଣିରେ ବୁଡ଼ିବା—
Buthibā To plunge in water.

**ବୁଦ୍(ଧାତୁ)**—ସଂ. ୧ । ଆଲୋଚନା କରିବା—1. To discuss. ୨ ।
Bud (root) ବିବେଚନା କରିବା—2. To consider. ୩ ।
ଅବଲୋକନ କରିବା – 3. To see; to discern; to to perceive.

**ବୁଦ୍(ଧ୍) ତାର(ଡ଼)କ**—ଦେ. ବି—ବୁଦ୍ଧ ଦାରକ (ଦେଖ)—
Bud(dh)-tāra(ṛḍa)ka Bruddhadāraka (See).
[ବୁତ୍ତାର(ଡ଼)କ—ଅନ୍ୟରୂପ]

**ବୁଦ୍‌ବୁଦ**—ସଂ. ବି (ବୁଦ୍=ଅନୁକରଣ ଶବ୍ଦ+ବୁଦ୍ ଧାତୁ=ଆଲୋଚନା
Bud-buda କରିବା+କର୍ମ ଅ)—୧ । ଜଳବିମ୍ବ; ଭୁଡ଼ୁଭୁଡ଼ା; ଭୁଡ଼ୁ
(ବୁଦ୍ବୁଦ—ଅନ୍ୟରୂପ) ଭୁଞ୍ଜି—1. Bubbles. (ଢ଼—ବୁଦ୍‌ବୁଦ ନ ହେବେ ଜଳ ଫି ଫି ଲୁଚ କରି । ଭଞ୍ଜ ବୈଦେହୀଶ ବିଳାସ) । ୨ । ଗର୍ଭସ୍ଥ ଭ୍ରୂଣ—2. The embryo; foetus. ୩ । ବୁଦ୍‌ବୁଦ ପରି କ୍ଷଣସ୍ଥାୟୀ ପଦାର୍ଥ—3. Any short-lived thing (like a bubble).

**ବୁଦ୍‌ବୁଦା ଜଳ**—ଦେ. ବି—(ସଂ ବୁଦ୍‌ବୁଦ+ଜଳ)—ଜଳ ବୁଦ୍ ବୁଦ୍—
Budbudā-jala Water bubbles, (ଢ଼—ବୁଦ୍ ବୁଦା ଜଳ
ଭୁଡ଼ଭୁଡ଼ୀ **बुलबुला, बुदबुदा** ଅଣ୍ଡଧର, ଇହାଣ ଥିଲେ ଶୂନ୍ୟ ହସ୍ତ । ଯଶୋବନ୍ତ—ପ୍ରେମଭକ୍ତି ବ୍ରହ୍ମଗୀତା । )

**ବୁଦା**—ଦେ. ବି—(ସଂ. ମୁଦ୍ ଧାତୁ; ଯହିଁରୁ ବୁଜିବା ହୋଇଅଛି)—୧ ।
Budā ଗୁଳ୍ମମାନଙ୍କର ସମଷ୍ଟି; କ୍ଷୁପ—1. Bush. [ଢ଼—ଲୁଚନ୍ତି
ଝୋପ ବୁଦାମାନ ପଛେ, ନାରଦ ଦେଖନ୍ତି ପ୍ରତ୍ୟକ୍ଷେ । ଜଗନ୍ନାଥ. ଭାଗବତ ।) ୨ । ଏକ ସ୍ଥାନରେ ଉଠିଥିବା ବାଉଁଶ ଗଛର ସମଷ୍ଟି—2. A grove of bamboos. ୩ । ଛୋଟ ଜଙ୍ଗଲ—3. Small jungle. [ଢ଼—କେତେକ ଲୋକ ବୁଦା ଭିତରେ ଲୁଚିଲେ । କୃଷ୍ଣସିଂହ. ମହାଭାରତ. ବନ) । ୪ । ଚାରିଆଡ଼େ ବାଡ଼ ବୁଜା ଯାଇ ଲଗା ଯାଇଥିବା ନୂତନ ଗଛ—4 young tree newly planted and sorrounded by fencing to protect them from the ravages of cattle). (ଯଥା—ଏ ବର୍ଷ ମୁଁ ମୋ ବାଡ଼ିରେ ୩ ବୁଦା ନଡ଼ିଆ ଓ ୨ ବୁଦା ପଣସ ଲଗାଇ ଅଛି । ]

**ବୁଦାବୁଦି**—ଦେ. ବି—(ସହଚର)—ଛୋଟ ଓ ବଡ଼ ବୁଦାମାନ—
Budā budi Large and small bushes.
ଝୋପଝାପି, **छोटी और बडी झाडी, झुरमुट**

**ବୁଦି**—ଦେ. ବି—ଛୋଟ ବୁଦା—Small bush. (ଯଥା—ମୋର
Budi ଜମା ବୁଦିଏ ବିବୃଦ୍ଧ ବାଉଁଶ ଅଛି, ସେଥିକି କାଟି ଦେଲେ
ଟୁପି **जाडी** ଏକା ବର୍ଷକେ ମୋ ପାଣ୍ଠି ଶେଷ ।)

**ବୁଦି ବୁଦିକା**—ଦେ. ବିଣ—ବୁଦ୍ଧି ବୁଦିକିଆ (ଦେଖ)—
Budibudika ଝୁପଡ଼ୀ Budibudikiā (See)
ପ୍ରାଦେ. (ଗଞ୍ଜାମ) ବି—ଗୋରୁଖିଆ (ଦେଖ)
Gorukhiā (See).

**ବୁଦି(ଦ୍,ଦୁ)ବୁଦିକିଆ**—ଦେ. ବିଣ—ଏଠାରେ ସେଠାରେ ଗୋଟିଏ
Budi(d;du)budikiā ବୁଦା ହୋଇ ଉଠିଥିବା—In sepa-
ଝୁପଡ଼ୀ **झाडी वाला** rate and thinly scattered bushes.

**ବୁଦୁକା**—ଦେ, ବିଣ—୧ । ମୋଟକା; ଭାରି—1. Heavy. ୨ ।
Budukā ସ୍ଥୂଳକାୟ—1. Stout; corpulent. ଦେ. ବି—
ଲତା ଓ ଫଳବିଶେଷ—A cucurbitatious fruit and its creeper.

**ବୁଦୁ ବୁଦୁ**—ଦେ. ବି—(ସଂ. ବୁଦ୍‌ବୁଦ)—ବୁଦ୍‌ବୁଦ; ପାଣିଫୋଟକା—
Budu budu ଭୁଡ଼ଭୁଡ଼ି **बुदबुदा** Water bubble.

**ବୁଦ୍ଧ**—ସଂ. ବି. ପୁଂ—(ବୁଧ ଧାତୁ=ଜାଣିବା+କର୍ତ୍ତୃ. ତ)—୧ । ଜ୍ଞାନୀ—
Buddha 1. A wise man; a sage ୨ । ବୌଦ୍ଧମତ ପ୍ରବର୍ତ୍ତକ ମୁନି; ଶାକ୍ୟସିଂହ; ଗୌତମ ବୁଦ୍ଧ—2 The founder of Buddhism; name of a sage. [ଦ୍ର—ଏ ହିମାଳୟର ସମୀପବର୍ତ୍ତୀ କପିଳବାସ୍ତୁର ରାଜା ଶୁଦ୍ଧୋଦନଙ୍କ ଔରସ ମହାମାୟା ବା ମାୟା ଦେବୀଙ୍କ ଗର୍ଭରୁ ଖ୍ରୀ. ପୂର୍ବ ୫୫୦ ଅବ୍ଦରେ ଜନ୍ମ ଗ୍ରହଣ କରି ଗୋପା ନାମ୍ନୀ ରାଜକନ୍ୟାଙ୍କୁ ବିବାହ କରିବା ପରେ ଗୃହ ତ୍ୟାଗ କରି ତପସ୍ୟାଚରଣ ପୂର୍ବକ ସତ୍ୟ ଧର୍ମର ଜ୍ୟୋତି ଲାଭ କରି ପ୍ରଚାର କରିଥିଲେ । ଏହାଙ୍କର ଅନ୍ୟ ନାମ ଗୌତମ, ସିଦ୍ଧାର୍ଥ, ଶାକ୍ୟସିଂହ । ତପଃସାଧନ କରି ସିଦ୍ଧି ଲାଭ କରିବା ପରେ ସେ ସଂସାରରେ ବୁଦ୍ଧ ନାମରେ ଖ୍ୟାତ ହେଲେ ଓ ବୌଦ୍ଧ ଧର୍ମ ପ୍ରଚାର କଲେ । ମାଘ ପୂର୍ଣ୍ଣିମା ଦିନ ଏ ଜନ୍ମ ଗ୍ରହଣ କରିଥିଲେ । ଶିଶୁ ଅବସ୍ଥାରେ ଏ ମାତାଙ୍କୁ ହରାଇ ଥିଲେହେଁ ଏହାଙ୍କ ବିମାତା ମହାପ୍ରଜାବତୀ ଏହାଙ୍କୁ ବହୁ ସ୍ନେହରେ ପାଳିଥିଲେ । ବାଲ୍ୟକାଳରେ କୌଶିକ ବିଶ୍ୱାମିତ୍ର ଏହାଙ୍କୁ ଅନେକ ଶାସ୍ତ୍ର ଓ କଳା ବିଦ୍ୟା ଶିକ୍ଷା ଦେଇଥିଲେ । ବାଲ୍ୟକାଳରେ ରାଜପ୍ରାସାଦରେ ଥାଇ ମଧ୍ୟ ଏ ଏକାକୀ ବସି ସଂସାରର ତ୍ରିବିଧ ଦୁଃଖର ନିବୃତ୍ତିର ଉପାୟ ଚିନ୍ତା କରୁଥିଲେ । ରାଜା ଶୁଦ୍ଧୋଦନ ପୁତ୍ରଙ୍କର ଏ ବୈରାଗ୍ୟଯୁକ୍ତ ଅବସ୍ଥା ଦେଖି ତାଙ୍କୁ ଭୋଗ ବିଳାସ ମଧ୍ୟରେ ରଖିଲେ ଓ ତାଙ୍କୁ ଜଣେ ରାଜକୁମାରୀଙ୍କ ସଙ୍ଗେ ବିବାହ କରାଇଲେ । ଥରେ ରାଜକୁମାର ନଗର ଭ୍ରମଣ କରିବା ସମୟରେ ଜଣେ ଦୁର୍ବଳ ବୃଦ୍ଧକୁ, ଥରେ ଜଣେ ରୋଗୀକୁ, ଥରେ ଗୋଟିଏ ଶବକୁ ଦେଖି ସଂସାର ପ୍ରତି ପୂର୍ବାପେକ୍ଷା ବେଶି ବିରକ୍ତ ଓ ଉଦାସୀନ ହେଲେ ଓ ଶେଷରେ ଜଣେ ସନ୍ନ୍ୟାସୀଙ୍କୁ ଦେଖି ସ୍ଥିର କଲେ ଯେ ସଂସାରର ଦୁଃଖରୁ ମୁକ୍ତି ପାଇବାର ଏକମାତ୍ର

ଉପାୟ ବୈରାଗ୍ୟ ଅଟେ । କାଳକ୍ରମେ ଗୋପାଙ୍କ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ଜାତ ହେବାରୁ ସେ ସଂସାର ତ୍ୟାଗ କରିବାର ସ୍ଥିର ସଂକଳ୍ପ କଲେ । ଦିନେ ରାତିରେ ସ୍ତ୍ରୀ ନିଦ୍ରିତା ଥିବା ବେଳେ ସେ ଘରୁ ବାହାରି ଗଲେ । ସେତେବେଳେ ତାଙ୍କୁ ୨୯ ବରଷ ବୟସ ହୋଇଥିଲା । ସେ ଜଙ୍ଗଲକୁ ଯାଇ ତପସ୍ୟା କଲେ ଓ ପରେ ଗୟା ନିକଟସ୍ଥ ନିରଞ୍ଜନା ନଦୀର କୂଳସ୍ଥ ଉରୁବିଲ ଗ୍ରାମରେ ରହି ଯୋଗସାଧନ ଓ ତପଶ୍ଚରଣ କଲେ ଓ ଏହି ସାଧନାର ଫଳରେ ସେ କାମକ୍ରୋଧାଦି ରିପୁଙ୍କୁ ଦମନ କରିବାକୁ ସମର୍ଥ ହେଲେ । ଗୃହରୁ ବାହାରି ଆସିବାର ୭ ବର୍ଷ ପରେ ଆଷାଢ଼ ପୂର୍ଣ୍ଣିମା ରାତିରେ ମହାବୋଧି ବୃକ୍ଷ ମୂଳରେ ତାଙ୍କର ଉଦ୍ବୋଧନ ହେଲା ଓ ସେ ବୁଦ୍ଧତ୍ୱ ଲାଭ କଲେ । ସେହି ଦିନଠାରୁ ସେ ବୁଦ୍ଧ ବା ଗୌତମ ବୁଦ୍ଧ ନାମରେ ଖ୍ୟାତ ହେଲେ । ଧର୍ମ ପ୍ରଚାରାର୍ଥ ସେ କାଶୀ ଆସିଲେ ଓ ତାଙ୍କ ପ୍ରଚାର ଫଳରେ ଅନେକ ରାଜା ରାଜକୁମାର, ପ୍ରତିଷ୍ଠିତ ବ୍ୟକ୍ତି ଓ ସାଧାରଣ ବ୍ୟକ୍ତି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ମଗଧର ରାଜା ବିମ୍ବିସାର ତାଙ୍କର ଶିଷ୍ୟ ହେଲେ ଓ ସମଗ୍ର ଉତ୍ତର ଭାରତରେ ତାଙ୍କ ପ୍ରଚାରିତ ବୌଦ୍ଧଧର୍ମ ବ୍ୟାପିଲା । ତାଙ୍କୁ ଘରକୁ ବାହୁଡ଼ାଇ ଆଣିବାକୁ ରାଜା ଶୁଦ୍ଧୋଦନ ଯେତେ ଲୋକଙ୍କୁ ପଠାଇଲେ ସେମାନେ ବୁଦ୍ଧଦେବଙ୍କ ଶିଷ୍ୟ ହୋଇ ତେଣେ ପଛକୁ ରହିଲେ । ପିତାଙ୍କ ଅନୁରୋଧ ରକ୍ଷା କରି ବୁଦ୍ଧଦେବ ରାଜଧାନୀକୁ ଆସିଲେ ଓ ତାଙ୍କ ପୁତ୍ର ରାହୁଲ ବୁଦ୍ଧଦେବଙ୍କର ପ୍ରଧାନ ଶିଷ୍ୟ ହେଲେ । ତତ୍‌ପରେ ବୁଦ୍ଧଦେବ ଲିଚ୍ଛବୀର ମହାରାଜାଙ୍କ ନିମନ୍ତ୍ରଣରେ ବୈଶାଳୀ ଗଲେ; ସେଠାରୁ ସଂକାଶ୍ୟ, ଶ୍ରାବସ୍ତୀ, କୌଶାମ୍ବୀ, ରାଜଗୃହ, ପାଟଳୀପୁତ୍ର, କୁଶୀନଗର ଆଦି ଭ୍ରମଣ କରି ଧର୍ମ ପ୍ରଚାର କଲେ ଓ ସହସ୍ର ସହସ୍ର ଲୋକ ତାଙ୍କର ଶିଷ୍ୟ ହେଲେ । ତାଙ୍କ ଶିଷ୍ୟମାନେ ମଧ୍ୟ ନାନାସ୍ଥାନ ଭ୍ରମଣ କରି ଧର୍ମ ପ୍ରଚାର କଲେ । ସେ ସମୟକୁ ହିନ୍ଦୁ ଧର୍ମ ଓ କର୍ମକାଣ୍ଡର ଯଜ୍ଞାର୍ଥେ ପଶୁବଧର ବହୁଳତା ହୋଇଥିଲା । ସେ ଜୀବ ମାତ୍ରରେ ଦୟା ଓ ଅହିଂସା ଧର୍ମ ପ୍ରଚାର କଲେ । ବୁଦ୍ଧଦେବ ୪୪ ବର୍ଷକାଳ ଧର୍ମ ପ୍ରଚାର କଲେ; ଶେଷରେ କୁଶୀନଗରର ନିକଟବର୍ତ୍ତୀ ବନରେ ଥିବା ଗୋଟିଏ ଶାଳବୃକ୍ଷମୂଳରେ ପ୍ରାୟ ୮୦ ବର୍ଷ ବୟସରେ ତାଙ୍କର ଦେହାନ୍ତ ବା 'ପରି-ନିର୍ବାଣ' ହେଲା । ତାଙ୍କ ମୃତ୍ୟୁ ପରେ ତାଙ୍କର ଉପଦେଶମାନ ସଂଗୃହୀତ ହୋଇ ୩ଭାଗରେ ତ୍ରିପିଟକ ଗ୍ରନ୍ଥ ସଙ୍କଳିତ ହେଲା । ଏହାଙ୍କ ଦାର୍ଶନିକ ସିଦ୍ଧାନ୍ତ ବ୍ରାହ୍ମବାଦ ବା ସର୍ବାତ୍ମ ବାଦ ଥିଲା । ଅନୁମାନ ୩୦ ବର୍ଷ ତଳେ ହିମାଳୟର ପାଦ ଦେଶ ନେପାଳର ତରାଇ (Terai) ଅଞ୍ଚଳରୁ ଜଣେ ପ୍ରତ୍ନ-ତତ୍ତ୍ୱବିଦ୍ ସାହେବ (ଫୁରର) ଖଣ୍ଡିଏ ଶିଳାଲିପି ପାଇଥିଲେ ଓ ସେଥିରେ ଲେଖାଥିବା ୭ଧାଡ଼ି ବ୍ରାହ୍ମୀଅକ୍ଷର ଲିପିରୁ ସେ ସ୍ଥିର କରିଥିଲେ ଯେ ଶିଳାଲିପି ଲିଖିତ 'ଲୁମ୍ବିନୀ' (ଆଧୁନିକ ନେପାଳର 'ଲୁମ୍ବିନୀ' ବା ପ୍ରଚଳିତ ଭାଷାରେ 'ରୁମିଣ୍ଡେଇ') ଗ୍ରାମରେ ବୁଦ୍ଧ ବା ଶାକ୍ୟମୁନି ଜନ୍ମଗ୍ରହଣ କରିଥିଲେ । ସେ ଶିଳାଲିପିର ଅନୁବାଦ ଯଥା—ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକ ଈଶ୍ୱରଙ୍କର ଅତିପ୍ରିୟ ଥିଲେ; ସେ ତାଙ୍କ ରାଜତ୍ୱର ଆରମ୍ଭରୁ ୨୦ ବର୍ଷ ପର୍ଯ୍ୟନ୍ତ ଦେଶ ବିଜୟରେ ବ୍ୟାପୃତ ଥାଇ ବହୁ ରକ୍ତପାତ ଓ ନାନା ଅନ୍ୟାୟ ଅତ୍ୟାଚାର କରିଥିଲେହେଁ, ଶେଷରେ ଏହି ସ୍ଥାନକୁ ଆସିଥିଲେ ଏବଂ ଈଶ୍ୱରଙ୍କ ଉପାସନା ମନ୍ତ୍ର ଉଚ୍ଚାରଣ କରି କହିଥିଲେ:—"ଏହି ସ୍ଥାନରେ ବୁଦ୍ଧ ଶାକ୍ୟମୁନି ଜାତ ହୋଇଥିଲେ, ତେଣୁ ଏ ସ୍ଥାନ ଅତି ପବିତ୍ର ଅଟେ । ବୁଦ୍ଧ ଏଠାରେ ଜାତ ହୋଇଥିବାରୁ ତାଙ୍କ ପାଇଁ ଗୋଟିଏ ବୃହତ୍ ସୂର୍ଯ୍ୟ ମୂର୍ତ୍ତି ସମନ୍ୱିତ ଶିଳାଫଳକ ଏବଂ ଏକ ପ୍ରସ୍ତର ସ୍ତମ୍ଭ ଏଠାରେ ନିର୍ମିତ ହେଉଅଛି । ଏହି ଲ(ଲୌ)ମ୍ବିନୀ ଗ୍ରାମରେ ସେ ଜାତ ହୋଇଥିଲେ ତେଣୁ ଆଜଠାରୁ ଏହି ଗ୍ରାମରୁ କୌଣସି ରାଜକାୟ କର ଗ୍ରହଣ କରାଯିବ ନାହିଁ । ପରନ୍ତୁ ଗ୍ରାମଟିର ସୌଷ୍ଠବ ସମ୍ପାଦନ ପାଇଁ ରାଜକୋଷରୁ ପ୍ରଚୁର ଅର୍ଥ ବ୍ୟୟ କରାଯିବ ।" ଅଳ୍ପଦିନ ତଳେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ଦକ୍ଷିଣ ଦିଗରେ ପ୍ରାୟ ୧ମାଇଲ୍ ଦୂରରେ କପିଳେଶ୍ୱର ନାମକ ଗ୍ରାମରୁ ଗୋଟିଏ ଶିଳାଲିପି ମିଳିଅଛି । ତାହା ବ୍ରାହ୍ମୀ ଅକ୍ଷରରେ ୭ ଧାଡ଼ିରେ ଲେଖା । ନେପାଳ ଶିଳାଲିପିରେ ଯାହା ଲେଖା, ଏଥିରେ ମଧ୍ୟ ତାହା ଲେଖା । ତେବେ ୭ଟି ସ୍ଥାନରେ ସାମାନ୍ୟ ପାର୍ଥକ୍ୟ ଦେଖାଯାଏ । ନେପାଳ ଶିଳାଲିପିର ୪ଟି ଶବ୍ଦ ଭୁବନେଶ୍ୱର ଶିଳାଲିପିରେ ନାହିଁ ଏବଂ ଭୁବନେଶ୍ୱର ଶିଳାଲିପିର ୩ଟି ଶବ୍ଦ ନେପାଳ ଶିଳାଲିପିରେ ନାହିଁ; କିନ୍ତୁ ଦୁହେଁ ଏକାର୍ଥ-ବୋଧକ । ଭୁବନେଶ୍ୱର ଶିଳାଲିପିର ୧ମ ଓ ୨ୟ ଧାଡ଼ିରେ ଥିବା ପ, ନ, ଯ ଅକ୍ଷରମାନଙ୍କ ଗଢ଼ଣ ଶେଷ ଚାରିଧାଡ଼ିରେ ଥିବା ଉକ୍ତ ଅକ୍ଷରମାନଙ୍କ ଗଢ଼ଣରୁ ଟିକିଏ ପୃଥକ୍ । ଅନୁମାନ କରାଯାଇ ପାରେ ଯେ ଏହା ୨ ଜଣ କାରିଗରଙ୍କ ଦ୍ୱାରା ଖୋଦିତ । ଭୁବନେଶ୍ୱର ନିକଟରେ ଅଦ୍ୟାପି 'ଲେମ୍ବାନୀ' ବୋଲି ଏକ ଗ୍ରାମ ଅଛି । ଭୁବନେଶ୍ୱର ମନ୍ଦିର ମଧ୍ୟରୁ ମଧ୍ୟ ସମ୍ପ୍ରତି ଗୋଟିଏ ଶିଳାଲିପି ବାହାରି ଅଛି, କିନ୍ତୁ ତାହାର ପାଠୋଦ୍ଧାର ଏ ପର୍ଯ୍ୟନ୍ତ ହୋଇ ନାହିଁ—ଦୈନିକ ଆଶା ୨୪।୮।୨୮ ଶ୍ରୀ ଭଗବାନ ପଣ୍ଡାଙ୍କ ପ୍ରେରିତ ପତ୍ର । ବସ୍ତୁତଃ ଜଣାପଡ଼େ ଯେ ନେପାଳରେ ପ୍ରାପ୍ତ ଶିଳାଲିପିର ଭୁବନେଶ୍ୱରର ଶିଳାଲିପି ଗୋଟିଏ ପ୍ରତିଲିପି ମାତ୍ର । ଭୁବନେଶ୍ୱର ଗୋଟିଏ ପ୍ରସିଦ୍ଧ ପ୍ରାଚୀନ ବୌଦ୍ଧକ୍ଷେତ୍ର ଥିଲା, କିନ୍ତୁ ଏ ଅଞ୍ଚଳରେ ଶାକ୍ୟମୁନି ଜନ୍ମଗ୍ରହଣ କରିଥିବା କଳ୍ପନା କଳ୍ପିତ ବୋଲି ଅନୁମିତ ହୁଏ । ]

୩ । ବିଷ୍ଣୁଙ୍କର ୧୦ ଅବତାର ମଧ୍ୟରୁ କଳିଯୁଗରେ ଅବତୀର୍ଣ୍ଣ ହେବା ଦାରୁରୂପୀ ବୌଦ୍ଧାବତାର ( ଏ ଦାରୁ-ମୂର୍ତ୍ତି ଉତ୍କଳର ନୀଳାଚଳ କ୍ଷେତ୍ରରେ ବା ପୁରୀରେ ଜଗନ୍ନାଥ-ରୂପେ ବିରାଜିତ )—3. The ninth iucarnation of Bishnu in the form of an wooden

image in the temple of Puri in Orissa. [ଦ୍ର—ବୁଦ୍ଧଦେବଙ୍କୁ କେହି କେହି ବିଷ୍ଣୁଙ୍କର ନବମ ବା ବୌଦ୍ଧାବତାର ଓ ଜଗନ୍ନାଥବିଗ୍ରହଙ୍କୁ ସେହି ବୁଦ୍ଧଙ୍କର ଦେହର ଅଂଶବିଶେଷ ବୋଲି କହନ୍ତି । ଜଗନ୍ନାଥଦେବଙ୍କର ରଥଯାତ୍ରା ବୌଦ୍ଧ ଉତ୍ସବର ଗୋଟିଏ ନିଦର୍ଶନ ବୋଲି କେହି କେହି କହନ୍ତି; କିନ୍ତୁ ପୁରୀରେ ହିନ୍ଦୁମାନଙ୍କର 'ଜଗନ୍ନାଥ ପୂଜା' ସଙ୍ଗେ ଓ ଆଧୁନିକ ହିନ୍ଦୁଧର୍ମର ଆଚାର ସଙ୍ଗେ ବୌଦ୍ଧଧର୍ମର କୌଣସି ସମତା ଲକ୍ଷିତ ହେଉ ନାହିଁ । ଐତିହାସିକମାନେ ସ୍ଥିର କରିଅଛନ୍ତି ଯେ, ଚୋଡ଼ଗଙ୍ଗ-ଦେବଙ୍କ ସନ୍ତାନହୀନା ପାଟରାଣୀ ଗୁଣ୍ଡିଚା ବା ଗୁଣ୍ଡିଚୋଡ଼ୀ ଦେବୀ ବା ଗୁଣ୍ଡିକେଶୀ ଦେବୀ ଜଗନ୍ନାଥଙ୍କ ରଥଯାତ୍ରାକୁ ଆରମ୍ଭ କରିଥିଲେ ଓ ତାଙ୍କ ନାମ ଅନୁସାରେ ରଥଯାତ୍ରାକୁ ଗୁଣ୍ଡିଚା ବୋଲାଯାଏ । ବର୍ତ୍ତମାନ ଆଚରିତ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ସ୍ୱତନ୍ତ୍ର ଧର୍ମ ଅଟେ । ହିନ୍ଦୁଧର୍ମ ଭାରତର ବାହାରକୁ ଅଗ୍ରସର ହୋଇ ନାହିଁ, କିନ୍ତୁ ବୌଦ୍ଧଧର୍ମ ପ୍ରଚାର-ମାହାତ୍ମ୍ୟରେ ସିଂହଳ, ବ୍ରହ୍ମଦେଶ, ଚୀନ୍, ତିବ୍ବତ୍ ଓ ଜାପାନ ଆଦି ଦେଶରେ ବିସ୍ତୃତି ଲାଭ କରିଅଛି । ବର୍ତ୍ତମାନ ବୌଦ୍ଧଧର୍ମ ଭାରତରେ ବେଶି ବ୍ୟାପ୍ତ ନୁହେଁ ।]

ବି. ବିଣ—(+କର୍ମ. ତ)—୧ । ଜ୍ଞାତ; ବିଦିତ—1 Known. ୨ । ଅନୁଭୂତ—2. Perceived; experienced ୩ । ଜାଗରିତ—3. Awaken. ୪ । ବୋଧଗମ୍ୟ ହୋଇଥିବା--4. Understood; compre-hended.

**ବୁଦ୍ଧ ଗୟା**—ସଂ. ବି—ଗୟାର ୮ମାଇଲ ଦୂରବର୍ତ୍ତୀ ବୌଦ୍ଧମାନଙ୍କର
Buddha gayā ତୀର୍ଥବିଶେଷ—A place near Gaya, sacred to the Buddihsts. [ଦ୍ର—ଏଠାରେ ବୁଦ୍ଧଦେବ ତପସ୍ୟା କରିଥିଲେ; ଏହା ଜଣେ ହିନ୍ଦୁ ମହନ୍ତଙ୍କ ମାରଫତଦାରରେ ଅଛି ।]

**ବୁଦ୍ଧ ଗୁରୁ (ସ୍ୱାମୀ)**--ମହିମାଧର୍ମ ସମ୍ପ୍ରଦାୟର ପ୍ରତିଷ୍ଠାତା ମହିମାଗୋସାଇଁଙ୍କର
Buddha guru (swāmi) ନାମାନ୍ତର—A name of Mahimā Gosāiñ, the founder of the Mahimā Dharma.

ମହିମା ସ୍ୱାମୀ, ଅଲେଖସ୍ୱାମୀ, ଅଲେଖ, ବ୍ରହ୍ମାବଧୂତ, ଧୂଳିଆଗୋସାଇଁ, ଖୀରିହାରୀ, ଜ(ନୀ)ରିହାରୀ, ଫଳାହାରୀଗୋସାଇଁ, ପ୍ରବୁଦ୍ଧଗୁରୁ } ଅନ୍ୟରୂପ

**ବୁଦ୍ଧ ଦେବ**—ଦେ. ବି—ବୁଦ୍ଧ (୧) (ଦେଖ)
Buddha deba Buddha (1) ( See ).

**ବୁଦ୍ଧି**—ସଂ. ବି (ବୁଧ୍ ଧାତୁ+ଭାବ. ତି) —୧ । ଜ୍ଞାନ—1. Know-
Buddhi ledge. ୨ । ବୋଧ ଶକ୍ତି—2. Intelligence; understanding; perception. ୩ । ମତି; ମନର ନିଶ୍ଚୟାତ୍ମିକା ବୃତ୍ତି; ମନୋବୃତ୍ତିବିଶେଷ—3. Conviction. ୪ । (+କରଣ. ତି) ଚିତ୍ତବୃତ୍ତି; ଅନ୍ତଃକରଣ—4. Mind; the heart. ୫ । (+କର୍ମ. ତି) ମହତ୍ତତ୍ତ୍ୱ-5. The primary faculty or intellect. [ଦ୍ର—ବେଦାନ୍ତ ଦର୍ଶନ ମତରେ ବୁଦ୍ଧି ଅନ୍ତଃକରଣର ଚାରିଟି ବୃତ୍ତି (ମନଃ, ବୁଦ୍ଧି, ଚିତ୍ତ, ଅହଙ୍କାର) ମଧ୍ୟରୁ ୨ୟ ବୃତ୍ତି ଅଟେ । ଏହା ନିତ୍ୟ ଓ ଅନିତ୍ୟ ଭେଦରେ ୨ ପ୍ରକାର । ନିତ୍ୟବୁଦ୍ଧି ପରମାତ୍ମାଙ୍କର ଓ ଅନିତ୍ୟବୁଦ୍ଧି ଜୀବର । ସାଂଖ୍ୟ ମତରେ ତ୍ରିଗୁଣାତ୍ମିକା ପ୍ରକୃତିର ପ୍ରଥମ ବିକାର ବୁଦ୍ଧିତତ୍ତ୍ୱ ଅଟେ ଓ ଏହାକୁ ମହତ୍ତତ୍ତ୍ୱ ବୋଲାଯାଏ । ସାଂଖ୍ୟମତରେ ଜଗତ୍ ଯେତେବେଳେ ସୁପ୍ତାବସ୍ଥାରୁ ଜାଗ୍ରତ ହେଲା, ସେତେବେଳେ ପ୍ରଥମେ ଏହି ମହତ୍ତତ୍ତ୍ୱର ବା ବୁଦ୍ଧିତତ୍ତ୍ୱର ବିକାଶ ହେଲା । ନୈୟାୟିକମାନେ ବୁଦ୍ଧିର ଅନୁଭୂତି ଓ ସ୍ମୃତି ଏହି ଦୁଇ ଭେଦକୁ ସ୍ୱୀକାର କରନ୍ତି । କେତେକଙ୍କ ମତରେ ବୁଦ୍ଧିର ଇଷ୍ଟାନିଷ୍ଟ, ବିପତ୍ତି, ବ୍ୟବସାୟ, ସମାଧିତା, ସଂଶୟ ଓ ପ୍ରତିପତ୍ତି, ଏହି ପାଞ୍ଚଗୁଣ ଓ ଅନ୍ୟ କେତେକଙ୍କ ମତରେ ବୁଦ୍ଧିର ଶୁଶ୍ରୂଷା, ଗ୍ରହଣ, ଶ୍ରବଣ, ଧାରଣ, ଊହ, ଅପୋହ ଓ ଅର୍ଥବିଜ୍ଞାନ ଏହି ସାତଗୁଣ ଅଛି । ପାଶ୍ଚାତ୍ୟ ପଣ୍ଡିତମାନେ ଅନ୍ତଃକରଣର ସବୁ ବ୍ୟାପାରର ସ୍ଥାନ ମସ୍ତିଷ୍କ ଥିବାର ସ୍ଥିର କରନ୍ତି; ବୁଦ୍ଧି ଏକ ପ୍ରାକୃତିକ ଶକ୍ତି ଅଟେ, ତଥାପି ଜ୍ଞାନ ଓ ଅନୁଭବର ସହାୟତାରେ ଏଥିର ବିକାଶ ହୁଏ । ବୁଦ୍ଧିର ଅନ୍ୟ ସଂସ୍କୃତ ପ୍ରତିଶବ୍ଦ ମନୀଷା, ଧୀଷଣା, ଧୀ, ପ୍ରଜ୍ଞା, ମତି, ପ୍ରେକ୍ଷା, ଚିତ୍, ଚେତନା, ଧାରଣା, ପ୍ରତିପତ୍ତି, ମେଧା, ମନ, ମନସ୍, ଜ୍ଞାନ, ବୋଧ, ପ୍ରତିଭା, ବିଜ୍ଞାନ ଓ ସଂଖ୍ୟା—ହି. ଶ.] ଦେ. ବି—୧ । ମନର ବିଚକ୍ଷଣତା—1. Sharpness of intellect. ୨ । ମନର ଗତି—2. Tendency of mind; the bent of mind. ୩ । ପରାମର୍ଶ; ଉପଦେଶ—3. Advice. ( ଉ—ବୁଦ୍ଧି ଦେଇ କରିବ ବଶଯାକ ଲୋପ । କୃଷ୍ଣସିଂହ. ମହାଭାରତ ବନ ।) ୪ । ବିବେଚନା ଶକ୍ତି—4. Reasoning faculty. ୫ । ଉପସ୍ଥିତ ବୁଦ୍ଧି—5. Presence of mind. [ଦ୍ର—ବୁଦ୍ଧି କହିଲେ ଆମ୍ଭେମାନେ ସାଧାରଣତଃ ୪ଟି ଅର୍ଥ ବୁଝିଥାଉଁ—ଯଥା—କ । କୌଣସି ବିଷୟରେ ହଠାତ୍ ପ୍ରବେଶ କରି ତାହା ବୁଝିବାର ଶକ୍ତି—a. Intelligence; sense of understanding (ଯଥା—ସେ ପିଲାଟିର ବୁଦ୍ଧି ସରସ ନୁହେଁ ) ଖ । ହିତାହିତ ବିବେଚନା ଶକ୍ତି—b. The power of distinguishing good from bad; power of discrimination; discretion. ଗ । ଉପାୟ—c. Means Expedient. ( ଉ—ବଡ଼େଇ ହଏ ପରକୁ, ବୁଦ୍ଧି ନ ଆସେ ଘରକୁ । ଢଗ । ଘ । ସାଂସାରିକ ଜ୍ଞାନ; ବିଷୟବୁଦ୍ଧି—d. Worldly wisdom; common sense. କୌଣସି ବିଷୟକୁ ଜାଣିବାର ବା ବୁଝି ପାରିବାର ନାମ ଜ୍ଞାନ; ଅନେକ ବିଷୟରେ ଜ୍ଞାନ ଦୃଢ଼ ହେଲେ ତାହା ଅଭିଜ୍ଞତା; ଧ୍ୟାନଦ୍ୱାରା ସତ୍ୟକୁ ହୃଦୟଙ୍ଗମ କରିବା ପ୍ରଜ୍ଞା; ଧ୍ୟାନ ଓ ଧାରଣା ଶକ୍ତିର ନାମ ଧୀ; ପ୍ରବୃତ୍ତିମୂଳକ ଜ୍ଞାନ—

ଶକ୍ତିକୁ ମଧ୍ୟ; କଷ୍ଟସ୍ପୃହ୍ଣିକା ମନୋବୃତ୍ତିକୁ ବୁଦ୍ଧି ବୋଲାଯାଏ । କିନ୍ତୁ ସାଧାରଣତଃ ଏହି ସମସ୍ତ ବୃତ୍ତିକୁ ଆମ୍ଭେମାନେ 'ବୁଦ୍ଧି' ବୋଲି କହୁଥାଉଁ । ]

**ବୁଦ୍ଧିଆ**—ଦେ ବିଣ—ବୁଦ୍ଧିମାନ୍—
Buddhia **বুদ্ধিয়ার** বুদ্ধিমান Intelligent

**ବୁଦ୍ଧି ଆସିବା**—ଦେ. ବି—ଉପଯୁକ୍ତ ଉପାୟ ସ୍ଥିରହେବା; ବୁଦ୍ଧିର ଉଦୟ ହେବା—The dawning of any expedient in the mind
Buddhi āsiba
ବୁଦ୍ଧି ପରିଚବା } —ଅନ୍ୟରୂପ
ବୁଦ୍ଧି ସ୍ଫୁରିବା }
[ଉ—ବହେଲେ ଦବ ପରିଲୁ, ବୁଦ୍ଧି ନ ଆସେ ଘରକୁ । ଉଗ ।

**ବୁଦ୍ଧି ଖଟା(ଟେ)ଇବା**—ଦେ. କ୍ରି—କୌଣସି କାର୍ଯ୍ୟରେ ନିଜର ବୁଦ୍ଧିକୁ ପ୍ରବେଶ କରାଇବା—To apply one's brain (to somematter).
Buddhi khaṭā(ṭe)iba
**বুদ্ধিখরচকরা** বুদ্ধিখরচকরা (ବୁଦ୍ଧି ଖରଚ କରିବା—ଅନ୍ୟରୂପ)

**ବୁଦ୍ଧିଗମ୍ୟ**—ସ. ବିଣ—(୩ୟା ତତ୍)—ବୋଧଗମ୍ୟ; ବୋଧଶକ୍ତିର ଗୋଚର—Within the compass of one's comprehension capable of being understood by.
Buddhigamya
(ବୁଦ୍ଧିଗୋଚର—ଅନ୍ୟରୂପ)

**ବୁଦ୍ଧିଚକ୍ଷୁଃ**—ସ. ବି—(ବହୁବ୍ରୀହି)—ପ୍ରଜ୍ଞା ଚକ୍ଷୁ; (ଜନ୍ମାନ୍ଧ) ଧୃତରାଷ୍ଟ୍ର—An epithet of Dhrutarāshṭra.
Buddhichakshuh

**ବୁଦ୍ଧିଜୀବୀ**—ସ. ବିଣ. ପୁଂ—(ବୁଦ୍ଧି+ଜୀବ୍ ଧାତୁ+କର୍ତ୍ତୃ ଇନ୍)—୧ । ଯେ ନିଜର ବୁଦ୍ଧିବଳରେ ଜୀବିକା ନିର୍ବାହ କରେ—1. Earning livelihood by intellect; living on one's wits ୨ । ଅତ୍ୟନ୍ତ ବୁଦ୍ଧିମାନ୍—Very intelligent.
Buddhijībi
(ବୁଦ୍ଧିଜୀବିନୀ—ସ୍ତ୍ରୀ).

**ବୁଦ୍ଧି ଦି(ଦୁ)ଶିବା**—ଦେ. ବି—ବୁଦ୍ଧିର ଉଦୟ ହେବା; ଉପାୟ ମନରେ ପଡ଼ିବା—Finding out a way out of a difficulty.
Buddhi di(du)sibā
**বুদ্ধিঘটনা** বুদ্ধি দেখা যাওয়া
(ଉ—କି କରିବେ କିଛି ବୁଦ୍ଧି ନ ଦିଶିଲା, ନ ପାଇଲେ ସ୍ଥଳକୂଳ । ନନ୍ଦକିଶୋର ଗ୍ରନ୍ଥାବଳୀ ।

**ବୁଦ୍ଧି ଦେବା**—ଦେ. କ୍ରି—ପରାମର୍ଶ ଦେବା; ଉପାୟ ବତାଇଦେବା—To advise.
Buddhi debā বুদ্ধি দেওয়া **বুদ্ধিদেনা**

**ବୁଦ୍ଧି ନ ଆସିବା**—ଦେ. ବି—କୌଣସି ଘଟଣାର ପ୍ରତିକାର ପାଇଁ ଉପାୟ ମନରେ ନ ପଡ଼ିବା—Not being able to find out a means; being at a loss.
Buddhi na āsibā
**বুদ্ধিনহীআনা**
ବୁଦ୍ଧି ହଜିବା } —ଅନ୍ୟରୂପ
ବୁଦ୍ଧି ନ ଦିଶିବା }
(ଉ—ବୁଦ୍ଧି ନ ଆସେ ଘରକୁ, ବହେଲେ ଦବ ପରିଲୁ । ଉଗ ।)

**ବୁଦ୍ଧିନାଶ**—ସ. ବି—(୬ଷ୍ଠୀ ତତ୍; ବୁଦ୍ଧି+ନାଶ)—ବୋଧ ଶକ୍ତିର ଲୋପ—Destruction or disappearance of one's reasoning faculty.
Buddhi nāsa
(ବୁଦ୍ଧିଲୋପ—ଅନ୍ୟରୂପ)

**ବୁଦ୍ଧିପର**—ସ. ବି—(୬ଷ୍ଠୀ ତତ୍)—ବୁଦ୍ଧିର ଅଗମ୍ୟ (ବି. ଣ)—Beyond comprehension.
Buddhipara

**ବୁଦ୍ଧି ବତା(ତେ)ଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ଉପସ୍ଥିତ ବିପଦର ବା ଘଟଣାର ପ୍ରତିକାର ବତାଇବା—To suggest to a person a means to achieve or evade some thing.
Buddhi bata(te)ibā
**বুদ্ধিবাতলানা** বুদ্ধিবাতলান

**ବୁଦ୍ଧିବନ୍ତ**—ଗ୍ରା. ବିଣ. ପୁଂ (ସ. ବୁଦ୍ଧିମତ୍)—ବୁଦ୍ଧିମାନ୍ (ଦେଖ)—Budhiman (See).
Buddhibantā **বুদ্ধিবন্ত**
(ଉ—(ବୁଦ୍ଧିବାନ୍—ଅନ୍ୟରୂପ) ଦ୍ୱାଦଶେ ବୁଦ୍ଧିବନ୍ତ ଜାଣ, ମେଧାଗ୍ର ସୁଖୁଧୀ; ଗୁଣେଣ । ପ୍ରାଚୀ—ପୂର୍ଣ୍ଣତମ ଚନ୍ଦ୍ରୋଦୟ ।)
ବୁଦ୍ଧିବନ୍ତା } —ସ୍ତ୍ରୀ ବୁଦ୍ଧିମାନ
ବୁଦ୍ଧିବନ୍ତୀ }

**ବୁଦ୍ଧିବାଟ**—ଉପାୟ—Means; expedient.
Buddhibāṭa

**ବୁଦ୍ଧି ବିକାଶ**—ସ. ବି—(୬ଷ୍ଠୀ ତତ୍; ବୁଦ୍ଧି+ବିକାଶ)—ବୋଧଶକ୍ତିର ପ୍ରକାଶ—The dawning of understanding or intelligence.
Buddhi bikāsa

**ବୁଦ୍ଧି ବିବେକ**—ଦେ. ବି, (ସହଚର)—ବୁଦ୍ଧି—Intelligence; discernment.
Buddhi bibeka **সুধবুধ**
(ବୁଦ୍ଧି ସୁଦ୍ଧି—ଅନ୍ୟରୂପ) বুদ্ধিশুদ্ধি

**ବୁଦ୍ଧି ବିହୀନ**—ସ. ବିଣ. ପୁଂ. ( ୩ୟା ତତ୍ )—ନିର୍ବୁଦ୍ଧିଆ; ନିର୍ବୋଧ; ଯାହାର ବୁଦ୍ଧି ନାହିଁ—Stupid; ignorant; foolish; silly.
Buddhi bihīna
ବୁଦ୍ଧିହୀନ } —ଅନ୍ୟରୂପ
ବୁଦ୍ଧିଶୂନ୍ୟ }
(ବୁଦ୍ଧି ବିହୀନା, ବୁଦ୍ଧିହୀନା, ବୁଦ୍ଧିଶୂନ୍ୟା—ସ୍ତ୍ରୀ)
(ବୁଦ୍ଧି ବିହୀନତା, ବୁଦ୍ଧି ହୀନତା, ବୁଦ୍ଧି ଶୂନ୍ୟତା—ବିଶେଷ୍ୟ ରୂପ)

**ବୁଦ୍ଧି ବୃତ୍ତି**—ସ. ବି. (ବୁଦ୍ଧି+ବୃତ୍ତି; ୬ଷ୍ଠୀ ତତ୍)—ବୋଧ କରିବାର ଶକ୍ତି; ବୁଝିବାର ଶକ୍ତି; କଷ୍ଟସ୍ପୃହ୍ଣିକା ମନୋବୃତ୍ତି—Faculty of understanding; intellect-intelligence; intellectual faculty.
Buddhi bṛutti

**ବୁଦ୍ଧିମତ୍ତ୍ୱ**—ସ. ବି. ( ବୁଦ୍ଧିମତ୍+ଭାବାର୍ଥେ. ତ୍ୱ )—ବୁଦ୍ଧିମାନ୍ ହେବା ଅବସ୍ଥା—Intelligence
Buddhimattā

**ବୁଦ୍ଧିମନ୍ତ**—ଦୈ. ବିଣ. ପୁଂ (ସ. ବୁଦ୍ଧିମତ୍)—ବୁଦ୍ଧିମାନ୍ (ଦେଖ)
Buddhi manta Buddhimān (See)
**বুদ্ধিবন্ত** (ଉ—ହନୁମାନ ଅଟନ୍ତି ଯେ ଅତି ବୁଦ୍ଧିମନ୍ତ । କୃଷ୍ଣଦ୍ୱୈ. ମହାଭାରତ, ବନ ।)
[ବୁଦ୍ଧିମନ୍ତା(ନ୍ତୀ)—ସ୍ତ୍ରୀ] বুদ্ধিমান্

**ବୁଦ୍ଧିମାନ୍**—ସ. ବିଣ. ପୁଂ (ବୁଦ୍ଧି+ଅସ୍ତ୍ୟ ଅର୍ଥରେ, ମତ୍; ବୁଦ୍ଧିମତ୍ ୧ମା. ୧ବ)—ବୁଦ୍ଧି ବିଶିଷ୍ଟ—Intelligent.
Buddhimān
(ବୁଦ୍ଧିମତୀ—ସ୍ତ୍ରୀ)

**ବୁଦ୍ଧିରେ ପଡ଼ିବା**—ଦେ. କ୍ରି—(ଅନ୍ୟର) ଉପଦେଶ ବା ଅନୁରୋଧ ଅନୁସାରେ କାର୍ଯ୍ୟ କରିବା ବା ଚାଳିତ ହେବା—To act or be guided according to the advice or request of another.
Buddhire paṛdibā
**बुद्धिमे पडना**
(ଉ—ପୁତ୍ର ସ୍ନେହରେ ପୁତ୍ର ବୁଦ୍ଧିରେ ପଡ଼ିଲେ । କୃଷ୍ଣଦ୍ୱୈ. ମହାଭାରତ. ବନ ।)

**ବୁଦ୍ଧିଶାଳୀ**—ସ. ବିଣ. ପୁଂ. (ବୁଦ୍ଧି+ଶାଳିନ୍; ୧ମା. ୧ବ)—ବୁଦ୍ଧିମାନ୍—Intelligent.
Buddhisāli
(ବୁଦ୍ଧିଶାଳିନୀ, ବୁଦ୍ଧିଶୀଳା—ସ୍ତ୍ରୀ) ( ବୁଦ୍ଧିଶୀଳ—ଅନ୍ୟରୂପ

**ବୁଦ୍ଧି ସଦ୍ମ**—ସଂ ବି. (୬ଷ୍ଠୀ ତତ୍)—ଚିତ୍ତ; ହୃଦୟ—
Buddhi sadma The heart.
[ଦ୍ର—ଆଧୁନିକ ବିଜ୍ଞାନ ଅନୁସାରେ ମସ୍ତିଷ୍କହିଁ ବୁଦ୍ଧିସଦ୍ମ ଅଟେ।]

**ବୁଦ୍ଧି ସହାୟ**—ସଂ. ବି. (୬ଷ୍ଠୀ ତତ୍; ବୁଦ୍ଧି=ଜ୍ଞାନ+ସହାୟ=ସହଚର)-
Buddhi sahāya ୧। ମନ୍ତ୍ରୀ—1. Minister.
୨। ପରାମର୍ଶଦାତା—2. Adviser.

**ବୁଦ୍ଧିହତ**—ସଂ. ବିଣ. ପୁଂ. (ବହୁବ୍ରୀହି)—୧। ବୁଦ୍ଧିହୀନ; ନିର୍ବୁଦ୍ଧିଆ—
Buddhi hata 1. Foolish. ୨। କିଂକର୍ତ୍ତବ୍ୟବିମୂଢ଼—
(ବୁଦ୍ଧିହତା—ସ୍ତ୍ରୀ) 2. Bewildered.

**ବୁଦ୍ଧିହା**—ସଂ. ବିଣ. (ବୁଦ୍ଧି+ହନ ଧାତୁ+କର୍ତ୍ତୃ. କ୍ୱିପ୍) ଯାହା ମନୁଷ୍ୟର
Buddhihā ବୁଦ୍ଧିକୁ ନଷ୍ଟ କରେ — Blunting the intellect.

**ବୁଦ୍ଧି ହେବା**—ଦେ° କ୍ର—୧। ଶିଶୁର ମାନସିକ ଶକ୍ତିର ବିକାଶ ହେବା-
Buddhi hebā 1. The dawning of intellect in a
ବୁଦ୍ଧିଶୁଦ୍ଧି ହଓଆ child. ୨। ଶିଶୁଠାରେ ଭଲ ମନ୍ଦ ବୁଝିବାର
ଶକ୍ତିର ବିକାଶ ହେବା—2. The dawning
of discretion in a child. (ଯଥା—ପିଲାର ବୁଦ୍ଧି
**ସୁଦ୍ଧବୁଦ୍ଧହୋନା** ହୋଇ ନାହିଁ, ସେ ବଡ଼ ହୋଇଗଲେ ସବୁ ବୁଝି ପାରିବ
ଯେ।)

**ବୁଦ୍ଧୀନ୍ଦ୍ରିୟ**—ସଂ. ବି. (ହିନ୍ଦୁ ଦର୍ଶନ; ୬ଷ୍ଠୀ ତତ୍; ବୁଦ୍ଧି+ଇନ୍ଦ୍ରିୟ)—
Buddhīndriya ଜ୍ଞାନେନ୍ଦ୍ରିୟ; ଯେଉଁ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ
ମନୁଷ୍ୟର ବାହ୍ୟ ବସ୍ତୁ ସମ୍ବନ୍ଧେ ଜ୍ଞାନ ଜନ୍ମେ; ଚକ୍ଷୁ, କର୍ଣ୍ଣ
ନାସିକା, ଜିହ୍ୱା, ତ୍ୱକ୍ ଓ ମନ—(Hindu Philosophy)
The organs of perception, viz. eyes, ears,
nose, tongue, skin and the mind.

**ବୁଦ୍‌ବୁଦା**—ଦେ. ବି—ବୁଦ୍‌ବୁଦ୍ (ଦେଖ)—Budbud (See)
Budbudā (ଦ୍ର—ଅଣ ଅକ୍ଷର ନିମନ୍ତେ, ବୁଦ୍‌ବୁଦା ପ୍ରାୟେ ମୁଁ
ଶୂନ୍ୟରେ। ପ୍ରାଚୀ. ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା।)

**ବୁଧ୍ (ଧାତୁ)**—ସଂ—ଜାଣିବା—
Budh (root) To know.

**ବୁଧ**—ସଂ. ବି. (ବୁଧ୍ ଧାତୁ+କର୍ତ୍ତୃ. ଅ)—୧। ଜ୍ୟୋତିଷୋକ୍ତ
Budha ନବ ଗ୍ରହ ମଧ୍ୟରୁ ୪ର୍ଥ ଗ୍ରହ—1. The peanet
Mercury. [ଦ୍ର—ଆଧୁନିକ ଜ୍ୟୋତିଷ ଗଣନାନୁସାରେ ସୌର ଜଗତର ସମସ୍ତ ଗ୍ରହଙ୍କଠାରୁ ବୁଧ ଗ୍ରହ ସୂର୍ଯ୍ୟଙ୍କର ବେଶି ନିକଟବର୍ତ୍ତୀ। ଏ ସୂର୍ଯ୍ୟଙ୍କଠାରୁ ୩ କୋଟି ୬୦ ଲକ୍ଷ ମାଇଲ ଦୂରରେ ରହି ୮୮ ଦିନରେ ସୂର୍ଯ୍ୟଙ୍କୁ ଥରେ ପରିକ୍ରମଣ କରେ। ଏ ଗ୍ରହର ବ୍ୟାସ ୩୧୦୦ ମାଇଲ ଓ ଏ ୨୪ ଘଣ୍ଟା ୫୫ ମିନିଟ୍‌ରେ ନିଜର ଅକ୍ଷରେ ଥରେ ଘୁରେ। ବୁଧର କକ୍ଷର ବ୍ୟାସ ୭ କୋଟି ୨୦ ଲକ୍ଷ ମାଇଲ ଏବଂ ବୁଧ ପ୍ରତି ଘଣ୍ଟାରେ ପ୍ରାୟ ୧ ଲକ୍ଷ ମାଇଲ ଗତି କରେ। ଏହା ସୂର୍ଯ୍ୟଙ୍କର ଅତ୍ୟନ୍ତ ସମୀପରେ ଥିବାରୁ ଓ ସୂର୍ଯ୍ୟ ଯେଉଁ ରାଶିରେ ଥାଆନ୍ତି ଏ ପ୍ରାୟ ସେହି ରାଶିରେ ଥିବାରୁ ଖାଲି ଆଖିକୁ ଦେଖା ପଡ଼େ ନାହିଁ। ଏହାର ନିଜର ଆଲୋକ ନାହିଁ, ଏ ସୂର୍ଯ୍ୟଙ୍କ ଆଲୋକରେ ଉଜ୍ଜ୍ୱଳ ଦେଖାଯାଏ। ଆକାରରେ ଏହା ପୃଥିବୀର ୧୯ ଭାଗର ଏକ ଭାଗ। ହିନ୍ଦୁ ଜ୍ୟୋତିଷଶାସ୍ତ୍ର ମତରେ ନବଗ୍ରହ ମଧ୍ୟରୁ ବୁଧ ୪ର୍ଥ ଗ୍ରହ ଓ ଦେବଗୁରୁ ବୃହସ୍ପତିଙ୍କ ଧର୍ମ ପତ୍ନୀ ତାରାଙ୍କଠାରୁ ଚନ୍ଦ୍ରଙ୍କ ଔରସରେ ଉତ୍ପନ୍ନ। ଏ ନପୁଂସକ, ଶୂଦ୍ର, ଅଥର୍ବବେଦଜ୍ଞ, ରଜୋଗୁଣୀ, ମଗଧ ଦେଶର ଅଧିପତି, ବାଲସ୍ୱଭାବ, ଦୁର୍ବାଶ୍ୟାମ ଓ ଧନୁର ଆକାରବିଶିଷ୍ଟ ଗ୍ରହ। ରବି ଓ ଶୁକ୍ର ଏହାଙ୍କ ମିତ୍ର ଓ ଚନ୍ଦ୍ର ଏହାଙ୍କ ଶତ୍ରୁ ଗ୍ରହ; କୌଣସି ପୁରାଣ ମତରେ ବୁଧ ବୈବସ୍ୱତ ମନୁଙ୍କ କନ୍ୟା ଇଲାଙ୍କୁ ବିବାହ କରିଥିଲେ ଓ ତାଙ୍କଠାରୁ ଚନ୍ଦ୍ରବଂଶର ଆଦ୍ୟପୁରୁଷ ପୁରୂରବା ରାଜା ଜନ୍ମିଥିଲେ। ହି. ଶ]
୨। ଜ୍ଞାନୀ ବ୍ୟକ୍ତି; ପଣ୍ଡିତ—2 Learned man; wise
man. ୩। ସୂର୍ଯ୍ୟ ବଂଶୀୟ ଜଣେ ରାଜା (ଅଗ୍ନିପୁରାଣ)—
3. Name of a king of the Solar dynasty.
୪। ମଙ୍ଗଳବାରର ପରବର୍ତ୍ତୀ ଓ ଗୁରୁବାରର ପୂର୍ବବର୍ତ୍ତୀ
ବାର—4. Wednesday. ୫। ବେଗବାନ୍ ରାଜାଙ୍କ ପୁତ୍ର
ଓ ତୃଣବିନ୍ଦୁ ରାଜାଙ୍କ ପିତା (ଭାଗବତ) (ହି. ଶ)—
5. Name of a king of ancient India. ୬।
କୁକୁର (ହି. ଶ)—6. Dog.

**ବୁଧ ଚକ୍ର**—ସଂ. ବି—(ଜ୍ୟୋତିଷ) ବୁଧଗ୍ରହ ଯେଉଁ ଯେଉଁ ରାଶିରୁ ସଞ୍ଚାର
Budha chakra କରିବା ସମୟରେ ଶୁଭାଶୁଭ ଜ୍ଞାପକ ଜ୍ୟୋତିଷଚକ୍ର—(Astrology) An astrological drawing or circle showing the passing of the planet Mercury through the different houses of the zodiac, with good or evil results to men.

**ବୁଧ ଚଳନ**—ସଂ. ବି—(୬ଷ୍ଠୀ ତତ୍)—ବୁଧ ଗ୍ରହର ଏକ ରାଶିରୁ ଅନ୍ୟ
Budha chaḷana ରାଶିକୁ ଗମନ—The course of the
(ବୁଧଚାର—ଅନ୍ୟରୂପ) planet Mercury in the different houses of the zodiac.

**ବୁଧ ଜନ**—ସଂ.ବି—ପଣ୍ଡିତ ବ୍ୟକ୍ତି; ଜ୍ଞାନୀ ବ୍ୟକ୍ତି—A learned man,
Budha jana a wise man.

**ବୁଧ ବାର**—ସଂ. ବି—ମଙ୍ଗଳବାରର ପରବର୍ତ୍ତୀ ବାର—
Budha bāra (ବୁଧବାସର—ଅନ୍ୟରୂପ) Wednesday.

**ବୁଧ ରତ୍ନ**—ସଂ. ବି—ବୁଧ ଗ୍ରହଙ୍କର ପ୍ରୀତିଜନକ ମଣି; ମରକତ ମଣି—
Budhā ratna (ବୁଧମଣି—ଅନ୍ୟରୂପ) Emerald.

**ବୁଧାନ**—ସଂ. ବି—(ବୁଧ୍ ଧାତୁ+କର୍ତ୍ତୃ. ଆନ)—୧। ଜ୍ଞାନୀ ବ୍ୟକ୍ତି—
Budhāna 1. A wise man. ୨। ଗୁରୁ—2. Preceptor. ୩। କବି—3. A poet. ୪। ବ୍ରହ୍ମବାଦୀ; ବ୍ରହ୍ମ ଉପାସକ—4. A worshipper of the
Brahma. ୫। ପ୍ରିୟବାଦୀ ବ୍ୟକ୍ତି—5. A person
who speaks kindly or sweetly.

**ବୁଧାଷ୍ଟମୀ**—ସଂ. ବି—ମାର୍ଗଶିର, ମାଘ, ଫାଲ୍‌ଗୁନ, ବୈଶାଖ ଓ ଜ୍ୟେଷ୍ଠ ଏହି
Budhāshṭamī ୫ ମାସରେ ଶୁକ୍ଳ ଅଷ୍ଟମୀ ତିଥିରେ ପଡ଼ିବା
ବୁଧବାର—Wednesday falling on the 8th.

day of the bright fortnight of the months Mārgaśira, Māgha, Fālguna, Baiśākha and Jyaiṣṭha of the year.
[ ଦ୍ର—ଏ ଦିନ ସ୍ତ୍ରୀଲୋକମାନଙ୍କର ବ୍ରତ କରିବାର ବିଧି ଅଛି । ]

**ବୁଧି**—ଗ୍ରା. ବି—(ସଂ. ବୁଦ୍ଧି)—୧ । ବୁଦ୍ଧି (ଦେଖ)—1. Buddhi
Budhi बुधि (See) [ଉ—ବୁଧି ନ ସ୍ଫୁରଇ କିସ କରିବି ଅନୁପାମ । ପ୍ରାଚୀ. ବ୍ରହ୍ମକରୁପଣ ଗୀତା ।] ୨ । ପୁରୁଷଙ୍କୁ ଓ ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—2. A name given to males and females.

**ବୁଧିଆ**—ଗ୍ରା. ବିଣ—ବୁଦ୍ଧିଆ; ବୁଦ୍ଧିମାନ୍—Intelligent. ଦେ. ବି.
Budhiā ପୁଂ—(ଅନାଦରାର୍ଥକ)—ବୁଧି ନାମକ ବ୍ୟକ୍ତିଙ୍କୁ ଡାକିବା
बुधमान बुद्धिमान ନାମ—Name for calling a person
(ବୁଧେଇ—ସ୍ତ୍ରୀ) Budhi.

**ବୁଧିତ**—ସଂ. ବିଣ—(ବୁଧ୍ ଧାତୁ + କର୍ମ ତ)—ଜ୍ଞାତ—
Budhita Known.

**ବୁଧିଲ**—ସଂ.ବିଣ.ପୁଂ—(ବୁଧ୍ ଧାତୁ + ଶୀଳାର୍ଥେ. ଇଲ)—ଜ୍ଞାନୀ; ବିଦ୍ୱାନ୍—
Budhila (ବୁଧିଲା—ସ୍ତ୍ରୀ) Wise; learned.

**ବୁଧେଇ ଓଷା**—ଦେ. ବି—ଭାଦ୍ରବ ମାସ ବୁଧବାରରେ ସ୍ତ୍ରୀଲୋକମାନେ
Budhei oshā ଯେଉଁ ଉପବାସ କରନ୍ତି—Name of a religious fast observed by females on wednesdays in the month of Bhādra.

**ବୁଧ୍ନ**—ସଂ. ବି—(ବୁଧ୍ ଧାତୁ + କର୍ତ୍ତୃ. ନ)—୧ । ବୃକ୍ଷ ମୂଳ—1. The
Budhna root of a tree. ୨ । ଶିବ—2. Śiba.

**ବୁନିଆତ(ତି, ଦ୍, ଦି)**—ବୈଦେ. ବି—(ପା. ବନିଯ଼ାଦ୍)—୧ । ଘରର
Buniāt(ti, d, di) ମୂଳଦୁଆ; ମୂଳ ଭିତ୍ତି; ନିଅଁ—1. Foundation of a house. ୨ । କାନ୍ଥର ମୂଳଦୁଆ—2
बनियाद Foundation of a wall; the part of a wall
बुनियाद, निव below the ground level. ୩ । କୌଣସି ବିଷୟର ଗୋଡ଼ା; ମୂଳ; ଆରମ୍ଭ—3. Origin or beginning of a thing. ୪ । ବଂଶର ପୂର୍ବ ଅବସ୍ଥା—4. The previous state or condition of a family. ୫ । ବଂଶର ଇତିହାସ—5. The past history of a family. ୬ । ମହତ୍ତ୍ୱ—6. Greatness. [ ଉ—ମେଲା ମେଲା ଶୁଣିବ ଶୁହିଁ, ବାପ ଅଜାଙ୍କର ବୁନିଆଦି ଗାଇ । ଉକାଶ୍ରୀ. ଗୀତଲହରୀ ।]

**ବୁନିଆତ୍ ଖୋଳିବା**—ଦେ. କ୍ରି—୧ । ଘରର ବା କାନ୍ଥର ମୂଳ ଭିତ୍ତିକୁ
Buniāt kholibā ଖୋଳିବା—1. To dig the founda-
बनियाद खोड़ाँ निव खोदना, निव लेना tion.
୨ । (ଲକ୍ଷଣାର୍ଥ; ମନ୍ଦାର୍ଥ) କୌଣସି ବଂଶର ପୂର୍ବ ଇତିହାସ ପ୍ରକାଶ କରିବା—2. (figurative) To divulge the origin or past history of a family (ordinarily in a bad sense.)

**ବୁନିଆଦି**—ବୈଦେ. ବିଣ—(ପା. ବନିଯ଼ାଦୀ)—୧ । ଉତ୍ତମ ଓ ସୁଦୃଢ଼
Buniādi ମୂଳଦୁଆ ଥିବା (କୋଠା)—1. (a building) Hav-
बनियादी ing a strong foundation ୨ । ଖାନଦାନ୍; ଧନୀ ଓ
बुनियादी ପୁରାତନ ଭଦ୍ର ବଂଶୋଦ୍ଭବ (ବ୍ୟକ୍ତି)—2. (a person) Descended from a high and respectable family. ୩ । ଧନୀ; ପଇସାବାଲା—3. Substantial (person). ୪ । ପ୍ରାଚୀନ ଓ ସମ୍ମାନିତ (ପରିବାର) 4. Ancient and respectable (family). ବୈ ବି.—ବୁନିଆତ୍ (ଦେଖ)—Buniāt (See)

**ବୁନିଆଦି ବତା(ତେ)ଇବା**—ଦେ କ୍ରି—କୌଣସି ବଂଶର ପୂର୍ବ ଇତିହାସ
Buniādi batā(te)ibā କହିବା—To describe the past
बुनियाद बताना history or origin of a family.

**ବୁନୋସ୍**—ଦେ. ବି—(ନାମ)—ରାଜସ୍ଥାନସ୍ଥ ନଦୀ ବିଶେଷ—
Bunos A river in Rajasthan. [ଉ—ଯେ ଦେଶେ ବୁନୋସ ତଟେ ପୁଷ୍ପବନେ ଗନ୍ଧର୍ବ ଲଳନା କରି ଗାୟନ । ନନ୍ଦକିଶୋର କୃଷ୍ଣକୁମାରୀ ।]

**ବୁନ୍ଦ୍**—ପ୍ରାଦେ. (ସମ୍ବଲପୁର) ବି—ବୃକ୍ଷାଦିର ମୂଳ—
Bund Root of a tree.

**ବୁନ୍ଦ**—ଦେ ବି—(ସଂ. ବିନ୍ଦୁ)—ବିନ୍ଦୁ; ଟୋପା—
Bunda बूँद बुंद Drop.

**ବୁନ୍ଦା**—ଦେ. ବି—(ସଂ. ବିନ୍ଦୁ; ହି. ବୁନ୍ଦା)—୧ । ବିନ୍ଦୁ ଟୋପା—
Bundā बुंद 1. Drop. ୨ । କଲମ ମୁନରେ କାଗଜ ଅାଦିର
बूँद ମାରିବା ବିନ୍ଦୁ—2. A dot with the tip of the pen.

**ବୁନ୍ଦା ଦେବା**—ଦେ ବି—୧ । କଲମଦ୍ୱାରା କାଗଜ ଆଦି ଉପରେ ଗୋଟିଏ
Bundā debā ବିନ୍ଦୁ ଲେଖିବା—1. To put a dot with
(ବୁନ୍ଦାମାରିବା ଅନ୍ୟରୂପ) the pen on a paper; to write.
बुंदा मारना ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟର ପ୍ରଥମ ଆରମ୍ଭ
बुंदमारा କରିବା—2. (Figurative). To begin a work.

**ବୁନ୍ଦିଆ**—ଦେ. ବି (ସଂ. ବିନ୍ଦୁ)—ଗୁଡ଼ଲର ବା ବୁଟ ବେସନର ପିଠଉକୁ
Bundiā ଝାଲିଚଟୁର ଛିଦ୍ରଦ୍ୱାରା ଫୁଟୁଥିବା ଘିଅ ବା ତେଲ ଉପରେ
बुँदिया ପକାଇ କରାଯିବା ଏକପ୍ରକାର ଗୋଲଗୋଲ ବା ଲମ୍ବା ଛୋଟ ଆକୃତି ବିଶିଷ୍ଟ ମିଠାଇ—A kind of sweetmeat.

**ବୁନ୍ଦିଆ ଚଟୁ**—ଦେ. ବି—ବୁନ୍ଦିଆ ଛାଣିବା ପାଇଁ ବଡ଼ ବଡ଼ ଛିଦ୍ର ଥିବା
Bundiā chaṭu ଏକପ୍ରକାର ଝାଲି ଚଟୁ—A perforated
झाँझ; झाँझर ladle used in frying Bundia sweet
ঝাঁজরাহাতা meat.

**ବୁନ୍ଦେଲ୍ ଖଣ୍ଡ**—ଦେ. ବି ( ନାମ )—ସଂଯୁକ୍ତ ପ୍ରଦେଶର ଗୋଟିଏ ଅଂଶ
Bundel khaṇḍa —Bundelkhand; name of a
बुन्देल खण्ड tract of the United Provinces. [ ଦ୍ର
बुंदेल खण्ड —ଖ୍ରୀ: ୧୪ଶ ଶତାବ୍ଦୀରେ ଏଠାରେ ରାଜତ୍ୱ କରୁଥିବା ବୁନ୍ଦେଲା ନାମକ କ୍ଷତ୍ରିୟ ବଂଶର ନାମରୁ ଏ ଅଞ୍ଚଳର ନାମ ହୋଇଅଛି । ବର୍ତ୍ତମାନ ଏହା ଦୁଇ ଭାଗରେ ବିଭକ୍ତ । ଯଥା—

୧ । ଇଂରେଜ ଶାସିତ ଝାନ୍ସି, ଜାଲୌନ, ହମିରପୁର, ବାନ୍ଦା ଜିଲ୍ଲା ଓ ୨ । ଦେଶୀୟ ରାଜଶାସିତ ଓର୍ଛା; ଦତିଆ, ପନ୍ନା, ଚରଖାରି, ବିଜାବର ଓ ଛତ୍ରପୁରଆଦି ରାଜ୍ୟ । ଏ ଅଞ୍ଚଳ ବିନ୍ଧ୍ୟପର୍ବତର ଉତ୍ତରରେ ଅବସ୍ଥିତ । ]

**ବୁନ୍ଦେଲ ଡୁଲି**—ପ୍ରାଦେ ( ସମ୍ବଲପୁର ) ବି—ଯେଉଁ ଖାଲୁଆ ଜମିରେ Bundel ḍuli ନିକଟବର୍ତ୍ତୀ ଉଚ୍ଚ ଜମିମାନଙ୍କରୁ ପାଣି ଗଡ଼ି ଆସି ଜମା ହୁଏ—Low land into which water from the sorrounding higher lands flow and accumulate

**ବୁନ୍ଦେଲା**—ଦେ. ବି ( ନାମ )—ଉତ୍ତର ଓ ମଧ୍ୟ ଭାରତବାସୀ କ୍ଷତ୍ରିୟ Bundelā ରାଜବଂଶବିଶେଷ—A dynasty of Kshatriya kings residing in the northern and central India. [ ଦ୍ର—ଏମାନେ ଗହରବାର ବଂଶର ଏକ ଶାଖା ଥିବାର କଥିତ । ଏହି ବଂଶର ଆଦିପୁରୁଷ ଆପଣା ଦେହ ତର ରକ୍ତରୁ ବିନ୍ଧ୍ୟବାସିନୀ ଦେବୀଙ୍କୁ ବଳି ଦେଇଥିଲେ । ଖ୍ରୀ. ୧୪ଶ ଶତାବ୍ଦୀରେ ଏମାନେ ବୁନ୍ଦେଲ୍ ଖଣ୍ଡ ଅଞ୍ଚଳରେ ପ୍ରତାପଶାଳୀ ହୋଇଥିଲେ ଓ ଏହାଙ୍କ ନାମ ଅନୁସାରେ ଏ ଅଞ୍ଚଳର ବୁନ୍ଦେଲ୍‌ଖଣ୍ଡ ନାମ ହେଲା । ] ପ୍ରାଦେ ( ଧୁଡ଼ା ପଣ୍ଡାଙ୍କ ବ୍ୟବହୃତ ) ବି ଓ

**बुँदेला** ବିଣ—ବୁନ୍ଦେଲ ଖଣ୍ଡ ଅଞ୍ଚଳବାସୀ ଯାତ୍ରୀ—Pilgrims hailing from Bundelkhand.

ବୁନ୍ଦୁ(ନ୍ଦେ)ଲା, ବନ୍ଦ(ନ୍ଦୁ, ନ୍ଦେ)ଲି, ବୁନ୍ଦେଲ ଖଣ୍ଡୀ } ଅନ୍ୟରୂପ

**ବୁପ୍‌ରା**—ପ୍ରାଦେ ( ସମ୍ବଲପୁର ) ବି. ପୁଂ ( ଭୁଲ. ହି. ବପୁରା )—Bup-rā ବାପୁଡ଼ା; ବିଚରା—Poor fellow; poor man. (ବୁପ୍‌ରୀ—ସ୍ତ୍ରୀ)

**ବୁବା**—ପ୍ରାଦେ ( ଭଞ୍ଜଭୂମି ) ବି—ବାପ—Father. Bubā

**ବୁବୁଧାନ**—ସଂ. ବି. ପୁଂ ( ବୁଧ୍ ଧାତୁ+କର୍ତ୍ତୃ. ଆନ )—୧ । ପଣ୍ଡିତ Bubudhāna —1. A learned man. ୨ । ଆଚାର୍ଯ୍ୟ (ବୁବୁଧାନା—ସ୍ତ୍ରୀ) —2. Preceptor. ୩ । ଦେବତା—3. Deity. ସଂ. ବିଣ. ପୁଂ—ବିଦ୍ୱାନ୍—Learned.

**ବୁବେ(ବୋ)ଇ**—ପ୍ରାଦେ ( ବାଲେଶ୍ୱର ) ବି—୧ । ସରୁ, ଲମ୍ବା Bube(bo)i ଏବଂ ଧାରୁଆ ପତ୍ରଯୁକ୍ତ ଏକ ଜାତୀୟ ଘାସ ଗଛ—1. A kind of grass, with thin long and sharp-edged leaves. ୨ । ବୁବେଇ ଘାସରୁ ତିଆରି ହୋଇଥିବା ଦଉଡ଼ି—3. Rope made of that grass.

**ବୁଭୁକ୍ଷା**—ସଂ. ବି ( ଭୁଜ୍ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+ଆ ) Bubhukshā —ଭୋଜନ କରିବା ଇଚ୍ଛା; କ୍ଷୁଧା; ଭୋକ—Hunger; desire to eat.

**ବୁଭୁକ୍ଷିତ**—ସଂ. ବିଣ. ପୁଂ ( ବୁଭୁକ୍ଷା+ଜାତାର୍ଥେ ଇତ )—କ୍ଷୁଧାର୍ତ୍ତ; Bubhukshita କ୍ଷୁଧିତ; ଭୋକିଲା—Hungry. ( ବୁଭୁକ୍ଷିତା—ସ୍ତ୍ରୀ )

**ବୁଭୁକ୍ଷୁ**—ସଂ. ବିଣ ( ଭୁଜ୍ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ )—Bubhukshu ୧ । ଭୋଜନେଚ୍ଛୁ—1. Wishing to eat. ୨ । କ୍ଷୁଧିତ 2 Hungry.

**ବୁଭୁତ୍ସା**—ସଂ. ବି ( ବୁଧ୍ ଧାତୁ+ଇଚ୍ଛାର୍ଥେ. ସନ୍+ଅ+ଆ )—Bubhutsā ୧ । ଜାଣିବାକୁ ଇଚ୍ଛା—1. A wish to know. ୨ । ବୁଝିବାର ଇଚ୍ଛା—2. Wish to understand.

**ବୁଭୁତ୍ସୁ**—ସଂ. ବିଣ ( ବୁଧ୍ ଧାତୁ+ସନ୍+କର୍ତ୍ତୃ. ଉ )—ଜାଣିବାକୁ Bubhutsu ଇଚ୍ଛୁକ—Desirous of knowing.

**ବୁଭୂଷା**—ସଂ. ବି ( ଭୂ ଧାତୁ ହେବା+ଇଚ୍ଛାର୍ଥେ ସନ୍+ଭାବ. ଅ+ Bubhūshā ଆ )—୧ । ସମ୍ଭବେଚ୍ଛା—1. A desire to (ବୁଭୂଷୁ—ବିଣ) be born. ୨ । ହେବାର ଇଚ୍ଛା ·2. A desire to be or to exist. ୩ । ଯଶୋଲାଭ ପାଇଁ ଇଚ୍ଛା —3. Desire for fame.

**ବୁଭୂଷୁ**—ସଂ. ବିଣ ( ଭୂ ଧାତୁ+ସନ୍+କର୍ତ୍ତୃ. ଉ ) -୧ । ହେବା-Bubhūshu ପାଇଁ ଇଚ୍ଛୁକ—1. Desiring to exist. ୨ । ଜନ୍ମଲାଭ କରିବାକୁ ଇଚ୍ଛୁକ—2. Wishing to be born. ୩ । ଯଶୋଲାଭ ପାଇଁ ଇଚ୍ଛୁକ—3. Desirous of attaining fame.

**ବୁୟଲ୍**—ପ୍ରାଦେ ( ଭଞ୍ଜଭୂମି )—ବଳଦ—Ox. Buyal

**ବୁର୍**—ବୈଦେ. ବି ( ଇଂ. ବୁଅର )—ବୁଅର ( ଦେଖ ) Bur Buar ( See )

**ବୁର-(ରୁ)କା**—ବୈଦେ. ବି ( ଆ )—ମୁସଲମାନ୍ ସ୍ତ୍ରୀମାନେ ବାହାରେ Bur-(ru)ka ବିଚରଣ କରିବା ସମୟରେ ନିଜର ସମୁଦାୟ ଶରୀରକୁ ଘୋଡ଼ାଇବା ପାଇଁ ବ୍ୟବହାର କରିବା ମସ୍ତକରୁ ପାଦ-

बुर्का, **बुरका** ପର୍ଯ୍ୟନ୍ତ ଲମ୍ବିଥିବା ଏକ ଖୋଳ ( ଏଥିରେ ମୁହଁରେ ଆଖି ସ୍ଥାନରେ ଛିଦ୍ର ଦୁଇଟି ଥାଏ )—A cloak or veil covering the whole body of Mahomedan women when they go out.

**ବୁର**—ଦେ. ବି—୧ । ଶିମିଳୀ ଗଛ—1. The silk cotton tree. Bura ୨ । ମାଛଙ୍କ ଖାଇବା ପାଇଁ ବନସିରେ ଲଗା ଆଦି ଯାହା ଦିଆଯାଏ; ଥୋପ—2. ait for fish, fixed to the angling hook. ପ୍ରାଦେ (ବୌଦ୍ଧ) ବି—ବରକୋଳି—Jujube.

**ବୁରଝାଞ୍ଜି**—ଦେ. ବି—ବୋରଝାଞ୍ଜି ( ଦେଖ ) Burajhāñji Borajhāñji ( See )

**ବୁର(ର୍)ବୁଡ଼ାଇବା**—ପ୍ରାଦେ ( ସମ୍ବଲପୁର ) କ୍ରି—୧ । ଲୁଚାଇବା; Bura(r-)burḍāibā କୌଣସି ପଦାର୍ଥକୁ ଗୁପ୍ତସ୍ଥାନରେ ଗୁଞ୍ଜିଦେବା—1. To stow; to conceal. ୨ । ପୂର୍ଣ୍ଣଥିବା ଜଳପାତ୍ରରେ ହାତ ବୁଡ଼ାଇ ଦେବା—2. To dip one's hand in a jug full of water.

**ବୁର(ର୍)ବୁଡ଼ିବା**—ପ୍ରାଦେ ( ଗଡ଼ଜାତ ) କ୍ରି—ବାଡ଼ ଭାଙ୍ଗି ପଶିବା—Bura(r-)burḍibā To enter into an enclosure by breaking a fence.

ବୁରା—ବୈଦେ. ବିଣ (ଫା. ବୁର୍ )—୧ । ମନ୍ଦ—1. Bad; evil
Burā ୨ । ଭିକୃଷ୍ଟ—2. Inferior. ୩ । ଅନୁଚିତ—3. Improper
मन्द; খারাপ ବୈଦେ. ବି [ ଫା. ବୋର୍;
बुरा ଭଲ ଫ. ବର୍ଣ୍ଣ = ଭଣ୍ଡ(ଯୋଗେଶଙ୍କ); ସଂ ପୁର = ପଉର-
বোরা ଦନା; ଚଳ ହି. ଷ ]—ବୋର୍; ବସ୍ତା—Gunny bag.
बोरा

ବୁରାଇ—ପ୍ରାଦେ ( ସମ୍ବଲପୁର ) ବି—ତୋଟା—A plantation or grove of trees.
Burāi ବୈଦେ. ବି ( ଫା )—୧ ।
बुराई ମନ୍ଦତା—1. Badness ୨ । ପ୍ରାଦେ (ବାଲେଶ୍ୱର) ଅନୌଚିତ୍ୟ—2. Impropriety.

ବୁରାଦା—ବୈଦେ. ବି ( ଫା )—କରତ ଗୁଣ୍ଡ—
Burāda बुरादा Sawdust.

ବୁରି—ପ୍ରାଦେ ( ବାଲେଶ୍ୱର ) ବି—ତୋଟା—
Buri A tope of fruit trees.

ବୁରି ଦେବା—ପ୍ରାଦେ ( ବାଲେଶ୍ୱର ) କ୍ରି—ଲିପିବା—
Buri debā To annoint; to besmear.

ବୁରୁଗି—ପ୍ରାଦେ ( ଗଡ଼ଜାତ ) ବି—ଯେଉଁ କର୍ମଚାରୀମାନେ ରାଜଗୃହକୁ
Burugi ସମାଗତ ବ୍ୟକ୍ତିଙ୍କ ଜଗୁଣେବାକୁ ନିଯୁକ୍ତ ହୋଇଥାଆନ୍ତି
Persons who take care of guests of a palace.

ବୁରୁଚ୍—ବୈଦେ.ବି (ଇଂ. ବ୍ରୁଚ୍)—ବ୍ରୁଚ୍; ଜାମା ଅଦରୁ ଲୁଗା ଯେପରି
Buruch ଖସି ନ ଯାଏ, ସେଥିପାଇଁ ବ୍ୟବହୃତ ଏକପ୍ରକାର
ব্রচ; বুরুচ ब्रूच, बुरुच ଜନ୍ତାଲଗା କଣ୍ଟା—A brooch.

ବୁରୁଛ - ଗ୍ରା. ବି—(ସ. ବୃକ୍ଷ)—ବୃକ୍ଷ—
Buruchha Tree.

ବୁରୁଜ—ବୈଦେ. ବି. (ଅ. ବୁର୍ଜ୍ =ଏକ ବଡ଼ନ; ବୁରୁଜ=ବନ୍ଧୁ-
Buruja ବଡନ)—୧ । ଦୁର୍ଗର ପ୍ରାଚୀର ଦେହକୁ ଲାଗି ମଧ୍ୟେ
বুরুজ ମଧ୍ୟେ ଉଠାଇ କରାଯାଇଥିବା ସୁଦୃଢ଼ ମାଟିର ବା ପଥରର ସ୍ତୂପ
बुर्ज ବା ଗୃହ—1. A bastion. ୨ । କଟକର ଦୁଇ ଆଡ଼େ
ପ୍ରବାହିତ ମହାନଦୀର ଓ କାଠଯୋଡ଼ୀର ବନ୍ୟାରୁ କଟକ
ସହରକୁ ରକ୍ଷା କରିବାପାଇଁ ଓଡ଼ିଆ ରାଜା ମର୍କଟ କେଶରୀଙ୍କ
ଦ୍ୱାରା ନିର୍ମିତ ପଥରବନ୍ଧର ଯେଉଁ ଅଂଶ ନଦୀ ଭିତରକୁ
ପଶିଗଲା ଭଳି ଉଠିଅଛି । (ଏଥିରେ ଧକ୍କା ଲାଗି
ସ୍ରୋତର ବେଗ ପ୍ରତିହତ ହୁଏ ଓ ନଦୀସ୍ରୋତ କୂଳରେ
କେଉଁ ଜୋରରେ ଆଘାତ କରେ ନାହିଁ) ।
2. Bastion-like projections along the stone embankments of the Kathjori and the Mahanadi rivers on both sides of the town of Cuttack. ୩ । ଏକପ୍ରକାର ତାସ୍‌ଖେଳ
3. A kind of game with cards.

ବୁରୁଝାଞ୍ଜି—ପ୍ରାଦେ (ଗଞ୍ଜାମ) ବି—ବୋରଝାଞ୍ଜି (ଦେଖ)
Burujhāñji Borajhāñji (See).

ବୁରୁତ—ଗ୍ରା. ବି. ୧ । ( ସ. ବୃତ୍ତି )—ବୃତ୍ତି ( ଦେଖ )
Buruta 1. Brutti (See).
୨ । ( ସ. ବୃତ୍ତ ) ବୃତ୍ତ ( ଦେଖ )
2. Brutta ( See ).

ବୁରୁତାନ୍ତ—ଗ୍ରା. ବି—ବୃତ୍ତାନ୍ତ (ଦେଖ)
Burutānta Brutānta (See).

ବୁରୁତି—ଗ୍ରା. ବି—ବୃତ୍ତି (ଦେଖ)
Buruti Brutti (See).

ବୁରୁଧ—ଗ୍ରା. ବି. ଓ ବିଣ (ସ. ବୃଦ୍ଧ)—ବୃଦ୍ଧ (ଦେଖ)
Burudha Brudha (See).

ବୁରୁଧ ଗାଲୁ—ଗ୍ରା. ବି—ବୃଦ୍ଧ ଗାଲୁ (ଦେଖ)
Burudha gālu Brudha gālu (See).
ବୁରୁଧଗାଲୁଅ, ବୁରୁଧମିରୁଅ }—ଅନ୍ୟରୂପ

ବୁରୁଧି—ଗ୍ରା. ବି (ସ. ବୃଦ୍ଧି)—ବୃଦ୍ଧି (ଦେଖ)
Burudhi Bruddhi (See).

ବୁରୁଧୁ—ବୈଦେ. ବି (ଇଂ. Board, ବୋର୍ଡ୍)—ପାନେଲ୍ କବାଟର
Burudhu ଗୃହପାଖରେ ଲାଗିବା ପଟା—The frame
कोर, बुरुद पानेलेर ठाट of a panelled door.

ବୁରୁନ୍ଦା—ଗ୍ରା. ବି. ପୁଂ (ଅନାଦରାର୍ଥକ)—ବୃନ୍ଦାବନର ଡାକନାମ —
बृंदा বেন্দা A name for calling Brundābana.
[ବୁରୁନ(ନ, ନ୍)—ଅଦରାର୍ଥକ ରୂପ]

ବୁରୁନ୍ଦାବନ—ଗ୍ରା. ବି—ବୃନ୍ଦାବନ (ଦେଖ)
Burundābana बिन्दाबन Brundābana (See).

ବୁରୁନ୍ଦାବତୀ—ଗ୍ରା. ବି (ସ. ବୃନ୍ଦାବତୀ)—ବୃନ୍ଦାବତୀ (ଦେଖ)
Burundābatī Brundābatī (See).

ବୁରୁବୁରା—ଦେ. ବି (ସ. ବୁଦ୍‌ବୁଦ)—ବୁଦ୍‌ବୁଦ; ପାଣିଫୋଟକା—
Buruburā बुलबुला বুদবুদ Water bubble.

ବୁରୁଲ(ଲ୍, ଲା)—ଦେ. ବି ( ବଙ୍ଗଳା ଭାଷାର ବୁଢ଼ୋ ଆଙ୍ଗୁଲ ଶବ୍ଦର ଅପଭ୍ରଂଶ; ସ. ବୃଦ୍ଧାଙ୍ଗୁଳ )—୩ ଯବ ବା ବୁଢ଼ା
Burul(l, lā) ଗୁଣ୍ଠାଠ;
বুরাল अंगुठा ଆଙ୍ଗୁଠିର ପରିମାଣ; ପ୍ରାୟ ଏକ ଇଞ୍ଚ—
One inch; the breadth of the thumb.

ବୁରୁଶ୍—ବୈଦେ. ବି (ଇଂ. ବ୍ରଶ୍)—୧ । ପଶୁମାନଙ୍କର ରୋମକୁ ସାଉଁଳିବା
Burus ଉଦ୍ଦେଶ୍ୟରେ ତିଆରି ଟାଆଁସା ଲୋମନିର୍ମିତ ପାନିଆ
ବା ମାର୍ଜନୀ—A brush for combing the body of animals. ( e. g. horse ).
ବୁରୁଶ୍, ବ୍ରୁଶ୍, ବ୍ରଶ୍ }—ଅନ୍ୟରୂପ
বুরুষ ब्रुश ୨ । ମନୁଷ୍ୟଙ୍କ ମୁଣ୍ଡର ବାଳକୁ ସାଉଁଳିବାରେ
ବ୍ୟବହୃତ ଲୋମନିର୍ମିତ ପାନିଆ; କେଶ ମାର୍ଜନୀ—
2 Hair brush. ୩ । ଦାନ୍ତ ମାଜିବାର ମୁଠା ବା
ମଜାମୁଠା—3. A tooth brush. ୪ । ଚିତ୍ର
କରିବାରେ ବ୍ୟବହୃତ ତୂଳିକା—4. A painting
brush. ୫ । ଯୋତା ସଫାକରିବାର ତୂଳିକା—
5. Shoe-brush. ୬ । ଲୁଗାରୁ ଧୂଳି ଝାଡ଼ିବାପାଇଁ
ବ୍ୟବହୃତ ଲୋମନିର୍ମିତ ମାର୍ଜନୀ—6. Cloth brush.

[ ଦ୍ର—ଅଳଙ୍କାର, ବସ୍ତ୍ର, ଯୋଡା ଓ ଘଣ୍ଟାର ଯନ୍ତ୍ରାଦି ବିଭିନ୍ନ ବସ୍ତୁକୁ ସଫା କରିବା ପାଇଁ ଭିନ୍ନ ଭିନ୍ନ ଉପକରଣରେ ନାନାବିଧ ବୁରୁଶ୍ ତିଆରି ହୁଏ, ଯେ ଗୁଡ଼ାକର ନାମ ମଧ୍ୟ ବ୍ୟବହାର ଅନୁସାରେ ଭିନ୍ନ ଭିନ୍ନ । ]

ବୁରୁଶ୍ କରିବା—ଦେ. କ୍ରି—ଯୋଡା ଆଦିକୁ ବୁରୁଶ୍‌ଦ୍ୱାରା ସଫା କରିବା Buruś kariba ବା ସାଜ୍ଜିଲବା—To brush (the hair, ब्रुश करना the shoes, the teeth and the body of **ब्रुश देना** (ବୁରୁଶ ମାରିବା—ଅନ୍ୟରୂପ) the horse).

ବୁରେଇ—ପ୍ରାଦେ. (ସମ୍ବଲପୁର; ବାଲେଶ୍ୱର) ବି.—ତୋଟା—Burei A plantation or grove of trees. [ଉ—ଶାସନ ପିଲାଗୁଡ଼ାକ ସଞ୍ଜ ଯାଏ ନଜ୍ଞ ବୁରେଇ ତଳେ ଧାଁ ଦଉଡ଼ ହୋ ହୋ ପାଟି କରି ଖେଳୁ ଥାନ୍ତି । ଫକୀରମୋହନ. ଗଳ୍ପ ସ୍ୱଳ୍ପ ।]

ବୁରେଶ୍ୱୀ—ଦେ. ବି. ସ୍ତ୍ରୀ—ଦେବୀ ବିଶେଷ—Burebi Name of a popular Goddess.

ବୁରୋ—ପ୍ରାଦେ. (ସମ୍ବଲପୁର) ବି.—(ଗ୍ରୁଲ. ବ୍ର, ବେର୍)—୧ । ବର-Buro କୋଳି—1 The jujube plum. ୨ । କୋଳି—2. Plum. ୩ । (ବୈଦେ.) ବି.—(ଇଂ. ଓ ଫ୍ରେଞ୍ଚ ବ୍ୟୁରୋ—ଦରାଜ ଥିବା ଅଲମାରି ବା ଟେବୁଲ୍) ଦରାଜ ଲଗା ଅଲମାରି—Bureau; a chest of drawyers

ବୁଲ୍ (ଧାତୁ)—ସ.—୧ । ମଗ୍ନ ହେବା—1. To sink. ୨ । ଭ୍ରମଣ Bul (root) କରିବା—2. To walk. ୩ । ଭାସି ଉଠିବା—3. To float up.

ବୁଲ୍‌ଚ(ଚା)ଲ—ଦେ. ବି—(ସହଚର)—ବୁଲା ଚଲା; ଭ୍ରମଣ କରିବା—Bul cha(chā)l चलां फेरा **चलना बुलना** Walking.

ବୁଲ୍ ଟେରିଅ(ଆ)ର୍—ବୈଦେ. ବି—(ଇଂ. ବୁଲ୍ ଟେରିଅର୍)—ବୁଲ୍-Bul-teria(ā)r ଡଗ୍ ଓ ଟେରିଅର ନାମକ କ୍ଷୁଦ୍ର ଆକାରର बुल टेरियर କୁକୁରର ଦୋକୋଷଲା ଏକପ୍ରକାର କଳାଇ କୁକୁର—**बुल टेरियार** Bull-terrier.

ବୁଲ୍ ଡଗ୍—ବୈଦେ. ବି. (ଇଂ)—ଏକ ପ୍ରକାର ବିକଟମୁହାଁ କଲଙ୍କ Bul-dag बुलडग **बुलडग** Bulldog.

[ ଦ୍ର—ଏହି ଇଂରାଜୀ ଶବ୍ଦର ଅର୍ଥ ଷଣ୍ଢ କୁକୁର । ଏ କୁକୁରକୁ ପୂର୍ବେ ଷଣ୍ଢ ଲଢ଼େଇରେ ଷଣ୍ଢକୁ ଖେପୁରେଇବା କର୍ମରେ ଲଗାଯାଉ ଥିବାରୁ ଏହି ନାମ ହୋଇଅଛି । ଏ ୨ଫୁଟ ପର୍ଯ୍ୟନ୍ତ ଉଚ୍ଚ; ଦେହର ଲୋମ କ୍ଷୁଦ୍ର ଓ ଦେହ ଚକ୍‌ଚକିଆ; ଏ ଦୃଢ଼କାୟ ଓ ହୃଷ୍ଟପୁଷ୍ଟ । ଦେହ ଅନୁପାତରେ ଏହା ମୁଣ୍ଡ ବଡ଼ ଓ ମୁହଁ ବିକଟ । ଏ ଭାରି ଶିକାରୀ ଓ ସାହସୀ ।]

ବୁଲି(ଲୁ)ବୁଲ୍(ଲୁ)—ବୈଦେ. ବି. (ଅ. ବୁଲ୍ ବୁଲ୍)—ଗୋବର୍ଦ୍ଧ ଚଢ଼େଇ; Bul(lu)bul(lu) ତୁଳଥ ଚଢ଼େଇ; ଶାଖାଶ୍ରୟୀ ବର୍ଗର ଗୋବର बुलबुल **बुल बुल** ବର୍ଗର କ୍ଷୁଦ୍ର ପକ୍ଷୀ—The fly catcher. [ ଦ୍ର—ଏମାନେ ବଣିଗୃହେ ଯୋଡ଼ା ଯୋଡ଼ା ହୋଇ ବୁଲନ୍ତି ଓ ଲୁଗାକାଠିରେ ବସା ବାନ୍ଧି ଶବ୍ଦକରେ କୁହା କରନ୍ତି । ଏମାନେ ଅନେକ ଜାତୀୟ—ଯଥା—୧ । ନାଲି ବୁଲ୍ ବୁଲ୍—ଏମାନଙ୍କର ମୁଣ୍ଡ, ଗଳା ଓ ଛାତିର ସାମନାରେ ଚକା ଚକା କଳାଦାଗ ଥାଏ; ପେଟ ଓ ଲାଞ୍ଜ ତଳ ଚୋପା ନାଲି; ମୁଣ୍ଡରେ ଚୁଳ ନାହିଁ । ଏମାନଙ୍କୁ ବଙ୍ଗଳାରେ ଗୁଲ ବୁଲ୍‌ବୁଲ ଓ ଇଂରାଜୀରେ Molapastes Bengalenes କହନ୍ତି । ୨ । ଏ ପ୍ରକାର ବୁଲ୍‌ବୁଲ୍ ନାଲି ଓ ଏହାର ଲମ୍ବ ଚୁଳ ଥାଏ; ପକ୍ଷ ପ୍ରାନ୍ତ ଗୋଲାକାର । ଏମାନଙ୍କୁ ବଙ୍ଗଳାରେ ସିପାଇ ବୁଲ୍‌ବୁଲ୍ ଓ ଇଂରାଜୀରେ Buculus Melanobucus କହନ୍ତି ।

୩ । ଏ ପ୍ରକାର ବୁଲ୍‌ବୁଲର ମୁଣ୍ଡରେ ଚୁଳ ଅଛି; ଗୋବର ରଙ୍ଗ; ନାହି ତଳେ ଫୁଲାଏ ନାଲି ଲୁମ; ଏମାନେ ମଧୁର ଶବ୍ଦ କରନ୍ତି ଓ ଲଢ଼ନ୍ତି । ଏମାନଙ୍କର ପୁରୁଷ ଜାତୀୟ ପକ୍ଷୀମାନେ ଗୋଷ୍ଠବେ ସ୍ତ୍ରୀ-ପକ୍ଷୀ ପାଇଁ ଆପଣା ଭିତରେ ଯୁଦ୍ଧ କରନ୍ତି । ଏମାନେ ପାଚଲା କଦଳୀର ଭାରି ପ୍ରିୟ । ଏମାନଙ୍କୁ ବଙ୍ଗଳାରେ ଶା ବୁଲ୍‌ବୁଲ୍ ଓ ଇଂରାଜୀରେ Paradise fly catcher or Terpisphone Pa radisi କହନ୍ତି ।

୪ । ଆଉ ଏକପ୍ରକାର ବଡ଼ ଓ ଗାୟକ ପକ୍ଷୀ ଅଛନ୍ତି, ଏମାନଙ୍କୁ ମଧ୍ୟ ବୁଲ୍‌ବୁଲ୍ ବୋଲାଯାଏ—Persian Nightingale; Pyconontus Jocosus; Maras; Bulbul Pyononotus Halmorrhosu. (ଯୋଗେଶ୍ଚନ୍ଦ୍ର) । ଲୋକେ ତୁଳଥ ବା ଗୋବର୍ଦ୍ଧ ଚଢ଼େଇଙ୍କ ଯୁଦ୍ଧ ଦେଖିବାପାଇଁ ସଉକରେ ସେମାନଙ୍କୁ ପୋଷି ବିଳାସିତାରେ ସହସ୍ର ସହସ୍ର ଟଙ୍କା ଅପବ୍ୟୟ କରନ୍ତି ।]

ଦେ. ଅ.—ଶିଶୁମାନଙ୍କ କୋମଳତା ଓ କରୁଣତା ବ୍ୟଞ୍ଜକ ଦୃଷ୍ଟି—Tender and pitiful look of infants and children. [ ଦ୍ର—ଏହା ଜୁଳୁଜୁଳୁ ଠାରୁ ଅଧିକତର କୋମଳତାବ୍ୟଞ୍ଜକ । ଏହା ଅପେକ୍ଷା 'ଗୁଲ୍ ଗୁଲ୍' ଶବ୍ଦାଣି ଅଧିକତର କୋମଳତା ସୂଚନା କରେ ।]

ବୁଲ୍‌ବୁଲ୍ ବାଜ୍—ବୈଦେ. ବିଣ. (ଫା) ଯାହାର ବୁଲ୍‌ବୁଲ୍ ଚଢ଼େଇ Bul-bul-bāj ପାଳିବା ଅଭ୍ୟାସ ବ୍ୟସନରେ ପରିଣତ ହୋଇଅଛି-बुलबुलबाज **बुलबुलबाज** Addicted to domesticating (ବୁଲବୁଲବାଜୀ—ବି) Bulbul birds for sport.

ବୁଲଣା—ଦେ. ବି—(ସ. ବୁଲ ଧାତୁ=ଭ୍ରମଣ କରିବା)—୧ । ଭ୍ରମ—Bulaṇā 1. Mistake; error. ୨ । ଭ୍ରାନ୍ତ ମତ—2. Erroneous theory. ( ଉ—ଆଉ କଥା ଯାକ ଭୂଲ ସବୁ ବେଦର ବୁଲଣା । ପ୍ରାଚୀ—ବ୍ରହ୍ମକରୁପଣ ଗୀତା । ) ପ୍ରାଦେ (ମେଦିନୀପୁର, ବାଲେଶ୍ୱର) ବି—ବୋଲଣା (ଦେଖ)-Bolanā (See)

ବୁଲା—ଦେ. ବି. ( ସ. ବୁଲ୍ ଧାତୁ=ସଞ୍ଚରଣ )—୧ । ବୁଲିବା କ୍ରିୟା; Bulā ଭ୍ରମଣ—1. Walking; roving. (ଉ—ଶରନ ଘୁରା, ଘୋରା, ବୁଲା, ପ୍ରଭୃ ଏବେ ହେଲେ ନ ହେଲା, ଶମନପୁରୀ ତଟ

ବୁଲନା, ଘୁମନା ଅଥବା ବୁଲା । କଶୋଗ୍ରାସ ) ୨ । ଘୁରାଇବା କ୍ରିୟା-2. Act of turning or whirling. ୩ । (ପୁଂ)

ବୁଲା ମନୁଷ୍ୟଙ୍କୁ ଦଅଯିବା ନାମ—3.Name given to males.

ବୁଲନ୍ତା ଦେ. ଭଣ. ପୁଂ—ଯେ ବୁଲେ; ଭ୍ରମଣକାରୀ—(ବୁଲା—ସ୍ତ୍ରୀ) Roving; wandering.

ବୁଲା(ଲେ)ଇବା—ଦେ. କ୍ରି. ( ବୁଲିବା କ୍ରିୟାର ଣିଜନ୍ତ ରୂପ )—Bulā(le)ibā ୧ । (ସକର୍ମକ) ଗଡ଼ କରାଇବା; ଘୂର୍ଣ୍ଣନ କରିବା; ଘୁ(ଘୋ)ରାନ ଘୂର୍ଣ୍ଣିତ କରାଇବା; ଘୁରାଇବା—1. To cause ଘୁମାନା a thing to turn round or whirl or revolve. (ଉ—ଛଅଟ କୁମାର ସେ ଚକ୍ରକୁ ବେଢ଼ିଛନ୍ତି, ଧରି କରି ତାହାକୁ ବୁଲାଉ ଅଛନ୍ତି । କୃଷ୍ଣସିଂହ. ମହାଭାରତ. ଆଦି ।) ୨ । (ସକର୍ମକ) କୌଣସି ବ୍ୟକ୍ତିକୁ ବହୁ ପଥ ଅକାରଣେ ଭ୍ରମଣ କରାଇବା; ଚଲାଇବା—2. To cause a person to walk a long way fruitlessly. (ଉ—ବାଇଆଣି ! ବୁଲେଇ ବୁଲେଇ ମାଇଲାଣି—ଭଗ ।) ୩ । ( ସକର୍ମକ ) ଭ୍ରମଣ କରାଇବା; ଟହଲାଇବା—3. To cause to move or walk; to take out for an airing. (ଯଥା—ଘୋଡ଼ାକୁ ନେଇ ପଡ଼ିଆରେ ବୁଲାଇ ଆଣ ।) ୪ । (ସକର୍ମକ) କୌଣସି ବ୍ୟକ୍ତିକୁ ସଙ୍ଗରେ ଘେନି ବୁଲିବା—4. To take with you a person for a walk. ( ଯଥା—ପଣ୍ଡା ଯାତ୍ରୀଙ୍କୁ ନେଇ ଦେଉଳ ବେଢ଼ା ଭିତରେ ବୁଲାଉଛନ୍ତି ।)

ବୁଲାନ ୫ । (ସକର୍ମକ) କୌଣସି ପଦାର୍ଥକୁ ବା ବସ୍ତ୍ର ଆଦିକୁ ଇତସ୍ତତଃ ଚାଳନା; ଚାଳନ କରିବା—5. To move to & fro. (ଉ—ଚାମର ବୁଲାଇ ସେବା କଲେ, ଯେସନେ ବନ୍ଦନ ଚାଳିଲେ । ଜଗନ୍ନାଥ. ଭାଗବତ) ୬ । (ସକର୍ମକ) ବ୍ୟାୟାମ ବା ଆତ୍ମରକ୍ଷା କାମରେ ଖଣ୍ଡା, ଯଷ୍ଟି ବା ବନ୍ଧୁକ ଆଦି ଚାଳନ କରିବା—6. To wave a stick, sword etc; to brandish; to flourish.

୭ । (ଅକର୍ମକ) ମୁଣ୍ଡ ଶବ୍ଦ ସଙ୍ଗେ ଲାଗେ) ଘୂର୍ଣ୍ଣିତହେବାପରି ଘୂରା ଅନୁଭୂତ ହେବା—7. To feel dizzy; to have a ଘୂମନା whirling sensation. (ଯଥା—୨୦୦ ହାତ ଉଚ୍ଚ ପୋଲ ଉପରେ ଠିଆ ହୋଇ ତଳକୁ ଚାହିଁଲାରୁ ମୋ ମୁଣ୍ଡ ବୁଲାଇଲା ) ୮ । (ଅକର୍ମକ) (ଦେହ ଶବ୍ଦ ସଙ୍ଗେ ଲାଗେ) ବମନୋଦ୍ବେଗ ହେବା—8. To have a tendency to vomit. ୯ । (ସକର୍ମକ) ଅନ୍ୟ ଦିଗକୁ ଫେରାଇବା-

ଘୂରାନ 9. To turn to the opposite direction or ଘୁମାନା to another direction. ( ଯଥା—ମଟରଗାଡ଼ିକୁ ପୂର୍ବଆଡ଼କୁ ବୁଲାଇ ରଖ ) ୧୦ । (ସକର୍ମକ) ଚଉଦିଗରେ ଚାଉିରକର୍‌ନା ପ୍ରଚାରିତ କରିବା—10. To publish broad-ଫେଲାନା. ଫେରାନା cast. ( ଯଥା—ଏ ଅଞ୍ଚଳପଞ୍ଜି କାହିଁ ସାହାଣ ଗାଆଁରେ ବୁଲାଅ ) ୧୧ । (ଥାଳ, ଥଳାପାତ୍ର ଶବ୍ଦ ପରେ ଲାଗେ) ଉପସ୍ଥିତ ବ୍ୟକ୍ତିମାନଙ୍କ ଠାରୁ ଚାନ୍ଦା ବା ଭିକ୍ଷା ସଂଗ୍ରହ କରିବା ଉଦ୍ଦେଶ୍ୟରେ ଗୋଟିଏ ଥାଳକୁ ବା ପାତ୍ରକୁ ସମସ୍ତଙ୍କ ପାଖରେ ଦେଖାଇ ଆଣିବା—11. To take a tray round amongst assembled persons for begging subscription or alms.

୧୨ । (ସକର୍ମକ) (ଦୃଷ୍ଟିକୁ ବା ଆଖିକୁ) ଏଣେ ତେଣେ ସଞ୍ଚାଳନ କରିବା—12. To turn one's eyes to defferent directions; to roll one's eyes.

[ ଦ୍ର—ବୁଲାଇବା କ୍ରିୟାର ଅସମାପିକାରୂପ ପରେ ଦେବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ ଓ ଭିନ୍ନ ଭିନ୍ନ ଅର୍ଥରେ ଆଣିବା, ନେବା, ପକାଇବା ଆଦି କ୍ରିୟା ଯୁକ୍ତ ହୁଏ, ଯଥା-ଘୋଡ଼ାକୁ ବୁଲାଇ ଆଣ, ପିଲାକୁ ବଜାର ବୁଲାଇ ନିଅ, ଗୋରୁକୁ ଖାଲକୁ ବଣାଇ କରି ବୁଲାଇ ପକାଅ । ]

ବୁଲା(ଲେ)ଇ ହେ(ଦେ)ବା—ଦେ. କ୍ରି—୧ । (ମୁଣ୍ଡ) ଘୂର୍ଣ୍ଣିତ ହେବାର Bulā(le)i he(de)bā ଅନୁଭୂତ ହେବା—1. To reel;to have ଘୂରୋଯାଓଆ a sensation of reeling. ( ଯଥା—ମୋ ଘୁମାଦେନା ମୁଣ୍ଡ ବୁଲାଇ ହେଉଛି ) ୨ । (ଦେହ) ବମନୋଦ୍ବେଗ ଅନୁଭବ କରିବା—2. To have a tendency to vomit. [ ଦ୍ର—ବୁଲାଇହେବା କ୍ରିୟା ଭିନ୍ନ ଅର୍ଥରେ ମୁଣ୍ଡ ଶବ୍ଦପରେ ଓ ଦେହ ଶବ୍ଦ ପରେ ଲାଗେ—ମୁଣ୍ଡ ବୁଲାଇ ହେବା=ମୁଣ୍ଡ ଘୂରିଲାପରି ଅନୁଭୂତ ହେବା; ହ(ଦେ)ହ ବୁଲାଇ ହେବା=ବାନ୍ତି ଦେଖାଇବା ।]

ବୁଲା(ଲ)ଉଣି—ଦେ. ବି—୧ । ବୁଲେଇବା କ୍ରିୟା—1. Act of Bulā(la)nni rolling. ୨ । ଘୂର୍ଣ୍ଣନ—2. Whirling; ଘୁରାନୀ ଘୁମାନା rotation.

ବୁଲାକି—ଦେ. ବି—ବୁଲିବା—Walking. ବୈଦେ. ବି. ( ବୁର୍କୀ— Bulāki ବୁଲାକ୍) ନାସାର ଦଣ୍ଡି; ଝୁଲଲ—A nosering ଘୂର୍ା with pendant. (ଉ—ନାସା ଜଳଫୁଲେ ତଳେ ଝଲମଲ ଘୁମନା ବୁଲାକି ଝୁଲାକି ମାନୁଥିଲା । କବିସୂର୍ଯ୍ୟ. ସଙ୍ଗୀତ ।) ଦେ. ଭଣ-ନୋଲକ ୧ । ଭ୍ରମଣଶୀଳ—1. Wandering. ୨ । ଯେ ଘର ବୁଲାକ ଆଡ଼କୁ ମୁହଁ ବୁଲାଏ—2. Turning round. ୩ । ବୁଲାଣି (ଦେଖ)—3. Bulāni (See).

ବୁଲା କୁକୁର—ଦେ. ବି—୧ । ଯେଉଁ କୁକୁରକୁ କୌଣସି ବ୍ୟକ୍ତି Bulā kukura ପୋଷି ନ ଥାଏ; ଯେଉଁ କୁକୁର ନାନା ବୁଲାକୁକୁର, ବୁଲାକୁତା } ଅନ୍ୟରୂପ— ସ୍ଥାନରେ ବୁଲୁଥାଏ—1. A dog not owned by any ( ବୁଲା କୁତୀ—ସ୍ତ୍ରୀ ) person; a roving dog.

[ ଦ୍ର—ଏହିପରି ବୁଲା ଫକୀର, ବୁଲାଷଣ୍ଢ, ବୁଲା ଗାଈ । ]

ବୁଲାକୁକୁର ୨ । ( ଲକ୍ଷଣାର୍ଥ—ଗାଳି ) ଯେଉଁ ବ୍ୟକ୍ତି ବୁଲାକୁକୁର ବିନାପୋଷା ହୁଆ କୁତ୍ତା ଭଳି ଏଣେ ତେଣେ ବୁଲି ପରର ଅଇଁଠା (ଘୋଷାକୁକୁର—ବଙ୍ଗଳା) ଖାଏ; ପରାନ୍ନଭୋଜୀ ବ୍ୟକ୍ତି—2. ( figurative ) A person who roves from door to door to eat the leavings of other people's tables; a toady; a hanger on. ୩ । ଗୃହହୀନ ବ୍ୟକ୍ତି—3. A homeless wanderer.

ବୁଲା(ଲ୍ଲା)ଖ୍(ଖି)—ବୈଦେ. ବି (ବଣିଆ ଶବ୍ଦ)—ବୁଲାକି ୨ (ଦେଖ)—
Bulā(llā)kh(khi) Bulāki 2 ( See )

ବୁଲାଚଲା—ଦେ. ବି ( ସହଚର; ସଂ. ବୁଲ୍ ଧାତୁ ଓ ଚଲ୍ ଧାତୁ )—
Bulā chalā ଭ୍ରମଣ କରିବା—Walking.
চলা ফিরা चलना फीरना

ବୁଲାଟି ବାଡ଼ି—ଦେ. ବି—ଯେଉଁ ଯଷ୍ଟିକୁ ମଲ୍ଲମାନେ ହାତଦ୍ୱାରା ବୁଲାଇ
Bulāṭi bāṛḍi କୁଢ଼ଇ ଦେଖାନ୍ତି; ବନୋଟ—A stick used
বনেটী by athletes in swinging it round and
बनोटी round.

ବୁଲାଣି—ଦେ. ବିଣ—ଯେଉଁ ବାଟ ଦେଇ କୌଣସି ସ୍ଥାନକୁ ଗଲେ
Bulāṇi ବହୁଦୂର ପଥ ଭ୍ରମିବାକୁ ହୁଏ—Circuitous
ঘুরা घूमान ( route ); round about ( road ).
[ବୁଲାଣିଆ(ଆଁ)—ଅନ୍ୟରୂପ]

ବୁଲାନ୍ତି—ପ୍ରାଦେ. ( ଗଞ୍ଜାମ ) ବିଣ—ଡାହାଣ ( ବଳଦ )—
Bulānti The right hand side (bullock).

ବୁଲା ବାହୁଟିଆ—ଦେ. ବିଣ• ପୁଂ—ଯେଉଁ ବ୍ୟକ୍ତି ଏଣେ ତେଣେ
Bulā bāhuṭiā ନିରର୍ଥକ ବୁଲିବାରେ ଅଭ୍ୟସ୍ତ; ଯାଯାବର—
পাড়া বেড়ানিয়া Roaming; wandering; loafing.
डोलने वाला ଦେ. ବି—ନିରର୍ଥକ ବୁଲିବା ବ୍ୟକ୍ତି—
Wanderer; loafer.

ବୁଲାବିକା—ଦେ. ବି ( ପୁଂ ଓ ସ୍ତ୍ରୀ )—ଯେଉଁ ବ୍ୟକ୍ତି ଘରଘର ବୁଲି
Bulābikā फेरीवाला ପଣ୍ୟ ଦ୍ରବ୍ୟ ବିକେ—A hawker.
(ବୁଲାବିକାଳି—ଅନ୍ୟରୂପ

ବୁଲାବୁଲି—ଦେ. ବି ( ସହଚର )—୧ । ଇତସ୍ତତଃ ବୁଲିବା କ୍ରିୟା—
Bulābuli 1. Wandering hither and thither
ঘুরাঘুরি in search of something. ୨ । ଇତସ୍ତତଃ
घुमना फीरना ବୁଲାଇବା କ୍ରିୟା—2. To make one walk
or wander hither and thither. ୩ । ଭ୍ରମଣ;
ପରିଭ୍ରମଣ—3. Walking.

ବୁଲାରୋଗ—ଦେ. ବି ( ବ୍ୟଙ୍ଗ )—ଏଣେ ତେଣେ ବୃଥା ଭ୍ରମଣ କରିବା
Bulāroga ରୂପ ମନ୍ଦ ଅଭ୍ୟାସ—A bad habit of roving;
বুলারোগ घुमनी रोग a roving habit.

ବୁଲା ସିଝୁ—ପ୍ରାଦେ. (ଗଞ୍ଜାମ) ବି—ଏକପ୍ରକାର ସିଝୁ—A kind of
Bulā sijhu Euphorbia Niruria or Euphorbia
Hirta. [ ବୃ—ଏହା ଆକାରରେ ଲଙ୍କାସିଝୁ ପରି, ଅଧିକନ୍ତୁ ଏହାର ଶାଖା ମୋଡ଼ି ମୋଡ଼ି ହୋଇଥାଏ । ଏହାର କ୍ଷୀର ତୀବ୍ର ବିରେଚକ; କଡ଼ା ସହିତ ଏହି କ୍ଷୀର ମିଶାଇ ମର୍ଦ୍ଦନ କଲେ ପକ୍ଷାଘାତ ପ୍ରଶମିତ ହୁଏ । ଏହି କ୍ଷୀର ଲଗାଇଲେ କୁଷ୍ଠ ଓ ଦାଦୁ ଭଲ ହୁଏ । ଏହାର ମୂଳର କ୍ୱାଥ ଶୂଳ ହରଣ କରେ; ଏହି ମୂଳର ପ୍ରଲେପ ଶୋଥନାଶକ । ଦ୍ରବ୍ୟଗୁଣ. କଳ୍ପଦ୍ରୁମ । ]

ବୁଲି—ସଂ. ବି ( ବୁଲ୍ ଧାତୁ = ମଗ୍ନ ହେବା + ଅଧିକରଣ. ଇ )—ଭଗ;
Buli ଯୋନି—Vagina; female organ. ଦେ. ବି—
বুলি ୧ । ବୋଲି; ପଦ; ଉକ୍ତି; ଭାଷା—1. Language;
बोली speech. ୨ । ଭାଷାର ଶବ୍ଦ—2. Word of a language. ୩ । ବାକ୍ୟ—3. Sentence. ୪ । ଶିକ୍ଷିତ ପକ୍ଷୀର ଉଚ୍ଚାରିତ କଥା ବା ପଦ—4. The call or utterance of words by a trained bird. ୫ । ଚଢ଼େଇର ସ୍ୱର—5. The tune of a bird. ୬ । ନିର୍ଦ୍ଦିଷ୍ଟ ଭାଷା; ବନ୍ଧା ଭାଷା—6. A formula; a set speech. ୭ । ( କଣିଆ ଶବ୍ଦ ) ଧାତୁର ପତ୍ର ଉପରେ ବା ମେଡାଲ୍ (ପଦକ) ଉପରେ ଅକ୍ଷର ଲେଖିବାରେ ବ୍ୟବହୃତ ବେଣ୍ଟ ଥିବା ମୁନିଆଁ ହତିଆର ବିଶେଷ—7. A pointed instrument for engraving letters on a metal plate or medal. ୮ । ସ୍ତ୍ରୀମାନଙ୍କୁ ଦିଆଯିବା ନାମ—8. A name given to females.
ଦେ. ବିଣ• ସ୍ତ୍ରୀ—(ଗାଳି) ଯେଉଁ ସ୍ତ୍ରୀ ବାଉଳିଆ ହୋଇ ବୁଲେ—
(a term of abuse to women ) Wandering ( woman ).

ବୁଲିଅନ—ଦେଶଜ. ବି ( ଇଂ. ବୁଲିଅନ୍ ) ( ଟାଙ୍କଶାଳାର ପାରିଭାଷିକ
Bulian ଶବ୍ଦ )—ମୁଦ୍ରାରେ ପରିବର୍ତ୍ତିତ ହେବା ପୂର୍ବରୁ ସୁନାର
বুলিঅন বା ରୂପାର ମୁଣ୍ଡା; ଇଟାସୁନା ବା ରୂପା—Bullion.
बूलियन

ବୁଲି ଧରିବା—ଦେ. କ୍ରି—(ଶୁଆ ଆଦି ପକ୍ଷୀ) ଶିଖାଯିବା ପଦକୁ ବୋଲିବା
Buli dharibā —To learn the sound or speech
বুলি ধরা बोली पकडना taught (said of a parrot).

ବୁଲି ପଡ଼ିବା—ଦେ. କ୍ରି—୧ । ଶୀଘ୍ର ପ୍ରତ୍ୟାବୃତ୍ତ ହେବା—1. To
Buli paṛḍibā return soon. ୨ । ପଛକୁ ବା କଡ଼କୁ
ফিরে আসা ମୁହଁ ବୁଲାଇବା—2. To turn one's face
মুখ ফিরান sidewards or backwards. ୩ । ଅଳ୍ପ-
বেড়িয়ে আসা ସମୟ ପାଇଁ ଭ୍ରମଣ କରିବା—3. To take a
ধম খাওয়া short walk. ୪ । ( କୂଅ ) ଭୁଶୁଡ଼ିବା—
4. (a well) To collapse. ( ଯଥା—ଆଉବର୍ଷ ନୂଆ କୂଅ ଖୋଳା ହୋଇଥିଲା, ଏହି ଥରକ ବଡ଼ ବରଷାରେ କୂଅଟା ବୁଲି ପଡ଼ିଲା । )

ବୁଲିବା—ଦେ. କ୍ରି—(ସଂ. ବଲ୍; ବୁଲ୍ ଧାତୁ ସଂଚରଣ)—୧ । ଭ୍ରମଣ
Bulibā କରିବା; ବୁଲିବା—1. To walk. ୨ । ଗତି କରିବା
বুলা घूमना 2. To move. ୩ । ଇତସ୍ତତଃ ଗତି କରିବା; ଟହଲିବା—3. To move to and fro; to take a walk. [ଉ—ସରାଗେ ମୃଗୀଏ ବିହରୁଣ ଥାନ୍ତି; ଗାରେ ଯାଉ ତତ ବୁଲି । ରାଧାନାଥ. ଯଯାତି ।] ୪ । ବୃଥା ଭ୍ରମଣ କରିବା—4. To rove or wander aimlessly. ୫ । ବେଢ଼ିବା—5. To surround. ୬ । ଘୂର୍ଣ୍ଣାୟମାନ ହେବା; ଘୂର୍ଣ୍ଣିତ ହେବା—6. To turn round; to whirl round. ୭ । ବିପରୀତ ଦିଗକୁ ଯିବା—7 To turn or be turned to the opposite direction or to another direc-

tion. [ଉ—ବସିଲ ଗଲେ ଗୁଣ୍ଡ, ଚଳଗଲ ପ୍ରଚଣ୍ଡ, ଭବେ ବୁଲଲ କାଣି ମୁଣ୍ଡ । ଭଞ୍ଜ· ବୈଦେହୀଶବିଳାସ ।] ୮ । ପ୍ରତ୍ୟାବର୍ତ୍ତନ କରିବା—8. To return; to turn back. ୯ । ହାଉଆ ଖାଇବା; ବାୟୁ ସେବନାର୍ଥ ପାଦଚାରଣ କରିବା—9. To take an airing; to take a constitutional walk. ୧୦ । ଦେଶ ଭ୍ରମଣ କରିବା—10. To travel. ୧୧ । ବୃତ୍ତାକାରରେ ଗତି କରିବା—11. To move in a circle. ୧୨ । ଗୁରୁଆଡ଼େ ରେଖା ଅଙ୍କିତ ହେବା; ବେଷ୍ଟିତ ହେବା—12. To be encircled by a line. (ଯଥା—ଶୁଆର କଣ୍ଠ ବୁଲଲଣି ।)

ବୁଲି ଯିବା—ଦେ. କ୍ରି—୧ । ଭ୍ରମଣ କରିବାକୁ ବାହାରିବା—1. To Buli jibā go awalking; to go out for a walk. ୨ । ଅଳ୍ପ ଅସୁସ୍ଥ ଓ ରୁଗ୍ଣ ଅବସ୍ଥାରୁ ମୁକ୍ତ ହୋଇ **मोटा होना** ସୁସ୍ଥ, ସବଳ ଓ ମୋଟାସୋଟା ହୋଇଯିବା—2. To घूरे याओया be stouter and stronger. ୩ । ଅନ୍ୟ ফুলে याओया ଆଡ଼କୁ ବା ବିପରୀତ ଦିଗକୁ ଯିବା—3. To turn গলে য়াওয়া to an opposite direction or to another ঘুলিযে যাওয়া direction. ୪ । (ଘନ ବସ୍ତୁ) ତରଳାବସ୍ଥା ପ୍ରାପ୍ତ ହେବା; ଗଳିତ ହେବା—4. To melt. (ଯଥା—ବସିଲ ଘିଅ ଖରାରେ ବୁଲି ଗଲଣି ।) ୫ । ବିକୃତ ହେବା—5. To deteriorate. (ଯଥା—ବର୍ଷେ କାଳ ମାଠିଆରେ ରହିବାରୁ ଗୁଡ଼ତକ ବୁଲି ଗଲା ।)

ବୁଲି ଶୋଇବା—ଦେ. କ୍ରି—କୌଣସି ବ୍ୟକ୍ତି ଆଡ଼କୁ ମୁହଁ ନ କରି Buli śoibā ଶୋଇବା—To turn the face away পাশ ফিরিয়ে শোয়া from a person and sleep. **मुख फेराकर सोना**

ବୁଲୁ—ବୈଦେ ବି. (ଇଂ)—ନୀଳ ରଙ୍ଗ; ନେଳିଆ ରଙ୍ଗ— Bulu ব্লু Blue colour; blue paint. **नीला**

ବୁଲେଇ ବୁଲେଇ କହିବା—ଦେ. କ୍ରି—କୌଣସି କଥାକୁ ସ୍ପଷ୍ଟ ବା Bulei bulei kahibā ସିଧା ରୂପେ ନ କହି ଏଣୁ ତେଣୁ ବଙ୍କାଇ ঘুরিয়ে ফিরিয়ে কথা বলা ବଙ୍କାଇ କେବଳ ଇସାରା ଦେବା— **घुमा घुमाकर कहना** To speak (something) indirectly and in a round about manner.

ବୁଲେଟ(ଡ୍)—ବୈଦେ. ବି. (ଇଂ—ବୁଲେଟ୍)—ଅଫିମରୁ ପ୍ରିତୁତ ଧୂଆଁ ସଙ୍ଗେ ସଙ୍ଗେ ଧୂମ ରୂପେ ପାନ କରିବାକୁ ଛୁଆଇ Bulet(d) ବୁଲେଟ କରି ଯାଉଥିବା ଗୋଲା; ଗୁଲି; ମଦକ ଗୋଲା—Bullet **बुलेट** prepared from opium for the purpose of smoking.

ବୁଲେଟିନ୍—ବୈଦେ. ବି. (ଇଂ)—ସର୍ବସାଧାରଣରେ ପ୍ରକାଶିତ ହେବା Buletin ନିମନ୍ତେ ସରକାରଙ୍କ ଅଳ୍ପପତ୍ରିକା—Bulletin. বুলেটিন **बुलेटीन**

ବୁଷ(ସ)—ସ. ବି. (ବୁସ୍ ଧାତୁ=ତ୍ୟାଗ କରିବା+କର୍ମ. ଅ)— Busha(sa) ୧ । ଭୁଷି; କୁଣ୍ଡା; ଶସ୍ୟର ଚୋପା—1. Husks. ୨ । ଅଗାଡ଼ି; ତୁଚ୍ଛ ଧାନ୍ୟ—2. Chaff.

ବୁସ (ଧାତୁ)—ସ.—୧ । ତ୍ୟାଗ କରିବା— Bus(root) 1. To shun; to give up. ୨ । ଅନାଦର କରିବା—2. To slight; to disregard.

ବୁସା—ସ. ବି. ସ୍ତ୍ରୀ—(ବୁସ୍ ଧାତୁ+ଅ+ସ୍ତ୍ରୀ. ଆ)—ନାଟ୍ୟୋକ୍ତିରେ Busā କନିଷ୍ଠା ଭଗିନୀ—A dramatic term meaning a younger sister.

ବୁସେଲ୍—ବୈଦେ. ବି. (ଇଂ—ବୁସେଲ୍)—ଶସ୍ୟର ଏକପ୍ରକାର ମାପ ବା Busel ପରିମାଣ—A standard of measure of corn. বুসেল [ ଦ୍ର—୧ ବୁସେଲ୍=୮ ଗାଲନ୍=୩୨ କ୍ୱାର୍ଟ୍=୬୨ **बुसल** ପାଇଣ୍ଟ୍=୩୨ ସେର ]—

ବୁସ୍ତ(ସ୍ତ୍ର)—ସ. ବି. (ବୁସ୍ ଧାତୁ=ତ୍ୟାଗ କରିବା, ଅନାଦର କରିବା+କର୍ମ· Busta(stra) ତ, କ୍ର)—୧ । ପଣସ ଆଦି ଫଳର ଅସାର ଭାଗ; ପଣସ ବୋଡ଼ା—1. The unuseable portion of a jack fruit. ୨ । ହାଣ୍ଡିରେ ଭଜା ହୋଇ ଥିବା ମାଂସ—2. Meat fried in a pot.

ବୁହ—ଗ୍ରା· ବି· (ସ· ବ୍ୟୂହ)—ବ୍ୟୂହ (ଦେଖ) Buha Byūha (See)

ବୁହନ୍ତା(ନ୍ତି)—ଦେ. ବିଣ· (ସ. ବହ୍ ଧାତୁ; ବହନ୍; ସ. ବହନ୍ତୀ)— Buhantā(nti) ପ୍ରବାହିତ—1. Flowing; having a বহতী current. (ଯଥା—ବହନ୍ତା ନଦୀରେ ଗାଧୋଇବା ସ୍ୱାସ୍ଥ୍ୟ **बहताहुआ** ପକ୍ଷରେ ହିତକର ।) ୨ । ବହନକାରୀ— 2. Carrying.

ବୁହା—ଦେ· ବି. (ସ. ବହ୍ ଧାତୁ; ବହନ)—୧ । ବୁହାଇବା କ୍ରିୟା; Buhā ବହନ (ଯଥା—ବୋଝ ବୁହା)—1. Act of carry- বহা ing. ୨ । ପାଣି ଆଦିକୁ ଜଳାଶୟରୁ ଉପରକୁ ଉଠାଇବା— **ढोना** 2. Act of lifting or baling out (water) (ଯଥା—ମରୁଡ଼ି ବେଳେ ବନ ଗୁଡ଼ି ଧାନ କିଆରିକୁ ପାଣି ବୁହା ଲାଗେ ।) ୩ । ବାହକ ବ୍ୟକ୍ତି—3. Carrier. (ଯଥା—ସବାରି ବୁହା ।) ୪ । ବହି ନେବା; କୌଣସି ବ୍ୟକ୍ତିଠାରୁ ବହୁ ପରିମାଣରେ ନେଇଯିବା—4 The act of taking away; carrying away in a great quantity. ଉ—ରାଜଧର୍ମ ହେଲା ପ୍ରଜାଧନ ବୁହା । ରାଧାନାଥ. ଦରବାର) ଦେ. ବିଣ. (ଅନ୍ୟ ଶବ୍ଦ ସଙ୍ଗେ ଲାଗେ)—୧ । ବହନକାରୀ—1. Carrying. (ଯଥା—ପାଣି ବୁହା ଗଉଡ଼ ।) ୨ । ଯାହା ପ୍ରବାହିତ କରେ; ପ୍ରବାହ ଉତ୍ପନ୍ନକାରୀ—2. Causing a flow or current. (ଯଥା—ରକତ ବୁହା ମାଡ଼ ।) ୩ । ପ୍ରବାହ ଉତ୍ପାଦିତ ହେବାର ଫଳ ରୂପେ ପ୍ରାପ୍ତ ବା ଉତ୍ପନ୍ନ—3. Resulting from a flow or current. (ଯଥା—ଝାଳ ବୁହା ଧନ ।) ୪ । ପ୍ରବାହିତ; ଯାହା ବହି ଯାଉଛି;

ସ୍ରୋତସ୍ୱାନ୍—4. Flowing; having a current (ଯଥା—ବୁହା ନଈ ।) ୫ । ବାହୃତ; ଉତ୍ତୋଳିତ (ଜଳ)—5. Lifted up (water). (ଯଥା—ବୁହା ପାଣିରେ ଖେତ କଅଛୁ ।) ପ୍ରାଦେ. (ଗଡ଼ଜାତ, ପୁରୀ, କଟକ) ବି. (ସଂ. ବହ୍ନ) —୧ । କାମର ଏକ ହୁଣା—1. A single course in a work; heat. (ଯଥା—ସବୁ ଲୋକ ମିଳି ଗୋଟେ ବୁହା ମାରି ଦେଲେ ଏ କାମ ସରିଯିବ ।) ୨ । ରାଗ ଅବର ଏକ ପ୍ରଚଣ୍ଡ ବେଗ—2. Paroxysm; vehemence; fit of passion.

**ବୁହା(ହେ)ଇବା**—ଦେ. କ୍ରି—(ବହିବା କ୍ରିୟାର ଣିଜନ୍ତ ରୂପ—Causative of bahiba). ୧ । ବହାଇବା; ବହନ କରାଇବା—1. To cause to carry; to cause to be carried. (ଦୃ—ଇନ୍ଦ୍ର ହୋଇଲେ ନୃପବର, ଋଷିଙ୍କି ବୁହାଇଲେ ଭାର । ଜଗନ୍ନାଥ. ଭାଗବତ ।) ୨ । (ରଥ, ଡଙ୍ଗା) ବାହିବା; ଚାଳିତ କରାଇବା—2. To drive; to cause to move (a cart, a boat). (ଦୃ—ଲେଉଟାଇ ପୁରକୁ ବୁହାଇଲେ ରଥ । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।) ୩ । ପ୍ରବାହିତ କରାଇବା—3. To cause to flow ୪ । କ୍ଷେତ୍ରାଦିରେ ମଡ଼ାଇବା ପାଇଁ ବା ଜଳଶୂନ୍ୟ କରିବା ପାଇଁ ପୁଷ୍କରଣୀ ଆଦିରୁ ଜଳ ଉଠାଇବା—4. To lift water for the purpose of irrigating fields or emptying a tank; to bale out water. [ଦ୍ର—ସଂ. ବହ୍ ଧାତୁରୁ ଓଡ଼ିଆରେ 'ବହିବା' କ୍ରିୟାକୁ ସାଧାରଣତଃ 'ବୋହିବା' ଓ ଣିଜନ୍ତ 'ବହାଇବା' କ୍ରିୟାକୁ ସାଧାରଣତଃ 'ବୁହାଇବା' ରୂପେ ବ୍ୟବହାର କରାଯାଏ ଓ 'ବହନ' ଶବ୍ଦର ଓଡ଼ିଆ ବିଶେଷ୍ୟ ରୂପ 'ବହା'କୁ 'ବୁହା' ରୂପେ ଓ ବିଶେଷଣ 'ବାହକ' ଓ 'ବାହିତ'କୁ 'ବୁହା' ରୂପେ ବ୍ୟବହାର କରାଯାଏ ।]

Buhā(he)ibā
वहान
**बहाना, ढोना**

**ବୁହାଏ(କ)**—ଗ୍ରା. ଅ. (ସଂ. ବହୁ)—୧ । ବହେ; ଅନେକ; ବହୁତ; ବହୁ—1. Much; great; many. (ଯଥା—ମୁଁ ବୁହାଏ ବାଟ ଗଲିଲି; ମୁଁ ତାଙ୍କୁ ବୁହାଏ ଗୋଧିଲି) ୨ । ଥରେ—2. Once. ୩ । ପର୍ଯ୍ୟାପ୍ତରୂପେ—3. Abundantly; copiously. ୪ । ପ୍ରଚଣ୍ଡତା ସହକାରେ—4. Vehemently.

Buhāe(ka)
ଏକ ଚୋଟ
**अधिक, जयादे**

**ବୁହାଏ(କ) ବାଟ**—ଦେ. ବି—ବହୁତ ଦୂର ରାସ୍ତା—A great distance; a great way; a long distance.

Buhāe(ka) bāta
**जयादा रास्ता**

**ବୁହାଣ**—ଦେ. ବି. (ସଂ. ବହନ)—ବୁହାଇବା କ୍ରିୟା—The act of carrying.

Buhāṇa
वहा **बहाव**

**ବୁହାଣିଆ(ଆଁ)**—ଦେ. ବି—ମଳିଙ୍ଗ ( ଦେଖ ) Maḷiṅga ( See )

Buhāṇiā(āṅ)

**ବୁହିବା**—ପ୍ରାଦେ. (ସମ୍ବଲପୁର) କ୍ରି. ( ସଂ. ବହ୍ ଧାତୁ )—୧ । ବହିବା; ବହନ କରିବା—1. To bear. ୨ । ସ୍ରୋତରୂପେ ବହିଯିବା—2. To flow; to move like a current. (ଦୃ—ତଙ୍କି ତ ମାଛର ଝୋଲ, ତାର ସଙ୍ଗେ ମିଶିଲେ ଘୋଲ, ବୁହି ପଡ଼ୁଥାଏ ଘି—ଢଗ ।)

Buhibā

**ବୃ (ଧାତୁ)**—ସଂ—୧ । ଆବରଣ କରିବା—1. To cover. ୨ । ବାଛିବା; ପସନ୍ଦ କରିବା; ବରଣ କରିବା—2. To select; to choose. ୩ । ପ୍ରାର୍ଥନା କରିବା—3. To pray. ୪ । ପୋଷଣ କରିବା—4. To support.

Bṛu (root)

**ବୃଂହ୍ (ଧାତୁ)**—ସଂ—୧ । ଶବ୍ଦ କରିବା—1. To make a sound. ୨ । ଗର୍ଜନ କରିବା—2. To make a roar. ୩ । ସମୃଦ୍ଧ ହେବା; ପୁଷ୍ଟ ହେବା—3. To prosper; to flourish. ୪ । ପୁଷ୍ଟି କରିବା—4. To nourish.

Bṛumh (root)
(ବୃନ୍ହ୍—ଅନ୍ୟରୂପ)

**ବୃଂହଣ**—ସଂ. ବି. (ବୃଂହ୍ ଧାତୁ=ଶବ୍ଦ କରିବା; ସମୃଦ୍ଧ ହେବା+ଭାବ. ଅନ)—୧ । ହାତୀର ଗର୍ଜନ ବା ରବ—1. The braying of an elephant. [ଦ୍ର—ହାତୀ ଗରଜିବା, ଓଡ଼ିଆରେ 'ଘେଁକାରିବା' କହନ୍ତି ।] ୨ । (+କର୍ତ୍ତୃ. ଅନ) ବଳବର୍ଦ୍ଧକ ବା ପୁଷ୍ଟିକାରକ ଦ୍ରବ୍ୟ (ହି. ଶ)—2. Any nourishing thing. ୩ । ଭାବପ୍ରକାଶ ମତରେ ଏକ ପ୍ରକାର ଧୂମ ପାନ (ହି. ଶବ୍ଦସାଗର)—3. A kind of smoking for medicinal purposes. ୪ । ଅଶ୍ୱଗନ୍ଧା (ହି. ଶ)—4. Withania Somnifera (tree). ୫ । ମନକ୍କା (ହି. ଶବ୍ଦସାଗର)—5. Raisin. ୬ । ଶୂକର ମାଂସରେ ପକ୍ୱ ଯବର ଛତୁଆ (ହି. ଶବ୍ଦସାଗର)—6. Barley-flour cooked with pork. ସଂ. ବିଣ. (+କର୍ତ୍ତୃ. ଅନ)—୧ । ପୁଷ୍ଟିଜନକ—1. Invigorating; nourishing. ୨ । ବଳକର—2. Strengthening; strength-giving.

Bṛumhaṇa

**ବୃଂହିତ**—ସଂ. ବିଣ—(ବୃଂହ୍ ଧାତୁ=ସମୃଦ୍ଧ ହେବା; ଶବ୍ଦ କରିବା+କର୍ତ୍ତୃ. ତ)—୧ । ବୃଦ୍ଧିପ୍ରାପ୍ତ—1. Augmented; increased. ୨ । ପୁଷ୍ଟ—2. Developed; nourished. ସଂ. ବି—( +ଭାବ. ତ )—ହାତୀର ଗର୍ଜନ—The braying of an elephant.

Bṛumhita

**ବୃକ୍ (ଧାତୁ)**—ସଂ.—ଗ୍ରହଣ କରିବା—To take hold of; to accept.

Bṛuk (root)

**ବୃକ**—ସଂ. ବି. ପୁଂ (ବୃକ୍ ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ; କିମ୍ବା ବୃ ଧାତୁ=ଆବରଣ କରିବା+କର୍ତ୍ତୃ. କ)—୧ । ହେଟା; (ବୃକୀ—ସ୍ତ୍ରୀ) ଲେଙ୍କଡ଼ା ବାଘ; ଗଧିଆ—1. Wolf; hyena. ୨ । ବକ ବୃକ୍ଷ; ଅଗସ୍ତିଗଛ—2. Name of a tree; Sesbania Grandiflora. ୩ । ଶୃଗାଳ—3. Jackal. ୪ । କ୍ଷତ୍ରିୟ—4. A Kshatriya. ୫ । ବାୟସ; କୁଆ—5. Crow. ୬ । ଅର୍ଦ୍ଧଚନ୍ଦ୍ର-ଜନକ କାର୍ଣ୍ଣିଶଶ୍ରୀବିଶିଷ୍ଟ ଜଠରାନଳ—6. A very

Bṛuka

digestive fire or energy inside the belly.
୭ । ସରଳ ବୃକ୍ଷସାର; ଗନ୍ଧବିରଜା (ହି. ଶ)—7. The aromatic juice from the Himalayan pine tree. ୮ । ବଣଆ କୁକୁର-8. A wild dog. (ଉ—ବୃକପରି ବେଢ଼ି ସେନାପତିମାନେ ବୃକୋଦର ସୁରେ ପେଷି ସେ । ଭଞ୍ଜ. ବୈଦେହୀଶବିଳାସ ।] ୯ । ବଜ୍ର (ହି. ଶ)—9. Thunder. ୧୦ । ଚୋର (ହି. ଶ)—10. Thief. ୧୧ । ବୃକାସୁର (ଦେଖ)—11. Brukāsura (See). ( ଉ—ବୃକ କଷାସେ କଲେ ନାଶ, ନାହିଁ କଷୋସଯାତ ଦୋଷ । ପ୍ରାଚୀ. ପୂର୍ଣ୍ଣିମ ଚନ୍ଦ୍ରୋଦୟ ।)

**ବୃକଦଂଶ(ସ)**—ସଂ. ବି (ବୃକ=ଶୃଗାଳ+ଦଂଶ ଧାତୁ=କାମୁଡ଼ିବା+ କର୍ତ୍ତୃ. ଅ; ଯେ ଶୃଗାଳକୁ ଦଂଶନ କରେ)-
Brukadamśa(sa)
ବୃକାରାତି } ଅନ୍ୟରୂପ
ବୃକାରି
୧ । କୁକୁର—1. Dog. ୨ । ହେଟାବାଘ—2. Hyena. ୩ । ବଣଆକୁକୁର—3. A species of ferocious wild dog.

**ବୃକ ଧୂପ**—ସଂ. ବି—୧ । ଝୁଣା—1. Resin. ୨ । ନାନା ସୁଗନ୍ଧ
Bruka dhūpa ଦ୍ରବ୍ୟରେ ପ୍ରସ୍ତୁତ ଧୂପ—2. An incense made up of many fragrant articles. (ଉ—ବୃକ ଧୂପରେ ଧୂପିତ, ସେ ଓକ କଲେ କାରତ, ଦ୍ରାକ୍ଷା ଅଶନରେ ହୋଇ ତୋଷ । ଭଞ୍ଜ. ବୈଦେହୀଶବିଳାସ )

**ବୃକା**—ସଂ. ବି—(ବୃକ+ସ୍ତ୍ରୀ. ଆ)—ଅମ୍ବଷ୍ଠା; ଅକାନବିନ୍ଧ ଲତା; ପାଠା
Brukā ( ହି. ଶ )—Stephania Hernandifolia (creeper).

**ବୃକାୟୁ**—ସଂ. ବି—୧ । ବଣଆକୁକୁର (ହି. ଶ)—1. A species of
Brukāyu ferocious wild dog. ୨ । ଚୋର (ହି. ଶ)—2. Thief.

**ବୃକାସୁର**—ବି—ବୃକ ନାମକ ଦୈତ୍ୟ; ଭସ୍ମାସୁର—A demon
Brukāsura named Bruka. (ଉ—ବୃକାସୁର ତାହା କର
ବୃକକର୍ମୀ } ଅନ୍ୟରୂପ
ବୃକଦନ୍ତ
ନିଜ ଶିରେ ଯଥା ଦେଲା ହର ବୋଲେ—ଭଞ୍ଜ. ବୈଦେହୀଶବିଳାସ ।)
[ ଦ୍ର—ଏ ଅସୁର କଠୋର ତପସ୍ୟା କରି ମହାଦେବଙ୍କ ଠାରୁ ବର ପାଇଲା ଯେ, ଏ ଯାହା ମୁଣ୍ଡରେ ହାତ ଦେବ ସେ ତତ୍କ୍ଷଣାତ୍ ଭସ୍ମ ହୋଇଯିବ । ବର ପାଇଲାପରେ ବୃକାସୁର ଉକ୍ତ ବରକୁ ମହାଦେବଙ୍କଠାରେ ପରୀକ୍ଷା କରିବା ପାଇଁ ମହାଦେବଙ୍କୁ ଗୋଡ଼ାଇଲା । ମହାଦେବ ଭୟରେ ପଳାଇଲେ । ଶେଷରେ ବିଷ୍ଣୁ ନିକଟରେ ପହଞ୍ଚିଲାରୁ ବିଷ୍ଣୁ ଛଳନା କରି ଉକ୍ତ ରାକ୍ଷସକୁ କହିଲେ ସେ ବରର କୌଣସି ଫଳ ହେବ ନାହିଁ, ବର ଠିକ୍ କି ଅଠିକ୍, ତାହା ତୁ ନିଜ ମୁଣ୍ଡରେ ହାତକୁ ଲୁଚାଇ ଦେଖ । ତାହା ଶୁଣି ଉକ୍ତ ରାକ୍ଷସ ନିଜ ମୁଣ୍ଡରେ ହାତ ଲୁଚାଇ ଦେବାରୁ ହଠାତ୍ ମରି ଭସ୍ମରେ ପରିଣତ ହେଲା ।]

**ବୃକୋଦର**—ସଂ. ବି—(ବହୁବ୍ରୀହି; ବୃକ ନାମକ ଅଗ୍ନି ଉଦରରେ
Brukodara ଯାହାର )—୧ । ଭୀମ; ମଧ୍ୟମ ପାଣ୍ଡବ—1. Bhima; the second Pāndaba brother.
୨ । ବରୁଣ—2. God Baruna. ୩ । ଯମ—3. Jama; the king of death. ( ଉ—ବୃକପରି ବେଢ଼ି ସେନାପତିମାନେ ବୃକୋଦର ସୁରେ ପେଷି । ଭଞ୍ଜ. (ବୃକୋଦରୀ—ସ୍ତ୍ରୀ) ବୈଦେହୀଶବିଳାସ ।) ସଂ. ବି. ପୁଂ—ପେଟୁ—Voracious; gluttonous.

**ବୃକ୍କ**—ସଂ. ବି.—(ବୃକ୍ ଧାତୁ+କର୍ତ୍ତୃ. କ)—ମୂତ୍ରାଶୟ (ହି. ଶ)—
Brukka (ବୃକ୍କକ—ଅନ୍ୟରୂପ) Kidney; bladder

**ବୃକ୍କା**—ସଂ. ବି, ( ବୃକ୍ ଧାତୁ+କର୍ତ୍ତୃ. କ+ଆ )—ହୃଦୟ (ହି. ଶ.)—
Brukkā Heart.

**ବୃକ୍ଷ୍ ଧାତୁ**—ସଂ.—ବେଷ୍ଟନ କରିବା—
Bruksh (root) To surround.

**ବୃକ୍ଷ**—ସଂ. ବି. ( ବୃକ୍ଷ୍ ଧାତୁ+କର୍ତ୍ତୃ. ଅ; କିମ୍ବା ବ୍ରଶ୍ଚ୍ ଧାତୁ=ଛେଦନ
Bruksha କରିବା+କର୍ମ. ଅକ —୧ । ଗଛ; ପାଦପ—
[ଅନ୍ୟ ସଂ. ନାମ—ମହୀରୁହ, ଶାଖୀ, ବିଟପୀ, ପାଦପ, ତରୁ, ପଳାଶୀ, ଦ୍ରୁମ, ଅଗମ, ନଗ, ଅଗ, କୁଜ, କ୍ଷିତିରୁହ, ମହୀଜ, ସାଲ) 1. A tree. [ଦ୍ର—ଯେଉଁ ଉଦ୍ଭିଦର ମୂଳରୁ ଗୋଟିଏ ଝାଣ୍ଡିଆ ଓ ସିଧା ଗଣ୍ଡି ସିଧାହୋଇ ଉଠନ୍ତି ଉପରେ ଓ ଭୂମିରୁ କିଛି ଦୂର ଉଠିଲା ପରେ ଯହିଁରୁ ଶାଖା ବାହାରେ ଓ ଯହିଁରେ ଫଳ ଥାଏ ତାକୁ ବୃକ୍ଷ ବୋଲଯାଏ ।]
୨ । ବୃକ୍ଷପରି ମୂଳ ଓ ଶାଖା ପ୍ରଶାଖାଯୁକ୍ତ କଳ୍ପିତ ଚିତ୍ର (ଯଥା-ବଂଶବୃକ୍ଷ)—2. Any picture or drawing in the shape of a tree (having a root and branches ) ( e. g. genealogical tree ).
ଦେ. ବି—ଯେ କୌଣସି ପ୍ରକାର ବଡ଼ ଉଦ୍ଭିଦ—Any big or tall vegetable growth growing out of a root.

**ବୃକ୍ଷକ**—ସଂ. ବି—(ବୃକ୍ଷ+କ୍ଷୁଦ୍ରାର୍ଥେ. କ)—୧ । ସୁଲ୍ଲ; ଛୋଟ ଗଛ—
Brukshaka 1. Small tree; plant. ୨ । କ୍ଷୁପ; ବୁଦା—2. Shrub. ୩ । କୁଟଜ ଗୁଳ୍ମ (ହି. ଶ) (ଦେଖ)—3. Kutaja (See).

**ବୃକ୍ଷଚର**—ସଂ. ବି. ପୁଂ (ବୃକ୍ଷ+ଚର୍ ଧାତୁ+ଅ; ଯେ ଗଛରେ ବିଚରଣ
Brukshachara କରେ)—କପି; ବାନର—Monkey.
( ବୃକ୍ଷଚରୀ—ସ୍ତ୍ରୀ )

**ବୃକ୍ଷଚ୍ଛାୟା**—ସଂ. ବି—(ବୃକ୍ଷ+ଛାୟା; ସନ୍ଧିହେବାରୁ ଚ୍ଛ)--୧ । ଗଛର ଛାଇ—
Brukshachchhāyā 1. The shade of a tree.
୨ । ବହୁବିସ୍ତୃତ ବୃକ୍ଷର ତଳ ଦେଶରେ ବିସ୍ତୃତ ଛାୟା—2. The shadow below a spreading tree.

**ବୃକ୍ଷତକ୍ଷକ**—ସଂ. ବି—ଏଣ୍ଡୁଅ (ହି. ଶ)—
Brukshatakshaka Chameleons.

**ବୃକ୍ଷତଳ**—ସଂ. ବି—( ୬ଷ୍ଠୀ ତତ୍ )—ଗଛର ନିମ୍ନଦେଶସ୍ଥ ଭୂମି—
Brukshatala The ground below a tree; the foot of a tree.

**ବୃକ୍ଷନାଥ**—ସଂ. ବି—(୬ଷ୍ଠୀ ତତ୍) - ବଟଗଛ—The banyan tree
Brukshanātha
(ବୃକ୍ଷପାଳ—ଅନ୍ୟରୂପ)

ବୃକ୍ଷ ପ୍ରତିଷ୍ଠା—ସଂ. ବି (୬ଷ୍ଠୀ ତତ୍)—ଶାସ୍ତ୍ରୋକ୍ତ ପୁଣ୍ୟଫଳ ପ୍ରାପ୍ତ୍ୟାଶାରେ Bṛuksha pratishṭhā ଅଶ୍ୱତ୍ଥ ଆଦି ବୃକ୍ଷର ରୋପଣ—The planting of trees as a pious act.

ବୃକ୍ଷବାଟିକା—ସଂ. ବି—୧ । ଉପବନ; କୁଞ୍ଜବନ; ନିକୁଞ୍ଜ; ଗଛଆଡ଼େ Bṛukshabāṭikā ଗଛ ଘେରିଥିବା ସ୍ଥାନ—1 A grove; grotto. ୨ । ବିହାରୋଦ୍ୟାନ—2 Park; pleasure garden. ୩ । ବଗିଚା ଘର—3. A garden house. ୪ । ବଗିଚା—4. A garden.

ବୃକ୍ଷ ଭକ୍ଷା—ସଂ. ବି. (ବୃକ୍ଷ+ଭକ୍ଷ୍ ଧାତୁ+କର୍ତ୍ତୃ. ଅ+ଆ)—୧ । ପରାଙ୍ଗଲୀ Bruksha bhakshā ଲତା—1. A parasitic creeper. (ବୃକ୍ଷାଦନୀ; ବୃକ୍ଷରୁହା—ଅନ୍ୟରୂପ) ୨ । ମଲ୍ଲଙ୍ଗ—2. Orchid.

ବୃକ୍ଷ ଭିଦ୍—ସଂ ବି—(ବୃକ୍ଷ+ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ)—୧ । କୁଠାର; Bṛukshabhid କୁରାଢ଼ି—1. An axe. ୨ । ବାଉଁଶୀ—(ବୃକ୍ଷଭେଦୀ—ଅନ୍ୟରୂପ) 2. Adze. ୩ । ଟାଙ୍ଗିଆ—3. A small axe; a hatchet. ୪ । ବଟାଳି—4. Chisel.

ବୃକ୍ଷ ମର୍କଟିକା—ସଂ. ବି—( ବୃକ୍ଷ+ମର୍କଟ+କ+ସ୍ତ୍ରୀ. ଆ ) —ଗୁଣ୍ଡୁଚି Bṛuksha markaṭikā ମୂଷା—A squirrel; Sciurus Palmarum.

ବୃକ୍ଷମୂଳ—ସଂ. ବି—(୬ଷ୍ଠୀ ତତ୍; ବୃକ୍ଷ+ମୂଳ)—୧ । ଗଛର ଚେର—Bṛuksha mūḻa 1. Root of a tree. ୨ । ଗଛର ନିମ୍ନ ଦେଶସ୍ଥ ଭୂମି—2. The foot of a tree.

ବୃକ୍ଷ ରାଜ—ସଂ. ବି—୧ । ଅଶ୍ୱତ୍ଥ ବୃକ୍ଷ; ବୋଧି ଦ୍ରୁମ—1. The reli-Bṛuksha rāja gious fig. (ଉ—ବୃକ୍ଷରାଜ ପରି ସାଜେକତ (ବୃକ୍ଷରାଜ୍—ଅନ୍ୟରୂପ) ନଗରୀ କରି ଅଲକ୍ଷ୍ମୀ ଆଶ୍ରିତ । ଉଞ୍ଜ. ବୈଦେହୀଶବିଳାସ ।) ୨ । ପାରିଜାତ ବୃକ୍ଷ—2. The mythological Pāri- jāta tree of heaven.

ବୃକ୍ଷ ସଙ୍କଟ—ସଂ. ବି—ଦୁଇ ପାଖରେ ଗଛ ଥିବା ରାସ୍ତା; ଗୋହିର ରାସ୍ତା Bṛuksha saṁkaṭa (ହ୍ରୁ. ଶ)—A narrow path with trees planted on both sides, avenue.

ବୃକ୍ଷ ସାର—ସଂ. ବି (୭ମୀ ତତ୍)—ବଡ଼ ଗଛ—A big tree. Bṛuksha sāra (ଉ—ବୃକ୍ଷ ସାର ଅଚଳ ରୂପର ମହାବଳ ସେନ ହୋଇ ସମର ଶୀଳ ସେ । ଉଞ୍ଜ. ବୈଦେହୀଶବିଳାସ ।)

ବୃକ୍ଷାଦନ—ସଂ. ବି. (ବୃକ୍ଷ+ଅଦ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ.ଅନ)—Bṛukshādana ୧ । କୁଠାର—1. Axe; hatchet, ୨ । ବାଉଁଶୀ—2. Adze. ୩ । ଅଶ୍ୱତ୍ଥ ଗଛ—3. The religious fig; Ficus Religiosa. ୪ । ପିଆଳ (ହ୍ରୁ. ଶ) (ଦେଖ)—4. Piāḻa (See). ୫ । ମହୁ ଫେଣା (ହ୍ରୁ ଶ)—5. Bee hive.

ବୃକ୍ଷାମୟ—ସଂ. ବି. (୬ଷ୍ଠୀ ତତ୍; ବୃକ୍ଷ+ଆମୟ)—Bṛukshāmaya ଲାକ୍ଷା; ଲାଖ—Shell lac.

ବୃକ୍ଷାମ୍ଳ—ସଂ. ବି—୧ । ତେନ୍ତୁଳି—1. Tamarind. ୨ । ଓରୁଅ Bṛukshāmḻa (ଦେଖ)—2. Orua (See) ୩ । ଅମଡ଼ା—3. Hog plum; Spondias Mangifera. ୪ । ଖଟା ପାଳଙ୍ଗ (ହ୍ରୁ. ଶ)—4. Bladder dock (pot herb). ୫ । ଅମ୍ଳ ବେତସ—5. A kind of creeper with acid leaves and slimy stem ୬ । ଅମ୍ବିଳିତ ଶାଗ—6. Indian sorrel; Oralis Cerniculata.

ବୃକ୍ଷାଳୟ—ସଂ. ବି. (ବହୁବ୍ରୀହି; ବୃକ୍ଷ+ଆଳୟ=ବାସ ସ୍ଥାନ)—Bṛukshāḻaya ପକ୍ଷୀ—Bird.

ବୃଜ୍ (ଧାତୁ)—ସଂ—ତ୍ୟାଗ କରିବା—Bṛuj (root) To shun.

ବୃଜନ—ସଂ. ବି. ( ବୃଜ୍ ଧାତୁ=ତ୍ୟାଗ କରିବା+କର୍ମ. ଅନ )—Bṛujana ୧ । ପାପ—1. Sin. ୨ । ଅପରାଧ—2. Crime. ୩ । ଦୋଷ—3. Fault. ୪ । କ୍ଲେଶ; ଦୁଃଖ—4. Distress; sufferings. ୫ । ରଙ୍ଗ ଚମଡ଼ା—5. Red skin. ୬ । ଆକାଶ—6. The sky ୭ । ମୁଣ୍ଡର କେଶ—7. The hair of the head. ୮ । (+ଭାବ. ଅନ) ବହିଷ୍କରଣ—8. Driving away; expelling. ୯ । (+ଅଧିକରଣ. ଅନ) ଯୁଦ୍ଧ (ହ୍ରୁ. ଶ)—9. Battle. ୧୦ । ନିରାକରଣ (ହ୍ରୁ. ଶ)—10. Refutation; rejection. ୧୧ । ତାକତ୍; ଶକ୍ତି; ବଳ (ହ୍ରୁ. ଶ)—11. Strength; power. ୧୨ । ଶତ୍ରୁ (ହ୍ରୁ. ଶ)—12. Enemy. ସଂ. ବିଣ—୧ । କୁଟିଳ; ବକ୍ର—1. Crooked. ୨ । ଅସରଳ—3. Insincere.

ବୃଜନ୍ୟ—ସଂ. ବି. ପୁଂ ( ବୃଜ୍ ଧାତୁ+କର୍ତ୍ତୃ. ଅନ୍ୟ)—ଅତି ସରଳ ବ୍ୟକ୍ତି Bṛujanya (ହ୍ରୁ. ଶ )—A very sincere and simple person.

ବୃଜି—ସଂ. ବି—୧ । ବ୍ରଜଭୂମି ( ହ୍ରୁ. ଶ )—1. The country Bṛuji round Bṛundābana ୨ । ମିଥିଳା ପ୍ରଦେଶ; ତ୍ରିହୁତ ( ହ୍ରୁ. ଶ )—2. The ancient name of the Tirhut Division

ବୃଜିନ—ସଂ. ବି ( ବୃଜ୍ ଧାତୁ+କର୍ମ. ଇନ )—୧ । ପାପ—1. Sin. Pṛujina ୨ । ଦୁଃଖ; କଷ୍ଟ—2. Trouble; ୩ । ଚମଡ଼ା ହ୍ରୁ. ଶ )—3 Skin. ୪ । ରକ୍ତ ( ହ୍ରୁ. ଶ )—4. Blood ୫ । କେଶ ( ହ୍ରୁ. ଶ )—5. Hair.

ବୃଣ୍ (ଧାତୁ)—ସଂ—ପ୍ରୀତ କରିବା—To please. Bṛuṇ (root)

ବୃତ୍ (ଧାତୁ)—ସଂ—୧ । ବର୍ତ୍ତମାନ ରହିବା—1. To be present. Bṛut (root) ୨ । ବଞ୍ଚି ରହିବା—2. To live; to subsist.

ବୃତ—ସଂ. ବିଣ ( ବୃ ଧାତୁ=ବରଣ କରିବା; ଆଚ୍ଛାଦନ କରିବା; ପ୍ରାର୍ଥନା Bṛuta କରିବା+କର୍ମ ତ )—୧ । କର୍ମସାଧନାର୍ଥ ନିଯୁକ୍ତ; କୌଣସି ଧର୍ମକର୍ମ ସାଧନ କରିବା ପାଇଁ ବରଣ କରାଯାଇ ଥିବା ( ବ୍ରାହ୍ମଣ )—1. Chosen or selected to perform a ceremony; formally engaged to perform a rite. ୨ । ଆବୃତ; ଆଚ୍ଛାଦିତ—2. Covered; enclosed. ୩ । ପ୍ରାର୍ଥିତ (ବସ୍ତୁ)—3. Asked for; requested. ୪ । ସ୍ୱୀକୃତ—4.

Agreed upon. ୫ । ଗୋଲ ( ଗ୍ରା. ଶ )—5. Circular. ୬ । ପରିବେଷ୍ଟିତ—6. Sorrounded; enveloped ( ଦୃ—ବୃତସ୍ତପସେ ହୋଇ ନଭୁ ଜୁଟେ, କଧ୍ବଂସି ସ୍ତନ ଉପସୁନ୍ଦ ସ୍ତନେ । ଉପେ. ବୈଦେହୀଶବିଳାସ ।)
ଦେ. ବି ( ସଂ ବୃତ୍ତି )—୧ । ପେଶା; ଜୀବିକା—1. Livelihood; profession. ୨ । ଅଭ୍ୟାସ—2. Habit. ୩ । ( ସଂ. ବୃତ୍ତ ) ଗୀତ ବୋଲିବାର ରୀତି; ଧରା—3. The tune of a song or poem.

**ବୃତପତ୍ରା**—ସଂ. ବି ( ବୃତ+ପତ୍ର+ଆ )—୧ । ସ୍ଥୁଳ ଦାନ୍ତି; ମାଳବ
Bṛutapatrā ପ୍ରଦେଶର ଗୁଳ୍ମ ବିଶେଷ ( ଗ୍ରା. ଶ )—A
(ବୃତ୍ତପତ୍ର—ଅନ୍ୟରୂପ) creeper or plant of Māḻaba. ୨ । ଶ୍ୱେତ କଣ୍ଟକାରି; ଧଳା ଭେଜିବାଇଗଣ—2. Solanum Indicum ( plant ).

**ବୃତାନ୍ତ**—ଗ୍ରା. ବି ( ସଂ. ବୃତ୍ତାନ୍ତ )—୧ । ବୃତ୍ତାନ୍ତ; ବିବରଣ; ଧାରାବାହିକ
Bṛutānta ବିବରଣ—1. Detailed description. ୨ । ସମ୍ବାଦ—2, News; intelligence.
ବୃତାନ୍ତ

**ବୃତି**—ସଂ. ବି ( ବୃ ଧାତୁ+ଭାବ. ତି )—୧ । ଆବରଣ—1.
Bṛuti Covering. ୨ । ଗୋପନ—2, Concealment ୩ । ବେଷ୍ଟନ—3. Surrounding. ୪ । (+କରଣ. ତି) ଭିତ୍ତି—4. Wall. ୫ । ବାଡ଼—5. Fencing. [ ଉ—ବୃତିରେ ପୁଷ୍ପିତ କେତକୀ ବ ଯହିଁ, ସମୀରଣ ଚୋର କରନ୍ତେ ସେବନ । ରାଧାନାଥ. ଚିଲିକା । ] ୬ । ବରଣ; ନିୟୋଗ—6. Engagement. ୭ । ପ୍ରାର୍ଥନା—7. Entreaty. ଗ୍ରା. ( ସଂ. ବୃତ୍ତି )—ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିବା ଛାତ୍ରକୁ ଦିଆଯିବା ମାସିକ ବେତନ—Stipend or scholarship given to a studnet Who has creditably passed an examination.

**ବୃତ୍ତ**—ସଂ. ବିଣ ( ବୃତ୍ ଧାତୁ+କର୍ତ୍ତୃ. ତ )—୧ । ବର୍ତ୍ତୁଳ; ଗୋଲାକାର
Bṛutta —1. Round; circular; spherical. ୨ । ଜାତ—2. Born; produced. ୩ । ଗତ—3. Gone. ୪ । ଅତୀତ—4. Past; elapsed. ୫ । ଦୃଢ଼—5. Firm; hard; strong. ୬ । ମୃତ—6, Dead; deceased. ୭ । ( +କର୍ମ. ତ ) ନିଯୁକ୍ତ—7. Appointed; engaged; employed. ୮ । ଆଚ୍ଛାଦିତ—8. Covered. ୯ । ଅଧୀତ—9. Read; studied. ୧୦ । ଅପ୍ରତିହତ—11. Unopposed. ୧୨ । ନିଷ୍ପନ୍ନ; ସିଦ୍ଧ ( ଗ୍ରା. ଶ )—12. Accomplished. ସଂ. ବି—୧ । କଚ୍ଛପ; କଇଁଛ—1. Tortoise; turtle. ୨ । ଆଚରଣ; ଚରିତ୍ର—2. Conduct; character. ୩ । ଛନ୍ଦଃ; ଛନ୍ଦ—3. The tuue of a poem. [ ଦ୍ର—ଯେଉଁ ପଦ୍ୟରେ ପ୍ରତ୍ୟେକ ପଦର ଅକ୍ଷର ସଂଖ୍ୟା ଓ ଲଘୁ ଗୁରୁବର୍ଣ୍ଣର କ୍ରମ ସମାନ ଥାଏ, ତାକୁ ବୃତ୍ତ ବୋଲାଯାଏ । ପଦମାନଙ୍କ ବିଚାରରେ ବୃତ୍ତ ୩ ପ୍ରକାର—୧ । ଯେଉଁ ବୃତ୍ତରେ ୪ ପଦଯାକ ସମାନ, ତାହାର ନାମ ସମବୃତ୍ତ—୨ । ଯହିଁରେ ୪ ପଦଯାକ ଅସମାନ, ତାହା ବିଷମ ବୃତ୍ତ—୩ । ଯାହାରେ ୧ମ ଓ ୩ୟ ପଦ ଏବଂ ୨ୟ ଓ ୪ର୍ଥ ପଦ ସମାନ ତାହା ଅର୍ଦ୍ଧ ସମବୃତ୍ତ । ] ୪ । ( +ଭାବ. ତ ) ବର୍ତ୍ତନ 4. Existence. ୫ । ଅନୁଷ୍ଠାନ—5. Institution. ୭ ବୃତ୍ତାନ୍ତ—7. Description. ୮ । ( ଜ୍ୟାମିତି ) ଗୋଲାକାର କ୍ଷେତ୍ର; ମଣ୍ଡଳ—8. ( geometry ) A circle. [ ଦ୍ର—ଗୋଟିଏ ବିନ୍ଦୁର ଚାରିଆଡ଼େ ସମଦୂରବର୍ତ୍ତୀ ରେଖାଦ୍ୱାରା ସୀମାବଦ୍ଧ କ୍ଷେତ୍ରକୁ ବୃତ୍ତ କହନ୍ତି । ] ୯ । ଧନ ସମ୍ବନ୍ଧେ ଚତୁର୍ବିଧ କର୍ମ; ଯଥା—ନ୍ୟାଯ୍ୟପୂର୍ବକ ଅର୍ଥୋପାର୍ଜନ, ଅର୍ଥପାଳନ, ଅର୍ଥବର୍ଦ୍ଧନ ଓ ସତ୍ ପାତ୍ରରେ ଦାନ—9. Fourfold acts regarding wealth, viz. earning by righteons means, its custody, increasing it and bestowing it on proper hands. ୧୦ । ଆଚାର ( ଗ୍ରା. ଶ )—10. Usage; custom. ୧୧ । ଜୀବିକା ( ଗ୍ରା. ଶ )—11. Livelihood. ୧୨ । ବେଦ ଓ ଶାସ୍ତ୍ର ବିହିତ ଆଚାର ପାଳନ (ଗ୍ରା. ଶ.)—12. Confirmity with the conduct laid down in the scriptures. ୧୩ । ଛତିଆନା (ଗ୍ରା. ଶ.)—13. Echites Scholaris (tree), ୧୪ । ସ୍ତନର ଅଗ ବା ସମ୍ମୁଖ ଭାଗ ( ଗ୍ରା. ଶ. )—14. The front portion of the female breast. ୧୫ । ସଫେଦ ଜୁଆରି ( ଗ୍ରା. ଶ, )—15. White millet, ୧୬ । ଅଞ୍ଜୀର (ଗ୍ରା. ଶ.)—16. Ficus Carica (fruit). ୧୭ । କଚ୍ଛପ ( ଗ୍ରା. ଶ. )—17. Tortoise. ୧୮ । ଗୁରୁଜନଙ୍କ ପ୍ରତି ସମ୍ମାନ, ଇନ୍ଦ୍ରିୟନିଗ୍ରହ ଓ ସତ୍ୟ କଥନାଦି କରିବା ପ୍ରବୃତ୍ତି (ଗ୍ରା.ଶ.) 18. Proclivity for showing respect to one's elders, self control an truthfulness.

**ବୃତ୍ତକ**—ସଂ. ବି—(ବୃତ୍ତ+କ)—୧ । କୋମଳ ଓ ମଧୁର ଅକ୍ଷର ଓ
Bṛuttaka ଛୋଟ ଛୋଟ ସମାସ ବ୍ୟବହାର କରାଯାଇଥିବା ଗଦ୍ୟ ରଚନା (ଗ୍ରା. ଶ)—1. Prose containing soft and sweet letters and small compound words. ୨ । ଛନ୍ଦ (ଗ୍ରା. ଶ)—2. Metre; tune of poetry.

**ବୃତ୍ତ କର୍କଟୀ**—ସଂ. ବି. ସ୍ତ୍ରୀ—୧ । ଷଡ଼ଭୁଜା ଦେବୀ ବିଶେଷ—
Bṛutta karkaṭi 1. Name of a Goddess. ୨ । ଷଡ଼ଭୁଜ କ୍ଷେତ୍ର—2. Hexagon. ୩ । ତରଭୁଜ ଫଳ (ଗ୍ରା.ଶ)—3. Water melon.

ବୃତ୍ତ ଖଣ୍ଡ—ସ. ବ (୬ଷ୍ଠୀ ତତ୍)—୧ । (ଜ୍ୟାମିତି) ବୃତ୍ତର କୌଣସି Brutta khanda ଖଣ୍ଡିତ ଅଂଶ—1. (geometry) Segment of circle. ୨ । (ଶିଳ୍ପ ଶାସ୍ତ୍ର) ମେହେରାପ; ଶିଳ୍ପଣ—2. (architecture) An arch.

ବୃତ୍ତଗନ୍ଧି—ସ. ବ (ବୃତ୍ତ+ଗନ୍ଧ+ଇ)—୧ । ଯେଉଁ ଗଦ୍ୟ ରଚନାର Bruttagandhi ସ୍ଥଳ ବିଶେଷରେ ପଦ୍ୟମିଶ୍ର ଅକ୍ଷରବନ୍ଧ ପଦ୍ୟାଂଶ ପରି ଶୁଣାଯାଏ—1. A form of prose containing poetical composition at places. ୨ । ଅନୁପ୍ରାସ ଓ ସମାସ ବହୁଳତା ଯୋଗୁଁ ଯେଉଁ ଗଦ୍ୟ ପଦ୍ୟ ପରି ଆନନ୍ଦପ୍ରଦ ହୁଏ—2. Prose composition which is full of alliterations and compound words and sounds like poetry.

ବୃତ୍ତଚଣ୍ଡ—ସ. ବ—ଗୋଟିଏ ବୃତ୍ତର ଯେଉଁ ଅଂଶ ଏକ ସରଳରେଖା-Brutta chanda ଦ୍ୱାରା କର୍ତ୍ତିତ ହୋଇଥାଏ—Segment of a circle.

ବୃତ୍ତତଣ୍ଡୁଳ—ସ. ବ—ଯବନାଳ; ବାଜରା (ହ୍ନ. ଶ) Brutta tandula Millet.

ବୃତ୍ତପର୍ଣ୍ଣୀ—ସ. ବ—(ବହୁବ୍ରୀହି) ଅକାନବନ୍ଧୀ ଲତା (ହ୍ନ. ଶ) Bruttaparnni Stephania Hernandifolia (creeper).

ବୃତ୍ତପୁଷ୍ପ—ସ. ବ—୧ । କଦମ୍ବ ଫୁଲ ଓ ଗଛ—1. The Nauclea Bruttapushpa Cadamba (tree and flower). ୨ । ଶିରୀଷ ଫୁଲ—2. Name of a flower. ୩ । ବାମାର; ଜଳବେତସ—3. A kind of cane; water ratan. ୪ । ଭୁଟ୍ଟକ ଗୁଳ୍ମ—4. A kind of plant. ୫ । ଭୂକଦମ୍ବ—5. A small species of Kadamba tree. ୬ । ସେବତୀ (ହ୍ନ. ଶ)—6. Musk rose. ୭ । ଜାଈ ଫୁଲ (ହ୍ନ. ଶ)—7. Jasmine. ୮ । ମୁଗୁରା ମଲ୍ଲୀ (ହ୍ନ. ଶ)—8. The double-petalled variety of Jasmine.

ବୃତ୍ତଫଳ—ସ. ବ—(କର୍ମଧା)—କୌଣସି ଗୋଲାକାର ଫଳ (ହ୍ନ. ଶ)—Bruttaphala 1. Any round fruit. ୨ । ଗୋଲମରିଚ (ହ୍ନ. ଶ)—2. Black pepper. ୩ । ଡାଳିମ୍ବ (ହ୍ନ. ଶ)—3. Pomegranate. ୪ । କଇଥ (ହ୍ନ. ଶ)—4. Wood apple. ୫ । ତରଭୁଜ (ହ୍ନ. ଶ)—5. Water melon. ୬ । (ବହୁବ୍ରୀହି) କରଞ୍ଜ ଗଛ (ହ୍ନ. ଶ)—6. Pongamia Glabra (tree). ୭ । ନାଲି ଅପାମାର୍ଗ (ହ୍ନ. ଶ)—7. The redvariety of Apāmārga plant.

ବୃତ୍ତଫଳା—ସ ବ (ବହୁବ୍ରୀହି; ବୃତ୍ତ+ଫଳ+ଆ)—୧ । ବାଇଗଣ Bruttaphalā (ହ୍ନ. ଶ)—1. Brinjal. ୨ । ଅଁଳା (ହ୍ନ. ଶ)—2 Embelic Myrobalan. ୩ । ଏକ ପ୍ରକାର ପିତା କାକୁଡ଼ (ହ୍ନ. ଶ)—3. A kind of bitter cucumber.

ବୃତ୍ତବୀଜ(ଜା)—ସ. ବ (ବହୁବ୍ରୀହି)—ବରଡ଼ା (ହ୍ନ. ଶ)—Bruttabija(jā) A kind of pulse. ( ବୃତ୍ତବୀଜକ[କା]—ଅନ୍ୟରୂପ )

ବୃତ୍ତଶାଳୀ—ସ. ବଣ. ପୁ°—( ବୃତ୍ତ+ଶାଳିନ୍; ୧ମା. ୧ବ )—Bruttasāli ୧ । ସଦାଚାରୀ (ହ୍ନ. ଶ)—1. Following (ବୃତ୍ତାନୁବର୍ତ୍ତୀ; ବୃତ୍ତସ୍ଥ, ବୃତ୍ତବାନ୍—ଅନ୍ୟରୂପ) the approved [ବୃତ୍ତାନୁବର୍ତ୍ତିନୀ, ବୃତ୍ତସ୍ଥା, ବୃତ୍ତବତୀ, ବୃତ୍ତଶାଳିନୀ—ସ୍ତ୍ରୀ] usages. ୨ । ସଚ୍ଚରିତ୍ର—2. Benevolent.

ବୃତ୍ତସୂଚୀ—ସ. ବ—୧ । ଉପର୍ଯ୍ୟୁପରି ସ୍ଥାପିତ ବୃତ୍ତ ସମୂହ—1. Concentric circles. Bruttasūchi ୨ । ଉପର୍ଯ୍ୟୁପରି ସ୍ଥାପିତ କ୍ରମଶଃ ସରୁ ହୋଇ ମୁନିଆ ହୋଇ ଥିବା ବସ୍ତୁ ଲବଶେଷ-2. A cone.

ବୃତ୍ତସ୍ଥ—ସ. ବଣ.—(ବୃତ୍ତ+ସ୍ଥା ଧାତୁ+କର୍ତ୍ତୃ. ଅ)—୧ । ବୃତ୍ତ କ୍ଷେତ୍ର Bruttastha ମଧ୍ୟରେ ଅବସ୍ଥିତ—1. Situated inside a circle. ୨ । ସଚ୍ଚରିତ୍ର—2. Honest. ୩ । ସୁଶୀଳ 5. Of good conduct.

ବୃତ୍ତାନ୍ତ—ସ. ବ—(ବୃତ୍ତ=କାଳ+ଅନ୍ତ=ନିର୍ଣ୍ଣୟ ଯହିଁରୁ; ବହୁବ୍ରୀହି)-Bruttānta ୧ । ବାର୍ତ୍ତା; ସମ୍ବାଦ; ସମାଚାର—1. News; report; tidings; information. ୨ । ଘଟିଥିବା ଘଟଣାର ଧାରାବାହିକ ବର୍ଣ୍ଣନା; ବିବରଣୀ—2. Discription; details of an event ୩ । ପ୍ରକାର—3. Sort; kind; nature. ୪ । ପ୍ରସ୍ତାବ—4. Proposal; mention of a matter. ୫ । ବ୍ୟାପାର; ବିଷୟ—5. Any matter; any subject. ୬ । ଭାବ—6. Meaning; disposition. ୭ । ଅବସର—7. Leisure. ୮ । ସମ୍ପୂର୍ଣ୍ଣତା—8. Perfection. ୯ । ଆଖ୍ୟାନ—(ହ୍ନ. ଶ.)—9. Narration; narrative.

ବୃତ୍ତାଭାସ—ସ. ବ—(ବୃତ୍ତ ପରି ଆଭାସ ଯାହାର)—୧ । ପଦ୍ୟର ଆଭାସ Bruttābhāsa ଯୁକ୍ତ ଗଦ୍ୟ ରଚନା; ବୃତ୍ତଗନ୍ଧି—1. A metrical or musical prose. ୨ । ଅଣ୍ଡାକୃତି କ୍ଷେତ୍ର—2. Ellipse; an oval figure. ସ. ବଣ—ସମ୍ପୂର୍ଣ୍ଣ ବୃତ୍ତ ନୁହେ କିନ୍ତୁ ବୃତ୍ତ ପରି ଗୋଲ; ଅଣ୍ଡାକୃତି—Oval; circular; elliptical.

ବୃତ୍ତି—ସ. ବ—(ବୃତ୍ ଧାତୁ+କରଣ. ତି)—୧ । ଜୀବିକା; ଦାନା ପାଣି; Brutti ପେଶା—1. Livelihood; employment; profession; means of living. ( ଉ—ବୃତ୍ତି ଏ ମୋ ଗୋଟିଏ ଭୃତ୍ୟମ୍—ଉଷ. ବୈଦେହୀଶବିଳାସ । ଉ—ଉନଲୋକେ ଖ୍ୟାତ ହୋଇଛୁ ତୁମ୍ଭ ଭାଗିଁ, ଅତଏବ କରୁପେ ବିଦ ଉଦାବୃତ୍ତି—କୃଷ୍ଣଦ. ମହାଭାରତ. ଶାନ୍ତି) । ୨ । ଖାଦ୍ୟ; ଆହାରୀୟ ବସ୍ତୁ—2. Food ୩ । (+ଭାବ. ତି ) ଖାଇବା; ଭୋଜନ—3 Eating; meal. ୪ । ଖୋରାକପୋଷାକ; ଜୀବନଧାରଣ—4. Living; maintenance. ୫ ।

ବ୍ୟବସାୟ—5. Trade; commerce. ୬ । ବ୍ୟାପାର; କାର୍ଯ୍ୟ—6. An act; an event. ୭ । ମନୋବୃତ୍ତି; ମାନସିକ ଧର୍ମ—7. Mental habit or quality; mental faculty ୮ । ପ୍ରବୃତ୍ତି; ଚିତ୍ତର ଗତି—8. Tendency; inclination. [ ଦ୍ର—ଯୋଗଶାସ୍ତ୍ର ଅନୁସାରେ ଚିତ୍ତବୃତ୍ତି ୫ ପ୍ରକାରର ବୋଲି କଳ୍ପିତ, ଯଥା—କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧ—ହି. ଶ ] ୯ । ଇଚ୍ଛା—9 Volition; wish. ୧୦ । ସ୍ଥିତି—10. Situation; existence. ୧୧ । ପ୍ରକୃତି; ସ୍ୱଭାବ—11. Nature; disposition; temper ୧୨ । ଆଚରଣ—12. Conduct. ( ଉ—ହୁଦେଁ ସେ ପରଷ୍ଟରେ ହସାହସି ହେଲେ, ବାଲ୍ୟକାଳ ବୃତ୍ତିକି କଥାବାର୍ତ୍ତା ହେଲେ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ] ୧୩ । ବ୍ୟବହାର—13. Behaviour; treatment. ୧୪ । ସୂତ୍ରର ବ୍ୟାଖ୍ୟା—14. Gloss or comment on aphorisms. [ ଦ୍ର—ବ୍ୟାକରଣର ସୂତ୍ର ଆଦିର ବ୍ୟାଖ୍ୟାକୁ ୫ ଶ୍ରେଣୀରେ ବିଭକ୍ତ କରା ଯାଇଅଛି—ବୃତ୍ତି, ଭାଷ୍ୟ, ବାର୍ତ୍ତିକ, ଟୀକା, ଟିପ୍ପଣୀ । ଯେଉଁ ବ୍ୟାଖ୍ୟା ସଂକ୍ଷିପ୍ତ ଓ ଯାହାର ରଚନା ଗମ୍ଭୀର ତାକୁ ବୃତ୍ତି ବୋଲାଯାଏ—ହି. ଶ.] ୧୫ । ନାଟକର ରଚନା ପ୍ରଣାଳୀ; ନାଟକୀୟ ବିଷୟ ବର୍ଣ୍ଣନ କରିବାର ଢଙ୍ଗ; ଶୈଳୀ—15. Style of a drama. [ ଦ୍ର—ନାଟକର ବୃତ୍ତିକୁ ୪ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି । ଭିନ୍ନ ଭିନ୍ନ ରସର ପ୍ରକାଶ ପାଇଁ ଭିନ୍ନ ଭିନ୍ନ ବୃତ୍ତି ନିର୍ଦ୍ଦିଷ୍ଟ ହୋଇଅଛି । ୧ । କୌଶିକୀ (ଶୃଙ୍ଗାର ରସର ଉପଯୋଗୀ) ୨ । ସାତ୍ତ୍ୱତୀ (ବୀର ରସର ଉପଯୋଗୀ), ୩ । ଆରଭଟୀ (ରୌଦ୍ର ଓ ବୀଭତ୍ସ ରସ) ଓ ୪ । ଭାରତୀ (ଅନ୍ୟ ସମସ୍ତ ରସମାନଙ୍କ ଉପଯୋଗୀ) । କୌଶିକୀବୃତ୍ତିରେ ସୁବେଶଭୂଷିତା ବହୁ ନାୟିକା, ନୃତ୍ୟଗୀତ, ଭୋଗବିଳାସାଦିର ବର୍ଣ୍ଣନା; ସାତ୍ତ୍ୱତୀରେ ବୀରତା, ଶୋକଶକ୍ତି, ଦୟା, ସରଳତା ଆଦିର ବର୍ଣ୍ଣନା; ଆରଭଟୀରେ ମାୟା, ଇନ୍ଦ୍ରଜାଲ, ସଂଗ୍ରାମ, କ୍ରୋଧ ଆଦିର ବର୍ଣ୍ଣନା, ଭାରତୀ ବୃତ୍ତିରେ ସଂସ୍କୃତବହୁଳ କଥୋପକଥନ ଥାଏ (ହି. ଶ) । ଏହି ବୃତ୍ତିପର ନାଟକର ମଧ୍ୟ ୪ଟି ପ୍ରବୃତ୍ତି ଅଛି; ୧ । ଆବନ୍ତୀ, ୨ । ଦାକ୍ଷିଣାତ୍ୟ, ୩ । ପାଞ୍ଚାଳୀ ଓ ୪ । ଓଡ୍ରମାଗଧୀ । ] ୧୬ । ବ୍ୟାପ୍ତି—16. Over-spreading; pervading; diffusion. ୧୭ । ବର୍ଣ୍ଣରଚନା—17. Composition. ୧୮ । (କାବ୍ୟାଳଙ୍କାର) 'କୌଣସି ଶବ୍ଦ କୌଣସି ଭାବ ବା ଅର୍ଥ ପ୍ରକାଶ କରୁ', ବକ୍ତାର ଏହିରୂପ ଇଚ୍ଛାମୟ ବ୍ୟାପାର—18. The intention of an author as to the expression of a particular thought by a particular sentence. ୧୯ । (କାବ୍ୟାଳଙ୍କାର) ଶବ୍ଦର ଅର୍ଥପ୍ରକାଶିକା ଶକ୍ତି—19. The potency of a word to convey a meanning. [ ଦ୍ର—ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା, ଶବ୍ଦର ଏହି ତ୍ରିବିଧ ଶକ୍ତିକି ତ୍ରିବିଧ ବୃତ୍ତି ବୋଲାଯାଏ । ] ୨୦ । ଆକାରାନ୍ତର ପ୍ରାପ୍ତି—2. Transformation; assumption of a different shape. ୨୧ । ଅକ୍ଷର ସଂଖ୍ୟାତ ଛନ୍ଦ—21. A poetical metre.

୨୨ । ପୁରାଣର ଦଶଲକ୍ଷଣ ମଧ୍ୟରୁ ଏକତମ—22. One of the 10 peculiarities of a mythology. (ଉ—ପ୍ରାଣୀମାନଙ୍କ ଯେ ପ୍ରକୃତି, ତାହାର ଆଶ୍ରୟ ଯେ ଗତି । ଏସନ ବୃତ୍ତି ଯେ ବୋଲାଇ, ପୁରାଣ ଲକ୍ଷଣଟି ଏହି । ଜଗନ୍ନାଥ—ଭାଗବତ) । ୨୩ । ବୃତ୍ତାନ୍ତ; ବିବରଣ—(ହି. ଶ) —23. Description. ୨୪ । କର୍ତ୍ତବ୍ୟକର୍ମ (ହି. ଶ) —24. Duty.—ଦେ. ବି—୧ । ଜୀବିକାନିର୍ବାହାର୍ଥ ଦିଆଯାଇଥିବା ଭୂମି; ଜାଗିର; ଖଞ୍ଜା— 1. A jagir; land assigned for the maintenance of a person; maintenance-grant. ୨ । ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କୁ ନିର୍ଦ୍ଦିଷ୍ଟ ସମୟ ପାଇଁ ଦିଆଯିବା ମାସିକ ପୁରସ୍କାର ଧନ—2 Stipend or scholarship awarded to an efficient student. ୩ । ଜମିବାଡ଼ି—3. Landed property. ୪ । କୃଷି ଜମି— 4. Cultivated land. ୫ । ପେନ୍ସନ୍—5. Pension, maintenance allowance.

ବୃତ୍ତି; वृत्ति

ବୃତ୍ତିକର—ସ. ବିଣ. ପୁଂ—( ବୃତ୍ତି+କୃ ଧାତୁ+କର୍ତ୍ତୃ. ଅ )— Bruttikara ଯାହା ଜୀବିକା ପ୍ରଦାନକରେ; ପରିପୋଷଣକାରୀ— (ବୃତ୍ତିକରୀ—ସ୍ତ୍ରୀ) Supplying livelihood; maintaining. (ଉ—ଏଣୁ ବହୁତ ବୃତ୍ତିକରୀ, ଭୋ ହରି ମାଗ ବସୁନ୍ଧରୀ । ଜଗନ୍ନାଥ—ଭାଗବତ) ।

ବୃତ୍ତିଚ୍ଛେଦ—ସ ବି. ( ୬ଷ୍ଠୀ ତତ୍; ବୃତ୍ତି+ଛେଦ; ସନ୍ଧିଯୋଗୁ ଛ ସ୍ଥାନରେ ଚ୍ଛ )—୧ । ଜୀବିକା ନିର୍ବାହର ଉପାୟ ବନ୍ଦ କରିବା;—1. Cutting off of the means of one's maintenance. ୨ । ଜୀବିକା ନିର୍ବାହାର୍ଥ ଖଞ୍ଜାଥିବା ଜାଗିର ଜମିକୁ ବାଜ୍ୟାପ୍ତି କରିବା—2, Confiscation or resumption of a maintenance grant. (ଉ—ଚତୁର୍ଥ୍ୟ ହିଂସା ମିଥ୍ୟାବାଦ, କଣ୍ଠାଘାତ ବୃତ୍ତିଚ୍ଛେଦ । ଜଗନ୍ନାଥ—ଭାଗବତ) ।

Brutticchheda

(ବୃତ୍ତିଛେଦନ—ଅନ୍ୟରୂପ)

(ବୃତ୍ତିଛେଦ—ଦେଶଜରୂପ)

ବୃତ୍ତି ଧ୍ୱଂସ—ସ. ବି. (୬ଷ୍ଠୀ ତତ୍)—ସମ୍ପତ୍ତିର ବା ଜୀବିକା ନିର୍ବାହୋପାୟର ବିନାଶ—Destruction or loss of one's property or means of livelihood.

Brutti dhwamsa

(ବୃତ୍ତି ନାଶ—ଅନ୍ୟରୂପ)

ବୃତ୍ତି ବାଡ଼ି—ଦେ. ବି—( ସହରର )—୧ । ଜମିବାଡ଼ି; ଭୂସମ୍ପତ୍ତି— 1. Landed property. ୨ । ଚଲ ବାଡ଼ି- बील बाड़ी, जमिबाड़ी **जमीनबाड़ी** କୃଷି ଜମି—2. Cultivated land.

Brutti bārdi

**ବୃତ୍ତିଭୋଗୀ**—ସଂ. ବିଣ. ପୁଂ—(ବୃତ୍ତି+ଭୋଗ+ଇନ୍)—ଯେ ବୃତ୍ତି
Bruttibhogi ଭୋଗ କରୁଥାଏ—Enjoying a stipend
( ବୃତ୍ତିଧାରୀ—ଅନ୍ୟରୂପ ) or maintenance grant;
ବୃତ୍ତିଭୋଗିନୀ } ସ୍ତ୍ରୀ getting a maintenance grant.
ବୃତ୍ତିଧାରିଣୀ }

**ବୃତ୍ତିଶୂନ୍ୟ**—ସଂ. ବିଣ. ପୁଂ. (ବହୁ ବ୍ରୀ)—ଜୀବିକାହୀନ; ବେକାର—
Brutti śūnya Destitute of the means of liv-
(ବୃତ୍ତିହୀନ—ଅନ୍ୟରୂପ) ing; unemployed.
(ବୃତ୍ତିଶୂନ୍ୟା, ବୃତ୍ତିହୀନା—ସ୍ତ୍ରୀ)

**ବୃତ୍ତ୍ୟନୁପ୍ରାସ**—ସଂ. ବି—ଅନୁପ୍ରାସ ବା ଶବ୍ଦାଳଙ୍କାର ବିଶେଷ—
Bruttyanuprāsa A kind of alliteration.
[ଦ୍ର—ପର୍ଯ୍ୟାୟ କ୍ରମେ ହେଉ ବା ନ ହେଉ, ଯେବେ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ ବାକ୍ୟ ମଧ୍ୟରେ ବାରମ୍ବାର ଉଚ୍ଚାରିତ ହୁଏ, ତେବେ ତାକୁ ବୃତ୍ତ୍ୟନୁପ୍ରାସ କହନ୍ତି । ଯଥା— ଲଳି ମଲ୍ଲିକାରି ମଧୁ ଲୁବଧ କୁ, ଶୁଣି ତା ବିଷମ ବଂଶୀ ସ୍ୱରକୁ, ନ ବର ହୋଇଲେ ଲଭିଥିବ ବୋଲି ନୂର ଧନଞ୍ଜୟ ହେଉ ନ ଗୋ । କବିସୂର୍ଯ୍ୟ. ସଙ୍ଗୀତ, କୁଳମଣି. ଅଳଙ୍କାର ତରଙ୍ଗିଣୀ ।]

**ବୃତ୍ୟ**—ସଂ. ବିଣ. ( ବୃ ଧାତୁ+କର୍ମ. ଯ; ତ ଆଗମ )—୧ । ବରଣୀୟ-
Brutya ବରଣଯୋଗ୍ୟ—1. Fit to be selected or chosen. ୨ । ନିଯୋଜନୀୟ—2. Fit to be engaged or employed.

**ବୃତ୍ର**—ସଂ. ବି. (ବୃତ୍ ଧାତୁ+କର୍ତ୍ତୃ. ର)—୧ । କଶ୍ୟପ ପୁତ୍ର ଧର୍ମଶୀଳ
Brutra ଦାନବ ବିଶେଷ—1. Name of a demon.
[ଦ୍ର—ଏ ତ୍ୱଷ୍ଟାଙ୍କ ପୁତ୍ର ଏକ ଦାନବ । କଥିତ ଅଛି ଯେ ଇନ୍ଦ୍ର ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପ ପୁରୋହିତଙ୍କୁ ମାରି ପକାଇଲେ; ଏଥିର ପ୍ରତିଶୋଧ ନେବା ପାଇଁ ତ୍ୱଷ୍ଟା ବୃତ୍ରଙ୍କୁ ଜନ୍ମ କଲେ । ବୃତ୍ର ଇନ୍ଦ୍ରଙ୍କୁ ଆକ୍ରମଣ କରିବାରୁ ଇନ୍ଦ୍ର ଦେବତାମାନଙ୍କ ସହ ଇନ୍ଦ୍ରପୁରୀରେ ଲୁଚିଲେ ଓ ବିଷ୍ଣୁଙ୍କ ପରାମର୍ଶରେ ଦଧୀଚି ଋଷିଙ୍କ ହାଡ଼ରେ ବଜ୍ର ତିଆରି କରି ବୃତ୍ର ସଙ୍ଗେ ଯୁଦ୍ଧ କଲେ । ଇନ୍ଦ୍ର ବୃତ୍ରର ୨ ହାତକୁ କାଟି ଦେଲେ ଓ ବୃତ୍ର ଐରାବତ ସହିତ ଇନ୍ଦ୍ରଙ୍କୁ ଗିଳି ଦେଲା । ଇନ୍ଦ୍ର ତା ପେଟକୁ ଫାଡି କରି ବାହାରିଲେ ଓ ତା ମସ୍ତକ ଛେଦନ କଲେ । ଦେବୀ ଭାଗବତରେ ବୃତ୍ରାସୁରର ବିସ୍ତାରିତ ବିବରଣ ଲେଖା-ଅଛି । ବେଦରେ ମଧ୍ୟ ବୃତ୍ରାସୁରର ଉଲ୍ଲେଖ ଅଛି, କିନ୍ତୁ ତହିଁରୁ ସୂଚିତ ହୁଏ ଯେ 'ମେଘ' ଓ 'ଅନ୍ଧକାର' ସମ୍ବନ୍ଧରେ 'ବୃତ୍ର' ଶବ୍ଦର ବ୍ୟବହାର ହୋଇଅଛି—ହି. ଶ ।
ପାର୍ସୀମାନଙ୍କ ଧର୍ମଗ୍ରନ୍ଥ ଜେନ୍ଦାବେସ୍ତାରେ ଅସୁରୀୟ (Assyrian) ଜାତିର ଦଳପତି ବେରେଥ୍ର ଆର୍ଯ୍ୟଭୂମି (Ariana) କୁ ଜନଶୂନ୍ୟ କରିବାଲାଗି ବବୁଲ (Babylon) ନଗରରେ ଯାଗ କରି ଅଦ୍ୱିଶ୍ୱରନାମ୍ନୀ ଦେବୀଙ୍କ ଆରାଧନା କରୁଥିଲା । କିନ୍ତୁ ତାହାର ଚେଷ୍ଟା ବିଫଳ ହେଲା ଓ ସେ ସବଂଶ ଇନ୍ଦ୍ରଙ୍କଦ୍ୱାରା ନିହତ ହେଲା ବୋଲି ବର୍ଣ୍ଣିତ ହୋଇଅଛି । ] ୨ । ଶତ୍ରୁ—2. Foe; enemy. ୩ । ଅନ୍ଧାର—3. Darkness. ୪ । ପର୍ବତ ବିଶେଷ—4. Name of a mountain. ୫ । ମେଘ—5. Cloud. ୬ । ମନ୍ତ୍ର—6. Vedic incantation or formula. ୭ । ଶବ୍ଦ—7. Sound; voice.

**ବୃତ୍ରତା(ତ୍ୱ)**—ସଂ. ବି ( ବୃତ୍ର+ତା, ତ୍ୱ )—ଶତ୍ରୁତା ( ହି. ଶ )—
Brutratā(twa) Enmity.

**ବୃତ୍ରହା**—ସଂ. ବି ( ବୃତ୍ର+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍ )—ବୃତ୍ର ନାଶନକାରୀ
Brutrahā ଇନ୍ଦ୍ର—Indra, the killer of the demon
[ବୃତ୍ରଖାଦ; ବୃତ୍ରଘ୍ନ; ବୃତ୍ରଦ୍ୱିଟ୍; ବୃତ୍ରନାଶନ; ବୃତ୍ରବୈରି; Brutra.
ବୃତ୍ରାରି; ବୃତ୍ରଶତ୍ରୁ—ଅନ୍ୟରୂପ]

**ବୃଥା**—ସଂ. ଅବ୍ୟୟ ( ବୃ ଧାତୁ+କର୍ମ ଥା )—୧ । ନିଷ୍ଫଳ; ପଣ୍ଡ—
Bruthā 1. Fruitless; vain; abortive; ineffectual. ୨ । ନିଷ୍ପ୍ରୟୋଜନ; ଅକାରଣ—2. Useless. ୩ । ଅନର୍ଥକ; ନିରର୍ଥକ—3. Meaningless. ୪ । ଉଦ୍ଦେଶ୍ୟ ବିହୀନ—4. Aimless କ୍ରି. ବିଣ—ଅକାରଣ—In vain.

**ବୃଥା କରିବା**—ଦେ. କ୍ରି—ବ୍ୟର୍ଥ କରିବା; ପଣ୍ଡ କରିବା—To make
Bruthā kariba abortive; to nullify. [ ଉ—
बृथा करना ବୃଥା କଲା ଦଶରଥ ତାଙ୍କ କଥା, ଭଲ ସେହିଁ ଭଲ ହେଲା । ଉଞ୍ଜ. ବୈଦେହୀଶବିଳାସ । ]

**ବୃଥାରେ**—ଦେ. କ୍ରି. ବିଣ ( ସଂ ବୃଥା )—ଅକାରଣରେ—
Bruthāre In vain; for nothing.
बृथा, बृथाय बृथा; व्यर्थ (ବୃଥାରେ—ଅନ୍ୟରୂପ)

**ବୃଥା ପରିଶ୍ରମ**—ସଂ. ବି ( କର୍ମଧା )—ନିଷ୍ଫଳ ପରିଶ୍ରମ—
Bruthā pariśrama Fruitless labour.
(ବୃଥାଶ୍ରମ—ଅନ୍ୟରୂପ)

**ବୃଥା ପର୍ଯ୍ୟଟନ**—ସଂ. ବି ( କର୍ମଧା )—ନିଷ୍ଫଳ ଭ୍ରମଣ; ଉଦ୍ଦେଶ୍ୟବିହୀନ
Bruthā paryyatana ଭ୍ରମଣ—Gaddling about.
(ବୃଥାଭ୍ରମଣ—ଅନ୍ୟରୂପ)

**ବୃଥା ବାସନା**—ସଂ. ବି ( କର୍ମଧା )—ନିଷ୍ଫଳ ଇଚ୍ଛା—
Bruthā bāsanā Vain wish.

**ବୃଥା ବ୍ୟୟ**—ସଂ. ବି ( କର୍ମଧା )—ଅପବ୍ୟୟ—
Bruthā byaya Waste.

**ବୃଥା ଭାବନା**—ସଂ. ବି ( କର୍ମଧା )—ନିଷ୍ଫଳ ଚିନ୍ତା—Vain
Bruthā bhābanā thoughts. [ ଉ—ବୃଥା ଭାବନା
(ବୃଥାଚିନ୍ତା—ଅନ୍ୟରୂପ) ଆଉ କରିବି ନାହିଁ, ଭାବନାରେ ଆନନ୍ଦ
(ବୃଥା ଭାଳେଣି—ଦେଶଜରୂପ) ମିଳଇ ନାହିଁ । ମଧୁସୂଦନ.
बृथाचिन्ता व्यर्थचिन्ता ଚିନ୍ତାସିନ୍ଧୁର ବିଳାପ । ]

**ବୃଥା ମାଂସ**—ସଂ. ବି—କୌଣସି ଦେବଦେବୀଙ୍କ ଉଦ୍ଦେଶ୍ୟରେ ବଳି
Bruthā māṁsa ହୋଇ ନ ଥିବା ଜୀବର ମାଂସ (ହି.ଶ)—
Meat of an animal which has not been sacrificed to a Deity. [ଦ୍ର—ଏପରି ମାଂସ ଭୋଜନ ନିଷିଦ୍ଧ । ]

**ବୃଥା ଯିବା**—ଦେ. କ୍ରି—ବ୍ୟର୍ଥ ହେବା—To be abortive.
Brŭthā jibā  বৃথা যাওয়া; বৃথায় যাওয়া; বৃথা হওয়া
**व्यर्थ होना** [ବୃଥାରେ ଯିବା; ବୃଥା ହେବା—ଅନ୍ୟରୂପ]

**ବୃଥାଳାପ**—ଦେ. ବି (କର୍ମଧା)—୧ । ନିଷ୍ଫଳ ବାକ୍ୟ—1. Useless
Bṛuthālāpa  talk. ୨ । ବାଜେ ବା ବ୍ୟର୍ଥ କଥା—
(ବୃଥାକଥା—ଅନ୍ୟରୂପ)  2. Nonsense.

**ବୃଥାଳାପୀ**—ସଂ. ବିଣ. ପୁଂ—ଯେ ବୃଥା କଥା ଗପେ—
Bṛuthālāpi  One who talks nonsense.
(ବୃଥାଳାପିନୀ—ସ୍ତ୍ରୀ)

**ବୃଦ୍ଧ**—ସଂ. ବିଣ. ପୁଂ (ବୃଧ୍ ଧାତୁ=ବୃଦ୍ଧି ପାଇବା; ବଢ଼ିବା+କର୍ତ୍ତୃ.
Bṛuddha  ତ)—୧ । ବୁଢ଼ା; ପ୍ରାଚୀନ—1. Old; aged;
(ବୃଦ୍ଧା—ସ୍ତ୍ରୀ)  ancient. ୨ । ବୟୋଜ୍ୟେଷ୍ଠ—2. Older; eldest. ୩ । ବୃହତ୍; ବଡ଼—3. Large; big; huge. ୪ । ବୃଦ୍ଧିଯୁକ୍ତ—4. Increasing. ୫ । ବିଗତଯୌବନ—5. Past youth. [ଦ୍ର—୭୦ ବର୍ଷ ବୟସ ଛଡ଼ିବା ବ୍ୟକ୍ତିକୁ ବୃଦ୍ଧ କୋଲାଯାଏ ।] ସଂ. ବି—୧ । ବୁଢ଼ା ଲୋକ—1. An old man. ୨ । ଗୋତ୍ର—2. Lineage. ୩ । ପର୍ବତ—3. Mountain. ୪ । ପଣ୍ଡିତ—4. Learned man. ୫ । ବୃଦ୍ଧଦାରକ (ଦେଖ)—5. Bṛuddhadāraka (See) ୬ । ଅଙ୍ଗୁଷ୍ଠ; ବୁଢ଼ାଆଙ୍ଗୁଠି—6. Thumb. ୭ । ଡାମରା କୁଆ—7. A rook; raven. ୮ । ବୃଦ୍ଧାବସ୍ଥା (ହି. ଶ)—8. Old age. ୯ । ଶୈଳଜ; ନାମକ ଗନ୍ଧଦ୍ରବ୍ୟ (ହି. ଶ)—9. Permalia Perlata. ଦେ. ବିଣର ବିଣ—ଅତ୍ୟନ୍ତ—Very. (ଯଥା—ବୃଦ୍ଧ ଗାଲୁଆ=ଭାରି ମିଛୁଆ—Inveterate liar. ବୃଦ୍ଧ ବଗୁଲିଆ=ଭାରି ବଗୁଲିଆ—Very wicked. ବୃଦ୍ଧ କାର୍ପଣ୍ୟ=ଅତ୍ୟନ୍ତ କୃପଣ—Very miserly. ବୃଦ୍ଧ ବାୟା, ବୃଦ୍ଧ ପାଗଳ=ଭାରି ବାୟା—Stark mad. ବୃଦ୍ଧ ମାଡ଼ୁଆ=ଅତି ମାଡ଼ୁଆ—Eminently deserving of a good deal of beating. ବୃଦ୍ଧ ପାପୀ=ମହାପାପୀ—Very sinful (person), a great sinner. ବୃଦ୍ଧ ଭଣ୍ଡ=ଅତ୍ୟନ୍ତ ଭଣ୍ଡ; ନିର୍ଲଜ୍ଜ—Very shameless (person).

**ବୃଦ୍ଧ କାକ**—ସଂ. ବି—ଡାମରା କୁଆ—Raven; a crow; a
Bṛuddha kāka  carrion crow.

**ବୃଦ୍ଧ କାଣ୍ଡ**—ପ୍ରାଦେ (ବାଲେଶ୍ୱର) ବି—ବୁଢ଼ା ଅଙ୍ଗୁଳିରେ ହେବା
Bṛuddha kānda  ଏକପ୍ରକାର ଯନ୍ତ୍ରଣାଦାୟକ ବ୍ରଣ; କନ୍ଦ୍ରାକାଣ୍ଡ—Whitlow.

**ବୃଦ୍ଧ କାଳ**—ସଂ. ବି—ବୁଢ଼ା ହେବାର ସମୟ; ବାର୍ଦ୍ଧକ୍ୟ—
Bṛuddha kāla  Old age.
(ବୃଦ୍ଧ ସମୟ, ବୃଦ୍ଧ ବୟସ—ଅନ୍ୟରୂପ)

**ବୃଦ୍ଧ ଗଙ୍ଗା**—ସଂ. ବି—୧ । (କଲିକତା ନିକଟରେ) ବୁଢ଼ୀଗଙ୍ଗା;
Bṛuddha gangā  ଗଙ୍ଗାର ଶାଖା ବିଶେଷ—1. Name of a small branch of the Ganges. (ଦ୍ର—ଏହା ତଟରେ କାଳୀଘାଟଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ ।) ୨ । ହିମାଳୟରୁ ବହିର୍ଗତ କ୍ଷୁଦ୍ର ନଦୀ (ହି. ଶ) 2. Name a rivulet rising from the Himalayas.

**ବୃଦ୍ଧ ଗଣ୍ଡୁକୀ**—ଦେ. ବି—୧ । ଲଙ୍କାରେ ପ୍ରବାହିତ ନଦୀ ବିଶେଷ—
Bṛuddha ganduki  1. Name of a river flowing in Ceylon. [ଭି—ବୃଦ୍ଧ ଗଣ୍ଡୁକୀ ନଦୀ ସ୍ଥାନରେ, ବଳାଇଲେ ଚକ୍ଷୁ ତତପରେ । ଭଞ୍ଜ. ବୈଦେହୀଶବିଳାସ ।]
**बृद्धगन्डकी**  ୨ । ମୁଜଫରପୁରରେ ପ୍ରବାହିତ ଗଣ୍ଡକ ନଦୀର ନାମ—2. Name of the river Gandaki while passing by Muzafferpur.

**ବୃଦ୍ଧ ଗାଲୁ**—ଦେ. ବି ଓ ବିଣ—ଅତି ମିଥ୍ୟାବାଦୀ; ଭାରି ମିଛୁଆ—
Bruddha gālu  Inveterate liar.
(ବୃଦ୍ଧ ଗାଲୁଆ; ବୃଦ୍ଧ ମିଛୁଆ—ଅନ୍ୟରୂପ)
পাকা মিথ্যাবাদী  **पुरानझूठा**

**ବୃଦ୍ଧତା(ତ୍ୱ)**—ସଂ. ବି—(ବୃଦ୍ଧ+ଭାବ ତା; ତ୍ୱ)—୧ । ବାର୍ଦ୍ଧକ୍ୟ;
Bṛuddhatā(twa)  ବୃଦ୍ଧାବସ୍ଥା—1. Old age. ୨ ।
(ବୃଦ୍ଧଦଶା, ବୃଦ୍ଧଭାବ—ଅନ୍ୟରୂପ)  ପାଣ୍ଡିତ୍ୟ—2. Learning.

**ବୃଦ୍ଧତାରକ**—ଦେ. ବି—ବୃଦ୍ଧଦାରକ (ଦେଖ)
Bṛuddhatāraka  Bṛuddhadāraka (See).

**ବୃଦ୍ଧଦାରକ**—ସଂ. ବି—ମଖମଲ ଗଛ; କଲମ୍ବୀ ଆଦି ବର୍ଗର ଔଷଧିଲତା-
Bṛuddhadāraka  ବିଶେଷ; ଗାଇଡାଡ଼ଙ୍କ—The elephant creeper; name of a medicinal creeper; Argyreia Speciosa; Gmelina Asiatica, [ଦ୍ର—ଏହା ଶ୍ୱେତ ଓ ରକ୍ତ ଭେଦରେ ଦୁଇ ପ୍ରକାର । ଏହାର ମଞ୍ଜି ଔଷଧରେ ଲାଗେ; ପତ୍ର ବଡ଼ ବଡ଼ ଓ ପାନ ପରିପରି; ଫୁଲ ବଡ଼ ବଡ଼ ନାଲିଆ ଓ ବାଇଗଣୀ; ବର୍ଷା ଓ ଶୀତଦିନେ ଫୁଟେ । ଏହା ମଧ୍ୟ ସାନ ବଡ଼ ଭେଦରେ ଦୁଇ ପ୍ରକାର । ସାନ ବୃଦ୍ଧଦାରକର ସଂ.ନାମ—ଜୀର୍ଣ୍ଣଦାରୁ, ସୁପୁଷ୍ପିକା, ସୂକ୍ଷ୍ମପତ୍ର । ବଡ଼ବୃଦ୍ଧଦାରକର ସଂ. ନାମ—ବୃଦ୍ଧଦାରକ ଓ ଛାଗଲାନ୍ତ୍ରୀ । ଦ୍ରବ୍ୟଗୁଣ କଳ୍ପଦ୍ରୁମ । ବୈଦ୍ୟକ ମତରେ ଏହା ରସାୟନ, ବଳକର, ପିଚ୍ଛଳ । ଏହା ଶୋଥ, ବାତରକ୍ତ, ଆମବାତ, କାଶ, ଶ୍ୱାସ ଓ ଜ୍ୱରନାଶକ ।]
ଅନ୍ୟ ସଂ.—ବୃଦ୍ଧଦାର(ରୁ), ଆବେଗୀ ଛାଗଲୀ, ଛାଗଲାନ୍ତ୍ରିକ;
বীজতারক, বিদ্ধাড়ক; বীজতাড়ক; বিদ্ধাঢক
**विधार, विधारा, बीजताडक, मखमलपौधा, कालाविधारा,**
ମ. ବରଧାରା
ଗୁ. ବରଧାରୋ
ତେ. ବୃଦ୍ଧଦାରୁ
[ବୃଦ୍ଧଦାର, ବୃଦ୍ଧଦାରୁ—ଅନ୍ୟରୂପ]

**ବୃଦ୍ଧନାଭି**—ସଂ. ବିଣ (ବହୁବ୍ରୀହି)—୧ । ଉନ୍ନତନାଭିଯୁକ୍ତ—
Bṛuddhanābhi  1. Having a prominent navel ୨ । ପେଟୁଆ—2. Pot-bellied.

ବୃଦ୍ଧ ପରାଶର—ସଂ. ବି (ନାମ)—ହିନ୍ଦୁ ସ୍ମୃତିକାର ବିଶେଷ—Name of
Bruddha parāśara an ancient Hindu law-giver.
[ ଦ୍ର—ଏହିପରି ବୃଦ୍ଧ ବୃହସ୍ପତି, ବୃଦ୍ଧବୌଧାୟନ, ବୃଦ୍ଧମନୁ, ବୃଦ୍ଧ ଯାଜ୍ଞବଲ୍କ୍ୟ, ବୃଦ୍ଧ ବଶିଷ୍ଠ, ବୃଦ୍ଧ ବିଷ୍ଣୁ, ବୃଦ୍ଧହାରୀତ ନାମକ ବହୁତ ସ୍ମୃତିକାରମାନଙ୍କ ନାମୋଲ୍ଲେଖ ସ୍ମୃତିଶାସ୍ତ୍ରମାନଙ୍କରେ ଦେଖାଯାଏ । ]

ବୃଦ୍ଧ ପ୍ରପିତାମହ—ସଂ. ବି. ପୁଂ—ପିତାଙ୍କ ପ୍ରପିତାମହ; ପିତାମହଙ୍କ
Bruddha prapitāmaha ପିତାମହ—One's father's
(ବୃଦ୍ଧପ୍ରପିତାମହୀ—ସ୍ତ୍ରୀ) great grandfather; great great grandfather.

ବୃଦ୍ଧ ପ୍ରମାତାମହ—ସଂ ବି. ପୁଂ—ମାତାମହଙ୍କ ପିତାମହ; ପ୍ରମାତାମହଙ୍କ
Bruddha pitāmaha ପିତା—Maternal grand-
(ବୃଦ୍ଧପ୍ରମାତାମହୀ—ସ୍ତ୍ରୀ) father's grandfather; maternal great grand father's father.

ବୃଦ୍ଧବାସିନୀ—ସଂ. ବି—କୋକିଶିଆଳ (ହି. ଶ)—
Bruddhabāsini Fox.

ବୃଦ୍ଧ ବାହନ—ସଂ. ବି—ଆମ୍ବ ଗଛ (ହି. ଶ)—
Bruddha bāhana Mango tree

ବୃଦ୍ଧ ବିଭୀତକ—ସଂ. ବି—ଅମ୍ବଡ଼ା (ହି. ଶ)—
Bruddha bibbhītaka Hog plum.

ବୃଦ୍ଧଯୁବତୀ—ସଂ. ବି. ସ୍ତ୍ରୀ—୧ । କୁଟ୍ଟିନୀ; ଦୂତୀ (ହି. ଶ)—1. A
Bruddha jubati procuress. ୨ । ଧାତ୍ରୀ; ଧାଈ (ହି. ଶ)—
2. A nurse.

ବୃଦ୍ଧଶ୍ରବାଃ—ସଂ. ବି (ବୃଦ୍ଧ=ବୃହତ୍+ଶ୍ରବସ୍=କର୍ଣ୍ଣ ଯାହାର; ବୃଦ୍ଧ-
Bruddha śrabāḥ ଶ୍ରବସ୍ ଶବ୍ଦ ୧ମା. ୧ବ)—ଇନ୍ଦ୍ର—
(ବୃଦ୍ଧଶ୍ରବା—ଦେଶଜରୂପ) Indra.

ବୃଦ୍ଧଶ୍ରବା ଦିଗ—ଦେ. ବି—ପୂର୍ବଦିଗ—The east. (ଉ—ବୃଦ୍ଧଶ୍ରବା
Bruddhaśrabā digā ଦିଗୁଁ ସନ୍ଧ୍ୟାତମ ଯଥା ଘୋଟ୍ଟ । ଭଞ୍ଜ ବୈଦେହୀଶବିଳାସ । )

ବୃଦ୍ଧସୂତ୍ରକ—ସଂ. ବି (ବୃଦ୍ଧ+ସୂତ୍ର+କ)—୧ । ଇନ୍ଦ୍ର ତୂଳ; ଆକାଶରେ
Bruddhasūtraka ଉଡ଼ୁଥିବା ଏକପ୍ରକାର ତୂଳା ଲାଗିଥିବା
ଆକାଶବୁଡ଼ି(ହିନ୍ଦୀ ମଞ୍ଜି—1 The down of seeds float-
ଆକାଶସୂତ ing in the air. ୨ । ଆକାଶରେ ଉଡ଼ୁଥିବା ବୁଢ଼ିଆଣୀ ସୂତା—2. Spider's thread floating in the air.

ବୃଦ୍ଧା—ସଂ. ବିଣ. ସ୍ତ୍ରୀ—( ବୃଦ୍ଧ+ସ୍ତ୍ରୀ. ଆ )—ଗତଯୌବନା—Old
Bruddhā (woman) ସଂ. ବି. ସ୍ତ୍ରୀ—୧ । ବୁଢ଼ୀ—1. An old woman. । ୨ । ବୃଦ୍ଧାଙ୍ଗୁଳି; ବୁଢ଼ାଆଙ୍ଗୁଠି—
2. The thumb; the great toe.

ବୃଦ୍ଧାଙ୍ଗୁଳି(ଷ୍ଠ)—ସଂ. ବି—୧ । ହାତର ବୁଢ଼ା ଅଙ୍ଗୁଠି—1. The
Bruddhāṅguḷi(shṭha) thumb. ୨ । ଗୋଡ଼ର ବୁଢ଼ା ଅଙ୍ଗୁଠି—2. The great toe.

ବୃଦ୍ଧାବସ୍ଥା—ସଂ. ବି—(ବୃଦ୍ଧ+ଅବସ୍ଥା)—ବାର୍ଦ୍ଧକ୍ୟ—
Bruddhābasthā Old age.

ବୃଦ୍ଧି—ସଂ. ବି (ବୃଧ ଧାତୁ+ଭାବ. ତି)—୧ । ବ୍ୟାପ୍ତି; ବିସ୍ତାର; ପ୍ରସାର—
Bruddhi 1. Extension. ୨ । ଆଧିକ୍ୟ—2. Abundance. ୩ । ଅତିରେକ—3. Excess. ୪ । ସମୃଦ୍ଧି; ଉନ୍ନତି; ଅଭ୍ୟୁଦୟ; ବଢ଼ନ୍ତି—4. Rise; prosperity; promotion. ୫ । ବଢ଼ିବା; ବଢ଼ତି—5. Growth; increment; increase; enhancement.
୬ । ସମ୍ପତ୍ତି—6. Wealth. ୭ । ସୁଧ; କୁଶୀଦ; ବ୍ୟାଜ—7. Interest. (ଉ—ପ୍ରତି ଶତରେ ଚତୁର୍ଥାଂଶ ବୃଦ୍ଧି ଯେବେ । କୃଷ୍ଣସିଂହ, ମହାଭାରତ ଶାନ୍ତି । ) ୮ । (ଫଳିତ ଜ୍ୟୋତିଷ) ଯୋଗ ବିଶେଷ; ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରେ ଏକାଦଶ ଯୋଗ—8. One of the planetary conjuctions (astrology). [ ଦ୍ର—ଏ ଯୋଗ ଶୁଭକର ଅଟେ; ଏ ଯୋଗରେ ଜନ୍ମିବା ବ୍ୟକ୍ତି ଧନଶାଳୀ, ଧନାର୍ଜ୍ଜକ ଓ ବ୍ୟବସାୟୀ ହୁଏ । ] ୯ । (ଆୟୁର୍ବେଦ) କନ୍ଦ ଜାତୀୟ ଲତା କନ୍ଦ—9 (Āyurbeda) A kind of succulent root. [ ଦ୍ର—ବୃଦ୍ଧି ଆୟୁର୍ବେଦୋକ୍ତ ଏକ ପ୍ରସିଦ୍ଧ ଲତା; ଏହା ଆଜିକାଲି ମିଳେ ନାହିଁ । ଏଥିର ମୂଳ ଧଳା ଓ ଲୋମଶ । ଏଥିର ଫଳ କପାକଢ଼ା ପରି । ଏହା ଅଷ୍ଟବର୍ଗର ଅନ୍ତର୍ଗତ । ବୈଦ୍ୟକମତରେ ଏହା ମଧୁର, ଶୀତଳ, ଗର୍ଭପ୍ରଦ, ଗର୍ଭଧାରକ ଓ ରକ୍ତ, ପିତ୍ତ, କାଶ ଓ କ୍ଷୟରୋଗର ନାଶକ । ଏଥିର ପରିବର୍ତ୍ତେ ବୈଦ୍ୟମାନେ ଶତମୂଳୀ ବ୍ୟବହାର କରନ୍ତି । ଏଥିର ଅନ୍ୟ ସଂସ୍କୃତ ନାମ ଯୋଗ୍ୟା, ସିଦ୍ଧି, ଲକ୍ଷ୍ମୀ, ପୁଷ୍ଟିଦା, ବୃଦ୍ଧିଦାତ୍ରୀ, ମଙ୍ଗଲ୍ୟା, ଶ୍ରୀ, ସମ୍ପଦ୍, ଜନେଷ୍ଟା, ଭୂତି, ସୁଖ, ଜୀବଭଦ୍ରା—ହି. ଶ; ଏହାର ଦେହରେ ରୁମ ଥାଏ । ଏହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଏହା ବୃଦ୍ଧି ନାମୀୟ] । ୧୦ । କୋଷବୃଦ୍ଧି ନାମକ ରୋଗ—10. Scrotal tumour. [ଦ୍ର—ଏହା ୨ପ୍ରକାର ଯଥା—୧ । ଜଳବୃଦ୍ଧି—1. Hydrocele. ୨ । ମାଂସ ବୃଦ୍ଧି 2. Scrotal tumour.] ୧୧ । (ବ୍ୟାକରଣ) ସ୍ୱରବର୍ଣ୍ଣର ପ୍ରସାରିତ ଅବସ୍ଥା ବିଶେଷ—11. (grammar) The state of a vowel becoming long in sound according to grammatical rules while forming words. [ଦ୍ର—ବ୍ୟାକରଣ ନିୟମ ଅନୁସାରେ ଅ ସ୍ଥାନରେ ଆ, ଇ ଓ ଏ ସ୍ଥାନରେ ଐ, ଉ ଓ ଊ ସ୍ଥାନରେ ଔ, ଋ ସ୍ଥାନରେ ଆର୍, ଌ ସ୍ଥାନରେ ଆଲ୍ ଆଦେଶକୁ ବୃଦ୍ଧି ବୋଲାଯାଏ, ଯଥା ଦ୍ୱିବର୍ଷ+ଇକ=ଦ୍ୱୈବାର୍ଷିକ; ଏଠାରେ ଦ୍ୱିରେ ଥିବା ଇ ଓ ବ ରେ ଥିବା ଅ ର ବୃଦ୍ଧି ହେଲା ।] ୧୨ । (ଆଇନ)—ଅର୍ଥଦଣ୍ଡ; ଜୋରିମାନା—12. (law) Fine. ୧୩ । (ରାଜନୀତି ଶାସ୍ତ୍ର) ରାଜ୍ୟରେ କୃଷି, ବାଣିଜ୍ୟ, ଦୁର୍ଗ, ସେତୁ, କୁଞ୍ଜର ବନ୍ଧନ, ଖନ୍ୟା କର, ବଳାଦାନ ଓ ସୈନ୍ୟ ସନ୍ନିବେଶ, ଏହି ଅଷ୍ଟବର୍ଗର ଉପଚୟ (ହି. ଶ.)—13. (polity) The improvement of a kingdom in respect of its agriculture, trade, forts, bridges and

dams, army etc. ୧୪ । ସ୍ଫୀତି—14. Swelling. (ଯଥା—ନଦୀ ବୃଦ୍ଧି; କୋଷ ବୃଦ୍ଧି)—୧୫। ସୂତକାଶୌଚ (ହ୍ରୁ. ଶ)—15. Formal pollution due to birth in a family or amongst one's kinsmen. ଦେ. ବିଣ.—(ସ. ବୃଦ୍ଧିପ୍ରାପ୍ତ)—ବଢ଼ିଯାଇଥିବା (ନଦୀ)—Flooded (river). [ ଉ—ବୃଦ୍ଧି ନଦୀ ତଟପଦ୍ମସ୍ତେ ଶାବକ, ଭଞ୍ଜ. ପ୍ରେମ ସୁଧାନିଧି ।]

ବୃଦ୍ଧିକର—ସ. ବିଣ ( ବୃଦ୍ଧି + କୃ ଧାତୁ + କର୍ତ୍ତୃ. ଅ )—ଉନ୍ନତି କାରକ
Bruddhikara —Promoting growth or increase; (ବୃଦ୍ଧିକାରକ, ବୃଦ୍ଧିକାରୀ, ବୃଦ୍ଧିଜନକ—ଅନ୍ୟରୂପ) increasing.

ବୃଦ୍ଧି କରିବା—ଦେ. କ୍ରି—ବଢ଼ାଇବା—To increase.
Bruddhikaribā वृद्धिकरा वृद्धिकरना

ବୃଦ୍ଧି ଜୀବିକା—ସ. ବି—ସୁଧ ବ୍ୟବସାୟ—Usury.
Bruddhi jībikā

ବୃଦ୍ଧିଜୀବୀ—ସ. ବି. ପୁଂ—ଯେ ଟଙ୍କାର ସୁଧ ନେଇ ଜୀବିକା ନିର୍ବାହ କରେ;
Bruddhijībī ମହାଜନ—An usurer; money lender. (ବୃଦ୍ଧ୍ୟାଜୀବ, ବୃଦ୍ଧ୍ୟୁପଜୀବୀ—ଅନ୍ୟରୂପ)
(ବୃଦ୍ଧିଜୀବନୀ, ବୃଦ୍ଧ୍ୟାଜୀବା, ବୃଦ୍ଧ୍ୟୁପଜୀବନୀ—ସ୍ତ୍ରୀ)

ବୃଦ୍ଧିଦ—ସ. ବିଣ ( ବୃଦ୍ଧି + ଦା ଧାତୁ + କର୍ତ୍ତୃ. ଅ )—୧ । ଯାହା ବର୍ଦ୍ଧିତ
Bruddhida କରେ ବା ବଢ଼ାଏ—1. Causing growth. (ବୃଦ୍ଧିଦା—ସ୍ତ୍ରୀ) ୨ । ଉନ୍ନତି ବିଧାୟକ—2. Causing improvement. ସ. ବି—୧ । ଜୀବକ ବୃକ୍ଷ—1. A rare medicinal plant. ୨ । ବାରାହୀକନ୍ଦ; ପିଣ୍ଡିଆଳୁ—2. Round bulbular-rooted yam.

ବୃଦ୍ଧିପତ୍ର—ସ. ବି—ପୂର୍ବେ ଚୋଳୁ ଡାକ୍ତରୀ ଅସ୍ତ୍ର ବିଶେଷ—A kind of
Bruddhipatra surgical knife used in ancient India. [ ବି—ଏହାର ଦୈର୍ଘ୍ୟ ୬ ଅଙ୍ଗୁଳ ଓ ଏହାର ଆକାର କ୍ଷୁର ପରି—ହ୍ରୁ. ଶ. ]

ବୃଦ୍ଧି ପାଇବା—ଦେ. କ୍ରି—ବଢ଼ିବା—To grow.
Bruddhi pāibā वृद्धिपाओया वृद्धिपाना
(ବୃଦ୍ଧି ଲଭିବା—ଅନ୍ୟରୂପ)

ବୃଦ୍ଧିପ୍ରାପ୍ତ—ସ. ବିଣ—ବର୍ଦ୍ଧିତ—Increased; enhanced.
Bruddhiprāpta

ବୃଦ୍ଧିଶ୍ରାଦ୍ଧ—ସ. ବି—ଆଭ୍ୟୁଦୟିକ ଶ୍ରାଦ୍ଧ; ବିବାହାଦି ମାଙ୍ଗଳିକ
Bruddhiśrāddha ଅନୁଷ୍ଠାନ ଉପଲକ୍ଷରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ କରାଯିବା ଶ୍ରାଦ୍ଧ; ନାନ୍ଦୀମୁଖ ଶ୍ରାଦ୍ଧ—An offering made to one's departed ancestors on the occasions of social ceremonies.

ବୃଦ୍ଧୋକ୍ଷ—ସ. ବି ( ବୃଦ୍ଧ + ଉକ୍ଷ=ଷଣ୍ଢ )—୧ । ବୁଢ଼ା ଷଣ୍ଢ—
Bruddhoksha 1. An old bull. ୨ । ବୁଢ଼ା ବଳଦ—2. An old ox.

ବୃଧ୍ (ଧାତୁ)—ସ—ବୃଦ୍ଧି ପାଇବା—To increase.
Brudh (root)

ବୃଧ—ଗ୍ରା. ବିଣ ( ସ. ବୃଦ୍ଧ )—ବୃଦ୍ଧ; ବୁଢ଼ା—Old. ବିଣର ବିଣ
Brudha ଅତି—Very. ( ଯଥା—ବୃଧ ଗାଳୁଆ । )

ବୃନ୍ହ (ଧାତୁ)—ସ—ବୃଦ୍ଧି ପାଇବା—To increase.
Brunha (root)

ବୃନ୍ତ—ସ. ବି ( ବୃ ଧାତୁ=ଆବରଣ କରିବା + କର୍ମ ତ; ନ ଆଗମ )—
Brunta ୧ । ଫଳର, ଫୁଲର ଓ ପତ୍ରର ଡେମ୍ଫ—1. The stalk of a fruit, flower or leaf. ୨ । ଚୁଚୁକ; କୁଚାଗ୍ର; ସ୍ତନର ଭୁଣ୍ଡି—2. Nipple. ୩ । ମାଠିଆଆଦି ବସିବାର ମଲା—3. A circular cushion of straw or rags used as a pedestal for pitchers and other round-bottomed pots.

ବୃନ୍ତଚ୍ୟୁତ—ସ. ବିଣ ( କର୍ମ ତତ )—ଯାହା ଡେମ୍ଫରୁ ଖସି ପଡ଼ୁଥାଏ—
Bruntachyuta Separated from the stalk. (ବୃନ୍ତଭ୍ରଷ୍ଟ—ଅନ୍ୟରୂପ)

ବୃନ୍ତାକ(କୀ)—ସ. ବି ( ବୃନ୍ତ + ଅକ ଧାତୁ=ଗମନ କରିବା + ଅ + ଈ )—୧ । ବାଇଗଣ; ବାଇଗଣ—
Bruntāka(kī) 1. Brinjal; egg plant; Solanum Melongena. ୨ । ପୋଇ ଶାଗ ( ହ୍ରୁ. ଶ )—2. Malabar nightshade ( potherb ).

ବୃନ୍ଦ—ସ. ବି ( ବୃଣ ଧାତୁ=ପ୍ରୀତ କରିବା + କର୍ତ୍ତୃ. ଦ )—୧ ।
Brunda ସମୂହ—1. Multitude; assemblage; congregation. ୨ । ସଂଖ୍ୟା ବିଶେଷ; ୧୦ ଅର୍ବୁଦ; ୧୦୦ କୋଟି—2. One thousand million; one billion.

ବୃନ୍ଦ ବୃନ୍ଦ—ଦେ. ବିଣ ଓ ବିଣ ( ଭୁଲ. ଏହି ଅର୍ଥରେ ସହସ୍ର ସହସ୍ର, ଲକ୍ଷ
Brunda brunda ଲକ୍ଷ, କୋଟି କୋଟି, ଖର୍ବ ଖର୍ବ )—୧ ।
वृन्द वृन्द ଅସଂଖ୍ୟ—1. Innumerable; countless. ୨ । ବହୁ ବୃନ୍ଦ ସଂଖ୍ୟା—2. Many billions.

ବୃନ୍ଦା—ସ. ବି. ସ୍ତ୍ରୀ—୧ । ତୁଳସୀ ଗଛ—1. The holy basil
Brundā plant. ୨ । ପୁରାଣ ପ୍ରସିଦ୍ଧ ଜଳନ୍ଧର ଅସୁରର ପତ୍ନୀ—2. Wife of demon Jalandhara. [ ବି—ଭଗବାନ୍ ମାୟା ଦ୍ୱାରା ବୃନ୍ଦାଙ୍କ ଏହାଙ୍କର ସତୀତ୍ୱ ନାଶ କରି ଜଳନ୍ଧର ଅସୁରକୁ ବଧ କରିଥିଲେ ଓ ଏ ଭଗବାନଙ୍କଠାରୁ ବର ପାଇ ପର ଜନ୍ମରେ ତୁଳସୀଗଛର ରୂପଧାରଣ କରିଅଛନ୍ତି; ( ଜଳନ୍ଧର ଓ ତୁଳସୀ ଦେଖ । ) ] ୩ । ରାଧିକାଙ୍କ ସଖୀ ବିଶେଷ—3. One of the female companions of Rādhā. ୪ । ରାଧିକାଙ୍କର ୧୬ ନାମ ମଧ୍ୟରୁ ଏକ—4. A name of Rādhikā. ଦେ. ବି. ପୁଂ—ବୃନ୍ଦାବନର ଡାକନାମ—
वृन्दा; बिन्दा A name for calling Brundābana.
बिन्द्राबन ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ବୃନ୍ଦାର୍କ—ଗ୍ରା. ବି ( ସ. ବୃନ୍ଦାରକ )—ଦେବତା—Deity.
Brundārka

ବୃନ୍ଦାକ—ସଂ. ବି ( ବୃଣ ଧାତୁ—ପ୍ରଭୃତ୍ୱ କରିବା+ଦ+ଅକ )—ମଲ୍ଲଙ୍ଗ
Bṛundāka ( ଶ୍ଳ. ଶ )—Parasitic plant; orchid.

ବୃନ୍ଦାବତୀ—ଦେ.ବି--ପ୍ରତ୍ୟେକ ହିନ୍ଦୁ ଗୃହର ପ୍ରାଙ୍ଗଣରେ ତୁଳସୀ ଚଉରାରେ
Bṛundābati ପ୍ରତିଷ୍ଠିତ ହୋଇ ପୂଜା ପାଉଥିବା ତୁଳସୀ ଗଛ—
वृन्दावती A holy basil plant planted and wor-
वृन्दावती shipped by very Hindu householder.
୨ । ବୃନ୍ଦା (ଦେଖ)—2. Bṛundā (See) [ଦ୍ରି—
ଗୋପିକା ବୃନ୍ଦାବତୀ ନାମେ, ଥିଲା ସେ କୃଷ୍ଣ ସନ୍ନିଧାନେ ।
ଜଗନ୍ନାଥ. ଭାଗବତ ।] ଦେ. ବି ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ
ଦିଆ ଯିବା ନାମ—A name given to females.

ବୃନ୍ଦାବତୀ ଦାସୀ—ଦେ. ବି. (ନାମ)—ସପ୍ତଦଶ ଶତାବ୍ଦୀର ଜଣେ
Bṛundābati dāsi ଓଡ଼ିଆ ନାରୀ କବି—An Oriya
poetess of the 17th century. [ଦ୍ରି—ପୁରୀ
ଜିଲ୍ଲାରେ କରଣ କୁଳରେ ଏହାଙ୍କର ଜନ୍ମ, ଏ ପୂର୍ଣ୍ଣତମ
ଚନ୍ଦ୍ରୋଦୟ ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ । ବିନାୟକ
ଉତ୍କଳସାହିତ୍ୟର ଇତିହାସ ।]

ବୃନ୍ଦାବନ—ସଂ. ବି. [୬ଷ୍ଠୀ ତତ୍; ବୃନ୍ଦା+ବନ; ରାଧିକାଙ୍କର କ୍ରୀଡ଼ା-
Bṛundābana ବନ]—ଯମୁନା ନଦୀ କୂଳରେ ଓ ମଥୁରା ପାଖ
ଅଳ୍ପ ଦୂରବର୍ତ୍ତୀ କ୍ଷୁଦ୍ର ନଗର—The small city of
Brindaban in the district; of Muttra in
united Provinces. [ଦ୍ରି—ବୃନ୍ଦା ଦେବୀ ଏଠାରେ
ଶ୍ରୀକୃଷ୍ଣଙ୍କୁ ପାଇବା ଆଶାରେ ତପସ୍ୟା କରିଥିଲେ ବୋଲି
ଏହାର ନାମ ବୃନ୍ଦାବନ ହୋଇ ଅଛି, ଅଥବା ବୃନ୍ଦା (ରାଧା)
ଏଠାରେ ଶ୍ରୀକୃଷ୍ଣଙ୍କ ସଙ୍ଗେ କ୍ରୀଡ଼ା କରିଥିଲେ । ବର୍ତ୍ତମାନ
ଯୁକ୍ତପ୍ରଦେଶର ମଥୁରା ଜିଲ୍ଲାର ଏହା ଗୋଟିଏ ନଗର ଅଟେ ।
ଏହି ସ୍ଥାନର କୁଞ୍ଜବନମାନଙ୍କରେ ଓ ଯମୁନା କୂଳରେ
ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ନାନା କ୍ରୀଡ଼ା କରିଥିଲେ ।
ବର୍ତ୍ତମାନ ଏଠାରେ ଅନେକ ବୈଷ୍ଣବ ଓ ବୈଷ୍ଣବୀ
ତୀର୍ଥବାସ କରନ୍ତି । ଏଠାରେ ଅନେକ ବିଷ୍ଣୁମନ୍ଦିର ଅଛି ।
ପୁରାଣମାନଙ୍କରେ ବୃନ୍ଦାବନ ନାମର ଉଲ୍ଲେଖ ଅଛି । ମହମ୍ମଦ
ଗଜନୀ ଏ ସ୍ଥାନକୁ ଆକ୍ରମଣ କରି ଏ ସ୍ଥାନକୁ ନଷ୍ଟଭ୍ରଷ୍ଟ
କରିଥିଲେ ଓ ଏଥିର ପ୍ରାଚୀନକୀର୍ତ୍ତିଚୟର ଓ ଶ୍ରୀକୃଷ୍ଣଙ୍କ ବିହାର
ସ୍ଥଳମାନଙ୍କର ଚିହ୍ନ ମଧ୍ୟ ଲୁପ୍ତ ହୋଇଥିଲା । ଏ ସ୍ଥାନର
ମାହାତ୍ମ୍ୟ କ୍ରମଶଃ ଲୁପ୍ତ ହୋଇଥିଲା । ଶ୍ରୀ ଚୈତନ୍ୟଦେବ
ଏ ଅଞ୍ଚଳକୁ ଆସି ପ୍ରାଚୀନ ବୃନ୍ଦାବନର ସ୍ଥାନ ନିରୂପଣ କରି
ଏ ତୀର୍ଥର ମାହାତ୍ମ୍ୟକୁ ପୁନଃ ପ୍ରତିଷ୍ଠିତ କରି ଏହାର
ପୂର୍ବଗୌରବକୁ ଉଦ୍ଧାର କରିଥିଲେ । ଏଠାର ପ୍ରଧାନ
ଦେବବିଗ୍ରହ ଗୋବିନ୍ଦଜୀଙ୍କ ମନ୍ଦିର ପୂର୍ବେ ତିନିତଳ ବିଶିଷ୍ଟ
ଥିଲା କିନ୍ତୁ ମୋଗଲ ବାଦସାହାମାନଙ୍କ ଅମଳରେ ଏହାର
ଉପରମହଲା ଭଙ୍ଗା ହୋଇ ବର୍ତ୍ତମାନ ଦ୍ୱିତଳ ମନ୍ଦିର
ରହିଅଛି । ଗୋବିନ୍ଦଜୀ ଏଠାର ଜମିଦାର । ଏଠାରେ
ଶ୍ରୀରଙ୍ଗମନ୍ଦିର ଓ ସାହାଜୀମନ୍ଦିର, ଶ୍ରୀରଙ୍ଗମନ୍ଦିରର ଉଦ୍ୟାନ
ଓ ଅନେକ କୁଞ୍ଜ ଦର୍ଶନୀୟ । ବୃନ୍ଦାବନରେ ଗୋପୀମାନଙ୍କ
ପୂଜିତ ଗୋପେଶ୍ୱର ଓ କାତ୍ୟାୟନୀଙ୍କ ମନ୍ଦିର ଅଛି ।
ଭାରତର ଅନେକ ଧନୀ ଏଠାରେ ମନ୍ଦିର, ଧର୍ମଶାଳା ଓ
ସଦାବ୍ରତମାନ ସ୍ଥାପନ କରି ଅଛନ୍ତି । ଯମୁନା ନଦୀ ବୃନ୍ଦାବନ
ନଗରରୁ କ୍ରମଶଃ ଦୂରକୁ ଘୁଞ୍ଚି ଯାଉଅଛି । କେଶୀ ଘାଟ-
ଠାରେ ପ୍ରତିଦିନ ଯମୁନା ନଦୀକୁ ଆରତି କରାଯାଏ ।
ଶ୍ରୀକୃଷ୍ଣଙ୍କ କ୍ରୀଡ଼ୋଦ୍ୟାନମାନଙ୍କ ସ୍ଥାନ ଯାତ୍ରୀମାନଙ୍କୁ ପଣ୍ଡାମାନେ
ଦେଖାନ୍ତି । ଦୋଳ ଓ ଝୁଲଣ ଯାତ୍ରା ଏଠାରେ ମହା-
ସମାରୋହରେ ସମ୍ପାଦିତ ହୁଏ । ଏଠାରେ ଅନେକ ମୟୂର
ଦେଖାଯାଆନ୍ତି ।] ଦେ. ବି. ପୁଂ—୧ । ଲୋକଙ୍କ ନାମ
—1, A name given to males. ୨ । ଦ୍ୱାଦଶ
ଗୋପାଳ ମଧ୍ୟରୁ ଜଣେ—2, One of the twelve
Gopālas. [ ଦ୍ର—ବାରସ୍ତୁତ ଦେଖ । ]

ବୃନ୍ଦାବନ ଚନ୍ଦ୍ର—ସଂ. ବି (ରୂପକ)—ଶ୍ରୀକୃଷ୍ଣଙ୍କ ନାମ—A name of
Bṛundābana chandra Srikṛushṇa. ଦେ. ବି. ପୁଂ—
ବୃନ୍ଦାବନ ବିହାରୀ } ଅନ୍ୟରୂପ ପୁରୁଷଙ୍କୁ ଦିଆଯିବା ନାମ—
ବୃନ୍ଦାବନେଶ୍ୱର } A name given to males.

ବୃନ୍ଦାବନ ନାୟକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବକବିଶେଷ-
Bṛundābana nāyaka ଙ୍କର ଉପାଧି—A title of a
certain class of sebakas in the Puri
temple. [ ଦ୍ର—ଜଗନ୍ନାଥଙ୍କର ମଣୋହିବେଳକୁ ଜଳସ
ଯୋଗାଇ ଦେବା ଏହାଙ୍କ କାର୍ଯ୍ୟ—ଜଗବନ୍ଧୁ. ପ୍ରାଚୀନ
ଉତ୍କଳ । ]

ବୃନ୍ଦାବନେଶ୍ୱରୀ—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ରାଧିକା—
Bṛundābaneśwari Rādhikā

ବୃନ୍ଦାର—ସଂ. ବିଣ ( ବୃଣ ଧାତୁ—ପ୍ରୀତ କରିବା+କର୍ତ୍ତୃ. ଦାର )—
Bṛundāra ୧ । ମନୋଜ୍ଞ; ସୁନ୍ଦର—1. Beautiful. ୨ ।
ପ୍ରୀତିକର—2. Pleasing. ୩ । ଯଶସ୍ୱୀ; ବିଖ୍ୟାତ—
3. Celebrated.

ବୃନ୍ଦାରକ—ସଂ. ବି (ବୃଣ ଧାତୁ+କର୍ତ୍ତୃ. ଦାର+କ)—୧ । ଦେବତା—
Bṛundāraka 1, A Deity. ୨ । ଦଳପତି—2. A leader,
( ବୃନ୍ଦାରକା—ସ୍ତ୍ରୀ ) ସଂ ବିଣ—୧ । ପ୍ରଧାନ—1. Chief.
୨ । ଶ୍ରେଷ୍ଠ—2. Eminent. ୩ । ସୁନ୍ଦର—3. Beauti-
ful. ୪ । ତୃପ୍ତିକର; ମନୋଜ୍ଞ—4. Pleasing.
୫ । ଉତ୍କୃଷ୍ଟ—5. Excellent. ୬ । ସର୍ବୋତ୍ତମ—
6. Best. ୭ । ବୃହତ୍—7. Big; large. ୮ ।
ବିଖ୍ୟାତ—8. Renowned; celebrated.

ବୃନ୍ଦାରଣ୍ୟ—ସଂ. ବି—ବୃନ୍ଦାବନ ( ଦେଖ )—Bṛundābana (See)
Bṛundāraṇya ( ବୃନ୍ଦାବିପିନ—ଅନ୍ୟରୂପ )

ବୃନ୍ଦାହୁଲ—ଦେ. ବି (ସଂ. ବୃନ୍ତୋଲ୍କା )—ଏକପ୍ରକାର ବହୁଶାଖାଯୁକ୍ତ
Bṛundāhula ମଶାଲ—A kind of forked torch.

ବୃନ୍ଦାହୋଳ—ଦେ. ବି—ଏକପ୍ରକାର ଖାଦ୍ୟଫଳ—A kind of
Bṛundāhola edible fruit.

ବୃନ୍ଦିଷ୍ଠ—ସଂ. ବିଣ ( ବୃନ୍ଦାରକ=ଶ୍ରେଷ୍ଠ, ମନୋଜ୍ଞ+ଅତିଶୟାର୍ଥେ
Bṛundishṭha ଇଷ୍ଠ, ବୃନ୍ଦାରକ ସ୍ଥାନରେ ବୃନ୍ଦ)—୧ । ଅତିଶୟ
( ବୃନ୍ଦୀୟାନ୍—ଅନ୍ୟରୂପ ) ସୁନ୍ଦର—1. Very beautiful.
ବୃନ୍ଦିଷ୍ଠା | ସ୍ତ୍ରୀ ୨ । ସର୍ବପ୍ରଧାନ—2. Chief; principal.
ବୃନ୍ଦୀୟସୀ | ୩ । ଅତି ଯଶସ୍ୱୀ—3. Very renowned.

ବୃଶ୍ ( ଧାତୁ )—ସଂ—ମନୋନୀତ କରିବା; ବାଛିବା—
Bṛuś ( root ) To choose; to select ( Apte ).

ବୃଶ—ସଂ. ବି—୧ । ବାସଙ୍ଗ ( ଗଛ ) ( ହି. ଶ )—1. Adhatoda
Bṛuśa Vasaca ( tree ). ୨ । ମୂଷା ( ହି. ଶ )—
2. Mouse. ୩ । ଅଦା—3. Ginger ( Apte ).

ବୃଶା(ଶ)ଳ—ଦେ. ବିଣ ( ସଂ. ବିଶାଳ )—ବିଶାଳ—Huge; gigan-
Bṛuśā(śa)ḻa tic. ( ଉ—କାଞ୍ଚି ଗଞ୍ଜିର ମଞ୍ଚା ଯାଣ ।
ବୃଶଳଅ, ବୃଶାଣ, } ଅନ୍ୟରୂପ ବୃଶାଳ କଟୀ ଉହଦାମ—
ବୃଶାଣିଅ, ବୃଶାଳଅ ଜଗନ୍ନାଥ. ଭାଗବତ । )
বিশাল विशाल

ବୃଶ୍ଚିକ—ସଂ. ବି ( ବ୍ରଶ୍ଚ ଧାତୁ=ଛେଦନ କରିବା+କର୍ତ୍ତୃ. ଇକ; ବ୍ର=
Bṛuśchika ବୃ )—୧ । ବିଛା—1. Centipede; scor-
( ବୃଶ୍ଚନ—ଅନ୍ୟରୂପ ) pion. [ ଦ୍ର—ବିଛା ଭଲେ ନୋଟ୍
ଦେଖ ।] ୨ । (ଜ୍ୟୋତିଷ) ବିଛା ରାଶି—2. ( astro-
nomy ) The 8th sign of the zodiac; the
Scorpio. ୩ । ବିଛା ବା ସୌର ମାର୍ଗଶୀର ମାସ—
3. The solar month of Mārgaśira.
୪ । ଶୁମ୍ପାଳୁଆ ପୋକ—4. The wooly bear;
caterpillar. ୫ । କଙ୍କଡ଼ା—5. Crab ( Apte ).
୬ । ଗୋବର ପୋକ ( ହି. ଶ )—5. A kind of
beetle (Apte ).

ବୃଶ୍ଚିକ ଦଂଶନ—ସଂ. ବି ( ୬ଷ୍ଠୀ ତତ୍ )—ବିଛା କାମୁଡ଼ା—Scorpion
Bṛuśchika daṁśana bite; scorpion sting.

ବୃଶ୍ଚିକାଳୀ—ସଂ. ବି—( ବୃଶ୍ଚିକ+ଅଳ=ସମୂହ )—୧ । ବୃଶ୍ଚିକସମୂହ—
Bṛuśchikāḻi 1. A swarm of scorpions or centi-
peds. ୨ । ବିଛୁଆତି—2. The stinging
nettle

ବୃଷ୍ ( ଧାତୁ )—ସଂ—୧ । ବର୍ଷଣ କରିବା—1. To rain down;
Bṛush ( root ) to pour down; to shower. ୨ । ପ୍ରଭୁ
ହେବା—2. To be master or lord; to be
powerful. ୩ । ଝରାଇବା; ବୁହାଇବା—3. To
shed; to pour forth ( Apte ). ୪ । ଓଦା
କରିବା; ବତୁରାଇବା—4. To moisten ( Apte )
୫ । ଉତ୍ପନ୍ନ କରିବା; ଜନ୍ମ କରିବା—5. To produce;
te engender ( Apte ). ୬ । ଆଘାତ କରିବା—
6. To strike; to hurt (Apte).

ବୃଷ—ସଂ. ବି (ବୃଷ୍ ଧାତୁ=ପ୍ରଭୁ ହେବା; ବର୍ଷଣ କରିବା+କର୍ତ୍ତୃ. ଅ)—
Bṛusha ୧ । ଷଣ୍ଢ—1. Bull. ୨ । ( ଜ୍ୟୋତିଷ ) ରାଶିଚକ୍ରର
ଦ୍ୱିତୀୟ ରାଶି—2. (astronomy) The 2nd sign
of the zodiac; the Taurus. ୩ । ରତିଶାସ୍ତ୍ର
ବର୍ଣ୍ଣିତ ୪ ଜାତି ପୁରୁଷ ମଧ୍ୟରୁ ଏକଜାତୀୟ ପୁରୁଷ;
ଶୁକ୍ରଳ ଓ କାମୁକ ବ୍ୟକ୍ତି—3. A lustful and strong
man; one of the 4 classes of males discrib-
ed in the erotic works. ( ଦ୍ର—ଏମାନେ
ଶଙ୍ଖିନୀ ଜାତୀୟା ସ୍ତ୍ରୀଙ୍କ ଉପଯୁକ୍ତ ପତି ଅଟନ୍ତି । ) ୪ । ବଳ-
ବାନ୍ ବ୍ୟକ୍ତି—4. A strong man. ୫ । ଇନ୍ଦ୍ର—
5. Indra. ୬ । ମୂଷିକ—6. Mouse. ୭ । ବିଷ୍ଣୁ—
7. Bishṇu. ୮ । ରାଧେୟ ତନୟ; ରାଜା କର୍ଣ୍ଣ—
8. A name of king Karṇṇa. ୯ । ମଲ୍ଲ—
9. An athlet. ୧୦ । ବାସଙ୍ଗ ଗଛ—10. Vasak
tree. ୧୧ । ଶ୍ରୀକୃଷ୍ଣ—11. Srīkṛushṇa. ୧୨ ।
ମୟୂରପୁଚ୍ଛ—12. Peacock's tail or plumage
(Apte). ୧୩ । ଗୃହ ନିର୍ମାଣୋପଯୁକ୍ତ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ—
13. A plot of land selected as the site
for building a house on. ୧୪ ।
ଜଳ—14. Water. ୧୫ । ଋଷଭ ନାମକ ଔଷଧ—
15. Name of a rare herb. ୧୬ ।
କନ୍ଦର୍ପ; କାମଦେବ—16. Cupid. ୧୭ । ( +
କରଣ. ଅ ) ଶୁକ୍ର—17. Semen virile.
୧୮ । ଶୁକ୍ର ଗ୍ରହ—The planet Venus. ୧୯ ।
( ଏହା ମନୁଷ୍ୟବାଚକ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହେଲେ
'ଶ୍ରେଷ୍ଠ' ଅର୍ଥ ବୋଧକ ହୁଏ; ଯଥା ନର ବୃଷ; କୁଳ-
ନର ପୁଙ୍ଗବ ) ଶ୍ରେଣୀର ବା ଦଳର ଶ୍ରେଷ୍ଠ ବ୍ୟକ୍ତି;
ସର୍ବୋତ୍ତମ ବ୍ୟକ୍ତି—The chief person of a class;
the best of a class. ୨୦ । ପ୍ରତିପକ୍ଷ; ଶତ୍ରୁ—
20. Eenmy; adversa ry (Apte). ୨୧ ।
(+ଭାବ ଅ)—ନ୍ୟାୟ ବିଚାର—21. Justice
(Apte). ୨୨ । ନୈତିକତା; ସଦାଚରଣ—23
Morality (Apte). ୨୩ । ପୁଣ୍ୟ କର୍ମ—23
A pious or meritorious act. ଦେ. ବି—
ଷଣ୍ଡାସୁର—The demon Shaṇḍhā. (ଉ—
ବୃଷ ବୃଷଶ୍ରେଷ୍ଠ ହର ହସ୍ତରେ ମଲା । ଅଭିମନ୍ୟୁ-
ବିଦଗ୍ଧଚିନ୍ତାମଣି

ବୃଷକର୍ଣ୍ଣୀ—ସଂ. ବି—ସୁଦର୍ଶନା ନାମକ ଲତା; ଗୁଳଞ୍ଚ ବିଶେଷ—
Bṛushakarṇṇi Name of a medicinal creeper.

ବୃଷକେତୁ—ସଂ. ବି—ଅଙ୍ଗରାଜ ଦାତା କର୍ଣ୍ଣଙ୍କ ପୁତ୍ର—The son of
Bṛushaketu Karṇṇa, the munificent king.
[ ଦ୍ର—ଓଡ଼ିଆରେ ଏହାଙ୍କୁ 'ବୃଷକେତନ' ବୋଲାଯାଏ;
କୁରୁକ୍ଷେତ୍ର ଯୁଦ୍ଧରେ କର୍ଣ୍ଣ ନିହତ ହେବାରୁ ଏ ପାଣ୍ଡବ-
ମାନଙ୍କର ଆଶ୍ରୟାର୍ଥୀ ହେଲେ ଓ ପାଣ୍ଡବମାନେ ଏହାଙ୍କ
ଭ୍ରାତୁଷ୍ପୁତ୍ରଜ୍ଞାନରେ ଗ୍ରହଣ କଲେ—ସୁବଳଚନ୍ଦ୍ର । ]

**ବୃଷଗନ୍ଧା**—ସଂ. ବି—ଇଭୁରୁଡ଼ୀ ଲତା—
Brushagandhā Dalmia Extensa (creeper).

**ବୃଷଣ**—ସଂ. ବି—[ବୃଷ ଧାତୁ=( ସାର୍ଯ୍ୟ ) ବର୍ଷଣ କରିବା+କର୍ତ୍ତୃ.
Brushaṇa ଅନ]—୧ । ଅଣ୍ଡକୋଷ—1. Testicle. ୨ । ଅଣ୍ଡକୋଷର ଆବରକ ଥଳୀ; ମୁଷ୍କ—2. Scrotum; the bag contaning the testicles. ୩ । (+ଭାବ ଅନ) ସାର୍ଯ୍ୟପାତଦ୍ୱାରା ଗର୍ଭ ଉତ୍ପାଦନ-3. Fertilization (Apte). ୪ । ଛିଞ୍ଚିବା—4. Sprinkling (Apte). ସଂ. ବିଣ—୧ । ସବଳ—1. Strong (Apte). ୨ । ପୁଷ୍ଟ—2. Stout (Apte).

**ବୃଷଣକଚ୍ଛୁ**—ସଂ. ବି—ଅଣ୍ଡକୋଷ ଉପରେ ହେବା ଘାଆରୋଗ—
Brushaṇa kachchhū Ulceraten of the scrotum.

**ବୃଷଦଂଶ**—ସଂ. ବି—( ବୃଷ=ମୂଷା+ଦଂଶ୍ ଧାତୁ+କର୍ତ୍ତୃ. ଅ )—
Brusha damśa ବିରାଡ଼ି—Cat. ( ଉ—ବୃଷଦଂଶରୂପେ (ବୃଷଦଂଶକ—ଅନ୍ୟରୂପ) ପଳାୟିତ ଋଷି ଅଛୁ । ଭଞ୍ଜ. ବୈଦେହୀଶ ବିଳାସ । )

**ବୃଷ ଧ୍ୱଜ**—ସଂ. ବି—( ବହୁବ୍ରୀହି; ବୃଷ=ଷଣ୍ଢ+ଧ୍ୱଜ=ଚିହ୍ନ )—
Brusha dhwaja ୧ । ମହାଦେବ—1. Siba. ୨ । (ବୃଷ=ମୂଷା+ଧ୍ୱଜ=ଚିହ୍ନ ) ଗଣେଶ—2. Gaṇesa. ୩ । (ବୃଷ=ଧର୍ମ+ଧ୍ୱଜ=ଚିହ୍ନ) ପୁଣ୍ୟବାନ୍ ବ୍ୟକ୍ତି—3. A pious and virtuous man.

**ବୃଷ ପତି**—ସଂ. ବି—୧ । ମହାଦେବ—1. Siba. ୨ । ମହାଦେବଙ୍କୁ
Brusha pati ଉତ୍ସୃଷ୍ଟ ବୃଷ—2. A bull dedicated to Siba and set at large. ୩ । ନପୁଂସକ (ହି. ଶ)—3. A ennoch..

**ବୃଷପରବା**—ଗ୍ରା. ବି—ବୃଷ ପର୍ବା ( ଦେଖ )—Brusha parbā
Brushaparabā (See). ( ଉ—ବୃଷ ପରବାଙ୍କର ନଗରକୁ ମୁହିଁ । କୃଷ୍ଣସିଂହ ମହାଭାରତ ଆଦି ।)

**ବୃଷପର୍ଣ୍ଣୀ**—ସଂ. ବି—୧ । ଆଖୁ ପର୍ଣ୍ଣୀ; ମୂଷାକାନ ଦଳ—A water-
Brushaparṇṇī weed; Ipomoea Kenniformis; Salvina Cuculata. [ ଦ୍ର—ଏହା ବର୍ଷାଯୁଗ ଜଳଜ ଶାକବିଶେଷ; ଏହାର ପତ୍ରମାନ ମୂଷାର କାନ ଭଳି ଛୋଟ ଓ ପାଖାଳିଆ । ବୈଦ୍ୟଶାସ୍ତ୍ର ମତରେ ଏହା କଟୁ-ତିକ୍ତକଷାୟରସ, ଶୀତବୀର୍ଯ୍ୟ, ଲଘୁ ଓ କଟୁବିପାକ । ଏହା ମୂତ୍ର, କଫ ଓ କ୍ରିମିରୋଗନାଶକ—ଦ୍ରବ୍ୟଗୁଣ । ]
ଅନ୍ୟ ସଂ. ନାମ—ଆଖୁପର୍ଣ୍ଣୀ, ଆଖୁକର୍ଣ୍ଣୀ; ପର୍ଣ୍ଣିକା, ଭୂଦରୀଭବା, ଉନ୍ଦୁରକର୍ଣ୍ଣୀ ।
ହି. इन्दुरकानी पाना
ବ. मूषाकानी, उन्दुरकान्नी
ଗୁ. ଉନ୍ଦର୍ କନୀ
ତେ. ଏଲୁକଚେବୀ
ଫା. ଗୋସ୍ମୋମୁଷ୍, ସତର
ଆ. ଅଜନୁଲଫାର୍, ଶରଜମ୍
୨ । ଦନ୍ତୀ (ହି ଶ) (ଦେଖ)—2. Dantī (See). ୩ । ସୁଦର୍ଶନା ଲତା (ହି. ଶ)—3. A creeper.

**ବୃଷପର୍ବା**—ସଂ. ବି—୧ । ଶିବ—1. Siba. ୨ । ଦୈତ୍ୟ ବିଶେଷ;
Brushaparbā ଶର୍ମିଷ୍ଠାଙ୍କ ପିତା—2. Name of a demon king, father of Sarmishṭhā. [ ଦ୍ର—ଶୁକ୍ର ଏହାଙ୍କ ଗୁରୁଥିଲେ । ଗୁରୁଙ୍କ ପରାମର୍ଶ କ୍ରମେ ଏ ବହୁକାଳ ଦେବତାମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଏହାଙ୍କ କନ୍ୟା ଶର୍ମିଷ୍ଠାଙ୍କୁ ଯଯାତି ବିବାହ କରିଥିଲେ । ] ୩ । ବିରୁଡ଼ି—3. Wasp. ୪ । କଶେରୁ; କେଶୁର ତୃଣ—4. A kind of grass. ୫ । ବିଷ୍ଣୁ (ହି. ଶ)—5. Bishnu.

**ବୃଷପ୍ରିୟ**—ସଂ. ବି—ବିଷ୍ଣୁ—Bishṇu. (ବୃଷଭାକ୍ଷ, ବୃଷଭେକ୍ଷଣ, ବୃଷ-
Brusha priya କପି, ବୃଷାଙ୍କୁର, ବୃଷାକୃତି, ବୃଷାକ୍ଷ, ବୃଷାହ୍ୱ, ବୃଷୋତ୍ସାହ, ବୃଷୋଦର—ଅନ୍ୟରୂପ)

**ବୃଷ ବାହନ**—ସଂ. ବି—(ବହୁବ୍ରୀହି)—ଶିବ; ମହାଦେବ—
Brusha bāhana Siba.

**ବୃଷ ବିବାହ**—ସଂ. ବି—ବୃଷୋତ୍ସର୍ଗ (ଦେଖ)
Brusha bibāha Brushotsarga (See).

**ବୃଷଭ**—ସଂ. ବି—(ବୃଷ୍ ଧାତୁ+କର୍ତ୍ତୃ. ଅଭ)—୧ । ବୃଷ; ଷଣ୍ଢ—
Brushabha 1. Bull. ୨ । ଋଷଭକ ନାମକ ଔଷଧ—2. A rare herb. ୩ । ବଳଦ୍ଦ; ବଳଦ—3. Bullock. ୪ । ବୈଦର୍ଭୀ ନାମକ ରଚନାରୀତି ବିଶେଷ—4. A class of literary composition. ୫ । କର୍ଣ୍ଣଛିଦ୍ର—5. The hole of the ear. ୬ । ଜୈନ ବିଶେଷ—6. Name of Jaina saint. ୭ । ରତିଶାସ୍ତ୍ର ମତେ ୪ଜାତିର ମଧ୍ୟରୁ ଏକଜାତିର ପୁରୁଷ—7. Name of a class of males according to the erotic books. ୮ । ଶ୍ରୀକୃଷ୍ଣଙ୍କର ଏକ ସଖା—8. Name of a companion of Srikrushṇa. ୯ । ରାମରାବଣ ଯୁଦ୍ଧରେ ଜଣେ ବାନର ସେନାପତିର ନାମ (ହି. ଶ)—9. Name of a commander of monkeys in the war of the Rāmāyaṇa. ୧୦ । (ଅନ୍ୟ ଶବ୍ଦ ପରେ ଯୁକ୍ତ ହେଲେ 'ଉତ୍କୃଷ୍ଟ' ବା 'ଶ୍ରେଷ୍ଠ' ଅର୍ଥ ବୁଝାଏ)—ଉତ୍କୃଷ୍ଟ ବା ଶ୍ରେଷ୍ଠ ବ୍ୟକ୍ତି; ଏକ ଶ୍ରେଣୀର ବା ଜାତିର ବହୁ ମଧ୍ୟରେ ଉତ୍କୃଷ୍ଟ ବା ବଳବାନ୍ ବ୍ୟକ୍ତି—7. An excellent or strong person; preemenent amongst many of a class. (ଯଥା-ନରବୃଷଭ=ନରଶ୍ରେଷ୍ଠ । ) [ ଦ୍ର—ଏହି ଅର୍ଥରେ ନରଶବ୍ଦ ପରେ ସିଂହ, କେଶରୀ, ଶାର୍ଦ୍ଦୂଳ, ବ୍ୟାଘ୍ର, ପୁଙ୍ଗବ ଆଦି ଶବ୍ଦ ବ୍ୟବହୃତ ହୁଏ । ]

**ବୃଷଭ ଗତି**—ସଂ. ବି—( ବହୁବ୍ରୀହି; ବୃଷଭ+ଗତି=ଗମନ )—
Brushabha gati ୧ । ଶିବ—Siba. ୨ । ବୃଷବାହ୍ୟ ଯାନ (ହି. ଶ)—2. A conveyance drawn by bullocks.

**ବୃଷଭ ଧ୍ୱଜ**—ସଂ. ବି—(ବହୁବ୍ରୀହି)—ଶିବ—
Brushabha dhwaja Siba.
ବୃଷଭକେତୁ, ବୃଷଭାଙ୍କ, ବୃଷଭୂଷ, ବୃଷଲାଞ୍ଛନ, ବୃଷାଙ୍କନ } ଅନ୍ୟରୂପ

**ବୃଷଭ ପଛଆଡ଼(ଡ଼ୁ) ପାଇବା**—ଦେ. କ୍ରି—(ଭୁଲ. ବକାଣ୍ଡ ପ୍ରତ୍ୟାଶା Brushabha pachha ārḍa pāibā ନ୍ୟାୟ)—କୌଣସି ବକାଣ୍ଡ ପ୍ରତ୍ୟାଶା କାର୍ଯ୍ୟରେ କରିଥିବା ଆଶା ପୂରଣ ନ ହେବା; **ବକାଣ୍ଡ ପ୍ରତ୍ୟାଶା** କୌଣସି କାର୍ଯ୍ୟରେ ବିଫଳମନୋରଥ ହେବା- An analogy purporting 'To be baffled in the fulfilment of one's hopes and wishes; to be tantalised.

**ବୃଷଭାନୁ**—ସଂ. ବି.—ରାଧିକାଙ୍କ ପିତା— Brusha bhānu Father of Rādhā.
[ଦ୍ର—ଏ ପୁରାଣାନୁସାରେ ନାଗ୍ୟପୁଣଙ୍କ ଅଂଶରେ ଉତ୍ପନ୍ନ ହୋଇଥିଲେ। ଏହାଙ୍କ ପିତାଙ୍କ ନାମ ସୁରଭାନୁ ଓ ମାତାଙ୍କ ନାମ ପଦ୍ମାବତୀ। ଏ ଗୋକୁଳର ଜଣେ ବଡ଼ ସରଦାର ଥିଲେ ଓ ପ୍ରଥମେ ରାବଲ ଗ୍ରାମରେ ରହୁଥିବା ଅବସ୍ଥାରେ ସେଠାରେ ରାଧିକାଙ୍କର ଜନ୍ମ ହୋଇଥିଲା। ଏ କଂସର ଉପଦ୍ରବରୁ ସେଠାରୁ ଆସି ଗୋକୁଳରେ ବାସ କଲେ।]

**ବୃଷଭାନୁ ଜେମା**—ଦେ, ବି—ରାଧିକା—Rādhā, [ଉ—ଦାଳନୀ- Brushabhānu jemā ପୁଳନେ ଶ୍ୟାମ-ହିରହ୍ରଣୀ, ଅବା
ବୃଷଭାନୁ ନନ୍ଦିନୀ(ସୁତା) / ବୃଷଭାନୁ କନ୍ୟା(କନ୍ୟକା) } ସଂସ୍କୃତ ରୂପ ବୃଷଭାନୁ ସୁତା। ରାଧାନାଥ ପାବନୀ।

**ବୃଷଭାଷା**—ଦେ, ବି—ମନୋହର ଉକ୍ତି—A nice expression, Brushabhāshā [ଉ—ବୃଷଭାଷା ଏହି ଚରଣେ ଢାଳବାରେ ଅପାଙ୍ଗ। ଭଞ୍ଜ, ବୈଦେହୀଶବିଳାସ।]

**ବୃଷଭାସା**—ସଂ. ବି—(ବୃଷ=ଇନ୍ଦ୍ର+ଭାସ୍ ଧାତୁ ଦୀପ୍ତି ପାଇବା+ଅଧି, Brushabhāsā ଅ+ଆ, ଯେଉଁଠାରେ ଇନ୍ଦ୍ର ଶୋଭା ପାଆନ୍ତି)—ଇନ୍ଦ୍ରପୁର; ସୁରପୁର; ଅମରାବତୀ—The capital or court of Indra (ଉ—ବୃଷଭାସାରେ ମଣ୍ଡିବାରେ ଚିତ୍ତ ଅଛି ଉଦ୍ବେଗ। ଭଞ୍ଜ—ବୈଦେହୀଶ ବିଳାସ।)

**ବୃଷଭୀ**—ସଂ. ବି—(ବୃଷଭ+ସ୍ତ୍ରୀ ଈ)—୧। କାଇଞ୍ଚ (ହରେକୃଷ୍ଣ, Brushabhī ଦ୍ରବ୍ୟଗୁଣ)—1. Cowhage ୨। ବିଧବା ସ୍ତ୍ରୀ— 2. A widow. ୩। ହାତୀର କାନ (ପ୍ରକୃତିବାଦ)— 3. Elephant's ear. ୪। କର୍ଣ୍ଣମଳ; କାନ ଶୁଙ୍ଘ (ପ୍ରକୃତିବାଦ)—4. Ear-wax.

**ବୃଷୟ**—ସଂ. ବି—୧। ଆଶ୍ରୟ—1. Refuge; shelter (Apte) Brushaya ୨। ଆଶ୍ରୟ ସ୍ଥାନ; ଆଶ୍ରମ—2. Asylum (Apte)

**ବୃଷଳ**—ସଂ. ବି. ପୁଂ (ବୃଷଧାତୁ + କର୍ତ୍ତୃ ଅଲ)—୧। ଅଶ୍ୱ; ଘୋଡ଼ା— Brushaḷa 1. Horse. ୨। ଶୂଦ୍ର—2. Sudra. ୩। (ବୃଷଳୀ—ସ୍ତ୍ରୀ) ଚନ୍ଦ୍ରଗୁପ୍ତ ରାଜା—3 King Chandragupta. ୪। ରସୁଣ—4. Garlic. ୫। (ବୃଷ=ଧର୍ମ+ ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ) ପାପୀ—5 A sinner. ୬। ଦୁରାଚାର ବ୍ୟକ୍ତି—6 A wicked person; a profligate. ୭। ଅଗ୍ନିକାର୍ଯ୍ୟାଦିରୁ ପରିଭ୍ରଷ୍ଟ, ସନ୍ଧ୍ୟୋପାସନାବର୍ଜିତ, ବେଦପାଠପରାଙ୍ମୁଖ ବ୍ରାହ୍ମଣ (ପରାଶର)—7. A Brāhamaṇa who does not obeserve his prescribed duties. ୮। ଶାଲଗମ୍ (ହି. ଶ)—8. Turnip ୯। ଗାଜର (ହି. ଶ.)—9. Carrot. ୧୦। ଜାତିଚ୍ୟୁତ ବ୍ୟକ୍ତି— 10. An outcaste (Apte), ୧୧। ଅଧାର୍ମିକ ବ୍ୟକ୍ତି—11. An irreligions man. ସଂ. ବିଣ- ୧। ପାପିଷ୍ଠ—1. Sinful. ୨। ଅଧାର୍ମିକ— 2. Irreligious; impious. ୩। ଦୁଷ୍ଟାତ୍ମା— 3. Wicked

**ବୃଷଳୀ**—ସଂ. ବି. ସ୍ତ୍ରୀ (ବୃଷଳ+ଈ)—୧। ଦ୍ୱାଦଶବର୍ଷବୟସ୍କା ଋତୁମତୀ Brushaḷī ଅବିବାହିତା କନ୍ୟା—1. An unmarried girl, 12 years of age, who has had her menses and is still unmaried. (ଉ—ଅଷ୍ଟବର୍ଷା ଭବେଦ୍ଗୌରୀ, ନବମେ ନଗ୍ନିକା ଭବେତ୍; ଦଶମେ କନ୍ୟକା ପ୍ରୋକ୍ତା, ଦ୍ୱାଦଶେ ବୃଷଳୀ ସ୍ମୃତା—ସନ୍ଦର୍ଭଂହିତା)। ୨। ପିତୃ ଗୃହରେ ଋତୁମତୀ ହେବା ଅବିବାହିତା କନ୍ୟା— 2 An unmarried girl who has attained puberty while at her parents' house. (ଉ—ପିତୁର୍ଗେହେ ତୁ ଯା କନ୍ୟା ରଜଃପଶ୍ୟତ୍ୟସଂସ୍କୃତା, ଭ୍ରୂଣହତ୍ୟା ପିତୁସ୍ତସ୍ୟାଃ ସା କନ୍ୟା ବୃଷଳୀ ସ୍ମୃତା— ଉଦ୍ଧାହତତ୍ତ୍ୱରେ ରଘୁନନ୍ଦନ ଉଦ୍ଧୃତ ଅତ୍ରି ଓ କାଶ୍ୟପ ସ୍ମୃତି)। ୩। ବନ୍ଧ୍ୟା ସ୍ତ୍ରୀ—3. A barren womane (ଉ—ବନ୍ଧ୍ୟା ତୁ ବୃଷଳୀ ଜ୍ଞେୟା ବୃଷଳୀ ତୁ ମୃତପ୍ରଜା, ଶୂଦ୍ରା ତୁ ବୃଷଳୀ ଜ୍ଞେୟା କୁମାରୀ ତୁ ରଜସ୍ୱଳା—ଯମସ୍ମୃତି)। ୪। ଶୂଦ୍ରା ସ୍ତ୍ରୀ—4. A Sūdra woman, ୫। ଋତୁମତୀ ସ୍ତ୍ରୀ—5. A woman in her menses. ୬। ଦ୍ୟୁତକ୍ରୀଡ଼ାବିନୋଦିତ କର୍ମରତା ସ୍ତ୍ରୀ—6, A woman addicted to gambling. ୭। ମୃତ ସନ୍ତାନ ପ୍ରସବକାରିଣୀ ସ୍ତ୍ରୀ—7. Mother of still-born children ୮। ସ୍ୱପତିଙ୍କୁ ଅବଜ୍ଞା କରି ପର ପୁରୁଷଠାରେ ଯେଉଁ ସ୍ତ୍ରୀ ଆସକ୍ତା ଥାଏ—8. An adulteress.

**ବୃଷଳୀ ପତି**—ସଂ. ବି. ପୁ—୧। ଶୂଦ୍ରା ବିବାହକାରୀ ବ୍ରାହ୍ମଣ—1. A Brushaḷī pati Brāhmaṇa who has married a śūdra woman. ୨। ଶୂଦ୍ରା ସ୍ତ୍ରୀ ସମ୍ଭୋଗକାରୀ ଦ୍ୱିଜାତି—2. A twice born male cohabiting a śūdra woman. ୩। ଯେଉଁ ପୁରୁଷ ଦ୍ୱାଦଶ ବା ତଦୂର୍ଦ୍ଧ୍ୱ ବର୍ଷୀୟା ରଜସ୍ୱଳା କନ୍ୟାକୁ ବିବାହ କରେ— 3. A person who marries a girl of twelve or above twelve years of age who has already attained puberty.

**ବୃଷଳୀ ସେବନ**—ସଂ, ବି—୧। ବ୍ରାହ୍ମଣ ପକ୍ଷରେ ଶୂଦ୍ରା ସ୍ତ୍ରୀ ସଙ୍ଗମ— Brushaḷī sebana 1. Cohabitation with a śūdra woman by a Brāhmaṇa.
ବୃଷଳୀ ଗମନ / ବୃଷଳୀ ସଙ୍ଗମ }—ଅନ୍ୟରୂପ

୨ । ରଜସ୍ୱଳା ସ୍ତ୍ରୀ ସଙ୍ଗମ—2. Cohabitation with a woman during her menses.

ବୃଷଲୋଚନ – ସଂ. ବ—୧ । ମୂଷିକ ( ହି. ଶ )—1. A mouse; Bṛusha lochana rat. ୨ । ବିଲୁଆ—2. A cat (Apte).

ବୃଷଶ୍ରେୟ—ଦେ. ବିଣ—ମଙ୍ଗଳପ୍ରଦ—Auspicious. [ ଉ— Bṛushaśreya ବୃଷ ବୃଷଶ୍ରେୟ ହେଉ ହସ୍ତରେ ମଲ୍ଲ । ଅଭିମନ୍ୟୁ. ବଧଗ୍ରନ୍ଥ ଚନ୍ଦ୍ରାମଣି ।]

ବୃଷ ସ୍କନ୍ଧ—ସଂ.ବ—୧ । (୬ଷ୍ଠୀ ତତ୍) ଷଣ୍ଢର ଢୁଲ—1. The hump Bṛusha skandha of flesh on the shoulder of a bull. ୨ । (ବହୁବ୍ରୀହି) ସ୍ଥୂଳକନ୍ଧର—2. Having the shoulder stout or lusty as that of a bull. ୩ । ମହାଦେବ; ଶିବ (ହି. ଶ.)—3. Śiba.

ବୃଷସ୍ୟନ୍ତୀ—ସଂ. ବିଣ. ସ୍ତ୍ରୀ—(ବୃଷ=ଷଣ୍ଢ, ବୃଷ ଜାତୀୟ ପୁରୁଷ+ଯ Bṛushasyantī +ଇଚ୍ଛାର୍ଥେ ସ ଅଗମ+ଅତ୍+ସ୍ତ୍ରୀ. ଈ)— ୧ । ଅତି କାମୁକା (ସ୍ତ୍ରୀ)—1. Lascivious(woman). ୨ । ଭ୍ରଷ୍ଟାଚରଣୀ (ସ୍ତ୍ରୀ)—2. Unchaste (woman). [ଉ—ବଡ଼ କୁଳେ ଜାତ ରୂପ ଲଗିମା ଭୂତି, ବୃଷସ୍ୟନ୍ତୀ ଅଠରଣ ଭଲ ତ ନୋହି । ଭଞ୍ଜ. ବୈଦେହୀଶବିଳାସ ।] ୩ । ପୁରୁଷ ସଙ୍ଗମାର୍ଥିନୀ (ସ୍ତ୍ରୀ); ଯେଉଁ ସ୍ତ୍ରୀ ହମହମ ହେଉଥାଏ—3. (a woman) Longing for sexual intercourse.

ସଂ.ବି.ସ୍ତ୍ରୀ୧।(ଅମୁକ ପୁରୁଷର)ସଙ୍ଗମାର୍ଥିନୀ.ସ୍ତ୍ରୀ-1.A woman longing for sexual intercourse with a particular male (Apte). ୨ । ବୃଷାର୍ଥିନୀ ଗାଭୀ; ବଳଦ ପଡ଼ିବା ଗାଈ—2. A cow in her menses (wishing for a bull); a cow in heat.

ବୃଷା—ସଂ. ବ. (ବୃଷ୍ ଧାତୁ=ବର୍ଷଣ କରିବା+କର୍ତ୍ତୃ. ଅନ୍, ବୃଷନ୍ ଶବ୍ଦ Bṛushā ୧ମା, ୧ବ)—୧ । ଇନ୍ଦ୍ର—1. Indra. ୨ । ରାଜା କର୍ଣ୍ଣ—2. A name of king Karṇṇa. ୩ । ଡଙ୍ଗାର ମଙ୍ଗଧରା; କେରୁଆଳ—3. The rudder of a boat. ୪ । ଦୁଃଖ—4. Distress; pain ୫। ବୃଷ; ଷଣ୍ଢ—5 Bull. ୬ । ଘୋଟକ—6. Horse. ୭ । ମହାଜ୍ୟୋତିଷ୍ମତୀଲତା—7. A phosphorescent creeper—୮ । ଯାତନାଜନ୍ୟ ଅଚୈତନ୍ୟ—8. Unconsciousness produced by anguish. ୮ । ଜ୍ୟୋତିଷୋକ୍ତ ବୃଷରାଶି 8. The sign of Taurus of the zodiac (Apte). ୯ । ଦଳର ସର୍ବଶ୍ରେଷ୍ଠ ବ୍ୟକ୍ତି—9. The chief of a class (Apte). ୧୦ । ଦୁଃଖ ଅନୁଭୂତ ରାହିତ୍ୟ 10. Insensibility to pain (Apte). ୧୧ । ଅଗ୍ନିଙ୍କ ନାମ—11. A name of Agni, the fire-god. ୧୨ । ମୁଷାକାନୀ ଦଳ (ହି ଶ)—12. A kind. of aquatic weed. ୧୩ । ବୃହତ୍ ଦନ୍ତୀ ବୃକ୍ଷ (ହି ଶ)—13 Croton Polyandrum (tree). ୧୪ । ଲଘୁଦନ୍ତୀ ବୃକ୍ଷ (ହି ଶ)—14. Curcas Multifidus (tree). ୧୫ । ବାଇଡଙ୍କ (ହି ଶ)—14. Cowhage. ୧୬ । ଅଶ୍ୱଗନ୍ଧା (ବୃକ୍ଷ) (ହି ଶ)— 15. Withania Somnifera ( tree ). ୧୭ । ସଂ. ବିଣ.—(ବୃଷ+ସ୍ତ୍ରୀ. ଆ) ୧ । ବୃହତ୍—1. Huge; gigantic. ୨ । ଉଚ୍ଚୈଃସ୍ୱରଯୁକ୍ତ—2. Loud.

ବୃଷାକପାୟୀ—ସଂ. ବ. ସ୍ତ୍ରୀ ( ବୃଷାକପି+ଈ )—୧ । ଲକ୍ଷ୍ମୀ— Bṛushākapāyī 1. Lakshmī. ୨ । ଗୌରୀ—2. Pārbatī. ୩ । କୁମାରୀ—3. A virgin. ୪ । ଅଗ୍ନିପତ୍ନୀ ସ୍ୱାହା—4. The wife of the God of fire ୫ । ଶଚୀ—5. Wife of Indra. ୬ । ଜୀବନ୍ତୀ— 6. A medicinal plant. ୭ । ଶତାବରୀ— 7. Asparagus Racemosus.

ବୃଷାକପି—ସଂ. ବ ( ବୃଷ=ଧର୍ମରୂପ ବୃଷ+ଅ+କମ୍ପ ଧାତୁ. କମ୍ପିବା Bṛushākapi +କର୍ତ୍ତୃ ଇ )—୧ । ବିଷ୍ଣୁ—1. Bishṇu. ୨ । ଶିବ—2. Śiba. ୩ । ଅଗ୍ନି—3. Fire. ୪ । ଇନ୍ଦ୍ର—4 Indra. ୫ । ସୂର୍ଯ୍ୟ ( ହି. ଶବ୍ଦସାଗର )— 5. The sun.

ବୃଷାଙ୍କ—ସଂ. ବ ( ବୃଷ ଅଟେ ଅଙ୍କ=ଚିହ୍ନ ଯାହାର; ବହୁବ୍ରୀହି )— Bṛushāṅka ୧ । ବୃଷଧ୍ୱଜ; ଶିବ—1. Śiba. ( ଉ—ବନ୍ଧକା କ୍ଷିତିରେ କମ୍ପିଲା, ବୃଷାଙ୍କ ଧନୁ ଜଳଗଲା—ଭଞ୍ଜ. ବୈଦେହୀଶବିଳାସ ।) ୨ । ଧାର୍ମିକ ବ୍ୟକ୍ତି—2. A pious man. ୩ । ଅନ୍ତଃପୁରରକ୍ଷକ ନପୁଂସକ—3. An eunoch entrusted with the guarding of a harem. ୪ । ମୟୂର—4 Peacock. ୫ । ବନ୍ୟବୃକ୍ଷବିଶେଷ— 5. Name of a wild tree.

ବୃଷାଞ୍ଚନ—ସଂ. ବ ( ବୃଷ=ଷଣ୍ଢ+ଅଞ୍ଚନ=ଗତି )—ଶିବ—Śiba. Bṛushāñchana ( ଉ—ମଦମଞ୍ଜନ ମୃଡ ଜନରଞ୍ଜନ ବୃଷାଞ୍ଚନ ( ବୃଷାଶନ—ଅନ୍ୟରୂପ ) ରୂପ ବହିଲା—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )

ବୃଷାଣ—ଦେ. ବିଣ ( ସଂ. ବିଶାଳ )—ବିଶାଳ; ପ୍ରକାଣ୍ଡ—Gigantic Bṛushāṇa [ ବୃଷାଣିଆ(ଆଁ)—ଅନ୍ୟରୂପ ]

ବୃଷାଦ୍ୱେଷୀ—ଦେ. ବ—ଇନ୍ଦ୍ରଜିତ୍—Indrajit. ( ଉ—ବୃଷା- Bṛushādweshī ଦ୍ୱେଷୀ ପ୍ରବେଶ, ସଙ୍ଗେ ଘୋରଷଣ୍ଢନଶେଷ, କୋଲେ ଚାଲୁ ଏ ଭାଷ ସେ—ଭଞ୍ଜ. ବୈଦେହୀଶବିଳାସ । )

ବୃଷାୟଣ—ସଂ. ବ—୧ । ଚଟକ; ଘରଚଟିଆ ଚଢ଼େଇ—1. Sparrow. Bṛushāyaṇa ୨ । ଶିବ ( ହି. ଶ )—2. Śiba.

ବୃଷାରବ—ସଂ. ବ—(ବହୁବ୍ରୀହି) କର୍କଶ ସ୍ୱରବିଶିଷ୍ଟ ଜନ୍ତୁ (ହି. ଶ)— Bṛushāraba Animals with harsh or shrill sound (ଯଥା—ହିଁକାର, ବେଙ୍ଗ, ଗଧ । )

ବୃଷାରି—ସଂ. ବ—ଇନ୍ଦ୍ରଜିତ୍—Indrjit, the eldest son of. Bṛushāri Rābaṇa. ( ଉ—ବୃଷାରି ଭ୍ରାତ ମେଳ ଯେ— ( ବୃଷାସ୍ତ୍ର—ଅନ୍ୟରୂପ ) ଭଞ୍ଜ, ବୈଦେହୀଶବିଳାସ । )

ବୃଷାଲ—ଦେ. ବଣ ( ସଂ. ବିଶାଲ )—ବିଶାଳ; ପ୍ରକାଣ୍ଡ—Gigantic.
Bṛushāla ( ଉ—ବୃଷାଲ ଶାଳ ପରି ଅଛନ୍ତି ଯେ ଦେଖ୍ଣା । ବିଶାଳ ବିଶାଳ ଭ୍ରମନ୍ତ ଯେ ଚୋରେ ଦାଣିମେ ଧରି ଖଣ୍ଡା—(ବୃଷାଳଅ—ଅନ୍ୟରୂପ) କୃଷ୍ଣସିଂହ. ମହାଭାରତ. ବନ । )

ବୃଷାଶନ—ସଂ. ବି ( ବହୁବ୍ରୀହି; ବୃଷ+ଅଶନ )—ବିରାଡ଼ି—Cat.
Bṛushāśana ( ବୃଷାହାର—ଅନ୍ୟରୂପ )

ବୃଷାସନ—ସଂ. ବି ( ବହୁବ୍ରୀହି )—ଶିବ—Siba. ( ଉ—ବୃଷାସନ
Bṛushāsana ବମ୍ଭ୍ ହରଲେ ବଳେ—ଉଞ୍ଜ. ବୈଦେହୀଶବିଳାସ) ।

ବୃଷାସୁତ—ସଂ. ବି—କାକ—Crow; rook. ( ଉ—ବୃଷାସୁତ
Bṛushāsuta ଖଗ ବର୍ଣ୍ଣ କଲେ ଏଂରେ ଗଣ୍ଡ—ଉଞ୍ଜ. ବୈଦେହୀଶବିଳାସ । )

ବୃଷାସୁର—ସଂ. ବି—୧ । ଭସ୍ମାସୁର ଦୈତ୍ୟ; ବୃକାସୁର ( ଦେଖ )—
Bṛushāsura 1. Name of a demon. ୨ । ଶ୍ରୀକୃଷ୍ଣଙ୍କଦ୍ୱାରା ନିହତ ଷଣ୍ଢାସୁର ରାକ୍ଷସ—2. Name of a demon who assumed the form of a bull and was killed by Srikrushna.

ବୃଷି—ସଂ. ବି ( ବୃଷ+ଇ )—ବ୍ରତଧାରୀ ବ୍ୟକ୍ତିମାନଙ୍କ ଉପବେଶନାର୍ଥ
Bṛushi କୁଶାସନ—A mat made of kuśa grass for persons observing religious vows or ascetics.

ବୃଷୀ—ସଂ. ବି ( ବୃଷ+ଈ )—୧ । ବୃଷି ( ଦେଖ )—Bṛushi
Bṛushī ( See ) ୨ । (ବୃଷ+ଇନ୍; ୧ମା. ୧ବ) ମୟୂର—2. Peacock.

ବୃଷୋତ୍ସର୍ଗ—ସଂ. ବି—ମୃତ ବ୍ୟକ୍ତିର ଅଶୌଚ ଗତ ହେବାର ଦ୍ୱିତୀୟ
Bṛushotsarga ଦିବସରେ ( ଅମଦେଶରେ ମୃତାହାର ଦ୍ୱାଦଶ ଦିନ) ଗୃହଗୋଷ୍ଠ ଅଣ୍ଡିରା ଅଧସ୍ତ ବାଛୁରୀଙ୍କ ପିଠିରେ ଚାଉଳା ଲୁହାଦ୍ୱାରା ତ୍ରିଶୂଳ ଚିହ୍ନିତ କରି ସେମାନଙ୍କୁ ଛାଡ଼ିଦେବାରୂପ ଶ୍ରାଦ୍ଧ ଓ ଯଜ୍ଞକ୍ରିୟା—A vedic rite performed on the 12th day of a person's death, consisting of letting loose 4 male calves after branding them with the sign of trident.

ବୃଷ୍ଟ—ସଂ. ବଣ (ବୃଷ ଧାତୁ+କର୍ତ୍ତୃ. ତ)—୧ । କୃତବର୍ଷଣ; ବର୍ଷୁଥିବା—
Bṛushṭa 1. Raining; pouring; showering. ୨ । ( +କର୍ମ. ତ ) ସିକ୍ତ—2. Moistened.

ବୃଷ୍ଟି—ସଂ. ବି ( ବୃଷ ଧାତୁ+ଭାବ. ତି )—୧ । ବର୍ଷଣ; ମେଘରୁ ଜଳ
Bṛushṭi ପତନ; ବରଷା—1 Raining; a shower of rain. ୨ । ବର୍ଷାଜଳ—2. Rain water ୩ । ଆକାଶରୁ ଧାରାକାରରେ ପଡ଼ିବା କୌଣସି ବସ୍ତୁ—3. A shower or downpour of any thing like rain. ୪ । ବୃଷ୍ଟିଧାରା ପରି ଅବିରତ ପଡ଼ିବା କର୍ମ—4. A volley or copious shower of some thing. (ଯଥା—ଶର ବୃଷ୍ଟି, ଅଗ୍ନି ବୃଷ୍ଟି, ଗାଳି ବୃଷ୍ଟି, ମାଡ଼ ବୃଷ୍ଟି, କଥା ବୃଷ୍ଟି । )

ବୃଷ୍ଟି କରିବା—ଦେ. କ୍ରି—୧ । ଜଳ ବରଷାଇବା—1. To rain.
Bṛushṭi karibā ୨ । ବୃଷ୍ଟି ଜଳ ପରି ଢାଳିବା—2. To pour in showers. ( ଉ—ଅଛି ସେ
ବିଷ୍ଟିକରା, ବର୍ଷାନ
वृष्टि करना, बरषाना ସଙ୍କଟ ଯାହିଁ ମ୍ଳେଚ୍ଛ ଥାଟେ କରିଲେ ପ୍ରତାପ ମରଣ ବୃଷ୍ଟି—ନନ୍ଦକିଶୋର. କୃଷ୍ଣକୁମାରୀ ।) ୩ । ଅବିରତ ଭାବରେ କୌଣସି କାର୍ଯ୍ୟ କରିବା—3. To deal a thing (e.g. blow) copiously. ( ଯଥା—ମାଡ଼ ବୃଷ୍ଟି କରିବା, ଗାଳି ବୃଷ୍ଟି କରିବା । )

ବୃଷ୍ଟି କାଳ—ସଂ. ବି(୬ଷ୍ଠୀ ତତ୍)—ବର୍ଷାଋତୁ—
Bṛushṭi kāla Rainy season.

ବୃଷ୍ଟିଜୀବନ—ସଂ. ବଣ ( ବହୁବ୍ରୀହି )—ବୃଷ୍ଟିପାତଦ୍ୱାରା ଶସ୍ୟ ଉତ୍ପନ୍ନ
Bṛushṭi jībana ହେଉଥିବା (ଦେଶ)—(a country) Nourished or watered by rain. ସଂ. ବଣ—୧ । ବୃଷ୍ଟିପାତଦ୍ୱାରା ବର୍ଦ୍ଧିତ ଶସ୍ୟରେ ପାଳିତ ଦେଶ—1. A country depending upon crops raised with the help of rain-water. ୨ । ଚାତକପକ୍ଷୀ—2. The Indian swift.

ବୃଷ୍ଟିପତନ—ସଂ. ବି (୬ଷ୍ଠୀତତ୍)—ମେଘରୁ ଜଳ ବର୍ଷଣ—
Bṛushṭi patana (ବୃଷ୍ଟିପାତ—ଅନ୍ୟରୂପ) Raining.

ବୃଷ୍ଟିବିନ୍ଦୁ—ସଂ. ବି (୬ଷ୍ଠୀତତ୍)—ବର୍ଷାପାଣିର ଟୋପା—
Bṛushṭi bindu Drops of rain.

ବୃଷ୍ଟିଭବ—ସଂ. ବଣ (ବୃଷ୍ଟି+ଭୂ ଧାତୁ+କର୍ତ୍ତୃ. ଅ)—ବୃଷ୍ଟିପାତ ଯୋଗୁଁ
Bṛushṭibhaba ଉତ୍ପନ୍ନ—Produced by rain.

ବୃଷ୍ଟିଭୂ—ସଂ. ବି (ବୃଷ୍ଟି+ଭୂ ଧାତୁ+କର୍ତ୍ତୃ. କ୍ୱିପ୍)—ବେଙ୍ଗ; ବେଙ୍ଗ—
Bṛushṭibhū Frog. ସଂ. ବଣ—ବୃଷ୍ଟିଭବ ( ଦେଖ )—Bṛushṭibhaba (See).

ବୃଷ୍ଟିମାନ୍—ସଂ. ବଣ (ବୃଷ୍ଟି+ମତ୍; ୧ମା. ୧ବ)—୧ । ବର୍ଷାମୟ—
Bṛushṭimān 1. Raining (Apte). ୨ । ଅଜାଡ଼ୁଥିବା—2. Showering (Apte); pouring. ସଂ. ବି - ମେଘ—Cloud.

ବୃଷ୍ଟିମାନ ଯନ୍ତ୍ର—ସଂ. ବି ( ଶଙ୍କାନପରିଭାଷା; ଅଧୁନାତ ବ୍ୟବହାର )—
Bṛushṭimāna jantra ବୃଷ୍ଟିପତନର ପରିମାଣ ନିର୍ଣ୍ଣୟ କରିବାର ଯନ୍ତ୍ର—Pluviometer; a rain-gauge.
বৃষ্টিমান যন্ত্র
वृष्टिमान यंत्र

ବୃଷ୍ଣି—ସଂ. ବି (ବୃଷ୍ ଧାତୁ+କର୍ତ୍ତୃ. ନି)—୧ । ଯଦୁବଂଶ; ଚନ୍ଦ୍ରବଂଶର
Bṛushṇi ଶାଖାବିଶେଷ—1. A branch of the Lunar dynasty of India. ୨ । ଶ୍ରୀକୃଷ୍ଣଙ୍କ ଜନୈକ ପୂର୍ବ-ପୁରୁଷ—2. Name of an ancestor of Śrīkṛushṇa. ୩ । ଶ୍ରୀକୃଷ୍ଣ—3. Śrīkṛushṇa. ୪ । ଜ୍ୟୋତିଃ—4. Light; lustre. ୫ । ଇନ୍ଦ୍ର—5. Indra. ୬ । ଅଗ୍ନି—6. Fire. ୭ । ବାୟୁ—7. The wind. ୮ । ମେଘ—8. Cloud. ୯ । ଗୋ—9. Cattle. ୧୦ । ମେଣ୍ଢା (ସ୍ତ୍ରୀ. ଣ )—10. A ram (Apte). ୧୧ । ଅନ୍ୟେକ ରଶ୍ମି—11. A ray of

light (Apte). ୧୨ । ଧର୍ମବିରୋଧୀ ବ୍ୟକ୍ତି; ପାଷଣ୍ଡ— 12 A heretic (Apte).
ସଂ. ବିଣ—୧ । ପାମର—1. Despicable; vile. ୨ । ପ୍ରଚଣ୍ଡ; ଉଗ୍ର—2. Violent; furious. ୩ । ଦୁରାଚାର—3. Wicked. ୪ । ସ୍ୱଧର୍ମତ୍ୟାଗୀ; ବିଧର୍ମୀବଲମ୍ବୀ 4. Renegade. ୫ । ଧର୍ମବିରୁଦ୍ଧ ମତାବଲମ୍ବୀ; ପାଷଣ୍ଡ— 5. Heretical; heterodox (Apte). ୬ । କ୍ରୋଧନ ସ୍ୱଭାବ—6. Angry (Apte); of fiery temper.

ବୃଷ୍ୟ—ସଂ. ବିଣ (ବୃଷ ଧାତୁ+କର୍ମ. ଯ)-୧ । ବୀର୍ଯ୍ୟକର; ବଳକର—
Bṛushya 1. Producing vigour; stimulating;
( ବୃଷ୍ୟା—ସ୍ତ୍ରୀ ) strengthening; invigorating. ୨ । ବୀର୍ଯ୍ୟ ସ୍ତମ୍ଭନକାରକ—2. Restraining the free flow of semen. ୩ । ବୀର୍ଯ୍ୟବର୍ଦ୍ଧକ—3. Increasing the semen in the body. ୪ । କାମ ସନ୍ଦୀପକ (ବସ୍ତୁ)—4. Stumulating amorous desire; aphrodisiac (article) ୫ । ଯାହା ବର୍ଷାପର ଧାରରେ ପଡ଼ିତ ହେବ—5. To be rained or showered down (Apte). ସଂ. ବି—୧ । ମାଷ; ବ୍ରୀହି—1. A species of pulse. ୨ । ବାଜୀକରଣ; ବୀର୍ଯ୍ୟବର୍ଦ୍ଧକ ଓ କାମସନ୍ଦୀପକ ଔଷଧ ବା ପ୍ରକ୍ରିୟା— 2. Medicine or treatment which Stimulates amorous desires ( Apte ). ୪ । ଅଖୁ (ହ୍ରି. ଶ)—4. Sugarcane. ୫ । ହରଡ଼ର ଡାଲି (ହ୍ରି. ଶ)—5. Split Hararda pulse. ୬ । ଋଷଭ ନାମକ ଔଷଧି (ହ୍ରି. ଶ)—6. A rare herb ୭ । ଅଁଳା (ହ୍ରି. ଶ)—7. Emblic myrobalan. ୮ । ମୃଣାଳ; ପଦ୍ମନାଡ଼ (ହ୍ରି. ଶ)—8. Stalk of lotus.

ବୃଷ୍ୟକନ୍ଦା—ସଂ. ବି (ବହୁବ୍ରୀହି; ବୃଷ୍ୟ+କନ୍ଦ+ଆ)—୧ । ବିଦାରି
Bṛushyakandā କନ୍ଦ; ଭୂଇଁକଖାରୁ (ହ୍ରି. ଶ)—1. Discorea; yam; Ipomoea Digitata. ୨ । ମୂଳା (ହ୍ରି. ଶ)—Radish.

ବୃଷ୍ୟଗନ୍ଧା—ସଂ. ବି (ବହୁବ୍ରୀହି; ବୃଷ୍ୟଗନ୍ଧ+ଆ)—୧ । ବୃଦ୍ଧଦାରକ
Bṛushyagandhā (ହ୍ରି. ଶ) (ଦେଶ)—1. Gmelina Asiatica. ୨ । ଅତିବଳା (ହ୍ରି. ଶ) ବଜ୍ରମୂଳୀ (ଦେଶ)- 2. Indian Mallow.

ବୃଷ୍ୟଗନ୍ଧିକା—ସଂ. ବି—( ବୃଷ୍ୟ+ଗନ୍ଧ+ଇକ+ଆ )—ଅତିବଳା;
Bṛushyagandhikā ବଜ୍ରମୂଳୀ (ହ୍ରି. ଶ)—Indian Mallow.

ବୃଷ୍ୟଚଣ୍ଡୀ—ସଂ. ବି—ଦୂଷାକାନୀ (ହ୍ରି. ଶ)—
Bṛushyachaṇḍī A species of water-weed.

ବୃଷ୍ୟପର୍ଣ୍ଣୀ—ସଂ. ବି—ଭୂଇଁକଖାରୁ; ବାରାହୀକନ୍ଦ ଅଳୁ (ହ୍ରି. ଶ)—
Bṛushyaparṇṇī Yam; Ipomœa Digitata;
(ବୃଷ୍ୟବଲ୍ଲିକା, ବୃଷ୍ୟବଲ୍ଲୀ—ଅନ୍ୟରୂପ) Discorea.

ବୃଷ୍ୟଫଳା—ସଂ. ବି—ଅଁଳା (ହ୍ରି. ଶ)—
Bṛushyaphaḷā Emblic myrobalan.

ବୃଷ୍ୟା—ସଂ. ବିଣ. ସ୍ତ୍ରୀ—( ବୃଷ୍ୟ+ଆ )—ବୃଷ୍ୟର ସ୍ତ୍ରୀଲିଙ୍ଗ—
Bṛushyā Feminine of Bṛushya. ସଂ. ବି—୧ । ଋଦ୍ଧି ନାମକ ମହୌଷଧ—1. Name of a rare drug. ୨ । ଶତାବରୀ—2. The climbing asparagus. ୩ । ଆମଳକୀ—3. Emblic myrobalan. ୪ । ବାଇଡଙ୍କ (ହ୍ରି. ଶ)—4. Cowhage. ୫ । ଭୂଇଁ ଅଁଳା (ହ୍ରି. ଶ)—5. Phyllanthus Niruri. ୬ । ଭୂଇଁକଖାରୁ (ହ୍ରି. ଶ)—6. Ipomoea Digitata. ୭ । ଅତିବଳା; ବଜ୍ରମୂଳୀ (ହ୍ରି. ଶ)— 7. Indian Mallow. ୮ । ବୃଦ୍ଧଦନ୍ତୀ (ହ୍ରି. ଶ)— 8. Croton Polyandrum.

ବୃହ୍ (ଧାତୁ)—ସଂ.—ବୃଦ୍ଧି ପାଇବା—
Bṛuh (root) To increase; to grow.

ବୃହଚ୍ଚକ୍ରମେଦ—ସଂ. ବି—(ବୃହତ୍+ଚକ୍ରମେଦ; ସନ୍ଧିଦ୍ୱାରା ତ୍+ଚ=
Bṛuhachchakrameda ଚ୍ଚ)—ଜୟନ୍ତୀ (ହ୍ରି. ଶ) ଅଗବଥୁ— Premna Serratifolia.

ବୃହଚ୍ଚିତ୍ତ—ସଂ. ବି. (ବୃହତ୍+ଚିତ୍ତ; ସନ୍ଧିଦ୍ୱାରା ତ୍+ଚ=ଚ୍ଚ)—
Bruhachchitta ଟାଭାଲେମ୍ବୁ (ହ୍ରି. ଶ)—A kind of lemon.

ବୃହଚ୍ଛଦ—ସଂ. ବି. (ବୃହତ୍+ଛଦ; ସନ୍ଧିଦ୍ୱାରା ତ୍+ଛ=ଚ୍ଛ)—
Bruhatchchhada ଆଖରୋଟ (ହ୍ରି. ଶ)—Walnut.

ବୃହଚ୍ଛଫରୀ(ର)—ସଂ. ବି. (ବୃହତ୍+ଶଫରୀ; ସନ୍ଧି ଦ୍ୱାରା ତ+ଶ=ଚ୍ଛ)—
Bṛuhachchhapharī(ra) ମହାଶଫର; ଶରଣା ମାଛ; ଗୋରଣା— सरणापूँठी सौरी Barbus Sarana (fish).

ବୃହଚ୍ଛରୀର—ସଂ. ବିଣ ପୁଂ (ବୃହତ୍, ଅଟେ ଶରୀର ଯାହାର; ବହୁ ବ୍ରୀହି;
Bṛuhachchharīra ବୃହତ୍+ଶରୀର; ସନ୍ଧିଦ୍ୱାରା ତ୍+ଶ=ଚ୍ଛ)- (ବୃହଚ୍ଛରୀରା—ସ୍ତ୍ରୀ) ବୃହତ୍କାୟ; ସ୍ଥୂଳକାୟ—Gigantic; corpulent.

ବୃହଚ୍ଛଲ୍କ—ସଂ.ବିଣ (ବୃହତ୍ ଶଲ୍କ+ବହୁବ୍ରୀହି; ସନ୍ଧିରେ ତ+ଶ=ଚ୍ଛ)—
Bruhachchhaḷka ବଡ଼କାତି ଯୁକ୍ତ—Having big scales. ସଂ. ବି—୧ । ଚିଙ୍ଗୁଡ଼ି ମାଛ—1. Shrimp. ୨ । ବଡ଼କାତିଆ ମାଛ—2. Fish with large scales.

ବୃହଜ୍ଜୀରକ—ସଂ. ବି (ବୃହତ୍+ଜୀରକ; ସନ୍ଧିଦ୍ୱାରା ତ୍+ଜ=ଜ୍ଜ)—ବଡ଼
Bṛuhajjiraka କଳାଜୀରା । କଳାଜୀରା ୨ (ଦେଶ)— बड़ कालजीरे मङ्गरैला Black caraway.

ବୃହତ୍—ସଂ. ବିଣ. (ବୃହଧାତୁ=ବଡ଼ହେବା+କର୍ତ୍ତୃଅତ୍)—୧ । ପ୍ରକାଣ୍ଡ,
Bṛuhat ବଡ଼; ବିରାଟ୍—1. Great; large; huge; big.
ବୃହତୀ—ସ୍ତ୍ରୀ ୨ । ବିସ୍ତୃତ—2. Extensive.

ବୃହତ୍କାୟ—ସଂ. ବିଣ. ପୁଂ (ବହୁବ୍ରୀହି)—ପ୍ରକାଣ୍ଡ ଶରୀରବିଶିଷ୍ଟ—
Burhat-kāya Gigantic; huge-bodied.
(ବୃହତ୍କାୟା—ସ୍ତ୍ରୀ)

**ବୃହତ୍କୁକ୍ଷି**—ସଂ. ବଣ (ବହୁବ୍ରୀହି)—ବଡ଼ ପେଟୁଆ—
Bṛuhat-kukshi Pot-bellied.

**ବୃହତ୍ତୃଣ**—ସ. ବ—ବାଉଁଶ (ହି. ଶ)—
Bṛuhat-truṇa (ବୃହତ୍ତୃଣ—ଅନ୍ୟରୂପ) Bamboo.

**ବୃହତ୍ତ୍ୱକ**—ସ. ବଣ (ବହୁବ୍ରୀହି; ବୃହତ୍+ତ୍ୱଚ୍; ୧ମା ୧ବ)—
Bṛuhat-twak ଯାହାର ଚମଡ଼ା ବା ଛାଲ ମୋଟା—Thick-(ବୃହତ୍ତ୍ୱକ୍—ଅନ୍ୟରୂପ) skinned; thick-rinded; thick-barked. ସ. ବ ସପ୍ତପର୍ଣ୍ଣୀ (ବୃକ୍ଷ) (ହି. ଶ)—Echites Scholaris (tree).

**ବୃହତ୍ ପଞ୍ଚମୂଳ**—ସ. ବ—( ଆୟୁର୍ବେଦ ) ବେଲ, ଫଣଫଣା, ପାଟଳି, Bṛuhat-pañchamūla ଗମ୍ଭାରୀ ଓ ଅଗବଥୁ, ଏହି ପାଞ୍ଚଟି ଗଛର ମୂଳ ଓ ଚହିଁର ପାଚନ—A decoction made from the roots of 5 trees ( viz; Marmalos, Bignonia Indica, Bignonia Suavuolens, Gmelina Arborea and Premna Serratifolia ). [ ଦ୍ର—ଏହାର ପାଚନ ଔଷଧରୂପେ ବ୍ୟବହୃତ ହୁଏ । ଏହା ନବଜ୍ୱର, ଶ୍ୱାସ କାସାଦି ରୋଗରେ ଉପକାରକ । ]

**ବୃହତିକା**—ସ. ବ. (ବୃହତୀ+କ+ଆ)—୧ । ଉତ୍ତରୀୟ; ଦୋପଟ୍ଟା—
Bṛuhatikā 1. The upper sheet.

**ବୃହତୀ**—ସଂ. ବ (ବୃହତ୍+ଈ)—୧ । ଭଣ୍ଟାକୁଡ଼ି; ଭେଜି ବାଇଗଣ—
Bruhatī Solanum Indicum. [ଦ୍ର—ଏହା ବଟଜାଦବର୍ଗର ବନ୍ଧୁଷାଖ କଣ୍ଟକାକ୍ଷୁପ; ଅଲ୍ପଗାରେ ମନକୁ ଉଠେ; ଏହା ଭୂମିରେ ଚଳପଡ଼ା ହୋଇ ମାଡ଼େ; ଏଥିର ଫୁଲ ବାଇଗଣି, ଫଳ ଗୋଲ, ଅଧଇଞ୍ଚ ବ୍ୟାସବିଶିଷ୍ଟ । ଏ ଗଛ ଓ ଫଳ ଦଶମୂଳ ପାଚନରେ ଲାଗେ । ବୈଦ୍ୟ ଶାସ୍ତ୍ର ମତରେ ଏହା ଧାରକ, ହୃଦୟଗ୍ରାହୀ, କଟୁ-ତିକ୍ତ ଓ ଉଷ୍ଣ ବୀର୍ଯ୍ୟ । ଏହା କଫ, ବାୟୁ, ମୂତ୍ରର ବିରସତା, ଅରୁଚି, କୁଷ୍ଠ, ଜ୍ୱର, ଶ୍ୱାସ, ଶୂଳ, କାଶ ଓ ଅଗ୍ନିମାନ୍ଦ୍ୟ ନାଶକ । ୨ । ଅଙ୍କଗ୍ରନ୍ଥି କଣ୍ଟକାରୀ; କଣ୍ଟକାରିକା (ଦେଖ)—2. Solanum Xanthocarpum. ୩ । ଭେଙ୍ଗା ଭେଜି; ଶ୍ୱେତ କଣ୍ଟକାରୀ—3. A tall variety of Solanum Indicum. [ ଦ୍ର—ଏହା କଣ୍ଟକୀ ଗୁଳ୍ମ; ଏହା କଣ୍ଟକାରୀର ଗୁଣଯୁକ୍ତ, ଅଧିକନ୍ତୁ ଗର୍ଭପ୍ରଦ; ଏଥିର ଫୁଲ ଧଳା]—୪ । ଲଟା ବେଙ୍କୋଳ—4. A variety of Solanum which is a creeper. [ ଦ୍ର—ଏ ଲତାର ଫଳ ଭେଜି ବାଇଗଣ ପରି, କିନ୍ତୁ ଭେଜି ଅପେକ୍ଷା କଣ୍ଟା କମ୍)—

ସ. ନାମ—ବାର୍ତ୍ତାକୀ, କ୍ଷୁଦ୍ର-ଭଣ୍ଟାକୀ, ମହତୀ, ବୃହତୀ, କୁଲୀ, ହିଙ୍ଗୁଲୀ, ରାଷ୍ଟ୍ରିକା, ସିଂହୀ, ମହୋଟୀ, ଦୁଷ୍ପ୍ରଧର୍ଷିଣୀ,
ବ୍ୟାକୁଡ଼ ବଡ଼ହଣ୍ଟା, କଣ୍ଟାଇ
ମ. ଥୋର ଡୋରଲୀ;
ତେ. ଣ୍ଡକମାଟ
ଗୁ. ଉଭୀଭୋରିଙ୍ଗଣୀ
ତା. ଚେରୁଚୁଣ୍ଡ
ଫା. ଉମ୍ବରଗାରୁ, ବାଦିଙ୍ଗାନ୍ ଜଙ୍ଗଲୀ
ଅ ବାଲୁଙ୍ଗାନ୍ ଜଙ୍ଗଲୀ ।
ସ. ନାମ—ଶ୍ୱେତା, କ୍ଷୁଦ୍ରା, ଚନ୍ଦ୍ରହାସା, ଲକ୍ଷ୍ମଣା, କ୍ଷେତ୍ର-ଦୂତିକା, ଗର୍ଦ୍ଦଭା, ଚନ୍ଦ୍ରିକା, ଚନ୍ଦ୍ରୀ, ଚନ୍ଦ୍ରପୁଷ୍ପା, ପ୍ରିୟଙ୍କରୀ ।

[ ଦ୍ର—ସାଧାରଣ ବୈଦ୍ୟଶାସ୍ତ୍ରରେ ବୃହତୀ ଦୁଇ ପ୍ରକାର; କିନ୍ତୁ ରାଜନିର୍ଘଣ୍ଟକାରଙ୍କ ମତରେ ବୃହତୀ ୩ ପ୍ରକାର । ୧ । ବୃହତୀ ବା ଭେଜି ବାଇଗଣ—1. Solanium Indicum. ୨ । କଣ୍ଟକାରୀ; ଅଙ୍କଗ୍ରନ୍ଥି—2. Solanium Xanthocarpum. ୩ । ଶ୍ୱେତ ବୃହତୀ ବା ଭେଙ୍ଗା ଭେଜି । ଶ୍ୱେତ ବୃହତୀଗଛ ବଡ଼; ଫୁଲ ବାଇଗଣ ଫୁଲ ପରି, କିନ୍ତୁ ଧଳା; ଫଳ ଭେଜି ଅପେକ୍ଷା ବଡ଼ । ସମସ୍ତ-ପ୍ରକାର ବୃହତୀ ଗୁଚ୍ଛଫଳା । ଆଉ ଏକପ୍ରକାର ଛୋଟ ବାଇଗଣ ପରି ଫଳ ଧରିବା କଣ୍ଟକମୀ ଲତାକୁ ଲଟା-ବେଙ୍କୋଳ ବା ଲଟ ବେଙ୍କୋଳ ବୋଲାଯାଏ ।] ୨ । ବିଶ୍ୱାବସୁଙ୍କ ବୀଣା—2. The lute of a Deity. ୩ । ଉତ୍ତରୀୟ ବସ୍ତ୍ର—3. The upper sheet. ୪ । ଛନ୍ଦୋବିଶେଷ—4. Name of a metre. (ଉ—'ବୃହତୀ ଛନ୍ଦେ ଅଛି ନଅଟି ଅକ୍ଷର, ନ ଅଛେତ କାଣ୍ଡ ଦେଉଛି ବେଭାର । କୃଷ୍ଣସିଂହ, ମହାଭାରତ ବନ) । ୫ । ବାକ୍ୟ—5. Word; expression. ଦେ. ବ—ବୋଇତି କଖାରୁ—The sweet gourd.

**ବୃହତୀ ପତି**—ସ. ବ (ବୃହତୀ=ବାକ୍ୟ(+ପତି)—ଦେବଗୁରୁ ବୃହସ୍ପତି;
Bṛuhatīpati ସୁରାଚାର୍ଯ୍ୟ—Bruhaspati, the preceptor of the gods.

**ବୃହଦଶ୍ୱ**—ସଂ ବ.—( ନାମ ) ଋଷିବିଶେଷ—A sage. (ଉ—
Bṛuhadaśwa ଦ୍ୱଇତ ଶୌନକ କାଶ୍ୟପ ବୃହଦଶ୍ୱ । କୃଷ୍ଣସିଂହ. ମହାଭାରତ ବନ ।)

**ବୃହଦାରଣ୍ୟକ**—ସ. ବ—ଉପନିଷଦ୍ ବିଶେଷ—Name of an
Bṛuhadāraṇyaka Upanishad.

**ବୃହଦନ୍ତୀ**—ସ. ବ ଏକପ୍ରକାର ଦନ୍ତୀ ବା ବୃକ୍ଷବିଶେଷ—Croton
Bṛuhaddantī polyandrum plant. [ଦ୍ର—ଏହାର ପତ୍ର ଏରଣ୍ଡପତ୍ର ପରି ବଡ଼ । ଏହା ଔଷଧରେ ବ୍ୟବହୃତ ହୁଏ । ]

**ବୃହଦ୍ବାମନ**—ସ, ବ—ପୁରାଣ ବିଶେଷ—A Purāna. (ଉ—
Bṛuhad-bāmana ବୃହଦ୍ବାମନେ ଛନ୍ତି କହି, ପ୍ରଭୁ ଶ୍ରୀମୁଖେ ଅଜ୍ଞା ଦେଇ । ପ୍ରାଚୀ. ପୂର୍ଣ୍ଣିମ ଚନ୍ଦ୍ରୋଦୟ ।

**ବୃହଦ୍ବ୍ରତ**—ଦେ. ବ ବଡ଼ ଓଷା—[ ଦ୍ର—ଏହା ଅଠଗଡ଼ର ସ୍ୱର୍ଗୀୟ
Bruhad-brata ରାଜା ବାହାଦୁର ବିଶ୍ୱନାଥ ବର୍ମାଙ୍କ ଉଦ୍ଭାବିତ ।]

**ବୃହଦ୍ଭାନୁ**—ସ. ବ (ବୃହତ୍+ଭାନୁ=କିରଣ ଯାହାର)—୧ । ଅଗ୍ନି—
Bruhadbhānu 1. Fire. ୨ । ସୂର୍ଯ୍ୟ—2. The sun.

**ବୃହଦ୍ରଥ**—ସ. ବ. (ବୃହତ୍+ରଥ)—୧ । ଇନ୍ଦ୍ର—1. Indra.
Bruhadratha ୨ । ଜରାସନ୍ଧର ପିତା—2. Father of Jarāsandha. ୩ । ଯଜ୍ଞପାତ୍ର—3. Sacrificial pot. ୪ । ବୈଦିକ ମନ୍ତ୍ର ବିଶେଷ—4. Name of a vedic formula. ୫ । ସାମବେଦର ଅଂଶ—5. Part of the Sāma beda.

**ବୃହନ୍ଦ**—ସ. ବ—୧ । ବହିର୍ଦ୍ୱାର—1. The outer gate.
Bruhanda ୨ । ଅଗଣା—2. Courtyard.

**ବୃହନ୍ନଳ**—ସଂ. ବି. (ବୃହତ୍+ନଳ)—୧ । ଦୀର୍ଘ ନଳ ବୃକ୍ଷ—1. A Bruhannala species of long reed; Arunda Tibialis. ୨ । ବାହୁ—2. The arm. ୩ । ପରିମାପକ ଦଣ୍ଡ; ପଦକା—3. A measuring rod.

**ବୃହନ୍ନଳା**—ସଂ. ବି. ପୁଂ—ପାଣ୍ଡବମାନେ ବିରାଟ ରାଜାଙ୍କ ଗୃହରେ Bruhannalā ପ୍ରଚ୍ଛନ୍ନ ଭାବରେ ବାସ କରୁଥିବା ସମୟରେ ବିରାଟକନ୍ୟା ଉତ୍ତରାଙ୍କୁ ନୃତ୍ୟଗୀତାଦି ଶିକ୍ଷାଦେବା ନିମନ୍ତେ ନିଯୁକ୍ତ କ୍ଳୀବରୂପଧାରୀ ଅର୍ଜୁନଙ୍କ ନାମ—The name assumed by Arjuna when he lived incognito in the house of the king of Birāta, as an eunuch and engaged as music master to the daughter of the king. (ଦ୍ର—ଏ ବାହାରେ ମୋହର ନାମ ବୃହନ୍ନଳା, ମୋ ପର ନାହିଁ ଜାଣିବାକୁ ନୃତ୍ୟକଳା । କୃଷ୍ଣସିଂହ. ମହାଭାରତ· ବିରାଟ ।)

**ବୃହସ୍ପତି**—ସଂ. ବି. (ବୃହତ୍+ପତି; ନିପାତନସିଦ୍ଧ)—୧ । ଦେବଗୁରୁ; Bruhaspati ସୁରଗୁରୁ—1. The spiritual preceptor of the gods. ୨ ନବଗ୍ରହ ମଧ୍ୟରୁ ପଞ୍ଚମଗ୍ରହ—2. The planet Jupiter. ୩ । ଧର୍ମଶାସ୍ତ୍ର ପ୍ରଣେତା ଋଷିବିଶେଷ—3. Name of a sage, the author of a code of Hindu law. ୪ । ଧର୍ମଶାସ୍ତ୍ର ପ୍ରଣେତା ଚାର୍ବାକ ମୁନି—4. Sage Chārbāka. ୫ । ବୃହସ୍ପତିଙ୍କ ପରି ମହାପଣ୍ଡିତ ବ୍ୟକ୍ତି—5 A very learned man (compared with Bruhaspati).

**ବୃହସ୍ପତି ଏକାଦଶ**—ଦେ. ବି.—ବିଶେଷ ସୌଭାଗ୍ୟୋଦୟ—Bruhaspati okādasa The dawning of good fortune or prosperity.
ଏକାଦଶ ବୃହସ୍ପতି
**एकादश बृहस्पति**

**ବୃହସ୍ପତି ଗୋଚର ଫଳ**—ସଂ. ବି—(ଜ୍ୟୋତିଷ) ଜ୍ୟୋତିଷ ଗଣନା । Bruhaspati gochara phala ଅନୁସାରେ ବୃହସ୍ପତି ଗ୍ରହଙ୍କର (ବୃହସ୍ପତି ଦଶା—ଅନ୍ୟରୂପ) ଭିନ୍ନ ଭିନ୍ନ ଅବସ୍ଥିତିଜନିତ ମନୁଷ୍ୟ ଜୀବନରେ ଭିନ୍ନ ଭିନ୍ନ ଫଳ ଘଟିବା ଅବସ୍ଥା—The fortunes of a person according to the position of the planet Jupitor calculated by astrology. [ଦ୍ର—ବୃହସ୍ପତି ଜନ୍ମ ବା ପ୍ରଥମ ରାଶିରେ ଥିଲେ ଭୟ, ଦ୍ୱିତୀୟରେ ଅର୍ଥଲାଭ, ତୃତୀୟରେ ଶରୀରପୀଡ଼ା, ଚତୁର୍ଥରେ ଅର୍ଥନାଶ, ପଞ୍ଚମରେ ଶୁଭ, ଷଷ୍ଠରେ ଶତ୍ରୁବୃଦ୍ଧି, ସପ୍ତମରେ ସୁଖ, ଅଷ୍ଟମରେ ଅର୍ଥନାଶ, ନବମରେ ସୁବାର୍ଥ ଲାଭ, ଦଶମରେ ଅଶୁଭ, ଏକାଦଶରେ ଧନଲାଭ ଓ ଦ୍ୱାଦଶରେ ଧନାଗମ ହୁଏ ।]

**ବୃହସ୍ପତି ଚକ୍ର**—ସଂ. ବି—(ଫଳିତ ଜ୍ୟୋତିଷ)—୧ । ଫଳିତ ଜ୍ୟୋତିଷାନୁ-Bruhaspati chakra ସାରେ ଅଙ୍କିତ ନରଦେହ—1. Figure of the human body drawn according to astrological directions. ୨ । ୬୦ ବର୍ଷ ବ୍ୟାପୀ କାଳଚକ୍ର—2. An astrological cycle of 60 years.

**ବୃହସ୍ପତି ପଞ୍ଚମ**—ଦେ. ବି—ମନୁଷ୍ୟର ସୌଭାଗ୍ୟଯୁକ୍ତ ଅବସ୍ଥା ଘଟିବା—Bruhaspati pañchama The dawning of good fortune.
ବୃହସ୍ପତି ନବମ } —ଅନ୍ୟରୂପ
ବୃହସ୍ପତି ଏକାଦଶ }
[ଦ୍ର—ଜ୍ୟୋତିଷ ମତରେ ମନୁଷ୍ୟର ଜୀବନରେ ୫ମ ବା ୯ମ ବୃହସ୍ପତି ପଡ଼ିଲେ ସୁବାର୍ଥ ଲାଭ ହୁଏ । କୌଣସି ବ୍ୟକ୍ତିର ସୌଭାଗ୍ୟଯୁକ୍ତ ଅବସ୍ଥା ଦେଖିଲେ ଲୋକେ କହୁଥାଆନ୍ତି 'ତାଙ୍କୁ ବୃହସ୍ପତି ପଞ୍ଚମ ବା ନବମ ପଡ଼ୁଅଛି' । ସେହିପରି କୌଣସି ବ୍ୟକ୍ତିର ସୌଭାଗ୍ୟୋଦୟକୁ ଲକ୍ଷ୍ୟ କରି 'ବୃହସ୍ପତି ଏକାଦଶ ପଡ଼ୁଛି' ବୋଲି ମଧ୍ୟ କହନ୍ତି ।]

**ବୃହସ୍ପତି ବାର**—ସଂ. ବି—ଗୁରୁବାର; ବୁଧବାରର ପରଦିନ—Thursday. Bruhaspati bāra (ବୃହସ୍ପତି ବାସର—ଅନ୍ୟରୂପ)

**ବୃହସ୍ପତି ସୂତ୍ର**—ସଂ. ବି—ବୌଦ୍ଧମାନଙ୍କର ଧର୍ମଶାସ୍ତ୍ରବିଶେଷ—Bruhaspati sūtra Name of a Buddhist scripture. [ଦ୍ର—କାହାରି କାହାରି ମତରେ ଚାର୍ବାକ ମୁନି ଓ ବୃହସ୍ପତି ଏକ ବ୍ୟକ୍ତି ଥିଲେ ]

**ବୃହସ୍ୱତି**—ଗ୍ରା. ବି. (ସଂ.ବୃହସ୍ପତି)—ବୃହସ୍ପତି (ଦେଖ)—Bruhaspati Bruhaswati বিষ্পতি; বেস্পতি; **बिरस्पती** (See).

**ବୃହାମ୍**—ବୈଦେ. ବି. (ଇଂ)—ଏକପ୍ରକାର ଘୋଡ଼ାଗାଡ଼ି—Bruhām Brougham. [ଦ୍ର—ଏଥିର ଆବରଣକୁ ବନ୍ଦ କରାଯାଇ ପାରେ ଓ ଖୋଲାଯାଇ ପାରେ ।] ব্রুহাম; **ब्रहाम्**

**ବେ**—ବୈଦେ. ଅ (ଫା)—ଅବଜ୍ଞା ବା ତୁଚ୍ଛାର୍ଥକ ସମ୍ବୋଧନ—Be (Interjection) A word used in addressing a person in contempt while calling him. ব্ৰে; **बे** [ଦ୍ର—ମାନ୍ୟାର୍ଥକ—ହେ, ହୋ, ଅହେ, ଅହୋ । ତୁଚ୍ଛାର୍ଥକ—(ପୁଂ) ରେ, ଅରେ, ଇରେ, (ସ୍ତ୍ରୀ) ଲୋ, ଅଲୋ, ଇଲୋ । ଅବଜ୍ଞା ବା ଅବମାନନାର୍ଥକ—ବେ, ଅବେ, ଇବେ, ହାଁବେ । ଓଡ଼ିଆରେ ଅତି ଘୃଣା ବା ତାଚ୍ଛଲ୍ୟ ସହିତ ନୀଚ ବ୍ୟକ୍ତିଙ୍କୁ ସମ୍ବୋଧନ କରିବାରେ 'ବେ' ବ୍ୟବହୃତ ହୁଏ ଓ ସାଧାରଣତଃ ଅପଣାଠାରୁ ନିମ୍ନତର ବ୍ୟକ୍ତିପ୍ରତି 'ରେ' ବ୍ୟବହୃତ ହୁଏ । ସମ୍ବଲପୁର ଅଞ୍ଚଳରେ 'ରେ' ସ୍ଥାନରେ 'ବେ' ବ୍ୟବହୃତ ହୁଏ ।] ବୈଦେ. (ଫା) ଉପସର୍ଗ—ବେ; बे ଅନ୍ୟ ଶବ୍ଦ ପୂର୍ବରେ ଯୁକ୍ତ ହୋଇ ନିଷେଧ, ବୈପରୀତ୍ୟ ଓ ଅଭାବ ଆଦି ବୁଝାଏ (ଏହା ସଂ ବି ଉପସର୍ଗ ଓ ଇଂ 'Un' 'Il' 'In' 'Ir' ଆଦି ଉପସର୍ଗ ସଙ୍ଗେ ସମାନ)—A Persian prefix added to words to denote absence, want, opposition or prevention. [ଦ୍ର—ଏହି ଫାରସୀ ଉପସର୍ଗଯୁକ୍ତ ଅନେକ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହୃତ ହୁଏ । ତାହା ସମସ୍ତ ସଂଗ୍ରହ କରିବା କଠିନ; ଗ୍ରନ୍ଥରେ କେତେଗୁଡ଼ିଏ ବେଶୀ ବ୍ୟବହୃତ ଶବ୍ଦ ଦିଆଗଲା । 'ବେ' ଉପସର୍ଗ ଯୁକ୍ତ କେତେଗୁଡ଼ିଏ ଫାରସୀ ଶବ୍ଦ ଅବିକୃତ ହୋଇ ଭାଷାରେ ଚଳୁଅଛି ଯଥା—ବମଞ୍ଜୁର; ବେମାଲୁମ୍;

ବେଦମ୍ । କେତେଗୁଡ଼ାଏ ବିକୃତ ହୋଇ ଚଳୁଅଛି । ଯଥା :—ବେକଚ୍ (ପ୍ରକୃତ ବେଇକ୍କ୍) "ବେଲୁବ୍ (ପ୍ରକୃତ (ବେ ଇକ୍କୁଫ୍) । କେତେଗୁଡ଼ାଏ ଶବ୍ଦରେ ଫାରସୀ 'ବେ' ଉପସର୍ଗ ସଙ୍ଗେ ଅନ୍ୟ ସଂସ୍କୃତ ଶବ୍ଦ ଯୁକ୍ତ ହୋଇ ଚଳୁଅଛି, ଯଥା —ବେଦମ୍, ବେଧାଗ୍, ବେମର୍ଯ୍ୟାଦା । କେତେକ ସ୍ଥଳରେ ଏହି ଉପସର୍ଗ ସଙ୍ଗେ ଅନ୍ୟ ଦେଶୀୟ ଶବ୍ଦ ଯୋଗ ହୋଇଅଛି । ଯଥା —ବେମର୍ଣିଷ, ବେପନ୍ଦ, ବେଧୁମ୍ ।]

ବେନ **ଦ'ବେ** ଉଦ. (ବ୍ୟାକରଣ)—ଭବିଷ୍ୟତକାଳରେ ଧାତୁ ସଙ୍ଗେ ବ୍ୟବହୃତ ପ୍ରତ୍ୟୟବିଶେଷ—An inflection added to verbs to denote the future tense. ( 2nd person and 3rd person ) [ ଦ୍ର—ଆପଣ, ଅପଣମାନେ, ମାନ୍ୟାର୍ଥକ ସେ, ବହୁବଚନାର୍ଥକ ସେମାନେ, ଏଗୁଡ଼ିକ କର୍ତ୍ତା ହେଲେ ଭବିଷ୍ୟତ୍ କାଳରେ କ୍ରିୟାର ରୂପରେ 'ବେ' ଯୁକ୍ତ ହୁଏ । ଯଥା—ଆପଣମାନେ ଯିବେ, ଆପଣମାନେ ଆସିବେ, ସେ ଖାଇବେ, ସେମାନେ ଶୋଇବେ । ]

ବେ ଅକ(କ୍କା)ଲ—ବୈଦେ. ବଣ. ( ଫା. ବେ+ଅକ୍କଲ୍=ବୁଦ୍ଧି )—
Be-aka(kka)la ନିର୍ବୁଦ୍ଧିଆ; ବୁଦ୍ଧିହୀନ—Stupid;
ବେଅକଲ, ବେଆକ୍କେଲ, ବେଆକ୍କିଲ lacking in understanding; silly.
ବେଅକ(କ୍କା)ଲ, ବେଅକ(କ୍କି)ଲିଆ }—ଅନ୍ୟରୂପ

ବେ **ଅକତଆର(ରି)**—ବୈଦେ. ବ ( ଫା. ବେ+ଇଖ୍‌ତିୟାର୍= Be-akatiāra(ri) ଅଧିକାର)—୧ । ଅନାୟତ୍ତ; ଅଧିକାର ବେଏଖ୍‌ତାର, ବେଏକ୍ତାର **बे इख़तियार** ବହିର୍ଭୂତ—
( ବେଅକ୍ତିଆର(ରି) —ଅନ୍ୟରୂପ ) 1. Beyond control. ୨ । ଅବଶ; ଅକ୍ଷମ—2. Powerless.

ବେ ଅକୁଫ୍(ବ୍)—ବୈଦେ. ବ (ଫା· ବେଇକୁଫ୍)—ବେକୁଫ୍ (ଦେଖ)
Be-akuph(b) Bekuph (See)

ବେ ଅଟକ୍—ବୈଦେ. ବଣ ( ଫା )—ବାଧାରହିତ—
Be-aṭak Unobstructed.
ବେଆଟକ **बेअटक**

ବେ ଅଟକଲ—ଦେ. ବ ( ଫା. ବେ+ଓଡ଼ିଆ. ଅଟକଳ )—ଆଗରୁ
Be-aṭakaḷa ଅନୁମାନଦ୍ୱାରା ଇୟତ୍ତା କରିବାର ଅଭାବ—
Want of estimate, ଦେ. ବଣ—ବେ ଅନ୍ଦାଜ (ଦେଖ)—Be-andāja ( See )

ବେ ଅନ୍ଦାଜ(ଜି)—ବୈଦେ. ବଣ ( ଫା )—୧ । ଅସଂଖ୍ୟ; ଅପରିମିତ—
Be-andāja(ji) 1. Innumerable; countless.
ବେଆନ୍ଦାଜ(ଜୀ) **बेअंदाज** ୨ । ଅନୁମାନଜ୍ଞାନହୀନ—2. Having
( ବେଅନ୍ଦାଜିଆ—ଅନ୍ୟରୂପ ) no capacity for inference.
୩ । ଅଜ୍ଞାତ—3. Unknown. ୪ । ଯାହାର ଅନ୍ଦାଜ ବା ଅନୁମାନ ଠିକ୍ ନୁହେ—4. Having no capacity for making an estimate. ୫। ପରସ୍ପର ସଙ୍ଗେ ସଙ୍ଗତ ବା ସାମଞ୍ଜସ୍ୟହୀନ—5. Disproportionate.
୬ । ଦରକାରଠାରୁ ଅତ୍ୟଧିକ —6. Immoderate.

ବେ **ଆଇନ୍(ନି)**—ବୈଦେ. ବଣ ( ଫା. ବେ+ଆଇନ୍=ନିୟମ )—
Be-āin(ni) ୧ । ଅବୈଧ; ଆଇନ୍‌ବିରୁଦ୍ଧ—1. Illegal; un-
ବେଆଇନ **बेआइन** lawful. ୨ । ଅନ୍ୟାୟ—2. Unjust.
ବୈଦେ. ବ—୧ । ଅବିଚାର—1 Injustice.
୨ । ଆଇନର ଲଙ୍ଘନ—2. Infringement or breach of law.

ବେ ଆଇନ୍(ନି) **ଜନତା**—ଦେ. ବ (କଚେରୀ)—ଅବୈଧ ଜନସଂଘ;
Be-āin(ni) janatā ଅସାଧୁ ଉଦ୍ଦେଶ୍ୟରେ ପାଞ୍ଚ ଜଣରୁ ଅଧିକ
ବେଆଇନ ଜନତା **बेआइन जनता** ଲୋକଙ୍କ ଏକତ୍ର ହେବା—
[ ବେଆଇନ୍(ନି) ମେଳ(ଳ)—ଅନ୍ୟରୂପ ] Unlawful assembly; an assembly of five or more persons formed with some unlawful object. [ ଦ୍ର—ମନ୍ଦ ବା ବେଆଇନ୍ ଉଦ୍ଦେଶ୍ୟରେ ବା ଶାନ୍ତିଭଙ୍ଗ କରିବା ବା ମାରପିଟ ବା ଅପରାଧ କରିବା କାରଣ ୫ ବା ୫ରୁ ଅଧିକ ବ୍ୟକ୍ତି ଏକଜ ହେଲେ ତାହା ବେଆଇନ୍ ଜନତା ହୁଏ । ଉଦ୍ଦେଶ୍ୟର ଓ ଅପରାଧର ପରିମାଣ ଓ ପ୍ରକୃତି ଅନୁସାରେ ଏଥିପାଇଁ ଭାରତୀୟ ଦଣ୍ଡବିଧି ଆଇନରେ ଭିନ୍ନ ଭିନ୍ନ ଦଣ୍ଡର ବ୍ୟବସ୍ଥା ଅଛି । ବେଆଇନ୍ ଜନତାକୁ ଭାଙ୍ଗିଦେଇ ଘଉଡ଼ିବାପାଇଁ ମାଜିଷ୍ଟ୍ରେଟଙ୍କର ଓ ପୁଲିସର କ୍ଷମତା ଅଛି । ଜନତାକାରୀମାନେ ମାଜିଷ୍ଟ୍ରେଟଙ୍କ ଆଦେଶ ନ ମାନିଲେ ମାଜିଷ୍ଟ୍ରେଟ୍ ବା ପୁଲିସ୍ ବଳପ୍ରୟୋଗପୂର୍ବକ ଏମାନଙ୍କୁ ଘଉଡ଼ିବାର ବିଧି ମଧ୍ୟ ଅଛି ।]

ବେଆଇନ୍(ନି) **ତୋଶରଫ**—ବୈଦେ. (ଫା) ବ (କଚେରୀ)—ଯେଉଁ
Be-āin(ni) tosharaph ଧନାପହରଣ ରାଜକୀୟ ବିଧିଦ୍ୱାରା ଅନନୁ-
ବେଆଇନ୍ ତୌଛରଫ ମୋଦିତ ବା ନିଷିଦ୍ଧ ଓ ଦୋଷାବହ—Mis-
**बेआईन तोसरफ** appropriation of property.

ବେ **ଆଏ (ୟ)ତ(ତ୍ତ)**— ଦେ. ବଣ (ଫା. ବେ+ସଂ. ଆୟତ୍ତ)—୧ ।
Be-āe(ya)ta (tta) ଅନାୟତ୍ତ; ଶକ୍ତିବହିର୍ଭୂତ—
ବେଆୟତ 1. Beyond one's control. ୨ । ଅବଶ—
**बेआयत** 2. Powerless. ୩ । ନିଃସହାୟ—3. Helpless.

ବେଆ (ଏ,ହା,ହେ)ଡ଼ା —ବୈଦେ. ବଣ—(ଫା. ବେ+ଅଡ଼ା =
Bea(e, hā, he) ṛdā ଆକୃତି—ଗଠନ, ଭୁଲ, ସ. ବିକଟ; ବିକୃତ
ବେଆଡ଼ା ପ୍ରା-ବିଅଡ଼ୁ)—୧ । କୁତ୍ସିତ; ବିକୃତ; ବେଢପ—
**बेहूदा** 1. Ugly; disordered. ୨ । ବେ-ନିୟମ—2.
(ବିଆଡ଼ା—ଅନ୍ୟରୂପ) Against rules. ୩ । ବେଆଇନ୍—
3. Illegal. ୪ । ଅବାଧ୍ୟ—4. Insubordinate.
୫ । ମନ୍ଦ; ଦୁଷ୍ଟ—5. Wicked; wanton. ୬ । ଅସୁନ୍ଦର—6. Ungraceful. ୭ । ସୌଷ୍ଠବରହିତ—7. Unsymmetrical.

ବେଆ(ଏ)ଣ୍ଟା—ଦେ. ବ—ଏକ ପ୍ରକାର ବନ୍ୟ ଗଛ—A kind of
Beā(e) ṇṭā wild tree. [ ଉ—ଗମ୍ଭାରୀ ବେଲ ଜାମୁ ବେଆଣ୍ଟା ଖଦିର । କୃଷ୍ଣସିଂହ. ମହାଭାରତ-ବନ ।]

ବେ ଆଦବ୍—ବୈଦେ. ଵଣ—(ଫା. ବେ+ଅଦବ୍=ଶିଷ୍ଟାଚାର)—୧ । ଅଶିଷ୍ଟ; ଶିଷ୍ଟାଚାର ବହିର୍ଭୂତ; ଅଭଦ୍ର—1. Uncivil; impolite. ୨ । ଧୃଷ୍ଟ—2. Insolent. ୩ । ଦୁରନ୍ତ; ଦୁଷ୍ଟ—3. Wicked; wanton. ୪ । ଅବାଧ୍ୟ—4. Uncontrollable; insubordinate.
Be-ādab
বেআদব
बेअदब

ବେ ଆଦବ—ବୈଦେ. ବ—(ଫା)—୧ । ଅଶିଷ୍ଟତା; ଅଭଦ୍ରତା—1. Rudeness; incivility. ୨ । ଧୃଷ୍ଟତା—2. Importunity; insolence. ୩ । ଦୁରନ୍ତପଣ—3. Wickedness. ଦେ. ଵଣ—ବେ-ଅଦବ୍ (ଦେଖ) Beādab (See)
Be-ādabi
বেআদবী
बेअदबी

ବେ ଆଦବ ମାଫ୍(ଫି) କରିବା—ଦେ କି. (ଫା ବେଅଦବୀ+ମୁଆଫ୍) କୌଣସି ବ୍ୟକ୍ତିର ଅଶିଷ୍ଟତା ବା ଧୃଷ୍ଟତାକୁ ମାର୍ଜନା କରିବା—To excuse one's rudeness or plain-speaking.
Be-ādabi māph(phi) karibā
বেআদবি মাফ করা
बेअदबि मुआफ करना

ବେ-ଆଦର—ଦେ. ବ—(ଫା. ବେ+ସଂ. ଆଦର)—ଉପେକ୍ଷା; ଅନାଦର—Slight; disrespect.
Be-ādara
বেআদর,অনাদর बेआदर

ବେ ଆବ(ବୁ, ବୋ)ର(ରୁ)—ବୈଦେ. ଵଣ—(ଫା. ବେ+ଆବରୁ=ମହତ୍ତ୍ୱ)—୧ । ମର୍ଯ୍ୟାଦାହୀନ; ବେଇଜ୍ଜତ—1. Devoid of honour or respect. ୨ । ନିର୍ଲଜ୍ଜ—2. Shameless; indecent;immodest. ୩ । ଯେ (ଯେଉଁ ସ୍ତ୍ରୀଲୋକ) ପରଦା ବା ଅବରୋଧ ପ୍ରଥା ପାଳନ କରୁ ନାହିଁ—3. (a woman) Not observing the rules of seclusion ୪ । ଖୋଲା; ମେଲା—4. Exposed to the public gaze; open. ଦେ. ବ—(ଫା.-ବେ+ସଂ. ଅବରଣ) ୫ । ଅନାଚ୍ଛାଦିତ—5. Uncovered. ୬ । ଅଲୁକ୍କାୟିତ; ବେପରଦା—6. Having no screen; unconcealed. ବୈଦେ. ବ. (ଫା.)—୧ । ମର୍ଯ୍ୟାଦାହୀନତା; ଇଜ୍ଜତର ଅଭାବ—1. Want or absence of honour or decency. ୨ । ନିର୍ଲଜ୍ଜତା - 2. Shamelessness. ୩ । ସ୍ତ୍ରୀମାନଙ୍କ ପରଦା ପ୍ରଥାର ଅଭାବ; ସ୍ତ୍ରୀମାନଙ୍କର ସର୍ବସାଧାରଣଙ୍କ ସମ୍ମୁଖରେ ଅନାବୃତ ମୁଖ ହୋଇ ବାହାରିବା ଅବସ୍ଥା—3. Non observance of the Purdah system by women. ୪ । ଅନାବୃତ ଅବସ୍ଥା—4 The state of being uncovered. ୫ । ଗୁପ୍ତ ନ ରହିବାର ଅବସ୍ଥା—5. Absence of privacy.
Be-āba (bu, bo)ra (ru)
বেআবরু
बेआबरु

ବେ ଆରାମ୍—ବୈଦେ. ବ—(ଫା ବେ+ଆରାମ୍=ସ୍ୱାସ୍ଥ୍ୟ; ସୁଖ)—୧ । ବେମାରି; ରୋଗ—1. Illness. ୨ । ଦୁଃଖ 2. Misery. ୩ । ଅଶାନ୍ତି; ଅସ୍ୱାଚ୍ଛନ୍ଦ୍ୟ—3. Discomfort. ବୈଦେ. ଵଣ.—(ଫା)—ରୁଗ୍ଣ; ଅସୁସ୍ଥ—Ill; sick.
Be-ārām
বেআরাম, ব্যারাম
बेराम, बिमार

ବେ ଆରିଙ୍ଗ୍—ବୈଦେ. ଅ. (ଇଂ.)—୧ । ମାଗଣା—1. Gratis. ୨ । ପର ବ୍ୟୟରେ କରାହୁତ (କାର୍ଯ୍ୟ)—2. (work) Done at another's expense.
Be-āriṅg
বেয়ারিঙ্গ बेरंग
ବେଆରଂ
ବେରଙ୍ଗ(ଗି) }—ଅନ୍ୟରୂପ
ବେରଂ

ବେଆରିଙ୍ଗ୍ ପୋଷ୍ଟ—ବୈଦେ. ବ (ଇଂ)—୧ । ପତ୍ରପ୍ରେରକ ଚିଠି ଉପରେ ଡାକ ଟିକଟ ନ ମାରି ଯେଉଁ ଚିଠି ଡାକରେ ପଠାନ୍ତି ଓ ଯେଉଁ ଚିଠିର ଡାକମାସୁଲ ପତ୍ର ଗ୍ରାହୀଙ୍କଠାରୁ ଡାକବାଲା ଆଦାୟ କରେ—1. Bearing post; unpaid post. ୨ । (ଲକ୍ଷଣାର୍ଥ) ପରର ଖର୍ଚ୍ଚାରେ ଯେଉଁ କାର୍ଯ୍ୟ କରାହୁତ ହୋଇଯାଏ—2. Any work done at the cost of another person.
Be-āriṅg posht
ବେରଂପୋଷ୍ଟ
ବେରଙ୍ଗପୋଷ୍ଟ }—ଅନ୍ୟରୂପ
বেআরিঙ্গপোষ্ট बेरंपोष्ट

ବେଆରିଙ୍ଗ୍ ମାରିବା—ଦେ. କ୍ରି—କୌଣସି କାର୍ଯ୍ୟ ପରର ବ୍ୟୟରେ ବା ମାଗଣାରେ ସମ୍ପନ୍ନ କରାଇ ନେବା—To have a thing accomplished gratis or at another's expense.
Be-āriṅg māribā
বেয়ারিংমারা
बेआरिं मारना, बेरङ्गमारना

ବେଆଲି—ଦେ. ବ—ବିଆଲି (ଦେଖ)—Biāli (See).
Be-āli

ବେ ଇଆଦ୍(ଦି)—ବୈଦେ. ବ (କଚରିଆ) (ଫା. ବେୟାଦ୍)—ବିସ୍ମରଣ—Forgetting. ବୈଦେ. ଵଣ.—ବିସ୍ମୃତ—Forgotten.
Be-iād(di)
বিস্মরণ, बेयाद [ବେୟାଦ୍ (ଦ)—ଅନ୍ୟରୂପ]

ବେଇଗି—ଦେ. କ୍ରି. ଵଣ. (ସଂ ବେଗ; ବେଗିତଃ)—ଚଞ୍ଚଳ; ଶୀଘ୍ର—Soon; sharp; swiftly; quickly.
Beigi
জলদী, শিগ্গীর, बेगी, जल्दी

ବେ ଇଜ(ଜ୍ଜ, ଜି, ଜ୍ଜି)ତ୍ (ତି)—ବୈଦେ. ଵଣ. (ଫା. ବେ+ଇଜ୍ଜତ୍=ସମ୍ଭ୍ରମ)—୧ । ସମ୍ଭ୍ରମଶୂନ୍ୟ—[ବେଜ(ଜ୍ଜ)ତ(ତି)—ଅନ୍ୟରୂପ] 1. Immodest. ୨ । ଅଶ୍ଳୀଳ—2. Indecent. ୩ । ଅବମାନିତ; ଅପଦସ୍ଥ; ଅସମ୍ମାନିତ; ଲାଞ୍ଛିତ; ମହତହରା—3. Dishonoured; insulted; disgraced; shorn of respectability. ୪ । ଅସମ୍ମାନଜନକ—4. Disrespectful; dishonourable; scandalous; ବୈଦେ. ବ—୧ । ଲାଞ୍ଛନା; ଅପମାନ—1. Insult; disgrace; ୨ । ସ୍ତ୍ରୀଲୋକଙ୍କ ସମ୍ଭ୍ରମ ନାଶ; ସ୍ତ୍ରୀଲୋକଙ୍କ ମହତ ମାରିବା—2. Violation of the modesty of females; outrage of female modesty;
Be-ija (jja, ji, jji) t (ti)
বেইজ্জিৎ बेइज्जत्
বেইজ্জতী; बेइज्जती

ବେଇଜ(ଜି)ତ୍(ତି) କରିବା—ଦେ. କ୍ରି—୧ । ଅବମାନିତ କରିବା—1. To insult; to disgrace. ୨ । ସ୍ତ୍ରୀଲୋକର ଇଜ୍ଜତ୍ ନାଶ କରିବା—2. To violate or outrage the modesty of a female. ୩ । ଅଶ୍ଳୀଳ ଭାଷାରେ ଗାଳିଦେବା—3. To abuse in filthy language.
Be ija(ji)t(ti) karibā
বেইজতকরা बेइजतकरना

**ବେଇଜ(ଜି, ଜ୍ଜ, ଜ୍ଜି)ତିଆ**—ବୈଦେ. ବିଣ ( ଫା. ବେଇଜ୍ଜତ୍ )—
Be ija(ji, jja, jji)tiā ୧ । ଅସମ୍ମାନିତ; ଅବମାନିତ; ଅପଦସ୍ଥ;
বেইজ্জত লାଞ୍ଛିତ—1. Dishonoured; disgraced;
**बेइज्जत** insulted. ୨ । ଯେ ଅନ୍ୟକୁ ଅବମାନିତ ବା ଲାଞ୍ଛିତ କରେ—2. Insulting or disgracing others. ୩ । ସ୍ତ୍ରୀର ସମ୍ଭ୍ରମନାଶକାରୀ—3. Outraging female modesty. ୪ । ଅସମ୍ମାନଜନକ—4. Disrespectful; dishonourable.

**ବେଇନ୍(ନି)ଶାପ୍(ଫ୍)**—ବୈଦେ. ବି. (ଫା. ବେ+ ଇନ୍‌ସାଫ୍=ନ୍ୟାୟ-
Be in(ni)śāp(ph) ବିଚାର )—ଅନ୍ୟାୟ; ଅବିଚାର—
বেনিসাপ Injustice; inequity. ବୈଦେ. ବିଣ—ଅନ୍ୟାୟ;
**बेइनसाफ** ନ୍ୟାୟ ବିରୁଦ୍ଧ—Unrighteous; inequitable.
(ବେନିସାପ—ଅନ୍ୟରୂପ)

**ବେଇ(ଇଁ)ବା**—ଦେ. କ୍ରି—( ସଂ. ବୀ ଧାତୁ=ଗର୍ଭଗ୍ରହଣ )—ଜନ୍ମ
Bei(iñ)bā କରିବା; ସନ୍ତାନ ପ୍ରସବ କରିବା—To bring
বিআন forth offspring; to be delivered of a
**बियाना, बयाना** child.
ବିଆଇବା, ବିଏଇବା
ବେଇ ପକା(କେ)ଇବା, } —ଅନ୍ୟରୂପ
ବ୍ୟା(ବେ୍ୟା)ଇବା

**ବେ ଇମାନ୍**—ବୈଦେ. ବିଣ (ଫା. ବେ+ ଇମାନ୍=ଧର୍ମାଧର୍ମ ବିଶ୍ୱାସ)—
Be imān ୧ । ଅଧାର୍ମିକ—1. Irreligious; impious.
বেইমান্ ୨ । ଅବିବେକ—2. Unconscientious. ୩ ।
**बेइमान** ଅକୃତଜ୍ଞ; କୃତଘ୍ନ—3. Ungrateful. ୪ । ବିଶ୍ୱାସ-
(ବେମାନ୍—ଅନ୍ୟରୂପ) ଘାତକ—4. Perfidious; faithless.

**ବେ ଇମାନି**—ବୈଦେ. ବି. ( ଫା )—୧ । ବିଶ୍ୱାସଘାତକତା—
Beimāni 1. Perfidy. ୨ । କୃତଘ୍ନତା—2. Ingratitude.
বেইমানী ବୈଦେ. ବିଣ. ( ଫା )—ବେଇମାନ ( ଦେଖ )—
**बेइमानि** Beimān (See).
( ବେମାନି—ଅନ୍ୟରୂପ )

**ବେ ଇଲାକା**—ବୈଦେ.ବି (ଫା)—୧ । ଯାହା ନିଜର ଇଲାକା ନୁହେଁ—
Be ilākā 1. That which is not one's jurisdiction.
বেইলাকা ୨ । ନିଜର ସମ୍ପର୍କ ବହିର୍ଭୂତ ସ୍ଥାନ ବା ବିଷୟ—
**बेइलाका** 2. A place or matter which is beyond one's juirsdiction. ୩ । ଯାହା ନିଜର ଭୂସମ୍ପତ୍ତି ନୁହେଁ—3 That which is not one's landed property. ୪ । ନିଜର ସମ୍ପର୍କର ଅଭାବ—4. Want of one's connection.

**ବେ ଇଲାକାଦାର୍**—ବୈଦେ. ବିଣ. ( ଫା. ବେ+ଇଲାକା=ସମ୍ପର୍କ+
Be ilākādār ଦାର୍; ନିଜର ଭାଷା )—ସମ୍ପର୍କରହିତ;
বেইলাকাদার নିଃସ୍ୱତ୍ୱବାନ୍—Divested of all connec-
**बेइलाकादार** tions; divested of all property-right. (ଯଥା—ଆଜିଠାରୁ ଆମ୍ଭେ ବାପୁ ଏ ବିଷୟ ସମ୍ପତ୍ତିରେ ନିଃସ୍ୱତ୍ୱବାନ୍ ଓ ବେଇଲାକାଦାର୍ ହେଲୁ । କବାଲାପତ୍ର) ।

**ବେଇ(ହି)**—ଦେ. ବିଣ. ସ୍ତ୍ରୀ ( ସଂ. ବିବାହିତା )—ବିବାହିତା (ସ୍ତ୍ରୀ)—
Bei(hi) Married (wife).
বিবাহিতা **बयाही** (ଉଚ୍ଚାରଣ—ଅପଭ୍ରଂଶ)

**ବେଇ(ହି) ମାଇପ**—ଦେ. ବି. ସ୍ତ୍ରୀ—୧ । ଆପଣାର ବିବାହିତା ପତ୍ନୀ
Bei(hi) māipa (ରକ୍ଷିତା ସ୍ତ୍ରୀ ନୁହେଁ)—1. One's married
বিবাহিতা স্ত্রী wife (not a concubine). ୨ । ଏକାଧିକ
**बयाही स्त्री** ଭାର୍ଯ୍ୟା ମଧ୍ୟରୁ ସନ୍ତାନପ୍ରସବକାରିଣୀ ଭାର୍ଯ୍ୟା—
[ବେଇ(ହି)ଭାରିଯା—ଅନ୍ୟରୂପ] 2. The wife who is the mother of children ( as distinguished from one's barren wife or wives).

**ବେଉ(ଓ)ଆ**—ବୈଦେ. ବି (ସ୍ତ୍ରୀ)—(ନିଜର ଅର୍ଥ) (ଫା. ବେୱା; ତୁଳ.
Beu(o)ā ସଂ. ବିଧବା)—୧ । ବିଧବା—1. Widow. ୨ ।
বেওয়া ଅପୁତ୍ରା ସ୍ତ୍ରୀ—2. A childless widow. ୩ । ବିଧବା
**बेवा** ଶୂଦ୍ରାମାନଙ୍କର ଉପାଧି—3. Title added to the
(ବେୱା—ଅନ୍ୟରୂପ) names of Śūdra widows. [ ଦ୍ର—
ଆଜିକାଲି କାଳର ସ୍ରୋତରେ ବ୍ରାହ୍ମଣ ଓ ଶୂଦ୍ରାଦିଙ୍କ ସ୍ତ୍ରୀମାନଙ୍କ ଉପାଧିରେ ନାନା ପରିବର୍ତ୍ତନ ଘଟୁଅଛି ଓ ଶୂଦ୍ରାମାନେ ବ୍ରାହ୍ମଣୀଙ୍କ ଉପାଧି ଆପଣା ନାମରେ ଯୋଗ କରୁଥିବାର ଦେଖାଯାଏ; କିନ୍ତୁ ଏଥିପୂର୍ବରୁ ସଧବା ବ୍ରାହ୍ମଣୀମାନଙ୍କୁ ଶ୍ରୀମତୀ ବା ଶ୍ରୀମତ୍ୟା ଅମୁକ ଦେବୀ, ବିଧବା ବ୍ରାହ୍ମଣୀମାନଙ୍କୁ ଶ୍ରୀମତ୍ୟା ଅମୁକ ଦେବ୍ୟା ବା ଦ୍ୱିବ୍ୟା; ରାଣୀମାନଙ୍କୁ ଶ୍ରୀମତୀ ଅମୁକ ମହାଦେଈ ବା ଦେଈ, ସଧବା ଓ ବିଧବା କରଣ ସ୍ତ୍ରୀମାନଙ୍କୁ ଶ୍ରୀମତୀ ବା ଶ୍ରୀମତ୍ୟା ଅମୁକ ଦେଈ; ସଧବା ଶୂଦ୍ରସ୍ତ୍ରୀମାନଙ୍କୁ ଶ୍ରୀମତୀ ଅମୁକ ଦାସୀ ଓ ବିଧବାଶୂଦ୍ରାଣୀମାନଙ୍କୁ ଅମୁକ ବେୱା ବୋଲି ଦଲିଲ ଆଦିରେ ଲେଖାଯାଉଥିଲା; ଏବେ ବ୍ରାହ୍ମଣେତର ଜାତୀୟା ସ୍ତ୍ରୀମାନଙ୍କଠାରୁ ଦେଈ, ଦାସୀ, ବେୱା ଆଦି ଉଠିଯାଇ କି ବିଧବା, କି ସଧବା, କି ଉଚ୍ଚ, କି ନୀଚ, କି ଅବର ସମସ୍ତେ ହେଲେଣି ଶ୍ରୀମତୀ ଅମୁକ ଦେବୀ ।]

**ବେ ଉ(ଓ,ଆକଫ୍(ବ୍)**—ବୈଦେ. ବିଣ. ( ନିଜର ଅର୍ଥ ) (ଫା. ବେ+
Be u(o)ākaph(b) ୱାକିଫ୍=ଅବଗତ)—ଅଜ୍ଞ; ଯେ କୌଣସି
বেওয়াকফ বିଷୟ ଅବଗତ ହୋଇ ନ ଥାଏ—Unacquainted;
**बेवाकिफ** not knowing; uninformed.
ବେୱାକ(କି)ଫ(ବ୍)
ବେଓୟାକ(କି)ଫଦାର } —ଅନ୍ୟରୂପ
ବେୱାକଫ୍(ବ)ଦା(କା)ର

**ବେ ଉଆର(ରି)ସ୍(ସି)**—ବୈଦେ. ବିଣ. ( ନିଜର ଅର୍ଥ )—( ଫା.
Be uāra(ri)s(si) ବେୱାରିସ୍ )—୧ । ଯାହାର କେହି
বেওয়ারিস উତ୍ତରାଧିକାରୀ ନ ଥାଏ; ଲାଉଆରସ୍ ( ବ୍ୟକ୍ତି )—
**बेवारिस; लावारिस** 1. Heirless (person) ୨ । ନିର୍ବଂଶ-
[ବେୱାର(ରି)ସ୍(ସି)—ଅନ୍ୟରୂପ] 2. Issueless. ୩ । ଯେଉଁ ସମ୍ପତ୍ତିରେ କେହି ଦାବିଦାର ନ ଥାଏ—3. (property) Having no claimant; unclaimed. ୪ । ଅସ୍ୱାମିକ (ସମ୍ପତ୍ତି); ଅଧିକାରୀ ବିହୀନ—4. Ownerless.

ବେଉଚ—ଗ୍ରାଦେ (ବସ୍ତୁର). ବ.—(ସଂ ବଉଛିଁକା)—ବଇଞ୍ଚ (ଦେଖ)-
Be-uchi Bi-iñchi (see).

ବେଉ(ହୁ)ଡ଼ା—ଦେ. ବ—ଶାରଦ ରୁଆଧାନ ଗଛକୁ ହଳ ବୁଲାଇ
Be-u(hu)rdā କାଦୁଅ କରିବା ପ୍ରକ୍ରିୟା; ବେଉଷଣ—The act
କାଡ଼ାନ **बिहियाना** of puddling Sārada or aut-
[ବଉ(ହୁ)ଡ଼ା—ଅନ୍ୟରୂପ] umnal paddy.

ବେଉଡ଼ା ବେଉଷଣ—ଦେ. ବ (ଏକାର୍ଥକ ସହଚର)—ବେଉଡ଼ା
Beurdā beushana (ଦେଖ)—Beurdā (see).
(ବେଉଡ଼ା ବେଉଢ଼—ଅନ୍ୟରୂପ)

ବେଉଡ଼ି—ଦେ. ବ (ଧ୍ୱନ୍ୟନୁକାରୀ ଶବ୍ଦ; ତୁଳନା କର ଏଉଡ଼ି)—ତୃପ୍ତି
Beurdi ଭୋଜନ ପରେ ଉଚ୍ଚାରିତ ଢାକୁଟି—Belching
ढेकुर **डकार** after a full meal.

ବେଉ(ହୁ)ଡ଼ି(ଷି)ବା—ଦେ. କ୍ରି—ବେଉଷଣ କରିବା; ବୁଣାଯାଇଥିବା
Beu(hu)rdi(shi)ba ଶାରଦ ଧାନଗଛ (ବୁଣା ଧାନଗଛ)
(ବହୁଡ଼ିବା—ଅନ୍ୟରୂପ) ଗୃଷଣ୍ଡେ ଲେଖାଏଁ ବଢ଼ିଗଲେ କିଆରିରେ
କାଡ଼ାନକରନା ପାଣି ପୂରାଇ ସେହି କିଆରିକୁ ଉତ୍ତମରୂପେ ହଳରେ
**बिहियाना** ଚଷି ଧାନଗଛମାନଙ୍କୁ କିଆରି ଉମାନ୍ ସମାନ ଭାବରେ ଖେଳାଇ
ତହିଁ ଉପରେ ମଇ ଦେବା ପ୍ରକ୍ରିୟା—The agricul-
tural operation of puddling and equally
distributing the paddy plants when they
are about 10 inches high. [ ଦ୍ର—ଶାରଦ
ରୁଆ ଧାନଗଛମାନ ପ୍ରାୟ ଏକ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହେଲେ
କିଆରିରେ ପାଣି ପୂରାଇ ଖୁବ କାଦୁଅ କରି ହଳ ବୁଲାଇବାକୁ
ହୁଏ । ଏପରି ହେଲେ ଧାନଗଛମାନ ଓଲଟ ପାଲଟ ହୋଇ-
ଯାଏ ଓ ତା ଉପରେ ମଇ ଚଲାଇବାକୁ ହୁଏ । ଏହାକୁ
ବେଉଡ଼ା ବା ବେଉଷଣ ବୋଲାଯାଏ । ମଇ ଚଲାଇବା
ପରେ ଯେବେ ଦେଖାଯାଏ ଯେ କିଆରିରେ କେଉଁ କେଉଁ
ସ୍ଥାନରେ ଧାନଗଛ ଗୁଡ଼ିଏ ଘନ ସନ୍ନିବିଷ୍ଟ ହୋଇଅଛି,
ଓ କେଉଁ କେଉଁଠାରେ ଧାନଗଛ ଆଦୌ ନାହିଁ, ତେବେ
ହାତଦ୍ୱାରା ଘନ ସନ୍ନିବିଷ୍ଟ ଧାନଗଛ ମଧ୍ୟରୁ ଗୋଟିକେତେ
ଗଛ ଉଠାଇ ନେଇ ଧାନଗଛ ନ ଥିବା ଯାଗାରେ ପୋତି
ଦେବାକୁ ହୁଏ । ଏମିତି ହେଲେ କିଆରିର ସବୁ ଅଂଶରେ
ଧାନଗଛମାନ ସମାନରୂପେ ଖେଳାଇ ହୋଇ ରହେ;
ଏହାକୁ ଖେଳୁଆ ବୋଲାଯାଏ । ବେଉଡ଼ା ବେଉଷଣ
ହେବାର କେତେଦିନ ପରେ ଦେଖାଯାଏ ଯେ ଧାନଗଛମାନ
ଖିବ୍ ତାଜା ହୁଏ ଓ ମୂଳମାନଙ୍କରୁ ଲୁଆଁମାନ ବାହାରେ ।]

ବେଉଡ଼ୁଣୀ ଛତୁ—ଦେ. ବ—ନଡ଼ଛତୁ (ଦେଖ)—
Beurduni chhatu Nārda Chhatu (See).
बड़ँाटा छातु **गोवरछत्ता**

ବେଉନ୍ତ(ତ)—ଦେ. ବ. (ସ ବଣ୍ଟନ; ସ ବିଭକ୍ତ)—୧ । ବଣ୍ଟନ—
Beunta(ta) 1. Distribution. ୨ । ବନ୍ଦୋବସ୍ତ; କାର୍ଯ୍ୟର
बाँट **ब्योंत, बांस** ବ୍ୟବସ୍ଥା—2. Arrangement. ୩ ।
ବିଭାଗ କରଣ—3. Division. ୪ । ବହୁଲୋକ
ମଧ୍ୟରେ କାର୍ଯ୍ୟକ୍ରମର ବିଭାଗ ବା ବଣ୍ଟନ—4. Divi-
sion of labour; distribution of work or
labour amongst many workers.

ବେଉନ୍ତି(ତି)ବା—ଦେ. କ୍ରି. (ସ ବଣ୍ଟଧାତୁ)—୧ । ବଣ୍ଟନ କରିବା—
Beunti(ti)bā 1. To distribute. ୨ । ବନ୍ଦୋବସ୍ତ କରିବା
बाँटना **ब्योंतना** —2. To arrange. ୩ । ବହୁଲୋକଙ୍କୁ
କାର୍ଯ୍ୟ ବାଣ୍ଟିବା—3. To distribute work to
many people. ୪ । କାର୍ଯ୍ୟକ୍ରମ ବହୁଲୋକଙ୍କ
ମଧ୍ୟରେ ବାଣ୍ଟିଦେବା—4. To make a division
of labour amongst many workers.

ବେ ଉ(ଓ)ପ୍ରୋଧ—ଗ୍ରା· ବ—(ଫା. ବେ+ସ. ଅନୁରୋଧ)—
Be-u(o)prodha ବେମୋହବତ (ଦେଖ)—Bemohabata
[ବେଉ(ଓ)ପ୍ରୋଧିଆ, ବେଉ(ଓ)ପ୍ରୋଧୀ—ବିଣ.] (See).

ବେଉର—ଦେ. ବ.—ନିମନ୍ତ୍ରଣ—
Beura Invitation.

ବେଉରା—ଦେ. ବ.—(ସ ବିବରଣ)—୧ । ବାର୍ତ୍ତା; ସମ୍ବାଦ—
Beurā 1. News; report. ୨ । ବିବରଣ—2 Des-
बेओरा, खबर cription; narration. ୩ । ପତ୍ରାଦିର
**ब्योरा** ଉତ୍ତର—3. Reply to a letter. ୪ । (ସ.
ବ୍ୟବହାରୀ) ଶୂଦ୍ରମାନଙ୍କର ବଂଶୋପାଧି ବିଶେଷ—4. A
family-title amongst the Sūdras. ୫ । ଦୁଧ
ମାଠିଆ—5. A pail or pitcher for milk.
ଦେ. ବିଣ—୧ । ଫେରନ୍ତି; ଲେଉଟ (ସମ୍ବାଦ)—
1. In return; by return (news).

ବେଉରା ଦେବା—ଦେ. କ୍ରି—୧ । ସମ୍ବାଦ ପଠାଇବା—1. To send
Beurā debā news; to report. ୨ । ପତ୍ରର ଉତ୍ତର
खबर देओना ପଠାଇବା—2. To send a reply to a
**बेओरा भेजना** [ବେଉରା ପଠା(ଠେ)ଇବା—ଅନ୍ୟରୂପ] letter.

ବେଉ(ହୁ)ରି—ଦେ. ବ—ଦୁଧର ଛୋଟ ମାଠିଆ—A small pitcher
Beu(hu)ri छोटि भाँड़ **बेउरी** for milk.

ବେଉଷଣ—ଦେ. ବ (ସ. ବିକର୍ଷଣ)—ବେଉଡ଼ା (ଦେଖ)
Beushana Beurdā (See)

ବେଉଷିବା—ଦେ. କ୍ରି (ସ. ବିକର୍ଷଣ)—୧ । ବେଉଷଣ କରିବା—
Beushibā 1. To puddle a paddy field. ୨ । ବ୍ୟବ-
କାଡ଼ାନ करना ସାୟରେ ନିଯୁକ୍ତ ହେବା—2. To be engaged
**बिहियाना** in a trade or business. ଗ୍ରାଦେ.(ବାଲେଶ୍ୱର)
କ୍ରି—ବୁଝାବୁଝି କରିଦେବା; ଆଶ୍ୱାସନା କରିବା—To
comfort; to soothe. (ଯଥା—ପିଲା କାନ୍ଦୁଛି, ତାକୁ
ଟିକଏ ବେଉଷି ଦେ ।)

ବେଉସା—ଦେ. ବ (ସ. ବ୍ୟବସାୟ)—୧ । ବ୍ୟବସାୟ; ବେପାର—
Beusā 1. Trade. ୨ । ଜୀବିକା—2. Occupation;
बेवसा calling; business. ୩ । ତେଲିମାନେ ତେଲ
**बेउसा** ପେଡ଼ିବା ପାଇଁ ଯେଉଁ ତୈଳବୀଜ ଆଣନ୍ତି—3. Oil seeds
brought by oilmen for manufacturing
oil. ୪ । ଫଳ; ଫସଲ; ଶସ୍ୟ—4. Crop. (ଦ୍ର—
ଦ୍ରୋଣ ବାଡ଼ି ଭାଙ୍ଗିଣ ଗଲେ ତ ସାତ୍ୟକ, ମୋର ସୁଦ

ବେଉଷା ରହି ପାରବ ନ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।) ୫ । ବେଉଡ଼ା ( ଦେଖ )—5. Beurḍā ( See )

ବେ ଏକରାର(ଲ) —ବୈଦେ. ବ ( କଚରଥ ) ( ଫା. ବେ + ଇକ୍‌ରାର =ସ୍ୱୀକାର; ସର୍ତ୍ତ )—୧ । ଅସ୍ୱୀକାର— Be-ekarār(l) 1. Refusal; denial. ୨ । ସର୍ତ୍ତହୀନତା— বেএকরার 2. Want of conditions. ୩ । ଅଭିଯୁକ୍ତ बेइकरार ବ୍ୟକ୍ତିର ଅପରାଧର ଅସ୍ୱୀକାର—3 Denial of guilt by the accused.

ବେ ଏକରାରି—ବୈଦେ. ବଣ (କଚରଥ) (ଫା)—ଅସ୍ୱୀକାର କରୁଥିବା— Be-ekarāri বেএকরারি बेइकरारी Denying.

ବେଏକୁ(ଖୁ)—ବୈଦେ. ବଣ ( ଫା. ବେଓକୁଫ୍ )—ବେକୁଫ୍ (ଦେଖ) Be-eku(khu) বেকুব बेवकूफ Bekup ( See ) ( ବେଏକୁବ୍—ଅନ୍ୟରୂପ ) ( ବେଏକୁବ—ବ )

ବେ ଓ(ବ, ୱ)କ(ଖ)ତ—ବୈଦେ. ବ (ଫା. ବେ + ୱଖ୍‌ତ୍=ସମୟ)— Be-o(ba, wa)ka(kha)t ୧ । ଅସମୟ; ମନ୍ଦ ସମୟ—1. Bad অসময় बेवखत times. ୨ । ଅନୁପଯୁକ୍ତ ସମୟ—2. Improper time; unsuitable time. ( ବେଓ[ବ, ୱ]କ୍ତ—ଅନ୍ୟରୂପ ) ୩ । ନିର୍ଦ୍ଧାରିତ ସୀମା ଗଡ଼ିଯିବା ସମୟ— 3 Time beyond the fixed time-limit. ୪ । ଅଶୁଭ ସମୟ—4. Unpropitious time.

ବେ ଓଜନ—ବୈଦେ. ବଣ (ଫା. ବେ + ୱଜନ୍=ପରିମାଣ; ଭାରୀ)— Be-ojana ୧ । ବେ ହିସାବ; ବେଅଦାଜ—1. Immoderate. বেওজন बेवजन ୨ । ଯାହା ଓଜନ କରାଯାଇ ନ ଥାଏ— 2. Not weighed; unbalanced. ବେଓଜନ ବେଓଜନିଆ } ଅନ୍ୟରୂପ ୩ । କ୍ଷମତା ବହିର୍ଭୂତ— 3. Exceeding one's power. ୪ । ସୀମା ବହିର୍ଭୂତ—4. Exceeding the proper limit. ୫ । ବିଶେଷ ଭାରି—5. Vsry heavy. ୬ । ଅତ୍ୟଧିକ—6. Excessive. ୭ । ଯାହାର ଆପେକ୍ଷିକ ପରିମାଣର ଜ୍ଞାନ ନାହିଁ— 7. Having no sense of proportion.

ବେ ଓଜର(ରି)—ବୈଦେ. (କଚରଥ) (ଫା. ବେ + ଉଜ୍ର=ଆପତ୍ତି)— Be-ojara(ri) ୧ । ଆପତ୍ତିହୀନ—1. Inexcusable; বেওজর without objection or excuse. ୨ । ଯାହା बेउज्र ସମ୍ବନ୍ଧେ ଆପତ୍ତି କରି ନ ଯାଏ—2. Not objected to, ବୈଦେ. କ୍ରି. ବଣ—ବିନା ଆପତ୍ତିରେ— Without objection.

ବେଓରା—ଦେ. ବ—ବେଉରା ୧, ୨, ୩, ( ଦେଖ )—Beurā 1, 2 Beorā 3, ( See ) ଦେ. ବଣ—ବେଉରା ( ଦେଖ )— Beurā ( See )

ବେଁ—ଦେ. ବ (ସଂ. ବ୍ୟାମ; ବ୍ୟାମନ)—୧ । ଦୁଇ ବାହୁକୁ ଦୁଇ ପାର୍ଶ୍ୱରେ Beñ ହାତରେ ଛନ୍ଦ ସଙ୍ଗେ ଏକ ରେଖାରେ ଦୁଇ ପାଖକୁ ବ୍ୟାଁଅ, ବେଁ; বাওঁ ବିସ୍ତୃତ କଲେ ବିସ୍ତାରିତ ଡାହାଣ ହାତର ମଝି ब्याम, पाँज ଅଙ୍ଗୁଠିର ଅଗ୍ରଭାଗରୁ ବାମ ହାତର ମଝି ଅଙ୍ଗୁଠିର ଅଗ୍ରଭାଗ ପର୍ଯ୍ୟନ୍ତ ଦୂରତ୍ୱ ( ପ୍ରାୟ ୪ ହାତ= ୬ ଫୁଟ ); ଏକ ଫାଦମ୍—1. Fathom. ବେଁଅଁ ବେଁବ } ଅନ୍ୟରୂପ [ ଦ୍ର—ଇଂରାଜୀ ଭାଷାରେ 'Fathom' ଶବ୍ଦର ଠିକ୍ ଏହି ଅର୍ଥ । ] ୨ । ହେଁସ ବୁଣିବାରେ ବ୍ୟବହୃତ କାଠର ବା ବାଉଁଶର ଦଣ୍ଡ—2. A wooden rod or bar used as the support in weaving reed-mats. [ ଦ୍ର—ଏହା ଲମ୍ବରେ ଏକ ବେଁ ଥିବାରୁ ଏହି ନାମ । ]

ବେଁ(ବ୍ୟାଁ)କ୍—ଶବିଦେ, ବ ( ଇଂ. ବାଙ୍କ୍ )—ଖଜଣାଖାନା; ଅନ୍ୟ Beñ(byāñ)k ଲୋକଙ୍କର ବା ଉପାର୍ଜନକାରୀମାନଙ୍କର ଟଙ୍କା ব্যেঙ্ক बैंक ଯେଉଁଠାରେ ଗଚ୍ଛିତ ରଖାଯାଏ—A money bank. ( ବେଙ୍କ୍—ଅନ୍ୟରୂପ ) [ଦ୍ର—ଏ ଦେଶରେ ପାଶ୍ଚାତ୍ୟରୀତି ଅନୁକରଣରେ ବେଙ୍କ୍ ( Bank ) ମାନ ପ୍ରତିଷ୍ଠିତ ହେବାରୁ ଏହି ସମ୍ପର୍କରେ ଅନେକଗୁଡ଼ିଏ ବୈଦେଶିକ ଓ ଇଂରାଜୀ ଶବ୍ଦ ଓଡ଼ିଆରେ ପଶିଲାଣି । ଯଥା—କୋ-ଅପେରେଟିଭ୍ ବେଁକ୍, ବେଁକ୍ ବାବୁ, ବେଁକ୍ ସାହେବ, ବେଁକ୍ କମିଶନ୍, କରେଣ୍ଟ ଏକାଉଣ୍ଟ, ଫିକ୍ସଡ୍ ଡିପୋଜିଟ୍, ମରେଟୋରିୟମ୍ । ] ପ୍ରାଦେ. ( ସମ୍ବଲପୁର ) ବ—ବେକ—Neck.

ବେଁ(ବ୍ୟାଁ)କ୍ ଛୁଟି—ବୈଦେ. ବ ( ଇଂ. ବାଙ୍କ୍ + ଫା. ଛୁଟି )— Beñ(byāñ)k chhuti ଯେଉଁ ଦିନମାନଙ୍କରେ ସରକାରଙ୍କ ব্যেঙ্কছুটি ପ୍ରଚାରିତ ବିଜ୍ଞାପନ ଅନୁସାରେ ବେଁକ୍‌ମାନଙ୍କରେ କାରବାର ବନ୍ଦ ରହେ—Bank holiday. बैंकछुट्टी

ବେଁକୁ(କୋ)ଳି—ଦେ. ବ ( ସଂ. ବୃନ୍ତାକୀ; ବୃହତୀ; କୁଲୀ )—୧ । ଲତା Beñku(ko)ḷi ବେଁକୋଳ—1 A thorny creeper; ব্যাকুড়; বাইকুব Solanium Indicum; Solanium Tovi-बरहण्टा rum ( Haines ). [ ଦ୍ର—ଏହା ଏକ (ବେଁଇଁକୁ[କୋ]ଳି—ଅନ୍ୟରୂପ) ପ୍ରକାର କଣ୍ଟକୀ ଲତା । ଏହାର ସଂ. ବର୍ଗନ, ବାଇଗଣ, ଫଳ ଭେଣ୍ଡି ବାଇଗଣ ପରି; ପତ୍ର ବାଇଗମ, ବୃନ୍ତାକୀ, ବୃହତୀ ପିଠିଭିତ୍ତିରେ କଣ୍ଟା ଥାଏ; ଫୁଲ ବାଇଗଣ ଫୁଲ ପରି, କିନ୍ତୁ ମଧ୍ୟ ଓ ପତଳା । ଏହାର ଚେର, ପତ୍ର ଓ ଫଳ କାଶରୋଗର ଔଷଧରେ ବ୍ୟବହୃତ ହୁଏ । ଏହା ଦଶମୂଳର ଗୋଟିଏ ଉପାଦାନ । ବୃହତୀ ଅଳେ ନୋଟ୍ ଦେଖ] ୨ । ପୁରୁଷ ଲୋକଙ୍କୁ ଦିଆଯିବା ନାମ—2. A name given to males. [ ଦ୍ର—କଟକ ଜିଲ୍ଲାର କୋଦଣ୍ଡା ପ୍ରଗଣାରେ ଅରଲେ ଗ୍ରାମ ନିକଟରେ ଗୋଟିଏ ଦଣ୍ଡା ଅଛି । ସେ ଦଣ୍ଡାର ନାମ ବେଁକୋଳ ସାହୁ ଦଣ୍ଡା । ସ୍ଥାନୀୟ ଲୋକେ ବିଶ୍ୱାସ କରନ୍ତି ଯେ ବେଁକୋଳ ସାହୁ ଦଣ୍ଡାରୁ ମୁଠାଏ ମାଟି ଆଣି ତାକୁ ହାତରେ ଧରି ଶପଥ କରି ଯେ ମିଛ କହିବ ତାର ବଂଶଲୋପ ହୋଇଯିବ । କଥିତ ଅଛି ଯେ ବେଁକୋଳ ସାହୁ ନାମକ ଜଣେ ବ୍ୟକ୍ତିର ଏ ଦଣ୍ଡା ଥିଲା । ସେ ନିଃସନ୍ତାନ ହୋଇ ମଲା ବେଳେ କହି ଯାଇଥିଲା ଯେ, ମୁଁ ପ୍ରଭୁଙ୍କୁ ଡାକୁଛି ମୋ ବଂଶରେ କେହି ନ ରହୁ ଓ ମୋ ଦଣ୍ଡାରୁ ମାଟି ମୁଠାଏ ଧରି ଯେ ମିଛ କହିବ ତା ବଂଶରେ କେହି ରହିବ ନାହିଁ । ]

**ବେଁଣ୍ଟା**—ପ୍ରାଦେ. ( ଗଞ୍ଜାମ ) ବି—ଏକପ୍ରକାର ଔଷଧ ଗଛ—
Beñṭā A medicinal plant. [ ଦ୍ର—ଏହି ଗଛର ପତ୍ରର
( ବେଏଁ[ବେଁ]ଣ୍ଟା—ଅନ୍ୟରୂପ ) ରସ ଓ ମୂଳର କ୍ୱାଥ ବାତରୋଗ
ପ୍ରଶମନାର୍ଥ ବ୍ୟବହୃତ ହୁଏ—ଦ୍ରବ୍ୟଗୁଣ. କଳ୍ପଦ୍ରୁମ ।

**ବେଣିର(ରା)**—ଦେ. ବି—୧ । ମନୁଷ୍ୟର ମେରୁଦଣ୍ଡ ତଳେ ଯାଇଥିବା
Beñśira(rā) ଶିରା—1. Spinal chord. ୨ । ବେକ-
[ବେଏଁଶିର(ରା)—ଅନ୍ୟରୂପ] ମୁଣ୍ଡାରେ ଶରୀରର ସମସ୍ତ ଶିରା
বোমশিরা ଏକତ୍ର ହୋଇଥିବା ସ୍ଥାନ—2. The nape of the
**रीढ** neck where the veins of the body meet.
[ଦ୍ର—କଥାରେ କହନ୍ତି ସବୁ ଶିରଯାକ ବେକରେ
ଲେଗ୍ଣ୍ଟ ।]

**ବେଁଶିର(ରା) ହାଡ଼**—ଦେ. ବି—ମେରୁଦଣ୍ଡ—Backbone.
Beñśira(rā) hāṟḍa বোমশিবার হাড় **रीढ**
[ବେଏଁଶିର(ରା) ହାଡ଼—ଅନ୍ୟରୂପ]

**ବେକ**—ଦେ. ବି—(ସଂ. ବକ୍ର; ଏହାଦ୍ୱାରା ମସ୍ତକକୁ ବକ୍ର କରି ଯାଇପାରେ
Beka ବୋଲି)—୧ । ମସ୍ତକ ଓ କାନ୍ଧ ମଧ୍ୟସ୍ଥ ଶରୀରାଂଶ; ଗ୍ରୀବା;
ঘাড় କଣ୍ଠଦେଶ—1. Neck. [ଉ—ବାହୁବା ଓଠଙ୍କର ଭୁଜ-
**कण्ठ गर्दन** ଗଳା ବେକ । କୃଷ୍ଣସିଂହ. ମହାଭାରତ. ସଭା ।]
୨ । ବେକର ପଛ ଭାଗ—2. The back part of
the neck. [ଦ୍ର—ବେକର ଆଗ ପାଖକୁ ତଣ୍ଟି ବା
ତୋଣ୍ଟି ଓ ପଛ ଭାଗକୁ ବେକ ବୋଲାଯାଏ । ଆଗ ପଛ
ସମୁଦାୟ ଅଂଶକୁ ମଧ୍ୟ କେହି କେହି ବେକ କହନ୍ତି ଓ
କଣ୍ଠନାଳୀକୁ ଗଳା ବୋଲି ଯାଏ । ବେକର ସାମନା ପାଖ
ଅଂଶକୁ ମଧ୍ୟ ଗଳା ଓ କଣ୍ଠ ବୋଲାଯାଏ ।]

**ବେକ ଖାଇବା**—ଦେ. କ୍ରି—ବେକ ପର୍ଯ୍ୟନ୍ତ ଉଚ୍ଚ ହେବା—
Beka khāibā To approach one's neck in tallness.
ঘাড়পর্যন্ত উঁচু হওয়া **भरगर्दन होना**

**ବେକଟ**—ସଂ. ବି—୧ । ଭେକଟା ମାଛ—1. Coius Vacti (fish).
Bekaṭa ୨ । ବିଦୂଷକ—2. Jester; a fool. ୩ । ତରୁଣ;
ଯୁବା—3. A youthful person. ୪ । ମଣି-
ବିକ୍ରେତା—4. A dealer in gems. ୫ । ନିନ୍ଦକ—5.
A censorious person; slanderer; scand-
al-monger.

**ବେକ(କେ)ଟା**—ଦେ. ବି—(ସଂ ବେକଟ)—ଭେକଟା ମାଛ—
Beka(ke)ṭā ভেটকী Coius Vacti (fish).

**ବେକଟା(ରା)ଳ**—ଦେ. ବିଣ—(ସଂ ବିକରାଳ)—ବିକରାଳ (ଦେଖ)
Bekaṭā(rā)ḻa (ବେକଟାଳିଆ—ଅନ୍ୟରୂପ) Bikarāḻa
(See)

**ବେକଡ଼ା**—ପ୍ରାଦେ. (ମେଦିନୀପୁର) ବି—ଚଡ଼କ ପୂଜା ଚୈତ୍ର ସଂକ୍ରାନ୍ତି ଦିନ
Bekaṟḍā ସେହି ଉପଲକ୍ଷରେ ଦେବତା ଯାହା ଠାରେ
ଅବତର ଥାନ୍ତି; କାଳଶୀ—A person who is
possessed with Sprit of the Deity on the
Chaṟḍaka Pūjā day.

**ବେକଣ୍ଟ**—ଦେ. ବିଣ—(ଫା. ବେ+ଓଡ଼ିଆ. କଣ୍ଟ)—୧ । ଅମାପ—
Bekaṇṭa 1. Unmeasured. ୨ । ଅମେଳ—2. Not
বেমাপ tallying. ୩ । ଅସଦୃଶ—3. Dissmilar. ୪ ।
ଯାହା ନିର୍ଦ୍ଦିଷ୍ଟ ବା ଅଭିପ୍ରେତ ବସ୍ତୁ ସଙ୍ଗେ ଖାପ ଖାଏ
ନାହିଁ—4. Not fitting.

**ବେକତ**—ଗ୍ରା. ବିଣ—(ସ. ପ୍ରାଚୀନ ପଦ୍ୟ) (ସ. ବ୍ୟକ୍ତ)—ବ୍ୟକ୍ତ(ଦେଖ)
Bekata Byakta (See) [ଉ—ବେକତ ମୃଗବରନେତ୍ରି !
ତୋଠାରେ ହୋଇଲା ପ୍ରୀତି ମୋହର । ଭଞ୍ଜ. ପ୍ରେମ
ସୁଧାନିଧି ।]

**ବେକ ତଳିଆ**—ଦେ. ବିଣ—ବେକ ତଳକୁ ଯାହା ଥାଏ—Occu-
Beka-taḻiā pying a position below one's neck.
[ଉ—ଅନାଇଲା ବେଳେ ହିବେକ ଦିଶଇ କି ବେକତଳିଆ
ଲମ୍ବସା ଖୋସା । କବିସୂର୍ଯ୍ୟ ସଙ୍ଗୀତ ।]

**ବେକ(କେ)ତି**—ଗ୍ରା. ବି—(ସଂ. ବ୍ୟକ୍ତି)—ବ୍ୟକ୍ତି; ଲୋକ—
Beka(ke)ti Person.

**ବେ·କବୁଲ୍**—ବୈଦେ. ବିଣ (କଚରିଆ) (ଫା. ବେ+କବୁଲ୍=ସ୍ୱୀକାର)
Be kabul ୧ । ଅସ୍ୱୀକୃତ—1. Denied. ୨ । ଅସ୍ୱୀକାରକାରୀ
বেকবুল 2 Denying ଦେ. ବି—ଅସ୍ୱୀକାର—Denal;
**बेकबुल** disagreement.

**ବେକ ମୁଣ୍ଡା**—ଦେ ବି—ବେକର ପୃଷ୍ଠଭାଗ—
Beka muṇḍā The nape of the neck.
গর্দান **गर्दन** [ବେକଖଣ୍ଡା(ଣ୍ଡୀ)—ଅନ୍ୟରୂପ]

**ବେ-କରାମତ (ତି)**—ବୈଦେ. ବିଣ—(ଫା. ବେ+କରାମତ୍=କ୍ଷମତା)—
Be-karāmat(ti) ଅକ୍ଷମ; କ୍ଷମତାହୀନ—Powerless;
অক্ষম **बेकरामत** impotent. ବି—ଅକ୍ଷମତା—Power-
lessness; impotence.

**ବେ·କରା(ରି)**—ବୈଦେ. ବିଣ - (କଚରିଆ) (ଫା. ବେ+କରାର୍=ଚୁକ୍ତି)
Bekarār(ri ୧ । ଚୁକ୍ତିବିହୀନ—1. Without agreement.
বেকরার **बेकरार** ୨ । ଚୁକ୍ତିଦ୍ୱାରା ସ୍ଥିରୀକୃତ ହୋଇ ନ ଥିବା—
2 Not settled by means of mutual agreement.

**ବେକରେ କଠା ପକା (କେ) ଇବା**—ଦେ. କ୍ରି—୧ । ବେକ ଚିପି ମାରି
Bekare kathā pakā(ke)ibā ଦେବା—1. To kill a
গলা টীপা person by pressing his neck with the
(ବେକରେ କାଠା ପକ୍ଷିବା—ବିଶେଷ୍ୟରୂପ) two hands as with
a vice ୨ । (ଲକ୍ଷଣାର୍ଥ କୌଣସି ବ୍ୟକ୍ତିକୁ ଖୁବ୍ ବାଧ୍ୟ
ବା ଜବରଦସ୍ତି କରି ତାଦ୍ୱାରା କୌଣସି କାର୍ଯ୍ୟ କରାଇ
[ବେକରେ କଠା ବସା(ସେ)ଇବା—ଅନ୍ୟରୂପ] ନେବା—
2. To force or coerce a person to do a work.

**ବେକରେ ବନ୍ଧା**—ଦେ. ବିଣ—ଅମୁକ ଉପରେ ନିର୍ଭର କରୁଥିବା (ବ୍ୟକ୍ତି);
Bekare bandhā ଆଶ୍ରିତ—Depending upon another
গলায় বাঁধা **गर्दनके नीचे बंधा हुआ** for one's main-
tenance.

**ବେକଲ୍ନି**—ପ୍ରାଦେ.—(ବସ୍ତ୍ରର) ବିଣ—( ଫା. ବେ+ସ. କଳନ)—
Be-kalni ଅକଳନ୍ତି; ଅଗଣ୍ୟ—Innumerable.

**ବେ-କଳନ** (ନା, ନି, ନ୍ତା)—ଦେ. ବିଣ—(ଫା. ବେ+ସଂ. କଳନ) Be-kalana (nā, ni, ntā) ଅକଳନ; ଅଗଣ୍ୟ— অকলন **बेकलन** Innumerable.

**ବେକସ**—ଦେ. ବିଣ—(ଫା. ବେ+ଫା.କସ୍)—ଢିଲା; ଢୁଗୁଲା; ଶ୍ଳଥ— Bekas ঢিলা **बेकस** Loose, slack; not closely fitting.

**ବେକସୁ(ସୋ)ର**—ବୈଦେ. ବିଣ—(କଚରୀଆ)—(ଫା. ବେ+କସୁର= Bekasu(so)r ଦୋଷ,ଅପରାଧ)—୧ । ନିର୍ଦ୍ଦୋଷ—1. Fault- বেকসুর **बेकसुर** less ୨ । ନିରପରାଧ—2. Guiltless; not guilty.

**ବେ-କସୁ(ସୋ)ର ଖଲାସ୍ ଦେବା**—ଦେ. କ୍ରି—(କଚରୀଆ)—ଆସାମୀଙ୍କୁ Be-kasu(so)r-khalās debā ସମ୍ପୂର୍ଣ୍ଣ ନିରପରାଧ ବୋଲି ସ୍ଥିର বেকসুর খালাস দেওয়া କରି ତାକୁ ଅବ୍ୟାହତି ଦେବା—To **बेकसुर खलास होना** acquit an accused by pronouncing him innocent.

**ବେ-କସୁ(ସୋ)ର୍ ଖଲାସ୍ ପାଇବା (ହେବା)**—ଦେ.କ୍ରି.—(କଚରୀଆ)- Be-kasu(so)r khalās pāibā(hebā) ବିଚାର ଅଦାଲତରେ বেকসুর খালাস হওয়া ଅଭିଯୁକ୍ତ ବ୍ୟକ୍ତି ନିର୍ଦ୍ଦୋଷ ବୋଲି ପ୍ରମାଣିତ **बेकसुर खलास होना** ହୋଇ ଅବ୍ୟାହତି ପାଇବା—To be honourably acquitted of a charge.

**ବେକା(ଙ୍କା)**—ଦେ. ବି—ଏକ ହାତର ମୁଠାମଧ୍ୟରେ ଧରାଯିବା ଘାସର Bekā(ṅkā) ବା ନଡ଼ାର ପରିମାଣ—Handful (of straw আঁটি or grass); as much as can be held tightly **गफी** by one hand. ପ୍ରାଦେ (ବାଲେଶ୍ୱର) ବି—ଘିଅ ରଖାଯିବା ଉପଯୋଗୀ ଏକପ୍ରକାର ପାତ୍ର (ହାଣ୍ଡି ଓ ଘଡ଼ି) —Pot in which ghee is kept. [ଉ—ଠେକା କହେ ବେକାରେ । ତୁ କୋଉଁ ମଣଷରେ ଲେଖାରେ ? ଚଗ । ]

**ବେ କାଇ(ଏ, ୟ)ଦା**—ବୈଦେ. ବିଣ (ଫା. ବେ+କାୟଦା=ନିୟମ) Be-kāi(de, ya)dā —୧ । ବିଶୃଙ୍ଖଳ; ଅନିୟମିତ—1. বেকায়দা Irregular. ୨ । ଅନାୟତ୍ତ; ଅଶାସିତ— **बेकायदा** 2. Uncontrolled; unruly; undisciplined. ୩ । ବେଇଜତ (ଦେଖ)—3. Beijata (See). ୪ । ବେଆଇନ୍—4. Illegal. ବୈଦେ. ବି (ଫା)— ୧ । ଶାସନର ଅଭାବ—1. Want of discipline. ୨ । ବିଶୃଙ୍ଖଳା—2. Irregularity.

**ବେ'କାଇଲ(ଲି, ଲା)**—ବୈଦେ. ବିଣ (ଫା)—ଯେଉଁ ବ୍ୟକ୍ତି ଆପଣାର Be-kāil(li, lā) ଦୋଷ ସ୍ୱୀକାର କରେ ନାହିଁ—Not **बेकाइल** admitting one's faults.

**ବେ କାଏ(ୟ)ମ୍**—ବୈଦେ. ବିଣ (କଚରୀଆ) (ଫା ବେ+କାୟମ୍)— Be kāe(ya)m ୧ । ନିଷ୍ଫଳ—1. Fruitless; null and বেকাএম void. ୨ । ଯାହା କାର୍ଯ୍ୟରେ ପରିଣତ ହୋଇ ନ **बेकायम** ଥାଏ—2. Not crried out.

**ବେ କାନୁନ୍(ନି)**—ବୈଦେ. ବିଣ (କଚରୀଆ) (ଫା. ବେକାନୁନ୍)— Be kānun(ni) ବେଆଇନ୍ (ଦେଖ)—Beāin (See). বেকানুন **बेकानुन**

**ବେ କାବୁ**—ବୈଦେ. ବିଣ (ଫା. ବେ+କାବୁ=ଆୟତ୍ତ, ବଶତା)— Be kābu ୧ । ଅବଶ; ଅନାୟତ୍ତ—1. Beyond control; বেকাবু not under one's control ୨ । ଅକ୍ଷମ— **बेकाबु** 2. Powerless; impotent. ୩ । ଉପାୟାନ୍ତର-ବିହୀନ—3. Having no alternative; resourceless

**ବେ କାମିକା**—ବୈଦେ. ବିଣ (ଫା. ବେକାମକ୍)—୧ । କର୍ମର Be kāmikā ଅଯୋଗ୍ୟ; ଅକାମିକା—1. Unfit for work; অকেজো worthless. ୨ । ନିଷ୍କର୍ମୀ—2. Unemployed. **बेकाम** (ବେକାମୀ—ଅନ୍ୟରୂପ) ୩ । ଅଳସୁଆ—3. Idle.

**ବେ କାର**—ବୈଦେ. ବିଣ (ଫା. ବେ+କାର=କର୍ମ)—୧ । ନିକମ୍ମା; Be kār କର୍ମରହିତ; ନିଷ୍କର୍ମୀ—1. Unemployed; without বেকার work. ୨ । ଅକର୍ମଠ; ଅଳସୁଆ—2 Idle. ୩ । **बेकार** ଜୀବିକା ବିହୀନ—3. Having no means of livelihood

**ବେକାରବାର(ରି)**—ବୈଦେ. ବିଣ (ଫା. ବେକାର୍‌ବାର୍)—୧ । ଯେଉଁ Bekārabāra(ri) ସମୟରେ ବ୍ୟବସାୟ ଚଳୁ ନ ଥାଏ—1. বেকারবার Dull (time); when there is no business. **बेकारबार** ୨ । ବ୍ୟବସାୟ ରହିତ ବ୍ୟକ୍ତି—2. Destitute of any employment or business. ବି— ବ୍ୟବସାୟ ରହିତ ଅବସ୍ଥା—Want of employment or business.

**ବେକୀ**—ଦେ. ବି—୧ । ଛୋଟ ମାଟି ଘଡ଼ି—1. A small earthen Bekī pitcher. [ଉ—ଠେକି ପଶୁରେ ବେକୀ ଲୋ । ଡରେ ছোটভাংড় କୋଉ ମଣିଷରେ ଲେଖି ଲୋ ? ଚଗ ।] ୨ । **टुइयाँ** ଦେବାଳୟର ଅଂଶ ବିଶେଷ—2. A part (neck) of ঘাড় the temple. [ଦ୍ର—ଏହା ଅର୍ଥଲାର ତଳ ସରୁ ଅଂଶ **गर्दन** ଅଟେ; ଏହା ଦେଉଳର ବେକପରି । ଦେଉଳ ତଳରେ ବଧାଯାଇଥିବା ଚିହ୍ନ ଦେଖ । ]

**ବେ କୁ(ଖୁ)ପ(ଫ, ବ)**—ବୈଦେ. ବିଣ (ଫା. ବେ+ୱକୁଫ୍=ବୋଧ) Be ku(khu)p(ph, b) —ନିର୍ବୋଧ—Foolish; stupid; বেকুব silly. [ଉ—ମିଆଁ କହଲେ—ବେକୁବ୍ । କମ୍‌ବକ୍ତ ! **बेवकुफ** ନାଲାଏକ୍ । × × × ଫକୀରମୋହନ. ଛଅମାଣ ଆଠଗୁଣ୍ଠ । ]

[ବେଏକୁ(ଖୁ), ବେଏକୁ(ଖୁ)ପ(ବ), ବେଉକୁପ(ଫ, ବ)—ଅନ୍ୟରୂପ]

**ବେକୁପି(ଫି, ବି)**—ବୈଦେ. ବି (ଫା. ବେୱକୁଫୀ)—ନିର୍ବୋଧତା— Bekupi(phi, bi) Foolishness; stupidity. বেকুবী ବୈଦେ. ବିଣ (ଫା)—ନିର୍ବୋଧର ଉପଯୁକ୍ତ— **बेवकुफी** Befitting a fool.

[ବେଏ(ଉ)କୁପି(ଫି, ବି)—ଅନ୍ୟରୂପ]

**ବେକୁଳ**—ଦେ. ବି (ସଂ. ବି+କୁଳ)—୧ । ନୀଚକୁଳ—1. Low Bekula family. ୨ । ଅନ୍ୟଜାତି—2. Another কুলনষ্ট **बेकुल** caste.

ବେକୁଳା—ଦେ· ବିଣ. ପୁଂ ( ସ. କୁଳ )—୧ । ନୀଚକୁଳୋଦ୍ଭବ, ଅକୁଳୀ—1. Born of a low family, ୨ । ଜାତିଭ୍ରଷ୍ଟ—2. Outcasted. ୩ । ଯାହାର କୁଳର ବା ବଂଶର ବିଷୟ କାହାକୁ ଜଣା ନାହିଁ—3. Of unknown origin.
Bekulā
(ବେକୁଳୀ—ସ୍ତ୍ରୀ)
কুলহীন
बेकुला

ବେକେ ପାଣି—ଦେ. ବିଣ—ମନୁଷ୍ୟ ବେକ ପର୍ଯ୍ୟନ୍ତ ବୁଡ଼ିବା ଗଭୀରତା-ଯୁକ୍ତ ଜଳ—Neck-deep (water).
Beke pāṇi
একগলা জল गर्दनभर पानी

ବେ ଖଞ୍ଜ—ବୈଦେ. ବି (ଫା)—ଅସୁବିଧା; ଅଖଞ୍ଜ—Inconvenience. ବିଣ—ଅସୁବିଧାଜନକ—Inconvenient
Be khañja
অসুবিধা, বেখড় असुविधा

ବେ ଖଟୁ(ଟ୍ଟୁ)—ଦେ. ବି—୧ । ପରିଶ୍ରମକାତର; ଶ୍ରମବିମୁଖ—1, Loathing work. ୨ । କାମଚୋର; ଅଳସୁଆ—2. Idle; lazy. ୩ । ଅକର୍ମଣ୍ୟ—3. Worthless.
Be khaṭu(ṭṭu)
অকেজো बेखट्टु

ବେଖଡ଼—ଦେ. ବି—ବିଖଡ଼ (ଦେଖ)—Bikharḍa (see)
Bekharḍa বেখড়

ବେଖଡ଼ିଆ—ଦେ. ବିଣ—ବିଖଡ଼ିଆ (ଦେଖ)—Bikharḍiā (see).
Bekharḍiā

ବେ ଖବର୍‌ଦାର୍—ବୈଦେ. ବିଣ. (ଫା)—ଅସାବଧାନ; ଗରଜୁସିଆରି—Careless; incautious.
Be khabar-dār
অসাবধান बेखबरदार (ବେଖବରଦାରି—ବି)

ବେ ଖରଚ(ଚା)—ବୈଦେ. ବିଣ—(ଫା. ବେ.ଖର୍ଚ୍ଚ)—୧ । ଯାହାପାଇଁ ମୂଲ୍ୟ ଦେବାକୁ ପଡ଼େ ନାହିଁ ବା ଖରଚ କରିବାକୁ ପଡ଼େ ନାହିଁ—1. Procured without any cost or expense; got gratis. ୨ । ବ୍ୟୟରହିତ—2. Inexpensive.
Be-kharacha(chā)
বেখরচা बेखरच
[ବେଖର୍ଚ୍ଚ(ର୍ଚ୍ଚା)—ଅନ୍ୟରୂପ

ବେ ଖରଚି—ଦେ. ବି—ଯେ ବହୁତ ବଦଖର୍ଚ୍ଚ କରେ; ସାହା ଖରଚ—Extravagant.
Be kharachi
ବେଖର୍ଚ୍ଚି, ବେଖର୍ଚ୍ଚିଆ, ବେଖରଚିଆ } ଅନ୍ୟରୂପ
বদখরচী बदखरची

ବେ ଖରଚ(ଚା)ରେ କାମ ଉଠା(ଠେ)ଇବା—ଦେ. କ୍ରି. ବିନା ବ୍ୟୟରେ କୌଣସି କାର୍ଯ୍ୟ କରାଇ ନେବା—To have a thing done gratis.
Be-kharachāre kāma uṭhā(ṭhe)ibā
বেখরচায় কাজ তোলা बेखरच काम उठाना

ବେ ଖାଉ(ମି)ନ୍ଦ—ବୈଦେ. ବିଣ (ଫା. ବେଖାମିନ୍ଦ୍)—୧ । ପ୍ରଭୁଶୂନ୍ୟ—1. Lordless; masterless; ownerless. ୨ । ରକ୍ଷକହୀନ—2. Having no protector.
Be khāu(mi)nda
বেমালিক बेखामिन्द, बेमालिक ( ବେଖାମିନ୍ଦ୍—ଅନ୍ୟରୂପ )

ବେ ଖାତି(ତି)ର—ବୈଦେ. ବି ( ଫା. ବେଖାତିର )—୧ । ଅସମ୍ମାନ—1. Disrespect. ୨ । ବେ-ପରୁଆ—2. Disregard. ୩ । ବେପରୁଆ ଅବସ୍ଥା—3. Carelessness.
Be khāta(ti)r
বেখাতীর(রী) बेखातीर

ବେ ଖାତ(ତି)ରି—ବୈଦେ· ବିଣ (ଫା)—୧ । ବେପରୁଆ—1. Careless. ୨ । ଅବମାନକାରକ—2. Insulting, disrespectful. ୩ । ଅପମାନସୂଚକ ( ବାକ୍ୟ ବା କାର୍ଯ୍ୟ )—3. [ speech or act ] Indicating insult or disregard; disgraceful.
Be khāta(ti)ri
বেখাতীর बेखातीरी
[ ବେ ଖାତ(ତି)ରିଆ—ଅନ୍ୟରୂପ ]

ବେ ଖାନ୍ଦାନ(ନି)—ବୈଦେ. ବିଣ (ଫା)—ଅଘରୁଆ; ଯେ ସମ୍ଭ୍ରାନ୍ତବଂଶୀୟ ନୁହେ—Not belonging to a respectable family.
Be khāndān(ni)
বেখান্দান बखान्दान

ବେ ଖାପ୍—ବୈଦେ, ବିଣ (ଫା)—୧ । ଯାହା ଅନ୍ୟ ବସ୍ତୁ ସଙ୍ଗେ ଠିକ୍‌ଭାବରେ ଖାପ ଖାଏ ନାହିଁ—1. Unfitting; not tallying with another thing; incongruous. ୨ । ଅସମାନ—2. Unequal.
Be khāp
বেখাপ बेखाप

ବେ ଖୁସ୍(ସି)—ବୈଦେ. ବିଣ ( ଫା. ବେଖୁସ୍ )—ଦୁଃଖିତ; ବିରକ୍ତ—Displeased. ବୈଦେ. ବି (ଫା)—ବିରକ୍ତି—Displeasure.
Be khus(si)
বেখুস बेखूस

ବେ ଖୋରାକ—ବୈଦେ. ବିଣ ( ଫା. ବେଖୁରାକ୍ )—ଖାଦ୍ୟବିହୀନ—Destitute of food.
Bekhorāka
বেখোরাক बेखुराक

ବେ(ବ୍ୟା)ଗ୍—ବୈଦେ. ବି (ଇଂ.ବ୍ୟାଗ୍)-କନାର ଥଳି—Bag. ବୈଦେ. ବି. ( ଫା, ବେଗ୍)—ପ୍ରଥମେ ମୁସଲମାନ୍ ଶାସକମାନଙ୍କୁ ପ୍ରଦତ୍ତ ଓ ପରେ ବଂଶଗତ ଉପାଧିବିଶେଷରୂପେ ପ୍ରବର୍ତ୍ତିତ ଉପାଧି—A title originally given to Mahomedan governors and now turned into a family title.
Be(byā)g
বেগ্ बेग; थली
বেগ बेग

ବେଗ—ସ. ବି (ବିଜ ଧାତୁ=ଗମନ କରିବା+ଭାବ. ଅ)—୧ । ଗତି—1. Motion; movement. ୨ । ଶୀଘ୍ରତା—2. Swiftness; haste. ୩ । ଗତିର ପରିମାଣ—3. Velocity; speed. ୪ । ମୂତ୍ର ବିଷ୍ଠାଦିର ନିର୍ଗମ ପ୍ରବୃତ୍ତି—4. Tendency to pass urine or faeces. ୫ । ପ୍ରବାହ—5. Stream; current. ୬ । ଆନନ୍ଦ; ଆହ୍ଲାଦ—6. Joy; pleasure. ୭ । ଦୃଢ଼ ପ୍ରତିଜ୍ଞା—7. Resolve. ୮ । ଉତ୍ସାହ; ବ୍ୟଗ୍ରତା ଉଦ୍ୟମ—8. Eagerness; energy. ୯ । ପ୍ରଣୟ—9. Intimacy; love. ୧୦ । ରେତଃ; ଶୁକ୍ର—10. Semen virile. ୧୧ । ଆମ୍ରବିଶେଷ—11. A kind of mango. ୧୨ । ବାଣପତି ରାଜା—12. Name of an ancient king of India. ୧୩ । ମନର ଗତି—13. Impulse; tendency.
Bega
তেজী বেগবাৰা, বেগী
वेगवाला, वेगी
ଦେ· ବିଣ.—ଦ୍ରୁତଗାମୀ; ବେଗବାନ୍—Swift. [ଉ—ମନରୁ ବେଗ ବଳବନ୍ତ, ଅଶ୍ୱ ଅଟେହି ଜଗନ୍ନାଥ । ଜଗନ୍ନାଥ. ଭାଗବତ ।] ଦେ. କ୍ରି. ବିଣ—ବେଗେ; ଶୀଘ୍ର—Swiftly. [ଉ—ମୁକ୍ତେନ୍ଦୁ ନେଇ କୁରଙ୍ଗ ରଙ୍ଗ, ଜନ ରଞ୍ଜନକୁ ପ୍ରକାଶେ ବେଗ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।]
শিগ্‌গীর वेग

ବେଗ କରି—ଦେ. କ୍ରି. ବଣ—ଶୀଘ୍ର—Swiftly. (ଉ—ତୋ
Bega kari ଲଘନଭଙ୍ଗୀ ମୁହିଁ ସିନା, ଯେଣୁ ନ ଅଇଲି
शिग्‌गीर **वेगसे** ବେଗ କରି । ରାଧାନାଥ କେଦାରଗୌରୀ ।)
[ବେଗ କରା(ନା), ବେଗ ଦ(ଧ)ସ୍—ଅନ୍ୟରୂପ]

ବେଗଗାମୀ—ସ. ବଣ ପୁଂ (ବେଗ+ଗମ୍ ଧାତୁ+କର୍ତ୍ତୃ ଇନ୍)—
Begagāmi ଦ୍ରୁତଗତିବିଶିଷ୍ଟ—Swift.
(ବେଗଗାମିନୀ—ସ୍ତ୍ରୀ)

ବେଗ ଚିର(ରା)—ଦେ. ବଣ ପୁଂ—ଯେଉଁ ଛାତ୍ର କୌଣସି ଅଧୀତ ବିଷୟ
Beg chira(rā) ଶୀଘ୍ର ମନେ ରଖେ ଓ ବିଳମ୍ବରେ ପାଶୋରେ—
**वेगचिर, तेज्ञमल** (a student) Who remembers or gets by heart a thing quickly and forgets it slowly. [ ଦ୍ର—ଅଧ୍ୟାୟୀମାନଙ୍କୁ ଏହି ଦୃଷ୍ଟିରେ ଚାରିଭାଗରେ ବିଭକ୍ତ କରାଯାଏ—ବେଗଚିର, ଚିରଚିର, ବେଗବେଗ ଓ ଚିରବେଗ ।]

ବେଗଡ଼(ଡ଼ା)—ଦେ. ବଣ. (ଫା ବିଗଡ୍, ସ. ବିକୃତ)—୧ । ବିକୃତ;
Begarda(rdā) ବିଗିଡ଼ି।—1. Deranged. ୨ । ନଷ୍ଟ—
बिगड़ा **बेगड** 2. Spoiled. ୩ । ଦୁଷ୍ଟ—3. Wicked.
(ବେଗଡ଼ୁଆ—ଅନ୍ୟରୂପ)

ବେଗଣିଆ ପିଛୁଡ଼ି—ଦେ· ବ (ଜାହାଜିଆ ଶବ୍ଦ)—ଉତ୍ତର ପଶ୍ଚିମ
Beganiā pichhārdi ଦିଗ୍ କୋଣ—The north-west point of the mariner's compass.

ବେଗତିକ—ଦେ. ବଣ. (ଫା ବେ+ସ. ଗତିକ=ଅବସ୍ଥା)—୧ ।
Begatika ନିରୁପାୟ; ବେଗତ୍ୟା—1. Resourceless. ୨ ।
बेगतिक **बेचारा** ସଙ୍କଟାପନ୍ନ; ଦୁରବସ୍ଥ—2. Beset with danger. ୩ । ନିରାଶ୍ରୟ—3. Helpless ଦେ. ବ—୧ । ଅସମୟ—1. Bad time. ୨ । ସଙ୍କଟ—2. Critical condition; danger; difficulty. ୩ । ନିରାଶ୍ରୟ ଅବସ୍ଥା—3. Helpless condition.

ବେଗ ଧାରଣ—ସ. ବ—(୬ଷ୍ଠୀ ତତ୍; ବେଗ+ଧାରଣ)—(ମଳ, ମୂତ୍ର
Bega dhārana ଓ କାମ କ୍ରୋଧାଦିର) ବେଗକୁ ଅଗ୍ରସର କରିବା
ବେଗରୋଧ - ଅନ୍ୟରୂପ ବା ସମ୍ଭାଳିବା—Restraining the impulse (of passing urine etc).

ବେଗ ପା(ପେ)ସେ ଜର୍—ଦେ. ବ. (ଆଧୁନିକ ପ୍ରୟୋଗ)—(ସ. ବେଗ
Bega pā(pe)senjar +ଇଂ. ପାସେଞ୍ଜର୍) ସାଧାରଣଠାରୁ ବେଶି
फ़ाष्टपासेञ्जर **बेगपेसेञ्जर** ବେଗଶାଳୀ ପାସେଞ୍ଜର୍ (ଯାତ୍ରୀବାହୀ) ରେଲଗାଡ଼ି—Fast passenger (train).

ବେ ଗଫଲତି—ବୈଦେ. ବ. (ଫା)—ହେଳାଶୂନ୍ୟତା—Want of
Be gaph-lati बेगाफलती **बेगफलती** negligence.

ବେ ଗ(ଗା)ଫୁ(ଫି)ଲ୍(ଲି)—ବୈଦେ ବ (ଫା. ବେଗାଫିଲ୍)=୧ ।
Be ga(ga)phu(phi)l(li) ଅନ୍ୟାୟ କାର୍ଯ୍ୟ—1. Wrong.
बेगाफिल ୨ । ଦୋଷ—2 Fault. ୩ । ଅସାବଧାନତା—
**बेगाफिल** 3 Carelessness. ୪ । ହେଳା—4 Negligence. ୫ । ବେକୁବୀ—5 Silliness; folly.

ବୈଦେ. ବଣ (ଫା) — ୧ । ଅସାବଧାନ—1.Careless. ୨ । ନିର୍ବୋଧ—2. Foolish. ୩ । ଯେ କାର୍ଯ୍ୟରେ ହେଳା କରେ—3. Negligent.

ବେଗବନ୍ତ—ଦେ. ବଣ- (ସ. ବେଗବତ୍)—ବେଗବାନ୍—
Begabanta बेगवान् **तेजी** Swift

ବେଗବାନ୍—ସ. ବଣ. ପୁଂ—(ବେଗ+ଅସ୍ତି ଅର୍ଥରେ ବତ୍; ୧ମା. ୧ବ)
Begabān ଭୃଷବନ୍ଦିତ; ଦ୍ରୁତଗତିବିଶିଷ୍ଟ—Swift.
(ବେଗଶାଳୀ—ଅନ୍ୟରୂପ)
(ବେଗବତୀ, ବେଗଶାଳିନୀ—ସ୍ତ୍ରୀ)

ବେଗ ବେଗ—ଦେ. ବଣ. ପୁଂ.—ଯେଉଁ ଛାତ୍ର କୌଣସି ବିଷୟକୁ
Bega bega ଶୀଘ୍ର ପଢ଼ିପାଏ ଓ ଶୀଘ୍ର ପାଶୋରି ପକାଏ—
(a student) Who remembers or gets by heart a matter soon and frogets it soon.
शिगीर शिगीर ଦେ. କ୍ରି ବଣ—୧ । ମୁହୁର୍ମୁହୁଃ; ପୁନଃପୁନଃ—
**जल्दी जल्दी** 1. Repeatedly; every moment [ଉ—ନାସାମାଳତିଳପୁଲରୁ ଅନିଳ ପ୍ରସରୁଛି ବେଗ ବେଗ । କବିସୂର୍ଯ୍ୟ—ବିଶୋସ୍ୱତମ୍ପୁ, ଓ ଗୀତ । ] ୨ । ଚଞ୍ଚଳ—2. Quickly. [ଉ-ବିଚ୍ଛେଦ ସମ ସମା ବଣ୍ଣ ଖଡ଼ଗେ, ବେଗ ବେଗ ଯାଉଁ ଗୋଡ଼ାଇ ସଙ୍ଗେ । ଭଞ୍ଜ ବୈଦେହୀଶ ବିଳାସ ।]

ବେ ଗଭା(ଭେ)ଇ—ବୈଦେ. ବଣ ( ଫା.ବେ+ଗବାହ=ସାକ୍ଷୀ )—
Be gabhā(bhe)i ୧ । ସାକ୍ଷୀଶୂନ୍ୟ (ବ୍ୟକ୍ତି)—1. (a person)
बेगाभाई Having no witness to depose on his behalf. ୨ । ଯେଉଁ ଘଟଣାର କେହି ସାକ୍ଷୀ ନ ଥାଏ—2. (an occurence Not witnessed by any one.

ବେଗମ୍—ବୈଦେ· ବ. (ତୁର୍କୀ; ଏହାର ପୁଂଲିଙ୍ଗ ବେଗ୍=ମାନ୍ୟବ୍ୟକ୍ତି,
Begam ରାଜା)—୧ । ଧନବାନ୍ ମୋଗଲଙ୍କ ପତ୍ନୀ—1. The
बेगम wife of a rich Moghul. ୨ । ମୁସଲମାନ୍
**बेगम** ସମ୍ଭ୍ରାନ୍ତ ମହିଳା—2. A Mahomedan lady. ୩ । ରାଣୀ—3. Queen· ୪ । ରାଜମହିଷୀ; ସମ୍ରାଜ୍ଞୀ—4 Empress

ବେ ଗମାର୍—ଦେ. ବଣ - ଅଗମ୍ଭୀର—
Be gamār छावला Light-hearted.

ବେଗର୍—ବୈଦେ. ଅ ( ଫା ବିଗର୍, ବଗୈର୍ )—ଇତର; ବିନା;
Begar ବ୍ୟତିରେକେ—Without; besides; except
बेगर **बेगर** ବୈଦେ. ବଣ ଫା—ବାଜେ—Miscellaneous.

ବେଗର୍ ଆସାମି—ବୈଦେ· ବ(ଫା)୧ । ବାଜେ ଲୋକ; ଇତର ଲୋକ—
Begar āsāmi 1. Common people; the mass.
बाजेलोक **गोरआसामी** ୨ । ବାହାରର ଲୋକ—2. An outsider.

ବେଗର୍ ଭାଟିଆ—ପ୍ରା (ବିଦ୍ଦଭୂମି) ବଣ—ଭାଟ-ଅନ୍ତର; ରାଜାଙ୍କ ଅନ୍ତର
Begar bhatia ଅର୍ଥାତ୍ ରକ୍ଷିତା ସ୍ତ୍ରୀ ଗର୍ଭୋତ୍ପନ୍ନ—Born of a 'Raja's concubine

ବେଗଲ୍—ପ୍ରାଦେ. (ସମ୍ବଲପୁର) ବଣ (ଆ.ବଗର୍)—ଅନ୍ୟ; ଦୋସର୍—
Begal Another; any other.

ବେଗଲ—ବୈଦେ. ବଣ ( ଫା. ବଗର )—ଭିନ୍ନ; ପୃଥକ—
Begala ପୃଥକ बिगर Separate.

ବେଗସର—ସ. ବ ( ବେଗ+ସୃ ଧାତୁ+କର୍ତ୍ତି. ଅ )—୧ । ବେଗଗାମୀ
Begasara ଅଶ୍ୱ—1. A swift steed. ୨ । ଅଶ୍ୱତର; ଖଚର—2. Mule.

ବେଗାଡ଼ି—ପ୍ରାଦେ. ବ ( ସମ୍ବଲପୁର; ଭୁଲ ହି. ବେଗାରି )—ବେଗାର
Begārdi ( ଦେଖ )—Begāri ( See )

ବେଗାଡ଼ୁ—ଦେ. ବଣ—ବିଗାଡ଼ୁ ( ଦେଖ )
Begārdu Bigārdu ( See )

ବେଗା(ଗି) ବେଗି—ଦେ କ୍ରି. ବଣ—ବେଗି (ଦେଖ)—Begi (See)
Begā(gi) begi [ ଉ—ସ୍ୱମ ଅସିଛନ୍ତି ବୋଲି ଶୁଣି ସେ, (ବେଗିଅ ବେଗି—ଅନ୍ୟରୂପ) ବେଗାବେଗି ଅନେକ ଲୋକବାକ, ଶିଗୀର ସୁନ୍ଦର ଖାଇବା ଜିନିସ ଧରି ଅସି ପହଁଚ ଗଲେ । बेगसे ମାଲକଣ୍ଠ ଦାଶ. ପିଲାଙ୍କରାମାୟଣ । ]

ବେଗାର(ରି)—ବୈଦେ. ବ ( ଫା. ବେଗାର୍ )—୧ । ବେଠି; ବିନା-
Begār(ri) ଦରମାରେ ବାଧ୍ୟତାମୂଳକ ପରିଶ୍ରମ—
ବେଗାର(ରୀ) 1. Impressment of persons into com-
बेगार(रि) pulsory service without remuneration; forced labour. ୨ । ବେଠିଆ—2. Persons impressed into service without pay. ୩ । ରାଜାଙ୍କ ଗହଣରେ ବା ବରଯାତ୍ରୀଙ୍କ ସଙ୍ଗେ ଅସିଥିବା ଅନୁଚରଦଳ (ଯଥା—ବେହେରା, ଭରୁଆ, ବାଜାଦାର)—
3. Menials accompanying a royal or marriage prrcession.

ବେଗାର(ରି) ଖ(ଖା)ଟିବା—ଦେ. କ୍ରି—ବେଠି ଖଟିବା; ବେଠିରେ କାମ
Begār(ri) kha(khā)ṭibā କରିବା—To work on
ବେଗାର ଖାଟା (ଠେଲା) बेगारी खटना impressed service.
[ବେଗାର(ରି) ଭୁଲା(ଲେ)ଇବା—ଅନ୍ୟରୂପ]

ବେଗାର୍ ଦଣ୍ଡ—ଦେ. ବ ( କଦର୍ଥ; ଅଧୁନାତନ )—ଇଉରୋପୀୟ
Begār danda ଅପରାଧୀଙ୍କ ପ୍ରତି ବିହିତ ସଶ୍ରମ କାରାଦଣ୍ଡ—
Penal servitude (for European convicts).

ବେଗାର(ରି) ଧରିବା—ଦେ. କ୍ରି-ଲୋକଙ୍କୁ ଜବରଦସ୍ତି ବେଠି କରିବାକୁ
Begār(ri) dharibā ଧରିବା—To impress persons
ବେଗାର ଧରା into service i.e. to work gratis.
बेगार धरना

ବେଗି—ଦେ. କ୍ରି. ବଣ ( ସ. ବେଗ )—ଚଞ୍ଚଳ; ଶୀଘ୍ର; ସତ୍ୱର;
Begi ଜଲ୍‌ଦି; ବେଇଟି—Soon; quickly; swiftly.
ଶିଗୀର [ ଉ—ମାଗିବ ଯାହା ତାହା ଦେବ ମୁହିଁ ବେଗି ।
बेग କୃଷ୍ଣସିଂହ. ମହାଭାରତ ବନ । ]

ବେଗିତ—ସ. ବଣ. (ବେଗ+ଇତ)—୧ । ବେଗବାନ୍—1. Swift.
Begita ୨ । ଚାଳିତ—2. Moved. ୩ । ତ୍ୱରାନ୍ୱିତ—
(ବେଗୀ—ଅନ୍ୟରୂପ) 3. In haste; hasty. ସ. ବ—ଶ୍ୟେନପକ୍ଷୀ—Falcon; hawk.

ବେଗୀନୀ—ଦେ ବ.—ପ୍ରାଚୀନ ଅର୍ଣ୍ଣବପୋତବିଶେଷ—A kind of
Begini ancient ship. (ଜଗବନ୍ଧୁ ପ୍ରାଚୀନ ଉତ୍କଳ) ।

ବେ ଗୁଆଁରୁ—ବୈଦେ. ବଣ, (ଫା. ବେଗଙ୍ଗାର୍)—୧ । ବୁଦ୍ଧିମାନ୍—
Be guāñr 1. Intelligent. ୨ । ଚତୁର—2 Clever.
ବୁଦ୍ଧିମାନ बैगँवार

ବେଗୁଆର—ଦେ. ବଣ—ବେଗବାନ୍—Swift. [ ଉ—ବେଗୁଆର
Beguāra ଘୋଡ଼ା ଯୋଚ୍ଚ ରଥରେ ବସି, ଯୁଧିଷ୍ଠିର ନୃପତି
ବେଗବାନ; बेगवन्त ପଳାଇଲେ ଖସି । କୃଷ୍ଣସିଂହ—ମହାଭାରତ-ଦ୍ରୋଣ ।]

ବେଗୁଣିଆ—ଦେ. ବଣ—ବିଗୁଣିଆ ( ଦେଖ )—Bigunia (See).
Begunia

ବେଗୁନିଆ—ଦେ. ବ.—ନିର୍ଗୁଣ୍ଡୀ; ବନ୍ୟ କ୍ଷୁପବିଶେଷ—A wild
Begunia plant; Vitex Negundo (Haines);
निसिन्दा; सिवारि;सम्भालु, Vitex Trifolia; five-leaved
पानिकिसम्भालु, chaste tree.
ଦେ. ବାବଲି, ନଛି ବାବଲ [ଦ୍ର—ଏ ଗଛ ଉଚ୍ଚରେ ୬।୭ ହାତ ବଢ଼େ; ପତ୍ର ୩।୬ ଅଙ୍ଗୁଳ ଲମ୍ବ । ଶୁଖିଲା ପତ୍ର ମୁଗ ଇତ୍ୟାଦିରେ ମିଶାଇ ଓଳିଆ ବାନ୍ଧିଲେ ମୁଗରେ ପୋକ ଧରନ୍ତି ନାହିଁ । ଏହା ପୁଷ୍ପବର୍ଣ୍ଣ ଭେଦରେ ଦୁଇ ପ୍ରକାର, ଶୁକ୍ଳ ବେଗୁନିଆକୁ ସିନ୍ଧୁବାର; କଳା ବେଗୁନିଆକୁ ନିର୍ଗୁଣ୍ଡୀ ଓ ନୀଳପୁଷ୍ପ କହନ୍ତି । ଦ୍ରବ୍ୟଗୁଣ—କଳ୍ପଦ୍ରୁମ ।]

ବେଗୁଲ୍ (ଲି)—ବୈଦେ.ବ. (ଇଂ. ବ୍ୟୁଗ୍ଲ୍)—ବିଗୁଲ୍; ତୁରୀ; ରଣତୁରୀ—
Begul li) ବିଗୁଲ; विगुल War buglo.

ବେଗେ—ଦେ କ୍ରି. ବଣ—( ସ. ବେଗତଃ )—ବେଗି (ଦେଖ)—
Bege ଜଲ୍‌ଦୀ; वेग से Begi ( See). [ଉ—ଯୁଦ୍ଧ ମନ ଅଛି
(ବେଗେଣ—ଅନ୍ୟରୂପ) ଆଜନମ ସୁଖୀ ରାଜରାଜ ଭୂଇ ବାହି ବେଗେ ସାଜ ସାଜ ହେ । ଭଞ୍ଜ—ପ୍ରେମ ସୁଧାନିଧି; ନଳ ବେଗେଣ ବନେ କରନ୍ତୁ ଅସି । ପ୍ରାଚୀ—ନଳଚରିତ ।]

ବେ ଘରୁଆ—ଦେ.ବଣ .(ଫା ବେ+ଓ.ଘରୁଆ)—ବେ ଖାନ୍ଦାନ୍ (ଦେଖ)
Be gharuā ବେଖାନ୍ଦାନ; बेखानदानी Bekhāndān (See).

ବେଙ୍କ—ବୈଦେ. ବ ( ଇଂ. ବାଙ୍କ୍ )—ବୈଙ୍କ୍ ( ଦେଖ )—Bānk
Benk ବ୍ୟାଙ୍କ; बैंक (See).

ବେଙ୍କର—ବୈଦେ. ବ. ( ଇଂ. ବାଙ୍କର୍ )—ବାଙ୍କର୍ ( ଦେଖ )—
Benkar (Bānkar (See)

ବେଙ୍ଗ—ଦେ. ବ (ସ. ବ୍ୟଙ୍ଗ)—୧ । ଉଭୟଚର ପ୍ରାଣୀବିଶେଷ; ଭେକ,
Benga ବେଙ,ବେଙ୍ଗ; बेंग,मेढक ମଣ୍ଡୁକ—1. Frog; Ranidae;
ମ-ବେଡ଼ୁକ୍ [ଉ-ସାପ ନେ । ବେଙ୍ଗ ନେ । ମୋ ପେଟ କାଳ ବଳେଇ
(ବେଙ୍ଗଇ; ବେଙ୍ଗେ, ବେଙ୍ଗେଇ—ଅନ୍ୟରୂପ) ଦେ । ଶିଶୁଗୀତ ।]
(ବେଙ୍ଗୁଲା—ସ୍ତ୍ରୀ) [ଦ୍ର-ନାନା ଜାତିର ଓ ଆକାରର ବେଙ୍ଗ ଦେଖାଯାଆନ୍ତି; ଯଥା—ବାଲୁଣୀ ବେଙ୍ଗ, କଣ୍ଟକଣ୍ଟିଆ ବେଙ୍ଗ, କୁଲି ବେଙ୍ଗ ଉଆଁ ବେଙ୍ଗ, କାଠ ବେଙ୍ଗ ଓ ସୁନା ବେଙ୍ଗ ।] ୨ । ପୁରୁଷ ଓ ସ୍ତ୍ରୀମାନଙ୍କୁ ଦିଆଯିବା ନାମ—2. A name given to males and females. ୩ । (ସ• ବ୍ୟଙ୍ଗ) ବ୍ୟଙ୍ଗୋକ୍ତି—
2. Irony; satire.

**ବେଙ୍ଗ ଚମ**—ଦେ. ବି (ସଂ. ବ୍ୟଙ୍ଗ ଚର୍ମ)—୧ । ବେଙ୍ଗ ଦେହର ଚମଡ଼ା—1. Skin of a frog. ୨ । ବେଙ୍ଗ ଚମ ଭଳି ଖାଉରିଆ ଦେହର ଚମଡ଼ା—2. Rough skin on the body of a person [compared to that of a frog]. (ବେଙ୍ଗଚମଡ଼ା—ଅନ୍ୟରୂପ)
Beṅga chama
ବେଙ୍গের চামড়া
बेंगका चमडा

**ବେଙ୍ଗ ଚଙ୍ଗ(ଙ୍ଗୁ)ଡ଼ିଆ**—ଦେ. ବିଣ—୧ । ଇତସ୍ତତଃ ବିକ୍ଷିପ୍ତ—1. Scattered about. (ଯଥା—ଏ ଘରେ ପଦାର୍ଥଗୁଡ଼ାକ ବେଙ୍ଗଚଙ୍ଗୁଡ଼ିଆ ହୋଇ ପଡ଼ିଛି । ) ୨ । ଅତି କ୍ଷୁଦ୍ର—2. Very small. (ଯଥା—ତାଙ୍କ ଘରର କୋଠରିଯାକ ସବୁ ବେଙ୍ଗଚଙ୍ଗୁଡ଼ିଆ ହୋଇଛି । ) ୩ । ରୁଗ୍ଣ ଓ କ୍ଷୀଣ (ଶିଶୁ)—3. Sickly and thin (child).
Beṅga chāṅga(ṅgu)ṛdiā
ছড়াছাড়ি
পায়রাখুপীর মতন
রোগাপটকা

**ବେଙ୍ଗ ପହଣା**—ପ୍ରାଦେ (ଗାଜପତ)—ବେଙ୍ଗଫୁଲ; ଲାଙ୍ଗୁଡ଼ଲଗା ଛୁଆ ବେଙ୍ଗ—Tadpole.
Beṅga pahiṇā

**ବେଙ୍ଗ ପାଟିଆ**—ଦେ. ବିଣ. ଧ୍ୱଂ—ବେଙ୍ଗପରି କର୍କଶସ୍ୱରବିଶିଷ୍ଟ—Having a croaking or hoarse voice like that of a frog. ଦେ. ବି—(ବର୍ଣ୍ଣିଆ ଶବ୍ଦ)—[ବେଙ୍ଗ ପାଟି(ଠୋ)ଇ—ଘଣ୍ଟି] ୧ । ବେଙ୍ଗର ପାଟିପରି ଆକାର ବିଶିଷ୍ଟ ଝୁମ୍ପାକାଠିରେ, ଘାଗୁଡ଼ିରେ ଓ ଅଣ୍ଟାସୂତାରେ ଲାଗିଥିବା ଝୁଣ୍ଟିରଲଗା ଘୁଙ୍ଗୁର—1. Tinkling ball shaped like a frog's mouth attached to ornaments. ୨ । ବେଙ୍ଗର ପାଟିପରି ଆକୃତିବିଶିଷ୍ଟ ରୁପାପଡ଼ ଓ ତାରରେ ନିର୍ମିତ ଗୋଲକଚଯୁକ୍ତ ବିଶିଷ୍ଟ ଅଣ୍ଟାରେ ଭିଡ଼ିବା ଅଲଙ୍କାର—2. A kind of waist-chain having balls shaped like the heads of frogs.
Beṅga pāṭiā
ভাঙ্গাগলা

**ବେଙ୍ଗ ଫୁଲ**—ଦେ. ବି—୧ । ଯେଉଁ ଫେଣରୁ ବେଙ୍ଗଛୁଆ ଜାତ ହୁଅନ୍ତି—1. Frothlike substance from which frogs are hatched. ୨ । ଫେଣରୁ ବାହାରି ପାଣିରେ ଖେଳୁଥିବା କେବଳ ମୁଣ୍ଡ ଓ ଲାଙ୍ଗୁଡ଼ଯୁକ୍ତ ବେଙ୍ଗଛୁଆ—2. Tadpole.
Beṅga phulā

**ବେଙ୍ଗ ବଥ**—ପ୍ରାଦେ, (ବସ୍ତର) ବି—ବେଙ୍ଗି ବଥ (ଦେଖ) Beṅgi batha (See).
Beṅga bath

**ବେଙ୍ଗ ବାଇଦ**—ଦେ. ବି—(ସଂ. ବ୍ୟଙ୍ଗ+ବାଦ୍ୟ)—ପିଲାମାନଙ୍କର ଏକ ପ୍ରକାର ଖେଳନା ବା ଆନନ୍ଦ ବାଦ୍ୟ—A kind of small drum for children.
Beṅga bāida
বেঙ্গ
वेङ्गबाजा

**ବେଙ୍ଗଲ**—ବୈଦେ. ବି—(ଇଂ. ବେଙ୍ଗଲ)—ବଙ୍ଗଦେଶ—The country of Bengal
Beṅgal বাঙ্গলা बेङ्गाल

**ବେଙ୍ଗଲ୍ ନାଗପୁର ରେଲଓଏ**—ବୈଦେ. ବି (ଇଂ)—କଲିକତାଠାରୁ ବଙ୍ଗୋପସାଗର ଉପକୂଳରେ ଓଡ଼ିଶା, ଗଞ୍ଜାମ, ମାନ୍ଦ୍ରାଜ ପ୍ରଦେଶର କିୟଦଂଶ ଦେଇ ୱାଲଟେୟାର ପର୍ଯ୍ୟନ୍ତ ଓ ଖଡ଼୍ଗପୁର ଉପରଦେଇ ମଧ୍ୟପ୍ରଦେଶ ନାଗପୁର ପର୍ଯ୍ୟନ୍ତ ବିସ୍ତୃତ ରେଲପଥ—Bengal Nagpur Railway.
Beṅgal-nāgapura relaoye
বেঙ্গলনাগপুর রেলওয়ে
बङ्गालनागपुर रेलवे

**ବେଙ୍ଗଲା**—ଦେ. ବି (ସଂ. ଦମନ)—୧ । ଗୋରୁଙ୍କ ଖୁରରେ ଧାନ ବିଡ଼ାମାନ ମକଚାଇ ବୁଟାରୁ ଧାନକୁ ପୃଥକ୍ କରିବା ନିମନ୍ତେ ମଝିରେ ଗୋଟିଏ ଖୁଣ୍ଟ ପୋତି ତାହାର ଚାରିଆଡ଼େ ବୃତ୍ତାକାରରେ ଧାନବିଡ଼ାମାନ ବିଛାଇ ସେ ଉପରରେ ଦାଉଁଣୀ ବା ପଘା ବାନ୍ଧି ସେଥିରେ ଏକାଧିକ ବଳଦ ଯୋଚି ବଳଦମାନଙ୍କୁ ବୁଲାଇବା ପ୍ରକ୍ରିୟା—1. The process of having paddy sheaves trodden by bullocks tethered to a central post to thresh out paddy from straw. (ଉ—ନାମ ମାତ୍ର ପାହିବାକୁ ଅଛି ରାତ୍ରିବେଳ, ଦେଖ ଆସିଲାଣି ଏ ଧ୍ରୁବ ମେରୁ ବୁଲି, ମେରୁ ନହେ ସପ୍ତର୍ଷିର ପ୍ରବର୍ତ୍ତି ବେଙ୍ଗଲା—ରାଧାନାଥ. ମହାଯାତ୍ରା ।) ୨ । ବେଙ୍ଗୁଲା (ଦେଖ)—2. Beṅgulā (See).
Beṅgalā
ধানমাড়ী
दौनी, दायँ, दवाँरी
(ବେଙ୍ଗେଲା—ଅନ୍ୟରୂପ)

**ବେଙ୍ଗ(ଙ୍ଗୁ)ଲା(ଲେ)ଇବା**—ଦେ କ୍ରି—ବେଙ୍ଗଲା ପକାଇବା ନିମନ୍ତେ ମେରର ଚାରିପାଖେ ଧାନ ବିଡ଼ାମାନ ବିଛାଇବା—To strew corn sheaves round the central post to have them trodden by oxen.
Beṅga(ṅgu)lā(le)ibā
আঁটি বিছান
खोह छींटना
(ବେଙ୍ଗୁଲବା—ଅନ୍ୟରୂପ)

**ବେଙ୍ଗ ଲାଙ୍ଗୁଡ଼**—ପ୍ରାଦେ (ବାଲେଶ୍ୱର) ବି—କୌଣସି ବ୍ୟକ୍ତିର ଏକମାତ୍ର ପୁତ୍ର ସନ୍ତାନ—The only son of a person. (ଯଥା—ଭଗବାନ୍ ଏଇ ବେଙ୍ଗଲାଙ୍ଗୁଡ଼ି ଖଣ୍ଡିକୁ ବଞ୍ଚାଇ ରଖନ୍ତୁ ।)
Beṅga lāṅguṛda

**ବେଙ୍ଗଲା ପକା(କେ)ଇବା**—ଦେ. କ୍ରି—ମେର ଖୁଣ୍ଟରେ ବଳଦ ଯୋଚି ଧାନବିଡ଼ାମାନ ବଳଦଙ୍କଦ୍ୱାରା ମଡ଼ାଇବା ପାଇଁ ବଳଦଙ୍କୁ ଚଳାଇ କରିବା—To drive bullocks tethered together round the central post to thresh paddy.
Beṅgalā pakā(ke)ibā
ধানমাড়া
दौनी करना
ବେଙ୍ଗଲା ବୁଲା(ଲେ)ଇବା } ଅନ୍ୟରୂପ
ବେଙ୍ଗଲା ଅଡ଼ା(ଡ଼େ)ଇବା }
(ଉ—କାହିଁ ଧାନ, ଅମଳ କରଇ କୃଷୀବଳ, ଖଳାରେ ବେଙ୍ଗଲା ପକାଇ । ମଧୁସୂଦନ. ଛନ୍ଦମାଳା ।)

**ବେଙ୍ଗଲି**—ବୈଦେ. ବି (ଇଂ)—ବଙ୍ଗୀୟ ବ୍ୟକ୍ତି, ବଙ୍ଗାଳୀ—A Bengalee. Pertaining to Bengal. ବିଣ—ବଙ୍ଗୀୟ—
Beṅgali
বাঙ্গালী
बङ्गाली

**ବେଙ୍ଗା**—ଦେ. ବି—୧ । ଶରତ ଯୋଗୁଁ ଗୋରୁମାନଙ୍କ ଗଳା ଫୁଲିଯିବା ରୋଗ—1. A sickness attacking cattle; Actinomycosis. ୨ । ଆଶଙ୍କା; ଭୟ—2. Fear; apprehension. ଦେ. ବିଣ—୧ । ପାଣିରେ ସୁସିଦ୍ଧ ନ ହୋଇ କଇଥା ହୋଇଯିବା (ବାଇଗଣ)—1. Half-boiled (brinjal). ୨ । ବାସି ହେବାରୁ ଦୁର୍ଗନ୍ଧଯୁକ୍ତ (ଦୁଧ, ଦହି, କାଞ୍ଜି)—2 Stale and putrid (milk, curd). ପ୍ରାଦେ. (ଗଞ୍ଜାମ) ବି—ହଇଜା ରୋଗୀର ଦେହରୁ
Beṅgā
গোরুর গলাফোলা রোগ
बेङ्गा
আধাসিদ্ধ; দরকাঁচা; দরকাচা
असिद्ध
বাসীগন্ধ
बेंगा

୨। ଯୁଦ୍ଧାସ୍ତ୍ରବିଶେଷ—2. A war-weapon. ୩। ସଙ୍ଗୀତରେ ତାଳଗ୍ଳାନତା—3. Want of tune in music. ଦେ. ବଣ—ବେତାଳଆ (ଦେଖ)—Betalia (See).

ବେତାଳ ପଞ୍ଚବିଂଶତି—ସ. ବ (ନାମ)—ବିଖ୍ୟାତ ସଂସ୍କୃତ ଉପନ୍ୟାସ—Betāla panchabimsati (ବେତାଳପଚଶ[ଶି]—ଦେ. ରୂପ) A famous novel in Sanskrit.

ବେତାଳଭଟ୍ଟ—ସ. ବ ( ନାମ )—ରାଜା ବିକ୍ରମାଦିତ୍ୟଙ୍କ ରାଜସଭାର Betālabhatta ନବରତ୍ନଙ୍କ ମଧ୍ୟରୁ ଜଣେ ପଣ୍ଡିତ—Name of a court poet of king Bikramāditya.

ବେତାଳ ସାଧନ[ନା]—ସ. ବ—ତାନ୍ତ୍ରିକ ପ୍ରୟୋଗ ଓ ଅନୁଷ୍ଠାନଦ୍ୱାରା Betāla sādhana(nā) 'ବେତାଳ'ଙ୍କୁ ଅଧୀନବଦ୍ଧ କରାଇବାରୂପ ପ୍ରକ୍ରିୟା—The act of performing rites to bring demons under one's control.

ବେତାଳ ସାଧିବା—ଦେ. କ୍ରି—ବେତାଳସାଧନାପୂର୍ବକ ବେତାଳଙ୍କୁ Betāla sādhibā ଅଧୀନ କରିବା—To bring demons under one's sway by performing Tantric rites.

ବେତାଳ ସିଦ୍ଧ—ସ. ବଣ (ବହୁବ୍ରୀହି; ବେତାଳ+ସିଦ୍ଧ)—ଯେଉଁ ବ୍ୟକ୍ତି Betāla siddha ତାନ୍ତ୍ରିକ ଉପାୟରେ ବେତାଳଙ୍କୁ ଅଧୀନ ( ବେତାଳସାଧକ—ଅନ୍ୟରୂପ ) କରିଥାଏ—One who has succeeded in mastering the demons to obey his orders.

ବେତାଳ ସିଦ୍ଧି—ସ. ବ—ତାନ୍ତ୍ରିକ ପ୍ରୟୋଗ ବା ସାଧନାଦ୍ୱାରା ବେତାଳଙ୍କ Betāla siddhi ଉପରେ ପ୍ରଭୁତ୍ୱ ସ୍ଥାପନରେ ସମର୍ଥ ହେବା—Mastery over evil spirits brought about by performance of Tantric rites.

ବେତାଲି—ପ୍ରାଦେ. (ଗଡ଼ଜାତ)—ବେତ ଟୋକେଇ—A basket Betāli made of split canes.

ବେତାଳିଆ—ଦେ. ବଣ (ଫା. ବେ+ସ ତାଲବ୍ଯ)—୧ । କର୍ଣ୍ଣକଟୁ—Betālia 1. Jarring to the ear. ୨ । ନୃତ୍ୟ ଗୀତାଦିର বেতাল, বেতাল ଲୟଗ୍ଳାନ, ତାଲଗ୍ଳାନ—2. Disordered; बेताल ill timed; not conforming to tunes; not (ବେତାଳ—ଅନ୍ୟରୂପ) keeping tune. ୩ । ତାଳବର୍ଜିତ—3. Against proper tune. ୪ । ଅପ୍ରାସଙ୍ଗିକ—4. Irrelevant. ୫ । ବେଠିକ—5. Inaccurate. ୬ । ଅସମ୍ବଦ୍ଧ—6. Confused. ୭ । ଅନିୟମିତ—7. Irregular. ୮ । ଯେଉଁ ବ୍ୟକ୍ତିର ତାଳମାନର ଜ୍ଞାନ ନ ଥାଏ—8. Not versed in the science of knowledge of tunes. ୯। ଯେଉଁ ବ୍ୟକ୍ତିର ଦେଶକାଳ ପାତ୍ରର ଜ୍ଞାନ ନ ଥାଏ—9. Devoid of any sense of proportion.

ବେତିକ୍ରମ—ଗ୍ରା. ବ—ବ୍ୟତିକ୍ରମ (ଦେଖ) Betikrama Byatikrama (See)

ବେତିକ୍ରାନ୍ତ—ଗ୍ରା. ବଣ—(ସଂ ବ୍ୟତିକ୍ରାନ୍ତ)—ବ୍ୟତିକ୍ରାନ୍ତ (ଦେଖ) Betikrānta Byatikrānta (See)

ବେତି ବେସ୍ତ—ଗ୍ରା. ବ—ବ୍ୟତିବ୍ୟସ୍ତ (ଦେଖ) Beti besta (ବେତିବ୍ୟସ୍ତ—ଅନ୍ୟରୂପ) Byatibyasta(See).

ବେତିରେକେ—ଗ୍ରା. କ୍ରି ବଣ—(ସ. ବ୍ୟତିରେକ)—ବ୍ୟତିରେକେ Betireke (ଦେଖ)—Byatireke (See)

ବେତୀତ—ଗ୍ରା. କ୍ରି. ବଣ—(ସ. ବ୍ୟତୀତ)—ବ୍ୟତୀତ (ଦେଖ) Betita Byatita (See)

ବେତୀପାତ—ଗ୍ରା. ବ—(ସଂ ବ୍ୟତୀପାତ)—ବ୍ୟତୀପାତ (ଦେଖ)—Betipāta Byatipāta (See)

ବେତୁଆ—ଦେ. ବଣ (ସ. ବେତ୍ରଧାରୀ)—ବେତ୍ରଧାରୀ (ପାଇକ)—Betuā বেঁতধরা बेतुआ Holding a cane. ଦେ. ବ. ବେତ୍ରଧାରୀ ପାଇକ—A peon holding a cane. ପ୍ରାଦେ. (ଗଡ଼ଜାତ) ବଣ—ଖାଇବା ପାଇଁ ଥାଳ ଆଦିରେ ସଜା ହେବା (ଅନ୍ନ ବ୍ୟଞ୍ଜନାଦି)—(Curry and rice) Arranged in plates for being served. ପ୍ରାଦେ. (ଗଡ଼ଜାତ) ବ—ଭାତ ତିଅଣ ଆଦିକୁ ଥାଳରେ ସଜାଇବା—Arranging rice, curry, etc in plates before serving food.

ବେତୁଆ କରିବା—ପ୍ରାଦେ. ( ଗଡ଼ଜାତ ) କ୍ରି—ଅନ୍ନାଦି ଖାଦ୍ୟକୁ Betuā karibā ଥାଳରେ ସଜାଇବା—To arrange or set down food on plates for serving.

ବେତୁଆ ହେବା—ପ୍ରାଦେ. (ଗଡ଼ଜାତ) କ୍ରି.—(ଅନ୍ନ ବ୍ୟଞ୍ଜନାଦି) Betuā hebā ଥାଳରେ ସଜ୍ଜିତ ହେବା—(food) To be arranged in plates.

ବେତୁଲି—ଦେ. ବ—(ବେତର କ୍ଷୁଦ୍ରାକୃତି, ତୁଳନା କର—ଅଙ୍ଗୁଳି) Betuli ବେତ ବା ବାଉଁଶ ଖଡ଼କାରେ ନିର୍ମିତ ଛୋଟ ଟୋକେଇ—दौरी; छोटी टोकरी Small basket of cane work.

ବେତେଇବା—ଦେ. କ୍ରି—୧ । ବେତ୍ରାଘାତ କରିବା—1. To strike Beteibā with cane. ୨ । ବେତ ପରି ନଇଁଯିବା—বেতান बैंत मारना बेतके येसेल बजाना 2. To bend; to shrink. [ ଯଥା—ଏ କୋଠାର କଡ଼ିଗୁଡ଼ିକ ବେତେଇ ଗଲାଣି ।]

ବେତେଇ ଯିବା—ଦେ. କ୍ରି.—ବେତେଇବା ୨ (ଦେଖ) Betei jibā Beteibā 2 (See)

ବେତ୍ତା—ସ. ବଣ. ପୁଂ—(ବିଦ୍ ଧାତୁ=ଜାଣିବା+କର୍ତ୍ତୃ. ତୃ, ୧ମା. ୧ବ; Bettā ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ବେଦବେତ୍ତା, (ବେତ୍ତ୍ରୀ—ସ୍ତ୍ରୀ) ବିଜ୍ଞାନବେତ୍ତା, ଭବିଷ୍ୟବେତ୍ତା)—୧ । ଯେ ଜାଣେ—1. Knowing. ୨ । ଅଭିଜ୍ଞ—2. Versed in; conversant with. ୩ । ପରିଣୀତା 3. Married to; marrying. ୪ । ଲାଭକର୍ତ୍ତା—4. Possessed of; gaining.

ବେତ୍ର—ସ. ବ (ଅଜ୍ ଧାତୁ କିମ୍ବା ବୀ ଧାତୁ=ଗମନ କରିବା+କରଣ. Betra ତ୍ର; ନପାତନ)—୧ । ବେତ—1. Cane; rotan.

୨ । ବେତ ବାଡ଼ି—2. A stick of cane. ୩ । ଅସୁର ବିଶେଷ—3. Name of a demon.

ବେତ୍ରକ—ଦେ. ବି—(ସଂ. ବେତ୍ରକର)—ଦ୍ୱାରପାଳ; ବେତ୍ରହସ୍ତ ପାଇକ— Betraka Door-keeper. [ଉ—ବାରତା କହି ସାମନ୍ତ ପାଦେ ଭୂରତ, ବେତ୍ରକେ କଟକ ଲୁଣ୍ଠନରେ ମଣ୍ଡିତ । ଭଞ୍ଜ. ବୈଦେହୀଶବିଳାସ ।]

ବେତ୍ର କର—ସଂ. ବି—(ବହୁବ୍ରୀହି; ବେତ୍ର+କର)—ପଢ଼ିଆରୀ (ଦେଖ) Betra kara Pardhiari (See) [ଉ—ବହୁବେ । ବେତ୍ର କରଗଣ ମଣ୍ଡ ଉଦ୍ଧତ । ଭଞ୍ଜ. ବୈଦେହୀଶବିଳାସ ।]

ବେତ୍ରକୀୟ—ସଂ. ବି—ବେତ୍ରସମୂହଯୁକ୍ତ ଦେଶ— Betrakiya Country abounding in canes.

ବେତ୍ର(ତ୍ରେ,ତ୍ରି)କେ—ଗ୍ରା. କି. ବିଣ—(ସଂ. ବ୍ୟତିରେକ)—୧ । ବ୍ୟତୀତ; Betra(tre,tri)ke ବିନା—1. Beside; without. व्यतिरेक ୨ । ଛଡ଼ା—2. Except. [ଉ—ନାଗ ବେତ୍ରକେ କେ ଆନ ଧରଣୀଧର । ଭଞ୍ଜ. ବୈଦେହୀଶବିଳାସ ।] [ଉ—ଏ ଉକ ବେତ୍ରିକେ ସୁଖ ଜାଣିମାନ୍ତୁ ନାହିଁ । ପ୍ରାଚୀ, ରହସ୍ୟମଞ୍ଜରୀ ।]

ବେତ୍ରଦଣ୍ଡ—ସଂ. ବି—୧ । ବେତ ବାଡ଼ି—1. A cane stick. Betra danda [ଦ୍ର—ଦ୍ୱାରପାଳ; ରାଜା ଓ ଦେବମନ୍ଦିରାଧ୍ୟକ୍ଷଙ୍କ ଅଧିକାରସୂଚକ ଚିହ୍ନ—Used as an insignia of royalty etc.] ୨ । ଅପରାଧୀଙ୍କୁ ବେତ୍ରପ୍ରହାରରୂପ ଦଣ୍ଡ—2. Punishment by strips of cane.

ବେତ୍ରଧର—ସଂ. ବିଣ (ଉପପଦ ତତ୍ ପୁରୁଷ; ବେତ୍ର+ଧୃ+କର୍ତ୍ତୃ. ଅ)— Betradhara ଯେ ବେତ ବାଡ଼ି ଧରିଥାଏ—Carrying or holding a cane. ସଂ. ବି— ଦ୍ୱାରପାଳ—A door-keeper. ବେତ୍ରଧାରକ, ବେତ୍ରଧାରୀ } ଅନ୍ୟରୂପ

ବେତ୍ର(ତ୍ରା)ବତୀ—ସଂ. ବି—୧ । ମାଳବଦେଶୀୟ ନଦୀବିଶେଷ; ଆଧୁନିକ Betra(tra)bati ବେତ୍ରୁଆ ନଦୀ—1. Name of a river in Malabar. [ଉ—ବେତ୍ରବତୀଯୌତ ପୁଷ୍ପ ବିବିଧ ଲକ୍ଷଣା—ରାଧାନାଥ. ମହାଯାତ୍ରା ।] ୨ । ବେତ୍ରାସୁରର ମାତା—2. Name of the mother of demon Betra.

ବେତ୍ରାଘାତ—ସଂ. ବି. (୬ଷ୍ଠୀ ବା ୩ୟା ତତ୍ ପୁରୁଷ; ବେତ୍ର+ଆଘାତ)— Betraghata ବେତଦ୍ୱାରା ପ୍ରହାର—A blow with a cane.

ବେତ୍ରାସନ—ସଂ. ବି (ମ. ପ. ଲୋ. କର୍ମଧାରୟ; ବେତ୍ରନିର୍ମିତ ଆସନ)— Betrasana ବେତର ମୋଡ଼ା ବା ଚଉକି— A seat or chair made of cane.

ବେତ୍ରାସୁର—ସଂ. ବି—ଅସୁରବିଶେଷ; ଏ ଇନ୍ଦ୍ରଙ୍କଦ୍ୱାରା ନିହତ ହୋଇ Betrasura ଥିଲା—Name of a demon killed by Indra.

ବେତ୍ରୀ—ସଂ. ବିଣ ( ବେତ୍ର+ଇନ୍ )—ବେତ୍ରଧାରୀ—Holding a Betri cane. ସଂ. ବି—ଦ୍ୱାରପାଳ—A door-keeper.

ବେତ୍ରେଇବା—ଦେ. କି—ବେତେରାଇବା ( ଦେଖ ) Betreiba Beteraiba ( See )

ବେଥଏ(ୟ)—ଦେ. ବିଣ ( ତୁଳନୀୟ—ସଂ. ବ୍ୟଥ୍ୟ; ଫା. ବେ+ Bethae(ya) ଥୟ )—ଅଥୟ; ଅସ୍ଥିର—Restless. अथय बेचैन

ବେଥଳ—ଦେ. ବିଣ ( ଫା. ବେ ଓ ସଂ. ସ୍ଥଳ )—୧ । ସୁଗଭୀର— Bethala 1. Very deep. ୨ । ଯାହାର ଗଭୀରତା ମାପ कराଯାଇ ନ ପାରେ—2. Unfathomable. ୩ । गभीर ଯେଉଁ ନଦୀ ବା ଜଳରେ ମନୁଷ୍ୟ ପଶି ପାର ହୋଇ ନ अथाह ପାରେ—3. Unfordable.

ବେଥା—ଗ୍ରା. ବି ( ସଂ. ବ୍ୟଥା )—ବ୍ୟଥା ( ଦେଖ )— Betha व्यथा दुःख Byatha ( See )

ବେଥାଇ—ଦେ. ବିଣ ( ସଂ. ଅସ୍ଥାୟୀ )—୧ । ଅସ୍ଥାୟୀ—1. Tran- Bethai अस्थायी sient. ୨ । ଅସ୍ଥିର—2. Fickle; अस्थाइ unstable.

ବେଥାନ—ଗ୍ରା. ବି-୧ । ଅଥାନ; ଅସ୍ଥାନ—1. Bad place. ୨ । ଅନୁପ- Bethana ଯୁକ୍ତ ସ୍ଥାନ—2. Unfit or unsuitable place. अस्थान ୩ । ମର୍ମସ୍ଥାନ ବା ଅଙ୍ଗ—3. A vital part of कुठाम the body.

ବେଦ—ସଂ. ବି (ବିଦ୍ ଧାତୁ=ଜାଣିବା+କର୍ମ. ଅ; ଯାହାର ଅଲୋଚନା Beda ଦ୍ୱାରା ବିଶେଷ ଜ୍ଞାନ ବା ଧର୍ମାଧର୍ମ ଜ୍ଞାନ ଜନ୍ମେ )—୧ । ବ୍ରହ୍ମାଙ୍କ ମୁଖନିଃସୃତ ହିନ୍ଦୁମାନଙ୍କ ଧର୍ମଶାସ୍ତ୍ର; ଶ୍ରୁତି— 1. The Vedas; the scriptures of the Hindus. [ ଦ୍ର—ଏହା ସଙ୍ଖ୍ୟାରେ ୪; ଯଥା—ଋକ୍, ଯଜୁଃ, ସାମ ଓ ଅଥର୍ବ । ଏମାନଙ୍କ ମଧ୍ୟରୁ ପ୍ରଥମ ୩ ଗୋଟି ପ୍ରାଚୀନ ଓ ଅଥର୍ବ ପରବର୍ତ୍ତୀ ସମୟର ବୋଲି ଅନୁମାନ କରାଯାଏ । ବ୍ରହ୍ମାଙ୍କ ମୁଖରୁ ଉଚାରିତ ହୋଇ ଋଷି ପରମ୍ପରା- କ୍ରମେ ସୃଷ୍ଟି ଆଦ୍ୟରୁ ଚଳି ଆସୁଅଛି ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ।

ହିନ୍ଦୁମାନଙ୍କର ବେଦ ପରି ଭିନ୍ନ ଭିନ୍ନ ଧର୍ମାବଲମ୍ବୀ- ମାନଙ୍କର ଧର୍ମଶାସ୍ତ୍ର ଅଛି—ମୁସଲମାନ=କୋରାଣ, ଖ୍ରୀଷ୍ଟାନ =ବାଇବଲ, ବୌଦ୍ଧ=ତ୍ରିପିଟକ, ପାରସୀ=ଜେନ୍ଦା- ବେସ୍ତା । ]

୨ । ଲୌକିକ ଓ ପାରମାର୍ଥିକ କର୍ତ୍ତବ୍ୟାକର୍ତ୍ତବ୍ୟ କର୍ମର ଶାସନରୂପ ଶାସ୍ତ୍ର, ହିନ୍ଦୁର ଆସ୍ତିକ୍ୟମୂଳକ ସର୍ବପ୍ରଧାନ ପ୍ରାମାଣିକ ଧର୍ମଶାସ୍ତ୍ର—2. The primary code of Hindu Law. ୩ । ଶାସ୍ତ୍ରଜ୍ଞାନ—3. Knowledge of the sacred books. ୪ । ଜ୍ଞାନ—4. Knowledge. ୫ । ୪ ସଂଖ୍ୟା—5. The number 4. ୬ । ଛନ୍ଦ— 6. Poetical metre. ୭ । ବ୍ୟାଖ୍ୟା—7. Commen- tary. ୮ । ଅଭିଧା—8. Title; term. ୯ । ଯଜ୍ଞାଙ୍ଗ—9. A part of Vedic offering. ୧୦ । ବିଷ୍ଣୁ—10. Bishnu. ୧୧ । ଶାସ୍ତ୍ରୋକ୍ତ ରୀତି—

11. History narrated in the scriptures.

* ଦେ. ବି—ଏକ କଉଡ଼ା କାଉଡ଼ିର ୪ ଭାଗରୁ ଏକଭାଗ—One-fourth of one cowrie money.

**ବେଦାଃ**—ସଂ. ବି ( ବିଦ୍ ଧାତୁ+କର୍ତ୍ତୃ. ଅସ୍ )—୧ । ବେଦସମୂହ—
Bedaḥ 1. The collection of the Vedas. ୨ । ସୁନା—2. Gold. ସଂ. ବିଣ—ବେତ୍ତା—Knowing.

**ବେ-ଦାକ୍(କା)**—ଦେ. ବି—୧ । ନିର୍ଭୟ—1. Fearless. ୨ । ନିଶ୍ଚିନ୍ତ—
Be-dak(kā) निर्भय बेदक 2. Free from anxiety.

**ବେଦ କୁଶଳ**—ସଂ. ବିଣ. ପୁଂ ( ୭ମୀ ତତ୍ )—ବେଦରେ ପାରଦର୍ଶୀ;
Beda kuśala ଯେ ବେଦଶାସ୍ତ୍ରକୁ ଉତ୍ତମରୂପେ ଜାଣେ—
ବେଦଜ୍ଞ, ବେଦଜ୍ଞାତା, ବେଦପାରଗ, ବେଦନିପୁଣ } ଅନ୍ୟରୂପ Well versed in the Vedas.
ବେଦକୁଶଳା, ବେଦଜ୍ଞା, ବେଦଜ୍ଞାତ୍ରୀ, ବେଦପାରଗା, ବେଦନିପୁଣା } ସ୍ତ୍ରୀ

**ବେ-ଦଖଲ୍(ଲି)**—ବୈଦେ. ବିଣ ( ଫା. ବେଦଖଲ୍ ) ( କଚରୀଆ )—
Be-dakhal(li) ୧ । ଅଧିକାରଚ୍ୟୁତ; କୌଣସି ବସ୍ତୁ ବା
বেদখল बेदखली ସମ୍ପତ୍ତିର ଅଧିକାରରୁ ବଞ୍ଚିତ ( ବ୍ୟକ୍ତି )—
1. Dispossessed of a property. ୨ । ଅନଧିକୃତ—2. Not taken possession of ( said of a property ). ବୈଦେ. ବି (ଫା) (କଚରୀଆ)—
बेदखल କୌଣସି ସମ୍ପତ୍ତିର ଅଧିକାରରୁ ଚ୍ୟୁତ ହେବା—Dispossession; discontinuance of possession.

**ବେଦଖଲ କରିବା**—ଦେ. କ୍ରି ( କଚରୀଆ )—କୌଣସି ବ୍ୟକ୍ତିକୁ
Bedakhala karibā କୌଣସି ସମ୍ପତ୍ତିର ଭୋଗାଧିକାରରୁ ଚ୍ୟୁତ
বেদখল করা କରିବା—To dispossess a person of
बेदखल करना a property.

**ବେଦଖଲ ହେବା**—ଦେ. କ୍ରି (କଚରୀଆ)—୧ । ସମ୍ପତ୍ତିରୁ ଭୋଗାଧିକାର-
Bedakhala hebā ଚ୍ୟୁତ ହେବା—1. To be dispossessed
বেদখল হওয়া of a property. ୨ । ଦଖଲ
बेदखल होना ଛାଡ଼ିଯିବା—2. To discontinue possession.

**ବେଦ ଗର୍ଭ**—ସଂ. ବି. ( ବହୁବ୍ରୀହି )—୧ । ବ୍ରହ୍ମା—1. Brahmā.
Beda garbha ୨ । ବ୍ରାହ୍ମଣ—2 Brahmaṇa.

**ବେଦ ଗାର**—ଦେ. ବି—୧ । ବେଦ ବଚନ ପରି ଅଖଣ୍ଡନୀୟ କଥା;
Beda gāra ବେଦ ବାକ୍ୟ—1. A matter as immutable as a vedic precept. ୨ । ଅଟଳ
বেদের গার
वेद आकर ବାକ୍ୟ—2. A promise which will never be violated. ୩ । ବେଦବାକ୍ୟ ପରି ଯେଉଁ ବିଷୟକୁ ସର୍ବଦା ମନେ ରଖିବା ଉଚିତ—3. A thing which should always be borne in mind. ୪। ସତ୍ୟ—4. Truth.

**ବେଦ ଗୁପ୍ତି**—ସଂ. ବି. ( ୬ଷ୍ଠୀ ତତ୍; ବେଦ+ଗୁପ୍ତି=ରକ୍ଷା )—ବ୍ରାହ୍ମଣ
Beda gupti କର୍ତ୍ତୃକ ବେଦସଂରକ୍ଷଣ—The preservation of the Vedas by a Brāhmaṇa.

**ବେ ଦଣ୍ଡା**—ଦେ. ବିଣ. (କଚରୀଆ ଭାଷା)—୧ । ଅନ୍ୟାୟ—1. Un-
Be daṇḍā just; wrong. ୨ । ବେଆଇନ୍—2. Unlawful; illegal ୩ । ପ୍ରଥାବିରୁଦ୍ଧ—3. Against custom or practice. ( ଯଥା—ବେଦଣ୍ଡା କୋବାଲା । )

**ବେଦ ଧ୍ୱନି**—ସଂ ବି. (୬ଷ୍ଠୀ ତତ୍)—ବେଦପାଠର ଶବ୍ଦ—
Beda dhwani The sound of recital of the Veda.

**ବେଦନ**—ସଂ. ବି. (ବିଦ୍ ଧାତୁ=ଜାଣିବା+ଭାବ. ଅନ)—୧ । ବୋଧ;
Bedana ଅନୁଭବ—1. Sensation; conception. ୨ । ଜ୍ଞାନ—2. Knowledge. ୩ । ଯାତନା; ବ୍ୟଥା; କ୍ଳେଶାନୁଭବ ( ଶାରୀରିକ ଓ ମାନସିକ )—3. Agony; anguish; throes; pain (bodily and mental) ୪ । କଷ୍ଟ; ଦୁଃଖ—4. Distress; trouble; sufferings. ୫ । ବିବାହ; ପରିଣୟ—5. Marriage; wedding. ୬ । ଦାନ; ଉପଢୌକନ—6. Gift; present; donation. ୭ । ଶୂଦ୍ର କାମିନୀ ଉଚ୍ଚଶ୍ରେଣୀର ବରଙ୍କୁ ବିବାହ କଲେ ସ୍ୱାମୀଙ୍କର ଉତ୍ତରୀୟ ବସ୍ତ୍ରର ପ୍ରାନ୍ତ ଧାରଣ ରୂପ ଆଚାର—7. The ceremony of a Śūdra bride holding the end of the outer sheet of a bridegroom of a higher caste while marrying him.

**ବେଦନା**—ସଂ. ବି. (ବିଦ୍ ଧାତୁ+ ଭାବ. ଅନ)—ବେଦନ (ଦେଖ)
Bedanā বেদনা दर्द Bedana (See)
ଦେ. ବି—୧ । ଦରଜ—1. Feeling of tenderness. ୨ । ଦରଜ—2. Aching.

**ବେଦନା ପାଇବା**—ଦେ. କ୍ରି—ବ୍ୟଥା ଅନୁଭବ କରିବା—
Bedanā pāibā To feel agony.
বেদনা পাওয়া वेदना पाना

**ବେଦ ନିନ୍ଦକ**—ସଂ. ବି—୧ । ନାସ୍ତିକ—1. Atheist.
Beda nindaka ୨ । ବୃଦ୍ଧ—2. Old.

**ବେଦ ନିନ୍ଦା**—ସଂ. ବି. ( ୬ଷ୍ଠୀ ତତ୍ )—୧ । ବେଦ ପ୍ରତି ଘୃଣାର୍ଥକ
Beda nindā ବାକ୍ୟପ୍ରୟୋଗ—1. Blaspheming the Vedas. ୨ । ନାସ୍ତିକତା—2. Atheism.

**ବେଦ ନିରତ**—ସଂ. ବିଣ. ପୁଂ ( ୭ମୀ ତତ୍ )—ବେଦାନୁରକ୍ତ; ବେଦ-
Beda nirata ବିହିତ ଅନୁଷ୍ଠାନକାରୀ—Devoted to the
ବେଦନିଷ୍ଠ, ବେଦପରାୟଣ } ଅନ୍ୟରୂପ teachings and precepts of the Vedas.
(ବେଦନିରତା, ବେଦନିଷ୍ଠା, ବେଦପରାୟଣା—ସ୍ତ୍ରୀ)

**ବେଦନୀୟ**—ସଂ. ବିଣ. ( ବିଦ୍ ଧାତୁ=ଜାଣିବା+କର୍ମ. ଅନୀୟ )—
Bedanīya ୧ । ଅନୁଭବନୀୟ—1. Perceptible; perceivable. ୨ । ଜ୍ଞେୟ—2. Knowable.

**ବେଦ ପାଠ**—ସଂ. ବି. (୬ଷ୍ଠୀ ତତ୍)—ବେଦକୁ ପଢ଼ିବା—Reading
Beda pāṭha or reciting the Vedas.
(ବେଦପାରାୟଣ, ବେଦାଧ୍ୟୟନ—ଅନ୍ୟରୂପ)

ବେଦ ବଂଶ—ଦେ. ବି—ବିଶ୍ୱାମିତ୍ର—The sage Biśwāmitra.
Beda baṁśa (ଉ—ବେଦବଂଶର ବିନାଶ ଉଦ୍ବେଗ । ଉଞ୍ଜ.
(ବେଦ-ବଂଶୀ—ଅନ୍ୟରୂପ) ବୈଦେହୀଶବିଳାସ ।)

ବେଦ ବଚନ—ସଂ. ବି—୧ । ବେଦଲିଖିତ ଉପଦେଶ—1. The
Beda bachana sayings of the Vedas. ୨ । ବୈଦିକ
(ବେଦ ବାକ୍ୟ—ଅନ୍ୟରୂପ) ମନ୍ତ୍ର—2. Vedic texts. ୩ ।
ସତ୍ୟ—3. Truth. ୪ । ସନାତନ ସତ୍ୟ; ଅଭ୍ରାନ୍ତ
ସତ୍ୟ—4. The eternal truth.

ବେଦବତୀ—ସଂ. ବି. ସ୍ତ୍ରୀ—କୁଶଧ୍ୱଜ ରାଜାଙ୍କର ଲକ୍ଷ୍ମୀଅଂଶଜାତା
Bedabatī କନ୍ୟା—Daughter of King Kuśadhwaja.
[ଦ୍ର—ଏ ବିଷ୍ଣୁଙ୍କୁ ପତିରୂପେ ବରଣ କରିଥିଲେ; କିନ୍ତୁ
ରାବଣ ବନରେ ଏହାଙ୍କ ରୂପରେ ମୁଗ୍ଧ ହୋଇ ବଳପୂର୍ବକ
ଧର୍ଷଣ କରିବାରୁ ଏ ଅଗ୍ନିରେ ଝାସ ଦେଇ ଆତ୍ମହତ୍ୟା
କଲେ ଓ ରାବଣଙ୍କୁ ଅଭିଶାପ ଦେଲେ ଯେ ସେ ପରବର୍ତ୍ତୀ
ଜନ୍ମରେ ସୀତାରୂପେ ଅବତୀର୍ଣ୍ଣ ହୋଇ ତାହାର ମୃତ୍ୟୁର
କାରଣ ହେବେ । ଏ ପରବର୍ତ୍ତୀ ଜନ୍ମରେ ସୀତାରୂପେ ଜନ୍ମ
ହୋଇ ରାବଣବଧର କାରଣ ହୋଇଥିବା କଥା ପୁରାଣରେ
ବର୍ଣ୍ଣିତ ଅଛି ।] ସଂ. ବିଣ—ବେଦଜ୍ଞା—(woman) Versed in the Vedas. ଦେ. ବି—ମହୀଶୂରର ଗୋଟିଏ
ନଦୀ—A river in Mysore. [ଦ୍ର—ଏହା ଗୋଟିଏ
ବନ୍ଧ ବା ଆନିକଟ (Anicut) ଦ୍ୱାରା ବନ୍ଧା ହୋଇଅଛି ।
ବନ୍ଧା ହେବା ସ୍ଥାନରେ ଏ ନଦୀର ଓସାର ୧୨୦୦ ଫୁଟ ।
୧୬୭ ଫୁଟ ଉଚ୍ଚର ପଥର ବନ୍ଧ ପଛ ୩୨୩୪ କୋଟି ଘନଫୁଟ ଜଳ ଅଟକାଇ ରଖିଅଛି । କେନାଲ ଦ୍ୱାରା କ୍ଷେତ୍ରମାନଙ୍କରେ ଜଳସେଚନର ସୁବିଧା କରାଯାଇଅଛି ।]

ବେଦ ବିତ୍(ଦ୍)—ସଂ. ବି. (ବେଦ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍)—ବିଷ୍ଣୁ—
Beda bit(d) Bishṇu. ସଂ. ବିଣ—ବେଦବିଦ୍ୟ (ଦେଖ)—
Bedabidya (See)

ବେଦବିଦ—ଦେ. ବିଣ. ( ସଂ. ବେଦବିଦ୍ )—ବେଦବିତ୍ (ଦେଖ)—
Bedabida Bedabit See) (ଉ—ସକଳ ଲୋକେ ଅଧିକାରୀ,
ଏ ସର୍ବ ବେଦବିଦଙ୍କର । ଜଗନ୍ନାଥ. ଭାଗବତ ।)

ବେଦ ବିଦ୍ୟ—ସଂ. ବିଣ. ( ବହୁବ୍ରୀହି; ବେଦ+ବିଦ୍ୟା )—ବେଦଜ୍ଞ;
Beda bidya ବେଦପାରଗ—Versed in the Vedas.
(ବେଦବିଶାରଦ, ବେଦବେତ୍ତା, ବେଦବୋଦ୍ଧା—ଅନ୍ୟରୂପ)

ବେଦ ବିଧି—ସଂ. ବି. (୬ଷ୍ଠୀ ତତ୍)—ବେଦୋକ୍ତ ବିଧି—
Beda bidhi Vedic rules.

ବେଦ ବିପରୀତ—ସଂ. ବିଣ—ବେଦରେ ନିର୍ଦ୍ଦିଷ୍ଟ ଥିବା ଉପଦେଶର
Beda biparīta ବହିର୍ଭୂତ—Opposed to the Vedas.
(ବେଦବିରୁଦ୍ଧ—ଅନ୍ୟରୂପ)

ବେଦ ବିହିତ—ସଂ. ବିଣ—ବେଦରେ ନିର୍ଦ୍ଦିଷ୍ଟ; ବେଦୋକ୍ତ—
Beda bihita In conformity with the governing
ବେଦସମ୍ମତ } ଅନ୍ୟରୂପ precepts laid down in the
ବେଦସିଦ୍ଧ } Vedas.

ବେଦ ବୃତ୍ତ—ସଂ. ବି—ବେଦୋକ୍ତ ଆଚରଣ—Conduct conforming to the Vedic precepts.
Bedabṛutta

ବେଦବ୍ୟାସ—ସଂ. ବି ( ବେଦ+ବି+ଆ+ଅସ୍ ଧାତୁ=କ୍ଷେପଣ
Bedabyāsa କରିବା+କର୍ତ୍ତୃ. ଅ; ଯେ ବେଦଶାସ୍ତ୍ରକୁ ବିସ୍ତାର-
ପୂର୍ବକ ୪ ଖଣ୍ଡରେ ବିଭକ୍ତ କରିଥିଲେ )—ପରାଶର ଓ
ସତ୍ୟବତୀଙ୍କ ପୁତ୍ର ମହର୍ଷି ଦ୍ୱୈପାୟନ—Name of a
sage, son of Parāśara. [ ଦ୍ର—କତିପୟ
ପଣ୍ଡିତଙ୍କ ମତରେ 'ବେଦବ୍ୟାସ' ବୋଲି କୌଣସି ବିଶିଷ୍ଟ
ଋଷି ନ ଥିଲେ । ପ୍ରତ୍ୟେକ ଯୁଗରେ ଯେଉଁ ପଣ୍ଡିତମାନେ
ବେଦବିଷୟ ଲୋକରେ ପ୍ରଚାର କରି ସେ ବିଷୟରେ ଗ୍ରନ୍ଥ
ପ୍ରଭୃତି ରଚନା କରୁଥିଲେ ସେହି ପଣ୍ଡିତମାନଙ୍କୁ ବେଦବ୍ୟାସ
ବୋଲି ଯାଉଥିଲା । ଯେ ଯୁଗେ ଯେଉଁ ଋଷିଗଣ, ବେଦ
ବିସ୍ତାର କଲେ ପୁଣ, ସେହି ବେଦବ୍ୟାସ ବୋଲାନ୍ତି, ତା
ଦେହେ ବିଷ୍ଣୁ ପ୍ରବେଶନ୍ତି । ଜଗନ୍ନାଥ. ଭାଗବତ । ]

ବେଦମ୍—ବୈଦେ. ବିଣ ( ପା. ବେ+ଦମ୍=ଶ୍ୱାସ )—୧ । ପ୍ରାଣାନ୍ତକ
Bedam —1. Fatal. ୨ । ଅଣନିଶ୍ୱାସି—2. Breathless; out of breath. ୩ । ଅବିଶ୍ରାନ୍ତ—3.
বেদম
बेदम Continuous; unbated; without stopping.
ବୈଦେ. କ୍ରି. ବିଣ—୧ । ପ୍ରାଣାନ୍ତକରୂପେ—1.
1. Fatally; mortally. ୨ । ଶ୍ୱାସରୁଦ୍ଧ ହେବା
ପ୍ରକାରେ—2 In a way which takes away
breath out of a person. ୩ । ଅବିଶ୍ରାନ୍ତରୂପେ—
3. Continually; uninterruptedly.

ବେଦମ୍ ଦଉଡ଼—ଦେ ବି—ଅଣନିଶ୍ୱାସୀ ହେବା ଭଳି ଦଉଡ଼—
Bedam daurḍa Running till one is out of breath.
বেদম দৌড় बेदम दौड

ବେଦମ୍ ପା(ପ୍ର)ହାର—ଦେ. ବି—ନିଷ୍ଠୁର ମାଡ଼; ନିର୍ମମ ମାଡ଼;
Bedam pā(pra)hāra ଅବିଶ୍ରାନ୍ତ ମାଡ଼; ମାଡ଼ବୃଷ୍ଟି—
(ବେଦମ୍ ମାଡ଼—ଅନ୍ୟରୂପ) Beating a person hollow.

ବେଦମତ—ସଂ. ବିଣ—ବେଦସମ୍ମତ—Approved by the Vedas.
Bedamata ସଂ. ବି—ବେଦର ନିୟମ—Doctrines laid
down in the Vedas.

ବେଦମତୀ—ଦେ. ବି. ସ୍ତ୍ରୀ ( ସଂ. ବେଦବତୀ )—ବେଦବତୀ ( ଦେଖ )
Bedamatī Bedabatī ( See ) [ଉ—ବେଦମତୀରେ ମତି
ବଳାଇ, ଦେଲା ସେ କନ୍ୟା ତନୁ ଜଳାଇ, ମୋ ହେତୁ ମୃତ୍ୟୁ
ଏ ଶାପ ଦାଇ ତନୁ ତେଜିଲେ । ଉଞ୍ଜ. ବୈଦେହୀଶବିଳାସ ।]

ବେଦମୟ—ଦେ. ବିଣ—ଜ୍ଞାନମୟ—Full of knowledge.
Bedamaya [ ଉ—ଏରୂପେ ବେଦମୟ ବ୍ରହ୍ମ, ବେଦ ନ ଜାଣେ
ତାର ମର୍ମ । ଭୂପତି. ପ୍ରେମପଞ୍ଚାମୃତ । ]

ବେଦମାତା—ସଂ. ବି. ସ୍ତ୍ରୀ—୧ । ଗାୟତ୍ରୀ—1. A mantra in the
Bedamātā Vedas. ୨ । ଦୁର୍ଗା—2. Durgā. ଦେ.
ବି—୧ । ସରସ୍ୱତୀ ନଦୀ—The river Saraswati.
[ ଉ—ନାହିଁରେ ଭାରତ ବକ୍ଷେ ଅଜ ସେ ସରିତ ବେଦମାତା । ମଧୁସୂଦନ. ଭାରତଭାବନା । ] ୨ । ବିରଜା -

2. Goddess Birajā. [ ଉ—ବୈଶୁଣ୍ଠ ବେଦ-ମାତାଙ୍କୁ ବିରଜା କହି । ପ୍ରାଚୀ. ଉଦ୍ଧବମଞ୍ଜରୀ । ]

**ବେଦ ମାର୍ଗ**—ସଂ. ବି—ବେଦବିହିତ ଆଚରଣ—
Beda mārga Conduct enjoined in the Vedas.

**ବେ ଦମ୍ଭ**—ଦେ. ବି ( ଫା. ବେ+ସଂ. ଦମ୍ଭ )—୧ । ଅଦମ୍ଭ; ଅଧୀର—
Be dambha 1. Impatient. ୨ । ଦୁର୍ବଳ—2. Weak.
ଅଧୀର बेदम (ବେଦମ୍ଭ ଲ—ଅନ୍ୟରୂପ)

**ବେ ଦରକାର(ରି)**—ବୈଦେ. ବିଣ ( ଫା. ବେଦରକାର )—
Be darakāra(ri) ଅନାବଶ୍ୟକ—Unnecessary; useless.
ବେଦରକାରୀ ( ଉ—* * ଦରକାର ବେଦରକାର କଥାମାନ
बेदरकार(री) ଅବଶାନ୍ତ ଚଳୁଅଛି । ଫକୀରମୋହନ. ଛଅମାଣ ଆଠଗୁଣ୍ଠ । )

**ବେଦ ରଙ୍କା**—ଦେ. ବିଣ—ବେଦ ପଢ଼ିବା ପାଇଁ ଉତ୍ସୁକ—Anxious
Beda raṅkā to study the Vedas. [ ଉ—ତାହା ଶୁଣି ସେ ଅଷ୍ଟାବକ୍ର ବେଦରଙ୍କା, ନଦୀରେ ଗାଧୋଇ ଛାଡ଼ିଲେ ଆଠବଙ୍କା । କୃଷ୍ଣସିଂ. ମହାଭାରତ. ବନ । ]

**ବେ ଦରଦ(ଦୀ)**—ବୈଦେ. ବିଣ ( ଫା. ବେ+ଦର୍ଦ୍ଦ=ଦୟା )—
Be daraja(ji) ୧ । ନିର୍ଦ୍ଦୟ—1. Cruel; unfeeling. ୨ ।
बेदर्दी ବିବେଚନାଶୂନ୍ୟ—2. Inconsiderate. ୩ ।
ବେଦରଦିଆ, ବେଦର୍ଦ୍ଦ(ର୍ଦ୍ଦୀ), ବେଦର୍ଦ୍ଦିଆ, ବେଦରଦ(ଦି), ବେଦର୍ଦ୍ଦ(ର୍ଦ୍ଦି) } ଅନ୍ୟରୂପ ଦାୟିତ୍ୱଜ୍ଞାନଶୂନ୍ୟ—3. Irresponsible. ୪ । ଯନ୍ତ୍ରଣାମୁକ୍ତ—4. Free from pain.

**ବେ ଦସ୍ତୁର(ରି)**—ବୈଦେ. ବିଣ ( ଫା. ବେ+ଦସ୍ତୁର=ନିୟମ )—
Be dastur(ri) ୧ । ରୀତିବହିର୍ଭୂତ—1. Not customary;
ବେଦସ୍ତୁର against custom or practice. ୨ ।
बेदस्तूर ଅନିୟମିତ—2. Irregular. ୩ । ଅବୈଧ; ବିଧି-ବହିର୍ଭୂତ; ବେଆଇନ—3. Illegal. ବୈଦେ. ବି—୧ । ବେଆଇନ କାର୍ଯ୍ୟ—1. Illegality. ୨ । ଅନିୟମ—2. Irregularity.

**ବେ ଦାଉ**—ଦେ. ବି—୧ । ଅଖଞ୍ଜ; ବେଖଞ୍ଜ; ଅକଳଙ୍କ ଅବସ୍ଥା—
Be dāu 1. Inconvenient position. ୨ । ଅସୁବିଧା
ବେଦାଓଁ —2. Inconvenience. ଦେ. ବିଣ—ଅସୁବିଧା-
बेदाव ଜନକ—Inconvenient.

**ବେ ଦାଗ**—ବୈଦେ. ବିଣ ( ଫା )—୧ । ଯହିଁରେ ଦାଗ ବା କଳଙ୍କ ନ
Be dāg ଥାଏ; ନିଷ୍କଳଙ୍କ—1. Spotless; stampless.
ବେଦାଗ ୨ । ଅଚିହ୍ନିତ—2. Unmarked.
बेदाग

**ବେ ଦାଗି**—ପ୍ରାଦେ ( ବସ୍ତୁର ) ବିଣ—ଅକଳଙ୍କ—
Be dāgi Spotless.

**ବେଦାଙ୍ଗ**—ସଂ. ବି ( ୬ଷ୍ଠୀ ତତ୍; ବେଦର ଅଙ୍ଗ=ଅବୟବ )—
Bedāṅga 'ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ' ଏହି ଛଅଗୋଟି ବେଦର ଅଂଶ—The 6 parts or sciences comprised in the Vedas.
[ ଦ୍ର—୧ । ସ୍ୱର ଉଚ୍ଚାରଣ—ଯାହାଦ୍ୱାରା ବୈଦିକ ସୂକ୍ତମାନ ଉଚ୍ଚାରଣ କରି ସ୍ୱରସଂଯୋଗପୂର୍ବକ ଗାନ କରିବାର ଶିକ୍ଷାଲାଭ ହୁଏ—୨ । କଳ୍ପ—ସୂତ୍ରଗ୍ରନ୍ଥ; ବେଦର ବ୍ରାହ୍ମଣ ଭାଗର ସାର ତତ୍ତ୍ୱମାନ ଏଥିରେ ସୂତ୍ରାକାରରେ ଗ୍ରଥିତ ହୋଇଅଛି—୩ । ବ୍ୟାକରଣ—ଶବ୍ଦ ଓ ବାକ୍ୟାଦିର ଆକାର ପ୍ରକାର ଓ ପ୍ରକୃତି ପ୍ରତ୍ୟୟାଦିର ଜ୍ଞାନ ଯହିଁରୁ ହୁଏ—୪ । ନିରୁକ୍ତ—ବୈଦିକ ଶବ୍ଦ ଓ ବାକ୍ୟର ଅର୍ଥ ପ୍ରତିପାଦକ ଗ୍ରନ୍ଥ—୫ । ଛନ୍ଦଃ—'ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁଭ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁଭ୍, ଜଗତୀ' ଏହି ୭ଟି ବୈଦିକ ଛନ୍ଦ ସମ୍ବନ୍ଧେ ଜ୍ଞାନ—୬ । ଜ୍ୟୋତିଷ—ଯଦ୍ଦ୍ୱାରା ସୂର୍ଯ୍ୟାଦି ଗ୍ରହଙ୍କର ଗତି, ସ୍ଥିତି, ଫଳ ଆଦିର ଜ୍ଞାନ ଲାଭ ହୁଏ । ]

**ବେ ଦାଢ଼**—ଦେ. ବିଣ—ଦନ୍ତୁର; ଅତୀକ୍ଷ୍ଣ—
Be dārḍha ভোঁতা बेधार Blunt; not sharp.
[ବେଦାଢ଼ୁ(ଢ଼ି)ଆ—ଅନ୍ୟରୂପ]

**ବେଦାଣ୍ଡ(ଣ୍ଡି)**—ଦେ. ବିଣ—୧ । ଲୋକାଚାରବିରୁଦ୍ଧ—1. Against
Be dāṇḍa(ṇḍi) the custom of the country.
ବେରାସ୍ତା ୨ । ଅନ୍ୟାୟ; ବେନିୟମ—2. Illegal; irregular.
बेरास्ता ୩ । ଅନୁପଯୁକ୍ତ—3. Improper.

**ବେଦାଦି**—ସଂ. ବି ( ୬ଷ୍ଠୀ ତତ୍; ବେଦ+ଆଦି )—ବେଦର ପ୍ରଥମ
Bedādi ଉଚ୍ଚାରଣ; ପ୍ରଣବ; ଓଁକାର—The mystic syllable om.

**ବେଦାଧିପ**—ସଂ. ବି (୬ଷ୍ଠୀ ତତ୍; ବେଦ+ଅଧିପ)—ପ୍ରତ୍ୟେକ ବେଦର
Bedādhipa ଅଧିପତି ଗ୍ରହ—The respective planets presiding over each Veda. [ ଦ୍ର—ଋକ୍ ବେଦର—ବୃହସ୍ପତି, ଯଜୁର୍ବେଦର—ଶୁକ୍ର, ସାମବେଦର—ମଙ୍ଗଳ, ଅଥର୍ବ ବେଦର—ବୁଧ । ]

**ବେଦାଧ୍ୟୟନ**—ସଂ. ବି (୬ଷ୍ଠୀ ତତ୍; ବେଦ+ଅଧ୍ୟୟନ)—ବେଦ ପଢ଼ିବା
Bedādhyayana The studying of the Vedas.

**ବେଦାଧ୍ୟାପକ**—ସଂ. ବିଣ. ପୁଂ ( ୬ଷ୍ଠୀ ତତ୍; ବେଦ+ଅଧ୍ୟାପକ )—
Bedādhyāpaka ଯେ ବେଦ ପଢ଼ାନ୍ତି—A person who teaches the Vedas.

**ବେଦାଧ୍ୟାପନ(ନା)**—ସଂ. ବି ( ୬ଷ୍ଠୀ ତତ୍ )—ବେଦ ପଢ଼ାଇବା—
Bedādhyāpana(nā) Teaching of the Vedas.

**ବେଦାଧ୍ୟାୟୀ**—ସଂ. ବିଣ—ବେଦ ପାଠ କରୁଥିବା ( ଛାତ୍ର )—
Bedādhyāyi Studying the Vedas.

**ବେଦାନା**—ସଂ. ବିଣ ( ଫା. ବେ+ଦାନା=ମଞ୍ଜି )—ମଞ୍ଜିହୀନ—
Bedānā Seedless. ସଂ. ବି—କାବୁଲୀ ଡାଳିମ୍ବ—
ବେଦାନା बेदाना Kabuly pomegranette.

**ବେଦାନ୍ତ**—ସଂ ବି ( ୬ଷ୍ଠୀ ତତ୍ )—ବ୍ୟାସଦେବ ପ୍ରଣୀତ ଦର୍ଶନଶାସ୍ତ୍ର;
Bedānta ବ୍ରହ୍ମର ସ୍ୱରୂପ ବି ନିରୂପକ ଶାସ୍ତ୍ର—The Vedānta;
(ବେଦାନ୍ତ ଦର୍ଶନ—ଅନ୍ୟରୂପ) the system of philosophy propounded by sage Byāsa.

**ବେଦାନ୍ତ ବାଦ**—ସଂ. ବି—ବେଦାନ୍ତ ଦର୍ଶନର ମତ; ବ୍ରହ୍ମବାଦ—The
Bedānta bāda doctrines of the Vedānta philosophy.
( ବେଦାନ୍ତମତ—ଅନ୍ୟରୂପ )

**ବେଦାନ୍ତ ବାଦୀ**—ସଂ. ବିଣ. ପୁଂ—ବେଦାନ୍ତମତାବଲମ୍ବୀ; ବ୍ରହ୍ମବାଦୀ—
Bedānta bādi Following the Vedanta doctrines.
( ବେଦାନ୍ତବାଦିନୀ—ସ୍ତ୍ରୀ )

**ବେ ଦାନ୍ତି**—ଦେ. ବିଣ. ପୁଂ (ବ୍ୟଙ୍ଗ)—ଦନ୍ତହୀନ—Toothless.
Be dānti ବେଦାଁତ **वेदाँती** ( ବେଦାନ୍ତିଆ—ଅନ୍ୟରୂପ )
( ବେଦାନ୍ତୀ; ବେଦାନ୍ତେଇ—ସ୍ତ୍ରୀ )

**ବେଦାନ୍ତୀ**—ସଂ. ବିଣ. ପୁଂ—ବେଦାନ୍ତମତାବଲମ୍ବୀ; ବ୍ରହ୍ମବାଦୀ—
Bedānti Following the doctrines propounded in the Vedānta philosophy ଦେ. ବିଣ. ସ୍ତ୍ରୀ—ବେଦାନ୍ତିର ସ୍ତ୍ରୀଲିଙ୍ଗ—Feminine of Bedānti.

**ବେ ଦାବି**—ବୈଦେ.ବି (ଫା)—ଦାବିର ଅଭାବ—Want of claim.
Be dābi ଦେ. ବିଣ—ଯାହାକୁ କେହି ଦାବି କରୁନାହିଁ—
ବେଦାବୀ **वेदावी** Unclaimed.

**ବେଦାଭ୍ୟାସ**—ସଂ. ବି (୬ଷ୍ଠୀ ତତ୍)—୧ । ବେଦପାଠପୂର୍ବକ ଘୋଷିବା—
Bedābhyāsa 1. The committing of the Vedas to memory. ୨ । ବେଦଚର୍ଚ୍ଚା; ବେଦପାଠ—
2. Studying of the Vedas. ୩ । (ବିଶେଷାର୍ଥ) ବେଦର ବିଚାର; ଅନୁଶୀଳନ; ଜପ; ଅଧ୍ୟୟନ ଓ ଅଧ୍ୟାପନା—
3. Discussion; exercise; contemplation; study and teaching of the Vedas.

**ବେ ଦାମି**—ଦେ. ବିଣ—୧ । ମୂଲ୍ୟହୀନ—1. Valueless.
Be dāmi ବେଦାମୀ **वेदामी** ୨ । ଅମୂଲ୍ୟ—2. Invaluable.

**ବେଦି(ଦୀ)**—ସଂ. ବି (ବିଦ୍ ଧାତୁ=ବିଦ୍ୟମାନ ଥିବା+ଅଧିକରଣ. ଇ)
Bedi(dī) ୧ । ଯଜ୍ଞାଦି କ୍ରିୟାର୍ଥ ପରିଷ୍କୃତ ସ୍ତୂପୀକୃତ ଭୂମି—
(ବେଦିକା—ଅନ୍ୟରୂପ) 1. Altar prepared for Vedic sacrifice. [ଦ୍ର—ବେଦୀର ଆକୃତି ସାଧାରଣତଃ ଚତୁରସ୍ର ଓ ଡମ୍ବରୁ ସଦୃଶ; ବିଭିନ୍ନ କ୍ରିୟାରେ ବେଦିର ଭିନ୍ନ ଭିନ୍ନ ନାମ ଯଥା—ସ୍ନାନ ବେଦି, ଗଙ୍ଗା ବେଦି, ଦୋଳ ବେଦି ବା ଝୁଲଣ ବେଦି, ଯଜ୍ଞ ବେଦି, ହୋମ ବେଦି, ବ୍ରତ ବେଦି, ବିବାହ ବେଦି, କୁକର୍ମ ବା କୁକୁର ବେଦି ।]
୨ । ମଞ୍ଚ—2. Platform. ୩ । ମାଟି ପଡ଼ି ଉଚ୍ଚ ହୋଇଥିବା ସ୍ଥାନ—3. A raised mound of earth
୪ । ମତ୍ସ୍ୟବିଶେଷ—4. A kind of fish. ୫ । (ବିଦ୍+କର୍ତ୍ତୃ. ଇ) ପଣ୍ଡିତ—5. Learned man; Philosopher.) ୬ । ନାମାଙ୍କିତ ମୁଦ୍ରା—6 Signet ring. ୭ । ବିରୁଡ଼ି—7. Wasp.

**ବେଦିଜା**—ସଂ. ବି. ସ୍ତ୍ରୀ—(ବେଦି+ଜନ୍+କର୍ତ୍ତୃ. ଅ+ସ୍ତ୍ରୀ. ଆ)—ଯଜ୍ଞ
Bedijā ବେଦୀରୁ ଜନ୍ମ ହୋଇ ଥିବାରୁ)—ଦ୍ରୌପଦୀ—
Draupadi.

**ବେଦିତ**—ସଂ. ବିଣ (ବିଦ୍ ଧାତୁ ଣିଚ୍=ବେଦି ଧାତୁ=ଜଣାଇବା+
Bedita କର୍ମ. ତ)—୧ । ଜ୍ଞାପିତ—1. Reported. ୨ । ନିବେଦିତ—2. Made known. ୩ । ଦର୍ଶିତ—
3. Shown; exhibited. ୪ । ସାକ୍ଷାତ୍‌କୃତ—
4. Visited; interviewed.

**ବେଦିତବ୍ୟ**—ସଂ. ବିଣ—(ବିଦ୍ ଧାତୁ+କର୍ମ. ତବ୍ୟ)—ଜ୍ଞାତବ୍ୟ; ଜ୍ଞେୟ—
Beditabya Knowable.

**ବେଦିତା**—ସଂ. ବିଣ. ପୁଂ (ବିଦ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Beditā ୧ । ଯେ ଜାଣେ, ଜ୍ଞାତା—1. Knowing. ୨ । ସାକ୍ଷାତ୍‌କର୍ତ୍ତା—2. Having seen.

**ବେଦିନ**—ଦେ. ବି—୧ । ଅଦିନ—1. Bad day. ୨ । ଦୁର୍ଦ୍ଦିନ—2.
Bedina Bad weather. ୩ । ଅସମୟ—3. Improper time. ବୈ. ବିଣ - ( ପାରସୀ. ବେ=ବିହୀନ+ଆଇନ=ଧର୍ମ)—୧ । ଧର୍ମହୀନ; ଅଧର୍ମୀ—1. Irreligious. ୨ । ପାପୀ—2. Sinful.

**ବେଦି ନଗୁତି**—ପ୍ରାଦେ. ବି. (ପୁରୀ)—ବର କନ୍ୟା ବିବାହ ବେଦୀରେ
Bedi naguti ଆସି ପହଞ୍ଚିବା (ହାତ ଗଣ୍ଠି ପଡ଼ିବା) ପର୍ଯ୍ୟନ୍ତ ଖର୍ଚ୍ଚ ହେବା ଟଙ୍କା ପାଇଁ ବରବାଲା କନ୍ୟାବାଲାଙ୍କୁ ଯାହା ଧନ ଦିଅନ୍ତି—The money paid by the bridegroom's party to the bride's party for expenses incurred by the latter till the moment of the marriage ceremony
[ ଦ୍ର—ଏହା ଏକପ୍ରକାର କନ୍ୟା ଶୁଳ୍କ । ]

**ବେଦି ମୁହଁ**—ଦେ. ବି. (ସଂ ବେଦୀ+ମୁଖ)—ଯେଉଁ ପାଖରେ ପାହାଚ
Bedi muhan ଦ୍ୱାରା ବେଦୀ ଉପରକୁ ଆସିବାକୁ ହୁଏ—The
ବେଦୀର ମୁଖ mouth of an altar; the place where
**वेदीका मुहँ** people step to an altar by means of a flight of steps (ଉ—ବିଭା ବାସି ଦିନ ବେଦି ମୁହଁ ଘୋଡ଼ା । ପ୍ରବଚନ ।)

**ବେଦୀ**—ସଂ. ବିଣ. (ବିଦ୍ ଧାତୁ+କର୍ତ୍ତୃ. ଇନ୍; ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ
Bedi ହୁଏ ଯଥା—ତ୍ରିବେଦୀ, ଦ୍ୱିବେଦୀ, ଚତୁର୍ବେଦୀ )—
ବେଦାଧ୍ୟାୟୀ—Versed in the Vedas. ସଂ. ବି—
୧ । ବେଦି (ଦେଖ)—1 Bedi (See) ୨ । ବ୍ରହ୍ମା—
2. Brahmā. ୩ । ବିବାହକାରୀ ସ୍ୱାମୀ; ପରିଣେତା—
3. Husband; bridegroom. ୪ । ପଣ୍ଡିତ—
4. Learned person. ଦେ. ବିଣ. (ସଂ. ବେଦୀୟ)—
ନିର୍ଦ୍ଦିଷ୍ଟ ବେଦର ଅନୁଗତ ବ୍ରାହ୍ମଣ—A Brahmana following the doctrines of a particular Veda. (ଯଥା—ଯଜୁର୍ବେଦୀ ବ୍ରାହ୍ମଣ )

**ବେଦୀଶ**—ସଂ. ବି. ( ବେଦୀ=ସରସ୍ୱତୀ+ଈଶ=ପ୍ରଭୁ )—ବ୍ରହ୍ମା—
Bedīsa Brahmā. (ଉ—ବେଦୀଶ ବିକଳି କର୍ମ ଆରମ୍ଭେଣ । ଉଷ. ବୈଦେହୀଶବିଳାସ ।)

**ବେଦୁଇନ୍**—ବୈଦେ. ବି. (ଇଂ. ବେଡୁଇନ୍)—ଆରବ ଦେଶୀୟ ଦସ୍ୟୁ
Beduin ଜାତି ବିଶେଷ—A caste of robbers in
ବେଦୁଇନ୍ Arabia; the Beduins
**वेदुइन्**

**ବେ ଦୁଲ୍**—ପ୍ରାଦେ. (ଯାଜପୁର) ବିଣ—ନିର୍ଭୟ; ନିଶ୍ଚିନ୍ତ—
Be dul Fearless; free from anxiety.

ବେଦୋକ୍ତ—ସଂ. ବିଣ. (୭ମୀ ତତ୍) ବେଦରେ ଲେଖା ଯାଇଥିବା—
Bedokta Prescribed in the Vedas.
(ବେଦୋଦିତ—ଅନ୍ୟରୂପ)

ବେଦ୍ୟ—ସଂ. ବିଣ (ବିଦ୍ ଧାତୁ+କର୍ମ. ଯ)—୧ । ଯାହା ଜାଣିବା ଉଚିତ;
Bedya ଜ୍ଞେୟ; ବୋଧ୍ୟ—1. Fit or proper to be known. ୨ । ସାକ୍ଷାତ୍କାର୍ଯ୍ୟ—2. Fit to be seen. ଦେ. ବି—ପରଂବ୍ରହ୍ମ—God. (ଉ—ବେଦ୍ୟ ବୋଲି ପରମ ବ୍ରହ୍ମ ଲକ୍ଷ୍ମୀସାଇଁ, ଯେଣୁଟି ସୁଖଦୁଃଖ ତାହାଙ୍କର ନାହିଁ । କୃଷ୍ଣସିଂହ. ମହାଭାରତ. ବନ ।)

ବେଧ—ସଂ. ବି (ବିଧ୍ ଧାତୁ=ବିଦ୍ଧ କରିବା+ଅ)—୧ । ବସ୍ତୁର
Bedha ସ୍ଥୂଳତାର ପରିମାଣ—1. Thickness of a thing.
(ବେଧକ—ଅନ୍ୟରୂପ) ୨ । ଗଭୀରତା—2. Depth. ୩ । ବିନ୍ଧ; ଛିଦ୍ର—3. Perforation; hole. ୪ । ବିନ୍ଧିବା; ଛିଦ୍ର କରିବା; ଫୋଡ଼ିବା—4. Perforating; piercing through. ୫ । ବିବାହାଦି ଶୁଭକାର୍ଯ୍ୟନିଷେଧକ ଗ୍ରହ ସଂସ୍ଥାନ—5. The position or conjunction of planets unpropitious for the performance of marriage and other ceremonies. ଦେ. ବି (ସଂ. ବିଧବା; ବିଧବାର ଅବୈଧ ଉପପତିସେବା)
ଛିନାଲୀ व्यभिचार ୧ । ସ୍ତ୍ରୀର ପରପୁରୁଷସଙ୍ଗମ—1. Adultery of a woman. ୨ । ବେଧୋଇ-
ଛିନାଲ व्यभिचारिणी 2. Adulteress. ୩ । ଜାରଜ ସନ୍ତାନ—
বেধুয়া जारज 3. A child born of adultery. ଦେ. ବିଣ—ଜାରଜ—Bastard.

ବେଧକ—ସଂ ବିଣ. ପୁଂ (ବିଧ୍ ଧାତୁ+କର୍ତ୍ତୃ. ଅକ)— ବିଦ୍ଧକାରକ;
Bedhaka ଯେ ଫୋଡ଼େ; ଯେ ଛିଦ୍ରକରେ—Perforating;
(ବେଧିକା—ସ୍ତ୍ରୀ) piercing; penetrating. ସଂ. ବି—
୧ । କର୍ପୂର—1. Camphor. ୨ । ଧନିଆ—
2. Coriander. ୩ । ଗର୍ଭିତ ଧାନ୍ୟ—3. Paddy blade pregnant with grains.

ବେଧ କରିବା—ଦେ.କ୍ରି—୧ । (ଅଶ୍ଳୀଳ) ଅବୈଧଭାବରେ କୌଣସି ସ୍ତ୍ରୀକୁ
Bedha karibā ଗର୍ଭବତୀ କରିବା—1. To make pregnat
व्यभिचार करना by illicit intercourse with a lady.
बेधकरना ୨ । ଛିଦ୍ର କରିବା—2 To perforate.

ବେଧ ଛୁଆ—ଦେ. ବି ( ତୁଳ ସଂ. ଅବୈଧସନ୍ତାନ)—ଜାରଜ ସନ୍ତାନ—
Bedha chhuā A bastard.
ବେଧ ପିଲା } ଅନ୍ୟରୂପ বেধুয়া, বেজন্ম, বেদো
ବେଧ ଫଳ } अकुला, जारज सन्तान

ବେଧଡକ—ଦେ. ବିଣ—୧ । ନିର୍ଭୟ- 1. Fearless. ୨ । ନିଶ୍ଚିନ୍ତ—
Be-dhardaka 2. Free from anxiety. ୩ । ଅପରିମିତ;
বেধড়ক ଅତ୍ୟନ୍ତ—3. Excessive. ଦେ. କ୍ରି. ବିଣ—ଭୟ ନ
बेधडक କରି—Fearlessly. (ଉ—କିଛି ପରବାଏ କରିବେ ନାହିଁ, ବେଧଡ଼କ ଜେଲଖାନାକୁ ଚାଲିଯାଉନ୍ତୁ । ଫକୀରମୋହନ. ଛମାଣଆଠଗୁଣ୍ଠ ।)

ବେଧ ଧରିବା—ଦେ. କ୍ରି—ସ୍ତ୍ରୀ ପାପପ୍ରଣୟରେ ଆସକ୍ତା ଥିବା ସମୟରେ
Bedha dharibā ତାକୁ ଗିରଫ କରିବା—To detect a woman committing adultery. ( ଉ—ବେଧକୁ ଧରିବ ଖଟରେ । ତଗ )

ବେଧନ—ପ୍ରାଦେ (ବାମଣ୍ଡା) – କାହଣ—Chisel.
Bedhan ( ବେଧୁଣ—ଅନ୍ୟରୂପ )

ବେଧନ—ସଂ. ବି (ବିଧ୍ ଧାତୁ+ଅନ)—ଭେଦନ; ବିଦ୍ଧକରଣ—
Bedhana Piercing; perforating. ଦେ. ବି. ସ୍ତ୍ରୀ—(ସ୍ତ୍ରୀମାନଙ୍କ ମଧ୍ୟରେ ଥଟ୍ଟା ଓ ଗାଳିରେ (ବ୍ୟବହୃତ)—ବେଧୋଇ— An adulteress.

ବେଧନୀ—ସଂ. ବି (ବିଧ୍ ଧାତୁ+ କରଣ. ଅନ+ସ୍ତ୍ରୀ. ଈ)—୧ । ମଣିଆଦି
Bedhanī ଭେଦ କରିବାର ଛୁଞ୍ଚି—1. A needle to bore into gems. ୨ । ଫୋଡ଼ଣୀ—
ବେଧନାସ୍ତ୍ର } ଅନ୍ୟରୂପ 2. Gimlet. ୩ । ଭଅଁର—3. A
ବେଧନିକା } drill; a boring needle.

ବେଧନୀୟ—ସଂ. ବିଣ (ବିଧ୍. ଧାତୁ+କର୍ମ. ଅନୀୟ)—ଭେଦ୍ୟ—
Bedhanīya Penetrable.

ବେଧ ପକା(କେ)ଇବା—ଦେ. କ୍ରି—(ସ୍ତ୍ରୀ ପକ୍ଷରେ) ପରପୁରୁଷ ସଙ୍ଗମ
Bedha pakā(ke)ibā କରିବା—To commit adultery
व्यभिचार करना with a paramour.

ବେଧ ବୁଜୁଲା(ଲି)—ଦେ. ବି—୧ । ପ୍ରସବାନ୍ତେ ଅବୈଧ ପ୍ରଣୟୋତ୍ପନ୍ନ
Bedha bujulā(li) ଭ୍ରୂଣ ବା ସନ୍ତାନାଦିକୁ ଗୋପନ କରି ଫୋପାଡ଼ି ଦେବା ନିମନ୍ତେ ବେଧୋଇ ସ୍ତ୍ରୀ ବାନ୍ଧିଥିବା ପୁଡ଼ା—1. A package containing the offspring of adultery which an adulteress wants to dispose of secretly. ୨ । (ଲକ୍ଷଣାର୍ଥ) କୌଣସି ଗୋପନୀୟ ବସ୍ତୁ—2. ( figurative ) A secret thing or a thing which a person wants to conceal.

ବେଧରମୀ—ଗ୍ରା. ବିଣ (ସଂ. ବିଧର୍ମୀ)—୧ । ଅନ୍ୟ ଧର୍ମାବଲମ୍ବୀ—
Bedharamī 1. Professing a different religion.
বিধর্মি ୨ । ଧର୍ମତ୍ୟାଗୀ—2. Renegade; converted to
बेधरमी another religion. ୩ । ପାପୀ—3. Sinning;
(ବେଧର୍ମୀ—ଅନ୍ୟରୂପ) sinful.

ବେଧସ—ସଂ. ବି (ବେଧସ୍+ଅ)—ଅଙ୍ଗୁଷ୍ଠମୂଳ; ବୁଢ଼ା ଅଙ୍ଗୁଠିର ମୂଳ—
Bedhasa The base of the thumb.

ବେଧା—ପ୍ରାଦେ. ବିଣ. ପୁଂ (ପୁରୀ; ବାଲେଶ୍ୱର ଗାଳିରେ ବ୍ୟବହୃତ)—
Bedhā ବେଧୁଆ (ଦେଖ(—Bedhuā (See). ଦେ. ବି—(ସଂ. ବେଧା)—ବ୍ରହ୍ମା—Brahmā.

ବେଧାଇ—ପ୍ରାଦେ (ସମ୍ବଲପୁର) ବିଣ. ସ୍ତ୍ରୀ—ବେଧୋଇ;ନଷ୍ଟଚରିତ୍ରା (ସ୍ତ୍ରୀ);
Bedhāi ବ୍ୟଭିଚାରିଣୀ—Unchaste (woman).
ছিনাল व्यभिचारिणी

ବେଧାଈ ଛୁଆ—ପ୍ରାଦେ. ( ସମ୍ବଲପୁର ) ବି—୧ । ବେଧ ଛୁଆ; ଜାରଜ
Bedhāi chhuā ସନ୍ତାନ—1. Illegitimate son. ୨ । ବେଧୂଆ ( ଦେଖ )—2. Bedhuā ( See )

ବେଧାଃ—ସଂ. ବି ( ବିଧ୍ ଧାତୁ=ବିଧାନ କରିବା+କର୍ତ୍ତୃ. ଅସ୍ ପ୍ରତ୍ୟୟ ବା ବି ଉପସର୍ଗ+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଅସ୍ )—୧ । ବ୍ରହ୍ମା—1. Brahmā. ୨ । ବିଷ୍ଣୁ—2. Bishnu. ୩ । ସୂର୍ଯ୍ୟ—3. The sun. ୪ । ପଣ୍ଡିତ—4. Philosopher. ୫ । ଶ୍ୱେତାର୍କ ବୃକ୍ଷ—5. Name of a plant ( Calotropis Gigantica ). ୬ । ଅନନ୍ତଙ୍କ ପୁତ୍ର—6. The son of Ananta.
Bedhāh

ବେଧାଡ଼ି—ଦେ. ବିଣ—୧ । ଏକ ସରଳରେଖାରେ ନ ଥିବା—1. Not arranged in a line. ୨ । ବେଧାରା; ଅନିୟମିତ—2. Irregular.
Bedhārdi
বেধারা बेधाडी बेधारा

ବେଧାରା—ଦେ. ବି ( ଫା. ବେ+ସଂ. ଧାରା )—୧ । ଅନିୟମ; ଅନିୟମ—1. Irregularity. ୨ । ଗୋଲମାଲ—2. Confusion.
Bedhārā
বেধারা बेधारा
ଦେ. ବିଣ—୧ । ଅନିୟମିତ—1. Irregular. ୨ । ଗୋଲମାଲଥିବା; ବିଶୃଙ୍ଖଳ—2. Confused. ୩ । ସ୍ୱାଭାବିକ ବିରୁଦ୍ଧ—3. Against custom or practice.

ବେଧିତ—ସଂ. ବିଣ ( ବିଧ୍ ଧାତୁ+କର୍ମ. ତ )—ବିଦ୍ଧ କରାଯାଇ ଥିବା—Perforated.
Bedhita

ବେଧିନୀ—ସଂ. ବି. ସ୍ତ୍ରୀ ( ବିଧ୍ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ )—୧ । ଜୋକ—1. Leech. ୨ । ମେଥି—2. Fenugreek.
Bedhinī

ବେଧୀ—ସଂ. ବିଣ. ପୁଂ ( ବିଧ୍ ଧାତୁ+ଇନ୍; ୧ମା. ୧ବ )—ବେଧକ ( ଦେଖ )—Bedhaka ( See ) ଦେ. ବିଣ—( ବେଧିନୀ—ସ୍ତ୍ରୀ ) ବେଧୋଇ; ପରପୁରୁଷରତା ସ୍ତ୍ରୀ—An adulteress.
Bedhī

ବେଧୁଆ—ଦେ. ବିଣ. ପୁଂ ( ଭୂଲ. ସଂ. ଅବୈଧ )—୧ । ଜାରଜ—1. Bastard. ୨ । ପରସ୍ତ୍ରୀରତ—2. Adulterer. ୩ । ( ବ୍ୟଙ୍ଗ ) ଅଧୁଆ; ଅସ୍ନାତ—3. ( ironical ) Unwashed.
Bedhuā
বেদু(ধু)য়া; বেদো जारज
[ବେଧେ(ଧୋ)ଇ—ସ୍ତ୍ରୀ] ব্যভিচারী बेधुआ

ବେଧୁଣୀ—ପ୍ରାଦେ ( ଦକ୍ଷିଣଭୂମି; ସଂ. ବେଧନୀ ) ବି—ଲିହଣ—Chisel.
Bedhuṇi

ବେଧୁମ୍—ବୈଦେ. ବିଣ ( ଫା. ବେଦମ୍ )—୧ । ବେଜାୟ; ଅତିରିକ୍ତ—1. Excessive. ୨ । ଅତ୍ୟନ୍ତ—2. Very much.
Bedhum
বেদম बेदम

ବେଧେ(ଧୋ, ଧୁ)ଈ—ଦେ. ବିଣ. ସ୍ତ୍ରୀ—ପରପୁରୁଷରତା ସ୍ତ୍ରୀ—Adulteress.
Bedhe(dho, dhu)ī
छिनाल , व्यभिचारिणी, बेचाली

ବେଧେ(ଧୋ)ଈ ପୁଅ—ପ୍ରାଦେ. ବି (ପୁରୀ ଗାଳି) (ଭୂଲ. ସଂ. ଅବୈଧପୁତ୍ର)—ଜାରଜ—A bastard.
Bedhe(dho)ī pua
ବେଧେ(ଧୋ)ଇ ପ(ପୋ), ବେଧୋଇ ପୁଅ, ବେଧୋଇ ପୋ, ବେଢ଼ି ପୋ } —ଅନ୍ୟରୂପ

ବେଧ୍ୟ—ସଂ. ବିଣ ( ବିଧ୍ ଧାତୁ+କର୍ମ. ଯ )—ବେଧନୀୟ—Penetrable. ସଂ. ବି—ଶରବ୍ୟ; ଲକ୍ଷ୍ୟ—Target; a mark to shoot at a butt.
Bedhya

ବେ ନଜର—ବୈଦେ. ବି ( ଫା )—୧ । ତତ୍ତ୍ୱାବଧାରଣର ଅଭାବ—1. Want of supervision. ୨ । ବେ ଅନୁଗ୍ରହ ଦୃଷ୍ଟି—2. Unfavourable look. ୩ । ଦୂରଦୃଷ୍ଟିର ଅଭାବ—3. Want of foresight ୪ । ଦୃଷ୍ଟିର ଅଭାବ—4. Negligence. ବୈଦେ. ବିଣ - ବେନଜରି ( ଦେଖ )—Benajari ( See )
Be najara
বেনজর बेनजर
( ସୁନଜର—ବିପରୀତ )

ବେ ନଜରି—ବୈଦେ. ବିଣ ( ଫା. ବେ ନଜର+ଇ )—୧ । ବେ ଅନ୍ଦାଜ—1. One who has no sense of proportion ୨ । ଅମନୋଯୋଗୀ—2. Careless; negligent.
Be najari
বেনজর बेनजरी (ବେନଜରିଆ—ଅନ୍ୟରୂପ)

ବେ ନ(ଲା)ବଜ୍—ବୈଦେ. ବି ( ଫା. ବେଲବ୍ଜ୍ )—ଅଶୁଦ୍ଧ—Incorrect.
Be na(la)baj बेलबज

ବେନସିବ(ବା)—ବୈଦେ. ବିଣ ( ଫା. ବେନସୀବ୍ )—ହତଭାଗା—Unfortunate. ବୈଦେ. ବି (ଫା)—ମନ୍ଦଭାଗ୍ୟ—Misfortune; ill-luck.
Be nasib(bā)
বদনসীব बेनसीब

ବେନା—ପ୍ରାଦେ. (ସମ୍ବଲପୁର) ବି—ବେଣା (ଦେଖ) Beṇā (See)
Bonā

ବେ ନାଏ(ୟ)କ୍—ଦେ. ବି. ( ଫା. ବେଲ୍ପାୟକ୍ )—୧ । ନାଲାୟକ; ନିକୃଷ୍ଟ—1. Inferior. ୨ । ଅନୁପଯୁକ୍ତ—2. Unworthy. ୩ । ଅଯୋଗ୍ୟ—3. Unfit.
Be nāe(ya)k
নালায়েক बेलायक
[ବେଲାଏ(ୟ)କ୍—ଅନ୍ୟରୂପ]

ବେନାତି—ପ୍ରାଦେ. (ସମ୍ବଲପୁର) ବି—ବେଞ୍ଜାତି (ଦେଖ) Benjāti (See)
Benāti

ବେନାମ(ମି)ଦାର—ବୈଦେ. ବି. (କଚେରୀ) (ଫା)—ପାଙ୍କା ନାମରେ ଅନ୍ୟ ବ୍ୟକ୍ତିର ସମ୍ପତ୍ତି ବେନାମି କରାଯାଏ—An ostensible holder of a property; a nominal owner.
Benāma(mi)dār
বেনামীদার बेनामदार

ବେନାମି—ବୈଦେ. ବି. (କଚେରୀ) (ଫା. ବେ+ନାମ=ନାମ, ପଣ)—ଅନ୍ୟ ନାମରେ ପ୍ରକାଶିତ ହୋଇଥିବା ବା କିଣା ହୋଇଥିବା—1. (property) Benami; purchased in the name of a person other than the real owner; held in another person's name. ୨ । ନାମ କିଛି ନ ଯାଇ ପ୍ରକାଶିତ ହୋଇଥିବା—2. Anonymous. ୩ । ନାମ ମାତ୍ର—3. Nominal; fictitious. ଦେ ବି - ୧ । ବେନାମି ଚିଠି (ଦେଖ)
Benāmi
বেনামী बेनामी
(ସ୍ୱନାମି—ବିପରୀତ)
ବେନାମ, ବେନାମା } ଅନ୍ୟରୂପ

1. Benāmi chiṭhi (See) ୨ । ବେନାମି କାରବାର (ଦେଖ)—2. Benāmi kārabāra (See)

**ବେନାମି କରିବା**—ଦେ. କି. (କଚରିଆ)—ମହାଜନ ଅବଦଙ୍କ ହାତରୁ ରକ୍ଷା ପାଇବା ପାଇଁ ଆପଣାର କୌଣସି ସମ୍ପତ୍ତିକୁ ବିଶ୍ୱାସରେ ଅନ୍ୟ ନାମରେ କାଗଜ ପତ୍ରରେ ଦରଜ କରାଇ ଦେବା—To have one's property transferred nominally to another person.
Benāmi karibā
বেনামী করা
**बेनामी करना**

**ବେନାମି କବ(ବା)ଲା**—ବୈଦେ. ବି. ( କଚରିଆ; ଫା )—ଯେଉଁ କବାଲାରେ ଖରିଦଦାର ବୋଲି ଯାହାର ନାମ ଉଲ୍ଲେଖ ଥାଏ ସେ ପ୍ରକୃତ ଖରିଦଦାର ନ ଥାଇ ଅନ୍ୟ ବ୍ୟକ୍ତି ବା ବ୍ୟକ୍ତିମାନେ ସେ ସମ୍ପତ୍ତିର ପ୍ରକୃତ ପକ୍ଷରେ ମାଲିକ ଥାଏ—A Benami kabālā or deed of sale in the name of an ostensible purchaser.
Benāmi kaba(bā)lā
বেনামী কবালা
**बेनामी कबाला**

**ବେନାମି କାରବାର**—ବୈଦେ. ବି. ( କଚରିଆ ) (ଫା)—ଅସଲ ମାଲିକର ନାମ ଗୋପନ ରଖାଯାଇ କରାଯିବା କାରବାର—Benami transaction; a paper transaction.
Benāmi kārabāra
বেনামী কারবার
**बेनामी कारबार**

**ବେନାମି ଚିଠି**—ବୈଦେ. ବି. (ଫା)—ଯେଉଁ ଚିଠିରେ ପ୍ରେରକ ଆପଣାର ନାମ ଗୋପନ କରିଥାଏ—Anonymous letter.
Benāmi chiṭhi
বেনামী চিঠি
**बेनामी चिट्ठी**

**ବେନାମି ତମସୁକ**—ବୈଦେ. ବି. ( କଚରିଆ ) (ଫା)—୧ । ଯେଉଁ ତମସୁକରେ ଲେଖାଥିବା ମହାଜନ ପ୍ରକୃତ ମହାଜନ ନ ଥାଇ ଅନ୍ୟ ବ୍ୟକ୍ତି ମହାଜନ ହୋଇଥାଏ—1. A bond executed in favour of an ostensible creditor. ୨ । ମହାଜନଙ୍କ ହାତରୁ ଆପଣା ସମ୍ପତ୍ତି ରକ୍ଷା କରିବା ଉଦ୍ଦେଶ୍ୟରେ ବିନା ଟଙ୍କାନେଣଦେଣରେ ଅନ୍ୟ ବ୍ୟକ୍ତିକୁ ମହାଜନରୂପେ ଠିଆ କରାଇ କରାଯିବା ତମସୁକ—2. A fictitious bond executed without passing of consideration.
Benāmi tamasuka
বেনামী তমস্সুক
**बेनामी तमस्सुक**

**ବେନାରସ**—ଦେ. ବି. (ନାମ) (ସଂ. ବାରାଣସୀ; ଇଂ. ବେନାରସ)—ବନାରସ; କାଶୀ—Benares.
Benārasa
বেনারস **बनारस**

**ବେନାହ(ହା)କ**—ଦେ. କି. ବିଣ. ( ଫା. ନାହକ୍ )—ବୃଥା; ଅକାରଣେ—In vain.
Benāha(hā)ka
নাহক **नाहक**

**ବେନି**—ଦେ. ବିଣ. ( କେବଳ ପଦ୍ୟରେ ବ୍ୟବହୃତ ) (ପ୍ରା. ବିଣ୍ଣି)—୧ । ଦୁଇ ସଂଖ୍ୟକ—1. Two. ୨ । ଉଭୟ—2. Both. (ଉ—ଶୁଣୁଥିବ ଏକା ଭେଉ ବେନି ଶ୍ରୁତି । କୃଷ୍ଣସିଂହ. ମହାଭାରତ. ବନ ।)
Beni
দু
**दो**

**ବେନଥ(ହା)ଜ**—ଦେ. ବି—ବିସ୍ମରଣ—Forgetting.
[illegible]nā(hā)ja বিস্মরণ **बिसरन**

**ବେନିଏ(ଏଁ)**—ଦେ. ସର୍ବନାମ (ପଦ୍ୟ)—ଦୁହେଁ; ଦୁଇଜଣଯାକ;ଉଭୟେ—Both. (ଉ—ବେନି ପରେ ପଡ଼ନ୍ତି ବେନିଏ । ରାଧାନାଥ. ମହାଯାତ୍ରା ।)
Benie(eṅ)
দু জনা **दोनो**

**ବେନିକୁଳ**—ଦେ. ବି—(ସ୍ତ୍ରୀ ମାନଙ୍କର) ବାପ ଘର ଓ ଶାଶୁ ଘର—
Benikula
দু কুল (ଉ—ସବୁ ସମ୍ପଦ ବେନିକୁଳ, ଛାଡ଼ିଲୁ ସେହେ ଛଡ଼ା ଫୁଲ । ଭୂପତି. ପ୍ରେମପଞ୍ଚାମୃତ ।)
**दोनो कुल**

**ବେନିମାନ**—ପ୍ରାଦେ• (ସମ୍ବଲପୁର) ବି—୧ । ଜାମୁର୍ଧି (ଦେଖ) 1. Jāmurdhi (See) ୨ । ଚିକ୍କଣୀ (ଦେଖ)—2. Chikkaṇī (See)
Benimāna

**ବେନିୟ(ହ)ତ(ତି)**—ଦେ. ବିଣ. ( ଫା. ବେ+ଅ. ନିୟତ୍ତ )—୧ । କୃତଘ୍ନ—1. Ungrateful. ୨ । ନିମକହାରାମ; ଅବିଶ୍ୱାସୀ—2. Unfaithful; perfidious. ୩ । ଯେ କୌଣସି ବିଷୟ ପ୍ରତି ଚିରକାଳ ଆସ୍ଥା ବା ଭକ୍ତି ରଖି ନ ପାରେ—3. Inconstant; fickle. ଦେ. ବି—୧ । ଗୁଣ ନ ମାନିବା; କୃତଘ୍ନତା—1. Ingratitude. ୨ । ନିମକ ହାରାମି—2. Perfidy. ୩ । ମାନସିକ ଦୃଢ଼ତାର ଅଭାବ—3. Inconstancy. ୪ । ଦୁରଦୃଷ୍ଟ; ମନ୍ଦଭାଗ୍ୟ; ଦୁର୍ଭାଗ୍ୟ—4. Misfortune.
Beniya(ha)ta(ti)
বেনিয়ত
**बेनियत**
**बेनियती**

**ବେନିୟ(ୟା)ନ**—ଦେ. ବି. (ସଂ. ବଣିକ)—ଅଣ୍ଟା ପର୍ଯ୍ୟନ୍ତ ଲମ୍ବ, ଜାଲି ବୁଣା କୁର୍ତ୍ତା; ଗେଞ୍ଜି—A gauze underwear; banian. [ଦ୍ର—ପୂର୍ବେ କଲିକତାର ବଣିଆମାନେ ଏହିପରି ଅଧା କୁରୁତା ପିନ୍ଧୁଥିବାରୁ ସାହେବମାନେ ଏହି କୁର୍ତ୍ତାକୁ ଏହି ନାମ ଦେଇ ଅଛନ୍ତି ।]
Beniya(yā)n
বেনিয়ান
**बनियाइन**

**ବେନିୟମ**—ଦେ. ବି—୧ । ଅନିୟମ—1. Irregularity. ୨ । ନିୟମର ଅଭାବ—2. Want of rules. ୩ । ଅଶୃଙ୍ଖଳା—3. Want of discipline or system.
Beniyama
বেনিয়ম
**बेनियम**
(ବେନିଅମି—ଅନ୍ୟରୂପ)

**ବେନିଶାଣ(ଣି)**—ବୈଦେ. ବିଣ (ଫା. ବେ ନିଶାନ୍ )—ଅଚହ୍ନିତ; ଚିହ୍ନଶୂନ୍ୟ—Having no distinctive mark; unidentifiable.
Benisāṇa(ṇi)
**बेनिशान**

**ବେନିଶାପ**—ବୈଦେ. ବି ଓ ବିଣ ( ଫା. ବେଇନ୍‌ସାଫ )—ବେଇନ୍‌ସାଫ୍ (ଦେଖ)—Beinsāp (See).
Benisāp

**ବେନୁ**—ଦେ. ବି (ସଂ. ବେଣୁ )—୧ । ବେଣୁ; ବଂଶୀ—1. Flute. ୨ । ବେଣୁଧର ନାମକ ବ୍ୟକ୍ତିଙ୍କୁ ଡାକିବା ନାମ—2. Name for calling persons named Benudhara.
Benu
বেণু
**बेनु**

**ବେଣ୍ଡର**—ପ୍ରାଦେ (ବସ୍ତର) ବି—ଘାଇ ମାଙ୍କଡ଼—Ape.
Bendarā

**ବେଣ୍ଡା**—ପ୍ରାଦେ ( ଗଡ଼ଜାତ )—ଲମ୍ବା ଖଇଁଚ—A long trap for catching fish. [ ଦ୍ର—ଏହା ମାଛ ଧରିବାରେ ବ୍ୟବହୃତ ହୁଏ, ଏ ମୁଣ୍ଡାପରି ।]
Bendā

ବେନ୍ଦାଳି—ପ୍ରାଦେ (ଗଞ୍ଜାମ) ବି—ଜିଗର; ଏକଜିଦ୍—
Bendāḷi Obstinacy.

ବେନ୍ଦ୍ରୀ—ପ୍ରାଦେ ( ସମ୍ବଲପୁର ) ବି—( ସଂ. ବାନରୀ; ହି. ବନ୍ଦରୀ=ମାଈ ମାଙ୍କଡ଼)—କୁତ୍ସିତା ସ୍ତ୍ରୀ—A bad woman. [ ଉ—ଘରେ ନାହିଁ ବେନ୍ଦ୍ର (ଚଗ୍ଲକନା), ବାଲ କୁରୁଚେ (ମୁଣ୍ଡ କୁଣ୍ଡାଉଛି) ବେନ୍ଦ୍ରୀ । ଛଗ ।]
Bendrī

ବେପ୍ (ଧାତୁ)—ସ—କମ୍ପିତ ହେବା—
Bep (root) To tremble.

ବେ ପଥ(ନ୍ଥ)—ଦେ. ବି—ବିପଥ (ଦେଖ)—Bipatha (See).
Be patha(ntha) विपथ **बेरास्ता**

ବେପଥୁ—ସଂ. ବି (ବେପ୍ ଧାତୁ+ଭାବ. ଅଥୁ)—୧ । କମ୍ପ; କମ୍ପନ—
Bepathu 1. Shaking; trembling; quaking; shiver; tremor. [ ବ୍ୟ—ଏହା ଅଷ୍ଟ ସାତ୍ତ୍ୱିକାନୁଭାବ ମଧ୍ୟରୁ ଏକତମ—ରାଗ, ଦ୍ୱେଷ ବା ସ୍ନେହାଦି ହେତୁରୁ ଯେଉଁ ଗାତ୍ର-କମ୍ପ ହୁଏ ତାହାର ନାମ ବେପଥୁ । ଏହାର ଉଦାହରଣ—ଲେଖୁ ଲେଖୁ ଚକ୍ରଲକ୍ଷାକମ, ଲେଖିଲେ ତହିଁରେ ନିଜ ନାମ, ଥରକୁଥର ଥରଇ ତାଙ୍କ କର, ଦେଖି ସଖୀ ମୁହିଁ କଲ ଡମ, ଗୋ ହେଲ କହ, କବ ଶବ୍ଦ ଚୋର ଛାଡ଼ ନାହିଁ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ବେପନ—ସଂ. ବି (ବେପ୍ ଧାତୁ+ଭାବ. ଅନ)—କମ୍ପ; କମ୍ପନ—
Bepana Shaking; quaking.

ବେପମାନ—ସଂ. ବିଣ. ପୁଂ (ବେପ୍ ଧାତୁ+କର୍ତ୍ତୃ. ଆନ)—କମ୍ପମାନ; ଚେପ
Bepamāna କମ୍ପୁଅଛି—Shaking; quaking; quivering; trembling; shivering.
(ବେପମାନା—ସ୍ତ୍ରୀ)

ବେ ପରଦା—ବୈଦେ.ବି (ଫା ବେ+ପରଦା=ଆବରଣ)—୧ । ଉନ୍ମୁକ୍ତ;
Be paradā ଆବରଣହୀନ; ଖୋଲା; ବେଆବରୁ—1. Unscreened; uncovered; open;
( ବେପର୍ଦ୍ଦା—ଅନ୍ୟରୂପ
বেপবদা exposed. ୨ । ବେହୁଦା; ନିର୍ଲ୍ଲଜ—2 Shameless.
**बेपरदा** ୩ । ବେଇଜ୍ଜତ; ସମ୍ଭ୍ରମଶୂନ୍ୟ—3 Shorn of prestige; immodest.

ବେ ପରବା—ବୈଦେ. ବିଣ (ଫା. ବେପର୍‌ବା)—୧ । ନିର୍ଭୟ—
Be parabā 1. Fearless. ୨ । ନିଶ୍ଚିନ୍ତ—2. Free from anxiety.
বেপরবা, বেপরোয়া **बेपरवाह; बेपरवा**
(ବେପର୍‌ବାଏ(ୟ), ବେପରୁଆ, ବେପରୱାଇ, ବେପରୱା } ଅନ୍ୟରୂପ

ବେପ(ଫ)ସନ୍ଦ—ବୈଦେ. ବିଣ (ଫା. ବେପସନ୍ଦ୍)—୧ । ଅମନୋନୀତ;
Bepa(pha)sanda ଗରପସନ୍ଦ—1. Unapproved. ୨ । ବେପসন্দ ବିଶ୍ୱାସର ଅଯୋଗ୍ୟ—2. Unbelievable.
**गरपसन्द्**

ବେ ପାଞ୍ଚ—ଦେ. ବି—ଗଣନାରେ ଭୁଲ—Miscalculation;
Be pāñcha wrong estimate. ଦେ. ବିଣ—୧ । ଅସୁବିଧା-
**बेपाँच** ଜନକ—1. Inconvenient. ୨ । ପୂର୍ବରୁ ବ୍ୟବସ୍ଥା କରାଯାଇ ପାର ନ ଥିବା—2. Unprovided for.

ବେପାର—ଦେ. ବିଣ—ଅକୂଳ (ସମୁଦ୍ର)—
Bepār Endless (See).

ବେପାର—ଦେ. ବି (ସଂ. ବ୍ୟବହାର; ବ୍ୟାପାର)—୧ । ବ୍ୟବସାୟ;
Bepāra ବାଣିଜ୍ୟ—1. Trade; business. (ଉ—ତାହାଙ୍କ
বেপার ମଧ୍ୟେ ସେ ସୁବୁଦ୍ଧି, ଜାଣେ ବେପାର ସବବୁଦ୍ଧି । ଜଗନ୍ନାଥ.
**वपापार, बेपार** ଭାଗବତ ।) ୨ । ପେଶା; ଜୀବିକା—2. Profession. ୩ । ଘଟଣା; ବ୍ୟାପାର; କାର୍ଯ୍ୟ—3. Event; work; action. ୪ । ଅଳ୍ପ ମୂଳଧନରେ ବ୍ୟବସାୟ—4. Petty trade. ୫ । ଆଡ଼ମ୍ବର; ଘାଇଟ; କାମ—5. The works of a household. (ଉ—ଯଶୋଦା ବୋଇଲନ୍ତି ଉତ୍ତର, ଘର ବେପାର ତୁମ୍ଭେ କର । ଜଗନ୍ନାଥ. ଭାଗବତ ।)

ବେପାର ବଣିଜ—ଦେ ବି ( ସହଚର; ସଂ. ବ୍ୟାପାର+ବାଣିଜ୍ୟ )—
Bepāra baṇija ବ୍ୟବସାୟ—Trade; business. (ଉ—
বেপার বাণিজ্য ଏ କଥା, ସେ କଥା, ବେପାର ବଣିଜ କଥା ହେଉଁ
**वपापार वनिज** ହେଉଁ ବାଲ୍ୟପ୍ରସଙ୍ଗ ପଡ଼ିଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ବେପାରୀ—ଦେ. ବି (ସଂ. ବ୍ୟାପାରୀ)—୧ । ବ୍ୟବସାୟୀ; ବଣିକ୍—
Bepārī 1. Trader; trademan. ୨ । ଛୋଟ ବଣିକ୍—
( ବେପାରିଆ—ଅନ୍ୟରୂପ ) 2. A petty trader. ( ଉ—
বেপারী ବେପାରୀ ବଣିଜାର ପ୍ରାୟେ, ସଂସାର ମାର୍ଗେ ଭ୍ରମୁଥାଏ—
**वपा(बे)पारी** ଜଗନ୍ନାଥ. ଭାଗବତ ।) ପ୍ରାଦେ (ଗଞ୍ଜାମ) ବି—ଗଞ୍ଜାମର ଜାତିବିଶେଷ—A caste in Ganjam.

ବେ ପୀର୍—ବୈଦେ. ବିଣ (ଫା)—୧ । ଅଗୁରୁଆ; ଗୁରୁହୀନ—
Be pīr 1. Having no teacher. ୨ । ପ୍ରଭୁହୀନ—
বেপীব 2. Masterless. ୩ । ଅକୃତଜ୍ଞ; କୃତଘ୍ନ—3. Un-
**बेपीर** grateful. ୪ । ନିର୍ଲଜ—4. Shameless. ୫ । ନାସ୍ତିକ—5. Atheist.

ବେ ଫରାକତ(ତି)—ବୈଦେ. ବିଣ (ଫା)—ଅପ୍ରଶସ୍ତ; ସଙ୍କୀର୍ଣ୍ଣ—
Be pharākata(ti) বেফরাকত **बेफराकत** Narrow.
(ବେଫରାକତିଆ—ଅନ୍ୟରୂପ)

ବେଫଳ—ଦେ. ବିଣ—ବିଫଳ (ଦେଖ)
Bephaḷa Biphaḷa (See).

ବେ ଫାଇ(ଏ,ୟ)ଦା—ବୈଦେ. ବିଣ. (ଫା. ବେ ଫ. (ଫା)ଯ୍ଦା)—
Be phāi(e, ya)dā ୧ । ଲାଭହୀନ—1. Profitless. ୨ । ବୃଥା—2. Vain. ୩ । ଅନର୍ଥକ; ନିଷ୍ଫଳ—3. Useless; fruitless. ୪ । ଅକାମିକା—4. Worthless. ବୈଦେ. କ୍ରି. ବିଣ—ବୃଥା—In vain

ବେ ଫାଁସ—ବୈଦେ. ବିଣ ଫା)—୧ । ଅକଥ୍ୟ; ଅପ୍ରକାଶ୍ୟ—
Be phā̃sa 1. Unfit to be spoken out; unspeakable. ୨ । ଅସମ୍ବନ୍ଧ; ଧାରାବାହିକତାରହିତ—2. Unconnected; incoherent. ୩ । ବନ୍ଧନହୀନ—3. Free from bond. ବୈଦେ. ବି—( ଫା )—
বেফাস
**बेफास**

୧ । ବିପଦ—1. Danger; difficulty. ୨ । ଅଣଙ୍ଗିଆ ଅବସ୍ଥା—2. Critical position. ୩ । ବିଷମ ସମସ୍ୟା—3. Dialema. ୪ । ଅସମ୍ବଦ୍ଧ ଅବସ୍ଥା—4. Incoherence.

ବେ ଫାଙ୍କ—ବୈଦେ. ବିଣ—ଫା.—ବ୍ୟବଧାନରହିତ—Without
Be phāṇka বেফাঙ্ক बेफाङ्क any opening.

ବେ ଫିକର(ରି)—ବୈଦେ. ବିଣ—(ଫା. ବେଫିକ୍ରୀ)=୧ । ଆଶ୍ରୟହୀନ—
Be phikara(ri) বেফিকর बेफिकर 1. Shelterless.
(ବେଫିକରୟା—ଅନ୍ୟରୂପ) ୨ । ନିରୁପାୟ—2. Resourceless. ୩ । କାର୍ଯ୍ୟକର୍ମରହିତ—3. Unemployed. ୪ । ନିଶ୍ଚିନ୍ତ; ଭବିଷ୍ୟତ୍ ସମ୍ବନ୍ଧେ ଚିନ୍ତାଶୂନ୍ୟ—4. Unconcerned; careless; thoughtless; indifferent.

ବେବକ(ଖ)ତ—ବେଦେ. ବି ଫା. ବେ+ବଖ୍ତ)—୧ । ଅସମୟ—
Bebaka(kha)t 1. Bad time; improper time.
অসময় ୨ । ଦୁଃସମୟ—2. Bad times. ବୈଦେ. ବିଣ.
बेवखत (ଫା.)—୧ । ଅସାମୟିକ—1. Untimely. ୨ ।
( ବେବକ୍ତ(ଖ୍ତ)—ଅନ୍ୟରୂପ ) ଅକାଳଜ—2. Premature.

ବେ-ବନ୍ଦୋବସ୍ତ—ବୈଦେ. ବି (ଫା. ବେ-ବନ୍ଦବସ୍ତ)—୧ । ଅନିୟମ—
বে বন্দোবস্ত बे बन्दोबस्त 1. Irregularity. ୨ । ଶୃଙ୍ଖଳାର ଅଭାବ; ଅବ୍ୟବସ୍ଥା—2. Want of proper arrangement. ୩ । ଗୋଲମାଲ—3. Confusion; chaos. ବୈଦେ. ବିଣ (ଫା)—୧ । ବିଶୃଙ୍ଖଳ—1. Chaotic. ୨ । ଅବ୍ୟବସ୍ଥିତ—2. Unsettled. ୩ । ଯେଉଁ ମାହାଲରେ ସରକାରୀ ରାଜସ୍ୱ ବନ୍ଦୋବସ୍ତ ହୋଇ ନାହିଁ—3. Unsettled; having undergone no settlement operation. ୪ । ଅନିୟମିତ—4. Irregular.

ବେ ବନ୍ଦୋବସ୍ତ(ସ୍ତି) ମାହାଲ—ଦେ. ବି—ଯେଉଁ ରାଜ୍ୟରେ ସରକାରଙ୍କ
Be bandobasta (sti) māhāla ରାଜସ୍ୱ ଆଦି ବନ୍ଦୋବସ୍ତ
বে বন্দোবস্তী মহল ହୋଇ ନାହିଁ—Non-regulated dis-
बे बन्दोबस्ती महल tricts; estates in which revenue
ବେ ବନ୍ଦୋବସ୍ତ ମହଲ—ଅନ୍ୟରୂପ) settlement operations have not yet taken place.

ବେ ବନ୍ଦୋବସ୍ତି—ବୈଦେ. ବିଣ—(ଫା.)—ବେ ବନ୍ଦୋବସ୍ତ (ଦେଖ)
Be bandobasti Be bandobasta (See)

ବେ ବରଗ(ଗା)—ଦେ. ବିଣ—୧ । ବ୍ୟବସ୍ଥାରହିତ; ଶୃଙ୍ଖଳ ହୀନ—
Be baraga(gā) 1. Without any method or arrangement. ୨ । ସୌଷ୍ଠବହୀନ—2. Unsymmetrical.
ବେ ବରଗିଆ; ବେ ବର୍ଗ
ବେ ବର୍ଗିଆ, ବେ ବର୍ଗା } —ଅନ୍ୟରୂପ ୩। ଅଭଦ୍ର—3. Uncivil. ୪ । ଭଦ୍ର-
ବେ ବାଗ, ବେ ବାଗିଆ
ସମାଜର ରୀତି ଜାଣି ନ ଥିବା—4. Uncouth; boorish.

ବେବରଦାସ୍ତ(ସ୍ତି)—ବୈଦେ. ବିଣ—(ଫା. ବେ ବରଦାସ୍ତ)—୧ । ଅସହିଷ୍ଣୁ
Bebaradāst (sti) বে বরদাস্ত 1. Impatient.
बेबरदास्त ୨ । ଅସହ୍ୟ—2. Intolerable; unbearable.
[ଉ—ଏ କଥାଟା ନିହାଏତ ବେବରଦାସ୍ତ୍ । ଫକୀର ମୋହନ. ଛମାଣ ଆଠଗୁଣ ।] ଦେ. ବି—ଅସହିଷ୍ଣୁତା—Impatience.

ବେ ବରାଦ(ଦି)ତ୍—ବୈଦେ. ବିଣ—(ଫା. ବେ-ବରାଅର୍ଦ)—୧ ।
Bebarād(di)t ବ୍ୟବସ୍ଥାହୀନ—1. Unmethodical; with-
বে বরাত out proper arrangement. ୨ । ଯାହା କର୍ମ
बेबराद ବା ଭାଗ୍ୟରେ ନାହିଁ—2. Not pre-ordained. ୩ । ପୂର୍ବରୁ ବ୍ୟବସ୍ଥା କରି ଯାଇ ନ ଥିବା—3. Without pre-arrangement. ୪ । ଯାହା ପୂର୍ବରୁ ଆଦେଶ ଦିଆ ଯାଇ ନାହିଁ—4. Not previously ordered for.

ବେବର୍ତ୍ତା—ଦେ. ବି—(ସଂ. ବ୍ୟବହର୍ତ୍ତା)—୧ । ବେହେରା; ମେନେଜର—
Bebarttā 1. Manager. ୨ । ତତ୍ତ୍ୱାବଧାରକ—2.
ব্যবহর্তা व्यवहारी Superintendont; supervisor.
୩ । କାର୍ଯ୍ୟାଧ୍ୟକ୍ଷ—3. Head of an establishment. ୪ । ରାଜଦତ୍ତ ଉପାଧିବିଶେଷ—4. A title given by Rajas.

ବେବର୍ତ୍ତା ପଟ୍ଟନାଏ(ୟ)କ—ଦେ. ବି—୧ । କରଣଙ୍କ ରାଜଦତ୍ତ ଉପାଧି-
Bebarttā paṭanāe(ya)ka ବିଶେଷ—1. Title given to karanas. ୨ । ଆଠଗଡ଼ର ରାଜବଂଶର ଉପାଧି—2. A family title of the Chiefs of Athgarh [ଦ୍ର—ଏହାଙ୍କ ପୂର୍ବପୁରୁଷ ଓଡ଼ିଶା ରାଜାଙ୍କ ଅମଳରେ ଜଗନ୍ନାଥ ମନ୍ଦିରର ବେବର୍ତ୍ତା ବା କାର୍ଯ୍ୟାଧ୍ୟକ୍ଷ ଥିଲେ ।]

ବେ ବଶ—ଦେ. ବିଣ—ଅବଶ; ଅଧୀନତାରୁ ବହିର୍ଭୂତ—Beyond
Be baśa বেবশ बेवश control; uncontrollable.

ବେବସା—ଦେ ବି—(ସଂ. ବ୍ୟବସାୟ)—ବ୍ୟବସାୟ; ପେଶା—
Bebasā বেবসা बेयसा Profession.
(ବେବସାୟ—ଅନ୍ୟରୂପ)

ବେବସାଦାର—ଦେ. ବିଣ—ବ୍ୟବସାୟୀ; ବିଷୟବୁଦ୍ଧିଯୁକ୍ତ—
Bebasādār বেবীসাদাৰ Of business; professional; practical.

ବେବସାଦାର ଲୋକ—ଦେ. ବି—୧ । ବ୍ୟବସାୟୀ ବ୍ୟକ୍ତି—1. Man
Bebasādār loka of business. ୨ । ବିଷୟବୁଦ୍ଧି ଥିବା
বেবসাদার লোক ଲୋକ—2. Business man; practical man

ବେବସାଦାରି—ଦେ. ବି—୧ । ବ୍ୟବସାୟରେ ନିଯୁକ୍ତ ହେବା ଅବସ୍ଥା—
Bebasādāri 1. The state of being a man of
বেবসাদারী business. ୨ । ଦୋକାନଦାରି—2. The state
पेसादारी of being a shop-keeper. ଦେ. ବିଣ—୧ । ବ୍ୟବସାୟୀର ଉପଯୁକ୍ତ—1. Befitting a man of business. ୨ । ବିଷୟବୁଦ୍ଧିଯୁକ୍ତ—2. Practical.

ବେବସାୟ—ଗ୍ରା. ବି (ସଂ. ବ୍ୟବସାୟ)—୧ । ଜୀବିକା—1. Livelihood. ୨ । ପେଶା—2. Profession; business. ୩ । କାରବାର—3. Trade.
Bebasāya ব্যবসা **व्यवसाय**

ବେବସାୟୀ—ଗ୍ରା. ବିଣ ( ସଂ. ବ୍ୟବସାୟୀ )—ବ୍ୟବସାୟୀ ( ଦେଖ ) Byabasāya ( See )
Bebasāyī ব্যবসাদার **व्यवसायी**

ବେବସ୍ଥା(ସ୍ତା) – ଗ୍ରା. ବି ( ସଂ. ବ୍ୟବସ୍ଥା )—ବ୍ୟବସ୍ଥା ( ଦେଖ ) Byabasthā ( See )
Bebasthā(stā) **व्यवस्था**
[ ଉ—ତୋହର ପ୍ରଶନ ବେବସ୍ଥା—ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା । ] [ ଉ—ତିନିଭୁବନର ବେବସ୍ଥା, ଶୁଣ କହିବା ତହିଁ କଥା—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]

ବେବହାର—ଗ୍ରା. ବି ( ସଂ. ବ୍ୟବହାର )—ବ୍ୟବହାର; ଆଚରଣ—Conduct; treatment.
Bebahāra বেভার **बेवहार**

ବେ ବା—ଦେ. ଅ ( ସହଚର )—ଅବଜ୍ଞାସୂଚକ ଅବ୍ୟୟ—Disdainful address.
Be bā **बेवा**

ବେବାକ୍—ବୈଦେ. କ୍ରି. ବିଣ ( ଫା )—୧ । ବିବାକ୍; ସମ୍ପୂର୍ଣ୍ଣରୂପେ—1. Wholly; fully; completely. ୨ । କିଛି ବାକି ନ ରହି—2. Without having any remainder. ବିଣ—ସମସ୍ତ—Whole; entire.
Bebāk বেবাক **बेबाक, चूकता**

ବେ ବା କରିବା—ଦେ. କ୍ରି—ଅବଜ୍ଞାସୂଚକ ଭାଷା ପ୍ରୟୋଗ କରିବା; ଗାଳି ଦେବା; ତୁକାର କରିବା—To address a person with disdain.
Be bā karibā **अबे अबे करना, बे वा करना, कच्चीपक्की बोलना**

ବେ ବାଟ—ଦେ. ବି—ବିପଥ ( ଦେଖ ) Bipatha ( See )
Be bāṭa বেবাস্তা **बेरास्ता**

ବେ ବୁଦ୍ଧି(ଧି)ଆ—ଦେ. ବିଣ—ନିର୍ବୁଦ୍ଧିଆ—Foolish; stupid.
Be buddhi(dhi)ā নির্বুদ্ধি **बेबुधिया**

ବେଭଲ—ଗ୍ରା. ବି—ବିହ୍ୱଳତାଜନିତ ବାକ୍ୟ—Words uttered by a bewildered person. [ ଉ—ମୋହେ ଛଳ ଛଳ ବେଭଲ କହି—ପ୍ରାଚୀ. ରହସ୍ୟମଞ୍ଜରୀ । ]
Bebhaḷa

ବେଭଳି—ଗ୍ରା. ବିଣ – ବିହ୍ୱଳ—Bewildered. [ ଉ—ବେଭଳି ମତି ଆରତି ହେତୁଜ୍ଞାନେ ଚକଲେ ଗୋଷ୍ଠ ସାନ୍ନିଧ୍ୟେଲେ—ପ୍ରାଚୀ. ରହସ୍ୟମଞ୍ଜରୀ । ]
Bebhaḷi

ବେଭାର—ଦେ. ବି ( ସଂ, ବ୍ୟବହାର )—୧ । ବ୍ୟବହାର; ଆଚରଣ—1. Treatment; conduct. [ ଉ—ଯାହାତେ ଧର୍ମ ପର ବେଭାର ସେ କଲେ—କୃଷ୍ଣସିଂହ. ମହାଭାରତ. ବନ ।] ୨ । ପ୍ରଥା; ଆଚାର; ରୀତି—2. Custom; practice, [ ଉ—ଲୋକମାନଙ୍କର ବେଭାର ବିଧାନ—କୃଷ୍ଣସିଂହ. ମହାଭାରତ. ଆଦି ।] ୩ । ସାମାଜିକ ପ୍ରଥା ଅନୁସାରେ ବନ୍ଧୁଘରକୁ ଦିଆଯିବା ଉପଢୌକନ—3. Social presents and gifts, ୪ । ଉପଭୋଗ—4. Enjoyment; use. ୫ । ବାଣିଜ୍ୟ; ବ୍ୟବସାୟ; ବେପାର—5. Trade; business. ୬ । ଘରର ମାମଲତ; ସାଂସାରିକ ବିଷୟ କର୍ମ—6. Wordly affairs. ୭ । କୁଳମର୍ଯ୍ୟାଦା—7. Prestige. [ ଉ—ବେଭାର ବୁଡ଼ା ଅନୁଜ ମୋ ମନୁଜ ଶରଣ ମାରିବ ଆଗ—ଉପେ. ବୈଦେହୀଶବିଳାସ । ] ୮ । କାରଣ—8. Cause. [ ଉ—ଏ ଆହ ଯେତେ ତନ୍ତ୍ରାଭାର, କହ ତୋ ବିମଳ ବେଭାର—ଜଗନ୍ନାଥ. ଭାଗବତ । ] ୯ । କ୍ଷମତା—9. Power. [ ଗାଇ ଗୋପୀଙ୍କ ଭାବଭେଲେ, କୃଷ୍ଣଙ୍କ ବେଭାର ସାରଲେ—ଭୂପତି. ପ୍ରେମପଞ୍ଚାମୃତ ।] ଦେ. ବିଣ—ଉଚିତ—Proper; fit. [ ଉ—ଏ କଥା କୋହଇ ବେଭାର, ଏମନ୍ତ କଲୁ ତୁ କିଗୁର—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]
Bebhāra বেভার **व्यवहार, बेभार**
তত্ত্ব **बेभार**
বেপার **व्यापार**

ବେଭାର ବଣିଜ—ଦେ. ବି ( ସହଚର )—ବାଣିଜ୍ୟ—Trade; business.
Bebhāra baṇija বেপার বাণিজ্য **व्यापार वनिज**

ବେଭାରିଆ—ଦେ. ବିଣ—୧ । ବେଭାରୀ ( ଦେଖ )—1. Bebhārī ( See ) ୨ । ସାଧାରଣ; ବିଶେଷତ୍ୱଶୂନ୍ୟ—2. Ordinary.
Bebhāriā

ବେଭାରୀ—ଦେ. ବିଣ—୧ । ବ୍ୟବସାୟୀ—1. Trading. ୨ । ବିଷୟବୁଦ୍ଧିସମ୍ପନ୍ନ—2. Practical. ଦେ. ବି—୧ । ବେପାରୀ—1. Tradesman. ୨ । ଘରର ମାମଲତକାର ବା କର୍ତ୍ତା—2. The manager of a family. ୩ । ଯେ ଅନ୍ୟ ବ୍ୟକ୍ତିର ସାଂସାରିକ ବିଷୟ ଦେଖାଶୁଣା କରେ—3. Manager.
Bebhārī **बेवहारी**

ବେଭାରେ—ଦେ. କ୍ରି. ବିଣ—୧ । ପ୍ରକୃତପକ୍ଷେ—1. Really; in reality. [ ଉ—ବେଭାରେ ସେ ରଜତ ଗୁଣସ କାଜେଈ ଶରଣରେ—ଉପେ. ବୈଦେହୀଶବିଳାସ । ] ୨ । ପରି—2. Like. [ ଉ—ହସ୍ତିନାପୁରେ ତାଙ୍କ ଘରେ, ବଞ୍ଚନ୍ତି ଅଛନ୍ତି ବେଭାରେ—ଜଗନ୍ନାଥ. ଭାଗବତ । ]
Bebhāre কাজেই **व्यवहारसे**

ବେ ଭୋଳ – ଗ୍ରା. ବିଣ. ପୁଂ—ବିହ୍ୱଳ—Bewildered. [ ଉ—ଗାବନ୍ତି ବାବନ୍ତି ନଚ୍ଚନ୍ତି ବାଳା, ଉନ୍ମଦ ମଦନଶରେ ବେଭୋଳା—ପ୍ରାଚୀ. ରହସ୍ୟମଞ୍ଜରୀ । ]
Be bhoḷa (ବେଭୋଳା—ସ୍ତ୍ରୀ)

ବେମ—ସଂ. ବି ( ବେ ଧାତୁ=ଲୁଗା ବୁଣିବା+କରଣ. ମନ୍; ୧ମା, ୧ବ )—୧ । ମାକୁ—1. Spindle. ୨ । ତନ୍ତ—2. Loom.
Bema

ବେ ମଉକା—ବୈଦେ. ବି ( ଫା. ବେ+ମୌକା=ସ୍ଥାନ; ସୁବିଧା )—୧ । ଅଡ଼ୁଆ; ଅସୁବିଧା—1. Inconvenience; want of opportunity. ୨ । ଅସଙ୍ଗତି—2. Impropriety. ୩ । ଅଯୋଗ୍ୟତା—3. Unfitness. ବୈଦେ. ବିଣ (ଫା) – ୧ । ଅଡ଼ୁଆ; ଅସୁବିଧାଜନକ—1. Inconvenient. ୨ । ଅସାମୟିକ—2. Unseasonable. ୩ । ରୀତିବିରୁଦ୍ଧ; ଅସଙ୍ଗତ—3. Improper; irregular. ୪ । ଦେଶକାଳକୁ ଅନୁପଯୁକ୍ତ—4 Inopportune. ୫ । ସ୍ଥାନଭ୍ରଷ୍ଟ—5. Displaced from the proper place. ୬ । ଅଯୋଗ୍ୟ—6. Unfit.
Be maukā বেমক্কা **बेमौका**
( ବେମୁ[ମୋ]କା, ବେମୌକା—ଅନ୍ୟରୂପ )

ବେ ମଉ(ହ୍ର)ଜୁ(ଦ୍)—ବୈଦେ. ବଣ ( ଫା. ବେମୌଜୁଦ୍ )—୧ । Be mau(ha)jut(d) ଅନୁପସ୍ଥିତ—1. Absent; not বেমজুদ্ present. ୨ । ଅପ୍ରସ୍ତୁତ—2. Not ready. बेमौजुद ୩ । ଅବିଦ୍ୟମାନ; ଅବର୍ତ୍ତମାନ—3. Non existent. ୪ । ଅସ୍ଥାୟୀ—4. Transient; not permanent.

ବେମଗ୍‌ଦୁର—ବୈଦେ. ବଣ ( ଫା. ବେ+ମକ୍‌ଦୁର୍ ) ( କଚେରୀ )—Bemagdura ୧ । ଅକ୍ଷମ; ଅପାରଗ—1. Unable. ୨ । বেমগ ক্যছুর କ୍ଷମତାରହିତ—2. Powerless. ୩ । ଋଣ ପରିଶୋଧ କରିବାକୁ ଅକ୍ଷମ; ଦେବାଳିଆ—3. Insolvent.

ବେମଗ୍‌ଦୁର(ରୀ) ଦରଖାସ୍ତ—ଦେ ବ ( କଚେରୀ )—ଯେଉଁ ଦରଖାସ୍ତ Bemagdura(ri) darakhāsta ଦ୍ୱାରା ଋଣଜାଲଗ୍ରସ୍ତ ବ୍ୟକ୍ତି বেমগ(ক)ছুর দরখাস্ত ଆପଣାର ଅତ୍ୟଧିକ ଋଣକୁ ପରିଶୋଧ बेमगदुर दरखास्त କରି ପାରିବାକୁ ଅକ୍ଷମ ଜାଣି ଆପଣାର ସମ୍ପତ୍ତିକୁ ଅଦାଲତଙ୍କ ହାତରେ ସମର୍ପଣ କରେ ଓ ଅଦାଲତ ଉକ୍ତ ବ୍ୟକ୍ତିର ସମ୍ପତ୍ତିକୁ ବିକ୍ରୟ କରାଇ ମହାଜନମାନଙ୍କୁ ଡକାଇ ସମ୍ପତ୍ତିର ପରିମାଣ ଅନୁସାରେ ମହାଜନମାନଙ୍କ ଦେଣାକୁ ହାରାହାରି ଭାବରେ ପରିଶୋଧ କରନ୍ତି ଓ ଉକ୍ତ ବ୍ୟକ୍ତିକୁ 'ବେମଗଦୁର' ବା ଋଣ ପରିଶୋଧ କରିବାକୁ ଅକ୍ଷମ ବୋଲି ଘୋଷଣା କରି ତାକୁ ଋଣ ଦାୟିତ୍ୱରୁ ନିଷ୍କୃତ ଦିଅନ୍ତି—A petition to the Judge to be declared 'Insolvent'.

ବେମଗଦୁରୀ—ବୈଦେ. ବ (ଫା)—୧ । ଅକ୍ଷମତା—1 Inability; Bemagdurī powerlessness. ୨ । ଋଣ ପରିଶୋଧ বেমগছুরী बेमगदुरी କରିବାର ଅକ୍ଷମତା—2. Insolvency.

ବେମଜବୁ(ଭୁ)ତ୍—ବୈଦେ. ବଣ ( ଫା )—ଗରମଜଭୁତ—Not Bemajabu(bhu)t গরমজভুত बेमजमूत strong. [ ବେମଜବୁ(ଭୁ)ତିଆ, ବେମଜବୁ(ଭୁ)ତି—ଅନ୍ୟରୂପ ]

ବେମଜା(ଜ୍ଞା)—ବୈଦେ. ବଣ ( ଫା )—୧ । ବିସ୍ୱାଦ; ପାଣିଚିଆ—Bemajā(jña) 1. Having a bad taste. ୨ । ଅମାର୍ଜିତ बेमजा ( ବାସନ ଆଦି )—2. Unpolished; unwashed; বেমজা (utensils etc). ଦେ. ବଣ (ସଂ. ଅମାର୍ଜିତ) ଅମଜା—Unscoured, unpolished.

ବେମଞ୍ଜୁର(ରୀ)—ବୈଦେ. ବ ( ଫା. ) ନାମଞ୍ଜୁର; ଅସମ୍ମତି; ଅସ୍ୱୀକାର—Bemañjura(ri) Refusal; disagreement. ଦେ ବଣ—নামঞ্জুর बेमंजुर ଅସ୍ୱୀକୃତ—Disapproved.

ବେମଣି(ଣି, ନି)ଷ—ଦେ. ବ—୧ । ଅମଣିଷ—1. A bad person. Bemaṇa(ṇi, ni)sha ୨ । ଅଯୋଗ୍ୟ ଲୋକ—2. An unfit বেমান্থষ बेमानुस person.

ବେମତଲପ୍(ବ୍)—ବୈଦେ. ବଣ. (ଫା. ବେମତଲବ୍)—୧ । ଉଦ୍ଦେଶ୍ୟହୀନ—1. Aimless. ୨ । ନିଃସ୍ୱାର୍ଥ—Bematalap(b) बेमतलब 2. Disinterested. ୩ । ଅର୍ଥହୀନ—3. Meaningless. [ବେମତଲପି (ବି), ବେମତାଲପ୍ (ବ୍), ବେମତାଲପି (ବି)—ଅନ୍ୟରୂପ]

ବେମନ—ଦେ ବ—(ସଂ. ବିମନସ୍)—୧ । ମନର ଅମେଳ; ମନୋମାଳିନ୍ୟ; Bemana ମତଭେଦ—1. Difference of opinion; dis-বিমনা विमन agreement ୨ । ବିବାଦ—2. Dispute. ଦେ. ବ—ବିମନା।

ବେମ(ମୁ)ନାସ(ସି)ପ୍(ବ୍)—ବୈଦେ. ବଣ—(ଫା. ବେମୁନାସିବ୍)—୧ । Bema(mu)nāsa(si)ph(b) ଅପସନ୍ଦ; ବେପସନ୍ଦ; ଅମନୋନୀତ—বেমনাসীব 1. Unapproved. ୨ । ଅପଥ୍ୟ; ଅନୁପଯୁକ୍ତ—बेमुनासीब 2. Improper. ୩ । ଅଯୋଗ୍ୟ—3. Unfit.

ବେମରଜି—ବୈଦେ. ବଣ (ଫା)—୧ । ଅସନ୍ତୁଷ୍ଟ—1. Dissatisfied. Bemaraji ୨ । ଯାହାର ମନୋଗତ ଭାବ ବୁଝାଯାଏ ନାହିଁ—बेमरजी 2. One whose intention cannot be ascertained or probed.

ବେ ମରାମତ(ତି)—ବୈଦେ. ବଣ (ଫା. ବେ+ମରାମତ=ଜୀର୍ଣ୍ଣସଂସ୍କାର) Be marāmata(ti) ଯାହା ମରାମତ ହୋଇନାହିଁ; ଅସଂସ୍କୃତ; ଜୀର୍ଣ୍ଣ; বেমরামত ସଂସ୍କାରବିହୀନ—Unrepaired; out of repair. बेमरम्मति ବୈଦେ. ବ—ଜୀର୍ଣ୍ଣ ଓ ଅସଂସ୍କୃତ ଅବସ୍ଥା—Want of ବେମରାମତ(ତି)—ଅନ୍ୟରୂପ repair; the state of being बेमरम्मति unrepaired.

ବେ ମର୍ଦ୍ଦ—ବୈଦେ. ବଣ (ଫା)—୧ । ଅମନୁଷ୍ୟ—1. Unmanly. Be marddā ୨ । କାପୁରୁଷ; ଭୀରୁ—2. Coward; timid. নামর্দ্দা बेमर्दा

ବେ ମର୍ଦ୍ଦାନା(ନି)—ବୈଦେ. ବ—(ଫା. ବେମର୍ଦ୍ଦାନା)—କାପୁରୁଷତା—Be marddānā(ni) Cowardice; unmanliness. নামর্দ্দানা बेमर्दाना

ବେ ମର୍ଯ୍ୟାଦା—ଦେ. ବ—ଅମର୍ଯ୍ୟାଦା—ଦେ· ବ—ଅମର୍ଯ୍ୟାଦା; ଅପ-Be marjyādā ମାନ; ଅସମ୍ମାନ—Disrespect; insult. অমর্যাদা बेमर्यादा ଦେ. ବଣ—୧ । ଅସମ୍ମାନିତ—1. Disrespected ୨ । ଅପମାନିତ—2. Insulted.

ବେ ମହତ(ତ୍ୱ)—ଦେ ବ—(ଫା. ବେ+ସଂ. ମହତ୍ତ୍ୱ)—୧ । ଅସମ୍ମାନ; Bemahata(twa) ଅସମ୍ଭ୍ରମ—1. Loss of respect or अमहत्व prestige. ୨ । ଅଭଦ୍ରତା—2. Rudeness; uncivility. ଦେ. ବଣ—ବେମହତି (ଦେଖ)—Bemahati (See)

ବେ ମହତି—ଦେ. ବଣ—୧ । ବେଇଜ୍ଜତ; ଅସମ୍ମାନିତ—1. Disrespected. ୨ । ଅଭଦ୍ର—2. Ungentle-Be mahati বেইজ্জত बेइज्जती manly; rude. ୩ । ମନୁଷ୍ୟତ୍ୱଶୂନ୍ୟ—(ବେମହତିଆ—ଅନ୍ୟରୂପ) 3. Destitute of prestige.

ବେମାର(ରି)—ବୈଦେ. ବ (ଫା. ବିମାର) ରୋଗ—Illness. Bemāra(ri) disease. ବୈଦେ. ବଣ—ବେମାରିଆ (ଦେଖ) বেমার, ব্যারাম बी(बे)मारी Bemāriā (See) ব্যারাম, বেমার बी(बे)मार

ବେମାର(ରି)ଧରିବା—ଦେ. କ୍ରି—ରୋଗ ଧରିବା—To be attacked Bemāra(ri)dharibā बिमारी पकडना with disease. (ବେମାର(ରି) ଘୋଟିବା—ଅନ୍ୟରୂପ)

ବେମାର(ରି) ପଡ଼ିବା—ଦେ. କ୍ରି—ରୋଗାକ୍ରାନ୍ତ ହେବା—
Bemāra(ri) pardibā बिमारीमे पढना To fall sick.
[ବେମାର(ରି)ହେବା—ଅନ୍ୟରୂପ]

ବେମାରିଆ—ଦେ. ବିଣ (ଫା. ବିମାର୍)—୧ । ରୁଗଣ—1 Sick.
Bemariā ୨ । ରୋଗଗ୍ରସ୍ତ—2. Ill; invalid.
বেমাব(রী) बीमार

ବେ ମାଲୁମ୍—ବୈଦେ. ବି (ଫା. ବେ+ମାଅଲୁମ=ବୋଧ)—୧ ।
Be mālum ଅଗୋଚର; ଅଜଣା; ଅଜ୍ଞାତ—1. Un-
বেমালুম बेमालुम known; unperceived. ୨ । ଅବୋଧ୍ୟ
2. Incomprehonsible ବୈଦେ. କ୍ରି. ବିଣ—୧ ।
ଅଜ୍ଞାତଭାବରେ—1. Unawares. ୨ । ଅଜଣାରେ—
2. Without any previous intimation.

ବେ ମିଆଦ(ଦୀ)—ବୈଦେ. ବିଣ—(ଫା)—୧ । ଅସୀମ;ଯେଉଁ ବିଷୟରେ
Be miāda(dī) ମିଆଦ୍ ବା ସମୟର ସୀମା ନିର୍ଦ୍ଧାରିତ ନ ଥାଏ—
বেমেয়াদ, বেমেয়াদি 1. Unlimited; indefinite; having
बेमियाद no time fixed for performance beforehand; without any stipulated time.
୨ । ମୁକରରି; ସ୍ଥାୟୀ—2 Permanent. ୩ ।
ଚିରକାଳ ପାଇଁ ନିର୍ଦ୍ଦିଷ୍ଟ—3. Settled for ever.
୪ । ଯେଉଁ ବିଷୟ ବା ଦାବୀ ପ୍ରତି ତମାଦି ଆଇନ ଖଟେ
ନାହିଁ—4. Unaffected with the law of limitation.

ବେ ମିଆଦ(ଦୀ)ପଟା(ଟ୍ଟା)—ଦେ. ବି—ଯେଉଁ ପଟ୍ଟାରେ ପଟ୍ଟାଲିଖିତ ବ୍ୟକ୍ତି
Be miāda(dī)paṭa(ṭṭa) ଉଚିତ କେତେକାଳ ସକାଶେ ଦଖଲ
বেমেয়াদীপাট্টা କରିବ ଏହା ଲେଖା ହୋଇ ନ ଥାଏ; ମୁକରରୀ ପଟ୍ଟା;
बेमियादीपट्टा ଚିରସ୍ଥାୟୀ ପଟା—A permanent lease; a lease granted for an indefinite term.

ବେ ମିଆଦୀ କାମ(ର୍ଯ୍ୟ)—ଦେ. ବି— ଯେଉଁ କାର୍ଯ୍ୟ ସମ୍ପନ୍ନ କରିବାପାଇଁ
Be miādī kāma(rjya) କାଳର କୌଣସି ନିର୍ଦ୍ଦିଷ୍ଟ ସୀମା ନ
বেমেয়াদী কাম ଥାଏ—A work for the completion of
बेमियादी काम which no time is fixed.

ବେ ମିଆଦୀ ତମସୁକ—ବୈଦେ. ବି (ଫା.)—ଯେଉଁ ତମସୁକରେ
Be miadi tamasuka ଋଣ ପରିଶୋଧ ପାଇଁ ମିଆଦ ବା କାଳ
বেমেয়াদী তমস্সুক ନିର୍ଦ୍ଧାରିତ ହୋଇ ନ ଥାଏ—A bond in
बेमियादीतमस्सुक which no time is fixed beforehand and mentioned for liquidation of the debt.

ବେ ମି(ମେ)ଳ—ଦେ.ବିଣ—ଅମେଳ; ମିଳନର ଅଭାବ—Disunion;
Be mi(me)ḷa বেমেল बेमेल disagreement

ବେ ମି(ମେ)ହନତ(ତି)—ବୈଦେ. ବିଣ (ଫା. ବେମେହନତ)—୧ ।
Be mi(me)hanat(ti) ସୁସ୍ତି; ଯେ ପରିଶ୍ରମ କରେ ନାହିଁ,
সুস্তী बेमिहनती କୋଡ଼ିଆ; ଅଳସୁଆ—1. Idle. ୨ ।
ବେମି(ମେ)ହନ୍ତ(ନ୍ତି) } —ଅନ୍ୟରୂପ ଶ୍ରମବିମୁଖ; ପରିଶ୍ରମକାତର—
ବେମେହେନ୍ତ (ନ୍ତି) } 2. Not laborious.
बेमिहनत ବୈଦେ. ବି. ପରିଶ୍ରମର ଅଭାବ—Want of labour.

ବେ ମୁ(ମୋ)କାବିଲା—ବୈଦେ. ବିଣ (ଫା. ବେ ମୋକାବିଲା)—
Be mu(mo)kābilā ଯାହା ମୁକାବିଲା ବା ପରୀକ୍ଷା କରାଯାଇ ନ
বেমুকাবিলা ଥାଏ—Unchecked; not compared;
बेमोकाबिला not confronted.

ବେ ମୁ(ମୋ)କାମ୍(ମି)—ବୈଦେ. ବିଣ (ଫା)—ଗୃହଶୂନ୍ୟ—
Be mu(mo)kām(mi) Houseless; shelterless
बेमुकाम

ବେ ମୁର(ରୁ)ବୀ—ବୈଦେ. ବିଣ (ଫା. ବେ+ମୁରୁବୀ=ରକ୍ଷକ)—
Be mura(ru)bi ୧ । ରକ୍ଷକ ବା ଅଭିଭାବକହୀନ—1.
[ବେମୁର(ରୁ)ବିଆ—ଅନ୍ୟରୂପ] Guardianless. ୨ ।
বেমুরুবী ଅସ୍ୱାମିକ—2. Masterless. ୩ । (ଲକ୍ଷଣାର୍ଥ)
बेमुरुब्बी ଉଚ୍ଛୃଙ୍ଖଳ—3 Unrestrained. ୪ । ଯାହାର
କେହି ମୁରବୀ ବା ସହାୟକ ନ ଥାଏ—4. Without a protector or patron.

ବେ ମୁରୱତ୍(ଫ୍, ବ୍)—ବେଦେ. ବିଣ (ଫା. ବେ+ମୁରୱତ୍=ସମ୍ମାନ)
Be murātap(ph, b) —୧ । ନିର୍ଲଜ୍ଜ—1. Shameless.
বেমুরাতিব ୨ । ମର୍ଯ୍ୟାଦାହୀନ; ସମ୍ମାନବିହୀନ—2. Undignified;
बेमुरातीब destitute of honour or dignity.
୩ । ଅପମାନକାରକ—3. Disrespectful. ୪ ।
ଅସମ୍ମାନିତ—4. Dishonoured.

ବେ ମୁଲାକାତ୍(ତି)—ବୈଦେ. କ୍ରି. ବିଣ (ଫା. ବେମୁଲାକାତ)—
Be mulakāt(ti) ଦେଖା ବା ସାକ୍ଷାତ ନ ହୋଇ—
बेमुलाकात Without interview or meeting.
ବୈଦେ. ବି—ସାକ୍ଷାତର ଅଭାବ—Failure to meet; want of interview.

ବେ ମୁଲାଜ୍ୟା—ବୈଦେ. ବି ଓ ବିଣ (ଫା. ବେ+ମୁଲାହିଜା)—
Be mulājjyā ବେ ମୋହବତ୍ (ଦେଖ)—Be mohabat
बेमुलाहिजा (ବେମୁଲାହିଜା—ଅନ୍ୟରୂପ) (See)

ବେ ମୂଲ୍—ଦେ. ବି—ଅତି ବେଶୀ ଦାମ;ଚଢ଼ାଦାମ -High price;
Be mūla dear price; excessive price; ଦେ. ବିଣ.
চড়াদাম —ମହାର୍ଘ—Dear in price; high-priced.
बेमूल अथवा बेमूल; बेजर

ବେ ମୋହ(ହୋ)ବତ—ବୈଦେ. ବି (ଫା. ବେମୁହବ୍ବତ୍)—୧ ।
Be moha(ho)bat ଚକ୍ଷୁଲଜ୍ଜାର ଅଭାବ—1. Disregard
बेमुहब्बत and want of consideration for the
[ବେମୋହ(ହୋ)ବତ—ଅନ୍ୟରୂପ] feelings of others.
୨ । ଅନୁରୋଧ, ଉପରୋଧାଦି ରକ୍ଷା ନ କରିବା—2.
Want of acting to please another.
୩ । ନିର୍ମମତା—3. Want of sympathy. ବୈଦେ.
बेमुहब्बती ବିଣ—୧ । ଯାହାର ଚକ୍ଷୁଲଜ୍ଜା ନାହିଁ—1.
Disregardful or insensitive to the feelings of others. ୨ । ଯେ ପରର ଉପରୋଧ
ଅନୁରୋଧ ରକ୍ଷା ନ କରେ—2. Having no fear for another person's favour or dis-

pleasure. ୩ । ସେ ପରର ମନ ଭଳି କାମ କରିବାକୁ ଚେଷ୍ଟା ନ କରେ—3. Not acting to please another. ୪ । ନିର୍ଦ୍ଦୟ—4. Unkind. ୫ । ନିର୍ମମ—5. Unsympathetic.

ବେ ମୋହ(ହୋ)ବତିଆ—ଦେ. ବିଣ—ବେମୋହବତ ( ଦେଖ )
Be moha(ho)batiā Bemohabata ( See )

ବେର୍—ପ୍ରାଦେ ( କଟକ ) ବି ( ସଂ. ବେଲା )—ସୂର୍ଯ୍ୟ—
Ber The sun.

ବେର୍(ରି, ରେ)ଜ୍(ଜି, ଜୀ)—ବୈଦେ. ବି ( କଚେରୀଆ ) ( ଅ. ବେରଜ୍ l er(ri, re)j(ji, jī) =ଉପରୁ ତଳକୁ ସ୍ତମ୍ଭାକାରରେ (ଦେଢ଼ଜ—ବାପସାଡ) ଲେଖାଥିବା ସଂଖ୍ୟାମାନଙ୍କର ମିଶାଣ )—
बेरिज ଯେଉଁ ହିସାବର ନିର୍ଦ୍ଦିଷ୍ଟ ସଂଖ୍ୟା ସବୁ କେବଳ ଗୋଟିଏ
बेरिज ବାଗରେ ମିଶାଣ କରାଯାଏ—The mode of totalling up the figures of an account in one direction.

ବେର୍ଜ—ଗ୍ରା. ( ସଂ. ବ୍ରଜ ) ବି—ବ୍ରଜ ନାମଯୁକ୍ତ ବ୍ୟକ୍ତିକୁ ଡାକିବା
Berja बिरजु ନାମ—A name for calling Braja.
[ବେର୍ଜା, ବେରେଜ, ବେରେଜା—ଅନ୍ୟରୂପ]

ବେର(ରି,ରେ)ଜ୍(ଜି) ମିଲା(ଲେ)ଇବା—ଦେ. କ୍ରି—ହିସାବରେ
Ber(ri,re)j(ji) milā(le)ibā ସ୍ତମ୍ଭାକାରରେ ଲେଖା ଥିବା
बेरिज मेलान ଅଙ୍କମାନଙ୍କର ମିଶାଣ କରି ହିସାବ କରିବା—
बेरिज मिलाना To check an account by totalling up the figures written in columns.

ବେର୍(ରି,ରେ) ଜ(ଜି) ହିସାବ—ବୈଦେ. ବି—ବେରଜ ପ୍ରଣାଳୀରେ
Ber(ri,re) ja (ji) hisāba ଅର୍ଥାତ୍ ସ୍ତମ୍ଭାକାରରେ ସଂଖ୍ୟା-
बेरिज हिसाब ମାନଙ୍କର ଉପର୍ଯ୍ୟୁପରି ଲେଖା ହୋଇଥିବା ହିସାବ—
बेरिज hisāb Accounts consisting of figures written in vertical columns.

ବେର୍ନା—ପ୍ରାଦେ. (ସମ୍ବଲପୁର) ବି—ଅଲ୍ପ ଜଳହୁଏ ଜମି—Law field.

ବେର୍ ପେଲା—ଦେ. ବିଣ. ଓ କ୍ରି. ବିଣ—ବଳପୂର୍ବକ ବା ଜବରଦସ୍ତି;
Ber pelā ଅନାହୂତରୂପେ—Doing a work gratuitously or without being asked.

ବେର—ସଂ. ବି—(ବା ବା ଅଜ୍ ଧାତୁ = ଗମନ କରିବା + କର୍ତ୍ତୃ. ର)—
Bera ୧ । ଶରୀର; ଦେହ—1. Body. ୨ । କୁଙ୍କୁମ—2. Saffron. ୩ । ବାଇଗଣ—3. Brinjal.
ଗ୍ରା. ବି (ଇତର ଜନଙ୍କ ଉଚ୍ଚାରଣ ଦୋଷରୁ 'ଲ' ସ୍ଥାନରେ ର)—ବେଳ—Time.

ବେରକ—ସଂ. ବି.—(ବେର + କ)—କର୍ପୂର—
Beraka Camphor.

ବେରଙ୍ଗ—ବୈଦେ. ବି—(ଫା. ବେରଙ୍ଗ୍)—୧ । ଅନ୍ୟରଙ୍ଗ; ବର୍ଣ୍ଣା-
Beraṅga ନ୍ତର—1. Another colour.
୨ । ବଦରଙ୍ଗ; ତାସ ଖେଳରେ କଟା ହୋଇଥିବା ରଙ୍ଗ ବ୍ୟତୀତ ଅନ୍ୟ ରଙ୍ଗର ତାସ—2. Cards of a class different from the one which has turned out at the cutting. ୩ । ଯେଉଁ ଡାକ ଚିଠିରେ ପ୍ରେରକ ଟିକଟ ମାରି ନ ଥାଏ; ବେଆରଙ୍ଗ—3. Unpaid letter. ବୈଦେ.ବିଣ—୧ । ଅନ୍ୟ ବର୍ଣ୍ଣଯୁକ୍ତ—1. Of another colour. ୨ । ବିବର୍ଣ୍ଣ; ଯାହାର ରଙ୍ଗ ବା ବର୍ଣ୍ଣ ବିକୃତ ହୋଇଥାଏ—2. Pale; discoloured. ୩ । ବର୍ଣ୍ଣହୀନ—3. Colour less. ୪ । ପ୍ରଭାହୀନ—4. Shorn of lustre.

ବେରଣା—ଦେ. ବି—୧ । ଘାସ ଜମି—1. Marshy land.
Beraṇā ୨ । ବେଣା ଘାସ—2. A field overgrown with Beṇā grass.

ବେରଣ୍ଡ—ଗ୍ରା. ବି. (ସଂ. ବ୍ରଣ; ବରଣ୍ଡ)—ମୁହଁରେ ବାହାରିବା ବରୁଣ;
Beraṇḍa ମୁଖବ୍ରଣ—Pimple; boil on the face
बरे

ବେର୍ଲିନ୍—ବୈଦେ. (ଇଂ) ବି—ଜର୍ମାନୀର ରାଜଧାନୀ—Berlin, the
Berlin capital of Germany.

ବେରସିକ—ଦେ. ବିଣ. (ଫା. ବେ + ସଂ. ରସିକ)—୧ । ଅରସିକ;
Berasika ରସଜ୍ଞାନହୀନ—1. One who has no sense
বেরসিক of humour or wit. ୨ । ବଦ୍ ରସିକ; ରସ-
बेरसिक ଭଙ୍ଗକାରୀ—2. One who is of a bad taste.
୩ । କବିତ୍ୱବିହୀନ—3. Devoid of poetry.

ବେରସିଦ୍—ଦେ. ବିଣ. ( ବେ + ରସିଦ )—ରସିଦ୍ ବା ପ୍ରାପ୍ତିସ୍ୱୀକାର
Berasid ପତ୍ର ନିଆ ନ ଯାଇ ଦିଆ ଯାଇଥିବା (ଧନ ବା ବସ୍ତୁ
বেরসীদ্ ଆଦି)—(articles) Given or paid without a receipt being granted.

ବେରା—ପ୍ରାଦେ. (ମେଦିନୀପୁର) ବି. (ଭୁଲ. ଓଡ଼ିଆ କେଉଟଙ୍କ ଉପାଧି
Berā ବେହେରା)—ମାହିଷ୍ୟ କୈବର୍ତ୍ତମାନଙ୍କର ବଂଶୋପାଧି-ବିଶେଷ; ବେହେରା—A family title of fishermen and Māhishyas. ପ୍ରାଦେ (ଭଡ଼ଙ୍ଗୀ ଭାଷା) ବି—ବେଳ—Time.

ବେରାଜ୍(ଜି)—ଦେ. ବି—୧ । ଅସନ୍ତୋଷ—1. Discontent;
Berāj(ji) Dis-satisfaction; Dis-affection. ୨ ।
গররাজী ଅସମ୍ମତି; ଗରରାଜି—2. Dis-agreement.
୩ । ଅସ୍ୱୀକାର—3. Denial; refusal. ଦେ. ବିଣ—
୧ । ଅସମ୍ମତ—1. Not consenting; disagreeing. ୨ । ଅସନ୍ତୁଷ୍ଟ—2. Dis-satisfied; discontented; disaffected.

ବେରାଦର—ଦେ. ବି—ବିରାଦର ( ଦେଖ )
Berādara Birādara (See)

ବେରାମ୍(ମି)—ବୈଦେ. ବି (ଫା. ବେ + ଆରାମ)—ବେମାରି; ରୋଗ—
Berām(mi) Disease; illness; sickness. ଦେ. ବିଣ—
ব্যারাম ୧ । ବେମାର; ରୁଗ୍ଣ—1. Diseased; laid with
बीमार illness. ୨ । ରୋଗାକ୍ରାନ୍ତ—2. Attacked with disease; sick; ailing and delicate in health.
[ ବେରାମିଆ—ଅନ୍ୟରୂପ ]

ବେରାମ ଆରାମ—ଦେ. ବି (ସହଚର)—ପୀଡ଼ା; ରୋଗ—Disease.
Berāma ārāma [ ଦ୍ର—× × × କାହାର ସ୍ୱଷ୍ଟ ହୋଇଥିଲେ ଏହି ରୂପ
ব্যারাম স্যারাম ବେରାମ ଆରାମ ହେଲେ କମ୍। କାହାର ମାନସିକ ଥିଲେ ପୂଜା ହୁଏ। ଫଙ୍କାରମୋହନ. ଛମାଣଆଠଗୁଣ୍ଠ।]

ବେରାମ(ମି) ପଡ଼ିବା—ଦେ. କ୍ରି—୧। ରୋଗାକ୍ରାନ୍ତ ହେବା—1. To
Berāma(mi)pardibā be attacked with sickness.
ব্যারামে পড়া ୨। ରୋଗାକ୍ରାନ୍ତ ହୋଇ ଶଯ୍ୟାଗତ ହେବା—2. To
[ବେରାମ(ମି) ଧରିବା—ବଶେଷ୍ୟ ରୂପ] be laid up with a sickness.

ବେର୍ହା—ପ୍ରାଦେ (ସମ୍ବଲପୁର) ବି. (ସଂ. ବେଷ୍ଟନ)—୧। ସ୍ତ୍ରୀମାନଙ୍କ
Berhā ପିନ୍ଧାଲୁଗା ତଳେ ପିନ୍ଧାଯିବା ଛୋଟ କନା—1. A small bit of rag used by females as underwear below her loin cloth. ୨। ଝିଅମାନଙ୍କ ବ୍ୟବହାର୍ଯ୍ୟ ବଡ଼ କଉପୁନୀ—2. A long strip of cloth tugged along the privities by girls. [ଦ୍ର—ଏହାର କଦର୍ଥିତ ସାନ କଉପୁନୀ=ଛେଦା।]

ବେ ରାହା—ବୈଦେ. ବି (ଫା. ବେ+ରାହା)—୧। ଭୁଲ୍ ବାଟ; କୁପଥ—
Be rāhā 1. Wrong road. ୨। ଅପଥ; କୁପଥ; କୁମାର୍ଗ—
বেরাস্তা 2. Evil ways. ୩। ଅକ୍ରମ—3. Irregularity;
बेराहा want of method. ୪। ଭ୍ରାନ୍ତି—4. Erring. ଦେ. ବିଣ—୧। ଶୃଙ୍ଖଳା ବା ନିୟମରହିତ—1. Irregular; unmethodical. ୨। କୁପଥଗାମୀ—2. Taking to wrong or evil ways. ୩। ଭ୍ରାନ୍ତ—3. Erring.

ବେରଙ୍ଗ(ଙ୍ଗି) (ଇତ୍ୟାଦି)—ବୈଦେ (ଇଂ) ବିଣ—ବେଅରଙ୍ଗ ଇତ୍ୟାଦି
Pering(ṅgi)(etc) (ଦେଖ)—Bearing etc (See).
(ବେରଂ—ଅନ୍ୟରୂପ)

ବେରିଜ୍(ଜି)—ବୈଦେ. ବି ( କରଖା ) ( ଫା. ବେରଜ୍ )—ହିସାବ
Berij(ji) କାଗଜରେ ସ୍ତମ୍ଭାକାରରେ ଲେଖାଥିବା ବଡ଼ ସଂଖ୍ୟା ଧାଡ଼ି-
বেরিজ ମୂଳଅ ହୋଇ ଲେଖା ହୋଇଥିଲେ ଧାଡ଼ିମୂଳଅ ସଂଖ୍ୟା-
बेरिज मାନଙ୍କୁ ମିଶାଇ ତାହାର ପାଖରେ ପ୍ରତ୍ୟେକ ଧାଡ଼ିର ଯୋଗଫଲକୁ ଲେଖି ସେହି ଯୋଗଫଲମାନଙ୍କୁ ଯୋଗ କଲେ ତହିଁର ଯୋଗଫଲ [ତେରିଜ]-ଠିକ୍ ହେଲା କି ନାହିଁ ଏହା ଜାଣିବା ପାଇଁ ପ୍ରତ୍ୟେକ ସ୍ତମ୍ଭର ଯୋଗଫଲକୁ ମିଶାଇବା—The adding up of the totals of every column in account.

ବେରିଜ ତେରିଜା—ବୈଦେ. ବି· ( ଫା. ବେରଜ୍+ତେରଜ୍ )—
Beriji teriji କାଗଜରେ ଉପର୍ଯ୍ୟୁପରି ଲେଖାଥିବା ହିସାବମାନ
বেরিজতেরিজ ଠିକ୍ ଅଛି କି ନାହିଁ ଜାଣିବାପାଇଁ ଶେଷ ବା ତାହାର
बेरिज्तेरिज पାଖର ସଂଖ୍ୟାମାନଙ୍କୁ ଯୋଗ କରିବା (ତେରିଜ) ଓ ତଳର ମିଶା ହୋଇଥିବା, (ଟୋଟାଲ) ସଂଖ୍ୟାମାନଙ୍କୁ ସବୁ ମୋଟ ସଂଖ୍ୟାରୁ (ମୋଟ ଟୋଟାଲରୁ) ଫେଡ଼ି ହିସାବ ଠିକ ଥିବାର ଚେକ୍ କରିବାର ନାମ ବେରିଜ—Adding up the figures in an account longitudinally and horizontally and checking the correctness thereof.

ବେରିବେରି—ବୈଦେ. ବି (ସିଂହଳଭାଷା ବେରି=ଦୁର୍ବଳତା; ବେରି
Beriberi ବେରି=ବିଶେଷ ଦୁର୍ବଳତା। ) ବି—ଭାତୁଆଙ୍କର ପ୍ରାୟ
বেরীবেরী ରୋଗବିଶେଷ—Beriberi; a kind of fatal
बेरीबेरी disease. [ଦ୍ର—ଅଛି ସଫା କଲଚାଉଳ ଖାଇଲେ ଏ ରୋଗ ଜନ୍ମେ। ଆଉ ମଧ୍ୟ ସାରହୀନ ଖାଦ୍ୟ ଏ ରୋଗର ପୋଷକତା କରେ। ଏ ରୋଗ ମାରାତ୍ମକ; ଏଥିରେ ଶୋଥ ଜନ୍ମେ। ଏ ରୋଗ ଆଗେ ଚୀନ୍‌ଦେଶରେ, ତା ପରେ ଜାପାନରେ ବ୍ୟାପିଥିଲା। ରୁଷ ଜାପାନ ଯୁଦ୍ଧ ସମୟରେ ୫୦ ହଜାର ଜାପାନୀ ଲୋକଙ୍କୁ ଏ ରୋଗ ଧରିଥିଲା। ଜର୍ମାନ ଯୁଦ୍ଧରେ ମେସୋପୋଟାମିଆରେ ଅନେକ ଇଂରେଜ ସୈନ୍ୟଙ୍କୁ ଏ ରୋଗ ଆକ୍ରମଣ କରିଥିଲା। ସ୍ତ୍ରୀଲୋକଙ୍କ ଅପେକ୍ଷା ପୁରୁଷଲୋକଙ୍କୁ ଏ ରୋଗ ବେଶି ଧରେ। ରୋଗର ଲକ୍ଷଣ ଏହି ଯେ—ଗୋଡ଼ ଅବଶ ହୋଇଯାଏ; କ୍ରମେ ଗୋଡ଼ ଓ ଜଙ୍ଘ ଦରଜ ହୁଏ ଓ ଦେହ ଫୁଲିଯାଏ; ମୁହଁ ମଧ୍ୟ ଫୁଲେ; ଦେହର କୌଣସି ସ୍ଥାନ ଚିପିଲେ ଖାଲ ହୋଇଯାଏ ମାତ୍ର ସେ ଖାଲ ସ୍ଥାନ ଶୀଘ୍ର ପୂରିଯାଏ ନାହିଁ; ହାତ ଗୋଡ଼ କ୍ରମଶଃ ଅଚଳ ହୁଏ; ହୃତ୍‌ପିଣ୍ଡ ଦୁର୍ବଳ ହୁଏ; ରୋଗୀ ସମ୍ପୂର୍ଣ୍ଣ ବିଶ୍ରାମ ନ କରି ଚଲାବୁଲା କଲେ ବା ପରିଶ୍ରମ କଲେ ହଠାତ୍ ହୃତ୍‌ପିଣ୍ଡର କାର୍ଯ୍ୟ ବନ୍ଦ ହୋଇ ମୃତ୍ୟୁ ଘଟେ; ଏ ରୋଗୀର ଶ୍ୱାସ ନିଃଶ୍ୱାସ କଷ୍ଟ; ନାଡ଼ି ଦୁର୍ବଳ ହୁଏ; ବେଶୀ ପ୍ରସ୍ରାବ ହୁଏ ନାହିଁ—ସତ୍ୟସମାଚାର— ୧। ୭। ୩୧।]

ବେରୁଆଁ (ହାଁ)—ଦେ. ବି (ସଂ. ବାରଣ ବା ବରକ)—ଜଳଜ ଘାସବିଶେଷ
Beruañ(hāñ) ବା ଘାସ ବିଶେଷ—A kind of aquatic
বোর, গাঁছবকাটি reed or grass with which mats are woven (Cyperus segetum). [ଦ୍ର—ଏ ଘାସ ଦୁଇ ହାତ ଉଚ୍ଚ ହୁଏ। ଏହାର ଡାଙ୍ଗକୁ ଚିରି ଶୁଖାଇ ଚଟେଇ ବୁଣନ୍ତି।]

ବେରୁଆଁ (ହାଁ)ମସିଣା(ଚଟେଇ, ମସିଣା ପେଁସ)—ଦେ. ବି—ବେରୁଆଁରେ
Beruañ(hāñ) masiṇā ବୁଣା ହୋଇଥିବା ମସିଣା—Mat
বোরপাটী, বোটপাট্টি woven with a kind of aquatic reed or grass.

ବେ ରୂପ—ଦେ. ବି (ସଂ. ବିରୂପ)·୧। ଖରାପ ରୂପ; କୁତ୍ସିତ ରୂପ—Ugly
Be rūpa form; deformity. ଦେ. ବିଣ—ବେରୂପା (ଦେଖ)·
বেরূপ बदसुरती Berūpā (See).

ବେରୂପା—ଦେ· ବିଣ (ସଂ. ବିରୂପ)—୧। ଖରାପ; କ୍ରୂର; କୁତ୍ସିତରୂପ-
Berūpā ବିଶିଷ୍ଟ—1. Ugly; deformed. ୨। ଅସୁନ୍ଦର—
বেরূপ 2. Not beautiful. ୩। ବିବର୍ଣ୍ଣ—3. Pale; dis-
बदसुरत coloured. ୪। ଯାହାର ସୁନ୍ଦର ରୂପ ପରେ ନାନା କାରଣରୁ ମ୍ଳାନ ହୋଇଥାଏ—4. Having one's countenance become pale

ବେ ରୁଲ(ଲୁ)—ବୈଦେ (ଫା. ବେ+ଇଂ. ରୁଲ=rule)—ବିଣ—
Be rūl(lu) ନିୟମ ବା ବିଧିବହିର୍ଭୂତ – Contrary to rules;
বেরূল irregular.

ବେ ରୋଜଗାର—ବୈଦେ (ଫା. ବେ+ରୋଜଗାର) ବି—୧ । ଅସ୍ୱ-
Be rojagāra ସ୍ଥାନ ଅବସ୍ଥା; ଅର୍ଜନରହିତ ଅବସ୍ଥା—1. A
বেরোজগার state of being without any income.
बेरोजगारी ୨ । ଶୃତିର ନ ଥିବା ଅବସ୍ଥା—2 Unemploy-
ment. ବିଣ—ବେରୋଜଗାରୁ (ଦେଖ)—
Berojagāri (See).

ବେ ରୋଜଗାରୁ—ବୈଦେ. ବି. (ଅ) ବିଣ—୧ । ଅର୍ଜନରହିତ—
Be rojagāri 1. Having no earning. ୨ । ଆସ୍ୱସ୍ଥାନ—
বেরোজগারী 2. Incomeless. ୩ । ଶୃତିରଶୂନ୍ୟ;
बेरोजगार ବେକାରୁ—3. Unemployed. ୪ । ଜୀବିକା-
(ବେରୋଜଗାରିଆ—ଅନ୍ୟରୂପ) ସ୍ଥାନ—4. Having no
means of support

ବେର୍ଥ—ଗ୍ରା. ବି. (ସ. ବ୍ୟର୍ଥ)—ବ୍ୟର୍ଥ—Fruitless.
Bertha ব্যর্থ

ବେର୍ଥା—ଗ୍ରା. ବି (ସ. ବୃଥା)—ବୃଥା—
Berthā Ineffectual.
(ବୃଥା—ଅନ୍ୟରୂପ)

ବେଲ୍ (ଧାତୁ)—ସ- ୧ । ଚଞ୍ଚଳ ହେବା—1. To be restless.
Bel (root) ୨ । ଗତି କରିବା—2. To move.

ବେଲ୍—ପ୍ରାଦେ. (ସମ୍ବଲପୁର) ବି. (ସ. ବେଳା)—୧ । ବେଳ; କାଳ;
Bel ସମୟ—1. Time. ୨ । ଦିବସର ଓଳ—2. Time or
half part of day. (ଯଥା—ସକାଳ୍ ବେଲ୍, ଉପର
ବେଲ୍ ।) ୩ । ସୂର୍ଯ୍ୟ—3. The sun. ବୈଦେ ବି.
(ଇଂ. ବେଲ୍) ବି—୧ । ପିତଳ ଘଣ୍ଟା—1. Bell; gong.
୨ । ମନୁଷ୍ୟର ମନକୁ କୌଣସି ବିଷୟ ପ୍ରତି ଆକର୍ଷଣ
କରିବା ନିମନ୍ତେ ବଜା ଯିବା ଘଣ୍ଟା—2. Alarm bell.
୩ । ଲୁଗାର ଗଣ୍ଠି—3. Bale of cloth. ୪ । ଯାମିନ—
4 Bail. ବୈଦେ. (ଫା) ବି—୧ । ମଲ୍ଲୀ ଫୁଲ—
1. Jasmine. ୨ । (ତୁଳ. ସ. ବଲ୍ଲୀ) ଲତା—
2 Creeper. ୩ । ସୂତା ଦ୍ୱାରା ଲତା ଆକାରରେ ବୁଣା
ହୋଇଥିବା ଲୁଗାର ଧଡି; ଲଡ଼ଡ଼—3. Lace; frill
worked on a cloth in the shape of a
running creeper. ୪ । (ଏହି କଣ୍ଟାର ମୁଣ୍ଡ
ପାଖ ମଲ୍ଲୀକଢ଼ ପରି ଗୋଲ ଥିବାରୁ) ସ୍ତ୍ରୀ ଲୋକମାନେ
ବଙ୍ଗାଳିଆ ବେଣୀକୁ ମୁଣ୍ଡରେ ଅଟକାଇ ରଖିବା ନିମନ୍ତେ
ଯେଉଁ ଲୁହାର କଣ୍ଟା ବ୍ୟବହାର କରନ୍ତି—4. Small
hair pins fixed to the coiled braid of hair
to make it stay firmly in a position.

ବେଲ୍ ଉଦିବା—ପ୍ରାଦେ. (ସମ୍ବଲପୁର) ବି. (ସ. ବେଳା+ଉଦୟ)—
Bel udibā ସୂର୍ଯ୍ୟୋଦୟ; ସୂର୍ଯ୍ୟ ଉଦିତ ହେବା—The rising
of the sun.

ବେଲ୍ କଣ୍ଟା—ଦେ. ବି—ସ୍ତ୍ରୀଲୋକମାନେ ବଙ୍ଗାଳିଆ ବେଣୀ ବାନ୍ଧି
Bel kantā ତାକୁ ଗୋଟିଏ ଖୋପ କରି ଗୁଡ଼ାଇ ଉକ୍ତ ବେଣୀକୁ
বেল কাঁটা ଦୃଢ଼ ଭାବରେ ରଖାଇବା ପାଇଁ ସେହି ଖୋପାରେ
बाँलका काँटा ଯେଉଁ କଣ୍ଟା ଗୁଞ୍ଜନ୍ତି—Small hair pins
fixed to the coiled braid of hair to make
it remain firm in its position.

ବେଲ୍ ଚକି(କ୍କି)—ଦେ. ବି (ଫା. ବେଲଚକ୍=ଫାଉଡ଼ା+ସ. ଚକ୍ର)—
Bel chaki(kki) କୋଠା କାମ ପାଇଁ ଚୂନକୁ ଘଣା ବୁଲାଇବା
বেল চাকি ପ୍ରକ୍ରିୟାରେ ପେଷିବାର ପଥର ଚକ—
बेल चक्की A stone mill for grinding lime.
[ବ୍ର—ଯେଉଁଠାରେ ବହୁତ ପେଷା ଚୂନ ଲୋଡ଼ା ହୁଏ
ସେଠାରେ ଚୂନ ସଙ୍ଗେ ବାଲି ବା ସୁରକୀକୁ ଠିକ୍ ଦ୍ୱାରା ନ
ମିଶାଇ ଗୋଟିଏ ପରାଧିକରିଣୀ ଗର୍ତ୍ତ କରି ସେ ଗର୍ତ୍ତରେ
ଚୂନ ଓ ବାଲି ଆଦି ପୂରାଇ ଘଣା ବୁଲାଇବା ପରି ବଳଦଙ୍କ
ଦ୍ୱାରା ପଥର ଚକକୁ ବୁଲାଇ ପେଷାଯାଏ ।]

ବେଲ୍ଟିନ୍(ଙ୍ଗ୍, ନି, ଙ୍ଗି, ଣ୍, ଣି)—ବୈଦେ, (ଇଂ) ବି. (ଇଂ. ବ୍ଲଟିଙ୍ଗ୍)—
Beltin(ṅg, ni, ṅgi, ṇ, ṇi) କାଗଜରୁ କାଳି ଶୋଷିବାର
ব্লাটিঙ্ ‌ କାଗଜ—Blotting paper.
[ବ୍ଲଟିଙ୍ଗ୍(ଙ୍ଗ୍, ନ୍, ଣି, ଙ୍ଗି, ନ୍)—ଅନ୍ୟରୂପ]

ବେଲ୍ଦାର୍—ବୈଦେ. (ଫା) ବିଣ—କାରୁକାର୍ଯ୍ୟଯୁକ୍ତ ଧଡ଼ି ବା ଫିତା
Beldār କସା ଯାଇଥିବା (ଲୁଗା ବା ଶାଢ଼ୀ)—
বেলদার बेलदार Embroidered cloth.

ବେଲ୍ ପହରୁ—ପ୍ରାଦେ. (ମେଦିନୀପୁର) ବି. (ସ. ବେଳା+ପ୍ରହର)—
Bel pahari ଓପର ଓଳ—Afternoon.

ବେଲ୍ ଫୁଲ—ଦେ. ବି. (ଫା. ବେଲ୍; ବ. ବେଲ୍ ଫୁଲ୍ ବଙ୍ଗଳାରୁ
Bel phula ଅନୁକୃତ)—୧ । ମଲ୍ଲୀ ଫୁଲ—1. Jasmine.
বেল ফুল ୨ । ମଲ୍ଲୀ କଢ଼ ଆକୃତିର ମୁଣ୍ଡ ଥିବା ଗୋଲକ-
बेला ସଯୁକ୍ତ ସ୍ତ୍ରୀ ଲୋକଙ୍କ କେଶର କଣ୍ଟା—2. Hair
pin of the shape of jasmine buds.

ବେଲ୍ ବଜା(ଜେ)ଇବା—ଦେ. କ୍ରି (ଇଂ. ବେଲ୍+ସ. ବାଦନ)—
Bel bajā(je)ibā ଘଣ୍ଟା ବଜାଇବା—To ring a bell.
বেল দেওয়া बेल बजाना

ବେଲ୍ ବୁଟା(ଟ୍ଟା)—ବୈଦେ. ବି. (ଫା)—ଲୁଗାରେ ଓ ଲୁଗା ଧଡିରେ
Bel butā(ṭṭā) ଛୁଞ୍ଚ ଦ୍ୱାରା କସି ଯାଇଥିବା ଫୁଲ, ଲତା ଓ
বেল বুটা ତାରମାନ—Embroidery work wrought
बेल बुटा on cloth in the shape of flowers,
creepers and stars.

ବେଲ୍ ବୁଟା(ଟ୍ଟା)ଦାରୁ—ବୈଦେ. ବିଣ. (ଫା)—ଯେଉଁ ଲୁଗାରେ ବେଲ
Bel butā(ṭṭā)dār ବୁଟା କସି ଯାଇଥାଏ—
Embroidered.

ବେଲବୁଡ଼ା—ପ୍ରାଦେ (ସମ୍ବଲପୁର) ବି—ସନ୍ଧ୍ୟା; ସୂର୍ଯ୍ୟାସ୍ତ—
Belburḍā Sunset; night-fall.

ବେଲ୍ଲି (ଧାତୁ)—ସ—୧ । ଚଞ୍ଚଳ ହେବା—1. To be restless.
Bell (root) ୨ । ଗତି କରିବା—2. To move.

ବେଳା—ସଂ. ବି ( ବେଲ୍ ଧାତୁ=ଚଞ୍ଚଳ ହେବା+ଅ )—ଉଦ୍ୟାନ—Garden. ଦେ. ବି ( ପ୍ରା· ବେଲ, ସଂ. ବେଲା; ଭା· ବେଳେ )—୧ । ବେଳା; ସମୟ—1. Time. ୨ । ଫୁରସେତ୍; ଅବସର—2. Leisure. ୩ । ରାତ୍ରିର ବା ଦିବସର ସମୟ—3. Time of day or night. ୪ । ସୁଯୋଗ—4. Opportunity. ୫ । ସୁବିଧାଜନକ ସମୟ; ଉପଯୁକ୍ତ ସମୟ—5. Opportune time; proper time. ୬ । ଥର; ବାର—6. Time. [ ଉ—ଶ୍ରୀ ଜଗଦେବ ବୋଲେ, ଭେଟେ କଲୁ କ ହେଲେ ବେଳେ, ଧରି କୋଳେ ତାକୁ ସୁସାରେ । କବିସୂର୍ଯ୍ୟ. ସଙ୍ଗୀତ ।] ୭ । ଜୀବନର ସମୟ—7. Time of one's life. ୮ । ଦିବାକାଳ; ଦିବାଭାଗ—8. Day-time. ୯ । ଦିବସର ପୂର୍ବାର୍ଦ୍ଧକାଳ; ପୂର୍ବାହ୍ନ ବା ଅପରାହ୍ନ କାଳ; ଓଳ—9. Half of the day time; forenoon or afternoon. ୧୦ । ଘଟଣା ଘଟିବାର ସମୟ—10. The time of an occurrence. ୧୧ । ବିଷୟ—11. Concern; matter; case. ( ଯଥା—ତୁମ ବେଳକୁ ଭଲ କଷାୟ, ମୋ ବେଳକୁ ଭଲ କଷାୟ । ) ୧୨ । ପାଳି—12. Turn.

Bela
বেলা
वेला

ବେଲ—ଦେ. ବି ( ସଂ. ବିଲ୍ୱ; ପ୍ରା· ବେଲ୍ଲୋ )—୧ । ଶ୍ରୀଫଳ; ବିଲ୍ୱଫଳ ଓ ବୃକ୍ଷ—1. Bael; Aegle Marmelos.

Bela

ଅନ୍ୟ ସଂସ୍କୃତ ନାମ—ଶ୍ରୀଫଳ, ମାଲୂର, ମଙ୍ଗଲ୍ୟ, ତ୍ରିଶିଖ, ଶଲ୍ୟ, ଶୈଲପତ୍ର, ମହାଫଳ, ସଦାଫଳ, ହ୍ରୀପତ୍ର, କଣ୍ଟକାଢ୍ୟ, ଶିବଦ୍ରୁମ, ମହାକପିତ୍ଥ, ଗୋହରୀତକୀ, ତ୍ରିଶାଖ, ସତ୍ୟଫଳ, ପତ୍ରଶ୍ରେଷ୍ଠ, ଲକ୍ଷ୍ମୀଫଳ, ଗନ୍ଧଫଳ
বেল
वेल; श्रीफल
ମ. ବେଲ
ଗୁ. ବେଲ
ତା. ବିଲ୍ୱମ୍, ବିଲ୍ୱପତ୍ରମ୍; ବେଲ
ତେ. ମାରେଡୁ, ପତ୍ରି, ବିଲ୍ୱପାଣ୍ଡୁ, ମାରେଡୁ, ମାଲୂରମୁ (Kirtikar)
କନ. ବଲ, କଠୋର

[ ଉ—ଏହା ନାରଙ୍ଗାଦି ବର୍ଗର ବୃହତ୍ କଣ୍ଟକବୃକ୍ଷ ଓ ଏହାର ଫଳ ବର୍ତ୍ତୁଳ, ପତ୍ର ତ୍ରିପତ୍ରୀ; ଫଳ ଗଛରେ ୮।୧୦ ମାସ ରହି ଖାଇବାକୁ ପାଚେ । ଏହାର କଞ୍ଚା ଓ ପାଚିଲା ଫଳ, ପତ୍ର ଓ ଅଠା ନାନା କାର୍ଯ୍ୟ ଓ ଔଷଧରେ ଲାଗେ । ଏହାର ପତ୍ର ମହାଦେବଙ୍କ ମସ୍ତକରେ ଚଢ଼ା ହୁଏ । ପାଚିଲା ବେଲକୁ ପଣା କରି ଖାଆନ୍ତି ଓ ମୁରବ୍ବା କରନ୍ତି । ଏହି ଗଛର ଚେର ମାଟିଭିତରେ ମାଡ଼ୁଥାଏ ଓ ତାହାର ଗଛମୂଳରୁ ଛୋଟ ଛୋଟ ଦୂରରେ କୁଆଁ ବାହାରି ନୂଆ ଗଛ ବାହାରେ । ଖାଇବାକୁ ପତ୍ରଯାକ ଝଡ଼ିପଡ଼େ । ବୈଦ୍ୟଙ୍କ ମତରେ ଏହା ମଧୁର, କଷାୟ, ଗରମ, ହୃଦ୍ୟ, ରୁଚିକର, ପକ୍ୱ, ଗ୍ରାହୀ, ପିତ୍ତକର, ପାଚକ, ବାତାତିସାର ଓ ଜ୍ୱରନାଶକ । ଏଥିର ଫଳ ପାଚିଲେ ଫଳ ମଧ୍ୟର ମିଠା ଶସକୁ ପଣା କରି ଓ ମୁରବ୍ବା କରି ଖିଆଯାଏ । ଫଳ ଉପରେ ଗୋଟିଏ କଠିନ ଆବରଣ ଥାଏ । କଞ୍ଚା ବେଲକୁ ଶୁଖାଇ ଔଷଧାର୍ଥ ରଖାଯାଏ, ପାଚିଲା ବେଲ କୋଷ୍ଠକାଠିନ୍ୟ ଦୂର କରେ ଓ ପଚିଲା ଝାଡ଼ାକୁ ମଧ୍ୟ ବାନ୍ଧେ । ] ୨ । ସ୍ତ୍ରୀଙ୍କୁ ଦିଆଯିବା ନାମ—2. Name given to females.

ବେଲଅଠା—ଦେ. ବି—ବେଲ ଫଳ ମଧ୍ୟରେ ଥିବା ଅଠା—The gum found inside the Bael fruit.
Bela athā
বেলের আঠা

ବେଲ ଉଇଁ(ହି)ବା—ପ୍ରାଦେ ( ସମ୍ବଲପୁର ) କ୍ରି—ସୂର୍ଯ୍ୟୋଦୟ ହେବା—Sunrise.
Bela uin̄(di)bā

ବେଳ ଉଣ୍ଡିବା—ଦେ କ୍ରି—ସୁବିଧାଜନକ ସମୟ ବା ସୁଯୋଗ ଅନ୍ୱେଷଣ କରିବା—To be on the look out for a suitable opportunity.
Bela uṇḍibā
সময় খোজা
(ବେଳ ଖୋଜିବା—ଅନ୍ୟରୂପ)

ବେଳ ଓ(ଉ)ତା—ପ୍ରାଦେ ( ବାଲେଶ୍ୱର ) ବି—ଓପରଓଳ, ଅପରାହ୍ନ—Afternoon.
Bela o(u)tā

ବେଲ କରଡ଼ି—ଦେ. ବି—ବେଲ ଗଛର ଡାଳରୁ ବାହାରିଥିବା କୋମଳ ଶାଖା—Tender shoots of a Bael-branch. [ ଉ—ବଗଡ଼ା ଅନ୍ନ କେ ଅଣିଲ୍ଲି, ବେଲ କରଡ଼ି ଲୁଣ ଅଁଳା । ଜଗନ୍ନାଥ. ଭାଗବତ । ]
Bela karaḍi
বেলের কুঁড়ী

ବେଳ କାଳ—ଦେ. ବି—(ସହଚର)—(ସଂ. ବେଳା+କାଳ)—୧ । ସମୟ—1. Time. [ଉ—ଭୋଗ ସଂଯୋଗ ସମୟ ବେଳକାଳ । କହିଲେ ସବୁ ଏ ଯୁଗଳ । ଭୂପତି. ପ୍ରେମପଞ୍ଚାମୃତ ।] ୨ । ଉପଯୁକ୍ତ ସମୟ—2. Proper time or moment. [ଉ—ଏଇ ବେଳ କାଳ ହୋଇ ଅଛି ତୋହର, ଏଥିରେ ବଳ କରି ନ କରୁ ଲୁମଇ । କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ ।]
Bela kāla

ବେଳକୁ—ଦେ. ଅ—୧ । ଏକ ନିର୍ଦ୍ଦିଷ୍ଟ ସମୟରେ—1. At a fixed time. [ ଉ—କର୍କଟ ବେଣୁ ନଳ, କଦଳୀ ଆଦି ଫଳ, ବେଳକୁ ନାଶକୁ ଭଜନ୍ତି । ପାନକୃଷ୍ଣ. ରସକଲ୍ଲୋଳ । ] ୨ । ଭବିଷ୍ୟତରେ—2. In future.
Belaku শেষে बखतमें

ବେଳକୁ ବେଳ—ଦେ. କ୍ରି. ବିଣ—୧ । ସମୟାନୁକ୍ରମେ—1. As time passes by. ୨ । କ୍ରମେ କ୍ରମେ; ক্রমে ক্রমে କ୍ରମଶଃ—2. Gradually; from time to time. (ବେଳ ବେଳକୁ; ବେଳୁଁ ବେଳ, ବେଳୁଁ ବେଳୁ—ଅନ୍ୟରୂପ)
Belaku bela

ବେ ଲକ୍ଷ—ଦେ. ବିଣ—(ଫା. ବେ+ସଂ. ଲକ୍ଷ)—ଯାହାର କୌଣସି ଲକ୍ଷ ବା ଉଦ୍ଦେଶ୍ୟ ନ ଥାଏ—Aimless; having no aim. ପ୍ରାଦେ. (ଗଞ୍ଜାମ) ବିଣ—ମୂଲ୍ୟହୀନ—Valueless [ଯଥା—ତୋ ଆଖିରେ ମୁଁ ବେଲକ୍ଷ ଦିଶୁଛି କାଁ ? ]
Be laksha
লক্ষহীন

ବେ ଲଗ୍—ଦେ. ବିଣ—(ଫ. ବିଲଗ୍ନ)—୧ । ଅସଂଲଗ୍ନ—1. Unattached; unconnected. ୨ । ପୃଥକ୍‌କୃତ—2 Separated.
Be lag আলগা

**ବେଲ ଗଡ଼ା(ଡ଼େ)ଇବା**—ଦେ. କ୍ରି—୧ । ନିର୍ଦ୍ଧାରିତ ସମୟ ଅତିବାହିତ
Bela garḍā(ṛḍe)ibā କରାଇବା—1. To let the
ସময় গড়ান fixed time pass. ୨ । ସମୟ ବୃଥା ବ୍ୟୟ
କରିବା—2. To while away time.

**ବେଲ ଗଡ଼ିବା**—ଦେ. କ୍ରି—୧ । ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା—
Bela garḍibā 1. The passing of the fixed time.
বেলা যাওয়া ୨ । ସ୍ଥଳ ଲେଉଟିବା; ମଧ୍ୟାହ୍ନର ବେଲ ଟପି ଯିବା—
ବେଲ ଯିବା } —ଅନ୍ୟରୂପ 2. The passing of
ବେଲ ଗଳିଯିବା } noon; the sun's passing the meridian.

**ବେଲ ଘଟିବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ ପାଇଁ ଯଥେଷ୍ଟ ସମୟ
Bela ghaṭibā ଓ ଅବସର ମିଳିବା—1. To find time
সময় আসা for doing a thing. ୨ । ପାଳି ପଡ଼ିବା—
2. The arrival of one's turn.

ବେଲ ମିଳିବା, ବେଲ ହେବା,
ବେଲ ପହଞ୍ଚିବା, ବେଲ ପାଇବା } —ଅନ୍ୟରୂପ
ବେଲ ଆସିବା, ବେଲ ପଡ଼ିବା

**ବେଲଙ୍କ(ଙ୍ଗ)**—ଦେ. ବି—ଯୁଦ୍ଧାସ୍ତ୍ରବିଶେଷ—
Belaṅka(ṅga) A kind of war weapon.

**ବେଲଜ(ଜ୍ଜ)ତ୍**—ବୈଦେ. ବିଣ—(ଫା)—ସ୍ୱାଦହୀନ—
Belaja(jja)t বেলজত **बेलज्जत** Tasteless; insipid.

**ବେଲ(ଲା)ଜ୍ୟା**—ଗ୍ରା. ବିଣ—(ଫା. ବେ+ସ. ଲଜ୍ଜା)—୧ । ନିର୍ଲଜ୍ଜ;
Bela(lā)jyā নির্লজ্জ ଅଲଜ୍ଜୁକ—1. Shameless.
[ବେଲଜ୍ଜୁକ (ପୁଂ)—ଅନ୍ୟରୂପ] ୨ । ଲଜ୍ଜାଜନକ (କାର୍ଯ୍ୟ)—
(ବେଲଜ୍ଜୁକୀ—ସ୍ତ୍ରୀ) 2. Shameful (etc).

**ବେଲଣ**—ଦେ. ବି—( ସ. ବେଲ୍ଲନ, ବେଲନ )—ରୁଟିକୁ ବେଲିବା
Belaṇa বেলন କ୍ରିୟା—Act of rolling bread.

**ବେଲଣା**—ଦେ. ବି—(ସ. ବେଲ୍ଲନ, ବେଲନ)—୧ । ରୁଟି ବେଲିବା
Belaṇā ନିମନ୍ତେ ଶିଳପୁଆ ପରି କାଷ୍ଠଦଣ୍ଡ—1. A paste-pin,
বেলনা; বেলন্ **बेलन** a rolling pin ୨ । ବେଲଣା
ପେଡ଼ି (ଦେଖ)—2 Belaṇā perḍi (See)

**ବେଲଣା କାଠି**—ଦେ. ବି—ଯେଉଁ କାଠରେ ଶିଳପୁଅଦ୍ୱାରା ରୁଟି ବେଲା
Belaṇā kāṭhi ଯାଏ—Rolling pin used in rolling
বেলনা, বেলন **बेलनी** balls of kneaded bread.

**ବେଲଣା ପେ(ପି)ଡ଼ି(ଢ଼ି)**—ଦେ. ବି ( ସ ବେଲ୍ଲନପୀଠ )—ଯେଉଁ କାଷ୍ଠ
Belaṇā pe(pi)ṛḍi(ṛḍhi) ଫଳକ ବା ପୀଠ ଉପରେ ମଇଦାର
বেলনপীড়ি, বেলন চাকি ଗୁଳା ରଖି ବେଲଣା କାଠିଦ୍ୱାରା ରୁଟି
**बेलन पीढी** ବେଲିବାକୁ ହୁଏ—A slab of plane wood
(ବେଲଣା ପଟ—ଅନ୍ୟରୂପ) on which balls of kneaded
bread are rolled into shape.

**ବେଲ ଧରିବା**—ଦେ. କ୍ରି ( ସ ବେଲ+ଧୃ ଧାତୁ )—ଜ୍ୟୋତିଷର
Bela dharibā ଉପଯୁକ୍ତ ମୁହୂର୍ତ୍ତ ବା ଲଗ୍ନ ଗଣନାଦ୍ୱାରା ସ୍ଥିର
বেলা ধরা କରିବା—To ascertain the astrologically
auspicious proper moment for marriage
etc.

**ବେଲନ(ଣ)**—ସ. ବି ( ସ. ବେଲ୍ ବା ବେଲ୍ଲ ଧାତୁ=ଚଞ୍ଚଳ ହେବା+
Belana(ṇa) ଭାବ. ଅନ )—ରୁଟି ବେଲିବା—Rolling of
cakes.

**ବେଲ ପଣା**—ଦେ. ବି ( ସ. ବେଲ୍ୱ+ପାନକ )—ପାଚିଲା ବେଲର
Bela paṇā ଶସକୁ ପାଣିରେ ଗୋଳି ଛାଣିବାକୁ ହୁଏ; କଦଳୀ ବା
বেলের পানা ଚିନି ମିଶାଇ ଯେଉଁ ପ୍ରପାନକ ପ୍ରସ୍ତୁତ ହୁଏ ତାକୁ
ବେଲପଣା କହନ୍ତି—Sweet drink made by
mixing the kernel of ripe bael fruit in
water and sweetening it.

**ବେଲପତୁରି**—ଦେ. ବିଣ (ସ. ବିଲ୍ୱ+ପତ୍ର)—ବେଲପତ୍ରର ଗନ୍ଧବିଶିଷ୍ଟ—
Belapaturi Smelling like Bael leaves ଦେ. ବି—
বেলপাতার মতন ୧ । ବେଲ ପତ୍ର ( ଦେଖ )—Bela patra
( See ) ୨ । ଯେଉଁ ଆମ୍ବର ଗନ୍ଧ ବେଲପତ୍ରର ଗନ୍ଧ
ପରି ଜଣାଯାଏ—2. Mango having the smell
of bael leaves.

**ବେଲ ପତ୍ର(ତ୍ରୀ)**—ଦେ. ବି ( ସ. ବିଲ୍ୱ+ପତ୍ର )—୧ । ବେଲ ଗଛର
Bela patra(trī) ପତ୍ର—1. Bael leaves. [ଦ୍ର—ଏହାର
বেলপাতা ଗନ୍ଧ ବଡ଼ ହୃଦ୍ୟ, ଏହା ଈଶାଣୀ ଓ ମହାଦେବଙ୍କ
**बेलपत्ता** ଉପରେ ଦିଆଯାଏ । ] ୨ । ( ଲକ୍ଷଣାର୍ଥ ) ପ୍ରାର୍ଥୀ ବର
ଲାଭ କରିବା ପାଇଁ ମହାଦେବଙ୍କ ମୁଣ୍ଡରେ ଅର୍ପଣ କରିବା
ବେଲପତ୍ରି ପରି କାର୍ଯ୍ୟପ୍ରାର୍ଥୀ କାର୍ଯ୍ୟାଧ୍ୟକ୍ଷ ବ୍ୟକ୍ତିଙ୍କୁ ଦେବା ବା
ଭେଟିବା ଉତ୍କୋଚ ଆଦି—2. (Figurative) Bribe
or presents given to one in authority for
confering a post or doing some favour
just as bael leaves are offered by votaries
of Śiba for obtaining some boon.

**ବେଲପତ୍ରି ଚଢ଼ା(ଢ଼େ)ଇବା**—ଦେ. କ୍ରି—୧ । ଶିବମୂର୍ତ୍ତି ଉପରେ ବେଲ
Belapatri charḍhā(ṛḍhe)ibā ପତ୍ର ଅର୍ପଣ କରିବା—1. To
বেলপাতা চড়ান put bael leaves on the image of
ବେଲପତ୍ରି ଦେବା } ଅନ୍ୟରୂପ Śiba. ୨ । (ଲକ୍ଷଣାର୍ଥ)
ବେଲପତ୍ରି ଲାଗି କରିବା } କୌଣସି ବ୍ୟକ୍ତିଙ୍କୁ ଧନ ବା
ଉପହାରଦ୍ୱାରା ସନ୍ତୁଷ୍ଟ କରିବା—2. ( figurative;
ironical ) To satisfy a person by money
or other presents.

**ବେଲ ପାଚିଲା, କୁଆର କି ଗଲା**—( ରଗ; ନ୍ୟାୟ )—ବେଲ ଫଳ
Bela pāchilā kuāra ki galā କଠିଣ ଆବରଣଦ୍ୱାରା ଆବୃତ
বেল পাকলে কাকের কি ଥିବାରୁ ପାଚିଲା ବେଲ ଭିତରର ସୁସ୍ୱାଦୁ
ଶସ ଖାଇବାରେ କୁଆ ଅକ୍ଷମ ହୁଏ; ଏପରି ସ୍ଥଳରେ
କୌଣସି ଅପ୍ରାପ୍ୟ ବସ୍ତୁ ସମ୍ବନ୍ଧେ ଲୋକ ଆଶା ନ କରିବା
ପାଇଁ ଏ ରଗ ବୋଲାଯାଏ—An analogy from
the fact that the crow does not rejoice
when the bael fruits become ripe (as the
crow cannot eat it on account of its hard
rind).

ବେଲ ପାରୁ—ଦେ. ବି—ପାଚଲା ବେଲକୁ ପାଣିରେ ଚକଟି ଛାଣିଲେ Bela pāru ସେଥିରୁ ବାହାରିବା ତନ୍ତୁମୟ ପଦାର୍ଥମାନ—The বেলের ছিবড়ে fibrous substance got after mixing the kernel of ripe Baels with water.

ବେଲବତୀ କନ୍ୟା—ଦେ. ବି—କାହାଣୀରେ ବର୍ଣ୍ଣିତ ଶାପଗ୍ରସ୍ତା ସୁନ୍ଦରୀ Belabatī kanyā କନ୍ୟା—Name of a beautiful girl described in the folk-tales as having assumed the shape of a bael fruit on account of a curse. [ ଦ୍ର—ଶାପଗ୍ରସ୍ତା ହୋଇ ଏ କନ୍ୟା ବନମାଳ ବେଲ ମଧ୍ୟରେ ଥାଏ; ରାଜକୁ ବେଲ ମଧ୍ୟରୁ ବାହାରେ । ରାଜପୁତ୍ର ତାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାକୁ ବିବାହ କରି ଶାପମୁକ୍ତ କରିଥିଲେ । ]

ବେଲ ବୁଡ଼—ଦେ.ବି. -ସୂର୍ଯ୍ୟାସ୍ତ; ସନ୍ଧ୍ୟା —Evening; sunset. Bela burda সন্ধ্যাবেলা

ବେଲ ବୁଡ଼ା(ଡ଼େ)ଇବା—ଦେ. କ୍ରି—କୌଣସି କାର୍ଯ୍ୟ କରିବା ପୂର୍ବରୁ Bela burdā(rde)ibā ସନ୍ଧ୍ୟା ହେବାର ଅବସ୍ଥା ଘଟାଇବା— সন্ধ্যা করা To prolong a work till evening.

ବେଲ ବୁଡ଼ିବା—ଦେ. ବି ସୂର୍ଯ୍ୟାସ୍ତ ହେବା; ସନ୍ଧ୍ୟା ହେବା—The Bela burdiba setting of the sun. [ଦ୍ର—ଯଦ୍ଦି বেলা রতরত হওয়া ବେଲ ବୁଡ଼ଇ ତହିଁ ରହିଯାଏ । କୃଷ୍ଣଙ୍କ. ମହାଭାରତ, ବନ ।

ବେଲ ବୁଝା—ଦେ. ବଣ—ସମୟଜ୍ଞ; କାଳଜ୍ଞ—Knowing the Bela bujhā time. [ଦ୍ର—ବେଲବୁଝା ପାର୍ବତ ଜ୍ୟୋତିର୍ବିଦ যে সময় জানে ପ୍ରାୟେ । ଭଞ୍ଜ. ବୈଦେହୀଶବିଳାସ ।

ବେଲମା—ପ୍ରାଦେ (ଗଞ୍ଜାମ) ବି—୧ । ନୀଚ ତନ୍ତୁ ଜାତିବିଶେଷ— Belamā 1. A class of low caste weavers. ୨ । (ବେଲମୀ—ସ୍ତ୍ରୀ) ବେଲମା (ତନ୍ତୁ) ଙ୍କ ଦ୍ୱାରା ବୁଣା ଯାଇଥିବା ଲୁଗା— 2. Cloth woven by Belamā weavers.

ବେଲ ମୁ(ମୋ)ର(ରୁ)ବା(ବ୍ବା)—ଦେ. ବି—(ସଂ. ବିଲ୍ୱ+ଫା. ମୁରବ୍ବା)- Bela mu(mo)ra(ru)bā(bbā) ପାଚିଲା ବେଲର ଖୋଳ ଛଡ଼ାଇ ତା ଭିତର ଶସକୁ ଚେକା ଚେକା କରି କାଷ୍ଠ ତନ୍ତ ପାଗରେ ସିଦ୍ଧ କରି ରଖିଥିବା ରୁଚିକର ଓ ସ୍ୱାସ୍ଥ୍ୟପ୍ରଦ ମିଷ୍ଟାନ୍ନବିଶେଷ—Slices of the বেলের মোরবা बेलमुरब्बा kernel of ripe bael fruit preserved in sugar.

ବେ ଲମ୍ବରୀ—ବୈଦେ. ବଣ. (ଫା. ବେ+ଇଂ. ନମ୍ବର) ଯେଉଁ ଜିନିଷର Be lambarī ବା ବସ୍ତୁର ନମ୍ବର ନ ଥାଏ—Having no বেনম্বরী बेलम्बरी number or mark attached to it. (ବେଲମ୍ବରୀ—ଅନ୍ୟରୂପ)

ବେଲ(ଲି)ମ୍ବି—ଦେ. ବି—ଅରଣ୍ୟ ତରୁବିଶେଷ— Bela(li)mbi Averrhoa Bilimbar.

ବେଲ ଯିବା—ଦେ. ବି—୧ । ଦିବସର ଅବସାନ—1. The end of Bela jibā the day. ୨ । ନିରୂପିତ ସମୟ ଗଡ଼ିଯିବା— বেলা যাওয়া 2. The passing away of the fixed time.

ବେଲ ରତରତ—ଦେ. ବି—୧ । ସୂର୍ଯ୍ୟାସ୍ତ—1. Sunset. ୨ । Bela rata rata বেলা রতরত ମୁହଁ ସନ୍ଧ୍ୟା—2. Dark. (ବେଲ ରଡ଼ା ମାରିବା—ଅନ୍ୟରୂପ)

ବେଲ ଶୁଣ୍ଠା—ଦେ. ବି—(ସଂ. ବିଲ୍ୱଶଲାଟୁ; ବିଲ୍ୱପେଶିକା)— Bela śunṭhā କଞ୍ଚା ବେଲକୁ କାଟି ତାହାକୁ ଔଷଧାର୍ଥ ବ୍ୟବହାର (ବେଲ ଶୁଣ୍ଠା—ଅନ୍ୟରୂପ) କରିବା ପାଇଁ ଶୁଖାଇ ରଖିଥିବା বেলশুঁঠ খণ্ডমান—Slices of raw bael fruit kept बेलगिरि dried up for medicinal purposes.

ବେଲସୁଁ(ହୁଁ)—ଦେ. ଅ—୧ । ଅଗରୁ; ପୂର୍ବରୁ—1. Beforehand. Belasuñ(huñ) ୨ । ସମୟ ଥାଉଁ ଥାଉଁ—2. When there আগে থেকে, বেলা বেলী is still time enough. आगाडी (ଦ୍ର—ବାଳକେ ମୋର ବୋଲ କର, ବେଲହୁଁ ଗୋବିନ୍ଦ ସ୍ମର —ଜଗନ୍ନାଥ, ଭାଗବତ ।)

ବେଲ ହେବା—ଦେ ବି—୧ । କୌଣସି କାର୍ଯ୍ୟ ପାଇଁ ନିର୍ଦ୍ଧାରିତ ସମୟ Bela hebā ବା ମୁହୂର୍ତ୍ତ ଉପସ୍ଥିତ ହେବା—1. The arrival সময়[বেলা]হওয়া of the fixed or proper moment वक्त होना for the doing of an act. ୨ । କୌଣସି କାର୍ଯ୍ୟ ପାଇଁ ଅବସର ମିଳିବା—2. Getting of leisure for doing a work. ୩ । ସକାଳଠାରୁ କ୍ରମଶଃ ଦିବସର କାଳ ଅଗ୍ରସର ହେବା—3. Advance of the day from morning.

ବେଳା—ସଂ. ବି (ବେଲ ଧାତୁ = ଚଞ୍ଚଳ ହେବା + କର୍ତ୍ତ୍ରି. ଅ+ସ୍ତ୍ରୀ. ଆ)- Belā ୧ । ବେଲ; ସମୟ; କାଳ—1. Time. ୨ । ଋତୁ— 2. Season. ୩ । ଦିବସ; ଦିବାଭାଗ—3. Day-time. ୪ । କାଳବିଭାଗ—4. Division of time. ୫ । ଇଂରେଜି ଏକ ଘଣ୍ଟା ପରିମିତ କାଳ; ହୋରା; (ଚବିଶ ବେଳାର ଉଦାହରଣ ପ୍ରଚଳିତ )—5. A period of one hour. ୬ । ଅବସର—6. Leisure. ୭ । ସୁବିଧା; ସୁଯୋଗ—7. Opportunity; opportune moment. ୮ । ସୀମା—8. Limit. ୯ । ସମୁଦ୍ର—9. The sea. ୧୦ । ରାଗ; ରସ— 10. Juice; humour; passion. ୧୧ । ନଦୀର ବା ସମୁଦ୍ରର ତୀର—11. Shore. ୧୨ । ଜଳ— 12. Water. ୧୩ । ଜୁଆର ଭଟ୍ଟା—13. Tide; ebb and flow tide. ୧୪ । ମର୍ଯ୍ୟାଦା— 14. Respect; honour. ୧୫ । ବାକ୍— 15. Word. ୧୬ । ପୀଡ଼ା—16. Illness. ୧୭ । ହଠାତ୍ ମୃତ୍ୟୁ—17. Sudden death. ୧୮ । ବୁଦ୍‌ବୁଦ— 18. Bubble. ୧୯ । ରକ୍ତଫଳବିଶେଷ—19. A kind of red fruit. ୨୦ । ବୁଧଗ୍ରହଙ୍କ ଭାର୍ଯ୍ୟା— 20. Name of the wife of planet Mercury. ୨୧ । ଦିନମାନର ଅଠଭାଗରୁ ଏକଭାଗ; ପ୍ରାୟ ୩ ଘଣ୍ଟା ( ଦ୍ର. ଶ )—21. A period of about 3 hours. ୨୨ । ରୋଗ; ବେମାରି ( ଦ୍ର. ଶ )—22. Illness;

disease. ଦେ. ବି—୧ । ଦିବସର ପୂର୍ବାର୍ଦ୍ଧ ବା
ବেলা ପରାର୍ଦ୍ଧ; ପୂର୍ବାହ୍ଣ ବା ପରାହ୍ଣ; ଓଳି—1. Half of the day-time; forenoon or afternoon. (ଯଥା—ସକାଳ ବେଳା, ଉପର ବେଳା)—୨ । କୌଣସି କାର୍ଯ୍ୟ କରିବାର ଉପଯୁକ୍ତ ସମୟ—2. Fit or proper time for the doing of a particular act.

**ବେଲ୍ଲା**—ଦେ. ବି—୧ । କଂସା—1 Bowl. [ ଉ—ଟଗାଲ
Belā କାଁସା ବେଲ୍ଲାରେ ନେଇ ମୁହଁ ଜୁଡ଼ାଇ ଦେଲେ × ×
বেলা बेलना ଗାଳି ଦିଏ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।]
୨ । ବଡ଼ କାଂସ୍ୟ ପାତ୍ର—2. A big bell metal dish. ୩ । ରୁଟି ବେଲିବା କର୍ମ—3. The act of rolling flour paste into rolls. ବୈଦେ.
বেল बेला ବି. (ଫା)—ମଲ୍ଲୀ ଫୁଲ—Jasmine. ପ୍ରାଦେ. (ସମ୍ବଲପୁର) ବି—ବେଳା; ସମୟ—Time.

**ବେଲ୍ଲାଏ(ୟ)କ୍**—ବୈଦେ. ବିଣ—ଫା.—ବେନାଏକ୍ (ଦେଖ)—
Belāe(ya)k Benāek (See)

**ବେଳା ଓଟା**—ପ୍ରାଦେ. (କଟକ) ବି—ଉପର ବେଳା; ଉପର ଓଳି—
Belā otā Afternoon.

**ବେଳା କୂଳ**—ସଂ. ବି—(ବେଳା=ଜୁଆର+କୂଳ=ତୀର)—ତାମ୍ରଲିପ୍ତ
Belā kūla ବା ତମଲୁକ ଦେଶ—Tamluk in Midnapur.

**ବେଳା ଜ୍ୱର**—ସଂ. ବି—(ମ. ପ. ଲୋ)—ମରିବା ବେଳେ ମୁମୂର୍ଷୁଙ୍କୁ
Belā jwara ଆକ୍ରମଣ କରିବା ଜ୍ୱର (ହି. ଶ)—Fever which attacks a person just before his death.

**ବେଲାତି**—ପ୍ରାଦେ. (ବସ୍ତର) ବି—ପିଜୁଳି; ଗୁଆଳିଆ—
Belāti Guava.

**ବେଲାଦାନି**—ପ୍ରାଦେ. (ଗଡ଼ଜାତ)—ଯୁଦ୍ଧୋପକରଣ ବିଶେଷ—
Belādāni A kind of material required for fighting. [ଉ—ବେଲା ଦାନି ନାନା ସଜ, ସବୁ ଜାତି ଭୂଲ୍ ବନାଇ ବାହାର ହୋଇଲେ ବରକନ୍ଦାଜ । ବ୍ରଜନାଥ. ସମରତରଙ୍ଗ । ]

**ବେଳାଧିପ**—ସଂ. ବି. (୬ଷ୍ଠୀ ତତ୍) (ଫଳିତ ଜ୍ୟୋତିଷ)—ଦିନମାନର
Belādhipa ଏକାଦିକ୍ରମେ ଆଠ ଭାଗରୁ ପ୍ରତ୍ୟେକ ଭାଗର ଅଧିପତି
ବେଳାଧିପତି } ଅନ୍ୟରୂପ
ବେଳାଧୀଶ
ବେଳାଧୀଶ୍ୱର
ଗ୍ରହ—(astrology) The planet said to preside over every succeeding 3 hours of each week day. [ଦ୍ର—ରବି, ଶୁକ୍ର, ବୁଧ, ଚନ୍ଦ୍ର, ଶନି, ବୃହସ୍ପତି ଓ ମଙ୍ଗଳ, ଏହି କ୍ରମରେ ଗ୍ରହମାନେ ବେଳାଧିପ ହୁଅନ୍ତି; ଯେଉଁ ଦିନ ଯେଉଁ ବାର ହୁଏ ସେହି ଦିନ ପ୍ରଥମ ୩ ଘଣ୍ଟା ସେହି ନାମଧାରୀ ଗ୍ରହ ବେଳାଧିପ ହୁଅନ୍ତି, ତପୂରେ ଉପରୋକ୍ତ କ୍ରମ ଅନୁସାରେ କ୍ରମଶଃ ପରବର୍ତ୍ତୀ ଗ୍ରହମାନେ ବେଳାଧିପ ହୁଅନ୍ତି । ହି. ଶ]

**ବେଲାବ(ବା)ଳି**—ଦେ. ବି. ୧ । ( ସଂ. ବେତାଳ+ବଳୀ )—
Belāba(bā)li ମହାଭାରତୋକ୍ତ ଅସୁରବିଶେଷ—1. Name
बेलावलि of a demon mentioned in the Mahābhārata. ୨ । (ସଂ. ବିଲାବଲ) ସଙ୍ଗୀତର ରାଗବିଶେଷ; ହିନ୍ଦୋଳ ରାଗର ସ୍ତ୍ରୀ (ହି. ଶ)—2. Name of a secondary musical tune.

**ବେଳା ବେଳି**—ଦେ. କ୍ରି. ବିଣ—୧ । ଶୀଘ୍ର—1. Soon.
Belā beli ୨ । ସକାଳ—2. Earlier.
বেলাবেলী (ଉ—କହୁଛି ଏବେହେଁ ବେଳାବେଳି ଲେଉଟ ।
जल्दी ପାନକୃଷ୍ଣ. ରସକଲ୍ଲୋଳ ।)

**ବେଲା ବେଲି**—ଦେ. ବି. (ସହଚର)—ରୁଟି ବା ପିଠା ବେଲିବା କାର୍ଯ୍ୟ—
Belā beli The act of rolling flour-paste into
বেলাবেলী cakes and bread.

**ବେଳା ଭୂମି**—ସଂ. ବି—ସମୁଦ୍ର କୂଳ—
Belā bhūmi Sea-shore.

**ବେଲାର**—ପ୍ରାଦେ. (ଭୁଜଙ୍ଗ ଅବ ଜଳମାଳ) ବି—ବାଲିଆଡ଼ି ଏସି ବା
Belāra ବାଲିଭୂଦବେଷ୍ଟିତ ସମୁଦ୍ର ଉପକୂଳବର୍ତ୍ତୀ ଚାଷ ଜମି—
Arable land in the sea coast surrounded by sand-dunes.

**ବେଲାଳ**—ସଂ. ବି—ମହାଭାରତୋକ୍ତ ଅସୁରବିଶେଷ—
Belāla Name of a demon mentioned in the Mahābhārata.

**ବେଳାସ୍ତ**—ଦେ. ବି. ( ସଂ ବେଳ+ଅସ୍ତ )—ସୂର୍ଯ୍ୟାସ୍ତ; ସନ୍ଧ୍ୟା—
Belāsta Evening; sunset.
(ଉ—ବେଳାସ୍ତ ହେବାର ଜାଣି ମେଲାଣି ହେଲୁଟି । ଉପେ. ବୈଦେହୀଶବିଳାସ ।)

**ବେଲି**—ଦେ. ବି. (ବେଲ୍ ଧାତୁ—ଚଞ୍ଚଳ ହେବା; ସଂ. ବେଲ୍ଲ ଧାତୁ—
Beli କେଳନାଗସା; ତମ୍ପା ସଂ. ବ୍ୟଲୀକ)—୧ । ପରିହାସ;
বেলেল্লাগিরি, বেলী ଥଟ୍ଟା—1. Jesting. ୨ । ଲୀଳା; ଛଳ;
বেলকা ম କୌତୁକ—2 Trick; sport; amusement. ୩ । ଢଙ୍ଗ—3. Mode; manner. (ଉ—ଯେଉଁ କାଳେ ଯେଉଁ ଯୋନି ମୁଁ ଆଶ୍ରା କରେଁ, ସେ କାଳରେ ଚାଲଇଁ ସେ ଚାଲି ବେଲିରେ । କୃଷ୍ଣସିଂହ. ମହାଭାରତ ଅଶ୍ୱମେଧ । ) ୪ । ଛଟା ଗାଳିବା—4. Feigning. ୫ । ରସିକତା—5. Gallantry. ୬ । ମିଥ୍ୟାକଥା—6. False words. ୭ । ଛୋଟ ବେଲ୍ଲା ବା କଂସା—7. Small metal bowl. [ଦ୍ର—ବଙ୍ଗଳା 'ବେଲି'ର ଅର୍ଥ ପଦ୍ମଫୁଲ ଥାଳୀ ।]

**ବେଲିଆ(ହା)**—ଦେ. ବିଣ. ପୁଂ—୧ । ବେହେଲ; ଥଟ୍ଟିଳ—1.
Beliā(hā) Jestive; sportive. ୨ । ଯେ ଛଟା ଗାଳେ
[ବେଲେଇ(ଘା)—ସ୍ତ୍ରୀ] —2. Feigning. ୩ । ରସିକ—
বেলেল্লা; বেল্লিক; রসিক 3. Gallant.

**ବେଲି କରିବା**—ଦେ. କ୍ରି—୧ । ଛଟା ଗାଳିବା—1. To feign.
Beli kariba [ଉ— × × × ଆହୁର ବେଲି କରୁଚୁ,

ଭାନ କରା କୋଉ ଗାତରେ ପଶିବୁ ? ଉକାଉ, ରତ୍ନମାଳୀ । ]

ବେଲ କାଢ଼ିବା, ବେଲ ଖେଳିବା, ବେଲ ଦେଖା(ଖୋ)ଇବା, ବେଲ ହେବା, ବେଲ ବାହାର କରିବା—ଅନ୍ୟରୂପ

ବେଲକା—ସଂ. ବି—ନଦୀ ତଟର ନିକଟବର୍ତ୍ତୀ ପ୍ରଦେଶ (ହ୍ର. ଶ)—
Belikā Land adjoining the bank of a river.

ବେଲଙ୍ଗ (ଙ୍ଗି) ବାଉଁଶ—ଦେ. ବି—ଡେଲଙ୍ଗ ବାଉଁଶ ସରୁ ଜାତୀୟ
Belüng(ūgi) bāunśa ବାଉଁଷ (ବାଉଁଶ ତଳେ ନୋଟ ଦେଖ)—
বেলড় বাঁশ A slender species of Bamboo.

ବେଲିବା—ଦେ. କି (ସଂ. ବେଲ୍ଲ ଧାତୁ)—ମଇଦାର ଖଳକୁ ବେଲଣା-
Belibā ଦ୍ୱାରା ବଳିବା—To roll dough into bread.
বেলা बेलना

ବେଲିହା—ପ୍ରାଦେ (ସମ୍ବଲପୁର) ବି – ବେଲ (ଦେଖ)—Beli
Belihā (See) ଦେ॰ ବିଣ—ବେଲିଆ (ଦେଖ)—
Beliā ( See )

ବେ ଲିହା(ଆ)ଜ୍(ଜି)—ଦେ. ବି (ଫା. ବେ+ନିହାଜ୍=ସ୍ମରଣ)—
Be lihā(ā)j(ji) ୧ । ବିସ୍ମରଣ—1. Forgetting. ୨ ।
বেআন্দাজ ଅଟକଳର ଅଭାବ; ବେଅନ୍ଦାଜ—2. Want of
बेअंदाज idea of proportion. ଦେ. ବିଣ—୧ ।
(ବେଲିହାଜିଆ—ଅନ୍ୟରୂପ) ଯେ ପାସୋରି ପକାଏ—1. Forgetful. ୨ । ଯାହାର ଅଟକଳର ଜ୍ଞାନ ନାହିଁ—2. Having no sense of proportion.

ବେଲୁ(ଲୁଁ)—ଦେ. କି. ବିଣ—୧ । ଆଦ୍ୟରୁ; ପ୍ରଥମରୁ—1. From
Belu(luñ) the beginning. [ ଉ—କି ହିସାବ ଦେବା
আগেথেকে ବେଲୁଁ ତାହା ଭାବ । ରଘୁନାଥ ଦରବାର । ]
पहलेसे ୨ । ପୂର୍ବରୁ—2. From before.
ବେଲୁସୁ(ସୁଁ), ବେଲୁନୁ—ଅନ୍ୟରୂପ

ବେଲୁନ୍—ବୈଦେ. ବି (ଇଂ. ବେଲୁନ୍)—ବ୍ୟୋମଯାନ—
Belun Balloon.

ବେଲୁଚି—ବୈଦେ. ବିଣ (ଫା)—ବେଲୁଚିସ୍ଥାନ ସମ୍ବନ୍ଧୀୟ—
Beluchi Beluchi; relating to Beluchistan.
বেলুচী ବି—ବେଲୁଚିସ୍ଥାନବାସୀ—A Beluchi; a person
बेलुची of Beluchistan.

ବେଲୁଚିସ୍ତା(ସ୍ଥା)ନ୍—ବୈଦେ. ବି (ଫା)—ଅଫଗାନିସ୍ଥାନର ଦକ୍ଷିଣରେ
Beluchistā(sthā)n ଥିବା ଇଂରାଜାଧିକୃତ ଦେଶ—
বেলুচিস্তান बेलुचिस्तान Beluchistan.

ବେଲୁ(ଲୋ)ରି—ଦେ. ବି—୧ । ବିଲୋରି (ଦେଖ)—Bilori (See)
Belu(lo)ri ୨ । ଖଟରେ ବୁଣାଯିବା ଫିତା; ଲେବାର—
(ବେଲର—ଅନ୍ୟରୂପ) 2. Tape woven on a bedstead.
লেবার ପ୍ରାଦେ (ଉତ୍ତର) ବି—ଲଣ୍ଠନ୍—Lantern.
लेबार

ବେଲୁ(ଲେ)ରି ଖଟ—ଦେ. ବି—ଲେବାରବୁଣା ଖଟ—
Belu(le)ri khata A bedstead woven with tapes.
লেবারবোনা খাট लेबारका खटिया

ବେଲେ—ଦେ. ଅ—୧ । ଦିନକେ ଥରେ; ଓଳିଏ—1. Once during
Bele the day. [ ଉ—ବ୍ରହ୍ମଚର୍ଯ୍ୟ କରିଣ ବେଲେ ଖାଇ
একবেলা ଖାଇ । କୃଷ୍ଣସିଂହ. ମହାଭାରତ. ବନ । ] ୨ ।
बार ଥର—2. Time. [ ଉ—କେତେ ଥର ବେଲେ ତାଙ୍କୁ ଦର୍ଶନ କରିବା । ଶ୍ରୀଗୁରୁଭକ୍ତି ଗୀତା । ] ଦେ. କି. ବିଣ—ଥରେ—Once. [ ଉ—ବୋଲି—ବିକ୍ରମ ଭୁଲିଲା ଥରୁ ବେଲେ । ଭଞ୍ଜ. ବୈଦେହୀଶବିଳାସ । ]

ବେଲେକ—ଦେ. କି ବିଣ—ଥରେ ମାତ୍ର—Once only.
Beleka একবার एकदफा

ବେଲେକେ—ଦେ. କି. ବିଣ—ଥରକେ—At a time.
Beleke একবারে

ବେଲେ ବେଲେ—ଦେ. ଅ—ସମୟ ସମୟରେ—At times; occasionally.
Bele bela বারেবারে एकएक दफा

ବେଲେଶ୍ୱର—ଦେ. ବି—ପୁରୀଠାରୁ ଚାରି ପାଞ୍ଚକୋଶ ଦୂରବର୍ତ୍ତୀ ସମୁଦ୍ର-
Beleśwara କୂଳରେ ଥିବା ବେଲେଶ୍ୱର ନାମକ ଗ୍ରାମ ଓ ତହିଁରେ ପ୍ରତିଷ୍ଠିତ ଶିବଲିଙ୍ଗ—Name of village and the image of Śiba on the sea-shore 8 or 10 miles from the town of Puri. ବେଲେଶ୍ୱରେ ଦିବ୍ୟ (ଉ—ସୁଯୋଗ ଜାଣି ଶାଣିଲେ ବାଣ । ରଘୁନାଥ. ଚନ୍ଦ୍ରଭାଗା ।)

ବେଲ୍ଲ (ଧାତୁ)—ସଂ.—୧ । ଚଞ୍ଚଳ ହେବା—1. To be restless. ୨ ।
Bell(root) ଗତି କରିବା—2. To move.

ବେଲ୍ଲ—ସଂ. ବି—(ବେଲ୍ଲ ଧାତୁ=ଚଞ୍ଚଳହେବା+ଭାବ. ଅ)—୧ ।
Bella ଗମନ; ଗତି—1. Going; motion. ୨ । ସଞ୍ଚାଳନ; କମ୍ପନ—2. Shaking. ୩ । ବିଡ଼ଙ୍ଗ (ଦେଖ)—3. Birdanga (see)

ବେଲ୍ଲଜ—ସଂ. ବି (ବେଲ୍ଲ+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ)—
Bellaja ଗୋଲମରିଚ—Black pepper.

ବେଲ୍ଲନ(ଣ)—ସଂ. ବି—(ବେଲ୍ଲ ଧାତୁ=ଚଞ୍ଚଳ ହେବା+ଭାବ. ଅନ)—
Bellana(ṇa) ୧ । ଲୁଣ୍ଠନ; ଭୂଇଁରେ ଗଡ଼ିବା—1. Wallowing. ୨ । ଚଳନ — 2. Moving. ୩ । ସଞ୍ଚାଳନ; ଦୋଦୋଳିବା—3. Rocking. ୪ । କମ୍ପନ 4. Shaking; vibration ୫ । ବେଲଣା—5. Roller used in making pastry cakes.

ବେଲ୍ଲହଳ—ସଂ. ବି—(ବେଲ୍ଲ ଧାତୁ=ଚଞ୍ଚଳ ହେବା+ଅହଳ)—୧ ।
Bellahala ଲମ୍ପଟ; କାମୁକ—1. A lecher. ୨ । ନାଗର—2. Gallant.

ବେଲ୍ଲି—ସଂ. ବି—(ବେଲ୍ଲ ଧାତୁ=ଚଞ୍ଚଳ ହେବା+ଇ)—୧ । ବଲ୍ଲୀ;
Belli ଲତା—1. Creeper. ୨ । ମଲ୍ଲିଫୁଲ—2. Jasmine; Arabian jasmine.

ବେଲ୍ଲିକା—ସଂ. ବି ପୋଇ ଶାଗ; ଉପୋଦକା—
Bellikā A kind of creeper used as pot-herb.

ବେଲ୍ଲିତ—ସଂ. ବିଣ—(ବେଲ୍ଲଧାତୁ=ଚଞ୍ଚଳ ହେବା+କର୍ମ. ତ)—୧ ।
Bellita ବକ୍ର; କୁଟିଳ—1. Curved; bent. ୨ । କମ୍ପିତ—2. Shaken; vibrating. ୩ । ଚଳିତ—

3. Attached; surrounded. [ଉ—ତୋଳଇନ୍ତି ଶିର କାହିଁ ଅଗଣିତ, ଶିଳାସ୍ତୂପ ଘନ ବଟପେ ବେଷ୍ଟିତ । ରାଧାନାଥ. ମହେନ୍ଦ୍ରଗିରି ।] ୪ । ଦୋଳିତ—4. Waved. ୫ । ଲୁଣ୍ଠିତ—5. Wallowing. ସ. ବି—(ବେଷ୍ଟ ଧାତୁ+ଭାବ.ତ)—୧ । ଚଳନ—1. Moving. ୨ । ଦୋଳନ—2. Waving. ୩ । ଲୁଣ୍ଠନ—3. Wallowing.

ବେଶ୍—ବୈଦେ. ବିଣ—(ଫା. ବେଶ୍)—୧ । ଅଚ୍ଛା; ଭଲ; ଉତ୍ତମ—Beś 1. Good. ୨ । ଶ୍ରେଷ୍ଠ; ଉତ୍କୃଷ୍ଟ—2. Excellent. ৩ । ପ୍ରଶଂସନୀୟ—3. Praiseworthy. ୪ । ଖୁବ୍; ବହୁତ—4. Much; great. ୫ । ସୁନ୍ଦର—5. Beautiful; charming. କ୍ରି. ବିଣ—୧ । ଅଚ୍ଛା—1. Well. ୨—ଉତ୍ତମରୂପେ—2. Goodly. ୩ । ଖୁବ୍; ଅତ୍ୟନ୍ତ—3. Greatly; much. ଅ—(ଅନୁମୋଦନାର୍ଥକ) ଭଲ ହେଲା—Well done !

ବେଶ ବେশ वेश

ବେଶ୍ କଥା—ଦେ. ବି—(ଫା. ବେଶ୍+ସ. କଥା)—ଭଲ କଥା; ଅଚ୍ଛା କଥା—Good matter.

eś kathā

বেশকথা अच्छा बात्

ବେଶ୍ କରିବା—ଦେ. କ୍ରି—୧ । ଆପଣା ମନ ମୁତାବକ କାମ କରିବା—Beś karibā 1. To act according to one's free will. ୨ । ଭଲକାର୍ଯ୍ୟ କରିବା—2. To do well. ୩ । ଉତ୍ତମରୂପେ ଆପଣା ଉପରେ ନ୍ୟସ୍ତ କାର୍ଯ୍ୟ ନିର୍ବାହ କରିବା—3. To conduct one self creditably.

বেশ করা अच्छा करना

ବେଶ୍ ଗୁରିପଇସା—ଦେ. ବି—(ଫା. ବେଶ୍+ଗୁରି ପଇସା)—ଉତ୍ତମ ଅର୍ଥ ଲାଭ—Good cash gain or profit.

Beś chāripaisā

বেশ চারপয়সা अच्छा दोपैसा

ବେଶ୍ ଚେହେରା—ବୈଦେ. ବି.—(ଫା. ବେଶ୍+ଚେହେରା)—ସୁନ୍ଦର ବା ମନୋମୋହକର ରୂପ—A charming appearance.

Beś cheherā

বেশ চেহারা वेश चेहेरा

ବେଶ(ଷ)—ସ. ବି—(ବିଶ୍ ଧାତୁ=ପ୍ରବେଶ କରିବା+ଅଧି. ଅ; ବିଷ୍ ଧାତୁ=ବ୍ୟାପିବା+କର୍ତ୍ତୃ. ଅ)—୧ । ସଜ୍ଜା; ପୋଶାକ—1. Dress; guise; garb; toilette. ୨ । ବସ୍ତ୍ରାଳଙ୍କାରଦ୍ୱାରା ସଜାଇ ହେବା—2. Act of dressing; decoration. ୩ । ବେଶ୍ୟାପଲ୍ଲୀ; ବାରାଙ୍ଗନାପଲ୍ଲୀ—3. Prostitute's quarter. ୪ । ବେଶ୍ୟାଳୟ—4. Whore house; a house of ill fame. ୫ । ଗୃହ—5. House. ୬ । ବସ୍ତ୍ରଗୃହ; ତମ୍ବୁ (ହି.ଶ)—6. Tent. ୭ । (+ଭାବ.ଅ) ପ୍ରବେଶ—7. Entrance. ଦେ. ବି (ସ. ବେଶ, ବେଷ)—୧ । ଯାତ୍ରାରେ ବା ଅଭିନୟରେ ନାଟ୍ୟକାରମାନେ ପିନ୍ଧିବା ପୋଶାକ—1. Garb worn by actors and dancers. ୨ । ରଙ୍ଗ—2. Painting. [ଉ—ରତ ରଙ୍ଗ ବେଶରେ ଭୂତ ବେଶରେ । ଭଞ୍ଜ. ପ୍ରେମସୁଧାନିଧି ।] ୩ । ଚେହେରା—3. Appearance. [ଉ—ଏ ସକଳ ବେଶେ କେଉଁ ଦୁଃଖେ ପୁଣି ଝୁରୁଛୁ ଏଡ଼େ ଆତୁରେ । ରାଧାନାଥ ପାର୍ବତୀ] ୪ । ଯାତ୍ରା ଉପଲକ୍ଷରେ କିମ୍ବା ବିଭିନ୍ନ ଦିନ ଦିନ ସମୟରେ ଦେବବିଗ୍ରହଙ୍କର ଭିନ୍ନ ଭିନ୍ନ ସଜ୍ଜା—4. Different garbs or dresses put on deities on different festive occasions or during different periods of the day and night. [ଉ—ଯେଉଁ ସଜ୍ଜା ବା ବେଶକୁ ସାଧାରଣ ଯାତ୍ରୀମାନେ ଦର୍ଶନ କରି ପାରନ୍ତି । ଯଥା—ଜଗନ୍ନାଥ ମହାପ୍ରଭୁଙ୍କର ମଦନମୋହନ ବେଶ, ଗିରିଧାରୀବେଶ, ନଟବରବେଶ, ବଡ଼ଶିଂହାର ବେଶ, ନବଯୌବନବେଶ, ଖାଣ୍ଡିଗୋପାଳଙ୍କର ଚନ୍ଦନ-ବେଶ ।] ଦେ. ବିଣ—ସୁବେଶରେ ସଜ୍ଜିତ—Fitted up with dainty dress and ornaments. (ଉ·ବେଶ ନୋହୁ କେବେ ଏ ବେଶେ ଭୁମ୍ଭ ପାଶେ, ନ ଯିବ ତାହାଙ୍କର ମନକୁ ଯେ ଆସେ । କୃଷ୍ଣସିଂହ, ମହାଭାରତ. ବନ ।]

বেশ वेश

ବେଶକ୍—ବୈଦେ. ବିଣ (ଫା)—୧ । ନିର୍ଭୀକ—1. Fearless. ୨ । ନିଃସନ୍ଦେହ—2. Doubtless; free from doubt. କ୍ରି. ବିଣ—୧ । ନିର୍ଭୀକଭାବରେ—1. Fearlessly. ୨ । ନିଶ୍ଚିତଭାବରେ—2. Doubtlessly. ୩ । ଅବଶ୍ୟ; ଅଲବତ୍—3. Certainly.

Be śak

বেশক वेशक

ବେଶକ—ସ. ବିଣ. ପୁଂ (ବିଶ୍ ଧାତୁ=ପ୍ରବେଶ କରିବା+କର୍ତ୍ତୃ. ଅକ)—ପ୍ରବେଶକାରକ; ପ୍ରବେଶକାରୀ—Entering. ସ. ବି—(ବେଶିକା—ସ୍ତ୍ରୀ) (ବିଶ୍ ଧାତୁ+କର୍ମ ବା ଅଧିକରଣ. ଅକ) ଗୃହ—House.

Beśaka

ବେଶ କରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ସଜ୍ଜିତ କରିବା—To dress up a person; to decorate; to fit up with dress.

Beśa karibā

বেশ করা भेश करना

ବେଶ କାରକ—ସ. ବିଣ ଓ ବି. ପୁଂ (ବେଶ+କାରକ)—ଯେ କୌଣସି ବ୍ୟକ୍ତିର ବେଶବିନ୍ୟାସ କରେ—Decorator; [ବେଶକାରୀ—ଅନ୍ୟରୂପ] a person who dresses up other people.

Beśa kāraka

ବେଶ କାରିକା } —ସ୍ତ୍ରୀ
ବେଶକାରିଣୀ }

ବେଶ ଧରିବା—ଦେ. କ୍ରି—ବେଶ ପରିଧାନ କରିବା; କୌଣସି ବେଶରେ ସଜ୍ଜିତ ହେବା—To put on a garb or dress; to a sume a garb. (ବେଶ ପକାଇବା—ଅନ୍ୟରୂପ)

Beśa dharibā

বেশ ধ(প)রা भेश पहरना

ବେଶ ଧାରକ—ସ. ବିଣ. ପୁଂ (ବେଶ+ଧାରକ)—୧ । ଯେ ବେଶରେ ସଜ୍ଜିତ ହୋଇଥାଏ—1. Dressed up. ୨ । (ବେଶଧାରୀ—ଅନ୍ୟରୂପ) କୌଣସି ବେଶରେ ସଜ୍ଜିତ—2. Assuming the garb of. ୩ । କପଟ-ବେଶଧାରୀ—3. Wearing a mask or disguise. ସ. ବି—ଭଣ୍ଡତପସ୍ୱୀ—1. An

Beśa dhāraka

ବେଶଧାରିକା } —ସ୍ତ୍ରୀ
ବେଶଧାରିଣୀ }

imposter. ୬ । ବହୁରୂପୀ—2. The wearer of a mask or disguise.

ବେ ଶଙ୍ଖୁଡ଼ି—ଦେ.ବଣ—ଳଶଙ୍ଖୁଡ଼ୁ; ଯେଉଁ ଖାଦ୍ୟପଦାର୍ଥ ଜଳଦ୍ୱାରା ସିଦ୍ଧ Be sankhurdi କରା ହୋଇ ନ ଥାଏ—( food ) Not যে শংকড়ীময় boiled in water.

ବେଶଙ୍ଖୁ(ଙ୍ଖୋ)ଳା—ଦେ. ବଣ—ଅନିମନ୍ତ୍ରିତ—
Be sankhu(nkho)la অনিমন্ত্রিত Uninvited.

ବେଶଧର—ସ. ବଣ. ପୁଂ (ବେଶ+ଧୃ ଧାତୁ+କର୍ତ୍ତୃ. ଅ)—୧ । ଅମୁକର ବେଶ ଧାରଣକାରୀ—1. Assuming the garb of. ୬ । ଛଦ୍ମବେଶୀ—2. Wearing a mask. ବ—୧ । ଛଦ୍ମବେଶଧାରୀ—1. The wearer of a mask. ୬ । ଭଣ୍ଡ ତପସ୍ୱୀ—2. An imposter; a wicked person assuming the garb of a recluse. ୩ । ଜୈନ ସମ୍ପ୍ରଦାୟବିଶେଷ (ହି. ଶ)—3. A sect of Jainas. ୪ । ପୁରାଣାଦିରେ ବର୍ଣ୍ଣିତ ସଙ୍କର ଜାତିବିଶେଷ (ହି.ଶ)—4. A hybrid caste mentioned in the Hindu mythologies.
Besadhara
ବେଶଧାରକ } ଅନ୍ୟରୂପ
ବେଶଧାରୀ
ବେଶଧରୀ }
ବେଶଧାରିକା } —ସ୍ତ୍ରୀ
ବେଶଧାରିଣୀ }

ବେଶନ—ଦେ. ବ (ସ. ବେଶ)—ବେଶ (ଦେଖ)—Besa (See)
Besana (ଉ—ମାୟାବନ୍ଧ ଅଲଙ୍କାର ନାନାବିଧ ଅଣି କରନ୍ତି ବେଶନ । ପ୍ରତାପ. ଶଶିସେଣା । )

ବେଶନ୍ତ—ସ. ବ-(ବିଶ୍ ଧାତୁ=ପ୍ରବେଶ କରିବା+ଅଧିକରଣ. ଅନ୍ତ)—
Besanta ୧ । ପଲ୍ୱଳ; କ୍ଷୁଦ୍ର ଜଳାଶୟ—1. A small tank or pool. ୬ । ଅଗ୍ନି—2. Fire. ଦେ. ବଣ—ବେଶଶୂନ୍ୟ—Devoid of garb or ornament. (ଉ—କାଳିଆଙ୍କର କାଳୀ ପ୍ରାୟେ ହୋଇଲେ ସରସୀମାନେ ବେଶଅନ୍ତ । ଗୋପୀକୃଷ୍ଣ. ରସକଲ୍ଲୋଳ । )

ବେଶ ପକା(କେ)ଇବା—ଦେ. କ୍ରି—୧ । ନଟ ବା ନର୍ତ୍ତକମାନଙ୍କର
Besa paka(ke)iba ବେଶ ବାନ୍ଧିବା—1. (said of বেশধরা actors) To assume the garb of. ୬ । ବେଶ ଆଦିଦ୍ୱାରା ଭଲେ ସଜ୍ଜିତ ହେବା—2. To be decorated with proper dress.
ବେଶ ବାନ୍ଧିବା }
ବେଶଲଗା(ଗେ)ଇବା } ଅନ୍ୟରୂପ
ବେଶହେବା }

ବେଶ ପୋଷାକ—ଦେ. ବ (ସଦ୍ୱଚନ) (ସ. ବେଶ+ଫା. ପୋଷାକ୍)—
Besa poshaka ସାଜସଜ୍ଜା—Dress; habiliments.
বেশপোষাক

ବେଶବଧୂ—ସ. ବ. ସ୍ତ୍ରୀ—ବେଶ୍ୟା (ହି. ଶ)—Prostitute; harlot.
Besabadhu (ବେଶଯୁବତୀ;ବେଶକନ୍ୟା; ବେଶ ସ୍ତ୍ରୀ—ଅନ୍ୟରୂପ)

ବେଶବବ୍—ବୈଦେ. ବଣ (ଫା)—୧ । ଅକାରଣ—1. Causeless.
Besabab ୬ । ବୃଥା; ନିଷ୍ଫଳ—2. Fruitless. କ୍ରି. ବଣ—ଅକାରଣ ୧ । ଅକାରଣରେ—1. Without any cause. ୬ । ବେସବବ୍ ବୃଥାରେ—2. In vain.

ବେଶବାସ—ସ. ବ (ଷଷ୍ଠୀ ତତ୍; ବା ବହୁବ୍ରୀହି)-ବେଶ୍ୟାଗୃହ (ହି.ଶ)—
Besabasa Prostitute's house; a house of ill fame. ଦେ. ବ (ସ. ବେଶ ସଙ୍ଗେ ଧ୍ୱନ୍ୟର୍ଥକ ବାସ ଶବ୍ଦର ଯୋଜନ । )—୧ । ବେଶ—1. Dress; garb. ୬ । ବେଶରଚନା—2. Toilette.

ବେଶବ(ବ୍ରୁ)ର—ବୈଦେ. ବଣ ( ଫା. ବେସବ୍ର )—୧ । ଅଧୀର—
Besab(bu)r 1. Impatient. ୬ । ଅସ୍ଥିର—2. Restless.
বেশবুর বেসবরা ବୈଦେ. ବ—(ଫା. ବେସବରୀ)—
ବେଶବୁରୀ(ରି) } ଅନ୍ୟରୂପ বেশবুরী
ବେଶବ୍ରୁରୀ(ରି) } বেসবরী

ବେଶବାର—ସ. ବ—(ବିଶ୍ ଧାତୁ=ପ୍ରବେଶ କରିବା+ଭାବ. ଅ=
Besabara ବେଶ; ବୃ ଧାତୁ=ପ୍ରାର୍ଥନା କରିବା+ଭାବ. ଅ)—୧ । ତିଅଣରେ ଦିଆ ଯିବାପାଇଁ ଧନିଆ ସୋରିଷ ଆଦିର ବଟା; ବାଟଣା—1. A paste of spices for flavouring curry; sauce. ୬ । ଏକପ୍ରକାର ତିଅଣ—2. A kind of curry.

ବେଶ ବା(ୱା)ଲ—ବୈଦେ. ବଣ ( ଫା. ବେ+ସୱାଲ୍ )—୧ ।
Besaba(wa)l ଅଜିଜ୍ଞାସିତ—1. Unasked; unquestioned. ୬ । ନିରୁତ୍ତର—2. Non-plussed.
বে সবাল
বেসবাল (ବେଶୁଆଲ—ଅନ୍ୟରୂପ)

ବେଶ ଭାଙ୍ଗିବା—ପ୍ରାଦେ ( ପୁରୀ ) କ୍ରି—ବେଶ ରଚନା କରିବା; ବେଶ
Besa bhangiba ହେବା—To fit up oneself with dress. ( ଉ—ବେଶ ଭାଙ୍ଗୁଥିଲେ ପୁଏ ମଣ୍ଡପଠାରେ । ଗୀତାମୃତ. ଛନ କାଞ୍ଚନବଳୀ । )

ବେଶଭୂଷା—ସ. ବ ( ସଦ୍ୱଚନ ) ( ବେଶ+ଭୂଷା=ଅଲଙ୍କାର )—
Besabhusha ସାଜସଜ୍ଜା; ପୋଷାକ ଓ ଅଲଙ୍କାର—Dress and ornaments. ( ଉ—ନାଗରୀଙ୍କ ବେଶଭୂଷାରେ ନୟନ ମନ୍ଦୁ ଅଛି ଭୁଲିହେଲେ । ରାଧାନାଥ. ପାର୍ବତୀ । )

ବେ ଶମା(ମ୍ଭା)ଲ—ଦେ. ବଣ ( ଫା. ବେସାମାଲ)—ଅସମ୍ଭାଳ; ଅଧୀର—
Be sama(mbha)l Impatient.
বে শামাল বেসামাল

ବେଶ(ସ)ର—ସ. ବ ( ବେଶ+ସ୍ର ଧାତୁ=ଦାନ କରିବା+କର୍ତ୍ତୃ. ଅ;
Besa(sa)ra ବା ବେସ୍ ଧାତୁ+କର୍ତ୍ତୃ. ଅର )—୧ । ଅଶ୍ୱତର; ଗଧ ଔରସରେ ଘୋଡ଼ୀ ପେଟରୁ ଓ ଘୋଡ଼ା ଔରସରେ ମାଈଗଧ ପେଟରୁ ଜାତ ଅଶ୍ୱ, ଖଚର—Mule. ଦେ. ବ ( ସ. ବେଶବାର )—୧ । বেসবার, বেসর ତରକାରୀରେ ଦିଆଯିବା ସୋରିଷବଟା—1. Rye বেসর paste for curry. ୬ । ସୋରିଷ ବଟା ଦିଆଯାଇ ତିଆରି କରାଯାଇ ଥିବା ମାଛ ତିଅଣ—2. Fish curry prepared with rye paste. ୩ । ବାମନାସାରେ ପିନ୍ଧାଯିବା ଏକପ୍ରକାର ଗୁଣା—3. A tip or ornament worn on the left nose. ( ଉ—ନାସାମଣ୍ଡିତ ବେଶରେ ପ୍ରବର୍ତ୍ତି ଥିବ ହାସରେ । ଭଞ୍ଜ. ପ୍ରେମସୁଧାନିଧି । ) ୪ । ସୋରିଷ—4. Rye.

ବେ ଶରକା—ବୈଦେ. ବଣ ( ଫା. ବେ ସରୋକା )—ସମ୍ପର୍କଶୂନ୍ୟ—
Be śarakā বেসরোকা Unconnected; unrelated.
बेसरोका [ବେଶରୋକ(କା), ବେଶରୋକା—ଅନ୍ୟରୂପ]

ବେଶ ରଚନ(ନା)—ସଂ. ବ ( ୬ଷ୍ଠୀ ତତ୍; ବେଶ + ରଚନ )—
Beśa rachana(nā) ପୋଷାକ; ଅଳଙ୍କାର; ଭୂଷଣ; ପୁଷ୍ପାଦି-ଦ୍ୱାରା ସଜ୍ଜା— Toilette; the act of fitting up with dress.

ବେଶର ପାଣି—ଦେ. ବ ( ବେଶର + ପାନୀୟ )—୧ । ବେଶର ବଟା
Beśara pāṇi ମିଶିଥିବା ଜଳ—1. Water mixed in
সোরষে বাটার জল the rye-paste. ୨ । ବେଶର-
সোরষে বাটার ঝোল ପ୍ରସ୍ତୁତ ତରକାରି—2. A curry made with water-mixed rye paste.

ବେଶର ବଟା—ଦେ. ବ—ସୋରିଷକୁ ବାଟିବା—
Beśara baṭā সোরষে বাটা The act of pasting rye.

ବେଶର ବାଟିବା—ଦେ. କ୍ରି—୧ । ସୋରିଷ ବାଟିବା—1. To
Beśara bāṭibā bruise rye for preparing paste.
সোরষে বাটা ୨ । ( ଲକ୍ଷଣାର୍ଥ ) ପରିଶ୍ରମଜନକ କାର୍ଯ୍ୟ କରିବା—2. ( figurative ) To perform a laborious task. ( ଯଥା—ବଡ଼ ବଡ଼ ଗଲେ ଫସର ଫାଟ, ସାନ ସାନ ଅସିଲେ ବେଶର ବାଟ । ଢଗ । )

ବେ ଶରମ(ମା)—ବୈଦେ. ବଣ. ପୁଂ ( ଫା. ବେଶରମ୍ )—ନିର୍ଲଜ୍ଜ—
Be śarama(mā) বেশরম बेशरमा Shame-less.
(ବେଶରମୀ—ସ୍ତ୍ରୀ)

ବେଶାଦ(ଦି)—ଦେ. ବ ( ଫା. ବଶାର୍=ବ୍ୟବସାୟର ପାଣ୍ଠି )—୧ ।
Beśād(di) ଶକ୍ତି; କ୍ଷମତା—1. Power. ୨ । ବଳ—
বেসাদ 2. Strength. ୩ । ବ୍ୟବସାୟର ମୂଳପଣ୍ଟି; ମୂଳଧନ;
ताकत; वेशात ପୁଞ୍ଜି—3. Capital of a business. ୪ । ଦୋକାନର ଜିନିଷପତ୍ର—4. Stock in trade. ୫ । ସମ୍ପତ୍ତି; ଧନ—5. Riches.

ବେଶାବୁତ(ତୁ, ତି)— ବୈଦେ. ବଣ ( ଫା. ବେଶାବାତ୍ )—ଅପ୍ରମାଣିତ
Beśābut(tu, ti) বেসাবিত वेसाबीत —Unproved.

ବେଶାର—ପ୍ରାଦେ ( ସମ୍ବଲପୁର ) ବ—ବେଶର; ତରକାରିରେ ଦିଆଯିବା
Beśār ପାଇଁ ବଟା ହୋଇଥିବା ସୋରିଷ—Rye-paste added to curry.

ବେଶି—ଦେ. ବ ( ଫା.ବେଶ୍=ବେଶୀ; ଅଧିକ୍ୟ; ଅତିରେକ Excess;
Beśi surplus; ତୁଳ ସଂ. ବିଶେଷ )—୧ । ବଡ଼; ଅଧିକ—
বেশী 1. Great; large. ୨ । ବିଶେଷ; ଅତ୍ୟନ୍ତ—2.
बेशी Much. ୩ । ଅତ୍ୟଧିକ—3. Too much. କ୍ରି. ବଣ—ଅତ୍ୟଧିକ ପରିମାଣରେ; ବିଶେଷ ପରିମାଣରେ—Too much. ବଣର ବଣ—ଅଧିକତର—More than. ( ଯଥା—ସେ ମୋଠାରୁ ବେଶି ଧନୀ= ଅଧିକତର ଧନୀ । )

ବେଶି କମ୍—ବୈଦେ.ବ—(ଫା. ବେଶୀ+କମତ୍ତି)—ଅଳ୍ପାଧିକ୍ୟ; କମି-
Beśi kam কম বেশী ବେଶି—Less or more.
ବେଶି କମତ } —ଅନ୍ୟରୂପ ଦେ. ବଣ—ଅଳ୍ପ ବା ଅଧିକ—
ବେଶି କମ } More or less.

ବେଶି ଭାଗ—ଦେ. ବ—(ଫା. ବେଶୀ+ସଂ. ଭାଗ) ଅଧିକାଂଶ—
Beśi bhāga বেশীর ভাগ Large portion; major portion.

ବେଶୀ—ସଂ. ବଣ. ପୁଂ (ବେଶ=ସଜ୍ଜା+ଅସ୍ତି ଅର୍ଥରେ ଇନ୍; ୧ମା,
Beśī ୧ବ. )—୧ । ବେଶକାରକ—1. Dressing up. ୨ ।
(ବେଶିନୀ—ସ୍ତ୍ରୀ) ପରିଚ୍ଛଦଯୁକ୍ତ—2. Dressed. ବୈଦେ. ବଣ (ଫା.)—ବେଶି (ଦେଖ)—Beśi (See)

ବେ ଶୁମାର(ରି)—ବୈଦେ. ବଣ—( ଫା. ବେଶୁମାର )—ଅସୁମାର;
Be śumār(ri) ଅଗଣ୍ୟ; ଅସଂଖ୍ୟ—Countless.
বেশুমার बेसुमार

ବେ ଶୁର—ବୈଦେ. ବଣ—(ଫା.)—୧ । ବେହୋସ; ଚୈତନ୍ୟହୀନ—
Be śur 1. Unconscious. ଦେ. ବଣ (ଫା. ବେ+ସଂ.
বেশুর ସ୍ୱର)—ସ୍ୱରର ଅମେଳ ହେତୁ ଶ୍ରୁତିକଟୁ—2. Un-
बेसुर melodius; of unharmonious tune. ୩ । ପରସ୍ପର ସଙ୍ଗେ ଅମେଳ—3. Discordant.

ବେଶୁର—ପ୍ରାଦେ. (ଯାଜପୁର) ବ—ବେଶର (ଦେଖ)
Beśura Beśara (See)

ବେଶୁରା—ଦେ. ବଣ—(ଫା. ବେ+ସଂ. ସ୍ୱର)—ବେଶୁର ୨।୩
Beśurā বেশুর(রা) (ଦେଖ)—Beśur 2, 3 (See)
सुर(रा)

ବେଶ୍ୱର—ସଂ. ବ—ଅଶ୍ୱତର—Mule. ଦେ. ବ—(ସଂ. ବେଶ-
Beśwara ବାର) ବେଶର (ଦେଖ)—Beśara (See)

ବେଶ୍ମ—ସଂ. ବ—(ବେଶ୍ମନ୍; ଶବ୍ଦ ୧ମା. ୧ବ. ବିଶ୍ ଧାତୁ=ପ୍ରବେଶ
Beśma କରିବା+ଅଧିକରଣ. ମନ୍)—ଭବନ; ଗୃହ; ସଦ୍ମ—House.

ବେଶ୍ମ କଳିଙ୍ଗ—ସଂ. ବ—ଚଟକ ' ସ୍ତ୍ରୀ (ଦ୍ବି. ଣ)—
Beśma kaliṅga The sparrow.

ବେଶ୍ମ ନକୁଳ—ସଂ. ବ— ବେଶ୍ମନ୍=ଗୃହ+ନକୁଳ )—ଗନ୍ଧମୂଷିକ;
Beśma nakūla ଛୁଚୁନ୍ଦୁରୀ—Musk rat; mole; shrew.

ବେଶ୍ମଭୂ—ସଂ. ବ—(ବେଶ୍ମନ୍=ଗୃହ+ଭୂ=ଭୂମି) —୧ । ବାସୋପଯୁକ୍ତ
Beśmabhū ସ୍ଥାନ—1. A habitable place. ୨ । ଘର-ବାଡ଼—2. Homestead.

ବେଶ୍ୟ—ସଂ. ବ—( ବିଶ୍ ଧାତୁ=ପ୍ରବେଶ କରିବା+କର୍ମ. ଯ) —
Beśya ବେଶ୍ୟାଳୟ—The house of a prostitute; brothel.

ବେଶ୍ୟା—ସଂ. ବ—(ବେଶ=ସଜ୍ଜା+ଯୁକ୍ତାର୍ଥେ ଯ+ସ୍ତ୍ରୀ. ଆ)—୧ ।
Beśyā ବାରାଙ୍ଗନା; ଦାସୀ; ଗଣିକା; ରୂପାଜୀବା—1. Prostitute; public woman. ୨ । ବକୁଳକର୍ଣ୍ଣୀ; ଅବାନ୍ତର ଲତା—2. A kind of creeper.

ବେଶ୍ୟାଗ୍ରର୍ଯ୍ୟ—ସ. ବି—(ବେଶ୍ୟା=ଗଣିକା+ଆଗ୍ରର୍ଯ୍ୟ=ଶିକ୍ଷାଗୁରୁ)—
Beśyāchārjya ୧ । ପୀଠମର୍ଦ୍ଦ;ଭଡ଼ୁଆ—1. A procurer. ୨ । ବେଶ୍ୟାଙ୍କର ନୃତ୍ୟଗୁରୁ—2. A dancing master to a dancing girl.

ବେଶ୍ୟା ପଣ—ଦେ. ବି—ବେଶ୍ୟାବୃତ୍ତି (ଦେଖ)
Beśyā paṇa বেশ্যাবৃত্তি Beśyābrutti (See)

ବେଶ୍ୟାବାର—ସ. ବି—(ବେଶ୍ୟା+ବାର=ସମୂହ)—ବେଶ୍ୟାସମୂହ—
Beśyābāra A company of prostitutes.

ବେଶ୍ୟାବୃତ୍ତି—ସ. ବି— ( ବେଶ୍ୟା+ବୃତ୍ତି ) —ବାରବନିତାରୂପେ
Beśyābrutti ରୋଜଗାର କର ଜୀବନଯାପନ; ଖାନଗୀ ପଣିଆ—The profession of a prostitute; prostitution.

ବେଶ୍ୟାଳୟ—ସ. ବି—(ବେଶ୍ୟା+ଆଳୟ)—ବେଶ୍ୟାର ଘର—
Beśyālaya Brothel; the house of a prostitute.

ବେଷାଦ୍—ବୈଦେ. ବଣ—(ଫା. ବସାଦ୍)—ଶକ୍ତିଶାଳୀ—
Beshād Strong; powerful. [ଉ—ଯଥୁଁ ପରଶଣ ମଧୁର ସାସିଣ ଶର୍କରା କେତେ ବେଷାଦ୍ ଗୋ । କବିସୂର୍ଯ୍ୟ ସଙ୍ଗୀତ ।]
ବୈଦେ. ବି—ଶକ୍ତି; ବଳ; ସାମର୍ଥ୍ୟ—Strength; power. (ଯଥା—ତାର ବେଷାଦ କେତେ ?)

ବେଷ୍ଟ୍ (ଧାତୁ)—ସ—ବେଢ଼ିବା—
Beshṭa (root) To surround.

ବେଷ୍ଟ—ସ. ବି—(ବେଷ୍ଟ୍ ଧାତୁ=ବେଢ଼ିବା+ଭାବ.ଅ)—୧ । ପରଧି—
Beshṭ 1. Circumference. ୨ । ବାଡ଼—2. Enclosure; fencing. ୩ । ପ୍ରାଚୀର; ବେଢ଼ା—3. Compound wall. ୪ । ଅଠା—4. Gum ୫ । ତାର୍ପିନ୍—5. Turpentine.

ବେଷ୍ଟକ—ସ. ବଣ—(ବେଷ୍ଟ୍ ଧାତୁ=ବେଢ଼ିବା+କର୍ତ୍ତୃ. ଅକ)—
Beshṭaka ଘେରଥିବା; ବେଢ଼ିଥିବା; ଯେ ବେଷ୍ଟନ କରେ—Surrounding. ସ. ବି—୧ । ଉଷ୍ଣୀଷ; ପଗଡ଼ି—1. Turban. ୨ । ନିର୍ଯ୍ୟାସ; ଅଠା – 2 Gum. ୩ । ତାର୍ପିନ୍—3. Turpentine ୪ । କୁଷ୍ମାଣ୍ଡ—4. Gourd. ୫ । ପ୍ରାଚୀର—5. Compound wall.

ବେଷ୍ଟିତ—ସ. ବଣ (ବେଷ୍ଟ୍ ଧାତୁ=ବେଷ୍ଟନ କରିବା+କର୍ମ. ତ )—
Beshṭita ଘେରଥିବା ଆବୃତ—Surrounded. ସ. ବି. (ବେଷ୍ଟ୍ ଧାତୁ+ଭାବ. ତ) ବେଷ୍ଟନ; ଘେରଥିବା ଘେର ହେବା—Surrounding.

ବେଷ୍ଟନ—ସ. ବି. (ବେଷ୍ଟ୍ ଧାତୁ=ବେଷ୍ଟନ କରିବା+ଭାବ ଅନ)—
Beshṭana ୧ । ବାଡ଼—1. Fencing. ୨ । ବେଢ଼ିବା—2. Surrounding. ୩ । ପ୍ରଦକ୍ଷିଣ—3. Circumambulation. ୪ । କର୍ଣ୍ଣକୁହର—4. The hole of the ear. ୫ । ବର୍ଣ୍ଣ; ରଙ୍ଗ—5. Colour. ୬ । ଅକ୍ଷର—6. Letter. ୭ । ନୃତ୍ୟକାଳୀନ ହସ୍ତଭଙ୍ଗୀ—7. The poses of the hand while dancing. ୮ । (ବେଷ୍ଟ୍ ଧାତୁ+କରଣ. ଅନ) ପରଧି; ବେଢ଼—8. Circumference; girth. ୯ । ପଗଡ଼ି—9. Turban. ୧୦ । କମରପଟ୍ଟି—10. Belt.

ବେଷ୍ଟନକ—ସ. ବି—ରତିବନ୍ଧବିଶେଷ—A kind of pose dur-
Beshṭanaka ing copulation.

ବେଷ୍ଟନିକା—ସ. ବି. ( ବେଷ୍ଟନ+ଇକ+ଆ )—
Beshṭanikā ତାଲପୁରୀ; ବେଢ଼ମିକା ( ଦେଖ )
A kind of sandwich.

ବେଷ୍ଟ ବଂଶ—ସ. ବି ( ବେଷ୍ଟ=ବେଷ୍ଟନ+ବଂଶ=ବାଉଁଶ )—
Beshṭa bamśa କଣ୍ଟା ବାଉଁଶ; ମୂଳୀ ବାଉଁଶ—A kind of বেউড় বাংশ thorny bamboo.

ବେଷ୍ଟିବା—ଦେ. କ୍ରି—ବେଢ଼ାଇ ହେବା—To be surrounded
Beshṭibā (ଉ—ଦେହରେ ବେଷ୍ଟି ମହାଗିରି, ରହିଲ୍ଲ ବନ୍ଧରୂପ ଧରି । ଜଗନ୍ନାଥ. ଭାଗବତ)

ବେଷ୍ୟ—ସ. ବି. (ବିଷ୍ ଧାତୁ=ବ୍ୟାପିବା+ଯ)—ପାନୀୟ ଜଳ—
Beshya Drinking water.

ବେସନ—ସ. ଶ. ( ବେସ୍ ଧାତୁ=ଗମନ କରିବା+କର୍ମ. ଅନ )—
Besana କଞ୍ଚା ବୁଟ ଆଦିର ଚୂନା—Flour of unfried
(বেসন,ম) बेसन gram etc.

ବେସନ୍ଦ—ଦେ. ବି—ଜଇସଣ୍ଡା ( ଦେଖ )
Besanda Jaisaṇḍā ( See )

ବେ ସମୟ—ଦେ. ବି. (ଫା. ବେ+ସମୟ)—୧ । ଅସମୟ—1. Bad
Be samaya times. ୨ । ଅନୁପଯୁକ୍ତ କାଳ—2. Unsuit-
অসময় बे वक्त able time.

ବେ ସମାନ—ଦେ.ବଣ. (ଫା. ବେ+ସ. ସମାନ)—ଅସମାନ—
Be samāna অসমান Unequal.

ବେ ସରକାରି—ବୈଦେ.ବଣ (ଫା)—ଯାହା ଗଭର୍ଣ୍ଣମେଣ୍ଟଙ୍କର ନୁହେଁ—
Be sarakārī Unofficial.
বেসরকারী बेसरकारी

ବେସର ପୁରିଆ ବସୁ—ପ୍ରାଦେ. (ପୁରୀ) ବି—ପୁରୀ ରାଜାଙ୍କ ଶାସନର
Besarapuriā basu ବୈଦିକ ବ୍ରାହ୍ମଣଙ୍କ ଗୋଷ୍ଠୀବିଶେଷ—A clan of Brāhmaṇas in the Puri district.

ବେସାର ବଟା—ପ୍ରାଦେ. (ଗଡ଼ଜାତ) ବି—ସୋରିଷ ବଟା—
Besāra baṭā Mustard paste; rye-paste.

ବେ ସୁଖ—ଦେ.ବି. (ଫା. ବେ+ସ. ସୁଖ)—୧ । ବେମାର—1.Dis-
Be sukha ease. ୨ । ଅସୁଖ; ଘୃଣା—2. Disgust;
অসুখ বিসুখ hatred.

ବେସେବେସ୍—ପ୍ରାଦେ. (ସାକ୍ଷୀଗୋପାଳ) ବଣ—ନିରାପଦ ଓ ସ୍ୱଚ୍ଛନ୍ଦ—
Besebes Safe and sound.

ବେସ୍ତ—ଗ୍ରା.ବି. (ସ. ବ୍ୟସ୍ତତା)—ବ୍ୟସ୍ତତା (ଦେଖ)
Besta Byastatā (See) (ଉ—ଧନୁ ଯଷ୍ଟି ଧରି ରହିଲେ (ବେଷ୍ଟିତ—ଅନ୍ୟରୂପ) ମୁଣ୍ଡ ପୋଡ଼, ତା ଦେଖି ଭୂମ୍ଭ ଯେବା ବେସ୍ତ କଲେ ମନ । କୃଷ୍ଣସିଂହ.ମହାଭାରତ. ଦ୍ରୋଣ) ଗ୍ରା. ବଣ (ସ.

ବ୍ୟସ୍ତ)—୧ । ବ୍ୟସ୍ତ (ଦେଖ)—1. Byasta (See) ୨ । ରୁଗ୍ଣ—2. Sick; ailing; ill. (ଉ—ମୁଁ ବେସ୍ତ ହେଇଁ ହେଇଁ ମଲିଣି । ଉକାଖ. ମୌତୁକ)। ୩ । ଦୁଃଖିତ—3. Sorry; worried.

ବେସ୍ତିଆ—ଗ୍ରା. ବଣ—ଯାହା ମନୁଷ୍ୟଙ୍କୁ ବ୍ୟସ୍ତ କରେ; ବ୍ୟସ୍ତତାଜନକ; Bestiā ବ୍ୟସ୍ତତାଯୁକ୍ତ—Worrying.

ବେହକ୍—ବୈଦେ. ବ. ( ଫା )—୧ । ଅନ୍ୟାୟ—1. Injustice; Be hak wrong. ୨ । ସ୍ୱତ୍ୱର ଅଭାବ—2. Want of बेहक title, ବୈଦେ. ବଣ—୧ । ଅନ୍ୟାୟ—1. Unjust; बेहक wrong. ୨ । ବେଠିକ୍; ଅସତ୍ୟ—2. Untrue; not right. କ୍ରି. ବଣ—୧ । ଅନ୍ୟାୟରୂପେ—1. Wrongly. ୨ । ବୃଥା—2. For nothing; in vain. ୩ । ବିନା ଦୋଷରେ—3. Without any fault.

ବେ ହକ୍‌ଦାର—ବୈଦେ.ବଣ (କଉରଅ)—Having no title or Be hakdār interest

ବେ ହଜମ(ମି)—ବୈଦେ.ବ. (ଫା)—ବଦହଜମ୍; ଅଜୀର୍ଣ୍ଣ—Behajam(mi) Indigestion. बेहजम(मी) ବୈଦେ. ବଣ—ଜୀର୍ଣ୍ଣ ହୋଇ ନ ଥିବା—Undigested.

ବେହଡ଼ା—ଦେ. ବଣ—ବାହାଡ଼ା ( ଦେଖ ) Behardā Bāhārdā ( See )

ବେହତ—ସ. ବ. ସ୍ତ୍ରୀ. (ବି—ହନ୍ ଧାତୁ=ବଧ କରିବା+କର୍ତ୍ତୃ ଅତ)—Behat ଗର୍ଭୋଘାତକମା ଗୌ; ଯେଉଁ ଗାଈ ଗର୍ଭର ପକାଏ—A cow which miscarries.

ବେହଦ୍(ଦ୍ଦ)—ବୈଦେ. ବଣ. ( ଫା. ବେହଦ୍ )—୧ । ଅସୀମ—Behad(dda) 1. Limitless. ୨ । ଅଶେଷ—2 Endless. बेहद ୩ । ଚାକୁବ୍; ଅଶ୍ଚର୍ଯ୍ୟାନ୍ୱିତ—3. Astonished. ୪ । बेहद्द ନିର୍ବୋଧ; କିଂ କର୍ତ୍ତବ୍ୟବିମୂଢ଼—4. Bewildered.

ବେହ(ହା)ୟା—ଦେ. ବଣ—ବେହୁଆ ( ଦେଖ ) Beha(hā)yā Behiā ( See )

ବେହ(ହେ)ରଣ—ଦେ. ବ. ( ସ. ବିହାର )—୧ । ସଭାମଣ୍ଡପ—Beha(he)rana 1. A roofed pandal. (ଉ—ସ୍ୱର୍ଣ୍ଣମୟ ଦିବ୍ୟ ବେହରଣରେ । ମଧୁସୂଦନ. ଛନ୍ଦମାଳା) ୨ । ବଇଠକ ସଭା—2. Meeting; assembly. ୩ । ବିହାର ସ୍ଥାନ; ବିହାର ମଣ୍ଡପ—3. A portico where people sit for recreation. ୪ । ବିହାର—4. Recreation. ୫ । ଉପବେଶନ ବା ଶୟନ—5. Sitting or sleeping. (ଉ—ଶଠାଅ ମୋତେ ତା ବେହରଣ ଫୁଲ ଖଟ ତଳେ ଦିବା ନିଶା । କବିସୂର୍ଯ୍ୟ. ସଙ୍ଗୀତ) ୬ । (ରାଜାଙ୍କ ପ୍ରତି ବ୍ୟବହୃତ) ଉପବେଶନ; ବସିବା; ବିଜେ କରିବା—6. Sitting (used in respect of Rājās).

ବେହରଣ କରିବା—ଦେ. କ୍ରି—ବସିବା—Beharana karibā To sit.

ବେହରଣ ମଣ୍ଡପ—ଦେ. ବ (ସ. ବିହାର+ମଣ୍ଡପ)—ଯେଉଁ ମଣ୍ଡପରେ Beharana mandapa ରାଜା ବସନ୍ତି—An pandal where a Rājā sits.

ବେ ହଲକ୍—ବୈଦେ. ବଣ ( ଅ )—ଦମ୍ଭହୀନ; ଧୈର୍ଯ୍ୟହୀନ—Be halak बेहलक बेहलक Impatient.

ବେହା—ଗ୍ରା. ବ ( ସ. ବିବାହ )—ବିବାହ—Behā बेहा ब्याह Marriage.

ବେହାଇ—ଗ୍ରା. ବଣ ( ସ. ବିବାହିତ )—ବାହା ହୋଇଥିବା—Behāi Wedded. [ ଉ—ସ୍ୱେଚ୍ଛା କରିବାକୁ ନ ପାଅ ଲଜ୍ଜା, ସେମାନେ ତାଙ୍କ ବେହାଇ ଭାରଯା—ପ୍ରତାପ. ଶଗୋଷେଣା । ]

ବେ ହାକମ(ମି)—ବୈଦେ. ବଣ ( ଅ. ବେ+ହାକିମ୍ )—ଯାହାଁରେ Be hākim(mi) କେହି କର୍ତ୍ତା ବା ସ୍ୱାମୀ ନାହାନ୍ତି—Lordless; masterless.

ବେହାଗ—ଦେ. ବ—ମିଶ୍ରରାଗବିଶେଷ—Name of a mixed Behāga बेहाग बेहाग musical tune. ( ବେହାଗଡ଼ା—ଅନ୍ୟରୂପ )

ବେହା ଘର—ଗ୍ରା. ବ ( ବିବାହ+ଘର )—ବିବାହ ଉତ୍ସବ—Behā ghara Marriage ceremony.

ବେହାତ—ଦେ. ବଣ ( ଅ. ବେ+ସ. ହସ୍ତ )—ହସ୍ତାନ୍ତରିତ; ଅନ୍ୟ Behāta ବ୍ୟକ୍ତିର ହସ୍ତଗତ—Gone to another's hand बेहात or control.

ବେହାୟା—ବୈଦେ. ବଣ—ବେହୁଆ ( ଦେଖ )—Behiā ( See ) Behāyā [ ଉ—ଓହୋ କାନ୍ଥରୁ ଦେଖିବା ପାଇଁ କ ପସ୍ତ, ( ବେୟା, ବେହ୍ୟା—ଅନ୍ୟରୂପ ) ନିର୍ଲଜ୍ଜ ବେହାୟା ଲୁଗ୍—ଉକାର ରତ୍ନମାଳୀ । ]

ବେହାର—ଗ୍ରା. ବଣ ( ସ. ବିହାର )—ବିହାର—Sport. [ଉ—Behāra ଶ୍ରୀରାମ ସଙ୍ଗେ ବେହାର କରନ୍ତି—ବିଶ୍ୱନାଥ. ବିଚିତ୍ର ରାମାୟଣ । ]

ବେହାରି—ଗ୍ରା ବ ଓ ବଣ—ବିହାରି ( ଦେଖ ) Behāri Bihāri ( See )

ବେହାଲ୍—ବୈଦେ. ବ ( ଅ. ବେ+ହାଲ୍ )—୧ । ଦୁର୍ଦ୍ଦଶା—Behāl 1. Bad condition. ୨ । ଦୁର୍ବଳ ଅବସ୍ଥା—बेहाल 2. Weak state. [ଉ—ଖାଉଇ ବାହାର ଅସିବା बेहाल ଦିନଠାରୁ ମାମୁଁ ମାଇଁ ବଡ଼ ବେହାଲରେ ପଡ଼ିଲେଣି—(ବେହାଲିଆ—ଅନ୍ୟରୂପ) ଫକୀରମୋହନ. ଗଳ୍ପସ୍ୱଳ୍ପ । ] ବୈଦେ. बेहाल बेहाल ବଣ—୧ । ଦୁର୍ବଳ—1 Weak. ୨ । କ୍ଷୀଣ—2. Feeble. ୩ । ବିପନ୍ନ—3. Beset with danger. ୪ । ଯାତନାଗ୍ରସ୍ତ—4. Beset with misery. ୫ । କାତର; କାଙ୍ଗାଳ; ନିରାଶ୍ରୟ—5. Helpless.

ବେହୁଆ—ଦେ. ବଣ ( ଫା. ବେହାୟା )—ନିର୍ଲଜ୍ଜ; ଅଲ୍ପଜ୍ଞ—Behiā बेहाया बेहाया Shameless.

ବେହୁଅଗିର୍—ଦେ. ବି—୧ । ନିର୍ଲଜ୍ଜତା—1. Shameless
Behiāgiri conduct. ୨ । ନିର୍ଲଜ୍ଜ ଲୋକର ଆଚରଣ—
ବେହୁଅପଣ ( ପଶ୍ଚିମ ) } ଅନ୍ୟରୂପ 2. The conduct of a
ବେହୁଅଗି } shameless person.
বেহায়াগিরি, বেহায়াপনা, বেহায়ামি **बेहायागिरी**

ବେହିପ(ପୋ)—ଗ୍ରା. ବି (ଅଶ୍ଲୀଳ ଗାଳି)—ଜାରଜ—Bastard son
Behipa(po) (ବେହୁପୁଅ—ଅନ୍ୟରୂପ) of an adulteress.

ବେହିଲି —ଦେ. ବିଣ. ସ୍ତ୍ରୀ ( ସଂ. ବିବାହିତା )—୧ । ବିବାହବନ୍ଧନରେ
Behili ପତ୍ନୀରୂପେ; ବିବାହିତା ( ସ୍ତ୍ରୀ )—1. (one's) Married
বিবাহিত (wife); taken as one's wife by marriage.
**विवाहिती** ( ଯଥା—ବେହିଲି ମାଇପ, ବେହିଲି ଭାର୍ଯ୍ୟା । )
୨ । ବିବାହିତା ( ବାଳିକା ); ଉଢ଼ା—2. Married
( girl ).

ବେ ହିସାବ(ବି)—ବୈଦେ. ବି (ଫା.ବେହିସାବ୍)—୧ । ଶୃଙ୍ଖଳାହୀନତା—
Behisāb(bi) 1. Want of order or method ୨ ।
বেহিসাব[বি] ବାଜେ ଖରଚ; ଅପବ୍ୟୟିତା—2. Squandering
**बेहिसाब[बि]** money. ବୈଦେ. ବିଣ—୧ । ଯେ ଗଣନା-
ପୂର୍ବକ କାର୍ଯ୍ୟ ନ କରେ—1. Wanting in foresight. ୨ । ଅବିବେଚକ—2. Inconsiderate. ୩ । ଜାଣ୍ଣଜ୍ଞାନଶୂନ୍ୟ—3. Reckless; rash. ୪ । ଅପବ୍ୟୟ ପ୍ରତି ଯେ ଦୃଷ୍ଟି ନ
ଦିଏ—4. Reckless in expenditure. ୫ ।
ଶୃଙ୍ଖଳାରହିତ—5. Methodless.

ବେହୀ—ଦେ. ବିଣ. ସ୍ତ୍ରୀ ( ସଂ. ବିବାହିତା )—ବିବାହିତା; ବିବାହ ଦ୍ୱାର
Behi ଦ୍ୱାରା ପତ୍ନୀରୂପେ ( ସ୍ତ୍ରୀ )—( one's ) Married
বিবাহিত ( wife ). ( ଯଥା—ବେହୀ ମାଇପ, ବେହୀ ଭାର୍ଯ୍ୟା ।)
**विवाहिती** ( ଉପେନ୍ଦ୍ର—ଛନ୍ଦଭୂଷଣ )

ବେ ହୁକୁମ୍—ବୈଦେ. ବିଣ ( ଫା. ବେହୁକ୍ମ୍ )—୧ । ଆଦେଶ ବ୍ୟତି-
Be hukum ରକ୍ତ—1. Unauthorised; not covered
বেহুকুম by any order. ୨ । ଆଦେଶବିରୁଦ୍ଧ—2. Contrary
**बेहुक्म** [ବେହୁକୁମତ(ତ) ଅନ୍ୟରୂପ] to orders.

ବେହୁଡ଼ା—ଦେ. ବି—ବେଉଡ଼ା ( ଦେଖ )
Behurdā Beurdā ( See )

ବେହୁଡ଼ିବା—ଦେ. କ୍ରି—ବେଉଡ଼ିବା ( ଦେଖ )
Behurdibā Beurdibā ( See )

ବେହୁ(ହୋ)ଦା(ଦା)—ବୈଦେ. ବିଣ (ଫା. ବେହୁଦା)—୧ । ଅନ୍ୟାୟ—
Behu(ho)ddā(dā) 1. Wrong, ୨ । ଅନୁଚିତ—2. Im-
বেআড়া **बेहूदा** proper. [ ଉ—ଭୂମ୍ ଏହା ବେହୁଦା
ସବାଲ କରୁଥିଲ ତ, ଭୁମାର ଓକାଲତି କେନ୍‌ସିଲ୍
କରଦେବା—ଫକୀରମୋହନ. ଛମାଣ ଆଠଗୁଣ୍ଠ । ]
୩ । ଅନିୟମିତ—3. Irregular. ୪ । ନିୟମ ଲଙ୍ଘନ-
କାରୀ—4. Transgressing or infringing a
rule.

ବେହୁର(ରୁ)ମତ(ତି)—ବୈଦେ. ବିଣ ( ଫା. ବେ+ହୁରମତ୍ )—
Behur(ru)mat(ti) বেইজ্জত ୧ । ସମ୍ମମହୀନ; ଅସମ୍ମାନିତ—
1. Dishonourable; disrespectful, ୨ ।
ନିର୍ଲଜ୍ଜ—2. Shameless. ଦେ. ବି—୧ । ସମ୍ଭ୍ରମ—
1. Want of dignity. ୨ । ଅମର୍ଯ୍ୟାଦା—
**बेहुरमत(ती)** 2. Disrespect.

ବେହୁରା—ଦେ. ବି—ବେଉରା ( ଦେଖ )
Behurā Beurā ( See )

ବେହୁ(ହୋ)ସ୍—ବୈଦେ. ବିଣ ( ଫା. ବେହୋସ୍ )—୧ । ଚୈତନ୍ୟ-
Behu(ho)s ହୀନ; ଅଚେତନ—1. Unconscious; senseless.
বেহুস, বেহোস less. ୨ । ନିର୍ବୋଧ—2. Foolish, ୩ ।
**बेहोश** (ବେହୋସ୍—ଅନ୍ୟରୂପ) ପାଗଳ; ଉନ୍ମତ୍ତ—3. Mad.

ବେହୁସିଆର(ରି)—ବୈଦେ. ବିଣ (ଫା.ବେହୋସିଆର)—୧ । ଅସାବଧାନ;
Behusiār(ri) ଗରହୁସିଆର—1. Incautious. ୨ । ଯତ୍ନହୀନ-
বেহুসিআর 2. Careless. ବୈଦେ. ବି—ଅସାବଧାନତା—
**बेहोशियार(री)** Carelessness.

ବେହେଡ଼ା—ପ୍ରାଦେ. ( ଯାଜପୁର ) ବିଣ—ବାହାଡ଼ା ( ଦେଖ )—
Beherdā Bāhārdā ( See ) ଦେ. ବିଣ—ବେଆଡ଼ା;
ଅନୁଚିତ—Beārdā ( See )

ବେହେଡ଼ି—ପ୍ରାଦେ. (ଯାଜପୁର) ବି—ଚଉଡ଼ାମୁହଁ ମୋଟା ଛୋଟ ହାଣ୍ଡି—
Beherdi A thick earthen pot with a wide
mouth.

ବେହେଣ୍ଟା—ଦେ. ବି—୧ । ଗ୍ଲେଟ ଓ ସଲଣ ବନ୍ୟ ବୃକ୍ଷ ବିଶେଷ—
Behentā 1. L. Lemonia. [ ଦ୍ର—ଏହାର କାଠ ଶକ୍ତ
ଓ ଏ ଗଛର କାଠରେ ଖଗଡ଼ର ଅଣ ତିଆରି ହୁଏ । ]
୨ । ବେଁଟା (ଦେଖ)—2. Beṅṭā (See).

ବେହେରା—ଦେ. ବି. ପୁଂ ( ସଂ. ବାହକ; ଭୁଲ ବହାର=ଜାଲା, ଭ୍ରମଣ,
Beherā ଭୁଲ. ଲ°. ବେଅରର)—୧ । ଯାନ ବାହକ;
ପାଲିଙ୍କିବାହକ—1. Palki bearer. ୨ ।
(ବେହେରାଣୀ—ସ୍ତ୍ରୀ) କେତେକ ଉତ୍କଳୀୟ ଶୂଦ୍ର ଓ ବୈଶ୍ୟଙ୍କ
বেহারা ବଂଶୋପାଧି—2. Family title of certain
**बेरा** Śūdras and Baisyas of Orissa. [ଦ୍ର—
ଗଉଡ଼, ଘାଟଏ, କେଉଟ, ଚମାର, ଶିଅଳ ଓ ଅନ୍ୟ
କେତେକ ଜାତିଙ୍କ ବଂଶୋପାଧି ବେହେରା ଅଟେ । ]
୩ । ଜାତିଆ ଜାତିର ନେତା ବା ଦଳପତି; ଜାତିବେହେରା—
3. The headman of a caste guild. ୪ ।
ଭୃତ୍ୟ—4. Servant. ( ଉ—ବାବୁ ଘରେ ଏବେ
ବସାଇ ବେହେରା—ରାଧାନାଥ. ଦରବାର । ୫ । ମାଲିକ—
5. Owner; master. (ଉ—ବେଶ କର ସାଉଥିଲେ
ଆଗୁଆଣି—ବେହେରାଏ ସବୁ ଶୋଭା ପୁରା ପୁଣି । ଉଚ୍ଚ.
ବୈଦେହୀଶବିଳାସ) । [ ଦ୍ର—ଉତ୍କଳର ଉତ୍ତର ଉତ୍ତର
ଅଞ୍ଚଳରେ ଗଉଡ଼, ବାଉର, ପାଣ, ହାଡ଼ି, କନ୍ଧ ଓ ସାନ୍ତାଳ-
ମାନେ ପାଲିଙ୍କି ବେହେରା କାର୍ଯ୍ୟ କରନ୍ତି । ] ପ୍ରାଦେ.
(ଜୟପୁର) ବି—ଗୃହ-ମୂଲିଆଙ୍କ ସର୍ଦ୍ଦାର; ଜମାଦାର—

The head amongst the servants engaged for agriculture

ବେହେରାଣିଆ(ଆଁ) ପୁଅ—ଦେ. ବ—ଅନ୍ୟରୂପ; ରାଜାଙ୍କର ରକ୍ଷିତା
Beheranīā(ān) pua ସ୍ତ୍ରୀଗର୍ଭଜାତ ସନ୍ତାନ—The illegitimate son of a Raja

ବେହେରାଣୀ—ଦେ. ବ. ସ୍ତ୍ରୀ—୧ । ବେହେରା ଜାତିର ସ୍ତ୍ରୀ—1.
Beherāṇī A woman of the Beherā caste. ୨ । (ସଂ. ବହାର ଶବ୍ଦରୁ ବହାରଣୀ; ରାଜା ଯାହା ସଙ୍ଗେ ବହାର କରନ୍ତି)—ରାଜାଙ୍କ ରକ୍ଷିତା ସ୍ତ୍ରୀ 2. The concubine of a Raja.

ବେହେରା ପଧାନ—ଦେ. ବ—୧ । ( ପ୍ରାଚୀନ ଓଡ଼ିଶାର ) କୃଷକ
Beherā padhāna ସୈନ୍ୟଦଳର ନେତା—1. The captain or leader of the militia of ancient Orissa. ୨ । କେତେକ ହାଟୁଆ ଜାତିର ନେତା—2. The headman of some caste-guilds.

ବେହେରା ପୁଅ—ଦେ. ବ ( ବେହେରାଜାତୀୟ ବ୍ୟକ୍ତି ପ୍ରତି ସମ୍ବୋଧନରେ
Beherā pua ବ୍ୟବହୃତ )—ବେହେରା ଜାତିର ସନ୍ତାନ—( ବେହେରା ଭାଇ—ଅନ୍ୟରୂପ ) A member of the Beherā caste.

ବେହେରି—ଦେ. ବ—ଦୁଧ ଅଉଟିବା ଓ ଦହି ମୋହିଁବାରେ
Beheri ବ୍ୟବହୃତ ଏକପ୍ରକାର ହାଣ୍ଡି—A kind of earthen pot used for boiling milk and churning curd. [ ଦ୍ର—ପ୍ରତେ ହୁଏ ଚନ୍ଦ୍ର ଯେହ୍ନେ ସ୍ଫଟିକ ବେହେରି—ଚନ୍ଦ୍ରାମଣି. ଗ୍ରନ୍ଥଲଳନା । ]

ବେହେ(ହା)ଲ—ଦେ. ବଣ ( ସଂ. ବେଷ୍ଟହଲ )—ବେଲିଆ ( ଦେଖ )
Behe(ha)la Beliā ( See )

ବେହେ(ହା)ଲପଣ—ଦେ. ବ—ବେଲି ( ଦେଖ )—Beli ( See )
Behe(ha)lapaṇa [ ବେହେଲପଣିଆ(ଆଁ)—ଅନ୍ୟରୂପ ]

ବେହେଲା—ବୈଦେ. ବ ( ସଂ. ବଲ୍ଲକୀ, ଇଂ ଭାୟୋଲିନ୍, ପର୍ତ୍ତୁ;
Behelā ଭାୟୋଲା)—ସ୍ୱରଗୋଷ୍ଠ ଚର୍ମାଚ୍ଛାଦିତ ବାଦ୍ୟ ଯନ୍ତ୍ର—Violin
ବେହেলা চিকারা, बेला [ ଦ୍ର—ଏହି ତାରମାନ ଘୋଡ଼ାର ଲାଞ୍ଜ ବାଳରେ ନିର୍ମିତ ଧନୁର୍ଗୁଣ (କମାଣି) ଦ୍ୱାରା ଘର୍ଷିତ ହୋଇ ମଧୁର ଶବ୍ଦ ଉତ୍ପାଦନ କରେ । ଏହି ଯନ୍ତ୍ର ଗୋଟି ତାରରୁ ସ୍ୱରଶ୍ରେଷ୍ଠ ସ୍ୱର ବାହାରେ । ଯଥା—୧. ଷଡ୍ଜ, ୨. ସୁର, ୩. ମଧ୍ୟମ, ୪. ଗାନ୍ଧାର । ]

ବେହେଲା କମାଣି—ଦେ. ବ (ସଂ. ବଲ୍ଲକୀ+କମାଣ)—୧ । ବେହେଲା
Behelā kamāṇi ତାରକୁ ଟେକି ଧରିଥିବା ପାନିଆ ଆକାରର ଖଣ୍ଡିଏ ପତଳା କାଠ—1. A comb-shaped bit of thin wood supporting the strings of the violin. ୨ । ବେହେଲା ଛଡ଼ ( ଦେଖ )—2. Behelā chharḍa (See)

ବେହେଲା ଛଡ଼(ଡ଼ି)—ଦେ. ବ—ବେହେଲା ତାରକୁ ଘଷିବା ପାଇଁ
Behelā chharḍa((rḍi) ବ୍ୟବହୃତ ଘୋଡ଼ାର ଲାଞ୍ଜ ବାଳରେ ନିର୍ମିତ ଧନୁ ଆକାରର କାଷ୍ଠ ଦଣ୍ଡବିଶେଷ—
বেহেলার ছড়ী The bow of a violin.
बेलाका छड

ବେହେଲା ତାର—ଦେ. ବ—ବେହେଲାରେ ଲଗାଯିବା ତାରମାନଙ୍କ
Behelā tāra ଅନ୍ତ ଦ୍ୱାରା ନିର୍ମିତ ତନ୍ତ୍ରବିଶେଷ—
বেহেলার তার बेलाका तार Violin string.

ବେହୋସ୍—ବୈଦେ. ବ ଓ ବଣ—ବେହୁସ୍ (ଦେଖ)
Behos Behus (See)

ବୈ—ସଂ. ଅ ( ବା ଧାତୁ=ଗମନ କରିବା+କର୍ତ୍ତ୍ତି. ଐ )—ପାଦ-
Bai ପୂରଣାର୍ଥ, ସମ୍ବୋଧନ ଓ ଅନୁନୟରେ ବ୍ୟବହୃତ ଅବ୍ୟୟ—A particle used in completing a sentence, in addressing and in entreaty. [ ଦ୍ର—ଏହି ସଂସ୍କୃତ 'ବୈ' ଶବ୍ଦ ବଙ୍ଗଳାରେ 'ବଇ', ଓଡ଼ିଆରେ 'ବ', ଫାର୍ସୀରେ 'ବ' ସଙ୍ଗେ ସମାନ । କିନ୍ତୁ ଏହି 'ବୈ' ଶବ୍ଦର ଓଡ଼ିଆରେ ବ୍ୟବହାର ନାହିଁ । ] ବୈଦେ. ବ ( ଫା. ବସ୍ତ )—୧ । ବହି, ପୁସ୍ତକ—1. Book. ୨ । ( ଆଦରାର୍ଥକ ) ବୈଷ୍ଣବ ବା ବୈରାଗୀ ନାମକ ବ୍ୟକ୍ତିଙ୍କୁ ଡାକିବା ନାମ—2. Name for calling Baishṇaba or Bairāgi. (ବୈଆ—ଅନାଦରାର୍ଥକ)

ବୈଁଶୋର—ଦେ. ବ—କ୍ଷୁଦ୍ର ବଂଶୀ – A small flute.
Baiṅsori (ଦ୍ର—ଅଷ୍ଟର ହୋଇଅଛି ବେଣୁ ଯେ ବୈଁଶୋର । ପ୍ରାଚୀ. ଗୁରୁଭକ୍ତି ଗୀତା ।)

ବୈ କବା(ବା)ଲା—ବୈଦେ. ବ (ଫା. ବୈକବାଲା) (କଟଉଆ)—
Bai kaba(bā)lā ବିକ୍ରୟ ପତ୍ର—A deed of sale
কবালা बैकबाला

ବୈକର୍ତ୍ତନ—ସଂ. ବଣ. (ବିକର୍ତ୍ତନ+ଅ)—୧ । ସୂର୍ଯ୍ୟବଂଶୀୟ—
Baikarttana 1. Belonging to the Solar dynasty. ୨ । ସୌର—2. Solar. ସଂ. ବ. (ବିକର୍ତ୍ତନ+ଅପତ୍ୟାର୍ଥେ ଅ )—୧ । ସୂର୍ଯ୍ୟପୁତ୍ର ଶନି ଗ୍ରହ—1. The planet Saturn. ୨ । ଅଙ୍ଗରାଜ କର୍ଣ୍ଣ—2. King Karṇṇa. [ଦ୍ର—ଅଙ୍ଗରାଜ କର୍ଣ୍ଣ ପୂର୍ବେ କବଚ ଓ କୁଣ୍ଡଳ ସ୍ୱୟଂ ଛେଦନ କରି ପୁରନ୍ଦରଙ୍କୁ ପ୍ରଦାନ କରିବାରୁ 'ବୈକର୍ତ୍ତନ' ନାମରେ ବିଖ୍ୟାତ ହୋଇଥିଲେ । ମହାଭାରତ; ଅବିବାହିତା କୁନ୍ତୀଙ୍କଠାରୁ ସୂର୍ଯ୍ୟ ଦେବଙ୍କ ଔରସରେ ଏ ଜାତ ହୋଇଥିଲେ । ]

ବୈକଳ୍ପିକ—ସଂ. ବଣ. ( ବିକଳ୍ପ+ଇକ )—୧ । (ବ୍ୟାକରଣ)
Baikalpika ବିକଳ୍ପରେ ଯାହା ସିଦ୍ଧ ହୁଏ—1. (grammar) Optional; alternative. ୨ । ସନ୍ଦେହଯୋଗ୍ୟ—2. Doubtful.

ବୈକଲ୍ୟ—ସଂ. ବ. (ବିକଳ+ଭାବାର୍ଥେ. ଯ)—୧ । ବିକଳତା; ବିକୃତ
Baikalya ଅବସ୍ଥା—1. Defect; impaired condition. ୨ । ଖଞ୍ଜତା—2. Lameness. ୩ । ଅଙ୍ଗହୀନତା—3. Want of limb. ୪ । ଅଭାବ—4. Want. ୫ । ଅସମ୍ପୂର୍ଣ୍ଣତା—5. Incompleteness; imperfection.

ବୈକାର—ସଂ. ବି (ବିକାର+ଭାବ. ଅ)—୧। ବିକୃତି—1.
Baikāra Deterioration. ସଂ. ବିଣ—ବିକାରସମ୍ବନ୍ଧୀୟ
—Relating to deterioration. ଦେ. ବିଣ—
ସାତ୍ତ୍ୱିକ—Relating to the satwa quality.
[ଉ—ବୈକାର ରଜସ ତାମସ, ଏ ତନରୂପେ ତା
ପ୍ରକାଶ। ଜଗନ୍ନାଥ. ଭାଗବତ।]

ବୈକାଲ—ସଂ. ବି (ବିକାଲ+ଅ)—୧। ଅପରାହ୍ଣ—1.
Baikāla Afternoon. ୨। ଦିବସର ଶେଷ ବେଳା—
2. The last portion of the day-time.

ବୈକାଳ—ପ୍ରାଦେ. (ଉତ୍ତର ବାଲେଶ୍ୱର) ବି (ଭୁଲ. ବି. ବୈକାଲ)—
Baikāla ଅପରାହ୍ଣ; ଓପରଓଳ—Afternoon.

ବୈକାଳିକ—ସଂ. ବିଣ (ବିକାଲ+ସମ୍ବନ୍ଧାର୍ଥେ ଇକ)—ଅପରାହ୍ଣକାଳୀନ
Baikālika —Relating to or happening in
the afternoon.

ବୈକୁଣ୍ଠ—ସଂ. ବି (ବିକୁଣ୍ଠ+ଅପତ୍ୟାର୍ଥେ ଅ; ବହୁବ୍ରୀହି; କିମ୍ବା ବି=
Baikuntha ବିବିଧ+କୁଣ୍ଠ=ମାୟା; ଯାହାର ବିବିଧ ମାୟା ବିଦ୍ୟମାନ
ଅଛି। କିମ୍ବା ବି=ବିଗତ+କୁଣ୍ଠା; କୁଣ୍ଠାରହିତ ହୋଇ ଅର୍ଥାତ୍
ଅକୁଣ୍ଠିତଭାବରେ ଯେ ପୃଥିବୀକୁ ସୃଷ୍ଟି କରି ଅଛନ୍ତି)—
୧। ବିଷ୍ଣୁ—1. Bishnu. ୨। ଇନ୍ଦ୍ର—2. Indra.
୩। (ବି=ବିଗତ+କୁଣ୍ଠ=ପ୍ରତିବନ୍ଧକ) ଗୋଲୋକଧାମ;
ବିଷ୍ଣୁଙ୍କ ପୁରୀ—3. The abode of Bishnu. ୪।
ବୈଷ୍ଣବମାନଙ୍କ ସ୍ୱର୍ଗ—4. The paradise of the
Baishnaabs. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା
ନାମ—A name given to males.

ବୈକୁଣ୍ଠ ଏକାଦଶୀ—ପ୍ରାଦେ (ଗଞ୍ଜାମ) ବି—ଶ୍ରୀରଙ୍ଗନାଥଙ୍କ ମନ୍ଦିରର
Baikuntha ekādasī ଉତ୍ସବବିଶେଷ—Name of a
festival in the temple of Srī Ranga-
natha.

ବୈକୁଣ୍ଠ ତୋରା(ଡ଼ା)ଣୀ—ପ୍ରାଦେ. (ପୁରୀ) ବି—ଚନ୍ଦନଯାତ୍ରା ସମୟରେ
Baikuntha torā(rdā)nī ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା
ଜଳଶାୟୀ ହେଲେ ତାଙ୍କୁ ଯେଉଁ ଦହି ପଖାଳ ଓ ପିଠାଆଦି
ଭୋଗ ଦିଆଯାଏ—The offering consisting of
ricewater mixed with curd and some
cakes.

ବୈକୁଣ୍ଠ ଧାମ—ସଂ. ବି (ବୈକୁଣ୍ଠ+ଧାମନ୍)—ଗୋଲୋକ ଧାମ;
Baikuntha dhāma ବିଷ୍ଣୁଙ୍କ ପୁରୀ—The abode of
[ବୈକୁଣ୍ଠପୁର(ରୀ)—ଅନ୍ୟରୂପ] Bishnu.

ବୈକୁଣ୍ଠ ନାଥ(ପତି)—ସଂ. ବି—ବିଷ୍ଣୁ—Bishnu.
Baikuntha nātha(pati)

ବୈକୁଣ୍ଠବାସୀ—ସଂ. ବି. ପୁଂ (ବୈକୁଣ୍ଠବାସିନ୍; ୧ମା. ୧ବ)—୧।
Baikunthabāsī ବିଷ୍ଣୁ—1. Bishnu. ୨। ଯେଉଁ ବିଷ୍ଣୁ-
(ବୈକୁଣ୍ଠବାସିନୀ—ସ୍ତ୍ରୀ) ଭକ୍ତମାନେ ମରି ଦେହ ତ୍ୟାଗ କରିବା
ପରେ ବୈକୁଣ୍ଠପୁରୀରେ ବାସ କରୁଅଛନ୍ତି—2. The
devotees of Bishnu who after death
transmigrate to and permanently reside
in Paradise.

ବୈକୃତ—ସଂ. ବି (ବିକୃତ+ସ୍ୱାର୍ଥେ ଅ)—୧। ବିକୃତତ୍ୱ;
Baikruta କାୟିକ ବା ମାନସିକ ବିକାର—1. The state
of deterioration. ୨। ପ୍ରାକୃତ ସୃଷ୍ଟି—2. The
material creation. [ଉ—ପ୍ରାକୃତ ବୈକୃତ
ସଂସାର, ମହତ ସ୍ଥାନର ସଞ୍ଚାର। ଜଗନ୍ନାଥ. ଭାଗବତ।]

ବୈକ୍ରାନ୍ତ—ସଂ. ବି (ବିକ୍ରାନ୍ତ+ଅ)—୧। ବିକ୍ରାନ୍ତମଣି; ଚୁନି—A sort
Baikrānta of gem; ruby. [ଦ୍ର—ଏହା ଶ୍ୱେତ, ରକ୍ତ ଓ
ସଂ—ନୀଳ ବର୍ଣ୍ଣ; କୁବର୍ଣ୍ଣ, ନୀଳ ଭେଦରେ ୩ ପ୍ରକାର।] ୨।
ଗୋଳାସ— ସ୍ପର୍ଶମଣି—2. Touch-stone; the
philosopher's stone. ୩। ଚୁମ୍ବକପଥର—3.
Loadstone; magnet.

ବୈକ୍ଳବ୍ୟ—ସଂ. ବି (ବିକ୍ଳବ+ଭାବ. ଯ)—କାତରତା; ବିହ୍ୱଳତା;
Baiklabya ଅଧୀରତା—Confusion; affliction;
agitation.

ବୈଖାନସ—ସଂ. ବି (ବି+ଖନ୍ ଧାତୁ+କର୍ତ୍ତୃ. ଅ;+ଅନ୍ ଧାତୁ=
Baikhānasa ଜୀବିତ ରହିବା+କର୍ତ୍ତୃ. ଅସ୍; ଯେଉଁମାନେ
ବୃକ୍ଷମୂଳାଦିଦ୍ୱାରା ଜୀବିତ ରହନ୍ତି)—୧। ଏକପ୍ରକାର ଋଷି—
1. A class of sages or ascetics. (ଉ—
ବୈଖାନସ ଗଣ ଯେଣେ ବାଟେ ଗଲେ। ଉପେ. ବୈଦେହୀଶ-
ବିଳାସ।) ୨। ବାନପ୍ରସ୍ଥ; ବନବାସୀ—2. A Hindu
who has renounced the home and gone
to live in the forest. ସଂ. ବିଣ—ବାନପ୍ରସ୍ଥ
ସମ୍ବନ୍ଧୀୟ—Relating to the third stage of a
Hindu's life.

ବୈଗୁଣ୍ୟ—ସଂ. ବି (ବିଗୁଣ+ଭାବ. ଯ)—୧। ବିଗୁଣତା; ଗୁଣରାହିତ୍ୟ;
Baigunya ବିକୃତତା—1. Derangement; deteriora-
tion. ୨। ଅପରାଧ; ଦୋଷ—2. Fault; guilt.
୩। ନୀଚତା—3. Inferiority; meanness; low-
ness. ଦେ. ବି—୧। ବିରକ୍ତି; ଅପ୍ରସନ୍ନତା—1. Dis-
pleasure; annoyance. ୨। ତ୍ରୁଟି—2. Defect.
୩। ଦୁଃଖ—3. Grief; sorrow.

ବୈଚ(ଚି)—ଦେ. ବି (ସଂ. ବିକଙ୍କତ)—ବଇଞ୍ଚ (ଦେଖ)—
Baicha(chi) বৈংচি Baincha (See).
(ବୈଁଚ, ବୈଁଚି, ବୈଂଚ, ବୈଂଚି—ଅନ୍ୟରୂପ)

ବୈଚକ୍ଷଣ୍ୟ—ସଂ. ବି (ବିଚକ୍ଷଣ+ଭାବ. ଯ)—ବିଚକ୍ଷଣତା; ନୈପୁଣ୍ୟ—
Baichakshanya Sharpness; eminence;
dexterity; skill.

ବୈଚିତ୍ତ୍ୟ—ସଂ. ବି (ବିଚିତ୍ତ+ଭାବ. ଯ)—ମତିଭ୍ରମ—
Baichittya Mental confusion or derangement.

ବୈଚିତ୍ର୍ୟ—ସଂ. ବି (ବିଚିତ୍ର+ଭାବ. ଯ)—୧ । ବିଚିତ୍ରତା; ଭିନ୍ନଭିନ୍ନତା; ନାନାରୂପତା—1. Variety; diversity. ୨ । ସୌନ୍ଦର୍ଯ୍ୟ—2. Beauty; elegance; grace.

ବୈଜନକ—ସଂ.ବି (ବିଜନନ+ଅ)—ଜନ୍ମମାସ; ଯେଉଁ ମାସରେ କୌଣସି Baijanaka ସନ୍ତାନ ଜନ୍ମ ହୋଇଥାଏ—The month of the year in which a child has was born.

ବୈଜୟନ୍ତ—ସଂ. ବି ( ବି+ଜି ଧାତୁ=ଜୟ କରିବା+ଅନ୍ତ )—Baijayanta ୧ । ଇନ୍ଦ୍ରପୁରୀ—1. The paradise or abode of Indra. ୨ । ଇନ୍ଦ୍ରଧ୍ୱଜ—2. The banner of Indra.

ବୈଜୟନ୍ତିକ—ସଂ. ବିଣ. ପୁଂ (ବୈଜୟନ୍ତୀ=ପତାକା+ଇକ)—Baijayantika ପତାକାଧାରୀ—Carrying a banner. (ବୈଜୟନ୍ତିକା—ସ୍ତ୍ରୀ)

ବୈଜୟନ୍ତୀ—ସଂ. ବି (ବୈଜୟନ୍ତ+ଈ)—୧ । ପତାକା—1. Flag; Baijayanti banner. ୨ । ଜାନୁ ପର୍ଯ୍ୟନ୍ତ ଲମ୍ବିତ ପଞ୍ଚବର୍ଣ୍ଣ (ବୈଜୟନ୍ତିକା—ଅନ୍ୟରୂପ) ମଣି ମାଳା—2. A five-coloured garland reaching the thighs. ୩ । ବିଷ୍ଣୁଙ୍କ କଣ୍ଠର ମାଳା—3. The garland of Bishnu. ୪ । ଅଧିରୋହଣୀ; ନିଶୁଣୀ—4. Ladder; staircase. ୫ । ଧନଗଛ ବା ଜୟନ୍ତୀ ବୃକ୍ଷ—5. Name of a plant; Eychonomene Sesban.

ବୈଜୟିକ—ସଂ. ବିଣ (ବିଜୟ+ସମ୍ବନ୍ଧାର୍ଥେ. ଇକ)—୧ । ବିଜୟସୂଚକ Baijayika 1. Triumphal; indicating victory. ୨ । ବିଜୟପ୍ରଦ—2. Granting victory; enabling one to gain victory.

ବୈଜୟିକୀ ବିଦ୍ୟା—ସଂ. ବିଣ (ବୈଜୟିକ+ଈ)—ଯେଉଁ ବିଦ୍ୟା ଶିକ୍ଷା Baijayiki bidyā କଲେ ବିଜୟ ଲାଭ ହୁଏ—A science which enables the votary to be victorious.

ବୈଜାତ୍ୟ—ସଂ. ବି. (ବିଜାତ+ଭାବ. ଯ)—୧ । ବିଜାତୀୟତା—Baijātya 1. Difference of caste or nationality. ୨ । ଅସାମଞ୍ଜସ୍ୟ—2. Disparity; dissimilarity. ୩ । ବୈଲକ୍ଷଣ୍ୟ—3. Derangement; strangeness. ୪ । ଲମ୍ପଟ୍ୟ—4. Lasciviousness. ୫ । ସ୍ୱଭାବରେ ପ୍ରଭେଦ—5. Difference of nature.

ବୈଜୁଳିକ—ଦେ. ବି—ଜୁଳୁଜୁଳିଆ ପୋକ—Baijulika Firefly [ଉ—କେତେ ବୋଇଲେ ଭଲ ଗଗନ ତାରକ । କୋହଲେ ବହୁଛନ୍ତି ଖଦ୍ୟୋତି ବୈଜୁଳିକ । କୃଷ୍ଣସିଂହ ମହାଭାରତ, ବନ ।]

ବୈଜ୍ଞାନିକ—ସଂ. ବିଣ—(ଅଧୁନିକ ପ୍ରୟୋଗ) (ବିଜ୍ଞାନ+ସମ୍ବନ୍ଧ ଓ Baijñānika ଜ୍ଞାନାର୍ଥେ+ଇକ)—ବିଜ୍ଞାନସମ୍ବନ୍ଧୀୟ—Scientific. ସଂ.ବି. ପୁଂ—୧ । ବିଜ୍ଞାନବିଶାରଦ ପଣ୍ଡିତ—1. A scientist. ୨ । ବିଶେଷଜ୍ଞ—2. An expert; a specialist.

ବୈଠକ(କି) (ଇତ୍ୟାଦି)—ଦେ. ବି—ବଇଠକ (କି) ଇତ୍ୟାଦି (ଦେଖ)—Baiṭhaka(ki) (etc) Baiṭhaka(ki)etc (See)

ବୈଠା(ଠି) (ଇତ୍ୟାଦି)—ଦେ. ବି—ବଇଠା(ଠି) ଇତ୍ୟାଦି (ଦେଖ) Baiṭhā(ṭhi) (etc) Baiṭhā(ṭhi) etc (See)

ବୈଠାଣି—ପ୍ରାଦେ. (ମେଦିନୀପୁର) ବି—ହୁକା ଅଧର ବଇଠି—Baiṭhāṇi The stand for a Hukā etc.

ବୈଠାର(ରୁ)—ଦେ. ବି—ବଇଠାର(ରୁ) (ଦେଖ) Baiṭhāra(ru) Baiṭhāra(ru) (See)

ବୈଡ଼୍—ପ୍ରାଦେ. (କଟକ) ବି—ଭିଡ଼; ବଦୋଡ଼; ଅସଂଖ୍ୟ ଜନ-Baiṛd ସମାଗମ; ଲୋକଗହଳ—Pressure of a crowd of people; over-crowding.

ବୈଡା(ଡ଼ା)ଲ ବ୍ରତ—ସଂ. ବି—(ବିଡ଼ାଳ+ଅ,+ବ୍ରତ)—ନିଜର ପାପ Baiṛdā(ḍā)la brata କର୍ମ ଗୋପନ କରି ନିଜକୁ ଧାର୍ମିକ ବୋଲି ପରିଚିତ କରାଇବା; ଭଣ୍ଡ ତପସ୍ୱିତା—Hypocricy.

ବୈଡ଼ାଲ ବ୍ରତିକ—ସଂ. ବିଣ.ପୁଂ (ବଡ଼ାଲ ବ୍ରତ+ଅଛି ଅର୍ଥ. ଇକ,ଇନ)-Bairḍala bratika ଭଣ୍ଡ ତପସ୍ୱୀ—Hypocretical. (ବୈଡ଼ାଲ ବ୍ରତୀ—ଅନ୍ୟରୂପ; (ବୈଡ଼ାଲ ବ୍ରତିକା, ବୈଡ଼ାଲବ୍ରତିନୀ ସ୍ତ୍ରୀ)

ବୈଡ଼ୁର୍ଯ୍ୟ—ଗ୍ରା. ବି—(ସଂ. ବୈଦୂର୍ଯ)—ବୈଦୂର୍ଯ୍ୟ (ଦେଖ) Baiḍurjya Baiḍūrjya (See)

ବୈଣ—ସଂ.ବିଣ—(ବେଣୁ+ଜୀବିକାର୍ଥେ)—ବାଉଁଶ ବ୍ୟବସାୟୀ; ବେଣୁ-Baiṇa ଜୀବୀ—Trading in bamboos. ସଂ. ବି—ବାଉଁଶରେ ପାଛିଆ ନିର୍ମାଣକାରୀ ଡମ—The Dome caste who live upon the manufacture of bamboo-works.

ବୈଣବ—ସଂ. ବିଣ—(ବେଣୁ+କୃତାର୍ଥେ. ଅ)—୧ । ବାଉଁଶନିର୍ମିତ—Baiṇaba 1. Made of bamboo. ୨ । ବାଉଁଶ ସମ୍ବନ୍ଧୀୟ-(ବୈଣବୀ—ସ୍ତ୍ରୀ) 2. Relating to bamboo. ୩ । (ପୁଂ) ବେଣୁଜୀବୀ ବ୍ୟକ୍ତି—3. Trading in bamboos or manufacturing bamboo work. ୪ । ବାଉଁଶ ଧାନ—4. Grains or seeds of bamboo.

ବୈଣବୀ—ସଂ. ବି. (ବୈଣବ+ଈ)—ବଂଶ ଲୋଚନ—Baiṇabī Bamboo manna.

ବୈଣିକ—ସଂ.ବିଣ.ପୁଂ (ବୀଣା+ବାଦନ ଅର୍ଥେ ଇକ)—ବୀଣା ସମ୍ବନ୍ଧୀୟ—Baiṇika Relating to harp. ସଂ. ବି.ପୁଂ—୧ । ବୀଣା ବାଦକ—1. Harper. ୨ । ନାରଦ ମୁନି—2. Sage Nārada.

ବୈଣବ୍ୟ—ସଂ. ବି (ବେଣୁ+ଯ)—ବଂଶ ଲୋଚନ—Baiṇabya Bamboo manna.

ବୈଣ୍ୟ—ସଂ. ବି ( ବେଣ+ଅପତ୍ୟାର୍ଥେ ଯ )—ବେଣ ରାଜାର ପୁତ୍ର; Baiṇya ପୃଥୁ—Pṛuthu, the son of king Bena.

ବୈତଂଶିକ—ସଂ. ବି. ପୁଂ (ବିତଂଶ=ଜାଲ+ଜୀବିକା ଅର୍ଥରେ ଇକ)—Baitamsika ୧ । ଯେ ଜାଲଦ୍ୱାରା ଜୀବିକା ନିର୍ବାହ କରେ—1. A trapper; a person who catches

animals with nets. ୨ । ମାଂସ ବିକ୍ରୟୀ; ଯେ ପଶୁ-ପକ୍ଷୀଙ୍କର ମାଂସ ବିକ୍ରୟ କରେ ( ପ୍ରକୃତିବାଦ )—2. A trader in meat.

**ବୈତନିକ**—ସ. ବିଣ. ପୁଂ. (ବେତନ+ଜୀବିକା ଅର୍ଥରେ ଇକ )—
Baitanika ୧ । ବେତନଭୋଗୀ—1. Salaried; getting salary. ୨ । ବେତନ ସାଧ୍ୟ—2. Performable by means of salaried servants. ସ. ବି—ବେତନ-ଭୋଗୀ ଭୃତ୍ୟ—Salaried servant.

**ବୈତମ**—ଦେ. ବି—୧ । ପୁରୁଣା; ପ୍ରାଚୀନ—1. Old.
Baitama ୨ ପୁରୁଣା ଓ ବ୍ୟବହାରର ଅନୁପଯୋଗୀ—2. Old and useless.

**ବୈତରଣୀ(ଣି)**—ସ. ବି (ବିଷମ ଅଟେ ତରଣ=ପାର ହେବା ଯହିଁରେ;
Baitarani(ni) ବି+ତରଣ+ଈ;+ଅ; କିମ୍ବା ବିତରଣ=ଦାନ+ଇ;+ଈ; ଦାନ ଦ୍ୱାରା ଯାହାକୁ ତରନ୍ତି)—୧ । ଯମ ପୁରୀକୁ ବେଷ୍ଟନ କରିଥିବା ପୌରାଣିକ ନଦୀ—1. The mythological river surrounding the abode of the departed spirits (corresponding to the Styx of Greek mythology). [ଦ୍ର—ଏହାର ଜଳ ରୁଧିରମୟ, ତପ୍ତ, ଦୁର୍ଗନ୍ଧ ଓ ଅସ୍ଥିକଙ୍କାଳ ସମନ୍ୱିତ । ମୃତ୍ୟୁ ପୂର୍ବରୁ ଗୋଦାନ ଦେଲେ ସେହି ଗୋରୁର ଲାଙ୍ଗୁଡ଼ ଧରି ଏ ମୃତ ବ୍ୟକ୍ତିର ପ୍ରେତ ନଦୀକୁ ପାରି ହୁଏ ବୋଲି ପୁରାଣରେ ଲେଖା ଅଛି ।] ୨ । ଉତ୍କଳର ନଦୀ ବିଶେଷ—2. Name of a river in Orissa. [ଦ୍ର—ଯାଜପୁର ଏହି ନଦୀ କୂଳରେ ଅବସ୍ଥିତ; ଏହା କେନ୍ଦୁଝରର ଗୋନାସିକା ପର୍ବତରୁ ବାହାରି ବଙ୍ଗୋପ-ସାଗରରେ ପଡ଼ିଅଛି ।] ଦେ. ବି—ମୃତ୍ୟୁ ପରେ ମୃତ ବ୍ୟକ୍ତିର ପ୍ରେତ ବିନା କଷ୍ଟରେ ଉକ୍ତ ବୈତରଣୀ ନଦୀକୁ ପାରି ହେବା ଉଦ୍ଦେଶ୍ୟରେ ମୃତ୍ୟୁ ପୂର୍ବରୁ ଦିଆଯିବା ଗୋଦାନ ଆଦି—Gift of cows etc given by a dying person with a view to safely cross the Baitarani river after death.

**ବୈତସ**—ସ. ବିଣ (ବେତସ+ସମ୍ବନ୍ଧାର୍ଥେ ଅ)—ବେତ ଗଛ ସମ୍ବନ୍ଧୀୟ—
Baitasa Relating to the cane plant.
(ବୈତସୀ—ସ୍ତ୍ରୀ) ସ. ବି—ଅମ୍ଳ ବେତସ ଗୁଳ୍ମ—A kind of sour plant.

**ବୈତାନ**—ସ. ବିଣ (ବିତାନ+ଅ)—ଯଜ୍ଞୀୟ; ଯଜ୍ଞ ସମ୍ବନ୍ଧୀ—
Baitāna Relating to vedic sacrifice; sacrificial.
(ବୈତାନକ—ଅନ୍ୟରୂପ) ସ.ବି—୧ । ଯଜ୍ଞାଗ୍ନି—1. Sacrificial fire. ୨ । ହୋମ—2. Vedic oblation unto fire; burnt offering. ୩ । ହୋମରେ ଦିଆଯିବା ନୈବେଦ୍ୟ—3. Offering made during vedic sacrifice and put into the fire.

**ବୈତାଳ**—ସ. ବି ( ବି=ବିବିଧ+ତାଳ=ବାଦ୍ୟାଦିର ଲୟ+ଅ )—
Baitāla ୧ । ସ୍ତୁତି ପାଠକ; ଭାଟ; ଯେଉଁମାନେ ପ୍ରଭାତ (ବୈତାଳିକ—ଅନ୍ୟରୂପ) କାଳରେ ମଙ୍ଗଳ ଗାନ କରି ରାଜାଙ୍କର ନିଦ୍ରା ଭଙ୍ଗ କରନ୍ତି—1. A herald; ministrel; a bard who awakens a king by singing songs in the morning. ୨ । ଗାରୁଡ଼ ବିଦ୍ୟା ସାଧକ; ବାଜିକର; ବେତାଳ ସାଧନ କରିଥିବା ବ୍ୟକ୍ତି; କୁହୁକୀ—2. A conjurer; magician.
ସ. ବିଣ—ବେତାଳ ସମ୍ବନ୍ଧୀୟ—Relating to Betāla.
ଦେ. ବି—ବୋଇତାଳ (ଦେଖ)—Boitāla (See)

**ବୈତାଳୀୟ**—ସ. ବି—ଛନ୍ଦୋବିଶେଷ—
Baitāliya A kind of metre.
[ଦ୍ର—ଏହି ଛନ୍ଦରେ ପ୍ରଥମ ଓ ତୃତୀୟ ପାଦରେ ୧୪ଟି ଲଘୁ ବର୍ଣ୍ଣ ଓ ଦ୍ୱିତୀୟ ଏବଂ ଚତୁର୍ଥ ପାଦରେ ୧୬ଟି ଲଘୁବର୍ଣ୍ଣ; ପ୍ରତ୍ୟେକ ପାଦର ପ୍ରଥମ ଓ ତୃତୀୟ ଅକ୍ଷର ଗୁରୁ ଏବଂ ଦ୍ୱିତୀୟ ଅକ୍ଷର ଲଘୁ ।]

**ବୈତିଆଳ(ଳୁ)**—ଦେ. ବି—ବୋଇତାଳ(ଳୁ) (ଦେଖ)
Baitiāla(lu) Boitāla(lu) (See)

**ବୈତ୍ରଣୀ**—ଗ୍ରା. ବି (ପ୍ରାଚୀନ ପଦ୍ୟ)—ବୈତରଣୀ ( ଦେଖ )
Baitrani Baitarani (See)
(ଉ— ପାର୍ବତୀ କ୍ଷେତ୍ରେ ପ୍ରବେଶିଲେ, ବୈତ୍ରଣୀ ସ୍ନାନ ଦାନ କଲେ । ଭୂପତି. ପ୍ରେମପଞ୍ଚାମୃତ ।)

**ବୈଦ (ଇତ୍ୟାଦି)**—ଗ୍ରା. ବି (ସ ବୈଦ୍ୟ)—ବଇଦ ଇତ୍ୟାଦି (ଦେଖ)
Baida (etc) Baida etc. (See)

**ବୈଦଗ୍ଧ(ଗ୍ଧ୍ୟ)**—ସ. ବି ( ବିଦଗ୍ଧ+ଭାବେ ଅ; ଯ )—୧ । ରସିକତା—
Baidagdha(gdhya) 1. Gallantry; humour; wit
(ବୈଦଗ୍ଧୀ—ଅନ୍ୟରୂପ) jocularity. ୨ । ଚତୁରତା; ପଟୁତା—2. Cleverness; skill. ୩ । ପାଣ୍ଡିତ୍ୟ—3. Dexterity; learning; ୪ । ଭଙ୍ଗୀ; ଛଳ—4. Dalliance.

**ବୈଦଗ୍ଧ କଳା**—ସ. ବି (୬ଷ୍ଠୀ ତତ୍)—ରସିକତା ସୂଚକ ହାବ ଭାବ—
Baidagdha kalā Exhibition of gallantry by signs.

**ବୈଦଗ୍ଧ ବିଳାସ**—ସ. ବି (୬ଷ୍ଠୀ ତତ୍)—ଚତୁରତା ପ୍ରକାଶ—
Baidagdha bilāsa Show of skill or gallantry.

**ବୈଦ(ଦି)ନାଥ**—ଗ୍ରା. ବି (ସ. ବୈଦ୍ୟନାଥ)—ବୈଦ୍ୟନାଥ (ଦେଖ)
Baida(di)nātha Baidyanātha (See).

**ବୈଦର୍ଭ**—ସଂ. ବିଣ (ବିଦର୍ଭ=ଦେଶ ବିଶେଷ+ସମ୍ବନ୍ଧାର୍ଥେ ଓ ଭବାର୍ଥେ
Baidarbha +ଅ)—୧ । ବିଦର୍ଭ ସମ୍ବନ୍ଧୀୟ—1. Relating to the Bidarbha country. ୨ । ବିଦର୍ଭ ଦେଶୋ-ତ୍ପନ୍ନ—2. Produced in the Bidarbha country. ସଂ. ବି—୧ । ବିଦର୍ଭ ରାଜ—1. The king of the Bidarbha country. ୨ । ଦମୟନ୍ତୀଙ୍କ ପିତା ଭୀମସେନ—2. The father of Damayanti. ୩ । ବାକ୍ଚାତୁର୍ଯ୍ୟ—3. Skill in speech; cleverness of speech; jugglery in speech. ୪ । ଦନ୍ତ ଶୂଳ—4. Tooth-ache.

**ବୈଦର୍ଭୀ**—ସ. ବ. ସ୍ତ୍ରୀ ( ବୈଦର୍ଭ+ସ୍ତ୍ରୀ ଈ )—୧ । ଦମୟନ୍ତୀ—
Baidarbhi 1. Damayanti. ୨ । ଅଗସ୍ତ୍ୟ ପତ୍ନୀ—
2. The wife of sage Agastya. [ ଦ୍ର—
ବୈଦର୍ଭୀ ପଦ ଅଇଲେ ସଙ୍କୋଳ, ବଦରୁ ମାର୍କଣ୍ଡେୟ ଋଷି
ମିଳ । ଉଷ୍ଣ. ବୈଦେହୀଶବିଳାସ । ] ୩ । ରୁକ୍ମିଣୀ—
3. Rukmini. ୪ । ବୈଦର୍ଭୀ ରୀତି ( ଦେଖ )—
4. Baidarbhi riti (See)

**ବୈଦର୍ଭୀ ରୀତି**—ସ. ବ—ରଚନାରୀତି ବିଶେଷ; ସରଳ ଓ ମଧୁର ରଚନା
Baidarbhi riti ବିଶେଷ—A sweet and easy style
in composition. [ ଦ୍ର—ଏ ରଚନା ଶ୍ରୁତିମଧୁର
ଶବ୍ଦ ବିଶିଷ୍ଟ ଓ ସମାସହୀନ ବା ସ୍ୱଳ୍ପ ସମାସ ଯୁକ୍ତ ଅଟେ । ]

**ବୈଦଲ**—ସ. ବ ( ବିଦଳ+ଅ )—୧ । ମୁଗ ବିରି ଆଦି ଡାଲିରେ
Baidala ତିଆରି ପିଠା ବା ପିଠା—1. Pastry cake
made of pulse. ୨ । ଭିକ୍ଷୁକର ମୃଣ୍ମୟ ପାତ୍ର—
2. Beggar's earthen bowl.

**ବୈଦଳିକ ଶିମ୍ବ**—ସ. ବ—( ବୈଦ୍ୟଗ୍ରନ୍ଥ ) ମଟର, ବରଗୁଡ଼ି ପ୍ରଭୃତି
Baidalika simba ଶିମ୍ବୀ ଧାନ୍ୟର ଛୁଇଁ—The beans
of pea other pulse.

**ବୈଦାନ୍ତିକ**—ସ. ବଣ ( ବେଦାନ୍ତ+ସମ୍ବନ୍ଧ ଓ ଜ୍ଞାନାର୍ଥ ଇକ )—
Baidantika ବେଦାନ୍ତ ସମ୍ବନ୍ଧୀୟ—Relating to the
Bedanta. ସ. ବ—ବେଦାନ୍ତ ଦର୍ଶନବେତ୍ତା ପଣ୍ଡିତ
—A person learned in the Bedanta
Philosophy.

**ବୈଦାର**—ପ୍ରାଦେ ( ସମ୍ବଲପୁର ) ବ—ବହିଦାର ( ଦେଖ )
Baidar Bahidara ( See )

**ବୈଦିକ**—ସ. ବଣ ( ବେଦ+ସମ୍ବନ୍ଧାର୍ଥେ ଇକ )—୧ । ବେଦସମ୍ବନ୍ଧୀୟ
Baidika —1. Vedic; relating to the Bedas.
୨ । ବେଦୋକ୍ତ; ବେଦନିର୍ଦ୍ଦିଷ୍ଟ—2. Enjoined or
laid down in the Bedas. ୩ । ବେଦାଧ୍ୟାୟୀ—
3. Studying the Bedas. ୪ । ବେଦଜ୍ଞ—
4. Versed in the Bedas. ସ. ବ—କୁଳୀନ
ବ୍ରାହ୍ମଣଙ୍କର ଶ୍ରେଣୀବିଶେଷ —A higher class of
Brahmanas.

**ବୈଦିକ କାଳ**—ସ. ବ ( ଆଧୁନିକ ପ୍ରୟୋଗ )—ଭାରତୀୟ ଇତିହାସର
Baidika kala ଯେଉଁ ଯୁଗରେ ବେଦ ବିଶେଷଭାବରେ
(ବୈଦିକଯୁଗ—ଅନ୍ୟରୂପ) ପ୍ରଚଳିତ ଥିଲା—The vedic age;
the age in Indian history when the
Bedas were followed. [ ଦ୍ର—କୌଣସି
କୌଣସି ପଣ୍ଡିତ କହନ୍ତି ଯେ ଏହା ଆଜିକୁ ୭୦୦୦ ବର୍ଷ
ପୂର୍ବର କାଳ । ]

**ବୈଦିକ ଧର୍ମ**—ସ. ବ—ସନାତନ ହିନ୍ଦୁ ଧର୍ମ—The vedic
Baidika dharma religion; the Hindu religion
as it was practised in the vedic age.
[ ଦ୍ର—ବୈଦିକ ଧର୍ମରେ ପ୍ରତିମା ପୂଜା ଓ ଜାତିଭେଦ ନ
ଥିଲା । ସେ ସବୁ ପୌରାଣିକଯୁଗର କଳ୍ପିତ ବୋଲି
ପଣ୍ଡିତମାନେ କହନ୍ତି । ]

**ବୈଦିକ ପନ୍ଥା**—ଦେ. ବ—ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ଗୋଷ୍ଠୀ; ବୈଦିକ
Baidika pantha ବ୍ରାହ୍ମଣଙ୍କ ସାମାଜିକ ଦଳ—The
ବୈଦିକ ଗୋଷ୍ଠୀ } ଅନ୍ୟରୂପ class formed amongst
ବୈଦିକ ସମାଜ } the Baidika Brahmanas.

**ବୈଦିକ ବିଧି**—ସ. ବ—ବେଦବିହିତ ବିଧି—Vedic rules;
Baidika bidhi rules of conduct enjoined in
the Bedas.

**ବୈଦିକ ବ୍ରାହ୍ମଣ**—ସ. ବ—ଶ୍ରୋତ୍ରିୟ ବ୍ରାହ୍ମଣ; ବ୍ରାହ୍ମଣମାନଙ୍କର ଶ୍ରେଣୀ
Baidika brahmana ବିଶେଷ—A class of
Brahmanas. [ ଦ୍ର—ସାଧାରଣତଃ ଦେଖାଯାଏ ଯେ
ଉତ୍କଳୀୟ ବ୍ରାହ୍ମଣମାନେ ୩ ଶ୍ରେଣୀରେ ବିଭକ୍ତ । ୧—
ସାଆନ୍ତ ( ବଙ୍ଗଦେଶର କୁଳୀନ ପରି ) । ୨—ବୈଦିକ
ବା ଶାସନୀ ( ଗଞ୍ଜାମରେ ଦାକ୍ଷିଣାତ୍ୟ ) । ୩—ପଣ୍ଡା, ମଢ଼ିଆ
ବା ଦେଉଳିଆ । ୪—ପଣାଅସ୍ତ୍ର ବା ସାରୁଆ । ୫—
ମାସ୍ତାନ, ହଳୁଆ ବା ବଳରାମ ଗୋତ୍ରୀ ( ବଡ଼ାରରେ
ଭୂଇଁହାର ଓ ସମ୍ବଲପୁରରେ ଝାଡ଼ୁଆଙ୍କ ପରି ) । ସାଆନ୍ତ-
ମାନେ ଓଡ଼ିଆରାଜାଙ୍କ ଗୁରୁ ଓ ସମସ୍ତ ବ୍ରାହ୍ମଣଙ୍କ ମଧ୍ୟରେ
ପ୍ରଧାନ ଥିଲେ । ଏମାନଙ୍କ ସଂଖ୍ୟା ଖୁବ୍ କମ୍ । ଅନ୍ୟ
ବ୍ରାହ୍ମଣମାନେ ଏମାନଙ୍କୁ ସମ୍ମାନିତ କରନ୍ତି ।
ପଣ୍ଡାମାନେ ଠାକୁରସେବା କରନ୍ତି । ପଣାଅସ୍ତ୍ରମାନେ ସାରୁ
ବାଇଗଣ ଆଦି ଫସଲ ଅବାଦ ଓ ତାହା ବିକି କରି ଜୀବିକା
ଚଳାନ୍ତି । ପଣ୍ଡା ଓ ପଣାଅସ୍ତ୍ର ବ୍ରାହ୍ମଣ ମଧ୍ୟରେ ପ୍ରଭେଦ ଖୁବ୍
କମ୍ । ମାସ୍ତାନ ବ୍ରାହ୍ମଣମାନେ ହଳ ଚଳାନ୍ତି ଓ ଶିଖା ରଖନ୍ତି । ]

**ବୈଦୂର୍ଯ୍ୟ**—ସ. ବ ( ବିଦୂର=ପର୍ବତ ବିଶେଷ+ଜାତାର୍ଥେ ଅ )—
Baidurjya କୃଷ୍ଣପୀତବର୍ଣ୍ଣ ମଣି ବିଶେଷ; ନୀଳକାନ୍ତମଣି; ନୀଳା—
Sapphire; Lapis Lazuli ( a gem of ultra-
marine colour ).

**ବୈଦେଶିକ**—ସ. ବଣ ( ବିଦେଶ+ସମ୍ବନ୍ଧ ଓ ଭବ ଅର୍ଥରେ ଇକ )—
Baidesika ୧ । ବିଦେଶୀ; ବିଦେଶ ସମ୍ବନ୍ଧୀୟ—1.
(ବୈଦେଶୀ—ଅନ୍ୟରୂପ) Relating to a foreign country.
୨ । ବିଦେଶାଗତ—2. Come from a foreign
country. ୩ । ବିଦେଶୋତ୍ପନ୍ନ—3. Produced
in a foreign land. ୪ । ଭିନ୍ନ ଦେଶବାସୀ—
4. Residing in a foreign country. ସ. ବ
—ବିଦେଶୀୟ ବ୍ୟକ୍ତି—Foreigner; a stranger.

**ବୈଦେହ**—ସ. ବଣ ( ବିଦେହ=ମିଥିଳା+ସମ୍ବନ୍ଧ ଓ ଭବ ଅର୍ଥରେ
Baideha ଅ )—୧ । ମିଥିଳାବାସୀ—1. Residing in
Mithila country. ୨ । ମୈଥିଳ; ମିଥିଳା ଦେଶ
ସମ୍ବନ୍ଧୀୟ—2. Relating to Mithila country
( modern Bihar ). ସ. ବ—୧ । ମିଥିଳାର ରାଜା
1. The king of Mithila. ୨ । ଜନକ ରାଜା—
2. King Janaka, the reputed father of

Sītā. ୩ । ମିଥିଳାବାସୀ ବ୍ୟକ୍ତି—3. A man of Mithilā. ୪ । ବଣିକ୍—4. A trader; merchant. ୫ । ଶୂଦ୍ରପିତୃକ ଓ ବୈଶ୍ୟମାତୃକ ସଙ୍କର ଜାତି ବିଶେଷ—5. A hybrid caste orginating in a śūdra father and Baiśya mother.

ବୈଦେହକ—ସଂ. ବି. (ବୈଦେହ+କ)—୧ । ନାନା ବାଣିଜ୍ୟ ଦ୍ରବ୍ୟ
Baidehaka ସଉଦାକାରୀ ବଣିକ୍—1. A trader dealing in various sorts of merchandise. ୨ । ଶୂଦ୍ରପିତୃକ ଓ ବୈଶ୍ୟମାତୃକ ସଙ୍କର ଜାତିବିଶେଷ—2. A hybrid caste.

ବୈଦେହିକ—ସଂ. ବିଣ (ବିଦେହ+ଇକ)—୧ । ବିଦେହ ବା
Baidehika ମିଥିଳା ସମ୍ବନ୍ଧୀୟ—1. Relating to the Mithilā country. ୨ । ମିଥିଳାବାସୀ—2. Residing in Mithilā. [ଉ—ବ୍ୟବସ୍ଥିତେ ପୁଣ ସଲକ୍ଷଣେ ସେହି ବୈଦେହିକ ଜନେ ଚକୋରକୁ ମୋହି ଉଞ୍ଜ. ବୈଦେହୀଶବିଳାସ ।]

ବୈଦେହୀ—ସଂ. ବି—(ବିଦେହ+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)—୧ ।
Baidehī ଜାନକୀ; ସୀତା—1. Sītā. ୨ । ହରିଦ୍ରା; ହଳଦୀ—2. Turmeric. ୩ । ବଣିକ୍ ପତ୍ନୀ—3. The wife of a trader. ୪ । ଗୋରୋଚନା—4. A yellow pigment obtained from dead cattle. ୫ । ପିପ୍ପଳୀ—5. Long pepper. [ଉ—ବୈଦେହୀ ପ୍ରମାଣ ଫଳେ କଟୁ କର ଜାତ । ଉଞ୍ଜ. ବୈଦେହୀଶବିଳାସ ।] ଦେ. ବି—ସ୍ତ୍ରୀଲୋକଙ୍କୁ ଦିଆ ଯିବା ନାମ—A name given to females.

ବୈଦେହୀ(ଇ) ବିଳାସ—ଗ୍ରା.ବି—ବୈଦେହୀଶବିଳାସ (ଦେଖ)
Baidehī(i) bilāsa Baidehīśabilāsa (See)

ବୈଦେହୀଶବିଳାସ—ଦେ. ବି (ଆଧୁନିକ)—ଉପେନ୍ଦ୍ର ଭଞ୍ଜଙ୍କ କୃତ
Baidehīśabilāsa ବୈଦେହୀଶ ବା ଶ୍ରୀରାମଚନ୍ଦ୍ରଙ୍କର ଜୀବନ-ଚରିତାତ୍ମକ ପଦ୍ୟ କାବ୍ୟ ବିଶେଷ—Name of an Oriya epic poem in 4 volumes by Upendra Bhañja, depicting the incidents of Rāmachandra's life, in which every line begins with the letter 'ba' [ଦ୍ର—ଏହି ପୁସ୍ତକ ୪ ଭାଗରେ ବିଭକ୍ତ ଗୋଟିଏ ପ୍ରକାଣ୍ଡ କାବ୍ୟ ଓ ଏଥିର ପ୍ରତ୍ୟେକ ପଦର ପ୍ରଥମ ଅକ୍ଷର 'ବ' ଅକ୍ଷରରେ ରଚିତ ହୋଇଅଛି । ଏପରି ରଚନାବୈଚିତ୍ର୍ୟ ଓ ପାଣ୍ଡିତ୍ୟ ଅନ୍ୟାନ୍ୟ ଭାଷାର ସାହିତ୍ୟରେ ବିରଳ ।]

ବୈଦ୍ୟ—ସଂ. ବି. ପୁଂ—(ବେଦ=ଆୟୁର୍ବେଦ+କୁଶଳାର୍ଥେ ଯ)—
Baidya ୧ । ଆୟୁର୍ବେଦୋକ୍ତ ପ୍ରଣାଳୀରେ ଚିକିତ୍ସା ବ୍ୟବସାୟୀ (ବୈଦ୍ୟା—ସ୍ତ୍ରୀ) କରିବା ବ୍ୟକ୍ତି; ଭିଷକ୍; ଚିକିତ୍ସକ—1. A physician (following the Hindu system of medicine). ୨ । ବିଦ୍ୱାନ୍; ପଣ୍ଡିତ; ଜ୍ଞାନୀ—2. A learned man; a philosopher; a wise man. ଦେ. ବି—ଅମ୍ବଷ୍ଠ ଜାତି; ବ୍ରାହ୍ମଣପିତୃକ ଓ ବୈଶ୍ୟମାତୃକ ପୂର୍ବବଙ୍ଗର ଚିକିତ୍ସାବ୍ୟବସାୟୀ ଜାତିବିଶେଷ—A caste of physician in East Bengal. [ଦ୍ର—ଏମାନେ ଦ୍ୱିଜାତି ଥିବାରୁ ବ୍ରାହ୍ମଣଙ୍କ ପରି ବ୍ରତ କରୁଥିନ୍ତି ଓ ଯଜ୍ଞୋପବୀତ ଧାରଣ କରନ୍ତି; ସାଧାରଣତଃ ଦାସଗୁପ୍ତ ଓ ସେନଗୁପ୍ତ ପ୍ରଭୃତି ଏମାନଙ୍କର ବଂଶଗତ ଉପାଧି ଅଟେ ।]

ବୈଦ୍ୟକ—ସଂ. ବିଣ (ବୈଦ୍ୟ+ସ୍ୱାର୍ଥେ କ)—୧ । ଆୟୁର୍ବେଦୋକ୍ତ ଚିକିତ୍ସା
Baidyaka ସମ୍ବନ୍ଧୀୟ—1. Relating to Āyurbedic treatment. ସଂ. ବି—୧ । ଆୟୁର୍ବେଦ—1. The Hindu medical science. ୨ । ଆୟୁର୍ବେଦୀୟ ଚିକିତ୍ସା ଗ୍ରନ୍ଥ—2. A treatise on the Hindu medical system.

ବୈଦ୍ୟ ଚନ୍ଦ୍ର—ସଂ. ବି—(୭ମୀ ତତ୍)—୧ । ଶ୍ରେଷ୍ଠ ବୈଦ୍ୟ—
Baidya chandra 1. An eminent physician. [ଉ—ବାଣୀ କ୍ୟାପ୍ଟ, ବୈଦ୍ୟ ଚନ୍ଦ୍ର ସୁବେଶ ଭୂଷିତ । ଉଞ୍ଜ. ବୈଦେହୀଶବିଳାସ ।] ୨ । ଶ୍ରେଷ୍ଠ ବୈଦ୍ୟଙ୍କୁ ରାଜଦତ୍ତ ଉପାଧି ବିଶେଷ—2. A title bestowed on eminent physicians.

ବୈଦ୍ୟନାଥ—ସଂ. ବି—(ବୈଦ୍ୟ=ଚିକିତ୍ସକ+ନାଥ=ପ୍ରଭୁ)—
Baidyanātha ୧ । ଶିବ; ମହାଦେବ—1. Śiba. ୨ । ଶିବାନୁଚର ଭୈରବ ବିଶେଷ—2. Name of an attendant of Śiba. ୩ । ବାବା ବୈଦ୍ୟନାଥ; ଛୋଟନାଗପୁର ବିଭାଗର ଅନ୍ତର୍ଗତ ସାନ୍ତାଳ ପରଗଣା ଜିଲ୍ଲାର ଦେଓଘର ସବ୍‌ଡିଭିଜନସ୍ଥ ପ୍ରସିଦ୍ଧ ଶିବ ଲିଙ୍ଗ—3. Image of Śiba in Deoghar in Santhal Perganas. [ଦ୍ର—ହିନ୍ଦୁଙ୍କର ଏହା ଗୋଟିଏ ପୀଠ ଓ ପ୍ରଧାନ ତୀର୍ଥ । ଏଠାରେ ୨୨ ଗୋଟି ମନ୍ଦିର ଶିବଙ୍କ ନାମରେ ଉତ୍ସୃଷ୍ଟ । ଏଠାର ଶିବଲିଙ୍ଗ ଭାରତ ପ୍ରସିଦ୍ଧ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ଏକତମ ।] ୪ । ଉତ୍ତରପୂର୍ବ ଭାରତର ଗୋଟିଏ ପ୍ରଧାନ ହିନ୍ଦୁ ତୀର୍ଥ; ବୈଦ୍ୟନାଥ ଲିଙ୍ଗଙ୍କ ଅଧିଷ୍ଠିତ ନଗର, ଦେଓଘର—4. The town of Deoghar. [ଦ୍ର—ଏ ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟକର ଥିବାରୁ ଏଠାକୁ ଭାରତର ନାନା ସ୍ଥାନରୁ ସହସ୍ର ସହସ୍ର ବ୍ୟକ୍ତି ଆସନ୍ତି ଓ ଏଠାରେ ଅନେକ ବଡ଼ ଲୋକ ସ୍ୱାସ୍ଥ୍ୟଳାଭାର୍ଥ ପ୍ରାସାଦମାନ ତୋଳି ଅଛନ୍ତି ।

ଏ ଦେବତାଙ୍କ ନିକଟରେ ବହୁ ଶତ ଭକ୍ତ ନର ନାରୀ ମନୋବାଞ୍ଛା ସିଦ୍ଧ୍ୟର୍ଥ ଓ ଆରୋଗ୍ୟ ଲାଭାର୍ଥ 'ଧାରଣା' ପଡ଼ନ୍ତି । ଏ ସ୍ଥାନର କୂପ ଜଳ ଅତି ସୁସ୍ୱାଦୁ । ଏ ଦେବତାଙ୍କୁ ସ୍ନେହରେ ହିନ୍ଦୁମାନେ 'ବାବା ବୈଦ୍ୟନାଥ' ବୋଲି ଡାକନ୍ତି । ଫଳତଃ ଏ ସ୍ଥାନର ଜଳବାୟୁ ଗୁଣରେ ଓ ଦେବତାଙ୍କ ଅନୁଗ୍ରହରେ ବହୁ ସହସ୍ର ରୋଗୀ ଧାରଣା ପଡ଼ି

ଅସାଧ୍ୟ ରୋଗମାନଙ୍କରୁ ମୁକ୍ତିଲାଭ କରିବା ଦେଖାଯାଏ । ଏଠାରେ ଅଧିକାଂଶ ସ୍ୱାସ୍ଥ୍ୟନିବାସ ବର୍ଗୀୟ ବଡ଼ଲୋକ ମାନଙ୍କର । ଏ ସ୍ଥାନ ପାହାଡ଼ିଆ । ଏଠାରେ ଭଲ ଘରେଇ ଓ ବଣାବକୁ ମିଳେ ଏବଂ ଲୁହାର ଗୁଣଯୁକ୍ତ ଜଳସମାନ ଏଠାରେ ଉପଲବ୍ଧ ହୁଏ ।]

**ବୈଦ୍ୟରାଜ**—ସ. ବି—(ବୈଦ୍ୟ+ରାଜନ୍; ୬ଷ୍ଠୀ ତତ୍)—ଶ୍ରେଷ୍ଠ ବୈଦ୍ୟ-
Baidyarāja An eminent physician.

**ବୈଦ୍ୟ ସଙ୍କର**—ସ. ବିଣ (ବୈଦ୍ୟକ)—ଏକ କାଳରେ ପରସ୍ପର ପରାମର୍ଶ
Baidya saṅkara ବିନା ଭିନ୍ନ ଭିନ୍ନ ଚିକିତ୍ସକଙ୍କଦ୍ୱାରା ଚିକିତ୍ସିତ ହେବା(ରୋଗ)—(sickness of a person) Which is being treated simultaneously by different physicians without reference to or consultation with each other.

**ବୈଦ୍ୟ ଶାସ୍ତ୍ର**—ସ. ବି—ବୈଦ୍ୟକ (ଦେଖ)
Baidya śāstra Baidyaka (See).

**ବୈଦ୍ୟା**—ସ. ବି. ସ୍ତ୍ରୀ—(ବୈଦ୍ୟ+ଆ) ୧ । ବୈଦ୍ୟର ସ୍ତ୍ରୀଲିଙ୍ଗ—
Baidyā 1. Feminine of Baidya. ୨ । କାକଲି; ମଧୁସ୍ୱର ଧ୍ୱନି—2. A sweet musical tune or note. ୩ । କାକୋଲି ନାମକ ଔଷଧ—3. Name of a drug.

**ବୈଦ୍ୟୁତ**—ସ. ବିଣ (ବିଦ୍ୟୁତ୍+ସମ୍ବନ୍ଧାର୍ଥେ ଅ)—୧ । ବିଦ୍ୟୁତ୍ ବା
Baidyuta ବିଜୁଳି ସମ୍ବନ୍ଧୀୟ—1. Electric; electrical. (ବୈଦ୍ୟୁତିକ—ଅନ୍ୟରୂପ) ୨ । ବିଦ୍ୟୁତ୍‌ଯୁକ୍ତ—2. Full of electricity.

**ବୈଦ୍ୟୁତାଲୋକ**—ସ. ବି (କର୍ମଧା; ବୈଦ୍ୟୁତ+ଆଲୋକ)—୧ ।
Baidyutāloka ବିଜୁଳିର ଆଲୁଅ—1. The light of a flash of lightning. ୨ । ବିଜୁଳି ବତି—2. Electric light or lamp.

**ବୈଧ**—ସ. ବିଣ (ବିଧି+ଅନପେତ ଅର୍ଥରେ ଅ)—୧ । ବିଧି ସମ୍ମତ—
Baidha 1. Conforming to rules. ୨ । ରୀତି ସମ୍ମତ—(ଅବୈଧ—ବିପରୀତ) 2. Conforming to usage or custom. ୩ । ବିଧିସିଦ୍ଧ; ଆଇନ ସଙ୍ଗତ—3. Legal; lawful.

**ବୈଧତା(ତ୍ୱ)**—ସ. ବି (ବୈଧ+ଭାବ ତା; ତ୍ୱ)—ବିଧିସିଦ୍ଧତା—
Baidhatā (twa) Legality; lawfulness.

**ବୈଧବ**—ଗ୍ରା. ବି—୧ । (ସ. ବିଧବା) -ବିଧବା—1. Widow. ୨ ।
Baidhaba (ସଂ. ବୈଧବ୍ୟ) ବୈଧବ୍ୟ—2. Widowhood.

**ବୈଧବ୍ୟ**—ସଂ. ବି (ବିଧବା+ଭାବ. ଯ)—ସ୍ତ୍ରୀର ବିଧବାବସ୍ଥା; ସ୍ତ୍ରୀର ସ୍ୱାମୀ
Baidhabya ମୃତ ହେବା ଅବସ୍ଥା—Widowhood.

**ବୈଧବ୍ୟ କଷ୍ଟ**—ସ.ବି—ବିଧବା ହେବାରୁ ସ୍ତ୍ରୀ ଯେଉଁ ଦୁଃଖ ଭୋଗ କରେ
Baidhabya kashṭa The pangs of widowhood; the pain and privations of a widow.
ବୈଧବ୍ୟ କ୍ଳେଶ, ବୈଧବ୍ୟ ଦୁଃଖ, ବୈଧବ୍ୟ ଦୁର୍ଦ୍ଦଶା, ବୈଧବ୍ୟ ଯନ୍ତ୍ରଣା, ବୈଧବ୍ୟ ଯାତନା; ବୈଧବ୍ୟ ବେଦନା } ଅନ୍ୟରୂପ

**ବୈଧବ୍ୟ କାତର**—ସ. ବିଣ. ସ୍ତ୍ରୀ (୩ୟା ତତ୍)—ବିଧବା ହେବାଯୋଗୁ
Baidhabya kātarā ଅତ୍ୟନ୍ତ ଶୋକ ବିହ୍ୱଳା—Overwhelmed with the grief of widowhood.
ବୈଧବ୍ୟକ୍ଳିଷ୍ଟା, ବୈଧବ୍ୟବିଧୁରା, ବୈଧବ୍ୟଦଗ୍ଧା, ବୈଧବ୍ୟବିହ୍ୱଳା } ଅନ୍ୟରୂପ

**ବୈଧବ୍ୟ ଘଟଣା(ନା)**—ଦେ. ବି—ବୈଧବ୍ୟ; ସ୍ତ୍ରୀର ସ୍ୱାମୀନାଶରୂପ
Baidhabya ghaṭaṇā(nā) ଅବସ୍ଥା—Widowhood; the state of becoming a widow.
ବୈଧବ୍ୟ ଦଶା, ବୈଧବ୍ୟାବସ୍ଥା } ଅନ୍ୟରୂପ

**ବୈଧର୍ମ୍ମ୍ୟ**—ସ. ବି (ବିଧର୍ମ+ଭାବ. ଯ)—୧ । ନାସ୍ତିକତା—1. A-
Baidharmmya theism. ୨ । ନିଜ ଧର୍ମ ପାଳନ ନ କରିବା—(ସାଧର୍ମ୍ମ୍ୟ—ବିପରୀତ) 2. Heterodoxy in religious matters. ୩ । ଏକ ଧର୍ମ ଛାଡ଼ି ଅନ୍ୟ ଧର୍ମ ଗ୍ରହଣ କରିବାର ଅବସ୍ଥା—3. Apostacy. ୪ । ଅସାମଞ୍ଜସ୍ୟ—4. Dissimilarity; difference. ୫ । ବୈପରୀତ୍ୟ—5. Contrariety.

**ବୈଧାତ୍ର**—ସ. ବି (ବିଧାତୃ+ଅପତ୍ୟ ଅର୍ଥରେ. ଅ)—ସନତ୍କୁମାରାଦି
Baidhātra ବ୍ରହ୍ମାଙ୍କ ପୁତ୍ର—The sons of Brahmā.
ସ. ବିଣ—୧ । ବିଧାତା ବା ବ୍ରହ୍ମାସମ୍ବନ୍ଧୀୟ—1. Relating to the Creator or Brahmā. ୨ । ଐଶ୍ୱରିକ—2. Divine.

**ବୈଧାତ୍ରୀ**—ସ. ବି. ସ୍ତ୍ରୀ (ବୈଧାତ୍ର+ଈ)—୧ । ବ୍ରାହ୍ମୀ ଶାଗ—1. A
Baidhātrī kind of potherb. ୨ । ବ୍ରାହ୍ମଣଝାଟିଆ (ଦେଖ)—2. Brāhmaṇa jhāṭiā (See).

**ବୈଧୀ**—ସଂ. ବିଣ. ସ୍ତ୍ରୀ (ବୈଧ+ ସ୍ତ୍ରୀ ଈ)—ବୈଧର ସ୍ତ୍ରୀଲିଙ୍ଗ—
Baidhī Feminine of Baidha.

**ବୈଧୀ ଭକ୍ତି**—ସଂ. ବି—ଧର୍ମ୍ମ ଅନୁଷ୍ଠାନ କରି ( ବେଦ ଓ ସ୍ମୃତିବିହିତ
Baidhī bhakti କାର୍ଯ୍ୟ କରି) ଯେ ଭକ୍ତି ଜନ୍ମେ—The devotion which is engendered in the mind by the performance of the rites prescribed in the scripture.

**ବୈଧୁର୍ଯ୍ୟ**—ସଂ. ବି (ବିଧୁର+ଭାବାର୍ଥେ ଯ)—ବିଧୁରତା; କାତର
Baidhurjya ହେବା ଅବସ୍ଥା—The state of being afflicted or overwhelmed with grief.

**ବୈଧୃତ**—ଦେ. ବି ( ସଂ ବୈଧୃତ; କୈଧୃତ ଯୋଗ ଅଶୁଭ ଥିବାରୁ )—
Baidhṛuta ୧ । ବିବାଦ; ବିସମ୍ବାଦ—1. Dispute. ୨ । କଳି—2. Quarrel. ଦେ. ବିଣ—ବିବାଦକାରୀ—Disputing; quarrelling.

**ବୈଧୃତି**—ସ. ବି (ବି=ବିପରୀତ+ଧୃତି=ଧୃତି ନାମକ ଶୁଭକର ଯୋଗ;
Baidhṛuti ବିପରୀତ )—ଜ୍ୟୋତିଷୋକ୍ତ ଯୋଗବିଶେଷ, ବିଷ୍କୁମ୍ଭାଦି ୨୭ଯୋଗରୁ ଶେଷୋକ୍ତ ଯୋଗ—One of the 27 astrological conjunctions, which is considered as very inauspicious.
[ ଦ୍ର—୨୭ଟି ଯୋଗ ମଧ୍ୟରୁ ଏହି ଯୋଗ ଓ ବ୍ୟତିପାତ ଯୋଗ ଶୁଭକାର୍ଯ୍ୟରେ ସର୍ବଥା ପରିହାର୍ଯ୍ୟ; ଏ ଯୋଗରେ

ଶୁଭ କାର୍ଯ୍ୟ କଲେ ବ୍ୟାଘାତ ଓ କଳ ଲାଗି ସେ କାର୍ଯ୍ୟ ନଷ୍ଟ ହୁଏ । ] ଦେ. ବି ଓ ବିଣ—ବୈଧୃତ ( ଦେଖ ) Baidhṛuta ( See )

ବୈଧେୟ—ସ. ବିଣ ( ବିଧି+ସମ୍ବନ୍ଧାର୍ଥେ ଏୟ )—୧ । ବିଧିସମ୍ବନ୍ଧୀୟ—Baidheya 1. Relating to rules. ୨ । ବୈଧ—2. Legal; rational. ୩ । (ବିଧେୟ+ଅ) ମୂର୍ଖ—3. Ignorant, ୪ । ମୂଢ଼—4. Foolish.

ବୈନତେୟ—ସ. ବି. ପୁଂ ( ବିନତା+ଅପତ୍ୟାର୍ଥେ ଏୟ )—୧ । ବିନତା Bainateya ନନ୍ଦନ—1. Son of Binatā. ୨ । ଅରୁଣ—2. Dawn personified. ୩ । ଗରୁଡ଼—3. The mythological king of birds and the carrier of Bishṇu on his back.

ବୈନାୟକ—ସ. ବି ( ବିନାୟକ+ସମ୍ବନ୍ଧାର୍ଥେ ଅ )—ବିନାୟକ (ଗଣେଶ, Baināyaka ଗରୁଡ଼ ) ସମ୍ବନ୍ଧୀୟ—Relating to Bināyaka ( Gaṇeśa and Garurḍa ).

ବୈନାୟକୀ ବିଦ୍ୟା—ସ. ବି—ଗାରୁଡ଼ୀ; ତାନ୍ତ୍ରିକ ବିଦ୍ୟା; ଗୁଣୀବିଦ୍ୟା—Baināyakī bidyā The science or art of magic. [ ଦ୍ର—ଏହା ଚଉଷଠି କଳା ମଧ୍ୟରୁ ଏକତମ । ]

ବୈନାୟିକ—ସ. ବିଣ ( ବିନୟ+ଇକ )—ବିନୟ ସମ୍ବନ୍ଧୀୟ—Baināyika Relating to humility or modesty. ସ. ବି—୧ । ଯୁଦ୍ଧରଥ—1. War-chariot. ୨ । ( ବିନାୟ=ଖଣ୍ଡନ+ଇକ; ଯେ ହିନ୍ଦୁ ଧର୍ମ ମତକୁ ଖଣ୍ଡନ କରେ ) ବୌଦ୍ଧ—2. A Buddhist.

ବୈନାଶିକ—ସ. ବିଣ ( ବିନାଶ+ଇକ )—୧ । କ୍ଷଣସ୍ଥାୟୀ; କ୍ଷଣ-Baināśika ଭଙ୍ଗୁର—1. Transient; fleeting. ୨ । ଯାହା ଅବଶ୍ୟ ବିନଷ୍ଟ ହେବ—2. Subject to decay. ସ. ବି—୧ । ନାଡ଼ୀ ନକ୍ଷତ୍ରବିଶେଷ—1. An astrological star. ୨ । ବୁଢ଼ିଆଣୀ; ଲୂତା—2. Spider. ୩ । ଦାସ—3. A slave. ୪ । ଜ୍ୟୋତିଷୀ—4. An astrologer.

ବୈପରୀତ୍ୟ—ସ. ବି ( ବିପରୀତ+ଯ )—୧ । ବୈଲକ୍ଷଣ୍ୟ—Baiparītya 1. Contrariety. ୨ । ଓଲଟ; ବିପର୍ଯ୍ୟୟ—2. Opposition; inversion.

ବୈପିତ୍ର—ସ. ବିଣ. ପୁଂ ( ବିପିତୃ+ଅପତ୍ୟାର୍ଥେ ଅ )—ଏକ ମାତାଙ୍କ Baipitra ଗର୍ଭଜାତ, କିନ୍ତୁ ଭିନ୍ନ ଭିନ୍ନ ପିତାଙ୍କ ଔରସ (ବୈପିତ୍ରା—ସ୍ତ୍ରୀ) ( ସନ୍ତାନ )—Uterine ( brother or sister ); born of the same mother but through different fathers,

ବୈବଧିକ—ସ. ବି.ପୁଂ (ବିବଧ=ଧାନ୍ୟାଦି ପ୍ରାପ୍ତି+ବ୍ୟବସାୟାର୍ଥେ ଇକ)—Baibadhika ୧ । ଧାନ୍ୟ ତଣ୍ଡୁଳାଦି ଖାଦ୍ୟ ବ୍ୟବସାୟୀ—1. A dealer in food grains. ୨ । ବାର୍ତ୍ତାବହ; ଦୂତ—2. Messenger. ୩ । ଭାରବାହକ—3. Carrier of loads.

ବୈବର୍ଣ୍ଣ୍ୟ—ସଂ. ବି ( ବିବର୍ଣ୍ଣ+ଯ )—୧ । ବିବର୍ଣ୍ଣତା—1. Discoloration; change of colour. Baibarṇṇya ୨ । ମ୍ଳାନତା; ମାଳିନ୍ୟ—2. Paleness; blush. ୩ । ଅସୌନ୍ଦର୍ଯ୍ୟ—3. Want of loveliness, grace or beauty. ୪ । ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କଠାରେ ପରିଲକ୍ଷିତ ଅଷ୍ଟଦଶା ମଧ୍ୟରୁ ଏକତମ—4. One of the eight stages through which unsatiated lovers pass.

ବୈବସ୍ୱତ—ସଂ. ବି ପୁଂ ( ବିବସ୍ୱତ୍=ସୂର୍ଯ୍ୟ+ଅପତ୍ୟାର୍ଥେ ଅ )—୧ । Baibaswata ସୂର୍ଯ୍ୟ ପୁତ୍ର—1. Son of the Sun-god. ୨ । ମାନବ ଧର୍ମଶାସ୍ତ୍ର ପ୍ରଣେତା ଋଷି; ସୂର୍ଯ୍ୟଙ୍କ ପୁତ୍ର ସପ୍ତମ ମନୁ—2. The great Hindu law-giver; the primeval ancestor of the human beings, being the 7th in descent from Manu. ୩ । ରୁଦ୍ରଦେବତାବିଶେଷ—3. One of the Rudra Deities. ୪ । ଯମ—4. The God of death. [ ଦ୍ର—କଳୁଷିବଂଶେ ଜାତ ଶ୍ୟାମ ଅଣ, ବୈବସ୍ୱତ ଏ ଗଣେ ତା ମାର୍ଗଣ—ଭଞ୍ଜ. ବୈଦେହୀଶବିଳାସ । ] ୫ । ଶନିଗ୍ରହ—5. The plant Saturn. ୬ । ଅଙ୍ଗରାଜ କର୍ଣ୍ଣ—6. The king Karṇṇa. ଦେ. ବିଣ ( ଲକ୍ଷଣାର୍ଥେ )—ବିନାଶକ—Destructive.

ବୈବସ୍ୱତ ମନୁ—ସଂ. ବି—ମନୁଙ୍କର ସପ୍ତମ ବଂଶଧର—The 7th Baibaswata manu Manu or progenitor of mankind (7th in descent from the 1st Manu).

ବୈବସ୍ୱତୀ—ସଂ. ବି. ସ୍ତ୍ରୀ ( ବୈବସ୍ୱତ=ଯମ+ଈ )—ଯମଦେବତାଙ୍କ Baibaswatī ଅଧିଷ୍ଠିତ ଦିଗ; ଦକ୍ଷିଣଦିଗ—The south quarter of the globe ( said to be presided over by Jama ).

ବୈବସ୍ୱତୀ ପ୍ରଭା—ସଂ. ବି ( ଆଧୁନିକ ପ୍ରୟୋଗ )—ଦକ୍ଷିଣ ମେରୁ Baibaswatī prabhā ପ୍ରଦେଶରେ ରାତ୍ରି ଅବିରତ ୬ ମାସ ମଧ୍ୟରେ ବେଳେ ବେଳେ ଦେଖାଯିବା ନୈସର୍ଗିକ ଅଲୌକିକ ରଶ୍ମି—Aurora Austrialis; the Southern Lights.

ବୈବାସିତ୍ ଡିକ୍ରି—ପ୍ରାଦେ. ( ସମ୍ବଲପୁର ) ବି. ( କଟକିଆ )—ବନ୍ଧକ Baibāsit ḍikri ଡିଗ୍ରୀରେ ନର୍ଦ୍ଧାରିତ ତାରିଖରେ ଟଙ୍କା ନ ଦେଲେ ଦେଣଦାରଙ୍କୁ ବନ୍ଧକମୁକ୍ତ କରିବାର କ୍ଷମତା ରହିତ କରାଯିବା ଡିଗ୍ରୀ—Decree for foreclosure in a mortgage suit; a decree absolute in a mortgage suit.

ବୈବାହିକ—ସଂ. ବିଣ ( ବିବାହ+ଇକ )—୧ । ବିବାହ ସମ୍ବନ୍ଧୀୟ—Baibāhika 1. Pertaining to marriage; marital. ( ବୈବାହିକା—ସ୍ତ୍ରୀ ) ୨ । ବିବାହ ଉପଯୋଗୀ—2. Fit to be given in marriage; marriageable. ସଂ. ବି. ପୁଂ—ସମୁଧୀ; ଜୋଇଁର ବାପ ବା ବୋହୂର ବାପ; ଅପଣାର ପୁତ୍ରର ବା କନ୍ୟାର ଶ୍ୱଶୁର—The father-in-law of one's son or one's daughter,

ବୈବୋଧିକ—ସ. ବି—(ବିବୋଧ+ଇକ)—୧ । ବୈତାଳିକ; ଭାଟ—
Baibodhita 1. Herald; the morning bard.
୨ । କୁହୁକିଆ; ବାଜିଗର—2. A conjurer; a magician.

ବୈଭବ—ସ. ବି—(ବିଭବ+ସ୍ୱାର୍ଥେ ଅ)—୧ । ସମୃଦ୍ଧି; ଐଶ୍ୱର୍ଯ୍ୟ—
Baibhaba 1. Affluence;grandeur; pre-eminence.
୨ । ଧନ; ସମ୍ପତ୍ତି—2. Riches; wealth. ୩ । ଅମାନୁଷିକ ଶକ୍ତି; ବିଭୂତି—3. Divinity; extraordinary power. ୪ । ଶକ୍ତି—4. Strength; might; power. ୫ । ମହତ୍ତ୍ୱ; ମହିମା; ଗୌରବ—5. Glory; greatness. ୬ । ସମ୍ମାନ—6. Honour; respect.

ବୈଭାଷିକ—ସ. ବିଣ—(ବିଭାଷା+ଇକ)—(ବ୍ୟାକରଣ) ବୈକଳ୍ପିକ;
Baibhāshika ବୈକଳ୍ପିକ—( grammar ) Formed optionally or as an alternative.

ବୈଭୋଗ—ଗ୍ରା. ବି—(ସ. ବି+ଭୋଗ)—ଭୋଗ—Enjoyment.
Baibhoga (ଉ—ଯେ ବନ୍ଧୁ ପୃଥ୍ୱୀରେ ବୈଭୋଗ, ସକଳ ସେ ପୁରେ ସଂଯୋଗ । ଜଗନ୍ନାଥ ଭାଗବତ ।)

ବୈଭ୍ରାଜ—ସ. ବି—(ବି+ଭ୍ରାଜ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ.ଅ)—
Baibhrāja କୁବେରଙ୍କ ଉଦ୍ୟାନ—The garden of the God of wealth. ଦେ. ବିଣ—ଦେଦୀପ୍ୟମାନ—Dazzling. (ଉ—ବନସ୍ତ ସ୍ତ ଶୋଭନ ଭାଇ ବୈଭ୍ରାଜ ବୈଭ୍ରାଜ ସୁରସା ଦସା କରକର ଶାଜ । ଉଞ୍. ବୈଦେହୀଶବିଳାସ ।)

ବୈମାତୃ—ଦେ. ବିଣ—(ସ. ବୈମାତ୍ର; ବୈମାତ୍ରେୟ)—ବୈମାତ୍ର;
Baimātru ବୈମାତ୍ରେୟ; ବିମାତାଙ୍କ ଗର୍ଭଜାତ—Born of the same father but from different mothers; born of one's step-mother.
(ବୈମାତୃକ, ବୈମାତ୍ରିକ, ବୈମାତ୍ରେୟ—ଅନ୍ୟରୂପ)

ବୈମାତୃ(ତ୍ରି) ଭଉଣୀ—ଦେ. ବି. ସ୍ତ୍ରୀ—ସାବତ ଭଉଣୀ—
Baimātru (tri) bhauṇi Step-sister.
(ବୈମାତ୍ରୀ ଭଉଣୀ, ବୈମାତ୍ରି(ତୃ)କ ଭଉଣୀ—ଅନ୍ୟରୂପ)

ବୈମାତୃ(ତ୍ରି) ଭାଇ—ଦେ. ବି. ପୁଂ (ସ. ବୈମାତ୍ର ଭ୍ରାତା)—ସାବତ
Baimātru(tri) bhāi ଭାଇ—Step-brother.
(ବୈମାତ୍ରିୟ ଭାଇ, ବୈମାତ୍ରି(ତୃ)କ ଭାଇ—ଅନ୍ୟରୂପ)

ବୈମାତ୍ର—ସ. ବିଣ. ପୁଂ (ବିମାତୃ+ଅପତ୍ୟାର୍ଥେ ଅ)—ବିମାତାଙ୍କ ଗର୍ଭଜାତ—
Baimātra Born of the same father but through different mothers; born of one's step-mother.
(ବୈମାତ୍ରେୟ—ଅନ୍ୟରୂପ) (ବୈମାତ୍ରୀ, ବୈମାତ୍ରେୟୀ—ସ୍ତ୍ରୀ)

ବୈମାତ୍ର ଭ୍ରାତା—ସ. ବି. ପୁଂ - ସାବତ ଭାଇ; ଅପଣାର ବିମାତାଙ୍କ ପୁଅ—
Baimātra bhrāta Step-brother.
(ବୈମାତ୍ରେୟ ଭ୍ରାତା—ଅନ୍ୟରୂପ)

ବୈମାତ୍ରେୟୀ—ସ. ବି. ସ୍ତ୍ରୀ (ବିମାତୃ+ଅପତ୍ୟ+ଈ)—ବୈମାତ୍ରୀ ଭଉଣୀ-
Baimātreyi Step-sister.

ବୈମାତ୍ରୀ ଭଗିନୀ—ସ. ବି ସ୍ତ୍ରୀ—ସାବତ ଭଉଣୀ; ଅପଣାର ବିମାତାଙ୍କ
Baimātri bhagini ଝିଅ—Step-sister.
(ବୈମାତ୍ରେୟୀ ଭଗିନୀ—ଅନ୍ୟରୂପ)

ବୈମାନ—ବିଦେ. ବିଣ. (ଫା. ବେ-ଇମାନ୍)—ବେଇମାନ୍; ବେମାନ୍;
Baimān বেইমান बेइमान କୃତଘ୍ନ—Ungrateful.

ବୈମାନି—ବିଦେ. ବି (ଫା. ବେଇମାନୀ)—କୃତଘ୍ନତା—Ingratitude.
Baimāni ବେଦେ. ବିଣ—ବୈମାନ୍ (ଦେଖ)—Baimān (See).

ବୈମାନିକ—ସ. ବିଣ ପୁଂ (ବିମାନ+ଇକ)—୧ । ବିମାନ ସମ୍ବନ୍ଧୀୟ—
Baimānika 1. Relating to an aerial car or balloon.
(ବୈମାନିକା—ସ୍ତ୍ରୀ) ୨ । ବିମାନଗାମୀ—2. Travelling by means of cars or aeroplanes.
ସ. ବି.ପୁଂ ୧ । ବିମାନଚାଳକ—1. The driver of a car. ୨ । ବିମାନାରୋହୀ ବ୍ୟକ୍ତି—2. A passenger in a car.

ବୈମୁଖ—ଗ୍ରା. ବିଣ. ପୁଂ (ସ ବିମୁଖ)—୧ । ଦୁଃଖିତ—1 Sorry,
Baimukha afflicted. ୨ । ଅପ୍ରସନ୍ନ—2. Despondent.
(ବୈମୁଖୀ—ସ୍ତ୍ରୀ) ୩ । ପ୍ରତିକୂଳ—3. Unpropitious; unfavourable. ୪ । ପରାଙ୍ମୁଖ—4. Averse.

ବୈମୁଖ୍ୟ—ସ. ବି. (ବିମୁଖ+ଭାବେ ଯ)—୧ । ବିମୁଖତା;
Baimukhya ପରାଙ୍ମୁଖତା—1. Aversion; shrinking.
୨ । ଅପ୍ରସନ୍ନତା—2. Despondency. ୩ । ପ୍ରତିକୂଳତା—3. Opposition. ୪ । ପଛକୁ ହଟିବା; ପଶ୍ଚାଦ୍ ଗମନ—4. Shrinking back; turning back. ୫ । ପଛଅଡ଼କୁ ପଳାଇଯିବା—5. Flight

ବୈମେୟ—ସ. ବି—ବିନିମୟ; ବଦଳ (ହ୍ର. ଶ)—
Baimeya Exchange; barter.

ବୈୟର୍ଥ—ସ. ବି—(ବ୍ୟର୍ଥ+ଭାବ ଅ)—ବ୍ୟର୍ଥତା (ହ୍ର. ଶ)—
Baiyartha Futility.

ବୈୟାକରଣ—ସ. ବିଣ. ପୁଂ ( ବ୍ୟାକରଣ+ଅଧୀତାର୍ଥେ ଅ )—୧ ।
Baiyākaraṇa ବ୍ୟାକରଣ ସମ୍ବନ୍ଧୀୟ—1. Grammatical.
(ବୈୟାକରଣିକ—ଅନ୍ୟରୂପ) ୨ । ବ୍ୟାକରଣ ଶାସ୍ତ୍ରରେ ପାରଦର୍ଶୀ-2. Versed in grammar. ସ. ବି—୧ । ବ୍ୟାକରଣ-ବେତ୍ତା ବ୍ୟକ୍ତି; ବ୍ୟାକରଣଶାସ୍ତ୍ରବିଦ୍ ବ୍ୟକ୍ତି—1. A grammarian. ୨ । ବ୍ୟାକରଣ ଗ୍ରନ୍ଥକର୍ତ୍ତା—2. Author of a work on grammar.

ବୈୟାଘ୍ର—ସ ବିଣ ( ବ୍ୟାଘ୍ର+ଅ )—୧ । ବ୍ୟାଘ୍ର ସମ୍ବନ୍ଧୀୟ—
Baiyāghra 1. Relating to tiger; feline. ୨ । ବ୍ୟାଘ୍ର ଚର୍ମାବୃତ; ବ୍ୟାଘ୍ରଚର୍ମ ପରିହିତ—2. Wearing a tiger skin. ସ. ବି—ପ୍ରାଚୀନକାଳରେ ବ୍ୟବହୃତ ଏକ ପ୍ରକାର ରଥ, ଯାହା ଉପରେ ବାଘଚମଡ଼ା ମଡ଼ା ହୋଇଥିଲା (ହ୍ର. ଶ)—A kind of car used in ancient India which was overlaid with tiger-hide.

ବୈୟାଘ୍ରପ(ପା)ଦ୍ୟ—ସଂ. ବ - [ବ୍ୟାଘ୍ରପ(ପା)ଦ+ଯ]—ବ୍ୟାଘ୍ରପା(ପ)ଦ
Baiyāghrapa(pā)dya ମୁନିଙ୍କ ଗୋତ୍ର; ଗୋତ୍ରପ୍ରବର୍ତ୍ତକ ମୁନି-
ବଂଶଧରଙ୍କ ଗୋତ୍ର—The clan descended from Byāghrapa(pā)da, a sage, the progenitor of the family in which Bhīshma was born. [ ଦ୍ର—ଏହି ଗୋତ୍ରରୁ ଭୀଷ୍ମଦେବଙ୍କ ଜନ୍ମ ହୋଇଥିଲା । ]

ବୈୟାଘ୍ର ରଥ—ସଂ. ବ ( କର୍ମଧା; ବୈୟାଘ୍ର+ରଥ )—ବ୍ୟାଘ୍ରଚର୍ମାବୃତ
Baiyāghra ratha ରଥ—A car covered over with tiger skin

ବୈୟାସ—ସଂ. ବଣ (ବ୍ୟାସ+ସମ୍ବନ୍ଧାର୍ଥେ ଅ)—ବ୍ୟାସ ସମ୍ବନ୍ଧୀୟ
Baiyāsa (ହ୍ର. ଶ)—Relating to Byāsa.
(ବୈୟାସକ—ଅନ୍ୟରୂପ)

ବୈୟାସକି—ସ. ବଣ ଓ ବି- (ବ୍ୟାସ+ଅକ+ଇ)—ବ୍ୟାସଙ୍କ ଗୋତ୍ରରେ
Baiyāsaki ବା ବଂଶରେ ଉତ୍ପନ୍ନ—Born of the family or clan of Byāsa.

ବୈୟାସିକ—ସଂ. ବଣ (ବ୍ୟାସ+ଇକ)—ବ୍ୟାସଦେବ ସମ୍ବନ୍ଧୀୟ; ବ୍ୟାସ-
Baiyāsika ଦେବଙ୍କ ରଚିତ ବା ସଂଗୃହୀତ—Compiled or drawn up or composed by sage Byāsa.

ବୈର—ସଂ. ବ ( ବୀର+ଅ )—୧ । ବିଦ୍ୱେଷ; ବିଦ୍ୱେଷ; ଶତ୍ରୁତା—
Baira 1. Enmity; hostility. ୨ । ଶୌର୍ଯ୍ୟ—2. Courage; prowess; valour.

ବୈରକ୍ତ୍ୟ(କ୍ତ)—ସ. ବ(ବିରକ୍ତ+ଯ; +ଅ)—୧ । ବିରାଗ; ବୈରାଗ୍ୟ—
Bairaktya(kta) 1. Indifference; apathy. ୨ । ବିରକ୍ତି—2. Disgust; displeasure. ୩ । ଘୃଣା—3. Dislike; hatred.

ବୈରଖ—ବୈଦେ. ବ ( ଫା. ବୈରକ୍ )—ପତାକା—Flag. [ଉ—
Bairakha ଉଡ଼ୁଛନ୍ତି ଯା ଧଣ୍ଡା ବୈରଖ, ପୁଣି ବୋଲନ୍ତି ମହିମା
ପତାକା ଦେଖ, ଏ କେଉଁଠେ ନାହିଁ, କେଉଁଠ ଲଢ଼ଇ, ମାନ ଆସୁଛ
ବୈରଖ ଉଠେ—ବ୍ରଜନାଥ. ସମରତରଙ୍ଗ.। ]

ବୈରଙ୍ଗିକ—ସଂ. ବଣ. ପୁଂ(ବି+ରଙ୍ଗ=ରାଗ+ଇକ)—୧ । ବିବେକୀ—
Bairangika 1. Discriminating; conscientious. ୨ । ବିରାଗାର୍ହ—2. Disgusting. ୩ । ସଂସାର ତ୍ୟାଗୀ—3. Renouncing the world. ୪ । ଜିତେନ୍ଦ୍ରିୟ—4. Self-controlled ସଂ. ବ ପୁଂ—ମୁନି; ତପସ୍ୱୀ—Anchorite; sage.

ବୈର ନିର୍ଯ୍ୟାତନ—ସଂ. ବ (୬ଷ୍ଠୀ ତତ୍)—ଦାଉ ସାଧିବା; ଶତ୍ରୁର ପ୍ରତ୍ୟ-
Baira nirjyātana ପକାର ସାଧନ—Retaliation, taking revenge.
ବୈର ପ୍ରତୀକାର, ବୈର ପ୍ରତିକ୍ରିୟା, ବୈରଶୋଧ, ବୈରଶୁଦ୍ଧି, ବୈରୋଦ୍ଧାର }—ଅନ୍ୟରୂପ

ବୈର ଭାବ—ସଂ. ବ (୬ଷ୍ଠୀ ତତ୍)—ଶତ୍ରୁତା—
Baira bhāba Enmity; hostility.

ବୈରଲ୍ୟ—ସଂ. ବ ( ବିରଳ+ଭାବ. ଯ )—ବିରଳତା—
Bairalya Scarceness; sparseness.

ବୈରସେନ—ସଂ. ବ. ପୁଂ ( ବୀରସେନ+ଅପତ୍ୟାର୍ଥେ ଅ )—ବୀରସେନ
Bairasena ରାଜାଙ୍କ ପୁତ୍ର ନଳରାଜା—King Nala, son of Birasena.

ବୈରସ୍ୟ—ସଂ. ବ (ବିରସ+ଯ) ୧। ବିରସତା—1 Despondency.
Bairasya ୨ । ଅରୁଚି—2. Disrelish; reluctance; aversion.

ବୈରା—ସ. ବ ଓ ବଣ—୧ । ବହିରା ( ଦେଖ )—1. Bahirā
Bairā ( See ) ୨ । ରାଜମିସ୍ତ୍ରୀମାନେ ଖିଲାଣ କାମ କରିବା ସମୟରେ ଖିଲାଣ ତଳର ଖାଲି ସ୍ଥାନରେ ଭରିବା ଇଟା, ପଥର, ମାଟିଆଦି—2. Stones, bricks and earth put below the arch when it is eing constructed.

ବୈରାଗ—ଗ୍ରା. ବ—୧ । ( ସ. ବୈରାଗ୍ୟ )—ବୈରାଗ୍ୟ ( ଦେଖ )—
Bairāga 1. Bairāgya (See). ୨ । ରାଗ; କ୍ରୋଧ—. 2. Anger.

ବୈରାଗୀ—ସ. ବ ( ବିରାଗ+ଇନ୍; ୧ମା ୧ବ )—୧ । ସଂସାର
Bairāgī ବିରକ୍ତ ବ୍ୟକ୍ତି; ବୈଷ୍ଣବ—1. An anchorite ୨ । ବିବେକୀ ବ୍ୟକ୍ତି—2. A conscientious, person. ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା
(ବୈରାଗିଆଣୀ—ସ୍ତ୍ରୀ) ନାମ—1. Name given to males. ୨ । ଏକ ଶ୍ରେଣୀର ଅବଧୂତ ସାଧୁ ବା ବାବାଜି—2 A sect of anchorites.

ବୈରାଗ୍ୟ—ସ. ବ ( ବିରାଗ+ଭାବାର୍ଥେ ଯ )—୧ । ସଂସାର ପ୍ରତି
Bairāgya ଅନାସକ୍ତି; ସଂସାର ପ୍ରତି ବିରକ୍ତି ବା ଔଦାସୀନ୍ୟ—1. Indifference to wordly concerns. ୨ । ସଂସାର ବିରାଗୀର ଧର୍ମ—2. The ways of an anchorite. ୩ । ବିବେକ—3. Conscience. [ ଦ୍ର—ବୈରାଗ୍ୟଦ୍ୱାରା ସଂସାର ପ୍ରତି ବିରକ୍ତି ଓ ସଂସାର ତ୍ୟାଗର ଭାବ ସୂଚିତ ହୁଏ ।
ବିବେକଦ୍ୱାରା ସତ୍ ଅସତ୍ ପ୍ରଭେଦ ଜ୍ଞାନ, ପ୍ରକୃତି ଓ ପୁରୁଷ ମଧ୍ୟରେ ପ୍ରଭେଦ ଜ୍ଞାନ, ସମ୍ୟକ ବାସ୍ତବ ଜ୍ଞାନ ଓ ମିଥ୍ୟା ପ୍ରତି ଅନାସକ୍ତି ସୂଚିତ ହୁଏ । ]

ବୈରାଜ୍ୟ—ସ. ବ ( ବି+ରାଜନ୍+ଯ )—୧ । ଏକାଧିକ ଦେଶରେ
Bairājya ଦୁଇ ଜଣ ରାଜାଙ୍କର ସମ୍ମିଳିତଭାବରେ ରାଜ୍ୟଶାସନ ପ୍ରଣାଳୀ; ଦ୍ୱୈତଶାସନ (ହ୍ର. ଶ )—1. A system of administration in which two kings or rulers rule a kingdom jointly; diarchy. ୨ । ଉପର୍ଯ୍ୟୁକ୍ତ ଦ୍ୱୈତ ଶାସନ ପ୍ରଣାଳୀରେ ଶାସିତ ରାଜ୍ୟ ( ହ୍ର. ଶ )—2. A kingdom governed by two kings or rulers simultaneously.

ବୈରାଟ—ସଂ. ବଣ ( ବିରାଟ+ଅ )—୧ । ବିରାଟ ଦେଶୀୟ—
Bairāṭa 1. Pertaining to the Birāṭa country. (ଉ—ଅସନ୍ତି ସମ୍ବନ୍ଧକୁ ବୈରାଟ ପଦାତି, ପ୍ରାଂଶୁ ତନୁ । ରାଧାନାଥ, ମହାଯାତ୍ରା) ସଂ. ବ—୧ । ବିରାଟ ଦେଶର

ରାଜା—1. The king of the Birāṭa country.
୨ । ଇନ୍ଦ୍ର ଗୋପ କୀଟ; ସାଧବସଭବୋଝ ପୋକ—
2. Cochineal; velvet insect.

ବୈରାଟଙ୍କ—ସଂ. ବି—ଅର୍ଜୁନ ଗଛ—A tree; Terminallia
Bairātaṅka Alata Glabrā.

ବୈରାୟମାଣ—ସଂ. ବିଣ. ପୁଂ. ( ବୈର+ଆ+ଆନ )—
Bairāyamāṇa ଶତ୍ରୁ ଆଚରଣକାରୀ—Doing hostile acts.
(ବୈରାୟମାଣା—ସ୍ତ୍ରୀ)

ବୈରି ଘନ—ଗ୍ରା. ବିଣ (ସଂ. ବୈରଘ୍ନ)—ବୈରଘ୍ନ; ଶତ୍ରୁହନ୍ତା—
Bairi ghana Destructive of the foes
(ଦ୍ର—ବୈରିଘନ ଯୁଦ୍ଧାଙ୍କରେ ଯୁକ୍ତ ସବ। ଉଦ୍ଧ. ବୈଦେହୀଶ-
(ବୈରଘ୍ନ—ସଂସ୍କୃତରୂପ) ବିଳ । )

ବୈରିତା(ତ୍ୱ)—ସଂ. ବି (ବୈରିନ୍+ଭାବାର୍ଥ ତା, ତ୍ୱ)—ଶତ୍ରୁତା—
Bairitā(twa) Enmity; hostility.

ବୈରୀ—ସଂ. ବିଣ. ପୁଂ ( ବୈର+ଇନ୍; ୧ମା. ୧ବ )—ବୈରଯୁକ୍ତ;
Bairī ଶତ୍ରୁଭାବପନ୍ନ—Inimicial; hostile. ସଂ. ବି. ପୁଂ—
(ବୈରିଣୀ—ସ୍ତ୍ରୀ) ୧ । ଶତ୍ରୁ—1. Enemy; antagonist; an
adversary. ୨ । ବଡ଼ବଡ଼ ପକ୍ଷୀ; ବୃହଦାକାର ଶ୍ୟେନ—
2. A big falcon; goshawk.

ବୈରୂପ୍ୟ—ସଂ. ବି ( ବିରୂପ+ଭାବାର୍ଥେ ଯ )—୧ । ବିରୂପତା—
Bairūpya 1. Deformity. ୨ । କଦର୍ଯ୍ୟତା—2 Ugliness. ୩ । ବିକୃତଭାବ—3. Unnatural condition; deterioration; derangement.

ବୈରୋଚନ(ନି)—ସଂ. ବି ( ବିରୋଚନ+ଅପତ୍ୟାର୍ଥେ ଅ; ଇ )—
Bairochana(ni) ୧ । ବିରୋଚନ ଦୈତ୍ୟର ପୁତ୍ର ବଳି ରାଜା—
1. King Bali. ୨ । ବୁଦ୍ଧଦେବ—2. The Buddha. ୩ । ସୂର୍ଯ୍ୟଦେବ—3. The sun God.

ବୈରୋତ୍ପତ୍ତି—ସଂ. ବି ( ୬ଷ୍ଠୀ ତତ୍; ବୈର+ଉତ୍ପତ୍ତି )—ଶତ୍ରୁଭାବ
Bairotpatti ସୂତ୍ରପାତ—The beginning of hostility.

ବୈଲକ୍ଷଣ୍ୟ—ସଂ. ବି ( ବିଲକ୍ଷଣ+ଭାବାର୍ଥେ ଯ )—୧ । ବିଶିଷ୍ଟତା;
Bailakshaṇya ବିଶେଷତ୍ୱ—1. Peculiarity. ୨ ।
ବିଭିନ୍ନତା—2. Difference ୩ । ଭାବାନ୍ତର;
ପ୍ରକାରାନ୍ତର—3. Disparity; derangement.

ବୈଲକ୍ଷ୍ୟ—ସଂ. ବି ( ବିଲକ୍ଷ=ଲଜ୍ଜିତ+ଯ )—୧ । ଲଜ୍ଜାଶୀଳତା—
Bailakshya 1. Bashfulness. ୨ । ବିସ୍ମୟ—
2. Surprise; astonishment. ୩ । ସ୍ୱଭାବର
ବୈଲକ୍ଷଣ୍ୟ—3. Difference of nature.

ବୈଲ(ଲା)ର—ବୈଦେ. ବି ( ଇଂ. ବଏଲର )—ବାଷ୍ପଚାଳିତ ଯନ୍ତ୍ରରେ
Baila(lā)r ଥିବା ଜଳପାତ୍ର, ଯହିଁର ଜଳରୁ ଅଗ୍ନି ଉତ୍ତାପରେ
ବଏଲାର ଯନ୍ତ୍ରଚାଳକ ବାଷ୍ପ ବାହାରେ—The boiler of a
बेलर steam engine.

ବୈଳ—ପ୍ରାଦେ (ଦକ୍ଷିଣ) ବି—ବଳଦ—
Bullock.

ବୈଶଦ୍ୟ—ସଂ. ବି ( ବିଶଦ+ଭାବାର୍ଥେ ଯ )—ବିଶଦତା—
Baiśadya Clearness.

ବୈଶମ୍ପାୟନ—ସଂ. ବି ( ବିଶମ୍ପାୟନ+ଅପତ୍ୟାର୍ଥେ ଅ )—ମହାଭାରତ
Baiśampāyana ଓ ପୁରାଣାଦିର ବକ୍ତା ବ୍ୟାସଶିଷ୍ୟ ମୁନିବିଶେଷ
—Name of a sage, disciple of Byāsa who narrated the Purāṇas.

ବୈଶସ—ସଂ. ବି ( ବିଶସ+ଅ )—୧ । ବିଶସନ; ହତ୍ୟା; ବଧ—
Baiśasa 1. Killing; slaughter. ୨ । ବିପଦ୍—
2. Calamity; danger. ୩ । ଅନିଷ୍ଟାପାତ—
3. Mishap. ୪ । ବାଧା; ପ୍ରତିରୋଧ—4. Obstacle. ୫ । କଳହ—5. Quarrel.

ବୈଶସ୍ତ୍ର—ସଂ. ବି ( ବିଶସ୍ତ୍ର+ଅ )—୧ । ଅଧିକାର—1. Authority.
Baiśastra ୨ । ଶସ୍ତ୍ରରହିତତ୍ୱ—2. The state of being unarmed or having no weapons. ୩ । ଶାସନ—3 Rule. ୪ । କ୍ଷମତା—4. Power. ୫ । ପ୍ରଭାବ—5. Influence.

ବୈଶାକ—ଦେ. ବି—୧ । ବଙ୍ଗଦେଶର କାୟସ୍ଥଙ୍କର ଉପାଧି ବିଶେଷ—
Baiśāka 1. A title of the Bengalee Kāyasthas.
বসাক ୨ । ଓଡ଼ିଶାରେ ପାଟସୂତାଙ୍କ ବଂଶୋପାଧି ବିଶେଷ—
2. A family title of cloth and twist dealers in Orissa.

ବୈଶାଖ—ସଂ. ବି ( ବିଶାଖା=ନକ୍ଷତ୍ର ବିଶେଷ+ଯୁକ୍ତାର୍ଥେ ଈ=
Baiśākha ବୈଶାଖୀ; ବୈଶାଖୀ=ବୈଶାଖ ପୂର୍ଣ୍ଣିମା+ଅ;
ବୈଶାଖ ପୂର୍ଣ୍ଣିମାଯୁକ୍ତ ମାସ )—୧ । ଶାଳିବାହନ ଶକାବ୍ଦର
ପ୍ରଥମ ମାସ; ହିନ୍ଦୁମାନଙ୍କର ପ୍ରଥମ ଚାନ୍ଦ୍ରମାନ ମାସ—
1. The lunar month of Baiśākha ( April-May ). [ ଦ୍ର—ଏହି ଚାନ୍ଦ୍ରମାନ ବୈଶାଖ ମାସ ସୌର
ମାନ ମେଷ ମାସ ସଙ୍ଗେ ସମାନ । ଏ ମାସ ପଣାସଂକ୍ରାନ୍ତି-
ଠାରୁ ଆରମ୍ଭ; ଏହାର ପୂର୍ବବର୍ତ୍ତୀ ମାସ ଚୈତ୍ର ଓ
ପରବର୍ତ୍ତୀ ମାସ ଜ୍ୟେଷ୍ଠ । ଏହି ମାସ ଓ ଏହାର
ପରବର୍ତ୍ତୀ ମାସ ଗ୍ରୀଷ୍ମ ଋତୁ । ହିନ୍ଦୁମତରେ ଏହା
୪ଟି ଧର୍ମ ମାସ ( ଆଷାଢ଼, କାର୍ତ୍ତିକ, ମାଘ, ବୈଶାଖ )
ମଧ୍ୟରୁ ଏକ; ଏଥିରେ ବ୍ରତୀମାନେ ପ୍ରାତଃସ୍ନାନ ଓ ହବିଷ୍ୟାନ୍ନ
କରନ୍ତି । ] ୨ । ଦଧିମନ୍ଥନ ଦଣ୍ଡ; ଖୁଆ—2. Churning rod. ( ଦ୍ର—ବୈଶାଖ ହୋଇଲା
ମନ୍ଦର ଅଯୋଧ୍ୟା ଭାଣ୍ଡେ ଥିଲା କ୍ଷୀର ପୂର । ଉଦ୍ଧ.
ବୈଦେହୀଶବିଳାସ । ) ୩ । ରକ୍ତ ପୁନର୍ନବା ( ହି. ଶ )
—3. The red variety of Hogweed.
୪ । ଘୋଡ଼ାଙ୍କୁ ଆକ୍ରମଣ କରିବା ଗ୍ରହ ବିଶେଷ (ହି. ଶ)—
4. A malevolent planet attacking horses.
[ ଦ୍ର—ଏହାର ପ୍ରଭାବରେ ଘୋଡ଼ାର ଶରୀର ଭାରି ହୋଇ-
ଯାଏ ଓ ଘୋଡ଼ା ସର୍ବଦା କମ୍ପେ ( ହି. ଶ )—ଦେ. ବି—
ବୈଶାକ ( ଦେଖ )—Baiśāka ( See ).

**ବୈଶାଖ ପୂର୍ଣ୍ଣିମୀ**—ଦେ. ବି ( ସଂ. ବୈଶାଖ+ପୂର୍ଣ୍ଣିମା )—ଚାନ୍ଦ୍ରମାନ
Baiśākha pūrṇṇamī ବୈଶାଖ ମାସର ପୂର୍ଣ୍ଣିମା—The
ବୈଶାଖ ପୁନେଇଁ } ଅନ୍ୟରୂପ full-moon day of the
ବୈଶାଖ ପୁନମୀ } lunar month of Baiśākha.
[ଦ୍ର—ଏଥିରେ ଶ୍ରୀକୃଷ୍ଣଙ୍କର ଫୁଲଦୋଳ ( ପୁଷ୍ପଦୋଳା ) ଉତ୍ସବ ହୁଏ । ]

**ବୈଶାଖ ବ୍ରତ**—ସଂ. ବି—ବୈଶାଖମାସରେ ହିନ୍ଦୁମାନଙ୍କର ଅନୁଷ୍ଠେୟ
Baiśākha brata ବ୍ରତ ବିଶେଷ—Religious vows observed in the month of Baiśākha
[ଦ୍ର—ବ୍ରତଧାରୀ ପ୍ରାତଃସ୍ନାନ, ହବିଷ୍ୟ ଓ ତୃଷାର୍ତ୍ତଙ୍କୁ ଜଳଦାନ ଆଦି କରନ୍ତି । ]

**ବୈଶାଖ ସଂକ୍ରାନ୍ତି**—ସଂ. ବି—ସୌରମାନ ବୈଶାଖର ବା ମେଷମାସର
Baiśākha saṁkrānti ପ୍ରଥମ ଦିନ; ପଣା ସଂକ୍ରାନ୍ତି; ମହାବିଷୁବ
(ବୈଶାଖ ସଙ୍କ୍ରମଣ—ଅନ୍ୟରୂପ) ସଂକ୍ରାନ୍ତି—The 1st day of the solar month of Mesha or Baiśākha,
[ଦ୍ର—ଏହା ବାବାଜୀ ଶ୍ରୀ ରାଧାରମଣ ଦେବଙ୍କର ଜନ୍ମ ଦିବସ । ]

**ବୈଶାଖୀ**—ସଂ. ବି ( ବିଶାଖା+ଈ; ବିଶାଖା ନକ୍ଷତ୍ରଯୁକ୍ତା ପୂର୍ଣ୍ଣିମା )—
Baiśākhī ଚାନ୍ଦ୍ରମାନ ବୈଶାଖମାସର ପୂର୍ଣ୍ଣିମାସୀ—The full-moon day of the month of Baiśākha.
ଦେ. ବିଣ—୧ । ବୈଶାଖ ମାସରେ ଜାତ—1. (a person ) Born in the month of Baiśākha
୨ । ବୈଶାଖ ମାସରେ ଅନୁଷ୍ଠେୟ—2. ( ceremony ) Observeable in the month of Baiśākha.
( ଯଥା—ବୈଶାଖୀ ବ୍ରତ । ) ୩ । ବୈଶାଖ ମାସରେ ଘଟିବା—3. (an event) Happening or taking place in the month of Baiśākha.
( ଯଥା—ବୈଶାଖୀମେଳା, ବୈଶାଖୀ ବର୍ଷା, ବୈଶାଖୀ-ପବନ । )

**ବୈଶାଖୀ ମେଳା**—ଦେ. ବି—ବୈଶାଖ ପୂର୍ଣ୍ଣିମାରେ ବା ବୈଶାଖ
Baiśākhī melā ସଂକ୍ରାନ୍ତିରେ ହେବା ମେଳା ବା ଉତ୍ସବ—A religious gathering held on the last day of the lunar Baiśākha or the 1st day of the solar Baiśākha month.
[ଦ୍ର—ବୈଶାଖୀ ମେଳା ପ୍ରତି ବର୍ଷ ସଂକ୍ରାନ୍ତି (ଅପ୍ରେଲ ମାସ ତା ୧୩ ରିଖ)ରେ ପଡ଼େ । ୧୯୧୯ ସାଲ ଅପ୍ରେଲ ୧୩ ତାରିଖରେ ପଞ୍ଜାବ ପ୍ରଦେଶର ଅମୃତସହର ମଧ୍ୟସ୍ଥ 'ଜଲିନ୍‌ୱାଲା' ବାଗ୍ (Jallinwalla Bag)ନାମକ ଚତୁର୍ଦ୍ଦିଗରେ ପ୍ରାଚୀର ବେଷ୍ଟିତ ପଡ଼ିଆରେ ସରକାରଙ୍କ ପ୍ରଚଳିତ ଗୋଟିଏ ଆଇନ୍ ସମ୍ବନ୍ଧେ ପ୍ରତିବାଦ କରିବା ଉଦ୍ଦେଶ୍ୟରେ ସମବେତ କେତେ ସହସ୍ର ହିନ୍ଦୁ ମୁସଲମାନ୍ ଓ ଶିଖ ଆଦିଙ୍କ ମେଳକୁ ଭାଙ୍ଗିବାପାଇଁ ଇଂରେଜ ସରକାରଙ୍କ ସେନାପତି ଜେନେରଲ୍ ଡାୟାର୍ (General Dyer) ଙ୍କ ଆଦେଶରେ ପଲଟଣମାନେ ଗୁଳି ଚଳାଇ ଅନେକ ଲୋକଙ୍କୁ ହତ୍ୟା କରିଥିଲେ । ଏହି ହତ୍ୟାକାଣ୍ଡ (Jallinwalla Bag massacre)ର ଫଳରେ ଭାରତରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଘୋର ଆନ୍ଦୋଳନ ହୋଇଥିଲା ।]

**ବୈଶାଖ୍ୟ (କ୍ଷ)**—ଗ୍ରା. ବି—(ସଂ· ବୈଶାଖ —ବୈଶାଖ (ଦେଖ)
Baiśākhya(ksha) Baiśākha (See)
ସଂ. ବି—୧ । ଏକ ପ୍ରାଚୀନ ଋଷିଙ୍କ ନାମ (ହି. ଶ)—1. Name of an ancient sage, ୨ । ବିଶାରଦ ବା ପଣ୍ଡିତ ହେବାର ଭାବ; ପାଣ୍ଡିତ୍ୟ (ହି. ଶ)—2. Proficiency, ୩ । ନିର୍ମଳତା; ସ୍ୱଚ୍ଛତା (ହି. ଶ)—3. Clearness.

**ବୈଶାରଦ**—ସଂ. ବି. ପୁଂ—(ବିଶାରଦ+ସ୍ୱାର୍ଥେ. ଅ)—୧ । ବିଶେଷଜ୍ଞ
Baiśārada ବ୍ୟକ୍ତି ( ହି. ଶ )—1. An expert. ୨ । ପଣ୍ଡିତ (ହି. ଶ)—2. A learned man.

**ବୈଶାଲ(ଲ,ଳ,ଳା)**—ଦେ. ବି—(ସଂ. ବହୁଃ ଶଲାକା)—ବ୍ରତ ଓ
Baiśāla(la, lā, ḷā) ବିବାହ ବେଦୀ ନିକଟରେ ଯେଉଁ ବାଉଁଶ
[ବଇଶାଲ(ଳ)—ଅନ୍ୟରୂପ ] ଦଣ୍ଡ ପୋତାଯାଏ—A staff driven to the ground near an alter prepared for marriage or sacred thread ceremony. [ଉ—ବୈଶାଳେ ଶୁଳ ଭରମ ଉପୁଜତା ଥିବ । ଭଞ୍ଜ. ବୈଦେହୀଶବିଳାସ ।]

**ବୈଶାଳୀ**—ସ. ବି. (ନାମ)—ବୁଦ୍ଧଦେବଙ୍କ ଜୀବିତ କାଳରେ ପ୍ରାଚୀନ
Baiśāḷī ଭାରତର ପ୍ରସିଦ୍ଧ ନଗର—Name of a town celebrated during the lifetime of the Buddha. [ ଦ୍ର—ଆଧୁନିକ ମଜଫରପୁର ଜିଲ୍ଲାର ବସାଢ଼ ନାମକ ଗ୍ରାମ ପ୍ରାଚୀନ ବୈଶାଳୀ ନଗରର ଅବଶେଷ ଥିବାର ପଣ୍ଡିତମାନେ କହନ୍ତି । ଏ ନଗରକୁ ରାଜା ତୃଣବିନ୍ଦୁଙ୍କ ପୁତ୍ର ବିଶାଳ ବସାଇ ଥିବାରୁ ଏହାର ଅନ୍ୟ ନାମ ବିଶାଳ ପୁରୀ ବା ବିଶାଳ ନଗରୀ । ବୁଦ୍ଧଦେବ କେତେ ଥର ଏ ସ୍ଥାନକୁ ଯାଇଥିଲେ । ଜୈନ ଧର୍ମର ପ୍ରବର୍ତ୍ତକ ମହାବୀରଙ୍କର ଏହି ନଗରରେ ଜନ୍ମ ହୋଇଥିଲା ଓ ଏହା ଜୈନମାନଙ୍କର ଗୋଟିଏ ତୀର୍ଥ ଥିଲା । ବୁଦ୍ଧଦେବଙ୍କ ସମୟରେ ଏ ନଗର ପ୍ରସିଦ୍ଧ ଥିଲା ଓ ଏଠାରେ ଅନେକ ବୌଦ୍ଧ ବାସ କରୁଥିଲେ ।—(ହି. ଶ)]

**ବୈଶିକ**—ସଂ. ବି—(ବେଶ ବା ବେଶ୍ୟା+ଇକ; ନିପାତନ)—୧ ।
Baiśika ବେଶ୍ୟାର ଛଳ ବା ଭଙ୍ଗି—1. The tricks of a courtesan. ୨ । ( ପୁଂ )—ବାରାଙ୍ଗନାବିଳାସୀ ପୁରୁଷ—A frequenter of brothels; a regular visitor to harlots. [ଦ୍ର—ସାହିତ୍ୟରେ ବର୍ଣ୍ଣିତ ୩ ଶ୍ରେଣୀର ନାୟକ ମଧ୍ୟରୁ ବୈଶିକ ଏକତମ—ହି.ଶ ।]

**ବୈଶୀପୁତ୍ର**—ସଂ, ବି—ବେଶ୍ୟାପୁତ୍ର (ହି. ଶ)—
Baiśīputra The son of a harlot.

**ବୈଶିଷ୍ଟ୍ୟ**—ସ. ବି—(ବିଶିଷ୍ଟ+ଯ)—୧ । ବିଶେଷତ୍ୱ—1. Indivi-
**Baisishtya** duality. ୨ । ବୈଲକ୍ଷଣ୍ୟ (ଦେଖ)—
2. Bailakshanya (See)

**ବୈଶୁନ୍(ଲ୍)ତାନ୍(ନୀ)**—ବୈଦେ. ବି—ବଇଶୁନ୍ ତାନ୍ (ଦେଖ)
**Baisun-(l-)tān(ni)** Baisun-tān (See)

**ବୈଶେଷିକ**—ସ. ବି—( ବିଶେଷ='ବିଶେଷ' ନାମକ ବସ୍ତୁ+
**Baiseshika** ନିରୂପଣାର୍ଥେ ଇକ; ଯାହା 'ବିଶେଷ' ନାମକ (ବୈଶେଷିକ ଦର୍ଶନ—ଅନ୍ୟରୂପ) ବସ୍ତୁକୁ ନିରୂପଣ କରିଅଛି )—
କଣାଦ ମୁନିଙ୍କ ପ୍ରବର୍ତ୍ତିତ ନ୍ୟାୟ ବା ଦର୍ଶନ ଶାସ୍ତ୍ରବିଶେଷ—The system of Hindu philosophy propounded by sage Kanāda
[ଦ୍ର—କଣାଦଙ୍କର ଏକ ନାମ ଉଲୂକ । ଏଥିପାଇଁ ଏ ଦର୍ଶନର ଅନ୍ୟ ନାମ ଔଲୂକ୍ୟ ଦର୍ଶନ । ଏ ଦର୍ଶନ ନ୍ୟାୟଶାସ୍ତ୍ରର ଅନ୍ତର୍ଗତ ବୋଲି ଗୃହୀତ ହୋଇଅଛି । ଗୌତମରେ ପ୍ରମାଣ ପକ୍ଷ ପ୍ରଧାନ ଓ ଏ ଦର୍ଶନରେ ପ୍ରମେୟ ପକ୍ଷ ପ୍ରଧାନ । ଈଶ୍ୱର, ଜଗତ୍ ଓ ଜୀବ ଆଦି ସମ୍ବନ୍ଧେ ଗୌତମ ଓ ବୈଶେଷିକ ଦର୍ଶନ ଦ୍ୱୟର ସିଦ୍ଧାନ୍ତ ଏକ ଅଟେ । ଏ ଦର୍ଶନ ଗୌତମ ଦର୍ଶନର ପରବର୍ତ୍ତୀ ଥିବାର କଥିତ । ଗୌତମ ମୁଖ୍ୟତଃ ତର୍କ ପଦ୍ଧତି ଓ ପ୍ରମାଣ ବିଷୟର ନିରୂପଣ କରିଅଛନ୍ତି, କିନ୍ତୁ କଣାଦ ଦ୍ରବ୍ୟର ପରୀକ୍ଷାରେ ପ୍ରବୃତ୍ତ ହୋଇଥିଲେ । ୯ଟି ଦ୍ରବ୍ୟର 'ବିଶେଷତା' ବୁଝାଇବାରୁ ଏହାର ନାମ 'ବୈଶେଷିକ' ହୋଇଅଛି । ନଅଟି ଦ୍ରବ୍ୟ ଯଥା—ପୃଥ୍ୱୀ, ଜଳ, ତେଜ, ବାୟୁ, ଆକାଶ, କାଳ, ଦିକ୍, ଆତ୍ମା ଓ ମନଃ । ଏଥି ମଧ୍ୟରୁ ପୃଥିବୀ, ଜଳ, ତେଜ, ଓ ବାୟୁ ପରମାଣୁ ଅବସ୍ଥାରେ ନିତ୍ୟ ଓ ସ୍ଥୂଳ ଅବସ୍ଥାରେ ଅନିତ୍ୟ । ଆକାଶ, କାଳ, ଦିକ୍, ଓ ଆତ୍ମା ନିତ୍ୟ ଓ ସର୍ବବ୍ୟାପକ । ମନ ନିତ୍ୟ, କିନ୍ତୁ ଅଣୁରୂପକ ଥିବାରୁ ବ୍ୟାପକ ନୁହେଁ । କଣାଦ ଏହି ପ୍ରକାରେ ଦ୍ରବ୍ୟମାନଙ୍କର ବିଶେଷତ୍ୱ ସ୍ଥିର କରିଅଛନ୍ତି ।

ଗୌତମ ୧୬ଟି ପଦାର୍ଥ ମାନିଥିଲେ, କିନ୍ତୁ କଣାଦ ୬ଟି ପଦାର୍ଥ ମାନିଅଛନ୍ତି । ଯଥା—ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ । ପରେ ଅଭାବ ବୋଲି ଆଉ ଗୋଟିଏ ପଦାର୍ଥ ମାନିଅଛନ୍ତି । ଦ୍ରବ୍ୟର ଉଦ୍ଦେଶ ( ପରିଗଣନ ), ଲକ୍ଷଣ ଓ ପରୀକ୍ଷା ଛଡ଼ା କଣାଦ ଗୁଣକୁ ଓ କର୍ମକୁ ସ୍ୱୀକାର କରିଅଛନ୍ତି । ଦ୍ରବ୍ୟର ସଂଖ୍ୟା, ପୃଥକ୍ତ୍ୱ, ବୁଦ୍ଧି, ସୁଖ, ଦୁଃଖ ଆଦି ୨୪ଟି ଗୁଣ ଅଛି । ଏଥିରେ ଉତ୍କ୍ଷେପଣ, ଅବକ୍ଷେପଣ, ଆଦି ୫ ପ୍ରକାର ଗତିକୁ କର୍ମର ଅନ୍ତର୍ଗତ ବୋଲି ସ୍ୱୀକୃତ ହୋଇଅଛି । ତାହା ରହିଲା 'ସାମାନ୍ୟ' । ଏହା ଦ୍ରବ୍ୟ, ଗୁଣ ଓ କର୍ମ ଏହି ତିନିରେ ସତ୍ତା ରୂପେ ମିଳେ । ପଞ୍ଚମ ପଦାର୍ଥ 'ବିଶେଷ' ପୃଥ୍ୱୀ, ଜଳ, ତେଜଃ ଓ ବାୟୁର ପରମାଣୁରେ ଅଛି । 'ବିଶେଷ' ଅନନ୍ତ ଅଟେ । ବୈଶେଷିକ ଦର୍ଶନର ପରମାଣୁବାଦ ପ୍ରସିଦ୍ଧ ଅଟେ । ପରମାଣୁ ନିତ୍ୟ ଓ ଅକ୍ଷର ଅଟେ । ପରମାଣୁମାନଙ୍କ ଯୋଜନାରେ ସବୁ ପଦାର୍ଥର ସୃଷ୍ଟି । ଆକାଶ ଛଡ଼ା ଅନ୍ୟ ୪ ଭୂତର ପରମାଣୁ ଅଛି । ୨ ପରମାଣୁ =ଦ୍ୱ୍ୟଣୁକ; ୩ ଦ୍ୱ୍ୟଣୁକ=ତ୍ରସରେଣୁ; ୪ ଦ୍ୱ୍ୟଣୁକ= ଚତୁରେଣୁ—ହି. ଶ]

**ବୈଶେଷ୍ୟ**—ସ. ବି. (ବିଶେଷ+ଭାବାର୍ଥ ଯ)—ବିଶେଷତା—
**Baiseshya** Peculiarity; characteristic.

**ବୈଶ୍ୱଦେବ**—ସ. ବି. (ବିଶ୍ୱଦେବ+ଅ; ପୃଥିବୀର ତାବତୀୟ ଦେବତା
**Baiswadeba** ଓ ଭୂତ ବା ଜୀବମାନଙ୍କୁ ଦିଆଯିବା ଅନ୍ନ ବଳି)—
ବିଶ୍ୱଦେବଙ୍କ ଉଦ୍ଦେଶ୍ୟରେ ଦ୍ୱିଜାତିଙ୍କର ପ୍ରତିଦିନ କର୍ତ୍ତବ୍ୟ ଅନ୍ନ ବଳିଦାନ ବିଧି—A daily ceremony of offering oblations of food to various Deities, the fire, certain beings and animals, observed by the twice born amongst the Hindus. [ଦ୍ର—ସକାଳେ ଗୃହସ୍ଥର ପାକ ଶେଷ ହେବା ପରେ ଏ 'ଅନ୍ନ ବଳିଦାନ' ଅନୁଷ୍ଠିତ ହୁଏ । ଏଥିରେ ପ୍ରଥମେ ଗୋଟିଏ ସ୍ଥାନକୁ କୁଶ, ଗୋମୟ ଓ ଜଳ ଦ୍ୱାରା ପରିଷ୍କୃତ କରି ସେଠାରେ ମୃତ୍ତିକାରେ ଠାଆ କରି ତହିଁରେ ପାକାଗ୍ନିଙ୍କୁ ବଳି ଦିଆଯାଏ, ତା ପରେ ନିମ୍ନଲିଖିତ ଭାବରେ ବଳିଦାନ କରାଯାଏ :—

୧ ବ୍ରହ୍ମା, ୨ ପ୍ରଜାପତି, ୩ ଗୃହ୍ୟଗଣ, ୪ ଅନୁମତି, ୫ କଶ୍ୟପ (ଏହି ପାଞ୍ଚଟି ବଳି ଅଗ୍ନିରେ ଅର୍ପଣ କରାଯାଏ); ୬ ପର୍ଜ୍ଜନ୍ୟ, ୭ ଜଳ, ୮ ପୃଥିବୀ, ୯ ଧାତୃ, ୧୦ ବିଧାତୃ, ୧୧-୧୪ ଚତୁର୍ଦ୍ଦିଗ, ୧୫-୧୮ ଚତୁଷ୍କୋଣ, ୧୯ ସୂର୍ଯ୍ୟ, ୨୦ ଅନ୍ତରୀକ୍ଷ, ୨୧ ବିଶ୍ୱଦେବଗଣ, ୨୨ ବିଶ୍ୱଭୂତଗଣ, ୨୩ ଉଷା, ୨୪ ଭୂତପତି, ୨୫ ପିତୃଗଣ, ୨୬ ଯକ୍ଷ, ୨୭-୩୩ ସନକାଦି ସପ୍ତ ମନୁଷ୍ୟ । ଏମାନଙ୍କ ନାମ ଉଚ୍ଚାରଣପୂର୍ବକ ଠାଆ ଉପରେ ଗଣ୍ଡାଏ ଗଣ୍ଡାଏ ଅନ୍ନ ଦିଆଯାଏ ।

ତା ପରେ ଖଣ୍ଡିଏ ଖଣ୍ଡିଏ ପତ୍ରରେ ବଢ଼ା ହୋଇଥିବା ଅନ୍ନକୁ ନିମ୍ନଲିଖିତ ରୂପେ ପାଣି ଛଡ଼ାନ୍ତି । ୩୪-୩୬ ପିତୃ, ପିତାମହ ଓ ପ୍ରପିତାମହ, ୩୭-୩୯ ମାତାମହ, ପ୍ରମାତାମହ ଓ ବୃଦ୍ଧ ପ୍ରମାତାମହ, ୪୦-୪୫ ପିତୃ ୩ ଜଣ ଓ ମାତାମହାଦି ୩ ଜଣ, ୪୬ ଅତିଥି ବ୍ରାହ୍ମଣ, ୪୮-୫୦, ଶ୍ୱାନ, ଚଣ୍ଡାଳ ଓ ବାୟସ । କେହି କେହି ବୈଶ୍ୱଦେବ ସ୍ଥାନରୁ ଉଠି ଆସି ଅଗଣାରେ ବା ଘରର ବାହାରେ ୪୮-୫୦ ବଳି ଦିଅନ୍ତି । ୫୦ ବଳିକୁ 'କାକ ବଳି' ବୋଲାଯାଏ । ଶେଷରେ ସୂର୍ଯ୍ୟଙ୍କୁ ନମସ୍କାର କରନ୍ତି ।

ନିଷ୍ଠାପର ଗୃହସ୍ଥ ଦେବପୂଜା ଓ ବୈଶ୍ୱଦେବ ନ କରି ଭୋଜନ କରନ୍ତି ନାହିଁ ।]

**ବୈଶ୍ୱାନର**—ସ. ବି. (ବିଶ୍ୱନର+ଅ; ଏହା ବିଶ୍ୱଜନଙ୍କ ଜଠରରେ
**Baiswānara** ଥିବାରୁ)—୧ । ଅଗ୍ନି—1. Fire. ୨ । ଜଠରାଗ୍ନି—2. The digestive energy in animals. ୩ । ଚିତ୍ରକ ବୃକ୍ଷ, ଧଳା ଚିତା ଗଛ—3. Lead wort (plant). ୪ । ବେଦାଂଶ ବିଶେଷ—4. Name of a portion of the Bedas. ୫ । ପିତୃ (ହି. ଶ)—

5. Bile. ୬ । ପରମାତ୍ମା ( ହି. ଶ )—6. The Supreme Spirit. ୭ । ଚେତନ ( ହି. ଶ )—7. Consciousness.

ବୈଶ୍ୱାସିକ—ସଂ. ବି. ପୁଂ. ( ବିଶ୍ୱାସ+ଇକ )—ବିଶ୍ୱସ୍ତ ବ୍ୟକ୍ତି—
Baiśwāsika A trusted person.
(ବୈଶ୍ୱାସିକା—ଅନ୍ୟରୂପ) ବିଣ. ପୁଂ—ବିଶ୍ୱସ୍ତ—Trusted.

ବୈଶ୍ୱୀ—ସଂ. ବି ( ବିଶ୍ୱ=ବିଶ୍ୱଦେବଗଣ+ଈ; ବିଶ୍ୱଦେବମାନଙ୍କର ଏ
Baiświ ନକ୍ଷତ୍ର ଉପରେ ଆଧିପତ୍ୟ ଥିବାରୁ )—( ଜ୍ୟୋତିଷ ) ଉତ୍ତରଷାଢ଼ା ନକ୍ଷତ୍ର—( astrology ) The twenty-first asterism.

ବୈଶ୍ୟ—ସଂ. ବି. ପୁଂ ( ବିଶ ଧାତୁ=ପ୍ରବେଶ କରିବା+କ୍ୱିପ୍+ଯ-
Baiśya ଯେଉଁ ଜାତି ଦ୍ୱିଜାତିମାନଙ୍କର ଶେଷଭାଗରେ ହିନ୍ଦୁ
(ବୈଶ୍ୟା—ସ୍ତ୍ରୀ) ସମାଜକୁ ପ୍ରବେଶ କରିଅଛି । )—ହିନ୍ଦୁ ଦ୍ୱିଜାତି-ମାନଙ୍କର ଶେଷ ବର୍ଣ୍ଣ—The 3rd caste of the Hindu twice-born classes. ( ଉ—ବୈଶ୍ୟା ଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ର ସୁତ, ଯୁଯୁତ୍ସୁଙ୍କୁ ନିଯୋଜିଲେ ସ୍ଥାପିନଥି ପଦେ—ରାଧାନାଥ. ମହାଯାତ୍ରା । ) [ ଦ୍ର—ଯଜନ, ଅଧ୍ୟୟନ ଓ ପଶୁପାଳନ ବୈଶ୍ୟମାନଙ୍କର ଧର୍ମ । ପଶୁପାଳନ ଓ ବାଣିଜ୍ୟ ଏମାନଙ୍କ ବୃତ୍ତି ଅଟେ । ବୈଦିକ କାଳରେ ପ୍ରଜାମାନଙ୍କୁ ବିଶ୍ ବୋଲି ଯାଉଥିଲା । ବୈଶ୍ୟ ଶବ୍ଦ ବୈଦିକ ବିଶ୍ ଶବ୍ଦରୁ ଉତ୍ପନ୍ନ । ପରେ ଯେତେବେଳେ ଚତୁର୍ବର୍ଣ୍ଣର ବ୍ୟବସ୍ଥା ହେଲା ସେତେବେଳେ ବାଣିଜ୍ୟ ବ୍ୟବସାୟ ଓ ଗୋପାଳନରେ ନିଯୁକ୍ତ ବର୍ଣ୍ଣକୁ ବୈଶ୍ୟ ବୋଲାଗଲା—ହି. ଶବ୍ଦସାଗର । ]

ବୈଶ୍ୟ କରଣ—ଦେ. ବି—ଜାତି ବିଶେଷ—A caste of
Baiśya karana Baiśyas. [ଦ୍ର—ଏମାନଙ୍କ ସମାଜରେ ବାଲ୍ୟବିବାହ ହୁଏ । ଏମାନେ ପୂର୍ବେ ଚଟଶାଳୀମାନଙ୍କରେ ଶିକ୍ଷକତା କରୁଥିଲେ । ଏମାନଙ୍କର ଉପାଧି ମହାନ୍ତି । ]

ବୈଶ୍ୟ ବଣିକ୍—ଦେ. ବି ( ସଂ. ବୈଶ୍ୟ ଓ ବଣିକ୍ )—ବୈଶ୍ୟ ବା
Baiśya banik ବଣିଆମାନଙ୍କର ଶାଖା ବିଶେଷ—A sect
(ବୈଶ୍ୟ ବଣିଆ—ଅନ୍ୟରୂପ) of the trading caste. [ ଦ୍ର—ବଣିଆମାନେ ସୁନାରି, ପୋଟଳୀ ଓ ବୈଶ୍ୟ ଏହି ତିନି ଶ୍ରେଣୀରେ ବିଭକ୍ତ । ]

ବୈଶ୍ରବଣ—ସଂ. ବି (ବିଶ୍ରବସ୍=ଋଷି+ଅପତ୍ୟାର୍ଥେ ଅ; 'ବି' ସ୍ଥାନରେ
Baiśrabana 'ବୈ' ଓ 'ଅ' ସ୍ଥାନରେ 'ଣ' ଆଗମ)—ବିଶ୍ରବା ଋଷିଙ୍କର ପୁତ୍ର—The son of sage Biśrabā. [ ଦ୍ର—କୁବେର, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ—ବୈଶ୍ରବଣ ଅଟନ୍ତି । ]

ବୈଷ(ଷି)ମ—ଗ୍ରାମ୍ୟ. ବି (ସଂ. ବୈଷ୍ଣବ)—୧ । ବୈଷ୍ଣବ (ଦେଖ)—
Baisha(shi)ma Baishnaba (See). ୨ । ବୈଷ୍ଣବ ନାମକ ବ୍ୟକ୍ତିଙ୍କୁ ଡାକିବା ନାମ—2. Name for calling a person named Baishnaba.

ବୈଷ୍ଣ(ଷ୍ଣୋ)ବ, ବୈଷ୍ଣମ, ବୈଷ୍ଣମ, ବୈଷ୍ଣମ, ବୈଷ୍ଣମ } ଅନ୍ୟରୂପ
ବୈଷମାଣୀ, ବୈଷ୍ଣବାଣୀ, ବୈଷ୍ଣମାଣୀ, ବୈଷ୍ଣବା(ମା)ଣୀ, ବଇଷି(ଷୁ)ମାଣୀ, ବୈଷି(ଷୁ)ମାଣୀ } ସ୍ତ୍ରୀ

ସଂ. ବି (ବିଷମ+ଅ) ବୈଷମ୍ୟ (ଦେଖ)—Baishamya (See).

ବୈଷମ କୁଳ—ଦେ. ବି—ବୈଷ୍ଣବ ସମାଜ—
Baishama kula The society of Baishnabas.

ବୈଷମ ହେବା—ଦେ. କ୍ରି—ବୈରାଗ୍ୟ ଦୀକ୍ଷା ଗ୍ରହଣ ପୂର୍ବକ ଗୃହତ୍ୟାଗ
Baishama hebā କରିବା—To renounce the world
( ବୈଷମ ହୋଇଯିବା—ଅନ୍ୟରୂପ ) or one's household-ties by being converted into a Baishnaba. ୨ । ଗୁରୁଙ୍କଠାରୁ ଇଷ୍ଟମନ୍ତ୍ର ବା ବିଷ୍ଣୁମନ୍ତ୍ର ଗ୍ରହଣ କରି ଓ ମାଳା ଡୋର କୌପୀନ ଗ୍ରହଣ କରି ଓ ଥିବି 'ବୈଷ୍ଣବ' ଧର୍ମରେ ଦୀକ୍ଷିତ ହେବା—2. To be initiated into Baishnabism by having the eseteric formula whespered into the ear by the spiritual preceptor and to put on rosary waist-string and a narrow strip of cloth over the privities.

ବୈଷ(ଷି, ଷୁ)ମାଣୀ—ଦେ. ବି. ସ୍ତ୍ରୀ ( ସଂ. ବୈଷ୍ଣବୀ )—୧ । ବୈଷମର
Baisba(shi, shu)māni ସ୍ତ୍ରୀଲିଙ୍ଗ—1. Feminine of
( ବୈଷ୍ଣବା[ମା]ଣୀ—ସ୍ତ୍ରୀ ) Baishama. ୨ । ମାତାଜୀ; ଯେଉଁ ସ୍ତ୍ରୀଲୋକ ବୈଷ୍ଣବ ଦୀକ୍ଷା ନେଇ ଗୃହତ୍ୟାଗ କରି-ଅଛି—2. A female mendicant. [ଦ୍ର—ବ୍ୟାକରଣ ସୂତ୍ର ଅନୁସାରେ ଏହା ବୈଷମର ସ୍ତ୍ରୀଲିଙ୍ଗ ନ ହୋଇ ବୈଷମର ବିପରୀତ ଲିଙ୍ଗ ଅଟେ । ଆପାତତଃ ବୈଷମାଣୀ ବୈଷମଙ୍କର ସ୍ତ୍ରୀ ବା ଧର୍ମପତ୍ନୀ ହୁଅନ୍ତି । ]

ବୈଷମ୍ୟ—ସଂ. ବି (ବିଷମ+ଯ)—୧ । ବିଷମତା; ସାମ୍ୟଭାବ ଅଭାବ—
Baishamya 1. Want of uniformity; unevenness; ineqality. ୨ । ବୈସାଦୃଶ୍ୟ—2. Dissimilarity; disparity. ୩ । ବିରୁଦ୍ଧଭାବ; ଶତ୍ରୁତା—3. Enmity; hostility. ୪ । ଅମେଳ—4. Disagreement.

ବୈଷୟିକ—ସଂ. ବିଣ ( ବିଷୟ+ଇକ )—୧ । ବିଷୟ କର୍ମ ସମ୍ବନ୍ଧୀୟ;
Baishayika ସାଂସାରିକ—1. Worldly. ୨ । ଗାର୍ହସ୍ଥ୍ୟ—2. Domestic. ୩ । ବ୍ୟବସାୟ ସମ୍ବନ୍ଧୀୟ—3 Relating to business. ୪ । ଇନ୍ଦ୍ରିୟ ସେବା ନିରତ—4. Sensual; sensualist. ୫ । ବିଷୟବାନ୍; ଧନୀ—5. Well-to-do. ୬ । ବ୍ୟବସାୟ ବା ସାଂସାରିକ କାର୍ଯ୍ୟରେ ନିପୁଣ—6. Skilful in business; practical. ୭ । ସାଂସାରିକ କାର୍ଯ୍ୟରେ ଆସକ୍ତ—7. Devoted or addicted to worldly concerns. ୧ । ସଂ. ବି—ବିଷୟୀ ବ୍ୟକ୍ତି—1. A man of the world. ୨ । ଧନୀ ବ୍ୟକ୍ତି—2. A rich man; a well-to-do person.

**ବୈଷୟିକ ବିଜ୍ଞାନ**—ସଂ. ବି ( ଅଧିକାର; କର୍ମଧା )—ଯେଉଁ ବିଜ୍ଞାନ
**Baishayika bijnāna** ଶାସ୍ତ୍ରଦ୍ୱାରା ମନୁଷ୍ୟର ସାଂସାରିକ ବିଷୟ ପରିଚାଳନାରେ ଜ୍ଞାନଲାଭ ହୁଏ; ଯେଉଁ ବିଜ୍ଞାନ ମନୁଷ୍ୟର ବ୍ୟବହାରରେ ଲାଗେ—Practical science. [ଯଥା—ଜଡ଼ବିଜ୍ଞାନ, ନୀତିବିଜ୍ଞାନ, କ୍ଷେତ୍ର ପରିମାଣ ବା ବ୍ୟବହାରିକ ଜ୍ୟାମିତି । ]

**ବୈଷୟିକ ବ୍ୟବସ୍ଥା**—ସଂ. ବି ( କର୍ମଧା )—ସାଂସାରିକ ବିଷୟର
**Baishayika byabasthā** ବନ୍ଦୋବସ୍ତ—Arrangement or mangement of one's worldly affairs.

**ବୈଷୟିକ ବ୍ୟାପାର**—ସଂ. ବି—୧। ସାଂସାରିକ କାର୍ଯ୍ୟ—1. Worldly
**Baishayika byāpāra** concerns ୨। ବିଷୟ ସମ୍ପତ୍ତି—2. Worldly riches and possession.
ବୈଷୟିକ କର୍ମ, ବୈଷୟିକ କାର୍ଯ୍ୟ, ବୈଷୟିକ ବୃତ୍ତି } ଅନ୍ୟରୂପ

**ବୈଷୁବତ**—ସଂ. ବି ( ବିଷୁବତ୍ + ଅ )—ବିଷୁବ ସଂକ୍ରାନ୍ତି ( ଦେଖ )
**Baishubata** Bishuba samkrānti (See)

**ବୈଷ୍ଟିକ**—ସଂ. ବି—ବେଠିଆ—A person impressed into
**Baishtika** service. [ଦ୍ର—ଇଥ୍ୟା-ସଂସ୍କରଣ ଚୋରଣା-ଗଠନେ ବ୍ୟାପୃତ ଯେତେ ବୈଷ୍ଟିକ—ରାଧାନାଥ. ପାର୍ବତୀ । ]

**ବୈଷ୍ଟୁତ**—ସଂ. ବି ( ବି + ସ୍ତୁ ଧାତୁ—ସ୍ତୁତି କରିବା + କରଣ. ତ )—
**Baishtuta** ହୋମଭସ୍ମ; ହୋମ ପାଉଁଶ; ବିଭୂତି—The ashes left after the performance of burnt offerings.

**ବୈଷ୍ଣବ**—ସଂ. ବିଣ. ପୁଂ ( ବିଷ୍ଣୁ + ଉପାସକାର୍ଥେ. ଅ )—୧। ବିଷ୍ଣୁ
**Baishnaba** ସମ୍ବନ୍ଧୀୟ—1. Relating to Bishnu.
(ବୈଷ୍ଣବୀ—ସ୍ତ୍ରୀ) ୨। ବିଷ୍ଣୁ ପୂଜାରତ; ବିଷ୍ଣୁଭକ୍ତ—2. Dovoted to the worship of Bishnu. ସଂ. ବି—ବିଷ୍ଣୁ ଭକ୍ତ; ବିଷ୍ଣୁଙ୍କ ଉପାସକ—1, A devotee of Bishnu. ୨। ଅଷ୍ଟାଦଶ ମହାପୁରାଣାନ୍ତର୍ଗତ ବିଷ୍ଣୁପୁରାଣ—2. The Bishnu Purāna, ୩। ହୋମଭସ୍ମ—3. The ashes of sacrificial fire. ୪। ପ୍ରାଚୀନକାଳର ଯୁଦ୍ଧାସ୍ତ୍ରବିଶେଷ—4. An ancient weapon of war. ୫। ସୁଦର୍ଶନଚକ୍ର—5. The Discus weapon of Bishnu. ଦେ. ବି—୧। ବିଷ୍ଣୁଭକ୍ତ ସନ୍ନ୍ୟାସୀ—1. An anchorite devoted to Bishnu [ ଦ୍ର—ଗୃହତ୍ୟାଗୀ ବୈଷ୍ଣବଙ୍କୁ 'ବିହଙ୍ଗୀ' ଓ ଗୃହସ୍ଥ ବୈଷ୍ଣବଙ୍କୁ 'ଗୃହୀ' ବୋଲାଯାଏ । ] ୨। ବୈରାଗୀ; ବାବାଜୀ—2. An anchorite; a religious mendicant. [ ଦ୍ର—ବୈଷ୍ଣବର ପ୍ରକୃତପ୍ରତ୍ୟୟଗତ ଅର୍ଥ ବିଷ୍ଣୁଭକ୍ତ; କିନ୍ତୁ ସାଧାରଣତଃ ଶୈବ, ଶାକ୍ତ ଓ ବୈଷ୍ଣବ ଆଦି ସବୁ ପ୍ରକାରର ବୈରାଗୀଙ୍କୁ ବୈଷ୍ଣବ ବୋଲାଯାଏ । ବୈଷ୍ଣବମାନଙ୍କର ଅନେକ ସମ୍ପ୍ରଦାୟ ଅଛି । ଭିନ୍ନ ଭିନ୍ନ ଧର୍ମପ୍ରଚାରକଙ୍କ ନାମ ଅନୁସାରେ, ଦେଶ ଅନୁସାରେ, ଗୃହ ତ୍ୟାଗ କରିଥିବା ବା ନ କରିଥିବା ଅନୁସାରେ, ସ୍ଥାନ ଅନୁସାରେ ଓ ଉପାସ୍ୟ ଦେବତାଙ୍କ ନାମ ଅନୁସାରେ ଭିନ୍ନ ସମ୍ପ୍ରଦାୟଙ୍କର ଭିନ୍ନ ନାମକରଣ ହୁଏ ।

ଧର୍ମପ୍ରଚାରକଙ୍କ ନାମାନୁସାରେ—ରାମାନନ୍ଦୀ, ନିମାଇତ, ଅଦ୍ୱୈତବାଦୀ ଓ ମାଧବାଚାର୍ଯ୍ୟ । ଦେଶ ଅନୁସାରେ—ଗୌଡ଼ୀୟ ବା ଗଉଡ଼ିଆ । ଗୃହତ୍ୟାଗ ଅନୁସାରେ—ଗୃହୀ, ବିହଙ୍ଗୀ, ବୈରାଗୀ ଓ ବିରକ୍ତ । ବେଶ ଅନୁସାରେ—ନାଗା, ନଙ୍ଗଳୀ, କୁମ୍ଭୀପଟିଆ, ଲେଙ୍ଗୁଟିଆ, ନିମାଇତ ଓ ମାଳବନ୍ଧା । ଉପାସ୍ୟ ଦେବତା ଅନୁସାରେ—ରାମାଇତ, ମହାବୀରଅ ଓ ପରମାର୍ଥୀ ଇତ୍ୟାଦି । ] ୩। ପୁରୁଷ ଲୋକଙ୍କୁ ଦିଆଯିବା ନାମ—3. A name given to males. ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ପାଇକ ବିଶେଷ—A caste of people in the district of Ganjam.

**ବୈଷ୍ଣବ ଓଝା ବାଡ଼ି**—ପ୍ରାଦେ ( ଯାଜପୁର ) ବି—ଯାଜପୁର-ବୈଷ୍ଣବ
**Baishnaba ojhā bārdi** ଚରଣ ଓଝା କାରିଗର କୃତ ବିଖ୍ୟାତ ବାଡ଼ି ବା ଯଷ୍ଟି—B. C. Ojhā's polished stick ( made in Jajpur ).

**ବୈଷ୍ଣବ କୁଳ**—ଦେ. ବି—ବୈଷ୍ଣବ ସମ୍ପ୍ରଦାୟ—A sect of
**Baishnaba kula** Baishnabas. ( ଉ—ନାଁ ଲକ୍ଷ୍ମୀକୁଳ ନାଁ ବୈଷ୍ଣବ କୁଳ —ଭଗ । )

**ବୈଷ୍ଣବ ଥାଳ**—ଦେ. ବି—ଯୋଗୀ ଥାଳ ( ଦେଖ )—
**Baishnaba thāla** Jogī thāla ( See )

**ବୈଷ୍ଣବତା**—ସଂ. ବି—୧। ବିଷ୍ଣୁଭକ୍ତି—1. Devotion to Bishnu
**Baishnabatā** ୨। ବୈଷ୍ଣବର ଆଚରଣ—2. Conduct of a Baishnaba.

**ବୈଷ୍ଣବା(ମା)ଣୀ**—ଦେ. ବିଣ ସ୍ତ୍ରୀ—ବୈଷ୍ଣବୀ; ମାତାଜୀ—
**Baishnabā(mā)nī** A female anchorite.

**ବୈଷ୍ଣବ ସମ୍ପ୍ରଦାୟ**—ସଂ. ବି—ବୈଷ୍ଣବମାନଙ୍କର ଭିନ୍ନ ଭିନ୍ନ ଶ୍ରେଣୀ ବା
**Baishnaba sampradāya** ଅଖଡ଼ା—Sect of anchorites.
(ବୈଷ୍ଣବ ସମାଜ—ଅନ୍ୟରୂପ)

**ବୈଷ୍ଣବୀ**—ସଂ. ବିଣ ସ୍ତ୍ରୀ ( ବିଷ୍ଣୁ + ଅ + ଈ )—ବିଷ୍ଣୁଙ୍କ ସମ୍ବନ୍ଧୀୟା—
**Baishnabī** Relating to Bishnu. ସଂ. ବି. ସ୍ତ୍ରୀ—୧। ବିଷ୍ଣୁଙ୍କର ଆଦ୍ୟା ଶକ୍ତି ବା ଜଗତ୍‌ସୃଷ୍ଟି କାରିକା ଶକ୍ତି—1. The prime or creative energy of Bishnu or God. ୨। ବିଷ୍ଣୁଙ୍କର ଜଗତ୍‌ପାଳନକାରୀ ଶକ୍ତି ବା ମାୟା—2. The illusive energy of Bishnu. ୩। ଦୁର୍ଗା—3. Goddess Durgā. ୪। ଗଙ୍ଗାନଦୀ ( ବିଷ୍ଣୁପଦୋଦ୍ଭବା ଥିବାରୁ )—4. The Ganges. ୫। ତୁଳସୀ ବୃକ୍ଷ ( ବିଷ୍ଣୁଙ୍କ ବର ଯୋଗୁଁ ବୃନ୍ଦା ତୁଳସୀରୂପେ ଜାତ ହେବାରୁ )—5. The holy Basil plant; Ocymum Sanctum. ୬। ଅପରାଜିତା ଲତା ଓ ଫୁଲ—6. Clitoris Ternatia ( creeper and flower ). ୭। ଶତାବରୀ; ଛତୋରୀ—7. Asparagus. ୮। ପୃଥିବୀ

( ବ୍ଲୁ. ଶ )—8. The earth. ୯ । ଶ୍ରବଣା ନକ୍ଷତ୍ର—9. The 22nd asterism. ୧୦ । ( ବୈଷ୍ଣବ+ଈ )—ବୈଷ୍ଣବର ସ୍ତ୍ରୀ—10. The wife of a Baishnaba. ୧୧ । ବିଷ୍ଣୁଭକ୍ତା ସ୍ତ୍ରୀ—11 A female devotee of Bishnu. ଦେ. ବି—ମାଈଆଜୀ; ବୈଷ୍ଣମାଣୀ—A female anchorite.

ବୈଷ୍ଣବ(ମି)ଆ—ଦେ. ବିଣ—ବାବାଜୀ ସମ୍ବନ୍ଧୀୟ—Relating to
Baishnabi(mi)ā an ascetic; or a recluse.

ବୈଷ୍ଣବ୍ୟ—ସଂ. ବିଣ ( ବିଷ୍ଣୁ+ଯ )—ବିଷ୍ଣୁ ସମ୍ବନ୍ଧୀୟ—
Baishnabya Relating to Bishnu.

ବୈସ ( ଇତ୍ୟାଦି )—ଗ୍ରାମ୍ୟ. ବି ( ସଂ. ବୟସ )—୧ । ବୟସ ଇତ୍ୟାଦି
Baisa ( etc ) ( ଦେଖ )—1. Bayasa etc ( See ) ୨ । ଯୌବନ—2. Youth.

ବୈସର୍ଗିକ—ସଂ. ବିଣ ( ବିସର୍ଗ+ଇକ )—ବିସର୍ଜନୀୟ; ତ୍ୟାଜ୍ୟ (ବ୍ଲୁ. ଶ)
Baisargika —Fit to be abandoned.

ବୈସର୍ଜନ—ସଂ. ବି ( ବିସର୍ଜନ+ଅ )—୧ । ବିସର୍ଜନ କର୍ମ—1.
Baisarjana Relinquishment. ୨ । ବିସର୍ଜିତ ବା ଉତ୍ସୃଷ୍ଟ ବସ୍ତୁ ( ବ୍ଲୁ. ଶ )—2. A thing which has been dedicated. ୩ । ଯଜ୍ଞର ବଳ ( ବ୍ଲୁ. ଶ )—3. Vedic oblation or offering.

ବୈସାଦୃଶ୍ୟ—ସଂ. ବି ( ବିସଦୃଶ+ଯ )—୧ । ବୈଷମ୍ୟ—1.
Baisādrusya Inequality; divergence. ୨ । ଅସାମଞ୍ଜସ୍ୟ; ଅସମାନତା—2 Dissimilarity.

ବୈସାରିଣ—ସଂ. ବି ( ବିସାରିନ୍+ସ୍ୱାର୍ଥେ. ଅ )—ମତ୍ସ୍ୟ; ମାଛ—
Baisārina Fish.

ବୈସୂଚନ—ସଂ. ବି ( ବି+ସୂଚ୍ ଧାତୁ ଣିଚ, ସୂଚ ଧାତୁ=ଜଣାଇବା+
Baisūchana ଅ=ବିସୂଚନ+ଅ )—ନାଟକାଦିରେ ପୁରୁଷର ସ୍ତ୍ରୀ ବେଶ ଧାରଣ—The introduction of a male in the garb of a female in a drama

ବୈସ୍ୱର୍ଯ୍ୟ—ସଂ. ବିଣ ( ବିସ୍ୱର+ଭାବ. ଯ )—ଗଳା ବସିଯିବା ଅବସ୍ଥା
Baiswarjya ( ବ୍ଲୁ. ଶ. )—Hoarseness of the voice

ବୈହଙ୍ଗ—ସଂ. ବିଣ ( ବିହଙ୍ଗ+ଅ )—ବିହଙ୍ଗ ବା ପକ୍ଷୀ ସମ୍ବନ୍ଧୀୟ
Baihanga ( ବ୍ଲୁ. ଶ )—Relating to bird.

ବୈହାୟସ—ସଂ. ବି—ଅସୁରରାଜ ବଳିର ରଥ—The chariot of
Baihāyasa Bali, the king of demons.(ଉ—ମୟ ନିର୍ମିତ ଘୋର ଯାନ, ସ୍ୱଭାବେ ବୈହାୟସ ନାମ । ଜଗନ୍ନାଥ, ଭାଗବତ । ) ସଂ. ବିଣ—( ବିହାୟସ୍+ଅ )—ଆକାଶ ସମ୍ବନ୍ଧୀୟ—Relating to the sky; aerial.

ବୈହାର୍ଯ୍ୟ—ସଂ ବି. ଓ ବିଣ. ପୁଂ (ବିହାର+ଯ)—ଆପଣାର ଉକ୍ତିଭାଜନ
Baihārjya ଲୋକ; ଥଟ୍ଟା ମଶିଷ; ପରିହାସଯୋଗ୍ୟ ଆତ୍ମୀୟ (ବୈହାର୍ଯ୍ୟା—ସ୍ତ୍ରୀ) ବ୍ୟକ୍ତି—A person related in such a manner that jokes can be cut with him. [ ଦ୍ର—ପୁରୁଷର ବୈହାର୍ଯ୍ୟ—ଯଥା—ନାତି, ନାତି ବେଳ, ଶଳା, ଉଶେଇ, ଅଜା, ମାମୁଁଅଜା, ସାନ-ଶଳା, ସାନ ସଢୁ, ଭାଇଶଳା ଓ ନାତୁଣୀଜୋଇଁ ।

ସ୍ତ୍ରୀର ବୈହାର୍ଯ୍ୟ—ଯଥା—ଦିଅର, ଭାଇଶଳା, ଉଶେଇ, ଅଜା, ନାତି, ନାତୁଣୀଜୋଇଁ, ନଣନ୍ଦେଇ ଓ ମାମୁଁଅଜା ।

ପୁରୁଷର ବୈହାର୍ଯ୍ୟା—ଯଥା—ଭାଉଜ, ଶାଳୀ, ନାତୁଣୀ, ନାତୁଣୀବୋହୂ, ଆଈ, ମାଈଁଆଈ, ଶଳାଭାଉଜ, ଉଶେଇର ଭଉଣୀ ବା ଭଉଣୀର ନଣନ୍ଦ ।

ସ୍ତ୍ରୀର ବୈହାର୍ଯ୍ୟା—ଯଥା—ଆଈ, ମାଈଁଆଈ, ନାତୁଣୀ, ନାତୁଣୀବୋହୂ ଓ ନଣନ୍ଦ । ]

ବୈହାସିକ—ସଂ ବି. ପୁଂ ( ବିହାସ+ଇକ )—ବିଦୂଷକ; ଭଣ୍ଡ—
Baihāsika A jester; buffoon. ( ଉ—ବୈହାସିକ ହେବେ ନ ବୁଝିଲ ଜନେ ତହିଁକି କେଉଁ କାରଣ ହେ । କାବ୍ୟରେ ! ଉଦ୍ଧ. ବୈଦେହୀଶବିଳାସ । )

ବୋ—ବୈଦେ. ବି ( ଫା. ବୁ=ଗନ୍ଧ )—୧ । ବୁ; ଗନ୍ଧ—1. Smell.
Bo ୨ । ଦୁର୍ଗନ୍ଧ—2. Bad smell; offensive odour.

ବୋ ଲୁ ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ଅ—( ସମ୍ବୋଧନ ) ରେ—( interjection ) Oh !. [ ଦ୍ର—ବାମଣ୍ଡା ଓ ଗାଙ୍ଗପୁର ଅଞ୍ଚଳରେ 'ବୋ' ଓ ସମ୍ବଲପୁର ଓ ଓଡ଼ିଶାରେ 'ରେ' ସର୍ଗୀ ବା ମାତାର ବ୍ୟକ୍ତି ପ୍ରତି ବ୍ୟବହୃତ ହୁଏ । ] ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) କ୍ରି. ବିଣ—ମ— Too.

ବୋଆ—ଦେ. ବି—ବୁଆ ( ଦେଖ )
Bo-ā Bu-ā ( See )

ବୋଆଲ—ପ୍ରାଦେ. ( ବାଲେଶ୍ୱର ) ବି. ( ସଂ. ବୋଦାଲ; ତୁଲ. ବଂ.
Bo-āla ବোয়াল)--ବାଲିଆ (ମାଛ) (ଦେଖ)—Bāliā (fish) ( See )

ବୋଆଳୁ—ଦେ ବି ( ସଂ. ବହୁବାତ; ଉଦ୍ଦାଳକ )—ଗଉଭଣା ଗଛ—
Boālu Cordia Myxa (tree).
বহুয়ার, বোয়াবিঞা बहुआर, लसोड़ा, लहिसा
ମ. ଭୋକର ଫା. ସୁଚ୍ପିସ୍ତାନ୍ ତା ବଡ଼

ବୋଇ—ବୈଦେ. ବି ( ଫା. ବୁ=ଗନ୍ଧ )—ବୋ ( ଦେଖ )
Bo-i Bo ( See )

ବୋଇ(ହି)ତ—ଦେ. ବି ( ସଂ. ବୋହିତ୍ଥ; ବହିତ୍ର; ପ୍ରା. ବହିତ୍ତ )—
Boi(hi)ta ୧ । ନୌକା—1. Boat. ୨ । ସମୁଦ୍ରଗାମୀ ଜାହାଜ—
ଜାହାଜ 2. Ship; sea-going vessel. [ ଉ—
जहाज, बोहित ଭାସଇ ବୋଇତ ଯଥା ମାଲ ସମୁଦ୍ରରେ—ମଧୁସୂଦନ, ଛନ୍ଦମାଳା । ] ୩ । ବାଣିଜ୍ୟ ପୋତ—3. Merchantman; trading vessel. [ ଦ୍ର—ପୂର୍ବେ ଉତ୍କଳୀୟମାନେ ସମୁଦ୍ରଗାମୀ ପୋତରେ ବାଣିଜ୍ୟ କରୁଥିବାର ଅନେକ ପ୍ରମାଣ ଓଡ଼ିଆ କାବ୍ୟ ଓ ଗ୍ରନ୍ଥମାନଙ୍କରୁ ମିଳେ । ୧୦୦ ବର୍ଷ ପୂର୍ବେ ବାଲେଶ୍ୱର ବନ୍ଦରରୁ ଜାହାଜମାନ ଯିବା ଆସିବା କରୁଥିଲା । ଫକୀରମୋହନ କେତେଗୁଡ଼ିଏ

ଜାହାଜଅ ଶବ୍ଦ ତାଙ୍କର ଗଳ୍ପସ୍ୱଳ୍ପରେ ଲିପିବଦ୍ଧ କରି ଯାଇ ଅଛନ୍ତି । ] ୪ । ମୋଟା ଲୁଗା—4. Coarse cloth. ୫ । ମୋଟ ପଟ୍ଟବସ୍ତ୍ର—5. Thick silk cloth. [ ଉ—ଆପେ ପିନ୍ଧିଥାଏ କଲା ବୋଇତ ଉଢ଼େଇ ନେଉଛି ଭୂତ—ବାଯ୍ନାମା ଗୀତ । ]

**ବୋଇତ କୁଦ**—ଦେ. ବି—କୌଣସି କୌଣସି ନଦୀର ମୁହାଣରେ Boita kuda କୂଳ ଖୋଲା ହୋଇ କୂଳଆଡ଼କୁ ଲାଗି ଯେଉଁ କୁଦ ଦୁଇଟି କରାଯାଇ ଥାଏ ଓ ବୋଇତ ସମୁଦ୍ରରୁ ଆସି ଯହିଁର ମଝିରେ ରହେ--Dams made at the mouth of a river to shelter ships. [ଦ୍ର—ପ୍ରାଚୀ ନଦୀକୂଳରୁ ପ୍ରାୟ ½ ମାଇଲ ଦୂର ଯାଏଁ ଜମି ଖୋଲାଯାଇ, ତାହାର ଦୁଇ ପଟରେ ଦୁଇଟି ମାଟିକୁଦ କରାଯାଇଅଛି । ସେହି ସ୍ତୂପ ଦ୍ୱୟର ମଧ୍ୟସ୍ଥାନକୁ ଆସି ବୋଇତମାନ ରହୁଥିଲା । ତୁଳସୀପୁର ନାମକ ସ୍ଥାନର ନିକଟରେ ସେହିପରି ଗୋଟିଏ କୁଦରେ ଗୋଟିଏ ପ୍ରକାଣ୍ଡ ଲୁହା ଶିକୁଳି ପୋତା ଯାଇଅଛି । ବୋଧ ହୁଏ ଦଉଡ଼ିଦ୍ୱାରା ବୋଇତମାନ ସେହି ଶିକୁଳିରେ ଖଟାଇ ରଖା ଯାଉଥିଲା । ]

**ବୋଇତ ଖଟା(ଟେ)ଇବା**—ଦେ. କ୍ରି—ଜାହାଜକୁ କୌଣସି ସ୍ଥାନରେ Boita khatā(ṭe)ibā ନଙ୍ଗର କରିବା—To anchor a ship.

**ବୋଇତ ବନ୍ଦା(ନ୍ଦେ)ଇବା**—ଦେ. କ୍ରି—ବାଣିଜ୍ୟପୋତ ବ୍ୟବସାୟ Boita bandā(nde)ibā ନିମନ୍ତେ ପ୍ରଥମେ ଅନୁକୂଳ କରିଯିବା ସମୟରେ ଓ ବିଦେଶରୁ ଫେରିଆସିବା ସମୟରେ ବଣିକଙ୍କ ସ୍ତ୍ରୀମାନେ ସାତଦୀପ ଆଦି ଦ୍ୱାରା ବାଣିଜ୍ୟପୋତକୁ ବନ୍ଦାପନା କରିବା—To worship a ship by waving light before it while it is going out for a voyage or returning home after a voyage. [ ଦ୍ର—ବଣିକ ପରିବାରର ସ୍ତ୍ରୀମାନେ ଫୁଲ ଓ ସାତଦୀପ ନେଇ ବୋଇତକୁ ବନ୍ଦାପନା କରୁଥିବା କାହାଣୀରୁ ଜଣାଯାଏ । କାର୍ତ୍ତିକ ଅମାବାସ୍ୟାର ପରଦିନ ଅତି ପ୍ରତ୍ୟୁଷରୁ ଓଡ଼ିଆ ଗୃହର ସ୍ତ୍ରୀମାନେ ଅଗଣାରେ ମୁରୁଜରେ ଏବଂ ପୀଠରେ ବୋଇତର ବା ଡଙ୍ଗାର ଚିତ୍ର ଲେଖି ସେହି କଳ୍ପିତ ବୋଇତ ଉପରେ ପେଟରା, ବାକସ ଓ ବାସନ ଆଦି ଆଣି ଜମା କରି ବୋଇତକୁ ବନ୍ଦାନ୍ତି । ସମ୍ଭବତଃ ଏହି ଅନୁଷ୍ଠାନ ପ୍ରାଚୀନ ବଣିକମାନଙ୍କର ପ୍ରଥମ ସମୁଦ୍ରଯାତ୍ରାର ଅନୁକୂଳର ସ୍ମାରକ ଓ ଉକ୍ତ ଦିନ ଅର୍ଥାତ୍ ଠାକୁରାଣୀଯାତ୍ରା ଦିନ ସକାଳେ ସ୍ତ୍ରୀମାନେ ଅଗଣାରେ ମୁରୁଜ ଆଦିରେ ବୋଇତର ଚିତ୍ର କାଟି ତାହା ଉପରେ ବାକ୍ସ ଆଦି ରଖି ବନ୍ଦାପନା ଓ ଲକ୍ଷ୍ମୀପୂଜା କରନ୍ତି । ସମ୍ଭବତଃ ଏହା ବୋଇତ ଫେରି ଆସିବା ସମୟରେ କରାଯାଉଥିବା ବନ୍ଦାପନାର ସ୍ମାରକ । ]

**ବୋଇତ ବୁଡ଼ିବା**—ଦେ. ବି—୧ । ଜାହାଜ ବୁଡ଼ିଯିବା—1. The Boita burḍibā sinking of a ship; shipwreck. ୨ । ( ଲକ୍ଷଣାର୍ଥ ) ଜୀବିକା ନିର୍ବାହର ଉପାୟ ବା ଆଶା ଭାଙ୍ଗିଯିବା—2. ( figurative ) The breaking of one's hopes or livelihood

**ବୋଇତ ଭଙ୍ଗା ତୁ(ତୋ)ଠ**—ଦେ. ବି- ପୁରୀଜିଲ୍ଲା ଅଣ୍ଡଅସାହି ଗ୍ରାମ ନିକଟରେ ଭ Boita bhaṅgā tu(to)ṭha କୁଶଭଦ୍ରା ନଦୀର ତୁଠ—Name of a bathing place in the river Kuśabhadrā, said to be the site of a shipwreck. [ଦ୍ର—କିମ୍ବଦନ୍ତୀ ଅଛି ଯେ ପ୍ରାଚୀନ କାଳରେ ଏ ନଦୀରେ ବୋଇତ ଯାତାୟତ କରୁଥିଲା ଏବଂ ଏଠାରେ ଖଣ୍ଡିଏ ବୋଇତ ଭାଙ୍ଗି ବୁଡ଼ି ଯାଇଥିଲା—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

**ବୋଇତାଳ**—ଦେ. ବି ( ସଂ. ବହିତ୍ରପାଳ )—୧ । ଜାହାଜର ସ୍ୱାମୀ ବା Boitāḷa ମାଲିକ—1. The owner of a ship. ( ଉ—

ବୋଇତୁଆଳ, ବୋଇତୁଆଳ, } ଅନ୍ୟରୂପ
ବୈତାଳ, ବୈତ(ତୁ)ଆଳ

ବୋଇତୁଆଳ ଯେ ଦଶରଥ ନୃପତି—ଉପେ. ବୈଦେହୀଶବିଳାସ । ) ୨ । ପୋତଚାଳକ; କାପ୍ତାନ୍—2. The captain of a ship. ୩ । ପୋତବାହୀ ନାବିକ—3. Sailor. ( ଉ—ରତ୍ନରେ ଧରିପୂର୍ଣ୍ଣ ହୋଇଣ ବୋଇତେ । ଭାସୁଥିଲେ ବୋଇତାଳଙ୍କ ଯିବା ଘାଟେ—କୃଷ୍ଣସିଂହ. ମହାଭାରତ. ବନ । ) ୪ । ପୋତ ବଣିକ—4. A merchant who carries on trade in ships. ୫ । ବୋଇତାଳୁ ( ଦେଖ )—5. Boitāḷu ( See )

**ବୋଇତାଳ ଦେଉଳ**—ଦେ. ବି—ଭୁବନେଶ୍ୱରରେ କପାଳୀ ଠାକୁରାଣୀଙ୍କ Boitāḷa deuḷa ଦେଉଳ—A ship-shaped three-spired temple at Bhubaneśwara.

ବୋଇତଆଳ ଦେଉଳ }
ବୈତାଳ ଦେଉଳ } —ଅନ୍ୟରୂପ
ବୈତଆଳ ଦେଉଳ }

[ଦ୍ର—ଏହା ବୋଇତର ବା ଜାହାଜର ଆକାରରେ ନିର୍ମିତ ଓ ଜାହାଜର ୩ ଗୋଟି ମାସ୍ତୁଲ ପରି ଏହାର ୩ ଗୋଟି ଅର୍ଦ୍ଧଳା ଉପରେ ୩ ଗୋଟି ତ୍ରିଶୂଳ ଅଛି । ଏପରି ଗଢ଼ଣର ଦେଉଳ ଭୁବନେଶ୍ୱରରେ ଅନ୍ୟତ୍ର ନାହିଁ । ଏହା ମାନ୍ଦ୍ରାଜ ଅଞ୍ଚଳର ଶିଳ୍ପକଳା ଅନୁସାରେ ରଚିତ; ଏ ଦେଉଳରେ କପାଳେଶ୍ୱରୀ ଠାକୁରାଣୀ ଅଛନ୍ତି । ]

**ବୋଇତାଳ ପଖିଆ**—ଦେ. ବି—ଏକ ପ୍ରକାର ମୋଟ ନା ବଡ଼ ଧାନ—Boitāḷa pakhiā A species of coarse paddy. (ବୋଇତାଳ ଧାନ—ଅନ୍ୟରୂପ)

**ବୋଇତାଳୁ**—ଦେ. ବି. ( ସଂ. ବହିତ୍ର ଓ କର୍କାରୁ, ଏହା ପ୍ରଥମେ Boitāḷu ବିଦେଶରୁ ଏ ଦେଶକୁ ଜାହାଜ ବା ବୋଇତ ଦ୍ୱାରା ଆସିଥିବାରୁ ଏହି ନାମ )—ଏକ ପ୍ରକାର ମିଠା କଖାରୁ; ଲତା ଫଳ—Gourd; Curcurbita Maxima.

ସଂ କର୍କୋଟିକା, ବୃହତ୍ କୁଷ୍ମାଣ୍ଡ
বৈতাল, বিলাতি কুমড়া,
গোল কুমড়া, গুড় কুমড়া,
মিঠা কুমড়া, সূর্য্য কুমড়া,
জাহাজী কুমড়া
**कोला, लाल कुमरा,**
**साफुरु कुमरा**

[ଦ୍ର—ଏ ପାଚିଲେ ହଳଦିଆ ଦିଶେ, କାଳି ହୁଏ ଓ ତରକାରୀ କଲେ ମିଠା ଲାଗେ । ଏଥିର ଗଛ ବର୍ଷା ଦିନେ ଲାଗେ, ଫଳ ଗ୍ରୀଷ୍ମକାଳରେ ପାଚେ । ଏହା ବର୍ଷଜୀବୀ ଲତା । ]

(ବୋଇଛ ଅଛୁ, ବୋଇଛ କଣାରୁ, ବୈଡାଳ, ବୈଡାଳୁ, ବୈଢ କଣାରୁ—ଅନ୍ୟରୂପ)

**ବୋଇଲା**—ଦେ. ବି—କଥିତ ବଚନ—Word spoken. (ଉ—
Boilā ଆମ୍ଭର ବୋଇଲା ସେହ୍ନ, ତୁମ୍ଭଙ୍କୁ ହୋଇ ଏ । ପ୍ରାଚୀ. ନଳ ଚରିତ ।) ଦେ. କି ( ବୋଲିବା କ୍ରିୟାର ଅତୀତ କାଳ ତୃତୀୟ ପୁରୁଷ ଅନାଦରାର୍ଥକ [ସେ] କର୍ତ୍ତା ସଙ୍ଗେ ଲାଗିବା ରୂପ )—(ସେ) କହିଲା—(he or she) Said.
[ଦ୍ର—ବୋଲିବା କ୍ରିୟାର ଅତୀତ କାଳରେ ବୋଇଲା ଆଦି ସ୍ଥାନରେ ବିକଳ୍ପରେ ବୋଇଲା, ବୋଇଲେ, ବୋଇଲ, ବୋଇଲି, ବୋଇଲୁ ଆଦି ଆକାର ହୁଏ ।]

**ବୋଇଲେ**— ଦେ. ଅ—୧ । ପରିବର୍ତ୍ତରେ—1. Instead of.
Boile (ଉ—ଆଳ ବୋଇଲେ କାଲ ଶୁଣେ, ଘର ପୋଡ଼ ବୋଇଲେ ବଣ ପୋଡ଼ ଶୁଣେ—ଢଗ ।) ଦେ. ଅ—୨ । ଏବଂ; ଓ—2. And. (ଯଥା—ତାର ହାତ ବୋଇଲେ ଗୋଡ଼ କଥା କହୁଛି; ଅର୍ଥାତ୍ ତାର ହାତ ଓ ଗୋଡ଼ ଆଦି ସବୁ ଅଙ୍ଗ ଅସ୍ଥିର ।) ୩ । ବୋଲି—3. As; to speak of. (ଉ—ଏତେ ବଡ଼ ଗାଁଟା, କଣ୍ଡରା ବୋଇଲେ ବାଦଥା ଏକ୍ଲୁଟିଆ । ଫକୀରମୋହନ. ଗଳ୍ପସ୍ୱଳ୍ପ) ଦେ. କି (ବୋଲିବା କ୍ରିୟାର ଅତୀତକାଳ ଆଦରାର୍ଥକ [ସେ, ସେମାନେ, ଆପଣମାନେ] କର୍ତ୍ତା ପରେ ବ୍ୟବହୃତ ଆକାର)—କହିଲେ—(he, they) Said.

**ବୋଉ**—ଦେ. ବି. ସ୍ତ୍ରୀ ( ସ. ବଧୂ )—ବୋହୂ ( ଦେଖ )
Bou बौ **बहू** Bohū ( See )
ପ୍ରାଦେ. (କଟକ, ପୁରୀ) ବି—ମାଆ—Mother.
[ଦ୍ର—ସାଧାରଣତଃ ପୁରୀ ଓ କଟକ ଜିଲ୍ଲାର ବ୍ରାହ୍ମଣ, କେତେକ କରଣ ଓ ଖଣ୍ଡାୟତ ବା କ୍ଷତ୍ରିୟ ପରିବାରରେ ମାତାଙ୍କୁ 'ବୋଉ' ଓ ପିତାମହୀଙ୍କୁ 'ମା' ବୋଲି ଡାକନ୍ତି । ଶୂଦ୍ରମାନେ ମାତାଙ୍କୁ 'ମା' ଓ ପିତାମହୀଙ୍କୁ 'ବୁଢ଼ୀ ମା' ବା 'ଆଈ' ବୋଲି ଡାକନ୍ତି ।]

**ବୋଉ ଉଲୁଗୁଣୀ**—ଦେ. ବିଣ. ସ୍ତ୍ରୀ—ଯେଉଁ ଶାଶୂ କିମ୍ବା ନଣନ୍ଦ
Bou ulugunī ବୋହୂକୁ ସର୍ବଦା ଉଲୁଗୁଣା ବା ଗଞ୍ଜଣା ଦଅନ୍ତି—
बउँकी टकी (a mother-in-law or husband's sister) Very oppressive or sarcastic towards the bride.
(ବୋଉ କଣ୍ଟକା, ବୋଉ କଣ୍ଟା, ବୋଉ ଗଞ୍ଜା, ବୋଉ ଗଞ୍ଜଣୀ, ବୋଉ ଜଞ୍ଜାଳୀ, ବୋଉ ଖ(ଖୋ)ଖୋଇ, ବୋଉଉଖେଇ—ଅନ୍ୟରୂପ)

**ବୋଉ କଥା କହ**—ପ୍ରାଦେ. (ମେଦିନୀପୁର) ବି. (ଭୁଲ ବି. ବଉ କଥା
Bou kathā kaha କଓ)— ଶାଖାଶ୍ରୟୀ ବର୍ଗର କୋକିଳ ଜାତୀୟ ପକ୍ଷୀ—The Indian cuckoo; Cuclus Miscropterus. [ଦ୍ର—ଏହା ୧୬।୧୨ ଅଙ୍ଗୁଳ ଦୀର୍ଘ, ପାଉଁଶିଆ ବର୍ଣ୍ଣ, କୋକିଳ ପରି ପରଭୃତ; ଗୋଡ଼ରେ ପର ଅଛି; ମୁଣ୍ଡରେ ଶିଖା ନାହିଁ; ପକ୍ଷ ଅପେକ୍ଷା ପୁଚ୍ଛ ଶ୍ରେଷ୍ଠ । ଏହାର ରବ 'ବୋଉ କଥା କହ' ଧ୍ୱନି ପରି ଶୁଣା ଯିବାରୁ ଏହି ନାମ ।]

**ବୋଉତ(ତୁ)**—ପ୍ରାଦେ. (ଗଞ୍ଜାମ) ବିଣ. (ସ. ବହୁ)—ବହୁତ—
Bout(tu) Much; many.

**ବୋଉଲ**—ପ୍ରାଦେ. (ଯାଜପୁର) ବି—ବଉଳ (ଦେଖ)
Boula Baula (See)

**ବୋଉଲୋ !**—ଦେ. ଅ—ହଠାତ୍ ଉପସ୍ଥିତ ବିପଦ ବା ଭୟ ସମୟରେ
Boulo ! କରାଯିବା ଆର୍ତ୍ତ ସ୍ୱର—(Interjection) Excla-
(ବୋଉଲୋ ବୋଉ !—ଅନ୍ୟରୂପ) mation uttered on account of sudden fear.
ଓମା !

**ବୋଁ**—ଦେ. ଅ (ଧ୍ୱନ୍ୟନୁକରଣ)—ଭୋଁ; ଭୋଁ ଭୋଁ ଶବ୍ଦ; ଶଙ୍ଖ ଧ୍ମିବା
Boṅ ପରି ଶବ୍ଦ—Sound like that of blowing a
बोँ conch.

**ବୋକ**—ଦେ. ବି—ଚୁମ୍ବ; ଚୁମ୍ବନ—Kiss.
Boka (ଉ—ଆଉଁସିଲା କୁକୁର ମୁହଁରେ ବୋକ—ଢଗ ।)

**ବୋକଚା**—ବୈଦେ. ବି. (ତୁର୍କୀ. ବୁକ୍ଚା)—ଲୁଗାପଟା ଆଦିର ବଡ଼ ପୁଡ଼ା
Bokachā ବା ଗଣ୍ଠିରି; ଗଣ୍ଠିରି—A large packet or
बुचका **बुकचा** bundle of clothes etc.
ବୁକୁ(କ)ଚା } ଅନ୍ୟରୂପ [ଦ୍ର—ପୋଟଳା, ପୁଡ଼ା, ବୁଜୁଲା, ବୋକଚା,
ବୁକଚା } ଗଣ୍ଠି, ଗଣ୍ଠିରି, ବୋନ୍ଦ, ଗାଣ୍ଡି, ଏମାନଙ୍କ ଅର୍ଥ, କନାର ପରି ଗୁଡ଼ାଏ ଏକାଠି ବନ୍ଧା ହୋଇ କରାଯାଇଥିବା ପୁଡ଼ା, କିନ୍ତୁ ଏମାନଙ୍କ ଆକାର ଭିନ୍ନ ଭିନ୍ନ ।]

**ବୋକଚା କରିବା**—ଦେ. କ୍ରି—ସବୁ ପଦାର୍ଥକୁ ବାନ୍ଧି ଗୋଟିଏ ଗଣ୍ଠିରି
Bokachā kribā କରିବା—To make or tie up
बुचका बाँधना **बुकचा बाँधना** things into a big packet
(ବୋକଚା ବାନ୍ଧିବା—ଅନ୍ୟରୂପ)

**ବୋକଚା ପତର(ପାତି)**—ଦେ. ବି. (ଅନର୍ଥକ ଦ୍ୱିତୀୟ ସହଚର ଶବ୍ଦ)—
Bokhachā patara(pāti) ୧ । ବଡ଼ ଓ ସାନ ବୋକଚାମାନ—
बोचका बोचकी 1. Big and small parcels, ୨ । ଲୁଗା ପଟା
**बुकचा बुकची** —2. Bag and baggage.

**ବୋକଚା ବୁହା**—ଦେ.ବି—୧। ଯେ ଅନ୍ୟର ବୋକଚା ବୁହେ—1. One
Bokachā buhā who carries a package or baggage; baggage-carrier. ୨ । ଯେଉଁ ଭୃତ୍ୟ ପଥିକଙ୍କ ପ୍ରଭୁଙ୍କର ଲୁଗାପଟାର ବୋକଚା ବହନ କରି ସାଙ୍ଗରେ ଯାଏ—A. A servant who accompanies the master & carries the master's bag and baggage. [ଦ୍ର—ବୋକଚାବୁହା ଭୃତ୍ୟର ପ୍ରଭୁଙ୍କଠାରୁ ନିକୃଷ୍ଟ କିଆ, ଏଥିପାଇଁ ଅତି ଓଲ୍ଲୁ ବ୍ୟକ୍ତିକୁ କହନ୍ତି 'ଓଲୁଙ୍କ ବୋକଚାବୁହା' । କିମ୍ବା ଅନେକ ବ୍ୟକ୍ତି ଏକ ସଙ୍ଗରେ ଯାଉଥିଲେ ସମସ୍ତଙ୍କଠାରୁ ନିକୃଷ୍ଟ କିଆ ଲୋକ ଉପରେ ଅନ୍ୟ ସମସ୍ତଙ୍କର ବୋକଚା ବୋହିବାର ଭାର ପଡ଼େ, ଏଥିପାଇଁ ଏ ପ୍ରବଚନର ସୃଷ୍ଟି ।]

**ବୋକଚାବୁହା ବେଠି**—ପ୍ରାଦେ (ଗଡ଼ଜାତ) ବି—ଗଡ଼ଜାତମାନଙ୍କରେ
Bokachābuhā bethi ରଜାଦେଶମତେ ବିନା ମଜୁରିରେ ରାଜକର୍ମଚାରୀ ଆଦିଙ୍କ ବୋକଚା ବୋହି ନେବାର ରୀତି—The practice of carrying the baggage

without any wages provalent in some native States.

**ବୋକ(କୁ)ଚି**—ଦେ. ବି—ଓଡିଆ ବୋକଚ; ପୁଟୁଳି—A small package
Boka(ku)chi ବୁଚକୀ **बुकची** or parcel.

**ବୋକ ଦେବା**—ଦେ. କ୍ରି—ଚୁମ୍ବନ କରିବା; ଚୁମ୍ବିବା—To give a
Boka debā ଚୁମ ଖାଓଆ **चुमा लेना** kiss; to kiss.

**ବୋକରା**—ଗ୍ରାଦେ (ଉତ୍ତରାଞ୍ଚଳ) ବି—(ସଂ. ବର୍କର; ଭୁଲ ହି. ବେକରା)—
Bokarā ଅଣ୍ଡିରା ଛେଳି—He-goat.

**ବୋ କରିବା**—ଦେ. କ୍ରି—ଗନ୍ଧାଇବା; ଦୁର୍ଗନ୍ଧ କରିବା—To emit
Bo karibā ବୁ କରା **बू करना** an offensive smell.
(ବୋଇ କରିବା, ବୋ ଦେବା, ବୋଇ ଦେବା —ଅନ୍ୟରୂପ)

**ବୋକା**—ଦେ. ବିଣ. ପୁଂ (ସଂ ବର୍କର; ଗ୍ରା. ବୋକଡ଼=ଛାଗଳ)—
Bokā ୧। ବକା; ବଗା; ମୂଢ଼; ଓଲ୍ଲୁ; ନିର୍ବୋଧ—1. Stupid;
(ବୋକୀ—ସ୍ତ୍ରୀ) foolish; silly. ୨। ଅର୍ଦ୍ଧପାଗଳ—2. Idiotic.
ବୋକା ୩। ମୂକ—3. Dumb. ଗ୍ରାଦେ (ସମ୍ବଲପୁର) ବି.
**बुड् बक्, बोदा** (ଭୁଲ. ହି. ବେକରା)—ବୁକା; ବୋଦା; ବଳି
ଦିଆଯିବା ମେଣ୍ଢା ବା ଛେଳି—A sheep or goat used as a victim for sacrifice.

**ବୋକାଟି(ଳି)ଆ**—ଦେ. ବିଣ—୧। ଅଳ୍ପ ବୋକା; ନିର୍ବୋଧ—
Bokāṭi(ḷi)ā 1. Foolish (less foolish than a Bokā). ଅର୍ଦ୍ଧ ପାଗଳ—2. Idiotic.

**ବୋକା ପଣ**—ଦେ. ବି—ନିର୍ବୋଧତା—Foolishness; folly;
Bokā paṇa ବୋକାମି **नादानी** stupidity.
(ବୋକାପଣିଆ ବୋକାମି—ଅନ୍ୟରୂପ)

**ବୋକାରାମ**—ଦେ. ବି ଓ ବିଣ (ଗାଳି)—ନିର୍ବୋଧଙ୍କ ମଧ୍ୟରେ ପ୍ରଥମ
Bokārām ସ୍ଥାନୀୟ; ଅତି ନିର୍ବୋଧ—A fool of fools;
ବୋକାରାମ very foolish (person).

**ବୋଝ**—ଦେ. ବି (ସଂ. ବହ; ପଦାର୍ଥମାନ ଏକତ୍ର ବନ୍ଧା ହୋଇଥିବାରୁ)—
Bojha ୧। ଭାର—1. Burden. ୨। ମନୁଷ୍ୟ ମୁଣ୍ଡରେ
ବୋଝା, ବୋଝା ବୋହିବା ବନ୍ଧା ବସ୍ତୁରାଶି—2. A load carried
बोझ on the head. ୩। ଯାନ ବାହନାଦିଙ୍କ ଉପରେ ବାହିତ
ହେବା ଭାର 3. A load carried on animals or conveyances. ୪। ଭାର; ଗୁରୁ ଦାୟିତ୍ୱ—4. Heavy responsibility. ୫। ଗୁରୁ ଭାର—5. A heavy weight. ୬। ଖେଳାଳିଙ୍କ ମଧ୍ୟରୁ ଏକଦଳର ପରାଜୟସୂଚକ ଥର—6. A defeat sustained by one of the two contending parties in a game. ୭।
तत्व ବିଶେଷ ଘଟଣା ଉପଲକ୍ଷରେ ବନ୍ଧୁ ଘରକୁ ପଠାଯିବା ବେଭାର
तेवार ପଦାର୍ଥମାନ ଏକତ୍ର କରାଯାଇଥିବା ଗଣ୍ଠିରି (ଏହାକୁ ସାଧାରଣତଃ ଭାରରେ ମୁଣ୍ଡାଇ ବା ପିଠିରେ ଗଣ୍ଠିରି କରି ବନ୍ଧୁ ଘରକୁ ନିଏ)—7. A load made up of presents sent to a relative on special occasions. [ ଦ୍ର—ଆମ ଦେଶରେ ଭିନ୍ନ ଭିନ୍ନ ସମୟରେ ପଠାଯାଉଥିବା ବୋଝର ଭିନ୍ନ ଭିନ୍ନ ନାମ ଅଛି । ଯଥା—କୁମାରପୂର୍ଣ୍ଣିମା ବୋଝ, ସାବିତ୍ରୀ ଅମାବାସ୍ୟା ବୋଝ, ଦୁତିଆଓଷା ବୋଝ, ଫଳଖିଆ ବୋଝ, ଶଙ୍ଖୁଳା ବୋଝ, ଚତୁର୍ଥୀଆ ବୋଝ, ଅଷ୍ଟମଙ୍ଗଳା ବୋଝ, ନୂଆଖିଆ ବୋଝ, ବରଷିବୋଝ ଇତ୍ୟାଦି । ] ୮। କାହୁଙ୍କର ଦୁଇ ମୁଣ୍ଡରେ ଝୁଲାଯାଇଥିବା ୨ଟି ପୋଟଳା ମଧ୍ୟରୁ ଗୋଟିଏ ଅଙ୍ଗ—8. One of the two packages suspended from both ends of a yoke carried on man's shoulder. [ ଦ୍ର—ବୋଝକୁ ଜଣେ ମନୁଷ୍ୟ ମୁଣ୍ଡରେ ମୁଣ୍ଡାଇ କରି ନିଏ; ଭାରକୁ ବାହୁଙ୍ଗୀଦ୍ୱାରା କାନ୍ଧରେ ଓହୋଳାଇ କରି ନିଏ, ବୋକଚକୁ ପିଠିରେ ପକାଇ କରି ନିଏ । ପୁଟୁଳାକୁ କାଖରେ ଯାକିକରି ନିଏ; ପୋଟଳାକୁ ହାତରେ ଧରିକରି ନିଏ ଓ ଟାଙ୍ଗିଆକୁ କାନ୍ଧର ଦୁଇ ପାଖରେ ଲମ୍ବାଇ କରି ନିଏ ।]

**ବୋଝ ଓହ୍ଲା(ହ୍ଲେ)ଇବା**—ଦେ. କ୍ରି—ଆପଣା ମୁଣ୍ଡରୁ ବା ପର
Bojha ohlā(hle)ibā ମୁଣ୍ଡରୁ ବୋଝକୁ ମୁକ୍ତ କରିବା—
ବୋଝା ନାମାନ **बोझउतारना** To unload; to discharge a load. ଦେ. ବି—ବୋଝ ଖଲାସ (ଦେଖ)
(ବୋଝ ଉତାରିବା—ଅନ୍ୟରୂପ) Bojha khalāsa (See).

**ବୋଝ ଖଲାସ(ସି)**—ଦେ. ବି—୧। ବହନ କରୁଥିବା ବୋଝରୁ
Bojha khalāsa (si) ମୁକ୍ତ ହେବା; ଭାର ମୋଚନ—1. Unloading; discharge of a load. ୨। ଗୁରୁଦାୟିତ୍ୱରୁ କଷ୍ଟ ଭିନ୍ନ—
(ବୋଝଓହ୍ଲା (ଉତୁରା), ବୋଝ ଓହ୍ଲିବା, ବୋଝଖସିବା—ଅନ୍ୟରୂପ)
ବୋଝା ଖାଲାସ **बोझखलासी** 2. Release from a heavy responsibility.

**ବୋଝ ଖେଞ୍ଚିବା**—ଦେ. କ୍ରି—୧। ନିର୍ଦ୍ଦିଷ୍ଟ ବୋଝକୁ ବହନ କରିବାକୁ
Bojha khenchibā ସମର୍ଥ ହେବା—1. To be able to carry a load, to sustain a load.
(ବୋଝକୁ ଶକିବା, ବୋଝଉଠା(ଠେ)ଇବା—ଅନ୍ୟରୂପ)
ବୋଝାଖାଁଚା **बोझखींचना** ୨। କୌଣସି କଠିନ କାର୍ଯ୍ୟ କରିବାକୁ ସମର୍ଥ ହେବା—2. To be able to accomplish a difficult task.

**ବୋଝ ଘେ(ଘୋ)ନି ଆସିବା**—ଦେ. କ୍ରି—ପୁଅଣୀ ହୋଇ ଆସିବା;
Bojha gho(ghi)ni āsibā (ବାଲ୍ୟପ୍ରାପ୍ତା ବଧୂ) ଋତୁମତୀ ହେଲାପରେ
(ବୋଝ ଆଣି ଆସିବା—ଅନ୍ୟରୂପ) ସ୍ୱାମୀ ଘରକୁ ବୋଝ ଭାର ସହିତ ପ୍ରଥମଥର ଆସିବା; ପହିଲିପାଳି ଆସିବା—To come to the husband's house for the first time after attaining puberty (said of a girl married before puberty).

**ବୋଝ ଗୁପିବା**—ଦେ. କ୍ରି—୧। କୌଣସି ବ୍ୟକ୍ତିର ମୁଣ୍ଡ ଉପରେ
Bojha chāpibā ଗୁରୁ ଭାର ଅର୍ପଣ କରିବା—
(ବୋଝ ଲଦିବା—ଅନ୍ୟରୂପ) 1. To put a heavy
ବୋଝା ଚାପାନ **बोझ लादना** load on a person.
୨। କୌଣସି ବ୍ୟକ୍ତି ଉପରେ ଗୁରୁ ଦାୟିତ୍ୱ ଅର୍ପଣ କରିବା—2. To put a heavy responsibility on the shoulders of a person.

**ବୋଝ ଦିଆ**—ପ୍ରାଦେ ( ବାଲେଶ୍ୱର ) ବି—ଏକପ୍ରକାର ଖେଳ—
Bojha diā A kind of game.

**ବୋଝ ଦେବା**—ଦେ. କ୍ରି—୧ । କୌଣସି ଖେଳାଳିକୁ ଖେଳରେ
Bojha debā ପରାଜିତ କରିବା—1. To defeat an
হারান **हराना** antagonist in a game.
তত্ত্ব পাঠান **तेभार भेजना** ୨ । କୌଣସି ବନ୍ଧୁର ଘରକୁ ଭେଟିଭାର
ପଠାଇବା—2. To send a present to the house of a relative.

**ବୋଝ ଧରିବା**—ଦେ. ବି ( କୌଣସି ଶଗଡ଼ ବା ଡଙ୍ଗା ) ନିର୍ଦ୍ଦିଷ୍ଟ
Bojha dharibā ପରିମିତ ସର୍ବୋଚ୍ଚ ବୋଝ ବହିବାକୁ ସମର୍ଥ
ବୋଝ ସମ୍ଭା(ମ୍ଭେ)ଳିବା } —ଅନ୍ୟରୂପ ହେବା—To have a
ବୋଝ ସମ୍ଭାଳିବା } carrying capacity
বোঝাসামলান of so much load.

**ବୋଝ ନେବା**—ଦେ. କ୍ରି—୧ । ବୋଝ ବହନ କରିବା—1. To
Bojha nebā carry a load. ୨ । ଖେଳରେ ପରାସ୍ତ
বোঝা লওয়া ହେବା—2. To sustain defeat in a game.

**ବୋଝ ବଳା(ଳେ)ଇବା**—ଦେ. ବି—(ଜଣେ ଲୋକ ବା ଗୋଟିଏ ଗାଡ଼ି
Bojha balā(le)ibā ବା ଡଙ୍ଗା) ଯେତିକି ଭାର ନେବା ପାଇଁ
ବୋଝ ବଳପଡ଼ିବା } ସମର୍ଥ, ତାହିଁରୁ ବୋଝ ବେଶି
ବୋଝ ବଳିବା } —ଅନ୍ୟରୂପ ହୋଇଯିବା—Overloading; state of being
ବୋଝ ବଢ଼ିବା } overladen.

**ବୋଝ ବୁଝା**—ପ୍ରାଦେ (ସମ୍ବଲପୁର) ବି (ସହରର ଶବ୍ଦ)—ବୋଝ ଆଦି;
Bojha bujhā ବୋଝମାନ—Loads etc.

**ବୋଝ ବୁହା**—ଦେ. ବି—ବୋଝ ବହନ କରିବା—The carrying
Bojha buhā of a load. ବିଣ—ବୋଝବୁହାଳି (ଦେଖ)
Bojhabuhāli (See).

**ବୋଝ ବୁହା(ହେ)ଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଦ୍ୱାରା ବୋଝକୁ
Bojha buhā(he)ibā ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଅଇବା—
( ବୋଝ ବୁହାଇବା—ଅନ୍ୟରୂପ ) To cause a load to be carried by another person from one place to another.

**ବୋଝ ବୁହାଳି**—ଦେ. ବିଣ ଓ ବିଣ—ଭାରବାହକ—Carrying
Bojha buhāli loads; carrier of loads.
বোঝারী **कुली**

**ବୋଝ ବେଭାର**—ଦେ. ବି ( ସହରର ଶବ୍ଦ )—ଉପଢୌକନ ସମ୍ଭାର;
Bojha bebhāra ବନ୍ଧୁ ଘରକୁ ବୋଝ ଓ ଭାରରେ
তত্ত্ব **तेभार** ପଠାଯିବା ଉପଢୌକନ—Extensive presents sent to the house of a relative.

**ବୋଝ ବୋକଚା**—ଦେ. ବି (ସହରର ଶବ୍ଦ)—୧ । ମନୁଷ୍ୟ ମୁଣ୍ଡରେ
Bojha bokachā ବହନ କରିବା ବୋଝ ଓ ପିଠିରେ ନେବା
ବୋକଚା—1. Loads; luggage. ୨ । ଗୁରୁ ଭାର—
2. Heavy weight.

**ବୋଝ ବୋଝ**—ଦେ. କ୍ରି. ବିଣ—ଅନେକଗୁଡ଼ିଏ ବୋଝ ଦ୍ୱାରା
Bojha bojha ( ପଠାଯିବା ପଦାର୍ଥ )—By loads.

ବୋଝ ବୋଝ ହୋଇ } ଅନ୍ୟରୂପ— ବିଣ. ବହୁସଂଖ୍ୟକ ବୋଝ
ବୋଝବା (ଲୁ)ବୋଝ } ବିଶିଷ୍ଟ—Consisting of many loads.

**ବୋଝ ବୋ(ବ)ହିବା**—ଦେ. କ୍ରି—ବୋଝକୁ ବହନ କରିବା—
Bojha bo(ba)hibā To carry a load.
বোঝা বহা **बोझासीचलेजा**

**ବୋଝ ଭାର**—ଦେ. ବି ସହରର ଶବ୍ଦ)—୧ । ବୋଝବେଭାର (ଦେଖ)
Bojha bhāra 1. Bojha bebhāra (See).
୨ । ବୋଝ ବୋକଚା ( ଦେଖ )—
2. Bojha bokachā (See)
( ଉ—ଅଭି ସମରଥ ଯେବଣ ଲୋକ, ବୋଝ ଭାର ବୋହି
ଲୋଡ଼ି ତା ବେକ—ଭଗ । )

**ବୋଝ ମୁଣ୍ଡା(ଣ୍ଡେ)ଇବା**—ଦେ.କ୍ରି—ମୁଣ୍ଡରେ ବହନ କରି ବୋଝ ନେବା-
Bojha muṇḍā(ṇḍe)ibā To carry a load on the
মাথায় বোঝা লওয়া **शीरपर बोझ लेना** head.
(ଉ—ମୁଣ୍ଡାଇ ଇନ୍ଧନ-ବୋଝ କାହିଁ ଅବା ବନ୍ଧୁ, ଗୁଞ୍ଜାମାଳେ
ବିମଣ୍ଡିତା କରିଚ ସୁନ୍ଦରୀ, ଅସୁନ୍ଦରୀ ଦଳେ ଦଳେ ଅଳାପି
ମଧୁରେ—ରାଧାନାଥ. ମହାଯାତ୍ରା । )

**ବୋଝା(ଝେ)ଇ**—ଦେ. ବି—୧ । ଭାରସ୍ଥାପନ; କୌଣସି ବ୍ୟକ୍ତି, ବା
Bojhā(jhe)i ଜନ୍ତୁ ବା ଯାନ ଉପରେ ଭାର ଲଦିବା—
বোঝাই 1. Loading. ୨ । ଭାର ବହନ କରିବାର କ୍ଷମତା—
2. Carrying capacity. ବିଣ—ଯାହା ଉପରେ
ଭାର ଲଦା ଯାଇଥାଏ—Loaded; laden. (ଯଥା—
ବୋଝାଇ ଗାଡ଼ି) ।

**ବୋଝାଇ କରିବା**—ଦେ. କ୍ରି—ଡଙ୍ଗା,ରେଲଗାଡ଼ି,ଶଗଡ଼ ଆଦିରେ ବୁହା
Bojhāi karibā ହେବାପାଇଁ ଭାର ଲଦିବା—To load a
বোঝাই করা **बोझलादना** cart or boat etc.

**ବୋଝାଇବା**—ଦେ. କ୍ରି—ବୋଝ ମୁଣ୍ଡରେ ରଖି ବହନ କରିବା—
Bojhāibā To carry a load on the head.
বোঝাবহা **बोझउठाना**

**ବୋଝିଆ**—ଦେ. ବି. ପୁଂ—୧ । ମୁଣ୍ଡରେ ବୋଝ ବୋହିବା ବ୍ୟକ୍ତି;
Bojhiā ମୁଣ୍ଡ ବୋଝିଆ—1. Carrier of loads by the
(ବୋଝିଆଣୀ—ସ୍ତ୍ରୀ) head. ୨ । ବୋଝବୁହା ଭୃତ୍ୟ ବା ମୂଲିଆ-
বোঝিআ; মুটে 2. Porter; cooly. ୩ । (ଘୃଣାର୍ଥକ) ନୀଚ
**बोझिया; कुली** ଭୃତ୍ୟ—3. A menial servant. ୪ ।
ଖେଳରେ ହାରିଥିବା ବ୍ୟକ୍ତି—4. One who has
sustained defeat in a game. [ଦ୍ର—ଯେ
କାନ୍ଧରେ ଭାର ବହେ ତାକୁ ଭାରୁଆ, ଯେ ମୁଣ୍ଡରେ ବୋଝ
ବୁହେ ତାକୁ ବୋଝିଆ, ଯେ ଶଗଡ଼ରେ ଜିନସ ବହେ ସେ
ତାକୁ ଶଗଡ଼ିଆ ବା ଗାଡ଼ିଆଳ କହନ୍ତି ।]

**ବୋଝେ**—ଦେ. ବିଣ. ଓ କ୍ରି. ବିଣ—୧ । (ମନୁଷ୍ୟର, ଗାଡ଼ିର, ଡଙ୍ଗା-
Bojhe ଆଦିର) ଏକ ବୋଝ ପରିମିତ—1. One full load of.
୨ । ଗୋଟିଏ ବୋଝ ମାତ୍ର—2. One load only of.
୩ । ବହୁତ; ବିଶେଷ—3. Much; too much.
(ଯଥା—ଏ କାମ୍‌ଟା ବୋଝେ ଭାର ହୋଇଅଛି) ।

ବୋଟ୍—ବୈଦେ. ବି (ଇଂ; ତୁଳ. ସଂ. ପୋତ) —ଆଧୁନିକ ପ୍ରଣାଳୀରେ ନିର୍ମିତ ନୌକା—A modern boat. [ ଦ୍ର—ଭିନ୍ନ ଭିନ୍ନ ପ୍ରକାର ବୋଟର ଭିନ୍ନ ଭିନ୍ନ ନାମ ଦିଆ ଯାଇଅଛି । ଯଥା— ଅଗ୍ନିବୋଟ୍, ଗଧା ବା ମାଲବୋଟ୍, ଜାଲିବୋଟ୍, ଟଣାବୋଟ୍, ପାନ୍‌ସିବୋଟ୍, ବାଉବୋଟ୍, ମଟରବୋଟ୍, ପାଲବୋଟ୍, ଲାଇଫ୍‌ବୋଟ୍, ହାଉସ୍‌ବୋଟ୍, ଇତ୍ୟାଦି । ] ପ୍ରାଦେ. (ଗଞ୍ଜାମ) ଗୋବ—Knob; the stamping of a hot stump on an affected limb.

Boṭ বোট बोट

ବୋଟ୍ ଚଣା—ପ୍ରାଦେ. (ଗଡ଼ଜାତ) ବି—ବୁଟ—Chick pea.

Boṭ chaṇā

ବୋଟ୍ ଟଣା—ଦେ. ବି—ବୋଟକୁ ଦଉଡ଼ିଦ୍ୱାରା ଟାଣିବା—Towing of a boat.

Boṭ ṭaṇā বোটটানা बोटखींचलेना

ବୋଟ୍ ପାଗଡ଼—ଦେ. ବି—ବୋଟକୁ ଟାଣିବା ମୋଟ ଦଉଡ଼ି—Stout towing ropes for boats.

Boṭ pāgarḍa নৌকাটানা দড়ী बोट खींचनेका रस्सी

ବୋଟ୍ ବସାଇବା—ପ୍ରାଦେ (ଗଞ୍ଜାମ) କ୍ରି—ଗୋବ ବସାଇବା—To fix a knob; to press a hot stump on an affected limb.

Boṭ basāibā

ବୋଟା—ସଂ. ବି ସ୍ତ୍ରୀ—୧ । ଦାସୀ (ହ୍ରି. ଶ.)—1. Maid-servant. ୨ । ମୂଲିଆଣୀ (ହ୍ରି. ଶ)—2 A female day-labourer. ୩ । ଧାତ୍ରୀ (ହ୍ରି. ଶ.)—3 A nurse.

Boṭā

ବୋଡ଼୍—ବୈଦେ. ବି (ଇଂ. ବୋର୍ଡ୍)—୧ । ଉପରେ କଳା ବା ଅନ୍ୟ ରଙ୍ଗ ବୋଳାଯାଇଥିବା କାଠର ପଟା; ବ୍ଲାକ୍‌ବୋଡ଼୍—1. A coloured board; a black board. ୨ । ମନ୍ତ୍ରଣା ସଭା ସମିତି—2. A board of councillors or other functionaries. ୩ । ବହୁ ସ୍ତର କାଗଜର ମୋଟା ପଟା; ପେଷ୍ଟବୋଡ଼୍; ପିସ୍‌ବୋଡ଼୍—3. Paste board. ୪ । ବିଲାତରେ ଥିବା ସମ୍ରାଟଙ୍କ ପ୍ରଧାନତମ ବିଚାରାଳୟ—4. Judicial Board of the Privy Council. ୫ । ପ୍ରଦେଶର ସର୍ବୋଚ୍ଚ ସରକାରୀ ଶାସନ ବା ରାଜସ୍ୱ ମଣ୍ଡଳୀ; ରେଭନ୍ୟୁ ବୋର୍ଡ଼—5. The highest executive or revenue Board of a Province. ୬ । ସମିତି—6. Board; an association. (ଯଥା—ଡିଷ୍ଟ୍ରିକ୍ଟବୋଡ଼୍, ଲୋକାଲବୋଡ଼୍, ୟୁନିଅନବୋର୍ଡ଼ । )

Borḍ (ବୋର୍ଡ୍—ଅନ୍ୟରୂପ) বোড় बोरड; बोर्ड

ବୋର୍ଡ଼ ଅଫ୍ ଡାଇରେକ୍ଟର୍ସ—ବୈଦେ. ବି (ଇଂ)—୧ । ଯୌଥ କମ୍ପାନୀର ପରିଚାଳକ ସମିତି—1. Board of Directors. ୨ । ସାବେକ ଇଷ୍ଟ୍ ଇଣ୍ଡିଆ କମ୍ପାନୀର ପରିଚାଳକ ସମିତି—2. Board of Directors of the East India Company. [ ଦ୍ର—ଏହିପରି ବୋଡ଼୍ ଅଫ୍ ରେଭନ୍ୟୁ, ବୋଡ଼୍ ଅଫ୍ ଏକଜାମିନର୍ସ, ବୋଡ଼୍ ଅଫ୍ ଟ୍ରଷ୍ଟୀଜ୍, ବୋଡ଼୍ ଅଫ୍ ସର୍ଜନସ୍, ବୋଡ଼୍ ଅଫ୍ ଟ୍ରେଡ୍ ଆଦି ଶବ୍ଦମାନ ବ୍ୟବହୃତ ହୁଏ । ]

Borḍ oph ḍāirekṭars

ବୋଡ଼—ପ୍ରାଦେ. ( ଗଞ୍ଜାମ ) ବି—ଗଞ୍ଜାମ ଜିଲ୍ଲାର ଶୂଦ୍ରବିଶେଷ—A sub-caste Śudras in the district of Ganjam. ସଂ. ବି—ଗୁଆ ( ହ୍ରି. ଶବ୍ଦସାଗର)—Betel-nut.

Borḍa

ବୋଡ଼ା—ଦେ. ବି ( ସଂ. ବୋଣ୍ଡ୍; ଅନ୍ୟ ସଂ. ନାମ ଗୋନସ)—ଗୋନସ ସର୍ପ; ବିଷଧର ସର୍ପବିଶେଷ—Vipor. [ଦ୍ର—ଏମାନଙ୍କର ଦେହ ୨।୩ ହାତ ଲମ୍ବ ଓ ଲାଙ୍ଗୁଡ଼ ୮।୧୦ ଅଙ୍ଗୁଳ ଲମ୍ବ ଓ ଦେହ ଅପେକ୍ଷା ସରୁ । ଲୋକେ ବିଶ୍ୱାସ କରନ୍ତି ଯେ ଏ ସାପ ପ୍ରତିବର୍ଷ କ୍ରମେ କ୍ରମେ ଲାଙ୍ଗୁଡ଼ ଆଡ଼ୁ ଛିଡ଼ି ଛିଡ଼ି ଛୋଟ ହେଉଥାଏ । ଏମାନେ ଅଣ୍ଡ ପରିବର୍ତ୍ତେ ପେଟରୁ ଛୁଆ ଜନ୍ମ କରନ୍ତି । ଏମାନଙ୍କର ବିଷରେ ହଠାତ୍ ମନୁଷ୍ୟ ମରିଯାଏ ନାହିଁ; କିନ୍ତୁ କ୍ଷତସ୍ଥାନ ଓ ଅଙ୍ଗ ଫୁଲିଯାଏ ଓ ସ୍ପର୍ଶଶକ୍ତିରହିତ ହୋଇଯାଏ । ଏମାନଙ୍କ ଦନ୍ତକ୍ଷତ ଘାଆରେ ପରିଣତ ହୋଇ ବଡ଼ କଷ୍ଟ ହଏ ଓ କ୍ୱଚିତ୍ ମୃତ୍ୟୁ ଘଟାଏ । ଏମାନେ ଗୋଖର ଆଦି ସାପଙ୍କ ଅପେକ୍ଷା ମୋଟା, କିନ୍ତୁ ଲମ୍ବରେ ସାନ ହୁଅନ୍ତି ଓ ଅନ୍ୟ ସାପମାନଙ୍କ ପରି ଦ୍ରୁତ-ବେଗରେ ପଳାଇ ପାରନ୍ତି ନାହିଁ । ଏମାନଙ୍କର ଫଣା ନାହିଁ । ଅଜଗର ସାପ ଏହି ଜାତୀୟ । ଏକଜାତୀୟ ଚିହ୍ନିତଦେହ ଛୋଟ ବୋଡ଼ାକୁ ଚନ୍ଦ୍ରବୋଡ଼ା ବା ଚନ୍ଦନବୋଡ଼ା (Russell's viper) କହନ୍ତି ଓ ଜଳରେ ରହିବା ରକ୍ତ ଚିହ୍ନଯୁକ୍ତ ଏକହାତ ଲମ୍ବ ବୋଡ଼ାକୁ ରକ୍ତବୋଡ଼ା ବୋଲାଯାଏ । ] ପ୍ରାଦେ (ଗଞ୍ଜାମ) ବି—୧ । ଧାନ୍ୟାଦି ମାପିବା ପରିମାଣ ପାତ୍ର ବିଶେଷ—1. A moasure for corn. ୨ । ବିଲୁଆ—2. Jackal. ପ୍ରାଦେ (ମେଦିନୀ-ପୁର) ବିଣ—ବଡ଼—Big; large; great.

Borḍā বোড়া बोडासाँप

ବୋଡ଼ା ଛତୁ—ପ୍ରାଦେ ( ଗଡ଼ଜାତ ଓ ସମ୍ବଲପୁର ) ବି-ଏକପ୍ରକାର ଖାଦ୍ୟ ଛତୁ—A kind of mushroom. [ଦ୍ର—ଏହି ଛତୁ ସୋନପୁର, ସମ୍ବଲପୁର, କଳାହାଣ୍ଡି, ଜୟପୁର ଅଞ୍ଚଳମାନଙ୍କରେ ବେଶି ମିଳେ; ଏହା ଶାଳୁଆଗଛ ମୂଳରେ ଭୂଇଁ ଭିତରୁ ବାହାରେ । ଏହା ଫୁଟିବା ସମୟରେ ଭୂମି ଫାଟିଯାଏ ଓ ଲୋକେ ତାହା ଜାଣିପାରି ଭୂମିଖୋଳି ତୋଳି ଆଣନ୍ତି । ଛେଳିର ଚର୍ବିପରି ଏହା ଚିକ୍କଣ; ଏହାର ତିଅଣ ଖାଇବାକୁ ମାଂସ ତିଅଣ ପରି ଲାଗେ । ]

Borḍā chhatu

ବୋଡ଼ି—ଦେ. ବିଣ (ସଂ. ବୋଡ୍ରୀ)—୧ । ପାଞ୍ଚଗଣ୍ଡା ବା ୨୦ କଉଡ଼ି; ପଣର ଏକ ଚତୁର୍ଥାଂଶ—1 Twenty cowry-shells (formerly used as currency.) ୨ । ବୁଡ଼ୀ କପା—2. Bori cotton.

Borḍi বুড়ী बोडी

ବୋଡ଼ିଆ—ଦେ. ବିଣ—ବୋଡ଼ି ସମ୍ବନ୍ଧୀୟ—Relating to Borḍi. (ଉ—ନାଥ ଛଡ଼ା ଖଣ୍ଡିକରେ ସରକ ନେଅଣ କରିବା ସକାଶେ ପାଞ୍ଚ ପାଞ୍ଚ ବୋଡ଼ିଆ ଯୋଡ଼ାଏ ; ଥୋଇ ବଳଦ ଖାଉଡ଼ି ବି ଅଛି । ଫକୀରମୋହନ. ଗଳ୍ପସ୍ୱଳ୍ପ । ) ପ୍ରାଦେ—୧ । ( କେନ୍ଦ୍ରାପଡ଼ା ଓ ମାଳଗିରି ) ବି—ବୁଡ଼ିଆ (ଦେଖ)—Burḍiā (See). ୨ । ( ଯାଜପୁର ) ବି—ବଡ଼ିଆ (ଦେଖ)—Barḍiā (See).

Borḍiā বুড়(ড়ি)কিয়া

ବୋଢ଼କଥା—ଦେ. ବଣ—ବୋଢ଼ିଆ (ଦେଖ) —Bordiā (See).
Bordikiā ବ—କଡ଼ାଗଣ୍ଡା ପଣିକିଆ; ଗଣିତର ସଂଖ୍ୟା ଗଣନା ବୁଡ଼ିକିଆ ଶିକ୍ଷିବା ଓ ମୁଖସ୍ଥ କରିବା ପାଇଁ ପଣିକିଆ ପରି ପ୍ରଣାଳୀ ବୁଡ଼ିକିୟା ନାମତା ବିଶେଷ—An arithmetical table which is committed to memory and deals with 'Bordi' calculation. [ ଦ୍ର—ଏଥିରେ କେତେ କଡ଼ାରେ କେତେ ଗଣ୍ଡା, କେତେ ଗଣ୍ଡାରେ କେତେ ବୋଢ଼ି, କେତେ ବୋଢ଼ିରେ କେତେ ପଣ ଓ କେତେ ପଣରେ କେତେ କାହାଣ ହୁଏ, ଏହା ଶିକ୍ଷା କରାଯାଏ । ଉଦାହରଣ—ଦୁଇ କେ ଦୁଇ କଡ଼ା, ଦୁଇ ଗଣ୍ଡା, ଦୁଇ ବୋଢ଼ି ଦଶଗଣ୍ଡା, ଦୁଇପଣ, ଦୁଇପଣକୁ ଅଠପଣ, ଦୁଇ କାହାଣ । ]

ବୋଢ଼ିଙ୍ଗ୍—ବୈଦେ. ବ (ଇଂ)—ଛାତ୍ରାବାସ; ହୋଷ୍ଟେଲ୍—
Bording বোর্ডিঙ্ বোর্ডিংग A hostel for students. (ବୋର୍ଡିଂ, ବୋଢ଼ିଙ୍ଗ୍ ହାଉସ୍—ଅନ୍ୟରୂପ)

ବୋଡ୍ର—ସ. ବ—୧ । ବୋଡ଼ା ( ଦେଖ )—1. Bordā (See).
Bodra ୨ । ଏକପ୍ରକାର ମତ୍ସ୍ୟ (ହ୍ର, ଘ) —2. A kind of fish.

ବୋଢ଼ୀ—ସ. ବ—ବୋଢ଼ି (ଦେଖ)
Bodri Bordi (See).

ବୋଢ଼ବ୍ୟ—ସ. ବଣ (ବହ୍ ଧାତୁ+କର୍ମ. ତବ୍ୟ)—ବହନୀୟ—
Bordhabya Fit to be carried.

ବୋଢ଼ା—ସ. ବ. (ବହ ଧାତୁ+କର୍ତ୍ତୃ. ତୃ; ବୋଢ଼ୃ ଶବ୍ଦ; ୧ମା. ୧ବ)—
Bordhā ୧ । ବିବାହକାରୀ ବ୍ୟକ୍ତି—1. One who marries a female. ୨ । ଭାରବାହକ—2. Carrier of a burden. ୩ । ସାରଥି—3. A driver; a charioteer. ୪। ବଳଦ—4. Ox. ୫। ପଥପ୍ରଦର୍ଶକ—5. A guide; one who leads the way. ୬ । ବହନ କର୍ତ୍ତା—6. Carrier; transporter. ୭ । ଋଷଭକ ନାମକ ଔଷଧ—7. A rare herb.

ବୋଢ଼ୁ—ସ. ବ—ମୁନି ବିଶେଷ—Name of a sage.
Bordhu [ଦ୍ର—ତର୍ପଣ କାର୍ଯ୍ୟରେ ଏହାଙ୍କୁ ଜଳ ଦେବାକୁ ହୁଏ ।]

ବୋଣ୍ଟ—ସ. ବ. ( ବା ଧାତୁ=ଗତି କରିବା+କର୍ତ୍ତୃ. ଉଣ୍ଟ )—
Bonta ୧ । ଫୁଲ ଆଦିର ଡେମ୍ଫ; ବୃନ୍ତ—
বোঁট(টা) 1. Stalk of flowers etc.
डांट ୨ । ଲଙ୍ଗଳର ବେଣ୍ଟ ( ଯୋଗେଶ୍ଚନ୍ଦ୍ର )—2. The handle of a plough.

ବୋଣ୍ଟା—ଦେ. ବ—ଏକ ପ୍ରକାର ଆରଣ୍ୟ ବୃକ୍ଷ—
Bontā Eriolaena Hookeriana (tree) (Haines).

ବୋତଡ଼ା—ପ୍ରାଦେ. (ଗଞ୍ଜାମ) ବ—ଗଞ୍ଜାମ ଜିଲ୍ଲାର ଶୂଦ୍ରକ ବିଶେଷ—
Botardā A subcaste of Śudras in the district of Ganjam.

ବୋତଲ—ବୈଦେ. ବ. (ଇଂ. ବଟ୍ଲ୍; ପ୍ରାଚୀନ ଇଂ. ବଟେଲ୍; ମୂଳ. ପର୍ତ୍ତୁ. ବଟେଲ୍ଲା)—୧। କାଚର ବା ଚିନା ମାଟିର ଲମ୍ବ ଓ ଗୋଲାକାର ଜଳ ପାତ୍ର ସରୁମୁହାଁ ପାତ୍ର—
Botala বোতল बोतल 1. Bottle. [ଦ୍ର—ବଡ଼ ପାତ୍ରକୁ ବୋତଲ ଓ ଛୋଟ ବୋତଲକୁ ଶିଶି ବୁଝାଯାଏ ।]. ୨ । ମଦ ବୋତଲ—2. Wine bottle.

ବୋତଲ ଚଢ଼ା(ଢ଼େ)ଇବା—ଦେ. କ୍ରି. (ବ୍ୟଙ୍ଗ)—ବହୁତ ମଦ୍ୟ ପାନ
Botala chardhā(rdhe)ibā କରିବା—To drink
বোতল চড়ান ( bottles of ) wine or brandy.
बोतल चढ़ाना

ବୋତଲ ଛି(ଠି)ପି—ଦେ. ବ—ବୋତଲର ମୁହଁରେ ମରା ଯାଇଥିବା
Botala chhi(ṭhi)pi ସୋଲର ବା କାଠଆଦିର ଖିଲା—
বোতলের ছিপি The cork or stopper of a bottle.
बोतलका डाट

ବୋତଲ ପାଣି—ଦେ. ବ ( ଲକ୍ଷଣାର୍ଥ )—କାଳି ପାଣି; କଳିତ ମଦ;
Botala pāni বোতলের জল ବ୍ରାଣ୍ଡି—Brandy.
बोतलकी पानी

ବୋଡା—ଦେ. ବ ( ସ. ବୃନ୍ତ )—୧ । ପଣସ ଫଳର ଅସାର ଅଂଶ ବା
Botā ଚୋପା—1. The refuse and rind of the
ভুতি; ভেঁতা; ভঁৎড়ি; ভুতড়ি; ভুতুড়ি jack fruit. ୨ । ବୋଟି
कटहलका बुस ( ଦେଖ )—2. Boti ( See )

ବୋଟାଣ୍ଡି—ପ୍ରାଦେ ( ଗଡ଼ଜାତ ) ବ—ବୋଟି ( ଦେଖ )
Botāndi Boti ( See )

ବୋତାମ—ବୈଦେ.ବ ( ଇଂ. ବଟନ୍ )—ଜାମା ପ୍ରଭୃତିର ବନ୍ଦନ ଖୋଲା
Botāma ଅଂଶକୁ ଏକତ୍ର ଯୋଗ କରିବାର ଗୁଣ୍ଡି ବା ଚକ୍ତି—
বোতাম Button [ ଦ୍ର—ଏହା ଧାତୁ, ଅସ୍ଥି, ଶିପ ଓ କନା
बटन; बोताम ଆଦିରେ ନିର୍ମିତ ହୁଏ । ]

ବୋଟି—ଦେ. ବ ( ସ. ବୃସ, ବୃନ୍ତ )—ମୁଗ, ହରଡ, କୋଳଥ ଆଦିର
Boti ଗାଛ ଝଡ଼ା ହେବା ପରେ ଅବଶିଷ୍ଟ ଛୁଇଁର ଚୋପା ଓ ଶୁଖିଲା
ভুসী ପତ୍ରର ଗୁଣ୍ଡ—The emptied pods of pulse
बुस grains and dried leaves after the seeds are separated.

ବୋଟିଆ—ଦେ. ବଣ ( ସ. ପୂତି )—୧ । ଗୋମେଷାଦିଙ୍କ ଶରୀରରୁ
Botiā ବାହାରିବା ପୂତି (ଗନ୍ଧ)—1. Disagreeable (smell)
বোটকা, বোকটা ( like that from the body of cattle and sheep ). ୨ । ପୋଗ୍ନ; ସଢ଼ା (ଗନ୍ଧ)
बदबूदार —2. Foetid ( smell ).

ବୋଟିଆ ଗନ୍ଧ—ଦେ. ବ—ପଶୁଆଦିଙ୍କ ଦେହରୁ ବାହାରିବା ଗନ୍ଧ—
Botiā gandha Stench from the body of animals.
বোটকা গন্ধ बदबू

ବୋଟିଲଇ—ପ୍ରାଦେ ( ଗଞ୍ଜାମ ) ବ—ଶୁଆଁଲଇ ( ଦେଖ )
Botilai Śuā̃lai (See)

ବୋଦ—ସ. ବଣ—ଆର୍ଦ୍ର; ଓଦା—Moist. ଦେ. ବ—ଗୋଟିଏ
Boda ଓଡ଼ିଆ ଗଡ଼ଜାତ ରାଜ୍ୟ; ବୌଦ୍ଧରାଜ୍ୟ—Name of an Oriya state in the Eastern states Agency. (ଉ—ଅଙ୍ଗୁଳି ଗାଈ କନ୍ଧମାଳ ତାତ ଦୁହିବା ଯୋଗାଏ ବୋଦ । ରାଧାନାଥ. ପାବତୀ ।)

ବୋଦ (ଡୁ, ଧ, ଧୁ) କା—ଦେ. ବିଣ—୧ । ମୋଟା; ସ୍ଥୂଳ—1. Fat.
Boda(du, dha, dhu)kā ୨ । ତାବଦା; ସ୍ତବ୍ଧ (କାନ)—
2. Dinned; stunned (said of the ear). ୩ ।
ସ୍ପର୍ଶ ଶକ୍ତି ରହିତ (ଅଙ୍ଗ ବା ଚର୍ମ)—3. Become insensible to touch. ପ୍ରାଦେ (ଗଞ୍ଜାମ) ବି—ଗୋଠ
କାକୁଡ଼ି (ଦେଖ)—Gotha kākurdi (See).

ବୋଦ(ଦି,ଦୁ)ସି—ପ୍ରାଦେ (କଟକ) ବି—କଉମାଛ ପରି, କଳୁ ରଙ୍ଗାଳିଆ
Boda(di,du)si ବର୍ଣ୍ଣର ଏକପ୍ରକାର ଛୋଟ ମାଛ—Datrioides
Quadrifaciatus (fish). [ ଦ୍ର—ଏମାନେ ଲମ୍ବରେ
୧୨ ଅଙ୍ଗୁଳ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କ ଦେହ
ଚେପ୍ଟା ଓ କାଉଁରିଯୁକ୍ତ; ଏମାନେ ଜଳଭ୍ରାବାପନ୍ନ ।]

ବୋଦା—ଦେ. ବି (ସଂ. ବର୍କର; ପ୍ରା. ବୋକଡ଼=ଛାଗ; ସଂ. ବସ୍ତ=
Bodā ଛାଗ—ଯୋଗେଶଚନ୍ଦ୍ର)—୧ । ଠାକୁରାଣୀଙ୍କ ନିକଟ ବଳି
पाँठा ଦିଆଯିବା ନିମନ୍ତେ ହୃଷ୍ଟପୁଷ୍ଟ ଅଣ୍ଡିରା ମେଣ୍ଢା ବା ଛେଳି
**बोकरा, कुरबानीका पशु** ବା ମଇଁଷି; ଜୀବବଳି—1. Male
sheep, goat or buffalo offered as a sacrifice before a Goddess; a victim for sacrifice before a Goddess. ( ଉ—କର୍ଣ୍ଣଙ୍କର
ଖଣ୍ଡାରେ ଭୀମ ହାତ ଗଦା, ଆଜି ହେବ ଯୁଦ୍ଧେ ଅର୍ଜୁନ
ପଡ଼ି ବୋଦା । କୃଷ୍ଣସିଂହ. ମହାଭାରତ କର୍ଣ୍ଣ । ) ୨ । ଅଣ୍ଡିରା
ମେଣ୍ଢା ବା ଛେଳି—2. A male goat or sheep. ୩ ।
(ଗାଳି ବିଶେଷ) ଯେଉଁ ଲୋକ ଖାଇ ପିଇ ବୋଦାପରି ହୃଷ୍ଟ-
ପୁଷ୍ଟ ହୋଇଥାଏ—3. (A term of rebuke) A
person who has grown fat.

ବୋଦା ପକା(କେ)ଇବା—ଦେ. କ୍ରି—ବଳିଦାନ କରିବା—
Bodā pakā(ke)ibā To sacrifice a victim before
বলিদেওয়া **बलिदेना(चढ़ाना)** a Deity
(ବୋଦା ଦେବା—ଅନ୍ୟରୂପ)

ବୋଦା ପଡ଼ିବା—ଦେ. କ୍ରି—(ଛେଳି ପ୍ରଭୃତି) ଦେବତାଙ୍କ ଆଗରେ ବଳି
Bodā pardibā ଦିଆଯିବା ବା ବଧ କରାଯିବା—To be
বলিপড়া offered as a victim; to be sacrificed
**बलि चढ़ना** before a Goddess (said of a victim).

ବୋଦା ବ୍ରତ—ପ୍ରାଦେ. (ଆଳି) ବି—ବାଛୁରି ବ୍ରତ (ଦେଖ)
Bodā brata Bāchhuri brata (See).

ବୋଦା ଯାଚିବା—ଦେ. କ୍ରି—ମନୋବାଞ୍ଛାର ସିଦ୍ଧି ହେଲେ ଠାକୁରାଣୀଙ୍କ
Bodā jāchibā ନିକଟରେ ଛାଗାଦି ବଳି ଦେବାକୁ ପ୍ରତିଶ୍ରୁତ
पाँठा मानतकरा ହେବା ବା ଅଙ୍ଗୀକାର କରିବା—To promise
**बलि मानना** to sacrifice an animal before a
Goddess on the fruition of a certain purpose; to offer to give a victim to a
[ବୋଦା ମାନିବା (ମନାଇବା)—ଅନ୍ୟରୂପ ] Goddess.

ବୋଦାଲ—ସଂ. ବି—ବାଲିଆ ମାଛ—The sheat fish, cat fish;
Bodāla Wallago Attu

ବୋଦା ହାଣିବା—ଦେ. କ୍ରି—ବଳିକୁ ବଧ କରିବା—To decapitate
Bodā hānibā a victim at a sacrifice.
पाँठाकाटा **बलिचढ़ाना** (ବୋଦା କାଟିବା—ଅନ୍ୟରୂପ)

ବୋଦୁଆ—ଦେ.ବି—୧ । ମାଛ ଧରିବା ଯନ୍ତ୍ର ବିଶେଷ—1. A wicker
Boduā work of bamboo strips used for catching
fish by dragging it in shallow water.
[ଦ୍ର—ଏହା ବାଉଁଶ ପାତିଆରେ ବୁଣା ହୋଇଥାଏ ଓ ତିନି
ହାତ ପର୍ଯ୍ୟନ୍ତ ଲମ୍ବ ଓ ୨ହାତ ଉଚ୍ଚ ହୁଏ । ଏହାକୁ
ଜାଲପରି ପାଣିରେ ଚଳାଇ ମାଛ ଧରନ୍ତି । ] ୨ । ପେଲଣା
ଜାଲ (ଦେଖ)—2. Pelanā net (See).

ବୋଦ୍ଧା—ସଂ. ବିଣ (ବୁଧ୍. ଧାତୁ=ଜାଣିବା+କର୍ତ୍ତୃ. ତୃ; ବୋଦ୍ଧୃ, ୧ମା·
Boddhā ୧ବ)—୧ । ଜ୍ଞାତା; ଯେ ଜାଣେ—1. Knowing.
(ବୋଦ୍ଧ୍ରୀ—ସ୍ତ୍ରୀ) ୨ । ଜ୍ଞାନୀ—2. Wise.

ବୋଧ—ସଂ. ବି (ବୁଧ· ଧାତୁ=ବୁଝିବା+ଭାବ. ଅ)—୧ । ବୁଦ୍ଧି—
Bodha 1. Intellect. ୨ । ଉପଲବ୍ଧି; ହୃଦୟଙ୍ଗମ କରିବା—
2. Understanding; realisation. ୩ । ଜ୍ଞାନ—
3 Knowledge; wisdom. ୪ । ଅଭିପ୍ରାୟ—4. Intention. ୫ । ଜାଗରଣ-5. Waking. ୬ । ମନରେ
ଉଦିତ ହେବା ଭାବ—6. Idea; mental impression. ୭ । ଅନୁଭୂତି—7. Perception; sensation;
experienc. ୮ । ସୁଖଦୁଃଖାନୁଭବ କ୍ଷମତା-8. Power
or capacity of feeling. ୯ । ପ୍ରବୋଧ; ସାନ୍ତ୍ୱନା—
9. Consolation. ୧୦ । (ବୋଧି ଧାତୁ+ଭାବ. ଅ)—
ବୋଧିତ କରିବା; ବୁଝାଇବା-10 Explaining.
ଦେ. ବି—୧ । ଦର୍ଶନ—1. Seeing. ୨ । ସମ୍ଭାବନା—
2. Expectation. ( ଉ—ଏ କମିଭୂମାନଙ୍କୁ ପାର୍ଥ
ହାତେ ବଧ, ହେବେ କର୍ଣ୍ଣ ବୋଲି ସବୁରି ହେଲା ବୋଧ ।
କୃଷ୍ଣସିଂହ. ମହାଭାରତ କର୍ଣ୍ଣ । ) ୩ । ସନ୍ତୋଷ—
3. Satisfaction. ୪ । ଉତ୍ସାହଦାନ; ହେମନ୍ତ
বোধ ଦେବା—4. Encouragement. ବିଣ—୧ । ସନ୍ତୁଷ୍ଟ;
**बोध** ତୃପ୍ତ—1. Satisfied; contented. ( ଉ—
ହୋଇଲି ମୁହିଁ ତାହା ଦେଖି ଅତି ବୋଧ । କୃଷ୍ଣସିଂହ.
ମହାଭାରତ. ବନ ।) ୨ । ଉତ୍ସାହିତ—2. Encouraged.
୩ । ଆଶ୍ୱସ୍ତ—3. Consoled. ୪ । ଜ୍ଞାତ—
4. Known. (ଉ—ଶିବଙ୍କ ସ୍ୱରୂପକୁ ନୋହିଲା ତାଙ୍କୁ
ବୋଧ । କୃଷ୍ଣସିଂହ. ମହାଭାରତ· ବନ ।) ୫ । ଅନୁଭୂତ—
5. Perceived.

ବୋଧକ—ସଂ. ବିଣ. ପୁଂ ( ବୁଧ୍ ଧାତୁ, ଣିଚ୍, ବୋଧି ଧାତୁ+କର୍ତ୍ତୃ.
Bodhaka ଅକ )—୧ । ଜ୍ଞାପକ; ସୂଚକ—1. Indicating.
(ବୋଧିକା—ସ୍ତ୍ରୀ) ୨ । ଯେ ଦୀପ୍ତି କରେ—2. Dazzling.
୩ । ନିଦ୍ରାଭଙ୍ଗକାରୀ—3. Awakening from
sleep. ୪ । ଯାହା ହୃଦୟଙ୍ଗମ କରାଏ; ଯାହା ବୁଝାଇ
ଦିଏ—4. Explaining or causing to be

understood. ବି. ପୁଂ—୧ । ଦୂତ; ଚର—1. Messenger. ୨ । ଗୁଇନ୍ଦା—2. An informer; spy. ୩ । ଶିକ୍ଷକ; ଗୁରୁ—3. Teacher; preceptor. ୪ । ଯେଉଁ ହାବ ଭାବ ବା ସଙ୍କେତଦ୍ୱାରା ପ୍ରେମିକ ପ୍ରେମିକା ପରସ୍ପରର ମନୋଭାବ ପରସ୍ପରକୁ ଜଣାନ୍ତି ( ହ୍ରି. ଶ )—4. Movements of the limbs or signs by which lovers intimate their minds to each other.

**ବୋଧକର**—ସ. ବି. ପୁଂ ( ବୋଧ+କୃ ଧାତୁ+କର୍ତ୍ତୃ. ଅ )—Bodhakara ବୈତାଳିକ; ସ୍ତୁତିପାଠକ—A herald; a (ବୋଧକାରକ—ଅନ୍ୟରୂପ) ministrel or bard who (ବୋଧକରୀ—ସ୍ତ୍ରୀ) daily awakens the king by singing songs. (ଉ-ବୋଧ ଜନକ ହରଧନୁ ସ୍ୱୟମ୍ବର ରଚନ୍ତି, ବୋଧ କର ମୁଖେ ବିଦ୍ୟାତ ନୃପଗଣେ ଅଗନ୍ତି । ଉପେ. ବୈଦେହୀଶ ବିଳାସ ।) ବିଣ. ପୁଂ—୧ । ଜ୍ଞାପନକାରୀ—1. Informing. ୨ । ନିଦ୍ରାଭଙ୍ଗକାରୀ —2. Awakening.

**ବୋଧ କରିବା**—ଦେ. କ୍ରି—୧ । ବିଚାର କରିବା—1. To think. Bodha kariba ୨ । ଅନୁମାନ କରିବା—2. To guess. বোধকরা ୩ । ବିଶ୍ୱାସ କରିବା—3. To believe; to बोध करना trow. ୪ । ହୃଦୟଙ୍ଗମ କରିବା; ବୁଝି ପାରିବା—4. To understand; to realise. ୫ । ସନ୍ତୁଷ୍ଟ କରିବା; ଅନ୍ୟର ମନକୁ ଥଣ୍ଡା କରିବା—5. To satisfy; to appease. ୬ । ( ଲକ୍ଷଣାର୍ଥ )—ଥଣ୍ଡା କରିଦେବା; ଜବତ୍ କରିଦେବା—6. (figurative ) To subdue; to teach a person a lesson. ୭ । ଅନୁଭବ କରିବା—7. To feel. ୮ । ସାନ୍ତ୍ୱନା ଦେବା—1. To console; to assuage one's grief

**ବୋଧ କରି ମୁଠାଏ ଖାଇବା**—ଦେ. କ୍ରି—ସାନ୍ତୋଷପୂର୍ବକ ଭୋଜନ Bodha kari muthāe khāibā କରିବା—To take one's meal with a feeling of satisfaction; to have a meal to one's satisfaction.

**ବୋଧଗମ୍ୟ**—ସ. ବିଣ ( ବୋଧ+ଗମ୍ୟ )—୧ । ବୁଝିବାର ଯୋଗ୍ୟ—Bodhagamya 1. Fit to be understood. ୨ । ଯାହା ବୁଝି ହୁଏ—2. Intelligible; comprehensible.

**ବୋଧ ଗୋଚର**—ସ. ବିଣ. ( ୬ଷ୍ଠୀ ତତ୍ )—୧ । ଅନୁମିତ—Bodha gochara 1. Inferred; conjectured. ୨ । ବୁଝାଯାଇଥିବା—2. Understood; comprehended.

**ବୋଧ ଜନକ**—ସ. ବିଣ ( ୬ଷ୍ଠୀ ତତ୍ )—ଜ୍ଞାନୋତ୍ପାଦକ—Bodha janaka Producing knowledge or comprehension.

**ବୋଧଜ୍ଞ**—ସ. ବିଣ. ପୁଂ ( ବୋଧ+ଜ୍ଞା ଧାତୁ+କର୍ତ୍ତୃ. ଅ )—ଅନ୍ୟ Bodhajña ବ୍ୟକ୍ତିର ଅଭିପ୍ରାୟଜ୍ଞ—Knowing the (ବୋଧଜ୍ଞା—ସ୍ତ୍ରୀ) intentions of another; able to fathom the mind of another. ବି—ଶ୍ରୀକୃଷ୍ଣ An epithet of Śrīkrushṇa.

**ବୋଧ ଦେବା**—ଦେ. କ୍ରି—୧ । ସାନ୍ତ୍ୱନା ଦେବା—1. To Bodha debā console. ୨ । କଥାଦ୍ୱାରା ସନ୍ତୁଷ୍ଟ କରିବା বোধ দেওয়া —2. To satisfy a person by words. बोधदेना; बोधना ୩ । ହେମତ୍ ଦେବା—2. To encourage to assure. ୪ । ଆଶା ଦେବା—4. To give hope.

**ବୋଧନ**—ସ. ବି ( ବୁଧ୍ ଧାତୁ ଣିଚ୍ ବୋଧି ଧାତୁ=ଜଣାଇବା+ଭାବ) Bodhana ଅନ )—୧ । ବୋଧ—1. Knowledge. ୨ । ଗନ୍ଧସ୍ଥାପନ; ସୁବାସ ଧୂଆଁ ଦେବା—2. Fumigating with scen . ୩ । ଜଣାଇବା; ଜ୍ଞାପନ; ବିଜ୍ଞାପନ—3. Intimation. ୪ । ନିଦ ଭଙ୍ଗାଇବା; ନିଦ୍ରାଭଙ୍ଗ କରଣ—4. Awakening; arousing from sleep. ୫ । ଉଦ୍ଦୀପନ—5. Exciting; instigating. ୬ । ଇନ୍ଦ୍ରିୟ ଜ୍ଞାନ; ଅନୁଭୂତି—6. Sensation; perception. ୭ । (+କର୍ତ୍ତୃ. ଅନ) ବୁଧଗ୍ରହ—7. The planet Mercury. ୮ । (+ଭାବ ଅନ ) ଦୀପ ବା ନିଆଁ ଲଗାଇବା (ହ୍ରି. ଶ)—2. Lighting of a lamp or fire.

**ବୋଧନୀ**—ସ. ବି ( ବୋଧନ+ଈ )—୧ । ଜ୍ଞାନ, ବୋଧ—1. Bodhanī Knowledge; perception. ୨ । ଅଧ୍ୟାପନା —2 Teaching. ୩ । ଜ୍ଞାପନ—3. Informing. ୪ । ନିଦରୁ ଉଠାଇବା—4. Awakening. ୫ । ( ବୁଧ ଧାତୁ ଣିଚ+ଅଧିକରଣ ଅନ+ଈ ) ଆଶ୍ୱିନ ଶୁକ୍ଳଷଷ୍ଠୀ—5. The 6th day of the bright fortnight of Āswina. ୬ । କାର୍ତ୍ତିକ ଶୁକ୍ଳ ଏକାଦଶୀ; ଉତ୍ଥାପନ ଏକାଦଶୀ; ପ୍ରବୋଧନ ଏକାଦଶୀ—6. A festival observed on the 11th day of the bright fortnight of Kārttika. [ ଉ—ଏ ଦିନ ବିଷ୍ଣୁ, ପ୍ରଭୃମାମାନେ କଳ୍ପିତ ନିଦ୍ରାରୁ ଉଠନ୍ତି । ] ୭ । ପିପ୍ପଳୀ ( ହ୍ରି. ଶ )—7. Long pepper.

**ବୋଧନୀୟ**—ସ ବିଣ ( ବୁଧଧାତୁ+କର୍ମ ଅନୀୟ )—ଜ୍ଞାପନୀୟ—Bodhanīya Fit to be intimated.

**ବୋଧ ପାଇବା**—ଦେ. କ୍ରି—୧ । ଆଶ୍ୱସ୍ତ ହେବା—1. To be Bodha pāibā consoled. ୨ । ସନ୍ତୁଷ୍ଟ ହେବା—বোধ পাওয়া 2. To feel contented. सन्तुष्ट होना; बोध पाना ୩ । ଆଶାନ୍ୱିତ ହେବା—3. To have hope.

**ବୋଧ ପ୍ରବାହ**—ସ. ବି (୬ଷ୍ଠୀତତ୍)—ମନର ଯେଉଁ ଶକ୍ତିଦ୍ୱାରା ଚିନ୍ତା, Bodha prabāha ଦର୍ଶନ, ଶ୍ରବଣ, ଅନୁଭବଆଦି କାର୍ଯ୍ୟ କରାଯାଏ, ଇନ୍ଦ୍ରିୟଦ୍ୱାରା ଜ୍ଞାନଶକ୍ତି—The faculty of sensation or perception.

**ବୋଧ ବା(ସୋ)ଧ**—ଦେ. ବି. (ଧ୍ୱନ୍ୟନୁକାରୀ ନିରର୍ଥକ ସହଚର ଶବ୍ଦ)-
Bodha bā(so)dha ୧ । ଆଶ୍ୱାସନା—1. Consolation,
বোধ সোধ (ଉ—ଭଲ ଲୋକେ ତାଙ୍କୁ ବୋଧ ସୋଧ କଲେ,
**बोधसोध, बोधबाध** ପୁଣ ହେଲା ତାଙ୍କ ଶାନ୍ତି । ଉପାଖ୍ୟା. ସାଥିଅନ୍ତୁ ବାହା ।) ୨ । ବୁଦ୍ଧିଶୁଦ୍ଧି; ବୁଝିବାର କ୍ଷମତା—
2. Intelligence. ବେ ଭଣ—୧ । ଆଶ୍ୱସ୍ତ—
1. Consoled. ୨ । ସନ୍ତୁଷ୍ଟ—2. Satisfied.

**ବୋଧ ବାସର**—ସଂ. ବି—୧ । ବିଷ୍ଣୁଙ୍କର ଉତ୍ଥାନ ଦିନ; ଉତ୍ଥାନୈକା-
Bodha bāsara ଦଶୀ; କାର୍ତ୍ତିକ ଶୁକ୍ଳ ଏକାଦଶୀ—
1. The 11th day of the bright fortnight of the month of Kārttika (for Bishṇu). [ଦ୍ର—ଏ ଦିନ ଜଗନ୍ନାଥଙ୍କର ଗୋଟିଏ ଯାତ୍ରା । ବିଷ୍ଣୁ ଆଷାଢ଼ ଶୁକ୍ଳ ଏକାଦଶୀ ଦିନ କଳ୍ପିତ ନିଦ୍ରା ଯାଇ ଥାଆନ୍ତି ଓ ଏ ଦିନ ଶୟନାବସ୍ଥାରୁ ଉଠନ୍ତି । ଶିବ ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଶୁଅନ୍ତି ଓ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଉଠନ୍ତି ।] ୨ । ଶିବଙ୍କର ଉତ୍ଥାନ ଚତୁର୍ଦ୍ଦଶୀ; କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ— 2. The 14th day of the bright fortnight of the month of Kārttika (for Śiba).

**ବୋଧ ଲାଗିବା**—ଦେ. କ୍ରି—ମନରେ ସନ୍ତୋଷ ଜଣାପିବା—
Bodha lāgibā A feeling of satisfaction
সন্তোষ হওয়া **सन्तोष लगना**

**ବୋଧ ଶକ୍ତି**—ଦେ. ବି—୧ । ବୁଦ୍ଧି ପାଇବାର କ୍ଷମତା—
Bodha śakti 1. Understanding; discretion
(ବୋଧ କ୍ଷମତା—ଅନ୍ୟରୂପ) ୨ । ଭଲ ମନ୍ଦ ବାଛିବାର କ୍ଷମତା—
বুঝবার শক্তি 2. Power of distinguishing good
**बोध शक्ति** from bad; discrimination.
୩ । ଚୈତନ୍ୟ—3. Consciousness. ୪ । ସୁଖ-ଦୁଃଖାନୁଭବ କରିବାର କ୍ଷମତା—4. Feeling; the power or capacity of feeling pleasure or pain.

**ବୋଧ ହୁଏ**—ଦେ. ଅ.—୧ । ମୁଁ ବିଚାରୁଛି; ମୁଁ ବୋଧ କରୁଛି;
Bodha hue ମୁଁ ଅନୁମାନ କରୁଛି—1. It seems; me-
বোধ হয় seems; methinks. ୨ । ସମ୍ଭବତଃ—2. Pro-
**मुझे सुझता है, मुझे बोध होता है** bably.

**ବୋଧ ହେବା**—ଦେ. କ୍ରି—୧ । (କୌଣସି ବିଷୟ) ଅନୁମିତ ହେବା—
Bodha hebā 1. To seem; to appear.
বোধ হওয়া ୨ । ଲାଗିବା; ଅନୁଭୂତ ହେବା—2. To be
**मालुम होना** felt. (ଯଥା—ମୋ ଉପଦେଶ ଗୁଡ଼ାକ ତାଙ୍କୁ ଭଲ
**प्रसन्न होना** ବୋଧ ହେଉ ନାହିଁ ।) ୩ । ବୋଧ ସୋଧ ହେବା; ସନ୍ତୁଷ୍ଟ ହେବା—3. To be satisfed. (ଉ—ବୋଧ ହେଲା ଚିତ୍ତ ସାତ୍ତ୍ୱିକେ ତାର । ଉପେ. ବୈଦେହୀଶ ବିଳାସ ।)

**ବୋଧା**—ଗ୍ରା. ବିଣ. (ସଂ. ବୋଦ୍ଧା)—୧ । ଜ୍ଞାନୀ—1. Wise.
Bodhā ୨ । ଅଭିଜ୍ଞ; ଅନୁଭବୀ—2. Experience
୩ । ସାଂସାରିକ କାର୍ଯ୍ୟାକାର୍ଯ୍ୟ ବିଷୟରେ ବିଚକ୍ଷଣ—
3. Prudent; worldly wise.

**ବୋଧା(ଧେ)ଇବା**—ଦେ. କ୍ରି—(ବୋଧିବା କ୍ରିୟାର ଣିଜନ୍ତ ରୂପ—
Bodhā(dhe)ibā The causative form of Bodhibā)
বুঝান ୧ । ବୋଧ କରାଇବା; ସମଝାଇବା—1. To make
**बोध करना** one understand or perceive. (ଉ—ବୋଧାଇ ଶୁଣନ୍ତି ଭିକ ଉତ୍ତର ନୋହନ୍ତି ମୁଁ ଦିନ୍ତିବାସ । ଉପେ. ବୈଦେହୀଶବିଳାସ ।) ୨ । ସାନ୍ତ୍ୱନା ଦେବା—
2. To console.

**ବୋଧାବୋଧ**—ଦେ. ବି. (ସହଚର ଶବ୍ଦ)—୧ । ଜ୍ଞାନାଜ୍ଞାନ; ଭଲ
Bodhābodha ମନ୍ଦ ବିଚାର କରିବାର ଶକ୍ତି—1. Discri-
বোধাবোধ mination. ୨ । ଜ୍ଞାନ ଓ ଅଜ୍ଞାନ—
**समझ** 2. Knowledge and want of knowledge.

**ବୋଧା ବୋଧି କରିବା**—ଦେ. କ୍ରି—ବୋଧ ସୋଧ କରିବା; ବୁଝାଇ
Bodhā bodhi karibā ସୁଝାଇ ଦେବା—To appease;
বোধ সোধ করা to make one understand or
**बोध देना, मनाना** realise the real situation.
(ଉ—ଯାଯାନଙ୍କୁ ବୋଧାବୋଧି କରି ସେ କୌଣସି ପ୍ରକାରେ ଶାନ୍ତି ପ୍ରସ୍ତାବର ଆଲୋଚନା ଚଳାଇଲେ । ଦୈନିକ ଆଶା ।)

**ବୋଧି**—ସଂ. ବିଣ. ( ବୁଧ ଧାତୁ+କର୍ତ୍ତୃ. ଇ )—୧ । ଜ୍ଞାତା—
Bodhi 1. Knowing. ୨ । ଜ୍ଞାନୀ—2. Wise. ୩ । ବିଦ୍ୱାନ୍—3. Learned. ବି—୧ । (+ଘିବ. ଇ)—ସମାଧି ବିଶେଷ—1. A state of mental tranquility during meditation. ୨ । ବୋଧ; ଜ୍ଞାନ-2. Understanding. ୩ । ଅଶ୍ୱତ୍ଥ ଗଛ—3. The holy fig tree; Ficus Religiosa.

**ବୋଧିତ**—ସଂ. ବିଣ. (ବୁଧ ଧାତୁ ଣିଚ୍+କର୍ମ. ତ)—୧ । ଜ୍ଞାପିତ—
Bodhita 1. Informed. ୨ । ଜାଗରିତ—2. Aroused from sleep.

**ବୋଧିତବ୍ୟ**—ସଂ. ବିଣ. (ବୁଧ୍ ଧାତୁ ଣିଚ୍ ବୋଧ ଧାତୁ + କର୍ମ ତବ୍ୟ)—
Bodhitabya ଜ୍ଞାପିତବ୍ୟ—Fit to be intimated or made known.

**ବୋଧି ତରୁ**—ସଂ. ବି—୧ । ଅଶ୍ୱତ୍ଥ ଗଛ—1. The holy fig
Bodhi taru tree; Ficus Religiosa. [ଦ୍ର—ଅଶ୍ୱତ୍ଥ ଗଛ
ବୋଧି ଦ୍ରୁମ, ବୋଧି ବୃକ୍ଷ } ଅନ୍ୟରୂପ ମୂଳେ ବୌଦ୍ଧ ଋଷିମାନେ ଓ ବୁଦ୍ଧଦେବ ସ୍ୱୟଂ ବସି ତପସ୍ୟା କରୁଥିଲେ । ଏଥି-ଲାଗି ଏ ଗଛ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ଦୃଷ୍ଟିରେ ଅତି ପବିତ୍ର ।] ୨ । ବୁଦ୍ଧଗୟାରେ ସ୍ଥିତ ପ୍ରାଚୀନ ଅଶ୍ୱତ୍ଥ ଗଛ, ଯହିଁ ମୂଳରେ ବୁଦ୍ଧଦେବ ତପସ୍ୟା କରୁଥିଲେ—2. The holy fig tree under which the Buddha sat in meditation.

**ବୋଧିବା**—ଦେ. କ୍ରି ( ସଂ. ବୋଧି ଧାତୁ )—୧ । ମନକୁ ପ୍ରବୋଧ ଦେବା; ନିଜ ମନକୁ ବୁଝାଇବା—1 To calm or console one's mind. ( ଉ—ନଳକୁ ଅଶ୍ୱବିଦ୍ୟା ଉପଦେଶି ଦେଲେ, ଏମନ୍ତ କହି ଯୁଧିଷ୍ଠିରଙ୍କୁ ବୋଧିଲେ—କୃଷ୍ଣସିଂହ.ମହାଭାରତ. ଅନୁଶାସନ ।) ୨। ନିଜର ମନକୁ ଶାନ୍ତ କରିବା—2. To pacify one's own mind. ୩। ଅନ୍ୟକୁ ପ୍ରବୋଧିବା ସାନ୍ତ୍ୱନା ଦେବା—3. To console a person; to pacify a person ( ଉ ବୋଧି କହେ ଅଷ୍ଟାବର୍ଗ ନାହା, ବୁଝି ହୃଦରୁ ତ ହେଲା ଏହା—ଜଗନ୍ନାଥ. ସଙ୍ଗୀତ । ) ୪ । ସନ୍ତୁଷ୍ଟ କରିବା—4. To satisfy. ( ଉ—କହୁଅଛି ଯେବେ ତୁହି ତାକୁ ଧରିନ, କୁଣ୍ଡଳ ସାଙ୍ଗୁ ଖଡ଼ୁ ଆନନ୍ଦେ ବୋଧିବୁ—କୃଷ୍ଣସିଂହ. ମହାଭାରତ. ବନ । )

Bodhibā
বোঝান
**बोध देना**

**ବୋଧି ସତ୍ତ୍ୱ**—ସଂ.ବି—୧ । ବୌଦ୍ଧ ଋଷି—1. A Buddhist sage. ୨ । ବୌଦ୍ଧ—2. A Buddhist. ୩ । ବୁଦ୍ଧ ବିଶେଷ—3. A class Buddhist sages. [ଦ୍ର—ଯେଉଁ ବୌଦ୍ଧ ଋଷି ନିଜର ତପସ୍ୟା ଓ ଜ୍ଞାନଲାଭଦ୍ୱାରା ବୁଦ୍ଧତ୍ୱ ଲାଭ କରିବାର ଅଧିକାରୀ ହୋଇଅଛନ୍ତି, ଅଥଚ ଅଦ୍ୟାପି ବୁଦ୍ଧତ୍ୱ ଲାଭ କରି ନାହାନ୍ତି ତାଙ୍କୁ ବୋଧିସତ୍ତ୍ୱ ବୋଲାଯାଏ; ବୋଧି ସତ୍ତ୍ୱଙ୍କର ୩ଟି ଅବସ୍ଥା ଅଛି, ସେ ଅବସ୍ଥା ପାର ହେଲେ ବୁଦ୍ଧତ୍ୱ ପ୍ରାପ୍ତି ହୁଏ । ]

Bodhi sattwa

**ବୋଧେ**—ଗ୍ରା. ଅ. ( 'ବୋଧ ହୁଏ'ର ସଂକ୍ଷିପ୍ତ ଆକାର )—ସମ୍ଭବତଃ; ବୋଧ ହୁଏ—It seems; perhaps.

Bodhe
বোধহয়
**मुझे सुझता है की, शायद्**

**ବୋଧ୍ୟ**—ସଂ. ବିଣ ( ବୁଧ୍ ଧାତୁ+କର୍ମ. ଯ )—୧ । ଜ୍ଞାତବ୍ୟ—1. Knowable. ୨ । ଯାହା ବୁଝି ହୁଏ—2. Comprehensible.

Bodhya

**ବୋନ(ନା)ସ୍**—ବୈଦେ.ବି (ଇଂ.ବୋନସ୍)—୧। ପାରିଶ୍ରମିକ ଛଡ଼ା କର୍ମୀ ବା ଭୃତ୍ୟମାନଙ୍କୁ ଦିଆଯିବା ଅର୍ଥ; ପାରିତୋଷିକ—1. Bonus; extra gratuity paid to workmen. ୨ । ଋଣ ଦିଆଯାଇଥିବା ଧନ ପାଇଁ ମହାଜନ ଯେଉଁ ସୁଧ ପାଆନ୍ତି, ତଦତିରିକ୍ତ ଯେଉଁ ଧନ ବା ସୁଧ ତାଙ୍କୁ ପୁରସ୍କାର ଦିଆଯାଏ-2. Premium beyond the usual interest. ୩ । ଯୌଥ କମ୍ପାନୀର ଅଂଶୀଦାରମାନଙ୍କୁ ଡିଭିଡେଣ୍ଡରୁ ଅଧିକା ଯାହା ପାରିତୋଷିକ ଦିଆଯାଏ—3. An extra divident paid to shareholders of a jointstock company. ୪ । କମ୍ପାନୀର ଅଧିକରୁ ଜୀବନବୀମାକାରୀମାନଙ୍କୁ ବୀମା କରାଯାଇଥିବା ନିର୍ଦ୍ଦିଷ୍ଟ ଧନ ଉପରେ ଯାହା ଅଧିକା ଧନ ଦିଆଯାଏ—4. Bonus paid to the policy holders of a life insurance company.

Bona(nā)s
বোনাস
**बोनस**

**ବୋପ ଦେବ**—ଦେ.ବି (ନାମ)—ଜଣେ ବୈଦିକ ସଂସ୍କୃତ ବ୍ୟାକରଣ ପ୍ରଣେତା—The name of the compiler of a Sanskrit grammar. [ ଦ୍ର—ବର୍ତ୍ତମାନ ନିଜାମ ରାଜ୍ୟର ଅନ୍ତର୍ଗତ ଦେବଗିରିସ୍ଥ ମହାରାଜ ମହାଦେବଙ୍କ ଧର୍ମାଧିକରଣର ଏ ପଣ୍ଡିତ ଥିଲେ । ଏ ଖ୍ରୀଷ୍ଟ ୭ମ ଶତାବ୍ଦୀର ଶେଷ ଓ ଅଷ୍ଟମ ଶତାବ୍ଦୀର ଆରମ୍ଭର ଲୋକ । ଏ ଶଙ୍କରାଚାର୍ଯ୍ୟଙ୍କ ସମସାମୟିକ ଥିଲେ । ଶଙ୍କରାଚାର୍ଯ୍ୟଙ୍କ ଯୁକ୍ତିରେ କାଶୀରାଜ ଶୂର ନାନାସ୍ଥାନରୁ ଭାଗବତ ଗ୍ରନ୍ଥ ସଂଗ୍ରହ କରି ଗଙ୍ଗାରେ ନିକ୍ଷେପ କଲେ ଓ ବୋପ ଦେବ ବହୁ କଷ୍ଟରେ ତହିଁର ଉଦ୍ଧାର କଲେ । ଏ ଭାଗବତର ୩ ଖଣ୍ଡ ଟୀକା ( ହରିଲୀଳା, ମୁକ୍ତାଫଳ ଓ ପରମହଂସପ୍ରିୟ ) ପ୍ରଣୟନ କରିଥିଲେ । ସଂସ୍କୃତ ମୁଗ୍ଧବୋଧ ବ୍ୟାକରଣ ପ୍ରଣେତାରୂପେ ଏ ଜଗଦ୍ୱିଖ୍ୟାତ । ଏ ୯ ଖଣ୍ଡି ବୈଦ୍ୟକ ଗ୍ରନ୍ଥ ରଚନା କରିଥିଲେ । କେହି କେହି ଏହାଙ୍କୁ ବୈଦ୍ୟବଂଶ ସମ୍ଭୂତ ବୋଲି କହନ୍ତି; କିନ୍ତୁ ଏ ବ୍ରାହ୍ମଣ ଥିବାର ସ୍ପଷ୍ଟ ପ୍ରମାଣ ରହିଅଛି । ଏ ତୀର୍ଥ ନିର୍ଦ୍ଧାରଣ ବିଷୟରେ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ । ଏ ବୈଷ୍ଣବ ଥିଲେ ଓ ରାମାନୁଜାଚାର୍ଯ୍ୟଙ୍କ ଊର୍ଦ୍ଧ୍ୱତନ ପଞ୍ଚମ ଗୁରୁସ୍ଥାନୀୟ ଥିଲେ—ସୁବଳଭଦ୍ର. ବାଙ୍ଗାଲା ଅଭିଧାନ ।]

Bopa deba

**ବୋପା**— ଗ୍ରା. ( ଇତର ) ବି (ସଂ ବପ୍ତା)—୧ । ବାପ—1. Father. [ ଦ୍ର—ବ୍ରାହ୍ମଣମାନେ ପିତାଙ୍କୁ ନନା ଓ ବାପା, କ୍ଷତ୍ରିୟମାନେ ଦଦା, କରଣ ଓ ବୈଦ୍ୟମାନେ ବାପା, ଇତର ଶୂଦ୍ରମାନେ ବାଆ, ଓ ବୋପା ଡାକନ୍ତି । ] ୨ । ଅଳ୍ପବୟସ୍କ ବ୍ୟକ୍ତିଙ୍କ ପ୍ରତି ବାତ୍ସଲ୍ୟାର୍ଥକ ସମ୍ବୋଧନ; ହେ ବତ୍ସ !—2. A term of endearment to an youngster.

Bopā
বাপা
**बाप**

**ବୋପାଙ୍କ ଉତନ**—ଦେ· ବି ( ଗାଳି )—୧ । ପିତୃଧନ; ପିତୃଦତ୍ତ ଧନସମ୍ପତ୍ତି—1 Paternal property. ( ବୋପାମାଲ—ଅନ୍ୟରୂପ ) ୨ । ଯେଉଁ ସମ୍ପତ୍ତି ଉପରେ ମନୁଷ୍ୟର ପୂର୍ଣ୍ଣ ସ୍ୱତ୍ୱ ଥାଏ—2. A property to which a person has full right and title.

Bopāṅka utana
**बपौती**

**ବୋପାଲୋ**—ଗ୍ରା. ( ଇତର ) ଅ—୧ । ଆଶ୍ଚର୍ଯ୍ୟାର୍ଥକ ଓ ଭୟାର୍ଥକ ଅବ୍ୟୟ; ବାପରେ !—1. Interjection; oh God ! Oh father ! ୨ । ଶାରୀରିକ ଯନ୍ତ୍ରଣା ବା ହଠାତ୍ ଉପସ୍ଥିତ ବିପଦବେଳେ ମନୁଷ୍ୟର ଡାକ—2. An interjection used in times of mental agony or sudden danger.

Bopālo
বাপরে বাপ
**बाबारे बाबा, बापरे बाप**

ବୋପାଲୋ ବୋପା, ବୋପାଲୋ ମାଆଲୋ, ବୋପାଲୋ ମାଆ } ଅନ୍ୟରୂପ

**ବୋପାଲୋ ମଲି**—ଗ୍ରା ଅ (ହଠାତ୍ ଉପସ୍ଥିତ ବିପଦ ସମୟରେ ଆର୍ତ୍ତନାଦ) ହେ ପିତଃ ! ମୋର ମୃତ୍ୟୁ ସମୟ ଉପସ୍ଥିତ, ମୋତେ ରକ୍ଷା କର—An exclamation invoking help during sudden danger.

Bopālo mali
**बापरे मरताहुँ**
বাপরে মরেগেলাম

**ବୋପାଲୋ ମାଆଲୋ ହେବା**—ଦେ. କ୍ରି—ବିକଳରେ ଛଟପଟ ହୋଇ ଆର୍ତ୍ତସ୍ୱର କରିବା—To utter exclamations in extreme agony.

Bopālo mā-ālo hebā
বাপরে মারে করা
**बापरे माआरे करना**

**ବୋପେଇ**—ଗ୍ରା. (ଇତର ବ୍ୟବହୃତ) ବି—୧ । ଶ୍ୱଶୁର—1. Father-in-law. ୨ । ଜ୍ୱାଇଁଙ୍କୁ ସମ୍ବୋଧନ—2. A term used in addresing one's son-in-law.

Bopei

**ବୋବର୍ସ**—ଦେ. ବି—ଶଗଡ଼ର ଦଣ୍ଡାକାଠ ଫାଟି ଗଲେ ବା ଭାଙ୍ଗି
Bobarā ଗଲେ ଫଟାକାଠ ଦୁଇଖଣ୍ଡର ଶୃଙ୍ଗପାଖେ ଯେଉଁ ଲୁହା ପାଞ୍ଚିଆ ଗୁଡ଼ାଇ କରି କାଠ ଦୁଇ ଖଣ୍ଡକୁ ପରସ୍ପର ସଂଲଗ୍ନ କରି ରଖାଯାଏ,ଉକ୍ତ ଲୁହା ପାଞ୍ଚିଆକୁ ଓ ଦଣ୍ଡାକାଠକୁ ପରସ୍ପର ସହିତ ଦୃଢ଼ ସଂଲଗ୍ନ କରିବା ପାଇଁ ଯେଉଁ ପତଳା କାଠଖିଲ ଫାଙ୍କରେ ବାଡ଼ିଆ ଯାଏ—A thin wedge driven into the interstice between the iron ring and the broken shaft of a cart to make the ring sit tight.

**ବୋବା**—ଦେ. ବିଣ. ପୁଂ ( ଧ୍ୱନ୍ୟନୁକରଣ; ଯେ କଥାବାର୍ତ୍ତା କରି ନ
Bobā ପାରି ବା ବା ବା, ବୋ ବୋ ବୋ, ଏହିପରି ଶବ୍ଦ
বোবা କରେ )—୧ । ଜଡ଼ା; ମୂକ—1. Mute; dumb.
**बौका, गूंगा** ୨ । ଖନା—2. Stammering. ( ଉ—ଶୁକ
(ବୋବୀ—ସ୍ତ୍ରୀ) ବୋଇଲେ ଅହେ କର୍ମିକର ଛଡ଼, ବୋବା ବୋଲୁ ଅଛ ତ ଏଥିରେ କେ ବଡ଼—କୃଷ୍ଣସିଂହ. ମହାଭାରତ. ଶାନ୍ତି । ) ୩ । ବୋବାଳି ( ଦେଖ )—3. Bobāḷi (See)

**ବୋବା(ବେ)ଇବା**—ଦେ· କ୍ରି (ଧ୍ୱନ୍ୟନୁକରଣ; ତୁଳ. ଇଂ, ବଓ୍ୱେଲ୍)—
Bobā(be)ibā ୧ । ରଡ଼ି ଛାଡ଼ିବା; ଉଚ୍ଚୈଃସ୍ୱରରେ କାନ୍ଦିବା;
কান্নাকাটি করা ବିଳାପ କରିବା—1. To bewail or lament
**चिल्लाकर रोना** loudly. ( ଉ—ଭୁଞ୍ଜ ତୁମ୍ଭେ ଗୁଡ଼ାଏ ନ ମରି

| | | |
|---|---|---|
| ବୋବାଳି କରିବା, ବୋବାଳି ଛାଡ଼ିବା, ବୋବାଳି ପକାଇବା, ବୋବାଳି ପାଡ଼ିବା, ବୋବ ଦେବା | ଅନ୍ୟରୂପ | ବୋବାଇ, ଆମ୍ଭେ ତୁମ୍ଭ ମଝରେ ହୋଇଲୁଣି |

କାଇ—କୃଷ୍ଣସିଂହ· ମହାଭାରତ. ସଭା । ) ୨ । ( ଇତର ଜୀବଜନ୍ତୁ ) ରବ କରିବା—2. To utter sound ( said of animals ). ( ଉ- ବୋବ ଦେଲ ପକ୍ଷି-ନାଦ ଛଳରି, ବଦନେ କାଳ ପଡ଼ିଲା ହଗରି—ଭଞ୍ଜ. ବୈଦେହୀଶବିଳାସ । )

**ବୋବାଳି**—ଦେ. ବି—୧ । ଭୟରେ ବା ଦୁଃଖରେ ଆର୍ତ୍ତନାଦ; ଡାକ;
Bobāḷi ବିକଳ ଡାକ; ବିକଳ ଚିତ୍କାର—Loud cry of
কান্নাকাটী distress. ( ଉ—ଲତାକୁ କରି ସର୍ପ ଭୟେ,
**चिल्लाकर रोना, चितकार** ବୋବାଳି ପାଡ଼ିଲେ ଥୋକାଏ—
( ବୋବ—ଅନ୍ୟରୂପ ) ଭୂପତି. ପ୍ରେମପଞ୍ଚାମୃତ । ) ୨ । ଉଚ୍ଚୈଃସ୍ୱରରେ କାନ୍ଦଣା; କାନ୍ଦୁନା; ରଡ଼ି—2. Loud
ডাক crying; wail. ୩ । ନାଦ; ରବ;ଉଚ୍ଚଧ୍ୱନି—3. Loud
**आवाज** sound. ୪ । ପଶୁପକ୍ଷୀମାନଙ୍କ କଣ୍ଠଧ୍ୱନି; ରବ—4. Sound made by birds and beasts. [ ଦ୍ର—ଭିନ୍ନ ଭିନ୍ନ ପଶୁପକ୍ଷୀଙ୍କର ବୋବାଳିର ଭିନ୍ନ ଭିନ୍ନ ନାମ ଅଛି; ଯଥା—ବାଘ, ସିଂହଙ୍କ—ଗର୍ଜନ, ହେମ୍ବାଳ, ରଡ଼ି । ହାତୀର—ପେଏଁ କାଳ (ସଂ. ବୃଂହଣ; ବୃଂହିତ) । ଘୋଡ଼ାର—(ସଂ. ହ୍ରେଷା) ହେରେଷା; ହେଁହେଁ । ବିଲୁଆ, କୁକୁର—ଭୁକ । ମାକଡ଼—ଖେଙ୍କା । ଷଣ୍ଢ—ହେମ୍ବାଳ, ହେମ୍ବାଳିଆଇବା । ଗାଈ, ବଳଦ, ବାଛୁରି—ହମାଳିବା । ମେଣ୍ଢା, ଛେଳି—ବୋବାଳି, ମେଁ ମେଁ କରିବା । ଗଧ —ରଡ଼ି । ପକ୍ଷୀ—ରାବିବା; ବୋବାଇବା, ବୋବାଳି, ବୋବ ।]

**ବୋବାଳି ପା(ଛା)ଡ଼ିବା**—ଦେ. କ୍ରି—ଉଚ୍ଚୈଃସ୍ୱରରେ କାନ୍ଦିବା—
Bobāḷi pā(chhā)rḍibā To cry aloud.
কান্নাকাটি করা **चिल्लाकर रोना**
[ବୋବ ପା(ଛା)ଡ଼ିବା—ଅନ୍ୟରୂପ]

**ବୋମା**—ବୈଦେ. ବି. (ଇଂ. ବମ୍)—ବମ୍ ( ଦେଖ )
Bomā বোমা **बम** Bam (See)

**ବୋମୁ ଗ(ଗୁ)ର୍ସ**—ଦେ. ବି—ବୃକ୍ଷ ବିଶେଷ—Flagellaria Indica
Bomu ga(gu)rā (Haines). [ଦ୍ର— ଏହା ମହାନଦୀ ତ୍ରିକୋଣ
বাঁচাদ **हुर्चेल** ଭୂମିରେ ଜନ୍ମେ । ଏହାର ଗଣ୍ଡି ଈଷତ୍ ଲାଲ ।]

**ବୋର**—ସଂ. ବି (ବା ଧାତୁ=ଗମନକରିବା+ଉର)—ଦାଳୁଅ ଧାନ—
Bora Summer paddy; marsh rice.
ଦେ. ବି—୧ । ବୋଳ (ଦେଖ)—1. Boḷa (See).
୨ । ବୋର ଧାନ (ଦେଖ)—Bora dhāna (See).
ବିଣ—ଅଳଙ୍କାର ବା କାଠି ନ ଭରିବା ଯୋଗୁଁ ବୁଜି ହୋଇ ଯାଇଥିବା ( କାନର ବା ନାକର ଛିଦ୍ର )—
ছাঁদাবুজা **छेदबंद** Filled up (bore in the ear or nose). [ ଦ୍ର—ଅଳଙ୍କାର ପିନ୍ଧିବା ପାଇଁ କାନରେ ଓ ନାକରେ ଯେଉଁ ଛିଦ୍ର ଫୋଡ଼ା ହୋଇଥାଏ ସେଥିରେ ଅଳଙ୍କାର ନ ଭରିଲେ କିଛିଦିନ ବାଦ ତାହା ବୁଜି (ବୋର) ହୋଇଯାଏ । ଏଥିପାଇଁ ସେ ଛିଦ୍ରରେ ଲୋକେ ନିମ କାଠି ବା ସୋଲ ଭରି ତାକୁ ଅଳଙ୍କାର ପିନ୍ଧିବା କାଳ ପର୍ଯ୍ୟନ୍ତ ମେଲା ରଖିଥାଆନ୍ତି । ] ପ୍ରାଦେ (ସମ୍ବଲପୁର ଓ କଳାହାଣ୍ଡି) ବି—ବଦର; ବରକୋଳି—Jujube (berry).

**ବୋରକ**—ସଂ. ବି· -୧ । ବୋର ( ଦେଖ )—1. Bora (See).
Boraka ୨ । ବୋଳକ ( ଦେଖ )—2. Boḷaka (See).

**ବୋର(ଳ)ଝାଞ୍ଜି**—ଦେ. ବି (ସଂ. ବାରିପର୍ଣ୍ଣୀ)—୧ । ଏକପ୍ରକାର ଭାସମାନ
Bora(ḷa)jhānji ଦଳ—1. Water lettuce; Serra-
( ବରଝାଞ୍ଜି—ଅନ୍ୟରୂପ ) tophyllum Submersum;
ସଂ. ବାରିପର୍ଣ୍ଣୀ, କୁମ୍ଭିକା Pristia Stratiotes.
টোপাপানা, পানা [ ଦ୍ର—୧୮୬୩ ସାଲରେ ତାଞ୍ଜୋର
**जलकुंभी** ଜେଲ୍‌ରେ କାନ୍ଦୁମ୍ବଲ ଗୁଡ଼ିଏ ଲେଖାଏଁ
ତେ. ଗୁଡ଼ିକୁରୁ; ବେକାମ୍ବୂ, ବୋରଝାଞ୍ଜି ଜମାକରି ରଖି ପରୀକ୍ଷାଦ୍ୱାରା
ଜଲକୁମ୍ଭୀ ଦେଖାଗଲା ଯେ ୨୩ ଦିନ ମଧ୍ୟରେ ଜେଲଖାନାର ସମସ୍ତ ସ୍ଥଳଯୋକ ଉକ୍ତ ବୋରଝାଞ୍ଜି ପାଖକୁ ଆକୃଷ୍ଟ ହୋଇଆସି ସେଠାରେ ମରିଗଲେ—Kirtikar]
୨ । (ଲକ୍ଷଣାର୍ଥ) (ଜଳରେ ଭାସୁଥିବା ବୋରଝାଞ୍ଜି ପବନ ଦ୍ୱାରା ବିତାଡ଼ିତ ହୋଇ ପୋଖରୀର ଏ ପାଖ ସେ ପାଖକୁ ଆଉଜି ଯିବାରୁ ଓ ଯେଉଁ ଆଡ଼କୁ ପବନ ବହେ ସେହି ଆଡ଼କୁ ଚଳିତ ହେଉଥିବାରୁ) ଯେଉଁ ବ୍ୟକ୍ତିର ମତ ସ୍ଥିର

ନ ଥାଏ ଓ ଯେ ବ୍ୟକ୍ତିବିଶେଷଙ୍କ ମତଦ୍ୱାରା ଚାଳିତ ହୋଇ ଆଜି ଏ ପକ୍ଷ କାଲି ସେ ପକ୍ଷକୁ ସମର୍ଥନ ବା ଅବଲମ୍ବନ କରେ—2. ( figurative ) A fickle-minded person; a person who sticks to no fixed principle or opinion or party, but is led (like floating duck weed wafted by wind from one part of a tank to another) to avow one side to-day and another to-morrow.

**ବୋରଟ**—ସଂ. ବି—କୁନ୍ଦ ଫୁଲ—A kind of Jasmine.
Borata
ବୈଦେ. ବି ଇଂ. ବୋର୍ଡ୍)—ବୋଡ୍ (ଦେଖ) Bord (See).

**ବୋରଠ**—ପ୍ରାଦେ (କଟକ) ବି—ମୁରୁମ (ଦେଖ)
Boratha Muruma (See).

**ବୋରଡ଼ା**—ଦେ. ବି—ଚିଲିକାର ଏକ ପ୍ରକାର ମାଛ—A
Borarda kind of fish found in the Chilka lake.

**ବୋର ଧାନ**—ଦେ. ବି ସଂ. ବୋରକ; ବରକ=ତୃଣଧାନ୍ୟବିଶେଷ)—
Bora dhana ନାଲିଚାଉଳବିଶିଷ୍ଟ ମୋଟ ଧାନ—A species
বোরো বোরোধান of paddy producing rice of
बोरो धान red colour.

**ବୋରବ**—ସଂ. ବି—ବୋର (ଦେଖ)
Boraba Bora (See).

**ବୋରା**—ଦେ. ବି ( ସଂ. ବରଣ୍ଡ=ଉଚ୍ଚ )—ଝୋଟର ବା ଛଣପଟର
Bora ଦଉଡ଼ିରେ ବୁଣା ବଡ଼ ବସ୍ତା; ଅଖା—
বোরা बोरा Big gunny bag. ବୈଦେ. ବଣ
খারাপ ( ପା. ବୁରା )—୧ । ବୁରା; ମନ୍ଦ—1. Bad.
बुरा [ ଦ୍ର—ଯେଉଁ କଛି ଭଲ ବୋଲା ବାସନା ଲକ୍ଷଣ— ପ୍ରାଚୀ. ଶିକ୍ଷାଶ୍ରେଣୀ । ] ୨ । ଅନୁଚିତ (କର୍ମ)—
2. Improper (act).

**ବୋରା(ରେ)ଇ**—ବୈଦେ. ବଣ ( ପା )—ବୋରା ( ଦେଖ )—
Bora(re)i Bora ( See ). ବୈଦେ. ବି.
बुराइ ( ପା. ବୁରାଇ )—ମନ୍ଦ ପଣ—
Badness.

**ବୋରି**—ଦେ. ବି—୧ । ଅନେକ ତାଳ, ଖଜୁରୀ ଆଦି ଗଛ
Bori ଥିବା ସ୍ଥାନ; ତାଳ ମରେଇ; ତାଳ ବନ—
ବୋରିଆ
ବୋରେଇ } —ଅନ୍ୟରୂପ 1. A tope of palm trees.
୨ । ପୁରୁଗ ( ଦେଖ )—
2. Purduga (See).

**ବୋରିଆ**—ପ୍ରାଦେ. ( ଗଞ୍ଜାମ ) ବି.—ପୋହଲା ମାଛ—
Boria A kind of fresh water fish; Cirrhina Reba.

**ବୋରିକ୍ ଏସିଡ୍**—ବୈଦେ. ବି ( ଇଂ )—ସୁହାଗା ବା ଟାଙ୍ଗଣା
Borik esid ଖଇ ମିଶିତ ଏକପ୍ରକାର ଚୂନା—
(ବୋରାସିକ୍ ଏସିଡ୍—ଅନ୍ୟରୂପ) Boric acid; boracic acid.
বোরিক এসিড [ ଦ୍ର—ଏହି ଚୂନା ଘା ଔଷଧ ପଚନ
बोरिक एसिड ନିବାରକ ଅଟେ । ]

**ବୋର୍କା(ର୍ଖା)**—ବୈଦେ. ବି. (ଆ)—ମୁସଲମାନ୍ ଭଦ୍ରପରିବାରର ସ୍ତ୍ରୀମାନେ
Borkā (rkhā) ପଦାକୁ ବାହାରିଲା ବେଳେ ସେମାନଙ୍କ ମସ୍ତକରୁ
বোর্কা बुर्का ପାଦ ପର୍ଯ୍ୟନ୍ତ ଆବୃତ କର ଯେଉଁ ଘୋଡ଼ଣି ବା ଖୋଳ ଲମ୍ବିଥାଏ—A dress or veil covering the whole body from head to foot, used by Mahomedan ladies while going out.
[ଦ୍ର—ଏଥିର ଆଖି ପାଖରେ ଦୁଇଟି ଛିଦ୍ର ଥାଏ ଓ ଆବୃତା ନାରୀ ସେହି ଛିଦ୍ର ବାଟେ ବହିର୍ଜଗତକୁ ଦେଖିବାକୁ ସମର୍ଥା
[ବୁର୍କା(ର୍ଖା)—ଅନ୍ୟରୂପ] ହୁଅନ୍ତି ।]

**ବୋର୍ଡ୍**—ବେଦେ ବି (ଇଂ)—ବୋଡ୍ (ଦେଖ)
Bord Bord (See)

**ବୋର୍ଡ୍ ଅଫ୍ ଏକ୍ଜାମିନର୍ସ**—ପରୀକ୍ଷକ ନିର୍ବାଚନ ସମିତି—Board of
Bord aph ekjāminars Examiners.
বোর্ড অফ এক্জামিনার্স बोर्ड अफ एकजामिनार्स

**ବୋର୍ଡ୍ ଅଫ୍ ଏକ୍ଜାମିନେସନ୍**—ବେଦେ. ବି (ଇଂ)—ଯେଉଁ ସମିତି
Bord aph ekjāminesan ବିଭିନ୍ନ ପରୀକ୍ଷା ବିଷୟ ବିଚାର
বোর্ড অফ একজামিনেসন করন্তି—Board of Examination.
वोड अफ एकजामिनेसन

**ବୋର୍ଡ୍ ଅଫ୍ ଟ୍ରଷ୍ଟିଜ୍**—ବୈଦେ.ବି (ଇଂ)—କୌଣସି କମାବାର ସମ୍ପତ୍ତିର
Bord aph trashtij ରକ୍ଷଣାବେକ୍ଷଣ ପାଇଁ ନିଯୁକ୍ତ ହୋଇଥିବା
বোর্ড অফ ট্রষ্টি ବିଶ୍ୱସ୍ତ ଲୋକମାନଙ୍କର ସମିତି ବା ସଙ୍ଘ—
वोड अफ ट्रष्टीज् Board of trustees.

**ବୋର୍ଡ୍ ଅଫ୍ ଟ୍ରେଡ୍**—ବୈଦେ. ବି ( ଇଂ )—ଦେଶର ବାଣିଜ୍ୟ
Bord aph tred ପରିଚାଳନା ବିଷୟକ ସଭା—Board of
বোড় অফ টে্ড; वोड अफ ट्रेड Trade.

**ବୋର୍ଡ୍ ଅଫ୍ ଡାଇରେକ୍ଟର୍ସ**—ବୈଦେ. ବି ( ଇଂ )—୧ । ଯୌଥ
Bord aph dāirektars କାରବାରର ପରିଚାଳକ ସମିତି—
বোড় আফ ডাইরেক্টর্স Board of Directors. ୨ । ସାବକ
वोड अफ डाइरेक्टरर्स ଇଷ୍ଟଇଣ୍ଡିଆ କମ୍ପାନୀର ପରିଚାଳକ ସମିତି—
( ବୋର୍ଡ ଅଫ୍ ଡିରେକ୍ଟର୍ସ—ଅନ୍ୟରୂପ ) 2. Board of Directors of the East India Company.

**ବୋର୍ଡ୍ ଅଫ୍ ରେଭିନ୍ୟୁ**—ବୈଦେ. ବି (ଇଂ)—ପ୍ରଦେଶର ରାଜସ୍ୱ
Bord aph rebhinyu ପରିଚାଳନା ସମ୍ବନ୍ଧୀୟ ସରକାରୀ ସମିତି—
রেভিন্যু বোড়; वोड्अफरेभिन्यु Board of Revenue.

**ବୋଲ**—ସଂ. ବି—(ବା. ଧାତୁ=ଗମନ କରିବା+କର୍ତ୍ତ୍ତୃ. ଭିଲ)—
Bola ୧ । ଗୁଗୁଲ ପରି ଏକପ୍ରକାର ସୁଗନ୍ଧଧୂମୋତ୍ପାଦକ ନିର୍ଯ୍ୟାସ;
ସଂ. ବୃକ୍ଷାର, ରକ୍ତ ଗନ୍ଧକ, ଗନ୍ଧ ରସ; ଲୋବାନ୍—1. Myrrh;
ଗନ୍ଧରସ, ଶଲ୍ଲକୀ, ରକ୍ତାପହ balsam; frankincense;
ଓ, ଲୋବାନ୍ storax; banzoin; libanum.
गन्धबोल, खुन खाराप [ଦ୍ର—ଏହା ଏକ ପ୍ରକାର ବୃକ୍ଷର
बोल ନିର୍ଯ୍ୟାସ । ଏହା ଶୁଖାଇ କରି
ଆ. ଲବାନ୍ ନିଆଁରେ ପକାଇଲେ ସୁଗନ୍ଧ ଧୂଆଁ
ମ. ବୋଲ ବାହାରେ । ଏ ଗଛ ଆଫ୍ରିକା ଓ
ତେ. ବାଳନ୍ତ୍ରବୋଲୁ, ଆରବରେ ଜନ୍ମେ ଓ ଏଥିର ଶୁଖିଲା

ବାଲ୍ସମୋଲ୍ଲୋପୋଲମ୍ ନିର୍ଯ୍ୟାସ ବା ଲେବାନ୍ ସେ ଦେଶରୁ ଆମ ଦେଶକୁ
ଗା. ବେଲ୍ଲଇଫପୋଲମ୍ ଅସେ ।] ୨ । କ୍ଷାର୍ ଜଳ—2. Alkaline
ଫା. ମୁରୁ water. ୩ । ପାଉଁଶଗୋଳାଥିବା ପାଣି—3.
ଅ. ମୁରୁସାଫ୍ Water mixed with ashes. ଦେ. ବି.
(ସଂ.ସ୍ତର,ଲେପ)—୧ । ଦେହରେ ବସିବା ମଳର ପରସ୍ତ ବା
ମଡମଡ଼ି ସ୍ତର—1. A layer of dirt deposited on the
**पर्त, चौर** unwashed body ୨ । ପାନ ଅଧିକ ଖଇ ହାଗ
ଦାନ୍ତ ଓ ଓଠ ଉପରେ ବସିଥିବା ମୋଟ ଲାଲ ବର୍ଣ୍ଣ ସ୍ତର—
ଦରାନୀ 2. A thick layer of coloured pigment
deposited on the lips and on the teeth as
a result of excessive chewing of betel.
(ଉ—ନେତ୍ର ତାମ୍ବୂଲ ବୋଲଯୁତ । ଭୂପତି. ପ୍ରେମପଞ୍ଚାମୃତ)
୩ । ଅଲତା ବା ବଟା ହଳଦୀ ପ୍ରଭୃତିର ବା ରଙ୍ଗର ସ୍ତର;
ଲେପ—3. A layer of paint or paste of
articles such as lac-dye or turmeric.
( ଉ—ଶିର ସୁନ୍ଦର ଦଶେ ଯାବକ ବୋଲେ । କବିସୂର୍ଯ୍ୟ.
କଣୋପାତମ୍ଭୁ କ୍ଷ ଗୀତ ।)

**ବୋଲକ**—ସଂ. ବି—(ବୋ.ଧାତୁ=ଗମନ କରିବା+କର୍ତ୍ତୃ ଭୂଳ+କ)—
Bolaka ୧ । ଲେଖକ; ଲିପିକର—1. Writer; scribe.
୨ । ଚିତ୍ରକର—2. Painter.

**ବୋଲ ବସିବା**—ଦେ. କ୍ରି—ଦେହ ଆଦିରେ ମଇଳାର ବା ରଙ୍ଗର ସ୍ତର
Bola basibā ବସିଥିବା—The deposit of a layer of
ଦରାନୀ ବସା; **चौर बैठना** dirt or paint on the body.

**ବୋଲ**—ଦେ. ବି (ସଂ. ବଦ୍ ଧାତୁ. ପ୍ରା. ବୋଲ୍ଲ)—୧ । ବଚନ;
Bola କଥା; ବାକ୍ୟ—1. Word; speech; saying.
କଥା **बोल, कहना**; (ଉ—ଗଣ୍ଡ ମୂରୁଛ ଧଇଲା କା ବୋଲେ;
ଚରଣ ପଙ୍କଜ ଧଇଲେ ଦେଲେ । କବିସୂର୍ଯ୍ୟ. କବିତା)
୨ । ବାଦ୍ୟରୁ ଉଠିବା ଶବ୍ଦ—2. Sound of a
musical instrument. ୩ । ବୋଲି; ଘୋଡ଼ା,
ଗୋରୁ ଆଦିଙ୍କୁ ଚଲାଇବା ନିମନ୍ତେ ଚାଳକ ଦ୍ୱାରା ବ୍ୟବହୃତ
ସାଙ୍କେତିକ ବା ସଂକ୍ଷିପ୍ତ ବାକ୍ୟ— 3. Formulas or
set phrases used by drivers of beasts for
guiding them. ୪ । ଆଦେଶ—4. Order.
୫ । ପରାମର୍ଶ;ଉପଦେଶ—5. Advice. (ଉ--ଆଜ୍ଞା ଶ୍ରୀମ
ରଜାଙ୍କ ବୋଲରେ ନଳଙ୍କୁ—କୃଷ୍ଣସିଂହ.ମହାଭାରତ. ବନ) ।
୬ । ଅନୁରୋଧ—6. Request. (ଉ--ତାହାଙ୍କୁ ରକ୍ଷା
ତୁମ୍ଭେ କର ମୋ ବୋଲରେ । କୃଷ୍ଣସିଂହ. ମହାଭାରତ.ବନ) ।
୭ । ଡାକ—7. Call. ୮ । ପ୍ରତିଜ୍ଞା—8. Promise.
(ଉ—ବାଳ ବାଳୁକା ଖେଳ; ବୟସରେ ତ ଅନ ତୁମ୍ଭ ବୋଲ ।
ଭଞ୍ଜ, ବୈଦେହୀଶବିଳାସ) ।

**ବୋଲକର**—ଦେ. ବିଣ—ଆଦେଶ ପ୍ରତିପାଳନକାରୀ; ଆଜ୍ଞାପାଳକ—
Bolakarā ଯେ କଥା ଶୁଣେ; **अज्ञाधीन** Carrying out
(ଅବୋଲକରା—ବିପରୀତ) orders; obedient. ଦେ. ବି—
ଆର୍ଦ୍ଦାଳୀ; **अरदली** ଆଦେଶ ପାଳନାର୍ଥ ନିଯୁକ୍ତ ଭୃତ୍ୟ; ଅର୍ଦ୍ଦଳୀ—
An orderly servant.

**ବୋଲ କରିବା**—ଦେ. କ୍ରି—୧ । ଜଣଙ୍କର ଉପଦେଶ ଅନୁସାରେ କାର୍ଯ୍ୟ
Bola karibā କରିବା—1. To act according to
କଥା ଶୁଣା; **बातमानना** one's directions. [ଉ—ଦ୍ରୌପଦୀ
ବୋଇଲେ ମୋ ବୋଲ କର ବାବୁ—କୃଷ୍ଣସିଂହ.
ମହାଭାରତ. ସଭା) । ୨ । ଆଦେଶ ମାନିବା—2. To
obey one's orders. (ଉ—ଆଜ ଠାରୁ ବୋଲ ସେ
କରିବେ ତୁମ୍ଭର—କୃଷ୍ଣସିଂହ. ମହାଭାରତ. ବନ) । ୩ ।
ଅନୁରୋଧ ରକ୍ଷା କରିବା—3. To carry out a
request. (ଉ—ତୁମ୍ଭେ ଏବେ ମୋ ବୋଲ କର ଦ୍ୱିଜ
ପୂଜା । ଏ ଜଗତ ଯାକରେ ହେବ ମହାରାଜା—କୃଷ୍ଣସିଂହ.
ମହାଭାରତ. ଅନୁଶାସନ) । ୪ । କାର୍ଯ୍ୟକ୍ଷମ ବା କାର୍ଯ୍ୟକାରୀ
ଗାଓ୍ୱା; **चलना** ହେବା—4. To be in a properly
working order. (ଯଥା—ଏ ପୁରୁଣା ବେଟେହେଲଟି
ଆଉ ବୋଲ କରୁ ନାହିଁ)
୫ । (ଆଦେଶ ଆଦି) ପ୍ରତିପାଳିତ ହେବା—5. To be
obeyed; to be acted upon. ୬। ଆଦୃତ ହେବା—
ଚଳା 6. To be respected. ( ଯଥା—ଆଜିକାଲି ଯୁଗରେ
**चलना** ଆମ ମରହଟ୍ଟି ଆଉ କଥା ବୋଲ କରୁ ନାହିଁ ।) ୭ । କାର୍ଯ୍ୟ
ଫଳ କରା କରିବା; ଫଳପ୍ରଦ ହେବା—7. To be effective.
**गुण करना** (ଯଥା—ମୋ ଔଷଧ ଏ ରୋଗରେ ବୋଲ କଲା ନାହିଁ ।)
ଚଳା ୮ । ଇତସ୍ତତଃ ଚାଳିତ ହେବା; ଅସ୍ଥିର ହେବା—
**चमकना** 8. To move to and fro; to be restless.
(ଯଥା—ସେ ଚୋଳାକୁ କାଢ଼ ବୋଇଲେ ଘୋଡ଼ା ବୋଲ
କଥା ମାନା କରୁଅଛି । ) ୯ । ଅଧୀନ ହେବା—9. To be
**बोलमानना** under control. (ଯଥା—ମୋ ହାତରେ ଏ ଘୋଡ଼ା
ଗାଓ୍ୱା ଆଉ ବୋଲ କରୁ ନାହିଁ । ) ୧୦ । (ବାଦ୍ୟ ଯନ୍ତ୍ର ଆଦି)
**बोल निकालना** ବାଦକର ଅଙ୍ଗୁଳିଚାଳନାବଶ ହେବା—10. (a
musical instrument) To obey the hands
of a player.

**ବୋଲଙ୍ଗ**—ଦେ. ବି—୧ । ସ୍ଥାନ ବିଶେଷ—1. Name of a
Bolang place in Balasore. [ ଦ୍ର-ଏହି ସ୍ଥାନ ବାଲେଶ୍ୱର
ନଗରର ଉତ୍ତର ପୂର୍ବରେ ଅବସ୍ଥିତ । ଏଠାରେ ବହୁତ
ବାଉଁଶ ଗଛ ଅଛି ଏବଂ ଏଠାରେ ଅନେକ ସମୟରେ ଭାଲୁର
ଉପଦ୍ରବ ଶୁଣାଯାଏ ।] ୨ । ଚିଲିକାର ଏକପ୍ରକାର ମାଛ—
2. A kind of fish found in the Chilka
lake.

**ବୋଲ(ଲି) ଚାଲ(ଲି)**—ଦେ. ବି (ସହଚର ଶବ୍ଦ,—କୌଣସି ବ୍ୟକ୍ତିର
Bola(li) chāla(li) କଥାବାର୍ତ୍ତା ଓ ଆଚରଣ; ଚାଲିଚଳନ;
ବୋଲଚାଲ ଆଚରଣ—Words and conduct;
**बोलचाल** behaviour.

**ବୋଲଟ**—ବୈଦେ. ବି (ଇଂ; ଭୁଲ. ସ. ବଲ୍ଟ)—ଲୁହା ପେଚର ଅଗ
Bolat ପାଖରେ ଅଟ୍ଟାଯିବା ପଗଯୁକ୍ତ ଚକତି; ଢିବିର—
ବୋଲଟ **बोल्ट** Bolt of an iron screw.
(ବୋଲଟ୍ଟୁ, ବୋଲ୍ଟୁ, ବୋଲ୍ଟ—ଅନ୍ୟରୂପ)

ବୋଲଣ—ଦେ. ବିଣ (ସଂ. ବଦ ଧାତୁ; ପ୍ରା. ବୋଲ୍ଲ ଧାତୁ)—
Bolaṇa ୧ । ବଚନ—1. Word. ୨ । ଶାସ୍ତ୍ରାଦିର ପ୍ରମାଣିକ
ବଣ୍ଡା **बोलना** ବାକ୍ୟ— 2. A saying.

ବୋଲଣା—ଦେ. ବି—୧ । ଅପବାଦ; ନିନ୍ଦା ରଟନା—1. Blame;
Bolaṇā निन्दा **शिकायत** blasphemy; defamation.
୨ । ଗାଳି; ଭର୍ତ୍ସନା—2. Rebuke. (ଉ—କେଉଁଠି କର
ବୋଲଣା ? ଜଗ । ) ୩ । ଗାଳି ଖାଇବାର କାର୍ଯ୍ୟ;
ଯେଉଁ କାର୍ଯ୍ୟ କଲେ ଗାଳି ଶୁଣିବାକୁ ପଡ଼େ—3. A
work for which the doer deserves or
courts rebuke.

ବୋଲଣା କରିବା—ଦେ. କ୍ରି—୧ । ବୋଲଣା ଦେବା ( ଦେଖ )—
Bolaṇā karibā 1. Bolaṇā debā (See). ୨ । ଗାଳି
( ବୋଲଣା କାମ କରିବା—ଅନ୍ୟରୂପ ) ଖାଇବା ଭଳି କାର୍ଯ୍ୟ
काजकरे कथा शुना କରିବା—2. To do a work for
which a person deserves or courts
rebuke. (ଉ—ଖାଟିକି ଆସିବାବେଳେ, ଯେଉଁ ଯାହା
କହୁଥିଲେ, ଘାସୋଇ ସକଳ କାମ, କରି ବୋଲଣା—
ଉକାର, ଗୀତାଭିଧାନ । )

ବୋଲଣା ଦେବା—ଦେ. କ୍ରି—୧ । ଅପବାଦ ଦେବା; ନିନ୍ଦା କରିବା—
Bolaṇa debā 1. To defame; to blame. ୨ । ଗାଳି
**शिकायत करना** ଦେବା—2. To rebuke; to reprimand.

ବୋଲଣା ପାଇବା—ଦେ. କ୍ରି—୧ । ନିନ୍ଦା ପାଇବା; ନିନ୍ଦିତ ହେବା—
Bolaṇā pāibā 1. To be blamed. ୨ । ଭର୍ତ୍ସିତ ହେବା;
( ବୋଲଣା ଶୁଣିବା—ଅନ୍ୟରୂପ ) ଗାଳି ଖାଇବା—2. To be
कथाशुनना **निन्दाशुनना** censured or rebuked.

ବୋଲଦ(ଦା)ର—ଦେ ବି—ଚମଡ଼ାମୋଡ଼ା ଚୌକି ବିଶେଷ—
Bolada(dā)ra A seat or stool covered over
with hide.

ବୋଲ ପାଳିବା—ଦେ. କ୍ରି—୧ । ଆଦେଶ ପ୍ରତିପାଳନ କରିବା—
Bola pāḷibā 1. To obey one's order; to carry
(ବୋଲ ମାନିବା, ବୋଲ ରଖିବା—ଅନ୍ୟରୂପ) out one's
कथा शुना order. ୨ । ଅନୁରୋଧ ରକ୍ଷା କରିବା—2 To
**बात मानना** accede to a request.

ବୋଲ ବତା(ତେ)ଇବା—ଦେ. କ୍ରି—୧ । ପରାମର୍ଶ ବା ଉପଦେଶ
Bola bata(te)ibā ଦେବା—1. To give an advice,
कथा बता ୨ । କୌଣସି କାର୍ଯ୍ୟ କରିବାକୁ ଅନୁରୋଧ କରିବା—
**बात बताना** 2. To request a person to do an act.

ବୋଲ ହାକ—ଦେ. ବି—( ନିରର୍ଥକ ସହଚର )—୧ । ଆଦେଶ ଓ
Bola hāka ଉପଦେଶ—1. Order and advice. ୨ ।
डाक हाक ଗୃହସ୍ଥର ଦୈନନ୍ଦିନ ସାଧାରଣ କର୍ମ କରିବା ପାଇଁ ଭୃତ୍ୟଙ୍କୁ
**बोल** ଆଦେଶ—2. Ordinary order of a routine
nature in a household.

ବୋଲହାକ କରିବା (ଶୁଣିବା)—ଦେ. କ୍ରି—ଗୃହରେ ବା ଅଫିସ୍‌ରେ
Bolahāka karibā (śuṇibā) ପ୍ରଭୁଙ୍କର ସାଧାରଣ ଆଦେଶ-
डाक हाक शुना ମାନ ପାଳନ କରିବା—To carry out the
**बोल बजाना** ordinary orders of a householder or
of an officer. [ଦ୍ର—ଏହା ଆମ ଦେଶର 'ବୋଲ-
କରା' ଓ ସାହେବଙ୍କ 'ଅର୍ଦ୍ଦଲୀ'ମାନେ କରନ୍ତି ।]

ବୋଲା—ଦେ. ବି—ବୋଳିବା ବା ଲେପିବା କ୍ରିୟା—Act of
Boḷā माखा **पोतना** smearing or daubing. [ଉ-
ଦଳା-ଅଞ୍ଜନ-ପ୍ରଭୃ ବୋଳା ପର୍ଯ୍ୟନ୍ତେ । ରାଧାନାଥ. ମେଘଦୂତ]
ବିଣ—ଲେପିତ—Smeared; anointed [ଉ—
କାହାର ଅବା ଭସ୍ମେ ବୋଳା ତନୁ । ରାଧାନାଥ. ମହାଯାତ୍ରା ।]

ବୋଲି—ଦେ. ବି—ବୋଲିବା କ୍ରିୟା—Act of speaking.
Bolā बला **बोलना** [ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସହିତ
ବ୍ୟବହୃତ ହୁଏ ଯଥା—ଗୀତ ବୋଲି, ବଡ଼ ବୋଲି, ଲୁହା
ବୋଲି ଇତ୍ୟାଦି ।]

ବୋଲି(ଲେ)ଇବା—ଦେ. କ୍ରି—( ବୋଲିବା କ୍ରିୟାର ଣିଜନ୍ତ ରୂପ—
Bolā(le)ibā The causative form of Bolibā.)
बलान, बोलान ୧ । କୁହାଇବା; ଅନ୍ୟବ୍ୟକ୍ତିଦ୍ୱାରା ବୋଲିବା କ୍ରିୟା
**बोलाना** କରାଇବା—1. To cause to be spoken. ୨ ।
अभिहित हओया ବୋଲି ଯିବା; କଥିତ ହେବା—2. To be
**कहलाना** spoken as. [ ଉ—ପ୍ରଭୁ ବୋଲାଇଣ ତୁମ୍ଭେ
ଅକୃଷଣ, ହେଲ ଦେହଲଗା ଉତ୍ତ୍ୟର ବାହନ । ରାଧାନାଥ.
ଦରବାର ।] ୩ । ଖ୍ୟାତ ହେବା—3. To be
known as. [ ଉ—ବୋଲାଏଁ ମୁଁ କରବରନା-
ପ୍ରବର ! ତୋ କରପଲ୍ଲବେ । କବିସୂର୍ଯ୍ୟ. ସଙ୍ଗୀତ । ]
୪ । ଅଭିହିତ ହେବା; ନାମରେ ଡକା ହେବା—4. To
be styled or called as. [ଉ—ଅଙ୍ଗ କାଟି
ଦେବାରୁ କର୍ଣ୍ଣ ବୋଲାଇଲେ । କୃଷ୍ଣସିଂହ. ମହାଭାରତ. ଆଦି]
**बोलाना** ୫ । କହି ପଠାଇବା—5. To send words. [ ଉ-
ବୋଲାଇଲେ ଅଜସୁତ ପୁର ଜନଙ୍କୁ । ଉପେ. ବୈଦେହୀଶ-
ବିଳାସ ।]

ବୋଲବନ୍ତି—ଦେ. କ୍ରି (ପ୍ରାଚୀନ ପଦ୍ୟ)—[ବୋଲିବା କ୍ରିୟାର, ତୃତୀୟ
Bolābanti ପୁରୁଷ ମାନ୍ୟାର୍ଥକ ଏକବଚନ (ସେ ) ଓ ବହୁବଚନ
(ସେମାନେ) ସଙ୍ଗେ ବ୍ୟବହୃତ ବର୍ତ୍ତମାନ କାଳ, କର୍ମ ବାଚ୍ୟ
ଆକାର]—କଥିତ ହୁଅନ୍ତି—(he or thy) Are Called.
(ଉ—ଏ ଭେଦ ନ ଜାଣି ଯେଉଁ ଗୁରୁ ବୋଲାବନ୍ତି—ପ୍ରାଚୀ.
ଶ୍ରୀ ଗୁରୁଭକ୍ତି ଗୀତା ।]

ବୋଲ ବୋଲି—ଦେ. ବି—(ସହଚର ଶବ୍ଦ)—୧ । କଥୋପକଥନ—
Bolā boli बलाबलि, बोलाबुल्हि 1. Conversation.
**बातचित** ୨ । ପରସ୍ପର ମଧ୍ୟରେ କଳି ଓ ବଚସା—
2. Mutual quarrel; recrimination. ୩ ।
ଗୀତ ଆଦି ବୋଲିବା କ୍ରିୟା—3. Act of singing.
୪ । ଉତ୍ତର ପ୍ରତ୍ୟୁତ୍ତର—4. Dialogue.

ବୋଲିବୋଲି କରିବା—ଦେ. କ୍ରି—୧ । ଗୀତ ଆଦି ବୋଲିବା—
Bolā boli karibā बलाबलि करा 1. To sing.
**बोलावोली होना** ୨ । ଗାଳି ଦେବା—2. To rebuke; to
chide.

**ବୋଲ୍ ବୋଲି ହେବା**—ଦେ. କ୍ରି—୧ । ପରସ୍ପର ମଧ୍ୟରେ କଳି କରିବା_
Bolā boli hebā 1. To quarrel with each
ପରସ୍ପର ଗାଲାଗାଲି ଦେଓୟା other; to engage in
**बोलाबोली होना** mutual quarrel. (ଉ—ଏହି ରୂପେ ତୁହେଁ ଯେ ବୋଲ୍ଲବୋଲି ହୋଇ, ଯାଗର ମୁଣ୍ଡଙ୍କୁ ସେ କହିଲେ ଅନାଇ । କୃଷ୍ଣସିଂହ ମହାଭାରତ ବନ ।)
୨ । କଥୋପକଥନ କରିବା—2. To converse. ( ଉ—ଏହିରୂପେ ପରସ୍ପରେ ବୋଲ୍ଲବୋଲି, ହୋଇ ପଳାଇଲେ ମୂଷାଏ ଭୟେ ଭୀଳ । କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ । )

**ବୋଲି**—ଦେ. ବି ( ସଂ. ବଦ୍ ଧାତୁ, ପ୍ରା. ବୋଲ୍ଲ )—୧ । ଭାଷା;
Boli କଥା; ବାକ୍ୟ—1. Word. ୨ । ପ୍ରବଚନ—
बुली **बोली** 2. Saying; proverb. ( ଉ—ଏକ ସାଇକର ଗାଳି ଅନ୍ୟ ସାଇକର ବୋଲି—
**कहावत** ଭଗ ) ୩ । ବିଜ୍ଞାନ, କଳା ଓ ଶିଳ୍ପ ଆଦିରେ ବ୍ୟବହୃତ ବିଶିଷ୍ଟ ଶବ୍ଦ; ପାରିଭାଷିକ ଶବ୍ଦ—
**मुहावीरा** 3. Phraseology; technical words and phrases used in different sciences and arts. ୪ । ଶୁଆଙ୍କୁ ପଢ଼ାଇବାର ପଦ—
बलि **बोली** 4. Sentences taught to parrots.
बुलि; **बोली** ୫ । ବାହକ ପଶୁଙ୍କୁ ଚଳାଇବା ପାଇଁ ଚାଳକର ବିଭିନ୍ନାର୍ଥ-ବୋଧକ ବଚନମାନ—5. Set phrases used by drivers to guide animals. ୬ । ଭାଷା; ଭିନ୍ନ ଭିନ୍ନ ଦେଶରେ ପ୍ରଚଳିତ ଭାଷାର ପ୍ରାଦେଶିକ ରୂପ—
बुलि; **ब्रुलि** 6. Dialectical forms of a language; provincialism. ୭ । କଥା କହିବା ସମୟରେ ବିଭିନ୍ନ ବ୍ୟକ୍ତିଙ୍କର ଅଭ୍ୟାସ ଦୋଷରୁ କଥାର ମଝିରେ ମଝିରେ ଉଚ୍ଚାରିତ ନିରର୍ଥକ ବିଭିନ୍ନ ବାକ୍ୟ ବା ଶବ୍ଦ—7. Individual peculiarities interspersed at intervals of speech by different persons as a result of habit. ୮ । ଏକ ଦେଶର ବିଭିନ୍ନ ଜାତିରେ ବା ସମାଜରେ ଶବ୍ଦର ପ୍ରଚଳିତ ଭିନ୍ନ ଭିନ୍ନ ରୂପ—8 Different phraseologies or forms of a word current amongst different societies of a locality; patois.
୯ । ବାଦ୍ୟ ବଜାଇବାର ସାଙ୍କେତିକ ଧ୍ୱନି; ଘାତ; ସ୍ୱରଲିପି; ବାଦ୍ୟର ଉକ୍ତି; ବାଦ୍ୟ ଓ ଗୀତର ସ୍ୱରବନ୍ଧ—9. The set phraseology for a song or musical instrument.

[ ଦ୍ର—ଭିନ୍ନ ଭିନ୍ନ ବାଦ୍ୟର ଓ ନୃତ୍ୟର ଭିନ୍ନ ଭିନ୍ନ ବୋଲି ଅଛି, ଯଥା—ତାଧିନ୍‌ଧିନା, ତାକ୍ ତାକ୍ ଧିନା ଇତ୍ୟାଦି । ଭିନ୍ନ ଭିନ୍ନ ଗୀତର ଓ ତାଳର ଭିନ୍ନ ଭିନ୍ନ ବୋଲି ଅଛି ।

ତନ୍ତି, କୁମ୍ଭାର, କମାର, ବଢ଼େଇ, ଗଉଡ଼, ତେଲି, ପାଟରା, ଭୁଲାଭଣା, ବାଦ୍ୟକାର, ହାତୀ ମାହୁନ୍ତ, ଘୋଡ଼ା ସଇସ, ଶଗଡ଼ିଆ, କରୁଆନ୍, ନାଉରୀ, ଦୋକାନୀ, ଚୋର, ଡାକ୍ତର, ବୈଷ୍ଣବ, ବ୍ରାହ୍ମଣ, ଜେଲା ଆଦିଙ୍କର ବ୍ୟବହୃତ ଭିନ୍ନ ଭିନ୍ନ 'ବୋଲି' ଅଛି ।

ଦେଶର ଭିନ୍ନ ଭିନ୍ନ ଅଂଶରେ ଏକ ଶବ୍ଦର ଭିନ୍ନ ଭିନ୍ନ 'ବୋଲି' ଅଛି । ଯଥା—କଟକରେ ଗୋଟିଏ ବସ୍ତୁକୁ ଓଡ଼ିଆମାନେ ଯେଉଁ ନାମରେ ଡାକନ୍ତି, ଗଞ୍ଜାମରେ, ସମ୍ବଲପୁରରେ ଓ ମେଦିନୀପୁରରେ ଓଡ଼ିଆମାନେ ସେହି ବସ୍ତୁକୁ ଭିନ୍ନ ଭିନ୍ନ 'ବୋଲି'ରେ ଡାକନ୍ତି । ଏକ ଅଞ୍ଚଳର ବ୍ରାହ୍ମଣମାନେ ଗୋଟିଏ ବସ୍ତୁକୁ ଯେଉଁ ନାମରେ ଡାକନ୍ତି ଶୂଦ୍ରମାନେ ସେହି ବସ୍ତୁକୁ ଅନ୍ୟ ନାମରେ ବା ବୋଲିରେ ଡାକନ୍ତି । ଯଥା—

| ବ୍ରାହ୍ମଣଙ୍କ ବୋଲି— | ଶୂଦ୍ରଙ୍କ ବୋଲି — |
|---|---|
| ଗିନା | ଡାଟିଆ |
| ମାଲପା, ମଥାଦହି | ତେଲ |
| କଦଳୀ | କଦାଲି |
| କୁଣ୍ଡି | କଣ୍ଡି |
| କଂସା | ବେଲା |
| ବନ୍ଧୁ | ବାନ୍ଧା |
| ବାପା | ବାଆ, ବୋପା |
| ପିଣ୍ଡା | ଦେଉଣ୍ଡିଆଁ |

କଟକ ସହରର ଇତର ବ୍ୟକ୍ତିଙ୍କ ବୋଲି ଭଦ୍ରଲୋକଙ୍କ ବୋଲିଠାରୁ ମଧ୍ୟ ପୃଥକ୍, ଯଥା—

| ଭଦ୍ର ବୋଲି— | ଇତର ବୋଲି— |
|---|---|
| ଆମେ | ହାମେ |
| ନଈ | ଲଈ |
| ନଡ଼ିଆ | ଲଡ଼ିଆ |
| ନାହିଁ | ଲାହିଁ |
| ନେ | ଲେ ଇତ୍ୟାଦି । |

ଏହିପରି ଘରୋଇ ବୋଲି, କଚେରିଆ ବୋଲି, ମହାଜନିଆ ବୋଲି, ଦଣ୍ଡିଦାରିଆ ବୋଲି ମାନ ମଧ୍ୟ ଅଛି ।

ବିଭିନ୍ନ ବ୍ୟକ୍ତିଙ୍କର କଥା କହିବାରେ ଗୋଟିଏ ଗୋଟିଏ ବିଶେଷ 'ବୋଲି' ବା 'ମୁଦ୍ରାଦୋଷ' ଥାଏ । ଜଣେ ଜଣେ ଲୋକ କଥା କହିଲା ବେଳେ ମଝିରେ ମଝିରେ ଗୋଟିଏ ଗୋଟିଏ ନିରର୍ଥକ ବା ବେଦରକାରୀ 'ବୋଲି' ଲଗାଇ ଦିଅନ୍ତି । ଏହା କ୍ରମେ ଅଭ୍ୟାସରେ ପରିଣତ ହୋଇଯାଏ । ଯଥା—ବର୍ତ୍ତମାନକୁ ଆସ, ବ୍ରତମାନ, ବର୍ତ୍ତମାନ, ଜାଣିଲୁ, ଆନ୍‌ଗଲୁ, ଫୁଲ୍‌ଷ୍ଟପ୍, ଜାଣିପାର ଯେ, ବସିକରି, ଆନେ-ଟେରେ, କରକରି, ଅଥଚ, ଈଶ୍ୱର ଭଲ କରନ୍ତୁ, ଫେର ଗାଲୁଲୁ, ଫାଟ୍, ବୁଝିଲ ଇତ୍ୟାଦି ।

"ମୁଁ ସେଠାକୁ ଯାଇଥିଲି, ସେଠାରେ ଘଣ୍ଟାଏ ରହି ଘରକୁ ଫେରିଲି ।"

ଏହି ବାକ୍ୟଟିକୁ 'ମୁଦ୍ରାଦୋଷ' ବାଲା ଆମ୍ଭମାନେ ନିରର୍ଥକ 'ବୋଲି' ଲଗାଇ କହି ଥାଆନ୍ତି । ଯଥା—ବର୍ତ୍ତମାନ ମୁଁ ସେଠାକୁ ଯାଇଥିଲି, ବର୍ତ୍ତମାନ ସେଠାରେ ଘଣ୍ଟାଏ ରହି ବର୍ତ୍ତମାନ ଘରକୁ ଫେରିଲି ।

ଏହି 'ବର୍ତ୍ତମାନ' ବୋଲିର ପ୍ରୟୋଗ ଏହି ବାକ୍ୟରେ ନିରର୍ଥକ ଅଟେ । ] କ୍ରି—ବୋଲିବା କ୍ରିୟାର ଅସମାପିକା ରୂପ—The infinite form of the verb Boliba. ଅ—୧ । ( ସମୟର ବା ସ୍ଥାନର ସୀମା ନିରୂପକ ) ପର୍ଯ୍ୟନ୍ତ; ଅବଧି—1. Upto. ( ଉ—ବ୍ରହ୍ମାଙ୍କର ସଭାକୁ ବୋଲି ଘେନି ଗଲେ । କୃଷ୍ଣସିଂହ, ମହାଭାରତ, ସଭା । ) ୨ । ଉକ୍ତ ହୁଏ; ଅଭିହିତ ହୁଏ; କଥିତ ହୁଏ; ବୋଲାଯାଏ; ଲୋକରେ କଥିତ ହୁଏ—2. Is styled as; is known as. ( ଯଥା—ଯେଉଁ ବର୍ଣ୍ଣମାନ କଣ୍ଠରୁ ଉଚ୍ଚାରିତ ହୁଏ ତାକୁ 'କଣ୍ଠ୍ୟ' ବର୍ଣ୍ଣ ବୋଲି । ) ୩ । ହେଲେ; ସୁଦ୍ଧା—3. Even. ( ଯଥା—ପୁଅ ରୋଜଗାରିଆ ବୋଲି କଅଣ ବାପଙ୍କ ମୁଣ୍ଡରେ ନାଚିବ ? ) ୪ । ଯେ ହେତୁ; କାରଣରୁ—4. Because; owing to. ( ଯଥା—ମୁଁ ସେଠାକୁ ଗଲି ବୋଲି ଗୃହଅଣା ଜୋରିମାନା ଦେଲି । ) ୫ । ଉଲ୍ଲେଖ କଲାକୁ—5. To speak of. ( ଉ—ସେ ମୁଅଛି ମାଇଁର ଗୋଟିଏ ବୋଲି ଅଛି; ତାକୁ ମାଇଁ ବଡ଼ ଗେହ୍ଲା କରନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ । ) ୬ । ହୋଇଥିବାରୁ—6. Being. (ଯଥା—ଆଜି ତାଙ୍କ ପୁଅର ବିବାହ ବୋଲି ସେ ମୋତେ ଖାଇବାକୁ ଡାକିଛନ୍ତି ।) ୭ । କେବଳ—7. Only. ( ଯଥା—ମୁଁ ବୋଲି ଏତେ ଗାଳି ସହି ଗଲି । ) ୮ । ହେବାର; ଥିବାର—8. Of being. ( ଉ—ଉହିବ ଏହିଟି ବୋଲି ଲୁଧା କଲି ବଣିଷ୍ଠ । ଜଗନ୍ନାଥ. ଭଗବତ, ଣ. ଗୀତ ।) ୯ । ବିଚାର କରି; ଭାବି—9. Thinking. ( ଯଥା—ମୁଁ ଖାଇବି ବୋଲି ସେଠାକୁ ଯାଇଥିଲି । ) ୧୦ । ଉଦ୍ଦେଶ୍ୟରେ—10. With a view to ( ଯଥା—ଉନ୍ନ ଖଣ୍ଡେ ମେଣ୍ଟ ପାଇବି ବୋଲି ପାଞ୍ଚ ବର୍ଷ ତାଙ୍କର ଚାକିରି କଲି । ) ୧୧ । ନାମକ—11. Named; ( ଯଥା—ରାମ ବୋଲି ତାଙ୍କର ଏକ ପୁଅ ଅଛି । ) ୧୨ । ଯଥା; ରୂପେ—12. Namely; as. ( ଉ—ବିଷ୍ୱକ୍ସେନ ବୋଲି ତାହାଙ୍କ ନାମ ଦେଲେ । କୃଷ୍ଣସିଂହ, ମହାଭାରତ, ଆଦି ।) ୧୩ । ( ଗୋଟିଏ କ୍ରିୟାଯୁକ୍ତ ବାକ୍ୟର ଉପସ୍ଥ ଅନ୍ୟ କ୍ରିୟାଯୁକ୍ତ ବାକ୍ୟର ବିଷୟୀଭୂତ ହେଲେ ୧ମ ବାକ୍ୟ ପରେ ଲାଗିବା ଶବ୍ଦ ) ଏହି ମର୍ମରେ—13. That; to the effect. (ଉ—ତକା ବାନ୍ଧିଥାଇ ନୃପେ, ଲଳାଟର ହ୍ଲାଦାମ୍ବୁପେ, କରୁଣା ଅଛି ବୋଲି ଯା, ନେଲା କେ ତା ହରି କରେ । ଜଗନ୍ନାଥ. ଭଗବତ, ଉ. ଗୀତ । )

ବଲେ

पर्यान्त; अवधि

तक

বলে

बोलते हैं

বলে

के सबब

বোলতে

हि

বলে

हि

বলে

लिये

বলে

नामके

বলে

इसलिये

ବୋଲିକରି—ଦେ. ଅ—ବୋଲି ( ଦେଖ ) Boli (See) Bolikari (ବୋଲିକରି—ଗ୍ରାମ୍ୟରୂପ)

ବୋଲି ଧରିବା—ଦେ. କ୍ରି—୧ । ( ଗୃହପାଳିତ ଶୁଆ, ଶାରୀ ବା ପକ୍ଷୀ ) ଶିକ୍ଷା ଦିଆଯିବା ବଚନକୁ ଉଚ୍ଚାରଣ କରିବାକୁ ଶିଖିବା—1. To learn to sing; to be able to repeat the words taught to it ( said of a parrot etc). ୨ ଗୋଟିଏ ବିଷୟକୁ ବା କଥାକୁ ବା ଜଗିରକୁ ଦୃଢ଼ଭାବରେ ଧରିବା ବା କହିବା —2. To stick to one formula.

Boli dhariba

বুলিধরা

बोलि धरना

ବୋଲିବା—ଦେ. କ୍ରି ( ସ. ଲିପ୍ ଧାତୁର ଅଗ୍ର ଉପସର୍ଗ ? )—୧ । ଲେପନ କରିବା; ମାଖିବା—1. To besmear; to anoint; to put a layer upon. ( ଉ—ସମଗ୍ର ପାଟେ ହଂସ ହଂସୀ ପଦ୍ମ-ପତ୍ରଗେ ଶରୀର ବୋଳି । ରାଧାନାଥ. ପାର୍ବତୀ । ) ୨ । ଘନଭାବରେ ଲେପନ କରିବା—2. To besmear, thickly; to plaster. ୩ । ଲେସିବା—3. To bungle; to daub ( ଯଥା—ସେ ଲେଖିଲା ବେଳେ କାଗଜ ଉପରେ ଗୁଡ଼ାଏ ସ୍ୟାହି ବୋଳିଛି ।) [ ଦ୍ର—ବ୍ୟବହାରରେ 'ଲେପିବା' ଓ 'ବୋଳିବା' ବା 'ଲେସିବା' ମଧ୍ୟରେ ସାମାନ୍ୟ ପ୍ରଭେଦ ଦେଖାଯାଏ । ଲେପିବା—କୌଣସି ପଦାର୍ଥ ଉପରେ ପତଳା କରି ଅନ୍ୟ ଗୋଟିଏ ପାଣିଆ ବସ୍ତୁର ସ୍ତର ଦେବା । ଲେସିବା ବା ବୋଳିବା—ଘନ ସ୍ତର ଲେପିବା । ଲଗାଇବା ଓ ମାଖିବା—ଲେପିବାଠାରୁ ପତଳାସ୍ତର; କିନ୍ତୁ 'ବୋଳିବା' ଶବ୍ଦଦ୍ୱାରା ପରିମାଣାଧିକ୍ୟ ସୂଚିତ ହୁଏ । ] ୪ । ( ଲକ୍ଷଣାର୍ଥ ) ପର ଉପରେ ଦୋଷ ଅର୍ପଣ କରିବା 4. To lay the blame on another. (ଯଥା—ସେ ଆପେ ଦୋଷ କରି ମୋ ଉପରେ ବୋଳି ଦେଉଛି ।)

Boliba

[ବୋଳା(ଳେ)ଇବା—ଣିଜନ୍ତରୂପ]

(ବୋଳିଦେବା—ଅନ୍ୟରୂପ)

[ବୋଳା ହେ(ଯି)ବା—କର୍ମବାଚ୍ୟରୂପ]

মাখা

लेपना

ବୋଲିବା—ଦେ. କ୍ରି. (ସ. ବଦ ବା ବ୍ରୂ ଧାତୁ; ପ୍ରା. ବୋଲ୍ଲ ଧାତୁ; ତୁଳ ପ୍ରା. ବୋଲ୍ଲଇ—ବଦତି)—୧ । କହିବା—1. To speak; to say. (ଉ—ବୋଲି ଦେଲି ସିନା ଗେଲେ ହସି, ବଡ଼େ ତୋ ସମ ନାହିଁ କଳ୍ପାସୀ । ଜଗନ୍ନାଥ. ଭଗବତ, ବ ଗୀତ ।) ୨ । ଗାନ କରିବା; ଗାଇବା—2. To sing. (ଯଥା—ଗୀତ ବୋଲିବା) ୩ । ଆବୃତ୍ତି କରିବା—3. To recite. ୪ । ଗାଳି ଦେବା—4. To rebuke; to abuse. ୫ । ବର୍ଣ୍ଣନା କରିବା—5. To describe. (ଉ—ଶୁକ ଦୈତ୍ୟକୁ ଜଣାଇଲେ, ଏମନ୍ତ ଏକାଦଶ ବୋଲେ । ଜଗନ୍ନାଥ. ଭଗବତ) ଦେ. ବି—କୁହାଯିବା କଥା; ବାକ୍ୟ—Saying; version. (ଉ—ଋତୁପର୍ଣ୍ଣ ରାଜା ସମ୍ମୁଖେ ଦେଖା ହେଲୁ, ତୁମ୍ଭେ ବୋଲିବାର ତାହାଙ୍କୁ ଶୁଣାଇଲୁ । କୃଷ୍ଣସିଂହ ମହାଭାରତ ବନ ।)

Boliba

বলা

बोलना

**ବୋଳି ବାଳି**—ଦେ॰ (ବୋଳିବା ଓ ଧ୍ୱନ୍ୟନୁକାରୀ ନିରର୍ଥକ ସହଚର
Boli bali ବାଳିବା କ୍ରିୟାଦ୍ୱୟର ଅସମାପିକା ରୂପ ) କ୍ରି—
ଭାଲ କରେ ବିଶେଷ ପରିମାଣରେ ଲେପନ କରି—By
**अच्छी तरह** besmearing thickly or well.

**ବୋଳି ହେବା**—ଦେ. କ୍ରି—୧ । ନିଜ ଦେହରେ ଲେପନ କରିବା—
Boli heba 1. To besmear one's own body.
মাখা (ଉ—ହୋଇଥାଏ ବୋଳି ଚନ୍ଦନ କେଳି-
**लगाना, लेपना** ନିକୁଞ୍ଜ କୁସୁମ ବାସ ଗୋ । କବିସୂର୍ଯ୍ୟ ସଙ୍ଗୀତ)
୨ । ନିଜ ଦେହକୁ ଅନ୍ୟ ବସ୍ତୁରେ ଆବୃତ କରିବା—
2. To cover one's body with another thing.
(ଉ—ଦେହରୁ ଚର୍ମ କେତେ ହୋଇଛନ୍ତି ବୋଳି । କୃଷ୍ଣସିଂହ ମହାଭାରତ ଦ୍ରୋଣ)

**ବୋଲୁଅ**—ଦେ. ବି. (ସଂ. ବୁଲ ଧାତୁ=ନିମଗ୍ନ ହେବା, ଯାହା ପାଣିରେ
Bolua ବୁଡ଼ିଯାଏ)—ବୃହଦାକାର ଲୋଷ୍ଟ୍ର; ଢେଲା; ମାଟିର
চাপড়া ବଡ଼ ଟେକା; ଟେଲା— Big clod of earth.
**चेका(की)** [ଦ୍ର—ଟେକାଠାରୁ ଟେଲା ବଡ଼, ଟେଲାଠାରୁ ବୋଲୁଅ ବଡ଼ ।]

**ବୋଲୁଅ ଉଞ୍ଚା(ଞ୍ଚେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ବା ବସ୍ତୁକୁ
Bolua uncha(nche)iba ଲକ୍ଷ କରି ମାରିବାକୁ ଢେଲା
ବୋଲୁଅ ଉଠା(ଠେ)ଇବା }
ବୋଲୁଅ ଉନ୍ଧ୍ୱା(ନ୍ଧ୍ୱେ)ଇବା } ଅନ୍ୟରୂପ ଉତ୍ତୋଳନ କରିବା—To lift a clod for
চাপড়া তোলা throwing at a person or thing.
**चेका उठाना**

**ବୋଲୁଅ ଛାଡ଼ିବା**—ଦେ.କ୍ରି—କୌଣସି ବ୍ୟକ୍ତିକୁ ବା ବସ୍ତୁକୁ ଲକ୍ଷ୍ୟ କରି
Bolua chhardiba ଢେଲା ନିକ୍ଷେପ କରିବା—To throw a big clod at a person or thing.
ବୋଲୁଅ ପକାଇବା
ବୋଲୁଅ ଫିଙ୍ଗିବା
ବୋଲୁଅ ଫୋପାଡ଼ିବା
ବୋଲୁଅ ମାରିବା } —ଅନ୍ୟରୂପ
চাপড়া ছোঁড়া **चेका मारना**

**ବୋଲୁଅ ବୃଷ୍ଟି କରିବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ଜୀବ ଉପରକୁ
Bolua brushti kariba ଉପର୍ଯ୍ୟୁପରି ଅନେକ ଗୁଡ଼ିଏ ଟେଲା ମାରିବା—To belabour a person or animal with a shower of clods
ବୋଲୁଅ ଲଦିବା }
ବୋଲୁଅରେ ପୋତି ପକାଇବା } ଅନ୍ୟରୂପ
ঢীল বৃষ্টি করা
**चेका बरषाना**

**ବୋଲୁଆ**—ଦେ. ବିଣ—ଟେଲା ପୂର୍ଣ୍ଣ—
Bolua Full of clods.
চাপড়া চাপড়া **चेकाबाला(ली)**

**ବୋହି ଆଣିବା**—ଦେ. କ୍ରି—(କୌଣସି ଦ୍ରବ୍ୟ) ଅନ୍ୟ ସ୍ଥାନରୁ ଏଠାକୁ
Bohi aniba ଆଣିବା—To carry things to this place from elsewhere.
বয়ে আনা **ढोना**

**ବୋହି ଆସିବା**—ଦେ. କ୍ରି—(ଜଳାଦି) ଉଚ୍ଚରୁ ତଳକୁ ସ୍ରୋତ ଦ୍ୱାରା
Bohi asiba ମାଡ଼ି ଆସିବା—To come down; to flow down.
বয়ে আসা **ढोना**

**ବୋହିତ**—ଦେ. ବି (ସଂ. ବୋହିତ୍ଥ)—ବୋଇତ ( ଦେଖ )
Bohita Boita ( See )
বোহিত (ଉ—ଏ ଭବ-ସାଗର ବୋହିତ, ପଣ୍ଡିତେ ବର୍ଣ୍ଣିଲେ
**जहाज** ଚରିତ । ଭୂପତି ପ୍ରେମପଞ୍ଚାମୃତ)

**ବୋହିତ୍ଥ**—ସ. ବି. ( ବହ୍ ଧାତୁ + କରଣ ଇତ୍ଥ )—ଅର୍ଣ୍ଣବପୋତ;
Bohittha ନୌକା;ଜାହାଜ (ହି. ଶ)—Ship; a sea-going vessel

**ବୋହି ଦେବା**—ଦେ. କ୍ରି—୧ । କୌଣସି ପଦାର୍ଥକୁ ନେଇ ଯିବା
Bohi deba ପାଇଁ କୌଣସି ବ୍ୟକ୍ତିକୁ ଦେବା—1. To give
বয়ে দেওয়া away a thing to a person to carry
**बहादेना** (ବୁହାଇ ଦେବା—ଅନ୍ୟରୂପ) it away. ୨ । କୌଣସି
ଜଳାଶୟରୁ ପାଣି ବୁହାଇ ଜଳ ନିଃଶେଷ କରିବା—
2. To bale out a tank dry.
শুখিয়েদেওয়া **सूखादेना**

**ବୋହି ପଡ଼ିବା**—ଦେ. କ୍ରି.—(ତରଳ ପଦାର୍ଥ) ପାତ୍ରକୁ ଉଛୁଳି ପଡ଼ିବା—
Bohi pardiba To overflow; to flow out of a receptacle.
বয়ে পড়া **बह निकलना**

**ବୋହିବା**—ଦେ. କ୍ରି. ( ସ. ବହ ଧାତୁ )—୧ । ଭାର ଆଦି ବହନ
Bohiba କରିବା—1. To carry loads etc, (ଉ—ବୋହି
বহা, বয়া ବୋହିକା ଯିବ ଶିରେ ପାଦୁକ ଓଳଥ । ଉକ୍ତାରୀ ଗୀତ
**ढोना** ଲହରୀ ।) ୨ । (ଜଳାଦି) ସ୍ରୋତ ରୂପେ ତଳ ଆଡ଼କୁ
**बहना** ଗତି କରିବା—2. To flow down in a current
(said of liquid). ୩ । (ବାୟୁ) ବେଗରେ ଗତି
କରିବା; ପବମାନ ହେବା—3. To blow (said of
wind). ୪ । (ଝାଳ ବା ରକ୍ତ) ସ୍ରବିବା—4. To trickle
down. ୫ । ଜମିବାଡ଼ିକୁ ପାଣି ମଡ଼ାଇବା ପାଇଁ ବା,
ଜଳାଶୟକୁ ଶୁଖାଇବା ପାଇଁ ଟୋଣା ଆଦି ଦ୍ୱାରା ଜଳାଶୟରୁ
ଜଳ ଉତ୍ତୋଳନ କରିବା—5. To lift or bale
**उलीचना** out water from a tank for irrigation
purposes. ୬ । (ବହ ଧାତୁ ଣିଚ; ବାହି ଧାତୁ) ଅନ୍ୟ
বহান ଦ୍ୱାରା ବହନ କର୍ମ କରାଇବା; ବୁହାଇବା—6. To cause
**बहवाना** another to carry a load. ୭ । (ଯାନ ବାହନ
চালান ଆଦି) ବାହିବା; ଗମନ କରାଇବା—7. To drive (a
**चलाना** car or a beast). ୮ । (ନଦ, ନଦୀ) ପର୍ବତରୁ ବା
বহে আসা ହ୍ରଦରୁ ଉତ୍ପନ୍ନ ହେବା; ବୋହି ଆସିବା; ବାହାରିବା—
**निकलना** 8. To rise from its source (said of a river).

**ବୋହି ଯିବା**—ଦେ. କ୍ରି—୧ । (ଜଳ ଆଦି) ଉଚ୍ଚ ସ୍ଥାନରୁ ତଳକୁ ସ୍ରୋତ
Bohi jiba ଦ୍ୱାରା ଗତି କରିବା—1. To flow down. (ଉ—
বয়েযাওয়া ବୋହିଯିବା ପାଣି ଯାଉ ଫେରିବ, ବଳେଇଲ ଯା ଃ ରହୁ
**बहजाना** ଏଣିକ । ଚଗ । ) ୨ । (ଲକ୍ଷ୍ୟାର୍ଥ) ଭାସିଯିବା; ନଷ୍ଟ
ହେବା; ନଷ୍ଟ ହେବା—2. To be spoilt or lost.
(ଯଥା—ସେ ମତେ ନ ପଚାରିଲେ ମୋର କ ବୋହିଗଲା ?)

ବୋହୁତ୍—ପ୍ରାଦେ (ସାଲପୁର) ବିଣ—ବହୁତ—Many; much.
Bohut ଦେ. ଅ—ଧାନ ପ୍ରଭୃତି ମାପିବା ବେଳେ ପ୍ରଥମ ଗଉଣୀର ପ୍ରତି ଉଚ୍ଚାରିତ ଶବ୍ଦ—A word uttered by a person while measuring the first gauni of paddy

ବୋହୂ—ଦେ. ବି ( ସଂ ବଧୂ; ତୁଳ ପ୍ରା ବହୂ )—୧ । ମାତା—1
Bohū Mother. ୨ । ପୁତ୍ରବଧୂ—2. Daughter-in-law.
বউ; বৌ ୩ । ସ୍ତ୍ରୀ—3. Wife. ୪ । ନବ ବିବାହିତା କନ୍ୟା—
बहू 4. A bride. ୫ । ଘରଣୀ 5. House-wife. ୬ । ସାନ
पुतोहू ଭାଇର ସ୍ତ୍ରୀ—6. Younger brother's wife

ବୋହୂ କଣ୍ଟକୀ—ଦେ ବିଣ. ସ୍ତ୍ରୀ—ଯେଉଁ ଶାଶୁ ବା ନଣନ୍ଦ ବଧୂ ଉପରେ ସର୍ବଦା
Bohū kaṇṭakī ଅପ୍ରସନ୍ନ ଓ ଅତ୍ୟାଚାରୀ—(a mother-in-
বউকাণ্টকী law or husbands' sister) Always sarcastic and oppressive towards the daughter-in-law.
बहूकण्टकी

ବୋହୂକଣ୍ଟକୀ(ଣୀ), ବୋହୂଙ୍କଂକାଳୀ
ବୋହୂଖି( ଖା)ଖୋଇ, ବୋହୂଜଳୁଣୀ } —ଅନ୍ୟରୂପ
ବୋହୂଝୁରେଇ, ବୋହୂଝୁରାଣୀ

ବୋହୂ ଗାଧୁଆ ବେଳ—ଦେ. ବି—ରାତି ପାହାନ୍ତିଆ ବେଳ; (ଯେଉଁ
Bohū gādhuā beḷa ସମୟରେ ଗ୍ରାମର ପୁରୁଷମାନେ ଶଯ୍ୟା ତ୍ୟାଗ କରି ଗ୍ରାମରେ ବିଚରଣ କରିବା ପୂର୍ବରୁ ଗ୍ରାମର ନବାଗତା ବଧୂମାନେ ଗ୍ରାମର ଜଳାଶୟରେ ସ୍ନାନ କରନ୍ତି)—The last quarter of the night (when the daughters-in-law take their bath in the
ভোর; अन्धरौख, तड़क village tank)

ବୋହୂଟି—ଦେ. ବି—ବଧୂ ଶବ୍ଦର ସ୍ନେହସୂଚକ ଆକାର—The
Bohuṭi endearing form of the word Bohū. [ଉ—
বউটী ନୂଆ ବୋହୂଟି ! ନଈକି ଗାଧୋଇ ଯିବୁ ନାହିଁଟି, ଅଣିଆ
बौहर କମ୍ବୀର ଜଗି ବସିଛି, ଝାଲୁ କନ ଟେଳ ଦବଟି । ଶିଶୁଗୀତ ।)

ବୋହୂ ପିଲା—ଦେ. ବି—ବାଳିକା ବଧୂ; ନୂଆ ବୋହୂ—
Bohū pilā বউড়ী A girl daughter-in-law.

ବୋହୂ ବୋହୂକା—ଦେ. ବି—ବାଳିକାମାନଙ୍କ ମଧ୍ୟରେ ଘରକରଣାର
Bohū bohūkā ଅଭିନୟ କରିବାର ଖେଳ—A play amongst
বৌ বৌ খেলা child-girls who play at house-keeping. [ଦ୍ର—ଏଥିରେ ଜଣେ ବାଳିକା ଶାଶୁ, ଜଣେ ବୋହୂ, ଜଣେ ଶ୍ୱଶୁର ଓ ଜଣେ ନଣନ୍ଦ ହୁଏ—
ବଙ୍ଗଦେଶରେ ଶିଶୁମାନଙ୍କର ଆଉ ଏକପ୍ରକାର କ୍ରୀଡ଼ା ଅଛି ତାକୁ 'ବଉବସନ୍ତ' ଖେଳ କହନ୍ତି । ଏଥିରେ ଜଣେ ବାଳିକା ବୋହୂ ହୁଏ । ତାକୁ ରକ୍ଷା କରିବାକୁ ଦଳେ ପିଲା ବାହାରନ୍ତି । ଆଉ ଦଳେ ପିଲା ସେ ବୋହୂକୁ ଅପହରଣ କରିବାକୁ ଚେଷ୍ଟା କରନ୍ତି । ଏ ଖେଳ ଆମ ଦେଶରେ ନାହିଁ । ଫଳତଃ ବଙ୍ଗଦେଶରେ 'ବୋହୂଚୋରୀ'ର ଯେଉଁ ପ୍ରକୃତ ଅଭିନୟ ଏବେ ଦେଖାଯାଉଅଛି, ତାହା ଓଡ଼ିଶାରେ
कनिया पुतरा का खेल ଦେଖା ନାହିଁ । ]

ବୋହୂ ଭୂଆସୁଣୀ—ଦେ. ବି (ସବୁରି ଶବ୍ଦ)—୧ । ଶାଶୁ ଘରକୁ
Bohū bhuāsuṇī ଆସିଥିବା ନବାଗତା ବଧୂ—1. Daughter-
কুলবধূ in-law recently come to her husband's house. ୨ । ପରିବାରର ଯୁବତୀ ବଧୂଗଣ—2. The young wives of a family. ୩ । କୁଳବଧୂ—
बहूबेटी 3. House-wife.

ବୋହୂ ସାଆନ୍ତାଣୀ—ଦେ. ବି. ସ୍ତ୍ରୀ—( ସଂ. ବଧୂ+ସାମନ୍ତ )—ଭଦ୍ର ବା
Bohū sā-āntāṇī ବଡ଼ଲୋକ ଘରର ବଧୂଙ୍କ ପ୍ରତି ଇତର
বৌঠাকুরাণী; বৌঠাকুরুণ ଲୋକଙ୍କର ବା ଚାକର ଚାକରାଣୀଙ୍କ
बहूजी ସମ୍ବୋଧନ—A term of address to a nobleman's daughter-in-law by the servants etc.

ବୋହୂ ସୁଆ(ହା)ଗି—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ବଧୂ+ସୌଭାଗ୍ୟ)—
Bohū suā(hā)gi ଯେଉଁ (ଶ୍ୱଶୁର ବା ଶାଶୁ) ବଧୂ ପ୍ରତି ବିଶେଷ
বৌসোহাগী ସ୍ନେହ ଓ ଆଦର କରନ୍ତି—(a father-in-law or
( ବୋହୂସୁଆ[ହା]ଗିଆ—ପୁଂଲିଙ୍ଗରୂପ ) mother-in-law)
[ ବୋହୂସୋହାଗେ(ଗୀ)ଇ—ସ୍ତ୍ରୀଲିଙ୍ଗରୂପ ] Very fond of
बहूसोहागी(सोहागीन) one's daughter-in-law.

ବୌଦ୍ଧ—ସଂ. ବି ( ବୁଦ୍ଧ+ସମ୍ବନ୍ଧାର୍ଥେ. ଅ )—୧ । ବୁଦ୍ଧଦେବଙ୍କ
Bauddha ମତାବଲମ୍ବୀ ବ୍ୟକ୍ତି—1. A Buddhist. ୨। ବୁଦ୍ଧଦେବ-ପ୍ରବର୍ତ୍ତିତ ଧର୍ମ—2. Buddhism. [ ଦ୍ର—ଏହି ଧର୍ମ ଗୌତମ ବୁଦ୍ଧଙ୍କଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା । ଈଶ୍ୱରଙ୍କ ଜଗତ୍କର୍ତ୍ତୃତ୍ୱ ଏ ଧର୍ମରେ ସ୍ୱୀକୃତ ନୁହେ । ଏ ଧର୍ମରେ ଜୀବହିଂସା ଓ ଜାତିଭେଦ ନିଷିଦ୍ଧ । ଏକ ସମୟରେ ପ୍ରାଚ୍ୟ ଜଗତରେ ବ୍ୟାପକ ଭାବରେ ଏହି ଧର୍ମ ପ୍ରଚଳିତ ହୋଇଥିଲା । ବର୍ତ୍ତମାନ ଚୀନ୍, ଜାପାନ, ସିଂହଳପ୍ରଭୃତି ଦେଶର ଲୋକେ ବୌଦ୍ଧଧର୍ମାବଲମ୍ବୀ ଅଟନ୍ତି ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବୁଦ୍ଧଦେବଙ୍କ ଜୀବନକାଳରେ ଉତ୍କଳର ଦୁଇ ଜଣ ବଣିକ ପଣ୍ୟ ଦ୍ରବ୍ୟ ସହ ମଗଧକୁ ଯାଉଁ ଯାଉଁ ବାଟରେ ବୁଦ୍ଧଦେବଙ୍କୁ ଭେଟି ତାଙ୍କଠାରୁ ଦୀକ୍ଷା ଗ୍ରହଣ କରି ତାଙ୍କଠାରୁ ନଖ ଓ କେଶ ଆଣି ଉତ୍କଳକୁ ଫେରି ଆସି ତାହା ରଖିବାପାଇଁ ଗୋଟିଏ ଚୈତ୍ୟ ନିର୍ମାଣ କରିଥିଲେ ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଅଶୋକ ଉତ୍କଳ ଜୟ କରିବାରୁ ବୌଦ୍ଧ ଧର୍ମ ଉତ୍କଳରେ ପ୍ରବଳ ହୋଇଥିଲା ।

ଆନ୍ଧ୍ର ରାଜା ନାଗାର୍ଜୁନଙ୍କର ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଓଡ଼ିଶାର ରାଜାଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବା କଥା ତିବ୍ବତର ଇତିହାସରୁ ମିଳେ ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନସାଂ ଉତ୍କଳକୁ ଆସିଲାବେଳେ ଉତ୍କଳରେ ହୀନଯାନ ଓ ମହାଯାନ ସମ୍ପ୍ରଦାୟଙ୍କ ମଧ୍ୟରେ ତୀବ୍ର ବାଦାନୁବାଦ ଲାଗି ମହାଯାନ ବୌଦ୍ଧଧର୍ମ ନିର୍ବିବାଦରେ ପ୍ରଚଳିତ ହେଲା । ଉତ୍କଳର ପ୍ରାଚୀନ ଶିଳ୍ପରେ ମହାଯାନ ସମ୍ପ୍ରଦାୟର ବ୍ୟବହୃତ ଅନେକ ମନ୍ତ୍ର ଖୋଦିତ ଅଛି । ଉତ୍କଳରେ ପ୍ରଚଳିତ ତନ୍ତ୍ର ମତ ବୌଦ୍ଧ ମତରୁ ଉଦ୍ଭୂତ । ବୌଦ୍ଧ ଧର୍ମର ତନ୍ତ୍ର-

ମତପ୍ରଧାନ ତନ୍ତ୍ର ଯାନ ବା ବଜ୍ର ଯାନରୁ ଉତ୍କଳରେ ସହଜ-ଯାନର ସୃଷ୍ଟି ହୋଇଥିଲା ।

ବର୍ତ୍ତମାନ ଆବିଷ୍କୃତ ତିବତୀୟ ଗ୍ରନ୍ଥମାନଙ୍କରୁ ପ୍ରମାଣ ମିଳେ ଯେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ରାଜା ମୁକୁନ୍ଦଦେବ ବୌଦ୍ଧମାନଙ୍କୁ ଆଦର କରୁଥିଲେ । ଅତଏବ ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଦାସ ପ୍ରଭୃତିଙ୍କୁ ଓଡ଼ିଶାର ୧୬ଶ ଶତାବ୍ଦୀର ବୌଦ୍ଧ ରୂପେ ଗ୍ରହଣ କରାଯାଇ ପାରେ । ଉତ୍କଳୀୟ ଯୋଗୀ-ବୈଷ୍ଣବମାନଙ୍କୁ ବୌଦ୍ଧ ବୋଲି ମାନିବାକୁ ହେବ । ସହଜିଆ ବୌଦ୍ଧମାନଙ୍କ ସଙ୍ଗେ ଉତ୍କଳୀୟ ଯୋଗୀ-ବୌଦ୍ଧମାନଙ୍କର ସାମଞ୍ଜସ୍ୟ ଅଛି ।

ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ ବ୍ରାହ୍ମଣ ଥିଲେହେଁ ସେ ଓଡ଼ିଆ ରାମାୟଣକାର ଶୂଦ୍ର ବଳରାମ ଦାସଙ୍କଠାରୁ ମନ୍ତ୍ର ଗ୍ରହଣ କରିଥିଲେ । ଶୂଦ୍ରଠାରୁ ବ୍ରାହ୍ମଣର ମନ୍ତ୍ର ଗ୍ରହଣ ହିନ୍ଦୁ ଶାସ୍ତ୍ରାନୁମୋଦିତ ନୁହେଁ, କିନ୍ତୁ ବୌଦ୍ଧ 'ଜାତକ' ଗ୍ରନ୍ଥରେ ଏହା ଅନୁମୋଦିତ । ବୌଦ୍ଧ ଜାତକମାଳାର ଗଳ୍ପ ସହିତ ପାନକୃଷ୍ଣ ଦାସଙ୍କ 'ପ୍ରସ୍ତାବସିନ୍ଧୁ'ରେ ଥିବା ଶିଅଳଠାରୁ ବ୍ରାହ୍ମଣର ମନ୍ତ୍ର ଗ୍ରହଣ ଗଳ୍ପର ମେଳ ଅଛି । ଉତ୍କଳୀୟ ବୈଷ୍ଣବ ସମାଜ ବୌଦ୍ଧଧର୍ମଦ୍ୱାରା ପ୍ରଭାବିତ ହୋଇଥିଲା । ଅଚ୍ୟୁତାନନ୍ଦ ଦାସ ଆଦିଙ୍କ ଶୂନ୍ୟ ଉପାସନା ବୌଦ୍ଧଧର୍ମ ଛଡ଼ା ଆଉ କିଛି ନୁହେଁ । ବୌଦ୍ଧ ସହଜ-ଯାନ ସାହିତ୍ୟ ସଙ୍ଗେ ଉତ୍କଳୀୟ ବୈଷ୍ଣବ ସାହିତ୍ୟର ଅନେକ ସାମଞ୍ଜସ୍ୟ ଅଛି—ଶ୍ରୀ ବିନାୟକ ମିଶ୍ର. ସହକାର ୧୦।୯୦ ।

ବୁଦ୍ଧଦେବ ଉପଦେଶ ଦେଇଅଛନ୍ତି, "ହେ ଭିକ୍ଷୁଗଣ ! ତୁମ୍ଭେମାନେ ଦୁଇ ଅନ୍ତକୁ ତ୍ୟାଗ କରି ମଧ୍ୟମ ମାର୍ଗ ( ମଧ୍ୟମା ପ୍ରତିପଦା ) ଅବଲମ୍ବନ କରିବ । ଏ ଦୁଇ ଅନ୍ତ ଯଥା—୧ । କାମ ବା ବିଷୟସୁଖଲାଭ ପାଇଁ ଯତ୍ନ ଓ ୨ । ଶରୀରକୁ କ୍ଳେଶ ଦେବା । ଏ ଦୁଇ ଅନ୍ତକୁ ତ୍ୟାଗ କରିବ । ବୌଦ୍ଧମତ ଅନୁସାରେ ପୃଥିବୀର କୌଣସି ବସ୍ତୁ ନିତ୍ୟ ନୁହେ । ନିତ୍ୟ ଚୈତନ୍ୟ ବୋଲି କିଛି ବସ୍ତୁ ନାହିଁ; ସବୁ ବିଜ୍ଞାନ ମାତ୍ର ଅଟେ । ବୌଦ୍ଧମାନେ ଆତ୍ମାର ଅମରତ୍ୱ ସ୍ୱୀକାର କରନ୍ତି ନାହିଁ ଓ କର୍ମବାଦ ଉପରେ ଆସ୍ଥା ସ୍ଥାପନ କରନ୍ତି । ମୃତ୍ୟୁ ପରେ ଶରୀରର ସମସ୍ତ ଅଂଶ ଓ ଆତ୍ମା ନଷ୍ଟ ହୋଇଯାଏ; କିନ୍ତୁ କର୍ମଫଳରୁ ଉକ୍ତ ନଷ୍ଟ ଅଂଶ ସ୍ଥାନରେ ନୂଆ ନୂଆ ଅଂଶ ଓ ନୂଆ ଜୀବ ଉତ୍ପନ୍ନ ହୁଏ । ଅତଏବ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଜୀବରେ କେବଳ କର୍ମ ସୂତ୍ରରୂପ ସମ୍ବନ୍ଧ ବିଦ୍ୟମାନ ଥାଏ । ବୌଦ୍ଧ ଧର୍ମର ୨ ପ୍ରଧାନ ଶାଖା, ହୀନଯାନ ଓ ମହାଯାନ । ହୀନଯାନ ବୌଦ୍ଧ ମତର ବିଶୁଦ୍ଧ ଓ ପୁରାତନ ରୂପ ଅଟେ । ମହାଯାନ ହୀନଯାନର ବିସ୍ତୃତ ରୂପ ଅଟେ ଓ ଏଥିରେ ବହୁ ଦେବୋ-ପାସନା ଓ ତନ୍ତ୍ରୋକ୍ତ କ୍ରିୟାମାନ ଅଛି । ହୀନଯାନର ପ୍ରଚାର ବ୍ରହ୍ମଦେଶ, ଶ୍ୟାମ ଓ ସିଂହଳରେ ଏବଂ ମହାଯାନର ପ୍ରଚାର ତିବତ, ମଙ୍ଗୋଲିଆ, ଚୀନ, ଜାପାନ, ମାଞ୍ଚୁରିଆ ଆଦିରେ ହୋଇଅଛି । ଆଜିକାଲି ପୃଥିବୀରେ ସବୁ ଧର୍ମ ଅପେକ୍ଷା ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ସଂଖ୍ୟା ବେଶି—ହି. ଶ. । ବୌଦ୍ଧ ଧର୍ମରେ ଜାତି ବିଚାର ନାହିଁ; ଚିତ୍ତ ଚାଞ୍ଚଲ୍ୟ ଦୂର କରି କାମନାର ବିନାଶ ପୂର୍ବକ ଇନ୍ଦ୍ରିୟ ପ୍ରଭାବକୁ ନଷ୍ଟ କରି ସୁଖରୁ ଓ ଦୁଃଖରୁ ନିର୍ବାଣ ଲାଭ କରିବା ବୌଦ୍ଧ ଧର୍ମର ଶିକ୍ଷା ଅଟେ; ସଦ୍ଦୃଷ୍ଟି, ସତ୍ ସଂକଳ୍ପ, ସଦ୍ବାକ୍ୟ, ସଦ୍ବ୍ୟବହାର, ସଦୁପାୟରେ ଜୀବିକା ନିର୍ବାହ, ସଚ୍ଚେଷ୍ଟା ସତ୍ ସ୍ମୃତି ଓ ସମ୍ୟକ୍ ସମାଧି, ଏହି ଅଷ୍ଟବିଧ ଉପାୟରେ ଆତ୍ମୋତ୍କର୍ଷ ସାଧନ କରିବା ବୌଦ୍ଧ ଧର୍ମର ଉପଦେଶ । ଦୟା, ବୃତ୍ତି ପରିଚାଳନ ଏଥିର ଉପଦେଶ । ଗୋକୁଳଚନ୍ଦ୍ର ଅଭିଧାନ ।]

ବିଣ—୧ । ବୁଦ୍ଧଦେବଙ୍କ ସମ୍ବନ୍ଧୀୟ—1. Relating to the Buddha. ୨ । ବୌଦ୍ଧଧର୍ମ ସମ୍ବନ୍ଧୀୟ—2. Buddhist; Buddhistic. ୩ । ବୁଦ୍ଧଦେବଙ୍କ ପ୍ରଚାରିତ—3. Promulgated by the Buddha.

ଦେ. ବି—ଓଡ଼ିଆ ଗଡ଼ଜାତର ରାଜ୍ୟବିଶେଷ—Name of an Oriya state in the Eastern Agency. [ ଦ୍ର—ବୌଦ୍ଧ ରାଜ୍ୟର ବର୍ତ୍ତମାନ ରାଜା ଶ୍ରୀ ନାରାୟଣପ୍ରସାଦ ଦେବ ରାୟପୁର ରାଜକୁମାର କଲେଜରେ ପାଠ ସମାପ୍ତ କରି ସେଠାରୁ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇ ରାଜ୍ୟ ଶାସନ କରୁଅଛନ୍ତି । ଉତ୍କଳୀୟ ଭାଷା, ସାହିତ୍ୟ, କଳା, ଶିକ୍ଷାବିସ୍ତାର ଓ ଶିଳ୍ପ ପ୍ରତି ତାଙ୍କର ଖୁବ୍ ଅନୁରାଗ ଅଛି । ସେ ଏ ଭାଷାକୋଷର ଜଣେ ପୃଷ୍ଠପୋଷକ ଅଟନ୍ତି । ]

**ବୌଦ୍ଧାବତାର**—ସଂ. ବି—କଳିଯୁଗରେ ବିଷ୍ଣୁଙ୍କ ନବମ ଅବତାର—Bauddhābatāra The 9th incarnation of Bishṇu. [ ଦ୍ର—ବୁଦ୍ଧ ଦେବଙ୍କୁ ଓ ପୁରୀରେ ବିରାଜିତ ଜଗନ୍ନାଥ ଦେବଙ୍କୁ ଲୋକେ ବୌଦ୍ଧାବତାର ବୋଲି ମାନନ୍ତି ।]

**ବୌଧ**—ସଂ. ବି ( ବୁଧ=ବୁଧଗ୍ରହ + ଅପତ୍ୟାର୍ଥେ. ଅ )—ବୁଧଗ୍ରହଙ୍କ Baudha ପୁତ୍ର; ରାଜା ପୁରୂରବାଃ—Name of King Purūrabāḥ.

**ବୌଧାୟନ**—ସଂ. ବି ( ବୁଧ + ଆୟନ )—ହିନ୍ଦୁ ସ୍ମୃତିକାର ଋଷି Baudhāyana ବିଶେଷ—Name of a sage. [ ଦ୍ର—ଏ ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ଧର୍ମସୂତ୍ର ନାମକ ଗ୍ରନ୍ଥତ୍ରୟ ରଚନା କରିଥିଲେ—ହି. ଶ. ।]

**ବୌ(ବୈ)ରାଣୀ ଦୁର୍ଗ**—ପ୍ରାଦେ. (ଗଞ୍ଜାମ) ବି. (ନାମ)— ଖ୍ରୀଷ୍ଟ ୧୩ଶ ଓ Bau(bai)rāṇī durga ୧୪ଶ ଶତାବ୍ଦୀରେ ପ୍ରତିଷ୍ଠିତ ଗଞ୍ଜାମର ଏକ ସୁଦୃଢ଼ ଦୁର୍ଗ—Name of a strong castle of ancient Orissa established in the 13th and 14 centuries A. D.

**ବୌଷଟ୍**—ସଂ. ବି ( ବହ ଧାତୁ=ବହନ କରିବା + କର୍ତ୍ତ୍ରି.ଔଷଟ୍; ଯାହା Baushaṭ ଘୃତାଦିକୁ ଦେବତାଙ୍କ ନିକଟକୁ ବହନ କରେ )—ଘୃତାଦିକୁ ଦେବତାଙ୍କୁ ନିବେଦନ କରିବା ମନ୍ତ୍ର—The mystical syllable or incantation attached to the name of the Deity to whom ghee etc are offered in a vedic sacrifice.

ବ୍ୟଂଶକ—ସଂ. ବି ( ବି+ଅଂଶ+କ )—ପର୍ବତ—
Byamśaka Hill; mountain.

ବ୍ୟଂସକ—ସଂ ବିଣ. ପୁଂ—୧ । ( ବି+ଅନ୍ସ୍ ଧାତୁ=ଭାଗ କରିବା
Byamsaka +କର୍ତ୍ତୃ.ଅକ) ଠକ; ପ୍ରତାରକ—1. Cheating; fraudulent. ୨ । ( ବି+ଅଂସ+କ ) ସ୍କନ୍ଧଶୂନ୍ୟ—2. Shoulderless.

ବ୍ୟଂସନ—ସଂ. ବି ( ବି+ଅନସ ଧାତୁ+ଭାବ ଅନ )—ପ୍ରତାରଣ—
Byamsana Cheating

ବ୍ୟଂସିତ—ସଂ. ବିଣ ( ବି+ଅନସ୍ ଧାତୁ+କର୍ମ. ତ )—ପ୍ରତାରିତ—
Byamsita Cheated; deceived.

ବ୍ୟକତ—ଗ୍ରା· ( ପଦ୍ୟ ) ବିଣ—ବ୍ୟକ୍ତ; ପ୍ରକାଶିତ—Published;
Byakata manifest (ଉ—ମଇମ ପଟମ ଗୁପତ । ଶ୍ରୀଗୁରୁ କୃପାରୁ ବ୍ୟକତ—ଭୂପତି. ପ୍ରେମପଞ୍ଚାମୃତ । ]
[ଦ୍ର · 'ବ୍ୟ' ଓ 'ବ୍ୟା' ଅକ୍ଷରରେ ଆରମ୍ଭ ହୋଇଥିବା କେତେଗୁଡ଼ିଏ ଶବ୍ଦ ଉଚ୍ଚାରଣ ଦୋଷରୁ ଗ୍ରାମ୍ୟ ଭାଷାରେ 'ବେ' ରୂପେ ଅପଭ୍ରଷ୍ଟ ହୋଇ କଥିତ ହୁଏ । ଯଥା—ବ୍ୟକ୍ତି—ବେକତି, ବେକେତି । ବ୍ୟତିକ୍ରମ—ବେତିକ୍ରମ । ବ୍ୟତିରେକେ—ବେତିରେକେ । ବ୍ୟଗ୍ରତ—ବେଗ୍ରତ । ବ୍ୟତିବ୍ୟସ୍ତ—ବେତିବେସ୍ତ । ବ୍ୟବସାୟ—ବେବସା, ବେଉସା । ବ୍ୟାପାର—ବେପାର, ବ୍ୟବହାର—ବେଭାର ଇତ୍ୟାଦି । ]

ବ୍ୟକ୍ତ—ସଂ. ବିଣ (ବି+ଅନ୍‌ଜ୍ ଧାତୁ=ପ୍ରକାଶ କରିବା+କର୍ମ. ତ)—
Byakta ୧ । ପ୍ରକାଶିତ—1. Published; expressed. ୨ । ସ୍ପଷ୍ଟୀକୃତ—2. Made clear. ୩ । ସ୍ପଷ୍ଟ; ସ୍ଫୁଟ; ପ୍ରକଟିତ—3. Clear; articulate; patent; manifest. ୪ । ସ୍ଥୂଳ—4. Thick. ୫ । ଦୃଷ୍ଟ—5. Perceived; seen. ୬ । ଅନୁମିତ—6. Inferred; guessed. ୭ । ଦୃଶ୍ୟ—7. Visible. ୮ । ବିଶିଷ୍ଟରୂପେ ପ୍ରକାଶିତ—8. Individuated; clearly indicated. ୯ । (+କର୍ତ୍ତୃ. ତ)—ବିଜ୍ଞ—9. Knowing. ପୁ.—ବିଷ୍ଣୁ—Bishṇu.

ବ୍ୟକ୍ତ କରିବା—ଦେ. କ୍ରି—୧ । ମିଟାଇ କରି କହିବା; ସ୍ପଷ୍ଟରୂପେ
Byakta kariba ପ୍ରକାଶିତ କରିବା—1. To speak out; ব্যক্ত করা व्यक्त करना to make clear; to express clearly. ୨ । ଦେଖାଇବା—2. To manifest; to show.

ବ୍ୟକ୍ତ ଗଣିତ—ସଂ. ବି—ପାଟୀଗଣିତ—
Byakta gaṇita Arithmetic.

ବ୍ୟକ୍ତ ଦୃଷ୍ଟାର୍ଥ—ସଂ ବିଣ—(ବହୁବ୍ରୀହି; ବ୍ୟକ୍ତ=ପ୍ରକାଶିତ+ଦୃଷ୍ଟ=
Byakta drushtārtha ଅବଲୋକିତ+ଅର୍ଥ=ବର୍ଣ୍ଣନୀୟ ବିଷୟ; ଦୃଷ୍ଟ ବିଷୟ ଯାହା ଦ୍ୱାରା ପ୍ରକାଶିତ ହୋଇଅଛି )—ଯେ ନିଜେ ବର୍ଣ୍ଣନୀୟ ବିଷୟ ଆଖିରେ ଦେଖିଅଛି; ପ୍ରତ୍ୟକ୍ଷଦର୍ଶୀ—Having himself seen a thing. ବି.—କୌଣସି ଘଟଣା ସ୍ୱୟଂ ଦେଖିଥିବା ବ୍ୟକ୍ତି; ସାକ୍ଷୀ—An eye-witness; one who gives direct evidence of an occurrence.

ବ୍ୟକ୍ତରୂପ—ସଂ.ବିଣ ପୁଂ—୧। (ବହୁବ୍ରୀହି;ବ୍ୟକ୍ତ ହୋଇଅଛି ରୂପ ଯାହାର)—
Byakta rūpa ଯାହାର ରୂପ ଦୃଶ୍ୟ ହେଉଅଛି—1. Having
(ବ୍ୟକ୍ତରୂପା—ସ୍ତ୍ରୀ) a visible form. ୨ । ସ୍ଥୂଳରୂପ—2. Having a material form. ବି—(କର୍ମଧା)—୧ । ଦୃଶ୍ୟ ରୂପ—1. Visible form. ୨ । ସ୍ଥୂଳ ମୂର୍ତ୍ତି—2. Material form. ୩ । (ବହୁବ୍ରୀହି) ବିଷ୍ଣୁ—3. A name of Bishṇu.

ବ୍ୟକ୍ତି—ସଂ. ବି—(ବି+ଅନଜ୍ ଧାତୁ=ପ୍ରକାଶିତ ହେବା+କର୍ମ. ତି)
Byakti ୧ । ମନୁଷ୍ୟ; ଲୋକ; ଜଣ—1. Individual; a distinct person; person. ୨ । ଏକ ଶ୍ରେଣୀର ଅନେକଙ୍କ ମଧ୍ୟରୁ ଜଣେ—2. One of a class ୩ । ଶରୀରୀ—3. A corporeal or material being. ୪ । ପ୍ରାଣୀ; ଜୀବ—4. Animal. ୫ । ଦ୍ରବ୍ୟ; ବସ୍ତୁ; ପଦାର୍ଥ—5. Thing; article. ୬ । (+ଭାବ.ତି)—ଅଭିବ୍ୟକ୍ତି; ପ୍ରକାଶ—6 Manifestation. [ଦ୍ର—ବ୍ୟକ୍ତି ଶବ୍ଦ ସଂସ୍କୃତରେ ସ୍ତ୍ରୀଲିଙ୍ଗ ହେଲେହେଁ ଭାଷାରେ ଏହା ମନୁଷ୍ୟ ବା ଲୋକ ଅର୍ଥରେ ପୁଂଲିଙ୍ଗରୂପେ ବ୍ୟବହୃତ ହୁଏ । ଧ୍ୱ. ଶ. ।]

ବ୍ୟକ୍ତିଗତ—ସଂ. ବିଣ—୧ । ଜଣକ ସମ୍ବନ୍ଧୀୟ; ଏକ ବ୍ୟକ୍ତି ସମ୍ବନ୍ଧୀୟ—
Byaktigata 1. Relating to an individual.
ଜାତିଗତ } —ବିପରୀତ
ଦଳଗତ }
୨ । ନିଜ ସମ୍ବନ୍ଧୀୟ—2. Personal; relating to one's self. ୩ । ସ୍ୱାର୍ଥପର—3. Selfish.

ବ୍ୟକ୍ତିଗତ ଈର୍ଷା—ସଂ.ବି—ଅହିତ୍ୟା;ଅହିତେଚ୍ଛା—Personal grudge.
Byaktigata īrshā (ବ୍ୟକ୍ତିଗତ ହିଂସା—ଅନ୍ୟରୂପ)

ବ୍ୟକ୍ତିଗତ ଉନ୍ନତି—ସଂ. ବି—ଜଣକର ଉନ୍ନତି—
Byaktigata unnati Personal improvement.

ବ୍ୟକ୍ତିଗତ ପାର୍ଥକ୍ୟ—ଦେ. ବି—ଅନ୍ୟମାନଙ୍କ ଠାରୁ ଜଣକର ବିଶିଷ୍ଟ
Byaktigata parthakya ପାର୍ଥକ୍ୟ—Individual
(ବ୍ୟକ୍ତିଗତ ବୈଷମ୍ୟ ଅନ୍ୟରୂପ) difference.

ବ୍ୟକ୍ତିଗତ ବିଶେଷତା(ତ୍ୱ)—ଦେ.ବି ଜଣକର ଅନନ୍ୟସାଧାରଣ ଅବସ୍ଥା
Byaktigata biśoshatā( twa ) ବା ଗୁଣ—Individual peculiarity; individuality.
ବ୍ୟକ୍ତିଗତ ବୈଶିଷ୍ଟତା }
ବ୍ୟକ୍ତିଗତ ବୈଶିଷ୍ଟ୍ୟ } —ଅନ୍ୟରୂପ

ବ୍ୟକ୍ତିଗତ ଭାବ—ଦେ. ବି—ନିଜର ମନରେ ଉଦିତ ଭାବ—
Byaktigata bhāba Personal feeling.
ব্যক্তিগত ভাব व्यक्तिगत भाव

ବ୍ୟକ୍ତିଗତ ସ୍ୱାର୍ଥ—ଦେ. ବି—ଜଣକର ନିଜର ଉପକାର—
Byaktigata swārtha Personal interest.

ବ୍ୟକ୍ତି ଗ୍ରହ—ସଂ. ବି ( ବ୍ୟକ୍ତି+ଗ୍ରହ ଧାତୁ+ଭାବ. ଅ )—ଗୋଟିଏ
Byakti graha ଗୋଟିଏ ପଦାର୍ଥର ସତ୍ତାର ଉପଲବ୍ଧି-
(ବ୍ୟକ୍ତି ଗ୍ରାହିତା—ଅନ୍ୟରୂପ) କାରକ ମନୋବୃତ୍ତି—Discernment of individuality; the mental quality

by which the peculiarities of different things are realised.

ବ୍ୟକ୍ତିତା(ତ୍ୱ)—ସ. ବି (ବ୍ୟକ୍ତି+ଭାବ.ତା,ତ୍ୱ)—୧ । ସ୍ୱପ୍ରାଧାନ୍ୟ; ବ୍ୟକ୍ତି Byaktitā(twa) ବିଶେଷର ସ୍ୱାତନ୍ତ୍ର୍ୟ—Individuality; one's superiority over others ୨ । ବିଶିଷ୍ଟତା; ବିଶେଷତ୍ୱ—2. Peculiarity.

ବ୍ୟକ୍ତି ବିଶେଷ—ସ. ବି—୧ । ଅନେକଙ୍କ ମଧ୍ୟରୁ ଜଣେ ବ୍ୟକ୍ତି—Byakti bisesha—1. One individual out of a class. ୨ । କେହି ଜଣେ ଲୋକ; ଜଣେ କେହି; ଜଣେ କେହି ନିର୍ଦ୍ଦିଷ୍ଟ ବ୍ୟକ୍ତି—2. A particular person

ବ୍ୟକ୍ତି ଭେଦ—ସ. ବି—ସାଧାରଣଙ୍କଠାରୁ ବ୍ୟକ୍ତି ବିଶେଷର ପ୍ରଭେଦ; Byakti bheda ସାଧାରଣଙ୍କ ମଧ୍ୟରୁ ବିଶିଷ୍ଟ ଗୁଣଯୁକ୍ତ ଜଣେ — A distinct individual; a particular individual.

ବ୍ୟକ୍ତୀକରଣ—ସ. ବି ( ବ୍ୟକ୍ତ+ଅଭୂତ ତଦ୍ଭାବେ ଚ୍ୱି+କରଣ )—Byaktīkaraṇa ସ୍ପଷ୍ଟୀ କରଣ; ପ୍ରକାଶ କରଣ; ଯାହା ପୂର୍ବେ ବ୍ୟକ୍ତ ନ ଥିଲା, ବର୍ତ୍ତମାନ ତାକୁ ବ୍ୟକ୍ତ କରିବା କର୍ମ—Making clear or manifest a thing which was not so before.

ବ୍ୟକ୍ତୀକୃତ—ସ. ବିଣ—(ବ୍ୟକ୍ତ+ଅଭୂତ ତଦ୍ଭାବେ ଚ୍ୱି+କୃତ)—Byaktī kṛuta ପ୍ରକଟିତ; ସ୍ପଷ୍ଟୀକୃତ; ଯାହାକୁ ବ୍ୟକ୍ତ କରାଯାଇ ଅଛି—Made manifest; made clear.

ବ୍ୟକ୍ତୀଭୂତ—ସ. ବିଣ—(ବ୍ୟକ୍ତ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—ଯାହା Byaktībhūta ପୂର୍ବେ ଅବ୍ୟକ୍ତ ଥିଲା ବର୍ତ୍ତମାନ ବ୍ୟକ୍ତ ହୋଇ- (ବ୍ୟକ୍ତୀଭାବ—ବି) ଅଛି—Become manifest or evident.

ବ୍ୟଗ୍ର—ସ. ବିଣ. ପୁଂ ( ବି+ଅଗ୍ର; ବିଗତ ବା ବହିର୍ଗତ ହୋଇଅଛି Byagra ଅଗ୍ର ଯାହାର)—୧ । ଆଗ୍ରହାନ୍ୱିତ—1. Eager; ardent; zealous. ୨ । ବ୍ୟସ୍ତ; ଚିନ୍ତିତ—2. Anxious. ୩ । ଅଧୀର—3. Impatient. ୪ । ବ୍ୟାକୁଳ—4. Bewildered; perplexed. ୫ । ତ୍ରସ୍ତ; ଚକିତ—5. Alarmed; (ବ୍ୟଗ୍ରା—ସ୍ତ୍ରୀ) affrighted; afraid. ୬ । ଉଦ୍ୟୋଗୀ; ଉଦ୍ୟମଶୀଳ —6. Prompt; diligent; assiduous. ୭ । ଆସକ୍ତ—7. Fondly attached; devoted to ବି.- ବିଷ୍ଣୁ—Bishṇu. ଦେ. ବି—୧ । ବେଗ—1. Force. ୨ । ବ୍ୟଗ୍ରତା; ଅଧୀରତା—2. Impatience [ଉ—ବାସ ଗୃହେ ବିଧୀ ସୀଦନ୍ତି କାମ ବ୍ୟଗ୍ର ସେ । ପ୍ରାଚୀ. ରସବାରିଧି ।]

ବ୍ୟଗ୍ରଚିତ୍ତ—ସ.ବିଣ.ପୁଂ (ବହୁବ୍ରୀହି;ବ୍ୟଗ୍ର ହୋଇଅଛି ଚିତ୍ତ ଯାହାର)—Byagra chitta ୧ । ଆକୁଳ; ବ୍ୟସ୍ତ—1. Bewildered; ( ବ୍ୟଗ୍ର ମାନସ, ବ୍ୟଗ୍ରଚେତାଃ—ଅନ୍ୟରୂପ ) perturbed. ୨ । (ବ୍ୟଗ୍ରଚିତ୍ତା—ସ୍ତ୍ରୀ) ଉଦ୍ବିଗ୍ନ—2 Anxious. ୩ । ଆଗ୍ରହାନ୍ୱିତ—3. Eager; ardent; zealous.

ବ୍ୟଗ୍ରତା(ତ୍ୱ)—ସ. ବି—(ବ୍ୟଗ୍ର+ଭାବାର୍ଥେ. ତା, ତ୍ୱ)—୧ । ବ୍ୟସ୍ତତା; Byagratā (twa) ଅଗ୍ରହ—1. Ardour; zeal; eagerness ୨ । ବ୍ୟାକୁଳତା—2. Perplexity; bewilderment. ୩ । ଅତ୍ୟନ୍ତ ଭୟ—3. Alarm.

ବ୍ୟଙ୍ଗ—ସ. ବିଣ—(ବି =ହୀନ+ଅଙ୍ଗ)—୧ । ବିକଳାଙ୍ଗ; ଅଙ୍ଗହୀନ; Byaṅga କୋଢ଼ିଆ—1. Deformed; crippled; mutilated. ୨ । ବ୍ୟର୍ଥ; ନିଷ୍ଫଳ—2. Fruitless. ବି.—୧ । ଭେକ ବେଙ୍ଗ—1. Frog. ୨ । ମୁଖରୋଗ ବିଶେଷ; ଭଙ୍ଗ ରୋଗ—2. A disease resulting in black patches on the face. [ବି—ଭାବପ୍ରକାଶ ମତରେ ଅଜୀର୍ଣ୍ଣ କ୍ରୋଧ ବା ପରିଶ୍ରମ ଯୋଗୁଁ ବାୟୁ କୁପିତ ହୋଇ ମୁହଁରେ ଛୋଟ ଛୋଟ କଳା ଦାଗ ବା ବ୍ରଣ ବାହାର ପଡ଼େ—ହି. ଶ. ।] ଦେ. ବି.—(ସ. ବ୍ୟଙ୍ଗ୍ୟ)—୧ । ବ୍ୟଙ୍ଗ୍ୟ; ବିଦ୍ରୂପ—1. Irony; satire; sarcasm. ୨ । ବିଘ୍ନ; ବାଧା—2. Impedement.

ବ୍ୟଙ୍ଗକ—ସ. ବି (ବ୍ୟଙ୍ଗ+କ; ଇନ୍ଦ୍ର ପର୍ବତମାନଙ୍କର ପକ୍ଷ ଛେଦନ Byaṅgaka କରି ପର୍ବତମାନଙ୍କୁ ବ୍ୟଙ୍ଗ କରି ଥିବାରୁ )—ପର୍ବତ (ହି. ଶ)—Mountain.

ବ୍ୟଙ୍ଗ କଥା—ଦେ. ବି—୧ । ବିକୃତରୂପ କରାଯାଇଥିବା କଥା—Byaṅga kathā 1. Distorted speech. ୨ । ବିଦ୍ରୂପ (ବ୍ୟଙ୍ଗ ବାକ୍ୟ, ବ୍ୟଙ୍ଗବଚନ—ଅନ୍ୟରୂପ) ଗୋଳି—2. Irony; satire; sarcasm.

ବ୍ୟଙ୍ଗକର—ସ. ବିଣ—ଯେ ବିକଳାଙ୍ଗ କରେ—Mutilating. Byaṅgakara (ବ୍ୟଙ୍ଗକାରକ—ଅନ୍ୟରୂପ)

ବ୍ୟଙ୍ଗ କରିବା—ଦେ. କ୍ରି ( ସ. ବ୍ୟଙ୍ଗ୍ୟ )—ଥଟ୍ଟା କରିବା—ব্যঙ্গ করা ব্যঙ্গ করনা To jest; to jeer; to satirize.

ବ୍ୟଙ୍ଗ ବିଦ୍ରୂପ—ଦେ. ବି (ସହଚର ଶବ୍ଦ) ( ସ. ବ୍ୟଙ୍ଗ୍ୟ+ବିରୂପ )—Byaṅga bidrūpa ୧ । ଶ୍ଳେଷବଚନ—1. Irony; satire. ব্যঙ্গবিদ্রূপ ঠোলিঠোলী ୨ । ଘୃଣାବ୍ୟଞ୍ଜକ ଉପହାସ—2. Gibe; sneer.

ବ୍ୟଙ୍ଗାତ୍ମକ—ଦେ. ବିଣ—ବ୍ୟଙ୍ଗ୍ୟାତ୍ମକ ( ଦେଖ )—Byaṅgātmaka Byaṅgyātmaka ( See ). ( ବ୍ୟଙ୍ଗାର୍ଥକ—ଅନ୍ୟରୂପ )

ବ୍ୟଙ୍ଗାର୍ଥ—ସ. ବି—ବିକଳୀକୃତ ଅର୍ଥ—Distorted meaning. Byaṅgārtha ଦେ. ବି—ବ୍ୟଙ୍ଗ୍ୟାର୍ଥ ( ଦେଖ )—Byaṅgyārtha ( See )

ବ୍ୟଙ୍ଗିତ—ସ. ବିଣ (ବି+ଅନ୍ଜ ଧାତୁ+କର୍ମ.ତ —୧ । ବିକଳୀକୃତ-Byaṅgita 1. Distorted; crippled; mutilated. ୨ । ବ୍ୟାକୁଳୀକୃତ—2. Confounded; confused.

ବ୍ୟଙ୍ଗୋକ୍ତି—ସ. ବି -ବିକଳୀକୃତ ଉକ୍ତି—Distorted speech. yaṅgokti ଦେ. ବି—ବ୍ୟଙ୍ଗ୍ୟୋକ୍ତି ( ଦେଖ )—Byaṅgyokti (See).

ବ୍ୟଙ୍ଗ୍ୟ—ସ. ବି (ବି+ଅନ୍ଜ ଧାତୁ=ବ୍ୟକ୍ତ କରିବା+କର୍ମ. ଯ )—Byaṅgya ୧ । ନିଗୂଢ଼ାର୍ଥ—1. Hidden meaning; implied sense. ୨ । ତାତ୍ପର୍ଯ୍ୟାର୍ଥ— . Rea or

intended meaning. ୩ । ସୂଚିତାର୍ଥ—3. Hinted meaning. [ ଦ୍ର—ବାଚ୍ୟ, ଲକ୍ଷ୍ୟ ଓ ବ୍ୟଙ୍ଗ୍ୟ ଭେଦରେ ଶବ୍ଦର ଶକ୍ତି ତ୍ରିବିଧ; ଏଗୁଡ଼ିକୁ ଯଥାକ୍ରମେ ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା ମଧ୍ୟ କୁହାଯାଏ ) ଶବ୍ଦର ବ୍ୟଞ୍ଜନାବୃତ୍ତି ଦ୍ୱାରା ପ୍ରକଟିତ ଅର୍ଥକୁ ବ୍ୟଙ୍ଗ୍ୟ ବୋଲାଯାଏ । ଏହା ଶବ୍ଦର ସାଧାରଣ ଅର୍ଥଠାରୁ ପୃଥକ୍ ବିଶିଷ୍ଟ ଅର୍ଥ ଅଟେ । ] ୩ । ଉପହାସ; ପରିହାସ—3. Joke; satire; sarcasm. ୪ । ଶ୍ଳେଷ—ଉଲୁଗୁଣା; ଉପହାସ—4 Irony; sneer ୫ । ଘୃଣାସୂଚକାର୍ଥଯୁକ୍ତ ବାକ୍ୟ—5. Innuendo; insinuation.

ବ୍ୟଙ୍ଗ୍ୟାତ୍ମକ—ସଂ, ବିଣ—ଯହିଁରେ ବ୍ୟଙ୍ଗ୍ୟାର୍ଥ ନିହିତ ଥାଏ—Byangyātmaka ( ବ୍ୟଙ୍ଗ୍ୟାର୍ଥକ—ଅନ୍ୟରୂପ ) Having a covert meaning; ironical; insinuative

ବ୍ୟଙ୍ଗ୍ୟାର୍ଥ—ସଂ. ବି — ୧ । ନିଗୂଢ଼ାର୍ଥ—1. Implied meaning yangyārtha [ ଦ୍ର—ପ୍ରଥମେ ବାକ୍ୟରୁ ଯେଉଁ ଅର୍ଥ ପ୍ରକାଶ ପାଏ ତାହା ଛଡ଼ା ତହିଁ ମଧ୍ୟରେ ନିହିତ ଥିବା ଅନ୍ୟ ଅର୍ଥକୁ ବ୍ୟଙ୍ଗ୍ୟାର୍ଥ ବୋଲାଯାଏ । ] ୨ । ଶ୍ଳେଷାର୍ଥ—2. Covert or insinuating meaning

ବ୍ୟଙ୍ଗ୍ୟୋକ୍ତି—ସଂ. ବି—୧ । ବକ୍ରୋକ୍ତି; ଶ୍ଳେଷୋକ୍ତି—1. Sarcasm; Byangyokti irony. ୨ । ଦୁଇ ଅର୍ଥ ପ୍ରକାଶକ ଉକ୍ତି—2. A pun; a play on words. ୩ । ଥଟ୍ଟା; ପରିହାସ; ବିଦ୍ରୂପ ବାକ୍ୟ -3 Jeer; jest; joke. ୪ । ଗୂଢ଼ାର୍ଥକ ବିଦ୍ରୂପ—4 Innuendo; insinuation; covert joke.

ବ୍ୟଜ—ସଂ. ବି— (ବି + ଅଜ ଧାତୁ =କ୍ଷେପଣ କରିବା + ଭାବ. ଅ)—Byaja ୧ । ବାୟୁ ସଞ୍ଚାଳନ—1. Ventilation. ୨ । ପବନ କରିବା; ବିଞ୍ଚିବା—2. Fanning.

ବ୍ୟଜନ – ସଂ. ବି—୧ । ( ବି + ଅଜ ଧାତୁ + ଭାବ. ଅନ )—ବ୍ୟଜ Byajana (ଦେଖ)-1. Byaja (See). ୨ । ( +କରଣ ଅନ) ବ୍ୟଜନୀ (ଦେଖ)—2. Byajani (See).

ବ୍ୟଜନୀ—ସଂ. ବି (ବି+ଅଜ ଧାତୁ+କରଣ ଅନ+ସ୍ତ୍ରୀ. ଈ)—ତାଳବୃନ୍ତ; Byajanī ବିଞ୍ଚଣା; ପଙ୍ଖା—A hand-fan.

ବ୍ୟଜ୍ୟ—ସଂ. ବିଣ (ବି + ଅଞ୍ଜ୍ ଧାତୁ+କର୍ମ ଯ)—ଶବ୍ଦର ବ୍ୟଞ୍ଜନାଶକ୍ତି Byajya ଦ୍ୱାରା ଯାହା ବୁଝାଯାଏ (ହି. ଶ)- Comprehensible by the implied or insinuated meaning.

ବ୍ୟଞ୍ଜକ—ସଂ. ବିଣ ( ବି+ଅଞ୍ଜ୍ ଧାତୁ=ପ୍ରକାଶ କରିବା+କର୍ତ୍ତୃ Byañjaka ଅକ )—୧ । ପ୍ରକାଶକ—1. Manifesting; (ବ୍ୟଞ୍ଜିକା—ସ୍ତ୍ରୀ) indicating; making plain. ୨ । ଯାହା କୌଣସି ଭାବକୁ ବା ଅର୍ଥକୁ ମନରେ ଜନ୍ମାଏ—2. Suggesting a meaning or thought; thought-provoking; suggestive. ବି—୧ । ହୃଦ୍‌ଗତ ଭାବ ପ୍ରକାଶକ ଅଭିନୟ—1. A representation expressing feelings or passions; a mute acting suggesting the thoughts of the actor. ୨ । ବ୍ୟଞ୍ଜନା ଦ୍ୱାରା ବୋଧକ ଶବ୍ଦ ( ପ୍ରକୃତିବାଦ)—2. A word which implies a certain meaning different from its apparent meaning.

ବ୍ୟଞ୍ଜକ ଶ୍ଳେଷ—ଦେ. ବି—ଅନୁପ୍ରାସ ଓ ବ୍ୟଞ୍ଜନାଯୁକ୍ତ ବାକ୍ୟାଲଙ୍କାର Byañjaka ṡlesha ବିଶେଷ—A figure of speech consisting of puns [ ଦ୍ର—ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣିର ନିମ୍ନଲିଖିତ ପଦଗୁଡ଼ିକ ବ୍ୟଞ୍ଜକ ଶ୍ଳେଷ: ଅଟେ—ସୁରସ କଣ୍ଠରେ ଦାସ ଆସ ବୋଲୁ ନାହୁଁ, କର୍ପକ ରଣରେ ଛେଦ ଦେଲ ଗୃହୁଁ ଗୃହୁଁ, ଭିକାରିଣୀ କପାଳେ ହେଉଛି ମୁଁ ପାନ, କୁଚାର୍ଥ ମଦନା ଥରେ କରୁ କନା ଦାନ । ]

ବ୍ୟଞ୍ଜନ—ସଂ. ବି (ବି+ଅଞ୍ଜ୍ ଧାତୁ + କରଣ ଅନ; ଯାହାଦ୍ୱାରା କୌଣସି Byañjana ବିଷୟ ପ୍ରକାଶ ପାଏ)—୧ । ବୈଶିଷ୍ଟ୍ୟ ବୋଧକ ଲକ୍ଷଣ; ଚିହ୍ନ —1. Distinctive sign or mark, token. ୨ । ପୁରୁଷ ଓ ସ୍ତ୍ରୀମାନଙ୍କର ପ୍ରଭେଦଜ୍ଞାପକ ଚିହ୍ନ (ଯଥା—ପୁରୁଷର ଶ୍ମଶ୍ରୁ ଓ ସ୍ତ୍ରୀର ସ୍ତନ)—2. Distinctive marks of the sexes. ୩ । କ ଠାରୁ ହ ପର୍ଯ୍ୟନ୍ତ ଏହି ୩୩ଟି ବର୍ଣ୍ଣ—3. The consonants. [ ଦ୍ର—ଓଡ଼ିଆ ଭାଷାରେ ୫୧ ଟି ବର୍ଣ୍ଣର ବ୍ୟବହାର ହୁଏ ।

ସ୍ୱରବର୍ଣ୍ଣ ୧୩ + ବ୍ୟଞ୍ଜନ ୩୩ + ଅଯୋଗବାହ ୩ = ୪୯; ବର୍ଣ୍ଣମାନ ସ୍ୱର, ବ୍ୟଞ୍ଜନ ଓ ଅଯୋଗବାହ ଏହି ତିନି ଶ୍ରେଣୀରେ ବିଭକ୍ତ । ଅଠାରୁ ଔ ପର୍ଯ୍ୟନ୍ତ ଏହି ୧୩ଟି ବର୍ଣ୍ଣକୁ ସ୍ୱରବର୍ଣ୍ଣ ବୋଲାଯାଏ । ସ୍ୱରବର୍ଣ୍ଣମାନ ଅନ୍ୟ ବର୍ଣ୍ଣର ସାହାଯ୍ୟ ବିନା ଉଚ୍ଚାରିତ ହୁଅନ୍ତି । କ ଠାରୁ ହ ପର୍ଯ୍ୟନ୍ତ ୩୩ଟି ବର୍ଣ୍ଣକୁ ବ୍ୟଞ୍ଜନ ବର୍ଣ୍ଣ ବୋଲାଯାଏ । ସ୍ୱରବର୍ଣ୍ଣର ବିନା ସାହାଯ୍ୟରେ ଏହି ବର୍ଣ୍ଣମାନେ ଉଚ୍ଚାରିତ ହୋଇ ପାରନ୍ତି ନାହିଁ । ଅନୁସ୍ୱାର, ବିସର୍ଗ ଓ ଚନ୍ଦ୍ରବିନ୍ଦୁକୁ କେହି କେହି ବ୍ୟଞ୍ଜନ ଓ କେହି କେହି ଅଯୋଗବାହ ବର୍ଣ୍ଣ କହନ୍ତି ଓ କେହି କେହି ଏମାନଙ୍କୁ ବର୍ଣ୍ଣ ମଧ୍ୟରେ ଗଣନା କରନ୍ତି ନାହିଁ । ୩୩ଟି ବ୍ୟଞ୍ଜନ ବର୍ଣ୍ଣ ୩ଭାଗରେ ବିଭକ୍ତ । ପ୍ରଥମ ୨୫ଟି ବର୍ଗୀୟ ବା ସ୍ପର୍ଶ ବର୍ଣ୍ଣ । ଯଥା—କ ବର୍ଗ (୫), ଚ ବର୍ଗ (୫), ଟ ବର୍ଗ (୫), ତ ବର୍ଗ (୫) ଓ ପ ବର୍ଗ (୫); ୪ଟି ଅବର୍ଗୀୟ ବା ଅନ୍ତଃସ୍ଥ ବର୍ଣ୍ଣ ଯଥା—ଯ, ର, ଲ, ବ; ୪ଟି ଉଷ୍ମବର୍ଣ୍ଣ ଯଥା—ଶ, ଷ, ସ, ହ । ] ୪ । ଅନ୍ନ ଭୋଜନର ସହାୟକ, ତରକାରୀ; ସୁପ ଶାକାଦି ( ଯହିଁର ସାହାଯ୍ୟରେ ଅନ୍ନ ରୋଚକ ହୁଏ)—4 Curry; sauce; stew. ୫ । ଅବୟବ; ଅଙ୍ଗ (ହି. ଶ)—5. Limb. ୬ । ତଳପେଟର ନିମ୍ନ ସ୍ଥାନ; ଉପସ୍ଥ (ହି. ଶ)-6. The part of the body below the abdomen. ୭ । ସିଦ୍ଧ ଭୋଜ୍ୟ ସାମଗ୍ରୀ (ହି.ଶ)—7. Any boiled

food. ୮ । (+ଭାବ, ଅନ) ବ୍ୟକ୍ତ ହେବାର ବା କରିବାର କ୍ରିୟା (ହି. ଶ)—8. Manifestation.

**ବ୍ୟଞ୍ଜନ ସନ୍ଧି**—ସଂ. ବି (ବ୍ୟାକରଣ)—ପଦାନ୍ତ ବ୍ୟଞ୍ଜନ ବର୍ଣ୍ଣ ସହିତ ଅନ୍ୟ
**Byañjana sandhi** ପଦାଦ୍ୟ ବ୍ୟଞ୍ଜନ ବର୍ଣ୍ଣର ବା ସ୍ୱର ବର୍ଣ୍ଣର ଯୋଗ—(Grammar) The conjuction of the final consonant of one word with the first consonant or vowel of the following word.

**ବ୍ୟଞ୍ଜନା**—ସଂ. ବି (ବ୍ୟଞ୍ଜନ+ଆ)—୧ । ବାକ୍ୟର ବ୍ୟଙ୍ଗ୍ୟାର୍ଥ-
**Byañjanā** ବୋଧକ ଶକ୍ତି; ଯେଉଁ ଶକ୍ତିଦ୍ୱାରା ବାକ୍ୟର ତାତ୍ପର୍ଯ୍ୟାର୍ଥର ବା ଗୂଢ଼ାର୍ଥର ବା ଅଭିପ୍ରେତାର୍ଥର ବା ସୂଚିତାର୍ଥର ବୋଧ ହୁଏ—1. The power of a word by which it suggests a hidden meaning or innuendo ୨ । ବ୍ୟଙ୍ଗୋକ୍ତି—2. A figurative mode of speech; irony; sarcasm. ୩ । ପ୍ରକଟୀକରଣ—3. The act of making manifest or patent.

**ବ୍ୟଞ୍ଜନା ବୃତ୍ତି**—ସଂ. ବି—ଶବ୍ଦର ଯେଉଁ ବୃତ୍ତି ବା ଶକ୍ତିଦ୍ୱାରା ଶବ୍ଦର ବା
**Byañjanā bṛutti** ବାକ୍ୟର ବାଚ୍ୟାର୍ଥ ଓ ଲକ୍ଷଣାର୍ଥ ଠାରୁ (ବ୍ୟଞ୍ଜନାଶକ୍ତି—ଅନ୍ୟରୂପ) ପୃଥକ୍ ବକ୍ତାଙ୍କ ଅଭିପ୍ରେତ ଗୂଢ଼ାର୍ଥର ବୋଧ କରେ—The power of a word by which the hidden meaning or suggestion or intention of the speaker is gathered, apart from its literal or patent meaning. [ଦ୍ର—ଏହି ବ୍ୟଞ୍ଜନାବୃତ୍ତି ଆପାତତଃ ଦ୍ୱିବିଧ; ଶବ୍ଦ ସମ୍ବନ୍ଧୀୟ ଓ ଅର୍ଥସମ୍ବନ୍ଧୀୟ ବ୍ୟଞ୍ଜନା । ଶବ୍ଦ ସମ୍ବନ୍ଧୀୟ ବ୍ୟଞ୍ଜନାକୁ ଶାବ୍ଦୀ ବ୍ୟଞ୍ଜନା ଓ ଅର୍ଥ ସମ୍ବନ୍ଧୀୟ ବ୍ୟଞ୍ଜନାକୁ ଆର୍ଥୀ ବ୍ୟଞ୍ଜନା କହନ୍ତି ।]

**ବ୍ୟଞ୍ଜିତ**—ସଂ. ବି.—(ବି+ଅନ୍ଜ ଧାତୁ+କର୍ମ. ତ)—୧ । ପ୍ରକାଶିତ-
**Byañjita** 1. Expressed. ୨ । ସୂଚିତ—2. Suggested; hinted. ୩ । ବ୍ୟଞ୍ଜନା ଦ୍ୱାରା ବୋଧିତ—3. Understood or conveyed by the implied meaning.

**ବ୍ୟଡ଼ମ୍ବକ**—ସଂ. ବି —(ବି+ଅଡ଼ [ଉଦ୍ୟମ] ଧାତୁ=ଉଦ୍ୟତ ହେବା+
**Byar̤dambaka** କର୍ତ୍ତୃ. ଅକ)—ଏରଣ୍ଡ ଗଛ; ଗବ ଗଛ—The castor oil plant; Ricinus Communis.

**ବ୍ୟତି**—ସଂ. ବି—ଘୋଡ଼ା (ହି. ଶ)—
**Byati** Horse.

**ବ୍ୟତିକ(କା)ର**—ସଂ. ବି—(ବି+ଅତି+କୃ ଧାତୁ+ଭାବ. ଅ)—
**Byatika(kā)ra** ୧ । ବ୍ୟସନ; ବିପଦ—1. Misfortune; calamity ୨ । ବ୍ୟାପ୍ତି—2. Pervading; diffusion; overspreading. ୩ । ସମ୍ପର୍କ; ସମ୍ବନ୍ଧ—3 Connection; relation. ୪ । ମିଶ୍ରଣ—4. Mixture; union; combination. ୫ । ପରସ୍ପର କର୍ମ କରଣ—5. Mutual action. ୬ । ପରସ୍ପର ସମ୍ବନ୍ଧ—6. Mutual connection. ୭ । ବିନାଶ (ହି. ଶ)—7. Ruin; destruction. ୮ । (+କର୍ମ. ଅ) ସମୂହ—8. Multitude. ସଂ. ବିଣ (+କର୍ତ୍ତୃ. ଅ) ସମ୍ପର୍କଯୁକ୍ତ—Related.

**ବ୍ୟତିକ୍ରମ**—ସଂ. ବି (ବି+ଅତିକ୍ରମ)—୧ । କ୍ରମର ବିପର୍ଯ୍ୟୟ—1.
**Byatikrama** Inversion of order or arrangement. ୨ । ବୈପରୀତ୍ୟ—2. Opposision; contrariety. ୩ । ଉଲ୍ଲଙ୍ଘନ; ଓଲଟାଇବା—3. Transgression; reversion. ୪ । ଅନ୍ୟଥା ଭାବ—4. Deviation. ୫ । ତ୍ରୁଟି—5. Violation; breach. ୬ । ବାଧା; ବିଘ୍ନ (ହି. ଶ)—6. Obstacle; obstruction.

**ବ୍ୟତିକ୍ରମଣ**—ସଂ. ବି (ବି+ଅତିକ୍ରମଣ)—୧ । କ୍ରମର ବିପର୍ଯ୍ୟୟ
**Byatikramaṇa** କରିବା—1. Inverting the order. ୨ । ନିୟମ ଲଙ୍ଘନ—2. Transgression or violation of a rule.

**ବ୍ୟତିକ୍ରାନ୍ତ**—ସଂ. ବିଣ (ବି+ଅତିକ୍ରାନ୍ତ)—୧ । ବିପର୍ଯ୍ୟୟ ପ୍ରାପ୍ତ
**Byatikrānta** —1. Inverted; reversed. ୨ । (ବ୍ୟତିକ୍ରାନ୍ତ—ବି) ଉଲ୍ଲଂଘିତ—2. Transgressed; violated.

**ବ୍ୟତିଚାର**—ସଂ. ବି (ବି+ଅତିଚାର)—୧ । ପାପାଚରଣ—1.
**Byatichāra** Commission of sinful acts. ୨ । ଦୋଷ 2. Fault; defect.

**ବ୍ୟତିପାତ**—ସଂ. ବି (ବି+ଅତି+ପତ ଧାତୁ+କର୍ତ୍ତୃ. ଅ)—୧ ।
**Byatipāta** ଅତ୍ୟନ୍ତ ଉତ୍ପାତ; ଘୋର ଉପଦ୍ରବ—1. A great oppression or calamity. ୨ । ବ୍ୟତୀପାତ (ଦେଖ)—2. Byatīpāta (See)

**ବ୍ୟତି ବ୍ୟସ୍ତ**—ସଂ. ବିଣ. (ସଂ. ବି+ଅତି+ବ୍ୟସ୍ତ)—୧ । ଅତ୍ୟନ୍ତ
**Byati byasta** ବ୍ୟସ୍ତ—1. Much perplexed; much harassed. (ଉ—କରିବା ପାଇଁ ନୋହି ବ୍ୟତି ବ୍ୟସ୍ତ, ଘର ବାଡ଼ୀ, ଜମି, ଜମା ବନ୍ଦୋବସ୍ତ । ରାଧାନାଥ ଦରବାର) ୨ । କାର୍ଯ୍ୟରେ ଅତି ବ୍ୟସ୍ତ—2. Unusually busy or engrossed in work.

**ବ୍ୟତିରିକ୍ତ**—ସଂ. ବିଣ. (ବି+ଅତିରିକ୍ତ)—୧ । ଭିନ୍ନ—1. Dis-
**Byatirikta** tinct; different. ୨ । ଅତିରିକ୍ତ—2. Ex- (ବ୍ୟତିରିକ୍ତତା—ବି) cessive; extra. ୩ । ବର୍ଦ୍ଧିତ—3. Increased; enlarged. ୪ । ପୃଥକ୍ କୃତ—4. Separated; withheld.

**ବ୍ୟତିରେକ**—ସଂ. ବି. (ବି+ଅତିରେକ)—୧ । ପ୍ରଭେଦ; ବିଭିନ୍ନତା—
**Byatireka** 1 Difference; dissimilarity. ୨ । ଅଭାବ—2. Want; absence. ୩ । ବୃଦ୍ଧି—3. Increase; growth. ୪ । ଅତିକ୍ରମ—4. Transgression. ୫ । କାବ୍ୟାଳଙ୍କାର ବିଶେଷ; ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ବା ବିଶେଷତା ବୁଝାଯିବା ଅଳଙ୍କାର—5 A

figure of speech in which there is dissimilarity between the matters compared. [ ଦ୍ର—ଉପମାନରୁ ଉପମେୟର ଆଧିକ୍ୟ କଥିତ ହେଲେ ବ୍ୟତିରେକ ଅଳଙ୍କାର ହୁଏ । ଯଥା—ଇନ୍ଦ୍ରାୟୁଧେ ତାର ଅଯୋଗ୍ୟମେ, ନହେ ଯେଉଁ ତୁଳନା, ତନ୍ତୁ ବଳ ଇନ୍ଦ୍ର ସଙ୍ଗେ ସୁନ୍ଦରୀର ତୁଳା ଅଲଣା—ରାଧାନାଥ. ଉଷା । ( କୁଳମଣି. ଅଳଙ୍କାରତରଙ୍ଗିଣୀ ) ] ୬ । ସ୍ୱତନ୍ତ୍ରାବସ୍ଥିତି—6. Individual existence. ( ଉ—ଆତ୍ମା ସର୍ବଦା ସର୍ବଠାବେ, ଅନ୍ୱୟ ବ୍ୟତିରେକ ଭାବେ — ଜଗନ୍ନାଥ. ଭାଗବତ ।)

ବ୍ୟତିରେକୀ—ସଂ. ବି ( ବ୍ୟତିରେକ+ଇନ୍; ୧ମା. ୧ବ )—
Byatirekī ୧ । ପ୍ରଭେଦକ—1. Separating; distinguishing. ୨ । ଅଭାବ ବିଶିଷ୍ଟ—2. Needy; full of want. ୩ । ପ୍ରତିଷେଧକ—3. Negative; Countermanding. ୪ । ଅତିକ୍ରମଣ କାରୀ (ହି.ଶ)—4. Transgressing. ୫ । ଭିନ୍ନତା ଉତ୍ପାଦନକାରୀ (ହି. ଶ)—5. Producing difference.

ବ୍ୟତିରେକେ—ଦେ.କ୍ରି. ବିଶ—୧ । ବ୍ୟତୀତ; ବିନା—1. Without.
Byatireke ব্যতিরেকে **सिवाय** ୨ । ଛଡ଼ା—2. Except.

ବ୍ୟତିଷକ୍ତ—ସଂ. ବିଣ (ବି+ଅତି+ସନ୍ଜ ଧାତୁ=ଆସକ୍ତ ହେବା+
Byatishakta କର୍ତ୍ତି. ତ)—୧ । ଆସକ୍ତ—1. Attached to; devoted. ୨ । ପରସ୍ପର ମିଳିତ—2. Mutually united; mixed up. ୩ । ଗ୍ରଥିତ—3. Orderly arranged together; set.

ବ୍ୟତିଷଙ୍ଗ—ସଂ. ବି ( ବି+ଅତି+ସନ୍ଜ ଧାତୁ+ଭାବ. ଅ )—
Byatisaṅga ୧ । ପରସ୍ପର ମିଳନ—1. Mutual union; conjunction; coincidence. ୨ । ଆସକ୍ତି—2. Attachment; love; devotion. ୩ । ଏକତ୍ର ବନ୍ଧନ—3. The tying of things together; mutual bond. ୪ । ବିନିମୟ; ବଦଳ (ହି. ଶ)—4. Exchange

ବ୍ୟତି(ତୀ)ହାର—ସଂ. ବି (ବି+ଅତି+ହୃ. ଧାତୁ+ଭାବ. ଅ)—
Byati(tī)hāra ୧ । ପରସ୍ପର ଏକରୂପ କ୍ରିୟା କରଣ—1. The act of both performing similar kind of work; reciprocity. ୨ । ପର୍ଯ୍ୟାୟକରଣ; ପାଳି କରି କାମ କରିବା 2. Act of doing by turns. ୩ । ପରିବର୍ତ୍ତନ; ବିନିମୟ; ବଦଳ—3. Exchange. ୪ । ଗାଳିମନ୍ଦ—4. Abuse. ୫ । ମରାମରି; ମାଡ଼ପିଟ—5. Scuffle.

ବ୍ୟତୀକାର—ସଂ. ବି—ବ୍ୟତିକର (ଦେଖ)
Byatīkāra Byatikara (See).

ବ୍ୟତୀତ—ସଂ. ବିଣ—(ବି+ଅତୀତ)—୧ । ବିଗତ—1. Gone. ୨ ।
Byatīta ଅତୀତ—2. Past. ୩ । ଅତିବାହିତ—3. Passed over; whiled away. ୪ । ତ୍ୟକ୍ତ—4. Abandoned. ୫ । ମୃତ—5. Dead; deceased. ୬ । ବିଲୁପ୍ତ—6. Destroyed; disappeared. ୭ । ସମ୍ପନ୍ନ—7. Accomplished; effected; completed.
ব্যতীত **सिवाय** ଦେ. କ୍ରି. ବିଶ—୧ । ଛଡ଼ା—1. Except; apart from. ୨ । ବିନା; ବ୍ୟତିରେକେ—2. Without.

ବ୍ୟତିପାତ—ସଂ. ବି (ବି+ଅତି+ପାତ)—୧ । ଉପଦ୍ରବ; ଉତ୍ପାତ,
Byatipāta ଧୂମକେତୁ, ଭୂମିକମ୍ପାଦି ଅମଙ୍ଗଳଜନକ ଉତ୍ପାତ—1. Natural calamities (e. g. earthquake, comet, falling of shooting stars etc). ୨ । (ଜ୍ୟୋତିଷ) ୨୭ ଯୋଗ ମଧ୍ୟରୁ ସପ୍ତଦଶ ଅଶୁଭକର ଯୋଗ—2. (Astrology) the 17th inauspicious astrological conjunction. [ ଦ୍ର—ବୈଧୃତି ଯୋଗ ପରି ଏ ଯୋଗ ଅତ୍ୟନ୍ତ ଅମଙ୍ଗଳକର ଯୋଗ । ଏ ଯୋଗ ପଡ଼ିଥିବା ସମୟରେ ସମସ୍ତ କାର୍ଯ୍ୟ ନିଷିଦ୍ଧ । ] ୩ । ଅମାବାସ୍ୟା ଦିନ ଶ୍ରବଣା, ଧନିଷ୍ଠା, ଆର୍ଦ୍ରା, ଅଶ୍ଳେଷା ବା ମୃଗଶିରା ନକ୍ଷତ୍ର ପଡ଼ିବା ଜ୍ୟୋତିଷୋକ୍ତ ଯୋଗ—3. A conjunction of certain asterisms with the amābāsyā day. [ ଦ୍ର—ଏ ଦିନ ଗଙ୍ଗାସ୍ନାନ କଲେ ବହୁ ପୁଣ୍ୟଲାଭ ହୁଏ—ହି. ଶ ।] ୪ । ଅଶ୍ରଦ୍ଧା; ଅସମ୍ମାନ—4. Disrespect; dishonour.

ବ୍ୟତ୍ୟୟ—ସଂ. ବି (ବି+ଅତି+ଇ. ଧାତୁ+ଭାବ. ଅ)—୧ । ବ୍ୟତିକ୍ରମ—
Byatyaya 1. Transgression; reversion. ୨ । ବୈପରୀତ୍ୟ—2. Opposition; contrariety. ୩ । କ୍ରମ ବିପର୍ଯ୍ୟୟ—3. Inverted order; retrogression.

ବ୍ୟତ୍ୟସ୍ତ—ସଂ. ବିଣ ( ବି+ଅତି+ଅସ୍ତ )—୧ । ବ୍ୟତିକ୍ରାନ୍ତ—
Byatyasta 1. Transgressed. ୨ । ବିପରୀତ ଭାବରେ ଅବସ୍ଥିତ; ବିପର୍ଯ୍ୟସ୍ତ—2. Inverted; reversed. ୩ । ଓଲଟପାଲଟ—3. Topsy turvy. ୪ । ଗୋଳମାଳ ହୋଇଥିବା—4. Disordered; confused.

ବ୍ୟତ୍ୟାସ—ସଂ. ବି (ବି+ଅତି+ଅସ ଧାତୁ+ଭାବ. ଅ)—୧ । ବିପର୍ଯ୍ୟାସ;
Byatyāsa ଓଲଟ ପାଲଟ ହେବା—1. Inversion. ୨ । ଲେଉଟ ପାଉଟ—2. Confusion. ୩ । ଗୋଳମାଳ—3. Disorder.

ବ୍ୟତ୍ର(ତ୍ରି,ତ୍ରେ)କେ—ଗ୍ରା. ଅ ( ପଦ୍ୟ )—ବ୍ୟତୀତ; ଛଡ଼ା—Besides;
Byatra(tri,tre)ke except. [ଉ—ବଡ଼ବାନଳେ ପଙ୍କାଥ ছাড়া ରାକ୍ଷସ ଗଣେ, ବ୍ୟତ୍ରେକେ ଏଥିରୁ କାହିଁ ଅନ୍ୟ ମାର୍ଗେଣେ । ଭଞ୍ଜ, **सिवाय** ବୈଦେହୀଶବିଳାସ ।]

ବ୍ୟଥ (ଧାତୁ)—ସଂ—ବଥାଇବା—
Byatha (root) To ache.

ବ୍ୟଥକ—ସଂ. ବିଣ (ବ୍ୟଥ ଧାତୁ+କର୍ତ୍ତି. ଅକ)—ପୀଡ଼ାଦାୟକ—
Byathaka [ବ୍ୟଥିକା—ସ୍ତ୍ରୀ] Painful.

ବ୍ୟଥନ—ସଂ. ବି. (ବ୍ୟଥ ଧାତୁ+ଭାବ. ଅନ)—୧ । ପୀଡ଼ା; ବ୍ୟଥା—
Byathana 1. Pain. ୨ । ପୀଡ଼ା ଦେବା—2. Giving pain. ଦେ. ବିଣ. (+କର୍ତ୍ତି. ଅନ)—ପୀଡ଼ାଦାୟକ (ହି. ଶ)—Painful.

**ବ୍ୟଥା**—ସ. ବି. (ବ୍ୟଥ୍ ଧାତୁ+ଭାବ. ଅ+ଆ)—୧ । ପୀଡ଼ା; କ୍ଳେଶ;
Byathā ବେଦନା; ଦୁଃଖ—1. Pain; agony; distress.
୨ । ଜଳା; ବଥା—2. Aching. ୩ । ଶୋକ—
3. Grief; sorrow; woe. ୪ । ଭୟ—4. Fear; alarm.

**ବ୍ୟଥା କରିବା**—ଦେ. କ୍ରି—ବଥାଇବା—To ache.
Byathā karibā ব্যথা করা बयथा करना
(ବ୍ୟଥା ଦେବା—ଅନ୍ୟରୂପ)

**ବ୍ୟଥା କାରକ**—ସ. ବଣ. ପୁଂ—୧ । ଯେ ବେଦନା ଦିଏ—
Byathā kāraka 1. Causing pain; distressing.
ବ୍ୟଥା ଦାତା / ବ୍ୟଥା ଦାୟକ / ବ୍ୟଥା ଦାୟୀ } ଅନ୍ୟରୂପ ୨ । ଦୁଃଖ ଜନକ—2. Sorrowful.
(ବ୍ୟଥା କାରିକା—ସ୍ତ୍ରୀ)

**ବ୍ୟଥାତୁର**—ସ. ବଣ. ପୁଂ. ( ୬ଷ୍ଠୀ ତତ୍; ବ୍ୟଥା+ଆତୁର )—ବ୍ୟଥା
Byathātura ଯୋଗୁ ଅତି ଅସ୍ଥିର—Overwhelmed with
(ବ୍ୟଥାତୁରା—ସ୍ତ୍ରୀ) pain; distressed.

**ବ୍ୟଥା ଦେବା**—ଦେ. କ୍ରି—ପୀଡ଼ା ଦେବା; କଷ୍ଟ ଦେବା—
Byathā debā To give pain.
ব্যথা দেওয়া बयथा देना

**ବ୍ୟଥା ବିହୀନ**—ସ. ବଣ. ( ୩ୟା ତତ୍ )—ବେଦନା ଶୂନ୍ୟ—Free
Byathā bihīna from pain; painless.
(ବ୍ୟଥା ରହିତ, ବ୍ୟଥା ଶୂନ୍ୟ, ବ୍ୟଥା ହୀନ—ଅନ୍ୟରୂପ)

**ବ୍ୟଥିତ**—ସ. ବଣ. ପୁଂ. (ବ୍ୟଥ ଧାତୁ+କର୍ତ୍ତୃ. ତ)—୧ । ବ୍ୟଥା ପ୍ରାପ୍ତ;
Byathita ଦୁଃଖିତ—1. Distressed; agonised; pain-
(ବ୍ୟଥିତା—ସ୍ତ୍ରୀ) ed; troubled. ୨ । ପୀଡ଼ିତ—2. Afflicted; ailing; sick; ill. ୩ । ସନ୍ତପ୍ତ—3. Agitated. ୪ । ଭୀତ—4. Alarmed. ୫ । ଶୋକଗ୍ରସ୍ତ—5. Overwhelmed with grief. ସ. ବି. (+ଭାବ ତ) ବ୍ୟଥା; ଯନ୍ତ୍ରଣା—Pain; trouble. (ଉ—ବନ୍ଧୁର ବ୍ୟଥିତକୁ, ପ୍ରତିଜ୍ଞା କଥିତକୁ, ସ୍ଥିର ନ କର ଚତ୍ତେ କେଳେ ସେ । ଉଞ୍ଜ. ବୈଦେହୀଶବିଳାସ ।)

**ବ୍ୟଥିତ ପ୍ରସୂ**—ସ. ବଣ—ଦୁଃଖଦାୟକ—
Byathita prasū Troublesome; painful.
(ଉ—ଶରଣରେ । ବ୍ୟଥିତପ୍ରସୂ ସେ ଲପନ । ଉଞ୍ଜ. ବୈଦେହୀଶବିଳାସ ।)

**ବ୍ୟଥିତ ହୃଦୟ**—ସ. ବି. ( କର୍ମଧା; ବ୍ୟଥିତ+ହୃଦୟ )—୧ । ବ୍ୟଥା-
Byathita hrudaya ପ୍ରାପ୍ତ ମନ—1. Distressed mind.
୨ । ମାନସିକ ଦୁଃଖ—2. Mental agony. ବଣ. ପୁଂ (ବହୁବ୍ରୀହି) ଯାହା ମନରେ ବିଶେଷ କଷ୍ଟ ହୋଇଅଛି—
(ବ୍ୟଥିତ ହୃଦୟା—ସ୍ତ୍ରୀ) Mentally troubled; agonised.

**ବ୍ୟଥିବା**—ଦେ. କ୍ରି (ସଦ୍ୟ) ( ସ. ବ୍ୟଥା )—୧ । ବ୍ୟଥା ଦେବା—
Byathibā 1. To give pain. ୨ । ବଥାଇବା—
ব্যথান 2. To ache. ( ଉ—ଅଦ୍ୟାପି ତା ବ୍ୟଥଇ
बयथना ମାନସେ । ମଧୁସୂଦନ. ଋତୁରଙ୍ଗମଞ୍ଜରୀ)

**ବ୍ୟଥୀ**—ଦେ. ବଣ. (ସ. ବ୍ୟଥିତ)—ବ୍ୟଥିତ—
Byathī Troubled; agonised; pained.
(ଉ—ବୋଇଲେ ବହୁତ ସେ ବ୍ୟଥୀ ନୋହୁ ଚିତ୍ତ )
କୃଷ୍ଣସିଂ. ମହାଭାରତ. ବନ ।)

**ବ୍ୟଥ୍ୟ**—ସ. ବଣ. ( ବ୍ୟଥ ଧାତୁ+କର୍ମ. ଯ )—୧ । ବ୍ୟଥା ଦେବାର
Byathya ଯୋଗ୍ୟ—1. Deserving to be troubled.
୨ । (+କର୍ତ୍ତୃ. ଯ) ଭୟ ଉତ୍ପାଦକ; ଭୟାନକ (ହ୍ରି.ଶ)—
2. Frightful.

**ବ୍ୟଧ (ଧାତୁ)**—ସ—୧ । ବିଦ୍ଧ କରିବା—1. To pierce.
Byadha (root) ୨ । ପୀଡ଼ନ କରିବା—2. To oppress.

**ବ୍ୟଧ**—ସ. ବି. (ବ୍ୟଧ ଧାତୁ+ଭାବ. ଅ)—୧ । ବିଦ୍ଧ କରଣ; ବିନ୍ଧିବା;
Byadha ଫୋଡ଼ିବା; ଭେଦନ—1. Piercing; perforating; boring. ୨ । ପୀଡ଼ା; ବ୍ୟଥା; ବାଧା—
2 Distress; agony; pain; ache. ୩ । ପ୍ରହାର କରିବା—3. Striking; beating. ୪ । ପ୍ରହାର; ମାଡ଼—4. Blow; stroke.

**ବ୍ୟଧନ**—ସ. ବି. (ବ୍ୟଧ ଧାତୁ+ଭାବ. ଅନ)—ଫୋଡ଼ିବା କର୍ମ—
Byadhana Act of piercing.

**ବ୍ୟଧିକ୍ଷେପ**—ସ. ବି. (ବି+ଅଧିକ୍ଷେପ)—ନିନ୍ଦା (ହ୍ରି. ଶ)—
Byadhikshepa Blame.

**ବ୍ୟଧିଜନ**—ସ. ବି. (ବି+ଅଧିଜନ)—ବନ୍ଧୁଜନ—
Byadhijana Friend.

**ବ୍ୟଧ୍ୱ**—ସ. ବି. (ବି+ଅଧ୍ୱ)—ବିପଥ; କୁମାର୍ଗ—
Byadhwa Bad way; evil way.

**ବ୍ୟଧ୍ୟ**—ସ. ବଣ. (ବ୍ୟଧ୍ ଧାତୁ+କର୍ମ. ଯ)—ବେଧନାର୍ହ—Fit to
Byadhya be bored or pierced through.
ବି—ଧନୁର୍ଗୁଣ—Bow string.

**ବ୍ୟପଦେଶ**—ସ. ବି. ( ବି+ଅପ+ଦିଶ ଧାତୁ+କରଣ. ଅ —
Byapadeśa ୧ । ଛଳ; ବ୍ୟାଜ—1. Pretext; pretence; excuse; dodge; trick. ୨ । ପ୍ରତାରଣା—
2. Fraud; deceit. ୩ । ଇଙ୍ଗିତ—3. Hint. ୪ । ଆପଣାର ମନୋଗତ ଭାବକୁ ବକ୍ର ଭାବରେ ପ୍ରକାଶ କରଣ—4. Indirect expression of one's desire or intention; giving hints. ୫ । ନାମ —5. Name. ୬ । ଉପାଧି—6. Title. ୭ । ବଂଶ; କୁଳ—7. Family. ୮ । (+ଭାବ. ଅ)—ନାମୋଲ୍ଲେଖ; କଥନ—8. Mention of one's name. ୯ । ନିନ୍ଦା (ହ୍ରି. ଶ)—9. Blame.

**ବ୍ୟପଦେଷ୍ଟା**—ସ. ବଣ. ପୁଂ (ବି+ଅପ+ଦିଶ ଧାତୁ+କର୍ତ୍ତୃ. ତୃ; ୧ମା, ୧ବ)—୧ । କପଟୀ; ଛଳନା କାରକ—1. Pre-
Byapadeshtā (ବ୍ୟପଦେଷ୍ଟ୍ରୀ—ସ୍ତ୍ରୀ) tending; fraudulent. ୨ । ନାମୋଲ୍ଲେଖକାରୀ—2. Mentioning the name. ୩ । ନିନ୍ଦାକାରୀ—3. Blaming. ବି—ଛଳନାକାରୀ ବ୍ୟକ୍ତି; ଠକ; ପ୍ରତାରକ—A cheat; a swindler.

ବ୍ୟପନୟ—ସ. ବି. ( ବି+ଅପ+ନୀ ଧାତୁ+ଭାବ. ଅ )— Byapanaya ୧। ବିନାଶ (ବି. ଶ)—1. Ruin. ୨। ତ୍ୟାଗ—2. Abandonment.

ବ୍ୟପନୟନ—ସ. ବିଣ ( ବି+ଅପ+ନୀ ଧାତୁ=ଭାବ. ଅନ )—୧। Byapanayana ଅସ୍ୱୀକାର—1. Denial. ୨। ପ୍ରତ୍ୟାଖ୍ୟାନ—2. Rejection; withdrawal. ୩। ବର୍ଜନ; ପରିତ୍ୟାଗ—3. Desertion; abandonment.

ବ୍ୟପନୀତ—ସ. ବିଣ (ବି+ଅପ+ନୀ ଧାତୁ+କର୍ମ ତ)—୧। ଅସ୍ୱୀକୃତ. Byapanita 1. Denied. ୨। ପରିତ୍ୟକ୍ତ—2. Withdrawn; deserted; abandoned.

ବ୍ୟପବର୍ତ୍ତିତ—ସ. ବିଣ (ବି+ଅପ+ବୃତ୍ ଧାତୁ ଣିଚ୍+କର୍ମ.ତ)— Byapabarttita ଯାହାକୁ ଫେରାଇ ଅଣା ହୋଇଅଛି; ପ୍ରତ୍ୟାବର୍ତ୍ତିତ—Made to return.

ବ୍ୟପରୋପଣ—ସ. ବି ( ବି+ଅପ+ରୁହ ଧାତୁ ଣିଚ=ରୋପି ଧାତୁ+ Byaparopana ଭାବ. ଅନ)—୧। ଅବତାରଣ; ଅନ୍ୟକୁ ତଳକୁ (ବ୍ୟପରୋପିତ—ବିଣ) ଓହ୍ଲାଇବା—1. Causing a person to descend or come down. ୨। ମୂଳୋତ୍ପାଟନ—2. Overthrow; uprooting. ୩। ସର୍ବନାଶ—3. Total ruin. ୪। ଦୂରୀକରଣ—4. Driving away; repulsion.

ବ୍ୟପାକୃତ—ସ. ବିଣ ( ବି+ଅପ+ଆ+କୃ ଧାତୁ+କର୍ମ. ତ)— Byapākruta ୧। ଦୂରୀକୃତ; ଅପନୀତ; ଅପସାରିତ— ବ୍ୟାକରଣ } ବି ବ୍ୟାକୃତ 1. Removed; expelled; driven away. ୨। ଅସ୍ୱୀକୃତ—2. Unacknowledged; disavowed. ୩। ନିରସ୍ତ—3. Restrained; appeased; calmed. ୪। ନିବୃତ୍ତ—4. Stopped.

ବ୍ୟପାୟ—ସ. ବି ( ବି+ଅପ+ଇ. ଧାତୁ+ଭାବ. ଅ )—୧। Byapāya ଅପନୟନ—1. Removal. ୨। ବିନାଶ—2. Destruction; ruin. ୩। ସମକାଳୀୟ ଧର୍ମ—3. Common virtue.

ବ୍ୟପାଶ୍ରୟ—ସ. ବି ( ବି+ଅପ+ଆ+ଶ୍ରି ଧାତୁ+ଭାବ. ଅ )— Byapāsraya ୧। ଆଶ୍ରୟ; ଅବଲମ୍ବନ—1. Support; ( ବ୍ୟପାଶ୍ରିତ—ବିଣ ) prop; defence; shelter. ୨। ପର ଉପରେ ନିର୍ଭରତା—2. Dependence.

ବ୍ୟପେକ୍ଷା—ସ. ବି ( ବି+ଅପ+ଈକ୍ଷ ଧାତୁ+ଭାବ ଅ+ଆ )— Byapekshā ୧। ଆକାଂକ୍ଷା; ସ୍ପୃହା—1. Desire; wish. ବ୍ୟପେକ୍ଷକ } ବିଣ ବ୍ୟପେକ୍ଷିତ ୨। ଅପେକ୍ଷା; ଆଶା—2. Hope; expectation. ୩। ବିଶେଷ ଅନୁରୋଧ—3. Earnest or special request. ୪। ଆଗ୍ରହ (ବି. ଶ)— 4. Eagerness.

ବ୍ୟପେତ—ସ. ବିଣ ( ବି+ଅପ+ଇ ଧାତୁ+କର୍ତ୍ତୃ. ତ )—୧। Byapeta ପ୍ରତିରୁଦ୍ଧ—1. Confined. ୨। ବିରୁଦ୍ଧ— 2. Opposed. ୩। ଅପଗତ; ଦୂରୀକୃତ—3. Removed; driven away.

ବ୍ୟପୋହ—ସ. ବି ( ବି+ଅପ+ଊହ ଧାତୁ+ଭାବ ଅ )—ବିନାଶ Byapoha ( ବି. ଶ )—Ruin; destruction.

ବ୍ୟବକଳନ(ନା)—ସ. ବି ( ବି+ଅବ+କଲ୍ ଧାତୁ=ଗଣନା କରିବା Byabakalana(nā) +ଭାବ ଅନ )—୧। ( ଗଣିତ ) (ସଙ୍କଳନ—ବିପରୀତ) ବିୟୋଜନ; ବିୟୋଗ; ଫେଡ଼ାଣ; ଏକରାଶିରୁ (ବ୍ୟବକଳିତ—ବିଣ) ଅନ୍ୟ ରାଶିକୁ ଫେଡ଼ିବା—1. (arithmetic) Subtraction; deduction. ୨। ଜମାରୁ ଖରଚ ବାଦ ଦେଇ ବାକି କାଢ଼ିବା—2. Act of making up an account by deducting the expenditure from the receipt.

ବ୍ୟବକୀର୍ଣ୍ଣ—ସ. ବିଣ ( ବି+ଅବ+କୃ ଧାତୁ+କର୍ମ ତ )—ପୃଥକ୍ Byabakirnna କରାଯାଇ ଥିବା ( ବି. ଶ )—Separated.

ବ୍ୟବଚ୍ଛିନ୍ନ—ସଂ. ବିଣ ( ବି+ଅବ+ଛିଦ୍ ଧାତୁ+କର୍ମ ତ )—୧। Byabachchhinna ବିଶ୍ଳେଷିତ—1. Analysed. ୨। ଛିନ୍ନ; କର୍ତ୍ତିତ—2. Cut off; separated. ୩। ଅପରୀକ୍ଷାର୍ଥ ଖଣ୍ଡଖଣ୍ଡ ହୋଇଥିବା—3. Dissected. ୪। ମୋଚିତ—4. Freed. ୫। ନିର୍ଦ୍ଧାରିତ—5. Ascertained. ୬। ବିଭକ୍ତ—6. Divided.

ବ୍ୟବଚ୍ଛେଦ—ସଂ. ବି ( ବି+ଅବ+ଛିଦ୍ ଧାତୁ+ଭାବ ଅ )—୧। Byabachchheda ବିଶ୍ଳେଷଣ—1. Analysis. ୨। ବିଭାଗ (ବ୍ୟବଚ୍ଛେଦକ—ବିଣ ପୁଂ) —2. Division. ୩। ଶରୀରରୁ ବାଣାଦି ମୋଚନ—3 Extraction of arrow from the body. ୪। ପରୀକ୍ଷାର୍ଥ କୌଣସି ପଦାର୍ଥକୁ ଖଣ୍ଡ ଖଣ୍ଡ କରି କାଟିବା—4. Dissection for experiment. ( ଯଥା—ଶବ ବ୍ୟବଚ୍ଛେଦ । ) ୫। ( +କର୍ମ ଅ ) ବିଭାଗ; ଖଣ୍ଡ—5. Section. ୬। ବିରାମ ( ବି. ଶ )—6. Cessation.

ବ୍ୟବଚ୍ଛେଦ ବିଜ୍ଞାନ—ସ. ବି ( ଆଧୁନିକ ପ୍ରୟୋଗ )—ଜୀବଦେହକୁ Byabachchheda bijnāna ଖଣ୍ଡ ଖଣ୍ଡ କରି କାଟି ତହିଁର ଅଂଶ- ବ୍ୟବଚ୍ଛେଦ ବିଦ୍ୟା } ଅନ୍ୟରୂପ ବ୍ୟବଚ୍ଛେଦ ଶାସ୍ତ୍ର ମାନଙ୍କ ବିଷୟ ଅଧ୍ୟୟନ କରିବା ଶାସ୍ତ୍ର—The science of Anatomy.

ବ୍ୟବଦାନ—ସ. ବି ( ବି+ଅବଦାନ )—କୌଣସି ପଦାର୍ଥକୁ ଶୁଦ୍ଧ ଓ Byabadāna ସଫା କରିବା କର୍ମ ( ବି. ଶ )—Purification.

ବ୍ୟବଧାନ—ସ. ବି ( ବି+ଅବ+ଧା. ଧାତୁ+ଭାବ. ଅନ )— Byabadhāna ୧। ଫାଙ୍କ; ଅନ୍ତର—1. Interval; space. ବ୍ୟବଧା } ଅନ୍ୟରୂପ ବ୍ୟବଧି ୨। ଦୁଇ ପଦାର୍ଥ ମଧ୍ୟରେ ଦୂରତ୍ୱ—2. Distance. ୩। ତିରୋଧାନ—3. Disappearance. ୪। ଆଚ୍ଛାଦନ—4. Covering; enveloping. ୫। (+କରଣ.ଅନ) । ପରଦା—5. Screen. ୬। (+କର୍ମ.ଅନ) ବିଭାଗ; ଖଣ୍ଡ (ବି.ଶ.)— 6. Division; piece; section.

**ବ୍ୟବସା** —ଗ୍ରା. ବି ( ସଂ ବ୍ୟବସାୟ )—୧ । ଜୀବିକା; ବ୍ୟବସାୟ—
Byabasā 1. Profession. ( ଉ—ଏ କଥିକି ବଧି, ଆହା!
ব্যবসা କି ବଶରେ । ଯୋଡଲେ ଦାରୁଣ ଋଣ ବ୍ୟବସାରେ—
**व्यवसा** ରାଧାନାଥ. ନନ୍ଦିକେଶ୍ୱରୀ । ) ୨ । ବଣିଜ; ବେପାର—
2. Trade; business.

**ବ୍ୟବସାୟ**—ସଂ ବି ( ବି+ଅବ+ସୋ ଧାତୁ+ଭାବ. ଅ )—୧ ।
Byabasāya ଯତ୍ନ ଉଦ୍ୟମ—1. Care; exertion. ୨ ।
ଚେଷ୍ଟା—2. Effort. ୩ । ଇଚ୍ଛା; କଳ୍ପନା; ଅଭିପ୍ରାୟ—
3. Desire; device; intention. ୪ । (+କର୍ତ୍ତୃ.ଅ)
ବିଷ୍ଣୁ—4. Bishṇu. ୫ । (+କର୍ମ.ଅ) ବେପାର;
ବାଣିଜ୍ୟ;ବଣିଜ; କାରବାର—5. Trade; business;
commerce. ୬ । (+କରଣ.ଅ) ଜୀବନୋପାୟ; ବୃତ୍ତି;
ଜୀବିକା; ପେଶା—6. Profession; occupation;
calling ୭ । ବ୍ୟାପାର;କାର୍ଯ୍ୟ—7. Action;doing.
୮ । କୌଣସି କାର୍ଯ୍ୟର ଆରମ୍ଭ (ହ୍ମ. ଶ )—8.Commencement of a work. ୯ । (କର୍ତ୍ତୃ. ଅ) ଶିବ
(ହ୍ମ. ଶ.)—9. Śiba.

**ବ୍ୟବସାୟ କରିବା**—ଦେ. କ୍ରି—୧ । ବେପାର କରିବା; କାରବାର
Byabasāya karibā କରିବା—1. To engage in a
ব্যবসা করা trade or business. ୨ । ଜୀବିକା ନିମନ୍ତେ
**व्यवसा करना** କୌଣସି ବୃତ୍ତି ଅବଲମ୍ବନ କରିବା—2. To take
to a profession; to engage in an
occupation.

**ବ୍ୟବସାୟ କେନ୍ଦ୍ର**—ଦେ. ବି—ବେପାରର ଗଞ୍ଜ—Mart; a centre
Byabasāya kendra of business or trade.
ব্যবসার কেন্দ্র **व्यापारका केन्द्र**

**ବ୍ୟବସାୟ ଜ୍ଞାନ**—ଦେ. ବି—ବ୍ୟବସାୟ ସମ୍ବନ୍ଧେ ଅଭିଜ୍ଞତା; ବିଷୟ-
Byabasāya jñāna ବୁଦ୍ଧି—Professional or practi-
ব্যবসা জ্ঞান, বিষয় বুদ্ধি **व्यवसा ज्ञान** cal experience
or knowledge.

**ବ୍ୟବସାୟ ଦ୍ରବ୍ୟ**—ଦେ. ବି—ବାଣିଜ୍ୟ ଦ୍ରବ୍ୟ; ପଣ୍ୟ ଦ୍ରବ୍ୟ—
Byabasāya drabya ব্যবসা দ্রব্য **माल** Merchandise.
( ବ୍ୟବସାୟ ସାମଗ୍ରୀ—ଅନ୍ୟରୂପ )

**ବ୍ୟବସାୟ ବୁଦ୍ଧି**—ଦେ. ବି—୧ । ବ୍ୟବସାୟ ଚଳାଇବା ନିମନ୍ତେ ଯେଉଁ
Byabasāya buddhi ବୁଦ୍ଧି ଆବଶ୍ୟକ—1. Business
ব্যবসা বুদ্ধি **व्यवसाय बुद्धि** instinct. ୨ । ବ୍ୟବସାୟ
କରିବା ନିମନ୍ତେ ଇଚ୍ଛା ବା ଆକାଙ୍କ୍ଷା—2. Business
propensity.

**ବ୍ୟବସାୟ ସ୍ଥଳ**—ଦେ. ବି—୧ । ବାଣିଜ୍ୟର ଜାଗା—1. A place
Byabasāya sthala of business. ୨ । ଯେଉଁଠାରେ
ব্যবসার স্থল ବ୍ୟବସାୟ କରାଯାଏ—2. A place where a
**व्यापारका जगह** man follows his profession. ୩ ।
( ବ୍ୟବସାୟ ସ୍ଥାନ—ଅନ୍ୟରୂପ ) ଶିଳ୍ପଶାଳା; କାରଖାନା—
3. Foctory;workshop ୪ । ବାଣିଜ୍ୟର ଆଡ୍ଡା;
ବାଣିଜ୍ୟ କେନ୍ଦ୍ର—4. A mart; a trade centre.

**ବ୍ୟବସାୟାବଲମ୍ବନ**—ସ. ବି ( ୭ମୀ ତତ୍ )—ଗୋଟିଏ ବେପାର ବା
Byabasāyābalambana ଜୀବିକାକୁ ଧରିବା—Taking to or
sticking to a trade or profession.

**ବ୍ୟବସାୟୀ**—ସ. ବଣ. ପୁଂ ( ବ୍ୟବସାୟ+ଅସ୍ତି ଅର୍ଥରେ ଇନ୍. ୧ମା.
Byabasāyī ୧ବ )—୧ । ବେପାରୀ; ସଉଦାଗର; ବାଣିଜ୍ୟ-
( ବ୍ୟବସାୟିନୀ—ସ୍ତ୍ରୀ ) କାରୀ—1. Trader; merchant.
୨ । ସାଂସାରିକ ବିଷୟ କାର୍ଯ୍ୟରେ ଚତୁର—2. Practical. ୩ । ବେବସାଦାର; ବୃତ୍ତି ଅବଲମ୍ବୀ—3. Following a profession; professional. ୪ । ତତ୍ପର;
ଉଦ୍‌ଯୋଗୀ—4. Exerting; active; diligent.
୫ । ଅନୁଷ୍ଠାନକାରୀ—5. Performing; practising.

**ବ୍ୟବସିତ**—ସ. ବି ( ବି+ଅବ+ସୋ ଧାତୁ+କର୍ତ୍ତୃ. ତ )—୧ ।
Byabasita ଚେଷ୍ଟିତ;ଉଦ୍ୟତ—1. Engaged in; endeavouring to do; about to do; ready to do
୨ । ପ୍ରତାରିତ—2. Defrauded; deceived;
cheated. ୩ । ଅବଧାରିତ; ସ୍ଥିରୀକୃତ—3. Settled;
ascertained. ୪ । ନିଶ୍ଚିତ—4. Certain; sure
୫ । ( +କର୍ମ. ତ ) ଅଭିପ୍ରେତ—5. Intended;
aimed at. ୬ । ଅନୁଷ୍ଠିତ—6. Performed;
done; accomplished. ବି—୧ । ( +ଭାବ. ତ )
ଅବଧାରଣ—1. Settlement; ascertainment;
determination. ୨ । ନିଶ୍ଚୟ—2. Certainty.
୩ । ନିଶ୍ଚୟାତ୍ମକ ଜ୍ଞାନ—3. Clear knowledge.

**ବ୍ୟବସ୍ଥା**—ସ. ବି (ବି+ଅବ+ସ୍ଥା ଧାତୁ+ଭାବ. ଅ+ଆ)—୧ । ବନ୍ଦୋ-
Byabasthā ବସ୍ତ—1. Arrangement. ୨ । ପଦ୍ଧତି—
2. Method; mode. ୩ । ପୃଥକ୍ ପୃଥକ୍ ସ୍ଥାପନ—
3. Placing things separately. ୪ । ବିଧି;
ବିଧାନ; ନିୟମ—4. Rule; formula. ୫ । ଆଇନ୍—
5. Law; a rule of law; ordinance. ୬ ।
କାନୁନ୍—6. Regulation. ୭ । ଶାସ୍ତ୍ରୀୟବିଧି—
7. A precept enjoined by the scriptures.
୮ । ସାମାଜିକ ନିୟମ—8. A rule of society.
୯ । ଆଦେଶ—9. Order; precept; injunction;
decree; prescription. ୧୦ । ସ୍ଥିତି—10. Situation. ୧୧ । ଅବସ୍ଥା—11. State; condition.
୧୨ । ସ୍ଥିରତା—12. Firmness; certainty.
ଦେ. ବି—୧ । ବିଚାର; ବିବେଚନା—1. Consideration. ( ଉ—ଏଣୁ ଭଲ ମନ୍ଦରେ ନାହିଁ ତୋ
ବ୍ୟବସ୍ଥା—କୃଷ୍ଣସିଂହ. ମହାଭାରତ, ବନ । ) ୨ ।
ଆଚରଣ—2. Conduct. ( ଉ—ବାତୁଳ ହେବେ
ମଣି ଅର୍ଣ୍ଣିବେ ପୁଣିହିଁ ସେ ବ୍ୟବସ୍ଥା—ଭଞ୍ଜ. ବୈଦେହୀଶ-
ବିଳାସ । ) ୩ । ଅବସ୍ଥା—3. State; condition.

( ଉ—ଏବେ ତୋ ଶୁଣ ମହାରଥା । ତୋ ର.ତ ଜନମା ବ୍ୟବସ୍ଥା—ଜଗନ୍ନାଥ. ଭାଗବତ । ) ୪ । ବ୍ୟବସ୍ଥାପତ୍ର—4. Prescription.

ବ୍ୟବସ୍ଥା କରିବା—ଦେ. କ୍ରି—ବନ୍ଦୋବସ୍ତ କରିବା—To make arrangements; to arrange.
Byabasthā kariba
ব্যবস্থা করা व्यवस्था करना

ବ୍ୟବସ୍ଥା କର୍ତ୍ତା—ସଂ. ବି ଓ ବିଣ ପୁଂ—ବ୍ୟବସ୍ଥାପକ; ଆଇନକର୍ତ୍ତା—Legislator; law giver.
Byabasthā karttā
(ବ୍ୟବସ୍ଥାକାରୀ—ଅନ୍ୟରୂପ) [ବ୍ୟବସ୍ଥାକର୍ତ୍ତ୍ରୀ (କାରିଣୀ)-ସ୍ତ୍ରୀ ]

ବ୍ୟବସ୍ଥାତା—ସଂ. ବି. ଓ ବିଣ. ପୁଂ—(ବି+ଅବ+ସ୍ଥା ଧାତୁ+କର୍ତ୍ତୃ. ତୃ; ୧ମା. ୧ବ.)—୧ । ବନ୍ଦୋବସ୍ତକାରୀ—1. One who makes arrangment.
Byabasthātā
(ବ୍ୟବସ୍ଥାତ୍ରୀ—ସ୍ତ୍ରୀ)
୨ । ବ୍ୟବସ୍ଥାଦାତା—2. Lawgiver; legislating.

ବ୍ୟବସ୍ଥାତିକ୍ରମ—ସଂ. ବି ( ୬ଷ୍ଠୀ ତତ୍ )—ନିୟମଭଙ୍ଗ କରଣ—Transgression of law; infringement of rule.
Byabasthātikrama
(ବ୍ୟବସ୍ଥାତିକ୍ରମଣ-ଅନ୍ୟରୂପ)

ବ୍ୟବସ୍ଥା ଦର୍ପଣ—ସଂ. ବି—ଯେଉଁ ପୁସ୍ତକରେ ଶାସ୍ତ୍ରୀୟ ବ୍ୟବସ୍ଥାମାନ ଲିପିବଦ୍ଧ ହୋଇଅଛି—A book laying down religious or legal precepts.
Byabastha darpaṇa

ବ୍ୟବସ୍ଥା ଦାତା—ସଂ. ବି ଓ ବିଣ.ପୁଂ—୧ । ଯେ ଶାସ୍ତ୍ର ବା ଆଇନ୍ ସମ୍ବନ୍ଧେ ମତ ଦିଏ—1. One who delivers an opinion an any rule or law.
Byabasthā dātā
ବ୍ୟବସ୍ଥା ଦାୟକ }
ବ୍ୟବସ୍ଥା ଦାୟୀ } —ଅନ୍ୟରୂପ
୨ । ବ୍ୟବସ୍ଥାପକ—2. Law giver; legislator,

ବ୍ୟବସ୍ଥା ଦେବା—ଦେ. କ୍ରି—୧ । ଶାସ୍ତ୍ରବିଧି ଉଲ୍ଲେଖ କରିବା—1. To lay down a rule of law; to proscribe.
Byabasthā debā
ব্যবস্থা দেওয়া
व्यवस्था देना
୨ । ଉପସ୍ଥିତ କୌଣସି ବିଷୟ ସମ୍ବନ୍ଧେ ପ୍ରଯୋଜ୍ୟ ଶାସ୍ତ୍ରୀୟ ବିଧିର ଉଲ୍ଲେଖ କରିବା-2. To give a prescription that will suit the particular case.

ବ୍ୟବସ୍ଥାନ—ସଂ. ବି—(ବି+ଅବ+ସ୍ଥା ଧାତୁ+ଭାବ. ଅନ)—୧ । ଅବସ୍ଥିତି—1. Position; situation.
Byabasthāna
୨ । ପ୍ରତିଷ୍ଠା—2. Establishment. ୩ । (+କର୍ତ୍ତୃ. ଅନ) ବିଷ୍ଣୁ—3. Bishṇu. ୪ । (+ଅଧିକରଣ.ଅନ) ବିଚାରାଳୟ—4 Court of justice, a place of trial.

ବ୍ୟବସ୍ଥାନୁମୋଦିତ—ସଂ. ବିଣ—(୩ୟା ତତ୍; ବ୍ୟବସ୍ଥା+ଅନୁମୋଦିତ)
Byabasthanumodita ୧ । ବିଧି ଅନୁମୋଦିତ; ବିଧିସଙ୍ଗତ; ବୈଧ—1. Established by law; conformable to rules; legal.
ବ୍ୟବସ୍ଥା ବିହିତ
ବ୍ୟବସ୍ଥା ସଙ୍ଗତ
ବ୍ୟବସ୍ଥା ସମ୍ମତ
ବ୍ୟବସ୍ଥା ସିଦ୍ଧ
ବ୍ୟବସ୍ଥାନୁମତ
} - ଅନ୍ୟରୂପ
୨ । ବିଧିବଦ୍ଧ—2. Laid down in codes; codified.

ବ୍ୟବସ୍ଥାପକ—ସଂ. ବିଣ. (ବି+ଅବ+ସ୍ଥା ଧାତୁ ଣିଚ୍ ସ୍ଥାପି ଧାତୁ+କର୍ତ୍ତୃ. ଅକ)—୧ । ଯେ ବ୍ୟବସ୍ଥା ଦିଏ—Legislating; legislative; prescribing.
Byabasthāpaka
(ବ୍ୟବସ୍ଥାପିକା—ସ୍ତ୍ରୀ)
୨ । ବିଧାନକର୍ତ୍ତା; ନିୟାମକ; ବିଧାୟକ—2. Controlling; ordaining; regulating. ୩ । ସଂସ୍ଥାପକ—3. Settling; fixing; establishing. ବି.—ଆଇନକର୍ତ୍ତା; ବିଧି କର୍ତ୍ତା—Legistator; a lawgiver.

ବ୍ୟବସ୍ଥାପକ ସଭା—ଦେ. ବି—(ଆଧୁନିକ ପ୍ରୟୋଗ)—ଯେଉଁ ସଭାଦ୍ୱାରା ଆଇନ୍ ମାନ ପ୍ରଣୀତ ବା ଲିପିବଦ୍ଧ ହୁଏ—The Legislative Assembly; the Legislative Council [ଦ୍ର—ଏହା ଦୁଇ ପ୍ରକାର ଯଥା—୧ । ପ୍ରାଦେଶିକ ବ୍ୟବସ୍ଥାପକ ସଭା ୨ । ଭାରତୀୟ ବ୍ୟବସ୍ଥାପକ ସଭା ।]
Byabasthāpaka sabhā

ବ୍ୟବସ୍ଥା ପତ୍ର—ସଂ. ବି (ଆଧୁନିକ ବ୍ୟବହାର)—୧ । ବିଧି ଲେଖାଥିବା ପତ୍ର—1. Prescription; a ruling.
Byabasthā patra
୨ । ଡାକ୍ତରମାନେ ରୋଗୀକୁ ଦେବା ରୋଗନିର୍ଣ୍ଣୟସୂଚକ ଓ ଔଷଧନିର୍ଦ୍ଦେଶକ ପତ୍ର—2. Doctor's prescription. ୩ । ଉପସ୍ଥିତ ଘଟଣାର ବା ସମସ୍ୟାର ସମାଧାନାର୍ଥ ପଣ୍ଡିତମାନେ ଶାସ୍ତ୍ରବାକ୍ୟ ଉଦ୍ଧାରପୂର୍ବକ ଦେଇଥିବା ବ୍ୟବସ୍ଥାସମ୍ବଳିତ ଲିପି—3 A prescription given by pandits quoting sastric rulings regarding a certain question. ୪ । ଆଇନ୍ ସମ୍ବନ୍ଧୀୟ ବିଧି ଲେଖାଥିବା ପତ୍ର; ନଜୀର—4. A ruling on law; a written legal opinion.

ବ୍ୟବସ୍ଥା ପଦ୍ଧତି—ଦେ. ବି—ବ୍ୟବସ୍ଥାର ବା ନିୟମର ପ୍ରଣାଳୀ—Method of arrangement.
Byabasthā paddhati

ବ୍ୟବସ୍ଥାପନ—ସଂ. ବି—(ବି+ଅବ+ସ୍ଥା ଧାତୁ ଣିଚ୍ ସ୍ଥାପି ଧାତୁ+ଭାବ. ଅନ)—୧ । ନିୟମ ପ୍ରଣୟନ—1. Legislation. ୨ । ନିର୍ଦ୍ଧାରଣ; ସ୍ଥିରୀକରଣ—2. Settlement; adjustment; ascertainment. ୩ । ପ୍ରତିଷ୍ଠାକରଣ—3. Establishment. ୪ । ବନ୍ଦୋବସ୍ତ କରିବା—4. Making arrangement. ୫ । ଶାସ୍ତ୍ରର ବ୍ୟବସ୍ଥା ଦେବା—5. Laying down of a rule of the scriptures. ୬ । କୌଣସି ବିଷୟରେ ଆଇନ ଘଟିତ ପ୍ରଶ୍ନର ଉତ୍ତର ଲେଖିଦେବା—6. Laying down a point of law.
Byabasthāpana

ବ୍ୟବସ୍ଥାପନୀୟ—ସଂ.ବିଣ—(ବି+ଅବ+ସ୍ଥା ଧାତୁ ଣିଚ୍+କର୍ମ. ଅନୀୟ)—୧ । ନିର୍ଦ୍ଧାରଣୀୟ—1. Ascertainable. ୨ । ବିଧିବଦ୍ଧ କରାଯିବା ଯୋଗ୍ୟ—2. Fit to be legislated or codified.
Byabasthāpaniya
ବ୍ୟବସ୍ଥାପୟିତବ୍ୟ
ବ୍ୟବସ୍ଥାପ୍ୟ
ବ୍ୟବସ୍ଥେୟ
} —ଅନ୍ୟରୂପ

ବ୍ୟବସ୍ଥାପୟିତା—ସଂ. ବିଣ. ପୁଂ—( ବି+ଅବ+ସ୍ଥାପି ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—୧ । ଆଇନ୍‌କର୍ତ୍ତା—1. Legislating. ୨ । ବିଧାନକର୍ତ୍ତା—2. Regulating; adjusting.
Byabasthāpayitā
(ବ୍ୟବସ୍ଥାପୟିତ୍ରୀ—ସ୍ତ୍ରୀ)

ବ୍ୟବସ୍ଥା ପରିଷଦ୍—ସ. ବି ( ଆଧୁନିକ ପ୍ରୟୋଗ )—ଆଇନ ପ୍ରଣୟନ-
Byabasthā parishad କାରୀ ସମିତି—Legislative
ব্যবস্থা পরিষদ্, व्यवस्था परिषद् . Assembly.

ବ୍ୟବସ୍ଥାପିତ—ସ. ବିଣ ( ବି+ଅବ+ସ୍ଥାପି ଧାତୁ+କର୍ମ ତ )—୧ । Byabasthāpita ବିଧିରୂପେ ଲିଖିତ; ବିଧିବଦ୍ଧ—1. Codified, legislated. ୨ । ନିର୍ଦ୍ଧାରିତ; ନିୟମିତ—2. Appointed; fixed; regulated. ୩ । ପ୍ରତିଷ୍ଠିତ—3. Established; adjusted. ୪ । ସ୍ଥିରୀକୃତ—4. Ascertained; settled.

ବ୍ୟବସ୍ଥା ବିଜ୍ଞାନ—ସ. ବି ( ଆଧୁନିକ ପ୍ରୟୋଗ )—ଯେଉଁ ଶାସ୍ତ୍ରରେ Byabasthā bijñāna ଆଇନର ମୌଳିକ ବିଧି ଓ ଉଦ୍ଦେଶ୍ୟମାନ ବର୍ଣ୍ଣିତ ହୋଇଅଛି—Jurisprudence; the science of law.

ବ୍ୟବସ୍ଥା ଶାସ୍ତ୍ର—ସ. ବି—୧ । ସ୍ମୃତିଶାସ୍ତ୍ର; ମନୁ, ପରାଶର ଆଦି ମୁନିଙ୍କ Byabasthā śāstra ସଙ୍କଳିତ ଧର୍ମଶାସ୍ତ୍ର; ସ୍ମୃତି ଶାସ୍ତ୍ର— ( ବ୍ୟବସ୍ଥା ସଂହିତା—ଅନ୍ୟରୂପ ) 1. Hindu codes of law compiled by Marm and others. ୨ । ବିଧିବଦ୍ଧ ଆଇନ୍—2. Codified law; a statute; a code of law. ୩ । ବ୍ୟବସ୍ଥାବିଜ୍ଞାନ—3. Jurisprudence.

ବ୍ୟବସ୍ଥା ବିରୁଦ୍ଧ—ସ.ବି (ବ୍ୟବସ୍ଥା+ବିରୁଦ୍ଧ)—ବ୍ୟବସ୍ଥାର ବା ଆଇନର Byabasthā biruddha ବିପରୀତ—Contrary to rules; (ବ୍ୟବସ୍ଥାବିଗର୍ହିତ—ଅନ୍ୟରୂପ) illegal.

ବ୍ୟବସ୍ଥିତ—ସ. ବିଣ (ବି+ଅବ+ସ୍ଥା ଧାତୁ+କର୍ମ. ତ)—୧ । ନିଶ୍ଚିତ; Byabasthita ସ୍ଥିରୀକୃତ; ନିର୍ଦ୍ଧାରିତ—1. Fixed; settled; ascertained. ୨ । ବିଧିବଦ୍ଧ—2. Decreed; codified; arranged. ୩ । ନିୟମିତ-3. Regulated; orderly. ୪ । ନିଯୁକ୍ତ—4. Engaged; appointed. ୫ । ପ୍ରଚାରିତ—5. Published; proclaimed. ୬ । ପ୍ରତିଷ୍ଠିତ—Established. ୭ । ପୃଥକ୍‌କୃତ—7. Separated. ୮ । ଦୃଢ଼ବଦ୍ଧ—8. Firmly settled or fixed. ୯ । (+କର୍ତ୍ତୃ. ତ)-ସମ୍ୟକ୍ ଅବସ୍ଥିତ—9. Peculiarly placed.

ବ୍ୟବସ୍ଥିତି—ସ. ବି (ବି+ଅବ+ସ୍ଥା ଧାତୁ+ଭାବ ତି)—୧ । ବ୍ୟବସ୍ଥା-Byabasthiti 1. Arrangement. ୨ । ନିର୍ଦ୍ଧାରଣ; ସ୍ଥିରୀକରଣ—2. Settlement; ascertainment. ୩ । ସମ୍ୟକ୍ ଅବସ୍ଥିତି—3. Peculiar situation.

ବ୍ୟବସ୍ଥେୟ—ସ. ବିଣ ( ବି+ଅବ+ସ୍ଥା ଧାତୁ+କର୍ମ ଯ )—Byabastheya ବ୍ୟବସ୍ଥା କରାଯିବାର ଯୋଗ୍ୟ—Fit to be laid down or legislated.

ବ୍ୟବହରଣ—ସ. ବି ( ବି+ଅବ+ହୃ ଧାତୁ+ଭାବ ଅନ )—Byabaharaṇa ଅଭିଯୋଗ ଆଦିର ନିୟମାନୁସାରେ ବିଚାର; ମକଦ୍ଦମାର ଶୁଣାଣି—Hearing or regular trial of a suit or case.

ବ୍ୟବହରଣୀୟ—ସ. ବିଣ ( ବି+ଅବ+ହୃ ଧାତୁ+. କର୍ମ Byabaharaṇīya ଅନୀୟ )—୧ । ବ୍ୟବହାରଯୋଗ୍ୟ—( ବ୍ୟବହର୍ତ୍ତବ୍ୟ—ଅନ୍ୟରୂପ ) 1. Fit for use. ୨ । ପ୍ରଚଳିତ; ଯାହା ବରାବର ବ୍ୟବହାରରେ ଚଳି ଆସୁଅଛି—2. Customary.

ବ୍ୟବହର୍ତ୍ତା—ସ. ବି ( ବି+ଅବ+ହୃ ଧାତୁ+କର୍ତ୍ତୃ. ତୃ; ବ୍ୟବହର୍ତ୍ତୃ Byabahartta ଶବ୍ଦ; ୧ମା. ୧ବ )—୧ । ଯେଉଁ ରାଜକର୍ମଚାରୀ ( ବ୍ୟବହର୍ତ୍ତ୍ରୀ—ସ୍ତ୍ରୀ ) ରାଜ୍ୟର ବ୍ୟବହାର ଓ ପ୍ରଚଳିତ ପ୍ରଥା ପ୍ରତି ଦୃଷ୍ଟି ରଖେ—1. A public servant appointed to watch if people are following the custom. ୨ । ପ୍ରାଡ୍‌ବିବାକ; ଯେ କୌଣସି ବିଧିର ପ୍ରଚଳନ କରେ—2. A person who introduces a custom or usage. ୩ । ବିଚାରକ; ହାକିମ; ଜଜ୍—3. A judge; a court; a magistrate. ୪ । ରାଜ-କର୍ମଚାରୀବିଶେଷ; ରାଜକାର୍ଯ୍ୟ ପରିଦର୍ଶକ—4. A superintendent appointed by the king. [ ଦ୍ର—ଓଡ଼ିଆ ବେବର୍ତ୍ତା ଶବ୍ଦ ଏହି ଶବ୍ଦର ଅପଭ୍ରଂଶ । ]

ବ୍ୟବହାର—ସ. ବି ( ବି+ଅବ+ହୃ ଧାତୁ=ହରଣ କରିବା+ଭାବ ଘ. Byabahāra ଅ )—୧ । କାରବାର; ବ୍ୟବସାୟ; ବାଣିଜ୍ୟ; ବେପାର—1. Trade; commerce. ୨ । ଆଚରଣ—2. Conduct; treatment; behaviour. ୩ । ଋଣଦାନ; ମହାଜନୀ—3. Usury; advancing money on interest; investment of money. ୪ । ମାମଲା; ମକଦ୍ଦମା—4. Law suit; litigation. ୫ । ମକଦ୍ଦମାର ବିଚାର—5. Administration of ustice; judicial trial. ୬ । ଆଇନ୍—6. Law. ୭ । ଲୋକାଚାର; ପ୍ରଥା; ଲୋକପ୍ରଚଳିତ ରୀତି; ସାମାଜିକ ପ୍ରଥା—7. Practice; usage; custom; social custom. ୮ । ଚୁକ୍ତି—8. Contract. ୯ । ପ୍ରଚଳନ; କାର୍ଯ୍ୟରେ ଲଗାଇବା; ପ୍ରୟୋଗ—9. Use; vogue. ୧୦ । ଲୌକିକ ବା ସାଂସାରିକ କାର୍ଯ୍ୟ—10. Wordly work; business. ୧୧ । କ୍ରିୟା; କର୍ମ; କାର୍ଯ୍ୟ—11. Affair; act. ୧୨ । ବେଭାର; ଲୌକିକତା; ସାମାଜିକ ନିୟମ ଅନୁସାରେ ଦେୟ ଉପଢୌକନ—12. Presents givin in observance of social custom. ୧୩ । ଉପଭୋଗ—13. Enjoyment. ୧୪ । ଝଗଡ଼ା; ବିବାଦ (ହି.ଶ)—14 Dispute; qarrel. ୧୫ । ସର୍ତ୍ତ; ପଣ—15. Condition. ୧୬ । ମକଦ୍ଦମା ମୂଳରୁ ଶେଷ ପର୍ଯ୍ୟନ୍ତ ଚଳିତ ହେବାର ବିଧି-16. Legal procedure. [ ଦ୍ର—ଓଡ଼ିଆ ବେଭାର ଶବ୍ଦ ଏଥିର ଅପଭ୍ରଂଶ । ]

ବ୍ୟବହାରକ—ସଂ. ବଣ. ପୁଂ—୧ । ପ୍ରଥା ବା ରୀତି ଅନୁସାରେ
Byabahāraka କାର୍ଯ୍ୟକାରକ—1. Acting according
(ବ୍ୟବହାରିକା—ସ୍ତ୍ରୀ) to custom. ୨ । ସାବାଳକ (ହ୍ରୁ. ଶ);
ପୂର୍ଣ୍ଣବୟସ୍କ—2. Major come of age. ସଂ. ବି—
ବ୍ୟବହାରାଜୀବ; ଆଇନ୍ ବ୍ୟବସାୟୀ (ହ୍ରୁ. ଶ)—Lawyer.

ବ୍ୟବହାର କରିବା—ଦେ. କ୍ରି—୧ । କୌଣସି ବସ୍ତୁକୁ ଆପଣା
Byabahāra karibā କାର୍ଯ୍ୟରେ ଲଗାଇବା ବା ପ୍ରୟୋଗ
ব্যাপার করনা କରିବା—1. To bring a thing into
**व्यापार करना** one's use. ୨ । କୌଣସି ବସ୍ତୁକୁ ଉପଭୋଗ
ব্যবহার করনা କରିବା—2. To enjoy or use a thing.
**व्यवहार करना** ୩ । ବେପାର କରିବା—To enter into a
trade or business

ବ୍ୟବହାରଜୀବୀ—ସଂ. ବି. ପୁଂ (ବ୍ୟବହାର+ଜୀବ ଧାତୁ+କର୍ତ୍ତୃ. ଇନ୍;
Byabahārajībī ୧ମା. ୧ବ)—ଆଇନ୍ ବ୍ୟବସାୟୀ ବ୍ୟକ୍ତି
(ବ୍ୟବହାରଜୀବିନୀ—ସ୍ତ୍ରୀ) (ହ୍ରୁ, ଶ)—Lawyer.

ବ୍ୟବହାରଜ୍ଞ—ସଂ. ବଣ. ପୁଂ (ବ୍ୟବହାର=ମକଦ୍ଦମା ଚଳାଇବା+ଜ୍ଞା.
Byabaharajña ଧାତୁ+କର୍ତ୍ତୃ. ଅ)—୧ । ପ୍ରାପ୍ତବୟସ୍କ;
(ବ୍ୟବହାରଜ୍ଞା—ସ୍ତ୍ରୀ) ସାବାଳକ—1. Come of age; major
୨ । ଆଇନଜ୍ଞ—2. Versed in law. ୩ । ରୀତିଜ୍ଞ—
3. Acquanted with customs and usages.

ବ୍ୟବହାର ଦର୍ଶନ—ସଂ. ବି—ଅଭିଯୋଗର ସତ୍ୟାସତ୍ୟ ବିଚାରପୂର୍ବକ ନିର୍ଣ୍ଣୟ
Byabahāra darśana (ହ୍ରୁ. ଶ)—Adjudication of a
charge.

ବ୍ୟବହାର ଦର୍ଶୀ—ସଂ. ବି. ପୁଂ—୧ । ବିଚାରକ 1. Judge. ୨ ।
Byabahāra darśī ଜୁରି; ବିଚାରକଙ୍କ ସହାୟକ—2. Jury.
(ବ୍ୟବହାରଦର୍ଶିନୀ—ସ୍ତ୍ରୀ)

ବ୍ୟବହାର ପାଦ—ସଂ. ବି (ହିନ୍ଦୁ ସ୍ମୃତି)—ମକଦ୍ଦମାର ଭିନ୍ନ ଭିନ୍ନ ଅଙ୍ଗ—
Byabahara pada (Hindu Law) The different
stages of litigation. [ ଯଥା—ମକଦ୍ଦମାରେ ୧—
ପୂର୍ବପକ୍ଷ (ଦରଖାସ୍ତ ବା ଅରଜି), ୨—ଉତ୍ତର ପକ୍ଷ (ପ୍ରତି-
ବାଦୀର ଜବାବ), ୩—କ୍ରିୟା (ପ୍ରମାଣ ଆଦିର ଉପସ୍ଥାପନ)
ଓ ୪—ନିର୍ଣ୍ଣୟ (ବିଚାରମୂଳକ ଫଇସଲ୍) ଏହି ଚାରୋଟି ପାଦ
ଅଛି) । ]

ବ୍ୟବହାର ବିଧି—ସଂ. ବି—ବ୍ୟବସ୍ଥା ଶାସ୍ତ୍ର; ଆଇନ୍—Law of
Byabahara bidhi procedure; jurisprudence.
ଦେ. ବି—କୌଣସି ଔଷଧ ବ୍ୟବହାର କରିବାର ବ୍ୟବସ୍ଥା—
Prescription or directions for using a
medicine.

ବ୍ୟବହାର ମାତୃକ(କା)—ସଂ. ବି—ବିଚାର ବା ମକଦ୍ଦମା ସମ୍ବନ୍ଧୀୟ
Byabahāra mātṛuka(kā) ସମୁଦାୟ କ୍ରିୟା—Legal
procedure. ( ଯଥା—ମକଦ୍ଦମା ଦାଏର, ପ୍ରତିବାଦୀର
ଜବାବ ଦାଖଲ, ମକଦ୍ଦମାର ଭିନ୍ନ ଭିନ୍ନ ଦିବସର ସାକ୍ଷୀସମନ,
ସାକ୍ଷୀଙ୍କ ହାଜର ଓ ସାକ୍ଷ୍ୟ ଦେବା, ସାକ୍ଷୀଙ୍କୁ ପ୍ରଶ୍ନ ଓ ଜେରା,
ଜବାବ ସବାଲ, ଫୈସଲ । ମିତାକ୍ଷରା ଅନୁସାରେ ଏଥିର
ସଂଖ୍ୟା ଚାରିଗୋଟି ହ୍ରୁ. ଶ । )

ବ୍ୟବହାର ମାର୍ଗ—ସଂ. ବି (୬ଷ୍ଠୀ ତତ୍; ବ୍ୟବହାର+ମାର୍ଗ)—ହିନ୍ଦୁ
Byabahāra mārga ସ୍ମୃତି ଗ୍ରନ୍ଥମାନଙ୍କରେ ଲେଖାଥିବା ଋଣ
ଦାନାଦି ଅଷ୍ଟାଦଶବିଧ ମକଦ୍ଦମାର କାରଣ—
Eighteen kinds of causes of action
according to the Hindu law.

ବ୍ୟବହାର ରସ—ସଂ. ବି—ସଂସାରାସକ୍ତି—
Byabahāra rasa Worldliness.

ବ୍ୟବହାରରେ ଲାଗିବା—ଦେ. କ୍ରି—୧। ବ୍ୟବହୃତ ବା ଉପଭୁକ୍ତ ହେବା—
Byabaharare lāgibā 1. To be used or enjoyed.
( ବ୍ୟବହାରରେ ଆସିବା—ଅନ୍ୟରୂପ ) ୨ । କାର୍ଯ୍ୟରେ ଲାଗିବା—
ব্যবহারে লাগা(আসা) 2. To become useful; to be
**काममें आना; व्यवहारमें लगना** of use.

ବ୍ୟବହାର ଶାସ୍ତ୍ର—ସଂ. ବି—ବ୍ୟବସ୍ଥାଶାସ୍ତ୍ର; ଆଇନ୍; ଧର୍ମ ଶାସ୍ତ୍ର—
Byabahāra śāstra Law; jurisprudence.

ବ୍ୟବହାର ସିଦ୍ଧ—ସଂ. ବି ( ତୃତୀୟା ତତ୍; ବ୍ୟବହାର+ସିଦ୍ଧ )—ସିଦ୍ଧ-
Byabahāra siddha ସମ୍ମତ—Customary; establi-
shed by usage.
[ବ୍ୟବହାରସଙ୍ଗତ, ବ୍ୟବହାରସମ୍ମତ, ବ୍ୟବହାରାନୁମୋଦିତ,
ବ୍ୟବହାରାନୁମତ—ଅନ୍ୟରୂପ]

ବ୍ୟବହାରାଜୀବ—ସଂ. ବି. ପୁଂ ( ବହୁବ୍ରୀହି; ବ୍ୟବହାର+ଆଜୀବ=
Byabahārājība ଜୀବିକା ଯାହାର )—ଆଇନ୍ ବ୍ୟବସାୟୀ;
(ବ୍ୟବହାରାଜୀବା—ସ୍ତ୍ରୀ) ଓକିଲ, ମୁକ୍ତାର, ବାରିଷ୍ଟର ଆଦି—
Lawyer; pleader; Vakil, Muktar,
Barrister etc.

ବ୍ୟବହାରାସନ—ସଂ. ବି—ବିଚାରାସନ; ଇଜ୍‌ଲାସ୍—The Bench; the
Byabahārāsana seat of justice.

ବ୍ୟବହାରିକ—ସଂ. ବଣ ( ବ୍ୟବହାର+ଇକ )—୧ । ବ୍ୟବହାର-
Byabahārika ସିଦ୍ଧ—1. Practical; established
by usage. ୨ । ବାଣିଜ୍ୟ ସମ୍ବନ୍ଧୀୟ—2. Relating
to trade. ୩ । ବ୍ୟବହାର୍ଯ୍ୟ—3. Useful. ୪ ।
ଯାହା କାର୍ଯ୍ୟରେ ଆସେ—4. Of use; useful.
ସଂ. ବି—ଇଙ୍ଗୁଦୀ (ହ୍ରୁ. ଶ) (ଦେଖ)—Iṅgudī (See)

ବ୍ୟବହାରିକା—ସଂ. ବଣ. ସ୍ତ୍ରୀ—ବ୍ୟବହାରିକର ସ୍ତ୍ରୀଲିଙ୍ଗ—
Byabahārikā Feminine of Byabahāraka.
ସଂ. ବି—୧ । ସଂସାରରେ ରହି ସଂସାର ବ୍ୟବହାର
ଅନୁସାରେ କାର୍ଯ୍ୟ କରିବା ( ହ୍ରୁ. ଶ )—1. Acting in
conformity to the worldly practice. ୨ ।
ଇଙ୍ଗୁଦୀ(ହ୍ରୁ. ଶ)—2. Iṅgudī ( See ) ୩ । ଝାଡ଼ୁ
(ହ୍ରୁ ଶ)—3 Broomstick.

ବ୍ୟବହାରୀ—ଦେ. ବଣ ( ସଂ. ବ୍ୟବହାରିକ )—୧ । ବ୍ୟବହାର୍ଯ୍ୟ—
Byabahārī 1. Practicable; ୨ । ଯାହା
(ବ୍ୟବହାରୀୟ—ଅନ୍ୟରୂପ) ପ୍ରତିଦିନ ବ୍ୟବହୃତ ହୁଏ—2. Of
every day use. ୩ । ଯାହା କାର୍ଯ୍ୟରେ ଆସେ—

ଣ. Practical; useful. ଦେ. ବି. ଗୁମାସ୍ତା—Agent.
(ବ୍ୟବହାରିଣୀ—ସ୍ତ୍ରୀ) ସଂ. ବିଣ. ପୁଂ ( ବ୍ୟବହାର +ଇନ୍; ୧ମା, ୧ବ )—ବ୍ୟବହାରକାରୀ—Using; enjoying.

ବ୍ୟବହାର୍ଯ୍ୟ—ସଂ. ବିଣ ( ବି+ଅବ+ହୃ ଧାତୁ+କର୍ମି. ଯ )—୧ । Byabahārjya ବ୍ୟବହାରଯୋଗ୍ୟ—1, Useful. ୨ । ଯାହା ବ୍ୟବହୃତ କରାଯାଇ ପାରେ—2, Fit to be used; useable. ୩ । ଯାହା କାର୍ଯ୍ୟରେ ଲଗାଯାଇ-ପାରେ—3. Practical. ୪ । ଉପଭୋଗ୍ୟ—4. Enjoyable.

ବ୍ୟବହିତ—ସଂ. ବିଣ ( ବି+ଅବ+ଧା ଧାତୁ+କର୍ମି. ତ )—୧ । Byabahitā ଆଚ୍ଛାଦିତ—1. Covered; protected. ( ଅବ୍ୟବହିତ—ବିପରୀତ ) ୨ । ଅନ୍ତରିତ—2, Removed, ୩ । ଅନ୍ତର୍ହିତ—3, Vanished. ୪ । ଯହିଁ ମଧ୍ୟରେ ବ୍ୟବଧାନ ଥାଏ; ଅସଂଯୁକ୍ତ ଭାବରେ ଅବସ୍ଥିତ—4, Situated at a distance from each other; interspersed. ୫ । ଅଧଃକୃତ—5, Brought down; lowered. ୬ । ବିକୃତ—6. Impaired, distorted. ୭ । ଲୁକ୍କାୟିତ ( ହି. ଶ ) —7. Hidden; concealed.

ବ୍ୟବହୃତ—ସଂ. ବି ( ବି+ଅବ+ହୃ ଧାତୁ+କର୍ମି. ତ )— Byabahṛuta ୧ । ଆଚରିତ—1. Used; followed. ୨ । ଅନୁଷ୍ଠିତ—2. Done. ୩ । ଉପଭୁକ୍ତ; ଅଧିକୃତ—3, Enjoyed; possessed. ୪ । ବିଚାରିତ—4. Judged; considered. ୫ । ସ୍ଥିରୀକୃତ—5. Acerrained. settled.

ବ୍ୟବହୃତି—ସଂ. ବି ( ବି+ଅବ+ହୃ ଧାତୁ+ଭାବ ତି )— Byabahṛuti ୧ । ବ୍ୟବସାୟରେ ମିଳିବା ଲାଭ (ହି. ଶ)— 1. Profit in business. ୨ । ବାଣିଜ୍ୟ (ହି. ଶ)— 2. Trade. ୩ । କୁଶଳତା (ହି. ଶ)—3. Proficiency.

ବ୍ୟବାୟ—ସଂ. ବି ( ବି+ଅବ+ଇ ଧାତୁ+ଭାବ. ଅ )—୧ । ମୈଥୁନ; Byabāya ସ୍ତ୍ରୀସଙ୍ଗ; ସମ୍ଭୋଗ—1. Copulation; sexual intercourse. ୩ । ଆଚ୍ଛାଦନ—3. Covering ୪ । ମଝିରେ ରହିବା—4. Intervention. ୫ । ଅନ୍ତର୍ଧାନ—5. Disappearance. ୬ । ପବିତ୍ରତା—6. Purity; holiness ୭ । ତେଜଃ—7. Vigour; splendour; energy; halo. ୮ । ପରିଣାମ; ଫଳ (ହି. ଶ)—8. Result. ୯ । ବିଘ୍ନ; ବାଧା (ହି. ଶ)— 9. Obstruction; obstacle. ୧୦ । ପରଦା (ହି.ଶ) —10. Screen.

ବ୍ୟବାୟ ଶୀଳ—ସଂ. ବି. ପୁଂ (ବ୍ୟବାୟ+ଶୀଳ)—ବ୍ୟବାୟୀ (ଦେଖ) Byabāya sīla Byabāyī (See)

ବ୍ୟବାୟ ଶୋଷ—ସଂ. ବି - ଅତ୍ୟଧିକ ସ୍ତ୍ରୀପ୍ରସଙ୍ଗ ଯୋଗୁଁ ଜନ୍ମିବା ଏକ Byabāya sosha ପ୍ରକାର ରାଜଯକ୍ଷ୍ମା (ହି. ଶବ୍ଦସାଗର)— A kind of pulmonary consumption due to excessive sexual enjoyment.

ବ୍ୟବାୟୀ—ସଂ.ବିଣ.ପୁଂ (ବ୍ୟବାୟ+ଇନ୍; ୧ମା. ୧ବ)—୧ । କାମୁକ— Byabāyī 1; Amorous. ୨ । ଲମ୍ପଟ—1, Dissolute; adulterous. ୨ । ଯେଉଁ ଔଷଧ ଶରୀରରେ ପ୍ରବେଶ କରି ହଠାତ୍ ଦେହ ଯାକ ବ୍ୟାପି ଯାଏ (ହି. ଶ)— 2. (a medicine) Which is diffused throughout the system immediately after it is taken.

ବ୍ୟଭାର—ଗ୍ରା. ବି ( ସଂ. ବ୍ୟବହାର )—୧ । ବ୍ୟବହାର; ଆଚରଣ — Byabhāra 1. Conduct. [ଉ—ସ୍ୱଜନ ଦେବେ ব্যাভার ବୋଲିଣ ଭାବ, ଶ୍ରେଷ୍ଠ ନୋହେ ଭାରଙ୍କର वताव ବ୍ୟଭାର—ବିଶ୍ୱନାଥ. ବିଚିତ୍ର ରାମାୟଣ । ୨ । ଉପଭୋଗ—2. Use; enjoyment. ୩ । ବେଭାର ( ଦେଖ )—3 Bebhāra (See).

ବ୍ୟଭିଚାର—ସଂ. ବି—(ବି+ଅଭି+ଚର୍ ଧାତୁ+ଭାବ. ଅ)—ଲୁଚ୍ଚାମି; Byabhichāra କଦାଚାର—1. Wickedness; profligacy, wantonness; bad conduct. ୨ । ଅନିୟମ— 2. Irregularity; departure from rule. ୩ । ପୁରୁଷର ପରସ୍ତ୍ରୀ ସଙ୍ଗେ ବା ସ୍ତ୍ରୀର ପରପୁରୁଷ ସଙ୍ଗେ ସଙ୍ଗମ—3. Adultery fornication; lechery. ୪ । ଲଙ୍ଘନ; ଅନ୍ୟଥାଚରଣ—4. Deviation, acting otherwise; transgression. ୫ । ସ୍ଖଳନ—5. Falling off; slipping. ୬ । ନିୟମର ବ୍ୟତିକ୍ରମ; ଅପବାଦ—6. Exception to a rule. ୭ । ଅନ୍ୟଥାଚରଣ—7. Acting contrary. ୮ । ଅତି ବ୍ୟାପ୍ତି—8. Suffusion. ୯ । ଅବ୍ୟାପ୍ତି— 8. Absence of diffusion. ୧୦ । ( ନ୍ୟାୟ ମତରେ ) ହେତ୍ୱାଭାସ ବିଶେଷ; ଯୁକ୍ତିରେ ଏକ ଶବ୍ଦକୁ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର କରିବା ଦୋଷ—10. (In logic) A defect of reasoning consisting of using the same term in different senses.

ବ୍ୟଭିଚାର ଦୋଷ—ସଂ. ବି—୧ । ପରସ୍ତ୍ରୀ ବା ପରପୁରୁଷ ସଙ୍ଗମ Byabhichāra dosha ଦୋଷ—1. Adultery. ୨ । ନ୍ୟାୟ ଶାସ୍ତ୍ରରେ ହେତ୍ୱାଭାସ ବିଶେଷ—2. (In logic) A defect consisting of using the same term in different senses. ୩ । ବିବାଦୀୟ ବିଷୟକୁ ଛାଡ଼ି ବିଷୟାନ୍ତରର ବିଚାର—3. Deviating from the real matter in dispute and introducing another

ବ୍ୟଭିଚାରୀ—ସଂ. ବିଣ. ପୁଂ—(ବ୍ୟଭିଚାର+କର୍ତ୍ତି. ଇନ୍; ୧ମା. ୧ବ)— Byabhichārī ୧ । ଲୁଚ୍ଚାମିରତ; ନଷ୍ଟଚରିତ୍ର—1. Profligate; (ବ୍ୟଭିଚାରିଣୀ—ସ୍ତ୍ରୀ) dissolute. ୨ । ପରସ୍ତ୍ରୀଗାମୀ—

(ବ୍ୟଭିଚାରିତା—ସ୍ତ୍ରୀ) 2. Lecherous; adulterous. ୩ । ଲଙ୍ଘନକାରୀ; ଅନ୍ୟଥାଗାମୀ—3. Going astray; deviating; transgressing. ୪ । ଅତିବ୍ୟାପ୍ତ—4. Overspreading; pervading. ୫ । ଶୃଙ୍ଗାରାଦି ରସର ଭାବବିଶେଷ; ସଞ୍ଚାରୀ ଭାବ (ଦେଖ)—5. Samchārī bhāba (See). ୬ । ସ୍ୱମାର୍ଗଭ୍ରଷ୍ଟ—7. Gone astray. ବି—ପରସ୍ତ୍ରୀଗାମୀ ବ୍ୟକ୍ତି—Adulterer; fornicator.

ବ୍ୟଭିଚାରିଣୀ—ସଂ. ବି. ଓ ବିଣ ସ୍ତ୍ରୀ (ବ୍ୟଭିଚାରିନ୍+ସ୍ତ୍ରୀ. ଈ)—ଦୋଷ୍ଟ୍‌ରୁଣୀ; ନଷ୍ଟା ସ୍ତ୍ରୀ; କୁଳଟା ସ୍ତ୍ରୀ, ପର ପୁରୁଷଗାମିନୀ ସ୍ତ୍ରୀ—Adulteress; an unchaste woman.
Byabhichāriṇī

ବ୍ୟଭିଚାରୀ ଭାବ—ସଂ. ବି—ଶୃଙ୍ଗାରାଦି ରସର ଭାବବିଶେଷ; ସଞ୍ଚାରୀ ଭାବ—The mental states of persons expierencing
Byabhichārī bhāba

[ଦ୍ର—ସ୍ଥାୟୀ ଭାବର ସହକାରୀ ରୂପେ ଅଉ ଯେଉଁ ଗୁଡ଼ିଏ ଭାବ ମନରେ ଉଦିତ ହୁଅନ୍ତି, ସେମାନଙ୍କୁ ବ୍ୟଭିଚାରୀ ଭାବ ବୋଲାଯାଏ ।

ସମସ୍ତ ରସରେ ୩୩ ଗୋଟି ବ୍ୟଭିଚାରୀ ଭାବ ଦେଖାଯାଏ । ଯଥା—ନିର୍ବେଦ, ଆବେଗ, ଦୈନ୍ୟ, ଶ୍ରମ, ମଦ, ଜଡ଼ତା, ଉଗ୍ରତା, ମୋହ, ବିବୋଧ (ଜାଗରଣ), ସ୍ୱପ୍ନ, ଅପସ୍ମାର (ମନର ଚଞ୍ଚଳତା), ଗର୍ବ, ମରଣ, ଆଲସ୍ୟ, ଅମର୍ଷ (ଅସହିଷ୍ଣୁତା), ନିଦ୍ରା, ଅବହିତ୍ଥା (ଭାବଗୋପନ) ଔତ୍ସୁକ୍ୟ, ଉନ୍ମାଦ, ଶଙ୍କା, ସ୍ମୃତି, ମତି, ବ୍ୟାଧି, ତ୍ରାସ, ଲଜ୍ଜା, ହର୍ଷ, ଅସୂୟା (ପରଗୁଣରେ ଦୋଷାରୋପଣ), ବିଷାଦ (ଉପାୟାଭାବଜନିତ ସତ୍ତ୍ୱକ୍ଷୟ), ଧୃତି, ଚପଳତା, ଗ୍ଲାନି (କ୍ଷୀଣତା), ଚିନ୍ତା, ବିତର୍କ (ସନ୍ଦେହ ହେତୁ ବିଚାର) ]

ବ୍ୟଭିହାସ—ସଂ. ବି. (ବି+ଅଭି+ହସ୍ ଧାତୁ+ଭାବ. ଅ)—ଉପହାସ; ଥଟ୍ଟା—Jest; sneer.
Byabhihāsa

ବ୍ୟୟ—ସଂ. ବି. ( ବି+ଇ ଧାତୁ=ଗମନ କରିବା+ଭାବ. ଅ )—
Byaya ୧ । ଅପଚୟ; ଖରଚ—1. Expenditure; outgoing; expense. ୨ । କ୍ଷୟ; ନାଶ—2. Decay; waste; loss; destruction. ୩ । ଅଭାବ—3. Want; deficiency. ୪ । ଅପଗମ—4. Departure. ୫ । (ଜ୍ୟୋତିଷ) ଲଗ୍ନରୁ ଦ୍ୱାଦଶ ସ୍ଥାନ—5. (astrology) The 12th place from one's 'Lagna' or natal sign. ୬ । ଦାନ (ପ୍ର. ଶ)—6. Gift. ୭ । ପରିତ୍ୟାଗ (ପ୍ର. ଶ)—7. Abandonment. ଦେ. ବି—୧ । ଧନକ୍ଷୟ—1. Loss of money. ୨ । ଅପବ୍ୟୟ—2. Waste of money. [ଦ୍ର—ଏହାର ଓଡ଼ିଆ ଅପଭ୍ରଂଶ ବଏ, ବୟ ।] ୩ । ମହାଜନଠାରୁ ଟଙ୍କା ଆଦି ଋଣ ନେବା—3. Borrowing money etc from a creditor. ୪ । ଦୋକାନଠାରୁ ସଉଦା ନେବା—4. Taking articles from a trader or shopkeeper.
ব্যয়
व्यय

ବ୍ୟୟକ—ସଂ.ବିଣ.ପୁଂ(ବି+ଇ ଧାତୁ+କର୍ତ୍ତୃ ଅକ)—ଯେ ବ୍ୟୟ କରେ—
Byayaka (ବ୍ୟୟିକା—ସ୍ତ୍ରୀ) Spending.

ବ୍ୟୟ କରି ଦେବା—ଦେ. କ୍ରି—ସମସ୍ତ ତୁଳନୀୟ ବସ୍ତୁଙ୍କୁ କୌଣସି ବସ୍ତୁ ସଙ୍ଗେ ତୁଳନା କରିବା—To exhaust all comparisions. (ଦ୍ର—ବ୍ୟୟ କରି ଦେବା ଏହା ଉଣା ଦା ଶିରେ । ଭଞ୍ଜ ବୈଦେହୀଶବିଳାସ)
Byaya kari debā

ବ୍ୟୟ କରିବା—ଦେ କ୍ରି—୧ । ଖରଚ କରିବା—1. To spend. ୨ । କରଜ କରିବା—2. To borrow. ୩ । ମହାଜନଠାରୁ ପଣ୍ୟଦ୍ରବ୍ୟ ନେବା—3. To take goods from a trader.
Byaya karibā
ব্যয় করা
व्यय करना

ବ୍ୟୟ କାତର—ସଂ. ବି. ପୁଂ (୭ମୀ ତତ୍)—କୃପଣ—Niggardly; stingy; close-fisted; miserly. (ବ୍ୟୟକୁଣ୍ଠ—ଅନ୍ୟରୂପ) (ବ୍ୟୟକାତରା—ସ୍ତ୍ରୀ)
Byaya kātara

ବ୍ୟୟ କାତରତା—ସଂ. ବି—କୃପଣତା—Miserliness; niggardliness; stinginess
Byaya kātaratā

ବ୍ୟୟ ବାହୁଲ୍ୟ—ସଂ. ବି(୬ଷ୍ଠୀ ତତ୍)—ଅତିରିକ୍ତ ବ୍ୟୟ—Heavy expenses
Byaya bāhulya

ବ୍ୟୟ ବୃଦ୍ଧି—ସଂ. ବି(୬ଷ୍ଠୀ ତତ୍)—ଖରଚ ବଢିବା—Increase of expenditure.
Byaya bruddhi

ବ୍ୟୟ ଶୀଳ—ସଂ. ବିଣ. ପୁଂ. ( ବହୁବ୍ରୀହି; ବ୍ୟୟ+ଶୀଳ )—୧ । ଖର୍ଚ୍ଚୁଆ; ଯେ ବେଶୀ ବ୍ୟୟ କରେ; ଖରଚୀ; ସାହାଖର୍ଚ୍ଚୀ—Extravagant; spendthrift. (ବ୍ୟୟଶୀଳା—ସ୍ତ୍ରୀ)
Byaya śila

ବ୍ୟୟ ଶୀଳତା—ସଂ. ବି—ଖର୍ଚ୍ଚପଣିଆ; ସାହା ଖରଚ—Extravagance.
Byaya śilatā

ବ୍ୟୟ ସାଧ—ସଂ. ବି. (୩ୟା ତତ୍; ବ୍ୟୟ+ସାଧ୍ୟ)—ଯାହା ଧନବ୍ୟୟ ଦ୍ୱାରା ସମ୍ପନ୍ନ କରାଯାଇ ପାରେ; ବ୍ୟୟଦ୍ୱାରା ନିଷ୍ପାଦ୍ୟ—Costing money; expensive. (ବ୍ୟୟ ସାପେକ୍ଷ—ଅନ୍ୟରୂପ)
Byaya sādhya

ବ୍ୟୟ ସ୍ଥାନ—ସଂ. ବି ( ଫଳିତ ଜ୍ୟୋତିଷ )—ଲଗ୍ନର ଦ୍ୱାଦଶ ସ୍ଥାନ—
Byaya sthāna (astrology) The 12th house from one's 'Lagna' or natal sign.

ବ୍ୟୟାଧିପ—ସଂ. ବି. (ଜ୍ୟୋତିଷ)—ଜନ୍ମ ଲଗ୍ନଠାରୁ ଦ୍ୱାଦଶ ସ୍ଥାନର ଅଧିପତି ଗ୍ରହ—The planet presiding over the 12th house from one's 'Lagna'.
Byayādhipa
ବ୍ୟୟାଧିପତି } ଅନ୍ୟରୂପ
ବ୍ୟୟାଧୀଶ

ବ୍ୟୟିତ—ସଂ.ବିଣ.(ବି+ଇ ଧାତୁ+କର୍ମ. ତ )—୧ । ଖରଚ କରାଯାଇଥିବା—1. Spent; expended. ୨ । ଅପଚିତ—2. Consumed. ୩ । ବିଗତ—3. Gone; past. ୪ । ବିନଷ୍ଟ; କ୍ଷୟିତ—4. Lost; decayed; destroyed; wasted.
Byayita

ବ୍ୟୟୀ—ସ. ବଣ. ପୁଂ. ( ବ୍ୟୟ+ଇନ୍, ୧ମା. ୧ବ )—
Byayī ୧ । ବ୍ୟୟଶୀଳ—1. Extravagant; spendthrift. ୨ । (ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା—ଧନବ୍ୟୟୀ, ମିତବ୍ୟୟୀ)—2. Spending.
(ବ୍ୟୟିନୀ—ସ୍ତ୍ରୀ)

ବ୍ୟର୍ଥ—ସ. ବଣ (ବି+ଅର୍ଥ)—୧ । ବିଫଳ; ବୃଥା—1. Fruitless;
Byartha vain. ୨ । ପଣ୍ଡ; ନିଷ୍ଫଳ—2. Ineffectual. ୩ । ନିଷ୍ପ୍ରୟୋଜନ—3. Useless; unnecessary. ୪ । ବେଫାଇଦା; ଲାଭହୀନ—4. Profitless. ୫ । ଅନର୍ଥକ—5.Meaningless. ୬। ଅମୂଳକ—6. Groundless. [ ଦ୍ର—ଏହାର ଗ୍ରାମ୍ୟ ଅପଭ୍ରଂଶ ବିଅର୍ଥ, ବେର୍ଥ । ] ଦେ. କ୍ରି. ବଣ—ବୃଥାରେ—In vain.
ବୃଥାସ୍ ব্যর্থ

ବ୍ୟର୍ଥ କରିବା—ଦେ. କ୍ରି—କୌଣସି କାର୍ଯ୍ୟକୁ ପଣ୍ଡ ବା ନିଷ୍ଫଳ କରିବା-
Byartha karibā To make ineffectual.
ব্যর্থ করা व्यर्थकरना

ବ୍ୟର୍ଥଚେଷ୍ଟ—ସ. ବଣ. ପୁଂ ( ବହୁବ୍ରୀହି; ବ୍ୟର୍ଥ+ଚେଷ୍ଟା )—ଯାହାର
Byartha cheshṭa ଚେଷ୍ଟା ବିଫଳ ହୋଇଅଛି—One whose efforts have become fruitless.
( ବ୍ୟର୍ଥଚେଷ୍ଟା—ସ୍ତ୍ରୀ )

ବ୍ୟର୍ଥଚେଷ୍ଟା—ସ. ବି ( କର୍ମଧା, ବ୍ୟର୍ଥ+ଚେଷ୍ଟା )—ବିଫଳପ୍ରଯତ୍ନ—
Byartha cheshṭā Fruitless endeavour.

ବ୍ୟର୍ଥତା—ସ. ବି—(ବ୍ୟର୍ଥ+ଭାବ. ତା) —ନିଷ୍ଫଳତା—
Byarthatā Fruitlessness; futility.

ବ୍ୟର୍ଥ ପରିଶ୍ରମ—ସ. ବି ( କର୍ମଧା; ବ୍ୟର୍ଥ+ପରିଶ୍ରମ )—ବୃଥା ଶ୍ରମ—
Byartha pariśrama Vain labour. ସ. ବଣ. ପୁଂ—(ବହୁବ୍ରୀହି) ଯାହାର ପରିଶ୍ରମ ବୃଥା ହୋଇଅଛି—Whose labours have become fruitless.
(ବ୍ୟର୍ଥ ପରିଶ୍ରମା—ସ୍ତ୍ରୀ)
[ବ୍ୟର୍ଥଶ୍ରମ—ଅନ୍ୟରୂପ]

ବ୍ୟର୍ଥ ମନୋରଥ—ସ. ବଣ. ପୁଂ (ବହୁବ୍ରୀହି)-ଯାହାର ମନୋବାଞ୍ଛା ସିଦ୍ଧ
Byartha manorat ହୋଇ ନାହିଁ—Whose desires remain unfulfilled. [ ଦ୍ର—ଏହିପରି ବ୍ୟର୍ଥପ୍ରୟାସ, ବ୍ୟର୍ଥପ୍ରଯତ୍ନ, ବ୍ୟର୍ଥକାମ, ବ୍ୟର୍ଥଜୀବନ, ବ୍ୟର୍ଥଜୀବନ ଆଦି ପଦ ନିଷ୍ପନ୍ନ ହୁଏ ।]
( ବ୍ୟର୍ଥମନୋରଥା—ସ୍ତ୍ରୀ )

ବ୍ୟଳୀକ—ସ. ବି (ବି+ ଅଲ. ଧାତୁ=ନିବାରଣ କରିବା+କର୍ମ. ଈକ)-
Byalīka ୧ । ପୀଡ଼ା; ମନୋଦୁଃଖ—1. Sorrow; grief; distress; afflicition. ୨ । ଲଜ୍ଜା—2. Shame. ୩ । ଅପରାଧ—3, Guilt; crime. ୪ । ପ୍ରତାରଣା—4. Fraud; deception. ୫ । କାମ ଆବେଗରେ କୃତ ଅପରାଧ (ହୁ. ଶ)—5. Crime committed in a fit of amourousness. ୬ । ଦୁଃଖ; କଷ୍ଟ (ହୁ. ଶ)-6. Pain; trouble. ୭ । ପୀଠମର୍ଦ୍ଦ; ବିଟ (ହୁ. ଶ)—7. A panderer. ୮ । ବିଲକ୍ଷଣତା (ହୁ. ଶ)—8. Peculiarity. ୯ । ଅଦ୍ଭୁତତା (ହୁ.ଶ)-9.Strangeness. ବଣ—୧ । ଲମ୍ପଟ—1. Lecherous; adulterous; libertine. ୨ । ଅପ୍ରିୟ—2. Disagreeable. ୩ । ଅନୃତ; ମିଥ୍ୟା—3. False; untrue. ୪ । ଅକର୍ତ୍ତବ୍ୟ; ଅନୁଚିତ-4. Unfit to be done; improper. ୫ । କଷ୍ଟଦାୟକ—5.Painful. ୬ । ଅପରିଚିତ—6. Unacquainted. ୭ । ଅଦ୍ଭୁତ—7. Strange; wonderful.

ବ୍ୟଳୀକତା(ତ୍ୱ)—ସଂ. ବି— ବ୍ୟଳୀକ (ଦେଖ)
Byalīkatā(twa) Byalīka (See).

ବ୍ୟଷ୍ଟକା—ସ. ବି (ବି+ଅଷ୍ଟକ+ଆ)—କୃଷ୍ଣପକ୍ଷର ପ୍ରତିପଦ୍ ତିଥି
Byashṭakā (ହୁ. ଶ)—The next day of the Pūrṇnimā.

ବ୍ୟଷ୍ଟି—ସ.ବି (ବି+ଅଶ୍ ଧାତୁ=ବ୍ୟାପିବା+ଭାବ.ତି)-୧ । ପୃଥକ୍ ପୃଥକ
Byashṭi ହେବା—1, Separation; detachment. ୨ । ଗୋଟିଏ ଗୋଟିଏ ହେବା—2, Becoming single. ୩ । ବିଶ୍ଳେଷଣ-3, Analysis. ୪ । ସମୂହରୁ ବା ସମାଜରୁ ପୃଥକ୍ କରିଯିବା ପ୍ରତ୍ୟେକ ବ୍ୟକ୍ତି ବା ବସ୍ତୁ—4, Every individual person or thing taken out of many. [ଦ୍ର—କେତେଗୁଡ଼ିଏ ବସ୍ତୁ ଏକତ୍ର ହେଲେ ସମଷ୍ଟି ଓ ସେଗୁଡ଼ିକ ବିଶିଷ୍ଟ ବା ପୃଥକ୍ ପୃଥକ୍ ହେଲେ ବ୍ୟଷ୍ଟି ହୁଏ ।]

ବ୍ୟଷ୍ଟିଭାବ—ଦେ. ବି—ପୃଥକ୍ ଭାବ; ବିଶ୍ଳିଷ୍ଟ ଭାବ—Separation
Byashṭi bhāba into different entities.

ବ୍ୟସନ—ସ. ବି (ବି+ଅସ୍, ଧାତୁ=କ୍ଷେପଣ କରିବା+କର୍ମ. ଅନ;
Byasana ଯାହା ମନୁଷ୍ୟକୁ ଶ୍ରେୟୋମାର୍ଗରୁ ଫୋପାଡ଼ି ଦିଏ)—୧ । କାମଜ ଓ କ୍ରୋଧଜ ଦୋଷ—1, Vice; vicious conduct or practice (e,g, drink, gambling, hunting etc).[ଦ୍ର—କାମଜ ବ୍ୟସନ ଦଶପ୍ରକାର; ଯଥା—ମଦ୍ୟପାନ, ବେଶ୍ୟାସକ୍ତି, ଦିବାନିଦ୍ରା, ପରନିନ୍ଦା, ମୃଗୟା, ବୃଥାଭ୍ରମଣ, ଦ୍ୟୂତ, ନୃତ୍ୟ, ଗୀତ ଓ କ୍ରୀଡ଼ା । କ୍ରୋଧଜ ବ୍ୟସନ ଆଠ ପ୍ରକାର । ଯଥା—ଦୁଷ୍ଟତା, ଦୌରାତ୍ମ୍ୟ, ଶଠ, ପ୍ରତାରଣା, ଈର୍ଷା, ଦ୍ୱେଷ, କଟୁକ୍ତି ଓ ନିଷ୍ଠୁରାଚରଣ ।] ୨ । ଦୁର୍ଭାଗ୍ୟ; ବିପଦ୍—2. Adversity; misfortune; mishap; ill-luck. ୩ । ବିଷୟାନୁରକ୍ତି—3. Attachment or being addicted to worldly concerns. ୪ । ଅଶୁଭ; ଅମଙ୍ଗଳ—4. An evil; calamity; disaster. ୫ । ଦୁଃଖ; କଷ୍ଟ—5. Sorrow; affliction; misery; trouble; pain. ୬ । ବିନାଶ—6. Distruction; ruin; overthrow. ୭ । ପତନ—7. Fall. ୮ । ପାପ—8. Sin. ୯ । ଅପରାଧ—9. Crime; guilt. ୧୦ । ବୃଥା ଚେଷ୍ଟା—10. Fruitless endeavour. ୧୧ । ଅଯୋଗ୍ୟତା 11. Unfitness. ୧୨ । ଦୋଷ—12. Fault; defect. ୧୩ ।ଅଶୁଭ ଲକ୍ଷଣ—13. Evil omen. ୧୪ ।

ଅସାମର୍ଥ୍ୟ—14. Inability. ୧୬ । କୌଣସି ବିଷୟରେ ଅତ୍ୟଧିକ ପ୍ରବୃତ୍ତି—16. Being addicted to any perticular matter.

ବ୍ୟସନାର୍ତ୍ତ—ସଂ. ବିଣ. ପୁଂ (ତୃତୀୟା ତତ୍; ବ୍ୟସନ+ଆର୍ତ୍ତ)—ବିପନ୍ନ—Byasanārtta Overwhelmed with calamity. (ବ୍ୟସନାର୍ତ୍ତା—ସ୍ତ୍ରୀ)

ବ୍ୟସନାସକ୍ତ—ସଂ. ବିଣ. ପୁଂ (୭ମୀ ତତ୍; ବ୍ୟସନ+ଅସକ୍ତ)—୧ । Byasanāsakta କୁକ୍ରିୟାରତ—1. Vicious. ୨ । କୌଣସି (ବ୍ୟସନାସକ୍ତା—ସ୍ତ୍ରୀ) କାର୍ଯ୍ୟ ପ୍ରତି ଅତ୍ୟନ୍ତରୂପେ ଆସକ୍ତ—3. Addicted to anything or practice.

ବ୍ୟସନୀ—ସଂ. ବିଣ. ପୁଂ—( ବ୍ୟସନ+ଇନ୍; ୧ମା. ୧ବ )—Byasanī ୧ । କୁକ୍ରିୟାରତ—1. Vicious; addicted to (ବ୍ୟସନିନୀ—ସ୍ତ୍ରୀ) evil practices. ୨ । ବ୍ୟସନାର୍ତ୍ତ; ବିପନ୍ନ-(ବ୍ୟସନିତା—ବି) 2. Overwhelmed with calamity; distressed. ୩ । ଅତ୍ୟନ୍ତ ଆସକ୍ତ—3 Unduly devoted to; excessively attacted to. ୪ । ବେଶ୍ୟାଗାମୀ ( ହ୍ର. ଶ )—4. Habituated to visiting prostitutes.

ବ୍ୟସନୋଦ୍ଭବ—ସଂ. ବିଣ (୫ମୀ ତତ୍; ବ୍ୟସନ+ଉଦ୍ଭବ)—ବ୍ୟସନରୁ Byasanodbhaba ଉତ୍ପନ୍ନ—Arising from vice; originating in vicious practices.

ବ୍ୟସୁ—ସଂ. ବିଣ (ବହୁବ୍ରୀହି; ବି=ବିଗତ+ଅସୁ=ପ୍ରାଣ ଯାହାର)—Byasu ମୃତ—Deceased; dead.

ବ୍ୟସ୍ତ—ସଂ. ବିଣ (ବି+ଅସ ଧାତୁ+କର୍ତ୍ତୃ. ତ)—୧ । ବ୍ୟାକୁଳ—Byasta 1. Agitated; perplexed; agonised. ୨ । ( ସମସ୍ତ—ବିପରୀତ ) ବିରକ୍ତ—2. Displeased; annoyed. ୩ । ବିରକ୍ତ; ପୃଥକ୍କୃତ—3. Separated. ୪ । ଅସମାପ୍ତ—4. Unfinished. ୫ । ବିସ୍ତୃତ; ବ୍ୟାପ୍ତ—5. Diffused; spread; expanded; pervaded. ୬ । ବିପରୀତ; ବିପର୍ଯ୍ୟସ୍ତ—6. Inverted; inverse. ୭ । ଉତ୍କ୍ଷିପ୍ତ—7. Thrown away; tossed. ୮ । ବିକ୍ଷିପ୍ତ—8. Strewn; scattered. ୯ । କାର୍ଯ୍ୟଲିପ୍ତ ହେବାରୁ ଅସ୍ଥିର; କାର୍ଯ୍ୟରେ ବ୍ୟାପୃତ—9. Busy with work; worried with work; busily engaged. ୧୦ । ଏଣେ ତେଣେ ମୁକୁଳା ହୋଇଥିବା; ଗୋଳମାଳିଆ—10. Confused; tangled; dishevelled; mismanaged. ୧୧ । ଅବ୍ୟବସ୍ଥିତ—11. Dis-ordered. [ ଉ—ବ୍ୟସ୍ତ ହୋଇ ଚନ୍ଦ୍ର ମାଛିରେ ବାଳା, ବୃଣ ଗଣ ତ ବସିଛି । କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନ୍ଦ ଗୀତ ।] ଦେ. ବି—ବ୍ୟାକୁଳତା; ବ୍ୟସ୍ତତା; ଦୁଃଖ—Sorrow; grief; agony; worry. [ଦ୍ର—ଏହାର ଗ୍ରାମ୍ୟ ଅପଭ୍ରଂଶ ଶବ୍ଦ ବେସ୍ତ]
ବ୍ୟସ୍ତ ତଙ୍ଗୀ

ବ୍ୟସ୍ତ କରିବା—ଦେ. କ୍ରି—ବ୍ୟାକୁଳ କରିବା—To trouble; to Byasta kariba annoy; to worry. ବାସ୍ତକରା व्यस्तकरना

ବ୍ୟସ୍ତତା—ସଂ. ବି (ବ୍ୟସ୍ତ+ତା)—ବ୍ୟାକୁଳତା—Byastatā Perplexity; worry.

ବ୍ୟସ୍ତ ତ୍ରୈରାଶିକ—ଦେ. ବି—(ଗଣିତ) ଯେଉଁ ତ୍ରୈରାଶିକରେ ପ୍ରଥମ ଓ Byasta trairāsika ଦ୍ୱିତୀୟ ରାଶିର ପରସ୍ପର ସ୍ଥାନ ପରିବର୍ତ୍ତନ ହୁଏ—(arthmetic) Irregular or inverse Rule of Three. [ଦ୍ର—'ସମସ୍ତ' ତ୍ରୈରାଶିକରେ ପ୍ରଥମ ଥିବା ତିନି ରାଶିର ସାହାଯ୍ୟରେ ଚତୁର୍ଥ ରାଶି ବାହାର କରିବାକୁ ହେଲେ ଦ୍ୱିତୀୟ ଓ ତୃତୀୟ ରାଶିର ଗୁଣନ କରି ପ୍ରଥମ ରାଶିଦ୍ୱାରା ଭାଗ କରାଯାଏ; କିନ୍ତୁ 'ବ୍ୟସ୍ତ' ତ୍ରୈରାଶିକର ପ୍ରଥମ ଓ ତୃତୀୟକୁ ଗୁଣି ଦ୍ୱିତୀୟ ରାଶିଦ୍ୱାରା ଭାଗ କରିବାକୁ ହୁଏ । ଉଦାହରଣ ଯଥା—୧୦ ଜଣ ଲୋକ ଯେଉଁ କାମକୁ ୨୦ ଦିନରେ କରନ୍ତି ୫୦ ଜଣ ଲୋକ ସେ କାମକୁ କେତେ ଦିନରେ କରିବେ ? ବ୍ୟସ୍ତ ତ୍ରୈରାଶିକରେ ଏହାର ଫଳ ହେବ ୪, ସମସ୍ତ ତ୍ରୈରାଶିକରେ ଏହାର ଫଳ ଯାହା (୧୦୦) ହେବ ତାହା ଭୁଲ ।]

ବ୍ୟସ୍ତ ପଦ—ସଂ. ବି—୧ । ସମାସହୀନ ପଦ—1. Simple or Byasta pada uncompounded words. (ଯଥା—ନଦୀର ଜଳ; କୂପରେ ପଡ଼ିତ, ପଦ୍ମର ଲୋଚନ ଯାହାର ଇତ୍ୟାଦି ।) ୨ । ( ହିନ୍ଦୁ ଆଇନ୍ ) ଋଣ ଝଙ୍କାପାଇଁ ଯେଉଁ ଖାତକ ନାମରେ ନାଲିସ୍ ହୋଇଥାଏ, ସେ ଋଣ ନ ସୁଝି ଓଜର କରିବା ( ହ୍ର. ଶ )—2. ( Hindu Law ) The filing of objection by the debtor instead of paying off the loan, when the creditor sues for it.

ବ୍ୟସ୍ତ ବିଧି—ଦେ. ବି ( ଗଣିତ ) ଗଣିତରେ ବିଲୋମ ବିଧି—Byasta bidhi (Mathematics) Rule of inversion.

ବ୍ୟସ୍ତରେ ପଡ଼ିବା—ଦେ. କ୍ରି—ବିପନ୍ନ ହେବା—To be put in Byastare pardibā difficulty: to land in danger, ବ୍ୟାସ୍ତେପଡ଼ା तकलीफमें पडना

ବ୍ୟସ୍ତ ସମସ୍ତ—ସଂ. ବିଣ ( ବିପରୀତାର୍ଥ ସଙ୍ଗତର )—୧ । ବ୍ୟସ୍ତ ଓ ସମସ୍ତ Byasta samasta —S. Separated and conjoined. ୨ । କେତେବେଳେ ଏକତ୍ରୀଭୂତ ଓ କେତେବେଳେ ପୃଥଗ୍‌ଭୂତ—2. Now scattered, now collected. ଆସ୍ତବ୍ୟସ୍ତ ଦେ. ବିଣ—୧ । ତ୍ରସ୍ତ ବ୍ୟସ୍ତ—1. Utterly अस्तब्यस्त, तबाहतबाह unnerved. ୨ । ଅତି ବ୍ୟସ୍ତ—2. Much afflicted.

ବ୍ୟସ୍ତ ହେବା—ଦେ. କ୍ରି—୧ । ବ୍ୟାକୁଳ ହେବା—1. To worry Byasta hebā one's self; to be troubled or ବ୍ୟସ୍ତ ହଓ୍ୟା worried. ୨ । ଦୁଃଖ ପାଇବା—2. To तङ्गहोना suffer agony or distress. ୩ । ମନୋଦୁଃଖ

ପ୍ରକାଶ କରିବା—3, To give vent to on's grief.

ବ୍ୟସ୍ତାଲଙ୍କାର—ସଂ. ବି—କାବ୍ୟର ଅଲଙ୍କାରବିଶେଷ—A figure of Byastālankāra speech in rhetoric. [ ଦ୍ର— ଯେଉଁଠାରେ ଉପମାନଙ୍କୁ ଉପମେୟର ଯଥାସ୍ଥାନରେ ସନ୍ନିବେଶିତ କରା ନ ଯାଇ ଅନ୍ୟ ସ୍ଥାନରେ ନ୍ୟସ୍ତ କରାଯାଏ ସେଠାରେ ଏ ଅଲଙ୍କାର ହୁଏ; ଉପେନ୍ଦ୍ରଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡସୁନ୍ଦରୀର ନିମ୍ନଲିଖିତ ପଦମାନ ବ୍ୟସ୍ତାଲଙ୍କାରର ଉଦାହରଣ—ସୁମନାମାନେ ମାନସେ ବିଶ୍ୱର, ଲାବଣ୍ୟସିନ୍ଧୁ କଣ୍ଠେ ଏ ନାଗରୀ । କରି ମକରୀ ଉରତେ ସଜିତ, ଭରମ କଟିକେ କରେ ସଂଯୁତ, ପୁଣି ସେ ସଭୁର । ପଯ୍ୟରେ ଲୀଳା ଦେଇ ହଂସକର । ]

ବ୍ୟସ୍ତିତ—ଗ୍ରା. ବିଣ (ସଂ. ବ୍ୟଥିତ)—ବ୍ୟସ୍ତତା ଯୁକ୍ତ—1, Suffering Byastita distress; afflicted, ୨ । ଦୁଃଖିତ—ব্যস্ত तंग 2, Sorry; grieved,

ବ୍ୟହ୍ନ—ସଂ, ବି ( ବି+ଅହନ୍ )—ଗତକାଲି ( ହି. ଶ )—Byahna Yesterday,

ବ୍ୟା—ପ୍ରାଦେ ( ମେଦନୀପୁର ) ବି ( ମୂଳ ହି, ବ୍ୟାହ୍, ବି, ବିଯ୍ରେ )—Bya (ବିଯ୍ରା—ଅନ୍ୟରୂପ) ବିବାହ—Marriage,

ବ୍ୟାକରଣ—ସଂ. ବି ( ବି+ଆ=କୃ ଧାତୁ=ବ୍ୟୁତ୍ପନ୍ନ ହେବା+କରଣ Byākarana ବା ଅଧିକରଣ ଅନ; ଯହିଁରେ ବା ଯେଉଁ ଶାସ୍ତ୍ରରେ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ନିର୍ଦ୍ଦେଶ କରାଯାଏ )—୧ । ଶବ୍ଦ ବ୍ୟୁତ୍ପାଦକ ଓ ଭାଷାଶିକ୍ଷାତ୍ମକ ଶାସ୍ତ୍ର; ଶବ୍ଦମାନଙ୍କ ବ୍ୟୁତ୍ପତ୍ତିର ଓ ଅର୍ଥର ଓ ପ୍ରୟୋଗର ନିୟମ ଆଦି ଯେଉଁ ଶାସ୍ତ୍ରଦ୍ୱାରା ପ୍ରତିପନ୍ନ ହୁଏ; ଶବ୍ଦଶାସ୍ତ୍ର, ସନ୍ଧିର କର୍ତ୍ତା, କର୍ମ, କ୍ରିୟା, ସମାସ ଆଦି ନିରୂପିତ ହୁଏ;ଶବ୍ଦମାନଙ୍କର ନିର୍ମାଣ ଓ ଗ୍ରଥନ ଯେଉଁ ଶାସ୍ତ୍ରରୁ ଜଣାଯାଏ—1 Philology, the science of grammar ( orthography; etymology, syntax and prosody ). [ ଦ୍ର—ଏ ଶାସ୍ତ୍ରଦ୍ୱାରା ଲିଖିତ ଭାଷାର ଉଚ୍ଛୃଙ୍ଖଳତା ନିବାରିତ ହୁଏ ଏବଂ ଭାଷା ଓ ଶବ୍ଦ ସମ୍ବନ୍ଧୀୟ ସାଧାରଣତଃ ଅବୋଧ୍ୟ ବିଷୟମାନ ସ୍ପଷ୍ଟରୂପେ ବୁଝାଯାଏ । ] ୨ । ( +ଭାବ, ଅନ ) ବିଶ୍ଳେଷଣ—2. Analysis, ୩ । ବ୍ୟାଖ୍ୟାନ—3. Expounting; commenting. ୪ । ବିକାଶନ—4. Expanding, ୫ । ଶିଳ୍ପନୈପୁଣ୍ୟ, କାରିଗରି—5, Artistic work; work-manship. ( ଉ—ପଢିଏ ଯାର ବ୍ୟାକରଣ, ବୁଦ୍ଧି ବିଷୟ ମନୁଗଣ । ଜଗନ୍ନାଥ, ଭାଗବତ । )

ବ୍ୟାକରଣଜ୍ଞ—ସଂ. ବି. ପୁଂ ( ବ୍ୟାକରଣ+ଜ୍ଞା ଧାତୁ+କର୍ତ୍ତୃ. ଅ )—Byākaranajña ବୈୟାକରଣ;ବ୍ୟାକରଣଶାସ୍ତ୍ର ଜାଣିଥିବା ବ୍ୟକ୍ତି—ବ୍ୟାକରଣବିତ୍, ବ୍ୟାକରଣବେତ୍ତା } ଅନ୍ୟରୂପ A grammarian; a philologist,

ବିଣ. ପୁଂ—ବ୍ୟାକରଣ ଶାସ୍ତ୍ରରେ ବିଜ୍ଞ—Well versed in grammar.

ବ୍ୟାକରଣ ଜ୍ଞାନ—ସଂ. ବି—ବ୍ୟାକରଣ ଶାସ୍ତ୍ରରେ ଅଭିଜ୍ଞତା—A know Byākarana jñāna ledge of grammar; grammatical knowledge.

ବ୍ୟାକରଣ ଦୋଷ—ଦେ. ବି—ବ୍ୟାକରଣବିରୁଦ୍ଧ ପ୍ରୟୋଗ; ବ୍ୟାକରଣ Byākarana dosha ଦୃଷ୍ଟିରେ ଅଶୁଦ୍ଧ ପ୍ରୟୋଗ—ব্যাকরণ দোষ व्याकरण दोष Grammatical mistake

ବ୍ୟାକରଣ ବହିର୍ଭୂତ—ସଂ. ବିଣ—ବ୍ୟାକରଣ ଶାସ୍ତ୍ରର ନିୟମବିରୁଦ୍ଧ—Byākarana bahirbhūta Ungrammatical; contrary to the rules of grammar. ( ବ୍ୟାକରଣବିରୁଦ୍ଧ—ଅନ୍ୟରୂପ )

ବ୍ୟାକରଣ ବିହିତ—ସଂ. ବିଣ—ବ୍ୟାକରଣର ବିଧି ଅନୁସାରେ ଶୁଦ୍ଧ—Byākarana bihita Grammatically correct; correct according to the rules of grammar. ବ୍ୟାକରଣସଙ୍ଗତ, ବ୍ୟାକରଣସମ୍ମତ, ବ୍ୟାକରଣ ସିଦ୍ଧ, ବ୍ୟାକରଣାନୁମତ } ଅନ୍ୟରୂପ

ବ୍ୟାକରଣ ଶାସ୍ତ୍ର—ସ.ବି—ବ୍ୟାକରଣ ୧(ଦେଖ)—The science of Byākarana śāstra grammar; philology.

ବ୍ୟାକର୍ତ୍ତା—ସଂ. ବି. ପୁଂ ( ବି+ଆ+କୃ ଧାତୁ+ତୃ; ୧ମା. ୧ବ )—Byākarttā ସୃଷ୍ଟିକର୍ତ୍ତା; ପରମେଶ୍ୱର ( ହି. ଶବ୍ଦସାଗର )—God; the Creator.

ବ୍ୟାକାର—ସଂ. ବି ( ବି+ଆକାର )—୧ । ବିକଟ ରୂପ; ବିରୂପ—Byākāra 1. Deformity. ୨ । ଆକାରର ପରିବର୍ତ୍ତନ—2. Change of form, ୩ । ( ବି+ଆ+କୃ ଧାତୁ+ଭାବ.ଅ ) ବ୍ୟାଖ୍ୟା ( ହି. ଶ )—3. Annotation.

ବ୍ୟାକୀର୍ଣ୍ଣ—ସଂ. ବିଣ ( ବି+ଆ+କୄ ଧାତୁ=ବିକ୍ଷେପ କରିବା+କର୍ମ. Byākirnna ନ )—୧ । ବ୍ୟାପ୍ତ—1. Spread about; diffused. ୨ । ଏଣେ ତେଣେ ବିସ୍ତୃ ହୋଇ ପଡ଼ିଥିବା—2. Dispersed; strewn; scattered.

ବ୍ୟାକୁଳ—ସଂ. ବିଣ ( ବି+ଆକୁଳ )—୧ । ଉଦ୍‌ବିଗ୍ନ; ଅତି ଆକୁଳ; Byākula ଅତି ଉତ୍କଣ୍ଠିତ—1. Very anxious or uneasy. ( ବ୍ୟାକୁଳା—ସ୍ତ୍ରୀ ) ୨ । କାତର; ବ୍ୟସ୍ତ—2. Distracted; agitated; perturbed;worried, ୩ । କିଂକର୍ତ୍ତବ୍ୟବିମୂଢ଼—3. Overwhelmed; dumbfounded; ୪ । କାର୍ଯ୍ୟବ୍ୟସ୍ତ—4. Busily engaged; busy, engrossed in work, ୫ । ଭୟବିହ୍ୱଳ; ଭୟବିଧୁର—5. Terrified; frightened, alarmed. ୬ । ବିକଳ—6. Distressed, ୭ । ଅସ୍ଥିର—7. Restless. ଦେ. ବି—ବ୍ୟାକୁଳତା—Perturbation, ( ଉ—ଏଣୁ ଅଜ୍ଞାନ ଜଡ଼ମତି । ବ୍ୟାକୁଳ ଛଡ଼ ଦେ ନୃତି—ଜଗନ୍ନାଥ. ଭାଗବତ । )

ବ୍ୟାକୁଳ କରିବା—ଦେ. କ୍ରି-୧ । କାତର କରିବା-1. To worry; Byākula karibā to agitate pain, ୨। କଷ୍ଟ ଦେବା-ব্যাকুল করা व्याकुल करना 2, To afflict; to pain.

ବ୍ୟାକୁଳ ଚିତ୍ତ—ସଂ. ବଣ. ପୁଂ (ବହୁବ୍ରୀହି; ବ୍ୟାକୁଳ+ଚିତ୍ତ ଯାହାର)—
Byākuḷa chitta ଅସ୍ଥିରମନାଃ—Mentally perturbed
( ବ୍ୟାକୁଳଚିତ୍ତା—ସ୍ତ୍ରୀ ) or disturbed.
ବ୍ୟାକୁଳଚେତାଃ, ବ୍ୟାକୁଳମନାଃ, ବ୍ୟାକୁଳାତ୍ମା, ବ୍ୟାକୁଳାନ୍ତଃକରଣ, ବ୍ୟାକୁଳହୃଦୟ }—ଅନ୍ୟରୂପ

ବ୍ୟାକୁଳତା—ସଂ. ବି ( ବ୍ୟାକୁଳ+ଭାବ ତା )—୧ । ଉତ୍କଣ୍ଠା—
Byākuḷatā 1. Anxiety; agitation; distress;
୨ । କାତରତା; ବିହ୍ୱଳତା—2. Perturbation.
୩ । ମନର ଅସ୍ଥିରତା—3. Mental restlessness.

ବ୍ୟାକୁଳ ହେବା—ଦେ. କ୍ରି—୧ । ବିକଳ ବା ବ୍ୟସ୍ତ ହେବା—1. To
Byākuḷa hebā grieve; to be worried. ୨ । ବ୍ୟାକୁଳ
ব্যাকুল হওয়া व्याकुल होना ହେବା—2. To be distressed;
to be afflicted. ୩ । ଅସ୍ଥିର ହେବା—3. To be
restless. ୪ । ଉଦ୍‌ବିଗ୍ନ ହେବା—4. To be uneasy
or anxious.

ବ୍ୟାକୁଳିତ—ସଂ. ବଣ—ବ୍ୟାକୁଳ ( ଦେଖ )
Byākuḷita Byākuḷa (Apte) ( See )

ବ୍ୟାକୂତି—ସଂ. ବି (ବି+ଆ+କୂ ଧାତୁ=ଶବ୍ଦ କରିବା+ଭାବ. ତି)—
Byākūti ୧ । ଛଳ; ବଞ୍ଚନା—1. Deception; fraud;
trick; deceit; stratagem. ୨ । ଛଦ୍ମବେଶ—
2 Disguise; mask.

ବ୍ୟାକୃତ—ସଂ. ବଣ (ବି+ଆ+କୃ ଧାତୁ+କର୍ମ. ତ)—୧ । ବ୍ୟାଖ୍ୟାତ—
Byākṛuta 1. Explained. ୨ । ପ୍ରକାଶିତ—2. Manifested; displayed. ୩ । ରୂପାନ୍ତରିତ—3. Transformed. ୪ । ବିକୃତ—4. Distorted; deformed;
disfigured. ୫ । ପୃଥକ୍‌କୃତ—Analysed (Apte).

ବ୍ୟାକୃତି—ସଂ. ବି (ବି+ଆକୃତି)—୧ । ବ୍ୟାଖ୍ୟାନ—1. Annotation.
Byākṛuti ୨ । ବିକୃତ ଆକାର—2. Deformity;
disfigurement. ୩ । ରୂପାନ୍ତର—3. Transformation. ୪ । ଛଦ୍ମରୂପ—4. Disguise; mask. ୫ ।
ବିକୃତି—5. Derangement.

ବ୍ୟାକୋଶ(ଷ)—ସଂ. ବ ( ବି+ଆ+କୋଶ )—ବିକଶିତ; ପ୍ରସ୍ଫୁଟିତ—
Byakośa(sha) Expanded; fullblown.

ବ୍ୟାକ୍ରୋଶ—ସଂ. ବି ( ବି+ଆକ୍ରୋଶ )—୧ । ଦୁର୍ବାକ୍ୟ; ତିରସ୍କାର—
Byākrośa 1. Reproach; abuse. ୨ । ଅପମାନ—
2. Insult. ୩ । ଉଚ୍ଚୈଃସ୍ୱର କରିବା—3. Hallooing.

ବ୍ୟାକ୍ଷେପ—ସଂ. ବି ( ବି+ଆକ୍ଷେପ )—୧ । ବିଳମ୍ବ; କାଳକ୍ଷେପ—
Byākshepa 1. Delay; procrastination. ୨ ।
ବ୍ୟାକୁଳତା; କିଂକର୍ତ୍ତବ୍ୟବିମୂଢ଼ତା ( ହି. ଶ )—
2. Consternation; bewilderment.

ବ୍ୟାଖ୍ୟା—ସଂ. ବି ( ବି+ଆ+ଖ୍ୟା ଧାତୁ=କହିବା, ବର୍ଣ୍ଣନା କରିବା
Byākhyā +ଭାବ. ଅ+ଆ )—୧ । ବିବରଣ; ବର୍ଣ୍ଣନା—
(ବ୍ୟାଖ୍ୟାନ—ଅନ୍ୟରୂପ) 1. Description; statement;
narration. ୨ । ଟୀକା; ଅର୍ଥ ପ୍ରକଟନ—2. Annotation; commentary; exposition. [ ଦ୍ର—
କୌଣସି ଜଟିଳ ବିଷୟକୁ ସରଳ ଶବ୍ଦ ଦ୍ୱାରା ଓ ଭାଷା ଦ୍ୱାରା
ପ୍ରକାଶକୁ ବ୍ୟାଖ୍ୟା ବୋଲାଯାଏ । ବୃତ୍ତି, ଭାଷ୍ୟ, ବାର୍ତ୍ତିକ,
ଟୀକା, ଟିପ୍ପଣୀ ଆଦି ବ୍ୟାଖ୍ୟାର ଅନେକ ଭେଦ ଅଛି । ]

ବ୍ୟାଖ୍ୟା କରିବା—ଦେ. କ୍ରି—୧ । ଉତ୍ତମରୂପେ ବୁଝାଇବା—1. To
Byākhyā karibā explain. ୨ । ଟୀକା କରିବା—
ব্যাখ্যাকরা व्याख्या करा 2. To annotate.

ବ୍ୟାଖ୍ୟା କର୍ତ୍ତା—ସଂ. ବି ଓ ବଣ—ଟୀକାକାର—
Byākhyā karttā Commentator; annotator.
(ବ୍ୟାଖ୍ୟାକର, ବ୍ୟାଖ୍ୟାକାରକ, ବ୍ୟାଖ୍ୟାକାରୀ—ଅନ୍ୟରୂପ )

ବ୍ୟାଖ୍ୟା ଗମ୍ୟ—ସଂ. ବଣ (ତତ୍ପୁ ତତ୍)—ଯାହା ବ୍ୟାଖ୍ୟାର ସହାୟତାରେ
Byākhyā gamya ବୁଝାଯାଇ ପାରେ—Comprensible
( ବ୍ୟାଖ୍ୟାବୋଧ୍ୟ—ଅନ୍ୟରୂପ ) with the help of annotations. ସଂ. ବି ( ହିନ୍ଦୁ ଆଇନ୍ )—ବାଦୀର
ଅଭିଯୋଗର ଯଥାଯୋଗ୍ୟ ଉତ୍ତର ନ ଦେଇ ଏଣୁ ତେଣୁ
ବୁଲାଇ କରି ଜବାବ ଦେବା (ହି. ଶ)—(Hindu law )
Prevaricating replies to the plaintiff's
allegations in a suit.

ବ୍ୟାଖ୍ୟା ଗ୍ରନ୍ଥ—ସଂ. ବି—ଟୀକାଗ୍ରନ୍ଥ—Glossary; commentary;
Byākhyā grantha ( ବ୍ୟାଖ୍ୟା ପୁସ୍ତକ—ଅନ୍ୟରୂପ ) key.

ବ୍ୟାଖ୍ୟାତ—ସଂ. ବଣ ( ବି+ଆ+ଖ୍ୟା ଧାତୁ+କର୍ତ୍ତୃ. ତ )—ବିବୃତ;
Byākyāta ଯାହା ବ୍ୟାଖ୍ୟା କରି ହୋଇଅଛି—Explained;
annotated.

ବ୍ୟାଖ୍ୟାତା—ସଂ. ବି ଓ ବଣ. (ପୁଂ) ( ବି+ଆ+ଖ୍ୟାଧାତୁ+କର୍ତ୍ତୃ. ତୃ,
Byākhyātā ୧ମା. ୧ବ )—ଅର୍ଥକର୍ତ୍ତା—Explaining;
(ବ୍ୟାଖ୍ୟାତ୍ରୀ—ସ୍ତ୍ରୀ) commenting; a commentator.

ବ୍ୟାଖ୍ୟେୟ—ସଂ. ବଣ ( ବି+ଆ+ଖ୍ୟା ଧାତୁ+କର୍ମ ଯ )—୧ ।
Byākhyeya ବର୍ଣ୍ଣନୀୟ—1. Describeable. ୨ । ଯାହା
ବ୍ୟାଖ୍ୟା କରିଯାଇ ପାରିବ—2. Capable of bein
explained or commented upon.
( ବ୍ୟାଖ୍ୟାତବ୍ୟ—ଅନ୍ୟରୂପ )

ବ୍ୟାଗ୍—ବୈଦେ. ବି (ଇଂ.ବାଗ୍)—ଥଳି—Bag.
Byāg ব্যাগ बैग

ବ୍ୟାଘଟ୍ଟନ—ସଂ. ବି ( ବି+ଆ+ଘଟ୍ଟ ଧାତୁ+ଭାବ ଅନ )—୧ ।
Byāghaṭṭana ଆଲୋଡ଼ନ; ମନ୍ଥନ—1. Churning.
ବ୍ୟାଘଟ୍ଟନ, ବ୍ୟାଘଟ୍ଟିତ } ବିଣ— ୨ । ଘୋଟା; ମର୍ଦ୍ଦନ; ବଟା—
2. Pestling; macerating.
[ ଦ୍ର—ଏହାର ଅପଭ୍ରଂଶ ଶବ୍ଦ ବଟା, ବାଟିବା,
ବାଟଣା । ]

ବ୍ୟାଘାତ—ସଂ. ବି. (ବି+ଆ+ହନ୍ ଧାତୁ+ଭାବ ଅ)—୧ । ବାଧା;
Byāghāta ବିଘ୍ନ; ପ୍ରତିବନ୍ଧକ—1. Obstruction; hindrance; obstacle. ୨ । ପ୍ରତିରୋଧ—2. Interruption; stoppage; cessation. ୩ । (ଜ୍ୟୋତିଷ)

୨୭ ଯୋଗ ମଧ୍ୟରୁ ଅଶୁଭ ସୂଚକ ତ୍ରୟୋଦଶ ଯୋଗ—3. (astrology) One of the 27 astrological conjunctions, the 1st 6 'Dandas' of which are inauspicious. [ଦ୍ର—ଏ ଯୋଗ ପଡ଼ିଥିବା ଦିବସର ପ୍ରଥମ ୬ ଦଣ୍ଡ ପରିତ୍ୟାଗ କରି କୌଣସି ଶୁଭ କାର୍ଯ୍ୟରେ ହାତ ଦେବା ଉଚିତ ।] ୪ । ପ୍ରହାର; ଆଘାତ—4. Blow; stroke. ୫ । କାବ୍ୟର ଅଳଙ୍କାର ବିଶେଷ—5. A figure of speech in rhetoric. [ଦ୍ର—କୌଣସି ଉପାୟ ଦ୍ୱାରା ଗୋଟିଏ ବସ୍ତୁ ଯେଉଁ ଆକାର ପ୍ରାପ୍ତ ହୋଇଅଛି ବା ଯେଉଁ ଫଳ ଘଟିଅଛି ସେହି ଉପାୟ ଦ୍ୱାରା ଉକ୍ତ ବସ୍ତୁର ଭିନ୍ନ ଆକାରପ୍ରାପ୍ତିର ବା ଭିନ୍ନ ଫଳ ଘଟିବାର ବର୍ଣ୍ଣନା ରୂପ ଅଳଙ୍କାର, ଯଥା—

ଯେଉଁ ପୁଷ୍ପାୟୁଧ ବିନ୍ଧିଲା ମୋ ହୃଦ

ବିନ୍ଧୁଛି ସେହି ତା ହୃଦ,

ମଣିଥିଲି ଯାକୁ ଅରି କରି, ଏବେ

ସେ ମୋର ଇଷ୍ଟ ସୁହୃଦ । ରାଧାନାଥ. ଯଯାତି

ଏହିପରି ବର୍ଣ୍ଣନାକୁ ବ୍ୟାଘାତ ଅଳଙ୍କାର କୋଲାଯାଏ ।]

**ବ୍ୟାଘାତକ**—ସ. ବିଣ. ପୁଂ (ବି+ଆ+ହନ୍ ଧାତୁ+କର୍ତ୍ତୃ.ଅକ)—୧ । Byāghātaka ବିଘ୍ନକାରୀ; ପ୍ରତିବନ୍ଧକ—Causing obstruction; hindering; obstructing.
ବ୍ୟାଘାତକାରୀ (କାରକ) } ଅନ୍ୟରୂପ
ବ୍ୟାଘାତୀ }
(ବ୍ୟାଘାତିକା, ବ୍ୟାଘାତକାରିଣୀ, ବ୍ୟାଘାତିନୀ—ସ୍ତ୍ରୀ)

**ବ୍ୟାଘ୍ର**—ସ. ବି, ପୁଂ (ବି+ଆ+ଘ୍ରା. ଧାତୁ=ଗନ୍ଧ ଗ୍ରହଣ କରିବା, Byāghra ଭକ୍ଷଣ କରିବା+କର୍ତ୍ତୃ ଅ)—୧ । ବିଡ଼ାଳ ଜାତୀୟ (ବ୍ୟାଘ୍ରୀ—ସ୍ତ୍ରୀ) ବନ୍ୟ ଓ ଜୀବଘାତୀ ବୃହତ୍ ଶ୍ୱାପଦ ବିଶେଷ;ବାଘ—1. Tiger. ୨ । ରକ୍ତ ଏରଣ୍ଡ ବୃକ୍ଷ; ନାଲି ଜଡ଼ାଗଛ—2. The red castor seed plant. ୩ । କରଞ୍ଜ (ବି. ଶ) (ଦେଖ)—3. Karañja (See). ବିଣ ଓ ବି—(ଅନ୍ୟ ଶବ୍ଦ ପରେ ପ୍ରଯୁକ୍ତ ହେଲେ, ଯଥା—ପୁରୁଷ ବ୍ୟାଘ୍ର, ନର ବ୍ୟାଘ୍ର)—ଏକ ଶ୍ରେଣୀର ବସ୍ତୁ ମଧ୍ୟରେ ଶ୍ରେଷ୍ଠ—Chief amongst many of a class; prominent; excellent.

**ବ୍ୟାଘ୍ରଗତି**—ସ. ବି—ଛନ୍ଦ ରଚନାବିଶେଷ; ଯେଉଁ ରଚନାରେ ପ୍ରତି Byāghragati ପଦର ଉପାନ୍ତ୍ୟ ଦୁଇ ଅକ୍ଷରଦ୍ୱାରା ପରବର୍ତ୍ତୀ ପଦ ଆରମ୍ଭ କରାଯାଇଥାଏ—A poetical composition in which the penultumate 2 letters of every line are the first 2 letters in the following line. [ଦ୍ର—ଉଦାହରଣ,—ଉପେନ୍ଦ୍ରଭଞ୍ଜ, ବୈଦେହୀଶବିଳାସ ୧୯ଶ ଛାନ୍ଦ ୧୦ମ ପଦଠାରୁ ୧୬ଶ ପଦ ପର୍ଯ୍ୟନ୍ତ:—ବ୍ୟାଘ୍ରଗତିରେ ସର୍ଧାରେ କହନ୍ତି ବିରସେ, ଶାଇତରୁରେ ତରୁଣୀ କୁସୁମ ବିବଶେ; ବର ଉନ୍ନତ ଉନ୍ନତ ଉପମା ବିହୀନ, ବିହି ତ କରିଛି ବହିକଲୁର ବଚନ । ୧୦ମ ପଦ । ଭଞ୍ଜଙ୍କର ଚିତ୍ରକାବ୍ୟ ବନ୍ଧୋଦୟରେ ଛନ୍ଦରଚନାମାନଙ୍କ ନାମ ତାଲିକାରେ ବ୍ୟାଘ୍ରଗତିର ନାମ ନାହିଁ, 'ଶାର୍ଦ୍ଦୂଳ କ୍ରୀଡ଼ିତ'ର ନାମ ଅଛି; କିନ୍ତୁ ଉକ୍ତ ଗ୍ରନ୍ଥରେ 'ଶାର୍ଦ୍ଦୂଳ କ୍ରୀଡ଼ିତ' ରଚନାର ଉଦାହରଣ ନାହିଁ । ବାଘ ଶିକାର ଉପରେ ପଡ଼ିବା ପୂର୍ବରୁ ଟିକିଏ ପଛକୁ ଘୁଞ୍ଚିଯାଏ ଓ ପରେ ଶିକାର ଆଡ଼କୁ ଅଗ୍ରସର ହୁଏ; ଏହି ଲକ୍ଷଣରୁ ଏ ରଚନାର ନାମ ବ୍ୟାଘ୍ରଗତି ହୋଇଅଛି । ସାହିତ୍ୟ ଦର୍ପଣ ଓ ଅଳଙ୍କାର କୌସ୍ତୁଭ ପ୍ରଭୃତି ଗ୍ରନ୍ଥମାନଙ୍କରେ ଏ ଶବ୍ଦର ଉଲ୍ଲେଖ ନାହିଁ ।]

**ବ୍ୟାଘ୍ର ଚର୍ମ**—ସ. ବି (୬ଷ୍ଠୀ ତତ୍)—ବାଘର ଚମଡ଼ା; ବାଘ ଛାଲ—Byāghra charma Tiger-hide

**ବ୍ୟାଘ୍ର ନଖ**—ସ. ବି. (୬ଷ୍ଠୀ ତତ୍)—୧ । ବାଘ ନଖ; ବାଘର ନଖ—Byāghra nakha 1. Tiger's claw. ୨ । (ବହୁବ୍ରୀହି) (ବ୍ୟାଘ୍ର ନଖର—ଅନ୍ୟରୂପ) ସ୍ନୁହୀ ବା ସିହୁଣ୍ଡଗଛ; ଛିଙ୍କଣ୍ଟା ସିହୁଣ୍ଡ—2. Euphorbia (with strong hooked thorns on the trunk). ୩ । ହାରର ମଝିରେ ଲଗା ଯିବା ବାଘ ନଖଉପରେ ସୁନା ବା ରୁପା ଛାଉଣି ହୋଇଥିବା ଅଳଙ୍କାର ବିଶେଷ—3. An ornament shaped like tiger's claw put in the middle of a necklace and sometimes consisting of tiger claws overlaid with gold or silver. ୪ । ନଖୀ ନାମକ ଗନ୍ଧ ଦ୍ରବ୍ୟ—4. A kind of scent; onyx; Unguis Odoratus.

**ବ୍ୟାଘ୍ର ନଖକ**—ସ.ବି (ବ୍ୟାଘ୍ର ନଖ+କ)—ନଖ ଚିହ୍ନ; ନଖକ୍ଷତ—Byāghra nakhaka Scratches made by the nail.

**ବ୍ୟାଘ୍ରନଖୀ**—ସଂ. ବି—ନଖୀ ନାମକ ଗନ୍ଧଦ୍ରବ୍ୟ—ନଖୀ (ଦେଖ)—Byāghranakhī Nakhī (See) (ହରେକୃଷ୍ଣ ଦ୍ରବ୍ୟଗୁଣ ।)
ବ୍ୟାଘ୍ରାୟୁଧ } —ଅନ୍ୟରୂପ
ବ୍ୟାଘ୍ରପୃଷ୍ଠ }

**ବ୍ୟାଘ୍ରନାୟକ**—ସଂ. ବି (ଉପପଦ ତତ୍; ବ୍ୟାଘ୍ର+ନାୟକ=Byāghranāyaka ଯେ ନେଇଯାଏ)—ଶୃଗାଳ—Jackal.
ବ୍ୟାଘ୍ରନାଦକ } —ଅନ୍ୟରୂପ
ବ୍ୟାଘ୍ରସେବକ }

**ବ୍ୟାଘ୍ରପାଦ(ତ୍,ଦ୍)**—ସଂ. ବି (ବ୍ୟାଘ୍ର ପରି ପାଦବିଶିଷ୍ଟ)—Byāghrapāda(t,d) ୧ । ସ୍ମୃତିଶାସ୍ତ୍ରପ୍ରଣେତା ମୁନିବିଶେଷ—1. Name of a sage [ଦ୍ର—ଏହାଙ୍କ ଗୋତ୍ରକୁ 'ବୈୟାଘ୍ରପାଦ(ଦ୍ୟ)' କୋଲାଯାଏ । ଖ୍ରୀଷ୍ଟଦେବ ଏହି ଗୋତ୍ରରେ ଜନ୍ମଗ୍ରହଣ କରିଥିଲେ । ଏ ଋଷି ବଶିଷ୍ଠଙ୍କ ଗୋତ୍ରରେ ଜନ୍ମଗ୍ରହଣ କରିଥିଲେ ଓ ଋଗ୍‌ବେଦର କେତେକ ମନ୍ତ୍ରର ଏ ଦ୍ରଷ୍ଟା ଥିଲେ ।] ୨ । ଭଇଞ୍ଚ (ଦେଖ) 2. Bhaiñchi (See)

**ବ୍ୟାଘ୍ର ପୁଚ୍ଛ**—ସଂ. ବି (ବହୁବ୍ରୀହି; ବ୍ୟାଘ୍ର+ପୁଚ୍ଛ)—୧ । ଏରଣ୍ଡ ଗଛ—Byāghra puchchha 1. Castor seed plant. ୨ । ବାଇଗବା ଗଛ—2. Jatropha Curcas (plant). ୩ । (୬ଷ୍ଠୀ ତତ୍) ବାଘର ଲାଞ୍ଜ—3. The tail of a tiger.

ବ୍ୟାଘ୍ର ବର—ଦେ. ବି—ମହାବଳ ବାଘ—The Royal Bengal
Byāghra bara tiger. [ ଉ—ବ୍ୟାଘ୍ର ବର ଶବର ମାରନ୍ତି ଗଳ ଯୋଗେ ଯେ । ଉଞ୍ଜ. ବୈଦେହୀଶ-ବିଳାସ । ]

ବ୍ୟାଘ୍ର ଭୀତି—ସଂ. ବି ( ୫ମୀ ତତ୍ ) —୧ । ବ୍ୟାଘ୍ର ଯୋଗୁଁ ଭୟ—
Byāghra bhīti 1. Fear of tiger. ୨ । ବାଘ ଭୟ;
( ବ୍ୟାଘ୍ରଭୀତ—ବିଣ ) କୌଣସି ଅଞ୍ଚଳରେ ବ୍ୟାଘ୍ରର ଉପଦ୍ରବ ହେବାରୁ ସେହି ଅଞ୍ଚଳର ଲୋକଙ୍କ ମନରେ ଜନ୍ମିବା ଭୟ—2. Fear of tiger's attack in the minds of people at a tiger-infested locality.

ବ୍ୟାଘ୍ର ମେରୁ—ଦେ. ବି—ରାଜପୁତାନାର ପର୍ବତ ବିଶେଷ—Name of
Byāghra meru a mountain in Rajputana.
[ ଉ—ବିବାଦିତ କରୁଥିଲେ ଅଗ୍ରବଳୀ, ବ୍ୟାଘ୍ରମେରୁ ଗାସିସ୍ଥାର ଗହଳ । ନନ୍ଦକିଶୋର. କୃଷ୍ଣକୁମାରୀ । ]

ବ୍ୟାଘ୍ର ଲୋମ—ସଂ. ବି ( ବ୍ୟାଘ୍ର+ଲୋମନ୍; ୯ମା. ୧ବ )—୧ ।
Byaghra loma ( ୬ଷ୍ଠୀ ତତ୍ ) ବାଘ ଦେହର ଲୋମ—
1. The fur on the body of a tiger. ୨ ।
( ବହୁବ୍ରୀହି ) ମୁଛ ( ହ୍ର. ଶ )—2. Mustaches.

ବ୍ୟାଘ୍ର ଶାବକ—ସଂ. ବି ( ୬ଷ୍ଠୀ ତତ୍; ବ୍ୟାଘ୍ର+ଶାବକ )—ବାଘଛୁଆ
Byāghra śābaka —Tiger-cub.
(ବ୍ୟାଘ୍ର ଶିଶୁ—ଅନ୍ୟରୂପ)

ବ୍ୟାଘ୍ର ହସ୍ତ—ସଂ. ବି ( ବହୁବ୍ରୀହି )—ନାଲି ଗବ ଗଛ—
Byāghra hasta The red variety of castor-
[ବ୍ୟାଘ୍ରଦଳ(ଳା), ବ୍ୟାଘ୍ରତଳ—ଅନ୍ୟରୂପ] seed plant.

ବ୍ୟାଘ୍ରାସ୍ୟ—ସଂ. ବି ପୁଂ ( ବହୁବ୍ରୀହି; ବ୍ୟାଘ୍ରର ଆସ୍ୟ=ମୁଖ ପରି ଆସ୍ୟ
Byāghrāsya ଯାହାର )—ମାର୍ଜାର; ବିରାଡ଼ି—Cat. ବିଣ—
ବ୍ୟାଘ୍ରମୁଖ } ଅନ୍ୟରୂପ ବ୍ୟାଘ୍ର ପରି ମୁଖ ବିଶିଷ୍ଟ; ବାଘୁଆ ମୁହାଁ—
ବ୍ୟାଘ୍ରବକ୍ତ୍ର } Having a face like tiger's.

ବ୍ୟାଘ୍ରୀ—ସଂ. ବି. ସ୍ତ୍ରୀ ( ବ୍ୟାଘ୍ର+ଈ )—୧ । ବାଘୁଣୀ—1.
Byāghrī Tigress. ୨ । କଣ୍ଟକାରୀ; ଅଙ୍କରାନ୍ତି—2. A medicinal plant; Solanum xanthocarpum.
[ ବ୍ୟୁ—ଏହାର କଣ୍ଟା ବାଘ ନଖ ପରି ଅଙ୍କୁଶିଆ ଅଟେ । ]
୩ । ନଖୀ ନାମକ ଗନ୍ଧ ଦ୍ରବ୍ୟ ( ହ୍ର. ଶ )—3. Onyx; shell.

ବ୍ୟାଘ୍ରୀ ତୈଳ—ସଂ. ବି—ଆୟୁର୍ବେଦୋକ୍ତ ତୈଳ ବିଶେଷ; ପୀନସଆଦି
Byāghrī taila ନାସା ରୋଗର ଉପକାରୀ ତୈଳ—
A medicinal oil prepared as an antidote against polypus of the nose.

ବ୍ୟାଙ୍କ୍—ବୈଦେ. ବି (ଇଂ.ବାଙ୍କ୍)—୧ । ଗଚ୍ଛିତ ଧନର ଭଣ୍ଡାର—1. A
Byāṅk bank for money. ୨ । ଖଜଣାଖାନା—
ବ୍ୟାଙ୍କ୍ 2. Treasury. ୩ । ଯେଉଁ ବ୍ୟବସାୟୀ କୋମ୍ପାନୀ
बैंक ସାଧାରଣଙ୍କଠାରୁ ଟଙ୍କା ଉପାର୍ଜନ୍ କରି ସୁଧରେ ଟଙ୍କା ଲଗାନ୍ତି—3. A firm or company of bankers.
( ଯଥା—ସେଭିଙ୍ଗ୍ସ୍ ବ୍ୟାଙ୍କ୍, ଇମ୍ପିରିୟଲ୍ ବ୍ୟାଙ୍କ୍, ବେଙ୍ଗଲ୍ ବ୍ୟାଙ୍କ୍, କୋଅପରେଟିଭ୍ ବ୍ୟାଙ୍କ୍ ଇତ୍ୟାଦି, ଏହି ଇଂରାଜୀ ବ୍ୟାଙ୍କ୍ ଶବ୍ଦ ସଙ୍ଗେ ଅନେକ ଦେଶୀ ଓ ବିଦେଶୀ ଶବ୍ଦ ଯୁକ୍ତ ହୋଇ ଭାଷାରେ ଚଳନ୍ତିଣି ଯଥା—ବ୍ୟାଙ୍କ୍‌ବିଲ୍‌ଗ୍ରାମ, ବ୍ୟାଙ୍କ ଛୁଟି, ବ୍ୟାଙ୍କ୍ ଅଫିସ ଇତ୍ୟାଦି ।)

ବ୍ୟାଙ୍କ୍ ନୋଟ୍—ବୈଦେ. ବି ( ଇଂ )—ମୁଦ୍ରା ପରିବର୍ତ୍ତରେ ବ୍ୟାଙ୍କରୁ
Byāṅk not ଲୋକଙ୍କୁ ଦିଆଯିବା ଟଙ୍କା ପାଇବାର କାଗଜ ହୁଣ୍ଡି—
ব্যাঙ্কনোট बैंकनोट Bank note.

ବ୍ୟାଙ୍କ୍ ବାବୁ—ଦେ. ବି—ବ୍ୟାଙ୍କ୍‌ର ପ୍ରଧାନ ଦେଶୀୟ କର୍ମଚାରୀ—
Byāṅk bābu The Indian head officer of a
ব্যাঙ্কবাবু बैंकबाबु bank.

ବ୍ୟାଙ୍କର—ବୈଦେ. ବି (ଇଂ)—ଯେଉଁ ମହାଜନ ସୁଧରେ ସାଧାରଣଙ୍କ
Byāṅkar ସଙ୍ଗେ ଟଙ୍କା ଦିଆ ନିଆ କରେ ଓ ସାଧାରଣଙ୍କଠାରୁ
ব্যাঙ্কর बैंकर ଟଙ୍କା ଉପାର୍ଜନ୍ କରେ—A banker.

ବ୍ୟାଜ—ସଂ. ବି (ବି+ଅଜ. ଧାତୁ=ଗମନ କରିବା+କରଣ ଅ )—
Byāja ୧ । ବାହାନା; କପଟ; ଛଳ—1. Pretext; trick; deceit; pretence. ୨ । କାଳକ୍ଷେପ—2. Delay.
୩ । ବାଧା; ବିଘ୍ନ—3. Obstacle; obstruction.
୪ । ବିଆଜ; ସୁଦ—4. Interest on money lent.
[ ବ୍ୟୁ—ଏଥିରୁ ଅପଭ୍ରଂଶ ଶବ୍ଦ ବିଆଜ । ]

ବ୍ୟାଜ ଖାଇବା—ଦେ.କ୍ରି (ଗୁଣାର୍ଥକ)—ଟଙ୍କାର ସୁଧ ଭୋଗ କରିବା—
Byāja khāibā সুদখাওয়া विआजखाना To live on usury.

ବ୍ୟାଜଖୋର—ଦେ. ବିଣ ଓ ବି (ସଂ. ବ୍ୟାଜ+ଫା.ପ୍ରତ୍ୟୟ ଖୋର୍;
Byājakhor ଗୁଣାର୍ଥକ)—ଯେ ଖାତକଠାରୁ ଅଧିକ ସୁଧ ନିଏ—
সুদখোর विआजखोर (ବ୍ୟାଜଖୋରୀ—ସ୍ତ୍ରୀ ଓ ବି) Usurer.
( ବ୍ୟାଜଖିଆ—ଅନ୍ୟରୂପ )

ବ୍ୟାଜ ସ୍ତୁତି—ସଂ. ବି—୧ । କପଟ ସ୍ତୁତି; କପଟ ପ୍ରଶଂସା; ଖୋସାମଦ୍—
Byāja stuti 1. Flattery. ୨ । କାବ୍ୟର ଅଳଙ୍କାର ବିଶେଷ—2. A figure of rhetoric. [ ବ୍ୟୁ—ଏଥିରେ ନିନ୍ଦାବାକ୍ୟଦ୍ୱାରା ସ୍ତୁତି ଓ ସ୍ତୁତିବାକ୍ୟଦ୍ୱାରା ନିନ୍ଦା ସୂଚିତ ହୁଏ । ଆପାତତଃ ପ୍ରଶଂସାମାନ ନିନ୍ଦା ବା ସ୍ତୁତି ଯେବେ ପରିଶେଷରେ ବିପରୀତ ଭାବରେ ପର୍ଯ୍ୟବସିତ ହୁଏ ତେବେ ବ୍ୟାଜସ୍ତୁତି ଅଳଙ୍କାର ହୁଏ । ସ୍ତୁତିରୁ ନିନ୍ଦା ଯଥା—ସାହେବ ପୋଷାକ କେହି ଅବା ଚିହ୍ନ, ସର୍ବତେ କହଇ ବଙ୍କା ବଙ୍କା ହିନ୍ଦି, ଥରେ ଥରେ ହସି ସାହେବ ଠାଣିରେ ପୋଛଇ ବଦନ ରୁମାଲ କାନରେ । ରାଧାନାଥ. ଦରବାର । ନିନ୍ଦାରୁ ସ୍ତୁତି ଯଥା— ତୁହେ ଆବାସ ଘର, ମାନସ ସରୋବର,, ଶୁଣିଲି କମଳେଶ୍ୱର ଦୟ; କ୍ଷଣେ ନ ରହି ଧାଇଁ, ଗଲଟି କାହିଁପାଇଁ, ଆଉ ନ ଥିଲେ କେବେ ଦେବ ହେ । କୃପାକଥ । ମନ ଜାଣିବା ଲୋକେ ବଶ, ତୁଥିନ୍ତୁ ସବୁ ଆଶୀବିଷ, ମନ୍ତ୍ରାଧୀନ ତ ଭୁଜଙ୍ଗେ, କାହିଁକି ଅଛ ଦମ୍ଭେ,ଭୁଜଙ୍ଗ ତୁଚ୍ଛ ଆଉ କସ ହେ । ମହାପ୍ରଭୁ ! କବିସୂର୍ଯ୍ୟ. କବିତା । ଲୁଳମଣି· ଅଳଙ୍କାରତରଙ୍ଗିଣୀ ।]

ବ୍ୟାଜୋକ୍ତି—ସଂ. ବି—୧ । ବ୍ୟଙ୍ଗୋକ୍ତି; ବକ୍ରୋକ୍ତି; କଥାର ଛଳ—
Byājokti 1. Irony; a covert expression; innuendo.
୨ । ବ୍ୟାଜସ୍ତୁତି—2. Covert flattery. ୩ । କାବ୍ୟର ଅଳଙ୍କାର ବିଶେଷ—3. A figure of rhetoric.
[ ଦ୍ର—କୌଣସି ଛଳନାଦ୍ୱାରା ଉଦ୍ଭିନ୍ନ ବିଷୟର ଗୋପନକୁ ବ୍ୟାଜୋକ୍ତି ବୋଲ୍ଲଯାଏ ।

ଯଥା—ସଖୀଙ୍କ ସଙ୍ଗରେ ଗ୍ଭଲିବାକୁ ବାଳା
ପାଦରେ ନ ଥିଲା ଶକ୍ତି,
ଗ୍ଭହୁଁ ଗ୍ଭହୁଁ ଦୃଷ୍ଟି ଆକର୍ଷିତ ହେଲା
ପୁନଶ୍ଚ ନୃପତି ପ୍ରତି ।
କୁରୁବକ କଣ୍ଟା ଲାଗି ଗଲା ବୋଲି
ସଖୀଙ୍କି କହିଲା ଛଳ,
ପ୍ରିୟଂବଦା ବୋଲେ କୁରୁବକ କଣ୍ଟା
ମୀନାକ୍ଷି ! ଗଲାକ ଗଳ ।

ଗଙ୍ଗାଧର ମେହେର. ପ୍ରଣୟ ବଲ୍ଲରୀ ।—କୁଳମଣି ଅଳଙ୍କାର ତରଙ୍ଗିଣୀ ।]

ବ୍ୟାଟ୍—ବୈଦେ. ବି (ଇଂ, ବାଟ୍)—୧ । ପେଣ୍ଡୁ ବାଡ଼େଇବାର ପଟା—
Byāṭ ব্যাট बैट 1. Bat. ୨ । ବାଜୁଡ଼ି; ବାଦୁଡ଼ି—2. Bat.

ବ୍ୟାଟ୍ ବଲ୍—ବୈଦେ. ବି (ଇଂ. ବାଟ୍+ବଲ)—ପେଣ୍ଡୁ ଓ ପେଣ୍ଡୁ ବାଡ଼ଆ
Byāṭ bal ପଟା; ଦଣ୍ଡ ଓ କନ୍ଦୁକ—Bat and ball.
ব্যাট বল बैट बल

ବ୍ୟାଟେ(ଟା)ରି—ବୈଦେ. ବି (ଇଂ)—୧ । ତଡ଼ିତୁତ୍ପାଦକ ଯନ୍ତ୍ରବିଶେଷ—
Byāṭe(ṭā)ri 1. Electric battery. ୨ । ତୋପଶ୍ରେଣୀ
ব্যাটারী बाटरी ଓ ତାହା ଚଳାଇବା ପାଇଁ ନିଯୁକ୍ତ ସୈନ୍ୟ ବ୍ୟୂହ—
2. Battery; battalion.

ବ୍ୟାଡ଼—ସଂ. ବି (ବି+ଆ+ଅଡ଼ ଧାତୁ=ଉଦ୍ୟତ ହେବା+କର୍ତ୍ତୃ. ଅ)—
Byarḍa ୧ । ସର୍ପ—1. Snake; serpent. ୨ । ଶ୍ୱାପଦ; ମାଂସାହାରୀ ହିଂସ୍ର ଜନ୍ତୁ—2. A carnivorous beast; a beast of prey. ୩ । ଇନ୍ଦ୍ର—3. Indra. ୪ । ପ୍ରତାରକ; ଶଠ—4. A cheat; deceiver; knave. ୫ । ବାଘ (ହୁ. ଶ)—5. Tiger. ସଂ. ବିଣ ପୁଂ—ପ୍ରବଞ୍ଚକ—Deceitful; fraudulent.

ବ୍ୟାଡ଼ି—ସଂ. ବି. (ନାମ) ( ବ୍ୟାଡ଼+ଅପତ୍ୟାର୍ଥେ. ଇ )—ସଂସ୍କୃତ ଶବ୍ଦ-
Byārḍi କୋଷ ଓ ବ୍ୟାକରଣକାର ମୁନି ବିଶେଷ—
Name of a sage, Sanscrit lexicographer and grammarian.

ବ୍ୟାଣ୍ଡ୍—ବୈଦେ ବି. ( ଇଂ. ବାଣ୍ଡ୍ )—ଐକତାନକ ମିଳିତ ବାଜା
Byāṇḍ ବଜାଇବାର ଦଳ—A musical band
ব্যাণ্ড बैंड

ବ୍ୟାଣ୍ଡ୍ ବାଜା—ଦେ. ବି. ( ଇଂ ବ୍ୟାଣ୍ଡ୍ ଓ ସଂ. ବାଦ୍ୟ )—
Byāṇḍ bājā ପାଶ୍ଚାତ୍ୟ ଦେଶୀୟ ଐକତାନକ ବାଦ୍ୟ—Band.
ব্যাণ্ড বাজা बैंड बाजा

ବ୍ୟାଣ୍ଡ୍ ମାଷ୍ଟର୍—ବୈଦେ. ବି. (ଇଂ)—ଐକତାନକ ବାଦକମାନଙ୍କର
Byāṇḍ māshṭar ନେତା ବା ଗୁରୁ—Band master.
ব্যাণ্ড মাষ্টর बैंड मास्टर

ବ୍ୟାଣ୍ଡ୍ ଷ୍ଟ୍ୟା(ଷ୍ଟା)ଣ୍ଡ୍—ବୈଦେ. ବି. ( ଇଂ )—ଯେଉଁ ମଣ୍ଡପରେ ବ୍ୟାଣ୍ଡ୍
Byāṇḍ-shṭyā(shṭā)ṇḍ ବାଜା ବଜାଇବା ଦଳ ବାଜା-
ব্যাণ্ড ষ্টাণ্ড बैंड स्टैंड ବଜାନ୍ତି—Band stand.

ବ୍ୟାଣ୍ଡେଜ୍—ବୈଦେ. ବି. (ଇଂ ବାଣ୍ଡେଜ୍)—ବାଣ୍ଡେଜ୍ ( ଦେଖ )
Byāṇḍej Bāṇḍej ( See )
ব্যাণ্ডেজ बैंडेज

ବ୍ୟାତ୍ତ—ସଂ. ବିଣ. (ବି+ଆ+ଅଦ୍ ଧାତୁ=ଗମନ କରିବା+କର୍ମ. ତ;
Byātta ଅଥବା ବି+ଆ+ଦା ଧାତୁ+କର୍ମ. ତ)—୧ । ବିସ୍ତାରିତ; ବିସ୍ତୃତ—1. Expanded; extended. ୨ । ମେଲା—2. Agape; widened. ବି—ମେଲା କରିଥିବା ପାଟି—Opened mouth.

ବ୍ୟାତ୍ତ ମୁଖ—ସଂ. ବିଣ. ପୁଂ, (ବହୁବ୍ରୀହି; ବ୍ୟାତ୍ତ+ମୁଖ)—ଯାହା ପାଟି
Byātta mukha ମେଲା ହୋଇଥାଏ—Having one's
(ବ୍ୟାତ୍ତାନନ—ଅନ୍ୟରୂପ) mouth agape. ବି (କର୍ମଧା)—
ବ୍ୟାତ୍ତ ମୁଖୀ } ସ୍ତ୍ରୀ ମେଲା ହୋଇଥିବା ପାଟି—Opened
ବ୍ୟାତ୍ତାନନା } mouth.

ବ୍ୟାତ୍ୟୁ(ତ୍ତ୍ୟୁ)କ୍ଷୀ—ସଂ. ବି. (ବି+ଅତି+ଉକ୍ଷ୍ ଧାତୁ=ସେଚନ କରିବା+
Byātyu(ttyu)kshī ଭାବ. ଅ+ଈ )—ଜଳକ୍ରୀଡ଼ାବିଶେଷ; ପାଣିରେ ପଶି ପରସ୍ପର ପାଣି ଫୋପଡ଼ା ଫୋପଡ଼ି ହେବା କ୍ରୀଡ଼ା—A sport while bathing and mutually splashing each other with water.

ବ୍ୟାଦାନ—ସଂ. ବି. (ବି+ଆ+ଦା. ଧାତୁ+ଭାବ. ଅନ)—୧ ।
Byādāna ପ୍ରସାର; ବିସ୍ତାର—1. Expansion. ୨ । ମେଲା କରିବା—2. Unfolding; gaping. ୩ । ଉଦ୍ଘାଟନ—3. Opening.

ବ୍ୟାଦିତ—ସଂ. ବି ( ବି+ଆ+ଦା. ଧାତୁ+କର୍ମ ତ )—୧ । ପ୍ରସାରିତ;
Byādita ବିସ୍ତାରିତ—1. Expanded; unfolded. ୨ । ମେଲା କରାଯାଇଥିବା; ଉଦ୍ଘାଟିତ—2. Opened

ବ୍ୟାଦିଶ—ସଂ. ବି.—ବିଷ୍ଣୁଙ୍କର ଏକ ନାମ (ହୁ. ଶ)—A name of
Byādiśa Bishṇu.

ବ୍ୟାଧ—ସଂ. ବି (ବ୍ୟଧ. ଧାତୁ=ବିନ୍ଧିବା, ବଧ କରିବା+କର୍ତ୍ତୃ. ଅ)—
Byādha ୧ । ମୃଗବଧ ବୃତ୍ତିକାରୀ ଜାତି ବିଶେଷ; ଶବର; ହେଳା—1. A caste of hunters. ୨ । ଶିକାରୀ; ବିଗ୍ଭିତ—2. A huntsman; fowler. ୩ । ନିଷ୍ଠୁର ବ୍ୟକ୍ତି—3. A cruel man. ୪ । ଦୁଷ୍ଟ ବ୍ୟକ୍ତି—4. Wicked person.

ବ୍ୟାଧ ଭୀତ—ସଂ. ବି. ବହୁବ୍ରୀହି—ମୃଗ; ହରିଣ—Stag; deer.
Byādha bhīta ସଂ. ବିଣ. ପୁଂ ( କର୍ମୀ ତତ୍ )—ବ୍ୟାଧ ଯୋଗୁଁ ଭୟପ୍ରାପ୍ତ—Fearful of the tiger.

ବ୍ୟାଧା—ସଂ. ବି (ବି+ଆ+ଧା. ଧାତୁ=ଧାରଣ କରିବା+ଅ+ଆ)—
Byādhā ଅଶନି; ବଜ୍ର—Thunder.

ବ୍ୟାଧି+ସ.ବି (ବି+ଆ+ଧା. ଧାତୁ=ଧାରଣ କରିବା+କର୍ମ. ଇ; କମ୍ବା
Byādhi ପୀଡ଼ିତ ହେବା+କରଣ ଇ )—୧ । ପୀଡ଼ା; ରୋଗ—1. Disease; illness; sickness. ୨ । କୁଷ୍ଠରୋଗ-2. Leprosy.୩ । ଅପରିତୃପ୍ତ ନାୟକର ଅବସ୍ଥା ବା ଦଶା-ବିଶେଷ—3. One the states of an unsatiated lover. [ଦ୍ର—ଏହାର ଅପଭ୍ରଂଶ ଶବ୍ଦ ବିଅଧି)—ଦେ. ବି—୧ । ମନ୍ଦ ଅଭ୍ୟାସ—1, A bad habit. ୨ । ଗୁରୁତର ପୀଡ଼ା—2.Serious illness.

ବ୍ୟାଧିକ—ଦେ. ବଣ—(ସ. ବ୍ୟାଧିଯୁକ୍ତ)—ରୋଗୀ; ପୀଡ଼ିତ (ବ୍ୟକ୍ତି)—
Byādhika Sick (person). (ଉ—ଦୁର୍ଲଭ ଦରିଦ୍ର ବ୍ୟାଧିକ, କେବଳ ଶଶାଙ୍କେ କଳଙ୍କ । ଭୂପତି. ପ୍ରେମପଞ୍ଚାମୃତ ।)

ବ୍ୟାଧିକର—ସ. ବଣ—ଯାହା ଦେହରେ ପୀଡ଼ା ଜନ୍ମାଏ—Causing
Byādhikara (ବ୍ୟାଧିକରୀ—ସ୍ତ୍ରୀ) sickness.
(ବ୍ୟାଧିକାରକ; ବ୍ୟାଧିଜନକ—ଅନ୍ୟରୂପ)

ବ୍ୟାଧି ଗ୍ରସ୍ତ—ସ.ବଣ. ପୁଂ ( ୭ମୀ ତତ୍, ବ୍ୟାଧି+ଗ୍ରସ୍ତ )—ପୀଡ଼ାଗ୍ରସ୍ତ,
Byādhi grasta ପୀଡ଼ିତ—Sick; ill; seized by a
(ବ୍ୟାଧିଗ୍ରସ୍ତା—ସ୍ତ୍ରୀ) disease,

ବ୍ୟାଧି ଘାତ—ସ. ବି ( ବ୍ୟାଧି+ହନ୍ ଧାତୁ=ନାଶ କରିବା+କର୍ତ୍ତୃ,
Byādhi ghāta ଅ )—ସୁନାରୀ ଗଛ—Cassia Fistula; Cathartocarpus Fistula, (tree).
( ବ୍ୟାଧିଘ୍ନ, ବ୍ୟାଧିଘାତକ, ବ୍ୟାଧିଘାତୀ—ଅନ୍ୟରୂପ )

ବ୍ୟାଧି ଘୋଟିବା—ଦେ. ବି —ଅତ୍ୟନ୍ତ ପୀଡ଼ାଗ୍ରସ୍ତ ହେବା—Being
Byādhi ghoṭibā very sick; being overtaken or
ব্যাধি ধরা व्याधि पकडना seized by a disease.
(ବ୍ୟାଧି ଧରିବା, ବ୍ୟାଧି ଘୋଟିଯିବା, ବ୍ୟାଧି ପଶିବା—ଅନ୍ୟରୂପ)

ବ୍ୟାଧିତ—ସ. ବଣ. ପୁଂ—(ବ୍ୟାଧି+ସଞ୍ଜାତାର୍ଥେ ଇତ)—ପୀଡ଼ିତ—
Byādhita (ବ୍ୟାଧିତା—ସ୍ତ୍ରୀ) —Ill; sick

ବ୍ୟାଧିମୁକ୍ତ—ସ. ବଣ. ପୁଂ ( ୫ମୀ ତତ୍ )—ଆରୋଗ୍ୟ ଲାଭ କରିଥିବା
Byādhimukta Recovered from illness.
(ବ୍ୟାଧିମୁକ୍ତା—ସ୍ତ୍ରୀ) (ବ୍ୟାଧିମୁକ୍ତି—ବି)

ବ୍ୟାଧି ଶୂନ୍ୟ—ସ. ବଣ (୭ମୀ ତତ୍)—ରୋଗଶୂନ୍ୟ; ସୁସ୍ଥ—
Byādhi śunya Healthy; hale; free from illness.
(ବ୍ୟାଧିହୀନ, ବ୍ୟାଧିରହିତ—ଅନ୍ୟରୂପ)

ବ୍ୟାଧୁ(ଧୂ)ତ — ସ. ବଣ (ବି+ଆ+ଧୂ. ଧାତୁ=କମ୍ପିବା+କର୍ମ. ତ) —
Byādhu(dhu)ta କମ୍ପିତ; ଚଳିତ; ଆନ୍ଦୋଳିତ—Shaken; made to tremble; agitated

ବ୍ୟାଧୂତି—ସ. ବି (ବି+ଆ+ଧୂ. ଧାତୁ=କର୍ମ ବା+ଭାବ. ତି)—
Byādhūti କମ୍ପନ—Shaking; trembling.

ବ୍ୟାଧୂନନ—ସ. ବି (ବି+ଆ+ଧୂ. ଧାତୁ ଣିଜନ୍ତ+ଭାବ. ଅନ)—
Byādhūnana ୧ । କମ୍ପାଇବା—1. Causing to tremble. ୨ । (+ଧୂ ଧାତୁ+କର୍ମ ବା ଭାବ. ଅନ)—କମ୍ପିବା; କମ୍ପନ—2. Trembling; shaking.

ବ୍ୟାନ—ସ. ବି (ବି+ଅନ୍. ଧାତୁ=ବଞ୍ଚିବା+ଭାବେ. ଅ)—ଶରୀର
Byāna ମଧ୍ୟସ୍ଥ ପାଞ୍ଚଗୋଟି ବାୟୁ ମଧ୍ୟରୁ ଏକତମ—One of the 5 vital airs of the body. [ଦ୍ର—ପ୍ରାଣ ପଞ୍ଚବାୟୁର ସମଷ୍ଟି ଅଟେ; ଏ ସବୁ ଶରୀରର ବିଭିନ୍ନ ଅଂଶରେ ଥାଏ—୧ ହୃଦସ୍ଥିତ ବାୟୁର ନାମ 'ପ୍ରାଣ', ୨ ଗୁହ୍ୟ ଦେଶସ୍ଥ ବାୟୁର ନାମ 'ଅପାନ', ୩ ନାଭି ସମୀପସ୍ଥ ବାୟୁର ନାମ 'ସମାନ', ୪ କଣ୍ଠଦେଶସ୍ଥ ବାୟୁର ନାମ 'ଉଦାନ', ୫ ସର୍ବଶରୀରଗାମୀ ବାୟୁର ନାମ 'ବ୍ୟାନ') ।

ବ୍ୟାପକ—ସ. ବଣ (ବି+ଆପ. ଧାତୁ=ପାଇବା+କର୍ତ୍ତୃ. ଅକ)—
Byāpaka ୧ । ବ୍ୟାପ୍ତିଶୀଳ; ଯାହା ବ୍ୟାପିଥାଏ; ସର୍ବାଙ୍ଗରେ
( ବ୍ୟାପିକା—ସ୍ତ୍ରୀ ) ବ୍ୟାପିଥିବା; ବିସ୍ତାରିତ—1. Pervading; spreading; diffused. ୨ । ଆଚ୍ଛାଦକ-2. Covering. ୩ । ସ୍ଥାନବ୍ୟାପୀ—3. Spread over an area. ୪ । କାଳବ୍ୟାପୀ—4. Extending over a period. ୫ । ଗପୁଡ଼ୀ—5. Talkative. ୬ । ଦୀର୍ଘ—6. Long. ୭ । ଯାହାର ବ୍ୟାପ୍ତି ଅଛି—7. That which has extension. [ ଦ୍ର—ଯେଉଁ ପଦାର୍ଥ ବ୍ୟାପିଥାଏ ତାକୁ ବ୍ୟାପକ କହନ୍ତି ଓ ଉକ୍ତ ପଦାର୍ଥ ଯେଉଁ ସ୍ଥାନକୁ ବା ବସ୍ତୁକୁ ବ୍ୟାପି ରହିଥାଏ ତାକୁ ବ୍ୟାପ୍ତ ବା ବ୍ୟାପ୍ୟ କହନ୍ତି । ଯଥା—ରୋଗ 'ବ୍ୟାପକ', ଶରୀର 'ବ୍ୟାପ୍ତ'; ଆକାଶ ବ୍ୟାପ୍ୟ, ମେଘ ବ୍ୟାପକ; ପୃଥ୍ୱୀ ବ୍ୟାପ୍ୟ, ଜଳ ବ୍ୟାପକ ।]
ବି—(ନ୍ୟାୟଦର୍ଶନ) ସ୍ୱାଭାବିକ ଲକ୍ଷଣ; ବସ୍ତୁର ଅପରିହାର୍ଯ୍ୟ ସ୍ଥାୟୀ ଧର୍ମବିଶେଷ—The essential property or attribute of a thing.

ବ୍ୟାପକତା(ତ୍ୱ)—ସ. ବି —୧ । ବ୍ୟାପିବାର ଅବସ୍ଥା—1. Diffusion.
Byāpakatā(twa) ୨ । ଗପୁଡ଼ିପଣ—2. Garrulity.

ବ୍ୟାପକ ନ୍ୟାସ—ସ. ବି—ତାନ୍ତ୍ରିକମାନଙ୍କ ସର୍ବାଙ୍ଗବ୍ୟାପକ ନ୍ୟାସ-
Byāpaka nyāsa ବିଶେଷ—A tantric process which diffuses action or vibration throughout the system of the devotee.

ବ୍ୟାପକବନ୍ତ—ଗ୍ରା. ବଣ—ବ୍ୟାପକ (ଦେଖ)—Byāpaka (See).
Byāpakabanta (ଉ—ସେ କର୍ମେ ବସ୍ତୁରୂପ ଧରେ, ବ୍ୟାପକବନ୍ତ ଏ ସଂସାରେ । ଜଗନ୍ନାଥ. ଭାଗବତ । )

ବ୍ୟାପତ୍ତି—ସ. ବି (ବି+ଆ+ପଦ୍. ଧାତୁ=ଯିବା+ଭାବ. ତି)—
Byāpatti ୧ । ବିପଦ; ଉପଦ୍ରବ—1. Danger; calamity; misfortune. ୨ । ମୃତ୍ୟୁ—2. Death.

ବ୍ୟାପନ—ସ. ବି ( ବି+ଆପ୍. ଧାତୁ=ପାଇବା+ଭାବ. ଅନ )—୧ ।
Byāpana ବ୍ୟାପ୍ତି; ବିସ୍ତାର—1. Diffusion; extension.
ବ୍ୟାପ୍ତ ବ୍ୟାପନୀୟ ବ୍ୟାପ୍ୟ } ବଣ ୨ । ବ୍ୟାପିବା-2. Spreading. ୩ । ଆଚ୍ଛାଦନ-3. Covering. ୪ । ସର୍ବାଙ୍ଗରେ ଲେପିବା-4. Suffsion; overspreading.

ବ୍ୟାପନ୍ନ—ସ. ବ (ବି+ଆ+ପଦ୍ ଧାତୁ+କର୍ତ୍ତୃ. ତ)-୧ । ବିପନ୍ନ; ବିପଦ୍-
Byāpanna ଗ୍ରସ୍ତ—1. Involved in danger or mis-

fortune. ୨ । ମୃତ—2. Dead; deceased. ୩ । କ୍ଷତ-ଗ୍ରସ୍ତ—3. Injured. ୪ । ସଂସାରାସକ୍ତ-4. Addicted to or engrossed in worldly concerns,

**ବ୍ୟାପାଦ୍**—ସଂ. ବି (ବି+ଆ+ପଦ୍ ଧାତୁ ଣିଚ୍=ପାଦି ଧାତୁ=ଗମନ କରାଇବା+ଭାବ. କ୍ୱିପ୍)—୧ । ବଧ; ବିନାଶ—
Byāpād 1. Destruction; murder. ୨ । ପରର ଅନିଷ୍ଟ ଚିନ୍ତା—2. Thought for injuring others. ୩ । ବ୍ୟାପତ୍ତି (ଦେଖ)—3. Byāpatti (See).

**ବ୍ୟାପାଦକ**—ସଂ. ବିଣ ପୁଂ (ବି+ଆ+ପଦ. ଧାତୁ ଣିଚ୍=ପାଦି ଧାତୁ=କର୍ତ୍ତୃ. ଅକ)—୧ । ମାରାତ୍ମକ; ପ୍ରାଣନାଶକ—
Byāpādaka 1. Deadly; fatal; mortal. ୨ । ହତ୍ୟାକାରୀ—2. Murderous. ୩ । ବିନାଶକ—3. Destructive; ruinous.

**ବ୍ୟାପାଦନ**—ସଂ. ବି (ବି+ଆ+ପଦ. ଧାତୁ ଣିଚ୍=ପାଦି. ଧାତୁ+ଭାବ. ଅନ)—୧ । ମାରଣ; ବଧ—1. Killing;
Byāpādana murder. ୨ । ବିନାଶ—2. Destruction. ୩ । ପରର ଅନିଷ୍ଟ ଚିନ୍ତନ—3. Wishing or contemplating injury to others,
(ବ୍ୟାପାଦନା—ସ୍ତ୍ରୀ)

**ବ୍ୟାପାଦିତ**—ସଂ. ବିଣ (ବି+ଆ+ପଦ. ଧାତୁ ଣିଚ୍=ପାଦି ଧାତୁ+କର୍ମ. ତ)—୧ । ନିହତ—1. Killed; mur-
Byāpādita dered. ୨ । ବିନାଶିତ—2. Destroyed. ୩ । ଆହତ—3. Hurt; injured.

**ବ୍ୟାପାର**—ସଂ. ବି॰ (ବି+ଆ+ପୃ ଧାତୁ=ପରିଶ୍ରମ କରିବା+ଭାବ. ଅ)—୧ । କ୍ରିୟା; କର୍ମ; କାର୍ଯ୍ୟ—1. Transac-
Byāpāra tion; affair; action. ୨ । କାଣ୍ଡ; ଘଟଣା—2. Event. ୩ । ବାଣିଜ୍ୟ; ବ୍ୟବସାୟ; ବେପାର—3. Trade; business; traffic. ୪ । ପେଶା; ବୃତ୍ତି; ଜୀବିକା—4. Occupation; profession. ୫ । ପରିଶ୍ରମସାଧ୍ୟ କାର୍ଯ୍ୟ—5. Act requiring physical labour. ୬ । ନିଯୋଗ—6. Appointment. ୭ । ଅଭ୍ୟାସ କରିବା; ଅନୁଶୀଳନ—7. Application; devotion to a subject; exercise. ଦେ. ବି—ଦୈନନ୍ଦିନ କର୍ମ; ଆଡ଼ତି— Menial household works. (ଉ—ବ୍ରାହ୍ମଣ ଘରେ ସେ ଏକାକୀ, ମୋହର ଜନନୀ ସେବକୀ । ବ୍ୟାପାର କରେ ସନ୍ତୋଦିନେ, ଏମନ୍ତ ନିର୍ଦ୍ଧର ବିଧାନେ । ଜଗନ୍ନାଥ. ଭାଗବତ ।)

**ବ୍ୟାପାରିତ**—ସଂ. ବିଣ॰ (ବ୍ୟାପାର+ନିଯୁକ୍ତାର୍ଥେ. ଇତ)—ବ୍ୟାପୃତ
Byāpārita (ଦେଖ)—Byāpruta (See)

**ବ୍ୟାପାରୀ**—ସଂ. ବିଣ.ପୁଂ (ବ୍ୟାପାର+ଅସ୍ତି ଅର୍ଥରେ ଇନ୍; ୧ମା.୧ବ)—
Byāpāri ୧ । ବ୍ୟବସାୟୀ, ବଣିଜ୍ୟରତ—1, Engaged in trade. [ଦ୍ର—ଏହାର ଅପଭ୍ରଂଶ ଶବ୍ଦ ବେପାରୀ ।] ୨ । କ୍ରିୟାସକ୍ତ; କାର୍ଯ୍ୟାସକ୍ତ—2. Engrossed or busy in any work. ସଂ. ବି. ପୁଂ—ବଣିକ୍; ବେପାରୀ—Trader.
(ବ୍ୟାପାରିଣୀ—ସ୍ତ୍ରୀ)

**ବ୍ୟାପିକା**—ସଂ. ବି. ସ୍ତ୍ରୀ—ଅଶ୍ରିତଭଣ୍ଡୀ; କଳହୁଡ଼ୀ ସ୍ତ୍ରୀ—
Byāpikā A pert woman; a shrew.
ସଂ. ବିଣ. ସ୍ତ୍ରୀ—ବ୍ୟାପକର ସ୍ତ୍ରୀଲିଙ୍ଗ—Feminine of Byāpaka.

**ବ୍ୟାପିତ**—ଦେ. ବିଣ. (ପଦ୍ୟ)—ବ୍ୟାପ୍ତ; ପରିପୂରିତ—Filled up.
Byāpita (ଉ—ହୃଦରେ ବ୍ୟାପିତ ମହା ଅନଳ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।) ସଂ. ବିଣ (ବି+ଆପ ଧାତୁ ଣିଜନ୍ତ+କର୍ମ. ତ)—ଯାହାକୁ ବ୍ୟାପ୍ତ କରି ଦିଆ ଯାଇଅଛି—Caused to be spread or diffused.

**ବ୍ୟାପିବା**—ଦେ. କ୍ରି (ସଂ॰ ବି+ଆପ ଧାତୁ)—୧ । ଘୋଟିବା—
Byāpibā 1. To pervade through. ୨ । ଗୁରି ଅଡ଼େ ବିସ୍ତୃତ ହେବା; ଖେଦି ଯିବା—2, To diffuse; to overspread. ୩ । ସର୍ବତ୍ର ପ୍ରକଟିତ ହେବା—3. To be published or spread everywhere. (ଉ—'ରାଜ୍ୟ ଭେଳ ଯିବେ ରାଜା' ଏ ବାର୍ତ୍ତା ନଗରେ, ନଗରୁ ନଗରେ, ତହୁଁ ବ୍ୟାପି ଜନପଦେ । ରାଧାନାଥ. ମହାଯାତ୍ରା ।) ୪ । ଆଚ୍ଛାଦନ କରିବା, ଘୋଡ଼ାଇବା—4. To surround to envelop. ୫ । ଘଟିବା ନିମନ୍ତେ ନିର୍ଦ୍ଦିଷ୍ଟ ସମୟ ବା କାଳ ଅଧିକାର କରିବା—5. To occupy a period of time. ୬ । ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିବା—6, To occupy a place or area
ब्यापी ब्यापना

**ବ୍ୟାପୀ**—ସଂ.ବିଣ.ପୁଂ (ବି+ଆପ୍ ଧାତୁ+ଶୀଳାର୍ଥେ ଇନ୍; ୧ମା. ୧ବ)—
Byāpi ୧ । ବ୍ୟାପକ—1. Spreading; diffusing; pervading. ୨ । ଆବରଣକାରୀ; ଆଚ୍ଛାଦକ—2. Overspreading; enveloping. ୩ । ଯାହା ଏତେ ସମୟକୁ ବା ସ୍ଥାନକୁ ବ୍ୟାପିଥାଏ ବା ଅଧିକାର କରିଥାଏ—3. Spread over a certain space or time. ବି—ବିଷ୍ଣୁ—Bishṇu.
(ବ୍ୟାପିନୀ—ସ୍ତ୍ରୀ)

**ବ୍ୟାପୃତ**—ସଂ. ବିଣ. (ବି+ଆ+ପୃ ଧାତୁ=ପରିଶ୍ରମ କରିବା+କର୍ତ୍ତୃ. ତ)—୧ । କାର୍ଯ୍ୟରେ ନିଯୁକ୍ତ; କାର୍ଯ୍ୟରେ ଲାଗିଥିବା—
Byāpṛuta 1. Engaged or busy in a work. ୨ । ନିଯୋଜିତ—2. Employed; appointed. ବି—୧ । ମନ୍ତ୍ରୀ; ସଚିବ—1. A councillor. ୨ । ରାଜକର୍ମଚାରୀ—2. A government officer.
(ବ୍ୟାପୃତା—ସ୍ତ୍ରୀ)

**ବ୍ୟାପ୍ତ**—ସଂ. ବିଣ. (ବି+ଆପ ଧାତୁ=ପାଇବା+କର୍ମ. ତ)—
Byāpta ୧ । ବିସ୍ତାରିତ—1. Spread; diffused. ୨ । ବେଷ୍ଟିତ—2. Encompassed; enveloped; encircled. ୩ । ପରିପୂରିତ—3. Filled up. ୪ । ଆଚ୍ଛନ୍ନ; ଆଚ୍ଛାଦିତ—4. Covered; overspread. ୫ । ପ୍ରସିଦ୍ଧ—5. Celebrated. ୬ । ଏକତ୍ରାବସ୍ଥିତ—6. Concomitant. ୭ । (+କର୍ତ୍ତୃ. ତ) ବ୍ୟାପ୍ତିଯୁକ୍ତ—7. Having expansion.

ବ୍ୟାପ୍ତ ବନ୍ତ—ଗ୍ରା. ବିଣ—ବ୍ୟାପ୍ତ (ଦେଖ)—Byāpta (Ses)
Byāpta banta (ଉ—ଅଶେଷ ବ୍ୟାପ୍ତବନ୍ତ ନାନା ସ୍ଥଳେ । (ବ୍ୟାପ୍ତିବନ୍ତ—ଦେଶଜରୂପ) ଅଭିମନ୍ୟୁ. ବଳଦ୍ଧ ଚନ୍ଦ୍ରାମଣି ।)

ବ୍ୟାପ୍ତି—ସ. ବି. ( ବି+ଆପ୍ ଧାତୁ+ଭାବ. ତି )—୧ । ବ୍ୟାପନ; Byāpana ସର୍ବତ୍ରାବସ୍ଥାନ—1. Overspreading; pervading; diffusion; omnipresence. ୨ । ବସ୍ତୃତି; ପ୍ରସାର—2. Extension; extent. ୩ । ଐଶ୍ୱର୍ଯ୍ୟ; ବିଭୂତି—3. Divinity; majesty; glory. [ ବୃ—ଅଷ୍ଟୈଶ୍ୱର୍ଯ୍ୟ ଭଲେ ଟୀକା ଦେଖ ।] ୪ । ଶିବଙ୍କର ଅଣିମାଦି ବିଭୂତି ମଧ୍ୟରୁ ଏକତମ; ସର୍ବତ୍ରାବସ୍ଥିତି ରୂପ ଐଶ୍ୱର୍ଯ୍ୟ—4. Omnipresence of God Śiba; universal concomitance of God Śiba. ୫ । (ଦର୍ଶନ ଶାସ୍ତ୍ର) ବସ୍ତୁର ସହଜ ଧର୍ମ (ଯଥା—ଜଳର ତାରଲ୍ୟ, ଅଗ୍ନିର ତାପ, ସର୍ଷପର ତୈଳପ୍ରଦତ୍ୱ—5. (Hindu Philosophy) An inseparable or inborn attribute of a thing; the adjunct of a matter. ୬ । ଲାଭ; ପ୍ରାପ୍ତି—6. Gain; acquisition. ୭ । ( ଆଧୁନିକ ଜଡ଼ବିଜ୍ଞାନ ) ଜଡ଼ ପଦାର୍ଥର ସ୍ଥାନ-ବ୍ୟାପକତା ରୂପ ଗୁଣ—7. The attribute of matter, occupying a space. ୮ । ପ୍ରସିଦ୍ଧି—8. Celebrity. ୯ । ବେଷ୍ଟନ; ବେଢ଼ିବା—9. Enveloping. ୧୦ । ଏକତ୍ରାବସ୍ଥିତି—10. Concomitance.

ବ୍ୟାପ୍ତି ଗ୍ରହ—ସ. ବି—ବ୍ୟାପ୍ତି ସମ୍ବନ୍ଧେ ବୋଧ—Apprehension
Byāpti graha of universal concomitance.

ବ୍ୟାପ୍ତି ଜ୍ଞାନ—ସ. ବି—ସାଧାରଣ ଗୁଣର ବା ଧର୍ମର ଅବସ୍ଥାନରୁ ବସ୍ତୁର Byāpti jñāna ଅସ୍ତିତ୍ୱ ସମ୍ବନ୍ଧେ ଜ୍ଞାନ—An idea of the existence of a matter on seeing its adjuncts.

ବ୍ୟାପ୍ୟ—ସ. ବିଣ (ବି+ଆପ ଧାତୁ+କର୍ମ. ଯ)—୧ । ବ୍ୟାପନୀୟ; Byāpya ଯାହାକୁ ବ୍ୟାପ୍ତ କରାଯାଇ ପାରେ; ପ୍ରସାର୍ଯ୍ୟ—1. Capable of being expanded or spread out. ୨ । ଅନୁମେୟ—2. Imaginable. ୩ । ସାଧ୍ୟ—3. Feasible; possible. ବି.—(ନ୍ୟାୟ-ଦର୍ଶନ)—୧ । ଅଳ୍ପଦେଶ ବୃତ୍ତି; ଯେଉଁ ପଦାର୍ଥକୁ କୌଣସି ବସ୍ତୁ ବା ବ୍ୟାପକ ଘୋଟି ଥାଏ—1. ( Hindu philosophy) A thing pervaded over by another thing. ୨ । ସାଧନ; ହେତୁ—2. Expedient; means. ୩ । କୁଷ୍ଠୌଷଧ; କୁଡ଼—3. A medicinal plant; Costus Speciosus.

ବ୍ୟାପ୍ୟତା(ତ୍ୱ)—ସ.ବି—(ବ୍ୟାପ୍ୟ+ଭାବ. ତା,ତ୍ୱ)-ବ୍ୟାପନୀୟତା; ଅନ୍ୟ Byāpyatā(twa) ପଦାର୍ଥଦ୍ୱାରା ବ୍ୟାପ୍ତ ହେବାର ଅବସ୍ଥା—The capacity of being pervaded over by another thing.

ବ୍ୟାପ୍ରିୟମାଣ—ସ. ବ (ବି+ଆ+ପୃ ଧାତୁ+କର୍ତ୍ତୃ. ଅନ)—ବ୍ୟାପୃତ
Byāpriyamāṇa ହୋଇଥିବା—Being engaged.

ବ୍ୟାବର୍ତ୍ତନ—ସ. ବ (ବି+ଆ+ବୃତ୍ ଧାତୁ=ଘୂରିବା+ଭାବ. ଅନ)—Byābarttana ୧ । କେନ୍ଦ୍ରର ଚାରିପାଖେ ପରିଭ୍ରମଣ; (ବ୍ୟାବର୍ତ୍ତକ, ବ୍ୟାବର୍ତ୍ତିତ—ବିଣ) ଆବର୍ତ୍ତନ; ଘୂରିବା—1. Rotation. ୨ । ପଛକୁ ମୁହଁ ହେବା; ଫେରିବା—2. Act of turning the face away. ୩ । (ବୃତ୍ ଧାତୁ ଣିଚ୍, ବର୍ତ୍ତି ଧାତୁ+ଭାବ. ଅନ)—ପଶ୍ଚାତ୍ମୁଖୀ କରଣ—3. Causing to turn back.

ବ୍ୟାବହାରିକ—ସ. ବିଣ ( ବ୍ୟବହାର+ସମ୍ବନ୍ଧାର୍ଥେ ଇକ )—୧ । Byābahārika ବ୍ୟବହାରିକ; ବ୍ୟବହାର ସମ୍ବନ୍ଧୀୟ—1. Relating to custom, usage, law or use. ୨ । ଯାହା ଦୈନନ୍ଦିନ କାର୍ଯ୍ୟରେ ଲାଗେ—2. Practical; of every day use; useful. ୩ । ବ୍ୟବହାରସିଦ୍ଧ—3. Conforming to practice, use or custom. ୪ । ଆଇନଜ୍ଞ—4. Versed in law. ୫ । ଆଇନ୍ ସମ୍ବନ୍ଧୀୟ—5. Legal. ବି.—୧ । ବିଚାରପତି—1. Judge; magistrate. ୨ । ମନ୍ତ୍ରୀ—2. Councillor.

ବ୍ୟାବୃତ୍ତ—ସ. ବିଣ (ବି+ଆ+ବୃତ୍ ଧାତୁ=ନିଷେଧ କରିବା+କର୍ତ୍ତୃ. Byābrutta ତ)—୧ । ନିବୃତ୍ତ—1. Stopped; ceased. ୨ । (+କର୍ମ. ତ) ନିବାରିତ; ନିଷିଦ୍ଧ—2. Prevented. ୩ । ଖଣ୍ଡିତ—3. Divided. ୪ । ପୃଥକ୍ କୃତ—4. Separated. ୫ । ମନୋନୀତ—5. Chosen; elected. ୬ । ବେଷ୍ଟିତ—6. Surrounded; enveloped. ୭ । ସ୍ତୁତ—7. Worshipped; adored; eulogised. ୮ । ଆଚ୍ଛାଦିତ—8. Covered. ୯ । ନିରାକୃତ—9. Withdrawn; expelled; refuted.

ବ୍ୟାବୃତ୍ତି—ସ. ବ (ବି+ଆ+ବୃତ୍ ଧାତୁ+ଭାବ. ତି)—୧ । ବିଭଜନ; Byābrutti ଖଣ୍ଡନ—1. Division; splitting up. ୨ । ପୃଥକ୍ କରଣ—2. Separation. ୩ । ମନୋନୟନ—3. Election. ୪ । ବେଷ୍ଟନ—4. Surrounding; girdle. ୫ । ସ୍ତୁତି—5. Praise; eulogy. ୬ । ନିରାକରଣ—6. Expulsion exclusion. ୭ । ନିବୃତ୍ତ—7. Stoppage; cessation. ୮ । ବାଧା—8. Hindrance; obstruction. ୯ । ନିୟୋଗ—9. Appointment. ୧୦ । ବିପର୍ଯ୍ୟାସ—10. Contrariety; inversion; reversion.

ବ୍ୟାମ—ସ. ବ—(ବି+ଆ+ମା ଧାତୁ=ମାପିବା+କରଣ. ଅ)—ବାଁ; Byāma ଦୁଇ ବାହୁକୁ ଦୁଇପାଖ ଦିଗକୁ ପ୍ରସାରିତ କଲେ ଏକ (ବ୍ୟାମନ—ଅନ୍ୟରୂପ) ବାହୁର ମଧ୍ୟମାଙ୍ଗୁଳିର ଅଗ୍ରରୁ ଅନ୍ୟ ବାହୁର ମଧ୍ୟମାଙ୍ଗୁଳିର ଅଗ୍ର ପର୍ଯ୍ୟନ୍ତ ପାର୍ଶ୍ୱଭାର ପରିମାଣ —

Fathom; the length measured between the middle fingers of the two arms stretched out to the full extent in opposite directions.

ବ୍ୟାମର୍ଷ—ସ. ବି—( ବି+ଆ+ମୃଷ୍ ଧାତୁ=ଘଷିବା+ଭାବ. ଅ )—
Byāmarsha ଉତ୍ପାଟନ; ଉପାଡ଼ିବା—1. Uprooting. ୨ । ଉଠାଇ କରି ଫୋପାଡ଼ିବା; ଟେକିବା—2. Uplifting; throwin g. ୩ । ଅଧୈର୍ଯ୍ୟ—3. Impatience. ୪ । ବ୍ୟାକୁଳତା—4. Enbarassment.

ବ୍ୟାମିଶ୍ର—ସ. ବିଣ (ବି+ଆ+ମିଶ୍ର ଧାତୁ+କର୍ତ୍ତୃ. ଅ)—୧ । ସମ୍ମିଳିତ—
Byāmisra 1, United; amalgamated. ୨ । ଏକୀକୃତ; ମିଶ୍ରିତ—2, Mixed together; unified. ସ. ବି—ଦୁଇ ପଦାର୍ଥକୁ ବା କାର୍ଯ୍ୟକୁ ଏକତ୍ର ମିଳାଇବା କର୍ମ— Amalgamation.

ବ୍ୟାମୋହ—ସ. ବି—( ବି+ଆ+ମୁହ୍ ଧାତୁ+ଭାବ. ଅ )—୧ ।
Byāmoha ମୋହ—1. Stupefaction; fascination.
ବ୍ୟାମୋହକ, ବ୍ୟାମୋହଜନକ, ବ୍ୟାମୋହଜନିତ —ବିଣ ୨ । ଭ୍ରାନ୍ତି; ଭ୍ରମ—2, Error; mistake. ୩ । ଚିତ୍ତବୈକଲ୍ୟ; ବିହ୍ୱଳତା; ଅଧୀରତା—3, Embarassment; bewilderment. ୪ । ପୀଡ଼ା—4. Affliction. ୫ । ଅଜ୍ଞାନ—5. Ignorance.

ବ୍ୟାୟତ—ସ. ବିଣ (ବି+ଆ+ଯମ୍ ଧାତୁ+କର୍ତ୍ତୃ. ତ)—୧ । ଦୀର୍ଘ;
Byāyata ଲମ୍ବା—1. Long; prolonged. ୨ । ଡେଙ୍ଗା—2, Tall. ୩ । ଉଚ୍ଚ—3 High. ୪ । ବିସ୍ତୃତ—4 Extended. ୫ । ବ୍ୟାପୃତ—5 Engaged. ୬ । ଦୃଢ଼—6 Strong; firm. ୭ । ଦୂର—7. Distant. ବି—୧ । ଦୈର୍ଘ୍ୟ—1. Length. ୨ । ପ୍ରସାର—2, Width; expanse. ୩ । ଡେଙ୍ଗ; ଉଚ୍ଚତା—3. Height.

ବ୍ୟାୟାମ—ସ. ବି ( ବି+ଆ+ଯମ୍ ଧାତୁ+ଭାବ. ଅ )—୧ । ବଳାଧାନ ଉଦ୍ଦେଶ୍ୟରେ ଅଙ୍ଗ ସଞ୍ଚାଳନରୂପ ଶ୍ରମସାଧନ—
Byāyāma 1, Physical exercise; bodily exercise. ୨ । କୁସ୍ତି; ମଲ୍ଲକ୍ରୀଡ଼ା—2. Athletic exercise; wrestling. ୩ । ଦୁର୍ଗମ ସ୍ଥାନରେ ଭ୍ରମଣ—3. Walking in perilous places. ୪ । ପୌରୁଷ—4. Manhood; manliness. ୫ । ବ୍ୟାପାର—5. Transaction; act ion. ୬ । ବୃତ୍ତି—6, Business; occupation. ୭ । ଦୈର୍ଘ୍ୟ—7. Length. ୮ । ବାଁ; ବ୍ୟାମ—8. A fathom. ୯ । ପରିଶ୍ରମ—9. Labour.

ବ୍ୟାରାମ—ପ୍ରାଦେ ( ବାଲେଶ୍ୱର ) ବି ( ମୂଳ ସ. ବ୍ୟାୟାମ )—
Byārāma ବେମାରି; ରୋଗ—Sickness.

ବ୍ୟାଳ—ସ. ବି ( ବି+ଆ+ଅଲ୍ ଧାତୁ+କର୍ତ୍ତୃ. ଅ )—୧ । ସର୍ପ—
Byāla 1. Snake; serpent. ୨ । ହିଂସ୍ରଜନ୍ତୁ; ଶ୍ୱାପଦ
(ବ୍ୟାଳୀ—ସ୍ତ୍ରୀ) 2. Beast of prey. ୩ । ଚିତାବାଘ—3. Leopard. ୪ । ଦୁର୍ଦ୍ଦାନ୍ତ ହସ୍ତୀ—4. A vicious elephant. ୫ । ରାଜା—5. King. ୬ । ଛନ୍ଦୋବିଶେଷ—6. Name of a metre. ୭ । ଚିତ୍ରକ; ଧଳା ଚିତାଗଛ—7. Plumbago Zeylanica (plant). ବିଣ—୧ । କ୍ରୂର—1. Cruel; villainous. ୨ । ଦୁଷ୍ଟ—2. Wicked; rogue. ୩ । ହିଂସ୍ର—3. Malicious; mischievous.

ବ୍ୟାଳ ଗ୍ରସ୍ତ—ସ. ବିଣ ( ୩ୟା ତତ୍ )—ହିଂସ୍ରଜନ୍ତୁ ପ୍ରପୀଡ଼ିତ—
Byāla grasta Beset with beasts of prey.

ବ୍ୟାଳ ଗ୍ରାହ—ସ. ବି ( ବ୍ୟାଳ=ସର୍ପ+ଗ୍ରହ୍ ଧାତୁ=ଗ୍ରହଣ କରିବା
Byāla grāha +କର୍ତ୍ତୃ. ଅ )—ଅହି ତୁଣ୍ଡିକ; ସାପୁଆ କେଳା
(ବ୍ୟାଳଗ୍ରାହୀ—ଅନ୍ୟରୂପ) —Snake-catcher; snake charmer.

ବ୍ୟାଳ ଦଂଷ୍ଟ୍ର—ସ. ବି—ଗୋକ୍ଷୁର—Tribulus Terrestris,
Byāla damshtra (plant).

ବ୍ୟାଳ ନଖ—ସ. ବି—ଗୋକ୍ଷୁର ନାମକ କଣ୍ଟକୀ ଫଳ—A thorny
Byāla nakha berry; Tribulus Terrestris. ୨ । ନଖୀ; ଗନ୍ଧଦ୍ରବ୍ୟ ବିଶେଷ—2. Onyx shell.

ବ୍ୟାଳ ମୃଗ—ସ. ବି—ଚିତା ବାଘ; ନେପାଳ ବାଘ—Leopard.
Byāla mruga

ବ୍ୟାଳ(ଲ)ମ୍ବ—ସ. ବି—ରକ୍ତ ଏରଣ୍ଡ—Red species of castor
Byāla(la)mba seed plant.

ବ୍ୟାଳ ଶ୍ରେଷ୍ଠ—ଦେ. ବି—ଅନନ୍ତ; ଶେଷଦେବ—The mytho-
Byāla śreshtha logical Serpent-king holding up the universe. ( ଉ—ବ୍ୟାଳ ଶ୍ରେଷ୍ଠ ଦେଖିନା ଅଭଷେକ, ବୋଲ୍ଲ ବୋଲି ହୋଇଯିବା ଉତ୍ସୁକ । ଭଞ୍ଜ. ବୈଦେହୀଶବିଳାସ । )

ବ୍ୟାସ—ସ. ବି ( ବି+ଆ+ଅସ୍ ଧାତୁ=ବିଭାଗ କରିବା+କରଣ.
Byāsa ଅ )—୧ । ବୃତ୍ତର ବା ଗୋଲକର ମଧ୍ୟ ରେଖା; ଯେଉଁ ରେଖା କେନ୍ଦ୍ରର ମଧ୍ୟ ଦେଇ ଦୁଇ ବିପରୀତ ଦିଗରେ ପରିଧିକୁ ସ୍ପର୍ଶ କରିଥାଏ—1, Diameter of a circle or sphere. ୨ । ବିସ୍ତାର—2, Extension. ୩ । ପରିମାଣବିଶେଷ—3, A sort of measure, ୪ । ସମାସଯୁକ୍ତ ପଦର ସମାସବିଚ୍ଛେଦ—4, The analysis of a compound word into its component words. ୫ । ( +କର୍ତ୍ତୃ. ଅ )—ପୁରାଣପାଠକ—5, A reader of the Purāṇas, ୬ । ବେଦ ବିଭାଗକାରୀ ଓ ମହାଭାରତ, ଅଷ୍ଟାଦଶ ପୁରାଣମାନଙ୍କ ରଚୟିତା ମୁନିବିଶେଷ; କୃଷ୍ଣଦ୍ୱୈପାୟନ; ବ୍ୟାସଦେବ; ବେଦବ୍ୟାସ—6, The sage Byāsa who arranged the Bedas into

4 books and complied the Mahābhārata and other Purāṇas. [ ଦ୍ର—ଜଳମଧ୍ୟସ୍ଥ ଦ୍ୱୀପରେ ଏହାଙ୍କର ଜନ୍ମ ହୋଇଥିବାରୁ ଏହାଙ୍କ ନାମ ଦ୍ୱୈପାୟନ । ଏହାଙ୍କ ଦେହର ବର୍ଣ୍ଣ କଳା ଥିବାରୁ ଏହାଙ୍କର ନାମ କୃଷ୍ଣ-ଦ୍ୱୈପାୟନ । ଏ ବାଲ୍ୟକାଳରୁ ତପସ୍ୟା କଲେ ଓ ଏ ବେଦମାନଙ୍କ ସଂଗ୍ରହ ଓ ବିଭାଗ କରିଥିଲେ । ଏଥିପାଇଁ ଏହାଙ୍କ ନାମ ବେଦବ୍ୟାସ । ପରେ ଏହାଙ୍କ ମାତା ସତ୍ୟ-ବତୀଙ୍କ ସଙ୍ଗେ ଶାନ୍ତନୁଙ୍କର ବିବାହ ହେଲା । ଶାନ୍ତନୁ ଓ ସତ୍ୟବତୀଙ୍କ ପୁତ୍ର ବିଚିତ୍ରବୀର୍ଯ୍ୟ ନିଃସନ୍ତାନ ମୃତ ହେବାରୁ ସତ୍ୟବତୀଙ୍କ ଆଦେଶ ଅନୁସାରେ ଏ ବିଚିତ୍ରବୀର୍ଯ୍ୟଙ୍କର ଦୁଇ ବିଧବାପତ୍ନୀ ଅମ୍ବିକା ଓ ଅମ୍ବାଳିକାଙ୍କ ସଙ୍ଗେ ନିୟୋଗ ବିଧି ଅନୁସାରେ ସହବାସ କଲେ ଓ ସେମାନଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର ଜନ୍ମ ହେଲା । ଏହାଙ୍କ ଔରସରେ ବିଚିତ୍ର-ବୀର୍ଯ୍ୟଙ୍କ ଦାସୀଗର୍ଭରେ ବିଦୁର ଜନ୍ମଗ୍ରହଣ କରିଥିଲେ—ଏହାଙ୍କର ଅନ୍ୟ ନାମ ପାରାଶର୍ଯ୍ୟ, କାନୀନ, ବାଦରାୟଣ, ସତ୍ୟଭାରତ, ସତ୍ୟବ୍ରତ ଓ ସତ୍ୟରତ । ] ୨ । ପୁରାଣାନୁସାରେ ଭିନ୍ନ ଭିନ୍ନ କଳ୍ପରେ ଜନ୍ମଗ୍ରହଣ କରି ବେଦମାନଙ୍କର ସଂଗ୍ରହ ଓ ବିଭାଗକାରୀ ୨୮ ଜଣ ଋଷି ( ହି. ଶ )—7. 28 sages said to have compiled and classified the Bedas at delferent times. [ ଦ୍ର—ଏମାନେ ବ୍ରହ୍ମାଙ୍କର ବା ବିଷ୍ଣୁଙ୍କ ଅବତାର ବୋଲି କଥିତ । ଏମାନଙ୍କ ନାମ ସ୍ୱୟଂଭୂବ, ପ୍ରଜାପତି ବା ମନୁ, ଉଶନା, ବୃହସ୍ପତି, ସବିତା, ମୃତ୍ୟୁ ବା ଯମ, ଇନ୍ଦ୍ର, ବଶିଷ୍ଠ, ସାରସ୍ୱତ, ତ୍ରିଧାମ, ତ୍ରିବୃଷ, ବା ଐବୃଷ, ସୁତେଜା ବା ଭାରଦ୍ୱାଜ, ଅନ୍ତରୀକ୍ଷ ବା ଧର୍ମ, ବପୁବନ୍ ବା ସୁରକ୍ଷ, ତ୍ରୟ୍ୟାରୁଣି, ଧନଞ୍ଜୟ, କୃତଞ୍ଜୟ, ଋତଞ୍ଜୟ, ଭରଦ୍ୱାଜ, ଗୌତମ, ଉତ୍ତମ ବା ହର୍ଯ୍ୟସ୍ୱା ବାଜଶ୍ରବା ବା ନାରାୟଣ ବା ବେଣ, ସୋମଶୁଷ୍ମାୟନ ବା ତୃଣବିନ୍ଦୁ, ଋକ୍ଷ ବା ବାଲ୍ମୀକି; ଶକ୍ତି, ପରାଶର, ଜାତୁକର୍ଣ୍ଣ ଓ କୃଷ୍ଣଦ୍ୱୈପାୟନ ( ହି. ଶ ) ଦେ. ବି—୧ । ପୁରାଣ-

ব্যাস
व्यास

ପାଠକ, ଯେଉଁ ବ୍ୟକ୍ତି ପୁରାଣ କଥା ଲୋକଙ୍କୁ ଶୁଣାନ୍ତି ( ହି. ଶ )—1. A narrator of the Purāṇas. ୨ । ଜ୍ଞାନୀ ଓ ପଣ୍ଡିତମାନଙ୍କୁ ଦିଆଯିବା ଉପାଧି—2. A title given to learned and wise men.

ବ୍ୟାସକୂଟ—ସଂ. ବି—୧ । ବ୍ୟାସ ଦେବଙ୍କ ରଚିତ ମହାଭାରତୋକ୍ତ
Byāsakūṭa ଶ୍ଳୋକମାନଙ୍କ ମଧ୍ୟରୁ ଦୁର୍ବୋଧ୍ୟ ଓ ଅସ୍ପଷ୍ଟ ଶ୍ଳୋକ-ସମୂହ—1. Obscure couplets in the writings of sage Byāsa in the Mahābhārata. ୨ । ସୀତାହରଣ ପରେ ରାମଚନ୍ଦ୍ର ମାଲ୍ୟବାନ୍ ପର୍ବତରେ ଉଚ୍ଚାରଣ କରିଥିବା କୂଟ ଶ୍ଳୋକ ( ହି. ଶବ୍ଦସାଗର )—2. Some obscure couplets uttered by Rāmachandra immediately after the forcible removal of Sītā by Rābaṇa.

ବ୍ୟାସକ୍ତ—ସଂ. ବିଣ. ପୁଂ ( ବି+ଆସକ୍ତ )—୧ । ଅତ୍ୟାସକ୍ତ—
Byāsakta 1. Addicted to; enamoured of; doting
(ବ୍ୟାସକ୍ତା—ସ୍ତ୍ରୀ) on. ୨ । ସଲଗ୍ନ—2. Attached to;
(ବ୍ୟସକ୍ତି—ବି) connected with; close to. ୩ । ଉଦ୍‌ଭ୍ରାନ୍ତ—3. Confused; bewildered.

ବ୍ୟାସଙ୍ଗ—ସଂ. ବି ( ବି+ଆସଙ୍ଗ )—୧ । ଅତ୍ୟାସକ୍ତି—1. Attach-
Byāsaṅga ment. ୨ । ବିଶେଷ ସଂଯୋଗ—2. Close connection; adhesion. ୩ । ବିଶେଷ ମନୋ-ଯୋଗ—3. Close attention.

ବ୍ୟାସ ଦେବ—ସଂ. ବି—ବ୍ୟାସ ଋଷି—
Byāsa deba Sage Byāsa.

ବ୍ୟାସ ପୀଠ—ସଂ. ବି—୧ । ପୁରାଣ ପାଠକଙ୍କ ବସିବାର ଉଚ୍ଚ ଆସନ—
Byāsapīṭha 1. An elevated seat or stool for
( ବ୍ୟାସାସନ—ଅନ୍ୟରୂପ ) the reader of a Purāṇa.
୨ । ପଢ଼ିବା ସମୟରେ ପୁରାଣକୁ ରଖିବା ନିମନ୍ତେ କାଠର ଉଚ୍ଚାସନ (ଏହାକୁ ଭାଙ୍ଗି ଦେଲେ ମୁଡ଼ି ହୋଇଯାଏ)—2. A folding stool on which a Purāṇa is placed while being read.

ବ୍ୟାସ ସରୋବର—ସଂ. ବି ( ନାମ )—ହିନ୍ଦୁମାନଙ୍କ ତୀର୍ଥବିଶେଷ—
Byāsa sarobara Name of a place of Hindu pilgrimage. [ ଓଡ଼ିଆ ତଳେ ଟୀକା ଦେଖ । ]

ବ୍ୟାସାର୍ଦ୍ଧ—ସଂ. ବି—ବ୍ୟାସର ଅର୍ଦ୍ଧାଂଶ; କେନ୍ଦ୍ରଠାରୁ ପରିଧି ପର୍ଯ୍ୟନ୍ତ
Byāsārddha ଅଙ୍କିତ ସରଳ ରେଖା—Radius.

ବ୍ୟାସିଦ୍ଧ—ସଂ. ବିଣ ( ବି+ଆ+ସିଦ୍ଧ )—୧ । ନିଷିଦ୍ଧ ( ହି. ଶ )—
Byāsiddha 1. Prohibited. ୨ । ଅବରୁଦ୍ଧ (ହି. ଶ)—2. Confined. ୩ । ବାଧାପ୍ରାପ୍ତ ( ହି. ଶ )—3. Obstructed.

ବ୍ୟାସୀୟ—ସଂ. ବିଣ ( ବ୍ୟାସ+ଈୟ )—ବ୍ୟାସ ସମ୍ବନ୍ଧୀୟ—
Byāsiya Relating to Byāsa.

ବ୍ୟାହତ—ସଂ. ବିଣ ( ବି+ଆହତ )—୧ । ନିଷିଦ୍ଧ; ନିବାରିତ—
Byāhata 1. Prevented; repelled. ୨ । ବିଫଳୀକୃତ—
(ବ୍ୟାହତି—ବି) 2. Made futile; nullified. ୩ । ଭୀତ—3. Alarmed. ୪ । ଦୂରୀକୃତ—4. Driven away; expelled. ୫ । ହତାଶ—5. Despaired. ୬ । ବାଧାପ୍ରାପ୍ତ—6. Obstructed; restrained.

ବ୍ୟାହତତ୍ୱ—ସଂ. ବି—ଅଳଙ୍କାରଶାସ୍ତ୍ରୋକ୍ତ ଅର୍ଥଦୋଷ ବିଶେଷ—
Byāhatatwa A defect in composition. [ ଦ୍ର—ପ୍ରଥମେ କୌଣସି ବିଷୟର ଉତ୍କର୍ଷ ବା ଅପକର୍ଷର ଉଲ୍ଲେଖ କରି, ପରେ ତାର ଅନ୍ୟଥା ପ୍ରତିପାଦନ କଲେ ବ୍ୟାହତତ୍ୱ ଦୋଷ ହୁଏ । ଉଦାହରଣ :—ଶୁଣିଛି ଚନ୍ଦ୍ରବଦନ, ନିରତେ ନୀଳ ଲୋଚନ, ତେବେହେଁ ଶୋଭାକୁ ଉପମା ଦେବାକୁ ନାହିଁ ନା ତ୍ରିଭୁବନ, ନାରୀରତନ—ବିଶ୍ୱନାଥ. ବିଚିତ୍ର ରାମାୟଣ । ]

ବ୍ୟାହାର—ସଂ. ବି ( ବି+ଆ+ହୃ ଧାତୁ+ଭାବ. ଅ )—୧ । କଥନ; Byāhāra ଉକ୍ତି—1. Speech; saying. ୨ । ସ୍ପଷ୍ଟ ଧ୍ୱନି—2. Articulate sound.

ବ୍ୟାହୃତ—ସଂ. ବିଣ (ବି+ଆ+ହୃ ଧାତୁ+କର୍ମ. ତ)—୧ । କଥିତ—Byāhṛuta 1. Spoken. ୨ । ଉଚ୍ଚାରିତ—2. Uttered; pronounced.

ବ୍ୟାହୃତି—ସଂ. ବି ( ବି+ଆ+ହୃ ଧାତୁ+ଭାବ. ତି )—୧ । ଉକ୍ତି; Byāhṛuti କଥନ—1. Speech. ୨ । ( +କର୍ମ. ତି ) 'ଭୂଃ, ଭୁବଃ, ସ୍ୱଃ', ଗାୟତ୍ରୀ ମନ୍ତ୍ରର ଏହି ଅଙ୍ଗ—2 The syllables Bhūḥ, Bhubaḥ and Swaaḥ in the beginning of the Gāyatrī Vedic formula.

ବ୍ୟୁଚ୍ଛିତ୍ତି—ସଂ. ବି ( ବି+ଉତ୍+ଛିଦ୍ ଧାତୁ+ଭାବ. ତି )—ବିନାଶ; Byuchchhitti ଉଚ୍ଛେଦ—Ruin; destruction; eradication.

ବ୍ୟୁଚ୍ଛେତ୍ତା—ସଂ. ବିଣ. ପୁଂ ( ବି+ଉତ୍+ଛିଦ ଧାତୁ+କର୍ତ୍ତୃ. ତୃ; Byuchchhettā ବ୍ୟୁଚ୍ଛେତ୍ତୃ; ୧ମା. ୧ବ )—ବିନାଶକ—( ବ୍ୟୁଚ୍ଛେତ୍ରୀ—ସ୍ତ୍ରୀ ) Desturctive.

ବ୍ୟୁତ୍କ୍ରମ—ସଂ. ବି ( ବି+ଉତ୍କ୍ରମ )—୧ । କ୍ରମବିପର୍ଯ୍ୟୟ; ବ୍ୟତିକ୍ରମ—Byut-krama 1. Inversion. ୨ । ଅନିୟମ—2. Irregularity. ୩ । ଗୋଳମାଳ—3. Confusion.

ବ୍ୟୁତ୍କ୍ରାନ୍ତା—ସଂ. ବି. ସ୍ତ୍ରୀ ( ବି+ଉତ୍କ୍ରାନ୍ତ+ଆ )—ପ୍ରହେଳିକା Byut-krāntā ( ହି. ଶ )—Riddle.

ବ୍ୟୁତ୍ଥାନ—ସଂ. ବି. (ବି+ଉତ୍ଥାନ)—୧ । ସ୍ୱାଧୀନ ହୋଇ କାମ କରିବା Byutthāna (ହି. ଶ)—1. Working independently. ୨ । ବିରୁଦ୍ଧାଚରଣ (ହି. ଶ)—2. Acting in opposition or hostility. ୩ । ବାଧା ଦେବା (ହି. ଶ)- 3. Obstructing. ୪ । ନୃତ୍ୟ ବିଶେଷ (ହି. ଶ)—4. A kind of dance. ୫ । ଚିତ୍ତର କ୍ଷିପ୍ତ, ମୂଢ଼ ଓ ବିକ୍ଷିପ୍ତ ଅବସ୍ଥା, ଯାହା ଯୋଗସାଧନର ପ୍ରତିକୂଳ ଅଟେ ( ହି. ଶ )—5. Want of concentration of mind; the habit of mental wandering. ୬ । ହଠାତ୍ ଉଦୟ—6. Sudden rise or appearance. ୭ । ଅଭ୍ୟୁତ୍ଥାନ—7. Elevation.

ବ୍ୟୁତ୍ପତ୍ତି—ସଂ. ବି (ବି+ଉତ୍+ପଦ୍ ଧାତୁ=ବୁଝିବା+ଭାବ. ତି)—Byut-patti ୧। ଶାସ୍ତ୍ର ସମ୍ବନ୍ଧେ ଗଭୀର ଜ୍ଞାନ ବା ବୋଧ—1.Critical or deep knowledge of a science. ୨ । ବିଶିଷ୍ଟ ଜ୍ଞାନ—2. Special or expert knowledge. ୩ । ଗଭୀର ଜ୍ଞାନ; ବିଦ୍ୱତ୍ତା—3. Deep learning; proficiency; scholarship. ୪ । ( ବ୍ୟାକରଣ ) ଶବ୍ଦର ପ୍ରକୃତି ପ୍ରତ୍ୟୟାଦିର ବିଭଜନ କୌଶଳ—( grammar ) Etymology; derivation of words. ୫ । ଶବ୍ଦମାନଙ୍କର ଗଠନ—5 Formation of words. ୬ । କୌଶଳ—6. Dexterity. ୭ । ଶବ୍ଦର ମୂଳରୂପ—7. The original form of a word. ୮ । କୌଣସି ପଦାର୍ଥର ବିଶିଷ୍ଟ ଉତ୍ପତ୍ତି (ହି. ଶ)—8. The peculiar origin of a thing. ୯ । ଜନ୍ମ—9. Birth.

ବ୍ୟୁତ୍ପତ୍ତି କରିବା—ଦେ. କ୍ରି—ବିଚାର କରିବା—To consider; to Byut-patti karibā judge. [ ଉ—ବ୍ୟୁତ୍ପତ୍ତି କରି ଯେ ଉତ୍ପତ୍ତି ହୋଇ, ବନପକ୍ଷିଶିଶୁ ଗଞ୍ଜ ମାରଇ । ଉଞ୍ଜ. ବୈଦେହୀଶବିଳାସ । ]

ବ୍ୟୁତ୍ପନ୍ନ—ସଂ.ବିଣ ପୁଂ(ବି+ଉତ୍+ପଦ୍ ଧାତୁ+କର୍ତ୍ତୃ. ତ)-୧ । ଶାସ୍ତ୍ର-Byut-panna ଜ୍ଞାନ ସମ୍ପନ୍ନ—1. Versed in a science. (ବ୍ୟୁତ୍ପନ୍ନା—ସ୍ତ୍ରୀ) ୨ । ପାରଦର୍ଶୀ; ପାରଙ୍ଗମ—2. Specialist in any science; proficient; well versed. ୩ । ପଣ୍ଡିତ—3. Learned. ୪ । ( ବ୍ୟାକରଣ ) ପ୍ରକୃତି ପ୍ରତ୍ୟୟ ସାହାଯ୍ୟରେ ଉତ୍ପନ୍ନ (ଶବ୍ଦ)—4. (Grammar) Derived ( word); derivative. ୫ । ବ୍ୟୁତ୍ପତ୍ତିଯୁକ୍ତ—5. Connected with the derivation; etymological. ୬ । ସଂସ୍କୃତ; ଯାହାର ସଂସ୍କାର ହୋଇଅଛି (ହି.ଶ)-6. Reformed; purified.

ବ୍ୟୁତ୍ପାଦକ—ସଂ. ବିଣ (ବି+ଉତ୍+ପାଦ ଧାତୁ+କର୍ତ୍ତୃ. ଅକ)—୧ । Byut-pādaka ଯାହାଦ୍ୱାରା ବ୍ୟୁତ୍ପତ୍ତି ଜନ୍ମେ; ବ୍ୟୁତ୍ପତ୍ତିଜନକ—(ବ୍ୟୁତ୍ପାଦୀ—ଅନ୍ୟରୂପ) 1. Producing proficiency. (ବ୍ୟୁତ୍ପାଦନ—ବି) ୨ । ସଂସ୍କାରଜନକ—2. Result-in purity or perfection. (ବ୍ୟୁତ୍ପାଦିକା—ସ୍ତ୍ରୀ) ୩ । ଉତ୍ପାଦକ—(ହି. ଶ)—3. Productive.

ବ୍ୟୁତ୍ପାଦିତ—ସଂ. ବିଣ—(ବି+ଉତ୍+ପାଦ ଧାତୁ+କର୍ମ. ତ)—Byut-pādita ପ୍ରକୃତି ପ୍ରତ୍ୟୟାଦି ଦ୍ୱାରା ଉତ୍ପାଦିତ—Derived or formed from etymology.

ବ୍ୟୁତ—ସଂ. ବିଣ—(ବେ ଧାତୁ=ବୁଣିବା+କର୍ମ. ତ)—୧ । ସ୍ୟୂତ—Byuta (ବ୍ୟୁତି—ବି) 1. Sewn. ୨ । ବୁଣା ହୋଇଥିବା-2. Woven.

ବ୍ୟୁତପତି—ଗ୍ରା. ବି (ପଦ୍ୟ) (ସଂ. ବ୍ୟୁତ୍ପତ୍ତି)—୧ । ଅନୁମାନ—Byutapati 1. Guess; inference. [ ଉ—ଘାତ ବେଗରେ ଗମନ ଲଭିଲ ସେ ଶାନ୍ତି, ବକ ହଂସଦ୍ୱାରରେ ଏମନ୍ତ ବ୍ୟୁତପତ । ଉଞ୍ଜ. ବୈଦେହୀଶବିଳାସ ।] ୨ । ଜ୍ଞାନ—2. Knowledgo. ୩ । ବୋଧ; ଅନୁଭୂତି—3. Understanding; perception.

ବ୍ୟୁତପନ(ନ୍ନ)—ଗ୍ରା. ବି (ପଦ୍ୟ)—ବ୍ରହ୍ମା—Brahmā. ( ଉ—Byutapana(nna) ବ୍ୟୁତପନ୍ନ ଆୟୁଷ ଛପନଗଣ୍ଡା ଯୁଗ ଯେ । ଉଞ୍ଜ. ବୈଦେହୀଶବିଳାସ । )

ବ୍ୟୁଦାସ—ସଂ. ବି (ବି+ଉତ୍+ଅସ୍ ଧାତୁ+ଭାବ. ଅ)-୧ । ମର୍ଦ୍ଦନ—Byudāsa 1. Pounding; rubbing. ୨ । ପରିତ୍ୟାଗ—2. Rejection; exclusion; abandonment; relinquishment. ୩ । ବହିଷ୍କରଣ—3. Expulsion. ୪ । ନିବାରଣ; ଖଣ୍ଡନ—4. Refutation;

provention. ୫ । ଔଦାସୀନ୍ୟ—5. Indifference. ୬ । ଅବଜ୍ଞା—6. Disregard. ୭ । କୌଣସି ବସ୍ତୁର ସମୁଚିତ ବ୍ୟବହାର ନ କରିବା; ଅପବ୍ୟବହାର—7. Abuse; want of proper use of a thing.

ବ୍ୟୁଷ—ସଂ. ବି—(ବି+ଉଷ ଧାତୁ=ବଧ କରିବା, ରୁଗ୍ଣ କରିବା+କର୍ତ୍ତୃ. ଅ, ଯାହା ମନୁଷ୍ୟଙ୍କୁ ରୁଗ୍ଣ କରେ; ତୁଳନା କର ପ୍ରତ୍ୟୁଷ)
Byusha
୧ । ସୂର୍ଯ୍ୟୋଦୟ ସମୟ (ହି. ଶ)—1. The time of sunrise. ୨ । ପ୍ରାତଃକାଳ (ହି. ଶ)—2. Morning.

ବ୍ୟୁଷ୍ଟ—ସଂ. ବିଣ (ବି+ବସ୍. ଧାତୁ+କର୍ମ. ତ)—୧ । ବାସି;
Byushṭa
ପର୍ଯ୍ୟୁଷିତ—1, Stale; not fresh. [ ଦ୍ର—ଏହି ଶବ୍ଦର ଅପଭ୍ରଂଶ—ବାସି । ] ୨ । (ବି+ଉଷ୍. ଧାତୁ=ଦଗ୍ଧ କରିବା+କର୍ମ. ତ) ଦଗ୍ଧ—2. Burnt; scorched.
ବି—( ବି+ଉଷଧାତୁ+କର୍ତ୍ତୃ ତ ) ୧ । ପ୍ରଭାତ—1. Morning. ୨ । ଦିନ; ସକାଳରୁ ସନ୍ଧ୍ୟାପର୍ଯ୍ୟନ୍ତ ସମୟ 2. Day time. ୩ । (+କର୍ମ ତ) ଫଳ—3. Fruit.

ବ୍ୟୁଷ୍ଟି—ସଂ. ବି ( ବି+ବସ୍. ଧାତୁ+ଅଧି. ତି )—୧ । ଫଳ—
Byushṭi
1. Fruit. ୨ । ସମୃଦ୍ଧି—2 Prosperity. ୩ । ସ୍ତୁତି—3. Praise; eulogy. ୪ । (ବି+ଉଷ୍. ଧାତୁ+ଭାବ. ତି) ଦାହ; ଜ୍ୱଳନ—4 Conflagration; combustion. ୫ । (+କର୍ତ୍ତୃ ତି) ପ୍ରଭାତ—5. Morning. ୬ । ( ବି+ବଶ୍. ଧାତୁ+ଭାବ. ତି ) ଇଚ୍ଛା—6. Inclination.

ବ୍ୟୂଢ଼—ସଂ. ବିଣ (ବି+ବହ. ଧାତୁ+କର୍ତ୍ତୃ. ତ)-୧ । ବିପୁଳ; ପ୍ରଶସ୍ତ—
Byūrḏha
1. Wide; broad; extensive. ୨ । ସ୍ଥୂଳ; ପୃଥୁଳ—2. Bulky; corpulent. ୩ । ସଂହତ—3. Compact; welded together; strongly knit. ୪ । ସ୍ଫୀତ—4. Swollen. ୫ । ବିନ୍ୟସ୍ତ—5. Arranged. ୬ । ତୁଲ୍ୟ—6. Similar. ୭ । ଉତ୍ତମ; ଉତ୍କୃଷ୍ଟ—7. Good; excellent. ୮ । ବିବାହିତ—8. Married. ୯ । ପରିହିତ—9. Clothed; clad. ୧୦ । ଦୃଢ଼—10. Strong; firm; hard; tight. ୧୧ । ବାହିତ—11. Conducted. ୧୨ । ସୁସନ୍ନଦ୍ଧ—12. Well girt. ୧୩ । ଯେ ବ୍ୟୂହ ରଚନା କରି ଠିଆ ହୋଇଅଛି (ହି. ଶ)—13. Standing ready for fight after forming a battle array.

ବ୍ୟୂଢ଼ କଙ୍କଟ—ସଂ.ବିଣ.ପୁଂ (ବହୁବ୍ରୀହି,ବ୍ୟୂଢ଼=ବିନ୍ୟସ୍ତ+କଙ୍କଟ=ସାଞ୍ଜୁ ଯାହାଠାରେ )—ଉତ୍ତମରୂପେ ସାଞ୍ଜୁଦ୍ୱାରା ଆବୃତ—Well girt with armour.
Byūrḏha kaṅkaṭa

ବ୍ୟୂଢ଼ି—ସଂ. ବି ( ବି+ଉହ୍ ଧାତୁ=ତର୍କ କରିବା+ଭାବ. ତି )—
Byūrḏh
୧ । ବିନ୍ୟାସ—1. Orderly arrangement. ୨ । ସ୍ଥୂଳତା—2. Thickness.

ବ୍ୟୂଢ଼ୋରସ୍କ—ସଂ. ବିଣ. ପୁଂ (ବହୁବ୍ରୀହି; ବ୍ୟୂଢ଼=ପ୍ରଶସ୍ତ+ଉରଃ=ବକ୍ଷୋଦେଶ ଯାହାର; କ ଆଗମ)—ଯାହାର ଛାତି ଚଉଡ଼ା—Broad-breasted.
Byūrḏhoraska

ବ୍ୟୂତ—ସଂ. ବିଣ. (ବି+ବେ ଧାତୁ=ବୁଣିବା+କର୍ମ. ତ)—୧ । ସୂତା ଦ୍ୱାରା ବୁଣା ଯାଇଥିବା—1. Woven. ୨ । ସିଲେଇ କରା ଯାଇଥିବା—2. Sewn.
Byūta

ବ୍ୟୂତି—ସଂ. ବି (ବି+ବେ ଧାତୁ+ଭାବ. ତି)—୧ । ବୟନ; ଲୁଗାବୁଣା—1. Weaving of cloth. ୨ । ସିଲେଇ;ସିଆଁ—2. Sewing. ୩ । (+କର୍ମ. ତି) ଛାଗା—3 Stitch.
Byūti

ବ୍ୟୂହ—ସଂ. ବି. (ବି+ଊହ୍ ଧାତୁ=ତର୍କ କରିବା; ବିନ୍ୟାସ କରିବା+ଭାବ. ଅ)—୧ । ସୈନ୍ୟ ସମାବେଶ; ଯୁଦ୍ଧାର୍ଥ ସୈନ୍ୟଦଳଙ୍କୁ ଶୃଙ୍ଖଳା ପୂର୍ବକ ସଜ୍ଜିତ କରିବା—1. Battle-array; arraying of troops in order.
Byūha
୨ । (+କର୍ମ.ଅ)—ସଜ୍ଜିତ ସୈନ୍ୟ ଦଳ—2. A line of soldiers. ୩ । (+କର୍ମ. ଅ) ସମୂହ—3. Multitude ୪ । ସୈନ୍ୟ ଦଳ—4. Phalanx; a body of troops; army. ୫ । (+ଭାବ. ଅ) ବିସ୍ତାର—5. Expansion; diffusion. ୬ । ନିର୍ମାଣ; ଗଠନ—6. Disposition; manufacture. ୭ । (+କର୍ମ. ଅ) ଦେହ; ଶରୀର—7. Body. ୮ । ତର୍କ (ହି. ଶ)—8. Argument. ୯ । ପରିଣାମ (ହି. ଶ)—9. End; final result. ୧୦ । କୌଣସି ଆକ୍ରମଣରୁ ବା ବିପଦରୁ ରକ୍ଷା କରିବା ପାଇଁ ରଚିତ ଯୋଜନା ( ହି. ଶ )—10. Any arrangement for self-defence against any attack or danger
[ଦ୍ର—ପୂର୍ବକାଳରେ ଯୁଦ୍ଧ କ୍ଷେତ୍ରରେ ଚତୁରଙ୍ଗ ସେନାଙ୍କୁ ନାନା କୌଶଳରେ ଯୁଦ୍ଧ ପାଇଁ ସଜ୍ଜିତ କରି ରଖା ଯାଉଥିଲା । ଆକାର ଆଦି ଅନୁସାରେ ବ୍ୟୂହର ଭିନ୍ନ ଭିନ୍ନ ନାମ ଥିଲା; ଯଥା—ଦଣ୍ଡ ବ୍ୟୂହ,ଶକଟ ବ୍ୟୂହ,ବରାହ ବ୍ୟୂହ, ଗରୁଡ଼ ବ୍ୟୂହ, ଶ୍ୟେନ ବ୍ୟୂହ, ମଣ୍ଡଳ ବ୍ୟୂହ, ଧନୁର୍ବ୍ୟୂହ, ସର୍ବତୋଭଦ୍ର ବ୍ୟୂହ । ରାଜା ବା ପ୍ରଧାନ ସେନାପତି ବ୍ୟୂହର କେନ୍ଦ୍ରରେ ଶତ୍ରୁର ପ୍ରତ୍ୟକ୍ଷ ଆକ୍ରମଣରୁ ଦୂରରେ ରହୁଥିଲେ ଓ ଆଦେଶାଦିଦ୍ୱାରା ବ୍ୟୂହ ଚାଳନା କରୁଥିଲେ । ]

ବ୍ୟୂହ ପାର୍ଷ୍ଣି—ସଂ. ବି—(୬ଷ୍ଠୀ ତତ୍) ସୈନ୍ୟ ଦଳର ପଶ୍ଚାଦ୍ ଭାଗ—The rear of an army.
Byūha pārshṇi

ବ୍ୟୂହ ଭେଦ—ସଂ. ବି ( ୬ଷ୍ଠୀ ତତ୍ )—ଶତ୍ରୁପକ୍ଷର ସୁସଜ୍ଜିତ ଶ୍ରେଣୀବଦ୍ଧ ସୈନ୍ୟଙ୍କ ମଧ୍ୟରେ ପ୍ରବେଶ କରିବା—Penetrating or breaking into the enemy's line.
Byūha bheda

ବ୍ୟୂହ ରଚନ(ନା)—ସଂ. ବି (୬ଷ୍ଠୀତତ୍)—ସୈନ୍ୟମାନଙ୍କୁ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସଜ୍ଜିତ କରିବା—Disposal or arranging of troops in battle order.
Byūha rachana(nā)

ବ୍ୟୂହିତ—ସଂ. ବି ( ବ୍ୟୂହ+ଇତ )—ବ୍ୟୂହାକାରରେ ସଜ୍ଜିତ (ସୈନ୍ୟ)—(army) Arranged in battle order.
Byūhita

(ଉ—ଅଗ୍ରେ ଉଭା ଯବନର ବ୍ୟୂହିତ ବାହିନୀ । ରାଧାନାଥ. ମହାଯାତ୍ରା । )

ବ୍ୟେ (ଧାତୁ)—ସଂ—ଆଚ୍ଛାଦନ କରିବା—To cover.
Bye (root)

ବ୍ୟୋମ—ସଂ. ବି ( ବ୍ୟେ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ମନ୍; ନିପାତନ; ବ୍ୟୋମନ୍ ଶବ୍ଦ, ୧ମା. ୧ବ )—୧ । ଆକାଶ; ଅମ୍ବର; ଶୂନ୍ୟ; ନଭୋମଣ୍ଡଳ—1. The sky; the heavens. ୨ । ଜଳ—2. Water. ୩ । ସୂର୍ଯ୍ୟୋପାସନାର୍ଥ ମନ୍ଦିର—3. A temple sacred to the Sun-god. ୪ । ମେଘ ( ହି. ଶ )—4. Cloud. ସଂ. ବି—୧ । ପୁରାଣୋକ୍ତ ରାକ୍ଷସ ବିଶେଷ; ବ୍ୟୋମାସୁର—1. Name of a demon. (ଉ—ବ୍ୟୋମମାର୍ଗେ ଯିବା ଗୁହିଁ, ବ୍ୟୋମ ଉଗ୍ନିପଣ୍ଡ କହି । ଭଞ୍ଜ. ବୈଦେହୀଶବିଳାସ ।) ୨ । ଭାଗବତୋକ୍ତ ଦୈତ୍ୟ ବିଶେଷ ( ଏହାକୁ ଶ୍ରୀକୃଷ୍ଣ ମାରିଥିଲେ । )—2. Name of another demon killed by Srikrushna.
Byoma

ବ୍ୟୋମ କେଶ(ଶୀ)—ସଂ. ବି ( ବ୍ୟୋମ=ଆକାଶବ୍ୟାପୀ କେଶ ଯାହାର, ବ୍ୟୋମ+କେଶ;+ଇନ୍; ୧ମା. ୧ବ )—ମହାଦେବ—Siba. ଦେ. ବି. ପର୍ବତ—Mountain. ( ଉ—ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମ କେଶ କେଶେ । ମଧୁସୂଦନ. ଆକାଶପ୍ରତି । ) [ ଦ୍ର—ପୁରାଣମତରେ ମହାଦେବ ଗଙ୍ଗାଙ୍କୁ ସ୍ୱମସ୍ତକରେ ଧାରଣ କଲାବେଳେ ତାଙ୍କର କେଶ ଆକାଶରେ ବ୍ୟାପିଥିଲା, ତେଣୁ ତାହାଙ୍କ ନାମ ବ୍ୟୋମକେଶ ହୋଇଅଛି । କିନ୍ତୁ ଏହା ପୁରାଣୋକ୍ତ କଳ୍ପନା ମାତ୍ର । ଭକ୍ତକବି ମଧୁସୂଦନ ବ୍ରାହ୍ମ ଧର୍ମାବଲମ୍ବୀ ଥିଲେ ଏବଂ ପୌରାଣିକ ମୂର୍ତ୍ତିକଳ୍ପନାରେ ବିଶ୍ୱାସ କରୁ ନ ଥିଲେ । ତେଣୁ ତାଙ୍କ କବିତାରେ 'ବ୍ୟୋମ କେଶ' ଶବ୍ଦ ଶିବ ଅର୍ଥରେ ପ୍ରଯୁକ୍ତ ହେବା ସମ୍ଭବପର ନୁହେଁ । ତେଣୁ ଉଦ୍ଧୃତ କବିତାରେ 'ବ୍ୟୋମକେଶ' ଶବ୍ଦ ବ୍ୟୋମବ୍ୟାପୀ କେଶ ଅର୍ଥାତ୍ ଅଗ୍ରଭାଗ ବା ଶିଖର ଯାହାର ଏହିପରି ବ୍ୟୁତ୍ପତ୍ତି ବଳରେ 'ପର୍ବତ' ଅର୍ଥରେ ପ୍ରଯୁକ୍ତ ହୋଇଅଛି ଓ ବ୍ୟୋମକେଶକେଶକୁ ପର୍ବତର ଶିରୋଭାଗ ବୋଲି ଅର୍ଥ କରାଯାଇ ପାରେ ବୋଲି କେହି କେହି ମତ ଦିଅନ୍ତି । ]
Byoma kesa(Si)

ବ୍ୟୋମ ଗଙ୍ଗା—ସଂ. ବି. (ଷଷ୍ଠୀ ତତ୍)—ଆକାଶ ଗଙ୍ଗା; ମନ୍ଦାକିନୀ—The Ganges said to flow in the heavens.
Byoma ganga
(ବ୍ୟୋମ ସରିତ୍—ଅନ୍ୟରୂପ)

ବ୍ୟୋମ ଗମନୀ—ସଂ. ବି. ( ବ୍ୟୋମ+ଗମନ+ଈ )—ଯେଉଁ ବିଦ୍ୟା ସାହାଯ୍ୟରେ ମନୁଷ୍ୟ ଆକାଶରେ ଉଡ଼ିବାକୁ ସମର୍ଥ ହୁଏ (ହି. ଶ)—The act or science with the aid of which a man can travel in the sky.
Byoma gamani

ବ୍ୟୋମ ଚର—ସଂ. ବିଣ. ପୁଂ ( ବ୍ୟୋମ+ଚର ଧାତୁ+କର୍ତ୍ତୃ. ଅ )—୧ । ଗଗନ ବିହାରୀ—1. Travelling in the sky. ବି—୧ । ଦେବତା—1. The Gods. ୨ । ଗ୍ରହ ନକ୍ଷତ୍ରାଦି—2. Stars and planets. ୩ । ପକ୍ଷୀ—3. Bird.
Byoma chara
(ବ୍ୟୋମଶ୍ରୁସ୍—ଅନ୍ୟରୂପ).
ବ୍ୟୋମଚରୀ, ବ୍ୟୋମଗୃଚାରୀ } ଅନ୍ୟରୂପ

ବ୍ୟୋମ ଦୋଳୀ—ଦେ. ବି—ଆକାଶରେ ଶୂନ୍ୟରେ ଝୁଲୁଥିବା ଦୋଳୀ—A swing suspended in the sky.
Byoma doli
(ଉ—ବ୍ୟୋମ ଦୋଳୀରେ ଉଦୟ କୋଳେ ତାରା ପ୍ରଭା । ଭଞ୍ଜ. ବୈଦେହୀଶବିଳାସ ।)

ବ୍ୟୋମ ଧୂମ—ସଂ. ବି. ( ମ. ପ. ଲୋ )—ମେଘ—Cloud.
Byoma dhuma
(ଉ—ବ୍ୟୋମ ଧୂମକୁ, ତାହା ସମକୁ, ଲକ୍ଷିବା ବ ମାନସ । ଭଞ୍ଜ. ବୈଦେହୀଶବିଳାସ ।)

ବ୍ୟୋମ ନାସିକା—ଦେ. ବି—ବ୍ୟୋମ ଲାସିକା ( ଦେଖ )—Byoma lasika ( See )
Byoma nasika
(ଉ—ବ୍ୟୋମ ନାସିକା ପରି ହୋଇ ଆକାଶେ, ବିଳାସ ପ୍ରକାଶ କଲା ସେ । ଭଞ୍ଜ. ବୈଦେହୀଶବିଳାସ ।)

ବ୍ୟୋମ ପାଦ—ସଂ. ବି. (ବହୁବ୍ରୀହି)—ବିଷ୍ଣୁ—Bishnu.
Byoma pada

ବ୍ୟୋମ ମଞ୍ଜର—ସଂ. ବି—ଧ୍ୱଜ; ପତାକା—Flag; standard.
Byoma manjara

ବ୍ୟୋମ ମଣ୍ଡଳ—ସଂ. ବି. ( ବହୁବ୍ରୀହି; ବ୍ୟୋମ+ମଣ୍ଡଳ=ସ୍ଥାନ )—୧ । ଧ୍ୱଜ; ପତାକା—1. Flag. ୨ । (ଷଷ୍ଠୀ ତତ୍) ଆକାଶ ମଣ୍ଡଳ—2. The sky.
Byoma mandala

ବ୍ୟୋମ ମୁଦ୍ଗର—ସଂ. ବି—୧ । ବାୟୁର ନିର୍ଘାତ ବା ଶବ୍ଦ—1. Loud sound produced by wind or tempest. ୨ । ଘଡଘଡି ଶବ୍ଦ—2. The sound of thunder.
Byoma mudgara

ବ୍ୟୋମ ଯାନ—ସଂ. ବି—୧ । ଦେବଯାନ; ବିମାନ—1. The aerial cars of the Gods. ୨ । ବେଲୁନ୍—2. Balloon aeroplane.
Byoma jana

ବ୍ୟୋମ ଲାସିକା—ସଂ. ବି. (ବ୍ୟୋମ=ଆକାଶ+ଲାସିକା=ନର୍ତ୍ତକୀ)—୧ । ଶୂନ୍ୟ ନର୍ତ୍ତକୀ—1. A dancing female who performs dances in the air. ୨ । ଭରଦ୍ୱାଜ ପକ୍ଷୀ—2. The sky lark. (ଉ—ବ୍ୟୋମ ଲାସିକା ନର୍ତ୍ତନେ ହୋଇଅଛି ମେଳା । ଭଞ୍ଜ. ବୈଦେହୀଶବିଳାସ ।)
Byoma lasika

ବ୍ୟୋମୋଦକ—ସଂ. ବି. (ଷଷ୍ଠୀ ତତ୍ କର୍ମ ମ. ପ. ଲୋ; ବ୍ୟୋମ ପତିତ ଉଦକ)—ବର୍ଷା ଜଳ—Rain water.
Byomodaka

ବ୍ୟୋମ୍ନିକ—ସଂ.ବିଣ (ବ୍ୟୋମନ୍+ଇକ; ନିପାତନ)—ଆକାଶ ସମ୍ବନ୍ଧୀୟ—Relating to the sky.
Byomnika

ବ୍ୟୋଷ—ସଂ. ବି. (ବୈଦ୍ୟକ)—ଶୁଣ୍ଠି, ପିପ୍ପଳ ଓ ମରିଚର ସମାହାର; ତ୍ରିକଟୁ—A mixture of dry ginger, long pepper and black pepper.
Byosha

ବ୍ରଜ୍ (ଧାତୁ)—ସଂ—ଗମନ କରିବା—To go; to walk.
Braj (root)

ବ୍ରଜ—ସଂ. ବି. (ବ୍ରଜ୍ ଧାତୁ + ଭାବ. ଅ)—୧ । ଗମନ—1. Going;
Braja walking. ୨ । (+ ଅଧିକରଣ. ଅ)—ପଥ—2. Road; way. ୩ । ଗୋଷ୍ଠ—3. A herd of cows; cow-pen; a pasture for cows. ୪ । (+ କର୍ମ. ଅ)—ସମୂହ—4. Multitude; assemblage. ୫ । ପୌରାଣିକ ଶୂରସେନ ଦେଶର ଏକ ଅଂଶ; ଆଧୁନିକ ମଥୁରାର ଅନ୍ତର୍ଗତ ପ୍ରାଚୀନ ଗୋକୁଳ ଗ୍ରାମ—5. An ancient village near Mathurā. ୬ । ବୃନ୍ଦାବନ—6. Bṛundābana. [ଦ୍ର—ଏହି ଦେଶ ବୃନ୍ଦାବନ, ଗୋକୁଳ, ମଥୁରା, ଆଗ୍ରା ଆଦି ସହିତ ପରିଧିରେ ୧୬୮ ମାଇଲ ଅଟେ । ହି.ଶ] ଦେ. ବି—୧ । ବ୍ରଜ ଶବ୍ଦରେ ଆରମ୍ଭ ହୋଇଥିବା ନାମଧାରୀ ବ୍ୟକ୍ତିଙ୍କୁ ଡାକିବା ନାମ—1. Name by which persons having names beginning with Braja are called. ୨ । ଗୋପାଳ; ଗଉଡ଼—2. Cowherd. (ଉ—ବ୍ରଜ ଜନର ଜାଣିବା ଲକ୍ଷଣେ, ବଶ୍ରୁ ପଯୁ ଉଦୟ କରଣେ । ଉଞ୍ଜ. ବୈଦେହୀଶବିଳାସ ।)

ବ୍ରଜକ—ସଂ. ବି. ପୁଂ (ବ୍ରଜ ଧାତୁ + କର୍ତ୍ତୃ. ଅକ)—ତପସ୍ୱୀ—
Brajaka A sage.

ବ୍ରଜ କାମିନୀ—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—ଗୋପନାରୀ; ବ୍ରଜନାରୀ—
Braja kāmini A woman of Bṛundābana.
[ଦ୍ର—ଏମାନେ ଶ୍ରୀକୃଷ୍ଣଙ୍କୁ ସ୍ନେହରସରେ ଭକ୍ତି କରୁଥିଲେ ।]
( ବ୍ରଜଗୋପିକା, ବ୍ରଜଗୋପୀ, ବ୍ରଜନାଗରୀ, ବ୍ରଜନାରୀ, ବ୍ରଜବଧୂ, ବ୍ରଜବାଳା, ବ୍ରଜରମଣୀ, ବ୍ରଜାଙ୍ଗନା—ଅନ୍ୟରୂପ )

ବ୍ରଜ କିଶୋର—ସଂ. ବି. ପୁଂ—ଶ୍ରୀକୃଷ୍ଣଙ୍କର ନାମ—
Braja kiśor A name of Śrikṛushṇa.
ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.
(ବ୍ରଜକୁମାର, ବ୍ରଜଗୋପାଳ, ବ୍ରଜନାଗର, ବ୍ରଜନାଥ, ବ୍ରଜବନ୍ଧୁ, ବ୍ରଜବଲ୍ଲଭ, ବ୍ରଜବିନୋଦ, ବ୍ରଜବିନୋଦନ, ବ୍ରଜବିଳାସୀ, ବ୍ରଜବିହାରୀ, ବ୍ରଜମୋହନ, ବ୍ରଜରମଣ, ବ୍ରଜରାଜ, ବ୍ରଜସୁନ୍ଦର, ବ୍ରଜାନନ୍ଦ, ବ୍ରଜେନ୍ଦ୍ର, ବ୍ରଜେଶ୍ୱର, ବ୍ରଜବଲ୍ଲଭ—ଅନ୍ୟରୂପ)

ବ୍ରଜ କିଶୋରୀ—ସଂ. ବି. ସ୍ତ୍ରୀ—ରାଧିକାଙ୍କ ନାମ—
Braja kiśori A name given to Rādhikā.
(ବ୍ରଜନାଗରୀ, ବ୍ରଜବିନୋଦିନୀ, ବ୍ରଜବିହାରୀ, ବ୍ରଜସୁନ୍ଦରୀ, ବ୍ରଜେଶ୍ୱରୀ, ବ୍ରଜବଲ୍ଲଭା—ଅନ୍ୟରୂପ)

ବ୍ରଜ ଧାମ—ସଂ. ବି. (ବ୍ରଜ + ଧାମନ୍)—ବୃନ୍ଦାବନ ଧାମ—
Braja dhāma Bṛundābana.

ବ୍ରଜ ଧୂଳି—ସଂ. ବି—ବୈଷ୍ଣବମାନଙ୍କର ଅତି ପ୍ରିୟ ଓ ପବିତ୍ର ବସ୍ତୁ
Braja dhūḷi ବ୍ରଜମଣ୍ଡଳର ଧୂଳି—The dust of the
ব্রজধূলা, ব্রজরেণু Braja country which is looked upon
ब्रजधूल as very sacred by the Baishṇabas.

ବ୍ରଜ ନଗର—ଦେ. ବି—ବୃନ୍ଦାବନ ଧାମ—The holy place of
Braja nagara Bṛundābana where Śrikṛushṇa had his sports with the Braja-women.
ବ୍ରଜପୁର, ବ୍ରଜପୁରୀ, ବ୍ରଜଭୂମି } ଅନ୍ୟରୂପ

ବ୍ରଜନାଥ ବଡ଼ଜେନା—ଦେ. ବି ( ନାମ )—ଅଷ୍ଟାଦଶ ଶତାବ୍ଦୀର
Brajanātha baṛdajenā ପରାର୍ଦ୍ଧରେ ଜନ୍ମିଥିବା ଢେଙ୍କାନାଳବାସୀ ଜଣେକ କବି—Name of an Oriya poet of the latter half part of the 18th century; the author of the Samara Taranga. [ ଦ୍ର—ମରହଟ୍ଟାମାନେ ଓଡ଼ିଶା ଅଧିକାର କରିବା ସମୟରେ ମରହଟ୍ଟାମାନଙ୍କର ଓ ଢେଙ୍କାନାଳ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କର ଢେଙ୍କାନାଳ ଗଡ଼ ନିକଟରେ ଯେଉଁ ଯୁଦ୍ଧ ହୋଇଥିଲା, ସେ ଯୁଦ୍ଧ ବିଷୟ ବର୍ଣ୍ଣନା କରି ବ୍ରଜନାଥ ସମରତରଙ୍ଗ ନାମରେ ଖଣ୍ଡିଏ ଓଡ଼ିଆ ପଦ୍ୟ ରଚନା କରିଥିଲେ । ଏ ମଧ୍ୟ ହିନ୍ଦୀଭାଷାରେ ପୁରୀ ଜଗନ୍ନାଥଙ୍କ ଗୁଣ୍ଡିଚା (ରଥ)ଯାତ୍ରା ସମ୍ବନ୍ଧେ ଗୋଟିଏ କବିତା ଲେଖିଥିଲେ ।
ତାରିଣୀଚରଣଙ୍କ ଉତ୍କଳ ସାହିତ୍ୟର ଇତିହାସରେ ଏହାଙ୍କ ନାମ ବ୍ରଜନାଥ ଦାସ ବୋଲି ଲେଖା ଯାଇଅଛି । ]

ବ୍ରଜ ବାଳକ—ସଂ. ବି—ଶ୍ରୀକୃଷ୍ଣଙ୍କର ସହଚର ବ୍ରଜ ନଗରର ଶିଶୁ—
Braja bāḷaka A cowherd companion of Srikṛushṇa.
( ବ୍ରଜସୁତ—ଅନ୍ୟରୂପ )

ବ୍ରଜବାଳା—ସଂ. ବି—ଗୋପନାରୀ; ଗୋପକନ୍ୟା; ଗୋପାଙ୍ଗନା—A
Brajabāḷā woman belonging to Braja country.

ବ୍ରଜ ବୋଲି—ଦେ. ବି—ବଙ୍ଗଦେଶର ପ୍ରାଚୀନ କବିମାନଙ୍କର ବ୍ୟବହୃତ
Braja boli ମୈଥିଳ ଓ ବଙ୍ଗୀୟ ଭାଷା ମିଶ୍ରଣରେ ଉତ୍ପନ୍ନ ଏକ-
ব্রজবুলি ପ୍ରକାର ପ୍ରାଚ୍ୟ ଭାଷା—A language mixed
ब्रजबोली up of Bengalee and Biharee languages used by classical writers of Bengal. [ ଦ୍ର—ବଙ୍ଗୀୟ ପ୍ରାଚୀନ କବି ବିଦ୍ୟାପତି, ଚଣ୍ଡୀଦାସ, ଜ୍ଞାନଦାସ ଆଦି ଓ ଆଧୁନିକ ବଙ୍କିମଚନ୍ଦ୍ର ଓ ରବୀନ୍ଦ୍ରନାଥ ଆଦି ଏ ଭାଷାରେ ବହୁ ପଦ୍ୟ ରଚନା କରିଅଛନ୍ତି । କିନ୍ତୁ ଏହା ପ୍ରକୃତରେ ବ୍ରଜଭୂମିର ଭାଷା ନୁହେ । ଏହା ମିଥିଳାର କ୍ଷତ୍ରିୟବଂଶର ଭାଷା ଅଟେ । ଜ୍ଞାନେନ୍ଦ୍ର ]

ବ୍ରଜଭାଷା(ଖା)—ଦେ. ବି—ମଥୁରା, ବୃନ୍ଦାବନ ଓ ତନ୍ନିକଟବର୍ତ୍ତୀ
Brajabhāshā(khā) ପ୍ରଦେଶମାନଙ୍କରେ କଥିତ ପ୍ରାକୃତ
ব্রজভাষা ब्रजभाषा[खा] ଶୌରସେନୀ ଭାଷାରୁ ଉତ୍ପନ୍ନ ଏକପ୍ରକାର ହିନ୍ଦୀ ଭାଷା—A dialect of Hindi spoken round Mathurā and Bṛundābana. [ ଦ୍ର—ଏହା ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଅଞ୍ଚଳ ଓ ତହିଁର ଦକ୍ଷିଣରେ ଅର୍ଥାତ୍ ମଥୁରା, ଆଗ୍ରା, ଇଟାୱା ଓ ଏଥିର ନିକଟବର୍ତ୍ତୀ ଅଞ୍ଚଳରେ ପ୍ରଚଳିତ ଭାଷା । ଏଥିର ଉତ୍ପତ୍ତି ଶୌରସେନୀ ପ୍ରାକୃତରୁ ହୋଇଅଛି । ଏହି ଅଞ୍ଚଳର ପଶ୍ଚିମ ଓ ଦକ୍ଷିଣରେ ଏ ଭାଷା ରାଜସ୍ଥାନୀରୂପ ଧାରଣ କରିଅଛି । ଏ ଭାଷାର ପ୍ରାଚୀନ ସାହିତ୍ୟ ବହୁତ ଉଚ୍ଚ ଓ ଅଧିକ । ଉତ୍ତର ଭାରତର ଅଧିକାଂଶ ପ୍ରାଚୀନ କବି ଏହି ଭାଷାରେ କବିତା ରଚନା କରିଥିଲେ । ଯଥା—ତୁଳସୀଦାସ, ସୁରଦାସ,

ହରିଦାସ । ବଙ୍ଗଦେଶର ପ୍ରାଚୀନ କବିମାନେ ଏହି ଭାଷାରେ କବିତାମାନ ରଚନା କରିଥିଲେ । ଆଜିକାଲି ଯାହା ବଙ୍ଗଳା ଭାଷା ନାମରେ ଚଳୁଅଛି ତାହା ଅର୍ବାଚୀନ ଅଟେ । ପୌରାଣିକ ଯୁଗରେ ଶୂରସେନ ଦେଶର ଏକ ଅଂଶର ନାମ ବ୍ରଜ ଥିଲା ଓ ସେହି ନାମ ଅନୁସାରେ ବ୍ରଜ ଭାଷାର ନାମକରଣ ହୋଇଅଛି । କନୌଜୀ ଭାଷାର ବ୍ରଜ-ଭାଷା ସଙ୍ଗେ ସୌସାଦୃଶ୍ୟ ଅଛି । ବ୍ରଜଭାଷା ସଙ୍ଗେ ବ୍ରଜ-ବୋଲିର ବିଶେଷ ସମ୍ବନ୍ଧ ନାହିଁ—ଜ୍ଞାନେନ୍ଦ୍ରଙ୍କ ଉଦ୍ଧୃତ ମହାବୀର ପ୍ରସାଦ ଦ୍ୱିବେଦୀଙ୍କ ହିନ୍ଦୀଗ୍ରନ୍ଥ । ]

ବ୍ରଜ ମଣ୍ଡଳ—ଦେ. ବି—ମଥୁରାମଣ୍ଡଳ—The country of Braja. Braja maṇḍaḷa [ ଦ୍ର—ମଥୁରା ଓ ବୃନ୍ଦାବନର ଚତୁଃପାର୍ଶ୍ୱସ୍ଥ (ବ୍ରଜଭୂମି—ଅନ୍ୟରୂପ) ଅଞ୍ଚଳ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ବାଲ୍ୟଲୀଳାକ୍ଷେତ୍ର ଥିଲା ଓ ଏଥିଯୋଗୁଁ ଏହା ହିନ୍ଦୁମାନଙ୍କର ପବିତ୍ର ତୀର୍ଥ । ପୁରାଣ ଅନୁସାରେ ମଥୁରାର ୪ ଦିଗରେ ୧୪ କୋଶ ଅଞ୍ଚଳ ବ୍ରଜମଣ୍ଡଳ ଅଟେ ଓ ଏହାକୁ ପରିକ୍ରମା କରିବା ମହାପୁଣ୍ୟ—ହି. ଶ । ]

ବ୍ରଜ ମଲ୍ଲୀ—ଦେ. ବି ( ସଂ. ନାମ ଭଣ୍ଡୀର )—ଏକପ୍ରକାର ପୁଷ୍ପଗୁଳ୍ମ—Braja malli A kind of flowering shrub. [ ଦ୍ର—ସେଁଟୁ, ଭାଁଟ ଏହା ଉଚ୍ଚରେ ୬।୭ ହାତ ବଢ଼େ । ଏ ଗଛର ଡାଳ ବ୍ରଜମଲ୍ଲୀ ଅଗରେ ଗୋଟିଏ ଥୋପା ବାହାରେ ଓ ଏ ଥୋପାରେ ଶତାଧିକ ମଲ୍ଲୀଫୁଲ ପରି ସୁବାସିତ ଫୁଲ ଫୁଟେ । ଏ ଫୁଲର ବର୍ଣ୍ଣ ଓ ଆକାର ମଲ୍ଲୀଫୁଲ ପରି, ତେବେ ମଲ୍ଲୀଫୁଲ ଅପେକ୍ଷା ସାନ, ମୋଟ ଓ ନାଲି । ଫୁଲର ପାଖୁଡ଼ା ମଲ୍ଲୀ ପାଖୁଡ଼ା ଅପେକ୍ଷା ମୋଟା । ଏ ଗଛର ଚେରରୁ ପ୍ରଧାନ ଗଛଠାରୁ ୧୦ ହାତ ପରିଧି ମଧ୍ୟରେ ଭୂମିରୁ ନୂଆ ଗଛ ସରୁ ଗଜା ଦେଇ ବାହାରେ । ଏହାର ପତ୍ର ଓ ଗଛ ଗେଙ୍ଗୁଟି ଗଛ ଓ ପତ୍ର ପରି । ଫୁଲ ଗେଙ୍ଗୁଟି ଫୁଲ ପରି ପେନ୍ଥା ପେନ୍ଥା, କିନ୍ତୁ କେଶର ସାନ । ଏହାକୁ କେହି କେହି ଭଣ୍ଡୀର ବୋଲି କହନ୍ତି । ]

ବ୍ରଜରାଜ—ସଂ. ବି ( ୬ଷ୍ଠୀ ତତ୍; ବ୍ରଜ+ରାଜନ୍ )—ବ୍ରଜରାଜା—Brajarāja King of Braja, ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ବ୍ରଜରାଜ ସିଂହ ଦେବ; ଖଡ଼ିଆଳର ସ୍ୱର୍ଗୀୟ ରାଜା—2. Name of a late Rājā of Khaṛiāḷa. [ ଦ୍ର—ଏ ଓଡ଼ିଆରେ ବ୍ରଜବଧୂ ବିଳାସ, ରୂପମଞ୍ଜରୀ, ଶୋଭାବଲ୍ଲରୀ, ପ୍ରବନ୍ଧ ଚନ୍ଦ୍ରକାବ୍ୟ, କହ୍ଲା ଚଉତିଶା, ଚନ୍ଦ୍ରପଦାଭୂଷଣ ଗ୍ରନ୍ଥମାନ ରଚନା କରିଥିଲେ । ଖଡ଼ିଆଳ ଓଡ଼ିଆ ରାଜ୍ୟ ଓ ଏଥିର ରାଜପରିବାର ଓଡ଼ିଆ ଥିଲେହେଁ ଏହା ଅଳ୍ପ ପର୍ଯ୍ୟନ୍ତ ମଧ୍ୟପ୍ରଦେଶର ରାୟପୁର ଜିଲ୍ଲାର ଅନ୍ତର୍ଗତ ଥିଲା । ୧୯୩୪-୩୫ରେ ପାର୍ଲିଆମେଣ୍ଟ ସିଲେକ୍ଟ କମିଟିଙ୍କ ସୁପାରିସ ଫଳରେ ଏହା ନବ ଓଡ଼ିଶା ପ୍ରଦେଶ ଭୁକ୍ତ ହୋଇଅଛି । ଖଡ଼ିଆଳର ରାଜା ଓ ରାଜବଂଶୀୟମାନେ ପୁରୁଷାନୁକ୍ରମେ ଓଡ଼ିଆ ସାହିତ୍ୟର ସେବକ ଓ ଅନୁରାଗୀ ଅଟନ୍ତି । ରାଜା ବ୍ରଜରାଜସିଂହଙ୍କ ପୁତ୍ର ଲାଲ ଶିବନାରାୟଣ ଦେବଙ୍କ ଆନୁକୂଲ୍ୟରେ ରାଧାନାଥ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଥିଲା । ଲାଲ ଶିବନାରାୟଣ ଜଣେ ଓଡ଼ିଆ ସାହିତ୍ୟ ସେବକ । ଖଡ଼ିଆଳ ଅଞ୍ଚଳରେ ପ୍ରଚଳିତ ବହୁଶତ ଶବ୍ଦ ଯୋଗାଇ ଓ ଅନ୍ୟରୂପେ ସାହାଯ୍ୟ କରି ସେ ଏ ଭାଷାକୋଷର ଜଣେ ସହକର୍ମୀରୂପେ ଗୃହୀତ ହୋଇଅଛନ୍ତି ଓ ଲାଲ ସାହେବଙ୍କ ଲେଖାରୁ ଏ ଟୀକା ସଂଗୃହୀତ । ]

ବ୍ରଜିବା—ଦେ. କ୍ରି ( ପଦ୍ୟ )—ଗମନ କରିବା—To go. ( ଉ—Brajibā ଏ ଯେବେ ବ୍ରଜେ ଥିଲେ ଭାଗ୍ୟ । ସମାନ ନୋହେ ବ୍ରଜନା ব্রজনা ଉତ୍ତ୍ରବର୍ଗ—ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । )

ବ୍ରଜେ—ଦେ. କ୍ରି. ବିଣ—କ୍ଷଣମାତ୍ର; ଅଳ୍ପସମୟ—A moment only. Braje ( ଉ—ବ୍ରଜେ ଯେ ବ୍ରଜେ ମାତ୍ର ରହେ । କୃଷ୍ଣ ଚରଣେ ଭକ୍ତି ହୁଏ—ପ୍ରାଚୀ. ପୂର୍ଣ୍ଣତମଚନ୍ଦ୍ରୋଦୟ । )

ବ୍ରଜ୍ୟା—ସଂ. ବି ( ବ୍ରଜ ଧାତୁ=ଗମନ କରିବା+ଭାବ. ଯ+ଆ )—Brajyā ୧ । ପର୍ଯ୍ୟଟନ; ଦେଶ ଭ୍ରମଣ—1. Travel; peregrination. ୨ । ଯାତ୍ରା—2. March. ୩ । ଗମନ—3. Going; moving. ୪ । ବର୍ଗ; ଶ୍ରେଣୀ-4. Class; section. ୫ । ବର୍ଗ ସଂଖ୍ୟା—5 A square number. ୬ । ରଙ୍ଗ—6. Paint; colour. ୭ । ତାମସା—7. Sport; merriment. ୮ । ବିଜିଗୀଷୁର ଯାତ୍ରା; ଯୁଦ୍ଧଯାତ୍ରା—8. March of a person desirous of victory; a march for battle. ୯ । ଦେଶାକ୍ରମଣ—9. Attack; invasion. ୧୦ । (ଅଧିକରଣ. ଅ+ଆ) ରଙ୍ଗଭୂମି; ନାଟ୍ୟଶାଳା (ହି. ଶ)—10. Stage; dancing hall.

ବ୍ରଣ୍ (ବ୍ରଣ)—ସ—କ୍ଷତ କରିବା—Bran To wound.

ବ୍ରଣ—ସଂ. ବି ( ବ୍ରଣ୍ ଧାତୁ+କର୍ତ୍ତୃ. ଅ )—୧ । କ୍ଷତ; ଘାଆ—Braṇa 1. Wound; sore. ୨ । ବିଦ୍ରଧି; ବଥ—2. Boil; tumour. ୩ । ବାଘୀ—3. Bubo. [ ଦ୍ର—ସ୍ଥାନ ଓ ପ୍ରକାର ଭେଦରେ ବ୍ରଣମାନଙ୍କର ଭିନ୍ନ ଭିନ୍ନ ନାମ ଅଛି, ଯଥା—ନାଡ଼ୀବ୍ରଣ, ପୃଷ୍ଠବ୍ରଣ, ଦୁଷ୍ଟବ୍ରଣ, ମୁଖବ୍ରଣ, ଧ୍ୱଷ୍ଟ ବ୍ରଣ, କ୍ଷତବ୍ରଣ ଓ ସଦ୍ୟୋବ୍ରଣ ଇତ୍ୟାଦି । ]

ବ୍ରଣ ଗ୍ରନ୍ଥି—ସ. ବି (୬ଷ୍ଠୀ ତତ୍)—କ୍ଷତ; ଘାଆ—Braṇa granthi Sore.

ବ୍ରଣ ରହିତ—ସ. ବିଣ—୧ । ଅକ୍ଷତ—1. Unwounded. ୨ । Braṇa rahita ବେଦନାରହିତ—2. Painless. ୩ । (ବ୍ରଣଶୂନ୍ୟ—ଅନ୍ୟରୂପ) ଯହିଁରେ କୌଣସି କ୍ଷତର ଦାଗ ନାହିଁ—3. Bearing no mark of injury or scar.

ବ୍ରଣ ଶୋଥ—ସ. ବି—ବିଦ୍ରଧି; ବ୍ରଣସ୍ଫୋଟକ; ବଥ—Braṇa śotha Abcess.

ବ୍ରଣିତ—ସ. ବିଣ (ବ୍ରଣ+ସଞ୍ଜାତ ଅର୍ଥରେ ଇତ)—୧ । ବ୍ରଣ ଯୁକ୍ତ—Braṇita 1. Having a boil. ୨ । କ୍ଷତ—2. Suffering (ବ୍ରଣୀ—ଅନ୍ୟରୂପ) from a wound; wounded.

୩ । କ୍ଷତଚିହ୍ନ ବିଶିଷ୍ଟ—3. Having a cicatrice or scar; scarred.

ବ୍ରତ—ସଂ. ବି (ବୃ. ଧାତୁ=ପ୍ରାର୍ଥନା କରିବା + କର୍ମ. ଅତ; ଯାହାଦ୍ୱାରା ସ୍ୱର୍ଗାଦି ପ୍ରାର୍ଥନା କରାଯାଏ)—୧ । ସ୍ୱର୍ଗସୁଖ, ଧନାଦି କାମନାରେ ଅନୁଷ୍ଠିତ ବା ସଂକଳ୍ପିତ ଧର୍ମକର୍ମାନୁଷ୍ଠାନ ଓ ଉପବାସାଦି—1. A voluntary religious observance; the carrying out of a religious vow or fast. ୨ । ପ୍ରାୟଶ୍ଚିତ୍ତ; ପାପକ୍ଷୟକର ଶାସ୍ତ୍ରୀୟ ବିହିତ କର୍ମ—2. Religious atonement; expiation. ୩ । ତପସ୍ୟା; ତପଶ୍ଚରଣ—3. Religious penance or austerity. ୪ । ପୁଣ୍ୟଜନକ ଓ ପାପକ୍ଷୟକର କର୍ମ; ଧର୍ମନିୟମ; ଯମନିୟମାଦି—4. Religious observance; act of devotion ୫ । (ବୈଦିକ ଅର୍ଥ) କର୍ମ; କାର୍ଯ୍ୟ—5. Act; action; work. ୬ । ଶାସନ—6. Rule. ୭ । ସଂକଳ୍ପ—7. A vow. ୮ । ଭକ୍ଷଣ—8. Eating; partaking of food.

Brata

উপনয়ন, পৈতা
জনেউ

দେ. ବି—୧ । ବ୍ରାହ୍ମଣର ଉପନୟନ—1. The putting on of the sacred thread ceremony of a twice-born boy amongst the Hindus. ୨ । ପୁଣ୍ୟ ପର୍ବ—2. Religious ceremonies and festivals. ୩ । ବ୍ରତଧାରୀମାନେ ହାତରେ ଯେଉଁ ସୂତ୍ର ବାନ୍ଧନ୍ତି—3. A thread worn round the arm of the person observing a certain religious vow. [ ଦ୍ର—ଏହାର ଅପଭ୍ରଂଶ ବରତ, ବର୍ତ୍ତ । ୪ । ଧର୍ମସମ୍ପର୍କୀୟ ଉପବାସ—4. Religious fast. [ ଦ୍ର—ଆମ ଦେଶରେ ଅନେକ ଗୁଡ଼ିଏ ବ୍ରତ ପାଳିତ ହୁଏ । ଯଥା—ଅନନ୍ତବ୍ରତ; ସୁଦଶାବ୍ରତ, ସୋମନାଥବ୍ରତ, ଖୁଦୁରୁକୁଣୀ ବ୍ରତ ଇତ୍ୟାଦି ।

यन्त्र, व्रत

ବ୍ରତ, ଉପବାସ (ଓଷା), ପର୍ବ, ଯାତ୍ରା ଆଦି ଶବ୍ଦମାନଙ୍କ ବ୍ୟବହାରରେ ଗୋଳମାଳ ଦେଖାଯାଏ । ସ୍ତ୍ରୀମାନଙ୍କ ବ୍ରତକୁ ଓଷା ବୋଲାଯାଏ ଓ ଦେବତାମାନଙ୍କ ଉତ୍ସବକୁ ଯାତ୍ରା ବୋଲାଯାଏ । ] ୫ । ଦୃଢ଼ ସଂକଳ୍ପପୂର୍ବକ ନିଷ୍ଠା ବା ଐକାନ୍ତିକତା ସହକାରେ କରାଯିବା କର୍ମ—5. Any work undertaken to be performed after a firm resolve. ୬ । ଅଣ୍ଡିରା ବାଛୁରୀକୁ 'ଧରିବା' ବା ତାର ମୁଷ୍କଚ୍ଛେଦନ କରିବାରୂପ କର୍ମ—6. The act of castrating a bull calf. [ ଦ୍ର—ଦ୍ୱିଜାତି ବାଳକର ବ୍ରତ ବା ଉପନୟନ ଦ୍ୱାରା ଦ୍ୱିଜତ୍ୱ ପ୍ରାପ୍ତି ହେବାପରି ଆମ ଦେଶରେ ଅଣ୍ଡିରା ବାଛୁରିଙ୍କର ମୁଷ୍କଚ୍ଛେଦନଦ୍ୱାରା 'ବଳଦତ୍ୱ' ପ୍ରାପ୍ତି ହୁଏ; ଏଥିପାଇଁ ବାଛୁରି ଧରିବାକୁ ବାଛୁରୀଙ୍କ ବ୍ରତ ବୋଲାଯାଏ । ପୁଣି ବାଛୁରିଙ୍କୁ ଧରି ସାରି ତାଙ୍କ ପାର୍ଶ୍ୱଦେଶରେ ତାତିଲା ଲୁହାରେ (ଦ୍ୱିଜାତି ବାଳକ ଦେହରେ ପଇତା ପଡ଼ିଲାପରି) ଲମ୍ବ ଚିହ୍ନ ଲଗାଯାଏ । ଏଥିପାଇଁ ବାଛୁରିଙ୍କ ମୁଷ୍କଚ୍ଛେଦନ ପ୍ରତି 'ବ୍ରତ' ଶବ୍ଦ ବ୍ୟବହୃତ ହୁଏ । ]

ବ୍ରତ ଉଜୁଆଁ—ଦେ ବି (ସଂ. ବ୍ରତ ଉଦ୍ୟାପନ)—ସଂକଳ୍ପିତ ବ୍ରତକୁ ବିଧି ଅନୁସାରେ ପାଳନ ପୂର୍ବକ ତହିଁର ସମାପନ ରୂପ କର୍ମ—The act of formal completion or conclusion of the performance of a religious vow or fast

Brata ujuāṅ
ব্রতের উদ্যাপন
व्रत उठाना

ବ୍ରତ ଉଜେଇଁବା—ଦେ କ୍ରି (ସଂ. ବ୍ରତ + ଉଦ୍ୟାପନ)—ବିଧିମତେ ବ୍ରତାନୁଷ୍ଠାନକୁ ସମାପନ କରିବା—To bring the performance of a vow to a formal finish.

Brata ujeiṅbā
(ବ୍ରତ ସାଙ୍ଗ କରିବା—ଅନ୍ୟରୂପ)
ব্রতসাঙ্গ করনা
व्रत उठाना

ବ୍ରତ ଉଦ୍ୟାପନ(ନା)—ସଂ. ବି (୬ଷ୍ଠୀ ତତ୍)—ବ୍ରତ ଉଜୁଆଁ (ଦେଖ)—Brata ujuāṅ (See)

Brata udyāpana(nā)
(ବ୍ରତ ସମାପନ—ଅନ୍ୟରୂପ)

ବ୍ରତ ଉପାସ—ଦେ. ବି (ତଦ୍ଭବ ଶବ୍ଦ; ସଂ. ବ୍ରତ + ଉପବାସ)—ବ୍ରତ ଓ ଉପବାସ—Religious vows and fasts.

Brata upāsa
(ବ୍ରତ ଓପାସ, ବ୍ରତ ଓଷା—ଅନ୍ୟରୂପ)
ব্রত উপোস व्रत उपास

ବ୍ରତ କଥା—ଦେ. ବି—ସୋମନାଥ ବ୍ରତ, ଖୁଦୁରୁକୁଣୀ ବ୍ରତ ଆଦି ସମ୍ବନ୍ଧୀୟ ବିବରଣ, ବିଧି ଓ ଉପାଖ୍ୟାନ—A narrative how a certain vow originated and how it is to be performed. [ ଦ୍ର—ଓଡ଼ିଆ ଭାଷାରେ କେତେକ ବ୍ରତକଥା ଗଦ୍ୟରେ ଲିଖିତ ହୋଇଥିବା ଦେଖାଯାଏ । ବ୍ରତକଥା ଓ ମାଦଳାପାଞ୍ଜି ଓ କେତେକ ରାଜବଂଶାବଳୀ ଗ୍ରନ୍ଥ ଓ ସନନ୍ଦମାନଙ୍କ ଛଡ଼ା ଅନ୍ୟ ପ୍ରାଚୀନ ଓଡ଼ିଆ ଲେଖାମାନ ପଦ୍ୟ ଅଟେ । ]

Brata kathā
ব্রত কথা
व्रतकी कथा

ବ୍ରତ କରା(ରେ)ଇବା—ଦେ. କ୍ରି—କୌଣସି ଦ୍ୱିଜାତି ବାଳକର ଉପନୟନ କରାଇବା—To have the ceremony of Upanayana performed on a Hindu boy of the 3 higher castes. (ଉ—କାଳରେ ସ୍ରଷ୍ଟା ତାଙ୍କୁ କରାଇଲେ ବ୍ରତ, ଭୋଗ କଲେକ ସୁଖମାନ ସେ ବହୁତ । କୃଷ୍ଣସିଂହ ମହାଭାରତ. ଆଦି । )

Brata karā(re)ibā
পৈতে দেওয়া
जनेउ कराना

ବ୍ରତ କରିବା—ଦେ. କ୍ରି—୧ । କୌଣସି କଠୋର ବ୍ରତ ପାଳନ କରିବା ନିମନ୍ତେ ସଂକଳ୍ପ କରିବା—1. To take a solemn vow. ୨ । କୌଣସି ବ୍ରତ ପାଳନ କରିବା ବା ପୁଣ୍ୟ କାର୍ଯ୍ୟ କରିବା ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା—2. To observe or carry out a vow; to perform a religious vow. ୩ । କୌଣସି ଦ୍ୱିଜାତି ବାଳକର ଉପନୟନ ସଂସ୍କାରରେ ଅନୁଷ୍ଠିତ ବୈଦିକ କର୍ମରେ ବେଦୀ ଉପରେ ବ୍ରହ୍ମ କର୍ତ୍ତୃରୂପେ କାର୍ଯ୍ୟ କରିବା—3. To preside at

Brata karibā
ব্রত করিবা
व्रत करना

the sacred thread ceremony of a boy. ୪ । ବାଛୁରିକୁ ଧରିବା—4. To castrate a calf.

ବ୍ରତ ଗ୍ରହଣ—ସଂ. ବି ( ୬ଷ୍ଠୀ ତତ୍ ; ବ୍ରତ+ଗ୍ରହଣ )—୧ । କୌଣସି Brata grahana ବ୍ରତ ପାଳନ କରିବା ନିମନ୍ତେ ସଂକଳ୍ପ—1. The taking of a religious vow. ୨ । ବ୍ରତ ଧାରଣ ( ଦେଖ )—2. Brata dhārana ( See ) ୩ । ବ୍ରତ ପାଳନ ( ଦେଖ )—3. Brata pālana ( See )

ବ୍ରତ ଘର—ଦେ. ବି—ଉପନୟନ ଉତ୍ସବ; ବଡ଼ୁଘର—The Brata ghara ceremony of the assumption of পৈতে ঘর the sacred thread by a Brāhmana boy. जनेउ घर

ବ୍ରତଘ୍ନ—ସଂ. ବିଣ ( ବ୍ରତ+ହନ୍ ଧାତୁ+କର୍ତ୍ତୃ. ଅ )—୧ । ଯାହା Brataghna ବ୍ରତାଚରଣରେ ବାଧା ଘଟାଏ—1. Causing (ବ୍ରତଘ୍ନୀ—ସ୍ତ୍ରୀ) obstruction to or interruption in the performance of a religious vow. ୨ । ପୁଂ. ଯେଉଁ ବ୍ୟକ୍ତି ବ୍ରତାଚରଣରେ ବାଧା ଦିଏ—2. One who puts obstacles on the smooth performance of religious vows.

ବ୍ରତତି(ତୀ)—ସଂ. ବି ( ବୃତ୍ ଧାତୁ=ବହିବା+କର୍ତ୍ତୃ. ଅତି;+ଈ)— Bratati(tī) ୧ । ବଲ୍ଲୀ; ଲତା—1. Creeper. ୨ । (+ ଭାବ. ଅତି ) ବିସ୍ତାର; ବିସ୍ତୃତି—2. Extension; expansion.

ବ୍ରତ ତିଥି—ଦେ. ବି—ଉପନୟନ ନିମନ୍ତେ ଜ୍ୟୋତିଷ ଗଣନାଦ୍ୱାରା Brata tithi ନିର୍ଦ୍ଦିଷ୍ଟ ଶୁଭ ଦିବସ—An auspicious day পৈতার তিথি settled for the celebration of जनेउकी तिथि the sacred thread ceremony.

ବ୍ରତ ଦାସ—ସଂ. ବି—ଇଷ୍ଟ ଦେବତାଙ୍କ ନିକଟରେ ବ୍ରତ ବିଧିକୁ ପାଳନ Brata dāsa କରିବା ନିମନ୍ତେ ସଂକଳ୍ପ କରିଥିବା ବ୍ୟକ୍ତି— A person who takes a vow of performing a religious vow before a Deity.

ବ୍ରତ ଧରିବା—ଦେ. କ୍ରି—ବ୍ରତ ଗ୍ରହଣ କରିବା—To take up on Brata dharibā one's self the performance of (ବ୍ରତ ନେବା—ଅନ୍ୟରୂପ) a vow. ব্রত লওয়া व्रत करना

ବ୍ରତ ଧାରଣ—ସଂ. ବି ( ୬ଷ୍ଠୀ ତତ୍ )—କୌଣସି ବ୍ରତକୁ ଅବଲମ୍ବନ Brata dhārana କରିବା— An undertaking to observe a vow. ଦେ. ବି—ବ୍ରତୀ ବ୍ୟକ୍ତିର ପରିଚୟସୂଚକ ( ଅନନ୍ତ ବ୍ରତ, ସାବିତ୍ରୀ ବ୍ରତ )କୁ ଦେହରେ ପିନ୍ଧିବା—The wearing of a sacred thread indicating the observance of a religious vow.

ବ୍ରତଧାରୀ—ସଂ. ବିଣ. ପୁଂ—ଯେଉଁ ବ୍ୟକ୍ତି କୌଣସି ବ୍ରତ ଅବଲମ୍ବନ Brata dhārī କରିଥାଏ; ବ୍ରତୀ—A person who has (ବ୍ରତ ଧାରିଣୀ—ସ୍ତ୍ରୀ) undertaken or resolved to (ବ୍ରତ ଧର—ଅନ୍ୟରୂପ) observe a particular religious vow.

ବ୍ରତ ନାଶ—ସଂ. ବି—(୬ଷ୍ଠୀ ତତ୍)—ବ୍ରତ ପାଳନର ଧାରାବାହିକତାର Brata nāsa ବିନାଶ—Interruption in the regular performance of a vow.

ବ୍ରତ ନାଶନ—ସଂ. ବି—ପରର ଅନୁଷ୍ଠିତ ବ୍ରତ ସାଧନରେ ବାଧା ଦେବା - Brata nāsana Putting of obstacles to the (ବ୍ରତ ଭଞ୍ଜନ—ଅନ୍ୟରୂପ) smooth performance of a vow by a person.

ସଂ. ବିଣ—ବ୍ରତଘ୍ନ ( ଦେଖ )—Brataghna (See)

ବ୍ରତ ନିୟମ—ସଂ. ବି (୬ଷ୍ଠୀ ତତ୍)—କୌଣସି ବ୍ରତାନୁଷ୍ଠାନ ପାଇଁ Brata niyama ନିର୍ଦ୍ଦିଷ୍ଟ ଥିବା ବିଧାନ—Rules laid down for the observance of particular vows.
ବ୍ରତ ବିଧି, ବ୍ରତ ବିଧାନ—ଅନ୍ୟରୂପ

ବ୍ରତ ପାରଣା—ସଂ.ବି—ବ୍ରତର ବା ବ୍ରତାର୍ଥ ଉପବାସର ଶେଷରେ ଭୋଜନ- Brata pāranā Meal taken on the completion of ( ବ୍ରତ ପାଲଣା, ବ୍ରତପାଲନା—ଗ୍ରାମ୍ୟରୂପ ) a fast; breakfast on the conclusion of a religious fast.

ବ୍ରତ ପାଳନ—ସଂ. ବି—(୬ଷ୍ଠୀ ତତ୍) ସଂକଳ୍ପିତ ବ୍ରତକୁ କାର୍ଯ୍ୟରେ Brata pālana ପରିଣତ କରିବା—Due performance (ବ୍ରତ ରକ୍ଷା—ଅନ୍ୟରୂପ) or observance of a solemn vow taken.

ବ୍ରତ ପାଳିବା—ଦେ. କ୍ରି – ସଂକଳ୍ପିତ ବ୍ରତ ଅନୁସାରେ କାର୍ଯ୍ୟ କରିବା— Brata pālibā To duly perform a vow taken. ব্রতপালন করা व्रत पालना; व्रत निबाहना

ବ୍ରତ ପ୍ରତିଷ୍ଠା—ସଂ. ବି (୬ଷ୍ଠୀ ତତ୍)—ବ୍ରତାନୁଷ୍ଠାନ କର୍ମକୁ ନିୟମାନୁସାରେ Brata pratishthā ଶେଷ କରିବା—The due completion or performance of a religious vow.
ବ୍ରତ ସମାଧା, ବ୍ରତ ସମାଧାନ, ବ୍ରତ ସମ୍ପାଦନ, ବ୍ରତ ସାଧନ, ବ୍ରତ ସମାପନ—ଅନ୍ୟରୂପ

ବ୍ରତ ବିଘ୍ନ—ସଂ. ବି—୧ । ପୁଣ୍ୟଜନକ କାର୍ଯ୍ୟ ସମ୍ପାଦନ ବା ବ୍ରତ ପାଳନ Brata bighna ସମ୍ବନ୍ଧେ ଅନ୍ତରାୟ—1. Obstacles to the performance of a solemn vow. ୨ । ବ୍ରତ ପାଳନ ମଧ୍ୟରେ, ଅର୍ଥାତ୍ ବ୍ରତ ସମ୍ପୂର୍ଣ୍ଣ ନ ହେଉଣୁ, ଉପସ୍ଥିତ ହେବା କୌଣସି ବାଧା—2. An obstruction to or interruption in the completion of a vow.
ବ୍ରତ ବାଧା, ବ୍ରତ ବ୍ୟାଘାତ—ଅନ୍ୟରୂପ

ବ୍ରତ ବିବାହ—ସଂ. ବି—(ସହଚର ଶବ୍ଦ)—ଉପନୟନ ଓ ବିବାହ— Brata bibāha Sacred thread ceremony and (ବ୍ରତବିଥି, ବ୍ରତ ବାହା—ଗ୍ରାମ୍ୟରୂପ) marriage ceremony.

ବ୍ରତ ବେଦୀ—ଦେ. ବି—ଯେଉଁ ବେଦୀ ଉପରେ ଉପନୟନ କ୍ରିୟା Brata bedi ସମାହିତ ହୁଏ—An alter on which the উপনয়নের বেদী ceremony of investiture जनेउमण्डप (वेदी) of sacred thread is performed.

ବ୍ରତଭଗ(କ)ତ(ତି)—ଦେ. ବଣ—(ସଂ. ବ୍ରତ ଭକ୍ତ)—୧ । ବ୍ରତ ପରାୟଣ...
Brata bhaga(ka)ta(ti) 1. Devoted to the strict
(ବ୍ରତ ଭଗ[କ]ତିଆ—ଅନ୍ୟରୂପ) observance of religious vows. [ଭି—ବ୍ରତ ଭଗତ ଯେତେ ନଚ, ବସନ୍ତ ବଇଷ୍ଣ ପୁର—ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।] ୨ । (ବ୍ୟଙ୍ଗ୍ୟ) ବ୍ରତର ବାହ୍ୟ ନିୟମମାନଙ୍କର ପାଳନକାରୀ—2. (ironical) Following or practising the outer forms of a religious vow, though not conforming to the spirit thereof.

ବ୍ରତଭଙ୍ଗ—ସଂ. ବି—(୬ଷ୍ଠୀ ତତ୍)—ବ୍ରତର ସମସ୍ତ ଅଙ୍ଗ ଯଥାବିଧି ପାଳନ
Brata bhaṅga କରିବାରେ ବା ବ୍ରତ ସମାଧା କରିବାରେ ବାଧା—Interruption in the smooth performance of a vow.

ବ୍ରତ ଭଙ୍ଗନ—ଦେ. ବି—୧ । ବ୍ରତଭଙ୍ଗ (ଦେଖ) 1. Bratabhaṅga
Brata bhaṅgana (See) ୨ । ବ୍ରତଭଞ୍ଜନ (ଦେଖ)—2. Brata bhañjana (See)

ବ୍ରତ ଭଞ୍ଜନ—ସଂ. ବି—(୬ଷ୍ଠୀ ତତ୍)—ଅନ୍ୟର ଆଚରିତ ବ୍ରତରେ
Brata bhañjana ବାଧା ପ୍ରଦାନ—Interrupting another's smooth performance of a vow.

ବ୍ରତ ଭିକ୍ଷା—ଦେ. ବି—ବ୍ରତବେଦୀରେ ଉପନୟନ ପରେ ବ୍ରହ୍ମଚାରୀର
Brata bhikshyā ମେଖଳା ପରିହିତ ଓ ଦଣ୍ଡଧାରୀ ଦ୍ୱିଜ ବାଳକକୁ ବନ୍ଧୁମାନେ ଯେଉଁ ଅର୍ଥ ଓ ଅଳଙ୍କାରାଦି ଦିଅନ୍ତି-Gifts made to a newly initiated boy of the twice born castes amongst the Hindus by his relatives and friends on the day of the ceremony while he is still on the altar. [ଦ୍ର—ଦ୍ୱିଜ ବାଳକର ମନ୍ତ୍ର ଗ୍ରହଣ ଓ ଯଜ୍ଞୋପବୀତ ଧାରଣ ପରେ ସେ ମୌଞ୍ଜି ମେଖଳା ଓ କୃଷ୍ଣମୃଗାଜିନ ପରିଧାନ କରି ପଳାଶ ଦଣ୍ଡ ଧାରଣ କରି ବ୍ରତ ବେଦୀରେ ଭିକ୍ଷା ମାଗେ । ସେ ଗୋଟିଏ ଥାଳି ଧରି ଠିଆ ହୁଏ ଓ ତା ପଛରେ ତା ମାମୁ ଠିଆ ହୋଇ ପିଲା ଧରିଥିବା ଥାଳିକୁ ଟେକି ଧରି ଥାଆନ୍ତି । ଏହି ସମୟରେ ବାଳକର ମାତା, ଭଗିନୀ ଓ ବନ୍ଧୁବାନ୍ଧବମାନେ (ସ୍ତ୍ରୀ ପୁରୁଷ) ବେଦୀକୁ ଆସନ୍ତି । ବାଳକ "ଭବଦ୍ଭିକ୍ଷାଂ ଦେହି" (ଆପଣ ଭିକ୍ଷା ଦିଅନ୍ତୁ) ଉଚ୍ଚାରଣ କରୁଥାଏ ଓ ଭିକ୍ଷାଦାତା ଓ ଦାତ୍ରୀମାନେ ବାଳକର ପାଖରେ ରଖାହୋଇଥିବା ଗୋଟିଏ ହାଣ୍ଡିରେ ଥିବା ଦୀପାନ୍ନ ସେ ଥାଳିରେ ଦିଅନ୍ତି ଓ ଶକ୍ତି ଅନୁସାରେ ଅଳଙ୍କାର ଓ ଧନ ଦିଅନ୍ତି । ପୂର୍ବେ ଉପନୟନ କର୍ମ ପରେ ବାଳକ ବ୍ରହ୍ମଚାରୀ ହୋଇ ବେଦାଧ୍ୟୟନାର୍ଥ ଗୁରୁ ଗୃହକୁ ପ୍ରସ୍ଥାନ କରୁଥିଲା ଓ ଗୁରୁଙ୍କ ପାଇଁ ଭିକ୍ଷା ମାଗୁଥିଲା ଓ ଭିକ୍ଷାଲବ୍ଧ ଅନ୍ନ ଧନ ଓ ବସ୍ତ୍ରକୁ ନେଇ ଗୁରୁଙ୍କୁ ଦେଉଥିଲା । ବର୍ତ୍ତମାନ ଦ୍ୱିଜ ବାଳକର ବ୍ରହ୍ମଚର୍ଯ୍ୟ, ଗୁରୁ ଗୃହ ଗମନ ଓ ବିବାହ ପର୍ଯ୍ୟନ୍ତ ଗୁରୁ ଗୃହରେ ବେଦାଧ୍ୟୟନ ରୀତିମାନ ଲୁପ୍ତ ହେଲାଣି, କେବଳ ବ୍ରତବେଦୀରେ ଭିକ୍ଷା ମାଗିବା ଓ ଭିକ୍ଷା ଗ୍ରହଣ ବିଧି କେବଳ ପୂର୍ବକାଳର ବିଧିର କଙ୍କାଳମାତ୍ରାବଶେଷ ରୂପେ ରହିଅଛି । ଆଜିକାଲି ଦ୍ୱିଜ ବାଳକ 'ବ୍ରତ ଭିକ୍ଷା' ଦ୍ୱାରା ଯେଉଁ ଅଳଙ୍କାର ଆଦି ପାଏ ସେସବୁ ସେ ନିଜେ ନିଏ ଓ ଯାହା ଧନ ଥାଏ ତାହା ତା ପିତାମାତାଙ୍କ ହାତକୁ ଯାଏ ।]

ବ୍ରତ ରକ୍ଷା—ସଂ. ବି (୬ଷ୍ଠୀ ତତ୍)—ବ୍ରତ ସମ୍ବନ୍ଧେ ପ୍ରତିଜ୍ଞା ପାଳନ—The
Brata rakshā proper carrying out or performance of a vow taken.

ବ୍ରତ ସଂକଳ୍ପ—ସଂ. ବି—(୪ର୍ଥୀ ତତ୍)—କୌଣସି ବ୍ରତ ପାଳନ କରିବା
Brata saṁkalpa ପାଇଁ ମନରେ ସଂକଳ୍ପ—Resolve to observe a vow. ଦେ. ବି—କୌଣସି ବ୍ରତ ପାଳନ କରିବା ପୂର୍ବରୁ ନିର୍ଦ୍ଦିଷ୍ଟ ବାକ୍ୟ ଉଚ୍ଚାରଣ ପୂର୍ବକ କରାଯିବା ସଂକଳ୍ପ—A set of phrases formally uttered by a person who is going to observe a vow; formal undertaking to observe a religious vow.

ବ୍ରତ ସମ୍ପୂର୍ଣ୍ଣ—ଦେ. ବି.—ନିର୍ଦ୍ଦିଷ୍ଟ କାଳ ଓ ନିୟମ ଅନୁସାରେ ଅନୁଷ୍ଠିତ
Brata sampūrṇṇa ବ୍ରତର ପୂର୍ଣ୍ଣତା ବିଧାନ—Smooth
ବ୍ରତ ସମାପ୍ତି, ବ୍ରତ ଶେଷ, ବ୍ରତ ସିଦ୍ଧି }—ସମ୍ମତରୂପ completion or conclusion of the performance of a religious vow.

ବ୍ରତାଚାରୀ—ସଂ. ବଣ. ଓ ବି. ପୁଂ—(ବ୍ରତ+ଆ+ଚର୍ ଧାତୁ+କର୍ତ୍ତୃ.
Bratāchārī ଇନ୍; ୧ମା ୧ବ.)—ବ୍ରତୀ; ବ୍ରତପାଳନକାରୀ—
(ବ୍ରତାଚାରିଣୀ—ସ୍ତ୍ରୀ) One engaged in the observance of a religious or solemn vow.

ବ୍ରତାଦେଶ—ସଂ. ବି—ଉପନୟନ ସଂସ୍କାର (ଯାଜ୍ଞବଲ୍କ୍ୟ; ହି. ଶ)—
Bratādeśa The ceremony of the investiture of a boy with the sacred thread.

ବ୍ରତାନୁଷ୍ଠାନ—ସଂ. ବି—(୬ଷ୍ଠୀ ତତ୍)—ବ୍ରତ ପାଳନ ରୂପ କାର୍ଯ୍ୟ; ବ୍ରତ
Bratānushṭhāna ପାଳନ—The performance of a vow; the rites of performing a vow.

ବ୍ରତାନ୍ତ ଭୋଜନ—ସଂ. ବି—ବ୍ରତପାରଣା; ବ୍ରତୀବା ଉପବାସୀ ବ୍ୟକ୍ତିର ବ୍ରତ
Bratānta bhojana ସମାପନାନ୍ତେ ପ୍ରଥମ ଭୋଜନ—The breakfast after the completion of a religious fast.

ବ୍ରତାମୃତ—ସଂ. ବି—ମର୍ତ୍ତମାନ କଦଳୀ (ଯାଜ୍ଞବଲ୍କ୍ୟ); ଚମ୍ପା କଦଳୀ—
Bratāmṛuta A kind of delicious ripe plantain or banana. [ଦ୍ର—ବ୍ରତଧାରୀମାନେ ଏହା ଖାଉଥିବାରୁ ବୋଧ ହୁଏ ଏହି ନାମ ।]

ବ୍ରତିବା—ଗ୍ରା. କ୍ରି (ସଂ. ବୃତ ଧାତୁ)—ବର୍ତ୍ତିବା (ଦେଖ)
Bratibā Barttibā (See)

ବ୍ରତୀ—ସଂ. ବଣ. ପୁଂ (ବ୍ରତ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Bratī ୧ । ବ୍ରତ ପାଳନକାରୀ; ବ୍ରତଧାରୀ—1. Engaged in
(ବ୍ରତିନୀ—ସ୍ତ୍ରୀ) the observance of a vow. ୨ । ତପଶ୍ଚରଣ ରତ—2. Engaged in the performance of religious penance.
ବ୍ରତିକ, ବ୍ରତ୍ୟ } ଅନ୍ୟରୂପ

୩ । ଯେ କୌଣସି କାର୍ଯ୍ୟ କରିବାକୁ ସଙ୍କଳ୍ପ କରିଥାଏ; ଦୃଢ଼ପ୍ରତିଜ୍ଞ—3. Resolved to do a work. ୪ । ନିୟମସ୍ଥ—4. Regulated; keeping one's self under rules. ସଂ. ବି, ପୁଂ—୧ । ବ୍ରହ୍ମଚାରୀ—1. A Brahmachārī. ୨ । ତପସ୍ୱୀ; ମୁନି—2. A sage.

**ବ୍ରତୁଆ**—ଦେ. ବିଣ (ସଂ. ବ୍ରତ)—୧ । ବଡ଼ୁଆ; ଯାହାର ଉପନୟନ ସଂସ୍କାର ହୋଇଅଛି—1. (a boy of the twice born caste) Having the sacred thread ceremony performed on him.
**Bratuā** যার পৈতে হয়েছে जनेउवाला .
(ବଡ଼ୁଆ—ଗ୍ରାମ୍ୟରୂପ) ୨ । ବ୍ରତୀ (ଦେଖ)—2. Bratī (See).
[ଅବ୍ରତୁଆ—ବିପରୀତ] ব্রতধারী व्रती

**ବ୍ରଦଳି**—ଦେ. ବି-ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ଯୁଦ୍ଧାସ୍ତ୍ର—A kind of war weapon used in ancient times.
**Bradaḷi**

**ବ୍ରଧ୍ନ**—ସଂ.ବି (ବନ୍ଧ. ଧାତୁ=ବାନ୍ଧିବା+କର୍ତ୍ତୃ ନ,ନିପାତନ)—୧ । ସୂର୍ଯ୍ୟ—1. The sun. ୨ । ଶିବ; ମହାଦେବ—2 Śiba. ୩ । ବୃକ୍ଷମୂଳ; ଚେର—3. Root of a tree. ୪ । ବ୍ରହ୍ମା—4. Brahmā; the Creator. ୫ । ଅର୍କଗଛ—5. The swallowwort;Calotropis Gigantia (plant) ୬ । ଶରୀର—6. Body. ୭ । ପୁତ୍ର—7. Son. ୮ । ରୋଗ ବିଶେଷ (ହି. ଶ)—8 Name of a disease. ୯ । ଦିନ; ଦିବସ (ହି. ଶ)—9. Day. ୧୦ । ଘୋଡ଼ା (ହି, ଶ)—10. Horse. ୧୧ । ଚତୁର୍ଦ୍ଦଶ ମନୁ ଭୌତ୍ୟଙ୍କ ପୁତ୍ର (ହି. ଶ)—11. Name of the son of the 14th Manu. ୧୨ । ସୀସା—12. Lead (Apte). ୧୩ । ଶରର ଅଗ ବା ମୁନ—13. The point of an arrow .(Apte)
**Bradhna**

**ବ୍ରଧ୍ନ ପାଦ**—ସଂ. ବି (ବ୍ରଧ୍ନ=ଗଛର ଚେରପରି+ପାଦ ଯାହାର)—ଏକ ପ୍ରକାର ଜଳଚର ଜୀବ—Medusa; a jelly fish;Callinema Ornata; Rhiropoda.
**Bradhna pāda**
[ଦ୍ର—ଏହା ଛତାକାର ମସ୍ତକରୁ ଗୁଚ୍ଛଆଡ଼େ ଗଛର ଚେର ପରି ଲମ୍ବି ଥିବା ତନ୍ତୁ ଯୁକ୍ତ ଅତି କୋମଳ ଭାସମାନ ଜୀବ ।]

**ବ୍ରଧ୍ର**—ସଂ. ବି (ବୈଦିକ)—ସୀସା ଧାତୁ (ଦ୍ରବ୍ୟଗୁଣ)—Lead; plumbum.
**Bradhra**

**ବ୍ରଶ୍**—ବୈଦେ. ବି (ଇଂ)—ବୁରୁଶ୍ (ଦେଖ)—Brush; Burus (See).
**Braś**

**ବ୍ରଶ୍ଚ (ଧାତୁ)**—ସ—ଛେଦନ କରିବା—To cut.
**Braścha (root)**

**ବ୍ରଶ୍ଚନ**—ସଂ. ବି (ବ୍ରଶ୍ଚ ଧାତୁ+ଭାବ. ଅନ)—୧ । କର୍ତ୍ତନ; ଛେଦନ—1. Cutting; boring ୨ । (+କରଣ ଅନ) ସ୍ୱର୍ଣ୍ଣ ଆଦି ଧାତୁ କାଟିବାର ଅସ୍ତ୍ର; ଛେଣୀ—2. Metal-cutting instrument;a chisel used in cutting metal. ୩ । (+ସଂଜ୍ଞାର୍ଥ ଅନ)ବୃକ୍ଷଚ୍ଛେଦନ ଜାତ ନିର୍ଯ୍ୟାସ-3. Juice coming out of a tree when cut; gum. ୪ । କାଠ ଚିରିଲେ ତହିଁରୁ ଝଡ଼ିବା ଗୁଣ୍ଡ; କରତ ଗୁଣ୍ଡ (ହି. ଶ)-4. Sawdust. ୫ । କୁରାଢ଼ି (ହି. ଶ)—5. Axe. ବିଣ—(+କର୍ତ୍ତୃ. ଅନ) ଛେଦକ—Cutting.
**Braśchana**

**ବ୍ରହ୍ମ**—ସଂ.ବି--(ବୃହ୍. ଧାତୁ=ବୃଦ୍ଧି ପାଇବା; ବ୍ୟାପ୍ତି ପାଇବା+କରଣ ବା କର୍ତ୍ତୃ. ମନ୍, ନିପାତନ; ବ୍ରହ୍ମନ୍ ଶବ୍ଦ ୧ମା.୧ବ; ଯାହାଙ୍କ ଦ୍ୱାରା ମନୁଷ୍ୟାଦି ଜଗତ୍ ବୃଦ୍ଧି ପାଉଅଛି,ବା ଯେ ନିଜର ତେଜ ଦ୍ୱାରା ଜଗତରେ ବ୍ୟାପ୍ତି ପାଉଅଛନ୍ତି)—୧ । ବେଦୋକ୍ତ ବିରାଟ ପୁରୁଷ; ପରମ ପୁରୁଷ; ପରମେଶ୍ୱର; ପରଂବ୍ରହ୍ମ; ନିରାକାର ବ୍ରହ୍ମ—1. God; the Godhead; the Supreme Being. [ ଦ୍ର—ଜଗତର କାରଣ ଏକମାତ୍ର ନିତ୍ୟଚେତନ ସତ୍ତା ବ୍ରହ୍ମ ଅଟେ । ଏହା ସତ୍, ଚିତ୍, ଆନନ୍ଦ ସ୍ୱରୂପ ଅଟନ୍ତି । ଜଗତରେ ଏହାର ଅତିରିକ୍ତ ଆଉ ଯାହା ସବୁ ପ୍ରତୀତ ହୁଏ ତାହା ସବୁ ଅସତ୍ ଓ ମିଥ୍ୟା ଅଟେ । ବ୍ରହ୍ମ ସଚ୍ଚିଦାନନ୍ଦ, ଅଖଣ୍ଡ, ନିତ୍ୟ, ନିର୍ଗୁଣ ଓ ଅଦ୍ୱିତୀୟ ଅଟେ; ଏହା ବ୍ରହ୍ମର ସ୍ୱରୂପ ଲକ୍ଷଣ । ବ୍ରହ୍ମ ଜଗତର କାରଣ ଅଟେ; ଏହା ବ୍ରହ୍ମର ତଟସ୍ଥ ଲକ୍ଷଣ ଅଟେ । ଜଗତ୍ ବ୍ରହ୍ମର ପରିଣାମ ବା ବିକାର ନୁହେଁ (ଅର୍ଥାତ୍, ବ୍ରହ୍ମ ଜଗତରେ ପରିଣତ ହୋଇ ନାହିଁ); ଏହି ଜଗତ୍ ବ୍ରହ୍ମର ବିବର୍ତ୍ତ ଅଟେ (ଅର୍ଥାତ୍, ବ୍ରହ୍ମ ଜଗତ୍ ରୂପେ ପ୍ରତୀତ ହେଉଅଛି, ଅର୍ଥାତ୍ ଜଗତ୍ ବ୍ରହ୍ମର ଅସତ୍ ବା ମିଥ୍ୟା ବା ଭ୍ରମ ରୂପ ଅଟେ) । ବ୍ରହ୍ମ ଛଡ଼ା ଆଉ ସବୁ ମିଥ୍ୟା ଓ ଭ୍ରମ ଅଟେ ଓ ଆଉ କାହିଁରେ ପାରମାର୍ଥିକ ସତ୍ତା ନାହିଁ । ବ୍ରହ୍ମର ସମ୍ୟକ୍ ନିରୂପଣକାରୀ ଅଦ୍ୱିତୀୟ ଉପନିଷଦ ଅଟେ । ଏଥିରେ 'ନେତି ନେତି' (ଏହା ବ୍ରହ୍ମ ନୁହେ, ଏହା ବ୍ରହ୍ମ ନୁହେ) ପ୍ରଣାଳୀରେ ବ୍ରହ୍ମର ସ୍ୱରୂପକୁ ବୁଝାଇବାକୁ ଚେଷ୍ଟା କରା ଯାଇଅଛି । ତତ୍ତ୍ୱମସି (ତାହା ତୁମ୍ଭେ ଅଟ) ଏହି ବଚନ ଦ୍ୱାରା ଆତ୍ମାର ଓ ବ୍ରହ୍ମର ଅଭେଦ ବ୍ୟଞ୍ଜିତ କରା ଯାଇଅଛି । ବ୍ରହ୍ମ ସମ୍ବନ୍ଧୀୟ ଏହି ଜ୍ଞାନର ପ୍ରାଚୀନ ନାମ 'ବ୍ରହ୍ମ ବିଦ୍ୟା' । ପରେ ବ୍ୟାସଦେବ 'ବ୍ରହ୍ମ-ସୂତ୍ର'ରେ ବ୍ରହ୍ମକୁ ବ୍ୟବସ୍ଥିତ ରୂପେ ପ୍ରତିପାଦିତ କରି ଅଛନ୍ତି । ବ୍ରହ୍ମସୂତ୍ର ବେଦାନ୍ତ ଦର୍ଶନର ଆଧାର ଅଟେ । ହି. ଶବ୍ଦସାଗର ।] ୨ । ଏ ଜଗତର ସୃଷ୍ଟିକର୍ତ୍ତା; ବ୍ରହ୍ମା, ବିଧାତା—2. Brahmā; the Creator of the universe. [ଦ୍ର—ଶାସ୍ତ୍ର ମତେ ବ୍ରହ୍ମଙ୍କର ଜନ୍ମ ମୃତ୍ୟୁ ନାହିଁ ମାତ୍ର ବ୍ରହ୍ମାଙ୍କର ଜନ୍ମ ମୃତ୍ୟୁ ଅଛି ।] ୩ । ବ୍ରାହ୍ମଣ—3. A Brāhmaṇa. ୪ । ଯଜ୍ଞାଦି ଅନୁଷ୍ଠାନରେ ନିଯୋଜିତ ପ୍ରଧାନ ପୁରୋହିତ—4. The chief priest officiating at a vedic rite. ୫ । ଧର୍ମ ଶାସ୍ତ୍ର ପ୍ରଣେତା ଋଷି ବିଶେଷ—5. Name of a Hindu lawgiver sage. ୬। ଜ୍ୟୋତିଷୋକ୍ତ ୨୭ଯୋଗ ମଧ୍ୟରୁ ଏକ ଯୋଗ;
**Brahma**

ପଞ୍ଚବିଂଶତିତମ ଯୋଗ —6. One of the 27 astrological conjunctions. [ ଦ୍ର—ଏହା ଶୁଭ ଯୋଗ ।] ୭ । ବେଦ—7. The Bedas. ୮ । (କ) ଓଁକାର; ପ୍ରଣବ, (ଖ) ବେଦ ମନ୍ତ୍ର—8. (a) The mystic vedic syllable 'Om' (b) A vedic formula or incantation.

୯ । ବ୍ରହ୍ମତେଜଃ; ତତ୍ ସତ୍; ଭଗ୍ଗ;ସତ୍, ତତ୍ ଓ ଅନନ୍ତ—9. The Holy spirit; the Essence of the Energy of the Creator; the Great Divine Unknown; the Divine Spark pervading the universe. ୧୦ । ଏକ ସଂଖ୍ୟା—10. The number one. ୧୧ । ତପସ୍ୟା—11. Religious austerities. ୧୨ । ବ୍ରହ୍ମଚର୍ଯ୍ୟ; ଶୁକ୍ରଧାରଣ; କୁମାର ବ୍ରତାବଲମ୍ବନ—12. Celebacy; the practice of restraining one's animal passions and the flow of the semen virile. ୧୩ । ଜୈନମାନଙ୍କର ପ୍ରଧାନ ସେବକ ବିଶେଷ—13. Name of a principal attendant of the Jaina saints. ଦେ. ବି—୧ । ମନୁଷ୍ୟର ଆତ୍ମା—1. The soul of a man. (ଯଥା—ଏ କାମ କରିବାକୁ ଆଉ ମୋ ବ୍ରହ୍ମ ଡାକୁ ନାହିଁ ।) ୨ । ମନୁଷ୍ୟର ମନ—2. Man's mind. ୩ । ପେଟ; କ୍ଷୁଧାତୁରତା—3. Hungriness; hunger [ ଦ୍ର—ବ୍ରହ୍ମକୁ ଚଳିବା ଲୋକ, ଏଥିରୁ ଦୁଇଟି ଅର୍ଥ ସୂଚିତ ହୁଏ,ଯଥା —୧ । ନିଜର ବ୍ରହ୍ମକୁ ଚଳିବା ଲୋକ ବା ପେଟ୍ଟୁ, ୨। ପରର ଭୋକଶୋଷ ଜାଣି କ୍ଷୁଧାତୁରଙ୍କୁ ଅନ୍ନାଦ୍ୟ ଦେବା ଲୋକ ।] ୪ । ବଙ୍ଗୀୟ କାୟସ୍ଥମାନଙ୍କ ଉପାଧି ବିଶେଷ —4. A title of Bengalee Kāyasthas. ୫ । ଭାରତର ପୂର୍ବବର୍ତ୍ତୀ ଦେଶ ବିଶେଷ—5. The country of Burma. ( ଉ—ଶ୍ୱେତ ଗଜ ବିଖେଦିତ ମାଳ ଇସ୍ତବଗାଯୌତ ବ୍ରହ୍ମେ । ରାଧାନାଥ. ମହାଯାତ୍ରା ।) ୬ । ବ୍ରହ୍ମ ରାକ୍ଷସ; ବ୍ରାହ୍ମଣର ପ୍ରେତ ( ହ୍ର. ଶ )—6. The ghost of a dead Brāhmaṇa.

ବ୍ରହ୍ମ ଅବଧୂତ—ଦେ.ବି—ବ୍ରହ୍ମଧ୍ୟାୟୀ ସନ୍ୟାସୀ—A recluse who Brahma abadhuta meditates on the Brahmā. (ଯଥା—ସତ୍ୟ ମହିମା ଧର୍ମ ପ୍ରବର୍ତ୍ତକ ବ୍ରହ୍ମ ଅବଧୂତ ବିଶ୍ୱନାଥ ବାବା) ।

ବ୍ରହ୍ମ କନ୍ୟକା—ସ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ବ୍ରହ୍ମନ୍+କନ୍ୟକା)—Brahma kanyakā ୧ । ସରସ୍ୱତୀ—1. The Goddess of (ବ୍ରହ୍ମକନ୍ୟା—ଅନ୍ୟରୂପ) learning. [ ଦ୍ର—ପୁରାଣମତେ ଏ ବ୍ରହ୍ମାଙ୍କ ମସ୍ତକରୁ ଜନ୍ମିଥିଲେ ।] ୨ । ବ୍ରାହ୍ମୀ ଶାକ—2. A pot herb; Ruta Graveolens. ୩ । ସୋମଲତା—3. A creeper producing the 'Soma' juice; Ascelpias Acida. ୪ । ବ୍ରାହ୍ମଣଯଷ୍ଟିଅ; ଭାର୍ଗୀ ( ହ୍ର. ଶ. )—4. Name of a plant; Clerodendron Siphonanthus.

ବ୍ରହ୍ମ କର୍ମ—ସ. ବି—(ବ୍ରହ୍ମନ୍+କର୍ମନ୍; ମ. ପ. ଲୋ; ବ୍ରହ୍ମାରାଧନ Brahma karma କର୍ମ ।)—୧ । ଯୋଗ ସାଧନ—1. The practice of holy mental concentration. ୨ । ବେଦବିହିତ କର୍ମ—2. Acts enjoined in the Bedas. ୩ । ବ୍ରାହ୍ମଣର କର୍ତ୍ତବ୍ୟ କର୍ମ—3. The duties of a Brāhmaṇa.

ବ୍ରହ୍ମ କଳ୍ପ—ସ. ବି (୬ଷ୍ଠୀ ତତ୍)—ଯେତିକି ସମୟ ଗୋଟିଏ ବ୍ରହ୍ମାଙ୍କର Brahma kalpa ଅବସ୍ଥିତି ବା ଜୀବନକାଳ ଅଟେ—That period in which one Brahmā is said to exist. ସ.ବିଣ—ବ୍ରହ୍ମାଙ୍କ ତୁଲ୍ୟ—Like Brahmā.

ବ୍ରହ୍ମ କାଣ୍ଡ—ସ. ବି– (ମ.ପ.ଲୋ; ବ୍ରହ୍ମନିରୂପକ କାଣ୍ଡ) ବେଦର ଯେଉଁ Brahma kāṇda ଅଂଶରେ ବ୍ରହ୍ମର ମୀମାଂସା କରାଯାଇଅଛି; ( କର୍ମକାଣ୍ଡ—ବିପରୀତ ) ଜ୍ଞାନକାଣ୍ଡ—That part of the Bedas dealing with metaphysics.

ବ୍ରହ୍ମ କୁଣ୍ଡ—ସ. ବି—ବ୍ରହ୍ମାଙ୍କଦ୍ୱାରା ଖୋଳିତ ସରୋବର ବିଶେଷ—Brahma kuṇda Name of a tank. [ ଦ୍ର—ଭିନ୍ନ ଭିନ୍ନ ତୀର୍ଥରେ ବ୍ରହ୍ମ କୁଣ୍ଡ ନାମରେ ସରୋବରମାନ ଅଛି । ]

ବ୍ରହ୍ମକୁ(କୋ)ଶା—ସ.' ବି (ବୈଦ୍ୟକ)—ଅଜମୋଦା; ବଣ ଜୁଆଣି—Brahmaku(ko)śā Seseli Indicum.

ବ୍ରହ୍ମକୂର୍ଚ୍ଚ—ସ.ବି—ବ୍ରତ ବିଶେଷ;ଏକ ଦିବାରାତ୍ର ଉପବାସ ରହି ତତ୍ପରେ Brahmakurchcha ପଞ୍ଚଗବ୍ୟ ପାନରୂପ ବ୍ରତ ବା ପ୍ରାୟଶ୍ଚିତ୍ତ—A penance consisting of drinking a mixture of five articles from the cow after 24 hours' fast. [ ଦ୍ର—ରଜସ୍ୱଳା ସ୍ତ୍ରୀକୁ ବା ଅସ୍ପୃଶ୍ୟ ବସ୍ତୁକୁ ବା ବ୍ୟକ୍ତିକୁ ଛୁଇଁବା ଜନିତ ଅଶୁଦ୍ଧି ଦୂର କରିବାପାଇଁ ଏ ବ୍ରତ କରାଯାଏ—ହ୍ର. ଶ । ]

ବ୍ରହ୍ମ ଗଣ୍ଠି—ଦେ. ବି—ବ୍ରହ୍ମଗ୍ରନ୍ଥି ( ଦେଖ )—Brahma granthi Brahma ganthi (See). ( ଦ୍ର—ଏହା ଯଦି ନ ହୁଏ, ମୁଁ ब्रह्मगाँठ ଅବ୍ରାହ୍ମଣ, ଏ ବ୍ରହ୍ମଗଣ୍ଠି ଛିଣ୍ଡାଇ ପକାଇବି । ଫକୀର ମୋହନ. ଗଳ୍ପସ୍ୱଳ୍ପ । )

ବ୍ରହ୍ମଗିରି—ସ. ବି—ପର୍ବତ ବିଶେଷ—Name of a mountain. Brahma giri ଦେ. ବି—ପୁରୀଜିଲ୍ଲାର ଥାନା ବିଶେଷ—Name of a Police station in the District of Puri.

ବ୍ରହ୍ମଗୁପ୍ତ—ସ. ବି (ନାମ)—ପ୍ରାଚୀନ ଜ୍ୟୋତିର୍ବିଦ୍ ପଣ୍ଡିତ ବିଶେଷ—Brahma gupta Name of an astronomer who corrected and revised the data of the ancient astronomical treatise Brahmasiddhānta with the help of many other astronomical treatises. [ ଦ୍ର—ଏ ବିଷ୍ଣୁଧର୍ମୋତ୍ତର ଅନ୍ତର୍ଗତ ବ୍ରହ୍ମସିଦ୍ଧାନ୍ତକୁ ଅବଲମ୍ବନ କରି ଜ୍ୟୋତିଷ ଗ୍ରନ୍ଥ

ରଚନା କରିଥିଲେ (ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀ) । ବହୁକାଳର ପୁରୁଣା ଗ୍ରନ୍ଥ ହେବାରୁ ବ୍ରହ୍ମସିଦ୍ଧାନ୍ତର ଗଣନାମାନଙ୍କରେ ବ୍ୟତିକ୍ରମ ଘଟୁଅଛି । ଏଥିପାଇଁ ଏ ନାଳନାଦ ଗ୍ରନ୍ଥ ସାହାଯ୍ୟରେ ଶୁଦ୍ଧଚଳ ସାଳସଂସ୍କାର କରି ବ୍ରହ୍ମସିଦ୍ଧାନ୍ତକୁ ଶୁଦ୍ଧ କରିଥିଲେ । ( ଯୋଗେଶଚନ୍ଦ୍ର ଆମାଦେର ଜ୍ୟୋତିଷୀ ) । ]

**ବ୍ରହ୍ମଗ୍ରନ୍ଥି**—ସ. ବି—ଯଜ୍ଞୋପବୀତର ଗଣ୍ଠି—The knot of a Brahma granthi Brāhmaṇa's sacred thread.

**ବ୍ରହ୍ମ ଗୋଳ**—ସ. ବି (୬ଷ୍ଠୀ ତତ୍)—ବ୍ରହ୍ମାଣ୍ଡ—The Universe. Brahma goḷa (ବ୍ରହ୍ମଗୋଳକ—ଅନ୍ୟରୂପ)

**ବ୍ରହ୍ମଗ୍ରହ**—ସ. ବି—ବ୍ରହ୍ମରାକ୍ଷସ (ହି. ଶ)—Brahmagraha The ghost of a deceased Brāhmaṇa.

**ବ୍ରହ୍ମଘାତକ**—ସ. ବିଣ ଓ ବି. ପୁଂ—ଯେ ବ୍ରାହ୍ମଣଙ୍କୁ ବଧ କରେ—Brahmaghātaka The slayer of a Brāhmaṇa. (ବ୍ରହ୍ମଘ୍ନ, ବ୍ରହ୍ମଘାତୀ, ବ୍ରହ୍ମହା—ଅନ୍ୟରୂପ) [ବ୍ରହ୍ମଘାତକା, ବ୍ରହ୍ମଘାତିନୀ, ବ୍ରହ୍ମଘ୍ନୀ—ସ୍ତ୍ରୀ]

**ବ୍ରହ୍ମ ଘୋଷ**—ସ. ବି (୬ଷ୍ଠୀ ତତ୍, ବ୍ରହ୍ମ=ବେଦ+ଘୋଷ=ଧ୍ୱନି)—Brahma ghosha ୧ । ବେଦଧ୍ୱନି—1. The sound or the utterance of the Beda. ୨ । ବେଦପାଠ (ହି. ଶ)—2. The reading or recital of the Bedas.

**ବ୍ରହ୍ମଘ୍ନୀ**—ସ. ବି. ସ୍ତ୍ରୀ—ଗୃହକନ୍ୟା; ଘୃତକୁମାରୀ; ଘିଇକୁଆଁରି—Brahmaghnī The aloe; Aloes Perfoliata.

**ବ୍ରହ୍ମଚର୍ଯ୍ୟ**—ସଂ. ବି (ବ୍ରହ୍ମନ୍+ଚର୍. ଧାତୁ+ଭାବ. ଯ=ଆଚରଣ)—Brahmacharjya ୧ । ବ୍ରହ୍ମଚାରୀର ଧର୍ମ ବା କରଣୀୟ ବ୍ରତ—(ବ୍ରହ୍ମକର୍ମ—ଅନ୍ୟରୂପ) 1. The austerities practised by a Brahmachārī. ୨ । ସ୍ତ୍ରୀର ବା ପୁରୁଷର ସ୍ମରଣ, ଦର୍ଶନ, ସ୍ପର୍ଶ, କେଳି, ଗୁପ୍ତଭାଷଣ, ମୈଥୁନ ଆଦି ଶାସ୍ତ୍ରୋକ୍ତ ଅଷ୍ଟବିଧ ମୈଥୁନରୁ ବିରତିରୂପ ବ୍ରତ—2. The vow of complete abstention from any connection with the opposite sex; absolute continence. ୩ । ଦ୍ୱିଜାତିଙ୍କର ଉପନୟନର ପରଠାରୁ ବିବାହ ପର୍ଯ୍ୟନ୍ତ ଅବଲମ୍ବନୀୟ ଗୁରୁଗୃହରେ ବାସ ଓ ବେଦାଧ୍ୟୟନ ରୂପ ଆଶ୍ରମ—3. The 1st stage of a Brāhmaṇa's life; the stage before marriage, consisting of studying the Bedas and leading a chaste life in the house of the preceptor. ୪ । ବୀର୍ଯ୍ୟରକ୍ଷାରୂପ ବ୍ରତ; ବୀର୍ଯ୍ୟଧାରଣ—4. The vow of restraining the flow of semen virile from one's body.

[ଦ୍ର—ବ୍ରହ୍ମଚର୍ଯ୍ୟ ଆଶ୍ରମ ଦ୍ୱିଜାତିଙ୍କର ଅବଶ୍ୟଗ୍ରହଣୀୟ ଜୀବନର ୪ ଆଶ୍ରମ ମଧ୍ୟରୁ ପ୍ରଥମ ଆଶ୍ରମ । ଦ୍ୱିଜ ବାଳକର ୭ମ ବର୍ଷ ବୟସରେ ଉପନୟନ ସଂସ୍କାର ହେବା ସଙ୍ଗେ ସଙ୍ଗେ ସେ ବ୍ରହ୍ମଚର୍ଯ୍ୟ ଆଶ୍ରମରେ ପ୍ରବେଶ କରୁଥିଲା । ସେ ଯାଇ ଗୁରୁଙ୍କ ଘରେ ରହି ବେଦାଧ୍ୟୟନ କରୁଥିଲା । ବ୍ରହ୍ମଚାରୀ ପକ୍ଷରେ ମଦ୍ୟମାଂସ ଗ୍ରହଣ, ଗନ୍ଧଦ୍ରବ୍ୟ ସେବନ, ସୁସ୍ୱାଦୁ ଓ ମଧୁର ବସ୍ତୁ ଭୋଜନ, ସ୍ତ୍ରୀ ପ୍ରସଙ୍ଗ, ନୃତ୍ୟଗୀତାଦି ଶ୍ରବଣ ଓ ଦର୍ଶନ ନିଷିଦ୍ଧ ଥିଲା । ବ୍ରହ୍ମଚାରୀ ପ୍ରତିଦିନ ଗୃହସ୍ଥଙ୍କ ଘରୁ ଭିକ୍ଷା କରି ଆଣି ଗୁରୁଙ୍କୁ ଦେଉଥିଲା ଓ ଗୁରୁଙ୍କ ସେବା, ଗୁରୁଙ୍କ ପାଇଁ ହୋମସମିଧ ସଂଗ୍ରହ ଓ ଗୁରୁଙ୍କ ଆଜ୍ଞାପାଳନ ଏବଂ ପ୍ରାତଃ ଓ ସନ୍ଧ୍ୟାରେ ହୋମ କରିବା ବ୍ରହ୍ମଚାରୀର କର୍ତ୍ତବ୍ୟ ଥିଲା । ବ୍ରହ୍ମଚର୍ଯ୍ୟ ୨ପ୍ରକାର:—୧ । ଉପକୁର୍ବାଣ ଅର୍ଥାତ୍ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପୂର୍ବରୁ ଅବଲମ୍ବନୀୟ ଓ ୨ । ନୈଷ୍ଠିକ ବା ଆଜୀବନ ବ୍ରହ୍ମଚର୍ଯ୍ୟ—ହି. ଷ. । ]

**ବ୍ରହ୍ମ ଚାପ(ପୁ)ଡ଼ା**—ଦେ. ବି—ନିର୍ଦ୍ଦୟ ଚପଡ଼ା—A tight slap. Brahma chāpa(pu)ṛḍā बरम चपेटा

**ବ୍ରହ୍ମଚାରିଣୀ**—ସ. ବି. ସ୍ତ୍ରୀ—୧ । ବ୍ରାହ୍ମଣ ଯଷ୍ଟିଅ; ଭାର୍ଗୀ—1. A Brahmachāriṇī medicinal shrub; Siphonanthus Indica. ୨ । ଦୁର୍ଗା—2. Goddess Durgā. ୩ । ବ୍ରାହ୍ମୀଶାଗ—3. A potherb. ୪ । କରୁଣ ବୃକ୍ଷ—4. Name of a tree. ୫ । ବ୍ରହ୍ମଚର୍ଯ୍ୟ ବ୍ରତଧାରିଣୀ ସ୍ତ୍ରୀ—5. A woman observing the vow of continence. ୬ । ସରସ୍ୱତୀ (ହି. ଶ)—6. Goddess Saraswatī.

**ବ୍ରହ୍ମଚାରୀ**—ସ. ବି. ପୁଂ (ବ୍ରହ୍ମ=ବେଦ+ଚର ଧାତୁ+ଇନ୍; ୧ମା. Brahmachārī ୧ବ)—୧ । ଉପନୟନ ପରେ ଯେଉଁ ଦ୍ୱିଜ (ବ୍ରହ୍ମଚାରିଣୀ—ସ୍ତ୍ରୀ) ଗୁରୁ ଗୃହରେ ରହି ବ୍ରହ୍ମଚର୍ଯ୍ୟ ଅବଲମ୍ବନ ପୂର୍ବକ ବେଦାଧ୍ୟୟନ କରେ; ପ୍ରଥମାଶ୍ରମୀ—1. A boy of the twice-born caste who studies the Bedas in the preceptor's house after his investiture. ୨ । ବ୍ରହ୍ମଚର୍ଯ୍ୟ ବ୍ରତାବଲମ୍ବୀ—2. One practising continence or self-control. ୩ । ବାଲ୍ୟକାଳରୁ ଅର୍ଥାତ୍ ଉପନୟନ ପରେ ଆଜୀବନ ସନ୍ନ୍ୟାସ ବ୍ରତାବଲମ୍ବୀ; ସନ୍ନ୍ୟାସୀ—3. Anchorite; sannyāsī. [ ଦ୍ର- ବ୍ରହ୍ମଚାରୀ ୨ ଶ୍ରେଣୀର ଯଥା—ଉପକୁର୍ବାଣ—ବିବାହ ହେବା ପର୍ଯ୍ୟନ୍ତ ଯେ ବ୍ରହ୍ମଚାରୀ ରହେ । ନୈଷ୍ଠିକ—ଯେ ଆଜୀବନ ବ୍ରହ୍ମଚାରୀ ରହେ । ]

**ବ୍ରହ୍ମ ଚିଡ଼ିବା**—ଦେ. ବି—ମନ ଅତ୍ୟନ୍ତ ବିରକ୍ତ ହେବା—Serious Brahma chirḍibā displeasure or annoyance. ব্রহ্ম চটে যাওয়া बरम बिगड़ना (ବ୍ରହ୍ମ ଚିଡ଼ିଯିବା, ବ୍ରହ୍ମ ଜଳିବା, ବ୍ରହ୍ମ ଜଳିଯିବା—ଅନ୍ୟରୂପ)

**ବ୍ରହ୍ମ ଚହ୍ନିବା**—ଦେ. କ୍ରି—୧ । ନିଜର ପେଟ କଥା ପ୍ରତି ସର୍ବଦା Brahma chinhibā ଅନୁରକ୍ତ ହେବା—1. To know ব্রহ্ম চেনা only one's belly ୨ । ଅନ୍ୟର ଭୋକ ଶୋଷ बरम पहचानना ଜାଣିବା—2. To know the want or hunger of other people.

ବ୍ରହ୍ମ ଚେତା—ଦେ. ବଣ. (ସଂ. ବ୍ରହ୍ମ+ଚେତସ୍)—ଭଗବାନଙ୍କଠାରେ
Brahma chetā ଯାହା ମନ ସର୍ବଦା ଲାଗିଥାଏ—Always
devoted to God; godly. ( ଉ—ବ୍ରହ୍ମଚେତା ସାଧୁ
(ବ୍ରହ୍ମଚେତାଃ—ସଂ. ରୂପ) ପଣ୍ଡିତ ଜନେ । ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତ ।)

ବ୍ରହ୍ମଜଟ(ଟା)—ସଂ. ବି—ଦମନକ; ଦଅଣା ଗୁଳ୍ମ—Artemisia
Brahmajaṭa(ṭā) Scoparia (plant); wormwood.

ବ୍ରହ୍ମ ଜଳିବା—ଦେ. କ୍ରି—୧ । ଅତି କ୍ଷୁଧାତୁର ହେବା—1. A
Brahma jaḻibā feeling of acute hunger. ୨ ।
(ବ୍ରହ୍ମ ତାତିବା—ଅନ୍ୟରୂପ) ଅତି କ୍ରୁଦ୍ଧ ହେବା—2. Being
ব্রহ্ম জলা **बरम जलना** enraged.

ବ୍ରହ୍ମଜାତି ହୀରା—ସଂ.ବି—ଉତ୍କୃଷ୍ଟ ହୀରା—A first class diamond;
Brahmajāti hirā a diamond of the first water.
[ ଦ୍ର—ହିନ୍ଦୁଶାସ୍ତ୍ରମତେ ବର୍ଣ୍ଣଭେଦରେ ହୀରା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ଜାତିରେ ବିଭକ୍ତ । ବ୍ରହ୍ମଜାତି ହୀରାର ବର୍ଣ୍ଣ ଶୁଭ୍ର ଉଜ୍ଜ୍ୱଳ; କ୍ଷତ୍ରିୟ ଜାତି ହୀରାର ବର୍ଣ୍ଣ ରକ୍ତ; ବୈଶ୍ୟ ଜାତି ହୀରା ପୀତ ଓ ଶୂଦ୍ର ଜାତି ହୀରା କୃଷ୍ଣବର୍ଣ୍ଣ ।
ରସାୟନ କାର୍ଯ୍ୟରେ ବ୍ରହ୍ମଜାତି ହୀରା ପ୍ରଶସ୍ତ ଓ ଏହା ସମସ୍ତ କାର୍ଯ୍ୟରେ ସିଦ୍ଧି ଦାୟକ । କ୍ଷତ୍ରିୟ ଜାତି ହୀରା ରୋଗ ନାଶକ, ଜରା ଓ ଅକାଳ ମୃତ୍ୟୁ ନିବାରକ । ବୈଶ୍ୟ ଜାତି ହୀରା ସମ୍ପତ୍ତି ପ୍ରଦାୟକ ଓ ଶରୀରର ଦୃଢ଼ତା ସମ୍ପାଦକ । ଶୂଦ୍ର ଜାତି ହୀରା ରୋଗ ନାଶକ ଓ ବୟଃସ୍ଥାପକ । ଦ୍ରବ୍ୟଗୁଣ । ]

ବ୍ରହ୍ମଜାର—ସଂ. ବି—୧ । ବ୍ରାହ୍ମଣୀର ଉପପତି ( ହି. ଶ )—1.
Brahmajāra The paramour of a Brāhmaṇi
woman. ୨ । ( ଏ ବଶିଷ୍ଠଙ୍କ ପତ୍ନୀଙ୍କ ସତୀତ୍ୱ ହରଣ କରିଥିବାରୁ ) ଇନ୍ଦ୍ର—2. Indra.

ବ୍ରହ୍ମଜୀବୀ—ସଂ. ବି ( ବ୍ରହ୍ମନ୍=ବେଦ+ଜୀବ ଧାତୁ=ବଞ୍ଚିବା+କର୍ତ୍ତୃ.
Brahmajibi ଇନ୍; ୧ମା. ୧ବ )—୧ । ବୈଦିକ କ୍ରିୟାକର୍ମ କରି ଯେ ପେଟ ପୋଷେ; ପୁରୋହିତ—1. One who earns his living by performing vedic rites; a professional priest. ୨ । ପାରିଶ୍ରମିକ ଗ୍ରହଣ କରି ଯେ ବେଦ ପଢ଼ାଏ—2. A professional teacher of the Bedas. ୩ । ହୀନ ବ୍ରାହ୍ମଣ; ଅପବିତ୍ର ବ୍ରାହ୍ମଣ—3. An inferior or impure Brāhmaṇa.

ବ୍ରହ୍ମଜ୍ଞ—ସଂ. ବିଣ. ପୁଂ ( ବ୍ରହ୍ମନ୍+ଜ୍ଞା ଧାତୁ+କର୍ତ୍ତୃ. ଅ )—୧ ।
Brahmajña ପରମାତ୍ମତତ୍ତ୍ୱଜ୍ଞ — 1. Knowing the
(ବ୍ରହ୍ମଜ୍ଞା—ସ୍ତ୍ରୀ) truths regarding the Supreme
Being. ୨ । ବେଦଜ୍ଞ—2. Versed in the
Bedas. ୩ । ଅଦ୍ୱୈତବାଦୀ—3. Holding the
doctrine that there is only one God;
pantheistic. ବି—୧ । ଋଷି—1. A sage
୨ । ବ୍ରହ୍ମକୁ ଚିହ୍ନିଥିବା ବ୍ୟକ୍ତି; ଯୋଗସାଧକ ବ୍ୟକ୍ତି—
2. A person who practises Jogā.

ବ୍ରହ୍ମ ଜ୍ଞାନ—ସଂ. ବି—ବ୍ରହ୍ମ ବିଷୟକ ଜ୍ଞାନ; ଅଧ୍ୟାତ୍ମ ତତ୍ତ୍ୱବୋଧ; ଆଧ୍ୟାତ୍ମିକ
Brahma jñāna ଜ୍ଞାନ—True knowledge of God;
spiritual wisdom.

ବ୍ରହ୍ମ ଜ୍ଞାନୀ—ସଂ. ବିଣ. ପୁଂ—ବ୍ରହ୍ମଜ୍ଞ ( ଦେଖ )—Brāhmajña
Brahma jñāni ( See ) ଦେ. ବି—ବ୍ରାହ୍ମ ଧର୍ମାବଲମ୍ବୀ
— A modern Brāhmo; a theosophist;

ବ୍ରହ୍ମ ଠକ—ଦେ, ବି—୧ । ପ୍ରତାରକାଗ୍ରଣୀ; ଯେ ସମସ୍ତଙ୍କୁ ଠକି ପାରେ;
Brahma ṭhaka ଶଠାଗ୍ରଣୀ—1. A master cheat.
**बरमठग** ୨ । ପ୍ରତାରକ ବ୍ରାହ୍ମଣ—2. A fraudulent
Brāhmaṇa. ୩ । ଯେ ବ୍ରାହ୍ମଣ ବେଶ ଧରି ଲୋକଙ୍କୁ
ଠକେ—3. A person who cheats people
by assuming the garb of a Brāhmaṇa.

ବ୍ରହ୍ମ ଡିମ୍ବ—ସଂ. ବି—ବ୍ରହ୍ମାଣ୍ଡ—The Universe.
Brahma ḍimba

ବ୍ରହ୍ମଣ୍ୟ—ସଂ ବିଣ. (ବ୍ରହ୍ମନ୍+ସମ୍ବନ୍ଧାର୍ଥେ ଯ)—୧ । ବ୍ରହ୍ମ ସମ୍ବନ୍ଧୀୟ—
Brahmaṇya 1. Relating to Brahma. ୨ । ବ୍ରାହ୍ମଣ
ସମ୍ବନ୍ଧୀୟ—2 Relating to a Brāhmaṇa,
brahminic. ୩ । ବ୍ରାହ୍ମଣ ଭକ୍ତ ବା ବ୍ରାହ୍ମଣ ସେବକ;
ବ୍ରାହ୍ମଣ ପାଳକ; ବ୍ରାହ୍ମଣ ହିତୈଷୀ—3. Loving or
protecting the Brāhmaṇas; devoted to
the service of Brāhmaṇas. ବି—୧ । ନାରାୟଣ;
ବିଷ୍ଣୁ—1. Bishṇu. ୨ । ବ୍ରହ୍ମତେଜଃ—2. The
Spirit or Spark of Divinity; the God-
head. ୩ । ଶନି ଗ୍ରହ—3. The planet saturn.
[ ଦ୍ର—ଏ ଗ୍ରହ ଶୂଦ୍ରମାନଙ୍କର କଣ୍ଟକ ଓ ବ୍ରାହ୍ମଣଙ୍କର
ମିତ୍ର ଅଟନ୍ତି ।] ୪ । ବ୍ରହ୍ମଦାରୁ ଗଛ; ତୁଳ ଗଛ—4.
The mulberry tree; Morus Indica. ୫ ।
ମୁଞ୍ଜତୃଣ—5. A sort of fibrous grass from
which the girdle of a Brahmachāri is
made; Saccharum Munja. ୬ । (+ଭାବ ତ)
ବ୍ରହ୍ମତ୍ୱ—6. The state of being a Brāhmaṇa.

ବ୍ରହ୍ମଣ୍ୟ ଦେବ—ସଂ. ବି (କର୍ମଧା)—ବିଷ୍ଣୁ—
Brahmaṇya deba Bishṇu.

ବ୍ରହ୍ମ ତତ୍ତ୍ୱ—ସଂ. ବି. (୬ଷ୍ଠୀ ତତ୍)—ବ୍ରହ୍ମ ଜ୍ଞାନ ( ଦେଖ )
Brahma tattwa Brahma jñāna ( See )

ବ୍ରହ୍ମ ତାଳ—ସଂ. ବି—ବାଦ୍ୟର ତାଳ ବିଶେଷ—Name of a
Brahma tāḻa Hindu musical tune.
[ଦ୍ର—ଏହି ତାଳର ୧୪ଟି ମାତ୍ରା । ଏଥିରେ ୧୦ଟି ଆଘାତ ଓ ୪ଟି ଖାଲି ତାଳ ରହେ ।]

ବ୍ରହ୍ମ ତାଳୁ—ସଂ. ବି—ମସ୍ତକର ଶୀର୍ଷ; କପାଳ ଉପରେ ଯେଉଁ ସ୍ଥାନଟି
Brahma tāḻu ଶିଶୁର କୋମଳ—The crown of the head.

[ଦ୍ର—ଶିଶୁମାନଙ୍କର କପାଳ ଉପରେ ହାତ ଦେଇ ଦେଖିଲେ ଏହି ସ୍ଥାନଟି ଚର୍ମମୟ ଓ କୋମଳ ଲାଗେ ଓ ସର୍ବଦା ଦୁକ୍‌ଦୁକ୍ ହେଉଥାଏ ।]

ବ୍ରହ୍ମ ତାଳୁକା—ଦେ. ବ—ବ୍ରହ୍ମ ତାଳୁ (ଦେଖ)
Brahma tāḷukā Brahma tāḷu (See)

ବ୍ରହ୍ମ ତୀର୍ଥ—ସଂ. ବ—୧ । ଆଜମୀରଠାରୁ ପ୍ରାୟ ୪ ମାଇଲ ଦୂରବର୍ତ୍ତୀ
Brahma tīrtha ନର୍ମଦା ତଟବର୍ତ୍ତୀ ତୀର୍ଥ ବିଶେଷ; ପୁଷ୍କର ତୀର୍ଥ—1. Name of a place of pilgrimage near Ajmere ୨ । ପୁଷ୍କର ମୂଳ; ଔଷଧ ବିଶେଷ—2. A medicinal root; the root of Alpotaxis Auriculata. ୩ । ବୃଦ୍ଧା ଅଙ୍ଗୁଠିର ମୂଳ ଭାଗ—3. The root of the thumb. [ଦ୍ର—ଏହି ବାଟେ ଜଳ ତର୍ପଣ କଲେ ବ୍ରହ୍ମା ପାଆନ୍ତି ।]

ବ୍ରହ୍ମ ତେଜଃ—ସଂ. ବ—୧ । ପ୍ରକୃତ ବ୍ରାହ୍ମଣର ତେଜ; ବ୍ରହ୍ମଜ୍ଞାନ ଜନିତ
Brahma tejaḥ ପ୍ରଭା—1. The spark emitted from
(ବ୍ରହ୍ମାଗ୍ନି—ଅନ୍ୟରୂପ) the body of a true Brāhmaṇa. ୨ । ବ୍ରାହ୍ମଣର ବ୍ରହ୍ମଜ୍ଞାନ ଓ ବେଦାଧ୍ୟୟନ ଜନିତ ତେଜ—2. The halo surrounding a Brāhmaṇa versed in spiritual lore.

ବ୍ରହ୍ମ(ହ୍ମୋ)ତ୍ତର—ଦେ. ବ. (ସଂ. ବ୍ରହ୍ମତ୍ର)—ବ୍ରାହ୍ମଣଙ୍କୁ ଦିଆ ଯାଇଥିବା
Brahma(hmo)ttara କର୍ଷର ଜମି—Land given free
ব্রহ্মোত্তর of rent to a Brāhmaṇa; brahmottar.
**ब्रह्मोत्तर, ब्रह्मचर**

ବ୍ରହ୍ମତ୍ତର ଟଙ୍କୀ—ଦେ. ବ—ଯେଉଁ ବ୍ରହ୍ମୋତ୍ତର ଜମିରେ ଓଡିଶା ରାଜା
Brahmattara ṭaṅkī ଚିରସ୍ଥାୟୀ ଟଙ୍କୀ ଜମା ଧାର୍ଯ୍ୟ କରିଥିଲେ—A revenue free Brahmottar land held at a perpetual quit rent.

ବ୍ରହ୍ମତ୍ତର ବାଯ୍ୟାପ୍ତି—ଦେ. ବ. ( ସଂ. ବ୍ରହ୍ମତ୍ର+ଫା. ବାଯେସ୍ତାପ୍ତ )—
Brahmattara bājyāpti ଯେଉଁ ବ୍ରହ୍ମୋତ୍ତର ଲାଖରାଜ
ব্রহ্মোত্তর বাজেয়াফত ଉପରେ ଇଂରାଜ ସରକାର ଖଜଣା ବସାଇ
**ब्रह्मोत्तर बाजेयापत** ଅଛନ୍ତି—Resumed Brahmottar.
[ବ୍ରହ୍ମା(ହ୍ମୋ)ତ୍ତର ବାଜେଅପ୍ତ—ଅନ୍ୟରୂପ]

ବ୍ରହ୍ମତ୍ତର ବାହି(ହେ)ଲ୍(ଲି)—ଦେ. ବ. (ସଂ. ବ୍ରହ୍ମତ୍ର+ଫା. ବହାଲ୍)—
Brahmattara bāhi(he)l(li) ଯେଉଁ ବ୍ରହ୍ମୋତ୍ତର ଜମିର
ব্রহ্মোত্তর বাহেল ସନନ୍ଦକୁ ଇଂରାଜ ସରକାର ସ୍ୱୀକାର କରି
**ब्रह्मोत्तर बाहेल** ଅଛନ୍ତି—Confirmed Brahmottar; revenue free land held in perpetuity.

ବ୍ରହ୍ମତ୍ତର ଲାଖରାଜ(ଜି)—ଦେ. ବ. (ସଂ. ବ୍ରହ୍ମତ୍ର+ଫା. ଲାଖିରାଜ୍)—
Brahmattara lākharāja(ji) ବ୍ରହ୍ମତ୍ତର (ଦେଖ)
Brahmattara (See)

ବ୍ରହ୍ମତ୍ୱ—ସଂ. ବ. (ବ୍ରହ୍ମନ୍+ଭାବ. ତ୍ୱ )—୧ । ବ୍ରହ୍ମ ସାଯୁଜ୍ୟ; ପରଂ
Brahmattwa ବ୍ରହ୍ମଠାରେ ଲୀନ ହେବାର ଅବସ୍ଥା; ମୋକ୍ଷ—1. Final beatitude of the soul. ୨ । ଯଜ୍ଞ ହୋମ ଆଦିରେ ବ୍ରହ୍ମ ଋତ୍ୱିକ୍ (ବ୍ରହ୍ମା) ହେବାର ଅବସ୍ଥା—2. The state of being invoked or selected as a Brahmā ( chief priest ) in a vedic ritual. ଦେ. ବ—ବ୍ରାହ୍ମଣର କ୍ରିୟା; ବ୍ରାହ୍ମଣ ପଣିଆ—The condition of being a Brāhmaṇa; the performance of the duties of a Brāhmaṇa.

ବ୍ରହ୍ମତ୍ର—ସଂ. ବଣ (ବ୍ରହ୍ମନ୍=ବ୍ରାହ୍ମଣ+ତ୍ରୈ ଧାତୁ=ରକ୍ଷା କରିବା+
Brahmatra କର୍ତ୍ତୃ. ଅ)—ବ୍ରାହ୍ମଣର ପୋଷଣାର୍ଥେ ଦତ୍ତ (ବୃତ୍ତି)—Given to a Brāhmaṇa for his maintenance.
ସଂ. ବ—ବ୍ରହ୍ମତ୍ତର ( ଦେଖ )—Brahmattara ( See )

ବ୍ରହ୍ମଦ—ସଂ. ବ· ( ବ୍ରହ୍ମ=ବେଦ+ଦା ଧାତୁ+କର୍ତ୍ତୃ. ଅ )—
Brahmada ୧ । ବେଦଗୁରୁ; ବେଦାଧ୍ୟାପକ—1. A preceptor of the Bedas. ୨ । ଦୀକ୍ଷା ଗୁରୁ—2. One's spiritual preceptor.

ବ୍ରହ୍ମ ଦଣ୍ଡ—ସଂ· ବ. ( ଷଷ୍ଠୀ ତତ୍; ବ୍ରହ୍ମ=ବ୍ରାହ୍ମଣ+ଦଣ୍ଡ )—
Brahma daṇḍa ୧ । ବ୍ରାହ୍ମଣ ଯଷ୍ଟି; ବାମ୍ଭଣ ଛାଟିଆ ନାମକ ଔଷଧ ଗୁଳ୍ମ—1. Siphonanthus Indica; a medicinal plant. ୨ । ବ୍ରହ୍ମଶାପ ଜନିତ ଦଣ୍ଡ—2. Punishment or evil befalling a person as a result of a Brāhmaṇa's curse. ୩ । ବ୍ରାହ୍ମଣର ଯଷ୍ଟି—3. A stick used by a Brāhmaṇa.

ବ୍ରହ୍ମ ଦଣ୍ଡୀ—ସଂ. ବ—ଏକପ୍ରକାର କ୍ଷୁଦ୍ର ଗୁଳ୍ମ; ଭୁଣ୍ଡଘୋଡ଼ା—Name
Brahma daṇḍī of a medicinal plant; Lampra-
[ଅନ୍ୟ ସଂ. ନାମ—ଅଜଦଣ୍ଡୀ, choinium Microcephalum.
କଣ୍ଟପତ୍ରଫଳା] [ଦ୍ର—ବୈଦ୍ୟକ ମତରେ ଏହା ଗରମ, କଟୁ ଓ କଫ ଏବଂ ବାତନାଶକ—ହି· ଶ ।]

ବ୍ରହ୍ମଦତ୍ତ—ସଂ. ବ ( ବ୍ରହ୍ମ=ବ୍ରହ୍ମ+ଦତ୍ତ=ଅର୍ପିତ )—୧ । ଚନ୍ଦ୍ର-
Brahmadatta ବଂଶୀୟ ଜଣେ ରାଜା—1. Name of a King of the Lunar dynasty. [ଦ୍ର—ଏ ଅଣୁହଙ୍କ ପୁତ୍ର ଥିଲେ ଓ ଯୋଗତନ୍ତ୍ର ପ୍ରଣୟନ କରିଥିଲେ ।]
୨ । ଇକ୍ଷ୍ୱାକୁବଂଶୀୟ ଜଣେ ରାଜା—2. Name of a King of Ikshwāku dynasty. ଦେ. ବ—କଳିଙ୍ଗ ବା ପ୍ରାଚୀନ ଉତ୍କଳର ଜଣେ ରାଜା—Name of a king of Kaḷiṅga or ancient Orissa.
[ଦ୍ର—ଏ ବୁଦ୍ଧଦେବଙ୍କ ମୃତ୍ୟୁ ପରେ ତାଙ୍କ ଦାନ୍ତକୁ ଆଣି ଦନ୍ତପୁର ( ପୁରୀ )ରେ ରଖିଥିଲେ । ]

ବ୍ରହ୍ମଦର୍ଭା—ସଂ. ବ (ବ୍ରହ୍ମ+ଦର୍ଭ+ଆ)—ଯମାନୀ; ଯୁଆଣୀ—Ligu-
Brahmadarbhā sticum Ajwan; Carum Copticum Ptychotis.

ବ୍ରହ୍ମ ଦାତା—ସ.ବ. ପୁଂ (ବ୍ରହ୍ମଦାତୃ, ୧ମା. ୧ବ)—ବେଦାଧ୍ୟାପକ ଗୁରୁ
Brahma dātā (ହି. ଶ )—A teacher of the Bedas.

ବ୍ରହ୍ମ ଦାନ—ସ. ବ—ବେଦାଧ୍ୟାପନ (ହି. ଶ )—
Brahma dāna Teaching of the Bedas.

ବ୍ରହ୍ମଦାରୁ—ସଂ. ବି—ତୁଁତ ଗଛ—The mulberry tree;
Brahmadāru Morus Indica.

ବ୍ରହ୍ମ ଦିବସ—ସଂ. ବି ( ୬ଷ୍ଠୀ ତତ୍; ବ୍ରହ୍ମ+ଦିବସ )—ବ୍ରହ୍ମାଙ୍କର
Brahma dibasa ଗୋଟିଏ ଦିନ (ଯାହା ଦେବତାଙ୍କର ୨୪୦୦୦ [ ୨୪ ହଜାର ] ବର୍ଷ ଓ ମନୁଷ୍ୟର ୧୦୫୧୦୬୦୦୦୦୦ [ ୧୦ ବୃନ୍ଦ ୫୧ କୋଟି ୬ ଲକ୍ଷ ] ବର୍ଷ; ଏହା ୧୦୦ ଚତୁର୍ଯୁଗୀ ସଙ୍ଗେ ସମାନ—A period of ten billion human years, which is one day to the Brahma.

ବ୍ରହ୍ମ ଦେଶ—ଦେ. ବି—ଭାରତ ସାଗରର ପୂର୍ବକୂଳସ୍ଥ ଦେଶବିଶେଷ—
Brahma deśa Burma (country).

ବ୍ରହ୍ମ ଦୈତ୍ୟ—ସଂ. ବି—ବ୍ରହ୍ମରାକ୍ଷସ; ପ୍ରେତଯୋନି ପ୍ରାପ୍ତ ଅବିବାହିତ
Brahma daitya ବ୍ରାହ୍ମଣ—The ghost of a Brāhmaṇa (ବ୍ରହ୍ମରାକ୍ଷସ, ବ୍ରହ୍ମପିଶାଚ—ଅନ୍ୟରୂପ) who died a bachelor. [ ଦ୍ର—ଲୋକମାନଙ୍କର ବିଶ୍ୱାସ ଯେ ନିମ୍ବ, ବେଲ, ବଟ, ଅଶ୍ୱତ୍ଥ ଏହି ବୃକ୍ଷ ଗଛରେ ବ୍ରହ୍ମଦୈତ୍ୟ ବାସ କରନ୍ତି । ଏଥିପାଇଁ ରାତିରେ ଓ ଦିନଦିପହର ବେଳେ ପିଲାଙ୍କୁ ଓ ସ୍ତ୍ରୀମାନଙ୍କୁ ଏ ଗଛମାନଙ୍କ ନିକଟକୁ ଯିବାକୁ ଲୋକେ ମନା କରନ୍ତି । ଏ ବ୍ରହ୍ମରାକ୍ଷସମାନେ ଗ୍ରାମର ଯୁବକ ଓ ଯୁବତୀମାନଙ୍କଠାରେ ଅଧିଷ୍ଠ ହେବା ଦେଖା ଯାଇଅଛି । ]

ବ୍ରହ୍ମ ଦୋଷ—ସଂ. ବି (ମ.ପ ଲୋ)—ବ୍ରହ୍ମହତ୍ୟାରୂପ ଅପରାଧ (ହି.ଶ)—
Brahma dosha The guilt of killing a Brāhmaṇa.

ବ୍ରହ୍ମଦୋଷୀ—ସଂ. ବିଣ. ଓ ବି. ପୁଂ—ବ୍ରହ୍ମହତ୍ୟା ଅପରାଧୀ (ହି. ଶ)—
Brahmadoshī Guilty of murdering a Brāhmaṇa.

ବ୍ରହ୍ମ ଦ୍ରବ—ସଂ. ବି—ଗଙ୍ଗାଜଳ ( ହି. ଶ )—
Brahma draba The water of the Ganges.

ବ୍ରହ୍ମ ଦ୍ରୁମ—ସଂ. ବି—ପଳାଶ ଗଛ ( ହି. ଶ )—Butea Frondosa
Brahma druma (ବ୍ରହ୍ମଦ୍ରୁ; ବ୍ରହ୍ମପାଦପ—ଅନ୍ୟରୂପ) (tree).

ବ୍ରହ୍ମ ଦ୍ରୋହୀ—ସଂ. ବିଣ ପୁଂ (ବ୍ରହ୍ମନ୍+ଦ୍ରୋହ+ଇନ୍; ୧ମା. ୧ବ)—
Brahma drohi ବ୍ରାହ୍ମଣଠାରେ ବୈର ରଖିବା ବ୍ୟକ୍ତି—Inimical to Brāhmaṇas.

ବ୍ରହ୍ମ ଦ୍ୱାର—ସଂ. ବି—ବ୍ରହ୍ମ ରନ୍ଧ୍ର (ଦେଖ )
Brahma dwāra Brahma randhra ( See )

ବ୍ରହ୍ମନାଭ—ସଂ. ବି ( ବହୁବ୍ରୀହି; ବ୍ରହ୍ମନ୍=ବ୍ରହ୍ମା, ନାଭିରୁ ଉତ୍ପନ୍ନ
Brahmanābha ଯାହାଙ୍କର )—ବିଷ୍ଣୁ—Bishṇu.

ବ୍ରହ୍ମନାଳ—ସଂ. ବି—ମଣିକର୍ଣ୍ଣିକାର ପୂର୍ବଭାଗରେ ଥିବା କାଶୀସ୍ଥ ତୀର୍ଥ
Brahmanāḷa ବିଶେଷ—Name of a holy place in Benares.

ବ୍ରହ୍ମ ନିରୂପଣ—ସଂ. ବି (୬ଷ୍ଠୀ ତତ୍ )—ପରମାତ୍ମା ସମ୍ବନ୍ଧୀୟ ତତ୍ତ୍ୱର
Brahma nirūpaṇa ସ୍ଥିରୀକରଣ—Ascertainment of the true nature of the Brahmā.

ବ୍ରହ୍ମ ନିରୂପଣ ଗୀତା—ଦେ. ବି—ଭୀମାଭୋଇଙ୍କ କୃତ ଓଡ଼ିଆ ଗ୍ରନ୍ଥ
Brahma nirūpaṇa gītā ବିଶେଷ—Name of a relegious poem composed by Bhīmābhoi.

ବ୍ରହ୍ମ ନିର୍ବାଣ—ସଂ. ବି—ପରମମୁକ୍ତି; ମୃତ୍ୟୁ ପରେ ମନୁଷ୍ୟର ଆତ୍ମାର ପର-
Brahma nirbāṇa ମାତ୍ମାଙ୍କଠାରେ ଲୀନ ହେବା—The final absorption of the human soul in the Divine Soul after death.

ବ୍ରହ୍ମନିଷ୍ଠ—ସଂ. ବିଣ. ପୁଂ—୧ । ବ୍ରାହ୍ମଣ ଭକ୍ତ—1. Devoted to
Brahmanishṭha Brāhmaṇas. ୨ । ବ୍ରହ୍ମଜ୍ଞାନ ସମ୍ପନ୍ନ—2. Having a true knowledge of the Brahma. ସଂ. ବି—ପାରସାକୋଳି ଗଛ (ହି. ଶ)—(ବ୍ରହ୍ମନିଷ୍ଠା—ସ୍ତ୍ରୀ) The tulip tree; Thaspesia Papulnea.

ବ୍ରହ୍ମନିଶା—ଦେ ବି—କଳ୍ପ; ବ୍ରହ୍ମାଙ୍କର ଗୋଟିଏ ରାତ୍ରି—An
Brahmaniśā unending era. ( ଉ—ଲୋକନେ ମହାସା ନିଶା ବ୍ରହ୍ମନିଶା କଷାୟିତ ନୋହେ ଲୋଚନ—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ) [ ଦ୍ର—ଏହା ବ୍ରହ୍ମାଙ୍କର ଗୋଟିଏ ଦିନର ସମାନ, ଅର୍ଥାତ୍ ୧୦ ବୃନ୍ଦ ୫୧ କୋଟି ୬ ଲକ୍ଷ ବର୍ଷ । ]

ବ୍ରହ୍ମ ପଇତା—ଦେ. ବି ( ସଂ. ବ୍ରହ୍ମୋପବୀତ )—ଯଜ୍ଞୋପବୀତ—
Brahma paitā A Brāhmaṇa's sacred thread. ( ବ୍ରହ୍ମ ପୈତା—ଅନ୍ୟରୂପ ) (ବ୍ରହ୍ମ ଦଉଡ଼ି—ବ୍ୟଙ୍ଗ୍ୟରୂପ)

ବ୍ରହ୍ମପତ୍ର—ସଂ. ବି—ପଳାଶପତ୍ର—The leaf of the Butea
Brahmapatra Frondosa tree.

ବ୍ରହ୍ମ ପଦ—ସଂ.ବି—୧ । ବ୍ରାହ୍ମଣତ୍ୱ—1. The state of being
Brahma pada a Brāhmaṇa. ୨ । ବ୍ରହ୍ମଜ୍ଞାନତ୍ୱ—2. The state of having a true knowledge of the Brahma. ୩ । ମୋକ୍ଷ; ମୁକ୍ତି (ହି. ଶ)—3. Salvation; final beatitude

ବ୍ରହ୍ମପୁତ୍ର—ସଂ. ବି—୧ । ବଙ୍ଗଦେଶର ପୂର୍ବାଞ୍ଚଳବାହୀ ନଦବିଶେଷ—1.
Brahmaputra The river Brahmaputra in Assam and East Bengal. [ଦ୍ର—ଏ ନଦର ଉତ୍ପତ୍ତି ସମ୍ବନ୍ଧେ କାଳିକା ପୁରାଣରେ ଲେଖାଅଛି ଯେ, ଦିନେ ବ୍ରହ୍ମା ଶାନ୍ତନୁ ମୁନିଙ୍କ ଅନୁପସ୍ଥିତିରେ ତାଙ୍କ ଆଶ୍ରମରେ ଉପସ୍ଥିତ ହୋଇ ଶାନ୍ତନୁଙ୍କ ସ୍ତ୍ରୀ ଅମୋଘାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ଅନୁସରଣ କରିବାରୁ ଅମୋଘା ପଳାଇ ଯାଇ ପର୍ଣ୍ଣକୁଟୀରର ଦ୍ୱାର ରୁଦ୍ଧ କରିଦେଲେ । ବ୍ରହ୍ମା କାମଜର୍ଜରିତ ହୋଇଥିବାରୁ ସେହିଠାରେ ତାଙ୍କ ରେତଃ ସ୍ଖଳିତ ହେଲା । ବ୍ରହ୍ମା ଲଜ୍ଜିତ ହୋଇ ସେ ସ୍ଥାନ ତ୍ୟାଗ କଲା ପରେ ଶାନ୍ତନୁ ଆସି ପହଞ୍ଚି ସେ ଅଲୌକିକ ବ୍ରହ୍ମବୀର୍ଯ୍ୟ ଦର୍ଶନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଧ୍ୟାନଦ୍ୱାରା ତହିଁର କାରଣ ଅବଧାରଣ କଲେ । ଋଷି ତାହା ନିଜେ ପାନ କରି ସ୍ୱୀୟ ଭାର୍ଯ୍ୟା ଅମୋଘାଙ୍କ ଗର୍ଭରେ ତାହା ନିଷେକ କଲେ ଓ ତହିଁର ଫଳରେ ଅମୋଘାଙ୍କଠାରୁ ଏହି ବ୍ରହ୍ମପୁତ୍ର ନଦର ଉତ୍ପତ୍ତି ହେଲା । ଏ ନଦ ମାନସରୋବରରୁ ବାହାରି ପୂର୍ବାଭିମୁଖରେ ହିମାଳୟର ପୂର୍ବପ୍ରାନ୍ତ ବାଟେ ବୁଲି ପଶ୍ଚିମାଭିମୁଖ ହୋଇ ଆସାମ ଦେଶ ଓ ଦକ୍ଷିଣାଭିମୁଖ ହୋଇ ପୂର୍ବବଙ୍ଗ ଦେଇ ଗୋଆଲନ୍ଦଠାରେ ଗଙ୍ଗା ସଙ୍ଗେ ମିଳିତ ହୋଇ ପଦ୍ମା ବା ମେଘନା ନାମ

ଧାରଣ କରି ବଙ୍ଗୋପସାଗରରେ ପଡ଼ିଅଛି । ଏ ନଦର ପୌରାଣିକ ନାମ ଅମୋଘାନନ୍ଦନ ଓ ଲୌହିତ୍ୟ । ହି. ଶ; ଏହାକୁ ନଦୀ ବୋଲି ନ ଯାଇ ନଦ ବୋଲାଯାଏ । ] ୨ । ତୀର୍ଥବିଶେଷ—2. Name of a Hindu place of pilgrimage. ୩ । ମଳୟାଚଳରେ ଜାତ କପିଳବର୍ଣ୍ଣ ସ୍ଥାବର ବିଷବିଶେଷ—3. Name of a mineral poison. ୪ । (ବ୍ରହ୍ମାଙ୍କ ପୁତ୍ର ) ବଶିଷ୍ଠ ଋଷି—4. The sage Basishṭha. ୫ । କପିଳ ମୁନି—5. The sage Kapila. ୬ । ନାରଦ ଋଷି—6. The sage Nārada. ୭ । ମନୁ—7. Manu. ୮ । ମରୀଚି ଋଷି—8. Sage Marichi. ୯ । ସନକାଦି ଋଷି—9. Sanaka and other sages said to have been born of Brahmā.

**ବ୍ରହ୍ମପୁତ୍ରୀ**—ସଂ. ବି—୧ । ସରସ୍ୱତୀ ନଦୀ—1. The rivar Sara-
Brahma putrī swatī (now non-existent). [ଦ୍ର—ଏହା ପ୍ରୟାଗରେ ଗଙ୍ଗା ଓ ଯମୁନାର ସଙ୍ଗମ ସ୍ଥଳ(ତ୍ରିବେଣୀ)ରେ ମିଳିତ ହୋଇଥିଲା ।] ୨ । ବାରାହୀ କନ୍ଦ; ବାରାହୀକନ୍ଦ ଅଳୁ—2. Bulbular yam. ୩ । ସରସ୍ୱତୀ ଦେବୀ (ହି. ଶ)—3. The Goddess Saraswatī.

**ବ୍ରହ୍ମପୁର**—ଦେ. ବି—୧ । ଦେଉଳ; ଦେବ ମନ୍ଦିର—1.
Brahmapura Temple. [ଦ୍ର—ଜଗନ୍ନାଥ ଘର ଉଚ୍ଚ ମନ୍ଦିର ବ୍ରହ୍ମପୁର ଗଲା ଝୁଣ୍ଟି । ଭୀମଭୋଇ ଭଜନ ।] ୨ । ଗଞ୍ଜାମର ଗୋଟିଏ ବଡ଼ ନଗର—2. Name of a big town in the Ganjam district. [ଦ୍ର—ଏହା ନୂତନ ଓଡ଼ିଶା ଭୁକ୍ତ ଗଞ୍ଜାମ ଜିଲ୍ଲାର ଅଂଶ ସହିତ ଓଡ଼ିଶା ପ୍ରଦେଶକୁ ଆସିଅଛି ।] ସଂ. ବି—୧ । ବ୍ରହ୍ମଲୋକ (ଦେଖ)—1. Brahmaloka (See) ୨ । ହୃଦୟ (ହି. ଶ)—2. The heart.

**ବ୍ରହ୍ମ ପୁରାଣ**—ସଂ. ବି—ଅଷ୍ଟାଦଶ ପୁରାଣାନ୍ତର୍ଗତ ପ୍ରଥମ ପୁରାଣ—
Brahma purāṇa First of the 18 Purāṇas of the Hindus. [ଦ୍ର—ପୁରାଣ ତଳେ ଟୀକା ଦେଖ; ମତ୍ସ୍ୟ ପୁରାଣାଦିରେ ବ୍ରହ୍ମପୁରାଣର ଶ୍ଳୋକ ସଂଖ୍ୟା ୧୦ ହଜାର ଥିବାର ଲେଖା ଅଛି । କିନ୍ତୁ ଆଜିକାଲି ମିଳୁଥିବା ଗ୍ରନ୍ଥର ଶ୍ଳୋକ ସଂଖ୍ୟା ୭ ହଜାର । ଏଥିରେ ପୁରୁଷୋତ୍ତମ କ୍ଷେତ୍ରର ବିସ୍ତୃତ ବର୍ଣ୍ଣନ ଅଛି ଓ ୪୦ଶ ଅଧ୍ୟାୟରେ ଜଗନ୍ନାଥ ଓ କୋଣାର୍କ ମନ୍ଦିରର ବର୍ଣ୍ଣନା ଅଛି; ଉତ୍ତର ଖଣ୍ଡରେ ମାରବାଡ଼ର ବଲଜା ନଦୀର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । କୃଷ୍ଣଙ୍କ କଥା ଓ ଅନେକ ତୀର୍ଥର କଥା ମଧ୍ୟ ଏଥିରେ ଅଛି । (ହି· ଶବ୍ଦସାଗର) ।]

**ବ୍ରହ୍ମ ପୁରୀ**—ସଂ. ବି—କୈଳାସ ପର୍ବତ ଉପରେ ବିରାଜିତ ବ୍ରହ୍ମାଙ୍କର
Brahma purī ଧାମ—The mythological abode of Brahmā on the Kailāsa hills.

**ବ୍ରହ୍ମ ପୁରୁଷ**—ସଂ. ବି—୧ । ପରମାତ୍ମା; ପରମେଶ୍ୱର—1. God;
Brahma purusha the Holy Spirit. ଦେ ବି—ମନୁଷ୍ୟର ଜୀବାତ୍ମା—The soul of a person. (ଯଥା—ମୋ ବ୍ରହ୍ମପୁରୁଷକୁ ଭାରି ବାଧିଲାଣି ।]

**ବ୍ରହ୍ମବଦ୍ୟ**—ସଂ. ବି—(ବ୍ରହ୍ମ+ବଦ୍ ଧାତୁ+ଭାବ. ଯ)—୧ । ବ୍ରହ୍ମ-
Brahmabadya ଜ୍ଞାନ—1. Spiritual knowledge. ( ବ୍ରହ୍ମୋଦ୍ୟ—ଅନ୍ୟରୂପ ) ୨ । ବ୍ରହ୍ମବାକ୍ୟ—2. Metaphysical discourse. ୩ । ବ୍ରହ୍ମାଙ୍କ ମୁଖନିର୍ଗତ ବାକ୍ୟ—3. Words spoken by Brahmā. ୪ । ବୈଦାନ୍ତିକ ମତବିଶେଷ (ଈଶ୍ୱର ସର୍ବବ୍ୟାପୀ ଓ ସର୍ବଜ୍ଞ ବିରାଜିତ ଏହି ମତ )—4. The vedantic theory of the omnipresence of God. ବିଣ —(ବ୍ରହ୍ମ=ବ୍ରହ୍ମା+ବଦ୍ ଧାତୁ=କହିବା+କର୍ମ. ଯ)—ବ୍ରହ୍ମୋକ୍ତ—Said by Brahma.

**ବ୍ରହ୍ମବଦ୍ୟା**—ସଂ. ବି. ସ୍ତ୍ରୀ—କଥା; ପ୍ରବଚନ—
Brahmabadyā Wise saying; proverb.

**ବ୍ରହ୍ମ ବଧ**—ସଂ. ବି—ବ୍ରାହ୍ମଣର ହତ୍ୟା—The murder of a
Brahma badha (ବ୍ରହ୍ମ ବଧ୍ୟା—ଅନ୍ୟରୂପ) Brāhmaṇa.

**ବ୍ରହ୍ମ ବନ୍ଧୁ**—ସଂ. ବି—(ବ୍ରହ୍ମନ୍+ନିନ୍ଦିତ ଅର୍ଥରେ ବନ୍ଧୁ)—ନିନ୍ଦିତ
Brahma bandhu ବ୍ରାହ୍ମଣ; ହୀନ ବ୍ରାହ୍ମଣ—A degraded Brāhmaṇa.

**ବ୍ରହ୍ମ ବର୍ଚ୍ଚଃ**—ସଂ. ବି—ବ୍ରହ୍ମ ତେଜଃ (ଦେଖ)
Brahma barchchaḥ Brahma tejaḥ (See) (ବ୍ରହ୍ମ ବର୍ଚ୍ଚସ୍, ବ୍ରହ୍ମ ବର୍ଚ୍ଚସ—ଅନ୍ୟରୂପ)

**ବ୍ରହ୍ମ ବର୍ଚ୍ଚସ୍ୱୀ**—ସଂ. ବିଣ. ପୁଂ—ବ୍ରହ୍ମ ତେଜୋବିଶିଷ୍ଟ—Endowed
Brahma barchchaswī with refulgence due to spiritual knowledge.

**ବ୍ରହ୍ମବର୍ତ୍ତ**—ସଂ. ବି—ବ୍ରହ୍ମାବର୍ତ୍ତ ଦେଶ—Name of an ancient
Brahma bartta country in north western India.

**ବ୍ରହ୍ମବର୍ଦ୍ଧନ**—ସଂ. ବି.—ତାମ୍ର; ତମ୍ବା—
Brahma bardhana Copper.

**ବ୍ରହ୍ମ ବାଦ**—ସଂ. ବି—୧ । ବେଦାନ୍ତ ଦର୍ଶନ—1. The Bedānta
Brahma bāda Philosophy. ୨ । ବେଦ—2. The Bedas. ୩ । ବେଦାଧ୍ୟୟନ—3. Study of the Bedas. ୪ । ଉକ୍ତ ଜର୍ଣ୍ଣିପ୍ରାର୍ଥକ ବାଦବିଶେଷ; ଅଦ୍ୱୈତବାଦ—4. Pantheism.

**ବ୍ରହ୍ମବାଦୀ**—ସଂ.ବିଣ ଓ ବି.ପୁଂ—(ବ୍ରହ୍ମ+ବଦ୍ ଧାତୁ=କହିବା+କର୍ତ୍ତୃ.
Brahmabādī ଇନ୍)—୧ । ବେଦାନ୍ତବାଦୀ—1. A vedantist; pantheistic. ୨ । ବେଦଜ୍ଞ; (ବ୍ରହ୍ମବାଦକ—ଅନ୍ୟରୂପ) (ବ୍ରହ୍ମବାଦିନ—ସ୍ତ୍ରୀ) ବେଦାଧ୍ୟାୟୀ-2. A reader of the Bedas; versed in the Bedas.

**ବ୍ରହ୍ମବାଦିନୀ**—ସଂ. ବି. ସ୍ତ୍ରୀ—(ବ୍ରହ୍ମବାଦିନ୍+ସ୍ତ୍ରୀ. ଈ)—ଗାୟତ୍ରୀ;
Brahma bādinī ବେଦ ମାତା—A name of Gāyatrī.

ବ୍ରହ୍ମ ବାଲୁକ—ସ. ବି—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—Name of
Brahma bāluka a place of Hindu pilgrimage.
[ଉ—ସକଳ ଯାତ୍ରୀଙ୍କର ବ୍ରହ୍ମ ବାଲୁକରେ, ସ୍ନାନ କଲେ ଶୋକ ନ ପଡ଼େ ସେ ଶୋକରେ । କୃଷ୍ଣସିଂହ. ମହାଭାରତ ବନ ।]

ବ୍ରହ୍ମବିଦ୍—ସ. ବିଣ ( ବ୍ରହ୍ମନ୍+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍; )—
Brahmabid ବ୍ରହ୍ମଜ୍ଞ (ଦେଖ)—Brahmajña (See)
ବି.—୧ । ବିଷ୍ଣୁ—1. Bishnu. ୨ । ବ୍ରାହ୍ମଣ—2. A Brāhmana.

ବ୍ରହ୍ମ ବିଦେଶ—ସ. ବି—କୁରୁକ୍ଷେତ୍ର, ପଞ୍ଚାଳ, ମତ୍ସ୍ୟ ଓ ଶୂରସେନ
Brahma bidesa ନାମକ ଦେଶ ଚତୁଷ୍ଟୟ—The countries (4 in number) round the Kurukshetra.

ବ୍ରହ୍ମବିଦ୍ୟା—ସଂ. ବି—୧ । ବ୍ରହ୍ମଜ୍ଞାନ ପ୍ରତିପାଦକ ଶାସ୍ତ୍ର—1. Theo-
Brahma bidyā sophy; theology. ୨ । ବେଦାନ୍ତ ଦର୍ଶନ ଶାସ୍ତ୍ର—2. Philosphy of the Bedas; the Bedānta philosophy.

ବ୍ରହ୍ମ ବିନ୍ଦୁ—ସ. ବି—୧ । ବେଦପାଠ କାଳରେ ମୁଖନିର୍ଗତ ନିଷ୍ଠୀ-
Brahma bindu ବନ ବିନ୍ଦୁ—1. Particles of saliva coming out of the mouth while reading the Bedas. ୨ । ବ୍ରହ୍ମାଙ୍କ ରେତଃ—2. The semen of Brahmā. ୩ । ବ୍ରାହ୍ମଣର ବୀର୍ଯ୍ୟ—2. The semen of a Brāhmana.

ବ୍ରହ୍ମବୀର୍ଯ୍ୟ—ସ. ବି—୧ । ବ୍ରହ୍ମ ତେଜଃ (ଦେଖ)—1. Brahma
Brahma birjya tejah (See). ୨ । ବ୍ରହ୍ମାଙ୍କ ରେତଃ—2. The semen of Brahmā. ୩ । ବ୍ରାହ୍ମଣର ରେତଃ 3. The semen of a Brāhmana.

ବ୍ରହ୍ମ ବୁଜୁଲି(ଲା)--ପ୍ରାଦେ (ଯାଜପୁର) ବି--ବ୍ରାହ୍ମଣୋଚିତ ବଡ଼ ବୁଜୁଲା
Brahma bujuli(lā) A big packet (of eatables offered at priestly functions) as is tied up by a Brahmana (priest) to be carried home.

ବ୍ରହ୍ମ ବୃକ୍ଷ—ସ. ବି—୧ । ପଳାଶ ବୃକ୍ଷ—1. Butea Frondosa.
Brahma bruksha ୨ । ଉଡ଼ୁମ୍ବର—2. The glomerous fig tree

ବ୍ରହ୍ମ ବୃତ୍ତି—ସ. ବି—୧ । ବ୍ରହ୍ମସ୍ୱ ( ଦେଖ )—1. Brahmaswa
Brahma brutti (See) ୨ । ବ୍ରାହ୍ମଣର ଜୀବିକାନିର୍ବାହୋପାୟ—2. Means of livelihood of a Brāhmana.

ବ୍ରହ୍ମ ବୃନ୍ଦା—ସ ବି—ବ୍ରହ୍ମାଙ୍କ ରାଜଧାନୀ—The capital of
Brahma brundā Brahmā.

ବ୍ରହ୍ମବେଦ—ସ. ବି(ବ୍ରହ୍ମନ୍+ବିଦ୍ ଧାତୁ+ଭାବ.ଅ)—୧ । ବ୍ରହ୍ମଜ୍ଞାନ—
Brahma beda 1. Spiritual wisdom ୨ । ବେଦଜ୍ଞାନ—2. Knowledge of the Bedas

ବ୍ରହ୍ମ ବେଦି—ସ. ବି—କୁରୁକ୍ଷେତ୍ର ନିକଟସ୍ଥ ଦେଶ ବିଶେଷ—Name
Brahma bedi of a country in north-western India.

ବ୍ରହ୍ମବେଦୀ—ସ. ବିଣ. ପୁଂ—( ବ୍ରହ୍ମ + ବିଦ୍ ଧାତୁ + କର୍ତ୍ତୃ. ଇନ୍; ୧ମା.
Brahma bedī ୧ବ)—ବ୍ରହ୍ମଜ୍ଞ (ଦେଖ)—Brahmajña (See). (ବ୍ରହ୍ମବେଦିନୀ—ସ୍ତ୍ରୀ)

ବ୍ରହ୍ମବୈବର୍ତ୍ତ ପୁରାଣ—ସ. ବି—ଅଷ୍ଟାଦଶ ମହାପୁରାଣାନ୍ତର୍ଗତ ୧୦ମ
Brahmabaibartta purāna ପୁରାଣ—One of the Hindu mythologies. [ଦ୍ର—ପୁରାଣ ଶବ୍ଦର ଟୀକା ଦେଖ; ନାରଦପୁରାଣ, ଶିବପୁରାଣ ଓ ମତ୍ସ୍ୟପୁରାଣରେ ଏ ପୁରାଣର ଯେଉଁ ବର୍ଣ୍ଣନା ଅଛି, ଆଜିକାଲି ଯେଉଁ ପୁରାଣ ମିଳୁଅଛି ସେଥି ସଙ୍ଗେ ଉକ୍ତ ବର୍ଣ୍ଣନାର ମେଳ ହେଉନାହିଁ । ଆଜିକାଲି ମିଳୁଥିବା ପୁରାଣ ବ୍ରହ୍ମଖଣ୍ଡ, ପ୍ରକୃତିଖଣ୍ଡ; ଗଣେଶଖଣ୍ଡ ଓ କୃଷ୍ଣଜନ୍ମଖଣ୍ଡ, ଏହିପରି ୪ ଖଣ୍ଡରେ ବିଭକ୍ତ—ହି. ଶ. ]

ବ୍ରହ୍ମଭୂତ—ସ. ବିଣ—ବ୍ରହ୍ମଙ୍କଠାରେ ଲୀନ; ସାୟୁଜ୍ୟପ୍ରାପ୍ତ—
Brahmabhūta . Become one or merged in the Supreme Being. ବି—ବ୍ରହ୍ମଙ୍କଠାରେ ଲୀନ ହେବାର ଅବସ୍ଥା—The state of being merged in the Supreme Soul.

ବ୍ରହ୍ମଭୂତି—ସ ବି—ସନ୍ଧ୍ୟା—
Brahmabhūti Evening.

ବ୍ରହ୍ମଭୋଜ—ସ. ବି—ବ୍ରାହ୍ମଣଭୋଜନ ( ହି. ଶ ); ବ୍ରାହ୍ମଣମାନଙ୍କୁ
Brahmabhoja ମିଷ୍ଟାନ୍ନ ଖୁଆଇବାରୂପ ପୁଣ୍ୟ କର୍ମ—The feeding of Brāhmanas (considered meritorious).

ବ୍ରହ୍ମ ମଣ୍ଡଳ—ସ. ବି—ଉତ୍ତରାକାଶରେ କଟାହ ବା କରେଇର ଆକୃତି
Brahma mandala ବିଶିଷ୍ଟ ନକ୍ଷତ୍ରପୁଞ୍ଜ—A constellation (ବ୍ରହ୍ମକଟାହ—ଅନ୍ୟରୂପ) of stars in the northern sky. [ ଦ—ନକ୍ଷତ୍ର ଶବ୍ଦର ୩୫ ସଂଖ୍ୟକ ଅର୍ଥ ଦେଖ—See Nakshatra No. 35 ].

ବ୍ରହ୍ମମଣ୍ଡୂକୀ—ସ. ବି—୧ । ମଞ୍ଜିଷ୍ଠା ( ହି. ଶ. )—1. Indian
Brahmamandūkī madder. ୨ । ମଣ୍ଡୂକପର୍ଣ୍ଣୀ (ହି ଶ. ( ଦେଖ )—2. Mandūkaparnī (See). ୩ । ବ୍ରାହ୍ମଣଝାଟିଆ ( ହି. ଶ.)—3. Brāhmana-jhātiā (See).

ବ୍ରହ୍ମମୟ—ସ. ବିଣ—୧ । ବ୍ରହ୍ମଙ୍କ ସତ୍ତାଦ୍ୱାରା ପୂର୍ଣ୍ଣ ( ଜଗତ୍ )—
Brahmamaya 1. Pervaded with the Divine Spirit. ୨ । ବ୍ରାହ୍ମଣସମ୍ବନ୍ଧୀୟ—2. Pertaining to Brāhmanas. ୩ । ବ୍ରାହ୍ମଣମାନଙ୍କ ଦ୍ୱାରା ପୂର୍ଣ୍ଣ—3. Full of Brāhmanas; exclusively (ବ୍ରହ୍ମମୟୀ—ସ୍ତ୍ରୀ) occupied by Brāhmanas.

ବ୍ରହ୍ମ ମୀମାଂସା—ସ. ବି—ବ୍ରହ୍ମଙ୍କର ପ୍ରକୃତି ଓ ଗୁଣ ବର୍ଣ୍ଣନାତ୍ମକ
Brahma mimāmsā ବେଦାନ୍ତ ଗ୍ରନ୍ଥବିଶେଷ—Name of

a work on the Bedānta system of philosophy.

ବ୍ରହ୍ମ ମୂର୍ଦ୍ଧଭୃତ୍—ସଂ. ବି ( ବ୍ରହ୍ମନ୍+ମୂର୍ଦ୍ଧନ୍=କପାଳ+ଭୃ. ଧାତୁ+ କର୍ତ୍ତୃ. କ୍ୱିପ୍)—ଶିବ;ମହାଦେବ—
Brahma mūrddhabhṛut — Śiba.

ବ୍ରହ୍ମ ମୁହୂର୍ତ୍ତ—ସଂ. ବି—ବଡ଼ଭୋର (ହି. ଶ.); ପ୍ରତ୍ୟୁଷ—
Brahma muhūrtta Early morning.

ବ୍ରହ୍ମମେଖଳ—ସଂ. ବି—ମୁଞ୍ଜତୃଣ—A sort of fibrous grass;
Brahmamekhaḻa Saccharum Munja.

ବ୍ରହ୍ମ ଯଜ୍ଞ—ସଂ. ବି ( ବ୍ରାହ୍ମଣର ନିତ୍ୟ କର୍ତ୍ତବ୍ୟ ) ବିଧି ଅନୁସାରେ ବେଦାଧ୍ୟୟନ, ବେଦାଭ୍ୟାସ ଓ ବେଦାଧ୍ୟାପନ—The regular study and teaching of the Bedas enjoined on each Brāhmaṇa [ ଦ୍ର—ଅନ୍ୟ ଦୁଇ ଯଜ୍ଞ ଯଥା—ନୃଯଜ୍ଞ ଓ ଦେବ ଯଜ୍ଞ । ]
Brahma jajña
( ବ୍ରହ୍ମସତ୍ର—ଅନ୍ୟରୂପ )

ବ୍ରହ୍ମ ଯଷ୍ଟି—ସଂ. ବି—ବ୍ରାହ୍ମଣ ଝାଟି ( ଦେଖ )—
Brahma jashṭi Brāhmaṇa jhāṭi (See)
( ବ୍ରହ୍ମଯଷ୍ଟିକା—ଅନ୍ୟରୂପ )

ବ୍ରହ୍ମ ଯୋଗ—ସଂ. ବି—ବ୍ରହ୍ମଜ୍ଞାନର ଚର୍ଚ୍ଚା ବା ସାଧନା—
Brahma joga Cultivation of spiritual knowledge or spiritual exercises.

ବ୍ରହ୍ମ ଯୋନି—ସଂ. ବି—୧ । ବ୍ରହ୍ମଗିରି; ଗୟାର ପର୍ବତବିଶେଷ—
Brahma joni Name of a mountain in Gayā. [ ଦ୍ର—ଏହା ହିନ୍ଦୁମାନଙ୍କ ତୀର୍ଥ ] । ୨ । ବ୍ରହ୍ମପ୍ରାପ୍ତି ପାଇଁ ବ୍ରହ୍ମଙ୍କ ଧ୍ୟାନ ( ହି. ଶ. )—2. Meditation on the Brahma.

ବ୍ରହ୍ମ ଯୋନୀ—ସଂ. ବି—କୁରୁକ୍ଷେତ୍ରସ୍ଥ ତୀର୍ଥବିଶେଷ; ସରସ୍ୱତୀ ନଦୀର ତୀରରେ ପୃଥୁଦକ ନିକଟସ୍ଥ ତୀର୍ଥ—
Brahma jonī A place of Hindu pilgrimage in N. W. India. [ ଦ୍ର—ଏଠାରେ ବ୍ରହ୍ମା ବ୍ରାହ୍ମଣାଦି ୪ ବର୍ଣ୍ଣର ସୃଷ୍ଟି କରିଥିଲେ । ]

ବ୍ରହ୍ମ ରନ୍ଧ୍ର—ସଂ. ବି—୧ । ବ୍ରହ୍ମତାଳୁ ( ଦେଖ )—1. Brahma tāḻu (See ୨ । ବ୍ରହ୍ମ ତାଳୁରେ ଯେଉଁ କଳ୍ପିତ ଅତି ସୂକ୍ଷ୍ମ ଛିଦ୍ର ବାଟେ ଯୋଗସାଧକମାନଙ୍କ ପ୍ରାଣବାୟୁ ବାହାର ହୁଏ—2. The imaginary hole on the top of the skull through which the vital spark of Jogīs passes away.
Brahma randhra
( ବ୍ରହ୍ମଛିଦ୍ର—ଅନ୍ୟରୂପ)

ବ୍ରହ୍ମ ରାକ୍ଷସ—ସଂ. ବି—୧ । ବ୍ରହ୍ମ ଦୈତ୍ୟ ( ଦେଖ )—
Brahma rākshasa 1. Brahma daitya (See) [ଦ୍ର—ମନୁଙ୍କ ମତରେ ଯେଉଁ ବ୍ରାହ୍ମଣ ପତିତ ବ୍ୟକ୍ତିର ସହବାସ, ପରସ୍ତ୍ରୀଗମନ, ବ୍ରହ୍ମସ୍ୱହରଣ କରିଥାଏ, ମୃତ୍ୟୁ ପରେ ସେ ବ୍ରହ୍ମରାକ୍ଷସତ୍ୱ ପ୍ରାପ୍ତ ହୁଏ । ଲୋକ ବିଶ୍ୱାସ ଏହିକି ବ୍ରାହ୍ମଣ ବିବାହ ନ କରି ମଲେ ବ୍ରହ୍ମରାକ୍ଷସ ହୁଏ ।] ୨ । ଶିବଙ୍କ ଗଣବିଶେଷ—2. A class of attendants of Śiba.

ବ୍ରହ୍ମରତ—ସଂ. ବି—୧ । ଶୁକଦେବ ( ହି. ଶ. )—1. Sage Śuka. ୨ । ଯାଜ୍ଞବଲ୍କ୍ୟ ମୁନି (ହି.ଶ)- 2. Sage Jājñyabaḻkya.
Brahmarata

ବ୍ରହ୍ମରାତ୍ର—ସଂ. ବି—ବ୍ରାହ୍ମ ମୁହୂର୍ତ୍ତ; ରାତ୍ରିର ଶେଷ ଅଂଶ—
Brahmarātra The last part of the night; early morning; a period of about $1\frac{1}{2}$ hours before daybreak.

ବ୍ରହ୍ମରାତି -ସଂ. ବି ( ବ୍ରହ୍ମନ୍+ରା ଧାତୁ=ଦାନ କରିବା+କର୍ତ୍ତୃ. ତି, ଯେ ଜନକ ରାଜାଙ୍କୁ ବ୍ରହ୍ମଜ୍ଞାନ ଦେଇଥିଲେ)- ୧ । ଯାଜ୍ଞବଲ୍କ୍ୟ ମୁନି—1. The Sage Jājña-baḻkya. ୨ । (ବ୍ରହ୍ମନ୍+ରାତ୍ରି)—ଦେବତାଙ୍କର ୨୪ ହଜାର ବର୍ଷ ପରିମିତ ବ୍ରହ୍ମାଙ୍କର ଏକ ରାତ୍ର—2. One night of Brahmā which is equal to 10 billions of human years. [ ଦ୍ର—ବ୍ରହ୍ମା ସୃଷ୍ଟି କରିବା ପରେ ମନୁଷ୍ୟ ଗଣନାରେ ୧୦ ନିୟୁତ ୯୧ କୋଟି ୬ ଲକ୍ଷ ବର୍ଷ ସୃଷ୍ଟି ରହେ । ଏହା ବ୍ରହ୍ମାଙ୍କର ଏକ ଦିନ; ତା ପରେ କଳ୍ପସ୍ଥାୟୀ ପ୍ରଳୟ ହୁଏ ଓ ବ୍ରହ୍ମା ପୁଣି ସେତିକି କାଳ ଶୋଇ ରହନ୍ତି । ଏହା ବ୍ରହ୍ମାଙ୍କର ରାତ୍ରି । ତା ପରେ ବ୍ରହ୍ମା ନିଦରୁ ଉଠି ପୁଣି ସୃଷ୍ଟି କରନ୍ତି ।]
Brahma rātri

ବ୍ରହ୍ମରାଶି—ସଂ. ବି—୧ । ବିଷ୍ଣୁ—1. Bishṇu. ( ଉ—ନାଶିବେ ତୋର ଦୁଃଖରାଶି, ଆମ୍ଭେ ଦେଖିବୁଁ ବ୍ରହ୍ମରାଶି—ଜଗନ୍ନାଥ. ଭାଗବତ । ) ୨ । ପରଶୁରାମ ( ହି. ଶ. )—2. A name of Paraśurāma. ୩ । ବୃହସ୍ପତିଙ୍କ ଆକ୍ରାନ୍ତ ଶ୍ରବଣା ନକ୍ଷତ୍ର ( ହି. ଶ. )—3. The Śrabaṇā asterism when it is overtaken by the planet Jupiter.
Brahmarāśi
ବି. ବିଣ—ବ୍ରହ୍ମଜ୍ଞାନୀ—Knowing the truth regarding God. ( ଉ—ଏମନ୍ତ ଶୁଣି ହସି,ବୋଲଇ ଶୁଣ ବ୍ରହ୍ମରାଶି—ଭୂପତି. ପ୍ରେମପଞ୍ଚାମୃତ ।)

ବ୍ରହ୍ମରୀତି—ସଂ. ବି—ପିତ୍ତଳ ବିଶେଷ; ଟିଙ୍ଗଲା—
Brahmarīti A kind of brass.

ବ୍ରହ୍ମରେ(ଲେ)ଖ—ସଂ. ବି ( ୬ଷ୍ଠୀ ତତ୍ )—ଜୀବର ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଜୀବନର ଅବଶ୍ୟଂଭାବୀ ଘଟଣାମାନ,ଯାହାକୁ ଜନ୍ମ ହେବାମାତ୍ରେ ବ୍ରହ୍ମା ତା କପାଳରେ ଲେଖି ଦେଇ ଯାଆନ୍ତି ( ହି. ଶ ); କପାଳ ଲେଖନ—The supposed decree which is written on every animal's brow by Brahmā just after his birth.
Brahma re(le)kha

ବ୍ରହ୍ମର୍ଷି—ସଂ. ବି (ବ୍ରହ୍ମନ୍+ଋଷି)—୧ । ବଶିଷ୍ଠାଦି ମୁନିଗଣ—1. A
Brahmarshi class of saints. ୨ । ବ୍ରାହ୍ମଣ ଋଷି—
2. A Brāhmaṇa who has become a sage.
୩ । ବଶିଷ୍ଠ, କଶ୍ୟପ, ଅଙ୍ଗିରା, ଅତ୍ରି ଓ ଭୃଗୁ ଏହି ପଞ୍ଚ ପ୍ରଜାପତିଙ୍କ ବଂଶଧର ମୁନିଗଣ—3. Sages descended from Baśistha and other 4 sages.
[ଦ୍ର—ବ୍ରହ୍ମର୍ଷି ବଶିଷ୍ଠାଦି ଓ ସେମାନଙ୍କ ବଂଶଧରମାନେ ।
ଦେବର୍ଷି—ଧର୍ମଙ୍କ ପୁତ୍ର ନର, ନାରାୟଣ, କ୍ରତୁଙ୍କ ପୁତ୍ର ବାଲଖିଲ୍ୟ, ପୁଲହଙ୍କ ପୁତ୍ର କର୍ଦ୍ଦମ, ପୁଲସ୍ତ୍ୟ ପୁତ୍ର କୁବେର, ପ୍ରତ୍ୟୁଷ ପୁତ୍ର ଅଚଳ, କାଶ୍ୟପ ପୁତ୍ର ନାରଦ ଓ ପର୍ବତ ।
ରାଜର୍ଷି—ଇକ୍ଷ୍ୱାକୁ, ନଳ, ଜନକ, ବିଶ୍ୱାମିତ୍ର । ଦେହ ତ୍ୟାଗପରେ ବ୍ରହ୍ମର୍ଷିମାନେ ବ୍ରହ୍ମଲୋକରେ, ଦେବର୍ଷିମାନେ ଦେବଲୋକରେ ଓ ରାଜର୍ଷିମାନେ ଇନ୍ଦ୍ରଲୋକରେ ବାସ କରନ୍ତି ।]

ବ୍ରହ୍ମ ଲୋକ—ସଂ. ବି—୧ । ବ୍ରହ୍ମାଙ୍କ ବାସସ୍ଥାନ—1. The residence of Brahmā. [ଦ୍ର—ଏହା ବ୍ରହ୍ମର୍ଷି ଓ ବ୍ରହ୍ମଜ୍ଞମାନଙ୍କର ପରଲୋକରେ ବାସସ୍ଥାନ ଅଟେ ।] ୨ ।
Brahma loka
ବ୍ରହ୍ମଜ୍ଞାନୀମାନଙ୍କ ଲବ୍ଧ ମୋକ୍ଷ—2. The final beatitude attained by Brahmajñānis.

ବ୍ରହ୍ମଶର—ଦେ. ବି (ସଂ. ବ୍ରହ୍ମଶିରଃ)—ବ୍ରହ୍ମଶିରଃ (ଦେଖ)
Brahmaśara Brahmaśiraḥ (See)

ବ୍ରହ୍ମଶଲ୍ୟ—ସଂ. ବି—ସୋମବଲ୍କ; ବବୁଲ ଗଛ—
Brahmaśalya Name of a tree; Acacia Arabica

ବ୍ରହ୍ମ ଶାସନ—ସଂ. ବି (୬ଷ୍ଠୀତତ୍)—୧ । ବେଦର ବା ଶାସ୍ତ୍ରର ଆଦେଶ (ହି. ଶ)—1. The injunctions laid down in the scriptures. ୨ । ରାଜାଙ୍କ ଦ୍ୱାରା ବ୍ରାହ୍ମଣଙ୍କୁ ପ୍ରଦତ୍ତ ଗ୍ରାମ (ହି. ଶ)—2. A village given free by a king to Brāhmaṇas to live in.
Brahma śasana

ବ୍ରହ୍ମଶିରଃ—ସଂ. ବି—ବ୍ରହ୍ମଶର; ବ୍ରହ୍ମାସ୍ତ୍ର; ମହାପ୍ରଭାମୟ ଯୁଦ୍ଧାସ୍ତ୍ର ବିଶେଷ—A very powerful and lustrous war-weapon. [ଦ୍ର—ଏଥିର ଉଲ୍ଲେଖ ରାମାୟଣ ମହାଭାରତରେ ଅଛି । ଦ୍ରୋଣାଚାର୍ଯ୍ୟ ଅଗସ୍ତ୍ୟଙ୍କଠାରୁ ଏ ଅସ୍ତ୍ରର ପ୍ରୟୋଗ ଶିକ୍ଷା କରି ଅର୍ଜୁନଙ୍କୁ ଓ ଅଶ୍ୱତ୍ଥାମାଙ୍କୁ ଶିଖାଇଥିଲେ । ହି. ଶ ।]
Brahma śiraḥ
ବ୍ରହ୍ମଶିର, ବ୍ରହ୍ମାସ୍ତ୍ର } ଅନ୍ୟରୂପ

ବ୍ରହ୍ମ ସଂହିତା—ଭଗବତ୍ ସିଦ୍ଧାନ୍ତ ସଂଗ୍ରହ ଗ୍ରନ୍ଥ ବିଶେଷ—
Brahma saṁhita A Hindu theological treatise.

ବ୍ରହ୍ମ ସଙ୍ଗୀତ—ଦେ. ବି—ନିରାକାର ବ୍ରହ୍ମଙ୍କ ସ୍ତବଗୀତିକା; ବ୍ରହ୍ମୋପାସନାମୂଳକ ସଙ୍ଗୀତ—Hymns composed in honour of the Formless Supreme Being. [ଦ୍ର—ରାଜା ରାମମୋହନରାୟ ବଙ୍ଗ ଦେଶରେ ଏ ସଙ୍ଗୀତର ପ୍ରଥମ ପଥ ପ୍ରଦର୍ଶକ । ]
Brahma saṅgīta

ବ୍ରହ୍ମସତୀ—ସଂ. ବି—ସରସ୍ୱତୀ —
Brahmasatī The Goddess of learning.

ବ୍ରହ୍ମସତ୍ର—ସଂ. ବି—ବ୍ରହ୍ମଯଜ୍ଞ (ଦେଖ)
Brahmasatra Brahmajajña (See).

ବ୍ରହ୍ମସଭା—ସଂ. ବି (୬ଷ୍ଠୀ ତତ୍)—୧ । ବ୍ରହ୍ମାଙ୍କ ସଭା—1. The council held in the court of God Brahmā. ୨ । ବ୍ରାହ୍ମଣମାନଙ୍କ ସଭା—2. An assembly or meeting of Brāhmaṇas.
Brahmasabhā

ବ୍ରହ୍ମ ସମାଜ—ଦେ. ବି—ବ୍ରାହ୍ମ ସମାଜ (ଦେଖ)—Brāhma samāja (See).
Brahma samāja ব্রাহ্মসমাজ ब्रह्मसमाज

ବ୍ରହ୍ମ ସମ୍ଭବ—ସଂ. ବିଣ. ପୁଂ (ବହୁବ୍ରୀହି; ବ୍ରହ୍ମାଙ୍କଠାରୁ ସମ୍ଭବ ବା ଜନ୍ମ ଯାହାର)—ବ୍ରହ୍ମାଙ୍କଠାରୁ ଜାତ—Born of Brahmā.
Brahma sambhaba

ବ୍ରହ୍ମ ସରଃ—ସଂ ବି—ଭଟତ୍ ଦେଶୀୟ ମାନସସରୋବର ନାମକ ପାର୍ବତ୍ୟ ହ୍ରଦ; ହ୍ରଦ ତୀର୍ଥ ବିଶେଷ—Name of a big inland lake north of the Himalayas.
Brahma saraḥ

ବ୍ରହ୍ମ ସାବର୍ଣ୍ଣି—ସଂ. ବି—ଦ୍ୱାଦଶ ମନୁ—The 12th descendant from Manu.
Brahma sābarṇṇi

ବ୍ରହ୍ମ ସାଯୁଜ୍ୟ—ସଂ. ବି—ବ୍ରହ୍ମଙ୍କ ସହିତ ସଂଯୋଗ; ବ୍ରହ୍ମତ୍ୱ ଲାଭ—
Brahma sājujya Merging in the Brahma.

ବ୍ରହ୍ମ ସିଦ୍ଧାନ୍ତ—ସଂ. ବି—ଜ୍ୟୋତିଷ ଗ୍ରନ୍ଥ ବିଶେଷ—The title of an astrological work.
Brahma siddhānta

ବ୍ରହ୍ମ ସୁବର୍ଚ୍ଚଳା—ସଂ. ବି—ଆଦିତ୍ୟଭକ୍ତାର ପ୍ରକାର ଭେଦ; ଏକ ପ୍ରକାର ବନ୍ୟ ଶାକ; ଅଣସୋରିଷ—A sort of wild potherb; Cleomi Viscosa; Polanisia Icosandra; the sunflower plant.
Brahma subarchchalā
[ଦ୍ର—ପୂର୍ବେ ତପସ୍ୱୀମାନେ ଏ ଗୁଳ୍ମର ବଟୁ ରସ ପାନ କରୁଥିଲେ । ହି. ଶ ।]

ବ୍ରହ୍ମସୂ—ସଂ. ବି. (ବ୍ରହ୍ମ+ସୂ ଧାତୁ=ପ୍ରସବ କରିବା+କର୍ତ୍ତୃ. କ୍ୱିପ୍)—
Brahmasū ୧ । କନ୍ଦର୍ପ—1. Cupid; the God of love.
(ଦ୍ର—ବ୍ରହ୍ମସୂ ଶବ୍ଦ ସୂନାର ପରଂବ୍ରହ୍ମ ବ୍ରହ୍ମଶର, ପ୍ରୟୋଗ ଏ ନାମପୃରେ ଉର ଉପର । ଉଞ୍ଜ. ବୈଦେହୀଶବିଳାସ ।)
୨ । ଅନିରୁଦ୍ଧ—2. Aniruddha. ୩ । ବିଷ୍ଣୁଙ୍କର ମୂର୍ତ୍ତି ବିଶେଷ (ହି. ଶ)—3. Name of an image of Bishṇu.

ବ୍ରହ୍ମ ସୂତ୍ର—ସଂ. ବି—୧ । ବ୍ରାହ୍ମଣର ଯଜ୍ଞ ସୂତ୍ର; ପଇତା—
Brahma sūtra 1. A Brāhmaṇa's sacred thread.
୨ । ବେଦାନ୍ତ ସୂତ୍ର—2. The aphorisms of the Vedānta [ଦ୍ର—ଏହା ବ୍ୟାସ ଦେବଙ୍କ ସଙ୍କଳିତ ।]

ବ୍ରହ୍ମ ସୂନୁ—ସଂ. ବି—୧ । ବ୍ରହ୍ମ ଦତ୍ତ (ଦେଖ)
Brahma sūnu 1. Brahma datta (See)
୨ । ବ୍ରହ୍ମାଙ୍କ ପୁତ୍ର—2. A son of Brahmā.

ବ୍ରହ୍ମ ସୃଜ—ସଂ. ବି. (ବ୍ରହ୍ମ+ସୃଜ ଧାତୁ+କର୍ତ୍ତୃ. ଅ)—୧ । ବ୍ରହ୍ମାଙ୍କ ଉତ୍ପନ୍ନକାରୀ—1. The begetter of Brahmā. ୨ । ଶିବ (ହି. ଶ)—2. Śiba.
Brahma sṛuja

**ବ୍ରହ୍ମସ୍ତେୟ**—ସଂ. ବି—ଗୁରୁଙ୍କ ବିନା ଅନୁମତିରେ ସେ ଅନ୍ୟକୁ ପଢ଼ାଉ
Brahmasteya ଥିବା ପାଠକୁ ଶୁଣି କରି ପାଠ ପଢ଼ିବା (ମନୁ ସଂହିତା) (ହି.ଶ)—Learning of the lessons which a teacher is teaching to another, by overhearing it and without his permission.

**ବ୍ରହ୍ମସ୍ୱ**—ସଂ. ବି ( ବ୍ରହ୍ମ+ଧନାର୍ଥେ. ସ୍ୱ )—ବ୍ରାହ୍ମଣର ସମ୍ପତ୍ତି—
Brahmaswa The property of a Brāhmaṇa.

**ବ୍ରହ୍ମସ୍ୱୀ**—ଦେ. ବିଣ ପୁଂ.—୧ । ଋଣୀ—1. Debtor. ୨ । ପିତାଶତ୍ରୁର
Brahmaswī ସହାୟକ—2. The helper of one's fathers enemy. ( ଉ—ବୋଲେ ଦଶଗ୍ରୀବ ଧରି ବ୍ରହ୍ମଶର, ବ୍ରହ୍ମସ୍ୱୀ ପ୍ରାଣ ଧନ ଦେ । ଭଞ୍ଜ ବୈଦେହୀଶ-ବିଳାସ । )

**ବ୍ରହ୍ମ ହତ୍ୟା**—ସଂ. ବି(ଷଷ୍ଠୀତତ୍)—ବ୍ରାହ୍ମଣ ବଧ—The murder-
Brahma hatyā ing of a Brahmaṇa. [ ଦ୍ର—ଶାସ୍ତ୍ରମତେ ଏହା ଗୋଟିଏ ମହାପାତକ ଓ ଏଥିର ପ୍ରାୟଶ୍ଚିତ୍ତ ଅତି କଠୋର ।]

**ବ୍ରହ୍ମ ହବିଃ**—ସଂ.ବି— ବ୍ରହ୍ମଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ପ୍ରଦତ୍ତ ଆହୁତି—
Brahma habiḥ Oblations of ghee offered to Brahma or God.

**ବ୍ରହ୍ମହା**—ସଂ. ବିଣ· ଓ ବି· ପୁଂ ( ବ୍ରହ୍ମ+ହନ ଧାତୁ=ବଧ କରିବା+
Brahmahā କର୍ତ୍ତୃ. କ୍ୱିପ୍ )—ବ୍ରହ୍ମଘାତୀ—Murderer of a Brāhmaṇa. ବି—ଶୂଦ୍ରାପତି ବ୍ରାହ୍ମଣ—A Brāhmaṇa marrying a Śūdra woman.

**ବ୍ରହ୍ମହୁତ**—ସଂ. ବି ( ବ୍ରହ୍ମନ୍=ବ୍ରାହ୍ମଣ+ହୁତ=ଅର୍ପିତ )—ଅତିଥି
Brahmahuta ସେବା; ନୃଯଜ୍ଞ—Entertainment of a guest or stranger ; hospitality.

**ବ୍ରହ୍ମ ହୃଦୟ**—ସଂ. ବି—ନକ୍ଷତ୍ର ବିଶେଷ ( ନକ୍ଷତ୍ର ତଳେ ୩୫ ସଂଖ୍ୟକ
Brahma hṛudaya ପରିଚୟ ଦେଖ)—Name of a star; Cappella.

**ବ୍ରହ୍ମା**—ସଂ.ବି. ପୁଂ—(ବ୍ରହ୍ମନ୍ ଶବ୍ଦ;୧ମା.୧ବ) ଏହା ବେଦରେ ସାଧାରଣ
Brahmā ସ୍ତୁତିବାଚକ ଶବ୍ଦ ରୂପେ ବ୍ୟବହୃତ ହୋଇଅଛି )—
(ବ୍ରହ୍ମାଣୀ—ସ୍ତ୍ରୀ) ୧ । ସ୍ତୁତି—1. Hymn; prayer. ୨ । ସ୍ତୋତା; ସ୍ତୁତିକାରୀ—2. A man who prays. ୩ । କବି—3. A poet. ୪ । ବ୍ରାହ୍ମଣ; ବିପ୍ର—4. Brāhmaṇa. ୫ । ଋତ୍ୱିକ୍; ପୁରୋହିତ—5. Priest. ୬ । ବୈଦିକ ଅନୁଷ୍ଠାନର ପ୍ରଧାନ ପୁରୋହିତ—6. The chief priest presiding at a Vedic rite. ୭ । କୁଳପୁରୋହିତ—7. One's family priest ୮ । ବ୍ରହ୍ମହୃଦୟ; ଉତ୍ତରାକାଶସ୍ଥ ନକ୍ଷତ୍ରବିଶେଷ (ନକ୍ଷତ୍ରତଳେ ୩୫ ପରିଚୟ ଦେଖ )—8. Name of a star; Cappella. ୯ । ହିନ୍ଦୁଶାସ୍ତ୍ରୋକ୍ତ ବ୍ରହ୍ମଙ୍କର ୩ ସଗୁଣ ରୂପ ମଧ୍ୟରୁ ଏକତମ; ସୃଷ୍ଟିକର୍ତ୍ତା; ବିଧାତା; ପ୍ରଜାପତି—9. The Creator of the Universe (according to the Hindus). [ଦ୍ର—ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ଶିବ ସଂହାର କରନ୍ତି ।—ମନୁସ୍ମୃତି ଅନୁସାରେ ସ୍ୱୟଂଭୂ ଭଗବାନ୍ ପ୍ରଥମେ ଜଳକୁ ସୃଷ୍ଟି କରି ତହିଁରେ ବୀଜ ବୁଣିଲେ, ସେଥିରୁ ଗୋଟିଏ ଜ୍ୟୋତିର୍ମୟ ଅଣ୍ଡ ବାହାରିଲା; ସେହି ଅଣ୍ଡ ମଧ୍ୟରୁ ବ୍ରହ୍ମା ବାହାରିଲେ । ଭାଗବତ ଆଦି ପୁରାଣରେ ଅଛି ଯେ ଭଗବାନ୍ ବିଷ୍ଣୁ ପ୍ରଥମେ ମହତ୍ତତ୍ତ୍ୱ, ଅହଙ୍କାର ଓ ପଞ୍ଚ ତନ୍ମାତ୍ର ଦ୍ୱାରା ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତ, ଏହି ୧୬ କଳାରୁ ସଂଗୃହୀତ ବିରାଟ ରୂପ ଧାରଣ କଲେ । ବିଷ୍ଣୁ ଯେତେବେଳେ ଯୋଗନିଦ୍ରାରେ ଶୋଇଥିଲେ ତାଙ୍କ ନାଭିରୁ ଗୋଟିଏ ନାଡ଼ିଲଗା ପଦ୍ମ ଫୁଟିଲା ଓ ସେହି ପଦ୍ମ ମଧ୍ୟରୁ ବ୍ରହ୍ମା ଜନ୍ମିଲେ । ବ୍ରହ୍ମାଙ୍କର ଅନ୍ୟ ନାମ ଧାତା, ବିଧାତା, ପ୍ରଜାପତି, ବେଧାଃ, ପିତାମହ, ପରମେଷ୍ଠୀ, ପଦ୍ମଯୋନି, ବିଧି, ବିଶ୍ୱସୃକ୍ ବ୍ରହ୍ମାଙ୍କର ଦଶଜଣ ମାନସପୁତ୍ର ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ପ୍ରଚେତା, ବଶିଷ୍ଠ, ଭୃଗୁ ଓ ନାରଦ । ପୁରାଣ ମାନଙ୍କରେ ବ୍ରହ୍ମାଙ୍କୁ ବେଦମାନଙ୍କର ପ୍ରକାଶୟିତା ବୋଲିଯାଇ ଅଛି । ବ୍ରହ୍ମା ମନୁଷ୍ୟର ଜନ୍ମ ପୂର୍ବରୁ ପ୍ରତ୍ୟେକ ବ୍ୟକ୍ତିର ଭାଗ୍ୟ ନିର୍ଣ୍ଣୟ କରନ୍ତି —ହି. ଶ) । ୯ । ବେଦବକ୍ତା—9. The recitor of the Bedas. ୧୦ । ଅର୍ହତ୍ ବିଶେଷ; ଜୈନ ଉପାସକବିଶେଷ – 10. A class of Jaina saints. ଦେ. ବି—୧ । ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—1. A family title of Brāhmaṇas. ୨ । (ଲକ୍ଷଣାର୍ଥ) କୌଣସି ବିଷୟରେ ସର୍ବୋଚ୍ଚ ବ୍ୟକ୍ତି ବା କର୍ତ୍ତା—2. The master or head in any matter.

**ବ୍ରହ୍ମା କୁଣ୍ଡ**—ଦେ. ବି—ଯାଜପୁରରେ ଥିବା ଯଜ୍ଞ କୁଣ୍ଡ—Name of
Prahmā kuṇḍa a sacrificial pit in Jājpur.
[ଦ୍ର—ଯାଜପୁରରେ ବ୍ରହ୍ମା ଯେଉଁଠାରେ ଯଜ୍ଞ କରିବା ପାଇଁ କୁଣ୍ଡ ଖୋଳାଇଥିଲେ ସେଥିରୁ ବିରଜା ଦେବୀ ବାହାରିଥିଲେ । ନୀଳମଣି ବିରଜା ସ୍ତୁତି ।]

**ବ୍ରହ୍ମାକ୍ଷର**—ସଂ. ବି—ଓଁକାର—
Brahmākshara The mystic syllable 'Om'.

**ବ୍ରହ୍ମାଗ୍ରଭୂ**—ସଂ. ବି—ଘୋଟକ; ଘୋଡ଼ା; ଅଶ୍ୱ—
Brahmāgrabhū The horse.

**ବ୍ରହ୍ମାଙ୍କ ସର୍ଜନା**—ଦେ ବି—୧ । ବିଧାତାଙ୍କର ସୃଷ୍ଟି ଜଗତ୍—
Brahmāṅka sarjanā 1. Brahmā's creation.
ବ୍ରହ୍ମାଙ୍କ ସୃଷ୍ଟି, ବ୍ରହ୍ମାଙ୍କ ସର୍ଜନା } ଅନ୍ୟରୂପ ୨ । ସାଧାରଣ ପରିଦୃଶ୍ୟମାନ ଘଟନା—2. An ordinary or natural thing
(ବିଶ୍ୱାମିତ୍ରଙ୍କ ସର୍ଜନା—ବିପରୀତ)
ব্রহ্মার সর্জনা ब्रह्माकी सर्जना

**ବ୍ରହ୍ମାଞ୍ଜଳି**—ସଂ. ବି—୧ । ସାମବେଦ ପାଠ ସମୟରେ ସ୍ୱର ବିଭାଗ ନିମିତ୍ତ
Brahmāñjali ଅଞ୍ଜଳି କରଣ—1. Joining the palms of the hands for keeping time while reciting

the Sāma Beda ୬ । ବେଦାଧ୍ୟୟନର ଆରମ୍ଭରେ ଓ ଶେଷରେ ପ୍ରଣବୋଚ୍ଚାରଣ ପୂର୍ବକ ଗୁରୁଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ହେବା—2. Folding the palms in honour of the preceptor while beginning to read and finishing the reading of the Bedas

ବ୍ରହ୍ମାଣୀ—ସ. ବି. ସ୍ତ୍ରୀ ( ବ୍ରହ୍ମନ୍+ସ୍ତ୍ରୀ. ଈ )—୧ । ବ୍ରହ୍ମାଙ୍କ ପତ୍ନୀ—Brahmāṇī 1. The wife of Brahmā. ୨ । ବ୍ରହ୍ମାଙ୍କର ସୃଷ୍ଟି ଶକ୍ତି—2. The creative energy of Brahmā (personified). ୩ । ଦେବୀ ବିଶେଷ—3. Name of a Goddess. ୪ । ବ୍ରାହ୍ମଣୀ—4. A female Brāhmaṇa. ୫ । ରେଣୁକା ନାମକ ଗନ୍ଧ ଦ୍ରବ୍ୟ—5. A medicinal scent. ୬ । ଏକ ପ୍ରକାର କଂସା—6. A kind of bellmetal. ୭ । ସରସ୍ୱତୀ (ହ୍ର. ଶ)—7. Goddess Saraswatī.

ବ୍ରହ୍ମାଣ୍ଡ—ସ. ବି—୧ । ବ୍ରହ୍ମାଙ୍କ ସୃଷ୍ଟ ବିଶ୍ୱ ଗୋଳକ—Brahmāṇḍa 1. The universe; the world. [ଦ୍ର—ମନୁରେ ଲେଖାଅଛି ଯେ ସ୍ୱୟଂ ଭଗବାନ୍ ପ୍ରଜା ସୃଷ୍ଟି କରିବାର ଇଚ୍ଛା କରି ପ୍ରଥମେ ଜଳର ସୃଷ୍ଟି କଲେ ଓ ଜଳରେ ବୀଜ ବୁଣିଲେ । ବୀଜ ବୁଣିବାରୁ ସୂର୍ଯ୍ୟଙ୍କ ପରି ତେଜୋମୟ ଗୋଟିଏ ସ୍ୱର୍ଣ୍ଣାଭ ଅଣ୍ଡ ଉତ୍ପନ୍ନ ହେଲା । ସେହି ଅଣ୍ଡ ବା ଗୋଳକରୁ ବ୍ରହ୍ମା ଜନ୍ମିଲେ । ବ୍ରହ୍ମା ଉକ୍ତ ଅଣ୍ଡ ମଧ୍ୟରେ ଏକ ବରଷ ବାସ କରି ତାକୁ ଦୁଇ ଫାଳ କଲେ; ଊର୍ଦ୍ଧ୍ୱ ଖଣ୍ଡରେ ସ୍ୱର୍ଗାଦି ଲୋକ ଓ ଅଧୋଖଣ୍ଡରେ ପୃଥିବୀ ଆଦିଙ୍କୁ ରଚନା କଲେ । ଏଥିପାଇଁ ବିଶ୍ୱଗୋଳକକୁ ବ୍ରହ୍ମାଣ୍ଡ ବୋଲାଯାଏ—ହ୍ର. ଶ] ୨ । ନର କପାଳ; ଖପୁରି (ହ୍ର. ଶ)—2. The human skull.

ବ୍ରହ୍ମାଣ୍ଡ ପୁରାଣ—ସ. ବି—ପୁରାଣ ବିଶେଷ—Brahmaṇḍa purāṇa Name of a Purāṇa. [ଦ୍ର—ପୁରାଣ ଶବ୍ଦ ଟୀକା ଦେଖ ।]

ବ୍ରହ୍ମାତ୍ମଭୂ—ସ. ବି—ଅଶ୍ୱ, ଘୋଟକ—Brahmatmabhū Horse.

ବ୍ରହ୍ମାଧିଗମନ—ସ. ବି—ବେଦ ପାଠ—Brahmadhigamana Reading of the Bedas. (ବ୍ରହ୍ମାଭ୍ୟାସ—ଅନ୍ୟରୂପ)

ବ୍ରହ୍ମାନନ୍ଦ—ସ. ବି—ବ୍ରହ୍ମ ଜ୍ଞାନ ଲାଭ କରିବା ବ୍ୟକ୍ତିର ଅନୁଭୂତ ପରମାନନ୍ଦ—Brahmananda The joy which one feels when he realises the Brahma.

ବ୍ରହ୍ମା ପୁତ୍ର—ଦେ. ବି (ସ. ବ୍ରହ୍ମପୁତ୍ର)—୧ । ବ୍ରହ୍ମାଙ୍କ ପୁତ୍ର—1. The Brahmā putra son of Brahmā. ୨ । ଜାମ୍ବବାନ୍—2. Jāmbabān. (ଦ୍ର—ବ୍ରହ୍ମା ପୁତ୍ର ଅର୍ଥରେ ମା ଭୁମାରସ୍ତ ସ୍ଥିତ । ଭଞ୍ଜ. ବୈଦେହୀଶବିଳାସ ।]

ବ୍ରହ୍ମା ବରଣ—ଦେ. ବି—ବୈଦିକ କର୍ମରେ ପ୍ରଧାନ ପୁରୋହିତଙ୍କର ନିର୍ବାଚନ—Brahmā baraṇa The act of formally choosing and engaging the chief priest for a vedic ritual.

ବ୍ରହ୍ମାବର୍ତ୍ତ—ସ. ବି—କୁରୁକ୍ଷେତ୍ର ନିକଟସ୍ଥ ଦୃଷଦ୍ୱତୀ ଓ ସରସ୍ୱତୀ ନଦୀର ମଧ୍ୟବର୍ତ୍ତୀ ପ୍ରାଚୀନ ଦେଶ—Brahmābartta Name of a holy place in N. W. India [ଦ୍ର—ମନୁରେ ଏହି ଅଞ୍ଚଳର ପରମ୍ପରାଗତ ଆଚାରକୁ ସବୁଠାରୁ ଶ୍ରେଷ୍ଠ ସଦାଚାର ବୋଲି ବୋଲାଯାଇଅଛି ।]

ବ୍ରହ୍ମାମ୍ଭଃ—ସ. ବି—ଗୋମୂତ୍ର; ଚନ୍ଦି—Brahmāmbhaḥ The urine of the cow.

ବ୍ରହ୍ମାୟଣୀ—ଗ୍ରା. ବି. (ସ. ବ୍ରାହ୍ମଣୀ)—୧ । ବ୍ରହ୍ମାଙ୍କ ସ୍ତ୍ରୀ; ସାବିତ୍ରୀ—Brahmāyaṇī 1. The wife of Brahmā. ୨ । ବ୍ରହ୍ମାଙ୍କ ଶକ୍ତି—2. The creative energy of Brahmā ୩ । ଅଷ୍ଟାଦଶ ଯୋଗିନୀ (ଦେବୀ)ଙ୍କ ମଧ୍ୟରୁ ଜଣେ—3. One of the 18 popular Goddesses.

ବ୍ରହ୍ମାୟୁଷ—ଦେ.ବି (ସ. ବ୍ରହ୍ମାୟୁଃ)—ବ୍ରହ୍ମାଙ୍କର ପରମାୟୁ; ଅନନ୍ତକାଳ—Brahmāyusha The lifetime or the age of a Brahmā; an indefinitely long period. (ଦ୍ର—ବ୍ରହ୍ମାୟୁଷ । ବିହରନ୍ତ ନର ଜାଃଶ୍ୱାସକେ । ଭଞ୍ଜ. ବୈଦେହୀଶବିଳାସ ।)

ବ୍ରହ୍ମାରଣ୍ୟ—ସ.ବି—ବେଦ ପାଠର ସ୍ଥାନ—A place where the Brahmāraṇya Bedas are read and explained.

ବ୍ରହ୍ମାର୍ପଣ—ସ. ବି—ନିଜର କୃତ କାର୍ଯ୍ୟକୁ ବ୍ରହ୍ମଙ୍କଠାରେ ଅର୍ପଣ—The Brahmārpaṇa act of renunciating or dedicating one's work unto God.

ବ୍ରହ୍ମାସନ—ସଂ. ବି—( ବ୍ରହ୍ମନ୍+ଆସନ )—ଯୋଗାସନ; ଧ୍ୟାନାସନ; ପଦ୍ମାସନ; ଯେଉଁ ଆସନରେ ବସି ପରମାର୍ଥ ବିଷୟକାର ବ୍ରହ୍ମଙ୍କ ଚିନ୍ତା କରାଯାଏ—Brahmāsana A posture which is prescribed for persons performing religious meditation.

ବ୍ରହ୍ମାସ୍ତ୍ର—ସଂ. ବି (ବ୍ରହ୍ମନ୍+ଅସ୍ତ୍ର)—୧ । ବ୍ରହ୍ମବାଣ; ବ୍ରହ୍ମତେଜୋମୟ ଅମୋଘ ଅସ୍ତ୍ର;ମହାଶକ୍ତିଶାଳୀ ଯୁଦ୍ଧାସ୍ତ୍ର—1. A very Brahmāstra powerful and never-failing weapon used in the wars in ancient India. ୨ । ବ୍ରହ୍ମଶାପ—2.A Brāhmaṇa's curse. ୩।(ଲକ୍ଷଣାର୍ଥ) ବ୍ରହ୍ମାସ୍ତ୍ରପରି ଅମୋଘ ପ୍ରୟୋଗ ବା ଔଷଧ ବା ଉପାୟ-3.(figurative) Any sure means (like the Brahmāstra),a sure weapon); a never-failing remedy;an unfailing remedy.

ବ୍ରହ୍ମିଷ୍ଠ—ସଂ. ବିଣ. ପୁଂ (ବ୍ରହ୍ମ+ସ୍ଥା. ଧାତୁ+କର୍ତ୍ତୃ. ଅ, ନିପାତନ)—ବ୍ରହ୍ମଜ୍ଞାନୀ; ବ୍ରହ୍ମନିଷ୍ଠ—Devoted to Brahmishṭha the contemplation of the Brahma. (ବ୍ରହ୍ମିଷ୍ଠା—ସ୍ତ୍ରୀ)

ବ୍ରହ୍ମିଷ୍ଠା—ସଂ. ବି. ସ୍ତ୍ରୀ—ଦୁର୍ଗା—Brahmishṭhā Goddess Durgā.

ବ୍ରହ୍ମୀ—ସଂ. ବି (ବୃହ୍. ଧାତୁ=ବୃଦ୍ଧି ପାଇବା+କର୍ତ୍ତୃ. ମନ୍+ଈ)—
Brahmī ୧। ଏକ ପ୍ରକାର ପଙ୍କୁଆ ମାଛ; ବମ୍ମୀମାଛ—1. A kind of fish moving in the mud at the bottom of water (shaped like a cylinder); Macrognathus Pancalus. ୨। ଭାର୍ଗୀ; ବ୍ରାହ୍ମଣଯଷ୍ଟିକା—2. Siphonanthus Indica. ୩। ବ୍ରାହ୍ମୀଶାଗ—3. A potherb; Ruta Graveolens. ଦେ·ଣ—୧। ବ୍ରାହ୍ମଧର୍ମାବଲମ୍ବୀ ବ୍ୟକ୍ତି—1. A Brahmo. ୨। ବ୍ରହ୍ମଦେଶବାସୀ ବ୍ୟକ୍ତି—2 A Burmese.

ବ୍ରହ୍ମୋତ୍ତର (ଇତ୍ୟାଦି) - ସଂ.ଦେ.କମ୍ପା ବି (ବ୍ରହ୍ମନ୍=ବ୍ରାହ୍ମଣ+ଉତ୍ତର
Brahmottara(etc) =ପ୍ରଧାନ ବା ଅଧିକାରଯୋଗ୍ୟ; କମ୍ପା ସଂ. ବ୍ରହ୍ମତ୍ର)—ବ୍ରହ୍ମତ୍ତର ଇତ୍ୟାଦି (ଦେଖ)—Brahmattara etc (See).

ବ୍ରହ୍ମୋତ୍ସବ -ପ୍ରାଦେ. (ଗଞ୍ଜାମ) ବି—ମଞ୍ଜୁଷାର ରାଜଧାନୀରେ ପ୍ରତିଷ୍ଠିତ
Brahmotsaba ରାଜପୂଜିତ ଦେବ ବାସୁଦେବଙ୍କ ଦେବାଳୟ-ପ୍ରତିଷ୍ଠା ଦିବସର ବାର୍ଷିକ ଉତ୍ସବ—A grand festival observed in Mandassa in the district of Ganjam.
[ଦ୍ର—ଏହା ବୈଶାଖ ମାସରେ ହୁଏ। ଏହା ପଣାସଂକ୍ରାନ୍ତି ଠାରୁ ଆରମ୍ଭ ହୋଇ ଏଠାରେ ଦଶ ଦିନ ଖୁବ୍ ଗହଳ ଓ ଯାତ୍ରା ହୁଏ। ମଞ୍ଜୁଷାର ରାଜବଂଶ ରାମାନୁଜ ମତାବଲମ୍ବୀ ବୈଷ୍ଣବ ଅଟନ୍ତି। ରାଜବଂଶପୂଜିତ ଦେବଙ୍କ ନାମ ବାସୁଦେବ; ଏ ଉତ୍ସବରେ ମଞ୍ଜୁଷାରାଜ୍ୟର ଓ ନିକଟବର୍ତ୍ତୀ ଅଞ୍ଚଳର ବହୁସହସ୍ର ଲୋକ ଆସି ଯୋଗ ଦିଅନ୍ତି; ଖୁବ୍ ଆଡ଼ମ୍ବର ସହିତ ସଙ୍ଗୀତ, ବୈଠକ, ସଖୀ ନାଟ ଆଦି ହୁଏ ଓ ବିକ୍ରୟାର୍ଥ ବହୁ ପଣ୍ୟଦ୍ରବ୍ୟର ଦୋକାନ ବାଣ୍ଡରେ ବସେ। ଏ ଉତ୍ସବରେ ଓଡ଼ିଶାର ଓ ଗଞ୍ଜାମର ରାଜାମାନେ ସମୟ ସମୟରେ ଯାଇ ଯୋଗ ଦିଅନ୍ତି।
ଦେ. ବି—ବ୍ରାହ୍ମଧର୍ମାବଲମ୍ବୀମାନଙ୍କର ମାଘୋତ୍ସବ—A festival held by the Brahmos in the month of Māgha.

ବ୍ରହ୍ମୋପଦେଶ—ସଂ. ବି—୧। ବେଦ ସମ୍ବନ୍ଧେ ଉପଦେଶ—1. Brahmopadeśa Vedic instruction. ୨। ନିରାକାର ବ୍ରହ୍ମ ସମ୍ବନ୍ଧେ ଉପଦେଶ—2. Spiritual instruction regarding the Formless God.

ବ୍ରହ୍ମୋପାସକ—ସଂ. ବିଣ. ପୁଂ—୧। ବ୍ରହ୍ମାଙ୍କ ଉପାସକ—1. Brahmopāsaka Worshipping the Brahmā (ବ୍ରହ୍ମୋପାସିକା—ସ୍ତ୍ରୀ) ୨। ନିରାକାର ବ୍ରହ୍ମଙ୍କର ଉପାସନାକାରୀ—2. Worshipping the Formless God. ଦେ. ବି. ପୁଂ—ବ୍ରାହ୍ମଧର୍ମାବଲମ୍ବୀ—A Brāhmo.

ବ୍ରହ୍ମୋପାସନା—ସଂ. ବି—୧। ବ୍ରହ୍ମାଙ୍କ ଉପାସନା—1 Worship of Brahmopāsanā Brahmā. ୨। ନିରାକାର ବ୍ରହ୍ମଙ୍କ ଉପାସନା—2. Worship of the Formless God

ବ୍ରହ୍ମୌଦନ—ସଂ. ବି ( ବ୍ରହ୍ମ=ବ୍ରାହ୍ମଣ+ଓଦନ=ଅନ୍ନ )—ଯଜ୍ଞ-
Brahmaudana କାଳରେ ପୁରୋହିତମାନଙ୍କୁ ପ୍ରଦତ୍ତ ଅନ୍ନ—Food distributed amongst the priests officiating at a vedic sacrifice.

ବ୍ରାକିଟ୍(ଟି)—ଗ୍ରା. ବୈଦେ. ବି (ଇଂ. ବ୍ରାକେଟ)—ବ୍ରାକେଟ୍ ୨ (ଦେଖ)
Brākiṭ ṭi) Brāket 2 (See).

ବ୍ରାକେଟ୍—ବୈଦେ. ବି (ଇଂ)—୧। ଲେଖାରେ ବ୍ୟବହୃତ ବନ୍ଧନୀ ଚିହ୍ନ
Brākeṭ —1. Bracket. ୨। ( ସଂ. ନାମ ସାମ୍ଭାର—
ବ୍ରାକେଟ, ବ୍ରେକେଟ ଯୋଗେଶ୍ୱର )—କାନ୍ଥରେ ଲୁଗା ଟାଙ୍ଗିବା
ब्राकेट; ब्रैकेट ଉପଯୋଗୀ କାଠର ଏକାଧିକ ମେଖଯୁକ୍ତ ପଟା—2. A bracket for hanging clothes. ୩। ପରୀକ୍ଷା ଦେଇଥିବା ଦୁଇ ଜଣ ଛାତ୍ର ପରୀକ୍ଷାରେ ସମାନ ନମ୍ବର ପାଇଥିବା ଅବସ୍ଥା—3. The state of 2 examinees securing equal marks in an examination and being thus bracketed.

ବ୍ରାଜ—ସଂ. ବି ( ବ୍ରଜ ଧାତୁ=ଗମନ କରିବା+କର୍ତ୍ତୃ. ଅ )—୧।
Brāja କୁକୁର (ହ୍ରି. ଶ)—1. Dog. ୨। ଦଳ; ସମୂହ—2 Multitude. ୩। ( +ଭାବ. ଅ )—ଗମନ—3. Going.

ବ୍ରାଜି—ସଂ. ବି ( ବ୍ରଜ ଧାତୁ=ଗମନ କରିବା+କର୍ତ୍ତୃ. ଇ )—ବାୟୁ;
Brāji ପବନ—Wind; air.

ବ୍ରାଞ୍ଚ୍—ବୈଦେ. ବି ( ଇଂ )—ଶାଖା—Branch. ( ଯଥା—
Brānch ବ୍ରାଞ୍ଚ୍ ପୋଷ୍ଟ ଅଫିସ୍, ବ୍ରାଞ୍ଚ୍ ଡିପୋ, ବ୍ରାଞ୍ଚ୍ ଲାଇନ୍—
ବ୍ରାଞ୍ଚ ब्रैंच ଇତ୍ୟାଦି। )

ବ୍ରାଣ୍ଡି—ବୈଦେ. ବି ( ଇଂ )—ବରାଣ୍ଡି; ଉଗ୍ର ମଦ; ଉଗ୍ର ସୁରା—
Brāṇḍi Brandy; spirituous liquor.
ବ୍ରାଣ୍ଡୀ, ବ୍ରେଣ୍ଡୀ ब्रांडी

ବ୍ରାତ—ସଂ. ବି (ବୃ ଧାତୁ=ପ୍ରାର୍ଥନା କରିବା+କର୍ତ୍ତୃ.ଅତ)—୧। ସଂଘ;
Brāta ଦଳ—1. Crowd; assemblage. ୨। ପତିତ ବ୍ରାହ୍ମଣର ସନ୍ତାନ—2. A descendant of a fallen Brāhmaṇa. ୩। ବିବାହ ଉତ୍ସବରେ ଯୋଗ ଦେବାକୁ ଯିବା ବରଯାତ୍ରୀ ବା କନ୍ୟାଯାତ୍ରୀ—3. A company of the relations of the bride or of the bridegroom attending a marriage. ୪। ଶାରୀରିକ ପରିଶ୍ରମ—4. Bodily labour; physical labour. ୫। ମଜୁରି ଖଟିବା—5. Working for daily wages.

ବ୍ରାତି—ସଂ. ବି. ପୁଂ ( ବ୍ରାତ+ଇନ୍, ୧ମା. ୧ବ)—ମୂଲିଆ; କୁଲି—
Brātī A daily labourer; cooly; a journeyman (ବ୍ରାତିନୀ—ସ୍ତ୍ରୀ) labourer. ବିଣ (ବ୍ରତ+ଇନ୍)—ବ୍ରତନିଷ୍ଠ—Devoted to the performance of religious vows

ବ୍ରାତ୍ୟ—ସଂ. ବିଣ ( ବ୍ରତ+ସ୍ୱାର୍ଥେ ଯ )—୧। ସଂସ୍କାର ବିହୀନ,
Brātya ନିର୍ଦ୍ଦିଷ୍ଟ ବୟସ ଅତୀତ ହୋଇ ସୁଦ୍ଧା ଯେଉଁ ଦ୍ୱିଜ ସନ୍ତାନ ବ୍ରତ ହୋଇ ନାହିଁ—(a person of the

twice born caste ) Who has not been invested with the sacred thread after he has passed the proper age. ୨ । ବ୍ରତ ସମ୍ବନ୍ଧୀୟ—2. Relating to a religious vow. ୩ । ବର୍ଣ୍ଣସଙ୍କର ( ହି. ଶ )—3 Born of mixed parents; hybrid

ବ୍ରାତ୍ୟ ସ୍ତୋମ -ସଂ. ବି—୧ । ସଂସ୍କାର ବହିର୍ଭୂତ ଯଜ୍ଞ—1. A vedic Brātya stoma sacrifice not duly performed. ୨ । ଯଜ୍ଞ ବିଶେଷ—2. A sort of vedic sacrifice.

ବ୍ରାଣ୍ଡ—ପ୍ରାଦେ (ଗଞ୍ଜାମ)ବି ( ସଂ. ବଣ୍ଡ )—୧ । ଘରଗୁଳର କାଠ ଆଦି Branda ଉପକରଣ; ଗୁଳ ଘରର କାନ୍ଥ ଉପରେ ବସାଯିବା ସମସ୍ତ କାଠ, ଯାହା ଉପରେ ଗୁଳ ରହେ; ବଲମ—Woodwork of the thatch in a thatched house. ୨ । ଗୁଳଘରର ଶେଣୀ—2. The roof-plates and wall-plates of a thatched house.

ବ୍ରାହ୍ମ —ସଂ. ବିଣ ( ବ୍ରହ୍ମନ୍+ସମ୍ବନ୍ଧାର୍ଥେ ଓ ଜ୍ଞାନାର୍ଥେ ଅ )—୧ । Brahma ବ୍ରହ୍ମସମ୍ବନ୍ଧୀୟ—1. Relating to Brahma. ୨ । ବ୍ରହ୍ମାଙ୍କ ସମ୍ବନ୍ଧୀୟ—2. Relating to Brahmā. ବି—୧ । ବ୍ରହ୍ମାଙ୍କ ପୁତ୍ର ନାରଦ ଋଷି—1. Sage Nārada, the son of Brahmā. ୨ । ବ୍ରାହ୍ମତୀର୍ଥ ( ଦେଖ )—2. Brāhmatirtha ( See ). ୩ । ବ୍ରାହ୍ମଧର୍ମ ( ଦେଖ )—3. Brāhmadharma ( See ). ୪ । ବ୍ରାହ୍ମ ପୁରାଣ ( ଦେଖ )—4. Brāhma purāna ( See ). ୫ । ବ୍ରାହ୍ମ ବିବାହ ( ଦେଖ )—4. Brāhma bibāha ( See ). ଦେ. ବି—୧ । ବ୍ରାହ୍ମ ସମାଜ ( ଦେଖ )—1. Brāhma samāja ( See ). ୨ । (ପୁଂ) ବ୍ରାହ୍ମ ସମାଜୀ ( ଦେଖ )—2. Brāhma samāji ( See ) ଦେ. ବିଣ. ପୁଂ—ବ୍ରାହ୍ମଧର୍ମାବଲମ୍ବୀ ବ୍ରାହ୍ମ (ବ୍ୟକ୍ତି)—( a person ) Professing the ବ୍ରାହ୍ମ (ବ୍ରାହ୍ମିକା—ସ୍ତ୍ରୀ) Brahmo religion.

ବ୍ରାହ୍ମଣ—ସଂ. ବିଣ—(ବ୍ରହ୍ମନ୍=ବ୍ରହ୍ମ, ବେଦ+ଜ୍ଞାତାର୍ଥେ. ଅ; ଯେ Brāhmana ବ୍ରହ୍ମଙ୍କୁ ବା ବେଦକୁ ଜାଣେ; କିମ୍ବା ଯେ ବ୍ରହ୍ମାଙ୍କ (ବ୍ରାହ୍ମଣୀ—ସ୍ତ୍ରୀ) ମୁଖରୁ ଜାତ )—ବ୍ରହ୍ମଜ୍ଞ—Knowing the Brahma. ବି.—୧ । ବ୍ରହ୍ମଜ୍ଞ ବ୍ୟକ୍ତି—1. person who has deep knowledge about the Supreme Being. ୨ । ଦ୍ୱିଜ ଶ୍ରେଷ୍ଠ; ହିନ୍ଦୁଙ୍କ ଚାରି ବର୍ଣ୍ଣ ମଧ୍ୟରେ ଆଦି ଓ ପ୍ରଧାନ ବର୍ଣ୍ଣ—2. Brahmana; the highest of the 4 Hindu castes. [ଦ୍ର—ବ୍ରାହ୍ମଣ ଜାତିର ଉତ୍ପତ୍ତି ବୈଦିକ ଯୁଗରୁ ହୋଇଅଛି । ବେଦରୁ ପ୍ରମାଣ ମିଳେ ଯେ ସେ ଯୁଗରେ ଗୁଣ କର୍ମ ବିଭାଗ ଅନୁସାରେ ବ୍ରାହ୍ମଣାଦି ଜାତିର ଉତ୍ପତ୍ତି ହୋଇଥିଲା; କାଳକ୍ରମେ ସେହି ଜାତିବିଭାଗ ବଂଶାନୁକ୍ରମରେ ଚଳିଲା, ଅର୍ଥାତ୍ ବ୍ରାହ୍ମଣର ପୁତ୍ର, ବ୍ରହ୍ମଜ୍ଞ ନ ହେଲେହେଁ ବ୍ରାହ୍ମଣ ବୋଲି ପରିଚିତ ହେଉଅଛି । ଶାସ୍ତ୍ରାନୁସାରେ ବ୍ରାହ୍ମଣର ବିଭିନ୍ନ ନାମର ଉତ୍ପତ୍ତି ଏହିପରି—ପ୍ରଥମେ ଲୋକ 'ଶୂଦ୍ର' ରୂପେ ଜନ୍ମ ଗ୍ରହଣ କରେ, ଉପନୟନ ସଂସ୍କାର ପରେ ସେ 'ଦ୍ୱିଜ' ବୋଲାଏ; ବେଦ ପାଠ କଲେ ତାହାର ନାମ 'ବିପ୍ର' ହୁଏ; ବିପ୍ର ବ୍ରହ୍ମଙ୍କୁ ଚିହ୍ନିଲେ, ଅର୍ଥାତ୍ ବିପ୍ରର ବ୍ରହ୍ମଜ୍ଞାନ ଜନ୍ମିଲେ ସେ ବ୍ରାହ୍ମଣ ହୁଏ ।

ବ୍ରାହ୍ମଣର ଦଶବିଧ ସଂସ୍କାର—୧ । ଗର୍ଭାଧାନ—ବିବାହ ପରେ ପରିଣୀତା ପତ୍ନୀଙ୍କ ସହବାସ କରି ଗର୍ଭ ସଞ୍ଚାର କରାଇବା ନିମନ୍ତେ ବେଦବିହିତ ଅନୁଷ୍ଠାନ । ୨ । ପୁଂସବନ—ଗର୍ଭର ତୃତୀୟ ମାସରେ ଗର୍ଭ ସ୍ପନ୍ଦନ ସମୟରେ ଅନୁଷ୍ଠେୟ ଆଚାର । ୩ । ସୀମନ୍ତୋନ୍ନୟନ—ଗର୍ଭର ୪ର୍ଥ, ୬ଷ୍ଠ ବା ଅଷ୍ଟମ ମାସରେ ଅନୁଷ୍ଠେୟ ଆଚାର । ୪ । ଜାତକର୍ମ—ସନ୍ତାନ ଭୂମିଷ୍ଠ ହେଲେ ଜନକଙ୍କ ଅନୁଷ୍ଠେୟ ଆଚାର । ୫ । ନାମକରଣ—ଜନ୍ମର ୬ ମାସ ପରେ ସନ୍ତାନର ନାମ ଦେବା ଆଚାର । ୬ । ଅନ୍ନପ୍ରାଶନ—୧ ବର୍ଷ ବୟସ ହେବା ପରେ ସନ୍ତାନକୁ ପ୍ରଥମେ ଅନ୍ନ ଖୁଆଇବା ଆଚାର । ୭ । ଚୂଡ଼ାକରଣ -୩ୟ ବର୍ଷ ପରେ ସନ୍ତାନର ମସ୍ତକ ମୁଣ୍ଡନ କରି ସ୍ଥଳବିଶେଷରେ କେଶଗୁଚ୍ଛ ରକ୍ଷା କରି ଉଦ୍ଧ୍ୱାସ୍ତ ଶିଖା ବନ୍ଧନ କରିବା ଆଚାର । (ଏହି ଉପଲକ୍ଷରେ କର୍ଣ୍ଣବେଧ ଓ ବିଦ୍ୟାରମ୍ଭ କରାଯାଏ) । ୮ । ଉପନୟନ—ଯାଗାଦି କର୍ମ ପୂର୍ବକ ସନ୍ତାନକୁ ଯଜ୍ଞୋପବୀତ ଦିଆଇବା ରୂପ ସଂସ୍କାର—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ଏହି ସଂସ୍କାରକୁ ପୁନର୍ଜନ୍ମ ବୋଲାଯାଏ । ଉପନୟନ ହେବାରୁ ଏମାନଙ୍କର ଅନ୍ୟ ନାମ 'ଦ୍ୱିଜ'। ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ଉପନୟନ ନିମନ୍ତେ ଭିନ୍ନ ଭିନ୍ନ ବୟସ ନିର୍ଦ୍ଦିଷ୍ଟ ଅଛି । ଉପନୟନ ନ ହେବା ପର୍ଯ୍ୟନ୍ତ ଦ୍ୱିଜ ସନ୍ତାନ ଶୂଦ୍ର ବୋଲି ବିବେଚିତ ହୁଏ ଓ ସଂସ୍କାର ହେଲେ ତାକୁ ଦ୍ୱିଜ ବୋଲାଯାଏ । ଏହି ସଂସ୍କାରହିଁ ଦ୍ୱିଜର ପ୍ରଧାନ ସଂସ୍କାର । ଉପନୟନ କର୍ମ ସାରି ବ୍ରାହ୍ମଣ ସନ୍ତାନ ବ୍ରହ୍ମଚର୍ଯ୍ୟ ଅବଲମ୍ବନ ପୂର୍ବକ ଗୁରୁ ଗୃହରେ ବାସ କରି ବେଦାଧ୍ୟୟନ କରିବ, ଏପରି ବିଧି ଅଛି । ୯ । ସମାବର୍ତ୍ତନ—ଗୁରୁ ଗୃହରେ ବେଦାଧ୍ୟୟନ ସମାପ୍ତ କରି ଗୁରୁଙ୍କ ଆଦେଶରେ ବିବାହ ନିମନ୍ତେ ଗୃହକୁ ଫେରି ଆସିବା ସମୟରେ ଅନୁଷ୍ଠେୟ ଆଚାର । ଏହିଠାରୁ ବ୍ରହ୍ମଚର୍ଯ୍ୟାଶ୍ରମ ସମାପ୍ତ ହୁଏ । ୧୦ । ବିବାହ—ବେଦବିହିତ ମନ୍ତ୍ରାଦି ଅନୁଷ୍ଠାନ ପୂର୍ବକ ଧର୍ମପତ୍ନୀ ଗ୍ରହଣ ରୂପ ଆଚାର ଓ ଗୃହସ୍ଥାଶ୍ରମରେ ପ୍ରବେଶ । ବର୍ତ୍ତମାନ ଏହି ସବୁ ସଂସ୍କାର ବା 'ଦଶ କର୍ମ'. ନାମ ମାତ୍ର ଅନୁଷ୍ଠିତ ହେଉଅଛି ଓ ଉପନୟନ ବେଳେ ଏକାବେଳକେ ଏହି ଦଶ କର୍ମର ଅଭିନୟ ମାତ୍ର କରା ଯାଉଅଛି । ଲୋକେ କହନ୍ତି ସେ 'ଦଶ କର୍ମରେ ବ୍ରତ ହେଲା', କିନ୍ତୁ ଫଳତଃ ନବମ କର୍ମ ସମାବର୍ତ୍ତନର ଓ ଦଶମ କର୍ମ ବା ବିବାହର ସେ ପର୍ଯ୍ୟନ୍ତ ସମାଧା

ହୋଇ ନ ଥାଏ । ଦ୍ୱିଜମାନଙ୍କର ଗୁରୁଗୋଷ୍ଠ ଆଶ୍ରମ ନିର୍ଦ୍ଦିଷ୍ଟ ଅଛି ଯଥା—୧ । ବ୍ରହ୍ମଚର୍ଯ୍ୟ—ଉପନୟନ ପରେ ବିବାହ ହେବା ପର୍ଯ୍ୟନ୍ତ ଗୁରୁ ଗୃହରେ ବାସ କରି ସଂଯମ ଓ ବ୍ରହ୍ମଚର୍ଯ୍ୟ ରକ୍ଷା ପୂର୍ବକ ବେଦାଭ୍ୟାସ ଓ ଗୁରୁସେବା । ୨ । ଗାର୍ହସ୍ଥ୍ୟ—ବିବାହ ପୂର୍ବକ ଗୃହସ୍ଥର ଆଚାର ଓ କର୍ତ୍ତବ୍ୟ ପ୍ରତିପାଳନ । ୩ । ବାନପ୍ରସ୍ଥ—ସନ୍ତାନ ଆଦି ଲାଭ କରିବା ପରେ ଗୃହ ତ୍ୟାଗ କରି ତପଃ ସାଧନାର୍ଥ ଅରଣ୍ୟକୁ ଯିବା ଓ ସେଠାରେ ଫଳ ମୂଳ ଖାଇ ବଞ୍ଚିବା । ୪ । ସନ୍ନ୍ୟାସ ବା ଭିକ୍ଷୁ ବ୍ରତ—କେତେକ କାଳ ବାନପ୍ରସ୍ଥ ଅବଲମ୍ବନ କରି ଅତି ବୃଦ୍ଧ ହେଲେ ଜନପଦମାନଙ୍କରେ ଗୃହସ୍ଥମାନଙ୍କ ନିକଟରେ ଭିକ୍ଷା କରି ଜୀବନ ଧାରଣ ।

ଏହି ଆଶ୍ରମମାନ ଅବଲମ୍ବନ କରିବାର ନିର୍ଦ୍ଦିଷ୍ଟ ବୟସମାନ ଅଛି । ବର୍ତ୍ତମାନ ବ୍ରାହ୍ମଣର ଏ ଆଶ୍ରମମାନ କାର୍ଯ୍ୟତଃ ପାଳିତ ହେଉନାହିଁ । ଉପନୟନର ପରଦିନ (କାହିଁଲେ ତଳେ) ବିବାହ କରି ଗୃହସ୍ଥ ହୋଇ ଶେଷ ଜୀବନ ପର୍ଯ୍ୟନ୍ତ ସେହି ଗୃହସ୍ଥାଶ୍ରମରେ ବାନ୍ଧି ହୋଇ ବ୍ରାହ୍ମଣମାନେ ଜୀବନ ଅତିବାହିତ କରୁଅଛନ୍ତି । ବ୍ରାହ୍ମଣର ଶାସ୍ତ୍ର ନିରୂପିତ କର୍ତ୍ତବ୍ୟ ୩ଟି ଯଥା—ଅଧ୍ୟୟନ, ଯଜନ ଓ ଦାନ । ବ୍ରାହ୍ମଣର ଶାସ୍ତ୍ର ନିରୂପିତ ଜୀବିକା ୩ଟି, ଯଥା—ଅଧ୍ୟାପନ, ଯାଜନ ଓ ପ୍ରତିଗ୍ରହ । ବ୍ରାହ୍ମଣର ନିତ୍ୟ-କର୍ତ୍ତବ୍ୟ ସ୍ୱଧର୍ମ, ଯଥା—ତ୍ରିସନ୍ଧ୍ୟାରେ ବ୍ରହ୍ମଙ୍କ ଧ୍ୟାନ, ଆରାଧନା ଓ ହରିଙ୍କୁ ଅର୍ପିତ ନୈବେଦ୍ୟ ଗ୍ରହଣ । ବ୍ରାହ୍ମଣର ଲକ୍ଷଣ ଯଥା—ଯୋଗ, ତପସ୍ୟା, ଦାନ, ବ୍ରତ, ଦମ ବା ଇନ୍ଦ୍ରିୟ ସଂଯମ, ଶୌଚ, କ୍ଷମା, ସରଳତା, ଅହିଂସା, ଦୟା, ବିଦ୍ୟା, ବିଜ୍ଞାନ, ଆସ୍ତିକ୍ୟ, ସତ୍ୟବାଦିତା । ବ୍ରାହ୍ମଣର ପ୍ରଧାନ ମନ୍ତ୍ର ଓଁକାର ଓ ଗାୟତ୍ରୀ ।

ପୁରାଣମାନଙ୍କରେ (ଯଥା ଅଗ୍ନି, ପଦ୍ମ, ବ୍ରହ୍ମବୈବର୍ତ୍ତ ଆଦିରେ) ବ୍ରାହ୍ମଣମାନଙ୍କର କର୍ତ୍ତବ୍ୟ, ନିତ୍ୟକ୍ରିୟା, ଆଚରଣ, ଲକ୍ଷଣ, ଆଦି ବିଶେଷରୂପେ ବର୍ଣ୍ଣିତ ହୋଇଅଛି; ତନ୍ମଧ୍ୟରେ ପ୍ରଧାନ କଥା ବେଦାଧ୍ୟୟନ, ତ୍ରିସନ୍ଧ୍ୟାରେ ବ୍ରହ୍ମ ଉପାସନା ଓ ଯଜ୍ଞ ସାଧନ ଅଟେ । ପାଶ୍ଚାତ୍ୟ ସଭ୍ୟତା ପ୍ରଭାବରେ ଦେଶର ପ୍ରାଚୀନ ସ୍ୱାଧୀନତାର ପରିବର୍ତ୍ତନ ସଙ୍ଗେ ବ୍ରାହ୍ମଣଙ୍କ କ୍ରିୟାକଲାପର ଏକପ୍ରକାର ଲୋପ ଘଟିଅଛି ଓ ବ୍ରାହ୍ମଣମାନେ ଅନ୍ୟ ଜାତିମାନଙ୍କର, ଏପରିକି ଶୂଦ୍ରର, କ୍ରିୟା କରିବାକୁ ବାଧ୍ୟ ହେଉ ଅଛନ୍ତି । ପୁରାଣକାରମାନେ ସର୍ବ ଲକ୍ଷଣ ସମ୍ପନ୍ନ ଓ ସଦାଚାରରତ ବ୍ରାହ୍ମଣଙ୍କୁ ବିଷ୍ଣୁଙ୍କ ସଙ୍ଗେ ତୁଳନା କରି ଅଛନ୍ତି ଓ ନିନ୍ଦିତ କର୍ମକାରୀ ଆଚାର-ରହିତ ବିପ୍ରଙ୍କୁ ବିଷହୀନ ସର୍ପ ଓ ଶୂଦ୍ର ସଙ୍ଗେ ତୁଳନା କରି ଅଛନ୍ତି । କେଉଁ ବ୍ରାହ୍ମଣମାନେ ଶୂଦ୍ର ବୋଲି ବିବେଚିତ ହେବେ ତାହା ବ୍ରହ୍ମବୈବର୍ତ୍ତ ପୁରାଣରେ ଉକ୍ତ ଅଛି ଓ ତାହା ଦେଖିଲେ ଆଜିକାଲି ସମାଜରେ ବ୍ରାହ୍ମଣ ରୂପେ ପଇତା ପକାଇଥିବା ବ୍ରାହ୍ମଣମାନେ ପ୍ରକୃତରେ ବ୍ରାହ୍ମଣ ପଦ ବାଚ୍ୟ କି ନୁହନ୍ତି ବୋଲି ଜଣା ପଡ଼ିବ । ପୁରାଣ ମତରେ ବ୍ରାହ୍ମଣର ବାହ୍ୟ ଚିହ୍ନ ଯଥା—ଗଳଦେଶରେ ଯଜ୍ଞ ସୂତ୍ର ଧାରଣ, ସର୍ବଦା ନିର୍ମଳ ଉତ୍ତରୀୟ ଓ ଧୌତ ଅଧୋବସ୍ତ୍ର ପରିଧାନ, ଲଲାଟରେ ତିଳକ, ହସ୍ତରେ କୁଶାଙ୍ଗୁରୀୟ, କଟୀଦେଶରେ କୁଶମୟୀ ମେଖଳା ଓ ମସ୍ତକରେ ଗ୍ରନ୍ଥିବଦ୍ଧ ଶିଖା ଧାରଣ ।

ପୁରାଣ ମତରେ ନିମ୍ନୋକ୍ତ ବ୍ରାହ୍ମଣମାନେ ନିନ୍ଦିତ ବ୍ରାହ୍ମଣ ଅଟନ୍ତି, ଯଥା—ବିଷ୍ଣୁମନ୍ତ୍ର ବିହୀନ, ତ୍ରିସନ୍ଧ୍ୟା ରହିତ, ଏକାଦଶୀ ବିହୀନ, ବୃଷବାହକ (ଶଗଡ଼ିଆ ବା ହଳିଆ), ଧାବକ (ପତ୍ର ବାହକ ବା ପିଆଦା), ଶୂଦ୍ରାନ୍ନଭୋଜୀ (ଶୂଦ୍ରଙ୍କ ଭୃତ୍ୟ ଓ ଶୂଦ୍ରଠାରୁ ଦାନଗ୍ରାହୀ), ଶୂଦ୍ରମାନଙ୍କ ସୂପକାର (ପାଚକ), ଶୂଦ୍ରମାନଙ୍କର ଯାଜକ (ପୁରୋହିତ), ଶୂଦ୍ରାପତି, ଅସିଜୀବୀ (ପଲଟଣ ବା ପୁଲିସ ଚାକିରିଆ), ମସୀଜୀବୀ (କିରାଣି), କନ୍ୟାବିକ୍ରୟୀ, ହରିନାମ ବିକ୍ରୟୀ, ବିଦ୍ୟା-ବିକ୍ରୟୀ, ସକାଳଠାରୁ ସନ୍ଧ୍ୟା ମଧ୍ୟରେ ଦୁଇଥର ଭୋଜନ-କାରୀ, ମତ୍ସ୍ୟମାଂସଭୋଜୀ, ଦେବଳ ଇତ୍ୟାଦି ।

ପୁରାଣମାନଙ୍କରେ ଏହା ମଧ୍ୟ ଦେଖାଯାଏ ଯେ କେହି କେହି ଜନ୍ମତଃ ଶୂଦ୍ର ତପସ୍ୟାଦ୍ୱାରା ବ୍ରାହ୍ମଣ ହୋଇଅଛନ୍ତି ଓ ବ୍ରାହ୍ମଣ କୁକ୍ରିୟାରତ ହୋଇ ଶୂଦ୍ରତ୍ୱ ଲାଭ କରିଅଛନ୍ତି । ବ୍ରାହ୍ମଣମାନଙ୍କର ଦେଶବିଶେଷରେ ଭିନ୍ନ ଭିନ୍ନ ଶ୍ରେଣୀ ଅଛି । ଯଥା-ଓଡ଼ିଶାବାସୀ—୧. ଶ୍ରୋତ୍ରିୟ, ୨. ମଢ଼ିଆ ପଣ୍ଡା, ଦେଉଳିଆ, ୩. ମାସ୍ତାନ ବା ବଳଭଦ୍ର ଗୋଷ୍ଠୀ, ୪. ସାରୁଆ, ଆଠଗଡ଼ିଆ ।

ଗଞ୍ଜାମବାସୀ—୧. ଶାସନୀ ବା ଦାନୁଆ, ୨. ପଣ୍ଡା ୩. ହଳୁଆ, ୪. ପଜାଅରି, ସାରୁଆ, ୫. ଭଦ୍ରୀ ।

ସମ୍ବଲପୁରବାସୀ—୧. ଓଡ଼ିଆ, ୨. ଝାଡ଼ୁଆ, ୩. ରଘୁନାଥିଆ । ]

୩ । ବେଦର ଉପସଂହାର ଭାଗ—3. The concluding sections of the Bedas. [ବି—ଏଥିରେ ଯାଗ ଯଜ୍ଞର ନିୟମାବଳୀ ଓ ବୈଦିକ ମନ୍ତ୍ରସମୂହ ଓ କ୍ରିୟା କର୍ମାଦି ବିବୃତ ହୋଇଅଛି । ଏହା ଦୁଇଟି ଶାଖାରେ ବିଭକ୍ତ ଅଟେ । ୧ । ଐତରେୟ ବ୍ରାହ୍ମଣ—ମହିଦାସ ଋଷି ପ୍ରଣୀତ, ୨ । କୌଷିତକି ବ୍ରାହ୍ମଣ, ସାଙ୍ଖ୍ୟାୟନ—କୁଷିତକ ଋଷି ପ୍ରଣୀତ । ] ୪ । ବ୍ରାହ୍ମଣସମୂହ—4. A conclave of Brāhmaṇas. ସ. ବିଣ—ବ୍ରହ୍ମଜ୍ଞ—Knowing the Brahma. ଦେ. ବି—୧ । ପୁରୋହିତ ବ୍ରାହ୍ମଣ—1. A Brāhmaṇa serving as a priest. ୨ । ପାଚକ ବ୍ରାହ୍ମଣ—2. A Brāhmaṇa serving as a cook. ୩ । ପୂଜାରୀ ବା ଦେବପୂଜକ ବ୍ରାହ୍ମଣ—3. A Brāhmaṇa who worships a Deity as a profession. ୪ । ବ୍ରାହ୍ମଣ ଭୋଜନରେ ଭୋଜନାର୍ଥ ଜମା ହୋଇଥିବା ବ୍ରାହ୍ମଣ—4. Brāhmaṇas assembled to partake of a feast. ୫ । ଭିକାରୀ ବ୍ରାହ୍ମଣ—5. A begger Brāhmaṇa.

୬ । ବ୍ରହ୍ମା—6. Brahmā. ( ଉ—ସେହୁକାଳେ ରୁଦ୍ର, ଇନ୍ଦ୍ରାଦି ଦେବତାଏ । ବ୍ରାହ୍ମଣ ଆଗ କରି ଆସିଲେ ସବେ—କୃଷ୍ଣସିଂହ. ମହାଭାରତ. ବନ । )

ବ୍ରାହ୍ମଣକ—ସଂ. ବି ( ବ୍ରାହ୍ମଣ + କୁତ୍ସିତାର୍ଥେ. କ)—୧ । ନିନ୍ଦିତ କର୍ମକାରୀ Brāhmaṇaka ବ୍ରାହ୍ମଣ—1. A Brāhmaṇa doing forbidden acts. ୨ । ଅସ୍ତ୍ରଧାରୀ ବ୍ରାହ୍ମଣମାନଙ୍କ ଅଧ୍ୟୁଷିତ ଦେଶ—2. A country inhabited by Brahmaṇas who have taken to the profession of wielding weapons or of being soldiers.

ବ୍ରାହ୍ମଣ ଗୋସା(ସେ)ଇଁ—ଦେ. ବି—୧ । ଦେବତାରୂପୀ ବ୍ରାହ୍ମଣ— Brāhmaṇa gosā(se)iṅ 1. A Bāhmaṇa who is ( ବ୍ରାହ୍ମଣ ଠାକୁର—ଅନ୍ୟରୂପ ) as adorable as a বামুনঠাকুর बामनगोसाईं Deity. ୨ । ଦେବତା ଓ ବ୍ରାହ୍ମଣ—2. Deities and Brāhmaṇas. ୩ । ପୂଜାକାରୀ ବ୍ରାହ୍ମଣ—3. A Brāhmaṇa cook or worshipper of idols.

ବ୍ରାହ୍ମଣ ଚଣ୍ଡାଳ—ସଂ. ବି—୧ । ଶାସ୍ତ୍ରନିଷିଦ୍ଧ କର୍ମକାରୀ ବ୍ରାହ୍ମଣ— Brahmaṇa chaṇḍāḷa 1. A Brāhmaṇa doing forbidden acts. ୨ । ପତିତ ବା ଜାତିଚ୍ୟୁତ ବ୍ରାହ୍ମଣ—2. An outcasted Brāhmaṇa. ୩ । ବ୍ରାହ୍ମଣ ଔରସରେ ଶୂଦ୍ରା ଗର୍ଭ ଜାତ ସନ୍ତାନ— 3. A son born of a Brāhmaṇa father and Śūdra mother.

ବ୍ରାହ୍ମଣ ଝାଟି—ଦେ. ବି—ପାଣାକଣ୍ଡିାଦିବର୍ଗର ପାର୍ଶ୍ୱାୟୁଃ ପାର୍ଶ୍ୱ ଯଷ୍ଟି ସଦୃଶ Brahmaṇa jhāṭi ବୃକ୍ଷବିଶେଷ—Clerodendron, ( ବ୍ରାହ୍ମଣଝାଟିଅ—ଅନ୍ୟରୂପ ) Siphonanthus Indica. ସଂ. ବ୍ରହ୍ମଯଷ୍ଟିକ, ଫଞ୍ଜୀ ବ୍ରାହ୍ମଣଯଷ୍ଟିକା, ବ୍ରାହ୍ମଣୀ, ହଞ୍ଜିକା, ଭାର୍ଗୀ, ଭୃଗୁଭବା, ପଦ୍ମା ଅଙ୍ଗାରବଲ୍ଲୀ, ଖରଶାକ বামনহাটি, বামুনহাটি आङ्गनी; आभना; बराङ्गी; भारङ्गी ତେ. ଭଣ୍ଡାରଙ୍ଗୀ [ ଦ୍ର—ଏହାର ପତ୍ର ଲମ୍ବ । ୪।୫ ଗୋଟି ପତ୍ର ଯଷ୍ଟିକୁ ବେଷ୍ଟନ କରିଥାଏ । ଏହାର ଫୁଲ ଧଳା ଓ ୪।୫ ଅଙ୍ଗୁଳ ଲମ୍ବ । ଖରା ଦିନରେ ଫୁଲ ଫୁଟେ । ଫଳ ଦେଖିଲେ ନୀଳକୃଷ୍ଣ ଅଙ୍ଗାର ବର୍ଣ୍ଣ ଦେଖାଯାଏ ବୋଲି ଏହାର ସଂସ୍କୃତ ନାମ ଅଙ୍ଗାରବଲ୍ଲୀ । ବୈଦ୍ୟକ ମତରେ ଏହା ରୁକ୍ଷ, କଟୁ, ତିକ୍ତ, କଷାୟ, ରୁଚିକର, ଉଷ୍ଣବୀର୍ଯ୍ୟ, ପାଚକ, ଲଘୁ ଓ ଅଗ୍ନିଦୀପକ । ଏହା ରକ୍ତ ଗୁଳ୍ମ, ଶୋଥ, କାଶ, କଫ, ଶ୍ୱାସ, ପୀନସ, ଜ୍ୱର ଓ ବାୟୁନାଶକ । ]

ବ୍ରାହ୍ମଣତା(ତ୍ୱ)—ସଂ. ବି (ବ୍ରାହ୍ମଣ + ଭାବ. ତା,ତ୍ୱ)—ବ୍ରହ୍ମତ୍ୱ; ବ୍ରାହ୍ମଣର Brāhmaṇatā(twa) ଶାସ୍ତ୍ରବିହିତ କ୍ରିୟା ପାଳନ କରିବାର ଅବସ୍ଥା—Brahminhood; the state of being a Brāhmaṇa not in name only but in conduct.

ବ୍ରାହ୍ମଣ ଦେବତା—ଦେ. ବି (ସହଚର ଶବ୍ଦ)—ବ୍ରାହ୍ମଣ ଓ ଦେବତା— Brāhmaṇa debatā Brāhmaṇas and Deities.

ବ୍ରାହ୍ମଣପଣ—ଦେ. ବି—୧ । ବ୍ରାହ୍ମଣତା ( ଦେଖ )— Brāhmaṇapaṇa 1. Brāhmaṇatā (See). [ବ୍ରାହ୍ମଣପଣିଆ(ଆଁ)-ଅନ୍ୟରୂପ] ୨ । ପୁରୋହିତି—2. Priesthood. বামুনগিরি; बामनगिरी ୩ । ଭିକ୍ଷାବୃତ୍ତି—3. Begging.

ବ୍ରାହ୍ମଣ ପ୍ରିୟ—ସଂ. ବିଣ—୧ । ଯେ ବ୍ରାହ୍ମଣମାନଙ୍କୁ ସ୍ନେହ କରେ Brāhmaṇa priya ବ୍ରାହ୍ମଣଙ୍କ ଭକ୍ତ—1. Loving the Brāhmaṇas. ୨ । ବ୍ରାହ୍ମଣଙ୍କ ହିତକର (କାର୍ଯ୍ୟ) 2. Advantageous to Brāhmaṇas. ୩ । ବ୍ରାହ୍ମଣମାନଙ୍କର ପ୍ରିୟ ( ବ୍ୟକ୍ତି )— 3. Loved by Brāhmaṇas. ବି—ବିଷ୍ଣୁଙ୍କ ନାମ—A name of Bishṇus

ବ୍ରାହ୍ମଣ ବୈଷ୍ଣ(ଷ୍ଣେ)ବ—ଦେ. ବି ( ସହଚର ଶବ୍ଦ)—ବ୍ରାହ୍ମଣଗଣ ଓ Brāhmaṇa baishṇa(shṇe)ba ବୈଷ୍ଣବଗଣ— বামুনবৈষ্ণব; बामनवैष्णव Brāhmaṇas and devotee. of Bishṇu or anchorites

ବ୍ରାହ୍ମଣ ବୈଷ୍ଣବ କରିବା—ଦେ. କ୍ରି—ବ୍ରାହ୍ମଣଙ୍କୁ ଓ ବୈଷ୍ଣବଙ୍କୁ ଦାନ Brāhmaṇa baishṇaba karibā ଭୋଜନାଦିଦ୍ୱାରା ସତ୍କାର বামুন বৈষ্ণব করা କରିବା—To entertain Brāhmaṇas बामन वैष्णव करना and Baishṇabas with food and gifts.

ବ୍ରାହ୍ମଣ ବ୍ରୁବ—ସଂ. ବି. ପୁଂ (ବ୍ରାହ୍ମଣ + ବ୍ରୂ ଧାତୁ = କହିବା + କର୍ତ୍ତୃ Brāhmaṇa bruba ଅ, ଯେ ଆପଣାକୁ ବ୍ରାହ୍ମଣ ବୋଲି କହି ହୁଏ)—ନାମମାତ୍ର ପରିଚାୟକ ବ୍ରାହ୍ମଣ; ନିନ୍ଦିତ କର୍ମକାରୀ ବ୍ରାହ୍ମଣ; ମହାବ୍ରାହ୍ମଣ—A Brāhmaṇa doing forbidden acts.

ବ୍ରାହ୍ମଣ ଭିକା(ଖା)ରି—ଦେ. ବି (ସହଚର ଶବ୍ଦ; ସଂ. ବ୍ରାହ୍ମଣ + Brahmaṇa bhikā(khā)ri ଭିକ୍ଷାକାରୀ)—୧ । ବ୍ରାହ୍ମଣ ଓ বামুনভিকা(খা)রী ଭିକ୍ଷୁକ-1. Brahmaṇas and beggars. बामनभिकमंगावा ୨ । ଭିକ୍ଷାବୃତ୍ତିଧାରୀ ବ୍ରାହ୍ମଣ— 2. A beggar Brāhmaṇa.

ବ୍ରାହ୍ମଣ ଭୋଜନ—ସଂ. ବି—ପ୍ରାୟଶ୍ଚିତ୍ତ, ମୃତାହ, ଶ୍ରାଦ୍ଧ ଆଦିର କର୍ତ୍ତ Brāhmaṇa bhojana ବ୍ରାହ୍ମଣମାନଙ୍କୁ ଉଦ୍ଦିଷ୍ଟ ଭୋଜନ ଦାନ— A feast given to Brāhmaṇas on funeral and other occasions

ବ୍ରାହ୍ମଣ ଯଷ୍ଟିକା—ସଂ. ବି—ବ୍ରାହ୍ମଣଝାଟି (ଦେଖ)—Brāhmaṇa Brāhmaṇa jashṭikā jhāṭi (See). [ବ୍ରାହ୍ମଣ ଯଷ୍ଟି—ଅନ୍ୟରୂପ]

ବ୍ରାହ୍ମଣାୟନ—ସଂ. ବି (ବ୍ରାହ୍ମଣ + ଜାତାର୍ଥେ. ଅୟନ)—ବିଶୁଦ୍ଧ ବା ଉଚ୍ଚ Brāhmaṇāyana ବଂଶୋଦ୍ଭବ ବ୍ରାହ୍ମଣ—A Brāhmaṇa born of a high or respectable caste; a Brāhmaṇa of pure descent.

ବ୍ରାହ୍ମଣିଆ(ଆଁ)—ଦେ. ଵଣ (ସଂ. ବ୍ରାହ୍ମଣ୍ୟ)—୧ । ବ୍ରାହ୍ମଣୋପଯୁକ୍ତ— Brāhmaṇiā(āṅ) 1. Befitting a Brāhmaṇa. ୨ । ବାମୁନିଆଁ ବ୍ରାହ୍ମଣ ସମ୍ବନ୍ଧୀୟ—2 Relating to Brāhmaṇa. **बामनीया** ବି-୧ । ବୃକ୍ଷବିଶେଷ—1. Name of a tree. (ଉ—ବ୍ରାହ୍ମଣିଆ ଯେ କୁମ୍ଭୀବାଡ଼ା ଅର୍ଜିଲା । କୃଷ୍ଣସିଂହ. ମହାଭାରତ ବନ । ) ୨ । ବ୍ରାହ୍ମଣର କାର୍ଯ୍ୟ—2 Act befitting a Brāhmaṇa. [ ଦ୍ର—ଏହି ଶବ୍ଦ ଆଧୁନିକ ପ୍ରୟୋଗରେ ପରଠାରୁ ଅନୁଗ୍ରହ ବା ଯାଚନାର୍ଥ ଅନୁସରଣ, ଦାନ ଗ୍ରହଣ, ଭିକ୍ଷାବୃତ୍ତି ଇତ୍ୟାଦି ବୁଝାଏ ।]

ବ୍ରାହ୍ମଣିଆ ଅଙ୍କ—ଦେ. ବି—ତାଳପତ୍ର ପୋଥି ଆଦି ପୁରୁଣା ହାତ ଲେଖା Brāhmaṇiā aṅka ଗ୍ରନ୍ଥମାନଙ୍କରେ ବ୍ୟବହୃତ ଦେବନାଗର ଅଙ୍କର ସଦୃଶ ଓଡ଼ିଆ ଅଙ୍କ—Oriya figures or digits resembling Doba nāgari found in ancient Oriya manuscripts.

ବ୍ରାହ୍ମଣିଆ କଙ୍କଡ଼ା—ଦେ. ବି—ଚିଲିକାରେ ମିଳୁଥିବା ଏକପ୍ରକାର ବଡ଼ Brāhmaṇiā kaṅkaṛā କଙ୍କଡ଼ା—A species of large crabs found in the Chilkā lake.

ବ୍ରାହ୍ମଣିଆ କରିବା—ଦେ. କ୍ରି—୧। ବ୍ରାହ୍ମଣ ପରି କୌଣସି ପଦାର୍ଥ ଦାନ Brāhmaṇiā karibā ନେବା ବା ମାଗଣା ନେବା—1. To take a thing as a free gift ୨ । ଭିକ୍ଷା କରିବା—2 To beg for alms.

ବ୍ରାହ୍ମଣିଆ ବେଙ୍ଗ—ଦେ. ବି—ଏକପ୍ରକାର ବଡ଼ ବେଙ୍ଗ—Spotted Brāhmaṇiā beṅga and striped frog; marsh frog; (ବ୍ରାହ୍ମଣୀବେଙ୍ଗ—ଅନ୍ୟରୂପ) Rana Palustris. [ଦ୍ର—ଏମାନଙ୍କ କୋଳାବେଙ୍ଗ୍ ପିଠିରେ (ବ୍ରାହ୍ମଣର ପଇତାପରି) ଧଳା ଡୋର ଥାଏ । **बामनबेंग** ଏମାନେ ପାଣି ନିକଟରେ ବାସ କରନ୍ତି । ଦେହ ମସୃଣ । ଏମାନେ ଉଭୟଚର ଅଟନ୍ତି; ବର୍ଷାକାଳରେ ଖୁବ ଉଚ୍ଚୈଃସ୍ୱରରେ ରବ କରନ୍ତି । କେତେକ ନୀଚଜାତୀୟ ଲୋକେ ଏହାର ମାଂସ ଖାଆନ୍ତି । ଏହାର ମାଂସ ଖାଇଲେ ବାତୁଳତା ଭଲ ହୁଏ ବୋଲି କେହି କେହି କହନ୍ତି ।]

ବ୍ରାହ୍ମଣୀ—ସଂ. ବି. ସ୍ତ୍ରୀ (ବ୍ରାହ୍ମଣ +ସ୍ତ୍ରୀ. ଈ)—୧ । ବ୍ରାହ୍ମଣଜାତୀୟା Brāhmaṇī ସ୍ତ୍ରୀ—1. A Brāhmaṇa woman. ୨ । ବ୍ରାହ୍ମଣ ପତ୍ନୀ—2. A Brāhmaṇa's wife. ୩ । ଭାର୍ଗୀ; ବ୍ରାହ୍ମଣଯଷ୍ଟିଆ ଗୁଳ୍ମ—3. Siphonanthus Indica (plant). ୪ । ସ୍ପୃକ୍କା; ପିଙ୍ଗଡ଼ାଶାଗ—4. A potherb; Trigonella Corniculata. ୫ । ବ୍ରାହ୍ମୀଶାଗ—5. A potherb; Ruta Graveolens ୬ । ବରଟା; ବିରୁଡ଼ୀ—6. Wasp. ୭ । କାଇ; ପିପୀଲିକାବିଶେଷ—7. A sort of ant; the yellow tree ant. ଦେ. ବି—ଓଡ଼ିଶାର କଟକଜିଲ୍ଲା ବାଟେ ପ୍ରବାହିତ ହେଉଥିବା ନଦୀବିଶେଷ—Name of a river of Orissa. [ଦ୍ର—ବ୍ରାହ୍ମଣୀ ନଦୀ ଛୋଟନାଗପୁର ଅଞ୍ଚଳରୁ ବାହାରି ତାଳଚେରର ଉତ୍ତର ପୂର୍ବ ସୀମାରେ ଓଡ଼ିଶା ଗଡ଼ଜାତକୁ ସ୍ପର୍ଶ କରି ଖାମଲୋଇ, ନଗ୍ରା ପ୍ରଭୃତି କେତୋଟି ଉପନଦୀଦ୍ୱାରା ପୁଷ୍ଟକଳେବର ହୋଇ (ତାଳଚେର, ପାଲଲହଡ଼ା ଓ ଢେଙ୍କାନାଳ ବାଟେ ଆସି) ଯୁଜନା ଓ ବଳରାମପୁର ଗଡ଼ଠାରେ ମୋଗଲବନ୍ଦି (କଟକ ଜିଲ୍ଲା) ମଧ୍ୟକୁ ପ୍ରବେଶ କରିଅଛି । ଏଥିରୁ ଖରସୁଆ ଓ କମ୍ପାଗିଆ ନାମକ ଯୋଡ଼ିଏ ଶାଖା ନଦୀ ବାହାରି ପୁଣି ଏଥିସଙ୍ଗେ ମିଳିତ ହୋଇଅଛି । ବିରୂପା ମହାନଦୀରୁ ବାହାରି ଓ ବୁଢ଼ା ବୈତରଣୀରୁ ବାହାର ଏଥିସଙ୍ଗେ ମିଶିଅଛି । ବ୍ରାହ୍ମଣୀରୁ ମାଇପଡ଼ା ନାମକ ଗୋଟିଏ ଶାଖା ବାହାରି (ବଙ୍ଗୋପ)ସାଗରରେ ପଡ଼ିଅଛି । ଆଉ ଗୋଟିଏ ଶାଖା ଗୋବରୀ ନଦୀ ସଙ୍ଗେ ମିଳିତ ହୋଇ ଗଣ୍ଡୁଆଖିଆ ନାମ ଘେନି ( ମହାନଦୀର ଏକ ଶାଖା) ଜମ୍ବୁନଦୀ ସଙ୍ଗେ ମିଶିଅଛି । ଅବଶେଷରେ ବ୍ରାହ୍ମଣୀ ବୈତରଣୀ ସଙ୍ଗେ ମିଳିତ ହୋଇଅଛି । ଏ ସମ୍ମିଳିତ ନଦୀର ନାମ ଧାମରା । ଧାମରା ମୁହାଣ (?) ନାବ୍ୟ ଅଟେ । ପ୍ରତି ସପ୍ତାହରେ ବଡ଼ ବଡ଼ ଜାହାଜମାନ (ବଙ୍ଗୋପସାଗରରୁ ଧାମରା ମୁହାଣ ବାଟେ ଗୁଜକାଲି ପର୍ଯ୍ୟନ୍ତ) ଏଥିମଧ୍ୟକୁ ଯାତାୟାତ କରୁଅଛି । ଧାମରା ନାମକ ଏକ ବନ୍ଦର ଏହି ଧାମରା ନଦୀର ଉତ୍ତର କୂଳରେ ଅବସ୍ଥିତ । (କଟକଜିଲ୍ଲାର) ପଟାମୁଣ୍ଡେଇ ଓ ଧର୍ମଶାଳା ବ୍ରାହ୍ମଣୀ ତୀରରେ ସ୍ଥିତ । ତାଳଚେର ଗଡ଼ ବ୍ରାହ୍ମଣୀ ନଦୀର ଉପରେ ଓ ଢେଙ୍କାନାଳ ଗଡ଼ ପ୍ରାୟ ୪ କୋଶ ଅନ୍ତରରେ ଅବସ୍ଥିତ—ପ୍ୟାରୀମୋହନ ଓଡ଼ିଶାର ଇତିହାସ ।]

ବ୍ରାହ୍ମଣୀ ନାନୀ—ଦେ. ବି. ସ୍ତ୍ରୀ—୧ । ବିଧବା ବ୍ରାହ୍ମଣୀ—1. A Brāhmaṇī nānī Brāhmaṇa widow. ୨ । ରଜାମାନଙ୍କ बामुन ठाकुरान ଘରେ ନିଯୁକ୍ତ ବିଧବା ପାଚିକା—2. A Brāhmaṇa widow serving as cook in **विधवा बामनी** a Raja's harem. ୩ । ଶୂଦ୍ରମାନଙ୍କର ବ୍ରାହ୍ମଣୀମାନଙ୍କ ପ୍ରତି ସମ୍ବୋଧନ—3. A term of address to a Brāhmaṇa lady by Śūdras.

ବ୍ରାହ୍ମଣୀ ସାପ—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି—ମାନ୍ତ ବିଷହୀନଆ Brahmaṇī sāpa ସାପ—A kind of non-poisonous snake.

ବ୍ରାହ୍ମଣ୍ୟ—ସଂ. ବି. (ବ୍ରାହ୍ମଣ+ସମୂହାର୍ଥେ ଯ)—୧ । ସମବେତ ବ୍ରାହ୍ମଣ Brāhmaṇya ଗଣ—1. An assembly of Brāhmaṇas. ୨ । (+ଭାବ. ଯ) ବ୍ରାହ୍ମଣତ୍ୱ—2. Brāhmaṇa-hood. ୩ । ଶନି ଗ୍ରହ—3. The planet Saturn. [ଦ୍ର—ଏହି ଗ୍ରହ ଶୂଦ୍ରମାନଙ୍କର କଣ୍ଟକ ଓ ବ୍ରାହ୍ମଣମାନଙ୍କର ମିତ୍ର ଗ୍ରହ ଅଟନ୍ତି ।]

ବ୍ରାହ୍ମ ତୀର୍ଥ—ସଂ. ବି—ବ୍ରହ୍ମ ତୀର୍ଥ; ଅଙ୍ଗୁଷ୍ଠର ମୂଳ ଦେଶ— Brāhma tīrtha The root of the thumb. [ଦ୍ର—ତର୍ପଣ ଓ ଶ୍ରାଦ୍ଧ ସମୟରେ ଏହି ବାଟେ ବ୍ରହ୍ମାଙ୍କୁ ଜଳ ଦିଆଯାଏ ।]

ବ୍ରାହ୍ମ ଦିବସ—ସ. ବି—୧ । ବ୍ରହ୍ମାଙ୍କର ଏକ ଦିନ ଓ ଏକ ରାତ୍ରି;
Brāhma dibasa ମନୁଷ୍ୟଙ୍କ ଗଣନାରେ ୧୦୯୧୦୨୦୦୦୦୦
(ବ୍ରାହ୍ମଅହୋରାତ୍ର—ଅନ୍ୟରୂପ) ବର୍ଷ (୧୦ ବୃନ୍ଦ ୧୧ କୋଟି ୨ ଲକ୍ଷ ବର୍ଷ) ବ୍ୟାପୀ ଦିବସ ଓ ଏତିକି ବର୍ଷ ବ୍ୟାପୀ ରାତ୍ରି—1. One day and night to Brahmā. [ଦ୍ର—ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ବ୍ରହ୍ମା ଦିନଯାକ ସୃଷ୍ଟି କାର୍ଯ୍ୟରେ ଲାଗନ୍ତି ଓ ରାତିରେ ଶୁଅନ୍ତି । ସେ ଶୋଇଲେ କଳ୍ପାନ୍ତ ପ୍ରଳୟ ଘଟେ ଓ ସେ ସକାଳୁ ଉଠି ପୁଣି ନୂତନ ସୃଷ୍ଟି ଆରମ୍ଭ କରନ୍ତି; ତାଙ୍କର କାଳ ଗଣନା ଓ ମନୁଷ୍ୟମାନଙ୍କ କାଳ ଗଣନା ସମାନ ନୁହେ ।

ମନୁଷ୍ୟମାନଙ୍କ କାଳ ଗଣନା କ୍ରମେ

ସତ୍ୟଯୁଗ—୧୭୨୮,୦୦୦ ବର୍ଷ

ତ୍ରେତାଯୁଗ—୧୨୯୬,୦୦୦ ବର୍ଷ

ଦ୍ୱାପରଯୁଗ—୮୬୪,୦୦୦ ବର୍ଷ

କଳିଯୁଗ—୪୩୨,୦୦୦ ବର୍ଷ

ଏହିପରି ମନୁଷ୍ୟର ଚାରି ଯୁଗରେ ଦେବତାଙ୍କର ୧ ଦିନ ହୁଏ । ଏହି ଗଣନା ଅନୁସାରେ ଦେବତାଙ୍କର ୧୦୦୦ ଯୁଗ—୨୪୦୦୦ ବର୍ଷ ହେଲେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ ଓ ୨୪୦୦୦ ବର୍ଷ ହେଲେ ବ୍ରହ୍ମାଙ୍କର ଗୋଟିଏ ରାତି ହୁଏ ।]—୨ । ବ୍ରହ୍ମାଙ୍କ ଗଣନାରେ ଏକ ଦିନ—
2. One day to Brahmā.

ବ୍ରାହ୍ମ ଧର୍ମ ସ. ବି—ବେଦ ପାଠ ସମାପନ ପୂର୍ବକ ଗୁରୁ ଗୃହରୁ
Brahma dharma ସମାଗତ ବିପ୍ରଙ୍କର ଅଭ୍ୟର୍ଥନାରୂପ ରାଜଧର୍ମ —A duty enjoined on a king, consisting of entertaining a Brāhmana returned from the house of the preceptor after completing his studies and his Brahmacharjya and before he enters into the 2nd or married stage of life. ଦେ. ବି—ବ୍ରାହ୍ମ
ବ୍ରାହ୍ମ ଧର୍ମ ସମାଜୀମାନଙ୍କ ଆଚରିତ ନିରାକାର ଏକେଶ୍ୱର ବାଦ ଧର୍ମ
ब्राह्म धर्म Pantheism practised by the Brahmos; Brahma Samāja ( See )

ବ୍ରାହ୍ମ ପିଙ୍ଗା—ସ. ବି—ରୌପ୍ୟ; ରୂପା—Silver.
Brahma pinga

ବ୍ରାହ୍ମ ପୁରାଣ—ସ. ବି—ବ୍ରହ୍ମ ପୁରାଣ; ପୁରାଣବିଶେଷ—
Brahma purāna Name of a Hindu Purāna.

ବ୍ରାହ୍ମ ବିବାହ—ସ. ବି—ପ୍ରାଚୀନ କାଳରେ ହିନ୍ଦୁମାନଙ୍କର ବିବାହ ପ୍ରଥା
Brahma bibāha ବିଶେଷ [ଏଥିରେ ବରଙ୍କୁ ଆହ୍ୱାନ ପୂର୍ବକ ତାଙ୍କ ହସ୍ତରେ ଯଥାଶକ୍ତି ଅଳଙ୍କୃତା କନ୍ୟାକୁ ବେଦୋକ୍ତ ବିଧିରେ ପ୍ରଦାନ କରାଯାଏ । (ବିବାହ ତଳେ ଟୀକା ଦେଖ )]—
A form of marriage prevalent amongst the Hindus of ancient India by giving a decorated girl to an invited bridegroom.
ଦେ. ବି—ବ୍ରାହ୍ମସମାଜରେ ପ୍ରବର୍ତ୍ତିତ ବିବାହ ପ୍ରଥା—
Marriage performed according to the Brahmo Samaj.
[ ଦ୍ର—ଏଥିରେ ବିବାହ ସମ୍ବନ୍ଧୀୟ ବେଦୋକ୍ତ ଓ ପୁରାଣୋକ୍ତ ମନ୍ତ୍ରମାନ ଦେଶୀୟ ଭାଷାରେ ଉଚ୍ଚାରିତ ହୁଏ । ]

ବ୍ରାହ୍ମ ମନ୍ଦିର—ଦେ. ବି—ବ୍ରାହ୍ମଧର୍ମାବଲମ୍ବୀମାନେ ଯେଉଁଠାରେ
Brāhma mandira ସମବେତ ହୋଇ ଉପାସନା କରନ୍ତି—
(ବ୍ରାହ୍ମସମାଜ ମନ୍ଦିର—ଅନ୍ୟରୂପ) The hall where the
ব্রাহ্ম মন্দির ब्राह्म मन्दिर Brāhmos meet for prayer.

ବ୍ରାହ୍ମ ମୁହୂର୍ତ୍ତ—ସ. ବି—୧ । ରାତ୍ରିର ଶେଷାର୍ଦ୍ଧ ପ୍ରହର; ରାତ୍ରିର ଅନ୍ତିମ
Brāhma muhūrtta ୨ ଦଣ୍ଡ, ମତାନ୍ତରରେ ୪ ଦଣ୍ଡ; ସୂର୍ଯ୍ୟୋଦୟ ପୂର୍ବର ଦୁଇ ଘଡ଼ି ସମୟ—1. The last 48 minutes ( or according to some 96 minutes) of the night. ୨ । ବ୍ରହ୍ମାଙ୍କର ୧ ମୁହୂର୍ତ୍ତ ସମୟ ( ମନୁଷ୍ୟର ଗଣନାରେ ୩୬,୦୨୦୦୦୦ ( ୩୬ କୋଟି ୨୦ ଲକ୍ଷ ୨୦ ହଜାର ) ବର୍ଷ—2. A period of about $3\frac{1}{3}$ billion human years.

ବ୍ରାହ୍ମ ସଂହିତା—ସଂ ବି. ( ଜ୍ୟୋତିଷ )—ପ୍ରାଚୀନ ହିନ୍ଦୁ ଜ୍ୟୋତିଷ
Brahma samhitā ଗ୍ରନ୍ଥ ବିଶେଷ—Name of an ancient Hindu astrological treatise.
[ ଦ୍ର - ଏହା ଖ୍ରୀଷ୍ଟପୂର୍ବ ୧୩ଶ ଶତାବ୍ଦୀରେ ବେଦାଙ୍ଗ ଜ୍ୟୋତିଷକୁ ଅବଲମ୍ବନ କରି ରଚିତ ହୋଇଥିଲା । ]

ବ୍ରାହ୍ମ ସମାଜ—ଦେ. ବି—୧ । ରାଜା ରାମମୋହନ ରାୟଙ୍କ ପ୍ରବର୍ତ୍ତିତ ଓ
Brahma samāja, କେଶବଚନ୍ଦ୍ର ସେନଙ୍କ ଦ୍ୱାରା ପରିବର୍ତ୍ତିତ-
ব্রাহ্ম সমাজ ब्राह्म समाज ନିରାକାରେଶ୍ୱରବାଦୀ ଧର୍ମସମାଜବିଶେଷ
1. The Brahmo Samaj. [ ଦ୍ର—ଭାରତରେ ଇଂରାଜ ରାଜ୍ୟର ସୂତ୍ରପାତ ହେବା ସମୟରେ ଖ୍ରୀଷ୍ଟିୟାନ୍ ପାଦ୍ରୀମାନେ ଏକେଶ୍ୱରବାଦ ଓ ନିରାକାରବାଦ ପ୍ରଚାରପୂର୍ବକ ନବଶିକ୍ଷିତ ହିନ୍ଦୁ ଯୁବକମାନଙ୍କୁ ଖ୍ରୀଷ୍ଟଧର୍ମସମ୍ପ୍ରଦାୟ ଆଡ଼କୁ ଆକର୍ଷଣ କରିବାକୁ ଲାଗିଲେ । ଏଣେ ରକ୍ଷଣଶୀଳ ହିନ୍ଦୁସମାଜ ଇଂରାଜୀଶିକ୍ଷିତ ହିନ୍ଦୁ ଯୁବକମାନଙ୍କର ମୂର୍ତ୍ତିପ୍ରଥା ବିରୁଦ୍ଧ ଆଚରଣକୁ ସହି ନ ପାରି ସେମାନଙ୍କୁ ହିନ୍ଦୁସମାଜରୁ ତଡ଼ିବାକୁ ଉଦ୍ୟତ ହେଲେ । ଏହି ସମୟରେ ରାଜା ରାମମୋହନ ରାୟ ଉପନିଷଦରେ ପ୍ରତିପାଦିତ ବୈଦିକ ହିନ୍ଦୁଧର୍ମର ନିରାକାର ଏକେଶ୍ୱରଙ୍କ ଭଜନ ପ୍ରତି ଶିକ୍ଷିତମାନଙ୍କ ଦୃଷ୍ଟି ଆକର୍ଷଣ କରି ସେମାନଙ୍କୁ ନେଇ ହିନ୍ଦୁ ସମାଜର ଗୋଟିଏ ଶାଖା ବ୍ରାହ୍ମସମାଜ ନାମରେ ପ୍ରତିଷ୍ଠିତ କଲେ ଓ ତାହାର ଫଳରେ ବହୁ ନବଶିକ୍ଷିତ ବଙ୍ଗୀୟ ଯୁବକ ଖ୍ରୀଷ୍ଟିୟାନ୍ ହେଲେ ନାହିଁ ] । ୨ । ବ୍ରାହ୍ମମାନଙ୍କ ଉପାସନା ମନ୍ଦିର—2. The prayer hall of the Brāhmo Samājists.

ବ୍ରାହ୍ମ ସମାଜୀ—ଦେ. ବିଣ—ବ୍ରାହ୍ମ ସମାଜ ସମ୍ବନ୍ଧୀୟ—Relating to the
Brāhma samāji Brāhmo Samāja ବି—ବ୍ରାହ୍ମସମାଜର
(ବ୍ରାହ୍ମ ସମାଜୀଆ —ଅନ୍ୟରୂପ) ବିଧିରେ ଉପାସନା କରିବା ବ୍ୟକ୍ତି—

(ବ୍ରାହ୍ମିକା—ସ୍ତ୍ରୀ) A Brāhmo; a Brāhmo Samājist
ব্রাহ্ম সমাজী; **ब्रह्म समाजी**

[ଦ୍ର—ଏମାନେ ନିରାକାର ବ୍ରହ୍ମଙ୍କ ଉପାସକ । ପ୍ରଥମେ ରାଜା ରାମମୋହନଙ୍କ ଦ୍ୱାରା ଏ ସମାଜର ସୂତ୍ରପାତ ହୋଇ-ଥିଲା ଓ ରାମମୋହନ ବେଦାନ୍ତ ଅନୁସାରେ ପରଂବ୍ରହ୍ମଙ୍କୁ ଉପାସନା କରୁଥିଲେ ଓ ପ୍ରତିମା ପୂଜା କରୁ ନ ଥିଲେ, କିନ୍ତୁ ନିଜେ ଯଜ୍ଞୋପବୀତ ଧାରଣ କରୁଥିଲେ । ମହର୍ଷି ଦେବେନ୍ଦ୍ରନାଥ ମଧ୍ୟ ଏହି ଦଳର ଥିଲେ । ଏହି 'ଆଦି ବ୍ରାହ୍ମ ସମାଜ'ରୁ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ସଂସ୍କୃତ କରି ନବବିଧାନ ଅନୁସାରେ ବ୍ରାହ୍ମ ସମାଜକୁ ଗଠିତ କଲେ । ଏହା ସାଧାରଣ ବ୍ରହ୍ମସମାଜ ଓ ପରେ 'ନବବିଧାନ ବ୍ରାହ୍ମ-ସମାଜ' ନାମରେ ପରିଚିତ ହେଲା । ଆଧୁନିକ ବ୍ରାହ୍ମମାନେ ଏହି ସମାଜର ଅନ୍ତର୍ଭୁକ୍ତ ଅଟନ୍ତି । ଏମାନେ ଜାତିଭେଦ ମାନନ୍ତି ନାହିଁ ଓ ହିନ୍ଦୁ ସମାଜର ଜାତିଭେଦ ଜ୍ଞାପକ ପଇତା ଓ ମାଳ ଆଦି ଧାରଣ କରନ୍ତି ନାହିଁ । ଏମାନଙ୍କର ଖାଦ୍ୟ ସମ୍ବନ୍ଧେ କୌଣସି ନିୟମ ନାହିଁ । ଫଳତଃ ଏମାନେ ହିନ୍ଦୁ ଓ ଏମାନଙ୍କ ଧର୍ମ ବେଦାନ୍ତର ଏକେଶ୍ୱରବାଦ ବା ଅଦ୍ୱୈତବାଦ ଉପରେ ପ୍ରତିଷ୍ଠିତ । ଏମାନେ ଉପାସନା ଓ ବିବାହାଦିରେ କେତେଗୁଡ଼ିଏ ବୈଦିକ ମନ୍ତ୍ର ଓ ମନ୍ତ୍ରର ଅନୁବାଦ ଉଚ୍ଚାରଣ କରନ୍ତି । ଏମାନଙ୍କର ବିବାହ ହିନ୍ଦୁଶାସ୍ତ୍ରୋକ୍ତ ବିଧିଦ୍ୱାରା ସମାହିତ ନ ହେଲେ ମଧ୍ୟ ବିବାହକୁ ଏମାନେ ହିନ୍ଦୁମାନଙ୍କ ପରି ଅଚ୍ଛେଦ୍ୟ ଧର୍ମବନ୍ଧନ ବୋଲି ଗ୍ରହଣ କରନ୍ତି । କିନ୍ତୁ ଅହିନ୍ଦୁମାନଙ୍କ ନିମନ୍ତେ ଯେଉଁ ବିବାହ ଆଇନ୍ ସରକାର ବିଧିବଦ୍ଧ କରିଅଛନ୍ତି ସେହି ଆଇନ୍ ଅନୁସାରେ ଏମାନଙ୍କର ବିବାହ ସରକାରଙ୍କ ନିଯୁକ୍ତ ରେଜିଷ୍ଟ୍ରାରଙ୍କ ନିକଟରେ ରେଜିଷ୍ଟ୍ରି କରାଯାଏ ଓ ସେଥିରେ ବରକନ୍ୟା 'ହିନ୍ଦୁ' ନୁହନ୍ତି ବୋଲି ଇକାହାର କରନ୍ତି । ପୂର୍ବେ ଖାଣ୍ଟି ହିନ୍ଦୁ ସମାଜ ଏମାନଙ୍କୁ ବିଧର୍ମୀ ବୋଲି ଘୃଣା କରୁଥିଲେ ଓ ଏମାନଙ୍କ ସଙ୍ଗେ ମିଶାମିଶି କରୁ ନ ଥିଲେ; କିନ୍ତୁ ଆଧୁନିକ ହିନ୍ଦୁ ସମାଜ ପୂର୍ବର ସଂକୀର୍ଣ୍ଣତାକୁ ଛାଡ଼ିବାରୁ ବ୍ରାହ୍ମମାନେ ବର୍ତ୍ତମାନ ଖାଣ୍ଟି ହିନ୍ଦୁଙ୍କ ସମାଜରେ ମିଶିବାରେ କିଛି ବାଧା ନାହିଁ । ଏମନ୍ତ କି, ଏମାନେ ହିନ୍ଦୁ ଦେବାଳୟରେ ମଧ୍ଯ ପ୍ରବେଶ କରି ପାରୁଅଛନ୍ତି ଓ ହିନ୍ଦୁମାନଙ୍କ ସାମାଜିକ ଅନୁଷ୍ଠାନ ଓ ଭୋଜିମାନଙ୍କରେ ପ୍ରକାଶ୍ୟରୂପେ ଯୋଗ ଦେଉଅଛନ୍ତି । ଆହୁରି ମଧ୍ୟ ଦେଖାଯାଏ ଯେ, ପୂର୍ବେ ଯେତେବେଳେ ଖାଣ୍ଟି ହିନ୍ଦୁମାନଙ୍କର ସଂକୀର୍ଣ୍ଣତା ବେଶି ଥିଲା ଓ ବଙ୍ଗଦେଶରେ ପତିତ ଫେରନ୍ତାମାନଙ୍କୁ ହିନ୍ଦୁ ସମାଜ ଗ୍ରହଣ କରୁ ନ ଥିଲା ସେତେବେଳେ ହିନ୍ଦୁ ସମାଜକୁ ତ୍ୟାଗ କରି ଅନେକ ବ୍ୟକ୍ତି ବ୍ରାହ୍ମ ସମାଜର ଆଶ୍ରୟ ନେଉଥିଲେ; କିନ୍ତୁ ଆଜିକାଲି ହିନ୍ଦୁ ସମାଜର ସଂକୀର୍ଣ୍ଣତା କ୍ରମଶଃ କମିଯିବା ଓ ସାମାଜିକ ନିୟମମାନ ଶିଥିଳ ହେବା ସଙ୍ଗେ ସଙ୍ଗେ ବ୍ରାହ୍ମଧର୍ମରେ ନବ ଦୀକ୍ଷିତଙ୍କ ସଂଖ୍ୟା ପୂର୍ବ ପରି ବଢ଼ୁ ନାହିଁ । ଏହି ଧର୍ମର ତତ୍ତ୍ୱ ଏହି ଯେ—ସୃଷ୍ଟିର ଆଦ୍ୟରେ ଏକମାତ୍ର ନିରାକାର ପରଂବ୍ରହ୍ମ ଥିଲେ ଓ ତାଙ୍କଠାରୁ ଏ ସୃଷ୍ଟିର ଆରମ୍ଭ ହୋଇଅଛି । ସେ ନିରାକାର,ଅନନ୍ତ,ଅବ୍ୟକ୍ତ, ଅଦ୍ୱି-ତୀୟ, ଅପରିମେୟ, ଜ୍ଞାନସ୍ୱରୂପ, ସଚ୍ଚିଦାନନ୍ଦ, ପ୍ରେମସ୍ୱରୂପ, ନିର୍ବିକାର, ଚୈତନ୍ୟମୟ, ମଙ୍ଗଳମୟ, ସର୍ବଜ୍ଞ, ସର୍ବନିୟନ୍ତା, ସର୍ବବ୍ୟାପୀ, ନିରବଲମ୍ବ, ସର୍ବଶକ୍ତିମାନ୍, ସ୍ୱତନ୍ତ୍ର ଓ ପରିପୂର୍ଣ୍ଣ ଅଟନ୍ତି । ତାହାଙ୍କର କାହା ସହିତ ତୁଳନା ହୋଇ ନ ପାରେ । ଏକମାତ୍ର ତାହାଙ୍କ ଉପାସନାଦ୍ୱାରା ଐହିକ ଓ ପାରତ୍ରିକ ମଙ୍ଗଳ ହୁଏ । ତାହାଙ୍କ ପ୍ରିୟ କାର୍ଯ୍ୟ କରିବାଦ୍ୱାରା ମଧ୍ୟ ତାଙ୍କର ଉପାସନା କରାଯାଏ । ସବୁ ମନୁଷ୍ୟ ଈଶ୍ୱରଙ୍କ ପୁତ୍ର ଥିବାରୁ ପରସ୍ପରଙ୍କ ଭାଇ ଓ ସବୁ ସ୍ତ୍ରୀ ପରସ୍ପରଙ୍କ ଭଉଣୀ ଅଟନ୍ତି । ଈଶ୍ୱରଙ୍କ ସୃଷ୍ଟିରେ ଜାତିଭେଦ ନାହିଁ ।]

ବ୍ରାହ୍ମହୁତ—ସଂ.ବି (ବ୍ରାହ୍ମ+ହୁତ)—୧ । ଅତିଥିସେବା; ଅତିଥେୟତା—Brāhmahuta 1. Hospitality. ୨ । ଅଭ୍ୟାଗତଙ୍କର, ବିଶେଷତଃ ଅଭ୍ୟାଗତ ବ୍ରାହ୍ମଣଙ୍କର, ସତ୍କାର—2. Entertainment of a stranger, specially a Brāhmaṇa new-comer.

ବ୍ରାହ୍ମିକା—ସଂ, ବି—ବ୍ରାହ୍ମଣ ଝାଟି ( ଦେଖ )—Brāhmaṇajhāṭi Brahmikā (See). ଦେ. ବି. ସ୍ତ୍ରୀ—ବ୍ରାହ୍ମଧର୍ମାବଲମ୍ବିନୀ ସ୍ତ୍ରୀ—ব্রাহ্মিকা A lady professing the Brahmo religion.

ବ୍ରାହ୍ମୀ—ସଂ. ବି. ସ୍ତ୍ରୀ (ବ୍ରହ୍ମନ୍+ଈ)—୧ । ଦୁର୍ଗା—1. Goddes. Brahmī Durgā. ୨ । ବ୍ରହ୍ମାଙ୍କର ବିଶ୍ୱସର୍ଜନ ଶକ୍ତି—2. The creative energy of Brahmā (personified). ୩ । ଶିବଙ୍କର ଅଷ୍ଟମାତୃକାନ୍ତର୍ଗତ ମାତୃକାବିଶେଷ—3. One of the creative Goddesses related to Śiba. ୪ । ସରସ୍ୱତୀ—4. The Goddess of learning. ୫ । ବ୍ରାହ୍ମଣ ପତ୍ନୀ—5. The wife of a Brāhmaṇa. ୬ । ରୋହିଣୀ ନକ୍ଷତ୍ର; ଜ୍ୟୋତିଷୋକ୍ତ ୪ର୍ଥ ନକ୍ଷତ୍ର—6. The 4th asterism. ୭ । ପ୍ରାଚୀନ ବ୍ରାହ୍ମ ବିବାହ ରୀତି ଅନୁସାରେ ପିତାଙ୍କ ଦ୍ୱାରା ପ୍ରଦତ୍ତ କନ୍ୟା—7. A bride given away by the father according to the old Brāhma form. ୮ । ମାଈବେଙ୍ଗ; ବେଙ୍ଗୁଲି—8. A she-frog. ୯ । ବୃକ୍ଷବୃନ୍ତର ପିପୀଲିକା ବିଶେଷ; କାଇ—9. A yellow species of ants; the tree ants. ୧୦ । ଭାର୍ଗୀ; ବ୍ରାହ୍ମଣଝାଟିଆ—10. Siphonanthus Indica (plant). ୧୧ । ହିଲମୋଚିକା; ହିଡ଼ମିଚ୍ଛ ଶାଗ—11. A potherb growing near water; Hingcha Repens. ୧୨ । ବାରାହୀ କନ୍ଦ; ଏକପ୍ରକାର ଅଳୁ—12. A kind of yam. ୧୩ । ସୋମଲତା—13. The celebrated vedic drink-producing creeper of the sages;

Asclepias Acida. ୧୪ । ବଣୀ ବା ଭୋଡ଼ମାଛ—14. A tubular fish; Macrognathus Pancalus. ୧୫ । ମହାଜ୍ୟୋତିଷ୍ମତୀ ଲତା ଗୁଳ୍ମ; ଏକ ପ୍ରକାର ଫୁଟ ଫୁଟିକା ଗୁଳ୍ମ—15. A sort of creeper emitting a phosphorescent light; Cardiospermum Helicacabum. ୧୬ । ଅଡ଼ଶ ପର୍ଣ୍ଣୀ; ଏକ ପ୍ରକାର ଶାଗ—16. A potherb growing near water; Ruta Graveolens or Herpestis Monnieria. ଦେ. ବ—୧ । ବ୍ରାହ୍ମଣୀ ନଦୀ—1. The Brāhmanī river. ( ଉ—ଏହି ସେହି ବ୍ରାହ୍ମୀ ବ୍ରାହ୍ମଣୀସ୍ରାବନୀ । ଗଧାନାଥ. ନନ୍ଦିକେଶ୍ୱରୀ । ) ୨ । ଆଧୁନିକ ବ୍ରାହ୍ମମତାବଲମ୍ବୀ—2. A Brahmo.
ବ୍ରାହ୍ମ ब्राह्मसमाजी

ବ୍ରାହ୍ମୀ କନ୍ଦ—ସ. ବ—ବାରାହୀ କନ୍ଦ—A kind of yam; an esculent root.
Brāhmī kanda

ବ୍ରାହ୍ମୀ ଗାୟତ୍ରୀ—ସ. ବ—୩୬ ବର୍ଣ୍ଣ ବିଶିଷ୍ଟ ବୈଦିକ ଛନ୍ଦୋବିଶେଷ (ହ. ଶ)—Name of a Vedic metre of 36 syllables or letters. [ ଦ୍ର—ବ୍ରାହ୍ମୀ ଶବ୍ଦ ଯୁକ୍ତ ଅନେକଗୁଡ଼ିଏ ବୈଦିକ ଛନ୍ଦ ଅଛି ଯଥା—ବ୍ରାହ୍ମୀ ଅନୁଷ୍ଟୁପ୍ (୪୮ ବର୍ଣ୍ଣ), ବ୍ରାହ୍ମୀ ଉଷ୍ଣିକ୍ (୪୨ ବର୍ଣ୍ଣ), ବ୍ରାହ୍ମୀ ଜଗତୀ (୭୨ ବର୍ଣ୍ଣ), ବ୍ରାହ୍ମୀ ତ୍ରିଷ୍ଟୁପ୍ (୬୬ ବର୍ଣ୍ଣ), ବ୍ରାହ୍ମୀ ପଂକ୍ତି (୬୦ ବର୍ଣ୍ଣ), ବ୍ରାହ୍ମୀ ବୃହତୀ (୫୪ ବର୍ଣ୍ଣ)—ହ. ଶ । ]
Brāhmī gāyatrī

ବ୍ରାହ୍ମୀ ଲିପି—ସ. ବ—ପ୍ରାଚୀନ ବମ୍ଭ-ଚନ୍ଦ୍ରରୁ ଉଦ୍ଭୂତ ଭାରତର ପ୍ରାଚୀନ ବର୍ଣ୍ଣମାଳା; ଭାରତର ପ୍ରାଚୀନ ଜାତୀୟ ଲିପି—The old Indian script. [ ଦ୍ର—ଏହି ବର୍ଣ୍ଣମାଳାରୁ ଦେବନାଗରୀ, ବଙ୍ଗଳା, ଓଡ଼ିଆ, ପାଲି, ଗୁରୁମୁଖୀ, ବର୍ମୀ, ଛିକତୀ, ତେଲୁଗୁ, ତାମିଲ୍, ଗୁଜରାଟୀ, ମାଳୟ, ଦ୍ରାବିଡ଼ୀ, ସିଂହଳୀ, ଶ୍ୟାମୀ, କାମ୍ବୋଜୀ, ଯବଦ୍ୱୀପୀ ଆଦି ପ୍ରାଚୀନ ଓ ଆଧୁନିକ ଲିପିମାନ ଉଦ୍ଭୂତ ହୋଇଅଛି । ଏ ଲିପିର ବର୍ଣ୍ଣମାଳା ସଂଖ୍ୟା ୪୬ ଥିଲା । (ଜ୍ଞାନେନ୍ଦ୍ର)
Brāhmī lipi

କୌଣସି କୌଣସି ପଣ୍ଡିତଙ୍କର ମତ ଯେ ବ୍ରାହ୍ମୀ ଲିପି ଖ୍ରୀଷ୍ଟ ୫୦୦ ଶତାବ୍ଦୀ ପୂର୍ବରୁ ଚଳୁଥିଲା ଓ ଏହା ୨୨ ଗୋଟି ସେମେଟିକ୍ ବା ଫୀନୀସୀୟ ଚିହ୍ନ—ଲିପିରୁ ଉଦ୍ଭୂତ ହୋଇଥିଲା । ହ. ଶ ]

ବ୍ରାହ୍ମୀ ଶାକ—ସ. ବ—ଜଳାଭୂମିରେ ଜନ୍ମିବା ଏକ ପ୍ରକାର ଶ୍ରେଷ୍ଠ ଲତା ଶାଗ—A potherb; Herpestis Monnierria. [ ଦ୍ର—ଏହାର ପତ୍ର ଶ୍ଳେଷ୍ମସ୍ଥାନ ଓ ଅଣ୍ଡାକାର । ପତ୍ର ଉପରେ ଫୁଟ୍ ଫୁଟ୍ ଚିହ୍ନ ଅଛି । ଫୁଲ ଶ୍ୱେତ ଓ ଈଷତ୍ ରକ୍ତାଭ ନୀଳବର୍ଣ୍ଣ । ଏହା ବର୍ଷା କାଳରେ ଫୁଟେ । ଫୁଲର ... ଭେକ୍ଷା ଲମ୍ବ । ଏ ଶାକ ବୁଦ୍ଧି ଓ ପ୍ରଜ୍ଞାବର୍ଦ୍ଧକ ବୋଲି ପ୍ରସିଦ୍ଧ । ଏହା ଦ୍ୱାରା ଉନ୍ମାଦ ରୋଗ କମିଯାଏ । ଆୟୁର୍ବେଦୋକ୍ତ ଘୃତ ପ୍ରସ୍ତୁତ ହୁଏ । ଏହାକୁ ବ୍ରାହ୍ମୀ ଘୃତ ବୋଲାଯାଏ । ଏହି ଘୃତ ସେବନ କଲେ ଛାତ୍ରମାନଙ୍କର ମେଧା ବୃଦ୍ଧି ହୁଏ ।]
Brāhmī śāka

ସ. ମତ୍ସ୍ୟାକ୍ଷୀ, ବୟସ୍ଥା, ସୁରସା, ଶାରଦା, କପୋତବେଗା, ବୈଧାତ୍ରୀ, ଦିବ୍ୟତେଜା, ସୁବର୍ଚ୍ଚଲା, ବ୍ରହ୍ମଚାରିଣୀ, ସରସ୍ୱତୀ, ସୋମବଲ୍ଲରୀ, ବ୍ରହ୍ମକନ୍ୟକା, ମଣ୍ଡୂକୀ, ଖାରୀ, ମଣ୍ଡୂକମାତା, ଦିବ୍ୟା
ଓ. ଅଡ଼ଶପର୍ଣ୍ଣୀ(ଣ୍ଣି)
ବ୍ରାହ୍ମୀ, ବର୍ମୀ
ब्राह्मी, ब्रह्मी, श्वेतचमनी
ତେ. ଶିମ୍ବୁନଚେଟ୍ଟୁ, ଅଧବର୍ଣ୍ଣୀ
ମ. ବାମ, ବ୍ରହ୍ମ ମାଣ୍ଡୁକୀ
ଗୁ. ଖାମୀ

ବ୍ରାହ୍ମ୍ୟ—ସ. ବଣ. (ବ୍ରହ୍ମ + ଷ୍ଣ ଓ ସମ୍ବନ୍ଧାର୍ଥେ. ଯ)—ବ୍ରହ୍ମ ସମ୍ବନ୍ଧୀୟ—Relating to the Brahma. ଦେ. ବଣ—୧ । ଆଧୁନିକ ବ୍ରାହ୍ମମତ ବା ସମାଜ ସମ୍ବନ୍ଧୀୟ—1. Relating to the modern Brāhmoism. ୨ । ଆଧୁନିକ ବ୍ରାହ୍ମ ସମାଜଭୁକ୍ତ; ବ୍ରାହ୍ମ—2. Brāhma. ସ.ବ—୧ । ବିସ୍ମୟ—1. Astonishment; wonder. ୨ । ଅଲୌକିକ ବ୍ୟାପାର—2. Miracle. ୩ । ଦୃଶ୍ୟ—3. Scene. ୪ । ବ୍ରାହ୍ମଣ ପ୍ରତି ଭକ୍ତି ବା ପୂଜା—4. Worshipping a Brāhmana; devotion to a Brāhmana.
Brāhmya
ବ୍ରାହ୍ମ; ब्राह्मी

ବୃଖ ଭାନୁ—ଦେ. ବ. (ହିନ୍ଦିରୁ ଷ ସ୍ଥାନରେ ଖ ଉଚ୍ଚାରଣ ଅନୁକୃତ)—ବୃଷ ଭାନୁ (ଦେଖ)—Brusha bhānu (See) (ଉ—ଉତ୍କଣ୍ଠା ସ୍ୱଭାବେ ବୃଖଭାନୁ ଦୁଲାଲୀ । ପ୍ରାଚୀ. ଲକ୍ଷଦାସ ।)
Brikha bhānu
(ବୃଷ ଭାନୁ—ଅନ୍ୟରୂପ)
विखभानु

ବ୍ରିଗେଡ୍—ବୈଦେ.ବ. (ଇଂ.ବ୍ରିଗେଡ୍)—ପାଦାତିକ ବା ଅଶ୍ୱାରୋହୀଙ୍କର ଦୁଇ ବା ତତୋଧିକ ଦଳବିଶିଷ୍ଟ ସେନା ଦଳ—Brigade.
Briged
ବ୍ରିଗେଡ ब्रिगेड

ବ୍ରିଗେଡିଅର୍—ବୈଦେ. ବ. (ଇଂ)—ବ୍ରିଗେଡ୍ ନାମକ ସେନା ଦଳର ଅଧ୍ୟକ୍ଷ—Brigadier.
Brigediar
[ବ୍ରିଗେଡିଅର୍ ଜେ(ଜ)ନରଲ୍—ଅନ୍ୟରୂପ]
ବ୍ରିଗେଡିୟାର ब्रिगेडियर

ବ୍ରିଚ୍ ଅଫ୍ କଣ୍ଟ୍ରାକ୍ଟ୍—ବୈଦେ. ବ (ଇଂ) (କଚେରୀଆ)—ଚୁକ୍ତିଭଙ୍ଗ—Breach of Contract.
Brich aph kantrākt
ବ୍ରୀଚ ଅଫ୍ କଣ୍ଟ୍ରାକ୍ଟ ब्रीच अफ कण्ट्राक्ट

ବ୍ରିଚ୍ ଅଫ୍ ଟ୍ରଷ୍ଟ—ବୈଦେ. ଧ. (ଇଂ) (କଚେରୀଆ)—ବିଶ୍ୱାସଭଙ୍ଗରୂପ ଅପରାଧ; ଧନ ବା ସମ୍ପତ୍ତି ପକ୍ଷେ ବିଶ୍ୱାସଘାତକତା—Breach of trust
Brich aph trasht
ବ୍ରୀଚ ଅଫ ଟ୍ରଷ୍ଟ
ब्रीच अफ ट्रस्ट

ବ୍ରିଚି(ଚେ)ସ୍—ବୈଦେ. ବ (ଇଂ. ବ୍ରିଚେସ୍)—ଜଙ୍ଘିଆ—Breeches; knee breeches.
Brichi(che)s
ବ୍ରୀଚେସ ब्रीजीस

ବ୍ରିଜ୍—ବୈଦେ. ବ. (ଇଂ)—୧ । ପୋଲ—1. Bridge. ୨ । ଏକ ପ୍ରକାର ତାସ ଖେଳ—2. A kind of game at cards.
Brij
ବ୍ରୀଜ ब्रीज

ବ୍ରିଜ୍କି—ପ୍ରାଦେ. (ସାକ୍ଷୀଗୋପାଳ) ବ—ବ୍ରଜ ଭାଷା (ଦେଖ) Braja bhāshā (See)
Brij-kī

ବ୍ରିଟନ୍—ବୈଦେ. ବି (ଇଂ)—ବ୍ରିଟେନ୍‌ବାସୀ ବ୍ୟକ୍ତି—
Britan ব্রিটন ब्रिटन A Briton.

ବ୍ରିଟିଶ୍—ବୈଦେ. ବିଣ (ଇଂ)—୧ । ଇଂରାଜୀ; ଇଂଲଣ୍ଡ ସମ୍ବନ୍ଧୀୟ—
Britiś 1. English. ୨ । ଇଂଲଣ୍ଡ ଓ ସ୍କଟଲଣ୍ଡ ସମ୍ବନ୍ଧୀୟ—
ব্রিটিস ब्रिटिस 2. British.

ବ୍ରିଟିଶ କେଶରୀ—ଦେ. ବି—ବଳରେ ସିଂହ ସହିତ ତୁଳନା କରି
Britiś keśarī ଯାଉଥିବା ଓ ଜାତୀୟ ପତାକାରେ ସିଂହର ରୂପ
(ବ୍ରିଟିଶ ସିଂହ—ଅନ୍ୟରୂପ) ଚିତ୍ରିତ ଥିବା ଇଂରାଜ ଜାତି—
ব্রিটিস কেশরী The British lion.
ब्रिटिश केशरी

ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ—ବୈଦେ. ବି (ଇଂ)—ବିଲାତ ସରକାର—
Britiś gabharṇṇameṇṭ British Government.
ব্রিটিস গভর্ণমেণ্ট ब्रिटिश गवर्णमेगट
(ବ୍ରିଟିଶ ସରକାର—ଦେଶଜ ରୂପ)

ବ୍ରିଟିଶ୍ ଜାତି—ଦେ. ବି. ( ଇଂ. ବ୍ରିଟିଶ୍ ଓ ସଂ. ଜାତି )—
Britiś jāti ୧ । ଇଂରାଜ ସରକାର—1. British Govern-
ব্রিটিস জাতি ब्रिटिश जाति ment. ୨ । ବ୍ରିଟେନ୍‌ବାସୀଗଣ—
2. The British nation.

ବ୍ରିଟିଶ୍ ପାର୍ଲିଆମେଣ୍ଟ—ବୈଦେ.ବି. (ଇଂ)—ବିଲାତର ଲୋକପ୍ରତିନିଧିଙ୍କ
Britiś pārliāmeṇṭ ଗଠିତ ଶାସନ ସଭା—British
ব্রিটিস পার্লিআমেণ্ট ब्रिटिश पार्लिआमेगट Parliament.
[ବ୍ରିଟିଶ୍ ପାର୍ଲାମେଣ୍ଟ, ବ୍ରିଟିଶ୍ ପାର୍ଲି(ର୍ଲେ)ମେଣ୍ଟ—ଅନ୍ୟରୂପ]

ବ୍ରିଟିଶ୍ ଫ(ଫା)ର୍ମ—ବୈଦେ. ବି. (ଇଂ)—୧ । ଗ୍ରେଟ୍ ବ୍ରିଟେନ୍‌ରେ
Britiś pha(phā)rm ସ୍ଥାପିତ କୌଣସି ବାଣିଜ୍ୟ ବ୍ୟବସାୟୀ-
ব্রিটিস কুম্পানী ସଂଘ—1. A British firm or company.
ब्रिटिस कोम्पानी ୨ । ଯେଉଁ ବାଣିଜ୍ୟ-ସଂଘର ଅଂଶୀଦାର ବା ସଭ୍ୟ
[ବ୍ରିଟିଶ୍ କ(କୋ, କୁ)ମ୍ପାନୀ—ଅନ୍ୟରୂପ] କେବଳ ଗ୍ରେଟ୍ ବ୍ରିଟେନ୍-
ବାସୀ ଅଟନ୍ତି—2. A firm or company of
which the people of Great Britain only
are shareholders or members.

ବ୍ରିଟିଶ୍ ଫାର୍ମ(ର୍ମା)କୋପିଆ—ବୈଦେ. ବି. (ଇଂ)—ଗ୍ରେଟ୍ ବ୍ରିଟେନର
Britiś phārma(mā)kopiā ସାଧାରଣ ଡାକ୍ତର ସମ୍ମେଳନୀ
ব্রিটিস্ ফার্মাকোপিয়া ପକ୍ଷରୁ ପ୍ରକାଶିତ ପ୍ରକାଣ୍ଡ ଭୈଷଜ ଶାସ୍ତ୍ର—
ब्रिटिश फार्माकोपिया British Pharmacopœa.
[ଦ୍ର—ଏଥିରେ ଉକ୍ତ ସମ୍ମେଳନୀ କର୍ତ୍ତୃକ ଅନୁମୋଦିତ
ଦେଶୀୟ ଓ ବିଦେଶୀୟ ଔଷଧ ଦ୍ରବ୍ୟମାନଙ୍କର ତାଲିକା ଓ
ବିଭିନ୍ନ ଔଷଧମାନଙ୍କରେ ପ୍ରସ୍ତୁତ କରିବା ପ୍ରଣାଳୀ ଲିପିବଦ୍ଧ
ହୋଇଅଛି ।]

ବ୍ରିଟିଶ୍ ସାମ୍ରାଜ୍ୟ—ଦେ. ବି. (ଇଂ. ବ୍ରିଟିଶ୍+ସଂ. ସାମ୍ରାଜ୍ୟ)—ଇଂରାଜ
Britiś sāmrājya ଜାତିଙ୍କ ଶାସିତ ପୃଥିବୀବ୍ୟାପୀ ରାଜ୍ୟ—
ব্রিটিস সাম্রাজ্য ब्रिटिस साम्राजय The British Empire.
[ଦ୍ର—ଏହା କାନେଡା, ଅଷ୍ଟ୍ରେଲିଆ ଓ ଆଫ୍ରିକା ପରି
କେତେଗୁଡ଼ିଏ ସାୟତ୍ତଶାସନପ୍ରାପ୍ତ ରାଜ୍ୟ ଓ ଭାରତବର୍ଷ,
ଷ୍ଟ୍ରେଟସ୍ ସେଟଲମେଣ୍ଟ ଓ ଲଙ୍କା ପରି କେତେଗୁଡ଼ିଏ
ସ୍ୱାୟତ୍ତଶାସନାର୍ଥୀ ରାଜ୍ୟର ମିଶ୍ରଣରେ ଗଠିତ ।]

ବ୍ରିଟେନ୍—ବୈଦେ. ବି ( ଇଂ )—୧ । ଇଂଲଣ୍ଡ ଦେଶ—
Briṭen 1. Britain; England. ୨ । ଗ୍ରେଟ୍‌ବ୍ରିଟେନ୍;
ব্রিটেন্ ब्रिटेन ଇଂଲଣ୍ଡ, ସ୍କଟଲଣ୍ଡ ଓ ୱେଲ୍‌ସ୍‌ସମ୍ମିଳିତ ରାଜ୍ୟ—
2 Great Britain.

ବ୍ରୀଡ଼୍ (ଧାତୁ)—ସଂ.—୧ । ଲାଜ କରିବା—1. To feel shame.
Brīrḍ (root) ୨ । ଫିଙ୍ଗିବା—2 To throw (Apte).

ବ୍ରୀଡ଼(ଡ଼ା)—ସଂ. ବି (ବ୍ରୀଡ଼୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—ଲଜ୍ଜା; ଲାଜ;
Brīrḍa(rḍā) ଶରମ—Shame; modesty; coyness.

ବ୍ରୀଡ଼ାକର—ସଂ. ବିଣ—(ବ୍ରୀଡ଼ା+କୃ ଧାତୁ+କର୍ତ୍ତୃ. ଅ)—ଲଜ୍ଜାଜନକ;
Brīrḍākara ଯାହା ମନୁଷ୍ୟକୁ ଲଜ୍ଜିତ କରାଏ—Shameful;
(ବ୍ରୀଡ଼ାଜନକ—ଅନ୍ୟରୂପ) producing modesty or
shame.

ବ୍ରୀଡ଼ା ବିହୀନ—ସଂ. ବିଣ—(ଅସ୍ୱା ତତ୍) ନିର୍ଲଜ୍ଜ—
Brīrḍā bihīna Shameless; immodest.
(ବ୍ରୀଡ଼ାରହିତ, ବ୍ରୀଡ଼ାଶୂନ୍ୟ, ବ୍ରୀଡ଼ାହୀନ, ବ୍ରୀଡ଼ାବର୍ଜିତ—ଅନ୍ୟରୂପ)

ବ୍ରୀଡ଼ିତ—ସଂ. ବିଣ—(ବ୍ରୀଡ଼୍ ଧାତୁ+କର୍ତ୍ତୃ. ତ)—ଲଜ୍ଜିତ—Ashamed;
Brīrḍita modest. ବି—ଲଜ୍ଜା—Shame; modesty.

ବ୍ରୀହି—ସଂ. ବି (ବୃ ଧାତୁ=ପ୍ରାର୍ଥନା କରିବା+କର୍ମ. ହି; ନିପାତନ)—
Brīhi ୧ । ଧାନ୍ୟ;ଧାନ—1. Paddy;rice. ୨ । ବଉଳ ଧାନ—
2. Rice ripening in the rains. ୩ । ଯେଉଁ
ଶସ୍ୟରୁ ଡାଲି ହୁଏ—3. Pulse-grains; lentil.
୪ । ବିର ନାମକ ଶସ୍ୟ; ମାଷ—4. A kind of pulse;
vetches; Phasoelus Radiatus

ବ୍ରୀହିକ—ସଂ. ବିଣ ( ବ୍ରୀହି+ଅସ୍ତି ଅର୍ଥରେ କ)—୧ । ଧାନ୍ୟବିଶିଷ୍ଟ—
Brīhika 1. Full of paddy. ୨ । ଶସ୍ୟଯୁକ୍ତ—
2. Full of grains.

ବ୍ରୀହି କାଞ୍ଚନ—ସଂ. ବି (ଯେଉଁ ବ୍ରୀହି କାଞ୍ଚନ ପରି ଝଲସେ)—ମସୁର—
Brīhi kāñchana A leguiminous plant; Ervum
Hirsutum; Cicer Lens.

ବ୍ରୀହି ଧାନ୍ୟ—ସଂ. ବି—ଶାଳି ଧାନ—Winter paddy.
Brīhi dhānya (ବ୍ରୀହି ଶ୍ରେଷ୍ଠ—ଅନ୍ୟ ରୂପ)

ବ୍ରୀହି ଭେଦ—ସଂ. ବି—ଶସ୍ୟ ଭେଦ; ଏକ ପ୍ରକାର ଶସ୍ୟ—
Brīhi bheda A kind of grain or pulse.

ବ୍ରୀହ୍ୟ—ସଂ. ବି (ବ୍ରୀହି+କ୍ଷେତ୍ରାର୍ଥ. ୟ)—ବ୍ରୀହିଯୁକ୍ତ କ୍ଷେତ୍ର—
Brīhī A field of grains or pulse.

ବ୍ରୁ(ବ୍ରୋ)ଚ୍—ବୈଦେ.ବି (ଇଂ ବ୍ରୁଚ)—ସ୍ତ୍ରୀଲୋକେ ପିନ୍ଧିଥିବା ଲୁଗା ଓ
Bru(bro)ch କୁର୍ତ୍ତି ଆଦିକୁ ଏକ ସ୍ଥାନରେ ଅଟକାଇ ରଖିବା
ব্রুচ, ব্রোচ ପାଇଁ ବ୍ୟବହୃତ କାରୁକାର୍ଯ୍ୟ ବିଶିଷ୍ଟ ସୁନାର ବା
ब्रुच ରୂପାର କଣ୍ଟା—Brooch.

ବ୍ରୁବତ୍—ସଂ. ବଣ ପୁଂ [ବ୍ରୂ ଧାତୁ—କହିବା + କର୍ତ୍ତୃ. ଅତ୍ (ଶତୃ)]— Brubat କହୁଥିବା—Speaking. [ ଦ୍ର—ଏହି ସଂସ୍କୃତ ଶବ୍ଦର (ବ୍ରୁବାଣ—ଅନ୍ୟରୂପ) ବ୍ୟବହାର ଓଡ଼ିଆରେ ବିରଳ ।] (ବ୍ରୁବତୀ, ବ୍ରୁବାଣା—ସ୍ତ୍ରୀ)

ବ୍ରୁଶ୍—ବୈଦେ. ବି ( ଇଂ. ବ୍ରଶ୍ )—୧ । ବ୍ରଶ୍; ବୁରୁସ; ଲୁଗା, କେଶ Brus ଓ ଦାନ୍ତ ଆଦି ସଫା କରିବାର ତୂଳି—1. Brush. ବ୍ରୁସ୍, ବ୍ରସ୍ ब्रुश [ ଦ୍ର—ଯେଉଁ କାର୍ଯ୍ୟରେ ଯେଉଁ ବ୍ରୁଶ୍ ବ୍ୟବହାର କରାଯାଏ ସେହି ଅନୁସାରେ ତାହାର ନାମ ଦିଆ ଯାଇଥାଏ । ଯଥା—ଲୁଗା ବ୍ରୁଶ୍, ଯୋତା ବ୍ରୁଶ୍, ଘୋଡ଼ା ବ୍ରୁଶ୍, ଘଣ୍ଟା ବ୍ରୁଶ୍, ଅଳଙ୍କାର ବ୍ରୁଶ୍ ଇତ୍ୟାଦି ।] ୨ । ଚିତ୍ର ତୂଳିକା—2. Painter's brush. ୩ । ଘୋଡ଼ାର ଦେହ ସଫା କରିବା ବ୍ରୁଶ୍—3. Horse's brush.

ବ୍ରୁଶ୍ କରିବା ଦେ. କ୍ରି—ବ୍ରୁଶ୍‌ଦ୍ୱାରା ଯୋତା, ଲୁଗା ଆଦି ସଫା Brus kariba କରିବା—To brush; to cleanse with ବ୍ରୁ(ବ୍ରୁ)ସ କରା ब्रुश करना brush (ବ୍ରୁଶ୍ ମାରିବା—ଅନ୍ୟରୂପ)

ବ୍ରୁହାମ୍—ବୈଦେ.ବି (ଇଂ)—ଘୋଡ଼ାଟିଏ ଯୁକ୍ତ ଏକ ପ୍ରକାର ଚାରିଚକିଆ- Bruham ବ୍ରୁହାମ ब्रूहाम ଘୋଡ଼ାଗାଡ଼ି—Brougham. [ଦ୍ର—ଏହାର ଆଗର ଓ ପଛର ସିଟ୍‌ଗୁଡ଼ିକୁ ଉଠାଇଲେ ଗାଡ଼ିଟି ବନ୍ଦ ହୁଏ ଓ ଖସାଇ ଦେଲେ ଗାଡ଼ି ଅନାବୃତ ହୁଏ; ଏଥିରେ କେବଳ ଜଣେ ବସି ପାରନ୍ତି ଓ ଆଗପାଖ ଆସନରେ ଗୋଟିଏ ଛୋଟ ବାକ୍ସ ବା ବାଗ୍ ରଖା ଯାଇ ପାରେ । ଇଂଲଣ୍ଡର ବ୍ରୁହାମ୍ ନାମକ ଜଣେ ଡାକ୍ତର ପ୍ରଥମେ ଏ ଗାଡ଼ିକୁ ବ୍ୟବହାର କରିଥିବାରୁ ତାଙ୍କ ନାମ ଅନୁସାରେ ଏ ଗାଡ଼ିର ନାମ ହୋଇଅଛି ।]

ବ୍ରେ—ବୈଦେ. ବି—(ଇଂ) —ଗଧ ରବ—Braying of an ass. Bre sound ଦେ. ବି—ତାସର ଏକପ୍ରକାର ଖେଳ— A kind of game at cards

ବ୍ରେକ୍—ବୈଦେ. ବି—(ଇଂ)—୧ । ମଟର ଗାଡ଼ି, ସାଇକେଲ, ରେଲ Brek ଆଦି ଯାନମାନ ଚାଲୁଥିବା ସମୟରେ ସେମାନଙ୍କ ଗତିକୁ ବ୍ରେକ ब्रेक ଅଟକାଇବା ନିମନ୍ତେ ଚକିରେ ଲାଗିଥିବା ଯନ୍ତ୍ର 1. Brake ୨ । ବ୍ରେକ୍‌ଭ୍ୟାନ୍ (ଦେଖ)—2 Brek-bhān (See)

ବ୍ରେକ୍ ଭାନ୍—ବୈଦେ. ବି. (ଇଂ)—ରେଲ ଗାଡ଼ିର ଯେଉଁ କକ୍ଷରେ Brek-bhān ବ୍ରେକଭାନ ଗାର୍ଡ ଥାଏ—A brakevan. ब्रेक भन [ ଦ୍ର—ଏଥିରେ ଯାତ୍ରୀମାନଙ୍କର ଭାରି ଲଗେଜ୍ ଆଦି ରଖାଯାଏ ଓ ସାଧାରଣତଃ ସେହି କକ୍ଷରେ ଗାଡ଼ିର ଗତିକୁ ବନ୍ଦ କରିବାର ଯନ୍ତ୍ର ଥାଏ ।]

ବ୍ରେକ୍‌ସମ୍ୟା(ମେ)ନ—ବୈଦେ. ବି (ଇଂ)—ରେଲ ଗାଡ଼ିର ବ୍ରେକ୍ Breks myā(me)n ଯନ୍ତ୍ରର ଚାଳକ କର୍ମଚାରୀ— Brakesman, ବ୍ରେକ୍‌ସ ମାନ ब्रेकसमैन

ବ୍ରେଭିଅର—ବୈଦେ. ବି (ଇଂ)—ଛାପାଖାନାରେ ବ୍ୟବହୃତ ଶବ୍ଦ) — Brebhiar ପାଇକାର ଆକାରର ଏକପ୍ରକାର ଟାଇପ୍ ବା ଛପା ବ୍ରେଭିୟର ब्रेवियर ଅକ୍ଷର—Brevier type in printing.

ବ୍ରେସ୍‌ଲେଟ୍—ବୈଦେ. ବି ( ଇଂ )—ହାତରେ ପିନ୍ଧାଯିବା ସୁନାରୂପାର Bres-let ଏକପ୍ରକାର ଜାଲକାଟି କାମର ଖଡ଼ୁ ବା ବଳୟ— ବ୍ରେସଲେଟ ब्रेसलेट Bracelet.

ବ୍ରୈହ—ସଂ. ବିଣ. ( ବ୍ରୀହି + ଅ )—ବ୍ରୀହିରୁ ପ୍ରସ୍ତୁତ— Braiha Made from brihi.

ବ୍ରୈହେୟ—ସଂ. ବି ( ବ୍ରୀହି + କ୍ଷେତ୍ରାର୍ଥେ ଏୟ )—ଧାନ୍ୟାଦି ଜନ୍ମିବାର Braiheya ଉପଯୁକ୍ତ କ୍ଷେତ୍ର—A field fit for growing rice etc.

ବ୍ରୋଚ—ଦେ. ବି ( ନାମ )—ସୁରଟ ଠାରୁ ୩୬ ମାଇଲ ଦୂରବର୍ତ୍ତୀ Brocha ସହର—Name of a town in western India; ବ୍ରୋଚ Broach [ ଦ୍ର—ଏହାର ପୁରାତନ ନାମ ଭୃଗୁକଚ୍ଛ । ब(भ)रोच ପୂର୍ବେ ଏହା ନର୍ମଦା ଓ ସମୁଦ୍ରର ସଙ୍ଗମ ସ୍ଥଳରେ ଥିଲା । ବର୍ତ୍ତମାନ ସମୁଦ୍ର କ୍ରମେ କ୍ରମେ ୧୫ କୋଶ ହଟି ଯାଇଅଛି । ଏହିସଙ୍ଗମ ସ୍ଥଳରେ ଭୃଗୁ ଋଷିଙ୍କର ଆଶ୍ରମ ଥିଲା । ଏଠାରେ ହିନ୍ଦୁ ଦେବମନ୍ଦିର ଅଛି । ( ମଦନମୋହନ. ତୀର୍ଥଦର୍ଶନ ) ]

ବ୍ରୋଟ୍‌ଭର୍—ବୈଦେ. ପ୍ରାଦେ (ଗଞ୍ଜାମ) ବିଣ ( ଇଂ. ବ୍ରଟ୍ ଓଭର୍ )— Brot-bhar ( ଗଞ୍ଜାମର ମହାଜନମାନଙ୍କ ଖାତାରେ ଚଳିତ ଶବ୍ଦ ) ଅନ୍ୟ ଖାତାରୁ ବା ଅନ୍ୟତ୍ର ଲିଖିତ ହିସାବରୁ ଅଣାଯାଇ ନୂଆ ଖାତାରେ ବା ନୂଆ ପୃଷ୍ଠାରେ ଲେଖାପାଇ ଥିବା (ହିସାବ ବା ସଂଖ୍ୟା )—(account or figures) Brought over from some other khātā or page.

ବ୍ଲକ୍—ବୈଦେ. ବି ( ଇଂ )—୧ । ବଡ଼ ଖଣ୍ଡ –1. Block. ୨ । Blak ଭୂମିର ଚଉକୋଣ ଖଣ୍ଡ—2. A square block of land. ୩ । ( ଛାପାଖାନା ) ଯେଉଁ ଫଳା ଉପରେ ଚିତ୍ର ମୁଦ୍ରିତ ହୁଏ—3. A block for printing pictures.

ବ୍ଲଟ୍ କରିବା—ଦେ. କ୍ରି (ଇଂ. ବ୍ଲଟ୍ )—ଶୁଖି ନ ଥିବା ଲେଖା କାଳିକୁ Blat kariba ବ୍ଲଟିଙ୍ଗ୍ ଦ୍ୱାରା ଶୋଷିବା—To blot an undried writing.

ବ୍ଲଟିଙ୍ଗ୍—ବୈଦେ.ବି (ଇଂ) —କାଳି ଶୋଷିବା କାଗଜ; ଯେଉଁ ସରୁଆ କାଗଜ Blating ଦ୍ୱାରା କାଳି ଶୋଷ ହୋଇଯାଏ; ମସୀଶୋଷଣ ପତ୍ର— ବଲଟିଙ୍ଗ (ବ୍ଲ) ବ୍ଲଟିଂ ବ୍ଲଟିଙ୍ଗ୍ Blotting. [ ଦ୍ର—ପୂର୍ବେ ଆମ- ଅନ୍ୟରୂପ]ଦେଶରେ ବ୍ଲଟିଙ୍ଗ୍ କାଗଜ ନଥିଲା । ଲୋକେ ଧଳିଦ୍ୱାରା ବା ଲମ୍ବା ଧୂଳିର କନାଧୁଡ଼ା ଦ୍ୱାରା ବ୍ଲାଟିଂ, ବ୍ଲୋଟିଂ ଶୁଖି ନ ଥିବା କାଳି ଲେଖାକୁ ଶୁଖାଉଥିଲେ । ] ब्लाटिंग, सोखता

ବ୍ଲାଉସ୍(ଜ୍)—ବୈଦେ. ବି ( ଇଂ. ବ୍ଲାଉସ୍ )—ଯାଗର; ପଛଆଡ଼େ Blāus(j) ବୋତାମ ଦିଆ ସ୍ତ୍ରୀଲୋକମାନଙ୍କ ପରିଧେୟ ଲମ୍ବା ବ୍ଲାଉଜ ଜାମା—Blouse. [ ଦ୍ର—ଏହା ଆଗେ ସାହେବାଣୀ- ब्लाउज माने ପିନ୍ଧୁଥିଲେ । ଆଜି କାଲି ନବ୍ୟଶିକ୍ଷିତା ଭାରତୀୟ ସ୍ତ୍ରୀମାନେ ପିନ୍ଧୁଅଛନ୍ତି । ]

ବ୍ଲାକ୍‌ବୋର୍ଡ୍(ର୍ଡ)—ବୈଦେ. ବି (ଇଂ)—ଚକ୍ ଖଡ଼ିରେ ଲେଖିବା ନିମନ୍ତେ Blāk-bord(rd) ବ୍ୟବହୃତ କଳାରଙ୍ଗ ଦିଆଯାଇଥିବା କାଠ ପଟା— ବ୍ଲାକବୋର୍ଡ ब्लाकबोर्ड Black board.

ବ୍ଲୁ—ବୈଦେ• ବି ( ଇଂ. ବ୍ଲୁ )—ନୀଳ; ନୀଳରଙ୍ଗ—Blue colour.
Blu ब्लू, बुलू ब्लु ବିଣ—ନୀଳିଆ—Blue.

ବ୍ଲୁ ବ୍ଲାକ୍—ବୈଦେ. ବି ( ଇଂ )—ନୀଳ ଓ କଳା ମିଶା ( କାଳି ); ଯାହା ଲେଖା ହେଲାବେଳେ ପ୍ରଥମେ ନୀଳ ଦେଖାଯାଇ ପରେ କଳା ଦେଖାଯାଏ—Blue black (ink).
Blu blāk
ब्लूब्लाक, बुलूब्लाक
ब्लुब्लैक

ବ୍ଲୁ ବ୍ଲାକ୍ କାଳି—ଦେ. ବି—ଯେଉଁ କାଳି ଲେଖିଲା ବେଳେ ପ୍ରଥମେ ନୀଳ ଦେଖାଯାଇ ପରେ କଳା ହୋଇଯାଏ—Blue-black ink.
Blu blāk kāḷi
ब्लूब्लेक काली
ब्लुब्लैक सयाही

ବ୍ଲୋ ପାଇପ୍—ବୈଦେ. ବି ( ଇଂ )—ଦୀପ ଶିଖାକୁ ଫୁଙ୍କି ସେହି ଶିଖାଦ୍ୱାରା ଧାତୁର ସୂକ୍ଷ୍ମ ଅଂଶକୁ ତରଳାଇବା କାମରେ ବଣିଆଙ୍କ ବ୍ୟବହୃତ ବଙ୍କାମୁଖ ସରୁ ଫୁଙ୍କନଳୀ—Blow-pipe.
Blo pāip
ब्लो पाईप
ब्लो पाइप

---

# ଭ

ଭ—ବ୍ୟଞ୍ଜନ ବର୍ଣ୍ଣମାଳାର ଚତୁର୍ବିଂଶ ଓ ପ ବର୍ଗର ଚତୁର୍ଥ ବର୍ଣ୍ଣ । [ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ । ଦୁଇ ଓଷ୍ଠ ମଧ୍ୟ ଦେଇ ଶ୍ୱାସବାୟୁ ସବେଗରେ ବାହାରି ଗଲେ ଏହା ଉଚ୍ଚାରିତ ହୁଏ । ଏହି ଅକ୍ଷରଯୁକ୍ତ ଶବ୍ଦଦ୍ୱାରା ଭ୍ରମର ଓ ମାଛିର ଶବ୍ଦ ( ଭଁ ଭଁ; ଭଣ ଭଣ ), ମୁଖର ବମନ ଶବ୍ଦ (ଭକ୍ ଭକ୍), ମୁଖ ନିଃସୃତ ଶବ୍ଦ ( ଭଟ ଭଟ ), ଜଳ ବୁଦ୍‌ବୁଦ୍ ଶବ୍ଦ ( ଭର ଭର, ଭୁଡ୍ ଭୁଡ୍ ), ଖଇ ଫୁଟିବାର ଓ ବେଗ ପ୍ରବାହର ଶବ୍ଦ ( ଭଡ଼ ଭଡ଼ ), କାନ୍ଦିବାର ଶବ୍ଦ ( ଭେଁ ଭେଁ ), କୁକୁରର ଶବ୍ଦ ( ଭୋ ଭୋ ) ତୂରୀ, ଭେରୀ ଓ ଶଙ୍ଖଧ୍ୱନି ( ଭୂଁ, ଭୋଁ ) ଇତ୍ୟାଦି ଅନେକ ଶବ୍ଦ ପ୍ରକାଶିତ ହୁଏ । ଏ ଅକ୍ଷରର ୨ ପ୍ରକାର ଉଚ୍ଚାରଣ ଭେଦ ଅଛି; ଦୁଇ ଓଠକୁ ସମ୍ପୂର୍ଣ୍ଣରୂପେ ବନ୍ଦ କରି ପରେ ଛାଡ଼ିଲେ ଭ (ଇଂରାଜୀ bh) ଓ ଓଠକୁ ସାମାନ୍ୟ ପୃଥକ୍ ରଖି ଛାଡ଼ି ଦେଲେ ଅବର୍ଗ୍ୟ ବ ଭଳି ଭ ( ଇଂରାଜୀ v ) ହୁଏ]—The twentyfourth consonant corresponding to the aspirate b(=bh).
Bha

ସଂ. ବି ( ଭା ଧାତୁ ଦୀପ୍ତି ପାଇବା + କର୍ତ୍ତ୍ରି. ଅ )—୧ । ନକ୍ଷତ୍ର—1. Star. [ଉ—ଭରାଜି କି ହାଉ ଦେ ବନ୍ଧ ଆକାଶେ । କବିସୂର୍ଯ୍ୟ. ସଙ୍ଗୀତ] ୨ । ଶୁକ୍ରାଚାର୍ଯ୍ୟ—2. The preceptor of the demons. ୩ । ଗ୍ରହ—3. Planet. ୪ । ଜ୍ୟୋତିଷିକ ରାଶି—4. A sign of the zodiac. ୫ । (ଭ୍ରମ୍ ଧାତୁ + ଭାବ. ଅ)—ଭ୍ରମ; ଭ୍ରାନ୍ତି—5. Mistake; error ୬ । (ଭଣ୍ ଧାତୁ-ଶବ୍ଦ କରିବା + କର୍ତ୍ତ୍ରି.ଅ)—ଭ୍ରମର—6. Black bee.

ଭଅଁ—ଦେ. ଅ [ ଧ୍ୱନ୍ୟନୁକରଣ ]—ଭ୍ରମରାଦିଙ୍କର ଗୁଣୁଗୁଣୁ ଶବ୍ଦ—The buzzing of a bee.
Bha-añ भौं भौं भुँ भुँ
ଭଅଁ ଭଅଁ, ଭଁ, ଭଁଭଁ } ଅନ୍ୟରୂପ] [ ଦ୍ର—ଭଅଁ ଭଅଁ ଅପେକ୍ଷା ଭୁଁ ଭୁଁ ନୀଚତର ଧ୍ୱନି; ଭେଁ ଭେଁ ଉଚ୍ଚତର ଧ୍ୱନି; ଭୋଁ ଭୋଁ ଅଳ୍ପର ଉଚ୍ଚତର ଧ୍ୱନି । ]

ଭଅଁର—ଦେ. ବି (ସଂ. ଭ୍ରମର)—୧ । ଭ୍ରମର; ଭୃଙ୍ଗ; ଦ୍ୱିରେଫ—1. The black bee; the humble-bee; Andrenidae.
Bha-añra
ଭଅଁର; भौंर

[ଦ୍ର—କୀଟମାନେ ମଧୁକର (ମହୁମାଛି) ଓ ଭ୍ରମର ମଧ୍ୟରେ ପ୍ରଭେଦ ରଖି ନାହାନ୍ତି । ଉଭୟେ ପୁଷ୍ପର ମଧୁ ଖାଆନ୍ତି, କିନ୍ତୁ ମହୁମାଛିମାନେ ମଧୁ ସଞ୍ଚୟ କରି ମହୁଫେଣା ବାନ୍ଧି ଦଳ ଦଳ ହୋଇ ରହନ୍ତି । ଭ୍ରମରମାନେ ଏହା କରନ୍ତି ନାହିଁ । ଭ୍ରମରମାନେ କଳା ଓ ମହୁମାଛିମାନଙ୍କଠାରୁ ବଡ଼ ।

କେହି କେହି ଭଅଁର ଓ ବିରୁଡ଼ି (ସଂ. ବରଟ)ଙ୍କୁ ଏକ ଜାତୀୟ ଜୀବ କହନ୍ତି; କିନ୍ତୁ ସେମାନେ ପୃଥକ୍ । ବିରୁଡ଼ିମାନେ ଏକତ୍ର ବସା ବାନ୍ଧି ରହନ୍ତି ।]

ଭଅଁର ୨ । କାଠରେ ଛିଦ୍ର କରିବା ଯନ୍ତ୍ରବିଶେଷ—
बरमा 2. Auger; gimlet; boring instrument.

ଭଅଁର କରିବା—ଦେ. କ୍ରି—ଭଅଁର ଯନ୍ତ୍ରଦ୍ୱାରା କାଠରେ ଛିଦ୍ର କରିବା—To bore through wood with a gimlet.
Bha-añra karibā
ଭଅଁର କରା; बरमासे छेदकरना

ଭଅଁର(ରା) ଗୁଡ଼ି—ପ୍ରାଦେ. (ବାଲେଶ୍ୱର) ବି—ଭଅଁ ଭଅଁ ଶବ୍ଦ କରି ଉଡ଼ୁଥିବା ବଡ଼ ଆକାରର ଗୁଡ଼ିବିଶେଷ—A big sized paper-kite that produces a sharp whizzing sound while flying.
Bha-añra(rā) guṛi

ଭଅଁରମାରୀ—ଦେ. ବି ( ସଂ. ଭ୍ରମରମାରୀ; ଅନ୍ୟ ସଂ. ନାମ; ଭ୍ରମରାରି; ଭୃଙ୍ଗମାରୀ; ଭୃଙ୍ଗାରୀ; ମାଂସପୁଷ୍ପିକା; କୁଷ୍ଠାରି; ଭ୍ରମରି; ଯଷ୍ଟିଲତା )—Bohun Upas; the upas tree; Antiaris Toxicaria. [ ଦ୍ର—ଏହା କୁଷ୍ଠ ରୋଗର ପ୍ରଧାନ ଔଷଧ ବୋଲି କଥିତ । ଏହା ନିକଟକୁ ଭ୍ରମରମାନେ ଗଲେ ମରିଯାଆନ୍ତି । କଥିତ ଅଛି ଯେ କେନ୍ଦୁଝରରେ ଏଥିର ଗୋଟିଏ ମାତ୍ର ଗଛ ଅଛି ଓ ଲୋକେ ସେ ଗଛର କାଠକୁ ବ୍ୟବହାର କରି କୁଷ୍ଠ ରୋଗରୁ ମୁକ୍ତ ହୁଅନ୍ତି । କେହି କେହି ଏ ଗଛକୁ କୃଷ୍ଣଚମ୍ପକ ବୃକ୍ଷ ବୋଲି କହନ୍ତି । ]
Bha-añramāri
भ्रमरमारी

ଭଅଁରୀ—ପ୍ରାଦେ. (ଗଡ଼ଜାତ) ବି—ବଡ଼ ଛତା ପରି ବାଉଁଶବୁଣା ଓ ଉପର ହୋଇଥିବା ଗୋଟିଏ ଗୋଲାକାର ଖୁଲ । ଏହାକୁ ବୁଣାବୁଣି କରି ମୁଣ୍ଡାଇ ନେଇ ଲୋକେ ଗୁରୁଟି ଖୁଣ୍ଟା ଉପରେ ରଖି ଘାଡ଼ି ବାନ୍ଧନ୍ତି ଏବଂ ସେହି ଘାଡ଼ିରେ ରହି ବଣ ଜଙ୍ଗଲରେ ଥିବା ଶୋଇ ଜନ୍ତୁମାନ ଜଗନ୍ତି—
Bha-añrā

A sort of provisional thatch with framework of bamboo with thatch propped up by four pillars used by people in the jungles of Orissa States as a protection while guarding crops.

ଭମର } ଭମର } ଅନ୍ୟରୂପ ଗ୍ରା. ବ (ଅନାଦରାର୍ଥକ)—ଭ୍ରମରବର ନାମଧାରୀ ବ୍ୟକ୍ତିଙ୍କୁ ଡାକିବା ନାମ—Abbreviated way of calling persons named Bhramarabara. ( ଦ୍ର—ଭଅଁର ଭଅଁର ହଉଛ ଭାଇ, ମାଛ ମାରଗଲେ ବାନ୍ଧିସାଇ—ଢଗ । ) ଦେ. ବ—ବାଉଁଶ କାଠିରେ ବୁଣା ଏକପ୍ରକାର ବଡ଼ ଖଇଅ—A wicker-work cage-like contrivance for catching fish.

ଭଅ(ଇ, ଉ,ଏ)ଣୀ—ଦେ. ବ. ( ସଂ. ସ୍ତ୍ରୀ. ଭଗିନୀ; ଭଗ୍ନୀ )—୧ । Bha-a(i, u, o)ṇī ଭଗିନୀ—1. Sister. ୨ । ମାଉଳ, ବହିନ, ଭଇନ, ବୋନ ପିତୃସ୍ୱସା, ମାତୃସ୍ୱସା ଆଦିଙ୍କ କନ୍ୟା—**बहिन; बहन** 2. Cousin-sister. ୩ । ସମବୟସ୍କା ସ୍ତ୍ରୀମାନଙ୍କର ପରସ୍ପର ସମ୍ବୋଧନ—3. Term of mutual address amongst women of the same age.

ଭଅ(ଇ, ଉ, ଏ)ଣୀ ଗିଅ(ହା)—ଗ୍ରା. ବଣ. ପୁଂ ( ଅଶ୍ଳୀଳ )—ଗାଳି Bha-a(i, u, o)ṇī giā(hā) ବିଶେଷ—A term of filthy ଭାନଚୋଦ **बहिनचोद** abuse.

ଭଅ(ଇ, ଉ, ଏ)ଣୀ ଜୋଇଁ—ଦେ. ବ—କୌଣସି ସ୍ତ୍ରୀର ସାନ ଭଉଣୀର Bha-a(i, u, o)ṇī joiṅ ସ୍ୱାମୀ—A woman's younger ବନାଈ **छोटा बहनोइ** sister's husband. [ ଦ୍ର—ସାନ ଭଉଣୀଙ୍କୁ ବିଭା ହୋଇଥିବା ବ୍ୟକ୍ତିଙ୍କର ଆପଣାର ସ୍ତ୍ରୀର ବଡ଼ ଭଉଣୀ ଦେଢ଼ଶାଶୁ ଅଟନ୍ତି ଓ ଓଡ଼ିଆ ସମାଜରେ ତାଙ୍କ ସଙ୍ଗେ ଥଟ୍ଟା କରିବା ବା କଥାବାର୍ତ୍ତା ହେବା ନିଷିଦ୍ଧ । ବଡ଼ ଭଉଣୀଙ୍କ ସ୍ୱାମୀ ଆପଣାର ଭଣେଇ ଓ ସ୍ତ୍ରୀର ସାନ ଭଉଣୀ ଆପଣାର ଶାଳୀ; ଶାଳୀ ଓ ଭଣେଇଙ୍କ ମଧ୍ୟରେ ଥଟ୍ଟା ପରିହାସ ଚଳେ । ]

ଭଅଣ୍ଡ—ପ୍ରାଦେ. (ପୁରୀସଦର ଓ ଭୁବନେଶ୍ୱର ସହର) ବ(ସଂ. ଭୋଗମଣ୍ଡପ) Bha-aṇḍa ବ—(ପୁରୀ ଜଗନ୍ନାଥଙ୍କ ମନ୍ଦିର ଓ ଭୁବନେଶ୍ୱରର (ଭଅଣ୍ଡପ—ଅନ୍ୟରୂପ) ଲିଙ୍ଗରାଜଙ୍କ ମନ୍ଦିରସମ୍ପର୍କୀୟ ସେବକମାନଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ । ) ଭୋଗମଣ୍ଡପ; ଦେବତାଙ୍କ ଯେଉଁ ଧୂପରେ କୋଠ ଭୋଗ ସଙ୍ଗେ ସାଧାରଣ ଯାତ୍ରୀଙ୍କ ନିମନ୍ତେ ଭୋଗ ସ୍ଥାପିତ ହୋଇ ଦେବତାଙ୍କ ଭୋଗ ଲଗାଯାଏ—The offering offered to the Deity Lord Jagannatha of Puri and Liṅgarāja of Bhubaneśwara when offerings for the general public are offered along with the daily offerings prepared from the funds of the deity.

ଭଅପ ( ଇତ୍ୟାଦି )—ଗ୍ରା. ବ ( ସଂ. ବପୁ )—ବହପ ଇତ୍ୟାଦି (ଦେଖ) Bha-apa ( etc ) Bahapa etc (See)

ଭଅପିଆ(ୟା)—ଗ୍ରା. ବଣ—ବହପିଆ ( ଦେଖ ) Bha-apiā(yā) ( ଭଅପେଇ—ସ୍ତ୍ରୀ ) Bahapiā ( See )

ଭଅପିବା—ଦେ. କ୍ରି—ବହପିବା ( ଦେଖ ) Bha-apibā Bahapibā ( See )

ଭଇଆ(ୟା)—ଦେ. ବ—ଭୟା ( ଦେଖ ) Bha-iā(yā) Bhayā ( See )

ଭଇଁଚ(ଚି) ( ଇତ୍ୟାଦି )—ଦେ. ବ—ବଇଁଚ(ଚି) ଇତ୍ୟାଦି ( ଦେଖ ) Bha-iñcha(chi) ( etc ) Ba-iñcha(chi) etc ( See ) ବୈଁଚି **कटाइ; किंकिणी; घंज**

ଭଇଁ(ଭୁଁ)ରା—ପ୍ରାଦେ ( ସମ୍ବଲପୁର ) ବ ( ସଂ. ଭ୍ରମର )—ନଟୁ—Bha-iñ(uñ)rā Spinning top. ପ୍ରାଦେ. ( ସମ୍ବଲପୁର ) (ଭଉଁରୀ—ସ୍ତ୍ରୀ) ବଣ ( ସଂ. ବଧିର )—କାଲ—Deaf. ( ଦ୍ର—ଭଇଁରା ଟାରେ ପୁରାଣ ସଭା । ଶୁଣିଲା ଲୋକେ ହୋଇବେ କାଲା—ଢଗ । )

ଭଇଁଷ(ଷା)—ଦେ. ବ ( ସଂ. ମହିଷ )—ମହିଷ; ମଇଁଷି—Buffalo. Bha-iñsha(shā) ଭଇଷ, ଭୈଁସା; **भैंस**

ଭଇଁଷା—ଦେ. ବଣ—ମହିଷଠାରୁ ଉତ୍ପନ୍ନ—Produced from Bha-iñshā buffalo. ( ଯଥା—ଭଇଁଷା ଘିଅ । ) ଭୈଁସା **भैंसका**

ଭଇଁଷା ଅନ୍ଧାର—ପ୍ରାଦେ. ( ସମ୍ବଲପୁର ) ବ—ସନ୍ଧ୍ୟାର ପରବର୍ତ୍ତୀ Bha-iñshā andhāra ରାତ୍ରିକାଳ—Time after dusk. [ ଦ୍ର—ଏ ସମୟରେ ମଇଁଷିମାନେ ଚରଣ ସ୍ଥାନରୁ ଫେରିବାରୁ ସମ୍ଭବତଃ ଏହି ନାମ କିମ୍ବା ମଇଁଷିଙ୍କ ଦେହର ବର୍ଣ୍ଣ ପରି ଅନ୍ଧକାର ବୋଧ ହେବାରୁ । ]

ଭଇଁଷା ଗାଣ୍ଡିରେ ଯିବା—ଗ୍ରା. କ୍ରି—(କୌଣସି ପଦାର୍ଥ, ଧନ ବା Bha-iñshā gāṇḍire jibā ପରିଶ୍ରମ) ବ୍ୟର୍ଥ ଯିବା; ଅପବ୍ୟୟିତ ପଣ୍ଡହେବା **भैंसा गाँडमे याना** ହେବା—To be wasted away; to go for nothing.

ଭଇଁଷି—ପ୍ରାଦେ. (ବାମଣ୍ଡା) ବ—ମଇଁଷି—Bhaiñshi Buffalo.

ଭଇମୀ—ଦେ ବ. ସ୍ତ୍ରୀ. ଗ୍ରା ( ପଦ୍ୟ ) ( ସଂ. ଭୈମୀ )—ଭୀମକନ୍ୟା; Bhaimī ଦମୟନ୍ତୀ—Daughter of king Bhīma, Damayanti, the consort of Nala. [ଦ୍ର—ନଳ ରଜାଙ୍କର ଭୀମ ରଜାଙ୍କ ଘରେ, ଖଣ୍ଡ ଦେଇଗଲେ ସେ ଭଇମୀ ଭାଷାରେ—କୃଷ୍ଣସିଂହ. ମହାଭାରତ. ବନ ।

ଭଇ(ଏ)ରବ—ଗ୍ରା. (ପଦ୍ୟ) ବ. (ସଂ. ଭୈରବ)—୧ । ଭୈରବ ବା Bhai(e)raba ଘଣ୍ଟାକର୍ଣ୍ଣ; ଭାଦ୍ର କୃଷ୍ଣପଞ୍ଚମୀ (ରକ୍ଷା ପଞ୍ଚମୀ ବା ରେଖା ପଞ୍ଚମୀ) ଦିନ କବାଟରେ ଚିତ୍ରିତ ହୋଇ ରାତ୍ରିରେ ପୂଜା କରାଯାଉଥିବା ମହାଦେବଙ୍କ ଅନୁଚରଙ୍କ ମୂର୍ତ୍ତି—1. An image of an attendant of Śiba depicted on the door and worshipped in the night of the 5th day of the dark fortnight of the month of Bhādra. [ ଦ୍ର—ରେଖା ପଞ୍ଚମୀ ଦିନ ଭୈରବ ବା ଘଣ୍ଟାକର୍ଣ୍ଣଙ୍କ

ଚନ୍ଦ୍ର ସଙ୍ଗେ ଗଣେଶ ଓ ମହାଦେବଙ୍କ ଚନ୍ଦ୍ର ମଧ୍ୟ ଦ୍ୱାରରେ ଲେଖା ହୋଇ ପୂଜା କରାଯାଏ । ଭୈରବଙ୍କର ଗୋଟିଏ ଗୋଡ଼ ଥିବାର ଚିତ୍ରରେ ଲେଖାଯାଏ ] । ୨ । ମହାଦେବଙ୍କ ମୂର୍ତ୍ତିବିଶେଷ ( ଭୈରବ ଦେଖ )—2. A particular image of Mahādeba (Bhairaba See) [ ଉ—ଦେବ ଭଇରବଙ୍କ, ଶେଯ୍ୟ ଇଚ୍ଛା କରି—କୃଷ୍ଣସିଂହ, ମହାଭାରତ. ସଭା ।

**ଭଇରୁ**—ଦେ. ବି—ଭେରୁ (ଦେଖ)—
Bhairu Bheru (See).

**ଭଉ**—ଗ୍ରା. ଅ (ସଂ. ବସ୍ତୁ) ଏକ—ଧାନମାପୁଣିମାନେ ଧାନ ମାପିଲା-
Bhau ବେଳେ ପ୍ରଥମ ଗଉଣି ମାପିବା ସମୟରେ 'ଏକ' ବୋଲି
ଭଉତ୍ } ଅନ୍ୟ ରୂପ— ନ କହି ବସ୍ତୁତ, ଭଉ, ରାମ୍, ଜଗନ୍ନାଥ
ଭଉଭୁ } ଆଦି ଶବ୍ଦ ବ୍ୟବହାର କରିଥାଆନ୍ତି—
ରାମ राम Peculiar ejaculation denoting the number 'one' uttered while beginning to measure the first pot of paddy.

**ଭଉଁର**—ଦେ. ବି ( ସଂ. ଭ୍ରମ୍ ଧାତୁ )—କୁନ୍ଦ; ଯେଉଁ ଯନ୍ତ୍ରଦ୍ୱାରା
Bhauñra କୌଣସି ପଦାର୍ଥକୁ କୁନ୍ଦି କରି ଗୋଲ
ଭ୍ରମିଯନ୍ତ୍ର खराद କରାଯାଏ; ଚକ୍ରଯନ୍ତ୍ର—A turning lath.

**ଭଉଁରା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଭ୍ରମର)—ନଟୁ (ଭ୍ରମର ପରି
Bhauñrā ଶବ୍ଦ କରୁଥିବାରୁ ଏ ନାମ)—Spinning top.

**ଭଉଁରି(ରୀ)**—ଦେ. ବି. ( ସଂ. ଭ୍ରମି )—୧ । ଜଳଭ୍ରମି; ମଲମଲୀ—
Bhauñri(rī) 1. A whirlpool; eddy. (ଉ—ଭଉଁରୀ
ଭଁବର, ଭୌଁରୀ ଖେଳେ ମାଛ, ଚଳନ୍ତି ହବାରିଛ, ପ୍ରକାଶି
भउँरि, भाउँरी, भौंरी ସଙ୍ଗୀତ ଉଦାର । ମଧୁସୂଦନ. କପାପ୍ରଭ ।)
୨ । ( ସଂ. ଭ୍ରମରକ ) ଶରୀରର ଲୋମାବର୍ତ୍ତ; କେଶର ବା ଲୋମର ଭ୍ରମରକ—2. A whorl. ୩ । (ସଂ. ଚକ୍ରଭ୍ରମି) ଏକ ପ୍ରକାର ପିଲା ଖେଳ; ଚକା ଭଉଁରୀ; ଘାଉଁରୀ;
घुरपाक ଚକ୍ରାକାର ଗତିବିଶେଷ—3. Whirling motion. (ଉ—ଚକା ଚକା ଭଉଁରୀ, ମାମୁଁ ଘର ଚଉଁରୀ । ଶିଶୁ-ଗୀତ ।) ୪ । ଘୋଡ଼ାର ଦେହରେ ଥିବା ଲୋମାବର୍ତ୍ତ (ଏହାର ଅବସ୍ଥିତି ଅନୁସାରେ ଘୋଡ଼ାର ଶୁଭ ବା ଅଶୁଭ ଲକ୍ଷଣ କରୂପିତ ହୁଏ)—4. Whorl on the body of a horse. ୫ । ଅଳଙ୍କାରରେ ଦିଆଯିବା ପେଚ ଲାଗିଥିବା ଖିଲ—5. Screw put on an ornament ୬ । (କ)—ଚନ୍ଦନ ଯାତ୍ରାର ଶେଷ ବା ଏକବିଂଶ ଦିନ । ଏ ଦିନ ମହାପ୍ରଭୁଙ୍କୁ ଡଙ୍ଗାରେ ବସାଇ ଡଙ୍ଗାକୁ ଚନ୍ଦନତଡ଼ାଗ ମଧ୍ୟରେ ଚକ୍ରାକାରରେ ବୁଲାନ୍ତି—6. (a)—The 21st day of the Chandan Jātrā festival. ୬ । (ଖ)—ଜଳକ୍ରୀଡ଼ା ଏକାଦଶୀ; ବୈଶାଖ ଶୁକ୍ଳ ଏକାଦଶୀ—6. (b)—The 11th day of the bright fortnight of Baiśākha. ୭ । ପକ୍ଷି-ବିଶେଷ—7. A kind of bird. ୮ । ଡଙ୍ଗାକୁ ପାଣିରେ ଚକ୍ରାକାର ଗତି କରାଇବା ରୂପ କ୍ରୀଡ଼ା—8. Moving a boat in circles in sport.

**ଭଉଁରିଆ**—ଦେ. ବି (ସଂ. ଭ୍ରମ୍ ଧାତୁ = ଭ୍ରମଣ କରିବାରୁ)—କ୍ଷେତ୍ରମାନଙ୍କ
Bhauñriā ମାପର ସ୍ମାରକ ଲିପି । ଯେଉଁ କାଗଜରେ ଜମି ମାପ କରିବା ସମୟରେ ମାପର ବିବରଣ ( ଅର୍ଥାତ୍ ଜମିର ନମ୍ବର, ଦାଗ, ଦୈର୍ଘ୍ୟ, ପ୍ରସ୍ଥ ପରିମାଣ, କ୍ଷେତ୍ରଫଳ, ଚତୁଃସୀମା ଓ ଜମିର ଅବସ୍ଥା ଆଦି) ଲେଖା ହୋଇଥାଏ—
भौरिया खतियान A concise memorandum or note regarding the measurement of land; a land-measurement field-book showing the particulars of each plot of land serially; old fashioned field-book. [ ଦ୍ର—ଓଡ଼ିଶାରେ ୧୮୪୨ ସାଲର ସାବକ ବନ୍ଦୋବସ୍ତ ମାପ ସମୟରେ ଜମିର ବିବରଣମାନ ଯେଉଁ ତାଲପତ୍ରରେ ଲେଖାଯାଉଥିଲା ତାହାକୁ ଭଉଁରିଆ କହନ୍ତି । ଏହି ସାବକ ବନ୍ଦୋବସ୍ତ ଭଉଁରିଆ ତାଲପତ୍ରରେ ଲେଖାଥିବାରୁ ତାକୁ ତାଲପତ୍ର ଭଉଁରିଆ ବୋଲାଯାଏ ଓ ଏହାର ବିବରଣମାନ ଏତେଦୂର ଠିକ୍ ଯେ ଗତ ୧୮୯୮ ସାଲର ବନ୍ଦୋବସ୍ତରେ ଚେନ୍ ମାପ ସମୟରେ ଏହି ଭଉଁରିଆ ସାହାଯ୍ୟରେ ବନ୍ଦୋବସ୍ତର ଖସଡ଼ା ପ୍ରସ୍ତୁତ ହୋଇଥିଲା । ଆଧୁନିକ ବନ୍ଦୋବସ୍ତର ଭଉଁରିଆକୁ ଖସଡ଼ା (khasra) ବୋଲି କୁହାଯାଏ ଓ ଆଧୁନିକ ସର୍ଭେଅରମାନେ ଜମି ମାପ କରି ଯେଉଁ ସ୍ମାରକ ଲିପି ତିଆର କରନ୍ତି ତାକୁ ଫିଲ୍‌ଡ଼ (field book) ବୋଲାଯାଏ । ହାଲ ବନ୍ଦୋବସ୍ତରେ ମାପ ହୋଇଥିବା ଜମି ସମ୍ବନ୍ଧେ ସନ୍ଦେହ ଉପସ୍ଥିତ ହେଲେ ଉକ୍ତ ଜମିକୁ ସାବକ ତାଲପତ୍ର ଭଉଁରିଆ ଅନୁସାରେ ସରଜମିନରେ ମଡ଼ାଣ କରି ହାଲ ବନ୍ଦୋବସ୍ତର ମାପ ଠିକ୍ ଅଛି କି ନାହିଁ ଏହା ସ୍ଥିରୀକୃତ ହୁଏ । ଗଭର୍ଣ୍ଣମେଣ୍ଟଙ୍କର କଲେକ୍ଟରୀ ମାହାଫିସ-ଖାନା (Collectorate Record Room)ରେ ଏହି ସାବକ ତାଲପତ୍ର ଭଉଁରିଆମାନ ଯତ୍ନପୂର୍ବକ ସଂରକ୍ଷିତ ହୋଇଅଛି; ଓ ଆବଶ୍ୟକ ହେଲେ ମକଦ୍ଦମାର ପକ୍ଷମାନଙ୍କୁ ତହିଁର ସହିମୋହର ନକଲ ଦିଆଯାଏ । ସାବକ ଭଉଁରିଆରେ ମାପ ଆରମ୍ଭ ପୂର୍ବରୁ ଶିରୋନାମା (Heading) ରେ ସନ, ଜିଲ୍ଲା, ପ୍ରଗନ୍ନା, ମଉଜାର ନାମ, ଜମିଦାରଙ୍କ ନାମ, ଅମିନଙ୍କ ନାମ, ଯେଉଁ ଉତ୍କଳୀଆ ପଦିକା ଧରି ମାପ କରିଥିଲା, ତାହାର ନାମ ଓ ପଦିକାର ପରିମାଣ ( ଚବିଶ ଦସ୍ତି, ବଣି ଦସ୍ତି ବା ବାର ଦସ୍ତି ), ମଉଜାର କେଉଁ ଦିଗର କେଉଁ ଶଙ୍କୁ (Starting point) ରୁ ପଦିକା କେଉଁ ଦିଗକୁ ଚଳନ୍ତ ତାହା ଲେଖାଯାଇ ତପ୍ପରେ ଜମିର ଧାରାବାହିକ ନମ୍ବର ଓ ବିବରଣ ଲେଖା ହେଉଥିଲା । ଏହି ହେଉଙ୍ଗର ଗୋଟିଏ ଉଦାହରଣ ଏଠାରେ ଦିଆଗଲା । ଯଥା—

ସବ ଗ୍ରଣି ଜରବ ଭଉଁରିଆ—

ସନ ୧୨୪୮ ସାଲ । ମୁ । ଅଙ୍ଗରେଜୀ ୧୮୪୨ ସାଲ । ଜି ।

କଟକ । ପ୍ର । କୋଦଣ୍ଡା । ଡା । ରଘୁନାଥପୁର ଭଉଁରୀ ୧୯୭୫ ନମ୍ବର । ମୌ । ବମ୍ପୁର । ଜମିଦାର ଖାଣ୍ଡେଇ ଆଗ୍ରହ୍ୟ । ଅମୀନ କାଶୀନାଥ ମାହାନ୍ତି ଦରପନ୍ଦଳେ ୨୪ ଦସ୍ତି ପଦକା ଚଳାଇବାରେ କେଶବମଳକ ଚଉକିଦାର । ପ୍ରଥମେ ପଦକା ଚଳନ୍ତି ଗ୍ରାମର ପୂର୍ବ ମୁଣ୍ଡ ଗ୍ରାମଠାକୁରାଣୀଙ୍କ ବରଗଛଠାରୁ ଉତ୍ତରକୁ—

ଏହି ଶିରୋନାମା ପରେ ଜମିର କ୍ରମିକ ନମ୍ବର

ନ ୧—ରଧୁ ସାହୁ ବାଡ଼ି ଉ.ଦ. କା୩ ପୂ. ପ. କା୨୫ ଜମି ମା୦।୮୬/ ମାଣ୍ଡିଆ କୋଲଥ, ସୋୟମ ଏଥିରେ ନଡ଼ିଆ— ୨ ଗଛ, ତାଳ ୧ ଗଛ, ବଉଁଶ ୨ ବୁଦା, ଗଜା ଅମ୍ବ ୪ ଗଛ ।

ନ ୨—ଉ.ପ. (ଅର୍ଥାତ୍ ପୂର୍ବ ନମ୍ବରର ପଶ୍ଚିମକୁ ପଦକା ଚଳନ୍ତି )—ରାମ ପଧାନ ଗୃହଜମି

ଉ. ଦ॰ ପୂର୍ବରେ କା ୭୫ ପଶ୍ଚିମରେ କା ୩ ଉ.ଦ.ସା କା ୩। ପୂ. ପ. ଉତ୍ତରରେ କା ୨ ଦକ୍ଷିଣରେ କା ୩ ପୂ.ପ.ସା ୨୫ ଜମି ମା ୦।୮୬/ ସାରଧ<br>ଅଉଲ } —ଏଥିରେ ପଣସ ଗଛ । ଦଖଲ ଜମିଦାର ।

ଉ. ଅଥଗା ଦୋସମାଳ ।

ପ୍ରତ୍ୟେକ ନମ୍ବର ତାଲପତ୍ରରେ ଲମ୍ବ ହୋଇ ଗୋଟିଏ ଧାଡ଼ିରେ ଲେଖାଯାଏ ।

ଭଉଁରିଆରେ ବ୍ୟବହୃତ କେତେ ଗୁଡ଼ିଏ ସାଙ୍କେତିକ ଓ ପାରିଭାଷିକ ଶବ୍ଦର ଅର୍ଥ ଏଠାରେ ଦିଆଗଲା ।

କା=କାହାଣ=୪ ପଦକା=୧୬ ପଣ ।

ଦର ପନ୍ଦକେ=ବ୍ୟବହୃତ ପନ୍ଦକାର ପରିମାଣ ।

ଉ. ଦ=ପୂର୍ବ ନମ୍ବର ଜମିର ଦକ୍ଷିଣକୁ ।

ଉ. ଉ=ପୂର୍ବ ନମ୍ବର ଜମିର ଉତ୍ତରକୁ ।

ଉ. ପ=ପୂର୍ବ ନମ୍ବର ଜମିର ପଶ୍ଚିମକୁ ।

ଉ. ପୂ=ପୂର୍ବ ନମ୍ବର ଜମିର ପୂର୍ବକୁ ।

ଉ. ଦ=ଜମିର ଉତ୍ତରରୁ ଦକ୍ଷିଣକୁ ମାପ ।

ଉ. ଦ, ସା=ଯେଉଁ ଜମି ସମକୋଣୀ ନୁହେଁ ତାର ଉତ୍ତର ଦକ୍ଷିଣ ମାପ କରିବାକୁ ପୂର୍ବ ମୁଣ୍ଡରେ ଓ ପଶ୍ଚିମ ମୁଣ୍ଡରେ କିମ୍ବା ଏକାଧିକ ସ୍ଥଳରେ ମାପ କରାଯାଇ ତାହା କଷୋଟ କରି ଯାହା ମାପ ହିସାବରେ ବାହାରେ ( Mean measurement ).

ପୂ॰ ପ=ଜମିର ପୂର୍ବରୁ ପଶ୍ଚିମକୁ ମାପ ।

ପୂ. ପ. ସା=ଅସମକୋଣୀ ଜମିର ଏକାଧିକ ସ୍ଥାନର ମାପର କଷୋଟ ହିସାବ ବା ସାର ।

ଉ=ଉତ୍ତର । ଦ=ଦକ୍ଷିଣ, ଦଖଲକାର ।

ପୂ=ପୂର୍ବ । ପ=ପଶ୍ଚିମ । ମୁ=ମୁଢାବକ ।

ମାଣ୍ଡିଆ କୋଲଥ=ଯେଉଁ ଜମିରେ ମାଣ୍ଡିଆ ଓ କୋଲଥ ହୁଏ ।

ଦୋଫସଲ=ଯେଉଁ ଜମିରେ ବର୍ଷକେ ୨ ଥର ଫସଲ କରାଯାଏ । ( ଯଥା—ଧାନ ଓ ମୁଗ । )

ଅଉଲ=ଉତ୍କୃଷ୍ଟ ଜମି ।

ଦୋୟମ=ଦ୍ୱିତୀୟ ଶ୍ରେଣୀର ଜମି ।

ସୋୟମ୍=ଦୋୟମ ଅପେକ୍ଷା ନିକୃଷ୍ଟ ।

ଚହରମ୍=ସୋୟମ୍‌ଠାରୁ ନିକୃଷ୍ଟ ।

ଏହା ଛଡ଼ା

। କି । କିଲ୍ଲା ।

। ତା । ତାଲୁକେ ।

। ପ୍ର । ପ୍ରଗନା ।

। ମୌ । ମୌଜା ଏହିପରି ଅନ୍ୟାନ୍ୟ ଶବ୍ଦମାନ ଲେଖାଥାଏ ।

**ଭଉଁରିଆ ଡାକିବା**—ଦେ କ୍ରି—ଜମି ମାପ ସମୟରେ ମାପିବା ବ୍ୟକ୍ତି ଛଡ଼ା Bhauñriā ḍākibā ଆଉ ଜଣେ ବ୍ୟକ୍ତି 'ଭଉଁରିଆ' ଧରି ପଢ଼ିବା (ଏହା ଦ୍ୱାରା ମାପିବା ବ୍ୟକ୍ତି କେଉଁ ଆଡ଼େ କେତେଦୂର ମାପିବ ତାହା ଜାଣି ପାରି ମାପେ)—To dictate the contents of a Bhauñriā paper to the person who is engaged in measuring the land.

**ଭଉଁରିଆ ମଡ଼ା(ଡ଼େ)ଇବା**—ଦେ.କ୍ରି—ସାବକ ଭଉଁରିଆରେ ଲେଖାଥିବା Bhauñriā marḍā(rḍe)ibā ବିବରଣମାନଙ୍କ ସାହାଯ୍ୟରେ ସରଜମିନ୍‌ରେ ମାପ କରି ସାବକରେ କ୍ଷେତ୍ରମାନଙ୍କର କିପରି ଆକାର ଥିଲା ତାହା ନିରୂପଣ କରିବା । [ଏତଦ୍ୱାରା ସାବକ ବନ୍ଦୋବସ୍ତ ସମୟରୁ ଆଜି ପର୍ଯ୍ୟନ୍ତ କ୍ଷେତ୍ରର କି ପରିବର୍ତ୍ତନ ଘଟିଅଛି ତାହା ଜଣା ପଡ଼େ]—To ascertain the old positions of plots (as they existed at the time of the old settlement) on the spot with the help of the directions contained in the old Bhauñriā papers.

**ଭଉଁରି କବାଟ**—ଦେ. ବି—କବାଟ ଖୋଲିବା କଣ୍ଢିକୁ ବାହାରୁ ଭର୍ତ୍ତି Bhauñri kabāṭa କରି କବାଟର ଭିତର ପାଖରୁ ବନ୍ଦ ହୋଇଥିବା କିଳଣୀକୁ ଘିଞ୍ଚାଇବା ପାଇଁ ଛିଦ୍ର ଥିବା କବାଟ—A peculiar sort of door having a hole through which key is applied from outside to open it by loosening the bolt from inside.

**ଭଉଁରି ଖେଳ**—ଦେ. ବି—୧ । ଚନ୍ଦନ ଯାତ୍ରା, ବୈଶାଖ ଶୁକ୍ଳ ତୃତୀୟା Bhauñri khela ଠାରୁ ୨୧ ଦିନ ପର୍ଯ୍ୟନ୍ତ ଦେବତାଙ୍କ ବାଇଛ(ଛ)ଖେଳା ଜଳକ୍ରୀଡ଼ା—1. The Chandana jātrā भौंभौंरी खेला festival in the month of Baiśākha commencing from the 3rd day of the light fortnight in which idols are taken in boats to tanks and the boats moved round the tank. ୨ । ପାଣିରେ ଡଙ୍ଗାକୁ ବୃତ୍ତାକାରରେ ଘୂରାଇବା ଖେଳ—2. Sporting in water by moving the boat in a circle.

ଭଉଁରି ଖେଳିବା—ଦେ. କ୍ରି—୧ । ଚକ୍ରଭ୍ରମିରୂପ ଜଳକ୍ରୀଡ଼ା କରିବା; Bhaunri khelibā ଜଳରେ ଡଙ୍ଗାକୁ ଚକ୍ରଗତି କରାଇ କ୍ରୀଡ଼ା ବାইচছাখেলা କରିବା—1. To move a boat in water भौंभौंरी खेलना in a circle in a sportive mood. ୨ । ଜଳରେ ଛୋଟ ଭଉଁରି ସୃଷ୍ଟି କରିବା—2. To produce small whorls in the current of water.

ଭଉଁରି ଜାଲ—ଦେ. ବି—ଖେପିଜାଲ—A circular casting Bhaunri jāla মাথাঘুরানী জাল घुमोआ जाल net.

ଭଉଁରି ଦେବା—ଦେ. କ୍ରି—ଘାଣ୍ଟିର ଖାଇବା; ଚକ୍ରାକାରରେ ଗତି Bhaunri debā କରିବା—To whirl round and চক্কর দেওয়া round; to make a circular motion. भौंरी देना (ଉ—ପାପଦଣ୍ଡି ଲଗ ମଙ୍ଗଳପନ୍ତ୍ର ଦିଏ ଭଉଁରି, ବଡ଼ ବଡ଼ଗ୍ରାହକ ବେଢ଼ି କ ଶୋଭ ଚଉଁରି । ଉପେନ୍ଦ୍ରଭଞ୍ଜ ।)

ଭଉଁ(ଅଁ)ରିବା—ଦେ. କ୍ରି—୧ । ଭଅଁର ଦ୍ୱାରା ଛିଦ୍ର କରିବା—Bhaun(an)ribā 1. To bore with a gimlet. ୨ । ছাঁদাকরা, ভওঁরকরা କୌଣସି ବସ୍ତୁକୁ କୁନ୍ଦରେ ବସାଇ କୁନ୍ଦିବା—छेदना 2. To shape a thing round with the help of the turning lath.

ଭଉଣ୍ଡୀ—ଗ୍ରା (ଭଉଣୀ) ବି (ବ୍ୟଙ୍ଗ୍ୟ)—ଭଉଣୀ—Bhaundi Sister.

ଭଉତ(ତୁ)—ଗ୍ରା. ବିଣ (ସଂ. ବହୁ)—ବହୁ; ବହୁତ—Many; much. Bhauta(tu) (ଉ—ନାଇଣୁଥିବ ଭଉତୁ ଅଛସ, ପାଞ୍ଚ କଥା বহুত बहुत ପାଞ୍ଚରେ ଅଛୁ, ଆସି ପଦ୍ମଗନ୍ଧା । ଘକାଶି. ରହ୍ମମାଳୀ ।)

ଭଏ—ଗ୍ରା.ବି (ସଂ. ଭୟ)—Fear; terror. (ଉ—ସେ କରୁଛି ସେଛି Bhae ভয় डर ଧନ୍ୟ କଛି ନାହିଁ ଭଏ । ଶିକସ୍ମଶ୍ୱେଦସ୍ୟ ।)

ଭକ୍ ଭକ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଝଲକା ଝଲକା ବାନ୍ତି Bhak bhak କରିବା ପ୍ରକାର ଉଦ୍ଗୀରଣ ଶବ୍ଦ—1. Said of ভক্ভক্ gusts of vomitting. (ଉ—ଭକ ଭକ ବାନ୍ତାର भक, भक भक् କରଇ ଉକତ, ସେ ଘର ଦେଖୁ ଦେଖୁ କଲା ମୋତେ ବ୍ୟସ୍ତ । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।) ୨ । ବକ ବକ; ନିର୍ବୁଦ୍ଧିଆ ଲୋକପରି ଚାହିଁ ରହିବା—2. To stare like a fool; vacant staer. (ଯଥା—ସେ ମୋ ମୁହଁକୁ ଭକ ଭକ କରି ଅନାଉଛି) । ୩ । ମଦ୍ୟପାୟୀର ମୁଖରୁ ବାହାରିବା ଉଗ୍ର ଗନ୍ଧ—3. Strong smell coming out of the mouth of an inveterate drunkard. (ଯଥା—ତା ମୁହଁରୁ ତାଡ଼ି ଗନ୍ଧ ଭକ ଭକ ହୋଇ ବାହାରୁଛି । ) ୪ । ବେଙ୍ଗମାନଙ୍କର ରବ—4. Croaking sound of frogs. (ଉ—ଭେକ ସେ ବରଷାକୁ ଦେଖି କରି ପାଇ, ବାହାରିଲା ବାଣୀକୁ ଭକ ଭକ ହୋଇ । କୃଷ୍ଣସିଂହ. ମହାଭାରତ. ବନ ।) ୫ । ବକ ବକ; ବକିବା ପ୍ରକାର; ବ କବକାଣି-5. Clattering. (ଯଥା—ବନସାଙ୍କ ଭକ ଭକ କ୍ଲୋଇ ତା ପାଞ୍ଚ ଘୋଳ ହେଉ ନାହିଁ ।)

ଭକ୍ ଭକ୍ କରିବା—ଦେ. କ୍ରି—ବକ ବକ କରିବା; ବୃଥା ଗପିବା—Bhak bhak karibā To talk at random; to chatter. [ଭକ୍ ଭକା(କେ)ଇବା;ଭକ୍ ଭକ୍ ହେବା-ଅନ୍ୟରୂପ] বকবক করা

ଭକ୍ ଭକ୍ ହେବା—ପ୍ରାଦେ. ଯାଜପୁର କ୍ରି—ଘୋଳାବିକା କରିବା—Bhak bhak hebā Aching of limbs due to exhaustion or overwork. (ଯଥା—କାଲ୍ଲାଠି ଭକ୍ ଭକ୍ ହେଉଅଛି ।)

ଭକ୍ ଭକୁମ୍ କୁମ୍—ଦେ. ଅ. (ଧ୍ୱନ୍ୟନୁକରଣ)—ପାରାମାନଙ୍କର ପ୍ରଣୟ-Bhak bhakum kum ବ୍ୟଞ୍ଜକ ଘୁଙ୍ଗୁର—The cooing of বকবকম गुटरकना a pigeon.

ଭକ(ଗ)ତ ବିଟ(ଟା,ଟୋ)ଲ—ଦେ. ବି. ଓ ବିଣ—ଭଣ୍ଡ ଭକ୍ତ—A Bhaka(ga)ta bita(ta,to)la hypocritical devotee; ভক্ত বিটকেল one who feigns devotion.

ଭକଭକି(କୁ)ଆ—ଦେ. ବିଣ (ସଂ. ବାବଦୂକ)—ବାବଦୂକ—Bhakabhaki(ku)ā Clattering; chattering; creaking; a chatter box. बकवादी

ଭକ୍ ଖାଇଯିବା—ଗ୍ରା. କ୍ରି—୧ । ବଫଳ ହୋଇଯିବା—1. (Slang). Bhak khāijibā To miscarry. ୨ । କିଂକର୍ତ୍ତବ୍ୟ-ବିମୂଢ଼ ହେବା—2. To be dumb-founded. বিফল হওয়া থত মত হওয়া भक खाना, भकुआना

ଭକ(ଗ)ତ—ଦେ. ବି (ପଦ୍ୟ) (ସଂ. ଭକ୍ତ)—୧ । ଭକ୍ତ—1. Devotee; votary. Bhaka(ga)ta ভকত भगत [ଉ—ହରି ଭକତ ଯେତେ ଜନ, ତାହାଙ୍କ ଯେ କର୍ଣ୍ଣ-ଭୂଷଣ । ଭାଗବତ. ୪ର୍ଥ ସ୍କନ୍ଧ ।] ୨ । ବିହାରବାସୀ ଯେସ୍ୱଥାସ୍ୱ ବୈଶ୍ୟମାନଙ୍କ ବଂଶୋପାଧିବିଶେଷ (ଏମାନେ ଓଡ଼ିଶାରେ ପୁରୁଷାନୁକ୍ରମେ ବଣିକ୍ ଓ ମହାଜନରୂପେ ବସତି କରୁଅଛନ୍ତି—2. Family title of Bihari Jeswars (Baisyas) domiciled in Orissa for generations as merchants and money-lenders. ୩ । ରାଜପୁତାନାର ଏକ ଜାତି—3 A caste of Hindus in Rajputana. [ଉ—ଏ ଜାତିର କନ୍ୟାମାନେ ନାଚ କରନ୍ତି ଓ ପୁରୁଷମାନେ ଭକ୍ତ ନର୍ତ୍ତକୀମାନଙ୍କ ସଙ୍ଗେ ବାଦ୍ୟ ବଜାନ୍ତି; ଏ ଜାତିର ସ୍ତ୍ରୀମାନଙ୍କୁ ହୁକୀରେ 'ଭଗଭାନ୍' ବୋଲାଯାଏ ।]

ଭକ(ଗ)ତ ବିଶ୍ୱାସ—ଦେ. ବି—(ସଂ. ଭକ୍ତ + ବିଶ୍ୱାସ)—୧ । ବିଶ୍ୱାସୀ Bhaka(ga)ta biswāsa ବା ବିଶ୍ୱାସାସ୍ପଦ ଭକ୍ତ—1. A ভকতের বিশ্বাস भकतर बिसास trusted devotee. [ଉ—ମୁଁ ତାଙ୍କ ଦୂରିଭିବ ଅଣ,ସେ ମୋର ଭକତ ବିଶ୍ୱାସ । ଜଗନ୍ନାଥ. ଭାଗବତ ।] ୨ । ବିଶ୍ୱାସୀ ଓ ଭକ୍ତିଯୁକ୍ତ ବନ୍ଧୁ—2. A trusted and devoted friend. [ଉ—ଆସ ମହତ ମୋର ପାଶ, ତୁ ମୋର ଭକତ ବିଶ୍ୱାସ । ଗଜ ନିସ୍ତାରଣ ।] ୩ । ଭକ୍ତ ଯେଉଁ ପ୍ରଭୁଙ୍କ ଠାରେ ପୂର୍ଣ୍ଣ ବିଶ୍ୱାସ ବା ଆସ୍ଥା ରଖିଥାଏ—3. A master on whom the devotee places utmost

confidence. (ଏ—ବୋଲନ୍ତ ସେ ତୁମ୍ଭେ ଭକତ-ବିଶ୍ୱାସ, ମୋ ଛାର ବ କହ ପାରବ ତୁମ୍ଭ ଯଶ—କୃଷ୍ଣସିଂହ. ମହାଭାରତ. ଆଦ ।)

ଭକ(ଗ)ତି—ଦେ. ( ପଦ୍ୟରେ ବ୍ୟବହୃତ ) ( ସଂ. ଭକ୍ତି )—ଭକ୍ତି—
Bhaka(ga)ti Devotion; religious devotion;
ভকতি भगति characteristic of votaries.
[ ଉ—ନଗମ ବାଞ୍ଛାବୃକ୍ଷ ଫଳ । ଭଗତି କଳ୍ପଲତା ମୂଳ । ପ୍ରେମପଞ୍ଚାମୃତ । ୧୫୨ ।]

ଭକ(ଗ)ତିଆ(ୟା)—ଦେ.ବଣ—(ଅବଜ୍ଞାର୍ଥ; ବ୍ୟଙ୍ଗ୍ୟାର୍ଥ)—୧ । ଭକ୍ତ—
Bhaka(ga)tiā(yā) 1. Devoted, having devotion.
ভক্তিমন্ত; ভণ্ড ভক্ত [ଯଥା—ମଧୁର ଭକତିଆ, ମୁଖ ଭଗତିଆ, ମିଛ
भगतिया ଭଗତିଆ ।] ୨ । ଭକ୍ତିର ବାହ୍ୟ ଲକ୍ଷଣ ଓ ଉଙ୍ଗ-ପ୍ରକାଶକାରୀ କିନ୍ତୁ ହୃଦୟରେ ଭକ୍ତିହୀନ—2. Showing oneself off as devoted, while actually not so. ଦେ. ବ—(ଅବଜ୍ଞା ଓ ବ୍ୟଙ୍ଗ୍ୟାର୍ଥ)—ଭକ୍ତ—Devotee.

ଭକର ଭକର—ଦେ. ଅ—( ଧ୍ୱନ୍ୟନୁକରଣ )—ବକ ବକ ଗର୍ଜିବା
Bhakara bhakara ପ୍ରକାରେ—Said of chattering.
বক বক बकर बकर

ଭକା(କୁ)—ଦେ. ବଣ. ଓ ବ—( ସଂ. ଭେକ )—୧ । ବକା; ବଗା;
Bhakā(ku) ବୋକା; ଓଲୁ; ନିର୍ବୋଧ—Foolish; a fool;
ভেকো ভেকুআ भकुआ (ଭକୁଆ—ଅନ୍ୟରୂପ) a simple-
[ଭକେ(କୋ)ଇ—ସ୍ତ୍ରୀ] ton. ୨ । ହତବୁଦ୍ଧି; କିଂକର୍ତ୍ତବ୍ୟ-ବିମୂଢ଼—2. Dumb-founded; bewildered; nonplussed. ୩ । ମୂର୍ଖ—3. Ignorant; an ignoramus.

ଭକାର—ସଂ. ବ (ଭ+କାର)—୧ । ଭ ଅକ୍ଷର—1. The letter
Bhakār ଭ । ୨ । ଭ ମାତ୍ରା; ଭ ଫଳା—2. The sign of letter ଭ in a dipthong (as in ମ+ଭ=ମ୍ଭ) ୩ । କୁମ୍ଭାରର ଚକ—3. Potter's wheel. ଦେ. ବ.—(ଧ୍ୱନ୍ୟନୁକରଣ)—ବମନ—Vomiting.

ଭକିଆ(ୟା)—ପ୍ରାଦେ. (ସମ୍ବଲପୁର) ବ—ଆଲୁଅ—
Bhakiā(yā) A light.

ଭକିବା—ଦେ. କ୍ରି—(ସଂ. ଭକ୍ଷ ଧାତୁରୁ)—ଭକ୍ଷଣ କରିବା; ଖାଇବା—
Bhakibā ভকা; ভক্ষা; ভক্ষা भकसना To eat.
[ଭକ୍ଷିବା; ଭଖିବା—ଅନ୍ୟରୂପ]

ଭକ୍କୁଡ଼(ର)—ସଂ. ବ (ସଂ. ଭକୁଟ)—ଭାକୁର ମାଛ—Catla Bucha-
Bhakkurda(ra) nani like American sheep's
କାଳୋ head fish.

ଭକୁ—ବୈଦେ. (ଅ) ବଣ—[ ସଂ. ଭକୁବତ୍ (କଷ୍ଟକ) ]—୧ । ଓଲୁ;
Bhaku ভেকো; ভেকুয়া ବୁଦ୍ଧିହୀନ—1. Stupid. ୨ ।
भकवा; भकुवा କିଂକର୍ତ୍ତବ୍ୟବିମୂଢ଼—2. Bewildered; dumb-
(ଭକୁଆ—ଅନ୍ୟରୂପ) founded. [ଉ—ବ୍ୟର୍ଥରେ ତୁମ୍ଭେ ମର ନାହିଁ—ଭକୁଆ ହୋଇ ଲଜ୍ଜୁ ବୋଲିବା ମାତ୍ରକେ ଭେକ ଯାଏ ନାହିଁ । ତୁଳସୀ. ବଚନ ରାମାୟଣ, ଆଦ ।]

ଭକୁଆ କରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଠକିବା—
Bhakuā karibā 1. To cheat a person. ୨ । କୌଣସି
[ଭକୁଆ ବନା(ନେ)ଇବା—ଅନ୍ୟରୂପ) ବ୍ୟକ୍ତିକୁ ଓଲୁ ବୋଲି ପ୍ରତି-
ভেকো বানান ପନ୍ନ କରିବା—2. To make a fool of some person.

ଭକୁଆ ବନିବା—ଦେ. କ୍ରି—୧ । ପ୍ରତାରିତ ହେବା; ଠକାମିରେ ପଡ଼ିବା-
Bhakuā banibā 1. To be made a fool of; to be
(ଭକୁଆ ହେବା—ଅନ୍ୟରୂପ) cheated. ୨ । ବିସ୍ମିତ ହେବା;
ভেকো বনে যাওয়া ଅବାକ୍ ହେବା—2. To be dumb-founded.

ଭକ୍ତ—ସଂ. ବଣ. ପୁଂ (ଭଜ୍ ଧାତୁ=ସେବା କରିବା; ଭାଗ କରିବା +
Bhakta କର୍ତ୍ତୃ. ତ )—୧ । ଭକ୍ତିଯୁକ୍ତ—1. Devoted.
(ଭକ୍ତା—ସ୍ତ୍ରୀ) devout. ୨ । ଅନୁରାଗୀ; ଅନୁରକ୍ତ—2. Attach-
(ଅଭକ୍ତ—ବିପରୀତ) ed to; fond of. ୩ । ଦେବତା ବା
( ଏଥିର ଅପଭ୍ରଂଶ ଭକତ, ଭଗତ । ) ଗୁରୁଙ୍କ ପ୍ରତି ଏକାନ୍ତ ଅନୁରକ୍ତ—3 Pious; devoted to God and elders. ୪ । ରାଜା ବା ଗୁରୁଙ୍କ ପ୍ରତି ଅନୁରକ୍ତ—4. Loyal; faithful. ୫ । ( +କର୍ମ.ତ ) ବିଭକ୍ତ; ଭଙ୍ଗା ହୋଇଥିବା—5. Broken; divided; cut into pieces. ସଂ. ବ—୧ । ସେବକ—1. Servant. ୨ । ଦାସ; ବିଶ୍ୱାସୀ ଭୃତ୍ୟ—2. Devoted servant. ୩ । ପୂଜକ—3 Worshipper; adorer. ୪ । ଶିଷ୍ୟ—4. Disciple. ୫ । ଅନୁରାଗୀ ବ୍ୟକ୍ତି—5. Ardent lover. ୬ । ଭକ୍ତିଯୁକ୍ତ ବ୍ୟକ୍ତି—6. Votary; devotee. ୭ । (ଭଜ୍ ଧାତୁ=ସେବା କରିବା+କର୍ମ. ତ)—ଅନ୍ନ, ଭାତ ରନ୍ଧା ହୋଇଥିବା ଚାଉଳ—8. Boiled rice.

ଭକ୍ତ କର—ସଂ. ବଣ. ( ଭକ୍ତ=ଭାତ+କୃ ଧାତୁ+କର୍ତ୍ତୃ. ଅ )—
Bhakta kara ୧ । ପାଚକ; ଯେ ଭାତ ରାନ୍ଧେ—1. A cook.
(ଭକ୍ତାକାର—ଅନ୍ୟରୂପ) ସଂ. ବ—କୃତ୍ରିମ ଧୂପ—A kind of incense; fumigation.

ଭକ୍ତ ଚରଣ ଦାସ—ଦେ. ବ (ନାମ)—ମଥୁରାମଙ୍ଗଳ ନାମକ ଉତ୍କଳର
Bhakta charaṇa dāsa ଲୋକପ୍ରିୟ ସୁମନୋହର ଗ୍ରନ୍ଥର ରଚୟିତା । ଖ୍ରୀଷ୍ଟ ୧୮ଶ ଶତାବ୍ଦୀରେ ଏ ଖୋର୍ଦ୍ଧାର ସୁନାଖଳା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପ୍ରକୃତ ନାମ ବୈରାଗି ଚରଣ ପଟ୍ଟନାୟକ ଓ 'ଭକ୍ତଚରଣ' ଏହାଙ୍କର ପରବର୍ତ୍ତୀ ବୈଷ୍ଣବ ନାମ । ମଥୁରାମଙ୍ଗଳ ଗ୍ରନ୍ଥର ସୁଲଳିତ ଛାନ୍ଦଗୁଡ଼ିକ ଓଡ଼ିଆ ଓଡ଼ିଆଣୀଙ୍କର ଅମୂଲ୍ୟ କଣ୍ଠହାର । ଏହାଙ୍କର ଅନ୍ୟ ସୁରଚିତ ଗୀତମାନଙ୍କ ମଧ୍ୟରେ କଳାକଳେବର କହାଇ ଚଉପଦୀ ଓ ମନୋବୋଧ ଚଉତିଶା ପ୍ରଧାନ—The poet of Mathuramangala which enjoys a sort of universal popularity in Orissa. He was born in a village named Sunākhalā (18th century). His

original name was Bairagi Charan Patnaik. He assumed the name Bhakta Charan after embracing Vaisnavism and becoming a mendicant. The nectarine strains of Mathuramangal are an invaluable treasure of the Oriya literature. Kaḻākaḻebara Kahnāi Chautiśā and Manobodha Chautiśā are among his most famous poems with which every Oriya is familiar.

**ଭକ୍ତ ଡାକ**—ଦେ. ବି. (୬ଷ୍ଠୀ ତତ୍)—ପ୍ରଭୁଙ୍କ ପ୍ରତି ଭକ୍ତର ଆହ୍ୱାନ—
Bhakta ḍāka The call of the votary to God.
ভক্তের ডাক (ଉ—ତେବେ ଥାନ୍ତୁ ଶ୍ରବଣ ଭକ୍ତ ଡାକକୁ—ଭଜନ ।)

**ଭକ୍ତ ତାରକ**—ସଂ. ବିଣ. (ଭକ୍ତ+ତୃ+କର୍ତ୍ତୃ. ଅକ)—ଭକ୍ତୋଦ୍ଧାରକାରୀ—
Bhakta tāraka Saviour of one's votaries.
(ଭକ୍ତ ତାରଣ—ଅନ୍ୟରୂପ)

**ଭକ୍ତ ଦାସ**—ସଂ. ବିଣ. ( ଭକ୍ତ=ଅନ୍ନ+ଦାସ=ଭୃତ୍ୟ )—୧ । ଅନ୍ନ-
Bhakta dāsa ଦାସ; ଯେ ମୁଠାଏ ଖାଇବାକୁ ପାଇବ ବୋଲି ଭକ୍ତି କରଥାଏ—1. One who becomes attached just to get his two morsels. ୨ । ପରାନ୍ନ-ପ୍ରତିପାଳିତ—2. A toady; a hanger on. ୩ । (ବିନୟୋକ୍ତି) ଭକ୍ତର ଭକ୍ତ; ଦାସାନୁଦାସ; ଭକ୍ତାନୁଭକ୍ତ; ଅତି ବିନୀତ ଭକ୍ତ—3. (a term of humility) A humble devotee; a devotee of the devotes, a servant of a devotee. [ଦ୍ର—କଥାରେ ବିନୟ ପ୍ରକାଶ ପାଇଁ ଲୋକେ କହନ୍ତି ମୁଁ ତାଙ୍କ ଭକ୍ତରୂପେ ପରି-ଗଣିତ ହେବାର ଏମନ୍ତ କି ଭକ୍ତଦାସରୂପେ ପରିଗଣିତ ହେବାର ଯୋଗ୍ୟ ନୁହେଁ ।]

**ଭକ୍ତ ପ୍ରାଣ**—ସଂ. ବିଣ. ପୁଂ (ବହୁବ୍ରୀହି)—ଭକ୍ତ ପ୍ରତି ଅନୁରକ୍ତ; ଭକ୍ତ-
Bhakta prāṇa ବତ୍ସଳ—Fond of one's devotees;
(ଭକ୍ତପ୍ରାଣା—ସ୍ତ୍ରୀ) gracious towards one's devotees.
ସଂ. ବି. (୬ଷ୍ଠୀ ତତ୍)—ଭକ୍ତର ଭକ୍ତିଯୁକ୍ତପ୍ରାଣ—
The heart of a devotee.

**ଭକ୍ତ ବତ୍ସଳ**—ସଂ. ବିଣ. ପୁଂ—ଭକ୍ତ ପ୍ରତି ଅନୁରକ୍ତ—Attached to
Bhakta batsaḻa devotees; gracious to devotees
(ଭକ୍ତବଚ୍ଛଳ—ଅନ୍ୟରୂପ) ସଂ. ବି—ଭଗବାନ—Name of God.
(ଭକ୍ତବତ୍ସଳା—ସ୍ତ୍ରୀ)

**ଭକ୍ତ ବତ୍ସଳତା**—ସଂ. ବି—ଅନୁରକ୍ତ ବ୍ୟକ୍ତି ପ୍ରତି ସ୍ନେହ—
Bhakta batsaḻatā Attachment to devotees.
(ଭକ୍ତବାତ୍ସଲ୍ୟ—ଅନ୍ୟରୂପ)

**ଭକ୍ତ ବିଟ(ଟା, ଟୋ)ଳ**—ଦେ. ବି—ହୀନ ଭକ୍ତ, କପଟ ଭକ୍ତ—
Bhakta biṭa(ṭā, ṭo)ḻa One who feigns devotion;
(ଭକ୍ତ ଭଣ୍ଡ—ଅନ୍ୟରୂପ) a mean votary; a votary in name.
ভক্ত বিটল भक्त बिटेल

**ଭକ୍ତ ମଣ୍ଡ**—ସଂ. ବି—ଭାତର ପେଜ—
Bhakta maṇḍa The scum of boiled rice.
(ଭକ୍ତ ପୁଲାକ—ଅନ୍ୟରୂପ)

**ଭକ୍ତ ରଙ୍କ**—ଦେ. ବି—ଉପବାସ ଯୋଗୁଁ କୃଶ ଭକ୍ତ—A devotee
Bhakta raṅka emaciated on account of religious fasting. (ଉ—ସୁଜନେ । କେବଳ ଭକ୍ତରଙ୍କ ପ୍ରାୟେ, କଚ୍ଛପ, ମତ୍ସ୍ୟ, ମଣ୍ଡୂକମାନଙ୍କର ଦୁର୍ବଳ ହୋଇଗଲା କାୟେ । ରସକଲ୍ଲୋଳ)

**ଭକ୍ତ ରକ୍ଷକ**—ସଂ. ବି—ଯେ ଭକ୍ତକୁ ରକ୍ଷାକରେ—Saviour of
Bhakta rakshaka devotees.
( ଭକ୍ତରକ୍ଷଣ—ଅନ୍ୟରୂପ )

**ଭକ୍ତ ଶାଳା**—ସଂ. ବି—୧ । ପାକଶାଳା; ରୋଷେଇଘର—1. Cook-
Bhakta śāḻā room. ୨ । ସମବେତ ଭକ୍ତମାନଙ୍କର
(ଭକ୍ତଶରଣ—ଅନ୍ୟରୂପ) ଭଜନ ଓ ଧର୍ମୋପଦେଶ ଶ୍ରବଣର ସ୍ଥାନ—
2. A place where devotees congregate for prayer and religious instruction.

**ଭକ୍ତା**—ଦେ. ବି ( ସଂ. ଭୋକ୍ତା )—୧ । ରାଜଦତ୍ତ ବଂଶଗତ ଉପାଧି
Bhaktā ବିଶେଷ—1. A family title. ପ୍ରାଦେ ( ଗଡ଼ଜାତ ଓ ବାରିପଦା ) ବି—୨ । ପଣାସଂକ୍ରାନ୍ତି ଦିନ ଶ୍ରେଷ୍ଠ ଜାତି ଲୋକେ କରୁଥିବା ଝାମୁଯାତ୍ରା—2. A festival peculiar to Orissa when votaries of Durgā walk on fire or prickly thorns. ୩ । ଭକ୍ତାବ୍ରତଧାରୀ ଦଳ—3. The band of these votaries.

**ଭକ୍ତାଧୀନ**—ସଂ. ବିଣ. ପୁଂ—ଭକ୍ତର ବଶୀଭୂତ—Said of God
Bhaktādhina who willingly makes Himself
(ଭକ୍ତାଧୀନା—ସ୍ତ୍ରୀ) subservient to His devotees.

**ଭକ୍ତାନୁରକ୍ତ**—ସଂ. ବିଣ. ପୁଂ—ଭକ୍ତବତ୍ସଳ—Attached to or
Bhaktānurakta fond of devotees.
(ଭକ୍ତାନୁରକ୍ତା—ସ୍ତ୍ରୀ) (ଭକ୍ତାନୁରକ୍ତି—ବି)

**ଭକ୍ତାଶ୍ରୟ**—ସଂ. ବିଣ—ଭକ୍ତର ଆଶ୍ରୟସ୍ଥଳ—
Bhaktāśraya The refuge of a devotee.

**ଭକ୍ତି**—ସଂ. ବି ( ଭଜ୍ ଧାତୁ+ଭାବ. କ୍ତି )—୧ । ପୂଜ୍ୟ ବ୍ୟକ୍ତି ବା
Bhakti ଦେବତାଙ୍କ ପ୍ରତି ଅନୁରାଗ ବା ଶ୍ରଦ୍ଧା—1. Devotion; Devotedness. [ ଦ୍ର—ହିନ୍ଦୁଶାସ୍ତ୍ରମତରେ ଭକ୍ତି ନବଧା—୧ । ନାମଶ୍ରବଣ, ୨ । କୀର୍ତ୍ତନ, ୩ । ସ୍ମରଣ, ୪ । ପଦସେବା, ୫ । ପୂଜା, ୬ । ସ୍ତବ, ୭ । ପରିଚର୍ଯ୍ୟା, ୮ । ସଖ୍ୟଭାବରେ ସମ୍ଭାଷଣ ଓ ୯ । ଆତ୍ମସମର୍ପଣ ।
ଭକ୍ତି ପୁଣି ଦୁଇ ପ୍ରକାରର ବୋଲି ଧରା ଯାଇଅଛି ।
୧ । ଶୁଦ୍ଧା ଭକ୍ତି, ୨ । ଜ୍ଞାନମିଶ୍ରା ଭକ୍ତି ।
୧ । ଭାଗବତରେ ଶୁଦ୍ଧା ଭକ୍ତିର ବିଷୟ ଚର୍ଚ୍ଚା କରାଯାଇ ଅଛି । ସବୁ କର୍ମକୁ ନାରାୟଣଙ୍କଠାରେ ଅର୍ପଣ କରିବ ଏବଂ ଶ୍ରୀକୃଷ୍ଣଙ୍କ ଜନ୍ମକର୍ମବିବରଣ, ନାମଶ୍ରବଣ ଓ ଗାନ କରିବ, ନାମକୀର୍ତ୍ତନ ଓ ନୃତ୍ୟ କରିବ, ସମଗ୍ର ବିଶ୍ୱକୁ ହରିଙ୍କର ଶରୀର ବୋଲି ଜ୍ଞାନ କରିବ ।

୬ । ଅଚ୍ୟୁତାନନ୍ଦ ପ୍ରଭୃତି ପଞ୍ଚ ମହାପୁରୁଷ ବା ପଞ୍ଚସଖା ପ୍ରଭୃତିଙ୍କର ଜ୍ଞାନମିଶ୍ରା ଭକ୍ତିର ପନ୍ଥା—ଏମାନେ କହନ୍ତି—ଯନ୍ତ୍ର, ତନ୍ତ୍ର, ମନ୍ତ୍ର, ଶୂନ୍ୟ, ଜ୍ୟୋତି, ଅବାଡ଼ୁ, ବଜ୍ର, ସମାଧି, ଭସଗୁଣ—ଏସବୁ କ୍ରମାନ୍ୱୟରେ ସାଧକର ସାଧନ ଓ ସିଦ୍ଧିର ସୋପାନ । ସମାଧିପରେ ପରମଦର୍ଶନ ଓ ପରମଦର୍ଶନ ପରେ ଜୀବର ଭଗବତ୍ ଲୀଳାସ୍ୱାଦ ଓ ତନ୍ମୟ ରସଭାବଡୁତ୍ନି ଜ୍ଞାନମିଶ୍ରା ଭକ୍ତିର ଚରମକୋଟି ଅଟେ । ଶୁଦ୍ଧା ଭକ୍ତିର ମଧ୍ୟ ତାହାହିଁ ଲକ୍ଷ୍ୟ । କିନ୍ତୁ ଉଭୟଙ୍କର ସାଧନପ୍ରଣାଳୀ ପୃଥକ୍ । ଗୁଣଭେଦରେ ଭକ୍ତି ୩ ପ୍ରକାର—ସାତ୍ତ୍ୱିକୀ, ରାଜସୀ ଓ ତାମସୀ । ] ୨ । ଗୁରୁଜନଙ୍କ ପ୍ରତି ପ୍ରେମ ବା ସ୍ନେହ—2, Reverence for or attachment for one's elders. ୩ । ରାଜାଙ୍କ ପ୍ରତି ଅନୁରାଗ—3. Loyalty. ୪ । ଉପଚାର; ପୂଜା—4. Worship; homage. ୫ । ( +କର୍ମ. ତି )—ଅଂଶ—5. Portion; share. ୬ । ବିଭାଗ; ବଣ୍ଟନ—6. Division; partition. ୭ । ଅଳଂକାର—7. Ornament ( Apte ). ( ଯଥା—ହେମ ଭକ୍ତିମନ୍ତ କି ସେ ଅବମାର ବେଣୀ । ମହାଯାତ୍ରା । ) ୮ । ରଚନା—8. Composition. ୯ । ଭଙ୍ଗୀ; ଭଙ୍ଗିମା—9. Demeanour; mode; pose. ୧୦ । ଗୌଣୀ ବୃତ୍ତି—10. The connotative attribute of a word. ୧୧ । ସେବା ଶୁଶ୍ରୂଷା ( ହ୍ର. ଶ )—11. Service; attendance. ୧୨ । ଅଙ୍ଗ; ଅବୟବ ( ହ୍ର. ଶ )—12. Limb. ୧୩ । ରେଖାଦ୍ୱାରା କରାଯିବା ବିଭାଗ ( ହ୍ର. ଶ )—13. A division made by means of a line ୧୪ । ଅନୁରାଗ; ସ୍ନେହ ( ହ୍ର. ଶ )—14. Attachment; affection

**ଭକ୍ତିଆ(ୟା)**—ଦେ. ବିଣ—୧ । ଭକ୍ତ—1. Devoted. ୨ । ଭକ୍ତବତ୍ସଳ—2 Attached to one's devotee.
Bhaktiā(yā)
ভক্তিস্বাভাও
( ଉ—ତାହାଙ୍କୁ ଭଗବାନ କହି, ଦାସଭକ୍ତିଆ ଅଟେ ସେହି । ପୂର୍ଣ୍ଣଚନ୍ଦ୍ର. ଚନ୍ଦ୍ରୋଦୟ । ) ୩ । ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ମଧୁରଭକ୍ତିଆ )—3. Having devotion. ଦେ. ବି—୧ । ଭକ୍ତ—1. A devotee. ( ଉ—କି ହେ ଶୃଗାଳ ପଥର ମହିମା, ପ୍ରେମ ଭକ୍ତିଆମାନେ ତା ଜାଣିମା । ପ୍ରାଚୀ. ରହସ୍ୟମଞ୍ଜରୀ । ) ୨ । ଭଣ୍ଡ ଭକ୍ତ—2. A hypocritical devotee.

**ଭକ୍ତି କର**—ସଂ. ବିଣ ( ଭକ୍ତି+କୃ ଧାତୁ+କର୍ତ୍ତୃ. ଅ )—ଭକ୍ତିର ଉତ୍ପାଦକ; ଭକ୍ତିର ଉଦ୍ରେକକାରୀ ( ହ୍ର. ଶ ) —Producing devotion in the mind of a person.
Bhakti kara

**ଭକ୍ତି କରିବା**—ଦେ. କ୍ରି—ହୃଦୟରେ ଶ୍ରଦ୍ଧା କରିବା—To have regard for; to be devoted to.
Bhakti karibā
ভক্তি করা भक्ति करना

**ଭକ୍ତି ଗ୍ରନ୍ଥ**—ସଂ. ବି ( ମ. ପ. କର୍ମ; ଭକ୍ତି+ଗ୍ରନ୍ଥ )—ଯେଉଁ ଗ୍ରନ୍ଥରେ ଭକ୍ତି ବିଷୟ ଆଲୋଚନା କରାଯାଇ ଅଛି—A devotional book.
Bhakti grantha

**ଭକ୍ତି ତତ୍ତ୍ୱ**—ସଂ. ବି ( ଷଷ୍ଠୀ ତତ୍; ଭକ୍ତି+ତତ୍ତ୍ୱ )—ଭକ୍ତି ସମ୍ବନ୍ଧେ ନାନା ତଥ୍ୟ—The principles of or truths about devotion
Bhakti tattwa

**ଭକ୍ତି ଦାତା**—ସଂ. ବିଣ—ଯାହା ମନରେ ଭକ୍ତିରସ ଉଦ୍ରେକ କରାଏ—Infusing or producing the sentiment of devotion in the mind of a person.
Bhakti dātā
ଭକ୍ତିଦାୟକ, ଭକ୍ତିପ୍ରଦ, ଭକ୍ତିପ୍ରଦାୟକ, ଭକ୍ତିସଞ୍ଚାରକ, ଭକ୍ତିସଞ୍ଚାରୀ } ଅନ୍ୟରୂପ

**ଭକ୍ତି ଦେଖା(ଖେ)ଇବା**—ଦେ. କ୍ରି—ଦେବତା ବା ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ଭକ୍ତି ପ୍ରକାଶ କରିବା—To give expression to one's regard or devotion to a Deity or an adorable person.
Bhakti dekhā(khe)ibā
ভক্তি দেখান

**ଭକ୍ତି ପଥ**—ସଂ. ବି ( ୬ଷ୍ଠୀ ତତ୍ )—ହିନ୍ଦୁଶାସ୍ତ୍ରନିର୍ଦ୍ଦିଷ୍ଟ ଭକ୍ତିର ନବଧା ସୋପାନ; ଈଶ୍ୱରଙ୍କୁ ଭକ୍ତିପୂର୍ବକ ଭଜନା କରିବାର ପନ୍ଥା—The mode of approaching God through devotion; the devotional aspect of religion. [ ଦ୍ର—ହିନ୍ଦୁଶାସ୍ତ୍ର ଅନୁସାରେ ଈଶ୍ୱରଙ୍କୁ ତିନିପ୍ରକାର ଭଜନ କରାଯାଇ ପାରେ; ଯଥା—ଜ୍ଞାନମାର୍ଗ ( ବୈରାଗୀଙ୍କର ), କର୍ମମାର୍ଗ ( ସଂସାରର ) ଓ ଭକ୍ତିମାର୍ଗ ( ବୈଷ୍ଣବଙ୍କର ) । ]
Bhakti patha
ଭକ୍ତିପନ୍ଥା, ଭକ୍ତିମାର୍ଗ } ଅନ୍ୟରୂପ
(ଭକ୍ତିବାଟ—ଦେଶଜ ରୂପ)

**ଭକ୍ତି ପର**—ସଂ. ବିଣ. ପୁଂ—ଏକାନ୍ତ ଭକ୍ତ—Exclusively devoted to.
Bhakti para ( ଭକ୍ତିପରା, ଭକ୍ତିପରାୟଣା—ସ୍ତ୍ରୀ )
( ଭକ୍ତିପରାୟଣ—ଅନ୍ୟରୂପ )

**ଭକ୍ତି ପୂତ**—ସଂ. ବିଣ. ପୁଂ ( ୩ୟା ତତ୍; ଭକ୍ତି+ପୂତ )—ଭକ୍ତି ଯୋଗୁଁ ନିର୍ମଳୀକୃତ (ହୃଦୟ)—(heart) Purified with the sentiment of devotion.
Bhakti pūta
( ଭକ୍ତିପୂତା—ସ୍ତ୍ରୀ )
( ଭକ୍ତିଶୁଦ୍ଧ, ଭକ୍ତିଶୋଧିତ—ଅନ୍ୟରୂପ )

**ଭକ୍ତି ପୂର୍ଣ୍ଣ**—ସଂ. ବିଣ ( ୩ୟା ତତ୍;ଭକ୍ତି+ପୂର୍ଣ୍ଣ )—ଭକ୍ତିରସରେ ପୂର୍ଣ୍ଣ—Full of devotion; abounding in devotion.
Bhakti pūrṇna
( ଭକ୍ତିପୂରିତ, ଭକ୍ତିମୟ—ଅନ୍ୟରୂପ )

**ଭକ୍ତି ପୂର୍ବକ**—ସଂ. କ୍ରି. ବିଣ—ଭକ୍ତି ସହିତ; ଭକ୍ତିଯୁକ୍ତ ଭାବରେ—Accompanied with devotion; respectfully; with due devotion.
Bhakti pūrbaka
( ଭକ୍ତିପୁରଃସର—ଅନ୍ୟରୂପ )

**ଭକ୍ତି ପ୍ରବଣ**—ସଂ. ବିଣ ( ଭକ୍ତି+ପ୍ରବଣ=ନମ୍ର )—ଭକ୍ତିଦ୍ୱାରା ବିନୀତ; ଭକ୍ତିରସଦ୍ୱାରା ଦ୍ରବୀଭୂତ ( ହୃଦୟ )—(heart) Moistened; made soft or overflowing with the sentiment of devotion.
Bhakti prabaṇa

ଭକ୍ତିପ୍ଲୁତ—ସଂ. ବିଣ—ଭକ୍ତିଦ୍ୱାରା ପୂର୍ଣ୍ଣ ( ହୃଦୟ )—( heart )
Bhakti pluta Overflowing with devotion.
( ଭକ୍ତିଦ୍ରାବିତ—ଅନ୍ୟରୂପ )

ଭକ୍ତିବାଦ—ସଂ. ବି—ଜ୍ଞାନମାର୍ଗ ଓ କର୍ମମାର୍ଗ ଅପେକ୍ଷା ଭକ୍ତିମାର୍ଗ
Bhakti bāda ଉତ୍କୃଷ୍ଟ ଏହା ପ୍ରତିପାଦନ—The exposition of the theory that devotion is higher than either knowledge or action.

ଭକ୍ତି ବିଭେଦ—ଦେ. ବିଣ—ଯାହା ଭକ୍ତି ବିଷୟକୁ ବିଭେଦ କରିଅଛି
Bhakti bibheda ଅର୍ଥାତ୍ ବିଷଦଭାବରେ ବ୍ୟାଖ୍ୟା କରି ବୁଝାଇ ଦେଇଅଛି—Fully explaining the subject of devotion. ( ଉ—ଆରମ୍ଭ କଲି ଏ ଚରିତ, ଭକ୍ତିବିଭେଦ ଭାଗବତ—ଭୂପତି. ପ୍ରେମପଞ୍ଚାମୃତ । )

ଭକ୍ତି ଭାଜନ—ସଂ. ବିଣ. ପୁଂ. ସ୍ତ୍ରୀ ( ଷଷ୍ଠୀ ତତ୍)—ଭକ୍ତିର ପାତ୍ର; ଯାହାଙ୍କୁ
Bhakti bhājana ଭକ୍ତି କରିବା କର୍ତ୍ତବ୍ୟ; ଶ୍ରଦ୍ଧାସ୍ପଦ—Deserving of respect; adorable; reverend.

ଭକ୍ତି ଭାବ—ସଂ.ବି—ଦେବତାବିଷୟିଣୀ ରତି;ଗୁରୁଜନଙ୍କ ପ୍ରତି ଅନୁରାଗ—
Bhakti bhābu Religion devotion; respect for elders.

ଭକ୍ତିମନ୍ତ—ଦେ, ବିଣ ( ସଂ. ଭକ୍ତିମତ୍ ଶବ୍ଦ )—ଭକ୍ତିମାନ୍—
Bhaktimanta Devoted; devout; regardful.
ভক্তিমন্ত भक्तिमन्त

ଭକ୍ତିମାନ୍—ସଂ. ବିଣ. ପୁଂ ( ଭକ୍ତି+ଅସ୍ତି ଅର୍ଥରେ ମତ୍; ୧ମା. ୧ବ )—
Bhaktimān ଭକ୍ତିଶୀଳ—Devoted; devout.
( ଭକ୍ତିମତୀ—ସ୍ତ୍ରୀ )

ଭକ୍ତିମୂଳକ—ସଂ. ବିଣ ( ବହୁବ୍ରୀହି; ଭକ୍ତି+ମୂଳକ )—ଯାହା ଭକ୍ତି-
Bhaktimūlaka ରସରେ ପୂର୍ଣ୍ଣ; ଭକ୍ତିରସଦ୍ୱାରା ପ୍ରଣୋଦିତ—Prompted by devotion; proceeding from heart's devotion.

ଭକ୍ତି ଯୋଗ—ସଂ. ବି—୧ । କେବଳ ଭକ୍ତିମାର୍ଗ ଅବଲମ୍ବନପୂର୍ବକ
Bhakti joga ଭଗବତ୍ପ୍ରାପ୍ତିରୂପ ସାଧନା—1. Following the mode of attaining God through devotion. ୨ । ଭକ୍ତିମାର୍ଗଦ୍ୱାରା ଭଗବାନଙ୍କ ଆରାଧନା—2. Praying to God through devotion.

ଭକ୍ତି ରସ—ସଂ. ବି—ଭକ୍ତିରୂପ ଆନ୍ତରିକ ଭାବ—The sentiment
Bhakti rasa of devotion; sense of devotion

ଭକ୍ତିଲ—ସଂ. ବିଣ. ପୁଂ ( ଭକ୍ତି+ଲ )—ଭକ୍ତିଦାତା ( ହି. ଶ. )
Bhaktila ( ଦେଖ )—Bhaktidātā ( See ) ସଂ. ବି—
(ଭକ୍ତିଲା—ସ୍ତ୍ରୀ) ଉତ୍ତମ ଘୋଡ଼ା ( ହି. ଶବ୍ଦସାଗର )—A good horse.

ଭକ୍ତି ଲୋକ—ଦେ. ବି—ଭକ୍ତ—A devotee. [ ଉ—କୃଷ୍ଣରେ
Bhakti loka ଭକ୍ତ ଥରନ୍ତି ଯେ ଜନ, ସେ ସଦା ଭକ୍ତିଲୋକ ଜାଣ—ବୃନ୍ଦାବତୀ ଦାସୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । ]

ଭକ୍ତି ଶୂନ୍ୟ—ସଂ. ବିଣ ( ୬ଷ୍ଠୀ ତତ )—୧ । ଯାହାର ଭକ୍ତି ନ ଥାଏ—
Bhakti śūnya 1. Devoid of the sentiment of devotion; lacking piety. ୨ । ଅଭକ୍ତ—2. Impious.
ଭକ୍ତିହୀନ
ଭକ୍ତିରହିତ } ଅନ୍ୟରୂପ
ଭକ୍ତିବିହୀନ

ଭକ୍ତି ସଞ୍ଚାର—ସଂ. ବି ( ୬ଷ୍ଠୀ ତତ୍ )—ହୃଦୟରେ ଭକ୍ତିଭାବର ବା
Bhakti sanchāra ଭକ୍ତିରସର ଉଦୟ—The rising of the sentiment of devotion in a person's mind.
ଭକ୍ତ୍ୟୁଦ୍ଗମ
ଭକ୍ତ୍ୟୁଦ୍ରେକ } ଅନ୍ୟରୂପ

ଭକ୍ତି ସୂଚକ—ସଂ. ବିଣ—ଯାହାଦ୍ୱାରା ଆନ୍ତରିକ ଭକ୍ତି ସୂଚିତ ହୁଏ—
Bhakti sūchaka Indicating the sentiment of devotion.

ଭକ୍ତି ସୂତ୍ର—ସଂ. ବି—ଶାଣ୍ଡିଲ୍ୟ ମୁନିଙ୍କ ରଚିତ ବୈଷ୍ଣବ ସମ୍ପ୍ରଦାୟର ଭକ୍ତି
Bhakti sūtra ବିଷୟକ ସୂତ୍ରଗ୍ରନ୍ଥ ( ହି ଶ )—Name of a treatise on devotion by sage Śāṇḍilya.

ଭକ୍ତୋପସାଧକ—ସଂ. ବି. ପୁଂ ( ୬ଷ୍ଠୀ ତତ୍; ଭକ୍ତ+ଉପସାଧକ )—
Bhaktopasādhaka ୧ । ପାଚକ; ରୋଷେୟା ( ହି. ଶ )—
( ଭକ୍ତୋପସାଧିକା—ସ୍ତ୍ରୀ ) 1. Cook. ୨ । ପରିବେଷକ ( ହି. ଶ. )—2. One who serves food; a waiter at table.

ଭକ୍ଷ୍ ( ଧାତୁ )—ସ—ଭୋଜନ କରିବା; ଖାଇବା—
Bhaksh ( root ) To eat.

ଭକ୍ଷ—ସଂ. ବିଣ ( ଭକ୍ଷ୍ ଧାତୁ+କର୍ମ. ଅ )—୧ । ଆହାର୍ଯ୍ୟ; ଅହାର୍ଯ୍ୟ;
Bhaksha ଭକ୍ଷ୍ୟ—1. To be eaten; eatable. ୨ ।
( ଅଭକ୍ଷ—ବିପରୀତ ) ଯାହା ଖାଇବାର ଉଚିତ—2. Fit to be taken. ବି—୧ । ଖାଦ୍ୟଦ୍ରବ୍ୟ—1. Food. [ ଉ—ଭକ୍ଷ ଦେଲ ବହୁ ମୋ ପୁତ୍ର ପନ୍ନଗଙ୍କୁ—କୃଷ୍ଣସିଂହ. ମହାଭାରତ. ବନ । ] ୨ । ଯେଉଁ ଖାଦ୍ୟ ଖାଇବାର ଯୋଗ୍ୟ ବା ଉଚିତ—2. Fit or proper food. ୩ । ( + ଭାବ. ଅ ) ଭୋଜନ—3. Eating; taking meal. [ ଉ—ରାମ ସଙ୍ଗେ ଅସୁରୀ ବନ୍ଧୁ ସମର କରି ମୁନିଙ୍କି କରୁଥିଲା ଭକ୍ଷ—ବିଚନ୍ଦ୍ର. ରାମାୟଣ ।]

ଭକ୍ଷକ—ସଂ. ବିଣ. ପୁଂ ( ଭକ୍ଷ୍ ଧାତୁ+କର୍ତ୍ତୃ. ଅକ)—ଖାଦକ; ଭୋଜନ-
Bhakshaka କାରୀ—Eating. ( ଯଥା—ଗୋମାଂସଭକ୍ଷକ—
(ଭକ୍ଷିକା—ସ୍ତ୍ରୀ) ହେଡ଼ାଖିଆ ( beef-eating), ନରଭକ୍ଷକ—ଯେ ନରମାଂସ ଖାଏ ( carnival ), ଜୀବ ଭକ୍ଷକ, ମାଂସ ଭକ୍ଷକ—ମାଂସାଶୀ ( carnivorous ), ଫଳ ଭକ୍ଷକ—ଫଳାହାରୀ ( vegetarian ) । )

ଭକ୍ଷ କାର—ସଂ. ବି (ଭକ୍ଷ+କୃ ଧାତୁ+କର୍ତ୍ତୃ. ଅ )—ଗୁଡ଼ିଆ (ହି. ଶ)—
Bhaksha kāra Confectioner.

ଭକ୍ଷଣ—ସଂ. ବି ( ଭକ୍ଷ୍+ଭାବ. ଅନ )—ଭୋଜନ; ଖାଇବା—
Bhakshaṇa Eating; partaking of food.

ଭକ୍ଷଣ କରିବା—ଦେ. କ୍ରି ( ସଂ. ଭକ୍ଷଣ )—ଖାଇବା; ଭକ୍ଷିବା—
Bhakshaṇa kariba ভক্ষণ করা भक्षण करना To eat.

ଭକ୍ଷଣୀୟ—ସଂ. ବିଣ ( ଭକ୍ଷ୍ ଧାତୁ+କର୍ମ. ଅନୀୟ )—ଭକ୍ଷଣ କରିବାର
Bhakhaṇiya ଯୋଗ୍ୟ—Eatable. ବି—ଖାଦ୍ୟଦ୍ରବ୍ୟ—Eatables; food.

**ଭକ୍ଷ ପାନ**—ଦେ. ବି ( ଭକ୍ଷ + ପାନ )—୧ । ଆହାର—1. Food.
Bhaksha pāna [ ଉ—ତାହାଙ୍କୁ କଲ୍ପ ଭକ୍ଷପାନ । ଦେଖାଇ ଖାଦ୍ୟପାନ୍, ଅନ୍ନପାନୀ ହରଷ ବିଧାନ—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ] ୨ । ଭୋଜନ—2. Eating. ୩ । ଭୋଜନ ଓ ପାନ—3. Eating and drinking. ୪ । ଖାଦ୍ୟଦ୍ରବ୍ୟ ଓ ପାନୀୟଦ୍ରବ୍ୟ—4. Food and drink

**ଭକ୍ଷ(କ୍ଷ୍ୟ) ଭୋଜନ**—ସ. ବି—ଭକ୍ଷ୍ୟଦ୍ରବ୍ୟ ଖାଇବା—Taking of
Bhaksha(kshya) bhojana proper food. ଦେ. ବି—
ଖାଓୟା ଦାଓୟା **खाना पीना** ୧ । ଉତ୍ସବାଦିରେ ଆପଣାର କୁଟୁମ୍ବ ଓ ବନ୍ଧୁମାନଙ୍କୁ ଖାଇବାକୁ ଦେବା—1. Feeding of one's kinsmen and relatives on ceremonial occasions. ୨ । ଜାତି ଭୋଜି—2. Caste dinner. ୩ । ସାମାଜିକ ଅନୁଷ୍ଠାନରେ ପରସ୍ପରଙ୍କ ଘରେ ଅନ୍ନଭୋଜନରୂପ ସମ୍ପର୍କ—3. The relationship between two persons of the same caste dining at each other's house on ceremonial feasts.

**ଭକ୍ଷ(କ୍ଷ୍ୟ)ଭୋଜି(ଜୀ)**—ଦେ. ବି—ଯେଉଁ ବ୍ୟକ୍ତିମାନେ କୌଣସି
Bhaksha(kshya)bhoji(jī) ବ୍ୟକ୍ତିର ଘରେ ଉତ୍ସବାଦି
ভক্ষভোজী ସମୟରେ ନିମନ୍ତ୍ରିତ ହୋଇ ଅନ୍ନଭୋଜନ କରନ୍ତି; ଜାତି ଭାଇ—Persons who partake of cooked food at a person's house on occasions of caste-dinners. [ ଦ୍ର—ସାମାଜିକ ଭୋଜିରେ ଆପଣା ଜ୍ଞାତି କୁଟୁମ୍ବ (kinsmen) ବନ୍ଧୁବାନ୍ଧବ (realatives) ଙ୍କ ଛଡ଼ା ଏକଜାତୀୟ ଅନ୍ୟ ଯେଉଁ ବ୍ୟକ୍ତିମାନଙ୍କୁ ଅନ୍ନଭୋଜନ ନିମନ୍ତେ ଡକାଯାଏ ସେମାନଙ୍କୁ ଭକ୍ଷଭୋଜୀ ବୋଲାଯାଏ । ]

**ଭକ୍ଷୟିତବ୍ୟ**—ସ. ବିଣ ( ଭକ୍ଷ୍ ଧାତୁ + କର୍ମ. ତବ୍ୟ )—୧ । ଭକ୍ଷଣ-
Bhakshayitabya ଯୋଗ୍ୟ; ଭକ୍ଷ୍ୟ; ଭକ୍ଷଣୀୟ—1. Edible. ୨ । ଯାହା ଖିଆଯିବ—2. To be eaten.

**ଭକ୍ଷାଭକ୍ଷ**—ସ. ବି (ଭକ୍ଷ + ଅଭକ୍ଷ)—ଖାଦ୍ୟାଖାଦ୍ୟ; ଭକ୍ଷାଭକ୍ଷ୍ୟ; ଭକ୍ଷ ଓ
Bhakshā bhaksha ଅଭକ୍ଷଦ୍ରବ୍ୟ—Proper food and improper food; food proper to be taken and food forbidden by śāstric injunctions to be taken.

**ଭକ୍ଷାଶୀ**—ଦେ. ବି—୧ । ଭୋଜନପ୍ରିୟ—1. Fond of eating;
Bhakshāśī voracious. [ ଉ—ଦ୍ୱିଜମାନେ ତ
ভোজনবিলাসী ଅଟନ୍ତି ଭକ୍ଷାଶୀ—କୃଷ୍ଣସିଂହ. ମହାଭାରତ. ସଭା । ] ୨ । ଭୋଜନାର୍ଥୀ—2. Desirous of taking a meal.

**ଭକ୍ଷିତ**—ସ. ବିଣ (ଭକ୍ଷ୍ + କର୍ମ. ତ)—ଭୁକ୍ତ—
Bhakshita Eaten.

**ଭକ୍ଷିତବ୍ୟ**—ଦେ. ବିଣ (ସ. ଭକ୍ଷୟିତବ୍ୟ)—ଭକ୍ଷୟିତବ୍ୟ ( ଦେଖ )—
Bhakshitabya Bhakshayitabya ( See ).
[ ଦ୍ର—ମନିଅର୍ ଉଇଲିଅମ୍ସଙ୍କ ଇଂରାଜୀ ଅକ୍ଷରରେ ମୁଦ୍ରିତ ସଂସ୍କୃତ କୋଷରେ ଓ ଆପ୍ଟେଙ୍କ କୋଷରେ 'ଭକ୍ଷୟିତବ୍ୟ, ଭକ୍ଷ୍ୟ' ଶବ୍ଦ ଅଛି; କିନ୍ତୁ 'ଭକ୍ଷିତବ୍ୟ' ରୂପ ନାହିଁ । ସଂସ୍କୃତରେ ଭକ୍ଷିତବ୍ୟ ଶବ୍ଦର ବ୍ୟବହାର ମିଳୁ ନାହିଁ । ]

**ଭକ୍ଷିବା**—ଦେ. ( ପଦ୍ୟ ) କ୍ରି (ସ. ଭକ୍ଷ୍ ଧାତୁ )—ଖାଇବା—
Bhakshibā To eat. [ ଉ—ନାନାଜାତିର ଭକ୍ଷ୍ୟମାନଙ୍କୁ
ভক্ষা **भखना** ଭକ୍ଷିଲେ—କୃଷ୍ଣସିଂହ ମହାଭାରତ. ଆଦି । ]

**ଭକ୍ଷୀ**—ସ. ବିଣ. ପୁଂ ( ଭକ୍ଷ୍ ଧାତୁ + କର୍ତ୍ତୃ. ଇନ୍; ୧ମା ୧ବ )—
Bhakshī ଭକ୍ଷଣକାରୀ—Eating.
( ଭକ୍ଷିଣୀ—ସ୍ତ୍ରୀ )

**ଭକ୍ଷ୍ୟ**—ସ. ବିଣ [ ଭକ୍ଷ୍ ଧାତୁ + କର୍ମ. ଯ ]—୧ । ଭକ୍ଷଣୀୟ; ଖାଦ୍ୟ—
Bhakshya 1. Eatable. ୨ । ଭୋଜନ କରିବାର
ବିପରୀତ—ଅଭକ୍ଷ୍ୟ ଉପଯୁକ୍ତ ବା ଯୋଗ୍ୟ—2. Fit or proper to be eaten. [ ଉ—ପଡ଼ିଏ ଯାହା ମୋର ନ କରନ୍ତି ଭକ୍ଷ—କୃଷ୍ଣସିଂହ ମହାଭାରତ. ବନ ] । ବି—୧ । ଖାଦ୍ୟଦ୍ରବ୍ୟ—1. Food. ୨ । ଅନିଷିଦ୍ଧ ଖାଦ୍ୟ—2. Unforbidden food.

**ଭକ୍ଷ୍ୟ କରିବା**—ଦେ. କ୍ରି [ ସ. ଭକ୍ଷ ]—ଭକ୍ଷଣ କରିବା; ଉଦରସ୍ଥ କରିବା-
Bhakshya karibā To eat up. [ ଉ—
ভক্ষকরা **भखना** ତାହାର ନାହିଁ ପକ୍ଷାପକ୍ଷ. ସକଳ କରଇ ସେ ଭକ୍ଷ—ଭାଗବତ. ୩ୟ ସ୍କନ୍ଧ । ]

**ଭକ୍ଷ୍ୟକାର**—ସ. ବି (ଭକ୍ଷ୍ୟ + କୃ + କର୍ତ୍ତୃ. ଅ)—୧ । ଯେ ଖାଦ୍ୟଦ୍ରବ୍ୟ
Bhakshyakāra ପ୍ରସ୍ତୁତ କରେ—1. One who cooks food. ୨ । ହୋଟେଲ୍‌ବାଲା—2. Hotel-keeper. ୩ । ଆପୂପିକ; ପିଷ୍ଟକବିକ୍ରେତା—3. A seller of cakes. ୪ । ଗୁଡ଼ିଆ—4. Confectioner.

**ଭକ୍ଷ୍ୟ ଦ୍ରବ୍ୟ**—ସ. ବି (କର୍ମଧା; ଭକ୍ଷ୍ୟ + ଦ୍ରବ୍ୟ)—୧ । ଖାଦ୍ୟଦ୍ରବ୍ୟ—
Bhakshya drabya 1. Food. ୨ । ଭୋଜନସାମଗ୍ରୀ—2. Victuals. ୩ । ଭୋଜ୍ୟଦ୍ରବ୍ୟ—3. Proper food.

**ଭକ୍ଷ୍ୟାବଶିଷ୍ଟ**—ସ. ବିଣ [ ୬ଷ୍ଠୀ ତତ୍ ]—ଭୁକ୍ତାବଶିଷ୍ଟ; ଉଚ୍ଛିଷ୍ଟ;
Bhakshyābaśishṭa ଅଇଁଠା—Left after meals; left at the table.

**ଭକ୍ଷ୍ୟାବଶେଷ**—ସ. ବି—ଭୁକ୍ତାବଶିଷ୍ଟଦ୍ରବ୍ୟ—
Bhakshyābaśesha Leavings of a dinner.

**ଭକ୍ଷ୍ୟାଭକ୍ଷ୍ୟ**—ସ. ବିଣ (ଦ୍ୱନ୍ଦ୍ୱ)—ଖାଦ୍ୟାଖାଦ୍ୟ ବସ୍ତୁ—
Bhakshyābhakshya Proper and improper food.

**ଭକ୍ଷ୍ୟାଭକ୍ଷ୍ୟ ବିଚାର**—ସ. ବି—ଖାଦ୍ୟ ଦ୍ରବ୍ୟ ଓ ଅଖାଦ୍ୟ ଦ୍ରବ୍ୟ
Bhakshyābhakshya bichāra ସମ୍ବନ୍ଧେ ବିବେଚନା—Consideration of what food is proper and what food is not proper to be taken.

ଭକ୍ଷିବା—ଦେ. କ୍ରି ( ସଂ. ଭକ୍ଷ୍ ଧାତୁ )—ଖାଇବା—To eat.
Bhakhibā [ଉ—ଜୀବନ ରକ୍ଷିବାକୁ ଭକ୍ଷିଲେ ମାଷ
ଭଖା भखना ଦାଉ—କୃଷ୍ଣସିଂହ. ମହାଭାରତ. ବନ ।]

ଭଖେନ—ପ୍ରାଦେ ( ସମ୍ବଲପୁର )—ବ—ଢଗ—
Bhakhen A popular saying.

ଭଖେନ ମାର୍ବା—ପ୍ରାଦେ ( ସମ୍ବଲପୁର )—କ୍ରି—ଢଗ ମେଲବା—
Bhakhen mārbā To utter a popular saying.

ଭଗ—ସଂ. ବ—(ଭଜ୍ ଧାତୁ=ଭଜନା କରିବା; ସେବା କରିବା +କର୍ମ-
Bhaga ଅ (ଗ)—୧ । ଯୋନି; ସ୍ତ୍ରୀଚିହ୍ନ—1. Vagina; vulva. ୨ । ଷଡ଼ୈଶ୍ୱର୍ଯ୍ୟ (ଯଥା—ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶଃ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ )—2. Glory; halo; divinity. ୩ । ଜ୍ଞାନ—3. Wisdom; knowledge. ୪ । ବୈରାଗ୍ୟ—4. Absence of concern with worldly matters. ୫ । ଶ୍ରୀ; ଲକ୍ଷ୍ମୀ; ସୌଭାଗ୍ୟ—5. Prosperity, affluence. ୬ । ଯଶଃ—6. Renown; fame. ୭ । ସୌନ୍ଦର୍ଯ୍ୟ—7. Beauty; charm. ୮ । ଉତ୍କର୍ଷ—8. Excellence. ୯ । ମାହାତ୍ମ୍ୟ—9. Greatness. ୧୦ । ଶକ୍ତି ବା ବୀର୍ଯ୍ୟ—10. Power; might. ୧୧। ଧର୍ମ—11. Religion; law. ୧୨ । ମୋକ୍ଷ; ମୁକ୍ତି—12. Salvation; beatitude. ୧୩ । ଗୁହ୍ୟ ଦେଶ—13. Anus. ୧୪ । ଚେଷ୍ଟା; ଯତ୍ନ—14. Care; effort. ୧୫ । ଇଚ୍ଛା—15. Desire; wish; intention. ୧୬ । ଦ୍ୱାଦଶାଦିତ୍ୟ ମଧ୍ୟରୁ ଏକତମ—16. One of the twelve shining deities. ୧୭ । ସୂର୍ଯ୍ୟ—17. The sun. ୧୮ । ଚନ୍ଦ୍ର—18. The moon. ୧୯ । ପୂର୍ବଫାଲ୍‌ଗୁନୀ ନକ୍ଷତ୍ର—19. The eleventh asterism. ୨୦ । ଯତ୍ନ—20. Care.

ଭଗଣ—ସଂ. ବ—୧ । (ଭ=ନକ୍ଷତ୍ର+ଗଣ=ସମୂହ)—ମେଷାଦି ଦ୍ୱାଦଶ
Bhagaṇa ରାଶିର ଚକ୍ରଅଡ଼େ କୌଣସି ଗ୍ରହର ଥରେ ମାତ୍ର ଭ୍ରମଣ; ଖଗୋଳରେ କୌଣସି ଗ୍ରହର ଥରେ ଘୂରିବା—The revolution of a planet round the 12 signs of the zodiac. ୨ । (ଛନ୍ଦଃଶାସ୍ତ୍ର) ଆଦ୍ୟବର୍ଣ୍ଣ ଗୁରୁ ଓ ଅନ୍ତ୍ୟ ୨ ବର୍ଣ୍ଣ ଲଘୁଥିବା ଗଣ (ଯଥା—ପାଠନ, ଭୋଜନ)—2. (Prosody) A triplet whose first letter is long and subsequent 2 letters are short.

ଭଗତ—ଦେ. ବ—୧ । ଲୋକଙ୍କୁ ଦିଆଯିବା ନାମ—1. Name
Bhagata given to persons. ୨ । ଭକତ (ଦେଖ)—
ଭଗତ भगत 2. Bhakata (See).

ଭଗଦତ୍ତ—ସଂ. ବ (ନାମ)—୧ । ପ୍ରାଗ୍‌ଜ୍ୟୋତିଷପୁର; (କାମରୂପ)ର
Bhagadatta ଅଧିପତି ନରକ ବା ନରକାସୁର ରାଜାର ଜ୍ୟେଷ୍ଠ ପୁତ୍ର—1. The name of a king; the son of Narakāsura. [ଦ୍ର—ଯୁଧିଷ୍ଠିରଙ୍କ ରାଜସୂୟ ସମୟରେ ୮ ଦିନ ଯୁଦ୍ଧପରେ ଏ ଅର୍ଜୁନଙ୍କ ଦ୍ୱାରା ପରାଜିତ ହୋଇ ଥିଲା । ମହାଭାରତ ଯୁଦ୍ଧରେ ଏ କୌରବଙ୍କ ପକ୍ଷରେ ଯୁଦ୍ଧ କରି ଅର୍ଜୁନଙ୍କ ଦ୍ୱାରା ନିହତ ହୋଇଥିଲା—ହି. ଶ ] ୨ । ଦୁର୍ଯ୍ୟୋଧନର ପତ୍ନୀ ଭାନୁମତୀର ପିତା—2. Father of Bhānumati, the wife of Durjyodhana. (ଉ—ଭଗଦତ୍ତ ଆଦି ଯେତେକ ଷତ୍ରିୟ. କାହିଁବେ ସେ ଭୁମିର ଶତ୍ରୁଙ୍କର ଖାପ୍ସ । କୃଷ୍ଣସିଂହ. ମହାଭାରତ. ବନ ।)

ଭଗନ—ଗ୍ରା. ବିଣ (ପଦ୍ୟ) (ସଂ. ଭଗ୍ନ)—ଭଗ୍ନ—Broken. (ଉ—
Bhagana ବିଧାରେ ସେ ସାନୁମାନ ଶତ ଯୋଜନ ଭଗନ ମୁଷ୍ଟି
ଭଗନ ପ୍ରହାରେ ତାହାକୁ ମାରି ସେ । ବୈଦେହୀଶବିଳାଶ)—୧ । ଭାଙ୍ଗିଯିବା; ଭଙ୍ଗ—1. Breaking. ୨ । ବାଧା—2. Obstruction.

ଭଗନ କରିବା—ଗ୍ରା. କ୍ରି (ସଂ. ଭଗ୍ନ)—୧ । ଭାଙ୍ଗିବା—1. To
Bhagana karibā break. ୨ । ବାଧା ଦେବା—2. To
ଭଗ୍ନକବା interrupt; to baffle. [ଉ—ଅଣା ଭଗନ କଲେ ଗର୍ଭହତ୍ୟା ଦୋଷ, କରୁଛନ୍ତି ଋଷିଏ ଶାସ୍ତ୍ରରେ ପ୍ରକାଶ—କୃଷ୍ଣସିଂହ. ମହାଭାରତ. ଶାନ୍ତି ।]

ଭଗନ୍ଦର—ସଂ.ବ—[ଭଗ=(ଗୁହ୍ୟଦ୍ୱାରକୁ)+ଦୃ ଧାତୁ (ବିଦାରିତ କରିବା +
Bhagandara ଅ]—ମଳଦ୍ୱାରରେ ବ୍ରଣ ବା କ୍ଷତ—Anal fistula; fistula in ano. [ଦ୍ର—ଏହା ଗୁଦାବର୍ତ୍ତ ବା ଗୁହ୍ୟଦ୍ୱାରର ବାହାରେ ଜନ୍ମେ । ଏ ବ୍ରଣ ନ ଫୁଟିଯିବା ପର୍ଯ୍ୟନ୍ତ ଏହାକୁ ପୀଡ଼କା ବୋଲାଯାଏ ଓ ଫୁଟିଗଲେ ଭଗନ୍ଦର ବୋଲାଯାଏ । ଏ ବ୍ରଣ ଫୁଟିଗଲେ ନାଳିଅ ଫେଣ ଓ ପୂଜ ବାହାରେ ଓ ଛିଦ୍ର ଗଭୀର ହୋଇଗଲେ ମଳ ଓ ମୂତ୍ରମାର୍ଗ ସଙ୍ଗେ ମିଳିଯାଏ—ହି. ଶ ]

ଭଗବତ—ଗ୍ରା. ବ, (ସଂ ଭଗବତ୍ ଶବ୍ଦ)—୧ । ଭଗବାନ୍—1. God.
Bhagabata (ଉ—ମହିମା ତୋହର ଅନନ୍ତ, ନମସ୍ତେ ବ୍ରହ୍ମ ଭଗବତ । ଭାଗବତ. ୧୨ଶ ସ୍କନ୍ଧ ।) ୨ । ଭାଗବତ
भगवन्त (ଦେଖ)—2. Bhāgabata (See)

ଭଗବତ ଗାଦି(ଦୀ)—ଗ୍ରା. ବ—ଭାଗବତ ଗାଦି; ଭାଗବତ ଓ
Bhagabata gadi(dī) ଅନ୍ୟାନ୍ୟ ଧର୍ମଗ୍ରନ୍ଥ ଓ ତାଳପତ୍ର ପୋଥି ଆଦି ରଖାଯାଇ ପୂଜା କରା ଯାଉଥିବା ଅସ୍ଥାନ—A heap of Bhāgabat books kept together and worshipped.
ଭାଗବତଗୋସାଇଁ, ଭାଗବତଗାଦି, ଗାଦିଗୋସାଇଁ } ଅନ୍ୟରୂପ
[ ଦ୍ର—ବଙ୍ଗଦେଶରେ ଭାଗବତ ଗାଦି, ଭାଗବତ ଗାଦିର ପୂଜା ଓ ଭାଗବତ ଘର ପ୍ରଥା ନାହିଁ ।

ଭଗବତ ଘର—ଗ୍ରା. ବ—୧ । ଭାଗବତ ଘର; ଯେଉଁ ଘରେ ଭାଗବତ
Bhagabata ghara ପୋଥି ରଖା ଯାଇ ପୂଜା କରାଯାଏ—
ଭଗବତ ଟୁଙ୍ଗି [ଙ୍ଗୀ], ଭାଗବତ ଟୁଙ୍ଗି } —ଅନ୍ୟରୂପ 1. A room where Bhāgabat books are kept and worshipped. ୨ । ଗ୍ରାମରେ ଥିବା ସାଧାରଣ ଗୃହ, ଯେଉଁଠାରେ ଭାଗବତ ଗାଦି ଥାଏ ଓ ଯେଉଁଠାରେ ସନ୍ଧ୍ୟାବେଳେ ପୁରାଣପାଠ ହୁଏ—

2. A common room of a village where Bhāgabata books are worshipped and read every day or often. [ଦ୍ର—ଏହା ଉତ୍କଳୀୟ ଗ୍ରାମମାନଙ୍କର ବିଶେଷତ୍ୱ । ପ୍ରାୟ ପ୍ରତ୍ୟେକ ସକ୍ଷମ ହିନ୍ଦୁ ଗୃହସ୍ଥଙ୍କର ଘରେ ଭାଗବତ ଗାଦି ଅଛନ୍ତି । ଏ ଭାଗବତ ଗାଦିରେ ଭାଗବତ ଓ ଅନ୍ୟାନ୍ୟ ପୁରାଣମାନ ମଧ୍ୟ ଥାଏ ଓ ପ୍ରତିଦିନ ଏ ଗାଦିକୁ ନୈବେଦ୍ୟାଦିଦ୍ୱାରା ପୂଜା କରାଯାଏ । ପ୍ରତି ଗ୍ରାମରେ ଗୋଟିଏ ସ୍ୱତନ୍ତ୍ର ଘର ଥାଏ, ସେ ଘରେ ଭାଗବତ ଗାଦି ପୂଜା କରାଯାଏ ଓ ପ୍ରତିଦିନ ସନ୍ଧ୍ୟାବେଳେ ସେଠାରେ ପୁରାଣପାଠ ବେଳେ ଅନେକ ଗ୍ରାମବାସୀ ରୁଣ୍ଡ ହୋଇ ଭାଗବତ ଶୁଣନ୍ତି ଓ ଆଗନ୍ତୁକ ଅତିଥିମାନେ ମଧ୍ୟ ସେଠାରେ ଆଶ୍ରୟ ପାଆନ୍ତି ।]

ଭଗବତ୍(ତ)ଗି(ଗୀ)ତା—ଦେ. ବି—[ସଂ. ଭଗବଦ୍ ଗୀତା]—ଭଗବଦ୍ ଗୀତା (ଦେଖ)
Bhagabat (ta) gi (gī) tā — Bhagabad gitā (See)

ଭଗବତୀ—ସଂ. ବି. ସ୍ତ୍ରୀ (ଭଗବତ୍ + ସ୍ତ୍ରୀ. ଈ)—୧ । ଦୁର୍ଗା—
Bhagabatī 1. Goddess Durgā ୨ । ଦୁର୍ଗା—2. Durgā. ୩ । ସରସ୍ୱତୀ (ହି. ଶ)—3. Saraswatī. ୪ । ଗଙ୍ଗା [ହି·ଶ]—4. The Ganges [personified] ଦେ. ବି—ପୁରୀ ଜିଲ୍ଲା ବାଣପୁରରେ ବିରାଜିତା ପ୍ରସିଦ୍ଧ ଦୁର୍ଗା ପ୍ରତିମା—An idol of Durgā at Banpur in the Puri district. [ଦ୍ର—ସନ୍ଧି ଲଙ୍ଘଣ ଭଗବତୀଙ୍କର । ରାଧାନାଥ ।] [ଦ୍ର—ଏ ପାରିକୁଦ ରାଜପରିବାରଙ୍କ ଇଷ୍ଟଦେବତା । ଆଗେ ପାରିକୁଦ ଓ ବାଣପୁରର ଏକ ରାଜା ଥିଲେ । ଏହାଙ୍କର ଦେବୋତ୍ତର ସମ୍ପତ୍ତି ଅଛି ପୂଜା ପୂଜା କରିବା ନିମନ୍ତେ କଟକର ଜିଲ୍ଲା ଜଜ ସାହେବଙ୍କ ନିଯୁକ୍ତ ଗୋଟିଏ କମିଟି ଅଛି ।]

ଭଗବତ୍ ପ୍ରେମ—ସଂ. ବି—(୬ଷ୍ଠୀ ତତ୍) —ଭଗବଦ୍ ଭକ୍ତି—
Bhagabat-prema Devotion to God.

ଭଗବତ୍ ପ୍ରେମିକ—ସଂ. ବି. ପୁଂ—ଭଗବଦ୍ ଭକ୍ତ; ଭଗବାନଙ୍କଠାରେ
Bhagabat premika ପ୍ରେମଯୁକ୍ତ—Devoted,
(ଭାଗବତ ପ୍ରେମୀ—ଅନ୍ୟରୂପ)
ଭାଗବତ ପ୍ରେମିକା, ଭାଗବତ ପ୍ରେମିଣୀ—ସ୍ତ୍ରୀ

ଭଗବନ୍ତ—ଗ୍ରା. ବିଣ ( ସଂ. ଭଗବତ୍ )—ପୂଜ୍ୟ—Adorable. ବି—
Bhagabanta ଭଗବାନ୍, ଈଶ୍ୱର; ବିଷ୍ଣୁ—God; Bishnu.
( ଉ—ନିର୍ଗୁଣ ଆତ୍ମା ଗୁଣବନ୍ତ, ନମସ୍ତେ ପ୍ରଭୁ ଭଗବନ୍ତ । ଭଗବତ. ୧୦ମ । )

ଭଗବଦ୍ ଗୀତା—ସଂ. ବି ( ମ. ପ. ଲୋ; ଭଗବତ୍—ଭଗବାନଙ୍କ
Bhagabad gitā ମୁଖୋଚ୍ଚାରିତ + ଗୀତା )—କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ରରେ ଯୁଦ୍ଧାର୍ଥ ଉପସ୍ଥିତ ଅର୍ଜୁନ ଓ ତାଙ୍କ ସାରଥି ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଚ୍ଛଳରେ ଜ୍ଞାନଯୋଗ, ଭକ୍ତିଯୋଗ ଓ କର୍ମଯୋଗ ସମ୍ବନ୍ଧୀୟ ଧାର୍ମିକ ତତ୍ତ୍ୱ ଉପଦେଶ—Bhagabatgita ( Lit. Lord's Hymns ) a spiritual desertation on the principles of Hindu religion emanating from the mouth of Sreekrushna and addressed to Arjuna. [ ଦ୍ର—ଏହା ମହାଭାରତର ଭୀଷ୍ମପର୍ବର ଅନ୍ତର୍ଗତ; ଏହା ଉପନିଷଦ ବା ବେଦାନ୍ତର ସାରାଂଶ । ଅର୍ଜୁନ ସମରପ୍ରାଙ୍ଗଣରେ ଉପସ୍ଥିତ ହୋଇ ଅପର ପକ୍ଷରେ ଯୁଦ୍ଧାର୍ଥ ସଜ୍ଜିତ ଆପଣାର ଭାଇ ବନ୍ଧୁ କୁଟୁମ୍ବଙ୍କୁ ଦେଖି ରାଜ୍ୟଲାଭାର୍ଥ ଏମାନଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଉଥିଲେ ଏହା ଭାବି ଯୁଦ୍ଧ କରିବେ ନାହିଁ ବୋଲି ଅସ୍ତ୍ରତ୍ୟାଗ କରି ବିଷଣ୍ଣ ହେଲେ । ଅର୍ଜୁନଙ୍କର ସାରଥି ଶ୍ରୀକୃଷ୍ଣ ସେହିଠାରେ ଅର୍ଜୁନଙ୍କୁ ଉପଦେଶ ପ୍ରଦାନପୂର୍ବକ ଅର୍ଜୁନଙ୍କ ମୋହ ଦୂର କରି କର୍ତ୍ତବ୍ୟସାଧନାର୍ଥ ନିର୍ଲିପ୍ତଭାବରେ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇଥିଲେ । ଏଥିର ଶେଷ ସିଦ୍ଧାନ୍ତ ଏହି କି ମନୁଷ୍ୟ ନିଜର କର୍ତ୍ତବ୍ୟ ସାଧନ ନିମନ୍ତେ ନିର୍ଲିପ୍ତଭାବରେ ସଂସାରରେ କର୍ମକ୍ଷେତ୍ରରେ କର୍ମସାଧନ କରି ନିଜ ଜୀବନକୁ ଚରିତାର୍ଥ କରିବ ଓ ସମସ୍ତ କର୍ମର ଫଳ ଈଶ୍ୱରଙ୍କଠାରେ ଅର୍ପଣ କରିବ । ଏ ଗ୍ରନ୍ଥ ୧୮ ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟ ଗୋଟିଏ ଲେଖାଏଁ ଯୋଗ ବୋଲି ଅଭିହିତ ହୋଇଅଛି । ହିନ୍ଦୁ ଧର୍ମର ସମସ୍ତ ଜ୍ଞାତବ୍ୟ ବିଷୟ ଏହି ୧୮ ଅଧ୍ୟାୟରେ ସଂକ୍ଷେପ ଓ ପ୍ରାଞ୍ଜଳଭାବରେ ସନ୍ନିବେଶିତ ହୋଇଅଛି ଓ ଏହା ବ୍ରହ୍ମବିଦ୍ୟା ବା ଯୋଗଶାସ୍ତ୍ର ଅଟେ ।

୧ମ ଅଧ୍ୟାୟ—ଅର୍ଜୁନବିଷାଦ ଯୋଗ, ୨ୟ ଅଧ୍ୟାୟ—ସାଂଖ୍ୟ ଯୋଗ, ୩ୟ ଅଧ୍ୟାୟ—କର୍ମଯୋଗ; ୪ର୍ଥ ଅଧ୍ୟାୟ—କର୍ମବ୍ରହ୍ମାର୍ପଣ ଯୋଗ, ୫ମ ଅଧ୍ୟାୟ—କର୍ମସନ୍ନ୍ୟାସ ଯୋଗ, ୬ଷ୍ଠ ଅଧ୍ୟାୟ—ଆତ୍ମସଂଯମ ଯୋଗ, ୭ମ ଅଧ୍ୟାୟ—ଜ୍ଞାନବିଜ୍ଞାନ ଯୋଗ, ୮ମ ଅଧ୍ୟାୟ ଅକ୍ଷର ବ୍ରହ୍ମଯୋଗ, ୯ମ ଅଧ୍ୟାୟ—ରାଜବିଦ୍ୟା ରାଜଗୁହ୍ୟ ଯୋଗ, ୧୦ମ ଅଧ୍ୟାୟ—ବିଭୂତି ଯୋଗ, ୧୧ଶ ଅଧ୍ୟାୟ—ବିଶ୍ୱରୂପଦର୍ଶନ ଯୋଗ, ୧୨ଶ ଅଧ୍ୟାୟ-ଭକ୍ତି ଯୋଗ, ୧୩ଶ ଅଧ୍ୟାୟ—କ୍ଷେତ୍ରକ୍ଷେତ୍ରଜ୍ଞବିଭାଗ ଯୋଗ, ୧୪ଶ ଅଧ୍ୟାୟ—ଗୁଣତ୍ରୟବିଭାଗ ଯୋଗ, ୧୫ଶ ଅଧ୍ୟାୟ—ପୁରୁଷୋତ୍ତମ ଯୋଗ, ୧୬ଶ ଅଧ୍ୟାୟ—ଦୈବାସୁର ସମ୍ପଦ୍‌ବିଭାଗ ଯୋଗ, ୧୭ଶ ଅଧ୍ୟାୟ—ଶ୍ରଦ୍ଧାତ୍ରୟବିଭାଗ ଯୋଗ, ୧୮ଶ ଅଧ୍ୟାୟ—ସନ୍ନ୍ୟାସ ଯୋଗ ।

ହିନ୍ଦୁ ଧର୍ମଗ୍ରନ୍ଥମାନଙ୍କ ମଧ୍ୟରୁ ଆଧୁନିକ ଶିକ୍ଷିତମାନଙ୍କ ମଧ୍ୟରେ ଏ ଗ୍ରନ୍ଥପରି ଅନ୍ୟ କୌଣସି ଗ୍ରନ୍ଥ ଏତେ ଆଦୃତ ନୁହେ । ଏ ଗ୍ରନ୍ଥକୁ ମୁସଲମାନ ଓ ଖ୍ରୀଷ୍ଟାନମାନେ ମଧ୍ୟ ଆଦର କରନ୍ତି ଏବଂ ୟୁରୋପ ଆମେରିକା ଆଦି ଦେଶରେ ମଧ୍ୟ ଏ ଗ୍ରନ୍ଥର ସହସ୍ର ସହସ୍ର ଭକ୍ତ ଅଛନ୍ତି । ସେଉଁମାନେ ହିନ୍ଦୁ ନୁହନ୍ତି ସେମାନେ ମଧ୍ୟ ଏଥିର କେତେଗୁଡ଼ିଏ ସାର ଉପଦେଶକୁ ନିଜର ଜୀବନର ଅଙ୍ଗୀଭୂତ କରିଥିଲନ୍ତି । ]

**ଭଗବଦ୍ ବିଗ୍ରହ**—ସ. ବି (୬ଷ୍ଠୀ ତତ୍)—ବିଷ୍ଣୁଙ୍କ ମୂର୍ତ୍ତି—
Bhagabad bigraha An image of Bishṇu.

**ଭଗବଦ୍ ଭକ୍ତ**—ସ. ବି. ଓ ବିଣ ପୁଂ (୬ଷ୍ଠୀ ତତ୍)—୧। ଈଶ୍ୱରପ୍ରେମିକ
Bhagabad bhakta 1. Devoted to God. ୨। (ଭଗବଦ୍ ଭକ୍ତା—ସ୍ତ୍ରୀ) ବିଷ୍ଣୁଭକ୍ତ; ବୈଷ୍ଣବ—2. A devotee of Bishṇu.

**ଭଗବଦ୍ ଭକ୍ତି**—ସ. ବି. (୭ମୀ ତତ୍)—ଈଶ୍ୱରଙ୍କଠାରେ ଭକ୍ତି—
Bhagabad bhakti Devotion to God.

**ଭଗବଦାରାଧନ(ନା)**—ସ. ବି (୬ଷ୍ଠୀ ତତ୍)—ଈଶ୍ୱରୋପାସନା—
Bhagabadārādhana (nā) Praying to God.

**ଭଗବଦାଶ୍ରୟ**—ସ. ବି (୬ଷ୍ଠୀ ତତ୍)—ଭଗବାନଙ୍କଠାରେ ଆସ୍ଥା—
Bhagabadāśraya Trust or refuge in God.

**ଭଗବଦାଶ୍ରିତ**—ସ. ବି. ପୁଂ—(୬ଷ୍ଠୀ ତତ୍)—ଭଗବାନଙ୍କ ଆଶ୍ରୟ
Bhagabadāśrita କରିଥିବା—Relying on God.
(ଭଗବଦାଶ୍ରିତା—ସ୍ତ୍ରୀ)

**ଭଗବାନ୍**—ସ. ବି. ପୁଂ (ଭଗ=ଐଶ୍ୱର୍ଯ୍ୟ+ଯୁକ୍ତାର୍ଥେ ବତ୍; ୧ମା ୧ବ)
Bhagabān ୧। ଜ୍ଞାନାଦି ଷଡ଼ୈଶ୍ୱର୍ଯ୍ୟଶାଳୀ—1. Divine; [ଭଗବତୀ—ସ୍ତ୍ରୀ] endowed with divinity. [ଉ—କେବଳ ଈଶ୍ୱର ଭଗବନ୍ତ ଭଗବାନ। ପ୍ରାଚୀ. ଶିବ-ସ୍ୱରୋଦୟ।] ୨। ପୂଜ୍ୟ; ପୂଜନୀୟ—2. Adorable; worshippable. ବି.—୧। ପରମେଶ୍ୱର—1. God. ୨। ବିଷ୍ଣୁ—2. Bishṇu. ୩। ବୁଦ୍ଧଦେବ 3. The Buddha. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A Name given to males
(ଭଗବାନ—ଦେଶଜ ରୂପ)

**ଭଗବାନ କବିରାଜ**—ଦେ. ବି (ନାମ) [ଉ—୬୦୦ ବର୍ଷ ପୂର୍ବର
Bhagabāna kabirāja ଅର୍ଥାତ୍ ୧୪ଶ ଶତାବ୍ଦୀର ଓଡ଼ିଆ କବି ଗୁପ୍ତି ଗୀତା ନାମକ ଗ୍ରନ୍ଥର ପ୍ରଣେତା। ଜଗବନ୍ଧୁ. ପ୍ରାଚୀନ ଉତ୍କଳ।] Name of an Oriya poet of the 14th century A. D.

**ଭଗଲ ଚଗଲ ହେବା**—ପ୍ରାଦେ. (ସାଜପୁର) କ୍ରି. ଭଗଲ ବଗଲ ହେବା;
Bhagal chagal hebā ଅସ୍ଥିର ହେବା—To be restless.

**ଭଗ(ଜ,ଗି,ଗୁ)ଲି**—ପ୍ରାଦେ. (ସାଜପୁର) ବି (ଭୁଲ. ହି. ଭଗଲ=ଛଳ);
Bhaga (ja,gi,gu)li ଭଗଲ୍=ଛଳ)—୧। ଖେଳ; ଥଟ୍ଟା—1. Joke; jesting. ୨। ଛଳ; କପଟ—2. Fraud. ୩। ବାହାନା—3. Feigning; pretence.

**ଭଗ(ଜ,ଗି,ଗୁ)ଲି କରିବା**—ଦେ. କ୍ରି. ୧। ଥଟ୍ଟା କରିବା—1. To
Bhaga(ja,gi,gu)li karibā cut jokes; to jest. ୨। ବାହାନା କରିବା—2. To feign. ୩। ପ୍ରଶ୍ନର ଠିକ୍ ଜବାବ୍ ନ ଦେଇ ଏଣୁ ତେଣୁ ଜବାବ୍ ଦେବା—3. To return evasive answers to questions; to prevaricate.

**ଭଗ ଶାସ୍ତ୍ର**—ସ. ବି (ମ. ପ. ଲୋ)—କାମଶାସ୍ତ୍ର (ହି. ଶ)—
Bhaga śāstra The sexual science.

**ଭଗହାରୀ**—ସ. ବି. ପୁଂ (ଭଗ+ହୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Bhagahārī ଶିବ (ହି. ଶ.)—A name of Śiba.

**ଭଗା**—ଦେ. ବିଣ. (ସ. ଭଗ୍ନ)—ଭଙ୍ଗା; ଭଗ୍ନ—
Bhagā ভাঁগা टूटा Broken.

**ଭଗା(ଗେ)ଇବା**—ଦେ. କ୍ରି—୧। ଭୁରୁଡ଼ାଇ ଦେବା—1. To
Bhagā(ge)ibā scare away. ୨। ତଡ଼ି ଦେବା—
ଭଗା(ଗେ)ଇ ଦେବା } ଅନ୍ୟରୂପ 2. To drive away.
ଭୁଗେଇବା, ଭୁଗେଇ ଦେବା }
ভাগান ୩। ପଳାଇବାକୁ ବାଧ୍ୟ କରିବା—3. To force a
भगाना person to flee away. ୪। ଭଗାଇ ଦେବା; କୌଣସି ବ୍ୟକ୍ତିଙ୍କୁ ଭୟ ଦେଖାଇ କୌଣସି ସ୍ଥାନରୁ ପଳାଇ ଯିବାକୁ ବାଧ୍ୟ କରିବା—4. To cause a person to flee away from a place by scaring him or by threatening him.

**ଭଗାରି(ରୀ)**—ସ. ବି. ପୁଂ ( ସ. ଭାଗହାରୀ )—୧। ଜ୍ଞାତି; କୁଟୁମ୍ବ—
Bhagāri(rī) 1. Kinsman. ୨। ଦାୟାଦ (ଉ—ଭଗାରି ଜନ
ভগারী ବଦନ ମ୍ଳାନ ହୁଏ ତା ଅବଧାନେ କ: ସୁ)—2. Heirs
ଭଗାରଣୀ } ଅନ୍ୟରୂପ to the same ancestors.
ଭଗାରୁଣୀ } ୩। ଆପଣାର ଲାଭରୁ ଅଂଶ ଦେବା ବ୍ୟକ୍ତି-
(ଭଗାରିଆ—ଅନ୍ୟରୂପ ଓ ବିଣ) 3. A cosharer; a person who takes a share from one's income. ୪। ବିପକ୍ଷ; ଶତ୍ରୁ—4. Enemy; opponent; an antagonist. (ଉ—ଖାଲୁ ମୋ ଧନ ନ ସର, ଭଗାରି ହୋଇଲ ମନ୍ଦର ନାଶ, ଭ୍ରମ ହେଲେ ଦଣ୍ଡଧାରୀ—କୌଶଲ୍ୟା ରୋଦନ ଉଦ୍ଧବଦାସ।) ୫। ପ୍ରତିଦ୍ୱନ୍ଦ୍ୱୀ—5. A rival. ୬। ଯାତ୍ରିମାନେ ପଣ୍ଡାମାନଙ୍କୁ ଦେବା ଉପହାରରୁ ଯାତ୍ରି ଆଣିଥିବା ଗୁମାସ୍ତା ଯାହା ଅଂଶ ପାଏ ତାକୁ ଅଂଶରୁ ପୁଣି ଭାଗ ବସାଇବା ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ଗୁମାସ୍ତା—6. A rival Gomāstā who takes a share from a Paṇḍā's own pilgrim-hunter from whatever the latter gets as his reward from the particular pilgrim's Paṇḍā.

[ଦ୍ର—ଜ୍ଞାତିମାନେ ପୈତୃକ ସମ୍ପତ୍ତିରୁ ଭାଗ ନିଅନ୍ତି ଓ ଏଥିପାଇଁ ସେମାନଙ୍କୁ ଭାଗହାରୀ ବା ଭଗାରି ବୋଲାଯାଏ; ପୈତୃକ ସମ୍ପତ୍ତିର ଭାଗସମ୍ବନ୍ଧେ ଭଗାରିମାନଙ୍କ ମଧ୍ୟରେ ଘୋର ଶତ୍ରୁତା ହେଉଥିବାରୁ ଭଗାରିର ଅର୍ଥ ଶତ୍ରୁ ହୋଇଅଛି।]

**ଭଗାରିଆ**—ଦେ. ବି—୧। ଭଗାରି ( ଦେଖ )—Bhagāri (See)
Bhagāriā ଶତ୍ରୁ ୨। ପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତି—2. A rival.
ଦେ. ବିଣ—ଶତ୍ରୁଭାବାପନ୍ନ—Inimical.

ଭଗାରିତା—ଦେ. ବି—ଭଗାରପଣ—Rivalry; enmity. [ଉ—
Bhagārită ଛୋଟର ମୋହର ଭାଇ ଭଗାରତା ଦୋଷ, ଅଜଠାରୁ ଗଲା ରେ ଅଧମ ପୁରୁଷ—କୃଷ୍ଣସିଂହ, ମହାଭାରତ, ବନ । ]

ଭଗାରି ପଣ—ଦେ. ବି—୧ । ଜ୍ଞାତିତ୍ୱ—1. Kinship. ୨ । ଶତ୍ରୁତା—
Bhagāri paṇa 2. Enmity. [ ଉ—ତନୁମେଳେ ବାଧା ଶତ୍ରୁ ଦେଇ ଅଚଳନ୍ତି ଭଗାରପଣ ଅମୂଲ—ରାଧାନାଥ. । ]
ଭଗାରପଣିଆ(ଆଁ)—ଅନ୍ୟରୂପ ]

ଭଗାରି ହସା—ଦେ.ବି—ପ୍ରତିବେଶୀମାନଙ୍କ ଉପହାସ—Ridicule of
Bhagāri hasā one's neighbours and kinsmen.
ଲୋକହସା ଦେ. ବିଣ—ପ୍ରତିବେଶୀମାନଙ୍କର ଉପହାସାସ୍ପଦ; ଲୋକ ହସା—Becoming the butt-end of ridicule to one's neighbours and kinsmen.
[ ଉ—କଲାକର୍ମଫଳେ ହେଲୁଁ ଭଗାରହସା—ଉଦ୍ଧାର, ଗୀତଲହରୀ । ]

ଭଗାଳ—ସଂ. ବି—ମନୁଷ୍ୟର ଖପୁର ( ହ୍ରି. ଶ )—
Bhagāḷa Human skull.

ଭଗି—ଦେ. ବି. ପୁଂ ( ଆଦରାର୍ଥକ )—ଭଗବାନ ନାମକ ବ୍ୟକ୍ତିର ଡାକ
Bhagi ଭଗି ନାମ—Name for calling a person
( ଭଗିଆ—ଅନାଦରାର୍ଥକରୂପ ) named Bhagabāna.

ଭଗିନି—ସଂ. ( ସମ୍ବୋଧନ )—ଭଗିନୀ ଶବ୍ଦର ସମ୍ବୋଧନରେ ରୂପ; ହେ
Bhagini ଭଉଣି !—O sister.

ଭଗିନୀ—ସଂ. ବି ( ଭଗ=ଯତ୍ନ+ଇନ୍+ସ୍ତ୍ରୀ. ଈ; ଯେ ଭାଇଙ୍କୁ ବିଶେଷ
Bhaginī ଯତ୍ନ କରେ କିମ୍ବା ଭନଜ୍ ଧାତୁ=ଭାଙ୍ଗିବା+ତ+ସ୍ତ୍ରୀ. ଈ
( ଭଗ୍ନୀ—ଅନ୍ୟରୂପ ) =ଯେ ପିତୃଗୃହର ଓ ଭ୍ରାତା ଆଦିଙ୍କର ମାୟା ଭାଙ୍ଗି ଦେଇ ବିବାହିତା ହୋଇ ଚାଲିଯାଏ )—
୧ । ଭଉଣୀ; ସହୋଦରା—1. Sister. ୨ । ସମବୟସ୍କା ନାରୀ ପ୍ରତି ସମ୍ବୋଧନ—2. A term of address to a woman of one's equal age.
( ଏହାର ଅପଭ୍ରଂଶ—ଭଅଣି, ଭଉଣୀ, ଭଇଣୀ, ଭଏଣୀ, ବଇଣୀ, ବଏଣୀ, ବହେଣୀ । )

ଭଗିନୀ ପତି—ସଂ. ବି ( ୬ଷ୍ଠୀ ତତ୍ )—ଆପଣାର ଭଗିନୀର ସ୍ୱାମୀ—
Bhaginī pati One's sister's husband. (ଏହାର ଅପଭ୍ରଂଶ
( ଭଗ୍ନୀପତି—ଅନ୍ୟରୂପ ) —ଭଣେଇ, ଭଣୋଇ, ଭେଣେଇ, ଭେଣୋଇ । )

ଭଗିନୀୟ—ସଂ. ବି. ପୁଂ ( ଭଗିନୀ+ଅପତ୍ୟାର୍ଥେ, ଈୟ )—ଭଣଜା
Bhaginīya ( ହ୍ରି. ଶବ୍ଦସାଗର )—One's sister's son
( ଭଗିନୀୟା—ସ୍ତ୍ରୀ )

ଭଗୀରଥ—ସଂ.ବି—ସଗର ରାଜାଙ୍କ ନାତି;ଜଣେକ ସୂର୍ଯ୍ୟବଂଶୀୟ ନରପତି-
Bhagīratha Name of a king who by his penances succeeded in inducing the Ganges to descend to the earth from the heaven.
[ଦ୍ର-ଏ ଅଯୋଧ୍ୟାର ସୂର୍ଯ୍ୟବଂଶର ରାଜା ଦଲୀପଙ୍କ ପୁତ୍ର ଥିଲେ । କପିଳମୁନିଙ୍କ ଶାପରୁ ସଗର ରାଜାଙ୍କ ପୁତ୍ରମାନେ ଭସ୍ମୀଭୂତ ହୋଇ ଥିବାରୁ ଭଗୀରଥ ଗଙ୍ଗାଙ୍କୁ ପୃଥିବୀକୁ ଆଣିବା ପାଇଁ ଘୋର ତପସ୍ୟା କଲେ ଓ ତପସ୍ୟାରେ ସଫଳ ହୋଇ ଗଙ୍ଗାଙ୍କୁ ପୃଥିବୀକୁ ଆଣି ସଗରତନୟମାନଙ୍କର ଉଦ୍ଧାର ସାଧନ କଲେ । ଏ ଗଙ୍ଗାଙ୍କୁ ପୃଥିବୀକୁ ଆଣିଥିବାରୁ ଗଙ୍ଗାଙ୍କର ଏକନାମ ଭାଗୀରଥୀ ଅଟେ । ]

ଭଗୁଆ—ଦେ. ବିଣ ( ଗୈରିକ )—ଗେରୁଆ ( ଲୁଗା ); ଗେରୁମାଟିରେ
Bhaguā ରଙ୍ଗା ହୋଇଥିବା—( cloth ) Coloured with
गेरुआ भगवा red ochre. ଦେ. ବି ( ପାରିଭାଷିକ )—
ଆକାଶର ଭିତର ପାଖ—The sidereal sphere; celestial sphere.

ଭଗୁଡ଼ି(ଲି)—ଦେ. ବି—୧ । ଖେଳପରି; ଛଇ; ଢେଲି; ଥଟ୍ଟା—1. Jest;
Bhagur̤di(li) ठट्टा joking. ୨ । ପଳାୟନ—2. Flight.

ଭଗୁଡ଼ି ଦେବା(ଦେ)ଇବା—ଦେ. କ୍ରି—ପଳାଇବା—To flee away.
Bhagur̤di batā(te)ibā भेगे यावया

ଭଗୋଳ—ସଂ. ବି ( ଜ୍ୟୋତିଷ )—ମେଷାଦି ଦ୍ୱାଦଶ ରାଶିଙ୍କର ମଣ୍ଡଳ—
Bhagoḷa The zodiac circle; the astrological
ଭଚକ୍ର } ଅନ୍ୟରୂପ circle showing the 12 signs
ଭମଣ୍ଡଳ } of the zodiac,
( ଖଗୋଳ—ବିପରୀତ )

ଭଗ୍ନ—ସଂ. ବିଣ ( ଭନଜ୍ ଧାତୁ=ଭାଙ୍ଗିବା+କର୍ମ, ତ )—୧ । ଖଣ୍ଡିତ।
Bhagna ଭଙ୍ଗା—1. Broken. ୨ । ଛିନ୍ନ—2. Torn.
(ଭଗ୍ନା—ସ୍ତ୍ରୀ) ୩ । ଫାଟି ଯାଇଥିବା—3. Cracked; fractured. ୪ । ବିଜିତ; ପରାଜିତ—4. Defeated; vanquished. ୫ । ନିବୃତ୍ତ; ଶାନ୍ତ—5. Prevented; stopped. ୬ । ବିନଷ୍ଟ—6. Spoilt; destroyed. ୭ । ନିରସ୍ତ—7. Afflicted. ୮ । ଯୁଦ୍ଧକ୍ଷେତ୍ରରୁ ପଳାୟିତ—8. Routed; put to flight.
ଦେ. ବି—୧ । ପରାଜୟ—1. Defeat. [ ଉ—ନାରଦ ପେଷି କୁଶପାଣି । 'ଅସୁରବଳ ଭଗ୍ନ ଶୁଣି—ଜଗନ୍ନାଥ. ଭାଗବତ । ] ୨ । ଯୁଦ୍ଧକ୍ଷେତ୍ରରୁ ସୈନ୍ୟମାନଙ୍କ ପଳାୟନ—2. Rout; flight of the army from the battle field.

ଭଗ୍ନ କଣ୍ଠ—ସଂ. ବି ( କର୍ମଧା )—ବିକୃତ ସ୍ୱର—Hoarse voice. ବିଣ
Bhagna kaṇṭha ପୁଂ ( ବହୁବ୍ରୀହି )—ଯାହାର ଗଳାର ସ୍ୱର
( ଭଗ୍ନକଣ୍ଠା—ସ୍ତ୍ରୀ ) ବିକୃତ ହୋଇଅଛି—Having a croaking or hoarse voice.

ଭଗ୍ନ ଗୃହ—ସଂ. ବି (କର୍ମଧା)—ଭଙ୍ଗା ଘର—
Bhagna gṛuha Dilapidated house.

ଭଗ୍ନ ଚିତ୍ତ—ସଂ. ବିଣ. ପୁଂ ( ବହୁବ୍ରୀହି )—୧ । ନିରାଶ—1. Hope-
Bhagna chitta less. ୨ । ହତାଶ—2. Desperate.
( ଭଗ୍ନଚେତାଃ, ଭଗ୍ନମନା, ଭଗ୍ନହୃଦୟ—ଅନ୍ୟରୂପ )
( ଭଗ୍ନଚିତ୍ତା—ସ୍ତ୍ରୀ )

ଭଗ୍ନ ଚେଷ୍ଟ—ସଂ. ବିଣ. ପୁଂ( ବହୁବ୍ରୀହି )—୧ । ଭଗ୍ନୋଦ୍ୟମ; ଯାହାର
Bhagna cheshṭa ଚେଷ୍ଟା ବିଫଳ ହୋଇଅଛି—1. Having

( ଭଗ୍ନଚେଷ୍ଟା—ସ୍ତ୍ରୀ ) one's endeavours baffled. ୨ । ଚେଷ୍ଟାରୁ ନିବୃତ୍ତ—2. Desisting from any endeavour.

ଭଗ୍ନ ଦର୍ପ—ସଂ. ବିଣ. ପୁଂ ( ବହୁବ୍ରୀହି )—ହତଗର୍ବ; ଯାହାର ଗର୍ବ ଚୂର୍ଣ୍ଣ Bhagna darpa ହୋଇଅଛି—Having one's pride ( ଭଗ୍ନଦର୍ପା—ସ୍ତ୍ରୀ ) humbled down; humiliated.

ଭଗ୍ନ ଦଶା—ସଂ. ବି (କର୍ମଧା )—ଭଙ୍ଗା ଅବସ୍ଥା—
Bhagna daśā Broken condition.

ଭଗ୍ନ ଦୂତ—ସଂ. ବି (କର୍ମଧା)—୧ । ଅତିକ୍ଲାନ୍ତ ଦୂତ—1. An over-
Bhagna dūta fatigued messenger. ୨ । ଯେଉଁ ଭଗ ପଦାତିକ } ଅନ୍ୟରୂପ ସୈନ୍ୟ ଯୁଦ୍ଧକ୍ଷେତ୍ରରୁ ପଳାଇ ଆସି ଭଗ୍ନ ପାଇକ ଆପଣା ପକ୍ଷର ପରାଜୟବାର୍ତ୍ତା ଆପଣା ରାଜ୍ୟରେ ବା ରାଜାଙ୍କୁ ଜଣାଏ—2. A fugitive who carries the news of his own party's defeat to the headquarters.

ଭଗ୍ନ ଦେହ—ସଂ. ବିଣ. ପୁଂ ( ବହୁବ୍ରୀହି )— ୧ । ଯାହାର ସ୍ୱାସ୍ଥ୍ୟ ନଷ୍ଟ Bhagna deha ହୋଇଅଛି—1. Of shattered health. ( ଭଗ୍ନସ୍ୱାସ୍ଥ୍ୟ—ଅନ୍ୟରୂପ ) ୨ । ରୁଗ୍ଣଶରୀର—2. Invalid; of ( ଭଗ୍ନଦେହା—ସ୍ତ୍ରୀ ) delicate or impaired health.

ଭଗ୍ନ ପାଦ—ସଂ. ବିଣ (ବହୁବ୍ରୀହି)—ଯାହାର ଗୋଡ଼ ଭାଙ୍ଗି ଯାଇଅଛି—
Bhagna pāda Crippled; having a broken leg. ବି—(ଜ୍ୟୋତିଷ)—୧ । ଅନ୍ୟ ରାଶି ସହିତ ସଂଯୁକ୍ତ ନକ୍ଷତ୍ର ବିଶେଷ-1. An asterism joined to a strange sign of the zodiac. ୨ । ଫଳିତ ଜ୍ୟୋତିଷ ଅନୁସାରେ ପୁନର୍ବସୁ, ଉତ୍ତରାଷାଢ଼ା, କୃତ୍ତିକା, ଉତ୍ତର ଫାଲ୍ଗୁନୀ, ପୂର୍ବାଭାଦ୍ରପଦ ଓ ବିଶାଖା ନକ୍ଷତ୍ର—2. The 7th, 21st, 3rd, 12th, 25th and 16th asterisms. [ଦ୍ର—ଏ ଛଅଟି ନକ୍ଷତ୍ର ମଧ୍ୟରୁ କୌଣସି ନକ୍ଷତ୍ରରେ ମୃତ ବ୍ୟକ୍ତିଙ୍କୁ ଫଳିତ ଜ୍ୟୋତିଷ-ମତରେ ଦ୍ୱିପାଦ ଦୋଷ ଲାଗେ ଓ ଅଶୌଚ କାଳ ମଧ୍ୟରେ ଦାନାଦି ଦ୍ୱାରା ଏ ଦୋଷର ଶାନ୍ତି କରାଯିବା ବିହିତ—ହି. ଶବ୍ଦସାଗର ।]

ଭଗ୍ନ ପୃଷ୍ଠ—ସଂ.ବିଣ (ବହୁବ୍ରୀହି)—୧ । ଯାହାର ପୃଷ୍ଠ ଭାଙ୍ଗି ଯାଇଅଛି—
Bhagna prusṭha 1. Having one's back broken. ୨ । କୁବଜ; କୁବଜା—2. Hump-backed.

ଭଗ୍ନ ପ୍ରାୟ—ସଂ. ବିଣ—ଧ୍ୱଂସୋନ୍ମୁଖ—
Bhagna prāya About to fall.

ଭଗ୍ନ ମନୋରଥ—ସଂ. ବିଣ (ବହୁବ୍ରୀହି)—ଯାହାର ମନୋବାଞ୍ଛା ବିଫଳ Bhagna manoratha ହୋଇଅଛି—Having one's hopes and wishes baffled; having one's projects dashed to the ground.

ଭଗ୍ନ ସନ୍ଧି—ସଂ. ବିଣ (ବହୁବ୍ରୀହି)—ଯାହାର ଦେହର ଗଣ୍ଠି ଭାଙ୍ଗି ଯାଇ-Bhagna sandhi ଅଛି—Having one's joints fractured. ସଂ. ବି (କର୍ମଧା)—ଗଣ୍ଠି ପାଖରୁ ହାଡ଼ ଭାଙ୍ଗି ଯିବା—Fracture of the bone at the joint.

ଭଗ୍ନ ସନ୍ଧିକ—ସଂ. ବି—ଘୋଲ ଦହି (ହି. ଶ)—
Bhagna sandhika Churned curd.

ଭଗ୍ନ ସାହସ—ସଂ. ବିଣ. ପୁଂ—(ବହୁବ୍ରୀହି)—ଯାହାର ସାହସ ଦବି Bhagna sāhasa ଯାଇଅଛି—Discouraged. (ଭଗ୍ନସାହସା—ସ୍ତ୍ରୀ)

ଭଗ୍ନ ସ୍ତୂପ—ସଂ. ବିଣ ( ୬ଷ୍ଠୀ ତତ୍ )—ସ୍ତୂପୀକୃତ ଧ୍ୱଂସାବଶେଷ—
Bhagna stūpa Heap of ruins.

ଭଗ୍ନ ହୃଦୟ—ସଂ. ବିଣ. ପୁଂ (ବହୁବ୍ରୀହି)—ନିରାଶ; ହତାଶ—
Bhagna hrudaya Disappointed; broken-hearted. (ଭଗ୍ନହୃଦୟା—ସ୍ତ୍ରୀ)

ଭଗ୍ନାଂଶ—ସଂ.ବି—୧ । ମୂଳ ଦ୍ରବ୍ୟର ଖଣ୍ଡିତ ଅଂଶ—1. A broken Bhagnāṁsa part of an orginal whole thing. ୨ । (ଗଣିତ) ଏକ ସଂଖ୍ୟାର ଅଂଶସୂଚକ ଅଂଶ—(mathematics) Fraction. [ ଦ୍ର—କୌଣସି ବସ୍ତୁକୁ ବା ରାଶିକୁ ଏକାଧିକ ଅଂଶରେ ଖଣ୍ଡିତ କଲେ ତହିଁର ଏକ ବା ତତୋଽଧିକ ଅଂଶକୁ ଭଗ୍ନାଂଶ ବୋଲାଯାଏ । ସମୁଦାୟ ବା ମୌଳିକ ବସ୍ତୁକୁ ବା ସଂଖ୍ୟାକୁ ଯେତେ ଅଂଶରେ ଭଗ୍ନ ବା ଖଣ୍ଡିତ କରାଯାଏ ସେହି ସଂଖ୍ୟାର ନାମ ହର ଓ ଉକ୍ତ ଅଂଶର ଯେତେ ଗୋଟି ଗୃହୀତ ହେବେ ତାହା ହିଁ ଲବ । ୨୫ କୁ ୫ ଭାଗରେ ବିଭକ୍ତ କଲେ ୨୫ ହେଲା ହର ଓ ୫ ହେଲା ଲବ; ଲବକୁ ଉପରେ ଲେଖି ତହିଁ ତଳେ ଗୋଟିଏ ଗାର କାଟି ହର ସଂଖ୍ୟାକୁ ଲେଖାଯାଏ; ପ୍ରଧାନତଃ ଏହି ତିନି ପ୍ରକାରରେ ଭଗ୍ନାଂଶ ପାଟୀଗଣିତରେ ଦେଖାଯାଏ—୧ । ସାଧାରଣ ବା ସାମାନ୍ୟ ଭଗ୍ନାଂଶ (simple fraction) ଅର୍ଥାତ୍ ଯେଉଁ ଭଗ୍ନାଂଶରେ ୨ଟି ମାତ୍ର ଅଙ୍କ ଥାଏ, ୨ । ଜଟିଳ ଭଗ୍ନାଂଶ ବା ଭଗ୍ନାଂଶର ଭଗ୍ନାଂଶ (compound fraction; a fraction of a fraction) ଅର୍ଥାତ୍ ଏକ ଭଗ୍ନାଂଶ ରାଶିକୁ ପୂର୍ଣ୍ଣ ସଂଖ୍ୟା ବିବେଚନା କରି ତହିଁକୁ ବିଭକ୍ତ କରାଯିବା ଭଗ୍ନାଂଶ ଓ ୩ । ଦଶମିକ ଭଗ୍ନାଂଶ (ବା ଦଶମିକ ସୂଚିତ ଭଗ୍ନାଂଶ) (Decimal fraction.)

ଭଗ୍ନାତ୍ମା—ସଂ. ବି—(ବହୁବ୍ରୀହି; ଭଗ୍ନ+ଆତ୍ମନ୍; ଭଗ୍ନାତ୍ମନ୍ ଶବ୍ଦ; ୧ମା. Bhagnātmā ୧ବ.) ଚନ୍ଦ୍ର—The moon. [ଦ୍ର—ଗୁରୁପତ୍ନୀ ହରଣ କରିବାରୁ ଶିବ ଏହାଙ୍କୁ ତ୍ରିଶୂଳଦ୍ୱାରା ଦ୍ୱିଖଣ୍ଡିତ କରିଥିଲେ ।]

ଭଗ୍ନାବଶେଷ—ସଂ. ବି—(କର୍ମଧା କିମ୍ବା ୬ଷ୍ଠୀ ତତ୍)—ଭଗ୍ନ ପଦାର୍ଥର Bhagnābaśesha ଯାହା ଅଂଶ ରହି ଯାଇଥାଏ—1. The (ଭଗ୍ନାବଶିଷ୍ଟ—ବିଣ) remains of a broken thing. ୨ । ଭାଙ୍ଗି ଯାଇଥିବା ଗୃହାଦିର ବାକି ରହିଥିବା ଅଂଶ—2. Ruins of a structure or building

ଭଗ୍ନାବସ୍ଥ—ସଂ. ବିଣ (ବହୁବ୍ରୀହି; ଭଗ୍ନ+ଅବସ୍ଥା)—ଭଗ୍ନଦଶାପ୍ରାପ୍ତ—
Bhagnābastha Having a broken condition, ruined; dilapidated.

ଭଗ୍ନାବସ୍ଥା—ସଂ. ବି—(କର୍ମଧା)—ଭାଙ୍ଗି ଯାଇଥିବା ଅବସ୍ଥା—
Bhagnābasthā Broken or dilapidated condition.

ଭଗ୍ନାଶ—ସଂ. ବିଣ. (ବହୁବ୍ରୀହି; ଭଗ୍ନ+ଆଶା)—ହତାଶ—
Bhagnāsa Disappointed; of shattered hopes.
(ଭଗ୍ନାଂଶା—ସ୍ତ୍ରୀ. ଓ ଦେଶଜ ରୂପ)

ଭଗ୍ନୀ (ଇତ୍ୟାଦି)—ସଂ. ବି. ସ୍ତ୍ରୀ—ଭଗିନୀ (ଦେଖ)
Bhagnī (etc) Bhaginī (See)

ଭଗ୍ନୀଜ—ଦେ. ବି. ପୁଂ (ଭଗ୍ନୀ+ଜନ୍ ଧାତୁ+କର୍ତ୍ତୃ. ଅ)—ଭଣଜା—
Bhagnīja Sister's son. (ଉ—ମାତୁଳଙ୍କ ବଳହାକୁ
(ଭଗ୍ନିଜା—ସ୍ତ୍ରୀ) ବଗ୍ନୀଜ ଗଲୁ । ଦେବଦୁର୍ଲ୍ଲଭ. ରହସ୍ୟମଞ୍ଜରୀ । )

ଭଗ୍ନୀ ହତ୍ୟା—ସଂ. ବି (୬ଷ୍ଠୀ ତତ୍)—ଭଉଣୀକୁ ମାରି ପକାଇବା—
Bhagnī hatyā Murdering one's sister,

ଭଙ୍ଗ—ସଂ. ବି (ଭଜ୍ଜ ଧାତୁ+ଭାବ, ଅ)—୧ । ଭାଙ୍ଗିଯିବା;
Bhaṅga ଭଗ୍ନହେବା—1, Breaking; fracture.
(ଉ—ମାନସ ଅଙ୍ଗ ଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ । ଉପେନ୍ଦ୍ର. ମ. ଗୀତ । ) ୨ । ଖଣ୍ଡ—2. Piece; cutting. ୩ । ହାନି—3. Loss, ୪ । ନାଶ—4. Destruction; ruin. ୫ । କୁଟିଳତା—5. Crookedness. ୬ । ପ୍ରତିବନ୍ଧ; ବାଧା—6. Interruption; obstruction. (ଯଥା—ରସଭଙ୍ଗ ।) ୭ । ପରାଜୟ—7. Defeat; routing. (ଉ—ଭୟେ କୁରୁ ବୀରବୃନ୍ଦ ରଣେ ଦେଲେ ଭଙ୍ଗ । ରାଧାନାଥ । ) ୮ । ନିବୃତ୍ତି; ବନ୍ଦ—8. Stoppage; cessation; dissolution. (ଯଥା—ଯାତ୍ରାଭଙ୍ଗ ।) ୯ । ରଚନା; ଚିତ୍ରଣ—9. Composition; writing; painting. (ଯଥା—ପଦଭଙ୍ଗ ।)—୧୦ । ବ୍ୟତିକ୍ରମ; ଲଙ୍ଘନ; ନ ମାନିବା—10. Infringement; transgression; violation. (ଯଥା—ଆଦେଶଭଙ୍ଗ, ଆଜ୍ଞାଭଙ୍ଗ, ନିୟମଭଙ୍ଗ, ପ୍ରତିଜ୍ଞାଭଙ୍ଗ, ସତ୍ୟଭଙ୍ଗ ।) ୧୧ । ତରଙ୍ଗ; ଢେଉ—11. Wave; billow. ୧୨ । ବିଶ୍ଳେଷଣ—12. Analysis. ୧୩ । ରୋଗ—13. Disease. ୧୪ । ବିଦାରଣ; ଭେଦ—14. Splitting; laceration; piercing. ୧୫ । ବ୍ୟସନ—15. Vice. ୧୬ । ଭୟ—16. Fear. ୧୭ । ନିରସନ—17. Refutation; rejection. ୧୮ । ଭଙ୍ଗୀ—18. Demeanour. ୧୯ । ଗମନ; ଗତି (ପ୍ରା. ଶ)—19. Going; motion. ୨୦ । (+କର୍ତ୍ତୃ. ଅ) ନାଗବିଶେଷ (ପ୍ରା. ଶ)—20. Name of a mythological serpent. ୨୧ । ଶରୀରକୁ ବଙ୍କା କରିବା ରୋଗ (ପ୍ରା. ଶ)—21. A disease making the patient crooked, ୨୨ । ଗଞ୍ଜେଇ (ଗଛ, ପତ୍ର)—22. Cannabis Sativā (plant and leaves), ୨୩ । ଗଞ୍ଜାଇର ପତ୍ର ବଟା ହୋଇ ପ୍ରସ୍ତୁତ ହେବା ଉନ୍ମାଦଉତ୍ପାଦକ ପାନୀୟ; ଭାଙ୍ଗ—23. An intoxicating drink made of the pestled leaves of Cannabis Sativā.
ଦେ. ବି (ସଂ ବ୍ୟଙ୍ଗ)—ମୁଖର ଚର୍ମ ସ୍ଥାନେ ସ୍ଥାନେ କୃଷ୍ଣବର୍ଣ୍ଣ ପଡ଼ିଯିବା ରୋଗ—Addison's disease; Melanoderma; a disease consisting of black discolouration in some parts of the face.

ଭଙ୍ଗଡ଼—ଦେ. ବିଣ—ସିଦ୍ଧିଖୋର; ଭାଙ୍ଗୁଆ—Addicted to
Bhaṅgarḍa ভাঙ্গড়; ভাঙ্গব drinking Bhāṅga.
भंगड

ଭଙ୍ଗ ଦେବା—ଦେ. କ୍ରି—ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ବ୍ୟୂହଭଙ୍ଗ କରି
Bhaṅga debā ରଣକ୍ଷେତ୍ରରୁ ପଳାଇବା—To give way when attacked; to flee away from the thick of the fight.

ଭଙ୍ଗ ପଡ଼ିବା—ଦେ. ବିଣ—ମୁହଁରେ କଳା କଳା ଦାଗରୂପ ରୋଗ
Bhaṅga parḍibā ଦେଖା ଦେବା—Being attacked with Melanoderma or Addison's disease.

ଭଙ୍ଗ ପ୍ରବଣ—ସଂ. ବିଣ (୭ମୀ ତତ୍)—ଯାହା ସହଜରେ ଭାଙ୍ଗିଯାଏ;
Bhaṅga prabaṇa ଭଙ୍ଗୁର; ମସ୍କା—Brittle; fragile.

ଭଙ୍ଗ ପ୍ରବଣତା(ତ୍ୱ)—ସଂ. ବି (ଭଙ୍ଗପ୍ରବଣ+ତା କିମ୍ବା ତ୍ୱ)—ସହଜରେ
Bhaṅga prabaṇatā(twa) ଭାଙ୍ଗିଯିବା ଅବସ୍ଥା—Brittleness; fragility.

ଭଙ୍ଗା—ଦେ. ବି (ସଂ. ଭଜ୍ଜ ଧାତୁ ଭଙ୍ଗ; ଭଞ୍ଜନ)—୧ । ଭାଙ୍ଗିବା
Bhaṅgā କର୍ମ (ଭାଙ୍ଗିବା ଦେଖ)—1. Act of breaking; Bhāṅgibā (See).
ভাঙ্গা; ভাঙ্গান ୨ । ଭଙ୍ଗାଇବା କର୍ମ
तोडना; तोडवाना (ଭଙ୍ଗାଇବା ଦେଖ)—2. The act of causing to break; Bhaṅgāibā (See).
୩ । ଦସ୍ତ ତାଡାସ୍ ଖେଳରେ ତାସ ସବୁ ଗୋଲାଇ ରଖିବା ପରେ ଉପରର କେତେକ ତାସକୁ କାଢ଼ି ତଳେ ରଖିବା—3. The act of taking out some cards from the top and putting them at the bottom in the game of cards, [ଦ୍ର—ଭଙ୍ଗା ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ପାଇଁ ଭାଙ୍ଗିବା ଓ ଭଙ୍ଗାଇବା ଶବ୍ଦର ଭିନ୍ନ ଭିନ୍ନ ଅର୍ଥମାନ ଦେଖ । ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ । ଯଥା—ଓଳିଆଭଙ୍ଗା, ଘରଭଙ୍ଗା, ପଡ଼ିଆଭଙ୍ଗା, ପଥଭଙ୍ଗା, ପାଣିଭଙ୍ଗା, ପାନଭଙ୍ଗା, ପେଟଭଙ୍ଗା; ମକଦମାଭଙ୍ଗା, ଟଙ୍କାଭଙ୍ଗା, ନୋଟଭଙ୍ଗା; ବଉଡ଼ା(ଢ଼)ଭଙ୍ଗା; ମନଭଙ୍ଗା, ମଣ୍ଡଳ ବା ମୁଣ୍ଡଳାଭଙ୍ଗା, ଲୁଗାଭଙ୍ଗା, ହାଣ୍ଡିଭଙ୍ଗା ।] ଦେ. ବିଣ (ସଂ. ଭଗ୍ନ)—୧ । ଭଗ୍ନ—1. Broken, ୨ । ନଷ୍ଟ—2. Ruined, ୩ । ଦଦରା; ଫଟା—3. Unsound; fractured; cracked, ୪ । (ପୁଂ) ଯେ ଭାଙ୍ଗେ—4. Breaking; spoiling, ୫ । ଯେ

ଭଙ୍ଗାଏ—5. Causing breach. [ ଉ—କେହି [ଭଙ୍ଗେଇ—ଖି] ନ ଜାଣନ୍ତି ଉଭର ଗୋଇ, ସମସ୍ତେ କହନ୍ତି ଘର ଭଙ୍ଗେଇ । ଛଗ । ] ସ. ବି ( ଭଙ୍ଗ+ଅ ) ବିଜୟା, ଭାଙ୍ଗ; ଗଞ୍ଜେଇ ଗଛ—Cannabis Sativā.

**ଭଙ୍ଗାଇ କହିବା**—ଦେ. କ୍ରି—ବୁଝାଇ ସୁଝାଇ କହିବା—To explain Bhaṅgāi kahibā a matter in detail. ভেঁগে বলা (ଉ—ଯେତେ ରୂପେ ଭଙ୍ଗାଇ କହିଲେ ହେଲେ ନୃପ ଦେବଯାମୀର କ୍ରୋଧ ବଢିଲା ଅମାପ । କୃଷ୍ଣସିଂହ. ମହାଭାରତ. ଆଦି ।)

**ଭଙ୍ଗା(ଙ୍ଗେ)ଇବା**—ଦେ. କ୍ରି (ସ. ଭଜନ୍ ଧାତୁ ଣିଚ୍)—ଭାଙ୍ଗିବା କ୍ରିୟାର Bhaṅgā(ṅge)ibā ଣିଜନ୍ତ ରୂପ—The causative form ভাঙ্গান of Bhāṅgibā. ୧ । ଅନ୍ୟ ଦ୍ୱାରା ଭାଙ୍ଗିବା କର୍ମ भुन्ना, भुनाना, तोड़वाना କରାଇବା—1. To cause to be broken or demolished. ୨ । ନଷ୍ଟ କରାଇବା—2. To cause destruction of; to cause to be spoilt. ୩ । ବଡ଼ ମୁଦ୍ରା ବା ନୋଟ ବଦଳରେ ଛୋଟ ମୁଦ୍ରା ନେବା—3. To exchange currency of larger value to small coins. ୪ । ବିରତ କରାଇବା; ବନ୍ଦ କରାଇବା—4. To cause to stop; to prevent a person from doing a thing. ୫ । (ବିବାଦ ବା ମକଦ୍ଦମାକୁ) ଆପୋଷରେ ମୀମାଂସା କରାଇବା—5. To cause a case or dispute to be amicably decided or settled. ୬ । ରଚିତ ହୋଇଥିବା ବେଶ ଆଦିକୁ ଅନ୍ୟ ଦ୍ୱାରା କାଢାଇବା—(ଯଥା—ବେଶ ଭଙ୍ଗାଇବା)—6. To cause a person to dismantle the decoration put on a person. ୭ । ପେଟ ଝଣା ବନ୍ଦ କରିବା ପାଇଁ ଚିତ ହୋଇ ଶୋଇଥିବା ମନୁଷ୍ୟର ପେଟ ଉପରେ ଗୋଟିଏ କଂସା ବା ବଡ଼ ପାତ୍ର ବସାଇ ଉପର୍ଯ୍ୟପରି ଅନ୍ୟ ପାତ୍ରରୁ ସେ କଂସା ମଧ୍ୟକୁ ଥଣ୍ଡା ବା ଗରମ ପାଣି ଅନ୍ୟ ଦ୍ୱାରା ଅଜାଡ଼ାଇବା (ଯଥା—ପାଣି ଭଙ୍ଗାଇବା)—7 To cause a person to repeatedly pour water into a shallow pan put on the belly of a person lying flat with a view to alleviate the latter's belly-ache. ୮ । ଅନ୍ୟ ଦ୍ୱାରା ଭୂମିରେ ମୁରୁଜ ବା ଗଣ୍ଡ ବା ପିଠଉ ଦ୍ୱାରା ମଣ୍ଡଳ ଓ ଚିତ୍ର ଆଦି ଅଙ୍କିତ କରାଇବା (ଯଥା—ମୁରୁଜ ଭଙ୍ଗାଇବା)—8. To cause another to draw circles and other artistic figures on the ground. ୯ । ଚୁଗୁଲି ଆଦି ଦ୍ୱାରା କୌଣସି ବ୍ୟକ୍ତିର ମନକୁ ଅନ୍ୟ ବ୍ୟକ୍ତି ଉପରେ ବିରାଗଯୁକ୍ତ ବା ଅପ୍ରସନ୍ନ କରାଇବା (ଯଥା—ମନ ଭଙ୍ଗାଇବା)—9. To cause a person to be displeased or annoyed with another by back-biting. ୧୦ । ଦଉଡ଼ି ଆଦିକୁ ଅନ୍ୟ ଦ୍ୱାରା ବଳାଇବା (ଯଥା—ଦଉଡ଼ି ଭଙ୍ଗାଇବା)—10. To cause a rope to be twined or twisted. ୧୧ । ଅନ୍ୟ ଦ୍ୱାରା ଲୁଗା ଆଦିକୁ କୁଞ୍ଚ ବା ଭାଙ୍ଗ କରାଇବା । ( ଯଥା—ଲୁଗା ଭଙ୍ଗାଇବା )—11. To cause a cloth to be artistically folded. ୧୨ । ଅନ୍ୟ ଦ୍ୱାରା ପାନ ଖିଲ ସଜାଇବା (ଯଥା—ପାନ ଭଙ୍ଗାଇବା)—12. To cause another to prepare packets of betel or nuts etc for chewing. ୧୩ । କୌଣସି ପରିବାରରେ ଅନ୍ତର୍ବିବାଦର ଖଳ କପଟ କରି ପରିବାରର ବ୍ୟକ୍ତିମାନଙ୍କ ମଧ୍ୟରେ ବିବାଦ ଜନ୍ମାଇ ସେମାନଙ୍କୁ ପରସ୍ପର ଠାରୁ ପୃଥଗନ୍ନ, ପୃଥଗ୍‌ବାସ କରାଇବା (ଯଥା—ଘର ଭଙ୍ଗାଇବା)—13. To cause or bring about internal dispute or rupture (in a family). ୧୪ । ପୂର୍ଣ୍ଣାବସ୍ଥା ପୂର୍ବରୁ ଗର୍ଭସ୍ଥ ଭ୍ରୂଣକୁ ଗର୍ଭରୁ ଖସାଇବା (ଯଥା—ପେଟ ଭଙ୍ଗାଇବା—14. To cause abortion or miscarriage ୧୫ । କୌଣସି ପ୍ରସ୍ତାବ କାର୍ଯ୍ୟରେ ପରିଣତ ନ ହେବାର ଉପାୟ କରିବା (ଯଥା—ବିବାହ ପ୍ରସ୍ତାବ ଭଙ୍ଗାଇବ । )—15. To cause the breaking of a proposal. ୧୬ ।ଅଭିପ୍ରେତ କାର୍ଯ୍ୟରୁ କୌଣସି ବ୍ୟକ୍ତିକୁ ନିବର୍ତ୍ତାଇବା—16. To dissuade a person from carrying out a certain wish. [ଦ୍ର—ଭାଙ୍ଗିବା କ୍ରିୟାର ଭିନ୍ନ ଭିନ୍ନ ଅର୍ଥର ଣିଜନ୍ତ ରୂପରେ ଭଙ୍ଗାଇବା କ୍ରିୟା ବ୍ୟବହୃତ ହୁଏ ।] ପ୍ରାଦେ. (ଗଡ଼ଜାତ) କ୍ରି—(ଗାଈ) ଗର୍ଭବତୀ ନ ହେବା; ବୃଷସଙ୍ଗମ ପରେ ଗର୍ଭଧାରଣ ନ କରିବା—(a cow) Not to be successful in one copulation with a bull.

**ଭଙ୍ଗା କାନ୍ଥଡ଼ା**—ପ୍ରାଦେ. (ବାଲେଶ୍ୱର) ବି—୧ । ଘରର ଭଗ୍ନାବଶେଷ—Bhaṅgā kāntharḍā 1. The ruins of a house; debris. ভাঁগা কাঁথ ୨ । ଘରର ଛାଳ ବା ଛାତ ଭାଙ୍ଗି ପଡ଼ିବା मलवा ପରେ ଠିଆ ହୋଇଥିବା ଭଙ୍ଗା କାନ୍ଥମାନ—2. The broken and outstanding walls of a house of which the roof has come down.

**ଭଙ୍ଗା ଚୂର**—ପ୍ରାଦେ. (ସମ୍ବଲପୁର) ବି—ଭାଙ୍ଗିବା ଓ ଚୂନା କରିବା—Bhaṅgā chūrā Breaking and pounding. ভাঙ্গ চূর ବିଣ—ଭଗ୍ନ ଓ ଚୂର୍ଣ୍ଣ—Broken and pounded. तोड़ना चूरना ভাঙ্গাচুরা टूटाफूटा

**ଭଙ୍ଗାଣିଆ(ଆଁ)**—ପ୍ରାଦେ. ( ଉତ୍ତର ବାଲେଶ୍ୱର ) ବି (ଭୁଲ. ବି. Bhaṅgāṇiā(āṅ) ଭାଗାମୀ)—୧ । ଟଙ୍କା ଆଦିର ଖୁଚୁରା; ଟଙ୍କା ভাঙ্গানিয়া ଆଦି ବେଶି ମୂଲ୍ୟର ମୁଦ୍ରାକୁ ଅଳ୍ପ ମୂଲ୍ୟର ବିଭିନ୍ନ तोड़नेवाला ମୁଦ୍ରାରେ ପରିବର୍ତ୍ତନ—1. Change of currency of higher value into coins of lower value. ୨ । ବେଶି ମୂଲ୍ୟର ମୁଦ୍ରା ବଦଳରେ ପ୍ରାପ୍ତ ଅଳ୍ପ ମୂଲ୍ୟର ମୁଦ୍ରାମାନ; ଖୁଚୁରା—2. Smaller coins

received in exchange for coins of higher value. ଦେ. ବଣ—ଯାହା ଭଙ୍ଗେ—Breaking; causing rupture. (ଯଥା—ମନ-ଭଙ୍ଗାଣିଆ କଥା; ଘରଭଙ୍ଗାଣିଆ ଲୋକ ।)

ଭଙ୍ଗାଭୁ(ଫୁ)ଟା—(ସବୁଚର) ବଣ—ଭଙ୍ଗା ଓ ଫୁଟା (ଦ୍ରବ୍ୟମାନ)—Bhangātu(phu)tā Broken and cracked [things]. (ଭଙ୍ଗାରୁଜା, ଭଙ୍ଗାଦଦରା, ଭଙ୍ଗାଫଟା—ଅନ୍ୟରୂପ) ভাঁগাটু(ফা)টা

ଭଙ୍ଗାଭଙ୍ଗ ଶ୍ଳେଷ—ସଂ ବି—କାବ୍ୟାଲଙ୍କାର ବିଶେଷ—A poetical Bhangābhanga ślesha composition in which a line conveys various senses. [ ଦ୍ର—ଏ ରଚନାରେ ଅଭଙ୍ଗ ଶ୍ଳେଷ ଓ ସଭଙ୍ଗ ଶ୍ଳେଷ ଦ୍ୱାରା ଗୋଟିଏ ପଦର ନାନା ଅର୍ଥ କରାଯାଇ ପାରେ; ଶ୍ଳେଷ ଶବ୍ଦେ ଟୀକା ଦେଖ । ] (ଉ—ସାନଭାପ ବିନାଶନ ସାଇଁ କି ସେ ହରି, ଉତ୍କଳ ତ ନୋହୁଛ୍ଛ ଅଛ୍ଛ ତ ବିଭାବରୀ, ଲୁମ୍ଫଦକାରୀ ସତ ବିଚ୍ଛେଦ ତମ ବାର, ସବଂ ଶିରୋଧାର୍ଯ୍ୟ ପୁଣି ଅହାଲ୍ୟ ବ- କାରୀ । ଅଭିମନ୍ୟୁ. ବିଦଗ୍ଧ ଚନ୍ତାମଣି ।)

ଭଙ୍ଗା ଭଙ୍ଗା—ଦେ. ବଣ (ବହୁବଚନ)—୧ । ବିଶେଷ ଭାଙ୍ଗ ଥିବା; ବଙ୍କା Bhangā bhangā ବଙ୍କା—1. Having creases and ভাংগা ভাংগা bends. ୨ । ଦଦରା—2. Half-broken. ୩ । ଅସ୍ଫୁଟ (ବାଳଭାଷା)—3. Prattling [speech]. ୪ । ଅସ୍ପଷ୍ଟ (କଥା)-4. Indistinctly expressed; half-expressed [words].

ଭଙ୍ଗାଭଙ୍ଗି—ଦେ. ବି—ଭାଙ୍ଗିବା କ୍ରିୟା—The act of breaking. Bhangābhangi ভাঙ্গাভাঙ্গি

ଭଙ୍ଗାରି—ସ. ବି—(ଭଙ୍ଗ+ଅରି)—ମଶା [ହ୍ରି. ଶ]—Bhangāri Mosquito.

ଭଙ୍ଗି(ଙ୍ଗୀ)—ସ. ବି (ଭଜନ୍ ଧାତୁ=ଭାଙ୍ଗିବା+ଭାବ. ଇ, ଈ)—Bhangi[ngi] ୧ । ଶୋଭା; ସୌନ୍ଦର୍ଯ୍ୟ—1. Beauty. (ଉ—ଭଙ୍ଗୀ ଶ୍ରବାଁ ଭ୍ରୁରୁ ସାଲ ଭୁଜଙ୍ଗୀ ଭ୍ରମର ଜାବ ସଙ୍ଗି । କବି-ସୂର୍ଯ୍ୟ. ବଳୋସାରଞ୍ଚ୍ଚ. ଦ ଗୀତ ।) ୨ । ଚତୁରୀ; ଛଳ—2. Trick. (ଉ—ଶଇକ ତ ଜାଣନ୍ତି ଖେଳର ଭଙ୍ଗିକ । କୃଷ୍ଣସିଂହ. ମହାଭାରତ. ସଭା ।) ୩ । ରୂପ; ଛବି; ପ୍ରତିକୃତି—3. Picture; form. ୪ । ଛଟକ; ହାବଭାବ; ଅଙ୍ଗର; କ୍ରୀଡ଼ା (ଯଥା—ଭାବଭଙ୍ଗି; ଭ୍ରୂଭଙ୍ଗି)—4. Gesture; contortion of the limbs. ୫ । ଥଟ୍ଟା ତାମସା; ରଙ୍ଗ; କୌତୁକ—5. Jest; joke; sport; repartee. ୬ । ତରଙ୍ଗ—6. Wave. ୭ । ଛଳ—7. Disguise. ୮ । କ୍ରୀଡ଼ାଜନକ ଭାବ—8. Amusing ways; wantonness; sportiveness. ୯ । ରଚନା—9. Composition. ୧୦ । ରସିକତା—10. Gallantry; wish; honour. ୧୧ । ଢଙ୍ଗ; ଭାବ—11. Condition. ୧୨ । ଢଙ୍ଗ; ପ୍ରକାର—12. Kind; mode; manner; ways. ୧୩ । ବିନ୍ୟାସ (ହ୍ରି. ଶ)—13. Arrangement. ୧୪ । ବ୍ୟଙ୍ଗ୍ୟ—14. Irony; ironical expression.

ଭଙ୍ଗି—ଦେ. ବି—[ହିନ୍ଦୀରୁ ଅନୁକୃତ]—ହାଡ଼ି; ମେହେନ୍ତର—Bhangi ভাঁগী भंगी Sweeper.

ଭଙ୍ଗିଆ(ୟା)—ଦେ ବଣ. ପୁଂ [ସ୍ତ୍ରୀ. ଭଙ୍ଗୀମତୀ]—୧ । ଛଇଳ—Bhangiā[yā] 1. Assuming different gestures. ଭଙ୍ଗୀ } ସ୍ତ୍ରୀ ଭଙ୍ଗେଇ } ୨ । କୌତୁକୀ—2. Sportful; sportive. ୩ । ରସିକ—3. Gallant. ୪ । (ବାକ୍ୟ) রসিক ରସିକତା ପୂର୍ଣ୍ଣ—4. Humourous; witty.

ଭଙ୍ଗି(ଙ୍ଗୀ) କଥା—୧ । ବ୍ୟଙ୍ଗପୂର୍ଣ୍ଣ ବାକ୍ୟ—1. Covert or ironical Bhangi(ngi) kathā expressions. ୨ । ଅବୋଧ କଥା—রঙ্গভঙ্গ 2. Mystical or unintelligible expression. ୩ । ରସିକତାପୂର୍ଣ୍ଣ କଥା—3. Witty or humorous expressions.

ଭଙ୍ଗି କାଢ଼ିବା—ଦେ. କ୍ରି-୧ । ଚତୁରୀ ଦେଖାଇବା; ଛଳ ଦେଖାଇବା—Bhangi kārdhibā 1. To display tricks. ୨ । ଛଟକ ଭଙ୍ଗି ଦେଖା[ଖେ]ଇବା } ଭଙ୍ଗି ହେବା } ଅନ୍ୟରୂପ ଦେଖାଇବା—2. To assume enchanting ভাঙ্গ দেখান ways. ୩ । ଥଟ୍ଟା ଖେଳିବା—3. To play tricks. ୪ । ପ୍ରକାର ଦେଖାଇବା—4. To display various curious modes or ways.

ଭଙ୍ଗିତା—ଦେ. ବି—ଭଙ୍ଗି; ଛବି; ରୂପ—Picture; form. [ ଉ—Bhangitā ଲଲାଟେ ଚନ୍ଦନ ଚିତା, ସିନ୍ଦୂରବିନ୍ଦୁ ଶୋଭିତା, ଇନ୍ଦୁ କୋଳେ କି ସବିତା । ଏହି ଭଙ୍ଗିତା ହେ । ଉଞ୍ଜ. ବୈଦେହୀଶ-ବିଳାସ । ]

ଭଙ୍ଗିବଚନ—ଦେ.ବି—୧ । ପରିହାସ ବାଣୀ—1. Jocose words. Bhangi bachana ୨ । ରସିକତାପୂର୍ଣ୍ଣ ବାକ୍ୟ—2. Witty পরিহাস বচন saying. [ ଉ—ସଙ୍ଗୀମାଏ ଏହିକାଳେ, ଭଙ୍ଗୀବଚନ ପ୍ରକାଶ କଲେ—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ୩୫ । ୧୨ ]

ଭଙ୍ଗିମା—ସ. ବି (ଭଙ୍ଗ+ଭାବାର୍ଥେ. ଇମନ୍; ଭଙ୍ଗିମନ୍, ୧ମା ୧ ବଚନ)—Bhangimā ୧ । ଭଙ୍ଗି, ଛଟକ; ଛଳ—1. Amusing deportment. ୨ । ଶୋଭା; ସୌନ୍ଦର୍ଯ୍ୟ—2. Beauty; charm. ୩ । ଢଙ୍ଗ—3. Mode. [ ଯଥା—ସେ ଭଳି ଭଙ୍ଗିମାରେ ଠିଆ ହେଉଛି । ]

ଭଙ୍ଗିମାନ୍—ସ. ବ. ପୁଂ ( ଭଙ୍ଗି+ମତ୍ ଅସ୍ତ୍ୟର୍ଥେ; ୧ମା ୧ବଚନ )—Bhangimān ୧ । ତରଙ୍ଗିତ—1. Waving. ୨ । [ ଭଙ୍ଗିମତୀ—ସ୍ତ୍ରୀ ] ଭଙ୍ଗିମା; ଛଇଳ—2. Assuming charming ways. ୩ । କୌତୁକୀ—3. Sportful, wanton.

ଭଙ୍ଗୀୟାନ୍—ସ. ବଣ. ପୁଂ—୧ । ( ଭଙ୍ଗ+ଈୟସ୍; ୧ମା ୧ବ )—Bhangiyān ଯେ ରଣରେ ଭଙ୍ଗଦେଇ ପଳାୟନ କରେ—[ ଭଙ୍ଗୀୟସୀ—ସ୍ତ୍ରୀ ] 1. Deserting from the thick of

affight; renegade from the rank of the army. ୬ । ( ଭଙ୍ଗ+ଈୟସ୍; ୧ମା ୧ବଚନ )—ଭଙ୍ଗିମାନ୍ [ଦେଖ]—2. Bhangimān [See]

ଭଙ୍ଗୀର—ଦେ. ଣ—ଶୃଙ୍ଗୁପ୍ରପୂର୍ଣ୍ଣ—Artful. [ ଉ—ଭ୍ରଷ୍ଟ Bhangira ସୁନ୍ଦର ଦରବାରୀ ବ ଭଙ୍ଗୀର ଭିଜ ହେଉ ପଛେ ସେ ତୋ ପରସର ହେ—ଭକ୍ତ. ପ୍ରେମସୁଧାନିଧି ]

ଭଙ୍ଗୀଲ—ସ. ବଣ ( ଭଙ୍ଗ+ଈଲ )—ଜ୍ଞାନେନ୍ଦ୍ରିୟର ବକଳତା Bhangila [ହି. ଷ.]—The deformity of a sense-organ.

ଭଙ୍ଗୁର—ସଂ. ବଣ ( ଭଜନ୍ ଧାତୁ=ଭାଙ୍ଗିବା+ ଶୀଳାର୍ଥେ. ଉର )—Bhangura ୧ । ବକ୍ର—1. Crooked. ୨ । ମସୃଣ; ( ଭଙ୍ଗୁରା—ସ୍ତ୍ରୀ ) ଭଙ୍ଗପ୍ରବଣ—2. Brittle; fragile. ୩ । କୂଟବୁଦ୍ଧିପୂର୍ଣ୍ଣ—3. Crafty. ୪ । ଯାହା ସାମାନ୍ୟ ଆଘାତରେ ଭାଙ୍ଗିଯାଏ—4. Frangible. ୫ । ଯାହାର କାର୍ଯ୍ୟର ଓ ମତର ସ୍ଥିରତା ନ ଥାଏ—5. Inconstant; fickle. ୬ । ବିନଶ୍ୱର; ବିନାଶଶୀଳ—6. Prone to destruction; destructible; subject to decay. [ଉ—ଭଙ୍ଗୁର ଭବର ଭୋଗ, ସୁଖ ଏହିପରି—ରାଧାନାଥ. ମହାଯାତ୍ରା ।] [ ଦ୍ର—ଭଙ୍ଗୁର ବା ଭଙ୍ଗପ୍ରବଣ ପଦାର୍ଥ (ଯଥା—କାଚ ପାତ୍ର ଆଦି ) କୁ କଥାରେ କହନ୍ତି ଏହା ଲୁଲୁଡ଼ା ଡ଼ୁମ୍ବ ଘର ହୋଇଅଛି । ଏହା ଠୁଙ୍କୁ ଠୁଙ୍କୁ ହୋଇଅଛି । ] ଦେ. ବ—ନଦୀର ବାଙ୍କ—ਮंगुर The bend of a river.

ଭଙ୍ଗୁରତା(ତ୍ୱ)—ସ. ବ ( ଭଙ୍ଗୁର+ତା )—୧ । ଭଙ୍ଗପ୍ରବଣତା—Bhanguratā(twa) 1. Fragility; frangibility. ୨ । ବିନାଶଶୀଳତା—2. Destructibility.

ଭଙ୍ଗୁରା—ସ. ବଣ. ସ୍ତ୍ରୀ ( ଭଙ୍ଗୁର+ସ୍ତ୍ରୀ. ଆ )—ଭଙ୍ଗୁରର Bhangurā ସ୍ତ୍ରୀଲିଙ୍ଗ—Feminine of Bhangura. ସଂ. ବ—୧ । ଅତିବିଷା—1. Aconite. ୨ । ପ୍ରିୟଙ୍ଗୁ ( ଦେଖ )—2. Priyangu (See)

ଭଚକ୍ର—ସଂ. ବ ( ଜ୍ୟୋତିଷ )—୧ । ରାଶିଚକ୍ର; ଦ୍ୱାଦଶ ରାଶିଙ୍କ Bhachakra ଗୃହରେ ଗ୍ରହମାନଙ୍କ ଅବସ୍ଥାନ ବିଜ୍ଞାପକ ( ଭପଞ୍ଜର—ଅନ୍ୟରୂପ ) ଚକ୍ର—1. The stellar sphere; the zodiac. [ ଦ୍ର—ଏହି ୧୨ ରାଶିଙ୍କର ୧୦୮ ପଦ ମଧ୍ୟରୁ ଯେଉଁ ରାଶିରେ ଯେଉଁ ଗ୍ରହ ଯେଉଁ ସମୟରେ ଅବସ୍ଥାନ କରୁଥାଆନ୍ତି ତହିଁର ଜ୍ୟୋତିଃଶାସ୍ତ୍ର ଗଣନାନୁସାରେ ଚକ୍ର । ] ୨ । ୨୭ ନକ୍ଷତ୍ରରେ ବିଭକ୍ତ ଚନ୍ଦ୍ରଙ୍କର ଗତିପଥସୂଚକ ଭୂଗୋଳ—2. The lunar zodiac.

ଭଚ(ଚୁ)କା—ଦେ. ବ—୧ । (ବିଲୁଆ ଯେଉଁପରି ପଶ୍ଚାଦ୍ଧାବକ କୁକୁରର Bhacha(chu)kā ମୁହଁରୁ ପଳାଏ, ସେହିପରି ) କୌଶଳପୂର୍ବକ ଶ୍ୟାଲ फाँकी ପଶ୍ଚାଦ୍ଧାବକର କବଳରୁ ଖସିଯିବା—1. Escaping from onset of a टालमटोल; हीलाहवाला pursuer; the artful evasion of one's pursuers. ୨ । ଟାଳମଟୁଳ—2. Putting off on various excuses.

ଭଚକା(କେ)ଇବା—ଦେ. କ୍ରି—୧ । ଧମକାଇବା; ଭୟ ଦେଖାଇବା; Bhachakā(ke)ibā ସ୍ତମ୍ଭିତ କରାଇବା—1. To threaten; धमकाना, फाँकी देओया to stun a person with fear; to हीलाहवाला बताना; ठगना terrify a person. ୨ । ପଶ୍ଚାଦ୍ଧାବକକୁ ଏଡ଼ିବା; ଭଚକା ମାରିବା—2. To evade a chase. ୩ । ଭଣ୍ଡାଇବା—3. To put off a person on some excuse.

ଭଚ(ଚୁ)କା ଦେବା—ଦେ. କ୍ରି—୧ । ଆପଣାକୁ ଧରିବାକୁ ଗୋଡ଼ାଇଥିବା Bhacha(chu)kā debā କୌଣସି ବ୍ୟକ୍ତିକୁ କୌଶଳ ପ୍ରୟୋଗ-ଶ୍ୟାଲ फाँकी देओया ପୂର୍ବକ ଧରି ନ ଦେବା; ଏଡ଼ିବା—1. To हीलाहवाला बताना baffle one's pursuers; to evade one's chasers. ୨ । ଭଣ୍ଡିବା—2. To put off on some excuse.

ଭଚ୍ଛ(ର୍ଚ୍ଛ)ନା—ଗ୍ରା. ବ—(ସ. ଭର୍ତ୍ସନା)—ଭର୍ତ୍ସନା; ଗାଳି—Bhachchha(rchcha)nā Rebuke; censure; abuse. (ଭର୍ଚ୍ଛନା, ଭୃଛନା, ଭୃଚ୍ଛନା—ଅନ୍ୟରୂପ) भच्छना डाँटडपट

ଭଜ୍ (ଧାତୁ)—ସ—୧ । ସେବା କରିବା—1. To serve; to Bhaj (root) devote oneself to the service of. ୨ । ପୂଜା କରିବା—2. To worship. ୩ । ନାମ ସ୍ମରଣ କରିବା—3. To recite the names of a person. ୪ । ସ୍ତୁତି କରିବା—4. To pray. ୫ । ଶରଣାପନ୍ନ ହେବା—5. To take shelter under a person. ୬ । ବିଭାଗ କରିବା—6. To divide or share.

ଭଜ—ଦେ. ବ—ଲୋକଙ୍କୁ ଦିଆଯିବା ନାମ—Names given to Bhaja persons. ସ. କ୍ରି—(ଭଜ୍ ଧାତୁ ଲୋଟ ମଧ୍ୟମ ପୁରୁଷ ଭଜ ହରି; ଭଜ ଗୋବିନ୍ଦ; ଭଜ ୧ବଚନ )—ଭଜନା କର—Do भज गोविन्द, भज आनन्द worship. ( ଉ—ଭଜ ମନ କଲା ( ଭଜ—ଆଦରାର୍ଥକ ରୂପ ) କହ୍ନାଇ, ଭଜିଲେ ଏ ଦୁଃଖ ରହିବ [ଭଜଅ—ଅନାଦରାର୍ଥକ ରୂପ] ନାହିଁ । )

ଭଜଗୋବିନ୍ଦ, ଭଜନ, ଭଜନା, ଭଜନାନନ୍ଦ, ଭଜନ ଭଜ(ଜା), ଭଜଅ(ସ୍ତା), ଭଜମନ, ଭଜହରି } ଅନ୍ୟରୂପ

ଭଜକ—ସ. ବଣ. ପୁଂ—(ଭଜ୍ ଧାତୁ+କର୍ତ୍ତୃ. ଅକ)—୧ । ଭଜନ-Bhajaka କାରୀ—1. Praying. ୨ । ବିଭାଗକାରୀ—(ଭଜିକା—ସ୍ତ୍ରୀ) 2. Dividing.

ଭଜକଟ—ଦେ. ବ—(ଭଞ୍ଜନ ଓ କର୍ତ୍ତନ=ଭାଙ୍ଗିବା ଓ କାଟିବା ରୂପ Bhajakata କଷ୍ଟକର କାର୍ଯ୍ୟ, ବା ଭଜନ ଓ କଷ୍ଟ କିମ୍ବା ଭଙ୍ଗା ଭଜକଟ ଓ କଷ୍ଟ)—୧ । ବ୍ୟାଘାତ, ବିଘ୍ନ—1. Obstruction; भँवर जाल, गडवडी impediment. ୨ । ବିଷମ ସମସ୍ୟା—2. Dilemma; difficult predicament. ୩ ।

କଷ୍ଟକର ଉଦ୍ଯୋଗ, କଷ୍ଟଦାୟକ ଉଦ୍ଯୋଗ—3. Difficult exertion. ୪ । କଷ୍ଟଜନକ କର୍ତ୍ତବ୍ୟ କାର୍ଯ୍ୟ—4. Difficult task. ୫ । ଗୋଳମାଳଥିବା କାର୍ଯ୍ୟ—5. Confused act. ୬ । ହଟହଟା; ଗୋଳମାଳ—6. Entanglement; confusion. ୭ । କୌଣସି କାର୍ଯ୍ୟ ନିମନ୍ତେ ଅବଲମ୍ବିତ ନାନା ଉପାୟ—7. Expedients followed to attain one's object.

**ଭଜକଟ କରିବା**—ଦେ. କ୍ରି—୧ । କୌଣସି ଉଦ୍ଦେଶ୍ୟର ସାଧନ ନିମନ୍ତେ ନାନା କଷ୍ଟସାଧ୍ୟ ଉଦ୍ୟମରେ ସଂଶ୍ଳିଷ୍ଟ ହେବା—1. To be entangled in confused actions with a view to achieve one's object. ୨ । ଗୋଳମାଳରେ ପଶିବା—2. To be involved in confusion and entanglements. ୩ । ହଟହଟାରେ ପଡ଼ିବା—3. To fall into a false position or predicament.
Bhajakaṭa karibā
( ଭଜକଟରେ ପଶି(ଡ଼)ବା—ଅନ୍ୟରୂପ )
ভজকট করা
**गोलमालमे फँसना**

**ଭଜନ୍**—ଗ୍ରାଦେ. (ସମ୍ବଲପୁର) ବି. (ସଂ. ଭୋଜନ)—ଭୋଜନ—Meal; eating.
Bhajan

**ଭଜନ**—ସଂ. ବି (ଭଜ୍ ଧାତୁ+ଭାବ. ଅନ)—୧ । ଦେବାଦିଙ୍କର ସ୍ତୁତି ଗାନ ବା ମହିମା କୀର୍ତ୍ତନ ବା ନାମକୀର୍ତ୍ତନ—1. Reciting the praise of gods or deities; repeatedly reciting the name of the worshipped deity. ୨ । ଆରାଧନା; ଉପାସନା—2. Praying. ୩ । ସେବା—3. Serving; service; attendance. ୪ । ଅର୍ଚ୍ଚନ, ପୂଜା—4. Worship; adoration. ୫ । ଆଶ୍ରୟଗ୍ରହଣ—5. Taking shelter under. ୬ । ଆତ୍ମ ସମର୍ପଣ—6. Yielding one's self up to; surrendering one's self. ୭ । ବାରଂବାର କୌଣସି ବ୍ୟକ୍ତିଙ୍କ ନାମସ୍ମରଣ—7. Recalling and repeating the name of a person. ୮ । ଭାଗ କରିବା—8. Dividing. ୯ । (+କର୍ମ. ଅନ) ଭାଗ—9. Share; allotment. ୧୦ । (+ଅଧିକରଣ ଅନ) ଦେବତାଙ୍କ ସ୍ତବ; ସ୍ତୁତି, ସ୍ତୋତ୍ର—10. Hymn. ଦେ. ବି—ଲୋକଙ୍କ ନାମ—Name given to persons.
Bhajana

**ଭଜନ କରିବା**—ଦେ. କ୍ରି—୧ । (ସଂ. ଭଜ୍ ଧାତୁ)—ଦେବତାଙ୍କ ନାମ ସ୍ମରଣ କରିବା, ଭଜିବା—1. To repeatedly recite the names of a deity. ୨ । ସର୍ବଦା କୌଣସି ବ୍ୟକ୍ତିଙ୍କୁ ସ୍ନେହ ବା ଭକ୍ତି ସହିତ ସ୍ମରଣ କରିବା; ସୁମରିବା; ଝୁରିବା—2. To cherish the memory of a person constantly. ୩ । ସ୍ତବ କରିବା—3. To pray. ୪ । ଆଶ୍ରୟ ନେବା—4. To take shelter or refuge. ୫ । ଲଭିବା, ଭଜିବା; ପ୍ରାପ୍ତ ହେବା—5. To get; to attain. ( ଯଥା—ମୃତ୍ୟୁ ଭଜନ କରିବା ) ୬ । ସେବା କରିବା—6. To serve.
Bhajana karibā
ভজন করা
**भजन करना**

**ଭଜନ ଗୃହ**—ସଂ. ବି—(୬ଷ୍ଠୀ ତତ୍)—୧ । ଉପାସନା ମନ୍ଦିର; ଯେଉଁ ମନ୍ଦିରରେ ଦେବତାଙ୍କୁ ଆରାଧନା କରାଯାଏ—1. A prayer hall. ୨ । ଗିର୍ଜା—2. Church. ୩ । ମସଜିଦ୍—3. Mosque. ୪ । ଦେବମନ୍ଦିର—4. Temple.
Bhajana gṛuha
ଭଜନାଳୟ, ଭଜନମନ୍ଦିର, ଭଜନଶାଳା, ଭଜନାଳୟ ଭଜନାଗାର—ଅନ୍ୟରୂପ

**ଭଜନ ଭାଜନ**—ଦେ. ବି—(ନିରର୍ଥକ ଦ୍ୱିତୀୟ ପଦରର ଶବ୍ଦ)—୧ । ସ୍ତୁତିପାଠାଦି—1. Hymn. ୨ । ସନ୍ଧ୍ୟାହ୍ନିକ—2. Daily prayers. ୩ । ଗୁପ୍ତ ମନ୍ତ୍ରଣା—3. Secret consultation or counsel.
Bhajana bhājana
ভজন টজন
**भजन उजन**

**ଭଜନ ମାଳା**—ସଂ.ବି—(୬ଷ୍ଠୀ ତତ୍, ୪ର୍ଥୀ ତତ୍)—୧ । ଜପମାଳା; ଯେଉଁ ମାଳା ସାହାଯ୍ୟରେ ଗଣନାପୂର୍ବକ ଦେବାଦିଙ୍କ ନାମ ଜପ କରାଯାଏ—1. String of beads used for reciting the names of deities. ୨ । ସ୍ତବସଂଗ୍ରହ—2. Collection of hymns.
Bhajana mālā
( ଭଜନମାଳ[ଳୀ]—ଦେଶଜରୂପ )

**ଭଜନ ସାଧନ**—ସଂ. ବି (ସହତର)—୧ । ସ୍ତବ ଓ ପୂଜା; ପୂଜା ଓ ଜପ ସେବା ଆରାଧନା—1. Worshipping and praying; worship and prayer. ୨ । ଦେବାର୍ଚ୍ଚନ; ସନ୍ଧ୍ୟାହ୍ନିକ—2. Daily worship or prayer. ୩ । ସାଧ୍ୟସାଧନ, ଅନୁନୟ ବିନୟ—3. Entreaties; repeated prayers.
Bhajana sādhana
ভজন সাধন
**भजन साधन**

**ଭଜନ ସ୍ମରଣ**—ସଂ. ବି—( ସମାର୍ଥକ ସହତର )—୧ । ସ୍ତୁତିପାଠାଦି—1. The saying of prayers or recital of hymns. ୨ । ସ୍ତୁତି ପାଠ ଓ ମାଳା ଜପ—2. Prayers and telling of beads. ୩ । ଦୈନିକ ଦେବାର୍ଚ୍ଚନ—3. Daily worship of God. ୪ । ସନ୍ଧ୍ୟାହ୍ନିକ—4. Daily prayers and rites.
Bhajana smaraṇa
(ଭଜନ ପୂଜନ—ଅନ୍ୟରୂପ)

**ଭଜନା**—ଗ୍ରାଦେ. (ସିଂହଭୂମ) ବି—ଏକ ପ୍ରକାର ଧାନ—A species of paddy. ଦେ. ବିଣ—ଭଜୁଥିବା—Worshipping. (ଉ—ନାମଭଜନା ଲୋକମାନେ, ବସନ୍ତି ଅର୍ଥବେଦ ଗ୍ରାମେ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।) ସଂ. ବି. ( ଭଜ୍ ଧାତୁ+ଭାବ. ଅନ+ଆ )—ଭଜନ; ଆରାଧନା; ସେବା—Praying; worshipping. ଦେ. ବି. (ଅନାଦରାର୍ଥକ)—ଭଜନାନନ୍ଦର ଡାକ ନାମ—A name for calling Bhajanānanda.
Bhajanā
ভজনা

**ଭଜନା କରିବା**—ଦେ. କ୍ରି. ( ସଂ. ଭଜ୍ ଧାତୁ )—୧ । ଭଜନ କରିବା
Bhajanā kariba ( ଦେଖ )—1. Bhajana kariba
ভজনা করা (See) ୨ । ଭଜିବା (ଦେଖ)—2. Bhajibā
भजन करना, भजना (See)

**ଭଜନାନନ୍ଦ**—ସଂ. ବି. (ମ. ପ, ଲୋ)—ଈଶ୍ୱରଭଜନକାରୀ ବ୍ୟକ୍ତିର
Bhajanānanda ଅନୁଭୂତ ଆନନ୍ଦ—The happiness ex-
भजनानन्द perienced by a person who prays to God.
ସଂ. ବିଣ. ପୁଂ—ଯେ ଈଶ୍ୱରଭଜନରେ ଆନନ୍ଦ ଲାଭ କରେ—Happy in the worship of God
ଦେ. ବି. ପୁଂ—ଲୋକଙ୍କ ନାମ—A name given to males

**ଭଜନାନନ୍ଦୀ**—ଦେ. ବିଣ. (ସଂ. ଭଜନାନନ୍ଦ)—ଈଶ୍ୱର ଭଜନ କରି
Bhajanānandī ଯେ ସୁଖରେ ମଗ୍ନ ହୋଇଥାଏ—Happy in
भजनानन्दी the worship of the Godhead.

**ଭଜନି**—ପ୍ରାଦେ. (ସିଂହଭୂମ) ବି—ଭଜନା ( ଦେଖ )
Bhajani Bhajanā ( See )
ভজন ওয়ালা ଦେ. ବିଣ—ଭଜନକାରୀ—Reciting hymns,
भजनी ଦେ. ବି—୧ । ଭଜନ କରିବା ଲୋକ—1. The person praying. ୨ । (ଆଦରାର୍ଥକ) ଭଜନାନନ୍ଦର ଡାକ ନାମ—2. A name for calling Bhajanānanda.

**ଭଜନୀୟ**—ସଂ. ବିଣ. ପୁଂ. (ଭଜ୍+କର୍ମ. ଅନୀୟ—୧ । ପୂଜା; ପୂଜନୀୟ
Bhajaniya (ବ୍ୟକ୍ତି)—1. Worshippable; adorable;
(ଭଜନୀୟା—ସ୍ତ୍ରୀ) venerable. ୨ । ଭଜନ କରିଥିବା ଯୋଗ୍ୟ (ସ୍ତୁବାଦ)—2. Fit to be recited.

**ଭଜ ମନ**—ଦେ. ଅ. ( ନିଜ ମନକୁ ସମ୍ବୋଧନ )—ହେ ମନ ତୁ
Bhaja mana ଭଜନା କର—O mind, you do pray
ভজ মন (to such or such a deity). ଦେ ବି ପୁଂ—
भजमन ଲୋକଙ୍କୁ ଡାକିବା ନାମ—A name given to males

**ଭଜମାନ**—ସଂ. ବିଣ. ପୁଂ ( ଭଜ୍ ଧାତୁ+କର୍ତ୍ତୃ. ଅନ )—୧ । ବିଭାଜକ
Bhajamāna —1. Dividing. ୨ । ଉପାସନାରତ—
(ଭଜମାନା—ସ୍ତ୍ରୀ) 2. Engaged in prayers. ୩ । ପୂଜା କରୁଥିବା; ପୂଜାକାରୀ—3. Worshipping. ୪ । ଉପଯୁକ୍ତ—4. Proper; suitable. ୫ । ସେବମାନ; ସେବାରତ—5. Engaged in serving.

**ଭଜା**—ଦେ. ବି ( ସଂ. ଭଜ୍ ଧାତୁରୁ ଭର୍ଜନ )—୧ । ଭର୍ଜନ; ଭାଜିବା
Bhajā କର୍ମ—1. Act of frying; roasting; baking.
ভাজা ୨ । ଭର୍ଜିତ ଖାଦ୍ୟ; ଭଜି; ଭଜା ହୋଇଥିବା ଖାଦ୍ୟ—
भूनना 2. Fried food; roast. ( ଯଥା—ଗୁଡ଼ୁଲଭଜା,
ভাজা କଦଳୀଭଜା । ) ଦେ. ବିଣ ( ସଂ. ଭର୍ଜିତ )—୧ ।
भूनाहुआ ଭର୍ଜିତ; ଯାହାକୁ ଭାଜିବାକୁ ହୋଇଥାଏ—1. Fried; roasted; baked. ( ଯଥା—ଭଜାମୁଗ, ଭଜାମାଛ, ଦୋଭଜା ଖଇ । ) [ ଉ—ଜ୍ଞାନାଗ୍ନିମୟ ତୁ ଅଗୁଣ,
ସକାମେ ଯେ ତୋର ଚରଣ, ପୂଜନ୍ତି ଜନ୍ମ ତାଙ୍କ ନାହିଁ, ଭଜା ଖାଜର ପ୍ରାୟ ହୋଇ । ଜଗନ୍ନାଥ. ଭାଗବତ । ]
୨ । ଯାହାଦ୍ୱାରା ଭାଜିବା କ୍ରିୟା ସାଧିତ ହୁଏ—2. Used for frying. ( ଯଥା—ଭଜା ଖପୁରି; ଭଜା ହାଣ୍ଡି—
୩ । ଘିଅରେ ଯାହାକୁ ଭର୍ଜିତ କରାଯାଇଅଛି—3. Fried in ghee or oil. ( ଯଥା—ଘିଅଭଜା ଶାଗ । ) ୪ । ବାଲିରେ ମିଶାଇ ଯାହା ଭର୍ଜିତ ହୋଇଥାଏ—4. Fried by being put in heated sand etc. ( ଯଥା—ବାଲିଭଜା ମୁଗ )

**ଭଜା(ଜେ)ଇ ଦେବା**—ଦେ. କ୍ରି—୧ । ସାକ୍ଷାତ୍ ପ୍ରମାଣ ଦ୍ୱାରା କୌଣସି
Bhajā(je)i debā ବିଷୟର ସତ୍ୟତା ପ୍ରତିପନ୍ନ କରାଇବା—
ভজিয়েদেওয়া 1. To have the truth of a matter
मुकाबला कराना established by proof. ୨ । ସମ୍ପୃକ୍ତ ବ୍ୟକ୍ତିର ଉପସ୍ଥିତି ଓ ଉକ୍ତିଦ୍ୱାରା କୌଣସି ବିଷୟର ସତ୍ୟତା ବା ଅସତ୍ୟତା ପ୍ରମାଣ କରାଇବା—2 To have a thing proved or disproved by confronting the person concerned.

**ଭଜା(ଜେ)ଇବା**—ଦେ. କ୍ରି ( ସଂ. ଭଜ୍ ଧାତୁ—ଭଜିବାର ଣିଜନ୍ତରୂପ )
Bhajā(je)ibā ୧ । ଅନ୍ୟକୁ ପ୍ରାର୍ଥନା କରାଇବା—1. To
ভজান cause another to say prayers. ୨ ।
भजवाना ଭଜକାଇବା; କୌଣସି ବ୍ୟକ୍ତିଙ୍କୁ ଭକ୍ତିଦ୍ୱାରା ବା ଅନୁସରଣ
ভজান ଦ୍ୱାରା ସନ୍ତୁଷ୍ଟ ବା ବଶୀଭୂତ କରିବା—2. To please
सन्तुष्ट रखना a person by one's devotion or
ভজান constant attendance. ୩ । (ସଂ. ଭୃଜ୍ ଧାତୁ)
भुनाना; भुनवाना ଭାଜିବାର ଣିଜନ୍ତରୂପ; ଅନ୍ୟଦ୍ୱାରା ଭାଜିବା କ୍ରିୟା କରାଇବା—3 To cause to be fried. ୪ ।
( ସଂ. ଭଜ୍ ଧାତୁ )—ପ୍ରବର୍ତ୍ତାଇବା; ମତାଇବା; ରାଜି କରାଇବା—4. To induce; to persuade; to cause to agree. ୫ । ମୁଖାମୁଖି ମୁକାବିଲା କରାଇବା
মোকাবিলা করা କୌଣସି ବିଷୟର ସତ୍ୟତା ବା ଅସତ୍ୟତାକୁ
भजार कराना ପ୍ରମାଣ କରିବାପାଇଁ ସମ୍ପୃକ୍ତ ବ୍ୟକ୍ତି ସଙ୍ଗେ ମୁକାବିଲା କରାଇବା—5. To cause a matter to be proved or disproved by confronting the person concerned. ୬ । ହିସାବ ମୁକାବିଲା କରାଇବା—6. To get an account explained
(हिसाब) मिलाना करना and settled.

**ଭଜା(ଜେ)ଇବା ମଜା(ଜେ)ଇବା**—ଦେ. କ୍ରି ( ସହଚର )—
Bhajā(je)ibā majā(je)ibā ସଂ. ଭଜ୍ ଧାତୁ ଓ ମସଜ୍ ଧାତୁ—
ଭଜା(ଜେ)ଇ ମଜା(ଜେ)ଇ ରଖିବା } ଅନ୍ୟରୂପ ଭରଜେଇବା,
ଭଜା(ଜେ)ଇବା ରଜା(ଜେ)ଇବା } କୌଣସି
ভজানমজান ବ୍ୟକ୍ତିର ମରଜି ନେବା; କୌଣସି ବ୍ୟକ୍ତିଙ୍କୁ ପ୍ରସନ୍ନ ବା
मिलाना; राजिमिलान करना ସନ୍ତୁଷ୍ଟ କରିବା; ବାକ୍ୟ, ସେବା ଓ କାର୍ଯ୍ୟଦ୍ୱାରା କୌଣସି ବ୍ୟକ୍ତିଙ୍କୁ ପ୍ରସନ୍ନ ରଖିବା—To

keep a person well pleased with one's words, devotion or action.

ଭଜା ଖଡ଼ିକା—ଦେ. ବି—ଭଜାଭଜି ଖଡ଼ିକା (ଦେଖ)
Bhajā khardikā Bhajābhaji khardikā (See).

ଭଜା ଖରଡା—ଦେ. ବି (ସହରର)—ଅଳ୍ପ ପାଣିରେ ଖରଡ଼ା ହୋଇ
Bhajā kharardā ତେଲ ବା ଘିଅରେ ଭଜା ହୋଇଥିବା
[ଭଜା ସ(ସି)ନ୍ତୁ(ନ୍ତୋ)ଳା—ଅନ୍ୟରୂପ] ବ୍ୟଞ୍ଜନ—Curry;
ভাজাড়ালনা fried in ghee or oil after being boiled
रधाभूना with a little water.

ଭଜା ଡାଲି—ଦେ. ବି—(ସଂ. ଭର୍ଜିତ+ଦାଲ)—ଭଜା ମୁଗ ବା ଭଜା
Bhajā dāli କୋଲଥ ରଗଡ଼ା ହୋଇ ପ୍ରସ୍ତୁତ ହୋଇଥିବା
ভাজা ডাল भुजीहुई दाल ଡାଲି—Split pulse prepared
(କଞ୍ଚା ଡାଲି ବା ଡାଇ—ଅନ୍ୟରୂପ) from fried grains.

ଭଜା ତିଅଣ—ଦେ. ବି (ସହରର) (ସଂ. ଭର୍ଜିତ+ତେମନ)—ଭଜା ଓ
Bhajā tiana ତରକାରି; ତିଅଣଭଜି; ତରକାରି ଭଜା—
(ଭଜା ତରକାରି—ଅନ୍ୟରୂପ) Fried vegetable and
ভাজা তরকারী भाजी तरकारी curry.

ଭଜା ପୋଡ଼ା—ଦେ. ବି (ସହରର)—(ଫଳାଦି) ଭଜାରେ ପ୍ରସ୍ତୁତ ଖାଦ୍ୟ
Bhajā pordā ଓ ପୋଡ଼ାରେ ପ୍ରସ୍ତୁତ ଖାଦ୍ୟ—(Vegetables)
(ଭଜା ଭରତା—ଅନ୍ୟରୂପ) Fried and singed.
ভাজা পোড়া भाजी और साना

ଭଜା ଭଜି—ଦେ. ବି (ସଂ. ଭର୍ଜନ)—୧ । ଭାଜିବା ପ୍ରକ୍ରିୟା—1. Act
Bhajā bhaji of frying. ୨ । ଭଜା ଆଦି ତରକାରି—
ভাজাভাজি 2. Curry and fried vegetables. ବିଣ—
भुनाभुनी ଯାହା ଦ୍ୱାରା ଭାଜିବା କ୍ରିୟା ସମ୍ପାଦିତ ହୁଏ—Used in
frying. (ଯଥା—ଭଜା ଭଜି ଅଟିକା ।)

ଭଜାଭଜି ଅଟିକା—ଦେ. ବି—ଯେଉଁ ଅଟିକା ବା ହାଣ୍ଡିରେ ଚାଉଳ
Bhajābhaji ātikā ମୁଗ ଆଦି ଭଜା ହୁଏ—An earthen
(ଭଜାଭଜି ହାଣ୍ଡି—ଅନ୍ୟରୂପ) pot in which pulse, paddy
भाड etc are fried.

ଭଜାଭଜିଖଡ଼ିକା—ଦେ. ବି—ଯେଉଁ ଖଡିକାଗୋଛଦ୍ୱାରା ଭଜା ହେଉ-
Bhajābhaji khardikā ଥିବା ଧାନ, ଚାଉଳ ଓ ମୁଗ ଆଦିକୁ
लारनकीखडही ଖରଡିବାକୁ ହୁଏ—A bunch of cocoanut
leaf stalks with which grains etc are
stirred during frying.

ଭଜା ମୁଗ—ଦେ. ବି (ସଂ. ଭର୍ଜିତ ମୁଦ୍ଗ)—ଯେଉଁ ମୁଗ ରଗଡ଼ା ହେବା
Bhajā muga ପୂର୍ବରୁ ଭଜା ହୋଇଥାଏ; ମୁଗ—Pulse
ভাজামুগ भुजाहुआ मुंग fried before being split.
(ବିପରୀତ—କଞ୍ଚାମୁଗ)

ଭଜା ରଗଡ଼ା—ଦେ. ବି—ଡାଲି କରିବାପାଇଁ ମୁଗ ହରଡ଼ ଆଦିକୁ
Bhajā ragardā ଭାଜିବା ଓ ଚକିରେ ରଗଡିବା—Frying
ভাজাভাঙ্গা भुनना दलना and splitting of pulses for
dāl.

ଭଜା ରନ୍ଧା—ଦେ. ବି (ସଂ. ଭର୍ଜନ+ରନ୍ଧନ)—ଖାଦ୍ୟ ଭାଜିବା କାର୍ଯ୍ୟ
Bhajā randhā ଓ ରାନ୍ଧିବା କାର୍ଯ୍ୟ—Act of frying and
ভাজারাংধা भूनारंधा cooking articles for food.

ଭଜିଆ—ପ୍ରାଦେ (ଉତ୍ତର ବାଲେଶ୍ୱର, ଗଡ଼ଜାତ) ବି—ଅନାର୍ଯ୍ୟ ଜାତି-
Bhajiā ବିଶେଷ—An aboriginal tribe of the name.
ଦେ. ବି. ପୁଂ (ଅନାଦରାର୍ଥକ)-ଭଜନାନନ୍ଦର ଡାକ ନାମ—
A name for calling Bhajanānanda.

ଭଜିବା—ଦେ. କ୍ରି. ସ (ଭଜ୍ ଧାତୁ)—୧ । ପୂଜା କରିବା —1. To
Bhajibā worship. ୨ । ଭଜନ କରିବା; ସ୍ତବ କରିବା—
ভজা 2. To pray. (ଯଥା—ଯାହାପାଇଁ ଶିବ ପୂଜୁ ଥାଉ,
भजना ତାହାଙ୍କ ପ୍ରିୟାଙ୍କୁ ଭଜୁ ଥାଉ । କାଶୀପୂର୍ଯ୍ୟ । )
୩ । ମାଳା ଜପିବା—3 To tell beads.
(ଯଥା—ଭସ୍ମ ମାଳା ତୁମ୍ଭର ଗଳାରେ ପଡ଼ିଛି, ଏଥିରେ
ଭଜିଲେ କି ମୁକତି ନୋହୁଛି । କୃଷ୍ଣସିଂହ ମହାଭାରତ.
ବନ ।) ୪ । ଉପର୍ଯ୍ୟୁପରି ନାମ ସ୍ମରଣ କରିବା—
4. To repeatedly utter the name of a
person in attachment or devotion.
୫ । ରଟିବା—5. To utter constantly. (ଯଥା—
ମନରେ ନାହିଁକି ମାଳରେ ନାହିଁ, ଭଜି ଭଜି ହରି ପାଇବୁ
କାହିଁ—ରଗ ।) ୬ । ଏକାନ୍ତରୂପେ ଆସକ୍ତ ହେବା—
6. To be deeply attached to. ୭ । ଧ୍ୟାନ ଗ୍ରସ୍ତ
ଝୁରିବା—7. To pine away in the thought
of a person. ୮ । (ମୃତ୍ୟୁ, ଲୟ, ବିନାଶ ଆଦି ଅବସ୍ଥା)
ସୁଖ ଦୁଃଖ ପ୍ରାପ୍ତ ହେବା; ଭୋଗ କରିବା—8. To get;
to experience; to suffer (death, self-extinction).
(ଉ—ମାଳ ଲୁଣ୍ଠିତ କୁନ୍ତଳ ତତି, ଭଜୁଥିଲା ଅସ୍ତ
ବ୍ୟସ୍ତ ସ୍ଥିତି—କବିସୂର୍ଯ୍ୟ । ତନୁ ତାହାଙ୍କ ଅତି ତନୁତା ଭଜୁଛି ।
କୃଷ୍ଣସିଂହ, ମହାଭାରତ. ଆଦି । ତା କଥାକୁ ସୁଖ ନ ଭଜେ ମୋର
କର୍ଣ୍ଣ । କୃଷ୍ଣସିଂହ ମହାଭାରତ. ବନ ।) ୯ । ଗୁଣଗାନ କରିବା;
ପ୍ରଶଂସା କରିବା—9. To eulogise; to praise.
୧୦ । ପତିରୂପେ ବରଣ କରିବା; ପ୍ରେମ ଦାନ କରିବା—
10. To love; to court; to choose as one's
husband. (ଉ—ଅଣ୍ଟିମାଙ୍କୁମାରେ ତା ଶୁଣିଣ ହସିଲେ,
କପଟୀ ତୁମ୍ଭେ ରୁକ୍ମିଣୀ ଭଜିଲ ଭାଷିଲେ । କୃଷ୍ଣସିଂହ.
ମହାଭାରତ. ବନ ।) ୧୧ । ସାଧନ କରିବା—
11. To practise. ୧୨ । ସେବା କରିବା—12. To
serve. (ଉ—ଅକ୍ଲେଶ ବୃତ୍ତିରେ ସମସ୍ତେ, ତାହାଙ୍କୁ ଭଜନ୍ତି
ଯଥୋଚିତେ । ଜଗନ୍ନାଥ. ଭାଗବତ ।) ୧୩ । ଭକ୍ତି ସହିତ
ଅନୁଗମନ କରିବା—13. To follow with devotion.
୧୪ । ପର ମନକୁ ଜଗି କାର୍ଯ୍ୟ କରିବା—
14. To seek to please a person. ୧୫ । ଶରଣା
ପନ୍ନ ହେବା; କୌଣସି ବ୍ୟକ୍ତିର ଆଶ୍ରୟ ନେବା—
15. To take shelter under a person.
(ଉ—ସେ ତ ସ୍ୱଭାବେ ସ୍ତ୍ରୀଙ୍କ ପୁଂସ ଭଜିବ, ରସିକ ଜଣେ
ବିନା କିସ ହୋଇବ । ଉପେ. ଲାବଣ୍ୟବତୀ ।)

ଭଜୀ—ସଂ. ବିଣ. ( ଭଜ୍ ଧାତୁ+ଇନ୍; ୧ମା. ୧ ବଚନ )—
Bhajī ଯେ ଭଜେ; ଭଜନକାରୀ—Praying.
(ଭଜିନୀ—ସ୍ତ୍ରୀ)

**ଭଜୁ(ବୁ)ସି(ସୀ)**—ଦେ. ବିଣ. ( ସଂ. ଭଜ ଧାତୁ )—୧ । ଭକ୍ତ—
Bhaju(bu)si(sī) 1. Devoted to. ୨ । ଯେ କୌଣସି
ଭକ୍ତ ବ୍ୟକ୍ତିର ମନ ଜଗିଥାଏ—2. Acting according
भक्त to the wish or pleasure of a person.
୩ । ନିଯୁକ୍ତ ସେବାକାରୀ—3. Diligently serving.
୪ । କୌଣସି ବ୍ୟକ୍ତିଠାରେ ଶରଣାପନ୍ନ—
4. Taking shelter under a person.
ଭକ୍ତି ବି—୧ । ଭକ୍ତି—1. Devotion. ୨ । ଆସକ୍ତି;
भक्ति ଅନୁରକ୍ତି—2. Attachment. ୩ । ଭଜାଇବା;
ରସାଇବା କର୍ମ—3. The act of pleasing a
person.

**ଭଜ୍ୟମାନ**—ସଂ ବିଣ. ପୁଂ (ଭଜ୍ ଧାତୁ + କର୍ମ. ଅନ )—୧ । ସେବ୍ୟ-
Bhajyamāna ମାନ—1. Being served. ୨ । ଯାହା
(ଭଜ୍ୟମାନା—ସ୍ତ୍ରୀ) ବିଭକ୍ତ କରି ଯାଉଅଛି—2. Being divided.

**ଭଞ୍ଜ** (ଧାତୁ)—ସଂ—୧ । ଭାଙ୍ଗିବା—1. To break. ୨ । ଲୋପ
Bhañj (root) କରିବା—2. To obliterate; to cause
(ଭନ୍‌ଜ ଧାତୁ—ଅନ୍ୟରୂପ) to disappear. ୩ । ବିନାଶ
କରିବା—3. To destroy; to ruin.

**ଭଞ୍ଜ**—ଦେ. ବି—୧ । କ୍ଷତ୍ରିୟଙ୍କ ଉପାଧିବିଶେଷ—1. Family
Bhañja title of Khatriyas. ୨ । ଘୁମୁସର, ମୟୂରଭଞ୍ଜ,
କେନ୍ଦୁଝର, ହଳଦିଆ ଆଦି ରାଜାମାନଙ୍କର ବଂଶଗତ ଉପାଧି—
2. Family title of kings of Ghumsar,
Mayūrbhañj, Keonjhar and Haladiā in
Orissa. ୩ । ଭଞ୍ଜ କବି (ଦେଖ)—3. Bhañja
kabi (See). [ଦ୍ର—ଏ ଭାଷାକୋଷରେ କବି ଉପେନ୍ଦ୍ର
ଭଞ୍ଜଙ୍କ ଗ୍ରନ୍ଥାଦିରୁ ଉଦ୍ଧୃତ ପଦମାନଙ୍କରେ 'ଭଞ୍ଜ' ନାମ
ଲେଖା ଯାଇଅଛି ।] ପ୍ରାଦେ. (ସମ୍ବଲପୁର) ବି—ପୋଳୁହ
(ଦେଖ)—Poḷuha ( See)

**ଭଞ୍ଜକବି**—ଦେ· ବି—(ଘୁମୁସର ରାଜବଂଶରେ ଜନ୍ମିଥିବାରୁ) ଉପେନ୍ଦ୍ରଭଞ୍ଜ-
Bhañja kabi Upendrabhañja,
(ଭଞ୍ଜ ଖାଇବର - ଅନ୍ୟରୂପ) (See) the renowned
classical poet of Orissa (of Ghumsur in
the district of Ganjam.) [ଭାଗ୍ୟବାନ୍ ବେନି
ବାଣୀଙ୍କ କୁମର, କବି ବଳଦେବ ଭଞ୍ଜ ଖାରବର ।
ରାଧାନାଥ. ଚିଲିକା ।]

**ଭଞ୍ଜ କିମ୍ବଦନ୍ତୀ**—ଦେ· ବି—ଉତ୍କଳର ଭଞ୍ଜବଂଶର ଉତ୍ପତ୍ତି ସମ୍ବନ୍ଧେ
Bhañja kimbadantī ପ୍ରାଚୀନ ଉପାଖ୍ୟାନ—The
tradition about the origin of the Bhañja
family. [ଦ୍ର—ତ୍ରେତାଯୁଗରେ ଦିନେ ବଶିଷ୍ଠ ଋଷି
ବଣରେ ବୁଲୁ ବୁଲୁ ମୃଗମିଥୁନଙ୍କ କାମକ୍ରୀଡ଼ା ଦେଖି
କାମାର୍ତ୍ତ ହେଲେ ଓ କୌପୀନରେ ତାଙ୍କ ଅମୋଘ ରେତଃ
ସ୍ଖଳିତ ହେଲା । ସେ କୌପୁନୀକୁ ପୁଷ୍କର ତୀର୍ଥ ମଧ୍ୟରେ
ଧୋଇବାରୁ ଦୁଇଟି ବିନ୍ଦୁ ଭାସିଲା । ତାକୁ ଗୋଟିଏ ମୟୂର
ଜଳ ସହିତ ପାନ କରି ଦୁଇଟି ଅଣ୍ଡ ପ୍ରସବ କଲା । ଅଣ୍ଡ
ବଢ଼ିବାରୁ ମୟୂରୀ ଛାଡ଼ି ପଳାଇଲା ଓ ବଶିଷ୍ଠ ନିଜେ ଅଣ୍ଡ
ଦୁଇଟିକୁ ପାଳିଲେ । ଗୋଟିଏ ଅଣ୍ଡ ଫାଟି ଶିଶୁ ଜାତ
ହେବାରୁ ବଶିଷ୍ଠ ଶିଶୁର ନାମ ମଦନ ରଖା ଦେଲେ । ଅନ୍ୟ
ଅଣ୍ଡଟି ନ ଫୁଟିବାରୁ ଋଷି ତାକୁ ଭାଙ୍ଗି ଦେଲେ ଓ
ସେଥିରୁ ବାହାରିବା ଶିଶୁ ମୋଦକ ଭଞ୍ଜ ବୋଲାଇଲେ ।
ଅଣ୍ଡ ସୂର୍ଯ୍ୟୋତ୍ତାପରେ ପକ୍ୱ ହୋଇଥିବାରୁ ଏମାନେ
ସୂର୍ଯ୍ୟବଂଶୀ ନାମରେ ପରିଚିତ ହେଲେ । ଭ୍ରାତୃଦ୍ୱୟଙ୍କୁ ବଶିଷ୍ଠ
ଶସ୍ତ୍ର ଓ ଶାସ୍ତ୍ରରେ ନିପୁଣ କଲେ । ଏହି ଭ୍ରାତୃଦ୍ୱୟ ବୟଃ-
ପ୍ରାପ୍ତି ପରେ ଚତୋର ଓ ତନ୍ନିକଟବର୍ତ୍ତୀ ଦେଶରେ ରାଜତ୍ୱ
ସ୍ଥାପନ କଲେ । ପରେ କନିଷ୍ଠ ମୋଦକ ଦେଶ ତ୍ୟାଗ
କରି ମୟୂରଭଞ୍ଜରେ ରାଜ୍ୟ ସ୍ଥାପନ କଲେ । ସେ ସମ୍ବଲପୁର
ରାଜକନ୍ୟାଙ୍କୁ ବିବାହ କଲେ । ମୟୂରଭଞ୍ଜରୁ କେତେକ
ଅଂଶ ବିଚ୍ଛିନ୍ନ ହୋଇ କେନ୍ଦୁଝର ବୋଲାଇଲା ଓ ତହିଁରେ
ଜଣେ ରାଜଭ୍ରାତା ରାଜା ହେଲେ ।

ବୌଦର କାଶ୍ୟପ ଗୋତ୍ରୀୟ ବ୍ରାହ୍ମଣ ରାଜା ଦୀନବନ୍ଧୁ
ନନ୍ଦଙ୍କର ଔରସ ପୁତ୍ର ବିନାୟକ ନନ୍ଦଙ୍କୁ ତାଙ୍କର ପାଳିତ
ସୂର୍ଯ୍ୟବଂଶୀୟ ଦୁଇଟି କ୍ଷତ୍ରିୟ କୁମାର ରଘୁନାଥ ଓ ବନମାଳୀ
ବଣରେ ବଧ କଲେ । ଦୀନବନ୍ଧୁ ନିଜ ପୁତ୍ରର ମରଣବାର୍ତ୍ତା
ଶୁଣି ପ୍ରାଣତ୍ୟାଗ କଲେ ଓ ସନ୍ଦେହରେ ସୂର୍ଯ୍ୟବଂଶୀୟ ଏହି
ଦୁଇ କୁମାରଙ୍କୁ ଅଭିଶାପ ଦେଲେ ତୁମ୍ଭ ବଂଶଧରମାନେ
କଳହ କରି ରୋଗଗ୍ରସ୍ତ ହୋଇ ବିନାଶ ପ୍ରାପ୍ତ ହେବେ ।
ଜ୍ୟେଷ୍ଠ ରଘୁନାଥ ରାଜା ହେଲେ ଓ ଖିଞ୍ଜାଲି ( ବର୍ତ୍ତମାନ
ଘୁମସର)ର କ୍ଷୁଦ୍ର ରାଜାଙ୍କ ମଧ୍ୟରେ ବିବାଦ ହେଉ ଥିବାରୁ
ସେମାନଙ୍କୁ ଜୟ କରି ଖିଞ୍ଜାଲିକୁ ବୌଦ ଅନ୍ତର୍ଭୁକ୍ତ
କଲେ । ଖିଞ୍ଜାଲିର ଆଦିମ ଅଧିବାସୀମାନେ ଅନାର୍ଯ୍ୟ କନ୍ଧ,
ଗଣ୍ଡ, ପାଣ ଆଦି ଜାତିର ଲୋକ ଥିଲେ । ରଘୁନାଥ
ସେମାନଙ୍କ ବିଦ୍ରୋହ ଦମନ କରି ସେଠାରେ ଶାନ୍ତି ସ୍ଥାପନ
କଲେ ଓ ଗୋଟିଏ ଭଗ୍ନ ପୁରାତନ ଦୁର୍ଗ (ଗୁମା = ଲୁଡ଼ିଆ-
ଘର, ଗଡ଼) ଓ ତହିଁର ଚତୁର୍ଦ୍ଦିଗରେ (ସର = ଜଳୀ)
ଜୋଡ଼ ଦେଖି ସେହିଠାରେ ଦୁର୍ଗ ନିର୍ମାଣ କଲେ । (ଖ୍ରୀ.
୮୩୨ ଅବ୍ଦ) । ସେ ଗଡ଼ର ନାମ ଗୁମସର ହେଲା । ବନମାଳି
ଭଞ୍ଜ ରଘୁନାଥଙ୍କ ଅଧୀନରେ ସେ ରାଜ୍ୟ ପାଳିଲେ ।
ଗୁମସର ଭଞ୍ଜବଂଶୀୟମାନେ ରଘୁନାଥ (୮୩୨ ଖ୍ରୀ) ଠାରୁ
ଆରମ୍ଭ କରି ୪୯ ପୁରୁଷ ପର୍ଯ୍ୟନ୍ତ ୫୮ ଜଣ ରାଜା ଗୁମସର
ଗାଦିରେ ବସିଥିଲେ । ଶେଷ ରାଜା ଧନଞ୍ଜୟ ଭଞ୍ଜ
(୧୮୩୨—୧୮୩୫) ଅଙ୍କ ସମୟରେ ଇଂରାଜୀଙ୍କଦ୍ୱାରା
ରାଜ୍ୟଚ୍ୟୁତ ହୋଇ ପେନସନ୍ ପାଇଲେ ଓ Vellore ରେ
ରହିଲେ । ବର୍ତ୍ତମାନ ଏ ଭଞ୍ଜବଂଶର ଲୋପ ହୋଇଅଛି ।
ଉପେନ୍ଦ୍ର ଭଞ୍ଜ ଏହି ବଂଶର ନୀଳକଣ୍ଠ ଭଞ୍ଜ (୧୬୦୧-୮)ଙ୍କ
ପୁଅ । ନୀଳକଣ୍ଠ ତାଙ୍କ ପିତାଙ୍କ କନିଷ୍ଠ ପୁତ୍ର ଥାଇ ଯୁକ୍ତି
କୌଶଳରେ ପିତାଙ୍କ ସିଂହାସନ ଅଧିକାର କରି ତାଙ୍କ ବଡ଼
ଭାଇ ଓ ପୁତ୍ରଙ୍କୁ ବଧ କରି ନାନା ଅତ୍ୟାଚାର କରିବାରୁ

ତାଙ୍କ ଦୁଇ ପୁରୁଷ ଛଡ଼ା କେକେଇ ଘନ ଭଞ୍ଜଙ୍କଦ୍ୱାରା ବିତାଡ଼ିତ ହୋଇ ଗୁମସର ପରିତ୍ୟାଗ କରି ଧରାକୋଟ ଓ ଅଠଗଡ଼ରେ ଓ ଶେଷରେ ନୂଆଗଡ଼ରେ ଆଶ୍ରୟ ନେଲେ। ଉପେନ୍ଦ୍ର ଭଞ୍ଜ ନୀଳକଣ୍ଠଙ୍କ ପୁତ୍ର। ସେ ରାମତାରକ ମନ୍ତ୍ର ସାଧନ କରି ଅସାଧାରଣ କବିତ୍ୱ ପାଇଥିଲେ।

ଗଞ୍ଜାମ ପୂର୍ବେ ଚିକାକୋଲ ସର୍କାର ଅନ୍ତର୍ଗତ ଥାଇ ଫ୍ରେଞ୍ଚ୍ ମାନଙ୍କ ଅଧୀନରେ ଜଣେ ନବାବଙ୍କ ଅଧୀନରେ ଥିଲା;ପରେ ଇଂରେଜମାନେ ଗୁମସର ରାଜା ବିକ୍ରମଙ୍କୁ ହଟାଇ ତାଙ୍କ ଭାଇ ଲକ୍ଷ୍ମଣଙ୍କୁ ରାଜା କଲେ। ତତ୍ପରେ ଶ୍ରୀକର (୧୭୯୦-୧୮୧୯) ରାଜା ହେଲେ ଓ ପୁତ୍ର ଧନଞ୍ଜୟଙ୍କ ଦୌରାତ୍ମ୍ୟରେ ବିରକ୍ତ ହୋଇ ରାଜ୍ୟ ଛାଡ଼ି ତୀର୍ଥକୁ ଗଲେ ଓ ଧନଞ୍ଜୟ ରାଜା ହେଲେ। ଧନଞ୍ଜୟ ଜଣେ ନରହନ୍ତା ଓ ଅତ୍ୟାଚାରୀ ଥିଲେ ଓ ମାଜିଷ୍ଟ୍ରେଟ୍ଙ୍କ ବିଚାରରେ ବନ୍ଦୀ ହୋଇ ଗଭର୍ଣ୍ଣମେଣ୍ଟରୁ ପେନସନ୍ ପାଇ ରହିଲେ ଓ ଶ୍ରୀକର ତୀର୍ଥରୁ ଫେରି ଆସି ପୁଣି ୧୮୧୯ ଠାରୁ ୧୮୩୬ ପର୍ଯ୍ୟନ୍ତ ରାଜା ହେଲେ। ତତ୍ପରେ ବୃଦ୍ଧ ହେବାରୁ ଇଂରାଜ ସରକାରଙ୍କ ଅନୁମତିକ୍ରମେ ଧନଞ୍ଜୟ ରାଜା ହେଲେ। କିନ୍ତୁ ଇଂରେଜଙ୍କ ସଙ୍ଗେ ବିଦ୍ରୋହୀ ହୋଇ ଯୁଦ୍ଧ କରି ୧୮୩୫ରେ ମଲେ ଓ ତତ୍ପରେ ଏହା ଖାସ କରି ସରକାର ନେଲେ ଓ Russel ସାହେବ କଲେକ୍ଟର ଗୁମସରର ପ୍ରଥମ ଇଂରାଜ ଶାସନକର୍ତ୍ତା ହେଲେ। ଚାରଣୀଚରଣ ରଥଙ୍କ ଗୁମସର ଇତିହାସରୁ ଗୃହୀତ (ତ୍ରି.ସା. ୧୯୧୩)।]

ଭଞ୍ଜକ—ସଂ. ବିଣ. ପୁଂ (ଭଞ୍ଜ୍ ଧାତୁ+କର୍ତ୍ତୃ. ଅକ)—୧। ଭାଙ୍ଗିକାରୀ; Bhañjaka ଭଞ୍ଜନକାରୀ—1. Breaking. ୨। ନିବାରକ (ଭଞ୍ଜିକା—ସ୍ତ୍ରୀ) —2.—Preventing. (ଯଥା—ବିପଦ-ଭଞ୍ଜକ, ସନ୍ଦେହଭଞ୍ଜକ, ମାନଭଞ୍ଜକ।)

ଭଞ୍ଜନ—ସଂ. ବି (ଭଞ୍ଜ୍ ଧାତୁ+ଭାବ. ଅନ)—୧। ଭାଙ୍ଗିବା—Bhañjana 1. Breaking. ୨। ଘୁଞ୍ଚାଇବା—2 (ଭଞ୍ଜନା—ସ୍ତ୍ରୀ) Removal ୩। ଖଣ୍ଡନ; ନିରସନ; ଦୂରୀକରଣ —3. Dispelling; expelling. ୪। ମେଣ୍ଟଣ; ମୀମାଂସା—4. Settlement; decision. ବିଣ. ପୁଂ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବ୍ୟବ; ଯଥା—ବିପଦ-ଭଞ୍ଜନ, ଦୁଃଖଭଞ୍ଜନ, କଳହଭଞ୍ଜନ, ମାନଭଞ୍ଜନ)—୧। (କଳଙ୍କର) ନିରସନ—1. Dispelling. ୨। (କଳହର) ମୀମାଂସା କରିବା; ମେଣ୍ଟଣ—2. Amicable settlement. ୩। (ବିପଦର)—ବିନାଶନ—3. Prevention (of a danger). ୪। (ମାନର) ଦୂରୀକରଣ—4. Removal.

ଭଞ୍ଜା—ଦେ. ବି—ଯେ ଭାଙ୍ଗେ—Breaking. (ଯଥା—ଶଙ୍କଟା-Bhañjā ଭାଂଗା ଭଞ୍ଜା, ଯାମଳା ଭଞ୍ଜା।)—
**तोडनेवाला; भंजा**

ଭଞ୍ଜା(ଞ୍ଜେ)ଇବା—ଦେ. କ୍ରି (ସଂ. ଭଞ୍ଜ୍ ଧାତୁର ଣିଜନ୍ତ)—ଭଙ୍ଗାଇବା Bhañjā(ñje)ibā —To cause to break. ଉ—ଭାଙ୍ଗାନ —ହେବେ କିସ ଲଙ୍ଘିତ କତ ଋଷଭରେ ହଂସ ଗରବ **तोडवाना** ଭଞ୍ଜାଇବ। ଭଞ୍ଜ ପ୍ରେମସୁଧାନିଧି ୩୧୧.।)

ଭଞ୍ଜିବା—ଦେ. କ୍ରି (ସଂ. ଭଞ୍ଜ୍ ଧାତୁ)—ଭାଙ୍ଗିବା—To break. Bhañjibā (ଉ—ଭଞ୍ଜ ଭଞ୍ଜଣାରବର ସନ୍ତାପ ଏବେ। ଭଞ୍ଜ. ଭାଂଗା **भंगना** ପ୍ରେମସୁଧାନିଧି ୧୮)

ଭଞ୍ଜୀ—ସଂ. ବି. ପୁଂ (ସଂ. ଭଞ୍ଜ୍ ଧାତୁ+ଇନ୍; ୧ମା. ୧ବ)—ଭଞ୍ଜକ—Bhañjī (ଭଞ୍ଜିନୀ—ସ୍ତ୍ରୀ) Breaking; dispelling.

ଭଞ୍ଜୀୟ—ଦେ. ବିଣ (ଭଞ୍ଜ+ସଂ. ପ୍ରତ୍ୟୟ ଈୟ)—ଉପେନ୍ଦ୍ର ଭଞ୍ଜ Bhañjīya ସମ୍ବନ୍ଧୀୟ—Relating to Uprndra Bhañja (Poet). (ଯଥା—ଭଞ୍ଜୀୟ ରଚନା, ଭଞ୍ଜୀୟ ଯୁଗ, ଭଞ୍ଜୀୟ କବିତା, ଭଞ୍ଜୀୟ ଶୈଳୀ, ଭଞ୍ଜୀୟ ସାହିତ୍ୟ ଇତ୍ୟାଦି।)

ଭଟ୍ (ଧାତୁ)—ସଂ.—୧। କହିବା—1. To tell; to speak. Bhaṭ (root) ୨। ପୋଷଣ କରିବା; ରକ୍ଷା କରିବା—2. To maintain; to entertain; to nourish; to foster. ୩। ଭଡ଼ା ଦେବା—3. To hire (Apte). ୪। ମୂଲ ପାଇବା—4. To receive wages (Apte).

ଭଟ୍—ସଂ. ଅ (ଧ୍ୱନ୍ୟର୍ଥକ)—ନିଆଁରେ ବାଇଗଣ ପୋଡ଼ିଲା ବେଳେ Bhaṭ ତାହା ଫାଟିଯାଇ ଯେଉଁ ଶବ୍ଦ ବାହାରେ—An ଭଟ onomatopoetic sound (as of the bursting **भट** of a brinjal when thrown into fire).

ଭଟ୍ ଭଟ୍—ଦେ. ଅ (ଧ୍ୱନ୍ୟର୍ଥକ)—୧। ଗପସପ—1. Gibble-Bhaṭ bhaṭ gabble. ୨। ବଡ଼ପାଟି କରିବା ଶବ୍ଦ—ଭଟ ଭଟ 2. Sound as of loud talk. (ଉ—ଭଟ **भट भट** ଭଟ ହୋଇ କହିଭି ପଡ଼ିଲେ। କୃଷ୍ଣସିଂହ, ମହାଭାରତ. ଆଦି।) ୩। କୋଳାହଳ—3. Ado; row; noise. ୪। କଳି—4. Quarrel. (ଉ—ବୋହୂଟା ଶାଶୂ ସଙ୍ଗେ ଭଟ୍ ଭଟ୍ ଲଗାଇଲାଣି। ଗଳ୍ପ-ସ୍ୱଳ୍ପ) ୫। ଗାଳିମନ୍ଦ—5. Abuse. ୬। ଭୁଟ୍ ଭୁଟ୍; ଭୁଦ୍ ଭୁଦ୍ ଫୋଟନ ଶବ୍ଦ—6. The sound of bursting of bubbles. (ଉ—ଉପରେ ଭଟ ଭଟ, ଭଟ ଭଟରେ ପାପ ଭଟ ଭଟ। ଚଗ।)

ଭଟ ଭଟ, ଭଟ ଭାଟ, ଭଟର ଭଟର, ଭଟର ଭାଟର, ଭଠ ଭଠ, ଭଠ ଭଠ, ଭଠର ଭଠର } ଅନ୍ୟରୂପ

ଭଟ୍ ଭାଟ୍—(ଧ୍ୱନ୍ୟନୁକରଣ) ପ୍ରାଦେ (ସମ୍ବଲପୁର)—ଧଡ୍ ଧାଡ Bhaṭ bhāṭ (ମାଠିଆ ଆଦି) ପଡ଼ିବାର ଶବ୍ଦ—The sound of falling of earthern pots.

ଭଟ୍ ଭଟ୍ ହେବା—ଦେ. କ୍ରି—୧। ଗପସପ୍ କରିବା—1. To gibble-Bhaṭ bhaṭ hebā gabble. ୨। ପାଟି କରି ଅନେକ (ଭଟର ଭଟର ହେବା—ଅନ୍ୟରୂପ) ଗପିବା—2. To talk ଭଟ ଭଟ କରା loudly; to gabble. (ଉ—କି ହେବ **भट भट करना** ଆଉ ଭଟ ଭଟ, କର୍ମକୁ ଉମ୍ଭ ହେଲି ଅରକ୍ଷିତ। କବିସୂର୍ଯ୍ୟ, କପୋଟାଙ୍କ କ. ଗୀତ।)

**ଭଟ୍(ଟ)ଭଟିଆ(ୟା)**—ଦେ. ବଣ—୧ । ଗପୁଡ଼ି—1. Gabbling; Bhaṭ(ṭa)bhatiā(yā) talkative. ୨ । କଳହପ୍ରିୟ—ଭটভটে **भटभटिया** 2. Quarrelsome. [ ଭଟ୍(ଟ)ଭଟୀ, ଭଟ୍(ଟ)ଭଟେଇଲି—ସ୍ତ୍ରୀ ]

**ଭଟ୍(ଟା)କା**—ସ. ବି—୧ । ଭୁଲ—1. Mistake. ୨ । କ୍ଷତି—Bhaṭ(ṭā)kā 2. Loss. ୩ । ଭାଉ—3. Market rate. ভটকা ୪ । ପଣ୍ୟଦ୍ରବ୍ୟର ଦାମ କଷାକଷି—4 Higgling **भटक** and haggling; negotiation [ ଦ୍ର—ଏ ଶବ୍ଦ ଭୁଲ ଓ ଭାଉ ସଙ୍ଗେ ନିରର୍ଥକ ବା ଏକାର୍ଥକ ସହଚରରୂପେ ପ୍ରଯୁକ୍ତ ହୁଏ, ଯଥା—ଭୁଲଭଟକା, ଭାଉଭଟକା—A meaningless term added to Bhul and Bhāu]

**ଭଟ**—ସ. ବି. ପୁଂ ( ଭଟ୍ ଧାତୁ=ପୋଷଣ କରିବା+କର୍ତ୍ତୃ. ଅ )—Bhaṭa ୧ । ଶୂର; ବୀର—1. Hero. ୨ । ରଣବୀର; (ଭଟୀ—ସ୍ତ୍ରୀ) ଯୋଦ୍ଧା—2. Warrior; combatant. ୩ । ବର୍ଣ୍ଣସଙ୍କର ଜାତିବିଶେଷ; ଭଟୁଆଜାତି—3. Name of a hybrid caste. ୪ । ମ୍ଳେଚ୍ଛଜାତିବିଶେଷ-4. A class of low caste. ୫ । ମୂଲ ନେଇ ଯୁଦ୍ଧ କରୁଥିବା ସୈନିକ—5. A mercenary or hired soldier ( Apte ). ୬ । ଜାତିଚ୍ୟୁତ ବ୍ୟକ୍ତି—6. An out—caste ( Apte ). ୭ । ରାକ୍ଷସ—7. A demon ( Apte ). ସ. ବଣ—୧ । ନୀଚ; ହୀନ; ପାମର—1. Mean; low; vile. ୨ । ପତିତ; ଜାତିଚ୍ୟୁତ—2. Outcasted. ( ସ. ଭଟ )—୧ । ବ୍ରାହ୍ମଣଙ୍କର ଉପାଧିବିଶେଷ—1. A family title of Brahmaṇas. ୨ । ଶୂଦ୍ରଙ୍କର ଉପାଧିବିଶେଷ—2. A family title of Śūdras. ୩ । ଭାଟ; ସ୍ତୁତିପାଠକ—3. A panegyrist; herald; bard.

**ଭଟ ଅମଲ**—ଦେ. ବି.—ମରହଟ୍ଟ ଅମଲ; ପ୍ରାଚୀନ କାଳ—Ancient Bhaṭa amaḷa পুরানো আমল **पुराना जमाना** times. (ଭଟ ଅମଲିଆ—ବଣ) [ଦ୍ର—ମରହଟ୍ଟାମାନଙ୍କ ଅମଳରେ ବିଥଲ ଭଟ୍ଟ ନାମକ ଜଣେ ବଡ଼ ଦୟାଶୀଳ ମନ୍ତ୍ରୀ ଥିଲେ । ସେ ବହୁ ଜମି ଦାନ କରିଥିଲେ । ତାଙ୍କଦ୍ୱାରା ପ୍ରଦତ୍ତ ଅନେକ ସନନ୍ଦ ବର୍ତ୍ତମାନ ମିଳେ । ତାଙ୍କ ଉପାଧିରୁ ଏ ପ୍ରବଚନ ହୋଇଅଛି ।]

**ଭଟ ଅମଲିଆ**—ଦେ. ବଣ—ପ୍ରାଚୀନ କାଳୀନ; ଅଧୁନା ଅବ୍ୟବହୃତ ଓ Bhaṭa amaḷiā ଅନାଦୃତ ( କଥା ବା ବିଷୟ ବା ଫେସନ୍ )—পুরানো আমলের Obsolete; archaic; out of date; **पुराने जमानेका (काम)** old-fashioned.

**ଭଟକା(କେ)ଇବା**—ଦେ. କ୍ରି—୧ । କ୍ଷତିଗ୍ରସ୍ତ କରିବା—1. To cause Bhaṭakā(ke)ibā loss to a person. ୨ । ଭୀତ ভাগান କରାଇବା—2. To frighten. ୩ । **भगाना, भडकाना** ହୁରୁଡ଼ାଇ ଦେବା—3. To scare away. ୪ । ଭ୍ରମରେ ପକାଇବା—4. To cause a person to fall into error. ୫ । ଠକାଇବା—5. To cheat; to defraud.

**ଭଟକିବା**—ଦେ. କ୍ରି—୧ । ଭୁଲ କରିବା—1. To commit Bhaṭakibā mistake. ୨ । ହୁରୁଡ଼ି କରି ପଳାଇବା—ভাগা 2. To be scared away. ୩ । ପଥଭ୍ରଷ୍ଟ **भगना, भगजाना, भडकना** ହେବା—3. To go astray. ( ଭଟକି ଯିବା—ଅନ୍ୟରୂପ ) ୪ । ଠକାମିରେ ପଡ଼ିବା—4. To be cheated ୫ । କ୍ଷତିରେ ପଡ଼ିବା—5. To suffer loss.

**ଭଟ ପଣ୍ଡିତ**—ଦେ ବଣ ( ଭଟ୍ଟ+ପଣ୍ଡିତ; ବ୍ୟଙ୍ଗ୍ୟ )—ମହାପଣ୍ଡିତ—Bhaṭa paṇḍita A big Pandit. ভট্ট পণ্ডিত **भट पण्डित**

**ଭଟ ମିଶ୍ର**—ଦେ. ବି—ଭଟ୍ଟମିଶ୍ର (ଦେଖ)—Bhaṭṭa miśra ( See ) Bhaṭa miśra ପ୍ରାଦେ. ( ବାଣପୁର, ପୁରୀଜିଲ୍ଲା ) ସ. ( ଭଟ= ନୀଚ, ହୀନ )—ପତିତ ବ୍ରାହ୍ମଣଙ୍କ ଉପାଧି ବିଶେଷ—The family title of a class of fallen Brāhmaṇas of Banpur in the Puri district who were outcasted for giving their girls in marriage to Kshatriya Kings. [ ଦ୍ର—କଥିତ ଅଛି ଯେ ଏମାନଙ୍କ ପୂର୍ବପୁରୁଷ ରାଜବଂଶକୁ କନ୍ୟା ପ୍ରଦାନ କରିବା ଫଳରେ ସମାଜଚ୍ୟୁତ ହୋଇଥିଲେ । ]

**ଭଟା**—ସ. ବି ( ଭଟ୍ ଧାତୁ=ପୋଷଣ କରିବା+ସଞ୍ଜ୍ଞାର୍ଥେ କର୍ତ୍ତୃ. ଅ Bhaṭā +ଆ )—ଇନ୍ଦ୍ରବାରୁଣୀ; ଗୋରେଖ ଶୃଙ୍ଖଳ; ମହାକାଳ ভাটা; ভাঁট ଫଳ—Colocynth. ଦେ. ବି ( ସ. ଭୃତ୍ ଧାତୁ= **भटा** ଶ୍ଖଳନ କରିବା )—୧ । ସମୁଦ୍ର ଜଳସ୍ଫୀତିର ଦୈନିକ (ଜୁଆର—ବିପରୀତ) ହ୍ରାସ—1. Ebb-tide of the ocean. ୨ । ସମୁଦ୍ର ଭଟ୍ଟା ଯୋଗୁଁ ସମୁଦ୍ରଗାମୀ ନଦୀର ଜଳହ୍ରାସ—2. The ebb-tide of a river. ୩ । ନଦୀର ଯେଉଁ ଅଂଶରେ ଡଙ୍ଗା ବା ପଟାଳ ଯିବା ପାଇଁ ଯଥେଷ୍ଟ ଗଭୀର ଜଳ ନ ଥାଏ—3. The shallow part of a **भट्टी, डाँर** river. ୪ । କ୍ଷୟ; ଅବନତି—4. Waning; deterioration. ୫ । ପ୍ରତାରଣା; ଠକାମି—5. Fraud; deceit; cheating. ୬ । କ୍ଷତି; ଲୋକସାନ—6. Loss. ୭ । ( ସ. ଭଟ୍ଟ ) ଚିଆଦା—7. A peon. ପ୍ରାଦେ—( ବାମଣ୍ଡା ) ବି—୧ । ବାହାର; ଘରର ବହିର୍ଦ୍ଦେଶ—1. The outside part of a house. ୨ । ( ବୈଦେ ) ବି ( ଭୁଲ. ଏହି ଅର୍ଥରେ ହି. ଭାଟା )—ନଦୀର ଜଳସ୍ରୋତ ନିକଟସ୍ଥ ଶୁଷ୍କ ସ୍ଥାନ—2 A dry place near the river-current. ୩ । ( ବୌଦ ) ବି ନଦୀର ଦୁଇ କୂଳରେ ଥିବା ଶୁଖିଲା ସ୍ଥଳଭାଗ—3. The dry banks of a river. ୪ । ( କଳାହାଣ୍ଡି ଓ. ଜୟପୁର ) ଟିଣ ଜମି—4. High land.

ଭଟାଗ୍ରୁର୍ଯ୍ୟ—ଦେ. ବି ( ସଂ. ଭଟ୍ଟାଗ୍ରୁର୍ଯ୍ୟ )—ଭଟ୍ଟାଗ୍ରୁର୍ଯ୍ୟ ( ଦେଖ )
Bhatāchārjya Bhaṭṭāchārjya ( See )

ଭଟା ନଈ—ଦେ. ବି—ସମୁଦ୍ରର ଭଟା ଯୋଗୁଁ ମୁହାଣ ନିକଟସ୍ଥ ଯୁଆର
Bhaṭā nai ଛାଡ଼ୁଥିବା ନଦୀ—Ebbing river; a river at
ভাটাহুঈ নদী घटतीहुइ नदी the ebb-tide.

ଭଟା ପଡ଼ିବା—ଦେ. କ୍ରି—ନଦୀ ବା ସମୁଦ୍ରର ଜୁଆର ଛାଡ଼ିଯିବା—
Bhaṭā pa<u>r</u>dibā To ebb ( said of the sea or of a
ভাটাপড়া, ভাটান river ), ( ଲକ୍ଷଣାର୍ଥ )—କୌଣସି
भाटा पड़ना କାର୍ଯ୍ୟରେ ବାଧା ପଡ଼ିବା ( ଜାହାଜ ନୌକା
ଡଙ୍ଗାମାନ ଭଟାରେ ପଡ଼ି ଅଟକିବା ଉପମାରୁ )—
Obstruction in course of the execution
of some business. ( ଉ—ଭଟା ପଡ଼ିଗଲା ଦୁଷ୍ଟ
କଳ୍ପନା ଜୁଆରେ—ଚିନ୍ତାମଣି. ବିଜୟାଦଶମୀ । )

ଭଟାଭଟି କରିବା—ଦେ. କ୍ରି—୧ । ବଟାବଟି କରିବା; ଭଣ୍ଡାଇବା;
Bhaṭābhaṭi karibā ଧପାଇବା—1. To inveigle; to
ঠগাঠগী করা put off on some excuse. ୨ । ଠକାଇବା;
ठगाठगी करना ପ୍ରତାରଣା କରିବା—2. To deceive; to
defraud.

ଭଟାରି—ଦେ. ବି. ସ୍ତ୍ରୀ ( ସଂ. ଭଟ୍ଟାରିକା )—ବଡ଼ମ୍ବା ରାଜ୍ୟର ମହାନଦୀ-
Bhaṭāri କୂଳରେ ପ୍ରତିଷ୍ଠିତ ଦେବୀବିଶେଷ—Name of a
( ଭଟାରିକା—ଅନ୍ୟରୂପ ) goddess in the Ba<u>r</u>dāmbā
State on the Mahānadī river.

ଭଟାରେ ପଡ଼ିବା—ଦେ. କ୍ରି—୧ । କ୍ଷତିଗ୍ରସ୍ତ ହେବା—1. To be
Bhaṭāre pa<u>r</u>dibā put to loss. ୨ । ଠକାମିରେ ପଡ଼ିବା—
घाटामे फँसना 2. To be defrauded or cheated.

ଭଟିତ(ତ୍ର)—ସଂ. ବି—କବାବ; ଶଲାକାଦ୍ୱାରା ବିଦ୍ଧ ହୋଇ ପକ୍ୱ ହୋଇ-
Bhaṭita(tra) ଥିବା ମାଂସ—Meat roasted on fire
while pierced through with an iron
poker or staff.

ଭଟିମୁଣ୍ଡା—ଦେ. ବି ( ନାମ )—କଟକଜିଲ୍ଲା କପିଳାସରୋଡ଼ ଷ୍ଟେସନର
Bhaṭimuṇḍā ନିକଟବର୍ତ୍ତୀ ଗୋଟିଏ କଂସାର ଗ୍ରାମ—A village
in the district of Cuttack famous for
bell metal utensils manufactured there.
[ଦ୍ର—ଏହା କଂସା ଆଦି ବାସନପାଇଁ ପ୍ରସିଦ୍ଧ । କେହି
କେହି ଏ ଗ୍ରାମକୁ ଘଣ୍ଟିମୁଣ୍ଡା କହନ୍ତି । ]

ଭଟେଇବା—ପ୍ରାଦେ (ସିଂହଭୂମ) କ୍ରି—ଖାଲରେ ମାଟି ଭରତି କରିବା—
Bhaṭeibā To fill up a pit with earth.

ଭଟୋତ୍ପଳ—ସଂ. ବି ( ନାମ )—ବରାହାଗ୍ରୁର୍ଯ୍ୟଙ୍କ ବୃହତ୍ସଂହିତା ଗ୍ରନ୍ଥର
Bhaṭotpala ଟୀକାକାର; ଏହାଙ୍କର ଅନ୍ୟ ନାମ ଉତ୍ପଳ ଭଟ୍ଟ;
ଜନ୍ମ ଖ୍ରୀଷ୍ଟୀୟ ୯ମ ଓ ୧୦ମ ଶତାବ୍ଦୀ; ଜାତିରେ ବ୍ରାହ୍ମଣ,
ବାସସ୍ଥାନ କାଶ୍ମୀର—The celebrated commentator of Bṛuhat saṁhitā by Barāhāchārjya;
his other name is Utpa<u>l</u>a Bhaṭṭa; he was
a Brāhmaṇa by caste and was born in
Kāśmira in 9th or 10th century A. D.

ଭଟ୍ଟ—ସଂ. ବି. ପୁଂ ( ଭଟ୍ ଧାତୁ=କହିବା+କର୍ତ୍ତୃ. ତ )—୧ । ବଂଶ-
Bhaṭṭa ଚରିତ କୀର୍ତ୍ତନକାରୀ; ଭାଟ; ସ୍ତୁତିପାଠକ—1. Panegyrist; bard. ୨ । ଗୋଟିଏ
( ଭଟ୍ଟିନୀ—ସ୍ତ୍ରୀ )
ବେଦକୁ ଆଦ୍ୟନ୍ତ କଣ୍ଠସ୍ଥ କରିଥିବା ବ୍ରାହ୍ମଣ—2. A
Brāhmaṇa who has got by heart a whole
Veda. ୩ । ପଣ୍ଡିତ—3. A Paṇḍita. ୪ ।
ଅଧ୍ୟାପକ—4. A teacher. ୫ । ଦର୍ଶନଶାସ୍ତ୍ରବେତ୍ତା—
5. A philosopher. ୬ । ସ୍ୱାମିତ୍ୱ—6. Mastery.
୭ । ଯୋଦ୍ଧା—7. Warrior. ( ଉ—ଉଦ୍ୟମ କଲେ
ସେ ରାଜନ, ସଙ୍ଗେ ଦୁର୍ଦ୍ଧର୍ଷ ଭଟ୍ଟମାନ—ଜଗନ୍ନାଥ. ଭାଗବତ)
୮ । ସ୍ୱାମୀ; ପ୍ରଭୁ—8. Lord; master. [ଦ୍ର—ରାଜା
ମାନଙ୍କ ପ୍ରତି ସମ୍ବୋଧନରେ ନାଟକାଦିରେ ଏ ଶବ୍ଦ ବ୍ୟବହୃତ
ହୁଏ—Apte । ] ୯ । ବିଦ୍ୱାନ୍ ବ୍ରାହ୍ମଣଙ୍କ ନାମ ସଙ୍ଗେ
ବ୍ୟବହୃତ ଉପାଧିବିଶେଷ—9. A title used with
the name of a learned Brāhmaṇa (Apte).
୧୦ । ଭାଟ ନାମକ ମିଶ୍ର ଜାତି—10. A mixed caste
whose occupation is that of bards or
panegyrist ( Apte ). ଦେ. ବି—ବଙ୍ଗୀୟ ଓ
ମରହଟ୍ଟୀ ବ୍ରାହ୍ମଣଙ୍କ ବଂଶୋପାଧି—A family title of
some Bengalee or Marahattee Brāhmaṇas.

ଭଟ୍ଟ ନାରାୟଣ—ସଂ. ବି ( ନାମ )—ବଙ୍ଗଳାର ରାଜା ଆଦିଶୂରଙ୍କଦ୍ୱାରା
Bhaṭṭa nārāyaṇa ଯଜ୍ଞସମ୍ପାଦନାର୍ଥ କାନ୍ୟକୁବ୍ଜରୁ ଆନୀତ
ପଞ୍ଚ ବ୍ରାହ୍ମଣଙ୍କ ମଧ୍ୟରୁ ଏକତମ—Name of one of
the five Brāhmaṇas brought from Kan<u>auj</u>
to settle in Bengal by king Ādiśūra and
to perform Vedic sacrifices. [ ଦ୍ର—ଏ
ବେଣୀସଂହାର ନାମକ ସଂସ୍କୃତ ନାଟକର ରଚୟିତା ]

ଭଟ୍ଟ ମିଶ୍ର—ଦେ. ବି—ପୁରୀଜିଲ୍ଲାର କୁଳୀନ ( ସାଆନ୍ତ ବ୍ରାହ୍ମଣ )ଙ୍କଠାରୁ
Bhaṭṭa miśra ଜାତୀୟଭାବେ ହିଁ କମ୍ କୁଳୀନ ବ୍ରାହ୍ମଣ-
ବିଶେଷ—A high class of Brāhmaṇas in the
Purī Śāsan villages. [ ଦ୍ର—ଏମାନେ ସାଧାରଣ
ବୈଦିକ ବ୍ରାହ୍ମଣ, କିନ୍ତୁ ସମାଜର ବୈଦିକ ବ୍ରାହ୍ମଣଙ୍କ ଅପେକ୍ଷା
ଏମାନଙ୍କର ଆସନ ଉଚ୍ଚତର । ସାଆନ୍ତମାନଙ୍କ ଅନ୍ନଭୋଜନ
ସଭା ଅର୍ଥାତ୍ 'ଶଙ୍ଖ ଓ ସଭାରେ' ପରିବେଷଣ କରିବା ନିମନ୍ତେ
ଏମାନଙ୍କର ଅଧିକାର ଅଛି । ଏଥିପାଇଁ ଏମାନଙ୍କୁ ସାଆନ୍ତଙ୍କ
'ଅଣକଧରା ମିଶ୍ର' ବୋଲାଯାଏ । ଏମାନଙ୍କ ଉପାଧି 'ମିଶ୍ର' ।]
(ଉ—ବ୍ରହ୍ମଣାର୍ଥରେ ପାନ ଶୂଦ୍ର ଯେତେକ କରେ, ଭଟ୍ଟ ମିଶ୍ର
ହୁଅଇ ସେ ମହାଲୋକରେ—କୃଷ୍ଣସିଂହ.ମହାଭାରତ.ବନ ।)

ଭଟ୍ଟା—ଦେ. ବି—ଭଟା ( ଦେଖ )—Bhaṭā (See). ୧ । ନଦୀ
Bhaṭṭā ଗର୍ଭର ଅନାବୃତ ଶୁଖିଲା ଅଂଶ ଯହିଁରେ ଡଙ୍ଗା ଯିବାକୁ
ପ୍ରାଦେ (ସମ୍ବଲପୁର) ଯଥେଷ୍ଟ ପାଣି ନ ଥାଏ—1. Shallow
part of a river insufficient for the plying of boats. ୨ । ବାରଣ୍ଡା—2. Verandah.

ଭଟ୍ଟାଗ୍ରୁର୍ଯ୍ୟ—ସଂ. ବି. ପୁଂ ( ଭଟ୍ଟ+ଆଗ୍ରୁର୍ଯ୍ୟ )—୧ । ଶାସ୍ତ୍ରଜ୍ଞ; ବିଦ୍ୱାନ୍;
Bhaṭṭāchārya ପଣ୍ଡିତ—1. A learned Paṇḍita.
୨ । ଦର୍ଶନଶାସ୍ତ୍ରର ଅଧ୍ୟାପକ—2. A professor of
Vedic philosophy. ଦେ. ବି—ବଙ୍ଗଦେଶୀୟ

ଭଟାଚାର୍ଯ୍ୟ ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ—A family title of some Bengali Brāhmaṇas. ( ଯଥା—ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ—(ବ୍ୟଙ୍ଗୋକ୍ତି)—ଭଟ୍ଟାଚାର୍ଯ୍ୟ ବା ପ୍ରସିଦ୍ଧ ବଂଶର ବଂଶଧର ଅଥଚ ମୂର୍ଖ ବ୍ୟକ୍ତି । )

**ଭଟ୍ଟାର—ସଂ. ବିଣ. ପୁଂ** ( ଭଟ୍ଟ=ସ୍ୱାମିତ୍ୱ+ଋ ଧାତୁ=ପାଇବା+କର୍ତ୍ତୃ. Bhaṭṭāra ଅ) —୧ । ମାନନୀୟ; ମାନ୍ୟ—1. Respectable. ୨ । ପୂଜ୍ୟ—2. Worshippable; adorable. ସଂ. ବି—ଉଚ୍ଚମନା ବା ଉଦାରମନା ପ୍ରଭୁ—A noble lord (Apte). [ ଦ୍ର— ବିଦ୍ୱାନ୍ ବ୍ୟକ୍ତିମାନଙ୍କ ନାମ ପୂର୍ବେ ଏହା ସମ୍ମାନସୂଚକ ଉପାଧିରୂପେ ବ୍ୟବହୃତ ହୁଏ—Apte]

**ଭଟ୍ଟାରକ—ସଂ. ବି. ପୁଂ** (ଭଟ୍ଟାର+କ)—୧ । ଋଷି; ମୁନି—1. Sage. Bhaṭṭāraka ୨ । ପଣ୍ଡିତ; ଦାର୍ଶନିକ—2. A learned man; ( ଭଟ୍ଟାରିକା—ସ୍ତ୍ରୀ ) a philosopher. ୩ । (ନାଟକରେ) ରାଜା—3. (In drama) A king. ୪ । ସୂର୍ଯ୍ୟ—4. The sun. ୫ । ଦେବତା—5. Deity. ବିଣ—ମାନନୀୟ; ପୂଜନୀୟ—Respectable; worshipful; venerable. [ ଦ୍ର—ଏ ଶବ୍ଦ ପଣ୍ଡିତ ଓ ମହାପୁରୁଷମାନଙ୍କ ନାମ ପୂର୍ବରେ ସମ୍ମାନସୂଚକ ଉପାଧିରୂପେ ବ୍ୟବହୃତ ହୁଏ—Apte.

**ଭଟ୍ଟାରକ ବାସର—ସଂ. ବି**—ରବିବାର—Sunday (Apte). Bhaṭṭāraka bāsara (ଭଟ୍ଟାରକବାର—ଅନ୍ୟରୂପ) ।

**ଭଟ୍ଟାରି—ଦେ. ବି**—ଭଟ୍ଟାରିକା (ଦେଖ) Bhaṭṭāri Bhaṭṭārikā (See)

**ଭଟ୍ଟାରିକା—ଦେ. ବି**—ଓଡ଼ିଶା ଗଡ଼ଜାତ ବଡ଼ମ୍ବାରାଜ୍ୟସ୍ଥ ମହାନଦୀ Bhaṭṭārikā କୂଳରେ ପ୍ରତିଷ୍ଠିତା ଦୁର୍ଗା ଠାକୁରାଣୀ—The name of an idol of Durga on the bank of the Mahānadī in the Feudatory State of Baṛdambā in Orissa. [ ଦ୍ର—ମହାନଦୀରେ ନାଉରିମାନଙ୍କର ଡଙ୍ଗା ଜଳପଥରେ ଯିବା ପାଇଁ ନାଉରିମାନେ ଏ ଦେବୀଙ୍କୁ ପୂଜା ଓ ବଳ ମନାସି ଥାନ୍ତି; ଭଟ୍ଟାରିକା ଶବ୍ଦର ପ୍ରକୃତ ପ୍ରତ୍ୟୟ ଅନୁସାରେ ଅର୍ଥ (ଭଟ୍ ଧାତୁ) ପୋଷଣ ବା ରକ୍ଷାକାରିଣୀ ଅଟେ । ] [ ଉ—ବସନ୍ତି ଯତ୍ରଦେବୀ ଭଟ୍ଟାରିକା—ରାଧାନାଥ. ଚନ୍ଦ୍ରକେଶୀ । ] ସଂ. ବି. ଓ ବିଣ ( ଭଟ୍ଟାରକ+ସ୍ତ୍ରୀ. ଆ )—ଭଟ୍ଟାରକର ସ୍ତ୍ରୀଲିଙ୍ଗ—Feminine of Bhattāraka. ସଂ. ବି. ସ୍ତ୍ରୀ—୧ । ଉଦାରହୃଦୟା ବା ଉଚ୍ଚବଂଶୀୟା ସ୍ତ୍ରୀ—1. A noble lady (Apte) ୨ । କୌଣସି ସ୍ଥାନର ଅଧିଷ୍ଠାତ୍ରୀ ଦେବୀ—2. A tutelary deity (Apte)

**ଭଟ୍ଟି—ସଂ. ବି** (ନାମ)—୧ । ଶ୍ରୀଧର ସ୍ୱାମୀଙ୍କ ପୁତ୍ର ସଂସ୍କୃତ ଭଟ୍ଟି କାବ୍ୟର Bhaṭṭi ରଚୟିତା—Name of the author of Bhaṭṭikāvya who was the son of Sridhara Swāmi. ୨ । ରାମଚରିତାତ୍ମକ ସଂସ୍କୃତ କାବ୍ୟ [ଏହା ଭଟ୍ଟିଙ୍କ ରଚିତ । କଥିତ ଅଛି ଯେ ଏହାଙ୍କର ଜନ୍ମ ହେବା ପରେ ଜନନୀଙ୍କର ବିୟୋଗ ହେବାରୁ ଏହାଙ୍କ ପିତା ଗୃହତ୍ୟାଗୀ ହେଲେ ଓ ବଲଭୀ ରାଜ୍ୟର ଅଧିପତି ଏହାଙ୍କର ଲାଳନ ପାଳନ ଓ ଶିକ୍ଷା ପ୍ରଦାନ କରିଥିଲେ; ପରେ ଏ ଯୁକ୍ତ ରାଜାଙ୍କ ରାଜକୁମାର ମାନଙ୍କର ଶିକ୍ଷକରୂପେ ନିଯୁକ୍ତ ହେଲେ ଓ ରାଜକୁମାରମାନଙ୍କର ଶିକ୍ଷାର୍ଥ ରାମଚରିତ ଅବଲମ୍ବନରେ ଭଟ୍ଟି କାବ୍ୟ ରଚନା କଲେ; ଏଥିରେ କାବ୍ୟ ଛଳରେ ବ୍ୟାକରଣ ଶିକ୍ଷା ଦିଆ ଯାଇଅଛି; ଟୀକାକାର ଭରତ ମଲ୍ଲିକ କହନ୍ତି ଯେ ଭଟ୍ଟି କାବ୍ୟ ଭର୍ତ୍ତୃହରିଙ୍କ ରଚିତ—ସୁବଳଚନ୍ଦ୍ର ] । Name of an epic in Sanskrit dealing with the life of Rāmchandra.

**ଭଟ୍ଟିନୀ—ସଂ. ବି. ସ୍ତ୍ରୀ**—( ଭଟ୍ଟ=ସ୍ୱାମିତ୍ୱ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ)—Bhaṭṭini ୧ । ରାଣୀ; ପଟ୍ଟମହାଦେବୀଙ୍କ ଛଡ଼ା ଅନ୍ୟ ରାଣୀ; ଅଭିଷେକହୀନା ମହିଷୀ—1. A queen (not crowned); a princess (Apte). [ ଦ୍ର—ନାଟକରେ ଦାସୀମାନେ ଏହି ବାକ୍ୟ ଦ୍ୱାରା ରାଣୀଙ୍କୁ ସମ୍ବୋଧନ କରନ୍ତି । ] ୨ । ଉଚ୍ଚବଂଶୀୟା ସ୍ତ୍ରୀ—2. A noble lady; a lady of high rank (Apte). ୩ । ବ୍ରାହ୍ମଣୀ—3. The wife of a Brāhmaṇa (Apte).

**ଭଡ଼୍—ଦେ. ବି**—(ଧ୍ୱନ୍ୟନୁକରଣ)—୧ । ନାକରେ ଘନୀଭୂତ ଶିଙ୍ଘାଣି Bhaṛḍ ନାକରନ୍ଧ୍ରରେ ପୂର୍ଣ୍ଣ ହୋଇ ନିଃଶ୍ୱାସଯୋଗେ ଚଳିବାରେ ଉତ୍ପନ୍ନ ଘଡ଼ଘଡ଼ ଶବ୍ଦ—1.Gurgling sound of thickened rheum inside the nose during breathing.

(ଭଡ଼୍ ଭଡ଼୍, ଭଡ଼ ଭଡ଼, ଭଡ଼ର ଭଡ଼ର, ଭଡ଼ର୍ ଭଡ଼ର୍ — ଅନ୍ୟରୂପ)

ଭଡ଼ଭଡ଼ ୨ । ଛୋଟ ଖାସା ବାଜାକୁ ବେତରେ ବଜାଇବା ଶବ୍ଦ— ୨. The sound of striking small kettle drums with thin sticks. ୩ । ଉପର୍ଯ୍ୟୁପରି ବେତରେ ପିଟିବା ଶବ୍ଦ—3. Repeated cracking sound of cane-beating. ୪ । ନିଆଁ ଉପରେ ଖଇ ଫୁଟିବାର ଶବ୍ଦ—4. Bursting or cracking sound of corn etc while being fried. ୫ । ଛୋଟ ବସ୍ତୁ ଫାଟିବାର ଶବ୍ଦ—5. Cracking or bursting sound. ୬ । ଘାଆ ପୂଜପୂର୍ଣ୍ଣ ହେବା ଅବସ୍ଥା—6.The state of sore becoming full of pus. ୭ । ହୁକା ଟାଣିବାର ଶବ୍ଦ—7. The bubbling sound of a hubble-bubble. ୮ । କଠିନ ଜିନିଷ ଚୋବାଇବାର ଶବ୍ଦ—8. Sound produced by chewing hard things. (ଉ—ଯଉଡ଼ୁଣୀ ପିଠା ଦେଖି ମନ ଉଦେଇ ଖଇବେଇ, ଘସି

ଫଡ଼ାଏ ହାତରେ ଧରି ଭଡ଼ ଭଡ଼ ଗ୍ଳେବେଇ । ଉଗ । ) ୯ । ଅସ୍ଥି ଆଦି କଠିଣ ବସ୍ତୁ ଭଙ୍ଗିବାର ଶବ୍ଦ—9. The sound of breaking of bone and other hard things. (ଦ୍ର —ଏହି ସକାଶରୁ ସ୍ପଷ୍ଟ ହାଡ଼ଯାକ, ସେହି କାଳରେ କଲ୍ଲ ଭଡ଼ ଭଡ଼ ଡାକ । କୃଷ୍ଣସିଂହ. ମହାଭାରତ. ବନ ।)

ଭଡ଼୍ ଭାଡ଼୍—ଦେ. ଅ—( ଧ୍ୱନ୍ୟନୁକରଣ )—୧ । ଉପର୍ଯ୍ୟୁପରି ବେତ Bhard bhard ମାଡ଼ର ଶବ୍ଦ—1. Cracking sound of repeated cane-beating. ଭଡ଼ଭାଡ଼, ଭାଡ଼ଭାଡ଼୍ } ଅନ୍ୟରୂପ ୨ । ଅବିରାମରୂପେ ଗୁଡ଼ାଏ ଗପିବା ପଟପାଟ ପ୍ରକାରେ —2. Loud talking without interruption. पटापट ୩ । ଏକାଧିକ ଦଉଡ଼ି ହଠାତ୍ ଛିଣ୍ଡିଯିବା ଶବ୍ଦ— 3. Sudden breaking of ropes. ୪ । କୌଣସି ଦୃଢ଼ ପଦାର୍ଥ ବାରମ୍ବାର ଉପହତ ହେବାର ଶବ୍ଦ— 4. Repeated thumping sounds. ( ଦ୍ର—ଶାଳ୍ୱ ମହାଗ୍ରାର ସେ କାଣ୍ଡର ବ୍ୟଥାରେ, ଭଡ଼୍ ଭାଡ଼୍ ହୋଇଣ ପଡ଼ିଲ୍ଲ ରଥରେ । କୃଷ୍ଣସିଂହ. ମହାଭାରତ. ବନ ।)

ଭଡ଼୍ କିନା(ନି)—ଦେ. କ୍ରି. ବଣ. (ଧ୍ୱନ୍ୟନୁକରଣ)—ଠୋ କରି, ଠକ Bhardkinā[ni] ଠକ୍; ହଠାତ୍ ଦଉଡ଼ି ଛିଣ୍ଡିଯିବା ପ୍ରକାରେ— Like the sudden breaking of a rope.
ଭଡ଼ୁକରି, ଭଡ଼ୁଦ(ଧ)ସ୍, ଭଡ଼ୋକନ(ନା), ଭଡ଼ୋକରି, ଭଡ଼ୋଦଣ୍ (ସ୍) } ଅନ୍ୟରୂପ

ଭଡ଼—ଦେ. ବଣ (ସ. ବୃହତ୍)—ବଡ଼— Bharda ବଡ଼ बड़ा Large.
ଭଡ଼ भड ସ. ବି—୧ । ପ୍ରାଚୀନକାଳର ବର୍ଣ୍ଣସଙ୍କର ଜାତି— A hybrid caste of ancient India. [ଦ୍ର—ଲେଟ ପିତା ଓ ଶବର ମାତାଠାରୁ ଏ ଜାତି ଉତ୍ପନ୍ନ—(ବ୍ର. ଖ) ।] ଦେ. ବି—୧ । ଶୂଦ୍ର ଜାତିର ଉପାଧିବିଶେଷ—1. A family title of some Śūdras. ୨ । ବଙ୍ଗଦେଶରୁ ଓଡ଼ିଶାକୁ ଆସୁଥିବା ଏକ ପ୍ରକାର ଧୂଆଁପତ୍ର—2. A kind of large sized tobacco leaves imported into Orissa. ୩ । ପ୍ରାଚୀନ କାଳରେ ବ୍ୟବହୃତ ପଣ୍ୟବାହୀ ବଡ଼ ନୌକା— 3. A kind of big country boat used in ancient times for conveying merchandise. [ଦ୍ର—ବ. ଭଡ଼; ସ. ଭାର=ଭାରବାହୀ ସମୁଦ୍ରଗାମୀ ବଡ଼ ନୌକା, ପୂର୍ବେ ବାଲେଶ୍ୱର ଓଡ଼ିଶାର ବନ୍ଦର ଥିବା ସମୟରେ ବଙ୍ଗଦେଶରୁ ସମୁଦ୍ର ବାଟେ 'ଭଡ଼' ନୌକାଦ୍ୱାରା ଆସୁଥିବା ଧୂଆଁପତ୍ରକୁ ବାଲେଶ୍ୱରୀ ବା ଭଡ଼ ପତ୍ର ବୋଲ୍ଲ ଯାଉଥିଲ୍ଲ । ଭଡ଼ ପତ୍ର ଅନ୍ୟ ଦେଶୀ ପତ୍ର ଅପେକ୍ଷା ଆକାରରେ ବଡ଼ ( ଭଡ଼ ) ଥିବାରୁ ଭଡ଼ ଅର୍ଥ ବଡ଼ ହେଲ୍ଲ ଓ ବଡ଼ ଯାନକୁ ଭଡ଼ ଯାନ ବୋଲ୍ଲଗଲ୍ଲ ।]

ଭଡ଼ଂ—ଦେ. ବି—ଭଡ଼ଙ୍ଗ (ଦେଖ)—Bhardanga (See) Bhardam (ଭଡ଼କ—ଅନ୍ୟରୂପ)

ଭଡ଼କ(ମ୍ବ)—ଦେ. ବି—(ସ. ଭୟଭ୍ରମ, ପ୍ରା. ଭଡ଼ମ୍ଭ)—୧ । ହଠାତ୍ Bhardak(mba) ଉପସ୍ଥିତ ଭୟ—1. Sudden fear; चमक खौफ alarm. ୨ । ଛନକା; ଭୀତି—2. Fright; ଭଡ଼ଂ भड़क; भड़क्का; तडक भडक terror. ୩ । ଆଡ଼ମ୍ବର 3. Grandeur; display; show; ado. ୪ । ଚକଚକ୍ୟ—4. Splendour; brightness. ୫ । ଦଗା; ଧପା—5. Deception; fraud.

ଭଡ଼କ-ଦାର—ଦେ. ବଣ—୧ । ଆଡ଼ମ୍ବରମୟ—1. Grand. ୨ । Bhardak-dār भड़कीला ଚକଚକିଆ-2 Shining; dazzling.

ଭଡ଼କା—ଦେ. ବି—(ଧ୍ୱନ୍ୟନୁକରଣ)—୧ । ବୁଦ୍‌ବୁଦ—1. Bubble. Bhardakā बुलबुला फल भडका ୨ । ନଡ଼ିଆ ହୁକା; ହୁକାର ଯେଉଁ ଅଂଶରେ ପାଣି ରହେ—2. Hubble bubble; the bottom-pot of a hukah. (ଯଥା—ଚୁଙ୍ଗୀ ଭଡ଼କା ।) ୩ । ଶିଙ୍ଘାଣିର ମେଞ୍ଚା— 3. Clod or flake of rheum.

ଭଡ଼କା(କେ)ଇବା—ଦେ. କ୍ରି ( ଭଡ଼କିବାର ଣିଜନ୍ତ )—୧ । Bhardakā(ke)ibā ଭଟକାଇବା; ଚମକାଇବା—1. To ଭଡ଼କାନ scare away. ୨ । ଭୟ ଦେଖାଇବା; ଧମକାଇବା; भड़काना ଚମକାଇବା—2. To frighten; to terrify; to threaten. ୩ । କୌଣସି ପଦାର୍ଥକୁ ( ଯଥା—କଳିଚୂନର ଶିପକୁ ) ପାଣିରେ ପକାଇ ଭଡ଼ ଭଡ଼ ଶବ୍ଦ କରାଇବା ଓ ଚୂନ ତିଆର କରିବା—3. To cause a thing to bubble ( as in slaking lime ); to slake burnt shells or lime into quick lime. ୪ । ( ମୁହଁରେ ) ବାମ୍ଭିକତା ପ୍ରକାଶ କରିବା; ଭୂରୁଭଙ୍ଗୀ ଦେଖାଇବା ( ଯଥା—ମୁହଁ ଭଡ଼କାଇବା )— 4. To indulge in bravado.

ଭଡ଼କିଆ—ଦେ. ବଣ—୧ । ଚକଚକିଆ—1. Dazzling. ୨ । Bhardakiā भड़कीला ଆଡ଼ମ୍ବରମୟ—2. Grand. भड़कीला

ଭଡ଼କିବା—ଦେ. କ୍ରି—୧ । ଭଟକିବା (ଦେଖ)—1. Bhaṭakibā Bhardakibā ( See ). ୨ । କ୍ଷେତରେ ଦିଆଯିବା ସାର ଅତିରିକ୍ତରୂପେ ବଳିଷ୍ଠ ହେବା ଯୋଗୁଁ ସେଥିରେ ଉଠିବା ଗଛ ଆଦି ( ଯଥା—ଧାନ; ଆଖୁ ) ଅତିରିକ୍ତରୂପେ ବଢ଼ିଯାଇ ଉପଯୁକ୍ତ ଫଳ ନ ଧରିବା—Said of plants growing too lustily ( owing to excess of manure ) and so not producing a good harvest. ୩ । ଭୟ କରି ପଳାଇବା; ଚମକିବା—3. To flee away through fear, to be scared away. ୪ । ଭୟବିହ୍ୱଳ ହେବା; ଚମକିବା—4. To shy; to be frightened.

ଭଡ଼କେଇତା—ଦେ ବି ( ସ. ଭଡ଼ )—ନୀଚ ଶୂଦ୍ର ଜାତିବିଶେଷ— Bhardakeitā A low caste śūdra whose profession it is to prepare pots of hubble

bubble with cocoanut shell. [ ଦ୍ର— ଏମାନେ ନଡ଼ିଆକୁ ଅଗିରୁ କଣା କରି କୋରଣା ପରି ଏକପ୍ରକାର ଅସ୍ତ୍ରଦ୍ୱାରା ତାହା ଭିତରର ଶସଯାକ କୋରିଇ କାଢ଼ି ନେଇ ନଡ଼ିଆଖୋଳା ତିଆର କରନ୍ତି । ଏ ଖୋଳାରେ ଲୋକେ ମଞ୍ଜି ଗୁଣ୍ଡିଆଦି ରଖନ୍ତି ଏବଂ ଏଥିରେ ହୁକା ମଧ୍ୟ ତିଆର ହୁଏ । ସଭ୍ୟବାସରେ ଏ ଜାତିର କେତେଗୋଟି ପରିବାର ଅଛନ୍ତି । ]

ଭଡ଼ଙ୍ଗ — ଦେ-ବି— (ସଂ. ବାହ୍ୟାଡ଼ମ୍ବର)—୧। ଆଡ଼ମ୍ବର; ବାହ୍ୟାଡ଼ମ୍ବର—
Bhar̲d̲aṅga ଭଡ଼ଂ **भडङ्ग भड़ीङ्ग** 1. Ostentation; ado; display; show of splendour. ୨। ଜୀକଜମକ—2. Splendour; glitter. ୩। (ସଂ. ବାଗାଡ଼ମ୍ବର) ବାଗାଡ଼ମ୍ବର—3. Bragging; tall talk.

ଭଡ଼ଙ୍ଗିଆ(ୟା)— ଦେ. ବିଣ—୧ । ବାହ୍ୟାଡ଼ମ୍ବରବିଶିଷ୍ଟ—1.
Bhar̲d̲aṅgiā(yā) Ostentatious; grand. ୨ । ଭଡ଼କାଳ ଭଡ଼ଙ୍ଗୀ ଭଡ଼ଙ୍ଗିୟା ଚକଚକିଆ—2. Bright; **भडङ्गिया; भडकीला** dazzling. ୩ । ବାଗାଡ଼ମ୍ବରଯୁକ୍ତ—3. Bragging. ଦେ. ବି-ଆଡ଼ମ୍ବର କରିବା ବ୍ୟକ୍ତି—A braggart.

ଭଡ଼ ପତ୍ର—ଦେ. ବି—ବଡ଼ ଆକୃତିବିଶିଷ୍ଟ ଧୂଆଁ ପତ୍ର—Large sized
Bhar̲d̲a patra **वडा तम्बाकुपत्ता** tobacco leaf.

ଭଡ଼ ପାନ—ଦେ. ବି—ବଡ଼ ଆକୃତିବିଶିଷ୍ଟ ପାନପତ୍ର—Large sized
Bhar̲d̲a pāna betel leaf. [ଦ୍ର—ଆକୃତି ଅନୁସାରେ ପାନକୁ **वडा पान** ଭଡ଼ (ବଡ଼), ମଝୋଲ (ମଧ୍ୟମାକୃତି) ଓ ଖିଲି (ସାନ) ବୋଲାଯାଏ । )

ଭଡ଼ ଭଡ଼ିଆ—ଦେ. ବିଣ. ପୁଂ — ବଡ଼ ବଢ଼ିଆ; ବାବଦୂକ; ବୃଥା ବାକ୍ୟ-
Bhar̲d̲a bhar̲d̲iā ବ୍ୟୟକାରୀ—Bragging; talkative. (ଭଡ଼ ଭଡ଼େଇ—ସ୍ତ୍ରୀ) ବକୁଆ **भडभडिया, वडवडिआ**

ଭଡ଼ା—ଦେ. ବି (ସଂ. ଭାଟକ)—୧ । ଗୃହ, ଯାନ ଆଦି ବ୍ୟବହାର
Bhar̲d̲ā କରିବା ନିମନ୍ତେ ଗୃହସ୍ୱାମୀଙ୍କୁ ବା ଯାନସ୍ୱାମୀଙ୍କୁ ଦିଆ ଭାଡ଼ା ଯିବା ଧନ, (ଯଥା—ଘରଭଡ଼ା; ଗାଡ଼ିଭଡ଼ା)—1. Hire for
**भाडा** use of a house or conveyance ୨ । (ଅଶିଷ୍ଟାର୍ଥ) ବେଶ୍ୟା ସ୍ତ୍ରୀର ଅର୍ଜିତ ପାପଧନ--2. Wages of infamy earned by an adulteress. ୩ । ଆପଣାର ଦ୍ରବ୍ୟକୁ ଅନ୍ୟ ବ୍ୟକ୍ତି ବ୍ୟବହାର କରିବାର ମୂଲ୍ୟସ୍ୱରୂପ ଦ୍ରବ୍ୟସ୍ୱାମୀଙ୍କୁ ଧନ ଦେବାର ରୀତି—3. The system of hire or letting out. ୪ । ଥରେ ଗାଡ଼ିରେ ବୋଝାଇ ହୋଇ ପାରିବା ପରିମିତ ବସ୍ତୁ—4. A cart-load of things. ୫ । ଏକା ଦମ୍ଭରେ ଚାଲିବା ବାଟ ବା ଦୂରତ୍ୱ; ଭେରି—5. Distance walked by a person at one stretch. ୬ । ପାହୁଣ୍ଡ—6. Step;
**डेग** foot-step; pace. (ଉ—ଦୁଃଶାସନର ତ ନାହିଁଟି କିଛି ବୀଡ଼ା, ପଳାଇଲା ପଛକୁ କାଢ଼ି କରି ଭଡ଼ା । କୃଷ୍ଣସିଂହ. ମହାଭାରତ. ବିରାଟ ।) ୭ । ରେଳ ଆଦିରେ ଯିବା ବ୍ୟକ୍ତିର ଦେୟ ଧନ--7. Fare for travelling in rail or ship. ଦେ. ବିଣ—୧ । ବହୁ ପରିମିତ—1. In large quantity. ୨ । ଗାଡ଼ିପରିମିତ—2. Cart-loads of. (ଯଥା—ତିନି ଭଡ଼ା କାଠ ଆଣିବ ।) ୩ । ଭଡ଼ା ଲାଗିବାରେ ବ୍ୟବହୃତ—3. Let out on hire. (ଯଥା—ଭଡ଼ା ବଗି; ଭଡ଼ା ଗାଡ଼ି; ଭଡ଼ା ବସା ।) [ଦ୍ର— ଘର ବା ଯାନାଦିର ବ୍ୟବହାର ପାଇଁ ଗୃହସ୍ୱାମୀଙ୍କୁ ଦିଆଯିବା ଧନକୁ ଭଡ଼ା ଓ ଭୂମିକୁ ଭୋଗ କରିବାପାଇଁ ଭୂସ୍ୱାମୀଙ୍କୁ ଦିଆଯିବା ଧନକୁ ଖଜଣା କୁହାଯାଏ । କୌଣସି ବ୍ୟକ୍ତିର ପରିଶ୍ରମଦ୍ୱାରା ଉପକୃତ ବ୍ୟକ୍ତି ପରିଶ୍ରମକାରୀ ବ୍ୟକ୍ତିକୁ ଦେବା ଧନ (ଦୈନିକ ରେଟରେ ମୂଲ ବା ମଜୁରି, ଏବଂ ମାସିକ ରେଟରେ ଦରମା ବୋଲାଯାଏ । ] ପ୍ରାଦେ. (ବାଲେଶ୍ୱର) ବି—ପାଦଚିହ୍ନ—Foot-mark.

ଭଡ଼ାଏ—ଦେ ବି ଓ ବିଣ—୧ । କିଛି ବାଟ; ଥୋଡ଼ାଏ ବାଟ; ଭେରିଏ—
Bhar̲d̲āe 1. Some distance. ( ଉ—ନିବାତ କବଚଙ୍କ
**चक्कर** ଶବେ ସେ ଘୋଡ଼ାଏ, ତଳରେ ଯାଇଁ ନ ପାରିଲେ ଟି ଭଡ଼ାଏ । କୃଷ୍ଣସିଂହ. ମହାଭାରତ. ବନ ।) ୨ । ଥରେ—2. Once. ୩ । ଶଗଡ଼ ବା ନାବରେ ଥରେ ବୋଝାଇ ହେବା ପରିମିତ; ଏକ ଗାଡ଼ି ବା ନାବପୂର୍ଣ୍ଣ—3. One load of. ୪ । ଏକ ପାହୁଣ୍ଡ—4. One step.

ଭଡ଼ା କଉଡ଼ି—ଦେ. ବି—୧ । ଶକଟ ବା ଗୃହାଦିର ବ୍ୟବହାରାର୍ଥ ଦେୟ
Bhar̲d̲ā kaur̲d̲i ଧନ—1. Hire money. ୨ । ବେଶ୍ୟାର ଅର୍ଜିତ ଧନ—2. The earnings of adultery of a woman.
ଭଡ଼ା ଧନ } ଅନ୍ୟରୂପ
ଭଡ଼ା ପଇସା }
ଭାଡ଼ା পয়সা **भडाका धन पैसा**

ଭଡ଼ା କରିବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର ଗୃହ ବା ଯାନକୁ
Bhar̲d̲ā karibā ଭଡ଼ା ଦେଇ ବ୍ୟବହାର କରିବା କଥା ସ୍ଥିର (ଭଡ଼ା ନେବା—ଅନ୍ୟରୂପ) କରିବା—1. To settle to
ভড়া করা, ভড়া লওয়া take on hire; to engage on
**भाडपरलेना, भडाकरना** hire. ୨ । ଅନ୍ୟ ବ୍ୟକ୍ତିର ଗୃହ ବା ଯାନାଦିକୁ ଭଡ଼ା ଦେଇ ବ୍ୟବହାର କରିବା—2. To take on hire.

ଭଡ଼ା କାଢ଼ିବା — ଦେ, କ୍ରି. (ପଦ୍ୟ) —ଚାଲିବା; ପାହୁଣ୍ଡ ପକାଇବା—
Bhar̲d̲ā kār̲d̲hibā To put forth steps; to advance
**डेग उठाना** steps. (ଉ—କଳ ସେହୁଘଣି ପଛକୁ କାଢ଼ି ଭଡ଼ା ଆଗେ କାଳ ଯାଇଁ ବୃଷେକ ବାହାଡ଼ା । କୃଷ୍ଣସିଂହ. ମହାଭାରତ. ବନ ।

ଭଡ଼ା ଖାଇବା—ଦେ. କ୍ରି ( ମନ୍ଦାର୍ଥ )—କୌଣସି ସ୍ତ୍ରୀର ବେଶ୍ୟାବୃତ୍ତି-
Bhar̲d̲ā khāibā ଜନିତ ଅର୍ଥରେ ପୁରୁଷ ପୋଷି ହେବା—
**रण्डीका पैसा खाना,** To live on the earning of an
**रण्डीबाजीका पैसा खाना** adulteress (said of a male).

ଭଡ଼ାଖିଆ(ୟା)—ଦେ. ବି. ପୁଂ ( ମନ୍ଦାର୍ଥ )—୧ । ଯେଉଁ ବ୍ୟକ୍ତି ଭଡ଼ା
Bhar̲d̲ā khiā(yā) ଦ୍ୱାରା ଜୀବିକା ନିର୍ବାହ କରେ—
(ଭଡ଼ାଖୋର—ଅନ୍ୟରୂପ) 1. Living on the earnings of

(ଭଡ଼ାଖାଇ—ସ୍ତ୍ରୀ) hire. ୨ । ବେଶ୍ୟାବୃତ୍ତିଜନିତ ଅର୍ଥରେ
रण्डीबाजी पैसा खोर ଜୀବିକାନିର୍ବାହକାରୀ—2. Living on the earnings of adultery.

ଭଡ଼ା ଘର—ଦେ. ବି. ( ସଂ. ଭାଟକ+ଗୃହ )—ଯେଉଁ ଘରକୁ ଗୃହ-
Bhardā ghara ସ୍ୱାମୀ ଅନ୍ୟ ବ୍ୟକ୍ତିଙ୍କ ବ୍ୟବହାର ସକାଶେ
ভাড়া ঘর ଭଡ଼ାରେ ଲଗାନ୍ତି—Hired or rented house;
भाडा घर a house let out on hire.
[ଦ୍ର—ଏହିପରି ଭଡ଼ା କରି, ଭଡ଼ା ବସା, ଭଡ଼ା ଗାଡ଼ି, ଭଡ଼ା ଜାହାଜ ଆଦି ହୁଏ ।]

ଭଡ଼ା ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି—୧ । କୌଣସି ବସ୍ତୁକୁ ବ୍ୟବହାର
Bhardā chhindā(nde)ibā କରିବା ବା ଭୋଗ କରିବା
ভাড়া স্থির করা ନିମନ୍ତେ ବସ୍ତୁସ୍ୱାମୀଙ୍କୁ କେତେ ଭଡ଼ା ଦିଆଯିବ
भाडा तोडना ତାହା ସ୍ଥିର କରିବା—1. To settle the
ভাড়া চুকান hire of a thing to be let out.
भाडा चुकाना ୨ । ବସ୍ତୁକୁ ବ୍ୟବହାର କରିବା ଯୋଗୁଁ ବସ୍ତୁ-
ସ୍ୱାମୀଙ୍କୁ ଦେୟ ଭଡ଼ା ସମ୍ପୂର୍ଣ୍ଣରୂପେ ଅଦାୟ ଦେବା; ଚୁକ୍ତି କରି ଦେବା—2. To pay off the whole hire due to the owner for the use of a thing.

ଭଡ଼ାଟିଆ—ଦେ. ବି. (ସଂ. ଭାଟକୀୟ)—୧ । ଯେଉଁମାନେ ଅନ୍ୟ ବ୍ୟକ୍ତିର
Bhardātiā ଘରେ ଭଡ଼ା ଦେଇ ରହନ୍ତି—1. Lodgers on
(ଭଡ଼ାଦାର—ଅନ୍ୟରୂପ) rent; occupiers of a house on
ভাড়াটে, ভাড়াদার hire. ୨ । ଯେଉଁ ବ୍ୟକ୍ତି ଭଡ଼ା ଦେଇ
भडौति, भाडादार ଅନ୍ୟର ଦ୍ରବ୍ୟ ବ୍ୟବହାର କରେ—
2. Lessees on hire. ବି—ଭଡ଼ାରେ ବ୍ୟବହାର ହେଉଥିବା ଗାଡ଼ି ଘର ଆଦି—(thing) Let out on hire.

ଭଡ଼ା ଦେବା—ଦେ. କ୍ରି—୧ । ଭଡ଼ା ପାଇବା ପାଇଁ ଆପଣାର
Bhardā debā ଗୃହାଦିକୁ ଅନ୍ୟ ବ୍ୟକ୍ତିକୁ ବ୍ୟବହାର କରିବାକୁ
[ଭଡ଼ା ଲଗା(ଗେ)ଇବା—ଅନ୍ୟରୂପ] ଦେବା—1. To let out
ভাড়া দেওয়া, ভাড়া লাগান a thing on hire. ୨ । ଭଡ଼ା-
भाडेपर देना, भाडा देना ଗୃହ ଆଦି ନିମନ୍ତେ ଦେୟ ଧନକୁ ଗୃହ-
ସ୍ୱାମୀଙ୍କୁ ଦେବା—2. To pay the hire or rent of some thing used on rent to the owner.
୩ । (ଅଶିଷ୍ଟାର୍ଥ) ଆପଣାର ଅଧିକାରଭୁକ୍ତ କୌଣସି ସ୍ତ୍ରୀକୁ ବେଶ୍ୟାବୃତ୍ତି ଦ୍ୱାରା ଧନ ଅର୍ଜନ କରିବା ପାଇଁ ଅନ୍ୟ ପୁରୁଷର ଉପଭୋଗ ପାଇଁ ଛାଡ଼ି ଦେବା—3. To let out a woman (who is in one's keeping) for prostitution.

ଭଡ଼ା ନାଲି(ଲି)ଶ(ଶି, ଚ, ଚି)—ଦେ. ବି. (ଓ. ଭଡ଼ା+ଫା.ନାଲିଶ)-
Bhardā nāla(li)s(si, ch, chi) ବସ୍ତୁର ସ୍ୱାମୀ ବ୍ୟବହାରକାରୀ
ভাড়ার জন্যে নালিস ବ୍ୟକ୍ତିଠାରୁ ପ୍ରାପ୍ୟ ଭଡ଼ା ପାଇଁ ଦାବିର
भाडेकी नालिस କରିବା ମକଦ୍ଦମା—A suit by the owner for realisation of the hire or rent due from the user.

ଭଡ଼ା ଦାର—ଦେ.ବି—୧ । ଯେଉଁ ବ୍ୟକ୍ତି ଆପଣାର ଘର ଆଦିକୁ ଅନ୍ୟ
Bhardā dār ବ୍ୟକ୍ତିକୁ ଭଡ଼ା ଲଗାଏ—1. A person who
ভাড়াদার lets out his house or other things
भाडादार to others on hire. ୨ । ଭଡ଼ାଟିଆ (ଦେଖ)
ଭଡ଼ା ବାଲା, ଭଡ଼ା ବୁଆଲା—ପୁଂ } ଅନ୍ୟରୂପ Bhardātiā
ଭଡ଼ା ବାଲି, ଭଡ଼ା ବୁଆଲି—ସ୍ତ୍ରୀ } (See)

ଭଡ଼ା ବାକି(କୀ)—ଦେ. ବି. ( ଭଡ଼ା+ଫା. ବାକୀ )—ବାକିଆ
Bhardā bāki(kī) ଭଡ଼ା; ବସ୍ତୁସ୍ୱାମୀଙ୍କୁ ଦେୟ ଭଡ଼ା ଯାହାର
भाडा बाकी ବ୍ୟବହାରକାରୀ ବ୍ୟକ୍ତିଠାରେ ବାକି ପଡ଼ିଯାଏ—
Arrear dues on account of the use of a thing.

ଭଡ଼ିଲ—ସଂ. ବି—୧ । ସେବକ; ଚାକର; ଭୃତ୍ୟ—1. A servant
Bhardila (Apte). ୨ । ଯୋଦ୍ଧା—2. Warrior (Apte).

ଭଡ଼ୁଆ—ଦେ. ବି. ପୁଂ (ସଂ. ଭଣ୍ଡରୁ ବା ସଂ. ଭଟ=ଯାମର ସଂ. ଭଟ୍ ଧାତୁ
Bhardua =ଭଡ଼ା ଗ୍ରହଣ କରିବା (ଇଂ. ବଅଡ୍ bawd)
(ଭାଡୁଆ—ଅନ୍ୟରୂପ) ସହିତ ତୁଳନା କର)—୧ । ବର୍ଣ୍ଣସଙ୍କର
ଭଡ଼ୋଇ } ସ୍ତ୍ରୀ ଜାତିବିଶେଷ—1. A hybrid caste.
ଭାଡ଼ୋଇ } [ଦ୍ର—ବେଶ୍ୟାମାନଙ୍କର ଜାତି, ଯେଉଁମାନେ
ভাড়ুয়া, ভেড়ুয়া ବେଶ୍ୟାକୁଳରେ ଜନ୍ମ ହୁଅନ୍ତି ସେମାନଙ୍କ ଦ୍ୱାରା
भडवा, भगत, ଏହି ଜାତି ଗଠିତ । ଏହି ସମାଜରେ ଅନ୍ୟ ସମାଜ
भगतबाज, भडुआ ପର ଗୃହସ୍ଥ ଓ ଗୃହିଣୀ ଅଛନ୍ତି । ଏହି ଜାତିମାନେ ଢୋଲକୀ ବାଜା ବଜାନ୍ତି ଓ ବେଶ୍ୟାମାନଙ୍କ ସଙ୍ଗେ ବାଜା ବଜାଇ ଜୀବିକାର୍ଜନ କରନ୍ତି । ରାଜପୁତାନାରେ ଭଗତ ବା ଭଗତିଯ଼ା ନାମକ ଏକ ଜାତି ଅଛନ୍ତି; ଏମାନେ ବୈଷ୍ଣବ ସାଧୁଙ୍କ ସନ୍ତାନ ଥିବାର କହନ୍ତି । ଏ ଜାତିର ସ୍ତ୍ରୀମାନେ ନର୍ତ୍ତକୀ ଓ ବେଶ୍ୟାବୃତ୍ତି କରନ୍ତି ଓ ପୁରୁଷମାନେ ନର୍ତ୍ତକୀ-ମାନଙ୍କୁ ବେଶ କରନ୍ତି ଓ ତାଙ୍କ ସଙ୍ଗେ ବାଦ୍ୟ ବଜାନ୍ତି । ହି. ଶ] ୨ । ନର୍ତ୍ତକୀ ବେଶ୍ୟାମାନଙ୍କ ସଙ୍ଗେ ବାଜା ବଜାଇବା ବ୍ୟକ୍ତି; ମାଦେଳିଆ; ବେଶ୍ୟାର ପୋଷ୍ୟ ବ୍ୟକ୍ତି; ଗୁରୁବା—2. A musician or player of music attached to a party of dancing girls. ୩ । ଅତି ନିର୍ଲଜ୍ଜ ବ୍ୟକ୍ତି—3. A shameless creature. ୪ । ଯେଉଁ ବ୍ୟକ୍ତି ପୁରୁଷମାନଙ୍କୁ ବେଶ୍ୟା ବା ପର-ସ୍ତ୍ରୀ ଯୋଗାଏ—4. A panderer; a bawd. ଦେ. ବିଣ. ପୁଂ—୧ । ନିର୍ଲଜ୍ଜ; ଅଲଜ୍ଜକ—1. Shameless. ୨ । ନୀଚ—2. Low; mean. ୩ । ଯେ ଜାରକୁ ପର-ସ୍ତ୍ରୀ ଯୋଗାଏ—3. Bawdy; pandering. ୪ । ରଣ୍ଡୀ-ବାଜ; ନିର୍ଲଜ୍ଜଭାବେ ବେଶ୍ୟାସକ୍ତ—4. Habitually and shamelessly attached to prostitutes.

ଭଡ଼ୁଆ ଗିରି—ଦେ. ବି—୧ । ନିର୍ଲଜ୍ଜତା—1. Shamelessness.
Bhardua giri ୨ । ଜାର ପୁରୁଷକୁ ସ୍ତ୍ରୀ ଯୋଗାଇବା କାର୍ଯ୍ୟ—
ଭଡ଼ୁଆପଣ } 2. The profession of a
ଭଡ଼ୁଆପଣିଆ(ଆଁ) } ଅନ୍ୟରୂପ bawd. ୩ । ରଣ୍ଡୀବାଜୀ—
ଭଡ଼ୁଆ ବୃତ୍ତି } 3. Habit of visiting pros-
ভাড়ামি, ভাড়োয়াগিরি भडुआगिरी titutes.

ଭଣ୍ (ଧାତୁ)—ସ—କହିବା—
Bhaṇ (root) To speak.

ଭଣ୍ - ଦେ. ଅ. (ସ. ବନ୍ଦନ)—ଝଟ୍; ବନ୍ଦନ; ଶୀଘ୍ର; ତୁରନ୍ତ; ହଠାତ୍—
Bhan Very soon; immediately; at once.
फौरन

ଭଣ୍ ଭଣ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ବହୁତ ଗୁଡ଼ାଏ ମାଛି
Bhaṇ-bhaṇ ଏକସ୍ଥାନରେ ବେଢ଼ି ଯାଇ ଉଡ଼ିବାଦ୍ୱାରା କରବାର
ଭନଭନ ଗଣଗଣ ଶବ୍ଦ—1. The buzzing sound
भिनभिना हट; भिनकना; भनभन of a swarm of flies.
(ଭଣର୍ ଭଣର୍—ଅନ୍ୟରୂପ) (ଉ—କାହାଣ କାହାଣ ମାଛି କଣ୍ଠା ଯାଗାରେ ବସିଅଛନ୍ତି ଏବଂ ସବୁ ସାଙ୍ଗ ଭଣଭଣ ହେଉଅଛନ୍ତି —ଫକୀରମୋହନ. ଛମାଣ ଆଠଗୁଣ୍ଠ ।) ୨ । ପଚା ପଦାର୍ଥର ଗନ୍ଧ ଗନ୍ଧ—2. Putrid smell. (ଯଥା— ନଳାମୁହଁ ଭଣଭଣ ଗନ୍ଧଉଛି ।)
୩ । ଯେଉଁ ପଦାର୍ଥ (ଖାଦ୍ୟ, ଘାଆ)ରେ ମାଛି ଦଳ ଦଳ ହୋଇ ବେଢ଼ି ଭଣଭଣ ଶବ୍ଦ କରୁଥାନ୍ତି—3. (food or sore) Infested with a swarm of buzzing flies. ୪ । ଅତ୍ୟନ୍ତ ଦୁର୍ଗନ୍ଧଯୁକ୍ତ ହୋଇ—4. With a fœtid smell. (ଯଥା—ଏ ଘରେ ପିଲାମାନେ ହଗିବାରୁ ଘର ଭଣଭଣ ଗନ୍ଧଉଛି ।)

ଭଣ୍ ଭଣା—ଦେ. ବିଣ (ଧ୍ୱନ୍ୟନୁକରଣ)—ଭଣଭଣ ଶବ୍ଦକାରୀ—
Bhaṇ-bhaṇā ଭନଭନିଆ; ଭନଭନେ Buzzing; humming.
भनभना (ଭଣ୍‌ଭଣିଅ[ଆଁ], ଭଣଭଣା, ଭଣଭଣିଆ[ଆଁ]— ଅନ୍ୟରୂପ)

ଭଣ ଭଣା ମାଛି—ଦେ. ବି—୧ । ଗଣଗଣିଆ ବଡ଼ ମାଛି—1. Buzz-
Bhaṇ-bhaṇā māchhi ing fly. ୨ । ପଚା ପଦାର୍ଥରେ
ଭନଭନେ ମାଛି ବସିଥିବା ନେଳଆ ମାଛି—2. The blue bottle
भनभनिया माछी (ଭଣ୍‌ଭଣିଅ[ଆଁ] ମାଛି—ଅନ୍ୟରୂପ) fly.

ଭଣଜା(ଞ୍ଜା)—ଦେ. ବି. ପୁଂ (ସ. ଭଗିନୀଜ)—ଭାଗିନେୟ; ଭଉଣୀର
Bhaṇajā(ñjā) ପୁଅ—Sister's son. (ଉ—ଶକୁନି
ଭାଗନା भानजा; बहनोत; भगिना ବୋଇଲେ ଭଣଞ୍ଜା କହ ଯାହା
(ଭଣଜା ବୋହୂ—ସ୍ତ୍ରୀ) —କୃଷ୍ଣସିଂହ. ମହାଭାରତ. ବନ ।)
(ଭାଣଜା, ଭାଣିଜା, ଭାଣିଞ୍ଜା—ବିପର୍ଯ୍ୟସ୍ତ ଲିଙ୍ଗ) [ଦ୍ର—ଶାସ୍ତ୍ର ଅନୁସାରେ ଆପେ ଯେଉଁ ପିତୃଲୋକଙ୍କୁ (ପିତୃପିତାମହ ଓ ପ୍ରପିତାମହ) ପିଣ୍ଡ ଦେବ, ଅପଣାର ଭଣଜା ମଧ୍ୟ ସେହିମାନଙ୍କୁ (ଭଣଜାର ମାତାମହ, ପ୍ରମାତାମହ ଓ ବୃଦ୍ଧ-ପ୍ରମାତାମହରୂପେ) ପିଣ୍ଡ ଦେବ । ଏପରି ସ୍ଥଳରେ ଭଣଜା-ଦ୍ୱାରା ମାମୁଁର ପିତୃଲୋକେ ପିଣ୍ଡ ପାଆନ୍ତି । ଏଥିପାଇଁ ସେ ମାମୁଙ୍କ କୁଳନନ୍ଦନ ଅଟେ ଓ ଭଣଜାର ଦୋଷ ମାମୁ ଧରନ୍ତି ନାହିଁ ଓ ଭଣଜାକୁ ମାମୁଁ ଖୁବ୍ ଆଦର କରନ୍ତି । ଏଠାରେ ଗୋଟିଏ ବିଷୟ ଉଲ୍ଲେଖ ଯୋଗ୍ୟ ଯେ ମାତାମହଙ୍କର ପୁତ୍ର ପୌତ୍ରାଦି ନ ଥିଲେ ଦୌହିତ୍ର (ଝିଅର ପୁଅ) ସମ୍ପତ୍ତିର ଅଧିକାରୀ ହୁଅନ୍ତି । କିନ୍ତୁ ମାମୁଙ୍କ ସମ୍ପତ୍ତିରେ ପୂର୍ବେ ଭଣଜା ଉତ୍ତରାଧିକାରୀ ହେଉ ନ ଥିଲେ; ଏବେ ନୂତନ ଆଇନ ହୋଇଅଛି ଯେ ମାମୁଙ୍କ ସମ୍ପତ୍ତିରେ ହିନ୍ଦୁଶାସ୍ତ୍ର ଅନୁସାରେ ଭଣଜା ଦାୟାଦ ହୋଇ ପାରିବ ।]

ଭଣଜା(ଞ୍ଜା) ବୋଉ(ହୂ)—ଦେ. ବି. ସ୍ତ୍ରୀ (ସ. ଭଗିନୀଜ ବଧୂ)—
Bhaṇajā(ñjā) bou(hū) ଭଣଜାର ସ୍ତ୍ରୀ—The wife of
ଭାଗନା ବଉ भानजाकी बहू one's sister's son. [ଉ—
(ଭାଣିଜା ବୋ[ହୂ]ଇଁ—ବିପର୍ଯ୍ୟସ୍ତ ଲିଙ୍ଗ) ବୋଲରେ ଯାଏ ବୋଲରେ ଆସେ, ଭଣଜାବୋହୂ ଭାତ ପରସେ—ଶିଶୁଗୀତ ।]

ଭଣତି—ଦେ. ବି (ସ. ଭଣ୍ ଧାତୁ)—ଭଣିତା (ଦେଖ)
Bhaṇati Bhaṇitā (See)

ଭଣୟିତା—ସ. ବିଣ. ପୁଂ (ଭଣ୍ ଧାତୁ + ତୃ; ୧ମା. ୧ବ)—୧ । କଥକ;
Bhaṇayitā ଯେ କହେ—1. Speaking. ୨ । ଯେ
(ଭଣୟିତ୍ରୀ—ସ୍ତ୍ରୀ) କୌଣସି ବିଷୟ ଅନ୍ୟ ବ୍ୟକ୍ତିର ମୁହଁରେ କୁହାଏ—2. Causing a thing to be spoken through another's mouth.

ଭଣା—ଗ୍ରାଦେ (ପୁରୀଜିଲ୍ଲା) ବି. ପୁଂ (ପୁରୁଷ ପ୍ରତି ପ୍ରଯୁକ୍ତ ଅଶ୍ଳୀଳ ଗାଳି)—
Bhaṇā ଭଉଣୀଗାମୀର ସଂକ୍ଷେପ ରୂପ; ଭଗିନୀର ସତୀତ୍ୱଧର୍ମନାଶକାରୀ ବ୍ୟକ୍ତି—A vile term of abuse used to males (a person committing incest with his sister.) ଦେ. ବି—ଭଣିବା କ୍ରିୟା (ଦେଖ) The act of Bhaṇibā (See)

ଭଣା(ଣେ)ଇବା—ଦେ. କ୍ରି (ଭଣିବା କ୍ରିୟାର ଣିଜନ୍ତ ରୂପ)—ଅନ୍ୟ
Bhaṇā(ṇe)ibā ବ୍ୟକ୍ତିର ରଚିତ ଗୀତାଦିରୁ ଅପଣା ନାମରେ
ଭଣାନ भणवाना ଭଣିତା କରାଇବା—To cause a song to be wound up with one's name as the author although one is not such.
[ଦ୍ର—ଉତ୍କଳରେ ରାଜସଭାର କବିମାନେ ସ୍ୱରଚିତ ଗୀତ ଆଦିକୁ ଅପଣା ନାମରେ ନ ଭଣି ତାଙ୍କ ପୃଷ୍ଠପୋଷକ ରାଜାମାନଙ୍କ ନାମରେ ଭଣିତା କରୁଥିଲେ ଓ ଅଳ୍ପକାଳ ମଧ୍ୟ ସେପରି କରୁଥିବାର ଦେଖାଯାଏ । କବିସୂର୍ଯ୍ୟ ତାଙ୍କ ରଚିତ ସଙ୍ଗୀତମାନଙ୍କୁ ଆଠଗଡ଼ ଓ ଜଳନ୍ତର ରାଜାମାନଙ୍କ ନାମରେ ଭଣିତା କରିଥିଲେ ।]

ଭଣା ଖାଇବା—ଗ୍ରାଦେ. (କେନ୍ଦ୍ରାପଡ଼ା)—କ୍ରି—ଚିନ୍ତାନ୍ୱିତ ହେବା—
Bhaṇā khāibā To become gloomy with anxiety. (ଯଥା—ମୋ ମନ ଭଣା ଖାଉଛି ।)

ଭଣିତ—ସ. ବିଣ (ଭଣ୍ ଧାତୁ + କର୍ମ. ତ)—୧ । ଭାଷିତ; କଥିତ—
Bhaṇita 1. Spoken; uttered; said. ୨ । (ଗୀତ) ରଚିତ—2. Composed (said of a song).

ଭଣିତା(ତି)—ଦେ. ବି (ସ. ଭଣ୍ ଧାତୁ; ଭଣିତ)—୧ । ପଦ୍ୟ ବା
Bhaṇitā(ti) ଗୀତ ଶେଷରେ ରଚୟିତାଙ୍କ ନାମ ଉଲ୍ଲେଖ କରାଯିବା
ଭଣିତା भणिता ପଦ—1. The concluding portion of a poem or song mentioning the name of

the composer. ୬ । ଗଦ୍ୟ ଶେଷରେ କବିଙ୍କ ନାମୋଲ୍ଲେଖ—2. Peroration of a song; the mentioning of the name of the composer of a song at its end. ୩ । ( ସ. ଭଣିତା ) ଗୀତ ଶେଷରେ ଯାହାଙ୍କ ନାମ ରଚକ ବୋଲି ଲେଖା ଥାଏ—3. The reputed or declared author of a song. ବେ॰ ବିଣ ( ସ. ଭଣିତ )—କୌଣସି ବ୍ୟକ୍ତିଙ୍କ ନାମରେ ଯେଉଁ ଗୀତର ଶେଷ ପଦ ରଚିତ ହୋଇଥାଏ—Concluded with the name of the reputed author.

ଭଣିତା କରିବା—ଦେ. କ୍ରି—୧ । ଭଣିବା; ଗୀତ ରଚନା କରି ଶେଷ Bhaṇitā kariba ପଦରେ ( ରଚକ ) ଆପଣାର ବା ଆଶ୍ରୟ- ଭଣিতা করা ଦାତାଙ୍କ ନାମ ଉଲ୍ଲେଖ କରିବା—1. To भणिता लगाना (करना) wind up a song by adding ( ଭଣେଇ କରିବା—ଅନ୍ୟରୂପ ) one's name or the name of one's patron at the end ( said of the author ). ୬ । ଭଣିତା ପଦ ବୋଲି ଗୀତ ବୋଲିବା ଶେଷ କରିବା—2. To conclude the singing of a song by reciting its last couplet.

ଭଣିତା(ତି) ପଦ—ଦେ. ବି ( ସ. ଭଣିତ ପଦ )—ଗୀତର ଶେଷ ପଦ Bhaṇitā(ti) pada ଯହିଁରେ ରଚକଙ୍କ ନାମ ଲେଖାଥାଏ— ভণিতাপদ भणित पद The concluding couplet of a song in which the composer's or his patron's name is embodied.

ଭଣିତି—ସ. ବି (ଭଣ୍ ଧାତୁ+ଭାବ. ତି)—୧ । କଥନ—1. Speak- Bhaṇiti ing ୬ । ବାକ୍ୟ; କଥା—2. Speech; word ୩ । ଉଚ୍ଚାରଣ—3. Utterance.

ଭଣିବା—ଦେ. କ୍ରି ( ସ. ଭଣ୍ ଧାତୁ )—୧ । ବୋଲିବା; କହିବା— Bhaṇibā 1. To speak. ( ଉ—ହଂସ ସେ ସୁଲକ୍ଷଣୀ ভণা भणना ମୁଖକୁ ଯେଷଣି, ଗୃହିଁ କର ପର ବଚନ ଦେଲି ଭଣି- କୃଷ୍ଣସିଂହ. ମହାଭାରତ. ବନ । ) ୬ । ଗୀତ ରଚନା କରି ସମାପ୍ତ କରିବା—2. To conclude the composing of a song. ୩ । ଉଚ୍ଚାରଣ କରିବା— 3. To utter. ( ଉ—ଯଣେ ହେଲେ ନାମକୁ ନ ଭଣେ ମୁଁ ଭ୍ରମର ହେ—କବିସୂର୍ଯ୍ୟ. ଚମ୍ପୂ । ) ୪ । (କବି) ଗୀତ ଶେଷରେ ଆପଣାର କିମ୍ବା ଅନ୍ୟ ବ୍ୟକ୍ତିର ନାମ ରଚକରୂପେ ସଯୋଗ କରିବା—4. To embody one's name or the name of another person in the concluding lines of a song. [ ଦ୍ର—ପ୍ରାଚୀନ କବିମାନେ ନିଜେ ଗୀତ ବା ପଦ୍ୟ ରଚନା କରି ଆପଣାର ନାମରେ ନ ଭଣି ଉକ୍ତ ରଜାଙ୍କ ନାମରେ ଭଣିତା କରିବାର ଦେଖାଯାଇଥାଏ । ଉଦାହରଣ ସ୍ୱରୂପ କଶୋରଚନ୍ଦ୍ରାନନ୍ଦ ଚମ୍ପୂକୁ କବିସୂର୍ଯ୍ୟ ବଳଦେବ ରଥ ରଚନା କରିଥିଲେ କିନ୍ତୁ ତଦାନୀନ୍ତନ ଅଷ୍ଟଗଡ଼ର ଅଧିପ ବାଲୁଙ୍କେଶଦେବ ଭୂପଙ୍କ ନାମରେ ଭଣିତା କରିଥିଲେ । ଉତ୍କଳ ସାହିତ୍ୟର ଅଧୁନିକ ଯୁଗରେ ପଦ୍ୟ ଓ ଗଦ୍ୟ ସାହିତ୍ୟରେ ଆଧୁନିକ "କବିସୂର୍ଯ୍ୟ" ଓ "କବି ଯଶଃପ୍ରାର୍ଥୀ" ଅଷ୍ଟଗଡ଼ନାଥମାନଙ୍କର ଉଦାହରଣ ବିରଳ ନୁହେ । ]

ଭଣ୍ଟାକ—ସ. ବି—ଖଡ଼ା ଶାଗ (ହ୍ରୁ. ଶ.)— Bhaṇṭāka A kind of potherb.

ଭଣ୍ଟାକୀ—ସ. ବି. ସ୍ତ୍ରୀ (ଭଣ୍ଟ୍ ଅନୁକରଣ ଶବ୍ଦ+ଅକ+ଈ; ପୋଡ଼ିବା Bhaṇṭākī ନିମନ୍ତେ ବାଇଗଣକୁ ନିଆଁରେ ପକାଇଲେ ତାହା ଫାଟିଯାଇ ସେଥିରୁ ଉଠିବା ଶବ୍ଦରୁ)—ବାର୍ତ୍ତାକୁ; ବାଇଗଣ— Brinjal; egg-fruit.

ଭଣ୍ଟୁକ—ସ. ବି—ଶ୍ୟୋନାକ; ଫମ୍ପଣା ( ହ୍ରୁ. ଶ. )—Bignonia Bhaṇṭuka Judica (plant).

ଭଣ୍ଡ୍ (ଧାତୁ)—ସ—୧ । ପ୍ରତାରଣା କରିବା; ଭଣ୍ଡିବା—1. To Bhaṇḍ (root) cheat; to inveigle. ୨ । ଥଟ୍ଟା କରିବା; ରଙ୍ଗରହସ୍ୟ କରିବା—2. To jest; to indulge in buffoonery. ୩ । ଉପହାସ କରିବା—3. To mock. ୪ । ଗାଳି ଦେବା— 4. To chide; to upbraid ( Apte ). ୫ । ଭାଗ୍ୟବାନ କରିବା—5. To make fortunate ( Apte ). ୬ । ମଙ୍ଗଳସୂଚକ କର୍ମ କରିବା—6. To do an auspicious act ( Apte ).

ଭଣ୍ଡ—ସ. ବିଣ ( ଭଣ୍ଡ୍ ଧାତୁ+ଅ )—୧ । ଧୂର୍ତ୍ତ; ଶଠ—1. Bhaṇḍa Cheating; deceitful. ୬ । କୃତ୍ରିମ; ଛଦ୍ମ; ଭଣ୍ଡ—2. Hypocritical; feigning; dissembling; pretending. ୩ । ସୁଅଙ୍ଗିଆ; ଥଟ୍ଟାଳି; ଖେଳୁଆ—3. Jesting; mimicking. ୪ । ଅଶ୍ଳୀଳ ବାକ୍ୟର କଥକ—4. Speaking obscene words. ସ ବି—୧ । ଦୁର୍ବ୍ୟକ୍ତି; ଧପ୍ପାବାଜ୍ ଲୋକ —1. A cheat. ୨ । ଅଭିନେତା; ନଟ—2. An actor; a player. ୩ । ସୁଅଙ୍ଗୀ; ଯାହାଙ୍କରେ ବାକ୍ୟାଦିଦ୍ୱାରା ହାସ୍ୟୋଦ୍ଦୀପକ ବ୍ୟକ୍ତି ( ଯଥା—ଓଡ଼ିଆ ଯାତ୍ରାରେ ହାସ୍ୟ )—3. A jester; a buffoon. ୪ । ଥଟ୍ଟାଳି ଲୋକ—4. A mimic. ୫ । ନିର୍ଲଜ୍ଜ ଲୋକ—5. A brazen faced man ୬ । ଛଦ୍ମବେଶୀ —6. A hypocrite. ୭ । ଅଶ୍ଳୀଳବାକ୍ୟକଥକ ବ୍ୟକ୍ତି—A speaker of obscene things.

ଭଣ୍ଡକ—ସ. ବି ( ଭଣ୍ଡ+କ )—ଖଞ୍ଜନପକ୍ଷୀ, କଜଳପାତି ଚଢ଼େଇ— Bhaṇḍaka The blue wagtail

ଭଣ୍ଡ ଗଣେଶ—ଦେ॰ ବି—ପୁରୀ ପୁରୁଷୋତ୍ତମ ଦେବଙ୍କ ଦ୍ୱାର ବାହାରୁ Bhaṇḍa gaṇesa ଆମଳ ଓ ପୁଷ୍ପ ମନ୍ଦିର ବେଢ଼ା ମଧ୍ୟରେ ସ୍ଥିତ ଗଣେଶମୂର୍ତ୍ତି—The image of Ganesa

brought down from Conjeverum by Raja Purusottama Deva and installed in the compound of the Jagannath temple.

ଭଣ୍ଡ ଗୀତ—ସ. ବି—ଅଶ୍ଳୀଳ ସଙ୍ଗୀତ—Obscene song.
Bhanda gita **भण्डौआ; भँडैला**

ଭଣ୍ଡ ତପସ୍ୱୀ—ସ. ବି. ପୁଂ ( କର୍ମଧା; ଭଣ୍ଡ+ତପସ୍ୱିନ୍; ୧ମା. ୧ବ )
Bhanda tapaswi —୧ । କପଟ ତପସ୍ୱୀ; କପଟବୈରାଗୀ; (ଭଣ୍ଡତାପସ—ଅନ୍ୟରୂପ) ତାପସବେଶଧାରୀ ଶଠ; ଛଦ୍ମତପସ୍ୱୀ—
ଭଣ୍ଡ ତପସ୍ୱିନୀ } ସ୍ତ୍ରୀ
ଭଣ୍ଡ ତାପସୀ } 1. A hypocritical ascetic. ୨ । ଧୂର୍ତ୍ତ; ପ୍ରତାରକ ବ୍ୟକ୍ତି—2. A cheat; a dessembler. ୩ । କୃତ୍ରିମ ଧାର୍ମିକ—3. A person who assumes piety.

ଭଣ୍ଡ ତପସ୍ୱିତା—ସ.ବି ( ଭଣ୍ଡତପସ୍ୱିନ୍+ତା, ଭ୍ର )—କପଟ ବୈରାଗ୍ୟ;
Bhanda tapaswitā କପଟଧାର୍ମିକତା—Hypocrisy; feigned piety.

ଭଣ୍ଡତା(ତ୍ୱ)—ସ. ବି ( ଭଣ୍ଡ+ଭାବ.ତା, ତ୍ୱ )—୧ । ଭଣ୍ଡପଣିଆ—
Bhandatā(twa) 1. Buffoonery; mimicry. ୨ । କୃତ୍ରିମତା—2. Dissimulation; hypocrisy. ୩ । ଶଠତା—3. Deceitfulness.

ଭଣ୍ଡନ—ସ. ବି ( ଭଣ୍ଡ ଧାତୁ+ଭାବ. ଅନ )—୧ । ପ୍ରତାରଣା;
Bhandana ଠକାଇବା—1. Cheating. ୨ । ଯୁଦ୍ଧ—2. Battle; war. ୩ । ( +କରଣ. ଅନ )—କବଚ; ସାଞ୍ଜୁ—3. Armour; mail. ୪ । ହାନି, କ୍ଷତି ( ହି. ଷ )—4. Loss; injury.

ଭଣ୍ଡ ବକର—ଦେ. ବି—ଧଣ୍ଡସଣ୍ଡ; ଅଶ୍ଳୀଳବାକ୍ୟ—Obscene lan-
Bhanda bakara guage. ବିଣ—ଅଶ୍ଳୀଳ—Obscene.
(ଭଣ୍ଡବକ, ଭଣ୍ଡସଣ୍ଡ—ଅନ୍ୟରୂପ) ଭାଁଡ଼ **अण्ट् सण्ट्**

ଭଣ୍ଡର(ରା)—ଦେ. ବିଣ—୧ । ( ସ. ପଣ୍ଡ, ସ. ଭଣ୍ଡ=ହାନି; ଷଣ୍ଡ )
Bhandara(rā) —ପଣ୍ଡ, ନଷ୍ଟ, ବିଫଳ, ବିଗିଡ଼ିଥିବା—1. Spoilt; baffled. ( ଯଥା—
ଭଣ୍ଡୁର(ରା)
ଭଣ୍ଡୁରୁ } ଅନ୍ୟରୂପ ବର୍ଷାଯୋଗୁଁ ଭୋଜି ଭଣ୍ଡର ହୋଇଗଲା । ) ୨ । ( ସ. ଭଣ୍ଡ ) ଲଜ୍ଜିତ
ଭଣ୍ଡୋର(ରା)
ଭଣ୍ଡୁର ଭଣ୍ଡୁଳ —2. Ashamed. ୩ । ଲଜ୍ଜାଗ୍ରସ୍ତ—3.
**भङ्ग; शरमिंदा** Put to shame. ୪ । ହାସ୍ୟାସ୍ପଦ—4. Ludicrous; ridiculous. ୫ । ଯେ ଭଣ୍ଡାଏ; ପ୍ରତାରକ—5. Fraudulent; deceitful; cheating. ୬ । ପ୍ରତାରିତ—6. Defrauded; cheated.

ଭଣ୍ଡର(ରା) କରିବା—ଦେ. କ୍ରି—୧ । ( ସ. ପଣ୍ଡ, ଭଙ୍ଗ ) କୌଣସି
Bhandara(rā) kariba କାର୍ଯ୍ୟକୁ ପଣ୍ଡ ବା ନଷ୍ଟ କରିବା—
ଭଣ୍ଡୁର କରନା 1. To spoil a work. ୨ । ( ସ. ଭଣ୍ଡ )
**भण्डना** କୌଣସି ବ୍ୟକ୍ତିକୁ ଲଜ୍ଜାଗ୍ରସ୍ତ କରିବା—2. To put a person to shame. ୩ । ହାସ୍ୟାସ୍ପଦ କରାଇବା —3. To expose a person to ridicule.

ଭଣ୍ଡରା—ପ୍ରାଦେ ( ସମ୍ବଲପୁର ) ( ତୁଳ. ହି. ଏହି ଅର୍ଥରେ ଭଣ୍ଡାର )—
Bhandarā ୧ । ଭୋଜି; ମହୋତ୍ସବ—1. A feast. ୨ । ସାଧୁ ବା ବାବାଜିମାନଙ୍କ ଭୋଜି—2. A feast of ascetics.

ଭଣ୍ଡଳ—ଦେ. ବିଣ (ସ. ଭଣ୍ଡ)—ଭଣ୍ଡ; ପ୍ରତାରକ—Fraudulent.
Bhandala ଦେ.ବି—ପ୍ରତାରକ ବ୍ୟକ୍ତି—A knave; a cheat.

ଭଣ୍ଡହାସିନୀ—ସ. ବି. ( ଭଣ୍ଡ+ହାସ+ଇନ୍+ଈ )—ବେଶ୍ୟା—A
Bhandahāsini prostitute; a harlot; a courtesan.

ଭଣ୍ଡା—ଦେ ବି. (ସ. ଭଣ୍ଡ ଧାତୁ)—୧ । ଭଣ୍ଡିବା କାର୍ଯ୍ୟ, ଠକିବା
Bhandā କାର୍ଯ୍ୟ—1. Cheating. ୨ । (ସ. ଭାଣ୍ଡ; ପିଣ୍ଡ)
ଭଓାନ କଦଳୀ କାଣ୍ଡର ଅଗ୍ରରେ ଥିବା ଭଣ୍ଡାକାର ମୁକୁଳମଞ୍ଜରୀ;
**भण्डना** ଏଥିରୁ କ୍ରମଶଃ କଦଳୀ ଫେଣାମାନ ବାହାରୁଥାଏ—
ମୋଚା **केलाका फुल; कोसा** 2. The sheath containing layers of blossoms of the plantain which is at the top of the bunch. ୩ । ( ସ.
ପିଓଳୀ **पिण्डली, ऊबा** ପିଣ୍ଡିକା )—ଗୋଡ଼ର ପେଣ୍ଡା, ଅଣ୍ଠୁ ଓ ଗୋଇଠିମଧ୍ୟସ୍ଥ ଗୋଡ଼ର ପଛଅଡ଼ର ମାଂସଳ ଅଂଶ; ନଳୀ ଗୋଡ଼ର ପଛଅଡ଼ର ମାଂସଳ ଅଂଶ—3. The calf of the leg; the swell of the leg. [ଉ—"ଅଧିକ ପାଦର ଭଣ୍ଡା ଥର ଥର ଥରେ"—ଗ୍ରାମାନାଥ. ମହାଯାତ୍ରା] । ପ୍ରାଦେ (କଳାହାଣ୍ଡି-ବି · ହାଣ୍ଡି—Earthen cooking pot.

ଭଣ୍ଡା(ଣ୍ଡେ)ଇବା—ଦେ. କ୍ରି—(ସ. ଭଣ୍ଡ ଧାତୁ)—୧ । ଧପାଇବା;
Bhandā(nde)ibā ଠକିବା—1. To cheat; to deceive.
[ଭଣ୍ଡିବା—ଅନ୍ୟରୂପ] [ଉ—ଦେବେ ଛଳ କଥା କହ, ଲୋକଙ୍କୁ
ଭାଁଡ଼ାନ **ठगना** ଭଣ୍ଡାଏ । ଗୋପକୃଷ୍ଣ. ଧର୍ମସାଗର ।] ୨ । ଶିଶୁଙ୍କୁ ଏଣୁ ତେଣୁ କଥାଦ୍ୱାରା ଭୁଲାଇବା—2. To inveigle
**धप्पा देना** children. ୩ । ଛଳକୌଶଳପୂର୍ବକ କାଳକ୍ଷେପଣ କରିବା 3. To put off the doing of a thing from day to day on one pretext or other.

ଭଣ୍ଡା କାଢ଼ିବା—ଦେ. କ୍ରି—କଦଳୀ ଗଛ ପେଣ୍ଡା ପକାଇବାର ପ୍ରଥମରେ
Bhandā kardhibā ଭଣ୍ଡା ବାହାର କରିବା—(said of
**नोमा निकालना** the plantain tree) To send forth
(ଭଣ୍ଡା ବାହାର କରିବା—ଅନ୍ୟରୂପ) the sheath containing the layers of its blossoms.

ଭଣ୍ଡାଣ—ଦେ. ବି—(ସ. ଭଣ୍ଡନ)—ଭଣ୍ଡାଇବା; ଠକାଇବା; ଭୁଲାଇବା-
Bhandāna ଭାଓାନ୍ **ठगना** Deceit; inveigling.
[ଭଣ୍ଡାଣିଆ ଅଁ)—ବିଣ] ଯଥା—ପିଲା ଭଣ୍ଡାଣ—
To deceive children.

ଭଣ୍ଡାର—ଦେ. ବି—(ସ' ଭାଣ୍ଡାଗାର)—୧ । ଧନାଗାର—1. Trea-
Bhandāra ଭାଣ୍ଡାର **भण्डार्** sury. ୨ । ଧନସଞ୍ଚୟ ସ୍ଥାନ—2. A place where money is hoarded.
୩ । କୌଣସି ଦ୍ରବ୍ୟ ବହୁ ପରିମାଣରେ ସଞ୍ଚିତ ହେବାର

ଆଗାର; ସରଘର—3. A store house; a magazine. [ଉ—ହେ ନୃପ ସବୃତା ପଶି କବତା ଭଣ୍ଡାରେ—ରାଧାନାଥ ମହାଯାତ୍ରା] ୪ । ପୁଞ୍ଜି; ସଞ୍ଚିତ ଧନ—4. Fund.

ଭଣ୍ଡାର କୋଣ—ପ୍ରାଦେ. (ସମ୍ବଲପୁର) ବ—ବାୟୁ କୋଣ—North-Bhandāra koṇa west. [ଦ୍ର—ଏ ଦିଗରେ ମେଘ ଦେଖା ଯିବା ଦ୍ୱାରା ଶୀଘ୍ର ଓ କ୍ଷିପ୍ର ବର୍ଷା ହେବା ସୂଚିତ ହୁଏ।]

ଭଣ୍ଡାର ଘର—(ସଂ. ଭାଣ୍ଡାଗାର+ଗୃହ)—୧ । ଯେଉଁ ଘରେ ଧନ Bhandāra ghara ଗଚ୍ଛିତ ରହେ; ଯେଉଁ ଘରେ ନାନା ଦ୍ରବ୍ୟ ভাণ্ডার ঘর ସଞ୍ଚିତ ହୁଏ—1. Store house; a store. भंडारघर ୨ । ଯେଉଁ ଘରେ ପରିବାରର ଖାଦ୍ୟ ସାମଗ୍ରୀ ସଞ୍ଚିତ ଥାଏ, ସରଘର—2. A store-room for victual.

ଭଣ୍ଡାର ଘରି(ରୁ)ଆ—ଦେ. ବ. ପୁଂ—(ସଂ. ଭାଣ୍ଡାଗାରିକ)—ସରଘରର Bhandāra ghari(ru)ā ଭାରପ୍ରାପ୍ତ ଭୃତ୍ୟ—Stores ভাঁড়ারী भंडारी [ଭଣ୍ଡାରଘରିଆଣି(ଣୀ)—ସ୍ତ୍ରୀ] keeper; steward.

ଭଣ୍ଡାର ଘରିଏନ୍—ପ୍ରାଦେ. (ସମ୍ବଲପୁର) ବ. ସ୍ତ୍ରୀ—ଭଣ୍ଡାର ଘରିଆଣୀ—Bhandāra gharien भंडारीन A female steward.

ଭଣ୍ଡାରା—ପ୍ରାଦେ. (ସମ୍ବଲପୁର) ବ—ଭଣ୍ଡାର (ଦେଖ) Bhandārā Bhandara (See)

ଭଣ୍ଡା ରାଇ—ଦେ. ବ—କଦଳୀ ଭଣ୍ଡାରେ ଶସ୍ୟ ଓ ସୋରିଷ ଦେଇ ରାନ୍ଧି Bhandā rāi ଥିବା ତରକାରୀ—A curry made from মোচার ঘণ্ট plantain blossoms boiled with (ଭଣ୍ଡା ରାଇତା—ଅନ୍ୟରୂପ) rye-paste.

ଭଣ୍ଡାରୀ—ଦେ. ବ—(ସଂ. ଭଣ୍ଡାରୀ)—୧ । ଭଣ୍ଡାରରକ୍ଷକ ଭୃତ୍ୟ; ସର-Bhandāri ଘରିଆ—1. A store keeper; a steward. ভাণ্ডারী भंडारी ୨ । (ସଂ. ଭଣ୍ଡ=ଧୂର୍ତ୍ତ, ନାପିତମାନେ ଧୂର୍ତ୍ତ ଥିବା ନାପিত हजाम; नाई ପ୍ରସିଦ୍ଧ; କିମ୍ବା ସଂ. ଭଣ୍ଡ=ନାପିତର ଖୁର (ଭଣ୍ଡାରୁଣୀ—ସ୍ତ୍ରୀ) ଧାରି)—ନାପିତ; କ୍ଷୌରକାର; ବାରିକ—2. Barber. [ଦ୍ର—ଏମାନେ କଳାମୁଠିଆ ଓ ଉମ-ମୁଠିଆ ଏହି ଦୁଇ ଶ୍ରେଣୀରେ ବିଭକ୍ତ, ଉମମୁଠିଆମାନେ ଉଚ୍ଚତର ଓ କଳାମୁଠିଆ ବା ହାଣ୍ଡୁଆମାନେ ନିମ୍ନତର ଭଣ୍ଡାରମାନେ ଗ୍ରାମସେବକ ଅଟନ୍ତି ଏମାନେ କ୍ଷୌର କର୍ମ କରନ୍ତି, ଗ୍ରାମବାସୀଙ୍କ ବନ୍ଧୁଙ୍କ ଘରକୁ ବୋଝ ଓ ବେଗାର ନେଇ ଯାଆନ୍ତି, ଯାଆନ୍ତିଙ୍କ ସଙ୍ଗେ ବିଦେଶକୁ ଭୃତ୍ୟରୂପେ ଯାଆନ୍ତି । ଏମାନେ ଗ୍ରାମବାସୀଙ୍କ ସେବାର ପାରିଶ୍ରମିକ ସ୍ୱରୂପ ହେଡା ; ଜମି ବା ବରତନ ପାନ୍ତି । ସେବା ନିମନ୍ତେ ଭଣ୍ଡାରମାନେ ନିଜ ନିଜ ମଧ୍ୟରେ ଗ୍ରାମ ବାଣ୍ଟି ନେଇ ଥାନ୍ତି । ଏଥିପାଇଁ ଢଗ ଅଛି; "ଗାଁ କାହାର ? ନା ଧୋବା ଭଣ୍ଡାରୀ ବୋଲନ୍ତି ଆମର ଆମର" । ଉତ୍ସବାଦିରେ ଆଗତ ବନ୍ଧୁ-ମାନଙ୍କୁ ତର୍ଚ୍ଚା କରିବାର ଭାର ଭଣ୍ଡାରୀ ଉପରେ । ଭଣ୍ଡାରୁଣୀ ମଧ୍ୟ ଗ୍ରାମର ସ୍ତ୍ରୀମାନଙ୍କ ନଖ କାଟେ, ଗୋଡ଼ରେ ଅଳତା ଦିଏ ଓ ଉତ୍ସବାଦି ସମୟରେ ଗ୍ରାମରେ ହଳଦୀ, ତେଲ, ସିନ୍ଦୂର ଆଦି ବାଣ୍ଟେ । ଢଗରେ ଅଛି ଯେ ସମସ୍ତ ଗ୍ରାମବାସୀମାନେ ଦୋଷ କଲେ ଭଣ୍ଡାରୀ ଉପରେ ବାହାରର ଲୋକେ ଦୋଷ ଦେଇଥାଆନ୍ତି । ଢଗ ଅଛି "ଗାଁଅ ସାକ ଘଣ୍ଟ ଖାଇଲେ ଭଣ୍ଡାରି ମୁଣ୍ଡରେ ଅଠା" । ଗ୍ରାମରେ ଭଣ୍ଡାରୀ ବିଶେଷ ସମସ୍ତଙ୍କ ପାଖେ ଭିତ୍ୟ । ସେଥି ପାଇଁ ଢଗରେ କହନ୍ତି "ମାରୁ ମାରୁ ଭଣ୍ଡାରିଅଙ୍କୁ ମାରୁ" । "ଭଣ୍ଡାର ମାଇପ ସମସ୍ତଙ୍କ ଝାପଣି" ।

+ + +

ଭଣ୍ଡାରିଆ—ଦେ. ବ—୧ । ଭଣ୍ଡାରଭାରପ୍ରାପ୍ତ ଭୃତ୍ୟ—1. A store Bhandāriā keeper. ୨ । ଭଣ୍ଡାରି—2. A barber. ভাঁড়ারী भंडारी (ଯଥା—ମାରୁ ମାରୁ ଭଣ୍ଡାରିଅଙ୍କୁ ମାରୁ—ଢଗ ।) ୩ । ସାରସ ଜାତୀୟ କୃଷ୍ଣବର୍ଣ୍ଣର ପକ୍ଷୀ—3. A kind of black bird.

ଭଣ୍ଡାରି ଖୁର—ଦେ. ବ—ଚିଲିକାର ଏକ ପ୍ରକାର ମାଛ—Bhandāri khura A species of fish found in the lake of Chilkā.

ଭଣ୍ଡାରି ଖୁରୁ(ରି)ଆ—ପ୍ରାଦେ. (ବାଲେଶ୍ୱର) ବ—ଏକ ଜାତୀୟ ଶ୍ୱେତ-Bhandāri khuru(ri)ā ବର୍ଣ୍ଣ କ୍ଷୁଦ୍ର କ୍ଷୁରାକୃତି ମତ୍ସ୍ୟ—A species of white razor-shaped fish.

ଭଣ୍ଡାରି ଜାଗିରି—ଦେ. ବ—ଗ୍ରାମବାସୀଙ୍କ କ୍ଷୌରକାର୍ଯ୍ୟାଦି ପାଇଁ ଦରମା Bhandāri jāgiri ପରିବର୍ତ୍ତରେ ରାଜାଙ୍କ ଠାରୁ ବା ଗ୍ରାମର (ଭଣ୍ଡାରୀ ହେଡା—ଅନ୍ୟରୂପ) କୋଠ ସମ୍ପତ୍ତିରୁ ଭଣ୍ଡାରିକୁ ଦିଆଯିବା ଜମି—Land assigned to a barber-family in lieu of its services to the villagers.

ଭଣ୍ଡାରି ବରତନ—ଦେ. ବ—ଗ୍ରାମବାସୀ ପ୍ରତ୍ୟେକ ଗୃହସ୍ଥଙ୍କଠାରୁ Bhandāri baratana କ୍ଷୌରାଦି କାର୍ଯ୍ୟ ନିମନ୍ତେ ଭଣ୍ଡାରି (ଭଣ୍ଡାରି ବର୍ତ୍ତନ—ଅନ୍ୟରୂପ) ପାଇବା ବାର୍ଷିକ ନିର୍ଦ୍ଦିଷ୍ଟ ଧନ—नाईकीकमाई Fixed annual wages given to a barber by every householder in a village.

ଭଣ୍ଡାରି ବିଦାକି—ଦେ. ବ—ଉତ୍ସବାଦିରେ ବନ୍ଧୁ ଘରକୁ ବେଗାର Bhandāri bidāki ଆଣିଥିବା ଭଣ୍ଡାରିକୁ ଦିଆଯିବା ପୁରସ୍କାର-नाईकीविदायी A reward given to a barber who comes from the house of a relative with presents.

ଭଣ୍ଡାରି ଭରାଣ୍ଡିରେ ବିରାଡ଼ି ବିଗାଡ଼ିଲା—(ଶିଶୁରଞ୍ଜନ ପଦ)—ଶିଶୁମାନଙ୍କ Bhandāri bharāndire birārdi bigārdilā ଉଚ୍ଚାରଣ ଦୋଷ ପରୀକ୍ଷାପାଇଁ ବୋଲାଯିବା ହାସ୍ୟୋଦ୍ଦୀପକ ପଦ—A sentence dictated to test the correctness or otherwise of a child's Oriya pronunciation [ଦ୍ର—ଏହିପରି ଶିଶୁମାନଙ୍କ ପାଇଁ ସବୁ ଦେଶରେ ହାସ୍ୟୋଦ୍ଦୀପକ ପଦମାନ ଉର୍ଦ୍ଧବୟସ୍କ ବ୍ୟକ୍ତିମାନେ ଶିଶୁମାନଙ୍କୁ କହନ୍ତି ଓ ଶିଶୁମାନେ ତାହା ଠିକ୍‌ରୂପେ ଉଚ୍ଚାରଣ କରି ନ ପାରିଲେ ହସ ଲାଗେ । ଯଥା—ମିଥିଳା ଅଞ୍ଚଳରେ ବୋଲାଯାଏ । ୧ । ତାଙ୍କାଚରୁ ବାଦ୍ ଫୁଫୁଥିଏ (ବେଡା ଉଳେ ବାଘ ଫଁ ଫଁ ହେଉଛି) ୨ । କ୍ଷଳ ସଉଷଢ଼ ସେର ଛବେକ ସାଡେକ (ଖୁଲ୍ଲ ଷୋଉଷ ସେର ଛଅ ବ ସାତ) ।]

ଭଣ୍ଡାରୁଣୀ—ଦେ. ବ. ସ୍ତ୍ରୀ—ଭଣ୍ଡାରୀର ସ୍ତ୍ରୀଲିଙ୍ଗ—A barber-woman. Bhandāruṇi নাপিতানী नाइन, हजामीन

ଭଣ୍ଡି—ସଂ. ବି ( ଭଣ୍ଡ୍ ଧାତୁ+ଇ )—ଲାଟ; ତରଙ୍ଗ—Wave.
Bhaṇḍi ଦେ. ବି—୧ । ( ସଂ. ଖଣ୍ଡ=ଯାଡ଼, ଏହା ପଣ୍ଡାକାର ଥିବାରୁ )—ଭୁଣ୍ଡି; ପାଟଫୁଲର ଅଗରେ ଲାଗିଥିବା ଫୁଲ—1. Tassels attached to the end of hair-tapes. ୨ । ସ୍ତ୍ରୀମାନଙ୍କ ଜୁଡ଼ାବନ୍ଧାର ଉପକରଣବିଶେଷ; ଜୁଡ଼ାର ମୂଳୁଲା—2. A pillow-like case used in tying the hair into a chignon. [ ଉ—ରଙ୍ଗ ଭଣ୍ଡି ଭଉ ଧବଦ୍ୟ ଜୁଡ଼ାକୁ, ସଜାଡ଼ିଲେ ଯୁବା ଗ୍ଲାନଜୁଡ଼ାକୁ—ଭଞ୍ଜ. ଲାବଣ୍ୟବତୀ । ]
ଫୁଦ୍ନା ଗେହଲୀ
୩ । ଇଟାକାନ୍ଥରେ ମଝେ ମଝେ ରଖା ଯାଇଥିବା ଗାତ—3. Holes left in brick walls. ( ଯଥା—ଗୁଣ୍ଡ ବାଜିବା ସ୍ଥାନକୁ ଦେଇ, ଭଣ୍ଡିକାଙ୍ଗୁଲ ଅଛନ୍ତି ସାଜି, ତଣ୍ଡୀ-ପ୍ରସାଦ ଗୁଣ୍ଡକୁ ଖଣ୍ଡି, ଛନ୍ତି ବଣ୍ଟୁଟ ଯେ—ବ୍ରଜନାଥ. ସମର-ତରଙ୍ଗ । ) ୪ । ଶିକାରୀର ମଞ୍ଚାରେ ବା ବାଡ଼ରେ କରି ଯାଇଥିବା କଣା, ଯହିଁ ବାଟେ ସେ ଶିକାରୀ ବନ୍ଧୁକ ମାରେ ଓ ଶିକାରକୁ ଦେଖେ—4. Loopholes in the wall of a Machan. ୫ । କଦଳୀର ଭଣ୍ଡା—5. The sheath containing the layers of blossoms of plantain.
ଭୁଁଡ଼ା ୬ । ଅଣ୍ଡିରା ତାଳଗଛର ପୁଷ୍ପ ମଞ୍ଜରୀ—6. The piston-shaped flower-pod of a male palm tree. ୭ । ପଣସର ଭେଣ୍ଟକୁ ଲାଗିଥିବା ଲମ୍ବ ଅଂଶ, ଯେଉଁ ଦଣ୍ଡର ଚାରିଆଡ଼େ କୋଷା ସବୁ ଥାଏ—7. The stem inside the jackfruit to which are attached seed capsules.

ଭଣ୍ଡିକା—ସଂ. ବି—ମଞ୍ଜିଷ୍ଠା ଲତା; ମଞ୍ଜୁଅତି—The Indian
Bhaṇḍikā madder plant [creeper]; Rubia Cordifolia.
ଭଣ୍ଡୀ, ଭଣ୍ଡୀରକା, ଭଣ୍ଡିରୀ, ଭଣ୍ଡିର ଲତିକା } ଅନ୍ୟରୂପ

ଭଣ୍ଡି କାଙ୍ଗୁଲ—ପ୍ରାଦେ. (ଗଡ଼ଜାତ) ପ୍ରାଚୀନ. ବି—ବିପକ୍ଷର ତୋପଗୁଳା
Bhaṇḍi kāṅgulā ବାଜିଲେ ଗଡ଼ ପାଚେରୀର କିଛି ଅନିଷ୍ଟ କରି ନ ପାରିବ ଏହି ଉଦ୍ଦେଶ୍ୟରେ ପାଚେରୀରେ କରାଯାଇଥିବା ଝୁଠା ଛିଦ୍ର ବା ଶ୍ରେଣୀ ଗାତ—False holes made in the wall of a fort so that the adversary's bullets will not damage the wall. (ଉ—ଗୁଣ୍ଡ ବାଜିବା ସ୍ଥାନକୁ ଦେଇ, ଭଣ୍ଡି କାଙ୍ଗୁଲ ଅଛନ୍ତି ସାଜି । ବ୍ରଜନାଥ. ସମରତରଙ୍ଗ । )

ଭଣ୍ଡିବା—ଦେ. କ୍ରି—ଭଣ୍ଡାଇବା (ଦେଖ)—Bhaṇḍāibā [See].
Bhaṇḍibā ( ଉ—କେଲା ଖାଏ ଭଣ୍ଡି, ରଜା ଖାଏ ଦଣ୍ଡି । ଡାକ । )

ଭଣ୍ଡି(ଣ୍ଡୀ)ର(ଲ)—ସଂ. ବି—୧ । ଶିରୀଷ ବୃକ୍ଷ—1. The sirisha
Bhaṇḍi[ṇḍī]ra[la] tree. ୨ । ଦୂତ ( ହି. ଶ )—2. Messenger. ୩ । ଶିଳ୍ପୀ ( ହି. ଶ )—3. Artisan.

ଭଣ୍ଡୂକ—ସଂ. ବି—୧ । ଏକପ୍ରକାର ମାଛ; ଖଲିଙ୍ଗା ମାଛ—1. A
Bhaṇḍūka kind of small fresh water fish.
କାତଲା ୨ । ଶ୍ୟୋନାକ; ଫଣଫଣା (ହି. ଶ)—2. Bignonia
ମାକୁଡ଼ Indica.

ଭତରା(ଡ଼ା)—ଦେ. ବି—୧ । ବସ୍ତର ଅଞ୍ଚଳର ଏକ କୃଷକ ଜାତି,
Bhatarā[ṛā] ( ଦ୍ର—ଏମାନଙ୍କ ବ୍ୟବହୃତ ଭାଷା ଭତରୀ)—1. A class of farmers in Bastar. ୨ । ଭଟ୍ଟଡ଼ା (ଦେଖ)—2. Bhattarḍā [See].

ଭତରି(ଡ଼ି)—ପ୍ରାଦେ. (ବସ୍ତର) ବି—ଓଡ଼ିଆ ଭାଷାର ଗୋଟିଏ
Bhatari(ṛi) ପ୍ରାଦେଶିକ ରୂପ—The Bhatri dialect;
(ଭତ୍ରି, ଭତ୍ରି—ଅନ୍ୟରୂପ) A dialect of the Oriya language spoken by 20000 people inhabiting the North Eastern corner of Bastar State in C. P. [ଦ୍ର—ଏହା ମଧ୍ୟପ୍ରଦେଶର ଓଡ଼ିଆ ରାଜ୍ୟ ବସ୍ତରର ଉତ୍ତର-ପୂର୍ବ କୋଣ (ପ୍ରାଚୀନ ଦକ୍ଷିଣ କୋଶଳ) ଅଞ୍ଚଳର ପ୍ରାୟ ୨୦ ହଜାର ଲୋକଙ୍କର କଥିତ ଭାଷା । ଆଶ୍ଚର୍ଯ୍ୟର କଥା, ଏହା ଓଡ଼ିଆ ଅକ୍ଷରରେ ଲେଖା ନ ଯାଇ ଦେବନାଗରୀ ଅକ୍ଷରରେ ଲେଖାଯାଏ । ଏ ଭାଷା ମରହଟ୍ଟୀ ଭାଷାଦ୍ୱାରା ପ୍ରଭାବିତ ହୋଇଅଛି ।]

[ଦ୍ର—ଭତରି ଭାଷାର ନମୁନା (ଗ୍ରୀୟର୍ସନ୍ ସାହେବଙ୍କ ଗ୍ରନ୍ଥରୁ ଗୃହୀତ)—କୋନୋ ମନୁଷର ଦୁଇଗୋଟା ବେଟା ରଲା । ହୁଁଚୁ ଭିତର ସାନ ପିଲା ବୁବା-କେ କଲ୍ଲା, ସେ ବୁବା ! ଧନ ଭିତର ଜେ ମୋର ଭାଗ ହଲେ ତା-କେ ମୋ-କେ ଦେସ୍ । ତେବେ ହୁଁଚୁ ହୁଁଚୁ-ମନ-କେ ଧନ ବାଁଟ ଦେଲା । ଖୁବ୍ ଦିନ ନା ହୋଇ ରଲା, ସାନ ବେଟା ସବ-କେ ଗୋଟେକ ଥାନେ ବନାଇ କରି ଦୂର ଦେଶ ଉଠେ ଗଲା । ଜେବେ ହୁଁଚୁ ସବ୍-କେ ସାରଲା । ତେବେ ହୁଁଚୁ ରାଜ-ନେଁ ବଡ଼ୁତ ଭୁଖ ପଡ଼ଲା ଆଉ ହୁଁଚୁ ଗରବ ହୋଏଲା । ଆଉ ହୁଁଚୁ ପୁରଥୀ କାହାର ଘରେ ଜାଇ କରି ଗୋଟକର ଘରେ ଥେବଲା । ହୁଁଚୁ ମନୁଷ ଅପନାର ବେଡ଼ା-ନେ ବର୍ହା ଚରାବୁକେ ପଠାଏଲା । ଆଉ ହୁଁଚୁ ଜେ ଗୋଠାକେ ବର୍ହା ଖାଯ୍ ଚୋରଲା ତାକେ ଖାଇକରି ପେଟ ଭରବା ତାଲେ ଖୋଜତେ ରଲା ଆଉ ତାକେ କୋଇ ନା ଦେତେ ରଲା । ତେବେ ତାକେ ଚେତ ପଡ଼ଲା ଆଉ ହୁଁଚୁ କଲଲା ମୋର ବୁବାଘର କତେକ ଭୁତୋ ଲୋଗର ଖାଇବାର ଠାନେ ବାଢ଼ସୀ ଅଛେ, ଆଉ ମେଁ ଭୁଖେ ମରଖା ଅଛେ । ମେଁ ଉଠିକରି ମୋର ବୁବା ଲଗେ ଜାଖା ଆଉ ତାକେ କଲଖା ସେ ବୁବା ! ଭଗବାନର ହୁକୁମ ନା ମାନଲୁଁ ଆଉ ତମର ପୁରେ ପାପ କରଲା । ଫେର ତମର ବେଟା କଲବାର ଜୋଗ ନା ଅଛୁଁ । ମୋକେ-

ଅପନାର ଭୂଖଅର ଅପନାର ବାପ ଲଗେ ଗଲା । ତେବେ ହୁଁସ୍ତ ଖୁବେ ଦୁର ରଲା; ତେବେ ତାର ବାପ ତା-କେ ଦେଖ କରି ମୟା କରଲା ଆଉର ପରାଇ କରି ଟୋଡ଼ା ପୋଟାଇ କରି ଚୁମଲା । ବେଟା ତାକେ ବଲଲା, ବୁବା ! ମୁଏଁ ଭଗବାନର ହୁକୁମ ନା ମାନଲା ଆଉର ତୁହ୍ମର ପୁରେ ପାପ କରଲା । ଆଉର ମେଁ ତୁହ୍ମର ବେଟା ବୋଲାଏବାର ଯୋଗ ନା ହେଲା । ବୁବା ଅପନାର କବାଡ଼କେ ବଲଲା ସବ-ଲେ ନଗଦ ଫଟଇ ହୁଟାଇ କରି । ତାକେ ପିଂଧାହା ଆଉର ଆଉର ତାର ହାତେ ମୁଦୀ ଆଉର ଗୋଡ଼େ ପଣଇ ପିନ୍ଧାହା । ]

ଓଡ଼ିଆ ଅନୁବାଦ—କୌଣସି ମନୁଷ୍ୟର ଦୁଇଟି ପୁଅ ଥିଲେ; ତହିଁ ଉତାରୁ ସାନ ପିଲା କହିଲା; ହେ ବାପା ! ଧନରେ ଯାହା ମୋର ଭାଗ ହେଉଛି ତାହା ମୋତେ ଦେ । ତେବେ ସେ ସେମାନଙ୍କୁ ଧନ ବାଣ୍ଟି ଦେଲା । ବେଶି ଦିନ ହୋଇ ନାହିଁ, ସାନ ପୁଅ ସବୁ ଧନକୁ ଗୋଟିଏ ସ୍ଥାନରେ ଜମାଇ ଦୂର ଦେଶକୁ ଗଲା । ଯେତେବେଳେ ସେଠାରେ ସବୁ ଧନ ସାରିଲା, ତେବେ ସେ ରାଜ୍ୟରେ ବଡ଼ ଭୋକରେ ରହିଲା ଓ ସେ ଗରିବ ହୋଇଗଲା ଓ ସେ ଦେଶରେ ଜଣକ ଘରେ ଯାଇ ରହିଲା । ସେ ମନୁଷ୍ୟ ତାକୁ ଆପଣା ପଡ଼ିଆରେ ଘୁଷୁରି ଚରାଇବାକୁ ପଠାଇଲା ଏବଂ ଯେଉଁ ଶସ୍ୟକୁ ଘୁଷୁରି ଖାଆନ୍ତି ଏ ତାକୁ ଖାଇ ପେଟ ପୂରାଇ କାମ ଖୋଜିବାକୁ ଲାଗିଲା ଓ କେହି ତାକୁ କିଛି କାମ ଦେଲେ ନାହିଁ । ତେବେ ତାକୁ ବ୍ୟସ୍ତ (ଚିନ୍ତା) ହେଲା, ସେ କହିଲା, ମୋ ବାପ ଘରେ କେତେ ମୂଲିଆ ଖାଇ ବଞ୍ଚୁଛନ୍ତି ଓ ମୁଁ ଭୋକରେ ମରୁଅଛି । ମୁଁ ଉଠିକରି ମୋ ବାପ ପାଖକୁ ଯିବି ଓ ତାଙ୍କୁ କହିବି, ହେ ବାପ ! ମୁଁ ଭଗବାନଙ୍କ ହୁକୁମ ନ ମାନିଲି ଓ ତୋଠାରେ ପାପ କଲି । ପୁଣି ତୁମ୍ଭର ପୁଅ ବୋଲାଯିବା ଯୋଗ୍ୟତା ମୋର ନ ହେଲା । ତାକୁ ଆପଣାର ମୂଲିଆ ତା ବାପ ପାଖକୁ ନେଲା । ତେବେ ସେ ଖୁବ୍ ଦୂରରେ ରହିଲା । ତେବେ ତା ବାପ ତାକୁ ଦେଖି କରି ମାୟା କଲା ଓ ତାକୁ ଡାକି ଉଠାଇ ପୋଟାଳି କରି ଚୁମ୍ବନ କଲା । ପୁଅ ତାକୁ କହିଲା, ବାପା ! ମୁଁ ଭଗବାନଙ୍କ ହୁକୁମ ନ ମାନିଲି ଓ ତୁମ୍ଭଠାରେ ପାପ କଲି ଓ ମୁଁ ତୁମ୍ଭର ପୁଅ ବୋଲାଇବାକୁ ଯୋଗ୍ୟ ନ ହେଲି । ବାପ ଆପଣା ଚାକରକୁ କହିଲା, ସର୍ବାପେକ୍ଷା ଭଲ ଲୁଗା ଆଣି କରି ତାକୁ ପିନ୍ଧାଅ ଓ ତା ହାତରେ ମୁଦି ଓ ଗୋଡ଼ରେ ପାଣ୍ଡୋଇ (ଜୋତା) ପିନ୍ଧାଅ । ]

**ଭତ୍ତଡ଼ା(ରା)**— ଦେ. ବି—ଏକ ଶ୍ରେଣୀର ଓଡ଼ିଆ କୃଷକ—A class of
Bhattarḍā(rā) Oriya peasants inhabiting the neighbouring tracts of Jeypore in Vizag and Bastar in C. P [ their language Bhatri is a dialect of the Oriya language]. [ଦ୍ର—ଏମାନେ ଜୟପୁର ଓ ବସ୍ତରର ସୀମା ସ୍ଥଳସ୍ଥ ମଲକାନଗିରି ଓ ନବରଙ୍ଗପୁର କୋଟପାଡ ଓ ଉମାର ପ୍ରଭୃତି ଅଞ୍ଚଳରେ ଦେଖାଯାନ୍ତି । ବସ୍ତର ଅଞ୍ଚଳରେ ଏମାନଙ୍କ ଭତ୍ତର କହନ୍ତି । ଏମାନଙ୍କର ଭାଷା ଭତ୍ତରୀ ବା ଭତଡ଼ୀ ।]

**ଭତା(ତ୍ତା)**—ଦେ. ବି. (ସଂ. ଭୃତ୍ତ)—୧ । ବଟ୍ଟା; କମିସନ; ଦାଲାଲି—
Bhatā(ttā) 1. Commission; brokerage. ୨। ଭୃତ୍ୟକୁ
ভতা ଦିଆଯିବା ବେତନର ଅତିରିକ୍ତ ଧନ; ବକ୍ସିସ୍—
भत्ता 2. Extra remuneration of a servant; tip. ୩ । ଆବଶ୍ୟକୀୟ ଖର୍ଚ୍ଚ ସକାଶେ କୌଣସି ବ୍ୟକ୍ତିକୁ ଦିଆ ଯାଉଥିବା ମାସିକ ଅର୍ଥ ସାହାଯ୍ୟ—3. Perquisite; monthly allowance.

**ଭଦଭଦଳି**—ଦେ. ବି ( ସଂ. ଭରଦ୍ୱାଜ ବା ଭଦ୍ର )—୧ । ଶାଖାଶ୍ରୟୀ
Bhadabhadaḷi ବର୍ଗର ୧୨ଅଙ୍ଗୁଳ ଲମ୍ବ ପକ୍ଷୀ [ମୁଣ୍ଡ ପାଉଁଶିଆ, ଟେଣା ଖଇରା, ପକ୍ଷ ନାନାବର୍ଣ୍ଣରଞ୍ଜିତ]
ଭଦଭଦଳିଆ, ଭଦଳିଆ, ଭଦାଳିଆ } ଅନ୍ୟରୂପ ଭରଦ୍ୱାଜ ପକ୍ଷୀ—1. The blue Jay Coracias Indica; The Indian
ভেদ ভেদে; ভারই Roller; Eurystomus Orientalis
भरत पक्षी Trogons. [ ଦ୍ର—ଏହି ପକ୍ଷୀର ପର ନାନାବର୍ଣ୍ଣ ରଞ୍ଜିତ ଥିବାରୁ ଗୋରୁଜଗା ଟୋକାମାନେ ବାଟରୁ ସେ ପକ୍ଷକୁ ଗୋଟାଇ ନେଇ ଛତାରେ ଖୋସନ୍ତି ।] ୨ । ଏକପ୍ରକାର ସାନ ଗଛ—[ ଦ୍ର—ଏହା ଦେଢ଼ ପୁରୁଷ ପର୍ଯ୍ୟନ୍ତ ବଢ଼େ । ଫଳ ଅଙ୍ଗୁଠି ଟିପ ପରି ଶିବଲିଙ୍ଗ ଆକୃତି ବିଶିଷ୍ଟ ଓ ତହିଁରା ଅଗରେ ଖୋସା ନ ଥାଇ ଅଧ ପର୍ଯ୍ୟନ୍ତ ଫଳର ମୂଳରୁ ଖୋସ ବକଳକୁ ଘୋଡ଼ାଇ ଥାଏ । ଏହାର କୋମଳ ପତ୍ର ଶାଗ ହୁଏ । ]—A kind of plant.

**ଭଦର**—ଗ୍ରା. ବିଣ ( ସଂ. ଭଦ୍ର )—ଭଦ୍ର ( ଦେଖ )—Bhadra
Bhadara ( See ). ବି —୧ । ମେଲାଘର—1. A hall.
भदर भद्र ক্ষৌরী ୨ । କ୍ଷୌର କର୍ମ; ମୁଣ୍ଡନ---2. Act of shaving.

**ଭଦର କରିବା** —ଗ୍ରା. କ୍ରି — କ୍ଷୌର କରିବା—To shave.
Bhadara karibā भद्र करना ক্ষৌরী করা

**ଭଦର ଲୋକ**—ଗ୍ରା. ବି—ଭଦ୍ର ଲୋକ ( ଦେଖ )—
Bhadar loka भला मानुस Bhadra loka ( See )

**ଭଦର ହେବା**—ଦେ. କ୍ରି—କ୍ଷୌର ହେବା—To be shaved.
Bhadara hebā भद्र होना ক্ষৌরী হওয়া

**ଭଦ୍ର**—ସଂ. ବି ( ଭଦ୍ ଧାତୁ═ପ୍ରୀତ ହେବା + କରଣ. ର )—୧ । କ୍ଷେମ;
Bhadra ସୌଭାଗ୍ୟ—1. Prosperity; good fortune. ୨ । କୁଶଳ; କଲ୍ୟାଣ; ମଙ୍ଗଳ; ଶୁଭ—2. Welfare; wellbeing; happiness; bliss. ୩ । ଉତ୍ତମତା—3. Goodness. ୪ । ( + କର୍ତ୍ତୃ. ର )—ମହାଦେବ; ଶିବ—4. Śiba. ୫ । ବଳରାମ; ବଳଭଦ୍ର—5. Śhrīkṛushṇa's elder step brother Baḷarāma. ୬ । ରାମଚନ୍ଦ୍ରଙ୍କର ଦୂତ ବିଶେଷ—[ ଦ୍ର—ଏହାଙ୍କଠାରୁ ସୀତାଙ୍କ ଅପବାଦ ଶୁଣି ରାମଚନ୍ଦ୍ର ସୀତାଙ୍କୁ ବନକୁ ନିର୍ବାସନ କରିଥିଲେ—ଉ. କା ]—6. Name

of an attendant or informer of Rāma. ୭ । ଉତ୍ତର ଦିଗର ଦିଗ୍‌ଗଜ (ହି.ଶ) —7. Name of a mythological elephant guarding the north. ୮ । ଖଞ୍ଜନ୍ଖଟ; ଖଞ୍ଜନପକ୍ଷୀ; କଜଳପାଣି ଚଢ଼େଇ—8. The wagtail. ୯ । ଶ୍ରୀକୃଷ୍ଣଙ୍କ ଲୀଳା-କାନନ; ବୃନ୍ଦାବନସ୍ଥ ଭଦ୍ରବନ—9. Name of a forest in Bṛundābana. ୧୦ । ବଳଦ—10. Bullock; ox. ୧୧ । ଷଣ୍ଢ; ବୃଷଭ—11. Bull. ୧୨ । ସାଧୁ; ଭଦ୍ର ସନ୍ତାନ—12. Son of a respectable family; a gentleman. ୧୩ । ବଂଶୋ-ପାଧି ବିଶେଷ—13. A family title. ୧୪ । ସୁବର୍ଣ୍ଣ—14. Gold. ୧୫ । ଲୌହ—15. Iron. ୧୬ । ନୀଳପଦ୍ମ—16. Blue lily. ୧୭ । ଚନ୍ଦନ—17. Sandal. ୧୮ । କଦମ୍ବ—18. Nuclea Cadamba (tree). ୧୯ । ସ୍ନୁହୀ ଗଛ; ସିଜୁ ଗଛ—19. Euphorbia (tree). ୨୦ । ମୁସ୍ତକ; ମୁଥା—20. Root of Duba grass. ୨୧ । ନାଗର ମୁଥା—21. A big species of bulbous grass root. ୨୨ । ଇନ୍ଦ୍ରଯବ—22. Echites. ୨୩ । ଦେବଦାରୁ—23. Cedar. ୨୪ । ବିଷ୍ଣୁଙ୍କର ଦକ୍ଷିଣ ପାର୍ଶ୍ୱସ୍ଥ ଦ୍ୱାରପାଳ (ହି. ଶ) —24. Name of the rightside gateman of Bishṇu. ୨୫ । ସ୍ୱର ସାଧନର ପ୍ରଣାଳୀ ବିଶେଷ—25. A kind of practising of music. [ଦ୍ର—ଏଥିରେ ସାରେସା, ରେଗାରେ, ଗାମାଗା, ମାପାମା, ପାଧାପା, ଧାନିଧା, ନିସାନି, ସାରେସା, ସାନିସା, ନିଧାନି, ଧାପାଧା, ପାମାପା, ମାଗାମା, ଗାରେଗା, ରେସାରେ, ସାନିସା—ହି. ଶ) । ] ୨୬ । ବଳରାମଙ୍କର ଏକ ସହୋଦର (ହି. ଶ)—26. One of the uterine brothers of Baḷarāma. ବିଣ—୧ । ଉତ୍ତମ—1. Good. ୨ । ଶ୍ରେଷ୍ଠ—2. Excellent. ୩ । ସାଧୁ—3. Honest; virtuous. ୪ । କୁଶଳୀ; ଭାଗ୍ୟବାନ୍—4. Fortunate; prosperous; lucky. ୫ । ମଙ୍ଗଳ ସୂଚକ—5. Auspicious; propitious. ୬ । ହିତ-କର—6. Beneficial. ୭ । ସଦ୍‌ବଂଶ ଜାତ—(ସ୍ତ୍ରୀ—ଭଦ୍ରା) 7. Born of a respectable family. ୮ । ସୁନ୍ଦର—8. Beautiful. ୯ । ନମ୍ର; ଶାନ୍ତ—9. Gentle. [ଦ୍ର—ବୈଦିକ ନିରୁକ୍ତ ଶାସ୍ତ୍ରରେ ଭଦ୍ରର ଅର୍ଥ ଗୃହ, ପ୍ରଜା, ପଶୁ, ବିତ୍ତ ପ୍ରଭୃତି ମନୁଷ୍ୟର ଯାହା ଆବଶ୍ୟକ, ଓଡ଼ିଆ ଚଳନ୍ତି କଥାରେ ଧନ ଜନ ଗୋପଲକ୍ଷ୍ମୀ । ଆଧୁନିକ ବ୍ୟବହାରରେ ସଦ୍‌ବଂଶଜାତ ବ୍ୟକ୍ତି ଓ ଶିଷ୍ଟ ଅର୍ଥରେ ଏହା ବ୍ୟବହୃତ ହୁଏ । ] ଦେ. ବି—( ସଂ. ଭଦ୍ରାକରଣ )—ଶିରୋମୁଣ୍ଡନ—Shaving of the head.

**ଭଦ୍ର**—ସଂ. ଅ (ସମ୍ବୋଧନରେ ବ୍ୟବହୃତ)—୧ । ହେ ସାଧୁବ୍ୟକ୍ତି ! ହେ
Bhadra ମହାଶୟ !—1. (Interjection) O good sir ! O kind sir !

**ଭଦ୍ର ଉତ୍ସବ**—ଦେ. ବି—( ସଂ. ଭଦ୍ର+ଉତ୍ସବ )—୧ । ମଙ୍ଗଳ
Bhadra utsaba ଉତ୍ସବ—1. A social or family ceremony. ୨ । ଭଦଭଦଳିଆ ପକ୍ଷୀ—2. The blue Jay. (ଉ—ବାରେ ବାରେ ଦେଖି ଭଦ୍ର ଉତ୍ସବକୁ—ଭଞ୍ଜ. ବୈଦେହୀଶବିଳାସ । )

**ଭଦ୍ରକ**—ସଂ. ବି (ଭଦ୍ର+କ)—୧ । ନାଗର ମୁଥା—1. A kind of
Bhadraka grass root. ୨ । ଦେବଦାରୁ ଗଛ—2. The cedar tree. ୩ । ୨୨ ଅକ୍ଷରଯୁକ୍ତ ଚରଣବିଶିଷ୍ଟ ଛନ୍ଦୋ-ବିଶେଷ—3. Name of a metre containing 22 letters in a foot. ୪ । ମୁଗ; ଚଣା ଆଦି ଶସ୍ୟ (ହି. ଶ)—4. Cereals. ବିଣ—ମନୋଜ୍ଞ; ସୁନ୍ଦର—Beautiful.

**ଭଦ୍ରକ(ଖ)**—ଦେ. ବି—ବାଲେଶ୍ୱର ଜିଲ୍ଲାର ଗୋଟିଏ ମହକୁମା ଓ
Bhadraka(kha) ନଗର—Name of a Sub-division and town in the district of Balasore in Orissa; Bhadrak.

**ଭଦ୍ରକାର**—ସଂ. ବିଣ—( ଭଦ୍ର+କୃ. ଧାତୁ+ଅ )—ମଙ୍ଗଳକର
Bhadrakāra ( ହି. ଶ )—Beneficient. ସଂ. ବି—ମହାଭାରତୋକ୍ତ ପ୍ରାଚୀନ ଦେଶବିଶେଷ ( ହି. ଶ )—Name of an ancient country.

**ଭଦ୍ରକାଳୀ**—ସଂ. ବି. ସ୍ତ୍ରୀ—୧ । ଦୁର୍ଗାଙ୍କ ମୂର୍ତ୍ତି ବିଶେଷ—1. An
(ଭଦ୍ରକାଳିକା—ଅନ୍ୟରୂପ) incarnation of Durga. [ଦ୍ର—ଏ ଦେବୀ କ୍ରୋଧରୁ ଉଦ୍ଭୂତ ହୋଇ ବୀରଭଦ୍ର ସହିତ ଦକ୍ଷଯଜ୍ଞ ନାଶ କରିଥିଲେ । ଏହାଙ୍କର ୧୬ ଟି ହାତ ଥିବାର କଳ୍ପିତ ଓ ଏ କାର୍ତ୍ତିକେୟଙ୍କର ଏକମାତୃକା (ହି. ଶ) । ] ୨ । ଗନ୍ଧପ୍ରସାରଣୀ; ପସାରୁଣୀ ଲତା (ଦେଖ) (ହି. ଶ)—2. Pasāruṇī (See). ୩ । ନାଗର ମୁଥା (ହି. ଶ)—3. A kind of grass root.

**ଭଦ୍ରକୁମ୍ଭ**—ସଂ. ବି—ମଙ୍ଗଳାର୍ଥ ସ୍ଥାପିତ ପୂର୍ଣ୍ଣ କୁମ୍ଭ—A pot full of
Bhadra kumbha water placed as an auspicious sign on ceremonial occasions.

**ଭଦ୍ରଖି(କି)ଆ**—ଦେ. ବି ଓ ବିଣ—ଭଦ୍ରକ ଅଧିବାସୀ—
Bhadrakhi(ki)ā Resident of Bhadrak.
(ଭଦ୍ରଖିଆଣୀ—ସ୍ତ୍ରୀ)

**ଭଦ୍ର ଘଟ**—ସଂ. ବି. (ପ୍ରାଚୀନ ଶିଳ୍ପ)—ଗୋଟିଏ କୁମ୍ଭ, ଯାହାର ମୁହଁର ଦୁଇ
Bhadra ghaṭa ପାଖରୁ ଫୁଲମାଳା ବାହାରି ଓହୋଳି ପଡ଼ିଥିବାର ଚିତ୍ର ହୋଇଥାଏ—(ancient sculpture) A pitcher from both sides of the mouth of which wreaths of flowers are shown to be flowing out. [ଦ୍ର—ଉତ୍କଳର ପ୍ରାଚୀନ ମନ୍ଦିର ଆଦିରେ ବିଶେଷତଃ ଭୁବନେଶ୍ୱରର ବୋଇତାଳ, ପରଶୁରାମେଶ୍ୱର

ଅବ ଖ୍ରୀ: ୬ଷ୍ଠ ଓ ୭ମ ଶତାବ୍ଦୀରେ ନିର୍ମିତ ମନ୍ଦିର-ମାନଙ୍କରେ ଭଦ୍ରପୀଠର ରୂପ ଖୋଦିତ ହୋଇଅଛି । ଏହା କୌଣ ଶିଳ୍ପ ଅନୁସାରେ ଗୃହଦେବଙ୍କ ଜନ୍ମସ୍ଥଳ ।]

**ଭଦ୍ର ଜନ**—ସ. ବି. ( କର୍ମଧା; ଅଧୁନିକ )—୧ । ସୁଜନ; ସାଧୁ ବ୍ୟକ୍ତି; Bhadra jana ଭଲ ଲୋକ—1. A good man. ୨ । ଉତ୍ତ ଭଦ୍ର ବ୍ୟକ୍ତି, ଭଦ୍ର ଲୋକ } ଅନ୍ୟରୂପ ଭଲଲୋକର ବ୍ୟକ୍ତି—2. Born of a respectable or genteel family; gentleman.

**ଭଦ୍ରଜନୋଚିତ**—ସ. ବିଣ. (୬ଷ୍ଠୀ ତତ୍; ଭଦ୍ରଜନ+ଉଚିତ; ଅଧୁନିକ)- Bhadrajanochita ଭଦ୍ର ବ୍ୟକ୍ତିର କର୍ତ୍ତବ୍ୟ—Observable by a gentleman; befitting a gentleman; gentlemanly. (ଭଦ୍ରଜନସୁଲଭ—ଅନ୍ୟରୂପ)

**ଭଦ୍ର ତରୁଣୀ**—ସ. ବି—ଏକ ପ୍ରକାର ଗୋଲାପ (ହି. ଶ)— Bhadra taruṇī A kind of rose. [ ଦ୍ର—ପାଟଳ, କୁବ୍ଜିକା, ଭଦ୍ରତରୁଣୀ ଅବ କେତେ ଜାତିର ଗୋଲାପ ଅଛି—ହି. ଶ]

**ଭଦ୍ରତା**—ସ. ବି. ( ଭଦ୍ର+ଭାବାର୍ଥେ ତା; ଅଧୁନିକ )—୧ । ଉତ୍ତମତା; Bhadratā ସାଧୁତା—1. Goodness. ୨ । ଶିଷ୍ଟତା; ସୌଜନ୍ୟ—2. Politeness; gentlemanliness. ୩ । ସୁଜନୋଚିତ ବ୍ୟବହାର; ଶିଷ୍ଟାଚାର—3. Polite conduct. ୪ । କଲ୍ୟାଣ—4. Welfare. ୫ । ଆଦବ୍ କାଇଦା; ଭଦ୍ର ସମାଜର ବ୍ୟବହାର—5. Etiquette; rules of genteel society; good manners; good breeding.

**ଭଦ୍ରତା ଅନୁରୋଧରେ**—ଦେ. କ୍ରି. ବିଣ—ସୌଜନ୍ୟରକ୍ଷାପୂର୍ବକ— Bhadratā anurodhare For the sake of politeness; in compliance with the rules of genteel society. ଭଦ୍ରତାର ଖାତିରରେ, ଭଦ୍ରତା ଲାଗି } ଅନ୍ୟରୂପ
ভদ্রতার অনুরোধে, ভদ্রতার খাতিরে
भद्रताका खातिरोसे

**ଭଦ୍ରତା କରିବା**—ଦେ. କ୍ରି—ସୁଜନୋଚିତ ବ୍ୟବହାର କରିବା; ଶିଷ୍ଟ Bhadratā karibā ବ୍ୟବହାର କରିବା—To display politeness; to act as a gentleman; to behave politely.
ভদ্রতা করা
भलमनसी दिखलाना
[ଭଦ୍ରତା ଦେଖା(ଖେ)ଇବା—ଅନ୍ୟରୂପ]

**ଭଦ୍ରତାଚରଣ**—ସ. ବି. (୬ଷ୍ଠୀ ତତ୍; ଭଦ୍ରତା+ଆଚରଣ; ଅଧୁନିକ)— Bhadratācharaṇa ସାଧୁତା ପ୍ରଦର୍ଶନ—Polite or gentlemanly behaviour. ( ଭଦ୍ର ବ୍ୟବହାର—ଅନ୍ୟରୂପ )

**ଭଦ୍ରତାନୁମୋଦିତ**—ସ. ବିଣ. ( ୩ୟା ତତ୍; ଅଧୁନିକ )—ସାଧୁତା-Bhadratānumodita ନୁମୋଦିତ; ଭଦ୍ର ବା ସଭ୍ୟ ସମାଜ ଦ୍ୱାରା ଆଦୃତ (ବ୍ୟବହାର)—(conduct) Approved by genteel society or by etiquette. (ଭଦ୍ରତାନୁମତ, ଭଦ୍ରତା ସମ୍ମତ—ଅନ୍ୟରୂପ)

**ଭଦ୍ରତା ବିରୁଦ୍ଧ**—ସ. ବିଣ. (୬ଷ୍ଠୀ ତତ୍; ଅଧୁନିକ)—ସୌଜନ୍ୟବିରୁଦ୍ଧ; Bhadratā biruddha ଶିଷ୍ଟାଚାରବହିର୍ଭୂତ—Against the dictates of politeness. (ଭଦ୍ରତାବହିର୍ଭୂତ—ଅନ୍ୟରୂପ)

**ଭଦ୍ରତାମୂଳକ**—ସ. ବିଣ. ( ଅଧୁନିକ )—ଭଦ୍ରପ୍ରକୃତିଜାତ— Bhadratāmūlaka Born of or dictated by one's good nature or gentility.

**ଭଦ୍ରତା ରକ୍ଷା କରିବା**—ଦେ. କ୍ରି—ଭଦ୍ର ସମାଜର ବିଧି ପାଳନ Bhadratā rakshā karibā କରିବା—To follow the rules of politeness or etiquette.
ভদ্রতা রক্ষা করা

**ଭଦ୍ରତିକ୍ତା**—ସ. ବି ( ବୈଦ୍ୟକ )—ମହାତିକ୍ତା; ଚଇରେତା ଜାତୀୟ Bhadratiktā ଏକପ୍ରକାର ତିକ୍ତ ଔଷଧ ଗୁଳ୍ମ; ଯବତିକ୍ତା— A medicinal plant of pungent taste; Andrographis Paniculata. ଅନ୍ୟ ସ. ନାମ—ଯବତିକ୍ତା, ମହାତିକ୍ତା, ଶ୍ୱେତଚୂଡ଼ା, ଶଙ୍ଖିନୀ, ସୁପୁଷ୍ପା, ତିକ୍ତଫଳା, ଯାସା, ତିକ୍ତା, ଯଶସ୍ୱିନୀ କାଳମେଘ [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ତିକ୍ତାମ୍ଳରସ, ଅଗ୍ନିଦୀପକ, ରୁଚିକର ଓ ରେଚକ; ଏହା ବିଷଦୋଷ, ରକ୍ତଦୁଷ୍ଟି, କ୍ରିମି, କୁଷ୍ଠ ଓ ଜ୍ୱରନାଶକ ଓ କାଳବ୍ୟାଧିରେ ସୁଫଳପ୍ରଦ—ଦ୍ରବ୍ୟଗୁଣ; ଏହା କାସଜାତ ବର୍ଗର ବର୍ଷାୟୁଃ ଶାକ; ଗଛ ସିଧା, ପତ୍ର ମସୃଣାକାର ଓ ଫୁଲ ଧଳା ଓ ଉପରେ ଅଶାଳରକ୍ତ ଚିହ୍ନ—ଯୋଗେଶ୍ବର୍ । ]

**ଭଦ୍ରତୁଙ୍ଗ**—ସ. ବି ( ନାମ )—ହିନ୍ଦୁମାନଙ୍କର ତୀର୍ଥବିଶେଷ ( ମହା-Bhadratuṅga ଭାରତୋକ୍ତ ) ( ହି. ଶ )—A sacred place for the Hindus. ( ଉ—ଭଦ୍ରତୁଙ୍ଗ ତୀର୍ଥକୁ ଗଲେ ବ୍ରହ୍ମଲୋକ, ହୁଅଇ ଅଟେ ଏହି ରଥୀଙ୍କ ନାୟକ— କୃଷ୍ଣସିଂହ, ମହାଭାରତ, ବନ । )

**ଭଦ୍ର ତୁରଗ**—ସ. ବି—ଜମ୍ବୁଦ୍ୱୀପର ନଅଗୋଟି ବର୍ଷ ବା ଦେଶ ମଧ୍ୟରୁ Bhadra turaga ଏକ—One of the nine divisions of the ancient Jambu dwipa.

**ଭଦ୍ରଦନ୍ତ**—ସ. ବି (ବହୁବ୍ରୀହି)—ହାତୀ ( ହି. ଶବ୍ଦସାଗର )— Bhadradanta Elephant.

**ଭଦ୍ରଦନ୍ତୀ**—ସ. ବି ( ବୈଦ୍ୟକ )—ଏକପ୍ରକାର ଦନ୍ତୀ ବୃକ୍ଷ— Bhadradantī A medicinal tree; a species of Croton Polyandrum. ଅନ୍ୟ ସ. ନାମ—କେଶରୁହା, ଘୃଷଭଦ୍ରା, ଜୟାବହା, ଅବର୍ତ୍ତିନୀ, ଜୟାଂଗୀ [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା କଟୁ, ଉଷ୍ଣ, ରେଚକ ଓ କ୍ରିମି, ଶୂଳ, କୁଷ୍ଠ ଏବଂ ଆମଦୋଷନାଶକ । ]

**ଭଦ୍ରଦାରୁ**—ସ. ବି—ଦେବଦାରୁ ( ବୃକ୍ଷ ) ( ହି. ଶ )— Bhadradāru Cedar ( tree).

**ଭଦ୍ରଧନ**—ସ. ବି—ନାଗରମୁଥା ( ହି. ଶ )—A species of Bhadradhana bulbous-rooted grass.

**ଭଦ୍ରପଣିଆ(ଅଁ)**—ସ. ବି ( ଆଧୁନିକ )—୧ । ସୌଜନ୍ୟ; ଶିଷ୍ଟତା— Bhadrapaṇiā(ã) Gentlemanliness; good manners; good breeding. ୨ । ଉତ୍ତମତା—2. Goodness. (ଭଦ୍ରପଣ—ଅନ୍ୟରୂପ)
ভদ্রতা
भलमनसी

**ଭଦ୍ର ପରିବାର**—ସଂ. ବି ( ଆଧୁନିକ )—ଭଦ୍ର ବଂଶ ( ଦେଖ )
Bhadraparibāra Bhadrabaṁśa ( See )

**ଭଦ୍ର ପର୍ଣ୍ଣା(ର୍ଣ୍ଣୀ)**—ସଂ. ବି—୧ । ପ୍ରସାରଣୀ ( ଲତା ); ପସାରୁଣୀ ( ହି. ଶ )—1. Paederia Fœtida ( creeper ). ୨ । ଗମ୍ଭାରି ଗଛ ( ଦ୍ରବ୍ୟଗୁଣ )—2. Gmelina Arborea ( tree ).
Bhadra parṇṇā(rṇṇī)

**ଭଦ୍ର ପୀଠ**—ସଂ. ବି—୧ । ବସିବାର ଆସନ ( ହି. ଶବ୍ଦସାଗର )—1. A seat to sit upon. ୨ । ରାଜା ବା ଦେବତାମାନଙ୍କ ଅଭିଷିକ୍ତ ହେବା ସିଂହାସନ (ହି. ଶ )—2. The throne on which kings or idols are installed.
Bhadra pīṭha

**ଭଦ୍ର ପ୍ରକୃତି**— ସଂ. ବି ( ଆଧୁନିକ )—୧ । ଉତ୍ତମ ସ୍ୱଭାବ—1. Good nature. ୨ । ଶିଷ୍ଟ ସ୍ୱଭାବ—2. Polite nature.
Bhadra prakṛuti
ଭଦ୍ର ପ୍ରକୃତିକ—ପୁଂ } ବିଣ
ଭଦ୍ର ପ୍ରକୃତିକା—ସ୍ତ୍ରୀ }

**ଭଦ୍ର ବଂଶ**—ସଂ. ବି—ସଦ୍‌ବଂଶ; ଉଚ୍ଚକୁଳ—Respectable family.
Bhadra baṁśa ভদ্রবংশ **अच्छा कुल, खानदान**

**ଭଦ୍ରବଂଶଜ (ବଂଶୀ)ୟ**—ସଂ. ବିଣ. ପୁଂ—ସଦ୍‌ବଂଶଜାତ—Respectable; of a noble family; genteel.
Bhadrabaṁśaja ( baṁśīya )
( ଭଦ୍ରବଂଶଜା [ବଂଶୀୟା]—ସ୍ତ୍ରୀ )

**ଭଦ୍ରବତୀ**—ସଂ. ବି—କଟ୍‌ଫଳ; କାଫଡ଼ ( ଦ୍ରବ୍ୟଗୁଣ )—Myrica Sapida ( tree )
Bhadrabatī

**ଭଦ୍ରବନ**—ସଂ. ବି—ମଥୁରା ନିକଟସ୍ଥ ଏକ ବନ ( ହି. ଶବ୍ଦସାଗର )—Name of a forest near Mathurā
Bharabana

**ଭଦ୍ରବଲା**—ସଂ. ବି—୧ । ପ୍ରସାରଣୀ ଲତା (ହି. ଶ )—1. Pæderia Fœtida creeper. ୨ । ମାଧବୀ ଲତା ( ହି. ଶ )—2. Mādhabī; a flowering creeper.
Bhadrabaḷā

**ଭଦ୍ରବଲ୍ଲଭ**—ସଂ. ବି—ବଳରାମ (ହି. ଶ)
Bhadra ballabha A name of Baḷarāma.

**ଭଦ୍ରବଲ୍ଲୀ**—ସଂ. ବି—୧ । ଗୁଳ୍ମବିଶେଷ—1. Vallaris Heynei (plant). [ଦ୍ର—ଏହା ତଗରାଦି ବର୍ଗର ଲତା।ଏଥି ସ୍ତୂପ; ପତ୍ର ଅଭିମୁଖୀ ଓ ସୂକ୍ଷ୍ମଚିହ୍ନ ବିଶିଷ୍ଟ, ଫୁଲ ଧଳା, ସୁଗନ୍ଧ ଓ ଥୋପା ଥୋପା, ଶୀତ ଓ ଗ୍ରୀଷ୍ମକାଳରେ ଫୁଟେ; ଫଳ ଲମ୍ବା । ଏହା ବ୍ରଣ, ଭଗ୍ନକ୍ଷତ ଓ ନାଡ଼ିବ୍ରଣ ବିନାଶକ—ଦ୍ରବ୍ୟଗୁଣ ଓ ଯୋଗେଶଚନ୍ଦ୍ର । ] ୨ । ବିଶଲ୍ୟକୃତ (ଦେଖ)-2. Biśalyakṛuta (See).
Bhadraballī
ଅନ୍ୟ ସଂ ନାମ—ଶୀତଭୀରୁ, ଭୂମିମଣ୍ଡ, ଅଷ୍ଟପାଦିକା।
हापरमली

**ଭଦ୍ର ବ୍ୟକ୍ତି**—ସଂ. ବି (ଆଧୁନିକ)—ଭଦ୍ରଜନ (ଦେଖ)
Bhadra byakti Bhadrajana (See)

**ଭଦ୍ର ବ୍ୟବହାର**—ସଂ. ବି (ଆଧୁନିକ)—୧ । ସଦାଚରଣ—1. Good conduct. ୨ । ଭଦ୍ରଜନୋଚିତ ବ୍ୟବହାର—2. Gentlemanly behaviour. ୩ । ଶିଷ୍ଟ ଆଚରଣ—3. Polite behaviour.
Bhadra byabahāra
ভদ্রব্যবহার
**सलूकियत**

**ଭଦ୍ରମୁଖ**—ସଂ. ବିଣ—ପ୍ରସନ୍ନମୂର୍ତ୍ତି—Of a happy or blissful appearance. ସଂ. ବି—ଶ୍ରୀରାମଙ୍କର ଜଣେକ ଗୁପ୍ତଚର—Name of a spy of Rāmachandra. [ଦ୍ର—ଲଙ୍କାରୁ ଫେରି ଆସିବା ପରେ ରାମଚନ୍ଦ୍ର ଏହାର ମୁଖରୁ ରାଜ୍ୟର ଲୋକେ ଭୂଷ୍ଟଭ୍ରଷ୍ଟ ହୋଇଥିବା ସୀତାଙ୍କ ଚରିତ୍ର ଉପରେ ଲଙ୍କାବାସ ଜନିତ କଳଙ୍କାରୋପଣ କଥା ଶୁଣି ଅନ୍ତଃସତ୍ତ୍ୱା ଅବସ୍ଥାରେ ସୀତାଙ୍କୁ ବନକୁ ନିର୍ବାସିତ କରିଥିଲେ । ] (ଉ—ପ୍ରବେଶିଣ ରାଜେଶ୍ୱର ଗୁପତ ଭବନ, ଗୁ ପ୍ତଚର ଭଦ୍ରମୁଖେ ପୁଚ୍ଛନ୍ତି ପ୍ରଶନ । ନନ୍ଦକିଶୋର. ସୀତାବନବାସ ।)
Bhadramukha

**ଭଦ୍ରମୁଞ୍ଜ**—ସଂ. ବି—ଶର ବା ଆଖୁପରି ଏକ ପ୍ରକାର ତୃଣ—A kind of reed grass; Saccharam Munja.
Bhadramuñja
ସଂ. ନାମ—ଶର, ବାଣ, ତେଜନ, ଇକ୍ଷୁବେଷ୍ଟନ ।
রামশর
**रामसर**
ମ. ମୋଲ
ତେ. ମୁଞ୍ଜଗଡ୍ଡି; ଅନ୍ନମୁଲଙ୍ଗ
[ ଦ୍ର—ଏହାର ଗଛ ଆଖୁପରି ଡେଙ୍ଗା, କିନ୍ତୁ ପତ୍ର ସରୁଆ; ଏହା ମଧୁର କଷାୟରସ, ଶୀତବୀର୍ଯ୍ୟ; ଏହା ଦାହ, ତୃଷ୍ଣା, ବିସର୍ପ, ଅମ୍ଳ, ମୂତ୍ରକୃଚ୍ଛ୍ର, ନେତ୍ରରୋଗ ଓ ତ୍ରିଦୋଷ-ନାଶକ ଓ ଶୁକ୍ରବର୍ଦ୍ଧକ; ଏହାଦ୍ୱାରା ମେଖଳା ପ୍ରସ୍ତୁତ ହୁଏ—ଦ୍ରବ୍ୟଗୁଣ । ]

**ଭଦ୍ରମୁସ୍ତ**—ସଂ. ବି—ନାଗର ମୁଥା—A sort of grass root; Cyperus Rotundus.
Bhadramusta
(ଭଦ୍ରମୁସ୍ତକ—ଅନ୍ୟରୂପ)

**ଭଦ୍ରଯବ**—ସଂ. ବି—ଇନ୍ଦ୍ରଯବ—Seed of Holarrhena Antidysenterica.
Bhadrajaba

**ଭଦ୍ରଲୋକ**—ଦେ. ବି—୧ । ସଦ୍‌ବଂଶ ଜାତ ବ୍ୟକ୍ତି—1. A person of a respectable family. ୨ । ଯେଉଁ ବ୍ୟକ୍ତିର ଆଚରଣ ଭଦ୍ରସମାଜସଙ୍ଗତ—2. Gentleman. ୩ । ସୁଜନ; ଶିଷ୍ଟ ଓ ସାଧୁ ବ୍ୟକ୍ତି—3. A good man. ୪ । ଭଲ ଲୋକ; ପଞ୍ଚାଏତ—4. Arbitrator.
Bhadra loka
ভদ্রলোক
**भलामानुस**

**ଭଦ୍ରଶେଣା**—ଦେ. ବି—ନାଉରିମାନଙ୍କର ରୋଷାଇ କରିବାପାଇଁ ନୌକାର ପଛ ମଙ୍ଗର ନିକଟତମ ଦୋଗୁଣାରେ ଥିବା କୋଠରି—The kitchen room in a country boat.
Bhadra śeṇā

**ଭଦ୍ରଶ୍ରୀ**—ସଂ. ବି—ଶ୍ରୀଖଣ୍ଡ ଚନ୍ଦନ (ଦ୍ରବ୍ୟଗୁଣ)—
Bhadra śrī Sandal; Santalum Album.

**ଭଦ୍ର ସନ୍ତାନ**—ସଂ. ବି (ଆଧୁନିକ)—ସଦ୍‌ବଂଶଜାତ ବ୍ୟକ୍ତି—A person of respectable family.
Bhadra santāna
**खान्दानी आदमि**

**ଭଦ୍ର ସମାଜ**—ସଂ. ବି ( ଆଧୁନିକ )—୧ । ସଭ୍ୟ ସମାଜ—1. Civilized society. ୨ । ସଦ୍‌ବଂଶୀୟ ବ୍ୟକ୍ତିମାନଙ୍କ ସମାଜ—2. Polite society; polished society.
Bhadra samāja
**सभ्यसमाज**

ଭଦ୍ରା—ସ. ବ. ସ୍ତ୍ରୀ—(ଭଦ୍ର+ସ୍ତ୍ରୀ. ଆ)—୧ । ଅଭିମନ୍ୟୁଙ୍କ ଜନନୀ ସୁଭଦ୍ରା; Bhadrā କୃଷ୍ଣଙ୍କ ଭଉଣୀ—1. Name of the mother of Abhimanyu. ୨ । ସୂର୍ଯ୍ୟ କନ୍ୟା—2. Daughter of the Sun-god. ୩ । କୃଷ୍ଣଙ୍କର ଜଣେ ପତ୍ନୀ—3. Name of one of the wives of Śrikrushṇa. ୪ । ଉତ୍ତରକୁରୁ ଦେଶରେ ପ୍ରବାହିତ ଗଙ୍ଗାସ୍ରୋତ—4. The current of the Ganges while flowing through the Uttarakuru country. ୫ । ଆକାଶ ଗଙ୍ଗା; ମନ୍ଦାକିନୀ—5. The Ganges said to flow in the sky. ୬ । ବିଷ୍ଟିର ଅନ୍ତିମ ୩ ଦଣ୍ଡ—6. The last 3 Daṇdas of Bishti joga. ୭ । ପକ୍ଷର ୨ୟା, ୭ମୀ ଓ ଦ୍ୱାଦଶୀ ତିଥି—7. The 2nd. 7th and 12th days of a lunar fortnight. ୮ । ହାଲିମ (ଦେଖ)—8 Hālima (See) ୯ । (ଆୟୁର୍ବେଦ) ଅନନ୍ତା, ଜୀବନ୍ତୀ, ଭମିର, ଶମୀ, କଟଫଳ, ଗମ୍ଭାର, ନାଳୀ, ଅପରାଜିତା, ହରଦ୍ରା, ମୁଥା, ବଳା, ବଚ, ଶ୍ୱେତ ଦୂବା ଓ ଦନ୍ତୀ—9. Name of 14 drugs in Ayurveda. ୧୦ । ଗୋରଚନା—10. Yellow-pigment found in the body of cows ୧୧ । ପସାରୁଣୀ ଲତା (ଦ୍ରବ୍ୟଗୁଣ)—11. Pæderia Fœtida (creeper). ଦେ. ବି—ଚନ୍ଦ୍ରାବଳୀଙ୍କର ଏକତମ ସଖୀ—A female companion of Chandrābaḷi. [ଉ—ଭଦ୍ରା ବଚନ କଲା ରଚନ କି ଯୋଗେ ଅଇଲୁ ଅଳ । ଅଭିମନ୍ୟୁ ହଦସ୍ତ୍ର ଚନ୍ଦ୍ରାମଣି ।] ଗ୍ରାଦେ. (ଗଡ଼ଜାତ) ବି—ସ୍ଥୂଳ ସୂତା (ନଳୀରେ ଅଭଧାନ)—A reel of thread.

ଭଦ୍ରାକରଣ—ସ. ବି—ମସ୍ତକ ମୁଣ୍ଡନ; କ୍ଷୌର କରିବା—Bhadrākaraṇa Shaving; tonsure.

ଭଦ୍ରାକୃତ—ସ. ବିଣ—ଉପନୟନାଦି ଉପଲକ୍ଷରେ ବିଧିପୂର୍ବକ ମୁଣ୍ଡିତ Bhadrākṛuta (ମସ୍ତକ)—(head) Shaved or tonsured on ceremonial occasions. (ଭଦ୍ରାକରଣ—ଦ)

ଭଦ୍ରାକ୍ଷ—ସ. ବି—ରୁଦ୍ରାକ୍ଷ ପରି ଏକପ୍ରକାର ମଞ୍ଜି—A kind of seed Bhadrāksha of a berry used as beads of a rosary. [ଦ୍ର—ଏଥିରେ ମାଳ ହୁଏ ।]

ଭଦ୍ରାତ୍ମଜ—ସ. ବି—(ଭଦ୍ର=ଲୌହ+ଆତ୍ମଜ)—ଅସି; ଖଡ୍ଗ; ଖଣ୍ଡା—Bhadrātmaja Sword.

ଭଦ୍ରାଭଦ୍ର—ଦେ. ବିଣ (ସଦୃଶ)—ଭଦ୍ର ଓ ଅଭଦ୍ର; ଶିଷ୍ଟ ଓ ଅଶିଷ୍ଟ; Bhadrābhadra ଭଲ ଓ ମନ୍ଦ—Good and bad; gentle and rude. ଦେ. ବି—ମଙ୍ଗଳ ଓ ଅମଙ୍ଗଳ Good and evil. ଭଦ୍ରାଭଦ୍ର भद्राभद्र

ଭଦ୍ରାମି—ଦେ. ବି (ବଙ୍ଗଳାରୁ ଅନୁକୃତ)—ଭଦ୍ରତା—Gentlemanliness; politeness. Bhadrāmi

ଭଦ୍ରାଶ୍ୱ—ସ. ବି (ବହୁବ୍ରୀହି; ଭଦ୍ର=କୁଶଳୀ+ଅଶ୍ୱ)—ପୃଥିବୀର ନବବର୍ଷ Bhadrāswa ମଧ୍ୟରୁ ଏକତମ ବର୍ଷ ବା ଦେଶ (ମେରୁର ପୂର୍ବରେ ଅବସ୍ଥିତ)—One of the 9 divisions of the world according to the ancient Hindu geography.

ଭଦ୍ରାଶ୍ରୟ—ସ. ବି—ଚନ୍ଦନ ବୃକ୍ଷ—Bhadrāsraya The sandal wood tree.

ଭଦ୍ରାସନ—ସ. ବି (କର୍ମଧା; ଭଦ୍ର=ଶ୍ରେଷ୍ଠ+ଆସନ)—୧ । ପ୍ରାସାଦ—Bhadrāsana 1. Building; palace. ୨ । ସିଂହାସନ—2. Throne. ୩ । ଯୋଗାସନ ବିଶେଷ—3. At posture in meditation. ଦେ. ବି—୧ । ବାସ୍ତୁ; ଘର ବାଡ଼ି—1. Homestead. ୨ । ପୈତୃକ ଘର ବାଡ଼ି—2. One's ancestral homestead.

ଭଦ୍ରି—ଗ୍ରାଦେ. (ଗଞ୍ଜାମ) ବି.—ବ୍ରାହ୍ମଣମାନଙ୍କର ଶ୍ରେଣୀ ବା ଗୋଷ୍ଠୀ Bhadri ବିଶେଷ—A class of Brāhmaṇas.

ଭଦ୍ରୈଳା—ସ. ବି (ଭଦ୍ର+ଏଳା)—ବଡ଼ ଅଳେଇଚ—Cardamum; Bhadraila the larger Elettaria Cardamomum.

ଭଦ୍ରୋଚିତ—ସ. ବିଣ (ଅଧୁନିକ) (୭ମୀ ତତ୍; ଭଦ୍ର+ଉଚିତ)—୧ Bhadrochita ଶିଷ୍ଟତା ସମ୍ମତ—1. Polite. ୨ । ସାଧୁଜନୋଚିତ—2. Becoming to or befitting a gentleman.

ଭଦ୍ରୋଚିତ ଆଚରଣ—ଦେ. ବି—ସୁଜନୋଚିତ କାର୍ଯ୍ୟ—Polite Bhadrochita ācharaṇa conduct; gentlemanly conduct or behaviour. ଭଦ୍ରାମି भलमनसात्

ଭନ—ଦେ. କ୍ରି. ବିଣ. (ସ. ବହନ)—ବହନ; ଶୀଘ୍ର—Bhan Soon. जल्द शिग्गीर

ଭଣ୍ଡ (ଧାତୁ)—ସ—୧ । ପ୍ରୀତ ହେବା—1. To be pleased. Bhand (root) ୨ । ଶୁଭ ହେବା—2. To be auspicious.

ଭଣ୍ଡର୍ଡ—ଦେ. ବି. (ସ. ଭଦ୍ର)—ଭୂନା; ଓଧ; ଓଲୁଅ—Bhandarda Otter; weales. ଭନ୍ଦଡ଼, ଭୌଁଦଡ଼ ଦେ. ବିଣ—ଓଲୁ—Foolish; stupid. उद, उदबिलाव

ଭଣ୍ଡିଲ—ସ. ବି. (ଭନ୍ଦ ଧାତୁ+କର୍ତ୍ତୃ. ଇଲ)—ଶୁଭ; ମଙ୍ଗଳ—Bhandila Weal.

ଭପ (ଇତ୍ୟାଦି)—ଦେ. ବି—ବହପ ଇତ୍ୟାଦି (ଦେଖ) Bhapa (etc) Bahapa etc. (See) हिम्मत ଦେ. ବି—୧ । ସାମର୍ଥ୍ୟ—1. Strength. ୨ । ହିମ୍ମତ; ସାହସ—2. Courage.

ଭପଞ୍ଜର—ସ. ବି—ଭଚକ୍ର; ରାଶି ଚକ୍ର—Bhapañjara The zodiac.

ଭପା—ଦେ. ବିଣ—୧ । ଭୁରୁଡ଼ା; ଦାମ୍ଭିକ—1. Tough; brazen-Bhapā faced. ୨ । ଧପାବାଜ୍—2. Deceptive; deceiving. (ଭପାଳିଆ—ଅନ୍ୟରୂପ)

ଭବକା ଛାଡ଼ିବା—ଗ୍ରାଦେ. (ବାଲେଶ୍ୱର) କ୍ରି—ଗୁଡ଼ି ଉଡ଼ୁଥିବା ବେଳେ Bhab-kā chhārdibā ଦରକାର ହେଲେ ହଠାତ୍ ଏକାଥରକେ ବହୁତ ସୂତା ଛାଡ଼ି ଦେବା—To let off a great length of (ଭବକା ଦେବା, ଭବକା କାଢ଼ିବା—ଅନ୍ୟରୂପ)

string while a paper-kite is being flown.

ଭବ—ସ. ବି. ( ଭୂ ଧାତୁ=ହେବା+ଭାବ.ଅ )—୧ । ସତ୍ତା; ସ୍ଥିତି—
Bhaba 1. Existence. ୨ । ଉତ୍ପତ୍ତି—2. Birth. ୩ । ଲାଭ; ପ୍ରାପ୍ତି—3. Gain; receipt; acquisition. ୪ । ମଙ୍ଗଳ—4. Weal; prosperity; welfare. ୫ । ପ୍ରାଧାନ୍ୟ; ଶ୍ରେଷ୍ଠତା—5. Excellence. ୬ । (+କର୍ତ୍ତୃ. ଅ) ଭବ ଲୋକ; ସଂସାର—6. The world. ୭ । ଭଗବାନ୍; ଈଶ୍ୱର—7. God. ୮ । ମହାଦେବ; ଶିବ—8. Śiba. ୯ । ଶିବଙ୍କର ଜଳମୂର୍ତ୍ତି; ଜଳମୂର୍ତ୍ତି ଶିବ ( ଜଳରୁ ସଂସାରର ଉତ୍ପତ୍ତି )—9. One of the 8 forms of Śiba (the form of water). ୧୦ । ଭବ୍ୟ; ଔଉ ଫଳ—10. An acid fruit; Dilenia Indica. ଗ୍ରା. ବି. (ସ. ଭଗ)—ଯୋନି—Vagina.

ଭବକା—ଦେ. ବି—୧ । ହାବୁକା (ଦେଖ)—1. Hābukā (See).
Bhabakā ୨ । ଜଳ ବୁଦ୍‌ବୁଦ—2. Bubble. ୩ । ଜଳର
धाका धक्का ତରଙ୍ଗ—3. Wave; billow. ୪ । ବଡ଼ ଗର୍ତ୍ତ
बुलबुला ବା ଛିଦ୍ର ଅବରୁ ଜୋରରେ ଉପରୁ ଉପର ଜଳ
भुभुक, झकोरा ଅବର ନିର୍ଗମନ—4. Gushing of water or any liquid through an opening.
(ଉ—ରଣତନ୍ତ୍ର-ଉଛ ତାଙ୍କ କଣ୍ଠ ମୂଳେ ପଶି, ଶୋଣିତ ଭବକା ସହ ଅଇଲା-ବାହାର । ଶ୍ରୀଧାନାଥ. ମହାଯାତ୍ରା ।)

ଭବ କାର୍—ସଂ. ବି ( ରୂପକ କର୍ମଧା; ଭବ+କାର୍ )—ସଂସାର ରୂପ
Bhaba kārā ବନ୍ଦିଶାଳା—The world compared to a prison.
(ଭବବନ୍ଧ, ଭବବନ୍ଧନ—ଅନ୍ୟରୂପ)

ଭବ କୂପ—ସଂ. ବି (ରୂପକ କର୍ମଧା; ଭବ+କୂପ)—ସଂସାର ରୂପ କୂପ—
Bhaba kūpa The world or mundane existence compared to a well.

ଭବ ଜଳଧି—ସଂ. ବି ( ରୂପକ କର୍ମଧା; ଭବ+ଜଳଧି )—ସଂସାର ରୂପ
Bhaba jaladhi ସମୁଦ୍ର—The world compared to an ocean.
ଭବ ପାରାବାର
ଭବ ସାଗର } ଅନ୍ୟରୂପ
ଭବ ସମୁଦ୍ର, ଭବସିନ୍ଧୁ

ଭବତ୍—ସଂ ସର୍ବନାମ ( ମାନ୍ୟାର୍ଥକ ମଧ୍ୟ ପୁରୁଷ )—
Bhabat ଆପଣ; ତୁମ୍ଭେ—Thou; you.
[ଦ୍ର—ଭାଷାରେ ଏହାର ସ୍ୱତନ୍ତ୍ର ବ୍ୟବହାର ନାହିଁ; ମାତ୍ର ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ, ଯଥା—ଭବତ୍ ପ୍ରେରିତ, ଭବଦନୁଗ୍ରହ, ଭବଦାଦିଷ୍ଟ, ଭବଦୀୟ ଇତ୍ୟାଦି ।]

ଭବତ୍ ପ୍ରସାଦ—ସ. ବି. (୬ଷ୍ଠୀ ତତ୍)—ଆପଣଙ୍କ ଅନୁଗ୍ରହ—
Bhabat-prasāda Thy favour.
(ଭବଦନୁଗ୍ରହ—ଅନ୍ୟରୂପ)

ଭବତ୍ ପ୍ରେରିତ—ସ. ବିଣ (୩ୟା ତତ୍)—ଆପଣଙ୍କ ଦ୍ୱାରା ପ୍ରେରିତ—
Bhabat prerita Sent by thee.

ଭବତ୍ ସନ୍ନିଧି—ସ. ବି (୬ଷ୍ଠୀ ତତ୍)—ଆପଣଙ୍କର ନୈକଟ୍ୟ—
Bhabat sannidhi Nearness to thee.
(ଭବତ୍ ସାନ୍ନିଧ୍ୟ—ଅନ୍ୟରୂପ)

ଭବତ୍ ସକାଶାତ୍—ସ. କ୍ରି. ବିଣ—ଆପଣଙ୍କଠାରୁ—
Bhabat sakāśāt From thee.

ଭବତରଣ—ସ. ବି—ସଂସାର ରୂପ ନଦୀ ବା ସାଗରକୁ ପାର ହେବା—
Bhabataraṇa Crossing the river of the world.

ଭବତାରଣ—ସଂ. ବିଣ. ପୁଂ—ଯେ ସଂସାରରୁ ମନୁଷ୍ୟଙ୍କୁ ଉଦ୍ଧାର
Bhabatāraṇa କରନ୍ତି—Delivering people from the
(ଭବତାରଣୀ—ସ୍ତ୍ରୀ) woes of the world ସଂ. ବି—ଈଶ୍ୱର—God.

ଭବତାରିଣୀ—ସଂ. ବି. ସ୍ତ୍ରୀ—ଦୁର୍ଗା—
Bhabatāriṇi Goddess Durgā.

ଭବଦାରୁ—ସଂ. ବି—ଦେବଦାରୁ—
Bhabadāru The pine; cedar.

ଭବଦୀୟ—ସଂ. ବିଣ. (ଭବତ୍+ଈୟ)—ଆପଣଙ୍କର—Thine;
Bhabadīya yours; belonging to thee.

ଭବଦ୍ୱାର—ସଂ. ବି. ( ରୂପକ କର୍ମଧା; ଭବ+ଦ୍ୱାର )—ସଂସାର ରୂପ
Bhaba dwāra ଦ୍ୱାର—The world compared to
भवद्वार an entrance. ଗ୍ରା. ବି—ଭଗ—Vaginal orifice. (ଉ—ସ୍ତ୍ରିର ଅଙ୍ଗରେ ଭବଦ୍ୱାର, ଜନ୍ମ ମଧ୍ୟରେ ତାର ଘର । ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ।)

ଭବନ—ସଂ. ବି ( ଭୂ. ଧାତୁ+ଅଧିକରଣ ଅନ )—୧ । ଆଳୟ;
Bhabana ବାସସ୍ଥାନ; ଗୃହ—1. House; residence; dwelling. ୨ । ( +ଭାବ. ଅନ ) ସ୍ଥିତି—2. Existence. ୩ । ଉତ୍ପତ୍ତି—3. Birth.

ଭବନୀୟ—ସ.ବିଣ (ଭୂ ଧାତୁ+କର୍ମ.ଅନୀୟ)—ଭବିତବ୍ୟ; ଯାହା ଅବଶ୍ୟ
Bhabaniya ଘଟିବ—Which must happen.

ଭବଭୂତ—ସ. ବି—ସଂସାରରୂପୀ ଭଗବାନ୍—
Bhababhūta God.

ଭବଭୂତି—ସ. ବି (୬ଷ୍ଠୀ ତତ୍)—୧ । ଶିବଙ୍କର ଐଶ୍ୱର୍ଯ୍ୟ—1. The
Bhababhūti divinity of Śiba. ୨ । (ନାମ) ଶ୍ରୀକଣ୍ଠ ନାମକ ଜନୈକ କବି—2. Name of a great Sanskrit poet named Śrikaṇṭha. [ ଦ୍ର—ଏ ମାଳତୀ-ମାଧବାଦି ନାଟକ ପ୍ରଣୟନ କରିଥିଲେ । ]

ଭବ ରନ୍ଧ୍ର—ସ. ବି (ରୂପକ କର୍ମଧା; ଭବ+ରନ୍ଧ୍ର)—ସଂସାରରୂପ ରନ୍ଧ୍ର—
Bhaba randhra The world compared to a hole. ଗ୍ରା. ବି—ଭଗରନ୍ଧ୍ର—Vaginal orifice.

ଭବ(ବି)ଷ୍ୟତି—ଗ୍ରା. ବି ( ସ. ଭବିଷ୍ୟତ୍ )—୧ । ଭବିଷ୍ୟତକାଳ—
Bhaba(bi)shwati भवस्वती 1. Future. ୨ । ଭାବୀଘଟଣା—2. Future event. ୩ । ଘଟଣା—3. Event; happening. ୪ । ହଠାତ୍ ଉପସ୍ଥିତ ବିପଦ—4. Accident; mishap. ଗ୍ରା. ବିଣ—ଭାବୀ—Future.

ଭବଷତ ପଡ଼ିବା—ଗ୍ରା. ବି—ହଠାତ୍ ବିପଦ ଘଟିବା—The happening of an accident.
Bhabashwatī pa<u>r</u>dibā
**भवस्वती पडना**

ଭବସନ୍ଧି—ଦେ. ବି—ଜଟିଳ ସମସ୍ୟା—Insoluble problem; dilemma.
Bhabasandhi

ଭବା—ସଂ. ବି—ଭବ୍ୟ; ଓଉ ( ବଲ୍ଲଭରାଜ. ଦ୍ରବ୍ୟଗୁଣ )—Dilenia Indica; an acid fruit.
Bhabā

ଭବାଦୃଶ(ଶ୍, କ୍ଷ)—ସଂ.ବିଣ. ପୁଂ (ଭବତ୍+ଦୃଶ୍ ଧାତୁ+କର୍ମ.ଅ,କ୍ୱିପ୍,ସ)—ଅପଣଙ୍କ ( ଭବାଦୃଶୀ—ସ୍ତ୍ରୀ ) ପରି—Like thee.
Bhabādṛuśa(ś,ksha)

ଭବାନୀ—ସଂ. ବି. ସ୍ତ୍ରୀ ( ଭବ=ଶିବ+ସ୍ତ୍ରୀ. ଈ; ଆନ୍ ଆଗମ )—ପାର୍ବତୀ—Pārbatī.
Bhabānī

ଭବାନୀ ଗୁରୁ—ସଂ.ବି. ପୁଂ (୬ଷ୍ଠୀ ତତ୍; ଭବାନୀ+ଗୁରୁ; ପାର୍ବତୀଙ୍କ ପିତା)—ହିମାଳୟ ପର୍ବତ—The Himālayas.
Bhabānī guru

ଭବାନୀ ପଣ୍ଡିତ—ଦେ. ବି ( ନାମ )—ଓଡ଼ିଶାର ଜଣେକ ମରହଟ୍ଟା ଶାସକ—A governor of Orissa under the Marahattas.
Bhabānī paṇḍita

ଭବାନୀ ପତି—ସଂ. ବି. ପୁଂ ( ୬ଷ୍ଠୀ ତତ୍; ଭବାନୀ+ପତି )—ଶିବ; ମହାଦେବ—Śiba.
Bhabānī pati
( ଭବାନୀଶ୍ୱର—ଅନ୍ୟରୂପ )

ଭବାନୀପୁର—ଦେ. ବି ( ନାମ )—କଲିକତାର ଉପକଣ୍ଠସ୍ଥ ନଗରୀ—A suburb of Calcutta.
Bhabānīpura

ଭବାନୀ ଭ୍ରୁକୁଟୀ ଭଙ୍ଗୀ—ସଂ. ବି—ପାର୍ବତୀଙ୍କର ଭ୍ରୂଭଙ୍ଗୀ—The various contortions of the eyebrows of Pārbatī.
Bhabānī bhrukuṭī bhaṅgī

ଭବାବ୍ଧି—ସଂ. ବି ( ରୂପକ କର୍ମଧା; ଭବ+ଅବ୍ଧି )—ସଂସାରରୂପ ସାଗର—The world compared to an ocean.
Bhabābdhi
( ଭବାର୍ଣ୍ଣବ—ଅନ୍ୟରୂପ )

ଭବାରାଧ୍ୟ—ସଂ. ବିଣ ( ଭବ+ଆରାଧ୍ୟ )—ସଂସାରପୂଜ୍ୟ—Worshipped by the whole world. ସଂ. ବି. ପୁ—ଭଗବାନ୍—God.
Bhabārādhya

ଭବି—ଦେ. ( ପଦ୍ୟ ) ବିଣ ( ସଂ. ଭବ୍ୟ )—ଭବ୍ୟ; ସାଧୁ—Good.
Bhabi ( ଉ—ଅପେ ଛବି ଅପେ ଭବି ଅପେ କଣ୍ଟକୂଟ—ପ୍ରାଚୀ. ବ୍ରହ୍ମନିରୂପଣଗୀତା । )

ଭବିକ—ସଂ. ବିଣ ( ଭବ=ମଙ୍ଗଳ+ଇକ )—ଶୁଭଜନକ—Auspicious. ସଂ. ବି—ଶୁଭ; ମଙ୍ଗଳ—Weal; prosperity.
Bhabika

ଭବିତବ୍ୟ—ସଂ. ବିଣ (ଭୂ. ଧାତୁ+କର୍ତ୍ତୃ ତବ୍ୟ)—୧ । ଅବଶ୍ୟମ୍ଭାବୀ; ଯାହା ଅବଶ୍ୟ ଘଟିବ—1. Which must happen; inevitable. ୨ । ଅନିବାର୍ଯ୍ୟ—2. Unavoidable; irresistible. ୩ । ଯାହା ଘଟିବ ବୋଲି ବିଧାତା ପୂର୍ବରୁ ନିର୍ଦ୍ଦେଶ କରିଅଛନ୍ତି—3. Preordained.
Bhabitabya
( ଭବିତବ୍ୟତା—ବି )

ଭବିତବ୍ୟତା—ସଂ. ବି (ଭବିତବ୍ୟ+ଭାବ. ତା)—୧ । ଅବଶ୍ୟମ୍ଭାବିତା—1. Preordinance. ୨ । ଅନିବାର୍ଯ୍ୟତା—2. Inevitability. ୩ । ଅଦୃଷ୍ଟ; ଭାଗ୍ୟ—3. Fortune; luck.
Bhabitabyatā

ଭବିତା—ସଂ. ବି (ଭୂ ଧାତୁ+କର୍ତ୍ତୃ ତୃ; ଭବିତୃ, ୧ମା. ୧ବ)—୧ । ଯାହା ଘଟିବ—1. That which will happen. ୨ । ଭବିଷ୍ୟତ—2. Future.
Bhabitā

ଭବିଷ—ଦେ. ବି ( ସଂ. ଭବିଷ୍ୟ )—୧ । ଭବିଷ୍ୟତ—1. The future. ୨ । ଘଟଣା—2. Event; happening. ୩ । ଅଖାଡ଼ୁଆ ବିଷୟ—3. A queer thing or proposal. ୪ । ଆଡ଼ମ୍ବର—4. Ado; grandeour. ୫ । ଅଦ୍ଭୁତ ବା ଆଶ୍ଚର୍ଯ୍ୟ ଘଟଣା—5. A strange or wonderful event. ୬ । ଅଦ୍ଭୁତ ପ୍ରସ୍ତାବ—6. A strange proposal. ଦେ. ବିଣ—୧ । ଯାହା ପରେ ଘଟିବ—1. Future ୨ । ଅଖାଡ଼ୁଆ—2. Queer; odd. ୩ । କୁତ୍ସିତ—3. Ugly.
Bhabisha
**बेबातकी बात**

ଭବିଷ କାଢ଼ିବା—ଦେ. କ୍ରି—ଅଖାଡ଼ୁଆ କଥା ବା ପ୍ରସ୍ତାବ ଆଗତ କରିବା—To make a queer or odd proposal.
Bhabisha kā<u>rdh</u>ibā
**बेबातकी बात निकालना**
(ଭବିଷ ବାହାର କରିବା, ଭବିଷ ଦେଖା[ଖେ]ଇବା —ଅନ୍ୟରୂପ )

ଭବିଷ୍ଣୁ—ସଂ ବିଣ ( ଭୂ ଧାତୁ+କର୍ତ୍ତୃ ଇଷ୍ଣୁ )—୧ । ଘଟୁଥିବା—1. Happening. ୨ । ଉତ୍ପତ୍ତିକାରକ—2. Producing.
Bhabishṇu

ଭବିଷ୍ୟ—ସଂ.ବିଣ (ଭୂ ଧାତୁ+ଭବିଷ୍ୟତରେ ଘଟିବା ଅର୍ଥରେ ସ୍ୟ)—ଭାବୀ; ଯାହା ଘଟିବ—About to happen; future. ସଂ. ବି—୧ । ଆଗାମୀ ଘଟଣା—1. Future event. ୨ । ଭବିଷ୍ୟ ନାମକ ପୁରାଣ—2. Name of a Purāṇa indicating future events. ଦେ. ବି—ଭବିଷ (ଦେଖ)—Bhabisha ( See )
Bhabishya

ଭବିଷ୍ୟଜ୍ଞ—ସଂ.ବିଣ ପୁଂ(ଭବିଷ୍ୟ+ଜ୍ଞା ଧାତୁ+କର୍ତ୍ତୃ.ଅ)—ଯେ ଭବିଷ୍ୟତ କଥା ଜାଣିପାରେ—Knowing the future.
Bhabishyajña
(ଭବିଷ୍ୟଜ୍ଞା – ସ୍ତ୍ରୀ)

ଭବିଷ୍ୟତ୍—ସଂ. ବିଣ—ଭାବୀ; ଯାହା ଘଟିବ; ଭବିତବ୍ୟ—Future; about to happen.
Bhabishyat

ଭବିଷ୍ୟତ୍ କାଳ—ସଂ. ବି ( ବ୍ୟାକରଣ )—ବର୍ତ୍ତମାନ କାଳର ପରବର୍ତ୍ତୀ କାଳ—The future tense of a verb.
Bhabishyat-kāḻa

ଭବିଷ୍ୟତ—ଦେ.ବିଣ (ସଂ.ଭବିଷ୍ୟତ୍)—ଯାହା ପରେ ଘଟିବ—Future. ଦେ. ବି—୧ । ଆଗାମୀ ସମୟ—1. The future. ୨ । ଭବିଷ୍ୟତ୍ ଘଟଣା—2. Future event.
Bhabishyata
**होनहार**

ଭବିଷ୍ୟଦ୍ଗର୍ଭ—ସଂ. ବି ( ୬ଷ୍ଠୀ ତତ୍ )—ଭବିଷ୍ୟତକାଳର ଗର୍ଭ—The womb of the future.
Bhabishyad-garbha

ଭବିଷ୍ୟଦ୍ ଜ୍ଞାନ—ସଂ. ବି—ଭବିଷ୍ୟତ୍ ସମ୍ବନ୍ଧରେ ବୋଧ ବା ବୁଦ୍ଧି—Knowledge about the future.
Bhabishyad-jñāna

ଭବିଷ୍ୟଦ୍ବକ୍ତା—ସଂ. ବି. ପୁଂ ( ସଂ. ଭବିଷ୍ୟଦ୍ବକ୍ତୃ, ୧ମା. ୧ବ )—
Bhabishyadbaktā ଯେ ଆଗାମୀ ଘଟିବା କଥା କହି ପାରେ ( ଭବିଷ୍ୟଦ୍ବାଦୀ—ଅନ୍ୟରୂପ ) —Foreteller; prophet; soothsayer. ସଂ. ବିଣ—ଭବିଷ୍ୟତ ଘଟଣା କହିପାରିବା (ବ୍ୟକ୍ତି)—Prophesying; foretelling.

ଭବିଷ୍ୟଦ୍ବାକ୍ୟ—ସଂ. ବି ( ଭବିଷ୍ୟତ୍+ବାକ୍ୟ )—ଭବିଷ୍ୟତ୍‌କାଳରେ
Bhabishyadbākya ଯେଉଁ ଯେଉଁ ବିଷୟ ଘଟିବ ତାହା ( ଭବିଷ୍ୟଦ୍ବାଣୀ —ଅନ୍ୟରୂପ ) ପୂର୍ବରୁ କହିବା—Foretelling; prediction prophecy.

ଭବିଷ୍ୟଦ୍ବାର୍ତ୍ତା—ସଂ. ବି ( ଭବିଷ୍ୟତ୍+ବାର୍ତ୍ତା )—ଆଗାମୀ କାଳ ସମ୍ବନ୍ଧେ
Bhabishyadbārttā ସମ୍ବାଦ—Information about the future events.

ଭବିଷ୍ୟନ୍ତ—ଗ୍ରା. ବି ଓ ବିଣ—୧ | ଭବିଷ୍ୟତ ( ଦେଖ )
Bhabishyanta 1. Bhabishyata (See )
୨ | ଭାବସ୍ୱତି (ଦେଖ)—2. Bhābashwati (See).

ଭବିଷ୍ୟ ପୁରାଣ—ସଂ. ବି—ପୁରାଣ ବିଶେଷ; ଭବିଷ୍ୟତରେ ଯାହା ଯାହା
Bhabishya purāṇa ଘଟିବ, ତାହା ଯେଉଁ ପୁରାଣରେ ସୂଚିତ ହୋଇଅଛି—Name of a Purāṇa indicating future events.

ଭବିଷ୍ୟ ବାଣୀ—ସଂ. ବି—ଭବିଷ୍ୟଦ୍ବାକ୍ୟ—
Bhabishya bāṇi Foretelling; prediction.

ଭବିଷ୍ୟ ସୂଚନା—ସଂ. ବି—ଭବିଷ୍ୟତ୍ ଘଟଣାର ସୂଚନା—
Bhabishya sūchanā Indication of future events; anticipatory statement.

ଭବୀ—ସଂ. ବି. ସ୍ତ୍ରୀ ( ଭବ+ସ୍ତ୍ରୀ. ଈ )—ଭବାନୀ; ପାର୍ବତୀ —
Bhabī Pārbatī.

ଭବୁଷି—ଗ୍ରା. ବି ଓ ବିଣ ( ସଂ. ଭବିଷ୍ୟତ୍ )—ଭବିଷ୍ୟତ—
Bhabushi Future.

ଭବ୍ୟ—ସଂ. ବିଣ [ଭୂ ଧାତୁ+କର୍ତ୍ତୃ.ଯ]—୧ ମଙ୍ଗଳଜନକ; ଶୁଭଯୁକ୍ତ;
Bhabya ଶୁଭଜନକ—1. Auspicious. ୨ | ସଭ୍ୟ—
[ଭବ୍ୟା—ସ୍ତ୍ରୀ] 2. Civilized. ୩ | ଶିଷ୍ଟ; ଭଦ୍ର—3. Polite; civil. ୪ | ଶାନ୍ତପ୍ରକୃତିକ—4. Of a calm nature. ୫ | ସାଧୁ; ସତ୍—5. Honest. ୬ | ମାର୍ଜିତ ରୁଚିବିଶିଷ୍ଟ—6. Of refined taste. ୭ | ଭାଗ୍ୟବାନ୍—7. Fortunate. ୮ | ଭାବୀ; ଭବିଷ୍ୟତ—8. Future; likely to happen. ୯ | ଉତ୍କୃଷ୍ଟ—9. Excellent. ୧୦ | ଉତ୍ତମ—10. Good: nice. ୧୧ | ଉପସ୍ଥିତ; ବର୍ତ୍ତମାନ—11 Existing. ୧୨ | ଉପଯୋଗୀ; ଉପଯୁକ୍ତ—12. Proper: fit; worthy. ସଂ. ବି—୧ | ଔଉ ଗଛ ଓ ଫଳ—1, Dilenia Indica ( tree and fruit ), ୨ | ଅବସ୍ଥିତି—2. Existence (Apte). ୩ | ଭବିଷ୍ୟତ୍‌କାଳ—3. Future time ( Apte ). ୪ | ଫଳ—4. Result; fruit ( Apte ). ୫ | ଉତ୍ତମଫଳ—5. Good result ( Apte ). ୬ | ସୌଭାଗ୍ୟ—6. Prosperity ( Apte ), ୭ | ଅସ୍ଥି—7. A bone (Apte). ଦେ. ବିଣ—ସମୀଚୀନ—Proper. [ ଉ—ଯେ ଯଥା ଭବ୍ୟ ସନ୍ନିବେଶ, ହସେ ପ୍ରଭୁଙ୍କ ଚନ୍ଦ୍ରଦେଶ— ପ୍ରାଚୀ. ପୂର୍ଣ୍ଣିତମଚନ୍ଦ୍ରୋଦୟ ।]

ଭବ୍ୟତା—ସଂ. ବି (ଭବ୍ୟ+ଭାବ. ତା)—ଭଦ୍ରତା—
Bhabyatā Civility; politeness.

ଭବ୍ୟଦାୟକ—ସଂ. ବିଣ (ଭବ୍ୟ+ଦା ଧାତୁ+କର୍ତ୍ତୃ. ଅକ)—ସୁଖଦ;
Bhabyadāyaka ସୁଖପ୍ରଦ—Causing happiness.
[ଉ—ଭବ୍ୟଦାୟକ ମାଣିକ୍ୟ ବର; ଭ୍ରମ ଜାତ କରୁଅଛି ମଧ୍ୟସ୍ଥ ଧର । ବିବସୂର୍ଯ୍ୟ. ବିଶୋଷ୍ଣ ଭଞ୍ଜ. ବ. ଗୀତ ।]

ଭବ୍ୟ ସଭ୍ୟ—ଦେ. ବିଣ (ସହଚର)—ଭଦ୍ର—
Bhabya sabhya Polite; civil.

ଭବ୍ୟା—ସଂ. ବି. ସ୍ତ୍ରୀ (ଭବ+ସ୍ତ୍ରୀ. ଆ; ଯ. ଆଗମ)—ଦୁର୍ଗା—
Bhabyā Durgā.

ଭମ୍—ସଂ. ଅ (ଧ୍ୱନ୍ୟନୁକରଣ)—ଭଁ ଭଁ—
Bham An imitative sound.

ଭମ୍‌କିବା—ପ୍ରାଦେ. (ସମ୍ବଲପୁର) କ୍ରି—ନିଦ୍ରାବସ୍ଥାରେ ବକବକେଇବା-
Bham-kibā To speak or talk during deep sleep.
गलगलाना, बौआना

ଭ ମଣ୍ଡଳ—ସଂ. ବି—(୬ଷ୍ଠୀ ତତ୍; ଭ+ମଣ୍ଡଳ)—ଆକାଶମଣ୍ଡଳ; ଗ୍ରହ
Bha maṇḍaḷa ମଣ୍ଡଳ—The stellar sphere; the zodiac.

ଭମ(ମ୍ବ)ର—ଗ୍ରା. ବି ( ସଂ. ଭ୍ରମର )—ଭ୍ରମର—
Bhama(mba)ra Bumble-bee.
भौंरा; भमर ভোমর

ଭମା (ଇତ୍ୟାଦି)—ଦେ. ବି. ଓ ବିଣ—୧ | ବମା ଇତ୍ୟାଦି ( ଦେଖ )
Bhamā (etc) ভোমা 1. Bamā etc (See).
୨ | (ସଂ, ବିବର) ବିବର—2. A big hole.

ଭମ୍ବର—ଗ୍ରା. ବି ( ସଂ. ବିବର )—୧ | ବିବର; ବଡ଼ ଗର୍ତ୍ତ—
Bhambara 1. A big hole. ୨ | (ସଂ. ଭ୍ରମର)—ଭ୍ରମର—
भौंरा, बिअर ভোমর 2. Bumble-bee.

ଭମ୍ଭ—ସଂ. ବି ( ଭମ୍=ଅନୁକରଣ ଶବ୍ଦ+ଭା ଧାତୁ+କର୍ତ୍ତୃ.ଅ )—୧ |
Bhambha ଧୂମ; ଧୂଆଁ—1. Smoke. ୨ | ମକ୍ଷିକା; ମାଛି—2. Flea.

ଭମ୍ଭରାଳି—ସଂ. ବି ( ଭମ୍+ଭା. ଧାତୁ+ରାଳ )—ଭଣଭଣା ମାଛି;
Bhambharāḷi ଗିଣିଗିଣା ମାଛି—Buzzing flea, the blue bottle fly.

ଭୟ—ସଂ. ବି (ଭୀ ଧାତୁ=ଭୀତ ହେବା+ଭାବ. ଅ)—୧ | ତ୍ରାସ; ଶଙ୍କା;
Bhaya ଡର—1. Fear; dread; apprehension.
୨ | ଅନିଷ୍ଟାଶଙ୍କା; ବିପଦର ଆଶଙ୍କା—2. Risk or apprehension of danger. ୩ | ଭୀତି—3. Dismay; terror; fright. ୪ | (+କରଣ.ଅ) ବିପଦ—4. Danger; peril;

**ଭୟ କରିବା**—ଦେ. କ୍ରି—୧ । ଭୀତ ହେବା—1. To fear;
Bhaya karibā to be afraid of. ୨ ।
भय करना ভয় করা ଆଶଙ୍କା କରିବା—2. To apprehend.

**ଭୟ କାତର**—ସଂ. ବିଣ ପୁଂ.(*ମୀ ତତ୍; ଭୟ+କାତର)—ଭୟାର୍ତ୍ତ;
Bhaya kātara ଅତ୍ୟନ୍ତ ଭୟ ଯୋଗୁଁ ବିହ୍ୱଳ—
Overwhelmed with fear; terrified.
ଭୟକ୍ଳିଷ୍ଟ, ଭୟବିହ୍ୱଳ, ଭୟବିହ୍ୱଳ }—ଅନ୍ୟରୂପ
(ଭୟକାତରତା-ବି; ଭୟକାତରା-ସ୍ତ୍ରୀ)

**ଭୟ ଖାଇବା**—ଦେ. କ୍ରି—ଭୟଗ୍ରସ୍ତ ହେବା—The state
Bhaya khāibā of being terrified or overtaken with fear.
ଭୟ ଖାଇଯିବା, ଭୟ ଖାଇ ଗୋଟେଇବା, ଭୟ ଲାଗିବା, ଭୟ ମାଡ଼ିବସିବା(ମାଡ଼ିବା) }—ଅନ୍ୟରୂପ
डर लगना ভয়করা

**ଭୟଙ୍କର**—ସଂ. ବିଣ (ଭୟ+କୃ ଧାତୁ+କର୍ତ୍ତୃ. ଅ)—୧ । ଭୀତିପ୍ରଦ;
Bhayṅkara ତ୍ରାସଜନକ—1. Fearful; terrific;
( ଭୟଙ୍କରୀ—ସ୍ତ୍ରୀ ) alarming. ୨ । ଘୋର—2.
Terrible; formidable. ୩ । ବେଳାୟ; ଅତ୍ୟଧିକ—
3. Excessive. ଦେ. କ୍ରି. ବିଣ ଓ ବିଣର ବିଣ—
ଅତ୍ୟନ୍ତ; ଭାରି—Very; too much. [ ଯଥା—
ସେ ଭୟଙ୍କର ଦୁଷ୍ଟ ପିଲା । ]

**ଭୟ ଚକିତ**—ସଂ.ବିଣ ପୁଂ(*ମୀ ତତ୍;ଭୟ+ଚକିତ)—ଭୟଦ୍ୱାରା ଚମକି
Bhaya chakita ପଡ଼ିଥିବା—Startled with fear.
( ଭୟତ୍ରସ୍ତ, ଭୟସନ୍ତ୍ରସ୍ତ—ଅନ୍ୟରୂପ ) (ଭୟଚକିତା—ସ୍ତ୍ରୀ)

**ଭୟ ଛାଡ଼ିବା**—ଦେ. କ୍ରି—ମନରୁ ଭୟ ଦୂର ବା ତ୍ୟାଗ କରିବା—
Bhaya chhāṟdibā To shake off fear from one's mind.
भयछोड़ना ভয়ছাড়া

**ଭୟଜନକ**—ସଂ. ବିଣ ( ଭୟ+ଜନ୍ ଧାତୁ+କର୍ତ୍ତୃ ଅକ)—ଯାହା
Bhayajanaka ଭୟ ଜନ୍ମାଏ—Causing fear; terrific.
( ଭୟଦ, ଭୟପ୍ରଦ—ଅନ୍ୟରୂପ )

**ଭୟ ଜନ୍ମା(ନ୍ମେ)ଇବା**—ଦେ. କ୍ରି—ଭୟ ଉତ୍ପାଦନ କରିବା—
Bhaya janmā(nme)ibā To cause apprehension;
ভয়জন্মান भयपैदाकरना to produce fear.

**ଭୟତମ**—ଗ୍ରା ( ପ୍ରାଚୀନ ପଦ୍ୟ ) ବିଣ—ଭୟଙ୍କର—Causing
Bhayatama fear; terrific. [ ଉ—ଭୁଜଗରାଜ
ଭୁଜ ସମ, ଜୁହନ୍ତି ଯେଣୁ ଭୟତମ—ପ୍ରାଚୀ.
ପୂର୍ଣ୍ଣତମଚନ୍ଦ୍ରୋଦୟ ।]

**ଭୟତ୍ରାତା**—ସଂ.ବିଣ ପୁଂ. (ଭୟ+ତ୍ରୈ ଧାତୁ+କର୍ତ୍ତୃ ତୃ, ୧ମା.୧ବ)—
Bhayatrāta ଯେ ମନୁଷ୍ୟଙ୍କୁ ଭୟରୁ ବା ବିପଦରୁ ଉଦ୍ଧାର କରେ—
(ଭୟତ୍ରାତ୍ରୀ—ସ୍ତ୍ରୀ) Saving people form fear or danger.

**ଭୟ ଦେଖା(ଖେ)ଇବା**—ଦେ. କ୍ରି—ଡରାଇବା—To frighten; to
Bhaya dekhā(khe)ibā ভয়দেখান भयदिखाना terrify.

**ଭୟ ନାଶନ**—ସଂ. ବିଣ. ପୁଂ—ବିପଦ ନିବାରକ—
Bhaya nāśana Preventing fear of danger.
(ଭୟନାଶିନୀ—ସ୍ତ୍ରୀ) ସଂ. ବି—ଭଗବାନ—God.

**ଭୟ ପଡ଼ିବା**—ପ୍ରାଦେ. (ଗଞ୍ଜାମ) କ୍ରି—ଭୟ କରିବା—
Bhaya paṟdibā To fear.

**ଭୟ ପାଇବା**—ଦେ. କ୍ରି—ଭୀତ ହେବା; ଡରିବା—
Bhaya pāibā To be frightened; to be terrified.
ভয় পাওয়া भयपाना

**ଭୟ ପ୍ରଦର୍ଶନ**—ସଂ. ବି (୬ଷ୍ଠୀ ତତ୍; ଭୟ+ପ୍ରଦର୍ଶନ)—ଅନ୍ୟକୁ ଭୟ
Bhaya pradarśana ଦେଖାଇବା—Terrifying, frightening others.

**ଭୟପ୍ରାପ୍ତ**—ସଂ. ବିଣ (୨ୟା ତତ୍; ଭୟ+ପ୍ରାପ୍ତ)—ଭୀତ—
Bhayaprāpta Frightened.

**ଭୟ ବିକ(ହ୍ୱ)ଳ**—ସଂ.ବିଣ.ପୁଂ(*ମୀତତ୍;ଭୟ+ବିକଳ)-ଭୟଦ୍ୱାରା ଅଭି-
Bhaya bika(hwa)ḷa Overwhelmed with fear;
(ଭୟ ବିହ୍ୱଳିତ—ଅନ୍ୟରୂପ) (ଭୟବିକା[ହ୍ୱ]ଳା—ସ୍ତ୍ରୀ) terrified.

**ଭୟଭାଗ**—ଦେ. ବି (ସଂ. ଭୟ+ଭାବ)—ଭୟଭାବ; ଭୀତି—Fright.
Bhayabhāga (ଉ—ନାଗମାନେ ମନ୍ତ୍ର ଶକ୍ତିରୁ ଭୟଭାଗ—
भयभाव ভয়ভাব କୃଷ୍ଣସିଂହ. ମହାଭାରତ ଅବ )

**ଭୟ ଭାଙ୍ଗିବା**—ଦେ.ବି—ନିଜର ମନରୁ ଭୟ ଦୂର ହେବା—Shaking
Bhaya bhāṅgibā off of fear. ଦେ. କ୍ରି—ଅନ୍ୟର ମନରେ
ভয়ভাঙ্গা भयछोड़ना ଉପସ୍ଥିତ ଭୟକୁ ଦୂର କରିବା—To
ভয়ভেঙ্গেদেওয়া भयछुड़ाना remove fear from the mind of another.

**ଭୟଭୀତ**—ସଂ. ବିଣ. ପୁଂ (*ମୀ ତତ୍; ଭୟ+ଭୀତ)—ଭୀତ; ତ୍ରସ୍ତ—
Bhayabhīta (ଭୟଭୀତା—ସ୍ତ୍ରୀ) Frightened.

**ଭୟ ଭୀତି**—ଦେ. ବି (ଏକାର୍ଥକ ସହଚର)—ଡର ଭୟ—
Bhaya bhīti भय भीति ভয়ভীতি Fear.

**ଭୟ ମାଡ଼ିବା**—ଦେ. କ୍ରି—ଡରିବା; ଭୀତ ହେବା—
Bhaya māṟdibā ভয় করা; ভয় বোধ হওয়া Being
भय लगना frightened or alarmed.
(ଭୟ ବୋଧ ହେବା, ଭୟ ହେବା—ଅନ୍ୟରୂପ)

**ଭୟ ରହିତ**—ସଂ. ବିଣ—୧ । ନିର୍ଭୟ—1. Fearless. ୨ ।
Bhaya rahita ଶଙ୍କା ରହିତ—2. Free from apprehension.
(ଭୟଶୂନ୍ୟ, ଭୟହୀନ—ଅନ୍ୟରୂପ)
୩ । ଯେଉଁଠାରେ କୌଣସି ଭୟ ଘଟିବାର ଶଙ୍କା ନାହିଁ—
3. Free from any risk of danger.

**ଭୟଶୀଳ**—ସଂ. ବିଣ. ପୁଂ—( ବହୁବ୍ରୀହି; ଭୟ+ଶୀଳ )—ଭୟାଳୁ;
Bhayaśiḷa (ଭୟଶୀଳା—ସ୍ତ୍ରୀ) ଭୀରୁ—Timid; fearful.

**ଭୟା**—ଦେ. ବି—ପ୍ରାଚୀନ ଜଳଯାନ ବିଶେଷ (ଜଗବନ୍ଧୁ ପ୍ରାଚୀନ
Bhayā ଉତ୍କଳ)—A kind of ancient boat or ship.
ବୈଦେ.ଅ—(ହିନ୍ଦି. ଭୈୟା;ସଂ. ଭ୍ରାତଃ)—ହେ ଭାଇ !—
Oh, brother ! ପ୍ରାଦେ. (ଗଡ଼ଜାତ)—ବି. (ସଂ.
भय ଭୟ)—କୌଣସି ଅଞ୍ଚଳରେ ବାଘଅବା ମାଡିବା ଯୋଗୁଁ
বন্যজন্তুরভয় ସେ ଅଞ୍ଚଳବାସୀ ଲୋକଙ୍କର ବା ସେ ବାଟେ ଯିବା ଲୋକଙ୍କ

ମନରେ ଉତ୍ପନ୍ନ ଅନିଷ୍ଟାଶଙ୍କା (ଯଥା—ଜଙ୍ଗଲ ବାଟରେ ବାଘ ଭୟ।)—Risk of danger from wild animals (in a tract visited or infested by a tiger or other wild animal).

**ଭୟାକୁଳ**—ସଂ. ବିଣ. ପୁଂ (ଷଷ୍ଠୀ ତତ୍; ଭୟ+ଆକୁଳ)—ଭୟବିହ୍ୱଳ—
Bhayākuḷa Overwhelmed with fear; terrified; terror-struck.
(ଭୟାକୁଳିତ, ଭୟାର୍ତ୍ତ—ଅନ୍ୟରୂପ)
(ଭୟାକୁଳା, ଭୟାକୁଳିତା; ଭୟାର୍ତ୍ତା—ସ୍ତ୍ରୀ)

**ଭୟାକୃତି**—ଦେ.ବିଣ—ଭୀଷଣ; ଭୟଙ୍କର—Terrible; dreadful.
Bhayākṛuti [ଉ—ଦେଖେ ଦେବଦେବ ବେଦପତି, ବିଶେ ବିଶନ୍ତି ଭୟାକୃତି। ଜଗନ୍ନାଥ. ଭାଗବତ।]

**ଭୟାନକ**—ସଂ.ବିଣ—ଯାହାଠାରୁ ଭୟ ପାଇବାକୁ ହୁଏ; ଭୀଷଣ; ଭୟଜନକ
Bhayānaka Terrific; terrible. ସଂ. ବି—୧। ବ୍ୟାଘ୍ର—1. Tiger. ୨। ରାହୁ—2. The Dragon's head. ୩। କାବ୍ୟର ରସବିଶେଷ; ଭୟ ଯେଉଁ ରସର ସ୍ଥାୟୀଭାବ—3. The sentiment of terror in literature. ଦେ. କ୍ରି. ବିଣ ଓ ବିଶେଷଣର ବିଣ—୧। ଅତ୍ୟନ୍ତ—1. Very much. ୨। ଭୟଙ୍କର ଭାବରେ—2. Awfully.

**ଭୟାପହ**—ସଂ, ବିଣ. ପୁଂ (ଭୟ+ଅପ+ହା ଧାତୁ=ତ୍ୟାଗ କରିବା+
Bhayāpaha କରଣ.ଅ)—୧। ଭୟ ନାଶକ—1. Allaying fear. ୨। ଭୟତ୍ରାତା—2. Saving from danger.
(ଭୟାପହା—ସ୍ତ୍ରୀ)
ସଂ. ବି—୧। ନୃପତି—1. King. ୨। ବିଷ୍ଣୁ—2. Bishṇu.

**ଭୟାବହ**—ସଂ. ବିଣ (ଭୟ+ଆ+ବହ୍ ଧାତୁ+କର୍ତ୍ତୃ.ଅ)—୧।
Bhayābaha ଭୟଜନକ—1. Formidable; terrible. ୨। ବିପଦ ପୂର୍ଣ୍ଣ—2. Fraught with danger; dangerous. ୩। ବିପଦର ଆଶଙ୍କାଜନକ—3. Risky.

**ଭୟାର୍ତ୍ତ**—ସଂ. ବିଣ. ପୁଂ (ଷଷ୍ଠୀ ତତ୍, ଭୟ+ଆର୍ତ୍ତ)—ଭୟ-
Bhayārtta ଦ୍ୱାରା ବିହ୍ୱଳ; ଭୟକାତର—Overwhelmed with fear; terrified; frightened.
[ଭୟାର୍ତ୍ତା—ସ୍ତ୍ରୀ]

**ଭୟାଳୁ**—ସଂ. ବିଣ (ଭୟ+ପ୍ରକୃତି ବିଶିଷ୍ଟାର୍ଥରେ ଆଳୁ)—ଭୀରୁ—
Bhayāḷu Timid; coward; alarmed.

**ଭୟେଣୀ**—ଗ୍ରା. (ପ୍ରାଚୀନ ପଦ୍ୟ) ବି ସ୍ତ୍ରୀ (ସଂ. ଭଗିନୀ. ପ୍ରା. ଭଇଣୀ)—
Bhayeṇi ଭଉଣୀ—Sister. (ଉ—ଦୁଖ ଗାୟେଣୀ, ଦୁହିତା ବୋନ **बहीन** ସହିତରେ, ଏ ମୋର ସାନ ଭୟେଣୀ ପ୍ରାଚୀ. ଗ୍ରନ୍ଥମାଳା।)

**ଭର୍**—ଦେ.ଅ.(ସଂ.ଭୃ ଧାତୁ; କାଳ ବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ)—
Bhar **भर** ତମାମ; ଯାକ—Throughout. (ଯଥା—ଦିନଭର୍ ମୁଁ ଏ କାମରେ ଲାଗି ରହିଛି।)

**ଭର୍‌ଦର୍**—ଗ୍ରାଦେ. (ସମ୍ବଲପୁର) କ୍ରି. ବିଣ. (ତୁଳ. ହି. ଜୋର୍ ତୋର୍)—
Bhar-dar କ୍ଷିପ୍ରଗତିରେ—Briskly. (ଯଥା—ପାଗ ମେଘୁଥ ଦେଖାରୁ ଧାନ କୁଣାକୁଣି ଭର୍‌ଦର୍ ଲାଗିଛି।)

**ଭର୍‌ପୂର୍**—ଦେ. ବିଣ. (ସଂ. ଭରଣ+ସଂ. ପୂର୍ଣ୍ଣ)—ପରିପୂର୍ଣ୍ଣ—
Bhar-pūr **भरपूर** ভরপুর Full; full to the brim.

**ଭର୍‌ଭଙ୍ଗ୍**—ଗ୍ରାଦେ. (ସମ୍ବଲପୁର) ବିଣ—ଅନାବୃତ; ମେଲା—
Bhar-bhaṅg Open; uncovered.

**ଭର୍‌ଭର୍**—ଦେ. ଅ—୧। ବୁଦ୍‌ବୁଦ ଉଠିବାର ଶବ୍ଦ—1. The sound
Bhar-bhar of bubbling. ୨। ଗାଢ଼ ଫେଣଯୁକ୍ତ
**भटभट** ତରଳ ପଦାର୍ଥରେ ପୂର୍ଣ୍ଣ—2. Full of thick slimy or foamy liquid matter.
(ଯଥା—ନଳାଟା ପଙ୍କ ଭର୍‌ଭର୍ ହୋଇଅଛି।)

**ଭରର୍**—ଦେ. ଅ. (ଧ୍ୱନ୍ୟନୁକରଣ)—ଫରର୍; ବହୁକାଳସ୍ଥାୟୀ ଭର୍‌ଭର୍
Bhar-r ଶବ୍ଦ—Imitative sound of fluttering.
(ଭରର୍ ଭରର୍—ଅନ୍ୟରୂପ) **फरर**

**ଭର** ସଂ. ବି (ଭୃ ଧାତୁ=ପୋଷଣ କରିବା+ଭାବ ଅ)—୧। ଭରଣ
Bhara ପୋଷଣ—1. Maintenance. ୨। ନିର୍ଭର; ଅବଲମ୍ବନ—2. Support; reliance. ୩। ଭାର—3. Weight; load; burden. [ଉ—ମସ୍ତାଧି ବର ଭର ବହିଲେ ଗୋ। କବିସୂର୍ଯ୍ୟ ସଙ୍ଗୀତ।] ୪। ଆବିର୍ଭାବ—4. Appearance ୫। ଆଧିକ୍ୟ—5. Excess; abundance. ୬। ଗୌରବ—6. Respect; regard; glory. ୭। ପୂରଣ—7. Filling; fulfilling. ୮। ଆସ୍ଥା; ବିଶ୍ୱାସ—8. Confidence. ୯। ଆଗ୍ରହ—9. Eagerness. ୧୦। ଆଶା—10. Hope. ୧୧। ସମୂହ—11. Multitude; collection. ସଂ.ବିଣ. ପୁଂ—୧। ଭରଣକର୍ତ୍ତା; ଯେ ଭରଣ କରେ—1. Maintaining. [ଦ୍ର—ଏହି ବିଶେଷଣାର୍ଥରେ ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ; ଯଥା—ବିଶ୍ୱମ୍ଭର।] ଦେ.ବିଣ. (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ, ଯଥା—ପଛଭର; ଆଗଭର)-୧। (ଅମୁକ) ଦିଗକୁ ଅଗ୍ରସର ହେଉଥିବା—1. Going or advancing towards (such or such a direction). ୨। (ଅମୁକରେ) ପୂର୍ଣ୍ଣ—2. Full of; full with. (ଉ—ଶ୍ରୀମତୀ ସଙ୍କୁଚିଲେ ଲଜ୍ଜାଭରେ। କବିସୂର୍ଯ୍ୟ, ସଙ୍ଗୀତ।) ୩। (ପେଟକୁ) ପୂର୍ଣ୍ଣ କରିବାକୁ ଯଥେଷ୍ଟ (ଖାଦ୍ୟ)—3. (food) Enough for filling up (one's belly). (ଯଥା—ପେଟଭର ଭୋଜନ।) ୪। (ପିଠିର) ସାମର୍ଥ୍ୟକୁ ଗୃହୀ—4. Equal to the capacity of (one's back). (ଉ—ପେଟଭର ଭୋଜନ ଦେଇ ପିଠିଭର କାମ ନେଲେ ବିନା ଖାଉନ)

**ଭର(ରା)ଉ**—ଦେ. ବି—୧। କ୍ଷତିପୂରଣ—1. Compensation.
Bhara(rā)u ୨। ପୂର୍ତ୍ତି; ପୂର୍ଣ୍ଣ କରିବା; ଭରିବା—2. Filling up. ୩। (ଗଙ୍ଗା ଆଦିକୁ) ବୋଝାଇ କରିବା—3. Loading.
**भरना**
ଦେ. ବିଣ—୧। ପରିପୂରିତ—1. Filled up. ୨। ବୋଝାଇରେ ପୂର୍ଣ୍ଣ—2. Full laden.
**भरीहुई, पुरी** ভরা

ଭରଉ ଦେବା—ଦେ. କ୍ରି—୧ । କ୍ଷତି ପୂରଣ କରିବା—1. To
Bharau debā compensate; to make up for. ୨ ।
मारदेना ପରିପୂର୍ଣ୍ଣ କରିବା—2. To fill up. ୩ । ବୋଝାଇ
भरना ভরা দেওয়া କରିବା—3. To load.

ଭର କରିବା(ରଖିବା)—ଦେ. କ୍ରି—କୌଣସି ବ୍ୟକ୍ତି ବା ବସ୍ତୁଠାରେ
Bhara kariba(rakhibā) ନିର୍ଭର କରିବା—To depend
ভর রাখা उमीद करना on; to be supported by.

ଭରଛନ(ନା)—ଗ୍ରା॰ ବି ( ସ. ଭର୍ତ୍ସନା )—ଭର୍ତ୍ସନା ( ଦେଖ )—
Bharachhana(nā) ভরছন भरछना Bhartsanā (See).

ଭରଜା—ଦେ. ବି—ମୁହାଁମୁହିଁ; ମୁକାବିଲା—Confronting; substan-
Bharajā मुकाबिला মোকাবলা tiation; verification.

ଭରଜା(ଜେ)ଇବା—ଦେ॰ କ୍ରି (ସ. ଭଜ୍ ଧାତୁ)—୧ । ମୁହାଁ
Bharajā(je)ibā କରାଇବା—1. To confront. ୨ ।
ভজান ମୁକାବିଲା କରାଇବା—2. To substantiate a
मुकाबिला करना matter by evidence.
୩ । ସନ୍ତୁଷ୍ଟ କରିବା—3. To satisfy.

ଭରଜା ଭରଜି—ଦେ. ବି—ପରସ୍ପର ସହିତ ମୁହାଁମୁହିଁ ମୁକାବିଲା—
Bharajā bharaji Mutual confronting; substanti-
मुकाबिला ation of a matter between 2 persons.

ଭରଜିବା—ଦେ. କ୍ରି—ଭଜିବା (ଦେଖ)
Bharajibā Bhajibā (See).

ଭରଟ—ସ.ବି(ଭୃ ଧାତୁ+କର୍ତ୍ତୃ.ଅଟ)—କୁମ୍ଭକାର; କୁମ୍ଭାର—Potter.
Bharaṭa ଦେ. ବି ଓ ବିଣ—ଭରାଟ (ଦେଖ)—Bharāṭa (See).

ଭର(ରା,ରୋ)ଟ—ଦେ. ବିଣ ( ସ ଭୃ ଧାତୁ )—କୌଣସି ପଦାର୍ଥଦ୍ୱାରା
Bhara(rā,ro)ṭa ପରିପୂର୍ଣ୍ଣ—Filled up. (ଯଥା—ସେ
ভরাট भरा ଭଣ୍ଡା ଧାନରେ ଭରଟ ହୋଇଛି )

ଭରଣ—ସ. ବି (ଭୃ ଧାତୁ+ଭାବ. ଅନ)—୧ । ପୂର୍ଣ୍ଣ କରିବା; ପୂରଣ—
Bharaṇa 1. Filling up. ୨ । ପୋଷଣ; ପ୍ରତିପାଳନ—
2. Maintenance; support. ୩ । ଧାରଣ—
3. Holding; bearing. ୪ । (+କରଣ ଅନ)
ବେତନ—4. Salary; pay. ୫ । ମିଶ୍ର ଧାତୁବିଶେଷ;
ଟଙ୍କ—5. A mixed metal; bronze. ଦେ.
ବି—୧ । ଶସ୍ୟର ପରିମାଣ ବିଶେଷ—1. A measure
of corn. [ ଦ୍ର—୧ଭରଣ=୪ପୌଟି=୮୦ ଗଉଣି ।]
୨ । ଏକ ଖଣ୍ଡ ଗାଡ଼ିରେ ବୋଝାଇ ହେବା ପରିମାଣ
—2. A cartload. ୩ । ( ପ୍ରାଚୀନ
ପଦ୍ୟ ) ( ଅଳତା ଆଦି ) ଲଗାଇବା—3. Painting
(with lac dye or other dye ). (ଉ—ତଥି
ସୁରେଖିତ ଅଳତାଭରଣ ଦେଖିଲେ ରଞ୍ଜଇ ମନ । ପ୍ରାଚୀ,
ଲବଣ୍ୟମଞ୍ଜରୀ ।) ପ୍ରାଦେ( ଗଞ୍ଜାମ ) ବି—୧ । ଏକ ଏକର
ଭୂମିର ଏକ ପଞ୍ଚମାଂଶ ବା ୨୦ ଡେସିମଲ୍ ଜମି—
1. One-fifth of an acre. [ ଦ୍ର—ଗଞ୍ଜାମରେ
ଏକ ଏକର=୧୦୦ ଡେସି=୫ ଭରଣ । ସ୍ଥାନେ
ସ୍ଥାନେ ୨୫ ବା ୩୨ ଡେସିରେ ମଧ୍ୟ ଏକ ଭରଣ
ଜମି ହୋଇଥାଏ । ] ୨ । ଧାନ ଆଦି ଶସ୍ୟର
ପରିମାଣ ବିଶେଷ—2. A measure of corn.
[ଦ୍ର—୨୦ ନୌତି=୮୦ ପୌଟି=୧ ଭରଣ । ସ୍ଥାନେ
ସ୍ଥାନେ ୩୦ ବା ୩୨ ନୌତିରେ ୧ ଭରଣ ହୁଏ ।]

ଭରଣ ପୂରଣ—ଦେ.ବି—( ସହଚର;ସ.ଭରଣ + ପୂରଣ)—ପୂର୍ଣ୍ଣକରିବା
Bharaṇa pūraṇa ভরণপূরণ भरपूर—Fulfilment.

ଭରଣ ପୋଷଣ—ସ. ବି (ଏକାର୍ଥକ ସହଚର)—୧ । ପ୍ରତିପାଳନ—
Bharaṇa poshaṇa 1. Maintenance. ୨ । ଖୋରାକ
ପୋଷାକ ଦେବା—2. Giving food and clothes.

ଭରଣପୋଷଣ କରିବା—ଦେ. କ୍ରି—ପ୍ରତିପାଳନ କରିବା—
Bharaṇaposhaṇa kariba ভরণপোষণকরা To
भरण पोषण करना maintain; to support.

ଭରଣ ଭରଣ—ଦେ. ବିଣ—ବହୁ ଭରଣ ପରିମିତ—
Bharaṇa bharaṇa Many Bharaṇas of.

ଭର(ରି)ଣା—ଦେ. ବି (ସ. ଭରଣ)—୧ । ପୂର୍ତ୍ତି—1. Filling up.
Bhara(ri)ṇā भरना; भरन ୨ । ପୂର୍ଣ୍ଣତା—2. Fullness.
୩ । କୌଣସି ପାତ୍ର ପୂର୍ଣ୍ଣ ହେବା ନିମନ୍ତେ ଆବଶ୍ୟକ
ପଦାର୍ଥର ପରିମାଣ—3. Quantity required to
fill up receptacle; supplement.
ভরনী ୪ । କ୍ଷତିପୂରଣ—4. Compensation.

ଭର(ରି)ଣା କରିବା—ଦେ. କ୍ରି—୧ । ପୂର୍ଣ୍ଣ କରିବା—1 To fill up a
Bhara(ri)ṇā karibā thing; to supplement.
ভরন করনা ୨ । କ୍ଷତି ପୂରଣ କରିବା—2. To compen-
भर देना sate

ଭର(ରି)ଣାକୁ—ଦେ. କ୍ରି. ବିଣ—ଯୁମିଲାକୁ; କୌଣସି ହିସାବ ପୂର୍ଣ୍ଣ
Bhara(ri)ṇāku ହେବା ନିମନ୍ତେ—Towards an
बाबतमे account. (ଯଥା—ମୋର ଦେଣା ଭରଣାକୁ ମୁଁ
বাবদে ମହାଜନଙ୍କୁ ଆଜି ଟ ୨୫୯ ଦେଲି ।)

ଭରଣି—ଦେ. ବି (ସ. ଭରଣ)—୧ । ପୂର୍ଣ୍ଣ କରିବା କ୍ରିୟା—1. Act
Bharaṇi भरना of filling up. ୨ । ଲୁଗାର ଅଡ଼
ভরনী बाना ବାଗର ସୂତା—2. The woof-thread.

ଭରଣି କରିବା—ଦେ. କ୍ରି—୧ । ପୂର୍ଣ୍ଣ କରିବା—1. To fill up.
Bharaṇi karibā ୨ । କ୍ଷତିପୂରଣ କରିବା—
ভরণকরা भरन करना 2. To compensatte.
(ଭରଣି ଦେବା—ଅନ୍ୟରୂପ)

ଭରଣୀ—ସ. ବି (ଭରଣ+ଈ)—ଦ୍ୱିତୀୟ ନକ୍ଷତ୍ର; ସପ୍ତବିଂଶତି ନକ୍ଷତ୍ର
Bharaṇī ମଧ୍ୟରୁ ୩ ଗୋଟି ତାରକାଯୁକ୍ତ ତ୍ରିକୋଣାକାର ନକ୍ଷତ୍ର
ବିଶେଷ; ୨ୟ ନକ୍ଷତ୍ର—The 2nd asterism.
(ନକ୍ଷତ୍ର ତଳେ ଟିକା ଦେଖ
ପ୍ରାଦେ. (ସୋନପୁର) ବି—ଅଶ୍ୱିନ ମାସରେ ସମଲାଇ
ଠାକୁରାଣୀଙ୍କୁ ପୂଜା କରିବା ପାଇଁ ବଜା ଯିବା ତେପଟା
ଢୋଲର ଉଚ୍ଚଟ ଓ ଛନ୍ଦାଙ୍କ ଅନୁସାରେ ଏକ ଥର ବାଦନ-

The cadenced beating or fanfare of flat drums according to a fixed tune in order to make Samal<u>ai</u> Ṭhākurāṇi possess a person. [ଦ୍ର—ଏହିପରି ଶୋଳ ଭରଣୀ ପୂର୍ଣ୍ଣ ହେଲେ ଠାକୁରାଣୀ କାଳସୀ ଠାରେ ଉଭା ହୁଅନ୍ତି ।]
ଗ୍ରାଦେ. (ଗଞ୍ଜାମ) ବି— ଫରୁଆ—A gallipot.

ଭରଣୀଭୂ—ସଂ. ବି (ଭରଣୀ=ନକ୍ଷତ୍ର ବିଶେଷ + ଭୂ = ଜାତ)—ରାହୁଗ୍ରହ- Bharaṇibhū The Dragon's head.

ଭରଣୀୟ—ସଂ. ବିଣ (ଭୃ ଧାତୁ+କର୍ମ.ଅନୀୟ)—ଭର୍ତ୍ତବ୍ୟ; ପୋଷଣୀୟ- Bharaṇiya Fit to be nourished.

ଭରଣ୍ୟ—ସଂ. ବିଣ (ଭରଣ+ଯ)—ଭରଣୀୟ; ପ୍ରତିପାଳ୍ୟ—Fit to Bharaṇya be nourished. . ସଂ. ବି—ବେତନ; ଦରମା— Pay;salary.

ଭରଣ୍ୟଭୁକ୍—ସଂ. ବିଣ (ଭରଣ୍ୟ+ଭୁଜ୍ ଧାତୁ=ଭୋଜନ କରିବା+ Bharaṇyabhuk କର୍ତ୍ତୃ କ୍ୱିପ୍; ଭରଣ୍ୟଭୁଜ;୧ମା. ୧ବ)—ବେତନ ଭୋଗୀ (କର୍ମଚାରୀ)—(a servant) Getting pay; salaried (servant.)

ଭରଣ୍ୟା—ସଂ. ବି. ସ୍ତ୍ରୀ (ଭରଣ୍ୟ+ଆ)—ଭରଣ୍ୟ; ବେତନ— Bharaṇyā Pay; salary.

ଭରଣ୍ଡ—ସଂ.ବି (ଭୃ ଧାତୁ+କର୍ତ୍ତୃ ଅଣ୍ଡ)—୧। ପ୍ରଭୁ, ସ୍ୱାମୀ—1. Lord; Bharaṇḍa master. ୨ । ଭର୍ତ୍ତା; ସ୍ୱାମୀ—2. Husband. ୩ । ରାଜା—3. King. ୪ । ବୃଷ—4. Bull. ୫ । କୃମି—5. Maggot; worms. ଦେ. ବି—ମୁଖବ୍ରଣ ବିରଣ୍ଡ—A boil on the face.

ଭରତ—ସଂ. ବି—(ଭୃ ଧାତୁ+କର୍ମ. ଅତ)—୧ । ଦଶରଥ ରାଜାଙ୍କର Bharata ତୃତୀୟ ପୁତ୍ର—1. The third son of Daśaratha ୨ । ରାଜର୍ଷି ବିଶେଷ—2. Name of a saintly king. ୩ । ଶକୁନ୍ତଳା ଗର୍ଭଜାତ ଦୁଷ୍ମନ୍ତ ରାଜାଙ୍କ ପୁତ୍ର (ପୂର୍ବ ନାମ ସର୍ବଦମନ)—3. Name of the son of Dushmanta [ଦ୍ର—ଏହାଙ୍କ ନାମରୁ ଭାରତବର୍ଷ ନାମ ହୋଇଅଛି ।] ୪ । ବ୍ରାହ୍ମଣକୁମାର ବିଶେଷ; ଜଡ଼ ଭରତ—4. Name of a Brāhmaṇa. [ଦ୍ର—ଜଡ଼ ଭରତ ଦେଖ । ]
୫ । ଭରତ ରାଜାଙ୍କ ବଂଶ—5. The race of king Bharata. ୬ । ସଙ୍ଗୀତ ଓ ନାଟ୍ୟ ଶାସ୍ତ୍ରର ପ୍ରଥମ ପ୍ରବର୍ତ୍ତକ ମୁନି—6. Name of the sage who first introduced music. [ ଦ୍ର—ଏହାଙ୍କ ନାଟ୍ୟ ଶାସ୍ତ୍ର ଗ୍ରନ୍ଥ ତୃତୀୟ ଶତାବ୍ଦୀର ଓ ଏଥିରେ ଉଡ୍ର ବିଭାଷାର ଉଲ୍ଲେଖ ଅଛି । ]
୭ । ସଙ୍ଗୀତ ଓ ନାଟ୍ୟଶାସ୍ତ୍ର—7. The science of dancing and music. ୮ । ନଟ—8. An actor. ୯ । ତନ୍ତୁବାୟ; ତନ୍ତୀ—9. Weaver. ୧୦ । ବ୍ୟାଧ—10. Hunter. ଦେ. ବି—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ଭରଦ୍ୱାଜ ବା ଭରତିଆ ପକ୍ଷୀ—2. Skylark. [ ଉ—ଶୁଭନ୍ତି ଉଦାସ ଭରତନାଦସ୍ୱନ ଗହଳପତ୍ର ଉଡ଼ାଲେ । ନନ୍ଦକିଶୋର ଶର୍ମିଷ୍ଠା । ]

ଭରତ ଖଣ୍ଡ—ସ. ବି—ଭାରତବର୍ଷ—India. Bharata khaṇḍa

ଭରତ ପୁତ୍ରକ—ସ. ବି ( ଭରତ=ନାଟ୍ୟଶାସ୍ତ୍ର ପ୍ରଣେତା + ପୁତ୍ର + Bharata putraka ତୁଲ୍ୟାର୍ଥରେ କ )—୧ । ନାଟ୍ୟକଳା ବ୍ୟବସାୟୀ—1. A Professional musician. ୨ । ନଟ; ଅଭିନେତା—2. An actor.

ଭରତପୁର—ଦେ. ବି—ଭରଥପୁର (ଦେଖ) Bharatapura भरतपुर ভরতপুর Bharathapura (See)

ଭରତର୍ଷଭ—ସ.ବିଣ ଓ ବି(ଭରତ+ଋଷଭ)—ଭରତବଂଶୀୟ ରାଜାମାନଙ୍କ Bharatarshabha ମଧ୍ୟରେ ଶ୍ରେଷ୍ଠ—Chief amongst the descendants of king Bharata.

ଭରତ ସେଣ—ଦେ. ବି ( ନାମ )—ଜନୈକ ଓଡ଼ିଆ କବି—An Bharata sheṇa Oriya poet. [ ଦ୍ର—ଏ ଗଞ୍ଜାମ ଜିଲ୍ଲା ଧରାକୋଟ ଦୁର୍ଗରେ ଜନ୍ମଗ୍ରହଣ କରିଥିଲେ; ଜାତିରେ ଶୂଦ୍ର; ଏ ଧରାକୋଟ ରାଜା ରଘୁନାଥ ସିଂହଙ୍କ ସମୟରେ (୧୮୬୦ ଖ୍ରୀଷ୍ଟାବ୍ଦରେ) ଜୀବିତ ଥିଲେ । 'ସୁଲୋଚନା ପରିଣୟ' ଓ 'ସୁଭଦ୍ରା ପରିଣୟ' ଏହାଙ୍କ ରଚିତ କାବ୍ୟ । ତାରିଣୀ, ଉତ୍କଳ ସାହିତ୍ୟ ଇତିହାସ । ]

ଭରତା—ଦେ. ବି—୧ । ( ପଦ୍ୟ ) ( ସ, ଭର୍ତ୍ତା )—ସ୍ୱାମୀ; ପତି— Bharatā 1. Husband. [ ଉ—ଭରତାସେବା ବିନା भरता ভাতার ଅନ ମତେ ତାଙ୍କୁ, ନାହିଁ ଗତି ଜାଣ ସଂସାରୁ ତରିବାକୁ । କୃଷ୍ଣସିଂହ. ମହାଭାରତ. ବନ । ] ୨ । ଭରଥା (ଦେଖ) —2. Bharathā ( See ).

ଭରତାଗ୍ରଜ—ସ. ବି ( ୬ଷ୍ଠୀ ତତ୍; ଭରତ + ଅଗ୍ରଜ )—ରାମଚନ୍ଦ୍ର— Bharatāgraja Rāmchandra.

ଭରତି—ଦେ. ବିଣ ( ସ· ଭୃ ଧାତୁ )—ପରିପୂର୍ଣ୍ଣ—Filled up. Bharati [ ଉ—ଅକାରଣ ପରାଗରେ ଜଗତ କରିଅଛୁ ଭରତି । (ଭର୍ତ୍ତି—ଅନ୍ୟରୂପ) କବିସୂର୍ଯ୍ୟ. ସଙ୍ଗୀତ । ] ଦେ. ବି—୧ । भर्ती ପୂର୍ତ୍ତି—1. Filling up. ୨ । ପୂର୍ଣ୍ଣତା—2. ভরতি Fullness ୩ । ପ୍ରବେଶ କରଣ—3. Admission. ভর্তি ୪ । ବିଦ୍ୟାଳୟରେ ପଢ଼ିବା ପାଇଁ ନାମ ଲେଖାଇବା— 4. Admission into a school.

ଭରତିଆ—ଦେ. ବି (ସ. ଭରଦ୍ୱାଜ)—ଖାଖାଶ୍ରୟୀ ବର୍ଗର ପକ୍ଷି ବିଶେଷ— Bharatiā The skylark; pipit; Alauda Arvensis. ভারই [ ଉ—ଭରତିଆ ରୂତେ ମୁଖର ସେ ଟଙ୍କ, ଭୂମି ଅନ୍ତ- लावा; लवा ରମି ପଥେ । ରାଧାନାଥ. ପାର୍ବତୀ । ] [ ଦ୍ର— ଏହା ୮।୯ ଅଙ୍ଗୁଳ ଲମ୍ବା; ଏହାର ପକ୍ଷ ଖଇରା; ମୁଣ୍ଡରେ ଝୁଣ୍ଟି ଜଟ; ଅଣ୍ଡା ସରୁ । ଏ ପଡ଼ିଆରେ ବସା କରେ ଏବଂ ସିଧା ମାରି ଭୂଇଁରୁ ଅକାଶକୁ ସିଧା ହୋଇ ଉଠେ । ପ୍ରବାଦ ଅଛି ଯେ ପ୍ରଳୟକାଳରେ ଏହାର ବସା ଉପରେ

ବଢ଼ିପାଣି ମାଡ଼ି ଯାଇ ୭ ତାଳ ପାଣି ହୋଇଗଲା; ମାତ୍ର ଭଗବାନ୍ ଏହାଙ୍କୁ ସେ ପାଣିରୁ ବଞ୍ଚାଇଲେ । ଆହୁରି ମଧ୍ୟ ପ୍ରବାଦ ଅଛି ଯେ ଭୂମିରେ ଭରଦ୍ୱାଜ ପକ୍ଷୀର ବସା ନ ଥିବାରୁ ଏ ସର୍ବଦା ଆକାଶରେ ଉଡ଼ି ବୁଲୁଥାଏ ଏବଂ ଆକାଶରେ ଉଡ଼ୁଥିବା ବେଳେ ଡିମ୍ବ ଛାଡ଼ିଲେ ଡିମ୍ବ ଭୂଇଁରେ ପଡ଼ି ଫାଟି ଯାଏ । ସେଥିରୁ ଯେଉଁ ପିଲା ଜନ୍ମ ହୁଏ ସେ ପୁଣି ମାଆ ପାଖକୁ ଆକାଶକୁ ଉଡ଼ିଯାଏ । ]

ଭରତି କରିବା—ଦେ. କ୍ରି—୧ । ପୁରାଇବା—1. To thrust ୨ । Bharati karibā ପୂର୍ଣ୍ଣ କରିବା—2. To fill up. ୩ । ( ଭର୍ତ୍ତି କରିବା—ଅନ୍ୟରୂପ ) ପ୍ରବେଶ କରାଇବା—3. To admit. ୪ । ବିଦ୍ୟାଳୟରେ ପଢ଼ିବାପାଇଁ ଭরতি করা ଛାତ୍ରର ନାମ ଲେଖିବା—4. To admit a भर्तीकरना student to a school.

ଭରଥ—ଗ୍ରା. ବି ( ସଂ. ଭରତ )—୧ । ଭରତ ( ଦେଖ )—1. Bharatha Bharata ( See ) ୨ । ଭରତ ନାମକ ଭର୍ତ୍ତିଆ, ଭରଦ୍ଧଆ, ଭରଥିଆ } ଅନ୍ୟରୂପ ବ୍ୟକ୍ତିର ଡାକ ନାମ—2. Name for calling Bharata. ୩ । ଧାତୁ ବିଶେଷ—3. A kind of metal. भरथ

ଭରଥ ପୁର—ଦେ. ବି (ନାମ)—ରାଜପୁତାନା ଅନ୍ତର୍ଗତ ରାଜ୍ୟବିଶେଷ— Bharatha pura A state in Rajputana. [ ଦ୍ର—ଏଠାର ରାଜା ଜାଠବଂଶୀୟ । ଭରଥପୁର ଦୁର୍ଗ କାରିଗର-କୌଶଳ ଯୋଗୁଁ ଅଭେଦ୍ୟ ଓ ଅଜେୟ ବୋଲି ଖ୍ୟାତିଲାଭ କରିଥିଲା । ଏଠାରେ ଅନେକ ହିନ୍ଦୁ ଦେବଦେବୀଙ୍କ ମନ୍ଦିର ଅଛି । ମଦନମୋହନ, ତୀର୍ଥଦର୍ଶନ । ]

ଭରଥା—ଦେ. ବି—ଆଳୁ, କଦଳୀ, ବାଇଗଣ ଆଦିକୁ ନିଆଁରେ ପୋଡ଼ି ବା ସିଝା କରି ତାକୁ ଚକଟି ଚଟିରେ ତେଲ ଓ Bharathā ମସଲାଆଦି ଗୋଳାଇ ଯେଉଁ ବ୍ୟଞ୍ଜନ ପ୍ରସ୍ତୁତ କରାଯାଏ—Fruits boiled with water or in fire and then made into a paste with spices added to it and used as curry. চাটনী, কচটা भरद्दावा, भरता

ଭର ଦେବା—ଦେ. କ୍ରି—ଭରା ଦେବା ( ଦେଖ ) Bhara debā भरदेना ভরদেওয়া Bharā debā ( See )

ଭରଦ୍ୱାଜ—ସଂ. ବି. (ଭର + ଦ୍ୱା + ଜ=ଜାତ, କିମ୍ବା ଭୃ ଧାତୁ=ଭରଣ Bharadwāja କରିବା + ଅତ୍ + ବାଜ; ଅଙ୍ଗିରସ ପତ୍ନୀ ମମତାଙ୍କୁ କହିଥିଲେ—ହେ ମମତେ ! ଆମ୍ଭେ ଉଭୟ ଭ୍ରାତାଙ୍କ ଦ୍ୱାରା ଉତ୍ପନ୍ନ ଏହି ପୁତ୍ରକୁ ଭର, ଅର୍ଥାତ୍ ପାଳନ କର— ଏଣୁ ଏହାଙ୍କ ନାମ ଭରଦ୍ୱାଜ)—୧ । ଗୋତ୍ର ପ୍ରବର୍ତ୍ତକ ମୁନି ବିଶେଷ—1. Name of a sage who founded a race. [ଦ୍ର—ଏ ମହାରାଜା ଭରତଙ୍କ ପାଳିତ ବୃହସ୍ପତିଙ୍କ ପୁତ୍ର ଓ ଦ୍ରୋଣାଚାର୍ଯ୍ୟଙ୍କ ପିତା । ପ୍ରୟାଗରେ ଏହାଙ୍କ ଆଶ୍ରମ ଥିଲା ] ୨ । ଭରଦ୍ୱାଜ ପକ୍ଷୀ—2 The sky lark. ୩ । ଉଦଉଦକିଆ ଚଢ଼େଇ—3. The blue jay.

ଭରପେଟ—ଦେ. ବିଣ ଓ କ୍ରି ବିଣ—ଉଦରପୂର୍ଣ୍ଣ ପୂର୍ବକ ( ଭୋଜନ ); Bharapeṭa भरपेट পেটভর ପେଟଭରି—Bellyful.

ଭରଭରା—ଦେ. ବି—ଭୁଭୁଙ୍ଗା; କର୍କଶନାଦକାରୀ ତୂରୀ ବିଶେଷ— Bharabharā A trumpet producing a harsh sound. घुघुड़, तुरही তূরী

ଭରମ—ସଂ. ବି. (ଭୃ ଧାତୁ + କର୍ତ୍ତୃ. ଅମ)—ଭର୍ତ୍ତା; ଭରଣପୋଷଣ କର୍ତ୍ତା— Bharama Supporter. ଦେ. ବି (ସଂ. ସମ୍ଭ୍ରମ)—୧ । ସମ୍ଭ୍ରମ; ମାନ; ମର୍ଯ୍ୟାଦା—1. Respect. ୨ । ମହତ୍ତ୍ୱ; ଇଜ୍ଜତ—2. Prestige; credit. ୩ । (ସଂ. ଭ୍ରମ) ଭ୍ରମ; ଭ୍ରାନ୍ତି—3. Mistake. ୪ । (ସଂ. ଭର୍ମ) ସୁନା—4. Gold. ଗ୍ରା. ବିଣ—ଭ୍ରାନ୍ତ—Mistaken; (ଉ—ଋଣୀ ହୋଇଲି ମୁଁ ଆଜେଶଙ୍କଠାରେ କରିଥିଲିରି କିସ୍ୟମ, ଅମର ମୋହନ ମାନ ନ କରିବୁ ଭୂତ ନୋହିଲୁ ଭରମ । ଉକ୍ତ. ପ୍ରେମସୁଧା ନିଧି ।) ভরম भरम

ଭରମଣ—ଗ୍ରା. ବି. (ସଂ. ଭ୍ରମଣ)—ଭ୍ରମଣ— Bharamaṇa भरमना Travelling.

ଭରମ ରଖିବା—ଦେ. କ୍ରି—କୌଣସି ବ୍ୟକ୍ତିର ଇଜ୍ଜତ ବଞ୍ଚାଇବା ବା Bharama rakhibā ସମ୍ଭାଳିବା—To save the prestige of a person; to save a person from loss of credit. সংভ্রম রাখা भरम(मा) रखना

ଭରମ ସରମ—ଦେ. ବି (ସଂ. ଭ୍ରମ+ଫା. ଶର୍ମ)—ସମ୍ମାନ ଓ ଲଜ୍ଜା— Bharama sarama ভরম সরম Respect and modesty.

ଭରମା(ମେ)ଇବା—ଦେ. କ୍ରି—୧ । ଭ୍ରମଣ କରାଇବା— Bharamā(me)ibā 1. To cause to walk. ୨ । ବୁଲାଇବା; ଘୁରାଇବା—2. To whirl. ୩ । ଭ୍ରମରେ ପକାଇବା—3. To cause to err. ভ্রমান भरमाना

ଭରମିବା—ଦେ. କ୍ରି ( ସଂ. ଭ୍ରମ ଧାତୁ )—୧ । ଭ୍ରମିବା; ବୁଲିବା— Bharamibā 1. To walk. ୨ । ଇତସ୍ତତଃ ଭ୍ରମଣ କରିବା 2. To wander about. ୩ । (ମଥା) ଭ୍ରମଯୁକ୍ତ ହେବା ବା ବୁଲାଇବା—3. To reel. ୪ । ଘୂରିବା—4. To spin round; to revolve. ୫ । ବ୍ୟାକୁଳ ହେବା—5. To be distressed (ଉ—ଭରମି ନ ଯା, ଭୁ ମନ୍ମଥ ବାଣରେ । କବିସୂର୍ଯ୍ୟ. କଗୋପାଳକୃଷ୍ଣ. ଭ ଗୀତ ।) भरमना ভ্রমা

ଭରମ୍ଭର—ସଂ. ବି (ଭର° + ଭର)—୧ । ପୂର୍ଣ୍ଣ ଆସ୍ଥା; ସମ୍ପୂର୍ଣ୍ଣ ନିର୍ଭର— Bharambhara 1. Full reliance or trust. ୨ । ପରସ୍ପର ଉପରେ ପରସ୍ପରର ଆସ୍ଥା—2. Mutual confidence.

ଭରସା—ଦେ. ବି ( ସଂ. ବର + ଆଶା )—୧ । ପ୍ରତ୍ୟୟ; ଆସ୍ଥା; ବିଶ୍ୱାସ; Bharasā ନିର୍ଭରତା—1. Reliance; trust. ୨ । ବିଶ୍ୱାସଶୀଳତା—2. Confidence. ୩ । ଆଶା— 3. Hope; expection. (ଉ—ନ ଫେଙ୍ଗ ପୁଣି ହସ୍ତ, ସୁନ୍ଦର ନୃହଇତି, ବିଧିର ଭରସା କହାଅ ଅପରମିତ । କବିସୂର୍ଯ୍ୟ. ସଙ୍ଗୀତ ।) ୪ । ଆଶ୍ରୟ; ଅବଲମ୍ବନ— 4. Shelter; refuge. ୫ । ହିମତ୍—5. Encou- ভরসা भरोसा

ragement. ୬ । ସାହସ—6. Courage. (ଉ—ତାକମଧ୍ୟମାଙ୍କୁ ତାଙ୍କ ଅର୍ଜିବାକୁ ଏଠାକୁ ଯାହା ଭରସାକରିପୂର୍ବ୍ୟ. କପୋଗ୍ରାଚନ୍ଦ୍ର. ଲ. ଗୀତ।) ୭ । ଆଶାର ସ୍ଥଳ—7. Place or resort of one's hopes; one's last resort or hope.

ଭରସା କରିବା—ଦେ. କ୍ରି—୧ । ଆଶା କରିବା—1. To hope. Bharasā karibā ୨ । ବିଶ୍ୱାସ କରିବା—2. To believe. भरोसा करना ୩ । ଆଶ୍ରା କରିବା—3. To rely on; to ভরসাকরা depend upon;

ଭରସା ଖଟିବା—ଦେ. ବି—କୌଣସି କାର୍ଯ୍ୟ କରି ପାରିବାକୁ ସାହସ Bharasā khaṭibā ହେବା—Having the courage भरोसा होना ভরসাপাওয়া to do a thing; (ଭରସା ପାଇବା—ଅନ୍ୟରୂପ) mustering of courage.

ଭରସା ଛାଡ଼ିବା—ଦେ. କ୍ରି—ଆଶା ତ୍ୟାଗ କରିବା—Bharasā chhāṛdibā To give up hope; to ভরসা ছাড়া भरोसा छोड़ना lose hope. (ଭରସା ତେଜିବା—ଅନ୍ୟରୂପ)

ଭରସା ଦେବା—ଦେ. କ୍ରି—୧ । ଆଶାନ୍ୱିତ କରାଇବା—Bharasā debā 1. To raise hope. (ଭରସା[ଦେ]ଇବା—ଅନ୍ୟରୂପ) ୨ । କୌଣସି ବ୍ୟକ୍ତିଙ୍କୁ ବଚନ ভরসা দেওয়া ଦେବା—2. To promise. ୩ । ସାହସ ଦେବା—भरोसा देना 3. To encourage; to infuse courage. ୪ । ଆଶ୍ରୟ ଦେବା—4. To patronise.

ଭରସାନ୍ୱିତ—ଦେ. ବଣ—ଆଶାନ୍ୱିତ; ଆଶାଯୁକ୍ତ—Bharasānwita Hopeful; expectant.

ଭରସା ପାଇବା—ଦେ. କ୍ରି—ଅପର ବ୍ୟକ୍ତିଠାରୁ ସାହସ ବା ଦମ୍ଭ Bharasā pāibā ପାଇବା—To get hope; to be en- ভরসা পাওয়া couraged by another, ଦେ. ବି—भरोसा पाना ଭରସା ଖଟିବା—Having the courage to do a thing.

ଭରସା ବାନ୍ଧିବା—ଦେ. କ୍ରି—ସାହସ ବାନ୍ଧିବା; କୌଣସି କାର୍ଯ୍ୟ କରିବା Bharasā bāndhibā ବିଷୟରେ ସାହସୀ ହେବା—To ভরসা বাঁধা muster courage to do a thing. भरोसा बाँधना

ଭରସିବା—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ସାହସୀ ହେବା—Bharasibā 1. To be bold enough to do a thing; ভরসা করা to venture to do a thing; to have भरोसा करना courage. ୨ । କୃତସଙ୍କଳ୍ପ ହେବା—2. To resolve to do a thing. ୩ । କୌଣସି କାର୍ଯ୍ୟ କରିବାକୁ ହେମନ୍ତ ବାନ୍ଧିବା—3. To gird up one's loins to do thing.

ଭରହ—ଦେ. ବି—ବାଦ୍ୟବିଶେଷ—A kind of musical Bharaha instrument.

ଭରା—ଦେ. ବଣ (ସଂ. ଭୃ ଧାତୁ)—୧ । ପରିପୂର୍ଣ୍ଣ—1. Full; filled Bharā up. [ଉ—ଡେଣ୍ଟ ମୋର ଅଙ୍କ ଭରା ଅଳଙ୍କ, ମଧୁସୂଦନ ভরা ଉତ୍କଳଗ୍ରାମଗୀତ । ] ୨ । ପୂର୍ଣ୍ଣରୂପେ ବୋଝାଇ କରା-भराहुआ ଯାଇଥିବା—2. Fully laden; loaded. [ଯଥା—ଭରା ଡଙ୍ଗା ।] ଦେ. ବି—(ସଂ. ଭାର)—୧ । ଠେଁସ; ଡିଗ୍; ଆଶ୍ରା—1. Prop; support. [ଉ—ଅଣୁଥାଇ ভর ଭରା ଦେଇ ପୁଣ ଉଠନ୍ତି । ବିଶ୍ୱନାଥ. ବିଚିତ୍ର ରାମାୟଣ । ] ୨ । ବୋଝ; ଭାର—2. Load. ୩ । ଡଙ୍ଗା ଆଦିର ভার ବୋଝ—3. Cargo of a boat etc. ୪ । लदौनी ଭରିବା; ପୂର୍ଣ୍ଣ କରିବା—4. Filling up

ଭରା(ରେ)ଇବା—ଦେ. କ୍ରି. ( ଭରିବା କ୍ରିୟାର ଣିଜନ୍ତ ରୂପ )—Bharā(re)ibā ୧ । ପୂର୍ଣ୍ଣ କରାଇବା—1. To cause to ভরান; भरवाना be filled up. ୨ । ପୂର୍ଣ୍ଣ ହେବା—2. To be filled up. ୩ । ପିନ୍ଧାଇବା—3. To cause to wear or put on (ଉ—ସନାଦ କଙ୍କିଣୀ କଣ୍ଟକେ ପୁଣି ଜୀବ ଥିଲେ ଭରାଇବ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।) ୪ । ସମ୍ଭାଇବା—4. To suffice; to be contained. (ଯଥା—ଏ ଘରରେ ଏତେଣେ ଗୁଡ଼ିଲ ଭରେଇବ ନାହିଁ ।)

ଭରାଉ—ଦେ ବି—୧ । ଭରଣା—1. Complement; filling Bharāu up; that which makes up a deficiency. ୨ । ନିଶା—2. Intoxication.

ଭରା(ରୋ)ଟ—ଦେ. ବି—ପୂର୍ତ୍ତି; ପୂର୍ଣ୍ଣ କରିବା—Filling up. Bharā(ro)ṭa ভরাট; भराइ ଦେ. ବଣ—ପରିପୂରିତ—Filled up.

ଭରାବୁଡ଼ି—ଦେ. ବି—୧ । ପୂର୍ଣ୍ଣରୂପେ ବୋଝାଇ ହୋଇଥିବା ଡଙ୍ଗା Bharāḍubi ବୁଡ଼ିଯିବା—1. The sinking of a ভরাডুবী laden boat.

ଭରା ଦେବା—ଦେ. କ୍ରି (ସଭାର)—୧ । କୌଣସି ବସ୍ତୁ—(ଯଥା—ଯଷ୍ଟି, Bharā debā କାଠ ) ଉପରେ ଆଶ୍ରା ରଖିବା ବା ନିର୍ଭର भारादेना କରିବା—1. To depend upon; to rely ভরাদেওয়া on a prop. (ଯଥା—ସେ ବାଡ଼ିରେ ଭରା ଦେଇ ଚାଲୁଛି ।) ୨ । ଠେଁସ ଲଗାଇବା—2. To prop up. (ଯଥା—ସେ କାନ୍ଥରେ ଦୁଇ ଖଣ୍ଡ ବାଉଁଶ ଭରା ଦେବାରୁ ତାହା ପଡ଼ି ନ ଯାଇ ଠିଆ ହୋଇ ରହିଛି ।) ୩ । କୌଣସି ବ୍ୟକ୍ତି ଉପରେ କୌଣସି କାର୍ଯ୍ୟର ଭାର ନ୍ୟସ୍ତ ବା ଅର୍ପଣ କରିବା—3. To lay the burden or responsibility of a work on any person.

ଭରଣ୍ଡି—ଦେ. ବି (ସ. ଭୃଧାତୁ)—ଢିଙ୍କି ମୁଣ୍ଡରେ ଭୂମିରେ ଥିବା ଗାତ Bharāṇḍi (ଯହିଁରେ କୁଟା ହେବା ଜିନିଷ ପକାଇବାକୁ ହୁଏ ଏବଂ ঢেঁকির গর্ত; उखड़ ଯାହା ମଧ୍ୟରେ ଢିଙ୍କିର ମୂଷଳ ପଡ଼େ)—The receiving hole in the ground on which the pestle of a Dhinki pounds the grains. (ଉ—ଭଣ୍ଡାର ଭରଣ୍ଡିରେ ବିସ୍ତୃତ ବିଗାଡ଼ନ୍ତି—ଶିଶୁବେଦ ।)

ଭରନାହା(ଆ)—ଦେ. ବି—ପୂର୍ଣ୍ଣ ବୋଝାଇ ହୋଇଥିବା ନୌକା—Bharā nāhā (ā) A fully laden boat. ভরানাআ; भरीहुइनाव (ଭରାଡଙ୍ଗା, ଭରା ନା—ଅନ୍ୟରୂପ

ଭରା ପେଟ—ଦେ. ବି—୧ । ପୂର୍ଣ୍ଣଭୁକ୍ତ ଉଦର—1. Full belly.
Bharā peṭa ୨ । ପୂର୍ଣ୍ଣଗର୍ଭ—2. A womb with a
ଭରା ପେଟ **भराहुआ पेट** fully developed child in it.

ଭରାଭର(ରି)—ଦେ. ବିଣ (ସ. ଭୃ ଧାତୁ, ଭରତ)—୧ । ଭରପୂର;
Bharābhara(ri) ପରିପୂରିତ—1. Completely full;
ভরপুর; **भराभर, भरति** filled up to the brim. ୨ ।
ବହୁ ବ୍ୟକ୍ତିଙ୍କ ଦ୍ୱାରା ପୂର୍ଣ୍ଣ—2. Thronged; crowded.
ଦେ. ବି—୧ । ପରିପୂର୍ଣ୍ଣ ଅବସ୍ଥା—1. The state of
being full. ୨ । ଭିଡ଼; ଜନତା—2. A crowd.
ଦେ. କ୍ରି. ବିଣ—ପରିପୂର୍ଣ୍ଣରୂପେ—Fully. (ଯଥା—
ନଈ ଭରାଭର ବଢ଼ିଛି ।)

ଭରା ଲୋକ—ଦେ.ବି—(ସ.ଭରିତ=ପୂର୍ଣ୍ଣ)-ବହୁତ ଲୋକ—A large
Bharā loka crowd of men; a large throng of
**भरपुर भीड़** people.

ଭରି—ଦେ. ବି(ସ.ଭୃତ)—ସ୍ୱର୍ଣ୍ଣାଦିର ଓଜନର ପରିମାଣ ବିଶେଷ; ତୋଳା;
Bhari ଏକ ଟଙ୍କାର ଓଜନ—A weight of metals and
**भरि** gems; one Tola. [ଦ୍ର—୧ ଭରି=୧୦ ମସା=
ভর; **भर** ୮୦ ରତି=୩୨୦ ଧାନ] ଦେ. ବିଣ—(ସ. ଭରିତ)
ପୂର୍ଣ୍ଣ—Full; filled up. ଦେ. କ୍ରି. ବିଣ (ଅନ୍ୟ
ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଯଥା—ଦିନ ଭରି; ବନଭରି)
୧ । ଯାକ; ତମାମ୍—1. Throughout. ୨ ।
ପୂର୍ଣ୍ଣରୂପେ—2. Fully. ୩ । ପୂର୍ଣ୍ଣ କରି (ଯଥା—
ପେଟଭରି ଖାଇବ)—3. By filling up. ପ୍ରାଦେ.
(ସିଂହଭୂମ) ବି—ଏକ ଗାଡ଼ିରେ ବୋଝାଇ ହେବା
ପରିମିତ ଜିନିଷ—A cartload of articles.

ଭରିତ—ସ. ବିଣ—୧ । (ଭୃ ଧାତୁ+କର୍ମ ତ)—ପୂରିତ; ପୂର୍ଣ୍ଣ—
Bharita 1. Filled up; full. ୨ । ପ୍ରତିପାଳିତ; ପୋଷିତ—
2. Nourished; maintained. ୩ । (+କର୍ତ୍ତୃ ତ)
ହରିଦ୍‌ବର୍ଣ୍ଣ; ସବୁଜ ରଙ୍ଗ—3. Green. ୪ । (ଭର+
ବିଶିଷ୍ଟାର୍ଥେ ଇତ) ଭର ବିଶିଷ୍ଟ—4 Supported;
propped up.

ଭରିବା—ଦେ. କ୍ରି (ସ. ଭୃ ଧାତୁ)—୧ । ପୂରାଇବା; ପୂର୍ଣ୍ଣ କରିବା—
Bharibā 1. To fill up. ୨ । ଭିତରକୁ ପ୍ରବେଶ
ভরা; **भरना** କରାଇବା—2. To thrust into.
୩ । ପୂରିବା; ପୂର୍ଣ୍ଣ ହେବା—3. To be filled up.
(ଉ—ଭରିଅଛି ସବୁପ୍ରାଣ ମହା ହରଷରେ । ମଧୁସୂଦନ.
ଉତ୍କଳଗାଥା ।) ୪ । ସଂଯୁକ୍ତ କରିବା—4. To join.
(ଉ—ବିଷାଦ ଅସହଣ, ନଶେ ବସ୍ତ୍ର ଭରଣ, ଶଙ୍କାର ଝମକ
କୃପାଣ । ଉଞ୍ଜ. ବୈଦେହୀଶବିଳାସ ।) ୫ । ଧାରଣ
କରିବା; ଲଗାଇବା; ପିନ୍ଧିବା—5.To wear; to hold;
to put on. (ଉ—ହିବଡକୁ ଭରଣ ଧରିଲେ ହେ ଶଣ୍ଡା ।
କୃଷ୍ଣସିଂହ—ମହାଭାରତ. ବନ ।) ୬ । ରଖିବା—6. To
put. (ଉ—ହିନେ ଘନସାର-ସାର, ଭରି ପାନ ତାର-
ତାର, ବରମୁଖୀ ଦେଉଁ ବାରବାର—ଉଞ୍ଜ. ପ୍ରେମସୁଧାନିଧି ।)
୭ । ବୋଝାଇ କରିବା—7. To load. ୮ । (ଜଳ
ଆଦିକୁ ମୁଖ ମଧ୍ୟରେ) ଢାଳି ଦେବା—8. To pour
into (the mouth). (ଉ—ଚନ୍ଦ୍ରକୁ ଚମୁଡ଼ ସୁଧା ଝର
ଚିର ଚୁଷିତର ମୁଖେ ଭରି—କବିସୂର୍ଯ୍ୟ.ବଳଦେବ ରଥ, ଚ ଗୀତ ।)
୯ । ବ୍ୟାପିବା—9. To be spread. (ଉ—ଅପଗାରିତ
ଭରୁ ଧୂବଲୋକରେ—ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।).
୧୦ । ଭରି ଯିବା (ଦେଖ)—10. Bhari jibā (See).

ଭରି ଭୋଜନ—ଦେ. ବି (ସ. ଭୂରିଭୋଜନ)—ପୂର୍ଣ୍ଣ ଭୋଜନ—
Bhari bhojana Eating to the full; full meal.
পূর্ণভোজন **भरपुरभोजन**

ଭରିମା—ସ. ବି (ଭୃ ଧାତୁ+ଭାବ.ଇମନ୍; ଭରିମନ୍.୧ମା.୧ବ)—ଭରଣ;
Bharimā ପ୍ରତିପାଳନ—Maintenance

ଭରି ଯିବା—ଦେ.କ୍ରି—୧ । (ପାଦ ଆଦି) ରୋଗରୁ ବା କେଶୀ କାଳ ଶୁଳିବା
Bhari jibā ଯୋଗୁଁ ଫୁଲିଯିବା—1. To be swollen.
(ଭରେଇ ଯିବା—ଅନ୍ୟରୂପ) (said of legs).
ফুলেযাওয়া **फुलजाना** (ଯଥା—କାଳୁ ଲୁଣିଆରେ ତା ଗୋଡ଼
ভরেযাওয়া **भरजाना** ଭରି ଗଲାଣି ।) ୨ । ପୂର୍ଣ୍ଣ ହୋଇଯିବା—
2 .To be filled up with.

ଭରୁ—ସ. ବି—(ଭୃ ଧାତୁ+କର୍ତ୍ତୃ ଉ)—୧ । ବିଷ୍ଣୁ—1. Bishṇu.
Bharu ୨ । ଶିବ—2. Śiba. ୩ । ସମୁଦ୍ର—3. Sea.
୪ । ସ୍ୱାମୀ—4. Master. ୫ । (+କରଣ ଉ) ସ୍ୱର୍ଣ୍ଣ—
5. Gold.

ଭର୍ଗ—ସ. ବି (ଭ୍ରସ୍ଜ୍ ଧାତୁ+କର୍ତ୍ତୃ ଅ)—୧ । ଶିବ—1. Śiba.
Bharga ୨ । ବ୍ରହ୍ମା—2 Brahmā ୩ । (+କର୍ମ ଅ) ସୂର୍ଯ୍ୟସ୍ଥ
ଐଶ ତେଜଃ—3. Divine splendour in the
sun. ୪ । (+ଭାବ ଅ) ଭର୍ଜନ; ଭାଜିବା—
4. Frying; roasting. ୫ । (+କରଣ ଅ) ଦୀପ୍ତି;
ଜ୍ୟୋତିଃ—5. Lustre; radiance.

ଭର୍ଜନ—ସ. ବି (ଭ୍ରସ୍ଜ୍ ଧାତୁ+ଭାବ ଅନ)—୧ । ଭାଜିବା—
Bharjana 1. Frying; roasting. ୨ । (+କର୍ମ ଅନ)
ଭଜା—2. Roasted food; baked meal.

ଭର୍ତ୍ତବ୍ୟ—ସ. ବିଣ (ଭୃ ଧାତୁ+କର୍ମ. ତବ୍ୟ)—ପ୍ରତିପାଳ୍ୟ; ପ୍ରତି-
Bharttabya ପାଳନୀୟ—Requiring to be sup-
ported or maintained.

ଭର୍ତ୍ତା—ସ. ବି. ପୁଂ (ଭୃ ଧାତୁ+କର୍ତ୍ତୃ ତୃ; ଭର୍ତ୍ତୃ; ୧ମା ୧ବ)—
Bharttā ୧ । ସ୍ୱାମୀ—1. Husband. ୨ । ବିଷ୍ଣୁ—
2. Bishṇu. ୩ । ପ୍ରଭୁ—3. Lord; master.
୪ । ଅଧିପତି; ରାଜା—4. King; ruler. ସ. ବିଣ.
ପୁଂ—୧ । ଧାରଣକର୍ତ୍ତା—1. Holding. ୨ ।
(ଭର୍ତ୍ତ୍ରୀ—ସ୍ତ୍ରୀ) ରକ୍ଷଣକାରୀ—2. Saving. ୩ । ଟେକିଧରିଥିବା—
3. Supporting; propping up. ୪ । ପୋଷଣକର୍ତ୍ତା—
4 Maintaining.

ଭର୍ତ୍ତୃଦାରକ—ସଂ. ବି. ପୁଂ—(ନାଟ୍ୟୋକ୍ତିରେ) ରାଜପୁତ୍ର—
Bharttṛudāraka (dramatic parlance) A prince.

ଭର୍ତ୍ତୃଦାରିକା—ସଂ. ବି. ସ୍ତ୍ରୀ—(ନାଟ୍ୟୋକ୍ତିରେ) ରାଜକନ୍ୟା—
Bharttṛudārikā (dramatic parlance)-Princess.

ଭର୍ତ୍ତୃହରି—ସଂ. ବି (ନାମ)—୧ । ରାଜା ବିକ୍ରମାଦିତ୍ୟଙ୍କର ବୈମାତ୍ରେୟ
Bharttṛuhari ଜ୍ୟେଷ୍ଠ ଭ୍ରାତା—1. Name of a king and poet who renounced the world. [ ଦ୍ର—ଏ (ମତାନ୍ତରରେ) ଭଟ୍ଟିକାବ୍ୟର ରଚୟିତା; ସଂସାର ତ୍ୟାଗ ପୂର୍ବକ ବୈରାଗ୍ୟ ଶତକ ନାମକ ୧୦୦ ଗୋଟି ବୈରାଗ୍ୟୋଦ୍ଦୀପକ ଶ୍ଳୋକ ରଚନା କରିଥିଲେ । ଶୃଙ୍ଗାର-ଶତକ ଓ ନୀତିଶତକ ମଧ୍ୟ ଏହାଙ୍କ ଦ୍ୱାରା ରଚିତ ।] ୨ । 'ବାକ୍ୟ ପ୍ରଦୀପ' ଗ୍ରନ୍ଥ କର୍ତ୍ତା ବୈୟାକରଣିକ କବି-ବିଶେଷ—2. Name of a grammarian poet.

ଭର୍ତ୍ସ (ଧାତୁ)—ସ.—ଗାଳି ଦେବା—
Bharts (root) To abuse; to rebuke; to scold.

ଭର୍ତ୍ସନ(ନା)—ସ.ବି (ଭର୍ତ୍ସ ଧାତୁ+ଭାବ. ଅନ; +ଆ)—୧। ଗାଳିଦେବା
Bhartsana(nā) 1. Rebuking; scolding. ୨ । ତିରସ୍କାର; ଗାଳି—2. Abuse; evil names. ୩ । ନିନ୍ଦା—3. Slander; blasphemy. ୪ । ତର୍ଜନ; ଧମକ—4. Threat; menace.

ଭର୍ତ୍ସନା କରିବା—ଦେ. କ୍ରି—ଗାଳି ଦେବା—To abuse; to scold.
Bhartsanā karibā ভর্ৎসনা করা
भर्त्सना करना

ଭର୍ତ୍ସିତ—ସ. ବିଣ. ପୁଂ (ଭର୍ତ୍ସ ଧାତୁ+କର୍ମ. ତ)—୧ । ତିରସ୍କୃତ—
Bhartsita 1. Rebuked; abused; reproached. ୨ । (ଭର୍ତ୍ସିତା—ସ୍ତ୍ରୀ) ନିନ୍ଦିତ—2. Blamed; reviled.

ଭର୍ମ—ସ. ବି (ଭୃ ଧାତୁ+କରଣ. ମନ୍)—୧ । ମୂଲିଆର ମୂଲ—
Bharma 1. Wages. ୨ । ଭଡ଼ା—2. Hire. ୩ । ସ୍ୱର୍ଣ୍ଣ—3. Gold. ୪ । ସ୍ୱର୍ଣ୍ଣମୁଦ୍ରା—4. Gold coin. (+କର୍ତ୍ତୃ.ମନ୍) ୫ । ନାଭି—5. Navel.(+କର୍ମ.ମନ୍) ୬ । ବୋଝ—6. Burden; load. ୭ । ଗୃହ—7. House.

ଭଲ—ଦେ. ବିଣ (ସ. ଭଦ୍ର; ପ୍ରା. ଭଲ୍ଲ; ପା. ଭଦ୍ଦ)—୧ । ଅଚ୍ଛା; ବେଶ୍;
Bhala ଉତ୍ତମ—1. Good. ୨ । ମଙ୍ଗଳସୂଚକ—
ভাল भला, अच्छा 2. Auspicious. ୩ । ହିତକର—(ହିତସାଧକ—ମନ୍) 3. Beneficial. ୪ । ଶ୍ରେଷ୍ଠ; ଉତ୍କୃଷ୍ଟ—4. Excellent. ୫ । ସୁସ୍ଥ—5. Healthy; free from illness. ୬ । ନିର୍ଦ୍ଦୋଷ; ଦୋଷଶୂନ୍ୟ—6. Faultless; flawless. ୭ । ସୁଖୀ—7. Happy; blessed. ୮ । ନିର୍ମଳ; ପବିତ୍ର—8. Pure. ୯ । ନିରୀହ—9 Innocent. ୧୦ । ଭଦ୍ର—10. Gentle. ୧୧ । ଆନନ୍ଦିତ—11. Gladdened. ୧୨ । ସାଧୁ; ସତ୍—12. Honest. ୧୩ । ଧାର୍ମିକ—13 Pious. ୧୪ । ସୁନ୍ଦର—14. Beautiful. ୧୫ । ଶାନ୍ତିମୟ—15 Peaceful. ଦେ. ବି—୧ ।
ভাল भलाई କ୍ଷେମ; ମଙ୍ଗଳ—1 Weal; well-being. ୨ । ସ୍ୱାସ୍ଥ୍ୟ—2 Health. ୩ । ଉପକାର; ହିତ; ଇଷ୍ଟ—3 Benefit. ୪ । ଉତ୍ତମତା—4. Goodness. ୫ । ସୁଖ—5. Happiness. ୬ । ମନର ଶାନ୍ତି—6. Mental peace. ଦେ. କ୍ରି. ବିଣ—
ভাল भले ଉତ୍ତମରୂପେ—Well, ଦେ, ଅ—ଉତ୍ତମ; ଅଚ୍ଛା; ବେଶ୍—Well ! allright!

ଭଲ ଓଷଧ—ଦେ. ବି—ଗୁଣକାରକ ଔଷଧ—
Bhala oshadha ভাল ওষুদ An efficacious
अच्छीदवाई remedy.

ଭଲ କଥା—ଦେ. ବି—୧ । ହିତ ବାକ୍ୟ—1. Beneficial words.
Bhala kathā ভালকথা अच्छीबात ୨ । ଧର୍ମସମ୍ବନ୍ଧୀୟ କଥା—2 Religious saying. ୩ । ସଦୁପଦେଶ; ଉତ୍ତମ ଉପଦେଶ—3 Good advice. ୪ । ଉତ୍ତମ କାର୍ଯ୍ୟ—4 Good act.

ଭଲ କରିବା—ଦେ. କ୍ରି—୧ । ଚିକିତ୍ସାଦ୍ୱାରା ରୋଗୀକୁ ଆରୋଗ୍ୟ
Bhala karibā କରିବା—1. To cure of any sick-
ভালকরা ness by treatment. ୨ । କୌଣସି ବ୍ୟକ୍ତିର
भला करना ଉପକାର କରିବା—2. To benefit a person. ୩ । ଉତ୍ତମ କାର୍ଯ୍ୟ କରିବା—3. To do a good act. ୪ । ଉତ୍ତମ ଫଳ ଦେଖାଇବା—4. To show good result.

ଭଲ କହିବା—ଦେ. କ୍ରି—୧ । ପ୍ରଶଂସା କରିବା—1. To praise.
Bhala kahibā ୨ । ହିତୋପଦେଶ ଦେବା—2. To give
ভালবলা good advice. ୩ । ଉତ୍ତମରୂପେ କହିବା—
भला कहना 3. To speak well.

ଭଲକା—ଦେ. ବି( ସ. ଜଳକା; ଝଲକା=ତରଙ୍ଗ—ହେମଚନ୍ଦ୍ର )—
Bhalaka ବାନ୍ତିର ଝଲକା ବା ଧାର—A gush of
भभका vomiting. [ ଉ—ମୁଖ ଦେଇ ରକ୍ତ
ঝলক ଭଲକା କେତେ ବାନ୍ତି, କଲେ ସେ ହିକଲେ ବଡ଼ଚିତ୍ୱାର୍ଯ୍ୟ ନାହିଁ । କୃଷ୍ଣସିଂହ. ମହାଭାରତ. ଶଲ୍ୟ । ]

ଭଲକିବା—ପ୍ରାଦେ ( ସମ୍ବଲପୁର ) କ୍ରି—ସ୍ୱର ବାର କୌଣସି ବ୍ୟକ୍ତିକୁ
Bhalakibā ଚିହ୍ନିବା—To recognize a person from his voice.

ଭଲ କୁଳ—ଦେ. ବି—ସଦ୍‌ବଂଶ—High family.
Bhalakula ভালকুল भलाकुल

ଭଲ ଘର—ଦେ. ବି—୧ । ସଦ୍‌ବଂଶ—1. High family. ୨ ।
Bhala ghara ଧନୀ ପରିବାର—2. Rich family. [ ଉ
ভালঘর —ଭଲଘର ଦେଖି ଝିଅକୁ ଦେଲି, କୋଉଁ ଗଣିଅ
अच्छाघर ମୁଁ ଜାଣି ନ ଥିଲି । ଢଗ । ] ୩ । ସୁନ୍ଦର ଗୃହ—3. A good-looking house.

ଭଲ ଗୁହଁ(ହି)ବା—ଦେ. କ୍ରି—ଅନ୍ୟର ମଙ୍ଗଳକାମନା କରିବା— Bhala chāhiṅ(hi)bā To wish one well. (ଭଲଚାହୁଁବା, ଭଲବାଞ୍ଛିବା—ଅନ୍ୟରୂପ) ভাল চাওয়া भलाचाहना

ଭଲ ଚେହେରା—ଦେ. ବି ( ସଂ. ଭଦ୍ର; ଫା. ଚେହେରା )—ସୁନ୍ଦର Bhala cheherā ଚେହେରା; ସୌମ୍ୟ ମୂର୍ତ୍ତି—Charming ভাল চেহারা भला चेहरा appearance.

ଭଲ ଥିବା—ଦେ. କ୍ରି—୧ । ସୁସ୍ଥ ବା ନିରୋଗୀ ରହିବା—1. To be Bhala thibā healthy; to do well. ୨ । ସୁଖରେ (ଭଲ ରହିବା—ଅନ୍ୟରୂପ) ରହିବା; ସୁଖୀ ହେବା—2. To be ভালথাকা happy. ୩ । ମନର ଆନନ୍ଦରେ ବା ଶାନ୍ତିରେ भला रहना; अच्छा रहना ରହିବା—3. To be hale and hearty; to live in peace.

ଭଲ ଦିନ—ଦେ. ବି ( ସଂ. ଭଦ୍ର+ଦିନ )—୧ । ଉତ୍ସବ ଦିବସ— Bhala dina 1. A holiday; a festive day. ୨ । ভালদিন ଜ୍ୟୋତିଷ ମତରେ ଶୁଭଦିନ—2. A pro- आच्छादिन, भलादिन pitious day according to astrological calculation. ୩ । ମେଘ, ବୃଷ୍ଟି ଆଦି ରହିତ ଦିବସ—3. A clear day. ୪ । ଯେଉଁ ଦିବସଟି ମନୁଷ୍ୟ ସୁଖରେ କଟାଏ—4. A happy day for a man.

ଭଲ ଦି(ଦୁ)ଶିବା—ଦେ. କ୍ରି. ( ସ. ଭଦ୍ର+ଦୃଶ ଧାତୁ ) – ୧ । ସୁନ୍ଦର Bhala di(du)śibā ଦେଖାଯିବା—1. To look well. ଭଲ ଦେଖା(ଖେ)ଇବା } ଅନ୍ୟରୂପ ଭଲ ଦେଖାଯିବା } ୨ । କରଣୀୟ ବୋଲି ବୋଧହେବା— ভাল দেখান अच्छा दिखना 2. To seem proper.

ଭଲ ଦି(ଦେ)ହ—ଦେ. ବି. (ସ. ଭଦ୍ର+ଦେହ) —୧ । ସୁସ୍ଥ ଶରୀର— Bhala di(de)ha 1. Sound body. ୨ । ଭଲ ସୂତାରେ ভাল গা ବୁଣା ଲୁଗାର ଦେହ—2. Good texure of a भला बदन cloth.

ଭଲ ପଡ଼ିବା—ଦେ. ବି—୧ । ଦୁଇ ଜଣଙ୍କ ମଧ୍ୟରେ ମନର ମେଳ ବା Bhala paṛibā ସଦ୍ଭାବ ହେବା; ସୌହାର୍ଦ୍ଦ୍ୟ ଜନ୍ମିବା— মীল হওয়া 1. Being in good terms. ଯଥା—ସେ मेल होना, सुलह होना ଦୁଇ ଜଣଙ୍କର ଭଲ ପଡ଼ୁଛି ।) ୨ । ସୁଦଶା अच्छा दिन होना ପଡ଼ିବା; ଭାଗ୍ୟୋଦୟ ହେବା—2. Dawning of good fortune. (ଯଥା—ମୋତେ ଭିନ ମାସ ହେଲା ଭଲ ପଡ଼ୁଛି ।) ଦେ. କ୍ରି—ଫଳରେ ଭଲ ভাল পড়া ବୋଲି ଜଣା ପଡ଼ିବା—To be known eventually to be good; to turn out to be भला पडना good, (ଯଥା—ଏ ଆମ୍ବଗଛ ଶେଷକୁ ଭଲ ପଡ଼ିଲା ।)

ଭଲ ପାଇବା—ଦେ କ୍ରି (ତୁଳ. ବଙ୍ଗଳା ଭାଲବାସା)—୧ । ସୁଖ ପାଇବା— Bhala pāibā 1. To like. ୨ । ସ୍ନେହ କରିବା—2. To love. ভালবাসা ୩ । ମନୋମତ ହେବା—3. To suit one's taste. प्यार करना ୪ । ଆଦର କରିବା—4. To fondle.

ଭଲ ପିଲା—ଦେ. ବି—୧ । ସୁନ୍ଦର ପିଲା—1. A fair-looking Bhala pilā boy. ୨ । ସଚ୍ଚରିତ୍ର ବାଳକ—2. Good boy. ভাল ছেলে ୩ । ଶାନ୍ତ ବାଳକ—3. Gentle boy. ୪ । ପଢ଼ୁଆ भला(अच्छा)लडका पिला —4 Efficient or studious boy.

ଭଲଭଲିଆ—ଦେ. ବି ଓ ବିଣ. (ବହୁବଚନ)—ଧୋବଧାଉଳିଆ (ଦେଖ) Bhalabhaliā Dhobadhāuliā ( See ) ভালভাল লোকে भलाभला (ଭଲଭଲେ—ଅନ୍ୟରୂପ)

ଭଲ ଭାଇ(ୟା)—ଦେ. ବି—ତେଲି ଗୁଡ଼ିଆ ଆଦି ଜାତିଆ ଜାତିର ମୁଖିଆ Bhala bhāi(yā) ଲୋକ (ଯେଉଁ ଲୋକ ଜାତିଆଣ ସଭାରେ ଭଲ ମନ୍ଦର କଥାବାର୍ତ୍ତା କରି ପାରେ)—A forward member of a caste-guild.

ଭଲ ମନୁଷ୍ୟ—ଦେ. ବି—୧ । ସୁସ୍ଥ ଲୋକ—1. Healthy man. Bhala manushya ୨ । ସଜ୍ଜନ; ସାଧୁ ବ୍ୟକ୍ତି—2. A good ভাল মানুষ man; an honest person. ୩ । ଭଦ୍ର ଲୋକ— भलमानुष 3. Gentleman. ୪ । ଶାନ୍ତ ଲୋକ—4. A [ ଭଲ ମଣ(ଣି,ନି)ଷ—ଗ୍ରାମ୍ୟରୂପ ] gentle or peaceful person.

ଭଲ ମନ୍ଦ—ଦେ. ବିଣ (ବିପରୀତାର୍ଥ ସମାହାର; ସ. ଭଦ୍ର+ମନ୍ଦ)— Bhala manda ଭଲ ଓ ମନ୍ଦ; ଶୁଭାଶୁଭ—Good and ভাল মন্দ bad. (ଉ—ଭଲ ମନ୍ଦ ବାରତା ବୁଝେ କରକୁରୁ— भलाबुरा; भलामन्द କୃଷ୍ଣସିଂହ, ମହାଭାରତ ବନ ।) ଦେ. ବି— ପରିବାରର ଶୁଭାଶୁଭ ସମ୍ବାଦ; ଦୁଃଖସୁଖ—Good and bad news of a family.

ଭଲ ଲାଗିବା—ଦେ. କ୍ରି—୧ । ତୃପ୍ତିକର ବୋଧ ହେବା—1. To Bhala lāgibā seem pleasant. ( ଯଥା—ଶୀତ ଦିନ ভাল লাগা ମୋ ତେ ଭଲ ଲାଗେ । ) ୨ । ମନକୁ ପାଇବା; अच्छालगना ମନୋମତ ହେବା—2. To suit one's mind. ( ଯଥା—ତା ପ୍ରସ୍ତାବଟି ମୋତେ ଭଲ ଲାଗିଲା ) ୩ । (ଶରୀର) ସୁସ୍ଥ ବୋଧ ହେବା—3. To seem healthy; to feel well. (ଯଥା—ମୋ ଦିହ ଆଜି ଭଲ ଲାଗୁ ନାହିଁ ।) ଦେ. ବି—୧ । ତୃପ୍ତି ବୋଧ—1. A feeling of satisfaction or contentment. ( ଯଥା— ଏଠାରେ ରହିବାକୁ ମୋତେ ଭଲ ଲାଗେ ।) ୨ । ( ଦେହର ) ସୁସ୍ଥତା ବୋଧ—2. Feeling well. (ଯଥା—ଦିହରୁ ଜରଟ ଓହ୍ଲାଇ ଯିବାରୁ ମୋତେ ଭଲ ଲାଗୁଛି ।)

ଭଲ ଲୁଗା—ଦେ. ବି—୧ । ଉତ୍କୃଷ୍ଟ ବା ମୂଲ୍ୟବାନ୍ ବସ୍ତ୍ର—1. Excellent or valuable cloth. ୨। ପବିତ୍ର ଲୁଗା; ଯେଉଁ Bhala lugā (ବିପରୀତ—ଖରସା ଲୁଗା) ଲୁଗା ଛୁଆଁ ବା ମାସ୍ ହୋଇ ନ ଥାଏ; ভালকাপড় ଅଛୁଆଁ ଲୁଗା (ବିପରୀତ—ଛୁଆଁ ଲୁଗା)—2. A pure भलाकपडा or unsoiled cloth; a cloth which has not been contaminated by prohibited touch. [ଦ୍ରି—ଅସ୍ପୃଶ୍ୟଜାତୀୟ ବ୍ୟକ୍ତିଙ୍କୁ ଓ ପାଦାସ୍ପର୍ଶ୍ୟ (ଭୂମିସ୍ପର୍ଶ)

ସ୍ତ୍ରୀ ଆଦିଙ୍କୁ ଛୁଇଁଲେ, ଲୁଗା ପିନ୍ଧି ପୋଖରୀପାଣି ଗଲେ ଉକ୍ତ ଲୁଗା ଛୁଆଁ ବା ମାତ୍ର ହୁଏ । ଯେଉଁ ଲୁଗା ପିନ୍ଧି ରାତିରେ ଶୋଇବାକୁ ହୋଇଥାଏ ତାହା ମଧ୍ୟ ରାତିବାସ ଛୁଆଁ ବୋଲି ବିବେଚିତ ହୁଏ । ସେ ଲୁଗାକୁ ଧୋଇଦେଲେ ତାହା ଭଲ ହୋଇଯାଏ । ପାଟ ଖଦି ଓ ମଠା ଲୁଗା ଛୁଆଁ ହୁଏ ନାହିଁ । ଏଥିପାଇଁ ଏ ଲୁଗାମାନଙ୍କୁ ଅମ୍ଳାନ ବସ୍ତ୍ର ବୋଲାଯାଏ । ପାଣିରେ କଷା ହୋଇଥିବା ଗାମୁଛା ଆମ ଦେଶରେ ଛୁଆଁ ଦୋଷରେ ଦୂଷିତ ହୁଏ ନାହିଁ । ] ୩ । ଯେଉଁ ଲୁଗା ଚିରି ଯାଇ ନାହିଁ; ଦଣ୍ଡିଲୁଗା ( ବିପରୀତ—ଚିରାଲୁଗା )—3. A cloth which has not become torn.

**ଭଲ ଲୋକ**—ଦେ. ବି—୧ । ଭଦ୍ର ଲୋକ—1. Gentleman.
Bhala loka ୨ । ସତ୍ ଲୋକ—2. Good or honest man.
पंच ୩ । ସାଲିସ; ପଞ୍ଚାୟତ; ଯେଉଁ ବ୍ୟକ୍ତିଙ୍କୁ ବା ବ୍ୟକ୍ତିମାନଙ୍କୁ
भालोक ବିବାଦକାରୀ ଉଭୟପକ୍ଷ ବିବାଦର ଆପୋଷି ନିଷ୍ପତ୍ତି
मध्यस्थ ପାଇଁ ମଧ୍ୟସ୍ଥ ମାନି ଥାଆନ୍ତି—3. An umpire; an arbitrator. ୪ । ବିବାହରେ ମଧ୍ୟସ୍ଥ—4. A go-between in a marriage; marriage broker. ୫ । ସମ୍ପତ୍ତି କିଣାବିକିରେ ମଧ୍ୟସ୍ଥ—5. A negotiator in a sale; broker.

**ଭଲଲୋକି**—ଦେ. ବି—୧ । ସାଲିସି; ପଞ୍ଚାଏତି; ବିନା ମକଦମାରେ
Bhalaloki ବିବାଦର ବିଚାର—1. Arbitration; consi-
पंचायती deration of a dispute for its amicable
भललोकी settlement. ୨ । ଭଦ୍ରତା—2. Politeness.
मध्यस्थता ୩ । ବିବାଦରେ ମଧ୍ୟସ୍ଥତା—3. Umpireship; or
मध्यस्थता mediation in a dispute. ୪ । ବିବାହରେ ମଧ୍ୟସ୍ଥତା—4. Negotiation in the matter of a marriage. ୫ । ମଧ୍ୟସ୍ଥତାର ପାରିଶ୍ରମିକ—5. Remuneration paid to a negotiator or broker.

**ଭଲଲୋକି କରିବା**—ଦେ. କ୍ରି—୧ । ସାଲିସି କରିବା; ବିବାଦ ଆଦି
Bhalaloki kariba ଆପୋଷିରେ ତୁଟାଇବା—1. To arbi-
पंचायतीकरना trate; to settle a dispute amicably. ୨ । ବିବାଦରେ ମଧ୍ୟସ୍ଥତା କର୍ମ କରିବା—2. To act as a mediator or umpire in a dispute. ୩ । ଅନ୍ୟର ବିବାହ ସମ୍ବନ୍ଧରେ ମଧ୍ୟସ୍ଥତା କରିବା—3. To act as a negotiator or go-between
भललोकि करना in another person's marriage.

**ଭଲ ହେବା**—ଦେ. କ୍ରି—୧ । ସୁସ୍ଥ ବା ରୋଗମୁକ୍ତ ହେବା—1.
Bhala hebā To be cured of a disease; to rec-
भाल हओया over from an illness. ୨ । (କୌଣସି
अच्छाहोना ବିଷୟ) ଫଳରେ ଉତ୍ତମ ଦେଖାଯିବା—2. To turn out to be good. ୩ । ମନୋମତ ହେବା—3. To suit one's taste; to be to one's liking.

**ଭଲ୍ଲ**—ଦେ. ବିଣ (ସଂ. ଭଦ୍ର)—୧ । ଧନ୍ୟ—1. Praiseworthy.
Bhalā ୨ । ଅଚ୍ଛା; ଉତ୍ତମ—2. Good; excellent. (ଉ—
भाल; भला ବୋଇଲେ ଦ୍ରୌପଦୀଙ୍କ ଭଲ୍ଲ ଧର୍ମ ଅଛି । ଅନେକ ବସ୍ତ୍ର ଦେଖ ଦେବୁଁ ବାହାରୁଛି—କୃଷ୍ଣସିଂହ, ମହାଭାରତ,ସଭା । ) ୩ । ସୁନ୍ଦର; ମନୋଜ୍ଞ—3. Lovely. ୪ । ଆଶ୍ଚର୍ଯ୍ୟଜନକ—4. Wonderful. ଦେ. କ୍ରି. ବିଣ—୧ । ଉତ୍କୃଷ୍ଟରୂପେ—1. Excellently. ୨ । ସୁନ୍ଦରରୂପେ—2. Beautifully. ଦେ. ଅ—୧ । ଅଚ୍ଛା; ବେଶ୍—1. Well. (ଉ—ଭଲ୍ଲ ମାନୁଛି ବେଶ, ଗୁରୁ ଚନ୍ଦ୍ରମା ମୁଖ—କବିସୂର୍ଯ୍ୟ, ବିଶୋରୀ ଚମ୍ପୂ, ଭ ଗୀତ ) ୨ । ( ନିଶ୍ଚୟାତ୍ମକ ) ନିଶ୍ଚେ—2. (Expressive of certainty) Certainly; surely. ୩ । (ପ୍ରଶ୍ନାତ୍ମକ) 3. (Interrogative) (ଉ—ତୋର ହଏ ଅଛି ଭଲ୍ଲ) ୪ । (ବିସ୍ମୟାର୍ଥକ) ଆହା ! 4. (Expressive of wonder) Oh ! (ଉ—ଭଲ୍ଲ ଭୁଲିଲୁ ତା ପ୍ରୀତିରେ, ପ୍ରାଣ ସଜନୀ । ସଙ୍ଗୀତ । ) ୫ । (ପାଦ ପୂରଣାର୍ଥକ) ହିଁ—5. (for completing a sentence) Too. ୬ । ( ବାକ୍ୟ ଉପରେ ଜୋର ଦେବାରେ ବ୍ୟବହୃତ ) ପରା—6. (for emphasis). ( ଯଥା—ତୁମର ଏତେ ଗୁଡ଼ିକ ବାକିର ଥାଉ ଥାଉ ତୁମେ ଭଲ୍ଲ ଘର ତୋଳାଉଛ କିଆଁ ? ) ୭ । ପୁନଶ୍ଚ—7. Again. ( ଯଥା—ଏ କାମ କରିବାକୁ ତୋତେ ମୁଁ ଦଶଥର କହିଲିଣି, ତୁ ଶୁଣୁ ନାହୁଁ; ଏଥରକ) ମୁଁ ଭଲ୍ଲ ନେହୁରା ହୋଇ କହୁଛି, ମୋ କଥା ଥରେ ଶୁଣ୍ ।)

**ଭଲ୍ଲା(ଲେ)ଇବା**—ଦେ. କ୍ରି (ଭଳିବା କ୍ରିୟାର ଣିଜନ୍ତରୂପ; ସଂ. ବିହ୍ୱଳ)
Bhaḷā(ḷe)ibā ୧ । କୌଣସି ବ୍ୟକ୍ତିଙ୍କୁ କଥାଦ୍ୱାରା ତରଳାଇବା—
लुभालेना 1. To melt the heart of a person by
भोलान् words. ୨ । ଲେପ ଆଦି ପ୍ରୟୋଗଦ୍ୱାରା ବଥ ଆଦିକୁ ନରମିବା ବା ଗୋଳାଇବା—2. To cause a boil to soften by using ointment. ୩ । ପ୍ରଲୁବ୍ଧ କରିବା—3. To tempt a person. ୪ । କଥାରେ ଭୁଲାଇବା—4. To inveigle.

**ଭଲ୍ଲ(ଲେ)ଇ ହେବା**—ଦେ. କ୍ରି (ବ୍ୟଙ୍ଗ୍ୟାର୍ଥ)—ଆପେ ଦୋଷୀ ବା ମନ୍ଦ
Bhalā(le)i hebā ହୋଇ ସୁଦ୍ଧା ଭଲ ବା ନିର୍ଦ୍ଦୋଷ ବୋଲି
भुलाबादेना ଲୋକଙ୍କୁ ଦେଖାଇ ହେବା—(ironical) To show one's self as good or innocent, (though actually not so); to try to pass off as good or innocent.

**ଭଲ୍ଲ ବୋ(ବୁ)ରା**—ଦେ. ବିଣ (ବିପରୀତାର୍ଥ ସହଚର; ସଂ. ଭଦ୍ର ଓ ଫା.
Bhalā bo(bu)rā ବୁର) ଭଲ ଓ ମନ୍ଦ—Good and bad.
भालमन्द ଦେ. ବି—୧ । ଭଲ କଥା ଓ ମନ୍ଦ କଥା—1. Matters
भलाबुरा good and bad. ୨ । ଶୁଭ ଓ ଅଶୁଭ ସମ୍ବାଦ—2. Tidings good and bad. ୩ । ପାରିବାରିକ ସୁଖ ଓ ଦୁଃଖ—3. Family maters good and bad; family matters.

ଭଲ—ଦେ. ବି—ପ୍ରକାର—Sort; kind. ଦେ. ଅ. ୧. । ସଦୃଶ; Bhali ତୁଲ୍ୟ; ସମାନ—1. Like; similar. ୨ । ଯୋଗ୍ୟ— मत; मतन 2. Deserving. (ଉ—ତୋ ଚରଣ ସେବା ଭଲ, कापसा, कामाफिक ନୋହିଲି ଯେବେ ରେ ଅଳି । କବିସୂର୍ଯ୍ୟ—ସଙ୍ଗୀତ ।) ୩ । ପ୍ରାୟ—3. About.

ଭଲିଆ(କା)—ଦେ. ବିଣ—ସମ—Like; similar. ଦେ. ଅ—Bhaliā(kā) ପରି; ସଦୃଶ—Like. (ଉ—ଅଣ୍ଟାଗୁଞ୍ଜା ପାଗ ( ଭଲକଅ—ଅନ୍ୟରୂପ ) ଜିଛ ନାହିଁ ସେ ଭଲିଅ । ରଜାସ୍ୱ. ଗୀତ मतन कापेसा, कामाफिक ଲହସ୍ରୀ ।)

ଭଲଉମ୍—ବୈଦେ. ବି ( ଇଂ. ଭଲ୍ୟୁମ୍ )—ଏକାଧିକ ଖଣ୍ଡବିଶିଷ୍ଟ ବା Bhalium ଭାଗବିଶିଷ୍ଟ ଗ୍ରନ୍ଥର ଗୋଟିଏ ଭାଗ ବା ଖଣ୍ଡ—ভল্যুম भलुयम One volume of a book or work (ଭଲ୍ୟୁମ୍—ଅନ୍ୟରୂପ) of many volumes.

ଭଲକିବା—ଦେ. କ୍ରି—ଭଲକିବା (୨) (ଦେଖ)—Bhalakibā (2) Bhalikibā (See).

ଭଲିତ—ଦେ. ବିଣ ( ସଂ. ବିହ୍ୱଳ )—ବିହ୍ୱଳ—Overwhelmed. Bhalita (ଉ—ଯହିଁ ଭଳିତ ହୋଇଛନ୍ତି ଋଷି । ଭଞ୍ଜ. ପ୍ରେମ-विह्वल ভোল ସୁଧାନିଧି ।)

ଭଲିବା—ଦେ. କ୍ରି (ସଂ. ବିହ୍ୱଳ)—୧ । ତରଳ ଯିବା; ଗୋଳିଯିବା—Bhalibā 1. To become soft or liquid. ୨ । (କୌଣସି [ଭଳିଯିବା—ଅନ୍ୟରୂପ] ବ୍ୟକ୍ତିର କଥାରେ) ମୁଗ୍ଧ ହେବା—2 To ভোলা पानीपानी होजाना be charmed. ୩ । ଭ୍ରମଯୁକ୍ତ ହେବା—भुलाजाना 3. To be mistaken. ୪ । କିଂକର୍ତ୍ତବ୍ୟବିମୂଢ଼ भुलजाना ହେବା—4 To be perplexed; to be bewil-बिगडजाना dered. [ଉ—ସେ ଯୋଷା, ଭଳ କହିବାରେ ମୃଦୁଭାଷା । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୫ । (ପ୍ରସୂତୀର ଶରୀର) ସାନ୍ନିପାତିକ ଅବସ୍ଥାଯୁକ୍ତ ହେବା—5. [the system of a newly delivered woman] To develop signs of collapse.

ଭଲି ଭଲି—ଦେ.ବିଣ (ବହୁବଚନ)—୧ । ନାନାପ୍ରକାରର; ନାନା ଜାତୀୟ—Bhali bhali 1. Of various sorts; of different रकमरकमारि kinds. ୨ । ଭିନ୍ନ ଭିନ୍ନ; ବିଭିନ୍ନ—2. Various. कीसमकीसमका ଦେ. ଅ—ବିଭିନ୍ନ ପ୍ରକାରେ—In various kinds or ways.

ଭଳକା(କି,ଲୁ)ଭଳ, ଭଳ ଭଳକା } ଅନ୍ୟରୂପ
ଭଳଭଳିଆ, ଭଳଭଳକିଅ }

ଭଲୀ—ଦେ. ବିଣ. ପୁଂ ଓ ସ୍ତ୍ରୀ—ଯେ ଭଲାଇ ହୁଏ; ଯେ ଆପଣାକୁ ଉତ୍ତମ Bhalī ବା ନିର୍ଦ୍ଦୋଷ ବୋଲି ସାଧାରଣରେ ପ୍ରକାଶ କରିବାକୁ भली ଚେଷ୍ଟା କରୁଥାଏ—Trying to pass one's self ( ଭଲେଇ—ଅନ୍ୟରୂପ ) off as good or innocent, though actually bad or guilty.

ଭଲୀ ସକସ୍—ଦେ. ବିଣ—(ହି. ଭଲୀ+ଫା ସକ୍ସ୍=ଖୁବ୍ କ୍ଷମତା ବା Bhali sakas ବଳ)—୧ । ଅତ୍ୟନ୍ତ କ୍ଷମତାଶାଳୀ—1. Very भला सकस powerful. ୨ । ବଡ଼ ଧୈର୍ଯ୍ୟଶୀଳ—2. Very patient. ୩ । ଖୁବ ସାହସୀ—3. Very bold.

ଭଲୀ ସକ୍ସ୍‌ବାଜ } —ଅନ୍ୟରୂପ
ଭଲୀ ସକସିଆ }

୪ । ଖୁବ୍ ବଳୁଆ—4. Very strong. ୫ । ଖୁବ୍ ଧନୀ—5. Very rich. ୬ । ଖୁବ୍ ସହନଶୀଳ—6. Very forbearing. ଦେ. ବି—୧ । ଖୁବ୍ ବଳ ବା ଶକ୍ତି—1. A great power or strength. ୨ । ଖୁବ୍ ଧୈର୍ଯ୍ୟ—2. A large amount of patence. ୩ । ଖୁବ ବଳୁଆ ଲୋକ—3. A very strong man. ୪ । ଖୁବ୍ ଧୈର୍ଯ୍ୟଶୀଳ ବ୍ୟକ୍ତି—4. A very patient person. ୫ । ଖୁବ୍ ଧନୀ ଲୋକ—5. Very rich man. ୬ । ଖୁବ୍ କ୍ଷମତାଶାଳୀ ବ୍ୟକ୍ତି—6. Very powerful person.

ଭଲେ—ଦେ.କ୍ରି.ବିଣ—୧। ଉତ୍ତମରୂପେ—1. Well; thoroughly. Bhale [ଉ—ଆପଣାର ସାମର୍ଥ୍ୟକୁ ଦେଖାଇ ମୋ ଭୁଲେ । ଯୁଦ୍ଧ (ଭଲେ ଭଲେ—ଅନ୍ୟରୂପ) କଲେ ଜାଣିବ ମୋ ବଳଟି ଭଲେ । ভালএ; ভালএ ভালএ କୃଷ୍ଣସିଂହ ମହାଭାରତ କର୍ଣ୍ଣ ।] ୨ । भले ସହଜରେ; ଅନାୟାସରେ—2. Easily; without trouble. [ଉ—ପରଶୁମଣି ପରଶରେ, ଲୌହ କାଞ୍ଚନ ହୁଏ ଭଲେ । ଭୂପତି. ପ୍ରେମପଞ୍ଚାମୃତ ।] ୩ । ଜୀବନର ସାଧାରଣ ଘଟନା ବା ଅବସ୍ଥାକ୍ରମେ;ଯଥାକାଳକ୍ରମରେ—3. In the natural course of life; in the ordinary course of life or events; duly. [ଉ—ମତେ ଆସି ଜରା ଅବସ୍ଥା ହେଲା ଭଲେ । କୃଷ୍ଣସିଂହ. ମହାଭାରତ ଆଦି ।] ୪ । ନିଶ୍ଚେ; ନିଶ୍ଚିତରୂପେ—4. Certainly. [ଉ—ପାଣ୍ଡବମାନେ ଯାହା ବନକୁ ଗଲେ, ମୋ ମତରେ ସବୁରି ନାଶନ୍ତି ସେ ଭଲେ । କୃଷ୍ଣସିଂହ. ମହାଭାରତ. ବନ] ୫ । ସାଧାରଣତଃ—5. Ordinarily ୬ । ଯଥା ଯୋଗ୍ୟରୂପେ; ଉଚିତ ରୂପେ—6. Properly.

ଭଲ୍ଲ (ଧାତୁ)—ସଂ.—ବଧ କରିବା—To kill.
Bhalla (root)

ଭଲ୍ଲ—ସଂ. ବି (ଭଲ୍ଲ ଧାତୁ+କର୍ତ୍ତୃ. ଅ)—୧। ଭାଲୁ—1. A bear. ୨ । Bhalla (+କରଣ.ଅ)ବେଧନାସ୍ତ୍ରବିଶେଷ; ଭାଲି; ବର୍ଚ୍ଛା—2. A spear. ୩ । ଅର୍ଦ୍ଧଚନ୍ଦ୍ର ଫଳାଯୁକ୍ତ ବାଣବିଶେଷ—3. An arrow with a crescent-shaped head or blade.

ଭଲ୍ଲ ମନ୍ତ୍ରୀ—ସଂ. ବି—ଜାମ୍ବବାନ୍ (ଦେଖ)—Jāmbabān (See) Bhalla mantrī [ଉ—ବେଲ ଭଲ ଭଲ୍ଲ ମନ୍ତ୍ରୀ, ବ୍ୟବସ୍ଥି ତରେ କହନ୍ତି । ଭଞ୍ଜ. ବୈଦେହୀଶବିଳାସ ।]

ଭଲ୍ଲ(ଲ୍ଲୁ,ଲ୍ଲୂ)କ—ସଂ. ବି. ପୁ (ଭଲ୍ଲ ଧାତୁ+କ; ଉକ; ଊକ)—ଭାଲୁ—Bear.
Bhalla (llu; llū)ka
[ଭଲ୍ଲକା (କୀ), ଭଲ୍ଲୁ (ଲ୍ଲୂ)କା (କୀ)—ସ୍ତ୍ରୀ]

ଭଲ୍ଲ(ଲ୍ଲୁ; ଲ୍ଲୂ)କ ଜ୍ୱର—ସଂ. ବି—କ୍ଷଣସ୍ଥାୟୀ କମ୍ପଜ୍ୱର; ଭାଲୁ ଜର—Bhalla(llu; llū)ka jwara A shivering ague lasting for a short time. [ ଉ—ଶୁକ୍ରବାର ଦିନ ଭାଲୁମାନେ କିଛି ସମୟ ଖୁବ କମ୍ପି କମ୍ପି ଶୋଇ ପଡ଼ନ୍ତି ଏବଂ ଅଳ୍ପ ସମୟ ପରେ ସେ କମ୍ପ ଛାଡ଼ିଯାଏ । ]

ଭଲ୍ଲାତ—ସ. ବି (ଭଲ୍ଲ=ବାଣବିଶେଷ+ଅତ୍ ଧାତୁ=ତୁଲ୍ୟ ହେବା+ କର୍ତ୍ତୃ ଅ;+କ; ଯାହା ଭଲ୍ଲ ପରି ଦେହରେ ବିଦ୍ଧ ହୋଇ ଯାଏ)—ଭଲିଆ ଗଛ ଓ ଫଳ—The marking nut (plant and fruit).
Bhallāta
(ଭଲ୍ଲାତକ—ଅନ୍ୟରୂପ)

ଭଲ୍ଲିକ—ଦେ. ବି. ପୁଂ (ନାମ)—ବୁଦ୍ଧଦେବଙ୍କ ସମସାମୟିକ ଜଣେକ ଓଡ଼ିଆ ବଣିକ ('ତ୍ରିପୁଷ' ତଳେ ଟୀକା ଦେଖ)—An Oriya trader; contemporary of the Buddha.
Bhallika
(See notes under 'Tripusha'.)

ଭଷ୍ (ଧାତୁ)—ସ. (କୁକୁର ଆଦି) ଭୁକିବା—To bark.
Bhash (root)

ଭଷ—ସ.ବି. ପୁଂ (ଭଷ୍ ଧାତୁ=ଭୁକିବା+କର୍ତ୍ତୃ. ଅ)—କୁକୁର—Dog.
Bhasha (ଭଷକ—ଅନ୍ୟରୂପ)

ଭସ୍ (ଧାତୁ)—ସ.—ଦୀପ୍ତି ପାଇବା; ଦୀପ୍ତ ହେବା; ଜକଜକ ହେବା—To dazzle; to shine.
Bhas (root)

ଭସ୍କା—ଦେ. ବିଣ—ଭସ୍ ଭସିଆ (ଦେଖ) Bhas-bhasia (See)
Bhas-kā भसका (ଭସକୀ—ସ୍ତ୍ରୀ) ପ୍ରାଦେ. (ସମ୍ବଲପୁର)
ভসকা ବିଣ. ପୁଂ—ମୋଟା; ସ୍ଥୂଳକାୟ (ବ୍ୟକ୍ତି)—Fat (man) corpulent.

ଭସ୍ଭସ୍—ଦେ. ଅ. (ଧ୍ୱନ୍ୟନୁକରଣ; ତୁଳନାକର ଇଂ. ହିସ୍ସିଙ୍ଗ୍—hissing)—ବଡ଼ ମୁଣିରୁ ଗୋଟିଏ ସାନ ଛିଦ୍ର ବାଟେ ପବନ ବା ପାଣି ଜୋରରେ ବାହାରିବାର ଶବ୍ଦ; ଫସ୍ଫସ୍—Hissing sound of water or air escaping from a bag through a small hole.
Bhas-bhas
(ଭାସ୍ଭାସ୍—ଅନ୍ୟରୂପ)
ভসভস
भसभस

ଭସ୍ଭସିଆ—ଦେ. ବିଣ—୧। ଫସ୍ଫସିଆ; ଯେଉଁ ଛିଦ୍ରମୟ ଥଳି ଆଦିରୁ ପାଣି ବା ପବନ ଭସ୍ଭସ୍ ହୋଇ ବାହାରି ଯାଉଥାଏ—1. (a bag with holes) From which water or air escapes with a hissing sound.
Bhas-bhasiā
(ଭସ୍କା—ଅନ୍ୟରୂପ)
ভস্‌কা, ভস্‌ভসিআ
भसभसिआ
୨। ଅସୁଆଦିଆ; ପାଣିଚିଆ—2. Insipid; tasteless.
୩। ଦଲଦଲିଆ—3. Soft and elastic.

ଭସା—ଦେ. ବି. (ସ. ଭାସ୍ ଧାତୁ=ଦୀପ୍ତି ପାଇବା, ପ୍ରକାଶ ପାଇବା)—କୌଣସି ପଦାର୍ଥକୁ ଜଳରେ ଭାସମାନ କରିବା—The act of floating a thing on water.
Bhasā
ভাসা
भसाना ଦେ. ବିଣ—ଭାସମାନ—Floating.

ଭସା(ସେ)ଇ ନେବା—ଦେ. କ୍ରି—ସ୍ରୋତର ବେଗରେ ଭାସମାନ ବସ୍ତୁକୁ ସ୍ଥାନାନ୍ତରକୁ ନେଇ ଯିବା—To cause a floating thing to move down with the current. (ଯଥା—ନଈବଢ଼ି କେତେ ଗାଈ ଗୋରୁଙ୍କୁ ଭସାଇ ନେଲା।)
Bhasā(se)i nebā
ভাসিয়ে নওয়া
भसालेना

ଭସା(ସେ)ଇବା—ଦେ. କ୍ରି. ('ଭାସିବା' କ୍ରିୟାର ଣିଜନ୍ତ ରୂପ)—୧। କୌଣସି ପଦାର୍ଥକୁ ଜଳରେ ଭାସମାନ କରିବା—1. To set a thing afloat on water; to cause a thing to float on water. ୨। ନୌକାକୁ ଜଳରେ ଭାସିବା ନିମନ୍ତେ ଛାଡ଼ି ଦେବା ବା ଠେଲି ଦେବା—2. To cause a boat to float on water; to launch a boat.
Bhasā(se)ibā
ভাসান
भसाना
(ଭସାଇ ଦେବା—ଅନ୍ୟରୂପ) ୩। (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା—3. (figurative) To cause ruin to a person; to ruin a person. (ଉ-ନୃପ କୁଳେ ଜନ୍ମି ତପସ୍ୱିନୀ ହୋଇ ମୋତେ ତ ଭସାଇ ଦେଲୁ। ନନ୍ଦକିଶୋର. ଶର୍ମିଷ୍ଠା) ୪। ଜଳ ପ୍ଳାବନ ଦ୍ୱାରା ଜଳ ସ୍ରୋତରେ ଦୂରକୁ ନେଇ ଯିବା—4. To cause to float away by flood water; to drift. (ଯଥା—ଗତ ପୂର୍ବ ବର୍ଷ କାଠଯୋଡ଼ି ନଈବଢ଼ି ଅନେକ ଘର ଭସାଇଲା।) ୫। ପ୍ଳାବିତ କରିବା—5. To flood; to inundate. (ଯଥା—ସେ ଲୁହରେ ଛାତିକୁ ଭସାଇଲାଣି।)

ଭସା ଜାଲ—ପ୍ରାଦେ. (ବାଲେଶ୍ୱର) ବି. (ତୁଳ. ବଂ. ଭାସା ଜାଲ)—ଭାସମାନ ଜାଲବିଶେଷ—A kind of floating net. [ଦ୍ର—ଏହାକୁ ପାଣିରେ ଭସାଇ ଦେଲେ ମାଛମାନେ ଏହା ଉପରକୁ ଡେଇ ପଡ଼ି ଜାଲରେ ଛନ୍ଦି ହୋଇ ଲାଗି ରହନ୍ତି।]
Bhasā jāla
भसा जाल

ଭସାଣି—ଦେ. ବିଣ—ଭାସି ଆସୁଥିବା—Floating. (ଉ—ଭସାଣି ଜାହାଜଟାକୁ ବାଟରେ ଓଗାଳି ରଖିବେ-ଫକୀରମୋହନ. ଗଳ୍ପସ୍ୱଳ୍ପ।) ଦେ. ବି—ନଈ ବଢ଼ିରେ ବା ସମୁଦ୍ରରେ ଭାସି ଆସିଥିବା ବସ୍ତୁ—Flotsam; things found floating on the water of a river or sea.
Bhasāṇi
भसनेवाला

ଭସାଣି କଙ୍କଡ଼ା—ପ୍ରାଦେ. (ବାଲେଶ୍ୱର) ବି—ସାମୁଦ୍ରିକ କଙ୍କଡ଼ା-ବିଶେଷ—A kind of sea-crab.
Bhasāṇi kaṅkarḍā

ଭସାଳୀ—ଦେ. ବିଣ ଓ ବି. (ଗାଳି)—ଭାସି ଆସିଥିବା; ନିରାଶ୍ରୟ; କାହିଁ ଅଇଲା (ବ୍ୟକ୍ତି)—Helpless (person); a bird of passage; a vagrant.
Bhasāḷi
भसा

ଭସାଭସି—ଦେ. ବି—ବହୁପଦାର୍ଥ ଭସାଇବା କର୍ମ—The act of causing many things to float.
Bhasābhasi
ভাসাভাসি भसाभसी

ଭସା ମେଘ(ବଉଦ)—ଯେଉଁ ମେଘ ଖଣ୍ଡ ପବନରେ ଇତସ୍ତତଃ ଚଳୁଥାଏ—Cloud drifted by wind.
Bhasā megha(bauda)
ভাসামেঘ भासाबादल

ଭସିତ—ସ. ବି. (ଭସ୍ ଧାତୁ+କର୍ତ୍ତୃ. ତ)—ଭସ୍ମ; ପାଉଁଶ—Ashes.
Bhasita

ଭସେଇ କି(କ)ରି କହିବା—ପ୍ରାଦେ. (ଯାଜପୁର) ବି—ଚାଟୁବାକ୍ୟ କହିବା—To flatter.
Bhasei ki(ka)ri kahibā

ଭସ୍କିବା—ପ୍ରାଦେ. (ଗଡ଼ଜାତ) କ୍ରି—କାଦୁଅରେ ଗୋଡ଼ ଦବି ଗଲେ ପାଦର ଗୃର ଧାରରେ (କାଦୁଅ ମାଟି) ଉପରକୁ
Bhaskibā

ଉଠିବା—(mud) To rise up along the edge of the feet when one walks on soft mud.

ଭସ୍ତ୍ର(ସ୍ତ୍ରି)କା—ସ. ବି. (ଭସ୍ ଧାତୁ+କର୍ତ୍ତୃ.ତ୍ର+କ+ଆ)-୧ । ଚମ ମୁଣିରେ Bhastra(stri)kā ପବନ ପୂରାଇ ମୁହଁ ବାନ୍ଧି ବାହାର କରିବା (ଭସ୍ତ୍ରା, ଭସ୍ତ୍ରୀ—ଅନ୍ୟରୂପ) ଯନ୍ତ୍ରବିଶେଷ; କମାରର ଭାଟି ବା ଯନ୍ତା—1. Blacksmith's bellows ୨ । ଭସ୍ତ୍ରି; ପାଣି ଆଦି ଏକସ୍ଥାନରୁ ଅନ୍ୟ ସ୍ଥାନକୁ ବୋହିବା ସରୁମୁହାଁ ଚମମୁଣି; ମଶକ—2. A leathern bag for carrying water.

ଭସ୍ମ—ସ. ବି. ( ଭସ୍ ଧାତୁ+କର୍ତ୍ତୃ. ମନ୍; ଭସ୍ମନ୍; ୧ମା, ୧ବ )—Bhasma ୧ । ପାଉଁଶ—1. Ashes. ୨ । ଆୟୁର୍ବେଦିକ ବା ରସାୟନିକ ପ୍ରକ୍ରିୟାରେ ସୁନା ଆଦି ପୋଡ଼ି ତହିଁରୁ କରାଯିବା ପାଉଁଶ—Oxide of metal and other things oxidised or reduced to ashes through chemical or Ayurbedic process. [ଦ୍ର—ସ୍ୱର୍ଣ୍ଣ ଆଦି ଧାତୁ ଓ ମୁକ୍ତା,ଶଙ୍ଖ ଆଦିକୁ ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ଭସ୍ମରେ ପରିଣତ କରିବା କାର୍ଯ୍ୟକୁ 'ମାରଣ' ବୋଲାଯାଏ । ଏହି ଭସ୍ମମାନ ଭିନ୍ନ ଭିନ୍ନ ରୋଗରେ ପ୍ରୟୋଗ କରାଯାଏ । ଆୟୁର୍ବେଦ ମତରେ ପ୍ରାୟ ସମସ୍ତ ଧାତୁର ଓ ରତ୍ନର ଭସ୍ମ ପ୍ରସ୍ତୁତ କରାଯାଇ ଔଷଧରେ ବ୍ୟବହୃତ ହୁଏ ।] ୩ । ହୋମରେ ଜଳାଯିବା କାଠ ଆଦିର ପାଉଁଶ; ବିଭୂତି—3. The ashes of wood etc burnt in Homa. ୪ । ଚିତା ଭସ୍ମ; ମୁଦାର ପୋଡ଼ା ପାଉଁଶ—4. Ashes left after cremation. ଦେ. ବି—ସୁଜୀର୍ଣ୍ଣ ଖାଦ୍ୟ ବସ୍ତୁର ପରିଣତି—The remains of food in the stomach after it is well digested.
ଦେ. ବିଣ—୧। ଭସ୍ମୀଭୂତ—1 Reduced to ashes ୨ । ସୁଜୀର୍ଣ୍ଣ ( ଖାଦ୍ୟ )—2. Well digested.

ଭସ୍ମକ—ସ. ବି ( ଭସ୍ମ+କ )—୧ । ସୁବର୍ଣ୍ଣ—1. Gold. ୨ । Bhasmaka ରୌପ୍ୟ—2. Silver. ୩ । କଫର ହ୍ରାସ ଓ ବାୟୁପିତ୍ତର ପ୍ରକୋପ ଜନିତ ରୋଗ ବିଶେଷ—3. A kind of disease due to loss of phlegm and excess of bile and wind. ୪ । ଭସ୍ମକୀଟ—4. A kind of worm in the stomach.

ଭସ୍ମ କରିବା—ଦେ. କ୍ରି—୧ । କୌଣସି ପଦାର୍ଥକୁ ପୋଡ଼ି ପାଉଁଶ Bhasma karibā କରିବା—1. To reduce a thing भस्म करना to ashes. ୨ । କୌଣସି ବ୍ୟକ୍ତିର ବା ବସ୍ତୁର भसम करना ସର୍ବନାଶ ଘଟାଇବା—2. To cause annihilation or extermination; to ruin. ୩ । ଖାଦ୍ୟ ଦ୍ରବ୍ୟକୁ ଜୀର୍ଣ୍ଣ କରିବା ବା ପାର୍ କରିବା—3. To digest a food.

ଭସ୍ମ କୀଟ—ସ. ବି—ଉଦର ମଧ୍ୟରେ ଥିବା ଏକପ୍ରକାର ପୋକ—Bhasma kīṭa A kind of worm in the stomach which eats up whatever the person eats and makes him or her ever hungry and craving for food. [ଦ୍ର—ମନୁଷ୍ୟ ଯାହା ଖାଏ ଏମାନେ ଶୀଘ୍ର ତାହା ଭସ୍ମ କରି ଦେବାରୁ ଉକ୍ତ ମନୁଷ୍ୟ ସର୍ବଦା ପ୍ରବଳ କ୍ଷୁଧାରେ ପ୍ରପୀଡ଼ିତ ହୁଏ । ଏହା ଗୋଟିଏ ମାରାତ୍ମକ ରୋଗ ।]

ଭସ୍ମ କୂଟ—ସ. ବି ( ୬ଷ୍ଠୀ ତତ୍; ଭସ୍ମ+କୂଟ )—ପାଉଁଶଗଦା—Bhasma kūṭa A heap of ashes. (ଭସ୍ମସ୍ତୂପ, ଭସ୍ମରାଶି—ଅନ୍ୟରୂପ)

ଭସ୍ମଗତ—ଦେ. ବିଣ—ଭସ୍ମସାତ୍—Reduced to ashes. [ଉ—Bhasmagata ଶ୍ରୀକ ଅନଳ ହେଲେ ଜାତ, ତେବେ ସେ ହୋଏ ଭସ୍ମଗତ । ଜଗନ୍ନାଥ, ଭାଗବତ । ]

ଭସ୍ମ ଗୁଣ୍ଠନ—ସ. ବି—ବିଭୂତିଲେପନ; ଦେହରେ ପାଉଁଶ ବୋଳି ହେବା Bhasma gunṭhana —Smearing the body with ashes. (ଭସ୍ମଲେପନ, ଭସ୍ମବିଲେପନ—ଅନ୍ୟରୂପ)

ଭସ୍ମସାତ୍—ସ. ବିଣ ( ଭସ୍ମ+ପରିଣତାର୍ଥରେ ସାତ୍ )—୧ । ଭସ୍ମରେ Bhasmasāt ପରିଣତ ଭସ୍ମୀଭୂତ—1. Reduced to ashes. ୨ । ଭସ୍ମାକାରରେ ପରିଣତ—2. Reduced to a state of ashes; oxidised.

ଭସ୍ମା—ପ୍ରାଦେ ( ସାଜପୁର ) ବି. ପୁଂ—ପୁରୁଷଙ୍କୁ ଦିଆଯିବା ଏକପ୍ରକାର Bhasmā ଗାଳି—A term of abuse to males.

ଭସ୍ମାଚ୍ଛନ୍ନ—ସ.ବିଣ (୩ୟା ତତ୍; ଭସ୍ମ+ଆଚ୍ଛନ୍ନ)—ପାଉଁଶଦ୍ୱାରା ଆବୃତ-Bhasmāchchanna Covered over with ashes. (ଭସ୍ମାଚ୍ଛାଦିତ, ଭସ୍ମାବୃତ—ଅନ୍ୟରୂପ)

ଭସ୍ମାଧାର—ସ. ବି ( ୬ଷ୍ଠୀ ତତ୍; ଭସ୍ମ+ଆଧାର )—୧ । ପାଉଁଶ Bhasmādhāra ରଖିବାର ପାତ୍ର—1. A receptacle for ashes. ୨ । ମୃତଦେହର ଭସ୍ମାବଶେଷ ରକ୍ଷା କରାଯିବା ଥାଳୀ ବା ପାତ୍ର—2. An urn to preserve the remains of the dead.

ଭସ୍ମାବଶିଷ୍ଟ—ସ. ବିଣ—ପୋଡ଼ିଯାଇ ପାଉଁଶ ମାତ୍ର ଅବଶିଷ୍ଟ (କୌଣସି ବସ୍ତୁ) Bhasmābasishta —Reduced to ashes after being burnt; burnt to ashes (ଭସ୍ମୋଚ୍ଛାବଶିଷ୍ଟ—ଅନ୍ୟରୂପ)

ଭସ୍ମାବଶେଷ—ସ. ବି ( ୬ଷ୍ଠୀ ତତ୍; ଭସ୍ମ+ଅବଶେଷ )—୧ । ପୋଡ଼ି Bhasmābasesha ଯାଇଥିବା ପଦାର୍ଥର ଅବଶିଷ୍ଟ ରହିଥିବା ଭସ୍ମରୂପ ଅଂଶ—1.The ashy remains of a burnt thing. ୨ । ଭସ୍ମୀଭୂତ ଦେହ—2. A body turned to ashes; the ashy form of a body which has been burnt down.

ଭସ୍ମାନ୍ଧ—ସ. ବିଣ, ପୁଂ ( ୩ୟା ତତ୍; ଭସ୍ମ+ଅନ୍ଧ )—ଆଖିରେ ପାଉଁଶ Bhasmāndha ପଡ଼ିବା ଯୋଗୁଁ ଅନ୍ଧ—Blinded with ashes. (ଭସ୍ମାନ୍ଧା—ସ୍ତ୍ରୀ)

ଭସ୍ମାସୁର—ଦେ. ବି—ଦୈତ୍ୟ ବିଶେଷ—Name of a demon. Bhasmāsura. [ ଦ୍ର—ଏ ତପସ୍ୟା କରି ମହାଦେବଙ୍କଠାରୁ ବର ପାଇଲା ଯେ, ଏ ଯାହା ମୁଣ୍ଡରେ ହାତ ଦେବ ସେ ଜଳି ପାଉଁଶ ହୋଇଯିବ । ଏହାର ସତ୍ୟତା ପରୀକ୍ଷା କରିବାପାଇଁ ଏ

ପ୍ରଥମେ ମହାଦେବଙ୍କ ମୁଣ୍ଡରେ ହାତ ଦେବାପାଇଁ ତାଙ୍କ ପଛରେ ଗୋଡ଼ାଇଲା ଓ ମହାଦେବ ପଳାଇଲେ; ମହାଦେବଙ୍କର ଦୁଃଖ ଦେଖି ବିଷ୍ଣୁ ଛଳ କରି ନିଜ ମୁଣ୍ଡରେ ହାତ ଦେବାକୁ ଏହାକୁ କହିଲେ । ଏ ତାହା କରିବାରୁ ଭସ୍ମ ହୋଇଗଲା । ] [ଦ୍ର—ଦୁଷ୍ଟଙ୍କୁ ଦୟନ୍ତ ବାଞ୍ଛାବର, ଦେଖାଇ ଦେଲା ଭସ୍ମାସୁର । ଭୂପତି. ପ୍ରେମପଞ୍ଚାମୃତ । ]

ଭସ୍ମିତ—ସଂ. ବିଣ ( ଭସ୍ମ+ଯୁକ୍ତ ବା ପରିଣତାର୍ଥେ ଇତ )—୧ ।
Bhasmita ପୋଡ଼ି ଯାଇ ପାଉଁଶ ହୋଇଥିବା—1. Reduced to ashes. ୨ । ବିନଷ୍ଟ—2. Destroyed.

ଭସ୍ମୀଭୂତ—ସଂ. ବିଣ ( ଭସ୍ମ+ଅଭୂତ ତଦ୍ଭାବେ. ଚ୍ୱି+ଭୂତ )—୧ ।
Bhasmībhūta ଭସ୍ମରେ ପରିଣତ; ପୋଡ଼ି ଯାଇ ପାଉଁଶ ହୋଇଥିବା—1. Reduced to ashes; burnt to ashes. ୨ । ବିନଷ୍ଟ—2. Destroyed; ruined. ୩ । ଉଦରାଗ୍ନି ଦ୍ୱାରା ଜୀର୍ଣ୍ଣ ହୋଇଥିବା—3. Digested.

ଭା (ଧାତୁ)—ସଂ—ଦୀପ୍ତି ପାଇବା—To shine.
Bhā (root)

ଭା (ଭାଃ)—ସଂ. ବି ( ଭା ଧାତୁ+ଭାବ ଅ+ଅସ୍ )—୧ । ଦୀପ୍ତି; ପ୍ରଭା—
Bhā (bhāḥ) 1. Lustre; radiance. ୨ । (+କର୍ତ୍ତୃ. ଅ )—2. Light. ୩ । କିରଣ—3. Ray. ୪ । ଶୋଭା—4. Beauty; splender.

ଭାଆର (ଇତ୍ୟାଦି)—ଗ୍ରା. ବି ଓ ବିଣ—ବାହାର ଇତ୍ୟାଦି (ଦେଖ)
Bhā-āra [etc] भार Bhāhāra etc etc [See]

ଭାଆରିବା—ଗ୍ରା. କ୍ରି—ବାହାରିବା (ଦେଖ)
Bhā-āribā भारना Bāhāribā [See].

ଭାଇ—ଦେ. ବି ପୁଂ (ସଂ. ଭ୍ରାତୃ; ପ୍ରା. ଭାଇ)—୧ । ଭ୍ରାତା; ସହୋଦର—
Bhāi 1. Brother. ୨ । ଖୁଡ଼ୁତା ବା ଦେଢ଼ୁତାଙ୍କ ପୁଅ; ମାମୁଁ, ପିଉସା ବା ମଉସାଙ୍କ ପୁଅ—2. Causin. ୩ । କୁଟୁମ୍ବୀ—
ভাই. भाई, भैया 3. Kinsman. ୪ । ଏକ ଜନ୍ମଭୂମିର ସନ୍ତାନ—4. One's countryman. ୫ । ସଙ୍ଗୀ—5. Companion, ୬ । ଧର୍ମଭାଇ—6. Godbrother. ୭ । ଏକ ଜାତିର ବା ସମାଜର ଅନ୍ତର୍ଗତ ବ୍ୟକ୍ତି—7. Member of a particular caste-guild or community. ୮ । ଏକ ସ୍ଥାନରେ କାର୍ଯ୍ୟ କରୁଥିବା ବ୍ୟକ୍ତି—8. Persons working at the same place; colleague. ୯ । ଏକ ସମ୍ପତ୍ତିର ଅଂଶୀଦାର—9. Cosharers in a property. ଦେ. ଅ—ସମ ବୟସ୍କ, ସମସ୍ଥ ବା ସମ ଅବସ୍ଥାପନ୍ନ ବ୍ୟକ୍ତିଙ୍କୁ ସମ୍ବୋଧନ—A word addressed to people of the same age, position or condition.

ଭାଇଆ—ଦେ. ବି (ସଂ. ଭ୍ରାତୃ+ଆଳ)—୧ । ଜ୍ଞାତି; କୁଟୁମ୍ବୀ ଭାଇ—
Bhāiā 1. Kinsman; one's agnate. ୨ । ଦୂର ସମ୍ପର୍କୀୟ ( ଭାଇଆଳ—ଅନ୍ୟରୂପ ) ଜ୍ଞାତି ବା କୁଟୁମ୍ବ—2. Distant
ভায়া agnate. ଦେ. ବିଣ—୧ । ଭାଇ ସମ୍ପର୍କୀୟ—
भैया; भाया 1. Brotherly. ୨ । ଭାଇଭାଗ ସମ୍ପର୍କୀୟ—2. Relating to fraternal or any other agnatic shares.

ଭାଁ ଭାଁ—ଦେ. ଅ (ଧ୍ୱନ୍ୟନୁକରଣ)—କାନ ମଧ୍ୟରେ ଅନୁଭୂତ ହେବା
Bhāñ bhāñ ଏକ ପ୍ରକାର ଶବ୍ଦ—A ringing sound or sensation experienced inside the ear.
ଭାଁଅଁ ଭାଁଅଁ, ଭାଇଁ ଭାଇଁ, ଭାଉଁ ଭାଉଁ } ଅନ୍ୟରୂପ
ভাঁ ভাঁ भाँभाँ

ଭାଇ କୁମା(ମ୍ବା,ମ୍ଭା)ଳ—ଦେ. ଅ (ସବାରି ବେହେରାଙ୍କ ଡାକ)—
Bhai kumā (mbā; mbhā)la ସବାରିର ଆଗ ବାଉଁଶର [ଭାଇକୁମା (ମ୍ବା, ମ୍ଭା)ଳଆ—ଅନ୍ୟରୂପ) ନିକଟରେ କାନ୍ଧେଇ ଥିବା [ଭାଇ ପି (ଫି)ଗାଲ (ଲଆ)—ବିପର୍ଯ୍ୟତ] ବେହେରାଙ୍କୁ ସମ୍ବୋଧନ—A term used by palki bearers, to denote the foremost bearer.

ଭାଇ ଗରବ—ଦେ. ଅ ( ସବାରି ବେହେରାଙ୍କ ଡାକ )—ସବାରିର
Bhai garaba ବାଉଁଶର ମୂଳରେ କାନ୍ଧେଇ ଥିବା ବେହେରାଙ୍କୁ ଡାକ—A term used by palki bearers, to denote the bearer at the root of the pole.

ଭାଇ ଘର—ପ୍ରାଦେ. (କଟକ) ବି—କୌଣସି ଘର ସମ୍ମୁଖରେ ତିଆରି
Bhāi ghara ହୋଇଥିବା ଅନ୍ୟ ଘର— A house raised in front of another.

ଭାଇଚ—ଦେ. ବି—(ସଂ. ବାଚ୍ୟ)—ବାଇଚ; ଦୂଷଣ—Finding
Bhāicha fault with a person; cavilling.

ଭାଇଚାରା—ଦେ. ବି—୧ । କୁଟୁମ୍ବିତା—1. Kinship. ୨ । କୁଟୁମ୍ବୀ
Bhāichārā ଭାଇ—2. Kinsman. ୩ । ଜାତିଭାଇ—
ভায়া भायाचारा; भाइचारा 3. Castemen. ୪ । ସମ ଅବସ୍ଥାପନ୍ନ ବ୍ୟକ୍ତିଗଣ—4. Brethren. ୫ । ଭାଇ ସମ୍ପର୍କ—5. Fraternal relationship.

ଭାଇଜାନ୍—ବୈଦେ ବି (ଫା)—ଭ୍ରାତା ବା ସଙ୍ଗୀ ପ୍ରତି ସ୍ନେହ
Bhāijān ସମ୍ବୋଧନ—A term of endearment ad-
ভাইজান भाईजान dressed to a brother or bosom-companion.

ଭାଇ ଜିଉଁତିଆ—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ହି. ଭାଇ ଜୁଗାୟା)—
Bhāi jiuñtiā ଆଶ୍ୱିନ ମାସର, ମହାଷ୍ଟମୀ ଦିନ ଭାଇ ଥିବା ସ୍ତ୍ରୀ (ଭାଏ ଜିମତିଆ—ଅନ୍ୟରୂପ) ଓ ବାଳିକାମାନେ ଯେଉଁ ଓଷା ପାଳନ କରନ୍ତି—A festival observed on the bright fortnight of Aświna in Sambalpur by women and girls having brothers. [ ଦ୍ର—ଏ ଦିନ ବିବାହିତା ଭଉଣୀମାନେ ଶଶୁର ଘରୁ ଭାଇଙ୍କ ଘରକୁ ଆସନ୍ତି ଏବଂ ଭାଇଙ୍କୁ ଫୁଲ ଚନ୍ଦନରେ ବେଶ କରି ପିଠା ଆଦି ଦିଅନ୍ତି । ଭଉଣୀମାନେ ଦିନ ସାରା ଉପବାସ ରହି ଦୁର୍ଗାଙ୍କଠାରେ ଭାଇଙ୍କର ଦୀର୍ଘ ଜୀବନ କାମନା କରନ୍ତି ଏବଂ ଜିଉନ୍ତିଆ (ସୂତ୍ର) ପିନ୍ଧନ୍ତି ।

ଡକ୍ତି ଅବସରରେ ଭାଇମାନେ ଭଉଣୀମାନଙ୍କୁ ନୂଆ ଲୁଗା ଦେବାନ୍ତି ଓ ପରେ ଶାଶୁଘରକୁ ବିଦାୟ କରନ୍ତି । ]

ଭାଇତିରିଆ—ଦେ. ବଣ—୧ । ଭାଇ ସମ୍ପର୍କୀୟ –1. Relating to Bhāitiriā brothers; fraternal; brotherly. भाईचारा ଭାୟା ୨ । କୁଟୁମ୍ବୀ—2. Agnatic.

ଭାଇ ଦୁତିଆ—ଗ୍ରା. ବ (ସ. ଭ୍ରାତୃ ଦ୍ୱିତୀୟା)—ଯମଦ୍ୱିତୀୟା; କାର୍ତ୍ତିକ Bhāi dutiā ଶୁକ୍ଳ ଦ୍ୱିତୀୟା—The 2nd day of the ଭାଇ ଦ୍ବିତୀୟା bright fortnight of the month of भाइदूज Kārttika. [ଦ୍ର—ଏ ଦିନ ଯମୁନା ଆପଣାର ଭାଇ ଯମଙ୍କର ପୂଜା କରି ଥିବାରୁ ଭଉଣୀମାନେ ନିଜ ନିଜର ଭାଇଙ୍କୁ ପୂଜା କରନ୍ତି । ]

ଭାଇ ଦେବା—ଦେ. କ୍ରି—ବାହୁଆ ଜାତିର ଓ ଗାଣି କଣ୍ଡାରଙ୍କ ସମାଜରେ Bhāi debā କୌଣସି ଲୋକ ମରିଗଲେ ତାହାର ଅନ୍ତ୍ୟେଷ୍ଟି दाहमे जाना କ୍ରିୟାରେ ଯୋଗ ଦେବା ପାଇଁ ଜାତି ଭାଇମାନଙ୍କ ପକ୍ଷରୁ ପ୍ରତିନିଧିସ୍ୱରୂପ ଜଣେ ଭାଇଙ୍କୁ ପଠାଇବା [ ଦ୍ର—ଜାତି ବେହେରା ଠାରେ ଭାଇ ଦେବା ଭାର ନ୍ୟସ୍ତ ଥାଏ । ] (the headman of a caste-guild) To depute a representative to attend the funeral of a deceased casteman.

ଭାଇଧନ—ଦେ. ଅ—ଭାଇ ବା ମିତ୍ର ପ୍ରତି ସ୍ନେହ ସମ୍ବୋଧନ— Bhāidhana A term of endearment addressed to भाइ; भाइजान ଭାଇଜାନ a brother or friend.

ଭାଇନା (ନ୍ନା)—ଦେ. ବି. ପୁଂ (ବ୍ରାହ୍ମଣଙ୍କ ଘରେ ପ୍ରଚଳିତ) ବଡ଼ଭାଇ— Bhāinā(nnā) Elder brother (in a Brāhmana- ଦାଦା; भैया, भाया family). [ଦ୍ର—କଟକ ଜିଲ୍ଲାର ମହାନଦୀର (ଭାଇନନା—ଅନ୍ୟରୂପ) ଉତ୍ତର ତଟବର୍ତ୍ତୀ ବ୍ରାହ୍ମଣମାନେ ବଡ଼ଭାଇଙ୍କୁ (ଭାଉଜ—ସ୍ତ୍ରୀ) ନନା ବୋଲି ସମ୍ବୋଧନ କରନ୍ତି ଓ ପିତାଙ୍କୁ 'ନନା' ନ କହି ବାପା ବୋଲି କହନ୍ତି; ପୁରୀ ଜିଲ୍ଲାରେ ଓ କଟକଜିଲ୍ଲାର ମହାନଦୀର ଦକ୍ଷିଣକୂଳବାସୀ ବ୍ରାହ୍ମଣମାନେ ବଡ଼ଭାଇଙ୍କୁ ଭାଇନା ଓ ପିତାଙ୍କୁ ନନା ବୋଲି ଡାକନ୍ତି ।]

ଭାଇପଣ—ଦେ. ବି—୧ । ଭ୍ରାତୃତା—1. Brotherhood. ୨ । ଭ୍ରାତୃ- Bhāipaṇa ଉଚିତ ବ୍ୟବହାର—2. Brotherly conduct. ୩ । ଏକ ସମାଜଭୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି କର୍ତ୍ତବ୍ୟ ସାମାଜିକ କର୍ମମାନଙ୍କର ନିୟମିତ ସମ୍ପାଦନ (ଯଥା, ଜାତିଅଣ ସଭାରେ ଛିଆହିଆ, ଦୁର୍ଦ୍ଦୀର ଉଠାଇବା, ପାରିବାରିକ ଉତ୍ସବାଦିରେ ଯୋଗ ଦେବା ଆଦି)— 3. Regular discharge of one's duties to the other members of the society or guild to which one belongs. ଭାଇପନା; भाइपन, भाइचारा (ଭାଇ ପଣିଆଁ—ଅନ୍ୟରୂପ)

ଭାଇ ପି(ଫି)ଙ୍ଗାଳ—ଦେ. ଅ ( ସବାରି ବେହେରାଙ୍କ ଡାକ )—ପଛ Bhāi pi(phi)ṅgāḷa ବାଉଁଶରେ ଥିବା ବେହେରାଙ୍କୁ ଆଗ [ଭାଇପି (ଫି)ଙ୍ଗାଳଅ—ଅନ୍ୟରୂପ] ବେହେରାର ସମ୍ବୋଧନ— A term used by palki bearers to denote (ବିପରୀତ—ଭାଇଭୁମ୍ପାଳ) the rearmost bearer.

ଭାଇ ପିଛିଲା—ଦେ. ଅ (ସବାରି ବେହେରାଙ୍କ ଡାକ)—ଆଗ ବେହେରା- Bhāi pichhilā ମାନଙ୍କର ପଛ ବେହେରାଙ୍କୁ ଡାକିବା ଡାକ— A term used by the bearers of the front pole of a palki to those at the rear.

ଭାଇପୁଅ—ଦେ. ବି (ସ. ଭ୍ରାତୃପୁତ୍ର)—୧ । ଭ୍ରାତୃପୁତ୍ର; ଭ୍ରାତୁଷ୍ପୁତ୍ର— Bhāipua 1. One's brother's son; nephew. ୨ । ଭାଇପୋ; भतीजा ରାଜାଙ୍କ ବଂଶଧର ବା କୁଟୁମ୍ବ—2. A Raja's kinsmen or agnates. ପ୍ରାଦେ. (ଗଞ୍ଜାମ) ବି— ଗଞ୍ଜାମ ଜିଲ୍ଲାର ଯାଦବକବଂଶ—A caste of Sūdras in the district of Ganjam.

ଭାଇ ବିରାଦର—ଦେ. ବି (ସହୋଦର; ସ. ଭ୍ରାତୃ+ଫା. ବିରାଦର୍)— Bhāi birādara ୧ । ସହୋଦର ଭାଇ ଓ କୁଟୁମ୍ବୀ ଭାଇମାନେ— ଭାଇ ଭାୟାଦ; भाइबिरादर 1. Brothers and cousins. ୨ । କୁଟୁମ୍ବୀଗଣ—2. Kinsmen.

ଭାଇ ବେହେରା—ଦେ. ବି—ବାହୁଆମାନଙ୍କ ଜାତି ଭାଇମାନଙ୍କ ମଧ୍ୟରେ Bhāi beherā ପ୍ରଧାନ ବ୍ୟକ୍ତି—A headman of a caste- मुखिया, माइजन ପରମାଣିକ guild.

ଭାଇବୋହୂ(ଉ)—ଦେ. ବି (ସ. ଭ୍ରାତୃବଧୂ)—ଭ୍ରାତୃବଧୂ; ସାନଭାଇର Bhāibohū(u) ସ୍ତ୍ରୀ—The wife of one's younger ଭାଇବଉ; भावज, भाभी brother.

ଭାଇ ଭଉଣୀ—ଦେ. ବି (ବିପରୀତଲିଙ୍ଗ ସହୋଦର)—ଭ୍ରାତା ଓ ଭଗିନୀ— Bhāi bhauṇi Brother and sister. ଭାଇବହିନ ଭାଇବୋନ; भाइबहीन

ଭାଇ ଭଗାରି—ଦେ. ବି—୧ । ଦାୟାଦ; ପୈତୃକ ସମ୍ପତ୍ତିରେ ଅଂଶୀଦାର— Bhāi bhagāri 1. Cosharer with a person in res- ଭାଇଭାଗାରି; भाइबन्धु pect of patrimony. ୨ । ଜ୍ଞାତି- ଶତ୍ରୁ—2. One's co-sharer, and so, one's enemy or rival.

ଭାଇ ଭଗାରିଆ—ଦେ. ବି—୧ । ଦାୟାଦ ବା ପୈତୃକ ସମ୍ପତ୍ତିରେ Bhāi bhagāriā ଅଂଶୀଦାରମାନଙ୍କ ସମ୍ବନ୍ଧୀୟ—1. Pertain- भाइबन्धु ing to agnatic or cognatic co-sharers. ୨ । ଯେଉଁ ବ୍ୟକ୍ତିର ବା ପରିବାରର ପ୍ରତିବେଶୀରୂପେ ଭାଇ ଓ ଭଗାରିମାନେ ବାସ କରନ୍ତି—2. (a person or family) Surrounded by co-sharers as ଭାଇଭାଗାରିୟା neighbours.
(ଢ଼—ଭାଇ ଭଗାରିଆ ଘର, ଯେ ନ ପଶିବ ସେ ପଶିଲ୍ଲି, ତାହାକୁ କରିବ ସର ?—ଢଗ)

ଭାଇ ଭାଗ—ଦେ. ବି (ସ. ଭ୍ରାତୃ+ଭାଗ )—୧ । ଭାଇମାନଙ୍କ ମଧ୍ୟରେ Bhāi bhagā ପୈତୃକ ସମ୍ପତ୍ତିର ବିଭାଗ—1. Partition of ଭାଇ ବାଣ୍ଟ / ଭାଇବ (ବା)ଣ୍ଟ }—ଅନ୍ୟରୂପ patrimony amongst brothers. भाइकाअंश ୨ । ଭାଇମାନଙ୍କ ମଧ୍ୟରୁ ଜଣକର ଅଂଶ—2. The भाइकाभाग share or allotment of one brother or भाइकाहिस्सा co-sharer. (ଢ଼—ପାଣ୍ଡବଙ୍କର ଭାଇ ଭାଗ ଲେଖି

ଦେଇ, ବୈଗ ବେ ସୁଖରେ ବସିଲା ନାମେ ମଣ୍ଡା—କୃଷ୍ଣସିଂହ.
ଭাইভাগ ମହାଭାରତ. ଉଦ୍ୟୋଗ ।)

ଭାଇ ଭାତ—ଦେ. ବି—ଜାତିଭାଇଙ୍କୁ ଦଥାଯିବା ଭୋଜନ—Caste-
Bhāi bhāta ভাইভাত, भाइभात dinner.
(ଭାଇ ଭୋଜ—ଅନ୍ୟରୂପ) জাতির ভোজ

ଭାଇ(ଏ)ରା(ଡ଼ା) ଭାଇ—ପ୍ରାଦେ. (ମେଦିନୀପୁର ଓ ଉତ୍ତର ବାଲେଶ୍ୱର)
Bhāi(e)rā(rdā) bhāi ବି (ଭୁଲ. ଏହି ଅର୍ଥରେ ବ. ଏହି ଶବ୍ଦ)
ସଢ଼ୁ; ଅପଣା ସ୍ତ୍ରୀର ଭଉଣୀଙ୍କ ସ୍ୱାମୀ; ଶ୍ୟାଳୀପତି—One's
brother-in-law, being the husband of
one's wife's sister.

ଭାଇ ଲେଖା—ଦେ. ବି—୧ । ଭ୍ରାତୃ ସମ୍ପର୍କ—1. Brotherly
Bhāi lekhā relationship. ୨ । ଦୂର ସମ୍ପର୍କରେ ଭାଇ—
भाइलेखा; मैयारी 2. One's distant causin. ଦେ.
ভায়া ବିଣ—୧ । ଭ୍ରାତୃସ୍ଥାନୀୟ(ବ୍ୟକ୍ତି)—1. In the position
of a brother. ୨ । ଦୂର ସମ୍ପର୍କରେ ଭାଇରୂପେ
ସମ୍ପୃକ୍ତ—2. Distantly related to a person as
causin.

ଭାଇ ଶଳା—ଦେ. ବି· ପୁଂ—କୌଣସି ସ୍ତ୍ରୀଲୋକର ଭାଇର ଶଳା—
Bhāi sālā A woman's brother's wife's brother.
भाईशाला [ ଦ୍ର—ସ୍ତ୍ରୀମାନଙ୍କର ଭାଇଶଳା ପରିହାସାସ୍ପଦ ଅଟନ୍ତି । ]

ଭାଇସ୍—ବୈଦେ. ବି. (ଇଂ)—ଦୁଇଥିଲ୍ଲ କୌଣସି ପଦାର୍ଥକୁ ଦୃଢ଼ ଧରିବା
Bhāis ପାଇଁ ବ୍ୟବହୃତ ଲୁହାର ଦୁଇ ଫାଳିଆ କଳ—A
ভাইস बाइस mechanic's vice.

ଭାଇସ୍‌ଚାନ୍‌ସେଲ(ଲା)ର୍—ବୈଦେ. ବି. (ଇଂ)—ବିଶ୍ୱବିଦ୍ୟାଳୟର
Bhāis-chānsela(lā)r ଚାନ୍‌ସେଲର୍ ବା ସଭାପତିଙ୍କ ସହକାରୀ—
ভাইস চান্সেলর্ बाइस चान्सेलार Vice-chancellor of
a university.

ଭାଇସ୍‌ଚେୟାରମା(ମେ,ମ୍ୟା)ନ୍—ବୈଦେ. ବି. (ଇଂ)—ଡିଷ୍ଟ୍ରିକ୍-
Bhāis-chear-ma(me,myā)n ବୋର୍ଡ ଓ ମିଉନିସିପାଲିଟିର
ভাইসচেয়ারমেন बाईसचेयारमैन ସହକାରୀ ଚେଆରମ୍ୟାନ୍—
(ଭାଇସ୍‌ଚେରମେନ୍—ଗ୍ରାମ୍ୟରୂପ) Vice-chairman.

ଭାଇସ୍ ପ୍ରେସିଡେଣ୍ଟ—ବୈଦେ· ବି. (ଇଂ)—ସଭା ସମିତି ଆଦିର
Bhāis- president ସହକାରୀ ସଭାପତି—Vice-president.
ভাইস্ প্রেসিডেন্ট बाइस प्रेसिडेण्ट

ଭାଇସ୍ ର(ରା)ୟ(ଏ)—ବୈଦେ.ବି. (ଇଂ)—ସମ୍ରାଟଙ୍କ ପ୍ରତିନିଧି ଭାରତର
Bhāis-ra(rā)y(e) ବଡ଼ଲାଟ—The Viceroy of India.
ভাইস্রায় बाईसराय

ଭାଇ ସଭା—ଦେ. ବି—ଜାତିଭାଇମାନଙ୍କର ସାମାଜିକ ପ୍ରସଙ୍ଗ ଆଲୋଚନା
Bhāisabhā ନିମନ୍ତେ ହେବା ସଭା—A meeting of
भाईसभा, জাতভাইদের সভা caste-men.

ଭାଉ—ଦେ. ବି (ସ.ଭାବ)—୧ । ପଦାର୍ଥର ବିକ୍ରି ଦର—1. Rate
Bhāu of the price of an article. ୨ । ମୂଲ୍ୟ—
ভাও भाव 2. Price or value of a thing. ୩ ।
ମୂଲ୍ୟ ନିର୍ଦ୍ଧାରଣ—3. Settlement of the price
of a thing.

ଭାଉ କରିବା—ଦେ.କ୍ରି—ଦରଦାମ୍ କରିବା;କୌଣସିଦ୍ରବ୍ୟକୁ କିଣିବାପାଇଁ
Bhāu karibā ମୂଲ୍ୟଚିବା—To appraise the value
ভাওকরা भावकरना of a thing.

ଭାଉଚର୍—ବୈଦେ. ବି (ଇଂ)—କୌଣସି ଧନ ବାହିତ ହୋଇଥିବାର
Bhāuchar ନିଦର୍ଶନ ସ୍ୱରୂପ ଗୃହୀତ ରସିଦ୍—A voucher.
ভাউচর मौचर

ଭାଉ ଛିଣ୍ଡା(ଣ୍ଡେ)ଇବା—ଦେ. କ୍ରି.—କୌଣସି ପଣ୍ୟଦ୍ରବ୍ୟର ମୂଲ୍ୟ
Bhāu chhindā(nde)ibā ନିରୂପଣ କରିବା—To settle
भावतोडना ভাও স্থিরকরা the price of a commodity.

ଭାଉ ଛିଣ୍ଡିବା—ଦେ. ବି—୧ । କୌଣସି ଦ୍ରବ୍ୟର ମୂଲ୍ୟର ନିର୍ଦ୍ଧାରଣ ବା
Bhāu chhindibā ସ୍ଥିରୀକରଣ—1. The settlement
(ଭାଉ ପଡ଼ିବା—ଅନ୍ୟରୂପ) of the price of a thing. ୨ ।
भावटूटना କ୍ରେତା ବିକ୍ରେତାଙ୍କ ମଧ୍ୟରେ କୌଣସି ଦ୍ରବ୍ୟର ମୂଲ୍ୟ
ভাও স্থির হওয়া ସମ୍ବନ୍ଧରେ ଚୁକ୍ତି—2.Final agreement be-
tween the seller and the purchaser as to
the price of an article offered for sale.

ଭାଉଜ—ଦେ. ବି. ସ୍ତ୍ରୀ (ସଂ. ଭ୍ରାତୃଜାୟା; ପ୍ରା. ଭାଉଜାଆ)—୧ ।
Bhāuja ଭ୍ରାତୃଜାୟା; ବଡ଼ଭାଇଙ୍କ ସ୍ତ୍ରୀ—1. The wife of a
বউদিদী man's elder brother. ୨ । କୌଣସି ସ୍ତ୍ରୀର ବଡ଼
भाबी, भावज, भउजी, ଭାଇର ବା ସାନ ଭାଇର ସ୍ତ୍ରୀ—2. The
भौजी, भौजाइ wife of a woman's elder or
ভাই(উ)জ younger brother.

ଭାଉଜ ବୋହୂ—ଦେ. ବି (କରଣ ଓ କ୍ଷତ୍ରିୟସମାଜ ପ୍ରଚଳିତ)—ଭାଉଜ;
Bhāuja bohu ବଡ଼ ଭାଇଙ୍କ ସ୍ତ୍ରୀ—Wife of one's elder
বউদিদী भौजाइ brother.

ଭାଉ ଭ(ବ)ଟକା—ଦେ· ବି (ଅନର୍ଥକ ଦ୍ୱିତୀୟ ସହଚର)—୧ ।
Bhāu bha(ba)ṭakā ପଣ୍ୟର ଦର ଦାମ—1. Sale-rate of
(ଭାଉବଟା—ଅନ୍ୟରୂପ) a commodity. ୨ । ଦର ଦାମ
भावसौदा ସମ୍ବନ୍ଧରେ କଥାବାର୍ତ୍ତା—2. Negotiation for
ভাওটাও the sale of a thing; appraisement. ୩ ।
ଦ୍ରବ୍ୟର ଦାମ—3. The price of a commodity.

ଭାଉଭଟକା କରିବା—ଦେ. କ୍ରି—କୌଣସି ଦ୍ରବ୍ୟକୁ କିଣିବା ପାଇଁ
Bhāubhaṭakā karibā ମୂଲ୍ୟଚିବା—To negotiate
(ଭାଉବଟା କରିବା—ଅନ୍ୟରୂପ) the price of an article
भावसौदा पटाना ভাওকরা to be sold; to appraise.

ଭାଉଲିଆ—ଦେ. ବି (ସଂ. ବହିତ୍ର; ବଙ୍ଗୀୟ ବ୍ୟବହାରରୁ ଗୃହୀତ)—
Bhāuliā କ୍ଷୁଦ୍ର କୋଠରୀ ବିଶିଷ୍ଟ ଛୋଟ ନୌକା ବା ଡଙ୍ଗୀ—
ভাউলিয়া, ভাউলে A very small house-boat.

ଭାକ୍—ସ. ବିଣ. ପୁଂ (ଅନ୍ୟ ଶବ୍ଦ ସହିତ ପ୍ରଯୁଜ୍ୟ ଭଜ୍ ଧାତୁ=ଅଂଶ
Bhāk କରିବା+କ୍ୱିପ୍; ୧ମା ୧ବ)—ଭାଗୀ; ଅଂଶୀ—
(ଭାଜୀ—ସ୍ତ୍ରୀ) Enjoying; sharing. ଦେ. ଅ—ଭାଗ୍ (ଦେଖ)·
Bhag (See).

ଭାକ୍‌ଭାକୁମ୍—ଦେ. ଅ (ଧ୍ୱନ୍ୟନୁକରଣ)—ପାରା ଘୁମୁରିବା ଶବ୍ଦ—
Bhāk-bhākum The cooing of pigeons.
(ଭାକ୍‌ଭାକୁମ୍‌କୁମ୍—ଅନ୍ୟରୂପ) गुटरगूँ বক্‌বক্‌কুম্

ଭାକ—ଦେ. ବି (ସଂ. ବାକ୍)—କଥାର ଠିକଣା ବା ସ୍ଥିରତା—
Bhāka Constancy or consistency in one's words
କଥାର ଠିକାନା बातका ठिकाना or promise.

ଭାକୁ(କୂ)ଟ—ସଂ. ବି—୧ । ଭାକୁଡ଼ ମାଛ—1. A big fresh
Bhāku(kū)ṭa water fish; Catla Buchanani.
୨ । ଭେକେଟା ମାଛ—2. Another kind of big fish living in both fresh and salt water; Lates Calcarifer. ୩। ପର୍ବତବିଶେଷ—3. Name of a mountain.

ଭାକୁଡ଼(ର)—ଦେ. ବି (ସଂ. ଭାକୁଟ)—ମଧୁର ପାଣିରେ ରହିବା ବଡ଼
Bhākurḍa(ra) ବଡ଼ କାତିଯୁକ୍ତ ଏକପ୍ରକାର ମାଛ—A
କାତଲା भाकुड kind of big fresh water fish with scales; Catla Buchanani. [ଦ୍ର—ଏ ଲମ୍ବରେ ୨ ହାତ ପର୍ଯ୍ୟନ୍ତ ବଢ଼େ । ଏହାର ଦେହ ବଡ଼ ଏବଂ ଛେଳ ମୁଣ୍ଡପରି ଦେଖାଯାଏ । ଏହି ମୁଣ୍ଡକୁ ଖୋଲୁଅ କରି ଖାଇଲେ ବୁଦ୍ଧି ବଳ ହୁଏ ବୋଲି ଲୋକେ ଏହି ମାଛକୁ ବଡ଼ ଆଦର କରନ୍ତି । ]

ଭାକୁଡ଼ କଲି—ପ୍ରାଦେ (ସାଜପୁର) ବି—ସାନ ଭାକୁଡ଼ ମାଛ;
Bhākurḍa kali ଭାକୁଡ଼ିଆ—A kind of young water fish.

ଭାକୁଡ଼ା—ଦେ. ବି—ବେଶ୍ୟାପୁତ୍ର—
Bhākurḍā भड़ुवा Son of a harlot.

ଭାକୁଡ଼ି—ପ୍ରାଦେ. (ପୁରୀ) ବି—ଯେଉଁ ଖୁଣ୍ଟରେ ବଳିକୁ ବନ୍ଧାଯାଏ; ବଳି
Bhākurḍi ଖୁଣ୍ଟ; ଯୂପକାଷ୍ଠ—The sacrificial post to which a victim is tied before immolation.

ଭାକୁଡ଼(ଡ଼ି)ଆ—ଦେ. ବି—ଛୋଟ ଭାକୁଡ଼ ମାଛ—A young
Bhākurḍi(ri)ā କାତଲା ବାଚ୍ଚା Bhākurḍa fish.
भाकुड जीरा ଦେ. ବିଣ—ଭାକୁଡ଼ ମାଛ ପରି ଛୋଟ ବା ଗେଡ଼ା
भकुरी ଓ ସ୍ଥୂଳକାୟ—Dwarf and stout (person)
বেঁটে খেটে भाकुड़िया

ଭାକୁନିଆ(ଆଁ) ଗନ୍ଧ—ପ୍ରାଦେ. (ସାଜପୁର) ବି—ଅତ୍ୟନ୍ତ ଦୁର୍ଗନ୍ଧ—
Bhākuniā(āñ) gandha A very bad smell, stench.

ଭାକେଶ୍ୱରୀ—ଦେ. ବି. ସ୍ତ୍ରୀ (ସଂ. ବାକେଶ୍ୱରୀ)—ଦେବୀବିଶେଷ—
Bhākeśwarī Name of a popular Goddess.

ଭାକ୍ତ—ସଂ. ବିଣ. ( ଭକ୍ତ+ସମ୍ବନ୍ଧାର୍ଥେ. ଅ )—୧ । ଭାତ ସମ୍ବନ୍ଧୀୟ—
Bhākta 1. Relating to boiled rice. ୨ । ଭକ୍ତ ସମ୍ବନ୍ଧୀୟ—2. Relating to a devotee. ୩ । (ଭକ୍ତ =ଗୌଣୀ ବୃତ୍ତି+ସକାଶାର୍ଥେ. ଅ) ଲାକ୍ଷଣିକ (ଅର୍ଥ)—3. Denotative; phenomenal. ୪ । ଗୌଣ (ଅର୍ଥ)—4. Secondary. ୫ । ଅପ୍ରକୃତ—5. Not real; hypocritical.

ଭାକ୍ତ ଦିନ—ସଂ. ବି—ଦିନର ପ୍ରଥମ ଓ ଶେଷ ଭାଗ; ଉଷା ଓ ଗୋଧୂଳି;
Bhākta dina ସୂର୍ଯ୍ୟୋଦୟ ପୂର୍ବରୁ ଓ ସୂର୍ଯ୍ୟାସ୍ତ ପରେ ୨ ଘଣ୍ଟା ସମୟ—Twilight; early dawn and dusk; an hour and a half before sunrise and after sunset.

ଭାକ୍ତିକ—ସଂ. ବିଣ. ପୁଂ (ଭକ୍ତ+ପ୍ରତିପାଳନାର୍ଥେ. ଇକ)—ଭାତୁଆ; ପରାନ୍ନ-
Bhāktika ପାଳିତ; ପରପ୍ରତ୍ୟାଶୀ—(a person) Brough up at the expense of another; depending on another for meals.

ଭାଖା(ଷା)—ଦେ. ବି. (ହିନ୍ଦୀରେ ଷ ସ୍ଥାନରେ ଖ ଉଚ୍ଚାରଣରୁ ଅନୁକୃତ)
Bhākhā(khā) —୧ । ମନର ଭାବକୁ ମୁହଁ ଦ୍ୱାରା ପ୍ରକାଶ
ভাখা କରିବା—1. Form assumed by a thought
भाखा when expressed in speech. ୨ । ଭାଷା—2. Language. (ଉ—ଅଚ୍ଛ ଯତନେ ପାଠ ମୁହଁ ଥୋଇଲି, କହୁ ମଧୁର ମୃଦୁ ଭାଖା । ଶିଶୁଙ୍କର ଭାଷା ଅଭିଳାଷ ।) ୩ । କୌଣସି ଦେଶରେ କୁହାଯାଉ ଥିବା ଭାଷା—3. The vernacular language of a country. ୪ । ମୁହଁର କଥା—4 Speech. ( ଉ—ଏକ ଲେଖାକୁ ସହସ୍ରେ ଭାଖା ସର ଜୁଟେହିଁ । ଭଗ ।) ୫ । ବାକ୍ୟ—5. Words. ୬ । ପ୍ରାଦେଶିକ ଭାଷା; ଉପଭାଷା; ଏକ ଭାଷାର ଦେଶାଂଶ ପ୍ରଚଳିତ ଆକାର; ସ୍ଥାନୀୟ ବୋଲି—6. Dialect; dialectical form of a language. ( ଉ—ନଇକେ ବାଙ୍କା, ଦେଶକେ ଭାଖା । ଭଗ ।) ବିଣ—କଥିତ—Spoken; uttered. [ ଦ୍ର—ଉତ୍ତର ଭାରତରେ ମୂର୍ଦ୍ଧନ୍ୟ 'ଷ' କୁ 'ଖ' ପରି ଉଚ୍ଚାରଣ କରନ୍ତି; ଯଥା—ପାଷାଣ=ପାଖାନ, ପାଷଣ୍ଡ=ପାଖଣ୍ଡ, ବରଷା=ବରଖା, ଏ ସମ୍ପର୍କରେ ସଂ. 'କ୍ଷ' (କ+ଷ) ପ୍ରା. 'କ୍ଖ' (କ+ଖ) ସଙ୍ଗେ ତୁଳନୀୟ; ଯଥା—ସଂ. କକ୍ଷ=ପ୍ରା. କକ୍ଖ, ସଂ. ଅକ୍ଷର= ପ୍ରା. ଅକ୍ଖର, ସଂ. ଅକ୍ଷି=ପ୍ରା. ଅକ୍ଖି ।]

ଭାଖି(କି)ବା—ଦେ. କ୍ରି ( ସଂ. ଭାଷ୍ ଧାତୁ )—ଭାଷିବା; କହିବା.—To
Bhākhi(ki)bā speak; to talk. ( ଉ—ଶୀକର ଭାଖି,
ভাখা भाखना ତୁମ୍ଭେ ମୋ ଅଖି, ଅଖିରେ ହେଲା ସଖି, କାହାର ଦେଖି ? ପ୍ରାଚୀ. ରହସ୍ୟମଞ୍ଜରୀ ।)

ଭାଗ୍—ଦେ—(କୌଣସି ବ୍ୟକ୍ତିକୁ କୌଣସି ସ୍ଥାନରୁ ଚାଲିଯିବା ପାଇଁ
Bhāg ଘୃଣାର୍ଥକ ଆଦେଶ ବଚନ)—ଚାଲି ଯା !—Get away !
দূর হও भागो Be off !

ଭାଗବା—ପ୍ରାଦେ. (ସମ୍ବଲପୁର; ଭୂଲ. ହି ଭାଗ୍‌ନା)—୧ । ପଳାଇ
Bhāg-bā ଯିବା—1. To flee away. ୨ । ସ୍ଥାନାନ୍ତରକୁ ଚାଲି ଯିବା—2. To go away to another place; to leave a place.

ଭାଗ—ସଂ. ବି—(ଭଜ୍ ଧାତୁ=ଭାଗ କରିବା+ଭାବ. ଅ)-୧ । ବିଭାଗ—
Bhāga 1. Division. ୨ । (+କର୍ମ. ଅ) ଅଂଶ; ହିସା—2. Part; share; allotment. ୩ । ଖଣ୍ଡ; ଟୁକୁରା—

3. Piece; bit; portion. ୪ । ପରିମାଣ—4. Quantity ୫ । କାଳାଂଶ—5. Part of time; a period of time. ୬ । ଅନୁପାତ—6. Proportion; ratio. ୭ । ଦେଶାଂଶ; ପ୍ରଦେଶ; ଅଞ୍ଚଳ—7. A tract of country; locality. ୮ । ଅଦୃଷ୍ଟ; ଭାଗ୍ୟ—8. Luck; fortune. ୯ । (+ଭଜ. ଅ) ବିଭଜନ; ବିଭାଗ କରିବା—9. Apportionment; separating into parts. ୧୦ । (ଗଣିତ) ହରଣ କ୍ରିୟା—10. (arithmetic) The process of division.

ଭାଗ / बँटैया — ଦେ. ବି—୧ । କ୍ଷେତ୍ରସ୍ୱାମୀ ଓ ଚାଷୀଙ୍କ ମଧ୍ୟରେ ବଣ୍ଟନ କରାଯିବା ଉତ୍ପନ୍ନ ବସ୍ତୁର ଅର୍ଦ୍ଧାଂଶ—1. Half share of the produce of a land, taken by each of the landowner and cultivator. ୨ । ଜମିକୁ

ଭାଓଲୀ / भावली — ଚାଷ କରିବା ବ୍ୟକ୍ତି ଉତ୍ପନ୍ନ ବସ୍ତୁରୁ ଅଧେ ନେବ ଏବଂ କ୍ଷେତ୍ର ସ୍ୱାମୀ ଅନ୍ୟ ଅଧକ ପାଇବ, ଏହି ସର୍ତ୍ତରେ ଅନୁସାରେ ଜମି ଚାଷ କରିବା ପଦ୍ଧତି—2. The system of apportionment of the produce of a land, half and half, between the landowner and the cultivator. ୩ । ପ୍ରକାର—3. Kind. ୪ । କୌଣସି ସମ୍ପତ୍ତିର ବଣ୍ଟନରେ ଅଂଶୀଦାରମାନଙ୍କ ମଧ୍ୟରୁ ଜଣ-ଜଣକେ ପଡ଼ିବା ଅଂଶ—4. Share which is alloted to one co-sharer on partition. ୫ । ଔଷଧ ଓ ବାରୁଦ ଆଦି ତିଆର କରିବା ନିମନ୍ତେ ମିଶା ଯିବା ଉପକରଣମାନଙ୍କର ନିର୍ଦ୍ଧାରିତ ପରିମାଣ—5. Specified quantities of the respective ingredients required to make up a mixture (e.g. m edicine; gun powder, curry etc). ୬ । ( ହିନ୍ଦୀ —ପଳାୟନ; ପଳାଇବା—6. Fleeing away; flight.

ଭାଗ କରିବା—ଦେ. କ୍ରି—୧ । କୌଣସି ପଦାର୍ଥକୁ ଭିନ୍ନ ଭିନ୍ନ ଅଂଶରେ Bhāga karibā ପୃଥକ୍ କରିବା—1. To divide ভাগকরা a thing into parts or shares. बाटना; भागकरना ୨ । ବଣ୍ଟନ କରିବା—2. To partition. भागकरना ୩ । (ଗଣିତ) ହରଣ କରିବା—3. (arithmetic) To divide. ভাগেচাষকরা ୪ । ଭାଗ ଚଷିବା—(ଦେଖ)—4. Bhāga chashibā (See). बँटैया करना

ଭାଗ ଖଜଣା—ଦେ. ବି ( ସଂ. ଭାଗ+ଅ. ଖଜାନା )—ଚାଷୀ ନଗଦ Bhāga khajanā ଖଜଣା ପରିବର୍ତ୍ତେ ଚାଷଜମିର ଉତ୍ପନ୍ନ ভাগ ବସ୍ତୁର ଯେଉଁ ଅର୍ଦ୍ଧକ ଜମିଦାରକୁ ଦିଏ—Produce rent भावलि ( generally half the produce ) payable by ( ବିପରୀତ—ନଗଦୀ ବା ନଗଦ ଖଜଣା ) the cultivator to the land-lord.

ଭାଗ ଚଷିବା—ଦେ. କ୍ରି—କ୍ଷେତ୍ରସ୍ୱାମୀଙ୍କୁ ଉତ୍ପନ୍ନ ବସ୍ତୁର ଅର୍ଦ୍ଧେକ Bhāga chashibā ଦେବା ଚୁକ୍ତିରେ ତାହାର ଜମିକୁ ଚାଷ (ଭାଗ ଧରିବା; ଭାଗ ନେବା—ଅନ୍ୟରୂପ) କରିବା—To cultivate a land on stipulation of paying half the produce to the land-lord. ভাগেচাষ করা बँटैयाचास जोतना

ଭାଗଚାଷ—ଦେ. ବି—ଜମିଦାରଙ୍କୁ ଚାଷ ଜମିର ଉତ୍ପନ୍ନ ବସ୍ତୁର ଅଧେ Bhāga chāsha ଦେବା ଚୁକ୍ତିରେ ଜମି ଚାଷ କରିବା ପ୍ରଥା—ভাগচাষ The system of cultivating land on बँटैयाचास produce-rent.

ଭାଗଚାଷୀ—ଦେ. ବି—ଯେଉଁ ରଇତ ଚାଷ ଜମିର ଉତ୍ପନ୍ନ ବସ୍ତୁର ଅଧେ Bhāgachāshī ଜମିଦାରଙ୍କୁ ଦେବାର କଥା କରି ଜମି ଚାଷ (ଭାଗପ୍ରଜା—ଅନ୍ୟରୂପ) କରେ—Bhaga-tenant; a cultivator who holds land on produce-rent. ভাগচাষী बँटैयादार

ଭାଗଡ଼—ଦେ.ବି—ଦଉଡ଼; ପଳାୟନ—Running away. [ପ୍ରୟୋଗ Bhāgarda —ଭାଗଡ଼ ଦେବା; ଭାଗଡ଼ ବଡ଼ା(ଢେ)ଇବା । ] পলায়ন भगदर

ଭାଗଦାର—ଦେ. ବି—୧ । କୌଣସି ସମ୍ପତ୍ତିରେ ଯେଉଁ ବ୍ୟକ୍ତିର ଅଂଶ Bhāgadār ଥାଏ; ଅଂଶୀଦାର; ସରିକଦାର—1. Cosharer ভাগদার ୨ । ଯେଉଁ ପ୍ରଜା ଭାଗ ଖଜଣା ଦେବାର ଚୁକ୍ତି କରି भागदार ଅନ୍ୟର ଜମି ଚାଷ କରେ—2. A royat who cultivates another's land on stipulation of paying produce rent.

ଭାଗ ଦେବା—ଦେ. କ୍ରି—୧ । ଆପଣାର କୌଣସି ଜମିକୁ ଭାଗ ଚାଷ Bhāga debā କରିବା ନିମନ୍ତେ ପ୍ରଜାକୁ ପଟା ଦେବା—1, To ভাগদেওয়া; ভাগেজমি বিলিকরা let out one's land to a बँटैयादेना; भावलिदेना cultivator on produce-rent. ୨ । (ପ୍ରଜା) ଜମିଦାରଙ୍କୁ ଦେୟ ଫସଲଭାଗ ତାହାଙ୍କୁ ଦେବା—2. To deliver half the produce of a holding to the land-owner. ୩ । କୌଣସି ସମ୍ପତ୍ତିରୁ କାହାରକୁ ଅଂଶ ବା ହିସ୍ସା ଦେବା—3. To allow a person to take a share from any property.

ଭାଗ ଧାନ—ଦେ. ବି—ଚାଷ ଜମିରେ ଉତ୍ପନ୍ନ ଧାନରୁ ପ୍ରଜା ଯେଉଁ ଅର୍ଦ୍ଧକ Bhāga dhāna ଜମିଦାରକୁ ଦିଏ—Half the produce ভাগধান of paddy of a holding held by a royat भागधान, बँटैयाधान on produce-rent.

ଭାଗଧେୟ—ସଂ. ବି (ଭାଗ+ସ୍ୱାର୍ଥେ. ଧେୟ)—୧ । ଭାଗ୍ୟ; ଅଦୃଷ୍ଟ—Bhāgadheya 1. Luck; destiny. ୨ । (+ଧା, ଧାତୁ+କର୍ମ. ଯ) ଜମିର କର; ରାଜସ୍ୱ—2. Rent of a holding. ୩ । ଅଂଶ; ଭାଗ—3. Share; allotment. ୪ । (+ଅପାଦାନେ. ଯ) ଉତ୍ତରାଧିକାରୀ; ଦାୟାଦ—4. Heir. ସଂ. ବଣ—୧ । ଅଂଶୀ; ଯାହାର (ଭାଗଧେୟୀ—ସ୍ତ୍ରୀ) ଭାଗ ପାଇବାକୁ ଦାବି ଥାଏ—1. Deserving to get a share. ୨ । ଉତ୍ତରାଧିକାରୀ ସୂତ୍ରେ ଧନଭାଗୀ—

2. Entitled to a share in a patrimony.

ଭାଗ ନେବା—ଦେ. କ୍ରି—୧ । କୌଣସି ସମ୍ପତ୍ତିରୁ ଅଂଶ ନେବା—
Bhāga nebā 1. To take a share from a
ভাগলওয়া property. ୨ । ବିବାଦ ଅବସରେ କୌଣସି ପକ୍ଷ
**हिस्सालेना, भागलेना** ସମର୍ଥନ କରିବା—2. To take the side of one party in a dispute.

ଭାଗ ପାଇବା—ଦେ. କ୍ରି—କୌଣସି ସମ୍ପତ୍ତିରୁ ଅଂଶ ବା ହିସା ପ୍ରାପ୍ତ
Bhāga pāibā ହେବା—To get a share from a
ভাগ পাওয়া **भागपाना; हिस्सा पाना** property.

ଭାଗ ଫଳ—ସ. ବି ( ଗଣିତ )—ହରଣ ଫଳ; ବଡ଼ ସଂଖ୍ୟାକୁ
Bhāga phaḷa ଛୋଟ ସଂଖ୍ୟାଦ୍ୱାରା ହରଲେ ଯେଉଁ ଫଳ
ଘଟେ—(arithmetic) Quotient; the resultant of a process of division.

ଭାଗ ବଣ୍ଟନ—ସ. ବି—କୌଣସି ବସ୍ତୁକୁ ଅଂଶୀଦାରମାନଙ୍କ ମଧ୍ୟରେ
Bhāga banṭana କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବାଣ୍ଟିବା—Parti-
ভাগ বাঁটোয়ারা tioning a thing into different
**भागबाँट** shares or portions.
(ଭାଗ ବଣ୍ଟର, ଭାଗ ବାଣ୍ଟ, ଭାଗ ବାଣ୍ଟରା—ଦେଶଜରୂପ)

ଭାଗ ବଣ୍ଟା—ଦେ. ବି (ସ. ଭାଗ ବଣ୍ଟନ)—ଭାଗ ବଣ୍ଟନ (ଦେଖ)
Bhāga banṭā ভাগ বাঁটরা Bhāga banṭana (See)
**भाग बाँटोयारा भाग बाँट** (ଭାଗ ବାଣ୍ଟୁଅରା—ଅନ୍ୟରୂପ)

ଭାଗବତ—ସ. ବିଣ (ଭଗବତ୍=ଭଗବାନ୍+ଭକ୍ତ ଅର୍ଥେ. ଅ)—
Bhāgabata ୧ । ଭଗବାନଙ୍କ ଠାରେ ଭକ୍ତିଯୁକ୍ତ—1. Devoted to God. ୨ । ଧାର୍ମିକ—2. Pious; god-fearing. ସ. ବି—୧ । ବିଷ୍ଣୁଭକ୍ତ—1. A devotee of Bishṇu. ୨ । ଈଶ୍ୱରପ୍ରେମିକ—2. A lover of God. ୩ । ଭାଗବତମତାବଲମ୍ବୀ ଦାର୍ଶନିକ—3 A philosopher holding the views or theories propounded by the Bhāgabata. ୪ । ଭଗବାନ ( ଶ୍ରୀକୃଷ୍ଣଙ୍କ )ଙ୍କ ଲୀଳା, ମାହାତ୍ମ୍ୟ ଓ ଭକ୍ତି ସମ୍ବନ୍ଧରେ ବ୍ୟାସଙ୍କଦ୍ୱାରା ପ୍ରଣୀତ ପ୍ରସିଦ୍ଧ ସଂସ୍କୃତ ପଦ୍ୟ ଗ୍ରନ୍ଥ (ଏହା ୧୨ ସ୍କନ୍ଧରେ ବିଭକ୍ତ ।)—4. A religious poem in Sanskrit in 12 volumes depicting the life of Śrikṛushṇa and other theological matters. [ଦ୍ର—ଏହି ମୂଳ ସଂସ୍କୃତ ଗ୍ରନ୍ଥକୁ ଅବଲମ୍ବନ କରି ପ୍ରାଚୀନ ଓ ଆଧୁନିକ ଓଡ଼ିଆ କବିମାନେ ପଦ୍ୟରେ ଭାଗବତ ରଚନା କରିଅଛନ୍ତି । ତହିଁ ମଧ୍ୟରେ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରଧାନ । ହିନ୍ଦୁଙ୍କ ଧର୍ମଗ୍ରନ୍ଥମାନଙ୍କ ମଧ୍ୟରେ ଓଡ଼ିଆ ଭାଗବତ ପ୍ରତି ଲୋକ ସାଧାରଣଙ୍କର ଖୁବ୍ ଆଦର ଦେଖାଯାଏ । ପ୍ରତ୍ୟେକ ମଧ୍ୟବିତ୍ତ ଓଡ଼ିଆ ହିନ୍ଦୁ ଗୃହସ୍ଥ ଆପଣା ଘରେ ଗୋଟିଏ ଗାଦି କରି ସେଥିରେ ଭାଗବତ ଗ୍ରନ୍ଥ ରଖି ତାକୁ ପୂଜା କରନ୍ତି ଏବଂ ଉକ୍ତ ଗାଦିରେ ଅନ୍ୟ ଗ୍ରନ୍ଥମାନ ଥିଲେ ମଧ୍ୟ ତାହାକୁ 'ଭାଗବତ ଗାଦି' ବୋଲାଯାଏ । ପ୍ରତ୍ୟେକ ବର୍ଦ୍ଧିଷ୍ଣୁ ଓଡ଼ିଆ ଗ୍ରାମରେ ମଧ୍ୟ ଗୋଟିଏ ସାଧାରଣ ଗୃହରେ 'ଭାଗବତ ଗାଦି' ରଖାଯାଇ ପୂଜା କରାଯାଏ । ସେ ଘରକୁ ଭାଗବତ ଘର ବା ଭାଗବତ ଟୁଙ୍ଗୀ କୁହାଯାଏ । ପ୍ରତି ପୁରୁଣା ଗ୍ରାମରେ ବିଶେଷତ ଶୂଦ୍ର ପ୍ରଧାନ ଗ୍ରାମରେ 'ଭାଗବତ ଘର' ପ୍ରତି ବିଶେଷ ଆଦର ଥିବାର ଦେଖାଯାଏ । ସେଠାରେ ସନ୍ଧ୍ୟା ବେଳେ ଭାଗବତ ବୋଲାଯାଏ ଏବଂ ଗ୍ରାମର ଲୋକେ, ବିଶେଷତଃ ବୁଢ଼ାମାନେ, ଭାଗବତ ଶୁଣିବାକୁ ସେଠାରେ ରୁଣ୍ଡ ହୁଅନ୍ତି । ଭାଗବତ ଗାଦିରେ ଥିବା ଭାଗବତ ଗ୍ରନ୍ଥକୁ ଦେବତା ଜ୍ଞାନରେ 'ଭାଗବତ ଗୋସାଇଁ' ବୋଲାଯାଏ । ଗ୍ରାମରେ ମାରୀଭୟ ଆଦି ଉପସ୍ଥିତ ହେଲେ ଲୋକେ 'ସପ୍ତାହ ଭାଗବତ' ବସାନ୍ତି, ଅର୍ଥାତ୍ ଅହୋରାତ୍ର ସାତ ଦିନ ପାଳି କରି ଭାଗବତ ବୋଲନ୍ତି ଏବଂ ଶେଷ ଦିନ 'ଭାଗବତ-ଗୋସାଇଁ'ଙ୍କୁ ନାନା ପ୍ରକାର ସାମଗ୍ରୀ ମହା ସମାରୋହରେ ଭୋଗ ଲଗାଇ ଲୋକସାଧାରଣଙ୍କୁ ବାଣ୍ଟି ଦିଅନ୍ତି । ଭାଗବତ ଗ୍ରନ୍ଥ ପାଠର ସମାପ୍ତିକୁ ଭାଗବତ ବଢ଼ା ବୋଲାଯାଏ । ଚୈତ୍ର ପୂର୍ଣ୍ଣିମା ରାତିରେ ନାନା ସ୍ଥାନରୁ ଭାଗବତ ଗାଦିମାନ ବିମାନମାନଙ୍କରେ ଅଣା ଯାଇ ସ୍ଥାନେ ସ୍ଥାନେ ଭାଗବତ ମେଳନ ଉତ୍ସବ କରାଯାଏ ।] ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.

ଭାଗବତ ଗାଦି—ଦେ. ବି—ସ୍ତୂପାକାରରେ ସଜ୍ଜିତ ସମସ୍ତ ଭାଗବତ ଗ୍ରନ୍ଥ
Bhāgabata gādi ( ଯାହାକୁ ପୂଜା କରାଯାଏ )—A heap
**भागवत गादि** of palm leaf manuscripts of Bhāgabata worshipped with reverence.

ଭାଗବତ ଗୋସା(ସେ)ଇଁ—ଦେ. ବି—ଦେବତାରୂପେ ପୂଜା କରା ଯାଉ-
Bhāgabata gosā[se]iñ ଥିବା ଭାଗବତ ଗାଦି—A set of
**भागवत गोसाई** Bhāgabata books stored in a heap on a raised platform or bimāna and worshipped as a Deity.

ଭାଗବତ ଘର—ଦେ. ବି—କୌଣସି ଗ୍ରାମର ଯେଉଁ ସାଧାରଣ ଗୃହରେ
Bhāgabata ghara ଭାଗବତ ଗାଦି ରଖା ଯାଇଥାଏ—A
(ଭାଗବତ ଟୁଙ୍ଗୀ—ଅନ୍ୟରୂପ) common room in a village where Bhāgabata palm-leaf-works are kept, worshipped and read. [ଦୃ—ଭାଗବତ ଘରେ ରାମାୟଣ ପୋଥି ଗାଉଥିଲେ ପୁରୋହିତ । ନନ୍ଦକିଶୋର. କାର୍ତ୍ତରଣୀ ।] [ଦ୍ର—ଏଠାରେ ଭାଗବତ ଗାଦି ରଖା ଯାଇ ପ୍ରତ୍ୟହ ପୂଜା କରାଯାଏ ଏବଂ ସନ୍ଧ୍ୟାବେଳେ ଭାଗବତ ଗ୍ରନ୍ଥ ପାଠ କରାଯାଏ; ବଙ୍ଗ ଦେଶରେ ଭାଗବତ
**भागवतघर** ଘର ପ୍ରଥା ନାହିଁ ।]

ଭାଗବତ ବଢ଼ା—ଦେ. ବି—ସପ୍ତାହବ୍ୟାପୀ ଅହୋରାତ୍ର ଭାଗବତ ପାଠ
Bhāgabata baḍhā ସମାପ୍ତ ହେବା ସଙ୍ଗେ ସଙ୍ଗେ
ନୈବେଦ୍ୟ ଦିଆଯାଇ ତାହା ବଣ୍ଟା ଯିବା ଉତ୍ସବବିଶେଷ—The ceremony of distributing offerings offered to the Bhāgabata books on the occasion of their reading being finished after a week's continuous reading.

ଭାଗବତ ମେଲନ—ଦେ. ବି. ( ସ. ଭାଗବତ + ମିଳନ )—ଭିନ୍ନ ଭିନ୍ନ
Bhāgabata meḷana ସ୍ଥାନରେ ପୂଜା ପାଉଥିବା ଭାଗବତ
(ଭାଗବତ ମେଳଣ—ଅନ୍ୟରୂପ) ଗାଦିମାନ କ୍ରମାନ୍ୱୟମାନଙ୍କରେ
ନିଆଯାଇ ଏକ ସ୍ଥାନରେ ସମ୍ମିଳିତ ହେବା ଏବଂ ତଦୁପଲକ୍ଷେ
କରାଯିବା ବାର୍ଷିକ ଯାତ୍ରା ଓ କୀର୍ତ୍ତନ ଆଦି—The annual festival of carrying the heaps of Bhāgabata manuscripts from different places to a rendezvous and having Saṅkīrttana and dancing done there.

ଭାଗବତ ଲକ୍ଷଣ—ସ. ବି—ଭାଗବତ ଗ୍ରନ୍ଥରେ ବର୍ଣ୍ଣିତ ବିଷୟମାନଙ୍କର
Bhāgabata lakshaṇa ବିଶିଷ୍ଟ ଗୁଣ—Peculiarities of the Bhāgabata books. [ଦ୍ର—ଏହା ଦଶ ଗୋଟି, ଯଥା—ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶକଥା, ନିରୋଧ, ମୁକ୍ତିର ବ୍ୟବସ୍ଥା ଓ ଆଶ୍ରୟ । ଭାଗବତ ୨ୟ ସ୍କନ୍ଧ ୧୦ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।]

ଭାଗବତ ସପ୍ତା—ଦେ. ବି (ସ. ଭାଗବତ + ସପ୍ତାହ)—କୌଣସି ବିଶିଷ୍ଟ
Bhāgabata saptā ଘଟଣା ଉପଲକ୍ଷରେ ବା ମାଙ୍ଗଳିକ ଆଦି
**भागवत सप्ता** ଉପସ୍ଥିତ ହେଲେ ଏକ ସପ୍ତାହକାଳ ଅହୋରାତ୍ର ଏକ ସ୍ଥାନରେ ହେବା ଭାଗବତ ଗ୍ରନ୍ଥ ପାଠ ରୂପ ଉତ୍ସବବିଶେଷ—Continuous reading of the Bhāgabata books for one week at a fixed place on occasions of calamities etc.

ଭାଗବତୀ—ସ. ବିଣ. ସ୍ତ୍ରୀ. ( ଭଗବତ୍ + ଅ + ଈ ପ୍ର )—ଭଗବାନଙ୍କ
Bhāgabatī ସମ୍ବନ୍ଧୀୟ—Pertaining to God; akin to beatitude. (ଉ—ଅନ୍ତେ ଲଭଇ ଯେଉଁ ଗତି, ତାହାଙ୍କୁ ବୋଲି ଭାଗବତୀ—ଜଗନ୍ନାଥ. ଭାଗବତ ।) [ ଦ୍ର—ଏଠାରେ 'ଭାଗବତୀ' ପଦ 'ଗତି' ଏହି ସ୍ତ୍ରୀଲିଙ୍ଗ ପଦର ବିଶେଷଣ ରୂପେ ବ୍ୟବହୃତ ।]

ଭାଗ ବସା(ସେ)ଇବା—ଦେ. କ୍ରି—କୌଣସି ସମ୍ପତ୍ତିକୁ ଭିନ୍ନ ଭିନ୍ନ ଅଂଶ
Bhāga basā(se)ibā କରି ରଖିବା—To make separate allotments out of a thing.
ଭାଗ ବସାନ
**भाग रखना**

ଭାଗ ବାଣ୍ଟିବା—ଦେ. କ୍ରି—କୌଣସି ପଦାର୍ଥକୁ ଭିନ୍ନ ଭିନ୍ନ ଅଂଶରେ
Bhāga bāṇṭibā ଭାଗ କରିବା—To partition a
ଭାଗ ବାଁଟା **भाग बाँटना** thing into lots.

ଭାଗ ବିଲ—ଦେ. ବି—ଯେଉଁ ଜମିକୁ ପ୍ରଜା ଭାଗ ପ୍ରଥାରେ ଚାଷ କରି-
Bhāga bila ଥାଏ—A land cultivated by a royat
ଭାଗ ଜମି under the system of produce rent.
**बँटैया जोत**

ଭାଗ ଭୁଗା—ଦେ. ବି. (ସହଚର)—ଅଂଶ ଅନୁସାରେ ପ୍ରାପ୍ୟ ଭାଗ ଆଦି-
Bhāga bhugā Bhāg etc.
ଭାଗ ଟାଗ **भागभुग**

ଭାଗ ମାପ—ଦେ. ବି—୧ । କୌଣସି ବସ୍ତୁର ଉପକରଣମାନଙ୍କର
Bhāga māpa ମିଶ୍ରଣାର୍ଥ ଉପଯୁକ୍ତ ଭାଗ—1. Due or proper allotment of the
(ଭାଗ ଯୋଗ—ଅନ୍ୟରୂପ) ingredients of a mixture.
ଭାଗ ମାପ
**भागनाप** ୨ । କୌଣସି ବସ୍ତୁ ପାଇଁ ଲୋଡ଼ା ଉପକରଣମାନଙ୍କୁ ମାପ ମୁତାବକ ମିଶାଇବା—2. Mixing of the ingredients according to due proportion.

ଭାଗ ଲଗା(ଗେ)ଇବା—ଦେ. କ୍ରି—୧ । କୌଣସି ସମ୍ପତ୍ତିର ଭାଗ ବାଣ୍ଟିବା
Bhāga lagā(ge)ibā —1. To partition a thing
ଭାଗ ଲାଗାନ into lots. ୨ । ଆପଣା ଜମିକୁ ଭାଗ ପ୍ରଥା
**भाग लगाना** ଅନୁସାରେ ଚାଷ କରିବା ପାଇଁ ପ୍ରଜାକୁ ଦେବା—
ଭାଗେ ଜମି ବିଲି କରା 2. To let out one's land or
**बटया लगाना** produce-rent.

ଭାଗ ଶେଷ—ସ. ବି—(ଗଣିତ)—ଗୋଟିଏ ରାଶିକୁ ଅନ୍ୟ ରାଶି ଦ୍ୱାରା
Bhāga śesha ହରଣଲେ ଯାହା ବାକି ରହିଯାଏ—(arithmetic) The remainder in division.

ଭାଗ ହର—ସ. ବି. (ଭାଗ + ହୃ ଧାତୁ + ଭାବ. ଅ)—ଅଂଶ ଗ୍ରହଣ—
Bhāga hara The taking of a share.
ସ. ବିଣ. ( + କର୍ତ୍ତୃ. ଅ )—ଅଂଶଗ୍ରାହୀ—Taking a share.

ଭାଗ ହାର—ସ. ବି ( ଭାଗ + ହୃ ଧାତୁ + ଭାବ, ଅ )—୧ । ଯେଉଁ
Bhāga hāra ଉପାୟରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ରାଶିକୁ କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟକ ସମାନ ଅଂଶରେ ବିଭକ୍ତ କରାଯାଏ—1. The arithmetical process of dividing a number into equal shares. ୨ । ବିଭାଗ ଗ୍ରହଣ; ଅଂଶ ଗ୍ରହଣ—2. The taking of a share.

ଭାଗା—ଦେ. ବି. (ହି. 'ଭାଗନା' କ୍ରିୟାର ଅତୀତକାଳ ତୃତୀୟ ପୁରୁଷ
Bhāgā ଅନାଦରାର୍ଥକ ଏକବଚନ ଆକାର; ହିନ୍ଦିରୁ ଅନୁକୃତ)—
ଭାଗା ପଳାୟନ—Fleeing away. (ଯଥା—ସେ ଭାଗା
**भगदर** ଦେଲା ।) ବିଣ—ପଳାୟିତ—Fled. (ଯଥା—ଏହା ଶୁଣି ସେ ଭାଗା । ) ଦେ. ବି—ଭାଗବତ ଓ ଭାଗୀରଥିର ଅନାଦରାର୍ଥକ ଡାକ ନାମ—A name for calling Bhāgabata and Bhāgirathi.

ଭାଗାଭାଗି କରିବା—ଦେ. କ୍ରି—କୌଣସି ପଦାର୍ଥକୁ ଆପଣା ମଧ୍ୟରେ
Bhāgābhāgi karibā ବାଣ୍ଟି ନେବା—To partition
(ଭାଗିଆଭାଗି କରିବା—ଅନ୍ୟରୂପ) a thing into shares
ଭାଗାଭାଗି କରା **बाँटचुट करना** amongst each other.

ଭାଗାରି—ଦେ. ବି. (ସ. ଭାଗହାରୀ)—୧ । ଯେ ଭାଗ ନିଏ—
Bhāgāri 1. One taking a share.
ଭାଗାରୀ ୨ । ଅଂଶୀଦାର୍—2. Cosharer. ପ୍ରାଦେ. (ପୁରୀ
**हिस्सादार** ସହର) ବି—ଯେଉଁ ଯାତ୍ରୀ ଗୁମାସ୍ତା ଅନ୍ୟ ଯାତ୍ରୀଗୁମାସ୍ତା ପୁରୀଠାକୁ ଆଣିଥିବା ଯାତ୍ରୀର ଦେଇଥିବା ଅର୍ଥରୁ ଶେଷୋକ୍ତ ଗୁମାସ୍ତାଠାରୁ ଭାଗ ନିଏ—A pilgrim-hunter who takes a share of the perquisites paid by a pilgrim to the pilgrim-hunter who has piloted him to Puri.

ଭାଗିକ—ସଂ. ବି. (ଭାଗ+ବୃଦ୍ଧି ଅର୍ଥରେ ଇକ)—ଅସଲ ଓ ସୁଧ ଟଙ୍କା—
Bhāgika Capital and interest of the money lent.

ଭାଗିନେୟ—ସଂ. ବି. ପୁଂ. (ଭଗିନୀ+ଅପତ୍ୟାର୍ଥରେ ଏୟ)—
Bhāgineya ଭଉଣୀର ପୁଅ; ଭଣଜା—Sister's son.

ଭାଗିନେୟୀ—ସଂ. ବି. ସ୍ତ୍ରୀ. ( ଭାଗିନେୟ+ସ୍ତ୍ରୀ. ଈ )—ଭଉଣୀର ଝିଅ;
Bhāgineyī ଭାଣିଜୀ—Sister's daughter

ଭାଗିବା—ଦେ. କ୍ରି—(ସଂ. ଭଜ୍ ଧାତୁ) —୧ । (ଶୂଦ୍ରଙ୍କ ବ୍ୟବହୃତ)—
Bhāgibā ଭାଁଗା **तोडना** ଭଗ୍ନ କରିବା; ଭାଙ୍ଗିବା—
**टुटना** 1. To break. ୨ । (ଶୂଦ୍ର ବ୍ୟବହୃତ) ଭାଙ୍ଗିବା; ଭାଙ୍ଗି-
ଯିବା; ଭଗ୍ନ ହେବା—2. To be broken. [ଉ—
ସେହି ସିନା ବଡ଼ ପଣ, ଯହିଁ ଲାଗି ଅନ୍ତକର ବକ୍ତ୍ର-ଦନ୍ତ
ଯାଏ ଭାଗି । ରାଧାନାଥ. ଦରବାର ।]
୩ । କୌଣସି ବ୍ୟକ୍ତିର ଅନୁରୋଧ ରକ୍ଷା ନ କରିବା ବା
ଏଡ଼ିବା—3. To disregard or avoid a person's request. ୪ । (ଯାତ୍ରା, ସ୍କୁଲ, କଚେରି ବା ହାଟ
ଆଦିର କାର୍ଯ୍ୟ) ଶେଷ ବା ସ୍ଥଗିତ ହେବା—4. To be
dismissed ( said of a court, office,
school or fair). ୫ । (ମନୁଷ୍ୟର ଦମ୍ଭ ବା ବଳ)
ବିନଷ୍ଟ ହେବା; କମିଯିବା—5. (a man's strength)
To be destroyed or lost; to abate. ୬ ।
କୌଣସି ପ୍ରସ୍ତାବ କାର୍ଯ୍ୟରେ ପରିଣତ ନ ହେବା—
6. To fall through (said of a proposal).
ভাগা; **भागना** ୭ । ପଳାୟନ କରିବା—7. To flee away
[ଉ—ଉଠି ଯେ ସେହିକ୍ଷଣି ଧଡ଼ପଡ଼େ ଉଠି । ଦାମଡ଼ାଙ୍କୁ
ବୋଲି ଭାଗିଲା କରି ପିଠି—କୃଷ୍ଣସିଂହ. ମହାଭାରତ. ଶାନ୍ତି ।]

ଭାଗୀ—ସଂ. ବିଣ. ପୁଂ (ଭାଗ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—୧ ।
Bhāgī ଅଂଶୀ; ଭାଗଦାର—1. Entitled to a share.
(ଭାଗିନୀ—ସ୍ତ୍ରୀ) ୨ । ଉତ୍ତରାଧିକାରୀ—2. Inheriting. ୩ । (ଭଜ୍
ଧାତୁ= ଭାଗ କରିବା+କର୍ତ୍ତୃ ଇନ୍ ) ଅଂଶ ଗ୍ରହଣକାରୀ—
3. Getting a share. ୪। ହକ୍‌ଦାର—4. Entitled
to. [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ;
ଯଥା—ଦୋଷଭାଗୀ, ପାପଭାଗୀ, ଧନଭାଗୀ ଇତ୍ୟାଦି ।]

ଭାଗୀଦାର୍—ଦେ. ବି (ସଂ. ଭାଗ+ଫା. ଦାର୍; ତୁଳନାକର ଅଂଶୀଦାର)—
Bhāgidār ଭାଗଦାର; ଅଂଶୀଦାର୍—Cosharer.
भागीदार; **हिस्सादार**

ଭାଗୀରଥି—ଦେ. ବି (ନାମ) ୧ । ରଥ ଉପାଧିଧାରୀ ଜଣେକ ଉତ୍କଳୀୟ
Bhāgirathi କବି-1. An Oriya poet. [ ଦ୍ର—ଏ
'ପଦ୍ମାବତୀ ପରିଣୟ' ଓ 'ଉତ୍କଳ ଚରିତ' ନାମକ ଦୁଇଖଣ୍ଡ
ପୁସ୍ତକ ଲେଖିଅଛନ୍ତି । ଭାରତୀ-ଉତ୍କଳ ସାହିତ୍ୟ ଇତିହାସ ।]
୨ । (ପୁଂ) ଲୋକଙ୍କୁ ଦିଆଯିବା ନାମ—2. A name
given to males.

ଭାଗୀରଥୀ—ସଂ. ବି. ସ୍ତ୍ରୀ (ଭଗୀରଥ+ଅପତ୍ୟାର୍ଥରେ ଅ+ସ୍ତ୍ରୀ. ଈ,)—
Bhāgirathī ଭଗୀରଥଙ୍କ କର୍ତ୍ତୃକ ସ୍ୱର୍ଗରୁ ମର୍ତ୍ତ୍ୟକୁ ଆନୀତ
ହୋଇଥିବାରୁ )—ଜାହ୍ନବୀ; ଗଙ୍ଗା—The Ganges.
[ଦ୍ର—ମହାଭାରତରେ ଲିଖିତ ଅଛି ଯେ ଦକ୍ଷିଣା ପ୍ରଦାନ
ସମୟରେ ଗଙ୍ଗା ମହାରାଜ ଭଗୀରଥଙ୍କ କୋଳରେ ଉପ-
ବେଶନ କରିଥିଲେ, ସେହି ଦିନଠାରୁ ଗଙ୍ଗା ଭଗୀରଥଙ୍କ
କନ୍ୟା ହୋଇ ଭାଗୀରଥୀ ନାମରେ ବିଖ୍ୟାତ ହେଲେ ।)

ଭାଗୁଆ—ଦେ. ବି (ସଂ. ଭାଗଧର)—୧ । ଅଂଶୀଦାର୍; ଭାଗଦାର୍—1.
Bhāguā भागदार; **हिस्सादार** Cosharer. ୨ । ଯେ ଭାଗ ବା
(ଭାଗୁଆଳ, ଭାଗୁଆଳ—ଅନ୍ୟରୂପ) ଅଂଶ ନିଏ—2. One who
takes a share. ୩ । କୌଣସି କାର୍ଯ୍ୟକୁ ଭାଗରେ
କରିଥିବା ଏକାଧିକ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ; ସରିକଦାର୍—
3. Partner. ୪ । ସରିକଦାରୀ—4. Partnership.
ଦେ. ବିଣ—ଭାଗଦାରଙ୍କ ଅଧିକୃତ (ଜମି, ବ୍ୟବସାୟ)—
Carried on or owned by cosharers.
[ତିନି ଭାଗୁଆଳ କାଲୁଡ଼ି ବାଡ଼ି—ଢଗ]

ଭାଗୁଡ଼ା—ଦେ. ବିଣ—ପଳାତକ—
Bhāgurdā Retreating; seceding.
**भगुआ** (ଭାଗୁଡ଼ିଆ—ଅନ୍ୟରୂପ)

ଭାଗୁଡ଼ି(ଳି)—ଦେ. ବି—୧ । ତ୍ରସ୍ତ ହୋଇ ଧାଇଁ ପଳାଇବା; ଛତ୍ରଭଙ୍ଗ—
Bhāgurdi(li) 1. Fleeing away in fright; rout.
छत्रभङ्ग; **भगदर** (ଉ—ସେକାଳେ ଦୁଇ ସେନା ଲୋକରେ ଭାଗୁଡ଼ି ।
ପଡ଼ିଲା ପଡ଼ିବାରେ ରଥିଙ୍କ ଶରଧାଡ଼ି—କୃଷ୍ଣସିଂହ. ମହାଭାରତ.
ଭୀଷ୍ମ ।) ୨ । ମାପ କରିସାରି ଖଣିରେ ବା ଓଳିଅରେ
घाटति, घाटि; **घटति** ରଖାଯାଇ ଥିବା ଶସ୍ୟାଦିକୁ କେତେକ ସମୟ
ଅନ୍ତେ ଖଣିରୁ ବା ଓଳିଅରୁ କାଢ଼ି ପୁଣି ମାପ କରିବା
ସମୟରେ ମାପରେ ଯାହା କମତି ବା ତୁଟି ଦେଖାଯାଏ—
2. Shrotage found on remeasurement of
grains stored in pits or in straw-packets.

ଭାଗୁଡ଼ି(ଳି) ବଟା(ଟେ)ଇବା—ଦେ. କ୍ରି—ଛତ୍ରଭଙ୍ଗ ଦେବା; ଭୀତ
Bhāgurdi(li) bātā(te)ibā ହୋଇ ପଳାଇବା—To flee
भागा; **भगदर मचाना** away in fright or panic;
to be routed.

ଭାଗୁରି—ସଂ. ବି (ନାମ)—ସଂସ୍କୃତ ବ୍ୟାକରଣ ପ୍ରଣେତା ଋଷିବିଶେଷ—
Bhāguri Name of a Sanskrit grammarian.

ଭାଗେ—ଦେ. ଅ—୧ । (ଅନୁକର) ଆୟତ୍ତରେ—Under one's
Bhāge हाते **पञ्जामे, हाथमे** clutches.
୨ । (ଅମୁକର) ସମ୍ମୁଖରେ; ହାବୁଡ଼େ—2. In front of.
(ଉ—ପଡ଼ିଥିଲି ଥରେ ତା ଭାଗେ ଲୋ-କବିସୂର୍ଯ୍ୟ. ସଙ୍ଗୀତ ।)
କ୍ରି (ହି. 'ଭାଗ୍‌ନା' କ୍ରିୟାର ଅତୀତକାଳ ଆଦରାର୍ଥକ ୧ମ
ପୁରୁଷ ୧ ବଚନ ରୂପ; ଅବ୍ୟୟରୂପେ ବ୍ୟବହୃତ; ହିନ୍ଦିରୁ
ଅନୁକୃତ) (ସେ) ପଳାଇଲା—(he) Fled away.
[ଯଥା, ସେ ମୋତେ ଦେଖି ସେଠାରୁ ଭାଗେ) ପ୍ରାଦେ.
(ସମ୍ବଲପୁର) ବି—କୌଣସି ଦଳର ବା ପକ୍ଷର ଏକ ଅଂଶ—
One part of a group.

ଭାଗ୍ୟ—ସ. ବି (ଭଜ୍ ଧାତୁ=ଭୋଗ କରିବା + କର୍ମ ଯ )—୧ । ନିୟତି;
Bhāgya ଅଦୃଷ୍ଟ; କପାଳ—1. Luck; lot; fate; fortune. ୨ । ସୌଭାଗ୍ୟ; ସୁଦଶା—2. Good fortune. ୩ । ଭାଗିକ; ଅସଲ ଓ ସୁଧ ଟଙ୍କା—3. Capital and interest of money invested. ସ. ବିଣ—୧ । ବିଭାଜ୍ୟ—1. Divisible. ୨ । ବଣ୍ଟନୀୟ—2. Distributable. ୩ । ଖଣ୍ଡନୀୟ—3. Partible.

ଭାଗ୍ୟକ୍ରମେ—ଦେ. ଅ. ୧ । ଦୈବଯୋଗେ; ଅଦୃଷ୍ଟ ଅନୁସାରେ—
Bhāgya krame 1 As luck would have it; luckily; fortunately.
ଭାଗ୍ୟକୁ, ଭାଗ୍ୟରେ, ଭାଗ୍ୟେ } ଅନ୍ୟରୂପ ଭାଗ୍ୟବଶତଃ—ସଂସ୍କୃତରୂପ
ଭାଗ୍ୟି, ଭାଗ୍ୟକ୍ରମେ, ୨ । ସୁଯୋଗ କ୍ରମେ—2. Fortunately.
ଭାଗ୍ୟ ବଶତଃ; ଭାଗ୍ୟିସ **भाग्यक्रमे**

ଭାଗ୍ୟ ଗଣନା—ସ. ବି (୬ଷ୍ଠୀ ତତ୍; ଭାଗ୍ୟ + ଗଣନା)—ଅଦୃଷ୍ଟର
Bhāgya gananā ଫଳାଫଳ ଜ୍ୟୋତିଷିକ ଗଣନା ଆଦିଦ୍ୱାରା ଆଗରୁ ବୁଝିବା—Telling of one's fortune by astrological calculations etc.

ଭାଗ୍ୟ ଚକ୍ର—ସ. ବି (ରୂପକ. କର୍ମଧା; ଭାଗ୍ୟ + ଚକ୍ର)—ଅଦୃଷ୍ଟରୂପ ଚକ୍ର
Bhāgya chakra (ଯେପରି ଚକ୍ର ଘୂରୁ ଘୂରୁ କେତେବେଳେ ଉପରକୁ ଓ କେବେ ତଳକୁ ଯାଏ ମନୁଷ୍ୟକୁ ଭାଗ୍ୟଅନୁସାରେ ସେହିପରି କେତେବେଳେ ଭଲ ଘଟେ ଏବଂ ଫେରି କେତେବେଳେ ମନ୍ଦ ଘଟିଯାଏ)—The wheel of fortune.

ଭାଗ୍ୟ ଟେକିବା—ଦେ. ବି—ଭାଗ୍ୟୋଦୟ ହେବା; ସୌଭାଗ୍ୟ ପହଞ୍ଚିବା
Bhāgya ṭekibā —The state of being very
( ଭାଗ୍ୟଟେକିବା, ଭାଗ୍ୟଖୋଲିବା—ଅନ୍ୟରୂପ ) lucky; the
ভাগ্যখুলা **भाग्यखुलना** dawning of good fortune.

ଭାଗ୍ୟ ଦେଖା(ଖେ)ଇବା—ଦେ. କ୍ରି—ଆପଣା ସୌଭାଗ୍ୟର ବିଷୟ ଅନ୍ୟ
Bhāgya dekhā(khe)ibā ବ୍ୟକ୍ତି ଆଗରେ ଗର୍ବରେ ପ୍ରକାଶ
[ଭାଗ୍ୟ ଦେଖା(ଖେ)ଇ ହେବା—ଅନ୍ୟରୂପ] କରିବା—To show
বৈভবদেখান off one's good fortune or riches
**भाग्य दिखलाना** before others.

ଭାଗ୍ୟଦେବୀ—ସ. ବି—ଲକ୍ଷ୍ମୀ—Goddess of fortune.
Bhāgyadebī

ଭାଗ୍ୟଫଳ—ସ. ବି—ଅଦୃଷ୍ଟର ପରିଣାମ; ପୂର୍ବଜନ୍ମାର୍ଜିତ କର୍ମର ସୁଖ
Bhāgyaphaḷa ଦୁଃଖାଦି ଫଳ—The result of one's luck.

ଭାଗ୍ୟବଳ—ସ. ବି ( ୬ଷ୍ଠୀ ତତ୍; ଭାଗ୍ୟ + ବଳ )—କପାଳର ଜୋର
Bhāgyabaḷa —The force of one's good fortune.

ଭାଗ୍ୟବ(ମ)ନ୍ତ—ଦେ. ବିଣ. ପୁଂ ( ସ. ଭାଗ୍ୟବତ୍ )—ଭାଗ୍ୟବାନ୍;
Bhāgyaba(ma)nta କପାଳିଆ—Fortunate. [ଉ—
ভাগ্যিমান, ভাগ্যমন্ত ମତଙ୍ଗ ଋଷିଙ୍କ କେଦାର ନାମେ ସ୍ଥାନ,
**भाग्यवन्त** ଭାଗ୍ୟବନ୍ତ ଲୋକେ ଯାଇ ସେ ଦର୍ଶନ । କୃଷ୍ଣସିଂହ
(ଭାଗ୍ୟବନ୍ତୀ—ସ୍ତ୍ରୀ) ମହାଭାରତ, ବନ । ]

ଭାଗ୍ୟବାଦୀ—ସ. ବିଣ. ଓ ବି ପୁଂ (ଭାଗ୍ୟ + ବାଦିନ୍ ୧ମା. ୧ବ)—
Bhāgyabādī ଅଦୃଷ୍ଟବାଦୀ; ଯେଉଁ ବ୍ୟକ୍ତି କହେ ଯେ
(ଭାଗ୍ୟବାଦିନୀ—ସ୍ତ୍ରୀ) ମନୁଷ୍ୟର ସୁଖ ଦୁଃଖ ତାହାର ଉଦ୍ୟମ ଉପରେ ନିର୍ଭର କରେ ନାହିଁ, ମାତ୍ର ତାହାର ଅଦୃଷ୍ଟ ଉପରେ ନିର୍ଭର କରେ—Fatalist; fatalistic.

ଭାଗ୍ୟବାନ୍—ସ. ବିଣ. ପୁଂ ( ଭାଗ୍ୟ + 'ଅଛି' ଅର୍ଥରେ ବତ୍; ୧ମା.
Bhāgyabān ୧ବ )—ସୌଭାଗ୍ୟଶାଳୀ; ଅଦୃଷ୍ଟବାନ୍; କପାଳିଆ
(ଭାଗ୍ୟବତୀ—ସ୍ତ୍ରୀ) —Lucky; fortunate.

ଭାଗ୍ୟ ବିଧାତା—ସ. ବି. ପୁଂ ( ଭାଗ୍ୟ + ବିଧାତୃ ୧ମା. ୧ବ )—
Bhāgya bidhātā ୧ । ଯାହା ଉପରେ ମନୁଷ୍ୟର ସୁଖ ଦୁଃଖ
(ଭାଗ୍ୟବିଧାତ୍ରୀ—ସ୍ତ୍ରୀ) ନିର୍ଭର କରେ; ଅଦୃଷ୍ଟର ନିୟନ୍ତା—1. The dispenser of a person's fortune; a person on whom depends one's weal or woe. ୨ । ବିଧି; ବିଧାତା—2. The Creator. [ ଦ୍ର—ହିନ୍ଦୁଙ୍କର ବିଶ୍ୱାସ ଯେ ବ୍ରହ୍ମା ବା ବିଧାତା ମନୁଷ୍ୟର ଇହଜୀବନର ଘଟଣାମାନ ଜନ୍ମର ଅବ୍ୟବହିତ ପୂର୍ବରୁ ବା ପରେ ତା କପାଳରେ ଲେଖି ଦିଅନ୍ତି । ଏହି ଘଟଣା ସକଳ ଭକ୍ତ ମନୁଷ୍ୟର ପୂର୍ବଜନ୍ମକୃତ କର୍ମର ଅପରିବର୍ତ୍ତନୀୟ ଫଳ । ]

ଭାଗ୍ୟ ବିପର୍ଯ୍ୟୟ—ସ. ବି ( ୬ଷ୍ଠୀ ତତ୍; ଭାଗ୍ୟ + ବିପର୍ଯ୍ୟୟ )—୧ ।
Bhāgya biparjyaya ଦୁରଦୃଷ୍ଟ; ମନ୍ଦଭାଗ୍ୟ—1. Ill luck; adversity. ୨ । ସୌଭାଗ୍ୟର ପରିବର୍ତ୍ତନ—2. Change of fortune; reverse of fortune.

ଭାଗ୍ୟଲିପି—ସ. ବି—ଅଦୃଷ୍ଟ ଲିଖନ; କପାଳ ଲେଖନ; ଯାହା ମନୁଷ୍ୟର
Bhāgyalipi କର୍ମରେ ଲେଖାଥାଏ—That which has been preordained by Fate. [ ଦ୍ର—ହିନ୍ଦୁଙ୍କର ବିଶ୍ୱାସ ଯେ ମନୁଷ୍ୟର ଜନ୍ମ ହେବାର ଅବ୍ୟବହିତ ପୂର୍ବରୁ ବା ପରେ ବିଧାତା ପୁରୁଷ ତାର କପାଳ ଉପରେ ପୂର୍ବଜନ୍ମକୃତ କର୍ମର ଫଳସ୍ୱରୂପ ଭବିଷ୍ୟତ ଜୀବନର ଅବଶ୍ୟମ୍ଭାବୀ ଘଟଣାବଳି କଲମ ଧରି ଲେଖିଦିଅନ୍ତି ଏବଂ ତଦନୁସାରେ ସେ ଜୀବନରେ ସୁଖ ଦୁଃଖ ଭୋଗ କରେ । ]

ଭାଗ୍ୟହୀନ—ସ. ବିଣ. ପୁଂ ( ୩ୟା ତତ୍; ଭାଗ୍ୟ + ହୀନ )—ହୀନ
Bhāgyahīna କପାଳିଆ; ହତଭାଗ୍ୟ—Unfortunate.
(ଭାଗ୍ୟହୀନା—ସ୍ତ୍ରୀ)

ଭାଗ୍ୟୋଦୟ—ସ. ବି ( ୬ଷ୍ଠୀ ତତ୍; ଭାଗ୍ୟ + ଉଦୟ )—ସୌଭାଗ୍ୟର
Bhāgyodaya ଆବିର୍ଭାବ—The dawning of one's good fortune.

ଭାଙ୍କାର—ସ. ବି ( ଧ୍ୱନ୍ୟନୁକରଣ; ଭାଂ=ଧ୍ୱନି + କାର )—ଭେରି
Bhānkāra ଆଦିର ଧ୍ୱନି—The sound of trumpets.

ଭାଙ୍ଗ୍—ଦେ. ବି ( ଯୁବକ ଶ୍ରୀଧାଶ୍ୟାମଙ୍କ ପ୍ରବର୍ତ୍ତିତ ଦେଶୀ କଥରତରେ
Bhāṅg ପ୍ରଯୁଜ୍ୟ ଆଦେଶ ବଚନ )—ଭାଙ୍ଗ; ବନକର—

(a term of school drill) Dismiss ! ପ୍ରାଦେ. ( ସମ୍ବଲପୁର ) ବି—ପାନ ସଙ୍ଗେ ଖିଆଯିବା ଓ ପାଟିରେ ପକାଯିବା ତମାଖୁ ଗୁଣ୍ଡ—Tobacco powder used for chewing with or without betel.

ଭାଙ୍ଗଚି—ଦେ. ବି ( ସ. ଭଞ୍ଜ୍ ଧାତୁ )—କୌଣସି ସଙ୍କଳ୍ପିତ କାର୍ଯ୍ୟକୁ ଭାଙ୍ଗିବାପାଇଁ ପ୍ରଦତ୍ତ ମନ୍ତ୍ରଣା; କୁମନ୍ତ୍ରଣା—Machinations or advice given to a person to spoil a proposal.
Bhāng-chi
ভাংচি, ভাঙ্গচি
भंगठि

ଭାଙ୍ଗଚି ଦେବା—ଦେ. କ୍ରି—କୌଣସି କାର୍ଯ୍ୟକୁ ନଷ୍ଟ ବା ପଣ୍ଡ କରିବା ଉଦ୍ଦେଶ୍ୟରେ କାର୍ଯ୍ୟକାରୀ ବ୍ୟକ୍ତିକୁ କୁମନ୍ତ୍ରଣା ଦେବା—To give evil advice to a person with a view to spoil a proposal.
Bhāng-chi debā
(ଭାଙ୍ଗଚି ମାରିବା—ଅନ୍ୟରୂପ)
ভাংচি দেওয়া
भंगठि देना

ଭାଙ୍ଗ ପତର—ପ୍ରାଦେ ( ସମ୍ବଲପୁର ) ବି—ଧୂଆଁପତ୍ର; ତମାଖୁ—Tobacco leaf.
Bhāng patar

ଭାଙ୍ଗ—ଦେ. ବି ( ସ. ଭଙ୍ଗ )—୧ । ଗଞ୍ଜେଇ ଗଛର ପତ୍ର—1. The leaves of the Indian hemp. ୨ । ଗଞ୍ଜେଇ, ପତ୍ର ବା କଳି (ମଞ୍ଜରୀ) ସଙ୍ଗେ ମରିଚ ମସଲା ଆଦି ବାଟି ପ୍ରସ୍ତୁତ କରାଯିବା ଉନ୍ମାଦକ ପାନୀୟବିଶେଷ—2. An intoxicating drink made by pounding the leaves of Indian hemp with black pepper and other spices. ୩ । ( ସ. ଭଞ୍ଜ୍ ଧାତୁ ) ଲୁଗାଆଦି ଭାଙ୍ଗି ରଖିବାର ଦାଗ—3. A crease of anything (cloth etc) which has been folded. ୪ । ଲୁଗାଆଦି ଭଙ୍ଗା ଗଲେ ଯେତିକି ସ୍ତର ହୁଏ—4. The layer of anything like cloth when fold up. ୫ । ଭାଙ୍ଗିବା ବା ଭଙ୍ଗୀ ରଚନା କରିବା—5. Making an artistic fold. ୬ । ଚିତ୍ର ଓ ମଣ୍ଡଳ ଆଦିର ଅଙ୍କନ—6. Drawing of pictures or artistic circles. ପ୍ରାଦେ. ( ସମ୍ବଲପୁର ) ବି—ପାନ ସଙ୍ଗେ ଖାଇବା ବା ପାଟିରେ ପକାଇବାରେ ବ୍ୟବହୃତ ତମାଖୁ ଗୁଣ୍ଡ—Tobacco powder used for chewing with or without betel.
Bhānga
ভাঙ; ভাঙ্গ, ভাং
सबजी; भंग; ठंडाई

ଭାଙ୍ଗ ଉଚର(ଲ)—ଦେ. ବି—ଗଞ୍ଜପା ବା ଦସ୍ତଖେଳର ଅବସ୍ଥାବିଶେଷ; ଖେଳାଳି ହାତରେ କୌଣସି ରଙ୍ଗର ରଜା, ନଅ ବା ଦୋକା ଥିଲେ ଓ ତାହାର ହାତରେ ୧୪ ଖଣ୍ଡ ପାଉରୁ କମ୍ ପାଉ ଥିଲେ ତାହାକୁ ହାକମ କରିବା ନିମନ୍ତେ ଖେଳିବାର ଅବସ୍ଥାବିଶେଷ ( ନଜେ )—A particular stage in the game of country cards in which a player has got the king card and the cards with 9 and 2 points and has got less than 14 cards in his hands.
Bhānga uchara(la)

ଭାଙ୍ଗ ଘୋଟିବା—ଦେ. କ୍ରି (ସ. ଭଙ୍ଗ+ଘଟ୍ଟ ଧାତୁ)—ମରିଚ ଓ ମସଲା ସହିତ ପତ୍ର ବା ଗଞ୍ଜେଇକଳିକୁ ଗୋଟିଏ ପଥୁରୀ ଲୁଣ୍ଡିରେ ରଖି ଖଣ୍ଡେ ବାଡ଼ିର ମୂଳରେ ତାକୁ ମର୍ଦ୍ଦନ କରିବା—To pound the leaves of Indian hemp with black pepper and spices in a mortar with the help of a wooden pestling rod.
Bhānga ghotibā
ভাঙ ঘোটা
भाँग घोटना
(ଭାଙ୍ଗ ବାଟିବା—ଅନ୍ୟରୂପ)

ଭାଙ୍ଗପତ୍ର—ପ୍ରାଦେ ( କୋଦ ) ବି—ଧୂଆଁପତ୍ର; ତମାଖୁ—Tobacco leaf.
Bhānga patra

ଭାଙ୍ଗପାଣି—ଦେ. ବି (ସ. ଭଙ୍ଗ+ପାନୀୟ)—ଗଞ୍ଜେଇ ବା ପତ୍ର ଓ ମରିଚ ମସଲା ଘୋଟି ପ୍ରସ୍ତୁତ କରାଯିବା ପାନୀୟବିଶେଷ; ମରିଚପାଣି—A drink made by mixing Indian hemp paste with water.
Bhānga pāni
ভাঙ
भँगपानी, ठँडाई

ଭାଙ୍ଗ ଫିକ—ଦେ. ବି—ଗଞ୍ଜପା ଖେଳର ଅବସ୍ଥାବିଶେଷ; ଖେଳାଳି ହାତରେ କୌଣସି ରଙ୍ଗର ରଜା, ଅଠ ଓ ତିକା ଥିଲେ ଓ ୨୧ ଖଣ୍ଡ ପାଉରୁ ବେଶି ଥିଲେ ଅଠକୁ ବା ତିକାକୁ ହାକମ କରିବା ପାଇଁ ଖେଳିବା (ନଜେ)—A particular stage or state of affairs in the card game of Gañjapā when a player has the king card, the cards with eight and 3 points and has got more than 21 cards in his hands.
Bhānga phika

ଭାଙ୍ଗ ଭୁଙ୍ଗ—ଦେ. ବି ( ନିରର୍ଥକ ସହଚର )—ଭାଙ୍ଗିବା କ୍ରିୟା; ଭାଙ୍ଗରୁଙ୍ଗି—The act of breaking.
Bhānga bhunga
ভাঙ্গাচুরা भाँग भूँग

ଭାଙ୍ଗସ(ସି)ର—ଦେ. ବି—ଗଞ୍ଜପା ଖେଳର ଅବସ୍ଥା ବିଶେଷ; ଖେଳାଳିର ହାତରେ କୌଣସି ରଙ୍ଗର ରଜା, ଦଶ ବା ଏକା ସହିତ ୧୦ ଖଣ୍ଡ ପାଉରୁ ଅନ୍ୟୂନ ଥିବା ଅବସ୍ଥା; ନଜେ ]—A particular state of affairs in the card game of Gañjapā when a player has less than 10 cards including the king card and the cards having 10 points or one point in his hands.
Bhānga sa(si)ra

ଭାଙ୍ଗା—ପ୍ରାଦେ ( ସିଂହଭୂମ) ବିଣ (ଭୁଲ. ବି ଭଙ୍ଗା)—ଭଙ୍ଗା; ଭଗ୍ନ—Broken.
Bhāngā

ଭାଙ୍ଗିଆ—ପ୍ରାଦେ ( ସମ୍ବଲପୁର ) ବି—ଏକପ୍ରକାର ଗୋରୁ ବନ୍ଧା ଦଉଡ଼ି—A kind of rope for tying cattle.
Bhāngiā

ଭାଙ୍ଗିବା—ଦେ. କ୍ରି ( ସ. ଭଞ୍ଜ୍ ଧାତୁ )—୧ । ( ସକର୍ମକ ) ଭଗ୍ନ କରିବା; ଖଣ୍ଡ ଖଣ୍ଡ କରିବା—1. To break; to break into pieces. ୨ । (ଅକର୍ମକ) ଭୁଟିବା; ଭଗ୍ନ ହେବା—2. To be broken. ୩ । ( ସକର୍ମକ ) କୌଣସି ବ୍ୟକ୍ତିର କଥାକୁ ରକ୍ଷା ନ କରିବା—3. To disregard a person's request. [ ଉ—ତା ଶୁଣି କେତେ ଋଷି ପାଖକୁ ପଳିଲେ, କେତେ ଋଷି ଯୁକ୍ତି କର ତାହା ଭାଙ୍ଗି ଦେଲେ । କୃଷ୍ଣସିଂହ. ମହାଭାରତ. ସଭା । ]
Bhāngibā
ভাগা, ভাঙ্গা
तोड़ना

୪ । (ସକର୍ମକ)(ଆଦେଶ) ଅମାନ୍ୟ କରିବା; ଲଙ୍ଘନ କରିବା —4. To disobey; to transgress. (ଉ—ମୋ ଆଜ୍ଞା ଭାଙ୍ଗିବାକୁ ତୋହର ଶକତି—କୃଷ୍ଣସିଂହ. ମହାଭାରତ. ବନ ।) ୫ ।(ସକର୍ମକ) (ପ୍ରସ୍ତାବ) ସ୍ଥଗିତ ରଖିବା—5. To postpone or adjourn a proposal; to hold in abeyance. ୬ । (ସକର୍ମକ) ଛାରଖାର କରିବା; ଧ୍ୱଂସ କରିବା; ବିନଷ୍ଟ କରିବା—6. To destroy; to demolish. (ଉ—ଯୁଦ୍ଧ କରି ଭାଙ୍ଗିବି ନୃପପରାକ୍ରମ—କୃଷ୍ଣସିଂହ. ମହାଭାରତ. ସଭା ।) ୭ । (ସକର୍ମକ) (ମଣ୍ଡଳ ଆଦି ) ଅଙ୍କନ କରିବା—7. To draw circles and figures. ୮ । (ଅକର୍ମକ) (କଚେରି ଅଫିସ କାର୍ଯ୍ୟ) ବନ୍ଦ ହେବା—8. To be dismissed; to be closed (said of courts and offices). ୯। ଦୁଇ ଜଣଙ୍କ ମଧ୍ୟରେ ମନୋବିବାଦ ଘଟାଇବା(ଯଥା —ସେ ଅମୁକ ଦୁଇ ଜଣଙ୍କ ମନ ଭାଙ୍ଗିଦେଲା)—9.To cause dissension between two persons. ୧୦ । (ସକର୍ମକ) ( ମକଦ୍ଦମା ) ଆଦି ଅପୋସିରେ ମୀମାଂସା କରିବା—10.To settle (cases) amicably. ୧୧ । (ସକର୍ମକ) (ପଡ଼ିଆ ଜମିକୁ ) ଭୂଇଁଆ କରିବା; ପଡ଼ିଆ ଜମିକୁ ହାଣି ମାରି ଚାଷ ଜମିରେ ପରିଣତ କରିବା—11. To reclaim; to bring under cultivation. ୧୨ । (ସକର୍ମକ) ଦୂର କରିବା—12. To remove. ( ଉ—ସେ ଅବା ଉରୁପରେ ଭାଙ୍ଗିବେ ସନ୍ଦେହ । କୃଷ୍ଣସିଂହ. ମହାଭାରତ. ବନ । ) ୧୩ । (ସକର୍ମକ) ବଳିବା; ବଳସିବା—13. To excel; to exceed. ( ଉ—ସିଂହ୍ମ ସିଂହ ହସ୍ତୀ ହସ୍ତିମାଠାକୁ ଗଲା, ଶୋଭାକୁ ଦ୍ରୌପଦୀଙ୍କ ଯିବାର ଭାଙ୍ଗିଲା—କୃଷ୍ଣସିଂହ. ମହାଭାରତ. ବିରାଟ । ) ୧୪ । ( ଗୋବରା ଚଢ଼େଇ ପାଳିବାବାଲାଙ୍କ ଭାଷା ) (କୌଣସି ଗୋବରା ଚଢ଼େଇ)ଅନ୍ୟ ଚଢ଼େଇକୁ ବିବାଦରେ ଜିଣିବା—14. To defeat another bird in fight ( said of a bulbul bird) ୧୫ । (ପ୍ରାଚୀନ ଓଡ଼ିଆ) ଯୁଦ୍ଧକ୍ଷେତ୍ରରୁ ପଳାୟନ କରିବା(ମାଦଳା ପାଞ୍ଜି)—15. To retreat or flee away from a battle field.୧୬। ଥରେ ବଳା ଯାଇଥିବା ଦଉଡ଼ିକୁ ଏକାଧିକ ସର କରି ବଳିବା—16.To twist strings or strands into a rope. ୧୭। (ଭାଙ୍ଗିଦେବା-ସକର୍ମକ ଅନ୍ୟରୂପ) (ସକର୍ମକ)ପେଟ ଟାଣିଲେ ପେଟ ଉପରେ (ଭାଙ୍ଗିଯିବା-ଅକର୍ମକ ଅନ୍ୟରୂପ; ପାଣିପୂର୍ଣ୍ଣ କଂସା ବା ଅନ୍ୟ ବଡ଼ ପାତ୍ର ରଖିସେହି ପାତ୍ର ମଧ୍ୟକୁ ଉପର୍ଯ୍ୟୁପରି ପାଣି ଅଜାଡ଼ିବା;(ଯଥା—ତା ପେଟରେ ପାଣି ଭାଙ୍ଗିଲେ ପେଟ-ଟଣା ବନ୍ଦ ହେବ)—17. To repeatedly pour water into a big cup placed on the belly when there is some disorder in the stomach. ୧୮ । (ଅକର୍ମକ) ନଦୀର ବନ୍ଧ ଆଦି ସ୍ରୋତର ବେଗରେ ନଷ୍ଟ ହେବା (ଯଥା—ନଈବଢ଼ିରେ ବନ୍ଧ ଭାଙ୍ଗିଗଲା)—18. To give way; to be breached (said of a bank. ୧୯ । ଲୁପ୍ତ ହେବା —19. To disappear; to be gone. ( ଯଥା, ମେଘ ଭାଙ୍ଗିଲାଣି; ବଳ ଭାଙ୍ଗିଲାଣି ) ୨୦ । (ସକର୍ମକ) —ଲୁପ୍ତ କରିବା—20. To cause to disappear. (ଯଥା, ରୋଗ ମୋ ବଳ ଭାଙ୍ଗିଲାଣି) ୨୧ । ପଣ୍ଡ କରିବା—21. To nullify.

ଭାଙ୍ଗୁଆ—ଦେ. ବିଣ. ପୁଂ—ଭଙ୍ଗଡ଼ି; ଭାଙ୍ଗ ଖାଇବାରେ ଅଭ୍ୟସ୍ତ—
Bhāṅguā Addicted to taking the intoxicating
ଭାଙ୍ଗୀ, ଭାଙ୍ଗଡ଼, ଭାଙ୍ଗର drink, Bāṅga.
भंगेरी (ଭାଙ୍ଗୋଇ—ସ୍ତ୍ରୀ)

ଭାଙ୍ଗୁଆଣି (ଇତ୍ୟାଦି)—ଦେ. ବି—ଭାଙ୍ଗଚି ଇତ୍ୟାଦି (ଦେଖ)
Bhāṅguāṇi (etc) Bhāṅgchi etc (See).

ଭାଙ୍ଗୁଣି—ଦେ. ବି—( ସ. ଭଙ୍ଗ )—୧ । ଭାଙ୍ଗିବା—1. Act of
Bhāṅguṇi breaking. ୨। ଅନ୍ୟଥାକରଣ;ଲଙ୍ଘନ—Viola-
ଭାଂଜନ tion. ୩ । ଯେଉଁ ଉପାୟଦ୍ୱାରା ରସାୟନ ଔଷଧର ତେଜ
तोड़ना ଉଣା ହୁଏ—3. Appliances by which the potency of tonics is lost or lessened

ଭାଙ୍ଗୁଣିଆ(ଆ )—ଦେ. ବିଣ—୧ । ଯେ ଭାଙ୍ଗେ—1. Breaking;
Bhāṅguṇiā(ā) one who breaks. ୨ । ଯେ ନିଜର
ଭାଙ୍ଗାନିୟା ପରିବାରର ଶାନ୍ତି ନଷ୍ଟ କରେ—2. Causing
तोड़नेवाला disturbance in one's own family. ୩ । ଯେ ପରର ଘର ଭାଙ୍ଗେ—3. Creating dissensions in another's family.

ଭାଜକ—ସ. ବି (ଗଣିତ) (ଭଜ୍ ଧାତୁ+କର୍ତ୍ତୃ, ଅକ)—ଯେଉଁ ରାଶିଦ୍ୱାରା
Bhājaka ଅନ୍ୟ ରାଶିକୁ ଭାଗ କରାଯାଏ—(arithmetic) A
(ଭାଜିକା—ସ୍ତ୍ରୀ) divisor. ସ. ବିଣ. ପୁଂ—ବିଭାଗକାରୀ—Dividing; partitioning.

ଭାଜନ—ସ. ବି (ଭଜ୍ ଧାତୁ=ସେବା+କରିବା+ କର୍ମ, ଅନ)—
Bhājana ୧ । ଆଧାର; ପାତ୍ର—1. Receptacle. ୨ । ଆଶ୍ରୟ—2. Refuge; shelter. ୩ । ସୁପାତ୍ର; ଯୋଗ୍ୟପାତ୍ର—3. A deserving person. ସ.ବିଣ—(ପୁଂ ଓ ସ୍ତ୍ରୀ)—ଯୋଗ୍ୟ—Deserving. ( ସ. ସ୍ନେହ-ଭାଜନ, ସ୍ନେହପାତ୍ର ଇତ୍ୟାଦି ଶବ୍ଦ ପୁଂ ଓ ସ୍ତ୍ରୀଲିଙ୍ଗରେ ବ୍ୟବହୃତ ହୁଏ । )

ଭାଜି—ଦେ. ବି (ସ. ଭୃଜ୍ ଧାତୁ)—ଭର୍ଜିତ ବ୍ୟଞ୍ଜନ; ଘିଅରେ ବା ତେଲରେ
Bhāji ଭଜା ହୋଇଥିବା ଖାଦ୍ୟ—Roasted or fried
ଭାଜା, ଭାଜୀ food ପ୍ରାଦେ. (ସମ୍ବଲପୁର) ବି—୧ । କୋଶଲା
भाजि, भुजिया ଶାଗ—1. A kind of potherb. [ ଉ—ଭାଜିର ଭୁଠେ କେନା ପାଏନ୍ ପାଏ । ଚିଉ । ଏଠାରେ ଅର୍ଥ କୋଶଲା ଶାଗ ଲାଗି କନଶିର ପାଣି ପାଏ; ତୁଳନା-କର, ଓଡ଼ିଶା ପ୍ରଚଳିତ ଚିଉ—ଦାଳୁଅ ଲାଗି କନଶିର ପାଣି ପାଏ । ] ୨ । (ତୁଳ. ହି. ଏହି ଅର୍ଥରେ ଏହି ଶବ୍ଦ) ଶାଗ 2. Pot-herb.

**ଭାଜିତ**—ସଂ. ବଣ [ଭଜ୍ ଧାତୁ + କର୍ମ. ତ]—ପୃଥକ୍‌କୃତ; ବିଭକ୍ତ—
Bhājita Divided. ସଂ. ବି—ଭାଗ; ଅଂଶ—Part; share.

**ଭାଜି ତରକାରି**—ଦେ. ବି [ସହଚର]—ଭଜା ଓ ତିଅଣ—
Bhāji tarakāri Fried fruit and curry.
ଭାଜୀ ତରକାରୀ **भुजिया तरकारी**

**ଭାଜିବା**—ଦେ. କ୍ରି. (ସଂ ଭଜ୍ ଧାତୁ)—(ଅକର୍ମକ) ୧ । ଭାଙ୍ଗିଯିବା;
Bhājibā ଭଗ୍ନ ହେବା—1 To be broken. (ଉ—ଉରୁ
ଭାଂଗା ପବନକୁ ପାଇଣ ବୃକ୍ଷଗୁଳ୍ମ, ଲତାଙ୍କର ଉପରେ ଛେଚ
**टूटना** ହେଲେ ଭାଜି । କୃଷ୍ଣସିଂ. ମହାଭାରତ. ବନ । ) ୨ ।
ନିଅଣ୍ଟିଯିବା; ଲୁପ୍ତପ୍ରାୟ ହେବା—2. To be exhausted
(ଉ—ଅନ୍ନ ନ ପାଇଲି, ଭାଜିଲୁ ମୋ ବଳ, ରାଜ୍ୟ କରାଉଛ
କଷ୍ଟରେ ଚଳେ । କବିସୂର୍ଯ୍ୟ. ସଙ୍ଗୀତ ।) ୩ । (କୌଣସି
ପ୍ରସ୍ତାବ) ରହିତ ହେବା—3. (a proposal) To be
ଭାଗୀ kept in abeyance. ୪ । ପଳାଇବା—4. To flee
**भागना** away. (ଉ—ଭୀମଙ୍କ ଶରଘାତରେ ଭାଜିଲେ ପଛକୁ ।
କୃଷ୍ଣସିଂ. ମହାଭାରତ. ବନ । ) ୫ । ପରାଜିତ ହେବା—
5. To be vanquished. ୬ । ପରାଜିତ ହୋଇ
ଛତ୍ରଭଙ୍ଗ ହେବା—6. To be routed after defeat.
ଭାଜା ୭ । (ସକର୍ମକ)(ସଂ. ଭ୍ରଜ୍ ଧାତୁ) ଭର୍ଜନ କରିବା—7. To
**भुजना, भाजना, भुजना** fry; to roast.
(ଭାଜିଯିବା—ଅକର୍ମକ ଅନ୍ୟରୂପ)

**ଭାଜି ଶାଗ**—ପ୍ରାଦେ. ( ସମ୍ବଲପୁର ) ବି. ( ଭୁଜ ଶାଗ ଅର୍ଥରେ ହି.
Bhāji śāg ଭାଜୀ )—କୋଶଲା, ଲେଉଟିଆ ଆଦି ଶାଗ—
Potherb

**ଭାଜ୍ୟ**—ସଂ. ବି. ( ଭଜ୍ ଧାତୁ+କର୍ମ. ଯ )—(ଗଣିତ) ଯେଉଁ ରାଶି
Bhājya ଅନ୍ୟ ରାଶି ଦ୍ୱାରା ଭାଗ କରାଯାଏ—
(arithmetic) A dividend.
ସଂ. ବିଣ—ଯାହାକୁ ଭାଗ କରିବା ଉଚିତ; ଭାଗାର୍ହ; ଭାଗ
ଯୋଗ୍ୟ—Divisible.

**ଭାଞ୍ଜ**—ଦେ. ବି. ( ସଂ. ଭଞ୍ଜ ଧାତୁ )—୧ । ସ୍ୱର୍ଣ୍ଣ ରୌପ୍ୟାଦିରେ
Bhānja ମିଶାଯିବା ନିକୃଷ୍ଟ ଧାତୁ; ଖାଦ—1. Dross. ୨ । ଭାଙ୍ଗ;
ଖାଦ ଭେଉ—2. Layer; fold. ଦେ. ବିଣ—ନିକୃଷ୍ଟ—
**खाद** भाँज **तह** Inferior.

**ଭାଞ୍ଜିବା**—ଦେ. କ୍ରି. (ସଂ. ଭଞ୍ଜ ଧାତୁ )—(ସକର୍ମକ) ୧ । ଭାଙ୍ଗିବା—
Bhānjibā 1. To break into pieces. ( ଉ—ବୃଷ
ଭାଁଜା **तोडना** ସ୍ଥାପିବା ବିନା କର୍ମ, ଭାଞ୍ଜିବା ଅଛିଁ ଅଧର୍ମ ।
ଭାଁଜା ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।) ୨ । ଲୁଗା ଆଦି ପ୍ରସ୍ଥ ପ୍ରସ୍ଥ କରି
**तह करना, तह लगाना** ଭାଙ୍ଗିବା—2. To fold (cloth etc).
୩ । (ଅକର୍ମକ) ପଳାଇବା—3. To flee away.
ଭାଗା (ଉ—ଶୁକ୍ରର ତେଜ ଯକ୍ଷ ବଳେ, ଭୟେ ଭାଞ୍ଜିଲେ ଦିଗ-
**भागना** ପାଳେ । ଜଗନ୍ନାଥ. ଭାଗବତ ।)

**ଭାଟ**—ଦେ. ବି. (ସଂ. ଭଟ୍ଟ)—୧ । ବଂଶଚରିତକୀର୍ତ୍ତନକାରୀ ଗାୟକ—
Bhāṭa 1. Bard; herald. ୨ । ସ୍ତୁତିପାଠକ; ବନ୍ଦୀ—
ଭାଟ 2. A panegyrist. (ଉ—ନୋହିଲେ କପାଁ ଭାଟ
**भाट** ପ୍ରାୟେ ସ୍ତୁତି କର । କୃଷ୍ଣସିଂ. ମହାଭାରତ. ସଭା)
୩ । ବର୍ଣ୍ଣସଙ୍କର ଜାତିବିଶେଷ—3. A hybrid caste
୪ । ରାଜଦୂତ—4. Ambassador.

**ଭାଟକ**—ସଂ. ବି. ( ଭଟ୍ ଧାତୁ=ଭଡ଼ା କରିବା + ସ୍ୱାର୍ଥେ. ଅକ)—
Bhāṭaka ୧ । ଘର ଆଦିର ଭଡ଼ା—1. Rent or hire for
the use of a house etc. ୨ । କୌଣସି ବସ୍ତୁର
ମୂଲ୍ୟ—2. Price of a thing.

**ଭାଟ ଭିକାରି(ଖାରି)**—ଦେ.ବି.(ସହଚର)(ସଂ.ଭଟ୍ଟ + ଭିକ୍ଷାକାରୀ)—ଭାଟ ଓ
Bhāṭa bhikā(khā)ri ଭିକ୍ଷୁକ—Bards and beggars
ଭାଟ ଭିଖାରୀ [ଦ୍ର—ପୂର୍ବେ ଭାଟମାନେ ରାଜାମାନଙ୍କ
**भाट भिखारी** ନିକଟରେ ପ୍ରତ୍ୟହ ସ୍ତୁତି ପାଠ କରି ଚଳୁଥିଲେ ।
ଏହି ପ୍ରାଚୀନ ପ୍ରଥା ଲୁପ୍ତପ୍ରାୟ ହେବାରୁ ଏବେ ଭାଟମାନେ
ଦ୍ୱାରେ ଦ୍ୱାରେ କବିତା ବୋଲି ଭିକ୍ଷା କରି ପେଟ
ପୋଷନ୍ତି ।]

**ଭାଟି**—ଦେ. ବି. (ସଂ. ଭ୍ରାଷ୍ଟ୍ରୀ)—୧ । ବଡ଼ ଚୁଲି—1. A furnace;
Bhāṭi ଭାଟୀ kiln. ୨ । ମଦ୍ୟ ପ୍ରସ୍ତୁତ କରିବାର ବଡ଼ ହାଣ୍ଡି—
**भाट, भट्ठी, भट्ठा** 2. Large pot for distilling wine
or spirits. ୩ । ଅର୍କ କାଢ଼ି ମଦ ତିଆରି
କରିବାର ଯନ୍ତ୍ର—3. Still. ୪ । ଧୋବା ଯେଉଁ
ବଡ଼ ବଡ଼ ହାଣ୍ଡିରେ ଲୁଗା ସିଝାଏ—4. Large ear-
then pots for boiling clothes to be washed
by a washerman; a washerman's cloth-
boiling pot. ୫ । ଇଟା ପୋଡ଼ିବା ଚୁଲି—
5. Brick kiln. ୬ । ଗେଙ୍ଗୁଟି ପୋଡ଼ି ଚୂନ ତିଆରି
କରିବା ଚୁଲି—6 Lime kiln. [ଦ୍ର—ଭିନ୍ନ ଭିନ୍ନ
କାର୍ଯ୍ୟ ନିମନ୍ତେ ବ୍ୟବହୃତ ଭାଟି ଭିନ୍ନ ଭିନ୍ନ ନାମରେ କଥିତ
ଯଥା—ଧୋବା ଭାଟି, ମଦ ଭାଟି, ଇଟାଭାଟି ଇତ୍ୟାଦି ।]
୭ । ପୋଡ଼ା ସାରିଥିବା ଇଟାର ସ୍ତୂପ—7. The
arranged heap of bricks burnt in a kiln.
୮। ଯେଉଁ ଘରେ ମଦ ତିଆରି ହୁଏ—8. Distillery.

**ଭାଟିଆ**—ଦେ. ବି—୧ । ଗୁଜରାଟବାସୀ ବୈଶ୍ୟ ବଣିକ—1. A
Bhāṭiyā Baisya merchant of Gujerat. ୨ । କଚ୍ଛ
ଭାଟିଆ ଓ କାଠିଆବାଡ଼ର ଅଧିବାସୀ ଭାଟିଆମାନଙ୍କ କଥିତ
**भाटिआ** ସିନ୍ଧି ଭାଷାର କଚ୍ଛିଭାଷାର ରୂପାନ୍ତରିତ ଉପଭାଷାବିଶେଷ-
2. A sub-dialect of Kachchhi dialect of
the Sindhi language spoken by the
Bhatias fo Cutch and Kathiawar
୩ । ଭାଟିର ଭାରପ୍ରାପ୍ତ ବ୍ୟକ୍ତି—3. A person in-
charge of a kiln or distillery.

**ଭାଟିଆ ବେଶ**—ଦେ. ବି. (ନାମ)—ଧର୍ମ ସମ୍ପ୍ରଦାୟବିଶେଷ—
Bhāṭia beṇa A religious sect.
[ଦ୍ର—ବଲ୍ଲଭାଚାର୍ଯ୍ୟ ଏହି ସମ୍ପ୍ରଦାୟର ପ୍ରତିଷ୍ଠାତା । ଧନ
ସମ୍ପଦ ଏମାନଙ୍କର ମୁଖ୍ୟଉଦ୍ଦେଶ୍ୟ,ମାତ୍ର ଭୋଗବିଳାସ ବାସନା
ଆଦୌ ନ ଥାଏ । ମଦନମୋହନ. ତୀର୍ଥ ଦର୍ଶନ ।]

ଭାଟିଆରା(ରୀ)—ଦେ. ବି—୧ । ଅନ୍ନବିକ୍ରେତା—1. Seller of cooked rice. ୨ । ମଦବିକ୍ରେତା—2. A vendor of wine. ୩ । ଯେ ଗୁଡ଼ଲ ଆଦିକୁ ସିଝାଇ ମଦ ତିଆରି କରେ—3. A wine distiller.
Bhāṭiārā(rī) ভাটিয়ারী भटियारी

ଭାଟିଆରି—ଦେ. ବି. ( ସଂ. ଭର୍ତ୍ତୃହାରିକା )—ଗୀତର ରାଗବିଶେଷ ( 'ରାଗ' ଶବ୍ଦେ ଟୀକା ଦେଖ )—Name of a tune in song (see notes under Rāga). [ଦ୍ର—ମହାରାଜ ଭର୍ତ୍ତୃହରି ଏହି ରାଗର ପ୍ରବର୍ତ୍ତକ । ଏହା ରାତ୍ରି ପ୍ରଥମ ପ୍ରହରରେ ଗେୟ । ଏହା ସପ୍ତସ୍ୱରବିଶିଷ୍ଟ । ଏଥିରୁ ଦୁଇ ସ୍ୱର କୋମଳ ।]
Bhāṭiāri ভাটিয়ারী मटियारी

ଭାଟି ଖାନା—ଦେ. ବି—ଯେଉଁ ଘରେ ମଦ ଭାଟି ଥାଏ ବା ମଦ ତିଆରି ହୁଏ—Distillery.
Bhāṭi khānā ভাটিখানা भट्टीखाना

ଭାଟିବା—ଦେ. କ୍ରି. ( ସଂ. ଘଟ୍ଟ ଧାତୁ=ଚଳନ କରିବା )—(ଜୁଆର) କମିବା—( flowtide ) To ebb. (ଉ—ଆଜି ପୂର୍ଣ୍ଣିମା । × × × × ବାରଟା ବେଳେ ଜୁଆର ଭାଟିବ । ଠିକ ସେତିକି ବେଳେ ପଡ଼ୁଛି ଅମୃତ ଯୋଗ—ଫକୀରମୋହନ. ଗଳ୍ପସ୍ୱଳ୍ପ )
Bhāṭibā ভাটা घटना

ଭାଟୁ(ଟୋ)ଇ—ଦେ. ବି ( ସଂ. ବର୍ତ୍ତକ )—ବତର ଚଢ଼େଇ—The grey quail ( bird ); Cotarnix Communis.
Bhāṭu(ṭo)i বটের बटेर

ଭାଟୁଆରି—ଦେ. ବିଣ—ଭାଟ ସମ୍ବନ୍ଧୀୟ—Relating to a Bhāṭa or panegyrist. ( ଯଥା—ଭାଟୁଆରି ଜାଗର । )
Bhāṭuāri ভাটু(টো)আরি भाटोत्तर

ଭାଟୋ—ପ୍ରାଦେ. (ସମ୍ବଲପୁର) — ବି. ପୁଂ—ଭଣୋଇ; ଭଗିନୀପତି—Sister's husband.
Bhāṭo

ଭାଠି—ପ୍ରାଦେ. ( ସମ୍ବଲପୁର ) ବି—୧ । ମଦଦୋକାନ—1. Wine shop. ୨ । ଭାଟି (ଦେଖ)—Bhaṭi (See).
Bhaṭhi

ଭାଡ଼୍(ଡ଼ୁ) ଭାଡ଼୍(ଡ଼ୁ)—ଦେ. ଅ (ଧ୍ୱନ୍ୟନୁକରଣ)—ଭଡ଼୍ ଭଡ଼୍; କୌଣସି ଟାଣ ପଦାର୍ଥ ଚୋବାଇବାର ଶବ୍ଦ—Sound of chewing hard things. [ଉ—ପଡ଼ୋଶୁଣୀ ଘର ପିଠା ଦେଖି ମନ ଲବେଇ ଖବେଇ, ଘସି ପଡ଼ା ଖଣ୍ଡେ ହାତରେ ଧରି ଭାଡ଼ୁ ଭାଡ଼ୁ ଚୋବେଇ । ଛଗ ।]
Bhāṛ(ṛu); bhāṛ(ṛu) भड भड কড়কড়

ଭାଡ଼ି—ଦେ. ବି (ସଂ. ଭଟ୍ଟକ)—୧ । କାଠ ବାଉଁଶ ଆଦିରେ ପ୍ରସ୍ତୁତ ମଞ୍ଚ—1. A raised framework of bamboo or planks; scaffold; a platform used for stocking things. [ ଦ୍ର—ଗୃହ ମଧ୍ୟରେ ଜିନିଷପତ୍ର ରଖିବା ପାଇଁ ଘରର ଗୃହ ତଳେ କାନ୍ଥ ଉପରେ ଖମ୍ବା (ଭୂଇଁରେ ଖୁଣ୍ଟି ପୋତି) ଖୁଣ୍ଟ ଉପରେ ଆଡ଼ଧାରଣା ଦେଇ ଉକ୍ତ ଧାରଣା ଉପରେ ବାଉଁଶ ବା ପଟା ବିଛାଇ ଭାଡ଼ି ତିଆରି କରାଯାଏ । ଯାତ୍ରାକାରୀ ବା ବାଜାବାଲାମାନଙ୍କ ବସିବା ପାଇଁ ଓ ବଣରେ ଶିକାରୀମାନଙ୍କ ସକାଶେ ଭାଡ଼ି ବା ମଞ୍ଚା ବନ୍ଧାଯାଏ । ଜଙ୍ଗଲ ମଧ୍ୟରେ ଥିବା ଶସ୍ୟ କ୍ଷେତ୍ରକୁ ରାତିରେ ଜଗିବା ପାଇଁ କୃଷକମାନେ ବିଲ ମଝିରେ ଖୁଣ୍ଟି ପୋତି ତା ଉପରେ ଭାଡ଼ି ତିଆରି କରନ୍ତି ।] ୨ । ମୁଢ଼ି, ଖଇ ଆଦି ଭଜା ଯିବାର ଏକ କ୍ଷେପ ବା ଥର—2. One baking or frying (of fried rice etc.) (ଯଥା—ମୁଁ ଭାଡ଼ିଏ ମୁଢ଼ି ଭାଜି ଦେଇ ଯିବି) ୩ । ଦାନ୍ତମାନଙ୍କର ଏକ ପୂର୍ଣ୍ଣ ପଂକ୍ତି—3. A row of teeth (ଯଥା—ଏକା ମୁଥେକେ ତୋର ଭାଡ଼ିଏ ଦାନ୍ତ ଭାଙ୍ଗି ଦେବି ।)
Bhāṛi মাচা मचान

ଭାଡ଼ିଆ—ଦେ. ବି—ଭାଡ଼ି ଜଗୁଆଳ; ଯେ ଭାଡ଼ି ଉପରେ ଥାଇ ରାତିରେ ଶସ୍ୟକ୍ଷେତ୍ର ଆଦି ଜଗେ—One who watches the crops in the night from a high scaffolding. [ ଉ—କେ ଗୁଲା ବାଜଲ୍ଲ, ମୁଣ୍ଡ ଯେନଗଲ୍ଲ, ଭାଡ଼ି ଉପରୁ ଭାଡ଼ିଆର । ବ୍ରଜନାଥ. ସମରତରଙ୍ଗ । ]
Bhāṛia [ଭାଡ଼ିଆର(ଲ)—ଅନ୍ୟରୂପ] মাচাওয়ালা मचानवाला

ଭାଡ଼ି ଚହଲେଇବା—ପ୍ରାଦେ. [ଗଡ଼ଜାତ] କ୍ରି—ଶିକାର ଉଦ୍ଦେଶ୍ୟରେ ଘେରିଥିବା ଲୋକେ ବାଦ୍ୟାଦି ବଜାଇ ଓ ପାଟକରି ଘେରମଧ୍ୟସ୍ଥ ଜନ୍ତୁମାନଙ୍କୁ ଶିକାରୀମାନଙ୍କ ଭାଡ଼ି ପାଖକୁ ହୁରୁଡ଼ାଇବା କାର୍ଯ୍ୟ ଆରମ୍ଭ କରିବା—(the beaters) To commence the beat.
Bhāṛi chahaleibā

ଭାଣ୍(ନ୍)ସ—ପ୍ରାଦେ. [ଗଡ଼ଜାତ; ଭୁଲ ହି, ଭାନସ୍=ପାକ]—ପାକଶାଳା; ରୋଷେଇ ଘର—Cookroom; kitchen.
Bhaṇ(n)-sa

ଭାଣ—ସଂ. ବି (ଭଣ୍ ଧାତୁ=କହିବା + ଅଧିକରଣ. ଅ)—୧ । ଏକ ଅଙ୍କରେ ସମାପ୍ତ ନାଟ୍ୟ ଗ୍ରନ୍ଥବିଶେଷ—1. A drama in one act. ୨ । ପ୍ରତୀତି; ବୋଧ—2. Belief; perception. ୩ । ବାହାନା; ଛଳ; କପଟ—3. pretence; feigning. ୪ । ଜ୍ଞାନ—4. Knowledge. ୫ । କଥା; ବାକ୍ୟ—5. Saying; speech; utterance.
Bhāṇa

ଭାଣ କରିବା—ଦେ. କ୍ରି—ବାହାନା କରିବା; ଛଳନା କରିବା; ଛଟା ଗାଳିବା—To feign; to pretend; to simulate.
Bhāṇa karibā ভাণকরা बाहाना करना

ଭାଣ(ଣି, ଣେ ଜା (ଞ୍ଜୀ)—ଦେ. ବି.ସ୍ତ୍ରୀ (ସଂ.ଭଗ୍ନୀକା)—ଭଉଣୀର ଝିଅ—Sister's daughter.
Bhāṇa (ṇi, ṇe) jī (ñjī) ভাগিনী भानजी

ଭାଣ(ଣି, ଣେ) ଜ (ଞ୍ଜି)ଜୋଇଁ—ଦେ.ବି (ସଂ. ଭଗ୍ନୀକା ଓ ଜାମାତୃ)—ଭଣିଜୀର ସ୍ୱାମୀ—The husband of one's sister's daughter.
Bhāṇa (ṇi, ṇe) ji (ñji) joiñ ভগিন জামাই भगिन जमाई

ଭାଣ୍ଟ—ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—କଇଁବେଣ୍ଟ; କଇଁର ବୀଜକୋଷ—The fruits of the water-lily.
Bhāṇṭa

ଭାଣ୍ଟା—ପ୍ରାଦେ. (ଗଞ୍ଜାମ) ବି—ଗିନା ପ୍ରଭୃତି ସାନପାତ୍ର—vessel small; cup.
Bhāṇṭā
ପ୍ରାଦେ. (ସମ୍ବଲପୁର) ବି—ବାଇଗଣ—Brinjal.

**ଭାଣ୍ଡ** —ପ୍ରାଦେ. (ସମ୍ବଲପୁର) ବିଣ —ଅଶ୍ଳୀଳ —Indecent.
Bhāṇḍ (ଭାଣ୍ଡେଭସରୁ—ଅନ୍ୟରୂପ)

**ଭାଣ୍ଡ** —ସଂ. ବି (ଭଣ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଡ)—୧ । ପାତ୍ର; କୋଷ; ହାଣ୍ଡି—1. A receptacle; a pot. ୨ । ବାଇଦ; ଢୋଲ; ଆନଦ୍ଧବାଦ୍ୟ—2. A drum. ୩ । (ଭନ୍ଦ୍ ଧାତୁ=ଉତ୍ତମ ସମ୍ବାଦ ଦେବା, ଉଲ୍ଲସିତ ହେବା+କର୍ତ୍ତୃ. ଅ ) ମୂଳ ଧନ ପୁଞ୍ଜି—3. Capital. ୪ । ସଞ୍ଚିତ ଧନ—4. Hoard; fund. ୫ । ନାପିତର ଅସ୍ତ୍ରାଧାର; ଭଣ୍ଡାର ମୁଠି—5 A razor-case; pouch for a barber's tools. ୬ । ଦେହ; ଶରୀର—6. Body. ୭ । (ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅଣ୍ଡ)—ଅଳଙ୍କାର 7. Ornament. ୮ । ଅଶ୍ୱଭୂଷଣ;ଘୋଡ଼ାର ସାଜ—8. Trappings for a horse. ୯। ନଦୀର ଶଯ୍ୟା—9. The bed of a river; river bed. ୧୦। (ଭଣ୍ଡ+ସ୍ୱାର୍ଥେ. ଅ ) ଭାଣ୍ଡପଣିଆ—Shamelessness; indecency.
Bhāṇḍa
ভাঁড় भाण्ड
ଦେ .ବିଣ (ସଂ. ଭଣ୍ଡ)—୧ । ପ୍ରତାରକ; ଶଠ—1. Cheating; swindling. ୨ । ଭଣ୍ଡାମିପୂର୍ଣ୍ଣ—2. Full of indecency. ୩। ଥଟ୍ଟାଳିଆ;ବିଦୂଷକ-3. Jestive. ୪ । ନିର୍ଲଜ୍ଜ—4. Shameless. ୫ । ପଣ୍ଡ; ନିଷ୍ଫଳ—5. Fruitless. ଦେ. ବି—୧ । ଠକ—1. Cheat. ୨ । ବିଦୂଷକ—2. Jester. ୩ । ଅଶ୍ଳୀଳଭାଷୀ ବ୍ୟକ୍ତି — 3. A speaker of vulgar and indecent things. ୪ । ଘୋରତର; ଅତି ଲଜ୍ଜିତ— Put to great shame or humiliation.

**ଭାଣ୍ଡ କଥା** —ଦେ. ବି—୧ । ଥଟ୍ଟାଳିଆ କଥା—1. Jugglery; buffonery. ୨ । ନିର୍ଲଜ୍ଜ କଥା—2. Shameless words; ribaldry. ୩ । ନିଷ୍ଫଳ ବା ପଣ୍ଡ ବିଷୟ—3. A fruitless matter; a vain thing.
Bhāṇḍa kathā ভণ্ড কথা दिल्लगी
[ଭାଣ୍ଡେଭସଡ଼ (ଡା) କଥା ଅନ୍ୟରୂପ]

**ଭାଣ୍ଡ କରିବା**—ଦେ. କ୍ରି —୧ । କୌଣସି ବ୍ୟକ୍ତିକୁ ଅପ୍ରସ୍ତୁତ ବା ଲଜ୍ଜିତ କରିବା—1. To put a person to shame; to humiliate a person to nonplus. ୨ । ଭଣ୍ଡୋଇ କରିବା; ବିଗାଡ଼ିବା; ପଣ୍ଡ କରିବା—2. To nullify or spoil a matter.
Bhāṇḍa karibā
অপ্রস্তুত করা, অপ্রতিভ করা
शर्मिंदा करना
[ଭାଣ୍ଡ କରା(କେ)ଇବା—ଅନ୍ୟରୂପ]

**ଭାଣ୍ଡଗିରି** —ଦେ. ବି—୧ । ହାସ ପରିହାସ—1. Jesting; ribaldry. ୨ । ଭଣ୍ଡାମି; ନିର୍ଲଜ୍ଜତା—2. Shamelessness; depravity.
Bhāṇḍagiri
ভাণ্ডাম(মি) दिल्लगीबाजी
[ଭାଣ୍ଡପଣ, ଭାଣ୍ଡପଣିଆ (ଅଁ)—ଅନ୍ୟରୂପ]

**ଭାଣ୍ଡରା କରିଦେବା**—ପ୍ରାଦେ. (ଯାଜପୁର) କ୍ରି —୧ । ଅପମାନ ଦେବା-1. To insult . (ଯଥା—ସେ ଭଲଲୋକରେ ମୋତେ ଭାଣ୍ଡରା କରି ଦେବ)— ୨ । ଖରାପ କରିଦେବା; ଭଣ୍ଡୋଇ କରିବା; ନଷ୍ଟ କରିବା—2. To spoil; to disorganise; to nullify
Bhāṇḍarā karidebā

**ଭାଣ୍ଡା**—ଦେ. ବି (ପ୍ରାଚୀନ)—୧ । ଆପଦ—1.Danger;calamity. [ ଉ—ଅରେ ବାବୁ ! ତୁମ୍ଭ ସବୁ ଭାଣ୍ଡା ଘେନିଯାଇ, ହାତ ସୁଖେ ପଶା ଖେଳ ଦୁଃଖକୁ ଦେଲଇଁ । ସରଳା-ମହାଭାରତ. ବିରାଟ । ] ୨ । ଜୀବନର ଘାଟୀ—2. A crisis; critical point of one's life.
Bhāṇḍā
ফাণ্ডা
घाटी

**ଭାଣ୍ଡାଗାର**—ସଂ. ବି ( ୬ଷ୍ଠୀ ତତ୍;ଭାଣ୍ଡ=ସଞ୍ଚିତ ଧନ+ଅଗାର )—୧ । ଧନାଗାର; ଭଣ୍ଡାର—1. Treasury. ୨ । ବସ୍ତୁସଞ୍ଚୟ ସ୍ଥାନ; ସରଘର—2. Store-house; magazine. ୩ । ପୁଞ୍ଜି—3. Fund; hoard.
Bhāṇḍāgāra
(ଭଣ୍ଡାର—ଅନ୍ୟରୂପ)

**ଭାଣ୍ଡାଗାରିକ**—ସଂ. ବି. ପୁଂ ( ଭାଣ୍ଡାଗାର+ରକ୍ଷଣାର୍ଥେ ଇକ )—୧ । କୋଷାଧ୍ୟକ୍ଷ—1. Treasurer. ୨ । ସରଘରର ରକ୍ଷକ—2. Store-keeper; store-house-keeper.
Bhāṇḍāgārika
(ଭଣ୍ଡାରିକ, ଭଣ୍ଡାରୀ—ଅନ୍ୟରୂପ)
(ଭାଣ୍ଡାଗାରିକା — ସ୍ତ୍ରୀ)

**ଭାଣ୍ଡିଆ**—ଦେ. ବିଣ. ପୁଂ ( ସଂ. ଭଣ୍ଡ )—୧ । ଭଣ୍ଡ; ନିର୍ଲଜ୍ଜ—1. Shameless. ୨ । ବହୁଲୋକଙ୍କ ସମ୍ମୁଖରେ ଲଜ୍ଜା ବା ଅପମାନ ଗ୍ରସ୍ତ—2. Put to shame or humiliation before many people. ୩ । ନିର୍ବୋଧ ଅବା ମିଥ୍ୟାବାଦୀ ବୋଲି ପ୍ରତିପାଦିତ—3. Proved to be a liar; befooled. ୪ । ଭଣ୍ଡୋଇ; ନଷ୍ଟ—4. Spoiled; nullified; undone.
Bhāṇḍiā
[ଭାଣ୍ଡେ(ଣ୍ଡୋ)ଇ —ସ୍ତ୍ରୀ]
ভাঁড়
बेसरम
অপ্রতিভ
वेपानि पाण्ड पण्ड

**ଭାଣ୍ଡିର**—ଦେ. ବି—ବେଲଗଛ—The Bel tree.
Bhāṇḍira

**ଭାଣ୍ଡୀର**—ସଂ. ବି ( ଭାଣ୍ଡ=ପାତ୍ର+ଈର ଧାତୁ=ଗମନ କରିବା+ଅ )—୧ । ବଟବୃକ୍ଷ; ବରଗଛ—1. The banyan tree. ୨ । ବ୍ରଜମଲ୍ଲୀ ( ଦେଖ )—2. Brajamallī ( See )
Bhāṇḍīra

**ଭାଣ୍ଡୁଆ**—ଦେ. ବିଣ. ପୁଂ ( ସଂ. ଭଣ୍ଡ )—୧ । ଶଠ; ଭଣ୍ଡ—1. Swindling; deceptive ୨ । ନିର୍ଲଜ୍ଜ—2. Shameless. ୩ । ଭଣ୍ଡୁଆ—3. Bawdy. ୪ । ଥଟ୍ଟାଳିଆ—4. Jestive. ୫ । ବହୁ ଲୋକଙ୍କ ମଧ୍ୟରେ ଯେ ଅନ୍ୟକୁ ଲଜ୍ଜିତ ବା ହାସ୍ୟାସ୍ପଦ କରେ—5. Humiliating or putting a person to shame. ୬ । ଅଶ୍ଳୀଳଭାଷୀ ବ୍ୟକ୍ତି—6. Speaker of indecencies.
Bhāṇḍuā
[ଭାଣ୍ଡେ(ଣ୍ଡୋ)ଇ—ସ୍ତ୍ରୀ]
ভাঁড় भाण्ड
ভেড়ুয়া भडुया

**ଭାଣ୍ଡେଇବା**—ପ୍ରାଦେ ( ବାଲେଶ୍ୱର ) କ୍ରି ( ଭୁଲ ବ. ଭାଁଡାନ )—ଭଣ୍ଡାଇବା; ଠକାଇବା—To cheat.
Bhāṇḍeibā

ଭାତ୍(ଥ୍)—ପ୍ରାଦେ ( ସମ୍ବଲପୁର ) ବି—ଭାତ—Boiled rice.
Bhāt(th)

ଭାତ୍-ଖୁଆ—ପ୍ରାଦେ ( ସମ୍ବଲପୁର ) ବି—ଅନ୍ନ ପ୍ରାଶନ ଉତ୍ସବ—The
Bhāt-khuā ceremony of a child's taking boiled rice for the 1st time.

ଭାତ—ସଂ. ବଣ ( ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ତ )—୧ । ପ୍ରକାଶିତ; ପ୍ରତିଭାତ—1. Displayed; manifested; shining; resplendent. ୨ । ଦୀପ୍ତ; ଆଲୋକିତ—2. Lighted; illuminated. ସଂ.ବି—ପ୍ରଭାତ; ସକାଳ—Morning; dawn. ଦେ. ବି ( ସଂ. ଭକ୍ତ; ପ୍ରା. ଭତ୍ତ )—୧ । ସିଦ୍ଧ ତଣ୍ଡୁଳ; ଅନ୍ନ; ରନ୍ଧା ହୋଇଥିବା ଚାଉଳ—1. Boiled rice. ୨ । (ସୂଚନାର୍ଥ) ଖାଦ୍ୟ—2. Food. (ଉ—ଧନକୁ ଯାର ଘରେ ନ ଥାଏଟି ଭାତ; ବ୍ୟର୍ଥ ଅଟେ ବାକୁଦେ ! ତାହାର ଜୀବନ . କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ । ) ୩ । ଦାନା; ଜୀବିକାନିର୍ବାହର ଉପାୟ—3. Means of living; livelihood.
Bhāta
ভাত
भात

ଭାତଖିଆ ହାତ—ପ୍ରାଦେ. (ଭଦ୍ରକ) ବି—ଡାହାଣ ହାତ—Right hand.
Bhātakhiā hāta

ଭାତ ଗଲା—ଦେ.ବି (ସଂ. ଭକ୍ତ+ଗଳନ)—ସିଦ୍ଧ ଅନ୍ନରୁ ପେଜ ଗାଳିବା—The act of scumming of boiled rice.
Bhāta galā
ভাতগালা; माँडपसाना
[ଦ୍ର—ପ୍ରକୃତରେ ଭାତ ଗଲା ଯାଏ ନାହିଁ, ଭାତରୁ ପେଜ ଗଲା ଯାଏ, ଏହା ଓଡ଼ିଆ ଭାଷାର ଗୋଟିଏ ବିଶେଷତ୍ୱ; ଭୁଲ. କୋଣ୍ଡ ହାଣିବା, ଘର ଭାଙ୍ଗିବା, ଚୁଡ଼ା କୁଟିବା ।]

ଭାତ ଜାମୁ—ଦେ.ବି—ଏକ ପ୍ରକାର ଜାମୁଗଛ ଓ ତାହାର ଶ୍ରେଷ୍ଠ ଫଳ ବା କୋଳି—A kind of small black-berry [tree and its fruit].
Bhāta jāmu
ছোট জাম; छोटा जामुन

ଭାତ ଡାଲି—ଦେ.ବି (ସହଚର) (ସଂ.ଭକ୍ତ+ଦାଲି)—ଭାତ ଓ ଡାଲି—Boiled rice and porridge of pulses.
Bhāta dāli ভাতডাল; भात दाल

ଭାତ ତିଅଣ—ଦେ. ବି (ସହଚର) (ସଂ.ଭକ୍ତ+ତେମନ)—ଅନ୍ନବ୍ୟଞ୍ଜନ—Boiled rice and curry.
Bhāta tiaṇa (ଭାତ ତରକାରୀ—ଅନ୍ୟରୂପ)
ভাত তরকারী; भाततिमन; भात तरकारि

ଭାତ ନିଦ—ଦେ. ବି (ସଂ. ଭକ୍ତ+ନିଦ୍ରା)—ଭାତ ଖାଇ ସାରିବା ପରେ ମନୁଷ୍ୟକୁ ଅକ୍ରମିବା ଗାଢ଼ ନିଦ୍ରା—Deep sleep overtaking a person just after meals.
Bhāta nida
ভাতের নিদ; भातनसा

ଭାତ ପରଷା—ଦେ. ବି (ସଂ. ଭକ୍ତ+ପରିବେଷଣ)—ଖାଇବା ଲୋକଙ୍କ ପତ୍ରରେ ବା ଖାଦ୍ୟପାତ୍ରରେ ଅନ୍ନର ପରିବେଷଣ—The serving up of boiled rice on the plate of a diner.
Bhāta parasha
ভাত পরিবেষণ; (পরষা)भात परोसना
(ଭାତ ପରଷିବା—କ୍ରିୟାରୂପ)

ଭାତ ପରଷାଳି(ଷୁଣୀ)—ଦେ. ବି. ପୁଂ ଓ ସ୍ତ୍ରୀ—ଅନ୍ନ ପରିବେଷଣକାରୀ ବ୍ୟକ୍ତି—A person who serves up boiled rice.
Bhāta parashāli( shuṇī)
যে ভাত পরষে भात परोशनेवाला

ଭାତ ପୁଡ଼ା—ଦେ. ବି—୧ । ଭାତ ବନ୍ଧା ହୋଇଥିବା ଲୁଗାର ପୁଡ଼ା—1. Some boiled rice tied up in cloth. ୨ । ଭେଣ୍ଟା ପଞ୍ଚମୀ ଦିନ ଘରଚାଳରେ ଘର ଆଗରେ ଝୁଲାଇ ଦେବା ଜଣକ ଲୁଗା ପୁଡ଼ିଆ; ପଞ୍ଚୁଅ-2. A plaited roll of rush hung from the thatch over the front door of a house on the fifth day of the dark fortnight of the month of Bhād a.
Bhāta purdā

ଭାତ ବଢ଼ା—ଦେ.ବି—ପାତ୍ରରେ ଅନ୍ନ ବାଢ଼ିବା—Bringing out of rice from the cooking pot and serving it up on a plate.
Bhāta barḍhā
ভাতবাঢ়া; भात निकालना
(ଭାତ ବାଢ଼ିବା—କ୍ରିୟା)

ଭାତ ବର୍ତ୍ତନ—ଦେ. ବି (ସହଚର) ଭୃତ୍ୟଙ୍କୁ ଦିଆଯିବା ଅନ୍ନ ଓ ଦରମା—Food and salary given to a servant.
Bhāta bartana মাইনা খোরাক; भात बरतन
(ଭାତ ବରତନ—ଅନ୍ୟରୂପ)

ଭାତ ରନ୍ଧା—ଦେ. ବି ସ (ଭକ୍ତ+ରନ୍ଧନ)—ଚାଉଳକୁ ସିଦ୍ଧ କରି ଅନ୍ନ ପ୍ରସ୍ତୁତ କରିବା—The act of boiling rice for food.
Bhāta randhā
ভাতরাঁধা भात राँधना (ଭାତ ରାନ୍ଧିବା—କ୍ରିୟା)
[ଦ୍ର—ଚାଉଳ ରନ୍ଧା ହୋଇ ଭାତ ହୁଏ; ଭାତ ରନ୍ଧା ଯାଏ ନାହିଁ ]

ଭାତରେ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ହସ୍ତ ଦ୍ୱାରା ପ୍ରହାର ନ ଦେଇ ତାହାର ଭାତ ବା ଦାନା ବନ୍ଦ କରିବାର ଉପାୟ କରିବା ବା ଜୀବିକା କାଢ଼ି ନେବା—To punish a person by stopping his food or taking away the means of his living instead of beating him with one's hands.
Bhātare māribā
ভাতেমারা
पेटकाटना; रोजीमारना
( ଭାତରେ ଧୂଳି ଦେବା—ଅନ୍ୟରୂପ )
(ଢ଼—ହାତରେ ନ ମାରି ଭାତରେ ମାରିବା—ଢଗ)

ଭାତ ଲୁଗା—ଦେ. ବି ( ସହଚର ) ଅନ୍ନ ଓ ବସ୍ତ୍ର; ଖୋରାକ ପୋଷାକ—Food and clothing. ( ଉ—କେବଳ ଭାତ ଲୁଗା ଆମ୍ଭଙ୍କୁ ସେ ଦେଉ—
Bhāta lugā
ভাতকাপড়
खोराकपोषाक
କୃଷ୍ଣସିଂହ. ମହାଭାରତ. ଉଦ୍‌ଯୋଗ ।)

ଭାତ ସୋଲ—ଦେ.ବି—ପୋଲ୍ଲ ସୋଲ—Hollow cork or sola.
Bhātasola ফাঁপাসোলা; खोखलाकोढिला

ଭାଥା—ଦେ. ବି ( ସଂ. ଭସ୍ତ୍ରା, ଭସ୍ତ୍ରୀ )—ବାୟୁ ସାହାଯ୍ୟରେ ନିଆଁ ଜାଳିବା ପାଇଁ ବ୍ୟବହୃତ କମାରର ଚର୍ମ ମୁଣା—Black-smith's bellows. (ଉ—ଲୌହକାରକ ଗୃହେ ଭାଥା । ବହେ ନିଶ୍ୱାସ ନ ଛାଡ଼ନ୍ତି—ଜଗନ୍ନାଥ. ଭାଗବତ ।)
Bhāthā
জাঁতা; धौंकनी; भाथी

ଭାତି—ସଂ. ବି ( ଭା ଧାତୁ+ଭାବ. ତି )—ଦୀପ୍ତି—Splendour; brilliance. ଦେ. ବି—ଭାତା (ଦେଖ) Bhātā [See].
Bhāti

**ଭାତଥା**—ପ୍ରାଦେ. ( ଗଞ୍ଜାମ, ଗଡ଼ଜାତ ) ବି. ( ସଂ. ଭକ୍ତ; ସଂ. ଭୃତ୍ତି= ବେତନ )—୧ । ଦରମା—1. Salary. ୨ । ଖୋରାକ—2. Maintenance-allowance. (ଉ—ଆଜି ମନ୍ତ୍ରୀମଣ୍ଡଳରେ ଭାତଥା ବାବଦକୁ କଣ୍ଟ ଶଢ଼ା—ଫକୀରମୋହନ. ଛମାଣ ଆଠଗୁଣ୍ଠ ।) ୩ । ଚାକରଙ୍କୁ ଭାତ ପରିବର୍ତ୍ତରେ ଦିଆଯିବା ଧାନ; ମାସିକ ପଡ଼ିଧାନ ବା ଧନ—3 Monthly bole of paddy or money for expenses given to a servant in lieu of daily food. ୪ । ଖାଦ୍ୟ ସାମଗ୍ରୀ—4. Victuals. ୫ । (ଡିଷ୍ଟ୍ରିକ୍ଟବୋର୍ଡ, କାଉନ୍ସିଲ୍ ଆଦିର) ଅବୈତନିକ ମେମ୍ବରମାନେ ମିଟିଙ୍ଗରେ ଉପସ୍ଥିତ ହେବାପାଇଁ ପାଉଥିବା ଖୋରାକ ଓ ଗସ୍ତଖର୍ଚ୍ଚା—5 Travelling and fooding allowance given to honorary members [e.g. of District Boards, Councils etc.

Bhātiā
ভাতা[তি]; भत्ता
(ଭତ୍ୟା—ଅନ୍ୟରୂପ)

**ଭାତି ତାଇବା**—ଦେ. କ୍ରି—ଭାଟିରେ ପବନ ପୂରାଇ ଭାଟିକୁ ଚଳିବା ଦ୍ୱାରା ଚର୍ମନିର୍ମିତ ଯନ୍ତ୍ରର ଛିଦ୍ରବାଟେ ପବନକୁ ନିଅଁ ଦେବାକୁ ଛାଡ଼ିବା—To blow the bellows.

Bhāti tāibā
জাঁতা চালান
माथी चलाना

**ଭାତୁଆ**—ଦେ. ବିଣ. (ସଂ. ଭକ୍ତ)—୧ । ଭାତ ପରି (ଶୁକ୍ଳ, କୋମଳ)—1. (White, soft) Like boiled rice. ୨ । ଭାତ ପରି ସ୍ୱାଦହୀନ—2. Tasteless like rice.

Bhātuā
ভাতুয়া;
भकुवा

ଦେ.ବି—୧। ଅନ୍ନର ଦାସ;ପରାନ୍ନପାଳିତ ବ୍ୟକ୍ତି—1. A person serving for food only; a person eating the salt of another. ୨ । ଚାକର—2. Servant. ( ଯଥା; ଭାତ ଥିଲେ ଭାତୁଆ ଅଛୁ ?—ଢଗ)

ভাতুড়িয়া, ভেতো
भत खौआ

**ଭାତୁଆଣି**—ଦେ. ବି—ଭାତ ରନ୍ଧା ହେବା ପାଇଁ ପାକ ପାତ୍ରରେ ଯେଉଁ ଜଳ ଫୁଟୁଥାଏ—Water boiling in the cooking pot for boiled rice. (ଉ—ପୁଣ ଆଉ ଗରଆରେ ଭାତୁଆଣି ଦେଇ, କଣ୍ଡାଲଥ କାଠ ନେଇ ଚୂଲିକି ଫିଙ୍ଗଇ—ପ୍ରାଚୀ. ନଳଚରିତ ।)

Bhātuāṇi
ভাতেরজল
अधन

**ଭାତୁଡ଼ି**—ଦେ. ବି. ( ଭାତ ପରି କ୍ଷୁଦ୍ରାକାର ହେତୁ )—ଦେହରେ ଜନ୍ମିବା କ୍ଷୁଦ୍ର ମାଂସପିଣ୍ଡ; ମାଂସକୀଲ—Tumour; wart. [ ଦ୍ର—ଛୋଟ ମାଂସପିଣ୍ଡକୁ ଭାତୁଡ଼ି ଓ ବଡ଼କୁ ଆବୁ ବୋଲାଯାଏ ।]

Bhāturdi
আব, ভাতুড়ী
मस्सा

**ଭାଦ୍ର**—ସଂ. ବି. ( ଭଦ୍ର+ଅ+ଇ=ଭାଦ୍ରୀ=ଭାଦ୍ର ପଦ ନକ୍ଷତ୍ର ଯୁକ୍ତ ପୂର୍ଣ୍ଣିମା; ଭାଦ୍ରୀ+ମାସାର୍ଥେ ଅ)—ଶରତ୍ ଋତୁର ପ୍ରଥମ ମାସ; ଶ୍ରାବଣର ପରବର୍ତ୍ତୀ ଓ ଅଶ୍ୱିନର ପୂର୍ବବର୍ତ୍ତୀ ଚାନ୍ଦ୍ରମାନ ମାସ; ଭୋଦୁଅ ମାସ—The lunar month following Śrābaṇa and preceding Āswina.

Bhādra

**ଭାଦ୍ର ପଦ(ଦା)**—ସଂ. ବି—୧ । ପୂର୍ବ ଭାଦ୍ରପଦ (ଷଡ଼ବିଂଶ) ଓ ଉତ୍ତର ଭାଦ୍ରପଦ (ସପ୍ତବିଂଶ) ନକ୍ଷତ୍ର—1. The 26th and the 27th asterisms. ୨ । ଭାଦ୍ର ମାସ—2. The month of Bhādra.

Bhādra pada(dā)

**ଭାଦ୍ରବ**—ଦେ. ବି. (ସଂ. ଭାଦ୍ର, ଭାଦ୍ରପଦ)—ଭାଦ୍ର ମାସ—The month of Bhādra.

Bhādraba
ভাদর, ভাদ্দর भादव

**ଭାନ**—ସଂ. ବି. (ଭା ଧାତୁ=ଦୀପ୍ତି ପାଇବା+ଭାବ. ଅନ)—୧ । ଦୀପ୍ତି—1. Splendour; radiance. ୨ । ପ୍ରତୀତି—2. Belief. ୩ । ଶୋଭା—3. Beauty. ୪ । ପ୍ରକାଶ—4. Manifestation. ୫ । ମିଥ୍ୟା ପ୍ରତୀତି—5. A false impression. ଦେ. ବି—ଛଳ; ବାହାନା—Feigning; excuse. (ଉ—ଅତି ବିନୟର ଭାନ କରଇ କେଶରୀ—ରାଧାନାଥ. ମହାଯାତ୍ରା ।) ଦେ. ବିଣ—୧ । ଅସାର—1. Unsubstantial. ୨ । ମନ୍ଦ—2. Bad.
(ଉ—କେବେ ସାର, ଭାନ କେବେ ଅମୃତ୍ୟୁ ଘା ଜଣା—ରାଧାନାଥ ସାବିତ୍ରୀ ଚରିତ ।)

Bhāna

**ଭାନ କରିବା**—ଦେ. କ୍ରି—ଭାଣ କରିବା; ବାହାନା କରିବା—To feign.

Bhāna kariba
ভাণ করা बाहाना करना

**ଭାନସ୍**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ଏହି ଅର୍ଥରେ ହି. ଭାନସ୍)—ରନ୍ଧନ; ପାକ କରିବା; ରାନ୍ଧିବା—Cooking.

Bhanas

**ଭାନସ୍ ଘର**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ଏହି ଅର୍ଥରେ ହି. ଏହି ଶବ୍ଦ)—ପାକଶାଳା—Kitchen.

Bhanas ghar

**ଭାନୁ**—ସଂ. ବି ( ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ନୁ)—୧ । ସୂର୍ଯ୍ୟ—1. The sun. ୨ । କିରଣ; ରଶ୍ମି—2. Ray of light. ୩ । (+ଭାବ. ନୁ) ଦୀପ୍ତି; କାନ୍ତି—3. Radiance; splendour; refulgence. ୪ । (+କର୍ତ୍ତୃ. ନୁ) ଶିବ—4. Siba. ୫ । ପ୍ରଭୁ—5. Lord. ୬। ରାଜା—6 King. ୭ । ଗନ୍ଧର୍ବବିଶେଷ—7. Name of a heavenly chorister.

Bhānu

**ଭାନୁ ଉଦିତ**—ଦେ. ବି. (ସଂ. ଭାନୁପୁତ୍ର, ଭାନୁ+ଉଦୟ)-୧ । ସୁଗ୍ରୀବ—1. Sugriba. ୨ । ସୂର୍ଯ୍ୟୋଦୟ—2. Sunrise. (ଉ—କୃଷ୍ଣ ହେଲୁ ଭୁ ଭାଗ୍ୟ ଭାନୁ ଉଦିତେ,ବିଧାନ ହେବ ପ୍ରେମଦୃଷ୍ଟି ଚେମନ୍ତେ—ଭଞ୍ଜ. ବୈଦେହୀଶବିଳାସ ।)

Bhānu udita

**ଭାନୁପତ୍ରୀ**—ସଂ. ବି (ରୂପକ କର୍ମଧା; ଭାନୁ+ପତ୍ରୀ)—ରଶ୍ମିଶର; ରଶ୍ମିରୂପ ଶର—Ray of light compared to an arrow. (ଉ—ବଦନ ଚନ୍ଦ୍ରଙ୍କୁ ଭାନୁପତ୍ରୀ ସନ୍ତାନୁ ବଦନକ କ୍ଷମାନୁକ ଧୀର—ଭଞ୍ଜ. ବୈଦେହୀଶବିଳାସ । )

Bhānupatrī

**ଭାନୁବତୀ**—ଦେ. ବି. ସ୍ତ୍ରୀ ( ସଂ. ଭାନୁମତୀ )—୧ । ଅଳର ଗଳର୍ଦ୍ଦ ଖେଳାମାନେ କୁହୁକ ଦେଖାଇବା ଉପଲକ୍ଷରେ ଯେଉଁ ସ୍ତ୍ରୀର ହାତ ଗୋଡ଼ ବାନ୍ଧି ତାକୁ ପେଡ଼ିରେ ପୂରାଇ ଦେଇ ପେଡ଼ି ଚାରିପାଖେ ଲୁଗା ଘେରାଇ ଦିଅନ୍ତି ଏବଂ ଯେ କୌଶଳକ୍ରମେ ହାତ ବନ୍ଧନ ଫିଟାଇ ଦେଇ ସେହି ପେଡ଼ିରୁ

Bhānubatī
ভানুমতী

ବାହାର ପଡ଼ି ଭଲ ସାଢ଼ୀ ଅଙ୍ଗ ପିନ୍ଧି ଦର୍ଶକମାନଙ୍କୁ ଚମତ୍କୃତ କରେ—1. (a show of magic) A woman coming out of a closed box where she is imprisoned after being bound hand and foot. ୨ । (ଲକ୍ଷଣାର୍ଥ) ସୁନ୍ଦରୀ ସ୍ତ୍ରୀ—2. (figurative) A graceful woman.

ଭାନୁବତୀ ଖେଳ—ଦେ. ବି—ଭାନୁବତୀ ରୂପ କୁହୁକ ଦେଖାଇବା Bhānubatī khela ଖେଳ—Magical exhibition ভানুমতীর খেলা नजरबंद consisting of Bhānubatī. (ଭାନୁବତୀ ସୁଆଙ୍ଗ; ଭାନୁବତୀ କୁହୁକ—ଅନ୍ୟରୂପ)

ଭାନୁମତୀ—ସ. ବିଣ. ସ୍ତ୍ରୀ (ଭାନୁ=କିରଣ, ଶୋଭା+ଯୁକ୍ତାର୍ଥେ ମତୁ+ Bhānumatī ସ୍ତ୍ରୀ.ଈ)—୧ । କିରଣମୟୀ—1. Having rays of light; refulgent; radiant. ୨ । ଅତିସୁନ୍ଦରୀ (ସ୍ତ୍ରୀ)—2. Very charming (lady), cynosure. ସ. ବି. ସ୍ତ୍ରୀ—୧ । ଦୁର୍ଯ୍ୟୋଧନଙ୍କ ମହିଷୀ—1. Durjyodhana's Ranee. [ ଦ୍ର—ଏହାଙ୍କ ଗର୍ଭରୁ ଲକ୍ଷ୍ମଣ ନାମକ ପୁତ୍ର ଓ ଲକ୍ଷଣା ନାମେ କନ୍ୟା ଜନ୍ମିଥିଲେ) — ୨ । ବିକ୍ରମାଦିତ୍ୟଙ୍କ ରାଣୀ—2. Bikramāditya's Ranee. ୩ । ଭାନୁନାମକ ଯାଦବଙ୍କ କନ୍ୟା ଓ ସହଦେବଙ୍କ ସ୍ତ୍ରୀ—3. Name of a wife of Sahadeba. [ ଦ୍ର—ନିକୁମ୍ଭଦୈତ୍ୟ ଏହାଙ୍କୁ ହରଣ କରି ନେଇଥିଲା; ଶ୍ରୀକୃଷ୍ଣ ନିକୁମ୍ଭକୁ ବଧ କରି ଏହାଙ୍କୁ ଉଦ୍ଧାର କଲେ ଓ ପରେ ପଞ୍ଚମ ପାଣ୍ଡବଙ୍କ ସହିତ ଏହାଙ୍କୁ ବିବାହ କରାଇଲେ—ହରିବଂଶ ] ୪ । କୁହୁକବିଦ୍ୟାପଣ୍ଡିତା ଭୋଜରାଜତନୟା— 4. The daughter of king Bhoja said to be a great magician.

ଭାନୁମାନ୍—ସ. ବିଣ. ପୁଂ (ଭାନୁ=କିରଣ+ଅସ୍ତି ଅର୍ଥରେ ମତୁ; ୧ମା, Bhānumān ୧ବ)—ଦୀପ୍ତିମାନ୍; ଦୀପ୍ତିଶାଳୀ—Refulgent; (ଭାନୁମତୀ—ସ୍ତ୍ରୀ) radiant. ସ. ବି—୧ । ସୂର୍ଯ୍ୟ—1. The sun. ୨ । କଳିଙ୍ଗ ରାଜାଙ୍କର ପୁତ୍ର—2. The son of the king of Kalinga. [ ଦ୍ର—ଏ ମହାଭାରତ ଯୁଦ୍ଧରେ ଭୀମଙ୍କ ବିରୋଧରେ ଭୀଷଣ ଯୁଦ୍ଧ କରିଥିଲେ—କୃପାସିନ୍ଧୁ, ଇତିହାସ । ]

ଭାନ୍ତି—ଦେ. ବି(ସ. ଭକ୍ତି)—୧ । କାନ୍ତି; ଦୀପ୍ତି—1. Splendour; Bhānti radiance. ( ଉ—ସଜଳ ଜଳଦ କାନ୍ତି, ନୀଳମଣି दिखावट, भाँति ଜିଣି ଭାନ୍ତି—ପ୍ରାଚୀ. ବିଦଗ୍ଧମଧୁରୀ ।) ୨ । ପ୍ରକାର; ভাঁতি ଢଙ୍ଗ; ଛନ୍ଦ—2. Type; pattern; mode; manner.

ଭାପ—ଦେ. ବି (ସ. ବାଷ୍ପ)—ବାଷ୍ପ; ବାଷ୍ପ—Vapour, Bhāpa भाफ ভাপ; ভাপরা (ଭାପ, ଭାପର, ଭାମ୍ଫ—ଅନ୍ୟରୂପ)

ଭାପିବା—ଦେ.କ୍ରି(ସ.ବାଷ୍ପ)—ବାଷ୍ପଯୁକ୍ତ ହେବା; ବାଷ୍ପାୟମାନ ହେବା— Bhāpibā ভাপা उबलना; भाफहोना To evaporate; to emit vapour.

ଭାବ—ସ. ବି (ଭୂ. ଧାତୁ=ହେବା+ଭାବ. ଅ)—୧ । ଜନ୍ମ; ଉତ୍ପତ୍ତି— Bhāba 1. Birth. ୨ । ସୃଷ୍ଟି—2. Creation. ୩ । ଅସ୍ତିତ୍ୱ; [ବିପରୀତ—ଅଭାବ] ସ୍ଥିତି—3. Existence; being. ୪ । ବିଭୂତି—4. Divinity. ୫ । ପ୍ରକୃତି; ସ୍ୱଭାବ; ସହଜ ଗୁଣ—5 Attribute; nature; natural disposition. ୬ । ଚିତ୍ତ—6. Heart. ୭ । ମନ—7. Mind. ୮ । ଆତ୍ମା—8. Soul. ୯ । କ୍ରିୟା—9. Action. ୧୦ । ଅବସ୍ଥା; ଦଶା—10. Condition; state. ୧୧ । ଢଙ୍ଗ; ଭଙ୍ଗୀ—11. Mode. ୧୨ । ମାନସିକ ଉଦ୍‌ବେଗ; ଚିନ୍ତା; ଭାବନା-12. Thought; anxiety. ୧୩ । ବାକ୍ୟାର୍ଥ—13. Meaning of words. ୧୪ । ଫଳ—14 Result; consequence. ୧୫ । (+କର୍ତ୍ତୃ. ଅ) ବସ୍ତୁ—15. Thing. ୧୬ । ଉପଦେଶ—16. Advice. ୧୭ । ଅଭିପ୍ରାୟ; ଉଦ୍ଦେଶ୍ୟ—17. Intention; aim. ୧୮ । ଚେଷ୍ଟା—18. Endeavour. ୧୯ । ତାତ୍ପର୍ଯ୍ୟ; ମର୍ମ—19. Purport; gist. ୨୦ ଜଗତ୍—20. The creation. ୨୧ । ଧ୍ୟାନ—21. Contemplation. ୨୨ । ଆବେଗ; ଆବେଶ—22. Sudden change of mind; paroxysm; pathos. ୨୩ । ପ୍ରକାର; ରକମ—23. Kind. ୨୪ । ସମ୍ଭାବନା—24. Possibility. ୨୫ । ବିଳାସ—25. Sport; pleasure. ୨୬ । ମନର ଅବସ୍ଥା; ମନୋବିକାର ବିଶେଷ—26. Mental condition; idea; feeling; emotion. ୨୭ । କାମ—27. Wish; cupid. ୨୮ । ଅନୁରାଗ; ପ୍ରୀତି; ପ୍ରଣୟ—28. Love; attachment. ୨୯ । ମନର ମେଳ; ସଦ୍ଭାବ—29. Good feeling; mental agreement. ୩୦ । ସୌହାର୍ଦ୍ଦ୍ୟ; ବନ୍ଧୁତା—30. Friendship. ୩୧ । ( ବ୍ୟାକରଣ ) ଧାତୁର ଅର୍ଥ—31. (Grammar) The meaning of a verbal root. ୩୨ । (ଅଳଙ୍କାର) କାବ୍ୟରେ ରସରୁ ଉତ୍ପନ୍ନ ମାନସିକ ଅବସ୍ଥା—32. ( rhetoric ) Feeling; sentiment. [ ଦ୍ର—ଯେଉଁଠାରେ ରସର ବିକାଶ ସମ୍ପୂର୍ଣ୍ଣରୂପେ ହୋଇ ନ ପାରି ଅଂଶତଃ ହୋଇଥାଏ ଅଥବା ଯେଉଁଠାରେ ସଞ୍ଚାରୀ ଭାବର ପ୍ରାଧାନ୍ୟ ଲକ୍ଷିତ ହୁଏ କିମ୍ବା ରତ୍ୟାଦି ସ୍ପଷ୍ଟ ଲକ୍ଷିତ ନ ହୋଇ କେବଳ ଅଳ୍ପ ପରିମାଣରେ ସ୍ଥାୟୀ ଭାବର ଉଦ୍‌ବୋଧ ହୁଏ ସେଠାରେ ତାହା ଭାବରୂପେ ବାଚ୍ୟ ହୁଏ । ଏହି ଭାବ ନାନାବିଧ—କୁଳମଣି, ଅଳଙ୍କାର ତରଙ୍ଗିଣୀ । ] ୩୩ । (ନାଟ୍ୟୋକ୍ତି) ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ବିଶେଷତଃ ସୂତ୍ରଧାରଙ୍କ ପ୍ରତି ନଟର ସମ୍ବୋଧନ—33. An address of respect in dramatic language ୩୪ । ଉକ୍ତି (ହି. ଶ.)—

ଭାବ
भाव

୩୪. Devotion. ( ଉ—ବିଶ୍ୱବ୍ୟାପୀ ତା ଭାବରେ ବିଭୋଗୀ ହେଲେ ଜବରେ । ଭକ୍ତ. ବୈଦେହୀଶରଣଲାଭ ।) ୩୫ । ମୁଖର ଆକୃତି ବା ଚେଷ୍ଟା (ହି.ଶ)—35. Facial expression. ୩୬ । ପର୍ଯ୍ୟାଲୋଚନ; ପର୍ଯ୍ୟବେକ୍ଷଣ (ହି. ଶ)—36. Attentive observation. ୩୭ । ବିଚାର—37. Consideration. ୩୮ । ବିଦ୍ୱାନ୍ ବ୍ୟକ୍ତି (ହି. ଶ)—38. A learned person. ୩୯ । ଜନ୍ତୁ (ହି.ଶ)—39. Animal. ୪୦ । ଯୋନି (ହି. ଶ)—40. Female organ. ୪୧ । (ଜ୍ୟୋତିଷ) ଜନ୍ମକାଳୀନ ନକ୍ଷତ୍ର (ହି. ଶ)—41. (astrology) A person's natal star. ୪୨ । କଳ୍ପନା (ହି. ଶ)—42. Imagination; fancy. ୪୩ । ମନରେ ଗୁପ୍ତ ରହିଥିବା ଇଚ୍ଛା ( ହି. ଶ )—43. Secret wish. ୪୪ । ଭରସା; ବିଶ୍ୱାସ (ହି. ଶ)—44. Faith; trust. ୪୫ । ଭାଉ (ହି. ଶ)—45. Market rate. ୪୬ । (ଫଳିତ ଜ୍ୟୋତିଷ) ଗ୍ରହମାନଙ୍କର ଶୟନ, ଉପବେଶନ, ପ୍ରକାଶନ, ଗମନ ଆଦି ୧୨ଟି ଚେଷ୍ଟା, ଯାହାକି ମନୁଷ୍ୟର ଜାତକ ଗଣନା ସମୟରେ ବିଚାର କରାଯାଏ (ହି. ଶ)—46. (astrology) The particular posture of a planet in connection with one's horoscope. ୪୭ । ନାୟକ ଆଦିଙ୍କୁ ଦେଖି କିମ୍ବା ଅନ୍ୟ ପ୍ରକାରେ ନାୟିକା ମନରେ ଉତ୍ପନ୍ନ ହେବା ୨୮ଟି ସ୍ୱଭାବଜ ଅବସ୍ଥା ମଧ୍ୟରୁ ୩ଟି ଅଙ୍ଗଜ ଅଳଙ୍କାର ମଧ୍ୟରୁ ପ୍ରଥମ (ହି. ଶ.)—47. The first of the mental conditions which are indicated by bodily expressions in the heroines of romance in respect of lovers. [ଦ୍ର—ସାହିତ୍ୟକାରମାନେ ଏହି ଭାବକୁ ୧. ସ୍ଥାୟୀଭାବ, ୨. ବ୍ୟଭିଚାରୀ ଭାବ; ଓ ୩. ସାତ୍ତ୍ୱିକ ଭାବରେ ବିଭକ୍ତ କରି ଅଛନ୍ତି । ରତି, ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଜୁଗୁପ୍ସା ଓ ବିସ୍ମୟ-ସ୍ଥାୟୀଭାବ; ନିର୍ବେଦ, ଗ୍ଲାନି, ଶଙ୍କା, ଅସୂୟା, ମଦ, ଶ୍ରମ, ଆଲସ୍ୟ, ଦୈନ୍ୟ, ଚିନ୍ତା, ମୋହ, ଧୃତି, ବ୍ରୀଡ଼ା, ଚପଳତା, ହର୍ଷ, ଆବେଗ, ଜଡ଼ତା, ଗର୍ବ, ବିଷାଦ, ଉତ୍ସୁକତା, ନିଦ୍ରା, ଅପସ୍ମାର, ସ୍ୱପ୍ନ, ବିବୋଧ, ଅମର୍ଷ, ଉଗ୍ରତା, ବ୍ୟାଧି, ଉନ୍ମାଦ, ମରଣ, ତ୍ରାସ ଓ ବିତର୍କ-ବ୍ୟଭିଚାରୀ ଭାବ; ସ୍ୱେଦ, ସ୍ତମ୍ଭ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ ସାତ୍ତ୍ୱିକ ଭାବର ଅନ୍ତର୍ଗତ । ] ୪୮ । ସଙ୍ଗୀତର ଅଭିପ୍ରାୟକୁ ଶ୍ରୋତାଙ୍କର ପ୍ରତ୍ୟକ୍ଷୀଭୂତ କରାଇବା ପାଇଁ ସଙ୍ଗୀତ ଗାଉଥିବା ବ୍ୟକ୍ତିର ସ୍ୱର, ନେତ୍ର, ମୁଖ, ବା ଅଙ୍ଗାଦିର ବିଭିନ୍ନ ଚାଳନ; ପାଉଯା ( ହି. ଶ. )—48. Gesiculations; modulutions of voice and movements of limbs made by singers to make the audience realise the purport of song. ୪୯ । ହାବ; ପ୍ରେମିକ ପ୍ରେମିକାଙ୍କ ମନୋଭାବଜ୍ଞାପକ ଭଙ୍ଗୀ (ହି. ଶ)—49. Lovers' gesticulations or blandishments. ୫୦ । [ସାଂଖ୍ୟ] ଜନ୍ମ, ସ୍ଥିତି, ବୃଦ୍ଧି ଓ କ୍ଷୀଣତାପ୍ରାପ୍ତ, ମରଣାମଯୁକ୍ତ ଅନିତ୍ୟର ପଦାର୍ଥ (ହି. ଶ)—50. (Sāṅkhya philosophy) A perishable thing having birth, existence, growth, waning and end. ୫୧ । ବୁଦ୍ଧିର ଯେଉଁ ଗୁଣଦ୍ୱାରା ଜ୍ଞାନ, ଅଜ୍ଞାନ, ଧର୍ମ, ଅଧର୍ମର ଧାରଣା ଜନ୍ମେ [ହି. ଶ]—51. Power of discrimination. ୫୨ । [ବୈଶେଷିକ ଦର୍ଶନ] ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ଏହି ୬ଟି ବିଦ୍ୟମାନ ବସ୍ତୁ—52. [ Baiśeshika philosophy ] Thing, attribute, act, commonness and peculiarity.

ସଂ. ଅ. (ନାଟ୍ୟୋକ୍ତି)—ସୂତ୍ରଧାରଙ୍କୁ ନଟୀର ସମ୍ବୋଧନ= A term of address of respect in drama.

ଦେ. ବି—ଭାବଗ୍ରାହୀ ନାମକ ବ୍ୟକ୍ତିର ଡାକ ନାମ—Name for calling 'Bhābagrāhī.

ଭାବକ—ସଂ. ବି. ପୁଂ (ଭୂ ଧାତୁ. ଣିଚ୍=ଭାବି. ଧାତୁ=ଚିନ୍ତା କରିବା+କର୍ତ୍ତୃ. ଅକ)—୧ । ଯେଉଁ ଗାୟକ ଗୀତର ଭାବ ଅନୁସାରେ ସ୍ୱର ବଦଳାଇ ପାରେ—1. A singer who can modulate his voice according to the sentiment of the song. ୨ । ଭାବୁକ ବା ଚିନ୍ତାଶୀଳ ବ୍ୟକ୍ତି—2. Thinker. ୩ । ଉତ୍ପାଦକ—3. Producer. ସଂ. ବିଣ. ପୁଂ—୧ । ଚିନ୍ତାଶୀଳ—1. Thoughtful. ୨ । ଉତ୍ପାଦନକାରୀ—2. Productive.

Bhābaka
(ଭାବିକା—ସ୍ତ୍ରୀ)

ଭାବ କରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତି ସଙ୍ଗେ ବନ୍ଧୁତା ସ୍ଥାପନ କରିବା—1. To set up friendship with a person. ୨ । ପ୍ରଣୟ କରିବା—2. To make love.

Bhāba karibā
भावकरना
भाव करना

ଭାବ ଗତି—ଦେ.ବି (ସଂ.ଭାବ+ଗତି)—୧। କୌଣସି ବ୍ୟକ୍ତିର ଆନ୍ତରିକ ଓ ବାହ୍ୟ ଅବସ୍ଥା; ଆକାର ପ୍ରକାର; ହାବଭାବ—1. Mental and external condition; feelings and deportments. ୨ । ଚଳିକି; ଢଙ୍ଗ ଢାଙ୍ଗ; ଭାବଭଙ୍ଗୀ—2. Deportment; demeanour; outward expression of one's inner thought. ୩ । ଅବସ୍ଥା—3. Condition. ୪ । ଢଙ୍ଗ—4. Mode. ୫ । ଚାଲି ଚଳନ—5. Conduct; behaviour.

Bhāba gati
(ଭାବଗତିକ—ଅନ୍ୟରୂପ)
भावगतिक
हावभाव

ଭାବ ଗମ୍ଭୀର—ସଂ. ବିଣ. ପୁଂ (୩ୟା ତତ୍, ଭାବ+ଗମ୍ଭୀର)—୧ । ପ୍ରଗାଢ଼ ଚିନ୍ତାଦ୍ୱାରା ପ୍ରଣୋଦିତ—1. Inspired by deep thought ୨ । ଗମ୍ଭୀର ଭାବପୂର୍ଣ୍ଣ—2. Full of deep thought. ୩ । ଭାବର ପ୍ରାବଲ୍ୟ

Bhāba gambhīra
[ଭାବଗମ୍ଭୀରା—ସ୍ତ୍ରୀ]
ଭାବ ଗମ୍ଭୀରତା } ବି.
ଭାବଗାମ୍ଭୀର୍ଯ୍ୟ }

ଯୋଗୁଁ ଗମ୍ଭୀର—3. Looking grave or serious on account of excess of sentiments.

ଭାବଗର୍ଭ—ସଂ. ବିଣ. (ବହୁବ୍ରୀହି; ଭାବ+ଗର୍ଭ)—୧ । ଅର୍ଥଗର୍ଭ; Bhābagarbha ଯହିଁରେ ଅର୍ଥ ନିହିତ ଅଛି—1. Having a (ଭାବଗର୍ଭିକ—ଅନ୍ୟରୂପ) meaning; significant. ୨ । ଆବେଗପୂର୍ଣ୍ଣ—2. Full of sentiment or feeling; sentimental.

ଭାବଗ୍ରାହୀ—ସଂ. ବିଣ. ପୁଂ (ଭାବ+ଗ୍ରହ୍, ଧାତୁ+କର୍ତ୍ତୃ. ଇନ୍, ୧ମା Bhābagrāhi ୧ବ)—ଯେ ଅନ୍ୟ ବ୍ୟକ୍ତିର ମନୋଭାବ ବୁଝି ପାରେ—Able to understand another's intention or thoughts. ସଂ. ବି—ଭଗବାନ୍—God. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

ଭାବ ତରଙ୍ଗ—ସଂ ବି. (୬ଷ୍ଠୀ ତତ୍, ଭାବ+ତରଙ୍ଗ)—ଭାବର ଢେଉ; Bhāba taraṅga ଭାବୋଚ୍ଛ୍ୱାସ—Waves of emotion.

ଭାବ ତରଳ—ସଂ. ବି. (୩ୟା ତତ୍, ଭାବ+ତରଳ)—ହୃଦୟର ଆବେଗ Bhāba tarala ଦ୍ୱାରା ବିଗଳିତ; ଭାବ ଭୋଳ—Melting with emotion; moved or led away by sentiments; emotional; sentimental

ଭାବ ତାରଲ୍ୟ—(ଭାବ+ତାରଲ୍ୟ)—ହୃଦୟର ଆବେଗଦ୍ୱାରା ବିଗଳିତ bhāba tāralya ହେବାର ଅବସ୍ଥା—Sentimentality. (ଭାବତରଳତା—ଅନ୍ୟରୂପ)

ଭାବ ଦୋସ୍ତି—ଦେ. ବି. (ସଂ. ଭାବ+ଫା. ଦୋସ୍ତୀ)—୧ । ଗାଢ଼ ବନ୍ଧୁତ Bhāba dosti —1. Close friendship; intimacy. ভাব দোস্তী ୨ । ପ୍ରଣୟ—2 Love. ଦେ. ବିଣ—ଗାଢ଼ भाव दोस्ती ବନ୍ଧୁତା ବା ପ୍ରଣୟ ସୂତ୍ରରେ ଆବଦ୍ଧ (ବ୍ୟକ୍ତି)—Intimate.

ଭାବନ(ନା)—ସଂ. ବି. (ଭାବ ଧାତୁ=ଚିନ୍ତା କରିବା+ଭାବ. ଅନ+ଆ)—Bhābana(nā) ୧ । ଧ୍ୟାନ; କଳ୍ପନ; ଅନୁଚିନ୍ତନ—1. Deliberation; contemplation. ୨ । ବିବେଚନା—2. Consideration. ୩ । ମାନସିକ ଉଦ୍‌ବେଗ; ଚିନ୍ତା—3. Anxiety; thought. ୪ । ପର୍ଯ୍ୟାଲୋଚନ—4. Reflection; circumspection. ୫ । ଅଭିଷେକ—5. Sprinkling. ୬ । ଔଷଧର ସଂସ୍କାରବିଶେଷ; ଚୂର୍ଣ୍ଣରେ ତେଲ ଅବା ବାରଂବାର ମିଶାଇ ଘୋଟି ଶୁଖାଇବା କ୍ରିୟା; ଅଭିମିଶ୍ରଣ—6. Act of mixing a juice or other liquid repeatedly with a medicinal powder which is being prepared. ୭ । ଅଧିବାସନ; ଅଙ୍ଗରାଗାଦିକରଣ; ବେଶବିନ୍ୟାସ—7. Toilette. ୮ । ସଜାଇବା—8. Furnishing. ୯ । ଅନୁଭବରୁ ଓ ସ୍ମୃତିରୁ ଜାତ ମାନସିକ ସଂସ୍କାର—9. A state of mind resulting from experience or memory.

ଭାବନା କରିବା—ଦେ. କ୍ରି—୧ । ଚିନ୍ତା କରିବା—1. To think. Bhābanā karibā ୨ । ଉଦ୍‌ବିଗ୍ନ ହେବା—2. To be ভাবনা করা भावना करना anxious.

ଭାବନା ଦେବା—ଦେ. କ୍ରି—ଚୂର୍ଣ୍ଣାଦିରେ ରସାଦି ଦ୍ରବ୍ୟ ବା ତେଲାଦି Bhābanā debā ମିଶାଇବା—To mix a juice or ভাবনা দেওয়া liquid with a powder and drying it. भावना देना

ଭାବ ନାବ(ଭ)—ଦେ. ବି. (ଅନର୍ଥକ ସହଚର)—୧ । ସୌହାର୍ଦ୍ଦ୍ୟ—Bhāba nāb(bh) 1. Intimacy. ୨ । କୌଣସି ବ୍ୟକ୍ତିସଙ୍ଗେ [ଭାବଲା(ସା)ବ୍—ଅନ୍ୟରୂପ] ମିଳା ମିଶା—2. The state of ভাবটাব, ভাবসাব mixing freely with a person. भावसाब ୩ । ପ୍ରଣୟ; ଗାଢ଼ ବନ୍ଧୁତା—3. Close friendship or love.

ଭାବନୀୟ—ଦେ. ବିଣ. (ଭାବ ଧାତୁ+କର୍ମ ଅନୀୟ)—ଚିନ୍ତନୀୟ—Bhābaniya Thinkable.

ଭାବ ପାଇବା—ଦେ. କ୍ରି—ଫଳ ଭୋଗ କରିବା—Bhāba pāibā To enjoy the result. ফল পাওয়া फल पाना

ଭାବ ପ୍ରକାଶ—ସଂ. ବି. (୬ଷ୍ଠୀ ତତ୍; ଭାବ+ପ୍ରକାଶ)—ମନୋଗତ Bhāba prakāśa ଭାବର ପ୍ରକାଶ; ଭାବ ବ୍ୟକ୍ତ କରିବା—Expression of one's feelings, thought, meaning or intention. ଦେ. ବି—ସଂସ୍କୃତ ଆୟୁର୍ବେଦିକ ଚିକିତ୍ସା ଗ୍ରନ୍ଥବିଶେଷ—Name of a Sanskrit work on the Hindu system of medicine. [ଦ୍ର—ଖ୍ରୀଷ୍ଟ ସପ୍ତଦଶ ଶତାବ୍ଦୀରେ ମଦ୍ର ଦେଶରେ ଜନ୍ମଗ୍ରହଣ କରିଥିବା ଭାବ ମିଶ୍ର ନାମକ ଜଣେ ପଣ୍ଡିତଙ୍କ ଦ୍ୱାରା ଏ ଗ୍ରନ୍ଥ ସଂକଳିତ ହୋଇଥିଲା—ସୁବଳଭଦ୍ର ।]

ଭାବ ବହୁଳ—ସଂ. ବିଣ. (୩ୟା ତତ୍; ଭାବ+ବହୁଳ)—ଅର୍ଥରେ ପୂର୍ଣ୍ଣ—Bhāba bahula Abounding in meaning or ideas (ଭାବ ବହୁଳତା, ଭାବବାହୁଲ୍ୟ—ବି) or thoughts.

ଭାବ ବାଚ୍ୟ—ସଂ. ବି. (ବ୍ୟାକରଣ)—ବାକ୍ୟର କର୍ତ୍ତୃହୀନ ରୂପ—Bhāba bāchya (grammar) The impersonal voice of a sentence. [ଦ୍ର—ବାକ୍ୟର ବାଚ୍ୟ ତ୍ରିବିଧ; କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ଭାବବାଚ୍ୟ । କର୍ତ୍ତୃବାଚ୍ୟରେ କର୍ତ୍ତାର ପ୍ରାଧାନ୍ୟ, କର୍ମ ବାଚ୍ୟରେ କର୍ମର ପ୍ରାଧାନ୍ୟ ଥାଏ, କିନ୍ତୁ ଭାବ ବାଚ୍ୟରେ କର୍ତ୍ତା ପ୍ରାୟଶଃ ଅନୁକ୍ତ ରହେ । ଉଦାହରଣ—କର୍ତ୍ତୃବାଚ୍ୟ—ବାଲ୍ମୀକି ରାମାୟଣ ଲେଖିଥିଲେ; କର୍ମବାଚ୍ୟ—ବାଲ୍ମୀକିଙ୍କ ଦ୍ୱାରା ରାମାୟଣ ଲେଖା ହୋଇଥିଲା । ଭାବବାଚ୍ୟ—ନଦୀ ତୀରରେ ବଂଶୀ ବାଜିଲା; ମତେ ଭଲ ଲାଗୁ ନାହିଁ । ଶବ୍ଦର ବାଚ୍ୟ ସପ୍ତବିଧ; ତନ୍ମଧ୍ୟରୁ ଭାବ ବାଚ୍ୟ ଏକତମ; ଭାବବାଚ୍ୟରେ କେବଳ ଧାତ୍ୱର୍ଥ ପ୍ରକାଶିତ ହୁଏ । ଯଥା—ଗମନ, ଶୟନ, ଗତି, ସ୍ଥିତି ଇତ୍ୟାଦି ।]

ଭାବ ବାଦୀ—ଦେ. ବି ଓ ବିଣ. ପୁଂ (ବାଇବ୍‌ଲ ଅନୁବାଦକଙ୍କ ଭାଷା)—
Bhāba bādī ଭବିଷ୍ୟଦ୍ ବକ୍ତା।—A prophet.
(ଭାବ ବାଦିନୀ—ସ୍ତ୍ରୀ)

ଭାବ ବାହାରିବା—ଦେ. କ୍ରି (ବ୍ୟଙ୍ଗ୍ୟାର୍ଥ)—ବିଷମୟ ଫଳ ଘଟିବା—
Bhāba bāhāribā The happening of untoward consequence.
(ଭାବ ନିକଳିବା—ଅନ୍ୟରୂପ)
ভাব বেরিএ যাওযা **पोल खुलजाना**

ଭାବ ବିନିମୟ—ସଂ ବି ( ୬ଷ୍ଠୀ ତତ୍; ଭାବ+ବିନିମୟ )—
Bhāba binimaya ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନ—Exchange of ideas.

ଭାବ ବିଳାସ—ସଂ. ବି. (ଆଧୁନିକ ପ୍ରୟୋଗ)—ଚିନ୍ତାରେ ଓ ଲେଖାରେ
Bhāba bil̲āsa କୌଣସି କାଳ୍ପନିକ ଆଦର୍ଶର ଅନୁସରଣ—Idealism.

ଭାବ ବିଳାସୀ—ସଂ. ବିଣ. ପୁଂ (ଆଧୁନିକ ପ୍ରୟୋଗ)—ଯେ ଚିନ୍ତାରେ ଓ
Bhāba bil̲āsī ଲେଖାରେ କୌଣସି କାଳ୍ପନିକ ଆଦର୍ଶର ଅନୁସରଣ
(ଭାବ ବିଳାସିନୀ—ସ୍ତ୍ରୀ) କରେ—Idealistic.

ଭାବ ବୋଧ—ସଂ ବି. ( ୬ଷ୍ଠୀ ତତ୍; ଭାବ+ବୋଧ )—ଅର୍ଥୋପଲବ୍ଧି;
Bhāba bodha ଭାବକୁ ହୃଦୟଙ୍ଗମ କରିବା—Realisation of the meaning of a matter.

ଭାବ ବୋଧକ—ସଂ. ବିଣ—ଯାହା କୌଣସି ଅର୍ଥ ବା ତାତ୍ପର୍ଯ୍ୟ ପ୍ରକାଶ
Bhāba bodhaka କରେ—Indicating a meaning.
(ଭାବଦ୍ୟୋତକ, ଭାବବ୍ୟଞ୍ଜକ, ଭାବସୂଚକ—ଅନ୍ୟରୂପ)

ଭାବ ବ୍ୟକ୍ତି—ସଂ. ବି. ( ୬ଷ୍ଠୀ ତତ୍ )—ମନରେ ଜନ୍ମିବା ଭାବର
Bhāba byakti ପ୍ରକାଶ ବା ଅଭିବ୍ୟକ୍ତି—Giving vent to one's idea or feeling.

ଭାବ ଭଙ୍ଗୀ—ଦେ. ବି—୧ । ମୁଖରେ ପ୍ରଦର୍ଶିତ ଚେଷ୍ଟାମାନ—1.
Bhāba bhaṅgī Facial expressions. ୨ । ଭାବଗତି ( ଦେଖ )—2 Bhāba gati (See).

ଭାବ ଭାଙ୍ଗିବା—ଦେ. କ୍ରି—୧ । କୌଣସି ବ୍ୟକ୍ତି ସଙ୍ଗେ ଥିବା
Bhāba bhaṅgibā ବନ୍ଧୁତା ବା ସମ୍ପର୍କ ଛିଣ୍ଡାଇବା—1. To cut off one's connection or friendship with a person.
ଭାବଛଡ଼ା(ଡେ)ଇବା } ୨ର ଅନ୍ୟରୂପ
ଭାବଭଙ୍ଗା(ଗେ)ଇବା }
ভাবভাঙ্গা (ভাঙ্গান)
**भावतोडना, भावहटाना**
ভাবভাঙ্গা
**भावतुटजाना**
୨ । ଦୁଇଜଣଙ୍କ ମଧ୍ୟରେ ଥିବା ବନ୍ଧୁତାର ବିନାଶ ଘଟାଇବା—2. To cause severance of friendship between 2 persons. ଦେ.ବି—୨ଜଣଙ୍କ ମଧ୍ୟରେ ଥିବା ସୌହାର୍ଦ୍ଦ୍ୟର ଲୋପ—Breach of friendship between two persons.

ଭାବ ଭୋଳ(ଳା)—ଦେ. ବିଣ ( ସଂ. ଭାବବିହ୍ୱଳ )—ଭାବରେ ବିହ୍ୱଳ
Bhāb bhol̲a(l̲ā) —Maddened or overwhelmed with feelings.
ভাবে বিহ্বল **भाव भोला**

ଭାବମୟ—ସଂ. ବିଣ ( ଭାବ+ପ୍ରାଚୁର୍ଯ୍ୟାର୍ଥେ ମୟ )—୧ । ଅର୍ଥପୂର୍ଣ୍ଣ—
Bhābamaya 1. Full of meaning. ୨ । ପ୍ରେମପୂର୍ଣ୍ଣ—2. Full of love. ୩ । ଚିନ୍ତାପୂର୍ଣ୍ଣ—3. Full of thoughts; thoughtful.

ଭାବ ମିଶ୍ର—ଦେ. ବି ( ନାମ )—ଭାବପ୍ରକାଶ ନାମକ ବୈଦ୍ୟକ ଗ୍ରନ୍ଥର
Bhāba miśra ପ୍ରଣେତା—Name of the author of the Hindu medical work Bhābaprakāśa.
[ଦ୍ର—ଏ ୩୦୦ ବର୍ଷ ପୂର୍ବେ ମଦ୍ର(ପ୍ରାଚୀନ ପଞ୍ଜାବ)ଦେଶରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଲଟକନ ମିଶ୍ର । ସୁବଳଚନ୍ଦ୍ର । ]

ଭାବମୂଳକ—ସଂ. ବିଣ ( ବହୁବ୍ରୀହି; ଭାବ+ମୂଳ+କ )—୧ ।
Bhābamūl̲aka ଯାହାର ମୂଳରେ ଭାବ ବା ଆବେଗ ଥାଏ—1. Actuated by tense feeling; sentimental ୨ । ଅର୍ଥମୂଳକ—2. Having meaning or significance.

ଭାବ ରଖିବା—ଦେ. କ୍ରି—କୌଣସି ବ୍ୟକ୍ତି ସଙ୍ଗେ ସଦ୍ଭାବ ବା
Bhāba rakhibā ସୌହାର୍ଦ୍ଦ୍ୟକୁ ଅକ୍ଷୁଣ୍ଣ ରଖିବା—To continue friendship with a person.
ভাবরাখা **भावरखना**
(ଭାବ ଭାଙ୍ଗିବା—ବିପରୀତ).

ଭାବର ପିଆରା—ଦେ. ବିଣ ( ସଂ, ଭାବ+ପ୍ରିୟ )—ଭାବ ବା
Bhābara piārā ପ୍ରେମଦ୍ୱାରା ଯାହାକୁ ବଶ କରିଯାଇ ପାରେ—Controllable by love or devotion.
ভাবের পিয়ারা
**भावका पयारा** ( ଭାବର ପ୍ୟାରୀ—ଅନ୍ୟରୂପ)

ଭାବ ଲଗା(ଗେ)ଇବା—ଦେ. କ୍ରି—୧ । ବନ୍ଧୁତା ସ୍ଥାପନ କରିବା—
Bhāba lagā(ge)ibā 1. To establish friendship. ୨ । ପ୍ରଣୟ କରିବା—2. To make love.
ভাব লাগানা
**भावलगाना** ( ଭାବ ଲାଗିବା—ବିଶେଷ୍ୟରୂପ)

ଭାବ ଶୁଦ୍ଧି—ସଂ. ବି ( ୬ଷ୍ଠୀ ତତ୍; ଭାବ+ଶୁଦ୍ଧି )—ଚିନ୍ତାର ବିଶୁଦ୍ଧି ବା
Bhāba śuddhi ପବିତ୍ରତା—Purity of thoughts.
(ଭାବ ସଂଶୁଦ୍ଧି—ଅନ୍ୟରୂପ)

ଭାବ ସଞ୍ଚାର—ସଂ. ବି ( ୬ଷ୍ଠୀ ତତ୍; ଭାବ+ସଞ୍ଚାର )—ଚିନ୍ତାର ଉଦୟ
Bhāba sañchāra —The dawning of a thought; the coming of an idea.

ଭାବ ସିନ୍ଧୁ—ସଂ. ବି (ରୂପକ କର୍ମଧା)—ସମୁଦ୍ର ପରି ଉଚ୍ଛୁଳୁଥିବା ଭାବ—
Bhāba sindhu Emotion compared to the sea.
(ଭାବସମୁଦ୍ର, ଭାବସାଗର, ଭାବାବ୍ଧି, ଭାବାର୍ଣ୍ଣବ—ଅନ୍ୟରୂପ)

ଭାବାତ୍ମକ—ସଂ. ବିଣ—ଭାବଗର୍ଭ ( ଦେଖ )—Bhābagarbha
Bhābātmaka (ଭାବାତ୍ମିକା—ସ୍ତ୍ରୀ) ( See )

ଭାବାନ୍ତର—ସଂ. ବି ( ଅନ୍ୟ+ଭାବ; କର୍ମଧାରୟ )—ମନର ଅବସ୍ଥାନ୍ତର;
Bhābāntara ଭାବର ପରିବର୍ତ୍ତନ—Change of feeling; another emotion or sentiment.

ଭାବାବେଗ—ସଂ. ବି ( ୬ଷ୍ଠୀ ତତ୍; ଭାବ+ଆବେଗ )—ଭାବର ଅତି
Bhābābega ବୃଦ୍ଧି—Overflow of feeling.
(ଭାବାଧିକ୍ୟ—ଅନ୍ୟରୂପ)

ଭାବାବେଶ—ସଂ. ବି ( ୬ଷ୍ଠୀ ତତ୍; ଭାବ+ଆବେଶ )—ଭାବର ଉପସ୍ଥିତି
Bhābābeśa ବା ଆବିର୍ଭାବ—The dawning or appearance of an idea or thought.

**ଭାବାଭାସ**—ସ. ବି—ରସିକାର ବା ଅନୁରାଗିଣୀ ସ୍ତ୍ରୀର ସମ୍ପର୍କ କୌଣସି ପୁରୁଷ Bhābābhāsa ପକ୍ଷରେ କ୍ଷୋଭର,ଲଜ୍ଜାର ବା ଚିନ୍ତାର ବିଷୟ ହେଲେ ପୁରୁଷର ଯେଉଁ ମାନସିକ ଅବସ୍ଥା ଉପସ୍ଥିତ ହୁଏ—The mental condition of a man when the woman whom he loves becomes the occasion for or cause of his regret, shame or anxiety ( literally;—the semblance of sentiment ). [ ଦ୍ର—ଭାବାଭାସର ଉଦାହରଣ—ଗୃହଲକ୍ଷ୍ମୀ କର ରକ୍ଷିବ ବାମାଙ୍କୁ ହେବ ଯେବ ଭାବ ମତ, ନ ହେଲେ ଜୀବନ ଯାଇବ ହୋଇ ତା ଗୁପତ-ପ୍ରଣୟେ ରତ । ଗଙ୍ଗାଧର. ଜୀଚକବଧ । ]

**ଭାବାର୍ଥ**—ସ. ବି—୧ । ତାତ୍ପର୍ଯ୍ୟ—1. Gist; purport. ୨ । Bhābārtha ପ୍ରକୃତ ଅଭିପ୍ରାୟ—2. Real intention.

**ଭାବାର୍ଥକ**—ସ. ବଣ ( ଭାବାର୍ଥ+କ )—ତାତ୍ପର୍ଯ୍ୟ ବିଶିଷ୍ଟ—Bhābārthaka Purporting to be; significant

**ଭାବାର୍ଥ ଦୀପିକା**—ଦେ. ବି ( ନାମ )—ଶ୍ରୀଧର ସ୍ୱାମୀଙ୍କ କୃତ ଶ୍ରୀମଦ୍-Bhābārtha dīpikā ଭାଗବତର ପ୍ରସିଦ୍ଧ ଟୀକା—The famous commentary on the Bhāgabata by Śrīdhara Swāmī.

**ଭାବିକ**—ସ. ବଣ ( ଭାବ+ଇକ )—୧ । ଅର୍ଥଯୁକ୍ତ—1. Having Bhābika meaning. ୨ । ସ୍ୱାଭାବିକ—2 Natural. ୩ । ଭାବଯୁକ୍ତ—3. Consisting of ideas or emotions. ୪ । ଉଦ୍ଦୀପକ—4. Inciting. ୫ । ଭବିଷ୍ୟତ୍‌କାଳ ସମ୍ବନ୍ଧୀୟ — 5. Relating to future. ସ. ବି—୧ । କାବ୍ୟାଲଙ୍କାରବିଶେଷ—1. A figure of speech. ୨ । ବୀଜଗଣିତର ସମୀକରଣବିଶେଷ — 2. An equation in algebra involving products of unknown quantities.

**ଭାବିତ**—ସ. ବଣ ( ଭୂ ଧାତୁ ଣିଚ୍ ଭାବି ଧାତୁ+କର୍ମ ତ )—୧ । Bhābita ( ପୁଂ ) ଚିନ୍ତାନ୍ୱିତ; ଚିନ୍ତିତ; ଉଦ୍‌ବିଗ୍ନ—1. (ଭାବିତା—ସ୍ତ୍ରୀ) Thoughtful; anxious. ୨ । ଅଙ୍ଗୀକୃତ—2. Agreed. ୩ । ପ୍ରମାଣୀକୃତ—3. Proved. ୪ । ଘଟିତ—4. Happened. ୫ । ପବିତ୍ରୀକୃତ—5. Purified; chastened. ୬ । ( ଔଷଧାଦି ) ସଂସ୍କୃତ; ଆୟୁର୍ବେଦୋକ୍ତ 'ଭାବନା' ବିଧିରେ ରସାଦି ସଙ୍ଗେ ମିଶ୍ରିତ—6. (medicinal powder) Mixed with a juice; steeped. ୭ । ବାସିତ—7. Scented; perfumed. ୮ । ପ୍ରାପ୍ତ—8. Acquired. ୯ । ପ୍ରାପିତ—9. Caused to be acquired.

**ଭାବିତ ହେବା**—ଦେ. କ୍ରି—ଚିନ୍ତିତ ହେବା—To be anxious. Bhābita hebā ভাবিত হওয়া चिन्तित होना

**ଭାବିତାତ୍ମା**—ସ. ବଣ (ବହୁବ୍ରୀହି, ଭାବିତ+ଆତ୍ମନ୍ ୧ମା.୧ବ)—୧ । Bhābitātmā ପୂତାତ୍ମା—1. One whose mind has been chastened by spiritual contemplation. ୨ । ଶୁଦ୍ଧାତ୍ମା—2. Pure in heart.

**ଭାବିତ୍ର**—ସ. ବି ( ଭାବି ଧାତୁ=ବିଦ୍ୟମାନ ଥିବା+କର୍ତ୍ତୃ. ଇତ୍ର)—Bhābitra ତ୍ରୈଲୋକ୍ୟ; ସ୍ୱର୍ଗ,ମର୍ତ୍ତ୍ୟ ଓ ପାତାଳ—The heaven, the earth and the nether world.

**ଭାବିବା**—ଦେ. କ୍ରି (ସ. ଭୂ ଧାତୁ, ଣିଚ୍=ଭାବି ଧାତୁ)—୧ । ଚିନ୍ତା Bhābibā କରିବା—1. To think. ୨ । ସ୍ଥିର କରିବା—ভাবা भावना 2. To settle. ୩ । ଉଦ୍‌ବିଗ୍ନ ହେବା—3. To be anxious. ୪ । ସ୍ମରଣ କରିବା—4 To recollect. ୫ । ଉଦ୍ଭାବନ କରିବା—5. To think out; to find out. ୬ । ବିଚାର କରିବା; ବିବେଚନା କରିବା—6. To consider. ୭ । ପଶ୍ଚାତ୍ତାପ କରିବା; ଅନୁତାପ କରିବା—7. To repent.

**ଭାବିବା ଚିନ୍ତିବା**—ଦେ. କ୍ରି (ସହଚର)—ଉତ୍ତମରୂପେ ଚିନ୍ତା କରିବା—Bhābibā chintibā To consider well; to deliberate. ভাবা চিন্তা सोच विचार करना

**ଭାବିନୀ**—ସ. ବଣ. ସ୍ତ୍ରୀ (ଭାବ+ଇନ୍+ସ୍ତ୍ରୀ. ଈ)—୧ । ଭାବନାଯୁକ୍ତା—Bhābinī 1. Thougtful. ୨ । ଚିନ୍ତିତା—2. Anxious. ୩ । ସୁଲକ୍ଷଣଯୁକ୍ତା—3. Graceful. ୪ । କାମୁକୀ (ସ୍ତ୍ରୀ)—4. Lustful (lady). ସ. ବି—୧ । କାମିନୀ 1. Woman. ୨ । ସ୍ତ୍ରୀ—2. Wife. ୩ । ପ୍ରିୟା—3. One's beloved woman.

**ଭାବୀ**—ସ. ବଣ 'ଭୂ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—୧ । ଭବିତବ୍ୟ; Bhābī ଭବିଷ୍ୟତ୍—1. Future. ୨ । ଆଗାମୀ; ଯାହା ଘଟିବ—2. Would be. ଦେ. ବି—ଭବିଷ୍ୟତ୍‌କାଳ—The future. ( ଦ୍ର—ଭାବି ଅଛି ବର୍ତ୍ତମାନ-ସହଂସ୍ତ ବନ୍ଧରେ । ରାଧାନାଥ. ମହାଯାତ୍ରା ।)

**ଭାବୀ ବଂଶଧର**—ସ. ବି—ମନୁଷ୍ୟର ଭବିଷ୍ୟତ୍ ବଂଶୀୟ ବ୍ୟକ୍ତିଗଣ—Bhābī baṃśadhara Future generations.

**ଭାବୁକ**—ସ. ବଣ. ପୁଂ (ଭୂ ଧାତୁ+କର୍ତ୍ତୃ. ଶୀଳାର୍ଥେ. ଉକ)—୧ । ଚିନ୍ତା Bhābuka ଶୀଳ—1. Thoughtful ୨ । ଧ୍ୟାନଶୀଳ—(ଭାବୁକା—ସ୍ତ୍ରୀ) 2. Contemplative. ୩ । ଭାବଗ୍ରାହୀ—3. Able to understand another's intentions or thoughts. ସ. ବି—୧ । ଯେ ଚିନ୍ତା କରେ—1. A thinker. ୨ । ମଙ୍ଗଳ—2. Weal. ୩ । ଭଗିନୀପତି—3. One's sister's husband.

**ଭାବୁକତା(ତ୍ୱ)**—ସ.ବି (ଭାବୁକ+ଭାବାର୍ଥେ ତା;+ତ୍ୱ)—ଚିନ୍ତାଶୀଳତା—Bhābukatā (twa) Thoughtfulness.

**ଭାବୁସି**—ଦେ. ବଣ—୧ । ପ୍ରେମଶୀଳ—1. Loving; affectionate. Bhābusi ভাবের प्रेमी ୨ । ପ୍ରଣୟୀ—2. Intimate. ভাব भाव ଦେ. ବି—ପ୍ରଣୟ—Attachment; intimacy.

**ଭାବୋଚ୍ଛ୍ୱାସ**—ସ. ବି (୬ଷ୍ଠୀ ତତ୍; ଭାବ+ଉଚ୍ଛ୍ୱାସ)—ଭାବ ତରଙ୍ଗ Bhābochchhwāsa ଉପର୍ଯ୍ୟୁପରି ଉଦିତ ହେବା ଭାବବୃଦ୍ଧି—Overflow of feelings.

ଭାବୋଦୟ—ସଂ. ବି (୬ଷ୍ଠୀ ତତ୍; ଭାବ+ଉଦୟ)—ମନରେ ଭାବର
Bhābodaya ଉଦୟ—Dawning of an idea.
(ଭାବୋଦ୍ଭବ; ଭାବୋଦ୍ରେକ—ଅନ୍ୟରୂପ)

ଭାବୋଦ୍ଦୀପକ—ସଂ. ବିଣ—ଯାହା ମନରେ କୌଣସି ଭାବର ଉଦ୍ରେକ
Bhāboddīpaka କରେ—Thought-provoking.

ଭାବୋଦ୍ଦୀପନ(ନା) —ସଂ. ବି—(୬ଷ୍ଠୀ ତତ; ଭାବ+ଉଦ୍ଦୀପନ)—
Bhāboddīpana (nā) ମନରେ ଭାବର ଉତ୍ତେଜନ—
Provocation of thought in the mind.

ଭାବୋନ୍ମତ୍ତ—ସଂ. ବିଣ. ପୁଂ (୩ୟା ତତ୍; ଭାବ+ଉନ୍ମତ୍ତ)—ଭାବଭୋଳ—
Bhābonmatta Maddened or overwhelmed by
(ଭାବୋନ୍ମତ୍ତା—ସ୍ତ୍ରୀ) an idea.

ଭାବୋନ୍ମାଦ—ସଂ ବି—ଭାବ ବିହ୍ୱଳତା; କୌଣସି ଭାବାଧିକ୍ୟ—
Bhābonmāda Madness about any fixed idea.

ଭାବ୍ୟ—ସଂ. ବିଣ (ଭୂ ଧାତୁ+କର୍ମ. ଯ)—୧ । ଭବିତବ୍ୟ; ଯାହା ଅବଶ୍ୟ
Bhābya ଘଟିବ—1. Inevitable. ୨ । ଭବିଷ୍ୟତ୍—
2. Future. ୩ । ଚିନ୍ତନୀୟ—3. Thinkable.
୪ । ସାଧ୍ୟ; ନିଷ୍ପାଦ୍ୟ—4. Performable.

ଭାମ୍ (ଧାତୁ)—ସଂ.—କ୍ରୁଦ୍ଧ ହେବା—
Bhām (root) To be angry.

ଭାମ—ସଂ. ବି (ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ମ)—୧ । ଭାନୁ—
Bhāma 1. The sun. ୨ । କିରଣ—2. Ray of light.
୩ । (+ଭାବ ମ) ଦୀପ୍ତି—3. Splendour; lustre; radiance.
୪ । (ଭାମ୍ ଧାତୁ=କ୍ରୁଦ୍ଧ ହେବା+ଭାବ ଅ) କ୍ରୋଧ;
କୋପ—4. Rage; anger. ୫ । (+କର୍ତ୍ତୃ ମ)
ଭଗିନୀପତି—5. Sister's husband. ୬ । ଓଧ
ଜାତୀୟ ଜନ୍ତୁ; କଣ୍ଟାଶ ଜାତୀୟ ଜନ୍ତୁ—6. A wild cat;
palm civet; Paradoxurus Niger.

ଭାମନ—ସଂ. ବି. ପୁଂ (ଭାମ୍ ଧାତୁ+କର୍ତ୍ତୃ ଅନ)—କ୍ରୋଧୀ ପୁରୁଷ—
Bhāmana (ଭାମନା—ସ୍ତ୍ରୀ) A passionate man.

ଭାମା—ସଂ. ବି. ସ୍ତ୍ରୀ (ଭାମ୍ ଧାତୁ+କର୍ତ୍ତୃ ଅ+ସ୍ତ୍ରୀ. ଆ)—୧ । ଅତି-
Bhāmā କୋପନା ସ୍ତ୍ରୀ—1. A violent or angry woman;
a shrew; vixen; virago. ୨ । ନାରୀ—2.
Woman. ୩ । ସତ୍ୟଭାମା—3. A wife of Srikrushna

ଭାମିନୀ—ସଂ.ବି. ସ୍ତ୍ରୀ (ଭାମ+ଇନ୍+ସ୍ତ୍ରୀ.ଈ)—୧ । ଅତିକୋପନା ସ୍ତ୍ରୀ—
Bhāminī 1. A shrew; a passionate woman.
୨ । ସ୍ତ୍ରୀ; ନାରୀ—2. Woman. ସଂ. ବିଣ. ସ୍ତ୍ରୀ
(ଭାମିନ୍+ଈ) ଭାମୀର ସ୍ତ୍ରୀଲିଙ୍ଗ—Feminine of Bhāmī.

ଭାମୀ—ସଂ. ବିଣ. ପୁଂ (ଭାମ+ଇନ୍; ୧ମା. ୧ବ)—କ୍ରୋଧୀ—
Bhāmī Angry; passionate.

ଭାର—ସଂ. ବି (ଭୃଧାତୁ=ଧାରଣ କରିବା+ଭାବ. ଅ)—୧ । ଗୁରୁତ୍ୱ;
Bhāra ଓଜନ—1. Weight; heaviness. ୨ । କ୍ରୋଧ
ବା ଅପମାନ-ଜନିତ ଗାମ୍ଭୀର୍ଯ୍ୟ—2. Sullenness
due to anger or displeasure. ୩ । (+କର୍ମ.
ଅ) ରାଶି; ସମୂହ—3. Multitude. ୪ । ବୋଝ—
4. Load. ୫ । ଦାୟିତ୍ୱ—5. Responsibility; charge. ୬ । (+କରଣ ଅ) ପରିମାଣ
ବିଶେଷ—6. A standard of weight. ଦେ.
ভার भार ବି—୧ । ନିର୍ଭରତା—1. Dependence. ୨ ।
ବାହୁଙ୍ଗିର ଦୁଇ ପାଖରେ ଝୁଲା ହୋଇ ଏକ ସଙ୍ଗେ
ବୁହାଯିବା ଦୁଇଟି ବୋଝ—2. Two loads carried
on one shoulder by means of a yoke. ୩ ।
ଶିକା ଓ ବାହୁଙ୍ଗି—3. A Banghy and its 2
scales. ୪ । ଜଣେ ଲୋକର ବାହୁଙ୍ଗିରେ ବୋହି ପାରିବା
ପଦାର୍ଥର ପରିମାଣ—4. As much as can be carried
by a person on the shoulder by means of
a yoke; [ଦ୍ର—ବୋଝ ଗୋଟିଏ ଏବଂ ତାହା
ମୁଣ୍ଡରେ ବା ପିଠିରେ ବୁହାଯାଏ । ଭାର ଯୋଡ଼ିଏ ଏବଂ
ତାହା ବାହୁଙ୍ଗିର ଦୁଇ ପାଖରେ ଝୁଲୁଥିବା ଶିକା ଦ୍ୱାରା
ବୁହାଯାଏ । ଭାରର ଦୁଇ ପାଖର ପ୍ରତ୍ୟେକ ବୋଝକୁ
ଅଧା ବୋଲାଯାଏ ।] ୫ । ବନ୍ଧୁ ବାନ୍ଧବଙ୍କୁ ଭାର ଦ୍ୱାରା
ପଠାଯିବା ଉପଢୌକନ—5. Presents sent to
relatives (and generally carried by
yokes). ଦେ. ବିଣ—୧ । ଭାରି—1. Heavy. ୨ ।
ভার; भार କଷ୍ଟକର; ଶକ୍ତ; କଠିନ—2. Difficult.

ଭାରଇମଲ(ଲ୍ଲ)—ଦେ. ବିଣ (ସଂ. ଭାର ଓ ମଲ୍ଲ)—୧ । ପ୍ରଧାନ ବୀର—
Bhāraimala(lla) 1. A chief hero or warrior. ୨ ।
প্রধানমল্ল; भारमल्ल ଯେଉଁ ବ୍ୟକ୍ତି ଖୁବ୍ ଭାରି ଦ୍ରବ୍ୟ ଭୂଇଁରୁ ଉଠାଇ
ପାରେ—2. A champion of heavy weight.

ଭାର(ରୁ)କୁଣ୍ଡା—ଦେ. ବିଣ. ପୁଂ—୧ । କ୍ରୋଧ ବା ଅପମାନ ଯୋଗୁଁ
Bhāra(ru)kuṇḍā ବିରସ (ମୁଖ)—1. Frowning (face).
ভার; फुलाहुआ ୨ । ଫୁଲୁକା—2. Swollen.
(ଭୃକୁକୁଣ୍ଡା—ଅନ୍ୟରୂପ) (ଭାର[ରୁ]କୁଣ୍ଡୀ—ସ୍ତ୍ରୀ)

ଭାରକୁଣ୍ଡା ମୁହାଁ—ଦେ. ବି ପୁଂ—୧ । ବିରସ ମୁହାଁ—1.
Bhārakuṇḍā muhāṅ 1. Having a frowning
(ଭୃକୁକୁଣ୍ଡା ମୁହାଁ—ଅନ୍ୟରୂପ) face ୨ । ଫୁଲୁକାମୁହାଁ; ଫୁଲୁକା-
যার সর্বদা মুখ ভারথাকে ଗାଲଥିବା—2. Having a swollen
मुह फुला or puffed up face.
[ଭାରକୁଣ୍ଡା(ଣ୍ଡୀ) ମୁହାଁ, ଭୃକୁକୁଣ୍ଡା(ଣ୍ଡୀ) ମୁହାଁ—ସ୍ତ୍ରୀ]

ଭାରକେନ୍ଦ୍ର—ସଂ. ବି (୬ଷ୍ଠୀ ତତ୍, ଭାର+କେନ୍ଦ୍ର)—୧ । ଭାରର
Bhārakendra ବା ବାହୁଙ୍ଗୀର ମଧ୍ୟବିନ୍ଦୁ—1. The
(ଭାରମଧ୍ୟ—ଅନ୍ୟରୂପ) middle point of a yoke. ୨ ।
[ବିଜ୍ଞାନ] ପଦାର୍ଥର ମଧ୍ୟ ବିନ୍ଦୁ—2. [science]
Centre of gravity.

ଭାରଗ୍ରସ୍ତ—ସଂ. ବିଣ. ପୁଂ (ଅପ୍ରା ତତ୍—୧ । ଯାହା ଉପରେ ଭାର ଲଦା Bhāragrasta ହୋଇଥାଏ—1. Loaded. ୨ । ଦାୟିତ୍ୱ- (ଭାରାକ୍ରାନ୍ତ—ଅନ୍ୟରୂପ) ଗ୍ରସ୍ତ—2. Burdened with a res- (ଭାରଗ୍ରସ୍ତା, ଭାରାକ୍ରାନ୍ତା—ସ୍ତ୍ରୀ) ponsibility.

ଭାରଗ୍ରହ—ସଂ. ବିଣ. ପୁଂ (ଭାର+ଗ୍ରହ ଧାତୁ+କର୍ତ୍ତୃ. ଅ)—ଯେ ଭାର Bharagraha ବା ଦାୟିତ୍ୱ ଗ୍ରହଣ କରେ—Taking a load (ଭାରଗ୍ରାହୀ, ଭାରଗ୍ରାହୀ—ଅନ୍ୟରୂପ) or responsibility. (ଭାର ଗ୍ରାହିଣୀ; ଭାରଗ୍ରହା; ଭାରଗ୍ରହିଣୀ—ସ୍ତ୍ରୀ)

ଭାର ଘେନି ଯିବା—ଦେ. କ୍ରି—୧ । (ବୟଃପ୍ରାପ୍ତା କନ୍ୟା) ବୋଝ ଭାର Bhāra gheni jibā ନେଇ ବାପ ଘରୁ ଶଶୁର ଘରକୁ ଯିବା— ତତ୍ତ୍ୱନିଏ ଯାଓଯା 1. (a grown up girl) To go to her **गौना होकर जाना;** husband's house accompanied with **दुरागमन करना** presents (carried by carriers) from her father's house. ୨ । (କନ୍ୟା) ବାପଘରୁ ଶଶୁର ଘରକୁ ପହିଲ ପାଳିଯିବା—2. (a girl) To start for the husband's house with presents for the first time after attaining puberty. (ଉ—ଫୁଲ ଫୁଟିଗଲା ଫୁଲୁର, ଘର ପୁଅକୁ ବସେଇ ଦେଇ, (ଭାର ନେଇଯିବା—ଅନ୍ୟରୂପ) ଭାର ଘେନିଗଲା ସୁଲୁସା – ଗୀତ ।)

ଭାର(ରୁ ଣ୍ଡ—ସଂ. ବି—ପୁରାଣବର୍ଣ୍ଣିତ ଉଭୟକୁରୁ ଦେଶଜ ପକ୍ଷି- Bhāra(ru)ṇḍa ବିଶେଷ; ଗଣ୍ଡଭୈରବ ପକ୍ଷୀ (ଦେଖ)— Name of a fabulous gigantic bird with 2 bodies joined

ଭାରତ—ସଂ. ବି (ଭରତ+ଅ; ଭରତ ନାମକ ରାଜପୁତ୍ରଙ୍କୁ ଦାନ କରା Bhārata ଯାଇ ଥିବାରୁ, ଅଥବା ଦୁଷ୍ମନ୍ତପୁତ୍ର ଭରତଙ୍କ ଦ୍ୱାରା ଶାସିତ ହୋଇଥିବାରୁ)—୧ । ଭାରତବର୍ଷ—1. India. (ଦ୍ର—ଏହା ଜମ୍ବୁଦ୍ୱୀପର ନଅଟି ବର୍ଷ ମଧ୍ୟରୁ ଏକ)— ୨ । ଭରତ ରାଜାଙ୍କ ତନୟ—2. Name of the son of king Bharata. ୩ । (ଭରତ+କୃତାର୍ଥେ ଅ ଭରତ ବଂଶୀୟମାନଙ୍କୁ ଅବଲମ୍ବନ କରି ଯେଉଁ ଗ୍ରନ୍ଥ କରାଯାଇ ଅଛି) ବେଦବ୍ୟାସ ରଚିତ ମହାଭାରତ ନାମକ ମହାକାବ୍ୟ—3. The great Indian epic Mahābhārata. [ଦ୍ର—ମହାଭାରତ ଅତି ବିଶାଳଗ୍ରନ୍ଥ ଏବଂ ଏଥିରେ ଭାରତବର୍ଷର ସବୁ ବିଷୟ ବର୍ଣ୍ଣିତ ହୋଇଅଛି । ଏଥିପାଇଁ ଲୋକେ କହୁଥାଅନ୍ତି,—ଯାହା ନାହିଁ ଭାରତେ ତାହା ନାହିଁ ଭାରତେ, ଅର୍ଥାତ୍ ମହାଭାରତ ଗ୍ରନ୍ଥରେ ଯାହା ନାହିଁ ତାହା ଭାରତବର୍ଷରେ ନାହିଁ ।] ୪ । ନଟ—4. An actor. ୫ । ଅଗ୍ନି—5. Fire. ୬ । ଭରତଙ୍କ ସଙ୍କଳିତ ସଙ୍ଗୀତ, ବାଦ୍ୟ ଓ ନାଟ୍ୟ ବିଷୟକ ଶାସ୍ତ୍ର—6. The science of music and dramaturgy compiled by Bharata [Apte]. ସଂ. ବିଣ—ଭରତ ବଂଶୀୟ—Belonging to the race of Bharata

ଭାରତ ଖଣ୍ଡ—ସଂ. ବି—ଭାରତବର୍ଷ—The country of India. Bhārata khaṇḍa

ଭାରତ ଗୀତିକା—ସଂ.ବି (ଆଧୁନିକ)—ଜାତୀୟ ଭାବୋଦ୍ଦୀପକ ଭାରତବର୍ଷ Bhārata gitikā ସମ୍ବନ୍ଧୀୟ ସଙ୍ଗୀତ—Indian national (ଭାରତଗୀତ—ଅନ୍ୟରୂପ) anthem or song

ଭାରତ ଗୌରବ—ସଂ. ବିଣ (ଆଧୁନିକ; ବହୁବ୍ରୀହି)—ଭାରତବର୍ଷର Bhārata gauraba ଗୌରବ ବା ମର୍ଯ୍ୟାଦାବୃଦ୍ଧିକାରୀ ବ୍ୟକ୍ତି— ଭାରତ ରତ୍ନ, ଭାରତ ଚନ୍ଦ୍ର, ଭାରତଚନ୍ଦ୍ରମା, ଭାରତଭୂଷଣ } ଅନ୍ୟରୂପ (a person) Who is an ornament to India. ଦେ. ବି—ଭାରତର ଶ୍ରେଷ୍ଠ ସନ୍ତାନ—An eminent Indian.

ଭାରତ ଚନ୍ଦ୍ର—ସଂ. ବିଣ ଓ ବି—ଭାରତ ଗୌରବ (ଦେଖ) Bhārata Bhārata chandra gauraba (See). ଦେ. ବି (ନାମ) ଅନ୍ନଦା ମଙ୍ଗଳ ଓ ବିଦ୍ୟାସୁନ୍ଦର ରଚୟିତା ବଙ୍ଗଦେଶର ସର୍ବଶ୍ରେଷ୍ଠ ପ୍ରାଚୀନ କବି—Name of a celebrated classical poet of Bengal. ( ଦ୍ର—ଏହାଙ୍କର ଜନ୍ମ ଖ୍ରୀଷ୍ଟାବ୍ଦ ୧୭୧୨ ଓ ମୃତ୍ୟୁ ଖ୍ରୀ ୧୭୬୦; ଏ ୪୮ ବର୍ଷ ବୟଃକ୍ରମରେ ଇହଲୀଳା ସାଙ୍ଗ କରିଥିଲେ । ଏ ବର୍ଦ୍ଧମାନ ଜିଲ୍ଲାର ପଣ୍ଡୁଆ ଗ୍ରାମରେ ବ୍ରାହ୍ମଣକୁଳରେ ଜନ୍ମିଥିଲେ । ରାଜାଙ୍କ କୋପ ଯୋଗୁଁ ଏହାଙ୍କ ପୈତୃକ ସମ୍ପତ୍ତି ବାଜ୍ୟାପ୍ତ ହେଲା ଓ ଏ ମାତୁଳାଳୟକୁ ଓ ହୁଗୁଳିକୁ ଯାଇ ସେଠାରେ ସଂସ୍କୃତ ଓ ଫାରସୀ ପଢ଼ି ଅସାଧାରଣ ପାଣ୍ଡିତ୍ୟ ଲାଭ କରିଥିଲେ । ବିଦ୍ୟାଶିକ୍ଷା କରିବାକୁ ଏ ବହୁତ ଦୁଃଖରେ ପଡ଼ିଥିଲେ; ବିବାହ କରି ଘରକୁ ଫେରି ପୈତୃକ ସମ୍ପତ୍ତିର ପୁନରୁଦ୍ଧାର କଲେ, କିନ୍ତୁ ରାଜସ୍ୱ ନିୟମିତ ରୂପେ ଦେଇ ନ ପାରିବାରୁ ସମ୍ପତ୍ତି ପୁଣି ଖାସ୍ ହେଲା ଓ ଏ କାରାରୁଦ୍ଧ ହେଲେ । କର୍ମଚାରୀଙ୍କ ଦୟାରୁ ଲୁଚି କରି ଖସି ଆସି ଏ ବନାକେତେ କଟକରେ ମହରଟ୍ଟାମାନଙ୍କ ଆଶ୍ରୟରେ ରହି ବୈଷ୍ଣବ ସମ୍ପ୍ରଦାୟ ଭୁକ୍ତ ହେଲେ ଓ ଭାଗବତାଦି ଅଧ୍ୟୟନ କରି ବୃନ୍ଦାବନ ଗଲେ । ସେଠାରୁ ଫେରି ଫରାସଡାଙ୍ଗାର ଦେବାନ ଇନ୍ଦ୍ରନାରାୟଣଙ୍କ ଆଶ୍ରୟରେ କିଛିଦିନ ରହିବାପରେ ନଦୀଆର ବିଖ୍ୟାତ ବିଦ୍ୟୋତ୍ସାହୀ ରାଜା କୃଷ୍ଣଚନ୍ଦ୍ରଙ୍କ ଆଶ୍ରୟରେ ରହି, କବିତା ରଚନା କରି ରାଜ ସଭାରେ ପାଠ କରୁଥିଲେ ଓ ଉକ୍ତ ରାଜାଙ୍କ ଆଦେଶରେ 'ଅନ୍ନଦାମଙ୍ଗଳ' ଓ 'ବିଦ୍ୟାସୁନ୍ଦର' କାବ୍ୟ ରଚନା କଲେ । ରାଜା କୃଷ୍ଣଚନ୍ଦ୍ର ତାଙ୍କୁ 'ରାୟ ଗୁଣାକର' ଉପାଧି ଦେଇଥିଲେ । ପଦଲାଳିତ୍ୟ, ଶବ୍ଦଯୋଜନା ଓ ସରଳ ଭାଷା ତାଙ୍କ ରଚନାର ବିଶେଷତ୍ୱ । ବଙ୍ଗଭାଷାରେ ବିବିଧ ଛନ୍ଦ ଏ ପ୍ରଥମେ ପ୍ରଚାର କରିଥିଲେ । ଏ ପ୍ରଥମ ଜୀବନରେ ସତ୍ୟ ନାରାୟଣଙ୍କ ପାଞ୍ଚାଳି (ପାଲା) ରଚନା କରିଥିଲେ । ସୁବଳଚନ୍ଦ୍ର ସରଳ ବାଙ୍ଗାଲା ଅଭିଧାନ ।)

ଭାରତ ଛଡ଼ା—ଦେ, ବିଣ—୧ । ଭାରତର ସୀମା ବହିର୍ଭୂତ—1. Be- Bhārata chhaṛā yond the domains of India. ভারতছাড়া ୨ । ଭାରତବର୍ଷରେ ଯାହା ମିଳେ ନାହିଁ—2. Not **भारतके बाहरकी,** obtainable in India. ୩ । ଦୁନିଆ **दुनियासे बाहर** ଛଡ଼ା—3. Not to be met in the world. ୪ । ମହାଭାରତରେ ଯାହା ବର୍ଣ୍ଣିତ ହୋଇ-

ନାହିଁ—4 Not mentioned in the Mahābhārata.

ଭାରତ ପର୍ବ-ସ. ବି-ମହାଭାରତ ଗ୍ରନ୍ଥର ୧୮ଖଣ୍ଡ ମଧ୍ୟରୁ କୌଣସି ଖଣ୍ଡ— Bhārata parba Any of the 18 parts of the great epic Mahābhārata. ଦେ. ବି—ଭୀଷଣ କାଣ୍ଡ; ମହାଗଣ୍ଡଗୋଳ—A great hubbub or ado.

ଭାରତବର୍ଷ—ସ. ବି—ଭାରତ ମହାଦେଶ—The Indian continent. Bhāratabarsha [ ଦ୍ର—ପୌରାଣିକ ଭୂଗୋଳ ମତରେ ପୃଥିବୀର ସପ୍ତଦ୍ୱୀପ ମଧ୍ୟରୁ ଜମ୍ବୁଦ୍ୱୀପ ଏକତମ ତହିଁର ନବ ବର୍ଷ ମଧ୍ୟରୁ ଭାରତବର୍ଷ ଗୋଟିଏ ବର୍ଷ ବା ଦେଶ । ଏହା ହିମାଳୟର ଦକ୍ଷିଣରେ ଓ ମହୋଦଧିର ଉତ୍ତରରେ ଅବସ୍ଥିତ । ]

ଭାରତବର୍ଷୀୟ—ସ. ବଣ. (ଭାରତବର୍ଷ+ଈୟ)—ଭାରତବର୍ଷ ସମ୍ବନ୍ଧୀୟ- Bhāratabarshiya (ଭାରତୀୟ—ଅନ୍ୟରୂପ) Indian.

ଭାରତବାସୀ—ସ. ବଣ. ଓ ବି ପୁଂ (ଭାରତ+ବସ୍ ଧାତୁ+କର୍ତ୍ତ୍ରି. ଇନ୍) Bhāratabāsī ଭାରତରେ ବାସ କରୁଥିବା—Inhabiting or (ଭାରତବାସିନୀ—ସ୍ତ୍ରୀ) residing in India; an Indian.

ଭାରତ ମହାସାଗର—ଦେ. ବି—ଭାରତର ଦକ୍ଷିଣସ୍ଥ ମହାସମୁଦ୍ର— Bhārata mahāsāgara The Indian ocean. ଭାରତ ସମୁଦ୍ର, ଭାରତ ସାଗର }—ଅନ୍ୟରୂପ ভারত মহাসাগর भारत महासागर

ଭାରତ ମାତା—ସ. ବି. (ଅଧୁନିକ)—ଭାରତବାସୀଙ୍କ ଜନନୀରୂପ Bhāratamātā ଜନ୍ମଭୂମି—Mother India; the mother country of the Indians.

ଭାରତ ଯୁଦ୍ଧ—ସ. ବି—କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ରରେ କୁରୁ ପାଣ୍ଡବଙ୍କ Bhārata juddha ମଧ୍ୟରେ ଅଷ୍ଟାଦଶ ଦିବସବ୍ୟାପୀ ମହାଭାରତୋକ୍ତ ମହାସମର—The great war (lasting for 18 days) described in the Mahābhārata between the Pāndaba brothers and the Kauraba brothers.

ଭାରତ ରମଣୀ—ଦେ. ବି—ଭାରତୀୟା ସ୍ତ୍ରୀଗଣ—The womanhood of India; the women of India. Bhārata ramaṇī ଭାରତନାରୀ, ଭାରତ ଲଲନା }—ଅନ୍ୟରୂପ

ଭାରତ ଲୀଳା—ଦେ. ବି—ମହାଭାରତ ବର୍ଣ୍ଣିତ କୌଣସି ଚରିତକୁ Bhārata līlā ଅବଲମ୍ବନ କରି କରାଯିବା ଯାତ୍ରା ଓ ନାଚ— महाभारत लीला A country-play or dancing party महाभारतलीला for the performance of any episode of the Mahābhārata.

ଭାରତ ସନ୍ତାନ—ସ. ବି (ଅଧୁନିକ ପ୍ରୟୋଗ)—ଭାରତୀୟ ବ୍ୟକ୍ତି— Bhārata santāna An Indian. (ଭାରତ ପୁତ୍ର—ଅନ୍ୟରୂପ)

ଭାରତ ସରକାର—ଦେ. ବି (ସ. ଭାରତ+ଅ. ସରକାର)—ସମଗ୍ର Bhārata sarkāra ବୃଟିଶ ଶାସିତ ଭାରତର ବଡ଼ଲାଟଙ୍କ ଦ୍ୱାରା ভারত সরকার भारत सरकार ନିୟନ୍ତ୍ରିତ ଶାସନତନ୍ତ୍ର— (ଭାରତ ଗଭର୍ଣ୍ଣମେଣ୍ଟ—ଅନ୍ୟରୂପ) India Government.

ଭାରତି—ଦେ. ବି—ତୂଣୀର; ତୂଣୀର—A quiver for arrows. Bhārati [ ଦ୍ର—କୁସୁମ କୋଦଣ୍ଡ କାଣ୍ଡ, କେତେ କରଥିଲ तून तरकस ତୂଣ୍ଡ, କର୍କଶ ନୋହିବା ଭାରତରେ—ଉଦ୍ଧବସୂର୍ଯ୍ୟ. କଲୋଲ ଗୋସ୍ୱାମୀ. ଗୀତ । ]

ଭାରତିଆ—ଦେ. ବି—ଦୁଇଟି ଖୁଣ୍ଟ ଉପରେ ଦିଆଯାଇଥିବା ବଡ଼ କଡ଼ି Bhāratiā କାଠ (ଯାହା ଉପରେ ଛୋଟ କଡ଼ିମାନ ଦିଆଯାଏ)- A big cross-beam placed on two pillars and on which are laid the ordinary beams of a building.

ଭାରତୀ—ସଂ. ବି. ସ୍ତ୍ରୀ—(ଭରତ+ଅ+ସ୍ତ୍ରୀ. ଈ)—୧ । ବାଣୀ; Bhārati କଥା—1. Words; speech. ୨ । ସରସ୍ୱତୀ— 2. The Goddess of learning. ୩ । କାବ୍ୟ-ରଚନାର ବୃତ୍ତିବିଶେଷ—3. A mode of lyrical composition. [ ଦ୍ର—ଏହାଦ୍ୱାରା ରୌଦ୍ର ଓ କରୁଣ ରସର ବର୍ଣ୍ଣନ କରାଯାଏ (ହି. ଶ)—୪ । ଭରଦ୍ୱାଜ ପକ୍ଷୀ—4. Skylark. ଦେ. ବି—ଦଶ ନାମୀ ସନ୍ନ୍ୟାସୀ-ମାନଙ୍କ ଉପାଧିବିଶେଷ—One of the titles of ascetics.

ଭାରତୀୟ—ଦେ. ବଣ (ଭାରତ+ସମ୍ବନ୍ଧାର୍ଥେ ଈୟ)—୧ । ଭାରତବର୍ଷ Bhāratiya ସମ୍ବନ୍ଧୀୟ—1. Pertaining to India. ୨ । ଭାରତବର୍ଷରେ ଜାତ—2. Indian.

ଭାରତୀୟ ଦଣ୍ଡବିଧି ଆଇନ୍—ଦେ. ବି—୧୮୬୦ ସାଲରେ ପ୍ରସ୍ତାବିତ ଓ Bhāratiya daṇḍabidhi āin ପ୍ରବର୍ତ୍ତିତ ଭିନ୍ନ ଭିନ୍ନ ଅପରାଧର ভারতীয় দণ্ডবিধি আইন ଦଣ୍ଡବିଧାୟକ ଆଇନ୍—The Indian भारतीय दण्डविधि आईन Penal code.

ଭାରଥ—ଗ୍ରା. ବି (ସ. ଭାରତର ଅଶୁଦ୍ଧ ଉଚ୍ଚାରଣ)— Bhāratha ୧ । ମହାଭାରତ ଗ୍ରନ୍ଥ—1 The epic Mahābhārata ୨ । ଭାରତବର୍ଷ—2. India. भारथ

ଭାରଥୋ(ଥୁ)ର—ଗ୍ରା. ବି (ଭାରାର୍ଥକ ସହଚର)—ବନ୍ଧୁ ସ୍ୱଜନଙ୍କୁ ପଠାଯିବା Bhāratho(thu)ra ଭାର କୋଳ ଆଦି ଉପଢୌକନ— ভারটার Presents sent to relatives. भार त्थमार

ଭାର ଦଣ୍ଡ—ସ. ବି—ବାହୁଙ୍ଗୀ—A yoke for carrying on the Bhāra daṇḍa shoulder loads suspended at both ends.

ଭାରଦା—ଦେ. ବି. (ସ. ଭାର୍ଯ୍ୟାଟି; ଭଣ୍ଡ)—୧ । (ଗାଳି) ଯେଉଁ ବ୍ୟକ୍ତି Bhāradā ଧନ ବା ଅନୁଗ୍ରହ ପାଇବା ଆଶାରେ ଆପଣାର ସ୍ତ୍ରୀକୁ ভাড়োয়া ପର ପୁରୁଷର ସମ୍ଭୋଗାର୍ଥ ଛାଡ଼ିଦିଏ—1. A per- भड़वा son who lets out his wife for the carnal enjoyment of another for consi-

deration. ୨ । ଭଡୁଆ—2. A bawd; panderer
ଦେ. ବଣ—ନିର୍ଲଜ୍ଜ—Shameless.

ଭାରଦା ସଭା—ଦେ. ବ—ନିର୍ଲଜ୍ଜ ବ୍ୟକ୍ତିମାନଙ୍କ ମଣ୍ଡଳୀ—
Bhāradā sabhā A society of shameless or depraved persons.

ଭାରଦ୍ୱାଜ—ସଂ.ବ. ପୁଂ (ଭରଦ୍ୱାଜ + ଅପତ୍ୟାର୍ଥରେ. ଅ)—୧ । ଦ୍ରୋଣାଚାର୍ଯ୍ୟ—1. Drona. ୨ । ଅଗସ୍ତ୍ୟ ମୁନି — 2. Sage Agastya. ୩ । ଭରଦ୍ୱାଜ ପକ୍ଷୀ; ଭଡଭଡଳିଆ ଚଢ଼େଇ—3. The blue jay. ୪ । ଅସ୍ଥି; ହାଡ଼—4. Bone. ୫ । ମଙ୍ଗଳ ଗ୍ରହ [ହି. ଶ]—5. The planet Mars. ସଂ. ବଣ—୧ । ଭରଦ୍ୱାଜ ଗୋତ୍ର ସମ୍ବନ୍ଧୀୟ ବା ଗୋତ୍ରରୁ ଉଦ୍ଭୂତ—1. Of the family of Bharadwāja; descended from sage Bharadwāja. ୨ । ଭରଦ୍ୱାଜ ସମ୍ବନ୍ଧୀୟ—2. Relating to Bharadwāja.
Bhāradwāja

ଭାର ନେବା—ଦେ. କ୍ରି—୧। କୌଣସି ଭାରକୁ ସ୍ଥାନାନ୍ତରକୁ ନେବା—
Bhāra nebā 1. To carry a load to another place.
ଭାର ନଓଆ भार उठाना ୨ । କୌଣସି ଦାୟିତ୍ୱ ଗ୍ରହଣ କରିବା—2. To take upono neself a responsibility.

ଭାରବାହ—ସଂ. ବଣ (ଭାର + ବହ ଧାତୁ + କର୍ତ୍ତୃ. ଅ)—ଯେ ଭାର ବହନ କରେ—Carrying a load.
Bhāra bāha

ଭାରବାହ୍, ଭାରବାହକ, ଭାରବାହୀ, ଭାରଭୃତ୍, ଭାରୋଦ୍ୱହ } —ଅନ୍ୟରୂପ ଦେ. ବ—୧ । ବୋହିଆ—1. A porter; a carrier. ୨ । ଭାରୁଆ—2. A person who carries loads suspended at both ends of a yoke put on one shoulder.

ଭାରବାହୀ ପଶୁ—ଦେ. ବ—ଯେଉଁ ପଶୁ ବୋଝ ବୋହିବାରେ (ଯଥା—ବଳଦ, ଘୋଡ଼ା, ହାତୀ, ଗଧ ଇତ୍ୟାଦି)—A beast of burden.
Bhārabāhi pasu

ଭାରବି—ସଂ. ବ—କିରାତାର୍ଜ୍ଜୁନୀୟ ନାମକ ପ୍ରସିଦ୍ଧ ସଂସ୍କୃତ କାବ୍ୟର ପ୍ରଣେତା—Name of the author of a celebrated Sanskrit work (relating to an episode in the Mahābhārata). [ ଦ୍ର—ଏ ଖ୍ରୀଷ୍ଟାବ୍ଦ ୬ଷ୍ଠ ଶତାବ୍ଦୀରେ ହିମାଳୟର ଉତ୍ତର ପ୍ରଦେଶରେ ଜନ୍ମଗ୍ରହଣ କରିଥିବାର ଅନୁମିତ ହୁଏ (ସୁବଳଚନ୍ଦ୍ର) । କଥିତ ଅଛି ଯେ ଏହାଙ୍କ ଗୁରୁଙ୍କ କୋପରୁ ତରିଇବାକୁ ହିମାଳୟର ଉତ୍ତର ଅଞ୍ଚଳକୁ ଯାଇ ସେଠାର ପ୍ରାକୃତିକ ଶୋଭାରେ ମୁଗ୍ଧ ହୋଇ ଏ କାବ୍ୟ ରଚନା କରିଥିଲେ—ହ୍ଵି. ଶ. । ] ଦେ. ବଣ (ଭା + ରବି) ସୂର୍ଯ୍ୟ ତୁଲ୍ୟ ତେଜସ୍ୱର—As brilliant as the sun. ( ଉ—ବିଭୁ ଶରଧର ମେଳ ସାଧିବ, ବିବ ଶାଳମେଘ ତନୁ ଭାରବି । ଉଞ୍ଜ. ବୈଦେହୀଶବିଳାସ । )
Bhārabi

ଭାର ଭାର—ଦେ. ବଣ—ବହୁତ; ଅନେକ—Much; many. (ଉ—ବହୁଳ ତୋ କୁଙ୍କୁମ ଭାରଭାରରେ । କବିସୂର୍ଯ୍ୟ—ସଙ୍ଗୀତ । ) ଦେ. କ୍ରି. ବଣ—ବହୁ ପରିମାଣରେ—Very much; too much. ( ଉ—ତନୁମଧ୍ୟ। କଣୋଖ, ମନ୍ଦ ଦେଇ ଯାସୋର, ସେ ସ୍ନେହ ସଖୀଭୁକ୍ତ ଭାର ଭାର । କବିସୂର୍ଯ୍ୟ. ସଙ୍ଗୀତ । ) ଦେ. ବ—ଅନେକ ଭାର; ଭାରମାନ—A large number of loads carried in Bhāras.
Bhāra bhāra
ଭାରଭାର भारभार

ଭାର ମଦାର—ଦେ. ବ (ସହଚର; ସଂ. ଭାର + ଫା. ମଦାର)—କୌଣସି କାର୍ଯ୍ୟର ଦାୟିତ୍ୱ; କୌଣସି କାର୍ଯ୍ୟର ଭାର ଓ ନିର୍ଭର—Responsibility and dependence for a certain work.
Bhāra madāra
ଭାର ନିର୍ଭର भारउर

ଭାର ଯଷ୍ଟି—ସଂ. ବ—ବାହୁଙ୍ଗି; ଦୁଇ ପାଖରେ ବୋଝ ଲଟକାଇ ବୋହିବା ନିମନ୍ତେ ବ୍ୟବହୃତ ଯଷ୍ଟି—A yoke used for carrying burdens suspended from both ends.
Bhāra jashti

ଭାରଯୁକ୍ତ—ସଂ. ବଣ ( ଆଦ୍ୟୁଦାତ୍ତ )—୧ । ଭାରି—1. Heavy; burdensome. ୨ । ଦାୟିତ୍ୱଯୁକ୍ତ—2. Onerous; responsible.
Bhārajukta

ଭାରସହ—ସଂ. ବଣ—୧ । ଗୁରୁଭାର ବହନ କ୍ଷମ—1. Capable of carrying a heavy load. ୨ । ଗୁରୁଭାର ଧାରଣ କ୍ଷମ—2. Capable of sustaining a great weight. ୩ । ଚେମଡ଼ା—3. Tenacious.
Bhārāsaha

ଭାର ସୁମାର ପଦ—ଦେ. ବ—ସାପବିଷ ଝାଡ଼ିବା ମନ୍ତ୍ରବିଶେଷ; ଗାରଡ଼ି ମନ୍ତ୍ର—Snake-charm. ( ଉ—ଭାର ସୁମାରପଦ; ଅରଣ୍ଡ କେଦାରଗଦ । ପ୍ରବଚନ । )
Bhāra sumāra pada

ଭାରସୁହା—ଦେ. ବଣ ( ସଂ. ଭାରସହ )—ଭାରସହ ( ଦେଖ )—Bhārasaha (See). (ଉ—ଭାରସୁହା କାଣ୍ଡମାନଙ୍କୁ ବାଛି ବାଛି, ବନ୍ଧିଲେ ତାକୁ ଯୁଦ୍ଧେ ଉତ୍ପୋଧ ମୁରୁଛି । କୃଷ୍ଣସିଂହ. ମହାଭାରତ ବନ । )
Bhārasuhā
ଭାରସହ भारसहा

ଭାରହର—ସଂ. ବଣ. ପୁଂ (ଭାର + ହୃ. ଧାତୁ + କର୍ତ୍ତୃ. ଅ)—୧ । ଭାରବହ ( ଦେଖ )—1. Bhārabaha (ଭାରବାହୀ—ଅନ୍ୟରୂପ) (See). ୨ । ଯେ ପୃଥିବୀର ଭାର ହରଣ କରନ୍ତି—2. Removing the load of sin from the earth. ସଂ. ବ. ବିଷ୍ଣୁ—A name of Bishnu.
Bhārahara

ଭାରା—ଦେ. ବ (ସଂ. ଭାର)—୧ । ( ଉଚ୍ଚ କୋଠାକାମ କରିବା ସମୟରେ ମୂଲମାନଙ୍କ ବସିବା ଓ ଯିବା ଆସିବା ଓ ଇଟା ପଥର ଆଦି ରଖିବା ଓ କାଅଣ୍ଡଣାପାଇଁ ପ୍ରସ୍ତୁତ ବାଉଁଶ ବା କାଠରେ ତିଆରି ପ୍ରଶସ୍ତ ମଞ୍ଚା ବା ସିଡ଼ି—1. A scaffolding or staircase made of bamboo or timber for the use of men and materials in the course of building structures). ୨ । ବୋଝ—2. Load; burden,
Bhārā
ଭାଷା भारसाहा; मचान
ଭାର भार

୩ । ଭାର; ଦାୟିତ୍ୱ—3. Responsibility. ୪ । ଭର;
ଭରା
ଅଣ୍ଡା—4. Prop; support. (ଉ-ହନୁମାନ୍ ମାଈରେ
भार
ଭାର ଦେଇ...ଡେଇଁ ପଡ଼ିଲା । ମାଳକଣ୍ଠ. ଗିରୀଙ୍କ
ରାମାୟଣ । ) ବେ ବଣ—ଭାରୀ—Heavy.

**ଭାରାକ୍ରାନ୍ତ**—ସଂ. ବଣ. ପୁଂ ( ଷଷ୍ଠୀ ତତ୍; ଭାର+ଆକ୍ରାନ୍ତ )—
Bhārākrānta ୧ । ଭାରଗ୍ରସ୍ତ—1. Loaded. ୨ । ଗୁରୁ
( ଭାରାକ୍ରାନ୍ତା—ସ୍ତ୍ରୀ ) ଭାର ଦ୍ୱାରା ଆକ୍ରାନ୍ତ ବା ବ୍ୟସ୍ତ—
2. Heavily laden; overburdened. ୩ ।
କୌଣସି ଗୁରୁଦାୟିତ୍ୱ ଗ୍ରସ୍ତ—3. Charged with a heavy trust or responsibility.

**ଭାରାକ୍ରାନ୍ତା**—ସଂ. ବ—ଏକ ବାର୍ଣ୍ଣିକ ବୃତ୍ତ (ବୃ. ଶ)
Bhārākrāntā Name of a Sanscrit metre.

**ଭାରାବଲମ୍ବକତା(ତ୍ୱ)**—ସଂ ବ (ବିଜ୍ଞାନ ପରିଭାଷା)—ପଦାର୍ଥର ପରମାଣୁ
Bhārābalambakatā(twa) ମାନଙ୍କ ମଧ୍ୟରେ ପରସ୍ପର ଆକର୍ଷଣ
( ବୃ. ଶ )—Mutual attraction between the atoms of a thing.

**ଭାରା ବାନ୍ଧିବା**—ଦେ. କ୍ରି—ଉଚ୍ଚ ଅଟ୍ଟାଳିକା ବା ଦେବାଳୟାଦିର ଉଚ୍ଚ
Bhārā bāndhibā ଅଂଶମାନଙ୍କରେ ରାଜମିସ୍ତ୍ରୀମାନଙ୍କର କାମ
ভারাবাঁধা କରିବା ପାଇଁ ଓ ସେଠାକୁ ଇଟା ପଥରାଦି
**मचान बाँधना; भारसहा बाँधना** ଉଠାଇବା ନିମନ୍ତେ କାଠବାଉଁଶଙ୍କୁ
ଦଉଡ଼ିରେ ବାନ୍ଧି ମଞ୍ଚା ବା ସିଡ଼ି ତିଆରି କରିବା—
To raise a scaffolding or staircase of bamboo or timber in the course of constructing big structures, such as buildings or temples.

**ଭାରି**—ସଂ. ବ ( ଭୃ. ଧାତୁ=ଭୟ ଦେଖାଇବା+କର୍ତ୍ତୃ. ଇ)—ସିଂହ—
Bhāri The lion. ଦେ.ବଣ (ସ.ବହୁତର)—୧ । ଅତ୍ୟଧିକ—
ভারী 1.Much; excessive. ୨। ଅଧିକ;ବଡ଼—2.Great,
भारी large. ୩ । ଦୁର୍ବହ; ଓଜନଦାର—3. Heavy; weighty. ୪ । ଅତ୍ୟାବଶ୍ୟକ—4. Important.
୫ । ( ସବାର ବେହେରାଙ୍କ ଭାଷା ) ଲୋକଗହଳ;
ଜନତା ପୂର୍ଣ୍ଣ—5. Crowded. ( ଯଥା—ଆଗଲା ଭାରି । ) ୬ । ବ୍ୟଥାଯୁକ୍ତ—6. Painful.
( ଯଥା—ଆଜି ମୋ ମୁଣ୍ଡଟା ଭାରି ଲାଗୁଛି )
୭ । ପୀଡ଼ାଯୁକ୍ତ—7. Sick ( ଯଥା—
ଆଜି ମୋ ପେଟ ଭାରି ଲାଗୁଛି । ) ୮ । ଅସହ୍ୟ—8.
Unbearable. ଦେ. କ୍ରି. ବଣ—୧ । ଅତ୍ୟନ୍ତ—
1. Much. ୨ । ଅତ୍ୟଧିକ ଭାବରେ; ଅତିଶୟ—
বেরিয়ে 2. Too much; excessively. ୩ । ( କ୍ରିୟା
बाहर ସଙ୍ଗେ ଯୁକ୍ତ ହେଲେ; ଯଥା—ଚାଲ ଏଠାରୁ ଯିବା ଭାରି )
ବାହାର; କୌଣସି ସ୍ଥାନରୁ ବହିର୍ଗତ ହୋଇ—3. Out;
forth ( of a place ). ଦେ.ବ (ସ. ଭାର)—୧ ।
भार ଭାର; ଗୁରୁତ୍ୱ; ଓଜନ—1. Weight; heaviness.
ভার ( ଉ—ସେ ଯଣି ସେ ଘୋଡ଼ାଏ ରଘୁପତି ଭାର, ନ ସହି
ଶୋଚିଲେ ଭୂମିରେ ଅଶ୍ୱ ପାଦ । କୃଷ୍ଣସିଂହ. ମହାଭାରତ
भीड़ ବନ । ) ୨ । ଭିଡ଼; ଲୋକ ଗହଳ—2. Crowd
of men. ଗ୍ରା ( ଉତ୍ତର ) ବ ( ଭୁଲ. ବାଡ଼ ସ୍ଥଳରେ
ବାର)—ଭାଡ଼ି ( ଦେଖ )—Bhārdi ( See )

**ଭାରି(ରୁ)ଆ**—ଦେ. ବ ( ସ. ଭାରବାହ )—ଭାରବାହକ; ଯେ ବାହୁଙ୍ଗି
Bhāri(ru)ā ଦ୍ୱାରା କାନ୍ଧରେ ବୋଝ ବୁହେ—A person
ভারী carrying weights suspended from the
भारिआ ends of a yoke carried on the shoulder; a banghy-man.

**ଭାରିକ**—ସଂ. ବଣ. ପୁଂ ( ଭାର+ଅସ୍ତି ଅର୍ଥରେ ଇକ)—୧ । ଭାରବାହୀ
Bhārika —1. Carrying loads on the shoulder
(ଭାର –ଅନ୍ୟରୂପ) by means of a yoke. ୨ । ଭାରବିଶିଷ୍ଟ—
2. Heavy.

**ଭାରିଚେମା**—ଦେ. ବ—ବଡ଼ଚେମା; ଏକପ୍ରକାର କଉଡ଼ି ଖେଳ—
Bhārichemā A kind of Indian game of cowries.

**ଭାରିତ୍ୱ**—ଦେ. ବ—ଧୀରତା; ସହିଷ୍ଣୁତା—
Bhāritwa Patience; for bearance.

**ଭାରିବା**—ଗ୍ରା. କ୍ରି ( ସ. ବହିଃ )—ବାହାରିବା—To go out; to
Bhāribā come out. ( ଉ—ଶ୍ୟାମସୁନ୍ଦର ପଢ଼ନ୍ତି, ଚଉ-
বের হওয়া; বেরনো ଉଦରେ ଅଛି, ଲକ୍ଷ୍ମିଣୀ ବାପର ଭାରିବ ଗୋ ।
बाहर होना କବିସୂର୍ଯ୍ୟ. ସଙ୍ଗୀତ । )

**ଭାରିମଲ(ଲ୍ଲ)**—ଦେ. ବ ( ସ. ଭାର+ମଲ୍ଲ )—୧ । ପ୍ରାଚୀନ
Bhārimala(lla) ଓଡ଼ିଆ ରାଜାମାନଙ୍କ ପ୍ରଦତ୍ତ ଯୋଦ୍ଧାମାନଙ୍କ
ଉପାଧିବିଶେଷ—1. A title conferred on warriors by the ancient Oriya kings.
୨ । ଖୁବ୍ ଭାରି ବସ୍ତୁକୁ ଭୂମିରୁ ଉଠାଇବା ମଲ୍ଲ—
2. A champion of heavy weights

**ଭାରିଯା**—ଦେ. ବ. ସ୍ତ୍ରୀ ( ସ. ଭାର୍ଯ୍ୟା )—ସ୍ତ୍ରୀ; ମାଇପ—Wife.
Bhārijā [ ଉ—ଦଣ୍ଡକ ଅରଣ୍ୟରେ ଭାରିଯା ହରାଇ ।
ভার্য্যা; মাগী କୃଷ୍ଣସିଂହ. ମହାଭାରତ. ବନ । ] ଗ୍ରା. ଅ—
**जोरू; बेगम** ବାହାର ଯାଅ—Get out ! go out !
বেরিএযাও **बाहरयाओ**

**ଭାରିଯା କରିବା**—ଦେ. କ୍ରି—୧ । ପତ୍ନୀରୂପେ ଗ୍ରହଣ କରିବା;
Bhārijā karibā କୌଣସି ସ୍ତ୍ରୀକୁ ବିବାହ କରିବା—
বিবাহ করা 1 To marry a woman;
शादी करना to take a wife. [ ଉ—ଅଳ୍ପ
(ଘଇତା କରିବା—ବିପର୍ଯ୍ୟତ) ପଇର ବ ସାରୁ ପଡ଼ର, ସେ ବ ହୋଇବ
ଚେମନୀ କରା ପାନ ? ପଛରେ ଯାହାକୁ ଭାରିଯା କରିବ, ସେ ବ
**रखेलि रखना** ଜାଣିବ ମନ ? ଇତ । ] ୨ । କୌଣସି ସ୍ତ୍ରୀକୁ
ବିବାହ ନ କରି ତା ସଙ୍ଗେ ପତ୍ନୀରୂପେ ରହିବା ବା ସହବାସ
କରିବା—2. To live with a woman as one's wife without wedlock.

**ଭାରିଯା ତଳିଆ**—ଦେ. ବଣ. ପୁଂ ( ହେତ୍ୱର୍ଥ )—ସ୍ତ୍ରୀର ଅଜ୍ଞାବଶବର୍ତ୍ତୀ
Bhārijā taliā ( ବ୍ୟକ୍ତି ); ସ୍ତ୍ରୈଣ—Hen-pecked (husband).
(ଭାରିଯା ବୋଲକରା—ଅନ୍ୟରୂପ)
মাগের আঁচলধরা, মেগো **मौगियाह**

ଭାରି ଲାଗିବା—ଦେ. କ୍ରି—୧ । ଭାର ବୋଧହେବା—1. Feeling Bhāri lāgibā of heaviness. ୨ । ମାନ୍ଦ୍ୟପଡ଼ିବା; (ଭାର ବୋଧହେବା—ଅନ୍ୟରୂପ) ଶଙ୍କଳ ଥିବା ଘର ବା କେହି ଭାରଲାଗା ଲୋକ ଥିବାପରି ଜଣାପଡ଼ିବା—2. A feeling as भार लगाना if some people are present. [ଉ—ଚରମଭାଗ ମୋ ଭାରି, ଲାଗି ନାହିଁ ଭ୍ରମେ ଉରି, ଚମକର ନାହିଁ ମୋର ଖଣ୍ଡ—କବିସୂର୍ଯ୍ୟ. ବଳୋଶ୍ୱ ଚମ୍ପୂ, ଠ ଗୀତ ।] ୩ । (ଦେହ)ର ଅସୁସ୍ଥତା ବୋଧ—3. A feeling of sickishness.

ଭାରି—ସଂ. ବିଣ. ପୁଂ (ଭାର+ଇନ୍; ୧ମା. ୧ବ)—ଭାରିକ (ଦେଖ)—Bhāri (ଭାରିଣୀ—ସ୍ତ୍ରୀ) Bhārika (See).

ଭାରୁଆଲି—ଦେ. ବି—ଭାରୁଆ (ଦେଖ)—Bhāruāli Bhāriā (See)

ଭାରୁ(ରୋ)ଇ—ଦେ. ବି (ସଂ. ଭରଦ୍ୱାଜ)—ଭରଦ୍ୱାଜ ପକ୍ଷୀ—Bhāru(ro)i The lark; the grey quail; Cocomantis Merulenus. [ଦ୍ର—ଏହା ଖାଖାଶ୍ରଗ୍ରୀ ଭାରୁଇ ବର୍ଗର ପକ୍ଷୀ; ୧୦।୧୨ ଅଙ୍ଗୁଳ ଦୀର୍ଘ । ଏହାର ମୁଣ୍ଡ ଲମ୍ବା ପାଉଁଶିଆ ଓ ପକ୍ଷ ଶରଙ୍ଗ । ଏହା ବଣବୁଦାରେ ରହେ । ]

ଭାରୁଣ୍ଡ—ସଂ. ବି—୧ । ଭାରଣ୍ଡ ( ଦେଖ )—1. Name of a Bhārunda fabulous bird. ୨ । ରାମାୟଣୋକ୍ତ ପ୍ରାଚୀନ ବନବିଶେଷ—Name of a forest mentioned in the Rāmāyana. [ ଦ୍ର—ଏ ପଞ୍ଜାବର ସରସ୍ୱତୀ ନଦୀର ନିକଟରେ ଥିଲା ହି. ଶ ]

ଭାର୍ଗଣ—ସଂ. ବି—ପାଣ୍ଡବପକ୍ଷୀୟ ଜନୈକ ଯୋଦ୍ଧା—Name of a Bhārgana warrior fighting for the Pāndabas. [ ଉ—ସୂର୍ଯ୍ୟ ଅଗ୍ନି ପର୍ଯ୍ୟନ୍ତେ ଶରଶାଏ ଦ୍ରୋଣ, ସଙ୍ଗଲେ ସହୁପାରେ ପଡ଼ିଲେ ଭାର୍ଗଣ—କୃଷ୍ଣସିଂହ. ମହାଭାରତ ଦ୍ରୋଣ ।]

ଭାର୍ଗବ—ସଂ. ବି. ପୁଂ (ଭୃଗୁ=ମୁନିବିଶେଷ+ଅପତ୍ୟାର୍ଥରେ ଅ)—୧ । Bhārgaba ଭୃଗୁମୁନିଙ୍କ ବଂଶଧର—1. A descendant of sage Bhrugu. ୨ । ଶୁକ୍ରାଚାର୍ଯ୍ୟ—2. The preceptor of the demons. ୩ । ଦକ୍ଷ ପ୍ରଜାପତିଙ୍କ ପୁରୋହିତ—3. Name of the priest of Daksha. ୪ । ପରଶୁରାମ—4. Parasurāma. ୫ । ମାର୍କଣ୍ଡେୟ ଋଷି—5. Sage Mārkandeya. ୬ । ହସ୍ତୀ—6. Elephant. ୭ । ଶ୍ୟୋନାକ; ଫଣଫଣା (ହି. ଶ)—7. Bignonia Indica. ୮ । କୁମ୍ଭାର (ହି. ଶ)—8. Potter. ୯ । ହୀରା (ହି. ଶ)—9. Diamond. ସଂ. ବିଣ—୧ । ଧାନୁଷ୍କ; ଧନୁର୍ଦ୍ଧର—1. Holding a bow. ୨ । ଭୃଗୁ ସମ୍ବନ୍ଧୀୟ—2. Relating to Bhrugu.

ଭାର୍ଗବୀ—ସଂ. ବି (ଭୃଗୁ+ଅ+ସ୍ତ୍ରୀ. ଈ)-୧ । ପାର୍ବତୀ—1. Pārbatī. Bhārgabī ୨ । ଲକ୍ଷ୍ମୀ—2. Goddess of fortune. ୩ । ଦୂର୍ବା—3. The Creeping grass. ଦେ. ବି—ଓଡ଼ିଶାର ପୁରୀ ଜିଲ୍ଲାରେ ପ୍ରବାହିତ ନଦୀବିଶେଷ—The name of a river in Orissa. (ଉ—ଭାର୍ଗବୀ, ସ୍ୱର୍ଗର ସୁଗମ ନିଃଶ୍ରେଣୀ, ମନୋହର ଯାର ନୀଳ ନୀରବେଣୀ । ରାଧାନାଥ. ଚିଲିକା । ) [ ଦ୍ର—ଏହା ପୁରୀ ଜିଲ୍ଲା ବାଲକାଟିଠାରୁ ଭୁଆଁଶାଇ ନଦୀରୁ ବାହାରି ଚିଲିକାରେ ପଡ଼ିଅଛି ] । ପ୍ରାଦେ. (ସମ୍ବଲପୁର) ବି—କନ୍ଦାରୁ ଜନ୍ମିବା ଏକପ୍ରକାର ଗୁଳ୍ମ—A kind of plant growing from bulbs.

ଭାର୍ଗୀ(ର୍ଙ୍ଗୀ)—ସଂ. ବି—ବ୍ରାହ୍ମଣଯଷ୍ଟି ନାମକ ଗୁଳ୍ମ; ବାମ୍ଭଣହାଟିଆ—A Bhārgī(rngī) medicinal plant; Clerodendron (ଭୃଙ୍ଗୀ—ଅନ୍ୟରୂପ) Syphonanthus.

ଭାର୍ଜନ—ଗ୍ରା. ବିଣ (ସଂ. ଭାଜନ)—୧ । ଭାଜନ; ଯୋଗ୍ୟ—1. DeseBhārjana भाजन; भाजन rving; fit for. ୨ । ଭୋଗୀ; ଭୋଗ କରିବା ଯୋଗ୍ୟ—2. Liable to experience. (ଉ—ଏରୂପେ ଯେତିକରେ ଦର୍ଶନ । ସେ ଦୁଃଖେ ନୁହନ୍ତି ଭାର୍ଜନ—ଜଗନ୍ନାଥ. ଭାଗବତ ।)

ଭାର୍ଯ୍ୟା—ସଂ. ବି. ସ୍ତ୍ରୀ ( ଭୃ ଧାତୁ=ପୋଷିବା+କର୍ମଣି+ସ୍ତ୍ରୀ. ଆ; Bhārjyā ଯାହାକୁ ସ୍ୱାମୀ ପୋଷଣ କରେ)—୧ । ପତ୍ନୀ; ସ୍ତ୍ରୀ—1. Wife ୨ । ବିବାହିତା ସ୍ତ୍ରୀ—2. One's wedded or lawful wife.

ଭାର୍ଯ୍ୟାଜିତ—ସଂ. ବିଣ. ପୁଂ (ଜଣ୍ଡା ତତ୍)—ସ୍ତ୍ରୀବଶ (ପୁରୁଷ)—Bhārjyājita Hen-pecked (husband).

ଭାର୍ଯ୍ୟାଟ—ସଂ. ବି. ପୁଂ (ଭାର୍ଯ୍ୟା+ଅଟ୍ ଧାତୁ+କର୍ତ୍ତୃ. ଅ; ଯେ ଭାର୍ଯ୍ୟାBhārjyāta ଦ୍ୱାରା ଅପଣାର ଜୀବିକା ନିର୍ବାହ କରେ)—ଭାଉଦା; ଯେଉଁ ବ୍ୟକ୍ତି ଅର୍ଥାତ୍ ଲୋଭରେ ଅପଣାର ସ୍ତ୍ରୀକୁ ପରପୁରୁଷର ଉପଭୋଗ ନିମନ୍ତେ ଛାଡ଼ିଦିଏ; ଭାର୍ଯ୍ୟାର ଜଡ଼ାଖିଆ—A person who lives on the earnings of his wife's adultery; a person who lets his wife be enjoyed by another for consideration.

ଭାର୍ଯ୍ୟାଟିକ—ସଂ. ବିଣ. ପୁଂ (ଭାର୍ଯ୍ୟା+ଅଟ ଧାତୁ+କର୍ତ୍ତୃ ଇକ)—ଅପଣା Bhārjyātika ଭାର୍ଯ୍ୟାଠାରେ ଅତ୍ୟନ୍ତ ଅନୁରକ୍ତ; ସ୍ତ୍ରୈଣ (ହି.ଶ)—( a person ) Devoted to his wife; hen-pecked.

ଭାର୍ଯ୍ୟାବନ୍ତ—ଦେ. ବିଣ (ସଂ ଭାର୍ଯ୍ୟା+ବନ୍ତ)—ଯାହାର ଭାର୍ଯ୍ୟା ଅଛି—Bhārjyābanta Having a wife; married. (ଉ—ଭାରିଯା ଯାର ଅଛି ତାର ଘର । ଭାର୍ଯ୍ୟାବନ୍ତ ଲୋକର ଅନନ୍ଦ ନିରନ୍ତର—କୃଷ୍ଣସିଂହ. ମହାଭାରତ. ଆଦି ।)

ଭାର୍ଯ୍ୟାବୃକ୍ଷ—ପତଙ୍ଗ ବୃକ୍ଷ (ହି. ଶ) ବକମ ଗଛ—Sappan wood Bhārjyā bruksha (tree).

ଭାଲ(ଲୁ)ଚୁକା ଦେବା—ପ୍ରାଦେ. ( ଯାଜପୁର ) କ୍ରି—ଧକ୍କା ମାରିବା—Bhāla(lu)chukā debā To deceive; to cheat.

ଭାଲ—ସଂ. ବି (ଭା ଧାତୁ=ପ୍ରାପ୍ତି ପାଇବା+କର୍ତ୍ତୃ ଲ)—୧ । ଲଲାଟ; Bhāla କପାଳ; ମସ୍ତକର ସମ୍ମୁଖସ୍ଥ ଉପରଭାଗ—1. Forehead.

୨ । କର୍ମ; ଅଦୃଷ୍ଟ—2. Luck; lot; fortune.
୩ । ଆଭା; ଦୀପ୍ତି—Lustre. ଦେ. ବ (ସଂ ଭଲ୍ଲ)
୧ । ଭାଲି; ବର୍ଚ୍ଛା—1. A spear. (ଭୂ— ଚାଲେକ ପୂରଭାଳୀ; भाला,भाल ବାମ "ହାତରେ ଭାଲ—ଜଗନ୍ନାଥ· ସମରତରଙ୍ଗ)
୨ । ଶରର ଫଳକ—2. The blade or head of an arrow.

ଭାଲକୁଣୀ (ଇତ୍ୟାଦ)—ଦେ. ବ—ଭାଲୁକୁଣୀ ଇତ୍ୟାଦ (ଦେଖ)—
Bhālakuṇī(etc) Bhālukuṇī etc, (See).

ଭାଲଚନ୍ଦ୍ର—ସଂ. ବ(ବହୁବ୍ରୀହି; ଭାଲ+ଚନ୍ଦ୍ର)—୧ । ମହାଦେବ;ଶିବ—
Bhāla chandra 1. Siba. ୨ । ଗଣେଶ—2. Gaṇeśa.

ଭାଲ(ଲେ)ଣା(ଣି)—ଦେ. ବ (ସଂ. ଭାବନା)—୧ । ଚନ୍ତା; ମନର
Bhāḷa(ḷe)ṇā(ṇi) ବ୍ୟାକୁଳତା—1. Anxiety. ୨ । चिन्ता; आफशोस चिन्ता, अफसोस ଭାବନା—2. Thought.

ଭାଲ ଦର୍ଶନ ସଂ. ବ— (ବହୁବ୍ରୀହି; ଭାଲରେ ଦର୍ଶନ=ଚକ୍ଷୁ ଯାହାଙ୍କର)—
Bhāla darśana ୧ । କପାଲଲୋଚନ; ମହାଦେବ—1. Siba
୨ । ସିନ୍ଦୂର—2. Vermilion.

ଭାଲ ପଟ୍ଟ(ଟ)—ସଂ· ବ—( ରୂପକର୍ମଧାରୟ; ଭାଲରୂପ ପଟ୍ଟ=ପଟା)—
Bhāla paṭṭa(ṭa) କପାଳର ସମ୍ମୁଖଭାଗ—The brow; the plate of the forehead; the bone of the forehead. ଦେ. ବ—(ଲକ୍ଷଣାର୍ଥ) କର୍ମ; ଅଦୃଷ୍ଟ—
(ଭାଲଫଳକ—ଅନ୍ୟରୂପ) 2. (figurative) Luck; lot.

ଭାଲପଟ୍ଟ ଲେ(ଲି)ଖନ—ସଂ. ବ—ବିଧାତାଙ୍କ ଲେଖା; ଅଦୃଷ୍ଟ ଲେଖନ;
Bhālapaṭṭa le(li)khana ମନୁଷ୍ୟର କର୍ମରେ ଲେଖାଥିବା ବିଷୟ—The scribblings written on the forehead by the Creatar at one's birth. [ ଦ୍ର— ହିନ୍ଦୁଙ୍କର ବିଶ୍ୱାସ ଯେ ପ୍ରତ୍ୟେକ ମନୁଷ୍ୟର ଜନ୍ମ ପୂର୍ବରୁ ବିଧାତା ତାହାର ଭାଲପଟ୍ଟରେ ଭବିଷ୍ୟତ୍ ଜୀବନର କର୍ମ ଓ ବ୍ୟକ୍ତିଗତ ଘଟଣାମାନ ଲେଖି ଦଅନ୍ତି । ]

ଭାଲ—ପ୍ରାଦେ. ( ସମ୍ବଲପୁର ) ବ ( ସଂ. ଭଲ୍ଲାତକ )—ଭାଲିଆ—
Bhāla Marking nut.

ଭାଲାଙ୍କ—ସଂ. ବ ( ଭାଲ+ଅଙ୍କ )—୧ । କରତ ( ହି. ଶ )—
Bhālāṅka 1. Saw. ୨ । ଏକପ୍ରକାର ଶାଗ ( ହି. ଶ )—
2. A kind of potherb. ୩ । ରୋହିମାଛ ( ହି. ଶ )—3. Rohi fish. ୪ । କଇଁଛ ( ହି. ଶ )—
4. Tortoise. ୫ । ଶିବ ( ହି. ଶ )—5. Siba.
୬ । ( ସାମୁଦ୍ରିକ ) ଦେହରେ ବହୁ ଶୁଭସୂଚକ ଲକ୍ଷଣଯୁକ୍ତ ପୁରୁଷ (ହି. ଶ )—6. A person bearing many auspicious signs on the body.

ଭାଲି(ଲୀ)—ଦେ. ବ ( ସଂ. ଭଲ୍ଲ )—ଭଲ୍ଲାସ୍ତ୍ର; ଭଲ୍ଲ ନାମକ ଅସ୍ତ୍ର; ବର୍ଚ୍ଛା—
Bhāli(lā) 1. Spear; javelin. ୨ । ଏକପ୍ରକାର ଅର୍ଦ୍ଧଭାଳୀ भाला ଚନ୍ଦ୍ରାକୃତି କାଣ୍ଡ—2. A crescent-headed arrow. [ ଭୂ—ବ ଚଞ୍ଚଳ ଭାବ ଥିଲା କାଲି, ବାଜି ଭୁମ୍ଭ ଅଙ୍ଗ ସଙ୍ଗ ଭାଲି—କବିସୂର୍ଯ୍ୟ. ସଙ୍ଗୀତ । ]

ଭାଲିଆ—ଦେ. ବ ( ସଂ. ଭଲ୍ଲାତକ )—୧ । ଅମୃତ ବର୍ଗର
Bhāliā ମଧ୍ୟମାକୃତି ତରୁବିଶେଷ ଓ ତାହାର ଫଳ—1. Marking nut; Semicarpus Anacardium.
ସଂ. ଅନ୍ୟ ନାମ—ଅରୁଷ୍କର, ଅଗ୍ନିମୁଖୀ, ବୀଜାର, କୃମିଘ୍ନ,
मिलावाँ, मिलावा, मेला, मिलौवा
भाला, भेला, भालिया, भेलातकि
ତା. ଶେନ୍ଦୋଭାଲ, ତେଲ୍ଲୋଜେଡ଼ି
[ ଦ୍ର—ଏହାର କାଠ କୋମଳ, ପତ୍ରର ଜନ୍ମସୂତ୍ର ଲୋମଶ; ପ୍ରାୟ ଶାଖାଗ୍ରରେ ପକ ଥାଏ; ବସନ୍ତକାଳରେ ପତ୍ର ଝଡ଼େ; ଫଳ କୃଷ୍ଣ ବା ଅରକ୍ତ କୃଷ୍ଣବର୍ଣ୍ଣ, ଫଳର ଜନ୍ମ ଦେଶରେ ନାରଙ୍ଗ ବର୍ଣ୍ଣ ଆମ୍ବ ପରି ଅବୃନ୍ତଵିଶିଷ୍ଟ ସ୍ଥୂଳ ବୃନ୍ତ ଥାଏ ଓ ତାହାର ତେ ଜାତ୍ଵରୁକ୍ତ, ଜଳମାଡ଼ି ମଞ୍ଜି ପୋଡ଼ି କରି ମନୁଷ୍ୟ ଖାଆନ୍ତି । ଫଳର ରସ ଦେହରେ ଲାଗିଲେ ଘା ହୁଏ; ଏଥର ବ, ଝାଡ଼ା ଫେରିବା ଯାଗାରେ ସେ ଫଳକୁ କାଟି କରି ପକାଇଲେ ପୋକର କରିବା ଲୋକର ମଳଦ୍ୱାରରେ ଘା ହୋଇଯାଏ । ଚୂନପାଣି ସଙ୍ଗେ ଏ ଫଳର ରସକୁ ମିଶାଇ ଧୋବାମାନେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଲୁଗା ଚିହ୍ନିବା ପାଇଁ କଳାଦାଗ ଲଗାନ୍ତି । ଭାଲିଆ ଦୁଇପ୍ରକାର; କଳା ଭାଲିଆ, ଲଙ୍କା ଭାଲିଆ । ] ୨ । ସ୍ତନର ରୋଗବିଶେଷ—
2. A disease of women's breast.
ପ୍ରାଦେ. ( ଗଞ୍ଜାମ )—ଲଙ୍କାଆମ୍ବ—Cashew nut.

ଭାଲିଆଖାଇ—ଦେ. ବ—କୋଚିଲାଖାଇ ପରି ଏକପ୍ରକାର ପକ୍ଷୀ—
Bhāliākhāi A kind of bird like the hornbill.
( ଭାଲ୍ୟାଖାଇ—ଅନ୍ୟରୂପ )

ଭାଲିଆ ଚାଉଳ—ଦେ. ବ—ଭାଲିଆ ଫଳ ଭିତରେ ଥିବା ଶସ—
Bhāliā chāula The kernel inside the marking
( ଭାଲ୍ୟା ଚାଉଳ—ଅନ୍ୟରୂପ ) nut. ପ୍ରାଦେ ( ଗଞ୍ଜାମ )—
ପୋଡ଼ା ଲଙ୍କାଆମ୍ବ ଭିତରୁ ବାହାରିବା ସୁଆଦିଆ ଶସ—
The sweet kernel inside burnt cashew nut

ଭାଲିକାଣ୍ଡ—ଦେ· ବ ( ସଂ. ଭଲ୍ଲକାଣ୍ଡ )—ଭଲ୍ଲ ପରି ଦାଢ଼ୁଆକାଣ୍ଡ;
Bhālikāṇḍa ଏକପ୍ରକାର ଶର—A kind of arrow भालाकाँड with a flat sharp head. ( ଭୂ— ବାଟରେ ଜାନ୍ତିସାର୍ଯ୍ୟ ରଜାଙ୍କୁ ଦେଖିଲେ, ଭାଲିକାଣ୍ଡେ ଆଗ ବାହୁକୁଟ କାଟଲେ—କୃଷ୍ଣସିଂହ. ମହାଭାରତ.ବନ ।)

ଭାଲିବା—ଦେ. କ୍ରି ( ସଂ. ଭୂ ଧାତୁ ଣିଚ୍ ଭାବ ଧାତୁ )—୧ । ବିବେଚନା
Bhāḷibā କରିବା—1. To consider. ( ଭୂ—ଶିଅଲି ଭାବା भावना, सोचना ପରି ବ ଧନ ! ମନରେ ଭାଳିଲୁ ରେ— କବିସୂର୍ଯ୍ୟ. କଶୋରୀଚନ୍ଦ୍ର. ଶ-ଗୀତ । ) ୨ । ପରାମର୍ଶ କରିବା—2. To consult. ( ଭୂ—ଏବେ ତୁମ୍ଭେ ବାପଙ୍କ ସଙ୍ଗେ ଯାଇଁ ଭାଳ—କୃଷ୍ଣସିଂହ. ମହାଭାରତ ବନ । ) ୩ । ଭାବିବା; ଚନ୍ତା କରିବା—3. To think. ୪ । ଚନ୍ତିତ ହେବା—4. To be anxious or uneasy. ( ଭୂ—ଦେଖି ସହଦେବ ବସିଲେ ମନେ ଭାଳି—କୃଷ୍ଣସିଂହ. ମହାଭାରତ. ବନ । )
୫ । ଅନୁତାପ କରିବା—5. To regret; to repent.

ଭାଳି ଭାଳି—ଦେ. କ୍ରି. ବିଣ—କରୁ ବିବେଚନା କରି; ଭାବି ଭାବି; କରୁ ଚନ୍ତା ପୂର୍ବକ—After mature consideration. ( ଉ—ଗୁନ୍ଥି ଫୁଲମାଳୀ ମାଳୀ, ପ୍ରାପ୍ତେ ପାଛି ଭୁଳ ଭୁଳ, କେ ଚତୁ ଲେଖିବି ଭାଳ ଭାଳ—ଭଞ୍ଜ. ପ୍ରେମସୁଧାନିଧି । )
Bhāli bhāli
ଭେବେ ଭେବେ
**सोच सोचकर**

ଭାଲୁ—ଦେ. ବି ( ସଂ. ଭଲ୍ଲ, ଭଲ୍ଲୁକ, ଭାଲୁକ )—୧ । କୃଷ୍ଣବର୍ଣ୍ଣ ବଡ଼ ଲୋମଯୁକ୍ତ ବନ୍ୟ ହିଂସ୍ର ଚତୁଷ୍ପଦ—1. The bear; Melursus Ursinus. [ ଦ୍ର—ଏମାନେ ଗୁର ଗୋଡ଼ରେ ଓ ବେଳେ ବେଳେ ଦୁଇ ପଛ ଗୋଡ଼ରେ ଗ୍ଲଲନ୍ତି । ଏମାନେ ଫଳ ଓ କୀଟ ଖାଆନ୍ତି; ଉଇ ହୁଙ୍କାକୁ ଆଗଗୋଡ଼ର ନଖଦ୍ୱାରା କଣା କରି ଚହିଁରୁ ଉଇମାନଙ୍କୁ ଶୋଷି ନିଅନ୍ତି । ଏମାନଙ୍କର ନଖ ଖୁବ୍ ବଡ଼ ବଡ଼ । ବନ୍ୟଅଞ୍ଚଳରେ ଏମାନେ ଅଖୁକିଆରିରେ ପଶି ଅଖୁ ଗଛକୁ ଚୋବାଇ ରସ ଖାଆନ୍ତି । ପ୍ରବାଦ ଅଛି ଯେ ଏମାନଙ୍କ ଜିଭ କଣ୍ଟକମୟ ଓ ଏମାନେ ମନୁଷ୍ୟ ଦେହକୁ ଗ୍ଲଟିଦେଲେ ହାଡ଼ରୁ ମାଂସଯାକ ଖସି ହୋଇ ବାହାରି ଯାଏ । ଏମାନଙ୍କୁ ଶୁକ୍ରବାର ଦିନ ଅଳ୍ପକାଳସ୍ଥାୟୀ କମ୍ପଜ୍ୱର ହୁଏ । ଲୋକେ ଭାଲୁଙ୍କୁ ଯୋଷି ନାଚ କରିବାକୁ ଶିଖାନ୍ତି ।
Bhālu
ଭାଲୁକ
**भालू**

ଭାଲୁ ଉଇମାନଙ୍କୁ ନିର୍ମୂଳ କରି ଶୋଷି କରି ନିଏ । ମଲ୍ଲ ଭାଲୁର ଚମ ଖଣ୍ଡିଏ ଭୂଇଁରେ ପୋତି ଦେଲେ ଅତି ଅଳ୍ପ ସମୟ ମଧ୍ୟରେ ସେ ଚମ ଖଣ୍ଡିକୁ ଉଇ ଘେରି ଯାଆନ୍ତି । ଏଥିପାଇଁ ଆଖୁକିଆରିରେ ଉଇ ଲାଗିଲେ ଲୋକେ କିଆରି ନିକଟରେ ଗୋଟିଏ ସ୍ଥାନରେ ଖଣ୍ଡିଏ ଭାଲୁ ଚମ ପୋତି ଦିଅନ୍ତି । ନିକଟବର୍ତ୍ତୀ ସବୁ ଉଇଯାକ ସେହି ଭାଲୁ ଚମ ନିକଟରେ ଜମା ହୋଇଗଲେ କ୍ଷେତ୍ରସ୍ୱାମୀ ସେହି ସ୍ଥାନସ୍ଥ ଖୋଳ ସବୁ ଉଇଗୁଡ଼ିକୁ ନଷ୍ଟ କରିଦିଏ ଓ ଏପରି କରିବାଦ୍ୱାରା ଅଖୁ କିଆରିରୁ ଉଇଯାକ ବିନଷ୍ଟ ହୁଅନ୍ତି ।

ଶୀତପ୍ରଧାନ ଦେଶର ଭଲ୍ଲୁକମାନଙ୍କ ଲୋମ ଧଳା ଓ ଉକ୍ତ ଶ୍ୱେତ ଭଲ୍ଲୁକକୁ ଧଳା ଭାଲୁ ( white bear of the polar regions ) କହନ୍ତି । ଭାଲୁଜାତୀୟ ଏକ ପ୍ରକାର କ୍ଷୁଦ୍ର ଜନ୍ତୁ ଭୂମିରେ ଗର୍ତ୍ତ କରି ବସା କରନ୍ତି । ଏମାନଙ୍କୁ ଗାଡ଼ ଭାଲୁ ( The jungly bear, sloth bear ବା Melursus Labiatus କହନ୍ତି । ] ୨ । ପୁଂ. ଅପତ୍ରିଆଣୀଙ୍କୁ ଦିଆଯିବା ନାମ—2 A name given to male children whose birth has been preceded by the death of their elder brother or sister

ଭାଲୁଆ—ଦେ. ବିଣ—ଭାଲୁ ପରି ଘନ ଓ ବଡ଼ ଲୋମଯୁକ୍ତ—Having shaggy hairs like the bear; shag-haired.
Bhālua
ଭାଲୁକେର ମତନ **भालुआ**

ଭାଲୁ(ଲୂ)କ—ସଂ ବି ( ଭଲ ଧାତୁ=ବଧ କରିବା+କର୍ତ୍ତୃ. ଉକ୍, ଊକ୍ )—ଋକ୍ଷ; ଭାଲୁ—The bear
Bhalu(lū)ka

ଭାଲୁ କାନ୍ଦ—ଦେ. ବି ( ସ. ଭାଲୁକ+କ୍ରନ୍ଦନ )—ମନୁଷ୍ୟର ଆର୍ତ୍ତ କ୍ରନ୍ଦନ ପରି ଆହତ ଭାଲୁର କାନ୍ଦଣା—The plaintive moan of a wounded bear which has a peculiar resemblance with the wail of a human being.
Bhālu kānda
ଭାଲୁକେର କାନ୍ଦନା
**भालुका रोना**
( ଭାଲୁ କାନ୍ଦଣା—ଅନ୍ୟରୂପ )

ଭାଲୁକି—ଦେ. ବି—ଋଷିବିଶେଷ (ବାଲ୍କି? )—A sage bearing this name ( ଉ—ନାରଦ, ଯାମଦଗ୍ନ୍ୟ, ଭାଲୁକି, ଦ୍ୱୈପାୟନ—କୃଷ୍ଣସିଂହ. ମହାଭାରତ, ବନ । )
Bhāluki

ଭାଲୁକୁଣୀ—ଦେ.ବି-୧। ବାଳକାମାନଙ୍କର ଗୋଟିଏ ଓଷା—1. A festival observed by girls in the month of Bhādraba, accompanied with dancing with dishevelled hair. [ ଦ୍ର—ଏ ଓଷାରେ ବାଳକାମାନେ ଭାଦ୍ରବ ମାସର ପ୍ରତି ରବିବାର ଦିନ ଚିଙ୍ଗି ମୁଣ୍ଡକୁ ପୂଜା କରି ସେଠାରେ ମୁଣ୍ଡମାନ ମୁକୁଳା କରି ଗୀତ ଗାଇ ଗାଇ ନାଚନ୍ତି । ] ୨ । ( ଲକ୍ଷଣାର୍ଥ ) ଯେଉଁ ସ୍ତ୍ରୀର ବାଳ ମୁକୁଳା ଓ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥାଏ—2. A woman with dishevelled hair.
Bhālukuṇī

ଭାଲୁକୁଣୀ ଓଷା—ଦେ. ବି.—ଭାଲୁକୁଣୀ (୧) ଦେଖ
Bhālukuṇī oshā Bhālukuṇī (1) See.

ଭାଲୁକୁଣୀ ମୁଣ୍ଡୀ—ଦେ. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀର କେଶ ତୈଳ ଓ କଙ୍କତିକା ଦ୍ୱାରା ସଯତ୍ନ ନ ହୋଇ ଅଡ଼ୁଆ ହୋଇ ମୁଣ୍ଡର ଏଣେ ତେଣେ ପଡ଼ି ଥାଏ—(a woman) With dishevelled and uncared and uncombed hair.
Bhālukuṇī muṇḍī

ଭାଲୁ ଜ(ଚ)ଟା—ଦେ. ବି— ଏକ ପ୍ରକାର ସରୁ ଧାନ—A species of fine paddy.
Bhālu ja(cha)ṭā

ଭାଲୁ ଜର—ଦେ. ବି—ଭାଲୁକୁ ଶୁକ୍ରବାର ଦିନ ଆକ୍ରମଣ କରିବା ଅଳ୍ପକାଳ ସ୍ଥାୟୀ ଗାଢ଼ କମ୍ପ—A shivering ague attacking bears on fridays.
Bhālu jara
ଭାଲୁକ ଜର **भालुका बुखार**

ଭାଲୁ ଜାମୁ—ଦେ. ବି—ଏକ ପ୍ରକାର ଜାମୁ—Eugenia Fruticosa.
Bhālu jāmu

ଭାଲୁ(ଲେ)ଣି—ଦେ. ବି— (ସଂ ଭାବନା)—୧ । ମହାଚନ୍ତା; ଉତ୍କଣ୍ଠା; ଦୁଶ୍ଚିନ୍ତା—1. A great anxiety. ୨ । ଭାବନା ଚନ୍ତା—2. Thought. [ଉ—ଏମନ୍ତେ ହରି ବାକ୍ୟ ଶୁଣି, ଆନନ୍ଦେ କରଇ ଭାଲେଣି । ଜଗନ୍ନାଥ. ଭାଗବତ । ] ୩ । ପରାମର୍ଶ—3. Consultation. [ ଉ—ଏଥୁ ଅନନ୍ତରେ ଯୁଧିଷ୍ଠିର ନରମଣି, ଭାଇଙ୍କ ଭୁଲେ ବସି କଲେ ଏ ଭାଲୁଣି—କୃଷ୍ଣସିଂହ. ମହାଭାରତ ।]
Bhālu(le)ṇi
ଭାବନା **भावना**

ଭାଲୁ ଧରା(ରେ)ଇବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ବିପଦର ମୁହଁରେ ପକାଇ ଦେବା—1. To
Bhālu dharā(re)ibā

বিপদে ফেলা **इंटामे फसाना** cause a person fall in-
[ଭାଲୁ ଧର(ରେ)ଇ ଦେବା—ଅନ୍ୟରୂପ] to a danger. ୨ । କୌଣସି ବିପନ୍ନ ସଙ୍ଗୀଙ୍କୁ ବିପନ୍ନ ଅବସ୍ଥାରେ ଛାଡ଼ି ଦେଇ ଚାଲି ଆସିବା—2. To leave a companion helpless in a perilous situat on. ୩ । କୌଣସି କଷ୍ଟକର କାର୍ଯ୍ୟରେ ବା ଦାୟିତ୍ୱରେ କୌଣସି ଲୋକକୁ ଭରତି କରି ଦେଇ ହଇରାଣ କରିବା—3. To harass a person by engaging him in a business presenting insuperable difficulties and of great responsibility.

ଭାଲୁ ପୋକ—ପ୍ରାଦେ. ( ସମ୍ବଲପୁର ) ବି—[ ଭୁଲ. ଏହି ଶବ୍ଦର ଇଂ.
Bhālu poka wooly bear (ଲୋମଶ ଭାଲୁ)]—ସମ୍ବାଳୁଅ—Caterpillar; wooly bear.

ଭାଲୁ ଶୋଷା—ଦେ. ବି—(ସଂ. ଭାଲୁକ + ଶୋଷଣ) (ଲକ୍ଷଣାର୍ଥ ) (ଭାଲୁ
Bhālu śoshā ଉଇ ହୁଙ୍କାରେ ମୁହଁ ପୁରାଇ ଖୁବ୍ ଜୋରରେ ନିଃଶ୍ୱାସ ଟାଣି ନେବାଦ୍ୱାରା ଉଇମାନଙ୍କୁ ଶୋଷି କରି ଖାଇବାପରି) ଗଭୀର ଶୋଷଣ କ୍ରିୟା—(figurative) Act of dee p sucking ( like a bear sucking in ants from an ant-till through a hole ). ବିଣ—୧ । ଭାଲୁ ପରି ଶୋଷଣକାରୀ—1. Sucking anything deeply ( like the bear sucking ants.) ୨ । (ଲକ୍ଷଣାର୍ଥ) ଅତି ଲୋଭୀ—2 (figurative) Very avaricious. ୩ । ଅତ୍ୟନ୍ତ ଧନ ଶୋଷଣକାରୀ—3. Extortionate.

ଭାଲେରି—ଦେ. ବି—ଚିଲିକା କୂଳସ୍ଥ ଗୋଟିଏ ପର୍ବତ, [ଏହା ପୁରୀ ଓ
Bhāleri ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ]—A hill on the shore of the Chilka lake [ ଉ—ଶୋଭେ ଶୋଭାମୟ ଭୂଧର ଭାଲେରି । ରାଧାନାଥ. ଚିଲିକା । ]

ଭାଲ୍ୟୁ ପେବଲ୍—ବୈଦେ. ବି ( ଇଂ. ଭାଲ୍ୟୁପେଏବଲ୍ )—ଡାକରେ
Bhālyu pebal ପ୍ରେରିତ ବସ୍ତୁକୁ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ନିକଟରେ
ভালুপেএবল ପହଞ୍ଚାଇ ତାଙ୍କ ଠାରୁ ପ୍ରେରକ ସ୍ଥିର କରିଥିବା ମୂଲ୍ୟ
**वेल्यु पेबल** ଓ ଡାକ ମାସୁଲ ଆଦାୟ କରି ପ୍ରେରକଙ୍କ ପାଖକୁ ପଠାଇବାର ଡାକବିଭାଗୀୟ ରୀତି; ଡାକ ବିଭାଗର 'ଦେବିଉଡ଼୍, ଏ। ପିଠ।' ରୀତି ।—The Value-payable postal system.

ଭାଷ୍ (ଧାତୁ)—ସଂ.—କହିବା—
Bhāsh (root) To speak.

ଭାଷ—ସଂ. ବି (ଭାଷ୍ ଧାତୁ+ଭାବ. ଅ)—୧ । ଉକ୍ତି; କଥନ—
Bhāsha 1. Utterance; speaking. ୨ । +କର୍ମ. ଅ) ବାକ୍ୟ; କଥା; ବଚନ—2. Word. [ ଉ—ଭୂମି ଭର ନ କହି ମୋତେ ଭାଷ । କୃଷ୍ଣସିଂହ. ମହାଭାରତ ବନ । ] ୩ । (+କରଣ. ଅ) ଭାଷ୍ୟ; ଟୀକା ଗ୍ରନ୍ଥ—3. Commentary.

ଭାଷକ—ସଂ. ବିଣ. ପୁଂ—( ଭାଷ୍ ଧାତୁ+କର୍ତ୍ତୃ. ଅକ )—କଥକ, ଯେ
Bhāshaka କହେ—(ଭାଷିକା—ସ୍ତ୍ରୀ) Speaking.

ଭାଷଜ୍ଞ—ସଂ. ବିଣ. ଓ ବି. ପୁଂ—ଭାଷାରେ ଅଭିଜ୍ଞ (ହି. ସ)—
Bhāshajña Linguist; adept; in the study of
(ଭାଷଜ୍ଞା—ସ୍ତ୍ରୀ) languages; philologist.

ଭାଷଣ—ସଂ. ବି—(ଭାଷ୍ ଧାତୁ+ଭାବ ଅନ)—୧ । କଥନ; କହିବା—
Bhāshaṇa 1. Speaking; utterance. ୨ । (+କର୍ମ. ଅନ) ଉକ୍ତି; ବାକ୍ୟ; ବକ୍ତୃତା—2. Speech; words and sentences. ୩ । ଗପିବା—3. Talking. [ଦ୍ର—ଏହା ମଧ୍ୟ ଅନ୍ୟ ଶବ୍ଦ ସହ ଯୁକ୍ତ ହୁଏ ଯଥା, ବକ୍ତୃଭାଷଣ, ପରୁଷ ଭାଷଣ, ବୃଥା ଭାଷଣ ।]

ଭାଷପତ୍ର—ସଂ. ବି—(ମ. ପ. ଲୋ; ଭାଷ+ପତ୍ର)—ଏକାଧିକ ପଣ୍ଡିତଙ୍କ
Bhāsha patra ସ୍ୱାକ୍ଷରଯୁକ୍ତ ବ୍ୟବସ୍ଥାପତ୍ର—A written opinion on a doubtful point of Hindu Law signed by many distinguished Pandits.

ଭାଷା—ସଂ. ବି ( ଭାଷ୍ ଧାତୁ+ଭାବ. ଅ + ଆ)—୧ । ମନର ଭାବର
Bhāshā ଅଭିବ୍ୟକ୍ତି; ଯାହା ଦ୍ୱାରା ମନର ଭାବ ପ୍ରକାଶିତ ହୁଏ—1. Vehicle of thought; outward expression of one's inmost thoughts. [ଦ୍ର—କଣ୍ଠ ସ୍ୱର, ହାବଭାବ, ଆକାର, ଇଙ୍ଗିତ ପ୍ରଭୃତି ଏହି ଅର୍ଥରେ 'ଭାଷା' ରୂପରେ ଗଣ୍ୟ । ଏହି ଅର୍ଥରେ ସବୁ ଜୀବଙ୍କର ଭାଷା ଅଛି, ଯଦ୍ୱାରା ପ୍ରତ୍ୟେକ ଜୀବ ନିଜର ସୁଖ ଦୁଃଖ, ହର୍ଷ ବେଦନା, ମୃତ୍ୟୁ ଯନ୍ତ୍ରଣା, ଇଚ୍ଛା, ବିରାଗ ଓ ଉତ୍ସାହ ପ୍ରକାଶ କରନ୍ତି ।] ୨ । ଏକ ବ୍ୟକ୍ତିର ମନୋଗତ ଭାବ ଅନ୍ୟ ବ୍ୟକ୍ତିର ବୋଧଗମ୍ୟ ହେବା ନିମନ୍ତେ ପ୍ରଯୁକ୍ତ ସଙ୍କେତ ବା ଶବ୍ଦ—2. Expression; signals and words by which a person's intentions and thoughts are conveyed to another. [ ଦ୍ର—ବ୍ୟକ୍ତ ନାଦର ସମଷ୍ଟି, ଯାହାଦ୍ୱାରା କୌଣସି ସମାଜର ବା ଦେଶର ଲୋକେ ଆପଣା ମନୋଗତ ଭାବ ଅନ୍ୟ ନିକଟରେ ପ୍ରକାଶ କରନ୍ତି ଓ ଯାହାକୁ ଅଭିପ୍ରେତ ବ୍ୟକ୍ତି ବୁଝନ୍ତି ତାହା ଭାଷା ଅଟେ । କଥା ନ କହି ମଧ୍ୟ ସଙ୍କେତ ବା ଅଙ୍ଗଭଙ୍ଗୀ ଦ୍ୱାରା ମନୋଗତ ଭାବ ପ୍ରକାଶ କରାଯାଇ ପାରେ । ସାଙ୍କେତିକ ବା ଅନୁଚ୍ଚାର୍ଯ୍ୟ ଭାଷା ଯଥା,—ଅଙ୍ଗଭଙ୍ଗୀ, ହାବ ଭାବ, ଆକାର ଇଙ୍ଗିତ, ଗତି, ଚେଷ୍ଟା, ନେତ୍ରବକ୍ତ୍ରବିକାର । ଶାବ୍ଦିକ ବା ଉଚ୍ଚାର୍ଯ୍ୟ ଭାଷା, ଯଥା,- ବର୍ଣ୍ଣଦ୍ୱାରା ଗଠିତ ବାକ୍ୟ । ଏହା ପୁଣି ୨ ଭାଗରେ ବିଭକ୍ତ, ଯଥା, କଥ୍ୟ ଭାଷା ଓ ଲେଖ୍ୟଭାଷା ବା ସାହିତ୍ୟ । ଭାରତବର୍ଷରେ ୧୪୭ ଗୋଟି ଭାଷା ପ୍ରଚଳିତ, ଏଥି ମଧ୍ୟରୁ ହାରାହାରି ୧୦ ଲକ୍ଷ ଲୋକାଏ ଲୋକ ୨୩ଟି ଭିନ୍ନ ଭାଷାରେ କଥା କହନ୍ତି । ଭାରତରେ ଭିନ୍ନ ଭାଷା ବ୍ୟବହାର କରିବା ବ୍ୟକ୍ତିଙ୍କ ମୋଟାମୋଟି ସଂଖ୍ୟା— ହିନ୍ଦି ୧୦ କୋଟି, ବଙ୍ଗଳା ୫ କୋଟି, ତେଲୁଗୁ ୩ କୋଟି, ମରହଟ୍ଟୀ ୨ କୋଟି, ତାମିଲ ୨ କୋଟି, ଓଡ଼ିଆ ୧ କୋଟି, ରାଜସ୍ଥାନୀ ୧ କୋଟି, ଗୁଜରାଟି ୧ କୋଟି, ବ୍ରାହ୍ମ ଭାଷା ୧

କୋଟି, କର୍ଣ୍ଣାଟୀ ୧ କୋଟି, ଅନ୍ୟାନ୍ୟ ଭାଷା ୭ କୋଟି । ସମଗ୍ର ପୃଥିବୀରେ ସହସ୍ରାଧିକ ଭାଷା ବ୍ୟବହୃତ ହୁଏ । ଏକ ସମାଜର ବା ଦେଶର ବା ଅଞ୍ଚଳର ଭାଷାକୁ ଅନ୍ୟ ସମାଜର, ଦେଶର ବା ଅଞ୍ଚଳର ଲୋକେ ବୁଝି ପାରନ୍ତି ନାହିଁ । ଏକାଧିକ ଭାଷାର ଶବ୍ଦ ଓ ବିଶେଷତ୍ୱମାନଙ୍କର ପର୍ଯ୍ୟାଲୋଚନା କରି ଭାଷାବିଜ୍ଞାନବିତ୍ ପଣ୍ଡିତମାନେ ପୃଥିବୀର ଭାଷାମାନଙ୍କୁ ଭିନ୍ନ ଭିନ୍ନ ବର୍ଗରେ (ଯଥା ଆର୍ଯ୍ୟ, ସେମେଟିକ୍, ହେମେଟିକ୍, ଦ୍ରାବିଡ଼ୀୟ, ଓ ଏକ ବର୍ଗର ଭାଷାକୁ ଭିନ୍ନ ଭିନ୍ନ ଶାଖାରେ ବିଭକ୍ତ କରିଅଛନ୍ତି ଓ ପ୍ରତ୍ୟେକ ଶାଖାକୁ କେତେଗୁଡ଼ିଏ ଭାଷାରେ ଓ ପ୍ରତ୍ୟେକ ଭାଷାକୁ କେତେଗୁଡ଼ିଏ ଉପଭାଷାରେ ବା ଭାଷରେ ବିଭକ୍ତ କରିଅଛନ୍ତି । ଏ ଗ୍ରନ୍ଥର ପ୍ରଥମ ଖଣ୍ଡର ଇଂରାଜୀ ଓ ଓଡ଼ିଆ ଅବତରଣିକାରେ ଭାରତବର୍ଷ ପ୍ରଚଳିତ ଭାଷାମାନଙ୍କ ସମ୍ବନ୍ଧେ କେତେକ ସୂଚନା ଦିଆ ଯାଇଅଛି । ]

୩ । କଥ୍ୟ ଭାଷା—3. Spoken language. ୪ । ଅର୍ଥଯୁକ୍ତ ଭାଷା—4. Words having meaning. ୫ । (+କର୍ମ ଅ) ବଚନ; ଉକ୍ତି, ବାକ୍ୟ; କଥା—5. Speech; utterance. ୬ । କଥ୍ୟ ଭାଷାର ପ୍ରାଦେଶିକ ବୋଲି; ଭାକା; ଭାଖା—6. Dialect. ୭ । ପ୍ରାକୃତ ଭାଷା; ଦେଶୀୟ ଭାଷା—7. Vernacular; the current language of a country. ୮ । ବାକ୍ୟ ରଚନାର ଛଟା—8. Style of composition. ୯ । ବାଗ୍‌ଦେବୀ; ସରସ୍ୱତୀ—9. The Goddess of learning. ୧୦ । ରାଗିଣୀ-ବିଶେଷ—10. Name of a musical air. ୧୧ । ଅଭିଯୋଗ; ଅଭିଯୋଗ ପତ୍ର (ହି.ଶ)—11. A complaint, plaint. ଦେ. ବି—ଚିଠି; ପତ୍ର—A letter; an epistle.
ଚିଠି चिट्ठी

**ଭାଷା ତତ୍ତ୍ୱ**—ସଂ. ବି (ଅଧୁନିକ ବ୍ୟବହାର)—ଭାଷାସମ୍ବନ୍ଧୀୟ ବୈଜ୍ଞାନିକ ତଥ୍ୟ—Philology; the science of language.
Bhāshā tattwa
(ଭାଷା ବିଜ୍ଞାନ, ଭାଷା ଶାସ୍ତ୍ର—ଅନ୍ୟରୂପ)

**ଭାଷାତୀତ**—ସଂ. ବିଣ (କର୍ମ ତତ୍)—ବଚନାତୀତ; ଯାହା କଥାରେ ପ୍ରକାଶିତ ହୋଇ ପାରିବ ନାହିଁ—Beyond expression; inexpressible. ( ଉ—କେମନ୍ତେ ବର୍ଣ୍ଣିବି ସେହି ଭାଷାତୀତ ଛବି, ଜୀବାତ୍ମାରେ ପରମାତ୍ମା ଭୂମା ଅବିର୍ଭାବି । ମଧୁସୂଦନ. ଭୁବମାଙ୍ଗଳ । )
Bhāshātita

**ଭାଷାନ୍ତର**—ସଂ. ବି. ( କର୍ମଧା; ଅନ୍ୟ+ଭାଷା )—୧ । ଅନ୍ୟ ଭାଷା—1. Another language. ୨ । ଅନୁବାଦ; ତର୍ଜମା—2. Translation.
Bhāshāntara

**ଭାଷାନ୍ତର କରିବା**—ଦେ. କ୍ରି—ଏକଭାଷାରୁ ଅନ୍ୟଭାଷାରେ ତର୍ଜମା କରିବା—To translate.
Bhāshāntara karibā
ଭାଷାନ୍ତର করা भाषान्तर करना

**ଭାଷାନ୍ତରିତ**—ସଂ. ବିଣ. (ଭାଷ+ଅନ୍ତରିତ)—ତର୍ଜମା କରାଯାଇଥିବା; ଅନୂଦିତ—Translated.
Bhāshāntarita

**ଭାଷା ପତ୍ର**—ଦେ. ବି (ଏକାର୍ଥ ସହଚର)—ଚିଠିପତ୍ର; ଚିଠି ଆଦି—Letters
Bhāshā patra (ଭାଷାପତର—ଗ୍ରାମ୍ୟରୂପ)
চিঠিপত্র चिट्ठिपत्रि

**ଭାଷା ପରିଚ୍ଛେଦ**—ସଂ. ବି (ନାମ)—ବିଶ୍ୱନାଥ ନ୍ୟାୟପଞ୍ଚାନନଙ୍କ କୃତ ନ୍ୟାୟ ପରିଭାଷା ଗ୍ରନ୍ଥ—A work on the phraseology of the Hindu system of logic
Bhāshā parichchheda

**ଭାଷାବଦ୍ଧ**—ସଂ. ବି(ସପ୍ତତତ୍)—ସାଧାରଣ କଥ୍ୟଭାଷାରେ ରଚିତ—Composed in the vernacular.
Bhāshābaddha

**ଭାଷାବନ୍ଧ**—ସଂ. ବି—ଦେଶର କଥ୍ୟଭାଷାରେ ରଚନା—Composition in the vernacularr.
Bhāshābandha

**ଭାଷା ବ୍ୟାକରଣ**—ଦେ. ବି—କୌଣସି କଥ୍ୟଭାଷାର ବ୍ୟାକରଣ—Grammar of any vernacular language.
Bhāshā byākarana
ভাষাব্যাকরণ भाषाव्याकरण

**ଭାଷାଭାଷି ହେବା**—ଦେ. କ୍ରି.—କଥାବାର୍ତ୍ତା ହେବା—To converse. (ଉ—ଏଠାରେ ଯଯାତି କାଶ୍ୟପ ଅଗ୍ନି ଋଷି, ମାନେ ବସି ହୋଇଥିଲେଟି ଭାଷାଭାଷି । କୃଷ୍ଣସିଂହ, ମହାଭାରତ ବନ ।)
Bhāshābhāshi hebā
কথা বলাবলি হওয়া बातचीतकरना

**ଭାଷିତ**—ସଂ ବିଣ (ଭାଷ୍ ଧାତୁ+କର୍ମ ତ) କଥିତ—Spoken, ସଂ. ବି (+ଭାବ ତ); କଥନ—Speaking; utterance. (+କର୍ମ ତ) ବଚନ; ବାକ୍ୟ—Speech; words. (ଉ—ଚେବେହେଁ ବ୍ରାହ୍ମଣ ତା ନ କଲେ ସମ୍ମତ, ବୋଇଲେ ମିଥ୍ୟା ନୋହେ ମୋହର ଭାଷିତ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।)
Bhāshita

**ଭାଷିବା**—ଦେ. (ପଦ୍ୟ କ୍ରି ସ ଭାଷ୍ ଧାତୁ) କହିବା—To speak, (ଉ—ଅଷ୍ଟ ଦୁର୍ଗେଶ ଭାଷେ—କବିସୂର୍ଯ୍ୟ ବଳଦେବ ଛାନ୍ଦ. ଣ ଗୀତ ।)
Bhāshibā
ভাষা भाषना

**ଭାଷୀ**—ସଂ. ବିଣ ପୁଂ (ଭାଷ୍ ଧାତୁ+କର୍ତ୍ତୃ ଇନ୍; ୧ମା ୧ବ) ଯେ କହେ—Speaking, [ ଦ୍ର—ଏହା ସମାସରେ ପରପଦରୂପେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା ମଧୁରଭାଷୀ, ପ୍ରିୟଭାଷୀ । 'ଭାଷୀ' 'ହାସୀ' ଆଦି ଶବ୍ଦ ସ୍ତ୍ରୀ ଲିଙ୍ଗରେ ମଧ୍ୟ ପ୍ରାଚୀନ ଓଡ଼ିଆ ପଦ୍ୟରେ ବ୍ୟବହାର କରାଯାଇଥିବାର ଦେଖାଯାଏ । ଯଥା—ମିତଣୀର କଥିତ ବଚ ନରେ ଶୁଦ୍ଧ ପାଣି,ଲକ୍ଷ୍ମୀକି ହେବାକୁ ହୋଇ ଦରସ୍ମିତହାସୀ; ବିଜେ କଲେ ସୀଣାଭାଷୀ—କବିସୂର୍ଯ୍ୟ ସଙ୍ଗୀତ ।]
Bhāshi
(ଭାଷିଣୀ—ସ୍ତ୍ରୀ)

**ଭାସୁ(ଷୁ) ଭାସୁ(ଷୁ)**—ଦେ.ଅ. (ଧ୍ୱନ୍ୟନୁକରଣ)—ଫାସୁ ଫାସୁ; ତଣ୍ଡୁ ଆଦି କୁଟିବାର ଶବ୍ଦ—A sound resembling that of pounding of chaff,
Bhāshu(sh) bhāshu(sh)
ভস্‌ভস্ भस्‌भस्

**ଭାଷ୍ୟ**—ସଂ. ବି (ଭାଷ୍ ଧାତୁ+ଭାବ ଯ)—୧ । ବ୍ୟାଖ୍ୟାନ—1. Expounding; exposition. ୨। (+କରଣ ଯ)
Bhāshya

ସୂତ୍ର ବିବରଣ ଗ୍ରନ୍ଥ; ଯେଉଁ ଗ୍ରନ୍ଥରେ ସୂତ୍ରମାନଙ୍କର ଟୀକା ଥାଏ—2. A treatise explaining aphorsmis. ୩ । ବ୍ୟାଖ୍ୟା ଗ୍ରନ୍ଥ—3 A commentary; an annotation. ୪ । ଗୃହ ବିଶେଷ (ପ୍ରକୃତିବାଦ)—4. A kind of house or building. ସ. ବିଣ କଥନୀୟ—Speakable.

ଭାଷ୍ୟକର—ସ. ବିଣ. ଓ ବି—(ଭାଷ୍ୟ+କୃ. ଧାତୁ+କର୍ତ୍ତୃ. ଅ)—Bhāshyakara ୧ । ଟୀକାକାର; ସୂତ୍ର ବିବରଣ ଲେଖକ—ଭାଷ୍ୟକାର, ଭାଷ୍ୟକୃତ୍ } ଅନ୍ୟରୂପ 1. Annotator. ୨ । ପାଣିନି ବ୍ୟାକରଣର ଓ ଦର୍ଶନ ଶାସ୍ତ୍ରର ଟୀକାକାର ପତଞ୍ଜଳି ମୁନି—2. Sage Patanjali.

ଭାସ୍ (ଧାତୁ)—ସ.—୧ । ଦୀପ୍ତି ପାଇବା—1. To shine. Bhās (root) ୨ । ପ୍ରକାଶ ପାଇବା—2. To be manifest.

ଭାସ୍(ସ,ସଃ,ସା) ସ. ବି. (ଭାସ୍ ଧାତୁ+ଭାବ.କ୍ୱିପ୍; +ଅ; +ଅସ୍; +ଅ) Bhās sa,saḥ,sā —୧ । ଅଗ୍ନି;କାନ୍ତି; ଦୀପ୍ତି—1. Lustre; (ଭାଃ—ଅନ୍ୟରୂପ) splendour. ୨ । ଶୋଭା—2. Beauty. ୩ । (+କର୍ତ୍ତୃ କ୍ୱିପ୍ ଇତ୍ୟାଦି) ଆଲୋକ—3. Light. ୪ । କିରଣ—4 Ray of light.

ଭାସ—ସ. ବି. (ଭାସ୍ ଧାତୁ+ କର୍ତ୍ତୃ. ଅ)—୧ । ଗୃଧ୍ର ପକ୍ଷୀ—1. The Bhāsa vulture. ୨ । କୁକ୍କୁଟ—2. Cock; fowl ୩ । ପାଣିକୁଆ—3.The little cormorant(bird). [ଉ—ଶ୍ୟେନ, ଭାସ ବା କପିଙ୍ଗଳେ—ଜଗନ୍ନାଥ ଭାଗବତ] ୪ । ଗୋଷ୍ଠ; ଗୋ ଶାଳା—4.Cowshed;cattle-pen; ୫ । ସ୍ୱାଦ (ହି. ଶ)—5. Taste. ୬ । ମିଥ୍ୟା ଜ୍ଞାନ (ହି. ଶ)—6. False knowledge. ୭ । ମହାଭାରତୋକ୍ତ ପର୍ବତ ବିଶେଷ (ହି. ଶ)—7. Name of a mountain mentioned in the Mahābhārata. ୮ । ଭାସ୍ (ଦେଖ)—8. Bhās (See). ଦେ. ବି. (ନାମ)—ସ୍ୱପ୍ନ ବାସବଦତ୍ତା ନାଟକ ପ୍ରଣେତା ନାମକ କବି । [ଦ୍ର—କାଳିଦାସଙ୍କ ପୂର୍ବବର୍ତ୍ତୀ ଏ କବି ଥିଲେ ।]—Name of a Sanscrit poet, the author of Swapna-bāsabadattā.

ଭାସ କର୍ଣ୍ଣ—ସ. ବି ପୁଂ (ନାମ) (ବହୁବ୍ରୀହି)—ଅଶୋକବନ ଉଜାଡ଼ିବା Bhāsa karṇna ସମୟରେ ହନୁମାନ୍ ଦ୍ୱାରା ନିହତ ରାବଣ ସେନାପତି ଅସୁରବିଶେଷ (ହି. ଶ)—Name of a demon, commander of Rābaṇa.

ଭାସନ୍ତ—ସ. ବିଣ—(ଭାସ୍ ଧାତୁ+କର୍ତ୍ତୃ. ଅନ୍ତ)—୧ । ମନୋହର—Bhāsanta 1. Beautiful; charming. ୨ । ଦୀପ୍ତିଶୀଳ—2. Dazzling; lustrous; shining. ୩ । ଭାସମାନ—3. Floating. ସ. ବି—୧ । ଚନ୍ଦ୍ର—1. The moon. ୨ । ସୂର୍ଯ୍ୟ—2. The sun. ୩ । ଭାସ—୧।୨।୩ (ଦେଖ)—3. Bhāsa 1 and 2 and 3 (See).

ଭାସନ୍ତା—ଦେ. ବିଣ—(ସ. ଭାସ୍ଧାତୁ)—ଭାସମାନ; ଭାସୁଥିବା—Bhāsantā भासन्त मसनेवाला Floating.

ଭାସନ୍ତୀ—ସ. ବି. ସ୍ତ୍ରୀ—(ଭାସନ୍ତ+ଈ)—ନକ୍ଷତ୍ର; ତାରକା—Star. Bhāsanti

ଭାସମାନ—ସ. ବିଣ. (ଭାସ୍ ଧାତୁ+କର୍ତ୍ତୃ. ଶାନଚ୍)—୧ । ଦୀପ୍ତିମାନ୍—Bhāsamāna 1. Dazzling; lustrous. ୨ । ଜ୍ୟୋତିଃ-(ଭାସମାନା—ସ୍ତ୍ରୀ) ଶୀଳ—2. Shining; emitting rays of light. ୩ । ଜଳରେ ଭାସୁଥିବା—3. Floating.

ଭାସି ଗଲ—ଦେ. ଅ. [ଅବଜ୍ଞା ବା ବେଖାତିର ସୂଚକ ଅବ୍ୟୟ]—ମୁଁ ଏ Bhāsi galā କଥାକୁ ଖାତର କରୁ ନାହିଁ—(Interjection. बयेगेल; जानेदो I care a fig for it )

ଭାସିତ—ସ. ବିଣ (ଭାସ୍ଧାତୁ+କର୍ତ୍ତୃ ତ)—୧ । ତେଜୋମୟ (ହି.ଶ)—Bhāsita 1. Shining; brilliant ୨ । ପ୍ରକାଶମାନ (ହି. ଶ)—2. Manifest.

ଭାସିବା—ଦେ. କ୍ରି—(ସ. ଭାସ୍ ଧାତୁ)—୧ । ଜଳ ବା ବାୟୁ ଉପରେ Bhāsibā ଅବସ୍ଥିତ କରିବା—1. To float on water or भासा; भासना air. ୨ । ବିପନ୍ନ ହେବା; ସର୍ବସ୍ୱାନ୍ତ ହେବା—2. To be ruined; to be overwhelmed with calamity. ୩ । ପ୍ଲାବିତ ହେବା; ଜଳପୂର୍ଣ୍ଣ ହେବା—3. To be overflooded; to be flooded with water. [ଯଥା—ଏ ଦେଶ ଯାକ ନଈବଢ଼ିରେ ଭାସୁଛି; ତା ଆଖି ଲୁହରେ ଭାସୁଛି । ) ପ୍ରାଦେ. (ବୌଦ୍ଧ, କଳାହାଣ୍ଡି, ଗଡ଼ଜାତ) କ୍ରି—ପଙ୍କ ଓ ବାଲି ଆଦିରେ ଗୋଡ଼ ବସିଯିବା (foot) To sink in mud—(ଯଥା—ପଙ୍କରେ ମୋ ଗୋଡ଼ଟା ଭାସିଗଲା ।)

ଭାସି ଯିବା—ଦେ. କ୍ରି (ସ. ଭାସ୍ ଧାତୁ)—୧ । ଜଳ ଉପରେ ଭାସିକରି Bhāsi jibā ଗତି କରିବା—1. To move by floating भेसेयाओयां; भासजाना on water; to drift. ୨ । ଜଳପ୍ଲାବିତ ହେବା—2. To be flooded with water. ୩ । ସର୍ବସ୍ୱାନ୍ତ ହେବା—3.To be ruined;to be a lost man

ଭାସିଲିନ୍—ବୈଦେ. ବି (ଇଂ. ଭେସେଲିନ୍)—ଦେହ ଚର୍ମର ମସୃଣୀ Bhāsilin କରଣାର୍ଥ ନମନ୍ତେ ବ୍ୟବହୃତ ତୈଳୀୟ ମଲମବିଶେଷ—ଭେସିଲିନ୍ भेसिलीन (ଭାସିଲୀନ୍—ଅନ୍ୟରୂପ) Vaseline.

ଭାସୁ—ସ. ବି (ଭାସ୍=ଦୀପ୍ତି ପାଇବା+କର୍ତ୍ତୃ. ଉ)—ସୂର୍ଯ୍ୟ—Bhāsu The sun.

ଭାସୁର—ସ. ବି (ଭାସ୍ ଧାତୁ+ଶୀଳାର୍ଥେ. ଉର)—୧ । ସ୍ଫଟିକ—Bhāsura 1. Crystal stone. ୨ । ବୀର—2. Warrior. (ଭାସୁରା—ସ୍ତ୍ରୀ) ୩ । କୁଷ୍ଠ ରୋଗର ଔଷଧ (ହି. ଶ)—3. Medicine for leprosy. ସ. ବିଣ—୧ । ଦୀପ୍ତିଯୁକ୍ତ; ଦୀପ୍ୟମାନ—1. Shining. ୨ । ଭୟଙ୍କର—2. Terrible (Apte).

ଭାସୁରତାପାଦନ—ଦେ. ବି (ଆଧୁନିକ ବୈଜ୍ଞାନିକ ପରିଭାଷା)—କେତେକ Bhāsuratāpādana ଜଳୀୟ ପଦାର୍ଥ କତିପୟ ସ୍ଥିର ହୋଇ

ରହିଲେ ପାତ୍ରର ତଳରେ ଖଣ୍ଡ ଖଣ୍ଡ ଚକଚକିଆ ବସ୍ତୁ ବସିଯିବା ଅବସ୍ଥା—Crystallization.

**ଭାସ୍କର**-ସଂ. ବି. ( ଭାସ୍=ଦୀପ୍ତି + କୃ ଧାତୁ=କରିବା + କର୍ତ୍ତୃ. ଅ )—୧ । ଦିବାକର; ସୂର୍ଯ୍ୟ—1. The sun. ୨ । ଅଗ୍ନି—2. Fire. ୩ । ସିଦ୍ଧାନ୍ତଶିରୋମଣି ପ୍ରଭୃତି ଗ୍ରନ୍ଥ ରଚୟିତା ଭାସ୍କରାଚାର୍ଯ୍ୟ—3. Name of a celebrated astronomer. ୪ । ବୀର—4. Warrior. ୫ । ଧାତୁ ପ୍ରସ୍ତରାଦିରେ କାରୁକାର୍ଯ୍ୟ ସଗଠନକାରୀ—5. An artist in stone or metal. ୬ । ଅର୍କଗଛ-6. Calotropis Gigantea (plant). ୭ । ସୁବର୍ଣ୍ଣ—7. Gold. ୮ । ଶିବ ( ହୁ. ଶ )—8. Śiba. ସଂ. ବିଣ—ଦୀପ୍ୟମାନ—Lustrous; dazzling. ଦେ. ବି—କର୍ପୂର—Camphor.
Bhāskara

**ଭାସ୍କର ପଣ୍ଡିତ**—ଦେ. ବି ( ନାମ )—ନାଗପୁରର ମର୍ହଟ୍ଟା ରାଜା ରଘୁଜୀ ଭୋଁସ୍ଲାଙ୍କ ଦେୱାନ୍—Name of the minister of the Marhatta King Raghuji Bhonsla. [ଦ୍ର—ଏ ବଙ୍ଗର ନବାବ୍ ଆଲିବର୍ଦ୍ଦି ଖାଁଙ୍କ ସମୟରେ ବଙ୍ଗ ଆକ୍ରମଣ କରି ନବାବଙ୍କୁ ପରାସ୍ତ କରି ବଙ୍ଗର ପ୍ରସିଦ୍ଧ ଧନୀ ଜଗତ୍ ସେଠଙ୍କ ଘର ଲୁଟି ଟଙ୍କା ନେଇଗଲେ । ନବାବ୍ ପେଶବାଙ୍କ ଶରଣାପନ୍ନ ହେବାରୁ ପେଶବାଙ୍କ ଅନୁରୋଧରେ ଭାସ୍କର ବଙ୍ଗଳା ତ୍ୟାଗ କଲେ ( ଖ୍ରୀ ୧୭୪୨ ) । ପରେ ପୁଣି ଭାସ୍କର ବଙ୍ଗ ଆକ୍ରମଣ କରି ନଗର ଓ ଗ୍ରାମମାନ ଲୁଣ୍ଠନ କଲେ । ଏହି ଉପଦ୍ରବ 'ବର୍ଗୀମାନଙ୍କ ଅତ୍ୟାଚାର' ବୋଲି ଇତିହାସ ପ୍ରସିଦ୍ଧ । ଶେଷରେ ଅଲିବର୍ଦ୍ଦି ଖାଁ ଗୁପ୍ତ ଘାତକ ନିଯୁକ୍ତ କରି ଭାସ୍କରଙ୍କୁ ହତ୍ୟା କଲେ । ଏଥିରେ ରଘୁଜୀ ଭୋଁସ୍ଲା କ୍ରୁଦ୍ଧ ହୋଇ ବଙ୍ଗଦେଶକୁ ବାରମ୍ବାର ଆକ୍ରମଣ କଲେ । ଏଥିରୁ ରକ୍ଷା ପାଇବା ପାଇଁ ୧୭୫୧ ଖ୍ରୀଷ୍ଟାବ୍ଦରେ ନବାବ୍ ରଘୁଜୀଙ୍କୁ ଓଡ଼ିଶା ଛାଡ଼ି ଦେଲେ ଓ ବଙ୍ଗର ଚୌଥ ପରିବର୍ତ୍ତେ ବାର୍ଷିକ ୧୨ ଲକ୍ଷ ଟଙ୍କା ରଘୁଜୀଙ୍କୁ ଦେବାକୁ ଅଙ୍ଗୀକାର କଲେ । ସୁବଳଚନ୍ଦ୍ର । ]
Bhāskara paṇḍita

**ଭାସ୍କରାଚାର୍ଯ୍ୟ**—ସଂ. ବି (ନାମ)—ସିଦ୍ଧାନ୍ତ ଶିରୋମଣି ଆଦି ଜ୍ୟୋତିଷ ଗ୍ରନ୍ଥର ପ୍ରଣେତା ଜନୈକ ମହାପଣ୍ଡିତ—Name of a great Indian astronomer. [ଦ୍ର—ଏ ସିଦ୍ଧାନ୍ତ ଶିରୋମଣି ଆଦି ଗ୍ରନ୍ଥ ରଚନା କରିଥିଲେ । ଏ ଖ୍ରୀଷ୍ଟ ୧୨ଶ ଶତାବ୍ଦୀରେ କର୍ଣ୍ଣାଟର ବିଜ୍ଜାପୁରରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତା ମହେଶର ମଧ୍ୟ ଜ୍ୟୋତିଷୀ ଥିଲେ । ଏହାଙ୍କ ପୂର୍ବ ପୁରୁଷ ଓ ପର ପୁରୁଷମାନେ ଦୈବଜ୍ଞ ଥିଲେ । ଭାସ୍କର ପାଟୀଗଣିତ ଓ ବୀଜଗଣିତ ଗ୍ରନ୍ଥ 'ଲୀଳାବତୀ'ର ପ୍ରଣେତା ଥିଲେ । ଏ ନିଜେ ମଧ୍ୟ ସିଦ୍ଧାନ୍ତ ଶିରୋମଣିର ଭାଷ୍ୟ (ବ୍ୟାଖ୍ୟା) ଲେଖି ଯାଇ ଅଛନ୍ତି । ସୁବଳଚନ୍ଦ୍ର ]
Bhāskarāchārjya

**ଭାସ୍କର୍ଯ୍ୟ**—ସଂ. ବି ( ଭାସ୍କର + ଯ )—ଧାତୁ ପ୍ରସ୍ତରାଦି ଖୋଦିତ କରି ମୂର୍ତ୍ତି ଗଠନ କରିବା କଳା; ଚତୁଃଷଷ୍ଟି କଳାରୁ ଏକତମ—Architecture; stone and metal carving.
Bhāskarjya

**ଭାସ୍କୋ ଡି ଗାମା**—ବୈଦେ. ବି ( ନାମ )—ଇଉରୋପର ପର୍ତ୍ତୁଗାଲ୍ ଦେଶୀୟ ବିଖ୍ୟାତ ନାବିକ—Name of a celebrated Portugese sailor who visited India in the 15th century A. D.; Vasco de Gama. [ଦ୍ର—କଲମ୍ବସ୍ ଭାରତ ଆବିଷ୍କାର କରିବାକୁ ବାହାରି ଜାହାଜରେ ପଶ୍ଚିମ ଦିଗକୁ ଯାଇ ଆମେରିକା ଆବିଷ୍କାର କଲେ । ଭାସ୍କୋ ଭାରତାନ୍ୱେଷଣରେ ବାହାରି ଦକ୍ଷିଣ ଓ ପୂର୍ବ ଦିଗକୁ ଯାଇ ଉତ୍ତମାଶା ଅନ୍ତରୀପ ବାଟେ ବୁଲି ୧୪୯୮ ଖ୍ରୀଷ୍ଟାବ୍ଦରେ ଭାରତର ପଶ୍ଚିମ ଉପକୂଳସ୍ଥ କାଲିକଟଠାରେ ଉପସ୍ଥିତ ହେଲେ ଓ ସେଠାର ରାଜା (ଜାମୋରିନ୍)ଙ୍କ ଠାରୁ ପର୍ତ୍ତୁଗାଲ୍ ରାଜ୍ୟର ବଣିକ୍ ମାନଙ୍କର ଭାରତ ସହିତ ବାଣିଜ୍ୟ କରିବାର ସନନ୍ଦ ପାଇଲେ ଓ ସେହିଦିନ ଠାରୁ ଭାରତ ସହିତ ପର୍ତ୍ତୁଗାଲ୍ବାସୀ ମାନଙ୍କ ବାଣିଜ୍ୟ ଆରବ୍ଧ ହେଲା ।]
Bhāsko ḍi gāmā

**ଭାସ୍ୱତୀ**—ସଂ. ବି. ସ୍ତ୍ରୀ ( ଭାସ୍ + ବତ୍ + ସ୍ତ୍ରୀ ଈ )—ଦୀପ୍ତି—Splendour; lustre. ସଂ. ବିଣ. ସ୍ତ୍ରୀ—ଭାସ୍ୱାନ୍ ଶବ୍ଦର ସ୍ତ୍ରୀଲିଙ୍ଗ—Feminine of Bhāswān.
Bhāswatī

**ଭାସ୍ୱର**—ସଂ. ବିଣ ( ଭାସ୍ ଧାତୁ + କର୍ତ୍ତୃ. ବର )—ଆଭାମୟ; ଉଜ୍ଜ୍ୱଳ—Shining; bright; radiant.
Bhāswara

**ଭାସ୍ୱାନ୍**—ସଂ. ବିଣ. ପୁଂ ( ଭାସ୍ + ବତ୍=ଭାସ୍ୱତ୍ ୧ମା. ୧ବ )—୧ । ଦୀପ୍ତିଶାଳୀ—1. Luminous; shining; ୨ । କିରଣଶାଳୀ—2. Emitting rays of light. ସଂ. ବି, ପୁଂ—୧ । ସୂର୍ଯ୍ୟ—1. The sun ୨ । ବୀର—2. Hero; warrior. ୩ । ଅର୍କଗୁଳ୍ମ—3. Calotropis Gigantea (Apte)
Bhāswān
(ଭାସ୍ୱତୀ—ସ୍ତ୍ରୀ)

**ଭାସ୍ମନ**—ସଂ. ବି ( ଭସ୍ମନ୍=ବିକାରାର୍ଥେ ଅ)—ଭସ୍ମବିକାର—A thing produced from ashes.
Bhāsmana

**ଭି**—ପ୍ରାଦେ ( ସମ୍ବଲପୁର ) ଅ ( ସଂ. ଅପି; ତୁଳ ହି. ଭୀ )—ବି; ମଧ୍ୟ; ଅଧିକ ମଧ୍ୟ; ଏବଂ—Also; and.
Bhi

**ଭିଃ ପିଃ**—ଦେ. ବି ( ଇଂ. ଭାଲ୍ୟୁ ପେଏବ୍ଲ୍ ଶବ୍ଦଦ୍ୱୟର ପ୍ରଥମ ୨ ଅକ୍ଷର )—ଦ୍ରବ୍ୟମାନ ଡାକଦ୍ୱାରା ଗ୍ରହୀତା ନିକଟରେ ପହଞ୍ଚାଇ ତାଠାରୁ ମୂଲ୍ୟ ଅଦାୟ କରି ପ୍ରେରକଙ୍କୁ ଦିଆଇବାର ଡାକ ବିଭାଗର ପଦ୍ଧତି—Value payable post.
Bhiḥ-piḥ
[ଭି. ପି. / ଭି. ପି. ପି / ଭି. ପି. ପୋଷ୍ଟ / ଭି ପି / ଭି ପି — ଅନ୍ୟରୂପ]

**ଭିଃ ପିଃ ପାର୍ସ(ର୍ସେ)ଲ୍**—ଦେ, ବି (ଇଂ, ଭାଲ୍ୟୁପେଏବ୍ଲ ପାର୍ସେଲ୍) ଯେଉଁ ରୀତିରେ ଗ୍ରାହକଠାରୁ ଡାକଘରଦ୍ୱାରା ଟଙ୍କା ଅଦାୟ କରିବା ନିମନ୍ତେ ପଠାଯିବା ପୁଳିନ୍ଦା—Value payable parcel; V.P. parcel).
Bhiḥ-piḥ pārsa(rse)l
ଭି ପି ପାର୍ସେଲ / ଭିଃ ପିଃ ପାର୍ସିଲ

**ଭିଆ**—ପ୍ରାଦେ. [ ପୁରୀଜିଲ୍ଲା ବ୍ରାହ୍ମଣ ସମାଜ ] ବି (ସଂ. ବିବାହ)—
Bhiā ବିବାହ—Marriage. (ଉ—କି କଥା ? ଭଲା ଭିଆ—
বিএ(য়ে) ब्याह କଥାର ଲଥା । ) ଦେ. ବି (ସଂ ବିଧାନ)—
কামান कमाना ଅର୍ଜନ; ଉପାର୍ଜନ—Earning.

**ଭିଆ(ଏ)ଇବା**—ଦେ. କ୍ରି (ସଂ. ବିଧାନ)—୧ । ତିଆରିବା; ଘଟାଇବା—
Bhiā(e)ibā 1. To cause to happen. ୨ । ବିଧାନ
করান କରିବା; ଘଟିବାର ଉପାୟ କରିବା; ଫଳରେ ଘଟାଇବା—
**विधान करना** 2. To bring about; to result in.
( ଉ—ଧିକ ଏ ରୂପକୁ ଏହି ସିନା ଦେବ ! ଭିଆଇଲା
ଯେତେ କଲ । ରାଧାନାଥ. ପାର୍ବତୀ । ) ୩ । ସୃଷ୍ଟି
କରିବା—3. To create. (ଉ—ମେଘାଗମେ ଯହିଁ
ପୁଷ୍ପିତ କଦମ୍ବେ, ଶିଖଣ୍ଡ ତାଣ୍ଡବ ରଙ୍ଗ, ଦେଖି ଅପୂର୍ବଙ୍କ ପ୍ରତେ
ଇନ୍ଦ୍ରଜାଲ ଭିଆଇଛି କି ଅନଙ୍ଗ । ରାଧାନାଥ. ଯଯାତି । )
୪ । ସମ୍ପାଦନ କରିବା—4 To perform. ୫ ।
ଯୋଗାଡ଼ କରିବା—5. To arrange. ( ଉ—ଆଜ୍ଞା
ଦେବ ଯେବେ, ମଣୋହି ସଖା ଭିଆଇବି ତେବେ । ପ୍ରାଚୀ
ପ୍ରତାପ. ଷଣ୍ଡିସେଣା । ) ୬ । ଜାତ କରିବା—6. To
produce; to bring forth. ୭ । ନିର୍ମାଣ କରିବା—
7. To build. (ଉ—ଗଙ୍ଗା ଯମୁନା ମଧ୍ୟ ପୁର, ଭିଆଇ
ଇନ୍ଦ୍ର ପୃଥୁ ସାର । ଜଗନ୍ନାଥ. ଭାଗବତ । ) ୮ । ସୂତ୍ରପାତ
কামান ବା ଆରମ୍ଭ କରିବା—8. To begin a work;
**कमाना** to commence. ୯ । ଅର୍ଜନ କରିବା—9. To
earn. ୧୦ । ସଂଗ୍ରହ କରିବା—10. To gather.
୧୧ । ସୂତ୍ରପାତ କରିବା—11. To lay the
foundation of.

**ଭିଆ କରା(ରେ)ଇବା**—ପ୍ରାଦେ. କ୍ରି (ପୁରୀ)—ଆପଣା ସନ୍ତାନ ସନ୍ତତିଙ୍କୁ
Bhiā karā(re)ibā ପାଣିଗ୍ରହଣ କରିବା—To give one's
বিএ করান **ब्याह कराना** children in marriage.
(ଭିଆ କରିବା—ଅନ୍ୟରୂପ)

**ଭିଆଘର**—ପ୍ରାଦେ (ପୁରୀଜିଲ୍ଲା ବ୍ରାହ୍ମଣ ସମାଜ) ବି. (ସଂ. ବିବାହ+
Bhiāghara ଗୃହ )—ବିବାହୋତ୍ସବ—Marriage cere-
বিএবাড়ী **ब्याह; सादीब्याह** mony or festival.

**ଭିଆ ଚଢ଼େଇ**—ପ୍ରାଦେ ( ଗଡ଼ଜାତ ) ବି—ନଦୀକୂଳରେ ଓ ସମୁଦ୍ର
Bhiā chaṛhei ପଠାରରେ ଦଳବଦ୍ଧ ହୋଇ ବିଚରଣ କରୁଥିବା
ଏକ ପ୍ରକାର ପକ୍ଷୀ । (ଦ୍ର—ଏମାନେ ଆକାଶରେ
ଉଡ଼ିଗଲାବେଳେ ଶୂନ୍ୟରେ ଝୁଲୁଥିବା ତୋରଣ
ପରି ଦେଖାଯାନ୍ତି ଓ କଁଥର କାଁଥର ରାବ କରି
ଉଡ଼ନ୍ତି ।)—A species of bird building
nests in river banks or seashore
flying in an arch-like course.

**ଭିଆଣ**—ଦେ. ବି (ସଂ. ବିଧାନ)—୧ । ବିଧାନ—1. Dispensa-
Bhiāṇa tion. ୨ । ରଚନା; ନିର୍ମାଣ—2. Construction;
বিধান making. ୩ । ସୃଷ୍ଟି; ସର୍ଜନ—3. Creation. ( ଉ—
**विधान** ଫୁଲେ ଫୁଲେ ସବୁ ଭିଆଣ ଯେଣୁ ସେ ପ୍ରଭୁ ଫୁଲ
ବିନୋଦିଆ । ଜଗମୋହନ ଲାଲ । ) ୪ । ଉପାୟ—
4. Means. ୫ । କାର୍ଯ୍ୟ; ଘଟଣା—5. Act; event.
୬ । ରଚନାକୌଶଳ—6. Art. ୭ । ସୂତ୍ରପାତ;
ଆରମ୍ଭ—7. Beginning. ୮ । ଜମିର ଶ୍ରେଣୀ
ଅନୁସାରେ ପ୍ରତ୍ୟେକ ଜମି ଉପରେ କର
ବସାଇବା—8. Assessment of rent on
holdings according to the qualities of
land. ୯ । ଯେଉଁ କାଗଜରେ ଜମିର ଜମା ନିରିଖ
ଲେଖାଥାଏ—9. Land assessment state-
ment. ୧୦ । ଗୁଡ଼ ଅବର ପାଗ—10. The boil-
ing of molasses to make syrup. ୧୧ ।
ଘଟଣା; ଘଟାଇବା—11. Bringing about.

**ଭିଆଣ କରିବା**—ଦେ. କ୍ରି (ସଂ. ବିଧାନ )—ଭିଆଇବା ( ଦେଖ )—
Bhiāṇa karibā Bhiāibā (See).
বিধান করা **विधानकरना**

**ଭିଆଣିଆଁ**—ଦେ. ବିଣ (ସଂ. ବିଧାନରୁ)—ବିବାହ ଆଦି କାର୍ଯ୍ୟପାଇଁ
Bhiāṇiāṅ ବେଭାରରୂପେ ପଠାଯିବା ଅଳ୍ପ ମୂଲ୍ୟର ଅଥଚ
**दिखाऊ** ଦେଖିବାକୁ ଆଡ଼ମ୍ବରଥିବା ( ଲୁଗାପ୍ରଭୃତି )—Cheap yet
showy sort of (clothes) meant for
presentation to relations in marriage
ceremonies.

**ଭିଆ ଭିତି**—ଦେ. ବି (ନିରର୍ଥକ ସହଚର)—ଅର୍ଥାଦିର ଉପାର୍ଜନ—
Bhiā bhiti Earning of money etc.
উপায়টুপায়, অর্জ্জনটর্জন; কামানটমান **अर्जनतर्जन; कमाउमा**

**ଭିଆ ହେବା**—ପ୍ରାଦେ. (ପୁରୀଜିଲ୍ଲା ବ୍ରାହ୍ମଣସମାଜ) କ୍ରି. (ସଂ. ବିବାହ)—
Bhiā hebā ବିବାହ କରିବା; ବିବାହିତ ହେବା—
বিএকরা **ब्याहकरना** To marry.

**ଭିକ(ଖ)**—ଦେ. ବି (ସଂ. ଭିକ୍ଷା)—୧ । ଭିକ୍ଷାଦ୍ରବ୍ୟ—1. Alms.
Bhika(kha) ୨ । ଭିକ୍ଷାବୃତ୍ତି—2. Begging; beggary.
ভিক (ଉ—ବ୍ରାହ୍ମଣଙ୍କୁ ସିନାଟି ଲେଖିଥିଲୁ ଭିକ । କୃଷ୍ଣସିଂହ.
**भिछा; भीक; भीख** ମହାଭାରତ ବନ । ) ୩ । ଭିକାରି ନାମକ
ଭିକନ, ଭିକା, ଭିକି, ଭିକୁ, ଭିକେଇ, ଭିକାରଥା } ଅନ୍ୟରୂପ ବ୍ୟକ୍ତିର ଡାକ ନାମ—
3. A name for calling
Bhikārī.

**ଭିକ ଚାଉଳ**—ଦେ. ବି—୧ । ଭିକ୍ଷା ଦିଆଯିବା ନିମନ୍ତେ ଉତ୍ସର୍ଗୀକୃତ
Bhika chāuḷa ତଣ୍ଡୁଳ—1. Rice set apart for
ভিক্ষার চাল being given away as alms. ୨ । ଭିକ୍ଷାଲବ୍ଧ
**भीकचावल** ତଣ୍ଡୁଳ—2 Rice received as alms.

**ଭିକ ଝୁଲି**—ଦେ. ବି—ଭିକ୍ଷାକାରୀର ମୁଣି—Beggar's pouch or
Bhika jhuli ভিক্ষারঝুলী **भीखकीझोली** wallet.

**ଭିକଥାଳ**—ଦେ. ବି (ସଂ ଭିକ୍ଷା+ସ୍ଥାଲୀ)—ଭିକ୍ଷାପାତ୍ର—Baggar's
Bhikathāḷa ভিক্ষারথাল **भीखकाबर्तन** bowl.

**ଭିକ(ଖ) ଦୁଃ(ଦୁ)ଖ**—ଦେ.ବି—(ଭିନ୍ନାର୍ଥକ ସହଚର) (ସଂ. ଭିକ୍ଷା+ଦୁଃଖ)-
Bhika(kha) duḥ(du)kha ଜୀବିକା ନିର୍ବାହାର୍ଥ ଭିକ୍ଷା ମାଗିବା ଓ
ভিখদুখ ମୂଲ ଲାଗିବା—Begging alms and working
on wages for earning one's livelihood.

ଭିକ ପସରା—ଦେ. ବି—୧। ଭିକ୍ଷାଲବ୍ଧ ପଦାର୍ଥଗୁଡ଼ିକ—1. Things Bhika pasarā received as alms ୨। ଭିକ ଥାଳ (ଦେଖ)—2. Bhika thāla [See]. ୩। (ଲକ୍ଷଣାର୍ଥ) ପୋଷ୍ୟପୁତ୍ର; ଦତ୍ତକ ପୁତ୍ର—3. An adopted son.

ଭିକମଗା—ଦେ. ବି, ଓ ବିଣ ପୁଂ—ଭିକ୍ଷାକାରୀ—Beggar. Bhikamagā भीखमंगा—पुं भीखमंगनी—स्त्री (ଭିକମାଗୀ—ସ୍ତ୍ରୀ) (ଭିକମଗାଳ—ଅନ୍ୟରୂପ) ভিখারী

ଭିକ ମାଗିବା—ଦେ. କ୍ରି—ଭିକ୍ଷା କରିବା—To beg for alms. Bhika māgibā ভীখ মাঁগা भीखमगा

ଭିକା(ଖା,କ୍ଷା)ରି—ଦେ. ବି. ପୁଂ (ସଂ. ଭିକ୍ଷାକାରୀ)—୧। ଭିକ୍ଷୁକ—Bhikā[khā,kshā]ri 1. Beggar. ୨। ଅପତ୍ନିଅଣୀ ভীখরী ବ୍ୟକ୍ତିର ନାମ—2. A name given to persons भीखारी whose elder brothers or sisters died [ଭିକା(ଖା)ରୁଣୀ—ସ୍ତ୍ରୀ] before his birth. ବିଣ. ପୁଂ—୧। ଭିକ୍ଷାଜୀବୀ-1. Living on alms. (ଉ—କରୁଣରେ ଭିକାରି ବ୍ରାହ୍ମଣ ଭକାର। କୃଷ୍ଣସିଂହ. ମହାଭାରତ. ଆଦି।) ୨। ପ୍ରାର୍ଥୀ—2. Supplicant (ଉ—ତୋଳଅଛି କଳ ଧ୍ୱଜ ଗଡୋଉ ପାଂଶୁକ, ଜଗୃତନ୍ତ୍ର ଯବନର ପ୍ରସାଦ ଭିକାରୀ। ରାଧାନାଥ. ମହାଯାତ୍ରା।)

ଭିକାରି ପଟ୍ଟନାୟକ—ଦେ. ବି (ନାମ)—ଜଣେ ପ୍ରାଚୀନ, ଓଡ଼ିଆ କବି Bhikāri paṭṭanāyaka ('ଲଙ୍କା ଦହନ ନାଟକ' ଏହାଙ୍କ ଦ୍ୱାରା ରଚିତ। ତାରିଣୀ. ଉତ୍କଳ ଇତିହାସ।)—An ancient Oriya poet of the name.

ଭିକାରି ବ୍ରାହ୍ମଣ—ଦେ. ବି (ସଂ. ଭିକ୍ଷାକାରୀ+ବ୍ରାହ୍ମଣ)—୧। Bhikāri brāhmaṇa (ସ୍ୱାର୍ଥିକ) ଭିକ୍ଷାଜୀବୀ ବ୍ରାହ୍ମଣ—1. A ভিকারী বামুন Brāhmaṇa living on alms; a भिखारी बामन beggar Brāhmaṇa. ୨। (ବହୁବଚନ) ଭିକ୍ଷୁକଗଣ ଓ ବ୍ରାହ୍ମଣଗଣ—2. Beggars and Brāhmaṇas.

ଭିକାରି(ରୁ)ଣୀ—ଦେ. ବି. ସ୍ତ୍ରୀ—ଭିକ୍ଷୁକୀ; ଭିକ୍ଷା କରୁଥିବା ସ୍ତ୍ରୀ—Bhikāri(ru)ṇi Beggar woman. ভিকারিনী भिखारिन

ଭିକ୍ଟୋରିୟା—ବୈଦେ. ବି (ଇଂ) ନାମ—ସ୍ୱର୍ଗୀୟା ପୁଣ୍ୟଶ୍ଳୋକା Bhikṭoriā ଭାରତେଶ୍ୱରୀ ଶ୍ରୀମତୀ ମହାରାଣୀ—The late Queen Victoria, Empress of India. [ଦ୍ର—ଜନ୍ମ ଖ୍ରୀ ୧୮୧୯, ସିଂହାସନାରୋହଣ ଖ୍ରୀ ୧୮୩୭, ବିବାହ ୧୮୪୦, ସ୍ୱର୍ଗାରୋହଣ ଖ୍ରୀ ୧୯୦୧। ଇଂଲଣ୍ଡର ରାଜା ୪ର୍ଥ ଉଇଲିଅମ୍‌ଙ୍କ ଭ୍ରାତୃଷ୍ପୁତ୍ରୀରୂପେ ଏ ଇଂଲଣ୍ଡ ସିଂହାସନ ଅଧିକାର କଲେ। ଜର୍ମାନିର ସାକ୍ସକୋବର୍ଗ୍ ଓ ଗୋଥାର ପ୍ରିନ୍ସ ଆଲବର୍ଟଙ୍କ ସହିତ ଏହାଙ୍କର ବିବାହ ହେଲା ଓ ଏହାଙ୍କର ୪ ପୁତ୍ର ଓ ୫ କନ୍ୟା ଲାଭ ହୋଇଥିଲା। ପ୍ରଥମ ପୁତ୍ର ଯୁବରାଜ ଏଡ୍‌ୱାର୍ଡ ୭ମ ଏଡ୍‌ୱାର୍ଡରୂପେ ଖ୍ରୀ ୧୯୦୧ ରେ ଇଂଲଣ୍ଡର ରାଜା ଓ ଭାରତ ସମ୍ରାଟ ହୋଇଥିଲେ ଓ ୭ମ ଏଡ୍‌ୱାର୍ଡଙ୍କ ଦ୍ୱିତୀୟ ପୁତ୍ର ପ୍ରିନ୍ସ ଜର୍ଜ୍ ୫ମ ଜର୍ଜରୂପେ ବର୍ତ୍ତମାନ ଇଂଲଣ୍ଡର ରାଜା ଓ ଭାରତ ସମ୍ରାଟ ଅଟନ୍ତି। ଭାରତର ସିପାହୀ ବିଦ୍ରୋହର ପର ବର୍ଷ (ଖ୍ରୀ ୧୮୫୮ରେ) ମହାରାଣୀ ଭାରତର ଶାସନଭାର ସ୍ୱୟଂ ଗ୍ରହଣ କଲେ। ତଦୁପଲକ୍ଷରେ ସେ ଘୋଷଣା କଲେ ଯେ ଭାରତୀୟ ପ୍ରଜାମାନେ ବ୍ରିଟିଶ ପ୍ରଜାଙ୍କ ସମାନ ଅଧିକାର ପାଇବେ ଓ ସେମାନଙ୍କର ଯୋଗ୍ୟତା ଥିଲେ ଜାତି ଧର୍ମ ନିର୍ବିଶେଷରେ ସବୁ ପ୍ରଜା ରାଜକାର୍ଯ୍ୟରେ ନିଯୁକ୍ତ ହୋଇ ପାରିବେ। ଏହାଙ୍କ ଅମଳରେ ଏହାଙ୍କ ଜ୍ୟେଷ୍ଠ, ଦ୍ୱିତୀୟ ଓ କନିଷ୍ଠପୁତ୍ରମାନେ ଓ ଯୁବରାଜଙ୍କ ଜ୍ୟେଷ୍ଠପୁତ୍ର ଭାରତ ଆଗମନ କରିଥିଲେ। ୧୮୭୭ ସାଲରେ ମହାରାଣୀ ଭାରତେଶ୍ୱରୀ ଉପାଧି ଧାରଣ କଲେ। ଏହାଙ୍କ ରାଜତ୍ୱ ୫୦ ବର୍ଷ ପୂରିବାରୁ ଖ୍ରୀ ୧୮୮୭ ରେ ସ୍ୱର୍ଣ୍ଣ ଜୁବିଲୀ ଉତ୍ସବ ଓ ୬୦ ବର୍ଷ ପୂରିବାରୁ ୧୮୯୭ ସାଲରେ ହୀରକ ଜୁବିଲୀ ଉତ୍ସବ ପାଳିତ ହୋଇଥିଲା। ଏହାଙ୍କ ପରି ୬୪ ବର୍ଷ ରାଜତ୍ୱ କରିବା କ୍ୱଚିତ୍ ଅନ୍ୟ ରାଜାଙ୍କ ଭାଗ୍ୟରେ ଘଟିଛି। ଏହାଙ୍କ ଦୀର୍ଘ ରାଜତ୍ୱ କାଳରେ ଭାରତରେ ଓ ବ୍ରିଟେନରେ ଅନେକ ଉନ୍ନତି ଘଟିଥିଲା, ଓ ବ୍ରିଟିଶ ସାମ୍ରାଜ୍ୟରେ ଅନେକ ଦେଶ ଭୁକ୍ତ ହୋଇଥିଲା। ଏହାଙ୍କ ସମୟରେ ରେଲ ଓ ଟେଲିଗ୍ରାଫ୍ ପ୍ରତିଷ୍ଠା ହେଲା, ସୁଏଜ କେନାଲ ଖୋଲା ଗଲା ଓ ନାନା କ୍ଷେତ୍ରରେ ବହୁ ପ୍ରତିଷ୍ଠାପନ୍ନ ମହାପୁରୁଷଙ୍କ ଆବିର୍ଭାବ ହୋଇଥିଲା—ସ୍ୱବଳଚନ୍ଦ୍ର।]

ଭିକ୍ଷ (ଧାତୁ)—ସଂ.—ଯାଚ୍ଞା କରିବା; ଭିକ ମାଗିବା—Bhiksh (root) To beg.

ଭିକ୍ଷା—ସଂ. ବି—(ଭିକ୍ଷ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—୧। ଅନୁଗ୍ରହ-Bhikshā ପ୍ରାର୍ଥନା—1. Request for favour. ୨। ଧନ ବା ଖାଦ୍ୟାଦି ପ୍ରାର୍ଥନା; ଭିକ ମାଗିବା—2. Begging. ୩। (+କର୍ମ ଅ+ଆ)—ଭିକ; ଭିକ୍ଷାଲବ୍ଧ ବସ୍ତୁ—3. Alms. ୪। ସନ୍ନ୍ୟାସୀ ବା ବ୍ରହ୍ମଚାରୀଙ୍କ ପ୍ରାର୍ଥିତ ଏକ ଗ୍ରାସ ଅନ୍ନ—4. One mouthful of food begged for by an ascetic. ୫। ସେବା—5. Tending. ଦେ. ବି—ସନ୍ନ୍ୟାସୀ ଓ ବ୍ରହ୍ମଚାରୀଙ୍କର ଭିକ୍ଷାଲବ୍ଧ ଦ୍ରବ୍ୟଦ୍ୱାରା ଭୋଜନ କ୍ରିୟା ନିର୍ବାହ—The act of a Sannyāsi (ascetic) taking food bestowed as alms. (ଉ—ଭିକ୍ଷା ନ ଦେଇ ଆଗ ମୋତେ। ପାଇଣ କଲ ଏ ଯୁଗତେ। ଜଗନ୍ନାଥ. ଭାଗବତ।) (ଭିଖ୍ୟା—ଗ୍ରାମ୍ୟରୂପ)

ଭିକ୍ଷା(କ୍ଷୁ)କ—ସଂ. ବି (ଭିକ୍ଷ ଧାତୁ+କର୍ତ୍ତୃ ଅକ; ଉକ)—ଭିକାରୀ; ଭିକ୍ଷୁକ Bhikshā(kshu)ka —A beggar; mendicant. (ଭିକ୍ଷୁ—ଅନ୍ୟରୂପ)

ଭିକ୍ଷା କରିବା—ଦେ. କ୍ରି (ସଂ. ଭିକ୍ଷ ଧାତୁ)—୧। ଭିକ ମାଗିବା—Bhikshā karibā ভীখ মাগা 1. To beg for alms. भिक्षा करना ୨। ଅନୁଗ୍ରହ କାମନାରେ ପ୍ରାର୍ଥନା କରିବା—2. To (ଭିଖ୍ୟା ମାଗିବା—ଗ୍ରାମ୍ୟରୂପ) solicit a favour. ୩।

ଭୋଜନ କରିବା ( ସନ୍ନ୍ୟାସୀ ପକ୍ଷେ )—3. To feed oneself(said of an ascetic). (ଉ—ସେ ବା ମିଳଇ ଯେତେବେଳେ, ସେ ଭିକ୍ଷା କରେ ସନ୍ଧ୍ୟାକାଳେ । ଜଗନ୍ନାଥ. ଭାଗବତ ।)

ଭିକ୍ଷା ଚର୍ଯ୍ୟା—ସଂ. ବି—(ଭିକ୍ଷା+ଚର ଧାତୁ+ଭାବ.ଯ+ଆ)—ଭିକ ମାଗି ଜୀବିକା ନିର୍ବାହ କରିବା—Beggary; begging as a profession.
Bhikshā charjyā
(ଭିକ୍ଷାବୃତ୍ତି—ଅନ୍ୟରୂପ)

ଭିକ୍ଷାଜୀବୀ—ସଂ. ବିଣ. ପୁଂ (ଭିକ୍ଷା+ଜୀବ ଧାତୁ+କର୍ତ୍ତୃ.ଇନ୍; ୧ମା ୧ବ.) ଯେ ଭିକ୍ଷା କରି ପୋଷିହୁଏ—Subsisting on alms.
Bhikshājībī
(ଭିକ୍ଷାଜୀବିନୀ—ସ୍ତ୍ରୀ)(ଭିକ୍ଷାଜୀବ—ଅନ୍ୟରୂପ)

ଭିକ୍ଷା ଝୁଲି—ଦେ. ବି—ଭିକ୍ଷା ଲବ୍ଧ ବସ୍ତୁ ରଖିଥିବାର ଥଳି ବା ମୁଣା—ভিক্ষার ঝুলি Beggar's pouch. **भिक्षाकी झोलि** (ଉ—ଘେନି ଭିକ୍ଷା ଝୁଲି, ପଥେ ପଥେ ବୁଲି, ଭିକ୍ଷା ମାଗି ପଚ୍ଛେ କାଟିବି ଦିନ । ନନ୍ଦକିଶୋର. ଲକ୍ଷ୍ମୀକୁମାରୀ ।)
Bhikshā jhuli

ଭିକ୍ଷାଟନ—ସଂ. ବି—(ମଧ୍ୟ ପଦଲୋପୀ, ଭିକ୍ଷା+ଅଟନ)—ଭିକ୍ଷ କରିବା ନିମନ୍ତେ ଏ ଘର ସେ ଘର ଓ ନାନା ସ୍ଥାନରେ ବୁଲିବା—Travelling about begging alms; mendicancy.
Bhikshāṭana

ଭିକ୍ଷାନ୍ନ—ସଂ. ବି (ମ. ପ. ଲୋ; କର୍ମଧା; ଭିକ୍ଷା+ଅନ୍ନ)—୧ । ଭିକ୍ଷାଲବ୍ଧ ଖାଦ୍ୟ—1. Food obtained as alms. ୨ । ସନ୍ନ୍ୟାସୀଙ୍କର (ଭିକ୍ଷାଲବ୍ଧ) ଭୋଜନ—2 The meal of a Sannyāsī, (bestowed as alms).
Bhikshānna

ଭିକ୍ଷା ପାତ୍ର—ସଂ. ବି (ମ. ପ. ଲୋ; କର୍ମଧା ଭିକ୍ଷା+ପାତ୍ର)—ଭିକ ରଖିବା ଅଧାର; ଭିକ ଥାଳ—A beggar's bowl.
Bhikshā pātra
(ଭିକ୍ଷା ଭାଣ୍ଡ—ଅନ୍ୟରୂପ)

ଭିକ୍ଷା ପୁତ୍ର—ସଂ. ବି ( ଅଧୁନିକ ପ୍ରୟୋଗ )—୧ । ଉପନୟନ ସଂସ୍କାର ପରେ ବାଳକର ବ୍ରହ୍ମଚର୍ଯ୍ୟ ବ୍ରତ ଭଙ୍ଗପୂର୍ବକ ଅପୁତ୍ରକ ବା ଅପୁତ୍ରକା ବ୍ୟକ୍ତିଦ୍ୱାରା ପୁତ୍ରରୂପେ ଗୃହୀତ ବ୍ରାହ୍ମଣ କୁମାର—1. A Brāhmaṇa boy adopted as a son by a childless male or female after the sacred thread ceremony but before marriage. ୨ । ପୋଷ୍ୟପୁତ୍ର; ଦତ୍ତକପୁତ୍ର—2. Adopted son.
Bhikshā putra

ଭିକ୍ଷାର୍ଥୀ—ସଂ. ବିଣ. ପୁଂ ( ଭିକ୍ଷା+ଅର୍ଥ ଧାତୁ=ମାଗିବା+କର୍ତ୍ତୃ. ଇନ୍; ୧ମା.୧ବ )—ଭିକ୍ଷା ମାଗିବା ବା ପାଇବା ପାଇଁ ଉପସ୍ଥିତ—Begging alms
Bhikshārthī
(ଭିକ୍ଷାର୍ଥିନୀ—ସ୍ତ୍ରୀ)
ସଂ. ବି—ଭିକ୍ଷୁକ—Beggar.

ଭିକ୍ଷା ଲବ୍ଧ—ସଂ. ବିଣ. ( ତୃତୀୟା ତତ୍ ପୁରୁଷ; ଭିକ୍ଷା+ଲବ୍ଧ )—ଭିକ୍ଷା ମାଗିବା ଦ୍ୱାରା ପ୍ରାପ୍ତ—Obtained by begging.
Bhikshā labdha

ଭିକ୍ଷାଶୀ—ସଂ. ବିଣ. ବି ଓ ପୁଂ (ଭିକ୍ଷା+ଅଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବଚନ )—ଭିକ୍ଷାଜୀବୀ—Mendicant; professional beggar. (ଉ—ସେ ଯୋଗୀ ଗୃହ ତ୍ୟାଗୀ ମହିମା ଭିକ୍ଷାଶୀ, ତାହାକୁହିଁ ବୋଲନ୍ତି ଭିକ୍ଷୁକ ସନ୍ନ୍ୟାସୀ । କୃଷ୍ଣସିଂହ. ମହାଭାରତ ଶାନ୍ତି ।)
Bhikshāśī

ଭିକ୍ଷିତ—ସଂ. ବିଣ ( ଭିକ୍ଷ୍ ଧାତୁ+କର୍ମ. ତ )—ଯାଚିତ; ପ୍ରାର୍ଥିତ—Begged or prayed for.
Bhikshita

ଭିକ୍ଷୁ—ସଂ. ବିଣ. ( ଭିକ୍ଷ୍ ଧାତୁ+କର୍ତ୍ତୃ. ଉ )—ଯାଚକ—Soliciting; begging.
Bhikshu
(ଭିକ୍ଷୁକ—ଅନ୍ୟରୂପ) ବି—୧ । ଚତୁର୍ଥାଶ୍ରମୀ ଦ୍ୱିଜ; ସନ୍ନ୍ୟାସୀ—
(ଭିକ୍ଷୁଣୀ—ସ୍ତ୍ରୀ) 1. A Brāhmaṇa who has taken to the 4th stage of life; viz. begging in the old age (as enjoined in the Hindu Śastras); a religious mendicant. ୨ । ଭିକାରି—2. Beggar; mendicant. ୩ । ବୁଦ୍ଧ ଶିଷ୍ୟ—3. A disciple of the Buddha. ୪ । ବୌଦ୍ଧ ସନ୍ନ୍ୟାସୀ—4. A Buddhist monk ୫ । ପରିବ୍ରାଜକ—5. An itinerant monk. ୬ । ଦ୍ୱିଜାତିମାନଙ୍କର ବୃଦ୍ଧାବସ୍ଥାରେ ଅବଲମ୍ବନୀୟ ୪ର୍ଥ ଆଶ୍ରମ—6. The 4th or last stage in the life of a twice born, enjoined by the Śastras.

ଭିକ୍ଷୁକାଶ୍ରମ—ସଂ ବି. (୬ଷ୍ଠୀ ତତ୍; ଭିକ୍ଷୁକ ଆଶ୍ରମ)—ଦ୍ୱିଜାତିଙ୍କର ଶାସ୍ତ୍ର-ନିର୍ଦ୍ଦିଷ୍ଟ ଚତୁର୍ଥ ଆଶ୍ରମ—The fourth stage in the life of a twice-born, enjoined by the Hindu scriptures (but not observed at present).
Bhikshukāśrama

ଭିକ୍ଷୋପଜୀବୀ—ସଂ. ବିଣ. ପୁଂ (ଭିକ୍ଷା+ଉପ ଜୀବୀନ୍)—ଭିକ୍ଷାଜୀବୀ (ଦେଖ) Bhikshājībī (See)
Bhikshopajībī
(ଭିକ୍ଷୋପଜୀବିନୀ—ସ୍ତ୍ରୀ)

ଭିକ୍ଷ୍ୟମାଣ—ସଂ. ବି. ( ଭିକ୍ଷ୍ ଧାତୁ+କର୍ତ୍ତୃ.ଶାନଚ୍ )—ଭିକ୍ଷା ମାଗୁଥିବା—Engaged in begging; begging alms.
Bikshyamāṇa

ଭିଖାରି—ଦେ. ବି ପୁଂ.—ଭିକାରି (ଦେଖ) Bhikārī ( See ) ( ଉ—ମଦଗଜଗମନଙ୍କୁ, କଦମ୍ବ ମୂଳଥିଲୁ, ମଣ୍ଡଶାଳା ଭିଖାରିଙ୍କୁ । କବିସୂର୍ଯ୍ୟ. ସଙ୍ଗୀତ ।)
Bhikhārī

ଭିଖା(ରି)ରୁଣୀ—ଦେ. ବି. ସ୍ତ୍ରୀ—ଭିକାରୁଣୀ—Bhikāruṇī. (ଉ—ଭୁମ୍ଭ ପଦେ ଅଜ ପ୍ରେମ ଭିଖାରିଣୀ । ରାଧାନାଥ. ନନ୍ଦିକେଶ୍ୱରୀ ।)
Bhikhā(ri)ruṇī

ଭିଖୁକ—ଗ୍ରା. ବି. ( ସଂ. ଭିକ୍ଷୁକ )—ଭିକ୍ଷୁକ ( ଦେଖ ) Bhikshuka ( See ) (ଉ—ଭିଖୁକ କଥାକୁ ସତ୍ୟ କରିଅଛୁ ମାନ । ପ୍ରତାପ ଶଶିରେଖା ।)
Bhikhuka

ଭିଗ୍‌ଲେଇବା—ପ୍ରାଦେ (ବାଲେଶ୍ୱର) କ୍ରି. (ତୁଲ. ବ. ଭେଙ୍ଗାନ; ହି. ଚିଢ଼ାନା)—୧ । ଖେଚେଇ ଦେବା—1. To
Bhig-leibā

(ଭିଙ୍ଗ୍‌ଡ଼େଇବା—ଅନ୍ୟରୂପ) make faces. ୨ । ମାଗିଲା ବେଳେ ଅତ୍ୟନ୍ତ ଲେଉଟେଇ ହେବା ବା ନ୍ୟୂନ ହେବା—2. To excessively humiliate oneself while supplicating for a favour.

**ଭିଖାରେନ୍**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ—ଭିଖାରୁଣୀ—
Bhikhāren A beggar woman.

**ଭିଗା(ଜା)**—ଦେ. ବିଣ—ଆର୍ଦ୍ର; ଓଦା—
Bhigā(jā) Moist.
ভিজা भीगा

**ଭିଗା(ଗେ, ଜା, ଜେ)ଇବା**—ଦେ. କ୍ରି. (ସ. ମସ୍ଜ ଧାତୁ=ମଜ୍ଜିବା; Bhigā(ge, jā, je)ibā କ୍ରମ୍ଭା ଭିଦ ଧାତୁ; ଭିଜିବା କ୍ରିୟାର ভিজান ଣିଜନ୍ତ ରୂପ)—ଓଦା କରିବା—To moisten; to भिजाना, भिंगाना wet; to soak.

**ଭିଗି(ଜି)ବା**—ଦେ. କ୍ରି (ଭିଦ୍ ଧାତୁ=[ଜଳ] ଭେଦ କରିବା)—
Bhigi(ji)bā ଓଦା ହେବା; ଆର୍ଦ୍ର ହେବା—To get wet; ভিজা भींगना to be moistened; to be drenched or steeped in water.

**ଭିଜାଣ**—ଦେ. ବି—ଓଦା କରିବା କ୍ରିୟା—Act of moistening.
Bhijāṇa ভিজান भींगाना

**ଭିଜା ମାଟି**—ଦେ. ବି—ଆର୍ଦ୍ର ମୃତ୍ତିକା—Wet soil; soil satura-
Bhijā māṭi ভিজা মাটি भींगी मिट्टी ted with water.

**ଭିଜିଟ୍**—ବୈଦେ. ବି (ଇଂ. ଭିଜିଟ୍)—୧ । ଡାକ୍ତରଙ୍କର ରୋଗୀଙ୍କୁ
Bhijiṭ ଦେଖିବାକୁ ଯିବା—1. Doctor's visit to a patient.
ভিজিট ୨ । ବିଦ୍ୟାଳୟମାନଙ୍କରେ ପରିଦର୍ଶକ କର୍ମଚାରୀଙ୍କଦ୍ୱାରା ବିଦ୍ୟା-
भिजट ଳୟାଦିର ପରିଦର୍ଶନ—2. Formal inspection of a school etc. ୩ । ରୋଗୀଙ୍କୁ ଚିକିତ୍ସାର୍ଥ ଦେଖିବାକୁ ଆସିଥିବା ଡାକ୍ତରଙ୍କୁ ଦିଆଯିବା ସମ୍ମାନୀ ବା ଦର୍ଶନୀ—3. A doctor's visiting fees. ୪ । ପରିଦର୍ଶନ —4. Visit; inspection.

**ଭିଜିଟ୍ ବହି**—ଦେ. ବି (ଇଂ. ଭିଜିଟର୍ସ ବୁକ୍)—ଯେଉଁ ପୁସ୍ତକରେ
Bhijiṭ bahi ବିଦ୍ୟାଳୟାଦିର ପରିଦର୍ଶକମାନେ ଆପଣାର ମନ୍ତବ୍ୟ
ଭିଜିଟ୍ ବୁକ } ଅନ୍ୟରୂପ ଲେଖି ରଖିଯାଆନ୍ତି—A
ଭିଜିଟର୍ ବୁକ୍ (ବହି) } visitors' book; a
ভিজিটার বই book kept for recording the remarks
भिजिट बही of inspections.

**ଭିଜିଟ୍ କାଡ଼(ର୍ଡ)**—ଦେ. ବି (ଇଂ. ଭିଜିଟିଙ୍ଗ୍ କାର୍ଡ)—ଦର୍ଶନୀ
Bhijiṭ kārḍ(rḍ) ପତ୍ରିକା; କୌଣସି ପଦସ୍ଥ ବ୍ୟକ୍ତିଙ୍କୁ
ভিজিটিঙ্গ কার্ড ଦେଖା କରିବା ପାଇଁ ଉପସ୍ଥିତ ବ୍ୟକ୍ତି
भिजिटिङ्ग कारड ପୂର୍ବରୁ ଆପଣାର ନାମ ଧାମ ଲେଖି ଯେଉଁ ଛୋଟ (ଭିଜିଟିଙ୍ଗ୍ କାଡ଼୍[ର୍ଡ]—ଅନ୍ୟରୂପ) କାଗଜ ବା ଟିକଟ୍ ପଦସ୍ଥ ବ୍ୟକ୍ତିଙ୍କଠାକୁ ପଠାଇ ଦିଅନ୍ତି—A visiting card.

**ଭିଜିଟର୍**—ବୈଦେ. ବି (ଇଂ. ଭିଜିଟର୍)—ପରିଦର୍ଶନକାରୀ ବ୍ୟକ୍ତି;
Bhijiṭar ভিজিটার भिजिटार ପରିଦର୍ଶକ—Visitor.

**ଭି(ଭେ)ଜିଟେବଲ୍ ଘିଅ**—ଦେ. ବି (ଇଂ. ଭେଜିଟେବଲ୍+ସ. ଘୃତ)
Bhi(bhe)jitebal ghia —ଉଦ୍ଭିଦରୁ ଜାତ ଘିଅ—
গাছ ঘী Vegetable ghee.

**ଭିଜିବା**—ଦେ. କ୍ରି—ଭିଗିବା (ଦେଖ)—Bhigibā (See)
Bhijibā ভিজা भिंगना

**ଭିଜ୍ଞ**—ଦେ. ବିଣ. ପୁଂ (ସ. ଅଭିଜ୍ଞ)—ଚତୁର—(ଭିଜ୍ଞା—ସ୍ତ୍ରୀ)
Bhijña Skilful; intelligent or smart.

**ଭିଟ୍**—ପ୍ରାଦେ (ଯାଜପୁର) ବି—ସଙ୍କଟସ୍ଥଳ; ସନ୍ଦେହଜନକ ବିଷୟ;
Bhiṭ ସମସ୍ୟା—A fix; a perplexing problem; dilemma. (ଯଥା—ମୋତେ ଗୋଟେ ବଡ଼ ଭିଟ୍ ପଡ଼ିଯାଇଛି ।)

**ଭିଟା**—ଦେ. ବି (ସ. ଭିତ୍ତି)—୧ । ପୈତୃକ ବାସଭୂମି; ମୌରସୀ
Bhiṭā ଘରବାଡ଼ି—1. Ancestral homestead. ୨ ।
ভিটা ଉଚ୍ଚ ଜମି—2. Homestead land. [ଦ୍ର—
डिह ପୈତୃକ ଭିଟା—ପୈତୃକ ଘର ଭିଟ ଅର୍ଥରେ, ଓ ବାସ୍ତୁଭିଟା —ଘରଭିଟ ଓ ଘରବାଡ଼ି ଅର୍ଥରେ ବ୍ୟବହୃତ ହୁଏ । ]

**ଭିଟା ଉଠା(ଠେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ସର୍ବସ୍ୱାନ୍ତ
Bhiṭā uṭhā(ṭhe)ibā କରି ତାହାକୁ ବାସଭୂମିରୁ ତଡ଼ିଦେବା
ଭିଟା ଉଚ୍ଛନ୍ନ କରିବା } ଅନ୍ୟରୂପ —To bring about
ଭିଟାମାଟି ଉଚ୍ଛନ୍ନ କରିବା } the utter ruin of a
ভিটায় ঘুঘুচরান; ভিটাউচ্ছন্ন করা person by ousting
डीह उजाडना him from his homestead.

**ଭିଟାମିନ୍**—ବୈଦେ. ବି (ଇଂ. ଭିଟାମିନ୍)—ବୈଜ୍ଞାନିକ ମତାନୁଯାୟୀ
Bhiṭāmin ଖାଦ୍ୟରେ ଥିବା ଜୀବନରକ୍ଷାକାରୀ ପୁଷ୍ଟିକର ସାରାଂଶ
ভিটামীন मिटामीन —Vitamin.

**ଭିଡ଼**—ଦେ. ବି (ସ. ବହୁଳ; କ୍ରମ୍ଭା ଧ୍ୱନ୍ୟନୁକରଣ)—୧ । ଜନଗହଳି;
Bhirḍa ଲୋକ ଗହଳ—1. Crowd; rush of people
ভীড় at a place. ୨ । ଭିଡ଼ିବା ବା ଟାଣିବା ଅବସ୍ଥା;
भीड(र) ଟଣାଟଣି—2. The act of drawing tightly. ୩ । ଚାପ; ଜବରଦସ୍ତ—3. Pressure. ୪ । କାର୍ଯ୍ୟର ଚାପ ବା ଆଧିକ୍ୟ—4. Pressure of work. ୫ । କଷ୍ଟ; ଦୁଃଖ—5. Difficulty; trouble. ୬ । ବଡ଼ ଜାଲର ଗୋଟିଏ ଖଣ୍ଡ—6. One component piece of a big net. [ଦ୍ର—ଗଭୀର ଜଳାଶୟରେ ମାଛ ମାରିବା ପାଇଁ ଅନେକଗୁଡ଼ିଏ ଜାଲର ଭିଡ଼ମାନଙ୍କୁ ଗଇଁଠାଇ ଆବଶ୍ୟକମତେ ଜାଲକୁ ଲମ୍ବା କରାଯାଏ । ]
চুস্ত चूस्त ଦେ. ବିଣ—ଚୁସ୍ତ; କସାକସ୍—Tight.

**ଭିଡ଼ କରିବା**—ଦେ. କ୍ରି—୧ । କଷି କରି ଟାଣିବା—1. To draw
Bhirḍa karibā tightly. ୨ । ଟାଣିବା ନିମନ୍ତେ ବିଶେଷ
[ଭିଡ଼ ଲଗା(ଗେ)ଇବା—ଅନ୍ୟରୂପ] ପରିଶ୍ରମ ଦରକାର କରିବା
জোরে টানা (ଯଥା—ଦଳୁଆ ବା ପଙ୍କୁଆ ପୋଖରୀରେ ବଡ଼
कसकर खिंचना ଜାଲ ପକାଇ ତାହା ଟାଣିଲା ବେଳକୁ ତଳିରେ
জোর চাওয়া ପଙ୍କ ଓ ଦଳ ବାଧା ଦେବାରୁ ଜାଲ ଭାରି ଭିଡ଼

বল চাহনা ଲଗେ )—2. To require a great জেদকরা force to draw. ୩ । ଜିଗର କରିବା; জিদ্ করনা ଜବରଦସ୍ତ କରିବା—3. To press; to importune.

ଭିଡ଼ କାମ—ଦେ. ବି—ବହୁପରିଶ୍ରମସାଧ୍ୟ କାର୍ଯ୍ୟ—Work entail- Bhirda kāma ing great labour; কষ্টসাধ্য কাজ কঠিন কাম toilsome work.

ଭିଡ଼ ଭା(ମା,ମୋ)ଡ଼—ଦେ. ବ ( ସବୁରେ )—୧ । ଖୁବ୍ ଜନତା—Bhirda bhā(mā,mo)rda 1. A very thick crowd. ভারীভিড় ୨ । ଖର ଟଣା ଓଟରା—2. Tight drawing; মিডভাড tugging. ୩ । ଜବରଦସ୍ତ—3. Importune or pressing request. ୪ । ଅନ୍ୟୋନ୍ୟରେ ଟଣାଟଣି—4. Mutual dragging; tug of war. ୫ । ବଳ କଷାକଷି—5. A mutual test of strength between two contending parties.

ଭିଡ଼(ଡ଼ା) ଜାଲ—ଦେ. ବ—ବଡ଼ ଜାଲ; ଯାହା ଗଭୀର ଜଳରେ ପକାଯାଇ Bhirda(rdā) jāla ଦୁଇ ମୁଣ୍ଡରେ ବନ୍ଧା ଥିବା ଲୋକଙ୍କ ଦ୍ୱାରା টানাজাল ଉପରକୁ ଭିଡ଼ା ହୋଇ ଅଣାଯାଏ—A big net মহাজাল which is cast in deep waters and the ends of the ropes passing through the top and bottom of which are dragged into the shore. [ ପ୍ର—ଭିଡ଼ଜାଲ ଏକାଧିକ ଖଣ୍ଡ ଭିଡ଼ ଏକତ୍ର ଗୁନ୍ଥାଯାଇ ଭିଡ଼ଜାଲ ପକାଯାଏ । ]

ଭିଡ଼ା—ଦେ. ବ ( ସ. ପୀଡ଼ ଧାତୁ )—୧ । ଭିଡ଼ିବା; କଷି କରି ଟାଣିବା Bhirdā ବା ଓଟାରିବା—1. Pulling or dragging টানা tightly. ୨ । ଦୃଢ଼ବନ୍ଧନ; କଷି କରି ବାନ୍ଧିବା—মীডনা 2. Binding tightly. ୩ । ସ୍ତ୍ରୀଲୋକଙ୍କ মাথারজড়ী ଜୁଡ଼ାରେ ବନ୍ଧାଯିବା ଧଡ଼ି—3. A tape tied পেঠা ডোর tightly round a chignon. ୪ । ଗାଢ଼ାଲିଙ୍ଗନ—4. A tight embrace. [ ପ୍ର—ଅପନବ କ୍ରୀଡ଼ା, କାଳେ ଗାଢ଼ ଭିଡ଼ା, ଅନୁଭବରୁ ତ, ଲଭୁଥିବ ବ୍ରୀଡ଼ା । କବିସୂର୍ଯ୍ୟ. ସଙ୍ଗୀତ । ] ୫ । ଗୁପିବା—5. Pressing. ୬ । (ସ. ବହୁତର) ପୁଞ୍ଜ; ସମୂହ—6. Multitude. [ ପ୍ର—ସଗର ପୁତ୍ରଙ୍କରେ ପାଇ କରି ପୀଡ଼ା, ବ୍ରହ୍ମାଙ୍କୁ ଜଣାଇଲେ ଦେବଲୋକ ଭିଡ଼ା କୃଷ୍ଣସିଂହ. ମହାଭାରତ. ବନ । ] ୭ । ଚଳୁଥିବା ନୌକାର থামান ବା ସବାରିଅଧର ଗତି ସ୍ଥଗିତ କରିବା—7. Stopping মীডনা the motion of a moving conveyance.

ଭିଡ଼ା(ଡ଼େ)ଇବା—ଦେ. କ୍ରି—୧ । ( ଭିଡ଼ିବା କ୍ରିୟାର ଣିଜନ୍ତରୂପ)- Bhirdā (rde) ibā ଅନ୍ୟଦ୍ୱାରା ଭିଡ଼ିବା କ୍ରିୟା କରାଇବା—ভিড়ান 1. To cause to be tightly drawn up, মীডানা; মিডবানা pressed or embraced. [ ପ୍ର—ପୀଡ଼ାଇ ଓଷ୍ଠକୁ, ଭିଡ଼ାଇ ଅଙ୍ଗକୁ । କବିସୂର୍ଯ୍ୟ. ସଙ୍ଗୀତ ] ୨ । ଯୁଟାଇବା; ମିଳିତ କରାଇବା—2. To cause to meet. ୩ । ସଲଗ୍ନ କରାଇବା—3. To cause to stick or adhere. ୪ । ଚଳୁଥିବା ଯାନଅଧର ଗତି ସ୍ଥଗିତ କରାଇବା—4. To cause the motion of any conveyance to be stopped.

ଭିଡ଼ା ଭିଡ଼ା—ଦେ. ବଣ ( ସ. ବହୁତର )—ବହୁ—Many. [ପ୍ର—hirdā bhirdā ପରବତ ପର ଯେ ମହିରେ ଲଦଡ଼ା । କୂଳରେ অনেক বহুত ବାନ୍ଧୁଥିଲେ ହୋଇ ଭିଡ଼ାଭିଡ଼ା—କୃଷ୍ଣସିଂହ. ମହାଭାରତ. ବନ । ]

ଭିଡ଼ାଭିଡ଼ି—ଦେ. ବ—ଅନ୍ୟୋନ୍ୟ ଟଣାଟଣି ବା ହିଞ୍ଚାହିଞ୍ଚି—Bhirdābhirdi 1. Mutual dragging. ୨ । ଅନ୍ୟୋ- টানাটানি মিডামিডি ନ୍ୟରେ ସଲଗ୍ନ ହେବା—2. Sticking to each other. ୩ । ଉତ୍ତମ କରି ଭିଡ଼ିବା—3. Dragging tightly. ଦେ. ବ—ଅନ୍ୟୋନ୍ୟ ଆଲିଙ୍ଗନ; କୁଣ୍ଢାକୁଣ୍ଢି—Tightly embracing each other. [ ପ୍ର—କୃଷ୍ଣ ଅର୍ଜୁନ ଅନ୍ୟୋନ୍ୟରେ ପ୍ରିୟ, ଭିଡ଼ାଭିଡ଼ି ହୋଇଲେ ଲଗାଇ ହୃଦୟ —କୃଷ୍ଣସିଂହ. ମହାଭାରତ. ବନ । ]

ଭିଡ଼(ଡ଼ୁ)ଣି—ଦେ. ବ—ଜୁଡ଼ାରେ ଭିଡ଼ିବା ପାଇଁ ବ୍ୟବହୃତ ପାଟଫୁଲ; Bhirdi(rdu)ni ଭିଡ଼ା—A tassellated tape used মাথার পাটের দড়ি for binding a chignon tightly. পেঁঠা ডোর

ଭିଡ଼ିବା—ଦେ. କ୍ରି ( ସ. ପୀଡ଼ ଧାତୁ )—୧ । ହିଞ୍ଚିବା; ଜୋରରେ Bhirdibā ବା କଷି କରି ଟାଣିବା—1. To draw or pull টানা, tightly. ୨ । ଆକର୍ଷଣ କରିବା; ଓଟାରିବା; মিডনা ଟାଣିବା—2. To attract; to draw; to pull. ୩ । ଅଣ୍ଟାରେ ବାନ୍ଧିବା; ଦୃଢ଼ଭାବରେ এঁটেবাঁধা ବାନ୍ଧିବା—3. To bind tightly. ( ପ୍ର—ବାହାରିଲେ ଅଣ୍ଟାରେ ଗାମୁଛା ଭିଡ଼ି ସଙ୍ଗେ—କୃଷ୍ଣସିଂହ. চেপেধরা ମହାଭାରତ. ବନ । ୪ । ଦୃଢ଼ରୂପେ ଆଲିଙ୍ଗନ কসকে পকড়না କରିବା—4. To embrace closely; to hug. [ ପ୍ର—ପ୍ରେମରେ ଶ୍ରୀକୃଷ୍ଣଙ୍କୁ ସମସ୍ତେ ଭିଡ଼ିଲେ—କୃଷ୍ଣସିଂହ. ମହାଭାରତ. ସଭା । ] চাপা ୫ । ଦୃଢ଼ କରି ଯାକିବା—5. To press closely. চাপনা [ ପ୍ର—ଗୋପ ଯୁବତୀଙ୍କ ଶିରୋମଣି, ତୋ ପଦଙ୍କୁ ଚୁମ୍ବିଲି ପୁଣି, ଭୁଜେ ଧରି ଭୁ ଯେ ବରଣଣିକ ଭଣିଲୁ ଭିଡ଼ି ରେ—କବିସୂର୍ଯ୍ୟ. ସଙ୍ଗୀତ । ) ୬ । ଦୃଢ଼ କষা ଭାବରେ ସଲଗ୍ନ କରିବା—6 To attach firmly; কসনা to fix firmly [ ପ୍ର—ସବୁ କଣ୍ଠିରେ ପୀତ ଚେଲ ଭିଡ଼ି—କବିସୂର୍ଯ୍ୟ. ବହ୍ଲାକରଣମ୍. ସଙ୍ଗୀତ । ] টেনে ছাড়ান ୭ । ନଡ଼ିଆ ଆମ୍ବ ଆଦି ଫଳର ଚୋପାକୁ ହାତରେ নোঁচনা ଓଟାରି ଛଡ଼ାଇବା—7. To peel off the rind থামান of a fruit with the hand. ୮ । ଗତି କରୁଥିବା মিডনা ସବାରି ବା ନୌକାଅଧର ଗତିକୁ ସ୍ଥଗିତ କରିବା—8.

To stop or draw up a moving conveyance ( such as a palki or boat) ୯। ଦୃଢ଼ ଗତିରେ ଚାଲିବା—9. To walk briskly. [ଉ-ଭିଡ଼ି ଦେଲେ ଅଣ୍ଟରେ ଦେଖାଇ ବକୁଳି—କୃଷ୍ଣସିଂହ.ମହାଭାରତ. ବନ ।] ୧୦ । ଚିପିବା—10. To squeeze. ୧୧ । ଧୀର ସ୍ଥିର ଅବିଚଳିତଭାବରେ ଉତ୍ସାହର ସହିତ କୌଣସି କାର୍ଯ୍ୟ ପଥରେ ଗତି କରିବା—11. To proceed in a course of action with steadiness and determination; to go on without relaxation. ୧୨ । ଜମାଇବା; ସ୍ଥିର କରିବା; ଦୃଢ଼ କରିବା—12. To set firmly (one's seat) [ଉ—ବଳି ଭୂମେ ବସିଅଛି ଆସନକୁ ଭିଡ଼ି—କୃଷ୍ଣସିଂହ.ମହାଭାରତ. ବନ ।] ୧୩ । ମୁଠାଇବା; ମୁଠାଇ ଧରିବା—13. To clasp or grasp tightly. (ଉ—ସେ କାଣ୍ଡ ଚିଶଣ୍ଡୀ ହୃଦରେ ଗଲା ବୁଡ଼ି, ମୋହ ଗଲେ ଚିଶଣ୍ଡୀ ଧ୍ୱଜ ଯଷ୍ଟି ଭିଡ଼ି—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । ] ୧୪ । ବନ୍ଧନକୁ ଦୃଢ଼ତର କରିବା—14. To tighten a bond; to make tighter.

ଟେପା / टीपना; जमान / जमाना; मुठीये धरा / मुठि कषना

[ଭିଡ଼ାଯି(ହେ)ବା—କର୍ମବାଚ୍ୟରୂପ]

**ଭିଡ଼ମ୍ବ**—ଦେ. ବି (ଧ୍ୱନ୍ୟନୁକରଣ)—ଆନକ ବାଦ୍ୟବିଶେଷ; ଢୋଲ— Bhirdimba A kind of drum.

**ଭିଡ଼ିଭାଡ଼ି**—ଦେ. କ୍ରି. ବିଣ—୧ । ଦୃଢ଼ରୂପେ ବାନ୍ଧି କରି ବା ଓଟାରି— Bhirdibhardi 1. Tightly; by binding or pulling tightly. (ଉ—ପୁଣି ସେ କୂଳେ ଆସି ଚମୁଡ଼ା ଟେନେଟୁନେ मिडभाड करके ଚମୁଡ଼, ହୋଇ ଦେହେ ଲୁଚା ଚିହ୍ନିଲେ ଭିଡ଼ିଭାଡ଼ି । କୃଷ୍ଣସିଂହ ମହାଭାରତ. ବନ ।)

**ଭିଡ଼ିହେବା**—ଦେ. କ୍ରି—୧ । ବନ୍ଧନରୁ ମୁକ୍ତ ହେବା ସକାଶେ ଟାଣି Bhirdiheba ଓଟାରି ହେବା—1. To pull one's self with force in order to be extricated from a bondage. ୨ । ମୋଡ଼ି [ଖାଓୟା], আড়ভাঙ্গা ଭିଡ଼ି ହେବା; ଅଙ୍ଗ ପ୍ରତ୍ୟଙ୍ଗାଦି ବିକ୍ଷେପ खींचते रहना କରିବା—2. To throw about one's limbs. (ଉ - ଯେତେକ ଥିଲି ଗର୍ବେ ପଡ଼ି, ଗାଣ୍ଡି ହେବ କୁ ହେଲି ଭିଡ଼ି । କବିସୂର୍ଯ୍ୟ କବିତା ) ।

ଭିଡ଼ମା(ମୋ)ଡ଼ି ହେବା / ଭିଡ଼ମୋଡ଼ି ହେବା }—ଅନ୍ୟରୂପ; আড়মোড়া করা, আড়ামোড়া করা

**ଭିଡ଼େ**—ଦେ. କ୍ରି. ବିଣ—ଦୃଢ଼ଭାବରେ; ଖୁବ୍ କଷିକରି—Tightly; Bhirde firmly. (ଉ—ଭୂଜ ପାଶିରୁ ଛାଡ଼ି ମୋ ଗଲେ, ଭିଡ଼େ ପଦ ଜୋরে भिडकर ଖଣ୍ଡ ଖଣ୍ଡ ଧରଣୀ ଚଳେ । କବିସୂର୍ଯ୍ୟ, ବଳୋସ୍ତ୍ର ଚମ୍ପୂ 'ଭ' ଗୀତ) । (ଭିଡ଼ରେ; ଭିଡ଼ିକରି—ଅନ୍ୟରୂପ)

**ଭିଣଭିଣା**—ଦେ. ବିଣ. (ସ ଭିନ୍ନ ଭିନ୍ନ)—ଭିଣା ଭିଣା (ଦେଖ)— Bhin-bhina Bhinabhina (See) টুকরা টুকরা चिरचिर

**ଭିଣା**—ଦେ. ବି. (ସ. ଭିନ୍ନ)—୧ । ତୁଳା ଆଦିକୁ ପିଞ୍ଜିବା—1. Bhina Carding (of cotton). ୨ । ବିଦାରଣ—ধুনা धुनना 2. Splitting up; tearing up. ୩ । ধুনা[হু]রী धुनरी ଗମ୍ଭୀର ସମ୍ମୁଡ଼ା—3. Scratching deeply. ୪ । ଯେଉଁ ବ୍ୟକ୍ତି ତୁଳାକୁ ଭିଣେ— धुनीहुई 4. Cotton carder. ୫ । ଦେ. ବିଣ.—ପିଞ୍ଜା ହୋଇଥିବା—5. Carded.

**ଭିଣା(ଣେ)ଇବା**—ଦେ. କ୍ରି—(ଭିଣିବା କ୍ରିୟାର ଣିଜନ୍ତ ରୂପ)—ଅନ୍ୟ Bhina(ne)iba ଦ୍ୱାରା ପିଞ୍ଜିବା କ୍ରିୟା କରାଇବା—To ধুনান धुनवाना cause to be carded.

**ଭିଣା କାଣ୍ଡ**—ଦେ. ବି - ତୁଳା ଭିଣିବାର ଧନୁ—Cotton-carding Bhina kanda ধুনারীর আছাড় धुनरिका काठ bow. [ଭିଣା କା(ଲ୍ଲ)ଠି—ଅନ୍ୟରୂପ]

**ଭିଣା(ଣି) ଭିଣା**—ଦେ.ବିଣ (ସ.ଭିନ୍ନ ଭିନ୍ନ)—ଛିନ୍ନଭିନ୍ନ; ଭିଣା ତୁଳା ପରି Bhina(ni) bhina ବିଦାରିତ; ଟିକି ଟିକି ହୋଇ ବିଦାରିତ ধুনোধুনো, তুলোধুনা ହୋଇଥିବା—Torn or split up into splinters or rags; shredded. चिर चिर

**ଭିଣା ଭିଣି**—ଦେ. ବି—୧ । ତୁଳା ଭିଣିବା ବା ପିଞ୍ଜିବା ଆଦି କାର୍ଯ୍ୟ— Bhina bhini ধুনাধুনি, আঁচড়া আঁচড়ি 1. Carding धुना धुनी of cotton. ୨ । ପରସ୍ପରକୁ ସମ୍ମୁଡ଼ିବା; ସମ୍ମୁଡ଼ା ସମ୍ମୁଡ଼ି—2. Scratching of one another.

**ଭିଣା ହାତୁଡ଼ି**—ଦେ. ବି-ତୁଳା ଭିଣିବା ଧନୁର ସୂତକୁ ଆଘାତ କରିବା Bhina haturdi କ୍ରମରେ ବ୍ୟବହୃତ ହୁଏ ମୁଣ୍ଡରେ ଗୋଲକ ଯୁକ୍ତ ধুনারীর হাতড়ী କାଠି—The dumbbell used for striking the string of a carding bow. धुनरिका हथुरि

**ଭିଣିବା**—ଦେ. କ୍ରି—(ସ. ଭିନ୍ନ ବା ସ. ଧୂ ଧାତୁ; ଭେଦନ ବା Bhiniba ଧୂନନ)—୧ । (ତୁଳାକୁ) ପିଞ୍ଜିବା—1. To card ধুনা धुनना (cotton). ୨ । ଟିକି ଟିକି କରି ବିଦାରଣ କରିବା—2. To tear up into shreds or splinters. [ ଭିଣା ହେ(ଯି)ବା—କର୍ମବାଚ୍ୟରୂପ ]

**ଭିଣି ଭାଣି**—ଦେ. କ୍ରି. ବିଣ—ଭଲରୂପେ; ପ୍ରାଞ୍ଜଳଭାବରେ; ତନ୍ନ ତନ୍ନ Bhini bhani କରି—Thoroughly; minutely. খুব ভাল করে धुन धुन कर

**ଭିଣି ଭିଣି ହେବା**—ପ୍ରାଦେ.(ଯାଜପୁର)କ୍ରି—ରାଗରେ ଗରଗର ହେବା— Bhini bhini heba To burn with anger; to foam রাগে গর গর করা क्रोधमे गिर गिराना with rage.

**ଭିଣି ହେବା**—ଦେ. କ୍ରି—୧ । ପିଞ୍ଜା ହୋଇ ପାରିବା—1. To be Bhini heba capable of being carded. ୨ । ଭିଣି ହୋଇ ଯିବା (ଦେଖ)—2. Bhini hoi jiba (See)

**ଭିଣି ହୋଇଯିବା**—ଦେ. କ୍ରି—ବ୍ୟତିବ୍ୟସ୍ତ ହୋଇପଡ଼ିବା— Bhini hoijiba To be pestered (from all ব্যতিব্যস্তহওয়া धुनाजाना quarters); to be bothered.

**ଭିଣେ(ଣୋ)ଇ**—ଦେ. ବି (ସ. ଭଗ୍ନୀପତି)—୧ । ଭଗ୍ନୀପତି— Bhine(no)i 1. Sister's husband. (ଉ—ବଇରି

বোনাই, বনাই କରୁଥିଲେ ଜନ୍ମ । ଭଉଣୋଇ କଲ୍ପ ଏଡ଼େ କର୍ମ ।
बहनोइ ଜଗନ୍ନାଥ. ଭାଗବତ । ) [ ଦ୍ର—ଅମ ସମାଜରେ କୌଣସି ପୁରୁଷର ବଡ଼ ଭଉଣୀଙ୍କର ଓ ସାନ ଭଉଣୀଙ୍କର ସ୍ୱାମୀ ତାର ଭଉଣେଇ ଅଟେ । ସ୍ତ୍ରୀମାନଙ୍କର ସାନ ଭଉଣୀଙ୍କ ସ୍ୱାମୀ ଭଉଣୀଜୋଇଁ ଓ ବଡ଼ ଭଉଣୀଙ୍କ ସ୍ୱାମୀ ଭଉଣେଇ ଅଟନ୍ତି । ଭଉଣେଇର ଆପେକ୍ଷିକ ସମ୍ବନ୍ଧଯୁକ୍ତ ବ୍ୟକ୍ତି ଶଳା, ଶଳାଭାରିଜ ଓ ଶାଳୀ; ଏମାନେ ପରସ୍ପର ପରିହାସସ୍ଥାନୀୟ । ଭଉଣୀଜୋଇଁର ଆପେକ୍ଷିକ ବ୍ୟକ୍ତି ଦେଢ଼ଶାଶୁ; ଏହୁଁହେଁ ପରସ୍ପର ପରିହାସ ସ୍ଥାନୀୟ ନୁହନ୍ତି । ] ୨ । ତୂଳା ଭଣିବା କର୍ମ—
ধুনাই 2. Cotton-carding. ୩ । ତୂଳା ଭଣିବାର ମଜୁରି—
धुनाइ 3. The wages paid for carding cotton.

ଭିତ୍‌ରି—ଦେ. ବିଣ—ଭିତର (ଦେଖ)—Bhitari (See).
Bhit-ri (ଭିତ୍‌ରିଆ—ଅନ୍ୟରୂପ)

ଭିତ୍‌ରି ବଲଦ୍—ପ୍ରାଦେ (ସମ୍ବଲପୁର) ବି—ଶଗଡ଼ରେ ବା ହଳରେ
Bhit-ri balad ଲାଗିଥିବା ବାଆଁ ପାଖର ବଳଦ । (ଏହାକୁ
(ବିପରୀତ—ବାହାର ବଳଦ) ଅଡ଼ାଇବାର ଟିକି ଜରୁରେ ତଡ଼ ।)—
The bullock yoked to the left side of a cart or plough.

ଭିତ୍ରିଆ ପିଲା—ପ୍ରାଦେ (ଗଡ଼ଜାତ) ବି—ଭିତରିଆ ପିଲା (ଦେଖ)
Bhit-riā pilā Bhitiriā pilā (See).

ଭିତ—ଦେ. ଅ (ସଂ. ଭିତ୍ତି ବା ଅଭିତଃ)—୧ । ଆଡ଼; ଦିଗ—
Bhita 1. Direction. ୨ । ଦଳ;ପକ୍ଷ—2. Party.
दिक ओर ୩ । ପାର୍ଶ୍ୱ—3. Side.

ଭିତର୍—ଦେ.ବି—(ସଂ. ଅଭ୍ୟନ୍ତର) ଅଭ୍ୟନ୍ତର; ଅନ୍ତଃସ୍ଥଳ—1. Inside;
Bhitara interior. ୨ । ମଧ୍ୟ—2. Midst; the middle.
ভি(ভে)তর ୩ । ଜଉଆସ; ଅନ୍ତଃପୁର—3. Harem; female
भितर, अन्दर apartments. (ଉ—ସେ ଲୋକ ଅଙ୍କା ମାନ ଯାଇ (ବିପରୀତ—ବାହାର) ଭିତରକୁ, ବୁଝି ଅସି କହିଲା ନୃପତି ଛାଲକଙ୍କୁ । କୃଷ୍ଣସିଂହ. ମହାଭାରତ. ବନ । ) ୪ । ମନ; ଅନ୍ତଃକରଣ; ହୃଦୟ—4. Heart; mind. (ଉ—ଗୋଲ ଦେଖ ମୋର ବାହାର ଭିତର । କହସୂର୍ଯ୍ୟ କଶୋଗ୍ରୀ ଚମ୍ପୂ. ଗ ଗୀତ; କଥା କହୁଥାଏ ଭରମକୁ, ଗୋଳିଯାଉଥାଏ ସରମକୁ, ଭିତରେ ଭିତରେ ଯାହା ହେଉଥାଏ, ସାକ୍ଷୀ ଦେଉଥାଏ ଧରମକୁ । ଇତ । ) ୫ । ଆନ୍ତରିକ ଇଚ୍ଛା—5. Inward wish. ସଂ. ବିଣ—୧ । ଅଭ୍ୟନ୍ତରୀଣ; ଅଭ୍ୟନ୍ତରରେ ଅବସ୍ଥିତ (ଯଥା—ଭିତରଅଗଣା)—1. Internal. ୨। ଗୁପ୍ତ—2. Secret. ୩ । ଆନ୍ତରିକ; ମାନସିକ—3. Mental. (ଉ—କରନ୍ତି ଅନେକ ଅନେକ ଗ୍ରୀପ, କେହି ନ ଜାଣେ ଭିତର ପାପ । ଗୋପାଳକୃଷ୍ଣ. ରସକଲ୍ଲୋଳ । ) ୪ । ଦୁଇର ମଧ୍ୟବର୍ତ୍ତୀ—4. Placed or situated between two; interlocated.

ଭିତର ଅଗଣା—ଦେ. ବି (ସଂ. ଅଭ୍ୟନ୍ତର+ଅଙ୍ଗନ)—୧ । ଗୃହର
Bhitara agaṇā ଅଭ୍ୟନ୍ତରସ୍ଥ ପ୍ରାଙ୍ଗଣ—1. Inner court-
(ଭିତର ଖଞ୍ଜା—ଅନ୍ୟରୂପ) yard of a house. ୨ । ଗୃହର
ভিতর পরস্ত ଅନ୍ତଃପୁର ସଂଲଗ୍ନ ଅଗଣା (ଯହିଁରେ ପରିବାରର
भितरि आं (ग्रन) ସ୍ତ୍ରୀମାନେ ଚଳପ୍ରଚଳ ହୁଅନ୍ତି)—2.
The courtyard of a house attached to the female apartments.

ଭିତର କଥା—ଦେ. ବି (ସଂ. ଅଭ୍ୟନ୍ତର+କଥା)—୧ । ଅଭ୍ୟନ୍ତରୀଣ
Bhitara kathā ବିଷୟ—1. Internal affairs. ୨ ।
(ଭିତର ବିଷୟ—ଅନ୍ୟରୂପ) ହୃଦୟରେ ଗୁପ୍ତ ଭାବ—2. Secret
ভিতরের কথা mentality. ୩ । ଆନ୍ତରିକ ଇଚ୍ଛା—3.
भितरिआ बात Inward wish. ୪ । ଚିନ୍ତା—4. Thought.

ଭିତର ଘର—ଦେ. ବି—୧ । ଅନ୍ତଃପୁର—1. Inner apart-
Bhitara ghara ments. [ ଉ—ତୁମ୍ଭେ ବୋଲିବ ଭିତର
ভিতর বাড়ি ଘରେ ଥାଇ । କୃଷ୍ଣସିଂହ. ମହାଭାରତ ବନ । ]
अन्दरका घर ୨ । ଗୃହର ଅଭ୍ୟନ୍ତର ଅଂଶରେ ନିର୍ମିତ ଗୃହ—
2. A house built inside the premises.
ପ୍ରାଦେ (ଖୋର୍ଧା) ବି—ରୋଷେଇ ଘର—Kitchen; cook-room.

ଭିତର ଛ(ଛେ)ଉ—ପ୍ରାଦେ (ପୁରୀ ଜଗନ୍ନାଥ ମନ୍ଦିର) ବି—ମନ୍ଦିରରେ
Bhitara chha(chhe)u ସେବକମାନଙ୍କର ତତ୍ତ୍ୱାବଧାରକ କର୍ମ-
[ଭିତରଛୁ(ଛୌ)—ଅନ୍ୟରୂପ] ଚାରୀଙ୍କର ରାଜଦତ୍ତ ଉପାଧିବିଶେଷ—
(ଭିତରଛଉ ପଟ୍ଟନାୟକ—ଅନ୍ୟରୂପ) A title granted to the person who is appointed to supervise the daily service of a Deity.

ଭିତର ତହବିଲ—ଦେ. ବି (ସଂ. ଅଭ୍ୟନ୍ତର+ଫା. ତହବିଲ୍)—ଗଚ୍ଛିତ
Bhitara tahabila ବା ସଞ୍ଚିତ ଧନ—Hoarded wealth,
ବାହାର ତହବିଲ } ବିପରୀତ stored up cash. [ ଦ୍ର—
ଚଳନ୍ତି ତହବିଲ } ସାଧାରଣତଃ ଧନୀ ଲୋକଙ୍କର ତହବିଲ
ভিতর তহবিল ବା ଧନ ୨ଟି ସ୍ଥାନରେ ରଖାଯାଏ; ବାହାର
भितर तहबिल ତହବିଲ, ଯହିଁରୁ ଚଳନ୍ତି ଆୟ ବ୍ୟୟ ଚଳେ; ଭିତର ତହବିଲ, ଯହିଁରେ ଧନ ଗଚ୍ଛିତ ରହେ ଓ ଅନିବାର୍ଯ୍ୟ ପ୍ରୟୋଜନ ବିନା ସେହି ତହବିଲରେ ହାତ ଦିଆଯାଏ ନାହିଁ ।]

ଭିତର ଦୋଳ—ଦେ. ବି—ଶ୍ରୀକୃଷ୍ଣ ବିଗ୍ରହଙ୍କ ଉପରେ ଫାଲ୍ଗୁନ ଶୁକ୍ଳ ନବମୀ
Bhitara doḷa ଦିନ ଅବିର ଅର୍ପଣ—The sprinkling
(ଭିତର ଫଗୁ—ଅନ୍ୟରୂପ) of Abira or red powder on the image of Kṛushṇa on the ninth day of the lighted fortnight of Phālguna.
[ ଦ୍ର—ତହିଁ ପରଦିନ (ଫଗୁଦଶମୀ)ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଦେବବିଗ୍ରହଙ୍କୁ ମନ୍ଦିରର ବାହାରକୁ ନିଆଯାଇ ବାହାର-ଫଗୁ ଉତ୍ସବ କରାଯାଏ ।]

ଭିତର ପରସ୍ତ—ପ୍ରାଦେ. (ବାଲେଶ୍ୱର) ବି (ଭୁଲ ବ. ଭିତର ପରସ୍ତ)—
Bhitara parasta ଭିତର ଅଗଣା (ଦେଖ)—Bhitara agaṇā (See)

ଭିତର ପୂଜା—ଦେ. ସଂ.ବି. (ସଂ. ଅଭ୍ୟନ୍ତର+ପୂଜା)—ଦୁର୍ଗାଙ୍କର ଶରତ୍-
Bhitara pūjā କାଳୀନ ଷୋଡ଼ଶ ଦିନ ବ୍ୟାପୀ ପୂଜନର ଆରମ୍ଭ
ভিতর পূজা (ଆଶ୍ୱିନ କୃଷ୍ଣ ଅଷ୍ଟମୀ)ଠାରୁ ନବପତ୍ରିକା ପୂଜାର

ଅଷ୍ଟମୀ (ଆଶ୍ୱିନ ଶୁକ୍ଳ ସପ୍ତମୀ) ପର୍ଯ୍ୟନ୍ତ ଦୁର୍ଗାଙ୍କର ପୂଜା—The worship of the Goddess Durgā for 16 days beginning from the 8th of the dark fortnight of Āświna to the 8th of the bright fortnight, both inclusive.
[ଦ୍ର—ଦୁର୍ଗାଙ୍କର ଷୋଳ ଦିନ ବ୍ୟାପୀ ଶାରଦୀୟ ପୂଜନ ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଆରମ୍ଭ ହୋଇ ଆଶ୍ୱିନ ଶୁକ୍ଳ ନବମୀରେ ସମାପ୍ତ ହୁଏ; ନବ ଦିନ ବ୍ୟାପୀ ପୂଜନ ଆଶ୍ୱିନ ଶୁକ୍ଳ ପ୍ରତିପଦାଠାରୁ ଆରମ୍ଭ ହୋଇ ଶୁକ୍ଳ ନବମୀରେ ସମାପ୍ତ ହୁଏ; ତ୍ରିଦିନ ବ୍ୟାପୀ ବା ନବପତ୍ରିକା **ପୂଜା** ଶୁକ୍ଳ ସପ୍ତମୀରେ ଆରମ୍ଭ ହୋଇ ନବମୀରେ **ସମାପ୍ତ** ହୁଏ। ଏହି ଷୋଳ ଦିନ ମଧ୍ୟରୁ ବା ନଅ ଦିନ ମଧ୍ୟରୁ ପ୍ରଥମ ୧୩ ଦିନ ବା ୬ ଦିନ ପ୍ରତିମାଙ୍କ ମନ୍ଦିର ମଧ୍ୟରେ ପୂଜା କରାଯାଏ ଏହି ପୂଜାକୁ ଭିତର ପୂଜା କହନ୍ତି। ଶୁକ୍ଳ ସପ୍ତମୀଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଯେଉଁ ପୂଜା ହୁଏ ତାକୁ ବାହାର ପୂଜା ବୋଲାଯାଏ; କାରଣ, ଏହି ୩ ଦିନ ଦୁର୍ଗାଙ୍କର ଘଟକୁ ବା ମୃଣ୍ମୟୀ ମୂର୍ତ୍ତିକୁ ମନ୍ଦିରର ବାହାରେ ଅନ୍ୟ କୌଣସି ସ୍ଥାନରେ ସ୍ଥାପିତ କରାଯାଇ ପୂଜା କରାଯାଏ।]

**ଭିତର ଫାଙ୍କ**—ଦେ. ବି—୧। ପଦାର୍ଥର ଅନ୍ତଃସ୍ଥଳରେ ଥିବା ମେଳ—
Bhitara phānka 1. A gap inside the body of
ফোঁপর a thing. ୨। (ଲକ୍ଷଣାର୍ଥ) ଆଭ୍ୟନ୍ତରୀଣ ବିବାଦ—
**भीतर फाँक** 2. Internal dispute or rupture.

**ଭିତର ଫାଙ୍କା**—ଦେ. ବିଣ—୧। ଯାହା ଭିତରେ ଫାଙ୍କ ଅଛି—
Bhitara phāṅka 1. Having a gap in the inside.
ফোঁপরা **भीतर फाँका** ୨। ପୋଲ—2. Hallow.

**ଭିତର ବାହାର**—ଦେ ବି. (ବିପରୀତ ସହଚର; ସଂ. ଅଭ୍ୟନ୍ତର+
Bhitara bāhāra ବହିଃ)—୧। ଅନ୍ତର ଓ ବହିଃସ୍ଥଳ—1.
ভিতর বাহার Inside and outside. ୨। ମନ ଓ ଦେହ—
**भितर बाहर** 2. Mind and body. ୩। ମାନସିକ ଚିନ୍ତା ଓ ବହିଃପ୍ରକାଶିତ ହାବଭାବ—3. Mental thoughts and external expressions.

**ଭିତର ଭଣ୍ଡାର**—ଦେ. ବି. (ସଂ. ଅଭ୍ୟନ୍ତର+ଭାଣ୍ଡାଗାର)—ଗୃହ
Bhitara bhaṇḍāra ମଧ୍ୟରେ ଥିବା ଗଚ୍ଛିତ ଧନର ଭଣ୍ଡାର—
(ବିପରୀତ—ବାହାର ଭଣ୍ଡାର) Private treasury.
ভিতর ভাণ্ডার [ଦ୍ର— ଅନିବାର୍ଯ୍ୟ ଖରଚ ପାଇଁ ଧନ ଆବଶ୍ୟକ ହେଲେ
**भितर भण्डार** ଏ ଧନ କଢ଼ା ହୁଏ।] (ଉ—ଏହି ମତେ ଦୁଇ ଶହ ଦିବସ ଗଲା, ଭିତର ଭଣ୍ଡାର ଯାକ ସରିଗଲା।
ପ୍ରାଚୀ. ନଳ ଚରିତ।)

**ଭିତର ସେବା**—ଦେ. ବି—ଦେବଦେବୀମାନଙ୍କ ମନ୍ଦିର ମଧ୍ୟରେ
Bhitara sebā ଦେବତାମାନଙ୍କୁ କରାଯିବା ସେବା (ଯଥା—ପୁଷ୍ପାଳକ, ପୂଜା ପଣ୍ଡା, ମୁଖ ସିଙ୍ଗାରୀ ଆଦିଙ୍କର ସେବା—
The services done to a Deity within the 'holy of holies' of the temple or the inner shrine.

**ଭିତ(ତି)ରି**—ଦେ. ବିଣ. (ସଂ ଆଭ୍ୟନ୍ତରିକ)—୧। ଆଭ୍ୟନ୍ତରୀଣ—
Bhita(ti)ri 1. Internal. ୨। ଆନ୍ତରିକ; ମାନସିକ—
গুপ্ত, ভিতরী 2. Inward;mental. ୩। ଗୁପ୍ତ—3. Secret. ୪।
**भितरी** ଗୋପନୀୟ—4. Confidential. ୫। ଅନ୍ତଃପୁର ସମ୍ବନ୍ଧୀୟ—5. Relating to the female apartments.
ପ୍ରାଦେ. (ଭିତର ଭାଷା)—୧। ଭିତରକୁ—1. Into.
୨। ମଧ୍ୟରେ—2. Inside; in; amongst.

**ଭିତ(ତି)ରି କଥା**—ଦେ. ବି—(ସଂ. ଆଭ୍ୟନ୍ତରିକ+କଥା)—୧।
Bhita(ti)ri kathā ଗୁପ୍ତ କଥା—1. Secret or confi-
ভি(ভে)তরের কথা, ভিতরীকথা dential matter
**भितरी बात** ୨। ଆଭ୍ୟନ୍ତରୀଣ ବିଷୟ—2. Internal affair.
[ଭିତ(ତି)ରି ମାମଲତ—ଅନ୍ୟରୂପ] ୩। ଅବୈଧ ଉପାୟ—
3. Underhand means. ୪। ଆନ୍ତରିକ ଇଚ୍ଛା—
4. Inward wish.

**ଭିତ(ତି)ରିଆ**—ଦେ. ବିଣ—(ସଂ. ଆଭ୍ୟନ୍ତରିକ)—୧। ଆଭ୍ୟନ୍ତରୀଣ—
Bhita(ti)riā ভিতরিয়া 1. Internal; inner ୨।
**भितरिया** ଅନ୍ତଃପୁର ସମ୍ବନ୍ଧୀୟ—2. Relating to the harem.
୩। ରହସ୍ୟ ଭେଦକାରୀ—3. Prying into or unravelling secrets ୪। ଆନ୍ତରିକ; ମାନସିକ—
4. Inwand; mental. ୫। ଗୁପ୍ତ—5. Secret. ଦେ
ବି—ରହସ୍ୟ ଭେଦକାରୀ ବ୍ୟକ୍ତି—One who prie into or unravels secrets.

**ଭିତ(ତି)ରି ଚାଲ(ଲି)**—ଦେ. ବି—୧। ଗୁପ୍ତ ବା କୂଟ ଆଚରଣ—
Bhita(ti)ri chāl(li) 1. Diplomacy; tactics.
ভিতরিচাল **भितरिचाल** ୨। ଷଡ଼ଯନ୍ତ୍ର—2. Plot.

**ଭିତ(ତି)ରିଆ ଟୋକା**—ପ୍ରାଦେ. (ଗଡ଼ଜାତ) ବି—ରାଜାମାନଙ୍କ ଅନ୍ତଃ-
Bhita(tī)riā ṭokā ପୁରକୁ ଖବର ନେଅଣା କରିବା ପିଲା
[ଭିତ (ତି)ରିଆ ପିଲା—ଅନ୍ୟରୂପ] ଚାକର—A page or young boy engaged in a Raja's harem or seraglio.

**ଭିତ(ତି)ରି ଖବର**—ଦେ. ବି—(ସଂ. ଆଭ୍ୟନ୍ତରିକ+ପା. ଖବର)—
Bhita(ti)ri khabara ୧। ଆଭ୍ୟନ୍ତରୀଣ ସମ୍ବାଦ—1. News
ভিতিরিখবর about internal affairs. ୨। ଗୁପ୍ତ ଖବର—
**भितरीखबर** 2. Secret news. ୩। ଗୋପନୀୟ ସମ୍ବାଦ—
3. Confidential information. ୪। ଅନ୍ତଃପୁରରୁ ଆସିଥିବା ସମ୍ବାଦ—4. News sent from the harem by the Ranees.

**ଭିତ(ତି)ରି ପେଚ(ଞ୍ଚ)**—ଦେ. ବି (ସଂ. ଆଭ୍ୟନ୍ତରିକ+ପା. ପେଚ)—
Bhita(ti)ri pecha(ñcha) କୂଟ ଗାଣ୍ଠି ବା କୌଶଳ—
ভিতরপ্যাঁচ **भितरीपेंच** Secret device; covert means.

**ଭିତ(ତି)ରି ଭିତ(ତି)ରି**—ଦେ. କ୍ରି. ବିଣ—ଗୋପନରେ—Secretly.
Bhita(ti)ri bhita(ti)ri ভিতরেভিতরে **भितरीभितर**

**ଭିତରେ**—ଦେ. କ୍ରି. ବିଣ; ଅବ୍ୟୟ (ସଂ. ଅଭ୍ୟନ୍ତର)—
Bhitare ୧। ଅନ୍ତଃସ୍ଥଳରେ—1. Inside (ଉ—ବାହାରେ

ଭିତରେ ଯାଉ ଭିତରେ ମାରୁ । ଛଗ । ). ୬ । ଅନେକଙ୍କ
भितर ମଧ୍ୟରେ—2. Amongst (many). ( ଉ—କୋଟିଏ ଭିତରେ ଗୋଟିଏ ମଣିଷ ଦେଖିଲିଡ ନାହିଁ ଚୋଲେ । ଛଗ) ୩ । ହୃଦୟରେ; ମନରେ—3. In the heart; mentally. ୪ । ଦେଇ; ଦ୍ୱାରା—4. By. (ଯଥା—ତୋ ଭିତରେ ଯାହା ହେବ ତାହା ଭୁ କରୁ ) ୫ । ଗୋପନରେ; ଗୁପ୍ତରେ; ଲୋକ ନୟନ ଅଗୋଚରରେ—5. Secretly. (ଉ—ବାହାରେ ମାରୁଛ କହୁଛ ଛପ, ଭିତରେ କରୁଛ ଅପାର ପାପ । ଛଗ । ) ୬ । ସମୟର ସୀମା ମଧ୍ୟରେ—6. Within the time-limit of; during. ( ଉ—ତେତେବେଳ ଭିତରେ ସୀତାଙ୍କୁ ନେଇ, ସମର୍ପ ଶ୍ରୀରାମଙ୍କୁ ଅମ୍ଭେ କହୁଥାଉଁ । କୃଷ୍ଣସିଂହ- ମହାଭାରତ, ବନ । )

ଭିତରେ ଭିତରେ—ଦେ· କ୍ରି. ବଣ—୧ . । ଅପଣା ଅପଣା ମଧ୍ୟରେ, Bhitare bhitare ମାତ୍ର ଗୋପନରେ—1. Amongst one ভিতরে ভিতরে another but not openly. ( ଉ—ଗାଁରେ भितर भितर ସ୍ତ୍ରୀମାନେ ଭିତରେ ଭିତରେ ବହୁଥା ଅଭ୍ ଗେଲ୍ଲୀକଥା ଫୁଟୁରୁ ଫୁଟୁରୁ ହେଲେ । କୁନ୍ତଳାକୁମାରୀ. ନଅଭୁଣ୍ଡୀ । ) ୬ । ଗୋପନରେ; ଲୋକଚକ୍ଷୁର ଅନ୍ତରାଳରେ—2. In secret. (ଉ—ଏକାଦଶୀ ଜଗିବାରୁ; ଭିତରେ ଭିତରେ ଚୁଡ଼ା ମାରୁ; ଭିତରେ ଭିତରେ ଛେନା ଚକଟା, ବାହାରେ ଲାଗିଛି କଳ । ଛଗ ।)

ଭିତା—ପ୍ରାଦେ ( ମେଦନୀପୁର ) ବି. ( ଭୂଲ· ବି· ଭିତ=ଦିଗ, Bhitā ଭରଫ )—୧ । ଧାର—1. Edge. ୬ । ଦିଗ—2. Quarter. ୩ । ତରଫ—3. Direction.

ଭିତା ମାରିବା—ପ୍ରାଦେ (ମେଦନୀପୁର) କ୍ରି—କଟି କରିବା (ଦେଖ) Bhitā māribā Kati karibā (See).

ଭିତେ—ପ୍ରାଦେ (କଟକ) ଅ—ଦ୍ୱାରା—By. (ଯଥା—ମୋ ଭିତେ ଯି Bhite द्वारा से ହୋଇ ପାରିବ ନାହିଁ । )

ଭିତ୍ତ—ବି. ବଣ (ଭିଦ୍ ଧାତୁ+କର୍ମ. ତ)—ଖଣ୍ଡିତ— Bhitta Cut; split up.

ଭିତ୍ତି—ବି. ବି. (ଭିଦ୍ ଧାତୁ+କର୍ମ. ତି)—୧ । ପ୍ରଦେଶ; ଅଞ୍ଚଳ— Bhitti 1. Province; tract of country. ୬ । ବିଭାଗ—2. Department; division. ୩ । ପାଚେରି; କାନ୍ଥ; କାଡ଼—3. Wall. ୪ । କ୍ଷୁଦ୍ରାଂଶ; ଖଣ୍ଡ—4. Small portion piece; fragment. ୫ । ପ୍ରଭେଦ—5. Difference. ୬ । ଗୃହର ମୂଳପତ୍ତନ; ମୂଳଦୁଆ—6. Foundation.

ଭିତ୍ତିକା—ବି. ବି (ଭିତ୍ତି ସ୍ୱାର୍ଥେ କ+ଆ)—କାନ୍ଥ— Bhittikā Wall.

ଭିତ୍ତିମାତ୍ର—ବି. ବି (୬ଷ୍ଠୀ ତତ୍; ଭିତ୍ତି+ମାତ୍ର)—କାନ୍ଥର ଉପର ଭାଗ; Bhittimātra କାନ୍ଥର ଦେହ—The surface of a wall; the body of a wall.

ଭିତ୍ତି ଚୌର—ବି. ବି (ମଧ୍ୟପଦଲୋପୀ କର୍ମଧା: ଭିତ୍ତି+ଚୌର)—ସେନ୍ଧି Bhitti chaura ଚୋର କାନ୍ଥରେ ସିନ୍ଧ କରି ଚୋରି କରେ; ସିନ୍ଧିଆଳ ଚୋର—A house breaker; a burglar.

ଭିତ୍ତି ପ୍ରସ୍ତର—ବି. ବି (ମଧ୍ୟପଦଲୋପୀ କର୍ମଧା; ଭିତ୍ତି+ପ୍ରସ୍ତର)—ଘରର Bhitti prastara ମୂଳଦୁଆରେ ବା ଭୂଗର୍ଭରେ ପ୍ରଥମେ ସ୍ଥାପିତ ପଥର—Foundation stone.

ଭିତ୍ତି ଭୂମି—ବି. ବି—(୬ଷ୍ଠୀତତ୍, ଭିତ୍ତି+ଭୂମି)—ଘରର ମୂଳଦୁଆ— Bhitti bhūmi The foundation of a building.

ଭିତ୍ତି ମୂଳ—ବି. ବି (୬ଷ୍ଠୀ ତତ୍; ଭିତ୍ତି+ମୂଳ)—ମୂଳଦୁଆ; ଭୂମି ସମତଳର Bhitti mūla ତଳେ ଥିବା କାନ୍ଥର ଅଂଶ—Foundation wall; the part of a wall below the ground level.

ଭିତ୍ତି ସ୍ଥାପନ—ବି. ବି (୬ଷ୍ଠୀ ତତ୍ ଭିତ୍ତି+ସ୍ଥାପନ)—ଘରର ମୂଳଦୁଆ Bhitti sthāpana ପକାଇବା—Laying of the foundation of a house or building.

ଭିତ୍ତି ହୀନ—ବି. ବଣ (୩ୟାତତ୍; ଭିତ୍ତି+ହୀନ)—୧ । ଯାହାର ମୂଳଦୁଆ Bhitti hīna ନ ଥାଏ—1. Without foundation. ୬ । ଅମୂଳକ—2. Groundless. ୩ । ଯାହାର ଘର ବା ଘର ନାହିଁ—3. Homeless.

ଭିଦ୍(ନ୍ଦ୍) ଧାତୁ(ସ)--ଭେଦ କରିବା—To pierce; to penetrate. Bhid(nd) root

ଭିଦ୍—ବି. ବଣ ( ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ୍ )—ଭେଦକାରୀ (ଯଥା— Bhid ଗୋତ୍ରଭିଦ୍)—Piercing.

ଭିଦା—ବି. ବି (ଭିଦ୍ ଧାତୁ+ଭାବ.ଅ+ଆ)—୧ । ଛେଦନ; କର୍ତ୍ତନ— Bhidā 1. Cutting. ୬ । ଭେଦ କରିବା; ଭିତରକୁ ପଶିବା—2. Penetrating; piercing. ୩ । ଫାଡ଼ିବା; ବିଦାରଣ—3. Splitting up; tearing. ୪ । ପାର୍ଥକ୍ୟ; ପ୍ରଭେଦ—4. Difference. ୫ । ଫୋଡ଼ିବା; କଣା କରିବା—5. Drilling, boring.

ଭିଦି(ଦୁ)ର—ବି. ବି (ଭିଦ୍ ଧାତୁ+କର୍ତ୍ତୃ ଇର, ଉର)—ବଜ୍ର; ଅଶନି— Bhidi(du)ra Thunder. [ଉ—ଭିଦୁର ଏହିଟି କବେକ ମୁଣ୍ଡରେ)—କବିସୂର୍ଯ୍ୟ, କଳୋଗ୍ରଚମ୍ପୂ, 'ଭ' ଗୀତ ।] ବି. ବଣ—୧ । ଭଙ୍ଗପ୍ରବଣ—1. Brittle; fragile. ୬ । ମିଶ୍ରିତ—2. Mixed together.

ଭିଦେଲିମ—ବି· ବଣ ( ଭିଦ୍ ଧାତୁ+କର୍ମ କର୍ତ୍ତୃ. ଏଲିମ )—ଭଙ୍ଗୁର— Bhidelima Brittle; fragile.

ଭିଦ୍ୟ—ବି. ବଣ (ଭିଦ୍ ଧାତୁ+କର୍ମ. ଯ)—୧ । ଭେଦନୀୟ; ଯାହା Bhidya ଭେଦ କରିବା ଯୋଗ୍ୟ ଅଟେ—1. Penetrable. ୬ । ଯାହାକୁ କଣା କରିବା ଉଚିତ—2. Fit to be bored through ବି.—ଶାର ଭେଦକାରୀ ନଦ—A river which bursts through the embankment.

ଭିଦ୍ୟମାନ—ବି· ବଣ—୧ । (ଭିଦ୍ ଧାତୁ+କର୍ତ୍ତୃ. ଅନ)—ଯାହା ଭେଦ Bhidyamāna କରୁଅଛି—1. Piercing. ୬ । (+କର୍ମ· ଅନ)—ଯାହାକୁ ଭେଦ କରି ଯାଉଅଛି— 2. Being rent asunder.

ଭିନ—ଗ୍ରା. ବିଣ (ସଂ. ଭିନ୍ନ)—ଭିନ୍ନ (ଦେଖ)
Bhina Bhinna (See)

ଭିନ(ନି, ନୁ)ଷ୍ଟା(ସ୍ତା)—ବୈଦେ. ବି ( ଇଂ )—ଫୁଲ ଲତାବିଶେଷ—
Bhina(ni,nu)strā(stā) ভিনষ্টা A kind of flowering
**भिनिस्ता** creeper; Bignonia Venusta.

ଭିନେ—ଗ୍ରା. ବିଣ ( ସଂ. ଭିନ୍ନ )—୧ । ଭିନ୍ନ—1. Separated.
Bhine ভিন্ন **भिन्न; जुदा** ୨ । ପୃଥଗନ୍ନ ଓ ପୃଥଗ୍‌ବାସ ହୋଇଥିବା—2. Separated in mess and lodging. ୩ । ଅଲଗା; ପୃଥକ୍—3. Separate. [ଉ—ପ୍ରକୃତିର ଶିଖା ଭିନେ । ରାଧାନାଥ. ଚନ୍ଦ୍ରଭାଗା ।] ୪ । ସ୍ୱତନ୍ତ୍ର—4. Individual; distinct.

ଭିନେ ହେବା—ଗ୍ରା. କ୍ରି—ପୃଥଗନ୍ନ ବା ପୃଥଗ୍‌ବାସ ବା ଉଭୟ ହେବା—
Bhine hebā To separate from each other in
ভিন্ন হওয়া **भिन्न होना** mess or lodging or both.

ଭିନେ ହାଣ୍ଡି କରିବା—ଗ୍ରା. କ୍ରି—କୌଣସି ବ୍ୟକ୍ତିଙ୍କ ଚୁଲିରୁ ଆପଣାର
Bhine hāṇḍi karibā ଚୁଲିକୁ ଅଲଗା କରି ନେବା—
To separate from another in mess.

ଭିନ୍ଦିପାଳ—ସଂ. ବି. (ଭିଦ୍ ଧାତୁ + ଭାବ. ଇ = ଭିନ୍ଦି = ଶତ୍ରୁର
Bhindipāḷa ଭେଦନରୁ + ପାଳ ଧାତୁ = ରକ୍ଷା କରିବା + କର୍ତ୍ତୃ.
ଅ )—କ୍ଷେପଣାସ୍ତ୍ରବିଶେଷ; କ୍ଷେପଣୀୟ ଶରବିଶେଷ—
A weapon thrown at the enemy; a short arrow thrown by the hand or through a tube.

ଭିନ୍ନ—ସଂ. ବିଣ (ଭିଦ୍ ଧାତୁ + କର୍ମ. ତ)—୧ । ଅଲଗା; ସ୍ୱତନ୍ତ୍ର; ପୃଥକ୍—
Bhinna 1. Separate; distinct. ୨ । ଅନ୍ୟ—2. Different. ୩ । ଛିନ୍ନ—3. Torn. ୪ । ବିଭକ୍ତ 4. Divided. ୫ । ତ୍ୟକ୍ତ—5. Abandoned. ୬ । ଭଗ୍ନ—6. Broken. ୭ । ଖଣ୍ଡିତ—7. Cut. ୮ । ବିଦୀର୍ଣ୍ଣ; ବିଦାରିତ—8. Split up. ୯ । ମର୍ଦ୍ଦିତ; ବିଦଳିତ—9. Pounded; crushed. ୧୦ । ଭେଦିତ—10. Pierced. [ଉ—କାମ ଶରେ ହୃଦୟ କରି ଦେବି ଭିନ୍ନ । କୃଷ୍ଣସିଂହ. ମହାଭାରତ. ସଭା ।] ୧୧ । ବିଚ୍ଛୁରିତ; ବହୁଳୀଭୂତ—11. Diffused. ୧୨ । ପ୍ରତିଫଳିତ—12. Reflected. ୧୩ । ବିଫଳୀକୃତ; ନିରସ୍ତ—13. Nullified. ୧୪ । ଶିଥିଳୀକୃତ—14. Slackened. ୧୫ । ବିକଶିତ—15. Opened; manifested; full-blown. ୧୬ । ସ୍ଖଳିତ—16. Slipped. ୧୭ । ଲୁଣ୍ଠିତ—17. Looted. ୧୮ । ସ୍ପଷ୍ଟୀକୃତ—18. Made clear. ୧୯ । ମିଶ୍ରିତ—19. Mixed. ୨୦ । ପୃଥକ୍ କୃତ—20. Separated; severed. ଦେ. ଅ—( ସଂ. ଭିନ୍ନମ୍ )—ବ୍ୟତୀତ; ଛଡ଼ା—Besides; except; save. ଦେ. ବି—ଭଗ୍ନାଂଶ—A fraction.

ଭିନ୍ନକ—ସଂ. ବି ( ଭିନ୍ନ + କ )—ଷଷ୍ଠଶତକ ବୌଦ୍ଧ ଭିକ୍ଷୁ—
Bhinnaka A Buddhist monk.

ଭିନ୍ନ କରିବା—ଦେ. କ୍ରି—୧ । ଅଲଗା କରିବା; ପୃଥକ୍ କରିବା—
Bhinna karibā 1. To separate. ୨ । ଆପଣାଠାରୁ
ভিন্ন করা ଅନ୍ତର କରିବା—2. To separate from
**भिन्न करना** one's self. ୩ । ତ୍ୟାଗ କରିବା—3. To abandon.

ଭିନ୍ନ କ୍ରମ—ସଂ. ବି ( ବହୁବ୍ରୀହି )—କ୍ରମଭଙ୍ଗରୂପ କାବ୍ୟର ଦୋଷ-
Bhinna krama ବିଶେଷ—A defect in literary composition consisting of the breaking of sequence. ସଂ. ବିଣ—ଯାହାର କ୍ରମଭଙ୍ଗ ହୋଇଅଛି—Having the sequence broken.

ଭିନ୍ନ ଗୁଣନ—ଦେ. ବି ( ଗଣିତ ପରିଭାଷା )—ଭଗ୍ନାଂଶ ରାଶିମାନଙ୍କର
Bhinna guṇana ଗୁଣନ—Multiplication of fractions. [ ଦ୍ର—ଏହିପରି 'ଭିନ୍ନ ସଂକଳନ' 'ଭିନ୍ନ ବ୍ୟବକଳନ'; ଭିନ୍ନ ହରଣ ଆଦି ଶବ୍ଦ ହୁଏ । ]

ଭିନ୍ନ ଜାତି—ଦେ. ବି ( କର୍ମଧା; ଭିନ୍ନ + ଜାତି)—ବର୍ଣ୍ଣାନ୍ତର; ଅନ୍ୟଜାତି
Bhinna jāti ବା ଶ୍ରେଣୀ—Another caste or class; a different class.

ଭିନ୍ନ ଜାତୀୟ—ଦେ. ବିଣ ପୁଂ (ଭିନ୍ନ ଜାତି + ସମ୍ବନ୍ଧାର୍ଥେ ଈୟ)—ଅନ୍ୟ
Bhinna jātiya ଜାତିସମ୍ବନ୍ଧୀୟ—Belonging to a
(ଭିନ୍ନଜାତୀୟା—ସ୍ତ୍ରୀଲିଙ୍ଗ) different class or caste.

ଭିନ୍ନ ପ୍ରକାର—ସଂ. ବି ( କର୍ମଧା)—ଅନ୍ୟପ୍ରକାର—
Bhinna prakāra Different kind.
ସଂ. ବିଣ ( ବହୁବ୍ରୀହି )—ଅନ୍ୟ ପ୍ରକାରର—Of different kind or sort.

ଭିନ୍ନ ବୃତ୍ତି—ସଂ. ବି ( କର୍ମଧା)—ସ୍ୱତନ୍ତ୍ର ବ୍ୟବସାୟ—
Bhinna bṛutti Different profession.

ଭିନ୍ନ ଭିନ୍ନ—ଦେ. ବିଣ ( ବହୁବଚନ )—୧ । ଖଣ୍ଡ ଖଣ୍ଡ; ଟିକି
Bhinna bhinna ଟିକି—1. Shattered to pieces.
ভিন্ন ভিন্ন [ ଉ—ବିଦାରି ବେନି ସାନୁମାନ, ବାଜି ତନୁରେ
**भिन्न भिन्न** ଭିନ୍ନ ଭିନ୍ନ । ଉପେନ୍ଦ୍ର. ବୈଦେହୀଶବିଳାସ । ] ୨ । ପୃଥକ୍ ପୃଥକ୍; ବହୁପୃଥକ୍ ( ବସ୍ତୁ )—2. Many different or distinct (things).

ଭିନ୍ନଭାନ୍ନ ହେବା—ଦେ. କ୍ରି—୧ । ପୃଥକ୍ ପୃଥକ୍ ଏବଂ ଛିନ୍ନଛତ୍ର ହେବା
Bhinnabhānna hebā —1. To be separated
ভিন্ন হওয়া and scattered. ୨ । ଛିନ୍ନଭିନ୍ନ ହେବା—
**भिन्न भिन्न होना** 2. To be routed. ୩ । ଖଣ୍ଡ ଖଣ୍ଡ ହେବା—3. To be shattered to pieces. ୪ । ପୃଥଗନ୍ନ ପୃଥଗ୍‌ବାସ ହେବା—4. To be separated from one another in mess and lodging.

ଭିନ୍ନ ମତ—ସଂ. ବି ( କର୍ମଧା; ଭିନ୍ନ + ମତ)—ପୃଥକ୍‌ମତ; ଅନ୍ୟମତ—
Bhinna mata Separate or different opinion.
ଭିନ୍ନମତା—ସ୍ତ୍ରୀ) ସଂ. ବିଣ. ପୁଂ—ଭିନ୍ନମତାବଲମ୍ବୀ ( ଦେଖ )—
Bhinnamatābalambi (See)

**ଭିନ୍ନମତାବଲମ୍ବୀ**—ସଂ. ବିଣ. ପୁଂ ( ଭିନ୍ନମତ+ଅବଲମ୍ବ+ଇନ୍, ୧ମା. ୧ବ )—ପୃଥକ୍‌ମତପୋଷଣକାରୀ—Holding a different view or opinion.
Bhinnamatābalambī
(ଭିନ୍ନମତାବଲମ୍ବିନୀ—ସ୍ତ୍ରୀ)

**ଭିନ୍ନ ରୁଚି**—ସଂ. ବିଣ (ବହୁବ୍ରୀହି; ଭିନ୍ନ+ରୁଚି)—ପୃଥକ ରୁଚିବିଶିଷ୍ଟ—Of different taste.
Bhinna ruchi
ସଂ. ବି ( କର୍ମଧା )—ପୃଥକ୍ ରୁଚି—Different taste.

**ଭିନ୍ନାଭିନ୍ନ**—ଦେ. ବି—୧ । ପ୍ରଭେଦ—1. Difference. ୨ । ଅନ୍ୟଥାଭାବ—2. The state of being otherwise. [ ଉ—ବେଦ କହନ୍ତେ ଅଛି ଜହ୍ନ ଏଥିରେ ଭିନ୍ନାଭିନ୍ନ ନାହିଁ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]
Bhinnābhinna
ভেদাভেদ
**भिन्नाभिन्न; भेदाभेद**

**ଭିନ୍ନାଞ୍ଜନ**—ସଂ. ବି ( କର୍ମଧା; ଭିନ୍ନ+ଅଞ୍ଜନ )—ଦଳିତାଞ୍ଜନ ( ଦେଖ )—Dalitāñjana ( See ).
Bhinnāñjana
[ ଉ—କ୍ଷଣେ ନୋହି ଭିନ୍ନ ଭିନ୍ନାଞ୍ଜନକେଶୀ ମନକୁ ମନ ମିଶିଥିବି । ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି । ]

**ଭିନ୍ନାର୍ଥ**—ସଂ. ବି (କର୍ମଧା, ଭିନ୍ନ+ଅର୍ଥ )—ପୃଥକ୍ ବା ଅନ୍ୟ ମାନେ—Different meaning. ସଂ. ବିଣ (ବହୁବ୍ରୀହି) ଭିନ୍ନାର୍ଥକ ( ଦେଖ )—Bhinnārthaka ( See ).
Bhinnārtha

**ଭିନ୍ନାର୍ଥକ**—ସଂ. ବିଣ ( ବହୁବ୍ରୀହି; ଭିନ୍ନ+ଅର୍ଥ )—ପୃଥକ୍ ବା ଅପର ଅର୍ଥ ବିଶିଷ୍ଟ—Having different meaning or meanings.
Bhinnārthaka

**ଭିନ୍ନେ**—ଦେ. ବିଣ ( ସଂ. ଭିନ୍ନ)—୧ । ସ୍ୱତନ୍ତ୍ର; ପୃଥକ୍—1. Separate distinct. ୨ । ଅସାଧାରଣ—2. Unusual; peculiar; extraordinary. [ ଉ—ଭିନ୍ନେ ଅଛ ତୋ ସାହିରେ, ପଙ୍କଜନୟନା ! ମାନେ ବଳନ୍ତି ମତିରେ । ପ୍ରାଚୀନ. ସଙ୍ଗୀତ. ଘୋଷା । ] ୩ । ପୃଥଗନ୍ନବାସ—3. Separated in mess and lodging. ଦେ. କ୍ରି. ବିଣ—୧ । ପୃଥକ୍‌ଭାବରେ—1 Differently. ୨ । ଅସାଧାରଣ ଭାବରେ—2· Unusually.
Bhinne
ভিন্ন
**भिन्न**

**ଭିୟା**—ଅସ. ବି. ସ୍ତ୍ରୀ ଭୀ ଧାତୁ=ଭୟ କରିବା+ଭାବ. ଅ )—ଭୟ; ଶଙ୍କା—Fear; apprehension.
Bhiyā

**ଭିରିଙ୍ଗ୍**—ପ୍ରାଦେ ( ସମ୍ବଲପୁର ) ବି—ଘୃଣା—Hatred.
Bhiring

**ଭିରିଡ଼ି**—ପ୍ରାଦେ ( ଗଡ଼ଜାତ )—ଭିରୁଡ଼ି ( ଦେଖ ) Bhirurdi ( See )
Bhirirdi

**ଭିରୁଡ଼ି(ଳି)**—ଦେ· ବି ସ. ଭୃଙ୍ଗରୋଳ, ବରଟ)—ହୁଲଥିବା ଡୋରି· ବିଶିଷ୍ଟ ଭୃଙ୍ଗ—Wasp.
Bhirurdi(li) ভীমরুল
**भिड, ततैया, बर्रे, बिड(ल)नी**

**ଭିରୁଡ଼ି(ଳି)ମୁହାଁ**—ଦେ. ବିଣ. ପୁଂ—ଯାହାର ମୁହଁରେ ସବୁବେଳେ କ୍ରୋଧସୂଚକ ଭଙ୍ଗୀ ଦେଖାଯାଏ—Frowning; having a face indicative of an angry mood.
Bhirurdi(li)muhāñ
ভীমরুল মুখো
**विढनी मुहाँ** (ଭିରୁଡ଼ିଆ—ଅନ୍ୟରୂପ)
( ଭିରୁଡ଼ି[ଳି] ମୁହାଁ—ସ୍ତ୍ରୀ )

**ଭିରୁଡ଼ି ମାଇଲା ପରି ହେବା**—ଦେ. କ୍ରି—୧ । (ଭିରୁଡ଼ି ଦଂଶିଲେ ତା ଜାକୁଡ଼ାର ଜ୍ୱାଳାରେ ମନୁଷ୍ୟ ଯେପରି ଅସ୍ଥିର ହୁଏ ସେହିପରି) ଅସ୍ଥିର ହେବା—1. To be restless. ୨ । କ୍ରୋଧରେ ଅସ୍ଥିର ହେବା—2. To be restless with anger.
Bhirurdi māilā pari hebā
ভীমরুল কামড়ানের মত হওয়া
**बिढनीकाटनेका एसा होना**

**ଭିରୁଳି**—ପ୍ରାଦେ. ( ସିଂହଭୂମ ) ବି—ଭିରୁଡ଼ି—Wasp.
Bhiruli

**ଭିଲ୍** ( ଧାତୁ )—ସ—ଭେଦନ କରିବା—To pierce.
Bhil ( root )

**ଭିଲ୍(ର୍)**—ପ୍ରାଦେ. ( ସମ୍ବଲପୁର ) ବି—ଦଳ; ଗୋଷ୍ଠି; ମେଳା—A crowd; multitude.
Bhil(r)

**ଭିଲ**—ଦେ. ବି ( ସ. ଭିଲ୍ଲ )—ଜଙ୍ଗଲୀଜାତିବିଶେଷ—The Bheels; a wild people inhabiting India.
Bhila
ভীল **भील**

**ଭିଲାରି(ଲି)**—ଦେ. ବି—ଅର୍ଯ୍ୟ ଭାଷାର ଶାଖାବିଶେଷ; ଓଡ଼ିଆ ଗଡ଼ଜାତ, ରାଜପୁତାନା, ମଧ୍ୟପ୍ରଦେଶ, ବେରାର ଓ ଖାନ୍ଦେଶ ଅଞ୍ଚଳ ଅଧିବାସୀ ଭିଲମାନଙ୍କ କଥିତ ଭାଷା—A language spoken by the Bheels.
Bhilāri(li)
ଭିଲ୍ଲୀ }
ଭିଲେଡ଼ି (ଡ଼ି) } ଅନ୍ୟରୂପ
ଭିଲି }
ভিল্লারী **भिलारी**

**ଭିଲେଜ୍ ନୋଟ୍**—ବୈଦେ. ବି ( ସେଟଲମେଣ୍ଟରେ ବ୍ୟବହୃତ ଶବ୍ଦ ) ( ଇଂ. ଭିଲେଜ୍ ନୋଟ୍ )—ରାଜସ୍ୱ ସେଟଲମେଣ୍ଟ ସମୟରେ ସେଟଲମେଣ୍ଟ କର୍ମଚାରୀ ପ୍ରତି ଗ୍ରାମ ବା ମଉଜା ସମ୍ବନ୍ଧୀୟ କେତେକ ଜ୍ଞାତବ୍ୟ ବିଷୟ ଲିପିବଦ୍ଧ କରିଥିବା ଲେଖା—A village note prepared by a Settlement Officer embodying certain informations regarding every village.
Bhilej not
ভিলেজ নোট
**भिलेज नोठ**

**ଭିଲେଜ୍ ରେଟ୍**—ବୈଦେ. ବି (ସେଟଲମେଣ୍ଟରେ ବ୍ୟବହୃତ ଶବ୍ଦ) (ଇଂ. ଭିଲେଜ ରେଟ୍ )—ପ୍ରତି ଗ୍ରାମରେ ଥିବା ଭିନ୍ନ ଭିନ୍ନ ଶ୍ରେଣୀର ବା କିସମର ଜମିମାନଙ୍କ ଉପରେ ନିର୍ଦ୍ଧାରିତ ଭିନ୍ନ ଭିନ୍ନ ରାଜସ୍ୱ ରେଟ୍‌ର ହାରାହାରି ହିସାବରେ ମାଣ ପ୍ରତି ଯେତେ ଖଜଣା ପଡ଼େ—Village rate; the mean rate of rent for an acre of land in a village, calculated from the different rates prevalent in the mouza.
Bhilej ret
ভিলেজ রেট
**भिलेज रेट**

**ଭିଲେଜ୍ ସେସ୍**—ପ୍ରାଦେ. ( ସମ୍ବଲପୁର) ବି ( ଇଂ. ଭିଲେଜ୍ ସେସ୍)—ମଉଜାର ଜମି ଚାଷ କରିବା ଯୋଗୁଁ ଯେଉଁ କର ରୟତ ଉପରେ ଧାର୍ଯ୍ୟ ହୁଏ ଓ ଯାହା ରୟତଦ୍ୱାରା, ଟଙ୍କାଦ୍ୱାରା ବା ଶସ୍ୟାଦିଦ୍ୱାରା ଜମିଦାରକୁ ବା ପଟେଲକୁ ଦିଆଯାଏ—A cess which a resident or cultivator ryot in a village pays or renders to the proprietor or to the Patel in money, kind or services. (ସମ୍ବଲପୁର ମାନୁଆଲ୍ ୧୯୨୮ ।)
Bhilej ses
ভিলেজ সেস
**भिलेजसेस**

ଭିଲ୍ଲ—ସଂ. ବି. ପୁଂ (ଭଲ୍ ଧାତୁ+କର୍ତ୍ତୃ ଲ)—ଭାରତର ଜଙ୍ଗଲୀ ଅନାର୍ଯ୍ୟ
Bhilla ଜାତିବିଶେଷ—Name of an aboriginal wild
(ଭିଲ୍ଲୀ—ସ୍ତ୍ରୀ) tribe of India. [ ଦ୍ର—ଏମାନେ ବହୁ ପ୍ରାଚୀନ କାଳରୁ ରାଜପୁତାନା, ସିନ୍ଧୁ ଓ ମଧ୍ୟଭାରତର ଜଙ୍ଗଲ ଓ ପାହାଡ଼ମାନଙ୍କରେ ବାସ କରି ଆସୁଅଛନ୍ତି । ଏମାନେ ଶର ଅଟନ୍ତି ଓ ତୀର ଚଳାଇବାରେ ସିଦ୍ଧହସ୍ତ । ଏମାନେ କଷ୍ଟ-ପ୍ରକୃତି ହେଲେ ମଧ୍ୟ ସତ୍ୟବାଦୀ, ସରଳ ଓ ସ୍ୱାମିଭକ୍ତ ଅଟନ୍ତି । ପୁରାଣମାନଙ୍କରେ ଏମାନଙ୍କୁ ବ୍ରାହ୍ମଣ କନ୍ୟା ଓ ତୀବର ପୁରୁଷଠାରୁ ଉତ୍ପନ୍ନ ସଙ୍କର ଜାତି ବୋଲାଯାଇ ଅଛି—ହି. ଶ । ]

ଭିଲ୍ଲା—ପ୍ରାଦେ. ( ଗଞ୍ଜାମ ) ବିଣ—ପରିହାସ ସୂଚକ ( ବ୍ୟକ୍ତି )—
Bhilla (a person) In terms of jesting
ଭିଲ୍ଲାଭିଲ୍ଲୁଚଅ—ଅନ୍ୟରୂପ ) with another.

ଭିଲ୍ଲୀ—ସଂ. ବି (ଭଲ ଧାତୁ+କର୍ତ୍ତୃ ଲ+ଈ)—୧ । ଲୋଧ୍ର ବୃକ୍ଷ; ଲୋଧ୍ର
Bhilli ଗଛ—1. Symplocos Racemosa ( tree ).
୨ । ଭିଲ୍ଲଜାତୀୟା ସ୍ତ୍ରୀ—2. A woman of the Bhilla tribe.

ଭିଷ୍(ସ୍) ( ଧାତୁ )—ସଂ. ( ସୌତ୍ର ଧାତୁ )—ରୋଗର ପ୍ରତିକାର
Bhish(s) ( root ) କରିବା—To treat a disease.

ଭିଷକ୍—ସଂ. ବି ( ଭିଷ୍ ଧାତୁ+କର୍ତ୍ତୃ. ଅକ୍; ଭିଷକ୍; ୧ମା. ୧ବ )—
Bhishak ଚିକିତ୍ସକ; ବୈଦ୍ୟ; ଡାକ୍ତର—A physician.

ଭିଷକ୍ ପାଶ—ସଂ. ବି (ଭିଷକ୍+କୁତ୍ସାର୍ଥେ ପାଶ)—ଅଧମ ବୈଦ୍ୟ—
Bhishak pāśa A quack.

ଭିଷକ୍(ଗ୍) ବୃତ୍ତି—ସଂ. ବି (୬ଷ୍ଠୀ ତତ୍, ଭିଷକ୍+ବୃତ୍ତି)—ବୈଦ୍ୟବୃତ୍ତି;
Bhishak(g)-brutti ଚିକିତ୍ସା ବ୍ୟବସାୟ—The profession of a physician.

ଭିଷକ୍(ଗ୍) ରତ୍ନ—ସଂ. ବି (୭ମୀ ତତ୍, ଭିଷକ୍+ରତ୍ନ)—ଉତ୍କୃଷ୍ଟ ବା ପ୍ରଧାନ
Bhishak-(g-)ratna ଚିକିତ୍ସକ—An eminent physician.
( ଭିଷକ୍‌ରାଜ, ଭିଷଗ୍ରତ୍ନ, ଭିଷଗ୍ରାଜ—ଅନ୍ୟରୂପ )

ଭିଷକ(ଜ)—ଗ୍ରା. ବି (ସଂ.ଭିଷକ୍; ଭିଷକ୍)—ଚିକିତ୍ସକ—Physician.
Bhishaka(ja) (ଦ୍ର—ଯେବଣ ପ୍ରକାରେ ଭିଷକ, କରଇ ଚିକିତ୍ସା ଅନେକ—ଜଗନ୍ନାଥ. ଭାଗବତ । )

ଭିସ୍ତି—ଦେ. ବି ( ଫ. ଭିସ୍ତୀ; ଏହା ଲୁମ୍ପାରର ଭୀତି ପରି ଚର୍ମ ନିର୍ମିତ
Bhisti ଓ ଆକୃତିବିଶିଷ୍ଟ ଥିବାରୁ )—୧ । ମସକ; ପାଣି ବୋହିବା
मशक ନିମନ୍ତେ ଏକପ୍ରକାର ଚର୍ମ ମୁଣା ( ଏଥିରେ ୫।୭ ମାଠିଆ
भिस्ती ପାଣି ସମ୍ଭବ )—1. A collapsible leathern bag used in carrying water.
ଭିସ୍ତିବାଲା, ଭିସ୍ତି- ଓଆଲା, ଭିସ୍ତିବୃଥଲା } ଅନ୍ୟରୂପ ୨ । ଯେଉଁ ଲୋକ ଭିସ୍ତିଦ୍ୱାରା ପାଣି
ଭିସ୍ତି मिस्ती; मस्का ବୁହେ—2. A water-carrier; a person carrying water in a big leathern bag.

ଭୀ ( ଧାତୁ )—ସଂ—୧ । ଭୀତ ହେବା—1. To be afraid. ୨ ।
Bhi ( root ) ଭୟ କରିବା—2. To fear; to dread.

ଭୀ—ସଂ. ବି ( ଭୀ ଧାତୁ+କ୍ୱିପ୍ )—୧ । ଡର; ଭୟ—1. Fear.
Bhi dread. ୨ । ତ୍ରାସ—2. Fright; alarm. ୩ । ଶଙ୍କା—3. Apprehension.

ଭୀଡ଼ା—ଦେ. ବି ( ସଂ. ବହୁତର )—ସମୂହ—Multitude. (ଦ୍ର—
Bhirdā ଲୁବ୍‌ଧ ଧନୁରୁ ବାହାର ଶର ଭୀଡ଼ା—କୃଷ୍ଣସିଂହ. ମହାଭାରତ, ବନ । )

ଭୀତ—ସଂ. ବିଣ. ପୁଂ ( ଭୀ ଧାତୁ+କର୍ତ୍ତୃ. ତ )—୧ । ଶଙ୍କିତ; ତ୍ରସ୍ତ—
Bhita 1. Afraid; frightened; alarmed. ୨ । ଆଶ-
( ଭୀତା—ସ୍ତ୍ରୀ ) ଙ୍କିତ—2. Apprehensive.

ଭୀତକ—ଦେ. ବିଣ. ପୁଂ ( ସଂ. ଭୀତ )—ଭୟବିହ୍ୱଳ—Beside one-
Bhitaka self with fear. [ ଦ୍ର—ବନା ଭଣ ମୁଁ ହୋଇବି ବୃଦ୍ଧ ଶୋକରେ ଭୀତକ ହୋଇ ବନ ନେବି—ଉପେ. ବୈଦେହୀଶବିଳାସ । ]

ଭୀତ ଚିତ୍ତ—ସଂ. ବି. ( କର୍ମଧା; ଭୀତ+ଚିତ୍ତ )—ଭୟବିହ୍ୱଳ ହୃଦୟ—
Bhita chitta Frightened heart; terrified mind.
(ଭୀତ ଚିତ୍ତା—ସ୍ତ୍ରୀ) ୨. ବିଣ. ପୁଂ ( ବହୁବ୍ରୀହି; ଭୀତ+ଚିତ୍ତ )—
ଅତ୍ୟନ୍ତ ତ୍ରସ୍ତ—Frightened; alarmed.

ଭୀତ ତ୍ରସ୍ତ—ସଂ. ବିଣ. ପୁଂ (ଏକାର୍ଥ ସହଚର)—ଅତ୍ୟନ୍ତ ତ୍ରସ୍ତ—
Bhita trasta Frightened; terrified.
( ଭୀତତ୍ରସ୍ତା—ସ୍ତ୍ରୀ )

ଭୀତଧୀ—ସଂ. ବିଣ (ବହୁବ୍ରୀହି)—ଭୟ ଯୋଗୁଁ ଯାହାର ବୁଦ୍ଧି ବିହ୍ୱଳ ହୋଇ
Bhitadhi ଅଛି—(one) Whose senses have been overpowered with fear.
(ଦ୍ର—ବିଭୀଷଣ ସମୁଦ୍ଧି, ଅଶେ କଲ ଅଭିଧି, ଏଲା ଭୂ ହେଲୁଣି ଭୀତଧୀ । ଉପେ. ବୈଦେହୀଶବିଳାସ । )

ଭୀତ ହେବା—ଦେ. କ୍ରି—ଭୟ ପାଇବା—To be afraid; to be
Bhita hebā alarmed or terrified.
ভীত হওয়া भय भीत होना

ଭୀତି—ସଂ. ବି. (ଭୀ ଧାତୁ+ଭାବ ତି)—୧ । ଭୟ—1. Fear.
Bhiti ୨ । ଆଶଙ୍କା—2. Apprehension.
୩ । ତ୍ରାସ; ଅତ୍ୟନ୍ତ ଭୟ—3. Terror.

ଭୀତିକର—ସଂ.ବିଣ.(ଭୀତି+କୃ ଧାତୁ+ଅ)—ଭୟ ଉତ୍ପାଦକ; ଯାହା ଭୟ
Bhitikara ଜନ୍ମାଏ—Terrific; alarming; dreadful.
(ଭୀତିଜନକ, ଭୀତିପ୍ରଦ—ଅନ୍ୟରୂପ) (ଭୀତିକରୀ—ସ୍ତ୍ରୀ)

ଭୀତି କରିବା—ଦେ. କ୍ରି—୧ । ଡରିବା—1. To fear; to dread.
Bhiti karibā ୨ । ଆଶଙ୍କା କରିବା—
ভয় করা भीति करना 2. To apprehend.

ଭୀତି ବିହ୍ୱଳ—ସଂ. ବିଣ. ପୁଂ. ( ୩ୟା ତତ୍ ଭୀତି+ବିହ୍ୱଳ )—
Bhiti bihwala ଭୟ ତ୍ରସ୍ତ—Overwhelmed with
(ଭୀତିବିହ୍ୱଳା—ସ୍ତ୍ରୀ) fear; frightened; terrified.
(ଭୀତିବିହ୍ୱଳତା—ବି)

ଭୀତି ମାଡ଼ିବା—ଦେ. ବି—ଡର ମାଡ଼ିବା, ଭୟୋଦ୍ରେକ—
Bhiti mārdibā Being frightened.
ভয় পাওয়া भीति होना
(ଭୀତି ଲାଗିବା—ଅନ୍ୟରୂପ)

ଭୀରୁ—ଦେ. ବଣ· (ସଂ. ଭୀରୁ)—ଭୀରୁ; ସ୍ୱଭାବତଃ ଭୟଶୀଳ—
Bhitu Timid; coward; cowardly.

ଭୀମ—ସଂ. ବଣ· ପୁଂ (ଭୀ ଧାତୁ+ଅପାଦାନରେ ମ; ଯାହାଠାରୁ ଭୟ ପ୍ରାପ୍ତ
Bhīma ହୁଏ)—୧ । ପ୍ରଚଣ୍ଡ—1. Violent. ୨ । ଭୀଷଣ; ଭୟଙ୍କର; ଭୟାନକ—2. Terrible; terrific. ସଂ. ବି. ପୁଂ—୧ । ମହାଦେବ; ଶିବ—1. Śiba. ୨ । ( ବିଷ୍ଣୁ ସହସ୍ର ନାମୋକ୍ତ ) ବିଷ୍ଣୁଙ୍କର ନାମାନ୍ତର—2. A name of Bishṇu. ୩ । ଦ୍ୱିତୀୟ ପାଣ୍ଡବ—3. The second Pāṇḍaba brother. [ଦ୍ର—ଏ ବାୟୁଙ୍କ ସଂଯୋଗରେ କୁନ୍ତୀଙ୍କ ଗର୍ଭରୁ ଜନ୍ମିଥିଲେ । ଏ ଯୁଧିଷ୍ଠିରଙ୍କ ଠାରୁ ସାନ ଓ ଅର୍ଜୁନଙ୍କଠାରୁ ବଡ଼ ଥିଲେ । ଏହାଙ୍କର ଓ ଦୁର୍ଯ୍ୟୋଧନଙ୍କର ଏକହିଁ ଦିବସରେ ଜନ୍ମ ହୋଇଥିଲା । ଦୁର୍ଯ୍ୟୋଧନ ଈର୍ଷାରେ ଏହାଙ୍କୁ ଥରେ ବିଷ ଲଡ଼ୁ ଖୁଆଇ ବାନ୍ଧି କରି ପାଣିରେ ପକାଇ ଦେଲେ, ପାଣିରେ ନାଗ ଦଂଶନ କରିବାରୁ ତାଙ୍କଠାରୁ ବିଷଲଡ଼ୁର ବିଷ ଉଭିଗଲା । ଗଦା ଯୁଦ୍ଧରେ ଭୀମ ଖୁବ୍ ପାରଙ୍ଗମ ଥିଲେ । ଏ ହିଡ଼ିମ୍ବ ରାକ୍ଷସକୁ ବଧ କରି ତା ଭଗ୍ନୀ ହିଡ଼ିମ୍ବାକୁ ବିବାହ କରିଥିଲେ ଓ ତାଙ୍କ-ଠାରୁ ଘଟୋତ୍କଚ ଜନ୍ମ ହୋଇଥିଲା । ଅଜ୍ଞାତବାସ ସମୟରେ ଏ ବଲ୍ଲବ ନାମ ଗ୍ରହଣ କରି ବିରାଟ ରାଜାଙ୍କ ସୂପକାର କର୍ମ କରୁଥିଲେ । ସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ରା କରାଇବାକୁ ଚେଷ୍ଟା କରି ଦୁର୍ଯ୍ୟୋଧନ ତାଙ୍କୁ ନିଜର ଜଙ୍ଘରେ ବସାଇବାକୁ କହିବାରୁ ଦୁର୍ଯ୍ୟୋଧନଙ୍କର ଜଙ୍ଘକୁ ଭାଙ୍ଗିବାକୁ ଏ ପ୍ରତିଜ୍ଞା କରି ମହାଭାରତ ଯୁଦ୍ଧରେ ତାହାହିଁ କରିଥିଲେ । ଦୁର୍ଯ୍ୟୋଧନଙ୍କୁ ଓ ତାଙ୍କ ଭାଇମାନଙ୍କୁ ଯୁଦ୍ଧରେ ହତ କରି ଦ୍ରୌପଦୀଙ୍କୁ ଅନ୍ତଃପୁରରୁ ଟାଣି ଆଣିଥିବା ଦୁଃଶାସନଙ୍କର ରକ୍ତ ଏ ପିଇଥିଲେ । ମହାପ୍ରସ୍ଥାନ ସମୟରେ ସହଦେବ, ନକୁଳ ଓ ଅର୍ଜୁନଙ୍କ ମୃତ୍ୟୁ ପରେ ଏହାଙ୍କର ମୃତ୍ୟୁ ହୋଇଥିଲା ।] ୪ । ବିଦର୍ଭରାଜ; ଦମୟନ୍ତୀଙ୍କ ପିତା, ଭୀମସେନ—4. Name of the father of Damayantī. [ଦ୍ର—ଏହାଙ୍କର ୩ ପୁତ୍ର, ଦମ, ଦାମ ଓ ଦମନ, ଏବଂ ଏକ କନ୍ୟା ଦମୟନ୍ତୀ ଥିଲେ ।] ୫ । ଦାନବ-ବିଶେଷ—5. Name of a demon. ୬ । ଗନ୍ଧର୍ବବିଶେଷ—6. Name of a heavenly chorister. ୭ । କାବ୍ୟରେ ଭୟାନକ ରସ; ନବରସ ମଧ୍ୟରୁ ଏକତମ 7. The sentiment of terror in literature. ୮ । ମହର୍ଷି ବିଶ୍ୱାମିତ୍ରଙ୍କ ପୂର୍ବ ପୁରୁଷ ଓ ପୁରୂରବାଙ୍କ ପୌତ୍ର—8. Grandson of Purūrabā. ୯ । କୁମ୍ଭ-କର୍ଣ୍ଣଙ୍କର ପୁତ୍ର; ରାବଣ ସେନାପତି—9. The son of Kumbhakarṇṇa. ଦେ. ବି. ପୁଂ—୧ । ମନୁଷ୍ୟଙ୍କୁ ଦିଆଯିବା ନାମ—1. A name given to males. ୨ । ପ୍ରାଚୀନ ଜଳଯାନବିଶେଷ—2. Name of a species of ancient sea-going vessel. (ଦ୍ର—ଭୋଜ ରାଜାଙ୍କ 'ଯୁକ୍ତି କଳ୍ପତରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।) (ଲୋ—ଭୀମବଳ କୋଇନ୍ତୀଙ୍କୁ ଜଣା—ଢଗ =ଭୀମଙ୍କ ସାମର୍ଥ୍ୟ କୁନ୍ତୀଙ୍କୁ ଜଣା; ପୁତ୍ରର ସାମର୍ଥ୍ୟ ମାତାଙ୍କୁ ଜଣା—A proverb meaning "One's strength or prowess is known to his own people". ୨ । ପହିଲି ବାଜି ଭୀମ ହାରେ—ଢଗ=(ଋଷିଙ୍କ ଅଭିଶାପ ଫଳରେ ମହାଭାରତୋକ୍ତ ଯୁଦ୍ଧମାନଙ୍କରେ ଭୀମ ପ୍ରଥମବାର ହାରି ଶେଷବାର ଜିଣିଥିବା ଉପାଖ୍ୟାନରୁ ) ବାକ୍ୟଟି ସୂଚାଏ ଯେ ପ୍ରଥମ ଥର ହାରିଯାଏ, ପ୍ରଥମର ଥର ହାରିବା କିଛି ନୁହେଁ । ଶେଷରେ ଯେ ହାରେ ଓ ଜିତେ ତାହାହିଁ ପ୍ରକୃତ ହାର ଜିତ ବୋଲି ବିବେଚିତ ହୁଏ—2. A proverb meaning "Final victory is the real victory").

ଭୀମ କର୍ମା—ସଂ. ବଣ. ପୁଂ (ବହୁବ୍ରୀହି; ଭୀମ ଅଟେ କର୍ମ ଯାହାର; ଭୀମ
Bhīma karmmā କର୍ମନ୍; ୧ମା. ୧ବ)—୧ । ଭୀଷଣ କର୍ମକାରୀ—1. Doing terrible acts. ୨ । ଅଶେଷ +କର୍ମା (ବ୍ୟକ୍ତି)—2. Very active; (man) of action.

ଭୀମ ଗର୍ଜ୍ଜନ—ସଂ. ବି· (କର୍ମଧା, ଭୀମ+ଗର୍ଜ୍ଜନ)—ଭୀମନାଦ (ଦେଖ)
Bhīma garjjana Bhīmanāda (See)
ସଂ—ବଣ(ବହୁବ୍ରୀହି)—ଯାହାର ଗର୍ଜନ ଭୟଙ୍କର—Of frightful roar.

ଭୀମ ଦର୍ଶନ—ସଂ. ବଣ. ପୁଂ (ବହୁବ୍ରୀହି; ଭୀମ ଅଟେ ଦର୍ଶନ ଯାହାର;
Bhīma darśana ଭୀମ+ଦର୍ଶନ)—ଭୀଷଣରୂପବିଶିଷ୍ଟ; (ଭୀମ ଦର୍ଶନା—ସ୍ତ୍ରୀ) ଯାହାକୁ ଦେଖିଲେ ଭୀତ ହୁଏ; ବିକଟାକୃତି ବିଶିଷ୍ଟ—Of terrifying appearance; looking hideous or frightful.

ଭୀମ ଦାସ—ଦେ. ବି (ନାମ)—ପୁରୀ ଜିଲ୍ଲାର ଗୌଡ଼ୀୟ ବୈଷ୍ଣବ ମତା-
Bhīma dāsa ବଲମ୍ବୀ କରଣ କବି—Name of an Oriya poet of Puri of the 17th. century who composed devotional verses. [ଦ୍ର—ତାଙ୍କର ଲେଖା ଭକ୍ତିମାର୍ଗଶ୍ରିତ ହେଲେହେଁ ସେଥିର ଭାଷା ସର୍ବଜନଗ୍ରାହ୍ୟ ବା ସରଳ ନୁହେ । ସେ ଭକ୍ତିରତ୍ନମାଳା ବା ଭକ୍ତି ରତ୍ନାବଳୀ ଓ ହରିଭକ୍ତି ଚନ୍ଦ୍ରୋଦୟ ନାମକ ଦୁଇ ଖଣ୍ଡି ବୈଷ୍ଣବ ଗ୍ରନ୍ଥ ରଚନା କରିଥିଲେ ।]

ଭୀମ(ମା) ଧୀବର—ଦେ, ବି (ନାମ)—(ଜାତିରେ କେଉଟ) କୌରବ
Bhīma(mā)dhībara ଓ ପାଣ୍ଡବଙ୍କ ଦ୍ୟୁତକ୍ରୀଡ଼ା ସମ୍ବନ୍ଧରେ "କପଟପାଶା" ନାମକ କମନୀୟ କବିତାର ରଚୟିତା—Name of a very popular Oriya poet, a fisherman by caste.

ଭୀମ ନାଦ—ସଂ. ବି (କର୍ମଧା; ଭୀମ+ନାଦ)—୧ । ଭୀଷଣ ଶବ୍ଦ; ହୁଙ୍କାର;
Bhīma nāda ବିକଟ ଗର୍ଜନ—1. Terrible sound; (ଭୀମ ନାଦୀ—ବଣ. ପୁଂ ) dreadful roar ୨ । ଭୀମଙ୍କ ରଡ଼ି ପରି ରଡ଼ି—2. Roar like that of Bhīma. ୩ । (ବହୁବ୍ରୀହି, ଭୀମ ଅଟେ ନାଦ ଯାହାର) ସିଂହ—3. The lion. ବଣ. ପୁଂ (ବହୁବ୍ରୀହି)—ଭୟଙ୍କର-ନାଦକାରୀ—Having a dreadful sound; roaring terribly.

ଭୀମ ପରାକ୍ରମ—ସଂ. ବି (କର୍ମଧା; ଭୀମ+ପରାକ୍ରମ)—୧ । ଭୟଙ୍କର ଶକ୍ତି-
Bhīma parākrama 1. Terrible might. ୨।(ମଶ୍ରୀ ତତ)
(ଭୀମ ପରାକ୍ରମା—ସ୍ତ୍ରୀ) ଭୀମଙ୍କର ଶକ୍ତି—2. The might of Bhīma.

ଭୀମ ବିକ୍ରମ, ଭୀମ ବଳ —ଅନ୍ୟରୂପ । ବିଣ. ପୁଂ (ବହୁବ୍ରୀହି; ଭୀମ ଅଟେ ପରାକ୍ରମ ଯାହାର) —ଅତ୍ୟନ୍ତ ବଳଶାଳୀ—Mighty; of dreadful strength

ଭୀମ ବେଗ—ସଂ. ବି ( କର୍ମଧା; ଭୀମ+ବେଗ )—ପ୍ରବଳ ବେଗ—
Bhīma bega Terrific force or velocity.

ଭୀମ(ମା) ଭୋଇ—ଦେ. ବି. ( ନାମ )—ଅନ୍ଧ କବି ଓଡ଼ିଆ କବି ( ଖ୍ରୀ. ୧୮୫୦—୧୮୯୫ )—Name of a
Bhīma(mā) bhoi blind Oriya poet. [ ଦ୍ର—ଏ ଢେଙ୍କାନାଳର ଓଡ଼ିଆ ବଂଶରେ ଜାତ ହୋଇଥିଲେ; ବାଲ୍ୟକାଳରୁ ପିତାଙ୍କୁ ହରାଇଥିଲେ ଓ ଗରିବ ଥିବାରୁ ଅତି କଷ୍ଟରେ ଜୀବନ ଯାପନ କରୁଥିଲେ । ଲୋକଙ୍କର ଗାଈ ଗୋରୁ ଜଗିବା ତାଙ୍କର ଜୀବିକା ଥିଲା । ଅତି ବାଲ୍ୟକାଳରୁ ତାଙ୍କର ଅଲେଖ ବା ସତ୍ୟ-ମହିମାଧର୍ମ ପ୍ରତି ମତି ବଳିଥିଲା ଓ ପରେ ମହିମା ଗୋସାଇଁଙ୍କୁ ଭେଟି ଢେଙ୍କାନାଳଠାରୁ ଆସି ସେଠାରେ ଗୁରୁଙ୍କଠାରୁ ଦୀକ୍ଷା ନେଇ "ସ୍ତୁତିଚିନ୍ତାମଣି" ନାମକ ଗ୍ରନ୍ଥ ରଚନା କରି ସତ୍ୟ-ମହିମାଧର୍ମ ପ୍ରଚାର କଲେ । ଏହାଙ୍କର ଭଜନମାଳା ଓ ବ୍ରହ୍ମନିରୂପଣଗୀତା ମହିମାଧର୍ମାବଲମ୍ବୀମାନଙ୍କର ଅତ୍ୟନ୍ତ ପ୍ରିୟ ଗ୍ରନ୍ଥ । ଏ ଗ୍ରନ୍ଥମାନ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ହୋଇଅଛି । ]

ଭୀମ ରଡ଼ି—ଦେ. ବି—୧ । ଭୀମନାଦ; ବିକଟ ଗର୍ଜନ—1.
Bhīma rardi Terrific sound; terrible roar.
ভীমনাদ भीमनाद ୨ । ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧ ପାଇଁ ଡାକୁଥିବା ବେଳେ ଭୀମଙ୍କର କରିଥିବା ରଡ଼ି—2. The roaring challenge of Bhīma to Durjyodhana for battle.
ଭୀମନାଦ, ଭୀମଗର୍ଜନ —ଅନ୍ୟରୂପ
[ ଦ୍ର—ଭୀମ ଦୁଇଥର ରଡ଼ି କରିବାଯାକେ ଦୁର୍ଯ୍ୟୋଧନ ସମ୍ଭାଳି ହୋଇ ରହିଲେ; କିନ୍ତୁ ତୃତୀୟ ରଡ଼ି ଶୁଣି ଆଉ ଥୟ ହୋଇ ନ ପାରି ଲୁଚିବା ସ୍ଥାନରୁ ବାହାରି ଆସି ଭୀମ ସଙ୍ଗେ ଯୁଦ୍ଧ କଲେ ଓ ସେହି ଯୁଦ୍ଧରେ ମୃତ ହେଲେ । ]

ଭୀମରଥ—ସଂ. ବି—୧ । ଶ୍ରୀକୃଷ୍ଣଙ୍କ ପୁତ୍ରବିଶେଷ—1. Name of one
Bhīmaratha of the sons of Śrīkrushṇa.
୨ । ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ—2. Name of a son of Dhrutarāshtra. ୩ । କୂର୍ମାବତାରରେ ବିଷ୍ଣୁଙ୍କ କର୍ତ୍ତୃକ ନିହତ ଅସୁର—3. Name of a demon killed by Bishṇu in His incarnation of the Tortoise.

ଭୀମରଥୀ—ସଂ. ବି (ଭୀମରଥ+ଈ)—ମନୁଷ୍ୟର ବୟୋଦଶାବିଶେଷ,
Bhīmarathī ୭୭ବର୍ଷ ୭ମାସ ୭ଦିନ (ବା ରାତ୍ରି) ବୟଃକ୍ରମ ପୂର୍ତ୍ତି
ভীমরতি ହେବାର ଦଶା—The period of a man's life
मरति after he passes the age of 77 years, 7
ଓ, ଭୀମରତି months and 7 days. [ଦ୍ର—ହିନ୍ଦୁଙ୍କର ବିଶ୍ୱାସ ଯେ ଏହି ଦଶା ପରେ ମନୁଷ୍ୟ ଜୀବିତ ହେଲେ ପ୍ରତିଦିନ ତାହା ପକ୍ଷରେ ଶତ ସୁବର୍ଣ୍ଣ ଦକ୍ଷିଣାପ୍ରଦ ଯଜ୍ଞ ତୁଲ୍ୟ ହୁଏ, ସେ ଇଚ୍ଛାକ୍ରମେ ଯିବା ଆସିବା କଲେ ତାହା ବିଷ୍ଣୁଙ୍କୁ ପ୍ରଦକ୍ଷିଣ କରିବା ତୁଲ୍ୟ ହୁଏ, ସେ କଥା କହିଲେ ମନ୍ତ୍ର ଜପ ତୁଲ୍ୟ ହୁଏ, ନିଦ୍ରା ତାହା ପକ୍ଷରେ ଧ୍ୟାନ ଓ ଅନଳ ତାହା ପକ୍ଷରେ ସୂର୍ଯ୍ୟ ତୁଲ୍ୟ । ]

ଭୀମରାଜ—ଦେ. ବି(ସଂ.ଭୃଙ୍ଗରାଜ)—ବହୁ ସ୍ୱର ଅନୁକରଣକାରୀ କଳା ପକ୍ଷୀ-
Bhīmarāja Large racket-tailed drongo; the
ভিমরাজ भीमराज mocking bird of India; Dissemurus Paradises. [ ଦ୍ର—ଏହା ଜଙ୍ଗଲଗାଛ ପରି ମିଳାଉ କୃଷ୍ଣବର୍ଣ୍ଣ, ଲମ୍ବ ୧ ହାତଲମ୍ବ; ମୁଣ୍ଡରେ ଚୂଳ ଅଛି । ଏହା ବହୁ ଜନ୍ତୁଙ୍କ ସ୍ୱରର ଅବିକଳ ଅନୁକରଣ କରିପାରେ; ଏହାର ଗୋଡ଼ ଛୋଟ ଓ ପକ୍ଷା ବଡ଼ । ଏହାର ଉମ, ଉପରେ ନାଲ ଓ ଗୋଲାପି ଉଜ୍ଜ୍ୱଳ ଚକ୍ଷମାନ ଥାଏ । ]

ଭୀମଶକତ(ତି)—ଦେ. ବିଣ(ସଂ. ଭୀମ+ଶକ୍ତି)—ଅତିଶୟ ପରାକ୍ରମଶାଳୀ—
Bhīmasakata(ti) Of superhuman might.
[ଜି—ବାର୍ଦ୍ଧିମଧ୍ୟସ୍ଥ ସଦାଗତି ପୁଷ୍ପକ ଆରୋହୀ ଭୀମ ଶକତ—ଭଞ୍ଜ. ବୈଦେହୀଶବିଳାସ]

ଭୀମସିଂହ—ଦେ. ବି. ନାମ—୧ । ରାଜପୁତାନାର କୃଷ୍ଣକୁମାରୀଙ୍କ ପିତା—
Bhīmasimha 1. Father of Krushṇakumārī of Rajasthan ୨ । ଚିତୋର ରାଣୀ ପଦ୍ମିନୀଙ୍କ ସ୍ୱାମୀ—2. Husband of Padminī of Chitor.

ଭୀମସେନ—ସଂ. ବି. (ନାମ) (ଭୀମ ସେନା) ୧ । ଦ୍ୱିତୀୟ ପାଣ୍ଡବ—
Bhīmasena 1. Name of the second Pāndaba brother. ୨ । ବିଦର୍ଭରାଜ ଦମୟନ୍ତୀଙ୍କ ପିତା—2. Name of the father of Damayanti.
ଦେ. ବି. ପୁଂ ଲୋକଙ୍କୁ ଡାକିବା ନାମ—A name given to males.

ଭୀମସେନୀ ଏକାଦଶୀ—ସଂ. ବି—ଜ୍ୟୈଷ୍ଠ ଶୁକ୍ଳ ଏକାଦଶୀ—The
Bhīmasenī ekādaśī 11th day of the bright
(ଭୀମଦ୍ୱାଦଶୀ—ଅନ୍ୟରୂପ) lunar fortnight of Jyaishtha
[ ଦ୍ର—ଏ ଦିନ ନିର୍ଜଳ ଉପବାସ କର୍ତ୍ତବ୍ୟ । ]

ଭୀମସେନୀ କର୍ପୂ(ପୁ)ର—ଦେ. ବି—୧ । ବୋର୍ଣ୍ଣିଓ ଓ ସୁମାତ୍ରାଦି ଦ୍ୱୀପ-
Bhīmasenī karpū(pū)ra ଜାତ କର୍ପୂର—1. Barus
ভীমসেনী কর্পূর camphor; camphor produced in
भीमसेनी कर्पूर the islands of Sumatra and Borneo. [ଦ୍ର—ଏହା ବୋର୍ଣ୍ଣିଓ ଓ ସୁମାତ୍ରାଦି ଦ୍ୱୀପର ବୃହତ୍ ତରୁ ବିଶେଷ (Dryobalanus Aromatica)ର କାଣ୍ଡରେ ସଞ୍ଚିତ କର୍ପୂର । ଏହା ଅପର ବା ଅଧିକ କର୍ପୂର ଅଟେ; ଜାପାନ ଚୀନ ଆଦି ଦେଶର ଏକପ୍ରକାର ଗଛ ( Cinnamonum Camphora )ର କାଠକୁ ସିଝାଇ କର୍ପୂର ବାହାର କରାଯାଏ । ଏହାକୁ

ସାଧାରଣ ଲୋକେ କର୍ପୂର ବା ଭୀମ୍ସର କହନ୍ତି । କର୍ପୂରକୁ ବାଷ୍ପୀଭୂତ କରି ଶୋଧିତ କରାଯାଇ ପ୍ରସ୍ତୁତ କର୍ପୂରକୁ ଶୀକର୍ପୂର କହନ୍ତି ଓ କର୍ପୂରରୂପେ ବୃକ୍ଷ କାଣ୍ଡରୁ ପ୍ରାପ୍ତ କର୍ପୂରକୁ ଭୀମସେନୀ କର୍ପୂର କହନ୍ତି ]।

ଭୀମା—ଦେ. ବି (ଅନାଦରାର୍ଥକ)—ଭୀମ ଓ ଭୀମସେନ ନାମକ ବ୍ୟକ୍ତିର
Bhimā ଡାକ ନାମ—A name used in calling Bhima and Bhimasena.

ভীমা भीमा ସଂ. ବି ( ଭୀମ+ଆ )—୧ । ସ୍ୱେତନ ନାମକ ଗନ୍ଧଦ୍ରବ୍ୟ — 1. A herbal scent. ୨ । କୋରଡ଼ା; ଚାବୁକ (ହି. ଶ)—2. Whip. ୩ । ପଶ୍ଚିମଘାଟ ପର୍ବତରୁ ବାହାରି କୃଷ୍ଣା ନଦୀରେ ମିଳିତ ହୋଇଥିବା ନଦୀ—3. A tributary of the Kṛushṇā river in the Deccan. ୪ । ଭୀମା ଦେବୀ (ଦେଖ)—4. Bihmā debi (See).

ଭୀମା ଦେବୀ—ସଂ ବି.ସ୍ତ୍ରୀ—୧ । ଦେବୀ ବିଶେଷ —1. A particular
Bhimā debi Goddess. (ଉ—ଭୀମାଦେବୀଙ୍କ ସ୍ଥାନ ଯୋନି ତୀର୍ଥେ ଯାଇ, ସ୍ନାନ କଲେ ଯେ ଦେବୀପୁତ୍ର ସେ ହୁଅଇ । କୃଷ୍ଣସିଂହ. ମହାଭାରତ ବନ ।) ୨ । (ଚଣ୍ଡୀପୁରାଣୋକ୍ତ) ଦୁର୍ଗାଙ୍କ ଅବତାରବିଶେଷ—2. An incarnation of Durgā. [ ଦ୍ର - ଚଣ୍ଡୀ ପୁରାଣର ଏକାଦଶ ଅଧ୍ୟାୟ ୫୧।୫୨ ଶ୍ଳୋକରେ ଦୁର୍ଗା କହୁଛନ୍ତି;—ହିମାଚଳରେ ମୁଁ ଭୀମରୂପ ଧାରଣ କରି ରାକ୍ଷସମାନଙ୍କୁ ଭକ୍ଷଣ କରି ମୁନିମାନଙ୍କୁ ରକ୍ଷା କରିବି, ତେଣୁ ମୁନିମାନେ ମୋତେ ଭୀମାଦେବୀ ନାମରେ ସ୍ତବ କରିବେ ]।

ଭୀମୋତ୍ତର—ସ. ବି—ପାଣିକଖାରୁ; କୁଷ୍ମାଣ୍ଡ (ହି. ଶ)—
Bhimottara White gourd.

ଭୀରୁ(ଲୁ)—ସ. ବିଣ. ପୁଂ (ଭୀ. ଧାତୁ+ଶୀଲାର୍ଥ କର୍ତ୍ତୃ ରୁ)—ଭୀତ
Bhiru(ḷu) ସ୍ୱଭାବ; କାପୁରୁଷ; ସ୍ୱଭାବତଃ ଭୟଶୀଳ; ଡରୁଆ; ଡରକୁଳା; ଛେରୁଆ—Timid; cowardly by nature. ସ. ବି ୧ । ଶୃଗାଳ—1. Jackal. ୨ । ବ୍ୟାଘ୍ର—2. Tiger. ୩ । ଏକପ୍ରକାର ଆଖୁ—3. A kind of sugarcane. ୪ । କଣ୍ଟକାରୀ—4. Solanum Indicum. ୫ । ଶତାବରୀ—5. Asparagus. ୬ । ଶତପାଦିକା—6. Centepede. ୭ । ଛାୟା—7. Shadow. ୮ । (ସ୍ତ୍ରୀ) ସ୍ୱଭାବତଃ ଭୀତା ସ୍ତ୍ରୀ—8 A timid woman (M. W.) ୯ । ଛେଳି ( ହି. ଶ )—9. Goat. ଦେ. ବି—୧ । ସ୍ତ୍ରୀ; ନାରୀ—1. Woman (ଉ—ଭୀରୁଚିତ ବର୍ଣ୍ଣେ ଚଳି ରଣ ବିଭାବିକା । ରାଧାନାଥ. ମହାଯାତ୍ରା ।) ୨ । ପତ୍ନୀ—2. Wife. (ଉ—ବଳାହକୁଁ ଜନ୍ମ ହୋଇଲା ପରି ଲକ୍ଷ୍ମର ଭୀରୁ । ଭଞ୍ଜ. ବୈଦେହୀଶବିଳାସ ।)

ଭୀରୁ(ଲୁ)କ—ସ. ବିଣ—(ଭୀରୁ+ସ୍ୱାର୍ଥେକ)—୧ । ଭୟାଳୁ—
Bhiru(ḷu)ka 1. Chicken-hearted; cowardly. ୨ । ଭୟତ୍ରସ୍ତ—2. Alarmed; overwhelmed
ভয়তরাসীয়া with fear. (ଉ—ବାଣୁକ ପରାୟେ ତେବେ, डरपोक; बायर ମୁଖରେ ଥନଲେ ଜବେ, ଦେଖାଇ ଜାଣି ଭୀରୁକ, ହେଲେ ଦୂଷିଲେ । ଭଞ୍ଜ, ବୈଦେହୀଶବିଳାସ । ) ସ. ବି—୧ । ପେଚକ—1. Owl. ୨ । ଶୃଗାଳ—2. Jackal. ୩ । ଭଲ୍ଲୁକ—3. Bear. ୪ । ବନ—4. Forest.

ଭୀରୁତା(ତ୍ୱ)—ସ. ବି ( ଭୀରୁ+ଭାବାର୍ଥେ ତା, ତ୍ୱ )—୧ । କାପୁରୁଷତା
Bhirutā(twa) —1. Cowardice; timidity. ୨ । ଡର; ଭୟ ( ହି. ଶ )—2. Fear.

ଭୀରୁ ପ୍ରକୃତି—ସ. ବିଣ. ପୁଂ ( ବହୁବ୍ରୀହି; ଭୀରୁ+ପ୍ରକୃତି )—
Bhiru prakṛuti ଡରକୁଳା; ଡରୁଆ—Timid by nature; ( ଭୀରୁପ୍ରକୃତିକ, ଭୀରୁସ୍ୱଭାବ—ଅନ୍ୟରୂପ ) chicken-hearted. (ଭୀରୁ ପ୍ରକୃତିକା, ଭୀରୁ ସ୍ୱଭାବା—ସ୍ତ୍ରୀ)

ଭୀରୁ ମତ୍ସ୍ୟ—ସ. ବି—ତୋଡ଼ି (ଦେଖ)—
Bhiru matsya Tordi ( See )

ଭୀରୁ ହୃଦୟ—ସ. ବିଣ. ପୁଂ ( ବହୁବ୍ରୀହି )—ଡରକୁଳା—Timid.
Bhiru hṛudaya ସ. ବି —ହରିଣ; ମୃଗ ( ହି. ଶ )—Deer. (ଭୀରୁହୃଦୟା—ସ୍ତ୍ରୀ)

ଭୀଲ(ଲ୍ଲ)—ଦେ. ବି ( ସଂ. ଭିଲ୍ଲ )—ଭିଲ୍ଲ ( ଦେଖ )—
Bhila(lla) ভিল भील Bhilla ( See )

ଭୀଲ ଭୂଷଣ—ସଂ. ବି ( ଭିଲ୍ଲ ଜାତୀୟ ସ୍ତ୍ରୀମାନଙ୍କର କାଇଞ୍ଚମାଳାଭୂଷଣ
Bhila bhūshaṇa ଥିବାରୁ )—କାଇଞ୍ଚ; ଗୁଞ୍ଜା ( ହି. ଶ )—Abrus Precatorius.

ଭୀଲୁକ—ସଂ. ବି—ଭାଲୁ (ହି. ଶ )—Bear. ସଂ. ବିଣ. ପୁଂ—ଭୀରୁ;
Bhiluka ଡରୁଆ—Timid.

ଭୀଷକ—ସଂ. ବିଣ. ପୁଂ ( ଭୀ ଧାତୁ ଣିଚ ଭୀଷି ଧାତୁ+କର୍ତ୍ତୃ. ଅକ )—
Bhishaka ଭୀଷଣ; ଭୟଙ୍କର ( ହି. ଶ )—Terrific. (ଭୀଷିକା—ସ୍ତ୍ରୀ)

ଭୀଷଣ—ସଂ. ବିଣ ( ଭୀ ଧାତୁ ଣିଚ୍=ଭୀଷି ଧାତୁ+କର୍ତ୍ତୃ. ଅନ )—
Bhishaṇa ୧ । ଭୀମ; ଭୟଙ୍କର; ଦାରୁଣ; ଭୀତିପ୍ରଦ—Frightful; terrible, awful; horrible. ୨ । ଗାଢ଼; ଦୃଢ଼—2. Tight; firm. ବି—୧ । ଶିବ—1. Śiba. ୨ । କପୋତ—2. Dove. ୩ । ଭୟାନକ ରସ—3. The sentiment of fear in literature. ୪ । ( +ଭାବ. ଅନ ) ଭୟପ୍ରଦର୍ଶନ—4. Frightening. ୫ । କୁନ୍ଦୁରୁ ( ହି, ଶ ); ଲୋବାନ୍—5. Olibanum. ୬ । ଶଲ୍ଲକୀ ବୃକ୍ଷ [ ହି, ଶ ]—6. Boswellia Serrata ( tree ). ୭ । ବ୍ରହ୍ମା [ ହି, ଶ ]—7. Brahmā.

ଭୀଷଣତା(ତ୍ୱ)—ସ. ବି ( ଭୀଷଣ+ଭାବାର୍ଥେ ତା, ତ୍ୱ)—ଦାରୁଣତା—
Bhishaṇatā(twa) Frightfulness.

**ଭୀଷଣ ଦର୍ଶନ**—ସଂ. ବିଣ. ପୁଂ (ବହୁବ୍ରୀହି)—ଭୀମଦର୍ଶନ (ଦେଖ)
Bhīshaṇa darśana Bhīmadarśana (See).
(ଭୀଷଣଦର୍ଶନା—ସ୍ତ୍ରୀ)

**ଭୀଷଣାକାର**—ସଂ. ବିଣ. ପୁଂ (ବହୁବ୍ରୀହି)—ଭୟଙ୍କର ରୂପବିଶିଷ୍ଟ—
Bhīshaṇākāra Of dreadful form or appearance.
(ଭୀଷଣାକୃତି—ଅନ୍ୟରୂପ) [ଭୀଷଣାକାରା—ସ୍ତ୍ରୀ]

**ଭୀଷଣାରବ**—ସଂ. ବି (କର୍ମଧା, ଭୀଷଣ + ଆରବ)—ଭୟଙ୍କର ଶବ୍ଦ; ଭୀମ
Bhīshaṇārāba ନାଦ—Dreadful or terrible noise.

**ଭୀଷମ**—ଗ୍ରା. ବି—୧ । (ପଦ୍ୟ) ଭୀଷ୍ମ (ଦେଖ)—1. Bhīshma
Bhīshama (See). ୨ । ଭୀଷ୍ମ (ଦେଶଜ) (ଦେଖ)—
**भीषम मीसम** 2. Bhīshma (deśaja) (See)

**ଭୀଷା**—ସଂ. ବି (ଭୀ ଧାତୁ, ଣିଜନ୍ତ ଭୀଷି. ଧାତୁ + ଭାବ. ଅ + ଆ)—
Bhīshā ଭୟ ପ୍ରଦର୍ଶନ; ଡରାଇବା—Frightening.

**ଭୀଷିତ**—ସଂ. ବିଣ (ଭୀ. ଧାତୁ ଣିଜନ୍ତ=ଭୀଷି. ଧାତୁ + କର୍ମ. ତ)—
Bhīshita ଭୟ ପ୍ରଦର୍ଶିତ—Frightened; terrified; scared.

**ଭୀଷ୍ମ**—ସଂ. ବିଣ (ଭୀ. ଧାତୁ=ଭୟ ପାଇବା + ଅପାଦାନ ମ; ଷ ଆଗମ)-
Bhīshma ଭୀଷଣ—Terrible. ସଂ. ବି—୧ । ରାକ୍ଷସ—
1. A demon. ୨ । ଶିବ—2. Śiba. ୩ । ଗାଙ୍ଗେୟ; ଶାନ୍ତନୁ ରାଜାଙ୍କ ପୁତ୍ର (ଏହାଙ୍କର ମାତା ଗଙ୍ଗା)—3. The son of king Śāntanu by the Ganges. [ ଦ୍ର—କୁରୁଦେଶର ରାଜା ଶାନ୍ତନୁ ଗଙ୍ଗା ଦେବୀଙ୍କୁ ଏହି ସର୍ତ୍ତରେ ବିବାହ କରିଥିଲେ ଯେ ଗଙ୍ଗା ନିଜର ଇଚ୍ଛା ଅନୁସାରେ କାର୍ଯ୍ୟ କରିବେ ଓ ଶାନ୍ତନୁ ତାଙ୍କୁ ନିଷେଧ କରି ପାରିବେ ନାହିଁ; ନିଷେଧ କଲେ ଗଙ୍ଗା ଶାନ୍ତନୁଙ୍କୁ ତ୍ୟାଗ କରି ଚାଲିଯିବେ । ଶାନ୍ତନୁଙ୍କ ଔରସରେ ଗଙ୍ଗାଙ୍କର ସାତଟି ପୁତ୍ର ଜନ୍ମିଲେ ଓ ଜନ୍ମ ହେବାକ୍ଷଣି ଗଙ୍ଗା ଉକ୍ତ ଶିଶୁମାନଙ୍କୁ ନେଇ ପାଣିକୁ ଫିଙ୍ଗି ଦେଉଥିଲେ । ଅଷ୍ଟମ ପୁତ୍ର 'ଦେବବ୍ରତ'ଙ୍କୁ ଗଙ୍ଗା ପାଣିକୁ ଫିଙ୍ଗି ଦେବାକୁ ଗଲାବେଳେ ଶାନ୍ତନୁ ତାଙ୍କୁ ନିଷେଧ କରି ଉକ୍ତ ସେ କୁମାରଙ୍କୁ ରକ୍ଷା କଲେ । ଏଥିରେ ଗଙ୍ଗାଦେବୀ ବିବାହ-କାଳୀନ ସର୍ତ୍ତ ଅନୁସାରେ ଶାନ୍ତନୁଙ୍କୁ ତ୍ୟାଗ କରି ଚାଲି ଗଲେ ଓ ଶାନ୍ତନୁ ଏ ଶିଶୁକୁ ପାଳିଲେ । ପରେ ନିମ୍ନଲିଖିତ 'ଭୀଷ୍ମ ପ୍ରତିଜ୍ଞା' ଯୋଗୁଁ ଦେବବ୍ରତଙ୍କର ନାମ 'ଭୀଷ୍ମ' ହେଲା । ଗଙ୍ଗା ଶାନ୍ତନୁଙ୍କୁ ତ୍ୟାଗ କରି ଯିବା ପରେ ଶାନ୍ତନୁ ଧୀବର-ରାଜଙ୍କର କନ୍ୟା ସତ୍ୟବତୀ ବା ଯୋଜନଗନ୍ଧାଙ୍କ ରୂପରେ ମୋହିତ ହୋଇ ତାହାଙ୍କୁ ବିବାହ କରିବାକୁ ଇଚ୍ଛା କଲେ, କିନ୍ତୁ ରାଜାଙ୍କର ବିବାହିତା ପତ୍ନୀ ଗଙ୍ଗାଙ୍କ ଗର୍ଭଜାତ ପୁତ୍ର ଭୀଷ୍ମ ପରେ ରାଜା ହେବେ ଓ ଧୀବରରାଜକନ୍ୟାଙ୍କ ଗର୍ଭଜାତ ପୁତ୍ର ରାଜା ହେବେ ନାହିଁ, ଏହି ଆଶଙ୍କାରେ ଧୀବରରାଜ ଆପଣା କନ୍ୟାଙ୍କୁ ଶାନ୍ତନୁଙ୍କୁ ପ୍ରଦାନ କରିବାକୁ କୁଣ୍ଠିତ ହେଲେ । ଭୀଷ୍ମ ଏହା ଶୁଣିପାରି ଧୀବରରାଜାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ ଯେ ଆପଣଙ୍କ କନ୍ୟାଙ୍କ ଗର୍ଭଜାତ ସନ୍ତାନ ରାଜା ହେବେ, ମୁଁ ରାଜା ହେବି ନାହିଁ ବୋଲି ପ୍ରତିଜ୍ଞା କରୁଅଛି । ଧୀବରରାଜ କହିଲେ ତୁମେ ସିନା ରାଜା ହେବ ନାହିଁ, କିନ୍ତୁ ତୁମ ପୁତ୍ରପୌତ୍ରାଦି ରାଜଗାଦି ଦାବି କରିବେ । ଏହା ଶୁଣି ଭୀଷ୍ମ ପ୍ରତିଜ୍ଞା କଲେ ଯେ ମୁଁ ଆପଣଙ୍କର ଏ ଆଶଙ୍କା ଦୂର କରିବା ନିମନ୍ତେ ଚିରକୁମାର-ବ୍ରତ ଅବଲମ୍ବନ କରିବି । ଏହି ପ୍ରତିଜ୍ଞା କରି ଧୀବରରାଜଙ୍କ ଠାରୁ ତାଙ୍କ କନ୍ୟାଙ୍କୁ ଜନନୀ ବୋଲି ସମ୍ବୋଧନ କରି ଆଣି ଭୀଷ୍ମ ପିତାଙ୍କୁ ସମର୍ପଣ କଲେ । ସେହି ପ୍ରତିଜ୍ଞା ଅନୁସାରେ ଭୀଷ୍ମ ଚିରକୌମାରବ୍ରତ ଧାରଣ କଲେ । ଏଥିପାଇଁ ଅଟଳ ପ୍ରତିଜ୍ଞାକୁ ଭୀଷ୍ମପ୍ରତିଜ୍ଞା ବୋଲାଯାଏ । ଭୀଷ୍ମ ଅପୁତ୍ରକ ଥିଲେ; ତାଙ୍କୁ କିଏ ପିଣ୍ଡ ଦେବ ବୋଲି କେହି ପଚାରିବାରୁ ସେ କହିଲେ ସଂସାରର ସମସ୍ତ ଲୋକେ ମୋ ପ୍ରତି ଓ ମତେ ପିଣ୍ଡ ଦେବେ । ଏଥିପାଇଁ ମାଘ ଶୁକ୍ଳ ଅଷ୍ଟମୀଦିନ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ଭୀଷ୍ମଙ୍କ ପାଇଁ ଶ୍ରାଦ୍ଧ କରନ୍ତି । ଶାନ୍ତନୁଙ୍କର ଦ୍ୱିତୀୟ ପତ୍ନୀ ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇ ପୁତ୍ର ଜାତ ହେଲେ । ଚିତ୍ରାଙ୍ଗଦ ଏକ ଗନ୍ଧର୍ବଦ୍ୱାରା କୁମାର ଅବସ୍ଥାରେ ହତ ହେଲେ ଓ ବିଚିତ୍ରବୀର୍ଯ୍ୟ କାଶୀରାଜଙ୍କର ୩ କନ୍ୟାଙ୍କୁ ବିବାହ କଲେ; କିନ୍ତୁ ନିଃସନ୍ତାନ ହୋଇ ମରିବାରୁ ସତ୍ୟବତୀଙ୍କ ଆଦେଶକ୍ରମେ ପରାଶରଙ୍କ ଔରସ ସତ୍ୟବତୀଙ୍କ କାନୀନ ପୁତ୍ର ବେଦବ୍ୟାସଙ୍କ ଦ୍ୱାରା ବିଚିତ୍ରବୀର୍ଯ୍ୟଙ୍କର ଦୁଇ ବିଧବାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମଗ୍ରହଣ କଲେ । ଏ ଜଣେ ମହାବୀର ଥିଲେ ଏବଂ ମୃତ୍ୟୁ ଏହାଙ୍କର ଇଚ୍ଛାଧୀନ ଥିଲା । ଏ କୌରବମାନଙ୍କ ପକ୍ଷରେ ଯୁଦ୍ଧ କରୁଥିଲେ । ଦଶଦିନ ଯୁଦ୍ଧ ପରେ ପାଣ୍ଡବମାନେ ଗୋଟିଏ କୌଶଳ କରି ଏହାଙ୍କ ହସ୍ତରୁ ଶର ଖସାଇ ପକାଇଲେ ଏବଂ ଅର୍ଜୁନଙ୍କ ଶରଦ୍ୱାରା ଏ ପୀଡ଼ିତ ହୋଇ-ଯିବା ପରି ହେଲେ । ଅର୍ଜୁନ ଏତେ ଶରଦ୍ୱାରା ଏହାଙ୍କ ଦେହକୁ ବିଦ୍ଧ କଲେ ଯେ ସେହି ଶରମାନ ଭୀଷ୍ମଙ୍କ ଦେହତମାମ ଆଚ୍ଛନ କଲା । ଉକ୍ତ ଶରମାନ ଦେହରେ ଲାଗିଥିବା ଅବସ୍ଥାରେ ଭୀଷ୍ମ ସେହି ଶରଶଯ୍ୟାରେ ଶୋଇ ରହିଲେ; କିନ୍ତୁ ସେ ସମୟରେ ମରିବାର ପୁଣ୍ୟକାଳ ଉପସ୍ଥିତ ହୋଇ ନ ଥିବାରୁ ସେ ପ୍ରାଣତ୍ୟାଗ କଲେ ନାହିଁ । ଯୁଦ୍ଧ ଶେଷରେ ମାଘ ଶୁକ୍ଳ ଅଷ୍ଟମୀଦିନ ଆପଣାର ଇଚ୍ଛା ଅନୁସାରେ ପ୍ରାଣତ୍ୟାଗ କଲେ; ଶରଶଯ୍ୟାରେ ଶୋଇଥିବା ଅବସ୍ଥାରେ ସେ ଯୁଧିଷ୍ଠିରଙ୍କୁ ବହୁମୂଲ୍ୟବାନ୍ ଉପଦେଶମାନ ଦେଇଥିଲେ । ମହାଭାରତର ଗୋଟିଏ ପର୍ବ 'ଭୀଷ୍ମପର୍ବ' ନାମରେ ଖ୍ୟାତ । ] ଦେ. ବି (ସଂ. ଭୀଷ୍ମ=ଭୟଙ୍କର କିମ୍ବା ବିଷମ)—ଭୀଷମ ବା ବିଷମ; ମହାନଦୀ ଓ ଅନ୍ୟ ପର୍ବତ-ସଙ୍କୁଳ ନଦୀମାନଙ୍କ ଶଯ୍ୟାରେ ଉପରକୁ ବାହାରିଥିବା ବଡ଼ ବଡ଼ ପଥର ବା ପାହାଡ଼ ଖଣ୍ଡମାନ—Block of stones and boulbers in the beds of rocky rivers, which raise their heads over the surface of water [ ଦ—ଏମାନଙ୍କ ମଧ୍ୟରୁ ନଦୀର ଜଳ

विषम
**विषम**

ମଧ୍ୟରେ କେତେକ ବୁଡ଼ିଥାଆନ୍ତି ଓ କେତେକ ପାଣି ଉପରକୁ ଉଠିଥାଆନ୍ତି । ନୌକା ଚାଳନ ପକ୍ଷରେ ଏମାନ ଅତି ଭୟଙ୍କର, ଏବଂ ଏହି ଭୀଷ୍ମମାନଙ୍କ ଉପରେ ଅନେକ ଡଙ୍ଗା ମାଡ଼ି ଯାଏ । ଉପଯୁକ୍ତ ପ୍ରବୀଣ ନୌଚାଳକ ବା କର୍ଣ୍ଣଧାରଙ୍କ ବିନା ସାହାଯ୍ୟରେ ଏ ଭୀଷ୍ମସଙ୍କୁଳ ନଦୀଗର୍ଭଯାକୁ ଝଟି ଆସିବା ନୌକା ପକ୍ଷରେ ସହଜ ନୁହେଁ; ସମ୍ବଲପୁରଠାରୁ ବୌଧ ପର୍ଯ୍ୟନ୍ତ ମହାନଦୀର ଶଯ୍ୟା ଏହି ଭୀଷମମାନଙ୍କରେ ପୂର୍ଣ୍ଣ । ନଦୀର ପୂର୍ଣ୍ଣ ବଢ଼ିବେଳେ ଏ ଭୀଷମମାନ ଅଧିକାଂଶ ପାଣି ତଳେ ବୁଡ଼ି ରହିଥାଆନ୍ତି; କିନ୍ତୁ ନଦୀର ଅଧା ବଢ଼ିସମୟରେ ଏହି ଭୀଷମମାନଙ୍କରେ ଜଳସ୍ରୋତ ବାଜି ଭୀଷଣ ଅନ୍ଦୋଳନ ସୃଷ୍ଟି କରେ ଓ ଡଙ୍ଗାମାନଙ୍କୁ ଖୁବ୍ ସାବଧାନତା ସହକାରେ ନ ଚଳାଇଲେ ଡଙ୍ଗାମାନ ଏଥିରେ ମାଡ଼ି ଖାଇ ଚୂର୍ଣ୍ଣ ହୋଇଯାଏ ।]

**ଭୀଷ୍ମକ**—ସଂ. ବି (ଭୀଷ୍ମ+କ)—ବିଦର୍ଭର୍ଷିଙ୍କ ଓ ରୁକ୍ମିଣୀଙ୍କ ପିତା—
Bhishmaka A king of Bidarbha and father of Rukmini.

**ଭୀଷ୍ମକ ସୁତା**—ସଂ. ବି—(୬ଷ୍ଠୀ ତତ୍; ଭୀଷ୍ମକ+ସୁତା)—ଶ୍ରୀକୃଷ୍ଣଙ୍କ ପତ୍ନୀ
Bhishmaka suta ରୁକ୍ମିଣୀ—Rukmini, the princi-
(ଭୀଷ୍ମକ କନ୍ୟା, ଭୀଷ୍ମକ ଦୁହିତା—ଅନ୍ୟ ସଂ. ରୂପ) pal queen of Srikrushna.
ଭୀଷ୍ମକ ଦୁହିତା, } ଗ୍ରାମ୍ୟରୂପ
ଭୀଷ୍ମକ ଦୁଲାଳୀ }

**ଭୀଷ୍ମ କଟକ**—ଦେ. ବି. ନାମ—ବିଶାଖାପାଟଣା ଜିଲ୍ଲାର ଗୋଟିଏ ଜମିଦାରୀ; ବିଷମ କଟକ—Name of a
Bhishma kataka
বিষম কটক Zemindary estate in the Vizagapatam
**विषम कटक** district. [ଦ୍ର—ଏହା ପୂର୍ବେ ଜୟପୁର ରାଜ୍ୟର
(ଭୀଷମ କଟକ—ଅନ୍ୟରୂପ) ଅଧୀନ ଥିଲା, କିନ୍ତୁ କାଳକ୍ରମେ ଏ ଜୟପୁରରୁ ପୃଥକ ହୋଇଯାଇଥିଲା; ଏବେ ତାହା ଜୟପୁର ମହାରାଜା ଖରିଦ କରି ଜୟପୁରଭୁକ୍ତ କରିଅଛନ୍ତି ଓ ଏଥିର ଶିକ୍ଷିତ ଯୁବକ ରାଜା 'ଆଟରାଜା' ଉପାଧି ଧାରଣ କରି ବିଶାଖାପାଟଣାରେ ଅବସ୍ଥାନ କରୁଅଛନ୍ତି । ]

**ଭୀଷ୍ମଙ୍କ ଶରଶଯ୍ୟା**—ଦେ. ବି—ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କଦ୍ୱାରା
Bhishmanka sarasajya ଭୀଷ୍ମଙ୍କ ଶରୀରରେ ବିଦ୍ଧ ହୋଇ
ଭୀଷ୍ମ ଶଯ୍ୟା } ଅନ୍ୟ ରୂପ ଥିବା ବାଣମାନ ଲାଗିଥିବା ଅବସ୍ଥାରେ
ଭୀଷ୍ମଶରଶଯ୍ୟା } ଭୀଷ୍ମଙ୍କର ଉକ୍ତ ବାଣମାନଙ୍କ ଅଗ୍ରରେ
ভীষ্মের শরশয্যা ଶୟନ—The bed of arrows
**भीष्मकी शरशय्या** thrown by Arjuna which stuck to the body of Bhisma like the quills of a porcupine and with which Bhishma lay down as comfortably as on a feathery bed [Mahabharata].

**ଭୀଷ୍ମ ଜନନୀ**—ସଂ. ବି (୬ଷ୍ଠୀ ତତ୍)—ଶାନ୍ତନୁଙ୍କ ପ୍ରଥମ ସ୍ତ୍ରୀ ଗଙ୍ଗାଦେବୀ—
Bhishma janani The mother of Bhishma [the
(ଭୀଷ୍ମସୂ—ଅନ୍ୟରୂପ) Ganges personified]. [ ଦ୍ର—ଭୀଷ୍ମ ତଳେ ଟୀକା ଦେଖ ।]

**ଭୀଷ୍ମ ତର୍ପଣ**—ସଂ. ବି—ପ୍ରତ୍ୟେକ ହିନ୍ଦୁ ତର୍ପଣ କରିବା ସମୟରେ ଭୀଷ୍ମଙ୍କ
Bhishma tarpana ଉଦ୍ଦେଶ୍ୟରେ ଅର୍ପଣ କରିବା ଜଳ-ତିଳାଦି—Oblation of water and sessamum seeds offered to Bhishma by every Hindu during Tarpana

**ଭୀଷ୍ମ ଦେବ**—ସଂ. ବି—ଭୀଷ୍ମ ( ଦେଖ )—Bhishma ( See )
Bhishma deba (ଭୀଷ୍ମ ପିତାମହ—ଅନ୍ୟରୂପ)

**ଭୀଷ୍ମ ପଞ୍ଚକ**—ସଂ. ବି—ବକ ପଞ୍ଚକ; କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ
Bhishma panchaka ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠେୟ ପ୍ରାତଃସ୍ନାନ, ହବିଷ୍ୟ, ଅମିଷ ଓ ସ୍ତ୍ରୀ ତୈଳାଦି ବର୍ଜନମୂଳକ ବ୍ରତବିଶେଷ-
A religious vow observed for the last 5 days of the month of Karttika (consisting of morning bath, frugal food, refraining from animal food, oil and co-habitation).

**ଭୀଷ୍ମ ଶ୍ରାଦ୍ଧ**—ସଂ. ବି. ( ମଧ୍ୟପଦଲୋପୀ କର୍ମଧା )—ମାଘ ଶୁକ୍ଳାଷ୍ଟମୀ ବା
Bhishma sraddha ଭୀଷ୍ମାଷ୍ଟମୀ ଦିନ ଭୀଷ୍ମଦେବଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥଙ୍କ ଅନୁଷ୍ଠେୟ ଶ୍ରାଦ୍ଧ ବା ପିଣ୍ଡଦାନ କର୍ମ—Sraddha or oblation of boiled rice offered to Bhishma by every Hindu householder on the 8th day of the bright lunar fortnight of Magha.

**ଭୀଷ୍ମାଷ୍ଟମୀ**—ସଂ. ବି—ମାଘ ଶୁକ୍ଳ ଅଷ୍ଟମୀ (ଯେଉଁ ଦିନ ପ୍ରତ୍ୟେକ ହିନ୍ଦୁ
Bhishmashtami ଅପୁତ୍ରିକ ଭୀଷ୍ମଦେବଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦାନ କରନ୍ତି)—The 8th day of the bright lunar fortnight of Magha (on which day every Hindu is enjoined to offer oblation of rice-cake to Bhishma).

**ଭୁଆ**—ଗ୍ରା. ବି. (ସଂ. ବ୍ୟୂହ)—ବ୍ୟୂହ—Battle-array.
Bhua (ଉ—ଜାନୁ ଯୋନ ଭୁଆ ହୋଇଛନ୍ତି ଯମ ରାଜା । ପ୍ରାଚୀ ବ୍ରହ୍ମନିରୂପଣ ଗୀତା ।)

**ଭୁଆ**—ଦେ. ବି—ଅଣ୍ଡିରା ବିରାଡ଼ି—Tom cat; a male cat.
Bhua [ଦ୍ର—ଏମାନେ ସାଧାରଣତଃ ଉଗ୍ର ଓ କଷ୍ଟସହିଷ୍ଣୁ ହୋଇଥାନ୍ତି ଓ ନବ ଜାତ ବିରାଡ଼ି ଛୁଆ-
ଭୁଆ ବିରାଡ଼ି } ଅନ୍ୟରୂପ
ଭୁଆ ବିଲେଇ }
ମାନଙ୍କୁ ଖାଇ ଯାଆନ୍ତି । ଏପରି କି,
হুলো, ভুলো ଅପଣା ଛୁଆଙ୍କୁ ମଧ୍ୟ ଖାଇ ଯାଆନ୍ତି ।] (ଉ—ପକ୍ଷୀ-
**बिलाव** ମାନେ ତା ଦେଖି ହୋଇ ଏକ ଗୋଟି, ବୋଇଲେ ଧର୍ମୀଷ୍ଠା ହୋଇଲା ଏ ଭୁଆଟି । କୃଷ୍ଣସିଂହ. ମହାଭାରତ ଉଦ୍ଯୋଗ ।) ପ୍ରାଦେ. (ଉତ୍ତର ବାଲେଶ୍ୱର) ବିଶ—ଫମ୍ପା ବା ଭୁଡ଼ଙ୍ଗିଆ (ନଡ଼ିଆ )—(cocoanut) Without kernel or water owing to defective growth.

**ଭୁଆ ଅପଣା ଛୁଆକୁ ଖାଇବା** (ନ୍ୟାୟ)—ଦେ. ଉକ୍ତି—ଯେଉଁ ଭୁଆ
Bhua apana chhuaku khaiba (nyaya) ବିରାଡ଼ି ଅପଣା

ହୁଲୋ ବେରାଲ ନିଜେର ଛାନା ଖାୟ — ଔରସ ଜାତ ଶିଶୁକୁ ଖାଇଯାଏ
**बिलाव अपने बच्चों को खाता है** — ଛଠାରୁ ପର ଜୁଆ ପ୍ରତି ମମତା ଆଶା କରିବା ରୂପ ଦୁରାଶା ସ୍ଥଳରେ ଏ ଢଗ ବୋଲାଯାଏ— (an analogical saying) To expect kindness and mercy from a male cat which eats up its own kitten.

**ଭୂଆଁ**—ଦେ. ବି. (ସଂ. ଭ୍ରମ୍ ଧାତୁ)—୧ । ମନୁଷ୍ୟ ବାଟ ଭୁଲି ଭୁଲିବା ଅବାଟ—1. Wrong way taken by a person by mistake. ୨ । ସମ୍ଭାଳୁଆ ପୋକ—2. Caterpillar; wooly bear. ଦେ. ବିଣ—୧ । ଅସାର—1. Unsubstantial. ୨ । ଅଲୀକ—2. Unreal. ୩ । ଭ୍ରମ ପୂର୍ଣ୍ଣ; ଭ୍ରାନ୍ତ—3. Mistaken; erroneous. ୪ । ବୋକା—4. Foolish. ୫ । ଫମ୍ପା—5. Empty. ୬ । ମିଛୁଆ—6. Lying.
Bhuāñ
ଚକ୍କର
**चक्कर**
ଭୂୟୋ
ଝୁଠା(ଠୀ)

**ଭୂଆଁ ଘାସ**—ଦେ. ବି—୧ । ଲୌକିକ ବିଶ୍ୱାସ ମତେ ଏକପ୍ରକାର ଘାସ— Bhuāñ ghāsa 1. A kind of grass said to possess the property of causing the person who treads on it to go the wrong way. [ଦ୍ର—ଗୋଟିଏ ଲୌକିକ ବିଶ୍ୱାସ ଅଛି ଯେ ପଥିକ ଭୂଆଁ ଘାସ ମାଡ଼ିଲେ ଭୂଆଁ ବୁଲେ ।]

**ଭୂଆଁ ବୁଲିବା**—ଦେ. କ୍ରି—୧ । ଭ୍ରମରେ ଅବାଟରେ ବୁଲିବା— Bhuāñ bulibā 1. To take a wrong road by mistake; to wander after having lost the way. ୨ । (ଲକ୍ଷଣାର୍ଥ)ବୃଥା ପରିଶ୍ରମ କରିବା— 2. To do fruitless labour. ୩ । ଭ୍ରାନ୍ତ ହେବା— 3. To be mistaken.
ଚକ୍କର ଦେଓୟା
**चक्कर देना**

**ଭୂଆଁର ଦେଖା(ଖେ)ଇବା**—ପ୍ରାଦେ. (ସାକ୍ଷୀଗୋପାଳ) କ୍ରି—୧ । ବାଲୁଙ୍ଗି କରିବା—1. To brag. ୨ । ଛଳନା କରିବା; ବାହାନା କରିବା—2. To feign; to plead an excuse.
Bhuāñra dekhā(khe)ibā
(ଭୂଆଁର ବତା(ତେ)ଇବା—ଅନ୍ୟରୂପ)

**ଭୂଆଁଳ(ର)**—ଦେ. ବି—ଏକ ପ୍ରକାର ବନ୍ୟ ଗଛ—A species of wild tree; Cordia Myxa.
Bhuāñla(ra)

**ଭୂଆଁ(ଆ)ସୁଣୀ**—ଦେ. ବି. ସ୍ତ୍ରୀ (ସଂ. ବଧୂସୁନା=ବଧୂବାର ସ୍ନୁଷବତୀ; ଭୁଲ. ସଂ. ବଧୂ+ସୁନୁ । କେହି କେହି କହନ୍ତି ଏହା ନୂତନ ବୌ, କୂଲବଧୂ ବହୁସିନୀ ବା ସୁବାସିନୀର ଅପଭ୍ରଂଶ, କିନ୍ତୁ ଏହା ଠିକ୍ ବୋଧ ହେଉ ନାହିଁ; ପରନ୍ତୁ ହିନ୍ଦୀରେ ଏହି ଅର୍ଥରେ ବହୁସିନ୍ ଶବ୍ଦର ବ୍ୟବହାର ଅଛି)—
Bhuāñ(ā)suṇi
**बहूआसीन**
୧ । ନବବଧୂ; କୂଳ ଭୂଆସୁଣୀ; କୁଳବଧୂ—1. A newly wedded wife; the daughter-in-law of a family. (ଉ—ଅଠଗଡ଼ ବଇସୁଣୀ, ଗୁଣ୍ଡିଳି ନଡ଼ିଆ ପଇଡ଼ ପାଣି, ବୁଢ଼ୀକାଳେ ଭୂଆସୁଣୀ—ଗଞ୍ଜାମର ଢଗ ।) ୨ । ଭୂଲ ଯୁବତୀ—2. A young housewife. ୩ । ବଧୂ; ବୋହୂ—3. Daughter-in-law. (ଉ— କୂଳ ଭୂଆସୁଣୀ ଦାଣ୍ଡରେ ଉଭା—ଢଗ; ବହୁ ଭୂଆସୁଣୀଏ ବାସୀ ପାଇଟିରେ ଲାଗିଯାନ୍ତି । ଫକୀରମୋହନ. ଛ ମାଣ ଅଠଗୁଣ୍ଠ ।) ୪ । ଏକ ପ୍ରକାର ଜଙ୍ଗଲ ଗଛ—4. Name of a wild tree. [ଦ୍ର—ଏହା ଗୋଟିଏ ଜଙ୍ଗଲି ଗଛ । ଏ ଗଛର ନାମ ସେନ୍ଧା ବା ସେନ୍ଧା । ଏହାର ବିସ୍ତୃତ ଜଙ୍ଗଲ ସମ୍ବଲପୁର, ଢେଙ୍କାନାଳ, ବାମଣ୍ଡା ଆଦିରେ ଅଛି । କଟକ ଜନକପୁର ମହାନଦୀ ଶଯ୍ୟାରେ ମହାନଦୀର ବଢ଼ି ଦ୍ୱାରା ଭାସି ଆସିଥିବା ଗୋଟିଏ ମଞ୍ଜିରୁ ଗୋଟିଏ ଗଛ ଉଠିଅଛି । ଲୋକେ ଏହାକୁ ଭୂଆସୁଣୀ ଗଛ ବୋଲି ଡାକନ୍ତି । ଜନ୍ମ ସ୍ଥାନୀୟ ଲୋକେ କହନ୍ତି ଯେ ଏ ଗଛକୁ କେହି ଛିଣ୍ଡି ପାରନ୍ତି ନାହିଁ; କିନ୍ତୁ ପ୍ରକୃତରେ ଏହା 'ସେନ୍ଧା' ନାମକ ବୃକ୍ଷ ଅଟେ । ( ଛବେସ୍ତ ଶ୍ରୀ ଶଶିଭୂଷଣ ରାୟଙ୍କଠାରୁ ଗୃହୀତ ) । ୫ । ଚିଲିକାରେ ଥିବା ଏକ ଜାତିର ମାଛ— 5. A kind of fish (in the Chilka lake). ୬ । ବୃକ୍ଷରେ ବିକଟ ଚିତ୍କାର କରିବା ଏକପ୍ରକାର ପକ୍ଷୀ— 6. A species of hoarsely screeching bird. ୭ । ଜଳଜୀବ ବିଶେଷ; ଶିଶୁମାର—7. A kind of aquatic animal; Gangetic porpoise.

**ଭୂଆସୁଣୀ ଗାଧୁଆ**—ପ୍ରାଦେ. ( ଗଡ଼ଜାତ, ସମ୍ବଲପୁର ) ବି—ସ୍ୱଳ୍ପନୂଆ Bhuāsuṇi gādhuā ଗାଧୁଆ—The time of early bath before sunrise.
(ଭୂଅସେନ୍ ଗାଧୁଆ—ଅନ୍ୟରୂପ)

**ଭୂଆସୁଣୀ ମାଛ**—ଦେ. ବି—ଶିଶୁମାର—
Bhuāsuṇi māchha — Gangetic porpoise.

**ଭୂଆସୁଣୀ ଯିବା**—ପ୍ରାଦେ. ( ଗଡ଼ଜାତ ) କ୍ରି—ବାଳିକା ଋତୁମତୀ ହେବା ପରେ ପ୍ରଥମେ ଶାଶୁଘରକୁ ଯିବା; ପହିଲି-ପାଳ ଯିବା—To go to the husband's house for the first time after attaining puberty ( said of a girl given in marriage before she attained puberty.)
Bhuāsuṇi jibā

**ଭୂଆସେନ୍**—ପ୍ରାଦେ. ( ସମ୍ବଲପୁର ) ବି ( ଭୁଲ. ହି. ବହୁଆସୀନ )— ଭୂଆସୁଣୀ ( ଦେଖ )—Bhuāsuṇi ( See )
Bhuāsen

**ଭୂଇଁ**—ଦେ. ବି ( ସଂ. ଭୂମି )—୧ । ପୃଥିବୀ ତଳ; ଜମି—1. Land; surface of the earth ୨ । ମୃତ୍ତିକା; ମାଟି— 2. Soil. ୩ । ପୃଥିବୀ—3. The earth.
Bhuiñ
ଭୂଇଁ **भुइँ**
( ଭୂଇ—ଅନ୍ୟରୂପ )

**ଭୂଇଁଅଅ(ଏଁ)ଳା**—ଦେ. ବି ( ସଂ. ଭୂମ୍ୟାମଳକୀ; ବର୍ଷାଯୁକ୍ତ କ୍ଷୁଦ୍ର ଶାକବିଶେଷ, ( ପତ୍ର ଓ ଫୁଲ ଶ୍ରେଷ୍ଠ ଅଅଁଳା ଆକାରବିଶିଷ୍ଟ)—A herb. Phyllanthus Niruri [ଦ୍ର— ଏହା ବର୍ଷାଦିନେ ଶୀତଳ ସ୍ଥାନରେ ଜନ୍ମେ; ଗୋଟିଏ ଡେମ୍ଫରେ ଦୁଇଟି ପତ୍ର ଥାଏ । ପତ୍ର ମୂଳରେ ଅତି ଶ୍ରେଷ୍ଠ ଫୁଲ ଧରେ ଓ ଫୁଲରୁ ଯୋଗସ୍ଥ ପର ଫଳ ଧରେ । ବୈଦ୍ୟଙ୍କ ମତରେ ଏହା
Bhuiñ a(añ, eñ)lā
ସଂ. ନାମ—ଭୂମ୍ୟାମଳକୀ, ଶିବା, ତାମଲକୀ, ଭୂଧାତ୍ରୀ, ଅମୃତ, ଅମ୍ଳିକା, କ୍ଷେତ୍ରମର୍ଲୀ, ଝାବୁକା, ଭଦ୍ରାମଲକୀ, ବହୁକର୍ଯ୍ୟା, ବହୁଜଟା, ବହୁଫଳା
ଭୂଇଁ ଆମ୍ବଳା
**भूइँ आँवला, भोमी आँवरा**

ମ ଭୂମ୍ୟୁଆଁବଲୀ — ବାୟୁବର୍ଦ୍ଧକ ଓ ଶୀତବୀର୍ଯ୍ୟ । ଏହା
ତେ. ନେଲଉଶିରକେ — ପିପାସା, କାସ, ରକ୍ତପିତ୍ତ, କଫ,
ଗୁ. ଭେ଼ାଂଆଂବଲୀ — କଣ୍ଡୁ ଓ ଘଡନାଶକ; (ଦ୍ରବ୍ୟଗୁଣ)
ଏହା ବାତକାରକ ଓ ଦାହନାଶକ—ହ୍ନି. ଶ ।]

**ଭୂଇଁ ଅଦା**—ଦେ ବି ( ସଂ. ଭୂମି ଓ ଆର୍ଦ୍ରକ )—ହରଦ୍ରାବର୍ଗର ଉଚ୍ଚ
Bhuiñ adā — ବହୁପତ୍ର ଶାକବିଶେଷ; (ଫୁଲ ଈଟାଳିଆ ରଙ୍ଗର)—
ভুইআদা **भूमीआदा** A herb; Hedychium Coccineum.

**ଭୂଇଁଆଁ**—ଦେ. ବି ( ସଂ. ଭୂମିଜ, ଭୂମିକ )—୧ । ଓଡ଼ିଶା ଗଡ଼ଜାତର
Bhuiñāñ — ଅନାର୍ଯ୍ୟ ଜାତିବିଶେଷ—1. A wild caste of
ভুঞাঁ **भूमिया** hillmen of Orissa.
( ଭୂୟାଁ,ଭୂଇଅଁ—ଅନ୍ୟରୂପ ) [ଦ୍ର—ଏମାନେ ନାଗବଂଶୀ, ପବନବଂଶୀ, ପାହାଡ଼ୀ, ଅସମାନ ଏହିପରି ୪ ଭିନ୍ନ ସମ୍ପ୍ରଦାୟରେ ବିଭକ୍ତ । ଓଡ଼ିଶାରେ ମଧ୍ୟ ଭୂୟାଁ ପଦର ପ୍ରଚଳନ ଅଛି । ଚଷା ଓ ଓଡ଼ ଶ୍ରେଣୀୟ ଲୋକଙ୍କର ଏପରି ପଦ୍ଧତି ଅଛି । ଏମାନେ ସମୟରେ ସୈନିକଶ୍ରେଣୀଭୁକ୍ତ ହୋଇ ଯୁଦ୍ଧ କରୁଥିଲେ । ବାଲେଶ୍ୱର ଅଞ୍ଚଳରେ ଏମାନଙ୍କ ସଂଖ୍ୟା ବେଶୀ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।] ୨ । ଗଡ଼ଜାତର ଅପୂଜା ଦେବତା-ବିଶେଷ—2. A sylvan Deity. ୩ । କେନ୍ଦୁଝରର ଆଦିମ ଭୂମ୍ୟଧିକାରୀ ଜାତିବିଶେଷ—3. A class of aboriginal land owners in the State of Keonjhar. [ ଦ୍ର—କେନ୍ଦୁଝରର ଭୂୟାଁମାନେ ପୂର୍ବେ ରାଜା ନିର୍ବାଚନ କରୁଥିଲେ । ଅଦ୍ୟାବଧି ମଧ୍ୟ କେନ୍ଦୁଝରର ରାଜାଙ୍କୁ ଭୂୟାଁମାନେ ନିର୍ବାଚନ ପଦ୍ଧତିର ପୂର୍ବ ରୀତି ଅନୁକରଣ କରି ରାଜଗାଦିରେ ବସାନ୍ତି । ଏମାନେ ରାଜାଙ୍କୁ ପୁଅ ବୋଲି ସମ୍ବୋଧନ କରି ସ୍ନେହରେ ତୁ, ତା, ବ୍ୟବହାର କରନ୍ତି । ଏମାନେ ଗତ ( ଊନବିଂଶ ) ଶତାବ୍ଦୀରେ ମେଳି କରି ରାଜାଙ୍କୁ ଓ ଗଭର୍ଣ୍ଣ-ମେଣ୍ଟଙ୍କୁ ବ୍ୟତିବ୍ୟସ୍ତ କରିଥିଲେ । ଧରଣୀଧର ନାମକ ଜଣେ ବ୍ୟକ୍ତିର ନେତୃତ୍ୱରେ ଏମାନେ ବିଦ୍ରୋହାଚରଣ କରିଥିଲେ । ଫକୀରମୋହନ ସେ ସମୟରେ କେନ୍ଦୁଝରର ଦେବାନ୍ ଥାଇ ଏ ବିଦ୍ରୋହର ପ୍ରଶଂସା ତାଙ୍କ ଜୀବନଚରିତରେ ଲେଖିଅଛନ୍ତି । ] ୪ । ସାମନ୍ତ ରାଜା; ଜମିଦାର—4. A feudal lord; zemindar. ୫ । ବଙ୍ଗଦେଶର ବାର ଜଣ ସାମନ୍ତ ଭୂସ୍ୱାମୀ; ବାର ଭୂୟାଁ—5. Twelve feudal lords of Bengal. ୬ । ଖଣ୍ଡାଏତମାନଙ୍କର ଉପାଧିବିଶେଷ—6. A family title of certain Khaṇḍāitas.
[ଦ୍ର—ପୂର୍ବେ ପଲେଇ, ଜେନା ଆଦି ବଂଶୋପାଧି ବିଶିଷ୍ଟ ବ୍ୟକ୍ତିମାନେ ଅଧୁନା ଶିକ୍ଷିତ, ଧନୀ ଓ ପଦସ୍ଥ ହୋଇ ମୌଳିକ ବଂଶୋପାଧିକୁ ବଦଳାଇ ସମ୍ମାନସୂଚକ ଭୂୟାଁ ଉପାଧି ଗ୍ରହଣ କରିଥିବାର ଦୃଷ୍ଟାନ୍ତ ଓଡ଼ିଶାରେ ବିରଳ ନୁହେଁ ।]

**ଭୂଇଁଆଁ ଗାତ**—ପ୍ରାଦେ. ( ବାଙ୍କି ) ବି—ବିଲମାନଙ୍କରେ ହୋଇଥିବା
Bhuiñāñ gāta — ଗାତ—Pits or holes appearing in cornfields.

**ଭୂଇଁଆଁ ଜର**—ଦେ. ବି—ଗଡ଼ଜାତରେ ହେବା ଏକପ୍ରକାର ପ୍ରବଳ
Bhuiñāñ jara — କମ୍ପଜ୍ୱର—A kind of fatal malarial fever prevailing in the Oriya States.
[ ଦ୍ର—ଏ ଜର ଜଙ୍ଗଲର ଭୂଇଁଆଁ ଦେବତାଙ୍କ ପ୍ରକୋପ ଜନିତ ବୋଲି ଗଡ଼ଜାତରେ ବିଶ୍ୱାସ । ଏହା ମାରାତ୍ମକ ହୁଏ । ]

**ଭୂଇଁଆଁ ପି(ପୀ)ଢ଼**—ଦେ. ବି ( ନାମ ) ( ସଂ. ଭୂମିଜ+ପୀଠ )—
Bhuiñāñ pi(pī)ṛḍha — କେନ୍ଦୁଝରର ଭୂୟାଁ ଜାତି ବାସ କରୁଥିବା
ভুঞাপীঢ় — ଅଞ୍ଚଳ—The tract in the Keonjhar State inhabited by the Bhuyāñs.

**ଭୂଇଁଆଁ ଲାଗିବା**—ଦେ. କ୍ରି—ଭୂଇଁଆଁ ନାମକ ବନଦେବତା ମନୁଷ୍ୟ
Bhuiñāñ lāgibā — ଦେହରେ ଆବିଷ୍ଟ ହେବା—The state of
ভূতে পাওয়া **भूत लगना** a person being possessed by the Deity Bhuiñāñ.

**ଭୂଇଁ କଖାରୁ**—ଦେ. ବି ( ସଂ. ଭୂମି+କର୍କାରୁ )—ଲତାକନ୍ଦବିଶେଷ—
Bhuiñ kakhāru — Ipomoea Digitata. [ ଦ୍ର—
ସଂ. ନାମ—ଭୂମିକୁଷ୍ମାଣ୍ଡ, — ଏହା କଲମ୍ବ୍ୟାଦି ବର୍ଗର ଦୀର୍ଘ ଲତା;
ବିଦାରୀ, ବୃଷ୍ୟକନ୍ଦ, ସ୍ୱାଦୁକନ୍ଦା, — ପିଣ୍ଡଆଳୁ ପରି ଏହାର ମୂଳରେ
କ୍ରୋଷ୍ଟ୍ରୀ, ସିତା, କ୍ଷୀରବଲ୍ଲୀ; — ପିଣ୍ଡାକାର ମୂଳ ଜନ୍ମେ । ଏହି ମୂଳର
କ୍ଷୀରଶୁକ୍ଲା, ପୟସ୍ୱିନୀ — ଭିତର ଶୁକ୍ଳ ଓ ଏହାକୁ ସିଦ୍ଧ କରି
ভুইকুমড়া, ভুইকুমড়ো, — ଖିଆଯାଏ; ପଞ୍ଚ ସାତ ଆଠ ଅଙ୍ଗୁଠି
ভুমি কুষ্মাণ্ড, সিমিয়া, — ବାହାରି ଥିବା ହାତ ପାପୁଲି ପରି;
**बिलाइकन्द, बिडारीकन्द** — ଫୁଲ ଆମାଳିଆ, ତାଙ୍ଗ ମସୃଣ ।
**बिल्लयाकन्द, भूईंकन्द** — ବୈଦ୍ୟଶାସ୍ତ୍ର ମତରେ ଏହା ପୁଷ୍ଟିକର,
ମ. ଭୂଇଁ କୋହଳା — ସ୍ୱରବର୍ଦ୍ଧକ, ମୂତ୍ରକର, ସ୍ତନ୍ୟଶୁକ୍ର ଓ
ଗୁ. ଭୋଇକାଲୁ — ବଳବର୍ଦ୍ଧକ, ବର୍ଣ୍ଣପ୍ରସାଦକ ଓ
ତେ. ନେଲଗୁଁ ଭୂଡ଼ୁ — ରସାୟନ । ଏହା ପିତ୍ତଦୋଷ,
ରକ୍ତଦୁଷ୍ଟି, ବାୟୁ ରୋଗ ଓ ଦାହନାଶକ । ]

**ଭୂଇଁ କଦମ୍ବ**—ଦେ. ବି ( ସଂ. ଭୂମି କଦମ୍ବ )—୧ । ଭୂକଦମ୍ବ ବୃକ୍ଷ—
Bhuiñ kadamba — 1. A kind of tree. ୨ । ସୋମ-
ସଂ. ନାମ—ମହାଶ୍ରାବଣିକା, ରାଜ୍ୟାଦି ବର୍ଗର ବର୍ଷାୟୁଃ ଶାକଗୁଳ୍ମ—2.
ଭୂକଦମ୍ବ, ଭୂକଦମ୍ବିକା, — Sphæranthus Indicus
କଦମ୍ବପୁଷ୍ପିକା, ଅବ୍ୟଥା, — ( plant ). [ ଦ୍ର—ଏହା ଧାନ
ଅତି ତପସ୍ୱିନୀ — ବିଲରେ ଓ ଜଳମୟ ସ୍ଥାନରେ
বড় থুলকুড়ি, গোরক্ষমুণ্ডি — ଜନ୍ମେ । ଗଞ୍ଜାମରେ ଏହାର ନାମ
**गोरखमुण्डी, घोरकमुँडी** — ବଣକଦମ୍ବ, ମୁଣ୍ଡୀ, ଗୁଣ୍ଡୀ । ଏହା ଗଳ-
ତେ. ବୋଡ଼ ସରପଟେଟ୍ଟୁ — ଗଣ୍ଡ, ଅପଚୀ, ମୂତ୍ରକୃଚ୍ଛ୍ର, କ୍ରିମି,
ଯୋନିରୋଗ, ପାଣ୍ଡୁ, ଶ୍ଲୀପଦ, ଅରୁଚି, ଅପସ୍ମାର, ପ୍ଲୀହା, ମେଦ ଓ ଗୁହ୍ୟସ୍ଥ ବ୍ୟାଧି ବିନାଶକ—ଦ୍ରବ୍ୟଗୁଣ । ]

**ଭୂଇଁକମ୍ପ**—ଦେ. ବି ( ସଂ. ଭୂମିକମ୍ପ )—ଭୂମିକମ୍ପ—Earth-quake.
Bhuiñ kampa — ভুমিকম্প **भूईंकंप, भूईंडोल**

**ଭୂଇ କଲରା**—ଦେ. ବି—ପଥର ଉପରେ ଉଠିବା ଗୁଳ୍ମବିଶେଷ; (ଏହା
Bhuiñ kalarā — ହାତେ ବା ଦୁଇହାତ ଉଚ୍ଚ ହୁଏ । ଗୋରୁ ଖାଇ

ଅବଦଙ୍କ ଔଷଧରେ ଲାଗେ )—A kind of herb used as medicine for kine.

ଭୂଇଁକୋରୁ(ଡ଼ୁ)ଅଁ—ଦେ. ବି. (ସଂ. ଭୂମିକୁଟଜ)—ଏକପ୍ରକାର କୁଟଜ
Bhuiñkoru(rdu)añ ଭୂଇଁବା ଲୁଡ଼ୁଚ ଗଛ—A kind of plant.

ଭୂଇଁ ଖଜୁର(ରି,ରୀ)—ଦେ. ବି (ସଂ. ଭୂମି ଖର୍ଜୁର)—ଏକ ପ୍ରକାର
Bhuiñ khajura(rā, ri) ଛୋଟ ଖଜୁର ଗଛ; ଚେଣ୍ଡି ଖଜୁରି—A species of small date palm. [ ଦ୍ର—ଏ ଗଛର ସ୍କନ୍ଧ ଭୂମିରୁ ଲାଗି ଥାଏ ଓ କେତେ ଭୂମି ଛାଡ଼ି ଉପରକୁ ଉଠେ ନାହିଁ, ଏହାର କୋଳ ସାଧାରଣ ଖଜୁରିକୋଳ ଅପେକ୍ଷା ସାନ ଏବଂ ମିଷ୍ଟତର ବୈଦ୍ୟଶାସ୍ତ୍ର ମତରେ ଏ ଖଜୁରିଠାରୁ ଅଳ୍ପ ଗୁଣ ବିଶିଷ୍ଟ । ]
ସଂ.—ଭୂମି ଖର୍ଜୁରିକା, ସ୍ୱାଦ୍ୱୀ, ଦୁସ୍ପ୍ରବେଶ୍ୟା, ମୃଦୁଚ୍ଛଦା, ସ୍ୱଳ୍ପ ଫଳା, କାକ କର୍କଶୀ, ସ୍ୱାଦୁ ମସ୍ତକା ।
ମ. ଶିନ୍ଦୀ, ଖଜୂରୀ
ଗୁ. ଖଜୁରୀ, ଖାରକ
ତେ. ଇଂଟାଚେଟ୍ଟୁ, ଖଜୁପୁଣ୍ଡୁ
ପିণ্ড খেজর; ভুইখেজুর
पिंडखजूर; भूईँखजूर

ଭୂଇଁ ଚଣା—ଦେ. ବି (ସଂ. ଭୂଚଣକ)—ଚେର ଚଣା; ଚୀନାବାଦାମ;
Bhuiñ chaṇā ମୁଗଫଳୀ—Groundnut; Pea-nut;
ভুঁইচণা; বিলাতীমুগ; চীনাবাদাম; মাটকলায় Arachis
मुगफली Hypogala. [ଦ୍ର—ଏହା ଲତା ଜାତୀୟ । ଏଥିର
ତେ. ବଉଣସନ ଗକାୟୁ ] ଚେରରେ ଭୂଇଁ ଧରେ ଓ ଭୂଇଁ ଭିତରେ ବୃହତ ପରି ସୁସ୍ୱାଦ୍ୟ ମଞ୍ଜି ଥାଏ ।]

ଭୂଇଁ ଚମ୍ପା—ଦେ. ବି (ସଂ. ଭୂମି ଚମ୍ପକ)—ହରିଦ୍ରା ବର୍ଗର କ୍ଷୁଦ୍ର ଶାକଗୁଳ୍ମ
Bhuiñ champā ବିଶେଷ—Kæmferias Rotunda (a
ভুইঁ চাঁপা भूईँचँपा plant and its scented flowers.)
[ଦ୍ର—ବୈଶାଖ ମାସରେ ଏଥିର ପତ୍ରମାନ ଶୁଖି ନଷ୍ଟ ହୋଇଯାଏ ଓ ମୂଳରୁ ସୁଗନ୍ଧ ଧଳା ଫୁଲ ବାହାରେ ଓ ଉକ୍ତ ଫୁଲ ଭୂଇଁରୁ ବାହାରିଲା ପରି ଦେଖା ଯାଏ । ପରେ ହଳଦୀ ଗଛର ପତ୍ର ପରି ଫୁଲ ସକାଳେ ଫୁଟେ । ଫୁଲ ଫୁଟା ବନ୍ଦ ହୋଇଯିବା ପରେ ପତ୍ର ବାହାରେ ।]

ଭୂଇଁ ଛତୁ—ଦେ ବି (ସଂ. ଭୂମି+ଛତ୍ରାକ)—ମାଟି ଛତୁ; ମାଟିରୁ ଉଠିଥିବା
Bhuiñ chhatu ଛତୁ—A kind of mushroom;
ভুইছাতু(তা) coming out of the surface of the
भूईँफोर; गोबरछता; सापकी छत्री earth. [ଦ୍ର—ବୈଦ୍ୟକ
(ଭୂଇଁ ଫୁଲି—ଅନ୍ୟରୂପ) ମତରେ ଏହା ଶୀତଳବୀର୍ଯ୍ୟ, ତ୍ରିଦୋଷଜନକ, ପିଚ୍ଛିଳ, ଗୁରୁ ଏବଂ ବମି, ଅତିସାର, ଜ୍ୱର ଓ କଫକାରକ । ବଲ୍ମୀକ ଓ ଶୁଚିପ୍ରଦେଶ ଜାତ ଓ ଶୁକ୍ଳବର୍ଣ୍ଣ ଛତୁ ଛଡ଼ା ଅନ୍ୟ ଛତୁମାନ ଦୋଷଜନକ ।]

ଭୂଇଁ ଜନ୍ଦା—ଦେ. ବି—ଧୂଳିଅଜନ୍ଦା—A kind of black ant.
ধুলোজংদা भूईँलहर चुट्टा

ଭୂଇଁ ଜାମୁ—ଦେ.ବି (ସଂ. ଭୂମି ଓ ଜମ୍ବୁ)—ବଣଜାମୁ; ଏକପ୍ରକାର ଛୋଟ
Bhuiñ jāmu ଜାମୁ ଗଛ ଓ ତାହାର ଛୋଟଫଳ—Premna
ভুইঁজাম; বনজাম Herbacea; Ardisa Humiles; a
भूईँजामन; जामूनी species of small blackberry.
ସଂ—କାକଜମ୍ବୁ, କ୍ଷୁଦ୍ର ଜମ୍ବୁ, ସୂକ୍ଷ୍ମ ପତ୍ରା, ନାଦେୟୀ, ଜଳ ଜମ୍ବୁକା ।
ମ. ନଦୀ ଜାମ୍ବୂଳ
ଗୁ. ଭୁଙ୍ଗଣୀ ଜାମୁ
[ଦ୍ର—ଏହା ଜାମୁ ଜାତୀୟ ବନ୍ୟକ୍ଷୁପ ବା କ୍ଷୁଦ୍ର ତରୁ; ଉଚ୍ଚରେ ୨।୩ ହାତ ହୁଏ, କୋଳ ଜାମୁ କୋଳ ଅପେକ୍ଷା ଛୋଟ । ପତ୍ର ଜାମୁ ପତ୍ର ପରି, କିନ୍ତୁ ସୂକ୍ଷ୍ମ; ବୈଦ୍ୟ ଶାସ୍ତ୍ର ମତରେ ଏହା ଧାରକ, ରୁକ୍ଷ; ଏହା କଫ, ପିତ୍ତ, ରକ୍ତ ଦୁଷ୍ଟି ଓ ଦାହ ନାଶକ ।]

ଭୂଇଁ ଡିମ୍ବିରି—ଦେ. ବି—(ସଂ. ଭୂମି+ଉଦୁମ୍ବର)—ଛୋଟ ଛୋଟ ଫଳଯୁକ୍ତ
Bhuiñ ḍimbiri ଡିମ୍ବିରି ଗଛ—Fig tree with very
ভুইঁ ডুমুর भूईँडुमुर small fruits.

ଭୂଇଁ ତଳ—ଦେ.ବି(ସଂ.ଭୂମି ତଳ)—୧ । ପୃଥିବୀର ତଳ ବା ପୃଷ୍ଠଦେଶ—
Bhuiñ taḷa 1. The surface of the earth; ୨ । ଅନାଚ୍ଛାଦିତ
ভূমি তল भूईँ तल ଭୂମି—2. Bare ground.

ଭୂଇଁ ଦ(ଡ଼,ନ,ଳ,ର)ଅ(ହ)ଣ—ଦେ. ବି—(ସଂ.ଭୂମି ଓ ଦଳନ ଅର୍ଥାତ୍ ଭୂମି
Bhuiñ da (ḍa, na, ḷa, ra) a(ha)ṇa ଦହନ, ପ୍ରା ଭୂଇଁ ଓ ଦଅଣ )—ରଜ ସଂକ୍ରାନ୍ତିର ପର ଦିବସ । ଭୂମି ରଜସ୍ୱଳା ହେବାର ଦ୍ୱିତୀୟ ଦିନ—The second day after Rajasankrānti (in the month of Ashārdha or Mithuna.)
অম্বুবাচির দ্বিতীয়দিন अंबुबाचिका दुसरा दिन

ଭୂଇଁ ଦାନ—ଦେ. ବି (ସଂ. ଭୂମିଦାନ)—ବ୍ରାହ୍ମଣଙ୍କୁ ଭୂମି ଦାନ କରିବା—
Bhuiñ dāna ভূমীদান भूईँदान Gift of land (to Brāhamaṇas)

ଭୂଇଁ ନିମ(ମ୍ବ)—ଦେ. ବି ( ସଂ. ଭୂ ନିମ୍ବ )—ଚିରେଇତା ଜାତୀୟ
Bhuiñ nima (mba) ବର୍ଷାୟୁଃ ଶାକ ଗୁଳ୍ମ ବିଶେଷ—Andrographis Paniculata.
ସଂ ନାମ—କିରାତତିକ୍ତ, ଭୂନିମ୍ବ, ହୈମ, ରାମସେନକ, ଚିରତିକ୍ତ, ବିଶ୍ୱସର୍ପିଣୀ, ମାଲୁଲୀ, ନେତ୍ରମୀନା, ସକଣ୍ଡଲୀ, ଯବ ତିକ୍ତା, ମହାତିକ୍ତା, କୈରୁଡ଼ା, ମୂଳପୁଷ୍ପୀ, ମାହେଶ୍ୱରୀ, ଶଙ୍ଖିନୀ, ସୂକ୍ଷ୍ମ ପୁଷ୍ପା, ଅର୍ଦ୍ଧତିକ୍ତଫଳା, ତିକ୍ତା, ଯାଶୀ, ଯଶସ୍ୱିନୀ
[ଦ୍ର—ଏହା ବାସକାଦି ବର୍ଗର ଗୁଳ୍ମ; ଗଛ ସିଧା; ପତ୍ର ମଣ୍ଡଳାକାର, ରୋମଶୂନ୍ୟ; ପତ୍ରର ଧାର ଅଖଣ୍ଡିତ; ଫୁଲ ଧଳା ଓ ଭିତରେ ଆଗାଳ ରକ୍ତଚିହ୍ନ, କେଶର ୨ଟି; ପତ୍ର ଓ ଗଛ ଅତି ତିକ୍ତ । ଏହା ଅଗ୍ନି-ପାଚକ, ରେଚକ ଓ ବିଷଦୋଷ, ରକ୍ତ-ଦୁଷ୍ଟି, କ୍ରିମି, କୁଷ୍ଟ ଓ ଜ୍ୱରନାଶକ ।]
কালমেঘ भूईँनिम

ଭୂଇଁପଦ୍ମ—ପ୍ରାଦେ· ( ଗଡ଼ଜାତ )—ବି—ସ୍ଥଳପଦ୍ମ ( ଦେଖ )
Bhuiñpadma Sthaḷa padma ( See )

ଭୂଇଁଫୋଡ଼—ଦେ. ବିଣ ( ସଂ. ଭୂମି ଓ ସ୍ଫୋଟ )—୧ । ଭୂମିଭେଦୀ—
Bhuiñphorḍa 1. Piercing through the ground.
ভুঁইফোড় ବି—ହଠାତ୍ ନୀଚ ସ୍ଥାନରୁ ଉପରକୁ ଉଠିବାରୁ ଯାହାର
भूईँफोड अତ୍ୟନ୍ତ ଗର୍ବ ହୁଏ—An upstart.

ଭୂଇଁ ବରକୋଳି—ଦେ. ବି ( ସଂ. ଭୂବଦରୀ )—ଏକ ପ୍ରକାର ଛୋଟ
Bauiñ barakoḷi ବରକୋଳି ( ବରକୋଳି ଦେଖ )—A
মেটোকুল small prickly bush which grows
झाडबैर, झरबेर wild, bearing small plums like
ଗୁ. ଯାଳେବୋର the jujube. Zizyphus Micro-
ମ. ଜଙ୍ଗଲବୋର phylla.
ଅନ୍ୟ ସଂ. ନାମ—ଅଜପ୍ରିୟା, ଭୂକର୍କନ୍ଧୁ, ବାଳକପ୍ରିୟା, ସୂକ୍ଷ୍ମଫଳା

ଭୂଇଁବାଣ—ଦେ. ବ—୧ । ଏକପ୍ରକାର ଛୋଟ ନଡ଼ିଆ ଓ ଗଛ, (ଏ Bhuiñbāṇa ଗଛର ଗଣ୍ଡି ଭୂମି ଛାଡ଼ି ନ ଥିବା ଅବସ୍ଥାରେ ଏଥିରେ ନଡ଼ିଆ ଫଳେ ଓ ନଡ଼ିଆର ପେଣ୍ଡା ଭୂଇଁରେ ଲାଗିଥାଏ)—1. A small species of cocoanut. ୨। ଏକପ୍ରକାର ବାଣ ବା ଅତସବାଜି ; ଗୁଡ଼ୁଗୁଡ଼ିବାଣ — 2. A kind of firework.

ଭୂଇଁ ବି(ଭି)ରୁଡ଼ି—ଦେ. ବ—ସୁନାଗୁଣା ପରି ଜକ୍ ଜକ୍ ଦିଶୁଥିବା ସାନ Bhuiñ bi(bhi)rurdi ସାନ ବିରୁଡ଼ି, (ଏମାନଙ୍କ ବସା କାନ୍ଥରେ भूइंबीढनी ଛାଆର ଓ ଉପୁରୁଡ଼ା ହୋଇଥିବା ପଲମ ପରି ଦିଶୁଥାଏ) ৼ মৱাল —A species of small-sized wasps; mudwasp.

ଭୂଇଁ ବେତ—ଦେ. ବ (ସଂ. ଭୂମି ବେତସ)—ଏକପ୍ରକାର ବେତ—Bhuiñ beta भूइंबेंत ভূঁইবেত Calamus Reticulatus

ଭୂଇଁମାଳି—ଦେ. ବ—ଗଡ଼ଜାତର ଜାତିବିଶେଷ—Name of a Bhuiñmāli ভূঁইমালী wild tribe in the Oriya States.

ଭୂଇଁମୂଳ—ଦେ. ବ—ମୁସଲମାନ୍ ଅମଳରେ ବଣୋଇ ଅଧୀନରେ କାର୍ଯ୍ୟ Bhuiñmūla କରୁଥିବା କାନୁନ୍‌ଗୋ ( ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ভুঁইমূল ଏହି ଅର୍ଥରେ ପୁରୀ ଓ ଖୋରଧା ଅଞ୍ଚଳରେ ଏ ଶବ୍ଦ ପ୍ରଚଳିତ ହେଉଅଛି )—Accountant ( during the Moslem rule in Orissa)

ଭୂଇଁଲତା(ଟା)—ଦେ. ବ—ଏକପ୍ରକାର ଅଧ ଇଞ୍ଚ ଲମ୍ବ ସରୁଆ ପୋକ; Bhuiñlatā(ṭā) (ଏମାନେ ଚିକିତ୍ସାଳରେ ଗାଡ଼ କରି ରହନ୍ତି । ଜଙ୍କ କାମୁଡ଼ିଲା ପରି କାମୁଡ଼ି ପକାନ୍ତି)—A kind of long worm.

ଭୂଇଁହାର—ଦେ. ବ ( ସଂ. ଭୂମିହର )—ବିହାର ଓ ସଂଯୁକ୍ତ ପ୍ରଦେଶର Bhuiñhāra ବ୍ରାହ୍ମଣଶ୍ରେଣୀବିଶେଷ—A class of ভূমিহার Brāhmaṇas in Bihar and U.P. भूइंहार (ଭୂମିହାର ତଳେ ଟୀକା ଦେଖ ।) [ ଦ୍ର—ଆର୍ଯ୍ୟାବର୍ତ୍ତର ବ୍ରାହ୍ମଣମାନଙ୍କର ୫ ଶ୍ରେଣୀ ( ସାରସ୍ୱତ, କାନ୍ୟକୁବ୍ଜ, ଗୌଡ଼, ମୈଥିଳ, ଉତ୍କଳ)ଙ୍କ ମଧ୍ୟରେ ଭୂଇଁହାରଙ୍କ ନାମର ଉଲ୍ଲେଖ ନାହିଁ । ଏମାନଙ୍କର ଓଡ଼ିଶାରେ ବଳଭଦ୍ର ଗୋତ୍ରୀ ବ୍ରାହ୍ମଣଙ୍କ ପରି ସାମାଜିକ ପରିସ୍ଥିତି ଥିବାର ଅନୁମିତ ହୁଏ । ]

ଭୂଁ—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ଶଙ୍ଖଧ୍ୱନି—1. The sound Bhuñ of blowing of conchshells. ୨। ଭୂରୀର ଧ୍ୱନି-( ଭୂଁ ଭୂଁ—ଅନ୍ୟରୂପ) 2. The blast of a trumpet. ভোঁ ୩ । ରେଲଗାଡ଼ିର ସିଟିର ଧ୍ୱନି—3. The sound of भों the railway whistle ୪ । କୁକୁରମାନଙ୍କର ସଙ୍ଗମ ଋତୁରେ ସଞ୍ଚିଲେ ଓ ଭୋକରୁ ବେଳେ ସେମାନଙ୍କ କରିବା ଶଙ୍ଖଧ୍ୱନିବତ୍ ଦୀର୍ଘ ଶବ୍ଦ—4. The braying sound of dogs during the mating season. ୫ । ଭ୍ରମର ଗୁଞ୍ଜନ—5. Humming or buzzing sound.

ଭୂଁଡ଼ି—ଗ୍ରାଦେ ( ସମ୍ବଲପୁର ) ବ—ଛିଦ୍ର; କଣା; ରନ୍ଧ୍ର—Bhuñrdi Hole; aperture.

ଭୂଁ ବଜା(ଜେ)ଇବା—ଦେ. କ୍ରି—୧ । ଶଙ୍ଖ ବଜାଇବା—1. To Bhuñ bajā(je)ibā blow a conchshell. ୨ । ଦୀର୍ଘ-ভোঁবাজান ସ୍ୱରରେ କାନ୍ଦିବା—2. To bewail with भोंबजाना a long sound. ୩ । ( ଲକ୍ଷଣାର୍ଥ; କଦାଚିତ୍ ଉତ୍ସବରେ ଶଙ୍ଖୁଆ ଶଙ୍ଖ ଫୁଙ୍କେ ଓ ମୁଠିଏ ଖାଇବାକୁ ପାଇବା ଛଡ଼ା ତାର ଅନ୍ୟ କିଛି ଲାଭ ହୁଏ ନାହିଁ, ଏହି ଲକ୍ଷଣାରୁ )—ବିନାପାରିଶ୍ରମିକରେ କର୍ମ କରିବା—3 To work without wages.

ଭୂଁ ଭାଁ (ଭୂଁ)—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ଭୂଁ ( ଦେଖ )—Bhuñ bhāñ (bhuñ) 1. Bhuñ ( See ) ୨ । ভোঁ ভাঁ ( ବହୁବଚନ ) ବହୁକାଳସ୍ଥାୟୀ ଭୂଁ ଶବ୍ଦ—2. भीं. भाँ A succession of blasts, buzzigs or whistlings.

ଭୂଁଷା—ଗ୍ରାଦେ ( ଲଇଥ ) ବ ( ଭୂଳ ହି. ଭୂସା )—ଭୂଷି; ତୁଷ—Bhuñsā Chaff.

ଭୁକ୍—ସଂ. ବିଣ ( ଭୁଜ୍ ଧାତୁ+କର୍ତ୍ତ୍ରି. କ୍ୱିପ୍. ଅନ୍ୟ ଶବ୍ଦ ସଙ୍ଗେ Bhuk ବ୍ୟବହୃତ ହୁଏ ଯଥା, କାଠଭୁକ୍, ବଳଭୁକ୍, ଅଗ୍ନିଭୁକ୍) ଭୋକ୍ତା; ଯେ ଖାଏ; ଖାଦକ—Eating. ଗ୍ରାଦେ ( ସମ୍ବଲପୁର ) ବି—ଭୋକ; କ୍ଷୁଧା—Hunger.

ଭୁକ(ଖ)—ଗ୍ରାଦେ (ବାଲେଶ୍ୱର) ବ (ସଂ. ବୁଭୁକ୍ଷା)—୧ । ଭୋକ; କ୍ଷୁଧା Bhuka(kha)—1. Hunger. ୨ । ( ଲକ୍ଷଣାର୍ଥ )—କାମନା —2. (figurative) Desire

ଭୁକା—ଦେ. ବ ( ସଂ. ବୁକ୍କ ଧାତୁ )—ଭୁକିବା; କୁକୁରଙ୍କ ଭୁକିବା; କୁକୁରଙ୍କ Bhukā ବୋବାଳି—Barking of dogs etc. ଗ୍ରାଦେ ডাক ( ବାଲେଶ୍ୱର ) ବିଣ—ଭୋକିଲା; କ୍ଷୁଧାର୍ତ୍ତ—Hungry. भूकना

ଭୁକା(କେ)ଇବା—ଦେ. କ୍ରି—୧ । ଭୁକିବା କ୍ରିୟାର ଣିଜନ୍ତରୂପ (ଭୁକିବା Bhukā(ke)ibā ଦେଖ )—1. To cause to bark. ୨ । ডাকান भुकवाना ପ୍ରବିଷ୍ଟ କରାଇବା; ଘଡ଼ଇକୁ ପୁରାଇବା—ভোকান घुसवाना 2. To thrust.

ଭୁକାଭୁକି—ଦେ. ବ ( ସହଚର )—ବହୁଥର ଭୁକିବା—Bhukābhuki ঘেউ ঘেউ; ভুক ভুক Repeated barking. भुका भुकी

ଭୁକିବା—ଦେ. କ୍ରି ( ସଂ. ବୁକ୍କ୍ ଧାତୁ )—୧ । ( କୁକୁର ବିଷୟ ) ରଡ଼ି Bhukibā କରିବା—1. To bark ( said of dogs) ঘেউ ঘেউ করা ୨ । ପାଟି କରି ରଡ଼ି କରିବା—भू(भूँ)कना 2. To make a loud sound with the ভুকা mouth. ୩ । (ସଂ. ଫୁଟ ଧାତୁ) ଭେଦ କରିବା; ପ୍ରବେଶ घुसना କରିବା ( ଯଥା ଗୋଡ଼ରେ କଣ୍ଟା ଭୁକିବା )—3. To enter in to a thing by piercing; to penetrate.

ଭୁକି ହେବା—ଦେ. କ୍ରି—ବୃଥା ବହୁକାଳ ପାଟି କରିବା—To talk Bhuki hebā ঘেউ ঘেউ করা loudly and long, but भूक भूक करना to no effect.

ଭୁକ(ଖି)ଲ—ପ୍ରାଦେ. ( ବାଲେଶ୍ୱର ) ବଣ ( ସ. ବୁଭୁକ୍ଷିତ ) ( ବାଲେ-
Bhuki(khi)la ଶ୍ୱରରେ ଓ ସ୍ଥାନରେ ଖ ଉଚ୍ଚାରଣ, ଭୂଲ. ବ. ଭୁଖା )—କ୍ଷୁଧାର୍ତ୍ତ; ଭୋକିଲା—Hungry.

ଭୁକୁ(ଗୁ)ତନ—ଦେ. ବ (ସ:ଭୁକ୍ତ)—୧ । କ୍ଷତିପୂରଣ—1. Compen-
Bhuku(gu)tana sation. ୨ । ମେଳ କରାଇବା—2.Causing to tally. ୩ । ମଜୁରା
( ଭୁକୁ[ଗୁ]ତାନ[ନ]—ଅନ୍ୟରୂପ ) ଦେବା—3. Giving credit; setting off a sum in the accounts. ୪ । ମଜୁରା
ଭୁକ୍ତନ ଭୁଗତାନା ଦିଆଯିବା ଧନ—4. Set off amount.
( ଭୁକୁ[ଗୁ]ତ[ତା]ନ[ନ] ଦେବା —ପ୍ରୟୋଗ )

ଭୁକୁ(ଗୁ)ତା(ତେ)ଇବା—ଦେ. ବ (ସ. ଭୁକ୍ତ)—୧ । କୌଣସି ପଦାର୍ଥକୁ
Bhuku(gu)tā(te)ibā ଭୁକ୍ତାଇବା; ଅନ୍ୟ ବସ୍ତୁ ସଙ୍ଗେ ଭୁକ୍ତ କରିବା
ଭୁକ୍ତାନ୍; ଭୁକତନ କରା ବା ମେଳ କରାଇବା—1. To cause a
ଭୁଗତାନା thing to be imposed on another; to cause to tally. ୨ । ମୁକାବିଲା କରାଇବା—2. To confront. ୩ । ହିସାବରେ ମଜୁରା ଦେବା—3.To set off;to give credit in the account. ୪ । ପ୍ରମାଣିତ କରିବା—4. To prove; to demonstrate. ୫ । ଛିଦ୍ରଅଗ୍ରରେ ତଦୁଦ୍ଦିଷ୍ଟ କାଠକ ଅଧ ବସାଇବା ବା ପୂରାଇବା—5. To dovetail; to fit a thing ( e. g. a plug ) into another ( e.g. a hole ).

ଭୁକ୍ତ—ସଂ. ବଣ ( ଭୁଜ୍ ଧାତୁ+କର୍ତ୍ତ୍ରି ତ )—୧ । ଖାଇଥିବା—1.
Bhukta Having eaten. (ଯଥା, ଅର୍ଦ୍ଧଭୁକ୍ତ) ୨ । (+କର୍ମ.ତ) ଭକ୍ଷିତ—2. Eaten. ( ଯଥା—କାଷ୍ଠଭୁକ୍ତ । ) ୩ । ଅନ୍ତର୍ଭୂତ—3 Included in; comprised in. (ଯଥା—ଅଧିକାର ଭୁକ୍ତ ।) ୪ । ଉପଭୁକ୍ତ; ଭୋଗକୃତ—4. Enjoyed. ବି.—( +ଭାବ. ତ )—ଭୋଗ—Enjoyment.

ଭୁକ୍ତ ପାକ—ସଂ. ବି (୬ଷ୍ଠୀ ତତ୍; ଭୁକ୍ତ+ପାକ)—୧ । ଖାଦ୍ୟ ଦ୍ରବ୍ୟର
Bhukta pāka ଜାର୍ଣ୍ଣ ହେବା—1. Digestion of food taken. ୨ । ଚର୍ବିତ ଚର୍ବଣ—2. Ruminating.

ଭୁକ୍ତପାଚ—ଦେ. ବି—(ସଂ. ଭୁକ୍ତ ଓ ପଚନ)—ଅନ୍ୟ ବ୍ୟକ୍ତିର ଉଚ୍ଛିଷ୍ଟ
Bhuktapācha ବା ଦେବ ନୈବେଦ୍ୟକୁ ଖାଇବା; ପ୍ରସାଦ ସେବନ —Eating of food left by another or of food offered to a Deity.

ଭୁକ୍ତପୂର୍ବ—ସଂ ବଣ.—( ବହୁବ୍ରୀହି; ପୂର୍ବ ନିପାତ )—୧ । ପୂର୍ବେ ଯାହା
Bhuktapūrba ଅନ୍ୟ ବ୍ୟକ୍ତିଦ୍ୱାରା ଭୁକ୍ତ ବା ଉପଭୁକ୍ତ ହୋଇଅଛି —1. Already partaken of or enjoyed by another; already tasted by another.
ବି. —ଅଇଁଠା—Leavings of a person's dinner.

ଭୁକ୍ତ ଭୋଗ—ସଂ. ବଣ—(ବହୁବ୍ରୀହି; ଭୁକ୍ତ+ଭୋଗ)—କୃତଭୋଗ—
Bhukta bhoga Already enjoyed by another.
ସ. ବି—ଭୁକ୍ତଭୋଜନ (ଦେଖ )—Bhuktabhojana ( See )

ଭୁକ୍ତ ଭୋଗୀ—ସଂ. ବଣ. ପୁଂ—(ଭୁକ୍ତ ଭୋଗ+ଇନ୍; ୧ମା. ୧ବ)—
Bhukta bhogī ୧ । ଯେ ଭୋଗ କରିଅଛି—1. One who
(ଭୁକ୍ତ ଭୋଗିନୀ—ସ୍ତ୍ରୀ) has enjoyed. ୨ । ପ୍ରବୀଣ; ଅନୁଭବୀ—2. Experienced. ୩ । ଯେ ନିଜେ ଅନୁଭବ କରି ଜାଣି ଅଛି—3. Grown wise by experience. ୪ । ଅନ୍ୟର ଭୁକ୍ତ ଦ୍ରବ୍ୟର ଖାଦକ ବା ଉପଭୋଗୀ—4. Partaking of or enjoying a thing already enjoyed by another.

ଭୁକ୍ତ ଭୋଜନ—ସଂ. ବି ( ୬ଷ୍ଠୀ ତତ୍ ଭୁକ୍ତ+ଭୋଜନ )—୧ । ଚର୍ବିତ
Bhuktabhojana ଚର୍ବଣ—Ruminating; chewing of the cud.
୨ । ପରର ଅଇଁଠା ଖାଇବା—2. Partaking of the leavings of another's dinner.

ଭୁକ୍ତା(ତେ)ଇବା—ଦେ. କ୍ରି—୧ । ସାମିଲ୍ କରାଇବା—1. To
Bhuktā(te)ibā cause a thing to be included
ଭୁକ୍ତାନ in another thing. ୨ । ମେଳ କରାଇବା
ଭୁଗତାନା —2. To cause a thing to fit into or tally with another thing. ୩ । ମୁକାବିଲା କରାଇବା—3. To confront. ୪ । ପ୍ରବେଶ କରାଇବା—4 To cause to enter; to thrust. ୫। ମଜୁରା ଦିଆଇବା—5. To cause to be set off. ୬ । ଖାପ ଖୁଆଇବା ଭଳି ଏକ ବସ୍ତୁକୁ ଅନ୍ୟ ବସ୍ତୁରେ ପୂରାଇବା—6. To dovetail. ୭ । ମୁଆଜାଦ୍ୱାରା ପ୍ରମାଣିତ କରିବା—7. To prove by direct evidence.

ଭୁକ୍ତାବଶିଷ୍ଟ—ସ. ବଣ (୬ଷ୍ଠୀ ତତ୍; ଭୁକ୍ତ+ଅବଶିଷ୍ଟ)—ଖାଇବା
Bhuktābasishta ପରେ ପାତ୍ରରେ ଯାହା ବଳି ଥାଏ; ଉଚ୍ଛିଷ୍ଟ; ଅଇଁଠା—Left in the dish after meal.

ଭୁକ୍ତାବଶେଷ—ସଂ. ବି—(୬ଷ୍ଠୀ ତତ୍ ଭୁକ୍ତ+ଅବଶେଷ)—ଅଇଁଠା—
Bhuktābasesha Leavings of a dinner; orts.
(ଭୁକ୍ତୋଚ୍ଛିଷ୍ଟ, ଭୁକ୍ତ ଶେଷ—ଅନ୍ୟରୂପ)

ଭୁକ୍ତି—ସଂ. ବି (ଭୁଜ୍ ଧାତୁ+ଭାବ. ତି)—୧ । ଭୋଜନ—
Bhukti 1. Eating. ୨ । ଭୋଗ 2. Enjoyment.

ଭୁକ୍ତିବା—ଦେ. କ୍ରି—(ସଂ. ଭୁଜ ଧାତୁ)—୧ । ଭୋଗ କରିବା—
Bhuktibā 1; To enjoy. ୨ । ମେଳ ଖାଇବା—2. To
मेलखाना, मिलेसाओया coincide with; to tally with.
मेलखाना, मीलजाना ୩ । ଖାପ ଖାଇବା—3. To fit in.

ଭୁଖ—ପ୍ରାଦେ. (ସମ୍ବଲପୁର) ବି—(ଭୂଲ. ହି. ଭୂଖ୍)—୧। ଭୋକ; କ୍ଷୁଧା—
Bhukh 1. Hunger. ୨। (ଭତରଭୁଖା) ଦୁର୍ଭିକ୍ଷ—2. Famine, scarcity.

ଭୁଖା(ଖି)—ପ୍ରାଦେ (ବାଲେଶ୍ୱର, ସମ୍ବଲପୁର) (ବାଲେଶ୍ୱର ଓ ସମ୍ବଲ-
Bhukhā (khi) ପୁରରେ ଓ ସ୍ଥାନରେ ଭ ଉଚ୍ଚାରଣ।ଭୂଲ. ବଂ'ଓ ହି
(ଭୁଖିଲା—ଅନ୍ୟରୂପ) ଏହି ଅର୍ଥରେ ଭୁଖା)—କ୍ଷୁଧାର୍ତ୍ତ—Hungry

ଭୁଖେ ହାଉର୍ ହାଉର୍—ପ୍ରାଦେ(ସମ୍ବଲପୁର) ବଣ—ଅତ୍ୟନ୍ତ କ୍ଷୁଧାତୁର; Bhukhe hāur hāur କ୍ଷୁଧାର୍ତ୍ତ; କ୍ଷୁଧାଦ୍ୱାରା ଅତ୍ୟନ୍ତ ପ୍ରପୀଡ଼ିତ; ଖିଧାୟ ছটপট ଭୋକରେ ଘାଣ୍ଟି ଘାଣ୍ଟି ହେବା—Suffering भुखसे तिलमिलाजाना from extreme hunger; very hungry; oppresed by excessive hunger.

ଭୁଗଲି—ପ୍ରାଦେ (ସମ୍ବଲପୁର) ବି—ଛୋଟ ଟୋକାଇ—Bhug-li Small basket.

ଭୁଗ—ପ୍ରାଦେ (ବାଲେଶ୍ୱର) ବି—(ଓ ସ୍ଥାନରେ ଉ ଉଚ୍ଚାରଣ; ଭୁଲ ବ. ଭୁଗା=ଭୋଗକରି)—ଭୋଗ (ଦେଖ)—Bhoga (See) Bhuga

ଦେ. (ସମ୍ବଲପୁର) ବି—୧ । ବଡ଼ ପାଚିଆ; ବାଉଁଶିଆ—Bhugā 1. Basket. ୨ । ଟୋକେଇ—2. Big basket, hampen.

ଭୁଗା(ଗେ)ଇ—ପ୍ରାଦେ (ବାଲେଶ୍ୱର) ବି—ଝୋଲେଇ; ଛୋଟ ବାଉଁଶିଆ—Small basket. Bhugā(ge)i (ଭୁଟେଇ—ଅନ୍ୟରୂପ)

ଭୁଗା(ଗେ)ଇବା—ପ୍ରାଦେ (ବାଲେଶ୍ୱର) କ୍ରି (ଭୁଲଭାବର ବ. ଭୁଗାନ; ଓ ସ୍ଥାନରେ ଉ ଉଚ୍ଚାରଣ)--ଭୋଗାଇବା (ଦେଖ) Bhuga(ge)ibā Bhogāibā (See)

ଭୁଗିବା—ପ୍ରାଦେ (ବାଲେଶ୍ୱର) କ୍ରି (ଭୁଲ ବ. ଭୁଗା; ଓ ସ୍ଥାନରେ ଉ ଉଚ୍ଚାରଣ)—ଭୋଗିବା(ଦେଖ)—Bhogibā (See) Bhugibā

ଭୁଗୁଲି—ପ୍ରାଦେ (ବାମଣ୍ଡା) ବି—ସାନ ଟୋକେଇ—Bhuguli Small basket.

ଭୁଗ୍ନ—ସଂ. ବଣ (ଭୁଜ୍ ଧାତୁ=କୁଟିଳ ହେବା+କର୍ତ୍ତୃ ତ)—୧ । କୁବ୍ଜ; ବକ୍ର—1. Crooked. ୨ । ଆନତ—2. Bent. ୩ । ଭଗ୍ନସ୍ୱାସ୍ଥ୍ୟ—3. Shattered in health; of delicate or broken health. Bhugna

ଭୁଚ୍(ଚୁ)କା—ଦେ. ବି—ଭୁରୁଚୁକା (ଦେଖ)—Bhuch-(chu)kā Bhuruchukā (See)

ଭୁଚ୍(ଚୁ)କା(କେ)ଇବା—ଦେ. କ୍ରି ୧ । ଭୁରୁଚୁକା ଦେବା (ଦେଖ)—Bhuch-(chu)kā(ke) ibā 1. Bhuruchukā debā(See)

ଭୁଚ୍ (ଚୁ)କା ଦେବା
ଭୁଚୁ(ଚୁ)କା ମାରିବା } —ଅନ୍ୟରୂପ
ଭୁଚ (ଚୁ)କା ବତା(ତେ)ଇବା

୨ । ଭୟ ଚକିତ କରିବା—2, To alarm a person

ଭୁଚ୍(ଚୁ)କା ଭୁଚ୍(ଚୁ)କି—ଦେ. ବି—ଧପାଧପି—Cheating. Bhuch-(chu) kā bhuch-(chu) ki ধাপ্পাধাপি धप्पाधप्पि

ଭୁଚ୍(ଚୁ)କିବା—ଦେ. କ୍ରି—ଭୟ ଚକିତ ହେବା; କିଂକର୍ତ୍ତବ୍ୟବିମୂଢ଼ ହେବା—To be dumbfounded; to be bewildered. Bhuch-(chu) kibā হকচকিএযাওয়া भुचकना

ଭୁଜ୍ (ଧାତୁ) ସଂ.—୧ । ଖାଇବା—1. To eat; ୨ । ଭୋଗ କରିବା—2. To enjoy ୩ । କୁଟିଳ ହେବା—3, To be crooked. ୪ । ନମ୍ର ହେବା-4. To bend; to be bent ୫। (ରାଜ୍ୟ) ଶାସନ କରିବା 5. To rule or govern (Apte). ୬ । ବଙ୍କାଇବା-6. To curve. ୭ । ଅନୁଭବ କରିବା; ସହିବା—7. To experience; to endure (Apte). Bhuj (root)

ଭୁଜ୍(ଜୁ)ନି—ପ୍ରାଦେ (ସମ୍ବଲପୁର) ବଣ (ସଂ. ଭୋଜନ)—ଯେଉଁ ହାତଦ୍ୱାରା ଭୋଜନ କରାଯାଏ; ଡାହାଣ (ହାତ); ଖାଇବ ହାତ-Right (hand); used in lifting food to the mouth Bhuj-(ju)ni (ପ୍ରୟୋଗ—ଭୁଜୁନିହାଥ)

ଭୁଜ—ସଂ. ବି. (ଭୁଜ୍ ଧାତୁ+କର୍ତ୍ତୃ ଅ) ୧ । ବଙ୍କାକୃତି—1. Crooked form. ୨ । ସମସ୍ତ ହସ୍ତ; ବାହୁ—2. Arm; the whole hand. ୩ । କ୍ଷେତ୍ରର ବାହୁ; କ୍ଷେତ୍ରର ସୀମା ରେଖା—3 The side or arm of a field or figure. ୪ । ସର୍ପର କୁଣ୍ଡଳ—4. The coil of a serpent ( M. W. ) ୫ । ହାତୀର ଶୁଣ୍ଢ—5 The trunk of an elephant(Apte)୬। ବାଙ୍କ—6. A bend (Apt). ୭ । ବୃକ୍ଷ ଶାଖା—7. The branch of a tree (Apte). ୮ । ତ୍ରିଭୁଜର ଭୂମି -8. The base of a triangle (Apte.) ୯ । (ଜ୍ୟୋତିଷ) ଛାୟାର ଭୂମି—9. (astronomy) The base of a shadow (Apte-) ସଂ. ବଣ—କୁଟିଳ-crooked, ଦେ. ବଣ (ସଂ.ଭୁଜ ଧାତୁ)ଖାଦ୍ୟ ନିମନ୍ତେ ସଞ୍ଚିତ (ଧାନ)—(paddy) Stored for food purposes. ଦେ. ବି. ୧ । ଖାଦ୍ୟ ନିମନ୍ତେ ସଞ୍ଚିତ ଧାନ—1. Paddy stored for food purposes. ୨ । ( ସଂ. ଭୂର୍ଜ ) ଭୂର୍ଜ ( ଦେଖ )—2 Bhūrja ( See ) ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି. ଧାନ—Paddy. Bhuja (ଭୁଜା—ସ୍ତ୍ରୀ) খৈহন खैहनधान

ଭୁଜ କୋଟର—ସଂ. ବି. (୬ଷ୍ଠୀ ତତ୍; ଭୁଜକୋଟର)—କାଖ ସନ୍ଧି—Bhuja koṭara Arm-pit.

ଭୁଜଗ(ଙ୍ଗ)—ସଂ. ବି. ପୁଂ (ଭୁଜ=ବଙ୍କାକୃତ+ଗମ୍ ଧାତୁ+କର୍ତ୍ତୃ. ଅ; ଯେ ବକ୍ର ଭାବରେ ଗମନ କରେ)—(ଭୁଜଗମ—ଅନ୍ୟରୂପ) ୧ । ଫଣୀ; ନାଗ; ସର୍ପ—1. Serpent. ୨ । ଲମ୍ପଟ ବ୍ୟକ୍ତି—2. Lecher. (ଉ—ହବ୍ୟ ଚନ୍ଦନ ନଷ୍ଟଦୃଷ୍ଟି, କହେ ସେ ଭୁଜଙ୍ଗରେ ପ୍ରୀତି । ଉଞ୍ଜ. ବୈଦେହୀଶ-ବିଳାସ । ) ୩ । ଶଠ ବ୍ୟକ୍ତି—3. A cheat. ୪ । ସୀସକ—4. Lead. ବଣ—୧ । ଲମ୍ପଟ—1. Lecherous. ୨ । ଶଠ—2, Fraudulent; cheating. Bhujaga(ṅga)

ଭୁଜଗୀ
ଭୁଜଙ୍ଗୀ } ଅନ୍ୟରୂପ
ଭୁଜଙ୍ଗମ

ଭୁଜଗୀ(ଙ୍ଗୀ)—ସଂ. ବି. ସ୍ତ୍ରୀ ( ଭୁଜଗ+ସ୍ତ୍ରୀ. )—୧ । ନାଗୁଣୀ—1. She-serpent. ୨ । ନଷ୍ଟା ସ୍ତ୍ରୀ—2. An adulteress. ୩ । କ୍ରୂର ନାରୀ—3. A cruel woman. Bhujagī(ṅgī) (ଭୁଜଙ୍ଗମୀ—ଅନ୍ୟରୂପ)

ଭୁଜଗା(ଙ୍ଗା)ଶନ—ସଂ. ବି ( ବହୁବ୍ରୀହି; ଭୁଜଗ=ସର୍ପ ଅଟେ ଅଶନ=ଖାଦ୍ୟ ଯାହାର )—୧ । ମୟୂର—1. Peacock. ୨ । ପନ୍ନଗାଶନ; ଗରୁଡ଼—2. Garurda. ସଂ. ବଣ—ସର୍ପଭୋଜୀ—Eating serpents. Bhujagā(ṅgā)śana

**ଭୁଜଙ୍ଗ ପ୍ରୟାତ**—ସଂ. ବି. ( ବହୁବ୍ରୀହି; ଭୁଜଙ୍ଗର ପ୍ରୟାତ ବା ଗତି ପରି ପ୍ରୟାତ ଯାହାର)—ସଂସ୍କୃତ ବୃତ୍ତବିଶେଷ; (ଦ୍ର—ଏହା ଚତୁର୍ବିଂଶତି ଅକ୍ଷରରେ ସମ୍ପୂର୍ଣ୍ଣ ଓ ଚାରିଟି ଚରଣ ଯୁକ୍ତ; ପ୍ରତ୍ୟେକ ଚରଣର ୧ମ, ୪ର୍ଥ, ୭ମ ଓ ୧୦ମ ବର୍ଣ୍ଣ ଲଘୁ; ଅବଶିଷ୍ଟ ବର୍ଣ୍ଣ ଗୁରୁ)
Bhujaṅga prayāta—A sort of metre in Sanskrit.

**ଭୁଜଙ୍ଗ(ଗ) ଭୁକ୍**—ସଂ. ବି. ( ଭୁଜଙ୍ଗ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍ )—
Bhujaṅga(ga)bhuk ୧ । ମୟୂର—1. Pea-fowl.
୨ । ଗରୁଡ଼—2. Garurḍa.

**ଭୁଜ ଛୁଆଁ**—ପ୍ରାଦେ (ଗଡ଼ଜାତ) ବି ଓ ବିଣ (ସଂ. ଭୁଜ+ସ୍ପର୍ଶ, ସ୍ପୃଷ୍ଟ)—
Bhuja chhuañ ରୋଗୀର ରୋଗୋପଶମ କାମନା କରି ଦେବତାଙ୍କୁ ଉତ୍ସର୍ଗ କରାଯିବା ଟଙ୍କା ବା ଅଳଙ୍କାର (ଯାହାକୁ କି ରୋଗୀର ହାତରେ ଛୁଆଇଁ କରି ଅଲଗା ରଖି ଦିଆଯାଏ )—Money or a piece of ornament which is touched by a patient's band and deposited in the name of a Deity for being offered to the Deity on the patient's recovery from the illness.

**ଭୁଜ(ଜୁ)ଣି ହାତ**—ଦେ. ବି (ସଂ. ଭୋଜନ ଓ ହସ୍ତ)—ଡାହାଣ ହାତ—
Bhuja(ju)ṇi hāta Right hand. [ ଉ—
(ଭୁଜଣିବାହା—ଅନ୍ୟରୂପ) ଧୃଷ୍ଟଦ୍ୟୁମ୍ନଙ୍କର ଭୁଜଣି ହାତ ହତା, କାଟିଲେ ଭଲ୍ଲ କାଣ୍ଡେ ସେ ଦ୍ୱିଜ ବ୍ରହ୍ମବେତ୍ତା—କୃଷ୍ଣସିଂହ. ମହାଭାରତ. ଭୀଷ୍ମପର୍ବ ।]

**ଭୁଜ ଦଣ୍ଡ**—ସଂ. ବି (ରୂପକ)—ଦଣ୍ଡ ବା ଯଷ୍ଟି ସହିତ ତୁଳନୀୟ ବାହୁ—
Bhuja daṇḍa The arm compared to a staff.

**ଭୁଜ ଦଳ**—ସଂ. ବି (ଷଷ୍ଠୀ ତତ୍)—କରପଲ୍ଲବ—
Bhuja dala Palm of the hand.

**ଭୁଜପତ୍ର**——ଦେ. ବି—୧ । (ରାଜାଙ୍କର) ନିଜ ହାତରେ ଲେଖା ଯାଇଥିବା ପତ୍ର—1. A letter in the handwriting ( said of a king)
Bhujapatra
ଭୁଜପତ୍ର
भुजपत्र
୨ । ( ସଂ· ଭୂର୍ଜପତ୍ର ( ଦେଖ )—2.) Bhūrjapatra ( See

**ଭୁଜପାଶ**—ସଂ. ବି (ଭୁଜ ରୂପ ପାଶ)—ଆଲିଙ୍ଗନକାଳରେ ବିସ୍ତୃତ ଦୁଇ ହସ୍ତରୂପ ପାଶ ବା ବନ୍ଧନ ରଜ୍ଜୁ—
Bhujapāśa The arms encircling the person embraced, compared to a noose)

**ଭୁଜପାଶି**—ଦେ. ବି (ସଂ. ଭୁଜ ପାଶ)—ଭୁଜ ପାଶ (ଦେଖ)
Bhujapaśi Lhujapāśa (See) [ ଉ—ଭୁଜପାଶିଲୁ ଛନ୍ଦି ମୋ ଗଲେ—କବିସୂର୍ଯ୍ୟ ବଳଦେବ ରଥ. ଉ. ଗୀତ ।

**ଭୁଜ ପ୍ରତିଭୁଜ**—ସଂ. ପୁଂ (ଦ୍ୱନ୍ଦ୍ୱ)—ସମାନ୍ତରିକକ୍ଷେତ୍ରରେ ପରସ୍ପର ସମ୍ମୁଖୀନ ବାହୁଦ୍ୱୟ (ଜ୍ୟା. ଶା)—
Bhuja pratibhūja The two opposite sides of a parallelogram,

**ଭୁଜ ବନ୍ଧନ**—ସଂ. ବି. ୧ । (ତୃତୀୟା ତତ୍)—୧ । ବାହୁ ଦ୍ୱାରା ଆଲିଙ୍ଗନ—
Bhuja bandhana 1. Clasping; embrace. ୨ । (ରୂପକ କର୍ମ ଧା)—ଭୁଜ ପାଶ (ଦେଖ)—2. Bhuja-pāśa [See].

**ଭୁଜ ବ(ବ୍ୟ)ୟ**—ଦେ. ବି— ହାତ ଖରଚ—Pocket expenses.
Bhuja ba(bya)ya হাতখরচ্ hातखर्च

**ଭୁଜବଳ**—ଦେ. ବି—କ୍ଷତ୍ରିୟଙ୍କର ବଂଶୋପାଧିବିଶେଷ—
Bhujabaḷa A family title of the Kshattriyas.
(ଭୁଜବୀର୍ଯ୍ୟ—ଅନ୍ୟରୂପ) ସଂ. ବି (୬ଷ୍ଠୀ ତତ୍)—ବାହୁ ପରାକ୍ରମ—
The might of one's arms.

**ଭୁଜ ମଧ୍ୟ**—ସଂ, ବି (୬ଷ୍ଠୀ ତତ୍)—ଛାତି—The breast; the chest.
Bhuja madhya (ଭୁଜାନ୍ତର—ଅନ୍ୟରୂପ)

**ଭୁଜ ମୂଳ**—ସଂ. ବି—(୬ଷ୍ଠୀ ତତ୍)— ୧ । କାନ୍ଧ—1. Shoulder.
Bhuja mūḷa ୨ । ତେଣା—2. The root of the arm.
(ଭୁଜାମୂଳ—ଅନ୍ୟରୂପ)

**ଭୁଜ ଶିଖର**—ସଂ. ବି (୬ଷ୍ଠୀ ତତ୍)—କାନ୍ଧ—The shoulder.
Bhuja śikhara (ଭୁଜଶିରଃ—ଅନ୍ୟରୂପ)

**ଭୁଜା**—ସଂ. ବି—(ଭୁଜ ଧାତୁ+କରଣ. ଅ+ଆ)—୧ । ବାହୁ (ଜ୍ୟା.ଶା)—
Bhujā 1. The arm. ୨ । ହାତ—2. The hand. (Apte). ୩ । ସର୍ପର କୁଣ୍ଡଳ—3. The coil of a snake ( Apte ). ୪ । ଗୁଡ଼ାଇବା—4. Winding [Apte]. ଦେ. ବି—(ସଂ. ଭୁଜ୍ ଧାତୁରୁ ନିଷ୍ପନ୍ନ ଭୃଷ୍ଟ)—ଭୃଷ୍ଟ ତଣ୍ଡୁଳ ଧାନ୍ୟାଦି; ମୁଢ଼ି ଉଖୁଡ଼ା—
ভুজা Fried rice or paddy; parched grain. [ଦ୍ର—
भुजिआ, भुजा ଚୂଡ଼ା, ମୁଢ଼ି, ଚୂଡ଼ାଭଜା, ହୁଡୁମ ଆଦିକୁ ଭୁଜା ବୋଲାଯାଏ । ] (ଉ—ଭୁଜା ବୋଲି ପିଠା ବୋଲି ଖାଇ ଗଲ, ଭାଇ ବୋଲି ବାପ ବୋଲି କାହିଁ ଗଲ । ଲୋଗ )
ପ୍ରାଦେ ( ସିଂହଭୂମ ) ବି—ମୁଢ଼ି—Fried rice.
( ସମ୍ବଲପୁର ) ବି—ଜଳଖିଆ—Luncheon.

**ଭୁଜାଇବା**—ଦେ ( ପଦ୍ୟ ) କ୍ରି ( ସଂ. ଭୁଜ୍ ଧାତୁର ଣିଜନ୍ତ )—
Bhujāibā ଭୁଞ୍ଜାଇବା ( ଦେଖ )—Bhunjāibā ( See )
খাওয়ান खिलाना

**ଭୁଜା ଉଖୁଡ଼ା**—ଦେ. ବି ( ସହଚର )—ଭୁଜା ଓ ଉଖୁଡ଼ା—
Bhujā ukhurḍā Unseasoned fried paddy and fried paddy seasoned with jaggery.
মুড়ী মুড়কী
भुजालाई

**ଭୁଜାକଣ୍ଟ**—ସଂ. ବି ( ଭୁଜା+କଣ୍ଟ; ୬ଷ୍ଠୀ ତତ୍ ) - ହାତ ନଖ—
Bhujākaṇṭa The nails of the hand (Apte).

**ଭୁଜା ଖିଆ**—ଦେ. ବି—ଭୁଜା ଖାଇବା ନିମନ୍ତେ ପିଲାଙ୍କୁ ବା ଚାକରଙ୍କୁ ଦିଆଯିବା ପଇସା—Tips given to servants and children for luncheon.
Bhujā khiā
মেঠাইখিয়া
जल खा

ଭୁଜାଗ୍ର—ସଂ. ବି (୬ଷ୍ଠୀ ତତ୍, ଭୁଜ+ଅଗ୍ର)—ହାତର ଅଗ୍ରଭାଗ—
Bhujāgra The fore part of the hand.

ଭୁଜାଦଳ—ସଂ. ବି (୬ଷ୍ଠୀ ତତ୍; ଭୁଜା+ଦଳ)—କରପଲ୍ଲବ (ହ. ଶ)
Bhujādaḷa —The palm of the hand spread flat.

ଭୁଜାନ୍ତର—ଦେ. ବି—୧ । (ଅନ୍ୟ+ଭୁଜ)—ଅନ୍ୟଭୁଜ—1.
Bhujāntara Another arm. ୨ । (୬ଷ୍ଠୀ ତତ୍) ବକ୍ଷଃସ୍ଥଳ—2. The chest.

ଭୁଜାନ୍ତରାଳ—ସଂ. ବି (୬ଷ୍ଠୀ ତତ୍; ଭୁଜ+ଅନ୍ତରାଳ)—ଛାତି—
Bhujāntarāḷa The breast (Apte).
(ଭୁଜାମଧ୍ୟ—ଅନ୍ୟରୂପ)

ଭୁଜାପୀଡ଼—ସଂ. ବି (୭ମୀ ତତ୍; ଭୁଜ+ଆପୀଡ଼)—କୁଣ୍ଢାଇବା; ଆଲିଙ୍ଗନ—Clasping or folding in
Bhujāpirḍa the arms (Apte).

ଭୁଜାଭୁଜି—ଦେ. ବି (ନିରର୍ଥକ ୨ୟ ସହଚର ଶବ୍ଦ)—ଭୁଜାଅନ୍ନ
Bhujā bhuji ଜଳଖିଆ—Light refreshment consisting of fried rice etc.
ମୁଡ଼ୀ ଟୁଡ଼ୀ मुजा मुजी

ଭୁଜାଲି—ଦେ. ବି (ସଂ. ଭୁଜ=ବକ୍ର)—ନେପାଳଦେଶୀୟ ବାଙ୍କ
Bhujāli କଟୁରୀ; ଭୁଜଙ୍ଗ—A kukri; a bent bill-hook.
ଭୁଜାଲୀ, ভোজালী भुजाली

ଭୁଜିଷ୍ୟ—ସଂ. ବି. ପୁଂ (ଭୁଜ୍ ଧାତୁ=କର୍ତ୍ତୃ. ଇଷ୍ୟ)—୧ । ଦାସ;
Bhujishya ଭୃତ୍ୟ—A slave; servant. ୨ । ସଙ୍ଗୀ;
(ଭୁଜିଷ୍ୟା—ସ୍ତ୍ରୀ) ସହଚର—2. A companion. ୩ । (+ କର୍ମ ଇଷ୍ୟ)—କରସୂତ୍ର; ହାତ କଟିରେ ବନ୍ଧାଯିବା ସୂତ୍ର—3. A string worn round the wrist. ୪ । ହାତଖଡ଼ୁ—4. Wristlet; bracelet. ୫ । ରୋଗ—5. Disease (Apte). ସଂ. ବିଣ. ପୁଂ —ସ୍ୱାଧୀନ—Independent (Apte).

ଭୁଜିଷ୍ୟା—ସଂ. ବିଣ. ସ୍ତ୍ରୀ (ଭୁଜିଷ୍ୟ+ଆ)—ଭୁଜିଷ୍ୟର ସ୍ତ୍ରୀଲିଙ୍ଗ—
Bhujishyā Feminine of Bhujishya. ସଂ. ବି. ସ୍ତ୍ରୀ—୧ । ଦାସୀ—1. Maid servant (Apte). ୨ । ସେବାଦାସୀ—2. Handmaid (Apte). ୩ । ବେଶ୍ୟା—3. Harlot (Apte).

ଭୁଜୁ(ଞ୍ଜୁ, ଞ୍ଜୁ)ଣି—ଦେ. ବିଣ (ସଂ. ଭୁଜ୍ ଧାତୁ)—ଯେଉଁ ହସ୍ତଦ୍ୱାରା
Bhuju(ñja, ñju)ṇi ଖିଆଯାଏ; ଦକ୍ଷିଣ; ଡାହାଣ (ହାତ)—Right (hand); (hand) employed in taking food.

ଭୁଜୁ(ଞ୍ଜୁ)ଣି(ନି) କର—ଦେ. ବି—ଦକ୍ଷିଣ ବା ଡାହାଣ ହାତ—Right
Bhuju(ñju)ṇi(ni) kara hand. [ଉ—ଅର୍ଜ୍ଜୁନଙ୍କୁ ବାନ୍ଧିଲେ ଉନୋଟ ନାଗର, ଭୁଜୁଣି କରେ ନାଶ କରିଦେଲେ ଭର । କୃଷ୍ଣସିଂହ ମହାଭାରତ. କର୍ଣ୍ଣ ।]

ଭୁଜ୍ୟ—ଦେ. ବି (ସଂ. ଭୋଜ୍ୟ)—ଶ୍ରାଦ୍ଧ ପ୍ରଭୃତି ଦିନରେ ବ୍ରାହ୍ମଣଙ୍କୁ
Bhujya ଦିଆଯିବା ସିଧା ବା ସଜ୍ଜା—A tray of victuals given to a Brāhmaṇa on the occasion of a Srāddha. [ପ୍ର—ଯେଉଁ ବ୍ୟକ୍ତି ଶ୍ରାଦ୍ଧ (ପିଣ୍ଡ ଦାନ) କରିବାକୁ ଅକ୍ଷମ ହୁଅନ୍ତି ସେ ଶ୍ରାଦ୍ଧବାସରେ ଗୋଟିଏ ପାତ୍ରରେ ରନ୍ଧନୀୟ ସାମଗ୍ରୀମାନ ରଖି ବ୍ରାହ୍ମଣଙ୍କୁ ଦାନ କରନ୍ତି ।]

ଭୁଞ୍ଜିବା—ପ୍ରାଦେ (ବସ୍ତର) କ୍ରି (ସଂ. ଭୁଜ୍ ଧାତୁ; ଭୁଲ ହି. ଭୁନ୍ନା)
Bhuñj-bā —ଭାଜିବା—To fry; to roast.

ଭୁଞ୍ଜକ(କ)—ପ୍ରାଦେ (ଗଡ଼ଜାତ) ବି—ଉପପତି—
Bhuñjak (ka) Paramouro.

ଭୁଞ୍ଜକ୍ ପୁରେଇ—ପ୍ରାଦେ (ଗଡ଼ଜାତ) ବିଣ ଓ ବି. ସ୍ତ୍ରୀ (ଗାଳିରେ
Bhuñjak purei ବ୍ୟବହୃତ)—ବେଶ୍ୟା; ଯେଉଁ ସ୍ତ୍ରୀ ପର-ପୁରୁଷମାନଙ୍କୁ ଅପଣା ଘରକୁ ଡାକିଆଣି କାମବୃତ୍ତି ଚରିତାର୍ଥ କରାଏ—Adulterous (woman); a woman who invites paramours to and entertains them in her house.

ଭୁଞ୍ଜା—ଦେ (ପଦ୍ୟ) ବି (ସଂ. ଭୁଜ୍ ଧାତୁ)—୧ । ଭୋଜନ; ଖାଇବା—
Bhuñjā 1. Eating. ୨ । ଭୋଗ; ଉପଭୋଗ—
ভুঞ্জা 2. Enjoyment. ଦେ. ବିଣ—୧ । ଭୋଜନକାରୀ
भोजन —1. Eating. ୨ । ଭୋଗକାରୀ—2. Enjoying.

ଭୁଞ୍ଜାଇବା—ଦେ. (ପଦ୍ୟ) କ୍ରି. (ସଂ. ଭୁଞ୍ଜ୍ ଧାତୁ ଣିଜନ୍ତ)—
Bhuñjāibā ୧ । ଖୁଆଇବା—1. To feed. (ଉ—ବିଜ
ভুঞ্জান্ ଋଷି ଅତିଥିମାନଙ୍କୁ ଭୁଞ୍ଜାଇଲେ । କୃଷ୍ଣସିଂହ. ମହାଭାରତ
खिलाना ଆଦି ।) ୨ । ଭୋଗ କରାଇବା—2. To cause to; enjoy. (ଉ—ତା ଦେଇ ଦେବତା ପିତୃକୁ ଭୁଞ୍ଜାଇଲେ । କୃଷ୍ଣସିଂହ. ମହାଭାରତ ବନ ।)

ଭୁଞ୍ଜାନ—ସଂ. ବିଣ. ପୁଂ (ଭୁଜ୍ ଧାତୁ+କର୍ତ୍ତୃ ଅନ)—
Bhuñjāna ଭୋଗକାରୀ—Enjoying.
(ଭୁଞ୍ଜାନା—ସ୍ତ୍ରୀ)

ଭୁଞ୍ଜାଭୁଞ୍ଜି—ଦେ. (ପଦ୍ୟ) ବି—ଖିଆଖେଇ; ଅନ୍ୟୋନ୍ୟରେ
Bhuñjābhuñji ଖୁଆଇବା—Mutual feeding; feeding each other.

ଭୁଞ୍ଜିବା—ଦେ. (ପଦ୍ୟ) କ୍ରି (ସଂ. ଭୁଜ୍ ଧାତୁ)—୧ । ଖାଇବା—
Bhuñjibā 1. To eat. (ଉ—ସଙ୍ଗତେ ଭୁଞ୍ଜାଇ ଭୁଞ୍ଜିବ,
ভুঞ্জা खाना ପଲଙ୍କେ ଯେନ ପହୁଡ଼ିବ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।) ୨ । ଉପଭୋଗ କରିବା; ଭୋଗ କରିବା—2. To enjoy. (ଉ—ଏଣୁ ରାଜ୍ୟ ଭୁଲେ ପାଇବ ପ୍ରିୟବନ୍ଧୀ, ପୁତ୍ର କନ୍ୟା ପୂର୍ଣ୍ଣିଷ୍ଠ ଭୁଞ୍ଜିବ ସମ୍ପତ୍ତି । କୃଷ୍ଣସିଂହ. ମହାଭାରତ. ବନ ।) ୩ । ଦୁଃଖ ବା ସୁଖ ଭୋଗ କରିବା—3. To experience or pass through pain or pleasure. (ଉ—ଅପଣା କରମ ଭୁଞ୍ଜି ଯାଉଅଛୁ ମୁହିଁ । ପ୍ରାଚୀ. ପ୍ରକାଶ ଷଷ୍ଠିସେଣା ।)

ଭୁଟ୍—ଦେ. ବି—ବିନାଶ—Destruction. ଦେ. ବିଣ—ଛିନ୍ନଭିନ୍ନ—
Bhuṭ Scattered; thrown pell mell.

ଭୁଟ୍(ଟୁ)ଭୁଟ୍—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଗୁପ୍ତ କଥୋପକଥନ—Bhuṭ(ṭu)bhuṭ 1. Whisper. ୨ । ଗୁପ୍ତ କଥୋପକଥନଦ୍ୱାରା ଗୁପ୍ତ କଥାର ପ୍ରକାଶ—2. The dissemination of a thing by whisper.
କାନାକানি ফুসফুসাহট
ভুটভাট ফুদফুদ, ফুসফুস

ଭୁଟ୍(ଟୁ)ଭାଟ୍ ହେବା—ଦେ. କ୍ରି—ଭୁକ ଭୁକ କଥା ଭାଷା ହେବା—Bhuṭ(ṭu)bhāṭ hebā To talk in whispers.
কানাকানি করা, কানে কানে কথা বলা
ফুদফুদ করনা, ফুসফুসানা

ଭୁଟ୍(ଟୁ)ଭୁଟ୍(ଟୁ)—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ବୁଦବୁଦର ସ୍ଫୋଟନ ଶବ୍ଦ; ଭୁଡ଼ଭୁଡ଼—1. Bubbling sound. ୨ । ଅଜୀର୍ଣ୍ଣଜନିତ ପେଟ ଭିତରେ ବୁଦ୍‌ବୁଦ ଶବ୍ଦ—2. Bubbling sound inside the stomach due to indigestion.
Bhuṭ(ṭu)bhuṭ(ṭu)
ভুট্‌ভুট্
भटभट

ଭୁଟ(ଟା,ଟା)—ଦେ ବ. ( ସ. ଭୃଷ୍ଟ; ପ୍ରା. ଭୁଟ୍ଟୋ )—Bhuṭa(ṭā, ṭṭā) ୧ । ମକ୍କା—1. Indian corn. ୨ । ବାଜରା—2. Maize; millet.
ভুট্টা, মকাই
भुट्टा, मक्का, बाजरा

ଭୁଟାନ—ଦେ. ବ. (ନାମ) ( ସ. ଭୋଟ; ଭୋଟାଙ୍ଗ )—ଭୋଟ ନ; Bhuṭān ହିମାଳୟ ସଂଲଗ୍ନ ଦେଶୀୟ ରାଜ୍ୟବିଶେଷ—Name of a native state near Nepal in India; Bhutan. [ଦ୍ର—ଏ ପାର୍ବତ୍ୟ ରାଜ୍ୟ ସିକିମର ପୂର୍ବ ଓ ଦ ସାମର ଉତ୍ତରରେ ଅବସ୍ଥିତ । ଏଥିର ଅଧିବାସୀମାନେ ଖୁବ ପରିଶ୍ରମୀ ଓ ଭାରସହ ଓ ପର୍ବତାରୋହଣକ୍ଷମ ଅଟନ୍ତି । ଏ ଦେଶର ଘୋଡ଼ା ଉତ୍କୃଷ୍ଟ ।]
ভুটান
भुटान

ଭୁଟିଆ—ଦେ. ବଣ—ଭୁଟାନ୍ ଦେଶୀୟ—Belonging to Bhutan. (ଯଥା—ଭୁଟିଆ ଟାଙ୍ଗଣ,ଭୁଟିଆ କମ୍ବଳ, ଭୁଟିଆ ଜାତି ।) ଦେ. ବ—ଭୁଟାନ୍ ଦେଶବାସୀ ବ୍ୟକ୍ତି—An inhabitant of Bhutān.
Bhuṭiā
ভুটিয়া
भूटिया

ଭୁଟିଆ ଟାଙ୍ଗଣ—ଦେ. ବ—ଭୁଟାନ୍ ଦେଶୀୟ ଘୋଡ଼ା—A kind of hardy horse imported from Bhutan; Bhutanese pony.
Bhuṭiā ṭāṅgaṇa
[ଭୁଟିଆ ଟାନୁ(ଟୁ)—ଅନ୍ୟରୂପ]
ভুটিয়া ঘোড়া भुटिआ घोडा

ଭୁଡ଼୍(ଡ଼ୁ)ଭୁଡ଼୍(ଡ଼ୁ)—ଦେ. ଅ (ଧ୍ୱନ୍ୟନୁକରଣ)—ବୁଦବୁଦର ସ୍ଫୋଟନ ଶବ୍ଦ—The sound of bubbles bursting or coming out.
Bhuṛ(ṛu)bhuṛ(ṛu)
ভুড়্‌ভুড় भुरभुर

ଭୁଡ଼୍(ଡ଼ୁ)ଭୁଡ଼ା(ଡ଼ି, ଡ଼ୁ)—ଦେ. ବ. ( ଧ୍ୱନ୍ୟନୁକରଣ; ସ. ବୁଦ୍‌ବୁଦ )—ଭୁଡ଼ି; ବୁଦ୍‌ବୁଦ—Bubble.
Bhuṛ(ṛu)bhuṛā(ṛi, ṛu)
ভুড়ভুড়ি বুলবুলা
[ଭୁଡ଼୍(ଡ଼ୁ)ଭୁଡ଼୍(ଡ଼ୁ)କା, ଭୁଡ଼ଭୁଡ଼କା—ଅନ୍ୟରୂପ]

ଭୁଡ଼ା—ପ୍ରାଦେ. (ବାଲେଶ୍ୱର) ଅ ( ସ. ଭୂରି=ଅଧିକ )—ଥୋଡ଼ାଏ (ବାଟ); ବେଶ୍‌ଏ (ବାଟ); ଖଣ୍ଡେ ଦୂର (ବାଟ)—(walking) Some distance; (taking) a round.
Bhuṛā
(ଭୁଡ଼ାଏ - ଅନ୍ୟରୂପ)

ଭୁଡ଼ି—ଦେ. ବ. ( ଧ୍ୱନ୍ୟନୁକରଣ; ସ. ବୁଦ୍‌ବୁଦ )—୧ । ବୁଦ୍‌ବୁଦ—1. Bubble. ୨ । ପେଟର ଅନ୍ତ୍ର—2. Entrails.
Bhuṛi
ভুড়ি বুলবুলা ভুড়ি अंतड़िया

ଭୁଡ଼ି ମାରିବା—ଦେ. କ୍ରି—(ଜଳ ମଧ୍ୟରେ ବୁଡ଼ିଥିବା ମାଛ, କୁମ୍ଭୀର, ଇତ୍ୟାଦି ଜନ୍ତୁ) ନିଶ୍ୱାସ ପକାଇ ଜଳଉପରକୁ ଭୁଡ଼ଭୁଡ଼ କରି ବୁଦ୍‌ବୁଦାକାରରେ ଉଠାଇବା—To raise bubbles to the surface of water (said of animals under water).
Bhuṛi māribā
ভুড়ভুড় করা
भुरभुराना, बुलबुले उठाना
(ଭୁଡ଼ି ଦେବା—ଅନ୍ୟରୂପ)

ଭୁଡ଼(ଡ଼ୁ)ଙ୍ଗା—ଦେ. ବ—୧ । ତୂରୀ ବାଦ୍ୟ; ଭେରୀ; କାହାଳୀ—1. Trumpet. ୨ । ରଣସିଂଘା—2. Clarion.
Bhuṛa(ṛu)ṅga
ভোরঙ্গ, তুরী तुरही

ଭୁଡ଼(ଡ଼ୁ)ଙ୍ଗିଆ—ଦେ. ବ—ତୂରୀ ବଜାଇବା ଲୋକ; କାହାଳିଆ—Trumpeteer.
Bhuṛa(ṛu)ṅgiā
তুরী ওয়ালা तुरहीवाला

ଭୁଡ଼ୁକା—ଦେ. ବ. (ସ. ବୁଦ୍‌ବୁଦ)—ବୁଦ୍‌ବୁଦ—Bubble.
Buṛukā
ভুড়ভুড়ি बुलबुला

ଭୁଡ଼ୁକାଣି—ପ୍ରାଦେ. (ବାଲେଶ୍ୱର) ବ. (ମୂଳ ବ. ଭୁଡ଼ୁକୁମା)—କୁମ୍ଭୀର, ମାଛ ଆଦି ପାଣି ଭିତରେ ରହି ନିଃଶ୍ୱାସ ବାୟୁ ଦ୍ୱାରା ଯେଉଁ ଜଳ ବୁଦ୍‌ବୁଦ ଜଳ ଉପରକୁ ଉଠାନ୍ତି—The bubbles raised to the surface by alligators, fish etc from deep water.
Bhuṛukāṇi

ଭୁଡ଼ୁଭୁଡ଼ା—ଦେ. ବ—୧ । ଚିଲିକାରେ ମିଳୁଥିବା ଏକପ୍ରକାର ଚିଙ୍ଗୁଡ଼ି ମାଛ—1. A species of shrimps found in lake Chilka. ୨ । ଭୁଡ଼ୁଭୁଡ଼ା (ଦେଖ) 2. Bhuṛ-bhuṛā ( See )
Bhuṛubhuṛā

ଭୁଡ଼େ—ଦେ. କ୍ରି, ବ—ଭଡ଼ାଏ; ବେଶ୍‌ଏ (ଚାଲିବା)—(walking) Some distance; at a stretch.
Bhuṛe
এক চক্কর एक चक्कर

ଭୁଣ୍ଡା—ଦେ. ବଣ. ପୁଂ (ସ. ଭୁନ୍ଦୀ=ଉଦର)—୧ । ସ୍ଥୂଳ; ମୋଟା; ଭୁଣ୍ଡାଭୁଷୁଣ୍ଡା—1. Fat; corpulent. ୨ । ସ୍ଥୂଳୋଦର—2. Pot-bellied.
Bhuṇḍā
ভুঁড়িআ, ভুঁড়ো, ভুঁদো
तोंदवाला ( ଭୁଣ୍ଡୀ—ସ୍ତ୍ରୀ )

ଭୁଣ୍ଡାଇବା—ପ୍ରାଦେ. ( ସମ୍ବଲପୁର ) କ୍ରି—ଭଣ୍ଡାଇବା; ଠକାଇବା; ଠକିବା—To cheat; to deceive.
Bhuṇḍāibā

ଭୁଣ୍ଡି—ଦେ. ବ—୧ । ଘରୁଅର ବା ସୁନର ଅଗ୍ରଭାଗ; ଚୁଚୁକ—1. The knob at the top of a circular wooden box; nipple. ୨ । ଭଣ୍ଡି; ପାଟଫୁଲର ଅଗ୍ରଭାଗ—2. The tassel attached to a tape. ୩ । ଅନୁଲ ପେଟ; ସ୍ଥୂଳୋଦର—3. Pot-belly. ୪ । ତାଇତ, ବାଜୁ ପ୍ରଭୃତିର ସୂତାରେ ଓହୋଳିଥିବା ବଉଳ କୋଳ ଆକୃତିର ଅଗ୍ରଭାଗ—4. The tapering ball-like thing hanging from the armlet of women.
Bhuṇḍi চুঁচী चुंची
থোপ फुंदना
ভুঁড়ি तोंद

ଭୂତ(ତୁ)ଅଇର୍—ଦେ. ବ ( ସ. ଭୂତଭୈରବୀ )—ଏକପ୍ରକାର ବନ୍ୟ Bhuta(tu)airi କଣ୍ଟକୀ ଗୁଳ୍ମ (ଏଥିର ପତ୍ର ଲୋମଶ, ପତ୍ରର ବାଡ଼ ଭୂତଭୈରବୀ କଟିଛ ଓ ଫୁଲ ଶ୍ୱେତ ଏବଂ ଗାତ୍ର ଗନ୍ଧଯୁକ୍ତ )— ढोरगड़ा A wild thorny plant with leaves and flowers of strong odour; Premna Integrifolia.

ଭୂତଈର, ଭୂତେଁ(ତୋ, ତୌ)ର — ଅନ୍ୟରୂପ

[ ଦ୍ର—ଗ୍ରାମ୍ୟ ଅଞ୍ଚଳରେ ଏହାକୁ ଦୋରଣ୍ଡା କହନ୍ତି ଓ ଏ ଗଛ ବନ୍ଧୁ ସଙ୍ଗାରେ ଥିବାରୁ ସମ୍ଭବ ଗୋଟିଏ ଅଂଶର ନାମ ମଧ୍ୟ ଦୋରଣ୍ଡା ହୋଇଅଛି । କଟକ ସହରରେ ମଧ୍ୟ ଗ୍ରାମ୍ୟପାଶ ପଡ଼ିଆରେ ଏ ଗଛ ବହୁତ ହୁଏ । ଏହାର ଫୁଲ ନାଲି ଓ ଫଳଗୁଡ଼ିକ ଶ୍ୱେତ କାହାଳ ପରି; ଡେଙ୍ଗରେ ପେଣ୍ଡା ପେଣ୍ଡା ହୋଇ ଫୁଲ ଓ ଫଳ ଧରେ; ଫୁଲ ବର୍ଷାଦିନେ ଫୁଟେ; ଏହାର ମୂଳ ଔଷଧରେ ଲାଗେ—ଯୋଗେଶଚନ୍ଦ୍ର । ]

ଭୂତା—ଦେ. ବଣ—୧ । ଓଛ୍ର—1. Foolish; stupid. ୨ । ଭୂତ Bhutā ଭୂତୋ ଗୁଲ୍ଫ ପରି କଦାକାର ଓ କଳା—2. Unseemly like a ghost. ଭୂତଭୁତୋ भुत ଦେ. ବ. ପୁଂ—( ଭୂତିଆ—ଅନ୍ୟରୂପ ) ପୁରୁଷଙ୍କୁ ଦିଆଯିବା ନାମ—A name given to males.

ଭୂତା(ତେ)ଇବା—ଦେ. କ୍ରି—ଭଣ୍ଡାଇବା; ଠକାଇବା—To cheat. Bhutā(te)ibā ঠকান ठगाना ( ଭୂତିଆଇବା—ଅନ୍ୟରୂପ )

ଭୂତି—ପ୍ରାଦେ. ( ସମ୍ବଲପୁର ଓ ସିଂହଭୂମ ) ( ସ. ଭୃତି )—ମଜୁରି; Bhuti ଫଳଆ ବା ମୂଲଆକୁ ଦିଆଯିବା ଧାନ ମୂଲ—Wages in kind given to a day-labourer.

ଭୂତିଆ—ଦେ. ବ. ପୁଂ ( ଅନାଦରାର୍ଥକ )—ଭୂତା ନାମକ ବ୍ୟକ୍ତିର Bhutiā ଡାକ ନାମ—Corruption of the name Bhutā. ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବ—ଏକଜାତୀୟ ପାଣିଛୁଆଁ ଗଉଡ଼—A class of cowherds. ପ୍ରାଦେ. ( ଉକ୍ତି ଭୂଷା ) ବ—ମୂଲିଆ—Labourer.

ଭୂତିଆ(ହା)ର୍—ପ୍ରାଦେ. (ସମ୍ବଲପୁର) ବ.(ସ. ଭୃତ; ଭୃତିହର; ଭୃତ୍ୟ)— Bhutiā(hā)r ଦୈନିକ ଧାନ ମୂଲ ନେଇ କାମ କରିବା ମୂଲିଆ— ( ଭୂତିଆ[ସ୍ତ୍ରୀ,ହା]ରେନ୍—ସ୍ତ୍ରୀ ) A day labourer who is paid in kind.

ଭୂଦାରଚଣ୍ଡୀ—ଦେ. ବ ( ନାମ )—ନୀଳଗିରି ଗଡ଼ଜାତର ପ୍ରସିଦ୍ଧ Bhudārachaṇḍī ଠାକୁରାଣୀ—The celebrated Deity of the Nīlagiri Oriya State.

ଭୂଦେଇ ବାଳୁଙ୍ଗା—ପ୍ରାଦେ. ( ବାଲେଶ୍ୱର ) ବ—ଯେଉଁ ବାଳୁଙ୍ଗା Bhudei bāḷungā ଧାନ ଉପରେ ଧଳା ରଙ୍ଗର ବାଳ ଭଳି ଛଅଁଟି ଥାଏ—A kind of paddy with white hairlike stings on.

ଭୂଦେଇ ବୋଇତାଳ—ପ୍ରାଦେ. ( ବାଲେଶ୍ୱର ) ବ—ଉପର କଳା Bhudei boitāḷa ବା ଗାଢ଼ ସବୁଜ ଏବଂ ଭିତର ସାମାନ୍ୟ ଫଳଦିଆ ଏକପ୍ରକାର ବୋଇତ କଖାରୁ—A species of red gourd.

ଭୂନା—ଦେ. ବ—୧ । ( ଅଶ୍ଳୀଳ ) ଯୋନି—1. Vagina Bhunā ୨ । ଭୁଇଁଆ ( ଦେଖ )—2. Bhuiāñ ( See )

ଭୂନାଭୁଜା—ପ୍ରାଦେ ( କଣପୁର, ଗଡ଼ଜାତ ) ବ—ଭୁଜାଭୁଜାରେ ତିଆର Bhunābhujā ଖାଦ୍ୟ ସାମଗ୍ରୀବିଶେଷ—A kind of confectionery prepared from fried paddy.

ଭୂନି—ଦେ. ବ ( ସ. କ୍ଷୌମ )— ଧଡ଼ି ଓ ମୁଣ୍ଡି ନ ଥିବା ବିଧବାର Bhuni ପରିଧେୟ ଧଳା ଲୁଗା—A white cloth without borders worn by widows.

ଭୂନ୍ଦଡ଼—ଦେ. ବଣ—ଓଛ୍ର; ବୁଦ୍ଧିହୀନ—Stupid. Bhundarḍ ভোঁদড়, ভোঁদা भोन्दू (ଭୂନ୍ଦା[ନ୍ଦି]—ଅନ୍ୟରୂପ)

ଭୂନ୍ଦାମୁହାଁ—ଦେ. ବଣ—ଚଉଡ଼ ଓ ଫୁଲିବା ମୁହଁଯୁକ୍ତ—Having Bhundāmuhāñ a swollen and frowning face. ভূঁদোমুখো मोँदमुहाँ ( ଭୂନ୍ଦା[ନ୍ଦୀ]ମୁହିଁ—ସ୍ତ୍ରୀ )

ଭୁବନ—ସ. ବ (ଭୂ ଧାତୁ+କର୍ତ୍ତୃ.ଅନ; କଲାଚନ)—୧ । ସପ୍ତସ୍ୱର୍ଗ ଓ Bhubana ସପ୍ତପାତାଳ ସମନ୍ୱିତ ବିଶ୍ୱ—1. The universe; ভুবন भुवन the creation consisting of seven upper and seven nether worlds. [ଦ୍ର—ସପ୍ତସ୍ୱର୍ଗ—ଭୂ,ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ । ସପ୍ତପାତାଳ—ଅତଳ, ବିତଳ, ସୁତଳ, ତଳ, ତଳାତଳ, ରସାତଳ, ପାତାଳ । ] ୨ । ପୃଥିବୀ—2. The earth. ୩ । ଦେଶ—3. Country; region. ୪ । ବାସସ୍ଥାନ; ଘର—4. Residence; house. ୫ । ଜଳ—5. Water. ୬ । ଏକକଉଡ଼ିର ଚଉଦ ଭାଗର ଏକଭାଗ—6. One fourteenth of a cowrie. ୭ । ଜୀବ—7 A being; a living creature ( Apte ). ୮ । ବିଭବଶାଳୀ ହେବା—8. Becoming prosperous ( Apte ). ଦେ. ବ. ନାମ—ଭୁବନେଶ୍ୱର ବା ଭୁବନାନନ୍ଦ ନାମକ ବ୍ୟକ୍ତିର ଡାକ ନାମ—A name for calling people named Bhubaneśwara and Bhubanānanda.

ଭୁବନା, ଭୁବନ — ଅନାଦରାର୍ଥକ

ଭୁବନଜ—ଦେ. ବ ( ସ. ଭୂମିଜ=ନରକାସୁର )—ମାରୀଚ (ଅସୁର)— Bhubanaja Demon Mārīcha. [ ଦ୍ର—ବକ୍ଷ ବାଣ ପବନେ ଭୁବନଜ ଜବନେ ଦେଲେ ସେ ପକାଇ ଅବ୍ଧି ରେ—ଉପ. ବୈଦେହୀଶବିଳାସ । ]

ଭୁବନତ୍ରୟ—ସ. ବ—ତ୍ରିଭୁବନ; ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—The Bhubanatraya three worlds ( e. g. the heaven, the earth and the nether region ).

ଭୁବନ ପାବନ - ସ. ବଣ ( ୬ଷ୍ଠୀ ତତ୍; ଭୁବନ+ପାବନ )— Bhubana pābana ଜଗଦ୍‌ତ୍ରାତା—The Savior of the world.

ଭୁବନପାଳ—ସଂ· ବି ( ୬ଷ୍ଠୀ ତତ୍; ଭୁବନ+ପାଳ )—ଜଗତ୍ପାତା—
Bhubanapāḷa The Protector or Lord of the world.

ଭୁବନ ବିଖ୍ୟାତ—ସଂ. ବିଣ ( ୭ମୀ ତତ୍; ଭୁବନ+ବିଖ୍ୟାତ )—
Bhubana bikhyāta ଜଗଦ୍ବିଖ୍ୟାତ—Renowned throughout the world.
(ଭୁବନବିଶ୍ରୁତ, ଭୁବନବିଦିତ—ଅନ୍ୟରୂପ)

ଭୁବନବ୍ୟାପୀ—ସଂ. ବିଣ.ପୁଂ (ଭୁବନ+ବି+ଆପ୍ ଧାତୁ+କର୍ତ୍ତୃ.ଇନ୍)—
Bhubanabyāpi ଜଗଦ୍ବିଖ୍ୟାତ—Diffused through the universe; pervading the universe.
( ଭୁବନବ୍ୟାପିନୀ—ସ୍ତ୍ରୀ )

ଭୁବନ ମୋହନ—ସଂ. ବିଣ. ପୁଂ ( ୬ଷ୍ଠୀ ତତ୍; ଭୁବନ+ମୋହନ)—
Bhubana mohana ବିଶ୍ୱମୁଗ୍ଧକାରୀ—Charming the universe ଦେ. ବି—ଲୋକଙ୍କ ଦିଆଯିବା ନାମ—A name given to males.

ଭୁବନାନନ୍ଦ—ସଂ. ବି. ( ୬ଷ୍ଠୀ ତତ୍; ଭୁବନ+ଆନନ୍ଦ )—୧ । ଜଗତର
Bhubanānanda ଆନନ୍ଦ—1. The delight of the universe. ୨ । (ବହୁବ୍ରୀହି) ପରମେଶ୍ୱର—2. God.
ଦେ· ବି. ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

ଭୁବନାଶ୍ରୟ—ସଂ. ବି. (୬ଷ୍ଠୀ ତତ୍; ଭୁବନ+ଆଶ୍ରୟ)—ପୃଥିବୀର ଆଶ୍ରୟ-
Bhubanāśraya ସ୍ଥଳ—The refuge of the universe.

ଭୁବନେଶ୍ୱର—ସଂ. ବି. ( ୬ଷ୍ଠୀ ତତ୍; ଭୁବନ+ଈଶ୍ୱର )—
Bhubaneśwara ୧ । ଜଗଦୀଶ୍ୱର—1. God ୨ । ଶିବ; ମହାଦେବ—2. Śiba. ୩ । ପୁରୀ ଜିଲ୍ଲାର ତୀର୍ଥବିଶେଷ—3. Name of a place of Hindu pilgrimage in the district of Puri in Orissa. ୪ । ଭୁବନେଶ୍ୱରସ୍ଥ ଶିବ ଲିଙ୍ଗ; ଲିଙ୍ଗରାଜ—4. Name of the image of Śiba at Bhubaneśwara.
[ଦ୍ର—ଲିଙ୍ଗରାଜ ମନ୍ଦିରର ପତ୍ତନ ରାଜା ଯଯାତି କେଶରୀ ପକାଇଥିଲେ । ପରେ ଲଲାଟେନ୍ଦୁ କେଶରୀ ଏହି ମନ୍ଦିର-କାର୍ଯ୍ୟ ସମାପ୍ତ ଓ ଏହାର ପ୍ରତିଷ୍ଠା କଲେ । ଭୁବନେଶ୍ୱର ଓ ତନ୍ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଅନେକ ଉତ୍କୃଷ୍ଟ ଶିଳ୍ପକଳ ଓ କାରୁକାର୍ଯ୍ୟବିଶିଷ୍ଟ ମନ୍ଦିରମାନ ଅଛି । ] ଦେ. ବି—ଲୋକଙ୍କ ନାମ—Name given to males.

ଭୁବନେଶ୍ୱର କବିଚନ୍ଦ୍ର—ଦେ. ବି(ନାମ)-ଓଡ଼ିଆକବି—Name of an
Bhubaneśwara kabichandra Oriya poet.
[ଦ୍ର—ଏ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ନିକଟ ହିଞ୍ଜିଲ ଗ୍ରାମର ଲୋକ; ସେ ଜାତିରେ ବ୍ରାହ୍ମଣ; ୧୮୭୬ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୯୬ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କ ରଚିତ ଗ୍ରନ୍ଥମାନଙ୍କ ମଧ୍ୟରେ ସୀତେଶବିଳାସ, ବାସୁଦେବ ବିଳାସ, ପ୍ରବନ୍ଧମାଳା ପ୍ରଧାନ । ତାରିଣୀଚରଣ ଉତ୍କଳ ସାହିତ୍ୟର ଇତିହାସ ।]

ଭୁବନେଶ୍ୱର ବଡ଼ ପଣ୍ଡା—ଦେ. ବି. ନାମ—ଜନୈକ ଉତ୍କଳୀୟ ପଣ୍ଡିତ
Bhubaneśwara baṛda paṇḍā ଓ ସୁଗ୍ରନ୍ଥକାର—Name of a learned Paṇḍit and author.
[ଦ୍ର—ଏ ଉତ୍କଳୀୟ ବ୍ରାହ୍ମଣ, ଭଗିରଥ ଗଡ଼ଜାତବାସୀ, ସ୍ମୃତିକାର ଓ ଅଲଙ୍କାର ଶାସ୍ତ୍ରପ୍ରଣେତା । ରାଜାଙ୍କ ବିରାଗଭାଜନ ହୋଇ ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।]

ଭୁବନେଶ୍ୱରୀ—ସଂ. ବି. ସ୍ତ୍ରୀ. ( ଭୁବନେଶ୍ୱର+ଈ )—୧ । ପାର୍ବତୀ;
Bhubaneśwari ଦୁର୍ଗା—1. Durgā. ୨ । ଦଶ ମହାବିଦ୍ୟା ମଧ୍ୟରେ ଦେବୀ ତ୍ରିପୁରସୁନ୍ଦରୀ—2. One of the ten Tantric incarnations of Durgā.
[ଦ୍ର—ଏ ଚତୁର୍ଭୁଜା, ପାଶାଙ୍କୁଶବରାଭୟହସ୍ତା, ତ୍ରିନୟନା, ଅର୍ଦ୍ଧେନ୍ଦୁଶେଖରା, ରକ୍ତବର୍ଣ୍ଣା, ସୁଭୂଷଣା ଓ ପଦ୍ମାସନା ରୂପରେ କଳ୍ପିତା ।]

ଭୁବନ୍ୟୁ—ସଂ. ବି (ଭୂ. ଧାତୁ+କର୍ତ୍ତୃ· ଅନ୍ୟୁ)—୧ । ପ୍ରଭୁ—
Bhubanyu 1, Master; lord. ୨ । ସୂର୍ଯ୍ୟ—2. The sun.

ଭୁବଃ—ସଂ· ଅ (ଭୂ. ଧାତୁ+କର୍ତ୍ତୃ. ଅସ୍)—୧ । ପୃଥିବୀର ଉପରସ୍ଥ
Bhubaḥ ସପ୍ତସ୍ୱର୍ଗର ଅନ୍ତର୍ଗତ ଭୁବନ, ଅନ୍ତରୀକ୍ଷ—1. The atmosphere; ether; the world or sphere immediately above the earth. ୨ । ଗାୟତ୍ରୀର ବ୍ୟାହୃତିତ୍ରୟ (ଭୂଃ,ଭୁବଃ,ସ୍ୱଃ) ମଧ୍ୟରୁ ଏକ—2. One of the three Byāhṛutis.
୩ । ଚନ୍ଦ୍ର—3. The moon. ୪ । ଅଗ୍ନି—4. Fire.

ଭୁବି—ଦେ. (ପଦ୍ୟ) ବି. ( ସଂ. ଭୁବି=ପୃଥିବୀରେ )—ପୃଥିବୀ—The
Bhubi world; the earth. ଉ—ଦିବରେ ନାହିଁ ଭୁବିରେ ନାହିଁ ଅଛି ନନ୍ଦନୀ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )

ଭୂବୀନ୍ଦ୍ର—ଦେ. ବି (ଭୁବି+ଇନ୍ଦ୍ର)—ରାଜା—
Bhubīndra A king.

ଭୁୟାଁ (ଇତ୍ୟାଦି)—ଦେ. ବି—ଭୂଇଁଆ ଇତ୍ୟାଦି (ଦେଖ)
Bhuyāñ [etc] Bhuiāñ etc [See].

ଭୁୟାଁ କରଣ—ଦେ. ବି—ଏକଜାତୀୟ କ୍ଷତ୍ରିୟ—
Bhuyāñ karaṇa A class of Kshatriyas.

ଭୁୟାଁର—ଦେ. ବି—ଭୂଆଁଳ ଗଛ (ଦେଖ)—
Bhuyāñra Bhuāñḷa (tree) (See)

ଭୁରୁକି—ଦେ. ବି—ଭୁରୁକି ଦେଖ)
Bhur-ki Bhuruki (See).

ଭୁଳୁ(ରୁ)କୁଣ୍ଡା (ଇତ୍ୟାଦି)—ଦେ. ବିଣ. ପୁଂ—ଭାର୍କୁଣ୍ଡା ଇତ୍ୟାଦି
Bhuḷu[ru]kuṇḍā (ଦେଖ)—Bhārkuṇḍā etc (See).
(ଭୁର୍କୁଣ୍ଡା—ଅନ୍ୟରୂପ)

ଭୁର(ରୁ)ଚୁକା—ଦେ. ବି—( ସଂ. ଭୟଚକିତ )—୧ । ଭୁଚୁକା;
Bhur-[ru]chukā ଗୋଡ଼ାଇ ଥିବା କୁକୁରକୁ ଶୃଗାଳର ଏଡ଼ିବା ଭୁଚୁକା କର୍ମ—The jackal's evading the pursuit of a dog. ଶେୟାଲଫାଁକୀ [ଦ୍ର—ବିଲୁଆମାନଙ୍କୁ କୁକୁର ଆକ୍ରମଣ କରିବାକୁ

ଗୋଡ଼ାଇଥିବାବେଳେ କୁକୁରକୁ ବିଲୁଅ ପଛରେ ଲାଗିଥିବା ଅବସ୍ଥା ଦେଖିଲେ ବିଲୁଅ ଭୟଚକିତ ହୋଇ ଗୋଟିଏ ଉତ୍କଟ ଦୁର୍ଗନ୍ଧ ଅଧୋବାୟୁ ତ୍ୟାଗ କରେ ଓ ତନ୍ନିମିତ୍ତ ଅସହ୍ୟ ଦୁର୍ଗନ୍ଧକୁ କୁକୁର ସମ୍ଭାଳି ନ ପାରି ଅଟକିଯାଏ ଓ ଇତ୍ୟବସରରେ ବିଲୁଅ ପଳାଇଯାଏ । ଏହାକୁ ଭୁରଚକା ବା ଭୁରୁକା ବୋଲଯାଏ । ] ୨ । ଭଣ୍ଡାଇବା; ଧପା ମାରିବା— 2. Cheating.

**ଭୁର(ରୁ)ଚୁକା ଦେବା**—ଦେ. କ୍ରି—୧ । (ବିଲୁଅ) ଗୋଡ଼ାଇଥିବା Bhur(ru)chukā debā କୁକୁରକୁ ଏଡ଼ିବା—1. To elude ফাঁকীদেওয়া the pursuit of the chasing hound (said of a jackal).
ଭୁରଚୁକ ବଢ଼ା(ଢେ)ଇବା, (ମାରିବା) } ଅନ୍ୟରୂପ
୨ । ଧପ୍ପା ମାରିବା; ଠକାଇବା—2. To elude a person; to cheat a person.

**ଭୁରଚୁକିବା**—ଦେ. କ୍ରି (ସଂ. ଭୟଚକିତ)—ଭୟ ଚକିତ ହେବା— Bhurchukibā To become dumb-founded. হকচকান भुचकना

**ଭୁର(ରୁ,ରି) ଭୁଜା**—ଦେ. ବି ( ସଂ. ଭୁରି ଭୋଜନ )—ସାମାନ୍ୟ କିଛି Bhur(ru,ri)bhujā ଭଜାଯାଇଥିବା ସାମଗ୍ରୀ ବା କୁଡ଼ୁମ୍, ଅନ୍ନ—भुजा A small quantity of fried rice etc for light চালচিড়ে tiffin purposes. [ ଭୁ—ଘରେ ନ ଥାଏ ଭୁରଭୁଜା ବେଶ କରୁଥାଏ ଦୁର୍ଗୋପୂଜା । ଢଗ । ]

**ଭୁରୁ**—ପ୍ରାଦେ (ସମ୍ବଲପୁର) ବି—ଧୂଆଁ ଖାଇବା ପାଇଁ ଚିଲମରେ Bhur-rā ସଜା ହେବା ଧୂଆଁପତ୍ର ଗୁଣ୍ଡ—Tobacco-powder for smoking.

**ଭୁରୁ ଉଡ଼ାଇବା**—ପ୍ରାଦେ (ସମ୍ବଲପୁର) କ୍ରି—ଚିଲମରେ ଧୂଆଁ ଖାଇ Bhur-rā urdāibā ମୁହଁରୁ ଧୂଆଁ ଛାଡ଼ିବା—To puff out smoke after smoking tobacco.

**ଭୁରୁଲିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଭୁଲିବା (ଦେଖ) Bhur-libā Bhulibā (See).

**ଭୁରୁଶା**—ପ୍ରାଦେ (ସମ୍ବଲପୁର) ବିଣ-ଅଂଶୁଳାଯୁ; ଅଂଶୁଯୁକ୍ତ ଲୋମଯୁକ୍ତ— Bhur-sā Covered with fibrous furs.

**ଭୁରୁଶା ପୋକ**—ପ୍ରାଦେ (ସମ୍ବଲପୁର) ବି—ସମ୍ପାଳୁଆ ପୋକ— Bhur-sā pok Caterpillar; the wooly bear.

**ଭୁର(ରୁ)ସୁଙ୍ଗ(ଙ୍ଗା)**—ଦେ. ବି—ଭୁରସଙ୍ଗା (ଦେଖ) Bhur[ru]sunga(ngā) Bhur-sangā (See).

**ଭୁରା**—ଦେ. ବି (ଅ. ବୁରାଦା=ଗୁଣ୍ଡା)—୧ । ଶୁଖିଲା ମୋଟା ଗୁଡ଼; ଖଣ୍ଡ; Bhurā ଏକପ୍ରକାର ଗୁଡ଼; ଏକ ପ୍ରକାର ଚୂନା ଚିନି—1. A kind গুঁড়ো গুঁড়ো গুঁড়া বুরাদা of molasses; raw brown sugar; rough unrefined sugar. ୨ । ଗୁଣ୍ଡ— 2. Powder.

**ଭୁରି**—ଦେ. ବି—ବୁଦବୁଦ—Bubble. Bhuri ভুড়ভুড়ি बिलबिला

**ଭୁରିଖଡ଼(ର)**-ପ୍ରାଦେ (କଟକ) ବି—ତୃଣବିଶେଷ (ଏହା ଛୁଆଣିରେ ଲାଗେ)- Bhurikhard(r) A kind of grass used for thatching purposes.

**ଭୁରି ଭାରି** -ଦେ. ବି—ଉଦ୍ଧତ; ଫାଙ୍କି— Bhuri bhāri Effrontery.

**ଭୁରି ସିନ୍ଦୂର**—ପ୍ରାଦେ (ବାଲେଶ୍ୱର) ବି—ଫିକାସିନ୍ଦୂର— Bhuri sindūra Vermilion of faint red colour.

**ଭୁରୁ**—ଦେ. ବି (ସଂ. ଭ୍ରୂ)—ଭ୍ରୂ; ଭ୍ରୂଲତା—Eye-brow. ( ଭୁ— Bhuru କେଉଁ ବଦନ ବଙ୍କା ଭୁରୁ, ଯାକୁ ଜାଣିବ ଠେଙ୍ଗ ভুরু भौं ଗୁରୁ । ଢଗ । )

**ଭୁରୁକି**—ଦେ. ବି—ଚୂର୍ଣ୍ଣ; ଚୂନା—Powder. Bhuruki গুঁড়ো बुरादा, बुकनी, भुरका

**ଭୁରୁଡ଼(ଡ଼ା,ଡ଼ୁ)**—ଦେ. ବି—୧ । ଦମ୍ଭପୂର୍ବକ ପ୍ରତ୍ୟାଖ୍ୟାନ କରିବା; ଦମ୍ଭ- Bhururda(rdā;rdu) ପୂର୍ବକ ସତକଥାକୁ ନ ମାନିବା; ফাক্কী ଧାର୍ଷ୍ଟ୍ୟତା—1. Effrontery. ୨ । ଠକାମି— ढिठाई 2. Cheating. ୩ । ଦାମ୍ଭିକତାପୂର୍ବକ ନିଜ ଦୋଷର ଅସ୍ୱୀକାର—3. Brazen-faced denial of one's guilt.

**ଭୁରୁଡ଼ା**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଦମ୍ଭପୂର୍ବକ ସତ୍ୟକଥାକୁ Bhururdā ନ ମାନେ; ଦାମ୍ଭିକ—A person who has ढीठ ঠেটা ঢীট effrontery; impudent.

**ଭୁରୁଡ଼ା(ଡ଼େ)ଇବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ପ୍ରବର୍ତ୍ତାଇବା— Bhurudā(rde)ibā 1. To persuade; to incite. ୨ । ଉତ୍ତେଜନା କରିବା—2. To instigate.

**ଭୁରୁଡ଼ା(ଡ଼େ)ଇବା**—ଦେ. କ୍ରି—୧ । ଦମ୍ଭପୂର୍ବକ ନ ମାନିବା—1. To Bhururdā(rde)ibā deny a thing with effrontery. দোষ নামানা, খাপান ୨ । ଧପାଇବା—2. To defraud. उतानघाइ ୩ । ଠକିବା—3. To cheat.
ଭୁରୁଡ଼ୁ କାଢ଼ିବା, ଭୁରୁଡ଼ ବଢ଼ା(ଢେ)ଇବା, ଭୁରୁଡ଼ୁ ମାରିବା } ଅନ୍ୟରୂପ
୪ । ସତ୍ୟ କଥାକୁ ନ ମାନିବା— 4. To deny a true fact. [ ଭୁ—ସୁନ୍ଦରୀ ବୃନ୍ଦ ଆଗରେ ଭୁରୁଡ଼ାଇ କଥା । ଦିଶିଣ କହିଲେ ଦ୍ରୁପଦ ମହାରଥୀ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ । ]

**ଭୁରୁଡ଼ି**—ପ୍ରାଦେ ( ଯାଜପୁର ) ବି—ଭୁରୁଡ଼— Bhurudi Effrontery.

**ଭୁରୁଡ଼ି କୋଳି**—ପ୍ରାଦେ ( ଯାଜପୁର )—ଏକପ୍ରକାର ଖାଦ୍ୟ କୋଳି— Bhururdi koli A kind of edible plum.

**ଭୁରୁ(ର)ଥାଇବା**—ପ୍ରାଦେ ( ସମ୍ବଲପୁର ) କ୍ରି—ମନବୋଧ କରି Bhuru(r)thāibā କହିବା; କଥା କହି ମନବୋଧ କରିଦେବା— To bring about one's satisfaction with sweet words; to coax.

(ଭଙ୍ଗି ଗୁହ୍ମି) **ଭୁରୁ ନୀଳ ଭୁଜଙ୍ଗୀ ଭ୍ରମର ଜୀବସଙ୍ଗୀ**—( କବିସୂର୍ଯ୍ୟଙ୍କ (Bhangichāhāni) Bhuru nila bhujangi bhramara jibasangi କଳୋଲଶତକ୍ମ 'ଭ' ଗୀତରୁ ଉଦ୍ଧୃତାଂଶ )—

ଚ୍ଛେ ଜୀବସଙ୍ଗୀ ଅର୍ଥାତ୍ ପ୍ରାଣବନ୍ଧୁ ! ( ଶ୍ରୀକୃଷ୍ଣଙ୍କର ) ଭ୍ରୂଲତାରୂପ ନୀଳସର୍ପୀର ଭ୍ରମ ଅର୍ଥାତ୍ ଭ୍ରମଣର ଭଙ୍ଗୀକୁ ଶୁଣ୍ହାଁ, ଶ୍ରୀକୃଷ୍ଣ ବୃନ୍ଦାବନରେ ବଂଶୀବାଦନ କରୁଥିବା ବେଳେ ଭ୍ରୂଲତାର ଯେପରି ଚାଳନା କରୁଥିଲେ ତାହାକୁ ଦେଖିବା ପାଇଁ ଲଳିତା ସଖିଙ୍କୁ ସମ୍ବୋଧନ କରି କହୁଅଛନ୍ତି— ( A passage in the song of Kabisūrjya ) The play of Srikrushṇa's eyebrow (while blowing the flute ) looks like a moving-blue serpent. [ ଦ୍ର— କବିସୂର୍ଯ୍ୟଙ୍କ କଣ୍ଠରେ ଏହା ଗୋଟିଏ ସନ୍ଦେହଜନକ ସ୍ଥଳ ଥିବାରୁ ଏଠାରେ ଏଥିର ଅର୍ଥ ଦିଆଗଲା, ଲୋକେ ଏହାର ପ୍ରକୃତ ଅର୍ଥ ବୁଝି ନ ପାରି 'ଭ୍ରମରୀ ଜୀବସଙ୍ଗି' ପ୍ରଭୃତି ନାନାପ୍ରକାର ପାଠାନ୍ତର ଗ୍ରହଣ କରନ୍ତି । ]

ଭ୍ରୂ ଭଙ୍ଗ—ଦେ. ବି ( ସଂ. ଭ୍ରୂଭଙ୍ଗୀ )—ଭ୍ରୂକ୍ଷେପ; ଖାତିର— Bhuru bhanga Slightest regard or consideration.
ଖାତীর ख़ातिर

ଭୁରୁ(ରୂ)ଭୁରା—ଦେ. ବି—ଭୂମି ଖୋଳିବା କୀଟଙ୍କଦ୍ୱାରା ମୃତ୍ତିକାର ଗୁଣ୍ଡା Bhuru(r)bhurā —Pulverised earth due to the boring of certain insects.

ଭୁରୁସ(ସୁ) ଙ୍ଗ (ଙ୍ଗା)—ଦେ. ବି ( ସଂ. ଭୂରସୁଗନ୍ଧ; ଅନ୍ୟ ସଂ. ନାମ Bhurusa(su) ṅga (ṅgā) କାଳଶାକ, କୃଷ୍ଣନିମ୍ବ; ସୁରଭିନିମ୍ବ ) [ଭୁର୍ଦ୍ଦ(ସୁ)ଙ୍ଗ(ଙ୍ଗା)—ଅନ୍ୟରୂପ] —ନାରଙ୍ଗାଦିବର୍ଗର ଶ୍ରେଷ୍ଠ ତରୁ
ভুরশুঙ্গা; ভুর্স্ঙ্গা [ ଦ୍ର—ଏଥିର ପତ୍ର କାମିନୀଗଛର ପତ୍ର ପରି,
बरसङ्गा; हर्रार; कटनिम ଜନ୍ତୁ ଖୁବ୍ ସୁଗନ୍ଧଯୁକ୍ତ । ତରକାରୀରେ ଓ ତେ. କରିବେ ପାକୁ କାଞ୍ଜିରେ ଏ ପତ୍ରକୁ ବଘାରନ୍ତି ଓ ଚଟଣି କରନ୍ତି । ]—Curry-leaf tree; Murraya Keonigii; Bergera Keonigii.

ଭୁରୁଶୁଣ୍ଡା—ପ୍ରାଦେ (ଅଳ) ବି—ଧାନ ଗଛର ରୋଗବିଶେଷ । (ଏଥିରେ Bhuruśuṇḍā ଆକ୍ରାନ୍ତ ହେଲେ ଧାନଗଛରୁ ଫଳ ନ ଥିବା ଗୋଟିଏ କେଣ୍ଡା ବାହାରେ ଓ ଧାନ ଗଛ ମରିଯାଏ— A malady (blight) of the paddy plant wherby a bunch of grain without rice comes out and the plant dies shortly after.

ଭୁର୍ଚୁକା—ଦେ. ବି—ଭୁରୁଚୁକା ( ଦେଖ )
Bhurchuckā Bhuruchukā (See)

ଭୁଲ୍—ଦେ. ବି ( ସଂ. ଭ୍ରମ, ପ୍ରା. ଭୁଲ୍ଲ, ସଂ. ଭୋଳ=ବିହ୍ୱଳ, ମେଦନୀ ) Bhul —୧ । ଭ୍ରମ, ଭ୍ରାନ୍ତି—1. Mistake; error; (ଭୁଲୁ—ଗ୍ରାମ୍ୟରୂପ) oversight. ୨ । ବିସ୍ମରଣ—2.
ভুল Forgetting. ୩ । ଦୋଷ—3. Fault. ୪ ।
भुल ଅଶୁଦ୍ଧି—4. Incorrectness. ବିଣ—୧ । ଭ୍ରାନ୍ତ —1. Mistaken; erroneous. ୨ । ଅଶୁଦ୍ଧ— 2. Incorrect; wrong.

ଭୁଲ୍ କରିବା—ଦେ. କ୍ରି—ଭ୍ରମ କରିବା – To commit a mistake or oversight
Bhul karibā ভুল করা
भुल करना

ଭୁଲ୍ ଚୁକ୍—ଦେ. ବି ( ସହଚର )—ଭ୍ରମ ପ୍ରମାଦ—Mistake. Bhul chuk (ଭୁଲ ଭଟକା, ଭୁଲ୍ ଭ୍ରାନ୍ତି—ଅନ୍ୟରୂପ )
ভুলচুক; ভুলভ্রান্তি भुलाभटका; भुलचूक

ଭୁଲ୍ ଦେଖା(ଖେ)ଇବା—ଦେ. କ୍ରି—ଅନ୍ୟର ଭ୍ରମ ପ୍ରଦର୍ଶନ କରିବା– Bhul dekhā(khe)ibā To point out another's mistake.
ভুল দেখান भुल दिखलाना

ଭୁଲ୍ ଧରିବା—ଦେ. କ୍ରି—୧ । ଅନ୍ୟର ଭ୍ରମ ଦେଖିବା—1. To detect another's mistake.
Bhul dharibā
(ଭୁଲ ବାହାର କରିବା—ଅନ୍ୟରୂପ) ভুলধরা भुल निकालना

ଭୁଲ୍ ଭାଙ୍ଗିବା—ଦେ. କ୍ରି—ଭ୍ରମ ଦୂର କରିବା, ଭ୍ରମ ସଂଶୋଧନ କରିବା Baul bhāngibā —To remove a mistaken idea; to correct an error.
ভুলভাঙ্গান भूल दूरकरना

ଭୁଳ—ପ୍ରାଦେ ( ଉତ୍ତର ଗଡ଼ଜାତ, ବାଲେଶ୍ୱର )—୧ । ଭୋଳ
Bhuḷa ( ଦେଖ )—1. Bhoḷa ( See ) ୨ । ( ବାଲେଶ୍ୱର ସମୁଦ୍ର ଉପକୂଳ ) ଲୂଣିମାଟି ଯାହାକୁ ବି ପାଣିରେ ଗୋଳି ନିଆଁ ଉପରେ ଫୁଟାଇଲେ ପାଣି ମରିଯାଇ ଘନ ଲୁଣ ମରିଯାଏ—2. Earth (near the Balasore sea-coast in Orissa) yielding salt by being mixed with water and then boiled dry.

ଭୁଲ୍ଲ—ଦେ. ବି ( ସଂ. ଭୋଳ ) (ଭୁଳ. ବଂ, ଭୋଲମାଛ; ଭେଲେ ମାଛ) Bhula —ଶକଳୀ ମତ୍ସ୍ୟବିଶେଷ; ବୋଦଣୀ— A kind of scaly fish; Barilius Bola.

ଭୁଲଣା—ଦେ. ବି [ ସଂ. ଭ୍ରମ ]—୧ । ବିସ୍ମୃତି—1. Forgetting.
Bhulaṇā ୨ । ଭୁଲାଇବା—2. Deluding; misleading.

ଭୁଲତା—ଦେ. ବି [ ସଂ. ଭ୍ରୂଲତା ]—ଭ୍ରୂଲତା; ଆଖି ଉପରେ ଥିବା
Bhulatā ରୋମରେଖା—Eye-brow. [ ଉ—ଭୁଲତା-
ভুলতা ଭଙ୍ଗି ତାର, ଇନ୍ଦ୍ରଧନୁ ଆକାର, ଶର ମାରୁଛି ମୋ ହୃଦକୁ
भौं ଶୁହିଁରେ । ସଙ୍ଗୀତ । ]

ଭୁଲତା ଭଙ୍ଗୀ—ଦେ ବି [ ସଂ. ଭ୍ରୂଲତା ଭଙ୍ଗୀ ]—୧ । ଭ୍ରୂଲତାର Bhulatā bhangi ଆକୃତି ବା ଛବି—1. The shape of the eye brow. ୨ । ଭ୍ରୂଭଙ୍ଗୀ—2. Amorous play of the eye-brow.

ଭୁଲ୍ଲା—ସଂ. ବି. ନାମ—ନର୍ମଦାର ସଙ୍ଗମସ୍ଥଳ ପ୍ରଦେଶରେ ଜନ୍ମ
Bhulā ହୋଇଥିବା ସପ୍ତଦଶଶତାବ୍ଦୀୟ ଜଣେକ ଜ୍ୟୋତିଷୀ ('ଗ୍ରହ ଗଣିତ ଚିନ୍ତାମଣି' ନାମକ ଗ୍ରନ୍ଥର ରଚୟିତା)— A celebrated 17th century Indian astronomer. ଦେ. ବି—ଭୁଲିବା—
[ଭୁଲ୍ଲୀ—ସ୍ତ୍ରୀ] Forgetting; oblivion. ଦେ. ବିଣ—
ভোলা ୧ । ଯେ ଭୁଲ କରେ—1. Committing mis-
भोला, भूलक takes; erring. ୨ । ଭୋଳା; ଯେ ଭୁଲିଯାଏ—

2. Forgetful. [ ଉ—ଭୁଲା ମନ, ଭୁଲୁ କାହିଁକି ? ଭଜନ । ]

ଭୁଲା(ଲେ)ଇବା—ଦେ. କି [ ଭୁଲିବାର ଣିଜନ୍ତରୂପ ]—୧ । ଭ୍ରମରେ ପକାଇବା—1. To mislead; to dupe. ୨ । ବିସ୍ମୃତ କରାଇବା—2. To cause to forget. ୩ । ଭଣ୍ଡାଇବା—3. To wheedle; to seduce. ୪ । ମୁଗ୍ଧ କରିବା—4. To fascinate; to charm.
Bhulā(le) ibā
ভুলান ਭੁਲਾਨਾ

ଭୁଲାକ୍(କି)—ବୈଦେ. (ବଙ୍ଗିଆ ଶବ୍ଦ) ବି (ଭୁଙ୍ଗା. ବୁଲାକ୍)—ବୁଲାକି (ଦେଖ)—Bulāki (See)
Bhulāk(ki)
বুলাকি, নোলক बुलाकी

ଭୁଲାଣିଆ(ଆଁ)—ଦେ. ବି—ଯେ ଭୁଲାଏ; ପ୍ରବଞ୍ଚକ—Misleading; deceitful; causing forgetfulness.
Bhulāṇiā(āṅ)
ভুলানিয়া भुलभुलैयाँ

ଭୁଲା ଭ(ଭେ)ଟକା—ଦେ. କ୍ରି. ବିଣ—ହଠାତ୍ କେବେ କେବେ—Accidentally; occasionally; not at regular intervals.
Bhulā bha(bho)ṭakā
ভুলে भूलके

ଭୁଲା ମନ—ଦେ. ବି—୧ । ଯେଉଁ ମନ ସବୁ କଥା ଭୁଲିଯାଏ—1. A mind prone to commit mistakes; erring mind. ୨ । ଭୋଳା ମନ—2. Forgetful mind.
Bhulā mana
ভোলা মন भुलक मन

ଭୁଲିଆ—ପ୍ରାଦେ. (ସମ୍ବଲପୁର, ଜୟପୁର )—୧ । ପାଣିଛୁଆଁ ଏକଜାତୀୟ ତନ୍ତି—1. A class of weavers from whose hands high caste people can take water for drinking. [ଦ୍ର—ତନ୍ତିମାନଙ୍କର ଜାତି,—ଭୁଲିଆ, କୁଲି, କୁଷ୍ଟା । ଏମାନେ ସୂତା କାଟନ୍ତି ଓ ଲୁଗା ବୁଣନ୍ତି ।] ଦେ. ବି—ଛତିଶଗଡ଼ୀ ଭାଷାର ଏକ ଉପଭାଷା—A sub-dialect of the Chhatisgarhi language. (ଭୁଲିଆ ଭାଷାର ଉଦାହରଣ—ଗୁଟେ ମନୁଷ୍ୟକ ଦୁଇଟା ବେଟା ରହିସ୍ । ଅକର ଉତର୍ ସାନ୍ ବେଟା ବୁଆକେ କହିସ୍‌କ ଆଗୋ ବୁଆ ! ସମ୍ପତ୍ତିକ ମର୍ ଜୁକ୍ ଭାଗ୍ ପଡ଼ିଦେ, ତାହା ମତେ ଭାଗ କରିଦେ । ବୁଆ ଇଟା ଶୁଇନ୍‌କ ଅକର ସମ୍ପତ୍ତିକ ଦୁହି ବେଟାକେ ଭାଗ କରି ଦେଇସ୍ । କେତେ ଦିନ ଗଇସ୍, ସାନ୍ ବେଟା ଅକର ଭାଗ୍‌ମ ଯାହା ପଡ଼ିସ୍ ସମ୍ପତ୍ତି ଯାକର୍ ଏକ ଯାଗାନେ ଦିଏଶକ୍ ବିଦେଶକ୍ ପଲି ଗଇସ୍ । ଭୁଇଠାନେ ଯାହା ପାଇଲା ଖର୍ଚ୍ଚା କରିକ କେତେକ ଦିନ ଗଇସ୍ କି ସମ୍ପତ୍ତି ଯାକର୍ ଉଡ଼ାଏ ଦେଇସ୍ । ଏନ୍ତା ବେଲ୍‌କେ ହୋ ଦେଶେ ଦୁର୍ଭିକ୍ଷ ପଡ଼ିସ୍ ଯେ ହୋ ପିଲା ଖାଏ ବାକେ ନାଇ ପାଇସ୍, ଯେ, ଉପାସ୍‌ନେ ଦୁଃଖ ପାଇସ୍ । (ଗ୍ରିଅର୍‌ସନଙ୍କ ଗ୍ରନ୍ଥରୁ ଗୃହୀତ) । ଏଥିର ଓଡ଼ିଆ ଅନୁବାଦ—ଜଣେ ମନୁଷ୍ୟର ୨ଟି ପୁଅ ଥିଲେ । ସେମାନଙ୍କ ଭିତରୁ ସାନ ପୁଅ ବାପକୁ କହିଲା କି ହେ ବାପ ! ସମ୍ପତ୍ତିରେ ମୋର ଯେଉଁ ଭାଗ ପଡ଼ୁଛି ତାକୁ ମୋତେ ଭାଗ କରି ଦେ । ବାପ ଏହା ଶୁଣି କରି ତାହାର ସମ୍ପତ୍ତିକୁ ଦୁଇ ପୁଅଙ୍କୁ ଭାଗ କରି ଦେଲା । କେତେ ଦିନ ଗଲାରୁ ସାନ ପୁଅ ତାହା ଭାଗରେ ଯାହା ପଡ଼ିଲା ସେ ସମ୍ପତ୍ତି ଯାକ ଏକତ୍ର କରି ଦୂରି ବିଦେଶ ଗଲା । ଇତ୍ୟାଦି । ଏଥିରୁ ଦେଖାଯିବ ଯେ ଏହାର ଓଡ଼ିଆ ଭାଷା ସଙ୍ଗେ ଓ ଉତ୍ତରଭାଷା ସଙ୍ଗେ ଖୁବ୍ ସୌସାଦୃଶ୍ୟ ଅଛି ।)
Bhulīā
ভুলিয়া भुलिया

ଭୁଲିଙ୍ଗ—ଦେ. ବି. (ସଂ. ଭୈରଣ୍ଡ)—ପୌରାଣିକ ବୃହତ୍ ପକ୍ଷୀବିଶେଷ—A kind of fabulous bird (like Phoenix. (ଉ—ସେ ବନ ଶୃଙ୍ଗ ପାଶେ ସ୍ୱର୍ଣ୍ଣଚୂଡ଼ ଭୁଲିଙ୍ଗ, ପକ୍ଷୀ ଯେ ହିଁ ବହି ଅଛନ୍ତି ହୋଇ ସଙ୍ଗ । କୃଷ୍ଣସିଂହ. ମହାଭାରତ. ଶାନ୍ତି ପର୍ବ ।)
Bhuliṅga

ଭୁଲିବା—ଦେ. ବି—୧ । ଭ୍ରମ କରିବା—1. To commit mistake. ୨ । ବିସ୍ମୃତ ହେବା; ପାସୋରିବା—2. To forget. ୩ । ମୁଗ୍ଧ ହେବା—3. To be fascinated. ୪ । ପର କଥାରେ ଠକି ଯିବା—4. To be beguiled.
Bhulibā
ভুলা भूलना
(ଭୁଲିଯିବା—ଅନ୍ୟରୂପ)

ଭୁଶ୍—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ଶୁଖିଲା ମାଟି ହଠାତ୍ ଖସି ପଡ଼ିବାର ଶବ୍ଦ—1. The sound of falling down of dry earth. ୨ । ହଠାତ୍ ପଡ଼ିବାର ଶବ୍ଦ—2. The sound of sudden fall. ୩ । ପୁନଃ ପୁନଃ ସ୍ଖଳନର ଶବ୍ଦ—3. Repeated slipping sound. ୪ । ହଠାତ୍—4. Suddenly.
Bhuś
ଭୁସ୍(ମ୍)ଭୁସ୍(ସ୍) } ଅନ୍ୟରୂପ
ଭୁସ୍(ସ୍)ଭାସ୍ }

ଭୁଶକା(କି)—ଦେ. କ୍ରି. ବିଣ—୧ । ହଠାତ୍—1. All of a sudden. ୨ । ଭୁଶ୍ ଶବ୍ଦପୂର୍ବକ—2. Making a sudden sound.
Bhuś-kā(ki)
ভুষ করে पिनपिन
[ଭୁଶକିନା(ନ), ଭୁଶ୍‌ବ(ଧ)ସ୍—ଅନ୍ୟରୂପ]

ଭୁଶ(ଶୁ)ଭୁଶ୍ ଶୁ ଚାଲି—ଦେ. ବି—ଦୁମ୍ ଦୁମ୍ ଶବ୍ଦ କରି ଚାଲିବା—Striding with loud steps.
Bhuś(śu)bhuś śu) chāli
ছুম ছুম করে চলা पिनपिनाकर चलना

ଭୁଶା(ସା)—ଦେ. ବି—୧ । ଭୁଶିବା—1. Goring. ୨ । କେଞ୍ଚିବା ବା ପ୍ରହାର—2. A goring stroke. (ଉ—ଘୋଡ଼ାର କାମ କାଢ଼ ଭୁଶାରେ । କବିସୂର୍ଯ୍ୟ. ଲହାକର ଚମ୍ପୂ. ୟ ଗୀତ ।) ୩ । ଯଷ୍ଟିର ମୂଳ ଦ୍ୱାରା କେଞ୍ଚ—3. Poking with the end of a rod. ଦେ. ବିଣ—ଶିଥିଳ (ମାଟି); ଯାହା ଉପରେ ଚାଲିଲା ବେଳକୁ ଗୋଡ଼ ତଳକୁ ଗଳି ପଡ଼େ—Loose (earth or sand).
Bhuśā(sā)
গোঁতা ढाही

ଭୁଶା(ସେ)ଇବା—ଦେ. କି—ଭୁଶିବା କ୍ରିୟାର ଣିଜନ୍ତ ରୂପ—Causative form of the verb 'Bhuśibā'.
Bhuśā(se)ibā
গুঁতান चिरवाना

ଭୁଶା ବାଲି—ଦେ. ବି—ଅସ୍ଥିର ବାଲୁକା; ଦୁର୍ଗମ ବାଲି, ଯହିଁରେ ଗୋଡ଼ ଗଳି ପଡ଼େ—Quicksand.
Bhuśā bāli
ধসা বালি धसा बालु

ଭୁଷା ମାଟି—ଦେ. ବି—ଶିଥିଳ ମୃତ୍ତିକା—
Bhuṡā māṭi Loose soil.
धसा माटी **भुसनी मिट्टी**

ଭୁଷି—ଦେ. ବି. (ସଂ. ବୁଷ)—ଗ୍ରେକଡ଼; ଯବ, ଗୋଧୂମାଦିର ଚୋପା ବା
Bhuṡi ତୁଷ—The chaff of wheat or barley;
ভূসী **বুর, মুস্, মুসী** bran; husk.

ଭୁଷି ଚିଙ୍ଗୁଡ଼ି—ପ୍ରାଦେ. (ଗଞ୍ଜାମ) ବି. ( ତୁଳ. ବଂ. ଦୁଷୋ ଚିଂଗଡ଼ୀ )—
Bhuṡi chiṅgurḍi ଏକ ପ୍ରକାର ଛୋଟ ଚିଙ୍ଗୁଡ଼ି ମାଛ—
A kind of small shrimp.

ଭୁଶୁକା—ଭୁସ୍କା ( ଦେଖ )
Bhuṡukā Bhuskā ( See )

ଭୁଶୁକି—ଭୁସ୍କି ( ଦେଖ )
Bhuṡuki Bhuski ( See )

ଭୁଶୁଣ୍ଡା—ଦେ. ବିଣ. ପୁଂ—ପୃଥୁଳ ଅଥଚ ଅକାମିକା ବା ଅସୁନ୍ଦର
Bhuṡuṇḍā ଲୋକ—Fat, idle and ugly (person.)
ষণ্ডামার্কা **मुषण्डा** ( ଭୁଶୁଣ୍ଡୀ—ସ୍ତ୍ରୀ )

ଭୁଶୁଣ୍ଡୀ—ସଂ. ବି ( ଯୋଗବାଶିଷ୍ଠ ରାମାୟଣ ବର୍ଣ୍ଣିତ )—ତ୍ରିକାଳଜ୍ଞ;
Bhṡuṇḍi ତ୍ରିଯୁଗଦର୍ଶୀ କାକ; ଚିରଞ୍ଜୀବୀ କାକ—A mythological immortal crow.
ଭୁଷଣ୍ଡ, ଭୁଷଣ୍ଡୀ, ଭୁଶୁଣ୍ଡୀକାକ } ଅନ୍ୟରୂପ [ ଦ୍ର—ଏ କାକ ବିଷ୍ଣୁକୁଣ୍ଡରେ ସ୍ନାନ କରି ଚତୁର୍ଭୁଜ ହେଲା ଓ ଚିରଞ୍ଜୀବୀ ହେଲା; ପୁରୀ ବଡ଼ ଦେଉଳର ଗୋଟିଏ କୁଣ୍ଡରେ ଭୁଶୁଣ୍ଡୀକାକର ମୂର୍ତ୍ତି ଅଛି । ]

ଭୁଶୁଡ଼ା—ଦେ. ବି—( ସଂ. ଧ୍ୱସ୍ତ )—ଭୁଶୁଡ଼ିବା ( ଦେଖ )—
Bhuṡurḍā Bhuṡurḍibā ( See ). ବିଣ—ଭୁଶୁଡ଼ି ଯାଇ
ধসা ଥିବା—Whose edges or banks have fallen
**धसना** down. ( ଯଥା—କୂଅ ଭୁଷୁଡ଼ିବା । )
ধসা **धसाहुआ**

ଭୁଶୁଡ଼ି(ରି,ଲି)ବା—ଦେ. କ୍ରି (ସଂ. ଭ୍ରଷ୍ଟ, ତୁଳ. ପ୍ରା. ଭୁସ୍‌ସିତେ ବମ୍ବା ସଂ.
Bhuṡurḍi(ri,li)bā ଧ୍ୱଂସ୍ ଧାତୁ ଦ୍ୱସ୍ତ)—୧ । ନଦୀର ବା କୂପାଦିର
ଭୁଶୁଡ଼ି ପଡ଼ିବା, ଭୁଶୁଡ଼ି ଯିବା } ଅନ୍ୟରୂପ କୂଳର ମାଟି ଛାଡ଼ିଯାଇ ତଳକୁ ଖସି ପଡ଼ିବା—1, To collapse; to come
ধসেযাওয়া; ধসখাওয়া down (said of portion of the
**धसना; धसजाना** soil on the bank of a river or
well. ୨ । ସ୍ଖଳିତ ହେବା; ସ୍ଥାନଚ୍ୟୁତ ହେବା—2. To give way. (ଉ—ଭୁଶୁଡ଼ିବନ୍ତି ସଙ୍ଗାବ୍ରତ ଜମ୍ବୁମ ଧିଉ—
କବିସୂର୍ଯ୍ୟ. କଶୋରୀଚନ୍ଦ୍ର. ଭ ଗୀତ । )

ଭୁଶୁ(ଶ)ଣ୍ଡୀ—ସଂ. ବି. ସ୍ତ୍ରୀ—ପ୍ରାଚୀନ ଭାରତର ଆଗ୍ନେୟାସ୍ତ୍ର ବିଶେଷ—
Bhuṡu(ṡa)ṇḍi A kind of firearm of ancient India. [ ଦ୍ର—ଏହା ବାନ୍ଧୁକ ସ୍ୟ ପରିମିତ ଲମ୍ବା, ବଡ଼ ବଡ଼ ଗ୍ରନ୍ଥିଯୁକ୍ତ ଓ ସ୍ଥୂଳକାୟ । ଏହାର ବର୍ଣ୍ଣ କୃଷ୍ଣ, ଏହା ସର୍ପପରି ଉଗ୍ରଦର୍ଶନ । ଏହା ପାତନ ଏବଂ ଘୂର୍ଣ୍ଣନ ଉଭୟ ଗତି ବିଶିଷ୍ଟ । ]

ଭୁଷ—ପ୍ରାଦେ. (ଯାଜପୁର) ବି—ଛୋଟ ଚିଙ୍ଗୁଡ଼ି ମାଛ –
Bhusha A kind of small-sized shrimp.

ଭୁଷ(ସ)ଣ୍ଡି—ସଂ. ବି—ବିକ୍ଷେପଣୀୟ ଯୁଦ୍ଧାସ୍ତ୍ର; ଅସ୍ତ୍ରବିଶେଷ—A kind
Bhusha(sa)ṇḍi of weapon; a weapon used in throwing at the enemy.

ଭୁସିବା—ଦେ. କ୍ରି ( ସଂ. ଉଦ୍ ଧାତୁ ବମ୍ବା ତୁଷ୍ ଧାତୁ )—୧ । ମୁନିଆଁ
Bhusibā ଅସ୍ତ୍ରଦ୍ୱାରା ବା ଶୃଙ୍ଗଦ୍ୱାରା କେଞ୍ଚିବା; ବିନ୍ଧିବା—
গোতা মারা 1. To gore; to give a thrust with a
**ढाही लगाना, चीरना** pointed weapon or horn).
(ଭୁସିଦେବା—ଅନ୍ୟରୂପ) ୨ । ଗାତରେ ମାଟି ଭର୍ତ୍ତି କରି ବାଡ଼ିରେ ଖୁନ୍ଦିବା—2. To ram earth into a hole.

ଭୁସି ହେବା—ଦେ. କ୍ରି—ମୁନିଆଁ ଅସ୍ତ୍ର ବା ଶୃଙ୍ଗଦ୍ୱାରା ଫୋଡ଼ ହୋଇ
Bhusi hebā ଯିବା—To be pierced with a sharp weapon or the horn of an animal. [ ଉ—
ଯେ ଶିଖଣ୍ଡଚୂଳ ନୟନକୁନ୍ତରେ ହନେ ନୋହୁଥିବ ଭୁସି
କବିସୂର୍ଯ୍ୟ. ସଙ୍ଗୀତ କଳ୍ପଲତା । ]

ଭୁସ୍କା—ପ୍ରାଦେ ( ସମ୍ବଲପୁର ) ବିଣ—ମୋଟା; ଗେଧା; ସ୍ଥୂଳକାୟ (ପୁରୁଷ)
Bhuskā (ଭୁସ୍କୀ—ସ୍ତ୍ରୀ) —Fat ( man ).

ଭୁସ୍ତୃଣ—ସଂ. ବି—ଗନ୍ଧମାତ୍ରୀ ( ଦେଖ )—Gandhamātri (See)
Bhustṛuṇa [ ଦ୍ର—କବିରାଜ ହରେକୃଷ୍ଣ ମିଶ୍ରଙ୍କ ଦ୍ରବ୍ୟଗୁଣ । ]

ଭୂ (ଧାତୁ)—ସଂ—୧ । ହେବା—1. To be. ୨ । ଜନ୍ମିବା—
Bhū (root) 2. To be born.

ଭୂ—ସଂ. ବି ( ଭୂ ଧାତୁ + କର୍ତ୍ତୃ. କ୍ୱିପ୍ )—୧ । ପୃଥିବୀ—1. The
Bhū world. ୨ । ପାତାଳ- 2. The nether regions.
୩ । ଭୂମି—3. The earth. ୪ । ପ୍ରଦେଶ; ଅଞ୍ଚଳ—
4. Country; tract of country. ୫ । ଯଜ୍ଞାଗ୍ନି
—5. Sacrificial fire. ୬ । ଆଧାର—6.
Receptacle. ବିଣ ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ,
ଯଥା ଆତ୍ମଭୂ, ସ୍ୱୟମ୍ଭୂ )—ଯେ ଜନ୍ମେ—Born of.

ଭୂଃ—ସଂ. ଅ ( ଭୂ ଧାତୁ + କର୍ତ୍ତୃ. ସୁକ୍ )—ସପ୍ତଭୁବନ ମଧ୍ୟରୁ ପ୍ରଥମ
Bhūḥ ଭୁବନ—The first of the seven worlds.

ଭୂଅଖଣ୍ଡ—ଗ୍ରା. ବି ( ସଂ. ଭୂଖଣ୍ଡ )—ସମଗ୍ର ପୃଥିବୀ –
Bhūakhaṇḍa The entire world.

ଭୂଇଁ (ଇତ୍ୟାଦି)—ଦେ. ବି—ଭୂଇଁ ଇତ୍ୟାଦି ( ଦେଖ )
Bhūin (etc) Bhuin etc (See)
[ ଉ—ମୋହର ତପୋବନ ଭୂଇଁ, ଅତି ସୁଗନ୍ଧ କଲୁ
ତୁହି । ଜଗନ୍ନାଥ. ଭାଗବତ । ]

ଭୂଇଁ କଇଠ(ଥ)—ଦେ ( ବୈଦ୍ୟକ ) ବି—ଏକପ୍ରକାର ବନ୍ୟଗଛ—
Bhūiñ kaiṭha(tha) [ ଦ୍ର—ଏହାର ମୂଳ ବଣିଆ ମହିତ
ସହିତ ବାଟି ଖାଇଲେ ଦାରୁଣ ବାତବ୍ୟାଧି ବିନଷ୍ଟ ହୁଏ ।
ଦ୍ରବ୍ୟଗୁଣ, କଳ୍ପଦ୍ରୁମ । ]—A kind of wild tree.

ଭୂଇଁ କ(କୋ)ରୁଆଁ—ପ୍ରାଦେ ( ଗଡ଼ଜାତ ) ବି—ସୁଗନ୍ଧ ବନ୍ୟ ପୁଷ୍ପ
Bhuin ka(ko)ruāñ ବିଶେଷ—A kind of wild flower of sweet smell.

ଭୂଇଁ କାମଡ଼ା—ଦେ. ( ବୈଦ୍ୟକ ) ବି—ଏକପ୍ରକାର ଲତା [ ଦ୍ର—
Bhūiñ kāmarḍā ଏହାର ପତ୍ରରସ ଦୁଧ ସହିତ ବାଟି ପାନ କଲେ ମେହରୋଗ ପ୍ରଶମିତ ହୁଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ] A kind of medicinal creeper Merremia Emarginata. [ ଦ୍ର—ଏହା କଲମ୍ବାଧବର୍ଗର ଲତା; ଭୂମିରେ ମାଡ଼େ; ଏହାର ପ୍ରତି ଗଣ୍ଠିରୁ ଚେର ବାହାରେ; ପତ୍ର ଅର୍ଦ୍ଧଚନ୍ଦ୍ରାକାର, ଚେମ୍ପ ଲମ୍ବ, ଫୁଲ ଛୋଟ ହଳଦିଆ—ଯୋଗେଶଚନ୍ଦ୍ର"। ]

ଭୂଇଁ ଚକୁଣ୍ଡା—ଦେ. ବି—ବନ୍ୟଗୁଳ୍ମବିଶେଷ—[ ଦ୍ର—ଏହାର ମୂଳ
Bhūiñ chākundā ପତ୍ରର କ୍ୱାଥ ଓ ଚୂର୍ଣ୍ଣ ମୃଦୁ ବିରେଚକ ଓ ଚେ, ତାଗେଦ୍ରୁ ମେହବ୍ରଣ ଓ କଫନାଶକ । ଏହାର ଅନ୍ୟାନ୍ୟ ଗୁଣ ଚକୁଣ୍ଡା ତୁଲ୍ୟ । ଦ୍ରବ୍ୟଗୁଣ କଳ୍ପଦ୍ରୁମ । ] A kind of medicinal plant.

ଭୂଇଁ ପଟକା—ପ୍ରାଦେ (ବାଲେଶ୍ୱର) ବି—ଛୋଟ ସୂତା ଗୁଡ଼ାଇ ତିଆରି
Bhūiñ paṭakā ହୋଇଥିବା ଗୋଲାକୃତି ପଟକାବିଶେଷ— A kind of crackers. [ ଦ୍ର—ଏହାକୁ ଭୂଇଁ ଉପରେ କଚାଡ଼ି ଦେଲେ ଏହା ସଶବ୍ଦରେ ଫାଟିଯାଏ । ]

ଭୂ କଦମ୍ବ—ସଂ. ବି—ଭୂଇଁ କଦମ୍ବ (ଦେଖ)
Bhū kadamba Bhūiñ kadamba (See).

ଭୂ କମ୍ପ—ସଂ. ବି—(୬ଷ୍ଠୀ ତତ୍ପୁରୁଷ; ଭୂ+କମ୍ପ)—ଭୂମିକମ୍ପ—
Bhū kampa Earth-quake.
(ଭୂକମ୍ପନ, ଭୂଚଳନ—ଅନ୍ୟରୂପ )

ଭୂ କର୍ଣ୍ଣ—ସଂ. ବି (୬ଷ୍ଠୀ ତତ୍; ଭୂ+କର୍ଣ୍ଣ)—ବିଷୁବରେଖାର ବ୍ୟାସାର୍ଦ୍ଧ—
Bhū karṇṇa The radius of the equator.

ଭୂକାନ—ସଂ. ବି (୬ଷ୍ଠୀ ତତ୍; ଭୂ+କାନ)—ନୀଳବର୍ଣ୍ଣ କପୋତ—
Bhūkāna Blue pigeon.

ଭୂ କୁଷ୍ମାଣ୍ଡ—ସଂ. ବି—ଭୂଇଁ କଖାରୁ (ଦେଖ)
Bhū kushmāṇḍa Bhūiñ kakhāru (See).

ଭୂ କେଶ—ସଂ. ବି—୧ । ଶୈବାଳ; ଶିଉଳ—1. Moss.
Bhū kesa ୨ । ବଟବୃକ୍ଷ—2. The banian tree.

ଭୂ କେଶା—ସଂ. ବି. ସ୍ତ୍ରୀ—ରାକ୍ଷସୀ—
Bhū kesā Demoness.

ଭୂ ଖଣ୍ଡ—ସଂ. ବି (୬ଷ୍ଠୀ ତତ୍)—ପୃଥିବୀର ଅଂଶ ବା ଅଞ୍ଚଳବିଶେଷ—
Bhū khaṇḍa A division of the globe; a tract of country.

ଭୂ ଖର୍ଜ୍ଜୁର—ସଂ. ବି—ଭୂଇଁ ଖଜୁରି (ଦେଖ)
Bhū kharjjura Bhūiñ khajuri (See).

ଭୂ ଗର୍ଭ—ସଂ. ବି (୬ଷ୍ଠୀ ତତ୍; ଭୂ+ଗର୍ଭ)—୧ । ପୃଥିବୀର ଅଭ୍ୟନ୍ତର;
Bhū garbha ମାଟିତଳ—1. The bowels of the earth. ୨ । ଭବଭୂତି କବି—2. A name of the poet Bhababhūti.

ଭୂଗର୍ଭନିହିତ—ସଂ. ବିଣ (୭ମୀ ତତ୍, ଭୂଗର୍ଭ+ନିହିତ)—ମାଟିତଳେ
Bhūgarbhanihita ସ୍ଥିତ—Deposited or situated in the lower strata or region of the earth.

ଭୂଗର୍ଭ ବିଦ୍ୟା (ଶାସ୍ତ୍ର)—ସଂ. ବି (ଆଧୁନିକ)—ଯେଉଁ ଶାସ୍ତ୍ରରେ ପୃଥିବୀର
Bhūgarbha bidyā (śāstra) ଅଭ୍ୟନ୍ତରସ୍ଥ ତଥ୍ୟମାନ
(ଭୂବିଦ୍ୟା—ଅନ୍ୟରୂପ) ଆଲୋଚିତ ହୋଇଥାଏ—Geology.

ଭୂଗୋଳ—ସଂ. ବି ଭୂ=ପୃଥିବୀ+ଗୋଳ=ମଣ୍ଡଳ—୧ । ଗୋଲାକାର
Bhūgoḷa ପୃଥିବୀ—1. The terrestrial globe. ୨ । ଭୂମଣ୍ଡଳ—2. The earth. ୩ । ପୃଥିବୀର ଉପରସ୍ଥ ବିଷୟ-ସମ୍ବନ୍ଧୀୟ ତତ୍ତ୍ୱଜ୍ଞାପକ ବିଦ୍ୟାବିଶେଷ—3. Geography. [ ଦ୍ର—ଭୂଗୋଳ ତ୍ରିବିଧ; ଗଣନାତ୍ମକ, ପ୍ରାକୃତିକ ଓ ବାଣିଜ୍ୟିକ । ]

ଭୂଗୋଳ(ଲ)କ—ସଂ. ବି. (ଭୂଗୋଳ+ସ୍ୱାର୍ଥେ. କ)—ପୃଥିବୀମଣ୍ଡଳ,
Bhūgoḷa(la)ka ପିଣ୍ଡାକୃତି ପୃଥିବୀ—The terrestrial globe.

ଭୂଗୋଳ ବିଦ୍ୟା—ସଂ. ବି—ଯେଉଁ ବିଦ୍ୟାଦ୍ୱାରା ପୃଥିବୀର ଆକୃତି, ଗତି,
Bhūgoḷa bidyā ଧର୍ମ, ବିଭାଗ, ସମ୍ବନ୍ଧ ପ୍ରଭୃତି ଜଣାଯାଏ—Geography.

ଭୂଗୋଳ ବିବରଣ—ସଂ. ବି (୬ଷ୍ଠୀ ତତ୍; ଭୂଗୋଳ+ବିବରଣ) –
Bhūgoḷa bibaraṇa ପୃଥିବୀର ବିବରଣ—Geographical
(ଭୂଗୋଳ ବୃତ୍ତାନ୍ତ—ଅନ୍ୟରୂପ) description of the earth.

ଭୂ ଚକ୍ର—ସଂ.ବି—୧ । ପୃଥିବୀର ପରିଧି—1. The circumference
Bhū chakra of the globe. ୨ । ବିଷୁବରେଖା (ଜ୍ୟୋ. ଶା)—2. The equator. ୩ । ଅୟନ ବୃତ୍ତ (ଜ୍ୟୋ. ଶା)—3. The ecliptic. ୪ । କ୍ରାନ୍ତିବୃତ୍ତ (ଜ୍ୟୋ. ଶା)—4. Equinoctial circles.

ଭୂ ଚଣକ—ସଂ. ବି (ଆଧୁନିକ—ଭୂଇଁଚଣା, ଚୀନାବାଦାମ, ମୁଗଫଳୀ—
Bhū chaṇaka Ground nut; (Arachis Hypogoea.

ଭୂ ଚମ୍ପକ—ସଂ. ବି—ଭୂଇଁ ଚମ୍ପା (ଦେଖ)—
Bhū champaka Bhūiñ champā (See).

ଭୂ ଚର—ସଂ. ବିଣ. ପୁଂ (ଭୂ+ଚର୍ ଧାତୁ+କର୍ତ୍ତୃ. ଅ)—ସ୍ଥଳଚର; ଯେ
Bhū chara ପୃଥିବୀ ଉପରେ ବିଚରଣ କରେ—Roaming on
(ଭୂଚରୀ—ସ୍ତ୍ରୀ) the earth. ପୁ. ବି—୧ । ମନୁଷ୍ୟାଦି ସ୍ଥଳଚର ଜୀବ—1. Animals moving on the land. ୨ । ଶିବ (ଜ୍ୟୋ. ଶା)—2. Śiba. ୩ । ତନ୍ତ୍ର ଅନୁସାରେ ଏକ ପ୍ରକାର ସିଦ୍ଧି, ଯହିଁ ଫଳରେ ସାଧକର କୌଣସି ସ୍ଥାନ ଅଗମ୍ୟ, କୌଣସି ବସ୍ତୁ ଅପ୍ରାପ୍ୟ ଓ କୌଣସି ବିଷୟ ଅଦୃଶ୍ୟ ରହେ ନାହିଁ ( ଜ୍ୟୋ. ଶା )—3. A sort of success in Tantric exercise in which a person can go any where and can see and do any thing.

ଭୂ ଚିତ୍ର—ସଂ. ବି (୬ଷ୍ଠୀ ତତ୍; ଭୂ+ଚିତ୍ର)—ପୃଥିବୀର ମାନଚିତ୍ର—
Bhū chitra Map of the world.

ଭୂ ଛାୟା—ସଂ. ବି—(୬ଷ୍ଠୀ ତତ୍; (ଭୂ+ଛାୟା)—୧ । ପୃଥିବୀର ଛାୟା—
Bhū chhāyā 1. The shadow of the earth. ୨ । ରାହୁ—2. The Dragon's head; the ascending node; the shadow of the earth fall-

ing on the moon causing ecipse. ୩ । ଅନ୍ଧକାର—3. Darkness.

ଭୂଞ୍ଜା—ଦେ. ବି—ଭୂଇଁଆ (ଦେଖ)—
Bhūñjā Bhuiāñ (See)

ଭୂତ—ସଂ. ବି—(ଭୂ ଧାତୁ+କର୍ତ୍ତୃ. ତ)—୧ । ବାୟୁଚର ଦେବଯୋନି Bhūta ବିଶେଷ—1. A class of aerial beings. ୨ । ପିଶାଚ—2 Ghosts; evil spirits. [ଦ୍ର—ସବୁ ଦେଶରେ, ସବୁ କାଳରେ, ସବୁ ଜାତିରେ 'ଭୂତ'ମାନଙ୍କ ସମ୍ବନ୍ଧରେ ନାନା କଳ୍ପନା ଓ ବିଶ୍ୱାସ ଅଛି । ଯେଉଁ ଜୀବମାନଙ୍କ ଆତ୍ମାମାନେ ମୋକ୍ଷଗତି ପ୍ରାପ୍ତ ନ ହୋଇ ସ୍ୱର୍ଗକୁ ଯାଇ ନ ଥାନ୍ତି ସେମାନେ ଭୂତ ବା ପ୍ରେତରୂପେ ନାନା ସ୍ଥୂଳ ଓ ସୂକ୍ଷ୍ମରୂପ ଧାରଣ କରି ପୃଥିବୀରେ ବିଚରଣ କରନ୍ତି । ଏମାନେ ରାତିରେ ବାହାରନ୍ତି ଓ ଶ୍ମଶାନ, ନିର୍ଜନ ସ୍ଥାନ ଓ ମହାରଣ୍ୟରେ ରହନ୍ତି ଓ ଇଚ୍ଛାନୁସାରେ ଭିନ୍ନ ଭିନ୍ନ ରୂପ ଧାରଣ କରନ୍ତି । ଏମାନେ ଲୋକଙ୍କ ଉପରେ ସମୟେ ସମୟେ ନାନା ଅତ୍ୟାଚାର କରନ୍ତି ଓ ବାଳକ ବାଳିକା ଯୁବକ ଯୁବତୀ ଓ ସ୍ତ୍ରୀମାନଙ୍କର ଦେହରେ ପ୍ରବେଶ କରନ୍ତି । ଏମାନେ କୌଣସି କୌଣସି ଗୃହକୁ ଅଧିକାର କରି ସେଠାରେ ନାନା ଅଲୌକିକ ଘଟନା ଘଟାନ୍ତି । ମୃତ ବ୍ୟକ୍ତିଙ୍କ ଆତ୍ମା 'ଭୂତ' ହେବା କଥା ବର୍ତ୍ତମାନ ପାଶ୍ଚାତ୍ୟମାନେ ସ୍ୱୀକାର କରୁଅଛନ୍ତି ଓ ଭୂତମାନଙ୍କୁ ନିମନ୍ତ୍ରଣ କରି ଲୋକମାନଙ୍କୁ ସେମାନଙ୍କ କ୍ରିୟାକଳାପ ଦେଖାଉଅଛନ୍ତି । ] ୩ । ଶିବଙ୍କର ଅନୁଚର ବା ଗଣସମୂହ—3. The attendants of Śiba. ୪ । ଜଗତର ପଞ୍ଚ ମୌଳିକ ଉପାଦାନ (ଯଥାః—(କ୍ଷିତି) ପୃଥିବୀ, (ଅପ୍) ଜଳ, (ତେଜଃ) ଅଗ୍ନି, (ମରୁତ୍) ବାୟୁ ଓ (ବ୍ୟୋମ) ଆକାଶ—4. The five primordial elements of the creation ( viz, the earth, water, fire, air and ether. ) ୫ । ପ୍ରାଣୀ; ଜୀବ; ଜନ୍ତୁ—5. Animals; animated beings. ୬ । ତତ୍ତ୍ୱ;ସତ୍ୟ-6. Eternal or fundamental truths. ୭ । ଅତୀତ ସମୟ—7. The past. ୮ । ତତ୍ତ୍ୱାନୁସନ୍ଧାନ—8. Investigation of facts; enquiry about an affair. ୯ । କାର୍ତ୍ତିକେୟ (ହି. ଶ)—9. Kārttikeya. ୧୦ । ଯୋଗୀନ୍ଦ୍ର (ହି. ଶ)—10. A pre-eminent Jogi. ୧୧ । ପ୍ରେତ ପିଶାଚ ଆଦିଙ୍କ ଉପଦ୍ରବ ଶାନ୍ତ କରିବା ଔଷଧ (ହି. ଶ)—11. Any medicine which protects a person from the attack of ghosts. ୧୨ । ଲୋଧ୍ର ବୃକ୍ଷ (ହି.ଶ) 12. Simplocus Racemosus. ୧୩ । ସୃଷ୍ଟ ଜଡ଼ ବା ଚେତନ ବସ୍ତୁ (ହି. ଶ)—13. Created thing; animate or inanimate object. ୧୪ । କୃଷ୍ଣ ପକ୍ଷ (ହି. ଶ)—14. The dark lunar fortnight. ୧୫ । ମୃତ ଶରୀର; ଶବ (ହି. ଶ)—15. Dead body. ୧୬ । ମୋକ୍ଷ ପ୍ରାପ୍ତ ହୋଇ ନ ଥିବା ମୃତ ପ୍ରାଣୀଙ୍କର ଆତ୍ମା; ପ୍ରେତ—16. The souls or spirits of dead beings who have not yet attained salvation ୧୭ । ( ବ୍ୟାକରଣ ) ଅତୀତ ହୋଇଥିବା କ୍ରିୟାର କାଳ—17. (grammar) The past tense. ୧୮ । ବୃତ୍ତ ( ହି. ଶ )—18. Circle. ସଂ. ବିଣ—୧ । ଅତୀତ; ଗତ—1. Past; gone. ୨ । ଜ୍ଞାତ—2. Known; ୩ । ଉତ୍ପନ୍ନ—3. Produced. ୪ । ଲବ୍ଧ—4. Obtained. ୫ । ଉଚିତ—5. Proper. ୬ । ସ୍ୱରୂପ, ତୁଲ୍ୟ; ସଦୃଶ—6. Equal; similar. ୭ । ଉପାସିତ—7. Worshipped. ୮ । ସତ୍ୟ—8. True. ୯ । ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଯଥା—ବାଷ୍ପୀଭୂତ, ଜଳୀଭୂତ, ସ୍ତମ୍ଭୀଭୂତ, ) ପରିଣତ—9. Changed into. ୧୦ । ଅବସ୍ଥିତ—10. Existing on. ୧୧ । ଯୁକ୍ତ; ମିଳିତ ( ହି. ଶ )—11. Joined; mixed. ଦେ. ( ଲକ୍ଷଣାର୍ଥ ) ବିଣ—୧ । ଅବିବେଚକ—1. Thoughtless. ୨ । ପ୍ରେତ ପରି ବିଚରଣଶୀଳ—2. Wandering like a ghost. ୩ । ଦୁର୍ଜନ; ଦୁଷ୍ଟ—3. Wicked. ୪ । ଭୂତପରି ଦେଖିବାକୁ କଦର୍ଯ୍ୟ—4. Ugly-looking like a ghost.

ଭୂତ ଉଠା(ଠେ)ଇବା—ଦେ. ବି—ନିଦ୍ରିତାବସ୍ଥାରେ ଶଯ୍ୟାରୁ ଉଠି Bhūta uṭhā(ṭhe)ibā ବାହାରେ ବିଚରଣ କରିବାରୂପ ଏକ-
ଭୂତ ଡାକିବା } ଅନ୍ୟରୂପ ପ୍ରକାର ରୋଗ—(a disease)
ଭୂତ ଗ୍ରନ୍ଥିରେ ଉଠାଇବା } Somnambulism.
ନିଶି ପାଓ୍ୱା(ଲାଗା) sleep—walking. [ ଦ୍ର—ଏ ରୋଗ-
**नींदमे चलाफीरा करना** ଗ୍ରସ୍ତ ବ୍ୟକ୍ତି ନିଦ୍ରିତ ଥିବା ଅବସ୍ଥାରେ ତାକୁ କିଏ ଡାକୁଥିବା ପରି ସ୍ୱପ୍ନ ଦେଖି ନିଦ ମଳମଳ ହୋଇ ଶଯ୍ୟା ତ୍ୟାଗ କରି ଘରୁ ବହିର୍ଗତ ହୁଏ ଓ ନିଦ୍ରିତ ଅବସ୍ଥାରେ ନାନାକାର୍ଯ୍ୟ କରେ ( ଯଥା—ଗୃହଲେ, ପାଣି ବୁହାଏ ଓ ଲେଖାପଢ଼ି କରେ ); କିନ୍ତୁ ପ୍ରକୃତରେ ଏ କାର୍ଯ୍ୟମାନ କରୁଥିଲା ବେଳେ ସେ ଶୋଇଥାଏ ଓ ନିଦ ଭାଙ୍ଗିଗଲେ ଏ କଥାସବୁ ତାର ସ୍ମରଣ ନ ଥାଏ । ଲୋକେ ବିଶ୍ୱାସ କରନ୍ତି ଯେ ସେ ଲୋକକୁ ଭୂତ ଉଠାଇ ନେଇ ପଛକୁ ହାଡ଼ଦ୍ୱାରି ପିଟି ମାରି ପକାଏ । ]

ଭୂତ କାରଖା(ଖେ)ନା—ଦେ ବି ( ସଂ. ଭୂତ+ଫା॰ କାର୍‌ଖାନାହ୍ )—Bhūta kārakhā(khe)nā ୧ । ଯେଉଁ କାର୍ଯ୍ୟ ବା ଅନୁଷ୍ଠାନରେ
ভূতের কারখানা ବହୁ ବୃଥା ପରିଶ୍ରମ କରାଯାଏ; ଉଦ୍ଦେଶ୍ୟ-
**भूत कारखाना** ବିହୀନ ବା ଫଳବିହୀନ କାର୍ଯ୍ୟ—1. A work of fruitless labour; a wild goose chase. ୨ । ଅନିର୍ଦ୍ଦିଷ୍ଟସ୍ୱାମିକ ବିଷୟ—2. An affair in which there is no master

**ଭୂତ କାଳ**—ସଂ. ବି ( କର୍ମଧା; ଭୂତ+କାଳ )—୧ । ଅତୀତ ସମୟ—
Bhūta kā̱la 1. The past. ୨ । ବ୍ୟାକରଣରେ କ୍ରିୟାର ୩ ପ୍ରଧାନ କାଳ ମଧ୍ୟରୁ ପୂର୍ବେ ଘଟି ଯାଇଥିବା ବିଷୟସୂଚକ କାଳ—2. ( grammar ) The past tense.

**ଭୂତ କେଶୀ**—ସଂ. ବି—ଏକପ୍ରକାର ସୂକ୍ଷ୍ମ ତୃଣ—Coridalis Govaniana; a herbarious plant. [ ଦ୍ର
Bhūta keśī
ଭୂଇଁକେଶ ଏହା ପଶ୍ଚିମ ହିମାଳୟର ଗାଛବିଶେଷ; ଏହାର ଚେର
**मूतकेश; भूतकिस** ଟାଣୁଆ, ମୂଳ ଚର୍ମରୋଗ ଔଷଧରେ ଲାଗେ । ]

**ଭୂତ ଖାନା**—ଦେ. ବି—୧ । ( ଲକ୍ଷଣାର୍ଥ ) ଯେଉଁ ସ୍ଥାନରେ ଅନେକ କୁକର୍ମୀ ଓ ଦୁଷ୍ଟ ଲୋକ ଜମା ହୋଇ ଥାଆନ୍ତି—1. ( figurative ) A rendezvous of evil and wicked persons.
Bhūta khānā
ଭୁତଖାନା
**भूतखाना; प्रेतखाना**
୨ । ( ଲକ୍ଷଣାର୍ଥ ) ଅନିର୍ଦ୍ଦିଷ୍ଟ-ସ୍ୱାମିକ ବିଷୟ—2. ( figurative ) An affair having no master. ୩ । ଯେଉଁ ଘରେ ଭୂତ ଥିବାର ଲୋକେ ବିଶ୍ୱାସ କରନ୍ତି—3. A haunted house. ୪ । ( ଲକ୍ଷଣାର୍ଥ ) ଯେଉଁ ବଡ଼ ଘରମାନଙ୍କରେ କେହି ଲୋକ ବାସ କରନ୍ତି ନାହିଁ ଓ ଯାହା ନିର୍ଜ୍ଜନ ଓ ଅପରିଷ୍କୃତ ହୋଇ ପଡ଼ି ରହିଥାଏ— 4. ( figurative ) An uninhabited big house or houses which remain unclean and uncared for. [ ଦ୍ର—ଲୋକେ ବିଶ୍ୱାସ କରନ୍ତି ଯେ କୌଣସି ଘରେ ବହୁକାଳ କେହି ବାସ ନ କଲେ ସେ ଘରେ ଭୂତ ପ୍ରେତ ଅଧି ରହନ୍ତି ଓ ସେଠାକୁ ଲୋକେ ବାସ କରିବାକୁ ଗଲେ ଉକ୍ତ ଭୂତମାନେ ସେଠାରେ ନାନା ଉତ୍ପାତ ଓ ଅଲୌକିକ କାଣ୍ଡ କରନ୍ତି । ଭୂତମାନେ ନାନା ଭୟଙ୍କରରୂପ ଧାରଣ କରି ଓ ପୁଣି ଅଦୃଶ୍ୟ ହୋଇଯାଇ ଲୋକଙ୍କୁ ଡରାନ୍ତି । କୌଣସି ଗଡ଼ଜାତରେ ରାଜାଙ୍କ ଅତିଥିରୂପେ ଗୋଟିଏ ଭୂତାଧିକୃତ ଘରେ ଏ ଗ୍ରନ୍ଥସଂଗ୍ରାହକ ୩।୪ ଦିନ ଅବସ୍ଥାନ କରିଥିଲେ । ସେ ଘରେ ଭିନ୍ନ ଭିନ୍ନ କୋଠରିରେ କେତେଥର ପରେ 'ହୁମ୍' ଶବ୍ଦ ଶୁଣାଯାଏ । ଅମ୍ଭେମାନେ ଯେଉଁ କୋଠରିରେ ଥାଉଁ ତହିଁର ନିକଟବର୍ତ୍ତୀ କୋଠରିରେ ଏ ଶବ୍ଦ ଶୁଣାଯାଏ, ଅମ୍ଭେମାନେ ସେ କୋଠରିକୁ ଗଲେ ଉକ୍ତ ଶବ୍ଦ ଆମ୍ଭମାନଙ୍କ ପୂର୍ବାଧିକୃତ କୋଠରିରେ ଶୁଣାଯାଏ । କିନ୍ତୁ ସେ ଭୂତ କାହାରି ଅନିଷ୍ଟ କରିବାର ଶୁଣାଯାଏ ନାହିଁ । କଟକ ସହରରେ ଅମ୍ଭମାନଙ୍କ ବସା ପାଖେ ଗୋଟିଏ ଭଦ୍ରବ୍ୟକ୍ତିଙ୍କ ବସାରେ ହଠାତ୍ କେତେ ଭୂତର ଉପଦ୍ରବ ହେଲା । ଶୂନ୍ୟରୁ ବିଷ୍ଠା ଓ ଢେଲା ପଡ଼ିଲା । ଭାତ ହାଣ୍ଡିରେ ଓ ଭାତ ପତ୍ରରେ ଓ ବନ୍ଦ ଥିବା ଆଲମାରି ଭିତରେ ଓ କାଚକୁମ୍ଭମାନଙ୍କରେ ସଦ୍ୟଃ ଉତ୍ସୃଷ୍ଟ ବିଷ୍ଠା ଦେଖାଗଲା, ଘରେ ଥିବା ବସ୍ତୁମାନ ଶୂନ୍ୟରେ ଉଡ଼ି ବାହାରେ ଆଣି କରିଗଲା । ୩।୨ ମାସ ଏହା ହେବା ପରେ ଜଣେ ଗୁଣିଆ ଆସି ଏ ଉପଦ୍ରବ ବନ୍ଦ କଲେ । ]

**ଭୂତ ଗଣ**—ସଂ. ବି. ( ୬ଷ୍ଠୀ ତତ୍; ଭୂତ+ଗଣ )—ଶିବାନୁଚରଗଣ;
Bhūta gaṇa ଶିବଗଣ—The attendants of Śiba.

**ଭୂତ ଗତ**—ସଂ. ବିଣ. (୬ଷ୍ଠୀ ତତ୍; ଭୂତ+ଗତ)—ପଞ୍ଚଭୂତରେ ପ୍ରବିଷ୍ଟ ବା ମିଳିତ—Reverting to the five elements from which all created things and beings were originally born.
Bhūta gata
[ଦ୍ର—ହିନ୍ଦୁ ମତରେ ଏ ସୃଷ୍ଟି ପଞ୍ଚଭୂତ ଦ୍ୱାରା ନିର୍ମିତ ହୋଇଥାଏ ଓ ଶେଷରେ ପୁଣି ପଞ୍ଚଭୂତରେ ମିଳିତ ହୋଇ ବିଲୟ ହୁଏ ।]

**ଭୂତ ଗ୍ରସ୍ତ**—ସଂ. ବିଣ. ପୁଂ (୩ୟା ତତ୍)—ଯାହାକୁ ଭୂତ ଲାଗିଥାଏ—
Bhūta grasta Possessed of ghosts or evil spirits.
( ଭୂତଗ୍ରସ୍ତା—ସ୍ତ୍ରୀ )

**ଭୂତଘ୍ନ**—ସଂ. ବିଣ ( ଭୂତ+ହନ୍ ଧାତୁ+କର୍ତ୍ତୃ. ଅ )—୧ । ଯେଉଁ ଔଷଧାଦି ପ୍ରୟୋଗ ଦ୍ୱାରା ମନୁଷ୍ୟଠାରୁ ଭୂତ ଛଡ଼େ-
Bhūtaghna
(ଭୂତଘ୍ନୀ—ସ୍ତ୍ରୀ) 1.(a medicine) Used in freeing persons possessed of evil spirits; to exorcise evil spirits from persons. ୨ । ଓଟ; ଉଷ୍ଟ୍ର—2. The camel. ୩ । ରସୁଣ—3. Garlic. ୪ । ଭୂର୍ଜ୍ଜ ବୃକ୍ଷ—4. Birch tree.

**ଭୂତ ଚତୁର୍ଦ୍ଦଶୀ**—ସ.ବିଣ—କାର୍ତ୍ତିକ କୃଷ୍ଣ ଚତୁର୍ଦ୍ଦଶୀ; ନରକ ଚତୁର୍ଦ୍ଦଶୀ—
Bhūta chaturddaśī The 14th day of the dark fortnight of Kārttika.
[ଦ୍ର—ଏ ଦିନ ଯମଙ୍କର ପୂଜା ଓ ତର୍ପଣ କରାଯାଏ ।]

**ଭୂତ ଛଡ଼ାଇବା**—ଦେ. କ୍ରି—୧ । ମନ୍ତ୍ର, ଯନ୍ତ୍ର, ଧୂପ ବା ପ୍ରହାରାଦି ଦ୍ୱାରା ଯେଉଁ ବ୍ୟକ୍ତିକୁ ଭୂତ ଲାଗିଥାଏ ତା ଦେହରୁ ଭୂତକୁ ଦୂର କରାଇବା—
Bhūta chhar̤āibā
(ଭୂତ ଝାଡ଼ିବା—ଅନ୍ୟରୂପ)
(ଭୂତ ଛଡ଼ିବା—ଅ) 1. To exorcise. ୨ । ( ଲକ୍ଷଣାର୍ଥ ) ଦୁଷ୍ଟାମିକୁ ଜବଦ କରିବା—
ভূত ছাড়ান, ভূত ঝাড়ান, ভূত নাবান ବ୍ୟକ୍ତିର
**भूत छोडाना, भूत झाडना, भूत उतारना**
2. To teach wicked person a lesson.

**ଭୂତ ଜଟା**—ସଂ. ବି—ଜଟା ମାଂସୀ ( ଦେଖ )
Bhūta jaṭā Jaṭā māmsī ( See )

**ଭୂତ ତତ୍ତ୍ୱ**—ସଂ. ବି ( ୬ଷ୍ଠୀ ତତ୍; ଭୂତ+ତତ୍ତ୍ୱ )—ପଦାର୍ଥ ବିଦ୍ୟା; ଜଡ଼ ବିଜ୍ଞାନ—Physics; natural science.
Bhūta tattwa

**ଭୂ ତତ୍ତ୍ୱ**—ସଂ. ବି (୬ଷ୍ଠୀ ତତ୍; ଭୂ=ପୃଥିବୀ+ତତ୍ତ୍ୱ )—ପୃଥିବୀର ଉତ୍ପତ୍ତି, ପରିଣତି ଆଦି ସମ୍ବନ୍ଧୀୟ ବିଜ୍ଞାନ—Geology.
Bhū tattwa

**ଭୂତତ୍ତ୍ୱ ବିତ୍**—ସଂ. ବିଣ. ପୁଂ (ଭୂତତ୍ତ୍ୱ+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. କ୍ୱିପ୍ )—ଭୂତତ୍ତ୍ୱ ବିଜ୍ଞାନ ସମ୍ବନ୍ଧରେ ଅଭିଜ୍ଞ ବ୍ୟକ୍ତି—A geologist.
Bhu tattwabit
(ଭୂତତ୍ତ୍ୱବେତ୍ତା—ଅନ୍ୟରୂପ)

**ଭୂତତ୍ତ୍ୱ ବିଦ୍ୟା**—ସ. ବି ( ଆଧୁନିକ ପ୍ରୟୋଗ )—ପୃଥିବୀର ଅଭ୍ୟନ୍ତରସ୍ଥ ପଦାର୍ଥ ସମୂହର ଉତ୍ପତ୍ତିମୂଳକ ଶାସ୍ତ୍ର—Geology.
Bhūtattwa bidyā
ଭୂତତ୍ତ୍ୱ ବିଜ୍ଞାନ } ଅନ୍ୟରୂପ
ଭୂତତ୍ତ୍ୱ ଶାସ୍ତ୍ର }

ଭୂତ ଧାତ୍ରୀ—ସଂ. ବି ( ଭୂତ=ସୃଷ୍ଟ ଜୀବ+ଧାତ୍ରୀ=ପାଳୟିତ୍ରୀ )—
Bhūta dhātri ବସୁଧା; ଧରଣୀ; ପୃଥିବୀ—The earth.

ଭୂତ ନାଥ—ସଂ. ବି. ( ୬ଷ୍ଠୀ ତତ୍; ଭୂତ+ନାଥ )—୧ । ଭୂତେଶ; ମହାଦେବ; ଶିବ—1. Śiba. ୨ । ବଟୁକ
Bhūta nātha
(ଭୂତ ପତି, ଭୂତ ବାହନ } ଅନ୍ୟରୂପ) 2. Name of the leader of the attendants of Śiba.

ଭୂତ ନାୟକ—ସଂ ବି, ପୁଂ (୬ଷ୍ଠୀ ତତ୍; ଭୂତ+ନାୟକ)—ଶିବ—
Bhūta nāyaka Śiba.
(ଭୂତ ବିନାୟକ—ଅନ୍ୟରୂପ)

ଭୂତ ନାୟିକା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍; ଭୂତ+ନାୟିକା)—ଦୁର୍ଗା—
Bhūta nāyikā Durgā.

ଭୂତ ପକ୍ଷ—ସଂ. ବି—ଶୁକ୍ଳମାନ ମାସର କୃଷ୍ଣ ପକ୍ଷ—The dark fortnight of the lunar month.
Bhūta paksha

ଭୂତ ପି(ଖି)ଆ—ଦେ. ବିଂ—ମାଳୁ (ନଡ଼ିଆ); ଯେଉଁ ନଡ଼ିଆର ବାହାରରେ କୌଣସି ଦୋଷ ଦେଖାଯାଏ ନାହିଁ କିନ୍ତୁ ଭିତର ଫମ୍ପା ଓ ଭିତରେ ପାଣି ବା ଶସ ନଥାଏ-
Bhūta pi(khi)ā
An empty cocoanut.

ଭୂତ ପୂର୍ବ—ସଂ. ବିଣ ( ପୂର୍ବରେ ଭୂତ ଅର୍ଥାତ୍ ଘଟିଥିବା )—ପୁର୍ବତନ; ଯାହା ପୁର୍ବରେ ଘଟିଥିଲା—Late; recent; former; that which existed before.
Bhūta pūrba

ଭୂତ ପ୍ରଳୟ—ସଂ. ବି. ( ୬ଷ୍ଠୀ ତତ୍; ଭୂତ+ପ୍ରଳୟ )—ସୃଷ୍ଟ ଜୀବ ଓ ବସ୍ତୁମାନଙ୍କର ବିନାଶ—The destruction of the created beings and things.
Bhūta pralaya

ଭୂତ ପ୍ରେତ—ସଂ. ବି (ସହଚର ଶବ୍ଦ)—ଭୂତ, ପ୍ରେତ ଓ ପିଶାଚାଦି ଦେବଯୋନି—Different classes of aerial beings or spirits.
Bhūta preta
(ଭୂତ ପ୍ରେତ ପିଶାଚ, ଭୂତ ପିଶାଚ } ଅନ୍ୟରୂପ)

ଭୂତ ବର୍ତ୍ତମାନ—ଦେ. ବି (ସହଚର)—ଅତୀତ ଓ ବର୍ତ୍ତମାନକାଳ—
Bhūta barttamāna Past and present.

ଭୂତ ବାସ—ସଂ, ବି—ବିଭୀତକ; ବାହାଡ଼ା (ଗଛ ଓ ଫଳ)—
Bhūta bāsa Beleric Myrobalan.

ଭୂତ ବିଦ୍ୟା—ସଂ. ବି—ଦେବ, ଅସୁର, ଗନ୍ଧର୍ବ, ଯକ୍ଷ, ପିଶାଚ, ନାଗ, ଗ୍ରହ, ଉପଗ୍ରହ ଆଦିଙ୍କ ପ୍ରଭାବରୁ ଉତ୍ପନ୍ନ ମାନସିକ ରୋଗମାନଙ୍କ ନିଦାନ ଓ ଉପାୟଆଲୋଚକ ଆୟୁର୍ବେଦର ଶାଖା (ହି. ଶ)—A branch of Hindu medical science dealing with mental diseases due to the influence of deities, ghosts, planets etc.
Bhūta bidyā

ଭୂତ ବୃକ୍ଷକ—ସଂ. ବି—୧ । ଗର୍ଭଣା ଗଛ—1. Cordia Myxa (tree). ୨ । ଶୋଣାକ; ଫଣଫଣା—2. Bignonia Indica.
Bhūta brukshaka
(ଭୂତ ବୃକ୍ଷ—ଅନ୍ୟରୂପ)

ଭୂତ ବୈରି—ସଂ. ବି—ଭୂତ ଅଇରି ( ଦେଖ )
Bhūta bairi Bhuta airi ( See )
(ଭୂତ ବୈରିଣୀ—ଅନ୍ୟରୂପ)

ଭୂତଭବିଷ୍ୟତ—ଦେ. ବି (ସହଚର)—ଅତୀତ ଓ ଭବିଷ୍ୟତ—
Bhūta bhabishyata Past and future.

ଭୂତ ଭବ୍ୟ—ସଂ. ବି—ସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ—
Bhūta bhabya A name of Bishṇu.

ଭୂତ ଭର୍ତ୍ତା—ସଂ. ବିଣ ( ଭୂତ+ଭୃ ଧାତୁ+ତୃ; କ୍ୟପ୍ )—ଜୀବପାଳକ; ପୃଥିବୀସ୍ଥ ଜୀବମାନଙ୍କର ପାଳନକର୍ତ୍ତା—Maintaining the created beings. ସଂ. ବି—୧ । ଭଗବାନ; ନାରାୟଣ; ବିଷ୍ଣୁ; ପରମେଶ୍ୱର—1. Bishṇu; God. ୨ । ଶିବ—2. Śiba.
Bhūta bharttā
(ଭୂତଭୃତ୍—ଅନ୍ୟରୂପ)

ଭୂତ ଭାବନ—ସଂ. ବି ( ଭୂତ+ଭୂ ଧାତୁ+ଣିଚ୍+କର୍ତ୍ତୃ. ଅନ )—୧ । ଜୀବଜଗତର ସୃଷ୍ଟିକର୍ତ୍ତା ପରମେଶ୍ୱର—1. The Creator; God. ୨ । ଶିବ; ମହାଦେବ—2. Śiba. ୩ । ନାରାୟଣ; ବିଷ୍ଣୁ—3. Bishṇu. ୪ । ବ୍ରହ୍ମା—4. Brahmā. ୫ । ବଟୁକ ଭୈରବ—5, An attendant of Śiba.
Bhūta bhābana

ଭୂତ ଭୂତି—ଦେ.ବି—ଅଶରୀରୀ ଅବସ୍ଥା—The state of being disembodied. [ ଉ—ସୁଷମା ସମାପତ ହେଲା ଦିନ, ଭୂତଭୂତି ଲଭିଥିବ ମଦନ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]
Bhūta bhūti

ଭୂତ ମୟ—ସଂ.ବିଣ (ଭୂତ+ମୟ)—ପଞ୍ଚଭୌତିକ; ପଞ୍ଚଭୂତ ଉପାଦାନରେ ପୂର୍ଣ୍ଣ—Consisting of the five primordial material elements.
Bhūta maya
(ଭୂତମୟୀ—ସ୍ତ୍ରୀଲିଙ୍ଗ)

ଭୂତ ମୁଣ୍ଡା (ମୁଣ୍ଡିଆ)—ଦେ. ବିଣ. ପୁଂ—ଯାହାର ମୁଣ୍ଡର କେଶମାନ ରୁକ୍ଷ, କର୍କଶ ଓ ଅଯତ୍ନବର୍ଦ୍ଧିତ ହୋଇଥାଏ—Having long unkempt hair on one's head.
Bhūta muṇḍa (muṇḍiā)
(ଭୂତମୁଣ୍ଡି (ମୁଣ୍ଡେଇ)—ସ୍ତ୍ରୀଲିଙ୍ଗ)
ଟୋକାମାଥା भूतमुण्डा

ଭୂତଯଜ୍ଞ—ସଂ. ବି—ଜୀବମାନଙ୍କୁ ଅନ୍ନଦାନ ବା ବୈଶ୍ୱଦେବରୂପ ଗୃହସ୍ଥର ନିତ୍ୟ ଅନୁଷ୍ଠେୟ ବଳିଦାନ—The daily ceremony enjoined on every householder to offer oblations of food to the created beings of the universe.
Bhūta jajñya

ଭୂତ ଯୋନି—ସଂ. ବି—ପ୍ରାଣୀମାନଙ୍କର ଭୂତ ବା ପ୍ରେତରୂପରେ ଜନ୍ମଗ୍ରହଣ—The life of a ghost or an unemancipated spirit assumed by an animal after death (as a result of his actions).
Bhūta joni

ଭୂ(ଭୋ)ତ ଲେଣ୍ଡିଆ—ପ୍ରାଦେ (ବାଲେଶ୍ୱର) ବିଣ—(ଗୁଡି) ଯାହାର ଲାଞ୍ଜ କାଗଜର ଅଭାବ ବା ଅନ୍ୟକାରଣରୁ ଅପୂର୍ଣ୍ଣ ଥାଏ—(Paper kite) Having its tail end incomplete.
Bhū(bho)ta leṇḍiā

ଭୂତଳ—ସଂ. ବି (୬ଷ୍ଠୀ ତତ୍; ଭୂ=ପୃଥିବୀର+ତଳ)—୧ । ଧରାତଳ, ପୃଥିବୀର ପୃଷ୍ଠଦେଶ ବା ଉପରଭାଗ—1. The surface of the earth. ୨ । ପତା—
Bhū tala

2. The nether regions. ୩ । ଅନାଚ୍ଛାଦିତ ଭୂମି—3. The bare surface of the earth; the bare ground.

ଭୂତଳ ଶୟନ—ସଂ. ବି ( ୭ମୀ ତତ୍; ଭୂତଳ+ଶୟନ )—ଭୂମି-
Bhūtaḻa śayana ଶଯ୍ୟା; ଖାଲି ଭୂଇଁରେ ବିଛଣା ନ ପକାଇ
(ଭୂତଳଶଯ୍ୟା—ଅନ୍ୟରୂପ) ଶୋଇବା—Sleeping on the bare ground.

ଭୂତଳଶାୟୀ—ସଂ. ବିଣ. ପୁଂ (ଭୂତଳ+ଶୀ. ଧାତୁ+କର୍ତ୍ତୃ. ଇନ୍)—
Bhūtaḻa śāyī ଧରାଶାୟୀ; ଭୂମିଶଯ୍ୟାରେ ଶୟାନ—
(ଭୂତଳଶାୟିନୀ—ସ୍ତ୍ରୀ) Sleeping on the bare ground.

ଭୂତ ଲାଗିବା—ଦେ. ବି—୧ । କୌଣସି ଲୋକଠାରେ ଭୂତାବେଶ
Bhūta lāgibā ହେବା; ଡାହାଣୀ ଲାଗିବା—1. Being
ଭୂତେପାଓୟା; ଭୂତଲାଗା, ঘাড়েভূতচাপা possessed with
भूतलगना, भूतचढना, भूतसवारहोना an evil spirit.
[ ଦ୍ର—ସାଧାରଣତଃ ମାଈଚିଆ ଯୁବକ, ସ୍ୱାମୀବିରହିତା ଯୁବତୀ ଓ ଯୁବତୀବିଧବାମାନଙ୍କୁ ଭୂତ ବା ଡାହାଣୀ ଲାଗେ । ଏମାନେ ଘନ ଘନ ମୂର୍ଚ୍ଛା ଯାଆନ୍ତି ଓ ପ୍ରଳାପ କରନ୍ତି ଏବଂ ଅଶେଷ ବଳପ୍ରକାଶ କରନ୍ତି; ଯଥା, ୨୦ ସେର ପାଣି ଭର୍ତ୍ତି ହୋଇଥିବା ଗରାର ଫନ୍ଦକୁ ଦାନ୍ତରେ କାମୁଡ଼ି ୧୦ । ୨୦ ହାତ ଦୂରକୁ ଟେକି ନିଅନ୍ତି । ସମୟେ ସମୟେ ଏ ରୋଗ ମାରାତ୍ମକ ହୁଏ । ଏଥିପାଇଁ ଗୁଣିଆମାନେ ଯନ୍ତ୍ରତନ୍ତ୍ର ପ୍ରୟୋଗ, ନାନାପ୍ରକାର ଧୂପ ( ଯଥା—ଅଡ଼ୁଆବାଳ ପୋଡ଼ା, ଝୁଣା, ଜନାର୍ଦ୍ଦନ ଧୂପ ) ଓ ନୈବେଦ୍ୟ (ଯଥା ଛେନାପଣା) ଓ ବଳି ଦେଇ ଓ ସମସ୍ତ ସମୟରେ ପ୍ରହାରାଦି କରି ଭୂତଗ୍ରସ୍ତ ବ୍ୟକ୍ତିଠାରୁ ଭୂତ ଛଡ଼ାନ୍ତି । ଭୂତ ଛାଡ଼ିଗଲେ ମନୁଷ୍ୟର ଚୈତନ୍ୟ ଲାଭ ହୁଏ । ] ୨ । (ଲକ୍ଷଣାର୍ଥ) ବାଉଳାପରି ହେବା—2. (figurative) Acting like a mad man. ୩ । କ୍ରୋଧରେ ବାଉଳା ପରି ହେବା—3. Being maddened with rage.

ଭୂତ ଶୁଦ୍ଧି—ସଂ. ବି (୬ଷ୍ଠୀ ତତ୍; ଭୂତ+ଶୁଦ୍ଧି )—୧ । ପୂଜା ଆଦି
Bhūta śuddhi ଅନୁଷ୍ଠାନରେ ମନ୍ତ୍ର ଓ ନ୍ୟାସାଦିଦ୍ୱାରା ଦେହ-
ଶୋଧନ—1. The ceremonial rite of purifying one's body before beginning the performance of any religious rite. [ ଦ୍ର—ଏଥିରେ ଦେହର ଭିନ୍ନ ଭିନ୍ନ ଅଂଶକୁ ମନ୍ତ୍ରପାଠପୂର୍ବକ ସ୍ପର୍ଶ କରିବାକୁ ହୁଏ । ବିନା ଭୂତଶୁଦ୍ଧିରେ ଦେବପୂଜା କରିବା ନିଷିଦ୍ଧ । ] ୨ । ଚୈତନ୍ୟ—2. Consciousness.

ଭୂତ ସଞ୍ଚାର—ସଂ. ବି ( ୬ଷ୍ଠୀ ତତ୍; ଭୂତ+ସଞ୍ଚାର )—ଭୂତାବେଶ;
Bhūta sañchāra କୌଣସି ବ୍ୟକ୍ତିର ଶରୀରରେ ଭୂତ ପଶିବା;
ଭୂତ ଲାଗିବା—Possession of a person's body by an evil spirit.

ଭୂତହର—ସଂ. ବି (ଭୂତ+ହୃ. ଧାତୁ+କର୍ତ୍ତୃ. ଅ; ଭୂତଗ୍ରସ୍ତ ରୋଗୀଙ୍କୁ
Bhūtahara ଏଥିର ଧୂପ ଦିଆଯାଏ)—ଗୁଗ୍ଗୁଳ (ବୈ. ଶା)—Bdellium.

ଭୂତ ହାସ—ସଂ. ବି—ଏକପ୍ରକାର ପ୍ରବଳ ସନ୍ନିପାତ ରୋଗ [ଏଥିରେ
Bhūta hāsa ରୋଗୀର ଇନ୍ଦ୍ରିୟମାନ ଅବଶ ହୁଏ, ରୋଗୀ ବହୁତ ପ୍ରଳାପ କରେ ଓ ହସେ (ବୈ. ଶା)]—A kind of disease accompanied with delirium and loud laughing.

ଭୂତା—ସଂ. ବିଣ. ସ୍ତ୍ରୀ—ଭୂତର ସ୍ତ୍ରୀଲିଙ୍ଗ—Feminine of Bhūta.
Bhūtā ସଂ. ବି—କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ—The 14th day of the dark fortnight of the month of Kārttika. ଦେ. ବି—୧ । ଦାୟିତ୍ୱଜ୍ଞାନଶୂନ୍ୟ ଲୋକ-1. (A man) Without any sense of responsibility. ୨ । ଅସାବଧାନ ବ୍ୟକ୍ତି—2. A careless person. ଦେ. ବି. ପୁଂ—ଲୋକଙ୍କୁ ଡାକିବା ନାମ—
(ଭୂଡ, ଭୂଡିଆ—ଅନ୍ୟରୂପ) A name given to males.

ଭୂତା(ତେ)ଇବା—ଦେ. କ୍ରି—୧ । ଧପାଇବା—1. To cheat; to
Bhūtā(te)ibā deceive. ୨ । ଭଣ୍ଡାଇବା—2. To
ধাপ্পা দেওয়া wheedle. [ ଦ୍ର—ଭୂତମାନେ ରାତିରେ ଲୋକଙ୍କୁ
धपादेना ଉଠାଇ ନେଇ ଭଣ୍ଡିବାର ଲୋକବିଶ୍ୱାସରୁ ଏହି ଅର୍ଥ ।]

ଭୂତାଣ୍ଡି—ଦେ. ବିଣ—୧ । ଭୂତତୁଲ୍ୟ ବ୍ୟବହାରକାରୀ—
Bhūtāṇḍi 1. Conducting one's self like a
ভূতেরমতন ghost. ୨ । ଭୂତର ଉପଯୁକ୍ତ—2. (work)
भूतकेऐसा Befitting a ghost.
( ଭୂତାଣ୍ଡିଆ—ଅନ୍ୟରୂପ )

ଭୂତାତ୍ମା—ସଂ. ବି ( ଭୂତ=ପଞ୍ଚଭୂତ ଅଟେ ଆତ୍ମା ଯାହାର )—୧ ।
Bhūtātmā ଶରୀର; ଦେହ—1. Material body. ୨ । ପ୍ରେତାତ୍ମା; ପ୍ରେତ—2. Ghost; evil spirit. ୩ । ଶିବ—3. Śiba. ୪ । ବ୍ରହ୍ମା—4. Brahmā. ୫ । ବିଷ୍ଣୁ—5. Bishṇu. ୬ । ପରଂବ୍ରହ୍ମ—6. The Universal Spirit. ୭ । ଯୁଦ୍ଧ ( ପ୍ରକୃତିବାଦ)—7. Battle.

ଭୂତାନ୍ତ—ଦେ. ବିଣ ( ପ୍ରାଚୀନ ପଦ୍ୟ )—ଅତୀତ; ଭୂତ—Past.
Bhūtānta [ ଉ—ଭୂତ ଅଥବା ଯେତୁ ଭୂତାନ୍ତ ଭବିଷ୍ୟ । ପ୍ରାଚୀ· ବ୍ରହ୍ମନିରୂପଣ ଗୀତା । ]

ଭୂତାବାସ—ସଂ· ବି ( ୬ଷ୍ଠୀ ତତ୍; ଭୂତ+ଆବାସ )—୧ । ଶରୀର;
Bhūtābāsa ଦେହ—1. Body. ୨ । ବିଷ୍ଣୁ—2. Bishṇu.

ଭୂତାବିଷ୍ଟ—ସଂ. ବିଣ. ପୁଂ ( ୭ମୀ ତତ୍; ଭୂତ+ଆବିଷ୍ଟ )—ଭୂତଗ୍ରସ୍ତ—
Bhūtābishṭa Possessed by a ghost.
( ଭୂତାବିଷ୍ଟା—ସ୍ତ୍ରୀ )

**ଭୂତାବେଶ**—ସଂ. ବି ( ୬ଷ୍ଠୀ ତତ୍; ଭୂତ+ଆବେଶ )—ଭୂତ ଲାଗିବା—
Bhūtābeśa  Possession of a person by an evil spirit.

**ଭୂତାର୍ତ୍ତ**—ସଂ. ବିଣ. ପୁଂ ( ୩ୟା ତତ୍; ଭୂତ+ଋତ ବା ଆର୍ତ୍ତ )—
Bhūtārtta  ଭୂତଗ୍ରସ୍ତ ( ଦେଖ ) —Bhūtagrasta ( See )
( ଭୂତାର୍ତ୍ତ—ସ୍ତ୍ରୀ )

**ଭୂତାର୍ଥ**—ସଂ. ବିଣ—୧ । ଯଥାର୍ଥ; ବାସ୍ତବ; ସତ୍ୟ—1. Actual;
Bhūtārtha  true; real. ୨ । ଅକୃତ୍ରିମ—2. Natural.

**ଭୂତି**—ସଂ. ବି. ସ୍ତ୍ରୀ ଭୂ ଧାତୁ+କରଣ. ତି )—୧ । ମହାଦେବଙ୍କ
Bhūti  ଅଷ୍ଟୈଶ୍ୱର୍ଯ୍ୟ (ମହିମା, ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ବଶିତା, ଈଶିତା, କାମାବସାୟିତା )—1. The eight divine attributes of God Śiba. ୨ । ବିଭୂତି; ଭସ୍ମ—2. Ashes. ୩ । ବୈଶ୍ୟଜାତିର ଉପାଧି—3. A title of the Baiśyas. ୪ । ହସ୍ତୀର ସିନ୍ଦୂରାଦି ଦ୍ୱାରା ସଜ୍ଜା—4. Decking of an elephant with paint. ୫ । ( +ଭାବ. ତି ) ଅଭ୍ୟୁଦୟ—5. Rise. ୬ । ମଙ୍ଗଳ—6. Weal. ୭ । ଉତ୍ପତ୍ତି—7. Birth. ୮ । ଉତ୍କର୍ଷ—8. Excellence. ୯ । ସିଦ୍ଧି—9. Success. ଦେ. ବି—ମୂଲ୍ୟ; ଦାମ—Price. ପ୍ରାଦେ ( ଉତ୍ତର ଭାଷା ) ବି—ମଜୁରି—Wages.

**ଭୂତୁଡ଼ିଆ**—ଦେ. ବି—ଗୁଣିଆ; ଭୂତ ଛଡ଼ାଇବା ବା ଭୂତ ଲଗାଇବା ଲୋକ-
Bhūturḍiā  ରୋଜା; ଭୂତୁଡ଼େ ଓଝା; ଗୁଣୀ  An exorcist.
(ଭୂତୁଡ଼ା, ଭୂତସିଦ୍ଧ—ଅନ୍ୟରୂପ)

**ଭୂତୁମ୍ବୀ**—ସଂ. ସ୍ତ୍ରୀ—ଏକପ୍ରକାର ଅଲାବୁ; ଲାଉ—
Bhūtumbī  A kind of gourd.

**ଭୂତୃ(ସ୍ତୃ)ଣ**—ସଂ. ବି ( ୬ଷ୍ଠୀ ତତ୍; ଭୂ+ତୃଣ )—ସୁଗନ୍ଧ ତୃଣବିଶେଷ; ଗନ୍ଧତୃଣ; ଧନ୍ୱରୀ—Andropogen Citratus; lemon-scented grass.
Bhūtṛu(stṛu)ṇa
ସଂ, ନାମ—ଗୁହ୍ୟବୀଜ, ଭୂତୀକ, ସୁଗନ୍ଧ, ଜମ୍ବୁକପ୍ରିୟ, ଛତ୍ର, ମାଲାତୃଣ
ହିଂ ରାମକପୁର
ବଙ୍ଗ ଗନ୍ଧତୃଣ
ଗୁ. ଭୂତୃଣ
[ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ବିରେଚକ, ଲଘୁ, ଅଗ୍ନିଦୀପକ, ରୁକ୍ଷ, ନେତ୍ରର ଅହିତକର, ମୁଖଶୋଧକ, ଓ ବୃଷ୍ୟ, ମଳବର୍ଦ୍ଧକ ଓ ପିତ୍ତର ଓ ରକ୍ତର ପୁଷ୍ଟିକର । ]

**ଭୂତେଶ**—ସଂ. ବି (୬ଷ୍ଠୀ ତତ୍; ଭୂତ+ଈଶ )—ମହାଦେବ—
Bhūteśa  Śiba.

**ଭୂଦାର**—ସଂ. ବି ( ଭୂ=ଭୂମି+ଦୃ ଧାତୁ=ବିଦାରଣ କରିବା+କର୍ତ୍ତୃ. ଅ )—ବରାହ; ଶୂକର—Boar; pig.
Bhūdāra

**ଭୂଦେବ**—ସଂ. ବି ( ୬ଷ୍ଠୀ ତତ୍; ଭୂ+ଦେବ )—ବ୍ରାହ୍ମଣ—
Bhūdeba (ଭୂସୁର—ଅନ୍ୟରୂପ)  Brāhmaṇa.

**ଭୂଧର**—ସଂ. ବି ( ଭୂ+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ. ଅ )—୧ ।
Bhūdhara  ପର୍ବତ; ମହୀଧର—1. Hill; mountain. ୨ । ଆୟୁର୍ବେଦୋକ୍ତ ମନ୍ତ୍ରବିଶେଷ—2. An incantation mentioned in the Ayurbeda. ୩ । ଶେଷ ନାଗ; ଅନନ୍ତ ଦେବ—3. The great serpent upholding the universe. ୪ । ବଟୁକ ଭୈରବ; ଶିବଙ୍କ ପ୍ରଧାନ ଅନୁଚର—4. The leader of the attendants of Śiba.

**ଭୂ ଧାତ୍ରୀ**—ସଂ. ବି—ଭୂଇଁଅଁଳା ( ଦେଖ )
Bhū dhātrī  Bhuiñ a-añḷā ( See )

**ଭୂ ନିମ୍ବ**—ସଂ. ବି—ଚିରେଇତା ( ଦେଖ )
Bhū nimba  Chireitā ( See )

**ଭୂ ନୀପ**—ସଂ. ବି—୧ । ପୋକଶୁଙ୍ଘା (ହରେକୃଷ୍ଣ ଦ୍ରବ୍ୟଗୁଣ ) ( ଦେଖ )
Bhū nīpa  Pokaśunghā ( See ) ୨ । ଭୂଇଁକଦମ୍ବ ( ଦେଖ )—2. Bhuiñ kadamba (See)

**ଭୂପ**—ସଂ. ବି ( ଭୂ=ପୃଥିବୀ+ପା ଧାତୁ+କର୍ତ୍ତୃ. ଅ )—ରାଜା; ନୃପତି
Bhūpa  —King; ruler of a kingdom.
(ଭୂପାଳ, ଭୂଭୁଜ୍—ଅନ୍ୟରୂପ)

**ଭୂପତି**—ସଂ. ବି ( ୬ଷ୍ଠୀ ତତ୍; ଭୂ+ପତି )—ରାଜା—King. ଦେ.
Bhūpati  ବି—ଓଡ଼ିଶାର କେତେକ ରାଜାଙ୍କ ଉପାଧି—Title of some of the Oriya Rajas.

**ଭୂପତି ପଣ୍ଡିତ**—ଦେ. ବି ( ନାମ )—ଜଣେ ଜନପ୍ରିୟ ପ୍ରାଚୀନ ଓଡ଼ିଆ
Bhūpati paṇḍita  କବି—Name of an Oriya poet.
[ଦ୍ର—ଏ ପଶ୍ଚିମାଞ୍ଚଳବାସୀ ସାରସ୍ୱତ ବ୍ରାହ୍ମଣ; ପୁରୀ ରାଜା ଦିବ୍ୟସିଂହ ଦେବଙ୍କ ରାଜତ୍ୱକାଳରେ ସପ୍ତଦଶ ଶତାବ୍ଦୀର ଶେଷଭାଗକୁ ତୀର୍ଥାଟନରେ ଯାଇଁ ପୁରୀକୁ ଆସି ରାଜାଙ୍କ ଅନୁଗ୍ରହରେ ଖୋରଧା ରଥିପୁର ଗ୍ରାମରେ ବାସ କଲେ । ଏ ବୈଷ୍ଣବଧର୍ମାବଲମ୍ବୀ ଥିଲେ; ସେ ହିନ୍ଦି, ସଂସ୍କୃତ ଓ ବଙ୍ଗଳା ଭାଷା ଜାଣୁଥିଲେ; ପରେ ଓଡ଼ିଆ ଭାଷା ଶିଖି ତହିଁରେ ପ୍ରେମପଞ୍ଚାମୃତ ଗ୍ରନ୍ଥ ଓ ଭୂପତି ଚଉତିଶା ନାମକ କବିତା ପ୍ରଣୟନ କଲେ । ]

**ଭୂପତି ଭଞ୍ଜ**—ଦେ. ବି (ନାମ )—ଜଣେ ରାଜା ଓ କବି—Name of
Bhūpati bhañja  an Oriya Raja and poet.
[ ଉ—ଗଣେଶ ବିଭୂତି ଏହାଙ୍କ ରଚିତ କାଳ୍ପନିକ ଇତିହାସ । ବିନାୟକ, ଉତ୍କଳସାହିତ୍ୟ ଇତିହାସ । ]

**ଭୂବ**—ଦେ. ବି ( ସଂସ୍କୃତ 'ଭୂ' ଶବ୍ଦର ବହୁବଚନ 'ଭୁବ'ର ଅପଭ୍ରଂଶ )—
Bhūba  ପୃଥିବୀ—The earth. [ ଉ—ଏ ଯେଣୁ ମେଳଣ ହୋଇବେ, ଏ ଭୂବ ଶ୍ଳେଷ୍ଣ ଆକର୍ଷିବେ । ଜଗନ୍ନାଥ. ଭାଗବତ । ]

**ଭୂ ବଳୟ**—ସଂ. ବି. (୬ଷ୍ଠୀ ତତ୍; ଭୂ+ବଳୟ)—ପୃଥିବୀର ପରିଧି—
Bhū baḷaya  The circumference of the earth

**ଭୂ ବାୟୁ**—ସଂ. ବି (୬ଷ୍ଠୀ ତତ୍ )—ପୃଥିବୀର ଉପରିସ୍ଥ ପବନ—The
Bhū bāyu  atmosphere; the air over the surface of the earth.

ଭୂ ବୃତ୍ତ—ସଂ. ବ (୬ଷ୍ଠୀ ତତ୍; ଭୂ+ବୃତ୍ତ)—ନିରକ୍ଷ ବୃତ୍ତ—
Bhū bṛutta The equator.

ଭୂ ଭାଗ—ସଂ. ବି. (ଭୂ+ଭାଗ )—୧ । ସ୍ଥଳଭାଗ—1. The solid
Bhū bhāga portion of the earth, as distinguished from the water portion of it.
୨ । ଦେଶାଂଶ—2, A political division of the earth.

ଭୂଭାର—ସଂ. ବି. ( ୬ଷ୍ଠୀ ତତ୍; ଭୂ+ଭାର )—୧ । ପୃଥିବୀର ଭାର—
Bhūbhāra 1. The burden of the earth.
୨ । ପୃଥିବୀରେ ପାପର ପ୍ରାବଲ୍ୟ—2. The prevalence of sin in the world.

ଭୂଭୃତ୍—ସଂ. ବ ( ଭୂ=ପୃଥିବୀ+ଭୃ ଧାତୁ=ପୋଷିବା, ଧରିବା+
Bhūbhṛut କର୍ତ୍ତୃ. କ୍ୱିପ୍ )—୧ । ରାଜା—1. King.
୨ । ପର୍ବତ—2. Mountain.

ଭୂମଣ୍ଡନା—ସଂ. ବଣ. ସ୍ତ୍ରୀ (୬ଷ୍ଠୀ ତତ୍; ଭୂ+ମଣ୍ଡନ+ସ୍ତ୍ରୀ. ଆ; ଯାହା ଲାଗି
Bhūmaṇḍanā ପୃଥିବୀ ସୁନ୍ଦର ଦିଶେ)—ଅତି ସୁନ୍ଦରୀ—
Beautiful (woman); beautifying the world.

ଭୂମଣ୍ଡଳ—ସଂ. ବି. ( ଭୂ=ପୃଥିବୀ+ମଣ୍ଡଳ )—୧ । ଜଗତ୍; ପୃଥିବୀ—
Bhūmaṇḍaḷa 1. The world. ୨ । ଭୂଗୋଲକ—2. The terrestrial globe.

ଭୂମା—ସଂ. ବି ( ବହୁ+ଇମନ୍=ନିପାତନ, ଭୂମନ୍, ୧ମା ୧ବ )—
Bhūmā ୧ । ବହୁତ୍ୱ—1. Plurality; immensity.
୨ । ସର୍ବବ୍ୟାପୀ ପୁରୁଷ ଭଗବାନ—2. The all-pervading God. ସଂ. ବଣ (ବହୁ+ମନ୍)—ଭୂୟିଷ୍ଠ; ବହୁଳ—Great; extensive.

ଭୂମାନନ୍ଦ—ସଂ. ବି ( କର୍ମଧା; ଭୂମା+ଆନନ୍ଦ )—ଅତ୍ୟନ୍ତ ଆନନ୍ଦ—
Bhūmānanda Great joy. (ଉ—ଦିଏ ଜୀବାତ୍ମାକୁ ଶାନ୍ତି ଭୂମାନନ୍ଦ, ପଳାଏ ତ୍ରିତାପ ଦୁଃଖ ଦ୍ୱନ୍ଦ୍ୱ । ନନ୍ଦକିଶୋର. ଶର୍ମିଷ୍ଠା ।)

ଭୂମି(ମୀ)—ସଂ. ବ ( ଭୂ ଧାତୁ+ଅଧିକରଣ ମି;+ଈ )—୧ । ପୃଥିବୀ—
Bhūmi(mī) 1. The earth. ୨ । ଦେଶ—2. Country.
୩ । କ୍ଷେତ୍ର—3. Field. ୪ । ଜମି; ପୃଥିବୀର ଉପରସ୍ଥ ମୃତ୍ତିକା—4. Soil over the surface of the earth. ୫ । ସ୍ଥାନ;ଆଧାର—5. Place;site; receptacle. ୬ । ମୂଳଦୁଆ—6. Foundation ୭ । ବାସସ୍ଥାନ—7. Residence. ୮ । ଖଣି;ଆକର—8. Mine. ୯ । ଜିହ୍ୱା—9. Tongue. ୧୦ । ଯୋଗୀମାନଙ୍କର ଅବସ୍ଥାବିଶେଷ—10. A certain condition of persons engaged in meditation. ୧୧ । ପ୍ରତିମାର ବଇଠି—11. The base or pedestal of an image.

ଭୂମିଆଁ—ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ଓଡ଼ିଆ ଶୂଦ୍ରବିଶେଷ—
Bhūmiāñ A low caste of Śudras in the district of Ganjam.
[ଦ୍ର—ଏମାନେ କୋଟପାଡ଼ ଓ ସାଲିମା ଅଞ୍ଚଳରେ ବାସ କରନ୍ତି । ଏମାନେ ମଦ୍ୟପ, ଅନାର୍ଯ୍ୟ, ଶୂଦ୍ର । ଏମାନେ ପାଣି ଦେଲେ ବ୍ରାହ୍ମଣମାନେ ଗୋଡ଼ ହାତ ଧୁଅନ୍ତି, କିନ୍ତୁ ପିଅନ୍ତି ନାହିଁ ।]

ଭୂମି କମ୍ପ—ସଂ. ବି. (୬ଷ୍ଠୀ ତତ୍; ଭୂମି+କମ୍ପ)—ପୃଥିବୀର ଅଭ୍ୟନ୍ତରସ୍ଥ
Bhūmi kampa ତରଳ ଧାତୁ ଆଦିର ଆନ୍ଦୋଳନଜନିତ ପୃଥିବୀ-ପୃଷ୍ଠର କମ୍ପନ—Earthquake. [ଦ୍ର—ସାଧାରଣ ଲୋକଙ୍କର ବିଶ୍ୱାସ ଯେ ପୃଥିବୀକୁ ଟେକି ଧରିଥିବା ବାସୁକୀ କଡ଼ ଲେଉଟାଇବାରୁ ଭୂମିକମ୍ପ ହୁଏ; କିନ୍ତୁ ପୃଥିବୀ ପ୍ରଥମେ ଅତି ଉଷ୍ଣ ଅଗ୍ନିମୟ ତରଳ ବସ୍ତୁ ଥିଲା, ତାହା କାଳକ୍ରମେ ଥଣ୍ଡା ହୋଇ ଜୀବଙ୍କ ବାସୋପଯୋଗୀ ହୋଇଅଛି; ତଥାପି ଏହାର ଗର୍ଭ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଅଗ୍ନିମୟ ରହିଅଛି । ବେଳେ ବେଳେ ଏହି ଭୂଗର୍ଭସ୍ଥ ଅଗ୍ନି ଦ୍ୱାରା ଉତ୍ତପ୍ତ ଓ ତରଳ ଧାତୁ ଆଦି ଆଗ୍ନେୟଗିରିର ମୁଖ ବାଟେ ବାହାରକୁ ବାହାରେ । ଭୂଗର୍ଭସ୍ଥ ଉତ୍ତପ୍ତ ତରଳ ବସ୍ତୁ ବାହାରକୁ ବାହାରିବା ଉପଲକ୍ଷରେ ଭୂମି ଦୋହୋଲି ଯାଏ, ଏହାକୁ ଭୂମିକମ୍ପ କହନ୍ତି ।]

ଭୂମିକା—ସଂ. ବି ( ଭୂମି+କ+ସ୍ତ୍ରୀ. ଆ )—୧ । ବକ୍ତବ୍ୟ ବିଷୟର ବା
Bhūmikā ଗ୍ରନ୍ଥର ଅବତରଣିକା; ପୂର୍ବାଭାସ ବା ସୂଚନା—
1. Introduction to a book or discourse.
୨ । ପତ୍ତନ; ମୂଳଦୁଆ—2. Foundation ୩ । ସଜ୍ଜା; ବେଶଧାରଣ—3. Putting on of a dress; toilet. ୪ । ରୂପାନ୍ତରପରିଗ୍ରହ—4. Changing of form. ୫ । ରଚନା—5. Composition.
୬ । (ଦର୍ଶନ ଶାସ୍ତ୍ର) ଚିତ୍ତର ଅବସ୍ଥାବିଶେଷ—6. A condition of the mind. ୭ । ବେଶ ବଦଳାଇବା-7. Changing of dress.

ଭୂମି କୁଷ୍ମାଣ୍ଡ—ସଂ. ବ—ଭୂଇଁ କଖାରୁ ( ଦେଖ )
Bhūmi kushmāṇḍa Bhūiñ kakhāru ( See )

ଭୂମି ଗତ—ସଂ. ବଣ ( ୨ୟା ତତ୍ )—୧ । ଭୂମିରେ ଅବସ୍ଥିତ—
Bhūmi gata 1. Situated on the ground.
୨ । ଭୂପତିତ—2. Fallen down. ୩ । ଭୂମିଷ୍ଠ—3. Born.

ଭୂମି ଗତେ—ପ୍ରାଦେ. (ପ୍ରାଚୀନ ପଦ୍ୟ ) କ୍ରି. ବଣ—ଭୂମିଷ୍ଠ ହୋଇ—
Bhūmi gate On being born. (ଉ—ଅଦିତି ଉଦରୁ ଭୂମି ଗତେ, ବାମନ ଦେଖିଲେ ଅଗ୍ରତେ । ଜଗନ୍ନାଥ. ଭାଗବତ ।)

ଭୂମି ଗମ—ସଂ. ବ (ଭୂମି+ଗମ୍ ଧାତୁ+କର୍ତ୍ତୃ. ଅ)—ଓଟ (ହି. ଘ)—
Bhūmi gama Camel.

ଭୂମି ଗୃହ—ସଂ. ବ (ମ.ପ.ଲୋ )—ଭୂଗର୍ଭରେ ବା ମାଟିତଳେ ନିର୍ମିତ
Bhūmi gṛuha ଘର—A house built under the surface of land; under-ground house; cellar.

ଭୂମି ଚମ୍ପକ—ସ. ବି—ଭୂଇଁ ଚମ୍ପା ( ଦେଖ )
Bhūmi champak Bhūiñ champā ( See )

ଭୂମି ଚଳ—ସ. ବି. (୬ଷ୍ଠୀ ତତ୍) — ଭୂମି କମ୍ପ—
Bhūmi chaḷa Earthquake.
(ଭୂମି ଚଳନ—ଅନ୍ୟରୂପ)

ଭୂମିଜ—ସ. ବିଣ (ଭୂମି + ଜନ୍ ଧାତୁ + ଅ)—୧ । ଭୂମିରୁ ଉତ୍ପନ୍ନ—
Bhūmija 1. Produced from the earth. ୨ । (ଭୂମିଜା—ସ୍ତ୍ରୀ) କ୍ଷେତ୍ର ଜାତ; କୃଷିଜାତ—2. Produced from agriculture. ସ. ବି—୧ । ମଙ୍ଗଳଗ୍ରହ—1. The planet Mars. ୨ । ନରକାସୁର—2. The name of a demon. ୩ । ସୁନା (ହି.ଶ)—3. Gold. ୪ । ସୀସା ( ହି. ଶ )—4. Lead (metal). ଗ୍ରାଦେ. ଦେ.—୧ । ଭୂଇଁଆ ଜାତି (ଦେଖ) Bhūiāñ jāti (See) ୨ । ଭୂଇଁଆଁ ଜାତିର ଭାଷା—2. Language spoken by the Bhuyañs in Singbhum, Manbhum and Mayurbhunj.

ଭୂମି ଜମ୍ବୁ—ସ. ବି—ଭୂଇଁ ଜାମୁ (ଦେଖ)
Bhūmi jambu Bhūiñ jāmu (See)

ଭୂମିଜା—ସ. ବି. ସ୍ତ୍ରୀ—( ଭୂମିଜ + ଆ )—ଧରଣୀସୁତା; ସୀତା—Sitā.
Bhūmijā (ଭୂମିପୁତ୍ରୀ, ଭୂମିସମ୍ଭବା, ଭୂମିସୁତା—ଅନ୍ୟରୂପ)

ଭୂମି ଜାତ—ସ. ବିଣ—(୭ମୀ ତତ୍)—ଭୂମିରୁ ଉତ୍ପନ୍ନ—Produced
Bhūmi jāta from the earth. ସ. ବି—ବୃକ୍ଷାଦି; ଉଦ୍ଭିଦ—Trees and plants; vegetables.

ଭୂମି ଜୀବୀ—ସ. ତ. ପୁଂ—(ଭୂମି + ଜୀବ୍ ଧାତୁ + ଇନ୍, ୧ମା. ୧ବ)—
Bhūmi jībī ୧ । କୃଷକ—1. An agriculturist. ୨ । (ଭୂମି ଜୀବନୀ—ସ୍ତ୍ରୀ) ବୈଶ୍ୟ (ହି. ଶ)—2. Baisya.

ଭୂମି ତଳ—ସ. ବି (୬ଷ୍ଠୀ ତତ୍; ଭୂମି + ତଳ) ଭୂତଳ; ଧରାପୃଷ୍ଠ—
Bhūmi taḷa The surface of the earth or soil.

ଭୂମି ଦାନ—ସ.ବି (୬ଷ୍ଠୀ ତତ୍; ଭୂମି+ଦାନ)—ବ୍ରାହ୍ମଣଙ୍କୁ ଜମି ଦେବା—
Bhūmi dāna Gift of land (to a Brāhmaṇa); grant of land (to a Brāhmaṇa.)

ଭୂମି ଦେବ—ସ. ବି (୬ଷ୍ଠୀ ତତ୍)—୧ । ଭୂଦେବ; ବ୍ରାହ୍ମଣ—1.
Bhūmi deba Brāhmaṇa. ୨ । ରାଜା—2. King.
[ ଉ—ଏକ ରଥକରେଣ ଦ୍ରୋଣ ଭୂମି ଦେବ । ସହାରିବେ କ୍ଷଣକେ ଦେବତା ମାନବ । କୃଷ୍ଣସିଂହ, ମହାଭାରତ, ବନ । ]

ଭୂମି ଧର—ସ.ବି—(ଭୂମି+ଧୃ ଧାତୁ+ କର୍ତ୍ତୃ.ଅ)—୧ । ଭୂଧର;ପର୍ବତ—
Bhūmi dhara 1. Mountain. ୨ । ଅନନ୍ତ; ଶେଷନାଗ—2 The great mythological serpent upholding the universe.

ଭୂମିପ—ସ. ବି. ପୁଂ (ଭୂମି+ପା. ଧାତୁ+କର୍ତ୍ତୃ. ଅ, କିମ୍ବା ପାଳ ଧାତୁ+ କର୍ତ୍ତୃ. ଅ)—ନୃପ; ରାଜା—King.
Bhūmipa
(ଭୂମିପତି, ଭୂମିପାଳ—ଅନ୍ୟରୂପ)

ଭୂମି ପିଶାଚ—ସ. ବି—ତାଳବୃକ୍ଷ—
Bhūmi pisācha Palm-tree.

ଭୂମିପୁତ୍ର—ସ. ବି (୬ଷ୍ଠୀ ତତ୍)—୧ । ମଙ୍ଗଳଗ୍ରହ—1. The
Bhūmiputra planet Mars. ୨ । ନରକାସୁର—2. A demon. ୩ । ଶ୍ୟୋନାକ; ଫଣଫଣା—3. Bignoniea Indica.

ଭୂମି ବର୍ଦ୍ଧକ—ସ. ବି (ଉପପଦ ସମାସ; ଭୂମି+ବର୍ଦ୍ଧକ; ଯାହା ସଢ଼ି ଯାଇ
Bhūmi barddhaka ଭୂମିର ଅବୟବକୁ ବଢ଼ାଏ)—ମୃତଶରୀର (ହି. ଶ)—Dead body; corpse.

ଭୂମିବଳା—ସ. ବି—ଶାକ ତରୁ ବିଶେଷ—Sida Veronicifolia
Bhūmibaḷā (plant). [ ଦ୍ର—ଏହା ସୁଲ୍ଭ ଭାରତର ଗ୍ରୀଷ୍ମ ପ୍ରଧାନ ଅଞ୍ଚଳରେ ଏବଂ ସିଂହଳରେ ଘାସମୟ ସ୍ଥଳମାନଙ୍କରେ ବା ପଡ଼ିଆ ଭୂମିରେ ହୁଏ; ଏ ବହୁକାଳ ସ୍ଥାୟୀ; ଏହାର ଶାଖା ଲମ୍ବ ଓ ସିଧା ଭାବରେ ବଢ଼େ । ପତ୍ରଗୁଡ଼ିକ ଓସାରିଆ ଓ ଅଣ୍ଡାକାର; ଫୁଲ ଛୋଟ, ଫୁଲର ରଙ୍ଗ ଧଳା ଓ ହଳଦିଆ ମିଶା; ପାଖୁଡ଼ାଗୁଡ଼ିକ ବିସ୍ତୃତ ।
ଜଙ୍ଘା
वर्नानियार
ସାନ୍ତାଲୀ. ଗାର, ଡାଣ୍ଡି,
କାରଥର, ଜୋଖା, ସାକାମ ।
ତା, ପାଲାମ୍ପାସି, ପାଲାମ୍ପାଦୁ
ତେ. ଗସ୍ୟାପୁଆଲୁ
ଗୁ. ଭୋଯ୍ୟାବଲା
ମ. ଭୂଇଚକ୍ନା,ଭୋଯ୍ୟାବାଲ
ଏହାର ପତ୍ର ଫୁଲ ଓ ଫଳ କଷା ସ୍ୱାଦ,ଉଦରାମୟ ଅର୍ଶାଣ୍ଡି, ଓ ମୂତ୍ରାଘାତଯୋଡ଼ାର ଔଷଧରେ ଲାଗେ । ]

ଭୂମି ବଲ୍ଲୀ—ସ. ବି—ଭୂଇଁ ଅଁଳା (ଦେଖ)
Bhūmi balli Bhūiñ a-añḷā (See).

ଭୂମି ବାଡ଼ି—ଦେ. ବି (ସହଚର)—ଅଚଳନ୍ତି ଭୂସମ୍ପତ୍ତି; ସମ୍ପତ୍ତି —
Bhūmi bāṛdi Immoveable property.
जमीवाड़ी जमिनवारी

ଭୂମିବାସ—ସ. ବି ( ୬ଷ୍ଠୀ ତତ୍; ଭୂମି + ବାସ )—ଜମି ଓ ଘରମାନ
Bhūmibāsa Land and houses. ( ଉ—ରିଦ୍ଧି ସିଦ୍ଧି ଭୂମିବାସ; ଏ ସବୁ ଭୂମିର ପ୍ରକାଶ । ଜଗନ୍ନାଥ ଭାଗବତ । )

ଭୂମି(ମୀ)ରୁହ—ସ. ବି (ଭୂମି + ରୁହ୍ ଧାତୁ + କର୍ତ୍ତୃ.ଅ)—ବୃକ୍ଷ—
Bhūmi(mī)ruha Tree; plant.

ଭୂମି ଲବଣ—ସ. ବି—ସୋରା (ହି. ଶ)—
Bhūmi labaṇa Saltpetre; nitre.

ଭୂମି ଲାଭ—ସ. ବି (୬ଷ୍ଠୀ ତତ୍)—ଜମିପ୍ରାପ୍ତି—
Bhūmi lābha Acquisition of land.

ଭୂମି ଲୁଣ୍ଠିତ—ସ. ବିଣ (୭ମୀ ତତ୍)—ଭୂମିରେ ଗଡ଼ୁଥିବା—
Bhūmi lunṭhita Rolling on the ground.

ଭୂମି ଲେପ—ସ. ବି (୬ଷ୍ଠୀ ତତ୍)—ଗୋବର (ହି. ଶ)
Bhūmi lepa Cowdung.

ଭୂମିଲୋକ—ଦେ. ବି—ମର୍ତ୍ତ୍ୟର ଲୋକଗଣ—The people of the
Bhūmilok a terrestrial regions. (ଉ—ଆମ୍ଭ ଭୁଲେ ଭୁଲିଲେ ଛନ୍ତି ଭୂମିଲୋକ । କୃଷ୍ଣସିଂହ, ମହାଭାରତ, ବନପର୍ବ । )

ଭୂମି ଶଯ୍ୟା—ସ. ବ (୭ମୀ ତତ୍; ଭୂମି+ଶଯ୍ୟା)—ଭୂତଳରେ ଶୋଇବା-
Bhūmi śajyā Sleeping on the bare ground.

ଭୂମି ଶାୟୀ—ସ. ବଣ. ପୁଂ (ଭୂମି+ଶୀ. ଧାତୁ+ଇନ୍; ୧ମା. ୧ବ)—
Bhūmi śāyi ୧। ଧରାଶାୟୀ—1. Sleeping on the
(ଭୂମିଶାୟିତ-ଅନ୍ୟରୂପ) bare ground; lying on the
[ଭୂମିଶାୟିନୀ—ସ୍ତ୍ରୀ] ground. ୨। ମୃତ—2. Dead (and lying prostrate on the ground.)

ଭୂମିଷ୍ଠ—ସ. ବଣ. ପୁଂ (ଭୂମି+ସ୍ଥା· ଧାତୁ+କର୍ତ୍ତୃ. ଅ)—୧। ପ୍ରସୂତ;
Bhūmishṭha ଉତ୍ପନ୍ନ; ଜାତ—1. Born. ୨। ଭୂମିଶାୟିତ—
(ଭୂମିଷ୍ଠା—ସ୍ତ୍ରୀଲିଙ୍ଗ) 2. Lying prostrate on the ground. ୩। ପ୍ରଣତ—3 Bowing; stooping with the face turned towards the ground.

ଭୂମିଷ୍ଠ ହେବା—ଦେ. କ୍ରି—ପ୍ରସୂତ ହେବା; ଜନ୍ମ ହୋଇ ପଡ଼ିବା—
Bhūmishṭha hebā To be born.
ভূমিষ্ঠ হওয়া भूमिष्ठ होना

ଭୂମି ସାଉଣ୍ଟା—ଦେ. ବ—ଭୂମିରେ ଲୁଣ୍ଠନ—Rolling on the
Bhūmi sāuṇṭā ground. ( ଉ—କାଣ୍ଡଘାତରେ ତଳେ
মাটিতেগড়াগড়ি (হওয়া) ପଡ଼ଣ କେତେଠା, ଦେବେ ଭୂମି ସାଉଣ୍ଟା
भूमिमे लोटपोट (करना) ଦନୁଜଙ୍କ ବେଠା। କୃଷ୍ଣସିଂହ.ମହାଭାରତ.
(ପ୍ରୟୋଗ—ଭୂମିସାଉଣ୍ଟା ଦେବା) ବନପର୍ବ।)

ଭୂମିସାତ୍—ସ· ବ (ଭୂମି+ପରିଣତାର୍ଥେ. ସାତ୍)—ଭୂପାତିତ—
Bhūmisāt Fallen to the ground; laid on the ground; consigned to the ground.

ଭୂମି ସମ୍ପତ୍ତି—ସ. ବ (ଭୂମିରୂପ ସମ୍ପତ୍ତି.ରୂପକ କର୍ମଧା;ଭୂମି+ସମ୍ପତ୍ତି)—
Bhūmi sampatti ଜମିବାଡ଼ି; ଭୂସମ୍ପତ୍ତି—Landed property.

ଭୂମି ସମ୍ଭବା—ସ. ବି. ସ୍ତ୍ରୀ (୭ମୀ ତତ୍; ଭୂମି+ ସମ୍ଭବ+ସ୍ତ୍ରୀ. ଆ)—
Bhūmi sambhabā ସୀତା—Sitā

ଭୂମି ସୁର—ସ. ବ—ଭୂସୁର; ବ୍ରାହ୍ମଣ—
Bhūmi sura A Brāhmaṇa.

ଭୂମିହାର—ସ. ବ—(ଭୂମି+ହୃ. ଧାତୁ+କର୍ତ୍ତୃ. ଅ)—ବିହାର ଓ ସଂଯୁକ୍ତ
Bhūmihāra ପ୍ରଦେଶବାସୀ ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ—A class of Brāhmaṇas of Bihar and the United Provinces. [ ଦ୍ର—ଏ ଜାତି ବହୁ ସଂଖ୍ୟା ବିହାର ପ୍ରଦେଶରେ ବାସ କରନ୍ତି। ଏମାନେ ଆପଣାଙ୍କୁ ବ୍ରାହ୍ମଣ ଜାତିର ଅନ୍ତର୍ଗତ ବୋଲି କହନ୍ତି ଓ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦିଅନ୍ତି। ଏ ଜାତିର ଉତ୍ପତ୍ତି ସମ୍ବନ୍ଧେ ନାନା କଥା ଶୁଣାଯାଏ; କେହି କେହି କହନ୍ତି ଯେ ଯେଉଁ ସମୟରେ ପରଶୁରାମ ପୃଥିବୀକୁ ନିଃକ୍ଷତ୍ରିୟ କରିଥିଲେ ସେହି ସମୟରେ ସେ ଯେଉଁ ବ୍ରାହ୍ମଣମାନଙ୍କୁ ରାଜ୍ୟ ଶାସନ ଭାର ସମର୍ପଣ କରିଥିଲେ, ଭୂମିହାର ବ୍ରାହ୍ମଣମାନେ ସେମାନଙ୍କ ବଂଶଧର ଅଟନ୍ତି। କେହି କେହି କହନ୍ତି ଯେ ମଗଧରାଜା ଜରାସନ୍ଧ ସ୍ୱାନୁଷ୍ଠିତ ଯଜ୍ଞ ପାଇଁ ଏକ ଲକ୍ଷ ବ୍ରାହ୍ମଣଙ୍କୁ ଲୋଡ଼ିଥିଲେ। କିନ୍ତୁ ଏତେ ସଂଖ୍ୟକ ବ୍ରାହ୍ମଣ ନ ମିଳିବାରୁ ତାଙ୍କର ଏକ ମନ୍ତ୍ରୀ ନିମ୍ନଜାତୀୟ ଅନେକ ଲୋକଙ୍କୁ ପଇତା ପିନ୍ଧାଇ ଜରାସନ୍ଧଙ୍କ ନିକଟରେ ଆଣି ବ୍ରାହ୍ମଣ ବୋଲି ଠିଆ କରାଇ ଦେଲେ, ଏମାନେ ଉକ୍ତ ବ୍ୟକ୍ତିମାନଙ୍କ ସନ୍ତାନ। ଯେ ହେଉ, ବର୍ତ୍ତମାନ ଏ ଜାତିର ବ୍ରାହ୍ମଣମାନଙ୍କଠାରେ ଯଜନ, ଯାଜନ ଆଦି ବ୍ରାହ୍ମଣୋଚିତ କର୍ମର ଅଭାବ ଦେଖାଯାଏ ଓ କ୍ଷତ୍ରିୟୋଚିତ ଅନେକ କର୍ମ ଏମାନଙ୍କଠାରେ ଦେଖାଯାଏ। ଏମାନେ ଦାନ ଗ୍ରହଣ କରନ୍ତି ନାହିଁ ଓ ଯେତବାଡ଼ି ଓ ଚାକିରି କରି ଜୀବିକାନିର୍ବାହ କରନ୍ତି। (ହି,ଶ) ଓଡ଼ିଶାରେ ବଳଭଦ୍ର ଗୋତ୍ରୀ ବା ମାସ୍ତାନ ବ୍ରାହ୍ମଣଙ୍କ ପରି ବିହାରରେ ବ୍ରହ୍ମଣ ସମାଜରେ ଏମାନଙ୍କର ପରିସ୍ଥିତି ଥିବାର ଜଣାଯାଏ। ଭୂମିହାର ବ୍ରାହ୍ମଣମାନେ ହଳ ବୁଲାନ୍ତି, ଧୂମପାନ କରନ୍ତି। ]

ଭୂମୀନ୍ଦ୍ର—ସ. ବ (୬ଷ୍ଠୀ ତତ୍; ଭୂମି+ଇନ୍ଦ୍ର)—ନୃପତି; ରାଜା—
Bhūmīndra King.

ଭୂମ୍ୟଧିକାରୀ—ସ. ବ (୬ଷ୍ଠୀ ତତ୍; ଭୂମି+ଅଧିକାରୀ)—୧। ଭୂସ୍ୱାମୀ—
Bhūmyadhikāri 1. The owner of land. ୨। ଜମିଦାର—2. Landlord; zamindar.
[ଦ୍ର—ଶିକ୍ଷିତ ଲୋକମାନେ ମଧ୍ୟ 'ଭୂମ୍ୟଧିକାରୀ' ସ୍ଥଳରେ 'ଭୂମ୍ୟାଧିକାରୀ' ଅଶୁଦ୍ଧ ଶବ୍ଦ ଲେଖୁଥିବାର ଦେଖାଯାଏ।]

ଭୂମ୍ୟାମଲକୀ—ସ. ବ—ଭୂଇଁ ଅଁଳା ( ଦେଖ )
Bhūmyāmaḷaki Bhuiñ a·añḷā ( See)

ଭୂମ୍ୟାଲୀକ—ସ. ବ—ଜମି ସମ୍ବନ୍ଧେ ମିଥ୍ୟାଭାଷଣ (ହି. ଶ)—
Bhūmyāḷika Speaking falsehood or untruths about land.

ଭୂୟଃ(ୟସ୍)—ସ. ବ ( ବହୁ+ଇୟସ୍ ଶବ୍ଦ, ପ୍ରଥମା ୧ବଚନ )—
Bhūyaḥ(yas) ଆଧିକ୍ୟ; ବାହୁଲ୍ୟ—Excess. ବଣ—୧।
(ଭୂୟସୀ—ସ୍ତ୍ରୀ); ଅଧିକ; ବହୁ—1. Great; many; much. ୨। ପ୍ରଚୁର—2. Plentiful. ଅ—୧। ପୁନର୍ବାର—1, Again. ୨। ପୁନଃ ପୁନଃ—2. Repeatedly.

ଭୂୟାଁ (ଇତ୍ୟାଦି)—ଦେ. ବ—ଭୂଇଁଆଁ ଇତ୍ୟାଦି ( ଦେଖ )
Bhūyāñ (etc) ভূয়ঁা भूमिया Bhūiñāñ etc (See)
(ଉ—ଅନଳ ଲଗାଇ ହୋଇଥିବେ ମତ୍ତ ସଙ୍ଗାତେ ଭୂୟାଁ ପ୍ରମଦା। ରାଧାନାଥ, ପାର୍ବତୀ।)

ଭୂୟିଷ୍ଠ—ସ, ବଣ (ବହୁ+ଇଷ୍ଠ)—ବହୁଳ; ଅତ୍ୟଧିକ—
Bhūyishṭha Very much; the greatest.

ଭୂୟୋଦର୍ଶନ—ସ. ବ (କର୍ମଧା; ଭୂୟଃ+ଦର୍ଶନ)—୧। ପର୍ଯ୍ୟବେକ୍ଷଣ-
Bhūyodarśana 1. Observation. ୨। ନିରିଖି କରି ଦେଖିବା—2, Looking attentively at a thing.

ଭୂୟୋଭୂୟଃ—ସ. ଅ (ଭୂୟଃ+ଭୂୟଃ)—ପୁନଃପୁନଃ; ବାରମ୍ବାର—
Bhūyobhūyaḥ Repeatedly; again and again.

ଭୂର ଭାର—ଦେ. ବ—ଦାମ୍ଭିକପଣ; ଦାମ୍ଭିକତା; ଭୂରୁଡ଼ି—
Bhūr bhār Bravado.
দাম্ভিকতা गीदड़, भपकी

ଭୂରି—ସ. ବଣ (ଭୂ ଧାତୁ+କର୍ତ୍ତୃ. ରି)—୧ । ପ୍ରଚୁର—1. Plentiful. ୨ । ବହୁ; ଅଧିକ—2. Much; many.
Bhūri
[ଭୂରିତା(ତ୍ୱ)—ବି] (ଉ—ବିଶାଳ ସେ ଭୂରି ଶାଳ, ବିଲୋକ ଲୋକରେ ମେଳ । ଉଞ୍ଜ. ବୈଦେହୀଶବିଳାସ ।)
ବି—୧ । ସ୍ୱର୍ଣ୍ଣ—1. Gold. ୨ । ବ୍ରହ୍ମା—2. Brahmā. ୩ । ବିଷ୍ଣୁ—3. Bishṇu ୪ । ଶିବ—4. Śiba. ୫ । ଇନ୍ଦ୍ର—5. Indra. ୬ । ସୋମଦତ୍ତଙ୍କର ଏକ ପୁତ୍ର—6. Name of a son of Somadatta.

ଭୂରି ଗନ୍ଧା—ସ. ବି—ମୁରାମାଂସୀ ନାମକ ଗନ୍ଧଦ୍ରବ୍ୟ—
Bhūri gandhā A scented herb.

ଭୂରି ଗମ—ସ. ବି ( ଭୂରି+ଗମ୍ ଧାତୁ+କର୍ତ୍ତୃ. ଅ )—
Bhūri gama ଗଧ (ହି. ଶ)—The ass.

ଭୂରି ତେଜାଃ—ସ. ବି (ବହୁବ୍ରୀହି; ଭୂରି+ତେଜସ୍; ୧ମା. ୧ବ)—
Bhūri tejāḥ ଅଗ୍ନି (ହି. ଶ)—Fire.

ଭୂରି ଦକ୍ଷିଣ—ସ. ବି ( ବହୁବ୍ରୀହି; ଭୂରି+ଦକ୍ଷିଣା )—ବିଷ୍ଣୁ—
Bhūri dakshiṇa Bishṇu. ସ. ବଣ—ଯେଉଁ ଯଜ୍ଞରେ ବହୁ ଦକ୍ଷିଣା ଦିଆଯାଏ—A vedic sacrifice in which great and large presents are made.

ଭୂରି ଦୁଗ୍ଧା—ସ. ବି (ବହୁବ୍ରୀହି)—ବୃଶ୍ଚିକାଳ (ହି.ଶ)—ବହୁଅଙ୍କ ଗୁଳ୍ମ—
Bhūri dugdhā The stinging nettle.

ଭୂରି ଭୋଜନ—ସ. ବି ( କର୍ମଧା; ଭୂରି+ଭୋଜନ )—୧ । ପୂର୍ଣ୍ଣ ଭୋଜନ—1. Full meal. ୨ । ଅନେକ ଲୋକଙ୍କୁ ଖାଇବାକୁ ଦେବା—2. The feeding of many people.
Bhūri bhojana

ଭୂରି ମଞ୍ଜରୀ—ସ. ବି (ବହୁବ୍ରୀହି)—ଧଳା ତୁଳସୀ (ହି. ଶ)—
Bhūri mañjarī The white or green variety of the Holy Basil plant.

ଭୂରି ରସ—ସ. ବି (ବହୁବ୍ରୀହି)—ଆଖୁ (ହି. ଶ)—
Bhūri rasa Sugarcane.

ଭୂରିଶଃ—ସ. ଅ ( ଭୂରି+ବାହୁଲ୍ୟାର୍ଥେ ଶସ୍ )—ବହୁବାର—Many
Bhūriśaḥ times; times without number.

ଭୂରିଶ୍ରବାଃ(ବା)—ସ. ବି ( ଭୂରି ଶ୍ରବସ୍; ୧ମା. ୧ବ )—ଚନ୍ଦ୍ରବଂଶୀୟ ରାଜା ସୋମଦତ୍ତଙ୍କ ପୁତ୍ର—A prince of the lunar dynasty, killed by Arjuna.
Bhūri śrabāḥ(bā)
[ଦ୍ର—ଏ ମହାଭାରତ ଯୁଦ୍ଧରେ କୌରବ ପକ୍ଷରେ ଯୁଦ୍ଧ କରି ଶେଷରେ ଅର୍ଜ୍ଜୁନଙ୍କ ଦ୍ୱାରା ନିହତ ହୋଇଥିଲେ ।]

ଭୂରିଶ୍ରବା ପାଗ ବାନ୍ଧୁ ବାନ୍ଧୁ ମହାଭାରତ ଶେଷ (ନ୍ୟାୟ; ଯାଜପୁର)—
Bhūriśrabā pāga bāndhu bāndhu mahābhārata śesha ଭୂରିଶ୍ରବା ଯୁଦ୍ଧକୁ ଯିବାକୁ ସଜ୍ଜିତ ହେଉ ହେଉ ଅଠର ଦିନ ଯୁଦ୍ଧ ଶେଷ ହେବା ନ୍ୟାୟ; (ଭୁଲ—ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ)—(analogy) To miss a function while making elaborate preparations to attend for the same.

ଭୂରୁ—ଦେ. ବି ( ସ. ଭ୍ରୂ )—ଭ୍ରୂଲତା—Eyebrow. (ଉ—ମଞ୍ଜୁ
Bhūru ଭୃଙ୍ଗ ଭୂରୁ ଚଳ ନୟନାଞ୍ଚଳ ଦେଖରେ ଛାଳ ।
ଭ୍ରୂ ମୈଁ କବିସୂର୍ଯ୍ୟ. ସଙ୍ଗୀତ ।)

ଭୂରୁକ୍ଷେପ—ଦେ. ବି—ଭ୍ରୂକ୍ଷେପ ( ଦେଖ )
Bhūrukshepa Bhrūkshepa ( See )
ଭ୍ରୂକ୍ଷେପ (ଉ—ଦେଖି ପ୍ରତିମା ପ୍ରିୟ ରୂପ, କୃଷ୍ଣଙ୍କୁ ନାହିଁ
भ्रूक्षेप ଭୂରୁକ୍ଷେପ । ଭୂପତି. ପ୍ରେମପଞ୍ଚାମୃତ ।)

ଭୂରୁ ଭଙ୍ଗ(ଙ୍ଗୀ)—ଦେ. ବି (ପଦ୍ୟ)—ଭ୍ରୂଭଙ୍ଗି ( ଦେଖ )
Bhūru bhaṅga(ṅgī) Bhrūbhaṅgi ( See )
ଭ୍ରୂଭଙ୍ଗି (ଉ—ମାଳ ତରଙ୍ଗେ ଭୂରୁଭଙ୍ଗୀ ଚଞ୍ଚଳ । ରାଧାନାଥ. ମେଘଦୂତ ।)

ଭୂରୁ ଲତା—ଦେ. ବି (ସ. ଭ୍ରୂଲତା)—ଭ୍ରୂଲତା—Eye-brow.
Bhūru latā (ଉ—କାମ ଧନୁ ପରିହ ଭୂରୁଲତା ଦୁଇ—
(ଭୂରୁଲେଖା—ଅନ୍ୟରୂପ) କୃଷ୍ଣସିଂହ. ମହାଭାରତ. ବନପର୍ବ ।)
ଭ୍ରୂଲତା मैँ

ଭୂ ରୁହ—ସ ବି ( ଭୂ+ରୁହ୍ ଧାତୁ+ଅ )—୧ । ବୃକ୍ଷ—1. Tree.
Bhū ruha ୨ । ବୃକ୍ଷଲତାଦି—2. Vegetables. ୩ । ଅର୍ଜ୍ଜୁନ ବୃକ୍ଷ—3. Arjuna (tree). ୪ । ଶାଳ ବୃକ୍ଷ—4. Śāla (tree).

ଭୂର୍ଜ୍ଜ—ସ. ବି—କୋମଳ ଚର୍ମବତ୍ ତ୍ୱକ୍‌ବିଶିଷ୍ଟ ବୃକ୍ଷବିଶେଷ—
Bhūrjja A variety of the Birch tree; Betula
भेजपत्र (Kirtikar) Utilis; Betula Bhojpatra (Kirtikar). [ ଦ୍ର—ଏହା ହିମାଳୟ ପ୍ରଦେଶରେ ଜନ୍ମେ । ଏଥିର ତ୍ୱକ୍ ସ୍ତରସ୍ତର ହୋଇ ପତଳା ଚମଡ଼ା ପରି ଛାଡ଼ିଯାଏ । ପୂର୍ବେ ହିନ୍ଦୁମାନେ ଏହି ବଲ୍କଲରେ ଲେଖୁଥିଲେ । ବର୍ତ୍ତମାନ ଏଥିରେ ଯନ୍ତ୍ର ମନ୍ତ୍ର ଲେଖାଯାଏ; ଘର ଛାଅର କରିବା ପାଇଁ ଏ ଗଛର କାଠ ବ୍ୟବହୃତ ହୁଏ—ଯୋଗେଶ୍ଚନ୍ଦ୍ର । ]

ଭୂର୍ଜ୍ଜପତ୍ର—ସ. ବି ( ୬ଷ୍ଠୀ ତତ୍; ଭୂର୍ଜ୍ଜ+ପତ୍ର )—ଭୂର୍ଜ୍ଜ ଗଛର ବକଳ;
Bhūrjja patra ଭୋଜ ପତ୍ର—The bark of the Birch tree (used like paper). [ ଦ୍ର—ପୂର୍ବେ ଯେଉଁପରି ହିନ୍ଦୁମାନେ ଭୂର୍ଜ୍ଜପତ୍ରରେ ଲେଖୁଥିଲେ ଇଜିପ୍ଟର ଲୋକେ ମଧ୍ୟ Papyrus ( ପାପିରସ୍ ) ନାମକ ଗଛର ଛାଲଦ୍ୱାରା କାଗଜ କାମ ଚଳାଉଥିଲେ ଓ ଏହି ଗଛର ନାମରୁ କାଗଜର ଇଂରାଜୀ ପ୍ରତିଶବ୍ଦ Paper ( ପେପର୍ ) ଉଦ୍ଭୂତ ହୋଇଅଛି । ]

ଭୂର୍ତ୍ତା(ର୍ତ୍ତେ)ଇବା—ପ୍ରାଦେ ( ଗଡ଼ଜାତ ) କ୍ରି—ଭଣ୍ଡାଇବା;
Bhūrtā(rte)ibā ଭୁଲାଇବା—To inveigle.
[ଭୂର୍ତ୍ତାଭୂର୍ତ୍ତି କରିବା, ଭୂରୁତା(ରୁତେ)ଇବା—ଅନ୍ୟରୂପ ]

ଭୂର୍ଲୋକ—ସ. ବି (ଭୂଃ+ଲୋକ)—ଭୂଲୋକ; ପୃଥିବୀ; ମର୍ତ୍ତ୍ୟଲୋକ—
Bhūrloka The earth.

ଭୂଲତା—ସ. ବି ( ୬ଷ୍ଠୀ ତତ୍; ଭୂ+ଲତା )—କେଞ୍ଚୁଆ; ଜିଆ—
Bhūlatā Earth-worm.

ଭୂଲୋକ—ସଂ. ବି—ମର୍ତ୍ତ୍ୟଲୋକ—The earth.
Bhūloka

ଭୂଶକ୍ର—ସଂ. ବି ( ୬ଷ୍ଠୀ ତତ୍ ) —ରାଜା—King.
Bhūśakra (ଭୂବଜ୍ରଭ—ଅନ୍ୟରୂପ)

ଭୂଶୟ—ସଂ. ବି. ପୁଂ ( ଭୂ + ଶୀ ଧାତୁ = ଶୋଇବା + କର୍ତ୍ତୃ. ଅ )—୧ । ବିଷ୍ଣୁ—1. Bishnu. ୨ । ନେଉଳ; ଗୋଧି ଆଦି ବିଳେଶୟ ଜୀବ—2. The class of animals living in dens or burrows.
Bhūśaya (ଭୂଶୟା—ସ୍ତ୍ରୀ)

ଭୂଶଯ୍ୟା—ସଂ. ବି ( ୭ମୀ ତତ୍ ) —ଭୂମିଶଯ୍ୟା ( ଦେଖ )
Bhūśajyā Bhūmiśajyā ( See )

ଭୂଶାୟୀ—ସଂ. ବିଣ. ପୁଂ ( ଭୂ + ଶୀ ଧାତୁ + କର୍ତ୍ତୃ. ଇନ୍; ୧ମା. ୧ବ )—୧ । ପୃଥିବୀ ଉପରେ ଶୋଇଥିବା—1. Sleeping or lying on the bare ground. ୨ । ଭୂମିରେ ପଡ଼ି ଯାଇଥିବା—2. Fallen down. ୩ । ମୃତ ( ଲୂ. ପ୍ର )—3. Dead.
Bhūśāyī (ଭୂଶାୟିନୀ—ସ୍ତ୍ରୀ)

ଭୂଷଣ—ସଂ. ବି ( ଭୂଷ୍ ଧାତୁ + କରଣ. ଅନ )—୧ । ଅଳଙ୍କାର; ଗହଣା —1. Ornament. ୨ । ସଜ୍ଜା—2. Paraphernalia. ୩ । ( + ଭାବ. ଅନ ) ଶୋଭା —3. Beauty. ୪ । ଅଳଙ୍କାର ପିନ୍ଧାଇବା—4. Decoration. ୫ । ( + କର୍ତ୍ତୃ. ଅନ ) ବିଷ୍ଣୁ—5. Bishnu. ସଂ. ବିଣ. ପୁଂ ( ଲକ୍ଷଣାର୍ଥ )—ଭୂଷଣସ୍ୱରୂପ; ଶୋଭା ବା ପ୍ରଶଂସା ବା ଗୌରବବର୍ଦ୍ଧକ ( ଯଥା—ସ୍ୱର୍ଗତ ମଧୁସୂଦନ ଉତ୍କଳଭୂଷଣ ସ୍ୱରୂପ ଥିଲେ )—( figurative ) Glorifying; glorious; an ornament ( as in 'he was an ornament to the society' ). ଦେ. ବି—ଭୂଷିତ; ଅଳଙ୍କୃତ—Decorated. [ ଉ—ବହୁଭାବରେ ଭୂଷଣ, ଶିରେ ଜଟା ଧରିଣ, ପ୍ରାସାଦ ଭୂଇଁରେ ବସିଲ । କବିଶ ରାମାୟଣ । ] ଦେ. ବି—୧ । ପ୍ରଶଂସାଯୋଗ୍ୟ ବିଷୟ—1. A praiseworthy thing. ୨ । ଶୋଭାଯୁକ୍ତ ବିଷୟ—2. Graceful thing.
Bhūshaṇa

ଭୂଷଣ କଥା—ଦେ. ବି—ପ୍ରଶଂସାର ବିଷୟ, ଶୋଭନୀୟ ବିଷୟ—
Bhūshaṇa kathā A praiseworthy matter.

ଭୂଷଣ ପ୍ରିୟ—ସଂ. ବିଣ. ପୁଂ ( ବହୁବ୍ରୀହି )—ଅଳଙ୍କାର ପ୍ରିୟ—Fond of ornaments or decorations.
Bhūshaṇa priya (ଭୂଷଣପ୍ରିୟା—ସ୍ତ୍ରୀ) (ଭୂଷଣପ୍ରିୟତା—ବି)

ଭୂଷଣୀ—ଦେ. ବିଣ. ସ୍ତ୍ରୀ ( ସଂ. ଭୂଷିତା )—ଭୂଷିତା; ଅଳଂକୃତା—Adorned with ornaments. [ ଉ—ବରବର୍ଣ୍ଣିନୀ ନାନାରତ୍ନ ଭୂଷଣୀ ପାଲୁଙ୍କରେ ଝଟଝଟ । ଭଞ୍ଜ. ବୈଦେହୀଶ ବିଳାସ । ]
Bhūshaṇī

ଭୂଷଣୀୟ—ସଂ. ବିଣ ( ଭୂଷ୍ ଧାତୁ + କର୍ମ. ଅନୀୟ )—ଅଳଙ୍କରଣୀୟ—Fit to be decorated.
Bhūshaṇīya

ଭୂଷଣ୍ଡ—ସଂ. ବି. ପୁଂ—ଭୁଷଣ୍ଡ ( ଦେଖ )—Bhushaṇḍa (See)
Bhūshaṇḍa (ଭୂଷଣ୍ଡୀ—ସ୍ତ୍ରୀ)

ଭୂଷା—ସଂ. ବି (ଭୂଷ୍ ଧାତୁ + କରଣ. ଅ + ସ୍ତ୍ରୀ. ଆ )—୧ । ଅଳଙ୍କାର; ଭୂଷଣ—1. Ornament; decoration. ଦେ. ବି ( ସଂ. ଭିଦ୍ ଧାତୁ )—ଭୁଷିବା; ଭେଷ୍ଟିବା—Thrusting; goring. [ ଉ—ଅନଙ୍ଗ ବାଣବର୍ଷ, ସଙ୍ଗେ ତ ଭୁଜଙ୍ଗଭୂଷା, ସଘୋଷ ଅପାଙ୍ଗଭୂଷା ମିଶିଲା ରେ । ଉପେନ୍ଦ୍ର. କବିସୂର୍ଯ୍ୟ. ସଙ୍ଗୀତ । ]
Bhūshā

ଭୂଷାଇବା—ଦେ. (ପଦ୍ୟ) କ୍ରି ( ସଂ. ଭୂଷ୍ ଧାତୁ, ଭୂଷିବା କ୍ରିୟାର ଣିଜନ୍ତରୂପ )—ଅନ୍ୟଦ୍ୱାରା ଭୂଷଣ କ୍ରିୟା କରାଇବା —To cause to decorate.
Bhūshāibā

ଭୂଷାବତୀ—ସଂ. ବିଣ. ସ୍ତ୍ରୀ ( ଭୂଷା + ବତ୍ + ସ୍ତ୍ରୀ. ଈ )—ଅଳଙ୍କୃତା—Decorated with ornaments.
Bhūshābatī ( ଭୂଷାବାନ୍—ପୁଂ )

ଭୂଷିତ—ସଂ. ବିଣ ( ଭୂଷା + ଇତ )—ଅଳଙ୍କୃତ—Decorated; adorned.
Bhūshita (ଭୂଷିତା—ସ୍ତ୍ରୀ)

ଭୂଷିବା—ଦେ. (ପଦ୍ୟ) କ୍ରି—(ସ. ଭୂଷ୍. ଧାତୁ)—ଭୂଷଣ କରିବା; ମଣ୍ଡିବା—To deck; to decorate. (ଉ—ଭୂଷାଂ ଭୂଷନ୍ତ ଅଳକା ଶିର ଭୂଷଇ ଦେବ । ରାଧାନାଥ. ମେଘଦୂତ ।)
Bhūshibā

ଭୂଷ୍ଣୁ—ସଂ. ବିଣ—(ଭୂ ଧାତୁ + ଶୀଳାର୍ଥେ. ଷ୍ଣୁ; ତୁଳ. ଜିଷ୍ଣୁ, ସହିଷ୍ଣୁ )—୧ । ଉତ୍ପତ୍ତିଶୀଳ; ଜନ୍ମଶୀଳ—1. Habituated to be born. ୨ । ଭବିଷ୍ୟତ—2. Future.
Bhūshṇu

ଭୂଷ୍ୟ—ସ. ବିଣ (ଭୂଷ୍. ଧାତୁ + କର୍ମ. ଯ)—ଭୂଷଣୀୟ (ଦେଖ)
Bhūshya Bhūshaṇīya (See).

ଭୂ ସଂସ୍କାର—ସ. ବି (୬ଷ୍ଠୀ ତତ୍)—ଯଜ୍ଞ, ହୋମ, ବୈଶ୍ୱଦେବ ଆଦିର ପୂର୍ବରୁ ଭୂମିରେ ରେଖାଙ୍କନ, ଲିପା, ଗୋମୟ ଓ ଉଦକ ଦ୍ୱାରା ବିଧିପୂର୍ବକ ଭୂମିର ସଂସ୍କାର ବା ପରିଷ୍କରଣ—The consecration or ceremonial cleansing of the site for a vedic fire-sacrifice or Baiswadeba.
Bhū saṁskāra

ଭୂସାଇଁ—ଦେ. ବି—(ସଂ. ଭୂସ୍ୱାମୀ)—ରାଜା—King.
Bhū sāiṅ

ଭୂସୁତ—ସଂ. ବି (୬ଷ୍ଠୀ ତତ୍; ଭୂ + ସୁତ)—୧ । ମଙ୍ଗଳଗ୍ରହ—1. The planet Mars. ୨ । ବୃକ୍ଷଲତାଦି—2. Trees and plants; vegetables. ୩ । ନରକାସୁର—3. A demon.
Bhū suta

ଭୂସୁର—ସଂ. ବି—(୬ଷ୍ଠୀ ବା ୭ମୀ ତତ୍)—ବ୍ରାହ୍ମଣ—Brāhmaṇa.
Bhūsura

ଭୂସ୍ତୃଣ—ସଂ. ବି—ଭୂତୃଣ (ଦେଖ)
Bhūstṛuṇa Bhutṛuṇa (See)

ଭୂସ୍ଥ—ସ. ବିଣ ( ଭୂ + ସ୍ଥା ଧାତୁ + କର୍ତ୍ତୃ. ଅ )—ପୃଥିବୀସ୍ଥିତ—Situated on the earth. ସ. ବି—ମନୁଷ୍ୟ ( ଲୂ. ପ୍ର )—Man.
Bhūsthā (ଭୂସ୍ଥା—ସ୍ତ୍ରୀ)

ଭୂସ୍ୱର୍ଗ—ସ. ବି (୭ମୀ ତତ୍; ଭୂ+ସ୍ୱର୍ଗ; ପୌରାଣିକ)—ସୁମେରୁ ପର୍ବତ—
Bhū swarga The Sumeru mountain. ଦେ. ବି ପୃଥିବୀରେ ଥିବା ସ୍ୱର୍ଗପରି ସୁଖମୟ ସ୍ଥାନ—A delightful place like paradise on earth.

ଭୂସ୍ୱାମୀ—ସ. ବି. ପୁଂ ( ଭୂ+ସ୍ୱାମିନ୍, ୬ଷ୍ଠୀ. ତତ୍ )—୧ । ଜମିଦାର—
Bhūswāmi 1. Landlord; zemindar. ୨ । ଭୂପତି; ରାଜା—2. King.
(ଭୂସ୍ୱାମିନୀ—ସ୍ତ୍ରୀ)

ଭ୍ରୁ (ଧାତୁ)—ସଂ—୧ । ଧାରଣ କରିବା—1. To hold; to sus-
Bhṛu (root) tain. ୨ । ଭରଣ କରିବା; ପୋଷିବା—2. To maintain.

ଭ୍ରୁକୁଂଶ(ସ)—ସ. ବି. ପୁଂ [ ଭ୍ରୁ+କୁନ୍ ଶ(ସ) ଧାତୁ=ଦୀପ୍ତି ପାଇବା+
Bhṛukuṁśa(sa) ସଜ୍ଞାର୍ଥେ ଅ ]—ସ୍ତ୍ରୀବେଶଧାରୀ ନର୍ତ୍ତକ ( ସୁବଳଚନ୍ଦ୍ର )—A male-dancer in female attire.

ଭ୍ରୁକୁଟି(ଟୀ)—ସ. ବି ( ଭ୍ରୁ+କୁଟ୍ ଧାତୁ=କୁଟିଳ ହେବା+ଇ; ଈ
Bhṛukuṭi(ṭī) କ୍ରିୟାର୍ଥକ )—ଭ୍ରୂଭଙ୍ଗୀ—A frown; contraction of the eye brow. ଦେ. ବି ( ସଂ. ଭ୍ରୂଭଙ୍ଗୀ )—ଭୃଙ୍ଗୀ; ଶିବାନୁଚର—Name of an attendant of Śiba.

ଭ୍ରୁକୁଟି(ଟୀ) କୁଟିଳାନନ—ସଂ. ବି ( ଭ୍ରୁକୁଟୀଦ୍ୱାରା କୁଟିଳ ଆନନ;
Bhṛukuṭi(ṭī) kuṭilānana ୩ୟା ତତ୍ ଓ କର୍ମଧା )—ଭ୍ରୂଭଙ୍ଗୀଦ୍ୱାରା ବକ୍ର ହୋଇଥିବା ମୁଖ—A face made wry with frowning; scowling face. ସଂ. ବିଣ. ପୁଂ ( ୩ୟା ତତ୍ ଓ ବହୁବ୍ରୀହି )—ଭ୍ରୁକୁଟିଦ୍ୱାରା ଯାହା ମୁହଁ ବଙ୍କା ହୋଇଛି—With the face made wry with frowning; scowling.
[ଭ୍ରୁକୁଟି(ଟୀ) କୁଟିଳାନନା—ସ୍ତ୍ରୀ]

ଭ୍ରୁକୁଣ୍ଡା (ଇତ୍ୟାଦି)—ଭୁରୁକୁଣ୍ଡା ଇତ୍ୟାଦି ( ଦେଖ )
Bhṛukuṇḍā (etc) Bhur-kuṇḍā etc ( See)

ଭୃଗୁ—ସଂ. ବି ( ଭ୍ରସ୍ଜ୍ ଧାତୁ=ଭାଜିବା+ଉ )—୧ । ଶୁକ୍ରାଚାର୍ଯ୍ୟଙ୍କ
Bhṛugu ପିତା, ବ୍ରହ୍ମାଙ୍କର ଏକ ମାନସ ପୁତ୍ର ଓ ପ୍ରଜାପତିବିଶେଷ; ମୁନିବିଶେଷ—1. Name of a sage, father of Śukra and a progenitor of mankind. [ ଦ୍ର—ମହାଭାରତରେ ଲେଖାଅଛି ଯେ, ଥରେ ରୁଦ୍ର ଏକ ଯଜ୍ଞ କରୁଥିଲେ ଓ ତାହା ଦେଖିବାକୁ ବହୁ ଦେବ, ଦେବୀ, ଦେବକନ୍ୟା ଓ ଋଷିମାନେ ଉପସ୍ଥିତ ହୋଇଥିଲେ । ବ୍ରହ୍ମା ଉକ୍ତ ଯଜ୍ଞରେ ଅଧ୍ୱର୍ଯ୍ୟୁ ହେବା ସମୟରେ ଦେବକନ୍ୟାମାନଙ୍କ ରୂପରେ ମୋହିତ ହେଲେ ଓ ତାଙ୍କର ରେତଃପାତ ହେଲା । ସୂର୍ଯ୍ୟ ଉକ୍ତ ରେତଃକୁ ଆପଣା କିରଣଦ୍ୱାରା ଆକର୍ଷଣ କରି ନେଇ ଅଗ୍ନିରେ ପକାଇଲେ ଓ ଉକ୍ତ ବୀର୍ଯ୍ୟରୁ ଯଜ୍ଞାଗ୍ନିଶିଖା ମଧ୍ୟରୁ ଭୃଗୁଙ୍କର ଜନ୍ମ ହେଲା । କେହି କେହି କହନ୍ତି ଏ ଶିବଙ୍କ ପୁତ୍ର । ଏହାଙ୍କର ପୁତ୍ର ଶୁକ୍ରାଚାର୍ଯ୍ୟ; ପରଶୁରାମ ଏହାଙ୍କ ବଂଶରେ ଜନ୍ମିଥିଲେ । କେହି କେହି କହନ୍ତି ଏ ବ୍ରହ୍ମାଙ୍କ ମାନସ ପୁତ୍ର ଥିଲେ ଓ ବ୍ରହ୍ମା ଏହାଙ୍କୁ ଅନ୍ୟତମ ପ୍ରଜାପତିରୂପେ ନିଯୁକ୍ତ କରିଥିଲେ । ଦକ୍ଷସୁତା ଖ୍ୟାତିଙ୍କ ସହିତ ଏହାଙ୍କର ବିବାହ ହେଲା । ବିଷ୍ଣୁପତ୍ନୀ ଲକ୍ଷ୍ମୀ ଏହାଙ୍କ କନ୍ୟା ଓ ଏହାଙ୍କର ଦୁଇ ପୁତ୍ର ଧାତା ଓ ବିଧାତା । ଏ ଧନୁର୍ବିଦ୍ୟାର ପ୍ରବର୍ତ୍ତକ ଓ ଭୃଗୁବଂଶର ଆଦିପୁରୁଷ । କ୍ଷତ୍ରିୟ ରାଜା ବୀତହବ୍ୟ ଶତ୍ରୁ ଭୟରେ ଏହାଙ୍କର ଶରଣ ପଶିବାରୁ ଏ ତାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରି ଶତ୍ରୁ ଭୟରୁ ମୁକ୍ତ କରିଥିଲେ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଏହା ପରୀକ୍ଷା କରିବା ପାଇଁ ମୁନିଋଷିମାନେ ଏହାଙ୍କୁ ନିଯୁକ୍ତ କରିଥିଲେ । ଏ ପ୍ରଥମେ ବ୍ରହ୍ମାଙ୍କ ପାଖେ ପହଞ୍ଚି ପରୀକ୍ଷା କରିବାକୁ ତାଙ୍କୁ ପ୍ରଣାମ ନ କରିବାରୁ ବ୍ରହ୍ମା କୁପିତ ହୋଇ ତାଙ୍କୁ ତିରସ୍କାର କଲେ; ପରେ ଭୃଗୁ ସ୍ତବ କରି ବ୍ରହ୍ମାଙ୍କୁ ତୁଷ୍ଟ କଲେ । ସେଠାରୁ ଯାଇ ମହାଦେବଙ୍କ ପାଖେ ପହଞ୍ଚି ତାଙ୍କୁ ନମସ୍କାର ନ କରିବାରୁ ମହାଦେବ କୁପିତ ହୋଇ ତାଙ୍କୁ ଭସ୍ମୀଭୂତ କରିବାକୁ ଉଦ୍ୟତ ହେଲେ ଓ ଭୃଗୁ ସ୍ତୁତିଦ୍ୱାରା ମହାଦେବଙ୍କ କ୍ରୋଧ ଶାନ୍ତ କରି ବିଷ୍ଣୁଙ୍କଠାକୁ ଗଲେ; ବିଷ୍ଣୁ ସେତେବେଳେ ଶୋଇଥିଲେ, ତାଙ୍କୁ ପରୀକ୍ଷା କରିବାକୁ ଭୃଗୁ ବିଷ୍ଣୁଙ୍କ ହୃଦସ୍ଥଳରେ ଏକ ଗୋଇଠା ମାରିଲେ । ବିଷ୍ଣୁଙ୍କ ନିଦ୍ରାଭଙ୍ଗ ହେଲା ଓ ପଦାଘାତ କରିଥିବା ହେତୁ ସେ ଭୃଗୁଙ୍କ ଉପରେ କୁପିତ ହେବା କଥା ଦୂରେ ଥାଉ, ବିଷ୍ଣୁଙ୍କ ହୃଦୟର କଠୋରତା ଯୋଗୁଁ ତାଙ୍କ ପାଦର ବ୍ୟଥା ହୋଇଅଛି କି ନାହିଁ ବିଷ୍ଣୁ ଭୃଗୁଙ୍କୁ ପଚାରି ଭୃଗୁଙ୍କ ପଦସେବା କରିବାକୁ ଲାଗିଲେ । ବିଷ୍ଣୁ ନିଜର ବକ୍ଷରେ ଅଦ୍ୟାପି ଭୃଗୁ ପଦାଘାତଚିହ୍ନ ଧାରଣ କରିଥିବାର କଥିତ । ଏହା ଦେଖି ଭୃଗୁ ସ୍ଥିର କଲେ ବିଷ୍ଣୁହିଁ ସର୍ବଶ୍ରେଷ୍ଠ ଦେବ—ସୁବଳଚନ୍ଦ୍ର । ] ୨ । ଦ୍ରୋଣାଚାର୍ଯ୍ୟ ( ସୁବଳଚନ୍ଦ୍ର )—2. A name of Droṇa. ୩ । ଶୁକ୍ରଗ୍ରହ—3. The planet Venus. ୪ । ଶିବ—4. Śiba. ୫ । ଅତ୍ୟୁଚ୍ଚ ସ୍ଥାନ—5. High and steep land. ୬ । ପର୍ବତର ତାଳୁଦେଶ—6 The brow of a mountain. ୭ । ପର୍ବତର ଗଡ଼ାଣିଆ ସ୍ଥାନ ( ଯେଉଁଠାରୁ ଗଡ଼ି ପଡ଼ିଲେ ମନୁଷ୍ୟ ପର୍ବତର ମୂଳଯାକେ ଏକଦମ୍ ଗଡ଼ିଆସେ )—7. Precipice; the steep slope of a mountain. ୮ । ପ୍ରପାତ—8. Waterfall; cataract; cascode. ୯ । ପର୍ବତରେ ତାଳୁଦେଶରେ ଥିବା ସମତଳ ଭୂମି—9. Table land. ୧୦ । ପରଶୁରାମ (ହ୍ରି. ଶ)—10. Paraśurāma. ୧୧ । ଭୃଗୁମୁନିଙ୍କ ବଂଶ ( ଦୁର୍ବଳ ) 11. The race of which the progenitor was Bhṛugu. ୧୨ । ଶୁକ୍ରାଚାର୍ଯ୍ୟ ( ହ୍ରି. ଶ )—12. Śukra, the preceptor of the demons. ୧୩ । ଜମଦଗ୍ନି ( ହ୍ରି. ଶ )—13. Jamadagni; the father of Paraśurāma.

ଭୃଗୁକଚ୍ଛ—ସ. ବି—ହିନ୍ଦୁମାନଙ୍କର ଏକ ପ୍ରସିଦ୍ଧ ପ୍ରାଚୀନ ତୀର୍ଥ, ଅଧୁନା
Bhrugukachchha ଭରୋଚ ବା ବ୍ରୋଚ—The Sanscrit
ଭରୋଚ name of Broach on the mouth of the
भडोच Narbuda river in Bombay presidency.
[ଦ୍ର—ଏହା ବୋମ୍ବେ ପ୍ରଦେଶଭୁକ୍ତ, ନର୍ମଦା ନଦୀ କାମ୍ବେ ଉପସାଗରରେ ପଡ଼ିଥିବା ମୁହାଣ ନିକଟରେ ଏ ନଗର ଅବସ୍ଥିତ ।]

ଭୃଗୁଜ—ସ. ବିଣ. ପୁଂ ( ଭୃଗୁ+ଜନ୍ ଧାତୁ+କର୍ତ୍ତୃ ଅ )—
Bhruguja ଭୃଗୁବଂଶ ଜାତ—Born in the family of Bhrugu. ସ. ବି—୧ । ଭୃଗୁଙ୍କ ପୁତ୍ର—1. Son of Bhrugu. ୨ । ଭୃଗୁବଂଶୀୟ ବ୍ୟକ୍ତି—2. A scion of the Bhrugu family. ୩ । ଶୁକ୍ରାଚାର୍ଯ୍ୟ—3. Sukrāchārjya.

ଭୃଗୁପତି—ସ. ବି ( ୬ଷ୍ଠୀ ତତ୍; ଭୃଗୁ=ଭୃଗୁ ବଂଶ+ପତି=ଶ୍ରେଷ୍ଠ
Bhrugupati ସାର )—ଭାର୍ଗବ; ପରଶୁରାମ (ବିଷ୍ଣୁଙ୍କ ଅବତାର)—Parasurāma, an incarnation of Bishnu.
ଭୃଗୁସୁତ, ଭୃଗୁନନ୍ଦ (ନନ୍ଦନ), ଭୃଗୁନାଥ, ଭୃଗୁନାୟକ, ଭୃଗୁରାମ — ଅନ୍ୟରୂପ

ଭୃଗୁ ବାର—ସ. ବି—ଶୁକ୍ରବାର—Friday.
Bhrugu bāra (ଭୃଗୁବାସର—ଅନ୍ୟରୂପ)

ଭୃଗୁମାନ୍—ସ. ବିଣ (ଭୃଗୁ+ମତ୍; ୧ମା. ୧ବ)—ଗଡ଼ାଣିଆ (ପର୍ବତ)-
Bhrugumān Precipitous; steep (mountain).
(ଢ଼—ଭୃଦ୍ଦେଳୀରେ ମାଳବନ୍ତି ଭୃଗୁମାନ ଚିହ୍ନ । ସ୍ୱଧାନାଥ-
(ଭୃଗୁମାନ—ଦେଶଜରୂପ) ସଯାଭି ।)

ଭୃଗୁ ରେଖା—ସ. ବି (ମ. ପ. ଲୋ)—ବିଷ୍ଣୁଙ୍କ ବକ୍ଷୋଦେଶରେ ଭୃଗୁ-
Bhrugu rekhā ମୁନିଙ୍କ ପଦାଘାତର ଚିହ୍ନ (ହି. ଶବ୍ଦସାଗର)—
(ଭୃଗୁଲତା—ଅନ୍ୟରୂପ) The mark left on the breast of Bishnu by the kick of sage Bhrugu.

ଭୃଗୁ ସୁତ—ସ. ବି (୬ଷ୍ଠୀ ତତ୍)—୧ । ଶୁକ୍ରାଚାର୍ଯ୍ୟ (ହି. ଶବ୍ଦସାଗର)—
Bhrugu suta 1. Sage Sukra. ୨ । ଶୁକ୍ରଗ୍ରହ (ହି.ଶ)—2. The planet Venus.

ଭୃକୁଂଶ—ସ. ବି—ସ୍ତ୍ରୀ ବେଶଧାରୀ ନଟ (ହି ଶବ୍ଦସାଗର)—
Bhrunkusa A dancer or actor appearing in a female garb.

ଭୃଙ୍ଗ—ସ.ବି (ଭୃ.ଧାତୁ+କର୍ତ୍ତୃ.ଗ)—୧ । ଭ୍ରମର—1. The humble
Bhrunga bee. ୨ । ଭୀମରାଜ ପକ୍ଷୀ—2. The fork-tailed shrike; the black drongo. ୩ । ବିଟ; ଲମ୍ପଟ ବ୍ୟକ୍ତି—3. A libertine; a lecher. ୪ । ସ୍ୱର୍ଣ୍ଣର ଜଳପାତ୍ର—4. A golden vase ୫ । ଗୁଳ୍ମ-ବିଶେଷ; କେଶଭୃଙ୍ଗରାଜ—5. Name of a plant. ୬ । ଗୁଡ଼ତ୍ୱକ୍ ଗଛ—6. Cinnamon. ୭ । ଭୃଙ୍ଗରାଜ ଗଛ—7. Wedelia Calendulacea. (ଢ଼—କଳ୍ପିତ ଭୃଙ୍ଗ ଭୃଙ୍ଗ କରେ କେଳି, ବଣା ବଣା ବନ୍ଧୁ ନ ପୁଷ୍ପହାରେ ଝିଲ । ଉପ. ବୈଦେହୀଶବିଳାସ । ) ୮ । ଘରୁଡ—8. Wasp.

ଭୃଙ୍ଗକ—ସ. ବି (ଭୃଙ୍ଗ+କ)—ଭୀମରାଜ (ଦେଖ)
Bhrungaka Bhīmarāja (See).

ଭୃଙ୍ଗଜ—ସ. ବି (ଭୃଙ୍ଗ+ଜନ୍ ଧାତୁ+କର୍ତ୍ତୃ. ଅ)—ଅଗୁରୁ (ହି.ଶ)—
Bhrungaja Agallochium.

ଭୃଙ୍ଗଜା—ସ. ବି (ଭୃଙ୍ଗଜ+ଆ)—ଭାର୍ଗୀ; ବ୍ରାହ୍ମଣଯଷ୍ଟିକା—
Bhrungajā Clerodendron Siphonanthus (plant).

ଭୃଙ୍ଗଟ—ଦେ. ବି—ବୈରାଗୀଙ୍କ ପରିଧାନବିଶେଷ—
Bhrungata A cloth worn by ascetics.

ଭୃଙ୍ଗପ୍ରିୟା—ସ. ବି—ମାଧବୀଲତା—Name of a creeper
Bhrungapriyā with sweet scented flowers.

ଭୃଙ୍ଗବନ୍ଧୁ—ସଂ. ବି (ବହୁବ୍ରୀହି ବା ୬ଷ୍ଠୀ ତତ୍)—୧ । କୁନ୍ଦ ଗୁଳ୍ମ
Bhrunga bandhu (ଦେଖ)—1. Kunda plant (See). ୨ । କଦମ୍ବ ଗଛ (ହି. ଶ)—2. Nuclea Cadama (tree).

ଭୃଙ୍ଗମୋହୀ—ସଂ. ବି (ଭୃଙ୍ଗ+ମୁହ, ଧାତୁ+କର୍ତ୍ତୃ, ଇନ୍; ୧ମା, ୧ବ—
Bhrungamohi ୧ । ଚମ୍ପା ଗଛ—1. The Champaka tree. ୨ । କନକଚମ୍ପା ( ହି. ଶ.) (ଦେଖ)—2. Kanakachampā (See)

ଭୃଙ୍ଗରାଜ—ସ. ବି—୧ । କଳା ଭଅଁର—1. The black bee.
Bhrungarāja ୨ । ଭ୍ରମର ଶ୍ରେଷ୍ଠ—2. A big humble
ବାଙ୍ଗ୍ରା, କେଶରାଜ bee. ୩ । ବଡ଼ କଜଳପାତି ଜାତୀୟ ଭୀମରାଜ
भँगरा,भाना ପକ୍ଷୀ—3. The large racket-tailed black drongo. ୪ । ଯଜ୍ଞବିଶେଷ—4. Name of a vedic sacrifice. ୫ । ଶକ୍ତିପ୍ରାଦିବହୁଳ ଶାକବିଶେଷ [ଦ୍ର—ଏହା କେଶବର୍ଦ୍ଧକ ଓ କେଶର ହିତକର (ଅନ୍ୟ ସ୍ଥ. ନାମ କେଶରାଜ, କେଶ୍ୟ, କୁନ୍ତଳବର୍ଦ୍ଧକ ) କେଶବଦ୍ଧା; କେଶଭୃଙ୍ଗର ଗୁଳ୍ମ (ଏହା ଅର୍ଦ୍ର ସ୍ଥାନମାନଙ୍କରେ ଜନ୍ମେ )—5. Wedelia Calendulacea ( a herb ) Verbesina Scandens. ୬ । ଏକପ୍ରକାର ଗୁଳ୍ମ—6. Spilanthes Oleracia (plant).

ଭୃଙ୍ଗରି(ରୀ)ଟ(ଟି)—ସ. ବି ( ଭୃଙ୍ଗ+ରିଟ୍. ଧାତୁ—ଗଳ୍ପ, ଚଳିବା+ଅ
Bhrungari(rī)ta(ti) ଇ )—ଶିବଙ୍କ ଅନୁଚରବିଶେଷ—One of the attendants of Siba.

ଭୃଙ୍ଗରୋଳ—ସ. ବି—ଘରୁଡି—
Bhrungarola The wasp; hornet.

ଭୃଙ୍ଗାଭିଷ୍ଟ—ସ. ବି (୬ଷ୍ଠୀ ତତ୍)—ଅମ୍ବ ଗଛ (ହି. ଶ)
Bhrungābhishta The mango tree.

ଭୃଙ୍ଗାର—ସ. ବି (ଭୃ. ଧାତୁ=ଧାରଣ କରିବା+କର୍ତ୍ତୃ. ଅର=ଯାହା
Bhrungāra ଜଳ ଧାରଣ କରେ)—୧ । ଝାରି; ଗଡ଼ୁ; ଜଳପାତ୍ର ବିଶେଷ—1. A waterpot with a spout;

୨। ଲବଙ୍ଗ—2. Clove. ୩ । ସୁବର୍ଣ୍ଣ—3. Gold. ୪ । ଭୃଙ୍ଗରାଜ (ଦେଖ)—4. Bhrungarāja (See). ୫ । ସ୍ୱର୍ଣ୍ଣନିର୍ମିତ ଜଳପାନପାତ୍ର (ହି. ଶ)—5. A drinking vessel made of gold.

ଭୃଙ୍ଗାରି—ଦେ. ବ (୬ଷ୍ଠୀ ତତ୍)—୧ । ଝିଙ୍କାରି ପୋକ—1. The
Bhrungāri cricket (insect). ୨ । କିଆ ଗଛ (ହି. ଶ)—2. Pandanus Odoratissimus plant.

ଭୃଙ୍ଗାରିକା—ସ. ବ—୧ । ଝିଙ୍କାଗୋଳ—1. Winged ants. ୨ ।
Bhrungārikā ଝିଙ୍କାରି ପୋକ—2. The cricket (insect).

ଭୃଙ୍ଗାର୍କ—ସଂ. ବ—କେଶରୁଦୁର ଗୁଳ୍ମ—
Bhrungārka Wedelia Calendulacea (plant).

ଭୃଙ୍ଗୀ—ସଂ. ବ (ଭୃଙ୍ଗ+ଇନ୍; ଏ ଭୃଙ୍ଗପରି କୃଷ୍ଣବର୍ଣ୍ଣ ଥିବାରୁ)—
Bhrungi ୧ । ଶିବାନୁଚରବିଶେଷ—1. One of the attendants of Siba. ୨ । ବରଗଛ (ହି. ଶ)—2. Banian tree. ୩ । (ସ୍ତ୍ରୀ. ଭୃଙ୍ଗ+ଈ) ମାଈ ଭଅଁର—3. A female wasp. ୪ । ଅତିବିଷା (ହି. ଶ)—4. Aconite. ୫ । ଭୃଙ୍ଗ(ହି.ଶ)(ଦେଖ)—5. Bhrunga (See).

ଭୃଙ୍ଗୀଫଳ—ସଂ. ବ—ଅମ୍ବଡ଼ା (ହି. ଶ)
Bhrungi phala Hogplum.

ଭୃଙ୍ଗୀଶ—ସଂ. ବ (୬ଷ୍ଠୀ ତତ୍; ଭୃଙ୍ଗୀ+ଈଶ)—ଶିବ—
Bhrungisa Siba.

ଭୃଙ୍ଗେଷ୍ଟା—ସଂ. ବ (ଭୃଙ୍ଗ+ଇଷ୍ଟ+ଆ)—୧ । ବାମ୍ଣହାଟିଆ ଗୁଳ୍ମ—
Bhrungeshtā 1. Clorodendron Siphonanthus (plant). ୨ । ଘିକୁଆଁରି (ହି. ଶ)—2. Indian Aloes. ୩ । ଯୁବତୀ ସ୍ତ୍ରୀ (ହି. ଶ)—3. A young woman.

ଭୃତ୍—ସଂ. ବିଣ (ଭୃ. ଧାତୁ+କର୍ତ୍ତୃ. କ୍ୱିପ୍; ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ; ଯଥା—ଭୂଭୃତ୍)—୧ । ପାଳନକର୍ତ୍ତା—1. Support-
Bhrut ing; maintaining. ୨ । ଧାରୀ, ଧାରଣକର୍ତ୍ତା—2. Holding; bearing. ୩ । ଯେ ଉଠାଇ ଧରେ—3. Upholding.

ଭୃତ—ସଂ. ବିଣ (ଭୃ. ଧାତୁ+କର୍ମ. ତ)—୧ । ପାଳିତ; ପୁଷ୍ଟ—
Bhruta 1. Brought up; maintained. ୨ । ପୂର୍ଣ୍ଣ—2. Full; filled up. ସଂ. ବ. ପୁଂ—୧ । ଭୃତ୍ୟ; ଚାକର (ହି. ଶ)—1. Servant. ୨ । ବୋଝିଆ ଚାକର; ବୋଝବୁହା ଚାକର [ହି. ଶ]—2. A servant who carries his master's luggage.

ଭୃତକ—ସଂ. ବ (ଭୃ. ଧାତୁ+କରଣ. ତ+କ)—୧ । ମୂଲ୍ୟ; ବେତନ;
Bhrutaka ଦରମା—1. Wages; salary. ୨ । (+କର୍ମ ତ+କ) ଭୃତ୍ୟ; ଚାକର—2. Servant. ୩ । (+କର୍ତ୍ତୃ. ତ+କ) ମାସ—3. Month. ବିଣ-ବେତନଗ୍ରାହୀ—Acting for wages; salaried.

ଭୃତି—ସଂ. ବ (ଭୃ ଧାତୁ+କରଣ. ତି)—୧ । ବେତନ—
Bhruti 1. Salary. ୨ । (+ଭାବ. ତି) ପୂର୍ଣ୍ଣତା—2. Fullness. ୩ । (+କରଣ. ତି ବୃତ୍ତି; ଖୋରାକ-ପୋଷାକ ଖଞ୍ଜା—3. Maintenance grant. ୪ । (+ଭାବ. ତି) ଭରଣପୋଷଣ—4. Maintenance. ୫ । (+କର୍ତ୍ତୃ.ତି) ମୂଳ ଧନ—5. Capital ୬ । ମୂଲ୍ୟ—6. Price; value. ୭ । (+ଭାବ. ତି) ପୂରଣ—7. Filling up.

ଭୃତିଜୀବୀ—ସ. ବିଣ.ପୁଂ (ଭୃତି+ଜୀବ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—
Brutijibi ୧ । ବେତନଗ୍ରାହୀ—1. Salaried. ୨ । ବୃତ୍ତି-(ଭୃତିଜୀବିନୀ—ସ୍ତ୍ରୀ) ଭୋଗୀ—2. Enjoying a grant or allowance for maintenance

ଭୃତିଭୁକ୍—ସ. ବିଣ (ଭୃତି+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍; ୧ମା. ୧ବ)—
Bhrutibhuk ଭୃତିଜୀବୀ (ଦେଖ)—Bhrutijibi (See)

ଭୃତ୍ୟ—ସ. ବ. ପୁଂ (ଭୃ. ଧାତୁ+କର୍ମ. ଯ)—୧ । ଦାସ; ଚାକର—
Bhrutya 1. Slave; servant. ୨ । ପ୍ରତିପାଲ୍ୟ ବ୍ୟକ୍ତି—(ଭୃତ୍ୟା—ସ୍ତ୍ରୀ) 2. Dependent. ୩ । (+କରଣ. ଯ) ଭୃତି; ବେତନ—3. Salary. ୪ । (+ଭାବ. ଯ) ଚିକିତ୍ସା—4. Medical treatment.

ଭୃତ୍ୟତା(ତ୍ୱ)—ସ. ବ (ଭୃତ୍ୟ+ଭାବ. ତା)—ଚାକରି—Service.
Bhrutyatā(twa) (ଭୃତ୍ୟପଣ—ଦେଶଜରୂପ)

ଭୃତ୍ୟାଧ୍ୟାପନ(ନା)—ସ. ବ (୩ୟା ତତ୍, ଭୃତ୍ୟ+ଅଧ୍ୟାପନ)—ଦରମା
Bhrutyādhyāpana ନେଇ ବେଦ ପଢ଼ାଇବା—Teaching of the Bedas in return for wages received. [ ଦ୍ର—ଏହା ଶାସ୍ତ୍ରଅନୁସାରେ ନିନ୍ଦନୀୟ । ]

ଭୃମି—ସ. ବ (ଭ୍ରମ୍. ଧାତୁ+କର୍ତ୍ତୃ. ଇ)—୧ । ଘୂର୍ଣ୍ଣିବାୟୁ—1. Whirl-
Bhrumi wind. ୨ । ଜଳଭ୍ରମି; ଭଅଁର—2. Whirlpool; eddy. ୩ । (+ଭାବ. ଇ) ଭ୍ରମଣ—3. Walk. ୪ । ଘୂରିବା—4. Whirling. ୫ । ବୈଦିକକାଳର ବୀଣାବିଶେଷ—5. A kind of harp used in the Vedic times.

ଭୃଶ୍ (ଧାତୁ)—ସ—ଭ୍ରଂଶ ହେବା—
Bhrus (root) To slip off.

ଭୃଶ—ସ. ବିଣ (ଭୃଶ୍ ଧାତୁ+କର୍ତ୍ତୃ. ଅ)—୧ । ବହୁଳ; ଅତ୍ୟନ୍ତ—
Bhrusa 1. Excessive. ୨ । ବାରଂବାର ଘଟୁଥିବା—2. Repeated. କ୍ରି. ବିଣ—୧ । ଅତ୍ୟନ୍ତ—1. Very much. ୨ । ପୁନଃ ପୁନଃ; ବାରମ୍ବାର—2. Repeatedly.

ଭୃଷତ୍—ସ. ବ(ଭୃଷ୍ ଧାତୁ+କର୍ତ୍ତୃ ଅତ୍)—ପାଷାଣ; ପଥର—
Bhhrushat Stone.

ଭୃଷାଲି—ସ ବ—ମଏଣ (ଦେଖ)
Bhrushāli Maena (See)

ଭୃଷ୍ଟ—ସ. ବିଣ (ଭ୍ରସଜ୍ ଧାତୁ=ଭାଜିବା+କର୍ମ. ତ)—ଭର୍ଜ୍ଜିତ; ଭଜା
Bhrushta ହୋଇଥିବା—Fried; roasted.

**ଭୃଷ୍ଟକାର**—ସ. ବ. ପୁଂ (ଭୃଷ୍ଟ+କୃ ଧାତୁ+କର୍ତ୍ତୃ. ଅ)—ମୁଢ଼ି, ଖୁଡ଼ୁମ୍
Bhrushṭakāra ଆଦ କରବା ଜାତି; ଶୁଖିଲ ଅନ୍ନ ଭାଜିବା ହିନ୍ଦୁ-
ଜାତି—A caste of Hindus who fry corn.

**ଭୃଷ୍ଟାନ୍ନ**—ସ. ବ ( କର୍ମଧା. ଭୃଷ୍ଟ+ଅନ୍ନ )—ମୁଢ଼ି—
Bhrushṭānna Fried rice.

**ଭୃଷ୍ଟି**—ସ. ବ ( ଭ୍ରସ୍ଜ୍ ଧାତୁ+କର୍ମ. ତି )—୧ । ମୁଢ଼ି—1. Fried.
Bhrushṭi rice. ୨ । (+ଭାବ. ତି) ଭାଜିବା—2 Frying.
roasting. ୩ । ( +ଅଧିକରଣ. ତି ) ଜନଶୂନ୍ୟ
ଉଦ୍ୟାନ—3. A lonely garden.

**ଭେଇବା**—ଦେ. କ୍ରି ( ସଂ. ବଧାନ )—ଉଥଇବା ( ଦେଖ )
Bheibā Bhiāibā (See)

**ଭେଉ**—ଦେ. ବ ( ସଂ. ଭେଦ )—ମର୍ମ; ରହସ୍ୟ; ଫେଡ଼—Secret;
Bheu key. ପ୍ରାଦେ. (ସମ୍ବଲପୁର) ବ—କୌଣସି ବ୍ୟକ୍ତିର ବାଗ;
ଫୈଉ ମେଉ ଢଙ୍ଗ; ଶୈଳୀ—One's ways. [ ଯଥା—ତାର
ଭେଉ ପାଇବା ବଡ଼ କଠିନ । ]

**ଭେଉଆ**—ଦେ. ବ ( ପ୍ରାଚୀନ ଓଡ଼ିଆ, ମାଦଳା ପାଞ୍ଜିରେ ବ୍ୟବହୃତ,
Bheuā ସଂ. ଭେଦ, ସଂ ଭିଦ ଧାତୁ )—୧ ଭେଦୁଆ—1. A
spy. ୨ । ଯେ ଗୁପ୍ତ କଥାମାନ ଶତ୍ରୁପକ୍ଷ ନିକଟରେ
ପ୍ରକାଶ କରେ—2. Abetrayer of one's secrets.

**ଭେଉ ଭେଉ**—ଦେ. ଅ ( ଧ୍ୱନ୍ୟନୁକରଣ)—କୁକୁର ଭୁକିବା ଶବ୍ଦ—
Bheu bheu ভেউভেউ भुभु The barking sound
of a dog.

**ଭେଁ**—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ଉଚ୍ଚୈଃସ୍ୱରରେ କାନ୍ଦିବାର
Bheṅ ভেঁভেঁ मैं मैं ଶବ୍ଦ—1. Sound of loud cry.
ଭେଁ ଭିଁ, ଭେଁ ଭେଁ } ଅନ୍ୟରୂପ ୨ । କୁକୁରଙ୍କ ଦୀର୍ଘ ଭୁକିବାର ଶବ୍ଦ—
2. Sound of long barking
or whining of a dog. ବ—ଭେଁ ଭେଁ ଶବ୍ଦ କରି
କାନ୍ଦିବା ଶିଶୁ—A child given to loud crying;
a whining child. [ ଉ—ଭେଁ କାନ୍ଦେ, ଭେଁ
କାନ୍ଦେ, କାନ୍ଦେ ନଟେଇ ମୂର୍ତ୍ତି, ନଟକୁମର କାନ୍ଦୁଥିଲୁ
ଘରକୁ ନ ଆସି—କାହାଣୀ ଗୀତ । ]

**ଭେଣ୍ଡି(ଡି)**—ପ୍ରାଦେ ( ବାମଣ୍ଡା) ବ ( ଭୁଲ ହି. ଭେଁଡ଼)—୧ । ମେଣ୍ଢା—
Bheṅrdi(di) 1. Ewe. ୨ । ଭେଣ୍ଡି—2. Lady's
finger.

**ଭେକ**—ସ. ବ. ପୁଂ ( ଭୀ ଧାତୁ=ଭୀତ ହେବା+ଅପାଦାନ କ )—
Bheka [ଭେକୀ—ସ୍ତ୍ରୀ] ବେଙ୍ଗ; ମଣ୍ଡୁକ—Frog.

**ଭେକ(ଖ)**—ଦେ. ବ ( ସ. ବେଶ )—୧ । ପୋଷାକ; ବେଶ;
Bheka(kha) ପରିଚ୍ଛଦ—1. Dress. ( ଉ—ଯୁବ ଭେକ
ভেক ନ ଥିଲା ଯାହାର ତାହାକୁ, ତାହା ମଧ୍ୟ ଦେଲେ ଯେ ବହୁ
भेख ସରାଗକୁ । କୃଷ୍ଣସିଂହ. ମହାଭାରତ ବନ । ) ୨ ।
ବୈଷ୍ଣବର ବେଶ; ସନ୍ନ୍ୟାସୀର ବା ଭିକ୍ଷୁର ବେଶ; ବୈଷ୍ଣବ,
ମାନେ ଦୀକ୍ଷା ନେବା ସମୟରେ ଗ୍ରହଣ କରିବା ଡୋର,
କୌପୁନ ଆଦି—2. The scanty dress assum-
ed by a recluse at his initiation; the
garb of an anchorite. ( ଉ—ଭେକରେ ବଞ୍ଚିତ
ପୁଣି କଳଙ୍କ ଲାଗିବ । ପ୍ରାଚୀ. ଶାଗୁରୁଭକ୍ତି ଗୀତା । )
[ ଦ୍ର—ଭିନ୍ନ ଭିନ୍ନ ସମ୍ପ୍ରଦାୟର ବୈରାଗୀ ( ଯଥା—ଶାକ୍ତ,
ବୈଷ୍ଣବ, ଶୈବ, ତାନ୍ତ୍ରିକ, ଗାଣପତ୍ୟ ସୌର ଆଦି )ଙ୍କର
ଭିନ୍ନ ଭିନ୍ନ ଭେକ ଅଛି । ଭିନ୍ନ ଭିନ୍ନ ସମ୍ପ୍ରଦାୟର
ଡୋର, କୌପୁନ, ବହିର୍ବାସ, କେଶ ଧାରଣ
ମାଳା ( ରୁଦ୍ରାକ୍ଷ, ତୁଳସୀ, ପଦ୍ମକେଶର ବା ସ୍ଫଟିକର )
ଓ ତିଳକ ( ତ୍ରିପୁଣ୍ଡ୍ର, ସମାନ୍ତରୀ, ଅର୍ଦ୍ଧପୁଣ୍ଡ୍ର ବା ଊର୍ଦ୍ଧ୍ୱପୁଣ୍ଡ୍ର )
ସ୍ୱତନ୍ତ୍ର । କାହାର ଗେରୁଆ ଲୁଗା, କାହାର କୌପୁନ । ଏକ
ସମ୍ପ୍ରଦାୟର, ଭିନ୍ନ ଭିନ୍ନ ଶାଖାବଲମ୍ବୀଙ୍କର ମଧ୍ୟ ଭେକ
ପୃଥକ୍ । ବୈଷ୍ଣବମାନଙ୍କ ମଧ୍ୟରେ ଗୌଡ଼ୀୟ, ମାଧ୍ୱାଚାର୍ଯ୍ୟ,
ରାମାନୁଜ,ନିମ୍ବାର୍କ ଆଦିଙ୍କର ଭେକ ମଧ୍ୟ ଭିନ୍ନ । ଏଥିପାଇଁ
ଭେକ ଦେଖି ବୈରାଗୀମାନଙ୍କର ଶାଖା ଚିହ୍ନିବାକୁ ହୁଏ । ]
୩ । ଅବଲମ୍ବନ; ଆଶ୍ରୟ—3. Shelter; refuge.
( ଉ—ଭେକ ଯେ କରଣାରୁ ଭେକ କରି ଯାଇ, ତାହାରିଙ୍କ
ବାଣ୍ଡକୁ ଭକ ଭକ ହୋଇ । କୃଷ୍ଣସିଂହ. ମହାଭାରତ.
ବନ । ) ୪ । ଶେଷ ଭରସା—4. Ultimate hope.
୫ । ଛଦ୍ମବେଶ—5. A mask. ୬ । ଭିନ୍ନ ଭିନ୍ନ
ବ୍ୟବସାୟର ବା ବୃତ୍ତିର ଭିନ୍ନ ଭିନ୍ନ ବେଶ—6. Res-
pective garbs of various professions;
୭ । ଜୀବିକା; ବୃତ୍ତି; ବ୍ୟବସାୟ—7. Profession.
calling; livelihood. ୮ । ପଦବୀ—8.
Position.

**ଭେକ ଘି(ଘେ)ନିବା**—ଦେ. କ୍ରି—୧ । କୌଣସି ବିଶିଷ୍ଟ ବେଶ ଧାରଣ
Bheka ghi(ghe)nibā କରିବା; ବେଶ ପିନ୍ଧିବା—1. To
(ଭେକ ନେବା—ଅନ୍ୟରୂପ) put on a special dress.
ভেক লওয়া ୨ । ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ ସମୟରେ ଡୋର
भेख लेना କୌପୁନ ଆଦି ଗ୍ରହଣ କରି ବୈଷ୍ଣବ ହେବା—
2. To be converted to Baishṇabism by
taking the garb ( a string for the waist
and a strip of cloth to cover the privi-
ties and a string of rosaries ) from the
preceptor at the initiation. ( ଉ—ଗ୍ରାମର
ବୁଢ଼ା ଭଲଥା ଦଶ ବାର ଜଣ ଡକ୍ତୀ ଭେକ ନେବାର କଥା
ହେଲାଣି । ଫକରମୋହନ—ଛମାଣ ଆଠଗୁଣ । )

**ଭେକ ଚଳିବା**—ଦେ. କ୍ରି—ଜୀବିକା ନିର୍ବାହ—Getting on with
Bheka chaḷibā জৌবিকাচলা one's livelihood.
নির্ব্বাহ চলা गुजर चलना

**ଭେକ ଚଳା(ଳେ)ଇବା**—ଦେ. କ୍ରି—ଅପଣା ଜୀବିକା ନିର୍ବାହ କରିବା—
Bheka chaḷā(ḷe)ibā To eke out one's livelihood.
জীবিকাচালান (নির্ব্বাহকরা) गुजर चलना

**ଭେକଟ(ଟା)**—ଦେ. ବ ( ସଂ. ଭେକଟ; ଖାକୁଟ )—ଖାକୁଡ଼ା ମାଛ
Bhekaṭa(ṭā) ଜାତୀୟ ବଡ଼ ଲୁଣୀ ମାଛ—A big salt-

ଭେଟକୀ water fish; Latis Calcarifer; Coius
ମାଙ୍ଗୁର Vacti. [ ଦ୍ର—ଏମାନେ ସମୁଦ୍ରରେ ଥାଆନ୍ତି ଓ ନଈବଢ଼ି ସମୟରେ ନଈମୁହଁମାନେ ମିଠା ପାଣିକୁ ଉଠି ଆସନ୍ତି; ପାର୍ଶ୍ୱରେ ୩।୪ ହାତ ଲମ୍ବ ହୁଅନ୍ତି । ଭାକୁଡ଼ ମାଛଙ୍କ ଅପେକ୍ଷା ଏମାନଙ୍କ ମୁହଁ ଗୋଲଥା ଓ ଦାନ୍ତ ଓଠ ବଡ଼; ପିଠି ଉପରର କଣ୍ଟା ଭୟଙ୍କର ଦାନ୍ତୁଆ [ଉ— "ଶଲ୍ଲାବୃନ୍ଦ ବସ୍ତ୍ର ପ୍ରକଟେ ଭେକଟା" ରାଧାନାଥ—ଚିଲିକା । ]

ଭେକଟା—ଦେ. ବିଣ. ପୁଂ (ସଂ. ବିକଟ)—୧ । ବିକଟ—1. Fierce.
Bhekaṭā ୨ । କଦାକାର—2. Ugly.
ଭେକଟିଆ } ଅନ୍ୟରୂପ (ଭେକଟୀ—ସ୍ତ୍ରୀ)
ଭେକଟାଳ }

ଭେକଟା ମୁହାଁ—ଦେ. ବିଣ—୧ । ଭେକଟା ମାଛ ପରି ଗୋଲା ମୁହାଁ—
Bhekaṭā muhāṅ 1. (a person) Having powted
[ଭେକଟା(ଟୀ)ମୁହାଁ—ସ୍ତ୍ରୀ] lips (like the boar-fish).
ବିକଟ ମুখো ୨ । (ସଂ. ବିକଟ+ମୁଖ) ବିକଟ ମୁଖ ବିଶିଷ୍ଟ; କରାଳ-
विकट मुहाँ ବଦନ—2. Having an ugly face; having a fierce visage

ଭେକ ଦୁ(ଦୁଃ)ଖ—ଦେ. ବି (ସନ୍ଧିଜ) ( ସଂ. ଭିକ୍ଷା+ ଦୁଃଖ)—
Bheka du(duḥ)kha ଭିକ୍ଷା କରିବା ଓ ମୂଲ ଲାଗିବା—
ভিক্ষা সি(টি)ক্ষা Begging in the garb of a mendi-
भीख दुख cant and working for wages.

ଭେକ ଦୁଃଖ କରିବା—ଦେ. କ୍ରି—ଭିକ୍ଷା କରି ଓ ମୂଲ ଲାଗି ପେଟ
Bheka duḥkha karibā ଚାଳିବା —To maintain
[ଭେକ ଦୁଃଖ କରି ପେଟ ପୋଷିବା (ଚଳିବା)—ଅନ୍ୟରୂପ] one's
ভিক্ষা সিক্ষা করা self by begging (in the garb of
भीख दुख करना a recluse) and by labour.

ଭେକ ଦେବା—ଦେ. କ୍ରି—(ଗୁରୁ) ଶିଷ୍ୟଙ୍କୁ ମନ୍ତ୍ରରେ ଦୀକ୍ଷିତ କରିବା
Bheka debā ସମୟରେ ବୈଷ୍ଣବର ଭେକ (ଡୋରି, କୌପୁନି,
ভেক দেওয়া ମାଳ, ତିଳକ ଆଦି) ଶିଷ୍ୟଙ୍କୁ ଅର୍ପଣ କରିବା—
भेख देना (a religious preceptor) To hand over to a disciple formally the garb of one's sect while initiating him.

ଭେକ(ଖ)ଧାରୀ—ଦେ. ବିଣ. ପୁଂ (ସଂ. ବେଶଧାରୀ)—୧ । ବେଶ ପିନ୍ଧି-
Bheka(kha)dhārī ଥିବା—1. Wearing a dress;
[ଭେକ(ଖ)ଧାରିଣୀ—ସ୍ତ୍ରୀ] dressed. ୨ । ଛଦ୍ମ ବେଶଧାରୀ—
ভেকধারী 2. Masked. (ଉ—କେହି ବିଷ ଦାନେ ଗୁପତ
भेखधारी ମାରଣେ, ଧର୍ମ ଭେକଧାରୀ କେହୁ ବୈରିକ ବଧନେ । ରାଧାନାଥ. ମହାଯାତ୍ରା ।) ୩ । କପଟାଚାରୀ—3. Hypocritical, ଦେ. ବି—ବୈଷ୍ଣବ—Baishṇaba. (ଉ-ଭୁଲସିବ ପଚର ଯେ ଅଟେ ପୁଣ ସରି, ସାନ ବଡ଼ ନ କରିବ ଯେବେ ଭେକଧାରୀ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।)

ଭେକ(ଖ)ଧାରୀ ବୈଷ୍ଣବ—ଦେ. ବି (ଲକ୍ଷଣାର୍ଥ)—ବୈଷ୍ଣବର ବେଶଧାରୀ
Bheka(kha)dhārī baishṇaba କପଟ ବୈଷ୍ଣବ; ବଗଧର୍ମ
ভেকধারী বৈষ্ণব ବକଧର୍ମ—(figurative) A recluse by
भेखधारी वैष्णव dress but not in fact; a wolf in sheep's clothing.

ଭେକ ନ ଥିଲେ ଭିକ ମିଳେ ନାହିଁ—ଦେ. ପ୍ରବଚନ—ବୈଷ୍ଣବଙ୍କ ବେଶ
Bheka na thile bhika mile nāhiṅ ନ ଥିଲେ ସାଧାରଣ
ভেক না থাকলে ভিক মিলেনা ଲୋକେ ତାକୁ ବୈଷ୍ଣବ ବୋଲି
भेखसे भीख मिलता, भेखे भीख ମାନନ୍ତି ନାହିଁ ଓ ଭିକ ଦିଅନ୍ତି ନାହିଁ—(a proverb meaning that the garb is essential to a recluse for securing alms.

ଭେକ ନ ସରିବା - ଦେ· ବି-ଜୀବିକା ନିର୍ବାହ ନ ହେବା—Stoppage
Bheka na saribā of one's means of living.
পেট না চলা गुजर नहीं चलना (ଭେକ ସରିଯିବା—ବିପରୀତ)

ଭେକନି—ସଂ, ବି (ଭେକ+ସଦୃଶାର୍ଥେ ନ+ଇ)—ଏଣ୍ଡୁଲା ମାଛ (ଲମ୍ବ
Bhekanī ୧।୧୪ ଅଙ୍ଗୁଳ; ସୋଦାଳା ମାଛ ଜାତୀୟ । ଏମାନେ
খরিশলা ମୁଣ୍ଡ ଉପରକୁ ଉଠାଇ ନଈରେ ପହଁରନ୍ତି । ଏମାନଙ୍କ ଆଖି କପାଳ ଉପରେ ବେଙ୍ଗଙ୍କ ପରି ଉଠିଥିବାରୁ ଏ ନାମ-କରଣ)—A kind of fresh water fish with protruding eyes; Mugil Corsula.

ଭେକ ମାରିବା— ଦେ. କ୍ରି—ଦାନା ମାରିବା; ଦାନାରେ ଧୂଳି ଦେବା;
Bheka māribā କୌଣସି ବ୍ୟକ୍ତିର ଜୀବିକା ନିର୍ବାହର ଉପାୟ
(ଭେକ ମାରି ଦେବା—ଅନ୍ୟରୂପ) ବନ୍ଦ କରି ଦେବା—To de-
দানা মারা prive a person of the means of his
दाना पानी मारना livelihood.

ଭେକରାଜ—ସଂ. ବି—କେଶ ଭୃଙ୍ଗରାଜ ଗଛ (ଦ୍ରି. ଷ) —
Bhekarāja Wedelia Calendulacea (plant).

ଭେକଲା—ଦେ. ବିଣ. ପୁଂ (ସଂ. ଭକ୍ଷୁବନ୍ତ ?)—୧ । ବୁଦ୍ଧୁ; ମୂର୍ଖ—
Bhekalā ভেকো 1. Foolish; idiotic; sheepish.
हुबड़ा, भकुआ ୨ । ହତବୁଦ୍ଧି—2. Bewildered.
(ଭେକଲୀ—ସ୍ତ୍ରୀ)

ଭେକା—ଦେ. ବିଣ (ସଂ. ଅବାକ୍)—୧ । ଅବାକ୍; ବାକ୍ୟରହିତ—
Bhekā 1. Dumb. ୨ । ବକା; ବୋକା; ଓଲୁ—
ভেকা, ভেকা চেকা 2. Stupid; silly; foolish.
अक्काबक्का ୩ । କିଂକର୍ତ୍ତବ୍ୟବିମୂଢ଼—3. Bewildered; struck dumb; confounded.
(ଉ—ଭେକା କରି ଦେଲା ଦେଖାଙ୍କି ଭୀଷଣ ଅଶନିପାତ ଘଟନା । ରାଧାନାଥ. ପାର୍ବତୀ ।)

ଭେକା(ଖା, ଙ୍କା)—ଦେ. ବିଣ—୧ । ଅତି ସାନଭାବାପନ୍ନ; ଦରିଦ୍ରଆ—
Bhekā(khā, ṅkā) 1. Beggarly; poor.
୨ । କୁରୂପ—2. Ugly. ୩ । ଅଭାବଗ୍ରସ୍ତ—3. Needy.

ଭେକୀ—ସଂ. ବି—ଥାଳକୁଡ଼ି(ଣୀ) ( ଦ୍ରବ୍ୟଗୁଣ ।) (ଦେଖ)
Bhekī Thālakurḍi (ṇi) ( See )

ଭେଜରି—ପ୍ରାଦେ. (ସମ୍ବଲପୁର) ବି—ଅଙ୍କରାନ୍ତି; ଭେଜ—
Bhej-ri Solanum Xanthocarpum.

ଭେଜା(ଜେ)ଇବା—ଦେ. କ୍ରି (ଋତ୍ତ୍ୱଅ; ଭେଜିବା କ୍ରିୟାର ଣିଜନ୍ତ ରୂପ)—ଅନ୍ୟ ଦ୍ୱାରା ପଠାଇବା—To send through another; to cause to be sent or despatched.
Bhejā(je)ibā
পাঠান, ভেজান
भेजाना, भेजवाना

ଭେଜା ଯି(ହେ)ବା—ଦେ. କ୍ରି (କଡଋଅ) (ଭେଜିବା କ୍ରିୟାର କର୍ମ ବାଚ୍ୟ)—ପଠାଯିବା—To be sent.
Bhejā ji(he)bā
পাঠান হওয়া, ভেজান হওয়া
भेजा जाना

ଭେଜି—ଦେ. ବି (ସ. ବୃହତୀ)—୧ । ବୃହତୀ ୧ ( ଦେଖ ) 1. Solanium Indicum (plant and fruit) ୨ । ( ସ. ଭେଦୀ ) ଝାଡ଼ା ଔଷଧ—2. A carthartic.
Bheji
ব্যাকুড়, ভেজী বেগুন
कटाइ, बरहण्टा, गुलभंटा
জোলাপ
जुलाप
ବିଣ—ଖୁବ୍ ଛୋଟ ଆକୃତିବିଶିଷ୍ଟ (ଯଥା—ଭେଜି ବାଇଗଣ)—Diminutive; tiny; pigmy; wee.

ଭେଜି କରିବା—ପ୍ରାଦେ. (ସମ୍ବଲପୁର) କ୍ରି—ଗ୍ରାମ ଦେବତାଙ୍କ ନିକଟରେ ଛେଳି (ବୋଦା) ବଳି ଦେଇ (ସେହି ଗ୍ରାମବାସୀମାନେ) ଉକ୍ତ ମାଂସ ଆପଣା ମଧ୍ୟରେ ବଣ୍ଟନ କରିବା—To distribute amongst the villagers the meat of a goat or sheep sacrificed to the village Goddess.
Bheji karibā

ଭେଜିତ—ଦେ. ବିଣ (କଡଋଅ)—ପ୍ରେରିତ—Sent; despatched.
Bhejita

ଭେଜିବା—ଦେ. କ୍ରି (କଡଋଅ)—ପଠାଇବା—To send; to despatch. (ଉ—ସରକାରଙ୍କୁ ଭେଜିବା ସକାଶେ ଲାସ୍ ଦେହରୁ ଅଲଙ୍କାର ସବୁ ବାହାର କରିଯାଇ ଜମାଦାର ଥଳୀରେ ରଖିଲେ । ଫକୀରମୋହନ ଛ ମାଣ ଆଠଗୁଣ୍ଠ ।) [ଦ୍ର—ଉତ୍କଳର କଚେରିମାନଙ୍କରେ ଫାରସୀ ନବିଶମାନ ପ୍ରଚଳିତ ହେଉଥିବା ସମୟରେ ଓ ଇଙ୍ଗରେଜୀଙ୍କ ପ୍ରଥମ ଅମଳରେ ଭେଜାଇବା, ଭେଜିବା, ଭେଜିତ ଶବ୍ଦମାନଙ୍କର ପ୍ରୟୋଗ ରୋବକାରି, ପରୱାନ୍ ଓ ସନନ୍ଦମାନଙ୍କରେ ବ୍ୟବହୃତ ହୋଇଥିବାର ଦେଖାଯାଏ ।]
Bhejibā
পাঠান
भेजना

ଭେଜି ବାଇଗଣ—ଦେ. ବି—ଭେଜି ୧ (ଦେଖ) Bheji 1 (See)
Bheji bāigaṇa

ଭେଟ—ଦେ, ବି (ସ. ଭିଦ୍ ଧାତୁ—ହି, ଗୁ; ସ. ମେଳ)—୧ । ଦୁଇ ବା ତତୋଽଧିକ ବ୍ୟକ୍ତିଙ୍କର ପରସ୍ପର ସହିତ ସାକ୍ଷାତ ବା ମିଳନ—1. Meeting of two or more persons. ୨ । ଦର୍ଶନ; ଦେଖା; ମୁଲାକାତ୍—2. Interview; visit. ୩ । ଦେବତା ଆଦିଙ୍କୁ ଯାତ୍ରୀଙ୍କ ଦର୍ଶନ କରିବା ସମୟରେ ଦିଆଯିବା ଉପଢୌକନ; ଭେଟି; ଦର୍ଶନୀ—3. Presents given to Deities by pilgrims. ୪ । ଭେଟି; ରାଜା ଆଦିଙ୍କୁ ବିଶିଷ୍ଟ ଉତ୍ସବାଦି ଉପଲକ୍ଷରେ ଦିଆଯିବା ଭେଟି; ସଲାମୀ; ନଜରାନା—4. Presents given to kings on special occasions; nuzzerana; salami. ୫ । ଦଶହରାରେ ଦେବୀଦର୍ଶନ ସମୟରେ ପାଇକ ବା ସୈନ୍ୟବର୍ଗଙ୍କର ରାଜାଙ୍କ ସମ୍ମୁଖରେ ଅସ୍ତ୍ର ଶସ୍ତ୍ରାଦିର ଚାଳନା ପୂର୍ବକ ରାଜାଙ୍କୁ ସମ୍ମାନ ପ୍ରଦର୍ଶନ—5. Presenting arms and saluting to a Raja by the assembled soldiers during Daśaharā.
Bheṭa
ভেট মেঁট

ଭେଟଣ(ଣା)—ଦେ. ବି (ସ. ଭେଦନ)—୧ । ହଠାତ୍ ଭେଟ ହେବା—1. Sudden meeting; encounter. ୨ । ଭୂତ ପିଶାଚାଦିଙ୍କୁ ହଠାତ୍ ଭେଟିବା ଯୋଗୁଁ ଲୋକ ଚମକି ଓ ମାରାତ୍ମକଭାବେ ପୀଡ଼ାଗ୍ରସ୍ତ ହେବା—2. Being overtaken with sudden alarm and mortal disease on encountering a ghost or other preternatural being. ୩ । ଭୂତ ପିଶାଚାଦିଙ୍କ ହାବୁଡ଼ରେ ମନୁଷ୍ୟ ପଡ଼ିଯିବା ଓ ତଦନନ୍ତର ମନୁଷ୍ୟଠାରେ ଭୂତାବେଶ ହେବା—3 Sudden encounter with a ghost or evil spirit and consequent possession of the person with the same. ବିଣ-୧। ହଠାତ୍ ଭୂତ ପିଶାଚାଦିଙ୍କ ହାବୁଡ଼ରେ ପଡ଼ିଯିବା ଯୋଗୁଁ ମାରାତ୍ମକ ଉନ୍ମାଦ, ଜ୍ୱର, ଝାଡ଼ା, ବାନ୍ତି ଦ୍ୱାରା ପୀଡ଼ାଗ୍ରସ୍ତ (ବ୍ୟକ୍ତି)—1. (a person) Overtaken with sudden alarm and mortal disease (fever,vomiting and evacuation) on suddenly encountering a ghost. ୨ । ( ଲକ୍ଷଣାର୍ଥ ) କିଂକର୍ତ୍ତବ୍ୟବିମୂଢ଼—2. (figurative) Bewildered. (ଉ—ପଦ ବୋଲି କୁଆଡ଼େ ଗଲୁ ? ମୁଁ ତ ଭେଟଣା ହୋଇଗଲି । ଉତ୍କଳ ଯୌତୁକ ।)
Bheṭaṇa(ṇā)
ভেট মেঁট

ଭେଟ(ଟି) ଦେବା—ଦେ. କ୍ରି—ଉପଢୌକନ ଦେବା—To give presents.
Bheṭa(ṭi) debā
ভেট দেওয়া भेंट देना

ଭେଟ ଦ୍ରବ୍ୟ—ଦେ. ବି—ଭେଟି (ଦେଖ)—Bheṭi (See) (ଉ—ଯକ୍ଷେ ଦୁର୍ଯ୍ୟୋଧନ କୋଷାଧ୍ୟକ୍ଷ ହୋଇଥିଲେ, ନୃପେ ଭେଟ ଦ୍ରବ୍ୟ ଆଣି ତାଙ୍କ ପାଶେ ଦେଲେ । କୃଷ୍ଣସିଂହ. ମହାଭାରତ ଆଦି ।)
Bheṭa drabya
ভেট দ্রব্য
भटकी चीज

ଭେଟ ପାଇବା—ଦେ. କ୍ରି—ସାକ୍ଷାତ ପାଇବା; ଦର୍ଶନ ପାଇବା—To have an interview. (ଉ—ପାଇବ ଭେଟ କଣ୍ଵ ଋଷିଙ୍କ ଚରଣ । କୃଷ୍ଣସିଂହ. (ଭେଟ ମିଳିବା—ବିଶେଷ୍ୟରୂପ) ମହାଭାରତ. ଆଦି ।)
Bheṭa pāibā
দেখা পাওয়া
भेंट करना

ଭେଟଭାଟ—ଦେ. ବି ( ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ )—ମିଳନ; ଦର୍ଶନ—Interview.
Bheṭabhāṭa
মিলন, সাক্ষাত भेंटउट, भेंटघांट

ଭେଟ ମଣ୍ଡପ(ଶାଳା)—ଦେ.ବି—ଯେଉଁ ମଣ୍ଡପରେ ରାଣୀ ବା ଠାକୁରାଣୀ (ଯଥା—ମହାଲକ୍ଷ୍ମୀଙ୍କ ବିଗ୍ରହ) ପ୍ରବାସରୁ ଆସୁଥିବା ରାଜାଙ୍କୁ ବା ଠାକୁରଙ୍କ ବିଗ୍ରହଙ୍କୁ ( ଯଥା—
Bheṭa maṇḍapa(śālā)

ଗୁଣ୍ଡିଚ୍ଚା ଘରୁ ଅସୁଥିବା ଜଗନ୍ନାଥଙ୍କୁ) ପ୍ରଥମରେ ଦେଖା କରନ୍ତି—A temple or house at which place the Queen or the female Deity (e.g. Lakshmi) first sees or meets with the King or the male Deity (e.g. Lord Jagannātha) respectively while he is returning home after a sojourn. (ଉ—ଛତ୍ର ଗଙ୍ଗାଧର ସେବା କରଣ ଦେଖିଣ କରୁଣାସିନ୍ଧୁ, ବେନି ହସ୍ତ ଧରି ଭେଟ ଶାଳାକୁ ବଢେ କଲେ ଘନବନ୍ଧୁ । ଘନକୃଷ୍ଣ. ଗୁଣସାଗର ।)

**ଭେଟ(ଟି) ସଲାମୀ**—ଦେ. ବି ( ସହଚର ଶବ୍ଦ )—Bheṭa(ṭi) salāmī ଭେଟ; ଉପଢୌକନ—Presents.
ଭେଟୀ সেলামী **भेंट सलामी**

**ଭେଟ ହେବା**—ଦେ. କ୍ରି—ଭେଟିବା—To have an interview Bheṭa hebā (ଉ—ପ୍ରଭାସ ତୀର୍ଥେ କୃଷ୍ଣ ସଙ୍ଗତେ ଭେଟ ভেটহওয়া ହେଲେ । କୃଷ୍ଣସିଂହ. ମହାଭାରତ ଆଦି ।) ଦେ· ବି—ଦୁଇ **भेंटहोना, भेंटना** ଜଣଙ୍କର ପରସ୍ପର ଦେଖାଦେଖି ହେବା—Interview.

**ଭେଟା**—ଦେ ବିଣ ଓ ବି. ପୁଂ—୧ । ଯେ ଭେଟାଏ—1. One Bheṭā who brings about an interview. ୨ । (ଗାଳି) (ଭେଟେଇ—ସ୍ତ୍ରୀ) ଯେଉଁ ବ୍ୟକ୍ତି କୌଣସି ପୁରୁଷ ନିକଟରେ ପର-ମେୟେমানুষের दालाल ସ୍ତ୍ରୀକୁ ଆଣି ଭେଟାଏ; ଭାରୁଆ—2. Panderer **भडुआ** ପ୍ରାଦେ (ଯାଜପୁର) ବି—ଭିଟାମାଟି—Homestead land.

**ଭେଟା(ଟେ)ଇବା**—ଦେ. କ୍ରି—୧ । ଦୁଇ ଜଣଙ୍କର ଭେଟ ବା ମିଳନ Bheṭā(ṭe)ibā କରାଇବା—1. To bring about an ভেটান, ভেটদেওয়া interview between two persons. **भेंटकरवाना** (ଉ—ସେହିକ୍ଷଣି ଆସି ଋଷିଙ୍କି ଘେନିଗଲେ, ନୃପ ଜନ୍ମେଜୟ ଛାମୁରେ ଭେଟାଇଲେ । କୃଷ୍ଣସିଂହ ମହାଭାରତ ଆଦି ।) ୨ । ପର ପୁରୁଷ ନିକଟରେ ପର ସ୍ତ୍ରୀ ଆଣି ପହଞ୍ଚାଇବା—2. To pander. ୩ । ଯଥେଷ୍ଟ ହେବା; ଅଣ୍ଟିବା—3. To suffice; to be sufficient. (ଯଥା—ନୂଆ ଗୁଡ଼ଲ ଭାତ ପୁରୁଣା ଗୁଡ଼ଲ ଭାତ ପରି ଭେଟାଏ ନାହିଁ ।)

**ଭେଟାଭେଟି**—ଦେ. ବି ଓ ବିଣ—ପରସ୍ପର ମିଳନ ବା ସାକ୍ଷାତ—Bheṭābheṭi Meeting each other; interview. (ଉ—ভেটাভেটি ଦେ ପ୍ରିୟ ପ୍ରିୟା ଦୁହେଁ ହୋଇ ଭେଟାଭେଟ । କୃଷ୍ଣସିଂହ. **मिलनजुलन, भेंटघांट** ମହାଭାରତ. ବନ ।)

**ଭେଟି**—ଦେ. ବି—ସଲାମୀ; ଦର୍ଶନୀ; ରାଜା, ଜମିଦାର ବା ଦେବତା Bheṭi ଆଦିଙ୍କୁ ପହିଲେ ଭେଟିବା ସମୟରେ ବା ଉତ୍ସବାଦି ସମୟରେ ভেটী ଦିଆଯିବା ଉପଢୌକନ—Presents given to a king **भेंट, नजराना** or landlord or a Deity at the first meeting. (ଯଥା—ଦଶହରା ଭେଟି; ସୁନାଆ ଭେଟି ଇତ୍ୟାଦି ।)

**ଭେଟି କରିବା**—ଦେ. କ୍ରି—ଉପଢୌକନ ଦେବା—To make a Bheṭi karibā ভেটিদেওয়া **भेंटदेना** present. (ଭେଟି ଦେବା—ଅନ୍ୟରୂପ)

**ଭେଟିବା**—ଦେ. କ୍ରି (ସଂ. ମିଳ୍.ଧାତୁ; ତୁଳ. ଲାଟିନ୍ ଭିଡୋ=ଦେଖିବା)—Bheṭibā ୧ । ସାକ୍ଷାତ କରିବା—1. To meet. (ଉ—ପାଣ୍ଡବ ভেটা ସୁତେ ବ୍ୟାସଙ୍କୁ ଭେଟିଲେ । କୃଷ୍ଣସିଂହ. ମହାଭାରତ ଆଦି ।) **भेंटकरना** ୨ । ମିଳିତ ହେବା; ଉପସ୍ଥିତ ହେବା—2. To join a person; attend. (ଉ—ଚରମ ଅଙ୍ଗେ ତାର ଲୁଗା ହେଲା, ଶୁକର ଛାମୁରେ ଭେଟିଛି ବୋଲି । କବିସୂର୍ଯ୍ୟ. କବିତା ।) ୩ । ସଲାମୀ ବା ଭେଟ ଦେବା—3. To give a present. (ଉ—ବନ୍ଧୁଜାବ ଅଧସ୍ତାବ ଏ ଫଳ ଭେଟିବ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।) ପ୍ରାଦେ (ବାଲେଶ୍ୱର) କ୍ରି—୧ । ବାଜିବା; ଆଘାତ କରିବା—1. To strike. ୨ । ଆଘାତପ୍ରାପ୍ତ ହେବା—2. To collide.

**ଭେଟେ**—ଦେ. ଅ—୧ । ଅଦୌ; ଜମାରୁ—1. At all. ୨ । ଥରେ Bheṭe ସୁଦ୍ଧା—2. Even once. (ଯଥା—ତା ସଙ୍ଗେ ମୋର আদতে **बीलकुल, जरामी** ଭେଟେ କଥାଭାଷା ନାହିଁ ।)

**ଭେଟେ ଭେଟେ**—ଦେ. କ୍ରି. ବିଣ—ପ୍ରତି ଥର ସାକ୍ଷାତ ହେଲାବେଳେ—Bheṭe bheṭe At every meeting. [ ଉ—ସଖୀ ଏହି, বারবার ଭେଟେ ଭେଟେ ଗୃହଙ୍କୁ କାହ୍ନୁ ବଚନ ଭାଷିବ । ଭଞ୍ଜ. **वारवार** ପ୍ରେମସୁଧାନିଧି । ]

**ଭେଡ଼**—ସଂ. ବି. ପୁଂ (ଭୀ ଧାତୁ=ଭୟ କରିବା+ କର୍ତ୍ତୃ. ଡ୍ର୍ନଯାତନ)—Bherḍa ୧ । ମେଣ୍ଢା—1. Sheep (Apte). ୨ । (+ (ଭେଡ଼ୀ—ସ୍ତ୍ରୀ) ଅଧିକରଣ.ଡ) ଭେଳା—2. A raft; a float (Apte).

**ଭେଡ଼ା**—ଦେ. ବି (ସଂ. ବେଢ଼, ବେଢ଼. ଧାତୁ=ବେଷ୍ଟନ କରିବା)—Bherḍā ୧ । ଦଣ୍ଡା; ଶସ୍ୟକ୍ଷେତ୍ରର ପାଖ କର୍ଡ଼ୀ ଲମ୍ବା ଜଙ୍ଗଲ ବା ভেড়ি ভাগাড় ପଡିଆ—1. Long strip of jungle or **धूर** waste land by the side of cultivated fields. ୨ । ପଗାର; ଉଚ୍ଚ ହିଡ଼—2. A high ridge round चक्कर a field. ୩ । ଚେରା; ଭଡ଼ା; ଚାଲିବାର ବଡ଼େ ବାଟ—**चक्कर** 3. A distance (walked). ୪ । ନଦୀର ମୁହାଁଣରେ ভেড়া ଓ ସମୁଦ୍ରକୂଳରେ ବିସ୍ତୃତ ନିମ୍ନଭୂମି (ଯାହା ନିଷ୍ଟବର୍ଷା ସମୟରେ ପାଣିରେ ବୁଡ଼ିଯାଏ ଓ ବଢ଼ି ଛାଡ଼ିଗଲେ ଶୁଖେ—4. Wide expanse of alluvial land on the mouth of rivers and along the seashore which remain submerged during the rainy season [ ବ୍ର—ଭେଡ଼ାର ସ୍ଥାନେ ସ୍ଥାନେ ବୃତ୍ତାକାର ବନ୍ଧ ଦିଆଯାଇ ଉକ୍ତ ବୃତ୍ତର ପରିଧ ମଧ୍ୟସ୍ଥ ଭୂମିକୁ ଆବାଦ କରାଯାଏ । ଏହି ବୃତ୍ତାକାର ବନ୍ଧକୁ ସୁନ୍ଦର ବନ ଅଞ୍ଚଳରେ ଭେଡ଼ି ବୋଲାଯାଏ । ] (ଉ—ଭେଡ଼ା ଅଶ୍ୟାଧାସା ବୃକ୍ଷସ୍ଥାନ ଭୂମି ସମୁଦ୍ର ଦାଢ଼େ, ଦ୍ୱୀପ ପ୍ରାୟେ କ୍ଷୁଦ୍ର ଜନପଦ ଯହିଁ ଭାସେ ଅଷାଢ଼େ । ରାଧାନାଥ. ଚିଲିକା ।) ୫ । ପାହୁଣ୍ଡ—5. Step; pace. (ଉ—ଅସୁର ପାଇଁ ମହାତ୍ରାସ, ଘୁଞ୍ଚିଲା ଭେଡ଼ା ଅଷ୍ଟାଦଶ । ଜଗନ୍ନାଥ. ଭାଗବତ ।) ୬ । ଭେଡ଼ ୧ ଓ ୨ (ଦେଖ)—

୬. Bherdi 1 & 2 (See). ପ୍ରାଦେ ୭ ( ଅନୁ ) ବି—ବର୍ଷାଋତୁରେ ଜଳପୂର୍ଣ୍ଣ ଧାନକ୍ଷେତ୍ର—Water-logged paddy field. [ଦ୍ର—ଏଥିରେ ପାଣିରେ ଧାନ ବୁଣାଯାଏ ଓ ପାଣିଥିଲାବେଳେ ଧାନ କଟାଯାଏ । ]

ଭେଡ଼ାଏ—ଦେ. କ୍ରି, ବିଣ—୧ । ଭେରାଏ ( ଦେଖ )—1. Berāe
Bherdāe (See). ୨ । ଥରେ—2 Once. ( ଉ—
একবার ବୋଇଲା, ଠଣ ଯେ ସୁନ୍ଦର ବେକ ପୋଏ, ଠକ
एकचक्कर ଭଣ୍ଡି ଗଲେ କୃଷ୍ଣ ନଇଲେ ଭେଡ଼ାଏ । ମାରକଣ୍ଡ. କେଶବକୋଇଲି । )

ଭେଡ଼ା ତାଡ଼ିବା—ଦେ. କ୍ରି—ପଡ଼ିଆ ଭୂମିକୁ କୃଷି କରିବା ପାଇଁ ଆବାଦ
Bherdā tārdibā କରିବା—To reclaim waste land.
পোড়োজমি আবদকরা पडती तोडना

ଭେଡ଼—ଦେ. ବି. ପୁଂ ( ସଂ. ଭେଡ )—୧ । ମେଣ୍ଢା—1. Sheep;
Bherdi a ram; Ovis; the domestic sheep
(ଭେଡ଼ୀ—ସ୍ତ୍ରୀ) ୨ । ଏକପ୍ରକାର ବଡ଼ ଲୋମଯୁକ୍ତ ମେଣ୍ଢା; ଦୁମ୍ବା—
ভেড়া 2. A kind of sheep with big wool. ୩ ।
मेढ(ढा) ଏକପ୍ରକାର ମାଛ—3. A kind of fish.

ଭେଡ଼ିବା—ପ୍ରାଦେ (କଳିକା) କ୍ରି—ଦଉଡ଼ିବା; ଧାଇଁବା—
Bherdibā To run

ଭେଡ୍ର—ସଂ. ବି. ପୁଂ ( ଭୀ ଧାତୁ=ଭୀତ ହେବା+କର୍ତ୍ତ୍ରି. ତ୍ର )—ମେଣ୍ଢା
Bhedra (ଭେଡ୍ରୀ—ସ୍ତ୍ରୀ) —A ram (Apte).

ଭେଣୋ(ଣେ)ଇଁ—ଦେ. ବି. ପୁଂ ( ସଂ. ଭଗ୍ନୀପତି )—ଭଗ୍ନୀପତି—
Bheno(ne)iñ One's sister's husband. ( ଉ—
বনাই ଅଶ୍ୱତ୍ଥାମା ପିତା କୃପଙ୍କର ଭେଣୋଇଁ । କୃଷ୍ଣସିଂହ.
बहनोई ମହାଭାରତ, ଆଦି । )

ଭେଣ୍ଟ—ପ୍ରାଦେ ( ବାଲେଶ୍ୱର ) ବି ( ତୁଳ ବଂ. ଭେଁଟୁ; ଭେଁଟ୍ )—
Bhenta କଇଁଫୁଲର ମଞ୍ଜି—The seeds of waterlily.
(ଭେଣ୍ଟ୍ଲ—ଅନ୍ୟରୂପ) [ ଦ୍ର—ଏ ମଞ୍ଜିମାନ ପୋରସ ପରି; ଏହାକୁ ଭାଜିଲେ ଏଥିରୁ ବାହାରିବା ଖଇକୁ ଭେଣ୍ଟ୍ ଖଇ ବା ଭେଣ୍ଟ୍ଲ ଖଇ କହନ୍ତି । ]

ଭେଣ୍ଡର—ବୈଦେ. ବି (ଇଂ)—୧ । ବିକ୍ରେତା—1. Vendor. ୨ ।
Bhendar ଷ୍ଟାମ୍ପବିକ୍ରେତା—2. Stamp—vendor.
ভেণ্ডর भेंडर

ଭେଣ୍ଡା—ଦେ ବିଣ. ପୁଂ ( ତା. ବେଣ୍ଡୁ=ଯୁବକ )—୧ । ଯୁବା;
Bhendā ଯୁବକ—1. Youth; young. ( ଉ—
(ଭେଣ୍ଡିଆ—ଅନ୍ୟରୂପ) ସହଜେ ତ ହୋଇଛୁ ଭେଣ୍ଡିଆ ବୟସ ।
জুআন, জোয়ান କୃଷ୍ଣସିଂହ, ମହାଭାରତ. ସଭା । ) ୨ । ବଳିଷ୍ଠ
नव जवान —2. Strong. ( ଉ—ନକୁଳଙ୍କ ରଥ
(ଭେଣ୍ଡୀ—ସ୍ତ୍ରୀ) ଘୋଡ଼ାକୁ ମାରି ଷଣ୍ଢା, ଛାଣ୍ଡାଇ ପକାଇଲେ ଶଲ୍ୟ ମହା ଭେଣ୍ଡା । କୃଷ୍ଣସିଂହ, ମହାଭାରତ. ଶଲ୍ୟ । ) ବି—୧ । ଯୁବକ—1. A youth; a young man. ୨ । ବଳିଷ୍ଠ ଓ ହୃଷ୍ଟପୁଷ୍ଟ ଯୁବକ—2. A stout and strong youth. ( ଉ—ସହଜରେ ତ ଅଛୁ ସୁନ୍ଦର ସେ ଭେଣ୍ଡା । କୃଷ୍ଣସିଂହ. ମହାଭାରତ. ବନ । )

ଭେଣ୍ଡା ପଣ—ଦେ. ବି—ଯୁବକତ୍ୱ—Youth; the state of
Bhendā pana being a youngman; youth-
[ଭେଣ୍ଡା ପଣିଆ(ଆଁ)—ଅନ୍ୟରୂପ] fulness. (ଉ—ସହଦେବ
জোয়ানী ଭୁଲରେ କୃପାଚାର୍ଯ୍ୟ ଭଣି, କଲେ ବୁଢ଼ାକାଳେ ଦେଖାଇ
नवजवानी ଭେଣ୍ଡା ପଣ । କୃଷ୍ଣସିଂହ. ମହାଭାରତ. ଭୀଷ୍ମ । ]

ଭେଣ୍ଡା ବଅ(ୟ, ଏ)ସ—ଦେ. ବି—ଯୁବାବୟସ—Youth.
Bhendā ba-a(ya, e)sa জোয়ান বয়স नवजवानी.

ଭେଣ୍ଡା ବଅ(ଇ, ୟ, ଏ)ସିଆ—ଦେ. ବିଣ—୧ । ଅଳ୍ପାୟୁ—
Bhendā ba a (i, ya,e)siā 1. Dying young.
জোয়ান नवजवान (ଗାଳିରେ ବ୍ୟବହୃତ)—୨ । ନବ ଯୁବକ—
2. Youthful.

ଭେଣ୍ଡା ବେଳ—ଦେ. ବି—ଯୌବନକାଳ—The period of life
Bhendā bela between childhood and full
জোয়ান বয়স नवजवानी manhood; youth.

ଭେଣ୍ଡା ଭାଜି—ପ୍ରାଦେ ( କଟକ ) ବି—ଖଟା କାଉଁରିଆ; ପଟୁଆ
Bhendā bhāji କାଉଁରିଆ—A red variety of jute
कुतुरुम plant tasting sour.

ଭେଣ୍ଡି—ଦେ. ବି ( ସଂ. ଡିଣ୍ଡିଶ )—ଜବାକୁ ବର୍ଗର କୃଷିଜାତ ଫଳଗୁଳ୍ମ
Bhendi —Lady's finger; Hibiscus Esculentus.
ঢেঁড়শ, ঢেঁড়শ [ ଦ୍ର—ଏହା ଭାରତର ସର୍ବତ୍ର ଜନ୍ମେ । ଏହି
भेण्डी; तोरई ଗଛ ୫ ହାତ ଉଚ୍ଚ ହୁଏ । ଫୁଲ ଶବପତ୍ର ପରି । ଫଳ ମେଷଶୃଙ୍ଗ ତୁଲ୍ୟ କ୍ରମଶଃ ସରୁ ଓ ଲମ୍ବ ଓ ଚିକ୍କଣ ରସବିଶିଷ୍ଟ । ମଞ୍ଜି ମଟର ମଞ୍ଜି ପରି । ପାଚିଲେ ଫଳ ଫାଟିଯାଏ । ଏହାର ଫଳ ଧଳା ଓ ନାଲି ଭେଦରେ ଦୁଇପ୍ରକାର ହୁଏ । ଉତ୍କଳର ଉତ୍ତରାଞ୍ଚଳରେ ଏହାକୁ ମେଣ୍ଢିଶିଙ୍ଗା ବୋଲି କହନ୍ତି; ଏଥିର ଛାଲରୁ ଝୋଟ ପରି ଏକପ୍ରକାର ଅଂଶୁ ବାହାରେ । ] ବିଣ—ଖାଦଯୁକ୍ତ
খাবাপ, পানমিশা ନିକୃଷ୍ଟ ଧାତୁ ମିଶ୍ରିତ ( ସୁନା )—Alloyed;
खराप ( gold ) adulterated with baser metals. ( ଉ—ସୁବର୍ଣ୍ଣ ବୋଲି ଦେଲେ ନେଇ, ଭେଣ୍ଡି ସେଣେହେ ସୁନା ପାଇ । ଭୂପତି. ପ୍ରେମପଞ୍ଚାମୃତ । ) ପ୍ରାଦେ ( ବାଲେଶ୍ୱର ) ବିଣ—ଜାଲ୍ ( ମୁଦ୍ରା )—
Counterfeit ( coin ). ( ଉ—ମଲା ଯା ! ଛଅଟା ଟଙ୍କା ପଡ଼ିଲା ଭେଣ୍ଡି । ଫକୀରମୋହନ. ଗଳ୍ପସ୍ୱଳ୍ପ । ]

ଭେଣ୍ଡିଆ—ଦେ. ବି—ଭେଣ୍ଡା ( ଦେଖ )—Bhendā ( See )
Bhendiā ପ୍ରାଦେ ( ଗଡ଼ଜାତ ) ବି—ତୁଳସୀ ଚଉରା—
A platform on which a holy Basil plant is reared for worship.

ଭେଣ୍ଡିଆ ମର୍ଦ୍ଦନ—ପ୍ରାଦେ ( ଗଡ଼ଜାତ ) ବି—ବୃକ୍ଷବିଶେଷ—
Bhendiā marddana Name of a tree. [ ଦ୍ର—ଏହି ବୃକ୍ଷ ଅତ୍ୟନ୍ତ ମୋଟ ଓ ଉଚ୍ଚରେ ବଢ଼େ । ଏଥିରେ କାଗସ୍ତ ମହୁ ଫେଣା କରନ୍ତି । ଏହାର ପତ୍ରରେ କାହା ଛଥର ହୁଏ । ]

**ଭେଣ୍ଡି ପଟ୍**—ପ୍ରାଦେ. (ସମ୍ବଲପୁର) ବି—ଭେଣ୍ଡି ଗଛର ଅଂଶୁ—The
Bheṇḍi paṭ fibres of the lady's finger plants.
(ଭେଣ୍ଡି ପଟ୍—ଅନ୍ୟରୂପ)

**ଭେଣ୍ଡି ଭଁଅର**—ଦେ. ବି—ଭେଣ୍ଡି ଗଛର ଫୁଲକୁ ଖାଇବା ଡମର ପରି
Bheṇḍi bhaaṇra ଏକ ପ୍ରକାର ପୋକ—A kind of
ঢেঁড়সের পোকা insect feeding on the flowers of
भेंडीका कीड़ा lady's finger plant.
[ବି—ଏମାନଙ୍କର ଦେହ ଅଙ୍ଗୁଠି ପରି ମୋଟ; ଖୋଳ-
ଯୁକ୍ତ ଆବରଣ ତଳେ ପକ୍ଷ ଥାଏ; ଖୋଳ ଉପରେ କଳା,
ଧଳା, ହଳଦିଆ, ଟୋପିମାନ ଥାଏ; ଗୋଡ଼ ଲମ୍ବ ଓ
କଳା ।]

**ଭେଣ୍ଡି ମୁଣ୍ଡି**—ପ୍ରାଦେ. ( ଯାଜପୁର ) ବି—ଚଉଁରିଆଭୁଣ୍ଡି—A cup-
Bheṇḍi muṇḍi shaped ornament for the hair into which a bunch of plaited-hair-string is firmly attached with lac.

**ଭେଣ୍ଡି ସୁନା**—ଦେ. ବି—୧ । ନିକୃଷ୍ଟ ସୁନା—1. Gold of in-
Bheṇḍi sunā ferior quality.
খারাপ সোনা खोटा सोना
୨ । ଖାଦ ମିଶ୍ରିତ ସ୍ୱର୍ଣ୍ଣ—2 Gold adulterated with baser metal; an alloy of gold. ୩ । ନକଲି ବା ଗିଲ୍ଟ ସୁନା—3. A gilt metal.

**ଭେଣ୍ଡେରା**—ପ୍ରାଦେ. (କଳାହାଣ୍ଡି) ବି—କୋକଶିଆଳୀ—
Bhenderā Fox.

**ଭେଦ**—ସ. ବି—(ଭିଦ୍ ଧାତୁ=ଭେଦ ବା ବିଦାରଣ କରିବା+
Bheda ଭାବ. ଅ)—୧ । ବିଦାରଣ କରିବା; ଫାଡ଼ିବା—1. Piercing; splitting up. ୨ । ବିଚ୍ଛେଦ—2. Separation. ୩ । ଛେଦନ—3. Cutting. ୪ । ବୈଲକ୍ଷଣ୍ୟ; ଅସାଧାରଣତା—4. Peculiarity; unusualness. ୫ । ବୈଷମ୍ୟ; ଅନୈକ୍ୟ—5. Dissimilarity. ୬ । ପ୍ରଭେଦ; ପାର୍ଥକ୍ୟ; ବିଭିନ୍ନତା—6. Difference; diversity. ୭ । ବିଭାଗ—7. Division. ୮ । ଭଙ୍ଗ—8. Breaking. ୯ । ବିବାଦ; ବିରୋଧ; ମନୋମାଳିନ୍ୟ—9. Dissension. ୧୦ । ମନୋଭଙ୍ଗ—10. Disagreement. ୧୧ । ଦୁଇଜଣଙ୍କ ମଧ୍ୟରେ କଳହ ଜାତ କରାଇବା ବା ଶତ୍ରୁକୁ ବଶ କରିବା ପାଇଁ କାଯ୍ୟକୁ ତାନ୍ତ୍ରିକ ଉପାୟବିଶେଷ—11. Charms employed for fomenting quarrel between two persons or bringing an enemy under subjugation. ୧୨ । ବେଧନ; ଫୋଡ଼ିବା—12. Penetration; boring. ୧୩ । ଉନ୍ମେଷ; ପ୍ରକାଶ—13. Opening up. ୧୪ । ରେଚନ; ଉଦର ଭଙ୍ଗ; ପତଳା ଝାଡ଼ା ହେବା—14. Purging; looseness of the bowels; diarrhœa. ୧୫ । ଅନ୍ୟୋନ୍ୟାଭାବ—15. Want of mutuality or reciprocity. ୧୬ । ମର୍ମ; ଭିତର କଥା; ରହସ୍ୟ; ଗୁପ୍ତକଥା—16. Secret; the key to a matter. ୧୭ । ପ୍ରକାର—17. Kind; manner. (ଯଥା ଜନ୍ତୁଭେଦ =ଏକପ୍ରକାର ଜନ୍ତୁ ।) ଦେ. ବି—୧ । ସମ୍ପର୍କ—1. Connection. [ଉ—ଏଣେ ତାହାର ନାହିଁ ଭେଦ, ଶୁଣ କହିବା ତତ୍ତ୍ୱ ବୋଧ । ଜଗନ୍ନାଥ. ଭାଗବତ ।]

**ଭେଦକ**—ସ. ବିଣ—(ଭିଦ୍ ଧାତୁ+କର୍ତ୍ତୃ. ଅକ)—୧ । ପୃଥକ୍କାରକ-
Bhedaka 1. Separating. ୨ । ବିଦାରଣକାରୀ—
(ଭେଦକାରକ—ଅନ୍ୟରୂପ) 2. Piercing. ୩ । ବିଚ୍ଛେଦ
(ଭେଦିକା—ସ୍ତ୍ରୀ) କାରକ—3. Causing separation. ୪ ।
ବିରେଚକ—4. Cathartic; purgative. ୫ ।
ବୈଶିଷ୍ଟ୍ୟଭାବବ୍ୟଞ୍ଜକ—5. Distinctive; characteristic.

**ଭେଦ କରିବା**—ଦେ. କ୍ରି—୧ । ବିଦାରଣ କରିବା; ଚିରିବା—
Bheda karibā 1. To pierce; to split up.
୨ । ଫୋଡ଼ିବା—2. To penetrate; to bore.
୩ । ପୃଥକ୍ କରିବା—3. To separate. ୪ । ଦୁଇ ଜଣଙ୍କ ମଧ୍ୟରେ କଳି ବା ମନୋମାଳିନ୍ୟ ଜନ୍ମାଇବା—4. To sow seeds of dissension between
ভেদকরা; भेदकरना two persons

**ଭେଦ କାଢ଼ିବା**—ଦେ. କ୍ରି—୧ । ରହସ୍ୟ ଉଦ୍‌ଘାଟନ କରିବା—
Bheda kaṛhibā 1. To find out or unravel the
ভেদ বাহির করা भेद निकालना secret of a matter.
(ଭେଦ ବାହାର କରିବା—ଅନ୍ୟରୂପ) ୨ । ଗୁପ୍ତ ବିଷୟ ବାହାରେ ପ୍ରକାଶ କରିବା—2. To publish a secret.

**ଭେଦ ଜ୍ଞାନ**—ସ. ବି. ( ୬ଷ୍ଠୀ ତତ୍ )—୧ । ସ୍ୱାତନ୍ତ୍ର୍ୟ ବୋଧ—
Bheda jñāna 1. Realisation of distinction.
(ଭେଦ ବୁଦ୍ଧି—ଅନ୍ୟରୂପ) ୨ । ଅନାତ୍ମୀୟ ଭାବ—2. Unfriendly feeling. ୩ । ଏକତାର ଅଭାବ—3. Want of unity.

**ଭେଦ ଧାଡ଼ି**—ଦେ. ବି—୧ । ପ୍ରଭେଦ ସମୂହ—1. A number
Bheda dhāṛi of differences or distinctions. ୨ । ରହସ୍ୟମାନ—2. Secrets. [ଉ—ପ୍ରସନ୍ନ ହୋଇଣ ମୋତେ କହ ଭେଦ ଧାଡ଼ି । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।]

**ଭେଦନ**—ସ. ବି (ଭିଦ୍ ଧାତୁ+ଭାବ. ଅନ)—୧ । ଭେଦକରଣ—
Bhedana 1. Act of separating or dividing. ୨ । ବିଦାରଣ; ଚିରିବା—2 Piercing. ୩ । ବେଧନ; ଫୋଡ଼ିବା—3. Boring; piercing. ୪ । ଝାଡ଼ା କରାଇବା—4. Purging. ୫ । (+କର୍ତ୍ତୃ. ଅନ; ଯେ ଭୂମିକୁ ଭେଦେ) ଶୂକର—5. Hog. ୬ । (ଯାହା ତରଳ ଝାଡ଼ା କରାଏ)—ହେଙ୍ଗୁ—6. Asafœtida.

ଭେଦନାସ୍ତ—ସଂ. ବି—୧ । ଭେଦନ କରିବାର ଅସ୍ତ୍ର—1. A piercing or splitting up weapon or instrument. ୨ । ଫୋଡ଼ିବା ଅସ୍ତ୍ର—2. A boring instrument; a drill.
Bhedanāstra

ଭେଦନୀୟ—ସଂ. ବିଣ—(ଭିଦ୍ ଧାତୁ+କର୍ମ. ଅନୀୟ)—ଭେଦନ କରିବାର ଯୋଗ୍ୟ—Fit to be penetrated or pierced through.
Bhedaniya

ଭେଦ ପାଇବା—ଦେ. କ୍ରି—ଗୁପ୍ତ କଥା ବା ରହସ୍ୟ ଜାଣି ପାରିବା—To find out the secret.
Bheda pāiba
ভেদ পাওয়া भेद पाना

ଭେଦ ପ୍ରତ୍ୟୟ—ସଂ. ବି—ଈଶ୍ୱରଙ୍କ ଠାରୁ ଜଗତ୍ ପୃଥକ୍, ଏହି ଜ୍ଞାନ—The belief that the Creator is something distinct from the creation
Bheda pratyaya

ଭେଦ ବତା(ତେ)ଇବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ କୌଣସି ବିଷୟର ରହସ୍ୟ ଶିଖାଇ ଦେବା—1. To teach a person the secret of a matter. ୨ । ଭେଦ କାଢ଼ିବା (ଦେଖ)—2. Bheda Kārdhibā (See)
Bheda batā(te)iba
ভেদ বাতলান
भेद देना, भेद बता(तला)ना

ଭେଦ ବାନ୍ତି—ଦେ. ବି—୧ । ଝାଡ଼ା ଓ ବାନ୍ତି—1. Purging and vomiting. ୨ । ହଇଜା—2. Cholera.
Bheda bānti
ভেদ বমী दस्तकै

ଭେଦ ଭାଦ—ଦେ. ବି—(ନିରର୍ଥକ ସମଧ୍ୱନିଯୁକ୍ତ ସହଚର ଶବ୍ଦ)—ଭେଦ (ଦେଖ)—Bheda (See)
Bheda bhāda
ভেদটেদ (ভাদ) भेदभाद (ଭେଦ ଛେଦ—ଅନ୍ୟରୂପ)

ଭେଦ ଭାବ—ଦେ. ବି—୧ । ଭେଦ ଜ୍ଞାନ (ଦେଖ)—1. Bheda-jñana (See) ୨ । କପଟ—2. Hypocrisy.
Bheda bhāba
ভেদ ভাব भेदभाव

ଭେଦ ମଦନ—ଦେ. ବି—କଣ୍ଟା ମଏଣ (ହରେକୃଷ୍ଣ ଦ୍ରବ୍ୟଗୁଣ (ଦେଖ)
Bheda madana Kaṇṭā maeṇa (See)

ଭେଦରା—ପ୍ରାଦେ. (କଳାହାଣ୍ଡି) ବି—ବିଲାତି ବାଇଗଣ—Tomato.
Bhedarā

ଭେଦ ହେବା—ଦେ. କ୍ରି—ଫାଟି ଯିବା; ଛିଦ୍ର ଭଗ୍ନ ହେବା—To give way; to crack. [ଦ୍ରି—ସେ ଶୂନ୍ୟ ଅଣ୍ଡ ଭେଦ ହୋଇ, ତହୁଁ ଜନମ ଲଭିଗଲା ସରୋବାନ୍ତ. ପ୍ରେମଭକ୍ତି ବ୍ରହ୍ମ ଗୀତା ]। ଦେ. ବି—ଦେହ ଭେଦ ହେବା; ପ୍ରସୂତିର ସନ୍ତାନ ଜନନ ପୂର୍ବରୁ ପ୍ରଥମ ଜ ସ୍ରାବ ହେବା—Primary watery discharge from the uterus before delivery.
Bheda heba
ভেদ হওয়া
फट जाना

ଭେଦା—ଦେ. ବି—( ସଂ. ଭେଦ; ଯାହା ବାହାମାନଙ୍କ ଅବସ୍ଥାଭେଦରେ କମ ବେଶି ହୋଇ ଆଦାୟ ହୁଏ) ଗୁହାରି—Subscription; contribution. (ଯଥା—ଗ୍ରାମ ଭେଦା; ଠାକୁରାଣୀ ମାଜଣା ଭେଦା ଇତ୍ୟାଦ ।)
Bhedā
চাদা चंदा, बेहरी

ଭେଦା(ଦେ)ଇବା—ଦେ. କ୍ରି ( ସଂ. ଭେଦ )—୧ । ଭେଦିବା କ୍ରିୟାର ଣିଜନ୍ତ ରୂପ—1. The causative form of 'Bhedibā.' ୨ । ପ୍ରବେଶ କରାଇବା—2. To cause to penetrate. ୩ । ଉତ୍ତମ ରୂପେ ବୁଝାଇବା; ବ୍ୟାଖ୍ୟା କରିବା—3. To explain clearly. (ଦ୍ରି—ସ୍ୱଜାକୁ କହିଲେ ବୁଝାଇ, ଏ କଥା ଶାସ୍ତ୍ର ଭେଦାଇ । ଜଗନ୍ନାଥ. ଭାଗବତ ।) ୪ । ବତୁରାଇବା—4. To soak.
Bhedā(de)iba
ଫୁକାନ भेदवाना
বুঝান बुझाना
ভিজান भिगाना

ଭେଦା ଉଠା(ଠେ)ଇବା—ଦେ. କ୍ରି—ଗୁହାରି ଦ୍ୱାରା ଅର୍ଥ ସଂଗ୍ରହ କରିବା; ଗୁହାରି ଉଠାଇବା—(ଭେଦା କରିବା—ଅନ୍ୟରୂପ) To raise a subscription.
Bhedā uṭhā(ṭhe)ibā
চান্দা তোলা चंदा करना(लेना)

ଭେଦାନ୍ତ—ଗ୍ରା. ବି (ସଂ. ଭେଦ)—ମର୍ମ; ରହସ୍ୟ—Secret. (ଦ୍ରି—ବସ୍ତୁ ସ୍ଥୂଳେକ ହୋଇଲେ ଭେଦାନ୍ତ ଜଣା ନାହିଁ । ପ୍ରାଚୀ. ବ୍ରହ୍ମାକରୂପଣ ଗୀତା ।)
Bhedānta

ଭେଦା ପଞ୍ଚା—ଦେ.ବି (ସହଚର ଶବ୍ଦ; ସଂ. ଭେଦ+ପଞ୍ଚ)—ଗ୍ରାମ ଭେଦା; ଗ୍ରାମବାସୀମାନଙ୍କଠାରୁ ସାଧାରଣ କାର୍ଯ୍ୟ ପାଇଁ ସଂଗୃହୀତ ଗୁହାରି—Subscription raised from villagers for a common purpose.
Bhedā pāñchā
চাঁদাটাঁদা चँदाउँदा

ଭେଦା ବସା(ସେ)ଇବା—ଦେ. କ୍ରି—ବ୍ୟକ୍ତିବିଶେଷଙ୍କ ଉପରେ ତାଙ୍କ ଦେୟ ଗୁହାରିର ପରିମାଣ ନିର୍ଦ୍ଧାରଣ କରିବା (ଭେଦା କରିବା—ଅନ୍ୟରୂପ)—To assess the amount of public subscription of different persons (according to difference of rank or wealth).
Bhedā basā(se)ibā
চাঁদা বসান
चंदा बैठाना
(ଭେଦା ବସିବା—ବିଶେଷ୍ୟରୂପ)

ଭେଦାଭେଦ—ସଂ. ବି ( ସହଚର ଶବ୍ଦ )—୧ । ପ୍ରଭେଦ ଓ ଐକ୍ୟ—1. Difference and similarity. ୨ । ବିଚ୍ଛେଦ ଓ ମିଳନ—2. Separation and union. ୩ । ଅନାତ୍ମୀୟତା ଓ ଆତ୍ମୀୟତା—3. Separation and oneness. ଦେ ବି(ସଂ. ଭେଦ) ପ୍ରଭେଦ—Difference.
Bhedābheda
ভেদাভেদ भेदाभेद

ଭେଦାଭେଦ ଜ୍ଞାନ—ଦେ. ବି—୧ । ଏ ଜଣକ ଆତ୍ମୀୟ ଓ ସେ ଜଣକ ପର, ଏହିପରି ଜ୍ଞାନ—1. Discrimination; observing distinction between that which is one's own and which is not. ୨ । ଭଲର ଓ ମନ୍ଦର ବିଚାର—2 Discriminating between good and bad.
Bhedābheda jñāna
(ଭେଦାଭେଦ ବିଚାର—ଅନ୍ୟରୂପ)
ভেদাভেদ জ্ঞান
भेदाभेद विचार

ଭେଦିତ—ସଂ. ବିଣ ( ଭିଦ୍ ଧାତୁ ଣିଚ୍ ଭେଦ ଧାତୁ+କର୍ମ. ତ )—ଛିନ୍ନ—Pierced through.
Bheditā

ଭେଦିବା—ଦେ. କ୍ରି ( ସଂ. ଭିଦ୍ ଧାତୁ )—୧ । ଭେଦ କରିବା; ବିଦାରଣ କରିବା—1. To penetrate; to pierce (ଦ୍ରି—ଦ୍ରୁପଦଙ୍କ ଶରେ ଯାଇ ଭେଦ ହେବ, ଜାତ ହେଲେ ଶତ୍ରୁ ଅଂଶରେ ଦ୍ରୌପଦୀ । କୃଷ୍ଣସିଂହ. ମହାଭାରତ. ଆଦ ।) ୨ । (ଜଳ) ପଦାର୍ଥ ମଧ୍ୟରେ ପ୍ରବେଶ କରିବା—2. To soak or pass through ( said of water ).
Bhedibā
ভেদ
भेदना

( ଉ—ତହିଁ ଯେ ବ୍ରହ୍ମଶାଳା ଭାଗୀରଥୀ ନଦୀ, ରହିଣ ବହୁଛନ୍ତି ପାତାଳକୁ ଭେଦି । କୃଷ୍ଣସିଂହ. ମହାଭାରତ. ବନ । ) ୩ । କୌଣସି ବିଷୟର ରହସ୍ୟ ଭେଦ କରିବା—3. To pry into the secrets of a matter. ୪ । କୌଣସି ବିଷୟ ଉତ୍ତମରୂପେ ଜାଣିବା—4. To know a matter well; to be well conversant with a matter. ୫ । ମୋହିବା; ତରଳାଇବା—5. To charm; to melt ( one's heart ). ( ଉ—କାଳିନ୍ଦୀ ତଟେ ତୋ କୁମର; ହୃଦୟ ଭେଦିଲା ଆମ୍ଭର । ଜଗନ୍ନାଥ. ଭାଗବତ । )

ଭେଦି(ଦୁ)ର—ସଂ. ବି ( ଭିଦ୍ ଧାତୁ+କର୍ତ୍ତୃ ଇର; ଉର)—ଭିଦୁର; ବଜ୍ର
Bhedi(du)ra —Thunderbolt.

ଭେଦୀ—ସଂ. ବିଣ. ପୁଂ ( ଭିଦ୍ ଧାତୁ+ଇନ୍; ଭେଦିନ୍ ୧ମା. ୧ବ )—
Bhedī ଯାହା ଭେଦ କରେ; ବିଦାରକ—Piercing; (ଭେଦିନୀ—ସ୍ତ୍ରୀ) penetrating. [ ଦ୍ର—ଏହା ଅନ୍ୟ ଶବ୍ଦ ସହିତ ଯୁକ୍ତ ହୁଏ, ଯଥା—ମର୍ମଭେଦୀ, ହୃଦୟଭେଦୀ, ଲକ୍ଷ୍ୟଭେଦୀ ଇତ୍ୟାଦି । ] ଦେ. ବି—ଝାଡ଼ା ଔଷଧ—A purgative; a cathartic.

ଭେଦୁଆ—ଦେ. ବିଣ ( ସଂ. ଭେଦକ )—୧ । ଯେ କୌଣସି ବିଷୟର
Bheduā ଭେଦ ବା ରହସ୍ୟକୁ ଜାଣେ—1. Conversant with the secrets of a matter. ୨ । ଯେ
গুপ্তচর
भेदिया; भेदुआ
ଗୁପ୍ତ ବିଷୟ ଅନୁସନ୍ଧାନ କରିପାରେ—2. Detective; able to find out secrets. ବି—୧ । କୌଣସି ବିଷୟକୁ ଗୁପ୍ତ ଭାବରେ ଅନୁସନ୍ଧାନ କରିବା ପାଇଁ ନିଯୁକ୍ତ ଚର; ଗୁପ୍ତଚର—1. A spy ୨ । ମଧ୍ୟସ୍ଥ—2 A go-between.

ଭେଦୁଆ ପୁରା(ରେ)ଇବା—ଦେ. କ୍ରି—୧ । ଗୁପ୍ତଚର ଦ୍ୱାରା ଅନୁସନ୍ଧାନ
Bheduā purā(re)ibā କରାଇବା—1. To have an investigation made through a spy.
গুপ্তচর লাগান
भेदिया लगाना
୨ । କୌଣସି ବ୍ୟକ୍ତିର ଆଚରଣାଦି ପ୍ରତି ଗୁପ୍ତ ଭାବରେ ଦୃଷ୍ଟିଦେବା ପାଇଁ ଗୁପ୍ତଚର ନିଯୁକ୍ତ କରିବା—2. To employ a spy to watch the movements of a person.
[ଭେଦୁଆ ଲଗା(ଗେ)ଇବା—ଅନ୍ୟରୂପ]

ଭେଦୁର—ସଂ. ବି—(ଭିଦ. ଧାତୁ+କର୍ତ୍ତୃ. ଉର)—ଭିଦୁର; ବଜ୍ର—
Bhedura Thunder.

ଭେଦୋ—ପ୍ରାଦେ (ସମ୍ବଲପୁର) ବିଣ. (ତୁଳ. ହି. ଭଦା; ଭଦ୍ ଭଦ୍)—
Bhedo ମୋଟା; ପୃଥୁଳ; ସ୍ଥୂଳକାୟ—Fat; corpulent.

ଭେଦ୍ୟ—ସଂ. ବିଣ (ଭିଦ୍. ଧାତୁ+କର୍ମ. ଯ)—ଭେଦନୀୟ—
Bhedya Penetrable; fit to be pierced through.

ଭେନେ(ନୋ)ଇ—ପ୍ରାଦେ (ସମ୍ବଲପୁର) ବି—(ସଂ. ଭଗ୍ନୀପତି)—
Bhene(no)i ଭଗ୍ନୀପତି—One's sister's husband.

ଭେବଲ—ଦେ. ବିଣ (ସଂ. ବିହ୍ୱଳ)—୧ । ବିହ୍ୱଳ; ବିଭୋର—
Bhebala 1. Bewildered; enchanted. ୨ । ଯେ
বিহ্বল
विह्वल भोला भोला
ସହଜରେ କଥାଗୁଡ଼ାକ ପାସୋରି ପକାଏ—2. Prone to forget everything easily
(ଭେବଲା, ଭେବଲୀ—ସ୍ତ୍ରୀ)

ଭେରୁଲିହା—ପ୍ରାଦେ. (ସମ୍ବଲପୁର) ବିଣ—୧ । ଅଲୁଳା; ସମାଜ
Bher-lihā ପରିତ୍ୟାଗ କରିଥିବା (ବ୍ୟକ୍ତି)—1. Out-casted. ୨ । ବିଟାଳିଆ—2. Taking food cooked by others irrespective of caste-consideration.

ଭେର(ରେ)ଣ୍ଡା—ଦେ. ବି ( ସଂ. ଏରଣ୍ଡ )—୧ । ଗବଗଛ—1.
Bhera(re)ṇḍā The castor oil plant. ୨ । ( ସଂ.
ভেরণ্ড ভেরণ্ডা
रंडी; रेंडी
गीदड़
ଫେରୁ ) ଅଣ୍ଡିରା ବିଲୁଆ—2. A he-jackal. ୩ । ହିଂସ୍ରଜନ୍ତୁ—3. Ferocious animal. ପ୍ରାଦେ ( ଗଡ଼ଜାତ ) ବି—ରାତିରେ ବିକଟ ସ୍ୱର କରିବା ଅମଙ୍ଗଳସୂଚକ ପକ୍ଷିବିଶେଷ—A bird whose screeching at night forebodes evil

ଭେରା—ଦେ. ବି—୧ । ଭେଡ଼ା; ଘେରା—1. Circuit. ୨ । ଅଳ୍ପଦୂର—2. Some distance.
Bherā
চক্কর
चक्कर, फेरा
୩ । ପାହୁଣ୍ଡ—3. Step.

ଭେରାଏ—ଦେ. କ୍ରି. ବିଣ—୧ । ଘେରାଏ—1. Making one
Bherāe circuit. ୨ । ଅରାଏ; ଭଡ଼ାଏ; ଅଳ୍ପଦୂର—
একচক্কর
एकचक्कर; एकफेरा
2. For a distance.

ଭେରି(ରୀ)—ସଂ. ବି (ଭୀ ଧାତୁ=ଭୀତ ହେବା+ର; +ଈ)—ରଣ
Bheri(rī) ଢକ୍କା; ପଟହ—War drum. ଦେ. ବି—
তুরী
तुरही, करनाल
୧ । ତୁରୀ; ବଡ଼ କାହାଳୀ—1. A long trumpet. [ଉ—ଭୂପତି ଇଙ୍ଗିତେ ଭେରିରବେ ବାଜିଲା ସଙ୍କେତ ଭେରୀ । ରାଧାନାଥ. ଉଷା । ] [ଦ୍ର—ଭେରୀର ସଂସ୍କୃତ ଅର୍ଥ ଠାରୁ ଓଡ଼ିଆ ଭାଷାରେ ବ୍ୟବହୃତ ଅର୍ଥ (ତୁରୀ) ପୃଥକ୍ ଅଟେ । ହିନ୍ଦିରେ ଓ ବଙ୍ଗଳାରେ ଏହି ଶବ୍ଦ ସଂସ୍କୃତ ଭାଷାଗତ ଅର୍ଥ(ଢକ୍କା)ରେ ବ୍ୟବହୃତ ହୁଏ । ] ୨ । ଭେରୁ (ଦେଖ) 2. Bheru (See).

ଭେରୁ—ଦେ. ବି (ସଂ ବିଲ୍ଲ)—ନିମ୍ବାଦି ବର୍ଗର ମଧ୍ୟମାକୃତି ବନ୍ୟ ତରୁ—
Bheru The Indian satin wood; Chloroxylon
ভেরু
धोउरा, भिररा. गिरिया, भेरा
ମ. ହଲଦା, ଭେରଆ
ତା. ମୁଡ଼ୁଭାଡ଼, ବରୁସ
ତେ. ବିଲ୍ଲୁ, ବିଲ୍ଲୁଡ଼ା, ବିଲ୍ଲୁଲୁରା
ବିଲ୍ଲା, ଖିଲ୍ଲୁଚେଟ୍ଟୁ ।
ଗଞ୍ଜାମ. ପୋଖଡ଼ିଆଲି
Swietenia. [ଦ୍ର—ଏହି ଗଛ ଓଡ଼ିଶା, ଛୋଟନାଗପୁର ଓ ମଧ୍ୟଭାରତର ନାନାସ୍ଥ ଅରଣ୍ୟରେ ଜନ୍ମେ । ଏହା ନିମ୍ବାଦିବର୍ଗର ମଧ୍ୟମାକୃତି ଆରଣ୍ୟ ତରୁ । ଏହାର କାଠ ପୀତାଭ, ସୁଗନ୍ଧ, ଘନ ଓ ଚିକ୍କଣ । ଏହାର ଛେଲି ବାଟି ଧବଳ କୁଷ୍ଠରେ ଲଗାଇଲେ ଉପକାର ହୁଏ । ଏ କାଠ ଅତ୍ୟନ୍ତ ଭାର ସହିବାରୁ ଏଥିରେ ଲୋକେ ଅଖ କରନ୍ତି । ଏ କାଠ ଲୁହିଲେ ଅତ୍ୟନ୍ତ ଚିକ୍କଣ ହୁଏ; କିନ୍ତୁ ବଡ଼ କାଠ ପ୍ରାୟ ଫାଟିଯାଏ (ଯୋଗେଶ୍ଚନ୍ଦ୍ର); ଏହି କାଠରେ ଘଣାର ଭଲ ମୁଷଳ ହୁଏ । ଏ କାଠକୁ ଜଳାଇଲେ ଏଥିରୁ ଖୁବ୍ ଧୂଆଁ ବାହାରେ (ହି. ଶ) । ] ପ୍ରାଦେ (ବାଲେଶ୍ୱର) ବି—ଚଟକା-ତଳିଆ ଡଙ୍ଗା—Flat-bottomed boat.

ଭେରୁଆଁ—ପ୍ରାଦେ (ସମ୍ବଲପୁର) ବି—ଭେରୁ (ଦେଖ)
Bheruāñ Bheru (See).

ଭେରୁଣ୍ଡ—ସଂ. ବିଣ (ଭୀ. ଭ୍ରୀ. ଧାତୁ)—ଭୟାନକ—Fierce. ବି—
Bheruṇḍa ଗର୍ଭଧାରଣ—Pregnancy; conception.

ଭେରୁଣ୍ଡା—ସଂ. ବି. ସ୍ତ୍ରୀ—୧। ଦେବୀବିଶେଷ—1. Name of a
Bheruṇḍā Goddess. ୨। ଯକ୍ଷିଣୀ ବିଶେଷ—2. Name of a female of the 'Jaksha' class of aereal beings.

ଭେରେଷା—ଦେ. ବିଣ [ସଂ. ଭ୍ରେଷ=ଅନ୍ୟାୟ, ପାପ ବା କୁପଥ ଗମନ
Bhereshā (ଆପ୍ଟେ) ବା ସଂ. ହ୍ରେଷା=ଅଶ୍ୱର ରାବ; ଯେ ଅଶ୍ୱର
(ଭେରେଷୀ—ସ୍ତ୍ରୀ) ରାବପରି ହସେ]—ଭଣ୍ଡ; ନିର୍ଲଜ୍ଜ—Shame-
ভাঁড় less; laughing immoderately. [ବି—ଯେଉଁ
भाँड लୋକ ନିର୍ଲଜ୍ଜ ଭାବରେ ବଡ଼ ପାଟି କରି ହସେ ଓ କଥା କହେ
(ଭେର୍ଷା—ଅନ୍ୟରୂପ) ତାହାକୁ ଭେରେଷା କୁହାଯାଏ।]

ଭେରେଷାଗିରି—ଦେ ବି—ନିର୍ଲଜ୍ଜତା—Shamelessness.
Bhereshāgiri ভাঁড়পনা भाँडगिरि
(ଭେରେଷାପଣ[ପଣିଆ]—ଅନ୍ୟରୂପ)

ଭେଳ—ସଂ. ବି (ଭୀ, ଧାତୁ+ଅଧିକରଣ• ର)—୧। ଭେଳା (ଦେଖ)
Bheḷa 1. Bheḷa (see) ୨। (+କର୍ତ୍ତୃ. ର) ମୁନି ବିଶେଷ—2. Name of a sage. ବିଣ—୧। (+କର୍ତ୍ତୃ. ର) ଭୀରୁ (ହି ଘ; ମେଦିନୀ)—1. Timid; coward ୨। ଭୟଭୀତ-2. Frightened; alarmed. ୩। କ୍ଷିପ୍ର; ଚଞ୍ଚଳ—3. Quick; agile; hasty (Apte). ୪। ମୂର୍ଖ; ଅଜ୍ଞ (ମେଦିନୀ)—4. Illiterate; ignorant. ୫। ଓଲୁ; ନିର୍ବୋଧ—5. Foolish; stupid. ୬। ଅସ୍ଥିର; ଅବ୍ୟବସ୍ଥିତ—6. Unsteady; fickle [Apte]. ୭। ଡେଙ୍ଗା—7. Tall [Apte]

ଭେଲ—ଦେ. ବିଣ [ସଂ. ମିଲ୍, ଧାତୁ; ତୁଳ. ତା, ଭେଲରୂପା]—
Bhela ୧। ନକଲି; କୃତ୍ରିମ—1. Artificial; counter-
ভেল feit; imitated. ୨। ଅବିଶୁଦ୍ଧ—2. Impure. ୩।
गोबराहा, खराप ମିଶ୍ରିତ—3. Adulterated; alloyed.
[ଉ—ଭଲ ସୁନା ବୋଲି ଭବେ ଯେ ବିଲସେ, ଭେଲ ସୁନା ତତ୍ତ୍ୱଗୁପ୍ତର ନିକଷେ। ରାଧାନାଥ. ଦରବାର।] ବି—
পান ୧। ସୁନା ଆଦିରେ ମିଶିବା ନିକୃଷ୍ଟ ଧାତୁ—1. Alloy;
मिलौनी, खाद base metals added to gold [ଉ—ଭଲ ସୁନା ବୋଲି ଭବେ ଯେ ବିଲସେ, ଭେଲ ସିନା ତତ୍ତ୍ୱଗୁପ୍ତର ନିକଷେ। ରାଧାନାଥ. ଦରବାର।] ୨। କୃତ୍ରିମ ପଦାର୍ଥ—2. Artificial thing; a counterfeit. ୩। ମନ୍ଦ
মেকী ଦ୍ରବ୍ୟ ମିଶ୍ରିତ ପଦାର୍ଥ—3. Adulterated article.
जालीरूपया ୪। ଜାଲ୍ ଟଙ୍କା—4. Counterfeit coin.

ଭେଳକ—ସଂ. ବି (ଭେଳ+କ)—ଭେଳା (ଦେଖ)—Bheḷā (See).
Bheḷaka [ଉ—ବଢ଼ିଲା ନଦୀ ଭେଳକରେ ମେଳକ ହୋଇଣ ନିସ୍ତରିଲ ଯଥା। ଉପେ. ବୈଦେହୀଶବିଳାସ।]

ଭେଳ(ଳି,ଳେ)କା—ଦେ• ବିଣ. [ସଂ ଭେଳ=କ୍ଷିପ୍ର(Apte); ଅଜ୍ଞ, ଭୀରୁ
Bheḷa(ḷi,ḷe)kā (ମେଦିନୀ)]୧। ଓଲୁ—1. Stupid. ୨। ଭୟଭୀତ; ଚକିତ—2. Frightened ୩। ହତବୁଦ୍ଧି; କିଂ-
ভেলকী କର୍ତ୍ତବ୍ୟବିମୂଢ଼—3. Bewildered; puzzled
भैचक, हक्कावक्का, भयभीत (ଉ-ନଳିକ ଦାଗି ଦେବା ବେଳେ ନୃପଙ୍କ
(ଭେଳ୍‌କା, ଭେଳ୍‌କି—ଅନ୍ୟରୂପ) ସବୁଙ୍କୁ ଲାଗଇ ଭେଳକି। ବଳନାଥ.
ভেলকী ସମସ୍ତରଙ୍ଗ) ୪। ମୋହିତ—4. Enchanted ବି—
घबडाहट ୧। କିଂକର୍ତ୍ତବ୍ୟବିମୂଢ଼ତା—1. Bewilderment.
नजरबन्दी ୨। (ସଂ. ଭେଳ=ନିର୍ବୋଧ, ଯାହା ଦର୍ଶକଙ୍କୁ ନିର୍ବୋଧ ପରି କରିଦିଏ)—କୁହୁକ—2. Jugglery; magical trick. (ଉ-ଦେଖିଲେ ମନେ ଲାଗେ ମଦନ ଭେଳକି, କୃଷ୍ଣସିଂହ. ମହାଭାରତ ଆଦି।) ୩। ଝୋଲା; ସଂଜ୍ଞାଲୋପ—3. Loss of one's senses.

ଭେଲକା—ପ୍ରାଦେ (ଯାଜପୁର) ବିଣ—ଭେଳକା (ଦେଖ)
Bhelakā Bheḷakā (See)

ଭେଳକା କରିବା—ଦେ. କ୍ରି—୧। କିଂକର୍ତ୍ତବ୍ୟବିମୂଢ଼ କରିବା; ହତ-
Bheḷakā karibā ବୁଦ୍ଧି କରିବା—1. To bewilder.
[ଭେଳକା ଲଗା(ଗେ)ଇବା—ଅନ୍ୟରୂପ] ୨। ମନ୍ତ୍ରମୁଗ୍ଧ କରିବା—
ভেলকী লাগান 2. To enchant. ୩। ଭୟଭୀତ କରିଦେବା—
भयभीत करना 3. To frighten a person out of his wits.

ଭେଳକା ମାରିଯିବା—ଦେ• ବି—କିଂକର୍ତ୍ତବ୍ୟବିମୂଢ଼ ହେବା; ଭୟଭୀତ
Bheḷakā mārijibā ହେବା—Being bewildered or alarmed.

ଭେଳକା(କି) ହେବା—ଦେ. କ୍ରି—୧। ମୁଗ୍ଧ ହେବା; ମୋହିତ ହେବା—
Bheḷakā(ki) hebā 1. To be enchanted.
ভোল(বিহ্বল) হওয়া ୨। ଧନ୍ଦିକ ହେବା; ହତବୁଦ୍ଧି ହେବା—
विह्वलहोना; घबडाना 2. To be bewildered or puzzled.

ଭେଳକି ଦେଖା(ଖେ)ଇବା—ଦେ. କ୍ରି—କୁହୁକ ଦେଖାଇବା—
Bheḷaki dekhā(khe)ibā To exhibit jugglery.
ভেলকী দেখান नजरबन्द करना

ଭେଳକି ବାଜି—ଦେ. ବି—ଭୋଜ ବାଜି ( ଦେଖ )—
Bheḷaki bāji Bhoja bāji ( See )
ভেলকী বাজী नजरबन्दि; छलाबल

ଭେଲ ମିଶା(ଶେ)ଇବା—ଦେ. କ୍ରି—ବିଶୁଦ୍ଧ ପଦାର୍ଥରେ ନିକୃଷ୍ଟ ପଦାର୍ଥ
Bhela miśā(śe)ibā ମିଶାଇବା—To adulterate base
ভেল মিশান things with superior ones.
खाद मिलाना

ଭେଳା—ଦେ. ବି ( ସଂ. ଭେଳ; ଭେଳକ )—୧। ପ୍ଳବ; ଉଡୁପ; ନଦୀ-
Bheḷā ଆଦି ପାରି ହେବା ନିମନ୍ତେ ଭାସମାନ କାଷ୍ଠାଦି—
ভেলা 1. A raft; a float. ( ଉ—ଧରି ହରି-ପାଦଦ୍ୱନ୍ଦ୍ୱ
बेडा; भेरा ଭେଳା। ମଧୁସୂଦନ. ସଙ୍ଗୀତମାଳା। ) ୨।
ସ୍ନାନାର୍ଥୀଙ୍କୁ ନଥିବା ପାଇଁ କାଠ ବାନ୍ଧିଥିବାର ପଟାଳି

—2. A number of timbers or bamboos tied into a raft for the purpose of being carried to a distance on the water. ୩ । ନଦୀଆଦି ପାର ହେବାର ନୌକା—3. Boat; means of crossing a river. ( ଉ—ମୋ ଜାନୁଭେଲା ଧର କାମନଦୀ ପାର । କୃଷ୍ଣସିଂହ. ମହାଭାରତ ବନ ।) ୪ । ଗୋଷ୍ଠ; ସମୂହ—4. Cluster; multitude. ୫ । ( ଲକ୍ଷଣାର୍ଥ ) ଜୀବିକା; ବଞ୍ଚିବାର ଉପାୟ—5. ( figurative ) Means of livelihood. ୬ । ଆଶ୍ରୟସ୍ଥଳ—6. Refuge.

**ଭେଲ୍ଲ**—ପ୍ରାଦେ ( ଗଡ଼ଜାତ, ସମ୍ବଲପୁର ) ବି—ପିଣ୍ଡୁଳା; ଗୁଡ଼ଆଦିର
Bhelā ମେଣ୍ଡା—Lump; clod ( of molasses ). ବିଣ —୧ । ସରୁ—1. Fine. ୨ । ଅସୁନ୍ଦର—2. Ugly. ( ଉ—ମୁହଁଟି ସୁନ୍ଦର ଦେହଟି ଭେଲ୍ଲ । ଡଗ । ) ୩ । ଚେପ୍ଟା—3. Flat. ଗ୍ରା ( ଇତର ) ଅ—ଭଲ୍ଲ (ଦେଖ) Bhalā ( See )

**ଭେଲା(ଲେ)ଇବା**—ଦେ, କ୍ରି ( ସଂ. ମିଳନ; ମେଳନ )—୧ ।
Bhelā(le)ibā ବହୁଲୋକଙ୍କୁ ମେଳାଇବା; ବହୁଲୋକଙ୍କୁ
জড়করা ଏକତ୍ର କରାଇବା—1. To cause many
ईकट्ठा करना people to assemble; to collect
মাতান many people. ୨ । ବହୁଲୋକଙ୍କୁ କୌଣସି
मनाना ଗୋଟିଏ କାର୍ଯ୍ୟପାଇଁ ମତାଇବା—2. To cause people to form a company or association to do a work.

**ଭେଲା ବାନ୍ଧିବା**—ଦେ. କ୍ରି—୧ । ନଦୀଆଦି ପାରହେବା ପାଇଁ ଭେଲା
Bhelā bāndhibā ତିଆର କରିବା—1. To make a
ভেলাবাঁধা raft. ୨ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ
बेड़ा बाँधना ସାଧନାର୍ଥ କୌଣସି ଉପାୟ ଅବଲମ୍ବନ କରିବା—2. ( figurative ) To pursue or have recourse to a means to accomplish an object. ( ଉ—ହରି ନାମକୁ ବାନ୍ଧିଥିବୁ ଭେଲା । ଡଗ । )

**ଭେଲା ବୁଡ଼ିବା**—ଦେ. କ୍ରି ( ଲକ୍ଷଣାର୍ଥ ) ସର୍ବନାଶ ଘଟିବା—
Bhelā burdibā (figurative) Being overtaken
ভেলা ডুবা by ruin. ( ଉ—ନଉକା ନାୟିକା ହେଲେ
बेड़ा डूबना ବୁଡ଼ିବ ଭେଲା । ଭଞ୍ଜ. ବୈଦେହୀଶବିଳାସ । )
(ଭେଲା ବୁଡ଼ିଯିବା—ଅନ୍ୟରୂପ)

**ଭେଲା ଭେଲା**—ଦେ. କ୍ରି: ବିଣ—୧ । ପଞ୍ଝା ପଞ୍ଝା ହୋଇ—1. In
Bhelā bhelā groups; in shoals. ( ଉ—ଗୃଳ
দল দল ଯାଗ କୁଣ୍ଡେ ପଡ଼ିବା ଭେଲା ଭେଲା । କୃଷ୍ଣସିଂହ.
झुंडकेझुंड, दलकेदल ମହାଭାରତ. ଅଦି । ) ୨ । ପଲ ପଲ; ବହୁ ସଂଖ୍ୟକ—2. In herds. ( ଯଥା—ଡଲମାଲ ନଈରେ କୁମ୍ଭୀର ଗୁଡ଼ାକ ଭେଲା ଭେଲା ହେଉଥାଆନ୍ତି ।)

**ଭେଲି**—ପ୍ରାଦେ ( ଯାଜପୁର ) ବି—ବେଲି ( ଦେଖ )—Beli (See)
Bheli ଦେ. ବି—ଭେଲିଗୁଡ଼ ( ଦେଖ )—Beligurda ( See )

**ଭେଲିଆ**—ପ୍ରାଦେ ( ଯାଜପୁର ) ବିଣ. ପୁଂ—ବେଲିଆ ( ଦେଖ )
Beliā Beliā (See)

**ଭେଳିଆ**—ପ୍ରାଦେ ( ଗଞ୍ଜାମ ) ବି—ସାମର୍ଥ୍ୟ—
Bheliā Strength.

**ଭେଲି ଗୁଡ଼**—ଦେ. ବି—ଏକପ୍ରକାର କାଟୁଆ ଗୁଡ଼; ପିଣ୍ଡୀକୃତ କରି-
Bheli gurda ଯାଇଥିବା କାଠୁଆ ଗୁଡ଼—Solid molasses.
(ଭେଲେଇଗୁଡ଼, ଭେଲୋଇଗୁଡ଼—ଅନ୍ୟରୂପ)
পাটালীগুড় भेलीगुड

**ଭେଲିଙ୍ଗି**—ପ୍ରାଦେ ( ଯାଜପୁର ) ବି—ବେଲି (ଦେଖ)—Beli (See)
Bheliṅgi ( ଯଥା—ସେ ଭେଲିଙ୍ଗି ବାହାର କରୁଛି । ) ଦେ. ବି—ବେଲିଙ୍ଗି (ଦେଖ)—Beliṅgi (See)

**ଭେଲୁ**—ପ୍ରାଦେ (ଗଞ୍ଜାମ) ବି (ମୂଳ ସଂ. ଭେଳକ)—ଉପାୟ—
Bhelu Means; resources.

**ଭେଲୁଆଁ**—ପ୍ରାଦେ (ସମ୍ବଲପୁର) ବି (ସଂ. ଭଲ୍ଲାତକ; ମୂଳ ହି. ଭିଲାୱାଁ।)
Bheluāṅ —ଭଲିଆ—Marking nut.

**ଭେଲୁଆ ବାଇଗଣ**—ଦେ. ବି—ଅତି ବଡ଼ ପାଲୁଆ ବାଇଗଣ—Big
Bheluā bāigaṇa brinjals grown on silted
[ଭେଲୋ(ଲେ)ଇ ବାଇଗଣ—ଅନ୍ୟରୂପ] lands.
বড়বেগুন, পালবেগুন बड़ाबैगन

**ଭେଲୁ(ଲ୍ୟୁ)ପେ ଏ ବଲ୍ (ଇତ୍ୟାଦି)**—ବୈଦେ. ବି ( ଇଂ. ଭାଲ୍ୟୁ-
Bhelu(lyu)pe-e bal (etc) ପେଏବ୍ଲ୍ )—ଭି. ପି. ଇତ୍ୟାଦି ( ଦେଖ )—Bhi. pi. etc (See)

**ଭେଲେ(ଲୋ)ଇ ଆମ୍ବ**—ଦେ.ବି—ଏକପ୍ରକାର ବଡ଼ଆମ୍ବ—A species
Bhele(lo)i āmba of mango, generally big in size.
বড আম্ব [ଦ୍ର—ବେଲ ପତ୍ରକୁ ଛେଚିଲେ ଯେଉଁ ଗନ୍ଧ ହୁଏ, ଏହି
बड़ा आम ଜାତିୟ ଆମ୍ବର ସେହିପରି ଗନ୍ଧ ହେବାରୁ ଉକ୍ତ ନାମ ହୋଇଥାଇଅଛି ।]

**ଭେଲେରି**—ଦେ. ବି—ଖୋରଧାର ଦକ୍ଷିଣ ପଶ୍ଚିମ ସୀମାରେ ଅବସ୍ଥିତ
Bheleri ପର୍ବତ; ଭଲେରି ପାହାଡ଼—A hill in the south-west of Khurda.

**ଭେଶ୍ରିଆ**—ପ୍ରାଦେ. ( ସମ୍ବଲ ପୁର ) ବିଣ. ପୁଂ (ସଂ. ଭ୍ରେଷ=ଅନ୍ୟାୟ;
Bheś-riā ଦୋଷ; କୁପଥ ଗମନ; (ଅପ୍ରେ )—୧ । ଅଶ୍ଳୀଳ—
(ଭେଶ୍ରି—ସ୍ତ୍ରୀ) 1. Vulgar; indecent. ୨ । ନିର୍ଲଜ୍ଜ—2. Shameless.

**ଭେଶ୍ରିଆ କଥା**—ପ୍ରାଦେ. ( ସମ୍ବଲପୁର ) ବି—୧ । ଅଶ୍ଳୀଳ ବାକ୍ୟ—
Bheś-riā kathā 1. Vulgar or coarse or indecent words. ୨ । ଅପଭାଷା—2. Vulgar language.

**ଭେଶ**—ଦେ. ବି. (ସଂ, ବେଶ)—୧ । ବେଶ; ପୋଷାକ—1. Dress.
Bheśa ୨ । ସାଜସଜ୍ଜା—2 Toilette. ୩ । ଚେହେରା—
বেশ भेश 3. Appearance.

ଭେଶ(ଶୋ)ଡ଼ା(ଢ଼ା) —ଦେ. ବଣ. ପୁଂ ( ସଂ ଭୂଷ୍ଣ )—୧ । କଦର୍ଯ୍ୟ; Bhesa(se))rdā(rā) କୁତ୍ସିତ—1. Ugly. ୨ । ମଳଥ— [ଭେଶ(ଶୋ)ଡ଼ୀ(ଢ଼ୀ)—ସ୍ତ୍ରୀ] 2. Slovenly; slatternly. ভেসরা ୩ । ବେହେଲା; ନିର୍ଲଜ୍ଜ; ନଲଠା—3. Shameless. भद्दा, फुहर ୪ । ଅଶ୍ଳୀଳ—4. Indecent.

ଭେଶ ବଦଳା(ଳେ)ଇବା—ଦେ. କ୍ରି—ନିଜର ରୂପ ପରିବର୍ତ୍ତନ Bhesa badalā(le)ibā କରିବା—To assume a disguise; to put on a mask; to change বেশ বদলান one's dress. भेश बदलाना

ଭେଶର—ପ୍ରାଦେ. ( ସମ୍ବଲପୁର ) ବଣ. ( ସଂ. ଭୂଷ୍ଣ )— Bhesar ନିର୍ଲଜ୍ଜ; ଅଶ୍ଳୀଳ; ଲଜ୍ଜାହୀନ—Shameless; impudent; vulgar.

ଭେଶର—ପ୍ରାଦେ. (ଗଞ୍ଜାମ) ବି—ବେଶର ଗୁଣା—A kind of Bhesara ornament for nose. (ଉ—ମଣ୍ଡିଲ କନ୍ଦର୍ପ ନିଜ କେଉଁର, କି ସୁନ୍ଦର ନାସାପୁଟ ଭେଶର । ଉଞ୍ଜ. ଲାବଣ୍ୟବତୀ ।)

ଭେଷ (ଧାତୁ)—ସ—୧ । ଭୟ କରିବା—1. To fear; to dread Bhesh (root) (Apte). ୨ । ଭୟ ପାଇବା; ଭୀତ ହେବା— 2. To be frightened.

ଭେଷ—ସଂ. ବି (ଭେଷ୍ ଧାତୁ+ଭାବ. ଅ)—ଭୟ— Bhesha Dread.

ଭେଷଜ—ସଂ. ବି (ଭେଷ=ଭୟ; ରୋଗ ଭୟ+ଜି ଧାତୁ=ଜୟ କରିବା Bheshaja +ଅ; ଯାହା ରୋଗ ଭୟକୁ ଜୟ କରେ )— ୧ । ଔଷଧ—1. Medicine. ୨ । ରୋଗରୁ ମନୁଷ୍ୟକୁ ଆରୋଗ୍ୟ କରିବା ପାଇଁ ନିଯୁକ୍ତ ମନ୍ତ୍ର ଯନ୍ତ୍ର—2. A spell against a disease (Apte). ୩ । ଏକ ପ୍ରକାର ସଉଁପ—3. A kind of fennel (Apte).

ଭେଷଜାଗାର—ସଂ. ବି (୬ଷ୍ଠୀ ତତ୍)—ଔଷଧ ବଣିଥିବା ଦୋକାନ; Bheshajāgāra ଯେଉଁ ଦୋକାନରେ ଔଷଧ ବିକି ହୁଏ— An apothecary's shop. ସଂ. ବଣ—ଆରୋଗ୍ୟକାରୀ —Curative (Apte).

ଭେଷଜାଙ୍ଗ—ସଂ. ବି ( ୬ଷ୍ଠୀ ତତ୍; ଭେଷଜ+ଅଙ୍ଗ )—ଔଷଧର Bheshajānga ଅନୁପାନ—Anything taken as a vehicle with a medicine.

ଭେଷଜ୍ୟ—ସଂ. ବଣ (ଭେଷଜ+ଯ)—ଆରୋଗ୍ୟକାରୀ— Bheshajya Curative (Apte).

ଭେସ୍ତା—ପ୍ରାଦେ. (ବାଲେଶ୍ୱର) ବି, ( ଭୁଲ. ବ. ଭେସ୍ତା, ସ. ବ୍ୟସ୍ତ)— Bhestā ତାସ ବାଣ୍ଟିବା ବେଳେ କୌଣସି କାରଣବଶତଃ ତାସ କମ ହୋଇଯିବା କିମ୍ବା ଜଣକର ଅଂଶ ଅନ୍ୟର ଭାଗରେ ପଡ଼ିବା—The missing of one's card or confusion of cards at the time of distribution after shuffling.

ଭେସ୍ତା କରିବା—ପ୍ରାଦେ. (ବାଲେଶ୍ୱର) କ୍ରି. (ଭୁଲ. ବ. ଭେସ୍ତା କରା)— Bhestā karibā ତାସକୁ ଗୋଳାଇ ଦେବା—To shuffle cards.

ଭେସ୍ତା ହେବା—ପ୍ରାଦେ. (ବାଲେଶ୍ୱର) କ୍ରି (ଭୁଲ ବ. ଭେସ୍ତା ହଓୟା)— Bhestā hebā (ତାସ) ଗୋଳମାଳ ହୋଇଯିବା—To get confused (said of playing cards).

ଭୈଁଷା (ଇତ୍ୟାଦ) —ଦେ. ବି ଓ ବଣ—ଭଇଁଷା ଇତ୍ୟାଦ ( ଦେଖ ) Bhaiñshā (etc) Bhaiñshā etc. (See)

ଭୈକ୍ଷ(କ୍ଷ୍ୟ)—ସଂ. ବି ( ଭିକ୍ଷା+ସ୍ୱାର୍ଥେ ବା ସମୂହାର୍ଥେ. ଅ )— Bhaiksha(kshya) ୧ । ଭିକ୍ଷାଲବ୍ଧ ବସ୍ତୁସମୂହ—1. Things got by begging; alms. ୨ । ଭିକ୍ଷାବୃତ୍ତି— 2. Mendicancy (Apte). ସଂ. ବଣ. ପୁଂ— ଭିକ୍ଷାଜୀବୀ—Living on alms.

ଭୈକ୍ଷ ଚର୍ଯ୍ୟ(ର୍ଯ୍ୟା)—ସଂ. ବି (ଭୈକ୍ଷ+ଚର୍ ଧାତୁ+ଭାବ. ଯ;+ଆ)— Bhaiksha charjya(jyā) ୧ । ଭିକ୍ଷାବୃତ୍ତି ଅବଲମ୍ବନ— 1. Living by begging; taking to alms; beggary. ୨ । ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲିବା—2 Going about from door to door begging alms (Apte).
(ଭୈକ୍ଷ ଚରଣ, ଭୈକ୍ଷ ଜୀବିକା, ଭୈକ୍ଷ ବୃତ୍ତି — ଅନ୍ୟରୂପ)

ଭୈକ୍ଷ ଜୀବୀ —ସଂ. ବଣ. ପୁଂ (ଭୈକ୍ଷ+ଜୀବ୍ ଧାତୁ+ଇନ୍; ୮ମା. ୧ବ)— Bhaiksha jibi ଭିକ୍ଷୁକ—Beggar. (ଭୈକ୍ଷ ଜୀବିନୀ—ସ୍ତ୍ରୀ)

ଭୈକ୍ଷାକୁଳ—ସଂ. ବି—ଯେଉଁଠାରେ ବହୁ ଲୋକଙ୍କୁ ଭିକ୍ଷା ଦିଆଯାଏ— Bhaikshākula Almonry; a place where alms are distributed.

ଭୈକ୍ଷୁକ—ସଂ. ବି (ଭିକ୍ଷୁକ+ସମୂହାର୍ଥେ. ଅ)—ଗୁଡ଼ାଏ ଭିକ୍ଷୁକ— Bhaikshuka A number of beggars (Apte). (ଭୈକ୍ଷୁବ —ଅନ୍ୟରୂପ)

ଭୈମ—ସଂ. ବଣ ( ଭୀମ+ଅ )—ଭୀମ ସମ୍ବନ୍ଧୀୟ—Relating to Bhaima Bhima. ସଂ. ବି, ପୁଂ. ରାଜା ଉଗ୍ରସେନ (ହେ· ଶ)— King Ugrasena.

ଭୈମସେନ(ନ୍ୟ)—ସଂ. ବି. ପୁଂ ( ଭୀମସେନ+ଇ; ଯ )— Bhaimaseni(nya) ଭୀମସେନଙ୍କ ପୁତ୍ର—A son of Bhimasena (Apte).

ଭୈମୀ—ସଂ. ବି. ସ୍ତ୍ରୀ ( ଭୀମ=ଭୀମସେନ ରାଜା+ଅପତ୍ୟାର୍ଥେ ଅ+ଈ. Bhaimi ଈ )—୧ । ନଳପତ୍ନୀ ଦମୟନ୍ତୀ—1. Damayanti, the daughter of king Bhima. ୨ । ଭୀମ ଏକାଦଶୀ; ମାଘମାସ ଶୁକ୍ଳ ଏକାଦଶୀ—2. The 11th day of the bright fortnight of Māgha. ସଂ. ବଣ. ସ୍ତ୍ରୀ—ଭୈମର ସ୍ତ୍ରୀଲିଙ୍ଗ—Feminine of Bhaima.

ଭୈୟା—ଦେ. ( ହିନ୍ଦୀରୁ ଅନୁକୃତ ) ଅ (ସଂ. ଭ୍ରାତା )—ହେ ଭାଇ !— Baiyā ভাই भैया Oh brother !

ଭୈରବ—ସଂ. ବି. ପୁଂ ( ଭୀରୁ+ଅ )—୧ । ମହାଦେବଙ୍କର ଭୟାନକ Bhairaba ଅଷ୍ଟମୂର୍ତ୍ତି ( ଯଥା—ଅସିତାଙ୍ଗ, ରୁଦ୍ର, ଚଣ୍ଡ, କ୍ରୋଧ, (ଭୈରବୀ—ସ୍ତ୍ରୀ) ଉନ୍ମତ୍ତ, କୁପିତ, ଭୀଷଣ, ସଂହାର)—1. Eight terrible forms of God Siba. [ ଉ—ଯେଉଁ

ସମୟରେ ଅନ୍ଧକ ରାକ୍ଷସ ସଙ୍ଗେ ମହାଦେବଙ୍କର ଯୁଦ୍ଧ ହେଲା ସେହି ସମୟରେ ଅନ୍ଧକର ଗଦା ବାଜି ମହାଦେବଙ୍କ ମୁଣ୍ଡ ଫାଟି ଚାରିଖଣ୍ଡ ହୋଇଗଲା, ସେଥିରୁ ରକ୍ତଧାରା ବହିଲା; ସେହି ରକ୍ତଧାରାରୁ ପାଞ୍ଚଟି ଭୈରବ ଉତ୍ପନ୍ନ ହେଲେ । କୌଣସି କୌଣସି ପୁରାଣ ମତରେ ଭୈରବଙ୍କ ସଂଖ୍ୟା ୮, ( ଯଥା— ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁ ଭୈରବ, କାଳ ଭୈରବ, କ୍ରୋଧ ଭୈରବ, ତାମ୍ରଚୂଡ଼ ଭୈରବ, ଚନ୍ଦ୍ରଚୂଡ଼ ଭୈରବ । ମତାନ୍ତରରେ ଏମାନଙ୍କ ନାମ ଅସିତାଙ୍ଗ ଭୈରବ, ରୁରୁ ଭୈରବ, ଚଣ୍ଡ ଭୈରବ, କ୍ରୋଧ ଭୈରବ, ଉନ୍ମତ୍ତ ଭୈରବ, କପାଳ ଭୈରବ, ଭୀଷଣ ଭୈରବ, ସଂହାର ଭୈରବ । ତାନ୍ତ୍ରିକମାନେ ଭୈରବମାନଙ୍କୁ ବିଶିଷ୍ଟରୂପେ ଉପାସନା କରନ୍ତି— ହି. ଶ. । ଭୈରବମାନଙ୍କ ଉତ୍ପତ୍ତି ସମ୍ବନ୍ଧେ ଆଉ ଏକ ଉପାଖ୍ୟାନ ପାଇଁ ପୀଠ ଶବ୍ଦ ତଳେ ଟୀକା ଦ୍ରଷ୍ଟବ୍ୟ; ରେଖାପଞ୍ଚମୀ ଦିନ କବାଟରେ ଓ କାନ୍ଥରେ ଚିତ୍ରିତ ଭୈରବ ମୂର୍ତ୍ତି ଏକପଦ ବିଶିଷ୍ଟ ଅଟନ୍ତି; କାଶୀରେ ଭୈରବଙ୍କ ମନ୍ଦିର ଅଛି ଓ ଏଠାକୁ ଦର୍ଶନ କରିବାକୁ ଯିବା ଯାତ୍ରୀମାନଙ୍କୁ ସେଠାର ପଣ୍ଡାମାନେ ମୟୂରପୁଚ୍ଛର ବାଡ଼ିରେ ନାମମାତ୍ର ପ୍ରହାର କରନ୍ତି] ୨ । ମହାଦେବ; ଶିବ—2. Siba. ୩ । ନଦୀବିଶେଷ— 3. Name of a river. ୪ । ରାଗବିଶେଷ; ହିନ୍ଦୁ ସଙ୍ଗୀତର ୬ ରାଗ ମଧ୍ୟରୁ ଏକତମ; ମାଳବ ରାଗ— 4. Name of one of the six musical airs of the Hindus. [ ଦ୍ର—ହନୁମାନଙ୍କ ମତରେ ଏହା ୬ ରାଗ ମଧ୍ୟରୁ ଏକ । ଏହାର ଗାନ ସମୟ ଶରଦ୍ ଋତୁ, ରବିବାର ଓ ପ୍ରାତଃକାଳ ଅଟେ । ଏହାର ରାଗିଣୀ ୫, ଯଥା— ଭୈରବୀ, ବୈରାଟୀ, ମଧୁମାଧବୀ, ସିନ୍ଧବୀ ଓ ବଙ୍ଗାଳୀ । ଏହା ହାସ୍ୟରସର ରାଗ ।] ୫ । ଭୟଙ୍କର ରୂପ—5. Terrible form. ୬ । ତାରାବତୀ ଗର୍ଭରେ ଶିବଙ୍କ ଔରସରୁ ଜାତ ପୁତ୍ର—6. The son of Siba born of Tārābati. ( ଉ—ବହି ଖଡ୍ଗ ଫଳକ ଅସ୍ତ୍ର ଭୈରବ—ଭଞ୍ଜ• ବୈଦେହୀଶବିଳାସ । ) ୭ । ଭୟଙ୍କର ଶବ୍ଦ (ହି. ଶ)— 7. Terrible noise. ୮ । କାବ୍ୟରେ ଭୟଙ୍କର ରସ ( ହି. ଶ )—8. The terrific sentiment in literature. ୯ । ନାଗବିଶେଷ ( ହି. ଶ )— 9. Name of a mythological serpent. ୧୦ । ଯେଉଁ ତାନ୍ତ୍ରିକ ମଦିରାପାନ କରୁ କରୁ ବମନ କରନ୍ତି ( ହି. ଶ )—10. A Tantric worshipper who vomits while taking wine. ୧୧ । ସଙ୍ଗୀତର ତାଳବିଶେଷ (ହି• ଶ)—10. Name of a musical measure. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males. ସଂ. ବିଣ— ୧ । ଭୟଙ୍କର—1. Terrible; frightful. ୨ । ଦୁଃଖାର୍ତ୍ତ—2. Miserable (Apte). ୩ । ଭୀମନାଦୀ ( ହି. ଶ )—3. Of frightful sound or roar.

**ଭୈରବ ଘାଟୀ**—ଦେ. ବି ( ନାମ )—ଗଙ୍ଗୋତ୍ରୀଠାରୁ ତିବ୍ବତକୁ ଯିବାର ଘାଟୀ—A Himalayan mountain pass for going to Tibet from Gangotri. [ ଦ୍ର—ଏହା ୧୧୦୦୦ ଫୁଟ ଉଚ୍ଚରେ ଅବସ୍ଥିତ । ]
Bhairaba ghāṭi
ভৈরব ঘাটি
भैरव घाटी

**ଭୈରବ ଯାତନା**—ସଂ. ବି (ମ. ପ. ଲୋ; ଭୈରବଙ୍କ ପ୍ରଦତ୍ତ ଯାତନା)— କାଶୀରେ ମୃତ୍ୟୁଲାଭ କରିବା ବ୍ୟକ୍ତିଙ୍କୁ କାଶୀର ଭୈରବଙ୍କ ମନ୍ଦିରରେ ଦିଆଯିବା ଶାରୀରିକ ଦଣ୍ଡ (ବେତ୍ରପ୍ରହାର), ଯଦ୍ଦ୍ୱାରା ମୃତ ବ୍ୟକ୍ତିର ଆତ୍ମା ପରମାତ୍ମାରେ ଲୀନ ହେବା ପାଇଁ ଉପଯୁକ୍ତ ଶୁଦ୍ଧି ଲାଭ କରେ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି—A sort of purificatory physical torment ( e. g. caning ) or penance inflicted by Bhairaba on those who die at Benares to make their spirits fit for absorption into the Supreme Spirit. [ ଦ୍ର—ଯେଉଁ ଯାତ୍ରୀମାନେ କାଶୀର ଭୈରବଙ୍କ ମନ୍ଦିରକୁ ଦର୍ଶନ କରିବାକୁ ଯାଆନ୍ତି ସେଠାର ପଣ୍ଡାମାନେ ସେମାନଙ୍କ ପିଠିରେ ମୟୂରପୁଚ୍ଛରେ ବନ୍ଧା ହୋଇଥିବା ବାଡ଼ିରେ ନାମମାତ୍ର ପ୍ରହାର ( ଭୈରବ ଯାତନା ) ଦିଅନ୍ତି । ]
Bhairaba jātanā

**ଭୈରବ ସାଧିବା**—ଦେ. କ୍ରି—ତାନ୍ତ୍ରିକ ମତରେ ଭୈରବଙ୍କ ଆରାଧନା କରିବା—To worship the Bhairabas according to Tantric rites. [ ଦ୍ର—ଭୈରବ ଏକଗୋଡ଼ିଆ ହୋଇଥିବାରୁ ଏ ସାଧନାରେ ଏକପାଦରେ ଠିଆ ହୋଇ ହସ୍ତଶୃଙ୍ଖଳ କରନ୍ତି । ]
Bhairaba sādhibā
ভৈরব সাধা
भैरव साधना
( ଭୈରବ ସଧା[ଧେ]ଇବା—ଅନ୍ୟରୂପ )

**ଭୈରବୀ**—ସଂ. ବି. ସ୍ତ୍ରୀ ( ଭୈରବ+ସ୍ତ୍ରୀ. ଈ )—୧ । ଦୁର୍ଗା; ସତୀ— 1. Wife of Siba. ୨ । ଭୈରବାନୁଚରୀ ଦେବୀବିଶେଷ—2. Name of a goddess accompanying Bhairaba. [ ଦ୍ର—ଭୈରବୀଙ୍କର କେତେକ ମୂର୍ତ୍ତି କଳ୍ପିତ ହୋଇଅଛି; ଯଥା—ତ୍ରିପୁର ଭୈରବୀ; କୋଲେଶ ଭୈରବୀ; ରୁଦ୍ର ଭୈରବୀ; ନିତ୍ୟା ଭୈରବୀ; ଚୈତନ୍ୟ ଭୈରବୀ—ହି. ଶବ୍ଦସାଗର । ] ୩ । ରାଗିଣୀବିଶେଷ— 3. Name of a secondary musical air. [ଦ୍ର—ହନୁମାନଙ୍କର ମତରେ ଭୈରବୀ ରାଗିଣୀ ଭୈରବ ରାଗର ରାଗିଣୀ ବିଶେଷ । ଏ ରାଗିଣୀ ଶରଦ୍ ଋତୁର ପୂର୍ବାହ୍ଣରେ ଗେୟ । ଏହା ସପ୍ତସ୍ୱରବିଶିଷ୍ଟ ଓ ଏଥିର ସବୁଗୋଟି ସ୍ୱର କୋମଳ--ହି. ଶ ।] ୪ । ଶୈବ ସନ୍ୟାସିନୀ— 4. A female ascetic devoted to Siba. ୫ । ଦଶ ମହାବିଦ୍ୟାର ଏକତମା; ଚାମୁଣ୍ଡା—5. One of the 10 forms of Pārbati. ୬ । ନଦୀବିଶେଷ- 6. Name of a river. ୭ । ଦୁର୍ଗାପୂଜାରେ ଦୁର୍ଗାରୂପେ କଳ୍ପିତା ଦ୍ୱାଦଶ ବର୍ଷୀୟା କନ୍ୟା- 7. A girl of 12 or a young girl representing the goddess Durgā at the Durgā festival (Apte.)
Bhairabi

**ଭୈରବୀ ଚକ୍ର**—ସଂ. ବି—ତନ୍ତ୍ର ଶାସ୍ତ୍ର କୁଳାର୍ଣ୍ଣବ ମତରେ ଯେଉଁ ଚକ୍ର ବା
Bhairabī chakra ତନ୍ତ୍ରସାଧକ ମଣ୍ଡଳୀ ମଧ୍ୟରେ ବସି ପଞ୍ଚମକାର ସାଧନ କରାଯାଏ—A circle of tantric worshippers sitting in which tantric devotees perform the ritual of 'Pañchamakāra'.
[ଦ୍ର—ଯେଉଁ ସାକ୍ଷିତ ତାନ୍ତ୍ରିକ ବାମ ମାର୍ଗ ସାଧକମାନେ ନିର୍ଦ୍ଦିଷ୍ଟ ତିଥି ଓ ନକ୍ଷତ୍ରରେ ଦେବୀ ପୂଜାର୍ଥ ଏକତ୍ର ହୋଇ ଏକ ଚକ୍ର ବା ମଣ୍ଡଳରେ ବସି ପଞ୍ଚମକାର ସାଧନ କରନ୍ତି ତାହାକୁ ଭୈରବୀଚକ୍ର ବୋଲାଯାଏ । ଏଥିରେ ସମ୍ମିଳିତ ସାଧକମାନଙ୍କର ବର୍ଣ୍ଣାଶ୍ରମ ଆଦି ଭେଦର ବିଚାର ରଖାଯାଏ ନାହିଁ ।] ଦେ. ବି—୧ । ଭୟଙ୍କର କୂଟ; କୂଟ ଚକ୍ର—
ভৈরবী চক্র 1. A puzzling snare or trick; deep
भैरवी चक्र conspiracy. ୨ । (ବ୍ୟଙ୍ଗ୍ୟ) ମଉଜିଆ ମଦ୍ୟପ ଗୋଷ୍ଠୀ—2. (Ironical) A company of merry drinkers.

**ଭୈରବେ**—ଦେ. କ୍ରି. ବି—(ସଂ. ଭୈରବ)—୧ । ଭୀଷଣରୂପେ—
Bhairabe 1. Terribly. ୨ । ଅତି ଭୟୋତ୍ପାଦକ ଉଚ୍ଚୈଃସ୍ୱରରେ—2. Tremendously loudly.
(ଉ—ଭୂପତି ଇଙ୍ଗିତେ ଭୈରବେ ବାଜିଲା ସଙ୍କେତ ଭେରୀ ରାଧାନାଥ, ଉଷା ।)

**ଭୈରବେଶ**—ସଂ. ବି (୬ଷ୍ଠୀ ତତ୍;)—ମହାଦେବ; ଶିବ—
Bhairabesa Śiba.

**ଭୈରା**—ଦେ. ବି—ବହିରା (ଦେଖ)—Bahirā (See)
Bhairā ପ୍ରାଦେ.—(ଗଞ୍ଜାମ) ବି—ତୋଡ଼ିମାଛ—
A kind of tubular fish.

**ଭୈଷଜ**—ସଂ. ବି—(ଭିଷକ୍+ଅ)—୧ । ଔଷଧ—1. Medicine
Bhaishaja ୨ । ଚିକିତ୍ସା—2. Medical treatment.
୩ । ଭିଷକ୍ ପୁତ୍ର—3. The son of a physician.
୪ । ଲାବ ପକ୍ଷୀ (ହି. ଶ)—4 The quail (bird) (Apte). ୫ । ବୈଦ୍ୟଙ୍କ ଶିଷ୍ୟ ବା ଛାତ୍ର (ହି. ଶ)—
5. A disciple or student of a physician.

**ଭୈଷଜ୍ୟ**—ସଂ. ବି—(ଭେଷଜ+ଯ)—୧ । ଆୟୁର୍ବେଦୀୟ ଚିକିତ୍ସକ—
Bhaishajya 1. A physician. ୨ । ଔଷଧ—2. Medicine. ୩ । ଔଷଧର ଉପକରଣ—3 Materials or herbs used in medicine. ୪ । ଚିକିତ୍ସା—4. Medical treatment (Apte)
୫ । ଔଷଧାଦିର ରୋଗମୁକ୍ତ କରିବା ଗୁଣ—
5. Curativeness; healing power (Apte).

**ଭୈଷଜ୍ୟ ଦର୍ପଣ**—ସଂ. ବି—ଆୟୁର୍ବେଦୀୟ ଚିକିତ୍ସା ଗ୍ରନ୍ଥବିଶେଷ—
Bhaishajya darpana Name of a work on the
(ଭୈଷଜ୍ୟ ରତ୍ନାବଳୀ—ଅନ୍ୟରୂପ) Ayurbedic system of medicine.

**ଭୈଷଜ୍ୟୋଦ୍ୟାନ**—ସଂ. ବି—ଯେଉଁ ବଗିଚାରେ ଔଷଧ ପାଇଁ ପ୍ରୟୋ-
Bhaishajyodyāna ଜନୀୟ ଉଦ୍ଭିଦ ମାନ ଥାଏ—A garden containing medicinal plants or herbs.

**ଭୈଷ୍ମକୀ**—ସଂ. ବି. ସ୍ତ୍ରୀ—(ଭୀଷ୍ମକ+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)—
Bhaishmakī ରୁକ୍ମିଣୀ—Rukmiṇī.

**ଭୋ**—ଦେ. ବି—(ସଂ. ବ୍ୟୂହ)—ପ୍ରାଚୀନ ମନ୍ଦିରର ଭିତ୍ତି ଗାତ୍ରରେ ଉତ୍କୀର୍ଣ୍ଣ
Bho ଚିତ୍ରବିଶେଷ—Pictures like coat of arms engraved on the walls of ancient temples.
ଅ.—(ସମ୍ବୋଧନ) ହେ; ଅହେ; ହୋ; ଅହୋ—
(Interjection) Oh [ଉ—ଏ ହରି ଚରିତ ବର୍ଣ୍ଣନ, ଭୋ ମୁନି ସାବଧାନେ ଶୁଣ । ଜଗନ୍ନାଥ. ଭାଗବତ ।]
ଦେ. ଅ—(ଧ୍ୱନ୍ୟନୁକରଣ) ଭୋ ଭା (ଦେଖ)
Bho bhā (See).

**ଭୋଇ**—ଦେ. ବି—୧ । ଉତ୍କଳର ପ୍ରାଚୀନ ରାଜବଂଶବିଶେଷ—
Bhoi 1. Name of a dynasty of ancient kings of Utkaḷa. ୨ । ଗ୍ରାମର ସାଧାରଣ ହିସାବରକ୍ଷକ—ଗୁମାସ୍ତା; ଭୂଇଁମୂଳ—2. The village accountant
୩ । ଉତ୍କଳର ସ୍ୱାଧୀନ ରାଜାଙ୍କ ସମୟରେ ଗ୍ରାମ ଶାସନଭାର-ପ୍ରାପ୍ତ ରାଜକର୍ମଚାରୀଙ୍କ ଉପାଧି—A title given to the person employed by the independent kings of Orissa to look after the administration of a village [ଦ୍ର—ଉତ୍କଳ ଗଜପତିଙ୍କ ମନ୍ତ୍ରୀ ଭୋଇ ଜନାର୍ଦ୍ଦନଙ୍କ ବିଦ୍ୟାଧରଙ୍କ ପୁତ୍ର ୧୫୬୮ ଖ୍ରୀଷ୍ଟାବ୍ଦରେ ଖୋରଧା ଅଧିକାର କରି ରାମଚନ୍ଦ୍ର ଦେବ ନାମ ଗ୍ରହଣ କରି ସ୍ୱାଧୀନ ରାଜତ୍ୱ ଚଳାଇଲେ । ସେହି ସମୟରୁ ଖୋରଧା ରାଜାମାନେ ଭୋଇ ବଂଶୀୟ ବୋଲି ପରିଚିତ ହେଲେ । କୃପାସିନ୍ଧୁ, ଉତ୍କଳ ଇତିହାସ ।] ୪ । ବାଉରିମାନଙ୍କର ବଂଶୋପାଧିବିଶେଷ—
4. A family title of 'Bāuris'.

**ଭୋଇ ପିଲା**—ଦେ. ବି—ବାଉରି ଜାତିର ସନ୍ତାନ—A person
Bhoi pilā belonging to the Bāuri caste.
(ଭୋଇ ପୁଅ—ଅନ୍ୟରୂପ)

**ଭୋଇ ମୂଳ**—ଦେ. ବି—ଭୂଇଁମୂଳ (ଦେଖ)
Bhoi mūḷa Bhuiñ mūḷa (See)

**ଭୋଉଁରି**—ପ୍ରାଦେ. (ଯାଜପୁର) ବି—ଭଉଁରି (ଦେଖ)
Bhouñri Bhauñri (See) (ଉ—ଚେକା ଚେକା ଭୋଉଁରି, ମାମୁଁ ଘର ଗୋଉଁରି । ଶିଶୁ ଗୀତ ।)

**ଭୋଃ**—ସଂ. ଅ—(ସମ୍ବୋଧନ)—ଭୋ (ଦେଖ)
Bhoḥ Bho (See)

**ଭୋଁ ଭାଁ (ଭୋଁ)**—ଦେ. ଅ—ଶଙ୍ଖ ଓ ସୀଟି ଆଦିର ଉଚ୍ଚ ଶବ୍ଦ—
Bhoñ bhāñ (bhoñ) Whizzing or whistling sound;
ভোঁভোঁ the sound of conch shell or loud whistle.
भोंभों (ଯଥା—ଜାହାଜ ଭୋଁ ଭୋଁ କରି ସିଟି ମାରିଲା ।)

**ଭୋକ(ଖ)**—ଦେ. ବି ( ସଂ. ବୁଭୁକ୍ଷା )—କ୍ଷୁଧା—Hunger. (ଉ—
Bhoka(kha) ହେ ସ୍ୱୟଂକୃଷ୍ଣ କର ତ୍ରାହି, ଭୋକେ କଣ୍ଠଇ ଆମ୍ଭ
ভোক(খ); ক্ষিধা **भूख** ଦେହି—ଜଗନ୍ନାଥ. ଭାଗବତ । )

**ଭୋକ କରିବା**—ଦେ. ବି—କ୍ଷୁଧାର୍ତ୍ତ ହେବା—
Bhoka karibā Feeling of hunger.
ক্ষিদে পাওয়া **भूख लगना**
[ଭୋକ ଦେଖା(ଖେ)ଇବା, ଭୋକ ଲାଗିବା—ଅନ୍ୟରୂପ]

**ଭୋକତା**—ଗ୍ରା. (ପଦ୍ୟ) ବିଣ—ଭୋକ୍ତା (ଦେଖ) Bhoktā (See)
Bhokatā (ଉ—କର୍ତ୍ତ ଭୋକତା ବେଦ ଭେଦ, ଏ ବେଦ
ସଂସ୍ପୃ ମୋ ଛେଦ । ଜଗନ୍ନାଥ. ଭାଗବତ ।)

**ଭୋକତା(ତେ)ଇବା**—ଦେ. କ୍ରି—ଭୁକ୍ତାଇବା (ଦେଖ)
Bhokatā(te)ibā Bhuktāibā (See)

**ଭୋକ ବାଉଳା**—ଦେ. ବି—(ସଂ. ବୁଭୁକ୍ଷା+ବ୍ୟାକୁଳ; ବାତୁଳ)—
Bhoka bāuḷā କ୍ଷୁଧାଜନିତ ବାତୁଳତା ବା ହିତାହିତ ଜ୍ଞାନର
ক্ষিধার জ্বালা **भूखकी बेचनी** ଲୋପ—Madness due to
hunger. ଦେ. ବିଣ. ପୁଂ—ଭୋକ ବାଉଳିଆ (ଦେଖ)
Bhoka bāuḷia (See)

**ଭୋକ ବାଉଳିଆ**—ଦେ. ବିଣ. ପୁଂ—୧ । କ୍ଷୁଧାଯୋଗୁଁ ବାତୁଳ—
Bhoka bāuḷiā 1. Maddened by hunger.
ক্ষিধায় পাগল ୨ । କ୍ଷୁଧା ଯୋଗୁଁ ବିବେକଶୂନ୍ୟ—2. Ren-
**भूखसे बेचैन** dered unconscientious by pangs of
(ଭୋକ ବାଉଳୀ—ସ୍ତ୍ରୀ) hunger.

**ଭୋକ ବିକଳ**—ଦେ. ବି—(ସଂ. ବୁଭୁକ୍ଷା+ବ୍ୟାକୁଳ)—କ୍ଷୁଧାର ଜ୍ୱାଳା;
Bhoka bikaḷa କ୍ଷୁଧାଦ୍ୱାରା ଆକ୍ରାନ୍ତ ହେବାର କଷ୍ଟ—
ক্ষিধার জ্বালা **भूखकी बेचैनी** Pangs of hunger.
(ଉ—ଭୋକ ବିକଳରେ ଚାହିଁଥା କାମୁଡ଼ିବା । ଢଗ ।)

**ଭୋକ ବିକଳା**—ଦେ. ବିଣ. ପୁଂ—୧ । ଅତି କ୍ଷୁଧାର୍ତ୍ତ; କ୍ଷୁଧାପୀଡ଼ିତ—
Bhoka bikaḷā ক্ষিধায় অস্থির 1. Very hungry;
**भूखसे व्याकुल** gnawed by hunger. ୨ । ଯେ କ୍ଷୁଧାର
(ଭୋକ ବିକଳିଆ—ଅନ୍ୟରୂପ) ଜ୍ୱାଳା ସହି ନ ପାରେ—2. One
(ଭୋକ ବିକଳୀ—ସ୍ତ୍ରୀ) who cannot long withstand
the pangs of hunger.

**ଭୋକ ମରିବା**—ଦେ. ବି—କ୍ଷୁଧା ଦେଖାଇବା ସମୟରେ ଖାଇବାକୁ ନ
Bhoka maribā ପାଇବାରୁ କ୍ଷୁଧା ନିବୃତ୍ତ ହେବା—The
(ଭୋକ ମରିଯିବା—ଅନ୍ୟରୂପ) deadening of the sharp-
ক্ষিধা মরে যাওয়া ness of hunger due to not be-
**भूख मरना** ing propitiated at the proper
time.

**ଭୋକ ମାରିବା**—ଦେ. କ୍ରି—କ୍ଷୁଧାର ଉଦ୍ରେକ ବେଳେ ନ ଖାଇ କ୍ଷୁଧା
Bhoka māribā ବୃତ୍ତିକୁ ଶାନ୍ତ କରିବା—To stifle the
ক্ষিধা মারা craving of hunger (by not eating
**भूखको मारना** when one feels hungry).

**ଭୋକରେ ଆଟପାଟୁ ହେବା**—ଦେ. କ୍ରି—ଅତି କ୍ଷୁଧାର୍ତ୍ତ ହେବା—
Bhokare āṭupāṭu hebā To feel very hungry; to
ଭୋକରେ ପାଟୁପାଟୁ ହେବା } ଅନ୍ୟରୂପ loose one's sanity
ଭୋକରେ ଦାଂଗା ଉଡ଼ିଯିବା } and vitality on
ক্ষিধায় আটুপাটু হওয়া account of extreme hunger.
**भूखमे लहालोट होना**

**ଭୋକରେ ପାଟି ପାକୁ ପାକୁ ହେବା**—ଦେ. ବି—ଅତି କ୍ଷୁଧାର୍ତ୍ତ ହୋଇ
Bhokare pāṭi pāku pāku hebā ପାଟିରେ ଲାଳ ଅଭାବରୁ
ক্ষিধায় পাক পাক করা ଦୁଇ ଓଷ୍ଠ ମୁହୁର୍ମୁହୁ ଲାଗିଯିବା—The
**भूखसे मुहँ बाना** repeated sticking of lips
due to extreme hunger.

**ଭୋକ ଶୋଷ**—ଦେ. ବି (ସହଚର ଶବ୍ଦ) ( ସଂ. ବୁଭୁକ୍ଷା+ତୃଷା )—
Bhoka śosha କ୍ଷୁଧା ଓ ତୃଷ୍ଣା—Hunger and thirst.
ক্ষিধা তেষ্টা **भूख प्यास**

**ଭୋକା(ଖା)**—ଦେ. ବିଣ (ସଂ. ବୁଭୁକ୍ଷିତ)—କ୍ଷୁଧିତ—
Bhokā(khā) Hungry.
[ଭୋକି(ଖି)ଲା—ଅନ୍ୟରୂପ] ক্ষুধিত **भुखा**

**ଭୋକା(କେ,ଖା,ଖେ)ଇବା**—ଦେ. କ୍ରି (ସଂ. ବୁଭୁକ୍ଷିତ)—କ୍ଷୁଧିତ ହେବା—
Bhokā(ke,khā,khe)ibā To feel hungry; to
ক্ষুধিত হওয়া **भुखा होना** hunger.

**ଭୋକିବା**—ପ୍ରାଦେ. (ଗଡ଼ଜାତ) କ୍ରି—ଭୁକିବା ( ଦେଖ )
Bhokibā Bhukibā ( See )

**ଭୋକି ଶୋଷି**—ଦେ. ବି ( ସହଚର ଶବ୍ଦ )—ଅତି କ୍ଷୁଧିତ ଓ ଗରିବ
Bhokī śoshī ବ୍ୟକ୍ତିଗଣ—The hungry and the
ଭୋକି ଦୁଃଖୀ } ଅନ୍ୟରୂପ thirsty; the foodless poor
ଭୋକି ରଙ୍କୀ } people. (ଉ—ସୌଭାଗ୍ୟ ସମୟେ
ভোকী শোষী କୌଶଲ୍ୟା ତୋହର ଦେଖୁଥିଲେ ଭୋକି-ଶୋଷି ।
**भुखा प्यासा** ରାଧାନାଥ. ପାର୍ବତୀ ।)

**ଭୋକ୍ତବ୍ୟ**—ସଂ. ବିଣ ( ଭୁଜ୍ ଧାତୁ+କର୍ମ. ତବ୍ୟ )—୧ । ଭକ୍ଷିତବ୍ୟ—
Bhoktabya 1. Eatable. ୨ । ଉପଭୁକ୍ତ ହେବାର
ଯୋଗ୍ୟ—2. Enjoyable.

**ଭୋକ୍ତା**—ସଂ. ବିଣ. ପୁଂ (ଭୁଜ୍ ଧାତୁ+କର୍ତ୍ତୃ. ତୃ; ଭୋକ୍ତୃ ୧ମା, ୧ବ)—
Bhoktā ୧ । ଭକ୍ଷକ—1. Eating. ୨ । ଉପଭୋକ୍ତା;
(ଭୋକ୍ତ୍ରୀ—ସ୍ତ୍ରୀ) ଭୋଗକାରକ—2. Enjoying. ୩ । ଅନୁଭବ
କାରୀ—3. Experiencing. ବି—୧। ଭୋଗୀ ବ୍ୟକ୍ତି—
1. Enjoyer. ୨ । ଖାଦକ—2. Eater. ୩ ।
ବିଷ୍ଣୁ—3. Bishṇu. ୪ । ଭର୍ତ୍ତା; ପତି ( ହ୍ରୁ. ଶ )—
4. Husband. ୫ । ପ୍ରେତବିଶେଷ ( ହ୍ରୁ. ଶ )—
5. A class of ghosts. ଦେ. ବି—୧ । ବଂଶଗତ
ଉପାଧି ବିଶେଷ—1 A family title. ୨ । ଗ୍ରାମର
ରାଜକର୍ମଚାରୀବିଶେଷ—2. Title of a village
official. ୩ । ଗ୍ରାମର ସରବରାକାର ବା ମକଦ୍ଦମ—
3. The tenure-holder or middle man of
a village ( through whom the villagers
pay their rents to the king ).

**ଭୋକ୍ତା(କ୍ତେ)ଇବା**—ଦେ. କ୍ରି—ଭୁକ୍ତାଇବା ( ଦେଖ )
Bhoktā(kte)ibā Bhuktāibā ( See )

**ଭୋକ୍ତୃତ୍ୱ**—ସଂ. ବି ( ଭୋକ୍ତୃ+ତ୍ୱ )—ଭୋକ୍ତାର ଭାବ—
Bhoktṛutwa The state of being a Bhoktā,

**ଭୋଖ** (ଇତ୍ୟାଦି)—ଭୋକ ଇତ୍ୟାଦି ( ଦେଖ )
Bhukha (etc) Bhoka etc ( See )

**ଭୋଗ**—ସଂ. ବି ( ଭୁଜ୍ ଧାତୁ=ଖାଇବା, ଭୋଗ କରିବା+କର୍ମି. ଅ )
Bhoga —୧ । ସୁଖର କିମ୍ବା ଦୁଃଖର ଅନୁଭୂତି—1. Experience of pleasure or pain; enjoyment of pleasure or suffering from pain. ୨ । ଉପଭୋଗ—2. Enjoyment. ୩ । ଭୋଜନ; ଭକ୍ଷଣ—3. Eating. ୪ । ଧନାଦି ଉପଭୋଗଜନିତ ସୁଖ—4. Worldly happiness. ୫ । ସୁଖ; ବିଳାସ—5. Luxury. ୬ । ଧନ; ଐଶ୍ୱର୍ଯ୍ୟ—6. Riches; prosperity. ୭ । ଅଧିକାର—7. Possession. ୮ । ଦେବତାଙ୍କ ଉଦ୍ଦେଶ୍ୟରେ ନିବେଦିତ ଭୋଜ୍ୟ ଦ୍ରବ୍ୟ; ନୈବେଦ୍ୟ—8 Food offered to a Deity; offering. [ଦ୍ର—ଦେବତାଙ୍କୁ ନୈବେଦ୍ୟ ସମର୍ପିତ ହେବା ପରେ ନିବେଦିତ ବସ୍ତୁକୁ ଭୋଗ ବୋଲଯାଏ ଓ ଭୋଗ ହେବା ପୂର୍ବରୁ ତାକୁ ଅମୁଣିଆ ବୋଲଯାଏ ।] ୯ । ଭୋଜ୍ୟ ବସ୍ତୁ—9. Food. ୧୦ । ସାପ—10. Serpent. ୧୧ । ସର୍ପ ଫଣା—11. Serpent's hood. ୧୨ । ସର୍ପର ଦେହ—12. The body of a serpent, ୧୩ । ପଣ୍ୟସ୍ତ୍ରୀର ବା ବେଶ୍ୟାର ବେତନ—13. The remuneration paid to a prostitute. ୧୪ । ପାଳନ—14. Maintainance; bringing up. ୧୫ । ଦେବ—15. Deity. ୧୬ । ସମୟ ଯାପନ; କାଳାତିକ୍ରମ; ସମୟ ବିତିବା—16. The passing of time. ୧୭ । ରୋଗୀର ଶରୀରରେ ରୋଗର ସ୍ଥିତିକାଳ—17. The duration of an attack of a disease. ୧୮ । ସ୍ତ୍ରୀସମ୍ଭୋଗ; ରମଣ (ହି. ଶ)—18. Cohabitation. (ଉ—ତେବେ ହେଲେ ତୁମ୍ଭ ପରସ୍ତ୍ରୀ ଭୋଗ, କରିବାରେ ତ ବଡ଼ଅଛି ଅନୁରାଗ । କୃଷ୍ଣସିଂହ. ମହାଭାରତ ଅନୁଶାସନ ।) ୧୯ । ଦୁଃଖ; କଷ୍ଟ (ହି ଶ)—19. Pain; suffering. ୨୦ । ମାନ; ପରିମାଣ (ହି. ଶ)—20. Measure. ୨୧ । ଗୃହ; ଘର (ହି. ଶ)—21. House; habitation. ୨୨ । ପ୍ରାରବ୍ଧ; ପୂର୍ବଜନ୍ମାର୍ଜିତ ପାପ ପୁଣ୍ୟର ଫଳ; ଯାହା କି ମନୁଷ୍ୟ ସହିବା ଦ୍ୱାରା ଭୋଗ କରେ (ହି. ଶ)—22 The result of one's sins or meritorious acts in a previous existence which a person undergoes in this life. ୨୩ । ସୈନ୍ୟ ବ୍ୟୂହ ବିଶେଷ (ହି. ଶ)—23. A kind of battle-array. ୨୪ । ଫଳ (ହି. ଶ) 24. Result. ୨୫ । (ଆଇନ୍) ସମ୍ପତ୍ତିରେ ଅଧିକାର; ଦଖଲ-26. (Law) Possession. ୨୬ । ଭଡ଼ା; କେରାୟା (ହି. ଶ)—26. Hire. ୨୭ । (ଜ୍ୟୋତିଷ) ଗ୍ରହର ଏକ ରାଶିରେ ରହିବା ସମୟ (ହି. ଶ)—27. The time during which a planet is within a certain sign. ୨୮ । ନଗର ବା ପ୍ରଦେଶ—28. Town or province. ୨୯ । ଭୋଜି—29. Feast; repast (Apte).

**ଭୋଗ କରିବା**—ଦେ. କ୍ରି—୧ । ଉପଭୋଗ କରିବା—1. To enjoy.
Bhoga karibā ୨ । ରମଣ କରିବା—2. To cohabit.
ভোগ করা (ଉ—ମୁଁ ତ ତାର ଝିଅ ମୋତେ ଲଢ଼ କର ।
भोग करना, भोगना ତୁମ୍ଭଙ୍କୁ କି ଭୋଗ କରିବ ବଳେ ଧର । କୃଷ୍ଣସିଂହ. ମହାଭାରତ ବିରାଟ ।) ୩ । ନିଜେ ଅନୁଭବରେ ଆଣିବା—3. To experience; to undergo; to go through an experience. ୪ । ନୈବେଦ୍ୟ
ভোগ লাগান ଅର୍ପଣ କରିବା—4. To offer food to a Deity.
भोग लगाना ୫ । ସହିବା—5. To bear; to suffer.

**ଭୋଗ ଗୁଚ୍ଛ**—ସଂ. ବି—ବେଶ୍ୟାକୁ ଦିଆଯିବା ମୂଲ—Wages paid
Bhoga guchchha to a prostitute (Apte).

**ଭୋଗ ଗୃହ**—ସଂ. ବି—୧ । ବାସ ଗୃହ—1. Residence.
Bhoga gṛuha ୨ । ଅନ୍ତଃପୁର—2. The harem, ladies' apartments.
ଭୋଗ ଶାଳା }
ଭୋଗ ସଦ୍ମ } ଅନ୍ୟରୂପ ୩ । ଭୋଗ ରନ୍ଧାଯିବା ଘର; ଦିଅଁଙ୍କ
ଭୋଗାବାସ } ରୋଷଘର—A room for cooking food for being offered to Deities.

**ଭୋଗ ଚଢ଼ା(ଢ଼େ)ଇବା**—ଦେ. କ୍ରି—ଦେବତାଙ୍କ ଉପରେ (ଯଥା—
Bhoga chardhā(rdhe)ibā କାଶୀରେ ବିଶ୍ୱନାଥଙ୍କ ଓ ଅନ୍ନ-
ভোগ চড়ান ପୂର୍ଣ୍ଣାଙ୍କ ଉପରେ) ନୈବେଦ୍ୟ ବସ୍ତୁ ଅର୍ପଣ କରିବା—
भोग चढाना To offer offerings to a Deity by putting the articles over the Deity (as is done is Benares).

**ଭୋଗ ଦେବା**—ଦେ. କ୍ରି—ଦେବତାଙ୍କୁ ନୈବେଦ୍ୟ ଦେବା—
Bhoga debā To make an offering to a Deity,
ভোগ দেওয়া भोग देना

**ଭୋଗ ଦେହ**—ସଂ. ବି—୧ । ମୃତ୍ୟୁ ପରେ ମନୁଷ୍ୟର ଜୀବାତ୍ମା ଯେଉଁ
Bhoga deha ସୂକ୍ଷ୍ମ ଶରୀର ଧାରଣପୂର୍ବକ ପାପ ପୁଣ୍ୟର ଫଳ ଭୋଗ କରେ—1. The subtle or spiritual body of a person after his death. ୨ । ସୁଖ ଦୁଃଖ ଭୋଗକାରୀ ଶରୀର—2. The body which enjoys happiness and suffers misery.

**ଭୋଗ ଧର**—ସଂ. ବି (ଭୋଗ+ଧୃ ଧାତୁ+କର୍ତ୍ତୃ. ଅ)—ଭୋଗୀ; ସର୍ପ—
Bhoga dhara Serpent (Apte).

**ଭୋଗ ପତି**—ସଂ, ବି. (୬ଷ୍ଠୀ ତତ୍)—କୌଣସି ନଗରର ବା ପ୍ରଦେଶର
Bhoga pati ଶାସନକର୍ତ୍ତା (ହି. ଶ)—The ruler of a town or province (Apte).

**ଭୋଗ ପାଳ**—ସଂ. ବି. ( ଭୋଗ+ପାଳ ଧାତୁ+କର୍ତ୍ତୃ. ଅ )—
Bhoga pāḷa ସଇସ—Groom (Apte).

**ଭୋଗ ପିପାସା**—ସ. ବି—ସାଂସାରିକ ସୁଖ ଓ ବିଷୟ ଭୋଗ ପାଇଁ
Bhoga pipāsā ମନୁଷ୍ୟର ବଳବତୀ ଇଚ୍ଛା—Hankering after worldly enjoyment.
[ଭୋଗତୃଷ୍ଣା, ଭୋଗବାସନା, ଭୋଗଲିପ୍ସା, ଭୋଗାଭିଳାଷ—ଅନ୍ୟରୂପ]

**ଭୋଗ ପିପାସୁ**—ସ. ବିଣ—ସାଂସାରିକ ସୁଖଭୋଗ ନିମନ୍ତେ ଇଚ୍ଛୁକ—
Bhoga pipāsu Hankering after worldly enjoyment.
ଭୋଗାଭିଳାଷୀ, ଭୋଗଲିପ୍ସୁ } ଅନ୍ୟରୂପ

**ଭୋଗ ପିଶାଚିକା**—ସ. ବି—କ୍ଷୁଧା; ଭୋକ—
Bhoga piśāchikā Hunger (Apte).

**ଭୋଗବଟା**—ପ୍ରାଦେ (ଗଞ୍ଜାମ) ବି—୧। ବିଷୟାଦିରେ ବିଶେଷ ଜ୍ଞାନ—
Bhoga baṭā 1. Intimate knowledge of a matter. ୨। ଅଭିଜ୍ଞତା; ପ୍ରବୀଣତା; ଅନୁଭବ—2. Experience. ୩। ବୈଷୟିକ ବିବରଣ—3. Material description

**ଭୋଗବତୀ**—ସ. ବି. ସ୍ତ୍ରୀ—(ଭୋଗବତ୍‌+ଈ)—୧। ପାତାଳ ଗଙ୍ଗା—
Bhogabatī 1. The river Ganges flowing in the nether world. ୨। ପାତାଳସ୍ଥ ନାଗପୁରୀ—1. The city of the serpents in the nether regions. ୩। ଗଙ୍ଗାନଦୀ (ହି. ଶ)—3. The Ganges. ୪। କାର୍ତ୍ତିକେୟଙ୍କ ଏକ ମାତୃକା (ହି.ଶ)—4. Name of one of the mothers of Kārttika. ୫। କୃଷ୍ଣପକ୍ଷର ଦ୍ୱିତୀୟା ତିଥିର ରାତ୍ରି—5. The night of the second day of a lunar month.

**ଭୋଗବନ୍ଧକ**—ଦେ. ବି—(ସଂ. ଭୋଗ୍ୟ+ବନ୍ଧକ)—ଦଖଲବନ୍ଧକ;
Bhogabandhaka ଫଳବନ୍ଧକ—Usufructuary mortgage.
दखलबन्धक भोगबन्धक

**ଭୋଗବସ୍ତୁ**—ସ. ବି—ଭୋଗ୍ୟ ବସ୍ତୁ—
Bhogabastu An object of enjoyment.

**ଭୋଗବାନ୍**—ସ. ବିଣ. ପୁଂ (ଭୋଗ+ବତ୍; ଭୋଗବତ୍ ୧ମା. ୧ବ)—
Bhogabān ୧। ଭୋଗୀ—1. Enjoying. ୨। ସୁଖୀ—2 Happy (Apte). ୩। ସୁଖପ୍ରଦ—3. Delightful (Apte). ୪। ଫଣାଯୁକ୍ତ—4. Hooded (serpent). ୫। କୁଣ୍ଡଳ ଯୁକ୍ତ—5. Having coils (Apte). ବି—୧। ଫଣୀ; ସର୍ପ—1. Serpent. (ଭୋଗବତୀ—ସ୍ତ୍ରୀ) ୨। ନୃତ୍ୟ ଗୀତ—2. Music and dance dancing; acting and singing together (Apte). ୩। ପର୍ବତ—3. Mountain (Apte).

**ଭୋଗବିଳାସ**—ସ. ବି—ଐହିକ ସୁଖଭୋଗ ଓ ଆନନ୍ଦ; ଆମୋଦ
Bhogabilāsa ପ୍ରମୋଦ—Enjoyment; worldly pleasures and luxuries; amusements.

**ଭୋଗବିଳାସୀ**—ସଂ. ବିଣ. ପୁଂ—ଯେ ସଂସାରର ସୁଖଭୋଗରେ ମାତିଥାଏ—
Bhogabilāsī Enjoying worldly pleasures.
(ଭୋଗବିଳାସିନୀ—ସ୍ତ୍ରୀ)

**ଭୋଗଭୂମି**—ସ. ବି—୧। ସୁଖ ଭୋଗ କରିବାର ସ୍ଥାନ—1. Place
Bhogabhūmi of bliss. ୨। ସ୍ୱର୍ଗ—2. Heaven. ୩। ଭାରତବାହାର ପ୍ରଦେଶ—3. A country outside India.

**ଭୋଗମୂର୍ତ୍ତି**—ସଂ. ବି—ବଡ଼ ବଡ଼ ଦେବତାଙ୍କର ଚଳନ୍ତି ପ୍ରତିମା (ଯଥା—
Bhogamūrtti ମହାଦେବଙ୍କର ଚନ୍ଦ୍ରଶେଖର ଓ ଜଗନ୍ନାଥଙ୍କର ମଦନମୋହନ)—Removable images of immovable idols.

**ଭୋଗରା**—ପ୍ରାଦେ (ସମ୍ବଲପୁର) ବି—ଗଉନ୍ତିଆଙ୍କ ନିଜକୃଷ ଜମି—
Bhogarā The land cultivated by a landlord himself (and not by tenants). [ ଦ୍ର—ମାଫିଦାରର ନିଜକୃଷ ଜମିକୁ ସିର୍ ବୋଲାଯାଏ । ]

**ଭୋଗରାଇ**—ଦେ. ବି—ବାଲେଶ୍ୱର ଜିଲ୍ଲାରେ ସମୁଦ୍ର ଅଦୂରବର୍ତ୍ତୀ
Bhogarāi ସିକତା ସ୍ତୂପମୟ ସ୍ଥାନ—Name of a tract of (ଭୋଗରାଇ—ଅନ୍ୟରୂପ) country in the district of Balasore which is full of sand-dunes along the sea-shore.

**ଭୋଗରାଗ**—ଦେ. ବି (ନିରର୍ଥକ ଧ୍ୱନ୍ୟାତ୍ମକ ସହଚର ଶବ୍ଦ)—ଠାକୁରଙ୍କ
Bhogarāga ନୈବେଦ୍ୟ ଆଦିଦ୍ୱାରା ପୂଜନ—Worship of ভোগটোগ a Deity consisting of offerings and भोगराग other rites ସଂ. ବି—ଭୋଗବିଳାସ (ଦେଖ)—Bhogabilāsa See.

**ଭୋଗ ଲଗା(ଗେ)ଇବା**—ଦେ. କ୍ରି—ଦେବତାଙ୍କୁ ମନ୍ତ୍ରାଦି ଉଚ୍ଚାରଣପୂର୍ବକ
Bhoga lagā(ge)ibā ନୈବେଦ୍ୟ ଅର୍ପଣ କରିବା—To ভোগলাগান offer an offering to a Deity by pro- भोगलगाना nouncing incantations.

**ଭୋଗ ସାଧନ**—ସଂ.ବି—୧। ଭୋଗପାଇଁ ସାଧନା—1. Practice or
Bhoga sādhana solicitations for enjoyment or prosperity. ୨। ଭୋଗର ଉପାୟ ବା ଉପାଦାନ—2. Luxury; means or materials of enjoyment; means to enjoyment.

**ଭୋଗ ସୁଖ**—ସ. ବି—୧। ଭୋଗଜନିତ ଆନନ୍ଦ—1. Pleasure
Bhoga sukha derived from enjoyment ୨। ଇନ୍ଦ୍ରିୟ ସେବାଜନିତ ସୁଖ—2. Pleasures due to sensual enjoyment.

**ଭୋଗସ୍ଥାନ**—ସ. ବି—୧। ପାର୍ଥିବ ସୁଖଭୋଗର ଆଧାର (ଅର୍ଥାତ୍
Bhoga sthāna ଶରୀର)—1. The material body. ୨। ଇନ୍ଦ୍ରିୟସେବାର ସ୍ଥାନ—2. Place for sensual enjoyment. ୩। ଅନ୍ତଃପୁର—3. The harem.

**ଭୋଗ ହେବା**—ଦେ.କ୍ରି—୧। (କୌଣସି ସମ୍ପତ୍ତି କୌଣସି ବ୍ୟକ୍ତିଦ୍ୱାରା)
Bhoga hebā ଉପଭୁକ୍ତ ହେବା—1. To be enjoyed ভোগ হওয়া (anything by any person). ୨। (ଦୁଃଖ भोगाजाना ସୁଖ ଆଦି) ଅନୁଭବରେ ଆସିବା—2. To be experienced or undergone (happiness or suffering). ୩। (ସମୟ) ଅତିବାହିତ ହେବା—3. To pass (said of time).

ଭୋଗା—ଦେ. ବି—ଧପ୍ପା; ପ୍ରତାରଣା; ଫାଙ୍କି; ପଟ୍ଟି—Cheating;
Bhogā ভোগা **फाँकी, पट्टी** deception; imposture.
ପ୍ରାଦେ. ( **ଅଠମଲ୍ଲିକ** ) ବି—ଗୁଉଳ ଧୁଆ ବାଉଁଶିଆ—
A basket used for washing rice.

ଭୋଗା(ଗେ)ଇ —ଦେ, ବି—( ଏଥିରେ ଠାକୁରଙ୍କୁ ଭୋଗ ଅନ୍ନ ଦିଆ
Bhogā(ge)i ଯାଉଥିବାରୁ ) ଛୋଟ ପାଚିଆ—A small
চুপড়ী **मौकी** (ଭୌଗେ—ଅନ୍ୟରୂପ) basket.

ଭୋଗା(ଗେ)ଇବା—ଦେ. କ୍ରି ( ଭୋଗିବା କ୍ରିୟାର ଣିଜନ୍ତରୂପ); The
Bhogā(ge)ibā causative form of Bhogibā )—
ভুগান, ভোগান ୧ । କଷ୍ଟ ଭୋଗ କରାଇବା —1. To cause
**भोगाना** another to suffer. ୨ । କଷ୍ଟ ଦେବା; ଦୁଃଖ
ଦେବା—2. To given trouble.

ଭୋଗା ଦେବା—ଦେ. କ୍ରି—ଧପା ମାରିବା; ପ୍ରତାରଣା କରିବା; ଭଣ୍ଡା-
Bhogā debā ଇବା—To cheat; to wheedle; to
ভোগা দেওয়া **पट्टी मारना** delude,
( ଭୋଗା ମାରିବା—ଅନ୍ୟରୂପ )

ଭୋଗାଧାର—ସ. ବି—ଭୋଗ ସ୍ଥାନ ( ଦେଖ )
Bhogādhāra Bhoga sthāna ( See )

ଭୋଗାଧି—ସ. ବି—ଭୋଗବନ୍ଧକ; ଦଖଲବନ୍ଧକ—
Bhogādhi Usufructuary mortgage ( Apte ).

ଭୋଗାନ୍ତ—ସ. ବି ( ୬ଷ୍ଠୀ ତତ୍; ଭୋଗ+ଅନ୍ତ )—ଭୋଗର ଶେଷ—
Bhogānta The end of enjoyment.

ଭୋଗାନ୍ତର—ସ. ବି—ଅନ୍ୟ ପ୍ରକାରର ଭୋଗ—
Bhogāntara Another pleasure or enjoyment.

ଭୋଗାବଳି(ଳୀ)—ସ. ବି ( ଭୋଗ+ଅବଳୀ=ଶ୍ରେଣୀ )—୧ । ନାନା-
Bhogābaḷi(ḷī) ବିଧ ଭୋଗ—1. Various enjoyments.
୨ । ସ୍ତୁତି; ପ୍ରଶଂସା—2. Praise; eulogy. ୩ ।
ନାଗ-ପୁରୀ—3. The city of the mythological
serpents. ୪ । ଭାଟର ସ୍ତୁତି—4. The pane-
gyric of a professional encomiast (Apte).

ଭୋଗାଭୋଗ—ସ. ବି—ଭୋଗ ଓ ଭୋଗର ଅଭାବ—Enjoyment
Bhogābhoga and absence thereof.

ଭୋଗାୟତନ - ସ. ବିଣ ( ୬ଷ୍ଠୀ ତତ୍; ଭୋଗ+ଆୟତନ )—ସୁଖ ଓ
Bhogāyatana ଦୁଃଖ ଭୋଗର ଆଧାରରୂପୀ—Being a
receptacle of enjoyment of both pleasure
and pain. ବି—ଜଡ଼ ଶରୀର—Physical or
material body.

ଭୋଗାର୍ଥୀ—ସ. ବି. ପୁଂ ( ଭୋଗ+ଅର୍ଥ+ଇନ୍; ୧ମା. ୧ବ )—
Bhogārthī ଭୋଗାଭିଳାଷୀ; ଭୋଗପ୍ରାର୍ଥନାକାରୀ—Desiring
(ଭୋଗାର୍ଥିନୀ—ସ୍ତ୍ରୀ) enjoyment; praying for enjoy-
ment.

ଭୋଗାର୍ହ—ସ. ବିଣ. ପୁଂ ( ୬ଷ୍ଠୀ ତତ୍; ଭୋଗ+ଅର୍ହ )—ଭୋଗର
Bhogārha ଉପଯୋଗୀ—Fit to be enjoyed. ବି—
୧ । ଐଶ୍ୱର୍ଯ୍ୟ; ସାଂସାରିକ ବିଭବ—1. Prosperity;
wordly happiness. ୨ । ସମ୍ପତ୍ତି; ଧନ—
(ଭୋଗାର୍ହା—ସ୍ତ୍ରୀ) 2. Riches; property.

ଭୋଗାସକ୍ତ—ସ. ବିଣ. ପୁଂ ( ୭ମୀ ତତ୍; ଭୋଗ+ଆସକ୍ତ )—ଐହିକ
Bhogāsakta ସୁଖଭୋଗରେ ଅନୁରକ୍ତ—Addicted to
( ଭୋଗାସକ୍ତା—ସ୍ତ୍ରୀ ) worldly enjoyments.

ଭୋଗାସକ୍ତି—ସ. ବି —୧ । ଐହିକ ସୁଖଭୋଗ ପ୍ରତି ଆସକ୍ତି—1. Atta-
Bhogāsakti chment to worldly pleasures. ୨ ।
ଭୋଗାଭିଳାଷ—2. Hankering after sensual
or worldly enjoyment.

ଭୋଗିକ—ସ. ବି. ପୁଂ ( ଭୋଗ + ଇକ )—ଘୋଡ଼ା ସଇସ—
Bhogika A groom; a horse-keeper.

ଭୋଗିନୀ—ସ. ବି. ସ୍ତ୍ରୀ—ମହିଷୀ ବ୍ୟତୀତ ରାଜାଙ୍କର ଅନ୍ୟ ସ୍ତ୍ରୀ; ପୋଇଲୀ—
Bhoginī Concubine of a Rājā. ସ. ବିଣ. ସ୍ତ୍ରୀ—
ଭୋଗୀର ସ୍ତ୍ରୀଲିଙ୍ଗ—Feminine of Bhogī.

ଭୋଗିବଲ୍ଲଭ—ସ. ବି ( ୬ଷ୍ଠୀ ତତ୍; ଭୋଗିନ୍+ବଲ୍ଲଭ )—ଚନ୍ଦନ—
Bhogiballabha Sandal ( Apte ).

ଭୋଗିବା—ଦେ. କ୍ରି (ଭୁଜ୍ ଧାତୁ)—୧ । ସୁଖ ଦୁଃଖ ଭୋଗ କରିବା—
Bhogibā 1. To enjoy pleasure or undergo
ভুগা, ভোগা suffering [ ଉ—ପୂର୍ବଜନ୍ମେ କରିଥିଲି ମୁହିଁ
**भोगना** ମହାପାପ, ଭୋଗୁଅଛି ତାହା ଫଳେ ଏ ଘୋର ସନ୍ତାପ
—ନନ୍ଦକିଶୋର. ସୀତା ବନବାସ । ] ୨ । ଅନୁଭବରେ
ଆଣିବା; ଅଙ୍ଗେ ନିଭାଇବା—2. To experience.
[ ଉ—ଭୋଗି ନାହିଁ କେବେ ଅଭାବର ତାପ—ରାଧାନାଥ.
ଦରବାର । ] ୩ । ଦୁଃଖ ଭୋଗ କରିବା—3. To
suffer or undergo hardships.

ଭୋଗୀ—ସ. ବିଣ ( ଭୋଗ+ଇନ୍; ୧ମା. ୧ବ )—୧ । ଭୋଗକାରୀ—
Bhogī 1. Enjoying. ୨ । ଭକ୍ଷକ—2. Partaking
(ଭୋଗିନୀ—ସ୍ତ୍ରୀ) of, eating. ୩ । ସୁଖୀ—3. Happy.
୪ । ଯେ ଅୟସ କରେ; ଭୋଗାସକ୍ତ—5. Luxurious;
indulging is sensual pleasures. ୫ । ଫଣା-
ଯୁକ୍ତ—(ସର୍ପ) 5. Hooded (serpent). ୬ । (ଅଇନ)
ଦଖଲକାର-6. Possessing. ୭ । ଅନୁଭବକାରୀ—7.
Experiencing. ୮ । ଯହିଁରେ ବାଙ୍କମାନ ଅଛି—8.
Having curves (Apte). ୯ । ଧନୀ—9. Rich;
opulent (Apte). ବି-୧। ଫଣୀ; ସର୍ପ--1. Serpent;
a hooded serpent. ୨ । ରାଜା—2. King. ୩ ।
ଗ୍ରାମାଧ୍ୟକ୍ଷ—3. The headman or the prop-
rietor of a village ୪ । ଭଣ୍ଡାରୀ—5. A
barber. ୫ । ଅୟସୀ ଲୋକ; ଇନ୍ଦ୍ରିୟବିଳାସୀ ବ୍ୟକ୍ତି—
5. A voluptuary ( Apte ). ପ୍ରାଦେ. (ଗଞ୍ଜାମ)
ବି ( ତେଲଗୁରୁ ଅନୁକୃତ )—ମକର ସଂକ୍ରାନ୍ତି ପୂର୍ବଦିବସ
ରାତ୍ରିରେ ହେବା ଅଗ୍ନ୍ୟୁତ୍ସବ—The bonfire lighted
on the night previous to Makarasankrānti.

**ଭୋଗୀନ୍ଦ୍ର**—ସଂ. ବି ( ୬ଷ୍ଠୀ ତତ୍; ଭୋଗିନ୍+ଇନ୍ଦ୍ର )—ନାଗରାଜ ବାସୁକି; ଅନନ୍ତ—The mythological king of serpents.
Bhogīndra
( ଭୋଗୀଶ—ଅନ୍ୟରୂପ )

**ଭୋଗୁଆ**—ଦେ, ବିଣ—ଭଗୁଆ; ଗେରୁ ମାଟିରେ ରଞ୍ଜିତ (ବସ୍ତ୍ର); ଗେରୁଆ—(a cloth) Died red with ochre.
Bhoguā
গেরুয়া भगवा

**ଭୋଗ୍ୟ**—ସଂ. ବିଣ ( ଭୁଜ୍ ଧାତୁ+କର୍ମ ଯ )—୧ । ଭୋଜ୍ୟ—1. Eatable. ୨ । ଉପଭୋଗ କରାଯିବାର ଯୋଗ୍ୟ ( ବସ୍ତୁ )—2. Enjoyable. ବି—୧ । ଧନରତ୍ନାଦି—1. Riches. ୨ । ଉପଭୋଗ—2. Enjoyment ( ଉ—ବିଭୀଷଣ କରିବ କାଷ୍ଠସୁ ଲଙ୍କା ଭୋଗ୍ୟ । ବିଶ୍ୱନାଥ. ବିଚିତ୍ର ରାମାୟଣ ।) ୩ । ଶସ୍ୟ—3. Corn; grain ( Apte ). ୪ । ଉପଭୋଗ୍ୟ ବସ୍ତୁ—4. An object of enjoyment [Apte ].
Bhogya
(ଭୋଗ୍ୟା—ସ୍ତ୍ରୀ)

**ଭୋଗ୍ୟ ବସ୍ତୁ**—ସଂ. ବି ( ଭୋଗ୍ୟ=ଭୋଗ କରିବାର ଯୋଗ୍ୟ+ବସ୍ତୁ=ପଦାର୍ଥ )—ମନୁଷ୍ୟର ଯାହା ଭୋଗଯୋଗ୍ୟ—Things enjoyed by persons; enjoyable things. [ ଦ୍ର—ଏହି ଭୋଗ୍ୟ ବସ୍ତୁ ଦଶ ବିଧ; ଯଥା—ଭୂମି ର୍ଗୌ ଦାସଦାସୀଚ, ବସନଂ ଭୂଷଣାଶନେ, ଭୂରଗୋ ମହିଷୋ ବାମା, ଭୋଗ୍ୟବସ୍ତୁ ଦ୍ୱିପଞ୍ଚକଂ । ଭୂମି, ଗୋରୁ, ଦାସ, ଦାସୀ, ବସନ, ଭୂଷଣ, ଭୋଜନ, ଅଶ୍ୱ, ମହିଷ ଓ ସ୍ତ୍ରୀ । ]
Bhogya bastu

**ଭୋଗ୍ୟମାନ**—ଗ୍ରା• ବି—ଭୋଗ୍ୟବସ୍ତୁ—Object of enjoyment. [ଉ—ରାଧାଙ୍କୁ କର ଭୋଗ୍ୟମାନ । ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା । ]
Bhogyamāna

**ଭୋଗ୍ୟା**—ସଂ. ବି. ସ୍ତ୍ରୀ ( ଭୋଗ୍ୟ+ଆ )—ଗଣିକା; ବେଶ୍ୟା—A prostitute. ସଂ. ବିଣ. ସ୍ତ୍ରୀ—ଭୋଗ୍ୟର ସ୍ତ୍ରୀଲିଙ୍ଗ—Feminine of Bhogya.
Bhogyā

**ଭୋଜ**—ସଂ. ବି (ନାମ) ( ଭୁଜ୍ ଧାତୁ+କର୍ତ୍ତୃ. ଅ )—୧ । ଯଦୁବଂଶ—1. The Royal dynasty of Jadus ୨ । ମାଳବଦେଶର ପ୍ରାଚୀନ ରାଜଧାନୀ; ଧାର ନଗରୀ, ଭୋଜପୁରୀ—2. The ancient capital of the Māḷaba kingdom. [ ଦ୍ର—ଏହା ଖ୍ରୀଷ୍ଟୀୟ ଦଶମ ଓ ଏକାଦଶ ଶତାବ୍ଦୀରେ ସମୃଦ୍ଧିଶାଳୀ ଥିଲା ।] ୩ । ଭୋଜନଗରୀର ପ୍ରସିଦ୍ଧ ରାଜାଙ୍କ ନାମ; ଭୋଜରାଜ—3. The name of a famous king of Bhoja. [ଦ୍ର—ଏ ଐନ୍ଦ୍ରଜାଲିକ ବିଦ୍ୟାରେ ବିଶେଷ ପାରଙ୍ଗମ ଥିଲେ ଓ ଏହାଙ୍କ କନ୍ୟା ଭାନୁମତୀ ମଧ୍ୟ ଜଣେ ପ୍ରସିଦ୍ଧା କୁହୁକିନୀ ଥିଲେ । ଏହାଙ୍କ ସ୍ତ୍ରୀଙ୍କ ନାମ ଲୀଳାବତୀ; ସେ ମଧ୍ୟ ବିଦୁଷୀ ଥିଲେ । କାଳିଦାସ କବି ଏହାଙ୍କ ରାଜସଭାର ନବରତ୍ନ ବୋଲି ପ୍ରସିଦ୍ଧି ଅଛି । ଏ ରାଜା ବେତାଳ ସାଧନ କରିଥିଲେ । ଏ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀର ଶେଷାଂଶ ବା ୧୧ଶ ଶତାବ୍ଦୀର ପ୍ରଥମାଂଶରେ ରାଜତ୍ୱ କରୁଥିବାର ଅନୁମିତ ହୁଏ । ଏ ସଂସ୍କୃତ ବିଦ୍ୟାରେ ପଣ୍ଡିତ ଓ ଅନୁରାଗୀ ଥିଲେ ଓ ଶୃଙ୍ଗାରମଞ୍ଜରୀ, ଚମ୍ପୂ ରାମାୟଣ, ଶୃଙ୍ଗାରଚର୍ଯ୍ୟା, ସରସ୍ୱତୀକଣ୍ଠାଭରଣ, ତତ୍ତ୍ୱପ୍ରକାଶ, ବ୍ୟବହାରସମୁଚ୍ଚୟ ଆଦି ଗ୍ରନ୍ଥ ରଚନା କରିଥିଲେ ହି. ଶ. ] ୪ । ବିଦର୍ଭ ଦେଶର ରାଜା—4. Name of a king of Bidarbha; the father of Indumatī. [ ଦ୍ର—ଏହାଙ୍କ କନ୍ୟା ଇନ୍ଦୁମତୀଙ୍କୁ ରଘୁବଂଶୀୟ ରାଜା ଅଜ ବିବାହ କରିଥିଲେ । ] ୫ । ଭୋଜବିଦ୍ୟା; ଭୋଜବାଜି; କୁହୁକ—5. Magic; legerdemain. ୬ । ଶାନ୍ତିଦେବୀଙ୍କ ଗର୍ଭଜାତ ବସୁଦେବଙ୍କ ପୁତ୍ର ( ହି. ଶ )—6. Name of a son of Basudeba. ୭ । ଶ୍ରୀକୃଷ୍ଣଙ୍କ ସଖା ଗୋପବାଳକ ବିଶେଷ ( ହି. ଶ )—7. Name of a cowherd companion of Śrīkṛushṇa. ୮ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ରାଜତ୍ୱ କରୁଥିବା କାନ୍ୟକୁବ୍ଜର ରାଜା—8 Name of a king of Kannouj in the 9th century A. D. ୯ । ଆଧୁନିକ ବିହାର ପ୍ରଦେଶସ୍ଥ ଭୋଜପୁର ( ହି. ଶ )—9. The ancient name of Bhojapur in Patna.
Bhoja

ভোজন भोजन ଦେ. ବି—(ସଂ· ଭୋଜନ)—୧ । ଭୋଜନ—1 Eating. [ଉ—ଶାକ ଫଳ ମୂଳ ଖାଇଣ ପୁଷ୍କରରେ, ରହି ଦ୍ୱିଜଙ୍କୁ ଯେ ଦିଅଇ ଭୋଜ ଥରେ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ଭୋଜି—2. A feast; banquet

ভোজ भोज ଗ୍ରା—(ଇତର)—୧ । ବୋଝ—1. A load. ୨ । ଅଙ୍ଗା; ଭାରରେ ଝୁଲା ହେବା ଦୁଇଟି ବୋଝରୁ ଗୋଟିଏ—2. One of the two loads carried suspended from a yoke.

**ଭୋଜକ**—ସଂ. ବିଣ. ପୁଂ—(ଭୁଜ୍ ଧାତୁ+କର୍ତ୍ତୃ. ଅକ)—ଭୋଜନକାରୀ—Eating.
Bhojaka (ଭୋଜିକା—ସ୍ତ୍ରୀ)

**ଭୋଜନ**—ସଂ. ବି—(ଭୁଜ୍ ଧାତୁ+ଭାବ ଅନ)—୧ । ଭକ୍ଷଣ; ଖାଇବା—1. Eating. ୨ । ( +କର୍ମ ଅନ ) ଭକ୍ଷଦ୍ରବ୍ୟ; ଖାଦ୍ୟ—2.Food. ୩ । ଖୁଆଇବା; ଲୋକଙ୍କୁ ଖାଇବାକୁ ଦେବା—3. Feeding people. ୪ । (+ଅଧିକରଣ ଅନ) ଭୋଜି—4. A feast.
Bhojana

**ଭୋଜନ କରିବା**—ଦେ. କ୍ରି—ଖାଇବା—To eat; to dine.
Bhojana karibā ভোজন করা भोजन करना

**ଭୋଜନ କାଳ**—ସଂ. ବି—୧ । ଖାଇବା ବେଳ—1. Time of dinner. ୨ । ଖାଇବାର ନିରୂପିତ ସମୟ—2 Time fixed for taking one's meal.
Bhojana kāḷa

**ଭୋଜନ ଦକ୍ଷିଣା**—ସଂ. ବି—ବ୍ରାହ୍ମଣଙ୍କୁ ଭୋଜନ ଦିଆଯିବା ପରେ ତାଙ୍କୁ ଦିଆଯିବା ଆର୍ଥିକ ଉପଢୌକନ—Monetary present given to a Brāhmaṇa after feasting him.
Bhojana dakshinā

ଭୋଜନ ଦେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ଖାଇବା ସାମଗ୍ରୀ Bhojana debā ଖାଇବାକୁ ଦେବା—To feed another ভোজন দেওয়া person; to bestow a dinner on भोजन देना another.

ଭୋଜନପଟୁ—ସ. ବିଣ—୧ । ଖାଇବା ବିଷୟରେ ବିଚକ୍ଷଣ— Bhojanapaṭu 1. Expert in eating. ୨ । ପେଟୁ; ଉଦରମ୍ଭରି—2. Greedy; gluttonous.

ଭୋଜନ ପାତ୍ର—ସ. ବି—ଯେଉଁ ପାତ୍ରରୁ ମନୁଷ୍ୟ ଖାଦ୍ୟ ଖାଏ, ଯେଉଁ Bhojana pātra ପାତ୍ରରେ ଖାଦ୍ୟ ଭୋଜନ ଖାଉକଙ୍କ ସମ୍ମୁଖରେ ରଖାଯାଏ—Food-tray; the plate on which a person's dinner is placed.

ଭୋଜନ ବଢ଼ା(ଢ଼େ)ଇବା—ଦେ. କ୍ରି—ଭୋଜନକ୍ରିୟା ଶେଷ କରିବା-- Bhojana barḍhā(rḍhe)ibā To finish one's meal; ভোজন শেষ করা, খাওয়া সারা to finish eating. भोजनसे निबटना (ଭୋଜନ ସାରିବା—ଅନ୍ୟରୂପ)

ଭୋଜନ ବଢ଼ିବା—ଦେ. ବି—ଭୋଜନର ସମାପ୍ତି— Bhojana barḍhibā The end of a dinner. ভোজন শেষ হওয়া भोजनका निबटारा

ଭୋଜନ ବିଳାସୀ—ଦେ ବିଣ. ପୁଂ.—ପେଟୁ— Greedy, Bhojana biḻāsī (ଭୋଜନ ବିଳାସିନୀ—ସ୍ତ୍ରୀ)

ଭୋଜନ ବେଳା—ସ. ବି—୧ । ଖାଇବାର ସମୟ—1. The time Bhojana beḻā of dinner. ୨ । ଖାଇବାର ନିରୂପିତ ସମୟ-- খাবার বেলা 2. The time fixed for taking one's भोजनका समय daily meals. (ଭୋଜନ ବେଳ ଦେ. ରୂପ; ଭୋଜନ ସମୟ—ଅନ୍ୟରୂପ)

ଭୋଜନ ଭାଜନ—ଦେ. ବି (ନିରର୍ଥକ ଧ୍ୱନିମୂଳକ ସହଚର ଶବ୍ଦ)— Bhojana bhājana ଖାଇବା କ୍ରିୟା; ଖିଆପିଆ—Act of ভোজন ভাজন भोजन भाजन eating.

ଭୋଜନ ମାରିବା—ଦେ. କ୍ରି—(ବ୍ୟଙ୍ଗାର୍ଥ)—ଖାଇବା; ଗିଳିବା— Bhojana māribā (Ironical) To eat one's fill. পেট ভরান भोजन मारना

ଭୋଜନ ଶକ୍ତି—ସ. ବି—ଖାଇବା ବିଷୟରେ ସାମର୍ଥ୍ୟ—Ability or Bhojana śakti capacity to eat (i. e. to digest what a person eats).

ଭୋଜନ ଶାଳା—ସ. ବି—୧ । ଭୋଜନ କରିବା ନିମନ୍ତେ ନିର୍ଦ୍ଦିଷ୍ଟ Bhojana śāḻā ସ୍ୱତନ୍ତ୍ର ଗୃହ—1. Dining room. ୨ । (ଭୋଜନାଗାର, ଭୋଜନାଳୟ—ଅନ୍ୟରୂପ) ହୋଟେଲ୍— 2. A hotel.

ଭୋଜନ ସାମଗ୍ରୀ—ସ. ବି—ପ୍ରସ୍ତୁତ ଖାଦ୍ୟ ସାମଗ୍ରୀ— Bhojana sāmagrī Ready-made food.

ଭୋଜନ ସ୍ପୃହା—ସ. ବି—୧ । ଖାଇବା ନିମନ୍ତେ ଇଚ୍ଛା—1. Bhojana spṛuhā Hankering after food ୨ । ଖାଦ୍ୟ ଦ୍ରବ୍ୟରେ ରୁଚି—2. A liking or relish for food. ୩ । ଭୋଜନେଚ୍ଛା; ଭୋକ; କ୍ଷୁଧା—3. Hunger.

ଭୋଜନାକାଙ୍କ୍ଷା—ସ. ବି—୧ । ଭୋଜନେଚ୍ଛା—1. Desire for Bhojanākāṅkshā food. ୨ । ବୁଭୁକ୍ଷା; ଭୋକ— 2. Hunger.

ଭୋଜନାକାଙ୍କ୍ଷୀ—ସ. ବି—୧ । ଭୋଜନ କରିବାକୁ ଇଚ୍ଛାଯୁକ୍ତ— Bhojanākāṅkshī 1. Desirous for getting a meal. (ଭୋଜନାକାଙ୍କ୍ଷିଣୀ—ସ୍ତ୍ରୀ)

ଭୋଜନାଚ୍ଛାଦନ—ସ. ବି—(ଦ୍ୱନ୍ଦ୍ୱ; ଭୋଜନ+ଆଚ୍ଛାଦନ)—ଖୋରାକ Bhojanāchchhādana ପୋଷାକ; ଖାଦ୍ୟ ଓ ବସ୍ତ୍ର— Fooding and raiment.

ଭୋଜନାବଶିଷ୍ଟ—ସ. ବିଣ—ଭୁକ୍ତାବଶିଷ୍ଟ; ଉଚ୍ଛିଷ୍ଟ—(food) Left Bhojanābaśishṭa in the plate after dinner.

ଭୋଜନାବଶେଷ—ସ. ବି—ଭୁକ୍ତାବଶେଷ; ଅଇଁଠା; ଉଚ୍ଛିଷ୍ଟ— Bhojanābaśesha Leavings of a dinner; orts.

ଭୋଜନାର୍ଥୀ—ସ. ବିଣ. ପୁଂ—୧ । ଭୋଜନ କରିବା ଉଦ୍ଦେଶ୍ୟରେ Bhojanārthī ଉପସ୍ଥିତ, ଭୋଜନାକାଙ୍କ୍ଷୀ—1. Desirous (ଭୋଜନାର୍ଥିନୀ—ସ୍ତ୍ରୀ) for getting a meal. ୨ । ଭୋଜନ ପ୍ରାର୍ଥୀ—2. Soliciting food.

ଭୋଜନୀୟ—ସ. ବିଣ—(ଭୁଜ ଧାତୁ+କର୍ମ. ଅନୀୟ)—ଭୋ,ଂ୍ୟ; Bhojanīya ଖାଇବାର ଉପଯୋଗୀ—Eatable; fit to be partaken of.

ଭୋଜନେଚ୍ଛା—ସ. ବି—୧ । ଭୋକ; ବୁଭୁକ୍ଷା—1. Hunger. Bhojanechchhā ୨ । ଖାଇବାକୁ ଇଚ୍ଛା— 2. Desire for food.

ଭୋଜ ପତି—ସ.ବି—୧ । ସଂସ୍କୃତ ସାହିତ୍ୟର ଅନୁରାଗୀ,ବିଦ୍ୱମାନଙ୍କର ପୃଷ୍ଠ- Bhoja pati ପୋଷକ ଓ ଇନ୍ଦ୍ରଜାଲ ବିଦ୍ୟାର ପ୍ରବର୍ତ୍ତକ ମାଳବର ଭୋଜ ରାଜ, ଭୋଜାଧିପ —ଅନ୍ୟରୂପ ପ୍ରସିଦ୍ଧ ରାଜା; ଭୋଜ ୨ (ଦେଖ)— 1. Name of a famous king of Malwa country. [ଦ୍ର—ମାଳବ ପାଣ୍ଡିତ୍ୟରୁ ଜଣାଯାଏ ଯେ ଏ କାଠଦ୍ୱାରା ଜଳଯାନ ପ୍ରସ୍ତୁତ କରାଇଥିଲେ । କି ପ୍ରକାର କାଠ କେଉଁ କାର୍ଯ୍ୟର ଉପଯୋଗୀ ଏହା ମଧ୍ୟ ତାଙ୍କୁ ଜଣା ଥିଲା । ଏ ଜାହାଜ ପ୍ରସ୍ତୁତ କରିବାର ନିୟମାବଳୀ ଲିପିବଦ୍ଧ କରି 'ଯୁକ୍ତି କଳ୍ପତରୁ' ନାମକ ପୁସ୍ତକ ସଂସ୍କୃତ ଭାଷାରେ ପ୍ରଣୟନ କରିଥିଲେ । ଏ ପୁସ୍ତକର ବିଷୟକୁ ଗ୍ରହଣ କରି ଅଧ୍ୟାପକ ରାଧାକୁମୁଦ ମୁଖର୍ଜି Indian Shipping ଅର୍ଥାତ୍ ଭାରତରେ ଜାହାଜ ଚଳାଚଳ ନାମକ ପୁସ୍ତକ ଇଂରାଜୀ ଭାଷାରେ ଲେଖି ଅଛନ୍ତି । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।] ୨ । କଂସ (ଦ୍ରୁ. ସ) —2. A name of Kaṁsa.

ଭୋଜପତ୍ର—ଦେ. ବି—(ସ. ଭୂର୍ଜ ପତ୍ର)—୧ । ଭୂର୍ଜ ଗଛ—1. The Bhoja patra Birch tree; Betula Bhojapatra. ସ. ନାମ—ଭୂର୍ଜ ପତ୍ର, ଭୂର୍ଜ, ୨ । ଭୂର୍ଜ ଗଛର ପତଳା ବକଳ— ଚର୍ମୀ, ବହୁ ବଲ୍କଳ; 2. The bark of the ମୃଦୁତ୍ୱକ୍, ଛିନ୍ନ ପତ୍ର, ଶିବ, Birch tree. [ଦ୍ର—ଏହା ସ୍ଥିରଚ୍ଛଦ, ପତ୍ର ପୁଷ୍ପକ ହିମାଳୟରେ ୧୪୦୦୦ ଫୁଟ ଉଚ୍ଚତା

ଭୂଜ, ବହୁପଟ୍ଟ, ବହୁଭୃକ୍ — ପର୍ଯ୍ୟନ୍ତ ସ୍ଥାନରେ ଜନ୍ମେ । ଏହାର
ମ. ଭୂର୍ଜପତ୍ର — କାଠ ଖୁବ୍ ଟାଣ ଓ ବହୁକାଳ
ଗୁ. ଭୋଜ ପତ୍ର — ସ୍ଥାୟୀ ଓ ଘର ତିଆରି କାମରେ
भूर्ज(ज)পত্র — ଲାଗେ । ଏହାର ପତ୍ର ଗୋରୁ ଖାଆନ୍ତି ।
भोजपत्र — ଏହାର ଛାଲ ନାଲି ଓ ଫିକ୍କା ଧଳା
ହୁଏ ଓ ଏଥିର ଛାଲ କାଗଜ ପରି ପରସ୍ତ ପରସ୍ତ ହୋଇ
ଛାଡ଼େ । ଛାଲ ଉପରେ ନାଲି ଟୋପମାନ ପଡ଼ି ଥାଏ ।
ଏହାର ପତ୍ରର କ୍ୱାଥ ବାତନାଶକ । ବୈଦ୍ୟକ ମତରେ
ଏହା ବଲକାରକ, କଫ ନାଶକ, କଷାୟ ରସ ଓ ଭୂତଗ୍ରହ.
କର୍ଣ୍ଣ ରୋଗ, ରକ୍ତ ପିତ୍ତ, ରାକ୍ଷସ, ମେଦୋଦୋଷ
ଓ ବିଷନାଶକ । ହି. ଶ ।]

ଭୋଜପୁର—ଦେ. ବି—୧ । ଭୋଜ ରାଜାଙ୍କ ରାଜଧାନୀ; ଧାରାନଗରୀ—
Bhojapur — 1. The name of the capital of king Bhoja (in Malwa).
ଭୋଜ ନଗର } ଅନ୍ୟରୂପ
ଭୋଜପୁରୀ }
୨ । ବିହାର ପ୍ରଦେଶର ଭୋଜପୁର—2. Bhojpur in Bihar.

ଭୋଜ ପୁରୀ—ଦେ. ବି—ବିହାରୀ ଭାଷାର ଏକ ବିକୃତ ଭାଷା—
Bhoja purī — A dialect of the Bihari language.
ভোজপুরী — ବିº—ଭୋଜପୁର ସମ୍ବନ୍ଧୀୟ—Relating to
भोजपुरी — Bhojpur.

ଭୋଜ ପ୍ରବନ୍ଧ—ସଂ.ବି—ଭୋଜରାଜାଙ୍କ ସମ୍ବନ୍ଧୀୟ ଗ୍ରନ୍ଥବିଶେଷ—Name
Bhoja prabandha — of a work dealing with the acts of king Bhcja.

ଭୋଜ ବାଜି—ଦେ. ବି—ବାଜିଗର; ଭେଲକି; କୁହୁକ; ଦୃଷ୍ଟିର ଭ୍ରମ-
Bhoja bāji — ଜନକ ଖେଳ—Legerdemain; feats
ভোজবাজী — of jugglery. ( ଉ—ଦେଖି ଦେଖି ଗଛପଟେ
बाजिगरी — ଏହିପରି ନାନା, ଅଦ୍ଭୁତ ପରିବର୍ତ୍ତନ ଭୋଜବାଜି
ପ୍ରାୟ । ଚନ୍ଦ୍ରାମଣି. ବିକ୍ରମାଦିତ୍ୟ । ) ୨ । ମାୟା—
2. Illusion.

ଭୋଜ ବିଦ୍ୟା—ସଂ. ବି—ଇନ୍ଦ୍ରଜାଲ ବିଦ୍ୟା—The science of
Bhoja bidyā — magical feats or legerdemain.

ଭୋଜୟିତା—ସଂ. ବିଣ. ପୁଂ ( ଭୁଜ୍ ଧାତୁ ଣିଚ୍; ଭୋଜି ଧାତୁ=ଖୁଆଇବା
Bhojayitā — +ତୃ, ଭୋଜୟିତୃ; ୧ମା. ୧ବ )—୧ । ଯେ
(ଭୋଜୟିତ୍ରୀ—ସ୍ତ୍ରୀ) — ଅନ୍ୟ ବ୍ୟକ୍ତିଙ୍କୁ ଖୁଆଏ—1. Feeding
another person. ୨ । ଅନ୍ନଦାତା—2. Giving
or bestowing food on another. ବି—
ଅତିଥିଙ୍କୁ ଖାଇବାକୁ ଦେବା ବ୍ୟକ୍ତି—A host.

ଭୋଜ ରାଜ—ସଂ, ବି ( ନାମ )—ଭୋଜ ୨ ( ଦେଖ )—Bhoja 2
Bhoja rāja — (See) ( ଉ—ଭୋଜ ରାଜ-ସୁତା ଲଭିଲା
ମୋତେ ଭଜି ହ୍ୱାପରେ । ରାଧାନାଥ, ଚନ୍ଦ୍ରଭାଗା । )

ଭୋଜା—ଦେ. ବି ( ସଂ, ଭୋଜ୍ୟ )—ଭୋଜ୍ୟଦ୍ରବ୍ୟ; ଖାଦ୍ୟ—
Bhojā — Victuals; food. ପ୍ରାଦେ ଗଡ଼ଜାତ ) ବି—
ଭୂଜା, ମୁଢ଼ି, ହୁଡ଼ୁମ୍ବଆଦି ଜଳଖିଆ—Tiffin consisting of fried rice. ( ଉ—ଛଡ଼ି ଦେଇଥାଏ
ମୁଖରେ ସଙ୍ଗୀତ, ଅଣ୍ଟି ଭୋଜା ଖାଇ ହୋଇ ଆନନ୍ଦିତ ।
କେଶବ. ବୈତରଣୀ । ]

ଭୋଜାଲି—ଦେ. ବି ( ସଂ. ଭୁଜବାଲ; ତୁଲ. କରବାଲ )—ବାଙ୍କ
Bhojāli — କଟୁରୀ; ଗୁର୍ଖାମାନଙ୍କର କୁକ୍ରୀ—A bent bladed
ভাজালিআ, ভুজালী — bill hook; a Goorkha's kukri.
भुजाली

ଭୋଜି—ଦେ. ବି ( ସଂ. ଭୋଜନ )—ବହୁ ଲୋକଙ୍କୁ ଦିଆଯିବା ଭୋଜନ
Bhoji — —A feast; a dinner partaken of by
ভোজ — many people. [ ଉ—ଭୈରବ ଭୈରବୀ-ଭୋଜି
भोज — ଭୂମି ପ୍ରାୟ ଦିଶିଲା ସଂଗ୍ରାମ-ସ୍ଥଳୀ । ରାଧାନାଥ. ପାର୍ବତୀ । ]

ଭୋଜି କରିବା—ଦେ. କ୍ରି—କେତେକ ଲୋକ ମିଶି ଗୋଟିଏ ଭୋଜିର
Bhoji karibā — ଉଦ୍ୟମ କରିବା—To get up a feast)
ভোজ করা — भोज करना

ଭୋଜି ଦେବା—ଦେ. କ୍ରି—ବହୁଲୋକଙ୍କୁ ନିମନ୍ତ୍ରଣ କରି ଭୋଜନ
Bhoji debā — ଦେବା—To bestow a feast on others.
ভোজ দেওয়া — भोज देना

ଭୋଜିବା—ଦେ ( ପଦ୍ୟ ) କ୍ରି—ଖାଇବା—To eat. ( ଉ—
Bhojibā — ଭୋଜିଲେ ସର୍ବଘରେ ତହିଁ । ପ୍ରାଚୀ. କାର୍ତ୍ତିକମାହାତ୍ମ୍ୟ)
খাওয়া — भोजन करना

ଭୋଜି ଭାତ—ଦେ. ବି—ଭୋଜି ନିମନ୍ତେ ପ୍ରସ୍ତୁତ ଅନ୍ନ ବା ଖାଦ୍ୟ—
Bhoji bhāta — Food prepared for a feast.
ভোজের অন্ন — भोजका भात

ଭୋଜୀ—ସଂ. ବିଣ. ପୁଂ ( ଭୁଜ୍ ଧାତୁ+ଇନ୍ ୧ମା. ୧ବ )—ଯେ ଖାଏ;
Bhojī — ଭୁକ୍—Eating; subsisting on. [ ଦ୍ର—
(ଭୋଜିନୀ—ସ୍ତ୍ରୀ) — ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—
ମାଂସଭୋଜୀ, ଶାକାନ୍ନଭୋଜୀ ଇତ୍ୟାଦି । ]

ଭୋଜ୍ୟ—ସଂ. ବିଣ ( ଭୁଜ୍ ଧାତୁ+କର୍ମ. ଯ )—ଭୋଜନୀୟ; ଖାଦ୍ୟ;
Bhojya — ଖାଇବା ଉପଯୋଗୀ—Eatable; fit to be
taken. [ ଦ୍ର—ଭୋଜ୍ୟ ଓ ଭୋଗ୍ୟ ଏକ ଧାତୁରୁ ଓ
ଏକ ପ୍ରତ୍ୟୟରୁ ନିଷ୍ପନ୍ନ; କିନ୍ତୁ ଭୋଗ୍ୟର ଅର୍ଥ ଭୋଗ
କରିବାର ଉପଯୋଗୀ । ] ବି—୧ । ଖାଦ୍ୟବସ୍ତୁ—
1. Food. ୨ । ଖାଇବାପାଇଁ ଅଭିପ୍ରେତ ଦ୍ରବ୍ୟଚୟ—
2. Eatables; victuals; provisions.
୩ । ସୁସ୍ୱାଦୁ ବା ରୁଚିକର ଖାଦ୍ୟ—3. A dainty
(Apte). ୪ । ଲାଭ—4. Advantage; benefit
(Apte). ୫ । ପିତୃପୁରୁଷଙ୍କୁ ପ୍ରଦତ୍ତ ଭୋଜ୍ୟବସ୍ତୁ—
5. Eatables offered to the manes (Apte).
୬ । ସ୍ୱର୍ଗଗତ ପିତୃପୁରୁଷଙ୍କ ଶ୍ରାଦ୍ଧ ଉପଲକ୍ଷରେ ବ୍ରାହ୍ମଣଙ୍କୁ
ଉତ୍ସୃଷ୍ଟ ଖାଦ୍ୟଦ୍ରବ୍ୟସମ୍ଭାର; ସିଧା; ସଞ୍ଜା—6. Victuals
presented to Brāhmaṇas on the occasion
of Srāddha. [ ଦ୍ର—ଯେଉଁମାନେ ଶ୍ରାଦ୍ଧ ଦିନ ପିତୃ-
ଲୋକଙ୍କୁ ପିଣ୍ଡ ଦିଅନ୍ତି ସେମାନେ ବ୍ରାହ୍ମଣମାନଙ୍କୁ ଅରନ୍ଧା
ଖାଦ୍ୟଦ୍ରବ୍ୟ ସମ୍ଭାର ଦାନ କରନ୍ତି । ]

ଭୋଜ୍ୟ ଉଚ୍ଛ(ଚ୍ଛ)ର୍ଗ—ଗ୍ରା. ବି—ଭୋଜ୍ୟୋତ୍ସର୍ଗ ( ଦେଖ )
Bhojya uchha(chchha)rga Bhojyotsarga (See)

ଭୋଜ୍ୟକାଳ—ସଂ. ବି—ଖାଇବାର ନିର୍ଦ୍ଧାରିତ ସମୟ—
Bhojyakāla Meal-time ( Apte ).

ଭୋଜ୍ୟ ଟେକି ଦେବା—ଦେ. କ୍ରି—ପିତୃଗଣଙ୍କ ଶ୍ରାଦ୍ଧ ଉପଲକ୍ଷରେ
Bhojya ṭeki debā ଖାଦ୍ୟ ସାମଗ୍ରୀ ବ୍ରାହ୍ମଣ ହାତକୁ ଉଠାଇ
ଭୋଜ୍ୟି ଦେଓୟା ଦେଇ ଦାନ କରିବା—To hand over
भोजन देना victuals to a Brāhmaṇa on the occasion of Srāddha.

ଭୋଜ୍ୟାତ୍ମକ—ସଂ. ବଣ (ଭୋଜ୍ୟ+ଆତ୍ମନ୍+କ)—୧ । ଭୋଜ୍ୟ ବା
Bhojyātmaka ଖାଦ୍ୟଦ୍ରବ୍ୟ ସମ୍ବନ୍ଧୀୟ—1. Relating to
food. ୨ । ଭୋଜ୍ୟୋତ୍ସର୍ଗ ସମ୍ବନ୍ଧୀୟ—2. Relating to the offering of victuals to a Brāhmaṇa.

ଭୋଜ୍ୟାନ୍ନ—ସଂ. ବି ( କର୍ମଧା )—ଭୋଜନର ଉପଯୋଗୀ ଅନ୍ନ—
Bhojyānna Food proper to be taken.

ଭୋଜ୍ୟୋତ୍ସର୍ଗ—ସଂ. ବି—ଶ୍ରାଦ୍ଧ ଦିବସରେ ବ୍ରାହ୍ମଣଙ୍କୁ ଅର୍ପିବା ଖାଦ୍ୟ
Bhojyotsarga ସାମଗ୍ରୀ ଉତ୍ସର୍ଗ କରିବାରୂପ କର୍ମ—The offering of victuals to a Brāhmaṇa on the occasion of a Srāddha.

ଭୋଟ୍—ବୈଦେ. ବି (ଇଂ)—କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ଆପଣା
Bhoṭ ମଧ୍ୟରୁ ବ୍ୟକ୍ତିବିଶେଷଙ୍କୁ ନିର୍ବାଚନ କରିବା ପାଇଁ
ଭୋଟ ଦଳସ୍ଥ ପ୍ରତ୍ୟେକ ବ୍ୟକ୍ତିଙ୍କର ଦେବା ମତ—Vote.
मोट

ଭୋଟ୍ ଦାତା—ଦେ. ବି—ଭୋଟର ( ଦେଖ )
Bhoṭ dātā Voṭar ( See )
ভোটদাতা मोटदाता

ଭୋଟ୍ ଦେବା—ଦେ. କ୍ରି—ଆପଣା ମଧ୍ୟରୁ କୌଣସି ବ୍ୟକ୍ତିଙ୍କର
Bhot debā ନିର୍ବାଚନ ନିମନ୍ତେ ମତ ଦେବା—
ভোট দেওয়া To vote for; to give vote for.
मोट देना

ଭୋଟ—ସଂ. ବି—୧ । ଭୋଟାଙ୍ଗ (ଦେଖ)—1. Bhoṭāṅga (See)
Bhoṭa ୨ । ତିବତ (ଦେଖ)—2. The country of
ভোট Tibet. ଦେ. ବି—୧ । ଭୋଟ କମ୍ବଳ ( ଦେଖ )
मोटिया कम्बल 1. Bhoṭa kambaḷa. ୨ । ନାଲି କମ୍ବଳ—
2. Red blanket.

ଭୋଟ ଅମଳ—ଦେ. ବି (ସଂ. ଭଟ୍ଟ)—ବହୁ ପୁରାତନ—
Bhoṭa amaḷa Very old.
মারাঠা আমলের (ଦି—ଭୋଟ ଅମଳର ଚଟ । କୁନ୍ତଳାକୁମାରୀ.
आदम जवानाका ନଅଭୁଣ୍ଡୀ ।)

ଭୋଟ କମ୍ବଳ—ଦେ. ବି—ଭୁଟାନ ଦେଶୀୟ ଉତ୍କୃଷ୍ଟ ମେଷ ଲୋମ
Bhoṭa kambaḷa ପ୍ରସ୍ତୁତ କମ୍ବଳ—Blanket imported
[ଭୋ(ଭୁ)ଟିଆ କମ୍ବଳ—ଅନ୍ୟରୂପ] to India from
ভোট কম্বল मोटिया कम्बल Bhutan.

ଭୋଟର୍—ବୈଦେ. ବି (ଇଂ)—ଯେ ଭୋଟ ଦିଏ; ନିର୍ବାଚକ—
Bhoṭar Voter.
ভেটার मोटर (ଭୋଟେର—ପ୍ରାଦେଶିକ, ଗଞ୍ଜାମ)

ଭୋଟା—ଦେ. ବଣ. ପୁଂ—ମୋଟା; ସ୍ଥୂଳ; ସ୍ଥୂଳକାୟ—
Bhoṭā Corpulent.
(ଭୋଟୀ—ସ୍ତ୍ରୀ) মোটা मोटा

ଭୋଟାଙ୍ଗ—ସଂ. ବି ( ଭୋଟ+ଅଙ୍ଗ; ତିବତ ଦେଶର ଅଙ୍ଗ )—
Bhoṭāṅga ଭୁଟାନ୍ ଦେଶ; ଭାରତରେ ଉତ୍ତର ପ୍ରାନ୍ତବର୍ତ୍ତୀ
ନେପାଳ ନିକଟସ୍ଥ ସ୍ଵାଧୀନ ରାଜ୍ୟ—Bhuṭān; name of a free state in the north of India near Nepal.

ଭୋଟାଧିକାର—ଦେ. ବି—ଭୋଟ ଦେବା ବା ନିର୍ବାଚନ କରିବାକୁ
Bhoṭādhikāra ଆଇନ ପ୍ରଦତ୍ତ ଅଧିକାର—Right of
ভোটাধিকার मोटाधिकार voting.

ଭୋଟାନ—ଦେ. ବି (ସଂ. ଭୋଟାଙ୍ଗ)—ଭୋଟାଙ୍ଗ (ଦେଖ)
Bhoṭān Bhoṭāṅga (See)
ভুটান भु(भो)टान

ଭୋଟିଆ—ଦେ. ବଣ (ସଂ. ଭୋଟୀୟ)—୧ । ଭୋଟା ( ଦେଖ )—
Bhoṭiā 1. Bhoṭā ( See ). ୨ । ଭୁଟାନ୍ ଦେଶୀୟ—
ভুটিয়া 2. Belonging to the country of Bhuṭān.
मोटिया (ଯଥା—ଭୋଟିଆ ଟାଙ୍ଗଣ=ଘୋଡ଼ା) ବି—୧ । ଭୁଟାନ-
ଦେଶବାସୀ ଜାତିବିଶେଷ—1. People of the Bhuṭān country. ୨ । ଏହି ଜାତିର କଥିତ ଭାଷା-
2. The vernacular of the Bhutanese people.
[ ଦ୍ର—ଏ ଭାଷା ତିବ୍ବତ, ଭୁଟାନ, କାଶ୍ମୀର, ସିକିମ୍ ଓ ଦାର୍ଜିଲିଙ୍ଗରେ କଥିତ ହୁଏ ।]

ଭୋଟୀ—ଦେ. ବି. ସ୍ତ୍ରୀ—୧ । ପ୍ରଶସ୍ତ ଦେହା—1 Corpulent; fat
Bhoṭī (female). ୨ । ଅଦୁଗ୍ଧବତୀ ଗାଈ)—2. (a cow)
(ଭୋଟେଇ—ଅନ୍ୟରୂପ) Giving no milk.

ଭୋଟୀୟ—ସଂ. ବଣ—ଭୋଟ ଦେଶୀୟ— Relating to
Bhoṭīya Tibet or Bhutan; Bhutanese

ଭୋଡ଼କା—ଦେ. ବି—ରୁଷିଆ ଦେଶରେ ପ୍ରଚଳିତ ଏକ ପ୍ରକାର ମାଦକ
Bhoḍ-kā ପାନୀୟ—A sort of liquor used in
ভোড়কা भोडका Russia; Vodka.

ଭୋଡ଼ଙ୍ଗ—ଦେ. ବି—ଭୂରୁଙ୍ଗ; ରଣଶିଂଘା—
Bhorḍaṅga Clarion; trumpet.
ভোরঙ্গ; তুরী तुरही

ଭୋଡ଼ଙ୍ଗା—ଦେ. ବଣ—୧ । ଫୋପଲ; ଶୂନ୍ୟଗର୍ଭ—1. Hollow.
Bhorḍaṅgā ୨ । ବଡ଼; ବଡ଼ ଓ ଫୋପଲ—2. Big and
মোটা ও ফাঁপা मोटाऔरखोखला hollow.

ଭୋଡ଼ଙ୍ଗିଆ—ଦେ. ବି—ଗ୍ରାମଜନଯୋଗରେ ଭୂରୁ ବା ରଣଶିଙ୍ଗା
Bhorḍaṅgiā ବଜାଉଥିବା ବ୍ୟକ୍ତି—A trumpeter. (ଦି—
তুরীওয়ালা तुरहीवाला ଚନ୍ଦ୍ର ସୂର୍ଯ୍ୟର ଓହାଡ଼, ବନ୍ଧୁର ଗୁମର ଫାଡ଼, ଭୋଡ଼ଙ୍ଗିଆ ଆସାନେ ଚଢ଼ି ଜଗିଥ ଦେଇ । ପ୍ରାଚୀ. ନଳ ଚରିତ । )

**ଭୋଣ୍ଡା**—ଦେ. ବି—ମାନ୍ଦ୍ରାଜ ପ୍ରଦେଶରେ ଏକ ଜାତୀୟ ଲୋକଙ୍କ କଥିତ Bhondā ଓଡ଼ିଆର ଏକ ବିକୃତ ଭାଷା (ମାନ୍ଦ୍ରାଜ ସେଲ୍ସ ରିପୋର୍ଟ—A dialect of the Oriya language spoken by some Oriyas living in a portion of the Madras Presidency.

**ଭୋଦ(ଦୁଅ)**—ଗ୍ରା. ବି (ସଂ. ଭାଦ୍ର)—ଭାଦ୍ର ମାସ—The month of Bhoda(dua) Bhādra. (ଯଥା—ଭୋଦୁଅ ମାସର ଜହ୍ନି ଫୁଲ ଗାଁର ଖୁଦୁରୁକୁଣୀ-ଓଷା-ମେଳ । ନନ୍ଦକିଶୋର-ଭାଦର **भादो** ଗୀତାବଳୀବାସ ।)

**ଭୋ ଦଇବ**—ଦେ. ଅ—ହା ଦୈବ ! ହାଇରେ କପାଳ !—Bho daiba (Interjection) O my ill-luck ! (ଭୋ ଧରମ; ଭୋ ବିଧାତା—ଅନ୍ୟରୂପ) **हे दैव** हे धर्म

**ଭୋଦୁଅ ଫୁଟା**—ପ୍ରାଦେ ( ଗଡ଼ଜାତ ) ବି—ଶୂଦ୍ରଘରର ଯୁବତୀ Bhodua phutā କନ୍ୟାମାନେ ଭାଦ୍ର ମାସରେ ଶାଶୁଘରୁ ବାପ ଘରକୁ ଆସିବା—The coming back of a Śūdra daughter-in-law to her father's house from the house of her father-in-law during the month of Bhādra.

**ଭୋଦୁଅ ମଙ୍ଗଳା(ଲା,ଲି)**—ପ୍ରାଦେ( ଗଡ଼ଜାତ ) ବି ( ଭାଦ୍ରମାସରେ ବା Bhodua maṅgalā(lā,li) ବର୍ଷାଘରେ ଏହା ଫୁଟିବାରୁ)—ଏକପ୍ରକାର ଛତୁ—A kind of mushroom.

**ଭୋଦୁଆ**—ଦେ. ବିଣ—ଭୋଦେଇ ( ଦେଖ ) Bhoduā Bhodei ( See )

**ଭୋଦେଇ**—ଦେ. ବିଣ ( ସଂ. ଭାଦ୍ର )—ଭାଦ୍ରମାସରେ ଜନ୍ମିବା ବା Bhodei ଅମଳ ହେବା—Produced in or harvested ଭାଦୋଇ during the month of Bhādra. ଦେ. ବି **भदई** —ଏକପ୍ରକାର ଚିଙ୍ଗୁଡ଼ି ମାଛ—A kind of shrimp. [ ଦ୍ର—ଏମାନେ ଭାଦ୍ରବ ମାସରେ ବହୁ ପରିମାଣରେ ଧରାଯାଆନ୍ତି । ]

**ଭୋଦେଇ ଖରା**—ଦେ. ବି—ଭାଦ୍ର ମାସର ପ୍ରଚଣ୍ଡ ଖରା—The Bhodei kharā strong heat-rays of the sun ( ଭୋଦୁଅ ଖରା—ଅନ୍ୟରୂପ ) during Bhādra. [ଦ୍ର—ଏ ଭାଦ୍ରେରରୋଦ ମାସରେ ଲୁଗାପଟା ଖରାରେ ଦେଲେ ଲୁଗାପଟାରେ **भादोकारौद** ଅଉ ପୋକ ଲାଗେ ନାହିଁ । ]

**ଭୋଦେଇ ଖସା**—ଦେ. ବି—ଭାଦ୍ର ମାସରେ ଅମଳ ହେବା ଏକପ୍ରକାର Bhodei khasā ରାଶି—A kind of sesamum ଭାଦେଇ ତିଲ harvested in Bhādra. [ ଦ୍ର—ଅନ୍ୟ ପ୍ରକାର **भदइतिल** ଖସାର ନାମ ମାଘୀ ଖସା । ]

**ଭୋଦେଇ ଧାନ**—ଦେ. ବି—ବିଆଳି ଧାନ—Bhodei dhāna Paddy harvested during rains. ଭାଦୋଇ ଧାନ **भदइधान, आमनधान**

**ଭୋଦେଇ ଫସଲ**—ଦେ. ବି—ଭାଦ୍ର ମାସରେ ଅମଦାନି ହେବା ଫସଲ Bhodei phasala (ବିଆଳି, ମାଣ୍ଡିଆ, ବାଦଗ୍ର, ମକା, କୋଦୁଅ ଭାଦୋଇ ଫସଲ ଇତ୍ୟାଦି )—The crops harvested in **भदइफसल** Bhādra.

**ଭୋ ଦେବ**—ସଂ. ଅ (ସମ୍ବୋଧନ)—ମହାପ୍ରଭୁ ଓ ରାଜା ଆଦିଙ୍କୁ ଉଦ୍ଦେଶ୍ୟର Bho deba ସମ୍ବୋଧନ; ହେ ପ୍ରଭୋ—( Interjection ) Oh ଭোদেব **भोदेव** Lord !

**ଭୋଦେ(ଦୈ)ବା(ବି)**—ଦେ. କ୍ରି. ବିଣ—୧ । କେବେ; କମିଛି; ଅକାଳେ Bhode(dai)bā(bi) ସକାଳେ—1. Untimely and at କାଲেভদ্রে irregular intervals. ୨ । ଦୈବାତ୍; ଅକସ୍ମାତ୍—**कभीकभी** 2. Accidentally. ୩ । କ୍ୱଚିତ୍; କଦାଚିତ୍—3 Scarcely. ୪ । ଅନିୟମିତରୂପେ ଓ ଅତି ଅଳ୍ପ ଥର—4. At times, few and far between. (ଯଥା—ମୁଁ ଭୋଦେବା କଲିକତା ଯାଏଁ । )

**ଭୋନ୍ଦଡ଼**—ଦେ. ବିଣ (ବଙ୍ଗଳାରୁ ଅନୁକୃତ) (ସଂ. ଉଦ୍=ଓଧ)—Bhondarda ୧ । ଓଧପର ଭାରକୁଣ୍ଡା ମୁହଁ—1. Having a (ଭୋନ୍ଦା[ନ୍ଦୁ]—ଅନ୍ୟରୂପ) scowling face. ୨ । ଓଲୁ—ভোঁদা **भोंदु** 2 Foolish.

**ଭୋପା**—ଦେ. ବି—୧ । ମହାଦେବ, ପାର୍ବତୀ ଓ ଗ୍ରାମଦେବତାଙ୍କର Bhopā ଶୂଦ୍ର ସେବକ ବା ମାଳ—1. A caste of Śūdra Sebakas of Śiba and Pārbati or other village gods and goddesses. ୨ । ବାଗାଡ଼ମ୍ବର-ପ୍ରିୟ ବ୍ୟକ୍ତି—2. A braggart. ୩ । ମିଛୁଆ—3. A liar. ବିଣ—୧ । (ସଂ. ବହୁଭାଷୀ) ଗପଡ଼ି—ବକুয়া 1. Talkative. ୨ । ବାଗାଡ଼ମ୍ବର ପ୍ରିୟ; ଗପଡ଼ି—**गपक्कड** 2. Bragging; boastful. ୩ । ମିଛୁଆ;ମିଥ୍ୟାବାଦୀ—3. Lying. ୪ । ଅବ୍ୟବସ୍ଥିତ; ଯେଉଁ ଲୋକର କାମରେ କିଛି ଠିକ୍ ଠିକଣା ନ ଥାଏ—4 Whimsical. ୫ । ଅଲୁରୁବାଲୁରୁଆ—5. Unmethodical. ୬ । ନିର୍ବୁଦ୍ଧିଆ; ବିବେଚନା ଶୂନ୍ୟ—5. Foolish, unthoughtful.

**ଭୋପାଳ**—ଦେ. ବି (ନାମ)—ମଧ୍ୟଭାରତରେ ମୁସଲମାନମାନଙ୍କ ଦ୍ୱାରା Bhopāla ଶାସିତ ଏକ ପ୍ରଧାନ ମିତ୍ରରାଜ୍ୟ—A native ভূপাল State in Central India ruled by **भोपाल** a Mussalman Nabab. [ ଦ୍ର—ଭୂପାଳ ରାଜା ଭୋପାଳଙ୍କ ଦ୍ୱାରା ନଗର ସ୍ଥାପିତ ହୋଇ ଥିବାରୁ ତାହାଙ୍କ ନାମାନୁସାରେ ଏହାର ନାମ ଭୋପାଳ ହୋଇଥିଲା । (ମଦନମୋହନ-ତୀର୍ଥଦର୍ଶନ) । ]

**ଭୋପାଳିଆ**—ଦେ. ବିଣ—୧ । ମିଥ୍ୟା—1. False ୨ । ଭୋପା Bhopāliā (ଦେଖ)—2. Bhopā (See).

**ଭୋବନ**—ଦେ. ବି—ପ୍ରାଚୀନ ଉତ୍କଳର କ୍ଷତ୍ରିୟଜାତି ବିଶେଷ—Bhobana A class of the Kshatriyas of ancient Orissa.

**ଭୋବନି**—ଗ୍ରା. ବି. ପୁଂ—(ଆଦରାର୍ଥକ) ଭୁବନେଶ୍ୱରର ଡାକ ନାମ—Bhobani A name for calling a person named ভুবন **भुवन** Bhubaneśwara. ( ଭୋବନା—ଅନାଦରାର୍ଥକ )

ଭୋବନ(ନେ)ଶ(ଶ୍ୱ)ର—ଗ୍ରା. ବି (ସ୍ଥାନର ନାମ)—ଭୁବନେଶ୍ୱର
Bhobani(ne)śa(śwa)ra (ଦେଖ)—Bhubaneswara (See).
ভুবনেশ্বর भुवनेसर

ଭୋ-ଭା—ଦେ. ଅ—୧ । ଭେଁ ଭେଁ; ଉଚ୍ଚ କାନ୍ଦଣାର ଶବ୍ଦ—
Bho-bhā 1. Sound of loud lamentation.
( ଭେଁ ଭେଁ, ଭୋ ଭୋ—ଅନ୍ୟରୂପ )
ভেউ ভেউ भोभा; मैं मैं

ଭୋ ଭୋ ଡାକ ଛାଡ଼ିବା—ଦେ. କ୍ରି—ଅତ୍ୟନ୍ତ ବିକଳ ହୋଇ ଉଚ୍ଚ-ସ୍ୱରରେ କ୍ରନ୍ଦନର ଶବ୍ଦ କରିବା—To make a loud bewailing sound.
Bho bho dakā chhārdibā
ভেউ ভেউ করে কান্দা
मैं मैं होना (करना)

ଭୋର—ଦେ. ବିଣ ( ସଂ. ଭୃ ଧାତୁ=ପୂରଣ କରିବା )—୧ । ପୂର୍ଣ୍ଣ—1. Filled up. ୨ । ଉଜ୍ଜ୍ୱଳ; ଜାକଜମକ—2. Splendid; bright; dazzling. ୩ । ଆଡ଼ମ୍ବର-ପୂର୍ଣ୍ଣ—3. Pompous. ୪ । ସମାପ୍ତ—4. Finished; completed. ୫ । ବିଭୋର; ଭୋଳ—5. Enchanted ୬ । ପ୍ରକାଶିତ; ପ୍ରକଟିତ—6. Published. ୭ । ନିଶାରେ ଉନ୍ମତ୍ତ—7. Intoxicated.
Bhor
ভোর
भोर

ବି—୧ । ( ସଂ. ଭୃ ଧାତୁ; ସୃଷ୍ଟିର ଶେଷ ବା ସମାପ୍ତି )—ପ୍ରତ୍ୟୁଷ; ପ୍ରାତଃକାଳ—1. Morning; dawn; day-break. ୨ । ଶେଷ; ସମାପ୍ତି—2 Completion; finish ୩ । ଶାନ୍ତି—3. Lustre, ୪ । ଆଡ଼ମ୍ବର—4. Ado; pomp.
শেষ खतम
আড়ম্বর ठाटबाट

ଭୋର କରିବା—ଦେ. କ୍ରି—କୌଣସି ବିଷୟକୁ ସାଧାରଣରେ ପ୍ରକଟିତ କରିବା—To publish a matter.
Bhor karibā
চাউর করা प्रकट करना

ଭୋର ବେଳ(ଳା)—ଦେ. ବି—ପ୍ରତ୍ୟୁଷକାଳ—
Bhor beḷa(ḷā) Early morning; dawn.
ভোর বেলা भोरका वक्त

ଭୋଳ—ଦେ. ବିଣ ( ସଂ. ବିହ୍ୱଳ )—୧ । ମୋହିତ; ମୁଗ୍ଧ; ବିହ୍ୱଳ—1. Enchanted ୨ । ବାଇ; ବାଉଳ; ଉନ୍ମତ୍ତ—2. Intoxicated; maddened. (ଉ—ମଦିର ପାନେ ଭୋଳ ହୋଇ, ଯେତେ ବିବସ୍ତ୍ର ନ ଜାଣଇ । ଜଗନ୍ନାଥ. ଭାଗବତ ।) ୩ । ହିତାହିତ ବିବେଚନା ଶୂନ୍ୟ-3. Incapable of distinguishing between right and wrong. ୪ । ଭ୍ରାନ୍ତ—4. Mistaken. ୫ । ବାଉଳା; ବିସ୍ମରଣଶୀଳ; ଯେ ଭୁଲିଯାଏ—5. Forgetful. (ଉ—ଅପୂଅ ଗେହ, ଗଙ୍ଗେଇଥି ଭୋଳ, ଥୁଆ ପଦୁରିଥା ଘରେ ନିନ୍ଦ ଗୋଳ—ଢଗ ।)
Bhoḷa
ভোল
भोर

ବି—୧ । ଉନ୍ମତ୍ତତା—1. Madness. ୨ । ଭ୍ରାନ୍ତି; ଭ୍ରମ—2. Mistake. ୩ । ବାଉଳା; ବିସ୍ମୃତି—3. Forgetfulness; oblivion. ୪ । ଶୂଦ୍ର ଓ ମସ୍ତାନମାନଙ୍କ ବଂଶୋପାଧି ବିଶେଷ—4. A family title of Śūdras and Mastānas. ୫ । (ସଂ. ଭୋଳ) ଚିଲିକାରେ ମିଳିବା ଏକ ପ୍ରକାର ମାଛ—5. A class of salt-water fish ( in Chilkā ). ୬ । ଜମିର ବନ୍ଧରେ ବା ହୁଡ଼ାରେ ପୂରିବା କଣା ବା ଗାତଅ—6. A hole under a ridge or embankment. ଗ୍ରାଦେ.(ଗଡ଼ଜାତ) ବି - ଯେଉଁ ଚିକିଟା ଲୁଣି ମାଟି ବର୍ଷା ଦିନେ ଫଲଫଲର ଯାଏ—Saline soil which becomes swollen during the rains. [ଦ୍ର—ଜଙ୍ଗଲ ଅଞ୍ଚଳରେ ଏହି ଲୁଣି ମାଟି ବର୍ଷା ପାଣି ସଙ୍ଗେ ଧୋଇ ହୋଇ ଆସି ଯେଉଁ ସ୍ଥାନରେ ଜମା ହୋଇଥାଏ, ସେହି ଲୁଣି ପାଣି ଓ ମାଟିକୁ ଖାଇବା ପାଇଁ ସେଠାକୁ ମୃଗ, ସମ୍ବର ଓ ଗୟଳମାନେ ଆସନ୍ତି । ବାଣୁଆମାନେ ସେ ସ୍ଥାନ ଉଣ୍ଡି ରହି ରାତିରେ ଲୁଣ ଉହି ଭୋଳ ଖାଇବାକୁ ଆସିବା ପଶୁଙ୍କୁ ଶିକାର କରନ୍ତି ।] ସଂ. ବି—ବୋଦସି ମାଛ ପରି ଏକ ପ୍ରକାର କାଉଁଥ ମାଛ (ଏହାର ଧଳା ଦେହରେ ନେଳିଆ ଛିଟ ଥାଏ; ଗାଲରି ଶ୍ଳେଷ ଓ ମୁହଁ ପାଖରେ ବିସ୍ତୃତ; ବଳସିରେ ସହଜରେ ଧରା ପଡ଼େ—ଯୋଗେଶ୍ବର । ଯାଠାର୍ଥୀମାନେ ଏ ମାଛ ଖାଇଲେ ପାଠ ଭୁଲି ଯାଆନ୍ତି ବୋଲି ଲୋକଙ୍କ ବିଶ୍ୱାସ ଅଛି) —Barellius Bola (fish).
ভোল विस्मरण
भोल
ভোল

ଭୋଳ ହେବା —ଦେ. କ୍ର—୧ । ଭୁଲିଯିବା—1. To forget. ୨ । ବାଉଳା ବା ଭ୍ରାନ୍ତ ହେବା—2. To become mad. ୩ । ନିଶାରେ ଉନ୍ମତ୍ତ ହେବା—3. To be intoxicated.
Bhoḷa hebā
বিহ্বল হওয়া भूलना, पगला होना

ଭୋଳା—ଦେ. ବିଣ. ପୁଂ (ସଂ. ବିହ୍ୱଳ)—୧ । ଉନ୍ମତ୍ତ —1. Intoxicated. (ଉ—ସାରସ ଗନ୍ଧ ଅବଳା, ସାର ସଙ୍ଗତ ପାଇ ମୁହିଁ କରନ୍ତେ, ସ୍ୱାଦେ ହେଉ ଥାଇ ଭୋଳା । ଉପେନ୍ଦ୍ର, ଛାନ୍ଦ ଗୀତ ।) ୨ । ବିସ୍ମରଣଶୀଳ—(ଭୋଳାପଣ—ବି) 2. Forgetful. ୩ । ବାଉଳା—3. Mad. ୪ । ଅକପଟ (ବ୍ୟକ୍ତି); ସରଳ ହୃଦୟ—4. Frank.
Bhoḷā
ভোলা
भोला

ବି—୧ । ଭୋଳାନାଥ (ଦେଖ)—1. Bhoḷānātha (See). ୨ । ଭୋଳାନାଥର ଡାକ ନାମ —2. A name for calling Bhoḷānātha.

ଭୋଳା ନାଥ—ଦେ. ବି—୧ । ମହାଦେବ; ଶିବ—1. God Śiba. [ଦ୍ର—ମହାଦେବ ସର୍ବଦା ଗଞ୍ଜେଇ ନିଶାରେ ଭୋଳ ଥିବାରୁ ତାହାଙ୍କର ଏହି ଲୌକିକ ନାମ ହୋଇଅଛି ।] ୨ । ଲୋକଙ୍କୁ ଦିଆଯିବା ନାମ—2. A name given to males. ଦେ. ବିଣ—ବିସ୍ମରଣଶୀଳ—Forgetful.
Bhoḷā nātha
ভোলানাথ
भोलानाथ

ଭୋଳି—ସଂ. ବି—ଓଟ—Camel (Apte). ଦେ. ବି· ପୁଂ—(ଅଦରାର୍ଥକ) ଭୋଳାନାଥର ଡାକ ନାମ—A name for calling Bhoḷānātha.
Bhoḷi

ଭୋଳିତ—ଦେ. ବିଣ ( ସଂ. ବିହ୍ୱଳିତ )—୧ । ଭୋଳ; ମୁଗ୍ଧ—1. Enchanted. ୨ । ଉନ୍ମତ୍ତ—2. Intoxicated. ୩ । ବିସ୍ମରଣଶୀଳ; ଭ୍ରାନ୍ତ—3. Forgetful; oblivious.
Bhoḷita
ভোল
भोर

ଭୌଗୋଳିକ—ସଂ.ବିଣ (ଭୂଗୋଳ+ଇକ)—୧ । ଭୂଗୋଳ ସମ୍ବନ୍ଧୀୟ—
Bha**u**golika 1. Geographical; relating to the terrestrial globe. ୨ । (ପୁଂ) ଭୂଗୋଳ ବିଦ୍ୟା-ବିଶାରଦ—2. Versed in geography.

ଭୌଜଙ୍ଗ—ସଂ. ବିଣ (ଭୁଜଙ୍ଗ+ଅ)—ସର୍ପ ସମ୍ବନ୍ଧୀୟ—Serpentine.
Bha**u**janga ସଂ. ବି—ଅଶ୍ଳେଷା ନକ୍ଷତ୍ର—The 9th lunar mansion. ( ନକ୍ଷତ୍ର ଶବ୍ଦରେ ଟୀକା ଦେଖ)

ଭୌଜି ପ୍ରାଦେ. (ବସ୍ତର) ବି (ଭୂଲ ଏହି ଅର୍ଥରେ ହିନ୍ଦୀ ଭୌଜାଇ
Bha**u**ji ଶବ୍ଦ)—ଭାଉଜ—The wife of one's elder brother.

ଭୌଜ୍ୟ—ସଂ. ବି ( ଭୋଜ+ଯ )—ଯେଉଁ ରାଜ୍ୟ କେବଳ ରାଜାଙ୍କ
Bha**u**jya ସୁଖ ଭୋଗ ଦୃଷ୍ଟିରେ ଶାସିତ ହୁଏ, ପରନ୍ତୁ ପ୍ରଜା ପାଳନ ଓ ପ୍ରଜାଙ୍କ ମଙ୍ଗଳ ପ୍ରତି ଦୃଷ୍ଟି ରଖାଯାଏ ନାହିଁ ( ହି. ଶ )—A kingdom of which the government is run for the profit of the ruler and not in the interest of the ruled.

ଭୌଟ୍ଟ—ସଂ. ବିଣ (ଭୋଟ୍ଟ+ଅ)—ତିବ୍ବତୀୟ (ହି. ଶ)—
Bha**u**tta Tibetan.

ଭୌତ—ସଂ. ବିଣ ( ଭୂତ+ଅ )—୧ । ପଞ୍ଚଭୂତ ସମ୍ବନ୍ଧୀୟ—
Bha**u**ta 1. Relating the 5 elements. ୨ । ଭୂତ ପ୍ରେତାଦି ସମ୍ବନ୍ଧୀୟ—2. Ghostly. ୩ । ଜୀବ-ସମ୍ବନ୍ଧୀୟ—3. Relating to living beings (Apte). ୪ । ପାଗଳ—4. Crazy; mad (Apte). ୫ । ପୈଶାଚିକ—5. Demoniacal (Apte).
ବି—୧ । ଭୂତଯଜ୍ଞ—1. Oblation offered to the created beings. ୨ । ଭୂତ ପ୍ରେତାଦିଙ୍କ ଉପାସକ—2. A worshipper of demons and spirits. ୩ । ଦେବଳ ବ୍ରାହ୍ମଣ; ଦେଉଳିଆ ବ୍ରାହ୍ମଣ; ପଣ୍ଡା—3. A class of Brāhmaṇas who take to worshipping in a temple as their profession. ହି. ବିଣ ( ସ. ବହୁ )—ବହୁତ;
ବହୁତ बहुत ଅଧିକ—Many; much.

ଭୌତିକ—ସଂ. ବିଣ (ଭୂତ+ଇକ)—୧ । ପ୍ରାକୃତିକ—1. Natural.
Bha**u**tika elementary ୨ । ଭୂତସମ୍ବନ୍ଧୀୟ—2. Relating to Bhūta. ୩ । ପଞ୍ଚଭୂତ ଘଟିତ—3. Material; physical. ୪ । ଭୂତପ୍ରେତସମ୍ବନ୍ଧୀୟ—4. Ghostly. ବି—୧ । ଭୂତନାଥ; ମହାଦେବ; ଶିବ—1. Siba. ୨ । ମୁକ୍ତା—2. Pearl ( Apte ). ୩ । ମୌଳିକ ଉପାଦାନବିଶିଷ୍ଟ ବସ୍ତୁ—3. Anything elemental ( Apte ).

ଭୌତିକ ଦେହ—ସ. ବି—ପଞ୍ଚଭୂତ ଘଟିତଜଡ଼ ଶରୀର—The
Bha**u**tika deha material body.
( ଭୌତିକ ଶରୀର—ଅନ୍ୟରୂପ )

ଭୌତିକ ନିୟମ—ସ. ବି— ପ୍ରାକୃତିକ ନିୟମ—Law of nature;
Bha**u**tika niyama physical law.

ଭୌତିକ ପଦାର୍ଥ—ସ. ବି—ପଞ୍ଚଭୂତରୁ ଜାତ ବସ୍ତୁ—A material
Bha**u**tika padārtha thing.
( ଭୌତିକ ବସ୍ତୁ—ଅନ୍ୟରୂପ )

ଭୌତିକ ବିଦ୍ୟା—ସ ବି—୧ । ବେତାଳ ସାଧନା; ଭୂତ ବା ବେତାଳ
Bha**u**tika bidyā ସାଧନାରୂପ ବିଦ୍ୟା—1. Demonology; necromancy. ୨ । ଗାରୁଡ଼ ବିଦ୍ୟା—2. Black art; magic; sorcery.

ଭୌତିକ ବ୍ୟାପାର—ସ. ବି ( ଆଧୁନିକ ବ୍ୟବହାର )—୧ । ଆଶ୍ଚର୍ଯ୍ୟ
Bha**u**tika byāpāra ଘଟଣା—1. Wonderful event;
ভৌতিক ব্যাপার supernatural affair. ୨ । ଭୂତ ଘଟିତ
भौतिक व्यापार ବ୍ୟାପାର; ଭୂତପ୍ରେତଙ୍କ ଉପଦ୍ରବ—2. A ghostly affair; a visitation of ghosts and evil spirits.
(ଭୌତିକ କାଣ୍ଡ—ଅନ୍ୟରୂପ)

ଭୌତି—ସ. ବି ( ଭୌତ+ଇ )—ରଜନୀ; ରାତ୍ରି—
Bha**u**ti The night.

ଭୌମ—ସ. ବିଣ ( ଭୂମି+ସମ୍ବନ୍ଧାର୍ଥେ. ଅ )—୧ । ପାର୍ଥିବ—
Bha**u**ma 1. Terrestrial; worldly. ୨ । ଭୂମିସମ୍ବନ୍ଧୀୟ—2. Earthly. ୩ । ଭୂମିରୁ ଉତ୍ପନ୍ନ—3. Produced from the earth. ବି. ( ଭୂମି+ଅପତ୍ୟାର୍ଥେ. ଅ)—୧ । ପୃଥିବୀପୁତ୍ର;ମଙ୍ଗଳ ଗ୍ରହ—1. The planet Mars. ୨ । ଆକାଶ; ଅମ୍ବର—2. The sky. ଦେ ବି—ପ୍ରାଚୀନ ଉତ୍କଳର ଏକ ରାଜବଂଶ—A dynasty of kings of ancient Orissa.

ଭୌମ ଜଳ—ସ. ବି ( ଆଧୁନିକ ପ୍ରୟୋଗ )—ଭୂଗର୍ଭସ୍ଥ ଜଳ—
Bha**u**ma jala Subterranean water.

ଭୌମନ—ସ. ବି—ବିଶ୍ୱକର୍ମା—The heavenly architect of
Bha**u**mana Hindu mythology.

ଭୌମ ବାର—ସ. ବି—ମଙ୍ଗଳବାର—Tuesday.
Bha**u**ma bāra ( ଭୌମବାସର—ଅନ୍ୟରୂପ)

ଭୌମ ରତ୍ନ—ସଂ. ବି ( ଭୌମ=ମଙ୍ଗଳଗ୍ରହ+ରତ୍ନ; ଏ ରତ୍ନ ମଙ୍ଗଳ
Bha**u**ma ratna ଗ୍ରହଙ୍କ ପ୍ରିୟ ବସ୍ତୁ ଥିବାରୁ )—ପ୍ରବାଳ; ପୋହଳା—Coral.

ଭୌମିକ—ସଂ. ବିଣ ( ଭୂମି+ଇକ )—ଭୂମିସ୍ଥିତ—Situated on
Bha**u**mika the ground ବି—୧ । ଭୂସ୍ୱାମୀ; ଜମିଦାର—1. Landlord. ୨ । ସାମନ୍ତ ରାଜାଙ୍କ ଉପାଧି—2. Title of feudal lords. [ ଦ୍ର—ଏଥିର ଅପଭ୍ରଂଶ ଭୂଇଁଆ, ଭୂୟାଁ । ]

ଭୌମୀ—ସଂ. ବି. ସ୍ତ୍ରୀ ( ଭୂମି+ଅପତ୍ୟାର୍ଥେ ଅ+ସ୍ତ୍ରୀ. ଈ )—ଧରାସୁତା;
Bha**u**mi ସୀତା—Sitā. [ ଦ୍ର—ଏହାଙ୍କୁ ଜନକ ଋଷି ହଳ କରିବା ସମୟରେ ଲଙ୍ଗଳ ସିଥରୁ ପାଇଥିଲେ । ]

ଭୌରିକ—ସଂ. ବି ( ଭୂରି+ଇକ )—କୋଷାଧ୍ୟକ୍ଷ; ଖଜାଞ୍ଚି—
Bha**u**rika Treasurer.

ଭୌଁରି ( ଇତ୍ୟାଦି )—ଦେ. ବି—ଭଉଁରି ଇତ୍ୟାଦି ( ଦେଖ )
Bhaunri ( etc ) Bhaunri etc ( See )

ଭ୍ରଂଶ—ସଂ. ବି ( ଭ୍ରନ୍ସ ଧାତୁ=ପତିତ ହେବା+ଅ )—୧ । ଲୋପ; Bhramsa ନାଶ; ବିନାଶ—1. Destruction. ୨ । ସର୍ବନାଶ—2. Ruin. ୩ । ପତନ—3. Overthrow; fall. ୪ । ଅବନତି—4. Degeneration; deterioration. ୫ । ଚ୍ୟୁତି—5. Slipping off ୬ । ପଳାୟନ—6. Fleeing away. ୭ । ସଦାଚାରରୁ ସ୍ଖଳନ—7. A fall from virtue; depravity.

ଭ୍ରଂଶାଇବା—ଦେ. ( ପଦ୍ୟ ) କ୍ରି—ଭ୍ରଷ୍ଟ କରାଇବା—To cause to Bhramsaiba be displaced. [ ଉ—ପୁଣି ଭ୍ରଂଶାଇ ଭ୍ରष्ट करा ସୁଖ ସ୍ଥାନୁ । ଯେଣୁ ହୋଇଲା ତୋର ମନ୍ୟୁ—ଜଗନ୍ନାଥ. भ्रंशाना ଭାଗବତ । ]

ଭ୍ରଂଶିତ—ସଂ. ବିଣ ( ଭ୍ରଂଶ+ଇତ )—ନଷ୍ଟ; ନାଶପ୍ରାପ୍ତ—Bhramsita Spoiled.

ଭ୍ରକୁଟି(ଟୀ)—ସଂ. ବି ( ଭ୍ରୂ+କୁଟ୍ ଧାତୁ=କୁଟିଳ ହେବା+ଇ, ଈ, Bhrakuti(ti) କପାଳକ )—ଭ୍ରୂକୁଞ୍ଚନ ( ଦେଖ ) Bhrukunchana ( See )

ଭ୍ରତ(ଥ)—ଗ୍ରା ବି (ସଂ.ଭରତ)—ଭରତ (ଦେଖ)—Bharata (See) Bhrata(tha) [ ଉ—କୈକେୟୀ ସେଉଠେ ଭ୍ରତଙ୍କୁ ଜାତ ଭରତ भरत କଲେ—କୃଷ୍ଣସିଂହ. ମହାଭାରତ. ବନ । ]

ଭ୍ରତ(ଥ)ଖଣ୍ଡ—ଗ୍ରା. ବି ( ସଂ. ଭରତଖଣ୍ଡ )—ଭାରତବର୍ଷ—India. Bhrata(tha khanda [ ଉ—ଭ୍ରତଖଣ୍ଡ ମଧ୍ୟରେ ଯିଥିଲା ଭାରତଖଣ୍ଡ भरतखण्ड ନାମେ ଦେଶ । ତହିଁ ଅଯୋଧ୍ୟା ଯେ ଜନକ ନଗରଦେଶ—ବିଶ୍ୱନାଥ. ବଇଦେହୀଶ ବିଳାସ । ]

ଭ୍ରାତା(ଥା)—ଗ୍ରା. ବି—୧ । ( ସଂ. ଭ୍ରାତା ) ଭାଇ—1. Brother. Bhrata(tha) ଭାଇ भैया, भाइ ଭାତାର भतार, भरतार ୨ । ( ସଂ. ଭର୍ତ୍ତା ) ସ୍ୱାମୀ; ପତି—2. Husband. [ ଉ—ମାୟା ହୋଇ ବିନା ତୋର ଭ୍ରଥା ହୋଇଥିଲା—ପ୍ରତାପ. ଶଶିସେଣା । ]

ଭ୍ରଥ ଦାସ—ଦେ. ବି—ଅଚ୍ୟୁତାନନ୍ଦଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ Bhratha dasa ପ୍ରଧାନ ଶିଷ୍ୟ—Name of a disciple of Achyutananda dasa. [ ଉ—ମୁକୁନ୍ଦ ଅନନ୍ତ ଦାସ ଭ୍ରଥ ଦାସ ଭକ୍ତ—ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା । ]

ଭ୍ରନ୍ସ୍ ( ଧାତୁ )—ସଂ—୧ । ପତିତ ହେବା—1. To fall. ୨ । Bhran-s ( root ) ଚ୍ୟୁତ ହେବା—2. To slip off. ୩ । ନଷ୍ଟ ହେବା—3. To be destroyed or lost ୪ । ସ୍ଥାନଚ୍ୟୁତ ହେବା—4. To be displaced.

ଭ୍ରମ୍ ( ଧାତୁ )—ସଂ—ଭ୍ରମଣ କରିବା; ବୁଲିବା—Bhram ( root ) To walk.

ଭ୍ରମ—ସଂ. ବି ( ଭ୍ରମ୍ ଧାତୁ+ଭାବ. ଅ )—୧ । ଭ୍ରାନ୍ତି; ଭୁଲ—Bhrama 1. Mistake; erring; error. ୨ । ମିଥ୍ୟାଜ୍ଞାନ; ମାୟା—2. Illusion; delusion. ୩ । ଭ୍ରମଣ; ବୁଲିବା—3. Walking. ୪ । ( +କର୍ତ୍ତୃ. ଅ ) ଜଳାବର୍ତ୍ତ; ମଇମଇ—4. Eddy; whirlpool. ୫ । ବିଚ୍ୟୁତି; ଭ୍ରଂଶ—5. Aberration. ୬ । ଘୂରିବା; ଘୂରିବା—6. Whirling. ୭ । ମୁଣ୍ଡ ବୁଲାଇ ହେବା—7. Dizziness. ୮ । (+କର୍ତ୍ତୃ.ଅ) କୁମ୍ଭକାରର ଚକ—8. Potter's wheel. ୯ । କୁନ୍ଦାଯନ୍ତ୍ର—9. A turning lathe. ଦେ.ବି (ସଂ.ଭର୍ମ)—ସ୍ୱର୍ଣ୍ଣ—Gold. [ଉ—ଭ୍ରମ ସୁମନ ଗନ୍ଧେ ତାହା ଜଳସି ସାଙ୍ଗର ଭ୍ରମ ଗନ୍ଧସ୍ତୀ—ଭକ୍ତ. ପ୍ରେମସୁଧାନିଧି । ] ବିଣ—ଭ୍ରାନ୍ତ—Mistaken; deluded. [ ଉ—ବେ ଜାଣନ୍ତି ଶୀତା, ଜାହାର ବନିତା, ଏ କାଉଣେ କୁଅ ଭ୍ରମ ହେ—ବିଶ୍ୱନାଥ. ବଇଦେହୀ ଶବିଳାସ । ]

ଭ୍ରମ କରିବା—ଦେ. କ୍ରି—୧ । ଭୁଲ୍ କରିବା—1. To commit Bhrama kariba mistake; to err. ୨ । ଉଦ୍ଦେଶ୍ୟରୁ ଭ୍ରମ করা ଭ୍ରଷ୍ଟ ହେବା—2. To slip off from one's भ्रम करना aim. ( ଉ—ଏରୂପେ ଯୋଗ ସମାଧିରେ, ଯେବେ ଏ ମନ ଭ୍ରମ କରେ, ତେବେ ସଂଯମ ପୁନ କରି, ଧ୍ୟାନେ ରଖିବ ନିରନ୍ତର । ଜଗନ୍ନାଥ. ଭାଗବତ । ) ୩ । ମନରେ ଭ୍ରାନ୍ତ ଧାରଣା ପୋଷଣ କରିବା—3. To mistake; to entertain a mistaken notion.

ଭ୍ରମ ଜାଲ(ଳ)—ସ. ବି—୧ । ( ରୂପକ ) ଭ୍ରାନ୍ତିରୂପ ବିଷମ ଫାଶ—Bhrama jala(la) 1. A net of illusions. ୨ । ( ୬ଷ୍ଠୀ ତତ୍ ) —ଭ୍ରମସମୂହ—2. A number of errors.

ଭ୍ରମଣ—ସ. ବି ( ଭ୍ରମ୍ ଧାତୁ+ଭାବ ଅନ )—୧ । ପର୍ଯ୍ୟଟନ—Bhramana 1. Travel. ୨ । ବୁଲିବା—2.Walking. ୩ । ଘୂରିବା—3. Whirling.

ଭ୍ରମଣକାରୀ—ସ. ବିଣ. ଓ ବି. ପୁଂ—୧। ଯେ ବୁଲେ—1. Walking. Bhramanakari ୨ । ପର୍ଯ୍ୟଟକ—2. Travelling; (ଭ୍ରମଣକାରିଣୀ—ସ୍ତ୍ରୀ) traveller.

ଭ୍ରମଣ କାହାଣୀ—ଦେ. ବି—ଭ୍ରମଣ ବୃତ୍ତାନ୍ତ ( ଦେଖ ) Bhramana kahani Bhramana bruttanta (See) ভ্রমণ কাহিনী भ्रमणकी कहानी

ଭ୍ରମଣ ବୃତ୍ତାନ୍ତ—ସ. ବି—ପର୍ଯ୍ୟଟନର ବିବରଣ—Description Bhramana bruttanta of a travel. (ଭ୍ରମଣକଥା—ଅନ୍ୟରୂପ)

ଭ୍ରମଣ ଶୀଳ—ସ. ବିଣ. ପୁଂ ( ଭ୍ରମଣ+ଶୀଳ; ବହୁବ୍ରୀହି )—ବୁଲା—Bhramana sila Itinerant; roving. (ଭ୍ରମଣଶୀଳା—ସ୍ତ୍ରୀ) (ଭ୍ରମଣଶୀଳତା—ବି)

ଭ୍ରମଣୀ—ସ. ବି ( ଭ୍ରମଣ+ଈ )—୧ । ବୁଲିବା; ବୁଲା—1. Bhramani Walking; walk. ( ଉ—ନନ୍ଦୀଗ୍ରାମପୁର, ଗମନ ପ୍ରସର, ଗଳପଦ୍ମେ ଶ୍ରମଜାଳ, ଉଜଳା ଭ୍ରମଣୀ ସାରଣ ସେକାଳେ ମିଳିଲେ କୈକେୟୀ ବାଳ । ବିଶ୍ୱନାଥ. ବଇଦେହୀଶବିଳାସ । ) ୨ । ଜୋକ ( ହି. ସ )—2. Leech.

ଭ୍ରମଣୀ ବେଳା—ସଂ. ବିଂ—ବିଚରଣ କରିବାର ନିର୍ଦ୍ଧାରିତ ସମୟ—
Bhramaṇī beḷa Time for roaming about or
বেড়াবার সময় **घुमनेका वक्त** taking a walk.

ଭ୍ରମ ନିରସନ—ସଂ. ବି ( ୬ଷ୍ଠୀ ତତ୍; ଭ୍ରମ+ନିରସନ )—ଭ୍ରମର ଦୂରୀ-
Bhrama nirasana କରଣ—Removal of a mistake.

ଭ୍ରମ ପ୍ରମାଦ—ସଂ. ବି ( ପ୍ରାୟ ଏକାର୍ଥକ ସହଚର ଶବ୍ଦ )—ଭୁଲ୍ ଭ୍ରାନ୍ତି
Bhrama pramāda —Mistakes; errors; errors of omission and commission.

ଭ୍ରମ ବଶ(ଶ୍ୟ)—ସଂ. ବିଣ. ପୁଂ—୧ । ଭ୍ରାନ୍ତିର ଅଧୀନ—1. Subject
Bhrama baśa(śya) to delusion. ୨ । ଭ୍ରାନ୍ତ—
[ ଭ୍ରମବଶା(ଶ୍ୟା)—ସ୍ତ୍ରୀ] 2. Mistaken; erring.

ଭ୍ରମ ବଶତଃ—ସଂ. କ୍ରି ବିଣ—୧ । ଭ୍ରାନ୍ତି ହେତୁ—1. Due to
Bhrama basataḥ mistake; by mistake; on account of mistake. ୨ । ଭ୍ରାନ୍ତି ପୂର୍ବକ—
2. Mistakenly.

ଭ୍ରମ ବାତ—ସଂ. ବି—ସର୍ବଦା ଘୂରୁଥିବା ଆକାଶସ୍ଥ ବାୟୁମଣ୍ଡଳ (ହି. ଶ )
Bhrama bāta —The current of air in the sky which has always a whirling motion.

ଭ୍ରମ ମାଣ—ସଂ. ବିଣ. ପୁଂ ( ଭ୍ରମ୍ ଧାତୁ+କର୍ତ୍ତୃ. ଆନ )—୧ ।
Bhrama māṇa ଘୂର୍ଣ୍ଣ୍ୟମାନ—1. Whirling ୨ ।
(ଭ୍ରମମାଣା—ସ୍ତ୍ରୀ) ଭ୍ରମଣଶୀଳ—2. Itinerant; walking; travelling.

ଭ୍ରମର—ସଂ, ବି.ପୁଂ ( ଭ୍ରମ୍ ଧାତୁ+କର୍ତ୍ତୃଅ. ର )—୧ । ଭୃଙ୍ଗ; ମଧୁକର;
Bhramara ଭଅଁର—1. Large black bee;
(ଭ୍ରମରୀ—ସ୍ତ୍ରୀ) humble bee. ୨ । କାମୁକ—2. A lecherous person ୩ । ଭଅଁର; କାଠରେ ରନ୍ଧ୍ର କରିବା ଯନ୍ତ୍ର—3. A drilling machine; brace and bit; gimlet. ଦେ. ବି ( ୬ଷ୍ଠୀ ବିଭକ୍ତି )—
ଭ୍ରମଣର; ଚଳନର—Of walking; of movement.
( ଉ—ଭଙ୍ଗୀରେ ହଁ, ଭ୍ରୂମାଳ ଭୁଜଙ୍ଗୀ ଭ୍ରମର ଜୀବ ସଙ୍ଗେ ।
କବିସୂର୍ଯ୍ୟ. ବଳୋରାମ, ଭ. ଗୀତ । )

ଭ୍ରମରକ—ସଂ. ବି ( ଭ୍ରମର+କ )—୧ । ଭୃଙ୍ଗ—1. Black bee.
Bhramaraka ୨ । ଶୃଙ୍ଗ—2. Horn. ୩ । ଜଳଭ୍ରମୀ;
ଭଉଁରୀ—3. Whirlpool. ୪ । ଭଅଁର ଯନ୍ତ୍ର—
4. Gimlet. ୫ । ଲଲାଟଲମ୍ବିତ ଚୂର୍ଣ୍ଣ କୁନ୍ତଳ—
5. Ringlets of hair hanging down from the forehead.

ଭ୍ରମର କୀଟ—ଦେ. ବି—କୁମ୍ଭାରପୋକ; ମାଟି ଉଢ଼ୁଢ଼—
Bhramara kīṭa Mud wasp.

ଭ୍ରମର କୃଷ୍ଣ—ସଂ. ବିଣ ( ମ, ପ. ଲୋ; ଭ୍ରମରବତ୍ କୃଷ୍ଣ )—ଭ୍ରମର
Bhramara kṛushṇa ପରି କଳା—Black as bee.

ଭ୍ରମର ଗୁଞ୍ଜନ—ସଂ. ବି ( ୬ଷ୍ଠୀ ତତ୍ )—ଭଅଁରର ଗୁଣୁଗୁଣୁ ଧ୍ୱନି—
Bhramara guñjana The buzzing of a bee.
(ଭ୍ରମର ଗୁଞ୍ଜିତ; ଭ୍ରମର ଝଙ୍କାର—ଅନ୍ୟରୂପ)

ଭ୍ରମରଚ୍ଛଲୀ—ସଂ, ବି—ଜଙ୍ଗଲୀ ବଡ଼ ବୃକ୍ଷବିଶେଷ—A kind of big
Bhramarchchhaḷī wild tree. [ ବ୍ର—ଏହାର ପତ୍ର ବାଦାମ
ଅନ୍ୟ ସଂ. ନାମ—ଭ୍ରମାହ୍ୱା, ପତ୍ର ପରି; ଗଛ ବହୁତ ଉଚ୍ଚ ହୁଏ ଧରେ;
ଭୃଙ୍ଗାହ୍ୱା, ଷୀବଦ୍ରୁ, ଭୃଙ୍ଗମୂଳକା] ଏହାର କାଠ ଧଳା ଓ ଉତ୍କୃଷ୍ଟ
ଉଗ୍ରଗନ୍ଧା, ଛଲ୍ଲୀ, ଭ୍ରମରୀ, ଥିବାରୁ ଏଥିରେ ଖଣ୍ଡାର ଖୋଳ
ଭ୍ରମରୀ ତିଆରି କରାଯାଏ । ବୈଦ୍ୟକମତରେ
ଏହା ଗୁରୁ, ରୁଚିକର, ଅଗ୍ନିଦୀପକ ଓ ସର୍ବ ଦୋଷଯୁକ୍ତ—
ନାଶକ—ହି. ଶ]

ଭ୍ରମର ନାଗ—ସଂ. ବି ( ମ. ପ. ଲୋ. ଭ୍ରମରବତ୍ ବର୍ଣ୍ଣବିଶିଷ୍ଟ ନାଗ )—
Bhramara nāga କଳାନାଗ—Black cobra.

ଭ୍ରମରମାରୀ—ସଂ. ବି—୧ । ଭଅଁରମାରି (ଦେଖ)—1. Bhaṅ̐ra-
Bhramaramārī mārī ( See ) [ ଦ୍ର—ଏ ଗଛ
(ଭ୍ରମରାରି—ଅନ୍ୟରୂପ) ମାଳବଦେଶରେ ଅଧିକ ପରିମାଣରେ ଜନ୍ମେ ।
ଅନ୍ୟ ସଂ, ନାମ ଭ୍ରମରାରି, ଏଥିର ଫୁଲ ସୁନ୍ଦର ଓ ସୁଗନ୍ଧିତ ।
ଭୃଙ୍ଗାରି; ମାଂସପୁଷ୍ପିକା, ବୈଦ୍ୟକମତରେ ଏହା ତିକ୍ତ; ଏହା
କୁଷ୍ଠାରି, ଭ୍ରମରୀ, ଯଷ୍ଟିଲତା ଶ୍ଲେଷ୍ମ, ଜ୍ୱର, ଶୋଥ, କୁଷ୍ଠ, ବ୍ରଣ ଓ
ତ୍ରିଦୋଷନାଶକ—ହି. ଶ. ଭଅଁରମାରି ତଳେ ଟୀକା
ଦେଖ । ]

ଭ୍ରମରେ ପଡ଼ିବା—ଦେ. କ୍ରି—ଅଜ୍ଞାତଭାବରେ ଭ୍ରମଯୁକ୍ତ କର୍ମ କରିବା
Bhramare paṟḍibā ବା ଭ୍ରାନ୍ତ ଧାରଣା ମନରେ ପୋଷିବା—
ভ্রমে পড়া **भ्रममे पडना** To fall into an error; to be mistaken.

ଭ୍ରମରେଷ୍ଟା—ସଂ. ବି (ଭ୍ରମର+ଇଷ୍ଟ+ଆ)—୧ । ଭୂଇଁଜାମୁ (ହି,ଶ.)-
Bhramareshṭā 1. A tiny species of blackberry.
୨ । ବ୍ରାହ୍ମଣଯଷ୍ଟିଆ (ହି. ଶ.)—2. Clerodendron Syphonan thus (tree).

ଭ୍ରମରୋତ୍ସବ—ସଂ, ବି ( ବହୁବ୍ରୀହି; ଭ୍ରମରମାନଙ୍କର ଏ ଫୁଲ ପ୍ରିୟ
Bhramrotsaba ଥିବାରୁ )—ମାଧବୀଲତା—Hipatage Madhablata (a flowering creeper).

ଭ୍ରମ ହେବା—ଦେ. ବି—ଭ୍ରାନ୍ତି—Falling into a mistake;
Bhrama hebā being mistaken.
(ଭ୍ରମ ଉପୁଜିବା, ଭ୍ରମ ଘଟିବା, ଭ୍ରମ ଜନ୍ମିବା, ଭ୍ରମ
ଜାତହେବା—ଅନ୍ୟରୂପ)
ভ্রমহওয়া **भ्रमहोना**

ଭ୍ରମରା—ସଂ. ବି—ଭ୍ରମରଚ୍ଛଲୀ ( ଦେଖ ) ( ହି. ଶ. )—
Bhramarā Bhramarachchhaḷī ( See )
ভোমরা **भौंरा** ଦେ (ପଦ୍ୟ) ବି—(ସଂ. ଭ୍ରମର)—ଭ୍ରମର—
The tack bee.

ଭ୍ରମରୀ—ସଂ. ବି. ସ୍ତ୍ରୀ ( ଭ୍ରମର+ଈ )—୧ । ମାଈ ଭଅଁର—
Bhramarī 1. A female wasp. ୨ । ଭ୍ରମରଚ୍ଛଲୀ
(ଦେଖ)—2. Bhramarchchhaḷī (See).
୧ । ଜତୁକା ନାମକ ଲତା; ପୁତ୍ରଦାତ୍ରୀ ( ହି. ଶ. )—
1. A kind of herbal creeper. ୨ । ମୃଗୀ
ରୋଗ (ହି. ଶ.)—2. Epilepsy. ୩ । ପାର୍ବତୀ
(ହି. ଶ.)—3. Pārbatī.

ଭ୍ରମରୀ ଫୁଲ—ଦେ. ବ (ବଣିଆ ଶବ୍ଦ)—ଭଅଁର ଆକାରର କାନଫୁଲ—
Bhramarī phula An ornament or ring for the ear resembling a black bee.
[ଉ—କର୍ଣ୍ଣେ ଭାଟଙ୍କ ଭ୍ରମରୀ ଫୁଲ ଶୋଭେ—ଘନକୃଷ୍ଣ. ରସକଲ୍ଲୋଳ । ]

ଭ୍ରମା—ଦେ. ବ—ଭ୍ରମ (ଦେଖ) Bhrama (See)
Bhramā ভ্রম भ्रम, भोर (ଉ—ବିନାଶ ଚନ୍ଦ୍ରାର୍କ ପ୍ରତାପ କର୍ମରୁ ନୋହିବ କପାଇ ଭ୍ରମ । ଉଞ୍ଜ. ବୈଦେହୀଶବିଳାସ ।)
ভ্রান্ত भ्रान्त ବଣ.—ଭ୍ରାନ୍ତ—Mistaken. ( ଉ—ତାହାର ମାର୍ଗେ ଶିବ ବ୍ରହ୍ମା, ଗତି ନ ଜାଣି ହୋନ୍ତି ଭ୍ରମା । ଜଗନ୍ନାଥ. ଭାଗବତ ।)

ଭ୍ରମା(ମେ)ଇବା—ଦେ. କ୍ରି—୧ । ଭ୍ରମିବା କ୍ରିୟାର ଣିଜନ୍ତ ରୂପ—
Bhramā(me)ibā 1. The causative form of
ভ্রমান Bhramibā. ୨ । ବହୁତ ବୁଲାଇବା—2. To
भ्रमाना cause to walk much. ୩ । ଭ୍ରମରେ ପକାଇବା
3. To cause one to fall into error ୪ ।
ଘୂରିବା—4. To whirl. ( ଯଥା—ମୋ ମୁଣ୍ଡ ଭ୍ରମାଉଛି ।) ୫ । ଘୂରାଇବା—5. To cause to spin round or whirl.

ଭ୍ରମାତ୍ମକ—ସ. ବଣ—( ଭ୍ରମ+ଆତ୍ମନ୍+କ )—୧ । ଯହିଁରେ ବା
Bhramātmaka ଯାହା ସମ୍ବନ୍ଧେ ଭ୍ରମ ଜାତ ହୁଏ (ହି. ଶ)—
1. (a matter) In or about which mistake is committed. ୨ । ଭ୍ରାନ୍ତ—2. Mistaken. ୩ । ସନ୍ଦିଗ୍ଧ—3. Doubtful; doubting

ଭ୍ରମାସକ୍ତ—ସ.ବ.ପୁଂ—ଯେଉଁ ବ୍ୟକ୍ତି ଅସ୍ତ୍ର ଶସ୍ତ୍ରାଦି ସଫା କରେ (ହି.ଟ)—
Bhramāsakta A cleaner of weapons.

ଭ୍ରମି(ମୀ)—ସ. ବ—( ଭ୍ରମ୍ ଧାତୁ+କର୍ତ୍ତୃ.ଇ; +ଈ )—୧ । ଜଳଭ୍ରମି;
Bhrami(mī) ଜଳାବର୍ତ୍ତ; ପାଣି ଭଉଁରି—1. Whirlpool; eddy. ୨ । ଘୂର୍ଣ୍ଣିବାୟୁ—2. Whirl-wind. ଦେ.ବ—(ସ. ଭ୍ରମ)—ମୂର୍ଚ୍ଛା—Swoon.

ଭ୍ରମିତ—ସ. ବଣ. ପୁଂ—(ଭ୍ରମ+ଯୁକ୍ତାର୍ଥେ ଇତ)—୧ । ଭ୍ରମଣକାରୀ
Bhramita (ହି. ଶ)—1. Roaming. ୨ । ଭ୍ରାନ୍ତ (ହି.ଶ)
2. Mistaken; erring. ୩ । ଶଙ୍କିତ (ହି. ଶ)—
3. Apprehensive.

ଭ୍ରମିତ ନେତ୍ର—ସ. ବଣ. ପୁଂ—(ବହୁବ୍ରୀହି, ଭ୍ରମିତ+ନେତ୍ର)—ଟେରା
Bhramita netra (ହି. ଶ)—Squint-eyed.
(ଭ୍ରମିତ ନେତ୍ରା—ସ୍ତ୍ରୀ)

ଭ୍ରମିବା—ଦେ. (ପଦ୍ୟ) କ୍ରି—(ସ. ଭ୍ରମ ଧାତୁ)—୧ । ଭ୍ରମଣ କରିବା—
Bhramibā ভ্রমা भ्रमना 1. To walk; to travel.
(ଉ—ଦେବେ କରି ନାମେ ରାକ୍ଷସୀ ଭ୍ରମୁ ଥିଲା । କୃଷ୍ଣସିଂହ ମହାଭାରତ. ସଭା ।) ୨ । ଭୁଲ୍ କରିବା—2. To commit mistake. (ଉ—ଭ୍ରମିଥିଲି ବୋଲି ପୁଣି ହାସ କଲି ଜାତ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]
୩ । ଘୂରିବା—3 To whirl; to spin round.

(ଉ—କୁଶଳ ନର୍ତ୍ତକୀ ଭ୍ରମରୀ ପର୍ଯ୍ୟନ୍ତେ ଭ୍ରମିଲେ ବାଡଚକ୍ର-ମାନେ । ଘନକୃଷ୍ଣ. ରସକଲ୍ଲୋଳ ।)

ଭ୍ରମି ହେବା—ଦେ. କ୍ରି—୧ । ବୃଥାରେ ବୁଲିବା—1. To walk or
Bhrami hebā wander aimlessly. ୨ । ଭ୍ରମରେ
ভ্রমে ঘুরা ପଡ଼ିବା—2. To fall into error. ( ଉ—ସବୁ
भ्रमना କଥା ଜାଣି ବା ଭ୍ରମୁଅଛ ତୁମ୍ଭେ । କୃଷ୍ଣସିଂହ. ମହାଭାରତ ସଭା) । ୩ । ଇତସ୍ତତଃ ବୁଲିବା—3. To wander; to roam about.

ଭ୍ରମୀ—ସ. ବଣ. ପୁଂ—(ଭ୍ରମ+ଇନ୍; ୧ମା. ୧ବ)—୧ । ଭ୍ରାନ୍ତ—
Bhramī 1. Mistaken. ୨ । ଉଦ୍ଭ୍ରାନ୍ତ ( ହି.ଶ )—
(ଭ୍ରମିଣୀ—ସ୍ତ୍ରୀ) 2. Bewildered; alarmed. ସ. ବ—
୧ । ଭ୍ରମଣ (ହି. ଶ)—1. Walking; roaming.
୨ । ଘୂରିବା—2. Whirling; spinning round.
୩ । ସୈନ୍ୟ ମଣ୍ଡଳ ଏକ ସ୍ଥାନରେ ଠିଆ ହୋଇ ରହିବା ରୂପ ସେନାରଚନା (ହି.ଶ)—3. Battle-array in which the army stands fixed in a particular position. ୪ । ମଳମଳ; ପାଣିର ଖର ସ୍ରୋତ ଥିବା ଭଉଁରି (ହି.ଶ)—4. Whirlpool. ୫ ।
କୁମ୍ଭାରର ଚକ (ହି. ଶ)—5. Potter's wheel.

ଭ୍ରଷ୍ଟ—ସ. ବଣ—(ଭ୍ରନ୍ଶ ଧାତୁ+କର୍ତ୍ତୃ.ତ)—୧ । ଅଧଃପତିତ, ଚ୍ୟୁତ—
Bhrashṭa 1. Fallen down; degraded. ୨ ।
(ଭ୍ରଷ୍ଟା—ସ୍ତ୍ରୀ) ସ୍ଥାନ ଚ୍ୟୁତ—2. Displaced; expelled.
୩ । ଭଗ୍ନୋଦ୍ୟମ; ନଷ୍ଟ—3. Degenerated; spoiled.
୪ । ଅଧାର୍ମିକ; ଅସତ୍—4. Irreligious ୫ ।
ଦୂଷିତ; ଦୋଷଯୁକ୍ତ—5. Corrupted ୬ । ଦୁଶ୍ଚରିତ୍ର
6. Depraved. ୭ । (ଆଜ୍ଞା) ଲଂଘିତ—Transgressed.

ଭ୍ରଷ୍ଟ କରିବା—ଦେ. କ୍ରି—୧ । ନଷ୍ଟ କରିବା—1. To spoil,
Bhrashṭa karibā ୨ । ଦୂଷିତ କରିବା—2. To corrupt.
ভ্রষ্ট কৰা भ्रष्टकरना ୩ । ନ ପାଳିବା—3. To disobey.
[ଉ—ଯେ ପିତା ଆଜ୍ଞା ଭ୍ରଷ୍ଟ କରେ, ନରକେ ପଡ଼ଇ ନର୍ଭରେ । ଭୂପତି ପ୍ରେମ ପଞ୍ଚାମୃତ ।)

ଭ୍ରଷ୍ଟକାର—ଗ୍ରା, ବଣ—ଅଶ୍ଳୀଳ; ଅଭଦ୍ର; ଭଣ୍ଡିଆ—Indecent;
Bhrashṭakāra অশ্লীল भद्दा, फूहर obscene.
( ପ୍ରୟୋଗ—ଭ୍ରଷ୍ଟକାର କଥା, ଭ୍ରଷ୍ଟକାର ଗାଳି )

ଭ୍ରଷ୍ଟ ଚରିତ୍ର—ସଂ. ବଣ. ପୁଂ ( ବହୁବ୍ରୀହି )—ଚରିତ୍ରହୀନ; ନଷ୍ଟ-
Bhrashṭa charitra ଚରିତ୍ର—Immoral; depraved.
( ଭ୍ରଷ୍ଟ ଚରିତ୍ରା—ସ୍ତ୍ରୀ )

ଭ୍ରଷ୍ଟତା(ତ୍ୱ)—ସଂ. ବ—୧ । ନଷ୍ଟ ଅବସ୍ଥା—1. Fallen condition.
Bhrashṭatā(twa) ୨ । ପତିତ ଅବସ୍ଥା—2. Degradation; degeneration.

ଭ୍ରଷ୍ଟା—ସ. ବ—କୁଳଟା ସ୍ତ୍ରୀ; ଅସତୀ; ବ୍ୟଭିଚାରିଣୀ; ପୁଂଶ୍ଚଳୀ—A
Bhrashṭā spoiled woman; a lewd woman; an unchaste woman; an adulteress ବଣ. ସ୍ତ୍ରୀ.—(ଭ୍ରଷ୍ଟର ସ୍ତ୍ରୀଲିଙ୍ଗ—Feminine of Bhrashṭa.)
ଦୁଶ୍ଚରିତ୍ରା—Depraved; adulterous (woman).

**ଭ୍ରଷ୍ଟାଚରଣ**—ସଂ. ବିଣ. ପୁଂ (ବହୁବ୍ରୀହି; ଭ୍ରଷ୍ଟ+ଆଚରଣ)—
Bhrashtācharana ୧ । ପାପାଚାରୀ—1. Sinful. ୨ ।
(ଭ୍ରଷ୍ଟାଚାର—ଅନ୍ୟରୂପ) କଦାଚାରୀ—2. Deviating from
(ଭ୍ରଷ୍ଟାଚରଣା, ଭ୍ରଷ୍ଟାଚାରିଣୀ—ସ୍ତ୍ରୀ) morality. ବି—(କର୍ମଧା)
ମନ୍ଦ ଆଚରଣ; କଦାଚାର—Depraved conduct.

**ଭ୍ରଷ୍ଟାଚାରୀ**—ସଂ. ବିଣ. ପୁଂ—କଦାଚାରୀ; ପାପାଚାରୀ—Sinful; im-
Bhrashtāchārī (ଭ୍ରଷ୍ଟାଚାରିଣୀ—ସ୍ତ୍ରୀ) moral.

**ଭ୍ରାଜ୍ (ଧାତୁ)**—ସଂ.—ଦୀପ୍ତି ପାଇବା—
Bhrāj (root) To shine; to look brilliant.

**ଭ୍ରାଜକ**—ସଂ. ବି (ଭ୍ରାଜ୍ ଧାତୁ+ଅକ)—ପିତ୍ତ—Bile; the bilious
Bhrājaka humour of the physical system.

**ଭ୍ରାଜିବା**—ଦେ. (ପଦ୍ୟ) କ୍ରି—(ସଂ. ଭ୍ରାଜ୍ ଧାତୁ)—ଶୋଭା ପାଇବା—
Bhrājibā ভ্ৰাজা भ्राजना To shine; to look brilliant.

**ଭ୍ରାଜିଷ୍ଣୁ**—ସଂ. ବିଣ—(ଭ୍ରାଜ୍ ଧାତୁ+ଶୀଳାର୍ଥେ. ଇଷ୍ଣୁ)—୧ । ଦୀପ୍ତିଶୀଳ-
Bhrājishnu 1. Resplendent; lustrous; shining.
୨ । ଉଜ୍ଜ୍ୱଳ—2. Bright. ୩ । ଶୋଭାଯୁକ୍ତ; ସୁନ୍ଦର-
3. Beautiful.

**ଭ୍ରାଜୀ**—ସଂ. ବିଣ ପୁଂ—(ଭ୍ରାଜ୍ ଧାତୁ+ଇନ୍; ୧ମା.୧ବ)—୧। ଉଜ୍ଜ୍ୱଳ—
Bhrājī 1. Bright. ୨ । ଦୀପ୍ତିଶୀଳ—2. Shining;
(ଭ୍ରାଜିନୀ—ସ୍ତ୍ରୀ) lustrous.

**ଭ୍ରାତ(ଥ)**—ଦେ. ବି—(ସଂ. ଭ୍ରାତା)—ଭ୍ରାତା; ଭାଇ—
Bhrāta(tha) ভাই भ्रात Brother.
[ ଉ—ହସ୍ତ ନ ବସିଲେ ଭ୍ରାଥ ଜନକଟେ ମରଇ । ପ୍ରାଚୀ. ଶ୍ରୀ ଗୁରୁଭକ୍ତ ଗୀତା ।]

**ଭ୍ରାତଃ**—ସଂ. (ସମ୍ବୋଧନ)—(ଭ୍ରାତୃ ଶବ୍ଦର ସମ୍ବୋଧନ)—ହେ ଭାଇ !—
Bhrātah Oh brother !

**ଭ୍ରାତା**—ସଂ. ବି—(ଭ୍ରାଜ୍ ଧାତୁ+କର୍ତ୍ତୃ. ତୃ; ଭ୍ରାତୃ ଶବ୍ଦ, ୧ମା. ୧ବ)—
Bhrātā ସହୋଦର; ଭାଇ—Brother. [ ଦ୍ର—ଏହା
ସମାସରେ ଭ୍ରାତୃ ରୂପ ଧାରଣ କରେ ଯଥା—ଭ୍ରାତୃବଧୂ,
ଭ୍ରାତୃ ବିରୋଧ, ଭ୍ରାତୃ ସ୍ନେହ ଇତ୍ୟାଦି ।]

**ଭ୍ରାତା ଭଗିନୀ(ଭଗ୍ନୀ)**—ସଂ. ବି—(ଯୌଗିକ ଶବ୍ଦ)—ଭାଇ ଓ ଭଉଣୀ—
Bhrātā bhaginī(bhagnī) Brother and sister.

**ଭ୍ରାତୁଷ୍ପୁତ୍ର**—ସଂ. ବି. ପୁଂ – (ସଂ. ଭ୍ରାତୃ ଶବ୍ଦର ୬ଷ୍ଠୀ ବିଭକ୍ତି ୧ ବଚନ ରୂପ
Bhrātushputra ଭ୍ରାତୁଃ=ଭାଇର+ପୁତ୍ର)—ଭାଇର ପୁଅ;
(ଭ୍ରାତୃ ପୁତ୍ର—ଅନ୍ୟରୂପ) ପୁତୁରା; ଭାଇପୁଅ—Brother's son;
(ଭ୍ରାତୁଷ୍ପୁତ୍ରୀ—ବିପରୀତଲିଙ୍ଗ) ভাই পো भतिजा nephew.

**ଭ୍ରାତୁଷ୍ପୌତ୍ର**—ସଂ. ବି. ପୁଂ—(ସଂ. ଭ୍ରାତୃ ଶବ୍ଦର ୬ଷ୍ଠୀ ବିଭକ୍ତି ୧ବ. ରୂପ
Bhrātushpautra ଭ୍ରାତୁଃ=ଭାଇର+ପୌତ୍ର)—ଭାଇର
भाईका पोता ପୁଅର ପୁଅ—Brother's son's son.
ভায়ের নাতি (ଭ୍ରାତୁଷ୍ପୌତ୍ରୀ—ବିପରୀତ ଲିଙ୍ଗ)

**ଭ୍ରାତୃ**—ସଂ. ବି—(ଭ୍ରାଜ୍ ଧାତୁ+କର୍ତ୍ତୃ.ତୃ)—ଭାଇ—
Bhrātru Brother.

**ଭ୍ରାତୃକ**—ସଂ. ବିଣ—(ଭ୍ରାତୃ+କ)—ଭ୍ରାତୃଯୋଗ୍ୟ—Fit for a
Bhrātruka brother. ସଂ. ବି—ଭାଇ ଠାରୁ ମିଳିବା ଧନ
ଅର୍ଥ (ହି. ଶ)—Riches or property acquired
from one's brother.

**ଭ୍ରାତୃକଳ୍ପ**—ସଂ. ବିଣ. ପୁଂ—ଭାଇ ପରି; ଭ୍ରାତୃ ପ୍ରତିମ—Like a
Bhrātru kalpa (ଭ୍ରାତୃ ପ୍ରତିମ—ଅନ୍ୟରୂପ) brother.

**ଭ୍ରାତୃଜ**—ସଂ. ବି. ପୁଂ—ପୁତୁରା; ଭାଇ ପୁଅ—Brother's son.
Bhrātruja (ଭ୍ରାତୃଜା—ବିପରୀତ ଲିଙ୍ଗ)

**ଭ୍ରାତୃଜାୟା**—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍; ଭ୍ରାତୃ+ଜାୟା)—୧ । ଭାଉଜ;
Bhrātrujāyā ବଡ଼ ଭାଇଙ୍କ ସ୍ତ୍ରୀ—1. Elder brother's
ভাইজ भाभी wife. ୨ । ଭ୍ରାତୃବଧୂ;ସାନ ଭାଇର ସ୍ତ୍ରୀ;ଭାଇବୋହୂ—
ভাত্রবধূ भभू 2. Younger brother's wife.

**ଭ୍ରାତୃତ୍ୱ(ତା)**—ସଂ. ବି (ଭ୍ରାତୃ+ଭାବ ତ୍ୱ; ତା)—ଭାଇ ପଣ—
Bhrātrutwa(tā) Brotherliness.

**ଭ୍ରାତୃଦେବ**—ସଂ. ବି—ଦେବତାପ୍ରତିମ ବଡ଼ଭାଇ—
Bhrātrudeba Elder brother (equal to a Deity).

**ଭ୍ରାତୃଦ୍ୱିତୀୟା**—ସଂ. ବି—ଭାଇ ଜୁଆଁଥ (ଦେଖ)
Bhātrudwitiyā Bhāi dutiā (See).

**ଭ୍ରାତୃ ନିର୍ବିଶେଷରେ**—ଦେ. କି. ବିଣ—ଭାଇ ସମାନ ଭାବରେ; ଭାଇ
Bhrātru nirbiseshare ପରି—In a brotherly
ভ্রাতৃনির্বিশেষে manner. (ଯଥା—ମୁଁ ତାଙ୍କୁ ଭ୍ରାତୃନିର୍ବିଶେଷରେ
भाईकेसमान ସ୍ନେହ କରୁଥିଲି ।)

**ଭ୍ରାତୃପୁତ୍ର**—ସଂ. ବି. ପୁଂ (୬ଷ୍ଠୀ ତତ୍)—ପୁତୁରା—
Bhrātruputra One's brother's son.
(ଭ୍ରାତୃପୁତ୍ରୀ—ବିପରୀତ ଲିଙ୍ଗ)

**ଭ୍ରାତୃପ୍ରତିମ**—ସଂ. ବି. ପୁଂ (ଭ୍ରାତୃ+ପ୍ରତିମା+ଅ)—ଭାଇପରି—
Bhrātru pratima Like one's brother.

**ଭ୍ରାତୃପ୍ରେମ**—ସଂ. ବି—ଭାଇ ଭାଇ ମଧ୍ୟରେ ସୌହାର୍ଦ୍ଦ୍ୟ—Brotherly
Bhrātruprema attachment. [ ଦ୍ର—ଏହା ଦୁଇ
ପ୍ରକାର । ଯଥା—ବଡ଼ଭାଇ ପ୍ରତି ସାନଭାଇର ଭକ୍ତି ଓ
ସାନଭାଇ ପ୍ରତି ବଡ଼ଭାଇର ବାତ୍ସଲ୍ୟ । ]

**ଭ୍ରାତୃବତ୍ସଳ**—ସଂ. ବିଣ. ପୁଂ—ସାନଭାଇ ପ୍ରତି ସ୍ନେହଶୀଳ—
Bhrātrubatsala Attached to one's younger
(ଭ୍ରାତୃବତ୍ସଳା—ସ୍ତ୍ରୀ) [ଭ୍ରାତୃବତ୍ସଳତା—ବି] brother.

**ଭ୍ରାତୃବଧ**—ସଂ. ବି (୬ଷ୍ଠୀତତ୍)—ଭାଇକୁ ହତ୍ୟା କରିବା—
Bhrātrubadha Fratricide.

**ଭ୍ରାତୃବଧୂ**—ସଂ. ବି. ସ୍ତ୍ରୀ - ଭାଇବୋହୂ; ସାନଭାଇର ସ୍ତ୍ରୀ—
Bhrātrubadhū Younger brother's wife.

**ଭ୍ରାତୃବାତ୍ସଲ୍ୟ**-ସଂ.ବି-ସାନ ଭାଇ ପ୍ରତି ବଡ଼ଭାଇର ବା ବଡ଼ଭଉଣୀର ସ୍ନେହ-
Bhrātrubātsalya Brotherly affection; affection
(ଭ୍ରାତୃସ୍ନେହ—ଅନ୍ୟରୂପ) for one's younger brother.

**ଭ୍ରାତୃବିଚ୍ଛେଦ**—ସଂ. ବି (୬ଷ୍ଠୀତତ୍)—ଭାଇ ମାନେ ପରସ୍ପର ଠାରୁ
Bhrātrubichchheda ଦୂରରେ ରହିବା; ଭାଇଭାଇ ଠାଇଁ-
ଠାଇଁ ହେବା—Separation between brothers.

**ଭ୍ରାତୃବିବାଦ**—ସଂ. ବି (୬ଷ୍ଠୀ ତତ୍)—ଭାଇମାନଙ୍କ ମଧ୍ୟରେ କଳହ;
Bhrātrubibāda ଭାଇ ସଙ୍ଗେ ଭାଇର କଳି—Dispute
between brothers; fraternal dissension.

ଭ୍ରାତୃ ବୃନ୍ଦ—ସଂ. ବି—୧ । ଭାଇମାନେ—1. Brothers. ୨ । ଏକ Bhrātṛu bṛunda ଦେଶବାସୀ ବା ଏକ ଜାତୀୟ ବା ଏକ ବ୍ୟବସାୟାବଲମ୍ବୀ ବା ଏକ ସ୍ଥାନରେ ଉପସ୍ଥିତ ବ୍ୟକ୍ତିଗଣ— (ଭ୍ରାତୃଗଣ—ଅନ୍ୟରୂପ) 2. Brethren.

ଭ୍ରାତୃବ୍ୟ—ସଂ. ବି. ପୁଂ (ଭ୍ରାତୃ+ଅପତ୍ୟାର୍ଥେ ବ୍ୟ)-୧ । ଭାଇର ପୁଅ—Bhrātṛubya 1. Brother's son. ୨ । ଶତ୍ରୁ—2. An (ଭ୍ରାତୃବ୍ୟା—ବିପକ୍ଷର ଲିଙ୍ଗ) enemy.

ଭ୍ରାତୃଭକ୍ତି—ବଡ଼ ଭାଇ ପ୍ରତି ସାନଭାଇର ପ୍ରେମ—A younger Bhrātṛubhakti brother's devotion to the elder.

ଭ୍ରାତୃଭାବ—ସଂ. ବି—୧ । ଭାଇଭାଇ ସମ୍ବନ୍ଧ; ସୌଭ୍ରାତ୍ର—Bhrātṛubhāba 1. Brotherly relationship. ୨ । ଭାଇ ଭାଇ ମଧ୍ୟରେ ଥିବା ସଦ୍ଭାବ ପରି ସଦ୍ଭାବ—Brotherly feeling; brotherly affection or attachment.

ଭ୍ରାତୃଶ୍ୱଶୁର—ସଂ. ବି ପୁଂ—ସ୍ୱାମୀଙ୍କ ବଡ଼ ଭାଇ; (ଶ୍ୱଶୁରଙ୍କପରି Bhrātṛuśwaśura ସମ୍ମାନାର୍ହ) ଦେଢ଼ଶୁର—Husband's ভাশুর भासुर (ଭ୍ରାତୃଶ୍ୱଶ୍ରୂ—ସ୍ତ୍ରୀଲିଙ୍ଗ) elder brother.

ଭ୍ରାତୃସ୍ଥାନୀୟ—ସଂ. ବିଣ ପୁଂ—୧ । ସମ୍ପର୍କରେ ଭାଇ—1. Related Bhrātṛusthānīya to one as brother. ୨ । ଭାଇପରି; ଭ୍ରାତୃକଳ୍ପ—2. Like a brother; in the posi- (ଭ୍ରାତୃସମ—ଅନ୍ୟରୂପ) tion of brother to one.

ଭ୍ରାତୃସ୍ନେହ—ସଂ. ବି—୧ । ସାନ ଭାଇ ପ୍ରତି ବାତ୍ସଲ୍ୟ—1. Affec- Bhrātṛusneha tion for one's younger brother. ୨ । ଭ୍ରାତୃପ୍ରେମ (ଦେଖ)—2. Bhrātṛuprema (See).

ଭ୍ରାତୃହତ୍ୟା—ସଂ ବି (୬ଷ୍ଠୀତତ୍) —ଭ୍ରାତୃବଧ—Fratricide. Bhrātṛuhatyā (ଭ୍ରାତୃଘାତ—ଅନ୍ୟରୂପ)

ଭ୍ରାତୃହନ୍ତା—ସଂ. ବିଣ ପୁଂ—ଯେ ଭାଇକୁ ହତ୍ୟା କରେ—Bhrātṛuhantā (ଭ୍ରାତୃଘାତୀ—ଅନ୍ୟରୂପ) A fratricide.

ଭ୍ରାତ୍ରୀୟ—ସ. ବିଣ (ଭ୍ରାତୃ+ଇୟ)—୧ । ଭ୍ରାତୃସମ୍ବନ୍ଧୀୟ—Bhrātrīya 1. Fraternal. ୨ । ଭ୍ରାତୃସମ; ଭାଇପରି—2. Brotherly.

ଭ୍ରାନ୍ତ—ସ. ବିଣ (ଭ୍ରମ୍ ଧାତୁ+କର୍ତ୍ତୃ. ତ)—୧ । ଘୂର୍ଣ୍ଣାୟମାନ—1. Bhrānta Whirling; revolving. ୨ । ଭ୍ରମଣଶୀଳ— (ଭ୍ରାନ୍ତା—ସ୍ତ୍ରୀ) 2. Itinerant. ୩ । ଯେ ଭ୍ରମଣ କରିଥାଏ —3. Travelled. ୪ । ଭ୍ରମପୂର୍ଣ୍ଣ—4. Erroneous; full of mistakes. ୫ । ଯାହାର ଭ୍ରମ ଜନ୍ମିଥାଏ—5. Mistaken; deluded; fallen into error; erring. ୬ । କିଂକର୍ତ୍ତବ୍ୟବିମୂଢ଼ (ହି. ଗ)—6. Bewildered. ୭ । ଉନ୍ମତ୍ତ(ହି.ଗ)—7. Maddened. ସ. ବି—୧ । ମତ୍ତ ହାତୀ (ହି. ଗ)—1. A maddened elephant. ୨ । ଏକପ୍ରକାର ଧତୁରା; ରାଜଧାତୁରା (ହି. ଗ)—2. A large species of thorn apple plant.

ଭ୍ରାନ୍ତ ଧାରଣା—ସ. ବି—ଭ୍ରମପୂର୍ଣ୍ଣ ବିଶ୍ୱାସ—Erroneous belief; Bhrānta dhāraṇā mistaken notion.

ଭ୍ରାନ୍ତ୍ୟା(ନ୍ତ୍ୟା)ପହ୍ନୁତି-ସ.ବି—କୌଣସି ଭ୍ରାନ୍ତିର ଦୂରୀକରଣାର୍ଥ ସତ୍ୟବସ୍ତୁର Bhrāntā(ntyā)pahnuti ବର୍ଣ୍ଣନରୂପ କାବ୍ୟାଲଙ୍କାର ବିଶେଷ (ହି. ଗ)—A rhetorical figure in which true facts are described to remove a mistaken notion from the mind of the reader.

ଭ୍ରାନ୍ତି—ସ. ବି (ଭ୍ରମ ଧାତୁ+ଭାବ ତି)—୧ । ଭ୍ରମ; ପ୍ରମାଦ—1. Error; Bhrānti mistake. ୨ । ମିଥ୍ୟା ଜ୍ଞାନ; ମୋହ—2. Delusion. ୩ । ମାୟା—3. Illusion. ୪ । ଭ୍ରମଣ—4. Walk; wandering. ୫ । ଘୂର୍ଣ୍ଣନ—5. Revolution. ୬ । ସନ୍ଦେହ (ହି. ଗ) —6. Doubt. ୭ । କାବ୍ୟାଲଙ୍କାର ବିଶେଷ; ଯହିଁରେ ଉପସ୍ଥିତ ବସ୍ତୁ ସଙ୍ଗେ ଅନ୍ୟ ଅନୁପସ୍ଥିତ ବସ୍ତୁର ସାଦୃଶ୍ୟ ଦେଖି ଦର୍ଶକର ମନରେ ଅନୁପସ୍ଥିତ ବସ୍ତୁର ଧାରଣା ଜନ୍ମିବା ବିଷୟ ବର୍ଣ୍ଣିତ ହୋଇଥାଏ—7. A figure of speech in which is described how a person mistakes one thing for another thing on account of the former's similarity with the other. ଗ୍ରା.ବି (ସ. ଭାତି)—ଶୋଭା Beauty. (ଉ—ଗାୟେଣୀଙ୍କ ଗତି ଭ୍ରାନ୍ତି ଶୃଙ୍ଖଳା ତରଙ୍ଗ, ଦେଖିଣ କି ଟଳେ ମନ ଲୋଚନ ସେ ଅଙ୍ଗ । ପ୍ରାଚୀ ଦମୟନ୍ତୀ ।]

ଭ୍ରାନ୍ତି କର—ସ.ବି(ଭ୍ରାନ୍ତି+କୃଧାତୁ+ଅ)—୧ । ଯାହା ଭ୍ରାନ୍ତି ଜନ୍ମାଏ—Bhrānti kara 1. Delusive. ୨ । ସନ୍ଦେହ ଉତ୍ପାଦକ—2. Doubtful; creating doubt. ଭ୍ରାନ୍ତି ଜନକ, ଭ୍ରାନ୍ତି ପ୍ରଦ } ଅନ୍ୟରୂପ

ଭ୍ରାନ୍ତି ଦୂର—ଦେ. ବି (ଭ୍ରାନ୍ତି+ଦୂରୀଭାବ)—ମନରୁ ଭ୍ରାନ୍ତିର Bhrānti dūra ଲୋପ—Removal of doubt ভ্রান্তি দূর হওয়া भ्रान्ति दूर होना from one's mind.

ଭ୍ରାନ୍ତି ନିବାରଣ—ସ. ବି—୧ । ମନରୁ ଭ୍ରାନ୍ତି ବା ଭ୍ରମ ଦୂର ହେବା—Bhrānti nibāraṇa 1. Removal of a mistake from one's mind. ୨ । ଅନ୍ୟ ବ୍ୟକ୍ତିର ମନରୁ ଭ୍ରାନ୍ତି ଭାବ ଦୂର କରିବା—2. Removing a mistake from another's mind. ଭ୍ରାନ୍ତି ଦୂରୀକରଣ, ଭ୍ରାନ୍ତି ନିରସନ, ଭ୍ରାନ୍ତି ନିବୃତ୍ତିକରଣ, ଭ୍ରାନ୍ତି ଶୋଧନ } ଅନ୍ୟରୂପ

ଭ୍ରାନ୍ତି ବିନୋଦ—ସ. ବି (ଅଧୁନିକ ପ୍ରୟୋଗ; ସେକ୍ସପିଅରଙ୍କ ନାଟକର Bhrānti binoda ନାମର ଅନୁବାଦ)—ଉପର୍ଯ୍ୟୁପରି ଭ୍ରମରେ ପତିତ (ଭ୍ରାନ୍ତି ବିଲାସ—ଅନ୍ୟରୂପ) ହେବାର ଫଳରେ ଘଟିବା ଆନନ୍ଦ—Comedy of errors.

ଭ୍ରାନ୍ତିମାନ୍—ସ. ବିଣ—୧ । ଭ୍ରମଯୁକ୍ତ—1. Mistaken. ୨ । କୁପଥ-Bhrāntimān ଗାମୀ—2. Going astray. ବି—କାବ୍ୟା- (ଭ୍ରାନ୍ତିମତୀ—ସ୍ତ୍ରୀ) ଲଙ୍କାର ବିଶେଷ—A rhetorical figure. [ବି—ଏଥିରେ ସାଦୃଶ୍ୟ ହେତୁ କଳ୍ପନାକୃତ ପ୍ରକୃତ ବିଷୟରେ କବିର ଅନ୍ୟ ବସ୍ତୁର ଭ୍ରମ ହୁଏ । ଯଥା—ଶିବା ଖୋଜିଲେ ସେ ସ୍ୱପ୍ନ ଅଛନ୍ତି ନାହାନ୍ତି ଭ୍ରମ ହିବ

ଗଙ୍ଗାଙ୍କୁ ଶୋଷିଲେ ଜଟା ପିଠାଇ, ଭୁଷୁମ ବୃତଗୀ ଅଦୃଷ୍ଟ ରଜାର ଖଣ୍ଡ, ମୋଢ଼ବାର ବଗ ମୋଢ଼ ଚନ୍ଦ୍ରାକୁ ପାଇ, ଭ୍ରମରେ ଭ୍ରମରେ ଭ୍ରମନ୍ତି, ମଧୁ ପଗ୍ୱେ କୁମୁଦନୀ ଲୋଡ଼ନ୍ତି । ଅଭିମନ୍ୟୁ. ବିଦଗ୍ଧ ଚନ୍ଦ୍ରାମଣି ।]

**ଭ୍ରାନ୍ତି ମୂଳକ**—ସଂ. ବଣ—ଯାହା ଭ୍ରାନ୍ତି ଯୋଗୁଁ ଘଟିଥାଏ—Due to error; based on mistake.
Brānti mūḻaka

**ଭ୍ରାନ୍ତି ହର**—ସଂ. ବି—ଯାହା ଭ୍ରାନ୍ତି ଦୂର କରେ—Removing error.
Bhrānti hara

**ଭ୍ରାମକ**—ସଂ. ବଣ. ପୁଂ (ଭ୍ରମ୍ ଧାତୁ ଣିଚ୍; ଭ୍ରମି ଧାତୁ+କର୍ତ୍ତୃ. ଅକ)—
Bhrāmaka ୧ । ଯେ ଅନ୍ୟକୁ ଭ୍ରମରେ ପକାଏ—1. Leading one to error. ୨ । ଯେ ବହୁତ ବୁଲାଏ—2. Causing a person to roam. ୩ । ଶଠ; ଧୂର୍ତ୍ତ—3. Deceptive; cheating. ବି—୧ । ଶଠ ବ୍ୟକ୍ତି—1. A cheat. ୨ । ବିଲୁଆ—2. Jackal. ୩ । ଚୁମ୍ବକ ପଥର—3. Load stone; magnet. ୪ । ସୂର୍ଯ୍ୟମୁଖୀ ଫୁଲ—4. Sun flower. ୫ । କାନ୍ତ ଲୌହ (ହି. ଶ)—5. A kind of iron.
(ଭ୍ରମିକା—ସ୍ତ୍ରୀ)

**ଭ୍ରାମର**—ସଂ. ବି (ଭ୍ରମର+ଅ)—୧ । ଭ୍ରମର ସଞ୍ଚିତ ଏକପ୍ରକାର ମଧୁ; ମହୁ—1. A kind of honey collected by the humble bee. [ଦ୍ର—ସଚରାଚର ଯେଉଁ ଭ୍ରମର ମାନେ ଦେଖାଯାନ୍ତି, ସେମାନଙ୍କ ଅପେକ୍ଷା ଆକୃତିରେ କିଞ୍ଚିତ କ୍ଷୁଦ୍ର ଭ୍ରମରମାନଙ୍କ କର୍ତ୍ତୃକ ସଞ୍ଚିତ ଭ୍ରମରମଧୁ ସ୍ଫଟିକତୁଲ୍ୟ ନିର୍ମଳ । ବୈଦ୍ୟକମତରେ ଏହା ରକ୍ତ ପିତ୍ତ ନାଶକ, ମୂତ୍ର-ଜନକ, ଜାଡ୍ୟକର, ଗୁରୁ, ମଧୁରବିପାକ, ଅଭିଷ୍ୟନ୍ଦୀ, ଅତ୍ୟନ୍ତ ପିଚ୍ଛିଳ ଓ ଶୀତବୀର୍ଯ୍ୟ-ବିଗଳା ଦ୍ରବ୍ୟଗୁଣ । ] ୨ । ଚୁମ୍ବକ ପଥର; ଅୟସ୍କାନ୍ତମଣି—2. Magnetie stone. load stone. ୩ । ନୃତ୍ୟ ବିଶେଷ—3. A kind of whirling ring-dance. [ଦ୍ର—ଏ ନୃତ୍ୟରେ ବହୁ ଲୋକ ମଣ୍ଡଳ ହୋଇ ବୁଲି ବୁଲି ନାଚନ୍ତି । ଗଡ଼ଜାତର ଆଦିମନିବାସୀମାନେ ଏହି ପ୍ରକାର ନାଚ ନାଚନ୍ତି ।] ୪ । ଅପସ୍ମାର ରୋଗ—4. Epilepsy. ବଣ—ଭ୍ରମର ସମ୍ବନ୍ଧୀୟ—Relating to the black bee.
Bhrāmara

**ଭ୍ରାମରୀ**—ସଂ ବି. ସ୍ତ୍ରୀ (ଭ୍ରାମର+ସ୍ତ୍ରୀ. ଈ)—୧ । ଭ୍ରାମରର ସ୍ତ୍ରୀଲିଙ୍ଗ—1. The feminine of Bhrāmara. ୨ । ଦୁର୍ଗା—2. Goddess Durgā. [ ଦ୍ର—ଚଣ୍ଡୀପୁରାଣରେ ୧୧ଶ ଅଧ୍ୟାୟ ୪୩।୫୪ ଶ୍ଳୋକରେ ଦେବୀ ସ୍ତବକାରୀ ଦେବତାମାନଙ୍କୁ କହିଅଛନ୍ତି, 'ଯେଉଁ ସମୟରେ ଅରୁଣ ନାମକ ରାକ୍ଷସ ତ୍ରୈଲୋକ୍ୟରେ ମହାବାଧା କରିବ, ସେ ସମୟରେ ମୁଁ ବହୁ ଷଟ୍‌ପଦ ଭ୍ରମରରୂପ ଧାରଣ କରି ତ୍ରୈଲୋକ୍ୟର ହିତ ନିମନ୍ତେ ଉକ୍ତ ମହାସୁରକୁ ବଧ କରିବି ଓ ଲୋକେ ସର୍ବତଃ ମୋତେ ସେ ସମୟରେ 'ଭ୍ରାମରୀ' ନାମରେ ସ୍ତବ କରିବେ । ] ୩। ପୁତ୍ରଦାତ୍ରୀ ଲତା (ହି. ଶ)—3. A kind of herbal creeper. ୪ । (ପୁଂ; ଭ୍ରାମର+ଇନ୍; ୧ମା, ୧ବ) ଅପସ୍ମାର ରୋଗାକ୍ରାନ୍ତ ବ୍ୟକ୍ତି (ହି. ଶ)—4. A person subject to epeleptic fits. ସଂ. ବଣ—୧ । (ପୁଂ) ଭ୍ରାମର+ଇନ୍) ଅପସ୍ମାର ରୋଗାକ୍ରାନ୍ତ—1. Epileptic. ୨ । (ସ୍ତ୍ରୀ) ଭ୍ରାମରର ସ୍ତ୍ରୀଲିଙ୍ଗ—2. Feminine of Bhrāmara.
Bhrāmarī

**ଭ୍ରାମ୍ୟମାଣ**—ସଂ. ବଣ. ପୁଂ (ଭ୍ରମ ଧାତୁ+ଅନ)—୧ । ଘୂର୍ଣ୍ଣ୍ୟମାନ; ଯାହାକୁ ଘୁରି ଯାଉଥାଏ—1. Being whirled round. ୨ । ଯାହାକୁ ଅନ୍ୟବ୍ୟକ୍ତି ବହୁତ ବୁଲାଉଅଛି—2 Caused to wandr or roam..
Bhrāmyamāṇa
(ଭ୍ରାମ୍ୟମାଣା—ସ୍ତ୍ରୀ)

**ଭ୍ରାଷ୍ଟ୍ର**—ସଂ. ବି—୧ । (ଭ୍ରାଜ ଧାତୁ+କର୍ତ୍ତୃ ତ୍ର; ନିପାତନ)—ଆକାଶ (ହି. ଶ)—1. The sky. ୨ । (ଭ୍ରଜ ଧାତୁ+କରଣ ବା ଅଧିକରଣ ତ୍ର, ନିପାତନ) ଭଜାଭଜି ହାଣ୍ଡି; ଯେଉଁ ହାଣ୍ଡିରେ ଚାଉଳ ଭଜା ମୁଢ଼ି, ଚୂଡ଼ା ଭଜା ଖଇଁ ଆଦି କରାଯାଏ (ହି. ଶ)—2. A pot for frying rice and other corn.
Bhrāshṭra

**ଭ୍ରୂକୁଂସ**—ସଂ. ବି. ପୁଂ—ସ୍ତ୍ରୀ ବେଶଧାରୀ ନର୍ତ୍ତକ ବା ନଟ (ହି. ଶ)—An actor or dancer in female dress.
Bhrukuṁsa

**ଭ୍ରୂ**—ସଂ. ବି. ସ୍ତ୍ରୀ (ଭ୍ରମ୍ ଧାତୁ+ କର୍ତ୍ତୃ. ଡୂ)—ଚକ୍ଷୁର ଉପରେ ଓ ଲଲାଟର ନିମ୍ନରେ ଥିବା ଧେନୁକାକୃତି ଲୋମରାଜି; ଭୂଲତା—Eyebrow; the line of hair or the arches over the eyes; the hairy arches above the eyes.
Bhrū

**ଭ୍ରୂକୁଞ୍ଚନ**—ସଂ. ବି (ଭ୍ରୂ+କୁଞ୍ଚନ=ସଙ୍କୋଚ; ବକ୍ରୀଭାବ)—କଟାକ୍ଷ; କ୍ରୋଧାଦିଜନିତ ଭ୍ରୂର ବକ୍ରତା-Scowling; frown; knitting of the eyebrows due to anger or displeasure.
Bhrūkuñchana

**ଭ୍ରୂକୁଞ୍ଚନ କରିବା** -ଦେ. କ୍ରି—୧ । କ୍ରୋଧରେ ମୁହଁ ଫଣ ଫଣ କରିବା—1. To scowl; to frown. ୨ । (ଲକ୍ଷଣାର୍ଥ) କ୍ରୋଧ ବା ଅସମ୍ମତି ବା ଅସନ୍ତୋଷ ପ୍ରକାଶ କରିବା—2. (figurative) To show signs of one's anger, disagreement or displeasure.
Bhrūkuñchana karibā
(ଭ୍ରୂକୁଟି କରିବା-ଅନ୍ୟରୂପ)
ভ্রূকুঞ্চনকরা, ভ্রুকুটি
**भौंहेंटेरकरना, भौंहचढाना**

**ଭ୍ରୂକୁଟି(ଟୀ)**—ସଂ. ବି (ଭ୍ରୂ+କୁଟ୍ ଧାତୁ=କୁଟିଳ ହେବା+ଇ, ଈ)—ଭ୍ରୂକୁଞ୍ଚନ (ଦେଖ)—Bhrūkuñchana (See) ଦେ. ବି (ସଂ. ଭୃଙ୍ଗୀ)—ମହାଦେବଙ୍କ ଦ୍ୱାରପାଳ ଦ୍ୱୟଙ୍କ ମଧ୍ୟରୁ ଜଣେ—One of the two gatekeepers of Śiba. [ଦ୍ର—ଅନ୍ୟ ଦ୍ୱାରପାଳଙ୍କ ନାମ ନନ୍ଦୀ ।]
Bhrūkuṭi(ṭī)

**ଭ୍ରୂକୁଣ୍ଡା**—ଦେ. ବଣ (ସଂ. ଭ୍ରୂକୁଟୀ)—ଭୂରୁକୁଣ୍ଡା ଭ୍ରୂକୁଟିଯୁକ୍ତ—Frowning; scowling.
Bhrūkuṇḍā
(ଭ୍ରୂକୁଣ୍ଡୀ—ସ୍ତ୍ରୀ) গাল ফোলা **भद्दा**

**ଭ୍ରୂକୁଣ୍ଡା ମୁହାଁ**—ଦେ. ବି—ଭୂରୁକୁଣ୍ଡା ମୁଖ ଯୁକ୍ତ—Having a scowling face.
Bhrūkuṇḍā muhāñ
(ଭ୍ରୂକୁଣ୍ଡୀ ମୁହାଁ—ସ୍ତ୍ରୀ) গাল ফোলা **भद्दा मुहँा**

**ଭ୍ରୂକ୍ଷେପ**—ସ. ବି ( ୬ଷ୍ଠୀ ତତ୍; ଭ୍ରୂ+କ୍ଷେପ )—୧ । ଭ୍ରୂଭଙ୍ଗ; ଭ୍ରୂଚାଳନ—1. Look; glance; a cast of the eyebrows (for an expressive look).
Bhrūkshepa
୨ । ସଙ୍କେତ ଜ୍ଞାପନାର୍ଥ ଭ୍ରୂର ତିର୍ଯ୍ୟକ୍ ଚାଳନା—2. Sidelong glance indicating some sign.
୩ । (ଲକ୍ଷଣାର୍ଥ) ସମ୍ମାନ; ଖାତିର—3. (figurative) Regard; respect

**ଭ୍ରୂକ୍ଷେପ କରିବା**—ଦେ. କ୍ରି—୧ । ଦୃଷ୍ଟି ପକାଇବା—1. To look at. ୨ । ଖାତିର କରିବା—2. To take notice of; to pay heed to.
Bhrūkshepa karibā
ভ্রূক্ষেপ করা
भ्रूक्षेप करना
(ଯଥା—ସେ ମୋ କଥାକୁ ଆଦୌ ଭ୍ରୂକ୍ଷେପ କଲେ ନାହିଁ ।)

**ଭ୍ରୂଣ୍** (ଧାତୁ)—ସ—ଆକାଙ୍କ୍ଷା କରିବା;ଆଶା କରିବା—To hanker after; to wish; to hope for.
Bhrūṇ (root)

**ଭ୍ରୂଣ**—ସ. ବି ( ଭ୍ରୂଣ୍ ଧାତୁ+କର୍ମ. ଅ )—୧ । ଗର୍ଭସ୍ଥ ଶିଶୁ; ଶିଶୁର ଗର୍ଭରେ ଥିବା ବେଳର ଅବସ୍ଥା—1. Fœtus; the embryo in the womb. ୨ । ଅଜାତ ଶିଶୁ; ଶିଶୁର ଜନ୍ମ ହେବାର ପୂର୍ବ ଅବସ୍ଥା—2. An unborn child. ୩ । ବାଳକ—3. A boy. ୪ । ସ୍ତ୍ରୀର ଗର୍ଭ (ହ୍ରୂ. ଶ) - 4. Womb; uterus
Bhrūṇa

**ଭ୍ରୂ(ଭ୍ରୂ)ଣଘ୍ନ**—ଦେ. ବିଣ. ପୁଂ ( ଭ୍ରୂଣ+ହନ ଧାତୁ+କ୍ୱିପ୍ )—ଯେ ଗର୍ଭସ୍ଥ ଭ୍ରୂଣକୁ ନାଶ କରେ; ଯେ ଗର୍ଭ ପାତ କରାଏ; ଗର୍ଭପାତକାରୀ—Bringing about or causing abortion or miscarriage.
Bhrū(bhru)ṇaghna
ଭ୍ରୂଣ ଘାତକ, ଭ୍ରୂଣଘାତୀ, ଭ୍ରୂଣହା } ଅନ୍ୟରୂପ
ଭ୍ରୂ(ଭ୍ରୂ)ଣଘ୍ନୀ, ଭ୍ରୂଣଘାତକା, ଭ୍ରୂଣଘାତିନୀ } ସ୍ତ୍ରୀ

**ଭ୍ରୂଣ ହତ୍ୟା**—ସ. ବି—ଗର୍ଭପାତ ଦ୍ୱାରା ଗର୍ଭସ୍ଥ ସନ୍ତାନର ବିନାଶ—Causing miscarriage or abortion.
Bhrūṇa hatyā

**ଭ୍ରୂ ଧନୁଃ**—ସ. ବି (ରୂପକ)— ଧନୁକାକୃତି ଅକ୍ଷି ପତା ଉପରର ରୋମରାଜି; ଭୂଲତା—The bowlike line of furs over the eye; the arched eyebrow.
Bhrū dhanuḥ

**ଭ୍ରୂ ବିକାଶ**—ସ. ବି—ଅକ୍ଷି ଠାର; କଟାକ୍ଷ—An amorous play of the eye brow.
Bhrū bikāśa
(ଭ୍ରୂ ବିଭ୍ରମ—ଅନ୍ୟରୂପ)

**ଭ୍ରୂ(ଭ୍ରୂ)ଭଙ୍ଗ**—ସ. ବି—୧ । କ୍ରୋଧରୁ ବା ଅସନ୍ତୋଷରୁ ଭ୍ରୂ କୁଞ୍ଚନ—Frown; scowl (due to anger or displeasure).
Bhrū(bhru)bhaṅga
(ଭ୍ରୂ ବିକ୍ଷେପ—ଅନ୍ୟରୂପ)
খাতির
खातिर
ଦେ. ବି—ଭୂରୁଭଙ୍ଗ; ଖାତିର—Regard; care.

**ଭ୍ରୂଭଙ୍ଗି(ଙ୍ଗୀ)**—ସ. ବି (୬ଷ୍ଠୀ ତତ୍)—୧ । ଭ୍ରୂ ବିକାଶ ( ଦେଖ ) 1. Bhrūbikāśa (See) ୨ । ଭ୍ରୂଭଙ୍ଗ ( ଦେଖ ) 2. Bhrūbhaṅga ( See )
Bhrūbhaṅgi(ṅgī)
(ଭ୍ରୂ ଭଙ୍ଗିମା—ଅନ୍ୟରୂପ)

**ଭ୍ରୂମଧ୍ୟ**—ସ. ବି—ଭ୍ରୂ ଯୁଗଳର ମଧ୍ୟ ସ୍ଥାନ—The middle of the eyebrows; the portion just over the bridge of the nose.
Bhrū madhya

**ଭ୍ରୂଲତା**—ସ. ବି ( ରୂପକ )—ଭୂଲତା—Eyebrow; the arched eyebrow.
Bhrūlatā
(ଦ୍ର—ଏହିର ଅପଭ୍ରଂଶ ଭୂଲତା ।)

**ଭ୍ରୂ ସଙ୍କେତ**—ସ. ବି—ଅକ୍ଷି ଠାର; ଭ୍ରୂ ସଞ୍ଚାଳନ ଦ୍ୱାରା ଇଙ୍ଗିତ ବା ଇସାରା—A suggestive wink; a significant gesture made by the turning of the eyebrow.
Bhrū saṅketa

**ଭ୍ରେଷ୍** (ଧାତୁ)—ସ—ଗମନ କରିବା—To go.
Bhresh (root)

**ଭ୍ରେଷ**—ସ, ବି ( ଭ୍ରେଷ୍ ଧାତୁ=ଗମନ କରିବା+ଭାବ. ଅ )—୧ । ଗମନ—1. Going, ୨। ଭ୍ରମଣ—2 Walking. ୩ । ଅନଧିକାର ପ୍ରବେଶ—3. Trespass. ୪ । ଅନ୍ୟାୟ; ଦୋଷ—4. Fault; wrong. ୫ । କୁପଥ ଗମନ—5. Going astray; deviation from the path of rectitude. ୬ । ନାଶ (ହ୍ରୂ. ଶ)—6. Ruin. ୭ । ଭୟ; ଡର—7. Fear.
Bhresha
(ଭ୍ରେଷଣ—ଅନ୍ୟରୂପ)

# ମ

ମ—ସ—ବ୍ୟଞ୍ଜନ ବର୍ଣ୍ଣମାଳାର ପଞ୍ଚବିଂଶ ବର୍ଣ୍ଣ, ପ ବର୍ଗର ପଞ୍ଚମ ବର୍ଣ୍ଣ (ଏହା
Ma ଅନୁନାସିକ ବର୍ଣ୍ଣ ଓ ଓଷ୍ଠ୍ୟ ବର୍ଣ୍ଣ)—The 25th consonant corresponding to 'M' of the English alphabet. ବି. (ମା ଧାତୁ=ପରିମାଣ କରିବା + କର୍ତ୍ତୃ. ଅ)—୧ । ଯମ—1. God of death ୨ । (+କରଣ. ଅ) ସମୟ—2. Time. ୩ । (+କର୍ତ୍ତୃ ଅ) ବିଷ୍ଣୁ—3. Bishṇu, the God of preservation. ୪ । ଶିବ—4. Śiba, the God of destruction. ୫ । ବ୍ରହ୍ମା - 5 Brahmā, the God of creation. ୬ । ଚନ୍ଦ୍ର—6 Moon. ୭ । (+କର୍ମ ଅ) ସୌନ୍ଦର୍ଯ୍ୟ—7. Beauty. ୮ । ବିଷ—8. Poison. ୯ । ମୁଖ—9. Mouth. ୧୦ । (+କର୍ତ୍ତୃ. ଅ) ମନୁଷ୍ୟ—10. Man. [ଦ୍ର—ଭାଷାର ଅନେକ ଗୁଡ଼ିଏ ଧ୍ୱନ୍ୟନୁକରଣ ଅବ୍ୟୟ ଶବ୍ଦ ଏହି ଅକ୍ଷର ଦ୍ୱାରା ଗଠିତ ହୋଇଅଛି । ଯଥା—ଝମ୍‌ଝମ୍, ଘମ୍‌ଘମ୍, ଝମ୍‌ଝମ୍, ଝମର ଝମର, ମକ୍‌ମକ୍, ମଟ୍‌ମଟ୍, ମଚ୍‌ମଚ୍, ମଡ଼୍‌ମଡ଼୍, ଡମ୍‌ଡମ୍, ଛମ୍‌ଛମ୍, ଢମ୍‌ଢମ୍, ଦମ୍‌ଦମ୍, ଧୁମ୍‌ଧାମ୍, ମିଟିମିଟି, ଝୁମୁଝୁମୁ ଇତ୍ୟାଦି ।]
ଦେ. ଅ—ନିମ୍ନଲିଖିତ ସ୍ଥଳମାନଙ୍କରେ ବ୍ୟବହୃତ ହୁଏ—An interjection used in the following cases. ୧ । ସମ୍ବୋଧନ—1. In addressing a person. ୨ । ବାକ୍ୟ ସମାପ୍ତି—2. In completing a sentence. ୩ । ବାକ୍ୟର ବିଶିଷ୍ଟତା ଦ୍ୟୋତକ—3. In emphasising a sentence. ୪ । ଅନାଦରାର୍ଥକ—4. Expressing disregard. ୫ । ବିସ୍ମୟ, ସନ୍ଦେହ ବା ଆଶ୍ଚର୍ଯ୍ୟ ବ୍ୟଞ୍ଜକ—5. In expressing surprise, doubt or wonder. [ ଦ୍ର—'ମ' ସମ୍ବୋଧନରେ ବ୍ୟବହୃତ ହେଲେ ସମ୍ବୋଧିତ ବ୍ୟକ୍ତିର ପରେ ବସେ; ଯଥା—ରାମ ମ; କିନ୍ତୁ ଶବ୍ଦର ପୂର୍ବରେ ଓ ପରେ 'ହେ' ବସେ, ଯଥା—ହେ ରାମ, ରାମ ହେ । ]

ମ ଅ—ଦେ. ଅ—ମ ( ଦେଖ )—Ma ( See )
Ma-a

ମଅଣ—ଦେ. ଓ ବିଣ—୧ । ମଣ ( ଦେଖ )—1. Maṇa (See)
Ma-aṇa ୨ । ମହଣ ( ଦେଖ )—2. Mahaṇa ( See )

ମଅଣ ସାରୁ—ଦେ. ବି—ମାଣସାରୁ—Arum Indicum; Alocasia Indica.
Ma-aṇa sāru

ମଅନ୍—ଦେ. ବି ( ସ. ମଥନୋତ୍ଥ=ଘୃତ ? ହିମ୍ଦୀ ; ସ. ମଦନ=ମହମ—ଯୋଗେଶ୍ୱର )—ରୁଟୀ ଓ ଲୁଚି ପାଇଁ ଅଟାର
Ma-an ବା ମଇଦାର ପିଣ୍ଡ ଚକଟା ହେବା ପୂର୍ବରୁ ଅଟାରେ
मयान ବା ମଇଦାରେ ମିଶାଯିବା ଘିଅ—Ghee mixed
मोया; मोयन with flour before it is mixed with water and kneaded into dough. [ ଦ୍ର—ଅଟାରେ ମଅନ୍ ଦେଲେ ରୁଟି ବା ପୁରି ଫୁଲୁକା ଓ ହାଲୁକା ହୁଏ ।]

ମଅନ୍ ଦାର୍—ଦେ. ବଣ—ମୟାନ ବା ଉତ୍ତମ ଘିଅ ଦିଆଯାଇ ତିଆରି
Ma-an dār ହୋଇଥିବା ( ପୁରି, ଲୁଚି ବା ରୁଟି ); ଖାସ୍ତା—
मयान दार ( Bread etc ) Prepared with a leaven
माँया दार, मोयन दार of ghee.

ମଅମ—ଦେଦେ. ବି ( ଫା. ମୋମ୍; ମୂଳ ସ. ମଧୂଚ୍ଛିଷ୍ଟମ୍ )—ମହମ
Ma-ama মোম मोम ( ଦେଖ )—Mahama ( See )

ମଅଳ—ଗ୍ରା. ବି ( ସ. ମଳ )—ମଳ; ମଳି—Dirt; filth;
Ma-aḷa excrement. ବିଣ—ମଇଳା; ମଳଯୁକ୍ତ; ମଳଥା;
मयला मैल, मला ମସିଆ—Dirty; filthy.

ମଅଳଣ(ନ)—ଦେ. ବଣ ( ସ. ମ୍ଳାନ )—୧ । ମ୍ଳାନ—1. Pale.
Ma-aḷaṇa(na) ୨ । ଝାଉଁଳ ବା ମଉଳି ଯାଇଥିବା—2.
মলিন Withered. ୩ । ସଭାଆଦିର ଭଙ୍ଗ—3. The
मलान dispersal of a meeting or gathering.
ବି—ମ୍ଳାନ ହେବା—Paling; discolouration.

ମଅଳଣ(ନ) ପଡ଼ିବା—ଦେ. କ୍ରି—୧ । ମଉଳିଯିବା; ମ୍ଳାନ ହେବା—
Ma-aḷaṇa(na) paṛibā 1. To become pale.
मलान होना
୨ । (ସଭା) ଭାଙ୍ଗି ଯିବା—2. (a meeting) To disperse.

ମଅଳ ମ୍ଳେଚ୍ଛ(ଚ୍ଛା)—ଦେ. ବିଣ. ପୁଂ ଓ ସ୍ତ୍ରୀ ( ସଂ ମଳ ଓ ମ୍ଳେଚ୍ଛ )—
Ma-aḷa mḷechha(chhā) ମଳଯୁକ୍ତ ଓ କୁତ୍ସିତ ( ଶରୀର ଓ
ମଅଳ ମେଲେ(ଳ)ଚ୍ଛଆ } ଅନ୍ୟରୂପ ବସ୍ତ୍ରାଦି )—Foul and
ମଅଳ ମେଲେ(ଳ)ଚ୍ଛ(ଚ୍ଛା) dirty.
(ମଅଳ ମ୍ଳେଚ୍ଛୀ, ମଅଳ ମେଲେଚ୍ଛୀ, ମଅଳ ମେଲେଚ୍ଛେଇ—ସ୍ତ୍ରୀ)
নোংরা म्लेच्छ

ମଅଳିଆ—ଦେ. ବିଣ (ସ. ମଳିନ)—ମଳିନ—Dirty; filthy.
Ma-aḷiā ময়লা मैला

ମଇ—ଦେ. ବି ( ସ. ମର୍ଦ୍ଦିକା; ମଦିକା; ମଦି )—୧ । ହଳ କରାଯାଇ
Mai ଥିବା ଜମିର ଟେକାମାନଙ୍କୁ ଭାଙ୍ଗି ସମତୁଲ କରିବା
মৈ ନିମନ୍ତେ କ୍ଷେତ୍ର ଉପରେ ଘୋଷାରିଥିବା କାଶୁଣି ପରି କୃଷିଯନ୍ତ୍ର
हैंगा; पटेल ବିଶେଷ—1. A ladder-like harrow drawn over ploughed fields to reduce the ploughed up clods of dry earth into powder; a beam; a clod-crusher; clod-breaker. [ ଦ୍ର—ପାଚିଲା ଧାନରେ ମଇଦେବା ନ୍ୟାୟ—କ୍ଷେତରେ ଧାନ ପାଚିଥିବା ସମୟରେ ମଇ ଦେଲେ ଧାନଗୁଡ଼ିକ ଗଛରୁ ଝଡ଼ି ପଡ଼ି ମାଟିରେ ମିଶିଯାଇ ନଷ୍ଟ ହୁଏ ଓ କୃଷକର ସର୍ବନାଶ ଘଟେ ବୋଲି, ବହୁପରିଶ୍ରମସାଧ୍ୟ କୌଣସି କାର୍ଯ୍ୟରେ ଫଳଭୋଗ କେଳକୁ ବିଘ୍ନ ବା ସର୍ବନାଶ ବା କଷ୍ଟଲତା ଘଟିଲେ ଏହି ଉପମା ଦିଆଯାଏ । ]
জিওল ୨ । ଜିଅଲ ଗଛ; ଏକପ୍ରକାର ଜଙ୍ଗଲି ବଡ଼ ଗଛ—
जिगन 2. A kind of wild tree; Odina Wodier.
মে ଦେବିଦେ ( ଇଂ. ମେ )—ଇଂରାଜି ବର୍ଷର ପଞ୍ଚମ ମାସ—
मई The month of May.

ମଇଆ—ପ୍ରାଦେ ( ସମ୍ବଲପୁର ଓ ବାମଣ୍ଡା ) ( ମୂଳ ଫା. ମେୱା )—
Maiā ୧ । ପିଜୁଳି—1. Guava. ୨ । ( ସମ୍ବଲପୁର ) ଆତ—2. Custard apple.

ମଇଁଷ—ଦେ. ବି ( ସଂ. ମହିଷ )—ମଇଁଷି ( ଦେଖ )
Maiñsha Maiñshi ( See )

ମଇଁଷାଘିଅ—ପ୍ରାଦେ ( ଉତ୍ତର ବାଲେଶ୍ୱର ) ବି ( ମୂଳ ବଂ. ଭଇଁଷା ଘୀ )—ମଇଁଷିର ଦୁଧରୁ ପ୍ରସ୍ତୁତ ଘିଅ—
Maiñshā ghia Ghee prepared from buffalo-milk; ghee produced from the milk of buffaloes.

ମଇଁଷାଳ—ଦେ. ବି. ପୁଂ (ସଂ. ମହିଷପାଳ )—ମହିଷରକ୍ଷକ; ଯେ ମହିଷ ଚରାଏ—A tender of buffaloes.
Maiñshāḷa
**भैसवार** মহীষের রাখাল

ମଇଁଷାସୁର—ପ୍ରା. ବି (ସଂ. ମହିଷାସୁର)—ମହିଷାସୁର ( ଦେଖ )
Maiñshāsura Mahishāsura ( See )

ମଇଁଷି—ଦେ. ବି. ପୁଂ ଓ ସ୍ତ୍ରୀ ( ସଂ. ମହିଷ )—ଗୋ ଜାତୀୟ ଦୁଗ୍ଧଦ କୃଷ୍ଣବର୍ଣ୍ଣ ଗୃହପାଳିତ ପଶୁବିଶେଷ—Buffalo.
Maiñshi
ভয়স, মইষ [ ଦ୍ର—ଏମାନେ ଜଙ୍ଗଲରେ ଚରନ୍ତି ଓ ପାଣିରେ
**भैंसा:, महीष** ବୁଡ଼ିବାକୁ ଖୁବ ଭଲ ପାଆନ୍ତି । ଗ୍ରାମ୍ୟ ଓ ବନ୍ୟ ଭେ. ଜନଯୋଗୁ ଭେଦରେ ଦୁଇପ୍ରକାର ମଇଁଷି ଅଛନ୍ତି । ବନ୍ୟ ମଇଁଷି କଳା ଓ ଖୁଷଣପ୍ରକୃତିକ ଓ ଗ୍ରାମ୍ୟ ମଇଁଷି ପାଣ୍ଡୁରବର୍ଣ୍ଣର ଅଟନ୍ତି । ଅଣ୍ଡିରା ମଇଁଷିକୁ ଯୋଢ଼ ବା ଯୋଢ଼ୁଅ ବୋଲାଯାଏ । ] ପ୍ରାଦେ ( ସିଂହଭୂମି ) ବି— ମାଈ ମଇଁଷି—She-buflalo. [ ଦ୍ର—ଅଣ୍ଡିରା ମଇଁଷିକୁ ସିଂହଭୂମିରେ କେଡ଼ା କୁହାଯାଏ । ]

ମଇଁଷିଆ—ଦେ. ବିଣ—୧ । ମହିଷ ସମ୍ବନ୍ଧୀୟ—1. Relating to
Maiñshiā buffalo. ୨ । ମହିଷଜାତ; ମହିଷୋତ୍ପନ୍ନ—
মইষা, ভয়সা 2. Produced from buffalo. ୩ । (ଏକ-
**भैंसका** ଜାତୀୟ ଫଳ ବା ଜନ୍ତୁ ମଧ୍ୟରେ ବଡ଼ ଆକୃତିବିଶିଷ୍ଟ ଫଳକୁ ବା ଜନ୍ତୁକୁ ମଇଁଷିଆ ଓ ଛୋଟ ଆକୃତିବିଶିଷ୍ଟ ଫଳକୁ ବା ଜନ୍ତୁକୁ ଗାଈଆ ବୋଲାଯାଏ ) ବଡ଼ଜାତୀୟ—3. Belonging to a large species. ଦେ.ବି. ପୁଂ— ମହିଷ ରକ୍ଷକ—A tender of buffaloes.

ମଇଁଷିଆ ଜୋକ—ଦେ. ବି—ଏକପ୍ରକାର ବଡ଼ ଜୋକ—A large
Maiñshiā joka বড় জোঁক species of leeches.
**महीसिया जोंक** ( ଗାଈଆ ଜୋକ—ବିପରୀତ )

ମଇଁଷିଆ ଦେ(ଦି)ହ—ଦେ. ବି (ସଂ. ମହିଷ+ଦେହ)—ଯେଉଁ ବ୍ୟକ୍ତିର
Maiñshiā de(di)ha ଶରୀର ଜଳକୁ ସର୍ବଦା ଗରମ ଥିବା ପରି
**भैंसीया देह** ଜଣାଯାଏ ଓ ଯେ ସର୍ବଦା ଥଣ୍ଡା ପାଣିକୁ ଖୁବ ଭଲ ପାଏ—A person who always feels hot and likes cold bath ( like the buffalo ).

ମଇଁଷିଆଳ—ଦେ. ବି. ପୁଂ ( ସଂ. ମହିଷପାଳ )—ମହିଷ ରକ୍ଷକ—
Maiñshiāḷa A person who tends buffaloes; a
মহিষ চরান লোক, মহিষের রাখাল buffalo-herd.
**भैंसवार**

ମଇଁଷିଆଳ ଛତା—ଦେ. ବି ( ସଂ. ମହିଷପାଳ+ଛତ୍ର )—ମହିଷରକ୍ଷକ-
Maiñshiāḷa chhatā ମାନଙ୍କ ବ୍ୟବହୃତ ଖୁବ୍ ବଡ଼ ତାଳପତ୍ରର ଛତା—Very big palm-leaf umbrellas used by buffalo-herds. [ ଦ୍ର—ଆମ ଦେଶରେ ମଫସଲରେ ମଇଁଷିମାନଙ୍କୁ ମଇଁଷିଆଳମାନେ ଜଙ୍ଗଲରେ ଚରାନ୍ତି ଓ ସନ୍ଧ୍ୟାରେ ଜଙ୍ଗଲର କୌଣସି ସ୍ଥାନରେ ମଇଁଷିମାନଙ୍କୁ ଗୁହାଳରେ ଛନ୍ଦି କରି ରଖନ୍ତି ଓ ବୃକ୍ଷର ମଞ୍ଚରେ ମଇଁଷିଆଳ ଶୁଅନ୍ତି । ମଇଁଷିଆଳମାନେ ଖୁବ୍ ବଡ଼ ( ୨୫ ହାତ ବା ୩ ହାତ ବ୍ୟାସବିଶିଷ୍ଟ ) ତାଳପତ୍ର ଛତା ବ୍ୟବହାର କରନ୍ତି ଓ ସେହି ଛତାକୁ ଭୂଇଁରେ ପୋତି ଛତା ତଳେ ଏକାଧିକ ବ୍ୟକ୍ତି ଶୁଅନ୍ତି । ସେହି ଛତାର ଛାତରୁ ଶିକା ଟାଙ୍ଗି ସେ ଶିକାରେ ଆପଣାର ଖାଦ୍ୟାଦି ଓ ମଇଁଷିଙ୍କଠାରୁ ଦୁହାଁ ହେବା ଦୁଧ ରଖନ୍ତି । ]

ମଇଁଷିଆ ଶୋଲ—ଦେ. ବି—ଏକପ୍ରକାର ବଡ଼ ଶୋଲ—A big
Maiñshiā sola species of Æschynomene. [ ଦ୍ର—
মোটাসোলা ଏହା ସାଧାରଣ ଶୋଲ ଗଛଠାରୁ ବଡ଼ ଓ ଏଥିର
কাটিশোলা ଡାଙ୍ଗମାନ ସାଧାରଣଶୋଲ ଅପେକ୍ଷା ବଡ଼ । ]

ମଇଁଷି ଘିଅ—ଦେ. ବି ( ସଂ. ମହିଷ+ଘୃତ )—ମଇଁଷି ଦୁଧରୁ ପ୍ରସ୍ତୁତ
Maiñshi ghia ଘୃତ—Ghee made from buffalo-
ভইষা ঘি **भैंसका घी** milk. [ ଦ୍ର—ଏହିପରି ମଇଁଷି ଦୁଧ, ମଇଁଷି ଦହି ଶବ୍ଦମାନ ବ୍ୟବହୃତ ହୁଏ । ]

ମଇଛ(ଛେ)ଦ୍—ପ୍ରାଦେ ( ସୁରୁ ) ବିଣ—ମୁକ୍ତହସ୍ତ—Liberal; open-
Maichha(chhe)d handed. ( ଯଥା—ସେ ମଇଛେଦ୍ ହୋଇ ପୁଅ ଭୋଜିରେ ଟଙ୍କା ଖରଚ କଲେ । )

ମଇତନ କଣ୍ଟା—ପ୍ରାଦେ. ( ଗଡ଼ଜାତ ) ବି—ମୈତ୍ରକଣ୍ଟା ( ଦେଖ )
Maitana kanṭā Maitrakanṭā ( See )

ମଇତା—ଦେ. ବି—ଲାଉଜାତୀୟ ଲତା ଓ ଫଳ—A kind of cucur-
Maitā bitatious creeper and its fruit.

ମଇତ୍ର—ଦେ. ବି.ପୁଂ ( ସଂ. ମିତ୍ର )—୧ । ମିତ୍ର—1. Friend. (ଗ୍ର—
Maitra ଉପସେଣ ଲୁଆମଣି କରି । ଶତ୍ରୁ ମଇତ୍ର ସମ ସରୁ—
মিতা **मीत** ଭୂପତ. ପ୍ରେମପଞ୍ଚାମୃତ ।) ୨ । ସମ ନାମଯୁକ୍ତ ବ୍ୟକ୍ତି –
(ମଇତ୍ରାଣୀ—ସ୍ତ୍ରୀ) 2. A namesake. ୩ । ସମନାମଯୁକ୍ତ ଦୁଇ ଜଣଙ୍କ ମଧ୍ୟରେ ସ୍ଥାପିତ ଧର୍ମ-ବନ୍ଧୁତା; ମିତ୍ରତା—3. A god-relationship established between two namesakes.

ମଇତ୍ରାଣୀ—ଦେ. ବି. ସ୍ତ୍ରୀ (ସଂ. ମିତ୍ରା)—ମଇତ୍ରର ସ୍ତ୍ରୀଲିଙ୍ଗ—Feminine
Maitrāṇi মিতানী **मीतनी** of Maitra

ମଇଥୁ(ଥ)ନ—ଗ୍ରା ( ପଦ୍ୟ ) ବି—ମୈଥୁନ ( ଦେଖ )
Maithu(tha)na Maithuna ( See )

ମଇ(ୟୁ,ଏ)ଦା—ଦେ.ବି (ଫ.ମୈଦା)-ଗୋଧୂମର ସୂକ୍ଷ୍ମଚୂର୍ଣ୍ଣ—Fine flour
Mai(ya,e)dā of wheat. [ ଦ୍ର—ମଇଦା ଅପେକ୍ଷା ବଡ଼ ଆକାରର
ময়দা, ময়দা **मैदा** ଦାନାବିଶିଷ୍ଟ ଗହମ ଚୂନାକୁ ଅଟା ବୋଲାଯାଏ । ]

ମଇଦା କଳ—ଦେ. ବି—ମଇଦା ପେଷିବାର ଚକ କଳ—
Maidā kaḷa ময়দা কল **मैदाकल** Flour-mill.

ମଇଦାଣ୍ଡି—ପ୍ରାଦେ ( ବାଲେଶ୍ୱର ପ୍ରାନ୍ତ ) ବ (ସଂ. ମେଧି+ଦଣ୍ଡ)—
Maidāṇḍi ମେଢ଼ିଖୁଣ୍ଟ; ଧାନ ବେଙ୍ଗଳା ପକାଇବା ପାଇଁ ବଳଦ ଯୋଗୁ ଦାଉଣୀ ବନ୍ଧାଥିବା ଖୁଣ୍ଟ—The central post to which bullocks are tethered for treading paddy.

ମଇଦାନ—ବୈଦେ. ବ ( ଫା. ମୈଦାନ୍=ପଡ଼ିଆ )—୧ । ବସ୍ତୀଶୂନ୍ୟ
Maidāna ପ୍ରାନ୍ତର; ପଡ଼ିଆ—1. A wide expanse of
ମୟଦାନ **मैदान** waste land; a vast field; a meadow
୨ । ( ଲୋକେ ଗ୍ରାମର ପ୍ରାନ୍ତସ୍ଥ ପଡ଼ିଆକୁ ଝାଡ଼ାଫେରି ଯାଉଥିବାରୁ ) ଝାଡ଼ା ଫେରିବା—2. Easing one's self; passing stools. ୩ । ଝାଡ଼ାରୋଗ—3. Diarrhoea; cholera. ପ୍ରାଦେ ( ସମ୍ବଲପୁର ) ବ—ଅପରାହ୍ଣ—Afternoon. [ ଦ୍ର—ସମ୍ଭବତଃ ଲୋକେ ସାଧାରଣତଃ ଅପରାହ୍ଣରେ ଝାଡ଼ାଫେରିବାକୁ ଯିବାର ଅଭ୍ୟାସ ଦେଖାଯିବାରୁ ଏହି ଅର୍ଥ । ]

ମଇଦାନ ଯିବା—ଦେ. କ୍ରି—ଝାଡ଼ା ଫେରିବାକୁ ଯିବା—To go to
Maidāna jibā ବାହ୍ୟି ଯାଓଯା ease one's self.
**मैदान जाना**

ମଇଦାନ ହେବା—ଦେ. କ୍ରି—୧ । ଝାଡ଼ା ଫେରିବା—1. To pass
Maidāna hebā stools. ୨ । ଝାଡ଼ା ରୋଗାକ୍ରାନ୍ତ ହେବା—ବାହ୍ୟି ହୁଓଯା 2. To suffer from diarrhoea or cholera.
**झाड़ा होना** ଦେ. ବ—ପତଳାଝାଡ଼ା ହେବା—Looseness of stools.

ମଇଧାନ୍—ପ୍ରାଦେ. ( ସମ୍ବଲପୁର ) ବ ( ସଂ. ମଧ୍ୟାହ୍ନ )—ଅପରାହ୍ଣ—
Maidhān (ମଇଧାନ୍ ବେଲ୍—ଅନ୍ୟରୂପ) Afternoon.

ମଇଧେ(ଧ୍ୟେ)—ପ୍ରା. କ୍ରି. ବିଣ (ସଂ. ମଧ୍ୟ; କଡରିଆ)—୧ । ମଧ୍ୟରେ—
Maidhe(dhye) 1. Amongst. ( ଉ—ଅଲଙ୍କାର ମଇଧେ
ମଧ୍ୟେ **मंझे** ଛନମକାଠି ଥାନେ—ଡଗ । ) ୨ । ମଧ୍ୟରୁ—
**मझे** 2. From; out of. [ ଦ୍ର—ଏହି ଶବ୍ଦ ହିସାବପତ୍ରରେ 'ମଧ୍ୟରୁ' ଅର୍ଥରେ ଓ ଏହିପରି ସାଙ୍କେତିକରୂପେ ଲେଖା ଯାଏ ।

ଯଥା—ଜମା ଟ ୩୯ ଖରଚ ଟ ୨୬ ଯାଇ ବାକ ରହିଲା ଟ ୦ ୴ ।

ଅର୍ଥାତ୍ ଛଅଟଙ୍କା ଜମା ମଇଧେ ବା ମଧ୍ୟରୁ ଦୁଇଟଙ୍କା ଦୁଇଅଣା ଖରଚ ବାଦ୍ ଯାଇ ବାକ ବଳକା ଚଉଦଅଣା । ]

ମଇନର—ପ୍ରାଦେ· (ଗଞ୍ଜାମ) ବୈଦେ.(ଇଂ ମାଇନର୍) ବିଣ—ନାବାଳଗ—
Mainara Minor. ବ—ନାବାଳକ ପିଲା—A minor.

ମଇ(ୟ,ଏ)ନା—ଦେ.ବ (ସଂ.ମଦନ ସାରିକା)—ସାରୀ—The Indian
Mai(ya,e)nā grackle; the myna; Eulabes Inter-
ମୟ(ଏ,ନା **मैना** media. [ ଦ୍ର—ଏମାନେ ବର୍ଣ୍ଣିତଚଢ଼େଇ ଜାତୀୟ ଅଟନ୍ତି ଓ ପାହାଡ଼ରେ ରହନ୍ତି । ଏମାନେ ମନୁଷ୍ୟ ପରି କଥା କହିବାକୁ ଶିଖନ୍ତି । ଏଥିପାଇଁ ଲୋକେ ଏ ଚଢ଼େଇଙ୍କୁ ପୋଷନ୍ତି । ] ପ୍ରାଦେ. ( ସମ୍ବଲପୁର ) ବ—ବର୍ଣ୍ଣିତଚଢ଼େଇ—The common myna; Acridotheres Tristis. ବୈଦେ. (ଫା. ମାହୁଆନା)—ମହିନା; ମାସିକ ବେତନ—Monthly salary.

ମଇନାକ—ପ୍ରା. ( ପଦ୍ୟ ) ବ—ମୈନାକ ( ଦେଖ )—Maināka
Maināka (See) [ଉ—ମଇନାକ ପର୍ବତ ଶ୍ୱେତ କଇଲାସ — କୃଷ୍ଣସିଂହ. ମହାଭାରତ ବନ । ]

ମଇନ୍ଦର—ପ୍ରାଦେ. ( ଗଞ୍ଜାମ ) ବ ( ସଂ. ମହେନ୍ଦ୍ର )—ଗଞ୍ଜାମର ମହେନ୍ଦ୍ର
Maindara ଗିରି—Name of a hill in the Ganjam district. [ ଉ—ବାଘ ବଳଦ ବାନ୍ଧିଲ ହଳେ । ଗୁଷ କଲ ମଇନ୍ଦର ମାଳେ—ଗଞ୍ଜାମ. ଗ୍ରାମ୍ୟ ଗୀତ । ]

ମଇଫ(ଫି)ଲ୍—ବୈଦେ. ବ (ଫା. ମଇଫିଲ୍ )—ଆଡ଼ମ୍ବରଯୁକ୍ତ ସଭାମଣ୍ଡପ;
Maipha(phi)l ମଜଲିସ୍ ପାଇଁ ସଜ୍ଜିତ ସଭାଗୃହ—A house or
**माइफल मोफिल** place equipped for holding a fete.

ମଇମନ—ବେଦେ.ବ (ଇଂ ମାମନ୍=ଧନଦେବ ?)—ପଶ୍ଚିମ ଭାରତୀୟ କଚ୍ଛ
Maiman ଦେଶୀୟ ବ୍ୟବସାୟୀ ମୁସଲମାନ୍—The Cutchee
ମୟମନ **मैमन** Memmons. [ଦ୍ର—ଏମାନଙ୍କ ପୂର୍ବପୁରୁଷ ପ୍ରଥମେ ହିନ୍ଦୁ ଥିଲେ ଓ ପରେ ମୁସଲମାନ୍ ଧର୍ମ ଗ୍ରହଣ କଲେ । ଏମାନଙ୍କର ହିନ୍ଦୁ ସ୍ୱତ୍ତ ଅନୁସାରେ ଦାୟବିଭାଗ କରାଯାଏ ।]

ମଇର—ପ୍ରା. ବ—(ସଂ. ମୟୂର )—ମୟୂର—Peafowl; peacock.
Maira ମୟୂର **मोर** (ମଇରୀ—ସ୍ତ୍ରୀ)

ମଇ(ୟ,ଏ)ରା—ଦେ.ବ—(ସଂ.ମୋଦକକାର)—୧ । ଗୁଡ଼ିଆ; ହାଲୋଇ—
Mai(ya,e)rā ମୟରା **हलवाई** 1. Confectioner. ୨ । ଲର୍ଡ଼ ମଇରା; ମାର୍କୁଇସ୍ ଅଫ୍ ହେଷ୍ଟିଙ୍ଗସ୍ ବା ଲର୍ଡ଼ ହେଷ୍ଟିଙ୍ଗସ୍—2. Lord Moira, Marquis of Hastings. [ ଦ୍ର—ଏ ଖ୍ରୀଷ୍ଟାବ୍ଦ ୧୮୧୩ ଠାରୁ ୧୮୨୩ ପର୍ଯ୍ୟନ୍ତ ଭାରତର ବଡ଼ ଲାଟ ଥିଲେ । ଏହାଙ୍କ ସମୟରେ ଭାରତରେ ପ୍ରାଥମିକ ଶିକ୍ଷା ବିସ୍ତାର, ନେପାଳ ଯୁଦ୍ଧ ଓ ପିଣ୍ଡାରୀ ଯୁଦ୍ଧ ହୋଇଥିଲା; ଶ୍ରୀରାମପୁର ଠାରୁ ପ୍ରଥମ ବଙ୍ଗଳା ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା ଓ କଲିକତାର ପ୍ରେସିଡେନ୍ସି କଲେଜ୍ ୧୮୧୭ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା ।]

ମଇରୀ—ଦେ. ବ—୧ । କବନ୍ଧ; ମୁଣ୍ଡହୀନ ମନୁଷ୍ୟ ଦେହ—1. A
Mairī headless human trunk. ୨ । ମାଈ ମୟୂର—
**मोरनी** 2. Peahen.

ମଇ(ହି)ରୀ ଗିରିଆ—ଦେ. ବ—(ସଂ. ମୟୂର ଗ୍ରୀବକ)—ତୁତିଆ; ତାମ୍ର—
Mai(hi)ri giriā ଘଟିତ ନୀଳ ବର୍ଣ୍ଣ ଉପରସ; ଉପଧାତୁ ବିଶେଷ—
ତୁତେ **मोर तुतिआ** Copper sulphate; blue vitriol.
ସଂ. ମୟୂର ତୁତ୍ଥ, ତୁତ୍ଥ

ମଇରୀ ପରି ଗଡ଼ିବା(ଲୋଟିବା)—ଦେ.କ୍ରି—(ସଂ. ମରା+ଓ. ଗଡ଼ିବା)—
Mairī pari gaṛibā(loṭibā) ଶାରୀରିକ ଯନ୍ତ୍ରଣାରେ ଛଟପଟ ଯନ୍ତ୍ରଣାୟ ଗଡ଼ାଗଡ଼ି ଦେଓଯା ହୋଇ ଭୂମିରେ ଲୋଟିବା (କବନ୍ଧ ପରି)—
**मोरकीतरहलोटपोट करना** To roll or wallow on the ground in extreme agony or pain.
ମଇରୀ ଭଳିଆ ଗଡ଼ିବା } —ଅନ୍ୟରୂପ
ମଇରୀ ଭଳିଆ ହେବା }

ମଇ(ଏ)ଲ୍—ଦେ. ଅ—ହାତୀ ଉପରେ ଆରୋହୀ ଚଢ଼ିବା ପାଇଁ ହାତୀକୁ Mai(e)l ଅଣ୍ଟୋଇବା ନିମନ୍ତେ ମାହୁନ୍ତଦ୍ୱାରା ବ୍ୟବହୃତ ଡାକ—ময়েল The driver's call to an elephant to kneel बै बै, मयल मयल down that it may be mounted on (ମଲ୍ ମଲ୍, ମଲ୍, ମଏଲ୍‌ମଇ—ଅନ୍ୟରୂପ)

ମଇ(ଏ)ଲ୍ (ଲି)ଖୁରା—ବୈଦେ. ବି—(ଫା. ମେଲ୍ ଖୋର୍)—ଘୋଡ଼ାର Mai(e)l (li) khurā ପିଠିରେ ଜିନ୍ ତଳେ ପକାଯିବା ପତଳା ଗଦି-জীনের গদী मौल खोरा A thin cushion put on the back of a horse below the saddle.

ମଇଲ(ଲ)—ପ୍ରାଦେ, (ଗଞ୍ଜାମ) ବୈଦେ. (ଇଂ) ବି—(ଇଂ. ମାଇଲ୍)—Maila(la) ମାଇଲ; ଅର୍ଦ୍ଧ କ୍ରୋଶ—A mile.

ମଇ ଏ)ଲମ୍—ବୈଦେ. ବି—(ଆ. ମଲହମ୍; ମରହମ୍)—୧ । ମଲମ—Mai(e)lam মলম मलहम 1. Ointment. ୨ । ଦେବତାଙ୍କ ଅଙ୍ଗରେ ଚୂଆ ଚନ୍ଦନ ବୋଳିବା ନୀତି ବିଶେଷ—2. The ritual of annointing idols with sandal paste and other scents. ୩ । ଦେବମୂର୍ତ୍ତିଙ୍କ ଦେହରୁ ପିନ୍ଧିଥିବା ବେଶ ଓ ଅଳଙ୍କାର କାଢ଼ିବା—3. Taking off of the dress and ornaments from an idol.

ମଇ(ଏ,ୟ)ଳା(ଲା)—ଦେ. ବି—( ସଂ. ମଳ )—୧ । ମଳ—Mai(e,ya)lā (lā) ময়লা मैला 1. Dirt; filth. ୨ । ଗୁହ; ବିଷ୍ଠା—2. Dung; ordure; night soil. ୩ । (ଲକ୍ଷଣାର୍ଥେ) ପାପ—3. (figurative) Sin. ୪ । ମନ୍ଦ ଚିନ୍ତା—4. Evil thoughts. ବିଣ—୧ । ମଳଥା; ମଳଯୁକ୍ତ—1. Dirty; filthy. ୨ । ଅପରିଷ୍କୃତ—2. Unclean. ୩ । ମଳିନ—3. Soiled.

ମଇଳା କରିବା—ଦେ. କ୍ରି—ମଳଯୁକ୍ତ କରିବା—To soil; to be Mailā karibā ময়লা করা मैला करना foul.

ମଇଳା ଗାଡ଼ି—ଦେ. ବି—ଯେଉଁ ଗାଡ଼ିରେ ସହରର ବିଷ୍ଠା ପ୍ରଭୃତି Mailā gārdi ବୁହାଯାଏ—A cart for carrying away ময়লাগাড়ি मैलागाडी ordure or night soil etc.

ମଇଲ(ଲା)ଟ ବାଡ଼(ଡ଼ା)—ଦେ. ବି ଇଂ. ମାଲେଟ=କାଠର ବଡ଼ Maila(lā)ta bārda(rdā) ହାତୁଡ଼ା; ଏ ବାଡ଼ର ଖୁଣ୍ଟମାନ [ମଲ(ଲା)ଟବାଡ଼(ଡ଼ା)—ଅନ୍ୟରୂପ] ହାତୁଡ଼ାରେ ପିଟି ହୋଇ ବସାଯିବାରୁ )—ନଦୀ ଖାଇ ଯାଉଥିବା ବନ୍ଧର ମୂଳରେ ହାତୁଡ଼ାରେ ପିଟାଯାଇ ବସା ଯାଇଥିବା କାଠର ବା ବାଉଁଶ-ଖୁଣ୍ଟିର ବାଡ଼—A fencing consisting of a row of wooden or bamboo posts driven into the ground with heavy hammers to prevent erosion of embankments.

ମଇଲଣ—ଦେ ( ପ୍ରାଚୀନ ଗଦ୍ୟ ) ବି—(ପ୍ରୋଫେସର୍ ଆର୍ତ୍ତବଲ୍ଲଭଙ୍କ Mailāna ଦୃଷ୍ଟ ପ୍ରାଚୀନ ଗ୍ରନ୍ଥରେ ବ୍ୟବହୃତ ଶବ୍ଦ) ପାଇଖାନା—Latrine; privy.

ମଉ—ଗ୍ରା. ବି (ସଂ. ମଧୁ)—ମଧୁ; ମହୁ—Mau मौ মৌ Honey.

ମଉକା—ବୈଦେ. ବି ( ଆ. ମୌକା=ଘଟନାସ୍ଥଳ ) —୧ । ଅବସର—Maukā 1. Leisure. ୨ । ସୁବିଧା; ସୁଯୋଗ—সুযোগ मौका 2. Opportunity. ୩ । ଘଟନାସ୍ଥଳ—3 Place of occurence. ୪ । ଉପଯୁକ୍ତ [ମୋ(ମୌ)କା—ଅନ୍ୟରୂପ] କର୍ମକ୍ଷେତ୍ର—4. A proper field for one's action.

ମଉକୁପ(ଫ୍,ବ୍)—ବୈଦେ. ବିଣ (ଆ ମଉକୁଫ୍) ( କଚେରୀଅ )—୧ । Maukup (ph, b) ସ୍ଥଗିତ—1. Stopped. ୨ । କିଛିକାଳପାଇଁ ম(মো)কুফ.ব) मौकुफ ସ୍ଥଗିତ—2.Stopped for a time; postponed; suspended. ୩ । ( ଚାକିରୀ ଅଧିକାରୀ) ବରଖାସ୍ତ—3 Dismissed (from service). ୪ । ରଦ୍ଦ୍ କରା ଯାଇଥିବା—4 Annulled; nullified; set aside.

ମଉକୁପି(ଫି,ବି)—ବୈଦେ ବି (ଆ. ମଉକୁଫୀ ) ( କଚେରୀଅ )- ୧ । Maukupi(phi,bi) ସ୍ଥଗିତ୍ୱ—1,Stoppage. ୨। ବରଖାସ୍ତି—মকুফী 2. Dismissal. ୩ । ସାମୟିକ ସ୍ଥଗିତ୍ୱ—3. मौकुफी Temporary stoppage; postponement; suspension. ୪ । ରଦ୍ଦ୍ ହୋଇ ରହିବା ଅବସ୍ଥା—4. Annulment.

ମଉଛ(ଛୁ)ବ—ଦେ. ବି ( ସଂ ମହୋତ୍ସବ; ପ୍ରା. ମହୋଚ୍ଛବ )—୧ । Mauchha(chhu) ba ମହୋତ୍ସବ—1. A great fes- (ମଉଚ୍ଛବ—ଅନ୍ୟରୂପ) tival. ୨ । ବଡ଼ ଭୋଜି—2. মচ্ছব A great feast. (ଉ—ଗୋଟାଏ ଘରେ बडा भोज; ମେଳା ମଉଛବରେ ଯିବା ଶଙ୍କା ହୃଥାଇ ହୁଏ । महोत्सव; महोत्सौ ଫକୀରମୋହନ. ଗଳ୍ପସ୍ୱଳ୍ପ ।) ୩ । ମଠର ମହନ୍ତ ଅବନ୍ତ ଶ୍ରାଦ୍ଧ ଉପଲକ୍ଷରେ ବୈଷ୍ଣବମାନଙ୍କୁ ଦିଆଯିବା ଭୋଜି—3. A feast given to Baishnabas on the anniversary of the death of a Mahanta.

ମଉଜ—ବୈଦେ. ବି—(ଫା.ମୌଜ୍=ଲହରୀ; ତରଙ୍ଗ)—୧ । ଆମୋଦ-Mauja ପ୍ରମୋଦ; ମଜା—1. Amusement. ୨ । ଆନନ୍ଦ-মউজ मौज ଲହରୀ—2. A wave of merriment. ୩ । ଇନ୍ଦ୍ରିୟ ଓ ଜିହ୍ୱା ଆଦିର ସୁଖପ୍ରଦ ଆମୋଦ—3. Pleasure derived from sensual enjoyment. ୪ । ଆନନ୍ଦ—4. Happiness; joy. ୫ । ସୁଖ ଭୋଗ—5. Enjoyment of pleasure. ୬ । ମୌଜା (ଦେଖ) —6. Maujā (See)

ମଉଜ ବେଳ(ଳା)—ଦେ. ବି—(ଫା. ମୌଜ+ସଂ. ବେଳା)—ମଜାର Mauja bela (lā) ସମୟ—A time of amusement মৌজের সময় or merriment. [ଉ—ରଥ ଗୁଳେ ଧାଁରେ ଧାଁରେ, मौजका समय ଖଣ୍ଡ ମଉଜ ବେଳେ । ଶିଶୁଙ୍କ ରଥ ଗୀତ ।]

ମଉଜ ଭାତ—ଦେ. ବି—(ଶିଶୁ ଭାଷା)—ଶିଶୁମାନଙ୍କ ମନୋରଞ୍ଜନାର୍ଥ Mauja bhāta ପିତା ମାତା ଭାତ ଡାଲି ଘିଅ ଆଦି ଗୋଳାଇ বেড়ে ভাত କରଥିବା ଲେହମାନ୍ତ୍ୱ, ଅନ୍ନ ପିଣ୍ଡ—A ball of rice

पप्पर भात dal and ghee rolled and kneaded together to attract children.

ମଉଜା—ବୈଦେ. ବି—୧ । ( କଚରଥା ) ( ଅ. ମୌଜା )—ରାଜସ୍ୱ Mauja ଅଦାୟର ସୁବଧା ନିମନ୍ତେ ଗୃହ ସମୂହର ବା ଭୂମି ସମୂହର ମୌଜା मौजा ସମଷ୍ଟି ଦ୍ୱାରା ଗଠିତ ଗ୍ରାମ—1 A village, being the unit of some houses or plots, fixed for revenue purposes. [ଦ୍ର— ଏଥିର ସାଙ୍କେତିକ । ମୌ । ] ୨ । (ଫା. ମୋଜହ୍) ମোজা मोजा ମୋଜା; ଗୋଡ଼ ମୁଣା—2. Stockings. ୩ । ঢেউ मौज (ଫା. ମୌଜ୍) ତେଉ—3 Wave.

ମଉଜାୱାର୍(ରି)—ବୈଦେ. ବିଣ—(ଫା.) (କଚରଥା)—ଭିନ୍ନ ଭିନ୍ନ Mauja war(ri) ମଉଜା ସମ୍ବନ୍ଧୀୟ—Relating to different mauzas or villages. (ଯଥା— মোজা ওয়ারি मौजा वार ମଉଜାୱାରୀ ରେକର୍ଡ଼ସ୍ୱତ୍ୱ ।)
(ମଉଜଉଆର୍ [ରି], ମଉଜା ଉଆର୍[ରି]—ଅନ୍ୟରୂପ)

ମଉଜା ଦାର୍—ବୈଦେ. ବି—(ଫା.ମୌଜା + ପ୍ରତ୍ୟୟ ଦାର୍)—ମଉଜାର Maujadar ଜମିଦାର—The proprietor of a village মৌজাদার मौजादार

ମଉଜି—ବୈଦେ. ବିଣ—(ଫା.)—୧ । ଆମୋଦ ପ୍ରିୟ—1. Fond Mauji of amusements or sensual pleasures. (ମୌଜିଆ—ଅନ୍ୟରୂପ) ୨ । ଯେଉଁ ବ୍ୟକ୍ତି ସର୍ବଦା ପ୍ରଫୁଲ୍ଲ ଥାଏ— মজাদার मौजी 2. Always merry. ୩ । ମନ ମଉଜି (ଦେଖ)—3. Mana mauji (See)

ମଉଜି କର୍ଡ଼ାଏ (ପଟେ)—ଦେ. ବି—(ବ୍ୟଙ୍ଗ୍ୟ) ଆମୋଦପ୍ରିୟ ବ୍ୟକ୍ତି— Mauji kardae (pate) (ironical) A person fond মজাদার লোক of pleasures and amusements; a आप मौजी happy-go-lucky person.
(ମଉଜିଆ କର୍ଡ଼ାଏ [ପଟେ]—ଅନ୍ୟରୂପ)

ମଉଜି ରାମ୍—ଦେ. ବିଣ—୧ ଅତି ନିର୍ଲିପ୍ତ—1. Careless. Mauji ram মৌজী রাম मौजी राम ୨ । ମଉଜି (ଦେଖ)- 2. (a person) Fond of amusements. ୩ । ସଂସାରର ଦୁଃଖରେ ନିର୍ଲିପ୍ତ—3. Not irritated or by affected worldly sorrows.

ମଉ(ହୁ)ଜୁତ୍(ଦ୍)—ବୈଦେ. ବିଣ—(ଫା ମୌଜୁଦ୍)—୧ । ଉପସ୍ଥିତ— Mau (hu)jut(d) মজুত(দ) 1. Present; at hand. मौजुद ୨ । ପ୍ରସ୍ତୁତ ହୋଇ ରଖା ଯାଇଥିବା—2. Ready. ୩ । ନଗଦ; ଗଚ୍ଛିତ (ଧାନାଦି)—3 Cash; ready cash,

ମଉଡ଼—ଦେ. ବି—୧ । (ସଂ. ମୁକୁଟ ପ୍ରା. ମଉଡ଼) ମୁକୁଟ—1. A Maurda crown. ୨ । ଟୋପି—2. Hat; cap. মকুট मौर ୩ । (ଫା. ମୋହର୍; ଭୁଲ୍; ସଂ. ମୁଦ୍ରା)—ସ୍ୱର୍ଣ୍ଣ ମୁଦ୍ରା; মোহর मोहर ମୋହର—3. Gold coin. ୪ । (ସଂ. ମୁକୁଟ; বাঙ্গলা ঘর कोनिआ घर ପ୍ରା. ମଉଡ଼)—ଚତୁଷ୍କୋଣ ଶୃଙ୍ଗ ଘର; ଯେଉଁ ଘରର ବାଉଁଶନ ନ ଥାଏ—4. A house with a tapering quadrangular or pyramidal thatch; a thatched house without a gable গরদান ୫ । (ସଂ. ମୌଳି) ବେକ ଖଣ୍ଡ; ଗରଦନ—The nape मौर of the neck.

ମଉଡ଼କଟା ସୁନା—ଦେ. ବି—ସ୍ୱର୍ଣ୍ଣମୁଦ୍ରା କାଟି କରି ବଣିଆଦ୍ୱାରା ଅଳଙ୍କାର Maurdakata suna କରାଇବା ପାଇଁ ବ୍ୟବହୃତ ବିଶୁଦ୍ଧ ସୁନା— মোহরগলান সোনা Pure gold got from gold coins. मोहरदार सोना

ମଉଡ଼ ଘର—ଦେ. ବି—ବଙ୍ଗଳାଘର; ଯେଉଁ ଘରର ଶୃଙ୍ଗ ଚତୁଷ୍କୋଣ; Maurda ghara ଯେଉଁ ଘରର ଚାରିପାଖେ ୪ଟି ତ୍ରିକୋଣ ଶୃଙ୍ଗ ( ମଉଡ଼ମଣ୍ଡ ଘର—ଅନ୍ୟରୂପ ) ଥାଏ—A house with a [ନାଗରଳଥ ଘର—ବିପରୀତ] pyramidal thatch. বাঙ্গলাঘর कोनिया घर

ମଉଡ଼ମଣି-ଦେ. ବି (ସଂ. ମୁକୁଟମଣି)—୧ । ମୁକୁଟରେ ଥିବା ପଥର— Maurdamani 1. Gem set in a crown. ୨।(ଲକ୍ଷଣାର୍ଥ) মকুটমণি ସର୍ବଶ୍ରେଷ୍ଠ ବ୍ୟକ୍ତି; ପ୍ରଧାନ ବା ସର୍ଦ୍ଦାର—2. (figura- मौर, शिरमौर tive) The chief or head of a class. ( ଉ—ଆପଣ ସ୍ୱଜାତିର ମଉଡ଼ମଣି, ଘଣ୍ଟାଏ ହେଲା ବସିଲେଣି । ଫକୀରମୋହନ. ଗଳ୍ପସ୍ୱଳ୍ପ ) [ ଦ୍ର—ପ୍ରାଚୀନ ଉତ୍କଳର ସ୍ୱାଧୀନ ନରପତିଙ୍କୁ 'ଲକ୍ଷେ ରଜାରେ ମଉଡ଼ମଣି' ବୋଲି ଲୋକେ କହୁଥିଲେ ।]

ମଉଡ଼ ମାଲ(ଳା)—ଦେ. ବି (ଫା. ମୋହର୍+ସଂ. ମାଲ)—ସ୍ୱର୍ଣ୍ଣମୁଦ୍ରାର Maurda mala(la) ହାର—A necklace of gold মোহরেরমালা coins. [ ଉ—ଧୋବଣୀ ବେକରେ ମଉଡ଼ମାଲ, मोहरमाला ବୋହି ପଡ଼ୁଥେଲ୍ଲ ଝାଳ । ଗୋରୁଜଗାଟୋକାଙ୍କ ଗୀତ]

ମଉଡ଼ଶେଣୀ—ଦେ. ବି—ମଉଡ଼ମଣ୍ଡ ଘରର ଶୃଙ୍ଗ ତଳେ ଓ ଗୃହକାନ୍ଥ Maurdaseni ଉପରେ ଥିବା ଶେଣୀ ( ଜଗବନ୍ଧୁ, ପ୍ରାଚୀନ ଉତ୍କଳ)-Wall-plates of pyramidal thatched houses.

ମଉଡ଼ା—ଦେ. ବି (ସଂ. ମୌଳି)—୧ । ପାଗ; ଶିରସ୍ତ୍ରାଣ-1. Helmet. Maurda ୨ । ବେକ; ଗ୍ରୀବା—2. Neck. [ଉ—ଅଳପ ପାଇ ପাগড়ী କେଉଁ ମୁଣ୍ଡକୁ, ରୂପି ଅଛନ୍ତି ଖାଲି ମୁଣ୍ଡକୁ, ମଉଡ଼ା टोप ଟେକଇନ୍ତି କାହାର, ଉଚ୍ଚ ମାପକୁ ଯେ । ବ୍ରଜନାଥ. ସମର ঘাড় मौर ତରଙ୍ଗ । ]

ମଉ(ହୁ)ତ—ପ୍ରାଦେ (ଯାଜପୁର] ବି. [ଭୁଲ. ହି. ମୌତ, ଅ, ମୌତ୍]— Mau(hu)ta ୧ । ମୃତ୍ୟୁ—1. Death. ୨ । ମୃତ୍ୟୁର ସମୟ— 2. The time of death.

ମଉନ—ଗ୍ରା (ପଦ୍ୟ) ବିଣ ଓ ବି(ସଂ ମୌନ)—ମୌନ (ଦେଖ)— Mauna Mauna (See). [ଉ—ହରଣାଙ୍କ ବମ୍, ଗୃହେଁ ଲକ୍ଷ୍ମା ବମ୍, ଅଧର ହେଲୁ ମଉନ । କବିସୂର୍ଯ୍ୟ, ସଙ୍ଗୀତ । ]

ମଉନମାଳା—ଗ୍ରା· ବି (ସଂ. ମୋହନ ମାଳା)—ସ୍ୱର୍ଣ୍ଣାଦି ଧାତୁ ଗୋଲକରଚିତ Maunamala ଗୁମ୍ଫିତ ମାଳା—A necklace of gold or মোহনমালা मोहनमाला silver balls.

ମଉନ(ନୁ)ମୁହାଁ—ଗ୍ରା. ବିଣ.ପୁଂ (ବ୍ୟଙ୍ଗ୍ୟ) (ସଂ. ମୌନମୁଖ)—ମୌନାବ-
Mauna(nu)muhā̃ ଲମ୍ବୀ;ଚୁପ୍‌ସଇତାନ-(ironical) Silent;
(ମଉନ[ନୁ]ମୁହିଁ—ସ୍ତ୍ରୀ) taciturn to all appearances
চুপ্সয়তান but scheming. [ ଉ—ମଉନମୁହାଁର ଅପାର ଗୁଣ
**मौनमुहाँ** ଛଗ ।] [ ଦ୍ର—ମଉନମୁହାଁମାନେ ଭିତର କପଟୀ ବା ଚୁପ୍-
ସଇତାନ ବୋଲି ଲୋକପ୍ରସିଦ୍ଧ ଅଛି ।]

ମଉନା[ନେ]ଈ—ଗ୍ରା. ବି—ଗ୍ରାମଦେବତାଙ୍କ ନାମ—
Maunā[ne]ī Name of a popular Goddess

ମଉନାବତୀ—ଗ୍ରା. ବି [ସଂ. ମୌନବତୀ]-ବେତାଳ ପଞ୍ଚବିଂଶତି କାହାଣୀରେ
Maunābatī ବର୍ଣ୍ଣିତ ମୌନବ୍ରତଧାରିଣୀ ରାଜକନ୍ୟାବିଶେଷ—
মৌনাবতী Name of a silent princess of the folk-
tale called Betālapañchabimśati.
[ଦ୍ର—ଏହି ରାଜକନ୍ୟାଙ୍କ ବିବରଣ ଯଥା—ଏକ ଦେଶର ରାଜଜେମା ମୌନବ୍ରତ ଧାରଣ କରିଥିଲେ । ତାଙ୍କୁ ଯେ କଥା କୁହାଇ ପାରିବ ରାଜା ଉକ୍ତ ବ୍ୟକ୍ତିଙ୍କୁ ସେ କନ୍ୟାଙ୍କୁ ସମ୍ପ୍ରଦାନ କରିବେ ବୋଲି ସତ୍ୟ କରିଥିଲେ । ଅନେକ ରାଜପୁତ୍ର ଆସି ବହୁ ଚେଷ୍ଟା କରି ବିଫଳପ୍ରଯତ୍ନ ହେଲେ । ଶେଷକୁ ବୀରବିକ୍ରମାଦିତ୍ୟ ( ଯେ ବେତାଳସାଧନା କରିଥିଲେ ) ବେତାଳମାନଙ୍କ ସହିତ ସେ କନ୍ୟା ନିକଟରେ ପହଞ୍ଚି ବେତାଳମାନଙ୍କ ସଙ୍ଗେ କଥାବାର୍ତ୍ତା ଛଳରେ ଏପରି କୌଶଳରେ ପ୍ରଶ୍ନ ଓ ଉତ୍ତରମାନ କଲେ (ଯଥା—ଦୋଷୀକୁ ନିର୍ଦ୍ଦୋଷ, ଅବଧ୍ୟକୁ ବଧ ବୋଲି ଉତ୍ତର କରିବା ) ଯେ, ମୌନାବତୀ ଏହା ଶୁଣି ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ, ଓ ଉକ୍ତ ଅନ୍ୟାଯ୍ୟ ଉତ୍ତରମାନଙ୍କର ପ୍ରତିବାଦ କରିବା ପାଇଁ ପାଟି ଫିଟାଇଲେ । ତାଙ୍କ ମୌନବ୍ରତଭଙ୍ଗ ହେବାରୁ ବୀର ବିକ୍ରମାଦିତ୍ୟ ଉକ୍ତ କନ୍ୟାଙ୍କୁ ବିବାହ କଲେ । ]

ମଉନାବେଶୀ—ଗ୍ରା. ବି (ସଂ. ମୌନ+ବେଶ)—ମଉନ ବ୍ରତ ଧାରଣ
Maunābeśī କରିଥିବା ସ୍ତ୍ରୀ—A woman who was
taken the vow of keeping silence.

ମଉନୀ ବାବାଜୀ(ବାବା)—ଗ୍ରା. ବି—ଯେଉଁ ବାବାଜୀ ମୌନ ବ୍ରତ
Maunī bābājī(bābā) ଅବଲମ୍ବନ କରି ଥାଆନ୍ତି—
মৌনীবাবা An anchorite who has taken the vow
**मौनीबाबा** of silence.

ମଉର(ରୁ)ସ(ସି)—ବୈଦେ. ବିଣ ଓ ବି ( ଅ. ମୌରୁସୀ )—
Maura(ru)sa(si) ମୌରସ(ସି) (ଦେଖ)– Maurasa(si)
(See) (ଉ—ଔପାଧିକ ରାଜା ଉଚ୍ଛାସନେ ରୁଷି, ଝୁଣ୍ଟ ହେଉଛନ୍ତି ରାଜା ମଉରୁସି । ରାଧାନାଥ. ଦରବାର ।)

ମଉ(ହୁ)ରଡ଼ି(ଳି)—ଦେ ବି ( ସଂ. ମୁରଲ; ମଧୁରାଳିକା )—ମଧୁର
Mau(hu)rāṛi(ḷi) ଜଳରେ ବାସ କରୁଥିବା ଏକ ପ୍ରକାର
মৌরলা କ୍ଷୁଦ୍ର ମତ୍ସ୍ୟ—A tiny fresh water fish;
**मौराली, खेसरा** Aspidoparia Marar.
[ଦ୍ର—ଏ ମାଛ ୩।୪ ଅଙ୍ଗୁଳ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କ ଦେହରେ କ୍ଷୁଦ୍ର କ୍ଷୁଦ୍ର କାତି ଅଛି; ଉଦର ଗୋଲ, ମୁହଁ ଛୋଟ, ମୂଛ ନାହିଁ; ଏ ମାଛ ଖାଇବାକୁ ଖୁବ୍ ରୁଚିକର ଓ ରୋଗୀର ପଥ୍ୟ ରୂପେ ବ୍ୟବହୃତ ହୁଏ । ]

ମଉର୍ବୀ—ଗ୍ରା. ବି ( ପଦ୍ୟ ) ( ସଂ. ମୌର୍ବୀ )—ଧନୁର ଗୁଣ—
Maurbī Bow-string. (ଉ—ଭୂରୁ ଧନୁ ଅଞ୍ଜନ ମଉର୍ବୀକି
(ମଉର୍ବୀକ—ଅନ୍ୟରୂପ) ରଞ୍ଜନ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।)

ମଉଲ (ଇତ୍ୟାଦି)—ଦେ. ବି—ମହୁଲ ଇତ୍ୟାଦି ( ଦେଖ )
Maula (etc) Mahula etc. ( See )

ମଉଳ(ଳି)—ଦେ. ବି ( ସଂ. ମୌଳି )—୧ । ମସ୍ତକ—1. Head.
Mauḷa(ḷi) ୨ । ଦେବମୂର୍ତ୍ତିର ମସ୍ତକରେ ଥିବା ମୁକୁଟ—2।
**मौर** Crown on the head of an image.
মৌড় ଦେ. ବିଣ ( ଲକ୍ଷଣାର୍ଥ )—ଶ୍ରେଣୀମଧ୍ୟରେ ଶ୍ରେଷ୍ଠ—
( figurative ) Best of a class. ( ଉ—
ଫୁଲ ଗୁଛି ଗୁଛି ତହିଁରେ ସହସା ଦେଖିଲା ଯୁବା-ମଉଳ ।
ରାଧାନାଥ. ଯଯାତି । )

ମଉଲ—ଦେ. ବି—ମହୁଲ ( ଦେଖ )
Maula Mahula ( See )

ମଉଲ(ଲା)ନା—ବୈଦେ. ବି (ଫା)—ମୌଲନା ( ଦେଖ )
Maula(lā)nā Maulanā (See)

ମଉଲବୀ—ବୈଦେ. ବି—(ଅ ମୌଲବୀ)—ମୌଲବୀ (ଦେଖ)
Maulabī Maulabī (See)

ମଉଲ(ନା) ମୁଗୁ(ଗ)ଲ—ଦେ. ବି—ଭାରତକୁ ଭବିଷ୍ୟତରେ ଆକ୍ରମଣ
Maula(nā) mugu(ga)la କରିବା ବୈଦେଶିକ ମୋଗଲ ବା
(ମହନା ମୁଗଲ—ଅନ୍ୟରୂପ) ମୁସଲମାନ୍ ଶତ୍ରୁର କାଳ୍ପନିକ ନାମ
(ଜଗନ୍ନାଥ,ଭାଗବତ)—Name of some foreign invader whose invasion of India has been foretold in the Bhāgabata. [ ଉ—ଏମନ୍ତେ ମଉଲ(ନା) ମୁଗୁଲ, ପୃଥ୍ୱୀକି ହୋଇବେ ସେ ଖଳ । ଜଗନ୍ନାଥ. ଭାଗବତ ।] [ ଦ୍ର—ଭାଗବତରେ ଲେଖା ଅଛି ଯେ କଳିଯୁଗ କ୍ରମଶଃ ଅଗ୍ରସର ହେଲେ ଲୋକେ ନିର୍ବୀର୍ଯ୍ୟ ହେବେ, ସମାଜରେ ପାପ ଭାର ବଢ଼ିବ, ଦେଶକୁ ବିଦେଶୀମାନେ ଆକ୍ରମଣ କରିବେ ଓ ମଉଲ(ନା) ମୁଗୁଲ ଭାରତକୁ ବ୍ୟତିବ୍ୟସ୍ତ କରିବେ । ]

ମଉ(ହ, ହୁ) ଳା—ଦେ. ବି—୧ । (ସଂ. ମାତୁଳ)—ମାତୁଳ; ମାମୁ—
Mau(ha, hu)ḷā 1. Mother's brother; maternal
মামা uncle. [ ଉ—ବାର ବରଷ ମଉଳା ପୋଷେ,
**मामा** ଖୁଡ଼ୁତା ଦେଖିଲେ କୋଡ଼ରେ ବସେ । ଛଗ । ] ୨।
মহালয়া [ ସଂ. ମହାଳୟା ] ମହାଳୟା [ ଦେଖ ]—
**महाजया** 2. Mahāḷayā (See) ୩ । ମାତୁଳ ସମ୍ବନ୍ଧୀୟ—
3. Relating to one's mothe'rs brother.

ମଉ[ହ,ହୁ]ଳା ଅମାସ୍ୟା—ଦେ.ବି.–[ ସଂ. ମହାଳୟା ଅମାବାସ୍ୟା ]—
Mau(ha,hu) ḷā amāsyā ଆଶ୍ୱିନ ମାସ ଅମାବାସ୍ୟା—The
মহালয়া newmoon of the month of Āświna.
**महाजया** [ଦ୍ର—ଏ ଦିନ ମହାଳୟା ଶ୍ରାଦ୍ଧ କରିବା ବିହିତ ।]

ମଉଳା(ଳେ)ଇବା—ଦେ. କ୍ରି ( ମଉଳିବା କ୍ରିୟାର ଣିଜନ୍ତରୂପ;
Mauḷā(ḷe)ibā The causative form of Mauḷibā),
শুকান ୧ । ଝାଉଁଳିବାର ଉପାୟ କରିବା—1. To cause to
**मौलाना** wither. ୨ ।, ( ସଂ. ମଳନ ) ମଳନ କରିବା—

2. To cause to turn pale. ❋ । ସଭା ଆଦ ଭଙ୍ଗାଇବା—3. To cause a meeting or assembly to disperse.

ମଉଳା ଛତୁ—ଦେ. ବ—ଏକ ପ୍ରକାର ଛତୁ—A kind of Maulā chhatu mushroom. [ ଦ୍ର—ଏହା ଆଶ୍ୱିନ ବା କାର୍ତ୍ତିକ ମାସରେ ଜନ୍ମେ । ଏହାର ନାଡ଼ ଗଣ୍ଠିର ମାଟିରୁ ଉଠିବା ଛତୁର ନାଡ଼ଠାରୁ ଦୀର୍ଘ, କିନ୍ତୁ ଉପର ଛଡ଼ ଉକ୍ତ ଛତୁର ଛଡ଼ ଅପେକ୍ଷା ବଡ଼ ।]

ମଉଳା ନିମନ୍ତ୍ରଣ—ଦେ. ବ ( ସ. ମାତୁଳ+ନିମନ୍ତ୍ରଣ )—ବାଳକର Maulā nimantraṇa ଉପନୟନ ବା ବାଳିକାର ବିବାହ ମାମারবাড়ী তত্ত্ব ପୂର୍ବରୁ ମାମୁଙ୍କ ନିକଟକୁ ପଠାଯିବା ନିମନ୍ତ୍ରଣ—Formal invitation sent with a tray to boy's or girl's maternal uncle before the boy's 'upanayana or girl's marriage is performed. [ଦ୍ର—ଗୋଟିଏ ଡାଲାରେ ପାଣ, ନଡ଼ିଆ, ଗୁଆ, ମହାପ୍ରସାଦ ଓ ତାଳପତ୍ରରେ ଲିଖିତ ନିମନ୍ତ୍ରଣ ପତ୍ର ପଣ୍ଡାଦ୍ୱାରା ମାମୁଙ୍କ ନିକଟକୁ ପଠାଯାଏ ଓ ପଣ୍ଡା ସଙ୍ଗେ ଜଣେ ଶଙ୍ଖୁଆ ଓ ଜଣେ ମହୁରିଆ ଯାଆନ୍ତି । ବ୍ରତରେ ବା ବିବାହ ଉତ୍ସବରେ ମାମୁ ଯୋଗ ଦେଇ ଉକ୍ତ ପାଣ ଖିଆନ୍ତି ।]

ମଉ(ହ)ଳା ପକ୍ଷ—ଦେ. ବ (ସ. ମହାଳୟା ପକ୍ଷ)—ପିତୃପକ୍ଷ; ଅପର ପକ୍ଷ; Mau(ha)lā paksha ଆଶ୍ୱିନ କୃଷ୍ଣପକ୍ଷ—The dark ପିତୃপক্ষ पितृपक्ष fortnight of the month of Āswina.

ମଉଳାପୁଅ ଭାଇ—ଦେ, ବ (ସ. ମାତୁଳ ପୁତ୍ର+ଭ୍ରାତୃ —ମାମୁପୁଅ ଭାଇ—Maulāpua bhāi One's cousin, being the son of মামাতো ভাই ममेरा भाइ one's maternal uncle.

ମଉଳା ଭଞ୍ଜା—ପ୍ରାଦେ (ସମ୍ବଲପୁର) ବ. (ସ· ମୌଳି)—୧ । ଚାଳଘରର Maulā bhañjā ମଥାନ ବା ଭୁଲ—1. The ridge or topmost strip of a trangular thatch. ୨ । ଚାଳଘରର ଦୁଇ ଚାଳର ମଥାନ ମଧ୍ୟରେ ପଡ଼ାଯିବା ଏକ ହାତ ଚଉଡ଼ା ଛଣର ଚାଟି—2. A plate of straw put on the ridge of gabled thatches.

ମଉଳାଶୁଭ—ଦେ. ବ. ପୁଂ (ସ. ମାତୁଳ ଓ ଶ୍ୱଶୁର )—ମଳାଶୁର; Maulāśubha ଆପଣା ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ମାତୁଳ—(ମଉଳା ଶଶୁର, ମଳାଶୁର—ଅନ୍ୟରୂପ) One's husband's or wife's maternal uncle. [ ଦ୍ର—ଆମ ସମାଜରେ ମଉଳାଶୁର ଓ ଭଣଜାବୋହୁ ପରସ୍ପର ମୁହଁ ଦେଖିବାର ଓ ଅନ୍ୟଙ୍କୁ ଛୁଇଁବାର ନିଷିଦ୍ଧ । ] ମଉଳା ଶାଶୁ, ମଳାଶାଶୁ { ସ୍ତ୍ରୀ }
मामाश्वशुर ममेरासस्रुर, ममियाससुर

ମଉ(ହ)ଳା ଶ୍ରାଦ୍ଧ—ଦେ. ବ (ସ. ମହାଳୟା ଶ୍ରାଦ୍ଧ)—ପିତୃପକ୍ଷରେ ବା Mau(ha)lā śrāddha ଆଶ୍ୱିନ କୃଷ୍ଣପକ୍ଷରେ କରାଯିବା ପିତୃ-ଶ୍ରାଦ୍ଧ—The Śrādha offered to one's মহালয়াশ্রাদ্ধ महालयाश्राद्ध ancestors during the dark fortnight of Āświna. [ ଦ୍ର—ଯେ କୌଣସି ମାସର ଯେଉଁ ତିଥିରେ ଆପଣାର ପିତା ମରିଥାଅନ୍ତି, ପିତୃପକ୍ଷର ସେହି ତିଥିରେ ମହାଳୟା ଶ୍ରାଦ୍ଧ କରାଯାଏ । ସେ ତିଥିରେ ଶ୍ରାଦ୍ଧ କରିବାକୁ ଅକ୍ଷମ ବ୍ୟକ୍ତି ପକ୍ଷରେ ଅମାବାସ୍ୟା ଦିନ ମହାଳୟାଶ୍ରାଦ୍ଧ ଅବଶ୍ୟ କର୍ତ୍ତବ୍ୟ । ]

ମଉଳିବା—ଦେ. କ୍ରି (ସ. ମ୍ଲୈ. ଧାତୁ=ମ୍ଲାନ ହେବା)—୧ । ମ୍ଳାନ Maulibā ହେବା—1. To become pale. (ଉ—କେତେ ଶୁକିয়েযাওয়া ସୁକୁମାର ବସ୍ତୁ ସହେ ଅବା ମଉଳିବ ପରଶେ । मौलना ରାଧାନାଥ. ପାର୍ବତୀ ।) ୨ । ଝାଉଁଳି ଯିବା—2. To wither. ( ଉ—ଏକମାତ୍ର ପାରଜାତ ଭାରତନନ୍ଦନକୁ । ପଡ଼ିଲା ମଉଳି ଝଡ଼ି । ଚନ୍ଦ୍ରାମଣି ବିଜୟବିବ୍ୟ ।) ❋ । ନିସ୍ତେଜ ହେବା—3. To be shorn of lustre ୪ । ଗର୍ବ ବା କ୍ରୋଧ ତ୍ୟାଗ କରି ନତ ହେବା; ନମ୍ର ହେବା—4. To climb down; to become crestfallen. ভঙ্গহওয়া ❋ । (ସଭା ଆଦ) ଭାଙ୍ଗିଯିବା—5. To disperse. (said of an assembly or meeting.

ମଉ(ହୁ)ଶଯ୍ୟା—ଦେ. ବ (ସ. ଶଯ୍ୟା)—ମଧୁ ଶଯ୍ୟା ( ଦେଖ ) Mau(hu)śajyā Madhu śajyā ( See ) ফুল শয্যা कोहबर शय्या

ମଉ(ହୁ)ଷଧ(ଧି)—ଗ୍ରା· ବ (ସ. ମହୌଷଧ)—ଅବ୍ୟର୍ଥ ଔଷଧ—Mau(hu)shadha(dhi) An unfailing medicine; মহৌষধ महौषध panacea. [ଉ—ହରନ୍ତ ପ୍ରାଣୀଙ୍କର ବ୍ୟାଧି, ଉଆଡ ମନ୍ତ୍ର ମଉଷଧି । ଜଗନ୍ନାଥ. ଭାଗବତ ।]

ମଉସମ—ଦେ. ବ—ମୌସୁମୀ ବାୟୁ (ଦେଖ)—Mausumī bāyu Mausama (See) [ଉ—ସମୁଦ୍ରଗାମୀ ସଓଦାଗର ଜାହାଜ ନଦୀ ଜଳକୁ ଆଚ୍ଛାଦନ କରି ମଉସମ ସମୟରେ କାଲେଷ୍ଟର ବନ୍ଦର ଘାଟରେ ଭାସୁଥିଲା । ଫକୀର ମୋହନ. ଗଳ୍ପସ୍ୱଳ୍ପ ।]

ମଉସା—ଦେ· ବ. ପୁଂ (ସ. ମାତୃଷ୍ୱସା=ମାଉସୀ; ମାଉସୀଙ୍କ ପୁଂଲିଙ୍ଗ Mausā ଆକାର)—ମାତାଙ୍କର ଭଗ୍ନୀପତି—One's mother's মাসা, মেসা, মেসো मौसा sister's husband.

ମଏ—ଦେ. ଅ ( କଟକିଆ ) ( ଫା. ମାୟ; ଭୁଲ ସ. ମଧ୍ୟ )—Mae ୧ । ସହିତ—1. With; together with. ୨ । ମଧ୍ୟ; মায় ଏବଂ—2. Also; and. ❋ । ଅମୁକକୁ ମିଶାଇ—माय 3 Including. ଗ୍ରା. ଅ (ପ୍ରାଚୀନ) (ସ. ମୟ; ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯୁକ୍ତ ମଏ) —ସ 'ମୟ' ପ୍ରତ୍ୟୟ—Full of. [ଉ—ଯେ ଭାଷା କୋଟି କୋଟି ମୋକ୍ଷ ମଏ, ନ ଦେବୁ ସୁନା ଯାଚଲେ ବିଶାଏ । ପ୍ରାଚୀ. ପରତେ ଗୀତା] କ୍ରି. ବିଣ (ସ. ମୟ)—ବ୍ୟାପକ ରୂପେ—Through-ময়, তমাম out. (ଯଥା—ରୋଗ ଦେଶମଏ ବ୍ୟାପିଗଲା ।) मय, तमाम ଦେ. ବ—ପଶୁ ଆଦ ଜୀବଙ୍କର ରତୁକାଳ—The ঋতু rut period of different animals; the थिराना mating period of animals; the time of heat of animals.

ମଏଁ—ପ୍ରାଦେ. (ସମ୍ବଲପୁର) ସର୍ବନାମ (ଭୁଲ ହି. ମୈଁ)—
Maeñ ମୁଁ; ଆମ୍ଭେ—I.

ମଏ(ୟ)କାଳ—ଦେ. ବି—ପଶୁ ଆଦି ଜୀବଙ୍କର, ଋତୁ ବା ସଙ୍ଗମକାଳ—
Mae(ya)kāḷa The period of rut of animals; mating season of animals.
ଋତୁ ସମୟ
थिरानेका समय [ମଏ(ୟ)ବନ, ମଏ ଋତୁ—ଅନ୍ୟରୂପ]

ମଏ(ୟ, ଅ)ଣ—ଦେ. ବି (ସଂ ମଦନ)—୧ । ଏକ ପ୍ରକାର କଣ୍ଟକ ଗୁଳ୍ମ—1. A medicinal bushy plant; the Bushy Gardenia: Randia Dumetorum.
Mae(ya, a ṇa
ସଂ. ମଦନ, ମଦନକଣ୍ଟକ, ପିଣ୍ଡି, ନଟ, କରହାଟ, ଶଲ୍ୟକ, ଧାମ୍ୟଫଳ, ଶଲ୍ୟ, ଛର୍ଦ୍ଦନ, ଢଷପୁଷ୍ପ, ପିଣ୍ଡୀତକ, ମରୁବକ
मयना फल, मएना, मएना काँटा
मैन फल, करहर
ଲେ. ବସନ୍ତ, ମଣ୍ଡେତ୍ରୁ, ମାଗଂ ମ. ମେଣାଫଳ ଗୁଜରାଟୀ -ଗସଗସା, ଘସଘସା, ଉଡ଼ଙ୍ଗାଳି ତା. ମଡୁକଳୁରମ୍ ମ. ଗେଲ ଗୁ. ଚାଲ
[ବି—ଏହା ଅଳ୍ପ ଅଧିକ ବର୍ଷେ ବନ୍ୟ ଗୁଳ୍ମ । ଶୁଷ୍କିଲ୍ପ ପଡ଼ୁଥିରେ ଏହି ଗଛ ଉଠେ । ଗଛରେ ସିଧା ସିଧା ଲମ୍ବ କଣ୍ଟା ଥାଏ । ଏହାର ଫୁଲ ଶ୍ୱେତ, ଧଳା ଓ ପଞ୍ଚଦଳ ବିଶିଷ୍ଟ; ଫଳ ପିଣ୍ଡାକାର । ଫୁଲ ଓ ଫଳ ଔଷଧରେ ବ୍ୟବହୃତ ହୁଏ; ଏହା ବାନ୍ତି, କୁଷ୍ଠ, ଶୂଳ, କଫ, ଆନାହ, ଶୋଥ ଓ ଗୁଲ୍ମ ବ୍ରଣ ନାଶକ ।]
୨ । ଏକ ଜାତୀୟ ବଡ଼ ବନ୍ୟ ଗଛ; ମହା ପିଣ୍ଡୀତକ—Randia Longispina.

ମଏଦାନ—ପ୍ରାଦେ. (ସମ୍ବଲପୁର) ବୈଦେ (ଫା) ବି—ମଇଦାନ (ଦେଖ)
Maedān Maidāna ( See )

ମଏ ମତ୍ତ(ନ୍ତା)—ପ୍ରା. ବିଣ (ସଂ ମଦମତ୍ତ)—ମତ୍ତ; ଉନ୍ମତ୍ତ—
Mae mattā (ntā) Wholly absorbed; intoxicated
मद मत्त
मदमत्त, मैमंत
(ଉ—ବିର ରସେ ମଦ୍ୟ ପାନେ ସର୍ବେ ମଏମତ୍ତ । ପ୍ରାଚୀ, କୃଷ୍ଣନଳରୂପଣ ଗୀତା ।)

ମଏ(ୟ) ଯିବା—ଦେ. କ୍ରି—୧ । (ପଶୁ ଆଦି; ସ୍ତ୍ରୀ ପୁରୁଷ) ସଙ୍ଗମ କରିବା—
Mae(ya) jibā 1. To copulate (said of beasts)
पाल देखा
୨ । (ଜୀବ ଜନ୍ତୁ ଆଦି) ଋତୁମତୀ ହେବା—
उहाना, बाहाना
थिराना
2. To have menses (said of animals in rut); to be in heat.

ମଏଲ୍‌କା—ପ୍ରାଦେ. (ସମ୍ବଲପୁର) ବି—ମାଟିର ଢୁବୁ ବା ସରୁ—
Mael-kā Earthen saucer or pan

ମଏଲ୍‌ଛା—ପ୍ରାଦେ. (ସମ୍ବଲପୁର) ବିଣ (ସଂ. ମ୍ଳେଚ୍ଛ)—
Mael-chhā ଝୋଟର; ମଳଥ—Dirty; filthy.

ମଂଜିର—ପ୍ରାଦେ. (ବସ୍ତର) ବି (ସଂ. ମଞ୍ଜୀର)—ମଞ୍ଜିର; ଗିନି—
Mamjirā (ମଁଜିର—ଅନ୍ୟରୂପ) Small cymbals.

ମଁଗ—ପ୍ରାଦେ. (ସମ୍ବଲପୁର) ବି—ମଙ୍ଗ ( ଦେଖ )
Mañg Mañga ( See )

ମଞ୍ଜ—ପ୍ରାଦେ. (ସମ୍ବଲପୁର) ବି—ମଞ୍ଜ ( ଦେଖ )
Mañj Mañja ( See )

ମଞ୍ଜି—ପ୍ରାଦେ. (ସମ୍ବଲପୁର) ବି—ମଞ୍ଜି ( ଦେଖ )
Mañji Mañji ( See )

ମଁଡ଼ିବା—ପ୍ରାଦେ. (ବସ୍ତର) ବି—ମଣ୍ଡିବା ( ଦେଖ )
Mañḍ-bā Manḍibā ( See )

ମଁଡ଼ି(ଡ଼ି)ଆ—ପ୍ରାଦେ. (ବସ୍ତର) ବି—ମାଣ୍ଡିଆ ( ଦେଖ )
Mañrḍi(di)ā (ଭୁଲ. ହି. ମଁଡୁଆ) Mānḍiā ( See )

ମଁଦ୍—ପ୍ରାଦେ. (ସମ୍ବଲପୁର) ବି (ସଂ. ମଦ୍ୟ)—ମଦ—Wine.
Mañd ବିଣ (ସଂ. ମନ୍ଦ)—ମନ୍ଦ—Bad.

ମକ୍ (ଧାତୁ)—ସଂ—ଭୂଷିତ କରିବା—To adorn.
Mak (root) [ମଙ୍କ୍ (ଧାତୁ—ଅନ୍ୟରୂପ)]

ମକ୍‌ତବ୍—ବୈଦେ. ବି (ଫା)—ଆରବୀ ଓ ଫାରସୀ ଭାଷା ପଢ଼ିବାର ପ୍ରାଥମିକ ବିଦ୍ୟାଳୟ—Primary school for teaching the Persian and Arabic languages.
Mak-tab
मक्तब
मकतब (ମକ୍ତବ୍—ଅନ୍ୟରୂପ)

ମକ୍(ଖ)ମଲି—ପ୍ରାଦେ. (ବସ୍ତର) ବି—ଗେଣ୍ଡୁ ଫୁଲ; କୁସୁମ ଫୁଲ—
Mak-(kh)-mali Safflower; Carthamus Tinctorius.

ମକଚା—ଦେ. ବି (ସଂ. ମଳନ)—୧ । ମୋଡ଼ିବା—1. Twisting; wrenching.
Makachā
मचका
୨ । ଦଳନ; ଦଳା; ମଳା—2. Trampling; treading; bruising.
मसलना
ଦେ. ବିଣ—ଦଳିତ—Bruised; trodden; trampled; sprained.

ମକଚ(ଚେ)ଇବା—ଦେ. କ୍ରି—(ମକଚିବା କ୍ରିୟାର ଣିଜନ୍ତ ରୂପ—The causative form of Makachibā).
Makachā(che)ibā
मचकाना मसलाना
ଦଳାଇବା—To cause to be bruised, crushed or trampled.

ମକଚିବା—ଦେ. କ୍ରି—(ସଂ. ମଳ ଧାତୁ)—୧ । ମଳିବା; ଦଳିବା—
Makachibā 1. To tread; to bruise; to crush.
मचका मसकना
[ଉ—ସେ ଗଛର ପବନ ବାଜି ଅମ୍ଳସ୍ତେ ଅଣ୍ଡି ମକଚ, କାଦରୁ ଉଠନ୍ତି ଘର ଉଠି ବସିଲେ । ମାଲକଣ୍ଟ ପିଲ୍ଲଙ୍କ ରାମାୟଣ ।]
୨ । ମୋଡ଼ି ଦେବା—2. To sprain; to twist; to wrench.

ମକଡ଼ା—ପ୍ରାଦେ. (ଅଠମଲ୍ଲିକ ବି—(ଭୁଲ. ହି. ମକଡ଼ା)—ବୁଢ଼ିଆଣୀ; ମାକଡ଼ସା—Spider.
Makarḍā

ମକଦ(ଦ୍ଦ)ମ—ବୈଦେ. ବି—(ଫା. ମୁକଦମ୍=ଶ୍ରେଷ୍ଠ; ପ୍ରାଚୀନ)—
Makada(dda)ma
मकद्दम
मुकद्दम
୧ । ଜମିଦାର ଓ ପ୍ରଜାଙ୍କର ମଧ୍ୟସ୍ଥିତ ମଧ୍ୟସ୍ୱତ୍ୱାଧିକାରୀ; ଯେଉଁ ବ୍ୟକ୍ତି ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ଆପଣାର ନିର୍ଦ୍ଧାରିତ ମାଲିକାନା କାଟି ନେଇ ବାକି ଖଜଣା ଜମିଦାରଙ୍କୁ ଦିଏ—1. A tenure holder under a zamindar. ୨ । ଗ୍ରାମାଧିକାରୀ—2. The proprietor of a village. ୩ । ଗ୍ରାମର ସର୍ଦ୍ଦାର 3. Village headman. [ଉ—ଲୋକେ ପଚାରିଲେ କ ବୋଲି ବୋଲିବ ? ମୁଁ ତ ଗାଆଁ ମକଦମ ହୋଇ । ଛଗ ।]
୪ । ରେଳୱାଇ କୁଲିଦଳଙ୍କ ସର୍ଦ୍ଦାର—4. A sardar of a gang of Railway coolies. ପ୍ରାଦେ. (ସମ୍ବଲପୁର) ବି—ଡେପୁଟି କମିଶନରଙ୍କ ବା ତହସିଲଦାରଙ୍କ ଦ୍ୱାରା ନିଯୁକ୍ତ ଗ୍ରାମର ଶାସନାଧିକାରୀ ବ୍ୟକ୍ତି—Exe-

cutive head of a village appointed by the Deputy Commissioner or Tahasildar.

ମକଦ(ଦ୍ଦ)ମା—ବୈଦେ. ବ ( ଫା. ମୁକଦମା )—ମାମଲ୍ଲା; ଅଦାଲତରେ Makada(d'da)mā ଉପସ୍ଥାପିତ ଅଭିଯୋଗ—Case in court; litigation. [ ଦ୍ର—ଭିନ୍ନ ଭିନ୍ନ ଅଦାଲତରେ ଦାଏର ହେବା ମକଦ୍ଦମାର ଭିନ୍ନ ଭିନ୍ନ ନାମ ଅଛି । ଯଥା—ଫଉଜଦାରି ବା ଫୌଜଦାରୀ ମକଦ୍ଦମା, ଦେଉଥାନି ବା ଦେୱାନି ମକଦ୍ଦମା, ଦଉରା ବା ସେସନ ମକଦ୍ଦମା । ଯେଉଁ ପକ୍ଷ ଅଦାଲତରେ ଜୟଲାଭ କରେ ତାର ମକଦ୍ଦମା ଡିକ୍ରି (କ୍ରି) ହେଲା ଓ ଯେ ହାରେ ତା ମକଦ୍ଦମା ଡିସ୍‌ମିସ୍ ହେଲା ବୋଲାଯାଏ । ମକଦ୍ଦମା ସମ୍ପର୍କରେ ଅନେକ ଗୁଡ଼ାଏ ଇଂରାଜୀ ଓ ପାର୍ସୀ ଶବ୍ଦ ଭାଷାରେ ପଶିଛି । ଯଥା—ଖାରିଜ, ଇସ୍ତୁ, ସାକ୍‌ଦାଏର୍, ଅପିଲ୍, ମୋସନ୍, ସାଏଲ୍, ଅସାମୀ, ମଜ୍‌ହର, ମଜହର୍‌ନାମା, ମୁଦେଇ,ମୁଦାଲା, ଫିରସ୍ତାବ୍, ତମାଦି, ଅର୍ଜି, ଜବାବ୍, ସମନ, ମିଥଦ୍, ନୋଟିସ୍ । ]

Bengali: ମୋ(ମ)କଦ୍ଦମା; Hindi: मुकदमा

ମକଦ୍ଦମା କରିବା—ଦେ. କ୍ରି—ଅଦାଲତରେ ଅଭିଯୋଗ ଆଣିବା—Makadamā karibā To file a suit or complaint in court.

Bengali: মকদ্দমা করা; Hindi: मुकदमा करना

ମକଦ୍ଦମା ଖର୍ଚ୍ଚ(ର୍ଚ୍ଚା)—ବୈଦେ ବ ( ଫା. ମୁକଦମା+ଖର୍ଚ୍ଚା )—Makadamā kharcha(rchā) ଅଦାଲତରେ ବା କଲେକ୍ଟରରେ [ମକଦ୍ଦମା ଖରଚ(ଚ୍ଚ)—ଅନ୍ୟରୂପ] ମକଦ୍ଦମା ପାଇଁ ଦିଆଯିବା ଅଇନ୍ ନିର୍ଦ୍ଧାରିତ ବ୍ୟୟ—Costs of a suit; expenses of litigation which are recognised by law. [ ଦ୍ର—ମକଦ୍ଦମାର ପକ୍ଷମାନେ ପ୍ରକୃତରେ ମକଦ୍ଦମାରେ ଯାହା ବ୍ୟୟ କରିଥାଆନ୍ତି ତାହା ମକଦ୍ଦମା ଖରଚ ବୋଲି ଅଦାଲତ ସ୍ଥିର କରନ୍ତି ନାହିଁ । କିନ୍ତୁ ଅଇନ୍ ଅନୁସାରେ ମକଦ୍ଦମାର ଭିନ୍ନ ଭିନ୍ନ ଦଫାରୁ ପାଇଁ ଯେତିକି ବ୍ୟୟ କରାଯିବ ବୋଲି ସରକାରଙ୍କ ଅଇନରେ ନିର୍ଦ୍ଧାରିତ ହୋଇଅଛି, ତାହା ମକଦ୍ଦମା ଖରଚ ବୋଲି ଧରାଯାଏ । ]

Bengali: মকদ্দমা খরচ; Hindi: मुकदमा खर्चा

ମକଦ୍ଦମା ଡିକ୍ରି(ଗ୍ରି)—ବୈଦେ. ବ ( କତରଥ ) ( ଫା. ମୁକଦମା+Makadamā dikri(gri) ଇଂ. ଡିକ୍ରି )—୧ । ମକଦ୍ଦମାରେ ( ଏକପକ୍ଷର ) ଜୟଲାଭ—1. Victory of one of the parties to a suit. ୨ । ମକଦ୍ଦମାରେ ବାଦୀର ଜୟଲାଭ—2. A case being decided in favour of the plaintiff.

Bengali: মকদ্দমা ডিগ্রী; Hindi: मुकदमा डिग्री

ମକଦ୍ଦମା ଡିସ୍‌ମିସ୍—ବୈଦେ. ବ ( କତରଥ ) ( ଫା. ମୁକଦମା+ଇଂ. Makadamā dis-mis ଡିସ୍‌ମିସ୍ )—୧ । ମକଦ୍ଦମାରେ ଏକପକ୍ଷର ପରାଜୟ—1. Defeat of one of the parties to a suit. ୨ । ମକଦ୍ଦମାରେ ବାଦୀର ଦାବୀର ନାମଞ୍ଜୁର—2. The dismissal of the plaintiff's claim.

Bengali: মকদ্দমা ডিসমিস; Hindi: मुकदमा डिसमिस

ମକଦ୍ଦମା ଦାଏ(ୟ)ର୍(ରି)—ବୈଦେ. ବ ( ଫା. ମୁକଦମା+ଦାୟର ) Makadamā dāe(ya)r(ri) —କୌଣସି ବ୍ୟକ୍ତି ବିରୁଦ୍ଧରେ ମକଦ୍ଦମାର ଉପସ୍ଥାପନ—Institution or filing of a case.

Bengali: মকদ্দমা দায়ের; Hindi: मुकदमादायेर

ମକଦ୍ଦମା ବାଜ୍—ବୈଦେ. ବଣ ( ଫା. ମୁକଦବାଜ୍ )—ମାମଲ୍ଲା ପ୍ରିୟ—Makadamā bāj Addicted to litigation; litigious. (ମକଦ୍ଦମାବାଜୀ—ବି)

Bengali: মকদ্দমা বাজ; Hindi: मुकमे बाज

ମକଦ୍ଦମା ମାମଲ୍ଲା—ବୈଦେ. ବ ( ଏକାର୍ଥକ ସଦଶର ଶବ୍ଦ; ଫା. ମୁକଦମା Makadamā māmalā +ମୁଆମଲ୍ଲା )—ମକଦ୍ଦମା ଅାଦି—Litigation.

Bengali: মামলা মকদ্দমা; Hindi: मामला मुकदमा

ମକଦ୍ଦମା ଲଢ଼ିବା—ଦେ. କ୍ରି ( କତରଥ )—ଅପର ପକ୍ଷ ବିରୁଦ୍ଧରେ Makadamā larhibā ଅପଣାପକ୍ଷର ଜୟଲାଭ ପାଇଁ ଅଦାଲତରେ ପ୍ରଯତ୍ନ କରିବା—To contest a suit.

Bengali: মকদ্দমা লড়া; Hindi: मुकदमा लड़ना

ମକଦ(ଦ୍ଦ)ମି—ବୈଦେ.ବ (ଫା.ମୁକଦମୀ)—ଜମିଦାରଙ୍କ ଅଧୀନ ମଧ୍ୟସ୍ୱତ୍ୱ Makada(dda)mi ବିଶେଷ—A sort of tenure under a zamindar.

Bengali: মকদ্দমী; Hindi: मुकदमी

ମକଦଳ—ପ୍ରାଦେ ( ଗଡ଼ଜାତ ) ବ—ଆତ; ବଢ଼ିଅଳ—Makadala The custard apple.

ମକଦଳ ଫୁଲ—ଦେ. ବ—ମଖମଲ ବା ମଣିକଗୁଚ୍ଛ ଫୁଲ—A small Makadala phula and veriegated kind of safflower; french marigold; Tagetes Patula.

Bengali: চিনের গেঁদা; Hindi: गुलदाउदी गेन्दा

ମକମକ—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ବେଙ୍ଗର ଡାକ—Makamaka 1. The croaking of frogs. ୨ । ବର୍ଷାଋତୁରେ ଶାମୁକମାନଙ୍କର ( କଳ୍ପିତ ) ଧ୍ୱନି—2.The imaginary sound produced by oysters during the rains. [ ଉ—ଶାମୁକ କାମୁକଙ୍କ ହୃଦରେ ଡମକ, ଥୋଇଲା କାଲ ଜାଣି ବୋଲି ମକ ମକ । କୃଷ୍ଣସିଂହ. ମହାଭାରତ ବନ । ] ୩ । ସ୍ତ୍ରୀଲୋକମାନଙ୍କର କାମୋଦ୍ଦୀପନା ସୂଚକ ହାବଭାବ ବା ଚେଷ୍ଟା—3. The external indications of amorous women; flirting of amorous women. ୪ । ବାଚାଳୁକ ବ୍ୟକ୍ତିର କହିବାକୁ ସୁବିଧା ନ ମିଳିବା ଯୋଗୁଁ ଅସ୍ଥିରତା ପ୍ରକାଶ—4. Exhibition of restlessness by a talkative person when he does not get an opportunity to speak. ୫ । ବିରହୀଭୂତ ବ୍ୟକ୍ତିର କାମଚେଷ୍ଟା ଓ ଅସ୍ଥିରତା—5. External indications and restlessness of a separated lover.

Bengali: মকমক; হাবভাব; Hindi: टर्टर, टर्टो; कसमस मटक

ମକମକ ହେବା—ଦେ. କ୍ରି ( ସ. ମକମକାୟତେ )—୧ । ( ବେଙ୍ଗ ) Makamaka hebā ମକମକ ଶବ୍ଦ କରିବା—1. To croak (said of a frog). ମକମକା(କେ)ଇବା, ମକମକା(କେ)ଇ ହେବା—ଅନ୍ୟରୂପ ୨ । ଚିତ୍କାର କରିବା—2. To make loud noise. ୩ । ଯୌବନରେ କାମଜ୍ୱାଳା ଯୋଗୁଁ ମତ୍ତତା ପ୍ରକାଶ କରିବା—3. To exhibit external signs of

Bengali: মকমকা; হাবভাব দেখান; Hindi: टर्टों करना

**कसमसाना** unsatiated lust; to flirt. [ ଦ୍ର—ଏହି
**मटकना** ଅର୍ଥରେ କାମୋନ୍ମତ୍ତ ଯୁବତୀମାନଙ୍କ ପକ୍ଷରେ ଏ ଶବ୍ଦ ବିଶେଷତଃ ବ୍ୟବହୃତ ହୁଏ । ] ୪ । ଧୃଷ୍ଟତା ପ୍ରକାଶ କରିବା—4 To exhibit impudence. ୫ । ( ମନ୍ଦାର୍ଥ ) ଅସ୍ଥିରତା ପ୍ରକାଶ କରିବା; ଛମଛମ ହେବା—5. [ bad sense ]—To show signs of restlessness.

ମକମକା(କି)—ଦେ· ବି—୧ । ଭେକରବ—Croaking of frogs.
Maka makā(ki) ୨ । ହାବଭାବ ଦ୍ୱାରା କାମମତ୍ତତା ପ୍ରକାଶ—
मकमकि, हाव 2. Exhibition of signs of unsatiated
**कसमसा** lust ବିଣ—ମକ ମକିଆ (ଦେଖ)
**मटकनी, मटकी** Maka makiā (See)

ମକମକା(କେ)ଇବା—ଦେ. କ୍ରି—(ସ. ମକମକାୟତେ)—୧ । ମକ ମକ
Maka makā(ke)ibā ହେବା (ଦେଖ)—1. Makamaka
मकमकान **उधियाना, कसमसाना, मटकना** hebā (See)
୨ । ଉନ୍ମତ୍ତ କରାଇବା—2. To intoxicate. ୩ । ଧୃଷ୍ଟ କରାଇବା—3. To make impudent. [ଦ୍ର—ତାକୁ ଭାତ ମକମକଉଛି, ନାଁ ବୟସ ମକମକଉଛି ? ଛଗ ।] ୪ । ବିରହରେ ଅସ୍ଥିର ହେବା—4. To feel restless and sickly owing to one's separation from the beloved.

ମକମକିଆ—ଦେ. ବିଣ, ପୁଂ—୧ । କାମାତୁର—1. Lustful; las-
Maka makiā ଅସ୍ଥିର **उद्दाम, मटकीला** civious.
(ମକ ମକା[କେ]ଇ—ସ୍ତ୍ରୀ) ୨ । ଯେ କାମାତୁର ଭାବ ପ୍ରକାଶ କରେ
2. Exhibiting amorous signs; thirsting for satisfaction of lust with the opposite sex; flirting.

ମକର୍‌ଲା—ପ୍ରାଦେ. (ସମ୍ବଲପୁର) ବି—(ଭୁଲ.ହି. ମକଡ଼ା)—ବୁଢ଼ିଆଣୀ—
Makar-lā Spider.

ମକର୍‌ଲା ଜାଲ—ପ୍ରାଦେ. (ସମ୍ବଲପୁର) ବି—(ଭୁଲ. ହି. ମକଡ଼ଜାଲ)
Makar-lā jāla ବୁଢ଼ିଆଣୀ ଜାଲ—Cob web.

ମକ(ଖ)ମଲି—ପ୍ରାଦେ. (ଗଞ୍ଜାମ) ବି—ଏକ ଜାତୀୟ ଫୁଲ ଗଛ—
Maka(kha)mali A species of flower tree.
( ଦ୍ର—ଗୁରୁବାର ଦିନ ମକମଲି ଫୁଲ ଗଛ ମୂଳେ ଧୂପ ଦୀପ ଦେଇ ପ୍ରଣାମ କରି ଏହାର ମୂଳ ଉତ୍ପାଟନ କରି ଅଣି ରଖିଥିବ । ଏହି ମୂଳକୁ ବାଟି ପ୍ରସବବେଦନାର୍ତ୍ତ ସ୍ତ୍ରୀକୁ ପାନ କରାଇଲେ ସେ ସତ୍ୱର ପ୍ରସବ କରିବ । ପ୍ରସବ କାଳରେ ମଧ୍ୟ ଏହି ଗଛର ମୂଳ ଅଣି ବାଟି ସ୍ତ୍ରୀକୁ ପାନ କରାଇଲେ ପ୍ରସବ ବେଦନା ଲୁପ୍ତ ହୁଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ । )

ମକର—ସଂ ବି—(ମ=ମୁଖ, ବିପ+କୃ ଧାତୁ=ବିକ୍ଷେପ କରିବା+କର୍ତ୍ତୃ
Makara ଅ; କିମ୍ବା ମାତ୍ର+କୃ ଧାତୁ+କର୍ତ୍ତୃ. ଅ; କିମ୍ବା ମ=ମନୁଷ୍ୟ+କୃ ଧାତୁ=ହିଂସା କରିବା+କର୍ତ୍ତୃ. ଅ; ନିପାତନ ସିଦ୍ଧ)—୧ । ପୁରାଣବର୍ଣ୍ଣିତ ଜଳଜନ୍ତୁ ବିଶେଷ—1. A mythological marine animal (half beast and half fish.) [ ଦ୍ର—ଏ ଗଙ୍ଗାଙ୍କ ବାହନ ଓ କାମଦେବଙ୍କ ଧ୍ୱଜ ଅଟେ ।

ପୁରାଣ ବର୍ଣ୍ଣନା ଅନୁସାରେ ଏହାର ଗୋଟିଏ ଶୁଣ୍ଢ ଅଛି । ଏହାର ମସ୍ତକ ଓ ଆଗଗୋଡ଼ ଦ୍ୱୟ କୃଷ୍ଣସାର ମୃଗ ପରି ଏବଂ ଦେହ ଓ ପୁଚ୍ଛ ମତ୍ସ୍ୟ ପରି । କେହି କେହି ଏହାକୁ କୁମ୍ଭୀର, କେହି ହାଙ୍ଗର କହନ୍ତି । ପ୍ରାଚୀନ କାଳର ଅଙ୍କିତ ଚିତ୍ରରେ ଓ ପ୍ରସ୍ତରରେ ଖୋଦିତ ମୂର୍ତ୍ତିମାନଙ୍କରେ ଏହାର ଦେହ କୁମ୍ଭୀର ପରି ଓ ହାତୀ ପରି ଗୋଟିଏ ଶୁଣ୍ଢ ଉପରକୁ ଟେକି ଥିବାର ଚିତ୍ରିତ ହୋଇ ଥାଏ । ଏ ଶବ୍ଦର ଅପଭ୍ରଂଶ ମଗର ।] ୨ । ଏକ ଶୃଙ୍ଗ ବିଶିଷ୍ଟ ମତ୍ସ୍ୟବିଶେଷ; ମଗର; ଖଣ୍ଡା ମଗର—2. Sword-fish. ( ଦ୍ର—ଏହାର ଉପର ଓଠରୁ ଗୋଟିଏ ଶୃଙ୍ଗ ଦୁଇ ପାଖେ ପାନ୍ଥଆ ପରି ଦନ୍ତୁରିତ ହୋଇ ଅଗକୁ ବାହାରିଥାଏ ।) ୩ । ମୁଣ୍ଡାମଗର; ହାଙ୍ଗର—3. Shark. ୪ । (ଜ୍ୟୋତିଷ) ରାଶିଚକ୍ରର ଦଶମ ରାଶି—4. The sign of Capricorn in the zodiac. ୫ । କୁବେରଙ୍କ ନିଧିବିଶେଷ—5. The name of a gem of the Hindū God of wealth. ୬ । ସୌରମାନ ମାଘ ମାସ—6. The solar month of Māgha. ଦେ. ବି—
मकर ମକର ସଂକ୍ରାନ୍ତି ଦିନ ଦେବତାଙ୍କୁ ଭୋଗ କରି ଯାଉଥିବା 'ମକରଚାଉଳ' ଖିଆଖୋଇ ହୋଇ ଦୁଇଜଣଙ୍କ ମଧ୍ୟରେ ସ୍ଥାପିତ ବନ୍ଧୁତା—A god-relationship or sworn friendship set up between two persons by each feeding the other some Makara Chāula.

ମକର କୁଣ୍ଡଳ—ସଂ. ବି (ମ. ପ. ଲୋ)—ମକରଆକୃତିବିଶିଷ୍ଟ କର୍ଣ୍ଣଭୂଷଣ-
Makara kuṇḍaḷa An earring in the shape of a Makara.

ମକର କେତନ—ସଂ. ବି—୧ । (ବହୁବ୍ରୀହି; ମକର ଅଟେ କେତନ=
Makara ketana ପତାକା, ଧ୍ୱଜ ଯାହାର; ଏହାଙ୍କ ଧ୍ୱଜରେ
ମକରକେତୁ } ମକରର ଚିତ୍ର ଅଙ୍କିତ ହୋଇଥିବାରୁ)—
ମକରଧ୍ୱଜ } ଅନ୍ୟରୂପ— ମୀନକେତନ; ଝଷକେତନ; କାମଦେବ;
ମକରାଙ୍କ } କନ୍ଦର୍ପ—1. The God Cupid.
୨ । ( ଷଷ୍ଠୀତତ୍; ମକରର କେତନ=ବାସସ୍ଥାନ )—
2. The sea.

ମକର କ୍ରାନ୍ତି—ସଂ. ବି (ଭୂଗୋଳପରିଭାଷା)—ନିରକ୍ଷବୃତ୍ତଠାରୁ ୨୩ ଅଂଶ
Makara krānti ଦକ୍ଷିଣରେ କଳ୍ପିତ ରେଖା—
( ମକରମଣ୍ଡଳ—ଅନ୍ୟରୂପ ) The Tropic of Capricorn.
[ ଦ୍ର—ନିରକ୍ଷବୃତ୍ତର ୨୩ ଅଂଶ ଉତ୍ତରରେ ଥିବା ରେଖାକୁ କର୍କଟକ୍ରାନ୍ତି Tropic of Cancer ବୋଲାଯାଏ ଓ ୨୩ ଅଂଶ ଦକ୍ଷିଣରେ ଥିବା ରେଖାକୁ ମକରକ୍ରାନ୍ତି ବୋଲାଯାଏ । ସୂର୍ଯ୍ୟ ଏହି ମକରକ୍ରାନ୍ତିକୁ ମକରସଂକ୍ରାନ୍ତି ବା, ମାଘ ସଂକ୍ରାନ୍ତି ଦିନ ଛୁଅନ୍ତି । ଏହାହିଁ ସୂର୍ଯ୍ୟଙ୍କର ଦକ୍ଷିଣଗତିର ଶେଷ ସୀମା । ଏହିଠାରୁ ସୂର୍ଯ୍ୟ ପୁଣି ଉତ୍ତର ଆଡ଼କୁ ଫେରନ୍ତି । ]

ମକରଚାଉଳ—ଦେ. ବି—ମକରସଂକ୍ରାନ୍ତି ଦିନ ଦେବତାଙ୍କୁ ଭୋଗ
Makara chāu̱la ଲଗୁଥିବା ଗୁଡ଼ମିଶ୍ରିତ ଅପକ୍ୱ ତଣ୍ଡୁଳ—
মকরের চাল **मकरचौरट** Rice mixed with molasses offered to Deities on the Makara Saṁkrānti day.

ମକର ଧ୍ୱଜ—ସଂ ବି ( ବହୁବ୍ରୀହି, ମକର + ଧ୍ୱଜ = ପତାକା )—୧ ।
Makara dhwaja ମକରକେତନ; କାମଦେବ—
1. The God Cupid. ୨ । (ଆୟୁର୍ବେଦ) ସ୍ୱର୍ଣ୍ଣ ସଙ୍ଗେ ପାରଦ ଓ ଗନ୍ଧକ ମିଶ୍ରିତ ହୋଇ ପୁଟପାକପ୍ରଣାଳୀରେ ପ୍ରସ୍ତୁତ ହୋଇଥିବା ମହାଶକ୍ତିଶାଳୀ ରସାୟନ ଔଷଧବିଶେଷ—2. ( Hindu medicine ) A sublimate of mercury and sulpher prepared through the catalytic agency of gold; oxide of mercury. [ ଦ୍ରୁ—ଏହା ବୈଦ୍ୟଶାସ୍ତ୍ର ଅନୁସାରେ ବୃଦ୍ଧ ଓ ରୁଗ୍ଣବ୍ୟକ୍ତିଙ୍କୁ ଯୁବକର ବଳ ଓ ଶକ୍ତି ପ୍ରଦାନ କରେ । ପ୍ରକ୍ରିୟାର ଭିନ୍ନତା ଓ ପୁଟର ସଂଖ୍ୟା ଅନୁସାରେ ଏହି ଔଷଧକୁ ରସସିନ୍ଦୂର, ସିଦ୍ଧ ମକରଧ୍ୱଜ, ଷଡ଼୍‌ଗୁଣ ବଳିଜାରିତ ସିଦ୍ଧ ମକରଧ୍ୱଜ, ଚନ୍ଦ୍ରୋଦୟ ମକରଧ୍ୱଜ, ବୃହତ୍ ଚନ୍ଦ୍ରୋଦୟ ମକରଧ୍ୱଜ ହୁଏ । ଅନୁପାନ ଅନୁସାରେ ଏହା ପ୍ରାୟ ଯାବତୀୟ ରୋଗରେ ପ୍ରୟୋଗ କରାଯାଏ । ବାଜୀକରଣ ଓ ଧ୍ୱଜଭଙ୍ଗ ରୋଗରେ ଏହା କବିରାଜମାନଙ୍କର ଗୋଟିଏ ପ୍ରଧାନ ପ୍ରୟୋଗ । ଶୋଧିତ ପାରଦ ଓ ଗନ୍ଧକ ସଙ୍ଗେ କଜ୍ଜଳୀ ସୁନା ମିଶାଇ ବୋତଲରେ ବନ୍ଦ କରି ବୋତଲକୁ ବାଲି ହାଣ୍ଡିରେ ପୋତି, ତିନି ଦିନ ପର୍ଯ୍ୟନ୍ତ ଉକ୍ତ ହାଣ୍ଡି ତଳେ ନିଆଁ ଜାଳି ଏହା ପ୍ରସ୍ତୁତ କରାଯାଏ । ଉତ୍ତାପଦ୍ୱାରା ପାରଦ ଓ ଗନ୍ଧକର କେତେକ ଅଂଶ ବାଷ୍ପରୂପେ ଉଡ଼ିଯାଏ ଓ ବାକି ପାରା ଓ ଗନ୍ଧକ ମିଶିଯାଇ ବୋତଲର ବେକ ପାଖରେ ଲାଗି ରହେ, କିନ୍ତୁ ସୁନା ତଳ ସେହିପରି ରହିଥାଏ । ସ୍ୱର୍ଣ୍ଣର ରାସାୟନିକ ସାହାଯ୍ୟ ବା ଉପସ୍ଥିତିଦ୍ୱାରା ପାରା ଓ ଗନ୍ଧକ ଏହି ରୂପ ଧାରଣ କରେ । ଅଧିକାଂଶ ଗନ୍ଧକ ବାଷ୍ପରୂପେ ଉଡ଼ିଯାଏ । ଏହାର ଅନ୍ୟ ନାମ ଚନ୍ଦ୍ରୋଦୟ ମକରଧ୍ୱଜ । ]

ଦେ.ବି.—୧ । ହନୁମାନର ପୁତ୍ରବିଶେଷ —1. Name of a son of 'Hanumān. [ ଉ—ଯହୁଁ ସେ ମକର ଧ୍ୱଜ ଏମନ୍ତ ଶୁଣିଲା, ଏ ମୋହର ପିଅର ସେ ବୋଲିଣ ଜାଣିଲା । ବିଶ୍ୱନାଥ. ବିଚିତ୍ରରାମାୟଣ । ] ୨ । ନାସିକାର ବାମ ପୁଡ଼ାରେ ବହୁଥିବା ନିଃଶ୍ୱାସ ପବନର ଦକ୍ଷିଣ ପୁଡ଼ାରେ ବହିବା ଅବସ୍ଥା—2. The state of the breath passing through the right nostril. [ ଉ—ପ୍ରଥମରେ ବାମ ସ୍ୱର ଦକ୍ଷିଣକୁ ଗଲେ, ମକରଧ୍ୱଜ ବୋଲନ୍ତି ସେ ସ୍ୱରକୁ ଭଲେ । ପ୍ରାଚୀ. ଶିବ ସ୍ୱରୋଦୟ ।]

ମକରନ୍ଦ—ସଂ ବି—(ମକ ର + ଦୋ ଧାତୁ = ଛେଦନ କରିବା + କର୍ତ୍ତୃ.
Makaranda ଅ)—୧ । ପୁଷ୍ପରସ, ପୁଷ୍ପ ମଧୁ—1. Honey inside flowers. ୨ । କୁନ୍ଦ ଫୁଲ ଗଛ—2. A kind of flower plant. ୩ । କିଞ୍ଜଳ୍କ; ପୁଷ୍ପରେଣୁ—3. Pollen of flowers. ୪ । କୋକିଳ—4. The cuckoo (Apte). ୫ । ମଧୁମକ୍ଷିକା—5. A bee (Apte). ୬ । ସୁବାସିତ ଆମ୍ର ବୃକ୍ଷବିଶେଷ—6. A kind of fragrant mango tree (Apte). ଦେ. ବି—( ନାମ )—ଜ୍ୟୋତିଷିକ ସାରଣୀ ଗ୍ରନ୍ଥକାର ସ୍ୱନାମଖ୍ୟାତ ବ୍ରାହ୍ମଣ—The name of the author of an astronomical work Sāraṇi who was a Brāhmaṇa.

ମକରନ୍ଦ କଣା—ସଂ. ବି(ଷଷ୍ଠୀତତ୍)—ପୁଷ୍ପରେଣୁର ଗୋଟିଏ କ୍ଷୁଦ୍ରାଂଶ—
Makaranda kaṇā A grain of pollen.

ମକରନ୍ଦ ବତୀ—ସଂ. ବିଣ ସ୍ତ୍ରୀ—ମକରନ୍ଦଯୁକ୍ତା; ମଧୁବିଶିଷ୍ଟା—
Makaranda batī Full of flower-honey. ବି—ପାଟଳ ଫୁଲ—Lignonia Suaveolens (flower).

ମକର ବାଲୁଆ—ପ୍ରାଦେ. (ଗଞ୍ଜାମ) ବି—ଯେଉଁ କାଠଖଣ୍ଡ ଦ୍ୱାରା ଶଗଡ଼ର
Makara bāluā ଦୁଇଟି ଦଣ୍ଡା ଅଗ ପାଖରେ ଅର୍ଥାତ୍ ଯୁଆଳିର ମଧ୍ୟସ୍ଥଳର ନିମ୍ନରେ ଯୋଡ଼ା ହୋଇଥାଏ—A wooden pin joining the 2 beams of a cart on the front (where they taper to a point).

ମକର ବାହିନୀ—ସଂ. ବି ସ୍ତ୍ରୀ—(ମକର + ବହ ଧାତୁ + କର୍ତ୍ତୃ. ଇନ୍ +
Makara bāhinī ସ୍ତ୍ରୀ. ଈ)—ଜାହ୍ନବୀ; ଗଙ୍ଗା—The river Ganges.

ମକର ବ୍ୟୂହ—ସଂ. ବି—ମକରର ଶରୀର ଆକୃତିରେ ସୈନ୍ୟ ସମାବେଶ—
Makara byūha A battle array formed in the shape of a 'Makara'.

ମକର ମଙ୍ଗଳ—ସଂ. ବି—ମନୁଷ୍ୟର ଜନ୍ମକାଳୀନ ଜ୍ୟୋତିଷୋକ୍ତ ଶୁଭ-
Makara maṅgaḻa ଯୋଗବିଶେଷ; ଜାତକରେ ମଙ୍ଗଳ ଗ୍ରହ ମକର ରାଶିରେ ରହିଥିଲେ ଏହି ଯୋଗ ହୁଏ—An auspicious conjuction of the planet Mars with the sign of Capricorn at one's birth.
(ମକର ମଙ୍ଗୁଳ; ମକର ମଙ୍ଗୁଳ ଯୋଗ—ଦେଶଜରୂପ)
[ ଦ୍ରୁ—ମନୁଷ୍ୟର ଜନ୍ମ ସମୟରେ ମଙ୍ଗଳ ଗ୍ରହ ମକର ରାଶିର ଗୃହରେ ଥିଲେ ଉକ୍ତ ବ୍ୟକ୍ତି ସୁଖୀ ଓ ଧନବାନ୍ ହୁଏ । ]

ମକର ସଂକ୍ରାନ୍ତି—ସଂ. ବି—ମାଘ ସଂକ୍ରାନ୍ତି; ଉତ୍ତରାୟଣ ସଂକ୍ରାନ୍ତି; ଯେଉଁ
Makara saṁkrānti ସଂକ୍ରାନ୍ତିରେ ସୂର୍ଯ୍ୟ ଧନୁ ରାଶିରୁ
(ମକର ସଂକ୍ରମଣ—ଅନ୍ୟରୂପ) ଯାଇ ମକର ରାଶିରେ ପ୍ରବେଶ କରନ୍ତି—The passage of the sun from the sign of Sagitarius to that of Capricorn. [ ଦ୍ରୁ—ଏ ଦିନ ସୂର୍ଯ୍ୟ ମକରସଂକ୍ରାନ୍ତିରୁ ଉତ୍ତର ଆଡ଼କୁ ଫେରନ୍ତି, ଏ ଦିନରେ ଜଗନ୍ନାଥଙ୍କର ଓ ଲିଙ୍ଗରାଜଙ୍କର ଯାତ୍ରା ହୁଏ । ଏହି ଯାତ୍ରା ଉପଲକ୍ଷରେ ଅପକ୍ୱ ଚାଉଳ ସଙ୍ଗେ ଗୁଡ଼, ନଡ଼ିଆ, ପାଚିଲା କଦଳୀ ଆଦି ଗୋଳିଆ ହୋଇ ଦେବତାଙ୍କୁ ଭୋଗ କରାଯାଏ । ଏହାକୁ ମକର ଚାଉଳ ବୋଲାଯାଏ । ଏହି ଭୋଗ ଖିଆ ହେଇ ହୋଇ ଲୋକେ 'ମକର' ବସନ୍ତି । ]

ମକରୀ—ଦେ. ବି—ଏକ ପ୍ରକାର ମୋଟ ଶାରଦ ଧାନ—A species
Makarā of coarse paddy. ଗ୍ରାଦେ (ଗଞ୍ଜାମ) ବି—ଅନ୍ଟୁ କରିବା ପାଇଁ ଘରର କାନ୍ଥ ଉପରେ ପଡ଼ିଥିବା ଧାରଣା ଉପରେ ବସା ଯିବା ଦୁଇଗୋଡ଼ିଆ ତ୍ରିକୋଣାକାର କାଠ ଖଣ୍ଡ—A two-legged triangular piece of wood placed on the cross beams of an earth-roofed thatched house. ଗ୍ରାଦେ. (ସମ୍ବଲପୁର) ବି.—(ଭୁଲ. ହି. ମାକରା) ମାକଡ଼ସା. ବୁଢ଼ିଆଣୀ—Spider.

ମକରାକର—ସ. ବି ( ୬ଷ୍ଠୀ ତତ୍; ମକର+ଆକର )—ସମୁଦ୍ର—
Makarākara The sea.
(ମକରାଳୟ, ମକରାବାସ—ଅନ୍ୟରୂପ)

ମକରାକ୍ଷ—ସ. ବି. ପୁଂ—ରାବଣର ସେନାପତିବିଶେଷ—
Makarāksha Name of one of the generals of Rābaṇa.

ମକରାର(ରି,ଲି)—ବୈଦେ. ବି. ଓ ବିଣ—ମୁକରର(ରି) (ଦେଖ)
Makarār(ri,li) Mukarara(ri) (See)

ମକରାଶ୍ୱ—ସ. ବି ( ବହୁବ୍ରୀହି; ମକର ଅଟେ ଅଶ୍ୱ ବା ଯାନ ଯାହାଙ୍କର )—ବରୁଣଦେବ—The God
Makarāswa of the ocean.

ମକରାସନ—ସ. ବି ( ରୁଦ୍ରଯାମଳୋକ୍ତ ) ତାନ୍ତ୍ରିକ ଯୋଗାସନବିଶେଷ—
Makarāsana A posture in sitting laid down in the Tantras.

ମକରିକା—ସ. ବି ( ମକର+ସାଦୃଶ୍ୟାର୍ଥେ. କ+ଆ )—ମକରାକାର
Makarikā ପତ୍ରାବଳୀ; ଲଲାଟରେ କସ୍ତୁରୀ ଓ ଚନ୍ଦନାଦି
( ମକରୀପତ୍ର, ମକରୀଲେଖା—ଅନ୍ୟରୂପ ) ଦ୍ୱାରା ମକରାକାରରେ ଅଙ୍କିତ ଚିତ୍ର; ଚନ୍ଦନପାନ୍ତି—Paintings on the forehead in the shape of a Makara.

ମକରୀ—ସ. ବି ( ମକର+ସ୍ତ୍ରୀ. ଈ )—୧ । ମକରର ସ୍ତ୍ରୀଲିଙ୍ଗ—
Makarī 1. The feminine of Makara.
୨ । ମକରିକା (ଦେଖ)—2. Makarikā (See).
[ ଉ—ବେନି କରେ ଧରି ଧରି-ଦ୍ରୁମଖଣ୍ଡଳଶିରୀ ଶିରୀ ଫଳ ଉରଜ ମକରୀ କରି—ଉଝ. ପ୍ରେମସୁଧାନିଧି । ]
୩ । ( ମକର+ଅଚ୍ଛ ଅର୍ଥରେ ଇନ୍ )—ସମୁଦ୍ର—
3. The ocean.

ମକ(ଖ,ଖି)ଶୋ(ଚୋ)ଷ—ଗ୍ରାଦେ ( ଯାଜପୁର ) ବିଣ—( ଭୁଲ. ହି.
Maka(kha,khi)śo(cho)sh ମକ୍ଖୀଚୂସ)—କୃପଣ—Miserly.

ମକା[କ୍କା]—ଦେ ବି—୧ । ଧାନ୍ୟାଦି ବର୍ଗର ଶସ୍ୟବିଶେଷ—
Makā[kkā] 1. Indian corn; maize; Zea
ସ. ଯବନାଳ; ଜାବନାଳ Mays; [ ବି—ଏହାର
ଭୁଟା, মক্কা, মকাই ଗଛ ଓ ପତ୍ର ଝୋଟ ଆଖୁ ଗଛ ପରି;
ଭୁଟ୍ଟା, मक्का, मकई ପ୍ରତ୍ୟେକ ଗଣ୍ଠିରୁ ଆବରଣାବୃତ ଲମ୍ବା ଫଳ ବାହାରେ ଓ ଉକ୍ତ ଫଳର ଗୁର ପାଖରେ ଦାନ୍ତ ପରି ମଞ୍ଜିମାନ ଘନ ହୋଇ ଲାଗିଥାଏ; ଖୋସା [ସିଲ୍‌କୋଷ]ର ଅଗରୁ ଗୁଚ୍ଛାଏ କେଶ ପରି ସରୁ ଲମ୍ବ ସୂକ୍ଷ୍ମ ବାହାରିଥାଏ । ଏ ଗଛର ଆଦି ନିବାସ ଅମେରିକା ।]

মক্কা मक्का ୨ । [ ନାମ [ ଆରବ ଦେଶର ରାଜଧାନୀ—
2. Mecca in Arabia [ ବି—ଏହା ମୁସଲମାନ ଧର୍ମପ୍ରବର୍ତ୍ତକ ମହମ୍ମଦଙ୍କ ଜନ୍ମ ସ୍ଥାନ ଓ ମୁସଲମାନଙ୍କର ପ୍ରସିଦ୍ଧ ତୀର୍ଥ । ଏଠାର ମୁସଲମାନ୍ ଧର୍ମମନ୍ଦିରକୁ କାବା ବୋଲାଯାଏ ଓ ପ୍ରତ୍ୟେକ ମୁସଲମାନ୍ ଦୈନିକ ନମାଜ ( ସ୍ତୋତ୍ରପାଠ) କଲାବେଳେ ଏହି ନଗର ଆଡ଼କୁ ମୁହଁ କରନ୍ତି । ]

ମକାଖଇ—ଦେ. ବି—ମକାର ମଞ୍ଜିକୁ ଭାଜି କଅଁଳ ଭଳି ଫୁଟାଯିବା
Makākhai ଲିଆ—Fried corns of maize.
মকাৰখৈ मक्कइलाव
( ମକାଲିଆ—ଅନ୍ୟରୂପ )

ମକା ଖୋଷା—ଦେ. ବି—ମକାଶସ୍ୟର ଗଚ୍ଛ କୋଷ—The
Makā khoshā cylindrical shaft to which the
মকার ভুঁটা corns of the Indian—corn are
मकाका कोसा attached; the corn-cob of maize.

ମକା ଦାନ୍ତ—ଦେ.ବି—ମକାପରି ଦ.ନ୍ତ—Teeth like the grains
Makā dānta of Indian corn.
মুক্তার মতন দাঁত मक्का दाँत
[ମକାଦାନ୍ତିଆ (ପୁଂ), ମକାଦାନ୍ତେଇ, ମକାଦାନ୍ତୀ—ସ୍ତ୍ରୀ—ବିଣ]

ମକାର—ସ. ବି—( ମ+ସ୍ୱାର୍ଥେ କାର ) ୧ । 'ମ' ଅକ୍ଷର—
Makāra 1. The letter 'Ma'. ୨ । ମ ଅକ୍ଷର ସୂଚକ ମାତ୍ରା ( ୍ୱ ); ମଫଳା—2. The sign of the letter Ma when added to consonants. ୩ । ଓଁକାର ବା ପ୍ରଣବ ମନ୍ତ୍ରର ତୃତୀୟ ବା ଶେଷ ଅଙ୍ଗ— 3. The last component element of the mystic syllable Oṅ'. [ ବି—ଓଁ=ଅ (ବ୍ରହ୍ମା)+ଉ(=ବିଷ୍ଣୁ)+ମ(=ମହାଦେବ) । ]
୪ । ମ ଅକ୍ଷରରେ ଆରମ୍ଭ ହୋଇଥିବା ପାଞ୍ଚଗୋଟି ବସ୍ତୁ (ଯାହାର ବାମମାର୍ଗୀ ତାନ୍ତ୍ରିକମାନେ ସାଧନା କରନ୍ତି )—
4. The five things beginning with the letter 'Ma' which Tantric devotees use during their esoteric rites. (ବି—ମଦ୍ୟ, ମାଂସ, ମତ୍ସ୍ୟ, ମୈଥୁନ ଓ ମୁଦ୍ରା ଏହି ଗୁଡ଼ିକୁ ପଞ୍ଚମକାର ବୋଲାଯାଏ ।)

ମକାର ସାଧନା(ନା)—ସ. ବି—ପଞ୍ଚମକାର ଦ୍ୱାରା ତାନ୍ତ୍ରିକ ସାଧନା—
Makāra sadhana(nā) Tantric or esoteric ritual performed with the aid of five things beginning with the letter 'Ma'.

ମକର୍ଲା—ଦେ. ବି—( ସ. ମହାକାଳ )—ମହାକାଳ ଲତା—
Makirlā Trichosanthes Palmata (Haines).
মাকাল [ବି—ଏ ଲତାର ଚେର ସାପ କାମୁଡ଼ାର ଔଷଧରୂପେ
माकाल ବ୍ୟବହୃତ ହୁଏ ]

ମକୁଟ—ସଂ. ବ—(ମଙ୍କ୍ ଧାତୁ=ଭୂଷିତ କରିବା+କରଣ ଉଟ)—୧ । Makuṭa ମୁକୁଟ; ଶିରୋଭୂଷଣ—1. Crown; diadem. ୨ । ଅନ୍ଧାରି ( ଦେଖ )—2. Andhāri (See). ୩ । ମକୁଟା (ଦେଖ)—3. Makuṭā (See).

ମକୁଟ ମାରିବା—ଦେ. କ୍ରି—ଅନ୍ଧାରି ମାରିବା (ଦେଖ)— Makuṭa māribā Andhāri māribā (See)

ମକୁଟା—ଦେ.ବ (ସଂ.ମକୁଟ)--୧ । ମୋଟ ପାଟରେ ତିଆରି ଏକ ପ୍ରକାର ମଠା Makuṭā —1. Cloth made of coarse or worsted
ମଟକା silk. ୨ । ବାଉଁଳ; ଘରର ଚାଳଅଗ୍ର ଉପରର ଶୃଙ୍ଗରେ
**मुकटा** ପଦାକୁ ବାହାରି କରାଯାଇ ବନ୍ଧାଯାଇଥିବା ନଡ଼ା ଗୋଛ —
ମଟକା 2. Straw projecting from the gable-roof.
**ଓଡ଼ିଆନୀ** ୩ । ନାହାଣ୍ଡଳଥ ଘରର ଚାଳଅଗ୍ର ଉପରର ତ୍ରିଭୁଜା- କାର ଅଂଶ—3. Gable of a thatched house.

ମକୁନ(ନ୍ଦା,ନ୍ଦି)—ଦେ. ବ. ପୁଂ (ସ ମୁକୁନ୍ଦ)—୧ । ମୁକୁନ୍ଦ; ଶ୍ରୀକୃଷ୍ଣ; Makunda (ndā,ndi) ବିଷ୍ଣୁ—1. Bishṇu. ୨ । ମୁକୁନ୍ଦ—
मकुन्द ନାମକ ବ୍ୟକ୍ତିର ଡାକ ନାମ—2. Name for calling
**मकुन्द** Mukunda. (ଉ—ଖାଲି ମକୁନା ଫେରୁ ଫାରୁ, ଦୋଦୋରା ପଇସା ଅଣ୍ଟାରେ ନାହିଁ—ଛଗ ।)

ମକୁନ୍ଦି ଉଖୁଡ଼ା—ଦେ. ବ—ଏକପ୍ରକାର ଉତ୍କୃଷ୍ଟ ଦୋପାଗୀ ଉଖୁଡ଼ା— Makundi ukhurdā An excellent kind of sweets
दोपागी मुड़की prepared by seasoning fried paddy
**पागाहुआलावा** with treacle twice.

ମକୁନ୍ଦି ଉଖୁଡ଼ା ଖାଇଲାପରି ମୁହଁ କରିବା—ଦେ. କ୍ରି—(ବ୍ୟଙ୍ଗାର୍ଥ)— Makundi ukhurdā khāilāpari muhan karibā ୧ । ମୁଖ ସରସ କରା ମୁହଁ ସରସ କରିବା; ମୁଖରେ ଆନନ୍ଦର ଚିହ୍ନ ପ୍ରକାଶ
**लाइखानेके पेसा मुहं बनाना** କରିବା—1. To show facial signs of pleasure. ୨ । (ବ୍ୟଙ୍ଗ୍ୟ) ମୁହଁ ବିରସ କରିବା; ମୁଖରେ ଅସନ୍ତୋଷର ଚିହ୍ନ ପ୍ରକାଶ କରିବା— 2. (irony) To show signs of discontent.

ମକୁପ(ଫ୍,ବ୍)—ବୈଦେ ବଂ—( ଫା, ମୌକୁଫ୍ )—ସମୟାନ୍ତରକୁ Makup (ph,b) ଗଡ଼ାଯିବା—Postponed; deferred.
मकुफ (ଯଥା—ଖଜଣା ବର୍ଷକ ସକାଶେ ମକୁବ କରାଗଲା )—
**मौकुफ** ବ—ମହଲତ—Postponement.
[ମକପି(ଫି)(ବି)—ବ]

ମକୁର—ସଂ. ବ (ମଙ୍କ୍ ଧାତୁ=ଭୂଷିତ କରିବା+କରଣ. ଉର)— Makura ୧ । ମୁକୁର; ଦର୍ପଣ—1. Looking glass; mirror. ୨ । (+କର୍ତ୍ତୃ. ଉର) ମୁକୁଳ; କଢ଼ି— 2. Bud; blossom. ୩ । କୁମ୍ଭକାରର ଦଣ୍ଡ; କୁଲାଲ ଦଣ୍ଡ—3. The rod or handle of the potter's wheel. ୪ । ବକୁଳ ବୃକ୍ଷ—4. The Bakuḷa tree. ୫ । ବୁନ ଫୁଲ—5. The Arabian jasmine (Apte).

ମକୁଳ—ସଂ. ବ (ମଙ୍କ୍, ଧାତୁ=ଭୂଷିତ କରିବା+କର୍ତ୍ତୃ. ଉଳ)— Makuḷa ୧ । ଫୁଲର କଢ଼ି—1. Bud; blossom. ୨ । ବକୁଳ (ଗଛ)—2. The Bakuḷa tree (Apte).

ମକୁଷ୍ଟ(ଷ୍ଠ)—ସଂ. ବ—ବନ୍ୟ ମୁଦ୍ଗ; ବଣ ମୁଗ—A kind of wild Makushṭa(shṭha) pulse grain; Phaselous Aconi- (ମକୁଷ୍ଟକ—ଅନ୍ୟରୂପ) tifolius. ସଂ. ବିଣ—ମନ୍ଦଗାମୀ; ମନ୍ଥର- Moving slowly.

ମକ୍କ୍ (ଧାତୁ)—ସ—ଗତି କରିବା— Makk (root) To move.

ମକ୍କଲ—ସଂ. ବ—ସ୍ତ୍ରୀମାନଙ୍କ ଶୂଳରୋଗ ବିଶେଷ—A kind of colic Makkala of females. [ ବି—ଏ ରୋଗରେ ପ୍ରସବ ପରେ ସ୍ତ୍ରୀମାନଙ୍କ ନାଭି ତଳେ, ପଞ୍ଜରା ହାଡ଼ ତଳେ ଓ ମୂତ୍ରାଶୟରେ ପୀଡ଼ା ହୁଏ, ପକ୍ୱାଶୟ ଫୁଲିଯାଏ ଓ ମୂତ୍ରରୋଧ ହୁଏ— ସୁ. ଶ । ]

ମକ୍କି(କ୍କେ)ଲ—ବୈଦେ. ବ (ଫା; ମୋଅକ୍କିଲ୍)—ଓକିଲଙ୍କ ଯଜମାନ— Maki(kke)la Client. (ଉ—ଅଇନ ପୋଥି ସଜାଡି ଦେଇ
मकेल ଚଉଥାକୁ ଅଜ୍ଞ ମକ୍କେଲକୁ ଗୃହୀ ବସିଥାଆନ୍ତି । ଫକୀର
**मुअकिल, मोकील** ମୋହନ. ଛମାଣ ଆଠଗୁଣ୍ଠ ।)

ମକ୍ରୀ—ପ୍ରାଦେ (କଳାହାଣ୍ଡି) ବ. (ଭୁଲ. ହି. ମକ୍ରୀ)—ବୁଢ଼ିଆଣୀ— Makri Spider.

ମକ୍ଷ୍ (ଧାତୁ)—ସ—୧ । ରାଶି କରିବା—1. To heap up; to Maksh(root) accumulate. ୨ । କ୍ରୁଦ୍ଧ ହେବା— 2. To be angry. ୩ । ଗମନ କରିବା—3. To go.

ମକ୍ଷ—ସ. ବ (ମକ୍ଷ. ଧାତୁ+ଭାବ. ଅ)—୧ । ସମୂହ—1. Multi- Maksha tude. ୨ । (+କର୍ମ ଅ) ଗଦା; ସ୍ତୂପ—2. Heap ୩ । କ୍ରୋଧ—3. Anger; wrath. ୪ । (+କରଣ. ଅ) ସ୍ୱୀୟ ଦୋଷ ଗୋପନ କରଣ; କପଟାଚାର—4. Concealing or hiding one's fault; hypocrisy.

ମକ୍ଷି—ଦେ. ବ—ମକ୍ଷିକା (ଦେଖ)—Makshikā (See). ( ଉ— Makshi ମକ୍ଷି ଉଡ଼ାଇବାକୁ ଏବେ ନାହିଁ ବଳ । ରାଧାନାଥ.
मक्खी ଚଲିକା ) ବିଣ—ଅତି କୃପଣ—Very miserly. (ଉ— ସ୍ୱାମୀଟା ବ ଥିଲେ କୁଦାକୁ ବଳ ତଲ୍ଲିଚାପା; ମକ୍ଷି ବୋଲି ସରନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ମକ୍ଷି(କ୍ଷୀ)କ(କା)—ସଂ.ବ (ମକ୍ଷ୍. ଧାତୁ+କର୍ତ୍ତୃ. ଅକ;+ଆ)—୧।ମାଛି- Makshi(kshī)ka(kā) 1. Flea; the common house- flea. ୨ । ମହୁମାଛି—2. Bee.

ମକ୍ଷିକାମଳ—ସ. ବ—(ଷଷ୍ଠୀତତ୍) ମହଣ; ମଧୁସିକ୍ଥ— Makshikā maḷa Beeswax.

ମ(ମଂ)କ୍ଷୁ—ସ. ବିଣ—( ମକ୍ଷ୍ ଧାତୁ+କର୍ତ୍ତୃ. ଉ )—ଗତିବିଶିଷ୍ଟ— Ma(maṁ)kshu Moving.
(ମକ୍ଷୁ—ଅନ୍ୟରୂପ) କ୍ରି. ବିଣ—୧ । ତୀକ୍ଷ୍ଣ; ଶୀଘ୍ର—1. Sharp; soon. ୨ । ପ୍ରକୃତରେ—2 Truly; really. ୩ । ଅତ୍ୟନ୍ତ—3. Exceedingly.

ମଖ୍ (ଧାତୁ—ସ.—ଗମନ କରିବା; ଗତି କରିବା—
Makh (root) To go; to move.

ମଖ—ସ. ବି—(ମଖ୍ ଧାତୁ+କରଣ ଅ; ଯାହାଦ୍ୱାରା ସ୍ୱର୍ଗକୁ ଗମନ
Makha କରାଯାଏ)—ଯାଗ; ଯଜ୍ଞ— Vedic sacrifice.

ମଖଡ଼—ଦେ. ବିଣ—ଦୁଷ୍ଟ; ବଖଡ଼—
Makharda Wicked; wanton.
(ମଖଡ଼ିଆ—ଅନ୍ୟରୂପ) মাকড় बखड

ମଖଣ୍ଡି—ଗ୍ରାଦେ. (କଟକ) ବି—ଥଟ୍ଟା କଥା—A jest; a joke.
Makhandi (ଭି—ଗୁଣ କରିବାରେ ପଣ୍ଡି ମଧୁର କୃଷ୍ଣ ଯେବା
ଟାଁଟୀ दिल्लगी କରେ ଧୈର୍ଯ୍ୟବାନ । ଉପେନ୍ଦ୍ର. ଗୀତ ଲହରୀ ।)

ମଖ ଦ୍ୱିଷ୍—ସ. ବି (ମଖ+ଦ୍ୱିଷ୍ ଧାତୁ+କର୍ତ୍ତୃ. କ୍ୱିପ୍)—ଅସୁର—
Makha dwish Demon.

ମଖ(କ୍ଖ)ନ—ଦେ. ବି ( ସ. ମ୍ରକ୍ଷଣ; ମନ୍ଥନ; ମଥନେଚ୍ଛୁ )—
Makha(kkha)na ୧ । ଦୁଗ୍ଧ ଦୁଧରୁ ବାହାରିବା ଲହୁଣୀ—
মাখন্ 1. Milk butter. ୨ । ନବନୀତ; ଲହୁଣୀ—
मक्खन 2. Butter. [ଦ୍ରି—ଦୁଧରୁ ମଖନ ଓ ଦହିରୁ ଲହୁଣୀ
ସା. ମସକାହ ବାହାରେ ।]

ମଖନା—ଗ୍ରାଦେ. (ଲଉଥ) ବି—ବୋଇତ କଖାରୁ—Red pump-
Makhanā kin; Cucurbita Maxima.

ମଖମଲ—ବୈଦେ. ବି (ଅ)—କୋମଳ ସୂକ୍ଷ୍ମ ଚକ୍କଣ ବସ୍ତ୍ର—
Makhmala মখমল मखमल Velvet.

ମଖମଲ(ଲି) ଖିଅର—ଦେ. ବି—ଯେଉଁ ଖିଅରରେ ମୁହଁ ବା ମୁଣ୍ଡ
Makhamala(li) khiara ମଖମଲ ପରି ଚକ୍କଣ ଜଣାଯାଏ—
মখমলের মতন কামান A velvety shave.
मखमलि क्षौर

ମଖମଲ(ଲି) ଗଛ—ଦେ. ବି—ମଖମଲ ପରି ପତ୍ର ବିଶିଷ୍ଟ ଏକ ପ୍ରକାର
Makhamala(li) gachha ଲତାଳିଆ ଗୁଳ୍ମ—A kind of
মখমল গাছ creeping plant with velvety leaves.
मखमलि पौधा

ମଖମଲ(ଲି) ଫୁଲ—ଦେ. ବି ( ସ. ମଖମଲୀ )—ଏକ ପ୍ରକାର ଛୋଟ
Makhamal(li) phula କୁସୁମ ଫୁଲ; ମାଛିଜ ଗନ୍ଧ ଫୁଲ—
চিনের গেঁদা A small species of safflower; French
गुलदावदी marigold.

ମଖମଲ(ଲି) ପୋକ—ଦେ. ବି—ଇନ୍ଦ୍ରଗୋପ କୀଟ—
Makhamala(li)poka The cocculus.
মখমলি পোকা, সিন্দুরে পোকা बीर बहूटी, रेसमी कीडा

ମଖମଲି—ବୈଦେ. ବିଣ (ଅ)—ମଖମଲ ପରି କୋମଳ ଓ ଚକ୍କଣ—
Makhamali Velvety; soft and glossy.
মখমলি मखमली

ମଖ ରକ୍ଷଣ—ସ. ବିଣ ଓ ବି—ଯଜ୍ଞ ରକ୍ଷାକାରୀ ବ୍ୟକ୍ତି—Protector
Makha rakshana of sacrifices. (ଭି—ବିପୁଳ ମଖ
(ମଖ ରକ୍ଷକ—ଅନ୍ୟରୂପ) ରକ୍ଷଣ ପ୍ରାଣ ଧାଣ ମୁଖ ସୌମିତ୍ରି ସୁମନ୍ତ ।
ଭଞ୍ଜ. ବୈଦେହୀଶବିଳାସ ।) ସ. ବି—ଯଜ୍ଞକୁ ରକ୍ଷା
କରିବା—Protecting the performance of a
vedic sacrifice.

ମଖ(ଖି, କ୍ଖି)ଚୁ(ଚୋ, ଶୁ, ଶୋ)ଷ୍—ଦେ. ବିଣ ( ସ. ମକ୍ଷିକା—
Makha(khi, kkhi)chu(cho, su, so)sh ମହୁମାଛି;
মাছিচোষা ମହୁମାଛି ପରି ସଞ୍ଚୟପ୍ରିୟ; କୃପଣ ଯେ ଘିଅରେ ପଡ଼ିଥିବା
मक्खीचूस ମାଛିର ଦେହରୁ ଘିଅ ଶୋଷି ଖାଇବାକୁ ପ୍ରସ୍ତୁତ ଥାଏ )
—ଅତି କୃପଣ—Very miserly; niggardly.

ମଖ(ଖା)ସା—ଗ୍ରାଦେ ( ଗଞ୍ଜାମ ) ବୈଦେ. ବି ( ଫ. ମଖାସା )—
Makha(khā)sā ପୁରସ୍କାରରୂପେ ପ୍ରଦତ୍ତ ଯାଗିର—Jagir
land granted as a reward for services
rendered. ୧ । ( ଗଞ୍ଜାମ, କୋରାପୁଟ ) ବି—ରାଜକାର୍ଯ୍ୟ
କରିବା ପାଇଁ ବ୍ୟକ୍ତିବିଶେଷଙ୍କୁ ଅଳ୍ପ ଖଜଣାରେ ଯେଉଁ
ଜାଗିର ଦିଆଯାଏ—1. Jaigirs granted to
public servants on quit-rent for rendering
service.

ମଖ(ଖା)ସାଦାର—ଗ୍ରାଦେ ( ଗଞ୍ଜାମ ) ବୈଦେ (ଫା) ବି—ଜାଗିର୍
Makha(khā)sādār ଭୋଗକାରୀ; ଜାଗିରଦାର—
Jagirdar; a holder of service tenure.

ମଖା(ଖେ)ଇବା—ଦେ. କ୍ରି (ସ. ମ୍ରକ୍ଷଣ)—( ମାଖିବା କ୍ରିୟାର ଣିଜନ୍ତ-
Makhā(khe)ibā ରୂପ—The causative form of
মাখন 'Mākhibā'). ଅନ୍ୟଦ୍ୱାରା ମାଖିବା କ୍ରିୟା କରିବା
लगवाना To cause to besmear or anoint.
( ଭି—ଘଷାଇ ସାବନ ତାହି ମଖାଇଣ ପାଉଡର; ଦେଇ
ଥାନ୍ତି ପାଲଟାଇ କୃଷ୍ଣକାନ୍ତି କୃଷ୍ଣଙ୍କର । ଉପେନ୍ଦ୍ର. ଗୀତ-
ଲହରୀ । )

ମଖାନ୍ନ—ସ. ବି ( ୬ଷ୍ଠୀ ତତ୍; ମଖ=ଯଜ୍ଞ+ଅନ୍ନ )—୧ । ଯଜ୍ଞାନ୍ନ—
Makhānna 1. Boiled rice offered in vedic
ଅନ୍ୟ ସ. ନାମ— sacrifice. ୨ । ଏକପ୍ରକାର ଜଳଜାତ ଶାକ ଓ
ପଦ୍ମବୀଜାଭ, ପାନୀୟଫଳ ତାହାର ଫଳ, ମାଖନା; ତାଲମଖନା—
মাখনা 2. A kind of aquatic pot-
मखाना herb; Euryeli Eerox, [ଦ୍ର—
ସ. ମଖାନେ ଶୁ ମଖାନା ଏହି ଶାକର ଶଇ ସୁସ୍ୱାଦ୍ୟ ଓ
ମୁଖରୋଚକ । )

ମଖି ଛୋଡ଼—ଗ୍ରାଦେ. (ପୁରୀ) ବିଣ—ମଖ (ଖି) ଶୁଷ୍ (ଦେଖ)
Makhi chhord Makha(khi) sush (See)

ମଖୁଣ୍ଡି(ଣ୍ଡି)—ଗ୍ରାଦେ. (ବାଲେଶ୍ୱର) ବି—ମଧୁର ଜିନିଷ; ମିଷ୍ଟ ଖାଦ୍ୟ
Makhundi(ndi) ପଦାର୍ଥ—Sweets. [ ଭି—ଟୋକେ
ଯେ ବି ମଖୁଣ୍ଡି ଖାଇବାକୁ ଦିଏ ଯେ, ଭୁ ତା ଘରକୁ ନିତ
ସକାଳୁ ଦଉଡ଼ୁ ଯାଉ ।]

ମଗ—ବୈଦେ. ବି (ଇଂ)—ବେଣ୍ଟଲଗା ଗ୍ଲାସ୍—
Mug মগ मग A mug.

ମଗ(କ)ଦୁର—ବୈଦେ. ବି—( ଫା. ମକ୍‌ଦୂର )—ଶକ୍ତି; ସାମର୍ଥ୍ୟ,
Mag(k)dur ପରାକ୍ରମ—Power; strength.
(ମନ୍ଦୁର—ଅନ୍ୟରୂପ) মগদুর, শক্তি मकदुर

**ମଗ୍‌ଦୁର୍ ଭର୍(ରି)**—ଦେ, କ୍ରି. ବିଣ—ଯଥାଶକ୍ତି; ସାଧ୍ୟାନୁସାରେ; ପାରୁ-
Magdur bhar(ri) ପର୍ଯ୍ୟନ୍ତ—To the best of one's
ଯଥାଶକ୍ତି **মকদুর ভর** power or ability.
(ମଦ୍ଦୁର୍ ଭରରେ—ଅନ୍ୟରୂପ) (ଯଥା—ମୋ ମଗ୍‌ଦୁର୍ ଭର ମୁଁ ଏ କାମ କରିବି, କାର୍ଯ୍ୟ ପୂର୍ଣ୍ଣ ହେବା ଈଶ୍ୱରଙ୍କ ହାତରେ।)

**ମଗ**—ସଂ. ବି—(ମ=ବେଦ+ଗୈ ଧାତୁ=ଗାଇବା+ଅଧି ଅ)—
Maga ୧ । ଶାକ ଦ୍ୱୀପ; ମଘ (ଦେଖ)—Magha (See)
୨ । (+କର୍ତ୍ତୃ.ଅ) ସୂର୍ଯ୍ୟ ପୂଜକ ପୁରୋହିତ—2. A priest of the sun god ୩। ପ୍ରାଚୀନ ପାରସ୍ୟ ଦେଶବାସୀ—3. A Magian (Apte) ଦେ. ବି—୧ । ବ୍ରହ୍ମ-
ମগ **मगह** ଦେଶ ଅନ୍ତର୍ବର୍ତ୍ତୀ ଆରାକାନ୍ ଦେଶ—1. The Arakan country in Burma ୨। ଆରାକାନ ଦେଶବାସୀ ବ୍ୟକ୍ତି—2. An Arakanese
(ଲୋ—ମଗ ଦେଖିଥି ଅଖୁ ଖାଇଲେ ଭଗ ଭଣନ୍ତି ନାହିଁ । ଭଗ ।) [ ଦ୍ର—ଏମାନେ ଖ୍ରୀଷ୍ଟ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ବଙ୍ଗୋପସାଗରରେ ଜଳଦସ୍ୟୁ ବୃତ୍ତି କରୁଥିଲେ । ମୋଗଲ ସମ୍ରାଟ ସାହାଜାହାନ୍ ସେମାନଙ୍କ ଉପଦ୍ରବ ବନ୍ଦ କରିଥିଲେ; ସେମାନଙ୍କ ବଂଶଧରମାନେ ବର୍ତ୍ତମାନ ଆରାକାନରେ କୃଷି ବାଣିଜ୍ୟାଦି କରି ବାସ କରୁଅଛନ୍ତି ।]

**ମଗଜ**—ବୈଦେ. ବି—( ଫା· ମଗଜ୍ )—୧ । ମସ୍ତିଷ୍କ—1. Brain.
Magaja ୨ । ବୁଦ୍ଧି—2. Intellect. ୩ । ମନ—3.
मगज **मगज** Mind. ୪ । ହୃଦୟଗତ ଭାବ—4. Mental condition. ୫ । (ଫା. ମଗଜୀ)—ମଗଜି (ଦେଖ) 5. Magaji (See)

**ମଗଜ ଖରଚ କରିବା**—ଦେ. କ୍ରି—(ଫା. ମଗଜ୍+ଖର୍ଚ୍ଚ)—ବୁଦ୍ଧି ଖରଚ
Magaja kharacha kariba କରିବା; ମସ୍ତିଷ୍କ ଚାଳନା କରିବା-
মগজ খরচ করা To exercise one's brain or intellect
**मगजपच्चाना**

**ମଗଜ ଖରାପ ହେବା**—ଦେ. ବି—(ଫା. ମଗଜ୍+ଖରାପ)—ପାଗଳ
Magaja kharāpa hebā ହେବା—Derangement of
মগজ খারাপ হওয়া **मगज खौलना** brain.

**ମଗଜ ଗରମ(ମି)**—ବୈଦେ. ବି—(ଫା. ମଗଜ୍+ଗରମ)—୧ । ମସ୍ତିଷ୍କ
Magaja garama(mi) ବିକୃତି —1. Derangement
মগজ গরম **मगज गरम(मी)** of brain.
୨ । ବିରକ୍ତ ଜାତ ହେବା; ଚିଡ଼ିବା—2 Loss of temper. ଦେ. ବିଣ—ବିକୃତ ମସ୍ତିଷ୍କ (ବ୍ୟକ୍ତି)—
[ମଗଜବଗ(ଡ଼ି)ଇବା—ଅନ୍ୟରୂପ] Deranged.

**ମଗଜ ଥଣ୍ଡା**—ବୈଦେ. ବି—(ଫା, ମଗଜ୍+ଠଣ୍ଡା)—୧ । କ୍ରୋଧଶାନ୍ତି
Magaja thandā 1. The cooling of rage ୨ ।
মগজ ঠাণ্ডা **मगज ठंडा** ମନ ସନ୍ତୋଷ—2. Contentment.

**ମଗଜ ଲଡ଼ୁ**—ଦେ. ବି—[ସଂ. ମଗଧ+ଲଡ୍ଡୁ; ଏହା ମଗଧ (ଦକ୍ଷିଣ
Magaja lardu ବିହାର) ଅଞ୍ଚଳରେ ଖୁବ ଆଦୃତ ହେଉଥିବାରୁ] ମଗଧ লাড়ু ଚିଅଁରେ ଭଜା ହୋଇ ଥିବା ଅଟାକୁ ଚିନି ସଙ୍ଗେ ମିଶା
**मगदलड्डु, मगदल** ଯାଇ ବନା ଯାଇଥିବା ଏକ ପ୍ରକାର ଲଡ଼ୁ—
A kind of sweet ball made of flour fried in ghee and mixed with sugar.

**ମଗଜା**—ପ୍ରାଦେ. (ସାଳପୁର) ବିଣ—୧ ମନୁଆଁ—1 Wayward.
Magajā ୨ । ମନମୋଟିଆ; ଗର୍ବିତ—2. Proud; arrogant.

**ମଗଜି**—ବୈଦେ. ବି (ଅ)—୧ । ଖେଣ ରେଜେଇ ଆଦିରେ ଦିଆଯିବା
Magaji ସରୁ ଧଡ଼ି—1. A narrow border sewn to
মগজি **मगजी** quilts; an edging. ୨ । ବସ୍ତ୍ରାଦିର ଧଡ଼ି—2. The border of a cloth; hem.

**ମଗଜିଦାର୍**—ବୈଦେ. ବିଣ (ଅ. ମଗଜୀ+ଫା. ପ୍ରତ୍ୟୟ ଦାର୍ )—ସରୁ
Magajidār ଧଡ଼ିଦାର୍—Having a narrow border.
মগজিদার **मगजीदार**

**ମଗଣ**—ସଂ. ବି—କବିତାର ୮ ଗଣ ମଧ୍ୟରୁ ଏକ; ଯହିଁରେ ୩ ଗୁରୁ
Magana ବର୍ଣ୍ଣର ପୁଞ୍ଜ ଥାଏ—A unit of 3 long letters in a poem or verse

**ମଗଧ୍ (ଧାତୁ)**—ସଂ—ସ୍ତୁତି କରିବା—
Magadh (root) To eulogise.

**ମଗଧ**—ସଂ. ବି (ମଗ=ବେଦଜ୍ଞ ବ୍ରାହ୍ମଣ+ଧା ଧାତୁ=ଧରିବା+କର୍ତ୍ତୃ,
Magadha ଅ; ମଗଧ୍ ଧାତୁ+କର୍ତ୍ତୃ. ଅ)—୧ । ବିହାର ପ୍ରଦେଶର ଦକ୍ଷିଣାଂଶର ପ୍ରାଚୀନ ନାମ—1. The ancient name of the southern part of the Bihar Division. ୨ । (ମଗଧ୍ ଧାତୁ+କର୍ତ୍ତୃ. ଅ) ସ୍ତୁତି ପାଠକ—2. A panegyrist; a bard. ୩ । ମଗଧ ଦେଶୀୟ ଲୋକ—3. A man belonging to the Magadha country.
ଦେ· ବି—ଓଡ଼ିଶାର ଜାଙ୍ଗଲ ଓ ଅନୂପ ପ୍ରଦେଶର ମଧ୍ୟବର୍ତ୍ତୀ ସମତଳ ଅଂଶ—The plain country between the jungles and the low tracts of the Orissa Coast ପ୍ରାଦେ. (ସମ୍ବଲପୁର) ବି—ଗରୁଡ଼ମାନଙ୍କର ଶ୍ରେଣୀ ଭେଦ—A subcaste of 'Garurdas' in Sambalpur district.
[ଦ୍ର—ଏମାନେ ଶୃଙ୍ଖଳ ଜାତି ।]

**ମଗଧ ଭାଷା**—ସଂ. ବି—ମାଗଧୀ ବା ପାଲି ଭାଷା—
Magadha bhāshā The Pali language.

**ମଗଧା**—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି—ଗଉଡ଼ମାନଙ୍କ ଶ୍ରେଣୀ
Magadhā ବିଶେଷ—A sub-caste of the milkman caste.

**ମଗଧାଧିପ**—ସଂ. ବି (୬ଷ୍ଠୀ ତତ୍; ମଗଧ+ଅଧିପ)—୧ । ମଗଧର ରାଜା—
Magadhādhipa 1. The king of Magadha
୨ । ଜରାସନ୍ଧ—2. Jarāsandha; the wicked demon-king of Magadha
ମଗଧାଧିପତି, ମଗଧେଶ୍ୱର, ମଗଧାଧୀଶ୍ୱର, ମଗଧେଶ } ଅନ୍ୟରୂପ

ମଗନ—ଗ୍ରା. (ପଦ୍ୟ) ବିଣ—ମଗ୍ନ (ଦେଖ)—Magna (See)
Magana (ଉ—ପରମ ପ୍ରୀତି ରସେ ହୁଏ ମଗନ । ଗ୍ରଧାନାଥ.
ମଗନ **मगन** ମେଘ ଦୂତ ।)

ମଗ(ଘ)ମ—ଦେ. ବି (ସଂ. ମର୍ମ; ମଗ୍ନ)—୧ । କୌଣସି ବିଷୟର ମର୍ମ
Maga(gha)ma ବା ରହସ୍ୟ—1. The secret of
ମଘମ **मुघम मुग्घम** a matter; the key to a matter.
୨ । ଅନ୍ତର୍ଦେଶ—2. Inside. ୩ । ହୃଦୟ; ଅନ୍ତର—
3. Heart. (ଯଥା—ଏ କଥା ତା ମଗମକୁ ବାଧିଲା ।)
ବିଣ—୧ । ଗୁପ୍ତ—1. Secret. ୨ । ମର୍ମଭେଦୀ—
2. Heart-rending; affecting the vital
parts. ୩ । ସଙ୍କେତ ଦ୍ୱାରା ପ୍ରକାଶିତ (ବିଷୟ)—
3. Expressed by signs.

ମଗ(ଘ)ମେ ମଗ(ଘ)ମେ—ଦେ. କ୍ରି. ବିଣ—୧ । ମର୍ମେ ମର୍ମେ—
Maga(gha)me maga(gha)me 1. Into the vital
ମଘମେ ମଘମେ parts; affecting the vital parts.
**मुग्घम मुग्घम** ୨ । ଗୁପ୍ତ ରୂପେ—2. Secretly; in secret.

ମଗରୁ—ଗ୍ରାଦେ. (ସମ୍ବଲପୁର) ଦେଶିଦେ (ଅ) ଅ (ଭୂଲ. ହି. ମଗର୍)—
Magar ୧ । କିନ୍ତୁ—1. But ୨ । ପକ୍ଷାନ୍ତରେ—2. On the
other hand. ଗ୍ରାଦେ (ସମ୍ବଲପୁର) ବି—୧ । ମକର (ଦେଖ)
1. Makara (See) ୨ । (ଭୂଲ. ଏହି ଅର୍ଥରେ ହୁଅଇ
ଏହି ଶବ୍ଦ) କୁମ୍ଭୀର—2. Alligator.

ମଗର—ଦେ. ବି ( ସଂ. ମକର )—୧ । ମକର ( ଦେଖ )
Magara 1. Makara (See) (ଉ—କଳା ମୁଣ୍ଡ ଜଳେ
ମଗର **मगर** ଛଟକେ ଦେଖାଇ, ବୁଲଇ ମଗର ଏଣେ ତେଣେ
ଧାଇଁ । ଗ୍ରଧାନାଥ. ଚିଲିକା ।) ୨ । ନେପାଳ ଜାତିବିଶେଷ
( ହି. ଶ )—2. A class of the Nepalese.
ଗ୍ରାଦେ. (ଗଡ଼ଜାତ.ସମ୍ବଲପୁର)—କୁମ୍ଭୀର—Alligator.

ମଗର କୁ(କି)ମ୍ଭୀର—ଦେ. ବି (ସହଚର ଶବ୍ଦ)—ମକର ଓ କୁମ୍ଭୀର
Magara ku(ki)mbhira ଆଦି ହିଂସ୍ର ଜଳଜନ୍ତୁ—
ମଗର କୁମୀର **मगरमच्छ** Sharks and alligators.

ମଗର ମୁଣ୍ଡ—ଦେ. ବି (ସଂ.ମକର+ମୁଣ୍ଡ)—ସୁନାର ବା ରୁପାର ଖଡ଼ୁ ଓ
Magara munda ବଳା ଆଦିରେ ମଗରର ମୁଣ୍ଡ ପରି କରା ଯାଇଥିବା
ମକର ମୁଖ ମୁଣ୍ଡର ପ୍ରାନ୍ତଭାଗ—The ends of some
**मगर मुख** ornaments, such as gold and silver
bangles, shaped like the head of a
(ମଗରମୁହଁ—ଅନ୍ୟରୂପ) Magara.

ମଗର(ଙ୍କ) ମୁଲକ—ଦେ. ବି—ଅରାଜକତା ଓ ଡକାଇତି ଘୋଟିବା
Magara(ṅka) mulaka ଦେଶ—A country where
ମଗେର ମୁଲୁକ lawlessness reigns supreme.
**मगका मुल्क**

ମଗର ମୁହାଁ—ଦେ. ବିଣ ( ସଂ. ମକର+ମୁଖ )—ଯାହାର ମୁହଁ ବା
Magara muhā̃ ମୁଣ୍ଡଭାଗ ମଗରର ମୁହଁ ପରି
ମକର ମୁଖୋ ଶୁଣ୍ଢଯୁକ୍ତ ହୋଇଥାଏ—Having the end
**मगर मुहाँ** modelled like a 'Magara'.
(ମଗରମୁହିଁଆ—ଅନ୍ୟରୂପ) (ଯଥା—ମଗରମୁହାଁ ପାଲିଙ୍କି, ମଗରମୁହାଁ
ବାଲି, ମଗରମୁହାଁ ଅନନ୍ତ, ମଗରମୁହାଁ କୁଣ୍ଡଳ ଇତ୍ୟାଦି ।)

ମଗରବ୍—ବୈଦେ. ବି (ଆ)—ପଶ୍ଚିମ ଦିଗ—The west.
Magarab ମଗରବ **मगरब**

ମଗରବୀ—ବୈଦେ ବିଣ (ଆ. ମଗରିବ୍)—ପଶ୍ଚିମ ଦିଗ ସମ୍ବନ୍ଧୀୟ—
Magarabī Relating to the west. (ଯଥା—ମଗରବୀ
(ମଗରିବ୍—ଅନ୍ୟରୂପ) ନମାଜ୍=ମୁସଲମାନମାନେ ପଶ୍ଚିମ ଦିଗକୁ
ମଗବବେବ ମୁହଁ କରିଲଇ ସୂର୍ଯ୍ୟାସ୍ତ ପରେ ଯେଉଁ ନମାଜ୍ ବା ସ୍ତବ
**मगरबकी** ଆବୃତ୍ତି କରନ୍ତି ।) ଦେ. ବି (ଆ. ମଗରିବ୍)—
ମଗବିବ ୧ । ସୂର୍ଯ୍ୟାସ୍ତର ଅବ୍ୟବହିତ ପରବର୍ତ୍ତୀ କାଳ—
**मगरीब** 1.The time immediately after sunset.
୨ । ସୂର୍ଯ୍ୟାସ୍ତର ଅବ୍ୟବହିତ ପରେ ମୁସଲମାନମାନେ
ପଶ୍ଚିମକୁ (ମକ୍କା ଆଡ଼କୁ) ମୁହଁ କରିଲଇ ଆବୃତ୍ତି କରିବା
ନମାଜ—2. A Mahomedan's prayer just
after sunset.

ମଗର ଲେଉଟ୍—ଗ୍ରାଦେ (ସମ୍ବଲପୁର) ବି. (ପ୍ରାଚୀନ ବ୍ୟବହାର; ସଂ.
Magara leut ମକର ଓ ଲୁଣ୍ଠନ)—କୁମ୍ଭୀର ପରି ଭୂଇଁରେ
[ମଗର ଲୋଟ(୦)ଅନ୍ୟରୂପ] ଗଡ଼ୁଣି ଗଡ଼ୁଣି ଗତି କରିବା—
[ଦ୍ର—ପୂର୍ବେ ସମ୍ବଲପୁର ରାଜାଙ୍କ ଅଧୀନ ଜମିଦାର ବା
ସାମନ୍ତ ରାଜାଙ୍କ ମଧ୍ୟରୁ ରେଢ଼ାଖୋଲର ଜମିଦାର ରାଜାଙ୍କ
କଚେରୀକୁ ବାର୍ଷିକ କର ଦେବାକୁ ଆସିଲାବେଳେ ସେ
ଅଧୀନତାର ଚିହ୍ନ ସ୍ୱରୂପ ରାଜାଙ୍କ, ଆଗରେ କରୁଥିବା
ଭୂମିଉପର ଗଡ଼ିବାକୁ (ଅର୍ଥାତ୍ ରେଢ଼ାଖୋଲର ଜମିଦାର
ସର୍ବାଙ୍ଗରେ କାଦୁଅ ବୋଳି ହୋଇ, ଖଣ୍ଡିଏ ଦୂରରୁ ଭଲେ
ଘୋଷି ଲେଉଟି ଲେଉଟି ରାଜାଙ୍କ ଚରଣ ପର୍ଯ୍ୟନ୍ତ ଆସି
ନଜରଣା ଦେଇ ସାରି ପରେ ଠିଆ ହେବା ରୀତିକୁ)
ମଗର ଲେଉଟ ବୋଲି ଯାଉଥିଲେ (ପରମାନନ୍ଦ ଆଚାର୍ଯ୍ୟ,
ଉତ୍କଳ ସାହିତ୍ୟ)—(Literally) Alligator's
rolling or crawling on the ground.
(Note—It was a curious performance
formerly done once a year by the
Zamindar of Rairākhol when the Raja
of Sambalpur was his suzerain; it con-
sisted of the Zamindar besmearing him-
self with mud and lying down and
crawling along the ground, like an alli-
gator, to the Raja's feet).

ମଗରା—ବୈଦେ. ବିଣ. ପୁଂ (ଆ—ମଗରୂର୍=ଗର୍ବିତ)—୧ । ଗର୍ବିତ—
Magarā 1. Proud. ୨ । ଧୃଷ୍ଟ; ଅବାଧ୍ୟ—2. Insub-
ମଗରା; **मगरूर** ordinate; impudent; insolent.
(ମଗରୀ—ସ୍ତ୍ରୀ) ୩ । ପ୍ରଭୁର ଆଦେଶ ଅବମାନନାକାରୀ (ଭୃତ୍ୟ)—
3. Disobedient (servant). ଗ୍ରାଦେ (କ୍ୱଚିତ୍)
ବି—୧ । ପାଣି ନିବାପାଇଁ ଛିଦ୍ର ହୋଇଥିବା ମାଟିର
ନଳୀ—1. Earthen tube used as the

channel for water to flow out ୨ । ଖପରଲୀ ଘରର ମଥାନ ଉପରେ ହଥିବା ଅର୍ଦ୍ଧ ବୃତ୍ତାକାର ଖପରଲ—Semicircular thatching tiles which are laid on the top of a tiled thatch.

ମଗରାପଣ—ଦେ ବି—ଅବାଧ୍ୟତା—Insubordination; dis-Magarāpana obedience. मगरापना, मगरूरी [ମଗର୍ ପଣିଆ; ମଗରେ(ଣ୍ଡ)ଲ୍; ମଗର୍ ଟିଲ୍—ଅନ୍ୟରୂପ]

ମଗହୀ—ଦେ. ବି—(ସଂ.ମାଗଧୀ) ବିହାରୀଭାଷାର ଏକ ପ୍ରାଦେଶିକ ରୂପ—Magahī A dialect of the Bihari language. ମଗହି; मगही ଦେ. ବିଣ—ମଗଧ ସମ୍ବନ୍ଧୀୟ—Relating to Magadha.

ମଗା—ଦେ. ବି—୧ । ( ସଂ. ମାର୍ଗଣ )— ଯାଚ୍ଞା; ମାଗିବା—Magā 1. Asking; begging. ୨ । ଭିକ୍ଷୁକ—2 ମାଗା; मांगन Beggar. ବିଣ—୧ । ( ଅନ୍ୟଠାରୁ ) ମାଗି ଆଣିଥିବା ( ପଦାର୍ଥ )—1. (a thing) Obtained ମାଗା; मांगाहुआ from another by asking for it. ୨ । ଭିକ୍ଷାକାରୀ (ବ୍ୟକ୍ତି)—2. Begging alms.

ମଗା(ଗେ)ଇବା—ଦେ. କ୍ରି. (୧ । ମାଗିବା କ୍ରିୟାର ଣିଜନ୍ତରୂପ—Magā(ge)ibā The causative form of Māgibā). ମାଗାନ; मंगवाना ୧ । ଅନ୍ୟ ଦ୍ୱାରା କୌଣସି ବସ୍ତୁ ମାଗିବା—1. To ask for a thing through another ଡେକେପାଠାନ person. ୨ । କୌଣସି ବସ୍ତୁ ଅଣାଇବାକୁ ଖବର ଦେବା—2. To send for (a thing); to order for the supply of a thing. [ଋତୁପର୍ଣ୍ଣ ନଳର ଦେଶକୁ ଯିବାକୁ । ମଗାଇଲେ ସାରଥିଏ ଶ୍ରୀମ ରଜାଙ୍କୁ । କୃଷ୍ଣସିଂହ. ମହାଭାରତ. ବନ ।]

ମଗାମଗି—ଦେ. ବି—ମାଗିବା କ୍ରିୟା; ମାଗଯାଚ; ମାଗି ଆଣିବା କ୍ରିୟା—Magāmagi The act of begging. ମାଗାମାଗି माँगामाँगी

ମଗାଯାଚ—ଦେ. ବି (ସଂ. ମାର୍ଗଣ+ଯାଚଞା)—୧ । ମାଗିବା ଓ Magājachā ଯାଚିବା—1. Asking and offering. ୨ । ମାଗାଯାଚା ( ଏକାର୍ଥକ ) ଯାଚଞା—2. Asking and begg-माँचाँग ing. ୩ । ମଗାମଗି (ଦେଖ)—3. Magāmagi (See). ଦେ. ବିଣ—ଯାହା ମାଗିକରି ଅଣାଯାଇ ଥାଏ—Obtained by begging

ମଗାହୀ—ପ୍ରାଦେ (ଛୋଟନାଗପୁର) ବି—ମଗହୀ (ଦେଖ)—Magahi Magāhī (See). [ଦ୍ର—ମୟୂରଭଞ୍ଜ ଓ ବାମଣ୍ଡାର କୁଡ଼ୁମୀମାନଙ୍କ (ମଗାଇ—ଅନ୍ୟରୂପ) କଥିତ କୁଡ଼ୁମାଲି ଭାଷା ଏହି ମଗାହିଭାଷାର ରୂପାନ୍ତର ଅଟେ । ]

ମଗୁ—ଗ୍ରା. ବି—୧ । (ସଂ. ମୃଗ) ମୃଗ—1. Deer. ୨ । (ସଂ. ମାର୍ଗ) Magu मगु ରାସ୍ତା; ବାଟ—2. Road; way.

ମଗୁ(ଘୁ)ଶିର—ଗ୍ରା. ବି (ସଂ. ମାର୍ଗଶୀର୍ଷ; ମାର୍ଗଶିର୍ଷ)—ମାର୍ଗଶିର ବା Magu(ghu)śria ଅଗ୍ରହାୟଣ ମାସ—The lunar month ଅଗ୍ରାନ of 'Mārgaśira' following Kārttika. (ହି—अगहन, मार्गशिर କାର୍ତ୍ତିକ ପରନ୍ତେ ପଶି ମଗୁଶୀର ଆସେ । ଗ୍ରାମୀ. ଭବସ୍ୟମଞ୍ଜରୀ । )

ମଗ୍ନ—ସଂ. ବିଣ (ମସ୍ଜ୍, ଧାତୁ=ବୁଡ଼ିବା+କର୍ତ୍ତୃ. ତ)—୧ । ବୁଡ଼ିଯାଇ Magna ଥିବା; ନିମଜ୍ଜିତ—1. Immersed; plunged; (ମଗ୍ନା—ସ୍ତ୍ରୀ) sunken; drowned. ୨ । ଅନ୍ତଃପ୍ରବିଷ୍ଟ—2. Entered inside. ୩ । ବିଭୋର; ତନ୍ମୟ—3. Absorbed in; engrossed; exclusively occupied with. ୪ । ଆସକ୍ତ—4 Addictd to. ୫ । ମଦମତ୍ତ; ନିଶାରେ ଚୂର୍; ଭୋଳ (ହି. ଶ)—5. Intoxicated; inebriated. ୬ । ଲୀନ (ହି.ଶ)—6. Swallowed up; entranced. ୭ । ପ୍ରସନ୍ନ, ହର୍ଷିତ (ହି. ଶ)—7. Delighted; overjoyed. ୮ । ତଳକୁ ଦବି ଯାଇଥିବା ( ଯଥା—ମଗ୍ନନାସିକା, ମଗ୍ନସ୍ତନ) [ହି. ଶ]—8 Sunken; suppressed (e. g nose; female breast). [ଦ୍ର—ଏହା ୧,୨,୩ ଅର୍ଥରେ ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ । ଯଥା—ଚନ୍ଦ୍ରାମଗ୍ନ, ଜଳମଗ୍ନ, ଧ୍ୟାନମଗ୍ନ; ପ୍ରେମମଗ୍ନ, ଶୋକମଗ୍ନ ଇତ୍ୟାଦି ।] ସଂ ବି—ପର୍ବତ ବିଶେଷ; ମଗ୍ନଗିରି (୨) (ଦେଖ)—Magnagiri (2) (See).

ମଗ୍ନଗିରି—ସଂ. ବି (କର୍ମଧା; ମଗ୍ନ+ଗିରି)—୧ । ସମୁଦ୍ର ମଧ୍ୟରେ ବୁଡ଼ି Magna giri ଥିବା ପର୍ବତ; ବୁଡ଼ା ପାହାଡ଼—1. Submarine (ମଗ୍ନପର୍ବତ—ଅନ୍ୟରୂପ) rock. ୨ । ପୌରାଣିକ ମୈନାକପର୍ବତ-2. Name of a mythological mountain. [ଦ୍ର—ଏ ହିମାଳୟର ପୁତ୍ର । ଇନ୍ଦ୍ର ପର୍ବତମାନଙ୍କ ପକ୍ଷଚ୍ଛେଦ କରିବା ସମୟରେ ମୈନାକ ପର୍ବତ ସମୁଦ୍ରରେ ଲୁଚି ରହି ଆତ୍ମରକ୍ଷା କରିଥିବା ପୁରାଣ ପ୍ରସିଦ୍ଧ । ]

ମଘ—ସଂ. ବି (ମହ୍, ଧାତୁ=ପୂଜା କରିବା+ଅ)—୧ । (+ଭାବ. ଅ) Magha ପୂଜା—1. Worship. ୨ । ସୁଖ—2. Happiness; pleasure. ୩ । (+କରଣ. ଅ) ଧନ; ସମ୍ପତ୍ତି (ହି. ଶ)—3. Riches. ୪ । ପୌରାଣିକ ଭୂଗୋଳ ଅନୁସାରେ ମ୍ଲେଚ୍ଛାଧ୍ୟୁଷିତ ଦ୍ୱୀପବିଶେଷ ଓ ତଦ୍ଦେଶବାସୀ ବ୍ୟକ୍ତିଗଣ—4. Name of a mythological island or division of the globe and its barbarian inhabitants (Apte). ୫ । ପୁଷ୍ପ ବିଶେଷ (ହି. ଶ)—4. A kind of flower (Apte). ୬ । ପୁରସ୍କାର (ହି. ଶ)—6. Reward. ୭ ଉପହାର—7. A present (Apte). ୮ । ଦଶମ ନକ୍ଷତ୍ର; ମଘା—8. The tenth lunar mansion (Apte). ଦେ ବି-ବ୍ରହ୍ମଦେଶର ଆରାକାନ ପ୍ରଦେଶ ଓ ତଦ୍ଦେଶବାସୀ ବ୍ୟକ୍ତି-ଗଣ—Tne Arakan country and the Arakanese people. [ ଦ୍ର—ଏମାନେ ଷୋଡ଼ଶ ଶତାବ୍ଦୀରେ ବଙ୍ଗୋପସାଗରରେ ଜଳଦସ୍ୟୁରୂପେ ଅତ୍ୟାଚାର

କରୁଥିଲେ । ] ପ୍ରାଦେ (ଯାଜପୁର) ବିଣ—କୃପଣ—Miserly.

ମଘ ଦେଶ—ଦେ. ବି—ବ୍ରହ୍ମଦେଶୀୟ ଆରାକାନ ପ୍ରଦେଶ—The Magha desa Arakan province in Burma. (ମଘମୂଲକ ଅନ୍ୟରୂପ) মগেরমল্লুক মর্ত্যকামুল্লুক

ମଘବା(ବାଃ)—ସଂ. ବି. ପୁଂ (ମହ୍. ଧାତୁ+କର୍ମ. ଅନ୍, ଅସୁ; ମଘବନ୍, Maghabā(bāḥ) ୧ମା· ୧ବା—୧ । ଦେବରାଜ; ଇନ୍ଦ୍ର—(ମଘୋନୀ – ସ୍ତ୍ରୀ) 1. Indra; the king of Hindu gods. ୨ । ପେଚକ—2 An owl (Apte). ୩ । ବ୍ୟାସଙ୍କ ନାମାନ୍ତର—3. A name of Byāsa (Apte).

ମଘବାଜିତ୍—ସଂ. ବି—ରାବଣର ପୁତ୍ର ଇନ୍ଦ୍ରଜିତ୍; ମେଘନାଦ [ହି. ଶ]—Maghabājit The valiant son of Rābaṇa.

ମଘବାନ୍—ସଂ. ବି. ପୁଂ [ମଘ=ସୁଖ+ବତ୍; ୧ମା. ୧ବ] —ଇନ୍ଦ୍ର—Maghabān (ମଘବତୀ, ମଘୋନୀ—ସ୍ତ୍ରୀ) Indra.

ମଘା—ସଂ. ବି. ସ୍ତ୍ରୀ [ମହ୍. ଧାତୁ+କର୍ମ. ଅ+ଆ]—ଜ୍ୟୋତିଷଶାସ୍ତ୍ର Maghā ୨୭ ନକ୍ଷତ୍ର ମଧ୍ୟରୁ ଅଶ୍ୱିନୀଆଦିକାଠାରୁ ଦଶମ ନକ୍ଷତ୍ର—The 10th lunar mansion or stellar constellation. [ ଦ୍ର—ଏ ନକ୍ଷତ୍ରରେ ଶୁଭକାର୍ଯ୍ୟରେ ଯାତ୍ରା ଇତ୍ୟାଦି, ନକ୍ଷତ୍ର ଦଳେ ଟୀକା ଦେଖ, See notes under Nakshatra) ପ୍ରାଦେ [ ସମ୍ବଲପୁର ] ବି—ମାଘ—The month of Māgha. ପ୍ରାଦେ. ବିଣ—ମାଘ ମାସସମ୍ବନ୍ଧୀୟ—Relating to the month of Māgha. [ଦ୍ର—ମଘା ବରଷା, ମାଘବରଷା, ଏ ଦୁହିଙ୍କର ଏକା ଦଶା । ଚଗ । ]

ମଘାତ୍ରୟୋଦଶୀ—ସଂ. ବି—ଭାଦ୍ର ମାସର ମଘାନକ୍ଷତ୍ର ଯୁକ୍ତ କୃଷ୍ଣା Maghā trayodasi ତ୍ରୟୋଦଶୀ—The 13th day of the dark fortnight of Bhādra if it falls on the Maghā asterism. [ ଦ୍ର—ଏ ତିଥିରେ ମଧୁ ବା ପାୟସଦ୍ୱାରା ପିତୃଲୋକଙ୍କର ଉଦ୍ଦେଶ୍ୟରେ ଶ୍ରାଦ୍ଧ କରିବାକୁ ହୁଏ । ]

ମଘାପଞ୍ଚମୀ ଯୋଗ—ସଂ. ବି [ଜ୍ୟୋତିଷ]—ପଞ୍ଚମୀ ତିଥି ଓ ମଘା ନକ୍ଷତ୍ରର Maghāpanchami joga ମିଳନ—The auspicious conjunction of Maghā asterism on the fifth day of any lunar fortnight. [ ଦ୍ର—ଏଥିରେ କ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରି ଇନ୍ଦ୍ରଦ୍ୟୁମ୍ନ ତୀର୍ଥରେ ପିଣ୍ଡଦାନ କଲେ ପିତୃଗଣ ମୁକ୍ତିଲାଭ କରନ୍ତି । ]

ମଘା ପଡ଼ିବା—ଦେ. ବି ( ଲାକ୍ଷଣିକ )—ଯାତ୍ରାଦି ଶୁଭକାର୍ଯ୍ୟରେ ବାଧା Maghā pardibā ବିଘ୍ନ ଘଟିବା—( figurative ) The ମঘାপড়া; বিঘ্নপড়া happening of an obstacle in the beginning of a good work.

ମଘାଭବ—ସଂ. ବିଣ ( ମଘା+ଭୂ ଧାତୁ+କର୍ତ୍ତୃ. ଅ )—ମଘା ନକ୍ଷତ୍ର Maghābhaba ଜାତ—Born at a time when (ମଘାଭୂ—ଅନ୍ୟରୂପ) the constellation of Maghā was in the ascendant. ବି—୧ । ଶୁକ୍ରାଚାର୍ଯ୍ୟ—1 Sukrāchārjya, the preceptor of the demons. ୨ । ଶୁକ୍ରଗ୍ରହ ( ହି. ଶ )—2. The planet Venus.

ମଘୋନୀ—ସଂ. ବି. ସ୍ତ୍ରୀ ( ମଘବନ୍+ସ୍ତ୍ରୀ ଈ )—ଇନ୍ଦ୍ରାଣୀ; ଶଚୀ—Maghoni The wife of Indra.

ମଙ୍କ୍ (ଧାତୁ)—ସଂ—୧ । ଗତି କରିବା—1. To move ( Apte ). Mank (root) ୨ । ଭୂଷିତ କରିବା—2. To adorn (ମନ୍କ୍ ଧାତୁ—ଅନ୍ୟରୂପ) ( Apte ).

ମଙ୍କଣକ—ସଂ. ବି—ଋଷି ବିଶେଷ—Name of a saint. Mankanaka ( ଦ୍ର—ପୂର୍ବେ ମଙ୍କଣକ ସେ ସ୍ଥାନରେ ବସି, ତପସ୍ୟା କରୁଥିଲେ ଗଲେ ନେତ୍ର ଖୋଜି । କୃଷ୍ଣସିଂହ. ମହାଭାରତ. ବନ । )

ମଙ୍କନ(ଣ, ଲ)କ—ସଂ. ବି—୧ । ମହାଭାରତୋକ୍ତ କୁରୁକ୍ଷେତ୍ରର Mankana(na, la)ka ଦ୍ୱାରପାଳ ଯକ୍ଷବିଶେଷ—1. Name of a demigod said to guard the Kurukshetra battle-field. ( ଦ୍ର—କୁରୁକ୍ଷେତ୍ରରେ ମଙ୍କନକ ଦ୍ୱାରପାଳ, ଅଛନ୍ତି ନମନ୍ତି ଯେ ତାଙ୍କ ପାଦତଳ । କୃଷ୍ଣସିଂହ. ମହାଭାରତ ବନ । ) ୨ । ଋଷି ବିଶେଷ ( ହି. ଶ )—2. Name of a sage

ମଙ୍କିଲ—ସଂ. ବି ( ମଙ୍କ ଧାତୁ+କର୍ତ୍ତୃ. ଇଲ )—ଦାବାଗ୍ନି—Mankila Forest conflagration (Apte).

ମଙ୍କୁର—ସଂ. ବି ( ମଙ୍କ ଧାତୁ+କରଣ. ଉର )—ମୁକୁର; ଦର୍ପଣ—Mankura Mirror.

ମଙ୍କ୍ଷଣ—ସଂ. ବି—ଗୋଡ଼ରେ ପିନ୍ଧାଯିବା ସାଞ୍ଜୁ—An armour of Mankshana the legs; greaves. (Apte ).

ମଙ୍ଖ—ସଂ. ବି. ପୁଂ—୧ । ଭାଟ—1. A royal bard ( Apte ). Mankha ୨ । ଏକଶ୍ରେଣୀର ଔଷଧ—2. Medicament of a particular class ( Apte ).

ମଙ୍ଗ୍ (ଧାତୁ)—ସଂ—ଗମନ କରିବା—To go; to move. Mang (root) [ମନଗ୍ (ଧାତୁ)—ଅନ୍ୟରୂପ)

ମଙ୍ଗ—ପ୍ରାଦେ ( ସମ୍ବଲପୁର ) ବି—ତନ୍ତ—Mang Loom.

ମଙ୍ଗତ୍ରି—ପ୍ରାଦେ ( ସମ୍ବଲପୁର ) ବି ( ତୁଳ. ହି. মংগতা )—ଭିକ୍ଷୁକ; Mang-tri ଭିକ୍ଷୁକ; ଭିକାରୀ; ଭିକମାଗୁଣିଆ—Beggar.

ମଙ୍ଗନିଆ—ପ୍ରାଦେ ( କଳାହାଣ୍ଡି ) ବି ( ତୁଳ ହି. मंगन; ମଙ୍ଗନ୍ୟା ) Mang-niā ମାଗନ୍ତା; ଭିକ୍ଷୁକ—Beggar.

ମଙ୍ଗରା—ପ୍ରାଦେ ( ବସ୍ତର ) ବି—ମଲ୍ଲିଫୁଲ—Mang-rā The jasmine flower.

ମଙ୍ଗରି ପାଟି—ପ୍ରାଦେ ( ବସ୍ତର ) ବି—ମଥାନ ବା ମଙ୍ଗେଶ୍ରେଣୀ—Mang-ri pāṭi The top wooden plate of a thatched house.

ମଙ୍ଗ—ସଂ. ବି ( ସଂ. ମଙ୍ଗ୍ ଧାତୁ+କର୍ତ୍ତୃ. ଅ )—୧ । ନୌକାର ମୁଣ୍ଡ; Manga ନୌକାର ଦଣ୍ଡି ( ହି· ଶ )—1. The end of

ମେଜୁଈ head of a boat; the prow of a boat
गलही (Apte). [ଦ୍ର—ଡଙ୍ଗାର ଅଗ ପାଖର ମଙ୍ଗକୁ ଅଗମଙ୍ଗ ଓ ପଛପାଖର ମଙ୍ଗକୁ ପଛମଙ୍ଗ କହନ୍ତି । ] ୨ । ଜାହାଜର ପାର୍ଶ୍ୱ—2. The side of a ship (Apte).
सम्मति, राजि ଦେ. ବ—ମଙ୍ଗିବା; ସ୍ୱୀକାର; ସମ୍ମତି—Consent;
राजी agreeing to a thing. ବଣ—ସ୍ୱୀକୃତ—
(ଅମଙ୍ଗ—ଅନ୍ୟରୂପ) Agreeable; consenting;
सम्मत; राजि राजी agreeing.

ମଙ୍ଗତ୍ ଜ(ଜା)ନ୍—ବୈଦେ. ବ (ଫା.ମଙ୍ଗତ୍=ଯେ ମଙ୍ଗେ ବା ଗ୍ରହଣ କରେ +ଜାନ୍=ସ୍ୱୀଲୋକ)—ନର୍ତ୍ତକୀ; ବେଶ୍ୟା—
Mangat ja(jā)n [ମଙ୍ଗନ୍ ଜ(ଜା)ନ୍ —ଅନ୍ୟରୂପ] A female dancer;dancing girl, who has accepted the profession of dancing out of her free will; prostitute.

ମଙ୍ଗ ଧର୍‌—ଦେ. ବ—୧ । ନୌକାର ପଛ ମଙ୍ଗରେ ଲାଗିଥିବା ନୌକାର
Manga dharā ଗତିର ନିୟନ୍ତ୍ରଣାତ୍ମକ ଅନୁକାଷ୍ଠ—1. The
हाइल helm of a boat; the rudder. [ଦ୍ର—ଯୁଆଳ
दुम्वाला, पतवार ଡଙ୍ଗା ଗଢ଼ା ହେଲା ବେଳେ ଡଙ୍ଗାର ପଛ ପାଖରେ
हालधरा; हाली କବ୍‌ଜାଦ୍ୱାରା ସଲଗ୍ନ କରାଯାଇ ଥାଏ । ମଙ୍ଗଧର୍ ମଧ୍ୟ
पत बारिया ଡଙ୍ଗାର ପଛପାଖରେ ଲାଗିଥାଏ । ମଙ୍ଗଧର୍ ଡଙ୍ଗାର ପଛ ମଙ୍ଗରେ ଦଉଡ଼ା ଦ୍ୱାରା ବନ୍ଧା ହୋଇଥାଏ ।] ୨।ମଙ୍ଗୁଆଳ; ଯେଉଁ ନାବିକ ନୌକାର ପଛ ମଙ୍ଗରେ ଲାଗିଥିବା ଅନୁକାଷ୍ଠକୁ ଧରି ନୌକାର ଗତିକୁ ନିୟନ୍ତ୍ରିତ କରେ—2. Helmsman. ୩ । (ଲକ୍ଷଣାର୍ଥ) ଚାଳକ—(figurative) Leader.

ମଙ୍ଗ ଧରିବା—ଦେ. କ୍ରି—ଡଙ୍ଗାର ପଛ ମଙ୍ଗର ଅନୁକାଷ୍ଠକୁ ଧରି ଡଙ୍ଗାର
Manga dhāribā ଗତିକୁ ନିୟନ୍ତ୍ରିତ କରିବା—To steer
हालधरा पतवार धरना at the helm.

ମଙ୍ଗନ—ଦେ. ବ—(ସଂ. ମଙ୍ଗଳ)—୧ । ବିବାହର ପୂର୍ବ ଦିବସ; ମଙ୍ଗଳ-
Mangana କୃତ୍ୟ—1. The day previous to a
मंगलकृत्य अधिवास मङ्गलकृतय marriage. (ଉ—ଅଜି ମଙ୍ଗନ କାଲି ବାହା, କସ କରୁଅଛୁ କନିଆର ମାଆ । ଢଗ । ୨ । ବିବାହର ପୂର୍ବ ଦିବସରେ ବର ଓ କନ୍ୟା ଯେଉଁ ମଙ୍ଗଳ କର୍ମ କରନ୍ତି) 2. The ceremonies performed on the eve of a marriage.

ମଙ୍ଗନ ଓଢ଼ା—ଦେ. ବ—ବିବାହର ପୂର୍ବ ଦିବସରେ ବର ଓ କନ୍ୟା
Mangana oṭā ଯେଉଁ ନୂଆ ଲୁଗା ପିନ୍ଧନ୍ତି—New cloths put on by the bride and the bridegroom on the day previous to the marriage [ଦ୍ର—କନ୍ୟାର ଲୁଗାକୁ ମଙ୍ଗନ ଶାଢ଼ି ଓ ବରର ଲୁଗାକୁ ମଙ୍ଗନ-ପାଟ କହନ୍ତି ।]

ମଙ୍ଗର୍—ପ୍ରାଦେ. (ସମ୍ବଲପୁର ଓ ବସ୍ତର) ବ—(ସଂ. ମକର)—କୁମ୍ଭୀର
Mangar Alligator.

ମଙ୍ଗରାଜ—ଦେ. ବ—୧ । କେତେକ ରାଜାଙ୍କ ବଂଶଗତ ଉପାଧିବିଶେଷ—
Mangarāja 1. A family title of kings. ୨ । କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—2. A family title of Kshatriyas.

ମଙ୍ଗରାଜି—ପ୍ରାଦେ. (ବାଲେଶ୍ୱର) ବ—ଏକ ପ୍ରକାର ଭୃଷ୍ଟ ବା ଚୁଡ଼ା-
Mangarāji ଭଜା—A kind of fried rice.

ମଙ୍ଗଲ—ପ୍ରାଦେ. (ସମ୍ବଲପୁର) ବ—ମଙ୍ଗଳ (ଦେଖ)
Mangal Mangala (See)

ମଙ୍ଗଳ—ସଂ. ବ—(ମଙ୍ଗ୍ ଧାତୁ=ଯିବା+କର୍ମ. ଅଳ)—୧ । ଶୁଭ;
Mangala କଲ୍ୟାଣ; କ୍ଷେମ—1. Welfare; bliss; auspiciousness. ୨ । ସୌଭାଗ୍ୟ—2. Prosperity. ୩ । (+କର୍ତ୍ତୃ ଅଳ) କୁଜଗ୍ରହ—3. The planet Mars. ୪ । ମଙ୍ଗଳବାର—4. Tuesday. ୫ । ମହାଦେବ; ମହେଶ୍ୱର; ଶିବ—5. Siba, ୬ । ଦେବାଦିଙ୍କର ସ୍ତୁତି—6, Hymns to the Gods. ବଣ—ଶୁଭକର—Auspicious; lucky. ଦେ. ବି.—୧ । ମଙ୍ଗଳାଚରଣ; ପୁରାଣାଦି ପାଠ ପୂର୍ବରୁ ବୋଲାଯିବା ମଙ୍ଗଳ ସୂଚକ ବାକ୍ୟ—1. Benedictory sentences uttered before beginning to read or recite a religious discourse. [ଉ—ଏମନ୍ତ ଋଷିମାନଙ୍କ ମୁଖୁ ଶୁଣି, ମଙ୍ଗଳ ଆରମ୍ଭିଲେ ଲୋମହରଷଣୀ । କୃଷ୍ଣସିଂହ ମହାଭାରତ. ଆଦି ।] ୨ । ମଙ୍ଗଳ ବାକ୍ୟ; ଶୁଭ ବାକ୍ୟ--2. Benedictory utterance. (ଉ—ଅକ୍ଷତ ଦେଇ ପୂଜା କରିବେ, ମଙ୍ଗଳ କଲେ ଉଚ୍ଚ ସ୍ୱରେ । ଜଗନ୍ନାଥ. ଭାଗବତ ।) ୩ । ଶୁଭ ବାଦ୍ୟବିଶେଷ—3. Music played on auspicious occasions. (ଉ—ମଦନ ବଜାଏ ମଙ୍ଗଳ, ବାଦ୍ୟ ମୋ ନୂପୁର ଯୁଗଳ । ଜଗନ୍ନାଥ ଭାଗବତ ।)

ମଙ୍ଗଳ ଆଳତି—ଦେ. ବ—(ସଂ. ମଙ୍ଗଳ ଓ ଆରାତ୍ରିକ)—ପ୍ରଭାତର
Mangala ālati ସକାଳେ ଦେବ ବିଗ୍ରହମାନଙ୍କର ନିଦ୍ରାଭଙ୍ଗ
मङ्गल आरती ସୂଚକ ସର୍ବ ପ୍ରଥମେ କରାଯିବା ଆରତି ବା ପାଶାଦି
मङ्गल अरती ପ୍ରଦର୍ଶନ ଦ୍ୱାରା ପୂଜା—The ceremony of waving lights as the first thing done in the morning before idols. (ଉ—ନୀଳାଚଳ ଧାମେ ପ୍ରତ୍ୟୂଷେ ମଙ୍ଗଳ-ଆଳତି ଦର୍ଶନ ପାଇଁ । ରାଧାନାଥ. ପାର୍ବତୀ ।)

ମଙ୍ଗଳ କର—ସଂ. ବଣ—(ମଙ୍ଗଳ+କୃ ଧାତୁ+କର୍ତ୍ତୃ. ଅ)—ଶୁଭକର -
Mangala kara Beneficial; auspicious; blissful. (ମଙ୍ଗଳଜନକ—ଅନ୍ୟରୂପ)

ମଙ୍ଗଳ କର୍ମ—ସଂ. ବ—ବିବାହାଦି ଶୁଭ କର୍ମ—Festive occasions;
Mangala karma auspicious or happy family-rites. [ଦ୍ର—ବ୍ରତ, ବିବାହ, କର୍ଣ୍ଣବେଧ, ଗୃହ ପ୍ରତିଷ୍ଠା, ଯଜ୍ଞ ଆଦି ମଙ୍ଗଳ କର୍ମର ଅନ୍ତର୍ଗତ ।]

ମଙ୍ଗଳ କାମନା—ସଂ. ବ—କୁଶଳ ପ୍ରାର୍ଥନା; ହିତାକାଂକ୍ଷା—
Mangala kāmanā Wishes for one's welfare,

ମଙ୍ଗଳ କାମୀ—ସଂ. ବି. ପୁଂ—ହିତାକାଂକ୍ଷୀ; କଲ୍ୟାଣପ୍ରାର୍ଥୀ—
Mangaḷa kāmī Wishing one's welfare.
(ମଙ୍ଗଳ କାମିନୀ—ସ୍ତ୍ରୀ)

ମଙ୍ଗଳ କୁମ୍ଭ—ସଂ.ବି—ବ୍ରତ ବିବାହାଦି ଶୁଭାନୁଷ୍ଠାନ ଉପଲକ୍ଷରେ ବେଦିରେ
Mangaḷa kumbha ବା ଗୃହର ଦ୍ୱାର ଦେଶରେ ସ୍ଥାପିତ ଜଳ-ପୂର୍ଣ୍ଣ କଳସ; ପୂର୍ଣ୍ଣକୁମ୍ଭ—A jar full of water kept on the altar or at the door on ceremonial and festive occasions.
(ମଙ୍ଗଳ କଳସ—ଅନ୍ୟରୂପ)

ମଙ୍ଗଳ କୃତ୍ୟ—ସଂ. ବି—( ମଙ୍ଗଳ+କୃତ୍ୟ=କର୍ମ ) ବିବାହ—
Mangaḷa krutya Marriage. ଦେ. ବି. ମଙ୍ଗଳ—(ଦେଖ)—Mangaḷa (See).

ମଙ୍ଗଳ ଗାନ—ସଂ. ବି—ଶୁଭାନୁଷ୍ଠାନ ଉପଲକ୍ଷରେ ଗାନ କରାଯିବା
Mangaḷa gāna ସଙ୍ଗୀତ—Songs sung on auspicious occasions.
(ମଙ୍ଗଳ ଗାୟନ, ମଙ୍ଗଳ ଗୀତ, ମଙ୍ଗଳ ଗୀତିକା, ମଙ୍ଗଳ ଗୀତି, ମଙ୍ଗଳ ସଙ୍ଗୀତ—ଅନ୍ୟରୂପ)

ମଙ୍ଗଳ ଘଟ—ସଂ. ବି—ଯେଉଁ ଜଳପୂର୍ଣ୍ଣ କଳସକୁ ଦେବପୂଜା ଉପଲକ୍ଷରେ
Mangaḷa ghaṭa ସ୍ଥାପିତ କରିବାକୁ ଦେବମୂର୍ତ୍ତି କଳ୍ପନା କରି
(ମଙ୍ଗଳ କଳସ—ଅନ୍ୟରୂପ) ପୂଜା କରାଯାଏ—A jar filled up with water and worshipped in lieu of Goddess Durgā.

ମଙ୍ଗଳ ଚଣ୍ଡିକା—ସଂ.ବି.ସ୍ତ୍ରୀ—୧ । ଭଗବତୀ; ଦୁର୍ଗା—1. Durgā.
Mangaḷa chandikā ୨ । ଅଭୀଷ୍ଟସିଦ୍ଧ୍ୟର୍ଥ ମଙ୍ଗଳବାରରେ
(ମଙ୍ଗଳଚଣ୍ଡୀ—ଅନ୍ୟରୂପ) ସ୍ତ୍ରୀଲୋକମାନେ ଯେଉଁ ଚଣ୍ଡୀଙ୍କୁ ବା ଭଗବତୀଙ୍କୁ ପୂଜା କରନ୍ତି—2. Goddess Durgā worshipped by females on Tuesdays. [ଦ୍ର—ଏ ଦ୍ୱିଭୁଜା, ରକ୍ତପଦ୍ମାସନସ୍ଥା, ଗୌରବର୍ଣ୍ଣା ଦେବୀ ଅଟନ୍ତି । ଧନୀ ସଉଦାଗରଙ୍କ ସ୍ତ୍ରୀ ପ୍ରଥମେ ସ୍ତ୍ରୀମାନଙ୍କ ମଧ୍ୟରେ ଏ ପୂଜା ଚଳାଇଥିବା ବିଷୟ ବ୍ରତ କଥାରେ ଉଲ୍ଲେଖ ହୋଇଅଛି । ]

ମଙ୍ଗଳ ଚିନ୍ତା—ସଂ. ବି—ମଙ୍ଗଳ କାମନା; କଲ୍ୟାଣ ଚିନ୍ତା; ଶୁଭକାମନା—
Mangaḷa chintā Thoughts for one's welfare; good-wishes.
(ମଙ୍ଗଳଚିନ୍ତକ—ପୁଂ. ବିଣ)

ମଙ୍ଗଳଣ(ନ)—ଦେ. ବି—(ସଂ. ମଙ୍ଗଳ)—ମଙ୍ଗୁଳିବା; ମଙ୍ଗଳାଚରଣ;
Mangaḷaṇa(na) ବିବାହାଦି ପୂର୍ବରୁ ଅବିଧବା ସ୍ତ୍ରୀମାନଙ୍କ ଦ୍ୱାରା
ଅଧିବାସ ଅନୁଷ୍ଠିତ ଦେବାରାଧନା ଓ ହାଣ୍ଡିମଙ୍ଗୁଳା ଆଦି—
अधिवास A propitiatory ceremony performed by females consisting of invoking the blessings of the village Goddess on festive occasions and consecrating earthen cooking pots for those occasions.
୨ । ଅଭିମନ୍ତ୍ରଣ; ପୂଜାଧିବାସ—2. Consecration.

ମଙ୍ଗଳ ଦର୍ଶନ—ସଂ. ବି—ଶୁଭସୂଚକ ବସ୍ତୁର ଦର୍ଶନ; ଶୁଭଶକୁନ—
Mangaḷa darśana Seeing or meeting with an auspicious thing.
(ମଙ୍ଗଳଦର୍ଶନା—ସ୍ତ୍ରୀ) ବିଣ. ପୁଂ—ଯାହାଙ୍କୁ ଦେଖିଲେ ଭାବୀ ମଙ୍ଗଳ ଘଟିବାର ସୂଚିତ ହୁଏ—Auspicious; whose sight indicates the happening of a happy event. [ଦ୍ର—ବାଆଁ ବିଲୁଆ, ପୂର୍ଣ୍ଣକୁମ୍ଭ, ବଦରଦଳିଆ ପକ୍ଷୀଆଦି ମଙ୍ଗଳ ଦର୍ଶନ ଅଟନ୍ତି—]

ମଙ୍ଗଳ ଦାୟକ—ସଂ. ବିଣ—୧ । ହିତକର—1. Beneficial. ୨ ।
Mangaḷa dāyaka କଲ୍ୟାଣପ୍ରଦ—2. Bringing about bliss.
(ମଙ୍ଗଳଦାନ, ମଙ୍ଗଳପ୍ରଦ—ଅନ୍ୟରୂପ)
(ମଙ୍ଗଳଦାୟିକା, ମଙ୍ଗଳପ୍ରଦା—ସ୍ତ୍ରୀ)

ମଙ୍ଗଳ ପାକ—ଦେ. ବି—୧ । ବିବାହାଦି ମଙ୍ଗଳକୃତ୍ୟର ପୂର୍ବ ଦିନ
Mangaḷa pāka ରାନ୍ଧିବା ପାଇଁ କରାଯିବା ନୂଆ ହାଣ୍ଡି—
(ମଙ୍ଗଳ ପାଗ, ମଙ୍ଗଳ ଭୋଜନ—ଅନ୍ୟରୂପ) 1. The new set
मङ्गलपाक of Earthen pots for a festive occasion.
मङ्गल पाक ୨ । ବରର କୁଟୁମ୍ବ ଓ ବନ୍ଧୁମାନଙ୍କୁ ବିବାହର ପୂର୍ବ ଦିନ ଦିଆଯିବା ଅନ୍ନ ଭୋଜନ—2. A feast of cooked food given to the kindreds and relatives of the bridegroom on the eve of marriage, generally in the night previous to the day of marriage. [ଦ୍ର—ମଙ୍ଗଳ ଭୋଜନ ସାରି ବର ଓ ବରଯାତ୍ରୀମାନେ କନ୍ୟା ଘରକୁ ଯାତ୍ରା କରନ୍ତି ।]

ମଙ୍ଗଳ ପାଠକ—ସଂ. ବି.ପୁଂ—୧ । ସ୍ତୁତିପାଠକ; ଭାଟ—1.A bard;
Mangaḷa pāṭhaka a panegyrist.
(ମଙ୍ଗଳଗାୟକ—ଅନ୍ୟରୂପ)

ମଙ୍ଗଳ ପୁର—ଦେ. ବି—୧ । ପୁରୀଜିଲ୍ଲାର ପିପିଲି ନିକଟସ୍ଥ ଗୋଟିଏ
Mangaḷa pura ବଡ଼ ଗ୍ରାମ—1. Name of a populous village in the district of Puri [ଦ୍ର—ଏଠାରେ ହାଟ ବସେ ଓ ଏହା ଅନେକ କେଳାଙ୍କ ବାସସ୍ଥାନ । ] ୨ । ବାଲେଶ୍ୱରର ଗୋଟିଏ ବଡ଼ ଗ୍ରାମ—2. Name of a village in Balasore district. [ଦ୍ର—ଏହା ମୁଗୁନି ପଥର ବାସନ ନିମନ୍ତେ ପ୍ରସିଦ୍ଧ । ]

ମଙ୍ଗଳ ବାଦ୍ୟ—ସଂ. ବି—ଶୁଭାନୁଷ୍ଠାନ ଉପଲକ୍ଷରେ ବଜାଯିବା ବାଦ୍ୟ—
Mangaḷa bādya Music played on festive occasions. [ଦ୍ର—ଏହିପରି ମଙ୍ଗଳ ଶଙ୍ଖ; ମଙ୍ଗଳ ମହୁରୀ ଆଦି ଶବ୍ଦର ବ୍ୟବହାର ଦେଖାଯାଏ । ]

ମଙ୍ଗଳ ବାର—ସଂ. ବି—କୁଜବାର; ସୋମବାରର ପରବର୍ତ୍ତୀ ଦିନ—
Mangaḷa bāra Tuesday. ଦେ. ବି—ମଙ୍ଗଳ-
(ମଙ୍ଗଳବାସର—ଅନ୍ୟରୂପ) ବାରରେ କରାଯିବା ବ୍ରତବିଶେଷ—A ritual performed on Tuesday. (ଉ—ମାସି ମଙ୍ଗଳ ବାର ଗୁରୁ, ଏବେହେଁ କଲେ ଜନନୀ । ଉପେନ୍ଦ୍ର· ପ୍ରେମପଞ୍ଚାମୃତ । )

ମଙ୍ଗଳ ମୟ—ସଂ. ବିଣ ( ମଙ୍ଗଳ+ପ୍ରାଚୁର୍ଯ୍ୟାର୍ଥେ ମୟ)—୧ । ସୁଖପୂର୍ଣ୍ଣ
Mangaḷa maya —1. Blissful. ୨ । କଲ୍ୟାଣ-

(ମଙ୍ଗଳମୟୀ—ସ୍ତ୍ରୀ) କର—2. Felicitous. ବି. ପୁଂ—ଭଗବାନ; ଈଶ୍ବର—God; the All Good.

ମଙ୍ଗଳ(ଳା)ଯାତ୍ରା—ପ୍ରାଦେ ( ଗଡ଼ଜାତ ) ବି—ଆଶ୍ୱିନମାସରେ ଇତର Mangalā(lā)jātrā ଜାତୀୟା ସ୍ତ୍ରୀମାନେ ଯେଉଁ ଯାତ୍ରା କରନ୍ତି—The jātrā performed by low caste women in the month ef Āświna. [ ଦ୍ର—ତେଣ୍ଡୁ ଉଳେ ଝାଁକା ଦେଖ । ]

ମଙ୍ଗଳ ସମାଗ୍ଭର—ସଂ. ବି—୧ । ସୁସମାଗ୍ଭର—1. Good news. Mangala samāchāra ୨ । ଶୁଭ ସମ୍ବାଦ—2. Happy news. ଦେ. ବି ( ପାଦ୍ରିଙ୍କ ଭାଷା )—ବାଇବଲ୍—The Gospel.

ମଙ୍ଗଳ ସମ୍ବିଧାନ—ସଂ. ବି—ବରଣ ଡାଲାରେ ଦେୟ ମାଙ୍ଗଲ୍ୟ ଦ୍ରବ୍ୟମାନ Mangala sambidhāna —Articles arranged in a tray ready for ceremonial invitation on festive occasions.

ମଙ୍ଗଳ ସୂଚକ—ସଂ. ବିଣ—ଯାହା ଭାବୀ ଶୁଭର ସୂଚନା କରେ—Mangala sūchaka Auspicious; indicating future bliss.

ମଙ୍ଗଳ ସୂତ୍ର—ସଂ. ବି—ବିବାହ ବେଦିରେ ବରକନ୍ୟାଙ୍କ ହାତରେ ଦୂବ Mangala sūtra ବରକୋଳିପତ୍ର ଓ ଅରୁଆଚାଉଳ ସହିତ (ମଙ୍ଗଳପ୍ରତିସର—ଅନ୍ୟରୂପ) ବନ୍ଧାଯିବା ହଳଦିଆ ସୂତା—An auspicious string worn in the arm by the bride and the bridegr om on the occasion of marriage.

ମଙ୍ଗଳ ହାଣ୍ଡି—ଦେ. ବି—ବିବାହ ବା ଜନ୍ମଆଦି ଉପଲକ୍ଷେ ପାକ କରିବା Mangala hāndi ପାଇଁ ଅନୁକୂଳ କରାଯିବା ପ୍ରଥମ ପାକହାଣ୍ଡି অধিবাসের হাঁড়ী —The set of cooking pots **अधिवासकी हाँडी** first used in cooking the food on family-ceremonies.

ମଙ୍ଗଳ ସ୍ନାନ—ସଂ. ବି—୧ । ଶୁଭାନୁଷ୍ଠାନ ଉପଲକ୍ଷରେ କୃତ ମନ୍ତ୍ରପୂତ ସ୍ନାନ Mangala snāna —1. A holy ceremonial bath taken on festive occasions. ୨ । କୋଇଲି ବୁଡ଼; ବିବାହ ଦିନ ପ୍ରତ୍ୟୁଷରେ କନ୍ୟାର ସ୍ନାନ—2. The ceremonial bath taken by a bride early in the morning of the day of marriage.

ମଙ୍ଗଳା—ସଂ. ବି. ସ୍ତ୍ରୀ—(ମଙ୍ଗଳ+ସ୍ତ୍ରୀ. ଆ)—୧ । ଭଗବତୀ; ପାର୍ବତୀ; Mangalā ଦୁର୍ଗା—1. Durgā. ୨ । ପତିବ୍ରତା ସ୍ତ୍ରୀ—2. A chaste lady; a lady devoted to her husband. ୩ । ଶୁକ୍ଳ ଦୂବ; ଧଳା ଦୂବ—3. The bleached creeping grass ୪ । ହରିଦ୍ରା;ହଳଦୀ—4. Turmeric. ୫ । ଦୂବ; ନୀଳ ଦୂବ- 5. The blue Dooba grass. ଦେ. ବି—୧ । ପୁରୀ ଜିଲ୍ଲା କାକଟପୁରସ୍ଥା ଦୁର୍ଗା ଠାକୁରାଣୀ—1. Name of the image of Goddess Durgā in Kākaṭapur (District Puri.) ୨ । ପନ୍ଥେଇ ଠାକୁରାଣୀ; ବାଟ ମଙ୍ଗଳା—2. A popular Goddess worshipped by village females in a hole dug in cross-ways of a village road. [ଦ୍ର—ଏହାଙ୍କୁ ଗ୍ରାମବାସୀନୀ ସ୍ତ୍ରୀମାନେ ଗ୍ରାମର ଦୋଛକି ବାଟରେ ଗାତ ଖୋଳି ପଣା ଇତ୍ୟାଦି ଭୋଗ ଦେଇ ପୂଜା କରନ୍ତି ଓ ସେ ଦିନ ରାତିରେ ଘର ମଧ୍ୟରେ ଗୋଟିଏ ଶିଳପୁଆକୁ ଏହି ପନ୍ଥେଇ ବା ମଙ୍ଗଳା ଠାକୁରାଣୀ ରୂପେ କଳ୍ପନା କରି ତାଙ୍କ ନିକଟରେ ଗଇଣ୍ଠା ଅଟକାଳି ଆଦି ଭୋଗ କରନ୍ତି ।] ୩ । ମାଷ୍ଟ ବଣ ଅବଧାନମାନେ ଭିକ୍ଷା କରିବା ପାଇଁ ସଙ୍ଗରେ ନେଉଥିବା ସରସ୍ୱତୀ ଠାକୁରାଣୀଙ୍କ ମୂର୍ତ୍ତି—3. The image of Saraswati carried by village pedagoguess while going a begging. ୪ । ବିବାହର ଏତେ ଦିନ ସଂଖ୍ୟା—4. So many days from the day of marriage [ ଦ୍ର—ଏହି ଶବ୍ଦ ଅନ୍ୟାନ୍ୟ ଶବ୍ଦ ସହିତ ମିଳିତ ହୋଇ ବ୍ୟବହୃତ ହୁଏ । ଯଥା—ତିନି ମଙ୍ଗଳା, ପାଞ୍ଚ ମଙ୍ଗଳା, ଛଅ ମଙ୍ଗଳା, ସାତ ମଙ୍ଗଳା, ଆଠ ମଙ୍ଗଳା, ଦଶ ମଙ୍ଗଳା । ବିଣ—ମଙ୍ଗୁଳା(ଦେଖ) Mangulā ( See ) ପ୍ରାଦେ (ଗଡ଼ଜାତ) ବି—ଶୂଦ୍ର, ପାଣ ଓ ଶ୍ରେଷ୍ଠ ଅନ୍ୟ ଶ୍ରେଷ୍ଠ ଜାତିମାନଙ୍କ ଗ୍ରାମରେ ପୂଜା ପାଉଥିବା ଗ୍ରାମ ଦେବତା—A village Goddess worshipped by Śūdras and low caste people, such as Pānas and others. [ଦ୍ର—ଆଶ୍ୱିନ ମାସରେ ମଙ୍ଗଳା ଜାତ ହୁଏ ଓ ଚୈତ୍ର ଏବଂ ଆଶ୍ୱିନ ମାସରେ ମଙ୍ଗଳ ବାର ଦିନ ଏହାଙ୍କ ପାଖରେ ଭୋଗ ଦିଆଯାଏ ଓ ମାନସିକ ହୁଏ ।]

ମଙ୍ଗଳାକର—ସଂ. ବିଣ (୬ଷ୍ଠୀ ତତ୍; ମଙ୍ଗଳ+ଆକର )—ମଙ୍ଗଳମୟ; Mangalākara କଲ୍ୟାଣମୟ—Full of bliss.

ମଙ୍ଗଳାଧାର } ଅନ୍ୟରୂପ ବି—ମଙ୍ଗଳର ନିଦାନ—
ମଙ୍ଗଳାଳୟ } Source of all bliss.

ମଙ୍ଗଳାକାଙ୍କ୍ଷା—ସଂ. ବି. ( ୬ଷ୍ଠୀ ତତ୍; ମଙ୍ଗଳ+ଆକାଙ୍କ୍ଷା )—Mangalākānkshā ମଙ୍ଗଳ କାମନା ( ଦେଖ ) Mangala kāmanā ( See )

ମଙ୍ଗଳାକାଙ୍କ୍ଷୀ—ସଂ. ବିଣ. ପୁଂ—ମଙ୍ଗଳକାମୀ ( ଦେଖ ) Mangalākānkshī Mangalakāmī ( See ) (ମଙ୍ଗଳାକାଙ୍କ୍ଷିଣୀ—ସ୍ତ୍ରୀ)

ମଙ୍ଗଳା ଖୁଣ୍ଟ—ପ୍ରାଦେ (ଯାଜପୁର) ବି—ଠାକୁର ଘରେ ମଙ୍ଗଳାଙ୍କୁ ପୂଜା Mangalā khunṭa କରିବା ପାଇଁ ସ୍ଥାପିତ ଖୁଣ୍ଟ—**मङ्गलाखुटी** A ceremonial post put in the Ṭhākuraghara room, representing Goddess Mangalā.

ମଙ୍ଗଳା ଘର—ପ୍ରାଦେ (ଗଡ଼ଜାତ)ବି—ଶୂଦ୍ରମାନଙ୍କର ଗ୍ରାମଦେବତାମନ୍ଦିର—Mangalā ghara The temple of the village Deities of Śūdra villages.

ମଙ୍ଗଳାଙ୍କ ଘଟ(ଣ୍ଟ)—ଦେ. ବି—୧ । କାକଟପୁରର ମଙ୍ଗଳା ଠାକୁରାଣୀଙ୍କ Maṅgaḻāṅka ghaṭa(ṇṭa) ନିକଟରେ ପୂଜା ହୋଇଥିବା କ୍ଷୁଦ୍ର (ମଙ୍ଗଳାଙ୍କ ଘଣ୍ଟ—ଅନ୍ୟରୂପ) ଜଳଘଟ—A small water-jar representing the Goddess Maṅgaḻā which the sebakas carry from village to village, [ଦ୍ର—ଏହି ଘଣ୍ଟକୁ ଠାକୁରାଣୀଙ୍କ ସେବକମାନେ ପୁଷ୍ପ ବିଭୂଷିତ କରି ମଫସଲର ଗ୍ରାମେ ଗ୍ରାମେ ବୁଲନ୍ତି ।] ୨ । ମଙ୍ଗଳା ଠାକୁରାଣୀଙ୍କ ପ୍ରତିମୂର୍ତ୍ତି—2. An image of Maṅgaḻā carried by the Sebakas from village to village for begging purposes. [ଦ୍ର—ଏହାକୁ ସେବକମାନେ ଗୋଟିଏ ଗୋଟିଏ ଖେଣ୍ଟ ବିମାନରେ ରଖି, ଗ୍ରାମେ ଗ୍ରାମେ ବୁଲାଇ ଘଣ୍ଟ ବଜାଇ ସ୍ତ୍ରୀଲୋକମାନଙ୍କଠାରୁ ଚାଉଳ, ହଳଦୀ, ଦୂବ, ସିନ୍ଦୂର ଆଦି ସଂଗ୍ରହ କରନ୍ତି ।]

ମଙ୍ଗଳାଚରଣ—ସଂ.ବି—(୬ଷ୍ଠୀ ତତ୍; ମଙ୍ଗଳ+ଆଚରଣ)୧ । କୌଣସି Maṅgaḻā charaṇa ଶୁଭକର୍ମର ଅନୁଷ୍ଠାନ ଆରମ୍ଭରେ କରାଯିବା ମଙ୍ଗଳପ୍ରଦ କର୍ମ— 1. Propitiatory ceremony; auspicious ceremony performed at the beginning of a festive occasion; auspicious preliminary observances. ୨ । କର୍ମାରମ୍ଭରେ ପ୍ରାଥମିକ ସ୍ତୁତି ପାଠ—2. Preliminary prayer in the beginning. ୩ । କାବ୍ୟାଦିର ନାନ୍ଦୀ ଶ୍ଳୋକ ବା ଦେବତାଙ୍କ ବନ୍ଦନା—3. The opening lines of a poem invoking a Deity for a blessing.

ମଙ୍ଗଳାଚାର—ସଂ. ବି—୧ । ମଙ୍ଗଳାଚରଣ (ଦେଖ)—1. Maṅgaḻā Maṅgaḻāchāra charaṇa (See) ୨ । ଶୁଭକର ବିଧି—2. Auspicious usage or custom. ୩ । ଶୁଭାନୁଷ୍ଠାନ—3. An auspicious occasion. ୪ । ଶୁଭ ପ୍ରଦ ବିଧି ନିୟମାଦିର ଅନୁଷ୍ଠାନ—4. Observance of propitious ceremonies.

ମଙ୍ଗଳାମଙ୍ଗଳ—ସଂ. ବି—(ବିପରୀତାର୍ଥ ସହଚର ଶବ୍ଦ)—ଭଲ ମନ୍ଦ; Maṅgaḻāmaṅgaḻa ଶୁଭାଶୁଭ; ଶୁଭ ଓ ଅଶୁଭ—Prosperity and diversity; bliss and misfortune.

ମଙ୍ଗଳାରୋପଣ—ସଂ. ବି—ବିବାହ ବା ବ୍ରତ କର୍ମର ପ୍ରାରମ୍ଭିକ କର୍ମ ଯାହା Maṅgaḻāropaṇa ହୋଇ ସାରିବା ପରେ ଅଶୌଚାଦି ଘଟିଲେ (ମଙ୍ଗଳାର୍ପଣ—ଦେଶଜ ରୂପ) ମଧ୍ୟ ବିବାହ ବା ବ୍ରତ ଆଦି କର୍ମ ବନ୍ଦ ହୁଏ ନାହିଁ—The preliminary religious ritual in a marriage, or thread ceremony, which being performed, the ceremonies are not stopped on account of any social impurity.

ମଙ୍ଗଳାଷ୍ଟକ—ସଂ. ବି—ବିବାହ ବ୍ରତ ଓ ଶୁଭ ଯାତ୍ରାଦି ଅନୁଷ୍ଠାନରେ Maṅgaḻāshṭaka ମଙ୍ଗଳାଚରଣ ରୂପ ବୋଲାଯିବା ଆଠଗୋଟି ଶ୍ଳୋକ—A collection of 8 'Ṡḻokas' recited on propititious or festive occasions.

ମଙ୍ଗଳୋତ୍ସବ—ସଂ. ବି—ଶୁଭ ପର୍ବ; ଶୁଭାନୁଷ୍ଠାନ—Auspicious or Maṅgaḻotsaba festive occasions. [ ଦ୍ର—ବିବାହ, ବ୍ରତ, ଯଜ୍ଞ, କର୍ଣ୍ଣବେଧ ଓ ଆଶୀର୍ବାଦ ପରି ପ୍ରଭୃତିକୁ ମଙ୍ଗଳୋତ୍ସବ କୁହାଯାଏ ।]

ମଙ୍ଗଲ୍ୟ—ସଂ. ବିଣ—(ମଙ୍ଗଳ+ହିତାର୍ଥେ, ଯ)—୧ । ମଙ୍ଗଳଜନକ; Maṅgalya ଶୁଭଜନକ—1. Auspicious; propitious. (ମଙ୍ଗଲ୍ୟା—ସ୍ତ୍ରୀ) ୨ । ସୁଖକର; ସୁଖଦାୟକ—2. Producing happiness. ୩ । ସୁନ୍ଦର—3. Beautiful. ବି—୧ । ଚନ୍ଦନ—1. Sandal. ୨ । ଦଧି—2. Curd. ୩ । ସୁବର୍ଣ୍ଣ—3. Gold. ୪ । ବିଲ୍ୱ ବୃକ୍ଷ—4. The Bel tree. ୫ । ଅଶ୍ୱତ୍ଥ ବୃକ୍ଷ—5. The holy fig tree. ୬ । ସିନ୍ଦୂର—6. Vermilion. ୭ । କଇଥ ଗଛ—7. Wood apple (tree). ୮ । ନଡ଼ିଆ ଗଛ—8. Cocoanut tree. ୯ । ପଇଡ଼—9. Raw or green cocoanut. [ ଦ୍ର—ଶୁଭାନୁଷ୍ଠାନମାନଙ୍କରେ ପୂଜାଦିରେ ବ୍ୟବହୃତ ନାନା ପଦାର୍ଥ ଯଥା-- ପୂର୍ଣ୍ଣକୁମ୍ଭ, ଦୂବ, ବରକୋଳି ପତ୍ର, ହଳଦୀ, ଚନ୍ଦନ, ଦହି, ନଡ଼ିଆ, ପଇଡ଼, ଗୁଆ, ଅମ୍ବଡାଳ ଇତ୍ୟାଦି ଶୁଭସୂଚକ ବୋଲି ବ୍ୟବହୃତ ହୁଏ । ସେମାନେ ଯଥାକ୍ରମେ 'ମଙ୍ଗଲ୍ୟ' ଓ ମଙ୍ଗଲ୍ୟା ବୋଲି ଅଭିହିତ ।]

ମଙ୍ଗଲ୍ୟା—ସଂ. ବି. ସ୍ତ୍ରୀ—(ମଙ୍ଗଲ୍ୟ+ଆ)—୧ । ଦୁର୍ଗା; ଭଗବତୀ; Maṅgalyā ପାର୍ବତୀ—1. Goddess Durgā. ୨ । ଦୁବ୍ବା, ଦୂବ—2. The Dooba grass. ୩ । ଗୋରୋଚନା 3. A yellow pigment obtained from the carcass of a cow. ୪ । ହରିଦ୍ରା; ହଳଦୀ—4. Turmeric. ୫ । ଶତପୁଷ୍ପା; ସଲୁପ—5. Dill-seed. ୬ । ଅଗୁରୁ ବିଶେଷ—6. Fragrant aloes-wood. ୭ । ମସୀ; ସ୍ୟାହି; କାଳି—7. Ink ୮ । ଋଦ୍ଧି ନାମକ ଔଷଧ—8. Name of a rare medicinal herb. ୯ । ବଚ (ହିବେକୃଷ୍ଣ ଦ୍ରବ୍ୟଗୁଣ)—9. Sweet flag root.

ମଙ୍ଗଲ୍ୟାଗୁରୁ—ସଂ. ବି—କେଦାରଖଣ୍ଡରେ ଉତ୍ପନ୍ନ ଅଗୁରୁବିଶେଷ—Maṅgalyaguru An excellent species of aloes-wood growing in Kedārakhaṇḍa. [ଦ୍ର—ଏହା ସୁଗନ୍ଧି ଓ ଶୀତଳ ଏବଂ ଯେତେବେଳେ ଯେଉଁ ଦ୍ରବ୍ୟ ସଙ୍ଗେ ମିଶ୍ରିତ ହୁଏ ସେତେବେଳେ ତାହାର ଗୁଣକୁ ଗ୍ରହଣ କରେ ।]

ମଙ୍ଗା—ଦେ. ବି—୧ । ମଙ୍ଗାମଙ୍ଗି (ଦେଖ)—Maṅgā maṅgi Maṅgā (See) ପ୍ରାଦେ. (ଗଡ଼ଜାତ)—ବି—୧ । ବନ୍ୟ

ବୃକ୍ଷ ବିଶେଷ— 1. Name of a wild tree. [ଦ୍ର—ଏହି ଗଛ ୩।୭ ହାତ ଉଚ୍ଚ ହୁଏ। ଏଥିର ଡାଳରୁ ବାଡ଼ି ହୁଏ। ଏହା ଜଙ୍ଗଲରେ ବହୁତ ଥାଏ ବଢ଼େ; କେତେ ଫଳ ନାହିଁ।] ୨। ଜନ୍ତୁ ଶିକାର ପାଇଁ କରା ଯାଇଥିବା ଉଚ୍ଚ ବା ମଞ୍ଚ—2. A machan; a platform raised in the forest for hunters.

ମଙ୍ଗା(ଙ୍ଗେ)ଇବା—ଦେ. କ୍ରି. (ସଂ. ମନୋନୟନ)—ମଙ୍ଗିବା କ୍ରିୟାର ଣିଜନ୍ତ ରୂପ—The causative form of 'Mangiba'.
Mangā(ṅge)ibā
রাজিকরান; राजिकराना; मनाना
୧। କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟ ପାଇଁ ରାଜି କରାଇବା; ମନାଇବା—1. To succeed in inducing a person to consent or agree to a matter. [ଦ୍ର—କେବଳ ଧୃତରାଷ୍ଟ୍ର ନୁହେ ମଙ୍ଗାଇଲେ ଅମ୍ଭେ ଯିବା, ଧନ ଦେଖାଇ ତାଙ୍କୁ ଭଲେ। କୃଷ୍ଣସିଂହ ମହାଭାରତ.ବନ।] ୩। ମନାଇବା; ପ୍ରବର୍ତ୍ତାଇବା—3. To induce. ୪। ପ୍ରସନ୍ନ କରିବା—4. To propitiate a person. ଗ୍ରା.କ୍ରି—(ମାଗିବା କ୍ରିୟାର ଣିଜନ୍ତ ରୂପ)—ମଗାଇବା—To send for.
আনান; मंगवाना

ମଙ୍ଗାମଙ୍ଗି—ଦେ. ବି—(ସଂ. ମନୋନୟନ)—୧। ସମ୍ମତି—1. Consent. ୨। ରାଜି ହେବା—2. Agreeing. ୩। ରାଜି କରିବା—3. Inducing a person to agree.
Mangāmangi
রাজি; राजीखुसी

ମଙ୍ଗିବା—ଦେ. କ୍ରି. (ସଂ. ମନୋନୟନ ବା ମନ୍ ଧାତୁ=ସମ୍ମତହେବା)-୧। ରାଜି ହେବା—1. To consent; to agree [ଦ୍ର—ସେଇ ପାଞ୍ଚଣରେ ମଙ୍ଗାଯାଉନ୍ତୁ। ଫକୀରମୋହନ ଗଳ୍ପ ସ୍ୱଳ୍ପ।] ୨। ମାନିବା—2. To admit. [ଦ୍ର—ସେ କଥିବ ନ ମଙ୍ଗିବାରୁ ପୁଣି ସହାଉଛି। ଲାଜ ସବୁ କରି ଅଛ। କବିସୂର୍ଯ୍ୟ. ଉତ୍କଳକର ଚମ୍ପୂ ସର୍ଗୀତ।]
Mangibā
রাজিহওয়া; राजीहोना, मानना

ମଙ୍ଗୁ—ଦେ. ବିଣ.ପୁଂ—୧। ଯେ ରାଜି ହୁଏ;ସମ୍ମତ—1. Agreeing; consenting. ଦେ. ବି.—ଯେ ନୌକାର ମଙ୍ଗରେ ହାଲୀ; ପତବାରିୟା ଥାଏ; ମଙ୍ଗଧର—A sailor holding the helm of a boat. ୨। ଲୋକଙ୍କ ଦିଆଯିବା ନାମ—2. Name given to persons.
Mangu
(ମଙ୍ଗୁଆ—ଅନ୍ୟରୂପ)
(ମଙ୍ଗେଇ—ସ୍ତ୍ରୀ)

ମଙ୍ଗୁଆଳ—ଦେ. ବି—ଯେଉଁ କାଉରୀ ଡଙ୍ଗାର ମଙ୍ଗ ଧରିଥାଏ; ମଙ୍ଗଧର—Helmsman.
Mangu̱āla ହାଲୀ; पतवारिया

ମଙ୍ଗୁ ମଠ—ଦେ. ବି—ପୁରୀରେ ଥିବା ଶିଖମାନଙ୍କ ମଠ—A Math at Puri appertaining to the Sikhs.
Mangu matha

ମଙ୍ଗୁଳା—ଦେ. ବିଣ—ମଙ୍ଗଳଣ ସମ୍ପାଦିତ ହୋଇଥିବା (ବର, କନ୍ୟା, ହାଣ୍ଡି ଓ ଦେବତା)—In respect of which 'Mangalana' or consecration ceremony has been performed.
Mangu̱lā

ମଙ୍ଗୁଳି—ଦେ. ବିଣ. ପୁଂ—ଶୁଭ ଦର୍ଶନ (ବ୍ୟକ୍ତି)—Auspicious; a person whose sight indicates coming bliss.
Manguḻi
मङ्गली, लछमिनिया
(ମଙ୍ଗୁଳିଆ—ଅନ୍ୟରୂପ ମଙ୍ଗୁଳୀ; ମଙ୍ଗୁଳେଇ—ସ୍ତ୍ରୀ)
(ଅମଙ୍ଗୁଳିଆ—ବିପରୀତ)

ମଙ୍ଗୁଳିବା—ଦେ. କ୍ରି—(ସଂ. ମଙ୍ଗଳ) ୧। ବିବାହ ଓ ବ୍ରତାଦି ଶୁଭକୃତ୍ୟ ସ୍ଥାନ ପୂର୍ବରୁ ଗ୍ରାମଦେବତାପୂଜା, ହାଣ୍ଡି ମଙ୍ଗୁଳା ଆଦି ମଙ୍ଗଳାଚାର ଅନୁଷ୍ଠାନ କରିବା—1. To perform propitious ceremonies on the eve of festive occasions. ୨। (ଲକ୍ଷଣାର୍ଥ) କାକେ ଅଶୁଚି ହୋଇ ଅନ୍ୟମାନଙ୍କୁ ଛୁଇଁବା; ଛୁଆଁ ଅଛୁଆଁ ବାରଣ ନ ରଖିବା; ସ୍ପୃଶ୍ୟାସ୍ପୃଶ୍ୟ ବାଛଣ ନ ରଖିବା—2. (figurative) To observe no distinction between the touchable and untouchable; to pollute clean people and things by one's touch (said of a person who is himself unclean).
Mangu̱ibā
মঙ্গলাচার করা
मङ्गलाचारकरना
অশুদ্ধকরা
छूतकरा

ମଙ୍ଗ୍ରା—ପ୍ରାଦେ (ସମ୍ବଲପୁର) ବିଣ (ଭୁଲ. ହି. ମଙ୍ଗନିୟା)—ମାଗୁଣିଆ—Beggar.
Mangrā

ମଚମଚ—ଦେ. (ଧ୍ୱନ୍ୟନୁକରଣ)ଅ—କୋମଳ ବସ୍ତୁ ଚୋବାଇବାର ବା ଯୋତା ମାଡ଼ି ଚାଲିବାର ଶବ୍ଦ—Squeaking sound; creaking sound (e.g. of munching a soft thing or walking with shoes on).
Mach-mach
মচ মচ
मचमच

ମଚକା—ଦେ. ବି—ଗୋଡ଼ ମୋଡ଼ି ହୋଇଯିବା—Wrenching; sprain; bruise. ବିଣ—ମୋଡ଼ି ହୋଇ ଯାଇଥିବା—Sprained.
Machakā
মচকেখাওয়া मचकना

ମଚକିବା—ଦେ.କ୍ରି—୧। (ଗୋଡ଼ ବା ହାତଆଦି) ମୋଡ଼ି ହୋଇଯିବା—1. To be wrenched; to be sprained or bruised (said of a hand or leg). ୨। ମଚ ମଚ ଶବ୍ଦ କରିବା—2. To make a munching sound. ୩। ଅଳ୍ପ ଫାଟିବା—3. To crack slightly. ଗ୍ରା. ବି—ମକଚିବା—To squeeze; to crush.
Machakibā
মচকেযাওয়া
मचकजाना
মচমচকরা
মচকান
মচকা

ମଚ ମଚ – ଦେ. ଅ—ମଚ୍ ମଚ୍ (ଦେଖ)—Mach mach (See)
Macha macha ବି—ବନ୍ୟବୃକ୍ଷବିଶେଷ—Melengtonia Hortensis; the Indian cork tree.

ମଚଲା—ଦେ. ବି—୧। ଲୁଣିଆ ରୋଗବିଶେଷ; ଶୁଖିଲା ଲୁଣିଆ—1. A sort of dry itches; scabies. ୨। ବିଚର୍ଚ୍ଚି ରୋଗ—2. Eczema. ୩। କୋଡ଼ଯାଦୁ; କୋଷ, ଗୁହ୍ୟ ଓ ଲିଙ୍ଗମୂଳରେ ହେବା କଣ୍ଡୁମୟ ଦଦ୍ରୁ—3. An itching ringworm attacking the privitees.
Machaḻā
খোস
खुजली

ମଚା—ପ୍ରାଦେ (ସମ୍ବଲପୁର) ବି—(ଭୁଲ. ହି. ମଚାନ) ଘରଭିତର ଉପରେ କରାଯିବା ଉଚ୍ଚ—A scaffolding inside a thatched house.
Machā

ମଚୁଆ—ଗ୍ରା. ବି—(ସଂ. ମଞ୍ଚ)—ଖଟର ଦଣ୍ଡା—The long beam of Machuā a bedstead. (ଦୃ—ଗ୍ରାମ ନାମ ଲଗି ଅଛି ଡାଁଗା ପାସ ଅଢେଣୀ ମଚୁଆ—ପ୍ରାଚୀ ବ୍ରହ୍ମକରୂପଣ ଗୀତା ।)

ମଚୁଆ ପାଟି ପ୍ରାଦେ (ବସ୍ତୁର) ବି—ପାଖପଟିଣୀ—
Machuā pāṭi The side wall-plate of a thatched house

ମଚ୍ଛ—ସଂ. ବି [ମଦ. ଧାତୁ=(ଜଳରେ) ହୃଷ୍ଟ ହେବା+କର୍ତ୍ତୃ. ଘ]—
Machcha ମତ୍ସ୍ୟ; ମାଛ—Fish.

ମଚ୍ଛଳ—ଗ୍ରା. ବିଣ—(ସଂ. ବତ୍ସଳ)—ବତ୍ସଳ—
Machchhala Loving; compassionate.

ମଛ(ଚ୍ଛ୍ୟ,ଚ୍ଛ୍ୟ)—ଗ୍ରା. ବି—(ସଂ. ମତ୍ସ୍ୟ)—୧ । ମାଛ—1. Fish. ୨ ।
Machha(chhya,chchhya) ବିଷ୍ଣୁଙ୍କର ମତ୍ସ୍ୟାବତାର—
2. The 1st incarnation of Bishnu ( in the shape of a fish ). [ଦୃ—ମଚ୍ଛ କଚ୍ଛ ଅବତାର ଛନ୍ତି ପାଏ ପଢ଼ି, ପ୍ରାଚୀ, ବ୍ରହ୍ମକରୂପଣ ଗୀତା ।]

ମଛଡ଼—ପ୍ରାଦେ (ବସ୍ତୁର) ବି—(ଭୂଲ. ହି. ମଛଡ଼)—ମଶା—
Machharda Mosquitoes.

ମଛଡ଼ଦାନି—ପ୍ରାଦେ (ବସ୍ତୁର) ବି—(ଭୂଲ. ହି. ମଛଡ଼ଦାନୀ) ମଶାରି—
Machhardadāni Musquito-curtain.

ମଛ(ଚ୍ଛ)ଦିଆ—ଦେ. ବି—୧ । ନଦୀ, ପୋଖରୀ ବା ଅନ୍ୟ କୌଣସି
Machha (chchha)diā ଜଳାଧାରରେ ମାଛ ଧରିବାର ସ୍ୱତ୍ୱ—
ମାছধরাস্বত্ব 1. Fishing right in a river or tank.
माछ मारनेका हक ୨ । ମାଛ ଧରୁଥିବା ଜଳାଧାର—2.
মাছ কর Fishery-tank. ୩ । ମାଛ ଧରିବା ବ୍ୟକ୍ତି ଜଳାଧାରର ମାଲିକଙ୍କୁ ଯେଉଁ କର ଦିଏ—
माछ कर 3. Fishery rent.

ମଛଦିଆ କର—ଦେ. ବି—ନଦୀ ପୋଖରୀ ଆଦିରୁ ମାଛ ଧରିବା ପାଇଁ
Machhadiā kara ଜମିଦାରଙ୍କୁ ଦିଆଯିବା ଖଜଣା—
মাছকর Fishery rent; rent payable to the land-
माछ कर lord of a river or tank for enjoying the
(ମଛୁଦିଆ ଖଜଣା, ମଛଦିଆ ଜମା—ଅନ୍ୟରୂପ) fishery right.

ମଛା (ଚ୍ଛା)—ଦେ. ବି—୧ । ପଣ୍ୟାର୍ଥ ରକ୍ଷିତ ବସ୍ତୁଆଦିର ନମୁନା—
Machhā (chchhā) 1. A sample of commodities
ନମুনা offered for sale (e.g. corn). ୨ । ବଣିଆଘରକୁ
बानगी କାମ କରିବାକୁ ସୁନା ଦେଲେ, ଗହଣା ତିଆର କରି ଦେବା ବେଳେ ଯେଉଁ ସୁନା ଦିଆ ଯାଇଥିଲା, ବଣିଆ ତାହା ଦେଲା କି ତହିଁରେ ଖାଦ ମିଶାଇଲା, ଏହା ଜାଣିବା ପାଇଁ ଉକ୍ତ ସୁନା ମଧ୍ୟରୁ ମାଲିକ କାଟି ରଖିବା ଟିକିଏ ସୁନା—2. A bit of gold kept for verification out of the gold entrusted to a goldsmith for turning it into some article.

ମଜ୍କୁର—ବୈଦେ. ବିଣ ବା ସର୍ବନାମ (ଆ)—(କଚେରୀ)—ପୂର୍ବୋକ୍ତ;
Maj-kur ଉକ୍ତ; ସେହି—Aforesaid; that.
মজকুর मजकूर (ମଜ୍କୁରଥ—ଅନ୍ୟରୂପ)

ମଜ୍ କୁରି—ବୈଦେ. ବିଣ (ଆ)—ଯେଉଁ ଜମିର ଖଜଣା ପ୍ରଜାଠାରୁ
Maj-kuri ସିଧେ ଜମିଦାର ବା ସିଧେ ଗଭର୍ଣ୍ଣମେଣ୍ଟ ଅସୁଲ କରନ୍ତି;
খাস ଖାସ୍ ଅସୁଲ—(land) Of which the rent is
मजकुरी realised direct by the landlord or by the Government (without the intervention of any middleman).

ମଜ୍କୁରି ଜମା—ବୈଦେ. ବି—ପ୍ରଜାଠାରୁ ଜମିଦାର ସ୍ୱୟଂ ଅସୁଲ
Maj-kuri jamā କରିବା ଜମା—Rent realised from a
খাসজমা मजकुरी जमा raiyat direct by the landlord.

ମଜ୍(ଝ୍)ବୁ(ଭୁ)ତ୍—ବୈଦେ. ବିଣ (ଅ-ମଜବୂତ୍)—୧ । ବଳବାନ୍;
Maj-(jh)bu(bhu)t 1. Strong. ୨ । ଦୃଢ଼—2.
মজবুত Firm. ୩ । ଶକ୍ତ—3. Hard. ୪ । ଦକ୍ଷ; ପଟୁ—
मजबूत 4. Expert. [ଦୃ—ମୁଁ ହୁସାର ଢଙ୍ଗରେ ଖୁବ୍ ମଜ୍ବୁତ୍ ବୋଲି ମୋତେ ଠକାଇ ପାରନ୍ତି ନାହିଁ ।]
[ମଜ୍ବୁ(ଭୁ)ତା—ବିଶେଷ୍ୟ] ଫକୀରମୋହନ. ଛମାଣ. ଆଠଗୁଣ୍ଠ ।]

ମଜ୍ ମୁ(ମୋ)ଆଁ—ବୈଦେ. ବି (ଫା. ମଜ୍ମୁଆଁ=ସୁଗନ୍ଧିତ)—ଏକ ପ୍ରକାର
Maj-mu(mo)āñ ଅତର—A kind of otto. [ବି—ଏହା
মজমোয়াঁ আতর ନାନା ଦ୍ରବ୍ୟରୁ ସୁଗନ୍ଧିତ ହୁଏ ଓ ଏହାକୁ
मजमुआ इत्र କାନପତ୍ର ବ୍ୟୋଗରେ କାନରେ ଧଳାଇଲେ ଉପକାର ହୁଏ ।]

ମଜ୍ମୁନ୍—ବୈଦେ. ବି (ଆ) (କଚେରୀ)—୧ । ମର୍ମ—1 Purpose.
Maj-mun ୨ । ଲେଖା ଯାଇଥିବା ବିଷୟର ସାରାଂଶ (ଯାହାର
মজমুন ହେଡଙ୍ଗରେ ଲେଖା ଥାଏ)—2. Purport of a
मजमुन writing noted in the heading.
୩ । ହେଡଙ୍ଗ୍—3. A heading.

ମଜରା—ଦେ. ବି—ଶ୍ରାନ୍ତି; କ୍ଳାନ୍ତି—Fatigue.
Majarā ବିଣ—ଶ୍ରାନ୍ତ; କ୍ଳାନ୍ତ—Fatigued.
কাহিল थकावट, थका हुआ

ମଜଲ୍ (ଲି)—ବୈଦେ. ବି ( ଅ. ମଜଲ୍ )—୧ । ଦିନକର ଗନ୍ତବ୍ୟ
Majal(li) ବାଟ—1. One day's journey.
मजल ୨ । ଭ୍ରମଣ—2. Journey.

ମଜଲ(ଲି)ମୁଣ୍ଡ—ଦେ. ବି—୧ । ଭ୍ରମଣର ଶେଷ ସୀମା—1. The
Majala(li)munda end or last point or limit
রাস্তার শেষ সীমা मजलका शेष of a journey. ୨ ।
ଆରବ୍ଧ କର୍ମର ସମାପ୍ତି—2. The end of a work.

ମଜଲ(ଲି)ସ୍—ବୈଦେ. ବି ( ଅ. ମଜଲିସ୍ )—୧ । ନୃତ୍ୟ ଗୀତାଦିର
Majala(li)s ସଭା—1. A musical gathering.
(ମଜଲ[ଲି]ସି—ଅନ୍ୟରୂପ) ୨ । ସମାବେଶଯୁକ୍ତ ସଭା ବା ବୈଠକ -
मजलिस 2. A grand meeting or assemblage of
মজলিস people. ୩ । ଦରବାର; ରାଜସଭା—3. A king's court; darbar. ୪ । ପାରସ୍ୟର ରାଜ-
ସଭା—4. The royal court of Persia.
୫ । ଆମୋଦପ୍ରମୋଦ—5 Amusements. (ଦୃ—ବଡ଼ଲୋକମାନଙ୍କରେ ଘରଚଟିଆମାନଙ୍କର ମଜଲିସ ।

ଫଲ୍ଗାରମୋହନ. ଛମାଣ ଅଠଗୁଣ୍ଠ । ) ୬ । ସୁଖସ୍ୱାଚ୍ଛନ୍ଦ୍ୟ; ଅଯ୍ୟସ—6. Luxury; grand style of living.

ମଜ(ଝ)ଲି—ଦେ. ବ ( ସଂ. ମଧ୍ୟ )—ମାର୍ଗମଧ୍ୟସ୍ଥ ପାନ୍ଥନିବାସ—
Maja(jha)li A rest-shed for travellers along a road.
ଚଟି ଘର **सराइ**

ମଜଲି[ଲି]ସ(ସି) କରିବା—ଦେ. କ୍ରି - ମଉଜ କରିବା; ଆମୋଦରେ କାଳ
Majali[la]s(si)karibā କାଟିବା—To spend time in
ମଜଲିସ করা[জমান] **मजलिस जमाना** ease or amusement.
[ମଜଲିସ ଜମା(ମେ)ଇବା—ଅନ୍ୟରୂପ]

ମଜହର—ବୈଦେ. ବ, ପୁଂ (କଚରୁଅ) (ଫା)—ଅଦାଲତରେ ଆପତ୍ତି-
Majahara କାରୀ ବ୍ୟକ୍ତି—An objector in any proceeding in a court of justice.
মজহর **मजहर**
(ମଜହରୁ, ମଜହରଅ—ସ୍ତ୍ରୀ)

ମଜହରା(ର)ଲା—ଦେ. ବ ( କଚରୁଅ ) (ଫା)—ଆପତ୍ତିକାରୀର ବିପକ୍ଷ
Majaharā(ra)lā ପକ୍ଷ—The opposite party of an objector; a counter-objector.
মজহর আলা
**मजहरवाला**

ମଜା—ଦେ ବ ( ସଂ. ମୃଜ୍ ଧାତୁ=ମାର୍ଜନ )—୧ । ମାଜିବା; ମାର୍ଜନ
Majā କରିବା—1. Rubbing; polishing;scouring.
মাজা **माजना** (ଯଥା—ବାସନ ମଜା, ଅଳଙ୍କାର ମଜା, ଘଷାମଜା)
୨ । (ସଂ. ମଜ୍ଜା) ମଜ୍ଜା—2. Marrow.
মজা **मजा** ବୈଦେ ୧ । ( ଫା. ମଜା=ସ୍ୱାଦ) ମଉଜ, ସୁଖ, ଆନନ୍ଦ—1. Amusement; pleasure; delight.
୨ । ସୁଖଭୋଗ—2. Enjoyment. ୩ । ତାମସା—3. Amusements; sports; (ଉ—କରଇ ସେ କେତେ ରଙ୍ଗ କେତେ ମଜା ରାଧାନାଥ. ଦରବାର ।) ୪ । ନିଶ୍ଚିନ୍ତତା—4. Freedom from care ୫ । (ଆ
মজ্জা **मज्जा** ମଜାହ=ସ୍ୱାଦ)—5. Flavour; taste.
মজা ୬ । ଖାଦ୍ୟରେ ରୁଚି— 6. Relish. ୭ । (ଆ. ମଜାକ୍= ଥଟ୍ଟା) ଥଟ୍ଟା; ପରିହାସ—7. Jest; sport. ବଣ—୧ । ମାର୍ଜିତ—1.
মাজা **मंजा हुआ** Polished; scoured. ୨ । ମଜ୍ଜିତ; ମଗ୍ନ—2. Sunken.
মজা **मजा**

ମଜା(ଜେ)ଇବା—ଦେ. କ୍ରି—(ମାଜିବା କ୍ରିୟାର ଣିଜନ୍ତ ରୂପ—The
Majā(je)ibā causative form of Mājibā).
মাজান ୧ । ମାର୍ଜିତ କରାଇବା—1. To cause to be
**मंजवाना** polished or scoured, (ଉ—ଧରାଇଲା କରେ ମଜାଇ ଦରପଣ । କୃଷ୍ଣସିଂହ ମହାଭାରତ ବନ ।)
মজান ୨ । (ମଜ୍ଜିବାର ଣିଜନ୍ତ ରୂପ) ମଗ୍ନ କରାଇବା; ଆସକ୍ତ
**मुग्ध करना** କରିବା—2. To cause to sink; to cause to be addicted or attached.
(ଉ—ମଜାଇ ସେ ସୁଧା ହ୍ରଦେ । ମଧୁସୂଦନ. ସଙ୍ଗୀତମାଳା ।) ୩ । ମୁଗ୍ଧ କରିବା—3. To enchant.
(ଉ—ସ୍ୱର୍ଣ୍ଣ ଜନ ମନ ମଜାଇ ତୋର ଏଡ଼େ ଗୁମାନ । ରାଧାନାଥ. ଚନ୍ଦ୍ରଭାଗା ।)

ମଜା ଉଡ଼ା(ଡ଼େ)ଇବା—ଦେ. କ୍ରି—ଇନ୍ଦ୍ରିୟ ସୁଖଭୋଗ କରିବା, ସୁଖ
Majā urdā(rde)ibā ଉପଭୋଗ କରିବା—To enjoy sensual pleasures.
মজা উড়ান **मजा उडाना (लूटना)**
(ମଜା ଲୁଟିବା, ମଜା ମାରିବା—ଅନ୍ୟରୂପ)

ମଜାକ୍—ବୈଦେ. ବ —୧ । ( ଆ. ମଜା )ମଜା; ମଉଜ; ସୁଖ—
Majāk 1. Pleasure. ୨ । (ଆ.ମଜାକ) ଥଟ୍ଟା—2. Jest; sport.
মজা **मजाक**

ମଜା କରିବା—ଦେ. କ୍ରି—୧ । ମଉଜ କରିବା; ଇନ୍ଦ୍ରିୟାହ୍ଲାଦଜନକ ସୁଖ-
Majā karibā ଭୋଗ କରିବା—1. To enjoy sensual pleasures. ୨ । ଥଟ୍ଟା କରିବା—2. To play jokes.
মজা করা
**मजा करना**

ମଜା ଘଷା—ଦେ. କ୍ରି· (ସହଚର ଶବ୍ଦ ଦ୍ୱ ମାର୍ଜନ, ଘର୍ଷଣ)—ମାଜିବା ଓ
Majā ghashā ଘଷିବା—Act of rubbing and chafing.
মাজা ঘষা **मांजना घसना**

ମଜା ଚଖା(ଖେ)ଇବା—ଦେ. କ୍ରି—୧ । କୌଣସି ଦ୍ରବ୍ୟର ଆସ୍ୱାଦନର
Majā chakhā(khe)ibā ସୁଖଭୋଗ କରିବାକୁ ଅନ୍ୟ ବ୍ୟକ୍ତିକୁ
মজাচাখান ସୁବିଧା ଦେବା—1. To let one have a taste
**मजाचखना** of some sweet thing. ୨ । ( ବ୍ୟଙ୍ଗ୍ୟ ବା ଧମକ) କୁଫଳ ଭୋଗ କରାଇବା—2. (ironical) To cause one to taste the bitter result.

ମଜା ଚାଖିବା—ଦେ. କ୍ରି—୧ । ଉପଭୋଗ୍ୟ ବସ୍ତୁର ଆସ୍ୱାଦନ ସୁଖ
Majā chākhibā ଅନୁଭବ କରିବା—1. To taste the sweetness of an enjoyable thing.
মজাচাখা
**मजाचाखना** ୨ । ଅନୁଭବ କରିବା—2.To experience.
୩ । (ବ୍ୟଙ୍ଗ୍ୟ) କୁଫଳ ଭୋଗ କରିବା—3. (ironical) To suffer the bitter results of a thing.

ମଜାଟା ଦେଖିବା—ଦେ. କ୍ରି—୧ । କୌତୁକ ଦେଖିବା—1. To see
Majātā dekhibā the fun. ୨ । (କୌଣସି ବ୍ୟକ୍ତିର) ଦୁଃଖ
মজাটাদেখা ବା ଦୁର୍ଦ୍ଦଶା ଦେଖିବା—2. To witness the
**मजादेखना** (ମଜା ଦେଖିନେବା—ଅନ୍ୟରୂପ) adversity (of any one).

ମଜାଦାର—ବୈଦେ.ବଣ (ଅ ମଜେଦାର୍ )—
Majādār ୧ । ତୃପ୍ତିକର-1· Pleasant. ୨ । କୌତୁକଦାୟକ—
মজাদার **मजेदार** 2. Amusing.

ମଜା ଦେଖିବା—ଦେ. କ୍ରି—୧ । କୌତୁକ ବା ରଙ୍ଗ ଦେଖିବା—
Majā dekhibā 1. To see the fun of a thing.
মজাদেখা ୨ । ଅନ୍ୟମାନଙ୍କ ମଧ୍ୟରେ ବିବାଦ ଲାଗିଥିବା ଅବସ୍ଥାରେ
**मजादेखना** ସେମାନଙ୍କର ଦୁଃଖରେ ସୁଖ ଅନୁଭବ କରିବା—2. To feel pleasure or to enjoy while others are quarelling. ୩ । (ଧମକାଣ) କୌଣସି ବ୍ୟକ୍ତିକୁ ଉପଯୁକ୍ତ ଶିକ୍ଷା ଦେବା—3. (threat) To teach a person a lesson. ୪ । ଅନୁଭବ କରିବା—4. To experience.

ମଜା ଦେବା—ଦେ. କ୍ରି—ସୁଖ ଦେବା—To give pleasure.
Majā debā ମজা দেওয়া मजादेना

ମଜା ନେବା—ଦେ. କ୍ରି—୧ । ଆମୋଦ ଉପଭୋଗ କରିବା—
Majā nebā 1 To enjoy pleasures.
মজা লওয়া मजा लूटना
୨। କୌଣସି ସଉଜକୁ ଶେଷ ସୀମା ପର୍ଯ୍ୟନ୍ତ ଭୋଗ କରିବା-
2. To enjoy a thing to satiation; to drink the cup to the dregs.
(ମଜାଲୁଟିବା—ଅନ୍ୟରୂପ)

ମଜା ବାହାରିଯିବା—ଦେ. କ୍ରି—୧ । କୌଣସି କାର୍ଯ୍ୟର କୁଫଳ ଭୋଗ
Majā bāhārijibā କରିବା—1. Suffering the bitter
মজা বেরিয়ে যাওয়া effects of one's acts. ୨ । ଅନୁଭୂତ ସୁଖ
मजा निकल जाना ଓ ଶାନ୍ତିର ଲୋପ—2. Cessation of
(ମଜା ନିକ(ଳ)ଲିବା—ଅନ୍ୟରୂପ) one's peace and
[ମଜା ବାହାର କରିବା, ମଜା ନିକାଳିବା—କ୍ରିୟାରୂପ] happiness.

ମଜାମଜି—ଦେ. ବି—ଉତ୍ତମରୂପେ ମାଜିବା କ୍ରିୟା—
Majāmaji Act of rubbing thoroughly.
মাজামাজি मंजामंजि

ମଜାମୁଠା—ଦେ. ବି—ସ୍ତ୍ରୀଲୋକମାନଙ୍କର ଅଳଙ୍କାର ମାଜିବା ପାଇଁ
Majā muṭhā ବାଉଁଶବାଳରେ ବା ବେଣାଚେରର ଏକତ୍ର ବନ୍ଧା
মাজবার বুরুস ହୋଇଥିବା ଗୁଚ୍ଛ—A brush of pig's hair
कुची or khuskhus tied together and used as a brush for cleansing ornaments

ମଜାର କଥା—ଦେ. ବି—୧ । କୌତୁକଜନକ ବ୍ୟାପାର—1. An
Majāra kathā amusing matter. ୨ । ଆଶ୍ଚର୍ଯ୍ୟଜନକ
(ମଜାର ବିଷୟ—ଅନ୍ୟରୂପ) ବିଷୟ—2. A wonderful thing
মজারকথা ୩ । ଅତି ଉତ୍କୃଷ୍ଟ ବିଷୟ—3. An excellent
मजेकीबात thing.

ମଜାର ଗପ(ପ୍ପ,ଲ୍ପ)—ଦେ. ବି—୧ । କୌତୁକପ୍ରଦ ଗଳ୍ପ—1 An
Majāra gapa[ppa,lpa] amusing story, a
মজারগপ मजेकीगप romantic story.

ମଜି(ଜ୍ଜି)ବା—ଦେ. କ୍ରି (ସଂ. ମସଜ୍ ଧାତୁ=ମଗ୍ନ ହେବା, ଗାଧୋଇବା)-
Maji(jji)bā ୧ । ମଗ୍ନ ହେବା; ବୁଡ଼ିବା;ଡୁବିବା;ନିମଜ୍ଜିତ ହେବା
মজা —1. To sink; to dive. ୨ । ଅନ୍ୟର ପ୍ରେମରେ ବା
मजना ଅନୁରାଗରେ ମଗ୍ନ ହୋଇ ଆତ୍ମବିସ୍ମୃତ ହେବା—
2. To be absorbed in love or attachment. ୩ । ଆସକ୍ତ ହେବା—3. To be attached to. ୪ । ମୁଗ୍ଧ ହେବା—4. To be enchanted by; to be charmed by.

ମଜୁତ(ଦ)—ବୈଦେ. ବିଣ (ଅ. ମୌଜୁଦ୍) (ବଚରଥ)—
Majut[d] ୧ । ବର୍ତ୍ତମାନ—1. Present. ୨ । ପ୍ରସ୍ତୁତ—
(ମଅଜୁତ, ମଉଜୁତ—ଅନ୍ୟରୂପ) 2. Ready; at hand. ୩ ।
মজুদ[ৎ] ଜମାଥିବା; ଗଚ୍ଛିତ; ନଗଦ—3. In cash;
मौजुद treasured. ବି—ନଗଦ ଧନ—Cash.

ମଜୁତ କରିବା—ଦେ. କ୍ରି (ବଚରଥ)—୧ । ଜମା ରଖିବା—
Majut karibā 1. To deposit. ୨ । ପ୍ରସ୍ତୁତ ରଖିବା—
মজুতকরা मौजुदकरना 2. To keep ready.

ମଜୁତି(ଦି)—ବୈଦେ. ବିଣ (ଅ. ମୌଜୁଦ୍) (ବଚରଥ)—ଗଚ୍ଛିତ
Majuti[di] ରଖାଯାଇଥିବା—Kept ready; kept as
মজুদী मौजुद cash; treasured.

ମଜୁମଦାର—ବୈଦେ (ଫା. ମଜମୁଅଦାର୍=ରାଜସ୍ୱର ହିସାବ ରକ୍ଷକ)—
Majum-dār ପ୍ରାଦେ (ଗଞ୍ଜାମ) ବି—ରାଜସ୍ୱର ହିସାବରକ୍ଷକ
মজুমদার କର୍ମଚାରୀଙ୍କୁ ଦିଆଯିବା ରାଜଦତ୍ତ ଉପାଧିବିଶେଷ—A title bestowed by kings on certain revenue accountants. ଦେ.ବି—ବଙ୍ଗୀୟ ବ୍ରାହ୍ମଣାଦିଙ୍କ ଉପାଧିବିଶେଷ—A family title of Bengalee Brahmanas and others.

ମଜମୁନ୍—ବୈଦେ. ବି (ଫା) (ବଚରଥ)—୧ । ମସୁଦା; ଚିଠା—
Majamun 1. Draft. ୨ । ଆଲୋଚିତ ବା ଲିଖିତ ବିଷୟ—
মজমুন 2. Subject matter of a discourse or
मजमून writing.

ମଜୁର(ରୁ)—ବୈଦେ. ବି (ଫା. ମଜ୍‌ଦୁର୍)—ଶ୍ରମଜୀବୀ; ମୂଲିଆ—
Majura(r) A day labourer. ପ୍ରା.ବି (ସଂ.ମୟୂର)—ମୟୂର—
মজুর मजदुर; मजुर मजूर Peacock.

ମଜୁର(ରି)ଦାର—ବୈଦେ. ବି (ଫା)—ମୂଲିଆ—
Majur[ri]dār Day labourer.
মজুরদার, রোজমজুর, मजदुर, मजुर

ମଜୁରା—ବୈଦେ. ବି (ଅ. ମୁଜରା)—ପୂର୍ବରୁ ଦିଆଯାଇଥିବା ଧନକୁ
Majurā ପରେ ହିସାବ ସମୟରେ କାଟିବା ବା ଭରଣା ଦେବା
মজুরা —Accounting for or setting off
मु(मो)जरा money paid before; a set-off. ପ୍ରାଦେ.
मुजरा (ଗଡ଼ଜାତ) (ଅ. ମୁଜରା)—ରାଜାଙ୍କୁ କରାଯିବା ପ୍ରଣାମ ବା ଅଭିବାଦନ—Obeisance made to a king. (ଉ—ମଜୁରା କରି ବିଜୁମ ଯାଇ ସାନ୍ତ ସକୁର, ବୃନ୍ଦାବନ ସମ୍ବଳରଙ୍କ ।) [ଦ୍ର—ସାଧାରଣ ପ୍ରଣାମ ଅପେକ୍ଷା ପ୍ରକାର ରାଜାଙ୍କୁ କରିବା ପ୍ରଣାମ ବା 'ମଜୁରା'ର ପ୍ରଭେଦ ଅଛି । ମଜୁରା କରିବା ଲୋକ ଅଗ କରି ମୁଣ୍ଡକୁ ତଳେ ଲଗାଏ । ପରେ ଆପଣା ହାତକୁ ମୁଣ୍ଡରେ, ବେକରେ, ଓ ପେଟରେ ଛୁଆଁଏ । ଏଥିର ଅର୍ଥ ଏହି କି ଏ ମୁଣ୍ଡ ଶ୍ରୀମୁଙ୍କର ଏ ବେକ ଶ୍ରୀମୁଙ୍କର ଅଟେ ଓ ଏ ପେଟ ଶ୍ରୀମୁଙ୍କ ଅନ୍ନରେ ପାଳିତ ହେଉଅଛି ।]

ମଜୁରା କରିବା—ଦେ. କ୍ରି—ପୂର୍ବଦତ୍ତ ଧନକୁ ହିସାବରେ ଭରଣା କରିବା
Majurā karibā —To set off previous payments.
মজুরা করা ପ୍ରାଦେ (ଗଡ଼ଜାତ)—ରାଜାଙ୍କୁ ପ୍ରଣାମ କରିବା—
मुजरा करा To bow before a king.

ମଜୁରା ଦେବା—ଦେ. କ୍ରି—ହିସାବ ନିକାଶ ହେବାବେଳେ ପୂର୍ବରୁ ପ୍ରଦତ୍ତ
Majurā debā ଧନକୁ ହିସାବରେ ଧରିବା—To grant a

মজুরা দেওয়া person a set off for previous
मुजरा देना payments made by him.

**ମଜୁରା ନେବା**—ଦେ. କ୍ରି—ହିସାବ ଫଇସଲା ହେବା ସମୟରେ ଆପଣାଦ୍ୱାରା
Majurā nebā ପୂର୍ବପ୍ରଦତ୍ତ ଧନକୁ ଭରଣା ପାଇବା—
ମଜୁରା ପାଇବା } ଅନ୍ୟରୂପ To get a set off for one's
ମଜୁରା କଟେଇବା } previous payments.
মজুরা পাওয়া मुजरा लेना

**ମଜୁରି**—ଦେ. * ବି ( ପା. ମଜଦୁରୀ )—ମୂଲ; ପାରିଶ୍ରମିକ—
Majuri মজুরি मजदूरी; मजुरि Wages.

**ମଜୁରିଆ**—ଦେଶୀ. ବି ( ପା. ମଜଦୂର )—ମୂଲିଆ—Day
Majuriā labourer; a hired man; a labourer.
মজুর मजदूर

**ମଜୁରି ଖ(ଖା)ଟିବା**—ଦେ. କ୍ରି—ମୂଲ ଲାଗିବା; ମଜୁରି ପାଇଁ କାର୍ଯ୍ୟ
Majuri kha(khā)ṭibā କରିବା—To work as a day
মজুর খাটা मजदूरी खटना labourer; to work for
(ମଜୁରିଲାଗିବା—ଅନ୍ୟରୂପ) wages

**ମଜୁଶି**—ଦେଶୀ. ବି (ଆ)—ଅଗ୍ନି ଉପାସକ ପାରସୀ ଜାତି—The
Majuśi मजुसी Parsees who worship the fire.

**ମଜେଜା**—ଦେଶୀ. ବି ( ଅ )—ପୟଗମ୍ବରଙ୍କର ଅସାଧାରଣ କ୍ଷମତା-
Majejā ଜନିତ କାର୍ଯ୍ୟମାନ; କରାମତ—Miracles per-
কেরামত करामाती formed by God or prophets.

**ମଜ୍ଜ୍** (ଧାତୁ)—ସଂ—ବୁଡ଼ିବା; ମଗ୍ନ ହେବା—To dive; to sink;
Majj (root) to plunge in water.
[ମସଜ୍(ଧାତୁ)—ଅନ୍ୟରୂପ]

**ମଜ୍ଜନ(ଥ)**—ସଂ. ବି ( ମସଜ୍ ଧାତୁ=ମଗ୍ନ ହେବା+ଭାବ. ଅନ; ଅଥ )
Majjana(tha) ୧ । ମଗ୍ନ ହେବା; ବୁଡ଼ିବା—1. Act of
sinking; plunging. ୨ । ଅବଗାହନ—2.
Immersion ୩ । ମଜ୍ଜା-3 Marrow.

**ମଜ୍ଜନୋନ୍ମୁଖ**—ସଂ. ବିଣ ପୁଂ (୭ମୀ ତତ୍; ମଜ୍ଜନ+ଉନ୍ମୁଖ)—ଯେ ବୁଡ଼ି
Majjanonmukha ଯାଉଅଛି—Sinking; about to
(ମଜ୍ଜମାନ—ଅନ୍ୟରୂପ) (ମଜ୍ଜନୋନ୍ମୁଖୀ—ସ୍ତ୍ରୀ) sink down.

**ମଜ୍ଜଫଳ**—ସଂ. ବି—ମାଜୁ ଫଳ—Oak galls; gall nuts.
Majjaphala [ ଦ୍ର—ପ୍ରକୃତରେ ଏହା ଫଳ ନୁହେଁ ।
ଅନ୍ୟ ସଂ. ନାମ— ଏକ ପ୍ରକାର ପୋକ ପଶ୍ଚିମଦେଶୀୟ ଓକ୍
କୀଟାବାସ, କୀଟରେଖା ନାମକ ବୃକ୍ଷବିଶେଷର କୋମଳ ଶାଖାରେ
মাজুফল ସୂକ୍ଷ୍ମ ଛିଦ୍ର କରି ତା ମଧ୍ୟରେ ଡିମ୍ବ ପାରନ୍ତି
माजुफल ସେହି ଛିଦ୍ରବାଟେ ଗଛରୁ ଅଠା ବାହାରି
ଗୁ. ମାଂଯୂ ଛିଦ୍ର ମୁଖରେ ଗୁଆପରି ଆବୁମାନ ଜମି
ମ. ମାୟୂଫଳ ଯାଏ । ଯଥାସମୟରେ ସେହି ଅବୁ-
ପା. ମାଜୁଫ, ମାଜୁ ଗୁଡ଼ିକ ଫୁଟାଇ ପୋକମାନ ସେହି କଣା
ଆ. ଅପ୍ସ, ସମରଉଲ ବାଟେ ବାହାରି ଯାଆନ୍ତି । ସେହି
ଭୂଉପା ଗୁଆ ଆକୃତି ବର୍ଣ୍ଣିଷ୍ଟ ଜମାଟ ଅଠାକୁ
ମାଜୁଫଳ ବୋଲାଯାଏ ଓ ଏହା ଔଷଧରେ ଲାଗେ; ଏହା
ହରିଡ଼ା ଅପେକ୍ଷା ବେଶି କଷା, ବୈଦ୍ୟକ ମତରେ ଏହା
ଗ୍ରାହୀ, ବଳକର, ଜ୍ୱରଘ୍ନ ଓ ଉତ୍କୃଷ୍ଟ ରୋଧକ । ଏହା ମୁଖ
ଓ ଦନ୍ତରୋଗ, ଶ୍ୱେତ ପ୍ରଦର, ଅର୍ଶଃ, ଯୋନିକନ୍ଦ, ଅତିସାର
ଗ୍ରହଣୀ ଓ ପ୍ରବାହିକା ରୋଗନାଶକ । ]

**ମଜ୍ଜା**—ସଂ. ବି ( ମଜ୍ଜ ବା ମସଜ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ; ଏହା ଅସ୍ଥି
Majjā ଭିତରେ ମଗ୍ନ ଥାଏ ବୋଲି )—୧ । ହାଡ଼ରସା ଅସ୍ଥି
ମଧ୍ୟରେ ଥିବା ଚିକ୍କଣ ପଦାର୍ଥ—1. Marrow. ୨ ।
ବୃକ୍ଷର ରସ—2. Sap. ୩ । ବୃକ୍ଷର ମଞ୍ଜ-3. The
pith of a tree. ଦେ. ବି—୧ । ( ଲକ୍ଷଣାର୍ଥ )—
ଅନ୍ତଃସ୍ଥଳ—1. ( figurative ) Inside. ୨ ।
ଅନ୍ତରତମ ପ୍ରଦେଶ—2. Innermost place. ୩ ।
ହୃଦୟ; ମନ; ଅନ୍ତଃକରଣ—3. Heart; mind.
( ଉ—କେବଳ ହେଲା ମୋ ମଜ୍ଜା ମଜ୍ଜିଯିବ ଉଭା ରତିରେ ।
କବିସୂର୍ଯ୍ୟ. କିଶୋରଚନ୍ଦ୍ର କ. ଗୀତ । ) ୪ । ଇଚ୍ଛା—
4. Wish; desire. ( ଉ—ଦମୟନ୍ତୀ ପାଶକୁ
ଯିବାକୁ କଲେ ମଜ୍ଜା । କୃଷ୍ଣସିଂହ. ମହାଭାରତ, ବନ । )
୫ । ମନୋଗତ ଭାବ—5. Intention; motive.
( ଉ—ଆଜି ଆସି କହିଲେ ମୋତେ ନଳ ରଜା, ଅର୍ଣ୍ଣି-
ଦେଲେ ଜାଇଁକି ଏ ମୋହର ମଜ୍ଜା । କୃଷ୍ଣସିଂହ.
ମହାଭାରତ, ବନ । ) ଦେଶୀ. ବି ( ପା. ମଜା )—
୧ । ମଉଜ; ସୁଖ; ଆନନ୍ଦ—1. Pleasure. ୨ । ସୁଖ-
ଭୋଗ—2. Enjoyment of pleasure. ୩ ।
କୌତୁକ—3. Amusement.

**ମଜ୍ଜା(ଜ୍ଜେ)ଇବା**—ଦେ. ବି ( ମଜ୍ଜିବାର ଣିଜନ୍ତରୂପ )—୧ । ନିମଜ୍ଜିତ
Majjā(jje)ibā କରିବା—1. To cause to sink. ୨ ।
মজান ମୁଗ୍ଧ କରିବା—2. To enchant; to charm.
मजाना ( ଉ—ନବ ରମଣୀମଣି ବେଣୀ ନର୍ତ୍ତକୀ, ନର୍ତ୍ତନେ
ଚିତ୍ତ ମଜ୍ଜାଇବି । ଭଞ୍ଜ. ପ୍ରେମସୁଧାନିଧି । ) ୩ ।
ପ୍ରେମରେ ଆସକ୍ତ ବା ଆବଦ୍ଧ କରିବା—3. To enchain
by ties of attachment.

**ମଜ୍ଜାଗତ**—ସଂ. ବିଣ ( ୨ୟା ତତ୍ )—୧ । ଅନ୍ତର୍ନିହିତ—1. Situate
Majjāgata inside. ୨ । ଶରୀରର ଧାତୁଗତ—2.
Constitutional. ୩ । ଦୃଢ଼ ସମ୍ବନ୍ଧ—3.
Inseparately connected; forming an
integral part of.

**ମଜ୍ଜାଗତ ଶରଦ(ଦି)**—ଦେ. ବି—ମନୁଷ୍ୟର ଦେହସ୍ୱଭାବର ବା ଧାତୁର
Majjāgata śarada(di) ଗୁଣରୁ ଯେଉଁ ଶରଦି ଧରିଥାଏ (ଯାହା
[ମଜ୍ଜାଗତଶ୍ଳେଷ୍ମ(ଷ୍ମା)—ଅନ୍ୟରୂପ] ବାହ୍ୟ ଔଷଧାଦି ପ୍ରୟୋଗରେ
মজ্জাগতশর্দি ସହଜରେ ଛାଡ଼େ ନାହିଁ)—Cold which
मज्जागतशर्दी attacks a person due to some
constitutional peculiarity; a persistent
attack of cold.

**ମଜ୍ଜାରସ**—ସଂ. ବି ( ୬ଷ୍ଠୀ ତତ୍ )—ରେତଃ; ଶୁକ୍ର—
Majjārasa Semen.

ମଜ୍ଜାସାର—ସ. ବ ( ବହୁବ୍ରୀହି )—ଜାଇଫଳ—
Majjāsāra		The nutmeg.

ମଜ୍ଜିତ—ସ. ବଣ ( ମଜ୍ଜ ବା ମସଜ୍ ଧାତୁ+କର୍ତ୍ତୃ. ତ )—ମଗ୍ନ—
Majjita	Sunken; drowned. [ ଦ୍ର—ଏହି ଶବ୍ଦ 'ନି' ଉପସର୍ଗ ସଙ୍ଗେ ମିଶି ନିମଜ୍ଜିତ ରୂପରେ ସାଧାରଣତଃ ବ୍ୟବହୃତ ହୁଏ । ]

ମଜ୍ଜିବା—ଦେ. କ୍ରି ( ସ. ମଜ୍ଜ ଧାତୁ )—ମଜିବା ( ଦେଖ )—Majibā
Majjibā	( See ) ( ଉ—ପିତାମହ ସବରେ ଯେ ଜନ ମଜା	ମଜ୍ଜଇ, ସବୁର ମନଲୁଟି ଜାଣ ସେ ରଞ୍ଜଇ । କୃଷ୍ଣସିଂହ,
ମଜନା	ମହାଭାରତ, ବନ । )

ମଜ୍ଜି ଯିବା—ଦେ. କ୍ରି (ସ. ମଜ୍ଜଧାତୁ)—୧ । ମଜ୍ଜିତ ହେବା—1 To
Majji jibā	be sunk; to be drowned. ୨ । ଦୃଢ଼-
ମଜେଯাওয়া **मज जाना**	ରୂପେ ନିଯୁକ୍ତ ହେବା—2 To be closely engaged. (ଉ—କେବଳ ହେଲ୍ଲ ମୋ ମଜ୍ଜା । ମଜ୍ଜି ଯିବ କ ହୃଦ ରଙ୍ଗରେ । କବିସୂର୍ଯ୍ୟ. ବଳଦେବରଥ, କ. ଗୀତ । ) ୩ । ଅତି ମୁଗ୍ଧ ବା ଆସକ୍ତ ହେବା—
3. To be attached or addicted to.

ମଝଲ୍—ପ୍ରାଦେ. (ସମ୍ବଲପୁର) ବଣ.—(ସ. ମଧ୍ୟ)—ମଧ୍ୟଭଳ; ଦୁଇ
Majhal	ଶ୍ରେଣୀର ମଧ୍ୟ ସ୍ଥାନୀୟ—Medium; of the middle class.

ମଝଲ(ଲି) ରୂପ—ପ୍ରାଦେ. (ସମ୍ବଲପୁର) ବ—ହଳଦି ରଙ୍ଗର ଥଣ୍ଟଯୁକ୍ତ
Majhal(li)rūpa	ଶୁଆ—Yellowish-beaked parrot.

ମଝ(ଝି)ଲା—ଦେ. ବଣ. (ସ. ମଧ୍ୟ)—୧ । ମଧ୍ୟରେ ସ୍ଥିତ—
Majha(jhi)lā	1. Situated in the middle. ୨ ।
মাঝের, মেজো	**मझोला, मझला**	ମଝିଆଁ—2 Intermediate.

ମଝା—ଦେ. ବ. ( ସ. ମଧ୍ୟ. ପ୍ରା. ମଜ୍ଝ )—୧ । ମଧ୍ୟଭାଗ—
Majha	1. The middle. ୨ । କଟି—2, Waist.
মাঝা (ଉ—ମଝା ହିଁ ଉପରେ ବାନ୍ଧିବନକସ୍ତି, ବ୍ରେସେ ଉଠି ବେକନ
**डाँड**	ଝୁମ୍ପ ଅଛି କ ଦୁଃଖର, ଶିଶୁଶଙ୍କର—ଉଷା ଅଭିଳାଷ । )
ପ୍ରାଦେ (ସମ୍ବଲପୁର) ବଣ—ମଧ୍ୟରେ ସ୍ଥିତ—
Situated in the middle.

ମଝା ଖୁଲି—ପ୍ରାଦେ (ସମ୍ବଲପୁର) ବ—ମଝିଦାଣ୍ଡ; ରାସ୍ତାର ମଧ୍ୟଭାଗ —
Majhā khuli		The middle of the road.

ମଝା ମଝି—ଦେ. କ୍ରି. ବଣ—୧ । ମଧ୍ୟସ୍ଥଳରେ—1, In the
Majhā majhi	মাঝা মাঝি **मझा मझि**	middle.
(ମଝିଆ ମଝି—ଅନ୍ୟରୂପ) ୨ । ମଧ୍ୟ ଭାବରେ—2. Moderately.
୩ । ମଝି ବାଟରେ—3. Half way.

ମଝାଲ—ଦେ. ବ—( ସ. ମଧ୍ୟ )—ମଧ୍ୟସ୍ଥଳ—The middle.
Majhāla	মাঝালি **मञ्झ**	ବଣ—ମଧ୍ୟଭାବର—
মাঝারি **मझला**	Middling; of moderate size.

ମଝାଲି—ପ୍ରାଦେ. (ବାଲେଶ୍ୱର) ବ—ଥୋଡ଼ିର ପଲାଣ ଦ୍ୱୟର ମଝିରେ
Majhāli	ଥିବା ଦଉଡ଼ି—The string in the middle of the two packs of a pack-saddle.

ମଝି—ଦେ. ବ—(ସ. ମଧ୍ୟ, ପ୍ରା. ମଜ୍ଝ)—୧ । ମଧ୍ୟଭାଗ—1. The
Majhi	মাঝ **बिच; मञ्झ**	middle. ୨ । ମଧ୍ୟସ୍ଥଳରେ ଥିବା ବ୍ୟକ୍ତି—2. A person who is in the middle. (ଉ—'ଅଗ, ସୁନା ସାଗ; ମଝି ମର୍ଦ୍ଦଗାଜା, ପଛ ଗୁହପୋଛ' । ଶିଶୁଗୀତ ।) ବଣ—୧ । ମଧ୍ୟଭାଗରେ ସ୍ଥିତ—1. Situate in the middle; middlemost. ୨ । ଦୁଇର ମଧ୍ୟରେ ଅବସ୍ଥିତ—
2. Intermediate.

ମଝିଆ—ଦେ. ବଣ—ମଝିଆଁ (ଦେଖ)—Majhiān (See)
Majhiā	ପ୍ରାଦେ.—(ସମ୍ବଲପୁର) ବ—୧ । ମାଝି; ମାଛ ଧରିବା ଓ ନୌକା ଚଳାଇବା ବ୍ୟବସାୟରେ ନିଯୁକ୍ତ କେଉଟ ଜାତିବିଶେଷ—1. A caste of fishermen and boatmen. ୨ । ନୌଚାଳକ—2. Boatman.

ମଝିଆଁ—ଦେ. ବଣ. ପୁଂ (ସ. ମଧ୍ୟମ, ପ୍ରା. ମଜ୍ଝିଅ)—୧ । ମଧ୍ୟମ—
Majhiān	মেজ, মেজো	1. Intermediate.
**बिचला, मझला** ୨ । ଜ୍ୟେଷ୍ଠ ଓ କନିଷ୍ଠର ମଧ୍ୟବର୍ତ୍ତୀ (ସନ୍ତାନ)—
(ମଝିଆଣୀ—ସ୍ତ୍ରୀ)	2. ( child ) Born between the eldest and the youngest. ( ଯଥା—ମଝିଆଁ ପୁଅ ।)

ମଝିଆଣୀ—ଦେ. ବଣ. ସ୍ତ୍ରୀ—ମଝିଆ ର ସ୍ତ୍ରୀଲିଙ୍ଗ—Feminine of
Majhiāṇi	Majhiān. ପ୍ରାଦେ (ସମ୍ବଲପୁର) ବ. ସ୍ତ୍ରୀ—ମଝିଆ
মেজো; **मझली**	ଜାତୀୟା ସ୍ତ୍ରୀ—A female of the 'Majhiā' caste of Sambalpur.

ମଝି ଘର—ଦେ. ବଣ—ଦୁଇ ଘରର ମଧ୍ୟରେ ଥିବା ଘର—The
Majhi ghara	middle room. [ଦ୍ର—ଏହିପରି ମଝିକୋଠରି, মাঝেরঘর; **मझलाघर**	ମଝି କୋଠରି, ମଝି କବାଟ, ମଝି ଖଣ୍ଡା, ମଝି ଅଗଣା, ମଝି ଦାଣ୍ଡ ପ୍ରଭୃତି ଶବ୍ଦମାନ ହୁଏ ।]

ମଝିତନ—ଦେ. ବଣ (ସ. ମଧ୍ୟତନ)—ମଧ୍ୟସ୍ଥ—Middle; situate
Majhitana		in the middle.

ମଝି ଦରିଆ—ଦେ. ବ—୧ । ସମୁଦ୍ରର ମଧ୍ୟଭାଗ; ସମୁଦ୍ରର ଗଭୀରତମ
Majhi daria	ପ୍ରଦେଶ—1. The deep sea; the mid-
মাঝদরিয়া **बीचदरिया**	ocean. ୨ । (ଲକ୍ଷଣାର୍ଥ) ଘୋର ବିପଦ—2. (Figurative) Great danger.

ମଝି ଦରିଆକୁ ପେ(ଠେ)ଲିଦେବା—ଦେ.କ୍ରି—(ଲକ୍ଷଣାର୍ଥ)—କୌଣସି
Majhidariāku pe(the)lidebā ବ୍ୟକ୍ତିକୁ ନିରାଶ୍ରୟ ବା କିଂକର୍ତ୍ତବ୍ୟ
মাঝদরিয়ায় ঠেলে দেওয়া	ବିମୂଢ଼ କରି ବିପଦକୁ ପେଲିଦେବା—
**मझधारमे छोडना**	To drive a person in a helpless or bewildered condition into extreme danger.
ମଝି ନଈକୁ ପେଲି ଦେବା } ଅନ୍ୟରୂପ
ମଝିନଈରେ ଭସା(ଏ)ଇ ଦେବା }

ମଝିଦାଣ୍ଡ—ଦେ. ବ—ଦାଣ୍ଡର ମଧ୍ୟ ଭାଗ—The middle of the
Majhi dāṇḍa	road. [ଉ—ମଝି ଦାଣ୍ଡରେ ପଡ଼ି ସାଇଥିବେ
রাস্তার মাঝ; মাঝ রাস্তা	ଗଡ଼ି । କୃଷ୍ଣସିଂହ, ମହାଭାରତ, ବନ ।]
**बीचरास्ता; मझरास्ता**

ମଝି ନଈ—ଦେ.ବି—ନଦୀର ମଧ୍ୟସ୍ଥଳ—The middle of a river.
Majhi naī [ଉ—ଦଦରା ଡଙ୍ଗା, ମଝି ନଈରେ ଦେଲୁ
ନদীর মাঝখান; মঝধার (ମଝିଧାର—ଅନ୍ୟରୂପ) ଦଗା । ଛଗ ।]

ମଝିମଝିକା(ଆ)— ଦେ. ବିଣ (ସହରର ଶବ୍ଦ)—୧ । ମଧ୍ୟଭାଗ ସ୍ଥିତ—
Majhi majhikā(ā) 1. Situated in the middle;
মাঝামাঝি; মঝোলা intermediate. ୨ । ଯେ ଦୁଇ ବିପରୀତ ମତ
(ମଝି ମଝିକିଆ— ଅନ୍ୟରୂପ) ମଧ୍ୟରୁ କୌଣସି ଗୋଟିଏ ମତକୁ
ଦୃଢ଼ କରି ନ ଧରେ—2. Not firmly holding
either of the 2 extreme views in a matter. [ଉ—ସଂସାରେ ମୂଢ଼ ଯେଉଁ ଜନ, ଯେବା ଈଶ୍ୱରେ
ଦୃଢ଼ ମନ । ଏ ବେନି ସଂସାରୁ ତରନ୍ତି । ମଝି ମଝିକା ନାଶ
ଯାନ୍ତି । ଜଗନ୍ନାଥ. ଭାଗବତ । ଦୃଢ଼େ ତରନ୍ତି, ମୂଢ଼େ
ତରନ୍ତି, ମଝି ମଝିକିଆ ବୁଡ଼ି ମରନ୍ତି — ଢଗ ।]

ମଝିସିଆଁ—ଦେ. ବିଣ—( ସଂ. ମଧ୍ୟସ୍ୟୂତ ) ଦୁଇଖଣ୍ଡ (ଲୁଗା ଆଦି)ର
Majhisiāṅ ଧାଡ଼ିରେ ସିଲାଇ ହୋଇଥିବା—Sewn by
মাঝখানে সেলাইকরা joining the edges of two
बीचसिलाहुआ pieces of cloth. (ଉ—ମୁଣ୍ଡରେ ମଝିସିଆଁ
ଛପ୍ପଲିଆ ରଙ୍ଗମୀ ବନ୍ଧା । ଫକୀରମୋହନ.ଛମାଣ ଆଠଗୁଣ୍ଠ ।)

ମଞ୍ଚ (ଧାତୁ )—ସଂ.—ଉଚ୍ଚ ହେବା—To be high.
Mañch (root) [ମଚ୍ଚ (ଧାତୁ) —ଅନ୍ୟରୂପ]

ମଞ୍ଚ—ସଂ. ବି—( ମଞ୍ଚ ଧାତୁ+କର୍ତ୍ତୃଅ; )—୧ । ଖଟ—
Mañcha 1. Bedstead. ୨ । ମଞ୍ଚା; ଭାଡ଼—
(ମଞ୍ଚକ—ଅନ୍ୟରୂପ) 2. A scaffolding; a stage. ୩ । ବେଦୀ;
ମଣ୍ଡପ—3. A platform; a pulpit. ୪ । ଉନ୍ନତ
ସ୍ଥାନ—4. An elevated place. ଦେ. ବି.
মর্ত্যলোক (ସଂ. ମର୍ତ୍ତ୍ୟ)—ମର୍ତ୍ତ୍ୟଲୋକ; ପୃଥିବୀ—The earth.
मर्त्त्यलोक [ଉ—ଜଳପାନ ଦେଇ ଯେ କରିଏ ସ୍ତୁତିବାଦ ।
ସେ ପୁଣି ଅଛି ଥରେ ନ ଦେଖେ ଆସି ମଞ୍ଚ ।
କୃଷ୍ଣସିଂହ. ମହାଭାରତ. ବନ ।]

ମଞ୍ଚ ଖଣ୍ଡ—ଦେ. ବି— (ସଂ. ମର୍ତ୍ତ୍ୟଖଣ୍ଡ)—ମର୍ତ୍ତ୍ୟମଣ୍ଡଳ; ପୃଥିବୀ —
Mañcha khaṇḍa The earth. (ଉ—ଅନନ୍ତ ଅଂଶୁ ଏ
মর্ত্যখণ্ড मर्त्त्य मण्डल ବ୍ରହ୍ମାଣ୍ଡ, ସ୍ୱର୍ଗ ପାତାଳ ମଞ୍ଚଖଣ୍ଡ ।
ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା ।)

ମଞ୍ଚ ଛଡ଼ା(ଡ଼େ)ଇବା— ଦେ. କ୍ରି—(ଲକ୍ଷଣାର୍ଥ)—ହତ କରିବା; ମାରି
Mañcha chhaṛā(ṛe)ibā ପକାଇବା—To kill.
সংসার থেকে বিদায় করা ( ଉ— ଧୃଷ୍ଟଦ୍ୟୁମ୍ନ ସେ ହାତିକୁଳକୁ
मर्त्त्य छोड़ाना ନାଶିତ, ବୋଇଲେ ଛଡ଼ାଇବା ପାଇଁ ଗୃହ ମଞ୍ଚ !
କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।)

ମଞ୍ଚପୁର(ରୀ)—ଦେ. ବି (ସଂ. ମର୍ତ୍ତ୍ୟପୁର )—ମର୍ତ୍ତ୍ୟମଣ୍ଡଳ; ମର୍ତ୍ତ୍ୟପୁର—
Mañchapura(rī) The terrestrial globe; the earth.
ମଞ୍ଚମଣ୍ଡଳ, ମଞ୍ଚଭୁବନ, ମଞ୍ଚଲୋକ — ଅନ୍ୟରୂପ
ଉ—ସକଳ ରିଭୁଙ୍କର ସାର
ଶସ୍ୟ ସମ୍ପଦ ମଞ୍ଚପୁର
ଜଗନ୍ନାଥ. ଭାଗବତ ।)
মর্ত্যমণ্ডল मर्त्त्यमण्डल

ମଞ୍ଚା —ଦେ. ବି—( ସଂ. ମଞ୍ଚ )—୧ । ଉଚ୍ଚ ଭାଡ଼—1. A high
Mañchā scaffolding. (ଉ—ମଞ୍ଚାରୁ ପଡ଼ି ମାମୁ ମଲ୍ଲ, ମରେହିଁ
মাচা, মাচন ଦଇବ ରକ୍ଷିଲ । ଜଗନ୍ନାଥ. ଭାଗବତ) । ୨ । ଫସଲ
मचान ଜଗିବା ପାଇଁ ବିଲରେ କରାଯିବା ଭାଡ଼—
A scaffolding raised in the field to
watch the crops ୩ । ବନ୍ୟ ଜନ୍ତୁ ଶିକାର କରିବା
ପାଇଁ ବଣରେ ବନ୍ଧା ଯାଇଥିବା ଭାଡ଼—3. A machan;
a high platform raised in the forest for
seating the hunters

ମଞ୍ଚା(ଚା,ଞ୍ଚେ,ଚେ)ଇବା—ଦେ. କ୍ରି—ଟିହାଇବା; ଉତ୍ତେଜିତ କରିବା;
Mañchā(chā,ñche,che)ibā লাগান মতାଇବା—
To instigate; to incite.

ମଞ୍ଚାଳନ—ଦେ. ବି— (ସଂ. ମର୍ଦ୍ଦନ)—୧ । ସମ୍ବାହନ; ଘଷିବା;ଚପିବା—
Mañchāḻana 1. Chafing with the hands.
টেপা दवाना, चापना (ଯଥା—ପାଦ ମଞ୍ଚାଳନ) । ୨ । ମନ୍ଥନ—
মুথান मथना 2. Churning.

ମଞ୍ଚା(ଚା)ଳିବା—ଦେ. କ୍ରି—୧ । (ପାଦ) ସମ୍ବାହନ କରିବା; ଘଷିବା—
Mañchā(chā)ḻibā 1. To chafe or rub with the
টেপা hands; to shampoo. ୨ । ହାତରେ ଚପିବା—
चापना 2. To press with the hands. (ଉ—ବିଶ୍ୱଶୀପାଦ
মোহা ମଞ୍ଚାଳି ଶୂଳ । ଭଞ୍ଜ. ପ୍ରେମସୁଧାନିଧି) । ୩ । ମନ୍ଥିବା—
मुथाना 3. To churn. ୪ । ଦୁଇ ହାତର ଲେଉଟରେ ମଳିବା—
দলা 4. To crush a thing between the two
मलना palms.

ମଞ୍ଜ (ଧାତୁ )— ସଂ— ୧ । ଶବ୍ଦ କରିବା—1. To make a sound.
Mañja (root) ୨ । ମାର୍ଜନ କରିବା; ମାଜିବା— 2. To polish;
[ମନ୍ଜ(ଧାତୁ) —ଅନ୍ୟରୂପ] to rub.

ମଞ୍ଜ— ଦେ. ବି (ସଂ. ମଜ୍ଜା)—୧ । କାଠର ମଝିରେ ଥିବା ସାର ଭାଗ—
Mañja 1. The pith of a wood. (ଉ—ବୃକ୍ଷର
মাঁজ, মাজ ଫଳଶେ ସିନା ମାତ୍ର କରେ ଭୂଇ, ମାଜ ତାର ହବା
साडिल ସାଧ୍ୟ ଶ୍ରୀବ ମଞ୍ଜକୁ । ଚନ୍ଦ୍ରାମଣି. ବିକ୍ରମାଦିତ୍ୟ ।)
୨ । କଦଳୀ ଗଛର ଗଣ୍ଡିର ମଧ୍ୟଭାଗ-2. The pith or
core of a plantain tree. ୩ । (ଲକ୍ଷଣାର୍ଥ) କୌଣସି
କଥାର ମର୍ମ; ଗୁପ୍ତ ବିଷୟ— 3. (figurative) Secret
matter. ୪ । ମଞ୍ଜ ପତ୍ର ( ଦେଖ )—4. Mañja
patra (See) ପ୍ରାଦେ. (ସିଂହଭୂମି ଓ ଗଡ଼ଜାତ) ବି—
ଛୋଟ ବୃକ୍ଷ ବିଶେଷ—Name of a small tree.
[ଦ୍ର—ଏହା ସିଂହଭୂମି, ସମ୍ବଲପୁର ଓ ଗଡ଼ଜାତ ଜଙ୍ଗଲମାନଙ୍କରେ ଜନ୍ମେ । ଏହାର ପତ୍ର ଚକଚକିଆ ଓ କେଶ
ପରି ସରୁ । ଏ କାଠର ଗୋଲେଇ ୫ ଫୁଟ ପର୍ଯ୍ୟନ୍ତ
ହୁଏ ।]

ମଞ୍ଜ କାଠ—ଦେ. ବି—କାଷ୍ଠର ମଜ୍ଜା; କାଠ ଭିତରର ସାର ଅଂଶ—
Mañja kāṭha The strong interior portion or
মাজ কাঠ साडिल काठ core of a timber.

**ମଞ୍ଜକାଲା ମାରିବା**—ଦେ. ବି ( ସଂ. ମଜ୍ଜା ଓ କାଲ )—କଦଳୀ ଓ
Mañjakiḷā māribā ଅନ୍ୟାନ୍ୟ ଗଛର ଏକ ପ୍ରକାର ରୋଗ
(ମଞ୍ଜ ମରିବା—ଅନ୍ୟରୂପ) (ଏ ରୋଗ ହେଲେ ଗଛର ମଞ୍ଜ ପ୍ରଥମେ
মাজ শুখা ଶୁଖିଯାଏ)—A disease attacking plantain
बीर सड़ना and other trees by which the pith
first withers. (ଉ—ଗଛେ ଛେଦନ୍ତି ନାହିଁ କେହି, ଉତରେ ମଞ୍ଜକାଲା ନାହିଁ । ଜଗନ୍ନାଥ. ଭାଗବତ ।)

**ମଞ୍ଜନ**—ଦେ. ବି (ସଂ. ମାର୍ଜନ)—ଦାନ୍ତଘଷା ଚୂର୍ଣ୍ଣ—
Mañjana Tooth powder.
মাজন मञ्जन

**ମଞ୍ଜ ପତ୍ର**—ଦେ. ବି—୧ । କଦଳୀ ଗଛର ମଞ୍ଜରୁ ବାହାରିଥିବା ବଡ଼
Mañja patra ପତ୍ର—1. A big new leaf which has
(ମଞ୍ଜ ପତର—ଅନ୍ୟରୂପ) emerged from the pith of a
আঙ্গোট কলাপাত plantain tree. ୨ । କଦଳୀ ଗଛର
बीर पत्ता କୋମଳ ପତ୍ର—2. The tender or new
leaf coming out of a plantain plant.

**ମଞ୍ଜ(ଞ୍ଜି)ର**—ଦେ. ବି (ସଂ. ମଂଜୀର)—ବାଦ୍ୟ ବିଶେଷ; ଝାଞ୍ଜ—
Mañja(ñji)rā Cymbals.
মন্দিরা (ଉ—ମୃଦଙ୍ଗ ମଞ୍ଜିରକୁ ଗନ୍ଧର୍ବେ ବାଇଲେ ।
मजीरा କୃଷ୍ଣସିଂହ. ମହାଭାରତ. ସଭା ।)

**ମଞ୍ଜରି(ରୀ)**—ସଂ. ବି (ମଞ୍ଜୁ=ମନୋଜ୍ଞତା+ଋ. ଧାତୁ=ଗମନ କରିବା+
Mañjari(rī) ଇ, ଈ)—୧ । ଅଙ୍କୁର; ମୁକୁଳ; କଢ଼ି—
1. Blossom; bud. ୨ । ବୃନ୍ତରେ ଲାଗିଥିବା ପୁଷ୍ପବୃନ୍ତ ବା ଝୁମ୍ପା—2. Tufts attached to a stem. ୩ । ପଲ୍ଲବାଙ୍କୁର—3. Newly blossomed tender leaf. (ଯଥା—ତୁଳସୀ ମଞ୍ଜରୀ) ୪ । ଫୁଲର ବା ଶସ୍ୟର କେଣ୍ଡା—4. A flower-spike; an ear of corn, a shoot; a sprout. ୫ । ତିଳକବୃକ୍ଷ—
5. Tiḷaka tree. ଦେ. ବି—ପାଦର ଅଳଙ୍କାର ବିଶେଷ; ଘାଗୁଡ଼ି—A tinkling ornament for the leg. (ଉ—ଅଙ୍ଘ୍ରି ଯୁଗଳେ ମଞ୍ଜରୀ ଦୋଳେ,ସେ ପାଦ କମଳେ ଦେବ ମନ ଭ୍ରମଲେ । ପ୍ରାଚୀ. ରହସ୍ୟମଞ୍ଜରୀ ।)

**ମଞ୍ଜରିତ**—ସଂ. ବିଣ (ମଞ୍ଜରି+ସଞ୍ଜାତ ଅର୍ଥରେ ଇତ)—୧ । ମୁକୁଳିତ—
Mañjarita 1. Blossomed; blooming. ୨ । ଅଙ୍କୁରିତ—
2. Sprouting,

**ମଞ୍ଜରିବା**—ଦେ. (ପଦ୍ୟ) କ୍ରି—କଅଁଳିବା; ଗଜୁରିବା—To sprout.
Mañjaribā মঞ্জরা मंजरना

**ମଞ୍ଜା**—ସଂ. ବି. ସ୍ତ୍ରୀ (ମଞ୍ଜ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । ଛାଗୀ; ମାଈ
Mañjā ଛେଳି—1. She-goat. ୨ । ମଞ୍ଜରୀ—2. Sprout.
থোড় ଦେ. ବି (ସଂ. ମଜ୍ଜା)—କଦଳୀଗଛର ମଧ୍ୟସ୍ଥ ସାରାଂଶ—
वीर The pith of plantain plant. [ ଦ୍ର—ଏହା ତରକାରୀରୂପେ ବ୍ୟବହୃତ ହୁଏ । ]

**ମଞ୍ଜା ଆମ୍ବିଳ**—ଦେ.ବି—ଥୋଡ଼ ବା କଦଳୀ ମଞ୍ଜା ସହିତ ଖଟା ମିଶାଇ
Mañjā ambiḷa ପ୍ରସ୍ତୁତ କରାଯିବା ଏକପ୍ରକାର ଖଟା ତରକାରୀ
থোড়ের অম্বল ( ଦ୍ର—ମଞ୍ଜାରେ ଖଟା ପ୍ରଭୃତି ଦେଇ ଅନ୍ୟ ବିବିଧ
बीरकीखटाई ବ୍ୟଞ୍ଜନ ମଧ୍ୟ ପ୍ରସ୍ତୁତ ହୁଏ)—A curry made
from chips of plantain-tree-piths by
mixing it with acid.

**ମଞ୍ଜାରି**—ଦେ. ବି ( ସଂ. ମାର୍ଜ୍ଜାରି )—୧ । ବିରାଡ଼ି—1. Cat.
Mañjārī ( ଉ—ଦୁର୍ଜ୍ଜନ କୁପିଲେ ଅଧରେ, ଯେହ୍ନେ ମଞ୍ଜାରି
বেরাল ମୂଷା ଧରେ । ଜଗନ୍ନାଥ. ଭାଗବତ ।) ( ଉ—
बिल्ली ଅଲିଅଳ ଘର ମଞ୍ଜାରି, ପୋକ ଖାଇଗଲେ ଝିଙ୍ଗାରି ।
পালিটা মাঁদার ଢଗ । ) ୨ । ( ସଂ. ମନ୍ଦାର ) ପାଳିଧିଆ ଗଛପରି
फरहद ଏକପ୍ରକାର ଗଛ—2. Erythrina Suberosa
( Haines ). [ ଦ୍ର—ଗୁଆଗଛମାନ ଥଣ୍ଡା ରହିବ ବୋଲି ଗୁଆ ବାଡ଼ିରେ ଏ ଗଛ ଲଗାଯାଏ । ]

**ମଞ୍ଜି(ଞ୍ଜୀ)**—( ମନକ୍ ଧାତୁ+କର୍ତ୍ତୃ ଇ;+ଈ )—ମଞ୍ଜରି; ଅଙ୍କୁର—
Mañji(ñjī) Sprout; shoot. ଦେ. ବି ( ସଂ. ବୀଜ;
বীচি बीज ମୂଳ ସଂ. ମଜ୍ଜା)—୧ । ଫଳମଧ୍ୟସ୍ଥ ବୀଜ—
1. Seed. ୨ । ଆଗାମୀ ବର୍ଷ ପାଇଁ ରଖାଯିବା ଧାନ ଆଦି ଶସ୍ୟର ବିହନ—2 Paddy and other seeds kept for sowing next year ୩। ଫଳର ବା କାଣ୍ଡାଦିର ଯେଉଁଅଂଶ ନୂଆ ଗଛ ଜନ୍ମାଇବା ପାଇଁ ବ୍ୟବହୃତ ହୁଏ—3. The portion of a plant or fruit used for raising new plants. [ଦ୍ର—ଆଖୁମଞ୍ଜି=ଆଖୁଦଣ୍ଡର କ୍ଷୁଦ୍ର ଖଣ୍ଡମାନ । ଆଳୁମଞ୍ଜି =ଆଳୁପିଣ୍ଡର ଅଂଶ । ପୋଟଳମଞ୍ଜି=ପୋଟଳ ଗଛର ଡେରର କ୍ଷୁଦ୍ର ଅଂଶ ।] ୪ । ଅଣ୍ଡକୋଷ—
আঁড়কীগুঠলী 4. The testis. ୫ । ମାଛଙ୍କ ଡିମ୍ବ—
ডিম अंडा 5. The spawn or ova of fishes.
खील, कील ୬ । ପାଚିଥିବା ବ୍ରଣ ଭିତରେ ଥିବା ଗୋଟିଏ
ব্রণেরচাল କଠିଣ ପୂଜମୟ କାଳକ—6. A hard wedge-like
pus inside a ripened boil. ୭ । (ଲକ୍ଷଣାର୍ଥ) କଥାର ଗୁପ୍ତ ମର୍ମ; ରହସ୍ୟ ବା ସନ୍ଧି—7. (Figurative) The secret of a matter. ୮ । ( ଲକ୍ଷଣାର୍ଥ ) କୌଣସି ସମସ୍ୟା ସାଧନ କରିବାର ମୂଳ ମନ୍ତ୍ର—8. ( Figurative ) The key to a problem. [ ଉ—କଥାର ମଞ୍ଜି, ଭୁଆ ଧାନ ଖାଏ ବୋହୂକୁ ଗଞ୍ଜି—ଢଗ ।] ୯ । ( ଲକ୍ଷଣାର୍ଥ ) କୌଣସି ବିଷୟର ମୂଳ କାରଣ—9. ( Figurative) The root cause of a matter. (ଯଥା—କଳିମଞ୍ଜି)

**ମଞ୍ଜିଆ**—ଦେ. ବିଣ—୧ । ଯେଉଁ ଫଳ ଅଧିକ ପକ୍ୱ ହେବାରୁ ତହିଁ
Mañjiā ମଧ୍ୟରେ ମଞ୍ଜିସାକ ପାକଳ ହୋଇ ଯାଇ ଥାଏ—
1. Running into seeds ( ଯଥା—

ମଞ୍ଜିଆ ବାଇଗଣ ) । ୨ । ସାଇଯୁକ୍ତ—
2. Seedy; full of seeds. ୩ । ଚିଲିକାରେ
ମିଳୁଥିବା ଏକପ୍ରକାର ମାଛ—3. A class of salt water fish found in the Chilka lake.

ମଞ୍ଜିଆ କଦଳୀ—ଦେ. ବି—ଭିତରେ ମଞ୍ଜି ଥିବା ଏକ ପ୍ରକାର କଦଳୀ;
Mañjiā kadaḷī ବଣୁଆ କଦଳୀ—A species of plantain which has seeds inside. ବীচে কলা [ଦ୍ର—ଏହା
ବୀଜବାଲା କेला ଅଖାଦ୍ୟ; ମାତ୍ର କେହି କେହି କସି ଥିବା ବେଳେ
(ମଞ୍ଜି କଦଳୀ—ଅନ୍ୟରୂପ) ଏହାକୁ ତର୍କାରି କରନ୍ତି ।]

ମଞ୍ଜିକା—ସଂ. ବି. ସ୍ତ୍ରୀ—(ମଞ୍ଜୁ+ଇକ+ଆ)—ବାରାଙ୍ଗନା; ଗଣିକା;
Mañjikā ବେଶ୍ୟା—Prostitute. ଦେ. ବି—ସ୍ତର ବା
ଧାଡ଼ି—Layer; row. ( ଉ—ଉଷ୍ଣ ପରବତ ଘୁଞ୍ଜୁ ଘୁଞ୍ଜୁକା, ତହିଁରେ ବସିଛି ଉନ ମଞ୍ଜିକା । ନନ୍ଦକିଶୋର. ନିର୍ଝରିଣୀ ।)

ମଞ୍ଜି ଫଳା—ସଂ. ବି—କଦଳୀ—
Mañji phaḷā The plantain

ମଞ୍ଜିବା – ପ୍ରାଦେ. (ଗଡ଼ଜାତ) କ୍ରି – (ସଂ. ମଜ୍ଜ ଧାତୁ) – ଘୋର ଅରଣ୍ୟ
Mañjibā ମଧ୍ୟରେ ପଶି ଯିବା – To enter into a dense forest.

ମଞ୍ଜିମା—ସ. ବି – (ମଞ୍ଜୁ+ଭାବ ଇମନ୍, ୧ମା. ୧ବ)—ମନୋଜ୍ଞତା;
Mañjimā ମଞ୍ଜୁଳତା; ସୌନ୍ଦର୍ଯ୍ୟ—Beauty.

ମଞ୍ଜି ମାଛ—ଦେ. ବି—ଯେଉଁ ମାଛର ପେଟରେ ବହଳ ଲଗି ଥାଏ—
Mañji māchha A fish with spawns.
ডিম ভরা মাছ अंडाभरी मछली

ମଞ୍ଜି ଶୁଖୁଆ—ଦେ ବି—ଶୁଖା ଯାଇ ଥିବା ମାଛ ମଞ୍ଜି—
Mañji sukhuā Dried fish spawn.
মাছের ডিমের শুঁকো सुखडी अंडो

ମଞ୍ଜି(ଞ୍ଜୀ)ଳ—ସ. ବି—(ମଞ୍ଜ+ଇଲ, ଈଲ)—ଅଟ୍ଟାଳିକା; ଘର; ମନ୍ଦିର –
Mañji(ñjī)la House; building.

ମଞ୍ଜିଷ୍ଠା—ସଂ. ବି—(ମଞ୍ଜୁ=ମନୋହର+ସ୍ଥା ଧାତୁ+କର୍ତ୍ତୃ. ଅ; ସ୍ତ୍ରୀ. ଆ)
Mañjishṭhā ଅଚ୍ଛୁକାନ୍ଧ ବର୍ଗର ରକ୍ତବର୍ଣ୍ଣ ଲତାବିଶେଷ—
ଅନ୍ୟ ସଂ—ଲୋହିତ ଲତା, ରକ୍ତା[ —The Indian
ଯଷ୍ଟି, ଯୋଜନ ବଲ୍ଲି, madder; Rubia Manjisṭha
ଜ୍ୱରହନ୍ତ୍ରୀ, ବିକାଳୀ; [ ଦ୍ର—ଏହା ହିମାଳୟ ପାର୍ବତ୍ୟ
ଜାଙ୍ଗି (ଦ୍ରବେକୃଷ୍ଣ ଦ୍ରବ୍ୟଗୁଣ) ପ୍ରଦେଶରେ ଜନ୍ମେ । ଏହାର ମୂଳ
ଫା· ରନ ସ୍ କବିରାଜୀ ତୈଳକୁ ରଞ୍ଜିତ କରିବା
ତେ. ମଞ୍ଜିଷ୍ଟି ପାଇଁ ବ୍ୟବହୃତ ହୁଏ ।] ଦେ. ବି—
মজিথ, অরুণা, মঞ্জিষ্ঠা ଏକ ପ୍ରକାର ଅନୁରାଗ—A kind
मजिठ; मिजिथ; मजिठ of love. [ଦ୍ର—ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଅନୁରାଗ ଖୁବ ଗାଢ଼ ହେଲେ ତାକୁ ମଞ୍ଜିଷ୍ଠା ବୋଲାଯାଏ, ନୀଳୀ ଓ କୁସୁମ୍ଭୀ ଏହାଠାରୁ ଭିନ୍ନତର ।]

ମଞ୍ଜୀର—ସ. ବି—(ମଞ୍ଜ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଈର)—ନୂପୁର
Mañjīra ଘୁଙ୍ଗୁର ଥିବା ମଲ; ବାଙ୍କେଣୀ; ପାଞ୍ଜନ୍—A tinkling anklet.

ମଞ୍ଜୁ—ସ ବି—(ମନ୍ଜ୍ ଧାତୁ=ମାର୍ଜନ କରିବା+କର୍ତ୍ତୃ. ଉ)—୧ ।
Mañju ସୁନ୍ଦର; ମନୋଜ୍ଞ—1. Lovely; beautiful. ୨ ।
ମନୋମୋହକର—2. Charming; enchanting. captivating. ୩ । ମଧୁର—3. Sweet.

ମଞ୍ଜୁଆତି—ଦେ. ବି—(ସଂ. ମଞ୍ଜିଷ୍ଠା)—ଏକ ପ୍ରକାର ହ୍ରସ୍ୱ ବୃକ୍ଷ—
Mañjuāti A kind of small tree, the leaves of
ସଂ. ନଖରଞ୍ଜକ, ନଖ ରଞ୍ଜନୀ which are crushed and
ତେ. ଗୋରଣ୍ଟା pasted on the hands and
ଆ. ହେନା legs which become red-
মেদী; মেহদী coloured; Hena; Lawsonia
मेहदी Alba; the evergreen
(ମଞ୍ଜାତି—ଅନ୍ୟରୂପ) privet (tree) Rhamnus Alaternus. [ଦ୍ର—ଏ ଗଛ ଉଚ୍ଚରେ ୫।୭ ହାତ ବଢ଼େ । ଏଥିର ପତ୍ରକୁ ବାଟି ହାତ ଗୋଡ଼ରେ ବୋଳଲେ ସେ ସ୍ଥାନମାନ ନାଲି ରଙ୍ଗରେ ରଞ୍ଜିତ ହୁଏ । ଏଥିର ଡାଳରେ ଛୋଟ ଛୋଟ କଣ୍ଟା ଅଛି । ଏ ଗଛକୁ ଲୋକେ ବାଡ଼ରେ ଲଗାନ୍ତି—ଏହା ଦୁଇପ୍ରକାର— ୧ । ଧଳି ମଞ୍ଜୁଆତି—1. Lawsonia Alba. ଏଥିର ଫୁଲ ଧଳା ଓ ଫିକା ୨ । ଘାଟ ମଞ୍ଜୁଆତି— 2. Alcanna Tinctoria; Lawsonia Inermis (Haines) Henna; Alcanet. ଏଥିର ଫୁଲ ମନ୍ଦାର ଫୁଲ ପରି ଗାଢ଼ ନାଲି ଓ ଫୁଲର ପାଖୁଡ଼ା ଦୋହରା ।]

ମଞ୍ଜୁକେଶୀ—ସଂ. ବିଣ. ପୁଂ—(ମଞ୍ଜୁ+କେଶ+ଅଛି ଅର୍ଥରେ ଇନ୍)—
Mañju kesī ସୁକେଶଯୁକ୍ତ; ମନୋହର କେଶବିଶିଷ୍ଟ—
(ମଞ୍ଜୁକେଶିନୀ—ସ୍ତ୍ରୀ) Having a lovely tress of hair on the head. ସଂ. ବି—ଶ୍ରୀକୃଷ୍ଣ—Srikrushṇa.

ମଞ୍ଜୁଗମନ—ସଂ. ବିଣ. ପୁଂ—(ବହୁବ୍ରୀହି; ମଞ୍ଜୁ+ଗମନ)—ଯାହାର
Mañju gamana ଗତି ସୁନ୍ଦର—Having a lovely
(ମଞ୍ଜୁଗମନା—ସ୍ତ୍ରୀ) gait. ବି—ହଂସ—The swan.

ମଞ୍ଜୁଘୋଷ—ସଂ. ବି—(କର୍ମଧା; ମଞ୍ଜୁ+ଘୋଷ)—୧ । ମଧୁର ଧ୍ୱନି—
Mañju ghosha 1. A sweet sound. ୨ । (ବହୁବ୍ରୀହି)
(ମଞ୍ଜୁଘୋଷା—ସ୍ତ୍ରୀ) ଜୈନ ଦେବତାବିଶେଷ—2. Name of a Jaina Deity. ୩ । ତାନ୍ତ୍ରିକ ସାଧକଙ୍କର ଉପାସ୍ୟ ଦେବତାବିଶେଷ—3 Name of a tantric Deity. ବିଣ. ପୁଂ—( ବହୁବ୍ରୀହି )—ସୁସ୍ୱରବିଶିଷ୍ଟ—Sweet-toned.

ମଞ୍ଜୁପାଠକ—ସଂ. ବିଣ. ପୁଂ—ଯେ ମନୋଜ୍ଞ ଭାବେ ବୋଲି ପାରେ;
Mañju pāṭhaka ସୁପାଠକ—One whose recitation
(ମଞ୍ଜୁପାଠିକା—ସ୍ତ୍ରୀ) is sweet; a good reader. ବି—ଶୁକପକ୍ଷୀ; ଶୁଆ –The parrot.

ମଞ୍ଜୁଭାଷୀ—ସଂ. ବିଣ. ପୁଂ (ମଞ୍ଜୁ+ଭାଷ୍ ଧାତୁ=କହିବା+କର୍ତ୍ତୃ. ଇନ୍
Mañju bhāshī ୧ମା. ୧ବ)—ମଧୁରଭାଷୀ; ସୁଭାଷୀ; ମିଷ୍ଟଭାଷୀ—Of sweet speech.
(ମଞ୍ଜୁଭାଷିଣୀ—ସ୍ତ୍ରୀ)

ମଞ୍ଜୁ ଭାଷିଣୀ—ସ. ବି ସ୍ତ୍ରୀ—ତ୍ରୟୋଦଶାକ୍ଷର ଯୁକ୍ତ ଛନ୍ଦୋବିଶେଷ—
Mañju bhāshiṇī A Sanscrit metre of 13 syllables.
ସ. ବିଣ. ସ୍ତ୍ରୀ—ମଧୁରଭାଷିଣୀ (ସ୍ତ୍ରୀ)—Of sweet speech.

ମଞ୍ଜୁର(ରି)—ବୈଦେ. ବି (ଅ. ମନ୍‌ଜୁରୀ)—୧ । ଅନୁମୋଦନ; କୌଣସି
Mañjur(ri) ପ୍ରାର୍ଥନାର ଗ୍ରହଣ—1. Sanction; granting
(ନାମଞ୍ଜୁର—ବିପରୀତ) of a request; approval. ୨। ସମ୍ମତି;
মংজুর(রি) ଅଙ୍ଗୀକାର; ସ୍ୱୀକାର—2. Consent. ବିଣ. (ଅ.
मंजूरी, ମନ୍‌ଜୁର୍)—୧ । ଅନୁମୋଦିତ—1. Granted;
मंजुर approved; sanctioned. ୨ । ଅଙ୍ଗୀକୃତ—
2. Consented; agreed to.

ମଞ୍ଜୁର—ଦେ. ବି (ସ. ମଞ୍ଜୁ)—ଏକ ପ୍ରକାର ପକ୍ଷୀ—
Mañjura Name of a bird.
ପ୍ରାଦେ. (ବସ୍ତର) ବି—ମୟୂର—Peacock.

ମଞ୍ଜୁର କରିବା—ଦେ. କ୍ରି—ପ୍ରାର୍ଥନା ଗ୍ରହଣ କରିବା—
Mañjura karibā To grant a prayer.
মঞ্জুর করা मंज़ुर करना

ମଞ୍ଜୁଳ—ସ. ବିଣ. ପୁଂ (ମଞ୍ଜୁ+ସ୍ୱାର୍ଥେ ଲ)—୧ । ସୁନ୍ଦର; ସୁଦୃଶ୍ୟ;
Mañjuḷa ମନୋହର—1. Charming; enchanting;
(ମଞ୍ଜୁଳା—ସ୍ତ୍ରୀ) captivating. ୨ । ଉପଯୁକ୍ତ; ସମୀଚୀନ—
2. Proper. ବି—୧ । ନିକୁଞ୍ଜ; କୁଞ୍ଜବନ—
1. Grove; a bower. ୨ । ଶୈବାଳ; ଶିଉଳୀ—
2. Moss.

ମଞ୍ଜୁଳତା(ତ୍ୱ)—ସ. ବି (ମଞ୍ଜୁଳ+ଭାବ. ତା,ତ୍ୱ)—ସୌନ୍ଦର୍ଯ୍ୟ—
Mañjuḷatā(twa) Loveliness.

ମଞ୍ଜୁଳବତୀ—ଦେ. ବିଣ ସ୍ତ୍ରୀ—ମନୋହାରିଣୀ—
Mañjuḷabatī Charming (feminine).
(ଉ—ବଞ୍ଜୁଳ ବନେ ମଞ୍ଜୁଳବତୀ ସୀତା ଏକାଳ ଅବସ୍ଥା ଧରି ଯେ । ଉଞ୍ଜ. ବୈଦେହୀଶବିଳାସ ।)

ମଞ୍ଜୁ(ଞ୍ଜୂ)ଷା—ସ.ବି(ମଞ୍ଜ୍ ଧାତୁ+କର୍ମ ଉଷ+ଅ)—୧ । ପେଡି; ପେଡ଼ା;
Mañju(ñjū)shā ପେଟରା—1. A trunk; a casket; a basket with lid. ୨ । ସିନ୍ଦୁକ—2. A chest.
୩ । ମଞ୍ଜିଷ୍ଠା ( ଦେଖ )—3. Mañjisṭhā ( See )
୪ । ପାଷାଣ—4. Stone. ଦେ. ବି—ଗଞ୍ଜାମ ଜିଲ୍ଲାର ଗୋଟିଏ ଓଡ଼ିଆ ଜମିଦାରି;(ମହେନ୍ଦ୍ରପର୍ବତ ଏହି ମଞ୍ଜୁଷାରାଜ୍ୟର ଅନ୍ତର୍ଗତ)—Name of an estate in the Ganjam district.

ମଞ୍ଜୁହାସୀ—ସ. ବିଣ. ପୁଂ—ସୁହାସ; ଯାହାର ହସ ମଧୁର—One who
Mañjuhāsi has a charming laugh.
(ମଞ୍ଜୁହାସିନୀ—ସ୍ତ୍ରୀ)

ମଟ୍‌ମଟ୍—ଦେ. (ଧ୍ୱନ୍ୟନୁକରଣ) ଅ (ସ. ମଡ୍ ଧାତୁ=ଭାଙ୍ଗିବା)—
Maṭ-maṭ ୧ । ମଡ଼ମଡ଼; କାଠର ବା ଗଛର ଡାଳ ଭାଙ୍ଗି ଯିବାର
মটমট ଶବ୍ଦ—1. Sound of breaking of hard
मटमट things (e.g. wood, boughs).
୨ । ଦଉଡ଼ିକୁ ଖିବ ଟାଣିଲେ ଛିଣ୍ଡି ଯିବା ପୂର୍ବରୁ ଯେଉଁ ଶବ୍ଦ ହୁଏ; କଟ୍‌କଟ୍; ରଟ୍‌ରଟ୍—2. The sound made by a rope before it breaks asunder.
୩ । ଖଟ ଆଦିର ଗଣ୍ଠି ଫୁଟିବାର ଶବ୍ଦ—3. Creaking sound of the joints of bedsteads and other furnitures. ୪ । ଆଖି ମେଲା କରି ଏକ ଦୃଷ୍ଟିରେ କୌଣସି ବସ୍ତୁକୁ ଚାହିଁବା; ରଟମଟ—4. Staring with distended eyes; mode of staring at a thing steadily. (ଉ—ବାପ ପରି ଛାତିରେ ଚଢ଼ି ଓଷ୍ଠ ଚାଟି, ଭୀମ ଭ୍ରୂ ପୁଏ ଚାହିଁଲେ ମଟ୍‌ମଟ୍ । କୃଷ୍ଣସିଂହ. ମହାଭାରତ ଭୀଷ୍ମ ।)

ମଟକ—ଦେ. ବି. (ସ. ପଲକ)—୧ । ଚକ୍ଷୁର ପଲକ; ଆଖି ମିଟିକା—
Maṭaka 1. The wink of the eye; the twink-
লহমা मटक ling of the eye ୨ । ପଲକପତନମାତ୍ର କାଳ—
2. A twinkle. ୩ । ମିଟିକା (ଦେଖ)—3. Miṭikā (See)

ମଟକା—ଦେ. ବିଣ—ମସକା; ଭଙ୍ଗୁରବଣ—Fragile. ବି. (ସ.
Maṭakā କଷାଲା)—୧ । ପୋଟଳ ଆକୃତିର ଏକ ପ୍ରକାର
মটকা ବନ୍ୟ ଲତା ଫଳ—1. A wild cucurbita-
बनपरबल tious fruit and creeper; Metothria Heterophylla. [ଦ୍ର—ଏହାକୁ ଛଅଣ କରି ଖାଆନ୍ତି ଓ କଅଁଳ ଥିଲା ବେଳେ ଏହା କଞ୍ଚା ମଧ୍ୟ ଖିଆଯାଏ ।] ୨ ।
মটকা (ସ.ମୁଗ+କର୍ତ୍ତନ) ମୋଟ ସୂତାର ତସର ଲୁଗା; ପାରିଅ
मुगटा ମଲ୍ଲୁଟା; ମଠା—2. A kind of coarse silk cloth
[ଦ୍ର—ପାଟର ଗୋଟି ଯୋଗମାନେ ଗୋଟିର ମୁହଁକୁ କାଟି ବାହାରି ଗଲେ ସେହି ଗୋଟିରୁ ଯେଉଁ ସୂତା ବାହାରେ
মটকা, বড়েরী ତହିଁରେ ମଲ୍ଲୁଟା ଓ ମଠା ହୁଏ ।] ୩ । (ସ. ମଟୁକ)
मङ्गरा, मरकचा ଚାଳ ଘରର ମଥାନ—3. The ridge of a thatched straw roof. ୪ । କୁଅଣି ହୋଇଥିବା ଘରର ଚାଳ ଉପରେ ଯେଉଁ ବତା ଚାଳର ଥାଟ ସଙ୍ଗେ ବନ୍ଧା ହୋଇଥାଏ ସେହି ବନ୍ଧା ଲଇଗଣ୍ଠିରେ ଥିବା ଛିଦ୍ରମାନ—4. Holes in the roof a thatched house near the knots of the bamboo laths laid over the thatch.
୫ । ମିଟିକା (ଦେଖ)—5. Miṭikā (See)

ମଟକା(କେ)ଇବା—ଦେ. କ୍ରି—୧ । ଆଖି ମିଟିମିଟି କରିବା—1. To
Maṭakā(Ke)ibā open and shut one's eyes
মটকা repeatedly; to twinkle; to wink.
मटक(का)ना ୨ । ମଟମଟ କରି ଚାହିଁବା—2 To stare.
୩ । ନୟନ ଭଙ୍ଗି କରିବା; ଆଖି ମିଟିକା ମାରିବା—
3. To show signs of amorousness by suggestive winks.

ମଟକା ପାଣି—ଦେ. ବି—ଚାଳର ମଥାନରୁ ଯେଉଁ ବର୍ଷାପାଣି ଘର
Maṭakā pāṇi ଭିତରକୁ ଗଳିପଡ଼େ—Water leaking
মটকার জল through the holes near the knots of
बड़ेरीकाचूना the roofs of a thatched house. [ ଦ୍ର—

ପ୍ରଥମ ଅବସ୍ଥା ବର୍ଷାରେ ମଟକା ପାଣି ପଡ଼େ; କିନ୍ତୁ ପରେ ସେହି ଲଇଜଣିର ଢ଼ଣାମାନ ମନକୁ ବୁଜି ହୋଇଯାଏ ଓ ସେବାଟେ ପାଣି ଗଡ଼େ ନାହିଁ । ]

ମଟନ ଚପ୍—ବୈଦେ· ବି (ଇଂ)—ମେଣ୍ଢା ପଞ୍ଜରର ମାଂସକୁ ଭୁଟି କରି Matan chap ଭାଜିବା ଖାଦ୍ୟ—Mutton chop; a rib मटनचप of mutton for broiling, with the end of मटनचप the bon eat the smaller part chopped off. (ଦ୍ର—ଏହିପରି ମଟନ୍ କଟ୍ଲେଟ୍ ଶବ୍ଦ ମଧ୍ୟ ଭାଷାରେ ଚଳେ)

ମଟନ୍ ଜୁସ୍—ବୈଦେ· ବି (ଇଂ)—ମେଣ୍ଢା ମାଂସର ସୁରୁଆ— Matan jus Mutton-soup. (ମଟନ୍ ସୁ୍—ଅନ୍ୟରୂପ) मटनजूस मटनजूस

ମଟମଟକା—ଦେ. ବି—ମଟକା ୧ (ଦେଖ) Mata mataka Mataka 1 ( See ). [ ମଟମଟା, ମଟମଟେଇ—ଅନ୍ୟରୂପ ]

ମଟମଟେଇ କରି ଗୁହିଁବା—ଦେ. କ୍ରି—କୌଣସି ବସ୍ତୁକୁ ଅଖି ମେଲ୍ଲ Mata matei kari chahinba କରି ଏକ ଦୃଷ୍ଟିରେ [ ମଟ ମଟ କରି ଗୁହିଁବା—ଅନ୍ୟରୂପ ] ଅନେକକ୍ଷଣ ଗୁହିଁବା— मटका, कटमटकरे चाओया To stare at a thing. घूरना, मटकना

ମଟର—ଦେ. ବି (ଭୁଲ; ସ ବର୍ତ୍ତୁଲ)—ବର୍ତ୍ତୁଲ ଆକାରବିଶିଷ୍ଟ ଶିମ୍ବ Matara ଜାତୀୟ କୃଷିଜାତ ଲତାଫଳବିଶେଷ—The pea; मटर Pisum Arvense. [ ଦ୍ର—ଆମ ଦେଶରେ ଦୁଇ ପ୍ରକାର मटर ମଟରର କୃଷି ହୁଏ । ୧ । ଦେଶୀ ମଟର—1. Field pea; Pisum Arvense. [ଦ୍ର—ଏହାର ଛୁଇଁ ଚେପ୍ଟା, ଫୁଲ ବାଇଗଣୀ ରଙ୍ଗର । ଏଥିର କଅଁଳ ଛୁଇଁକୁ ଓ ମଞ୍ଜିକୁ ତରକାରୀ କରି ଖିଆଯାଏ । ] ୨ । କାବୁଲି ମଟର— 2. Pisum Sativium. ୩ । ଆଉ ଏକ ପ୍ରକାର ମଟରଜାତୀୟ ଶ୍ୱେତ ବର୍ଣ୍ଣଜୀବୀ ଲତା ଅଛି । ଏହାକୁ ଲୋକେ ସୁଗନ୍ଧ ଫୁଲର ସଉକରେ ଲଗାନ୍ତି । ଏହାର ନାମ ସୁଗନ୍ଧ ମଟର—3. Sweet pea; Lathyrus Odoratos. [ଦ୍ର—ଦେଶୀ ମଟର ଗଛର ଫୁଲ ବାଇଗଣୀ, କାବୁଲୀ ମଟରର ଫୁଲ ଧଳା । ଏ ମଞ୍ଜିକୁ ବର୍ଷା ଓ ଶରତକାଳରେ ଗହମ ଗୁଷ ହୋଇଥିବା ଓ ଖେତ ଦଅଯାଇଥିବା ବଅଉରରେ ଧାଡ଼ି ଧାଡ଼ି କରି ଲଗାଯାଏ । ଏ ଲତାକୁ ବଞ୍ଚାରେ ମଡ଼ାଯାଏ । ଏଥିର ଛୁଇଁ ମଧ୍ୟରେ ଗୋଲ ମଞ୍ଜିମାନ ଥାଏ । ଖୁବ୍ କଅଁଳ ଛୁଇଁକୁ ଓ କଞ୍ଚାମଞ୍ଜିକୁ ତରକାରୀ ଓ ଭାଜିକରି ଖିଆଯାଏ । ଛୁଇଁ ପାଚିଲେ ମଞ୍ଜିକୁ ଶୁଖାଇ ଲୋକେ ଡାଲି କରନ୍ତି । କୌଣସି କୌଣସି ସ୍ଥାନରେ ଏ ମଞ୍ଜିର ଛତୁଆ କରାଯାଏ । ଦେଶୀମଟରର ସଂ. ନାମ— କଳାୟ, ମୁଣ୍ଡଚଣକ, ହରେଣୁ, ରେଣୁକ, ସତୀନ, ତ୍ରିପୁଟ, ଅତିବର୍ତ୍ତୁଲ, ଖଣ୍ଡିକ, ନୀଳକ, କଂଠୀ, ସତୀଲ, ସତୀନକ— ବୈଦ୍ୟକ ମତରେ ଏହା ମଧୁର, ସ୍ୱାଦିଷ୍ଟ, ଶୀତଳ, ପିତ୍ତ- ନାଶକ, ରୁଚିକର, ବାତକାରକ, ପୁଷ୍ଟିଜନକ, ମଳନିଃସାରକ

ମଟର ଓ ରକ୍ତଦୁଷ୍ଟି ନାଶକ—ହି· ଶ । ] ବୈଦେ. ବି (ଇଂରାଜି मोटर ମୋଟର୍ )—ମଟରକାର (ଦେଖ)—Matarakar ( See ).

ମଟରକଣ୍ଟିଆ—ପ୍ରାଦେ [ବାଲେଶ୍ୱର] ବି—ସାମୁଦ୍ରିକ ମତ୍ସ୍ୟବିଶେଷ— Matara kantia A kind of salt water fish. [ଦ୍ର— ଏହାର ପେଟରେ ମଟର ଭଳି ବଡ଼ ବଡ଼ ଏବଂ ଷ୍ଟ ମଞ୍ଜି- ମାନ ଦେଖାଯାଏ । ]

ମଟରକାର—ବୈଦେ. ବି ( ଇଂ. ମୋଟର୍+କାର୍ )—ଶୋଧିତ Matarakar କେରୋସିନ୍ ବା ପେଟ୍ରୋଲ୍ ଜଳାଯାଇ ତଦ୍ଦ୍ୱାରା मटरकार मोटरकार ପରିଗ୍ୱଳିତ କଳ ଗାଡ଼ି—Motor car.

ମଟର ଚଣା—ପ୍ରାଦେ (ଗଞ୍ଜାମ) ବି (ସ.ବର୍ତ୍ତୁଳ ଚଣକ)—ମଟର (ଦେଖ)— Matara chana Matara (See). [ ବାଟୁଲା ଚଣା—ଅନ୍ୟରୂପ ]

ମଟର ବୋଟ୍—ବୈଦେ.ବି (ଇଂ)—ଶୋଧିତ କେରୋସିନ୍ ବା ପେଟ୍ରୋଲ Matara bot ଜଳାଯାଇ ତଦ୍ଦ୍ୱାରା ପରିଗ୍ୱଳିତ ଡଙ୍ଗା—Motor मटरबोट मोटरबोट boat.

ମଟର ମାଳ—ଦେ. ବି—ମଟର ମଞ୍ଜିପରି ଛୋଟ ଗୋଲକରଯୁ ଗ୍ରଥିତ ସୁନାର Motara mala ମାଳ—Necklace made of small मटर माला मटर माला golden peas strung together.

ମଟର ଲରି—ବୈଦେ. ବି (ଇଂ)—ବହୁଲୋକ ବା ବହୁ ପରିମାଣରେ Matara lari ପଦାର୍ଥ ବୋହିବା ନିମନ୍ତେ ବ୍ୟବହୃତ ବଡ଼ ମଟର मटरलरी मोटरलारी ଗାଡ଼ି—Motor lorry.

ମଟା(ଟୁ)—ଦେ. ବି (ସ. ମୃତ)—ପଶା ବା କଉଡ଼ି ଖେଳରେ ଯେଉଁ Mata(tu) ସାର ବା ଗୋଟି ମାଡ଼ ଖାଇ ଅଡ଼ି ପାଲିରେ ବସି ନ मड़ा, मरा ଥାଏ —A dice ball or cowrie which has मडा been superseded by another in the game of dice or cowrie and has not yet been restored to the board.

ମଟାମ—ଦେ. ବି—୧ । କାନ୍ଥର ଓ କାଠର ସମକୋଣ ନିର୍ଣ୍ଣୟ କରିବା Matama ନିମନ୍ତେ ରାଜମିସ୍ତ୍ରୀ ଓ ବଢ଼େଇମାନେ ବ୍ୟବହାର କରିବା माटाम ସମକୋଣୀ ଯନ୍ତ୍ରବିଶେଷ—1. A mason's or मटाम carpenter's square (used in ascertaining लेवल right angles). ୨ । ସମତଳ ନିର୍ଣ୍ଣୟ କରିବା ପାଇଁ समतैल यन्त्र ମିସ୍ତ୍ରୀ ଓ ବଢ଼େଇଙ୍କ ବ୍ୟବହୃତ ଯନ୍ତ୍ର ବିଶେଷ— 2. A carpenter's or plumber's level. [ଦ୍ର— ରାଜମିସ୍ତ୍ରୀମାନେ କାନ୍ଥ ବା ମୂଳଦୁଆ ସମତଳ ହୋଇଅଛି କି ନାହିଁ ଏହା ଦେଖିବା ପାଇଁ ଯେଉଁ ତ୍ରିକୋଣବିଶିଷ୍ଟ ମଟାମ ଯନ୍ତ୍ର ବ୍ୟବହାର କରନ୍ତି ତାହାକୁ ଡଙ୍ଗା ମଟାମ (Plumb level) କହନ୍ତି ।

ବଢ଼େଇ ଓ ରାଜମିସ୍ତ୍ରୀମାନେ ଭୂମି ଓ ଟେବଲ ଆଦିର ସମତଳ ଠିକ୍ ଥିବାର ପରୀକ୍ଷା କରିବା ପାଇଁ ଯେଉଁ ଜଳୀୟଦ୍ରବ୍ୟ ପୂର୍ଣ୍ଣ ନଳଯୁକ୍ତ ମଟାମ ବ୍ୟବହାର କରନ୍ତି ତାହାକୁ ପାରଦମଟାମ (Spirit level) କହନ୍ତି । ]

ମଟାମସଇ(ହି)—ଦେ. ବିଣ—ସମତଳବିଶିଷ୍ଟ; ସମକୋଣବିଶିଷ୍ଟ ବା
Matāma sai(hi) ଲମ୍ବ ଭାବରେ ଦଣ୍ଡାୟମାନ—Confir-
मटामसई ming to the plumb line; exactly horiz-
**मटाम सही** ontal or perpendicular or level.

ମଟାଳ—ଦେ. ବିଣ (ସଂ. ମୃତ୍ତିକା)—କର୍ଦ୍ଦମମୟ ବା ଟକଟା (ମାଟି)—
Maṭāḷa Hard and clayey (soil) (ଉ—
এঁটেল ସେଇଠା ଏକଟକିଆ ପଦର ମାଣ ମଟାଳ ଜମି-ଭାର
**चिकट, मटियार** କଳନ। ପଲ୍ଲୀଚମୋହନ. ଗଳ୍ପସ୍ୱଳ୍ପ।) ବି—
এঁটেল মাটি ୧। ଟକଟା ମାଟି; ବିଶେଷ କର୍ଦ୍ଦମମୟ ଓ କଠିଣ
**चिकट; मटियार मिट्टी** ମାଟି—1. Hard and clayey
soil. [ଦ୍ର—ଏହାକୁ ଲୁହାଲଣୁଣିଆ ମାଟି ମଧ୍ୟ
କୁହାଯାଏ। ବର୍ଷା ହେଲେ ଏ ମାଟି କର୍ଦ୍ଦମମୟ (ଲହୁଣୀ
ପରି) ହୁଏ ଓ ଖରାହେଲେ ଲୁହାପରି ଭାରି ଟାଣ ହୋଇ
ଖଣ୍ଡ ଖଣ୍ଡ ହୋଇ ଫାଟିଯାଏ। ସାଧାରଣତଃ ତିନି ପ୍ରକାର
ମଟାଳ ଜମି ଦେଖାଯାଏ, ଯଥା—୧। ବାଲିଆ ବା
ବାଲିଆରି ବା ଦୋରସା ମଟାଳ; ଏହା ବାଲି ଓ କାଦୁଅ
ମିଶ୍ରିତ ମାଟି—୨। ତେଲିଆ ମଟାଳ—ଏହା ଚିକ୍କଣ
କର୍ଦ୍ଦମାକ୍ତ ମାଟି—୩। ଲହୁଣିଆ ମଟାଳ ବା ଲୁହା ଲହୁଣିଆ
ମଟାଳ; ଯାହା ଶୁଖିଗଲେ ଲୁହା ପରି ଟାଣ ହୁଏ ଓ ଓଦା
ହେଲେ ଲହୁଣୀ ପରି କଅଁଳ ହୋଇଯାଏ।] ୨। ବିଳମ୍ବ
টালা —2. Delay. ୩। ମଟାଳିବା—3. Putting off
**टालना** of the doing of a matter.

ମଟାଳିଆ—ଦେ. ବିଣ—କର୍ଦ୍ଦମମୟ ଓ ଟାଣୁଆ (ମାଟି)—
Maṭāḷiā Hard and clayey (soil).
এঁটেল **चिकना; मटियार**

ମଟାଳିବା—ଦେ. କ୍ରି (ସଂ. ଟଳ ଧାତୁ)—୧। ଅପେକ୍ଷା କରିବା—
Maṭāḷibā 1. To wait. ୨। ବିଳମ୍ବ କରିବା—
সবুর করা 2. To delay. ୩। ସମୟକୁ ଟାଳିବା—
**सबुर करना** 3. To put off a work from time to
গড়ন time. ୪। ଶାନ୍ତ ହେବା; କମିବା—4. To
**टालना** abate. (ଯଥା—କଟକରେ ଗ୍ରୀଷ୍ମଦିନେ ୪ଟା
ঠাণ্ডা হওয়া **टलजाना** ବେଳ ପୁଣି ଖରା ମଟାଳେ।)

ମଟିଆ—ପ୍ରାଦେ (ସମ୍ବଲପୁର) ବି—ପ୍ରେତ ଯୋନିବିଶେଷ—
Maṭiā A class of ghosts. [ଦ୍ର—ଶିଶୁମାନେ
ବହୁତ କାନ୍ଦିବା ଦେଖା ଗଲେ ଓ ତହିଁର କାରଣ ସ୍ୱରୂପ
ଦୃଶ୍ୟମାନ କୌଣସି ରୋଗ ଆଦି ନିର୍ଣ୍ଣୀତ ହୋଇ ନ
ପାରିଲେ ସମ୍ବଲପୁର ଅଞ୍ଚଳର ଅଧମ ନିବାସୀମାନେ କହନ୍ତି
ଯେ ପିଲାକୁ ମଟିଆ କନାଉଛି ଓ ପିଲାଠାରୁ ମଟିଆକୁ
ଛଡ଼ାଇବା ପାଇଁ ଗୁଣିଆ ଆଣି ଦେଖାନ୍ତି।]

ମଠ୍ (ଧାତୁ)—ସଂ—ବାସ କରିବା—
Maṭh (root) To live in; to reside.

ମଠ—ସଂ. ବି (ମଠ୍ ଧାତୁ + ଅଧିକରଣ ଅ; ଯେଉଁଠାରେ ବିଦ୍ୟାର୍ଥୀ-
Maṭha ମାନେ ବାସ କରନ୍ତି)—୧। ବିଦ୍ୟାର୍ଥୀମାନଙ୍କ ଆଶ୍ରମ;
ଟୋଲ—1. A residential Sanscrit school.
୨। ବାସସ୍ଥାନ—2. Residence. ୩। ଦେବସେବା
ପ୍ରଭୃତି ନିମିତ୍ତ ସ୍ଥାପିତ ଓ ଜମି ବାଡ଼ି ଲାଗି ଥିବା ଆଶ୍ରମ—
3. A religious endowment. [ଦ୍ର—ଭିନ୍ନ ଭିନ୍ନ
ସମ୍ପ୍ରଦାୟର ବା ପ୍ରତିଷ୍ଠାତାଙ୍କ ନାମ ଅନୁସାରେ ମଠର ନାମ
ହୋଇଥାଏ, ଯଥା—ଗୌଡ଼ୀୟ ମଠ, ସନ୍ନ୍ୟାସୀ ମଠ, ଦଣ୍ଡୀ
ମଠ, ଶଙ୍କରାଚାର୍ଯ୍ୟ ମଠ, ରାମାନନ୍ଦୀମଠ, ନିର୍ବାଣୀ ମଠ,
ନିରଞ୍ଜନୀ ମଠ, ରାମକୃଷ୍ଣ ମଠ ଇତ୍ୟାଦି। ପୁରୀରେ ଅନେକ-
ଗୁଡ଼ିଏ ମଠ ଅଛି ଓ ମଠଧାରୀମାନେ ଜଗନ୍ନାଥଙ୍କ ନିକଟରେ
ଲାଗିଥିବା ଅମୃତମନୋହି ସ୍ୱରୂପ ଭୋଗ କରି ତହିଁର ଆୟରୁ
ଜଗନ୍ନାଥଙ୍କ ଭୋଗ, ମଠର ଠାକୁରଙ୍କ ଓ ଅତିଥି
ଅଭ୍ୟାଗତମାନଙ୍କ ସେବା, ସଂସ୍କୃତ ଶିକ୍ଷାର୍ଥୀମାନଙ୍କର ଭରଣ-
ପୋଷଣ ଓ ଖଏରାତ ଆଦି କରନ୍ତି। ପୁରୀରେ ଇମାରମଠ,
ଉତ୍ତରପାର୍ଶ୍ୱ, ଦକ୍ଷିଣପାର୍ଶ୍ୱ, ଓଡ଼ିଆ, ପାପୁଡ଼ିଆ, ବଡ଼ସନ୍ଥ,
ବଡ଼ଛତା, ଜଗନ୍ନାଥବଲ୍ଲଭ, ଦ୍ୱିମାଳୀ, ସାନଛତା, ରାମଜୀ,
କଟକିଆ, ରାଧାକାନ୍ତମଠ ଆଦି ଅନେକଗୁଡ଼ିଏ
ମଠ ପ୍ରଧାନ। ଅଧିକାଂଶ ସ୍ଥଳରେ ମଠର ସମ୍ପତ୍ତି
ଲାଗିଥିବା ବ୍ୟକ୍ତିମାନଙ୍କ ଉଦ୍ଦିଷ୍ଟ କାର୍ଯ୍ୟରେ
ବ୍ୟୟିତ ହେଉ ନ ଥିବାରୁ ସ୍ଥାନୀୟଲୋକେ ଅଭିଯୋଗ
କରନ୍ତି। ମଠର ପ୍ରଧାନ ବାବାଜୀଙ୍କୁ ମହନ୍ତ କହନ୍ତି;
ମହନ୍ତମାନେ ସାଧାରଣତଃ ଦାରପରିଗ୍ରହ କରନ୍ତି ନାହିଁ।
ଯେଉଁ ମଠର ମହନ୍ତ (ଅନ୍ତତଃ ଦୂରଗତ ବ୍ୟକ୍ତିମାନେ
ଦେଖିବା ଭଳି) କୌମାର ବ୍ରତ ଧାରଣ କରିବାକୁ ବାଧ୍ୟ
ତାହାକୁ ନହଙ୍ଗିମଠ ବୋଲାଯାଏ। ପୁରୀର ଅଧିକାଂଶ ମଠ
ନହଙ୍ଗି ମଠ ଅଟେ। ଯେଉଁ ମଠର ମହନ୍ତ ଗୃହସ୍ଥ ଅଟନ୍ତି
ତାହାକୁ ଗୃହମଠ ବୋଲାଯାଏ। କଟକ ଜିଲ୍ଲାର ନେମାଳ
ମଠ, ଫତଗଡ଼ ମଠ ଆଦି ଗୃହୀମଠ।] ୪। ସନ୍ନ୍ୟାସୀ ଓ
ସନ୍ନ୍ୟାସିନୀମାନଙ୍କ ଆଶ୍ରମ; ବାବାଜୀ ମାତାଜୀଙ୍କ ଆଖଡ଼ା—
4. Math; hermitage of anchorites: a
monastery. ୫। ମନ୍ଦିର; ଦେଉଳ; ଦେବସ୍ଥାନ—
5. Temple ୬। ଗାଡ଼ି; ରଥ; ଗାଡ଼ି (ପ୍ରକୃତିବାଦ)
—6. Cart. ଦେ. ବି (ସଂ. ମନ୍ଥର; ପ୍ରା. ମଟ୍ଠଅ)—
বিলম্ব; দেরি ୧। ଡେରି; ବିଳମ୍ବ—1. Delay. (ଉ—ନ
**देरी** କର ମଠ ବରମାଗ ହେ। ବହନ। କୃଷ୍ଣସିଂହ.
ମହାଭାରତ. ବନ।) ୨। ବିଳମ୍ବ କରିବା—
2. Delaying. ବିଣ—ବିଳମ୍ବିତ—Delayed. (ଉ
—ନାହିଁ ଯେନି ନାହିଁକେ ଜଗତ ଉଠ, ପଥିକଙ୍କ ଗମନ
ହୁଅଇ ମଠ। ଘାନକୃଷ୍ଣ. ଜଗମୋହନ।)

ମଠ ଅଲଣା—ପ୍ରାଦେ (ଯାଜପୁର) ବିଣ—ଈଷତ୍ ଅଲଣା (ତରକାରି)—
Maṭhā alaṇā (curry) Slightly wanting in
salt.

ମଠ କରିବା—ଦେ. କ୍ରି—ବିଳମ୍ବ କରିବା—To delay.
Maṭha karibā [ଉ—ବୋଇଲେ ଗୋ ଦ୍ରୌପଦୀ ବେଗେ
(ମଠେଇବା—ଅନ୍ୟରୂପ) ଉଠ ଉଠ, ବ୍ୟର୍ଥ ଘରେ ବି

ଦେରିକରା **मिटयाना** କରୁଛ କାହିଁ ମଠ—କୃଷ୍ଣସିଂହ ମହାଭାରତ, ସଭା । )

**ମଠଧାରୀ**—ସ. ବି. ପୁଂ ( ମଠ+ଧୃ ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଇନ୍ )—୧ । ଯେଉଁ ବୈଷ୍ଣବମାନେ ମଠରେ ବାସ କରନ୍ତି—1. The inmates of a monastery. ୨ । ମଠର ମହନ୍ତ—2. The Mahanta or head of a Matha; abbot.
Mathadhārī
( ମଠଧାରିଣୀ—ସ୍ତ୍ରୀ )
( ମଠପତି—ଅନ୍ୟରୂପ )

**ମଠବାଡ଼ି**—ଦେ. ବି ( ସମ୍ପତ୍ତିର ଶବ୍ଦ )—ମଠ ଆଦି; ମଠ ଓ ମଠର ସମ୍ପତ୍ତି—A Matha and its properties.
Mathabārdi
मठबाड़ि **मठबारी**

**ମଠ ବୈଷ୍ଣବ**—ଦେ. ବି. ପୁଂ—ମଠବାସୀ ବୈଷ୍ଣବ—A monk belonging to a Mātha.
Matha baishnaba
मठेरवैष्णव **मटवैष्णव**
(ମଠ ବୈଷ୍ଣବୀ, ମଠ ବୈଷ୍ଣବାଣୀ—ସ୍ତ୍ରୀ)
(ମଠ ବଇଷ୍ଣ[ଷ୍ଣୋ]ମ, ମଠ ବଇଷ୍ଣବ, ମଠବୈସମ—ଗ୍ରାମ୍ୟରୂପ)

**ମଠ ମଠ ହେବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହେବା—1. To shrink from doing a work. ୨ । କାମ କରିବାକୁ ଡେରି କରିବା—2. To delay in doing a work.
Matha matha hebā
( ମଠେଇ ମଠେଇ ହେବା—ଅନ୍ୟରୂପ )
ଦେରିକରା **मटियाना**
[ମଠ ମଠ କରିବା—ଅନ୍ୟରୂପ]

**ମଠର**—ସ. ବି (ମନ୍ ଧାତୁ=ମାନ୍ୟ କରିବା+କର୍ମ. ଅର ନିପାତନ)—ପ୍ରାଚୀନ ମୁନିବିଶେଷ—Name of an ancient sage. ଦେ. ବିଣ ( ସ. ମତ୍ତ )—Maddened. ବି (ସ. ମନ୍ଥର)—ବିଳମ୍ବ—Delay.
Mathara

**ମଠ ସମ୍ପତ୍ତି**—ସ. ବି—ମଠ ତଳେ ଲାଗି ଥିବା ସମ୍ପତ୍ତି—The property endowed for a Matha
Matha sampatti

**ମଠା**—ଦେ. ବି—ଗରଦ; ଏକପ୍ରକାର ମୋଟ ରେଶମ ଲୁଗା; ଟସର; ମଲ୍ଲୁଟା—Tusser; a kind of coarse silk.
Mathā
मटका **कोकटा, मुकटा**
[ ଦ୍ର—ରେଶମ ବା ପାଟ ଏକପ୍ରକାର ପୋକଙ୍କ ଗୋଟିରୁ ବାହାରେ । ମଠା ଅନ୍ୟପ୍ରକାର ଗୋଟିରୁ ବାହାରେ । ରେଶମ ଗୋଟିମାନଙ୍କୁ ଭିତରସ୍ଥ ପୋକମାନେ କାଟି ବାହାର ଯିବା ପୂର୍ବରୁ ଉକ୍ତ ଗୋଟିମାନଙ୍କୁ ଗରମ ପାଣିରେ ବୁଡ଼ାଇ ପୋକମାନଙ୍କୁ ମାରି ପକାଇବାକୁ ହୁଏ । ଗୋଟିର ମୁହଁରେ ଛିଦ୍ର ହେଲେ ଗୋଟି ଚାରିପାଖେ ଥିବା ରେଶମ ସୂତା ଛିଣ୍ଡିଯାଏ; କିନ୍ତୁ ମଠା-ଗୋଟିରେ ଥିବା ପୋକମାନେ ଗୋଟିର ମୁହଁ କାଟି ପ୍ରଜାପତି ହୋଇ ଉଡ଼ିଯିବା ପରେ ସେହି ମୁହଁକଟା ଗୋଟିରୁ ମଠା ସୂତା କଟାଯାଏ । ] ବିଣ—ଯାହା ମଠା ବା ଚିକ୍କଣ ହୋଇଥାଏ—Polished. ପ୍ରାଦେ. (ଗଞ୍ଜାମ) ବି (ସ. ମଂଥିତ)—ଘୋଳ ଦହି; ତକ୍ର ( ତୁଳ. ହି. ମଠା, ବ. ମାଠା=ଘୋଳ ଦହି)—Churned curd.
मठोराहुआ

**ମଠା(ଠେ)ଇବା**—ଦେ. କ୍ରି—୧ । ବିଳମ୍ବ କରିବା—1. To delay. ୨ । ( ମାଠିବାର ଣିଜନ୍ତ ) ଅନ୍ୟ ଦ୍ୱାରା ମାଠିବା କାର୍ଯ୍ୟ କରାଇବା—2. To cause to be polished.
Mathā(the)ibā
ଦେରିକରା **देरीकरना, मटियाना**
ପାମିସକରାନ **चिकनाकराना, मठोराना**

**ମଠାଧିପ**—ସ ବି ( ମଠ+ଅଧିପ )—ମହନ୍ତ—The head of a Matha; an abbot of a monastery.
Mathādhipa
ମଠାଧୀଶ
ମଠାଧ୍ୟକ୍ଷ } —ଅନ୍ୟରୂପ

**ମଠିଆ**—ପ୍ରାଦେ ( ବାଲେଶ୍ୱର ପ୍ରାନ୍ତ ) ବି—(ତୁଳ. ହି. ମାଠ, ମଟକା, ମଟକୀ; ବ. ମଟ୍‌କା)--ମାଠିଆ—An earthen water jug.
Mathiā

**ମଠୁଆ**—ଦେ. ବିଣ ପୁଂ—୧ । ଅଳସୁଆ—1. Idle; slow; lazy; slothful [ଦ୍ର—ଅଳ୍ପ ବୁଦ୍ଧି ମଠୁଆ ଅଳସ ସୁଦ୍ଧକାର—କୃଷ୍ଣସିଂହ ମହାଭାରତ. ଉଦ୍ୟୋଗ ।) ୨ । ଯେ ସବୁ କାମରେ ମଠ କରେ—2. Dilatory; procrastinating. ୩ । ଯେ ମଠରେ ରହେ—3. Living in a Matha. ୪ । ମଠସମ୍ବନ୍ଧୀୟ—4. Relating to a Matha.
Mathuā
ଆଲସେ **सुस्त**
**मठवाला**

**ମଠେ**—ଦେ (ପଦ୍ୟ) କ୍ରି ବିଣ—ମଠରେ, ଧୀରେ ଧୀରେ—Slowly [ ଦ୍ର—ମଠେ ଗତି ଯହିଁ ଲକ୍ଷଣରତ୍ନ କହେ—ସ୍ୱଧାନାଥ. କାବ୍ୟକୌସ୍ତୁଭ । ]
Mathe
ଧୀରେ ଧୀରେ **सुस्तीसे**

**ମଡ଼ମଡ଼**—ଦେ (ଧ୍ୱନ୍ୟନୁକରଣ) ଅ—୧ । ଶୁଷ୍କ ବୃକ୍ଷର ଶାଖା ଭାଙ୍ଗିବାର ଶବ୍ଦ—1 The rattling sound of the breaking of the branches of a tree. ୨ । ଟାଣୁଆ ଜିନିଷ ଚୋବାଇବାର ଶବ୍ଦ - 2. The sound of chewing hard substances; crunching sound. [ ଦ୍ର—କାହିଁକି ଗୋଟିଏ ବାଛୁରୀକି ମଡ଼ମଡ଼ କରି ଚୋବାଇ ପକାଇଲେ—ମଧୁସୂଦନ ଉତ୍ତରରାମଚରିତ ।] [ ଦ୍ର—ମଡ୍ ମଡ୍ ଶବ୍ଦଠାରୁ ମୁଡ଼ ମୁଡ଼ ଶବ୍ଦ ଅଳ୍ପ । ]
Mardmard
ମଡ଼ମଡ଼ **मडमड, मुरमुर**

**ମଡ଼କ**—ଦେ. ବି—(ସ. ମରକ)—ମାରୀଭୟ; ମହାମାରୀ; ଯେଉଁ ବ୍ୟାପକ ରୋଗଦ୍ୱାରା ଏକସମୟରେ ବହୁ ଲୋକ ମରନ୍ତି—A fatal epidemic (e g. pestitence, cholera, plague, smallpox etc) [ଦ୍ର—ଧୂମକେତୁ ଯାମ ପୁଚ୍ଛ ସଞ୍ଚାଳ ବଦନ; କାଶିଥେ ଅକାଳେ ଥାଇ ବୁଝଇ ଯେସନ ଦୁର୍ଭିକ୍ଷ ମଡ଼କ ଗ୍ରହେ—ସ୍ୱଧାନାଥ. ବେଣୀସଂହାର ।]
Mardaka
ମଡ଼କ **मरी, मरकी**

**ମଡ଼କା**—ଦେ. ବିଣ—ମସକା; ଭଙ୍ଗପ୍ରବଣ—Fragile; brittle.
Mardakā
ମଚ(ଟି)କା **कुडकीला**

**ମଡ଼ଙ୍ଗ**—ପ୍ରାଦେ. (ଗଞ୍ଜାମ) ବି—ଶସ୍ୟାଦିର ଏକ ପ୍ରକାର ମାପ—A measure of corn; a unit of weight [ ଦ୍ର—୧ ମଡ଼ଙ୍ଗ=୮ ବିଶା=୨୦୦ ପଳ=ପ୍ରାୟ ୧୦ ବାଲେଶ୍ୱରୀ ସେର । ]
Mardaṅga

ମଡ଼(ଡ଼ି,ର) ଛୀ—ଦେ. ବଣ. ସ୍ତ୍ରୀ—(ସଂ. ମୃତବତ୍ସା)—୧ । ଯେଉଁ ସ୍ତ୍ରୀ
Marda(rdi, ra) chhī ମୃତବତ୍ସା ପ୍ରସବ କରେ—1. A
ମଡ଼ଞ୍ଚିଆ, ମଡ଼ଞ୍ଚୀ(ଞ୍ଚେ); ମରଞ୍ଚେ woman giving birth to
**मृतजनी** still born children. ୨ । ଯେଉଁ ସ୍ତ୍ରୀର ସନ୍ତାନ-
ମାନେ ଶିଶୁ ଅବସ୍ଥାରେ ମୃତ ହୁଅନ୍ତି—2. A woman
whose offsprings do not survive their
infancy.
[ଦ୍ରୁ—ଏଡ଼େ ମଡ଼ଛ ଅଛ କାହିଁ, କେ ବୋଲେ ମୁଖ ତା ନ
ଗୁହିଁ । ଜଗନ୍ନାଥ ଭାଗବତ ।]

ମଡ଼(ଢ଼)ଫୁଲି—ଦେ. (ପ୍ରାଚୀନ) ବି—୧ । ରାଜାଙ୍କ ଖାଦ୍ୟ ଓ ଦେବତାଙ୍କ
Marda(rdha)phuli ନୈବେଦ୍ୟ ପ୍ରଭୃ ବ୍ୟବହୃତ)
(ମେଢ଼ ଫୁଲି—ଅନ୍ୟରୂପ) ଭୋଜନାଦିର ପକ୍ୱ ସାମଗ୍ରୀ; ଅନ୍ନ-
ବ୍ୟଞ୍ଜନାଦି—1. Cooked articles of meal (of
a Raja or a Deity). ୨ । (ମାଦଳା ପାଞ୍ଜିରେ
ବ୍ୟବହୃତ) ଦେବତା ଓ ରାଜାଙ୍କ ଖାଦ୍ୟ ପାଇଁ ପକ୍ୱାନ୍ନ—
2. Boiled rice intended for a Deity or
Raja.

ମଡ଼ଫୁଲି ଘର—ଦେ. (ପ୍ରାଚୀନ) ବି—ପାକଶାଳା—
Marda phuli ghara Cook-room; kitchen.

ମଡ଼ ମଡ଼ି—ଦେ. ବି—ଏକ ପ୍ରକାର ବଡ଼ ଗୁଳ୍ମ—A kind of
Marda mardi large shrub; Antidesma Diandrum (Haine). [ ଦ୍ରୁ—ଏ ଗୁଳ୍ମ ସାଧାରଣତଃ
ପାର୍ବତ୍ୟ ଅଞ୍ଚଳର ଝରଣା ନିକଟରେ ଜନ୍ମେ ।]

ମଡ଼ ମଡ଼ିଆ—ଦେ. ବିଣ (ଧ୍ୱନ୍ୟନୁକରଣ)—୧ । ଭଙ୍ଗପ୍ରବଣ—
Marda mardiā 1. Fragile. ୨ । ରୁଗ୍ଣ ଓ ଦୁର୍ବଳ—
ମড় মড়ে 2. Weak and lean (on ac-
**मुर मुरिया** count of illness). ୩ । (ପତ୍ର ଆଦି) ଶୁଖିଯିବାରୁ
মড়া ଭଙ୍ଗପ୍ରବଣ—3. Dried and become crisp ( said
**मरनासन** of leaves etc).

ମଡ଼ର କେଶ୍—ବୈଦେ. ବି—(ଇଂ) (କଚରଥି)—ନରହତ୍ୟା ମକଦମା;
Mardar keś ଖୁଣୀ ମକଦମା—A murder case.
মড়র কেস **मडर केस**

ମଡ଼ା—ଦେ. ବି—(ସଂ. ମୃତ; ପା ମୁର୍ଦ୍ଦା)—୧ । ମୃତ ଦେହ; ଶବ;
Mardā ମୁର୍ଦ୍ଦାର—1 Dead body; carcass. [ଉ—
মড়া ସେ ଦୁହିଙ୍କ ଅସ୍ତ୍ରମାନ ଅଛି ଦୃଢ଼, ଏ ସକାଶୁ ମଡ଼ା ହୋଇବେ
**मुरदा; मुरदार** ଭୂଢ଼ ଭୁଢ଼ । କୃଷ୍ଣସିଂହ. ମହାଭାରତ. ବନ ।]
[ଦ୍ରୁ—ଯେଉଁ ଶବ ମରିବା ସଙ୍ଗେ ସଦ୍ୟ ଶ୍ମଶାନକୁ ନିଆଯାଏ
ତାକୁ ସଜ ମଡ଼ା ଓ ଯେ ଉଁଶବ ପରଦିନ ଯାଏ ପଡ଼ି ରହେ
ধান মাড়া ତାକୁ ବାସି ମଡ଼ା କହନ୍ତି ।] ୨ । ଧାନ ବେଙ୍ଗଲା—2.
**दौंनी** Treading of paddy sheaves by bullocks.
মাড়া ୩ । (ସଂ. ମର୍ଦ୍ଦନ) ଦଳନ; ମାଡ଼ିବା; ଗୋଡ଼ରେ ମଳିବା—
**रौंदना** 3. Treading; trampling. ବିଣ—୧ । ପଦ-
মাড়া ଦଳିତ—1. Trodden; trampled ୨ । ଶବପରି
**रौंदाहुआ** ଅସ୍ଥିକଙ୍କାଳଯୁକ୍ତ—2. Reduced to skeleton
মড়া (like a corpse). ୩ । ଯେ ମାଡ଼ିଥାଏ—3. Trea-
**मुरदा** ding on. ୪ । (ସଂ. ମର୍ଦ୍ଦିତ) ଲୋକେ ଯାତାୟାତ କରୁଥିବା
**चालु** (ବାଟ)—4. Beaten ( path ). ୫ । ପାଣିମାଡ଼ିଥିବା
**पटुआ** (ସ୍ଥାନ)—5. Irrigated by water.

ମଡ଼ା ଅମଡ଼ା—ଦେ. ବିଣ (ବିପରୀତାର୍ଥ ବୋଧକ ସହଚର ଶବ୍ଦ)—୧ ।
Mardā amardā ପାଣି ମାଡ଼ିଥିବା ଓ ପାଣି ନ ମାଡ଼ିଥିବା (କ୍ଷେତ୍ର)
**पटुआ और अपटुआ** —1. Irrigated and non-irrigated
**चालू और मरा** (lands) ୨ । ଲୋକମାନେ ଚାଲୁଥିବା (ବାଟ)
পথ অপথ ଓ ବାଟ ଫିଟି ନ ଥିବା (ସ୍ଥାନ)—2. Beaten and
**राहबेराह** unbeaten (track). ବି—ପଥ ଓ ଅପଥ—
Beaten and unbeaten paths; 'rough and
smooth' (as in 'Over rough and smooth
she trips along').

ମଡ଼ା(ଡ଼େ)ଇବା—ଦେ. କ୍ରି (ମାଡ଼ିବା କ୍ରିୟାର ଣିଜନ୍ତ ରୂପ)—
Mardā(rde)ibā The causative form of Mardibā)
মড়ান ୧ । ଅନ୍ୟଦ୍ୱାରା ମାଡ଼ିବା କ୍ରିୟା କରାଇବା; ଦଳାଇବା;
**मढवाना** ମଳାଇବା—1. To cause to be trampled; to
cause to be trodden. ( ଯଥା—ସେ ବଳଦଙ୍କ
ଦ୍ୱାରା ଧାନ ମଡ଼ାଉଛି )—୨ । ଅନ୍ୟଦ୍ୱାରା ଭୂମିରେ (ଜଳ)
দেওয়ান ବିସ୍ତୃତ କରାଇବା—2. To cause (a land or
**सींचवाना, पटवाना** place) to be irrigated. (ଯଥା—
ସେ କୂଲିଅଙ୍କ ଦ୍ୱାରା କ୍ଷେତରେ ପାଣି ମଡ଼ାଉଛି ।)
[জল]দেওয়া ୩ । ଭୂମିରେ ଜଳ ସେଚନ କରିବା—3. To
**सींचना, पटाना** irrigate a field. (ଯଥା—ରାମ ପଧାନ ଆଖ
କ୍ଷେତରେ ପାଣି ମଡ଼ାଉଛି) ୪ । ଅନ୍ୟର ଜମିକୁ ଅଧି-
অধিকারকরা କାର କରିବା—4. To encroach on another's
**बढाना** boundary or land. ( ଯଥା—ସେ ବାଡ଼କୁ
পরা ମୋ ଜମିରେ ହାତେ ମଡ଼ାଇ ଅଛନ୍ତି) ୫ । ଦେହରେ ଲୁଗା
**ओढना** ବା ଯୋତା ପିନ୍ଧିବା—5. To put on a dress on
the body. ( ଯଥା—ସେ ଚଢ଼ଉ ଯୋତା ମଡ଼େଇ
କରି କଚେରୀକୁ ବାହାରି ଅଛି )—୬ । କୌଣସି ଦିଗକୁ
**बाढ़ान** ଗତି କରାଇବା—6. To cause to take a course
বাঢ়ান towards any direction. ( ଯଥା—ନଦୀର ପୂର୍ବ
ପାଖରେ ବନ୍ଧୁତି ପାଣି ଅଛି, ପଶ୍ଚିମକୁ ମଡ଼େଇ କରି ନ
চাপান ଗଲେ ଲମ୍ବା ଓଦା ହୋଇଯିବ)—୭ । (ଲକ୍ଷଣାର୍ଥ) କୌଣସି
**चढाना** ବ୍ୟକ୍ତି ଉପରେ କୌଣସି ଦାୟିତ୍ୱ ପକାଇ ଦେବା ବା ଲଦି
ଦେବା—7. (Figurative) To lay a burden
or responsibility on another. ( ଯଥା—
ଜମିଦାର ବାକିଦାରଙ୍କ ଦେୟ ଖଜଣା ମୋ ଉପରେ ମଡ଼ାଇ
পিছনেথেকে ঘোরান ଦେଲେ ) ୮ । ଡଙ୍ଗାର ପଚ୍ଛମଙ୍ଗରେ ଥାଇ
**मोडना** କାତ ମାରି ଅଗ ମଙ୍ଗକୁ ବୁଲାଇବା—8. To turn or
direct the front end of a boat by manipulating the pole at the hind part of it.
চাপা ୯ । କୌଣସି ବସ୍ତୁ ଉପରେ ଅନ୍ୟ କୌଣସି ବସ୍ତୁକୁ ଲଦି
**दबाना** ଦେବା—9. To put or a press thing on

another. (ଯଥା—ବଙ୍କା ବାଉଁଶକୁ ନଆଁରେ ସେକ ଦେଇ ତା ଉପରେ ଗୋଟାଏ ପଥର ମଡ଼ାଇ କଣ୍ଟୁଦନା ରଖି ଦେଲେ ତାହା ସିଧା ହୋଇ ଯାଏ)· —୧୦ । କୌଣସି ଲତାକୁ ବୃକ୍ଷ ବା ଶୁଳ ବା ଉଞ୍ଚା ଉପରେ ମାଡ଼ିବାର ଉପାୟ କରିବା— 10. To cause a creep to creep over trellise. (ଯଥା—ଲଉ ଗଛକୁ ଖୁଦାଳ ପିଢ଼ାରେ ମଡାଇଲେ ଭଲ ଫଳ ହୁଏ )

ପୁକୁର ଗାବାନ ୧୧ । (ମାଛ ଧରିବା ପାଇଁ ନଦୀ ବା ପୋଖରୀରେ
छापना ପୋଲୁଦକୁ ) ମାଡ଼ିବା—11. To press (a fishing basket on the ground of a shallow tank or river to catch fish). (ଯଥା—ନଈରେ ମାଛ
ମାଡ଼ାନ ଧରିବାକୁ ଲୋକେ ପୋଲୁଦ ମଡ଼ାଉ ଅଛନ୍ତି) ୧୨ । ବଳଦଙ୍କୁ
रौंदवाना, दौनीकरना ଯୋଡ଼ି ଧାନକୁ ବେଙ୍ଗଳା ପକାଇବା— 12. To have the paddy sheaves trodden
বাগান by tethered bullocks. ୧୩ । (ଲକ୍ଷଣାର୍ଥ) କୌଣସି
बढाना କାର୍ଯ୍ୟ କରିବା ପାଇଁ କୌଣସି ବ୍ୟକ୍ତିଙ୍କୁ ପ୍ରବର୍ତ୍ତାଇବା— 13. To induce a person to do a thing. (ଯଥା—ମୁଁ ତାକୁ ଏକାମ କରିବାକୁ ଯେତେ ମଡ଼ାଇଲି ସେ ମାଡ଼ିଲା ନାହିଁ ) ୧୪ । (କନ୍ଥରେ କାଗଜ, ଟେବଲରେ କନା) ବିଛାଇବା—14. To spread a layer [of cloth on a table]
मढना

ମଡ଼ା କଢ଼ା—ଦେ. ବିଣ—ଶବବାହକ; ଯେଉଁ ଲୋକମାନେ ଶବକୁ ଘରୁ
Mar̲d̲ā kar̲dhā କାଢ଼ି ଶ୍ମଶାନକୁ ନଅନ୍ତି କିମ୍ବା ଶବ ଶ୍ମଶାନକୁ
କାଁଧକାଟ ନଆ ହେଉଥିବାବେଳେ ଶବ ସଙ୍ଗେ ଯାଆନ୍ତି— (Persons)
मुर्दा लेनेवाला

| | | |
|---|---|---|
| ମଡ଼ାକାନ୍ଧି<br>ମଡ଼ାକାନ୍ଧିଆ<br>ମଡ଼ାସାଇଁ<br>ମଡ଼ାସାଙ୍ଗୀ<br>ମଡ଼ାସାଙ୍ଗିଆ | ଅନ୍ୟରୂପ | Carrying the dead body to the cremation ground or accompanying the corpse to the cremation ground in funeral procession |

ମଡ଼ାକଢ଼ା ଭାଇ—ଦେ. ବି—ମୃତ ବ୍ୟକ୍ତିର ଗ୍ରାମବାସୀ ଯେଉଁ କୁଟୁମ୍ବ
Mar̲d̲ākar̲dhā bhāi ବା ବନ୍ଧୁମାନେ ଉକ୍ତ ବ୍ୟକ୍ତିର ଶବକୁ
ମଡ଼ାକାନ୍ଧିଆ ଭାଇ } ଅନ୍ୟରୂପ ଶ୍ମଶାନକୁ ନିଅନ୍ତି ବା ଶ୍ମଶାନ
ମଡ଼ାସାଙ୍ଗୀ ଭାଇ } ଯାଉଥିବାବେଳେ ଶବର ଅନୁଗମନ
କାଁଧକାଟ କରନ୍ତି;ଶବବାହକ ବାନ୍ଧବଗଣ— Agnates, neigh-
सागभातभाई bours and relatives who (according to the caste and social grade of the deceased ) carry his deadbody and accompany a person's funeral procession· [ ଦ୍ର—ଏଥିପାଇଁ ଶ୍ଳୋକରେ ଅଛି:—'ସ୍ୱଜନ୍ମାଦେ ଶ୍ମଶାନେଚ ଯସ୍ତିଷ୍ଠତି ସବାନ୍ଧବଃ' । ]

ମଡ଼ା କାମୁଡ଼ିବା—ଦେ. କ୍ରି—ଅତ୍ୟନ୍ତ କନ୍ଥାଳ କରିବା—
Mar̲d̲ā kāmur̲d̲ibā बहुत तङ्ग करना To importune·

ମଡ଼ାଖାଇ—ଦେ. ବି—ମଡ଼ା ମଶାଣୀ; ଶ୍ମଶାନ—
Mar̲d̲ā khāi Cremation ground.

ମଡ଼ା ଚଣ୍ଡିଆ—ଦେ. ବି. ପୁଂ ( ଗାଳି ) ( ସ. ଶ୍ମଶାନଚଣ୍ଡୀ )—
Mar̲d̲ā chandiā ୧ । ଶ୍ମଶାନବାସୀ ବ୍ୟକ୍ତି—1. (a term
(ମଡ଼ା ଚଣ୍ଡୀ—ସ୍ତ୍ରୀ) of abuse) A person living in the
मसानिया cremation ground. ୨ । ଶ୍ମଶାନବାସୀ ତନ୍ତ୍ର ସାଧକ ପୁରୁଷ ଓ ସ୍ତ୍ରୀ (ଭୈରବ ଓ ଭୈରବୀ), ଯେଉଁମାନେ ଶ୍ମଶାନରେ ରହନ୍ତି ଓ ଶବ ମାଂସ ଭକ୍ଷଣ କରନ୍ତି; ଅଘୋର ପନ୍ଥା ନେଇଥିବା ଶ୍ମଶାନବାସୀ ପୁରୁଷ ଓ ସ୍ତ୍ରୀ— 2. Persons (male or female) who perform esoteric (Tantric) rites and live in the cremation ground and eat the flesh of the dead bodies taken to the cremation ground [ଦ୍ର—ଏମାନେ ଚଣ୍ଡୀଙ୍କର ଉପାସକ ଅଟନ୍ତି ।] ୩ । (ସ. ମୃତପ) ଯେଉଁ ଲୋକ ଶ୍ମଶାନରେ ଶବର ବସ୍ତ୍ରାଦି ଗ୍ରହଣ କରି ତାହା ବିକି ଖାଇବା ନିର୍ବାହ କରେ—3. A person who lives on the selling of the clothes of dead men left in the cremation ground.

ମଡ଼ା ଜମି—ପ୍ରାଦେ. (ଯାଜପୁର) ବି—୧ । ଯେଉଁ ଜମିରେ ପାଣି ମାଡ଼ି
Mar̲d̲ā jami ଥାଏ—1. A field which has been
चालुजमीन irrigated by canal water
पगडंडी जमीन ୨ । ଯେଉଁ ଜମିରେ ଏକପଦା ରାସ୍ତା ପଡ଼ିଥାଏ— 2. The land on which there is a beaten track.

ମଡ଼ାଣ—ଦେ. ବି—ପୂର୍ବର ଭଉଁରିଆକୁ ଦେଖି ଜମିକୁ ମାପ କରିବା—
Mar̲d̲āṇa Measurement of land with reference
पड़ताल ପଡ଼ତାଳ to an old field book.

ମଡ଼ା ଭଉଁରିଆ—ଦେ. ବି—ଜମିକୁ ଆଉ ଥରେ ମାପ କରି ସାବିକ
Mar̲d̲ā bhaūṅriā ଭଉଁରିଆ ସଙ୍ଗେ ମେଳ ବା ଅମେଳ ଥିବା
पड़ताल खतियान ବିଷୟ ଦେଖିବା ଉଦ୍ଦେଶ୍ୟରେ ତିଆର କରି ଯାଇଥିବା ଭଉଁରିଆ—Revised fieldbook; remeasurement field book.

ମଡ଼ା ପଦା—ପ୍ରାଦେ. (ଯାଜପୁର) ବି—ଶ୍ମଶାନ—Cremation
Mar̲d̲ā padā ground; grave yard.

ମଡ଼ା ପୋଡ଼ା—ଦେ. ବି—ଶବଦାହ—
Mar̲d̲ā por̲d̲ā Cremation of the dead body.
ମଡ଼ି ପୋଡ଼ା, ମଡୁଇ ପୋଡ଼ାନ ଦେ. ବିଣ—ଶବଦାହକ—
मुर्दा जलाना Cremating the dead body.

ମଡ଼ାମଡ଼ି—ଦେ· ବି ଓ ବିଣ—ଦଳାଦଳ; ଚକଟାଚକଟି; ଲୁଦାଲୁଦି;
Mar̲d̲āmar̲d̲i ପରସ୍ପରକୁ ଲୁଦିବା ଚକଟିବା (କାର୍ଯ୍ୟ)—
ଦଳାଦଳି कुचलाकुचली Trampling each other. (ଦ୍ର—ପାଞ୍ଚାଳମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ଛାଡ଼ି, ପଳାଇଲେ ଶଙ୍କିତ ହୋଇ ମଡ଼ାମଡ଼ି । କୃଷ୍ଣସିଂ. ମହାଭାରତ ଦ୍ରୋଣ ।)

ମଡ଼ା ମଶାଣୀ—ଦେ. ବି ( ସ. ଶ୍ମଶାନ )—ଶ୍ମଶାନ—Cremation
Mar̲d̲ā masāṇī ମଡ଼ାମଶାନ मरघट; मशान ground.

ମଡ଼ା ମୁର୍ଦ୍ଦାରିଆ—ଦେ. ବଣ—୧ । ଶବପରି ଅତି କୃଶ—1. Weak
Mar̤ā murddāriā or emaciated like a corpse.
मराटिया ୨ । ଅତି ଜୀର୍ଣ୍ଣ—Too much worn out.
मुरदा

ମଡ଼ି—ଦେ. ବି ( ପ୍ରାଚୀନ ତାମ୍ରପତ୍ରରୁ ସନନ୍ଦ )—ଶ୍ରାଦ୍ଧାଦିର ଅନୁଷ୍ଠାନ
Mar̤i କରିବା ଲାଗି ରାଜ ଅନୁମତି ପ୍ରାପ୍ତି ନିମନ୍ତେ ଦେୟ
କର ( ପ୍ରୋଫେସର ଅର୍ତ୍ତବଲ୍ଲଭ )—A tax payable
to the king for perfomance of Srāddha.

ମଡ଼ିଆ—ଦେ. ବି ଓ ବଣ—ମଢ଼ିଆ ( ଦେଖ )—Mar̤hiā (See)
Mar̤iā ପ୍ରାଦେ ( ବସ୍ତର ) ବି—ବସ୍ତର ଅଧିବାସୀ
କନ୍ଧମାନଙ୍କର ଭାଷା—The language spoken by
the Kandhas in Bastar State.

ମଡ଼ି(ଡ଼ୁ, ରି, ରୁ)ଚ—ବୈଦେ. ବି ( ଫା. ମୋରଚ୍ )—ମୁରୁଚ୍; ଲୁହା
Mar̤i(r̤u; ri; ru)chā ଆଦିରେ ଲାଗିବା କଳଙ୍କି—Rust
मोरचा, मड़िचा ( on metals ). ବଣ—କଳଙ୍କି ଲାଗିଥିବା
मुर्चा —Rusted; rusty

ମଡ଼ିଚ ଧରିବା—ଦେ. କି ଓ ବି—ମୁରୁଚ୍ ଧରିବା;ଲୁହା ଆଦିରେ କଳଙ୍କ
Mar̤ichā dharibā ଲାଗିବା—To be rusted or
मर्चे धवा (लागा) rusty; to be covered with
मुर्चा लगना (धरना) (ମଡ଼ିଚ ଲାଗିବା—ଅନ୍ୟରୂପ) rust.

ମଡ଼ୁଆ—ଦେ. ବି—ମଢ଼ୁଆ ( ଦେଖ )—Mar̤hua ( See ) ପ୍ରାଦେ
Mar̤uā ( ସମ୍ବଲପୁର ) ବି—ଖମ୍ବୁଣିଆ ( ଭୁଲ. ହି. ମଡ଼ଇ
=ପର୍ଣ୍ଣଶାଳା )—A temporary shed.

ମଡ୍ଡୁ—ନ. ବି ( ମସଜ୍ ଧାତୁ=ପଙ୍କ୍ ହେବା + କର୍ତ୍ତୃ. ଉ )—ଅନବ
Maḍḍu ବାଦ୍ୟ ବିଶେଷ—A kind of drum.
(ମଡ୍ଡୁକ—ଅନ୍ୟରୂପ)

ମଢ଼—ଦେ. ବି ( ସଂ. ମୃତ )—ଶବ—Corpse; caracass. [ ଦ୍ର
Mar̤ha —ମନୁଷ୍ୟର ଶବକୁ ମଡ଼ା ଓ ପଶୁର ଶବକୁ ମଢ଼
मड़ा मुर्दा ବୋଲାଯାଏ । ]

ମଢ଼ିଆ—ଦେ. ବଣ—୧ । ମୁର୍ଦ୍ଦାରିଆ, ଶବପରି ଶୀର୍ଣ୍ଣ—1 Ema-
Mar̤hiā ciated or lean like a corpse. ୨ ।
मड़ा ଶବବାହକ—2. Carrying the dead body;
मुरदा corpse-bearing ବି—୧ । ( ସଂ. ମଣ୍ଡପ )—
काँधकाट ମଢ଼ୁଆ; ପତ୍ର କୁଡ଼ିଆ—1. A hut made of
कुड़े leaves and twigs. ( ଉ—ମଢ଼ିଆ ଦୁଆରେ
मढ़ी; मँडया ଯେ ଅଛଇ ବେଲ ଗଛ, ତହିଁ ତଳେ ବସିଛନ୍ତି
ବିଶ୍ୱଣ୍ଡଳ ବସ୍ତ୍ର । ବିଶ୍ୱନାଥ ଛଡ଼ପ୍ରାମାୟଣ । ) ୨ ।
( ସଂ. ମୃତାହ ) ଶୂଦ୍ରର ଶବଦାହରେ ସାହାଯ୍ୟକାରୀ ବା
ପୁରୋହିତ କର୍ମକାରୀ ପତିତ ବ୍ରାହ୍ମଣ; ଅଗ୍ରଦାନୀ ବ୍ରାହ୍ମଣ;
मड़िपोड़ा,मडुईपोड़ा पण्डाब्राह्मण-2. A fallen Brāhmaṇa;
मुर्दनी a low caste of Brāhmaṇas who officiate
at the funeral ceremony of Sūdras.
୩ । ( ବଣିଆ ଶବ୍ଦ ) କ୍ଷୁଦ୍ର ହାତୁଡ଼ି—3. A gold-
मठरना smith's small hammer.

ମଢ଼ିଆ ଅଇଁଠା—ଦେ. ବି—ପତିତ ବ୍ରାହ୍ମଣ ଦ୍ୱାରା ସ୍ପୃଷ୍ଟ—
Mar̤hiā aiṅṭhā Food made unclean by the
(ମଢ଼ିଆ ଛୁଆଁ ଛୁଡ଼—ଅନ୍ୟରୂପ) touch of a low caste
Brāhmaṇa. [ ଦ୍ର—ପୁରୀ ଜଗନ୍ନାଥ ମନ୍ଦିରର ଶାସନ-
ମାନଙ୍କରେ ଗ୍ରାମ ଦେବତା, ଦୁର୍ଗା ଠାକୁରାଣୀ ଆଦିଙ୍କ
ସେବକ ପଣ୍ଡା ପିଠା ଆଦି ଯାହା ଶଙ୍ଖୁଡ଼ି ଭୋଗ ଲଗାନ୍ତି,
ଉକ୍ତ ଭୋଗର ଅଂଶ ଆଣି ବ୍ରାହ୍ମଣ ଗୃହସ୍ଥଙ୍କ ଘରେ
ପଣ୍ଡା ଦେଇ ଯାଆନ୍ତି । ଉକ୍ତ ପିଠା ଆଦିକୁ 'ମଢ଼ିଆ
ଛୁଆଁଛୁଡ଼' ବୋଲାଯାଏ । ତାହାକୁ ବ୍ରାହ୍ମଣମାନେ ଖାଆନ୍ତି
ନାହିଁ; କିନ୍ତୁ ବ୍ରାହ୍ମଣ ପରିବାରର ସ୍ତ୍ରୀଲୋକମାନେ,
ଅବିବାହିତା ବ୍ରାହ୍ମଣଝିଅ ଓ ଶୂଦ୍ରମାନେ ଖାଆନ୍ତି ।]

ମଢ଼ିଆ କୋଟରା—ପ୍ରାଦେ (ଗଡ଼ଜାତ) ବି—ଅତି କ୍ଷୁଦ୍ରକାୟ କୋଟରା
Mar̤hiā koṭarā ହରିଣ—A short-statured species
of deer.

ମଢ଼ିଆ ପଣ୍ଡା—ଦେ. ୪ (ସବୁଠାରୁ ଶବ୍ଦ)—ନୀଚ ଶ୍ରେଣୀସ୍ଥ ବ୍ରାହ୍ମଣ—
Mar̤hiā paṇḍā Brāhmaṇa of an inferior caste.
(ମଢ଼ିଆ ବ୍ରାହ୍ମଣ—ଅନ୍ୟରୂପ) [ଦ୍ର—ମଢ଼ିଆ ପଣ୍ଡାଙ୍କ ଘରେ ଉଚ୍ଚ
ଶ୍ରେଣୀସ୍ଥ ଶାସନୀ ବ୍ରାହ୍ମଣମାନେ ଖାଆନ୍ତି ନାହିଁ କିମ୍ବା ବୈବାହିକ
ସମ୍ବନ୍ଧ କରନ୍ତି ନାହିଁ । ଏମାନେ ଅଶ୍ରୋତ୍ରିୟ ବ୍ରାହ୍ମଣଙ୍କର
ଛଅଗୋଟି ଶ୍ରେଣୀ ମଧ୍ୟରୁ ନିକୃଷ୍ଟ ଶ୍ରେଣୀର ଅନ୍ତର୍ଭୁକ୍ତ ।
କୃପାସିନ୍ଧୁ—ଇତିହାସ ।]

ମଢ଼ିଆଲ—ଦେ. ( ପ୍ରାଚୀନ ) ବି—୧ । ରଜକ; ଧୋବା—1. A
Mar̤hiāla washer man. ୨ । ପାଲଟା ଲୁଗା; ଅନ୍ୟର
धोप ; धोबी ବ୍ୟବହୃତ ଲୁଗା —2. Cloth already used by
छाड़ा कापड़ another person. ୩ । ମଳଆ ଲୁଗା—3.
छेड़ाहुआकपड़ा Soiled cloth; cloth soiled by use.
मयलाकापड़, मैलाकपड़ा ୪ । ଧୋବାଘରେ ସଫା କରି ହୋଇ
बासिकापड़, कलपदिआहुआ कपड़ा ସଫା ହୋଇଥିବା ରାଜାଙ୍କ
ଲୁଗା ବା ପୋଷାକ—4. Clothes or dress of a
king which have been washed by the
washer-man. (ଉ—ଦେଖିବା କେମନ୍ତ ସୁନ୍ଦର ।
ରାଜାର ମଢ଼ିଆଲ । ଜଗନ୍ନାଥ, ଭାଗବତ ।)

ମଢ଼ୁଆ—ଦେ. ବି—ତାଳ ପତ୍ରର ପିଠି ପାଖରେ ଥିବା ଚେମଡ଼ା ଲଇ ପର
Mar̤huā ଟାଣୁଆ ଖଡ଼କା—The tenacious and fib-
ताल पाताब शीर रीढ़ rous rib running at the back
of a palm leaf. [ ଉ—ମଢ଼ୁଆ ଟଣ୍ଡିକ ଗୁଡ଼ା
ହୋଇଅଛି ଲମ୍ବରେ କେତେ ଅଙ୍ଗୁଳ । ଉପାଦ. ସାଆନ୍ତୁଆ
ବାହା ।] ପ୍ରାଦେ (ଯାଜପୁର) ବି—ଭଜ ଆଦି ଘାଣ୍ଟିବା
ପାଇଁ ବ୍ୟବହୃତ ନଡ଼ିଆପତ୍ର ଖଡ଼କାର ଚୁଞ୍ଚ; ଭଜା ଭଜ
ଖଡ଼କା—A bunch of the fibrous ribs of
cocoanut leaves used for agitating corn
which is being fried.

ମଡ୍ଢୁଅ ଶାଙ୍କୁ(ଙ୍କୋ)ଳି—ଦେ. ବି—ତାଳପତ୍ରର ଶିର୍ବରେ କୃମିତ ଏକ-
Mardhuā sānku(ṅko)li ପ୍ରକାର ଫାଶ ।—
An obsolete kind of punishment inflicted on wicked boys by old pedagogues, consisting of tying the noosed ends of a palm-leaf-rib to the toes of the boy and putting the curved rib-string round his neck, so that his head and legs come nearer together. [ଦ୍ର—ପୂର୍ବେ ଚଟ୍ଟଶାଳୀମାନଙ୍କରେ ଏ ଦଣ୍ଡ ଦିଆ ଯାଉଥିଲା; ଏଥିରେ ଦଣ୍ଡିତ ବାଳକକୁ ଭୂମିରେ ବସାଇ ତାହାର ଦୁଇ ଗୋଡ଼ର ବୁଢ଼ା ଆଙ୍ଗୁଳିଦ୍ୱୟରେ ମଡ୍ଢୁଅର ଶେଷରେ ଥିବା ଫାଶଦ୍ୱୟକୁ ଦୃଢ଼ରୂପେ ଆବଦ୍ଧ କରି ମଡ୍ଢୁଅର ମଝି ଅଂଶକୁ ବାଳକର ମୁଣ୍ଡବାଟେ ଗଳାଇ ବେକରେ ପକାଇଲେ ସେ ବାଳକଟିର ମୁଣ୍ଡ ଓ ଦୁଇ ଗୋଡ଼ ଏକାଠେଇଁ ଲାଗିଯାଇ ବାଳକଟିର ମୁଣ୍ଡ ନଇଁକରି ଭୂଇଁ ଘାଷକୁ ଲାଗିଯାଉଥିଲା ଓ ଏଥିରେ ଦଣ୍ଡିତ ବାଳକର ଖୁବ୍ କଷ୍ଟ ହେଉଥିଲା । ବଙ୍ଗଦେଶରେ ଓ ଋଷିକୁଲ୍ୟା ଅଞ୍ଚଳରେ ଗ୍ରାମ୍ୟପାଠଶାଳାମାନଙ୍କରେ ଏ ଦଣ୍ଡ ପ୍ରଚଳିତ ନ ଥିବାର ଜଣାଯାଏ । ]

ମଣ୍ (ଧାତୁ)—ସ—ଶବ୍ଦକରିବା—
Man (root) To make a sound.

ମଣ (ଧାତୁ)—ପ୍ରାକୃତ—୧ । ବୋଧ କରିବା; ଜାଣିବା—1. To think; Mana (root) to know. ୨ । ବିଶ୍ୱାସ କରିବା—2. To trow; to believe. ୩ । ଶବ୍ଦ କରିବା—3. To make a sound.

ମଣ—ସ. ବି—(ଅର୍ବାଚୀନ ସଂସ୍କୃତ)—ମନ୍ଦଣ; ୪୦ ସେର—
Mana One maund; 40 seers. ଦେ. ବି.—ତାଲିମ ଘୋଡ଼ା ଓ ବଳଦମାନଙ୍କୁ କାମ ଶିଖାଇବା ପାଇଁ ତାଲିମ କରିବା—Training given to horses and bullocks; breaking a horse or young bullock. ବିଣ—ତାଲିମ ହୋଇଥିବା (ପଶୁଆଦି)—Trained (animals) for work. ପ୍ରାଦେ (ସିଂହଭୂମ) ବି—୪୦ ବାଟି ଓଜନ—Weight of forty bātis.
सायेस्ता; तालिम

ମଣ କରିବା—ଦେ. କ୍ରି—ଘୋଡ଼ା ଆଦିକୁ ତାଲିମ କରିବା—
Mana kariba To train or break an animal.
सायेस्ताकरा साधना; तालिमकरना

ମଣ(ଣି)ଷ—ଦେ. ବି (ସ. ମନୁଷ୍ୟ)—୧ । ଲୋକ; ମନୁଷ୍ୟ—
Mana(ṇi)sha 1. Man; person. ୨ । ଗୁଲାମ—2. Servant. ୩ । କୁଲି; ମୂଲିଆ—3. Cooly; labourer.
मानुष मानुख

ମଣହିଁ—ପ୍ରାଦେ (ଗଡ଼ଜାତ) ବି—ଭୋଜନ—
Manahiṅ Meal.

ମଣ ହେବା—ଦେ. କ୍ରି (ପଶୁ ଆଦି) କାମ କରିବାପାଇଁ ଶିକ୍ଷିତ ହେବା—
...hebā To be trained or broken (said of beasts of burden.
तालीमहोना,

ମଣା—ଦେ. ବି (ସ. ମଣ. ଧାତୁ=ଜାଣିବା)—୧ । ବୋଧ; ଜ୍ଞାନ—
Manā 1. Understanding; knowledge. ୨ । ମଣାଇବା; ମନୋରଞ୍ଜନ—2. Gratifying; ବିଣ—ମଣିଆ (ଦେଖ)—Maniā (See).

ମଣା(ଣେ)ଇବା—ଦେ. କ୍ରି (ସ ମନ. ଧାତୁ; ମଣିବା କ୍ରିୟାର ଣିଜନ୍ତ Manā(ne)ibā ରୂପ—The causative form of 'Manibā')—୧ । ମନୋରଞ୍ଜନ କରିବା—1. To gratify. (ଉ—ଡଗରେ କୃଷ୍ଣ ଅଛନ୍ତି ପାଇ; ଗୋପୀଙ୍କି ମୋକାବିଲା କରା କହନ୍ତି ମଣାଇ । ଜଗନ୍ନାଥ. ଭାଗବତ ।) ୨ । ମୁକାବିଲା, କରାଇବା—2. To settle a matter by confronting or comparing. ୩ । ରାଜି କରାଇବା—3. To cause to agree ୪ । ପ୍ରବର୍ତ୍ତାଇବା—4. To persuade. ୫ । ଅଧୀନ କରାଇବା—5. To bring under control. ୬ । (ପଶୁ ପ୍ରଭୃତିଙ୍କୁ) କାର୍ଯ୍ୟକୁଶଳ ହେବା ନିମନ୍ତେ ଶିକ୍ଷା ଦେବା—6. To train (beast of burden). (ଉ—ଦାମଡ଼ା ଘୋଡ଼ାକୁ ମଣାଉଥିଲି ମୁହିଁ, ଉଚିତ ଏବେ ଘେନଗଲା ବେକେ ବୋହି । କୃଷ୍ଣସିଂହ. ମହାଭାରତ ଶାନ୍ତି ।) ୭ । ବୁଝାଇବା—7. To cause to understand.
मनाना; मुकाबिला करना; मनाना; राजिकरान; मनाना; लयान; मनाना; सायेस्ताकरा; तालिमकरना, फेरना; बुझाना; सुझाना

ମଣାଣ—ଦେ. ବି (ପ୍ରା. ମଣ୍. ଧାତୁ=ଜାଣିବା)—୧ । ମନାଇବା;
Manāna ରାଜି କରାଇବା-1 Causing to agree. (ଉ—ରାଜି ସନ୍ଧିରେ ଧରିରେ ଜଣାଣ ମଣାଣ ନ କଲି କିଛି ବଣରେ—ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।) ୨ । ମୁକାବିଲା—2. Confronting; checking.
मनाना; मोकाबिला मुकाबिला

ମଣି(ଣୀ)—ସ. ବି (ମଣ୍. ଧାତୁ=ଶବ୍ଦ କରିବା+କର୍ତ୍ତୃ. ଇ)—
Maṇi(ṇī) ୧ । ରତ୍ନ; ବହୁମୂଲ୍ୟ ଦୀପ୍ତିଶାଳୀ ପ୍ରସ୍ତର—1. Precious stone; gem. [ଦ୍ର—ମଣି ଅନେକ ପ୍ରକାରର ଅଛି । ଯଥା—ହୀରା, ନୀଳା, ମୋତି ବା ମୁକ୍ତା, ମାଣିକ୍ୟ, ପଦ୍ମରାଗ, ସୂର୍ଯ୍ୟକାନ୍ତ, ଚନ୍ଦ୍ରକାନ୍ତ ଇତ୍ୟାଦି । ରତ୍ନ ତଳେ ଟୀକା ଦେଖ । ] ୨ । ମୁକ୍ତା—2. Pearl. ୩ । ସାପର ମୁଣ୍ଡରେ ଥିବା ଉଜ୍ଜ୍ୱଳ ରତ୍ନସଦୃଶ ବସ୍ତୁ—3. A gem found in the head of a serpent. [ଦ୍ର—ନୂଆ ହୋଇ ଧରା ହୋଇଥିବା ଗୋଖର ସାପର ଫଣା ନିକଟସ୍ଥ ମସ୍ତକାଂଶରୁ କେଳାମାନେ ଯୋଉଷ ବା ମାଣ୍ଡିଆ ପରି ଦୁଇଟି ଈଷତ୍ ହଳଦିଆ ମଣି ବାହାର କରିବାର ଦେଖା ଯାଇଅଛି, କିନ୍ତୁ ପୁରାଣ ଆଦିରେ ସର୍ପମୁଣ୍ଡରେ ଯେଉଁ ମଣି ଥିବାର କଥିତ ତାହା ଖୁବ୍ ଉଜ୍ଜ୍ୱଳ ଓ ଆଲୋକମୟ ଥିବାର କଥିତ ଓ ତାହା ସାପମୁଣ୍ଡରେ ଥିବାବେଳେ ନିକଟବର୍ତ୍ତୀ ଅଞ୍ଚଳକୁ ତହିଁର ପ୍ରଭାଦ୍ୱାରା ଆଲୋକିତ କରେ ବୋଲି ଲେଖାଅଛି । ସେପରି ଆଲୋକମୟ ମଣି ସତରାଚର ସର୍ପମାନଙ୍କ ମସ୍ତକରେ ଦେଖାଯାଏ ନାହିଁ । ] ୪ । ଚୂଡ଼ାଗ୍ର—4. The top of the head. ୫ । ଅଜାଗଳ ସ୍ତନ—5. The false nipple hanging down a goat's neck. ୬ ।

ଅକାଳେ ଉଦିତ ଇନ୍ଦ୍ରଧନୁ—6. A rainbow appearing of out time. ୭। ହାତଗଣ୍ଠି;ମଣିବନ୍ଧ—7. The wrist. ୮। ଲିଙ୍ଗାଗ୍ର; ସୁପାରୁ—8. The top of the penis. ୯। ସ୍ତ୍ରୀ ଯୋନିର ନାସିକାକୃତି ଅଗ୍ରଭାଗ; ସେଣ୍ଠି—9. The clitoris of the female organ. ୧୦। ଅଳଞ୍ଜର; ଜଳପାତ୍ର; ଜାହାଲ—10. A water-jar. ବିଣ—ଶ୍ରେଷ୍ଠ—Best. [ ଉ—ବସ୍ତ୍ର ସ୍ଵଚ୍ଛମଣି ମଣି,-ବର୍ଣ୍ଣ ପୁଣି ଅଣି ଅଣି, ଶଙ୍କା ଦୂର ସେହି ଅଣି, ଲଙ୍କା ରାଜନ । ଉଞ୍ଜ. ବୈଦେହୀଶବିଳାସ ) ଦେ. ବି (ସ୍ତ୍ରୀ ଓ ପୁଂ)—୧ । ଲୋକଙ୍କୁ ଡାକିବା ନାମ—1. Name given to persons. ୨ । ଚନ୍ଦ୍ରାମଣି, ସୂର୍ଯ୍ୟମଣି ଆଦିଙ୍କ ଡାକ ନାମ—2. A name for calling males and females whose names contain 'Maṇi'.

मनि
**मनि**

**ମଣି(ଣୁ)ଆ**—ଦେ· ବିଣ—ତାଲିମ କରାଯାଇଥିବା ( ପଶୁ )—
Maṇi(ṇu)ā Trained; broken (said of beasts of burden).
(ଅମଣିଆ—ବିପରୀତ)

ସାଏସ୍ତା **तालिमकियाहुआ, फेराहुआ**

**ମଣିଆଁ**—ପ୍ରାଦେ (ଗଡ଼ଜାତ) ବି—ଏକପ୍ରକାର କ୍ଷୁଦ୍ର ମୃଗ—A kind of small unspotted deer.
Maṇiāṅ
[ ଦ୍ର—ଏହା ଉଚ୍ଚରେ ୨ । ୨॥ ଫୁଟ ହୁଏ; ଦେହର ବର୍ଣ୍ଣ ଲାଲୁବର ବର୍ଣ୍ଣପରି ଓ ଦେହରେ ଛୋପି ଛୋପି ଦାଗ ନ ଥାଏ । ପୁରୁଷ ଜାତିର ଶିଂଘ ଥାଏ । ମାଈର ଶିଙ୍ଘ ନ ଥାଏ । ସମ୍ବରଙ୍କ ଦେହର ବର୍ଣ୍ଣ ମାଟିଆ ନାଲି, କିନ୍ତୁ ମଣିଆଁ ଦେହର ବର୍ଣ୍ଣ ଇଟାର ବର୍ଣ୍ଣ । ଏମାନେ କୁଟୁରାଠାରୁ ବଡ଼ ଓ ହରିଣଠାରୁ ଛୋଟ । ]

**ମଣି ଆଣିବା**—ଦେ. କ୍ରି—୧ । ବିଚାରିବା—1. To consider.
Maṇi āṇibā
[ ଉ—ବୋଲନ୍ତି ତ ଜାଣୁ ରମଣୀମଣିକି ହୁଦେ ମଣି ଆଣିଲେ ଏ ସତ । ଉଞ୍ଜ ବୈଦେହୀଶବିଳାସ । ] ୨ । କୌଣସି ବସ୍ତୁକୁ ମୁକାବିଲା କରି ଗ୍ରହଣ କରିବା—2. To take charge of a thing by checking and tasting it.

**जांचकरलेना**

**ମଣିକ**—ସଂ. ବି (ମଣି+ସ୍ଵାର୍ଥେ. କ)—୧ । ଅଳଞ୍ଜର; ଜାହାଲ—
Maṇika 1. A water-jar. ୨ । ମାଠିଆ (ହି. ଶ)—2. An earthen pitcher.

**ମଣି କଙ୍କଣ**—ସଂ. ବି—ରତ୍ନଖଚିତବଳୟ—
Maṇi kaṅkaṇa A bracelet set with gems.

**ମଣି କର୍ଣ୍ଣିକା**—ସଂ. ବି—(ମଣି+କର୍ଣ୍ଣିକା=କର୍ଣ୍ଣଭୂଷଣ)—୧ । ମଣିମୟ କର୍ଣ୍ଣଭୂଷଣ—1. An earring set with gems.
Maṇi karṇṇikā
୨ । କାଶୀସ୍ଥ ତୀର୍ଥସ୍ଥାନ ଓ ଗଙ୍ଗା ନଦୀର ଗୋଟିଏ ଘାଟ—2. Name of a sacred place and bathing ghat of the Ganges in Kāśī (Benares) [ ଦ୍ର—ଏହି ସ୍ଥାନରେ ଶିବଙ୍କ ମଣିମୟ କର୍ଣ୍ଣଭୂଷଣ ଖସି ପଡ଼ିଥିବାରୁ ଏହି ନାମକରଣ ହୋଇଅଛି । କାଶୀଖଣ୍ଡରେ ବର୍ଣ୍ଣିତ ହୋଇଅଛି ଯେ ଚନ୍ଦ୍ରାମଣି ମହାଦେବ ଏହି ସ୍ଥାନରେ ମୁମୂର୍ଷୁ ସାଧୁପୁରୁଷମାନଙ୍କ କର୍ଣ୍ଣରେ ତାରକ ବ୍ରହ୍ମନାମ ଦେଇ ସେମାନଙ୍କୁ ଉଦ୍ଧାର କରନ୍ତି ବୋଲି ଏହିପରି ନାମକରଣ ହୋଇଅଛି । ଏହି ତୀର୍ଥ ବିଷ୍ଣୁଙ୍କ ସୁଦର୍ଶନ ଚକ୍ରଦ୍ଵାରା ଖୋଳିତ ହୋଇ ଥିବାରୁ ଚକ୍ର ପୁଷ୍କରିଣୀ ନାମରେ ଖ୍ୟାତ । ଏଠାରେ ମଣିକର୍ଣ୍ଣିକେଶ୍ଵର ଶିବମନ୍ଦିର ଓ ବିଷ୍ଣୁଙ୍କ ପାଦୁକା ଅଛି । ଏହି ମଣିକର୍ଣ୍ଣିକା ଘାଟ ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ । ଏଠାରେ ଥିବା ଶ୍ମଶାନର ଅଗ୍ନି ପ୍ରାୟ ଲିଭେ ନାହିଁ; ଏହି ଶ୍ମଶାନରେ ଦାହ ହେବା ନିମନ୍ତେ ୪୦।୫୦ କୋଶ ଦୂରରୁ ଲୋକେ ଶବମାନ ଏଠାକୁ ବହି ଆଣନ୍ତି; ଦିବା ରାତ୍ରି ଶବବାହୀ ଲୋକଙ୍କର ସ୍ରୋତ ଏଠାରେ ଲାଗିଥାଏ । କାଶୀରେ ମୃତ ହୋଇ ଏହି ଘାଟରେ ମୃତ ବ୍ୟକ୍ତିର ଶବଦାହ ହେଲେ ମୁକ୍ତିଲାଭ ହୁଏ, ଏହି ବିଶ୍ଵାସରେ ବହୁଶତ ହିନ୍ଦୁ ମୃତ୍ୟୁର ପ୍ରତୀକ୍ଷାରେ ଏହି ତୀର୍ଥ ନିକଟରେ କାଶୀବାସ କରନ୍ତି । ମୃତ୍ୟୁ ପୂର୍ବରୁ ମଧ୍ୟ ଅନେକ ମୁମୂର୍ଷୁ ବ୍ୟକ୍ତିଙ୍କୁ ଏଠାକୁ ଅଣା ଯାଇଥାଏ । ଏହି ଘାଟକୁ ଯେଉଁ ରାସ୍ତା ଦେଇ ଯିବାକୁ ହୁଏ, ସେହି ରାସ୍ତା ପ୍ରାୟ ହିବାରାତ୍ର ଶବବାହୀମାନଙ୍କର 'ରାମ ନାମ ସତ୍ୟ ହେ' ଧ୍ଵନିରେ ମୁଖରିତ ହେଉଥାଏ । ଏହି ଶ୍ମଶାନ ଉପର୍ଯ୍ୟୁପରି ତଳ(ମହଲା)ଯୁକ୍ତ ହୋଇ ଏପରି ନିର୍ମିତ ହୋଇ ଅଛି ଯେ, ଗଙ୍ଗା ନଦୀର ଜଳ ବଢ଼ିଲେ କମ୍ବା କମିଲେ ସେହି ଜଳକୁ ଲାଗିଥିବା ମହଲାରେ ଶବଦାହ କରାଯାଏ ଓ ଶବଦାହ ପରେ ଚିତା-ଭସ୍ମକୁ ଗଙ୍ଗାଜଳଦ୍ଵାରା ଧୌତ କରି ସେ ସ୍ଥାନ ପରିଷ୍କୃତ କରାଯାଇ ସେହି ସ୍ଥାନରେ ଅନ୍ୟ ଶବଦାହ କରାଯାଏ । ଏହି ଘାଟରେ ସ୍ନାନ କରି ପିତୃଲୋକଙ୍କୁ ପିଣ୍ଡ ଦେବା ନିମନ୍ତେ ପ୍ରତ୍ୟହ ଲକ୍ଷ ଲକ୍ଷ ଯାତ୍ରୀ ଏଠାରେ ରୁଣ୍ଡ ହୁଅନ୍ତି । ]

**ମଣି କାଚ**—ସଂ. ବି—୧ । ସ୍ଫଟିକ—1. Crystal. ୨ । ବାଣପୁଙ୍ଖ—2. The tail of an arrow.
Maṇi kācha

**ମଣି କାଞ୍ଚନ**—ସଂ. ବି—(ଦ୍ଵନ୍ଦ୍ଵ; ମଣି+କାଞ୍ଚନ)—ମଣି ଓ କାଞ୍ଚନ; ମୁକ୍ତା ଓ ସ୍ଵର୍ଣ୍ଣ—Gem and gold.
Maṇi kāñchana

**ମଣିକାଞ୍ଚନ ଯୋଗ**—ସଂ. ବି—ମଣିର ଓ କାଞ୍ଚନର ଏକତ୍ର ସମାବେଶ; ଦୁଇଟି ଉପଯୁକ୍ତ ବା ଶୋଭନ ବସ୍ତୁର ମିଳନ; ମଣିର ଓ ସ୍ଵର୍ଣ୍ଣର ଏକବି ସମାବେଶ ପରି ଅତି ମନୋହର ଓ ଉପଯୁକ୍ତ ସଂଯୋଜନ—The conjuction of two nice things. [ ଦ୍ର—ଓଡ଼ିଆରେ ଏହି ଭାବାତ୍ମକ ଆଉ ଗୋଟିଏ ଉପମା ଅଛି—'ହାତୀ ଦାନ୍ତରେ ସୁନା କୁଅଣି ହେବା ନ୍ୟାୟ ।']
Maṇi kāñchana joga
(ମଣିକାଞ୍ଚନ ସଂଯୋଗ—ଅନ୍ୟରୂପ)

**ମଣିକାର**—ସଂ. ବି—( ମଣି+କୃ ଧାତୁ+କର୍ତ୍ତୃ. ଅ )—୧ । ମଣି-ପରିଷ୍କାରକ—1. A cleaner of gems. ୨ । ଜହୁରୀ; ମଣିପରୀକ୍ଷକ—2. Examiner of
Maṇi-kāra

gems; a lapidiary. ୩ । ମଣିବ୍ୟବସାୟୀ—3. Jeweller. ୪ । ନ୍ୟାୟଚିନ୍ତାମଣି ନାମକ ଗ୍ରନ୍ଥର ରଚୟିତା—4. The author of a logical work 'Nyāya Chintāmaṇi'.

ମଣି କୁଟ୍ଟିମ—ସ. ବି(ମ.ପ.ଲୋ)—ମଣିଦ୍ୱାରା ଆଚ୍ଛାଦିତ ଗୃହର ତଳଦେଶ
Maṇi kuṭṭima —Floor paved with mosaic of stones or gems.

ମଣି କୁଣ୍ଡଳ—ସ. ବି—ମଣିମୟ କର୍ଣ୍ଣାଭରଣ—An ornament for
Maṇi kuṇḍaḷa the ear set with gems.

ମଣିକୂ(କୁ)ଟ—ସ. ବି—ରତ୍ନଗିରି, ପର୍ବତବିଶେଷ—A mythologi-
Maṇi kū(ku)ṭa cal mountain made of gems.
[ ଦ୍ର—ପୁରାଣ ମତରେ ଆସାମର କାମରୂପ ନିକଟରେ ଏହା ଅବସ୍ଥିତ । ହି. ଶ ]

ମଣି ଖୁମ୍ବ—ପ୍ରାଦେ.—(ସାଜପୁର) ବି—ମାଣିଖୁଣ୍ଟ (ଦେଖ)
Maṇi khumba Māṇi khuṇṭa (See)

ମଣି ଗ୍ରୀବ—ସ. ବି—କୁବେରଙ୍କ ପୁତ୍ର—
Maṇi grība Son of Kubera.

ମଣି ଚୂଡ଼—ସ. ବି.—(ବହୁବ୍ରୀହି; ମଣି+ଚୂଡ଼ା)—ଯାହାର ଚୂଡ଼ାରେ
Maṇi chūṛa ବା ମସ୍ତକରେ ମଣି ଥାଏ—Having a dazzling gem on the head. ବି—ମଣିନାଗ ( ଦେଖ )—Maṇināga (See) ଦେ. ବି—ସର୍ପରୂପରେ ଜନ୍ମ ହୋଇଥିବା ଅଭିଶପ୍ତ ଇନ୍ଦ୍ରପୁତ୍ର ସୁଦର୍ଶନ—Sudarsana, the accursed son of Indra who was born as a serpent. [ ଦ୍ର—ସେ ନନ୍ଦଙ୍କୁ ଗିଳିଲାରୁ ଶ୍ରୀକୃଷ୍ଣ ତା ମସ୍ତକରେ ପାଦ ପ୍ରହାର କରି ନନ୍ଦଙ୍କୁ ଉଦ୍ଧାର କରିଥିଲେ ଓ ମଣିଚୂଡ଼ଙ୍କୁ ମୋକ୍ଷଦାନ କରିଥିଲେ ।]

ମଣି ଚୂଳ—ଦେ. ବି (ସ. ମଣି ଚୂଡ଼)—ମଣି ନାଗ ( ଦେଖ )
Maṇi chūḷa Maṇi nāga ( See )
মণি চূড় मनियार

ମଣି ଜଡ଼ିତ—ସ. ବି. (ତୃତୀୟା ତତ୍)—ମଣିମଣ୍ଡିତ; ରତ୍ନଖଚିତ—
Maṇi jaṛita Set with gems.

ମଣିତ—ସ. ବି ( ମଣ୍ ଧାତୁ=ଶବ୍ଦ କରିବା+ଭାବ. ତ )—୧ । ଚୁମ୍ବନ
Maṇita ଧ୍ୱନି—1. The sound of kissing. ୨ । ରତି ରତି ବାଣୀ;ରତି କୂଜିତ; ରମଣ କାଳରେ ରମଣୀର ଅବ୍ୟକ୍ତ ମଧୁର ଶବ୍ଦବିଶେଷ—2. The sweet and blissful sound emitted by a woman during cohabitation indicating ecstasy or orgasm

ମଣି ଦ୍ୱୀପ—ସ. ବି (ମଣିମୟ ଦ୍ୱୀପ; ଏହି ଦ୍ୱୀପରେ ପ୍ରଚୁର ମଣି ଥିବାରୁ)-
Maṇi dwīpa କ୍ଷୀର ସମୁଦ୍ର ମଧ୍ୟସ୍ଥ ପୌରାଣିକ ଦ୍ୱୀପବିଶେଷ-Name of a fabulous island abounding in gems. [ ଦ୍ର—ଏହା ତ୍ରିପୁରସୁନ୍ଦରୀ ଦେବୀଙ୍କ ନିବାସସ୍ଥାନ ଥିବାର ପୁରାଣରେ ବର୍ଣ୍ଣିତ—ହି. ଶ ]

ମଣି ଧର—ସ. ବି (ମଣି+ଧୃ ଧାତୁ+କର୍ତ୍ତୃ. ଅ)—ସର୍ପ (ହି. ଶ)—
Maṇi dhara Snake.

ମଣି ନାକ—ଗ୍ରା. ବି—ମୈନାକ (ଦେଖ)—Maināka (See)
Maṇi nāka (ଉ—ପଛ ବାଣୀ ପଛ ମଣି ମଣିନାକ ମଛ, ପ୍ରମାଦ-ଉଦରେ ଦରେ ବୁଡ଼ି ସେ କମଛ । ଆନନ୍ଦଚନ୍ଦ୍ର. ଭକ୍ତିପ୍ରକାଶ ।)

ମଣି ନାଗ—ସ. ବି, ( ମ. ପ. ଲୋ; ମଣିଧାରୀ ନାଗ )—ଯେଉଁ ନାଗ
Maṇi nāga ସାପର ମୁଣ୍ଡରେ ମଣି ଥାଏ—A cobra having a jewel on his head. [ଦ୍ର—ଗୋଖର, ନାଗ ଆଦି ବିଷଧର ସର୍ପମାନଙ୍କୁ କେଳାମାନେ ଧରି ତାଙ୍କ ମୁଣ୍ଡକୁ ଛୁରିରେ ଚିରାଇ ଦେଲେ ଉକ୍ତ ସାପ ମୁଣ୍ଡରୁ ଦୁଇଟି ଈଷତ ହଳଦିଆ ମଣି ବାହାରିବାର ଦେଖାଯାଏ । ] ଦେ.ତଣ—ରଣପୁରର ପର୍ବତବିଶେଷ—Name of a mountain in 'Raṇapura' State.

ମଣି ନାଗ ଦୁର୍ଗା—ଦେ. ବି ( ସ. ମୈନାକ ଦୁର୍ଗା )—ରଣପୁରର
Maṇi nāga durgā ଅଧିଷ୍ଠାତ୍ରୀ ଦେବୀ—Name of the image of Goddess Durgā in Ranpur state.

ମଣି ନେବା—ଦେ. କ୍ରି ( ସ. ମନ୍ ଧାତୁ )—୧ । କୌଣସି ବିଷୟରେ
Maṇi nebā ସକଳ କଥା ବୁଝି ସାରି ଭାର ଗ୍ରହଣ କରିବା—মোকাবিলা করে ভার লওয়া 1. To take over charge बुझ लेना item by item. ୨ । ଉତ୍ତମ ରୂପେ ବୁଝି ଗ୍ରହଣ କରିବା—2. To take a thing after understanding it.

ମଣିନ୍ଦା—ପ୍ରାଦେ. (ସାଜପୁର) ବି—୧ । ମୁକନ୍ଦା ଘାସ—1. A kind
Maṇindā of grass. ୨ । ଏକ ଜାତୀୟ କ୍ଷୁଦ୍ର ହଳଦିଆ ରଙ୍ଗର କୋଳି—2. A species of yellow-coloured small berry.

ମଣି ପଦ୍ମ—ସ. ବି—ଏକ ବୋଧିସତ୍ତ୍ୱଙ୍କ ନାମ (ହି. ଶ)—
Maṇi padma Name of a Buddhist saint.

ମଣି ପୁର—ସ. ବି—୧ । ଆସାମ ନିକଟବର୍ତ୍ତୀ ପାର୍ବତ୍ୟ ରାଜ୍ୟବିଶେଷ—
Maṇi pura 1. Name of a hilly state near Assam. ୨ । ତନ୍ତ୍ର ଅନୁସାରେ ଶରୀରସ୍ଥ ଛଅଟି ଚକ୍ର ମଧ୍ୟରୁ ନାଭିର ନିମ୍ନରେ ଥିବା ଚକ୍ର—2. Name of one of the six esoteric circles said to exist inside the human body according to the Tantras. [ଦ୍ର—ତନ୍ତ୍ର ମତରେ ଏହା ତେଜୋମୟ, ବିଦ୍ୟୁତପ୍ରଭ, ନୀଳବର୍ଣ୍ଣ, ଦଶ ଦଳବିଶିଷ୍ଟ ଓ ମହାଦେବଙ୍କ ନିବାସ ସ୍ଥାନ । ଏହି ଦଶ ଦଳରେ ଯଥାକ୍ରମେ ବର୍ଣ୍ଣମାଳାର ଡ ବର୍ଣ୍ଣଠାରୁ ଫ ବର୍ଣ୍ଣ ଅବସ୍ଥିତ—ହି. ଶ]

ମଣି ପୁଷ୍ପକ—ସ. ବି (ନାମ)—ସହଦେବଙ୍କ ଶଙ୍ଖ—The conch
Maṇi pushpaka of Sahadeba.

ମଣି ପୂର—ସ. ବି (ମଣି+ପୂର=ପୂର୍ଣ୍ଣ)—୧ । ନାଭି ପଦ୍ମ—1. The
Maṇi pūra part inside the navel. ୨ । ନାଭିଚକ୍ର; ତନ୍ତ୍ରୋକ୍ତ ଶରୀରସ୍ଥ ଷଟ୍ ଚକ୍ର ମଧ୍ୟରୁ ତୃତୀୟ ଚକ୍ର—2 The third of the six Tantric circles said to exist inside the human body.

ମଣି ପ୍ରଭ—ସଂ. ବିଣ ( ବହୁବ୍ରୀହି; ମଣି+ପ୍ରଭା )—୧ । ମଣିପରି
Maṇi prabha ପ୍ରଭାଯୁକ୍ତ—1. Dazzling like a gem.
୨ । ମଣି ଦ୍ୱାରା ଆଭାଯୁକ୍ତ—2. Dazzling with gems.

ମଣି ପ୍ରଭା—ସଂ. ବି· (୬ଷ୍ଠୀ ତତ୍; ମଣି+ପ୍ରଭା)—ରତ୍ନର ଆଭା—
Maṇi prabhā The lustre of gems.

ମଣି ବନ୍ଧ—ସଂ. ବି—୧ । କର ଗ୍ରନ୍ଥି; ହାତର ଗଣ୍ଠି ବା ଖଞ୍ଜା;
Maṇi bandha କଚଟି—1. The wrist. ୨ । ନବାକ୍ଷର
ସଂସ୍କୃତ ବୃତ୍ତ ବିଶେଷ—2. Name of a Sanskrit
metre. [ଦ୍ର—ଏଥିର ପ୍ରତି ଚରଣରେ ଭଗଣ, ମଗଣ ଓ
ସଗଣ ଥାଏ—ଛ. ଶ]

ମଣିବା—ଦେ. କ୍ରି (ସଂ. ମନ ଧାତୁ)—୧ । ଜାଣିବା—1. To know.
Maṇibā ୨ । ବୁଝିବା—2. To understand. ୩ । ବୋଧ
(ମଣାଇବା—ଣିଜନ୍ତ ରୂପ) କରିବା—3. To feel. (ଉ—ଲୁଣି
মানা, মনে করা ମଣିଲଣି ମଧୁ ଝରନ୍ତୁ । କବିସୂର୍ଯ୍ୟ. ସଙ୍ଗୀତ ।)
**सोचना, मनन करना** ୪ । ବିଚାର କରିବା—4. To think;
to regard. (ଉ—ପର ମଣିତ ରମଣୀ ! ଦେଲୁ କଇମଣି
ଛନ୍ଦରେ । କବିସୂର୍ଯ୍ୟ. ସଙ୍ଗୀତ ।) ୫ । ବିଶ୍ୱାସ କରିବା—
মানা 5. To believe. ୬ । ସ୍ୱୀକୃତ ହେବା; ମଙ୍ଗିବା—
**मानना** 6. To agree; to acquiesce. ୭ । ମୁକାବିଲା
মোকাবিলা করা କରିବା; ପରୀକ୍ଷା କରିବା—7. To check; to
**जाँचना** compare. ୮ । କୌଣସି ନୂତନ ସ୍ଥାନକୁ ବା ବ୍ୟକ୍ତିକୁ
রাজি হওয়া ବା ଅବସ୍ଥାକୁ ଆଦର ଯିବା ବା ସହଜ ହୋଇଯିବା—
**मानना** 8. To become used or reconciled to a
ভাল পাওয়া new place, position, work or person.
**पसन्द करना, चाहना** ୯ । ଅନୁମାନ କରିବା—9. To infer.
(ଉ—ବିବାଦ ଉଚିତ ନୁହେଁ, ସନ୍ଦେହ ହୋଇ
ଉଚିତ, ଗମନ କରିବା ପ୍ରାପ୍ୟେ ମଣେ । ଉଞ୍ଜ. ବୈଦେହୀଶ-
ବିଳାସ ।) ୧୦ । ସୁଖ ପାଇବା; ଭଲ ପାଇବା—10. To
like; to love. (ଉ—କୋଇଲି ଲୋ ! ଘର ମୋର କ
ମଣେ କ୍ଷନ ନନ୍ଦ । ମାରକଣ୍ଡ କୋଇଲି ।)

ମଣି ବିଗ୍ରହ—ସଂ. ବି ( ୬ଷ୍ଠୀ ତତ୍ )—ମଣି ବା ପ୍ରସ୍ତର ନିର୍ମିତ ଦେବ-
Maṇi bigraha ମୂର୍ତ୍ତି—An image of a Deity made of gems or stone.

ମଣି ବୀଜ—ସଂ. ବି ( ବହୁବ୍ରୀହି; ମଣି+ବୀଜ )—ଡାଳିମ୍ବ—
Maṇi bīja Pomegranate.

ମଣି ବେଦୀ—ସଂ. ବି—ମଣି ଖଚିତ ପୀଠ ବା ବେଦୀ—An altar
Maṇi bedī set with gems or precious stones.

ମଣି ଭଦ୍ର—ସଂ. ବି—୧ । ଯକ୍ଷବିଶେଷ—1. Name of an aerial
Maṇi bhadra being. ୨ । ବଣିକ୍ ବିଶେଷ—2.
Name of a trader or merchant. ୩ । ଶିବଙ୍କ
ଗଣ ବିଶେଷ—3. Name of a class of Śiba's attendants.

ମଣି ଭଦ୍ରା—ଦେ· ବି ( ନାମ· )—ଦଶପଲ୍ଲା ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ
Maṇi bhadrā ସୁରମ୍ୟ ପର୍ବତ—Name of a beautiful mountain in Daspalla State.
( ଉ—ମଣିଭଦ୍ରା ଶୈଳେ ମୃନ ଲୁମାଗଙ୍କ ଆବାର-ମୂର୍ତ୍ତି
ଅସ୍ୱାଦ । ରାଧାନାଥ. ପାର୍ବତୀ ।) [ ଦ୍ର—ଏ ପର୍ବତ
ମହାନଦୀର ଦକ୍ଷିଣ ତୀରରେ ଅବସ୍ଥିତ ଓ ଏହା ଅତ୍ୟନ୍ତ
ବିଷଧର ସର୍ପସଙ୍କୁଳ । କେଳାମାନେ ଏଠାକୁ ଯାଇ ସାପ
ଧରନ୍ତି । ]

ମଣି ଭୂ—ସଂ· ବି ( ମଣି+ଭୂ ଧାତୁ+ଅଧିକରଣ କ୍ୱିପ୍ )—ମଣିର ଖଣି
Maṇi bhū —A mine of gems.
(ମଣି ଭୂମି—ଅନ୍ୟରୂପ)

ମଣି ମଙ୍ଗଳ ସୂତ୍ର—ଦେ.ବି (ବଣିଆ ଶବ୍ଦ)—ରାଜ ପରିବାରରେ ବା ସମ୍ଭ୍ରାନ୍ତ
Maṇi maṅgaḷa sūtra ପରିବାରରେ ବିବାହ ବେଦୀ ଉପରେ
ହାତଗଣ୍ଠି ପଡ଼ିବା ପରେ କନ୍ୟା ହାତରେ ପିନ୍ଧିବା ଦୁଇଗୋଟି
ଅଳଙ୍କାର—Two ornaments worn in the hand
by a bride of a Raja's or gentleman's
family on the marriage altar after the
ceremony of tying the nuptial knot.

ମଣି ମଣ୍ଡପ—ସଂ. ବି (ମଧ୍ୟପଦଲୋପୀ କର୍ମଧାରୟ)—୧ । ରତ୍ନଖଚିତ
Maṇi maṇḍapa ମଣ୍ଡପ—A pavillion set with of
gems or precious stones. ୨ । ଦେବତା ପୀଠସ୍ଥାନ
ବିଶେଷ—2. A kind of seat for an idol.

ମଣି ମଣ୍ଡିତ—ସଂ. ବିଣ (୩ୟା ତତ୍ )—ମଣିରେ ବା ରତ୍ନରେ ଖଚିତ—
Maṇi maḍita Set with gems.

ମଣି ମଧ୍ୟ—ସଂ. ବି—ନବାକ୍ଷରଯୁକ୍ତ ଛନ୍ଦୋବିଶେଷ; ମଣି ବନ୍ଧ ୨ ଦେଖ
Maṇi madhya —Name of a Sanskrit metre of nine letters.

ମଣି ମନ୍ଥ—ସଂ. ବି (ମଣି+ମନ୍ଥ ଧାତୁ+ଅଧିକରଣ ଅ)—୧ । ପର୍ବତ-
Maṇi mantha ବିଶେଷ—1. Name of a mountain.
୨ । ଯଜ୍ଞବିଶେଷ—2. Name of a sacrifice. ୩ ।
(+କର୍ତ୍ତୃ.ଅ) ନୃପବିଶେଷ—3. Name of a king.
୪ । ସୈନ୍ଧବ ଲବଣ—4. Rock salt.

ମଣି ମୟ—ସଂ. ବିଣ ( ମଣି+ବିକାରାର୍ଥେ ମୟ )—ମଣି ନିର୍ମିତ ବା ଖଚିତ
Maṇi maya —Mad e of or set with gems.

ମଣିମା—ବୈଦେ. ଅ ( ଆ. ମୁନିମା=ମୁନିବ୍=ପ୍ରଭୁ, ଭୁଲ ସଂ. ମହିମା )
Maṇimā —୧ । ପ୍ରଭୋ ! ହେ ଦୟାମୟ !—1. ( Interj )
হজুর Oh Lord ! ୨ । ପ୍ରଜା ଆଦିଙ୍କର ରାଜା ଓ ରାଣୀଙ୍କ
**हुज़ुर, श्रीमान** ପ୍ରତି ସମ୍ବୋଧନ—2. 'Your Highness'; a
(ପ୍ରାଚୀନ ବଙ୍ଗଳା—মণিমা) term of address used by
subjects to a Raja. or Ranee ୩ । ଠାକୁରଙ୍କ
ପ୍ରତି ସେବକର ସମ୍ବୋଧନ—3. An address used
to a Deity. ବି—୧ । ରାଜା—1. King. (ଉ—
ଜୀବନ ଥିବାଯାକ ରାଜାଙ୍କୁ ମଣିମା, ବୋଲୁଥାନ୍ତି ମଲେ କ
ଯାନ୍ତି ତାର ସୀମା । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।)

୨ । ରାଣୀ—2. A queen; a Rāṇi. ( ଯଥା—ପାଟ ମଣିମା, ନୂଆ ମଣିମା, କନ୍ୟା ମଣିମା । )

**ମଣି ମାଣିକ**—ଦେ. ବି (ସହଚର ଶବ୍ଦ; ସଂ ମଣି+ମାଣିକ୍ୟ)—ରତ୍ନାଦି—
Maṇi māṇika — Gems and jewels.
(ମଣି ମୁକୁତା—ଅନ୍ୟରୂପ) मणि माणिक्य **मणि माणिक**

**ମଣି ମାଣିକ୍ୟ**—ସଂ. ବି ( ସହଚର ଶବ୍ଦ )—ରତ୍ନାଦି—
Maṇi māṇikya — Gems and jewels
(ମଣି ମୁକ୍ତା, ମଣି ରତ୍ନ—ଅନ୍ୟରୂପ)

**ମଣିମାନ୍**—ସ. ବିଣ ( ମଣି+ଅସ୍ତି ଅର୍ଥରେ ମତ୍; ୧ମା. ୧ବ )—୧ ।
Māṇimān — ମଣିଯୁକ୍ତ—1. Jewelled. ୨ । ମଣି-ଭୂଷିତ—2. Adorned with gems. ବି—୧ । କୁବେରଙ୍କ ପାର୍ଶ୍ୱଚର ( ରାକ୍ଷସ )—Name of an attendant of 'Kubera' (a demon). [ ଉ—ମଣିମାନ ନାମେ ରାକ୍ଷସ ଜଣେ ଥିଲା, ରାକ୍ଷସଙ୍କ ଏ ସାଙ୍ଗ ଦେଖିଣ ବୋଇଲା—କୃଷ୍ଣସିଂହ ମହାଭାରତ. ବନ । ] [ବି—ଏ ଅଗସ୍ତ୍ୟ ମୁନିଙ୍କ ଅଭିଶାପରୁ ଭୀମଙ୍କଦ୍ୱାରା ନିହତ ହୋଇଥିଲା । ] ୨ । ସୂର୍ଯ୍ୟ—2. The sun. ୩ । ଯଜ୍ଞବିଶେଷ—3. Name of a vedic sacrifice. ୪ । ପଶ୍ଚିମସ୍ଥ ଦେଶବିଶେଷ—4. Name of a western country.
(ମଣିମାନ, ମଣିମନ୍ତ—ଦେ. ରୂପ)

**ମଣିମାଳା**—ସ. ବି—୧ । ରତ୍ନମୟ ହାର—1. A necklace of
Maṇimālā gems. ୨ । ଦ୍ୱାଦଶାକ୍ଷର ଛନ୍ଦୋବିଶେଷ-2. Name of a Sanscrit metre of 12 letters. [ବି-ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ; ତଗଣ, ଯଗଣ, ଭଗଣ, ଯଗଣ ଥାଏ—ବୃ. ଶ । ] ୩ । ଦୀପ୍ତି—3. Lustre. ୪ । ଲକ୍ଷ୍ମୀ—4. Goddess Lakshmī. ୫ । ଦନ୍ତକ୍ଷତ-ବିଶେଷ—5. A kind of mark left by the lover's teeth on the cheeks of the beloved.

**ମଣିରତ୍ନ**—ସ. ବି (ସହଚର ଶବ୍ଦ)—ବହୁମୂଲ୍ୟ ରତ୍ନାଦି—
Maṇiratna — Jewels and gems.

**ମଣିରାଗ**—ସ. ବି—୧ । (୬ଷ୍ଠୀ ତତ୍)—ରତ୍ନର କାନ୍ତି—1. The lustre
Maṇirāga of gems. ୨ । (ବହୁବ୍ରୀହି) ହିଙ୍ଗୁଳ—2. The yellow orpiment.

**ମଣିରାମ**—ସ. ବି (ନାମ)—'ଗ୍ରହଗଣିତ ଚିନ୍ତାମଣି' ନାମକ ଜ୍ୟୋତିଷ
Maṇirāma ଶାସ୍ତ୍ର ରଚୟିତା ଜଣେକ ଗୁଜରାଟୀ ବ୍ରାହ୍ମଣ—The name of a Gujrati Brāhmaṇa, the author of Grahagaṇita Chintāmoni, a treatise on Astronomy.

**ମଣିରୋଗ**—ସ. ବି—ପୁରୁଷେନ୍ଦ୍ରିୟର ରୋଗବିଶେଷ; ଚୁଟୁକୁ—A
Maṇiroga kind of phimosis. [ ବି ଏ ରୋଗରେ ଲିଙ୍ଗାଗ୍ରଭାଗର ଚମଡ଼ା ଲିଙ୍ଗର ମୁଖାଗ୍ର ଉପରେ ଲାଗିଯାଏ ଓ ମୂତ୍ରମାର୍ଗ ସଂକୁଚିତ ହୋଇ ସେହି ବାଟେ ମୂତ୍ରର ସରୁ ଧାର୍ ବହେ—ବୃ. ଶ. । ]

**ମଣିଶିଳା**—ଦେ. ବି (ସଂ. ମନଃଶିଳା)—ମନଃଶିଳା (ଦେଖ)—
Maṇiśilā — Manahśilā (See)
मनशिला **मैनशील**

**ମଣିଷ ଭାଙ୍ଗିବା**—ଦେ. କ୍ରି—୧ । (ଯାହା ଅଛି କୌଣସି ବଣିକ୍ଷ୍ଟ ମେଳାରୁ)
Maṇisha bhāṅgibā — କୌଣସି କାରଣ ବଶତଃ ହଠାତ୍
भीड़भाङ्गा **मेलाछूटना** — ଲୋକେ ଗୁଳିଯିବା—
( ମଣିଷ ଭାଙ୍ଗିଯିବା—ଅନ୍ୟରୂପ ) 1. Sudden dispersal
**आदमी कम होना** of a crowd. ୨ । କୌଣସି ହାଟରେ ବା ମେଳାରେ ) ଯେତେ ଲୋକ ପୂର୍ବେ ଜମା ହେଉଥିଲେ ସେତେ ଲୋକ ଜମା ନ ହେବା—2. The discontinuance of crowded attendance in a gathering, fair or market.

**ମଣିଷ ମାରୁ**—ଦେ. ବି. ଓ ବିଣ—୧ । କୌଣସି ବ୍ୟକ୍ତିକୁ ଜୀବନରେ
Maṇisha māru ମାରି ଦେବା; ଖୁଣ; ନରହତ୍ୟା—
ଖୁନୀ **खुनी** 1. Murder; assassination. ୨ । ଯେ ମନୁଷ୍ୟକୁ ମାରି ଦିଏ; ନରହନ୍ତା—
2. Murderer; assassin.

**ମଣି ସର**—ସଂ. ବି—୧ । ରତ୍ନମୟ ହାର—1. A necklace of
Maṇi sara gems. ୨ । ମୁକ୍ତାମାଳା—2. A string of pearls.

**ମଣିହରା**—ଦେ. ବିଣ -ଯେ ମଣି ହରାଇ ଅଛି; ଛିନ୍ନମଣି ( ସର୍ପ )—
Maṇi harā मणीहारा **मणिहीन** (a serpent) Having lost his jewel.

**ମଣିହରାଫଣୀ**—ଦେ. ବି—୧ । ଯେଉଁ ସର୍ପର ମଥାର ମାଣିକ୍ୟ ହଜି
Maṇiharāphaṇi ଯାଇଅଛି—1. A serpent which
( ମଣିହରା ନାଗ—ଅନ୍ୟରୂପ ) has lost the jewel of
मणिहाराफणी **मनिहीनफनी** its head. ୨ । ଛିନ୍ନମଣି ସର୍ପ ପରି ଅସ୍ଥିର ବ୍ୟକ୍ତି—2. A person who has become restless like a serpent whose jewel is lost.

**ମଣିହାରୀ**—ସ. ବି ପୁଂ—୧। ରତ୍ନଜୀବୀ; ଅଳଙ୍କାରବ୍ୟବସାୟୀ; ମଣିବ୍ୟବସାୟୀ
Maṇihārī — 1. A jeweller; a goldsmith.
୨ । ରତ୍ନଚୋର—2. A stealer of gems.

**ମଣୀ**—ସ. ବି (ମଣି+ଇନ୍; ୧ମା; ୧ବ)—ସର୍ପ (ବୃ. ଶ.)—
Maṇi — Serpent.

**ମଣୀବକ**—ସ. ବି—ପୁଷ୍ପ; ଫୁଲ (ବୃ. ଶ)—
Maṇibaka — Flower.

**ମଣୀହାର**—ସ. ବି—ରତ୍ନର ହାର—A necklace of gems or
Maṇihāra pearls.

**ମଣୁ(ଣେ,ଣୋ)ଇ(ହି)**—ଦେ. ବି—ମୁଣୋହିଁ; ରାଜାମାନଙ୍କର ଭୋଜନ-
Maṇu(ṇe ṇo)i(hi) କ୍ରିୟା—Dinner of kings
मनूई **राजभोजन** [ ଉ—କହୁଁ କହୁଁ ସୁମା ବେଳ ସାର ବୋଇଲେ ଆସ ମଣୋହି କର—ଭଞ୍ଜ. କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ । ]

ମଣ୍ଠ(ଣ୍ଡ) (ଧାତୁ)—ସ—୧ । ଭୂଷିତ କରିବା—1. To adorn.
Manṭh(ṇḍ) (root)　୨ । ବେଷ୍ଟନ କରିବା—2. To surround.

ମଣ୍ଠକ—ସ. ବି (ମଣ୍ଠ ଧାତୁ+କର୍ମ ଥ+କ)—ମଣ୍ଡାପିଠା—
Manṭhaka　A kind of steam-boiled cake.

ମଣ୍ଡ—ସ. ବି (ମନ୍ ଧାତୁ=ଭୂଷିତ କରିବା+କରଣ. ଡ)—୧ । ଭୂଷଣ;
Manḍa ଅଳଙ୍କାର—1. Ornament, ୨ । (+କର୍ତ୍ତୃ. ଡ) ଭାତର ପେଜ—2. The scum extracted from boiled rice. ୩ । ଫେଣ—3. Foam; froth; ferment. ୪ । ଜାଉ—4. Gruel. ୫ । ଖଳ; ଭାତ ଚୂଡ଼ା ଆଦି ଗୋଳାଇ ହୋଇଥିବା ପିଠୋଉ—5. Paste made from rice etc; dough. ୬ । ତେଲ ଆଦିର କାଣ୍ଟି—6. The dregs of a liquid (e.g. oil). ୭ । ଗୋଧୂମ, ଚାଉଳ, ଆଳୁ ଆଦି ପଦାର୍ଥର ଅନ୍ନମୟ ସାର—7. Starch. ୮ । ଏରଣ୍ଡ ବୃକ୍ଷ; ଗବଗଛ—8. The castor seed plant. ୯ । ପିଚ୍ଛ; ମୟୂରପୁଚ୍ଛ—9. The tail of a peacock. ୧୦ । (ବୈଦ୍ୟଶାସ୍ତ୍ର) ଚାଉଳ ବା ଯବ ପ୍ରଭୃତିକୁ ୮ ଗୁଣ ବା ୧୪ ଗୁଣ ଜଳରେ ସିଦ୍ଧ କରି ତାହା ଉତ୍ତମରୂପେ ଚକଟି ଛାଣି ପ୍ରସ୍ତୁତ କରାଯିବା ରୋଗୀର ପଥ୍ୟ—10. A liquid food or gruel made by boiling rice or barley in water and sifting it [ଦ୍ର—(ମତାନ୍ତରରେ) ୧୪ ଗୁଣ ଜଳରେ ତଣ୍ଡୁଳ ସିଦ୍ଧ କରି ସିଠା ପରିତ୍ୟାଗ କରି ଏହି ତରଳ ମଣ୍ଡ ପ୍ରସ୍ତୁତ କରାଯାଏ—ଦ୍ରବ୍ୟଗୁଣ କଳ୍ପଦ୍ରୁମ ।] ୧୧ । (+ଭାବ. ଡ)—ସଜ୍ଜା; ସଜାଇବା; ଅଳଙ୍କରଣ (ହି. ଶ)—11. Decoration. ୧୨ । (+କର୍ତ୍ତୃ.ଡ) ବେଙ୍ଗ (ହି.ଶ)—12. Frog. ଦେ. ବି. ୧ । (ସ. ମଣ୍ଡନ)—ପୁରସ୍କାର—1. Reward. [ ଉ—ଦଣ୍ଡ ବା ମଣ୍ଡ ସେହିଙ୍କଠେ, ତେବେ ତରଣ ତଲେ ଅଟେ—ଭୂପତି. ପ୍ରେମପଞ୍ଚାମୃତ । ] ୨ । ଜଳୀୟ ପଦାର୍ଥର ଖଦଡ଼ା ଅଂଶ—2. Lumps found in liquids.

ମଣ୍ଡକ—ସ. ବି (ମଣ୍ଡ+କ)—୧ । ପିଷ୍ଟକବିଶେଷ; ମଣ୍ଡା ପିଠା—
Manḍaka　1. A kind of ball-shaped cake. [ ଦ୍ର—ଚାଉଳ ଚୂନାରେ ପାଣି ମିଶାଇ ତାକୁ ସିଦ୍ଧ କରି ଯେଉଁ ଖଳ ପ୍ରସ୍ତୁତ ହୁଏ, ସେ ଖଳ ମଧ୍ୟରେ ମିଷ୍ଟ ପୂର ଦେଇ ବାମ୍ଫରେ ସୁସିଦ୍ଧ କରି ଏହା ପ୍ରସ୍ତୁତ କରାଯାଏ । ] ୨ । ମାଧବୀଲତା (ହି. ଶ.)—2. A kind of hardy flowering creeper. ୩ । ଗୀତର ଅଙ୍ଗବିଶେଷ (ହି.ଶ.)—3. A part of a song.

ମଣ୍ଡ କରିବା—ଦେ. କ୍ରି—ପୁରସ୍କାର ଦେବା; ସମ୍ମାନିତ କରିବା—
Manḍa kariba　To reward; to honour.
ପୁରସ୍କାର ଦେଓଯ়া　मण्ड करना　[ ଦ୍ର—ଦୋଷ ହେବା ଲୋକଙ୍କ ଦେଉଥିବ ଦଣ୍ଡ, ଜଗତ୍‌ଶୀ ଲୋକଙ୍କୁ ଦୃଷ୍ଟି କରୁଥିବ ମଣ୍ଡ—କୃଷ୍ଣଦେବ. ମହାଭାରତ. କର୍ଣ୍ଣ ।]

ମଣ୍ଡଣ—ଦେ. ବି (ସ. ମଣ୍ଡନ. ପ୍ରା. ମଣ୍ଡଣ)—ମଣ୍ଡନ (ଦେଖ)
Manḍaṇa　মণ্ডন　मंडन　Manḍana (See)

ମଣ୍ଡଣ(ଣି)ସୁଆଁସିଆ—ଦେ. ବି—ଯେଉଁ ସେବକ ଯାତ୍ରା ଓ ଉତ୍ସବାଦି
Manḍaṇa(ṇi)suāṅsiā ଉପଲକ୍ଷରେ ଦେବତାଙ୍କ ରଥ, ବିମାନ
सजानेवाला सेवक　ଆଦିକୁ ସଜ୍ଜିତ କରେ—A servant who bedecks the Deity's car etc. with trappings and fittings.

ମଣ୍ଡଣି—ଦେ. ବି—(ସ. ମଣ୍ଡନ)—୧ । ଅଳଙ୍କାର; ଭୂଷଣ—
Manḍaṇi　1. Ornaments; decorations. ୨ । ଅଳଙ୍କାର　ଅଳଙ୍କରଣ; ଅଳଙ୍କାରରେ ଭୂଷିତ କରଣ—2. Adorning.
मंडन　[ଉ—କୁଣ୍ଡଳ ମଣି ଗଣ୍ଡେ ମଣ୍ଡଣି । କଣ୍ଠରେ ଖଞ୍ଜିଲେ ସୂର୍ଯ୍ୟ ଉଜ୍ଜ୍ୱଳମଣି—ପ୍ରାଚୀ. ରହସ୍ୟମଞ୍ଜରୀ ।]—୩ । ବିମାନଆଦିର
সাজসজ্জা　ସାଜସଜ୍ଜା—3. The equipments of a car;
सजावट　trappings. ( ଉ—ଟୁଳ ମଣ୍ଡଣ ଭାର ଭକ୍ତମାଳରେ । ସୁଧାକାର. ମେଘଦୂତ ।)

ମଣ୍ଡଣିଆ—ଦେ. ବି—ବେଶକାରୀ; ଯେଉଁ ସେବକ ବେଶ କରେ—
Manḍaṇiā　A servant who furnishes Deities
বেশকার　सजानेवाला　etc with ornaments

ମଣ୍ଡଣି ହେବା—ଦେ କ୍ରି—ଅଳଙ୍କାରରେ ଭୂଷିତ ହେବା—To be
Manḍaṇi heba　bedecked with ornaments.
মণ্ডিতহওয়া　सँवारा होना

ମଣ୍ଡନ—ସ. ବି—( ମଣ୍ଡ୍ ଧାତୁ+କରଣ ଅନ ) -୧ । ଅଳଙ୍କାର;
Manḍana　ଆଭରଣ; ଭୂଷଣ—1. Ornament. ୨ । ସାଜସଜ୍ଜା—2. Equipments. ୩ । (+ଭାବ ଅନ) ପ୍ରସାଧନ—3. Toilette. ୪ । ଅଳଙ୍କରଣ—4. Act of adorning. ୫ । ସଜାଇବା—5. Equipping; furnishing. ବିଣ—ପୁଂ ( +କର୍ତ୍ତୃ. ଅନ ) ୧ । ଅଳଙ୍କାରକ; ପ୍ରସାଧକ—1. Adorning; one who adorns. ୨ । ଗୌରବ ବା ଶୋଭାବୃଦ୍ଧିକର—
(ମଣ୍ଡନା—ସ୍ତ୍ରୀ)　2. Enhancing the glory or grace. [ ଦ୍ର—ଏହି ଅର୍ଥରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ମଲ୍ଲମଣ୍ଡନ, କୁଳମଣ୍ଡନ, ଭୂମଣ୍ଡନା ଇତ୍ୟାଦି ] ୩ । ଏକ ଶ୍ରେଣୀର ଅନେକଙ୍କ ମଧ୍ୟରେ ଶ୍ରେଷ୍ଠ—3. Chief amongst many of a class. [ ଉ—ନରେଶ ମଣ୍ଡନ, ଶୀତଳ ଚନ୍ଦନ, ଜଗଦେବ ସ୍ତବ ଘେନ । କବିସୂର୍ଯ୍ୟ. କଲ୍ଲୋଳଚଉତିଶା ଓ ଗୀତ । ] ଦେ. ବିଣ; ମୁଗ୍ଧ—Pleased; charmed. (ଉ—ଏଣୁ କରଇ ମନ ନେତ୍ରକୁ ମଣ୍ଡନ । କୃଷ୍ଣଦେବ. ମହାଭାରତ. ସଭା ।)

ମଣ୍ଡନ ମିଶ୍ର—ସ. ବି—(ନାମ) ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଶଙ୍କରାଚାର୍ଯ୍ୟଙ୍କର
Manḍana misra ସମସାମୟିକ ଜନୈକ ପ୍ରସିଦ୍ଧ ବୌଦ୍ଧପଣ୍ଡିତ-
Name of a celebrated Buddhist Pandit

of the ninth century A. D. [ ଦ୍ର—ଏହାଙ୍କ ସ୍ତ୍ରୀ ଉଭୟଭାରତୀ ନିଜ ସ୍ୱାମୀ ଓ ଶଙ୍କରାଚାର୍ଯ୍ୟଙ୍କ ମଧ୍ୟରେ ହୋଇଥିବା ତର୍କରେ ମଧ୍ୟସ୍ଥତା କରିଥିଲେ ]

**ମଣ୍ଡନ ଲୀଳା**—ଦେ. ବି—( ୬ଷ୍ଠୀତତ୍ ) ଦେହର ଅଳଙ୍କାରମାନଙ୍କର
Maṇḍana līḻā ଶୋଭା—The beauty of body due to ornaments or decorations. (ଉ—ପୁଣି ପୁଣି ମଣ୍ଡନ ଲୀଳା ଗୃହେ ଛନ୍ଦେ ଯେ । ପ୍ରାଚୀ. ରସବାରିଧି ।)

**ମଣ୍ଡପ**—ସ.ବି—(ମଣ୍ଡ=ଅଳଙ୍କାର, ଭୂଷଣ+ପା. ଧାତୁ=ପାଳନ କରିବା
Maṇḍapa +କର୍ତ୍ତୃ. ଅ)— ୧ । ମନ୍ଦିର; ଦେବାଳୟ—1. Temple. ୨ । ବିଶ୍ରାମ ଗୃହ—2. Rest house. ୩ । ଉପରରେ ଛାତ ଥିବା କିନ୍ତୁ ଚାରି ପାଖରେ ମେଲା ଥିବା ଘର, ଯହିଁରେ ବହୁଲୋକ ଆଶ୍ରୟ ଗ୍ରହଣ କରିପାରନ୍ତି—3. A shed open on all sides; pavilion. ୪ । ମଞ୍ଚ; ବେଦୀ—4. An altar; a platform; a pandal. ୫ । ଅଳ୍ପକାଳ ନିମିତ୍ତ ନିର୍ମିତ ବାସସ୍ଥାନ—5. Arbour; a temporary pavilion. ୬ । ଦେବୋଦ୍ଦେଶରେ ନିର୍ମିତ ଗୃହ—6. A house or raised shed intended for accomodating idols ୭ । ଚାନ୍ଦୁଆ;ସାମିଆନା (ହି.ଶ)—7. Awning. ୮ । ଛାୟା ମଣ୍ଡପ; ଛାମୁଣ୍ଡିଆ; ଉତ୍ସବ ବା ସମାରୋହାର୍ଥ ନିର୍ମିତ ଛାୟାଯୁକ୍ତ ଅସ୍ଥାୟୀ ମଣ୍ଡପ (ହି. ଶ)—8. A temporary shed erected for a particular occasion. ୯ । ଦେଉଳର ଉପରଭାଗରେ କ୍ରମ-ସୂକ୍ଷ୍ମ ଆବରଣ (ହି. ଶ )—
9. Dome; pyramidal roof of a temple.

**ମଣ୍ଡପିକା**—ସ. ବି (ମଣ୍ଡପ+କ+ଆ)—ଛୋଟ ମଣ୍ଡପ (ହି. ଶ)—
Maṇḍapikā A small maṇḍapa.

**ମଣ୍ଡ(ଣ୍ଡି) ମଣ୍ଡିଆ**—ଦେ. ବିଣ—ଖଣ୍ଡି ଖଣ୍ଡି; ମଣ୍ଡଯୁକ୍ତ; ଖଦଡ଼ଆ (ଜଳୀୟ
Maṇḍa( ṇḍi ) maṇḍiā ବସ୍ତୁ)—(liquid) Having
ଖଇଚେ **ଗୁଟଲୀବାଲା** sediments or lumps; lumpy.

**ମଣ୍ଡଳ**—ସ. ବି—( ମଣ୍ଡ+ଅଚ୍ଛ ଅର୍ଥରେ ଳ )—୧ । ଗୋଲକ—1.
Maṇḍaḻa Sphere; orb. ୨ । ଚକ୍ର—2. Wheel. ୩ । ମୁଣ୍ଡଳା; ବୃତ୍ତ—3. Circle. ୪ । ବୃତ୍ତାକାର ଆଲୋକ—4. Halo of light. ୫ । ପରିଧି—5. Circumference. ୬ । ବୃତ୍ତାକାର ଚିତ୍ର—6. Circular figure or drawing. ୭ । ଚନ୍ଦ୍ର ସୂର୍ଯ୍ୟଙ୍କର ପରିଧି; ଚନ୍ଦ୍ର ବା ସୂର୍ଯ୍ୟଙ୍କ ବିମ୍ବ—7. Disc of the sun or the moon. ୮ । ଚନ୍ଦ୍ର ବା ସୂର୍ଯ୍ୟଙ୍କ ଚାରି ଦିଗରେ ବେଢ଼ିଥିବା ଉଜ୍ଜ୍ୱଳ ଆଲୋକ ରେଖା—8. A halo of light seen round the sun and the moon. ୯। ପରିବେଶ; ଚନ୍ଦ୍ର ସୂର୍ଯ୍ୟଙ୍କର, ବିଶେଷତଃ ଚନ୍ଦ୍ରଙ୍କର, ଚାରି ପାଖେ ଖଣ୍ଡଦୂରରେ ବେଳେ ବେଳେ ଯେଉଁ ବୃତ୍ତାକାର ରେଖା ଦେଖା ଯାଏ—9. A bright circle sometimes seen at some distance from the sun and specially the moon (in cloudy weather.) ୧୦ । ଗ୍ରହମାନଙ୍କର ଗତି ରେଖା—10. Orbit of a planet. ୧୧ । ରାଜ୍ୟ—11. Kingdom. ୧୨ । ସ୍ଥାନ; ଦେଶ—12. Country; place. ୧୩ । ଦେଶାଂଶ; ପ୍ରଦେଶ; ଦେଶ ବିଭାଗ—13. Province; tract of country. ୧୪ । ଗ୍ରାମ ସମଷ୍ଟି; ତାଲୁକ; ପ୍ରଗଣା—14. A collection or group of villages. ୧୫ । ମୁଣ୍ଡଳା; କୃତ୍ରିମ ବା ଅଙ୍କିତ ରେଖାଦ୍ୱାରା ରଚିତ ଆସନବିଶେଷ—15. A seat prepared by drawing circular lines on the ground. ୧୬ । ଧନୁର୍ଦ୍ଧରମାନଙ୍କ ଆସନବିଶେଷ—16. One of the postures assumed by an archer. ୧୭ । ଅରି ମିତ୍ରାଦି ଦ୍ୱାଦଶ ପ୍ରକାରର ରାଜା—17. Twelve kinds of kings surrounding a kingdom. ୧୮ । ସର୍ପ; ନାଗ—18. Serpent; cobra. ୧୯ । କୁକୁର—19. Dog. ୨୦ । ସମୂହ, ପୁଞ୍ଜ; ବୃନ୍ଦ—20. Cluster; multitude. ୨୧ । ନଖାଘାତ; ପ୍ରେମିକ ପ୍ରେମିକାଙ୍କ ଶରୀରର ସ୍ଥାନବିଶେଷରେ ବିଳାସକାଳୀନ ନଖାଘାତ (ପ୍ରକୃତିବାଦ)—21. Semi circular amatory nail scratches. ୨୨ । ଦିଙ୍ମଣ୍ଡଳ; ଦିଗବଳୟ (ହି. ଶ)—22. Horizon. ୨୩ । ୪୦ ଯୋଜନ ଲମ୍ବ ଓ ୨୦ ଯୋଜନ ଚୌଡ଼ା ଭୂଖଣ୍ଡ (ହି. ଶ)—23. A tract of county 40 Jojanas long and 20 Jojanas broad. ୨୪ । ନଖୀ ନାମକ ସୁଗନ୍ଧ ଦ୍ରବ୍ୟ (ହି. ଶ)—24. A kind medicinal scent; shell. ୨୫ । ଦେହରେ ଚକାଚକା ଦାଗ ପଡ଼ିଯିବା କୁଷ୍ଠରୋଗ ବିଶେଷ (ହି. ଶ)—25. A kind of leprosy with round spots. ୨୬ । ଗୋଲ ଦାଗ (ହି. ଶ)—26. Circular spot. ୨୭ । ଗୋଲାକାର ସୈନ୍ୟବ୍ୟୂହ ବିଶେଷ (ହି. ଶ)—27. A kind of circular battle-array. ଦେ. ବି—୧ । ବଂଶୋପାଧିବିଶେଷ—1. Name of a family title. ୨ । ଗ୍ରାମର ପ୍ରଧାନ ବ୍ୟକ୍ତି—2. The headman of a village. ୩ । ଦାଣ୍ଡୁଆ ଜାତିର ସଜ୍ଞାବିଶେଷ—3. A title of the Sudra (Daḻuā) caste guild.

**ମଣ୍ଡଳକ**—ସ. ବି (ମଣ୍ଡଳ+ସ୍ୱାର୍ଥେ. କ)—୧। ସୂର୍ଯ୍ୟ ଓ ଚନ୍ଦ୍ରଙ୍କ
Maṇḍaḻaka ମଣ୍ଡଳ—1. The orb of the sun and the moon. ୨ । ଦର୍ପଣ—2. Mirror. ୩ । କୁଷ୍ଠ ରୋଗ ବିଶେଷ—3. A kind of leprosy. ୪ । ମଣ୍ଡଳାକାର ବ୍ୟୂହ—4. A kind of circular

battle array. ୫। (ଏମାନେ ମଣ୍ଡଳାକାରରେ ଘୋଡ଼ିଥିବାରୁ) କୁକ୍କୁର—5. Dog.

ମଣ୍ଡଳ ନୃତ୍ୟ—ସଂ. ବି—ଚକ୍ରାକାର ନୃତ୍ୟ—
Maṇḍaḻa nṛutya A dance in a ring.

ମଣ୍ଡଳ ଭାଙ୍ଗିବା—ଦେ. କ୍ରି—ଭୂମିରେ ମଣ୍ଡଳାକାର ଚିତ୍ର ଲେଖିବା—
Maṇḍaḻa bhāṅgibā To draw circular figures on the ground.
মণ্ডল আঁকা अहिपन देना

ମଣ୍ଡଳ ମଧ୍ୟବର୍ତ୍ତୀ—ସଂ. ବିଣ—ଚକ୍ର ମଧ୍ୟସ୍ଥ—Situate inside a circle.
Maṇḍaḻa madhyabarttī

ମଣ୍ଡଳା—ଦେ. ବି (ସଂ. ମଣ୍ଡଳ)—ଭୂମି ଆଦିରେ ଅଙ୍କିତ ମଣ୍ଡଳାକାର ରେଖା—Circles drawn on the ground.
Maṇḍaḻā
মণ্ডলাকার রেখা गोलाकार रेखा, मण्डल
(ଉ—ପୃଥ୍ୱୀ ମଣ୍ଡଳା କରି ବାନ୍ଧିଲେ, ମୂଳ କମଳ ତାର ନାମ ଦେଲେ। ପ୍ରାଚୀ. ପରତେ ଗୀତା।)

ମଣ୍ଡଳାକାର—ସଂ. ବିଣ (ମଣ୍ଡଳ+ଆକାର)—ଗୋଲାକାର; ଚକ୍ରାକାର—
Maṇḍaḻākāra Circular; globular.

ମଣ୍ଡଳାଗ୍ର—ସଂ. ବି (ବହୁବ୍ରୀହି; ମଣ୍ଡଳ+ଅଗ୍ର)—୧। ଖଡ୍ଗ—
Maṇḍaḻāgra 1. Sword. ୨। ସୁଶ୍ରୁତୋକ୍ତ ଅସ୍ତ୍ରବିଶେଷ (ହି. ଶ)—2. A kind of surgical instrument used in ancient India.

ମଣ୍ଡଳା ଘର—ପ୍ରାଦେ. (ସମ୍ବଲପୁର) ବି—ପାଇଖାନା—
Maṇḍaḻā ghara Latrine.

ମଣ୍ଡଳା ଘରେ ବିଜେ କରିବା—ପ୍ରାଦେ. (ସମ୍ବଲପୁର) କ୍ରି. (ରାଜାଙ୍କ ପ୍ରତି ପ୍ରଯୋଜ୍ୟ)—(ରାଜା) ପାଇଖାନାକୁ ଯିବା ବା ଝାଡ଼ା ଫେରିଯିବା—To ease oneself (said of Rajas).
Maṇḍaḻā ghare bije karibā

ମଣ୍ଡଳାଧିପ—ସଂ. ବି (୬ଷ୍ଠୀ ତତ୍; ମଣ୍ଡଳ+ଅଧିପ)—ପ୍ରଦେଶର ଅଧିପତି; ଚତ୍ତ୍ୱାରିଂଶତ ବା ଚତ୍ୱାରିଂଶତ୍ ଯୋଜନ ପରିମିତ ଦେଶର ରାଜା—The lord of a province.
Maṇḍaḻādhipa
(ମଣ୍ଡଳାଧିପତି, ମଣ୍ଡଳାଧୀଶ, ମଣ୍ଡଳେଶ, ମଣ୍ଡଳେଶ୍ୱର—ଅନ୍ୟରୂପ)

ମଣ୍ଡଳାୟିତ—ସଂ. ବିଣ (ମଣ୍ଡଳ+ଯ=ମଣ୍ଡଳାୟ ଧାତୁ+କର୍ତ୍ତୃ. ତ)—ଚକ୍ରାକୃତ; ବର୍ତ୍ତୁଳ, ଗୋଲାକାର—Round; circular.
Maṇḍaḻāyita

ମଣ୍ଡଳି—ଦେ. ବି. (ସଂ. ମଣ୍ଡଳୀ)—୧। ଖ୍ରୀଷ୍ଟିୟାନମାନଙ୍କର ଏକ ଧର୍ମ ଯାଜକଙ୍କ ଅଧୀନ ଉପାସକଗଣ—1. A colony or congregation under a person. ୨। ଜଣେ ଧର୍ମଯାଜକଙ୍କ ଇଲାକା—2. A parish.
Maṇḍaḻi
মণ্ডলী मण्डली

ମଣ୍ଡଳିଆ—ଦେ. ବିଣ—ମଣ୍ଡଳଯୁକ୍ତ; ଗୋଲ—Circular.
Maṇḍaḻiā
গোল गोला
(ଉ—ଅଖଣ୍ଡ ଚନ୍ଦ୍ର ସୁନ୍ଦର ମୁଖ ମଣ୍ଡଳିଆ। କବିସୂର୍ଯ୍ୟ. ସଙ୍ଗୀତ।)

ମଣ୍ଡଳିନୀ—ସଂ. ବି. ସ୍ତ୍ରୀ. (ମଣ୍ଡଳ+ଇନ୍+ଈ; ୧ମା. ୧ବା)—ଦୂବ—
Maṇḍaḻinī The doob grass.

ମଣ୍ଡଳୀ—ସଂ. ବି (ମଣ୍ଡଳ+ଇନ୍; ୧ମା. ୧ବ)—୧। ଜନସମୂହ; ଗୋଷ୍ଠୀ; ସମାଜ—1. A congregation or crowd of people; a group of people; a society of men. ୨। ଚକ୍ରାକାରରେ ଉପବିଷ୍ଟ ଜନସମୂହ—2. An assembly of persons seated in a circle. ୩। ସୂର୍ଯ୍ୟ—3. The sun. ୪। ସର୍ପ—4. Serpent. ୫। କୁକ୍କୁର—5. Dog. ୬। ବଣଭୁଆ; କଟାଶ—6. Wild cat. ୭। ବିରାଡ଼ି—7. Cat. ୮। ଡିମ୍ବିରି ଗଛ—8 The fig tree. ୯। ବଟ ବୃକ୍ଷ—9. Banyan tree. ୧୦। ଚକ୍ର—10. Wheel. ୧୧। ଦୂବ (ହି. ଶ)—11. The Doob grass. ୧୨। ଗୁଳୁଚି (ହି. ଶ) (ଦେଖ)—12. Guḻuchi (See) ୧୩। ସୁଶ୍ରୁତୋକ୍ତ ଆଠ ପ୍ରକାର ସର୍ପ ମଧ୍ୟରୁ ଏକ ଜାତୀୟ ସର୍ପ—13. A kind of snake. [ଦ୍ର—ଏହା ଦେହରେ ଗୋଲାକାର ମଣ୍ଡଳମାନ ଥାଏ ଓ ଏହା ଖୁବ ଭାରି ଥିବାରୁ ଚଞ୍ଚଳ ଚାଲି ପାରେ ନାହିଁ—ହି. ଶ] ବିଣ—ଚକ୍ରାକାରରେ ଘୂର୍ଣ୍ଣିତ ମଣ୍ଡଳ ବିଶିଷ୍ଟ—Revolving in a circle; gyrating.
Maṇḍaḻī

ମଣ୍ଡଳୀ କରଣ—ସଂ. ବି (ମଣ୍ଡଳ+ଅଭୂତ ତଦ୍ଭାବେ ଚ୍ୱି+କରଣ)—କୁଣ୍ଡଳୀକରଣ; ଗୋଲକରିବା—Coiling; rounding.
Maṇḍaḻī karaṇa
(ମଣ୍ଡଳୀକୃତ—ବିଣ)

ମଣ୍ଡ ହାରକ—ସଂ. ବି (ମଣ୍ଡ=ଅନ୍ନାଦିର ଫେଣ+ହୃ ଧାତୁ=ନେବା+କର୍ତ୍ତୃ. ଅକ; ଯେ ଭାତର ଫେଣରୁ ମଦ ତିଆରି କରେ)—୧। ଶୌଣ୍ଡିକ; ଶୁଣ୍ଡି—1. A maker of wine; a distiller. ୨। ମଦ୍ୟ ବ୍ୟବସାୟୀ (ହି. ଶ)-2. A dealer in wine.
Maṇḍa hāraka

ମଣ୍ଡା—ଦେ. ବି (ସଂ. ମଣ୍ଡକ; ମଣ୍ଡକ)—୧। ପିଷ୍ଟକବିଶେଷ—1. A kind of cake boiled in steam.
Maṇḍā
মংডা मंडा
[ଦ୍ର—ଚାଉଳ ଚୂନାକୁ ସିଝାଇ ଖଳ କରିବାକୁ ହୁଏ। ତହୁଁରେ ସେହି ଖଳକୁ ଗିନା ଆକାର କରି ତା ମଧ୍ୟରେ ପୂର ଦେଇ ମୁହଁ ବୁଜି ଗୋଲ କରି ବାମ୍ଫରେ ସିଝା ଯାଏ। ଏହି ପିଠା ଅତ୍ୟନ୍ତ ଗୁରୁପାକ ଅଟେ। ତେଣୁ ଢଗରେ କହନ୍ତି—ପିଠା ଭିତରେ ମଣ୍ଡା ବଡ଼ଠାକୁର, ବାହ୍ମଣ ଭିତରେ ପଣ୍ଡା ବଡ଼ଠାକୁର।] ୨। ପୁଷ୍ପ ସ୍ତବକ—2. Nosegay. ୩। ଗୁଚ୍ଛ ସ୍ତବକ—3. Cluster.
তোড়া गुलदस्ता
[ଉ—କରେ ଦେଲେ ସୁଗନ୍ଧ ମଣ୍ଡା, ଶୁଙ୍ଘନ୍ତେ ଭ୍ରମରମଣି ହୋଇଲେ ମେଣ୍ଢା। ପ୍ରତାପ. ଶଶିସେଣା।] ୪। ମଣ୍ଡିବା; ଭୂଷିତ କରିବା—4. Adorning. ୫। ମଣ୍ଡା କାଇଁଚ (ଦେଖ)—5. Maṇḍā kāiñcha (See)
ভূষিত করা
ବିଣ—୧। ଗୋଲାକାର—1. Circular. ୨। ସଜ୍ଜିତ; ମଣ୍ଡିତ—2 Adorned. (ଉ—ଦେବଙ୍କର ଖଣ୍ଡାପାତରେ ଗଣ୍ଡା ଗଣ୍ଡା, ଛିଡ଼ିଲେ ଅସୁରଙ୍କ ମୁଣ୍ଡ ରହେ ମଣ୍ଡା। କୃଷ୍ଣସିଂହ. ମହାଭାରତ ବନ।) ସଂ. ବି. (ମଣ୍ଡ+ଆ)—୧। ସୁରା (ହି. ଶ)—1. Wine; spirituous liquor. ୨। ଆମଳକୀ (ହି. ଶ)—2. Embelic
গোল गोल

myrobalan. ପ୍ରାଦେ. (ଗଡ଼ଜାତ)—କୌଣସି ଦେଶୀ ମଦ ( ଗୁଡ଼ିଲ ବା ମହୁଲି ) ରଖିବାର ମାଟିର ପାତ୍ର ବିଶେଷ—A flat earthen vase for containing liquor. [ଦ୍ର—ଏହା ଶିଆଳମାନେ ଛାଞ୍ଚ ରଖିବା ମଦ ଓଗ୍ ଭଳ ସାନ ମୁହାଁ ଓ ମାଠିଆ ପରି ଗୋଲ ନ ହୋଇ ଚେପ୍ଟା ଅଟେ ।]

**ମଣ୍ଡା(ଣ୍ଡେ)ଇବା**—ଦେ. କ୍ରି—(ମଣ୍ଡିବା କ୍ରିୟାର ଣିଜନ୍ତ ରୂପ—The
Maṇḍā(ṇḍe)ibā causative form of Maṇḍibā).
୧ । ମଣ୍ଡିତ କରାଇବା—1. To cause to adorn.
साजान (ଉ—ମଣ୍ଡାଇ ସୁନାଲ ନେତ୍ର ପଙ୍କଜାସ୍ୟ, ଅଯତ୍ନ ମଣ୍ଡଳ
**सजावट कराना,मंडवाना** ଚଳଭୂରୂ ଲାସ୍ୟେ । ରାଧାନାଥ. ଚିଲିକା)
୨ । ସୁସଜ୍ଜିତ କରିବା—2. To decorate. ( ଉ—ମଣ୍ଡାଇଲି ନିବାସ । କିମ୍ପା ହେଲି ଏ ବେଶ, ଅନେ ଯେବେ ଜୀବେଶ ମନ ବଳାଇରେ । କବିସୂର୍ଯ୍ୟ ସଙ୍ଗୀତ ।)

**ମଣ୍ଡା କାଇଁଚ**—ଦେ ବି (ସ. ମଣ୍ଡଳ + କୁଞ୍ଚିକା; ସ.ନାମ. କୁଚନ୍ଦନ)—
Maṇḍā kāiñcha ଏକ ପ୍ରକାର ବର୍ତ୍ତୁଳ ନାଲି ଫଳ—A kind of flat red seed used by goldsmiths in weighing; Adenanthera Penonina, [ଦ୍ର—ଏହା ପ୍ରକୃତରେ କାଇଞ୍ଚ ଜାତୀୟ ନୁହେଁ, କାଇଞ୍ଚ ଲତାରେ ଫଳେ, ଏହା ଏକ ପ୍ରକାର ଗଛରେ ଫଳେ । ଏହି ଗଛ ଶିମ୍ବୁଳିକା ବର୍ଗର ଅଟେ । ଏହାର ବୀଜ ଗୋଲ ଓ ଚେପ୍ଟା ଓ ଆକାରରେ କାଇଞ୍ଚର ପ୍ରାୟ ଦୁଇ ଗୁଣ । ବଣିଆମାନେ ସୁନା ଆଦି ଓଜନ କରିବାରେ ଏହା ବ୍ୟବହାର କରନ୍ତି । ଏହାର ଓଜନ=୨ କାଇଞ୍ଚ, କେହି କେହି ଏହାକୁ ରକ୍ତ ଚନ୍ଦନ (Teracarpus Santalum) ଓ କେହି କେହି ପତ୍ରଙ୍ଗ ବା ବକମ (Caesalpina Sapan) ର ବୀଜ ବୋଲି କହନ୍ତି । ]

**ମଣ୍ଡା କୁସୁମ**—ଦେ· ବି—ବଡ଼ କୁସୁମ ଫୁଲ—Safflower of bigger species. [ଦ୍ର—ଏଥିରେ ହଳଦିଆ
Maṇḍā kusuma
बड गेंदा **फूल हजारा** ରଙ୍ଗର ବହୁତ ପ୍ରସ୍ଥ ପାଖୁଡ଼ା ଥାଏ ।]

**ମଣ୍ଡା କୋଲପ**—ଦେ. ବି—ଗୋଲାକାର କୋଲପ—
Maṇḍā kolapa গোল কুলুপ A round padlock.
( ମୁଣ୍ଡା କୋଲପ ଅନ୍ୟ ରୂପ; ନଳୀ କୋଲପ—ବିପରୀତ )

**ମଣ୍ଡା ଗିଲ**—ଦେ. ବି—ଏକଜାତୀୟ ଗିଲ; କଡ଼କଲ ( ଦେଖ )—
Maṇḍā gila A kind of Mimosa Scandens.
गिला [ ଦ୍ର—ଏହା ସାଧାରଣ ଗିଲଠାରୁ ଭିନ୍ନ ଗୁର ଗୁଣ ବଡ଼
पन्जा ଓ ଚେପ୍ଟା । ]

**ମଣ୍ଡାଛତୁ**—ଦେ. ବି—ନାଡ଼ ନ ଥିବା ଓ ପେଣ୍ଡୁପରି ମୁଣ୍ଡବିଶିଷ୍ଟ ଭୂମିରୁ
Maṇḍāchhatu ଉଠିବା ଏକପ୍ରକାର ଛତୁ—A ball-
बड़छातु shaped mushroom. [ ଦ୍ର—ଏହା ଶୁଖିଗଲେ କଳା ହୁଏ । ଏହାର ଚୂନା ପାଉଁଶ ପରି । ଏହି ଚୂନାକୁ ଘାଆରେ ପକାଇଲେ ଘାଆ ଶୁଖିଯାଏ । ]

**ମଣ୍ଡା ଟିଙ୍କ**—ଦେ. ବି—ଏକଜାତୀୟ ବଡ଼ ଟିଙ୍କ—A kind of big
Maṇḍā ṭiṅka sized tick. [ ଦ୍ର—ଟିଙ୍କ ତଳେ ଟୀକା
गोल एँटेली **बड़ीकिलनी** ଦେଖ । ]

**ମଣ୍ଡାଣ**—ପ୍ରାଦେ ( ବାଲେଶ୍ୱର ) ବି—କହାଣ ଓ ଦୋଓଡ଼ ପରେ
Maṇḍāṇa ବିଲରେ ଯେଉଁ ହଳ କରାଯାଏ—The third ploughing of fields.

**ମଣ୍ଡା ପଡ଼ିଆ**—ଦେ.ବିଣ—ଧଡ଼ିରେ ମଣ୍ଡଳ ଆକାର ଚିହ୍ନ ବୁଣାଯାଇ ଥିବା
Maṇḍā paṛiyā ( ଲୁଗା )—( cloth ) Bearing circular marks in the border. ( ଉ—ନେତ ପିନ୍ଧିଥିବା ମଣ୍ଡା ପଡ଼ିଆ, କହାଇ କି ଯିବ ଛୋଡ଼ିଆ, ପ୍ରାଚୀ. ରହସ୍ୟମଞ୍ଜରୀ । )

**ମଣ୍ଡା ରୁଞ୍ଜ**—ପ୍ରାଦେ ( ବାଲେଶ୍ୱର ) ବି—ମଣ୍ଡା କାଇଁଚ ( ଦେଖ )—
Maṇḍā ruñja Maṇḍā kāiñcha ( See)

**ମଣ୍ଡା ଶିପ**—ଦେ ବି—ଗୋଲାକାର ଶିପ—Round oyster shell.
Maṇḍā śipa গোল সামুক **गोलसीप**

**ମଣ୍ଡି**—ଦେ. ବି ( ସ. ମଣ୍ଡ )—ପାଣିଆ ଦ୍ରବ୍ୟର ତଳେ ବସିଥିବା
Maṇḍi ଖଦଡ଼ା ଅଂଶ—Rough sediment left at
তলানী **तलछट** the bottom of a liquid.

**ମଣ୍ଡିଆ**—ଦେ. ବିଣ—ଖଦଡ଼ିଆ ( ତରଳ ଦ୍ରବ୍ୟ )—( a liquid)
Maṇḍiā খইচে Having rough particles or
(ମଣ୍ଡ ମଣ୍ଡିଆ—ଅନ୍ୟରୂପ) lumps in it.

**ମଣ୍ଡିତ**—ସ.ବିଣ (ମଣ୍ଡ୍ ଧାତୁ + କର୍ମ.ତ)—୧ । ଭୂଷିତ—1, Adorned.
Maṇḍita ୨ । ସଜ୍ଜିତ—2. Equipped. ୩ । ଖଚିତ —3. Studded. ୪ । ବେଷ୍ଟିତ—4. Enveloped; surrounded. ୫ । ଆବୃତ—5. Plated; covered; overlaid with, ବି—ଜନୈକ ବୌଦ୍ଧ ରାଜା —Name of a Buddhist king

**ମଣ୍ଡିବା**—ଦେ. କ୍ରି ( ସ. ମଣ୍ଡ୍ ଧାତୁ )—୧ । ଅଳଂକୃତ କରିବା;
Maṇḍibā ଭୂଷିତ କରିବା—1. To adorn; to
সাজান; মণ্ডনকরা decorate. ( ଉ—ଚନ୍ଦନ ଫୁଲେ ମଣ୍ଡିଥାଉ
**मंडना** ନିଜ ଗାତ୍ର । କୃଷ୍ଣସିଂହ. ମହାଭାରତ. ସଭା । )
୨ । ସଜାଇବା; ସଜ୍ଜିତ କରିବା—2. To equip. ୩ । ଶୋଭା ବଢ଼ାଇବା; ସୌନ୍ଦର୍ଯ୍ୟ ବୃଦ୍ଧିର ଉପାୟ କରିବା—3. To enhance the beauty or charm of a thing. ( ଉ—ଯଥାକାଳେ ଅଙ୍ଗମଣ୍ଡିଲା ଅଭିନବ ଯୌବନ । ରାଧାନାଥ. ଚନ୍ଦ୍ରଭାଗା । ) ୪ । ନାକେ ପିନ୍ଧିବା—4. To wear, to put on. ( ଉ—ଲୋପମୁଦ୍ରା ତା ଦେଖି ସ୍ନାନଦାନ କଲେ, ଶୁଭ ମୁହୂର୍ତ୍ତେ ସେ ମଣ୍ଡନ ମଣ୍ଡିଲେ । କୃଷ୍ଣସିଂହ. ମହାଭାରତ. ବନ । )

**ମଣ୍ଡୁଅ**—ଗ୍ରା. ବି ( ସ. ମଣ୍ଡପ )—ମଣ୍ଡପ—A raised and shaded
Maṇḍua pandal. ( ଉ—ଗୁଳ ଅଳୁଅଁ ମଣ୍ଡୁଅରେ
মণ্ডপ ଥାଇ, ଚନ୍ଦ୍ର ସୂର୍ଯ୍ୟ ବେଢ଼ କରଣ ଏହି । ପ୍ରାଚୀ.
**मंडवा** ପରଚେଗୀତା । )

ମଣ୍ଡୁଅ—ପ୍ରାଦେ (ସମ୍ବଲପୁର) ବି (ସଂ. ମଣ୍ଡପ) ମଣ୍ଡପ—
Manduā A raised pavilion or pandal.

ମଣ୍ଡୁକ—ସଂ. ବି (ମଣ୍ଡ୍ ଧାତୁ+କର୍ମ ଉକ) —ଢାଲକୁ ଧରିବାର ସ୍ଥାନ—
Manduka The part of a shield where it is held by the hand

ମଣ୍ଡୁଲି—ପ୍ରାଦେ (ସମ୍ବଲପୁର) ବି—ମାଛ ଧରିବାର ଯନ୍ତ୍ରବିଶେଷ—
Manduli A contrivance for catching fish.

ମଣ୍ଡୂକ—ସଂ. ବି (ମଣ୍ଡ୍ ଧାତୁ+କର୍ତ୍ତୃ. ଉକ)—୧। ଭେକ; ବେଙ୍ଗ—
Mandūka 1. A frog. ୨। ମୁନିବିଶେଷ—2. Name of a sage. ୩। (+କରଣ ଉକ) ରତିବନ୍ଧବିଶେଷ—3. A kind of coitus or mode of sexual enjoyment (Apte). ୪। (+କର୍ତ୍ତୃ. ଉକ) ପ୍ରାଚୀନକାଳର ଏକ ବାଦ୍ୟ (ହି. ଶ)—4. A kind of musical instrument used in ancient India. ୫। (+ଅଧିକରଣ. ଉକ) ନୃତ୍ୟବିଶେଷ (ହି. ଶ)—5. A kind of dance. ୬। ଏକଜାତୀୟ ଘୋଡ଼ା (ହି. ଶ)—6. A species of horse.
(ମଣ୍ଡୂକୀ—ସ୍ତ୍ରୀ)

ମଣ୍ଡୂକପର୍ଣ୍ଣ—ସଂ ବି—ଶ୍ୟୋନାକ; ଫଣଫଣା (ବଙ୍ଗଳା ଦ୍ରବ୍ୟଗୁଣ)—
Mandūkaparnna Bignonia Indica.

ମଣ୍ଡୂକପର୍ଣ୍ଣୀ—ସଂ. ବି—୧। ହାତୀଶୋଷିଆ ଗୁଳ୍ମ; ଧାନ୍ୟାଦିବର୍ଗର ବନ୍ୟ ଶାକବିଶେଷ; ଥାଲକୁଣ୍ଡୀ ଗଛ—
Mandūkaparnni 1. Hydrocotyle Asiatica; the Asiatic pennywort (Kirtikar).
(ମଣ୍ଡୂକପର୍ଣ୍ଣିକା—ଅନ୍ୟରୂପ)
ଅନ୍ୟ ସଂ. ନାମ—ମାଣ୍ଡୂକୀ,ଭୂସ୍ତ୍ରୀ, ଦିବ୍ୟା, ମହୌଷଧୀ
ଥାନକୁଡ଼ି, ଥୁଲକୁଁଡ଼ି
थुलखुडी, ब्रह्ममाण्डूकी.
खुलखुडी
ତେ. ମଣ୍ଡୂକବ୍ରହ୍ମୀ
ମ. ବ୍ରହ୍ମୀ
ତା. ବଲ୍ଲାରକୀରୈ
ଗୁ. ଖଡ଼ବ୍ରହ୍ମୀ
ଫା. ଜଳାଗଢ଼

[ଦ୍ର—ଏହାର ପତ୍ର ବେଙ୍ଗ ପିଠିର ଅନୁରୂପ ବିଶିଷ୍ଟ। ଏହି ପତ୍ରର ବାଦ୍ୟ ପ୍ରୟୋଗରେ କୁଷ୍ଠ, ଉପଦଂଶ, ନଳୀ ଘା ଓ ଚର୍ମରୋଗ ଅରୋଗ୍ୟ ହୁଏ। ବୈଦ୍ୟଶାସ୍ତ୍ର ମତରେ ଏହା କୁଷ୍ଠ, ପାଣ୍ଡୁ, ମେହ, ରକ୍ତଦୋଷ, କାସ, ବିଷଦୋଷ, ଶୋଥ ଓ ଜ୍ୱର ନାଶକ। ଏହା ଆୟୁଷ୍ୟକର, ମେଧାଜନକ, ରସାୟନ, ସ୍ୱରବର୍ଦ୍ଧକ ଓ ସ୍ମୃତିପ୍ରଦ। ପରୀକ୍ଷା ଦ୍ୱାରା ଦେଖା ଯାଇଅଛି ଯେ ଏ ପତ୍ରର ରସ ଏକ ତୋଳା ଲେଖାଏଁ ପ୍ରତ୍ୟହ ଖାଇଲେ ଆୟୁର୍ବୃଦ୍ଧି ହୁଏ। ଜଣେ ଚୀନ ଦେଶବାସୀ ଏହା ବ୍ୟବହାର କରି ଶତାଧିକ ବର୍ଷ ବଞ୍ଚିଥିବାର ଦେଖା ଯାଇଅଛି।] ୨। ମଞ୍ଜିଷ୍ଠା (ହି. ଶ.)—2. Indian madder. ୩। ବ୍ରାହ୍ମୀ ଶାଗ (ହି. ଶ) (ଦେଖ)—3 Brāhmi (See)

ମଣ୍ଡୂକପ୍ଲୁତ(ତି)—ସଂ. ବି—୧। ଭେକ ଲମ୍ଫ; ବେଙ୍ଗ ଡେଇଁବା ଗତି—
Mandūka pluta(ti) 1. The jumping motion of a frog. ୨। ରଚନାର ଗୁଣବିଶେଷ; ଚିତ୍ରରଚନାବିଶେଷ—2. A kind of pictural composition. [ଦ୍ର—ଏ ରଚନାରେ ଏକ ବା ତତୋଽଧିକ ପଦ ମଧ୍ୟରେ ଏକ ବା ଏକାଧିକ ଅକ୍ଷର ବନ୍ଧୁବାର ପ୍ରଯୁକ୍ତ ହୋଇଥାଏ। ନିମ୍ନଲିଖିତ ପଦଗୁଡ଼ିକ ମଣ୍ଡୂକପ୍ଲୁତ ଗୁଣରେ ଲିଖିତ। ଯଥା—
(ମଣ୍ଡୂକାନୁବୃତ୍ତି—ଅନ୍ୟରୂପ)

ଖରକର ହସି ହସି କେ ସଖୀ କହେ ମଧୁରେ
ମଧୁରେ ଚନ୍ଦ୍ରହେ ସୁମନା ମନାଇବା ବାଧୁରେ
ଧୀରେ ହେବ ମୋଦ ପୀବର ବର ଲଭନ୍ତି କାଳେ
କାଳେ ନ ହେବ ଟ ଏ ଭାବ ଭାବକଲା ଭାବରେ।
ଗୋଲୋକ. ଉକୁରେଖା।

ମଚ୍ଛାନ୍ତରରେ ଉଦାହରଣ—
ଘାନଜନ ମନ ମନ ଛନ୍ଦ ଛନ୍ଦ ଧନଘାନ
ଛନ୍ଦ ଘନ ମାନ ପ୍ରାଣଧନ ମାନ ମାନ।
ଗୋଲୋକ. ଉକୁରେଖା।

ମଚ୍ଛାନ୍ତରରେ ଉଦାହରଣ—
ରସେ ବରସେ ରସେ ଅଳ ରସେ ପରସେ ରସେ।
ଗୋଲୋକ. ଉକୁରେଖା।]

ମଣ୍ଡୂକପ୍ଲୁତ(ତି)ନ୍ୟାୟ—ସଂ. ବି—ବେଙ୍ଗ ଯେଉଁପରି ଡେଇଁ ଡେଇଁ ଗତି କରେ ସେହିପରି ମଧ୍ୟେ ମଧ୍ୟେ ରହି ରହି କୌଣସି କାର୍ଯ୍ୟ କରିବିବା—
Mandūkapluta(ti)nyāya Like the leaping motion of a frog. An analogy applied to a case where an act is done by leaps and bounds with repeated rests).

ମଣ୍ଡୂକ ବାଦ୍ୟ—ସଂ. ବି—ଶିଶୁଙ୍କ କ୍ରୀଡ଼ନକ ଏକପ୍ରକାର ଆନକ ବାଦ୍ୟ; ବେଙ୍ଗାବାଇଦ—
Manduka bādya A kind of small drum for children.

ମଣ୍ଡୂକ ସରଃ—ସଂ. ବି (ମ. ପ. ଲୋ)—ମଣ୍ଡୂକପୂର୍ଣ୍ଣ ଜଳାଶୟ—
Mandūka saraḥ A tank abounding in frogs.

ମଣ୍ଡୂକା—ସଂ. ବି—ମଞ୍ଜିଷ୍ଠା (ଦେଖ)
Mandūkā Manjishthā (See)

ମଣ୍ଡୂକାସନ—ସଂ. ବି—ଯୋଗର ଆସନବିଶେଷ—
Mandūkāsana A posture in joga or spiritual meditation.

ମଣ୍ଡୂକି—ଦେ. ବି—ମଣ୍ଡୂକ (ଦେଖ)—Mandūka (See)
Mandūki (ଉ—କୂର୍ମଙ୍କ ମଣ୍ଡୂକିରେ ରହନ୍ତି—ପ୍ରାଚୀ. ପରଚେଗୀତା।)

ମଣ୍ଡୂକୀ—ସଂ. ବି. ସ୍ତ୍ରୀ—୧। ମାଈ ବେଙ୍ଗ; ବେଙ୍ଗୁଲୀ—1. A she-frog. ୨। ଦୁଷ୍ଟା ବା ଅସତୀ ସ୍ତ୍ରୀ—2. An unchaste woman (Apte). ୩। ମଣ୍ଡୂକପର୍ଣ୍ଣୀ (ଦେଖ)—3. Mandūkaparnni (See) ୪। ଆଦିତ୍ୟଭକ୍ତା (ହି. ଶ.) (ଦେଖ)—4. Adityabhaktā (See)
Mandūki

ମଣ୍ଡୂର—ସଂ. ବି (ମଣ୍ଡ୍ ଧାତୁ+କର୍ତ୍ତୃ. ଉର)—୧। ଲୌହକିଟ୍ଟ; ଲୁହାର କଳଙ୍କି; ଲୌହମଳ—1. The rust of iron. ୨। ଲୁହା ଗୁହ—2. Slag of
Mandūra
ଅନ୍ୟ ସଂ. ନାମ-ଶିଙ୍ଘଣ,

ସିଂହାଣ, ହିଂହାନ, iron; dross of iron. [ ଦ୍ର—
ସିଂଘାନ, ଶୂଳଘାତନ, ଅନ୍ତତଃ ୭୦ ବର୍ଷର ପୁରାତନ ମଣ୍ଡୂରକୁ
କିଟ୍ଟ, ଲୌହଚୂର୍ଣ୍ଣ, ବାହାଡ଼ା କାଠର ନିଆଁରେ ପୋଡ଼ି ଗୋମୂତ୍ରରେ
ଅୟୋମଳ, ଲୋହଜ, ପକାଇ, ଏହିପରି ୭ ଥର ଶୋଧନ କରି
କୃଷ୍ଣଚୂର୍ଣ୍ଣ, ଲୋଷ୍ଟ, ଚାଲୁ ଚୂର୍ଣ୍ଣ କରି ଔଷଧରେ ବ୍ୟବହାର
ଲୌହସିଂହାନ(ଣି)କା କରାଯିବା ଉଚିତ । ]

ମଣ୍ଡେଇବା—ପ୍ରାଦେ (ଭାଗପୁର) କ୍ରି—ପିନ୍ଧାଇବା—
Mandeibā To put on.

ମଣ୍ଡୋଦକ—ସଂ. ବି ( ମ. ପ. ଲୋ; ମଣ୍ଡମିଶ୍ରିତ ଉଦକ )—ପିଠୋଉ
Maṇḍodaka ପାଣି—Water mixed with rice paste.

ମଣ୍ଡୋପ—ଗ୍ରା. ବି—ମଣ୍ଡପ ( ଦେଖ )—Maṇḍapa (See)
Maṇḍopa [ ଉ—କିଛି ଦୂରେ ମଣ୍ଡୋପେକ ଦେଖିଲେ
(ମଣ୍ଡେଇ,ମୁଣ୍ଡପ, ମୁଣ୍ଡେଇ—ଅନ୍ୟରୂପ) ଯାଇଁ—ପ୍ରାଚୀ. ନଳଚରିତ. ]

ମତ—ସଂ—୧ । (ଅସ୍ମଦ୍ ଶବ୍ଦର ମଦ୍‌ଶବ୍ଦାଂଶର ଏକ ରୂପ, ଅନ୍ୟ ଶବ୍ଦ
Mat ପୂର୍ବେ ଯୁକ୍ତ ହୁଏ । ଯଥା—ମଦବଲମ୍ବନ, ମଦାଳୟ,
ମଦାଶ୍ରୟ, ମଦର୍ଜିତ, ମଦଦୃଷ୍ଟ, ମଦୀଶ୍ୱର, ମଦୁକ୍ତ, ମଦ୍‌ଗୁଣ,
ମଦୈଶ୍ୱର୍ଯ୍ୟ, ମତ୍‌କେଶ, ମତ୍‌ଶକ୍ତି, ମଦ୍‌ଗୁଣ, ମଦ୍‌ଧର୍ମ,
ମଚ୍ଚିତ୍ତ, ମଚ୍ଛାୟା, ମଜ୍ଜାୟା, ମଜ୍ଜୀବନ, ମଦ୍ଧୃଷ୍ଟ, ମନ୍ନୂପୁର,
ମଦ୍ଭୂତ୍ୟ, ମଦ୍ଭକ୍ତ, ମତ୍ତୁଲ୍ୟ, ମଦ୍ଦୀପାକାର, ମଦ୍ଦେଶ,
ମଦ୍ଧନ, ମନ୍ନାଥ, ମତ୍ପ୍ରେରିତ, ମତ୍ଫଳ, ମଦ୍ବଂଶିତ, ମତ୍ସନ୍ଦେଶ,
ମତ୍ସଦୃଶ )—ମଦ୍ଧୃତ; ମୋହୋର; ମୋସମ୍ବନ୍ଧୀୟ;
ମୋଦ୍ୱାରା—1. Mine; relating to me; by me.
୨ । ( ପ୍ରତ୍ୟୟ )—ଯାହାର ଅଛି, ଏହି ଅର୍ଥରେ
ବିଶେଷ୍ୟ ଶବ୍ଦ ପରେ ପ୍ରତ୍ୟୟ ହୁଏ—2. A
suffix denoting having or possessing.
[ ଦ୍ର—ଏଥିର ପୁଂ. ୧ ବଚନରେ ମାନ୍ ଓ ସ୍ତ୍ରୀଲିଙ୍ଗରେ
ମତୀ ହୁଏ । ଓଡ଼ିଆରେ ୧ ବଚନରେ ମଧ୍ୟ 'ମନ୍ତ'
ପ୍ରତ୍ୟୟ ହୁଏ । ଯଥା—ସଂ ବୁଦ୍ଧିମାନ୍, ବୁଦ୍ଧିମତୀ,
ଦେଶଜ. ବୁଦ୍ଧିମନ୍ତ । ]

ମତ୍କ—ସଂ. ବିଣ (ଅସ୍ମଦ୍ +୬ଷ୍ଠୀ ବିଭକ୍ତିରେ କ) —ମଦୀୟ; ମୋର—
Mat-ka Mine: my (Apte) ବି ( ମଦ୍
( ମତ୍କା—ସ୍ତ୍ରୀ ) ଧାତୁ+କର୍ତ୍ତୃ. କ )—ଛାରପୋକ—
A bed-bug (Apte)

ମତ୍କାମନା—ସଂ. ବି (ଷଷ୍ଠୀ ତତ୍; ଅସ୍ମଦ୍+କାମନା)—ମୋ ଇଚ୍ଛା—
Mat-kāmanā My wish

ମତ୍କାମୀ—ସଂ. ବିଣ. ପୁଂ ( ଷଷ୍ଠୀ ତତ୍; ଅସ୍ମଦ୍ +କାମିନ୍ )—ମୋତେ
Mat-kāmi ଲାଭ କରିବାକୁ ଇଚ୍ଛୁକ—Desirous of
(ମତ୍କାମିନୀ—ସ୍ତ୍ରୀ ) getting me. [ ଦ୍ର—
( ମଦ୍ଦୃଷ୍ଟି, ମତ୍ପିପାସୁ, ମଦଭିଳାଷୀ—ଅନ୍ୟରୂପ ) ଏହିପରି
ମତ୍ଶବ୍ଦପୂର୍ବକ ଅନେକ ଶବ୍ଦ ଜାତ ହୁଏ । ଯଥା—
ମତ୍କାର୍ଯ୍ୟ, ମତ୍କୁଟୀର, ମତ୍କୁଳ, ମତ୍କେଶ । ]

ମତ୍କୁଣ—ସଂ. ବି ( ମଦ୍ ଧାତୁ+କର୍ତ୍ତୃ. କୁଣ )—୧ । ଛାର ପୋକ;
Matk-uṇa ଓଡ଼ଶ—1. The bed bug. ୨ । ଉକୁଣୀ—
2. Louse. ୩ । ଦନ୍ତବିହୀନ ହସ୍ତୀ; ମାଖୁନା ହାତୀ—
3. An elephant without tusks. ୪ । ନାରିକେଳ
(ଗଛ ଓ ଫଳ)—4. Cocoanut (tree and fruit).
୫ । ମାଖୁନା ମନୁଷ୍ୟ; ଶ୍ମଶ୍ରୁହୀନ ବ୍ୟକ୍ତି—5. A male
without mustaches or beard; a beardless man. ୬ । ଜଙ୍ଘାତ୍ରାଣ; ପଦ ତ୍ରାଣ—6. An
armour for the legs or thigh. ୭ । ମହିଷ—
7. A buffalo (Apte.)

ମତ୍କୁଣା(ଣୀ)—ସଂ. ବି—୧ । ଅଜାଗଳସ୍ତନ—1. The nipple-
Mat-kuṇā(ṇi) like protuberances below the
neck of a goat. ୨ । ଅଜାତଲୋମ ସ୍ତ୍ରୀଚିହ୍ନ;
ଅଲୋମକ ଭଗ—2. Female organ which
has not yet grown the pubic hairs; the
pudendum of a young girl (Apte.)

ମତ୍କୁଣାରି—ସଂ. ବି—(ମତ୍କୁଣ+ଅରି)—ଇନ୍ଦ୍ରାସନ; ସିଦ୍ଧି; ଘଞ୍ଜା—
Mat-kuṇāri Indian hemp.

ମତ୍କୃତ—ସଂ. ବି—(୩ୟା ତତ୍; ଅସ୍ମଦ୍+କୃତ)—ମୋଦ୍ୱାରା କୃତ
Mat-kṛuta ବା ସମ୍ପାଦିତ ବା ରଚିତ—Done by me.

ମତ୍ ପରାୟଣ—ସଂ. ବିଣ. ପୁଂ—(ଅସ୍ମଦ୍+ପରାୟଣ)—ମୋ ପ୍ରତି
Mat-parāyaṇa ବିଶେଷ ଅନୁରକ୍ତ—Devoted to me.
(ମତ ପରାୟଣା—ସ୍ତ୍ରୀ) (ମତ ପରାୟଣତା—ବି)

ମତ୍ପୁତ୍ର—ସଂ. ବି—(ଅସ୍ମଦ୍+ପୁତ୍ର)—ମୋ ପୁଅ—
Mat-putra My son. ( ଦ୍ର—ଏହିପରି ମତ୍ପିତା, ମତ୍କନ୍ୟା,
ମତ୍ସନ୍ତାନ, ମଦ୍ଦୁହିତା ଆଦି ଶବ୍ଦ ଜାତ ହୁଏ ।)

ମତ୍ ପ୍ରଣୀତ—ସଂ. ବିଣ—(ଅସ୍ମଦ୍+ପ୍ରଣୀତ) ମୋ ଦ୍ୱାରା ରଚିତ—
Mat praṇita Written or composed by me.
(ମଦ୍ରଚିତ, ମଲ୍ଲିଖିତ—ଅନ୍ୟରୂପ)

ମତ୍ସ —ସଂ. ବି—(ମଦ ଧାତୁ+କର୍ତ୍ତୃ. ସ)—୧ । ମାଛ—1. Fish
Mat-sa (Apte). ୨ । ମତ୍ସ୍ୟରାଜ—2. A lord of the
Matsyas (Apte). ୩ । ମତ୍ସ୍ୟ ଦେଶ—3. The
Matsya country. ୪ । ମତ୍ସ୍ୟ ଦେଶବାସୀ—
4. An inhabitant of the Matsya country.

ମତ୍ ସକାଶ—ସଂ. ବି—( ଅସ୍ମଦ୍+ସକାଶ )—ମୋ ନିକଟତା—My
Mat-sakāśa (ମତ୍ସକାଶ—ଅନ୍ୟରୂପ) vicinity.

ମତ୍ ସକାଶାତ୍—ସଂ. ଅ—( ଅସ୍ମଦ୍+ସକାଶାତ୍ )—ମୋଠାରୁ; ମୋ-
Mat-sakāśāt ନିକଟରୁ—From me.

ମତ୍ ସଙ୍କଳ୍ପ—ସଂ. ବି—( ଅସ୍ମଦ୍+ସଙ୍କଳ୍ପ )—ମୋର ସଙ୍କଳ୍ପ—My
Mat-saṅkalpa determination or resolve.
(ମତ୍ସଙ୍କଳ୍ପ—ଅନ୍ୟରୂପ)

ମତ୍ ସଦୃଶ—ସଂ. ବିଣ ପୁଂ—(ଅସ୍ମଦ୍+ସଦୃଶ) —ମୋ ପରି—
Mat-sadṛuśa Like me; similar to me.
(ମତ୍ସଦୃଶ—ଅନ୍ୟରୂପ) (ମତ୍ ସାଦୃଶ୍ୟ—ବି) (ମତ୍ସଦୃଶା—ସ୍ତ୍ରୀ)

ମତ୍ସର—ସଂ. ବି—(ମଦ୍ ଧାତୁ=ଦ୍ୱେଷ କରିବା+ଭାବ. ସର)—୧। Mat-sara ଅସୂୟା; ହିଂସା—1. Spite; malice. ୨। (ମତ୍ସର—ଅନ୍ୟରୂପ) ଦ୍ୱେଷ—2. Envy. ୩। ପରଶ୍ରୀକାତରତା—3. Pain at another's weal. ୪। ରୋଷ; କ୍ରୋଧ—4. Anger. ୫। ଆତ୍ମଧିକ୍କାର—5. Self reproach. ୬। ଶତ୍ରୁତା—6. Enmity (Apte). ୭। ଗର୍ବ—7. Pride (Apte). ୮। ଲୋଭ; ଅସ୍ପୃହତା—8. Covetuousness (Apte). ୯। (+କରଣ. ସର) ସୋମ (ଲତା)—9. The soma (Apte). ୧୦। (+କର୍ତ୍ତୃ. ସର)—ମଶା—10. Gnat (Apte) ବିଣ—୧। (+କର୍ତ୍ତୃ.ସର)—ପରଶ୍ରୀକାତର—1 Envious. ୨। କ୍ରୁଦ୍ଧ—2. Angry. ୩। ଦ୍ୱେଷପୂର୍ଣ୍ଣ—3. Spiteful. ୪। ଲୋଭୀ—4 Covetuous. ୫। ପେଟୁ; ଉଦରମ୍ଭରି—5 Greedy; insatiate (Apte) ୬। ସ୍ୱାର୍ଥାନ୍ଧ—6 Selfish; self interested (Apte) ୭। କୃପଣ—7 Niggardly.
(ମତ୍ସରୀ—ସ୍ତ୍ରୀ)
(ମତ୍ସରତା—ବି)

ମତ୍ସରା—ସଂ. ବିଣ. ସ୍ତ୍ରୀ—ମତ୍ସରର ସ୍ତ୍ରୀଲିଙ୍ଗ—The feminine of Mat-sara. ସଂ. ବି—୧। ମଛିକା; ମାଛି—1.A fly. ୨। ମଶା—2. Gnat.
Mat-sarā
(ମତ୍ସରା—ଅନ୍ୟରୂପ)

ମତ୍ସରୀ—ସଂ. ବିଣ. ପୁଂ (ମତ୍ସର+ଇନ୍; ୧ମା, ୧ବ)—୧। ଦ୍ୱେଷକାରୀ—1. Envious; jealous; spiteful. ୨। ପରଶ୍ରୀକାତର; ଅସୂୟାପରବଶ—2. Unable to bear the weal of another person with equanimity. ୩। ବୈରଭାବାପନ୍ନ—3. Inimical. ୪। କୃପଣ—4, Miserly. ୫। କ୍ରୁଦ୍ଧ—5. Angry. ୬। ଲୋଭୀ—6. Covetuous; greedy (Apte).
Mat-sari
(ମତ୍ସରୀ—ଅନ୍ୟରୂପ)
(ମତ୍ସରିଣୀ—ସ୍ତ୍ରୀ)

ମତ୍ସ୍ୟ—ସଂ. ବି. ପୁଂ (ମଦ୍ ଧାତୁ=ମତ୍ତ ହେବା; ଆନନ୍ଦିତ ହେବା+କର୍ତ୍ତୃ. ସ୍ୟ; ଯେ ନୂଆ ପାଣି ପାଇଲେ ମତ୍ତ ହୁଏ)—୧। ମାଛ; ମୀନ—1. Fish. ୨। ବିଷ୍ଣୁଙ୍କ ପ୍ରଥମ ଅବତାର—2. The first incarnation of Bishṇu. [ ଦ୍ର—ଏହି ଅବତାରରେ ବିଷ୍ଣୁ ମହାପ୍ରଳୟ ସମୟରେ ଅତଳ ଗମ୍ଭୀର ସମୁଦ୍ର ମଧ୍ୟରେ ବୁଡ଼ି ଯାଇଥିବା 'ବେଦ' ଗ୍ରନ୍ଥକୁ ଉଦ୍ଧାର କରିଥିଲେ । ] ୩। ପୁରାଣ ବିଶେଷ—3. The name of a Purāṇa. [ ଦ୍ର—ଏଥିରେ ପୃଥିବୀର ସୃଷ୍ଟିତତ୍ତ୍ୱ ଓ ବିଷ୍ଣୁଙ୍କ ମତ୍ସ୍ୟ ଅବତାରର କାର୍ଯ୍ୟମାନ ବର୍ଣ୍ଣିତ ହୋଇଅଛି । ] ୪। ମୀନରାଶି; ଜ୍ୟୋତିଷୋକ୍ତ ଦ୍ୱାଦଶ ରାଶିର ଶେଷ ରାଶି—4. The Pisces; the last of the 12 signs of the zodiac. ୫। ସୌର ଚୈତ୍ରମାସ—5. The solar month of Chaitra. ୬। ମତ୍ସ୍ୟ ଦେଶ (ଦେଖ) 6. Name of a country; Mat-sya deśa (See) ୭। ବିରାଟ ଦେଶ—7. The Birāṭa country. ୮। ମତ୍ସ୍ୟଦେଶର ରାଜା—8. The king of the Mat-sya country (Apte). ଦେ. ବି—୧। ଉତ୍କଳ ଦେଶ—1. The country of Utkaḻa. [ ଦ୍ର—ଉତ୍କଳର ବ୍ରାହ୍ମଣମାନଙ୍କ ମାଛ ଖାଇବା ପ୍ରସଙ୍ଗରେ ମରହଟ୍ଟିଆ ପଣ୍ଡିତମାନେ କହୁଥାଆନ୍ତି ଯେ ଆମର ଓଡ଼ିଶାଟା ମତ୍ସ୍ୟ ଦେଶ । ] ୨। ବାଲେଶ୍ୱର ଜିଲ୍ଲାର ପର୍ବତ ବିଶେଷ—2. Name of a mountain in the Balasore district. ( ଉ—ମତ୍ସ୍ୟଶୈଳ ଦେଶ ଭବା ଅଦ୍ଭୁତରେ ଅଗ୍ରତେ ଠିଆ । ରାଧାନାଥ. ଉଷା । )
Mat-sya
(ମତ୍ସ୍ୟ—ଅନ୍ୟରୂପ)
(ମତ୍ସ୍ୟୀ—ସ୍ତ୍ରୀ)

ମତ୍ସ୍ୟ କରଣ୍ଡ—ସଂ. ବି—ଖାଲୋଇ; ମାଛ ରଖିବାର ବାଉଁଶିଆ; ଅଣ୍ଟିଆ ଟୋକେଇ—A wickerwork basket used by fishermen for keeping the fish they catch; a fish-basket.
Mat-sya karaṇḍa
ମତ୍ସ୍ୟ କରଣ୍ଡିକା, ମତ୍ସ୍ୟ ବନ୍ଧ(ନ୍ଧି)ନୀ, ମତ୍ସ୍ୟାଧାନୀ, ମତ୍ସ୍ୟଧାନୀ — ଅନ୍ୟରୂପ

ମତ୍ସ୍ୟ କେଶରୀ—ଦେ. ବି (ନାମ)—ପ୍ରାଚୀନ ଉତ୍କଳର କେଶରୀ ବଂଶୀୟ ନରପତି ବିଶେଷ—Name of a king of ancient Orissa, of the Keśarī Dynasty. [ ଦ୍ର—ଏ ପୁରୀ ସହର ନିକଟବର୍ତ୍ତୀ ଅଠରନଳା ପୋଲ ନିର୍ମାଣ କରାଇଥିଲେ । ଏ ରାଜା ୯୭୫ ଖ୍ରୀଷ୍ଟାବ୍ଦଠାରୁ ୯୯୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ]
Mat-sya keśarī

ମତ୍ସ୍ୟଗନ୍ଧ—ସଂ. ବିଣ (ବହୁବ୍ରୀହି)—ଯାହା ମାଛପରି ଗନ୍ଧାଉଥାଏ—Having the smell of fish. ସଂ. ବି (୬ଷ୍ଠୀ ତତ୍)—ମାଛର ଗନ୍ଧ; ଅଇଁଷିଣିଆ ଗନ୍ଧ—Fishy smell.
Mat-sya gandha

ମତ୍ସ୍ୟଗନ୍ଧା—ସଂ. ବି ସ୍ତ୍ରୀ (ବହୁବ୍ରୀହି; ମତ୍ସ୍ୟ+ଗନ୍ଧ+ସ୍ତ୍ରୀ. ଆ; ମତ୍ସ୍ୟର ଗନ୍ଧପରି ଗନ୍ଧ ଯାହାର)—୧। ଧୀବରରାଜକନ୍ୟା; ଯୋଜନଗନ୍ଧା; ବ୍ୟାସଦେବଙ୍କ ଜନନୀ; ସତ୍ୟବତୀ—1. The mother of sage 'Byāsa' and wife of king Śāntwanu, but formerly deflowered by sage Parāśara. [ ଦ୍ର—ସତ୍ୟବତୀ ତଳେ ଟୀକା ଦେଖ । ] ୨। ଜଳ ପିପ୍ପଳୀ—2. A kind of aquatic pepper. ବିଣ. ସ୍ତ୍ରୀ—ଯାହାର ଦେହ ମାଛପରି ଗନ୍ଧାଉ ଥାଏ; ଅଇଁଷିଣିଆ ଗନ୍ଧଯୁକ୍ତ—Having a fishy smell.
Mat-syagandhā
(ମତ୍ସ୍ୟନାରୀ—ଅନ୍ୟରୂପ)

ମତ୍ସ୍ୟଘାତ—ସଂ. ବି—୧। (୬ଷ୍ଠୀ ତତ୍)—ମାଛ ମାରିବା ବୃତ୍ତି—1.The occupation of a fisherman ୨। (ମତ୍ସ୍ୟ+ହନ୍. ଧାତୁ+କର୍ତ୍ତୃ. ଅ)—ମାଛମରା କେଉଟ; ମାଳୁଆ—2. Fisherman (Apte).
Mat syaghāta

ମତ୍ସ୍ୟଜାଲ—ସଂ. ବି (୬ଷ୍ଠୀ ତତ୍)—ମାଛଙ୍କ ମନା ବା ଝାଙ୍କ—A shoal of fishes.
Mat-sya jāla

ମତ୍ସ୍ୟ ଜାଲ—ସଂ. ବି (ମ ଷ. ତୋ)—ମାଛ ଧରିବା ଜାଲ—
Mat-sya jāla Fishing net.

ମତ୍ସ୍ୟ ଜୀବ(ବୀ)—ସଂ. ବି. ପୁଂ (ମତ୍ସ୍ୟ+ଜୀବ୍. ଧାତୁ+କର୍ତ୍ତୃ. ଅ;
Mat-sya jība(bī) +ଇନ୍, ୧ମା. ୧ବ)—ଯେ ମାଛ ମାରି
ମତ୍ସ୍ୟଜୀବୀ, ମତ୍ସ୍ୟଜୀବନୀ } ସ୍ତ୍ରୀ — ଜୀବିକା ନିର୍ବାହ କରେ; ଧୀବର; କେଉଟ—
Fisherman. ବିଣ. ପୁଂ—ମାଛ ମାରି
ମତ୍ସ୍ୟାଜୀବ, ମତ୍ସ୍ୟୋପଜୀବୀ, ମତ୍ସ୍ୟଘାତୀ } ଅନ୍ୟରୂପ — ଜୀବିକା ନିର୍ବାହକାରୀ—
Subsisting on fishing.

ମତ୍ସ୍ୟଣ୍ଡିକା—ସଂ. ବି (ମତ୍ସ୍ୟ+ଅଣ୍ଡ+କ+ଆ)—୧ । ମିଶ୍ରୀ—
Mat-syaṇdikā 1. Crystallised sugar; sugarcandy.
(ମତ୍ସ୍ୟଣ୍ଡୀ—ଅନ୍ୟରୂପ) ୨। କନ; ନବାତ—2. Coarse or unrefined sugar (Apte). ୩ । ମଠ—3. A monastery. ୪ । ହିମାଳୟ ଜାତ ଏକଜାତୀୟ ବନ୍ୟ ଲତାର ଡାଙ୍ଗରୁ ଉତ୍ପନ୍ନ ମାଛମଞ୍ଜି ପରି ଦାନା ବିଶିଷ୍ଟ ଔଷଧ ଦ୍ରବ୍ୟ—4. A kind of tiny globules coming out of the stems of a Himalayan herb and used in medicine.

ମତ୍ସ୍ୟ ଦେଶ—ସଂ. ବି—୧ । ଆଧୁନିକ ରାଜପୁତାନାର ଜୟପୁର—
Mat-sya deśa 1. Modern Jaipur in the Raj-putana states. ୨ । ପ୍ରାଚୀନ ବିରାଟଦେଶ; ଆଧୁନିକ କୁଚବିହାର—2. Modern Coochbehar.
[ଦ୍ର—କେତେକ ଲୋକଙ୍କ ମତ ଅଟେ ଯେ ବର୍ତ୍ତମାନ ଦିନାଜପୁର ଓ ରଙ୍ଗପୁରହିଁ ପ୍ରାଚୀନକାଳର ମତ୍ସ୍ୟ ଦେଶ ଅଟେ; କେତେକ ଲୋକ ଏହାକୁ ପ୍ରାଚୀନ ପାଞ୍ଚାଳ ଦେଶର ଅନ୍ତର୍ଗତ ବୋଲି କହନ୍ତି—ହି. ଶ; କେହି କେହି ପ୍ରାଚୀନ ବିରାଟ ବା ମତ୍ସ୍ୟ ଦେଶକୁ ଉତ୍ତର ବଙ୍ଗରେ ବଗୁଡ଼ାର ନିକଟରେ ଅବସ୍ଥିତ ଥିବାର କହନ୍ତି—ସୁବଳଚନ୍ଦ୍ର ଓ ଜ୍ଞାନେନ୍ଦ୍ରଚନ୍ଦ୍ର; ମନୁସ୍ମୃତିରେ କୁରୁକ୍ଷେତ୍ର ଓ ପାଞ୍ଚାଳ ଦେଶ ସଙ୍ଗେ ମତ୍ସ୍ୟ ଦେଶର ଉଲ୍ଲେଖ ଅଛି । ଏଥିରୁ ଅନୁମିତ ହେଉଥିଲା ଯେ ଏହା ଥାନେଶ୍ୱର ନିକଟବର୍ତ୍ତୀ ଥିଲା । କିନ୍ତୁ ବର୍ତ୍ତମାନ ନିଶ୍ଚିତ ହୋଇଅଛି ଯେ ଅଲୱାର ଓ ଜୟପୁର ରାଜ୍ୟର ମଧ୍ୟବର୍ତ୍ତୀ ପ୍ରଦେଶ ମହାଭାରତ ସମୟରେ ମତ୍ସ୍ୟଦେଶ ବୋଲାଯାଉଥିଲା। ଉକ୍ତ ଅଞ୍ଚଳର ଅନ୍ତର୍ଭୁକ୍ତ ବୈରାଟ ଓ ମାଚେଡ଼ୀ ସ୍ଥାନ ଦ୍ୱୟ ଆଜ ପର୍ଯ୍ୟନ୍ତ ପ୍ରାଚୀନ ବିରାଟ ଓ ମତ୍ସ୍ୟ ଦେଶର ସ୍ମୃତି ଜାଗରୁକ କରୁଅଛି । ହି. ଶ. । ମରହଟ୍ଟୀ ପଣ୍ଡିତମାନଙ୍କ ଠାରୁ ଓଡ଼ିଶା ମତ୍ସ୍ୟଦେଶ ଥିବାର ଶୁଣାଯାଏ । କେହି କେହି ବିଶାଖା ପଟଣାର ଜୟପୁରକୁ ମତ୍ସ୍ୟଦେଶ କହନ୍ତି । କିନ୍ତୁ ଏଥିର କିଛି ଶାସ୍ତ୍ରୀୟ ପ୍ରମାଣ ନାହିଁ । ] ଦେ. ବି—ଉତ୍କଳ ଦେଶ—The Utkaḷa country.

ମତ୍ସ୍ୟ ଦ୍ୱାଦଶୀ—ସଂ. ବି—ମାର୍ଗଶିର କୃଷ୍ଣଦ୍ୱାଦଶୀ—
Mat-sya dwādaśi The 12th day of the month of Mārgaśira (Apte).

ମତ୍ସ୍ୟ ଧାନିକା—ସଂ. ବି—ମାଛ ରଖାଯିବା ଟୋକେଇ; ଖାଲେଇ—
Mat-sya dhānikā A basket for depositing fishes after their being caught.
(ମତ୍ସ୍ୟଧାନୀ—ଅନ୍ୟରୂପ)

ମତ୍ସ୍ୟ ପୁରାଣ—ସଂ. ବି—ଉପନାମକ ଏକ ହିନ୍ଦୁ ପୁରାଣ—
Mat-sya purāna The name of a Purāṇa or Hindu mythological work.

ମତ୍ସ୍ୟ ବନ୍ଧ—ସଂ. ବି (ମତ୍ସ୍ୟ+ବନ୍ଧଧାତୁ+କର୍ତ୍ତୃ.ଅ)—ମାଛମରା
Mat-sya bandha କେଉଟ—Fisherman (Apte)
(ମତ୍ସ୍ୟବନ୍ଧୀ—ଅନ୍ୟରୂପ)

ମତ୍ସ୍ୟ ବେଧନ—ସଂ. ବି—୧ । ବନସି—1. A fishing angle
Mat-sya bedhana (Apte). ୨ । ପାଣିକୁଆ—
2. Cormorant (Apte)

ମତ୍ସ୍ୟବେଧନୀ—ସଂ. ବି—(ମତ୍ସ୍ୟ+ବେଧନ+ଈ)—ବନସୀ—
Mat-syabedhani Angling rod.
(ମତ୍ସ୍ୟବନ୍ଧନ, ମତ୍ସ୍ୟବେଧନିକା—ଅନ୍ୟରୂପ)

ମତ୍ସ୍ୟ ଭୋଜୀ—ସଂ. ବିଣ. ପୁଂ (ମତ୍ସ୍ୟ+ଭୁଜଧାତୁ+କର୍ତ୍ତୃ ଇନ, ୧ମା.
Matsya bhoji ୧ବ)—ଆମିଷଭୋଜୀ; ମତ୍ସ୍ୟାଶୀ; ଯେ
ମାଛଖାଏ— Fish-eating.
(ମତ୍ସ୍ୟ ଭୋଜୀନୀ—ସ୍ତ୍ରୀ)

ମତ୍ସ୍ୟରଙ୍କ(ଙ୍ଗ)—ସଂ. ବି—ମାଛରଙ୍କା ଚଢ଼େଇ—The king-
Mat-sya ranka(nga) fisher (bird); halcyon.
(ମତ୍ସ୍ୟରଙ୍ଗକ, ମତ୍ସ୍ୟାଶନ—ଅନ୍ୟରୂପ)

ମତ୍ସ୍ୟ ରାଶି—ସଂ. ବି—ମୀନରାଶି—
Mat sya rāsi The Pisces sign of the zodiac.

ମତ୍ସ୍ୟରାଜ—ସଂ. ବି—(ଷଷ୍ଠୀତତ୍; ମତ୍ସ୍ୟ+ରାଜନ୍)—୧। ମତ୍ସ୍ୟଦେଶର
Mat-sya rāja ଅଧିପତି; ବିରାଟରାଜ—1. Birāta; the king of the Mat-sya country. ୨। ରୋହିତ-ମତ୍ସ୍ୟ—2. the Rohita fish. ୩। ବାଲିଆ ମାଛ—3. The cat fish; the Boal fish. ଦେ. ବି—ଭାକୁଡ଼ ମାଛ—The Katla fish. (ଦ୍ର—ଭାକୁଡ଼ମାଛ ଥାଇ ବୋଇଲା ମୁଁ ମାଛଙ୍କ ମଧ୍ୟରେ ରଜା । ମୋ ମୁଣ୍ଡକୁ ସୋରୁଅ କଲେ ଦେଖିବୁ କେତେ ମଜା । ଢଗ ।)

ମତ୍ସ୍ୟ ଲିସ୍—ପ୍ରାଦେ (ଗଞ୍ଜାମ) ବି (ସଂ. ମତ୍ସ୍ୟ ଓ ଇଂ. ଲିଜ୍)—
Mat-sya lis ମତ୍ସ୍ୟଧରା ପଟା—Lease of fishery.

ମତ୍ସ୍ୟ ସଙ୍ଘ—ସଂ. ବି—(ଷଷ୍ଠୀତତ୍; ମତ୍ସ୍ୟ+ସଙ୍ଘ)—ମାଛଙ୍କ ପଙ୍କ୍ତି ବା
Mat-sya saṁgha ଖେଦା—A shoal of fish.
(ମତ୍ସ୍ୟ ସଙ୍ଘାତ—ଅନ୍ୟରୂପ)

ମତ୍ସ୍ୟାକ୍ଷୀ(ଙ୍ଗୀ)—ସଂ. ବି—୧ । ଜଳଜ ଶାକବିଶେଷ; ହିଲମୋଚିକା;
Mat-syākshi(ngi) ହିଡ଼ିମିଚ୍ଛ ଶାଗ—1. A kind of aquatic pot-herb; Hincha Ripens. ୨ । ଗଣ୍ଠିଦୂବ—2. Globular-knotted grass. ୩ । ବୃହତୀ; କଣ୍ଟକାରୀ—3. Solanum Indicum.

ମତ୍ସ୍ୟାଣ୍ଡ—ସଂ. ବି—(ଷଷ୍ଠୀତତ୍; ମତ୍ସ୍ୟ+ଅଣ୍ଡ)—ମାଛମଞ୍ଜି—
Matsyāṇda The ova of fishes; the roe of a fish.
(ମତ୍ସ୍ୟାଣ୍ଡିକା—ଅନ୍ୟରୂପ)

ମତ୍ସ୍ୟାଦ—ସଂ.ବିଣ. ପୁଂ (ମତ୍ସ୍ୟ + ଅଦ୍. ଧାତୁ + କର୍ତ୍ତ୍ରି ଅ)—ଯେ ମାଛ
Mat-syāda ଖାଏ; ଆମିଷାଶୀ—Subsisting on fishes; ( ମତ୍ସ୍ୟାଶୀ, ମତ୍ସାଶନ—ଅନ୍ୟରୂପ ) fish-eating. ସଂ. ବି.— (ମତ୍ସ୍ୟାଦା—ସ୍ତ୍ରୀ) ମାଛରଙ୍କା ପକ୍ଷୀ—The kingfisher bird.

ମତ୍ସ୍ୟାସନ—ସଂ. ବି—ରୁଦ୍ର ଯାମଳୋକ୍ତ ତାନ୍ତ୍ରିକ ଆସନବିଶେଷ—
Matsyāsana Name of a posture during spiritual meditation according to the Tantras.

ମତ୍ସୀ—ସଂ. ବି. ସ୍ତ୍ରୀ (ମତ୍ସ୍ୟ + ସ୍ତ୍ରୀ. ଈ)—ମାଈ ମାଛ; ଯେଉଁ ମାଛଙ୍କ
Mat-syī ପେଟରେ ମଞ୍ଜି ଥାଏ—A female fish.

ମତ୍ସ୍ୟୋଦରୀ—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ମତ୍ସ୍ୟ + ଉଦର + ସ୍ତ୍ରୀ. ଈ)—
Mat-syodarī ମତ୍ସ୍ୟଗନ୍ଧା ୧ (ଦେଖ)—Mat-syagandhā 1 (See) ସଂ. ବି. ପୁଂ (ମତ୍ସ୍ୟ + ଉଦର + ଇନ୍; ୧ମା ୧ବ)— ରାଜା ବିରାଟ—An epithet of King Birāṭa (Apte).

ମତ୍ସ୍ୟୋଦରୀୟ—ସଂ. ବି. ପୁଂ ( ମତ୍ସ୍ୟୋଦରୀ + ଅପତ୍ୟାର୍ଥେ. ଈୟ)—
Mat-syodarīya ବ୍ୟାସଦେବ—Sage Byāsa (Apte).

ମତ—ସଂ. ବି (ମନ୍ ଧାତୁ=ବୋଧ କରିବା; ମନେ କରିବା + କର୍ମ.ତ)—
Mata ୧ । ମନର ଭାବ—1. Idea; thought. ୨ । ପରାମର୍ଶ; ଉପଦେଶ—2. Advice. ୩ । ଉଦ୍ଦେଶ୍ୟ; ଅଭିପ୍ରାୟ; ଆଶୟ—3. Intention; aim. ୪ । ବିଶ୍ୱାସ—4. Faith; belief. ୫ । ମନ୍ତବ୍ୟ—5. Remark. ୬ । ଇଚ୍ଛା—6. Wish; desire. ୭ । ଅଭିମତ—7. Opinion; choice. ୮ । ଜ୍ଞାନ—8. Knowledge. ୯ । ଗୁଗ୍ଗୁଲ; ଅଗୁରୁ—9. Agallochium ୧୦ । ହସ୍ତୀ—10. Elephant. ୧୧ । ପ୍ରକାର; ରୀତି—11. Mode; manner. ୧୨ । କୌଣସି ବିଷୟରେ ମନରେ ସ୍ଥିରୀକୃତ ଭାବ; ମତବାଦ—12. View; doctrine. ୧୩ । ମେଘ—13. Cloud. ୧୪ । ଧର୍ମର ବିଶ୍ୱାସ—14. Religious belief; creed; tenet. ୧୫ । ସମ୍ମତି; ମଞ୍ଜୁର; ଅନୁକୂଳମତ—15. Approbation; commendation; sanction (Apte). [ ଦ୍ର—କେତେକ ଭାରତୀୟ ଅଭିଧାନରେ ଏଶବ୍ଦର ଅର୍ଥ ମଞ୍ଜୁର ବା ସମ୍ମତି (approbation, commendation, sanction) ବୋଲି ଲେଖା ଅଛି, କିନ୍ତୁ ଏହି ଅର୍ଥରେ ଏ ଶବ୍ଦର ବ୍ୟବହାର କୌଣସି ଶାସ୍ତ୍ରରେ ବା ଗ୍ରନ୍ଥରେ ମିଳେ ନାହିଁ ଓ ଏହା ମଧ୍ୟ ସାଧାରଣତଃ ଏହି ଅର୍ଥରେ ବ୍ୟବହୃତ ହୁଏ ନାହିଁ—M. W.] ବିଣ—୧ । ସମ୍ମତ—1. Agreed; approved; sanctioned. ୨ । ଜ୍ଞାତ—2. Known. ୩ । ଯୁକ୍ତିଯୁକ୍ତ—3. Reasonable. ୪ । ଅଭିପ୍ରେତ—4. Intended; aimed at. ୫ । ବିବେଚିତ—5. Considered; deemed; regarded; looked-upon. ୬ । ଚିନ୍ତିତ—6. Thought of. ୭ । ଅନୁମିତ—7. Supposed; conjectured; guessed. (Apte). ୮ । ଚିନ୍ତାଦ୍ୱାରା ସ୍ଥିରୀକୃତ—8. Thought out (Apte). ୯ । ପୂଜିତ; ସମ୍ମାନିତ—9. Respected; worshipped. ୧୦ । ଅନୁଭୂତ—10. Perceived (Apte). ୧୧ । କୁତ୍ସିତ; ମନ୍ଦ; କଦର୍ଯ୍ୟ (ଗ୍ରା. ଶ)—11. Nasty; filthy; bad. ଗ୍ରା. ବି ( ସଂ. ମତ୍ତ )—୧ । ମତ୍ତତା—1. Madness. ୨ । ଗର୍ବ—2. Pride. ୩ । ମାତୁ; ମାତ ଉଠିବା—3. Paroxysm. ବିଣ—୧ । ଉନ୍ମତ୍ତ—1. Maddened. ୨ । ଗର୍ବିତ—2. Arrogant. ଅ.—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ଏ ମତ; ସେ ମତ ନାନା ମତ; କେ ମତ ।)—୧ । ପରି—1. Like. [ଉ—ଅକାଶ ମତ ମହିମା ଯାହାର । ପ୍ରାଚୀ. ଶିଶୁଙ୍କର ଉପା- ଅଭିଳାଷ ।] ୨ । ପ୍ରକାରେ—2. In (such) way.

মত্ততা मतताई, मस्ती
মত্ত; मस्त
মত; মতন
कापेसा
रकमसे

ମତ ଉଠିବା—ଦେ ବି—ମାତୁ ଉଠିବା; ମତ୍ତତା ପ୍ରକାଶ ହେବା—
Mata uṭhibā Being in a paroxysm, frenzy or madness.
মাত ওঠা मस्तीउतरना (चढना)

ମତ କରିବା—ଦେ. କ୍ରି—୧ । ସମ୍ମତ ହେବା—1. To agree.
Mata karibā ୨ । ଅଭିମତ ଦେବା—2. To give an opinion.
মত করা; मतना

ମତ ଖେଞ୍ଚା—ଦେ. ବିଣ—ବିତଣ୍ଡା ଯୁକ୍ତି କରି ଭିନ୍ନ ମତ ଦେଉଥିବା—
Mata khenchā (ବ୍ୟକ୍ତି)—Wrangling; carping. [ଉ—ମତ ଖେଞ୍ଚା ଜ୍ଞାନକୁ ଯେ ଏଥୁ ଏ ଅପ୍ରାପତ—ପ୍ରାଚୀ. ଶିବ ସ୍ୱରୋଦୟ ।]

ମତ ଗଜ—ଦେ. ବି—୧ । (ସଂ. ମତଙ୍ଗଜ)—ମତଙ୍ଗଜ (ଦେଖ)
Mata gaja 1. Matangaja (See) ୨ । (ସଂ. ମତ୍ତଗଜ) ମତ୍ତହସ୍ତୀ—2. An elephant in rut.
মত্ত গজ मत्ता हाथी
মত্তহাতী

ମତଗଜ ଚାଲି—ଦେ. ବି—ମତ୍ତହାତୀ ପରି ଧୀରେ ଧୀରେ ଚାଲି—Slow
Matagaja chāli walking like that of an elephant in rut.
মত্তগজের চাল मतवाला हाथीकी चाल

ମତଗଜ ସିଂହ—ଦେ. ବି—ଓଡ଼ିଆ ପାଇକ ଓ ଖଣ୍ଡାଏତଙ୍କ ଦିଆଯିବା
Matagaja siṁha ଉପାଧିବିଶେଷ—Name of a personal title given by Oriya Rajas to to 'Pāikas'.

ମତଙ୍ଗ—ସଂ. ବି—( ମଦ୍ ଧାତୁ=ପ୍ରୀତ ହେବା + କର୍ତ୍ତ୍ରି. ଅଙ୍ଗ )—୧ ।
Mataṅga ମାତଙ୍ଗ; ହସ୍ତୀ; ହାତୀ—1. Elephant. ୨ । (+କରଣ ଅଙ୍ଗ) ମେଘ—2. Cloud. ୩ । ରାଜର୍ଷିବିଶେଷ—3. Name of a saintly king. ୪ । ମୁନିବିଶେଷ—4. Name of a sage. [ ଦ୍ର—ଏହାଙ୍କ ଆଶ୍ରମ ଋଷ୍ୟମୂକ ପର୍ବତରେ ଥିଲା । ଏକଦା କିଷ୍କିନ୍ଧ୍ୟାଧିପ ବାଳି ଦୁନ୍ଦୁଭି ନାମକ ଅସୁରକୁ ବଧ କରି ତାହାର ଶବକୁ ଦୂରକୁ ଫିଙ୍ଗି ଦେବା ସମୟରେ ଉକ୍ତ ଶବରୁ କ୍ଷରିତ ରକ୍ତବିନ୍ଦୁମାନ ଏ ମୁନିଙ୍କ ଦେହରେ ପଡ଼ିବାରୁ ଏ କ୍ରୋଧରେ

ବାଳକୁ ଅଭିଶାପ ଦେଲେ ଯେ, ବାଳ ଭ୍ରଷ୍ଟମୁକ୍ତ ପର୍ବତ ଉପରକୁ ଗଲେ ମୃତ୍ୟୁ ଲଭିବ । ବାଳ ଏହି ପର୍ବତକୁ ଯିବାରୁ ସେହି ଶାପଯୋଗୁଁ ତହିଁ ଉପରେ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ନିହତ ହେଲା ।(ସୁକଲଚନ୍ଦ୍ର)।ଏ ଶବରୀର ଗୁରୁ ଥିଲେ । ମହାଭାରତରେ ଅଛି ଯେ ଏକ ନାପିତର ଔରସରୁ ଏ ବ୍ରାହ୍ମଣୀ ଗର୍ଭରେ ଜନ୍ମିଥିଲେ । ହି. ଶ । ] ୫ । ଦାନବବିଶେଷ (ହି. ଶ) 5. Name of a demon. ୬ । ପ୍ରାଚୀନ ତୀର୍ଥବିଶେଷ—(ହି. ଶ.)—6. Name of an ancient place of pilgrimage. ୭ । କାମରୂପ ଦେଶର ଅଗ୍ନିକୋଣସ୍ଥ ପ୍ରାଚୀନ ଦେଶବିଶେଷ—(ହି. ଶବ୍ଦସାଗର)- 7. Name of a country to the south-east of Kāmarūpa in Assam.

**ମତଙ୍ଗଜ**—ସଂ. ବି—(ମତଙ୍ଗ+ଜନ ଧାତୁ+ଅ)—୧ । ମୁନିବିଶେଷ—Matangaja 1. Name of a sage. ୨ । ହସ୍ତୀ—2. Elephant.

**ମତ ଦେବା**—ଦେ.କ୍ରି—୧ । ଅନୁମୋଦନ କରିବା—1.To support; Mata debā to second. ୨ । ଅଭିମତ ପ୍ରକାଶ କରିବା—ମত দেওয়া **मत देना** 2. To give an opinion. ୩ । ସ୍ୱୀକୃତ ହେବା—3. To agree. ୪ । ଅନୁମତି ଦେବା—4. To give permission. ୫ । ପରାମର୍ଶ ଦେବା—5. To give advice.

**ମତଦ୍ୱୈଧ**—ସଂ. ବି—(୬ଷ୍ଠୀ ତତ୍)—୧ । ଦୁଇଜଣଙ୍କ ମଧ୍ୟରେ ମତର ପ୍ରଭେଦ ବା ଅନୈକ୍ୟ—1. Difference of opinion between two persons. ୨ । ଏକ ବିଷୟରେ ଦୁଇଟି ପୃଥକ୍ ମତ—2. Two defferent opinion son a subject. Mata dwaidha

**ମତ ନେବା**—ଦେ. କ୍ରି· ୧ । ଅନ୍ୟ ବ୍ୟକ୍ତିମାନଙ୍କର ଅଭିପ୍ରାୟ ସଂଗ୍ରହ କରିବା—1. To take or gather other people's opinion. ୨ । ଅନ୍ୟର ଅନୁମତି ଗ୍ରହଣ କରିବା—2. To take permission. ୩ । ସମ୍ମତି ଗ୍ରହଣ କରିବା—3· To get consent. ୪ । ଅନ୍ୟର ପରାମର୍ଶ ନେବା—4. To take another's advice. Mata nebā ମতনেওয়া **मतलेना**

**ମତ ପରିବର୍ତ୍ତନ**—ସଂ. ବି (୬ଷ୍ଠୀ ତତ୍)—ପ୍ରଥମେ ପ୍ରକାଶିତ ବା କଳ୍ପିତ ମତର ଅନ୍ୟଥା ଭାବ—Change of opinion. Mata paribarttana

**ମତ ପୋଷଣ**—ସଂ. ବି (୬ଷ୍ଠୀ ତତ୍)—ମନରେ କୌଣସି ମତ ଧାରଣ କରିବା—Holding or entertaining an opinion. Mata poshaṇa

**ମତ ଫେରା(ରେ)ଇବା**—ଦେ. କ୍ରି—ପ୍ରଥମରେ ପ୍ରକାଶିତ ବା କଳ୍ପିତ ଅଭିପ୍ରାୟକୁ ପରିବର୍ତ୍ତନ କରିବା—To change one's opinion. Mata pherā(re)ibā ମতবদলান **मतबदलाना** [ମତ ବଦଳା(ଲେ)ଇବା—ଅନ୍ୟରୂପ]

**ମତବାଇ(ୟା)**—ଦେ. ବିଣ. ପୁଂ (ସଂ. ମତ୍ତ ଓ ବାତୁଲ)—ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ ହୋଇ ନ ପାରିବା ଯୋଗୁଁ ପାଗଳ; ମଦନମତ୍ତ—Maddened on account of unsatiated sexual hankering. Mata bāi(yā) (ମତବାଇ—ସ୍ତ୍ରୀ) [ମତବାଉଲା—ଅନ୍ୟରୂପ] কামবাই **मदनमस्त**

**ମତବାଦ**—ସଂ· ବି—୧ । ଆପଣାର ଜୀବନର ଗତି ଓ ଶୃଙ୍ଖଳର ବା ଅନ୍ୟ ବିଷୟକ ମତ ବା ମୂଳନୀତି—1. The basic principles governing a man's actions or life; tenet governing a person's life or conduct; theory. ୨ । ଅଭିମତ ପ୍ରକାଶ—2. Expression of one's opinion; laying down of one's tenets or doctrines. Matabāda

**ମତବାଦୀ**—ସଂ. ବିଣ. ପୁଂ (ମତ+ବଦ. ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ମତ ପ୍ରକାଶକାରୀ—Expressing or propounding an opinion or theory. Matabādī (ମତବାଦିନୀ—ସ୍ତ୍ରୀ)

**ମତ ବିରୁଦ୍ଧ**—ସଂ.ବିଣ (୬ଷ୍ଠୀ ତତ୍)—କୌଣସି ମତର ବିପକ୍ଷ ବା ପ୍ରତିକୂଳ—Contrary to a particular opinion or doctrine. Mata birudha (ମତ ବହିର୍ଭୂତ—ଅନ୍ୟରୂପ)

**ମତବିରୋଧ**—ସଂ. ବି (୬ଷ୍ଠୀ ତତ୍)-ମତମାନଙ୍କର ଭିନ୍ନତା ବା ଅମେଳ—Difference or disagreement of opinion. Mata birodha

**ମତବିରୋଧୀ**—ସଂ. ବିଣ. ପୁଂ (୬ଷ୍ଠୀ ତତ୍)--ବିପକ୍ଷମତ ପୋଷଣକାରୀ—Holding an opposite or adverse opinion. Matabirodhī (ମତବିରୋଧିନୀ—ସ୍ତ୍ରୀ)

**ମତଭେଦ**—ସଂ. ବି (୬ଷ୍ଠୀ ତତ୍)—୧ । ଏକାଧିକ ମତର ଅମେଳ—1. Difference of opinion. ୨ । ଅନ୍ୟମତ—2. A different opinion. Matabheda

**ମତ(ତା)ଲପ(ବ)**—ବୈଦେ. ବି (ଅ. ମତଲବ୍)—୧ । ଇଚ୍ଛା—1. Wish; desire. ୨ । ଅଭିପ୍ରାୟ; ଆଶୟ—2. Intention. ୩ । ଗୂଢ଼ ଅଭିସନ୍ଧି—3 Secret intent; motive. ୪ । ଉଦ୍ଦେଶ୍ୟ—4. Aim; object. ୫ । ତାତ୍ପର୍ଯ୍ୟ--5. Gist. ୬ । ସ୍ୱାର୍ଥପରତା--6. Selfishnesss. Mata(tā)lap(b) মতলব **मतलब**

**ମତଲପ(ବ) ବାଜ୍**—ବୈଦେ. ବିଣ (ଅ. ମତ୍‌ଲବ୍+ଫା. ପ୍ରତ୍ୟୟ ବାଜ୍)—କୁଅଭିସନ୍ଧି ଯୁକ୍ତ—Evil-intentioned; designing. Matalap(b) bāj মতলববাজ **मतलबबाज**

**ମତ(ତା)ଲପି(ବି)**—ବୈଦେ. ବିଣ (ଅ. ମତଲବୀ)—୧ । ଯାହାର ଅଭିସନ୍ଧି ଅଛି—1. Having an aim armotive in view. ୨ । ସ୍ୱେଚ୍ଛାଗ୍ରସ୍ତ; ଖିଆଲୀ—2. Acting according to one's whims; wayward; whimsical. ୩ । ଫନ୍ଦୀବାଜ୍; କୂଟବୁଦ୍ଧିଯୁକ୍ତ; କୌଶଳୀ—3. Strategist; crafty; designing. ୪ । ସ୍ୱାର୍ଥପର—4. Selfish. Mata(tā)lapi(bi) খেয়ালী **मतलबी** [ମତ(ତା)ଲପି(ବି)ଆ—ଅନ୍ୟରୂପ]

ମତଲ୍ଲିକା—ସଂ. ବିଣ (ମତ+ଅଲ୍ ଧାତୁ=ଭୂଷିତ କରିବା+କର୍ତ୍ତୃ.ଅକ+ଆ)—ପ୍ରଶସ୍ତ; ଉତ୍ତମ—Good; excellent; best of its kind. [ଦ୍ର—ଏହା ବିଶେଷ୍ୟ ପଦର ପରେ ଯୁକ୍ତ ହୁଏ ଯଥା—ଗୋମତଲ୍ଲିକା=ଉତ୍କୃଷ୍ଟ ଗୋ । ]
Matallikā

ମତ ହେବା ଗଜ ହେବା—ଦେ. କ୍ରି (ସଂ. ମତଙ୍ଗଜଗତି)—୧ । ଅଳସ ବା ଧୀରଗତିରେ କୌଣସି କାର୍ଯ୍ୟ କରିବା—1. To do any work lazily or slowly. [ଉ—ମତ ହେବେ ଗଜ ହେବେ, କେବେ ଯାଇ ପୁଅ ବେଦକୁ ଯିବେ—ଢଗ । ] ୨ । ସାଜସଜ୍ଜା ବା ଅଙ୍ଗରାଗ କରିବାରେ ବହୁ ସମୟ ବ୍ୟୟ କରିବା—2. To spend much time in dressing or equipping oneself.
Mata hebā gaja hebā
सुस्तीसे सजावट करना

ମତା—ଦେ. ବି—୧ । ଉନ୍ମତ୍ତ ହେବା ଅବସ୍ଥା—1. State of being excited; excitement. ୨ । ଅଣ୍ଡିରା ପାରାବିଶେଷ—2. A kind of male pigeon. ବିଣ ( ତରାଜୁ ଓ ପାଲିଙ୍କି ଆଦି ) ଏକ ପାଖକୁ ଢଳିବା ଅବସ୍ଥାରେ ଥିବା—The state of a (palanqin or a balance) leaning to one side.
Matā
माती
मस्ती

ମତା(ତେ)ଇବା—ଦେ. କ୍ରି—( ମାତିବା କ୍ରିୟାର ଣିଜନ୍ତ ରୂପ—The causative form of 'Mātibā'). ୧ । ଉନ୍ମତ୍ତ କରାଇବା—1. To madden. ୨ । ପ୍ରବର୍ତ୍ତାଇବା—2. To instigate; to incite; to induce. ୩ । ଆସକ୍ତ କରାଇବା—3 To cause to be attached. (ଉ—କୁହୁଅଛୁ ମତାଇଣ ଜୁଦ କରାଇବ, ସାହାର ଯେତେକ ଯିବ ଭଣ୍ଡାରୁ ତା ଦେବ । ସ୍ୱାମୀ. ନଳ ଚରିତ ।)
Matā(te)ibā
मातान
मतवाना, बहकाना

ମତାନୁଯାୟୀ—ଦେ. କ୍ରି. ବିଣ ( ସଂ. ମତ+ଅନୁଯାୟିନ୍ )—କୌଣସି ମତ ପ୍ରକାରେ—According to an opinion or doctrine. ସଂ.ବିଣ. ପୁଂ (ମତାନୁଯାୟିନୀ—ସ୍ତ୍ରୀ) —ମତାବଲମ୍ବୀ (ଦେଖ)—Matābalambī (See)
Matānujāyī
(ମତାନୁସାରେ—ଅନ୍ୟରୂପ)

ମତାନ୍ତର—ସଂ. ବି (ସଂ. ଅନ୍ୟ +ମତ)—ଅନ୍ୟ ମତ; ଭିନ୍ନ ମତ—Different opinion.
Matāntara

ମତାବଲମ୍ବନ—ସଂ. ବି(୬ଷ୍ଠୀ ତତ୍)—୧। ଗୋଟିଏ ମତକୁ ଗ୍ରହଣ କରିବା; ଗୋଟିଏ ମତ ଅନୁସାରେ କାର୍ଯ୍ୟ କରିବା—1. Acceptance of a particular opinion; following of an opinion or tenet. ୨ । କୌଣସି ବ୍ୟକ୍ତିଙ୍କ ମତ ଅନୁସାରେ କର୍ମ କରଣ—2. Acting according to the opinion of another; subserviency to the wish of another person.
Matābalambana
ମତାଶ୍ରୟ, ମତାନୁବର୍ତ୍ତନ, ମତାନୁସରଣ } ଅନ୍ୟରୂପ

ମତାବଲମ୍ବୀ—ସଂ ବିଣ. ପୁଂ—ଯେ ଗୋଟିଏ କୌଣସି ମତ ଅନୁସାରେ ଚଳେ—Following a particular opinion or tenet.
Matābalambī
ମତାନୁବର୍ତ୍ତୀ, ମତାନୁସାରୀ, ମତାଶ୍ରୟୀ } ଅନ୍ୟରୂପ
(ମତାବଲମ୍ବିନୀ, ମତାନୁବର୍ତ୍ତିନୀ, ମତାନୁସାରିଣୀ – ସ୍ତ୍ରୀ)

ମତାମତ—ସଂ. ବି ( ମତ+ଅମତ )—୧ । ମତ ଓ ଅମତ; ସମ୍ମତି ଓ ଅସମ୍ମତି—1. Opinion for and against a thing. ୨ । ଇଚ୍ଛା ବା ଅନିଚ୍ଛା—2. Wish or unwillingness.
Matāmata

ମତାମତି କରିବା—ଦେ. କ୍ରି—ମତାଇବା; ଉତ୍ତେଜିତ କରିବା—To instigate; to incite.
Matāmati karibā
মাতামাতি করা बहकाना

ମତି—ସଂ. ବି ( ମନ୍ ଧାତୁ=ବୋଧ କରିବା+କରଣ. ତି )—୧ । ବୋଧ ଶକ୍ତି; ବୁଦ୍ଧି—1. Intelligence; sense; understanding. ୨ । ଜ୍ଞାନ—2.Knowledge; perception; reason. ୩ । ସ୍ମୃତି; ସ୍ମରଣଶକ୍ତି — 3. Memory; remembrance. ୪ । ଅନ୍ତଃକରଣ — 4. Heart. ୫ । ମନ—5. Mind. ୬ । (+ଭାବ. ତି)—ପ୍ରବୃତ୍ତି; ଚିତ୍ତବୃତ୍ତି—6. Propensity; tendency; mental condition; feeling; mentality. ୭ । ଇଚ୍ଛା—7. Wish; inclination; desire. ୮ । ପ୍ରକୃତି—8. Nature. ୯ । ସମ୍ମତି—9 Consent; agreement. ୧୦ । ବିବେଚନା—10. Consideration.
Mati

ମତି, ଦେ. ବି—ଧୈର୍ଯ୍ୟ; ଧୃତି—Patience. (ଉ—ବଢାଇବେ ଯେତି ମତିକ । କବିସୂର୍ଯ୍ୟ ସଙ୍ଗୀତ ।) ଅ—ମତ (ଦେଖ)—Mata(See) [ଦ୍ର—ଏହି ଶବ୍ଦ ଏହି ଅର୍ଥରେ ଅନ୍ୟ ଶବ୍ଦ ପରେ ଲାଗେ । ଯଥା—ଏମତି ଯେମତି, କେମତି, ତେମତି ।]
मति, धीराज
मत
कापेसा, केपेसे,
कीपेसी, कीतरह,
कीमांति

ମତିଆରି—ଦେ. ବି—ସ୍ୱର ବିଶେଷ—Name of a tune in music.
Matiārī

ମତିକି ଆଣିବା—ଦେ. କ୍ରି—୧ । ମନକୁ ଆଣିବା; ମନରେ ଭାବିବା—1. To consider; to mind; to take into consideration. )ଉ—ତପେ ମନାଇ ବୁଝି ଗୁଣିକ, ଆଣିଲେ ସେ ଚଢେଇ ପାଉଣା, ନୋହିବ କଳ ଆଣ ମତିକ, ଗଲ୍ପ ଉଦେଗ । ଭକ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ) ୨ । କଳ୍ପନା କରିବା—2. To image; to guess.
Matiki ānibā
মনে আনা
मन मे लाना

ମତି ଗତି—ଦେ. ବି (ସହଚର ଶବ୍ଦ; ସଂ. ମତି+ଗତି)—୧। ଆନ୍ତରିକ ଉଦ୍ଦେଶ୍ୟ ଓ ବାହ୍ୟ ପ୍ରଚେଷ୍ଟା ବା କ୍ରିୟାକଳାପ—1. Intention and outward expressions or movements. ୨ । ରଙ୍ଗଢଙ୍ଗ; ମାନସିକ ଓ ବାହ୍ୟ ଅବସ୍ଥା—2. Inward and outward condition. ୩ । ମନର ଭାବ—3. Mental condition;mentality; attitude.
Mati gati
মতিগতি
मतिगति

**ମତି ଗର୍ଭ**—ସଂ. ବିଣ. ପୁଂ. ( ବହୁବ୍ରୀହି )—୧ । ବୁଦ୍ଧିମାନ୍ (ହି. ଶ)—
Matigarbha 1. Intelligent. ୨ । ଚତୁର (ହି. ଶ)—
(ମତିଗର୍ଭା—ସ୍ତ୍ରୀ) 2. Clever. ୩ । ହୁସିଆର (ହି. ଶ)—
3. Cautious; prudent.

**ମତିଚ୍ଛନ୍ନ**—ସଂ. ବିଣ. ପୁଂ ( ୩ୟା ତତ୍ )—୧ । ଯାହାର ବୁଦ୍ଧି ଲୋପ
Matichchhanna ହୋଇଥାଏ—1. Having lost one's
मतिछन्न brain; demented. ୨ । କିଂକର୍ତ୍ତବ୍ୟବିମୂଢ଼—
(ମତିଚ୍ଛନ୍ନା—ସ୍ତ୍ରୀ) 2. Bewildered. ଦେ, ବି—ବୁଦ୍ଧିର ବିନାଶ; ବୁଦ୍ଧି
(ମତିଚ୍ଛନ୍ନତା—ବି) ଭ୍ରଂଶ—Derangement of brain; loss of reasoning faculty.

**ମତିଦା**—ସଂ. ବିଣ. ସ୍ତ୍ରୀ ( ମତି + ଦା ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ )—
Matidā ଯାହା ବୁଦ୍ଧି ବୃତ୍ତି ପ୍ରଦାନ କରେ—
(ମତିଦ—ପୁଂ) Endowing one with intelligence.
(ମତିପ୍ରଦା—ଅନ୍ୟରୂପ) ୧ । ଜ୍ୟୋତିଷ୍ମତୀ ଲତା (ହି. ଶ)—
1. Cardiospermum Helicácabum (plant)
୨ । ସିମିଳି ଗଛ (ହି. ଶ)—2. The silk cotton tree.

**ମତି ପ୍ରକର୍ଷ**—ସଂ. ବି (୬ଷ୍ଠୀ ତତ୍)—ବୁଦ୍ଧିର ପ୍ରକର୍ଷ—
Mati prakarsha Excellence of intellect.

**ମତି ବୁଦ୍ଧି**—ଦେ. ବି ( ଏକାର୍ଥକ ସହଚର ଶବ୍ଦ; ସଂ. ମତି + ବୁଦ୍ଧି )—
Mati buddhi ବୁଦ୍ଧିସୁଦ୍ଧି—Understanding; intelligence.

**ମତି ବିଭ୍ରଂଶ**—ସଂ. ବି. ( ୬ଷ୍ଠୀ ତତ୍ )—୧ । ବୁଦ୍ଧିଶକ୍ତିର ବିନାଶ—
Mati bibhramśa 1. Loss of intelligence.
ମତି ଭ୍ରଂଶ, ମତି ଭ୍ରମ, ମତି ବିଭ୍ରମ } ଅନ୍ୟରୂପ
୨ । ସ୍ମୃତିଶକ୍ତିର ଲୋପ—2. Loss of memory. ୩ । ଉନ୍ମାଦ ରୋଗ (ହି.ଶ)—3. Madness; mania; derangement of brain.

**ମତି ଭ୍ରଷ୍ଟ**—ସଂ. ବି. ପୁଂ (୩ୟା ତତ୍)—ଉନ୍ମତ୍ତ—Mad; deranged in brain; demented.
Mati bhrashṭa
(ମତି ଭ୍ରଷ୍ଟା—ସ୍ତ୍ରୀ) (ମତି ବିଭ୍ରଷ୍ଟ—ଅନ୍ୟରୂପ)

**ମତି ମତେ**—ଦେ (ପଦ୍ୟ) କ୍ରି. ବିଣ—( ଅମୁକର ) ଇଚ୍ଛାନୁସାରେ—
Mati mate According to the desire or wish
ইচ্ছা মতে मन माना of a person.

**ମତିମ(ବ)ନ୍ତ**—ଦେ. ବିଣ. ପୁଂ (ସଂ ମତିମାନ୍)—ମତିମାନ; ବୁଦ୍ଧିମାନ୍—
Matima(ba)nta মতিমন্ত मतिम(व)न्त Intelligent.
(ଉ—ଗୁଣବନ୍ତ ଲୋକେ ଆଦର ଯେ କରଇ, ମତିମନ୍ତ ବୋଲିଣ ତାହାଙ୍କୁ କହି—କୃଷ୍ଣସିଂହ. ମହାଭାରତ. ଉଦ୍‌ଯୋଗ । )

**ମତିମାନ୍**—ସଂ. ବିଣ. ପୁଂ (ମତି + ମତ୍, ୧ମା. ୧ବ)—୧ । ବୁଦ୍ଧିମାନ୍—
Matimān 1. Intelligent. ୨ । ସୁବିବେଚକ—
(ମତିମତୀ—ସ୍ତ୍ରୀ) 2. Considerate.

**ମତିଷ୍ଠ**—ସଂ. ବିଣ ( ମତିମତ୍ + ଇଷ୍ଠ )—ସୁବୁଦ୍ଧିବିଶିଷ୍ଟ—
Matisṭha (ମତିଷ୍ଠା—ସ୍ତ୍ରୀ) Intelligent; keen-witted.

**ମତିସ୍ଥୈର୍ଯ୍ୟ**—ସଂ. ବି ( ୬ଷ୍ଠୀ ତତ୍ )—୧ । ବୁଦ୍ଧିର ସ୍ଥିରତା—
Mati sthairjya 1. Mental equilibrium; calmness of mind.
(ମତିସ୍ଥିରତା—ଅନ୍ୟରୂପ) ୨ । ସଙ୍କଳ୍ପର ଦୃଢ଼ତା ବା ଅଟଳତା—2. Fixity of purpose.

**ମତିହୀନ**—ସଂ. ବିଣ. ପୁଂ ( ୩ୟା ତତ୍ )—୧ । ବୁଦ୍ଧିଭ୍ରଷ୍ଟ—1. Mad.
Matihīna ୨ । ନିର୍ବୁଦ୍ଧିଆ; ନିର୍ବୋଧ—2. Foolish.
(ମତିହୀନା—ସ୍ତ୍ରୀ) (ମତିହୀନତା—ବି)

**ମତୁଆ**—ଦେ. ବିଣ. ପୁଂ—୧ । ଉନ୍ମତ୍ତ; ପାଗଳ—1. Maddened;
Matuā intoxicated. ୨ । ଯେ ଅନ୍ୟକୁ ମତାଏ—
মাতাল, মোদো 2. Instigating others; inciting
मतबाला যে মাতায় उसकानेवाला others.
(ମତେଇ, ମତୋଇ—ସ୍ତ୍ରୀ)

**ମତୁଆଳ(ର, ଳା, ଲା)**—ଦେ ବିଣ ( ସଂ. ମତ୍ତ )—୧ । ଉନ୍ମତ୍ତ—
Matuāḷa(rā, ḷā. lā) 1. Maddened. ( ଉ—
(ମତୁଆଲ—ଅନ୍ୟରୂପ) ଫତୁଆ ହେବୁ କି? ସେ କାମ ଅମଳ-ମତୁଆଳ
(ମତୁଆଳୀ—ସ୍ତ୍ରୀ) ଯୁବା ଭୁଲେ । କବିସୂର୍ଯ୍ୟ. ସଙ୍ଗୀତ । )
মাতাল; মাতোয়ারা(ল) ୨ । ମଦୋନ୍ମତ୍ତ ( ହସ୍ତୀ )—2.
मतबाला Infuriated; in rut ( elephant ). ୩ । ମଦନିଶାରେ ଭୋଳ—3. Intoxicated with wine. ବି—ମଦୁଆ ଲୋକ —Drunkard.) ଉ—ଜଣେ ମତୁଆଳ କହୁଥିଲା × × × ଫକୀରମୋହନ. ଛମାଣ. ଆଠଗୁଣ୍ଠ । )

**ମତୁଆଳ(ଳା) ହାତୀ**—ଦେ ବି—ମତ୍ତ ହସ୍ତୀ—Maddened or
Matuāḷa(ḷā) hātī infuriated elephant.
মাতোয়াল হাতী मतबाला हाती

**ମତୁଆଲି**—ଦେ. ବି (ଫା. ମାତୱଲ୍ଲି; ମତୱଲ୍ଲୀ)—ମୁସଲମାନଙ୍କ ମସଜିଦ୍‌ର
Matuāli ବା ଦେବୋତ୍ତର ସମ୍ପତ୍ତିର ମାଇଫତ୍‌ଦାର—
(ମତୋଲି, ମତ୍ୱାଲି—ଅନ୍ୟରୂପ) A trustee of a religious
মাতোয়ালী, মতওয়ালী endowment amongst the
मातबली; मतवली Mahomedans.

**ମତେ**—ଦେ. ଅ ( ଅନ୍ୟ ସର୍ବନାମ ଶବ୍ଦ ସଙ୍ଗେ ଲାଗେ )—ମତ
Mate ( ଦେଖ ) (ଅମୁକ) ପ୍ରକାରେ—Mata ( See )
মতন; মত In (such) a manner [ ଉ—କେତେ ଲୀଳା
तरह ନୃତ୍ୟ କରେ କେତେମତେ । ରାଧାନାଥ-ଦାଯାତ୍ରା । ]
আমাকে मुझे ସର୍ବ ( ଅନାଦରାର୍ଥ )—ଆମ୍ଭଙ୍କୁ—Me; to me.

**ମତ୍କ**—ସଂ. ବିଣ—ମତକ ( ଦେଖ )—Mat-ka ( See ) [ ଦ୍ର—
Matka ମତ୍କୁଣ(ଣା, ଣୀ), ମତ୍କୁଣାରି ଇତ୍ୟାଦି ଶବ୍ଦ ପାଇଁ ମତ୍କୁଣ(ଣା, ଣୀ) ଇତ୍ୟାଦି ଦ୍ରଷ୍ଟବ୍ୟ । ]

**ମତ୍ତ**—ସଂ. ବିଣ. ପୁଂ ( ମଦ୍ ଧାତୁ = ହୃଷ୍ଟ ହେବା, ଭୋଳହେବା + କର୍ତ୍ତୃ ତ )
Matta —୧ । ଉନ୍ମତ୍ତ; ପ୍ରମତ୍ତ; ପାଗଳ—1. Maddened;
(ମତ୍ତା—ସ୍ତ୍ରୀ) overcome with extreme excitement.
୨ । ମତୁଆଳ; ନିଶାରେ ବିହ୍ୱଳ ବା ଭୋଳ—2. Intoxicated. ୩ । ଅତ୍ୟନ୍ତ ହୃଷ୍ଟ—3. Excited

with delight; overjoyed. ୪ । କ୍ରୋଧାନ୍ଧ; କ୍ରୋଧରେ ଜ୍ଞାନଶୂନ୍ୟ--4. Maddened with anger; blinded with rage. ବି—୧ । କୋକିଳ—1. Cuckoo. ୨ । ବାଯ଼ୁଆ ହାତୀ; ଉନ୍ମତ୍ତ ବା କ୍ରୋଧାନ୍ଧ ହସ୍ତୀ—2. An elephant maddened with rage. ୩ । ମଦମତ୍ତ ହସ୍ତୀ—3. An elephant in rut. ୪ । ମହିଷ—4. Buffalo. ୫ । ଧୂସ୍ତୂର; ଧାତୁରି--5. The Datura Fastuosa (plant, fruit and flower). ଦେ.ବି—ମତ୍ତତା; ମାତୁ—Madness; paroxysm. ଗ୍ରାଦେ (କାମଣ୍ଡା) ବି—ସାମର୍ଥ୍ୟ; ବଳ—Might; strength.

মাতলামি
मस्ती

ମତ୍ତ ଉଠିବା—ଦେ. କ୍ର (ସଂ. ମତ୍ତତା+ଉତ୍ଥାନ)—ମାତୁ ଉଠିବା
Matta uthibā ମତ୍ତତା ଜାତ ହେବା—Being maddened; being over-taken with a fit of madness (due to lust etc).
(ମତ୍ତହେବା—ଅନ୍ୟରୂପ)
পাগলামি ওঠা
मस्ती उतरना

ମତ୍ତ କରୀ—ସଂ ବି. ପୁଂ (କର୍ମଧା; ମତ୍ତ+କରୀ)—ମଦମତ୍ତ ହସ୍ତୀ; ମଦସ୍ରାବ ଯୋଗୁଁ ଉନ୍ମତ୍ତ ହସ୍ତୀ; ବାଯ଼ୁଆହାତୀ—An elephant maddened with lust; an elephant in his rut. [ଦ୍ର—ମଦୋନ୍ମତ୍ତ ହସ୍ତୀ ଦେଖିବାକୁ ଅତି ସୁନ୍ଦର ବୋଲି ସୁନ୍ଦର ପୁରୁଷଙ୍କୁ ମତ୍ତ କୁଞ୍ଜର ସଙ୍ଗେ ଉପମା ଦିଆଯାଏ । ମତ୍ତ କୁଞ୍ଜରର ଗତି ମନ୍ଥର ଓ ମନୋହର ଥିବାରୁ ସୁନ୍ଦରୀ ଯୁବତୀମାନଙ୍କର ଚାଲିକୁ ମତ୍ତଗଜ ଚାଲି ସଙ୍ଗେ ତୁଳନା କରାଯାଏ । ]
Matta kari
ମତ୍ତଦ୍ୱିପ, ମତ୍ତକୁଞ୍ଜର, ମତ୍ତଗଜ, ମତ୍ତନାଗ, ମତ୍ତବାରଣ, ମତ୍ତମତଙ୍ଗଜ, ମତ୍ତମାତଙ୍ଗ, ମତ୍ତହସ୍ତୀ — ଅନ୍ୟରୂପ

ମତ୍ତକାଶି(ସି)ନୀ—ସଂ.ବି. ସ୍ତ୍ରୀ (ମତ୍ତ+କାଶ୍‌ଧାତୁ+ଇନ୍+ସ୍ତ୍ରୀଈ)—୧ । ଯୌବନମତ୍ତା ବା କାମମତ୍ତା ସ୍ତ୍ରୀ—1. A woman brimming with youthful restlessness; a buoyant young woman. ୨ । ଉତ୍ତମା ଯୁବତୀ— A very beautiful or graceful young woman.
Mattakāsi(si)ni
(ମତ୍ତକାଶୀ—ଅନ୍ୟରୂପ)

ମତ୍ତଗଜଗତି—ସଂ. ବି—ବାଯ଼ୁଆ ହାତୀ ପରି ମନ୍ଥର ଗତି—Walking resembling that of a mad elephant. ସଂ. ବିଣ—ପୁଂ ଓ ବିଣ—(ବହୁବ୍ରୀହି)—ମତ୍ତଗଜ ପରି ମନ୍ଥରଗତିବିଶିଷ୍ଟ—Of majestic gait (like an infuriated elephant).
Mattagajagati

ମତ୍ତଗଜ ଗମନା—ସଂ. ବିଣ. ସ୍ତ୍ରୀ—ମତ୍ତମାତଙ୍ଗ ପରି ମନ୍ଥରଗତିବିଶିଷ୍ଟା (ସ୍ତ୍ରୀ)—A lady with majestic steps like those of a mad elephant.
Mattagaja gamanā
(ମତ୍ତଗଜଗମନା—ଦେଶଜରୂପ)

ମତ୍ତଗଜ ଚାଲି—ଦେ. ବି—ମତ୍ତଗଜ ଗତି (ଦେଖ) Mattagaja gati (See)
Mattagaja chāli

ମତ୍ତତା—ସଂ. ବି (ମତ୍ତ+ଭାବ ତା)—୧ । ବୁଦ୍ଧିବିକାର; କ୍ଷିପ୍ତତା; ବାତୁଳତା; ଉନ୍ମାଦ—1. Madness; mania. ୨ । ନିଶା—2. Intoxication.
Mattatā

ମତ୍ତବାଇ—ଦେ. ବି—କାମୋନ୍ମତ୍ତତା; କାମୋନ୍ମାଦ—Madness due to unsatiated lust. ବିଣ—ମତ୍ତବାଯ଼ୁ (ଦେଖ) Mattabāyā [See]
Mattabāi
কামবাই
मदनमस्ती

ମତ୍ତବାଯ଼ୁ—ଦେ. ବିଣ. ପୁଂ—କାମୋନ୍ମତ୍ତ (ପୁରୁଷ)—(a man) Maddened with lust.
Mattabāyā
মাতোয়ার
मतवाला, मदनमत्त
(ମତ୍ତବାଯ଼ୁଣୀ—ସ୍ତ୍ରୀ)

ମତ୍ତବାରଣ—ସଂ. ବି—୧ । ମତ୍ତକରୀ (ଦେଖ)—1. Mattakari (See) ୨ । ଘରର ପିଣ୍ଡା ବା ବାରଣ୍ଡା·2. Veranda; portico. ୩ । ଚନ୍ଦୁଆ; ପ୍ରାଙ୍ଗଣର ଆବରଣ--3. An a wning over a courtaryd. ୪ । ଆବୃତ ସ୍ଥାନ—4. A covered place. ୫ । ନାଗଦନ୍ତକ; ଘରର କାନ୍ଥରୁ ବାହାରିଥିବା କାଠି—5. A peg driven into the wall of a house.
Mattabārana

ମତ୍ତଭର—ଦେ.ବିଣ—ମତୁଆଲା; ଉନ୍ମତ୍ତ—Excited; maddened. (ଉ—ଯୌବନଗର୍ବ ଗଜବର, ମଦନମତ୍ତେ ମତ୍ତଭର—ଭୂପତି. ପ୍ରେମପଞ୍ଚାମୃତ ।
Matta bhara
মাতোয়ার
मस्त

ମତ୍ତ ଭୃଙ୍ଗ—ସଂ. ବି (କର୍ମଧା; ମତ୍ତ+ଭୃଙ୍ଗ)—ମଧୁପାନରେ ଉନ୍ମତ୍ତ ଭ୍ରମର—A black bee maddened or intoxicated with honey.
Matta bhruṅga

ମତ୍ତ ମୟୂର—ସଂ. ବି (କର୍ମଧା; ମତ୍ତ+ମୟୂର)—୧ । ମେଘ ଉଠିବାର ଦେଖି ଆନନ୍ଦରେ ଉନ୍ମତ୍ତ ମୟୂର—1. A peacock overjoy at seeing the rise of clouds in the sky. ୨ । ପଞ୍ଚଦଶାକ୍ଷର ଛନ୍ଦୋବିଶେଷ—2. A metre consisting of 15 syllables. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ମଗଣ, ତଗଣ, ଯଗଣ, ସଗଣ ଓ ମଗଣ ଥାଏ—ବୃ. ର ।] ୩ । (ବହୁବ୍ରୀହି) ମେଘ—3. Cloud.
Matta mayūra

ମତ୍ତା—ସଂ. ବିଣ. ସ୍ତ୍ରୀ (ମତ୍ତ+ଆ)—ଅତି ହୃଷ୍ଟା; ବିହ୍ୱଳା—(female) Maddened or excited with delight, lust or anger. ବି—୧ । ମଦିରା; ମଦ; ସୁରା—1. Wine; intoxicating spirits; ୨ । ଦଶାକ୍ଷର ଛନ୍ଦୋବିଶେଷ—2. A metre of 10 letters. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ମଗଣ, ଭଗଣ, ସଗଣ ଓ ଏକ ଗୁରୁ ବର୍ଣ୍ଣ ଥାଏ ଓ ଏଥିରେ ୪ର୍ଥ ଓ ୬ଷ୍ଠ ଅକ୍ଷରରେ ଯତି ପଡ଼େ—ବୃ.ର ।] ସଂ. ପ୍ରତ୍ୟୟ (ଭାବବାଚକ ପ୍ରତ୍ୟୟ ଯଥା—ବୁଦ୍ଧିମତ୍ତା, ଶକ୍ତିମତ୍ତା) ଅମୁକ ବିଷୟ ବା ଗୁଣ ଥିବାର ଅବସ୍ଥା; ପଣ; ପଣିଆ—
Mattā

A suffix added to nouns to indicate the state of having. ଗ୍ରା. ବିଣ—ମତ୍ତ (ଦେଖ)—Matta (See). ( ଯୁ—ଯଉବନ ବଉଷେ ହୋଇଲା ମତ୍ତା, କୋଡ଼ିଏ ବଉଷେ ଉଡ଼ରେ ଛତ୍ତା—ପ୍ରାଚୀ ପଦଚେଗୀତା । )

ମତ୍ତାକ୍ରୀଡ଼(ଡ଼ା)—ସ. ବି (ମତ୍ତ+ଆକ୍ରୀଡ଼)—ଛନ୍ଦୋବଂଶାସ୍ତ୍ରର ଛନ୍ଦୋ-
Mattākrīrda(rdā) ବିଶେଷ—A metre of 23 syllables. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ୨ ମଗଣ, ୧ ତଗଣ, ୪ ନଗଣ ଓ ଅନ୍ତରେ ୧ ଲଘୁ ଓ ୧ ଗୁରୁ ବର୍ଣ୍ଣ ଥାଏ—ବୃ. ଶ । ]

ମତ୍ତାଲମ୍ବ—ସ. ବି ( ମତ୍ତ+ଆଲମ୍ବ )—୧ । ବାରଣ୍ଡା—
Mattālamba 1. Veranda. ୨ । ଆବୃତସ୍ଥାନ—2. A covered place.

ମତ୍ତେଭ—ସ. ବି ( ମତ୍ତ+ଇଭ )—ମତ୍ତଗଜ—An elephant
Mattebha maddened with lust.

ମତ୍ତେଭଗତି—ସ. ବି ଓ ବିଣ ( ପୁଂ ଓ ସ୍ତ୍ରୀ ) ( ବହୁବ୍ରୀହି )—
Mattebha gati ମତ୍ତଗଜଗତି ( ଦେଖ )—Mattagaja gati ( See )
( ଯୁ—ମତ୍ତେଭଗତି ବାତ ମମତେ ମତ୍ତେ ଉଡ଼ିଲା ଅକାଶେ ବସିଥିଲା ସ୍ୱଚ୍ଛେ ପଛେ ଉଡ଼ିଲା କେମନ୍ତେ—ଭଞ୍ଜ ପ୍ରେମସୁଧାନିଧି । )

ମତ୍ଥା ( ଇତ୍ୟାଦି )—ଦେ. ବି—ମଥା ଇତ୍ୟାଦି ( ଦେଖ )
Matthā (etc) Mathā etc (See)
ମାଥା मत्था

ମତ୍ସ(ତ୍ସ୍ୟ) (ଇତ୍ୟାଦି)—ସ. ବି—ମତ୍ସ(ସ୍ୟ) ଇତ୍ୟାଦି (ଦେଖ)
Matsa[tsya] (etc) Matsa(sya) etc [See]

ମତ୍ସର (ଇତ୍ୟାଦି)—ସ. ବିଣ—ମତ୍ସର ଇତ୍ୟାଦି (ଦେଖ)
Matsara [etc] Mat-sara etc [See]

ମଥ୍(ନ୍ଥ) (ଧାତୁ)—ସ. ୧ । ମନ୍ଥନ କରିବା; ଆଲୋଡ଼ନ କରିବା—
Math[nth] [root] 1. To churn. ୨ । ବିନାଶ କରିବା—2. To destroy. ୩ । ମଳିବା—3. To crush. ୪ । ବଧ କରିବା—4. To kill; to slaughter.

ମଥଉଟ—ଦେ. ବି ( ହିନ୍ଦୀ )—ମଥୋଟ ( ଦେଖ )
Mathauṭa Mathoṭa [See].
(ମଥଟ—ଅନ୍ୟରୂପ)

ମଥନ—ସ. ବି—(ମଥ୍ ଧାତୁ+ଭାବ. ଅନ)—୧ । ମନ୍ଥନ; ମନ୍ଥିବା;
Mathana ଆଲୋଡ଼ନ; ଦଳନ—1. Churning; stirring up. ୨ । କ୍ଲେଶ—2. Hardship. ୩ । ବିନାଶ—3. Destruction. ୪ । ଅତ୍ୟାଚାର—4. Oppression. ୫ । (+କରଣ ଅନ)—ଅସ୍ତ୍ର ବିଶେଷ (ହ୍ର.ଶ) 5. A sort of weapon of offence. ୬ । (+କର୍ମ ଅନ; ପୂର୍ବେ ଯଜ୍ଞାଗ୍ନି ନିମନ୍ତେ ଏହି ବୃକ୍ଷର ୨ ଖଣ୍ଡ କାଠକୁ ମନ୍ଥନ କରି ଯାଉଥିବାରୁ ) ଅଗ୍ନିମନ୍ଥ; ଅଗରଥ ଗଛ—6. Premna Integrifolia (tree.) ୭ । (+ଭାବ.ଅନ)—ଶତ୍ରୁ ଆଦିଙ୍କୁ ଦଳନ—7. Crushing of a foe etc. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ସମାସରେ ବ୍ୟବହୃତ; +କର୍ତ୍ତୃ. ଅନ )—୧ । ମନ୍ଥନକାରୀ—1. Stirring; churning. ( ଯଥା—ମଦନମଥନ, କେଶୀ ମଥନ ଇତ୍ୟାଦି)—୨ । ବିନାଶକାରୀ; ବିନାଶକ—2. Destroying.

ମଥା—ଦେ. ବି—(ସ. ମସ୍ତ, ମସ୍ତକ; ପ୍ରା. ମତ୍ଥା)—୧ । ମୁଣ୍ଡ—
Mathā ମାଥା मत्था, माथा 1. Head. [ଯୁ—ତଳକୁ କଲା ମଥା ଲାଜି ଉପଲତା । କବିସୂର୍ଯ୍ୟ. ସଙ୍ଗୀତ କଲ୍ପଲତା] ୨ । ମସ୍ତିଷ୍କ—2. Brain. ୩ । କୌଣସି ବସ୍ତୁର ଅଗ୍ରଭାଗ—3. The top of anything. ୪ । ( ମଥ ଧାତୁ ) ମନ୍ଥନ—4. Churning. ସ. ବି—(ମଥ ଧାତୁ+କରଣ. ଅ+ଆ) ଦହି ମୋହିବା ଖୁଆ (ହ୍ର. ଶ)—Churning rod.

ମଥା (ଇତ୍ୟାଦି)—ମୁଣ୍ଡ ଇତ୍ୟାଦି (ଦେଖ)
Mathā (etc) Muṇḍa etc (See)

ମଥା ଘଷା—ଦେ. ବି—ମୁଣ୍ଡର ବାଳକୁ ଧୋଇବା ନିମନ୍ତେ ମେଥି, ଗନ୍ଧ-
Mathā ghashā ଶୁଣ୍ଠି, ବେଣାଚେର ଆଦି ଅନେକ ସୁଗନ୍ଧ ମାଥା ଘଷା ମସଲାଦ୍ୱାରା ମିଶ୍ରିତ ଗୁଣ୍ଡା; ସର୍ବୌଷଧି ଚୂର୍ଣ୍ଣ—A hair-
माँथका मशाला wash consisting of many sweet-scented ingredients made into paste and used as a shampoo for the hair. [ ଦ୍ର—ଏହାକୁ ବାଟି କେଶରେ ଲଗାଇ ଧୋଇଲେ କେଶ ସୁଗନ୍ଧିତ ହୁଏ ।]

ମଥା ଘୁମା(ରା,ରୁ)ଣି—ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—୧। (ଲୁପ୍ତ.ବ.
Mathā ghumā(rā,ru)ṇi ମାଥା ଘୋରାନୀ—ମୁଣ୍ଡ ବୁଲା ଜାଲ; ଖେପା ଜାଲ—1. Circular casting net.
ମଥା ଘୁର(ରା), ମଥା ମାର, ମୁଣ୍ଡ ଘର —ଅନ୍ୟରୂପ [ଦ୍ର—ଏହାକୁ ଦୁଇ ହାତରେ ଧରି ନିଜ ମୁଣ୍ଡ ଉପରେ ଘେରାଇ ପାଣି ଭିତରକୁ ଛାଡି ଦେବାକୁ ହୁଏ । ତେଣୁ ଏପରି ନାମ ହୋଇଅଛି ।]
୨ । ମୁଣ୍ଡ ବୁଲାଇବା (ରୋଗ)—2. Giddiness of the head.

ମଥା ଛୁ(ଛୋ)ଇଁବା—ଦେ. କ୍ରି ( ସ. ମସ୍ତକ+ସ୍ପୃଶ୍ ଧାତୁ )—ଶପଥ
Mathā chhu(chho)iṅbā କରିବା;ନିଜର ବା ଅନ୍ୟର (ଗୁରୁ ମାଥା ଛୋୟା ଜନଙ୍କର ବା ଆତ୍ମୀୟଙ୍କର) ମୁଣ୍ଡରେ ହାତ ଦେଇ
मत्था(माथ)छूना ଶପଥ କରିବା—To take a special oath by touching one's own head or the head of one's dear and near ones [ ଯୁ—କଥାକୁ ଶାଶୁଙ୍କ ମଥାକୁ ଛୁଅଇଁ ଏପରି ସାହସ ଗୋ । କବିସୂର୍ଯ୍ୟ. ସଙ୍ଗୀତ । ]

ମଥା ଜାଲି—ଦେ. ବି ( ସଂ. ମସ୍ତକ+ଜାଲ )—ସ୍ତ୍ରୀମାନଙ୍କ ମସ୍ତକରେ
Mathā jāli କେଶ ଉପରେ ପିନ୍ଧାଯିବା ଜାଲିକାମର ଅଳଙ୍କାରବିଶେଷ-
খোঁপার জাল A filgree ornament or net for the head
मत्थाकीजाल of females. (ଉ—କେଂଧଡ଼ ମୋଡ଼ ମଥା ଜାଲି
ମଣ୍ଡିଲେ, ମଣ୍ଡିଲେ ନାହିଁ, ଧଇର୍ଯ୍ୟ ଖଣ୍ଡିଲେ ।
ଉଞ୍ଜ. ଲାବଣ୍ୟବତୀ । )

ମଥା ଦଇ(ହି)—ଦେ. ବି (ସ. ମସ୍ତକ+ଦଧି)—ଚିକ୍କଣ; ତେଲ—
Mathā dai(hi) তেল चिकनई (ମଥାଦେ—ଅନ୍ୟରୂପ) Oil.

ମଥା ଦେବା—ଦେ. କ୍ରି—୧ । (ଯୁଦ୍ଧାଦିରେ) ଜୀବନ ଉତ୍ସର୍ଗ କରିବା—
Mathā debā 1. To sacrifice one's own life.
মাথাদেওয়া (ଉ—କିଏ ହେ ପ୍ରସ୍ତୁତ, କେବାକୁ ଦେବାକୁ ମଥା
शिरदेना କଥାକେ କଥାକେ । ରାଧାନାଥ. ମହାଯାତ୍ରା । ) ୨ ।
କୌଣସି ବିଷୟରେ ମସ୍ତିଷ୍କ ଚାଳନ କରିବା—2. To
apply one's mind to something.

ମଥାନ—ଦେ. ବି (ସ. ମସ୍ତକ)—୧ । ଘରର ଚାଳର ଶୀର୍ଷଭାଗ—
Mathāna 1. The topmost strip of the thatch
মটকা of a house; the top ridge of a thatched house.
मठठ (ଉ—ଘନ-ନୀଳ-ସିନ୍ଧୁ ମଥାନ ଦେଖିଣ ଉଠୁଥିଲା ଧୂମଘନ । ନନ୍ଦ-
तूली କିଶୋର; ଜର୍ଜରିଣୀ । ) ୨ । ଚିତ୍ରକରର ଲେଖନୀ ବା ତୂଳୀ.
2. Painter's brush.

ମଥାନ କରିବା—ଦେ. କ୍ରି—ଅଭାବ ପୂରଣ କରିବା; କ୍ଷତିପୂରଣ କରିବା
Mathāna karibā —To make up the want or
অভাবপূরণ করা loss. [ ଉ—ଷାଠିଏ ଟଙ୍କାର ବଳଦ ମଲା,
अभाव पूरन करना ଏକା କାଳୀ ଗାଈ ମଥାନ କଲା । ନନ୍ଦକିଶୋର
ଜର୍ଜରିଣୀ । ଅର୍ଥାତ୍ କାଳୀଗାଈ ଗୋଟିଏ ଅଣ୍ଡିରା ବାଛୁରି
ଜନ୍ମ କରିବାଦ୍ୱାରା ମୃତ ବଳଦର କ୍ଷତି ପୂରଣ କଲା । ]

ମଥାନ ଖୁଣ୍ଟ(ଣ୍ଟି)—ପ୍ରାଦେ (ଅଳ) ବି—ଛପରଘେରିଥିବା ଘରର ଉଚ୍ଚତମ
Mathāna khunṭa(nṭi) ଖୁଣ୍ଟ—The tallest poles
of a thatched house.

ମଥାନ ଗଡ଼ା—ଦେ. ବିଣ—(ବର୍ଷା ପାଣି) ଯାହା ଘରର ଚାଳରୁ ଗଡ଼ି
Mathāna garḍā ଥାଏ—(rain water) Dropping
ছাঁচের(জল) औलतीसेगीराहुआ from the thatch.

ମଥାନଗଡ଼ା ବରଷା—ଦେ. ବି—ଯେଉଁ ବର୍ଷା ଅସହ୍ୟଦ୍ୱାରା ଘରର
Mathānagarḍā barashā ଚାଳରୁ ସାମାନ୍ୟ ପାଣି ମାତ୍ର ଗଡ଼ି
ছাঁচেরজলপড়াবৃষ্টি ପଡ଼େ—A shower of rain sufficient
औलतीसे जलगीराने वाली बर्षा for making the rain-
water trickle down from the eaves.

ମଥାନଗୁଡ଼ି ମାରିବା—ଦେ. କ୍ରି—ଘରର ଚାଳର ତଳ ପାଖରେ ଥିବା
Mathānagurḍi māribā ବାଉଁଶ ଅବଲମ୍ବ ହାତଦ୍ୱାରା ଓ ଗୋଡ଼
ভিতরেরচালধরেধরেযাওয়া ଦ୍ୱାରା ଜାବୁଡ଼ି କରି ଧରି ଧରି ମଥାନର
दोलबाती देना ତଳେ ତଳେ ଝିଟିପିଟି ବା ଚେମେଣୀ ଚଢ଼ିଲାପରି
ଘର ଗତି କରିବା—To creep along the inner
side of a thatch by holding the lower
frame with the hands and legs like a
lizard or house-bat.

ମଥାନଙ୍ଗଳା—ଦେ. ବିଣ. ପୁଂ (ସ. ମସ୍ତକ ଓ ନଗ୍ନ)—ନଗ୍ନମସ୍ତକ;
Mathānangaḷā ଯାହାର ଶରୀରର ଅନ୍ୟାନ୍ୟ ଅଂଶରେ
ମଥା ନଙ୍ଗଳ } ଅନ୍ୟରୂପ ପୋଷାକ ବା ଅଳଙ୍କାର ଥାଏ,କିନ୍ତୁ
ମଥା ନଙ୍ଗୁଳଥ } ମୁଣ୍ଡଟି ଅନାବୃତ ବା ଅନଳଙ୍କୃତ—
[ମଥାନଙ୍ଗୁଳି—ସ୍ତ୍ରୀ] Having the head uncovered or
খালিমাথা unadorned, though the other parts
सिरखुल्ला of the body are properly dressed
or decorated.

ମଥାନ ମାରିବା—ଦେ. କ୍ରି—ତୁଳି ମାରିବା (ଦେଖ)
Mathāna māribā Tuḷi māribā [See].
(ମଥାନ ତୁଳି ମାରିବା—ଅନ୍ୟରୂପ)

ମଥାପାଣି—ପ୍ରାଦେ (ଗଡ଼ଜାତ) ବି, (ସ. ମସ୍ତକ+ପାନୀୟ)—ସ୍ନାନବିଶେଷ
Mathā pāṇi ମୁଣ୍ଡ ଧୋଇ ଗାଧୋଇବା—The bathing
of the whole body (of a Rājā) including
the head.

ମଥା ଭଉଁରି ଜାଲ—ଦେ. ବି—(ସ. ମସ୍ତକ+ଭ୍ରମ+ଜାଲ)—ଭଉଁରି
Mathā bhaunri jāla ଜାଲ; ଫେପାଜାଲ—A circular
মাথাঘোরানোজাল शिरघुमनीजाल casting net.

ମଥା ଭ୍ରମ—ଦେ. ବି (ସ. ମସ୍ତକ+ଭ୍ରମ)—୧ । ମୁଣ୍ଡ ବୁଲାଇବା—
Mathā bhrama 1. Giddiness of the head.
মাথাভ্রম ୨ । ବାତୁଳତା; ମସ୍ତିଷ୍କବିକୃତି—
माथाघुमरो, माथाभ्रम 2. Derangement of the brain.

ମଥା ମଣି—ଦେ. ବି (ସ.ମସ୍ତକ ମଣି)—ମାଙ୍ଗଟୀକା; ସ୍ତ୍ରୀ ଲୋକମାନଙ୍କର
Mathā maṇi କପାଳର କେଶର ମଧ୍ୟସ୍ଥ ରେଖାର ମୂଳରେ
মাথার মণি, টীকা ପିନ୍ଧାଯିବା ଅଳଙ୍କାର—A jewellery worn
मांग टीका, मथौरी by females on the forehead
at the parting of the hair.
ବିଣ (ଲକ୍ଷଣାର୍ଥ)—ଶ୍ରେଷ୍ଠ—(figurative) Best.
(ଉ—ବନଜାରେ ମଥାମଣି ଦେଲେ ଭୋକ, ବନ୍ଧଜାରେ
ଏ ପଦ ନ ବୋଲି ବୋଲି । ଉଞ୍ଜ. ବୈଦେହୀଶବିଳାସ ।)

ମଥା ଲଗା(ଗେ)ଇବା—ପ୍ରାଦେ. (କଟକ) କ୍ରି—ଜମିରେ ପ୍ରଜାଦ୍ୱାରା ଫସଲ
Mathā lagā(ge)ibā ଦେବାର ବନ୍ଦୋବସ୍ତ କରିବା; ପ୍ରଜା ବିଲି
କରିବା—To settle lands with tenants for
the purpose of cultivation.

ମଥା ଲାଙ୍ଗୁଡ଼ି—ଦେ. ବି—ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ବାନ୍ଧି ଛନ୍ଦ
Mathā lāngurḍi ଦୁଷ୍ଟ ବଳଦକୁ ହଳରେ ଯୋଚିବା ପ୍ରଣାଳୀ—
नंगर कस Yoking of a naughty bullock to
the plough after tying its limbs from
head to foot.

ମଥିତ—ସ. ବିଣ ( ମଥ୍ ଧାତୁ+କର୍ମ. ତ )—୧ । ବିଲୋଡ଼ିତ;
Mathita ଅଲୋଡ଼ିତ—1. Churned. ୨ । ଅଲୋଡ଼ିତ—
2. Stirred up. ୩ । ବ୍ୟାକୁଳୀକୃତ—3. Agitated.
୪ । ଉତ୍ପୀଡ଼ିତ;ଅତ୍ୟାଚରିତ;କ୍ଲେଶିତ—4. Oppressed;

harassed. ୫ । ବିନଷ୍ଟ;ବିନାଶିତ—5. Destroyed; crushed. ୬ । ହତ—6. Killed; slaughtered.
ବି—ଜଳହୀନ ଦଧି—Unwatered curds

**ମଥୀ**—ସଂ. ବି (ମଥ୍ ଧାତୁ+କରଣ. ଇନ୍; ୧ମା. ୧ବ)—ମନ୍ଥନ ଦଣ୍ଡ—
Mathī Churner; churning rod,
(ମଥିମା—ସ୍ତ୍ରୀ) ସଂ. ବିଶ. ପୁଂ (ମଥ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)
ମନ୍ଥନକାରୀ—Churning.

**ମଥୁ(ଥୂ)ରା**—ସଂ.ବି.ସ୍ତ୍ରୀ (ମଥ୍ ଧାତୁ=ବଧ କରିବା+ ଅଧିକରଣ ଉର;ଉର
Mathu(thū)rā +ଅ; କିମ୍ବା ମଧୁ+ଉର+ଅ; ଏହି ସ୍ଥାନରେ
ଶତ୍ରୁଘ୍ନ ବାଣାସୁରର ପିତା ମଧୁ ନାମକ ଦୈତ୍ୟକୁ ବଧ କରିଥିବାରୁ ଏହି ନାମ )—ମଧୁଦୈତ୍ୟ ନିର୍ମିତ ଯମୁନାତଟସ୍ଥ ବୃନ୍ଦାବନ ନିକଟସ୍ଥ ନଗର; ମଧୁପୁର; କଂସର ରାଜଧାନୀ—
Muttra; name of a district, town and cantonment in the United Provinces of India, 8 miles from Bṛundābana. [ ଦ୍ର—
ଏଠାରେ କଂସର ବନ୍ଦୀଶାଳାରେ ଦେବକୀଙ୍କ ଗର୍ଭରୁ କୃଷ୍ଣଙ୍କର ଜନ୍ମ ହୋଇଥିଲା । ପରେ ଏଠାରେ ସେ କଂସକୁ ବଧ କରିଥିଲେ ।

ଆର୍ଯ୍ୟ ଶୂରସେନ ଜାତି ଏଠାରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିବାରୁ ଏହାର ନାମ ପ୍ରଥମେ ଶୂରସେନା ଥିଲା । ପରେ ମହାଭାରତ ଯୁଗରୁ ଏହା ମଧୁପୁର ନାମରେ ଅଭିହିତ ହେଲା । ପରେ ଏହା ମଥୁରାନାମରେ ଖ୍ୟାତ ହେଲା । ପାଲୀ ଗ୍ରନ୍ଥମାନଙ୍କରେ ଏହା ମଥୁରା ନାମରେ ପରିଚିତ । ଅଶୋକଙ୍କ ରାଜତ୍ୱକାଳରେ ତାଙ୍କର ଆଚାର୍ଯ୍ୟ ଉପଗୁପ୍ତ ଏ ନଗରକୁ ବୌଦ୍ଧଧର୍ମର କେନ୍ଦ୍ର କରିଥିଲେ । ଏହା ମଧ୍ୟ ଜୈନମାନଙ୍କର ଗୋଟିଏ ତୀର୍ଥ ଅଟେ । ହିନ୍ଦୁ ପୁରାଣମତରେ ଏ ଗୋଟିଏ ମୋକ୍ଷଦାୟକ ତୀର୍ଥ ଅଟେ । ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଗ୍ରୀକ୍,ପାରସୀ ଓ ଶକମାନେ ଏନଗର ଅଧିକାର କରିଥିଲେ । ଖ୍ରୀ ୧୦୧୭ ରେ ମହମ୍ମଦ (ମାମୁଦ) ଗଜନୀ ଏ ନଗରକୁ ଆକ୍ରମଣ କରି ଏହାର ଧ୍ୱଂସ କରିଥିଲେ । ବର୍ତ୍ତମାନ ଏହା ଯୁକ୍ତପ୍ରଦେଶର ଗୋଟିଏ ଜିଲ୍ଲା ଏବଂ ନଗର । ଏହା ବୃନ୍ଦାବନଠାରୁ ୮ ମାଇଲ ଦୂରବର୍ତ୍ତୀ; ଯମୁନା ନଦୀର ତଟଉପରେ ଏ ନଗରଟି ଅତ୍ୟନ୍ତ ଶୋଭାମୟ ଦେଖାଯାଏ । ଏଠାରେ ଅନେକ ବୈଷ୍ଣବ ଦେବମନ୍ଦିର ଅଛି । ଏଠାରେ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କର ଗୋଟିଏ ସେନାନିବାସ ଅଛି ଏବଂ ଏଠାରେ ଗୋଟିଏ ବଡ଼ ରେଲ ଜଙ୍କ୍ସନ ଅଛି । ଏଠାରେ ଯମୁନା ଉପରେ ଗୋଟିଏ ରେଲ ପୋଲ ତିଆରି ହୋଇଅଛି । ଏହି ଅଞ୍ଚଳରେ ଯମୁନାନଦୀରେ ବହୁସଂଖ୍ୟକ ବଡ଼ ବଡ଼ କଚ୍ଛପ ଦେଖା ଯାଆନ୍ତି । ନଦୀତଟସ୍ଥ କୋଠାରେ ବସି ଯମୁନା ନଦୀର ଜଳକୁ ହାତ ବଢ଼ାଯାଇ ପାରେ ।

ଏଠାରେ ଚୌବେ ବ୍ରାହ୍ମଣମାନଙ୍କର ଭୋଜନଶକ୍ତି ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଜଣେ ଜଣେ ଚୌବେ ୧୦।୧୫ ସେର ଲୁଚି, ଡାଲି, ମିଷ୍ଟାନ୍ନାଦି ଭୋଜନ କରିବାର ସଂଗ୍ରାହକ ସ୍ୱଚକ୍ଷୁରେ ଦେଖି ଅଛନ୍ତି । ]

**ମଥୁରା ଘାଟ**—ଦେ. ବି—ବୃନ୍ଦାବନରୁ ମଥୁରାକୁ ଆସିବାପାଇଁ ଗୋପୀ-
Mathurā ghāṭa ମାନଙ୍କର ଯମୁନା ନଦୀକୁ ପାରି ହେବା ଘାଟ
মথুরার ঘাট —The ferry across the river
मथुराका घाट Jamunā for coming to Mathurā.
[ ଦ୍ର—ଏଠାରେ ଶ୍ରୀକୃଷ୍ଣ ନାବିକ ବେଶରେ ମଥୁରାକୁ ଦୁଧ-ଦହି ବିକିବାକୁ ଯାଉଥିବା ଗୋପୀମାନଙ୍କୁ ପାରି ଉତ୍ତାରି କରି ନାନାରଙ୍ଗ କରୁଥିଲେ । ]

**ମଥୁରା ଚୌବେ(ବେ)**—ଦେ. ବି ( ସଂ. ମଥୁରା+ଚତୁର୍ବେଦୀ )—
Mathurā chobe(bbe) ମଥୁରା ଅଞ୍ଚଳବାସୀ ବ୍ରାହ୍ମଣମାନଙ୍କ
মথুরার চোবে ଉପାଧି—Title of Brāhmaṇas of
मथुरिया चोब्बे Mathurā. [ ଦ୍ର—ଏମାନଙ୍କର ଭୋଜନ ଶକ୍ତି ଆଶ୍ଚର୍ଯ୍ୟଜନକ । ଜଣେ ଜଣେ ଚୌବେ ୧୦।୧୫ସେର ଲୁଚି ଓ ମିଷ୍ଟାନ୍ନ ଏକା ବୈଠକରେ ଉଦରସାତ୍ କରିବାର ଦେଖା ଯାଇଅଛି । ]

**ମଥୁରା ଧାମ**—ସଂ. ବି—ମଥୁରା ତୀର୍ଥ; ମଧୁପୁର—The sacred city
Mathurā dhāma of Mathurā.
(ମଥୁରାପୁର, ମଥୁରାପୁରୀ—ଅନ୍ୟରୂପ)

**ମଥୁରାନାଥ ଶୁକ୍ଳ**—ସଂ. ବି (ନାମ)—ମାଳବ ଦେଶର ଅଧିବାସୀ ବ୍ରାହ୍ମଣ-
Mathurānātha śukḷa ବିଶେଷ—The name of a Brahmaṇa of the country of Mālaba.
[ ଦ୍ର—ଏ ଶକ ୧୮ଶ ଶତାବ୍ଦିର ଲୋକ ଥିଲେ । ଏ ପାରସୀ ଭାଷାରେ ଅତ୍ୟନ୍ତ ନିପୁଣ ଥିଲେ । ୧୭୧୫ ଶକାବ୍ଦିରେ ଏ କାଶୀର ରାଜକୀୟ ପାଠଶାଳାର ପୁସ୍ତକାଗାରର ଅଧ୍ୟକ୍ଷ ଥିଲେ । ଏ ଯନ୍ତ୍ରପଟରାଜ ନାମକ ବୋଧୋପଯୋଗୀ ସଂସ୍କୃତ ଜ୍ୟୋତିଷଗ୍ରନ୍ଥ ରଚନା କରିଥିଲେ ।]

**ମଥୁରା ପୁରିଆ**—ଦେ. ବିଶ—ମଥୁରାପୁରନିବାସୀ—Resident of
Mathurā puriā মথুরা পুরী मथुरापुरिया Mathurā.
ବି—ଉତ୍କଳର ଗୋପାଳମାନଙ୍କ ଜାତିବିଭାଗ—A sub-caste of Oriya cowherds. [ ଦ୍ର—ଏମାନେ ଯଦୁ ବଂଶୀୟ ବା ଯାଦବ ବୋଲି ପରିଚିତ ।]

**ମଥୁରା ମଙ୍ଗଳ**—ଦେ. ବି—କବି ଭକ୍ତଚରଣ ଦାସଙ୍କ କୃତ ଶ୍ରୀକୃଷ୍ଣଙ୍କ
Mathurā maṅgaḷa ମଥୁରାଲୀଳା ବର୍ଣ୍ଣନାତ୍ମକ ଓଡ଼ିଆ ପଦ୍ୟ—
Name of an Oriya classical poem dealing with the doings of Śrīkṛushṇa in Mathurā.

**ମଥୁରା ମୋହନ**—ସଂ. ବି—ଶ୍ରୀକୃଷ୍ଣଙ୍କ ନାମାନ୍ତର—A name of
Mathurā mohana Śrīkṛushṇa. ଦେ. ବି. ପୁଂ—
ଲୋକଙ୍କୁ ଦିଆଯିବା ନାମ—A name given to males.

**ମଥୁରା ଲୀଳା**—ସଂ. ବି—ଶ୍ରୀକୃଷ୍ଣଙ୍କର ମଥୁରା ନଗରୀରେ କରିଥିବା ଲୀଳା
Mathurā līḷā ବା କାର୍ଯ୍ୟକଳାପ—The doings of Śrīkṛushṇa in the city of Mathurā (dis-

cribed in the 10th book of the Bhāgabata) [ଦ୍ର—ଏହା ଭାଗବତର ୧୦ମ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି ।]

ମଥୁରି—ଦେ. ବି—(ନାମ)—୧ । ମଥୁରାମୋହନର ଡାକ ନାମ—Mathuri 1.A name for calling Mathurā mohana. ୨ । ଦ୍ୱାଦଶ ଗୋପାଳଙ୍କ ମଧ୍ୟରୁ ଏକତମ—2. One of the twelve cowherds (the 12 companions of Śrīkrushna.) [ ଦ୍ର—ବାଉଁଶ ତଳେ ଠିକା ଦେଖ ।]

ମଥୁରେଶ—ସ. ବି—( ୬ଷ୍ଠୀ ତତ୍; ମଥୁରା+ଈଶ )—ଶ୍ରୀକୃଷ୍ଣ—Mathureśa (ମଥୁରେଶ୍ୱର—ଅନ୍ୟରୂପ) Śrīkrushna.

ମଥେଇ—ଗ୍ରାମ୍ୟ. ପ୍ରାଦେ. ( ପୁଙ୍ଗ ) ବି ( ସ. ମସ୍ତକ+ଦ୍ରବ୍ୟ )—ତେଲ; Mathei ମଥା'ଦହ୍ନ—Oil.

ମଥୋ(ଥୌ,ଥ)ଟ—ଦେ. ବି—( ହିନ୍ଦୀ ମଥୌଟ; ସ. ମସ୍ତ=ମସ୍ତକ; Matho(thau,tha)ta ଅନେକ ଲୋକଙ୍କ ଠାରୁ ମୁଣ୍ଡ ପିଛା ଅର୍ଥାତ୍ (ମଥୌଟ—ଅନ୍ୟରୂପ) ପ୍ରତ୍ୟେକ ବ୍ୟକ୍ତିଠାରୁ ଅନୁପାତ ଅନୁସାରେ ମାଥଟ **मथौट** ଅଦାୟ କରି ନିବାରୁ)—୧ । ଅନୁପାତ—1. Ratio; proportion. ୨ । ଜଣ ପିଛା ହିସାବ ହୋଇ ଅଦାୟ କରାଯିବା ଚାନ୍ଦା—2. Subscription raised equally from many persons, per head. ବିଣ—୧ । ଆନୁପାତିକ—1. Proportionate ୨ । ଜଣ ପିଛା ହିସାବ କରାଯିବା—2. Computed per head; per capita.

ମଥୋଟ ଜମା—ଦେ. ବି—ଆନୁପାତିକ ଖଜଣା—Mathota jamā ମାଥଟ ଜମା Proportionate rent. **मथौट जमा**

ମଥୋଟ ଧରିବା—ଦେ. କ୍ରି—ଆନୁପାତିକ ହିସାବ କରିବା—To Mathota dharibā strike up a ratio or proportion. ମାଥଟ ଧରା **मथौट हिसाब करना**

ମଥୋଟ ମୁତାବକ—ବୈଦେ. କ୍ରି. ବିଣ—(ହିନ୍ଦୀ. ମଥୋଟ ଓ ଆ. Mathota mutābaka ମୁତାବିକ୍)—୧ । ଅନୁପାତ ଅନୁସାରେ ମାଥଟ ମୋତାବେକ **मथौट मुताबिक** 1. Proportionately. ୨ । ଜଣପିଛା ହିସାବ କରାଯାଇ—2. Per capita.

ମଥୋଟ ହିସାବ—ଦେ. ବି—୧ । ଆନୁପାତିକ ହିସାବ—1. Proportionate account. ୨ । ଜଣ ପିଛା ଧରାଯିବା ହିସାବ—2. An account computed per head. Mathota hisāba ମାଥଟ ହେସାବ **मथौट हिसाब**

ମଥ୍ୟମାନ—ସ. ବିଣ—( ମଥ୍ ଧାତୁ+କର୍ମ. ଅନ )—ଯାହା ଆଲୋଡ଼ିତ ହେଉଅଛି—Being churned. Mathyamāna (ମଥ୍ୟମାନା—ସ୍ତ୍ରୀ)

ମଦ୍ (ଧାତୁ)—ସ.—୧ । ମତ୍ତ ହେବା—1. To be maddened. Mad (root) ୨ । ନିଶାରେ ଭୋଳ ହେବା—2. To be intoxicated. ୩ । ତୁଷ୍ଟ ହେବା—3. To be delighted. ୪ । ଦ୍ୱେଷ କରିବା—4. To envy.

ମଦ୍‌ଗୁ—ସ. ବି—(ମସ୍ଜ୍ ଧାତୁ=ମଗ୍ନ ହେବା+କର୍ତ୍ତୃ. ଉ, ନିପାତନ)—Mad-gu ୧ । ଏକ ପ୍ରକାର ଜଳଚର ପକ୍ଷୀ; ପାଣିଭୁଆ—1. A water fowl; small cormorant. [ ଦ୍ର—ଜଳଚରଙ୍କ ଠାରେ ମଦ୍‌ଗୁ ହଂସ ବକ ମୃଦ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ଯୁଦ୍ଧଜାହାଜର ଦଳ; ରଣପୋତସମୂହ—2. A fleet of warships; navy.

ମଦ୍‌ଗୁର—ସ. ବି (ମସ୍ଜ୍ ଧାତୁ=ମଗ୍ନ ହେବା+କର୍ତ୍ତୃ. ଉର)—ମାଗୁର Mad-gura ମାଛ—A kind of scaleless fresh water (ମଦ୍‌ଗୁରକ—ଅନ୍ୟରୂପ) fish; a small sheat fish. [ଦ୍ର—ମାଗୁର ଏମାନେ ମୁଦ୍‌ଗିବ ପର୍ଯ୍ୟନ୍ତ କହନ୍ତି ଓ କୃଷ୍ଣାଭ; ଏହି **मंगुर** ଜାତୀୟ ଶ୍ରେଷ୍ଠ ଓ ଅଳଙ୍କୃ ପାଙ୍କିଣିଆ ମାଛଙ୍କୁ ଲଟା ବୋଲାଯାଏ । ଏମାନଙ୍କର ଗାଲୁଚି ତଳେ ଦୁଇ ପାଖରେ ଶିଂଘ (କଣ୍ଟା) ଅଛି । ଏ ଶିଂଘ ମନୁଷ୍ୟ ଦେହରେ ବିଦ୍ଧ ହେଲେ ବିଶେଷ ବ୍ୟଥା ହୁଏ । ]

ମଦ୍‌ଗୁରୁ—ସ. ବି (ଅସ୍ମଦ୍+ଗୁରୁ)—ମୋ ଗୁରୁଦେବ—Mad-guru My teacher or preceptor.

ମଦ୍‌ଗୃହ—ସ. ବି (ଅସ୍ମଦ୍+ଗୃହ)—ମୋ ଘର—My house. Mad-gruha (ମଦ୍‌ଗେହ—ଅନ୍ୟରୂପ)

ମଦ୍ରାସା—ବୈଦେ. ବି. (ଆ)—ମାଦ୍ରାସା (ଦେଖ) Mad-rāsā Mādrāsā (See). (ମଦ୍ରାସା—ଅନ୍ୟରୂପ) ମାଦ୍ରାସା **मदरासा**

ମଦ—ସ. ବି (ମଦ୍ ଧାତୁ=ତୁଷ୍ଟ ହେବା+ଭାବ. ଅ)—୧ । ହର୍ଷଜନିତ Mada ସମ୍ମୋହ—1. Paroxysm of joy; intoxication due to excess of joy. ୨ । ଅତ୍ୟନ୍ତ ହର୍ଷ;ଆନନ୍ଦ—2. Joy; delight. ୩ । ମଦ୍ୟପାନଜନିତ ମନୋବିକାର; ମତ୍ତତା—3. Intoxication due to wine. ୪ । ଉନ୍ମତ୍ତତା; ଉନ୍ମାଦ; ପାଗଳାମି—4. Madness. ୫ । ଅହଙ୍କାର; ଗର୍ବ—5. Pride; arrrogance; conceit. [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ ଯଥା—ଧନମଦ,ରୂପମଦ ଇତ୍ୟାଦି ।] ୬ । (+କରଣ ଅ) ମଦ୍ୟ;ମଦିରା;ସୁରା—6. Wine; spirits. [ଦ୍ର—ବିଭିନ୍ନ ଦେଶରେ ବ୍ୟବହୃତ ମଦର ବିଭିନ୍ନ ନାମ ଅଛି ଯଥା—ଦେଶୀ ମଦ, ବିଲାତି ମଦ, ଫ୍ରେଞ୍ଚ ମଦ ଇତ୍ୟାଦି । ଭିନ୍ନ ଭିନ୍ନ ପଦାର୍ଥରୁ ବା ପ୍ରକ୍ରିୟାରେ ଉତ୍ପନ୍ନ ମଦର ଭିନ୍ନ ଭିନ୍ନ ନାମ ଅଛି । ଯଥା—ଖଜୁରିମଦ, ଅରକି ମଦ, ଧାନୁଆ ମଦ ( ଚାଉଳ ମଦ ), ହାଣ୍ଡିଆମଦ ଇତ୍ୟାଦି । ଖଜୁରି, ତାଳ, ନଡ଼ିଆ ଆଦି ଗଛରୁ ସଦ୍ୟ ଅମଦାଣି ରସକୁ ସଜମଦ ଓ ତାହା ବାସି ହୋଇଗଲେ ତାକୁ ବାସିମଦ କହନ୍ତି ।] ୭ । ମୃଗମଦ; କସ୍ତୁରୀ—7. Musk. ୮ । ବୀର୍ଯ୍ୟ; ରେତଃ—8. Semen; virile. ୯ । ମତ୍ତହସ୍ତୀର ଗଣ୍ଡସ୍ଥଳରୁ ନିର୍ଗତ ତୀବ୍ରଗନ୍ଧଯୁକ୍ତ ରସ—9. A strong-smelling juice flowing from the openings in the temples of a ma.e

elephant in rut. ୧୦ । ଉନ୍ମାଦ ରୋଗ (ହି. ଶ)—10. Mania. ୧୧ । କାମଦେବ (ହି. ଶ)—11. Cupid. ଦେ. ବି—ଅସୁର ବିଶେଷ—Name of a demon.

ମଦ ଅଳସ—ଦେ. ବିଣ (ସଂ. ମଦାଲସ୍ୟ)—ମତ୍ତତା ଯୋଗୁଁ ଆଳସ୍ୟଯୁକ୍ତ—Mada alasa Languid on account of intoxication. **मदालस** (ଉ—ଦୃଷ୍ଟି ତୋ ମଦ-ଅଳସ, ବଦନଚନ୍ଦ୍ର ପ୍ରକାଶ, ଗତି ତୋହର ଜନ ମନୋହର । ପ୍ରାଚୀ. ରସକାଉଥ ।)

ମଦ ଉ(ଓ)ରା—ଦେ. ବି—ଯେଉଁ କ୍ଷୁଦ୍ର କଳସରେ ବା ଘଟରେ ଖଜୁରି Mada u(o)rā ତାଳ ଓ ନଡ଼ିଆ ଗଛର ଝରିବା ରସ ସଂଗୃହୀତ তাড়ীর ভাঁড় ହୁଏ—A jar in which is collected the **लबनी** toddy juice from palm, date-palm and cocoanut trees. [ଦ୍ର—ଖେଡ଼ ଖେଡ଼ କଳସକୁ ବା ଘଡ଼ିକୁ ଉରା ଓ ବଡ଼ ମଠିଆକୁ ଅଧ୍ୟା ବୋଲାଯାଏ; ଗଛର ଦେହରେ ରସ ସଂଗ୍ରହାର୍ଥ ଉରା ଟଙ୍ଗା କରାଯାଏ । ଉରା-ମାନଙ୍କରେ ସଂଗୃହୀତ ରସକୁ ଅଧ୍ୟାରେ ଦୂରାଯାଏ । ]

ମଦକ୍—ଦେ. ବି—ମଦତ୍ (ଦେଖ) Madak Madat (See).

ମଦ କଟ—ସଂ. ବିଣ (କସ୍ୟ ତତ୍)—ମଦୋନ୍ମତ୍ତ; ମଦୋଦ୍ଧତ—Mada kaṭa Intoxicated with lust or pride. ବି ୧ । ମଦମତ୍ତ ହସ୍ତୀ—1. An elephant in rut. ୨ । ବୃଷ—2 Bull.

ମଦ କଳ—ସଂ. ବିଣ. ପୁଂ (କସ୍ୟ ତତ୍)—୧ । ମତ୍ତତା ଯୋଗୁଁ ଅସ୍ଫୁଟ Mada kaḷa ଧ୍ୱନିକାରୀ—1. Making inarticulate sound under the effect of intoxication. ୨ । ମତ୍ତ; ଉନ୍ମତ୍ତ—2. Maddened. ବି—ମତ୍ତହସ୍ତୀ—An elephant in rut.

ମଦକଳା—ଦେ. ବିଣ. ସ୍ତ୍ରୀ—ନବଯୌବନା—[a lady] In the Madakaḷā glory of her youth. [ଉ—ମଦାମାଯ୍ୟା ଦସ୍ୟା କଳା । ମଦକଳା ବ୍ୟାଧ୍ର ଗଳା । ଅଭିମନ୍ୟୁ. ବିଦଗ୍ଧ-ଚିନ୍ତାମଣି । ]

ମଦ କାଞ୍ଜି—ଦେ. ବି - (ସଂ. ମଦ୍ୟ+କଞ୍ଜିକା)—୧ । ପାଣିମିଶା ହୋଇ Mada kāñji ଅମ୍ଳିଲା କରାଯାଇ ଥିବା ମଦ— সিরকা 1. Fermented wine. ୨ । ସିର୍କା; ମଦର କାଞ୍ଜି— **सिरका** 2. Vinegar.

ମଦ ଖଟି—ଦେ. ବି—ଯେଉଁଠାରେ ମଦୁଆମାନେ ମଦ ଖାଇବାକୁ ଜମା Mada khaṭi ହୁଅନ୍ତି—Wine-shop; pot house; মদের খটী **पासीखाना** grog shop.

ମଦ ଖୋର୍—ଦେ. ବିଣ (ସଂ.ମଦ୍ୟ+ଫା. ଖୋର୍) —ମଦୁଆ— Mada khor মদ খোর **मद् खोर** Drunkard.

ମଦ ଗନ୍ଧ—ସଂ. ବି (୬ଷ୍ଠୀ ତତ୍)—୧ । ହସ୍ତୀ ଗଣ୍ଡରୁ ନିଃସୃତ ମଦବାରିର Mada gandha ଉତ୍କଟ ଗନ୍ଧ—1. The strong smell of the juice exuded from the temples of an elephant in rut. ୨ । (ବହୁବ୍ରୀହି) ମଦ (ହି. ଶ)—2. Wine. ୩ । ଛତିଅନା (ଗଛ) (ହି.ଶ) মদের গন্ধ 3. Alistonia Scholaris (tree). ଦେ. ବି—**मद्की गंध** ମଦ୍ୟରୁ ଉତ୍ପନ୍ନ ଗନ୍ଧ—The peculiar smell of wine (which comes out of the mouth of a drunkard or toddy pot or toddy-shop ).

ମଦ ଗନ୍ଧା—ସଂ. ବି—୧ । ସୁରା—1. Wine. Mada gandhā ୨ । ଅତସୀ (ହି. ଶ) - 2. Linseed.

ମଦ ଗମନ—ସଂ. ବି (ବହୁବ୍ରୀହି)--ମଇଁଷି (ହି. ଶ)— Mada gamana Buffalo.

ମଦ ଗର୍ବ—ସଂ. ବି—ମତ୍ତତାଜନିତ ଅହଙ୍କାର; ଦାମ୍ଭିକତା— Mada garba Arrogance due to intoxication or madness or selfconceit.

ମଦ ଗର୍ବିତ--ସଂ.ବିଣ.ପୁଂ--ଗର୍ବ ମତ୍ତ--Intoxicated or arrogant Mada garbita (ମଦଗର୍ବିତା—ସ୍ତ୍ରୀ) with pride.

ମଦ ଗଳ(ଳା)—ଦେ. ବି (ସଂ. ମଦ କଳ)—ମତ୍ତ ହସ୍ତୀ — Mada gaḷa(ḷā) An elephant in rut.

ମଦଘ୍ନୀ—ସଂ. ବି. ସ୍ତ୍ରୀ (ମଦ+ହନ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ ଈ)— Madaghnī ପୂତିକା; ପୋଇ ଶାଗ (ହି. ଶ)— (ମଦ ଶାକ—ଅନ୍ୟରୂପ) Basella (pot herb).

ମଦ ଚ୍ୟୁତ—ସଂ. ବିଣ ( ମଦ+ଚ୍ୟୁ ଧାତୁ+କର୍ତ୍ତୃ. କ୍ତ )— Mada chyut ମଦସ୍ରାବୀ (ଦେଖ)—Mada srābī (See)

ମଦ ଝୁଙ୍କ—ଦେ ବି—୧ । ମଦନିଶା; ମଦ୍ୟପାନଜନିତ ମତ୍ତତା— Mada jhuṅka 1. Intoxication due to wine. মদের ঝোঁক ୨ । ମଦ ନିଶା ଯୋଗୁଁ ଟଳ ଟଳ ଚାଲିବା— **मद्का झोंक** 2. Unsteadiness in walking due to overdrink.

ମଦତ(ଦ)—ବୈଦେ. ବି (ଫା. ମଦଦ୍)—ସହାୟତା; ସାହାଯ୍ୟ— Madat(d) Help; assistance. মদত(দ্) (ଯଥା—ଏ ଘଟଣାରେ ପୁଲିସ୍ ମଦତ୍ ଲୋଡ଼ାକୁ **मदद** ଦରକାର ।)

মদক ଦେ. ବି ( ସଂ. ମଦ; ମୋଦକ )—ଗୁଳି; ଚିଜୁଳ ପତ୍ରକୁ **मदत(क)** ପୋଡ଼ି ତହିଁ ସଙ୍ଗେ ଅଫିମକୁ ଗୁଣ୍ଡ ପ୍ରସ୍ତୁତ କରାଯିବା ବସ୍ତୁ—A preparation of opium for smoking; bullet of opium. [ଦ୍ର—ଏହାର ଧୂଆଁ ପାନ କଲେ ଭାରି ନିଶା ହୁଏ । ମଦତ୍ ନିଶାର ଅଭ୍ୟାସ ସହଜରେ ଛାଡ଼ି ହୁଏ ନାହିଁ ଓ ଏହା ମନୁଷ୍ୟକୁ ଅନ୍ତଃସାର ଶୂନ୍ୟ ଓ ଅଳସୁଆ କରି ପକାଏ । ଥରେ ଏଥିର ଚକ୍ ଲାଗିଲେ ମଦତ୍ଖୋର୍ ଆଗ ପଛ ବିଚାର ନ କରି ଏଥିର ମାତ୍ରା ବଢ଼ାଇ ବଢ଼ାଇ ଶେଷକୁ ସର୍ବସ୍ୱାନ୍ତ ହୁଏ । ମଦଖୋମାନେ ଶୀର୍ଣ୍ଣକାୟ ହୋଇ ଯାଆନ୍ତି ଓ କେତେଜଣ ଏକତ୍ର ବସି ଅସାର କାଳ୍ପନିକ ଗଳ୍ପ ଦ୍ୱାରା ଆପଣା ଆପଣାର ମନୋରଞ୍ଜନ କରନ୍ତି । ଏମାନଙ୍କର ଅଧିକାଂଶ ସମୟ ଆଖି ବୁଜି କାଳ୍ପନିକ ଜଗତରେ ଅତିବାହିତ ହୁଏ । ]

ମଦତ(ଦ) କରିବା—ଦେ.କ୍ରି--ସାହାଯ୍ୟ କରିବା – To render help; Madat(d) karibā to render assistance. মদত দেওয়া **मदद् देना** (ମଦତ୍ ଦେବା —ଅନ୍ୟରୂପ)

ମଦତ୍(ଦ୍) କାର—ବୈଦେ. ବଣ (ଫା. ମଦଦ୍ ଗାର୍ )—ମୁଦତ୍ କାର୍;
Madat-(d-) kāra ସାହାଯ୍ୟକାରୀ—Helping; rendering
मदत् कार मदद् गार assistance.

ମଦତ୍ ଖଟି—ଦେ. ବି—ଗୁଳି ଖଟି ( ଦେଖ )
Madat khaṭi Guli khaṭi ( See )
मदक् खटी मदक खाना

ମଦତ୍ ଖଟି ଗପ—ଦେ. ବି—ଗୁଳି ଖଟି ଗପ ( ଦେଖ )
Madat khaṭi gapa Guli khaṭi gapa (See)
मदक् खटीर गल्प मदक खानाका गप

ମଦତ୍ ଖାଇବା—ଦେ. କ୍ରି—ଅଫିମର ଧୂଆଁ ସେବନ କରିବା—
Madat khāibā To smoke opium.
मदक खाओया मदक खाना (ମଦତ୍ ପିଇବା—ଅନ୍ୟରୂପ)

ମଦତ୍ ଖୋର୍—ଦେ.ବି ଓ ବଣ—ମଦତ୍ ନିଶା ଖାଇବାରେ ଅଭ୍ୟସ୍ତ ବ୍ୟକ୍ତି
Madat khor —A person addicted to smoking
मदक खोर मदक खोर opium;habitual opium
(ମଦତ୍ ଖୋରୀ— ଅବସ୍ଥାବାଚକ ବିଶେଷ୍ୟ) smoker.

ମଦତ୍(ଦ୍)ଗାର୍—ବୈଦେ. ବଣ (ଫା. ମଦଦ୍ ଗାର୍)—
Madat-(d-)gār ସହାୟକ—Helping.
मदत् कार मददगार ବି—ସହାୟକ ବ୍ୟକ୍ତି—Helper.

ମଦତ୍(ଦ୍)ଗାରି—ବୈଦେ. ବି (ଫା. ମଦଦ୍‌ଗାରୀ)—ସହାୟକତା—
Madat(d)gāri The state of being a helper.
मदत् कारी मदद् गारी

ମଦତ୍ ଛିଟା—ଦେ. ବି—ମଦତ୍ ବସ୍ତୁର ଗୋଟିଏ ମାତ୍ର କ୍ଷୁଦ୍ର ଗୋଲକ;
Madat chhiṭā ଯାହା ଥରକେ ଧୂଆଁ ପିଆରେ ଉଡ଼ିଯାଏ—
(ମଦତ୍ ଗୁ(ଗୋ)ଳ(ଳା, ଲି)—ଅନ୍ୟରୂପ) One small ball
मदक गोला मदककी गोली or pillet of Madak.

ମଦତ୍(ଦ୍)ମାଶ୍—ବୈଦେ. ବି (ଫା, ମଦଦ୍=ସାହାଯ୍ୟ+ଇ=ପାର୍ସି+
Madat-(d-)mās ମା-ଅଶ୍=ଜୀବିକା ନିର୍ବାହାର୍ଥ ସାହାଯ୍ୟ)—
मदद् मास ମୁସଲମାନ୍ ବାଦସାହାମାନଙ୍କ ଅମଳରେ ଧର୍ମଯାଜକ-
मदद् माश ମାନଙ୍କ ଭରଣ ପୋଷଣାର୍ଥ ବା ଧର୍ମ କାର୍ଯ୍ୟ ନିମନ୍ତେ
ଅଳ୍ପ କରରେ ବା ନିଷ୍କରଭାବେ ଦିଆ ହୋଇଥିବା ବୃତ୍ତି—
Endowments given by Mahomedan emperors rent-free or on a nominal rent for religious purposes.

ମଦତ୍ ସରପ୍—ବୈଦେ (ସଂ. ମୋଦକ+ ଫା. ସର୍ବ୍)—ଗୁଳି ଓ ମଦ—
Madat sarāp Opium bullet and wine.
मदक्सराप मदकसराब

ମଦତି(ତ୍ତି) ଗପ—ଦେ. ବି—ମଦତ୍‌ଖୋର୍ ଲୋକର ସୁଲଭ ଅସାର ବା
Madati(tti) gapa କାଳ୍ପନିକ ଗଳ୍ପ—Imaginary talk
ଓଲିଖୋରେର ଗଳ୍ପ befitting opium smokers; an
मदकखोरीगप opium smoker's sweet waking
(ମଦତଖୋରି ଗପ—ଅନ୍ୟରୂପ) dreams.

ମଦତୀ(ତ୍ତୀ)—ଦେ. ବଣ—୧। ମଦତ୍‌ଖୋର୍; ଗୁଳିଖୋର୍—1. Addic-
Madatī(ttī) ted to smoking opium. ୨। ମଦତ୍-
मदती ଖୋର୍ ସୁଲଭ—2. Befitting an opium-
मदकची smoker. ବି—ମଦତ୍ ଖାଇବାରେ ଅଭ୍ୟସ୍ତ
ବ୍ୟକ୍ତି—A habitual smoker of opium

ମଦନ—ସଂ. ବି (ମଦ୍ ଧାତୁ; ଣିଚ୍. ମଦ ଧାତୁ=ମତ୍ତ କରିବା+କର୍ତ୍ତୃ.ଅନ)
Madana —୧। କାମଦେବ—1. Cupid personified.
[ ଦ୍ର—ଏହାଙ୍କର ସ୍ତ୍ରୀ ରତି, ସଖା ବସନ୍ତ ଓ ଅସ୍ତ୍ର ଫୁଲ-
ଧନୁଶର । ] ୨। କନ୍ଦର୍ପ; କାମ—2. Cupid; lust.
୩। ଆଲିଙ୍ଗନବିଶେଷ—3. A sort of embrace.
[ ଦ୍ର—ଏଥିରେ ନାୟକ ଗୋଟିଏ ହାତକୁ ନାୟିକାର
ଗଳାରେ ଓ ଅନ୍ୟ ହାତକୁ ନାୟିକାର କଟିଦେଶରେ
ରଖି ଆଲିଙ୍ଗନ କରେ—ହି. ଶ । ] ୪। ବସନ୍ତ-
କାଳ—4. The spring season. ୫। ମୁଗ—
5. Phaseolus (grain). ୬। ଭ୍ରମର; ଭୃଙ୍ଗ—6 The
black bee. ୭। ମଏଣ (ଦେଖ)—7. Maeṇa
(See) ୮। ଧଳା ଅଙ୍କୁ ଗଛ—8. A kind of
tree; Alangium Hexapetalum. ୯। ଖଇର
ଗଛ—9. The catechu tree. ୧୦। ବଉଳଗଛ—
10. The Bakuḷa tree. ୧୧। ଧାତୁରୀ; ଦୁଦୁରା—
11.The Datura Fastuosa plant. ୧୨। କାମକ୍ରୀଡ଼ା
(ହି. ଶ)—12. Amorous dalliance. ୧୩। ମହମ
( ହି. ଶ )—13. Beeswax. ୧୪। ସାରୀ; ମଇନା
ପକ୍ଷୀ ( ହି. ଶ )—14. Hill myna. ୧୫ ।
( ଜ୍ୟୋତିଷ ) ଲଗ୍ନଠାରୁ ସପ୍ତମ ଗୃହ ( ହି. ଶ )—
15. The 7th house from one's lagna.
୧୬। ପ୍ରେମ (ହି. ଶ)—16. Love. ୧୭ । ଖଞ୍ଜନ
ପକ୍ଷୀ (ହି. ଶ)—17. The wagtail. ୧୮। ମହା-
ଦେବଙ୍କ ୪ ପ୍ରଧାନ ଅବତାର ମଧ୍ୟରୁ ତୃତୀୟ ଅବତାର
(ହି. ଶ)—18. The 3rd of the four princi-
pal incarnations of Śiba. ବଣ—ମତ୍ତତା-
ଜନକ—Causing intoxication or madness.
ଦେ.ବି.ପୁଂ—ମଦନମୋହନର ଡାକ ନାମ—Name for
calling Madanamohana.

ମଦନ କଣ୍ଟକ—ସଂ. ବି—୧। କାମାତୁର ବ୍ୟକ୍ତିର ରୋମାଞ୍ଚ; ସାତ୍ତ୍ୱିକ
Madana kaṇṭaka ରୋମାଞ୍ଚ—1. Horripilation
due to lust ୨। ମଏଣ (ଦେଖ)—2 Maeṇa
( See )

ମଦନ କଳହ—ସଂ. ବି ( ମ ଷ.ଲେ )—ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ
Madana kaḷaha ପ୍ରଣୟଜନିତ କଳହ—Love-quarrel.

ମଦନ ଗୃହ—ସଂ. ବି ( ୬ଷ୍ଠୀ ତତ୍ )—୧। ଭଗ; ଯୋନି ( ହି. ଶ )—
Madana gṛuha 1. Female organ. ୨। ଜନ୍ମ କୁଣ୍ଡ-
ଳୀର ୭ମ ଗୃହ—2. The 7th house from one's lagna in the horoscope.
ମଦନ ଭବନ, ମଦନ-ସଦନ, ମଦନାଳୟ } ଅନ୍ୟରୂପ

ମଦନ ଗୋପାଳ—ସଂ. ବି ( ମ. ଧ. ଲୋ, ମଦନ ପରି ସୁନ୍ଦର ଗୋପାଳ )
Madana gopāla —ଶ୍ରୀକୃଷ୍ଣ—Śrīkṛushṇa.

ମଦନ ଚତୁର୍ଦ୍ଦଶୀ—ସଂ. ବି—ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ—The 14th
Madana chaturddaṡi day of the bright fortnight of the month of Chaitra. [ଦ୍ର—ଏହା ମଦନ ମହୋତ୍ସବର ଅନ୍ତର୍ଗତ—ହ୍ର. ଶ ।]

ମଦନ ଜ୍ୱର—ସଂ. ବି(ମ. ସ. ଶ୍ଳୋ) —କାମାତୁର ବ୍ୟକ୍ତିର ପୀଡ଼ିତାବସ୍ଥା;
Madana jwara କାମଜ୍ୱର—Love-sickness; rise of temperature in a love-sick person.

ମଦନ ତନ୍ତ୍ର—ସଂ. ବି (ମଦନ+ତନ୍ତ୍ର)—ରତିଶାସ୍ତ୍ର—The science
Madana tantra (ମଦନ ଶାସ୍ତ୍ର—ଅନ୍ୟରୂପ) of sexual love.

ମଦନ ତ୍ରୟୋଦଶୀ—ସଂ. ବି—ଚୈତ୍ର ଶୁକ୍ଳ ତ୍ରୟୋଦଶୀ—The 13th
Madana trayodaṡi day of the bright fortnight of Chaitra.

ମଦନ ଦଶା—ସଂ. ବି—କାମାତୁର ବ୍ୟକ୍ତିର ଭିନ୍ନ ଭିନ୍ନ ଅବସ୍ଥା—
Madana daṡā Different stages of an unsatiated lover's condition.

ମଦନ ଦହ(ମ)ନ—ସଂ. ବି—( ଯେ ମଦନଙ୍କୁ ଭସ୍ମ କରିଥିଲେ )
Madana daha(ma)na ମହାଦେବ—Śiba.

ମଦନ ଦୂତ—ସଂ. ବି ( ୬ଷ୍ଠୀ ତତ୍; ମଦନ+ଦୂତ )—କୋକିଳ—
Madana dūta The cuckoo.

ମଦନ ଦ୍ୱାଦଶୀ—ସଂ. ବି—ଚୈତ୍ର ଶୁକ୍ଳ ଦ୍ୱାଦଶୀ—The twelvth
Madana dwādaṡi day of the bright fortinght of the month of Chaitra.

ମଦନ ଧର୍ମ—ସଂ. ବି—ରତିକ୍ରୀଡ଼ା—
Madana dharma Copulation.

ମଦନ ଧର୍ମୋତ୍ସବ—ସଂ. ବି—୧ । ଦୋଳପର୍ବ; ଦୋଳ; ଫାଲ୍ଗୁନ ପୌର୍ଣ୍ଣମୀ
Madana dharmotsaba ଉତ୍ସବ—1. Dolajātrā festi-
(ମଦନୋତ୍ସବ—ଅନ୍ୟରୂପ) val celebrated in honour of God Cupid during the fullmoon of Phālguna.
୨ । ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠିତ ଉତ୍ସବ ବିଶେଷ—
2. A festival observed during the full-moon of Chaitra.

ମଦନ ନାଳିକା—ସଂ. ବି—ଅସତୀ ସ୍ତ୍ରୀ—A faithless wife; a
Madana nāḷikā dissolute woman.

ମଦନ ପକ୍ଷୀ—ସଂ. ବି—ଶାଗୁ ଚଢ଼େଇ—A kind of bird; the
Madana pakshi hill-myna.

ମଦନ ପାଠକ—ସଂ. ବି ( ମଦନ=ବସନ୍ତ+ପାଠକ )—କୋକିଳ—
Madana pāṭhaka The Indian cuckoo.

ମଦନ ପୀଡ଼ା—ସଂ. ବି—୧ । ମଦନ ବ୍ୟଥା—1. Love-sickness.
Madana pirḍā ୨ । କାମବାଧା—2. Exhaustion or
(ମଦନବାଧା—ଅନ୍ୟରୂପ) fatigue due to cohabitation.

ମଦନ ପୁର—ସଂ. ବି—ସ୍ମରପୁର; ଭଗ; ଯୋନି—Female organ.
Madana pura ( ମଦନଗୃହ—ଅନ୍ୟରୂପ )

ମଦନ ପ୍ରିୟ—ସଂ. ବି (୬ଷ୍ଠୀ ତତ୍; ମଦନ+ପ୍ରିୟ)—ବସନ୍ତ; ମଦନସଖା—
Madana priya The spring season.

ମଦନ ଫଳ—ସଂ. ବି—ମେଣ ( ଦେଖ )
Madana phaḷa Maeṇa ( See )

ମଦନ ବାଇ—ଦେ. ବି—କାମପୀଡ଼ାଜନିତ ବାତୁଳତା—Love mad-
Madana bāi ness. ବିଣ—ମଦନ ବାଉଳା ( ଦେଖ )
Madana bāuḷā ( See )

ମଦନ ବାଉଳା—ଦେ. ବି. ପୁଂ (ସଂ. ମଦନ+ବାତୁଳ)—କାମବିହ୍ୱଳ—
Madana bāuḷā Maddened by love or lust; love-
କାମବାଈ मदनमत्त ( ମଦନ ବାଉଳୀ—ସ୍ତ୍ରୀ ) mad.

ମଦନ ବାଣ—ସଂ. ବି—(୬ଷ୍ଠୀ ତତ୍)—୧ । କାମବଶିଖ—1. The
Madana bāṇa shafts of cupid. ୨ । କାମପ୍ରବୃତ୍ତି—
(ମଦନ ବିଶିଖ—ଅନ୍ୟରୂପ) 2. Lust. ୩ । କାମବ୍ୟଥା—
3. The agony felt on account of unsatiated love or lust.

ମଦନ ବିହ୍ୱଳ—ସଂ. ବିଣ. ପୁଂ—କାମୋନ୍ମତ୍ତ—Maddened by
Madana bihwaḷa lust; love-struck.
(ମଦନମତ୍ତ—ଅନ୍ୟରୂପ । ମଦନ ବିହ୍ୱଳା, ମଦନ ମତ୍ତା—ସ୍ତ୍ରୀ)
(ମଦନବିହ୍ୱଳତା, ମଦନମତ୍ତତା—ବି ମଦନଭୋଳ(ଳା)—ଦେଶଜ, ବିଣ)

ମଦନ ବୃକ୍ଷ—ସଂ. ବି—ମେଣ ( ଦେଖ )
Madana bruksha Maeṇa ( See )

ମଦନ ବ୍ୟଥା—ସଂ. ବି—କାମପୀଡ଼ା; କାମାତୁର ବ୍ୟକ୍ତି ଯେଉଁ ଅସହ୍ୟ
Madana byathā ଯନ୍ତ୍ରଣା ଓ ଅସ୍ଥିରତା ଅନୁଭବ କରେ—
The agony experienced by an unsatiated lover.

ମଦନ ଭଞ୍ଜିକା—ସଂ. ବି—ମଦନ ଚତୁର୍ଦ୍ଦଶୀ ( ଦେଖ )—
Madana bhañjikā Madana chaturddaṡi ( See )
(ମଦନ ଭଞ୍ଜୀ—ଅନ୍ୟରୂପ)

ମଦନ ଭେରୁ—ପ୍ରାଦେ (ସିଂହଭୂମ) ବି—ବାଦ୍ୟଯନ୍ତ୍ରବିଶେଷ—
Madana bheru A kind of drum.

ମଦନ ମନୋହର—ସଂ. ବିଣ—କାମଦେବଙ୍କ ପରି କମନୀୟ ( ରୂପ )—
Madana manohara (form) Charming like God Cupid.

ମଦନ ମନ୍ଦିର—ସଂ. ବି—ପୟୋଧର; ସ୍ତ୍ରୀ ସ୍ତନ—Female breast;
Madana mandira the mammary glands.

ମଦନ ମସ୍ତ—ଦେ ବିଣ ( ସଂ. ମଦନ+ମତ୍ତ )—୧ । କାମୋନ୍ମତ୍ତ—
Madana masta 1. Maddened by lust. ବି—
କାମମତ୍ତ मदनमस्त ମଦନ ମସ୍ତକ ( ଦେଖ ) Madana. mastaka ( See )

ମଦନମସ୍ତକ—ଦେ ବି—୧ । ଔଷଧରେ ବ୍ୟବହୃତ ଜଙ୍ଗଲି ଓଲୁଅର
Madanamastaka ଶୁଖିଲା ଚକୁଡ଼ା ( ହ୍ର. ଶ )—1. Dried
मदनमस्त chips of wild arum. ୨ । ଚମ୍ପା ଜାତୀୟ ଏକପ୍ରକାର ପନସ ଗନ୍ଧଯୁକ୍ତ ଫୁଲ ( ହ୍ର. ଶ); ଚମ୍ପିଚମ୍ପା—
2. A kind of strong smelling flower.

ମଦନ ମାଦକ—ଦେ. ବି (ସଂ. ମଦନ+ଉନ୍ମାଦ)-୧ । କାମୋନ୍ମତ୍ତତା—
Madana mādaka 1. Madness due to unsatiated
( ମଦନମାତୁ—ଅନ୍ୟରୂପ ) lust. ୨ । ଜାମକ୍ରୀଡ଼ାରେ ମାତିଥିବା ବ୍ୟକ୍ତିର—2. Orgasm; hilarity of persons during amorous dalliance.

**ମଦନ ମୋହନ**—ସଂ. ବି ( ମଦନ ପରି ମୋହନ= ଅତି ସୁନ୍ଦର, ବା ମଦନଙ୍କୁ ଯେ ମୋହିତ କରଅଛନ୍ତି )—ଶ୍ରୀକୃଷ୍ଣଙ୍କର ନାମାନ୍ତର—A name of Śrikṛushṇa.
Madana mohana
ବିଣ—ଅତି ସୁନ୍ଦର ରୂପବିଶିଷ୍ଟ—Having a charming appearance. ଦେ. ବି—୧। ପୁରୀ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା; ଯେଉଁ ଶ୍ରେଷ୍ଠ ପ୍ରତିମା ଜଗନ୍ନାଥଙ୍କ ପ୍ରତିନିଧି ରୂପେ ଚନ୍ଦନ ଯାତ୍ରା ସମୟରେ ନୌକାକୁ ବିଜେ କରନ୍ତି—1. The movable image representing the Idol, Jagannātha which is taken to the boat during the Chandanajātrā festival. ୨। ପୁରୁଷ ଲୋକଙ୍କୁ ଦିଆଯିବା ନାମ—2. Name given to males.
মদনমোহন
मदनमोहन

**ମଦନ ରିପୁ**—ସଂ. ବି ( ୬ଷ୍ଠୀ ତତ୍; ମଦନ+ରିପୁ ) –ମହାଦେବ—Śiba.
Madana ripu (ମଦନ ଦ୍ୱିଟ୍, ମଦନାରି—ଅନ୍ୟରୂପ)

**ମଦନ ଲତା**—ସଂ. ବି—ମଏଣ ( ଦେଖ )
Madana latā Maeṇa ( See )

**ମଦନ ଲେଖ(ଖା)**—ସଂ. ବି—ପ୍ରେମ ପତ୍ରିକା—Love letter; a letter written by a lover to his or her beloved.
Madana lekha (khā)

**ମଦନ ଶର**—ସଂ. ବି—କାମ ବ୍ୟଥା; କାମବାଣ—The shafts of Cupid.
Madana śara (ମଦନଶାୟକ—ଅନ୍ୟରୂପ)

**ମଦନ ଶରାହତ**—ସଂ. ବିଣ. ପୁଂ (୬ଷ୍ଠୀ ତତ୍ ଓ ତୃତୀୟା ତତ୍; ମଦନ+ଶର+ଆହତ )—କାମ ପୀଡ଼ିତ—Love-struck.
Madana śarāhata
(ମଦନ ଶରାହତା—ସ୍ତ୍ରୀ)

**ମଦନ ଶଲାକା**—ସଂ. ବି. ସ୍ତ୍ରୀ—୧ । ମଇନା ପକ୍ଷୀ—1. The hill myna. ୨। କୋକିଳା (ହି.ଗ)—2. A female cuckoo.
Madana śalākā
(ମଦନ ଶାରିକା—ଅନ୍ୟରୂପ)

**ମଦନ ସୁନ୍ଦର**—ସଂ. ବିଣ—କାମଦେବଙ୍କ ପରି କମନୀୟ ରୂପବିଶିଷ୍ଟ—Having a charming countenance like that of the God Cupid.
Madana sundara
ଦେ ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.

**ମଦନ ସୁନ୍ଦର ପାଲା**—ଦେ. ବି—ଧନୀ ସଉଦାଗରର ପୁଅ ମଦନସୁନ୍ଦରର ଜୀବନରେ ସତ୍ୟପୀର ଠାକୁରଙ୍କ ମାହାତ୍ମ୍ୟ ପ୍ରମାଣିତ ହୋଇଥିବା ଗଳ୍ପ ବର୍ଣ୍ଣିତ ହୋଇଥିବା ପାଲା—A popular ballad describing the life of a merchant's son named Madana sundara who was favoured by the Deity Satyapīra.
Madana sundara pālā
মদনসুন্দর পালা

**ମଦନା**—ସଂ. ବି. ସ୍ତ୍ରୀ—(ମଦନ+ଆ)—୧ । ସୁରା; ମଦ୍ୟ—1.Wine. ୨। ମୃଗନାଭି; କସ୍ତୁରୀ—2. Musk. ୩। କାମୁକୀ ସ୍ତ୍ରୀ—3. A lascivious or lustful woman. ୪। ମଇନା; ସାରୀ (ହି. ଗ)—4. The hill-myna bird. ଦେ. ବି—୧ । ମାଧବୀ ଜାତୀୟ ପୁଷ୍ପଲତାବିଶେଷ—1. A kind of flowering creeper. ( ଯଥା—ଚମ୍ପା ନାଗେଶ୍ୱର ମଦନା ମାଧବୀ, ସୁଶୋଭିତ ଲକ୍ଷ୍ମୀହାଲି ଗୋ । ପ୍ରାଚୀ. ରହସ୍ୟ ମଞ୍ଜରୀ ।) ୨। ମଦନର ଅନାଦରାର୍ଥ ଡାକନାମ—2. A name for calling Madana.
Madanā

**ମଦନାଙ୍କୁଶ**—ସଂ. ବି ( ୬ଷ୍ଠୀ ତତ୍; ମଦନ+ଅଙ୍କୁଶ )—ପୁରୁଷଚିହ୍ନ; ଲିଙ୍ଗ—Penis.
Madanāṅkuśa

**ମଦନାତୁର**—ସଂ. ବିଣ. ପୁଂ ( ତୃତୀୟା ତତ୍; ମଦନ+ଆତୁର)—ମଦନ-ବିହ୍ୱଳ; କାମାତୁର; କାମାର୍ତ୍ତ; କାମଜ୍ୱରପୀଡ଼ିତ—Love-struck; suffering from the pangs of unsatiated lust or love.
Madanātura
(ମଦନାତୁରା—ସ୍ତ୍ରୀ)
(ମଦନାତୁରତା—ବି)

**ମଦନାନ୍ତକ**—ସଂ. ବି ( ୬ଷ୍ଠୀ ତତ୍; ମଦନ+ଅନ୍ତକ )—ମଦନଦହନ; ମହାଦେବ—Śiba.
Madanāntaka
(ମଦନାରି—ଅନ୍ୟରୂପ)

**ମଦନାନ୍ଧ**—ସଂ. ବିଣ. ପୁଂ ( ତୃତୀୟା ତତ୍; ମଦନ+ଅନ୍ଧ )—ମଦନ-ବିହ୍ୱଳ; ଅତ୍ୟନ୍ତ କାମପୀଡ଼ା ଯୋଗୁଁ ବାହ୍ୟଜ୍ଞାନଶୂନ୍ୟ—Blinded by love or lust; maddened by lust.
Madanāndha

**ମଦନାବତୀ**—ଦେ. ବି—୧ । କାହାଣୀରେ ବର୍ଣ୍ଣିତ ସୁନ୍ଦରୀ ରାଜକନ୍ୟା—1. Name of a fair princess described in the folk-tales. ୨। ନୃସିଂହ ପୁରାଣରେ ବର୍ଣ୍ଣିତ ମୁରାସୁରର ରାଣୀ—2. The name of the queen of the demon 'Mura' described in the Nṛusiṁha Purāṇa.
Madanābatī
ময়নাবতী

**ମଦନାବର୍ତ୍ତ**—ସଂ. ବି—ମଦନଗୃହ; ଯୋନି—The female organ.
Madanābartta (ମଦନାଳୟ—ଅନ୍ୟରୂପ)

**ମଦନାବସ୍ଥା**—ସଂ. ବି ( ମ. ପ. ଲୋ)—କାମଦଶା; କାମାତୁର ବ୍ୟକ୍ତିର ଭିନ୍ନ ଭିନ୍ନ ଅବସ୍ଥା—The different stages through which lovers pass.
Madanābasthā

**ମଦନାୟୁଧ**—ସଂ. ବି—୧ । ମଦନବାଣ—1. Shafts of Cupid. ୨ । ସ୍ତ୍ରୀ ଚିହ୍ନ; ଯୋନି—2, Female organ.
Madanāyudha

**ମଦନାର୍ତ୍ତ**—ସଂ. ବିଣ. ପୁଂ ( ତୃତୀୟା ତତ୍; ମଦନ+ଆର୍ତ୍ତ )—କାମାତୁର; କାମବିହ୍ୱଳ—Restless through Cupid; love-struck.
Madanārtta
(ମଦନାର୍ତ୍ତା—ସ୍ତ୍ରୀ)

**ମଦ ନିଶା**—ଦେ. ବି ( ସଂ. ମଦ୍ୟ+ଫା. ନିଶା )—ମଦ୍ୟପାନଜନିତ ମତ୍ତତା—Intoxication due to wine.
Mada niśā
মদের নেশা मदकी निशा

**ମଦନୀ**—ସଂ. ବି. ସ୍ତ୍ରୀ ( ମଦନ+ଈ )—୧ । ସୁରା; ମଦ୍ୟ—1. Wine. ୨ । ମୃଗନାଭି; କସ୍ତୁରୀ—2. Musk. ୩ । କାମୁକୀ ସ୍ତ୍ରୀ—3. Lustful woman. ୪ । ମେଥି (ହି. ଗ)—4. Fenugreek. ୫ । ଧାଇ ଫୁଲ; ଧାତକୀ ( ହି. ଗ ) ( ଦେଖ )—5. Dhatakī ( See )
Madanī

ମଦନୀୟହେତୁ—ସଂ. ବି—ଧାତକୀ (ହ୍ରି. ଶ) ( ଦେଖ )
Madaniya hetu Dhataki ( See )
(ମଦହେତୁ, ମଦ୍ୟପୁଷ୍ପ, ମଦ୍ୟବାସିନୀ—ଅନ୍ୟରୂପ)

ମଦନୋତ୍ସବ—ସଂ. ବି—୧ । ବସନ୍ତୋତ୍ସବ; ଦୋଳଯାତ୍ରା; ହୋରି—
Madanotsaba 1. A festival performed in the (ମଦନମହୋତ୍ସବ—ଅନ୍ୟରୂପ) spring in honour of Cupid ୨ । ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠେୟ ଉତ୍ସବ—2. A festival on the full moon of Chaitra. [ ଦ୍ର—ପ୍ରାଚୀନକାଳରେ ଏହି ଉତ୍ସବ ଚୈତ୍ର ଶୁକ୍ଳ ଦ୍ୱାଦଶୀଠାରୁ ଆରମ୍ଭ ହୋଇ ଚତୁର୍ଦ୍ଦଶୀ ଦିନ ସମାପ୍ତ ହେଉଥିଲା; ଏଥିରେ ବ୍ରତ, କାମଦେବଙ୍କ ପୂଜା, ଗୀତବାଦ୍ୟ, ରାତ୍ରିଜାଗରଣ ଓ ସ୍ତ୍ରୀପୁରୁଷ ସମ୍ମିଳନ, ଉଦ୍ୟାନାଦିରେ ଆମୋଦପ୍ରମୋଦ ହେଉଥିଲା—ହ୍ରି. ଶ] ୩ । ସ୍ତ୍ରୀପୁରୁଷଙ୍କର ସଙ୍ଗମ; ରତି; ରମଣ—3. Copulation.

ମଦନୋତ୍ସବା—ସଂ. ବି. ସ୍ତ୍ରୀ—ସ୍ୱର୍ଗବେଶ୍ୟା; ଅପ୍ସରା—Heavenly
Madanotsabā nymphs; the courtesans of Indra's court ( they are said to possess perpetual youth and charm ).

ମଦ ବାରି—ସଂ. ବି—ମତ୍ତହସ୍ତୀର ଗଣ୍ଡନିଃସୃତ ସୁଗନ୍ଧୀ ରସ—A
Mada bāri strong-scented juice exuded from the temples of an elephant in rut.

ମଦ ଭଞ୍ଜିନୀ—ସଂ. ବି—ଶତମୂଳୀ ( ହ୍ରି. ଶ ) ( ଦେଖ )
Mada bhañjini Asparagus.

ମଦଭର—ଦେ. ବିଣ—ମଦମତ୍ତ (ଦେଖ)—Madamatta (See).
Madabhara (ଉ—ବଣ୍ଣିଲେ ଲୁଚ ସେ ମଦଭର, ନାଗେଶବର
ମତ୍ତ ଗୋପ୍ୟସ୍ଥାନର, ମଣି ଦନ୍ତୁରି ଦେଖାଇବାର ସନ୍ଧି ହେଲା ।
মদমত্ত ଉଞ୍ଜ. ବୈଦେହୀଶ ବିଳାସ । )

ମଦ୍ଭାଟି—ଦେ. ବି—ଯେଉଁଠାରେ ମଦ ଭିଆରି ହୁଏ—
Mada bhāti Distillery; wine-still.
মদের ভাটী मदकी भट्टी

ମଦ ଭୋଳ(ଳା)—ଦେ. ବି ( ସଂ ମଦ୍ୟ+ବିହ୍ୱଳ )—ମଦଜନିତ
Madabhola(lā) ବାଉଳତା—Madness or deep
মদের ঘোর मदभोर intoxication resulting from
মদেচুর নशামেचूर excessive drink. ବିଣ—ମଦ୍ୟପାନ ଯୋଗୁଁ ବାଉଳ—Maddened by wine.

ମଦମତ୍ତ—ସଂ. ବିଣ, ପୁଂ ( ଙ୍ୟା ତତ୍; ମଦ+ମତ୍ତ )—୧ । ଗର୍ବମତ୍ତ—
Madamatta 1. Maddened with pride. ୨ । କାମୋନ୍ମତ୍ତ; ମଦସ୍ରାବ ଯୋଗୁଁ ଉନ୍ମତ୍ତ (ହସ୍ତୀ)—
(ମଦକ୍ଷିପ୍ତ—ଅନ୍ୟରୂପ) 2. ( elephant ) Excited with lust; in rut.
( ମଦମତ୍ତା—ସ୍ତ୍ରୀ )

ମଦ ମୁକୁଳିତାକ୍ଷୀ—ସଂ. ବିଣ. ସ୍ତ୍ରୀ ( ଙ୍ୟା ତତ୍ ବା ବହୁବ୍ରୀହି; ମଦ ବା
Mada mukulitākshi ହର୍ଷଦ୍ୱାରା ମୁକୁଳିତ=ଅର୍ଦ୍ଧନିମୀଳିତ ହୋଇଅଛି ଅକ୍ଷି ଯାହାର )—ହର୍ଷ ହେତୁ ଅର୍ଦ୍ଧନିମୀଳିତନୟନା—( a woman ) Having eyes half opened on account of extreme delight.

ମଦ ମୁକ୍ତ—ସଂ. ବିଣ—୧ । ଗର୍ବଶୂନ୍ୟ—1. Free from pride.
Mada mukta ୨ । ମତ୍ତତାଶୂନ୍ୟ—2. Free from madness.

ମଦୟନ୍ତୀ—ସଂ. ବି. ସ୍ତ୍ରୀ ( ମଦ୍ ଧାତୁ ଣିଚ୍ ମଦ୍ଧାତୁ+ଅତ୍ [ ଶତୃ ]+
Madayanti ସ୍ତ୍ରୀ. ଈ; ଯେ ହୃଷ୍ଟ କରାଏ )—ବଣମଲ୍ଲିକା; ବଣ-
(ମଦୟନ୍ତିକା—ଅନ୍ୟରୂପ ) ମଲ୍ଲୀ—Wild jasmine.

ମଦୟିତା—ସଂ. ବିଣ. ପୁଂ ( ମଦ୍ ଧାତୁ; ଣିଚ୍ ମଦ ଧାତୁ=ମତ୍ତ କରାଇବା
Madayitā +କର୍ତ୍ତୃ. ତୃ ୧ମା ୧ବ )—ଯେ ଉନ୍ମତ୍ତ କରାଏ—
( ମଦୟିତ୍ରୀ—ସ୍ତ୍ରୀ ) Maddening; intoxicating.

ମଦୟିତ୍ନୁ—ସଂ. ବିଣ ( ମଦ୍ ଧାତୁ ଣିଚ୍ ମଦ ଧାତୁ+କର୍ତ୍ତୃ. ଇତ୍ନୁ )—
Madayitnu ଯେ ଉନ୍ମତ୍ତ କରାଏ—Causing madness; bringing about intoxication; making a person intoxicated. ବି—୧ । ଶୁଣ୍ଡି—1. A wine seller; a wine-distiller. ୨ । କନ୍ଦର୍ପ—2. Cupid; lust. ୩ । ମଦ୍ୟ—3. Wine.

ମଦୟିଲୁ—ସଂ. ବି ( ମଦ୍ ଧାତୁ ଣିଚ୍+କର୍ତ୍ତୃ. ଇଲୁ )—୧ । କାମଦେବ
Madayilu ( ହ୍ରି. ଶ )—1. God Cupid. ୨ । ମଦ୍ୟ ( ହ୍ରି. ଶ )—2. Wine. ୩ । ମେଘ ( ହ୍ରି. ଶ )—3. Cloud.

ମଦରଙ୍ଗା—ଦେ. ବି—ଏକପ୍ରକାର ଜଳଜ ଶାକ ଲତା—Name of
Madarangā an aquatic creeper; Alter-
ସ ଶାଳଞ୍ଚ, ଶିତସାର, nathera Sessilis. [ ଦ୍ର—
ଲୌହମାରକ, ଲୌହସାରକ ଏହା ମଧୁର ତିକ୍ତରସ, ରୁଚିକର,
শাঞ্চিশাক, শালিঞ্চশাক ଶୀତବୀର୍ଯ୍ୟ, ଅଗ୍ନିବର୍ଦ୍ଧକ, କଫପିତ୍ତ-
शान्तिशाग, शांलच, ନାଶକ, ପିତ୍ତ ବିକୃତିରେ ଔଷଧରୂପେ
सरहची ବ୍ୟବହୃତ ହୁଏ । ଏହା ଗ୍ଲୀହା, ବାଗୀ ଓ କଫନାଶକ । ମଦରଙ୍ଗା ପରି ଏକପ୍ରକାର ନାଲି ପତ୍ରଯୁକ୍ତ ବିଦେଶାଗତ ଶାକକୁ ବିଲାତି ମଦରଙ୍ଗା କହନ୍ତି । ]

ମଦ ସ୍ରାବ—ସଂ. ବି ( ୬ଷ୍ଠୀ ତତ୍; ମଦ+ସ୍ରାବ )—ହାତୀର ଗଣ୍ଡରୁ ମଦ-
Mada srāba ବାରିର କ୍ଷରଣ—The dropping or
( ମଦ ପ୍ରସ୍ରୋଗ—ଅନ୍ୟରୂପ ) flowing of the Mada juice from the temples of an elephant in rut.

ମଦ ସ୍ରାବୀ—ସଂ. ବିଣ. ପୁଂ ( ମଦସ୍ରାବ+ଇନ୍; ୧ମା. ୧ବ )—ଯାହାର
Mada srābi ଗଣ୍ଡରୁ ମଦବାରି ଧାରା ବହୁଥାଏ—( An elephant in rut ) From whose temples juice is dropping.

ମଦାଙ୍ଗ—ପ୍ରାଦେ. ( ଗଞ୍ଜାମ ) ବି—୧ । ମଲ୍ଲଙ୍ଗ; ମଳାଙ୍ଗ; ଅନ୍ୟ ଗଛ
Madānga ଦେହରେ ଜନ୍ମିବା ଗଛ—1. A parasitic plant growing on the body of an other tree. ୨ । ଲୋକେ ଯିବା ଆସିବା ପାଇଁ ବଥରର ଦୁଡ଼ା ଚଲେ

ଛଡ଼ା ହୋଇଥିବା ବାଟ—2. A pathway left below the ridge of a cultivated field. ୩ । ପୋଲ—3 Bridge.

ମଦାଢ୍ୟ—ସଂ. ବିଣ. ପୁଂ (ତୃତୀୟା ତତ୍, ମଦ+ଆଢ୍ୟ=ପୂର୍ଣ୍ଣ)—୧ । ମଦଯୁକ୍ତ; ଅତି ଗର୍ବିତ—1. Arrogant. ୨ । ଅତି ଉନ୍ମତ୍ତ—2. Mad; intoxicated. ବି—ତାଳଗଛ—Palm tree.
Madāḍhya
(ମଦାଢ୍ୟା—ସ୍ତ୍ରୀ)

ମଦାତଙ୍କ—ସଂ. ବି (ମଦ=ମତ୍ତତାଜନିତ ଆତଙ୍କ)—ଅତିରିକ୍ତ ମଦ୍ୟପାନ ଜନିତ ଉନ୍ମାଦ ରୋଗବିଶେଷ—A sort of delirium due to excessive wine-drinking; delirium. [ ଦ୍ର—ଏଥିରେ ରୋଗୀର ମୁଣ୍ଡ ବୁଲିଏ, ଅରୁଚି ହୁଏ, ଶୋଷ ହୁଏ, ହାତ ଗୋଡ଼ ଜଳେ; ତନ୍ଦ୍ରା ଓ ଅଜୀର୍ଣ୍ଣ ହୁଏ ଓ ସମୟେ ସମୟେ ଜ୍ୱର ଓ ପ୍ରଳାପ ହୁଏ—ହି. ଶ । ]
Madātaṅka
(ମଦାତ୍ୟୟ—ଅନ୍ୟରୂପ)

ମଦାନ୍ଧ—ସଂ. ବିଣ. ପୁଂ ( ତୃତୀୟା ତତ୍; ମଦ+ଅନ୍ଧ )—ମଦ ( ଗର୍ବ, ମତ୍ତତା ) ଯୋଗୁଁ ହିତାହିତଜ୍ଞାନଶୂନ୍ୟ—Blinded by pride or intoxication
Madāndha
( ମଦାନ୍ଧା—ସ୍ତ୍ରୀ )
( ମଦାନ୍ଧତା, ମଦାନ୍ଧ୍ୟ—ବି )

ମଦାର୍—ବୈଦେ. ବି ( ଅ )—୧ । କୌଣସି ବ୍ୟକ୍ତି ଉପରେ ଅର୍ପିତ କୌଣସି କାର୍ଯ୍ୟର ଭାର—1. Any charge entrusted to a person. ୨ । ଦାୟିତ୍ୱ—2. Responsibility. ୩ । ବିଶ୍ୱାସ—3. Trust; confidence.
Madār
ভার
मदार

ମଦାର୍ ଦେବା—ଦେ. କ୍ରି—୧ । କାର୍ଯ୍ୟର ଭାର ଅର୍ପଣ କରିବା—1. To entrust the charge of a work or matter to a person. ୨ । ନିର୍ଭର ବା ବିଶ୍ୱାସ କରିବା—2. To have trust or confidence on a person; to put reliance on a person. ୩ । କୌଣସି କାର୍ଯ୍ୟ ପାଇଁ ଅନ୍ୟ ବ୍ୟକ୍ତି ଉପରେ ନିର୍ଭର କରିବା—3 To depend upon another for any matter.
Madār debā
ভার দেওয়া
मदार देना

ମଦାର—ସଂ. ବିଣ (ମଦ୍ ଧାତୁ=ମତ୍ତ ହେବା+କର୍ତ୍ତୃ. ଆର)—୧ । କାମୁକ—1. Lascivious; lustful. ୨ । ଧୂର୍ତ୍ତ; ଶଠ—2. Fraudulent; deceitful; cheat. ବି—୧ । ଶଠ ବ୍ୟକ୍ତି—1. A cheat. ୨ । କାମୁକବ୍ୟକ୍ତି—2. A lustful person. ୩ । ହସ୍ତୀ—3. Elephant. ୪ । ମତ୍ତହସ୍ତୀ—4. An elephant in rut. ୫ । ଶୂକର—5 A hog. ୬ । ବରାହ; ବାରହା—6. A wild hog; a boar.
Madāra

ମଦାରିଆ—ବୈଦେ. ବିଣ ( ଅ. ମଦାର )—୧ । ଯେଉଁ ଲୋକ ପର ଉପରେ ନିର୍ଭର ରଖେ—1. Putting reliance or trust on others. ୨ । ଯାହାର ଅସ୍ୱନିର୍ଭରଶୀଳତା ନାହିଁ—2. Having no self-reliance. ୩ । ଯେ ଅନ୍ୟ ବ୍ୟକ୍ତିଠାରେ କାର୍ଯ୍ୟଭାର ଅର୍ପଣ କରେ—3. Entrusting others with any charge. ୪ । ପରମୁଖାପେକ୍ଷୀ—4. Dependent on others.
Madāriā
পরমুখাপেক্ষী
दारमदार देनेवाला

ମଦାଳସ—ସ. ବିଣ. ପୁଂ—(ମଦ+ଅଳସ+ଅ)—ମଦବିହ୍ୱଳ; ଅବେଗବିହ୍ୱଳ—Overcome with passion; maddened with feelings or lust.
Madāḷasa
(ମଦାଳସା—ସ୍ତ୍ରୀ)

ମଦାଳସା—ସ. ବି. ସ୍ତ୍ରୀ (ନାମ)—ଧର୍ମଶୀଳା ତତ୍ତ୍ୱବାଦିନୀ ରାଣୀବିଶେଷ—Name of a very learned and pious queen who taught theology and philosophy to her son. [ ଦ୍ର—ଏ ବିଶ୍ୱାବସୁ ଗନ୍ଧର୍ବଙ୍କ କନ୍ୟା ଓ ଚନ୍ଦ୍ରବଂଶୀୟ ପ୍ରତର୍ଦ୍ଦନ ବା ଋତୁଧ୍ୱଜ ରାଜାଙ୍କର ମହିଷୀ ଏବଂ ରାଜା ଅଳର୍କଙ୍କର ମାତା । ଏହାଙ୍କର ଆଉ ୩ ପୁତ୍ର ସଂସାରବିରକ୍ତ ଥିଲେ । ଏ ଏହାଙ୍କ ପୁତ୍ରଙ୍କୁ ବ୍ରହ୍ମବିଦ୍ୟା ଶିକ୍ଷା ଦେଇଥିଲେ । ] ଦେ. ବିଣ—ମଦାଳସୀ (ଦେଖ)—Madāḷasī (See).
Madāḷasā

ମଦାଳସୀ—ଦେ. ବିଣ. ସ୍ତ୍ରୀ (ସ. ମଦାଳସା)—୧ । ମଦବିହ୍ୱଳା ସ୍ତ୍ରୀ—1. A woman overwhelmed with passion; a passionate woman. ୨ । କାମୁକୀ ସ୍ତ୍ରୀ—2. A lustful woman; a lascivious and charming lady. ୩ । ଉତ୍କୃଷ୍ଟା ସ୍ତ୍ରୀ—3. A charming and excellent lady. ( ଉ—ମୁଁ ଯେବେ ହେଲି ଦୋଷୀ, ଅରେରେ ମଦାଳସି ! କରକମଳେ ଭିଡ଼ି, ଦଣ୍ଡ ଦଅନା ବଳେ । ପ୍ରାଚୀନ, ସଙ୍ଗୀତ ।)
Madāḷasī

ମଦାଳାପ—ସ. ବି (ମ. ପ. ଲୋ; ମଦ=ହର୍ଷଯୁକ୍ତ+ଆଳାପ)—ମଧୁରଭାଷଣ; ମଧୁରାଳାପ; ହର୍ଷପୂର୍ଣ୍ଣ କଥୋପକଥନ—Delightful discourse; sweet conversation.
Madāḷāpa

ମଦାଳାପୀ—ସ. ବିଣ. ପୁଂ (ମଦାଳାପ+ଇନ୍; ୧ମା, ୧ବ)—ମଧୁରଭାଷୀ—Of sweet speech. ସ. ବି—କୋକିଳ—The Indian cuckoo.
Madāḷāpī
(ମଦାଳାପିନୀ—ସ୍ତ୍ରୀ)

ମଦାହ୍ୱ—ସ. ବି (ମଦ+ଆ+ହ୍ୱେ. ଧାତୁ+କର୍ମ. ଅ)—କସ୍ତୁରୀ (ହି. ଶ)—Musk.
Madāhwa

ମଡ଼ି—ସ. ବି—ମଇ; କର୍ଷିତଭୂମିକୁ ସମତୁଲ କରିବାରେ ବ୍ୟବହୃତ କାଷ୍ଠଶ୍ରେଣୀ ପରି ଯନ୍ତ୍ରବିଶେଷ—A clod-crusher.
Madi
(ମଡ଼କ, ମଡ଼କା, ମଇ—ଅନ୍ୟରୂପ)

ମଦିନା—ଦେ. ବି (ନାମ)—ଆରବ ଦେଶର ଗୋଟିଏ ନଗର—Medina, a town in Arabia. [ ଦ୍ର—ମୁସଲମାନ୍ ଧର୍ମପ୍ରତିଷ୍ଠାତା ମହମ୍ମଦ ଏଠାରେ ଧର୍ମପ୍ରଚାର କରି ଏହି ନଗର ଅଧିକାର କରିଥିଲେ । ଏହା ମୁସଲମାନଙ୍କର ଗୋଟିଏ ତୀର୍ଥସ୍ଥାନ । ଏହା ମକ୍କା ନଗରଠାରୁ ୩୭ ମାଇଲ ଦୂରରେ ଉତ୍ତରରେ ଅବସ୍ଥିତ । ]
Madinā
মদিনা
मदीना

ମଦିର—ସ. ବି (ମଦ୍. ଧାତୁ=ମତ୍ତ ହେବା+କର୍ତ୍ତୃ. ଇର)—୧ । ମତ୍ତ ଖଞ୍ଜନ ପକ୍ଷୀ—1. The deep-blue wag-tail
Madira

(which seems restless like an intoxicated person). ୨ । ରକ୍ତ ଖଦିର—2. Red catechu. ବିଣ. ପୁଂ ( ମଦ. ଧାତୁ=ମତ୍ତ ହେବା+ (ମଦିରା—ସ୍ତ୍ରୀ) କରଣ. ଇର)—ମତ୍ତତାଜନକ—Intoxicating.

**ମଦିରା**—ସଂ. ବିଣ. ସ୍ତ୍ରୀ ( ମଦିର+ଆ )—ମଦିରର ସ୍ତ୍ରୀଲିଙ୍ଗ—
Madirā Feminine of Madira. ସଂ. ବି—୧ । ବାରୁଣୀ ମଦ; ମଦ—1. Wine; a kind of spirituous liquor. [ଦ୍ର—ମଦିରା ପ୍ରଧାନତଃ ୨ ଶ୍ରେଣୀରେ ବିଭକ୍ତ । ୧. ଯାହାକୁ ନିଆଁରେ ବାଷ୍ପ ଦ୍ୱାରା ବକ ଯନ୍ତ୍ର ସାହାଯ୍ୟରେ ବାହାର କରାଯାଏ; ଏଥିର ନାମ ଅଭିସ୍ରବିତ, ଯଥା—ଅରଖି ମଦ। ୨. ଯାହାକୁ ସଢ଼ାଇ କରି ତିଆର କରାଯାଏ । ଏଥିର ନାମ ପର୍ଯ୍ୟୁସିତ; ଯଥା—ତାଡ଼ି । ଏ ଦୁଇ ପ୍ରକାର ମଦିରା ଉତ୍ତେଜକ, ଦାହକ, କଷାୟ ଓ ମଧୁର । ବୈଦିକ ଯୁଗରେ ସୋମ ଲତାକୁ ଛେଚି ତହିଁର ରସ ତୁପୁଡ଼ି କେତେ ଦିନ ରଖାଗଲା ପରେ ତାହା ସଢ଼ି ଯାଇ ମାଦକ ହେଉଥିଲା । ଯଜୁର୍ବେଦରେ ଯବ ସୁରାର ଉଲ୍ଲେଖ ଅଛି । ବୈଦ୍ୟକରେ ସୁରା, ବାରୁଣୀ, ଶୀଧୁ, ଆସବ, ମାଧ୍ୱୀକ, ଗୌଡ଼ୀ, ପୈଷ୍ଟୀ, ମାଧ୍ୱୀ, ହାଲା, କାଦମ୍ବରୀର ନାମ ମିଳେ । ଜଟାଧରରେ ମଧ୍ୱୀକ, ପାନାସ, ଦ୍ରାକ୍ଷ, ଖର୍ଜୁର, ତାଲ, ଐକ୍ଷବ, ମୈରେୟ, ମାକ୍ଷିକ, ଟାଂକ, ମଧୂକ, ନାରିକେଲଜ, ଅନ୍ନବିକାରୋତ୍ଥ, ଏହି ୧୨ ପ୍ରକାର ମଦିରାର ଉଲ୍ଲେଖ ଅଛି । ଏଥିରୁ ଖର୍ଜୁର ଓ ତାଲ ଶ୍ରେଣୀର ମଦ୍ୟ ପର୍ଯ୍ୟୁସିତ ଓ ଅନ୍ୟମାନ ଅଭିସ୍ରବିତ । ଏହା ଛଡ଼ା କ୍ୱାଥରୁ ପ୍ରସ୍ତୁତ ଏକ ପ୍ରକାର ମଦିରାକୁ ଅରିଷ୍ଟ କହନ୍ତି । ଧାନ ବା ଚାଉଳର ମଦିରାକୁ ସୁରା, ଯବର ମଦିରାକୁ କୋହଲ, ଗହମର ମଦିରାକୁ ମଧୂଳିକା, ମିଠା ରସର ମଦିରାକୁ ଶୀଧୁ, ଗୁଡ଼ର ମଦିରାକୁ ଗୌଡ଼ୀ, ଦ୍ରାକ୍ଷାର ମଦିରାକୁ ମାଧ୍ୱୀକ କହନ୍ତି । ବୈଦ୍ୟଶାସ୍ତ୍ର ମତରେ ବିଭିନ୍ନ ମଦିରାର ବିଭିନ୍ନ ଗୁଣ ଅଛି ଓ ତହିଁର ପ୍ରୟୋଗ ଭିନ୍ନ ଭିନ୍ନ ଅବସ୍ଥାରେ ଉପକାରକ ବୋଲି ଲେଖା ଅଛି—ହି. ଶ] ୨ । ରକ୍ତ ଖଦିର—2. Red catechu. ୩ । ଦ୍ୱାବିଂଶତି ଅକ୍ଷର ଯୁକ୍ତ ଛନ୍ଦୋବିଶେଷ—3. Name of a Sanscrit metre with 22 letters. [ଦ୍ର—ଏଥିର ପ୍ରତି ଚରଣରେ ୭ ଭଗଣ ଓ ଅନ୍ତରେ ୧ ଗୁରୁ ବର୍ଣ୍ଣ ଥାଏ—ହି. ଶ]

**ମଦିରାକ୍ଷ**—ସଂ. ବିଣ ପୁଂ (ବହୁବ୍ରୀହି; ମଦିର=ମତ୍ତ ଖଞ୍ଜନ+ଅକ୍ଷି, ଖଞ୍ଜନ
Madirāksha ପରି ଯାହାର )—ଖଞ୍ଜନନୟନ, ସୁଲୋଚନ—
(ମଦିରେକ୍ଷଣ—ଅନ୍ୟରୂପ) (a person) With charming
ମଦିରାକ୍ଷୀ } ସ୍ତ୍ରୀ eyes (like those of a wag-tail).
ମଦିରେକ୍ଷଣା }

**ମଦିରା ଗୃହ**—ସଂ. ବି—୧ । ମଦ ଖଟି; ମଦ ଦୋକାନ—1. A tavern; wine shop; grog-shop.
Madirā gruha ୨ । ମଦ ଭାଟି—2. A distillery
ଅନ୍ୟରୂପ

**ମଦୀୟ**—ସଂ. ବିଣ (ଅସ୍ମଦ୍+ସମ୍ବନ୍ଧାର୍ଥେ.ଈୟ) —୧ । ମତ୍ ସମ୍ବନ୍ଧୀୟ;
Madiya ମୋ ସମ୍ବନ୍ଧୀୟ—1. Relating to me.
(ମଦୀୟା—ସ୍ତ୍ରୀ) ୨ । ମୋର—2. Mine.

**ମଦୀୟୂନ୍**—ବୈଦେ. ବିଣ (ଫା)—ଦେଣଦାର; ଋଣଗ୍ରସ୍ତ—
Madiyūn Indebted; involved in debt.
দেনদার **मदीयून**

**ମଦୁଆ**—ଦେ. ବିଣ. ପୁଂ—୧ । ମଦ ସମ୍ବନ୍ଧୀୟ—1. Relating to
Maduā wine. ୨ । ପାନାସକ୍ତ—2. Addicted to
মহুয়া, মদো drinking; sottish. ବି—୧ । ମଦଖୋର—
**मदका पेसा** 1. Drunkard; a sot (ଭୂ—କୁରୁ ପାଣ୍ଡୁ ଦୁଇ
মহুয়া **मडुआ** ସେନାଏତ ମଦୁଆ, ପ୍ରାୟେ ଯୁଦ୍ଧ ଦାଣ୍ଡେ ଯୁଝିଲେ
(ମଦୋଇ—ସ୍ତ୍ରୀ) ହୋଇ ଠିଆ । କୃଷ୍ଣସିଂହ. ମହାଭାରତ ଭୀଷ୍ମ ।)
মহুয়া, মদো, মোদো ୨ । ଗାଳି ବିଶେଷ—2. A term of
**मद्‌खोर** abuse.

**ମଦୁଆ ଗନ୍ଧ**—ଦେ. ବି—୧ । ମଦର ଗନ୍ଧ—1. The smell of
Maduā gandha wine. ୨ । ମଦ୍ୟ ପରି ଗନ୍ଧ—2. Wine-
মহুয়া গন্ধ like smell; a smell resembling that of
**मद्‌की गंध** wine.

**ମଦୁଡ଼**—ଦେ. ବି—ମଲ୍ଲମାନଙ୍କ ଦ୍ୱାରା ଭୂମିକୁ ଆଘାତ—The strik-
Madurda ing of the ground by athletes.
(ଭୂ—ଦାଣ୍ଡ ପେଲି ସାରଣ ମାଇଲେ ମଦୁଡ଼, ଭୂମେ ପଡ଼ ପାଟେ ଛେଚଲେ ପିଠି ହାଡ଼ । କୃଷ୍ଣସିଂହ. ମହାଭାରତ ସଭା ।)

**ମଦୁରା**—ଦେ. ବି (ନାମ) ( ସଂ. ମଧୁରା )—ଦକ୍ଷିଣ ଭାରତର ଗୋଟିଏ
Madurā ବୃହତ୍ ନଗର—Name of a big town in
মহুরা southern India. [ ଦ୍ର—ଏହା ମାନ୍ଦ୍ରାଜଠାରୁ ୩୪୮
**मदुरा** ମାଇଲ୍ ଦୂରରେ ଅବସ୍ଥିତ । ଏହାର ପ୍ରାଚୀନ ନାମ ଦକ୍ଷିଣ ମଥୁରା । ଏହା ପାଣ୍ଡ୍ୟ ରାଜାମାନଙ୍କର ରାଜଧାନୀ ଥିଲା । ଏଠାର ଦେବ ମନ୍ଦିର ଜଗତ୍ ବିଖ୍ୟାତ । ମନ୍ଦିରର ଏକ ଭାଗରେ ମୀନାକ୍ଷୀ ଦେବୀ ଓ ଅନ୍ୟ ଭାଗରେ ସୁନ୍ଦରେଶ୍ୱର ମହାଦେବ ପ୍ରତିଷ୍ଠିତ । ମନ୍ଦିରଟି ନାନା କାରୁକାର୍ଯ୍ୟ ବିମଣ୍ଡିତ —ମଦନମୋହନ. ତୀର୍ଥ ଦର୍ଶନ ।]

**ମଦୋତ୍କଟ**—ସଂ. ବିଣ. ପୁଂ—୧ । ମଦୋଦ୍ଧତ; ମଦଗର୍ବିତ; ଗର୍ବୋନ୍ମତ୍ତ—
Madotkaṭa 1. Maddened with pride; arrogant.
(ମଦୋତ୍କଟା—ସ୍ତ୍ରୀ) ୨ । ମତୁଆଲ—2. Intoxicated with drink. ୩ । ମଦସ୍ରାବ ଯୋଗୁଁ ଅଦମ୍ୟ (ହସ୍ତୀ)—3. (elephant) Restive on account of rut.
ବି—ମତ୍ତହସ୍ତୀ—An elephant in rut.

**ମଦୋତ୍କଟା**—ସଂ. ବି. ସ୍ତ୍ରୀ (ମଦୋତ୍କଟ+ସ୍ତ୍ରୀ. ଆ)—ସୁରା; ମଦ୍ୟ—
Madotkaṭā Wine; spirituous liquor.

**ମଦୋଦଗ୍ର**—ସଂ. ବିଣ. ପୁଂ (ତୃତୀୟା ତତ୍; ମଦ+ଉଦଗ୍ର )—
Madodagra ୧ । ଗର୍ବୋଦ୍ଧତ; ମଦମତ୍ତ; ମଦଗର୍ବିତ—
ମଦୋଦ୍ଧତ } ଅନ୍ୟରୂପ 1. Intoxicated with arro-
ମଦୋନ୍ମତ୍ତ } gance. ୨ । ମଦସ୍ରାବ ଯୋଗୁଁ ଅଦମ୍ୟ

ମଦୋଦଗ୍ରା } ସ୍ତ୍ରୀ (ହସ୍ତୀ)—2. ( elephant ) Excited
ମଦୋଦ୍ଧତା } by being in rut. ୩ । ମତ୍ତତାଯୋଗୁଁ
ମଦୋନ୍ମତ୍ତା } ବାହ୍ୟଜ୍ଞାନଶୂନ୍ୟ—3. Maddened.

ମଦ୍ଗୁର—ସଂ. ବି—ମଦ୍‌ଗୁର (ଦେଖ)
Madgura Mad-gura (See).

ମଦ୍ଧିକ—ସଂ. ବି—ଦ୍ରାକ୍ଷାରୁ ପ୍ରସ୍ତୁତ ମଦ (ହ୍ର. ଶ)—
Maddhika Wine made from grapes.

ମଦ୍ଧିତ—ସଂ. ବି. ( ୬ଷ୍ଠୀତତ୍; ଅସ୍ମଦ୍+ହିତ )—ମୋର ମଙ୍ଗଳ—
Maddhita My welfare.

ମଦ୍ୟ—ସଂ. ବି (ମଦ୍. ଧାତୁ ଣିଚ୍; ମଦ. ଧାତୁ=ମତ୍ତ କରିବା+କର୍ତ୍ତୃ.ଯ)—
Madya ୧ । ମଦ; ମଦିରା; ସୁରା—1. Wine. ୨ । ରାସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ଆସବ—2. Extract made by chemical process. [ ଦ୍ର—ମଦିରା ତଳେ ଟୀକା ଦେଖ; ମତାନ୍ତରରେ ମଦ୍ୟ ଦ୍ୱାଦଶ ପ୍ରକାର; ଯଥା—୧—ମାଧ୍ୱିକ ବା ମାଧ୍ୱୀ—ମହୁରୁ ପ୍ରସ୍ତୁତ, ୨—ଐକ୍ଷବ—ଆଖୁ ରସରୁ ପ୍ରସ୍ତୁତ, ୩ । ଦ୍ରାକ୍ଷବ—ଅଙ୍ଗୁରରୁ ପ୍ରସ୍ତୁତ, ୪—ତାଳ—ତାଳ ଗଛର ରସରୁ ପ୍ରସ୍ତୁତ, ୫ । ଖାର୍ଜୁର—ଖଜୁରି ଗଛର ରସରୁ ପ୍ରସ୍ତୁତ, ୬ । ପାନସ—ପଣସ ଫଳରୁ ପ୍ରସ୍ତୁତ, ୭ । ମୈରେୟ—ଧାଇଫୁଲ ଓ ଗୁଡ଼ରୁ ପ୍ରସ୍ତୁତ, ୮ । ଯାହିକ—ଏକପ୍ରକାର ନୀଳବର୍ଣ୍ଣ ମଧୁମକ୍ଷିକା ସଂଗୃହୀତ ମଧୁ, ୯ । ସୌମ୍ୟ ବା ଟାଙ୍କ—ସୋମଲତା ରସରୁ ପ୍ରସ୍ତୁତ, ୧୦ । ମଧୂକ ବା ମାଧୂକୀ—ପୁଷ୍ପ ( ମହୁଲ ) ରସରୁ ପ୍ରସ୍ତୁତ, ୧୧ । ନାରିକେଳଜ—ନଡ଼ିଆ ଗଛର ଅଙ୍କୁରା ଖୋସାର ଅଗ କାଟିଲେ ତହିଁରୁ ଝରିବା ରସ, ୧୨ । ଅନ୍ନ ବିକାରୋତ୍ଥ—ଚାଉଳ ଆଦିକୁ ସିଝାଇ ବାଖର ଦେଇ ସଢ଼ାଇ ବକଯନ୍ତ୍ରଦ୍ୱାରା ଅରକ ବାହାର କରି ତିଆର କରାଯିବା ମଦ୍ୟ ।

ବୃକ୍ଷ, ପୁଷ୍ପ, ଫଳ ଓ ଶସ୍ୟ ଆଦିର ରସକୁ ସଢ଼ାଇଲେ ସେଥିରୁ ହେବା ପାନୀୟକୁ ମଦ ବୋଲାଯାଏ ଓ ଏହାକୁ ଖାଇଲେ ନିଶା ହୁଏ । ରାତିରେ ଝରିଥିବା ଖଜୁରି ଆଦିର ସଦ୍ୟ ରସରେ ନିଶା ନ ଥାଏ, କିନ୍ତୁ ତାହା ବାସି ହେଲେ, ଅର୍ଥାତ୍ ରାତିରେ ଝରିଥିବା ରସରେ ସୂର୍ଯ୍ୟକିରଣ ପଡ଼ିଲେ ସେଥିରେ ନିଶା ହୁଏ । ଆମ ଦେଶରେ ଖଜୁରି ଗଛର ବେକ ପାଖ କନ୍ଦାକୁ କ୍ଷତ କରି ଯେଉଁ ରସ ତାଡ଼ି ବାହାର କରନ୍ତି, ଉତ୍ତରଭାରତରେ ତାଳ ଗଛରୁ ସେହିପରି ତାଡ଼ି ହୁଏ । ମାନ୍ଦ୍ରାଜ ଅଞ୍ଚଳରେ ନଡ଼ିଆ ଗଛର ଅଙ୍କୁରା ଖୋସାର ଅଗ କାଟିଲେ ସେଥିରୁ ଯେଉଁ ରସ ବାହାରେ, ସେ ରସରୁ ତାଡ଼ି ହୁଏ । ଇଉରୋପ ଆଦିରେ ଦ୍ରାକ୍ଷା ବା ଅଙ୍ଗୁର ରସକୁ ସଢ଼ାଇ ବକ ଯନ୍ତ୍ରଦ୍ୱାରା ଅରକ କାଢ଼ି ମଦ ପ୍ରସ୍ତୁତ ହୁଏ । ଚାଉଳ, ଯବ ଓ ଗହମ ଆଦିକୁ ସିଝାଇ ତାକୁ ସଢ଼ାଇ ସେଥିରୁ ଅରକ ବାହାର କରି ମଦ ତିଆର କରାଯାଏ । ଗଡ଼ଜାତରେ ମହୁଲ ଫୁଲକୁ ପାଣିରେ ସିଝାଇ ତାକୁ ସଢ଼ାଇ ସେଥିରୁ ମହୁଆ ମଦ ତିଆର କରାଯାଏ ଓ ଚାଉଳକୁ ରାନ୍ଧି ସଢ଼ାଇ ହାଣ୍ଡିଆ ମଦ ପ୍ରସ୍ତୁତ ହୁଏ । ମହୁରୁ ଓ ଆଖୁ ଦୋରୁଅରୁ ମଧ୍ୟ ମଦ ହୁଏ । ସବୁ ମଦର ପ୍ରଧାନ ଉପାଦାନ ମିଠା ପଦାର୍ଥ ଓ ତାହା ସଢ଼ିଗଲେ ତାଡ଼ି ହୁଏ ଓ ସେଥିରୁ ବାହାରିବା ଅରକରେ ନିଶା ହୁଏ । ରୋଗବିଶେଷରେ ଓ ଧାତୁଦୌର୍ବଲ୍ୟାଦିରେ ଚିକିତ୍ସକମାନେ ରୋଗୀକୁ ସାମାନ୍ୟ ପରିମାଣରେ ମଦ୍ୟ ସେବନ କରିବାକୁ ଉପଦେଶ ଦିଅନ୍ତି ଓ ତଦ୍ୱାରା ଉପକାର ଦର୍ଶେ; କିନ୍ତୁ ଅଭ୍ୟାସପୂର୍ବକ ମଦ୍ୟପାନ ଦ୍ୱାରା ମନୁଷ୍ୟ ନିଶାରେ ହିତାହିତଜ୍ଞାନଶୂନ୍ୟ ହୁଏ ଓ ସର୍ବସ୍ୱ ବିକି ମଦ୍ୟ ଖାଇବାକୁ ଅଗ୍ରସର ହୁଏ ଓ ମଦନିଶାର ଘୋରରେ ଉନ୍ମତ୍ତ ଓ ଅଜ୍ଞାନ ହୁଏ । ଅତ୍ୟଧିକ ମଦ୍ୟପାନରୁ ମହାତ୍ୟୟ ଆଦି ନାନାବିଧ ରୋଗ ଜନ୍ମି ଶେଷରେ ମୃତ୍ୟୁ ମଧ୍ୟ ଘଟେ ।

ଆମ ଦେଶରେ ପାଶ୍ଚାତ୍ୟ ସଭ୍ୟତାର ବିସ୍ତାର ହେବା ସଙ୍ଗେ ସଙ୍ଗେ ମଦ୍ୟପାନ ବୃଦ୍ଧିଲାଭ କରିଥିବାର ଦେଖାଯାଏ । ପୂର୍ବେ ବୈଦିକ ଯଜ୍ଞରେ ସୋମଲତାକୁ ଛେଚି, ଚିପୁଡ଼ି ଓ ସଢ଼ାଇ ପ୍ରସ୍ତୁତ କରାଯିବା ମଦ୍ୟ ବ୍ୟବହୃତ ହେଉଥିଲା । ତନ୍ତ୍ର ଯୁଗରେ ମଧ୍ୟ ପୂଜାଆଦିରେ ଓ ପଞ୍ଚମକାର ସାଧନାରେ ମଦ୍ୟର ବ୍ୟବହାର ପ୍ରଚଳିତ ହେଲା । ମଦ୍ୟପାନ ପାଶ୍ଚାତ୍ୟ ସଭ୍ୟତା ଯୁଗରେ ଏତେ ପରିମାଣରେ ବୃଦ୍ଧିଲାଭ କରିଥିବାର ଦେଖି କେତେକ ସଭ୍ୟଜାତି ତାହା ବନ୍ଦ କରିବା ପାଇଁ ନାନାପ୍ରକାର ଚେଷ୍ଟା କରୁଥିବାର ଦେଖାଯାଏ ଓ ମାଦକ ନିବାରଣାର୍ଥ ଦଳବଦ୍ଧ ଚେଷ୍ଟା ଲାଗିଅଛି । ମଦ ଆଦି ମାଦକ ଦ୍ରବ୍ୟ ପ୍ରସ୍ତୁତ, ଉତ୍ପନ୍ନ ଓ ବିକ୍ରି ହେବା ସମ୍ବନ୍ଧେ ଇଂରାଜ ସରକାର ଖୁବ୍ କଟକଣା କରିଅଛନ୍ତି । ପରନ୍ତୁ ଭାରତରେ ଏହି ପାଶ୍ଚାତ୍ୟ ସଭ୍ୟତାର ଯୁଗରେ ମଦ୍ୟପାନ ଦୋଷ ପ୍ରାୟ ସବୁ ସମାଜର ଉଚ୍ଚତମ ସ୍ଥାନମାନଙ୍କୁ କଳୁଷିତ କରିବା ଦେଖା ଯାଇଅଛି । ]

ମଦ୍ୟପ—ସଂ ବିଣ. ପୁଂ(ମଦ୍ୟ+ପା ଧାତୁ+କର୍ତ୍ତୃ. ଅ)—ଯେ ମଦ ପିଏ; ମଦୁଆ—
Madyapa Drunkard; habituated to drink.
(ମଦ୍ୟପାୟୀ—ଅନ୍ୟରୂପ) [ମଦ୍ୟପା, ମଦ୍ୟପାୟିନୀ—ସ୍ତ୍ରୀ]

ମଦ୍ୟପାନ—ସଂ. ବି(ଷଷ୍ଠୀ ତତ୍)—ମଦ ପିଇବା—
Madya pāna Drinking of wine.

ମଦ୍ୟପୀ—ଦେ.ବିଣ ଓ ବି (ସଂ• ମଦ୍ୟପ)—ମଦୁଆ—Drunkard. (ଉ—
Madyapi ବ୍ରହ୍ମଘାତୀ ମଦ୍ୟପୀ ନ୍ୟାସ ଅପହାରୀ, ମାତୃ ଅଗ୍ନି ଯେ ଯାତାନ ପିତୃତ୍ୟାଗୀ ପାପକାରୀ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।)
मतबाला

ମଦ୍ୟ ବ୍ୟବସାୟୀ—ସଂ. ତ—ଯେ. ମଦର ବାଣିଜ୍ୟ କରେ—
Madya byabasāyi Wine merchant.

ମଦ୍ର—ସଂ. ବି (ମଦ୍. ଧାତୁ=ହୃଷ୍ଟ ହେବା+ଭାବ.ର)—୧। ହର୍ଷ; ଆନନ୍ଦ—
Madra 1.Gay;delight. ୨ । (+କରଣ.ଅ) ଶୁଭ; ମଙ୍ଗଳ—2, Bliss;prosperity. ୩ । ପଞ୍ଜାବର ଅନ୍ତର୍ଗତ ପ୍ରାଚୀନ ଦେଶବିଶେଷ — 3. Name of a province or kingdom in ancient India. [ଦ୍ର—ଏହା ଇରାବତୀ ଓ ଚନ୍ଦ୍ରଭାଗା ନଦୀଦ୍ୱୟର ମଧ୍ୟରେ ଅବସ୍ଥିତ ଥିଲା ।]

ମଦ୍ରକ—ସଂ. ବି (ମଦ୍ର+କ) ମଦ୍ର ଦେଶଜାତ—
Madraka Born or produced in 'Madra' country.

**ମଦ୍ରରାଜ**—ମଦ୍ରଦେଶର ରାଜା; ଅଶ୍ୱପତି ନାମକ ରାଜା—
Madrarāja A king of Madra country.

**ମଦ୍ର ସୁତା**—ସଂ. ବି—ମାଦ୍ରୀ; ମଦ୍ରରାଜତନୟା; ପାଣ୍ଡୁ ରାଜାଙ୍କର ପତ୍ନୀ;
Madra sutā ନକୁଳ ସହଦେବଙ୍କ ମାତା—A wife of king Pāṇḍu; the mother of the two youngest Pandaba brothers.

**ମଦ୍ରାସା**—ବୈଦେ. ବି—(ଅ)—ଅରବୀ ଓ ପାରସୀ ଭାଷା ଶିକ୍ଷା ଦିଆ-
Madrāsā ଯିବା ବିଦ୍ୟାଳୟ—A school where Arabic
[ମାଦ୍ରାସା मदरसा] or Persian or both are taught.

**ମଧୁ**—ସଂ. ବି—(ମନ୍ ଧାତୁ=ବୋଧ କରିବା+କର୍ତ୍ତୃ. ଉ; ନିପାତନ)—୧ ।
Madhu ମହୁ—1. Honey. [ଦ୍ର—ମଧୁମକ୍ଷିକା ନାମକ ପକ୍ଷ-ଯୁକ୍ତ କୀଟଗଣ ପୁଷ୍ପମାନଙ୍କ ମଧ୍ୟରୁ ଏକ ପ୍ରକାର ମିଷ୍ଟରସ ବା ମକରନ୍ଦ ସଂଗ୍ରହ କରି ସଞ୍ଚୟ କରନ୍ତି । ଏହାକୁ ମଧୁ ବୋଲି ଯାଏ । ଏହା ମଧୁର ରସ, ଏବଂ ଏହା ଖାଦ୍ୟରୂପେ ଓ ବିଶେଷତଃ ନାନା ଔଷଧର ଅନୁପାନରୂପେ ବ୍ୟବହୃତ ହୁଏ । କଲିଚୁନ ସଙ୍ଗେ ମଧୁ ମିଶାଇଲେ ଯେଉଁ ପ୍ରଲେପ ହୁଏ ତାହା ଅତିଶୀଘ୍ର କଠିନ ହୋଇ ଯାଏ । ଉକ୍ତ ପ୍ରଲେପ କଠିନ ନ ହେଉଣୁ ବାଗୀ, ଗାଲୁଆ, ଓ ଗିଲଟି ଉପରେ ବୋଳିଲେ ଉକ୍ତ ବ୍ରଣମାନ ବସିଯାଏ । ବିଷାକ୍ତ କୀଟାଦିଙ୍କ ଦଂଶନ ଜନିତ କ୍ଷତ ସ୍ଥାନରେ ମଧୁ ଲଗାଇଲେ ଜ୍ୱାଳାର ନିବୃତ୍ତି ହୁଏ । ମଧୁରୁ ପ୍ରସ୍ତୁତ ଆସବ ହୋମିଓପାଥିରେ ପ୍ରୟୋଗ କରାଯାଏ (ଇଂ Apis mother tincture). ସମାନ ପରିମାଣରେ ମଧୁ ଓ ଘୃତ ମିଶାଇ ଖାଇଲେ ତାହା ବିଷପରି ଅନିଷ୍ଟ କରେ । ମଧୁସଂଗ୍ରହକାରୀ ମକ୍ଷିକାମାନଙ୍କର ନାମ ଅନୁସାରେ ମଧୁର ଭିନ୍ନ ଭିନ୍ନ ନାମ ଅଛି ଓ ବୈଦ୍ୟ-ଶାସ୍ତ୍ରରେ ସେମାନଙ୍କ ଗୁଣ ମଧ୍ୟ ପୃଥକ୍ ଥିବା ଲେଖାଅଛି—
୧ । ମାକ୍ଷିକ—ନୀଳବର୍ଣ୍ଣ ମକ୍ଷିକାଦ୍ୱାରା ସଂଗୃହୀତ; ଏହାର ବର୍ଣ୍ଣ ତୈଳପରି । ୨ । କ୍ଷୌଦ୍ର—ପିଙ୍ଗଳବର୍ଣ୍ଣ ମକ୍ଷିକାଦ୍ୱାରା ସଂଗୃହୀତ; ଏହା କପିଳ ବର୍ଣ୍ଣ । ୩ । ଭ୍ରାମର—ଭ୍ରମରଦ୍ୱାରା ସଞ୍ଚିତ; ଶ୍ୱେତ-ବର୍ଣ୍ଣ । ୪ । ପୈତ୍ତିକ—ବାଘରା ବା ବଡ଼ ମହୁମାଛି ସଂଗୃହୀତ; ଏ ହଳଦିଆ । ୫ । ଛାତ୍ରକ—ବରୁଡ଼ିଙ୍କଦ୍ୱାରା ସଂଗୃହୀତ । ୬ । ଆର୍ଘ—ହଳଦିଆ ମାଛିଙ୍କଦ୍ୱାରା ସଂଗୃହୀତ । ୭ । ଔଦ୍ଦାଲକ—ଉଇଙ୍କଦ୍ୱାରା ସଂଗୃହୀତ । ୮ । ଦାଲକ—ବୃକ୍ଷ କୋଟରରେ ସଞ୍ଚିତ ଡାଳମହୁ । ପଦ୍ମଫୁଲରୁ ମହୁ ମାଛିମାନେ ଯେଉଁ ମହୁ ସଂଗ୍ରହ କରନ୍ତି ତାହାକୁ ପଦ୍ମମଧୁ ବୋଲିଯାଏ । ଏହା ନେତ୍ରରୋଗରେ ଉପକାରୀ । ଗାଢ଼ ମହୁକୁ କିଛି ଦିନ ରଖି ଦେଲେ ତାହାର ତଳ ଦେଶରେ ଗୁଡ଼ ଦାନା ପରି କାଠୁଆ ଜିନିଷ ବସିଯାଏ । ଏହାକୁ ମଧୁଶର୍କରା ବୋଲିଯାଏ । ୨ । ଫୁଲ ମଧ୍ୟରେ ଥିବା ମକରନ୍ଦ—2. Nectar or sweet juice found inside flowers. ୩ । ମଦ; ମଦ୍ୟ—3. Wine, ୪ । ସୁମିଷ୍ଟ ରସ; ମଧୁର ରସ; ମିଠା—4. Sweet juice; things of sweet taste; sweets. ୫ । ଜଳ—5. Water. ୬ । ବସନ୍ତ କାଳ—6. The spring season. ୭ । କାମ-ଦେବଙ୍କ ଅନୁଚର—7. The companion of the God Cupid. ୮ । ମଧୁଦ୍ରୁମ; ଆମ୍ବଗଛ—8. Mango tree ୯ । ମହୁଲ ଗଛ—9. Mahwa; Bassia Latifolia (tree). ୧୦ । ଚୈତ୍ରମାସ—10. The lunar month of Chaitra. ୧୧ । ବିଷ୍ଣୁଙ୍କ କର୍ଣ୍ଣମଳରୁ ଜାତ ଦୈତ୍ୟବିଶେଷ—11. Name of a demon said to have sprung from the ear-wax of Bishṇu. [ ଦ୍ର—ଏ ପ୍ରଳୟ ପୟୋଧି ଜଳଶାୟୀ ବିଷ୍ଣୁଙ୍କ ନାଭିରୁ ବାହାରିଥିବା ପଦ୍ମ ମଧ୍ୟସ୍ଥ ବ୍ରହ୍ମାଙ୍କୁ ବଧ କରିବାକୁ ଉଦ୍ୟତ ହେବାରୁ ଏହାକୁ ଓ ଏହାର ଭାଇ କୈଟଭକୁ ବିଷ୍ଣୁ ସଂହାର କରିଥିଲେ । ଏଥିପାଇଁ ବିଷ୍ଣୁଙ୍କ ନାମ ମଧୁସୂଦନ । ଏହାର ମେଦରୁ ମେଦିନୀ ବା ପୃଥିବୀ ଜାତ ହେଲା । ଚଣ୍ଡୀ ବା ଦେବୀମାହାତ୍ମ୍ୟର ପ୍ରଥମ ଅଧ୍ୟାୟରେ ମଧୁକୈଟଭବଧ ବିଷୟ ବର୍ଣ୍ଣିତ ହୋଇ-ଅଛି । ] ୧୨ । ଯଦୁବଂଶୀୟ ଜଣେ ରାଜା—12. Name of a king of the Jadu dynasty. [ଦ୍ର—ଏହାଙ୍କ ନାମ ଅନୁସାରେ ଏହାଙ୍କର ବଂଶଧରମାନେ ମାଧବ ନାମରେ ଖ୍ୟାତ ହୋଇଥିଲେ ।] ୧୩ । ଜଣେ ରାକ୍ଷସରାଜ—13. Name of a demon king. [ଦ୍ର—ଏ ମଥୁରା ନଗରୀକୁ ସ୍ଥାପନ କରିଥିବାରୁ ମଥୁରାର ଏକ ନାମ ମଧୁପୁରୀ । ଏ ରାବଣର ମାଉସୀଝିଅ ଭଉଣୀ କୁମ୍ଭୀନସୀକୁ ହରଣ କରିବାରୁ ରାବଣ ମଧୁପୁରକୁ ଆକ୍ରମଣ କରିଥିଲା, କିନ୍ତୁ କୁମ୍ଭୀନସୀର ଅନୁରୋଧରେ ମଧୁ ଓ ରାବଣଙ୍କ ମଧ୍ୟରେ ସନ୍ଧି ହେଲା । ଏ ରାକ୍ଷସ କଠୋର ତପସ୍ୟାଦ୍ୱାରା ମହାଦେବଙ୍କଠାରୁ ଗୋଟିଏ ଅମୋଘ ଶୂଳ ପ୍ରାପ୍ତ ହୋଇ ତଦ୍ଦ୍ୱାରା ଜଗତ୍ ଜୟ କରିଥିଲା । ଏହାର ପୁତ୍ରର ନାମ ଲବଣ ଓ କନ୍ୟାର ନାମ ମଧୁମତୀ । ସୂର୍ଯ୍ୟ-ବଂଶୀୟ ରାଜା ହର୍ଯ୍ୟଶ୍ୱଙ୍କ ସଙ୍ଗେ ମଧୁମତୀର ବିବାହ ହୋଇ-ଥିଲା । ଏ ରାକ୍ଷସ ସ୍ୱୀୟ ତପସ୍ୟା ଓ ପୁଣ୍ୟବଳରେ ବରୁଣ ଲୋକ ପ୍ରାପ୍ତ ହୋଇଥିବାର ପୁରାଣରେ ଲେଖା ଅଛି । ହ୍ରି.ଶ ।]

ମଧୁ
ମଧ୍ଵ

ସଂ. ବିଣ—୧ । ମିଷ୍ଟ; ମିଠା—1. Sweet. ୨ । ସ୍ନିଗ୍ଧ—2. Mild; agreeable. ଦେ. ବି—୧ । ମଧୁବନ; ରାବଣର ଉଦ୍ୟାନ—1. The pleasure-garden of the demon Rābaṇa. (ଉ—ବେଭାରେ ବୋଲନ୍ତି ହରି, ବଲେ ମଧୁ ନାଶ କରି । ଉଞ୍ଜ. ବୈଦେହୀଶବିଳାସ । ) ୨ । ମଧୁସୂଦନର ଡାକ ନାମ—2. Name for calling Madhusūdana. ୩ । ଦ୍ୱାଦଶ ଗୋପାଳ ମଧ୍ୟରୁ ଜଣେ—3. One of the twelve companion-cowherds of Śrīkṛushṇa. [ ଦ୍ର—ବାରପୁତ ତଳେ ଟୀକା ଦେଖ । ] ୪ । ପୁରୁଷଙ୍କୁ ଦିଆଯିବା ନାମ—4. A name given to males.

ମଧୁ ଅମାବାସ୍ୟା—ସ. ବ—ଚୈତ୍ର ଅମାବାସ୍ୟା—The new-moon
Madhu amābāsyā of Chaitra.

ମଧୁ(ଧୂ)କ—ସ. ବ ( ମନ୍ ଧାତୁ+କର୍ତ୍ତୃ. ଉକ, ଉକ )—୧ । ମହୁଲ
Madhu(dhū)ka ଗଛ ଓ ଫୁଲ—1. Bassia Latifolia (tree and flower). ୨ । ଯଷ୍ଟି ମଧୁ; ଯାଠି ମହୁ—2 Glycyrhiza Glabra. ୩ । ମହୁଲରୁ ପ୍ରସ୍ତୁତ ମଦ—3. Wine made from Mahula flowers. ( ଉ—ମଧୂକ-ମଦସ୍ତ ଯାକେ ଉଲ୍ଲାସ ସରବେ । ସୁଧାନାଥ-ମହାଯାତ୍ରା ।)

ମଧୁ କଟା—ଦେ. ବଣ—ଯେ ମହୁ ଫେଣା କାଟି ମହୁ ସଂଗ୍ରହ କରେ—
Madhu kaṭā Collecting honey by cutting the honeycomb after scaring away the bees. (ଉ—ଦେଖିଅଛ ମଟମାଛି ବ ହୋଇ ଗୋଷ୍ଠି, ମଧୁକଟା ଲୋକର ଜଅନ୍ତି ପ୍ରାଣକି । କୃଷ୍ଣସିଂହ. ମହାଭାରତ. ବନ ।)

ମଧୁ କଣ୍ଠ—ସ. ବଣ. ପୁଂ (ବହୁବ୍ରୀହି, ମଧୁ=ମିଷ୍ଟ ଅଟେ କଣ୍ଠ=ସ୍ୱର
Madhu kaṇṭha ଯାହାର )—୧ । ମିଷ୍ଟକଣ୍ଠସ୍ୱରଯୁକ୍ତ—1. Having a sweet tone or voice. ୨ । ମିଷ୍ଟଭାଷୀ—2. Of sweet speech. ଦେ. ବ—କୋଇଲି—The cuckoo.

ମଧୁ କଣ୍ଠ ଭାଷୀ—ଦେ. ବଣ. ସ୍ତ୍ରୀ ( ସ. ମଧୁ କଣ୍ଠ ଭାଷିଣୀ )—କୋଇଲି-
Madhu kaṇṭha bhāshī ସ୍ୱର ପରି କୋମଳ ଓ ସୁନ୍ଦର ଯାହାର କଣ୍ଠ ସ୍ୱର—(a woman) Having a sweet and melodious voice like that of a cuckoo. (ଉ—ଏହି ବନରେ ମଟର ମଧୁ ମାସେ ମଧୁର ମଧୁକଣ୍ଠ-ଭାଷୀ, ସୁଧାଂଶୁ-ପ୍ରଭା ସୁଧା-ପୁରେ ବସୁଧା-ମଣ୍ଡନା ସୁଖେ ଥିଲା ବସି । ଉଚ୍ଚ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

ମଧୁ କର—ସ. ବ. ପୁଂ (ମଧୁ+କୃ ଧାତୁ+କର୍ତ୍ତୃ. ଅ)—୧ । ଭ୍ରମର—
Madhu kara 1. Black bee. ୨ । [ ଭ୍ରମର ଯେପରି ନାନା ପୁଷ୍ପରୁ ମଧୁ ସଂଗ୍ରହ କରେ, ବାଣିଜ୍ୟତରୀ ସେହିପରି ନାନା ଦେଶରୁ ପଣ୍ୟ ସଂଗ୍ରହ କରେ । ] ବାଣିଜ୍ୟତରୀ—( ମଧୁକରୀ—ସ୍ତ୍ରୀ ) 2. Merchant vessel. ୩ । ବଲ୍ଲଭ; ପ୍ରଣୟୀ—3. Lover. ୪ । କାମୁକ ବ୍ୟକ୍ତି—4. A lustful person. ୫ । ଭୃଙ୍ଗରାଜ ଗଛ—5. Wadelia Calendulacea. ( tree ) ୬ । ନାଗର—6. A gallant. ଉ—ଯେ ମଧୁ ସଂଗ୍ରହ କରେ—Gathering honey.

ମଧୁକର ଡମ୍ବର—ସ. ବ ( ୬ଷ୍ଠୀ ତତ୍; ମଧୁକର+ଡମ୍ବର )—
Madhukara ḍambara ଭ୍ରମର ପୁଞ୍ଜ—A swarm of black bees.

ମଧୁକ(କୁ, କେ)ରୀ—ଦେ. ବ (ସ. ମାଧୁକରୀ; ମଧୁକର ଯେଉଁପରି ନାନା
Madhuka(ku, ke)rī ପୁଷ୍ପରୁ ମଧୁ ସଂଗ୍ରହ କରେ ସେହିପରି ମାଧୁକରୀ ବହୁ ସ୍ଥାନରୁ ଭିକ୍ଷାହାର ଏହା ସଂଗୃହୀତ ହେବାରୁ)—**ମଧୁକରୀ** ମାଧୁକରୀ; ଏକାଧିକ ସ୍ଥାନରୁ ସଂଗୃହୀତ (ରୁଟି ତରକାରୀ ଅନ୍ନ) ଭିକ୍ଷା କରି ବୃନ୍ଦାବନରେ ଭକ୍ତଙ୍କର ସଂଗ୍ରହ କରିବା ଭିକ୍ଷା—Alms (consisting of cooked food) collected from many doors by a beggar at Bṛundābana. (ଉ—ବ୍ରାହ୍ମଣ ବୃତ୍ତିକ ତ **ଅଣ୍ଣା** ଥିଲେ କରି, ମାଗିଲେ ସେ ନଗରେ ବୁଲି ମଧୁକରୀ । କୃଷ୍ଣସିଂହ. ମହାଭାରତ **ଆଦି** ।)

ମଧୁ କର୍କଟିକା—ସ. ବ—ମଧୁର ରସଯୁକ୍ତ ଏକ ପ୍ରକାର ଟଭା; ମିଠା
Madhu karkaṭikā ଟଭା ଲେମ୍ବୁ—A kind of sweet citron.
(ମଧୁ କର୍କଟୀ, ମଧୁର କର୍କଟିକା, ମଧୁର କର୍କଟୀ, ମଧୁର ଫଳା—ଅନ୍ୟରୂପ)

ମଧୁକ ସୁରା—ସ. ବ—ମହୁଲରୁ ପ୍ରସ୍ତୁତ ମଦ୍ୟ—Wine made from
Madhuka surā Mahula flowers.

ମଧୁକାର—ସ. ବ (ମଧୁ+କୃ ଧାତୁ+କର୍ତ୍ତୃ. ଅ)—ମହୁମାଛି (ହି. ଶ)—
Madhukāra Bee.

ମଧୁ କାଳ—ସ. ବ—ବସନ୍ତ ଋତୁ—
Madhu kāla The spring season.

ମଧୁକାଶ୍ରୟ—ସ. ବ ( ୬ଷ୍ଠୀ ତତ୍; ମଧୁକ+ଅଶ୍ରୟ )—
Madhukāsraya (ମଧୂଚ୍ଛ—ଅନ୍ୟରୂପ) ମହଣ—Bees-wax.

ମଧୁ କିରଣ—ସ. ବ (ବହୁବ୍ରୀହି; ମଧୁ=ସ୍ନିଗ୍ଧ ଅଟେ କିରଣ ଯାହାର)-
Madhu kiraṇa ଚନ୍ଦ୍ର—The moon.

ମଧୁ କୁକ୍କୁଟିକା—ସ. ବ—ଏକ ପ୍ରକାର ମଧୁର ଟଭା ଲେମ୍ବୁ—
Madhu kukkuṭikā A species of sweet citron.

ମଧୁ କୁଲ୍ୟା—ସ. ବ—ମଧୁପୂର୍ଣ୍ଣ କ୍ଷୁଦ୍ର ନଦୀ—A small river
Madhu kulyā full of honey. [ ଦ୍ର—ଏହିପରି ଘୃତ-କୁଲ୍ୟା, ଦଧିକୁଲ୍ୟା, ଦୁଗ୍ଧକୁଲ୍ୟା ଇତ୍ୟାଦି ଜୁଏ, ପୁରାଣ ଅନୁସାରେ ମଧୁକୁଲ୍ୟା କୁଶଦ୍ୱୀପର ଏକ ନଦୀ । ]

ମଧୁ କୃତ୍—ସଂ. ବ (ମଧୁ+କୃ ଧାତୁ+କର୍ତ୍ତୃ. କ୍ୱିପ୍)—ମଧୁକର; ଭ୍ରମର—
Madhu kṛut The black bee.

ମଧୁ କୈଟଭ—ସଂ. ବ—ବିଷ୍ଣୁଙ୍କ କର୍ଣ୍ଣମଳରୁ ଜାତ ଅସୁରଦ୍ୱୟ—
Madhu kaiṭabha The twin demons said to have spring from the ear-wax of Bishṇu. [ ଦ୍ର—ଏମାନେ ସୃଷ୍ଟିକାର୍ଯ୍ୟାରମ୍ଭ ପୂର୍ବରୁ ବ୍ରହ୍ମାଙ୍କୁ ମାରି ପକାଇବାକୁ ଉଦ୍ୟତ ହେବାରୁ ବିଷ୍ଣୁ ଏମାନଙ୍କୁ ବଧ କରିଥିଲେ ଓ ଏମାନଙ୍କ ମେଦରୁ ମେଦିନୀ ବା ପୃଥିବୀ ଜାତ ହେଲା; ଏଥିର ବିବରଣପାଇଁ ଚଣ୍ଡୀପୁରାଣ ୧ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।)

ମଧୁ କୈଟଭ ବିଧ୍ୱଂସୀ—ସଂ. ବ—ବିଷ୍ଣୁ—
Madhu kaiṭabha bidhwaṁsī Bishṇu.
(ମଧୁ କୈଟଭାରି; ମଧୁକୈଟଭଜିତ୍, ମଧୁକୈଟଭହନ୍ତା—ଅନ୍ୟରୂପ)

ମଧୁ କୋଷ—ସଂ. ବ—ମହୁ ଘର; ମହୁ ଫେଣା; ମହୁମାଛିମାନଙ୍କ ବସା-
Madhu kosha Honeycomb; bee-hive.
ମଧୁ କ୍ରମ, ମଧୁ ଜାଳକ, ମଧୁ ପଟଳ } ଅନ୍ୟରୂପ [ଦ୍ର—ମହୁମାଛିମାନେ ଏହା ନିର୍ମାଣ କରି ଏଥିରେ ରହନ୍ତି, ଡିମ୍ବ ରଖନ୍ତି ଓ ମହୁ ସଞ୍ଚୟ କରନ୍ତି । ଏଥିର ଘରଗୁଡ଼ିକ ଷଡ଼୍-

କୋଣ ଓ ପଉପାର୍ଶ୍ୱ । ଏ ପଦାର୍ଥଗୁଡ଼ିକ ଅଠାଳିଆ ବସ୍ତୁରେ ଜନ୍ମେ ଓ ଏହାକୁ ଗରମ ଜଳରେ ପକାଇଲେ ଏଥିରୁ ମହମ ବାହାରେ ।]

ମଧୁ କ୍ରୋଡ଼ା—ସଂ. ବି—ମଧୁ ମସ୍ତକ ( ଦେଖ )
Madhu krorḍā Madhu mastaka ( See )

ମଧୁ କ୍ଷୀର—ସଂ. ବି (ବହୁବ୍ରୀହି)—ଖଜୁରି ଗଛ (ହି. ଶ)—
Madhu kshīra Date palm tree.

ମଧୁ ଖର୍ଜ୍ଜୂରିକା—ସଂ. ବି—୧ । ଏକ ପ୍ରକାର ଖଜୁରି—1. A kind
Madhu kharjjūrikā of date fruit. ୨ । ମଧୁ କର୍କଟିକା—
(ମଧୁ ଖର୍ଜ୍ଜୂରୀ—ଅନ୍ୟରୂପ) 2. Madhu karkaṭikā (See)

ମଧୁ ଘୋଷ—ସଂ. ବି ( ବହୁବ୍ରୀହି; ମଧୁପର ଘୋଷ ଯାହାର ବା ମଧୁ-
Madhu ghosha କାଳରେ ଯେ ଘୋଷ କରେ )—କୋକିଳ ( ହି. ଶ )—Cuckoo.

ମଧୁ ଚକ୍ର—ସଂ ବି—ମହୁଫେଣା—Bee-hive.
Madhu chakra (ମଧୁଛତ୍ର, ମଧୁପଟଳ, ମଧୁସ୍ଥାନ, ମଧ୍ୱାଧାର—ଅନ୍ୟରୂପ)

ମଧୁ ଚନ୍ଦ୍ରମା—ସଂ. ବି—(ଆଧୁନିକ ବ୍ୟବହାର)—ଖ୍ରୀଷ୍ଟିଆନମାନଙ୍କ
Madhu chandramā ବିବାହର ଅବ୍ୟବହିତ ପରେ ଦମ୍ପତିଙ୍କ ନିରବଚ୍ଛିନ୍ନ ଏକତ୍ରାବସ୍ଥାନ କରିବା ଏକ ମାସ ସମୟ—(ବୈଦେଶିକ ଆଶା)—Honeymoon.

ମଧୁଜ—ସଂ. ବିଣ ( ମଧୁ+ଜନ୍ ଧାତୁ+କର୍ତ୍ତୃ. ଅ )—ମଧୁରୁ ଉତ୍ପନ୍ନ—
Madhuja Produced from honey. ବି—ମହମ—Wax; beeswax.

ମଧୁଜା—ସଂ. ବି. ସ୍ତ୍ରୀ ( ମଧୁ=ମଧୁ ଦୈତ୍ୟ+ଜନ୍ ଧାତୁ+କର୍ତ୍ତୃ. ଅ; ଏହା
Madhujā ମଧୁନାମକ ଦୈତ୍ୟର ମେଦରୁ ଉତ୍ପନ୍ନ ହୋଇ ଥିବାରୁ )—ପୃଥିବୀ—The earth.

ମଧୁଜିତ୍—ସଂ. ବି (ମଧୁ=ଦୈତ୍ୟ+ଜି ଧାତୁ=ଜିଣିବା+କର୍ତ୍ତୃ. କ୍ୱିପ୍)—
Madhujit ବିଷ୍ଣୁ—Bishṇu.
(ମଧୁମଥନ, ମଧୁଦଳନ—ଅନ୍ୟରୂପ)

ମଧୁ ଜୀବ—ସଂ. ବି ( ମଧୁ+ଜୀବ୍ ଧାତୁ+କର୍ତ୍ତୃ. ଅ )—ଭ୍ରମର—
Madhu jība The black bee.

ମଧୁ ଜୀରକ—ସଂ. ବି—ସଉପ (ହି. ଶ); ଶତପୁଷ୍ପା—
Madhu jīraka Dill seed.

ମଧୁ ତୃଣ—ସଂ. ବି ( ମଧୁ=ମିଷ୍ଟ+ତୃଣ )—ଆଖୁ—
Madhu truṇa Sugarcane.

ମଧୁତ୍ରୟ—ସଂ. ବି ( ମଧୁ=ମିଷ୍ଟରସ+ତ୍ରୟ=ତିନିଟି )—ମହୁ, ଘିଅ ଓ
Madhutraya ଚିନିର ସମାହାର—A mixture of honey,
(ମଧୁରତ୍ରୟ—ଅନ୍ୟରୂପ) ghee and sugar.

ମଧୁ ଦୀପ—ସଂ. ବି—କାମଦେବ ( ହି. ଶ )—
Madhu dīpa God Cupid.

ମଧୁ ଦୂତ—ସଂ. ବି ( ୬ଷ୍ଠୀ ତତ୍ )—ଆମ୍ବ ଗଛ ( ହି. ଶ )—
Madhu dūta Mango tree.

ମଧୁ ଦ୍ରୁ—ସଂ. ବି—ଭ୍ରମର(ହି.ଶ)—The black bee.
Madhudru (ମଧୁଲେହା—ଅନ୍ୟରୂପ)

ମଧୁ ଦ୍ରୁମ—ସଂ. ବି—୧ । ମହୁଲ ଗଛ—1. Bassia Latifolia.
Madhu druma ୨ । ( ମଧୁମାସରେ ବଉଳିବାରୁ )ଆମ୍ବ ଗଛ—2. Mango tree.

ମଧୁଦ୍ୱିଟ୍—ସଂ. ବି ( ମଧୁ=ଦୈତ୍ୟ+ଦ୍ୱିଷ୍ ଧାତୁ+କ୍ୱିପ୍, ମଧୁଦ୍ୱିଷ୍ ୧ମା,
Madhudwiṭ ୧ବ )—ବିଷ୍ଣୁ, ମଧୁସୂଦନ—Bishṇu.
(ମଧୁରିପୁ; ମଧୁମଥନ—ଅନ୍ୟରୂପ)

ମଧୁ ଧୂଳି—ସଂ. ବି—ଖଣ୍ଡ ଗୁଡ଼—Molasses reduced to powder; pulverised sugar.
Madhu dhūli

ମଧୁ ନାରିକେଳ—ସଂ. ବି—ବାଣ ନଡ଼ିଆ; ଏକପ୍ରକାର ଶ୍ୱେତ ଓ ମିଷ୍ଟ
Madhu nārikeḷa ଶସ୍ୟଯୁକ୍ତ ନଡ଼ିଆ—A species of
ଓ. ବାଣନଡ଼ିଆ dwarf cocoanut with sweet
ବାମନ নারিকেল **বামন নরিয়ল** kernel.
ତେ. ଏର; ମ. ମୋହାନାରଲ

ମଧୁ ନିଷ୍ପାବ—ସଂ. ବି—ଏକପ୍ରକାର ମିଠା ଶିମ୍ବ—A kind of
Madhu nishpāba (ମୁକୁଟଶିମ୍ବୀ—ଅନ୍ୟରୂପ) sweet bean.

ମଧୁପ—ସଂ. ବି. ପୁଂ ( ମଧୁ+ପା ଧାତୁ+କର୍ତ୍ତୃ. ଅ )—ଭ୍ରମର—The
Madhupa black bee. ବିଣ—୧ । ମଧୁପାନକାରୀ—
ମଧୁମାରକ, ମଧୁରସିକ, ମଧୁଶୃକ, ମଧୁଲେଲିହ, ମଧୁକାମନ } ଅନ୍ୟରୂପ 1. Drinking honey. ୨ । ମଦ୍ୟପାୟୀ—2. Drinking wine.

ମଧୁ ପର୍କ—ସଂ. ବି (ମଧୁ+ପୃଚ୍ ଧାତୁ=ଛୁଇଁବା+ଅଧିକରଣ ଅ)—ମଧୁ,
Madhu parka ଦଧି, ଘୃତ, ଶର୍କରା, ଜଳ (ମତାନ୍ତରରେ କାଂସ୍ୟକେଳଜଳ), ଏହି ପାଞ୍ଚଦ୍ରବ୍ୟ ମିଶ୍ରିତ ଖାଦ୍ୟ ବା ନୈବେଦ୍ୟବିଶେଷ—A cordial or an offering prepared by mixing honey, curds, ghee, sugar and water. [ ଦ୍ର—ଏହା ବୈଦିକଯୁଗରେ ଅଭ୍ୟାଗତମାନଙ୍କୁ ଅଭ୍ୟର୍ଥନାରୂପେ ଦିଆଯାଉଥିଲା । ଦଧିସର୍ପିର୍ଜଳଂ କ୍ଷୌଦ୍ରଂ ସିତୈତାଭସ୍ତୁ ପଞ୍ଚଭିଃ । ପ୍ରୋଚ୍ୟତେ ମଧୁପର୍କସ୍ତୁ* ।]

ମଧୁ ପର୍ଣ୍ଣୀ—ସଂ. ବି. ସ୍ତ୍ରୀ ( ବୈଦ୍ୟକ )—୧ । ନାଲି ଗୁଳ୍ମ—1.
Madhu parṇṇī Indigo plant. ୨ । ଗୁଡ଼ୁଚିଲତା—2. A medicinal creeper. ୩ । ଗମ୍ଭାରୀ—3. A timber tree; Gmelina Arborea. ୪ । ମଧୁର ଟଭା—4. A kind of sweet citron.

ମଧୁ ପାନ—ସଂ.ବି (୬ଷ୍ଠୀ ତତ୍)—୧ । ପୁଷ୍ପରୁ ଭ୍ରମର ମଧୁ ପିଇବା—1.
Madhu pāna Drinking of nectar from flowers by the bee. ୨ । ମଦ୍ୟପାନ—2. Drinking of wine.

ମଧୁ ପାୟୀ—ସଂ. ବିଣ.ପୁଂ (ମଧୁ+ପା ଧାତୁ+କର୍ତ୍ତୃ.ଇନ୍; ୧ମା, ୧ବ)—
Madhu pāyī ୧ । ମଧୁପାନକାରୀ—1. Drinking honey.
(ମଧୁପାୟିନୀ—ସ୍ତ୍ରୀ) ୨ । ମଦ୍ୟପାୟୀ—2. Drinking wine.
ବି—୧ । ଭ୍ରମର—1. Black bee. ୨ । ଏକପ୍ରକାର ପକ୍ଷୀ—2. Sun bird; flower pecker.

ମଧୁ ପାର୍ବଣ—ସଂ. ବି—ବସନ୍ତକାଳୀନ ଦୁର୍ଗୋତ୍ସବ—Durgāpūja
Madhu pārbaṇa held during the spring ( in Chaiṭra ).

ମଧୁପୁର—ସ. ବି—ମଧୁପୁରୀ ( ଦେଖ )—Madhupuri ( See )
Madhupura ଦେ. ବି—୧ । କଟକ ଜିଲ୍ଲା ଅନ୍ତର୍ଗତ ଗୋଟିଏ
ମଧୁପୁର୍ କିଲ୍ଲାଜାତ ସ୍ଥାନ—1. Name of a Killa
मधुपुर ( permanently settled estate ) in
Cuttack district. ୨ । ସାନ୍ତାଳ ପ୍ରଗନ୍ନାର
ଗୋଟିଏ ନଗର—2. Name of a town in the
Santal Pergannahs.

ମଧୁପୁରୀ—ସ. ବି—ମଥୁରା ନଗରୀ—The town of Muttra.
Madhupuri [ ଉ—କୃଷ୍ଣଗଲେ ମଧୁପୁରୀ, କେମନ୍ତେ ବଞ୍ଚିବୁ
ଗୋପର ନାରୀ,ହେ କଳାକର ! କଂସ ତ ହେଲା ଉଗାର,
ହେ କଳାକର ! କଳାକର ଚଉତିଶା । ]

ମଧୁପୁଷ୍ପ—ସ. ବି—୧ । ମହୁଲ ଗଛ—1. The Mahwa tree.
Madhupushpa ୨ । ଅଶୋକ ଗଛ—2. The Asoka
tree. ୩ । ବଉଳ ଗଛ - 3. The Bakula tree.
୪ । ଶିରୀଷ ଗଛ—4. Albizza sebbek tree

ମଧୁପୁଷ୍ପା—ସ. ବି—ଦନ୍ତୀ ଗଛ—1. Baliospermum
Madhupushpa Montanum.
୨ । ଧାତକୀ [ପ୍ରା. ଶ] (ଦେଖ)—2. Dhātaki ( See )

ମଧୁ ପୂର୍ଣ୍ଣ—ସ. ବି ( କର୍ମ୍ମ ତତ୍ )—୧ । ମଧୁମୟ—1. Full of
Madhu pūrṇṇa honey. ୨ । ଅତିମିଠା—2. Honeyed;
very sweet.

ମଧୁ ପ୍ରିୟ—ସ.ବଣ. ପୁଂ(ବହୁବ୍ରୀହି; ମଧୁ ଅଟେ ପ୍ରିୟ ଯାହାର)—୧ । ଯେ
Madhu priya ମଧୁ ଖାଇବାକୁ ଭଲ ପାଏ—1. Fond of
honey. ୨ । ମଦ୍ୟପ; ମଦ୍ୟପ୍ରିୟ—2. Fond of
wine.ବି—୧ । ବଳରାମ—1. Elder step-brother
of Srikrushna. ୨ । ଭୂଇଁଜାମୁ—2. A small
(ମଧୁପ୍ରିୟା—ସ୍ତ୍ରୀ) species of black berry.

ମଧୁ ଫଳ—ସ. ବି—୧ । ଦ୍ରାକ୍ଷା; କିସମିସ୍—1. Grape ୨ ।
Madhu phala ବଇଞ୍ଚ; ଭଇଞ୍ଚ (ପ୍ର. ଶ)—2. Flacourtia Romontche ( plant ) .

ମଧୁ ବନ—ସ.ବି(ମଧୁ=ମିଷ୍ଟ+ବନ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ.ଅ)—
Madhu bana ୧ । କୋଇଲି—1. The cuckoo. ୨ ।
( ମଧୁ=ସ୍ନିଗ୍ଧ+ବନ ) ପ୍ରମୋଦ ଉଦ୍ୟାନ—2. A
pleasure garden. ୩ । ବୃନ୍ଦାବନର ଗୋଟିଏ
ଉଦ୍ୟାନ—3. Name of a garden in Brundābana. ୪ । କିଷ୍କିନ୍ଧ୍ୟାର ଗୋଟିଏ ବନ—4. Name
of a part of the ancient forest of
Kishkindhyā in South India. ୫ । ଲଙ୍କାର
ଗୋଟିଏ ବନ—5. Name of a garden in
Lankā. ୬ । ମଥୁରାସ୍ଥ କଂସର ପ୍ରମୋଦ ବନ—
6. Name of a pleasure garden of Kamsa
in Mathurā. [ ଉ—ଏହାକୁ ଶ୍ରୀକୃଷ୍ଣ ଜୟ କଲେ;
ଉକ୍ତ ବନର ରକ୍ଷକ କଂସର ଭୃତ୍ୟ ମନା କରିବାରୁ
ତାଙ୍କୁ ଶ୍ରୀକୃଷ୍ଣ ଓ ବଳରାମ ବାଡ଼ ପକାଇଥିଲେ । ]
୭ । ପ୍ରେମିକ ପ୍ରେମିକାଙ୍କ ମିଳନ କୁଞ୍ଜ ( ପ୍ର. ଶ )—
7. A grove where lovers meet or tryst.
ମଧୁବନୀ ଦେ. ବି—ଦ୍ୱାରଭଙ୍ଗା ଜିଲ୍ଲାର ଗୋଟିଏ ମହକୁମା ଓ ନଗର—
मधुबनी A subdivision and town in the district of
Dwārabhangā.

ମଧୁବର୍ଷୀ—ସ. ବଣ ( ମଧୁ+ବୃଷ୍ ଧାତୁ+କର୍ତ୍ତୃ.ଇନ୍; ୧ମା. ୧ବ )—
Madhubarshi ଅମୃତବର୍ଷୀ; ଅତି ମଧୁର—Very sweet;
( ମଧୁବର୍ଷିଣୀ—ସ୍ତ୍ରୀ ) raining nectar.

ମଧୁ ବଲ୍ଲୀ—ସ. ବି—ମଧୁ ଯଷ୍ଟି (ଦେଖ)
Madhu balli Madhu jashti ( See )

ମଧୁବହୁଳା(ଳ)—ସ. ବି ( ବହୁବ୍ରୀହି )—୧ । ମାଧବୀ ଲତା—1. A
Madhubahulā(la) flowering creeper; Hiptage
Mādhabilata. ୨ । ଧଳା ଯୂଥି—2 The white
flowered Jūi plant.

ମଧୁବାର—ସ. ବି—୧ । ମହୁଚାକ—1. Honey-comb. ୨ । ପୁନଃ
Madhubāra ପୁନଃ ମଦ୍ୟପାନ—2. Repeated drinking
of wine; bout. ୩ । ମଦ୍ୟ (ପ୍ର. ଶ)—3. Wine.
୪ । ମଦ୍ୟପାନ ଦିବସ ( ପ୍ର. ଶ )—4. A day for
drinking wine. ୫ । ମଦ୍ୟପାନର ରୀତି (ପ୍ର.ଶ)—
5. Mode of drinking wine.

ମଧୁ ବୀଜ—ସ. ବି ( ବହୁବ୍ରୀହି; ମଧୁ=ମିଷ୍ଟ ଅଟେ ବୀଜ ଯାହାର )—
Madhu bija ଡାଳିମ୍ବ—Pomegranate.

ମଧୁ ବୀଜପୂର—ସ. ବି—ଏକପ୍ରକାର ମିଠା ଟଭା ଲେମ୍ବୁ; ମଧୁକର୍କଟିକା—
Madhu bijapūra A kind of sweet citron or
lemon.

ମଧୁବ୍ରତ—ସ. ବି(ବହୁବ୍ରୀହି; ମଧୁ+ବ୍ରତ)—ମଧୁକର; ଭ୍ରମର—Black
Madhubrata bee.[ଉ—କବେ ପାଦେ ହୋଇ ମଧୁବ୍ରତେ—
ଉଜ୍ଜ. ବୈଦେହୀଶବିଳାସ । ]

ମଧୁ ଭୁବନ—ସ. ବି—ମଧୁପୁରୀ ( ଦେଖ)—Madhupuri ( See )
Madhu bhubana [ଉ—ଆରେ ବାବୁ ଶ୍ୟାମଘନ ! ତୁ ଗଲେ
ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବି—ଭକ୍ତଚରଣ.
ମଥୁରାମଙ୍ଗଳ ! ]

ମଧୁଭୃତ୍—ସ. ବି ( ମଧୁ+ଭୃ ଧାତୁ+କ୍ୱିପ୍ )—ଭ୍ରମର—
Madhubhrut The black bee.

ମଧୁମକ୍ଷିକା—ସ. ବି ( ମ. ପ. ଲୋ; ମଧୁ ସଂଗ୍ରହକାରିଣୀ ମକ୍ଷିକା )—
Madhumakshikā ମହୁମାଛି—Bee.

ମଧୁମଙ୍ଗଳ—ସ. ବି—ସାନ୍ଦୀପନି ମୁନିଙ୍କର ପୁତ୍ର; ଶ୍ରୀକୃଷ୍ଣଙ୍କର ସଖା—
Madhumangala Son of the sage Sandipani.
ଦେ. ବି—କୋଇଲି—The cuckoo.

ମଧୁମତୀ—ସ. ବଣ. ସ୍ତ୍ରୀ ( ମଧୁମତ୍+ସ୍ତ୍ରୀ. ଈ )—ମାଧୁର୍ଯ୍ୟମୟୀ—
Madhumati Full of sweetness ବି—୧ । ଯୋଗିନୀ-
ବିଶେଷ; ଦେବୀବିଶେଷ—1. Name of a Goddess.

[ ଦ୍ର—ତନ୍ତ୍ରସାଧକ ଏହି ଯୋଗିନୀଙ୍କର ସାଧନା କରି ସିଦ୍ଧି ଲାଭ କଲେ, ଦେବ, ଦାନବ, ଗନ୍ଧର୍ବ, ବିଦ୍ୟାଧର, ଯକ୍ଷ ଓ ରାକ୍ଷସ କନ୍ୟା ଓ ନାନାବିଧ ଉପଭୋଗ୍ୟ ବସ୍ତୁ ପ୍ରାପ୍ତ ହୁଅନ୍ତି ।] ୨ । କାଶ୍ମୀରଦେଶୀୟ ନଦୀବିଶେଷ—2. Name of a river in Kāśmira ୩ । ଛନ୍ଦୋବିଶେଷ—3. Name of a metre. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୨ ନଗଣ ଓ ଏକ ଗୁରୁବର୍ଣ୍ଣ ଥାଏ—ହି· ଶ । ] ୪ । ମଧୁଦୈତ୍ୟର କନ୍ୟା ( ହି. ଶ )—4. Name of the daughter of demon Madhu. [ ଦ୍ର—ଏ ଇକ୍ଷ୍ୱାକୁଙ୍କ ପୁତ୍ର ହର୍ଯ୍ୟଶ୍ୱଙ୍କୁ ବିବାହ କରିଥିଲେ ।] ୫ । ପୁରାଣ ମତେ ନର୍ମଦା ନଦୀର ଏକ ଶାଖା (ହି. ଶ)—5. Name of a branch of the Narmadā river. ୬ । ପତଞ୍ଜଳଙ୍କ ମତରେ ସମାଧିର ଅବସ୍ଥାବିଶେଷ, ଯହିଁରେ ଅଭ୍ୟାସ ଓ ବୈରାଗ୍ୟ ଯୋଗୁଁ ରଜୋଗୁଣର ପୂର୍ଣ୍ଣ ବିନାଶ ଓ ସତ୍ତ୍ୱଗୁଣର ବିକାଶ ହୁଏ (ହି. ଶ)—6. A stage in religious meditation in which the devotee loses all his grosser habits

**ମଧୁମତୀ ସାଧନା (ନ)**—ସଂ. ବି— ମଧୁମତୀ ଯୋଗିନୀଙ୍କର ତନ୍ତ୍ରୋକ୍ତ ସାଧନା—Madhumatī sādhanā (na) The process for attaining success in the worship of Goddess Madhumatī. [ ଦ୍ର—ଏହିପରି ମଧୁମତୀ ସାଧକ= ମଧୁମତୀ ସିଦ୍ଧ, ମଧୁମତୀ ସିଦ୍ଧି ପଦମାନ ସିଦ୍ଧ ହୁଏ । ]

**ମଧୁମତ୍ତ**—ସଂ. ବିଣ (ଆସ୍ୱା ଚଢ଼)—୧ । ମଧୁପାନଦ୍ୱାରା ମତ୍ତ—(ଭ୍ରମର) Madhumatta 1. (black bee) Mad after drinking honey from flowers. ୨ । ମଦ୍ୟପାନ ଯୋଗୁ ଉନ୍ମତ୍ତ (ବ୍ୟକ୍ତି)—2. (person) Maddened with wine.

**ମଧୁମୟ**—ସଂ. ବିଣ—୧ । ମଧୁପୂର୍ଣ୍ଣ—1. Full of honey. ୨ । ଅତି Madhumaya ମଧୁର—2. Very sweet; honeyed.

**ମଧୁମଲ୍ଲୀ**—ସଂ. ଉ—ମାଳତୀ (ହି. ଶ)—Echites caryophylata. Madhumallī ( creeper and flower ).

**ମଧୁମସ୍ତକ**—ସଂ. ବି—ଏକପ୍ରକାର ପିଠା; ମଇଦାର ପିଠା ମଧ୍ୟରେ Mudhumastaka ମହୁର ପୂର ଦିଆଯାଇ ଘିଅରେ ଛଣା ହୋଇଥିବା ପିଠା—A sort of cake containing honey in the centre.

**ମଧୁମାଧବୀ**—ସଂ. ବି—୧ । ମଧୁରୁ ପ୍ରସ୍ତୁତ ସୁରା—1. Wine made Madhumādhabī from honey. ୨ । ଭୈରବ ରାଗର ( ମଧୁମାଧ୍ୱୀକ—ଅନ୍ୟରୂପ ) ସହଚରୀ ରାଗିଣୀ ( ହି. ଶ )—2. Name of a secondary musical air.

**ମଧୁମାନ୍**—ସଂ. ବିଣ. ପୁଂ (ମଧୁ+ଅଛି ଅର୍ଥରେ ମତ୍; ୧ମା. ୧ବ )—Madhumān ୧ । ମଧୁପୂର୍ଣ୍ଣ—1. Full of honey. ୨ । ଯହିଁରେ ମଧୁ ଅଛି—2. Having honey. ୩ । (ମଧୁମତୀ—ସ୍ତ୍ରୀ) ମାଧୁର୍ଯ୍ୟପୂର୍ଣ୍ଣ—3. Full of sweetness.

**ମଧୁମାଲତୀ**—ଦେ. ବି (ସଂ. ବାସନ୍ତୀ)—ମୃଦୁଗନ୍ଧଯୁକ୍ତ ଏକପ୍ରକାର ଦୃଢ଼ Madhumālatī ପୁଷ୍ପଲତା—A kind of hardy flowering ସୀତାବାହାବ; ସୀତାହାବ creeper; the rangoon creeper. [ ଦ୍ର—ଏହା ବର୍ଷଧିକଜୀବନୀ ଲତା । ଏହାର ଫୁଲ ଚଉଦର୍ଲ ଓ ଫୁଲର ଡେଙ୍ଫ୍ ଲମ୍ବା । ପ୍ରଥମେ ଫୁଟିଲା ବେଳେ ଫୁଲ ଧଳା ହିଁଏ ଓ ୧୨ ଘଣ୍ଟା ପରେ ନାଲିଆ ହୋଇଯାଏ । ଏଥିପାଇଁ ଏକ ସମୟରେ ଲତାରେ ଧଳା ଓ ନାଲି ପାଖୁଡ଼ାଯୁକ୍ତ ଫୁଲ ଫୁଟିଥିବା ଦେଖାଯାଏ । ଏହାର ଫୁଲ ପେନ୍ଥା ପେନ୍ଥା ହୋଇ ଫୁଟେ; ସନ୍ଧ୍ୟା ସମୟରେ ଫୁଟିଲା ବେଳେ ଫୁଲର ପାଖୁଡ଼ା ନାଲି ଥାଏ ଓ ସକାଳକୁ ଧଳା ହୋଇଯାଏ । ସମ୍ଭବତଃ ଜୟଦେବଙ୍କ ଗୀତଗୋବିନ୍ଦର 'ଲବଙ୍ଗଲତା' ଏହି ମଧୁମାଲତୀ ଲତା ଅଟେ; ଡେଙ୍ଫଲଗା ଫୁଲ ଲବଙ୍ଗ ସଙ୍ଗେ ସଙ୍ଗେ ତୁଳନୀୟ ।] ସଂ ବି—ହଳଦିଆ ମାଳତୀ ଫୁଲ ଓ ତହିଁର ଲତା—The yellow flowering variety of Echites caryophylata creeper.

**ମଧୁମାସ**—ସଂ. ବି ( ମଧୁ=ବସନ୍ତ+ମାସ )—ଚୈତ୍ରମାସ—Madhumāsa The month of Chaitra.

**ମଧୁମୁର**—ସଂ. ବି—ମଧୁଦୈତ୍ୟ ଓ ମୁର ଦୈତ୍ୟ—The demons Madhu mura Madhu and Mura ( killed by Bishṇu at different periods.)

**ମଧୁମୂଳ**—ସଂ. ବି—୧ । ମହୁଆ ଆଳୁ—1. A kind of yam Madhu mūla with sweet bulbous root; Dioscoria Spinosa. ମଧ୍ୱାଳୁ, ମଧୁରାଳୁକ }—ଅନ୍ୟରୂପ [ଦ୍ର—ଏହାର ଲତା ବୃହତ୍ । ଲତାର ମୂଳରେ ଓ ଅଗରେ କଣ୍ଟା ଥାଏ । ଆଳୁ ଗୁଡ଼ିକ ମୂଳରୁ ଏକାଧିକ ଓ ଅସମାନ ହୋଇ ବାହାରେ । ଏହି ଆଳୁର ଚୋପ ଉପରେ ଥିବା ଚେରମାନ ମଧ୍ୟ କଣ୍ଟା ପରି ମୁନିଆ ଓ ଖରତାଣୁଆ । ଏ ଆଳୁ ବହୁକାଳ ସଢ଼ି ନ ଯାଇ ରହେ ।] ୨ । ନାଲି ଆଳୁ (ହି. ଶ)—2. The red variety of yam.

**ମଧୁମେହ**—ସଂ. ବି—ମୂତ୍ର ସହିତ ମଧୁ ବା ଶର୍କରାକ୍ଷରଣ ରୋଗ—Madhu meha Diabetes Mellitus. [ ଦ୍ର—ସବୁପ୍ରକାର (ମଧୁପ୍ରମେହ—ଅନ୍ୟରୂପ) ମେହର ଏହା ବର୍ଦ୍ଧିତ ଅବସ୍ଥା । ଏଥିରେ ରୋଗୀର ପ୍ରସ୍ରାବ ବହୁ ପରିମିତ ଓ ଘନ ଓ ମିଷ୍ଟ ହୁଏ । ମେହର ଏ ଅବସ୍ଥା ଅସାଧ୍ୟ ଓ ମାରାତ୍ମକ—(ହି. ଶ) ।]

**ମଧୁମେହୀ**—ସଂ. ବିଣ. ପୁଂ— (ମଧୁମେହ+ଇନ୍; ୧ମା.୧ବ)—ମଧୁମେହ-Madhumehī ଗ୍ରସ୍ତ (ବ୍ୟକ୍ତି)—(a person) Suffering (ମଧୁମେହିନୀ—ସ୍ତ୍ରୀ) from Diabetes Mellitus.

**ମଧୁଯଷ୍ଟି**—ସଂ. ବି—୧ । ଯଷ୍ଟି ମଧୁ—1. A tree with sweet Madhu jashṭi root; Glycyrhiza Glabra. ୨ । ଆଖୁ—2. Sugarcane.

**ମଧୁଯାମିନୀ**—ସଂ. ବି—୧ । ବସନ୍ତକାଳର ରାତ୍ରି—1. A night Madhu jāminī during the spring. ୨ । ନିର୍ମଳ ବା ଜ୍ୟୋତ୍ସ୍ନାମୟୀ ରାତ୍ରି—2. A clear moon-lit night.

ମଧୁର(ରୁ)ଚ (ଚିଁ)—ଦେ. ବି—ଖଟା ଓ ମିଠା ଦିଆଯାଇ ରନ୍ଧା ଯାଇ-
Madhur (ru)chi (chiñ) ଥିବା ଏକ ପ୍ରକାର ସୁସ୍ୱାଦ୍ୟ ତରକାରି-
[ମଧୁର(ରୁ) ଚୁ(ଚେ)ଇଁ—ଗ୍ରାମ୍ୟରୂପ] A kind of relishing
মধুর অম্বল curry in which sweet and acid tastes
**खटमिट्ठी** are very tastefully mixed up.

ମଧୁର—ସଂ. ବି ( ମଧୁ+ଅସ୍ତି ଅର୍ଥରେ ର )—୧ । ମାଧୁର୍ଯ୍ୟ ଗୁଣ—
Madhura 1. Sweetness. ୨ । ମିଷ୍ଟରସ—2.
(ମଧୁରା—ସ୍ତ୍ରୀ) Sweet taste. ୩ । ବିଷ; ହଳାହଳ—
3. Poison; deadly poison. ୪ ।
ଟୀଣ ଧାତୁ—4. Tin (metal). ୫ ।
ଜୀବକ ବୃକ୍ଷ ( ହି. ଶ )—5. A rare
medicinal plant. ୬ । ନାଲି ଆଖୁ (ହି. ଶ)—
6. Red variety of sugarcane. ୭ । ଗୁଡ଼
( ହି. ଶ ) 7. Molasses. ୮ । ଧାନ—8. Paddy.
୯ । ଲୁହା (ହି.ଶ)—9. Iron. ୧୦ । ମହୁଲ (ହି.ଶ)—
10. Mahula. [ଉ—ବର୍ଷେ ଘନ ଘନ ଘନ ଭୁଷ ବଶ
ଯଥା, ବୃଷ୍ଟି ମଧୁର ମଧୁର ମଧୁର ଯେ ତଥା । ଉପେ.
ବୈଦେହୀଶବିଳାସ । ] ୧୧ । ମଟର ( ହି. ଶ )—
11. Pea. ୧୨ । ଜଙ୍ଗଲୀ ବରକୋଳି—12. Wild
jujube. ୧୩ । ବାଦାମ ଗଛ ( ହି. ଶ )—13.
Almond tree. ୧୪ । କାକୋଲୀ ( ହି. ଶ )
( ଦେଖ )—14. Kākoḷī ( See ) ବିଣ—୧ ।
ମିଠା; ମିଷ୍ଟରସଯୁକ୍ତ—1. Sweet to the
taste. ୨ । ପ୍ରୀତିକର; ମନୋହର—2. Pleasant;
pleasing. ୩ । ସୌମ୍ୟ; ପ୍ରିୟଦର୍ଶନ— 3. Hand-
ମଧୁରତା, ମଧୁରତ୍ୱ, ମାଧୁରୀ, ମାଧୁର୍ଯ୍ୟ, ମଧୁରିମା—ବିଶେଷ୍ୟ some. ୪ । ମନ୍ଦଗାମୀ—4. Slow going. [ଦ୍ର—
ଦର୍ଶନ, ରସନା, ଘ୍ରାଣ, ସ୍ପର୍ଶ ଓ ଶ୍ରବଣ ଏସବୁ ସବୁପ୍ରକାର
ଇନ୍ଦ୍ରିୟଦ୍ୱାରା ମାଧୁର୍ଯ୍ୟର ଉପଲବ୍ଧି କରାଯାଇ
ପାରେ ।]

ମଧୁର ଗନ୍ଧ—ସଂ. ବି ( କର୍ମଧା; ମଧୁର+ଗନ୍ଧ )—ସ୍ନିଗ୍ଧ ଗନ୍ଧ—
Madhura gandha Mild or sweet taste;
ବିଣ—ସ୍ନିଗ୍ଧ ଗନ୍ଧ ଯୁକ୍ତ—Sweet-scented. [ ଦ୍ର
—ଏହିପରି ମଧୁର ରୂପ, ମଧୁର ସ୍ପର୍ଶ, ମଧୁର ରସ, ମଧୁର ସ୍ୱାଦ
ଓ ମଧୁରଶବ୍ଦ ଶବ୍ଦମାନ ହୁଏ । ]

ମଧୁର ଗାୟନ—ସଂ. ବି—ଶ୍ରୁତିମଧୁର ଗୀତ—
Madhura gāyana Sweet song.

ମଧୁର ଗୁଣ୍ଡା—ପ୍ରାଦେ (ଗଞ୍ଜାମ) ବି. (ନିମ୍ବପିତା ନ କହି ମଧୁର ଶବ୍ଦ
Madhura guṇḍā ପ୍ରୟୋଗ)—ନିମ୍ବପିତା—(euphemism)
Bitter Nim.

ମଧୁର ଚି(ଚୁ)ଙ୍ଗୁଡ଼ି—ଦେ. ବି—ମଧୁର ଜଳ ( ଅର୍ଥାତ୍ ଯାହା ଲୁଣି ପାଣି
Madhura chi(chu)ṅgurḍi ନୁହେଁ) ରେ ଥିବା ଚିଙ୍ଗୁଡ଼ି ମାଛ-
(ଲୁଣି ଚିଙ୍ଗୁଡ଼ି—ବିପରୀତ) Shrimps living in fresh
মিঠেজলের চিঙ্গড়ী water (in contradistinction with
**मीठापानीका झींगा** those living in salt water).

ମଧୁର ଜ୍ୱର—ସଂ.ବି—ଦେହରେ ସର୍ବଦା ସାମାନ୍ୟ ତାତି ଥିବା ଜ୍ୱର—
Madhura jwara Low constant fever. [ଦ୍ର—
ଅଧିକ ଘିଅ ଖାଇଲେ ବା ସ୍ନାନ ବୃଥା ବନ୍ଦ କଲେ ଏ ଜ୍ୱର
ହୁଏ; ଏଥିରେ ମୁହଁ ନାଲି ପଡ଼େ, ତାଲୁ ଓ ଓଠ ଶୁଖିଯାଏ,
ନିଦ୍ରା ହୁଏ ନାହିଁ । ଖୁବ୍ ଶୋଷ ଓ ବାନ୍ତି ଦେଖାଏ—ହି.ଶ ।]

ମଧୁର ଟଭା—ଦେ. ବି—ଏକପ୍ରକାର ମିଠା ଟଭା—
Madhura ṭabhā A kind of sweet citron.
(ମଟର ଜମ୍ବୀର—ସଂସ୍କୃତରୂପ) মধুর টাবা **मधुर टाब**

ମଧୁର ଟିଙ୍ଗା—ଦେ.ବି (ଅଶ୍ଳୀଳ)—ବାଳକଙ୍କର ଓ ବୃଦ୍ଧଙ୍କର କ୍ଷଣକାଳସ୍ଥାୟୀ
Madhura ṭiṅgā ଲିଙ୍ଗୋଦ୍ରେକ—Short and feeble
অল্পঠাটান erection of the penis of small boys and of
**मन्द उठना** very old men.

ମଧୁର ତ(ତୋ)ରଡ଼ା—ଦେ. ବି (ସଂ. ଧାମାର୍ଗବ; ମଧୁର କୋଷା)—
Madhura ta(to)rarḍā ଜହ୍ନିପରି ଏକପ୍ରକାର ବନ୍ୟ ଲତା-
ধুন্দুল,পরেরুল ଫଳ—Luffa Aegyptica. [ଦ୍ର—ଅନ୍ୟ ଏକ
**कुँदरु** ପ୍ରକାର ତିକ୍ତ ତରଡ଼ାକୁ ପିତା ତରଡ଼ା କହନ୍ତି । ]

ମଧୁରତା(ତ୍ୱ)—ସଂ. ବି—ମିଷ୍ଟତା (ତ୍ୱ)—
Madhuratā (twa) Sweetness.

ମଧୁର ପାଣି—ଦେ. ବି—୧ । ବିଶୁଦ୍ଧ ଜଳ (ଯାହା ଲୁଣି ନୁହେ)—
Madhura pāni 1. Fresh water. ୨ । ସୁସ୍ୱାଦୁ ଜଳ;
মিঠে জল ନଦୀ ପୁଷ୍କରିଣୀ ଆଦିର ଜଳ—2. Water having
**मीठा पानी** a good taste; sweet water. ୩ । (ବ୍ୟଙ୍ଗ୍ୟ)
(ଲୁଣପାଣି—ବିପରୀତ) ମଦ; ନାଲିପାଣି—3. (ironical) Wine.

ମଧୁର ପ୍ରକୃତି—ସଂ. ବି ( କର୍ମଧା )—କୋମଳ ପ୍ରକୃତି—Sweet
Madhura prakṛuti temper or nature.
ସଂ. ବିଣ (ବହୁବ୍ରୀହି)—କୋମଳପ୍ରକୃତିବିଶିଷ୍ଟ—
Of sweet nature or temper.

ମଧୁର ବଚନ—ସଂ. ବି (କର୍ମଧା; ମଧୁର+ବଚନ)—ମିଷ୍ଟ ବାକ୍ୟ—
Madhura bachana Sweet words. ବିଣ.ପୁଂ (ବହୁବ୍ରୀହି)
(ମଧୁର ଭାଷଣ—ଅନ୍ୟରୂପ) ମିଷ୍ଟଭାଷୀ—Sweetspeaking.
[ମଧୁର ବଚନା, ମଧୁର ଭାଷଣା—ସ୍ତ୍ରୀ ]
( ମଧୁର ବଚନୀ—ଦେଶଜ ସ୍ତ୍ରୀଲିଙ୍ଗ )

ମଧୁର ଭକ(ଗ)ତି—ଦେ. ବି ( ସଂ. ମଧୁର ଓ ଭକ୍ତି )—(ବ୍ୟଙ୍ଗ୍ୟ) ମୁହଁ-
Madhura bhaka(ga)ti ଭକତି; ବାହ୍ୟ ଭକ୍ତି—
মৌখিক ভক্তি **मुखभक्ति** (ironical) Lip-devotion.

ମଧୁର ଭକ(ଗ)ତିଆ—ଦେ. ବିଣ—ଯେ ମୁହଁରେ ଭକ୍ତି ଦେଖାଏ, କିନ୍ତୁ
Madhura bhaka(ga)tiā ଯାହା ଅନ୍ତରରେ ଭକ୍ତି ନ ଥାଏ—
যে মুখে ভক্তি দেখায় Showing devotion outwardly.
**मुख भगतीया**

ମଧୁର ଭକ୍ତି—ସଂ. ବି—ପ୍ରେମ ରସ ମିଶ୍ରିତ ଭକ୍ତି—Devotion
Madhura bhakti mixed with love. [ଦ୍ର—ଶ୍ରୀ
ଚୈତନ୍ୟ ଦେବଙ୍କ ଅମଳରୁ ବୈଷ୍ଣବମାନେ ଏହି ଭକ୍ତି
ଦ୍ୱାରା ଭଗବାନଙ୍କୁ ଆରାଧନା କରିବା ପ୍ରଚୁର କରିଅଛନ୍ତି ।

ଗୋପୀ ଓ ଗୋପ ବାଳକମାନେ ଶ୍ରୀକୃଷ୍ଣଙ୍କୁ ଏହି ଭକ୍ତି ଦ୍ୱାରା ଭଜନା କରୁଥିଲେ ।] ଦେ. ବି—୧ । ବାତ୍ସଲ୍ୟ ଭକ୍ତି (ଦେଖ)—1, Bātsalya bhakti (See). ୨ । ମଧୁର ଭକତି (ଦେଖ)—2. Madhura bhakati (See).

ମଧୁର ଭାଷୀ—ସଂ. ବିଣ. ପୁଂ—ଯେ ମିଷ୍ଟ କଥା କହେ—Sweet in speech; sweet-talking; talking sweetly.
Kadhura bhāshī
(ମଧୁର ଭାଷିଣୀ—ସ୍ତ୍ରୀ)

ମଧୁର ମାଛ—ଦେ. ବି—ଅଲବଣାକ୍ତ ଜଳାଶୟ ଓ ନଦ୍ୟାଦିରେ ଥିବା ମାଛ—Fresh-water-fish.
Madhura māchha
মিঠে জলের মাছ **मीठा पानीका मछली**

ମଧୁର ମୂରତି—ଗ୍ରା. (ପଦ୍ୟ) ବି. (ସଂ. ମଧୁର ଓ ମୂର୍ତ୍ତି)—କମନୀୟ ରୂପ—A pleasing form.
Madhura mūrati
মধুর মূরতি **मधुर मूरत**

ମଧୁର ମୂର୍ତ୍ତି—ସଂ. ବି ( କର୍ମଧା: ମଧୁର+ମୂର୍ତ୍ତି )—କମନୀୟ ରୂପ—Pleasing form
Madhura mūrtti
ବିଣ. (ବହୁବ୍ରୀହି)—କମନୀୟ ରୂପ ଯୁକ୍ତ—Having a pleasing form.

ମଧୁର ରସ—ସ.ବି—୧ । (କର୍ମଧା) (ଷଡ଼ ରସ ମଧ୍ୟରୁ ଏକତମ) ମିଠା ରସ—1. Sweet taste. ୨ । ପ୍ରେମ ରସ; ବାତ୍ସଲ୍ୟ ରସ—2. The sentiment of love and affection; soft and tender emotions. ୩ । (ବହୁବ୍ରୀହି, ମଧୁ=ମିଠା ଅଟେ ରସ ଯାହାର) ଆଖୁ—3.Sugarcane. ୪ । ତାଳ ଗଛ—4. Palm tree.
Madhura rasa

ମଧୁର ରସା—ସ. ବି—୧ । ଦ୍ରାକ୍ଷା—1. Grape. ୨ । ମୁର୍ବା ମୁରୁଗା ଘାସ—2. A kind of sweet grass. ୩ । ଗମ୍ଭାରୀ—3. A kind of timber tree; Gmelina Arborea. ୪ । ଶତପୁଷ୍ପା (ହି.ଶ);ଶଗୁପ—4. Dill seed. ୫ । ପ୍ରସାରଣୀ ଲତା; (ହି. ଶ)—5. Pæderia Fœtida (creeper).
Madhura rasā
(ମଧୁରସା—ଅନ୍ୟରୂପ)

ମଧୁ ରସ—ସ. ବିଣ (ବହୁବ୍ରୀହି)—ଯାହାର ରସ ମଧୁର—Having sweet juice.
Madhu rasa
ସ. ବି—ଆଖୁ—Sugarcane.

ମଧୁର ସ୍ୱର—ସ. ବି ( କର୍ମଧା )—୧ । ଶ୍ରୁତିମଧୁର ସ୍ୱର—1. Sweet tone. ୨ । (ବହୁବ୍ରୀହି) ଗନ୍ଧର୍ବ ହି. ଶ)—2. Heavenly chorister.
Madhura swara
(ମଧୁର ସ୍ୱରା—ଅନ୍ୟରୂପ)
ସ. ବିଣ. ପୁଂ (ବହୁବ୍ରୀହି)—ମଧୁର ସ୍ୱରବିଶିଷ୍ଟ—Sweet-toned.

ମଧର ସ୍ରବା—ସ ବି ପୁଂ—ପିଣ୍ଡ ଖର୍ଜୁର (ହି. ଶ)—Arabian dates.
Madhura srabā
(ମଧୁ ଫଳକା, ମଧୁଫଳୀ—ଅନ୍ୟରୂପ)

ମଧୁର ହାସ(ସ୍ୟ)—ସ. ବି (କର୍ମଧା; ମଧୁର+ହାସ; ସ୍ୟ)—ମୃଦୁହାସ୍ୟ—Sweet smile. ବିଣ. ପୁଂ—ମୃଦୁହାସ୍ୟକାରୀ—Sweet smiling.
Madhura hāsa(sya)
[ମଧୁର ହାସା(ସ୍ୟା)—ସ୍ତ୍ରୀ]

ମଧୁର ହାସୀ—ସ. ବିଣ ପୁଂ—ମୃଦୁହାସ୍ୟକାରୀ—Smiling sweetly.
Madhura hāsī
(ମଧୁରହାସିନୀ—ସ୍ତ୍ରୀ)

ମଧୁରା—ସ, ବିଣ, ସ୍ତ୍ରୀ ( ମଧୁର+ଆ )—ମନୋହରା—Pleasing (female). ବି—୧ । ପାଳଙ୍ଗ ଶାଗ; ମିଠା ପାଳଙ୍ଗ—1. The spinach. ୨ । ଶତପୁଷ୍ପା; ଶଗୁପ—2. An armotic seed;dillseee. ୩ । (ମଧୁ+ରା) ମଥୁରା ପୁରୀ—3. The city of Mathurā (in U. P. ot India). ୪ । ମଦୁରା ନଗର—4. Madura in Madras Provincd. ୫ । ମିଠା ଲେମ୍ବୁ (ହି.ଶ)-6 Sweet orange. ୬ । ଯଷ୍ଟି ମଧୁ (ହି. ଶ)—6. Liquorice root. ୭ । ମେଦା (ହି, ଶ)—7. A rare herb. ୮ । କାକୋଲୀ (ହି. ଶ)—8. Kākoḻi (See) ୯ । କଦଳୀ ଗଛ (ହି. ଶ)—9. Plantain tree. ୧୦ । ଶିମ୍ବ (ହି. ଶ)—10. Bean. ୧୧ । ମସୁର (ହି. ଶ)—11. Lentil. ୧୨ । ମିଠା ଖଜୁର (ହି. ଶ)—12. Sweet date. ୧୩ । ମହାମେଦା (ହି. ଶ)—13. A rare herb.
Madhurā
মিষ্টি **मीठा** ଦେ. ବି—ମିଷ୍ଟ ରସ ଯୁକ୍ତ; ଗୁଡ଼ଆ—Sweet; sugary.

ମଧୁରାଜାଳୁକ—ସ, ବି—ମନ୍ଧୁଆ ଆଳୁ—Sweet yam.
Madhurājāḻuka

ମଧୁରାମ୍ଳ—ସ ବିଣ (ଦ୍ୱନ୍ଦ୍ୱ)—ମିଠା ଓ ଖଟା—Sweet and sour.
Madhurāmḻa

ମଧୁରା ଲାଗିବା—ଦେ. କ୍ରି—ମୁହଁ ଭିତରେ ମିଠା ଆସ୍ୱାଦ ବୋଧ ହେବା—Feeling of a sweet taste in the mouth at some times.
Madhurā lāgibā
মিষ্টি লাগা **मीठा लगना**
(ମଧୁରା ହେବା—ଅନ୍ୟରୂପ) ଦେ. କ୍ରି—ଖାଇବାକୁ ମିଠା ଲାଗିବା—oT taste sweet.

ମଧୁରାଳାପ—ସଂ. ବି ( କର୍ମଧା; ମଧୁର+ଆଳାପ )—ମିଷ୍ଟ ବଚନ—Sweet talk or discourse.
Madhurāḻāpa
(ମଧୁରାଳାପା—ସ୍ତ୍ରୀ) ବିଣ. ପୁଂ (ବହୁବ୍ରୀହି)—ମିଷ୍ଟ ଭାଷୀ—Sweet-talking.

ମଧୁରାଳାପା—ସଂ. ବିଣ. ସ୍ତ୍ରୀ (ମଧୁରାଳାପ+ଆ )—ମଧୁରାଳାପର.ସ୍ତ୍ରୀ ଲିଙ୍ଗ—Feminine of Madhurāḻāpa.
Madhurāḻāpa
ସଂ. ବି—ମଇନା ପକ୍ଷୀ; ସାରୀ (ହି. ଶବ୍ଦସାଗର)—The hill myna bird'

ମଧୁରାଳାପୀ—ଦେ. ବିଣ. ପୁଂ ( ମଧୁରାଳାପ+ଇନ୍; ୧ମା ୧ବ )—ମିଷ୍ଟ ଭାଷୀ—Talking sweetly.
Madhurāḻāpī
(ମଧୁରାଳାପିନୀ—ସ୍ତ୍ରୀଲିଙ୍ଗ)

ମଧୁରାଳିକା—ସଂ. ବି—ମନ୍ଧୁରାଳି ମାଛ (ହି. ଶ)—A kind of tiny fish.
Madhurāḻikā

ମଧୁରାସ୍ୱାଦ—ସଂ. ବି—୧ । ପାଟିକୁ ମିଠା ଲାଗିବା—1. Sweet taste. ସ.ବିଣ (ବହୁବ୍ରୀହି)—ମିଠା; ମିଷ୍ଟ—Sweet to the taste.
Madhurāswāda

ମଧୁରିଆ—ଦେ. ବିଣ—ଈଷତ୍ ମଧୁର—
Madhuriā ଅଳ୍ପ ମିଷ୍ଟି Sweetish.
**थोड़ा मीठा, मधुरिया**

ମଧୁରିକା—ସଂ. ବି ( ମଧୁର+କ+ଆ )- ପାନମହୁରି—Aniseed;
Madhurikā fennel. ଦେ. ବି—ମୁଖବାଦ୍ୟ ବିଶେଷ; ମହୁରି
—A kind of musical instrument;
a kind of clarion. ( ଉ—ଡମରୁ, ନାଗରା,
ମହୁରିକା, ତୂରୀ, ଭେରୀ, କାହାଳ; ନାଦ ବାଦ୍ୟକାରେ
ସବାରେ ଶୁଭନ୍ତି ମାଳକୁ ମାଳ । ରାଧାନାଥ. ଉଷା ।)

ମଧୁ ରିପୁ—ସଂ. ବି. (୬ଷ୍ଠୀ ତତ୍)—ମଧୁସୂଦନ; ବିଷ୍ଣୁ—
Madhu ripu Bishṇu.

ମଧୁରିମା—ସଂ. ବି. (ମଧୁର+ଭାବାର୍ଥେ ଇମନ୍; ୧ମା. ୧ବ)—ମାଧୁର୍ଯ୍ୟ;
Madhurimā ମଧୁରତା—1. Sweetness. ୨ । ସୌନ୍ଦର୍ଯ୍ୟ—
2. Beauty; grace.

ମଧୁରୀ— ଦେ.ବି(ସ.ମଧୁରିକା)--ମହୁରୀ ବାଜା--Name of a musical
Madhurī instrument; clarionet. (ଉ—ମନ୍ଦ୍ରୀ କରୁ
ଶଙ୍ଖ, ଅସଂଖ୍ୟ ଅନେକ, ଜନକ ମଧୁରୀ ମାଧୁରୀ । ଭଞ୍ଜ.
କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

ମଧୁରେଣ ସମାପୟେତ୍—ସଂ.ପ୍ରବଚନ –(କୌଣସି କାର୍ଯ୍ୟକୁ) ମଧୁରତା
Madhureṇa samāpayet ଦ୍ୱାରା ସମାପ୍ତ କରିବା ଉଚିତ—
To end a thing sweetly; to finish a
thing well.

ମଧୁରୋଦକ—ସଂ. ବି (ବହୁବ୍ରୀହି)—ପୁରାଣ ଅନୁସାରେ ସାତ ସମୁଦ୍ରର
Madhurodaka ଅନ୍ତିମ ସମୁଦ୍ର, ଯହିଁର ଜଳ ମିଠା ଓ ଯାହା
(ମଧୁରୋଦଧି—ଅନ୍ୟରୂପ) ପୁଷ୍କର ଦ୍ୱୀପକୁ ବେଢ଼ିଛି—The my-
thological sea of sweet water.

ମଧୁ ଲତା—ଦେ. ବି—ବିଲାତିପୁଲର ଲତାବିଶେଷ—Name of a
Madhu latā creeper imported from abroad.
[ ଦ୍ର—ଏହାକୁ ବଡ଼ଲୋକମାନେ ବଗିଚାରେ ଲଗାନ୍ତି;
ଏହାଦ୍ୱାରା ବଗିଚାର ସୌନ୍ଦର୍ଯ୍ୟ ବଢ଼େ । ] ସଂ. ବି
—ଏକପ୍ରକାର ଘାସ ( ହି. ଶ )—A kind of
grass.

ମଧୁ ଲମ୍ପଟ—ସ. ବିଣ (୭ମୀ ତତ)—ମଧୁ ପ୍ରେମୀ—Fond of honey.
Madhu lampaṭa ବି—ଭ୍ରମର—The black bee. [ଉ—
ମଧୁଲମ୍ପଟ ପ୍ରାୟେ କପଟ ପୀରତି ପଟଳତ । ଭଞ୍ଜ.
ପ୍ରେମସୁଧାନିଧି ]

ମଧୁଳିକା—ସ. ବି—୧ । ମଧୁଳୀ ନାମକ ଗହମରୁ ପ୍ରସ୍ତୁତ ମଦ (ହି.ଶ)
Madhuḷikā 1. Wine distilled from a kind
of wheat ୨ । ରାଇ ସୋରିଷ (ହି. ଶ)—2. Rye.
୩ । ଫୁଲର ପରାଗ (ହି. ଶ)—3. The pollen of
flowers.

ମଧୁଲିଟ୍—ସ. ବି--(ମଧୁ+ଲିହ୍ ଧାତୁ=ଚାଟିବା+କର୍ତ୍ତୃ. କ୍ୱିପ୍;
Madhuliṭ ମଧୁଲିହ୍ ଶବ୍ଦ ୧ମା. ୧ବ)—ମଧୁକର; ଭ୍ରମର—
The black bee.

ମଧୁ ଲିହ—ସ. ବି—(ମଧୁ+ଲିହ୍ ଧାତୁ=ଚାଟିବା+କର୍ତ୍ତୃ. ଅ)—
Madhu liha ଭ୍ରମର—1. The black bee.

ମଧୁଳୀ -ସ. ବି—(ମଧୁ+ଲା ଧାତୁ ଗ୍ରହଣ କରିବା+କର୍ତ୍ତୃ ଅ+ଈ.
Madhuḷī ଏକପ୍ରକାର ଗହମ (ହି, ଶ; ଭାବପ୍ରକାଶ)—
A species of wheat

ମଧୁ ଲୁବ୍ଧ—ସ. ବିଣ. ପୁଂ--(ଓୟା ବା ୭ମୀ ତତ୍; ମଧୁ+ଲୁବ୍ଧ)--ମଧୁପାନ
Madhu lubdha କରିବା ପାଇଁ ଲାଳସାଯୁକ୍ତ—Hankering
(ମଧୁଲୋଭୀ; ମଧୁଲୋଲୁପ—ଅନ୍ୟରୂପ) after or tempted by
(ମଧୁଲୁବ୍ଧା—ସ୍ତ୍ରୀ) honey.

ମଧୁଲେହ(ହୀ) —ସ. ବି, ପୁଂ —(ମଧୁ+ଲିହ୍ ଧାତୁ+କର୍ତ୍ତୃ. ଅ; ଇନ୍)—
Madhuleha(hī) ଭ୍ରମର—The black bee.

ମଧୁ ଶୟନ—ସ. ବି—ମଧୁ ଶଯ୍ୟା (ଦେଖ)—Madhu śajyā
Madhu śayana (See) [ ଉ—ଏ କାଳ କବାଟେ ବର-
ବଧୂଙ୍କର ମଧୁଶୟନ । ରାଧାନାଥ. ଉଷା ।]

ମଧୁ ଶଯ୍ୟା —ସ. ବି—ମଧୁଶଯ୍ୟା; ବିବାହର ପ୍ରଥମ ସପ୍ତାହରେ ସ୍ୱାମୀ
Madhu śajyā ସ୍ତ୍ରୀଙ୍କର ଏକତ୍ରଶୟନ--Honeymoon; sleep-
ing together of the bride and bride-
groom during the first week of marriage.
[ ଦ୍ର—ଏହି ମଧୁଶଯ୍ୟା ପ୍ରଥାରୁ ଜଣାଯାଏ ଯେ ପୂର୍ବେ
ବ୍ରାହ୍ମଣାଦି ସମାଜରେ ଯୁବତୀ କନ୍ୟାର ବିବାହ ହେଉଥିଲା,
ନଚେତ୍ ବାଳିକା କନ୍ୟା ସଙ୍ଗେ ବରର ଏକତ୍ର ଶଯ୍ୟା-
ରଚନା ହାସ୍ୟାସ୍ପଦ ହୋଇ ଥାଆନ୍ତା ।]

ମଧୁ ଶର୍କରା - ସଂ.ବି—୧ । ମହୁରୁ ଜାତ ଗୁଡ଼--1. Sugar deposited
Madhu śarkarā from honey. ୨ । ଶିମ୍ବ (ହି. ଶ)—
(ମଧୁଶୁକ୍ଳା—ଅନ୍ୟରୂପ) 2. Bean.

ମଧୁ ଶିଗ୍ରୁ—ସଂ. ବି—ନାଲି ସଜନା—The red species of
Madhu śigru (ମଧୁ ଲିଗ୍ରୁ— ଅନ୍ୟରୂପ) Moringa tree.

ମଧୁ ଶିଷ୍ଟ—ସଂ. ବି (୬ଷ୍ଠୀ ତତ୍)—ମହଣ (ହି. ଶ)—
Madhu śishtha Bees-wax.
(ମଧୁଚ୍ଛିଷ୍ଟ, ମଧୁଶେଷ, ମଧୁସଂଭବ, ମଧୁସିକ୍ଥ, ମଧୁସିକ୍ଥକ—ଅନ୍ୟରୂପ)

ମଧୁ ସଂଗ୍ରହ—ସ. ବି (୬ଷ୍ଠୀ ତତ୍)—ମଧୁମକ୍ଷିକା ଓ ଭ୍ରମରଦ୍ୱାରା ଫୁଲରୁ
Madhu saṁgraha ମଧୁ ଆହରଣ—The gathering of
(ମଧୁଚୟନ—ଅନ୍ୟରୂପ) honey from flowers by bees
etc.

ମଧୁସଖ-ସ. ବି (ବହୁବ୍ରୀହି; ମଧୁ=ବସନ୍ତକାଳ ଅଟେ ସଖା ଯାହାର)—
Madhu sakha ୧ । କାମ—1. Cupid. ୨ । କୋକିଳ—
2. The cuckoo.

ମଧୁ ସଞ୍ଚୟ —ସ. ବି. (୬ଷ୍ଠୀ ତତ୍)—ମଧୁମକ୍ଷିକା ଓ ଭ୍ରମରଙ୍କର
Madhu sañchaya ମଧୁଚକ୍ରରେ ମଧୁ ସଞ୍ଚିତ ହେବା—The
storing of honey in the hive by bees or
black bees.

ମଧୁ ସହାୟ—ସ. ବି (୬ଷ୍ଠୀ ତତ୍; ମଧୁ+ସହାୟ)—କନ୍ଦର୍ପ; କାମ—
Madhu sahāya Cupid.
(ମଧୁସାରଥି, ମଧୁସୁହୃତ୍, ମଧୁହେତୁ—ଅନ୍ୟରୂପ)

**ମଧୁସୂଦନ**—ସଂ. ବି. ପୁଂ (ମଧୁ ନାମକ ରାକ୍ଷସକୁ ବଧ କରିଥିବାରୁ)—Madhusūdana ୧ । ମଧୁରିପୁ; ବିଷ୍ଣୁ—1. Bishṇu. ୨ । (ମଧୁହନ୍ତା—ଅନ୍ୟରୂପ) ଭ୍ରମର—2. Black bee. (ଉ—ଭାବନ୍ତି ରଙ୍ଗଦେବୀ ଚିତ୍ତ କଲିତା ମଧୁସୂଦନର ଭ୍ରମଣେ । ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ) ଦେ. ବି (ନାମ)—୧ । ସପ୍ତଦଶ ଶତାବ୍ଦୀର ଓଡ଼ିଆ କବି—1. Name of an Oriya poet of the seventeenth century, A.D [ଦ୍ର—ଏ ଶ୍ରୀମାଧୁରେଣୀଙ୍କ ନଳଚରିତର ଅନୁକରଣରେ 'ନଳଚରିତ' ନାମକ ପୁସ୍ତକ ଲେଖିଥିଲେ । ] ୨ । ଲୋକଙ୍କୁ ଦିଆଯିବା ନାମ—2. Name given to males.

**ମଧୁସୂଦନ ଦତ୍ତ**—ଦେ. ବି (ନାମ)—ବଙ୍ଗଳାର ପ୍ରସିଦ୍ଧ କବି; ମାଇକେଲ୍ Madhusūdana datta ମଧୁସୂଦନ ଦତ୍ତ—A famous poet of Bengal. [ଦ୍ର—ଏହାଙ୍କ ନାମ ମାଇକେଲ୍ ମଧୁସୂଦନଦତ୍ତ । ବଙ୍ଗଳାରେ ଅମିତ୍ରାକ୍ଷର ଛନ୍ଦରେ ଏ ପ୍ରସିଦ୍ଧ ମେଘନାଦବଧ କାବ୍ୟ ରଚନା କରିଥିଲେ; ଜନ୍ମ ଖ୍ରୀ ୧୮୨୪, ମୃତ୍ୟୁ ଖ୍ରୀ ୧୮୭୩ । ଏ କଲିକତା ହିନ୍ଦୁ କଲେଜରେ ଉଚ୍ଚ ଶିକ୍ଷାଲାଭ କରି ୧୯ ବର୍ଷ ବୟସରେ ଖ୍ରୀଷ୍ଟାନ୍ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏ ଇଂରାଜୀ ଛଡ଼ା ଗ୍ରୀକ୍ ଓ ଲାଟିନ୍ ଭାଷାରେ ବ୍ୟୁତ୍ପନ୍ନ ଥିଲେ । ଏ ପ୍ରଥମେ ମାନ୍ଦ୍ରାଜ କଲେଜର ଜଣେ ଇଉରୋପୀୟ ଅଧ୍ୟକ୍ଷଙ୍କ କନ୍ୟାଙ୍କ ପାଣିଗ୍ରହଣ କରିଥିଲେ । ଭାରତଇତିହାସପ୍ରସିଦ୍ଧା ସଂଯୁକ୍ତାଙ୍କ ଉପାଖ୍ୟାନକୁ ଅବଲମ୍ବନ କରି କାରାବଦ୍ଧା ସ୍ତ୍ରୀ (The Captive Lady) ନାମରେ ଏ ଗୋଟିଏ ଉତ୍କୃଷ୍ଟ ଇଂରାଜୀ କବିତା ଲେଖିଥିଲେ । ପରେ ପ୍ରଥମ ବିବାହବନ୍ଧନ ଛିନ୍ନ କରି ଏ ଆଉ ଜଣେ ଶ୍ୱେତକାୟା ରମଣୀଙ୍କ ପାଣିଗ୍ରହଣ କଲେ । ଏ କେତେକ କାଳ କଲିକତା ପୁଲିସ୍ କୋର୍ଟରେ କିରାଣୀ ଓ ପରେ ଦୋଭାଷୀ କର୍ମ କରିଥିଲେ ଓ ରତ୍ନାବଳୀ ନାଟକର ଇଂରାଜୀ ଅନୁବାଦ କରିଥିଲେ; କିନ୍ତୁ ପରେ ମାତୃଭାଷାର ସେବା କରି ବଙ୍ଗଳାରେ ଗୁଡ଼ିଏ ନାଟକ ଓ କାବ୍ୟ ରଚନା କରି ବଙ୍ଗରେ କବିପ୍ରସିଦ୍ଧି ଲାଭ କଲେ । ସେ ଆଇନ୍ ଶିକ୍ଷା କରିବାକୁ ବିଲାତ ଯାଇ ସେଠାରେ ବହୁ ଆର୍ଥିକ ଦୁଃଖ ଭୋଗ କଲେ ଓ ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଠାରୁ ବିସ୍ତର ଅର୍ଥ ସାହାଯ୍ୟ ଲାଭ କରି ବିଲାତରେ ବାରିଷ୍ଟର ପାଶ କରି ଫ୍ରାନ୍ସ ଓ ଇଂଲଣ୍ଡରେ କିଛି ଦିନ ଅବସ୍ଥାନ କରିବା ପରେ କଲିକତାକୁ ଆସି ବାରିଷ୍ଟରୀ କଲେ; କିନ୍ତୁ ସେ ଅମିତବ୍ୟୟୀ ଥିବାରୁ ଶେଷଜୀବନରେ ବହୁ ଦୁଃଖ ଭୋଗ କଲେ ଓ ରୁଗ୍ଣ ଅବସ୍ଥାରେ ଚିକିତ୍ସାବ୍ୟୟ ଚଳାଇବାର ତାଙ୍କର ସାମର୍ଥ୍ୟ ନ ଥିବାରୁ ଆଲିପୁର ଦାତବ୍ୟ ଚିକିତ୍ସାଳୟକୁ ଯାଇ ସେଠାରେ ଇହଲୋକ ତ୍ୟାଗ କଲେ । ତାଙ୍କର ଅମିତ୍ରାକ୍ଷର ଛନ୍ଦ ଓ ଚତୁର୍ଦ୍ଦଶପଦୀ କବିତା ଓ ବୀରରସପ୍ରଧାନ ରଚନା ତାଙ୍କୁ ବଙ୍ଗଳାର ଶ୍ରେଷ୍ଠ କବିରୂପେ ଚିରସ୍ମରଣୀୟ କରି ରଖିବ । ତାଙ୍କ ମୃତ୍ୟୁର ୧୫ ବର୍ଷ ପରେ ଦେଶବାସୀ ତାଙ୍କ ସ୍ମୃତିପୂଜା କରି ତାଙ୍କ ସମାଧି ଉପରେ ଗୋଟିଏ ମର୍ମରବେଦୀ ନିର୍ମାଣ କଲେ । ସୁବଳଚନ୍ଦ୍ର. ବଙ୍ଗଳା ଅଭିଧାନ । ]

**ମଧୁସୂଦନ ଦାସ**—ଦେ. ବି (ନାମ)—ଉତ୍କଳର ସ୍ୱର୍ଗୀୟ ଦେଶକର୍ମୀ—Madhusūdana dāsa The late Mr. M. S. Das, M. A., B.L., C. I. E. [ଦ୍ର—ଜନ୍ମ ଖ୍ରୀ ୧୮୪୮—ସ୍ୱର୍ଗଲାଭ ଖ୍ରୀ ୧୯୩୪ । ସେ ପ୍ରଥମେ କଟକରେ ଶିକ୍ଷାଲାଭ କରି କଲିକତାକୁ ଯାଇ ଉଚ୍ଚଶିକ୍ଷା ଲାଭ କରି ଏମ୍.ଏ ଓ ବି.ଏଲ ପାସ୍ କରିଥିଲେ । କଲିକତାରେ ସେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ପ୍ରଥମ ଓଡ଼ିଆ ଏମ୍. ଏ ଓ ଓଡ଼ିଆ ଓକିଲ ଥିଲେ । ସେ ପାସ୍ କରି ସାରି କଲିକତାରେ କେତେଦିନ ଶିକ୍ଷକତା କରିଥିଲେ । ବଙ୍ଗର ସୁପ୍ରସିଦ୍ଧ ସ୍ୱର୍ଗୀୟ ସର୍ ଆଶୁତୋଷଙ୍କର ବାଲ୍ୟାବସ୍ଥାରେ ମଧୁସୂଦନ କେତେଦିନ ତାଙ୍କର ଗୃହଶିକ୍ଷକ ଥିଲେ ଓ ସର୍ ଆଶୁତୋଷ ମଧୁସୂଦନଙ୍କଠାରୁ ପାଇଥିବା ଶିକ୍ଷାପାଇଁ ଆଜୀବନ କୃତଜ୍ଞତା ସ୍ୱୀକାର କରିଥିଲେ । କଲିକତା ହାଇକୋର୍ଟରେ ସେ କେତେଦିନ ଓଡ଼ିଆ ଅନୁବାଦକ କର୍ମ କରି ପରେ କଟକରେ ଓକିଲାତି ଆରମ୍ଭ କଲେ । ଖ୍ରୀ ୧୮୮୬—୮୭ ରେ ପୁରୀ ଜଗନ୍ନାଥ ମନ୍ଦିରକୁ ସରକାର ସ୍ୱହସ୍ତରେ ନେବାକୁ ଯେଉଁ ଚେଷ୍ଟା କରିଥିଲେ, ମଧୁସୂଦନ ପୁରୀ ରାଜାଙ୍କ ପକ୍ଷରୁ କଲିକତା ହାଇକୋର୍ଟ ପର୍ଯ୍ୟନ୍ତ ମକଦ୍ଦମା ଲଢ଼ି ମନ୍ଦିରରେ ପୁରୀ ରାଜାଙ୍କ ପୁରୁଷାନୁକ୍ରମିକ ଅଧିକାର ପ୍ରତିଷ୍ଠିତ କରାଇଥିଲେ । ସେ କଟକ କଲେଜରେ ବହୁ ବର୍ଷ ଆଇନ୍‌କ୍ଲାସର ପ୍ରୋଫେସର ଓ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ଭାଇସ୍‌ଚେୟାରମାନ୍ କାର୍ଯ୍ୟ ଦକ୍ଷତାର ସହିତ ସମ୍ପାଦନ କରିଥିଲେ । କଟକ ଓକିଲମାନଙ୍କ ମଧ୍ୟରେ ତାଙ୍କର ଅସାଧାରଣ ପ୍ରତିଭା ଓ ଶକ୍ତିବଳରେ ସେ ଓଡ଼ିଶାରେ ଓ ଗଡ଼ଜାତରେ ଅନନ୍ୟସାଧାରଣ ପ୍ରତିପତ୍ତି ଲାଭ କରିଥିଲେ । ବଙ୍ଗର ପ୍ରାଦେଶିକ କାଉନ୍‌ସିଲ୍‌ର ସଭ୍ୟରୂପେ ସେ ଓଡ଼ିଶାର ବହୁ ଉପକାର ସାଧନ କରିଥିଲେ ଓ ବିଲାତକୁ ଯାଇ ଓଡ଼ିଶା ପ୍ରତି ବିଲାତବାସୀଙ୍କର ତଥା ପାର୍ଲିଆମେଣ୍ଟ ମେମ୍ବର୍‌ମାନଙ୍କର ଓ ଷ୍ଟେଟ୍ ସେକ୍ରେଟରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ମଧୁସୂଦନଙ୍କ ଚେଷ୍ଟାରେ ଓଡ଼ିଶାର ଅସ୍ଥାୟୀ ବନ୍ଦୋବସ୍ତର ମିଆଦ ୧୫ ବର୍ଷ ପରିବର୍ତ୍ତରେ ୩୦ ବର୍ଷ ହୋଇଥିଲା । ଶିକ୍ଷିତ ଓଡ଼ିଆମାନଙ୍କର ଉଚ୍ଚ ରାଜକୀୟ କର୍ମରେ ନିଯୁକ୍ତିର ସୂତ୍ରପାତ ମଧୁସୂଦନଙ୍କ ଉଦ୍ୟମରେ ହୋଇଥିଲା । ୧୯୦୩ ସାଲରେ ଉତ୍କଳ ସମ୍ମିଳନୀର ସୂତ୍ରପାତ କରି ସେ ପ୍ରଥମେ ସମଗ୍ର ଉତ୍କଳବାସୀଙ୍କ ମନରେ ଜାତୀୟଭାବର ଉଦ୍ରେକ କରାଇଥିଲେ; କୃଷି, ବାଣିଜ୍ୟ, ବୟନଶିଳ୍ପ ଓ କାରୁଶିଳ୍ପର ଉନ୍ନତିପାଇଁ ସେ ଅଜସ୍ର ଅର୍ଥବ୍ୟୟ କରିଥିଲେ । ତାଙ୍କ ପ୍ରତିଷ୍ଠିତ ଉତ୍କଳ ଶିଳ୍ପ ଭଣ୍ଡାର [Orissa Art Wares] ଓ ଉତ୍କଳ ଚମଡ଼ା କାରଖାନା ( Utkal Tannery ) ଯୋଗୁଁ ଉତ୍କଳର ଶିଳ୍ପ ପାଶ୍ଚାତ୍ୟ ଜଗତରେ ଆଦୃତ ହୋଇଥିଲା । ଯାଜପୁର ବନ୍ୟାକ୍ଲିଷ୍ଟ

ଅଞ୍ଚଳକୁ ନିଜେ ଯାଇ ସେ ଅଞ୍ଚଳର ଦୁର୍ଦ୍ଦଶା ସରକାରଙ୍କ, ପାର୍ଲିଆମେଣ୍ଟର ମେମ୍ବରଙ୍କ ଓ କଲିକତାର ସାମ୍ବାଦିକମାନଙ୍କ ଦୃଷ୍ଟିକୁ ଆଣିଥିଲେ । ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ଆନ୍ଦୋଳନରେ ମଧୁସୂଦନ ୧୯୦୦ ସାଲରୁ ମଙ୍ଗଳଧରରୂପେ ରହି ଶେଷରେ ଓଡ଼ିଶା ପ୍ରଦେଶ ଗଢ଼ାଯିବା ଆଦେଶ ୧୯୩୪ ସାଲରେ ତାଙ୍କ ଜୀବନରେ ଶୁଣି ଗଲେ । ତାଙ୍କ ପ୍ରଯତ୍ନରେ The Oriya ନାମକ ଓଡ଼ିଶାର ଇଂରାଜୀ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ସେ ଓଜସ୍ୱୀ ବକ୍ତା ଓ ଅଗ୍ନିସ୍ଫୁଲିଙ୍ଗବର୍ଷୀ ଲେଖକ ଥିଲେ । ବିହାର ଓଡ଼ିଶା ସରକାରଙ୍କ ମନ୍ତ୍ରୀତ୍ୱ ଗ୍ରହଣ କରି ବିନା ଦରମାରେ ମନ୍ତ୍ରୀମାନେ କାର୍ଯ୍ୟ କରିବାର ପ୍ରସ୍ତାବ ସେ କରିବାରୁ ସରକାରଙ୍କ ସଙ୍ଗେ ତାଙ୍କ ମତଭେଦ ହେଲା ଓ ସେ ମନ୍ତ୍ରିପଦ ଇସ୍ତଫା ଦେଲେ । ରେଭେନ୍‌ସା ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ମଧୁବାବୁଙ୍କ ପରାମର୍ଶରେ ତାଙ୍କର ପୋଷ୍ୟା କନ୍ୟା ଶ୍ରୀଯୁକ୍ତା ଶୈଳବାଳା ଦାସଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ସେ ଖୁବ୍ ବଦାନ୍ୟ ଥିଲେ ଓ ଶେଷକୁ ଦେବାଳିଆ ହୋଇଥିଲେ । ସେ ଏହି ଭାଷାକୋଷ ସଂଗ୍ରାହକଙ୍କର ଗୁରୁସ୍ଥାନୀୟ ଥିଲେ । ଭାଷାକୋଷର ପ୍ରଥମ ଖଣ୍ଡର ଅବତରଣିକାରେ ଏ ଗ୍ରନ୍ଥ ସଙ୍ଗେ ତାଙ୍କର ସମ୍ପର୍କ ବିବୃତ ହୋଇଅଛି । ]

ମଧୁସୂଦନ ରାଓ—ଦେ. ବି—(ନାମ)—ଉତ୍କଳର ସ୍ୱର୍ଗୀୟ ଭକ୍ତ କବି—Madhu sūdana rāo The late Rai Bahadoor Madhusudan Rao. [ ଦ୍ର—) ଜନ୍ମ ଖ୍ରୀ. ୧୮୫୩, ପରଲୋକ ପ୍ରାପ୍ତି ଖ୍ରୀ. ୧୯୧୨ । ଏହାଙ୍କ ମାତୃଭୂମି ପୁରୀ ଜିଲ୍ଲା ଗୋପ ଗ୍ରାମ, ଏ ମରହଟ୍ଟା ଋଷିଯ ବଂଶରେ ଜନ୍ମଗ୍ରହଣ କରି-ଥିଲେ । ଏହାଙ୍କ ପିତା ଭାଗୀରଥି ରାଓ ଜଣେ ପୁଲିସ୍ କର୍ମଚାରୀ ଥିଲେ । ଏ ପୁରୀ ସହରରେ ଏହାଙ୍କ ମାତୁଳା-ଳୟରେ ଜନ୍ମଗ୍ରହଣ କରିଥିଲେ ଏବଂ ଶୈଶବରେ ମାତୃଶୂନ୍ୟ ହୋଇଥିଲେ । ଏ ପ୍ରଥମେ ଗୋପ ଗ୍ରାମର ଚାଟଶାଳରେ, ତତ୍ପରେ ଭୁବନେଶ୍ୱର ସାହାଯ୍ୟପ୍ରାପ୍ତ ମାଇନର ସ୍କୁଲରେ କିଛି ଦିନ ପଢ଼ିବା ପରେ ପୁରୀ ଜିଲ୍ଲାସ୍କୁଲରେ ପଢ଼ିଲେ । ଛାତ୍ରାବସ୍ଥାରେ ତାଙ୍କର ବିନୟଶୀଳତା, ଭକ୍ତି, ଅଧ୍ୟୟନରେ ଅଭିନିବେଶ, ନୀତିମୟ ଜୀବନଯାପନ ଦେଖି ଶିକ୍ଷକ, ସ୍କୁଲ୍ ଇନ୍‌ସପେକ୍ଟର ଓ ତଦାନୀନ୍ତନ ଜିଲ୍ଲା ମାଜିଷ୍ଟ୍ରେଟ୍ ବିମୁଗ୍ଧ ହୋଇଥିଲେ । ସେ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିବା ସମୟରେ ଓଡ଼ିଶାର ଭୟଙ୍କର ନଅଙ୍କ ଦୁର୍ଭିକ୍ଷ (ଖ୍ରୀ. ୧୮୬୬) ପଡ଼ିଲା ଓ ସେଥିରେ ଦୁର୍ଭିକ୍ଷ କ୍ଲିଷ୍ଟ ଅଞ୍ଚଳ ବୁଲି ସେ ସରକାରୀ ସାହାଯ୍ୟ ବିତରଣ କର୍ମରେ ଲାଗିଲେ । ତହିଁର ପର ବର୍ଷ ତାଙ୍କର ସାଂଘାତିକ ପୀଡ଼ା ଯୋଗୁଁ ସେ ପରୀକ୍ଷା ଦେଇ ପାରି ନ ଥିଲେ । ତତ୍ ପରବର୍ଷ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍ସ ପାଶ୍ କରି ମଧୁସୂଦନ କଟକ କଲେଜକୁ ଅଧ୍ୟୟନ କରିବାକୁ ଆସିଲେ । କଲେଜର ପ୍ରୋଫେସର୍ ବ୍ରାହ୍ମଧର୍ମାବଲମ୍ବୀ ହରନାଥଭଟ୍ଟାଚାର୍ଯ୍ୟଙ୍କ ସହବାସ, ଧର୍ମଜୀବନ ଓ ଉପଦେଶ ତାହାଙ୍କୁ ଏକେଶ୍ୱରବାଦମୂଳକ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ କଲା । ୧୮ ବରଷ ବୟସରେ ସେ କଟକ କଲେଜରୁ ଏଫ୍. ଏ ପାସ୍ କରି ବି. ଏ ପଢ଼ିବା ପାଇଁ କଲିକତା ଯିବାକୁ କାମନା କରିଥିଲେ, କିନ୍ତୁ ତାଙ୍କ ପିତା ତାଙ୍କୁ କଲିକତା ଛାଡ଼ି ଦେବାକୁ ସମ୍ମତ ନ ହେବାରୁ ସେ ପ୍ରଥମେ ପୁରୀ ଜିଲ୍ଲାସ୍କୁଲର ତୃତୀୟ ଶିକ୍ଷକ ପଦ ଗ୍ରହଣ କଲେ । ତତ୍ପରେ ଯାଜପୁର ଓ ବାଲେଶ୍ୱରରେ ଶିକ୍ଷକତା କରି କଟକ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ, କଟକ ଜିଲ୍ଲାର ସ୍କୁଲ ସମୂହର ଡେପୁଟି ଇନ୍‌ସପେକ୍ଟର, କଟକ ଟ୍ରେନିଙ୍ଗ୍ ସ୍କୁଲର ଓ କଲେଜିଏଟ୍‌ସ୍କୁଲର ହେଡ୍‌ମାଷ୍ଟର ଓ ଶେଷକୁ ଓଡ଼ିଶା ଶିକ୍ଷାବିଭାଗର ଇନ୍‌ସପେକ୍ଟର ହୋଇଥିଲେ । ତାଙ୍କର ସ୍ମୃତିଶକ୍ତି ପ୍ରଖର ଥିଲା ଓ ଅବସର ସମୟରେ ସେ ଧର୍ମଶାସ୍ତ୍ର, ସାହିତ୍ୟ ଆଦି ଅଧ୍ୟୟନ କରୁଥିଲେ । ସେ କୌଣସି ବଡ଼ କାବ୍ୟ ରଚନା କରି ନାହାନ୍ତି । ତାଙ୍କ ଗଦ୍ୟ ପ୍ରବନ୍ଧ ମାଳା, ପଦ୍ୟ କବିତାବଳି, ଛନ୍ଦମାଳା, କୁସୁମାଞ୍ଜଳି, ବସନ୍ତ ଗାଥା, କର୍ଣ୍ଣିବଧ କାବ୍ୟ, ସଙ୍ଗୀତମାଳା, ଶୋକଶ୍ଳୋକ, ସଂସ୍କୃତ ଉତ୍ତର ରାମଚରିତର ଅନୁବାଦ, ଚତୁର୍ଦ୍ଦଶପଦୀ କବିତା, ବିବିଧ କବିତା ଓ ଶିଶୁପାଠ୍ୟ ବର୍ଣ୍ଣବୋଧ, ତାଙ୍କର ବହୁତୋମୁଖୀ ପ୍ରତିଭାର ପରିଚୟ ପ୍ରଦାନ କରେ । ସେ ବାଲ୍ୟ କାଳରେ ପ୍ରତିଦିନ ଦେବ ଦର୍ଶନ ନ କରି ଜଳ ଗ୍ରହଣ କରୁ ନ ଥିଲେ । ଏଣ୍ଟ୍ରାନ୍ସ ପରୀକ୍ଷା ଦେବା ପୂର୍ବରୁ ପୁରୀଠାରେ ସ୍ୱପ୍ନରେ ଜଣେ ଜଟାଧାରୀ ଅଲୋକମୟ ପୁରୁଷଙ୍କୁ ଦେଖି ତାଙ୍କ ମୁଖରୁ 'ଓଁ' ଉଚ୍ଚାରିତ ହେବାର ଶୁଣି ମଧୁସୂଦନଙ୍କ ହୃଦୟରେ ଆଧ୍ୟାତ୍ମିକ ମହାଭାବ ପ୍ରଥମେ ଜାଗ୍ରତ ହୋଇଥିଲା । ପୁରୀଠାରେ ମଧୁସୂଦନ ପଢ଼ିବା ସମୟରେ କବିବର ରାଧାନାଥ ପୁରୀ ଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକ ହୋଇଥିଲେ ଓ ବିଦ୍ୟାଳୟରେ ପଢ଼ାଇବା ଛଡ଼ା ସେ ମଧୁସୂଦନଙ୍କୁ ଘରେ ପଢ଼ାଉଥିଲେ । ରାଧାନାଥଙ୍କ ସହବାସ ଓ ସହଭ୍ରମଣରେ ମଧୁସୂଦନଙ୍କର କବି-ଜନୋଚିତ ଭାବୁକତାର ବୀଜ ଅଙ୍କୁରିତ ହୋଇଥିଲା । ନବ୍ୟ ଉତ୍କଳ ସାହିତ୍ୟରେ ଓ ଓଡ଼ିଆ ପାଠ୍ୟପୁସ୍ତକରେ ମଧୁ-ସୂଦନଙ୍କୁ ନବଯୁଗର ଓ ମାର୍ଜିତରୁଚିର ପଥପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଋଷିପ୍ରାଣେ ଦେବାବତରଣ, ଜୀବନଚିନ୍ତା, ଆକାଶ ପ୍ରତି, ଧ୍ୱନି, ଏ ସୃଷ୍ଟି ଅମୃତମୟହେ, ଆଶା, କବିତାମାନଙ୍କ ଆଧ୍ୟାତ୍ମିକ ଭାବୋଚ୍ଛ୍ୱାସ ଉତ୍କଳ ସାହିତ୍ୟରେ ଅତୁଳନୀୟ ଓ ଏପରି ମୌଳିକ ପଦ୍ଧତି କବିତା ମଧୁସୂଦନଙ୍କ ପୂର୍ବରୁ ଆଧୁନିକ ଓଡ଼ିଆ ସାହିତ୍ୟରେ ଦେଖାଯାଇ ନ ଥିଲା । ତାଙ୍କର ବର୍ଣ୍ଣବୋଧ ଓ ଛନ୍ଦମାଳା ଗତ ୬୦ ବର୍ଷ ହେବ ଉତ୍କଳର ଲକ୍ଷ ଲକ୍ଷ ବାଳକ ବାଳିକାଙ୍କର ଆଦରର ସାମଗ୍ରୀ ହୋଇଅଛି । ତାଙ୍କର ଆଦର୍ଶ ଧର୍ମଜୀବନ, ଆଦର୍ଶ ପାରିବାରିକ ଜୀବନ ଯେଉଁମାନେ ଦେଖିଅଛନ୍ତି ସେମାନେ ମୁଗ୍ଧ ହୋଇଅଛନ୍ତି । ସେ ୩୫ ବର୍ଷ କାଳ ଉତ୍କଳର ବ୍ରାହ୍ମସମାଜର ଆଚାର୍ଯ୍ୟ ଥିଲେ । ରାଧାନାଥ, ଫକୀରମୋହନ, ମୋହିନୀମୋହନ ଆଚାର୍ଯ୍ୟ ଓ ପ୍ୟାରୀମୋହନ ସେନ, ବିଶ୍ୱନାଥ

କବି, ମିଷ୍ଟର ମଧୁସୂଦନ ଦାସ, ବାମଣ୍ଡାର ରାଜା ସୁଚଳ ଓ ସଚ୍ଚିଦାନନ୍ଦ, ମୟୂରଭଞ୍ଜ ମହାରାଜ ରାମଚନ୍ଦ୍ର, ମହାତ୍ମା ଚନ୍ଦ୍ରଶେଖର, ନନ୍ଦକିଶୋର ଦାସ, ଗୌରୀଶଙ୍କର, ରାମଶଙ୍କର ଆଦି ଉତ୍କଳର ପୁଣ୍ୟଶ୍ଳୋକ ମହାପୁରୁଷମାନେ ମଧୁସୂଦନଙ୍କ ସମସାମୟିକ ଥିଲେ ଓ ଆଧୁନିକ ସାହିତ୍ୟର ବହୁ ସେବକ ମଧୁସୂଦନଙ୍କ ଶିଷ୍ୟ ଓ ଭକ୍ତ ଥିଲେ । ତାଙ୍କର ପ୍ରତ୍ୟେକ କର୍ମ ସୁମାର୍ଜିତ, ସ୍ନେହ ଓ ଭକ୍ତିଦ୍ୱାରା ଜୟଯୁକ୍ତ ହୋଇଥିଲା । ଏଥିପାଇଁ ଫକୀରମୋହନ ଗାଇଥିଲେ, 'ଆଦର୍ଶ ମନୁଷ୍ୟ ଯଦି ଦେଖିବାରେ ଇଚ୍ଛା, ଧାଇଁ ଯାଅ ଦେଖିଆସ ଘରେ ମଧୁରାଓ ।' ଉତ୍କଳରେ ଉଚ୍ଚଶିକ୍ଷାର ବିସ୍ତାର ପାଇଁ ଟାଉନ୍ ଭିକ୍ଟୋରିଆ ସ୍କୁଲ୍ ସ୍ଥାପନ କରି ମଧୁସୂଦନ ଉତ୍କଳର ଯେଉଁ ମହୋପକାର କରିଅଛନ୍ତି ତାହା ଉତ୍କଳର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ମଧୁସୂଦନ ଆଜୀବନ ଶୂଳ ରୋଗରେ ବହୁ କଷ୍ଟ ଭୋଗ କରୁଥିଲେ । ସେ ମଧୁରପ୍ରକୃତି, ମିଷ୍ଟଭାଷୀ ଓ ଆଦର୍ଶ ଗୃହସ୍ଥ ଥିଲେ । ଶିକ୍ଷକ ସମାଜରେ ମଧୁସୂଦନଙ୍କ ସ୍ଥାନ ସର୍ବୋଚ୍ଚ ଥିଲା । ଉତ୍କଳର ଶିକ୍ଷାକ୍ଷେତ୍ରରେ ଓ ସାହିତ୍ୟରେ ତାଙ୍କର ସୁମାର୍ଜିତ ନବ୍ୟ ଉତ୍କଳକୁ ପ୍ରଭାବିତ କରିଅଛି । ଆଧୁନିକ ଯୁଗରେ ବଙ୍ଗୀୟମାନଙ୍କ ମଧ୍ୟରେ ଉତ୍କଳ ସାହିତ୍ୟଭକ୍ତ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ତାଙ୍କର ଜ୍ୟେଷ୍ଠ ଜାମାତା । ତାଙ୍କ ଜ୍ୟେଷ୍ଠ ପୁତ୍ର ରାୟ ବାହାଦୁର ଜୟନ୍ତ ରାଓ ଜଣେ ଖ୍ୟାତନାମା ଓ ସିଦ୍ଧହସ୍ତ ଚିକିତ୍ସକ ( ସିଭିଲ ସର୍ଜନ୍ ) ରୂପେ କର୍ମ କରି ବର୍ତ୍ତମାନ ଅବସର ଗ୍ରହଣ କରିଅଛନ୍ତି । ତାଙ୍କର ଅନ୍ୟତମ ପୁତ୍ର ଶ୍ରୀମାନ୍ ସୁକାନ୍ତ ରାଓ ଏମ୍. ଏସ୍‌ସି. ଶିକ୍ଷା ବିଭାଗର ଉଚ୍ଚପଦବୀ ଅଧିକାର କରିଅଛନ୍ତି । ନବଯୁଗର ଉତ୍କଳ ସାହିତ୍ୟ କ୍ଷେତ୍ରରେ ମଧୁସୂଦନଙ୍କୁ ଭବଭୂତିଙ୍କ ସଙ୍ଗେ ଓ ରାଧାନାଥଙ୍କୁ କାଳିଦାସଙ୍କ ସଙ୍ଗେ ତୁଳନା କରାଯାଇ ପାରେ । ]

ମଧୁସ୍ରବ—ସ. ବି—ମହୁଲ ଗଛ—
Madhusraba The Mahula tree,

ମଧୁସ୍ରବା—ସ. ବି—୧ । ମୂର୍ବା ( ଦେଖ )—1. Mūrbā ( See )
Madhusrabā [ ଉ—ଅପରାଜିତା ବଳ୍ଲି—ବୃନ୍ଦ ତାର ଝୁଲନ୍ତି ଏ ମଧୁସ୍ରବା ଗୋ । ] ୨ । ପିଣ୍ଡ ଖର୍ଜୁର—2, A superior variety of dates.

ମଧୁହା—ସ ବି (ମଧୁ+ହନ୍ ଧାତୁ+କର୍ତ୍ତୃ.କ୍ୱିପ୍)—୧ । ମଧୁରିପୁ; ବିଷ୍ଣୁ—
Madhuhā 1. Bishṇu. ୨ । ଭ୍ରମର - 2. The black bee.

ମଧୁହାରୀ—ସ.ବି—୧ । ମଧୁସୂଦନ; ବିଷ୍ଣୁ—1, Bishṇu. [ଉ—
Madhuhārī ବାସରେ ବାସରେ ଋଷି ସଙ୍ଗ ମଧୁହାରୀ ସେ—ଭଞ୍ଜ. ବୈଦେହୀଶବିଳାସ । ] ୨ । ଭ୍ରମର—2. Black bee.

ମଧୂକ—ସ. ବି—ମହୁଆ (ଗଛ ଓ ଫୁଲ) ( ଦେଖ )
Madhūka Bassia Latifolia (tree and flower.)

ମଧୂକ ସୁରା—ସ. ବି—ମହୁଲରୁ ପ୍ରସ୍ତୁତ ମଦ—
Madhūka surā The wine extracted from Mahwa flowers

ମଧୂଚ୍ଛିଷ୍ଟ—ସ, ବି ( ୬ଷ୍ଠୀ ତତ୍; ମଧୁ+ଉଚ୍ଛିଷ୍ଟ )—ମହମ—
Madhūchchhishṭa Bees-wax

ମଧୂତ୍ଥ—ସ. ବି (ମଧୁ+ଉତ୍+ସ୍ଥା ଧାତୁ+କର୍ତ୍ତୃ.ଅ)—ମହମ—Bees-wax.
Madhūttha ( ମଧୂତ୍ଥିତ, ମଧୂବକ—ଅନ୍ୟରୂପ )

ମଧୂତ୍ଥ ବର୍ତ୍ତିକା—ସଂ. ବି ( ଆଧୁନିକ ପ୍ରୟୋଗ )—ମହମବତି—
Madhūttha barttikā Wax candle.

ମଧୂତ୍ସବ—ସଂ. ବି—ମଦନୋତ୍ସବ ( ଦେଖ )
Madhūtsaba Madanotsaba ( See )

ମଧୂଳ—ସଂ. ବି—ଜଳମହୁଆ (ହି. ଶ)—Aquatic Mahwa.
Madhūla

ମଧୂଳିକା—ସଂ. ବି—ମଧୂଲୀ ନାମକ ଗୋଧୂମରୁ ପ୍ରସ୍ତୁତ ମଦ୍ୟ—
Madhūlikā 1. Wine distilled from a kind of wheat. ୨ । ଯଷ୍ଟିମଧୁ (ହି.ଶ)—2. Liquorice root. ୩ । ମୂର୍ବା (ହି. ଶ )—3, A kind of fibrous grass. ୪ । ଏକପ୍ରକାର ଛୋଟ ଦାନାବାଲା ଗହମ ( ହି. ଶ )—4. A small variety of wheat. ୫ । ଜଳଜ ମହୁଆ—5. Aquatic Mahwa. ୬ । ଏକପ୍ରକାର ବିଷାକ୍ତ ମାଛି ( ହି. ଶ )—6. A kind of poisonous flea

ମଧୂଲୀ—ସଂ. ବି—୧ । ମଧ୍ୟଭାରତଜାତ ଏକପ୍ରକାର କ୍ଷୁଦ୍ର ଗୋଧୂମ—
Madhūlī 1. A species of small wheat grown in the Central Provinces of India. ୨ । ଆମ୍ବଗଛ ( ହି. ଶ )—2. The mango tree. ୩ । ଜଳଜ ମଧୁଯଷ୍ଟି ( ହି. ଶ )—3. A species of a aquatic liquorice.

ମଧ୍ୱକ ସଂ. ବି ( ମଧୁ+ସଂଗ୍ରାହକାର୍ଥେ, ଅକ )—ମହୁମାଛି (ହି ଶ)—
Madhwaka Bee.

ମଧ୍ୱରିଷ୍ଟ- ସଂ. ବି ( ମ, ପ. ଲୋ; ମଧୁ+ଅରିଷ୍ଟ )—ମଧୁମିଶ୍ରଣରେ
Madhwarishṭa ପ୍ରସ୍ତୁତ ଅରିଷ୍ଟବିଶେଷ—A kind of decoction of honey. [ ଦ୍ର—ଏହା ସଂଗ୍ରହଣୀ ରୋଗରେ ଉପକାରୀ—ହି. ଶ । ]

ମଧ୍ୱଲ—ସଂ, ବି ( ମଧୁ+ଅଳଂ )—ବାରମ୍ବାର ଓ ବହୁତ ମଦ୍ୟପାନ
Madhwaḷa ( ହି. ଶ)—Repeated and excessive wine-drinking; drinkingbout.

ମଧ୍ୱାଚାରୀ—ସଂ. ବିଣ ( ଆଧୁନିକ ପ୍ରୟୋଗ; ମଧ୍ୱାଚାର୍ଯ୍ୟ+ଇନ୍; ୧ମା.
Madhwāchārī ୧ବ )—ମଧ୍ୱାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ( ମାଧ୍ୱ—ଅନ୍ୟରୂପ ) ଭକ୍ତ—( a person ) Belonging to the religious sect started by Madhwā-chārjya.

ମଧ୍ୱାଚାର୍ଯ୍ୟ—ସଂ. ବି ( ନାମ )—ଦକ୍ଷିଣ ଭାରତର ମଧ୍ୱାଚାରୀ ବା ମାଧ୍ୱ
Mādhwāchārjya ବୈଷ୍ଣବ ସମ୍ପ୍ରଦାୟର ପ୍ରତିଷ୍ଠାତା—Name

of a religious teacher of South India. [ ଦ୍ର—ଏ ଖ୍ରୀଷ୍ଟ ଦ୍ୱାଦଶ ଶତାବ୍ଦୀରେ ଜୀବିତ ଥିଲେ । ଏହାଙ୍କ ମତରେ ନାରାୟଣଙ୍କଠାରୁ ଦେବତାମାନଙ୍କର ଓ ଜଗତର ସୃଷ୍ଟି ହୋଇଅଛି । ଜୀବ ଓ ଈଶ୍ୱରଙ୍କର ପୃଥକ୍ ସତ୍ତା ଏ ସ୍ୱୀକାର କରିଅଛନ୍ତି । ଏହାଙ୍କ ପ୍ରବର୍ତ୍ତିତ ଦର୍ଶନର ନାମ ପୂର୍ଣ୍ଣପ୍ରଜ୍ଞ ଦର୍ଶନ । ଏ ଅନେକ ବୈଷ୍ଣବଗ୍ରନ୍ଥ ଓ ଗୀତାର ଓ ଅନ୍ୟାନ୍ୟ ଅନେକ ଗ୍ରନ୍ଥର ଭାଷ୍ୟ ପ୍ରଣୟନ କରିଥିଲେ । ଏହାଙ୍କର ନାମ ପ୍ରଥମେ ବାସୁଦେବାଚାର୍ଯ୍ୟ ଥିଲା । କଥିତ ଅଛି ଯେ ଏ ବଦରିକାଶ୍ରମକୁ ଯାଇ ସେଠାରେ ବାସୁଦେବଙ୍କଠାରୁ ୩ଟି ଶାଳଗ୍ରାମ ପାଇଥିଲେ ଓ ଉକ୍ତ ୩ଟି ଶାଳଗ୍ରାମଙ୍କ ପୂଜା ନିମନ୍ତେ ଏ ଭାରତର ୩ ସ୍ଥାନରେ ୩ଟି ମଠ ସ୍ଥାପନ କରିଥିଲେ—ହି. ଶ । ]

**ମଧ୍ୱାଧାର**—ସଂ. ବି ( ୬ଷ୍ଠୀ ତତ୍; ମଧୁ+ଆଧାର )—ମହୁଫେଣା ( ହି. ଶ)—Bee-hive.
Madhwādhāra

**ମଧ୍ୱାବାସ**—ସଂ. ବି (୬ଷ୍ଠୀ ତତ୍; ମଧୁ+ଆବାସ)—ଆମ୍ବଗଛ (ହି.ଶ)—The mango tree.
Madhwābāsa

**ମଧ୍ୱାଳୁ**—ସଂ. ବି—ମହୁଆ ଅଳୁ ( ଦେଖ)—Mahuā ālu ( See )
Madhwālu

**ମଧ୍ୱାସବ**—ସଂ. ବି —୧ । ମଧୁରୁ ପ୍ରସ୍ତୁତ ସୁରା—1. Wine made from honey; mead wine. ୨ । ମହୁଲି ମଦ—2 Spirituous liquor made from the blossoms of Mahwa flower ( Bassia Latifolia ).
Madhwāsaba

**ମଧ୍ୱାସବନିକ**—ସଂ. ବି—ଶୁଣ୍ଡୀ; ଯେ ସର୍ବଦା ତିଆର କରି ବିକେ (ହି.ଶ)—A distiller and seller of wine.
Madhwāsabanika

**ମଧ୍ୱିଜା**—ସଂ. ବି—ମଦିରା; ମଦ ( ହି. ଶ )—Wine.
Madhwija

**ମଧ୍ୟ**—ସଂ. ବି ( ମନ୍ ଧାତୁ+କର୍ମ ଅ; ନିପାତନ; କିମ୍ବା ମ=ସୌନ୍ଦର୍ଯ୍ୟ+ଧା ଧାତୁ=ଧାରଣ କରିବା+କର୍ତ୍ତୃ ଅ; ନିପାତନ ) —୧ । ଅଣ୍ଟା; କଟିଦେଶ—1. The waist. ୨ । ମଝି; ଦୁଇ ଶେଷ ଭାଗର ମଧ୍ୟସ୍ଥଳ—2. Middle. ୩ । ଭିତର; ଅଭ୍ୟନ୍ତର; ଅନ୍ତର୍ଦ୍ଦେଶ—3. Inside. ୪ । ଅନ୍ତରାଳ—4. Interval, interstice. ୫ । ବିଶ୍ରାମ; ବିରାମ—5. Cessation; rest. ୬ । ତାଳ ବିଶେଷ—6. Name of a musical cadence. ୭ । ସଂଖ୍ୟା ବିଶେଷ; ଏକରେ ୧୬ଟା ଶୂନ୍ୟ ଦେଲେ ହେବା ସଂଖ୍ୟା—7. Ten thousand trillions in number. ୮ । ନୃତ୍ୟ ବିଶେଷ; ଲେମଟା ନାଚ—8. A kind of dance. ୯ । ଗ୍ରହର ଗତି ବିଶେଷ—9. A motion of a planet. ୧୦ । ହାତର ମଝି ଅଙ୍ଗୁଳି—10. Middle finger. ୧୧ । ପଶ୍ଚିମ ଦିଗ—11. The west. ୧୨ । ସୁଶ୍ରୁତ ମତରେ ୧୬ ବର୍ଷଠାରୁ ୭୦ ବର୍ଷ ବୟସ ହେବା ପର୍ଯ୍ୟନ୍ତ ମନୁଷ୍ୟର ଅବସ୍ଥା ( ହି. ଶ )—12. The state of a person between the ages of 16 and 70 years. ୧୩ । ଭେଦ ( ହି. ଶ )—13. Difference. ବିଣ—୧ । ଅନ୍ତର୍ବର୍ତ୍ତୀ—1. Situate inside. ୨ । ଉପଯୁକ୍ତ; ନ୍ୟାଯ୍ୟ—2. Legitimate; proper; fit. ୩ । ଅଭ୍ୟନ୍ତରସ୍ଥ—3. Inner; internal. ୪ । ମଧ୍ୟମ—4. Middle-most. ୫ । ମଧ୍ୟବର୍ତ୍ତୀ—5. Intermediate ୬ । ଅଧମ; ଅନୁତ୍ତମ—6. Bad; not good. ଦେ. ଅ ( ସଂ. ଅପି )—୧ । ଅପିଚ; ପୁନଶ୍ଚ, ଆହୁରି—1 Also; again. ୨ । କିନ୍ତୁ—2. But. ୩ । ଏବଂ—3. And. ( ଉ—ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର ଜମିଦାର, ମଧ୍ୟ ମହାଜନ । ଫକୀରମୋହନ. ଛମାଣ ଆଠଗୁଣ । )
Madhya
(ମଧ୍ୟା—ସ୍ତ୍ରୀ)
ଓ
ମୀ
କିନ୍ତୁ
ଏବଂ

**ମଧ୍ୟକ୍ଷୀଣ**—ସଂ. ବିଣ. ପୁଂ ( ବହୁବ୍ରୀହି, ମଧ୍ୟ=କଟି ଅଟେ କ୍ଷୀଣ ଯାହାର )—କ୍ଷୀଣମଧ୍ୟ; ସରୁକଟିଯୁକ୍ତ—Having a slender waist
Madhyakshiṇa
(ମଧ୍ୟକ୍ଷୀଣା—ସ୍ତ୍ରୀ)

**ମଧ୍ୟଗତ**—ସଂ. ବିଣ ( ୨ୟା ତତ୍ )—ମଧ୍ୟସ୍ଥିତ—Middle.
Madhyagata

**ମଧ୍ୟଗନ୍ଧ ବର୍ଗ**—ବି—ଜୀରାଆଦି ୧୬ଟି ଦ୍ରବ୍ୟ ( ବୈଦ୍ୟକୋକ୍ତ ଦ୍ରବ୍ୟଗୁଣ )—16 condiments beginning with cumin seed.
Madhyagandha barga

**ମଧ୍ୟତଃ**—ସଂ. ଅ—୧ । (ମଧ୍ୟ+ତସ୍) ମଧ୍ୟେ; ମଧ୍ୟରେ—1. In; inside of. ୨ । ମଧ୍ୟରୁ—2. From inside.
Madhyatah

**ମଧ୍ୟଦେଶ**—ସଂ. ବି—୧ । କୌଣସି ବସ୍ତୁର ମଧ୍ୟସ୍ଥଳ—1. The central part of a thing. ୨ । କଟିଦେଶ; ଅଣ୍ଟା—2 The waist. ୩ । ଭାରତର ମଧ୍ୟପ୍ରଦେଶ—3. The Central Provinces of India. ୪ । ହିମାଳୟ ଓ ବିନ୍ଧ୍ୟାଚଳର ମଧ୍ୟବର୍ତ୍ତୀ ଦେଶ—4. The country between the Himalayas and the Bindhya range. [ ଦ୍ର—ଏହାର ପୂର୍ବରେ ପ୍ରୟାଗ ଓ ପଶ୍ଚିମରେ କୁରୁକ୍ଷେତ୍ର । ମନୁ ୨।୨୧ ]
Madhyadesa

**ମଧ୍ୟଦେହ**—ସଂ. ବି ( ୬ଷ୍ଠୀ ତତ୍; ଦେହ+ମଧ୍ୟ; ପରନିପାତ )—ଉଦର; ପେଟ ( ହି. ଶ )—Belly.
Madhyadeha

**ମଧ୍ୟନ୍ଦିନ**—ସଂ. ବି ( ୬ଷ୍ଠୀ ତତ୍; ଦିନ+ମଧ୍ୟଂ; ପୂର୍ବପଦର ପର ନିପାତ )—ମଧ୍ୟାହ୍ନ—Noon.
Madhyandina

**ମଧ୍ୟନ୍ଦିନ ରେଖା**—ସଂ. ବି ( ଆଧୁନିକ ଭୂଗୋଳ ପାରିଭାଷିକ )—ଦ୍ରାଘିମା ରେଖା; ଯେଉଁ କଳ୍ପିତ ରେଖା ବିଷୁବରେଖାକୁ ଭେଦି ଲମ୍ବଭାବରେ ଉଭୟ ମେରୁକୁ ସ୍ପର୍ଶ କରିଅଛି—Longitudinal line.
Madhyandina rekhā

**ମଧ୍ୟପଦଲୋପୀ ସମାସ**—ସଂ. ବି —ସମାସଗଠନକାରୀ ପଦମାନଙ୍କ ମଧ୍ୟରୁ ମଝି ପଦଟି ଲୋପ ହୋଇ ଯେଉଁ ସମାସର ସୃଷ୍ଟି ହୋଇଅଛି
Madhyapadalop samāsa
(ମଧ୍ୟମପଦଲୋପୀ—ଅନ୍ୟରୂପ)

ହୁଏ—A compound in which the midmost word disappears. (ଯଥା—ସ୍ୱର୍ଣ୍ଣନିର୍ମିତ ମୁଦ୍ରିକା=ସ୍ୱର୍ଣ୍ଣମୁଦ୍ରିକା । ଏଗ୍ରନ୍ଥରେ ଏଥିର ସାଙ୍କେତିକ, ମ. ପ. ଲୋ ।)

**ମଧ୍ୟ ପାଣ୍ଡବ**—ସଂ. ବି (ସ. ଦେ)—ଅର୍ଜୁନର ଏକାର୍ଥ ମଯୂର ଥିବାରୁ Madhya pāndaba ମଯୂର—Peacock. (ଉ—କଲେ ତାଣ୍ଡବ (ମଧ୍ୟମପାଣ୍ଡବ—ଅନ୍ୟରୂପ) ମଧ୍ୟ ପାଣ୍ଡବ ବନ୍ଧୁପୀଡିରେ ମାର୍ଜାର ରବ । ଯାନକୃଷ୍ଣ. ରସକଲ୍ଲୋଳ ।) ସଂ. ବି—ଅର୍ଜୁନ—Arjuna.

**ମଧ୍ୟ ପାତ୍ର**—ଦେ. ବି—ରାଜଦୂତ; ଦୁଇ ରାଜାଙ୍କ ମଧ୍ୟସ୍ଥ ଦୂତ—Madhya pātra Ambassador.

**ମଧ୍ୟ ପ୍ରାଚ୍ୟ ଦେଶ**—ସ. ବି (ଆଧୁନିକ ପ୍ରୟୋଗ)—ପାରସ୍ୟ, Madhya prāchya desa ଅଫଗାନିସ୍ଥାନ ଆଦି ଦେଶ—The middle eastern countries. [ଦ୍ର—ପାଶ୍ଚାତ୍ୟମାନେ ଇଉରୋପ ଦୃଷ୍ଟିରେ ଆରବ, ତୁରସ୍କ ଆଦିଙ୍କୁ ନିକଟ ପ୍ରାଚ୍ୟ ଦେଶ, ପାରସ୍ୟ, ଅଫଗାନିସ୍ଥାନ ଆଦିଙ୍କୁ ମଧ୍ୟ ପ୍ରାଚ୍ୟଦେଶ ଓ ଭାରତ, ବ୍ରହ୍ମ, ଚୀନ, ଜାପାନ ଆଦିଙ୍କୁ ଅନ୍ତ୍ୟ ପ୍ରାଚ୍ୟ ଦେଶ କହନ୍ତି ।]

**ମଧ୍ୟବର୍ତ୍ତିତା**—ସଂ. ବି (ମଧ୍ୟବର୍ତ୍ତିନ୍+ଭାବ. ତା)—୧ । ମଧ୍ୟରେ Madhyabarttitā ଅବସ୍ଥିତ ହେବା ଅବସ୍ଥା—1. The state of being situated in the middle. ୨ । ମଧ୍ୟସ୍ଥତା; ଭଲମନ୍ଦ—2. Arbitration; umpireship.

**ମଧ୍ୟବର୍ତ୍ତୀ**—ସଂ. ବିଣ (ମଧ୍ୟ+ବୃତ୍ ଧାତୁ+ଇନ୍; ୧ମା. ୧ବ)—Madhyabartti ୧ । ମଧ୍ୟରେ ଅବସ୍ଥିତ—1. Situated in the middle. ୨ । କେନ୍ଦ୍ରସ୍ଥ—2. Central. ବି. ପୁଂ—ମଧ୍ୟସ୍ଥ; ସାଲିସ—Arbitrator; mediator. umpire.

**ମଧ୍ୟ ବିତ୍ତ**—ସଂ. ବିଣ. ପୁଂ—ଯେ ଅତି ଧନୀ ନୁହେଁ ବା ଅତି ଗରିବ Madhya-bitta ନୁହେଁ—Neither rich nor poor; of (ମଧ୍ୟବିତ୍ତା—ସ୍ତ୍ରୀ) middling circumstances; belonging to the middle moneyed class.

**ମଧ୍ୟ ଭଲି**—ଦେ. ବିଣ—ମଧ୍ୟମ ପ୍ରକାରର—Middling; medium. Madhya bhali [ଉ—ମୂର୍ଖ ପଣ୍ଡିତଙ୍କର ହେଉଅଛୁ ଯୁଦ୍ଧ, (ମଧ୍ୟଭଲିଆ—ଅନ୍ୟରୂପ) ବୁଝିଲେ ମଧ୍ୟଭଲି ଲୋକପାଏ ଦୁଃଖ । ମাঝারি রকমের মঝোলা କୃଷ୍ଣସିଂହ, ମହାଭାରତ. ଶାନ୍ତି ।]

**ମଧ୍ୟମ**—ସଂ. ବି—୧ । ମଝି ମଝିଆ; ମଧ୍ୟ ଭଲିଆ—1. Middling; Madhyama of medium kind. ୨ । ମଝିଆଁ—ମধ্যম 2. Middlemost. ୩ । ଦୁଇଟିର ମଧ୍ୟରେ ସ୍ଥିତ—मध्यम 3. Intermediate; situate between two. ୪ । ଉତ୍ତମ ନୁହେଁ କି ଅଧମ ନୁହେଁ; ଭଲ ନୁହେ କି ମନ୍ଦ ନୁହେଁ—4. Neither good nor bad ୫ । ମଝିମଝିଆ; ଚଳନସହ—5. Tolerable; passable. ୬ । ଯାହା ଅତି ବଡ଼ ନୁହେଁ ବା ଅତି ସାନ ନୁହେଁ—6. Neither very big nor very small; of middle stature or size. ବି—୧ । ସଙ୍ଗୀତରେ ସପ୍ତସ୍ୱର ମଧ୍ୟରୁ ଚତୁର୍ଥ ସ୍ୱର 'ମା'—1. The fourth tune in the gamut of Hindu musical notes. [ଦ୍ର—ଏହା ମଯୂରର ସ୍ୱରରୂପେ କଳ୍ପିତ ।] ୨ । ମୃଗ ବିଶେଷ—2. A species of deer (of medium size). ୩ । କାବ୍ୟ ନାଟକାଦିର ନାୟକବିଶେଷ—3. A class of heroes or lovers depicted in fiction. [ଦ୍ର—ନାୟିକାର କୋପ ଦେଖି ଯେ ଆପଣାର ଅନୁରାଗ ନାୟିକା ନିକଟରେ ପ୍ରକଟିତ କରେ ନାହିଁ ଓ ନାୟିକାର ଚେଷ୍ଟାରୁ ନାୟିକାର ମନୋଭାବ ଠଉରାଇ ପାରେ, ସେ ମଧ୍ୟମନାୟକ ହି. ଶ] ୪ । ମଧ୍ୟଦେଶ (ହି. ଶ) (ଦେଖ)—4. Madhya desa (See) ଦେ. ବି—୧ । ପ୍ରାଚୀନ ଜଳଯାନବିଶେଷ—1. A kind of ancient vessel. [ଦ୍ର—ଭୋଜ ରାଜାଙ୍କ 'ଯୁକ୍ତି କଳ୍ପତରୁ' ପୁସ୍ତକରେ ଏହାର ବିଶେଷ ବିବରଣ ଦ୍ରଷ୍ଟବ୍ୟ । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।] ୨ । ମନ୍ଦ କଥା ବା ବିଷୟ—2. Bad words or matter. (ଯଥା—ମୁଁ ତାଙ୍କୁ ବହୁତ ଉତ୍ତମ ମଧ୍ୟମ ଦେଇ ବିଦାୟ କଲି=ମୁଁ ତାଙ୍କୁ ମାଡ଼ ଗାଳି ଦେଇ ବିଦା କଲି ।) ଦେ. ବିଣ—ମନ୍ଦ—Bad.

**ମଧ୍ୟମ କାବ୍ୟ**—ସଂ. ବି—ଯେଉଁ କାବ୍ୟରେ ବାଚ୍ୟାର୍ଥ ଅପେକ୍ଷା Madhyama kābya ବ୍ୟଙ୍ଗ୍ୟାର୍ଥର ଚମତ୍କାରିତା ଅଧିକ ନୁହେଁ ବା ବ୍ୟଙ୍ଗ୍ୟାର୍ଥ ବାଚ୍ୟାର୍ଥର ଚମତ୍କାରିତାକୁ ବଢ଼ାଏ ନାହିଁ—A literary production in which the suggestive or hidden meaning does not excel or surpass the real meaning.

**ମଧ୍ୟମ ଖଣ୍ଡ**—ଦେ. ବି—(ବୀଜଗଣିତ ପାରିଭାଷିକ)—ସମୀକରଣର ମଧ୍ୟ Madhyama khanda ରାଶି—The middle term of an algebraic equation.

**ମଧ୍ୟମ ଗ୍ରାମ**—ସଂ. ବି—ସଙ୍ଗୀତର ସ୍ୱରଗ୍ରାମର ମଧ୍ୟମ ସ୍ୱର; 'ମା'—Madhyama grāma The middle or the 4th tune of the Hindu gamut.

**ମଧ୍ୟ ମଣି**—ସଂ. ବି—(ମଧ୍ୟରେ ସ୍ଥାପିତ ମଣି; ମ. ପ. ଲୋ; କର୍ମଧା)—Madhya mani ହାର ଆଦି ଅଳଙ୍କାରର ମଧ୍ୟସ୍ଥଳରେ ସ୍ଥାପିତ ହୀରକାଦି ରତ୍ନ—A central gem; a gem set in the middle of a necklace or other ornament.

**ମଧ୍ୟ ମନ୍ଦିର**—ଦେ. ବି—(ସ. ମଧ୍ୟ+ମନ୍ଦିର)—ଏକ ଜାତୀୟ ପ୍ରାଚୀନ Madhya mandira ଅର୍ଣ୍ଣବପୋତ—A kind of ancient sea-going vessel. [ଦ୍ର—ଏ ପୋତର ମଧ୍ୟଭାଗରେ ରାଜାଙ୍କ ବସିବା ନିମନ୍ତେ ମନ୍ଦିର ନିର୍ମିତ ଥିବାରୁ ସମ୍ଭବତଃ ଏହିର ନାମ ହୋଇଅଛି । ଏଥିରେ ରାଜାମାନେ ବିଶେଷତଃ

ବର୍ଷାକାଳରେ ଯାତାୟାତ କରୁଥିଲେ । ଶ୍ଳେଷସ୍ତନପ୍ରଣୀତ 'ଯୁକ୍ତିକଳ୍ପତରୁ' ଦ୍ରଷ୍ଟବ୍ୟ । ଜଗବନ୍ଧୁ. ପ୍ରାଚୀନଉତ୍କଳ ।]

ମଧ୍ୟମ ପାଣ୍ଡବ—ସଂ. ବି—ଅର୍ଜୁନ—Arjuna; the 3rd
Madhyama pāndaba Pāndaba brother.

ମଧ୍ୟମ ବୟସ—ସଂ. ବି—ପ୍ରୌଢ଼ ବୟସ; ଅଧା ବୟସ—The middle
Madhyama bayasa age; the meridian of life.
[ଦ୍ର—୪୦ ବର୍ଷ ବୟସ ।]

ମଧ୍ୟମ ବୟସ୍କ—ସଂ. ବିଣ, ପୁଂ (ମଧ୍ୟମ+ବୟସ୍+କ)—ଅଧା ବୟସିଆ;
Madyama bayaska ପ୍ରୌଢ଼—Of middle age.
(ମଧ୍ୟମବୟସ୍କା—ସ୍ତ୍ରୀ) (ମଧ୍ୟବୟସ୍କ—ଅନ୍ୟରୂପ)

ମଧ୍ୟମ ଲୋକ—ସଂ. ବି—(ସ୍ୱର୍ଗ ଓ ପାତାଳର ମଧ୍ୟବର୍ତ୍ତୀ ବୋଲି) ପୃଥିବୀ;
Madhyama loka ଭୂମଣ୍ଡଳ; ମର୍ତ୍ତ୍ୟଲୋକ—The earth.
(ମଧ୍ୟଲୋକ—ଅନ୍ୟରୂପ)

ମଧ୍ୟମ ଲୋକପାଳ—ସଂ. ବି—ଭୂପାଳ; ମଣ୍ଡଳପତି—A king.
Madhyama lokapāla (ମଧ୍ୟଲୋକପାଳ—ଅନ୍ୟରୂପ)

ମଧ୍ୟମ ସାହସ—ସଂ. ବି—ପଞ୍ଚଶତ ପଳ ପରିମାଣ ଅର୍ଥଦଣ୍ଡ (ମନୁ
Madyama sāhasa ୮।୧୩୮)—A fine amounting to 500 Palas in weight. [ଦ୍ର—ଏକ କାର୍ଷ ବା ୮୦ ରତି ପରିମିତ ତମ୍ବାକୁ ଏକ ପଣ ବା କାର୍ଷିକ କାର୍ଷାପଣ ବୋଲଯାଏ (ମନୁ ୮।୧୩୬) । ଅଢ଼େଇଶତ ପଣ ଅର୍ଥଦଣ୍ଡକୁ ପ୍ରଥମସାହସ, ପଞ୍ଚଶତ ପଣକୁ ମଧ୍ୟମସାହସ ଓ ସହସ୍ର ପଣକୁ ଉତ୍ତମ ସାହସ ବୋଲଯାଏ । (୮।୧୩୮) ।]

ମଧ୍ୟମା—ସଂ. ବିଣ. ସ୍ତ୍ରୀ.—ମଧ୍ୟମ (ଦେଖ)—Madhyama (See).
Madhyamā (ଉ—ରଙ୍ଗିଣୀ ଧବଳ ଦେହ ବଶଇ ମଧ୍ୟମା । ପ୍ରାଚୀ; ବ୍ରହ୍ମନିରୂପଣ ଗୀତା ) ସଂ. ବି—୧ । ଦୃଷ୍ଟରଜା ସ୍ତ୍ରୀ ଋତୁମତୀ ହୋଇଥିବା ନବଯୁବତୀ—1. A newly menstruated girl. ୨ । ମଝି ଅଙ୍ଗୁଠି—2. Middle finger. ୩ । ମଧ୍ୟରେ ଫୁଟିଥିବା କଢ଼ି—3. A central blossom.

ମଧ୍ୟମାନ—ସଂ. ବି—ସଙ୍ଗୀତର ତାଳବିଶେଷ—Name of a
Madhya māna musical cadence. [ଦ୍ର—ଏଥିରେ ୮ ହ୍ରସ୍ୱ ଅଥବା ୪ ଦୀର୍ଘମାତ୍ରା ଥାଏ ଓ ୩ ଆଘାତ ଓ ୧ ଖାଲି ଥାଏ । ଏଥିର ତବଲାର ଉଲ୍ଲୁଠ—ଧା ଧିନ୍ ତାକ୍ ଧିନ୍; ଧା ଧିନ୍ ତାକ୍ ଧିନ୍, ଧାଡିନ୍ ତାକ୍ ତିନ୍, ତା ଧିନ୍ ତାକ୍ ଧିନ୍ ଧା—ହି. ଶ. ] ଦେ. ବିଣ—
मझारी ମଧ୍ୟଆକାର—Of mediocre size. (ଉ—ଦୀର୍ଘ
मझोला ବା ପ୍ରତି ସ୍ଥୂଳଶୀର୍ଣ୍ଣ, ଉଚ୍ଚ ବା ଓଚ୍ଚ ମଧ୍ୟମାନ । ଭୂପତି. ପ୍ରେମପଞ୍ଚାମୃତ ।)

ମଧ୍ୟମିକ—ସଂ. ବିଣ (ମଧ୍ୟମ+ଇକ)—ମଧ୍ୟମ—
Madhyamik (ମଧ୍ୟମିକା—ସ୍ତ୍ରୀ) Middle.

ମଧ୍ୟମିକା—ସଂ. ବି. ସ୍ତ୍ରୀ (ମଧ୍ୟମା+ସ୍ୱାର୍ଥେ. କ)—ମଧ୍ୟମା; ନବଯୁବତୀ
Madhyamikā —A girl arrived at her puberty.

ମଧ୍ୟ ଯମକ—ସଂ. ବି—ଶବ୍ଦାଳଙ୍କାର ବିଶେଷ—A kind of figure
Madhya jamaka of speech. [ଦ୍ର—ବାକ୍ୟ ମଧ୍ୟରେ ଭିନ୍ନାର୍ଥବୋଧକ ଏକ ଶବ୍ଦର ପୁନଃ ପୁନଃ ବ୍ୟବହାରରେ ଏହି ଅଳଂକାର ହୁଏ ।] (ଉ—କୂଳେ ଭ୍ରମ ଭ୍ରମ ଭ୍ରମକେଶୀ ସେଜ କରେ । ଉପ. ବୈଦେହୀଶବିଳାସ ।)

ମଧ୍ୟ ରାତ—ସଂ. ବି (ସ୍ୱଭିନ୍ନ ମଧ୍ୟ; ମଧ୍ୟ+ରାତ୍ରି)—ରାତ୍ର ଅଧ; ଅଧ ରାତ୍ର;
Madhya rātra ନିଶୀଥ—Midnight; the dead of night.

ମଧ୍ୟ ରାତି—ଦେ. ବି (ସଂ. ମଧ୍ୟ ରାତ୍ର)—ରାତ୍ର ଅଧ—
Madhya rātri Midnight.

ମଧ୍ୟରୁ—ଦେ. ଅ—୧ । ଭିତରରୁ—1 From inside of.
Madhyaru ୨ । (ବହୁଙ୍କ) ଭିତରୁ—2. Out of (many).
मध्ये मझे, बीचसे (ମଧ୍ୟୁଁ—ଅନ୍ୟରୂପ)

ମଧ୍ୟରେ—ଦେ. ଅ (ସଂ. ମଧ୍ୟେ)—୧ । ଭିତରେ—1. Inside of;
Madhyare in; within; in the midst of. ୨ । ଦୁଇ
मध्ये, माझे ବସ୍ତୁ ବା ବ୍ୟକ୍ତି ମଧ୍ୟରେ—2. Between two.
मधमें, बीचमें ୩ । ଅନେକଙ୍କ ଭିତରେ—3. Amongst many; amidst many. ୪ । ଅମୁକ ସମୟରେ—4. Within the time or period of. ୫ । ଅଧିକନ୍ତୁ—5. Moreover. (ଉ—ତାଙ୍କ ତାମ୍ବୂଳ ବଟୋଇନ୍ତି, ମଧ୍ୟରେ ସେବକ ବୋଲନ୍ତି । ଜଗନ୍ନାଥ. ଭାଗବତ ।)

ମଧ୍ୟ ରେଖା—ସଂ. ବି—( ଗଣିତ ଜ୍ୟୋତିଷ ଓ ଭୂଗୋଳ )—ଉତ୍ତର
Madhya rekhā ଧ୍ରୁବ ଓ ଦକ୍ଷିଣ ଧ୍ରୁବ ଭେଦ କରିଥିବା
(ମଧ୍ୟ ସୂତ୍ର—ଅନ୍ୟରୂପ) କଳ୍ପିତ ରେଖା ( ହି. ଶବ୍ଦସାଗର )—(astrology and geography) An imaginary line passing through the north and south poles.

ମଧ୍ୟରେ ମଧ୍ୟରେ—ଦେ. ଅ—୧ । ମଝିରେ ମଝିରେ; କିଛି ସମୟ ଛାଡ଼ି
Madhyare madhyare ଛାଡ଼ି—1. At intervals.
माझे माझे ୨ । ସମୟେ ସମୟେ—2. At times.
बीच बीचमे

ମଧ୍ୟସ୍ଥ—ସଂ. ବିଣ ( ମଧ୍ୟ+ସ୍ଥା ଧାତୁ+କର୍ତ୍ତୃ. ଅ )—୧ । ମଧ୍ୟବର୍ତ୍ତୀ;
Madhyastha ମଧ୍ୟରେ ଅବସ୍ଥିତ—1. Situated in the
(ମଧ୍ୟସ୍ଥା—ସ୍ତ୍ରୀ) middle. ୨ । ଅନ୍ତରସ୍ଥ—2. Inner. ୩ । କେନ୍ଦ୍ରସ୍ଥ—3. Central. ୪ । ଯେ କୌଣସି ପକ୍ଷରେ ଲିପ୍ତ ନୁହେଁ; ଉଦାସୀନ—4. Not concerned with any of the parties; neutral. ୫ । ଯେ ଆପଣାର ହାନି ନ କରି ଅନ୍ୟର ଉପକାର କରେ (ହି.ଶ)—5. Doing good to others without injuring one's interest. ସଂ. ବି—ଦୁଇ ଦଳଙ୍କ ମଧ୍ୟରେ ବିବାଦ ମୀମାଂସାକାରୀ ବ୍ୟକ୍ତି; ମାଲ୍‌ଇସ୍—Arbitrator; umpire.

ମଧ୍ୟସ୍ଥତା—ସଂ. ବି—୧ । ମଧ୍ୟବର୍ତ୍ତିତା—1. The state of being
Madhyasthatā situated in the middle. ୨ । ଉଦା-

ଲୋକ; ପଞ୍ଚାଏତ—2. Arbitration; mediation. ୩ । ଉଦାସୀନତା—3. Neutrality.

ମଧ୍ୟସ୍ଥତା କରିବା—ଦେ. କ୍ରି—ଭଲଲୋକ କରିବା; କୌଣସି ବିବାଦକୁ Madhyasthatā karibā ଆପୋସରେ ମୀମାଂସା କରିବା—मध्यस्थता करना To arbitrate; to decide a matter मध्यस्थता करना in dispute by arbitration.

ମଧ୍ୟ ସ୍ଥଳ(ଳୀ)—ସଂ. ବି [କର୍ମଧା; ମଧ୍ୟ+ସ୍ଥଳ(ଳୀ)]—୧ । ମଝିଭାଗ—Madhya sthaḷa(ḷi) 1. The middle part. ୨ । ଦୁଇ ସୀମାର ବା ଦୁଇ ଖଣ୍ଡର ମଝି—2. Midway. ୩ । କେନ୍ଦ୍ର—3. Centre. ୪ । ଅନ୍ତଃସ୍ଥଳ; ଭିତର—4. Inside. ୫ । ଅଣ୍ଟା—5. Waist.

ମଧ୍ୟସ୍ଥିତ—ସଂ. ବିଣ (୭ମୀ ତତ୍; ମଧ୍ୟ+ସ୍ଥିତ)—୧ । ମଧ୍ୟସ୍ଥଳରେ ସ୍ଥିତ—Madhyasthita 1. Situate in the middle. ୨ । ଆଭ୍ୟନ୍ତରୀଣ—2. Inner. ୩ । ଦୁଇ ବସ୍ତୁର ମଧ୍ୟ ଭାଗରେ ଥିବା—3. Situate between two things

ମଧ୍ୟା—ସଂ. ବିଣ. ସ୍ତ୍ରୀ ( ମଧ୍ୟ+ସ୍ତ୍ରୀ. ଆ )—ମଧ୍ୟର ସ୍ତ୍ରୀଲିଙ୍ଗ—Madhyā Feminine of Madhyā. ଦେ. ବି—୧ । ନାୟିକାବିଶେଷ—1. A class of heroines. [ଦ୍ର—ଯେ ଅଳ୍ପ ପ୍ରଗଲ୍ଭା ବା ଅଳ୍ପ ଧୀର ଦୁହେଁ ଏବଂ ଯାହାର ଲଜ୍ଜା ଓ କାମ ସମାନ ଅଟେ ତାକୁ ମଧ୍ୟା ବୋଲାଯାଏ—ବ୍ର. ଶ] ୨ । ଗ୍ରହର ଗତି ବିଶେଷ—2. A particular motion of a planet. ୩ । ମଧ୍ୟମାଙ୍ଗୁଳି—3. Middle finger. ୪ । ତ୍ର୍ୟକ୍ଷର ବୃତ୍ତବିଶେଷ—4. A metre of 3 letters. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୩ଟି ମାତ୍ର ଅକ୍ଷର ଥାଏ—ବ୍ର. ଶ]

ମଧ୍ୟାନୁପ୍ରାସ—ସଂ. ବି—ଛନ୍ଦ ରଚନା ବିଶେଷ—A kind of Madhyānuprāsa alliteration. [ଦ୍ର—ଧାଡ଼ିର ଦୁଇ ମୁଣ୍ଡ ଛଡ଼ା ଅନ୍ୟତ୍ର ଅନୁପ୍ରାସ ଯୁକ୍ତ ରଚନାକୁ ମଧ୍ୟାନୁପ୍ରାସ ବୋଲାଯାଏ, ଯଥା—ଅହା ନବ ରମଣୀ ମଣି ତୋ ଗୁଣ ଗୁଣି ଗୁଣି ଏ ଜୀବ କି ମୋ ଯିବ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।]

ମଧ୍ୟାହ୍ନ—ସଂ. ବି (ମଧ୍ୟ+ଅହନ୍; ଅହ୍ନଃ=ଦିନର+ମଧ୍ୟ=ମଧ୍ୟ ଭାଗ; Madhyāhna ୬ଷ୍ଠୀ ତତ୍; ପୂର୍ବ ପଦର ପରନିପାତ )—୧ । ଦ୍ୱିପ୍ରହର—1. Midday; noon. ୨ । (ବୈଦିକ ଗଣନା ମତେ) ଦିନକୁ ୩ ଭାଗ କଲେ ତହିଁ ମଧ୍ୟରୁ ୨ୟ ଭାଗ; ଦିନ ପ୍ରାୟ ୧୦ଟା ଠାରୁ ୨ଟା ପର୍ଯ୍ୟନ୍ତ କାଳ; ଦିବସର ଅଷ୍ଟମ ମୁହୂର୍ତ୍ତ—2. The middle portion of the day divided into 3 divisions. ୩ । ଲୁତପକାଳ (ସ୍ମୃତି ମତେ) ଦିବସର ପାଞ୍ଚ ଭାଗରୁ ତୃତୀୟ ଭାଗ—3. The 3rd division of the day divided into 5 divisions. [ଦ୍ର—ପୂର୍ବାହ୍ଣ ଓ ଅପରାହ୍ଣ ଶବ୍ଦମାନଙ୍କରେ 'ର'ର ନିକଟବର୍ତ୍ତିତା ଯୋଗୁ ଣତ୍ୱବିଧି ଅନୁସାରେ ଶେଷ ବର୍ଣ୍ଣ 'ହ୍ଣ' ହୁଏ; କିନ୍ତୁ ମଧ୍ୟାହ୍ନ, ସାୟାହ୍ନ ଶବ୍ଦରେ ଶେଷ ବର୍ଣ୍ଣ 'ହ୍ନ' ହେବ, କାରଣ ଏ ଶବ୍ଦ ଦ୍ୱୟରେ 'ର' ଅକ୍ଷରର ସତ୍ତା ନାହିଁ ।]

ମଧ୍ୟାହ୍ନ କାଳ—ସଂ. ବି (କର୍ମଧା)—ଦିବା ଦ୍ୱିପ୍ରହର; ମଧ୍ୟାହ୍ନ (ଦେଖ) Madhyāhna kāḷa Noon; Madhyāhna (See) (ମଧ୍ୟାହ୍ନ ବେଳା, ମଧ୍ୟାହ୍ନ ସମୟ—ଅନ୍ୟରୂପ)

ମଧ୍ୟାହ୍ନ କାଳୀନ—ସଂ. ବିଣ ( ମଧ୍ୟାହ୍ନକାଳ+ଈନ )—୧ । ମଧ୍ୟାହ୍ନ Madhyāhna kāḷina ସମ୍ବନ୍ଧୀୟ—1. Relating to noon. ୨ । ମଧ୍ୟାହ୍ନରେ ଘଟିବା—2. Happening at noon. ୩ । ମଧ୍ୟାହ୍ନରେ କର୍ତ୍ତବ୍ୟ—3. Performable at noon.

ମଧ୍ୟାହ୍ନ ତପନ—ସଂ. ବି (ମ. ପ. ଲୋ; ମଧ୍ୟାହ୍ନ କାଳୀନ ତପନ)—Madhyāhna tapana ଦ୍ୱିପ୍ରହର କାଳରେ କିରଣ ଦେଉଥିବା ସୂର୍ଯ୍ୟ—The mid-day sun; the meridian sun.

ମଧ୍ୟାହ୍ନ ଭୋଜନ—ସଂ. ବି (ମ.ପ. ଲୋ)—ଦ୍ୱିପ୍ରହର ସମୟରେ କରାଯିବା Madhyāhna bhojana ଭୋଜନ—Dinner; mid-day meal.

ମଧ୍ୟାହ୍ନୋତ୍ତର—ସଂ. ବିଣ ( ୬ଷ୍ଠୀ ତତ୍ )—ମଧ୍ୟାହ୍ନର ପରବର୍ତ୍ତୀ—Madhyahnottara Following the midday.

ମଧ୍ୟେ—ଦେ. ବି—୧ । ମଧ୍ୟରେ ( ଦେଖ )—1. Madhyare Madhye ( See ) ୨ । ମଇଧେ ( ଦେଖ )—2. मध्ये Maidhe ( See ) ୩ । ( ପଦ୍ୟ ) ମଧ୍ୟ; ସୁଦ୍ଧା—मधेउ ओ भी 3. Also. [ ଉ—ଏ କାହାରେ ସିଗାଇ ପାଇକଙ୍କୁ ମଧ୍ୟେ, ମାରି ପକାଇଲେ ସେ ଯୁଦ୍ଧେ ତହିଁ କ୍ରୋଧେ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । ]

ମଧ୍ୟେ ମଧ୍ୟେ—ଦେ. ଅ—ମଝିରେ ମଝିରେ; ସମୟ ସମୟରେ—Madhye madhye At intervals; at times मांझे मांझे बीचबीचमे [ ଉ—ମଧ୍ୟେ ମଧ୍ୟେ ଅସି, ଶାନ୍ତମୁଖରେ ଭେଟି, ଦେଉଥିଲ ଅନୁର୍କ୍ତିନ । ରାଧାନାଥ—ଉଷଙ୍ଗୀ । ]

ମନ୍ (ଧାତୁ)—ସଂ—୧ । ବିଚାର କରିବା—1. To think. ୨ । Man (root) ବୋଧ କରିବା—2. To feel. ୩ । ବୁଝିବା —3. To understand. ୪ । ଗର୍ବ କରିବା—4. To feel proud.

ମନ୍—ପ୍ରାଦେ ( ସମ୍ବଲପୁର ) ବି—ମାନ ( ଦେଖ )—Mana (See) Man ପ୍ରାଦେ ( ସମ୍ବଲପୁର ) ବହୁବଚନ ପ୍ରତ୍ୟୟ—ମାନେ—A suffix ( meaning plurality ).

ମନ୍‌ଜିଲ—ବୈଦେ. ବି ( ଆ)—ସୁଉଚ୍ଚ ପ୍ରାସାଦ—Palace; palatial Man-jil मन्‌जील building.

ମନତନ୍—ପ୍ରାଦେ ( ସମ୍ବଲପୁର ) ବି ( ସଂ. ମନସ୍ ଓ ତନୁ; ତୁଳନା Man-tan କର ହି. ତନ୍‌ମନ୍ )—୧ । ଗାଢ଼ ଅଭିନିବେଶ—1. Close attention. ୨ । ମନ ଓ ଦେହ—2. Mind and body.

ମନ୍ତନ୍ ଦେଇ—ପ୍ରାଦେ ( ସମ୍ବଲପୁର ) କ୍ରି. ବିଣ ( ଭୁଲ ହୁ. ତନ୍‌ମନ୍ ଦେ )—୧ । ଗାଢ଼ ଅଭିନିବେଶପୂର୍ବକ —1. Very attentively ୨ । ମନ ଓ ଦେହ-ଲଗାଇ ( କାର୍ଯ୍ୟ କରିବା )—2. (To act) By applying one's mind and body.
Mantan dei

ମନ୍ ସବ(ବା)ଦାର୍—ଦେଦେ. ବି ( ଫା. ମନସବ୍‌ଦାର୍ )—୧ । ଉଚ୍ଚ ରାଜପଦସ୍ଥ ବ୍ୟକ୍ତି—1. High official. ୨ । ମୋଗଲ ବାଦ୍‌ସାହାଙ୍କ ଉଚ୍ଚ ରାଜକର୍ମଚାରୀଙ୍କୁ ପ୍ରଦତ୍ତ ଉପାଧିବିଶେଷ—2. A title bestowed on public servants by Moghal emperors.
Man-sab-(bā)dār
মনসবাদার
मनसबदार

ମନ୍‌ସୁବା—ଦେଦେ. ବି ( ଫା. କଚରିଥ )—୧ । ମସୁଦା; ଅଯୋଜନ; କଳ୍ପିତ ବ୍ୟବସ୍ଥା—1. A plan; scheme; a design. ୨ । ଉଦ୍ଦେଶ୍ୟ—2 Purpose. ୩ । ଯୁକ୍ତି—3. Reasoning.
Man-subā
মনস্থবা
मनसुबा

ମନ୍‌ସୁବାଦାର୍—ଦେଦେ. ବି ( ଫା. ମନସବ୍‌ଦାର )—୧ । ଉଚ୍ଚପଦସ୍ଥ ରାଜ କର୍ମଚାରୀ—1. A high official. ୨ । ଉଚ୍ଚ ରାଜକର୍ମଚାରୀଙ୍କୁ ମୋଗଲ ବାଦସାହାଙ୍କ ପ୍ରଦତ୍ତ ଉପାଧିବିଶେଷ—2 A title bestowed by Moghal emperors.
Man-subādār
মনস্থবাদার
मनसुबादार

ମନ—ଦେ. ବି (ସଂ. ମନସ୍ ଶବ୍ଦ, ୧ମା. ୧ବ, ମନଃ)—୧ । ଚିତ୍ତ; ଅନ୍ତଃକରଣ; ମନୁଷ୍ୟର ଅନ୍ତରିନ୍ଦ୍ରିୟ—1. Mind; mental sense. ୨ । ଚିତ୍ତବୃତ୍ତି—2. Mental faculty; the mental organ of feeling and perception. [ ଦ୍ର—ଏହା ବେଦାନ୍ତ ମତରେ ସଙ୍କଳ୍ପ ବିକଳ୍ପାତ୍ମକ ଚିତ୍ତବୃତ୍ତି ଓ ନ୍ୟାୟ ଦର୍ଶନ ମତରେ ସୁଖେନ୍ଦ୍ରିୟର ପ୍ରବର୍ତ୍ତକ ଅନ୍ତରିନ୍ଦ୍ରିୟ ଅଟେ । ] ୩ । ମନୁଷ୍ୟର ମନୋଗତ ଭାବ—3. Mental idea of a person; mentality. ୪ । ଅଭିଳାଷ; ଇଚ୍ଛା—4 Wish; desire. [ ଉ—ମକରନ୍ଦ ପାନ ଉତ୍ସବରେ ମନ ନ କରଇ କିବା ଭୃଙ୍ଗ । କବିସୂର୍ଯ୍ୟ. ସଙ୍ଗୀତ । ] ୫ । ପ୍ରବୃତ୍ତି—5. Inclination. ୬ । ମିଜାଜ୍; ମତି—6. Temper. ୭ । ମାନସିକ ପ୍ରକୃତି—7. Temperament.
Mana
মন
मन

ମନ ଅଟ୍ଟାଳିକା—ଦେ. ବି ( ସଂ. ମନଃ+ଅଟ୍ଟାଳିକା )—ଅପ୍ରକୃତ ମଟମଯ଼ ମାନସିକ କଳ୍ପନା—Visionary pleasant project; castles in the air. [ ଉ—ଗଢ଼ୁଥିଲି ବସି ମନ-ଅଟ୍ଟାଳିକା । ରାଧାନାଥ—ଚିଲିକା । ]
Mana aṭṭālikā
আকাশ কুসুম
मनकी कोठा

ମନ ଅବଶୋଷ୍—ଦେ. ବି ( ସଂ. ମନ+ଫା. ଅଫ୍‌ସୋସ୍ )—୧ । ମନୋବେଦନା—1. Mental worry. ୨ । ଅନୁତାପ; ପସ୍ତାଇବା—2. Regret; repentance. ୩ । ବିବେକର ଦଂଶନ 3, Bitings of one's conscience.
Mana abaśos
মনের আফশোষ
मनका अफसोस

ମନ ଅଉଟି ହେବା—ଦେ. ବି (ସଂ. ମନସ୍+ଉଦ୍ବର୍ତ୍ତନ )—ମନ ଅସ୍ଥିର ହେବା—Feeling of uneasiness or mental restlessness.
Mana āuṭi hebā
(ମନ ଘାଣ୍ଟି ହେବା—ଅନ୍ୟରୂପ)
মন অস্থির হওয়া
मन दहलना
(ମନ ଅଉଠେଣି—ଅନ୍ୟରୂପ)
[ମନ ଅଉଟ ପା(ସା(ଉଟ ହେବା—ଅନ୍ୟରୂପ]

ମନ ଇଚ୍ଛା—ଦେ. ବି—( ସଂ. ମନଃ+ଇଚ୍ଛା )—ସ୍ୱେଚ୍ଛା—One's free will; one's unfettered will. କ୍ରି. ବିଣ—ମନ ଇଚ୍ଛା ମୁତାବକ (ଦେଖ) Mana-ichhā mutābaka (See)
Mana ichhā
মনিচ্ছা
मनकी इच्छा

ମନ ଇଚ୍ଛା ମୁତାବକ୍—ଦେ. କ୍ରି. ବିଣ—ସ୍ୱେଚ୍ଛାନୁସାରେ—According to one's free will, wish or desire.
Mana ichhā mutābak
ইছা মত
मनकी माफिक
(ମନ ଇଚ୍ଛା ମାଫିକ୍[କେ]—ଅନ୍ୟରୂପ)

ମନ ଉଚା(ଚ୍ଚା)ଟନ—ଦେ. ବି—( ସଂ. ମନସ୍+ଉଚ୍ଚାଟନ ) କୌଣସି ବିଷୟ ପ୍ରତି ମନ ଉନ୍ମତ୍ତ ହେବା—Being mad after any matter.
Mana uchchā(chā)ṭana
মন মাতা
मनकी वेचैनी
(ମନ ମାତିବା, ମନ ଉଚ୍(ଚ୍ଛା)ଟ—ଅନ୍ୟରୂପ)

ମନ ଉଡ଼ା(ଡ଼େ)ଇବା—ଦେ. କ୍ରି (ସଂ. ମନସ୍+ଉଡ୍ଡୀନ)—୧ । ଜନର ମନକୁ କୌଣସି ବିଷୟର ସ୍ୱାର୍ଥ ଅସ୍ଥିରତାଯୁକ୍ତ କରିବା—To be restless after a thing. ୨ । ମନୋଯୋଗକୁ ସ୍ଥିର ନ ରଖିବା—2. Not to concentrate one's attention; to let one's mind wander.
Mana urḍā(rḍe)ibā
মনকে অস্থির করা
मन बहकाना

ମନ ଉଡ଼ିବା—ଦେ. ବି—୧ । କୌଣସି ବିଷୟ ପାଇଁ ମନର ଚଞ୍ଚଳ୍ୟ—1. Being restless over a matter. ୨ । ମନୋଯୋଗର ଅଭାବ—Want of concentration.
Mana urḍibā
মন অস্থির হওয়া
मन बहकना
(ମନ ଅଥୟ, ମନଅଥିର—ଅନ୍ୟରୂପ)

ମନଃ—ସଂ. ବି - ( ମନ୍ ଧାତୁ+କରଣ ଅସ୍; ମନସ୍ ୧ମା. ୧ବ)—ମନ (ଦେଖ) Mana (See)
Manaḥ

ମନଃ କଳ୍ପିତ—ସଂ. ବିଣ—( ୩ୟା ତତ୍ )—କଳ୍ପନାପ୍ରସୂତ—Imaginary.
Manaḥ kalpita

ମନଃ କଷ୍ଟ—ସଂ. ବି—(୬ଷ୍ଠୀ ତତ୍)—୧ । ମନୋଦୁଃଖ; ଦୁଶ୍ଚିନ୍ତା—1. Anxiety. ୨ । ମାନସିକ ବେଦନା—2. Mental anguish.
Manaḥ kashṭa
(ମନଃ ପୀଡ଼ା—ଅନ୍ୟରୂପ)

ମନଃ କ୍ଷେପ—ସଂ. ବି (୬ଷ୍ଠୀ ତତ୍)—ମନର ଅସ୍ଥିରତା; ଉଦ୍ବେଗ (ହି.ଶ)-Restlessness of mind; anxiety.
Manaḥ kshepa

ମନଃ ପତି—ସଂ. ବି (୬ଷ୍ଠୀ ତତ୍)—ବିଷ୍ଣୁ (ହି. ଶ)—A name of Bishṇu.
Manaḥ pati

ମନଃ ପର୍ଯ୍ୟାପ୍ତି—ସଂ. ବି (୬ଷ୍ଠୀ ତତ୍)—ସଙ୍କଳ୍ପ ଓ ବିକଳ୍ପ ଅନୁଭୂତ କରିବା ମାନସିକ ଶକ୍ତି (ହି. ଶ)—The faculty of mind which enables one to form resolutions and doubts.
Manaḥ parjyāpti

**ମନଃ ପୂତ**—ସଂ. ବିଣ—( ୭ମୀ ତତ୍ )—୧ । ମନୋମତ—
Manaḥ pūta 1. Approved by one's own mind.
୨ । ଚିତ୍ତତୃପ୍ତିକର—2. Pleasing to one's own mind; giving satisfaction ୩ । ବିବେକ-ବିହିତ—3. Conscientious. ୪ । ନିର୍ମଳାନ୍ତଃକରଣ-ଯୁକ୍ତ—4. Pure in mind. ଦେ. ବି—(ସଂ· ମନଃ ପୂତି)—୧ । ଚିତ୍ତ ଶୁଦ୍ଧି—1 Purity of mind.
୨ । ଚିତ୍ତର ପ୍ରସନ୍ନତା—2 Cheerfulness of mind.

**ମନଃପୂତ ହେବା**—ଦେ. ବି—ଚିତ୍ତରେ ନିର୍ମଳ ବା ପବିତ୍ର ସୁଖ ବୋଧ
Manaḥ pūta hebā ହେବା—Feeling one's self
ମনঃপূত লওয়া purely satisfied; to be satisfied in
**मनःपूत होना** one's own conscience.

**ମନଃପୂତି**—ସଂ. ବି (୭ମୀ ତତ୍)—୧ । ମନର ପବିତ୍ରତା—1.
Manaḥ pūti Purity of mind. ୨ । ମନର ପ୍ରସନ୍ନତା—
2. Cheerfulness of mind. ୩ । ସନ୍ତୋଷ—
3. Contentment; satisfaction. ୪ । ନିର୍ମଳ
ବା ପବିତ୍ର ଆନନ୍ଦ—4. Pure or holy joy.

**ମନଃ ପ୍ରସାଦ**—ସଂ. ବି— (୬ଷ୍ଠୀ ତତ୍)—ମନର ପ୍ରସନ୍ନତା—
Manaḥ prasāda Cheerfulness of mind.

**ମନଃ ଶାନ୍ତି**—ସଂ. ବି—(୬ଷ୍ଠୀ ତତ୍)—ମନର ଶାନ୍ତ ଅବସ୍ଥା—
Manaḥ śānti Calmness of mind.

**ମନଃ ଶାସ୍ତ୍ର**—ସଂ. ବି—(ମ. ପ. ଲୋ) —ମନୋବିଜ୍ଞାନ—
Manaḥ śāstra Psychology

**ମନଃଶି(ସି)ଳ(ଳା)**—ସଂ. ବି [ ମନଃ+ଶିଳା=ପଥର, ଏହା ଅତି
Manaḥśi[si]la[lā] ମନୋହର]—ମନଶ୍ଶିଳ; ଖଣିଜ ଉକ୍ତ
ଅନ୍ୟ ସଂ.ନାମ—ନେପାଳିକା, ନାଗମାତା] ବର୍ଣ୍ଣ ଧାତୁ ବିଶେଷ;ଶଙ୍ଖ ଆ-
କଲ୍ୟାଣିକା— ଘଟିତ ଉପରସ ବିଶେଷ; ଶଙ୍ଖବିଷ ଓ
মনছাল ଗନ୍ଧକ ଯୋଗରେ ଉତ୍ପନ୍ନ ଉପରସ
**मैनशील** ବିଶେଷ—Red arsenic; real-
ତେ. ମଣିଶିଲା gar. [ଦ୍ର—ଏହାକୁ ଆୟୁର୍ବେଦୋକ୍ତ
ବିଧି ଅନୁସାରେ ଶୋଧନ କରି ଔଷଧରେ ବ୍ୟବହାର
କରାଯାଏ । ]

**ମନଃସଂଯୋଗ**—ସ. ବି (୬ଷ୍ଠୀ ତତ୍)—କୌଣସି ବିଷୟ ପ୍ରତି
Manḥsaṁjoga ମନୋନିବେଶ; ମନୋଯୋଗ—Close
application of mind to any subject.

**ମନଃସଂଯୋଗୀ**—ସ. ବିଣ ପୁଂ (ମନଃସଂଯୋଗ+ଇନ୍; ୧ମା· ୧ବ)—
Manaḥ saṁjogī ଯେ କୌଣସି ବିଷୟ ପ୍ରତି ଦୃଢ଼ ଭାବରେ
[ ମନଃସଂଯୋଗିନୀ—ସ୍ତ୍ରୀ ] ମନୋଯୋଗ ଦିଏ—Closely
applying one's mind to any subject; attentive.

**ମନକଥା**—ଦେ. ବି—ହୃଦୟଗତ ଭାବ—One's internal
Mana kathā thoughts; the wish of one's heart.
মনেরকথা [ଉ—ସ୍ୱାମୀଙ୍କୁ ଦେଖିଲେ ଥରେ ମନ କଥା କହିବିରେ-
**मनकीबात** ସଙ୍ଗାତ ।]

**ମନ(ନ୍)କର**—ପ୍ରାଦେ(ଜାଜପୁର ଓ ଉତ୍ତରାଞ୍ଚଳ) (ପ୍ରତ୍ୟୟ)—ମାନଙ୍କର-
Mana(n-)kar (added to nouns and pronouns to
denote the 6th case plural). Of.

**ମନ କରିବା**—ଦେ. କ୍ରି (ସଂ. ମନଃ+କୃ ଧାତୁ)—୧ । ବିଚାର କରିବା—
Mana karibā 1. To think. ୨ । କାମନା କରିବା; ଇଚ୍ଛା
ইচ্ছাকরা କରିବା—2. To wish; to desire. [ଉ—କେଶର
**मननकरना, विचारकरना, मनकरना** ଜାଳକ ଶୁଙ୍ଘି ହେବା ମନ
କଲେ । ଉଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]୩ । ମନସ୍ଥ କରିବା;
କୌଣସି କାର୍ଯ୍ୟ କରିବାକୁ ସଙ୍କଳ୍ପ କରିବା—3. To
resolve to do a thing.

**ମନ କଳପଣା [ନା]**—ଗ୍ରା·ବି ୧। ମନରେ ଅବଶୋଷ୍ ଜନ୍ମିବା; ଅପ୍ରସନ୍ନତା-
Mana kaḷapaṇā[nā] Regret; want of
মনের অস্বচ্ছতা **दिलमें दुख रहना:** mental spontaneity.
**मन कलपना** ୨ । ଦୁଃଖିତ ହେବା—2. Being sorry for.
(ମନ କଳପଣା[ନା] କରିବା-କ୍ରିୟା) ୩ । କୌଣସି ପ୍ରାର୍ଥିତ ବସ୍ତୁକୁ
ଦାନ କରିବା ପାଇଁ ମନରେ ସ୍ୱଚ୍ଛତା ନ ଜନ୍ମିବା—3.
Want of spontaniety in giving a thing
asked for.

**ମନ କଳିବା**—ଦେ. କ୍ରି ( ସଂ. ମନଃ+କଳନ )—ଅନ୍ୟର ମନର
Mana kaḷibā ଭାବକୁ ବୁଝିବା—To fathom ano-
মন ঠাওরান; মনবুঝা **मनटोना** ther's thoughts.
[ମନ କଳନେବା, ମନ ଠଉରା(ରେ)ଇବା, ମନ କଳନା କରିବା—
ଅନ୍ୟରୂପ]

**ମନ କସିବା**—ଦେ. କ୍ରି ( ସ. ମନସ୍+ଫା. କସ୍ନା )—କୌଣସି
Mana kasibā ବ୍ୟକ୍ତିର ହୃଦ୍ଗତ ଭାବ ଜାଣିବା ପାଇଁ ପରୀକ୍ଷା
মনকসা କରିବା—To test one's mind. [ ଦ୍ର—
**मनजांचना** କୌଣସି ବ୍ୟକ୍ତିର ମନ କଳିବା ପାଇଁ ମନ କସାଯାଏ;
ମନ କସିବା ପରେ ସେ ଲୋକର ମନ କଳ ହୁଏ । ]

**ମନକା ମନ**—ଦେ. ଅ—୧ । ମନେ ମନେ—1. Mentally. ୨ ।
Manakā mana କଳ୍ପନାରେ—2. In imagination.
মনেমনে ( ଯଥା—ତାଙ୍କର ମନକାମନ କୋଠା ତୋଳା
**मनमे, मनहीमन** ହୋଇଯାଏ । )

**ମନ କାମନା**—ଦେ. ବି ( ସ. ମନସ୍କାମନା )—ମନୋବାଞ୍ଛା; ମନସ୍କାମନା
Mana kāmanā —Heart's desire.
মনের কামনা **मन कामना**

**ମନ କିଣାକିଣି**—ଦେ. ବି—ଐକାନ୍ତିକ ସ୍ନେହର ପରସ୍ପର ଆଦାନ ପ୍ରଦାନ
Mana kiṇākiṇi —Exchange of
মন কেনাকিনী mutual attachment, love or
**परस्पर विकजाना** affection.
(ମନ ବିକାବିକି—ଅନ୍ୟରୂପ) ବିଣ.—ପରସ୍ପର ପ୍ରତି ଏକାନ୍ତ ଆସକ୍ତ—
Fondly attached to each other.

**ମନ କିଣିନେବା**—ଦେ. କ୍ରି ( ସ. ମନଃ+କ୍ରୀ ଧାତୁ )—କୌଣସି
Mana kiṇinebā ବ୍ୟକ୍ତିର ଉପକାର କରିବା ବା ସେ ବ୍ୟକ୍ତିକୁ
মনবাঁধা, মনকেনা ସ୍ନେହରେ ବଶୀଭୂତ କରିବା ବା ମୁଗ୍ଧ କରିବା· –

**मन खरीदना(कीनना)** To bring a person under
ମନ ବାନ୍ଧିବା } ଅନ୍ୟରୂପ one's control by conferring
ମନ କିଣିବା } benefits on him or by love.

ମନ କମିତି କମିତି ହେବା—ଦେ. ବି—ମନର ବ୍ୟାକୁଳତା—
Mana kimiti kimiti hebā Feeling uneasy.
মন কেমন কেমন করা **मन कैसा कैसा होना**

ମନକୁ—ଦେ. ଅ—୧ । ସ୍ୱେଚ୍ଛା କ୍ରମେ—1. Willingly; of one's
Manaku own accord. ୨ । ଅପେ ଅପେ; ସ୍ୱବଁ ସ୍ୱବଁ
স্বেচ্ছায় —2. By one's own exertions. ୩ । ପରର
**आपसे आप, अपने मनसे** ବିନା ପରିଶ୍ରମରେ ବା ସାହାଯ୍ୟରେ—
3. Without the help or exertion of another.

ମନକୁ ଆଣିବା—ଦେ. କି (ସ. ମନଃ+ଅନୟନ)—କୌଣସି ବିଷୟକୁ
Manaku āṇibā ମନ ମଧ୍ୟରେ ଭାବିବା; ବିଚାର କରିବା—To
মনেকরা think over a matter; to consider. (ଉ—
**मनमेलाना** ମୋ କନାରେ ସେ ନବାନା ଦରଶନକୁ, କେ ଦେବହେ
ବୋଲି ଦେବ ଅଛ ମନକୁ । ଭକ୍ତ, କୋଟୀବ୍ରହ୍ମାଣ୍ଡସୁନ୍ଦରୀ । )

ମନକୁ ଆସିବା—ଦେ.କ୍ରି—୧ । ପସନ୍ଦସହ ହେବା; ମନୋମତ ହେବା—
Manaku āsibā 1. To meet with one's choice or
পছন্দ হওয়া, মনেরমতন হওয়া approval (ଉ—କହୁଥାଅ
**मनको माना; मनमे आना,** ହେ ଯେଉଁ କଥାଟ ତାହାକୁ,
**मनमे जमना, मनमे बठना** ଅସୁ ଥାଏଟିକ ତା ତାହାର ମନକୁ?
କୃଷ୍ଣସିଂହ. ମହାଭାରତ. ସଭା । ) ୨ । ଉଚିତ ବା
ଯୁକ୍ତିଯୁକ୍ତ ବୋଲି ପ୍ରତୀତ ହେବା—2 To seem
reasonable or proper.

ମନକୁ ଚାହିଁ—ଦେ. ବିଣ ଓ କ୍ରି. ବିଣ—ମନୋମତ; ମନର ବାଞ୍ଛା
Manaku chāhin̐ ଅନୁସାରେ—As one would desire;
মনের মতন; মনের মত suiting one's wishes; as
**नन माफिक,मन मुताबिक** one would like to have it.
(ଉ—ତା ମନକୁ ଚାହିଁ କହନ୍ତି ହସି ହସି । କୃଷ୍ଣସିଂହ,
ମହାଭାରତ. ବିରାଟ )

ମନ କୁଣ୍ଢେ ମୋଟ ହେବା—ଦେ. ବି—୧ । (ମନୁଷ୍ୟ) ଗର୍ବାନ୍ୱୀତ
Mana kuṇḍhe moṭa hebā ହେବା—1 Being swollen with pride.
মন ফোলা ୨ । ମନ ଆନନ୍ଦରେ ନାଚି
**मनफुलना** ଉଠିବା; ହର୍ଷୋତ୍ଫୁଲ୍ଲ ହେବା—2. Being beside oneself with joy.
(ମନକୁ ଲଙ୍ଗଳ ଦଉଡ଼ା ନ ଯାଇବା, ମନ ଫୁଲିବା—ଅନ୍ୟରୂପ)

ମନକୁ ପତଳା କରିବା—ଦେ. କ୍ରି—ଅଧୀର ହେବା;ଧୈର୍ଯ୍ୟ ହୀନ ହେବା-
Manaku pataḷā karibā To lose one's patience.
ধৈর্য্য হারান **मनको पतला करना, मन मारना**

ମନକୁ ପାଇବା—ଦେ. କ୍ରି—୧ । ମନର ଅନୁମତ ହେବା; ପସନ୍ଦସହ
Manaku pāibā ହେବା—1. To meet with one's
পছন্দ হওয়া approval. ୨ । ବିଶ୍ୱାସ କରାଯିବା—
**मन माना, मन मानना** 2. To be believed. (ଉ—ଏ
କଥାଟା ସତ, ହେଲେ ମନକୁ ପାଉ ନାହିଁ—ଭଗ ।) ୩ ।
ବିବେଚିତ ହେବା—3. To be considered or thought of.

ମନକୁ ବାଧିବା—ଦେ. କ୍ରି—ମନରେ ବ୍ୟଥା ଜାତ କରିବା—To
Manaku bādhibā cause mental pain or
মনে লাগা **मनको दुखाना** distress.
(ମନକୁ କାଟିବା—ଅନ୍ୟରୂପ)

ମନକୁ ଲାଗିବା—ଦେ. କ୍ରି—୧ । ଅନୁମୋଦିତ ହେବା—
Manaku lāgibā 1. To be approved.
মনে লাগা ୨ । ମନକୁ ବାଧିବା—2. To give mental
**मनमे जचना** pain; to affect painfully.

ମନକ୍କା(କା)—ବୈଦେ. ବି (ଅ. ମୁନକ୍କା)—କାବୁଲି ଫଳବିଶେଷ;
Manakkā(kā) ସୁପକ୍ୱ ଶୁଷ୍କ ବଡ଼ ଅଙ୍ଗୁର ବା ଦ୍ରାକ୍ଷା ଫଳ—
মুনক্কা **मुनक्का** Dried sweet grape; raisin.

ମନ ଖରାପ—ଦେ. ବି ( ସ. ମନ+ଅ. ଖରାପ )—
Mana kharāpa ମନ ବିଗିଡ଼ିବା ୧ ( ଦେଖ )
মন খারাপ Mana bigirḍibā 1 ( See )
**मन खराब**

ମନ ଖେଳା(ଳେ)ଇବା—ଦେ. କ୍ରି—ନିଜର ମନକୁ ନାନା ବିଷୟକ
Mana kheḷā(ḷe)ibā ଚିନ୍ତାରେ ନିଯୁକ୍ତ କରିବା—To en-
**मनकी घुमाना** gage one's mind in diverse thoughts
মন ঘুরান or directions.

ମନ ଖେଳିବା—ଦେ. କ୍ରି—ମନ ନାନା ଦିଗରେ ଗତି କରିବା ବା
Mana kheḷibā ନାନା ଦିଗରେ ଚିନ୍ତା କରିବା—
মন ঘুরা **मन घुमना** Wandering of the mind.

ମନ ଖୋଲା—ଦେ. ବିଣ ( ସ. ମନସ୍+ପା. ଖୁଲ୍ଲ )—
Mana kholā ସରଳାନ୍ତଃକରଣ—Frank.
(ମନ ଖୋଲାସା—ଅନ୍ୟରୂପ) মন খোলা **मन भाला**

ମନ ଖୋଲିବା—ଦେ. କ୍ରି ( ସ. ମନଃ+ପା. ଖୁଲନା )—ହୃଦୟଗତ
Mana kholibā ଭାବକୁ ଅନ୍ୟ ଆଗରେ ସରଳ ଭାବରେ ପ୍ରକାଶ
মন খোলা . କରିବା—To open one's heart to another;
**मन खोलना** to frankly speak out one's thought to
[ମନ ଫିଟା(ଟେ)ଇବା—ଅନ୍ୟରୂପ] another. (ଉ—ତା
ପରେ ସେ ମନ ଖୋଲି ହନୁଙ୍କୁ ରାମ ଲକ୍ଷ୍ମଣଙ୍କର ସବୁ ଖବର
ପଚାରିଲେ । ନୀଳକଣ୍ଠ ପିଲଙ୍କ ରାମାୟଣ ।)

ମନ ଖୋଲି ଯିବା—ଦେ. ବି ( ସ. ମନଃ+ପା. ଖୁଲନା )—
Mana kholi jibā ୧ । ସରଳ ଭାବରେ ମନୋଭାବର ପ୍ରକାଶ;
মন খুলে যাওআ ମନୋଗତ କଥାର ବାହାରେ ପ୍ରକାଶ—
**मन खुलजाना** 1. Speaking out one's mind.
୨ । ମନରେ ଥିବା ସନ୍ଦେହ ବା ଆଶଙ୍କାର ଦୂରୀଭାବ—
2. Removal of any doubt or fear from the mind.

ମନ ଗଢ଼ା—ଦେ. ବିଣ ( ସ. ମନ+ଗ୍ରଥିତ )—୧ । କାଳ୍ପନିକ—
Mana garḍhā 1. Imaginary. ୨ । ଅବାସ୍ତବ—
মন গড়া **मन गढा, मन गढ़ंत** 2. Not real or actual.

**ମନ ଗଳିବା**—ଦେ. ବି ( ସଂ. ମନଃ+ଗଳ ଧାତୁ )—ମନୋନିବେଶ
Mana gaḻibā ହେବା—Paying attention.
मन पड़ालागा **मन डूबना, मन गडना**

**ମନ ଗଳେ(ଳା)ଇବା**—ଦେ. କ୍ରି—ଖୁବ୍ ଏକାଗ୍ର ଭାବରେ ମନୋ-
Mana gaḻe(ḻā)ibā ନିବେଶ କରିବା—To be engaged
मन देओया, मन लागान in some work very atten-
**मन डूबाना, मन गडाना** tively; to attend to a thing
[ମନ(ନୋ)ଯୋଗ କରିବା, ମନ(ନୋ)ଯୋଗ ଦେବା, ମନ ଲଗା(ଗେ)ଇବା—ଅନ୍ୟରୂପ]

**ମନ ଘର ଧରିବା**—ଦେ. ବି—୧ । ଅବସ୍ଥାର ଗାମ୍ଭୀର୍ଯ୍ୟ ଅନୁଭୂତ ହେବା·
Mana ghara dharibā 1. Becoming alive to the
मने पड़ा seriousness of a situation; realisation
**मन ठिकाना लगाना** of one's serious situation.
୨ । ବିଶେଷ ଚିନ୍ତିତ ହେବା—2. Being very anxious; a state of great anxiety.

**ମନ ଘେନିବା**—ଦେ. କ୍ରି—୧ । ରାଜି କରାଇବା; ସମ୍ମତ କରାଇବା—
Mana ghenibā 1. To make one agree. ୨ । ପ୍ରସନ୍ନ
[ମନ ଘେନା(ନେ)ଇବା—ଅନ୍ୟରୂପ] କରାଇବା; ଅନ୍ୟର ମନ
मन योगान ମୁତାବକ କାର୍ଯ୍ୟ କରି ତାଙ୍କୁ ସନ୍ତୁଷ୍ଟ କରିବା—
**मन राजी कराना** 2. To please a person by acting according to his wishes. (ଉ—ଏହି ରୂପରେ ଧୃତରାଷ୍ଟ୍ରଙ୍କୁ ଶକୁନି, କହିବାରେ ଗଲେ ତାଙ୍କର ମନ ଘେନି । କୃଷ୍ଣସିଂହ. ମହାଭାରତ ବନ ।)

**ମନ ଚଗଲ(ଲା)**—ଦେ. ବିଣ ( ସଂ. ମନଃ+ଚଞ୍ଚଳ )—
Mana chagala(lā) ଅସ୍ଥିର ଚିତ୍ତ—Fickle-minded.
(ମନ ଚଗଲୀ, ମନ ଚଗଲେଇ—ସ୍ତ୍ରୀ) अस्थिर मना **मन चला**

**ମନ ଚଗଲା(ଲେ)ଇବା**—ଦେ. କ୍ରି—କୌଣସି ବିଷୟ ପ୍ରତି ମନୋ-
Mana chagalā(le)ibā ଯୋଗ ନ ଦେଇ ମନକୁ ଏଣେ
मन टलान ତେଣେ ଖେଳାଇବା; ମନକୁ ବିକ୍ଷିପ୍ତ କରିବା—
**मनको घुमाना, मन चलाना** To cause one's, mind to
(ମନ ଚଗଲ କରିବା—ଅନ୍ୟରୂପ) wander away from a matter.

ମନ ଚାଞ୍ଚଲ—ଦେ. ବି ( ସଂ. ମନ+ଚାଞ୍ଚଲ୍ୟ )—ଚିତ୍ତ ଚାଞ୍ଚଲ୍ୟ; ପ୍ରେମ,
Mana chāñchalya ଚିନ୍ତା ବା ଭୟ ଆଦି ଯୋଗୁଁ ମନର
मन अस्थिर ଅସ୍ଥିରତା ବା ଚାଞ୍ଚଲ୍ୟ—Mental restlessness
**मन बेचैन** on account of love, anxiety or fear.
(ମନ ଅଥୟ, ମନ ଅସ୍ଥିର—ଅନ୍ୟରୂପ)

ମନ ଚଞ୍ଚଳ ହେବା—ଦେ. ବି—ମନର ଅସ୍ଥିରତା—
Mana chañchaḻa hebā Restlessness of mind.
मन अस्थिर हओया **मनमे बेचैन होना, मन चञ्चला होना**

**ମନ ଚାଲିବା**—ଦେ. ବି—କୌଣସି ପ୍ରସ୍ତାବ ସପକ୍ଷରେ ମନ, ଇଚ୍ଛୁକ ବା
Mana chālibā ପ୍ରସନ୍ନ ହେବା— Being favourably
मन चला, मन याओआ inclined to a certain proposal.
**मन जाना** (ମନ ଯିବା—ଅନ୍ୟରୂପ)

**ମନ ଚାହିଁ(ହି)ବା**—ଦେ. କ୍ରି—ଅନ୍ୟର ମନର ଭାବକୁ ଅନୁସରଣ କରିବା—
Mana chāhiñ(hi)bā To meet one's accord; to
मन योगान follow to please. (ଉ—ପରର ମନ ଚାହିଁ
**मनचाहना** କହୁଥାଏ କଥା । କୃଷ୍ଣସିଂହ. ମହାଭାରତ. ବିରାଟ ।)
मनचाओया ଦେ. ବି କୌଣସି ବିଷୟ ମନରେ ଆକାଂକ୍ଷା କରିବା—
**मन चाहना** Hankering after a thing.

ମନ ଚୂନା ହୋଇଯିବା—ଦେ. କ୍ରି. ( ସଂ. ମନସ୍+ଚୂର୍ଣ୍ଣ )—
Mana chūnā hoijibā ମନ ଫାଟି ଯିବା ( ଦେଖ )
Mana phāṭi jibā ( See )

**ମନ ଚୋରା**—ଦେ. ବି (ସଂ. ମନସ୍+ଚୌର)—ଚିତ୍ତ ଚୋରା; ପ୍ରିୟତମ
Mana chorā ଲୋକ; ପ୍ରଣୟୀ ବ୍ୟକ୍ତି—Lover; one's be-
मन चोरा loved person ଦେ. ବିଣ- ମନୋମୋହକର—
**मन चोर** Enchanting; very charming.

ମନ ଚୋରା(ରେ)ଇବା—ଦେ. କ୍ରି—ଅନ୍ୟକୁ ପ୍ରେମମୁଗ୍ଧ କରିବା;
Mana chorā(re)ibā ପ୍ରେମ ଦ୍ୱାରା ଅନ୍ୟକୁ ବଶୀଭୂତ କରିବା-
मन चुरि करा To charm a person with love; to
**मन चुराना** steal another's heart.

ମନ **ଛଡ଼ା(ଡ଼େ)ଇବା**—ଦେ. କ୍ରି—ଗୁପ୍ତ ମନ୍ତ୍ରଣା ଦ୍ୱାରା ଜଣକଠାରେ
Mana chhaṛā(ṛe)ibā ଅନ୍ୟ ଜଣଙ୍କର ବିରାଗ ଜନ୍ମାଇବା-
मन भाङ्गान **मन छोडाना** To estrange a person from another.
[ମନ ଫଟା(ଟେ)ଇବା, ମନ ଭାଙ୍ଗିବା, ମନ ବିଗାଡ଼ି ଦେବା, ମନ ଭଙ୍ଗା(ଙ୍ଗେ)ଇବା, ମନ ବିରସା(ସେ)ଇବା, ମନ ବିରଯା(ଯେ)ଇବା—ଅନ୍ୟରୂପ]

ମନ **ଛାଡ଼ିଯିବା**—ଦେ. ବି—୧ । କୌଣସି ବିଷୟରୁ ମନ ବିରକ୍ତ ହେବା-
Mana chhāṛijibā 1 Feeling disgusted with a
मनहटेयाओया **मनहटजाना** certain thing. ୨ । କୌଣସି
( ମନ ହଟିଯିବା—ଅନ୍ୟରୂପ ) ବିଷୟରୁ ଷାନ୍ତ ହେବା—
2. Desisting from a matter.

ମନଛାଲ—ଦେ. ବି (ସଂ. ମନଃଶିଳା)—ମନଃଶିଳା—
Mana chhāla मनछाल **मैनसिल** Realgar.

ମନଜ—ଗ୍ରା. ବି (ସଂ. ମନୋଜ)—ମନୋଜ; କନ୍ଦର୍ପ—Cupid.
Manaja [ଉ—ମନ ମନଜ ଦହିଲ କହନ୍ତି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ମନଜଗା—ଦେ. ବି—ଅନ୍ୟର ମନର ଭାବ ବା ଇଚ୍ଛାର ଅନୁରୂପ
Manajagā କାର୍ଯ୍ୟ କରିବା—Acting with a view
मनराखा to please another. ଦେ. ବିଣ. ପୁଂ—୧ । ଯେ
**मनमुताविककामकरना, मनरखना** କର୍ମ୍ମ ଯାହା ଅନ୍ୟ ବ୍ୟକ୍ତିର
[ମନରଖା(ଖା)—ଅନ୍ୟରୂପ] ମନୋବାଞ୍ଛା ପୂରଣ କରେ—
मनराखा 1. Fulfilling another's desire. ୨ । ଖୋସା-
**मनमुताविककामकरनेवाला, मनरखा** ମଦିଆ—2. Flatter-
ing. ୩ । ମନସ୍ତୁଷ୍ଟିକାରକ—
3. Satisfying; pleasing; gratifying.
ମନ ଜଗିଆ, ମନରଖା, ମନରକ୍ଷିଆ } ଅନ୍ୟରୂପ
[ମନ ଜଗେଇ, ମନ ରଖେଇ—ସ୍ତ୍ରୀ]

ମନ ଜଗିବା—ଦେ. କ୍ରି—ଅନ୍ୟର ମନୋଗତ ଭାବକୁ ରକ୍ଷା କରି କାର୍ଯ୍ୟ
Mana jagibā କରିବା; ସନ୍ତୁଷ୍ଟ କରିବା—To please a
मनराखा; मनयोगान person; to act in such a manner
**मन रखना** that the person concerned will be
ମନ ଜଗା[ଗେ]ଇବା pleased or humoured;
ମନ ଯୋଗା(ଗେ)ଇବା to humour a person
ମନରଞ୍ଜିବା —ଅନ୍ୟରୂପ by acts and words.
ମନ ରକ୍ଷା କରିବା [ଉ—ଭୂ କେବଳ ଭକ୍ତ-
ମନ ରଖିବା ବତ୍ସଳ, ଭକ୍ତ ମନ ରଖିବାକୁ
ସଦା ବଂଛୁଳା । ମାଳମଣି ଅସ୍ପ ନିବେଦନ । ]

ମନ ଜଳିଯିବା—ଦେ. ବି (ସଂ. ମନଃ+ଜଳ. ଧାତୁ)—୧ । ଅନ୍ତର୍ଦାହ
Mana jaḻijibā ଉପସ୍ଥିତ ହେବା—1. Heart burning.
मन पुड़ेयाओया ୨ । ଗୁରୁତର ପଶ୍ଚାତ୍ତାପ—2. Grave
**मन जलजाना** repentance. ୩ । ଗୁରୁତର ବିରକ୍ତି—
ମନ ପୋଡ଼ିଯିବା 3. Grave displeasure.
ମନ ପୋଡ଼ିବା } ଅନ୍ୟରୂପ
ମନ ଜଳିବା

ମନ ଜାଣିବା—ଦେ. କ୍ରି (ସଂ. ମନସ୍+ଜ୍ଞା. ଧାତୁ)—ପରର ମନୋଗତ
Mana jāṇibā ଭାବ ବୁଝି ପାରିବା—To understand
मन जाना another's mind.[ଉ—ଅହେ ଯୁଧିଷ୍ଠିର ତୁମ୍ଭର ଜାଣି
**मन जानना** ମନ, ଏଠାକୁ ସ୍ୱଇଚ୍ଛାରେ ଅସିଲି ବହନ । କୃଷ୍ଣସିଂହ—
ମହାଭାରତ ବନ । ] ଦେ. ବି—ସାକ୍ଷାତ୍ ଅନୁଭୂତି—
Direct experience.

ମନ ଜ୍ଞାନ—ଦେ. ବି (ତତ୍ପୁରୁଷ; ମନଃ+ଜ୍ଞାନ)—୧ । ମନ ଓ କଳ୍ପନା;
Mana jñāna ମନ ଓ ବୁଦ୍ଧି—1. Thought and
( ମନତତ୍ତ୍ୱ—ଅନ୍ୟରୂପ ) मनज्ञान **मनज्ञान** knowledge.
୨ । ମନୋଯୋଗ—2. Attention.

ମନଜ୍ଞାନ କରିବା—ଦେ. କ୍ରି—କୌଣସି ବିଷୟ ପ୍ରତି ମନୋଯୋଗ
Mana jñāna karibā ଦେବା—To mind or attend
मने लओया **मनज्ञान करना** to any matter.

ମନ ଟଳା(ଳେ)ଇବା—ଦେ. କ୍ରି (ସଂ. ମନସ୍+ଟଳ. ଧାତୁ)—
Mana ṭaḻā(ḻe)ibā ୧ । ଅନ୍ୟକୁ ସଙ୍କଳ୍ପରୁ ବିଚ୍ୟୁତ
मनटलान କରିବା—1. To cause one to be deflected
**मनहटाना (टालना)** from his purpose. ୨ । ମୁଗ୍ଧ
(ମନ ଟାଳିବା—ଅନ୍ୟରୂପ) କରିବା—2. To enchant; to
enamour.

ମନ ଟଳିବା—ଦେ. ବି—୧ । ପୂର୍ବ ସଙ୍କଳ୍ପରୁ ମନ ବିଚ୍ୟୁତ ହେବା—
Mana ṭaḻibā 1. Being deflected from one's
मनटला resolve. original. ୨ । ମୁଗ୍ଧ ହେବା—2. Being
**मनहटना, मनटलना** enchanted or enamoured.

ମନ ଟାଣିବା—ଦେ. କ୍ରି (ସଂ. ମନ+ଟନ. ଧାତୁ)—୧ । କୌଣସି
Mana ṭāṇibā ବିଷୟ ପ୍ରତି ଅନ୍ୟର ମନକୁ ଆକୃଷ୍ଟ କରିବା—
मन टाना 1. To attract another's mind to a certain
**मन खींचना** matter. ୨ । ଅନ୍ୟର ପ୍ରେମକୁ ନିଜ ପ୍ରତି ଆକର୍ଷଣ
କରିବା—2. To attract another's mind or
love to one's self.

ମନ ଠଉରା(ରେ)ଇବା—ଦେ. କ୍ରି—ଅନ୍ୟର ମନୋଗତ ଭାବ
Mana ṭhaurā(re)ibā ଅନୁମାନ କରିବା ବା ବୁଝି ପାରିବା—
मन बोझा To guess or understand
**मनटो लेना, मन लेना** another's mind.

ମନ ଡରିବା—ଦେ. ବି—କୌଣସି ବିଷୟ ସମ୍ବନ୍ଧେ ମନରେ ଭୟ ବା
Mana ḍaribā ଆଶଙ୍କା ଉପସ୍ଥିତ ହେବା—Having mis-
ভয় পাওয়া **मन डरना** givings or apprehension
[ମନ ଡରା(ରେ)ଇବା—ଅନ୍ୟରୂପ] about a matter.

ମନ ଡାକିବା—ଦେ. ବି—୧ । କୌଣସି ବସ୍ତୁ ବା କାର୍ଯ୍ୟ ପାଇଁ ମନରେ
Mana ḍākibā ଆକାଙ୍କ୍ଷା ଜାତ ହେବା—1. Having a
मनडाका, मन चाओया yearning or desire for some-
**मनचाहना** thing; wishing for something.
୨ । କୌଣସି ବିଷୟ ଘଟିବ ବୋଲି ମନରେ ଆଶା ଜାଗ୍ରତ
ହେବା—2. Expectation or anticipation of
something.
[ ଉ—ଅହା ମନ ମୋର ଡାକୁଥିଲା ଯାହା, ସେହି ତା
ଘଟିଲା ପରେ । ରାଧାନାଥ. ପାର୍ବତୀ । ]

ମନ ତରଳିବା—ଦେ. ବି (ସଂ. ମନଃ+ତରଳ)—ହୃଦୟ ଦୟାର୍ଦ୍ର ହେବା
Mana taraḻibā Being melted with pity.
मनगला **मन पिघलना** [ମନତରଳା(ଳେ)ଇବା—କ୍ରିୟାରୂପ]

ମନତୋଷ—ଦେ. ବି ( ସଂ. ମନଃ+ତୋଷ )—ମନସ୍ତୁଷ୍ଟି ( ଦେଖ )
Manatosha मनतोष **मनतोस** Manastushṭi (See )

ମନ ଥଣ୍ଡା(ୟ)—ଦେ. ବି ( ସଂ. ମନସ୍+ପା. ଠଣ୍ଡା )—୧ । ଚିତ୍ତର
Mana thaṇḍā(ya) ସ୍ଥିରତା; ମନର ଚଞ୍ଚଳ୍ୟରାହିତ୍ୟ—
मन ठांडा 1. Calmness of mind;serenity of mind;
**मन ठंडा** pacification of one's mental restless-
(ମଥ ଥିର—ଅନ୍ୟରୂପ) ness. ୨ । ସନ୍ତୋଷ—2. Satis-
(ମନ ଥଥୟ—ବିପରୀତ) faction; contentment.

ମନ ଥଣ୍ଡା କରିବା—ଦେ. କ୍ରି—ଆପଣା ମନକୁ ଶାନ୍ତ କରାଇବା—
Mana thaṇḍā karibā To appease one's mind;
मन बोझान, मन ठांडा करा to pacify one's mind.
**मनठण्डा करना** [ମନକୁ ବୁଝା(ଝେ)ଇବା—ଅନ୍ୟରୂପ]

ମନ ଥଣ୍ଡା ହେବା—ଦେ.ବି—ମନରେ ଶାନ୍ତି ବା ସନ୍ତୋଷ ଜାତ ହେବା—
Mana thaṇḍā hebā Having peace or satisfac-
मन ठांडा हओया **मन ठंडा होना** tion of mind.

ମନ ଦଉଡ଼ିବା—ଦେ. ବି—୧ । ମନରେ ପ୍ରବଳ ଇଚ୍ଛା ଜନ୍ମିବା—
Mana daurḍibā 1. Intense desire for or
मनछूटा hankering after a matter. ୨ । ମନର
**मन दौडना** ଗତି—2. Bent of mind; inclination.
[ମନଦଉଡ଼ା(ଡ଼େ)ଇବା—କ୍ରିୟାରୂପ]

ମନ ଦୁଃ(ଦୁ)ଖ—ଦେ. ବିଶ ( ସଂ. ମନୋଦୁଃଖ )—୧ । ଚିତ୍ତର
Mana duḥ(du)kha ଅପ୍ରସନ୍ନତା; ବିମର୍ଷତା; ମନୋବେଦନା—
मनेर दुःख 1. Mental affliction; grief. ୨ । ଅଭିମାନ,
**मन दुख** ଅପ୍ରୀତି—2. Displeasure.

ମନ ଦୁଃ(ଦୁ)ଖ କରିବା-ଦେ. କ୍ରି (ସ. ମନୋଦୁଃଖ)-୧ । ଦୁଃଖିତ ହେବା
Mana duḥ(du)kha karibā 1. To grieve. ୨ ।
ମন দুঃখ করা ଅପମାନ କରିବା -2. To be inwardly
मन भारी करना displeased with a person.

ମନ ଦୃଢ଼ କରିବା—ଦେ. କ୍ରି ( ସ. ମନସ୍+ଦୃଢ଼ )—୧ । ଦୃଢ଼ ସଙ୍କଳ୍ପ
Mana dṛurdha karibā କରିବା—1. To form a
মনকে দৃঢ় করা strong determination or fixed
मन दृढ करना resolve. ୨ । ଅଟଳ ବିଶ୍ୱାସ କରିବା—
2. To have a firm faith or belief.
[ ଉ—ମନ ଦୃଢ଼ କଲେ ଗଡ଼ୁଆ ଗଙ୍ଗା—ପ୍ରବଚନ । ]

ମନ ଦେବା—ଦେ. କ୍ରି—୧ । ମନ ଗଳେଇବା ( ଦେଖ )—1.
Mana debā Mana gaḷeibā ( See) [ ଉ—ମୋ-
মন দেওয়া ଠାରୁ ଶୁଣ ଭଲ କରି ମନ ଦେଇ । କୃଷ୍ଣସିଂହ.
मनदेना ମହାଭାରତ. ବନ । ] ୨ । ଆଦର କରିବା—
2. To like; to have a liking for. [ ଉ—
ଜାମ୍ବୁଦଳ ଦ୍ରବେ ଦେଇ ମନ, ସୁଧା ଧାରି ସୁଧା ଧରୁଛଲେ,
ଦେଲୁଛ ଅନାଦ୍ରବେ । କବିସୂର୍ଯ୍ୟ. ସଙ୍ଗୀତ । ] ୩ ।
କୌଣସି କାର୍ଯ୍ୟରେ ମନୋନିବେଶ କରିବା - 3. To
closely apply one's mind to any particular
object.

ମନ ଧରା—ଦେ. ବି (ସ. ମନଃ+ଧୃ ଧାତୁ )—ଅନ୍ୟର ଇଚ୍ଛା ଅନୁସାରେ
Mana dharā କାର୍ଯ୍ୟ କରି ତାର ସନ୍ତୋଷ ଉତ୍ପାଦନ—
মন যোগান Pleasing a person by acting accor-
मनरखना ding to his desire; humouring a
person; captivating. [ ଉ—ତୋତେ ତ
ଗୋଚର, ପେଶି ଶିଶୁଚର, ଯେତେ ରୂପେ ମନ ଧରି ।
କବିସୂର୍ଯ୍ୟ. ସଙ୍ଗୀତ । ]

ମନ ଧରିବା—ଦେ. କ୍ରି ( ସ. ମନଃ+ଧୃ ଧାତୁ )—୧ । କୌଣସି
Mana dharibā ବ୍ୟକ୍ତିର ଇଚ୍ଛାକୁ ଠଉରାଇବା—1. To
মনবুঝা read another's mind. ୨ । ମନ ଜଗିବା (ଦେଖ)
मनटोना 2. Mana jagibā ( See ) [ ଉ—ପୂର୍ବେ
ଯୁଧିଷ୍ଠିରଙ୍କୁ ସଭାଲୋକମାନେ, ମନ ଧରଣ କରୁଥାନ୍ତି
ଅବହିତେ । କୃଷ୍ଣସିଂହ. ମହାଭାରତ• ବିରାଟ । ]

ମନ ଧାଇଁବା—ଦେ. ବି—ଲାଳାୟିତ ହେବା;କୌଣସି ବିଷୟ ପ୍ରତି ମନରେ
Mana dhāiñbā ପ୍ରବଳ ଇଚ୍ଛା ଜନ୍ମିବା—Hankering after
মনছুটা a particular thing. [ ଉ—ଦରିଦ୍ର ଜାଇଙ୍କ
मन दौड़ना ଦୁଏତ, ଦେଖୁଥିଲେ ଦେଖୁଥିବାକୁ ମୋ ମନ, ଧାଇଁଥାଏ
ନାହିଁ ନାହିଁ—କବିସୂର୍ଯ୍ୟ. ସଙ୍ଗୀତ ]

ମନନ—ସ. ବି ( ମନ ଧାତୁ=ବୋଧ କରିବା; ଜାଣିବା; ମନ କରିବା
Manana + ଭାବ. ଅନ )—୧ । ବୁଦ୍ଧି—1· Intelli-
gence. ୨ । ପ୍ରଗାଢ଼ ଚିନ୍ତନ—2· Reflection;
contemplation; deliberation. ୩ । କୌଣସି
ବିଷୟରେ ଅନବରତ ଅନୁଚିନ୍ତନ—3. Harping upon
a subject. ୪ । ଅନୁମାନ—4· Inference. ୫ ।
ଚିନ୍ତନ—5. Act of thinking. ୬ । ଧାରଣା; ଚିନ୍ତା
—6. Thought; mental impression. [ଉ—
ବଚନ ମନନ ଯାର ସତ୍ୟ ପୁଣ ପୁଣି ସୁନ୍ଦରତ । ମଧୁସୂଦନ.
ସାହିତ୍ୟ ତରଙ୍ଗ । ] ୭ । ବୁଝିବା; ହୃଦୟଙ୍ଗମ କରିବା—
7. Understanding. ୮ । ସଙ୍କଳ୍ପ—8. Resolve;
determination. ୯ । ଅଭିଳାଷ; ଇଚ୍ଛା—9. Wish;
desire. ୧୦ । ନବଧା ଭକ୍ତିର ଦ୍ୱିତୀୟ ସୋପାନ;
କୌଣସି ବିଷୟ ଶୁଣିବା ପରେ ମନରେ ତହିଁର ଚିହ୍ନ ବା
ଛାପା ଅଙ୍କିତ ହେବାର ସୋପାନ; ଶୁଣା ହେବା ବିଷୟକୁ
ବାରମ୍ବାର ବିଚାର କରି ମନରେ ତହିଁର ଦୃଢ଼ ଚିହ୍ନ ଅଙ୍କିତ
କରିବା ରୂପ ମାନସିକ ପ୍ରକ୍ରିୟା—10. The 2nd step
in the processes of devotion in which an
impression in left of the matter heard;
mental rumination or musing.

ମନ ନେବା—ଦେ. କ୍ରି ( ସ. ମନସ୍+ନୀ ଧାତୁ )—୧ । କୌଣସି
Mana nebā ବ୍ୟକ୍ତିକୁ ସନ୍ତୁଷ୍ଟ କରିବା—1. To please a
মন লওয়া person. ୨ । ମୁଗ୍ଧ କରିବା—2. To en-
मन हातमे लेना chant;to fascinate. ୩ । ପ୍ରସ୍ତାବିତ
କାର୍ଯ୍ୟରେ କୌଣସି ବ୍ୟକ୍ତିର ସହାନୁଭୂତି ଅଛି କି ନାହିଁ,
ଏହା ପରୀକ୍ଷାପୂର୍ବକ ସ୍ଥିର କରିବା—3. To ascertain
after testing whether one has sympathy
for any proposal.
(ମନ ଝୁଲେଇବା, ମନ ଚୋରିବା—ଅନ୍ୟରୂପ)

ମନ ପତଳା କରିବା—ଦେ. କ୍ରି ( ସ. ମନସ୍+ପତଳ )—୧ । ଧୈର୍ଯ୍ୟ
Mana pataḷā karibā ବା ଦମ୍ଭ ହରାଇବା—1. To lose
মন পাতলা করা, মনমরা হওয়া patience or fortitude.
मन पतला करना; मन मलिन करना; मन मौलाना ୨ । ଭୀତ
( ମନ ପାତଳ[ଳା] କରିବା—ଅନ୍ୟରୂପ ) ହେବା—2. To
[ମନ ଦମ(ଝାଣ)କରିବା—ବିପରୀତ] fear; to be afraid.

ମନ ପତଳା ହେବା—ଦେ. ବି—ମନ ଅଧୀର ହେବା—Loss of
Mana pataḷā hebā one's patience or equanimity
মন মরা मन पतला होना

ମନ ପବନ—ଦେ. ବି—୧ । ମନରୂପ ପବନ—1. Wind com-
Mana pabana pared in speed to the mind.
୨ । ପବନ ପରି ଚଞ୍ଚଳ ମନ—2. The mind com-
pared in speed to the wind.

ମନପବନ(ନା)—ଦେ. ବିଣ ( ସ. ମନସ୍+ପବନ )--ଯାହା ପବନ
Manapabana(nā) ପରି ଦ୍ରୁତଗତି କରି ଲୋକକୁ ଈପ୍ସିତ
ସ୍ଥାନରେ ପହଞ୍ଚାଏ—Able to carry a person
swiftly to the desired place

ମନପବନ(ନା) ଘୋଡ଼ା—ଦେ. ବି—କାହାଣୀରେ ବର୍ଣ୍ଣିତ ଘୋଡ଼ା,
Manapabana(nā) ghorḍā ଯେଉଁ ଘୋଡ଼ାରେ ଚଢ଼ିବା
মনপবনের ঘোড়া ଲୋକ ଈପ୍ସିତ ସ୍ଥାନରେ ପବନଗତିରେ
मन पवन घोडा ପହଞ୍ଚେ—A fabulous horse which
is said to swiftly carry its rider to
the desired place.

**ମନପବନ(ନା) ଡଙ୍ଗା (ନାଆ[ହା])**—ଦେ. ବି—କାହାଣୀରେ ବର୍ଣ୍ଣିତ
Manapabana(nā) ḍaṅgā (nāa[hā]) ନୌକା, ଯାହା
মনপবনের না　ଆରୋହୀଙ୍କୁ ଇପ୍ସିତ ସ୍ଥାନରେ ପବନବେଗରେ
**मनपवननाव (डोंगा)**　ବା ଅତିଶୀଘ୍ର ପହଞ୍ଚାଏ—A fabulous boat which is said to swiftly carry its passenger to any desired place.

**ମନ ପଶିବା**—ଦେ. ବି—କୌଣସି ବିଷୟରେ ବୁଦ୍ଧି ପ୍ରବେଶ କରିବା;
Mana paśibā ମନୋନିବେଶ—Concentration of one's
মনেঢুকা　**मन पै[बै]ठना**　attention on a particular
(ମନପଶ୍ୟ ହେବା—ଅନ୍ୟରୂପ)　matter.

**ମନ ପଶ୍ୟ କରିବା**—( ସ. ମନଃ+ପ୍ରବେଶ )—୧ । କୌଣସି ବିଷୟକୁ
Mana paśya karibā　ବା ଉପଦେଶକୁ ଖାତିର କରିବା—
মন ঢুকান　1. To care for a thing or advice. ୨ ।
**मनवैठाना** ମନ ଦେବା; ମନୋଯୋଗ କରିବା—2. To give one's attention to thing. ୩ । ସ୍ମରଣ କରିବା—3. To remember.

**ମନ ପାଇବା**—ଦେ. କ୍ରି ( ସ. ମନଃ+ପ୍ରାପ ଧାତୁ )—୧ । କୌଣସି
Mana pāibā　ବ୍ୟକ୍ତିର ହୃଦ୍‌ଗତ ଭାବକୁ ହୃଦୟଙ୍ଗମ କରିବା—
মন পাওয়া　**मन पाना**　1. To fathom a person's mind. [ ଉ—ଏକଇଁ ଫଳ ଏକ ହେବା, ଅନେକ ମନ ନ ପାଇବା—ଭୂପତି ପ୍ରେମପଞ୍ଚାମୃତ । ] ୨ । ଚିତ୍ତ ରଞ୍ଜନ କରିବା—2. To please a person. ଦେ.
আসকারা পাওয়া　ବି—୧। କୌଣସି କାର୍ଯ୍ୟରେ ସିଦ୍ଧି ବା ପ୍ରଶଂସା
**मन बढना** ଲାଭ କରିବା ଯୋଗୁଁ ଭବିଷ୍ୟତରେ ସେହିପରି କର୍ମ କରିବା ପାଇଁ ହୃଦୟରେ ସାହସ ବା ଉତ୍ସାହ ଜନ୍ମିବା—1. Being encouraged to do a similar act, having once been praised or rewarded for it. ୨। କୌଣସି କାର୍ଯ୍ୟରେ ମନର ପ୍ରସନ୍ନତା ଜନ୍ମିବା—2. Satisfaction.

**ମନ ପୂରିବା**—ଦେ, ବି (ସ· ମନ+ପୂର୍ତ୍ତି)—ମନସ୍କାମନା ସଫଳ ହେବା—
Mana pūribā　The fructification or fulfilment
**मनपूरना होना**　of one's desire. [ ଉ—ସେ କଥା ଅନ୍ୟଥା ନୋହିବ, ଅବଶ୍ୟ ତୋ ମନ ପୂରିବ—ଜଗନ୍ନାଥ, ଭାଗବତ ]

**ମନ ପୋଡ଼ିବା**—ଦେ. କ୍ରି ( ସ. ମନଃ+ପ୍ଳୁଷ୍ ଧାତୁ )—ଅନ୍ୟର ମନକୁ
Mana porḍibā　ଦୁଃଖିତ କରିବା—To cause grief to
মন পোড়ান　**मनजलाना**　another person.
( ମନ ପୋଡ଼ିଦେବା—ଅନ୍ୟରୂପ )　ମନପୋଡ଼ା ଦେ. ବି—୧ ।
**मन जलना**　( ମନ ପୋଡ଼ିଯିବା—ଅନ୍ୟରୂପ )　ମନରେ ଗଭୀର ଦୁଃଖ ବା ବିରକ୍ତି ଜାତ ହେବା—1. Grave displeasure or grief. ୨ । କୌଣସି ବିଷୟ ପ୍ରତି ପୂର୍ବ ଉତ୍ସାହର ଲଘିତ ବା ଅଗ୍ରହର ଲୋପ—2. The abatement of one's zeal for a certain matter.

**ମନ ଫଟା**—ଦେ. ବି ( ସ. ମନଃ+ସ୍ଫୁଟ୍ ଧାତୁ )—୧ । ବନ୍ଧୁଦ୍ୱୟଙ୍କ
Mana phaṭā ମଧ୍ୟରେ ମନୋମାଳିନ୍ୟ ବା ମାନସିକ ଅପ୍ରସନ୍ନତା—
মন ফাটা　**मन फटना**　1. Dissension between two friends. ୨ । ମନୋଦୁଃଖ—2. Sorrow; mental pang. ୩ । ଉତ୍ସାହଭଙ୍ଗ—3. Abatement of zeal. [ ଉ—ଅମୃତ ଏହି ଦଶା ଦେଖି ମନଫଟା, ନ କର ଯୁଦ୍ଧ କର ନାଥ ହେ ଯଶୁଟା—କୃଷ୍ଣସିଂହ. ମହାଭାରତ, ବିରାଟ ।]

**ମନ ଫଟା(ଟେ)ଇବା**—ଦେ. କ୍ରି ( ସ. ମନଃ+ସ୍ଫୁଟ୍ ଧାତୁ )—ଦୁଇ
Mana phaṭā(ṭe)ibā　ବନ୍ଧୁ ବା ପ୍ରଣୟୀଙ୍କ ମଧ୍ୟରେ ମନୋ-
মন ফাটান (বিগড়ান)　ମାଳିନ୍ୟ ଘଟାଇବା—To cause
**मन फटाना**　dissension between two friends or
(ମନ ଫାଡ଼ିବା, ମନ ଫଡ଼ା[ଡ଼େ]ଇବା—ଅନ୍ୟରୂପ )　lovers.

**ମନ ଫଟାଫଟି**—ଦେ. ବି—ଦୁଇ ବନ୍ଧୁ ବା ପ୍ରଣୟୀଙ୍କର ଉଭୟ ପ୍ରତି
Mana phaṭāphaṭi　ଉଭୟଙ୍କର ମନର ଅପ୍ରସନ୍ନତା—Mutual
মন কষাকষি ill feeling or misunderstanding between
**दोनोंका मन फटजाना**　two friends or two lovers.

**ମନ ଫା(ଫି)ଟିବା**—ଦେ. ବି—୧ । ଦୁଇ ଜଣଙ୍କର ମନୋମାଳିନ୍ୟ
Mana phā(phi)ṭibā　ବା ଏକତାର ଲୋପ ଘଟିବା—
মন ফেটে যাওয়া, মন কষাকষি হওয়া　1. The cropping
**मन फटना**　up of discord or split between two persons. ( ଉ—ରଜାମାନଙ୍କରେ ଜଣକୁ
ମନଫିଟିଯିବା, ମନ ଫାଟିଯିବା }—ଅନ୍ୟରୂପ　ସେନାପତି, କଲେ ମନ ଫିଟିଯିବ ହେ ମହାମତି—କୃଷ୍ଣସିଂହ. ମହାଭାରତ· ଶଲ୍ୟ । ) ୨ । କୌଣସି ବିଷୟ ପ୍ରତି ବିରାଗ ଜନ୍ମିବା—2. Becoming apathetic or averse to any thing.

**ମନ ଫି(ଫ)କା ପଡ଼ିଯିବା**—ଦେ. ବି ( ସ. ମନଃ+ଆ. ଫିକା )—
Mana phi(pha)kā parḍijibā　୧ । ନିରୁତ୍ସାହ ହେବା;
মন মরা　**मन फिका पडजाना**　ମନ ମରିଯିବା; ଆଗ୍ରହର ଲୋପ—
(ମନ ଫିକା ହେବା—ଅନ୍ୟରୂପ)　1. Becoming discouraged or devoid of zeal. ୨ । ବିରସ ହେବା—
(ମନ ମଉଳିବା—ଅନ୍ୟରୂପ)　2. Being dejected.

**ମନ ଫୁଲଣା**—ଦେ. ବିଣ ( ସଂ. ମନସ୍+ସ୍ଫୀତ )—୧ । ଚିନ୍ତାଶୂନ୍ୟ—
Mana phulaṇā　1. Free from anxiety. ୨ । ହୃଷ୍ଟ-
নিশ্চিন্ত, ফুর্তিবাজ　ଚିତ୍ତ; ଫୂର୍ତ୍ତିବାନ୍—2. Merry. ୩ । ଯେଉଁ
**मनमौजी, फुर्तीला** ଲୋକ ସଂସାରର ଦୁଃଖକୁ ଦୁଃଖ ବୋଲି ମନରେ
( ମନଫୁଲଣିଆ—ଅନ୍ୟରୂପ )　ଘେନେ ନାହିଁ—3. Happy-go-
( ମନଫୁଲଣୀ—ସ୍ତ୍ରୀ )　lucky ( person ). [ ଉ—ମନ ଫୁଲଣିଆ ଗୀତ ଗାଏ, ଅଯୋକା ନାଗ୍ ବାପଘର ଯାଏ—ଢଗ । ]

**ମନ ଫେରଣ**—ଦେ. ବି ( ଖ୍ରୀଷ୍ଟୀୟାନ୍ ପାଦ୍ରୀମାନଙ୍କ ସୃଷ୍ଟ ଶବ୍ଦ; ସଂ. ମନଃ
Mana pheraṇa　+ପ୍ରତ୍ୟାବର୍ତ୍ତନ )—୧ । ମାନସିକ ଅବସ୍ଥାର
মন ফিরা　ବା ମନୋବୃତ୍ତିର ବା ଧାରଣାର ପରିବର୍ତ୍ତନ—
**मन फेरना; मनफेरना**　1. Change of one's mental condition, mentality or outlook. ୨ । ଅନୁ-ତାପ—2. Remorse; repentance.

**ମନ ଫେରା(ରେ)ଇବା**—ଦେ. କ୍ରି—(ସଂ. ମନସ୍+ପ୍ରତ୍ୟାବର୍ତ୍ତନ)—୧। ପ୍ରଥମ ମତ ବା ସଙ୍କଳ୍ପକୁ ପରିବର୍ତ୍ତନ କରିବା—1. To change one's mind or opinion. (ବାଇବ୍ଲ ଅନୁବାଦ) ୨। ଅନୁତାପ କରିବା—2. (Bible) To repent.
Mana pherā(re)ibā
মন ফিরান **मन फेराना**

**ମନ ଫେରିଯିବା**—ଦେ କ୍ରି—୧। ମାନସିକ ଅବସ୍ଥାର ବା ଧାରଣାର ପରିବର୍ତ୍ତନ—1. Change of one's mental condition or outlook. ୨। ଦୁଶ୍ଚିନ୍ତାରୁ ବା ବିରସ ପଣରୁ ମନର ବିରତି—2. Diversion of one's mind from distressful thoughts or melancholy.
Mana pheri jibā
মন ফিরে যাওয়া **मनफीरजाना**
(ମନ ପରିବର୍ତ୍ତନ, ମନ ବଦଳିବା—ଅନ୍ୟରୂପ)

**ମନ ବଢ଼ିବା**—ଦେ. କ୍ରି—(ସଂ. ମନଃ+ବୃଦ୍ଧି)—୧। ମନ ବଳିବା (ଦେଖ)—1. Mana balibā (See) [ଉ—ତାର ଚରଣ ସେବା ଛାଡ଼। ଯୁବା ପୁରୁଷେ ମନ ବଢ଼ି। ଭାଗବତ।] ୨। ଆସକ୍ତିର ଆଧିକ୍ୟ—2. Having excess of attachment; being enamoured. ୩। ମନ ପାଇବା (ବି) (୧) ଦେଖ—3. Mana pāibā (noun) (1) (See)
Mana bardhibā
আসক্তি হওয়া
**मन बढना**
(ମନ ବଢ଼ି ଯିବା—ଅନ୍ୟରୂପ)
আসাকার পাওয়া

**ମନ ବଳା(ଳେ)ଇବା**—ଦେ. କ୍ରି—(ସଂ. ମନଃ+ବୃଦ୍ଧି)—କୌଣସି କାର୍ଯ୍ୟ କରିବାକୁ ଦୃଢ଼ସଙ୍କଳ୍ପ କରିବା ବା ଲାଳାୟିତ ହେବା—To be determined or resolved to do a thing; to be bent upon doing a thing. (ଉ—ଚଳାଚଳ ନୟନ ଛଳା ଦେଖିଲୁ ମନ ବଳାଅଛେ। କବିସୂର୍ଯ୍ୟ, ସଙ୍ଗୀତ।)
Mana balā(le)ibā
সংকল্প করা
**मन बढाना**

**ମନ ବଳିବା**—ଦେ. କ୍ରି—(ସଂ. ମନସ୍+ବୃଦ୍ଧି)—୧। କୌଣସି କାର୍ଯ୍ୟ କରିବା ପାଇଁ ମନରେ ଦୃଢ଼ ପ୍ରତିଜ୍ଞାର ବା ଲାଳସାର ବା ଆସକ୍ତିର ଉଦ୍ରେକ—1. Hankering after or determination to do a thing; being bent on doing a thing. (ଉ—ପୁଣି ଭଜିବାକୁ ଏବେହେ ପଶୁ ବଳୁଛି ମନ। ରାଧାନାଥ, ଚନ୍ଦ୍ରଭାଗା) ୨। କୌଣସି ବ୍ୟକ୍ତି ପ୍ରତି ପ୍ରଣୟାସକ୍ତି ଜନ୍ମିବା—2. Being enamoured of a person.
Mana balibā
আসক্তি হওয়া
**मन बढजाना**

**ମନ ବହଲ**—ଦେ. ବିଣ—୧। ଯେଉଁ ବ୍ୟକ୍ତି ବା କାର୍ଯ୍ୟଦ୍ୱାରା ଖିନ୍ନ-ହୃଦୟ ବ୍ୟକ୍ତିର ମନରେ ପ୍ରସନ୍ନତା ଜନ୍ମେ—1. (any person or act) Diverting the mind of a person from grief or sad thoughts. ୨। ମନ ଭୁଲାଣିଆ (ଦେଖ)—2. Mana bhulāniā (See) ଦେ.ବି—ଖିନ୍ନ ହୋଇଥିବା ମନର ପ୍ରସନ୍ନତା ଜନ୍ମିବା।—Diversion of one's mind from grief or sad thoughts.
Mana bahalā

**ମନ ବହଲା(ଲେ)ଇବା**—ଦେ. କ୍ରି.—୧। ଦୁଶ୍ଚିନ୍ତାରୁ ବା ଶୋକରୁ ଆପଣାର ବା ପରର ମନକୁ ପ୍ରସନ୍ନତା ଆଡ଼କୁ ଆଣିବା—1. To divert one's own or another's mind from grief or sad thought. ୨। ମନ ଭୁଲାଇବା (ଦେଖ)—2. Mana bhulāibā (See)
Mana bahalā(le)ibā
মন ফিরান
**मन बहलाना**
(ମନ ବହଲିବା—ବିଶେଷ୍ୟରୂପ)

**ମନ ବାଉଳା**—ଦେ. ବିଣ. ପୁଂ—ଶୋକ ବା ପ୍ରମୋଦାଦି ଯୋଗୁଁ ଯାହାର ବିସ୍ମୃତି ବା ମତ୍ତତା ଘଟୁଅଛି—Become mad or forgetful on account of grief or joy.
Mana bāulā
ভোল **मन सनकी**
(ମନ ବାଉଳୀ—ସ୍ତ୍ରୀ)

**ମନ ବାଉଳା(ଳି) ହେବା**—ଦେ. କ୍ରି—ପ୍ରେମ ବା ଶୋକାଦିଦ୍ୱାରା ବିସ୍ମୃତି ଘଟିବା—Forgetfulness due to love or grief.
Mana bāulā(li) hebā
**मन सनकना**

**ମନବାଞ୍ଛା**—ଗ୍ରା. ବି (ସଂ. ମନୋବାଞ୍ଛା)—ମନସ୍କାମନା—Hearts wish.
Manabāñchhā
মনবাঞ্ছা **मनवाञ्छा**

**ମନବିକଳ**—ସଂ. ବି (ମନଃ+ବ୍ୟାକୁଳତା)—ଚିତ୍ତର ବ୍ୟାକୁଳତା; ଶୋକାଧୀରତା—Restlessness due to grief; distraction of mind.
Manabikala
মনব্যাকুল **मनविकल**
(ମନବିକଳା—ବିଣ)

**ମନ ବିକିଦେ(ହେ)ବା**—ଦେ.କ୍ରି (ସଂ.ମନ+ବି+କ୍ରୀ ଧାତୁ)—୧। ଅନ୍ୟ ବ୍ୟକ୍ତିର ସମ୍ପୂର୍ଣ୍ଣ ବଶ ହେବା; ଅନ୍ୟ ବ୍ୟକ୍ତି-ଠାରେ ଆପଣାର ମନକୁ ସମର୍ପଣ କରିବା—1 To offer full homage to a person; to sell one's heart to a person. ୨। ଅନ୍ୟଠାରେ ପୂର୍ଣ୍ଣରୂପେ ଆସକ୍ତ ହେବା—2. To be completely attached to or enamowred of a person.
Mana bikide(he)bā
মনসম্পেদেওয়া
**मनवेचदेना, मनसौंपना**
(ମନ ସମର୍ପି ଦେବା—ଅନ୍ୟରୂପ)

**ମନ ବିଗାଡ଼ିବା**—ଦେ. କ୍ରି (ସଂ. ମନଃ+ବିକାର)—୧। ଅନ୍ୟର ମନରେ ବିରକ୍ତିଭାବ ଜନ୍ମାଇବା—1. To bring about or sow seeds of displeasure in another's mind. ୨। ମନୋମାଳିନ୍ୟ ଘଟାଇବା—2. To bring about mental rupture or discord between 2 persons.
Mana bigārdibā
মনবিগড়ান **मनबिगाडना**
[ମନବିଗ(ଗି)ଡ଼ା(ଡ଼େ)ଇବା—ଅନ୍ୟରୂପ]
(ମନବିଷା[ଷୋ]ଇ ଦେବା—ଅନ୍ୟରୂପ)

**ମନ ବିଗିଡ଼ିବା**—ଦେ. କ୍ରି (ସଂ. ମନଃ+ବିକାର)—୧। ମନୋଭଙ୍ଗ; ମନୋଦୁଃଖ—1. Dejection. ୨। ଅପଡ଼; ମନ ଛାଡ଼ିଯିବା; ମନୋମାଳିନ୍ୟ ଘଟିବା—2. Mental difference.
Mana bigirdibā
মনবিগড়া, মনভাঙ্গা
**मनबिगडना, मनमोटाहोना**
(ମନଭାଙ୍ଗିବା, ମନବିରସିବା—ଅନ୍ୟରୂପ)

**ମନ ବିଡ଼ିବା**—ଦେ. କ୍ରି (ସଂ. ମନ+ବିଡ଼ ଧାତୁ=ଭେଦ କରିବା)—ଅନ୍ୟ ବ୍ୟକ୍ତିର ମନୋଗତ ଭାବକୁ ପରୀକ୍ଷା କରିବା—To test the mental thoughts of a person.
Mana birdibā
মনপরীক্ষাকরা **मनजाँचना**

**ମନ ବିରସ**—ଦେ. ବି (ସଂ. ମନଃ+ବିରସ)—ଚିତ୍ତର ଅପ୍ରସନ୍ନତା ବା ବିରକ୍ତି—Mental gloom
Mana birasa
মনমরা **मनविरस**

**ମନ ବୁଝା**—ଦେ. ବଣ ( ସ. ମନଃ+ବୋଧ )—ସାନ୍ତ୍ୱନାପ୍ରଦ—
Mana bujhā मनबुझाव Consolatory.

**ମନ ବୁଝିବା**—ଦେ. କ୍ର (ସ. ମନଃ+ବୋଧ)—୧ । ମନବୋଧ ହେବା; ମନରେ ଶାନ୍ତ ହେବା—1. Satisfaction or pacification of mind.
Mana bujhibā
মনবুঝা मनबुझना
(ମନବୁଝିଯିବା—ଅନ୍ୟରୂପ) ୨ । ସାନ୍ତ୍ୱନା ପାଇବା; ଆଶ୍ୱସ୍ତ ହେବା· 2. Consolation. ଦେ. କ୍ରି—୧ । ମନ କଳିବା
মন পরীক্ষা করা मन जांचना (ଦେଖ)—1. Mana kaḷibā See) ୨ । ମନ କଷିବା (ଦେଖ)—2. Mana kasibā (See) ୩ । ମନ ଜଗିବା (ଦେଖ)—Mana jagibā (See)

**ମନ ବୋଧ**—ଦେ. ବ ( ସ. ମନସ୍+ବୋଧ )—୧ । ମନସ୍ତୁଷ୍ଟି—
Mana bodha 1. Satisfaction. ୨ । ଆପଣା ମନକୁ ବୁଝାଇବା—2. Introspection.
মনকে বুঝান मनबोधन
୩ । ନିଜ ନିଜେ ଆପଣାର ମନକୁ ସମ୍ବୋଧନ—3. Soliloqy. (ଯଥା—ମନବୋଧ ଚଉତିଶା) ।

**ମନ ବୋଧିଆ**—ଦେ. ବଣ—୧ । ମନକୁ ସନ୍ତୁଷ୍ଟ କରିବାକୁ ସମ ବା ସମର୍ଥ—1. Capable of satisfying one's mind; giving satisfaction.
Mana bodhiā
মনেরমত মনভুলান
मनबोधन ୨ । ମନଭୁଲାଣିଆ—2. Beguiling.

**ମନ ବ୍ୟାକୁଳ**—ଦେ.ବ (ସ. ମନୋବ୍ୟାକୁଳତା)—୧ । ଚିତ୍ତବ୍ୟାକୁଳତା
Mana byākuḷa 1. Mental perturbation.
মনব্যাকুল मनकीबिकलता ୨ । ମନ ଖରାପ—2. Depression of mind; mental gloom.
[ମନବ୍ୟାକୁଳା, ମନବ୍ୟାକୁଳିଆ—ପୁଂ } ବଣ
ମନବ୍ୟାକୁଳୀ, ମନବ୍ୟାକୁଳେଇ—ସ୍ତ୍ରୀ ]

**ମନ ଭଙ୍ଗା**—ଦେ. ବଣ. ପୁଂ—ଯାହା ବା ଯେ ଦୁଇଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଏ—Bringing about or causing mental estrangement between two persons.
Mana bhaṅgā
[ମନଭଙ୍ଗାଣିଆ(ଆଁ)—ଅନ୍ୟରୂପ]
ମନଭଙ୍ଗା(ଙ୍ଗେ)ଇ } ସ୍ତ୍ରୀ
ମନଭଙ୍ଗୁଣୀ }
মন ভাঙ্গান मन तोडनेवाला

**ମନ ଭଙ୍ଗା(ଙ୍ଗେ)ଇବା**—ଦେ. କ୍ରି—୧ । ଦୁଇଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଇବା—1. To cause mental rupture between two persons.
Mana bhaṅgā(ṅge)ibā
মন ভাঙ্গান
मनतोडना ୨ । ବିଚ୍ଛେଦ ଭାବ କରାଇବା—2 To sow seeds of displeasure. ୩ । ବୁଝାଇ ବୋଧ କରି କୌଣସି ସଂକଳ୍ପିତ କାର୍ଯ୍ୟରୁ ନିବୃତ୍ତ କରିବା —3. To induce a person to desist from a resolve.

**ମନ ଭାଙ୍ଗିଯିବା**—ଦେ. କ୍ର—୧ । ମନ ବିଗିଡ଼ିବା (ଦେଖ)—1. Mana bigiṟḍibā (See)
Mana bhāṅgijibā
মন ভেঙ্গে যাওয়া ୨ । ନିରୁତ୍ସାହିତ ହେବା—2. Being discouraged or deprived of vigour; abatement of eagerness for a thing.
मन टूट जाना
(ମନ ତୁଟିଯିବା, ମନ ଛିଣ୍ଡିଯିବା, ମନ ବସିବା—ଅନ୍ୟରୂପ)

**ମନ ଭା(ଭା)ବୁକା(ସି)**—ଦେ. ବଣ—୧ । ମନମଉଜୀ; ମନମୁଖୀ; ମନୁଆ
Mana bha(bhā)bukā(si) 1. Arbitrary; self-willed.
একগুঁয়ে। ୨ । ଯେ ସର୍ବଦା ପ୍ରଫୁଲ୍ଲ ଥାଏ—2. One who is of a cheerful disposition of mind.
প্রফুল
मनमौजी ୩ । ସ୍ୱେଚ୍ଛାରେ କୃତ ( କର୍ମ )—3. (act ) Done according to one's free will.

**ମନ ଭୁଲା(ଲେ)ଇବା**—ଦେ. କ୍ରି ( ସ. ମନସ୍+ବହୁଳ )—୧ । କୌଣସି ବ୍ୟକ୍ତିର ମନକୁ ତାହାର ସଂକଳ୍ପରୁ କୌଶଳକ୍ରମେ ଟଳାଇ ଦେବା —1. To shrewdly cause a person to deviate from one's resolve. ୨ । ଚିତ୍ତ ମୁଗ୍ଧ କରିବା—2.To enchant a person.
Mana bhulā(le)ibā
মন ভোলান; মন ভুলান
मन भूलाना

**ମନ ଭୁଲାଣିଆ(ଆଁ)**—ଦେ. ବଣ—୧ । ଯେଉଁ ବ୍ୟକ୍ତି କୌଶଳକ୍ରମେ ଅନ୍ୟର ମନକୁ ସଂକଳ୍ପରୁ ଭ୍ରଷ୍ଟ କରେ ବା ଟଳାଏ—1. Shrewdly causing a person to deviate from one's resolve. ୨ । ଯେଉଁ କାର୍ଯ୍ୟଦ୍ୱାରା ମନୁଷ୍ୟର ମନ ମୌଳିକ ସଂକଳ୍ପରୁ ଭ୍ରମରେ ଟଳିଯାଏ—2 ( work ) Which causes a man to deviate from his original resolve unawares. ୩ । ଚିତ୍ତମୁଗ୍ଧକର—3. Fascinating; enchanting.
Mana bhulāṇiā(āṅ)
মন ভুলানিআ

**ମନ ଭୁଲିବା**—ଦେ. କ—୧ । ମୁଗ୍ଧ ହେବା—1. Being enchanted or beguiled. ୨ । ଜାଣିକି ଅଜାଣତରେ ବା ଅସାବଧାନତାରେ ସଂକଳ୍ପରୁ ଟଳିବା—2. Unconscious deviation from one's resolve.
Mana bhulibā
মন ভুলা मन भूलना

**ମନ ଭୋଳ ହେବା**—ଦେ. କ—ମନ ବାଉଳା ହେବା ( ଦେଖ )—
Mana bhoḷa hebā Mana bāuḷā hebā ( See )
মন ভোল হওয়া मन भोल होना

**ମନ ଭ୍ରମର ଗୁମ୍ଫାରେ ପଶିବା**—ଦେ.କ—ମନ ଘର ଧରିବା—(ଦେଖ)
Mana bhramara gumphāre paśibā —Mana ghara dharibā ( See )

**ମନ ମଉଜୀ**—ଦେ. ବଣ ପୁଂ. ( ସ ମନଃ+ଫା. ମୌଜ )—୧ । ଯେ ସର୍ବଦା ପ୍ରଫୁଲ୍ଲମନା—1. Always merry. ୨ । ଯଥେଚ୍ଛାଚାରୀ—2. Despotic, arbitrary.
Mana maujī
ମନମୌଜୀ(ମୌଜିଆ) } ଅନ୍ୟରୂପ
ମନମଉଜିଆ }
একগুঁয়ে मनमौजी
(ମନ ମଉଜୀ, ମନ ମଉଜେଇ—ସ୍ତ୍ରୀ)

**ମନ ମକଚ ହୋଇଯିବା**—ଦେ. କ—୧ । ମନ ମରିଯିବା; ମନରେ କୌଣସି ବିଷୟ ପ୍ରତି ବିତୃଷ୍ଣା ଜନ୍ମିବା—1. Becoming disgusted or apathetic towards a matter. ୨ । ଉପାୟାନ୍ତର ବିହୀନ ହୋଇ ନିଶ୍ଚେଷ୍ଟ ହେବା—2. Desisting from exertion, having no other alternative.
Mana makachi hoijibā
মন মরা मन टूटना
ମନ ମକଚ ହେବା } ଅନ୍ୟରୂପ
ମନ ମକଚ ହୋଇ ରହିବା }

ମନ ମଜ୍ଜା(ଜ୍ଜେ)ଇବା—ଦେ. କ୍ରି (ସଂ. ମନସ୍+ମଜ୍ଜ୍. ଧାତୁ)—ଅନ୍ୟର
Mana majjā(jje)ibā ମନକୁ ମୁଗ୍ଧ କରିବା—To charm
মন মজান or fascinate another's mind.
**मन मनाना(मोहना)** [ମନ ମଜା(ଜେ)ଇବା—ଅନ୍ୟରୂପ]

ମନ ମଜ୍ଜି (ଜି)ବା—ଦେ.ବି.ସ (ମନସ୍+ମଜ୍ଜନ)—ମୁଗ୍ଧ ହେବା; ପ୍ରେମ-
Mana majji(ji)bā ମୁଗ୍ଧ ହେବା—Being fascinated or
মন মজা **मन मोहितहोना** charmed.
(ମନ ମଜ୍ଜିଯିବା—ଅନ୍ୟରୂପ)

ମନ ମତା (ମତୁଆ)—ଦେ. ବିଣ (ବଂ. ମଦୋନ୍ମତ୍ତ)—୧ । କାମାଚାରୀ;
Mana matā (matuā) ସ୍ୱୈର; ଯେ ଆପଣା ଇଚ୍ଛାନୁସାରେ
মন সরিআ କାମ କରେ—1. Despotic; arbitrary. ୨ ।
**मैमंत, मनमत** ହର୍ଷୋନ୍ମତ୍ତ—2. Mad with joy. ୩ । ମଦୋ-
(ମନମତୁଆ—ଅନ୍ୟରୂପ) ନ୍ମତ୍ତ—3. Maddened with
ମନମତୀ } ସ୍ତ୍ରୀ pride. ୪ । ଯେଉଁ ବ୍ୟକ୍ତି ଅନ୍ୟର ମନକୁ
ମନମତେଇ } କୌଣସି ବିଷୟ ପ୍ରତି ମତ୍ତ କରାଏ—
4. Causing another to become mad after a thing; maddening. ଦେ. ବି (ସଂ.ଉନ୍ମତ୍ତତା)—
କୌଣସି ବିଷୟ ପ୍ରତି ଅଳ୍ପକାଳସ୍ଥାୟୀ ଅତ୍ୟନ୍ତ ଲାଳସା
মনের ঝোঁক **मनकाचूक** ବା ଝୁଙ୍କ—

ମନ ମତା(ତେ)ଇବା—ଦେ. କ୍ରି (ସଂ. ମନଃ+ମତ୍ତ)—୧ । କୌଣସି
Mana matā(te)ibā ବ୍ୟକ୍ତିର ମନକୁ ଉନ୍ମତ୍ତ କରାଇବା—
মন মাতান 1. To cause a person to become mad
**मन मताना** after a thing. ୨ । ଟେହିବା; ଉତ୍ତେଜିତ
କରିବା—2. To excite a person.

ମନମଥ—ଗ୍ରା (ପଦ୍ୟ) ବି (ସଂ. ମନ୍ମଥ)—ମନ୍ମଥ; କନ୍ଦର୍ପ; କାମ—
Manamatha Cupid.
মনমথ **मनमथ**

ମନମଥ(ଥି)ନୀ—ଦେ. ବିଣ. ସ୍ତ୍ରୀ (ସଂ. ମନସ୍+ମଥିନୀ)—୧ । ମନରେ
Manamatha(thi)nī କ୍ଳେଶଦାୟିନୀ; ମନରେ ପୀଡ଼ାଦାତ୍ରୀ—
1 Causing distress or mental uneasiness. ୨ । ଚଉଶୃଙ୍ଖଲ୍ୟଦାୟିନୀ—2. Causing restlessness of mind. (ଉ—ମନମଥ ନାମ ଯାର, ମନମଥନୀ ତୁ ଅଟୁ ତାହାର । କବିସୂର୍ଯ୍ୟ. ଭୃଙ୍ଗ ଗୀତ । )

ମନମନ—ଦେ. ବି—ମନ୍ମନ (ଦେଖ)—Manmana (See).
Manamana (ଉ—କାମିନୀ ସୁରତ କାଳେ ମନ ମନ ଶବଦ ପରାୟେ ଘଟନ୍ତି । ଦୀନକୃଷ୍ଣ, ରସକଲ୍ଲୋଳ । )

ମନମନ କରିବା—ଦେ. କ୍ରି—ମନ ବଳାଇବା; ଇଚ୍ଛା କରିବା—
Manamana karibā To wish ; to feel inclined
মন্‌বসান towards; to be bent on a thing. (ଉ—
**मन करना** ନୀଳକଣ୍ଠ ଘନ ଘନ ନାଦେ କଲ୍ୟ ଛନ୍ନ ଛନ୍ନ ଧ୍ୱନି ଭଦେ କଲି ମନ ମନ । ଉଞ୍ଜ. ପ୍ରେମସୁଧାନିଧି )

ମନ ମନା(ନେ)ଇବା—ଦେ. କ୍ରି—(ସଂ. ମନ୍ ଧାତୁ)—୧ । ସନ୍ତୁଷ୍ଟ
Mana manā(ne)ibā କରିବା—1. To please. ୨ ।
মন লওয়া ରାଜି କରିବା—2. To cause to consent or
**मन मनाना** agree.

ମନ ମରଜି—ଦେ. ବି—(ସଂ. ମନଃ+ପା. ମର୍ଜୀ)—ସ୍ୱଇଚ୍ଛା—
Mana maraji One's free will; desire.
মনের ইছা **मन मरजि** ଦେ.କ୍ରି.ବିଣ—ଯଥେଚ୍ଛା—At will.

ମନ ମରିଯିବା—ଦେ. ବି—(ସଂ. ମନସ୍+ମୃ ଧାତୁ)—ପ୍ରଥମେ ଅନୁରାଗ
Mana marijibā ଜନ୍ମିଥିବା ବିଷୟ ପ୍ରତି ଉତ୍ସାହ କମିଯିବା—
মন মরা Abatement of one's enthusiasm for a
**मन टूटना** thing. [ଉ—ଚେଳିଆ ଯାରୁ, ମନ ମରି ଗଲା
(ମନ ମରିବା, ମନ ଖଣ୍ଡିଯିବା—ଅନ୍ୟରୂପ) ସେହି ପଦରୁ । ଡଗ ।]

ମନ ମାତୁ—ଦେ. ବି—(ସଂ. ମନସ୍+ମତ୍ତତା)—୧ । ମନର ଉନ୍ମାଦ;
Mana mātu ମାନସିକ କଣ୍ଡୁ; ମନର ଅତିରିକ୍ତ ପ୍ରଫୁଲ୍ଲତା—
মনের কণ্ডু 1. Mental itching; buoyancy of
**मनका दोष** spirits. ୨ । ଦୁଷ୍ଟାମୀ; ପରର ଅନିଷ୍ଟ କରି ବା
ମନ କାଣ୍ଡୁ (ଣ୍ଡୁ) } ପରର କଷ୍ଟ ଦେଖି ସୁଖ
(ମନକା(କି)ଣ୍ଡୁ) } —ଅନ୍ୟରୂପ ଅନୁଭବ କରିବା ପ୍ରବୃତ୍ତି—
2. Wickedness; wantonness. ୩ । ଚଉ-ଶୃଙ୍ଖଲ୍ୟ—3. Mental restlessness. ୪ । ଆତ୍ମ-ଗର୍ବ—4. Self-pride. ୫ । କୌଣସି ବସ୍ତୁ ବା ବିଷୟ ପ୍ରତି ଅତ୍ୟନ୍ତ ଲାଳସା; ହମ ହମ ହେବା—
5. Excessive hankering after something.

ମନ ମାନିବା—ଦେ. ବି—୧। ମନସ୍ତୁଷ୍ଟି ହେବା—1. Satisfaction;
Mana mānibā মন মানা being satisfied. ୨ ।
**मन भरना मन मानना** ପସନ୍ଦ ସଞ୍ଚ ହେବା; ମନୋମତ ହେବା—
2. Being according to one's choice or liking. ୩ । ଅନୁଭବଦ୍ୱାରା ଜ୍ଞାନ ଜନ୍ମିବା—3. Wisdom resulting from one's experience.

ମନ ମାଫିକ୍(କେ)—ଦେ.ବିଣ. (ସଂ.ମନଃ+ଆ.ମୁଆଫିକ୍)—ମନକୁ ଗୃହିଁ;
Mana māphik(ke) ମନୋମତ; ଅଭୀଷ୍ଟ ମୁତାବକ—
মনের মতন Suiting one's wishes or taste; as
**मन माफिक** one would like to have.
ମନକୁ ଲାଖି
ମନ ଲାଖି { ଅନ୍ୟରୂପ ଦେ. କ୍ରି. ବିଣ—ଆପଣାର ଇଚ୍ଛା
ମନକୁ ଗୃହିଁ ଅନୁସାରେ—According to
ମନ ମୁତାବକ one's wish or desire.

ମନ ମାରିବା—ଦେ. କ୍ରି (ସଂ. ମନସ୍+ମୃ ଧାତୁ ଣିଚ=ମାର ଧାତୁ )—
Mana māribā ୧ । ମନ ଦୁଃଖ କରିବା; ବିରସ ହେବା—
মন মরা হওয়া, মন ভারি করা 1. To feel sorry; to as-
**मन मारना** sume a sorrowful attitude; to be depressed. ୨ । ତୁଚ୍ଛ ଜ୍ଞାନ କରିବା—2. To feel abhorence for; to consider insignificant. ୩ । ବିରତ ହେବା—3. To desist from. (ଉ—ଆମୋଦରୁ ମନ ମାରି ଦେଲୁ । ରାଧାନାଥ. ଇତାଲୀୟ ଯୁବା ।)

ମନ ମିଳା(ମେଳ)—ଦେ. ବି ( ସଂ. ମନସ୍+ମିଳନ )—ଦୁଇ ଜଣଙ୍କ
Mana milā(meḷa) ମଧ୍ୟରେ ସଦ୍ଭାବ; ସୌହାର୍ଦ୍ଦ୍ୟ—

ମନେର মিল Good feelings or intimacy between
**मनका मेल** ମନ ମିଳିବା—ଅନ୍ୟରୂପ) two persons.

ମନ ମିଳାପୀ—ଦେ. ବଣ ( ସ. ମନସ୍+ସ. ମିଳନ )—ମନ ମିଳୁଥିବା; Mana milāpī ଯେଉଁ ବ୍ୟକ୍ତି ସଙ୍ଗେ ଘନିଷ୍ଠତା ଥାଏ; ଘନିଷ୍ଠ **मन मिलापी** Very intimate (friend).
[ଦୃ—ମାସେ ଦୁଇମାସରେ ଶ୍ୱଶୁରମାସ ଛମାସରେ ଚୋଙ୍ଗଠାରୁ ଗୁଡ଼ୀ, ଚୋଙ୍ଗଠାରୁ ଗୁଡ଼ାଯାଏ ସାଙ୍ଗ, ମନ ମିଳାପୀ ଲୋକ ଦେଖିଲେ × × × × ଘରଗୃହକୁ ସାବଧାନ କରାଇ ଦଅନ୍ତି । ଫକୀରମୋହନ. ଛମାଣ ଆଠଗୁଣ୍ଠ । ]

ମନମୁଖି—ଦେ. ବଣ. ପୁଂ—୧ । ମନୁଆ; ଆପଣାର ମନର ମରଜି Mana mukhi ଅନୁସାରେ ଚଳବା (ବ୍ୟକ୍ତି); ସ୍ୱେଚ୍ଛାଚାରୀ—(ମନମୁଖିଆ—ଅନ୍ୟରୂପ) 1. Self-willed; wayward; arbitrary.
ମନମୁଖୀ }
ମନମୁଖେଇ } ଅନ୍ୟରୂପ
୨ । ଆପଣାର ମନ ଅନୁସାରେ କରାଯିବା (କାର୍ଯ୍ୟ)—2. (act) Done
একগুঁয়ে according to one's free will. ଦେ. କ୍ରି. ବଣ-
মনের মত, মনের মতন **मनमाना** ଯଥେଚ୍ଛା;ଆପଣାର ଇଚ୍ଛାନୁସାରେ- According to one's free will; arbitrarily.
[ ଯଥା—ଅମୁକ ଲୋକ ଗୁରୁଜନଙ୍କ କଥା ନ ମାନି ମନମୁଖି ଚଳୁଛି । ]

ମନ ମୁତାବକ— —ଦେ. ବଣ. ଓ କ୍ରି. ବଣ—ମନ ମାଫିକ ( ଦେଖ )
Mana mutābaka Mana māphik ( See )

ମନ ମୁନ—ଦେ. ବ—ସମ୍ପୂର୍ଣ୍ଣ ମନୋଯୋଗ ଓ ଚେଷ୍ଟା—Whole
Mana muna attention; undivided attention and
মনপ্রাণ **मनचित** thought (ମନପ୍ରାଣ—ଅନ୍ୟରୂପ)

ମନ ମୁରୁଛା—ଦେ. ବଣ (ସ. ମନସ୍+ମୂର୍ଚ୍ଛ୍ ଧାତୁ )—ମନକୁ ମୁର୍ଚ୍ଛାଇବା
Mana muruchhā ବା ବଦଳାଇବାପାଇଁ କରାଯିବା (କାର୍ଯ୍ୟ)—(an act) Which is done to
মন বুঝান **मनबुझावे** satisfy one's high expectations which have not been fulfilled. ( ଯ—ଭୁଟ୍ଟାକୁ ଭୁଟ୍ଟା, ଭୁଟ୍ଟା କାଙ୍ଗି ପାଇଁ ମନମୁରୁଛା—ଢଗ )

ମନ ମୋଟ(ଟା)—ଦେ.ବ—୧ । ମନର ଗର୍ବ--1. Pride. ୨ । ବଡ଼ପଣ
Mana moṭa(ṭā) ଆନନ୍ଦ—2 Delight. ୩ । ବେଖାତିର—
বেখাতির, গর্ব **घमंड** 3. Want of regard or respect; unconcern. ଦେ. ବଣ.ପୁଂ—ମନମୋଟିଆ (ଦେଖ)
Manamoṭiā (See)

ମନ ମୋଟ ହେବା—ଦେ.ବ—ଗର୍ବସ୍ଫୀତ ହେବା—Being swollen
Mana moṭa hebā গর্বহওয়া **घमंडी होना** with pride.

ମନ ମୋଟିଆ—ଦେ. ବଣ. ପୁଂ—୧ । ଗର୍ବସ୍ଫୀତ—1. Swollen.
Mana moṭiā witht pride; arrogant ୨ । ବେଖାତିରଥ-
গর্ব্বিত **घमण्डी** 2.Regardless;unconcerned, ସ୍ୱେଚ୍ଛାଚାରୀ-
(ମନମୋଟୀ, ମନମୋଟେଇ—ସ୍ତ୍ରୀ) Arbitrary

ମନ ମୋହନ—ଦେ. ବଣ. ପୁଂ ( ସ. ମନୋମୋହନ )—
Mana mohana ୧ । ମନୋମୁଗ୍ଧକର; ଅତି ରମଣୀୟ—
মনমোহন 1. Charming; fascinating. ( ଯ—କେଉଁ
**मनमोहन** ଖଳ ଜନ କହୁଛୁ ତ ମନମୋହନା । ଛଳ ମୋହ ନାହିଁରେ—
(ମନମୋହନଅଁ[ ଅଁ ]—ଅନ୍ୟରୂପ) ବନସୁର୍ଯ୍ୟ. ସଙ୍ଗୀତ । ) ଦେ.
ମନମୋହନୀ(ମୋ) } ସ୍ତ୍ରୀ
ମନମୋହୁନୀ }
ବ. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.
[ମନମୋହୋନ(ନା,ମା,ନଅ)—ଗ୍ରାମ୍ୟରୂପ]

ମନ ମୋହନିଆ—ଦେ. ବଣ—ମନୋମୁଗ୍ଧକର—Delightful
Mana mohaniā fascinating; enchanting;
মনমোহন **मनमोहनिया** charming.

ମନ ମୋହିବା—ଦେ. କ୍ରି (ସ. ମନଃ+ମୁହ୍ ଧାତୁ)—ମନ ରଞ୍ଜିବା
Mana mohibā (ଦେଖ)—Mana rañjibā (See).
মন মোহিতকরা **मन मोहना**

ମନଯୋଗ—ଦେ. ବ (ସ. ମନୋଯୋଗ)—ମନୋଯୋଗ (ଦେଖ)—
Manajoga Manojoga [See].
মনযোগ **मनयोग**

ମନଯୋଗ କରିବା(ଦେବା)—ଦେ. କ୍ରି—ମନୋଯୋଗ କରିବା (ଦେଖ)
Manajoga karibā(debā) Manojoga karibā [See].
মনযোগ করা **मनयोग करना**

ମନ ଯୋଗା(ଗେ)ଇବା—ଦେ. କ୍ରି (ସ. ମନସ୍+ଯୁଜ୍ ଧାତୁ )—
Mana jogā[ge]ibā ୧ । କୌଣସି ବ୍ୟକ୍ତିର ମନକୁ ଜଗି କର୍ମ
মনযোগান କରିବା—1. To act according to a
**मनरखना** person's wish. ୨ । କୌଣସି ବ୍ୟକ୍ତିର ଇଚ୍ଛା ଅନୁସାରେ କାର୍ଯ୍ୟ କରି ତାଙ୍କୁ ସନ୍ତୁଷ୍ଟ କରିବା—2. To please another by acting according to his or her wishes.

ମନଯୋଗୀ—ଦେ. ବଣ (ସ. ମନୋଯୋଗୀ)-ମନୋଯୋଗୀ (ଦେଖ)—
Manajogī Manojogī (See).
মনযোগী **मनयोगी** (ଅମନଯୋଗୀ—ବିପରୀତ)

ମନର କଥା—ଦେ. ବ—ମନ କଥା (ଦେଖ)
Manara kathā Mana kathā (See).

ମନର କାଳି—ଦେ ବ—୧ । ମନୋଦୁଃଖ; ମନୋମାଳିନ୍ୟ—
Manara kāḷi 1 Mental worry. ୨ । ପାପର ଘାର; ମନ
মনের কালি ଦ୍ୱାର ଅପରାଧ ପାପ—2. Sinful thoughts.
**मनमैल** ୩ । ମନରେ ଲାଗିଥିବା ଆଘାତ—3. Hurt
(ମନର ଦାଗ[କାଳିମା, ମଇଳା]—ଅନ୍ୟରୂପ) inflicted on the mind. ୪ । ଅଜ୍ଞାନାନ୍ଧକାର; ମୂର୍ଖତା—4. Mental darkness; ignorance.

ମନ ରକ୍ଷା—ଦେ. ବ (ସ. ମନୋରକ୍ଷା)—ପରର ମନକୁ ଜଗିବା; ମନ
Mana rakshā ଯୋଗାଇବା; ଅନ୍ୟର ଇଚ୍ଛା ଅନୁସାରେ କର୍ମ
মনরক্ষা କରିବା ବା କଥା କହିବା—Speaking or acting
**मनरखा** to please another.

ମନର(ଂ)ଗତି—ଦେ. ବ (ସ. ମନୋଗତି)—୧ । ମାନସିକ ଅବସ୍ଥା;
Manara gati ମନର ଭାବ—1. Mental state. ୨ ।
মনের দৌড় କଳ୍ପନା—2. Imagination. ୩ । ମନର ଚଞ୍ଚଳ—

मनका दौड़ 3. Internal thoughts. ୪ । କଳ୍ପନାର ଗତି—
ମନର ଦଉଡ଼ } ଅନ୍ୟରୂପ 4. Flights of imagination.
ମନର ଦୌଡ଼ } ୫ । ମନର ରୁଚି—5. Tastes
and likings. ୬ । ମନର ପ୍ରକୃତିଗତ ବା ଅଭ୍ୟାସଗତ
ଧାରଣା—6. Mentality; bent of mind.

ମନ ରଗା(ଗେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିର ମନରେ କ୍ରୋଧ
Mana ragā(ge)ibā ଜନ୍ମାଇବା—To cause anger
मन चटान मन रंगाना in another's mind.

ମନ ରଗିବା—ଦେ. ବି (ସଂ. ମନ+ରଞ୍ଜ୍ ଧାତୁ)—ମନରେ ରାଗ
Mana ragibā ଜନ୍ମିବା—Feeling of anger in the
मन चटा मन रंगना mind.
[ ଦ୍ର—ରଗିବା ଓ ରାଗିବାର ପ୍ରୟୋଗ ପୃଥକ୍, ମୋ ମନ ରଗିଛି, ମୁଁ ରାଗିଛି । ]

ମନର ଗୁଣେ—ଦେ. କ୍ରି. ବିଣ—ଆପଣାର ମନ ଅନୁସାରେ—
Manara guṇe According to one's mental state
मनेर गुणे or thought. (ଉ—ମନର ଗୁଣେ ଫଳ ଫଳେ—
मनका गुणसे ଛଗ । ମନର ମୂଳେ ଏ ଜଗତ,ମନରୁ କେବା ସାମରଥ ।
(ମନର ମୂଳେ—ଅନ୍ୟରୂପ) ଜଗନ୍ନାଥ. ଭାଗବତ । )

ମନର ଜା(ଜ୍ୱା)ଳା - ଦେ. ବି [ସଂ. ମନୋଜ୍ୱାଳା]—୧ । ଅନ୍ତର୍ଦାହ—
Manara jā(jwā)ḷā 1. Burning of the heart.
मनेर ज्वाला ୨ । ଅନୁତାପ—2. Bitings of a guilty
मनकी ज्वाला conscience.

ମନର ଜୋର୍ -ଦେ. ବି (ସଂ.ମନସ୍+ଫା. ଜୋର୍)--୧ । ଦୃଢ ପ୍ରତିଜ୍ଞା—
Manara jor 1. Firm determination. ୨ । ଅଧ୍ୟବ-
मनेर जोर ସାୟ—2. Perseverance; tenacity of
मनका ज़ोर purpose. ୩ । ମନର ବଳ; ମାନସିକ ଶକ୍ତି—
3. Strength of mind

ମନ ରଞ୍ଜା(ଞ୍ଜେ)ଇବା—ଦେ. କ୍ରି [ ସଂ. ମନୋରଞ୍ଜନ ]—୧ । ମନୋ-
Mana rañjā(ñje)ibā ରଞ୍ଜନ କରିବା—1. To please
मन योगान a person. ୨ । ଅନ୍ୟର ମନରେ ରାଗ ଜନ୍ମାଇବା-
मन रंजितकरना 2. To cause anger in a person; to irritate a person.

ମନ ରଞ୍ଜିବା—ଦେ. କ୍ରି—ମୁଗ୍ଧ କରିବା—To enchant; to
Mana rañjibā charm; to please a person.
मन रञ्जनकरा ଦେ ବି—ମନ ମୁଗ୍ଧ ହେବା—
मन रंजितकरना Being charmed or fascinated.

ମନ ରଥ—ଗ୍ରା. ବି—ମନୋରଥ (ଦେଖ)—Manoratha (See)
Mana ratha (ଉ—ଗାଇ ଗୋପୀଙ୍କ ମନରଥ, ଏ ରୂପେ ଦେଲେ ଗୋପୀନାଥ । ଭୂପତି. ପ୍ରେମପଞ୍ଚାମୃତ ।)

ମନର ଦୃଢ଼ତା—ଦେ. ବି ( ସଂ ମନସ୍+ଦୃଢ଼ତା)—୧ । ଦୃଢ଼ ବିଶ୍ୱାସ;
Manara dṛuṛhatā ଅଟଳ ବିଶ୍ୱାସ—1. Firm belief.
मनेर दृढ़ता ୨ । ଅଟଳ ସଙ୍କଳ୍ପ—2. Firm determi-
मनकी दृढ़ता nation.

ମନର ଭାବ—ଦେ. ବି (ସଂ. ମନୋଗତ ଭାବ)—୧ । ମନୋଗତ ଭାବ—
Manara bhāba 1. Internal thoughts.
मनेर भाव ୨ । ମାନସିକ ଅବସ୍ଥା—2. Mental condition.
मनका भाव ୩ । ମନର ଧାରଣା—3. Mentality.

ମନର ମଳି—ଦେ. ବି ( ସଂ. ମନସ୍+ମଳ )—୧ । ମାନସିକ ମଳିନତା
Manara maḷi ବା ପାପ—1. Sinful thoughts.
मनेर मयला ୨ । କପଟ—2. Insincerity.
मनका मैला
(ମନର ମଇଳା(ଳ), ମନର କାଳି, ମନର ଶୁଦ୍ଧ—ଅନ୍ୟରୂପ)

ମନର ମାଇପ—ଦେ.ବି--୧ । ମନୋମୁଗ୍ଧକାରିଣୀ ଭାର୍ଯ୍ୟା--1. Charm-
Manara māipa ing wife. ୨ । ମନର କଳ୍ପନାନୁରୂପା
मनेर मत स्त्री ଭାର୍ଯ୍ୟା—2. A wife who tallies with
मन चाहती स्त्री one's model or ideal.
୩ । ଆପଣା ଦ୍ୱାରା ମନୋମନୀତା ସ୍ତ୍ରୀ—
(ମନର ଭାରିଯା—ଅନ୍ୟରୂପ) 3. A wife selected by a person himself; a wife of one's own choice.
(ଉ—ଅମମ ମାଇପ ମନ କରୁଛି, ମନର ମାଇପ ଶୋଚ ପାଉଛି, ଥୋଇ ମାଇପର ପାଳି, ବେଶ୍ୟା ମାଇପର ବନ୍ଧାପକା ଧନ ଗେଉସ୍ତ ବସିଛି ଭାଳି—ଛଗ ।)

ମନର ମେଳ—ଦେ. ବି ( ସଂ. ମନସ୍+ମିଳନ )—୧ । ସଦ୍ଭାବ—
Manara meḷa 1. Good feelings; good rela-
मनेर मील tions. ୨ । ସୌହାର୍ଦ୍ଦ୍ୟ—2. Intimacy.
मनका मेल ୩ । ମତର ଐକ୍ୟ—3. Consensus of opinion.

ମନର ସାଧ(ଦ)—ଦେ. ବି ( ସଂ. ମନସ୍+ସାଧ୍ ଧାତୁ )—ମନରେ
Manara sādha(da) ପୋଷିତ ବାସନା—One's fondly
मनेर साध मनका साध cherished desire.
(ମନ ସାଧ—ଅନ୍ୟରୂପ)

ମନର ସାଧ ମେଣ୍ଟିବା—ଦେ· ବି—ମନୋକାଂକ୍ଷା ପୂର୍ଣ୍ଣ ହେବା—
Manara sādha meṇṭibā The fulfilment of one's
मनेर साध मेटा मनका साध मेटना cherished desire.
(ମନର ସାଧ ପୂରିବା—ଅନ୍ୟରୂପ)
[ମନର ସାଧ ମେଣ୍ଟା(ଣ୍ଟେ)ଇବା, ମନର ସାଧ ପୂର(ରେ)ଇବା—ଅନ୍ୟରୂପ]

ମନ ରହିବା—ଦେ. ବି—୧ । ମନ କୌଣସି ବିଷୟ ପ୍ରତି ଆକୃଷ୍ଟ ହୋଇ
Mana rahibā ତହିଁରେ ଅନୁରକ୍ତ ହେବା—1. Being at-
मन बसा मन रहना tached to some thing.
୨ । ମନର ନିଶ୍ଚଳତା ବା ସ୍ଥିରତା—2 Mental calmness ୩ । କୌଣସି କର୍ମରୁ ବା ଇଚ୍ଛାରୁ ମନର ନିବୃତ୍ତି—3. Desistence from an act or desire.

ମନରୁ ପାଶୋରିବା—ଦେ. କ୍ରି (ସଂ. ମନସ୍+ବିସ୍ମରଣ)—୧ । ମନରୁ
Manaru pāsoribā ଭୁଲିଯିବା—1. To forget.
मन थेके मुछे देओया ୨ । ମନେ ନ ପକାଇବା—2. Not to

**मनसे भूलना** cherish the memory of something.
(ମନରୁ ପୋଛି ଦେବା,ମନରୁ ଦୂର କରିବା, ମନରୁ ଲି(ଳି)ଭା(ଭେ)ଇବା —ଅନ୍ୟରୂପ)

**ମନରୁ ଯିବା**—ଦେ. କ୍ରି ( ସ. ମନସ୍+ଯା ଧାତୁ )—
Manaru jibā ମନରୁ ବିସ୍ମୃତ ହେବା; ବିସ୍ମରଣ ହେବା—
মন থেকে যাওয়া **मनसे जाना** To be forgotten.
(ମନୁଁ ଯିବା, ମନରୁ ଲି(ଳି)ଭିବା, ମନରୁ ପାଶୋରିବା—ଅନ୍ୟରୂପ)

**ମନରେ କରିବା**—ଦେ. କ୍ରି ( ସ. ମନସ୍+କୃ ଧାତୁ )—୧ । ସ୍ମରଣ
Manare karibā କରିବା—1. To remember. ୨ ।
মনে করা ହେଜିବା—2. To recollect. ୩ । କଳ୍ପନା
**मनमे लाना** କରିବା—3. To imagine. ୪ । ବିଚାର କରିବା
(ମନେ କରିବା—ଅନ୍ୟରୂପ) —4. To think.

**ମନରେ ଥିବା**—ଦେ. କ୍ରି ( ସ. ମନସ୍+ସ୍ଥା ଧାତୁ )—୧ । ସ୍ମୃତିରୁ
Manare thibā ଅନ୍ତର ନ ହେବା —1. Not to be out
মনে থাকা **मनमे रहना** of one's mind. ୨ । ମନୋଯୋଗର
(ମନେ ଥିବା—ଅନ୍ୟରୂପ) ବିଷୟ ହେବା—2. To be the
(ମନରେ ନ ଥିବା—ବିପରୀତ) subject of one's attention.

**ମନରେ ଧରିବା**—ଦେ. କ୍ରି ( ସ. ମନସ୍+ଧୃ ଧାତୁ )—କୌଣସି
Manare dharibā ବିଷୟକୁ ଗାମ୍ଭୀର୍ଯ୍ୟ ସହିତ ଗ୍ରହଣ କରିବା—
মনে ধরা **मनमे धरना** To take a thing seriously.

**ମନରେ ଧୋକା ଦେବା**—ଦେ. କ୍ରି ( ସ. ମନସ୍+ଧୃଷ୍ ଧାତୁ )—
Manare dhokā debā ୧ । ମନରେ ଭୟ ବା ଆଶଙ୍କା ଜାତ
মনে ধোকা দেওয়া କରାଇବା—1.To cause fear or app-
**मनमे धोका देना** rehension. ୨ । ମନରେ ଚିନ୍ତା ଜନ୍ମାଇବା —2. To cause anxiety.
୩ । ମନରେ ସନ୍ଦେହ ଜନ୍ମାଇବା—3. To cause doubt or suspicion

**ମନରେ ପକା(କେ)ଇ ଦେବା**—ଦେ. କ୍ରି—ସ୍ମରଣ କରାଇ ଦେବା;
Manare pakā(ke)i debā ଚେତାଇ ଦେବା—To re-
মনে করান **मनमे याद दिलाना** mind.
[ମନେ ପକା(କେ)ଇ ଦେବା—ଅନ୍ୟରୂପ]

**ମନରେ ପକା(କେ)ଇବା**—ଦେ. କ୍ରି—୧ । ସ୍ମରଣ କରିବା—1 To
Manare pakā(ke)ibā remember. ୨ । ହେଜିବା;
মনে করা **मनमे रखना** ଚେଇବା —2. To recollect.
[ମନେ ପକା(କେ)ଇବା—ଅନ୍ୟରୂପ] ୩ । ମନରେ ପକାଇ ଦେବା ( ଦେଖ )—3. Manare pakāi debā ( See )

**ମନରେ ପଡ଼ିବା**—ଦେ.କ୍ରି—ସ୍ମରଣରେ ଆସିବା—To be remem-
Manare paṛibā bered; to occur to one's mind.
মনে পড়া **मनमे पडना** (ମନେ ପଡ଼ିବା—ଅନ୍ୟରୂପ)

**ମନରେ ଭାବିତ ହେବା**—ଦେ. କ୍ରି ( ସ. ମନସ୍+ଭାବିତ )—
Manare bhābita hebā ୧ । ଚିନ୍ତା କରିବା—1. To
মনে ভাবা, মন দুঃখ করা think. ୨ । ଚିନ୍ତିତ ହେବା; ଉଦ୍ବିଗ୍ନ
**मनमे चिन्तित होना** ହେବା—2. To be anxious for

ମନରେ ଭାବିବା } ଅନ୍ୟରୂପ ୩ । ଦୁଃଖିତ ହେବା—3. To be
ମନରେ ଭାଳିବା } sorry; to grieve.

**ମନରେ ମନରେ**—ଦେ. କ୍ରି. ବିଣ—୧ । କଳ୍ପନାରେ; ପ୍ରକୃତରେ ନୁହେଁ·
Manare manare 1. In one's imagination. ଯଥା—
মনেমনে ମନେ ମନେ ମିଠେଇ ଖାଇବା । ୨ । ଆପଣାର ମନକୁ;
[ ମନେ ମନେ—ଅନ୍ୟରୂପ ] ଅପ୍ରକାଶ୍ୟରେ; ଗୋପନରେ—
2. To one's self; internally. ୩ । ଆପଣାର କଳନା ଅନୁସାରେ—3. In one's own estimation.

**ମନରେ ରଖିବା**—ଦେ. କ୍ରି—ସ୍ମରଣ କରିବା—
Manare rakhibā To remember.
মনে রাখা **याद रखना** (ମନେ ରଖିବା—ଅନ୍ୟରୂପ)

**ମନରେ ଲାଖିବା**—ଦେ. କ୍ରି ( ସ. ମନଃ+ଲଗ୍ନ; ଲଗ୍ନ )—ସଦାବେଳେ
Manare lākhibā ସ୍ମରଣରେ ରହିବା—To be cherished
মনে বিংধে যাওয়া in memory; to be remembered
**मनमे बसना** always.

**ମନରେ ଲୋଭ ହେବା**—ଦେ. କ୍ରି—କୌଣସି ପଦାର୍ଥ ପାଇବା ପାଇଁ
Manare lobha hebā ମନରେ ପ୍ରବଳ ଆକାଂକ୍ଷା ଜନ୍ମିବା—
মনে লোভ হওয়া Hankering after a thing; covet-
**मनमे लोभ होना** ing for a thing.

**ମନ ଲଗା(ଗେ)ଇବା**—ଦେ. କ୍ରି—କୌଣସି ବିଷୟ ପ୍ରତି ମନୋଯୋଗ
Mana lagā(ge)iba ଦେବା—To give or devote one's
মন লাগান **मन देना** attention to a particular matter.

**ମନ ଲାଖି**—ଦେ. ବିଣ ( ସ. ମନଃ+ଲକ୍ଷ୍ୟ )—୧ । ଆପଣା ଇଚ୍ଛାର
Mana lākhi ଅନୁକୂଳ—1. Favourable to one's
মনের মতন desire or wish. ୨ । ମନୋମୁଗ୍ଧକର—
**मनभाई** 2. Charming. ୩ । କଳ୍ପିତ ଆଦର୍ଶର ତୁଲ୍ୟ —3. Tallying with one's ideal or fancy.

**ମନ ଲାଗିବା**—ଦେ. ବି ( ସ. ମନସ୍+ଲଗ୍ ଧାତୁ )—୧ । କୌଣସି
Mana lāgibā ବିଷୟ ପ୍ରତି ମନୋଯୋଗ—1. Close atten-
মনলাগা tion to a matter. ୨ । କୌଣସି ବିଷୟ ପ୍ରତି
**दिलजमना** ମନରେ ଆଗ୍ରହ ଜନ୍ମିବା—2. Being bent upon a thing.

**ମନ ଲୋଭା**—ଦେ. ବିଣ ( ସ.ମନସ୍+ଲୁବ୍ଧ )—ସୁନ୍ଦର; ମନୋହର—
Mana lobhā মনলোভা Charming.

**ମନ ଲୋଭା(ଭେ)ଇବା**—ଦେ. ବି ( ସ. ମନସ୍+ଲୁଭ୍ ଧାତୁ )—
Mana lobhā(bhe)ibā କୌଣସି ବିଷୟ ପ୍ରତି ମନ ଲୁବ୍ଧ
মন লুভে যাওয়া; মন হাই পাই করা ବା ଲାଳାୟିତ ହେବା—
**मन लुभाना, मन ललचाना** Hankering after a thing.
(ମନ ହାଇ ପାଇଁ ହେବା, ମନ ଲାଳେ(ଳେ)ଇବା—ଅନ୍ୟରୂପ)

**ମନ ଶୀଳ(ଳା)**—ଦେ. ବି ( ସ. ମନଃଶୀଳ )—ମନଃଶୀଳ ( ଦେଖ )
Mana śīḷa(ḷā) Manahśīḷa ( See )
মনছাল **मैनशील**

**ମନଶ୍ଚକ୍ଷୁଃ**—ସ. ବି (ରୂପକ କର୍ମଧାରୟ, ମନୋରୂପ ଚକ୍ଷୁ)—୧ । ଅନ୍ତ-
Manaśchakshuḥ ର୍ଦୃଷ୍ଟି; ଲୋକର ମନୋବୃତ୍ତିର କଳନ—

1. Introspection. ୨ । ଭାବନା; ଧ୍ୟାନ—2. Contemplation; meditation. ୩ । କଳ୍ପନା—3. Imagination; fancy; mind's eye.

ମନଶ୍ଚାଞ୍ଚଲ୍ୟ—ସ. ବ ( ୬ଷ୍ଠୀ ତତ୍; ମନସ୍+ଚାଞ୍ଚଲ୍ୟ )—୧ । ମନର ଉଦ୍ବେଗ; ଉତ୍କଣ୍ଠା—1. Mental restlessness; worry; anxiety. ୨ । ମନର ଅସ୍ଥିରତା—2. Fickleness of mind.
Manaśchāñchalya

ମନସବ୍ଦାର୍—ବୈଦେ. ବ ( ଅ )—ଭାରତର ମୋଗଲ ବାଦସାହା ମାନଙ୍କ ଅମଳରେ ଶହେ ସୈନ୍ୟର ନେତା ବା ସେନାପତିଙ୍କ ଉପାଧି—A title given to a commander of one hundred soldiers under the Moghal emperors of India.
Manasab-dār
मनसबदार
मनसबदार

ମନସବାଦାରୀ—ବୈଦେ. ବ ( ଅ. ମନସବ୍ଦାରୀ )—ମନସବ୍ଦାରର ପଦବୀ—The position of a Manasabdār.
Manasabādārī
মনসব্দরী मनसबदारी

ମନ ସରସ—ଦେ. ବ (ସ. ମନଃ+ସରସତା)—୧ । ମନର ଉତ୍ଫୁଲ୍ଲତା—1. The state of being in good spirits. ୨ । ରସିକ ପ୍ରକୃତି—2. Gallant nature. ୩ । ମନର ଉଦାରତା—3. Magnanimity of mind; liberality of mind.
Mana sarasa
মন সরস
मनसरस
(ମନବରସ—ବପସ୍ତିତ)
(ମନସରସିଆ—ବଣ)

ମନସା—ସ. ବ. ସ୍ତ୍ରୀ ( ମନସ୍+ଅ+ସ୍ତ୍ରୀ. ଆ )—କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରେ ଜାତ କନ୍ୟା—Name of a goddess born of the womb of Kadru and begotten by Kaśyapa.[ବି—ଏ ଅନନ୍ତ ବା ବାସୁକି ନାଗଙ୍କ ଭଉଣୀ, ଜରତ୍କାରୁ ଋଷିଙ୍କ ପତ୍ନୀ ଓ ଆସ୍ତୀକ ମୁନିଙ୍କ ମାତା । ଏ ସର୍ପମାନଙ୍କଠାରୁ ମନୁଷ୍ୟଙ୍କୁ ରକ୍ଷା କରିବା ଦେବୀରୂପେ ପୂଜିତା । ଏହାଙ୍କର ପ୍ରିୟ ବୃକ୍ଷ କଣ୍ଟା ସିଝୁ । ବଙ୍ଗ ଦେଶରେ ଏହାଙ୍କର ପୂଜା ବିଶେଷରୂପେ ପ୍ରଚଳିତ ।]ଦେ.ଅ ( ପ୍ରାଚୀନ ପଦ୍ୟ; ସ. ମନସା=ମନଦ୍ୱାରା )—୧ । ମନେ ମନେ; ମନରେ—1. In mind; mentally. ୨ । କଳ୍ପନାଦ୍ୱାରା—2. In imagnation. [ ଉ—ମନସା ଭ୍ରମର ଯେସନେ ଦୃଷ୍ଟି ପ୍ରସଙ୍ଗେ । ପ୍ରାଚୀ. ଉପ-ବାରଧି । ] ପ୍ରାଦେ ( ଉତ୍ତର ବାଲେଶ୍ୱର ) ବ—କଣ୍ଟା ସିଝୁଗଛ—Euphorbiā Niruria; Euphorbia Hirta.
Manasā

ମନସା ପଞ୍ଚମୀ—ସ. ବ—ଶ୍ରାବଣ କୃଷ୍ଣପଞ୍ଚମୀ—The 5th day of dark fortnight of Śrābaṇa.
Manasā pañchamī

ମନସା ପୂଜା—ସ. ବ ( ୬ଷ୍ଠୀ ତତ୍ )—୧ । ମନସା ଦେବୀଙ୍କର ପୂଜା; ଶ୍ରାବଣ କୃଷ୍ଣପଞ୍ଚମୀରେ ଅନୁଷ୍ଠିତ ମନସାଙ୍କ ଆରାଧନା—1. The worship of Goddess Manasā. ୨ । ଶ୍ରାବଣ କୃଷ୍ଣପଞ୍ଚମୀ—2. The 5th day of the dark fortnight of Śrābaṇa.
Manasā pūjā

ମନସା ସିଝୁ(ଜୁ)—ଦେ. ବ—କଣ୍ଟାସିଝୁ; ପତ୍ରଯୁକ୍ତ ସିଝୁ—Euphorbia Niruria.
Manasā sijhu(ju) मनसा सीज थुहर

ମନସିଜ—ସ. ବ. ପୁଂ ( ମନସି=ମନରେ+ଜନ୍ ଧାତୁ+କର୍ତ୍ତୃ. ଅ; ଅଲୁକ୍ ସମାସ )—କନ୍ଦର୍ପ; କାମ; ମଦନ—Cupid.
Manasija
(ମନସିଶୟ—ଅନ୍ୟରୂପ)

ମନ ସୋ(ସୁ)ରେ(ରା)ଇବା—ଦେ. ବ ( ସ. ମନଃ+ସ୍ପୃହା )—୧ । ମନରେ ସ୍ପୃହା ଜାତ ହେବା; କୌଣସି କାର୍ଯ୍ୟ ପାଇଁ ମନରେ ଉତ୍ସାହ ଜାତ ହେବା—1. Having a hankering after or desire for a thing. ୨ । ମନ ଆନନ୍ଦିତ ହେବା—2. Being delighted.
Mana so(su)re(rā)ibā
মন যাওয়া
मनका साध होना

ମନ ସୋ(ସୁ)ରେ(ରୁ)ହା—ଦେ. ବ ( ସ. ମନଃ ଓ ସ୍ପୃହା )—୧ । ମନର ସ୍ପୃହା ବା ଉତ୍ସାହ—1. Keen desire. ୨ । ମନର ପ୍ରସନ୍ନତା; ପ୍ରଫୁଲ୍ଲତା—2. Delight; joy.
Mana so(su)re(ru)hā
মনের সাধ
मनकासध

ମନସ୍କାମ—ସ ( ୬ଷ୍ଠୀ ତତ୍; ମନଃ+କାମ )—ମନୋରଥ; ମନୋବାଞ୍ଛା; ମନର ଅଭିଳାଷ—A desire or longing of the heart; heart's wish.
Manaskāma
(ମନସ୍କାମନା—ଅନ୍ୟରୂପ)

ମନସ୍କାମ ସିଦ୍ଧି—ସ. ବ ( ୬ଷ୍ଠୀ ତତ୍; ମନସ୍କାମ+ସିଦ୍ଧି )—ମନୋରଥର ସାଫଲ୍ୟ—Fulfilment or realisation of one's heart's desires.
Manaskāma siddhi
(ମନସ୍କାମନା ସିଦ୍ଧି—ଅନ୍ୟରୂପ)

ମନସ୍କାର—ସ. ବ ( ମନସ୍+କୃ ଧାତୁ+ଅ )—୧ । ମନର ସୁଖ; ସନ୍ତୋଷ—1. Mental happiness, satisfaction. ୨ । ଅନୁଭବ—2. Experience. ୩ । ଅଭିପ୍ରାୟ; ଇଚ୍ଛା—3. Intention; wish.
Manaskāra

ମନସ୍ତାପ—ସ. ବ [ ୬ଷ୍ଠୀ ତତ୍; ମନଃ+ତାପ ]—୧ । ମନୋଦୁଃଖ—1. Sorrow. ୨ । ଅନୁତାପ—2. Regret; remorse.
Manastāpa

ମନସ୍ତୁଷ୍ଟି—ସ. ବ (୬ଷ୍ଠୀ ତତ୍)—ମନର ସନ୍ତୋଷ—pleasure; satisfaction.
Manastushṭi

ମନସ୍ତୁଷ୍ଟିକର—ସଂ. ବଣ (ମନସ୍+ତୁଷ୍ଟି+କୃ. ଧାତୁ+କର୍ତ୍ତୃ. ଅ]—ଚିତ୍ତର ସନ୍ତୋଷଜନକ-Satisfactory; pleasing.
Manastushṭikara

ମନସ୍ତୃପ୍ତି—ସଂ. ବ [୬ଷ୍ଠୀ ତତ୍] ମନର ସନ୍ତୋଷ—Contentment or satisfaction.
Manastṛupti

ମନସ୍ତୃପ୍ତିକର—ସଂ. ବଣ (ମନଃ+ତୃପ୍ତି+କୃ. ଧାତୁ+କର୍ତ୍ତୃ. ଅ)—ଚିତ୍ତର ସନ୍ତୋଷବିଧାୟକ—Pleasing to the mind; satisfactory.
Manastṛuptikara

ମନସ୍ଥ—ସ. ବଣ• (ସ. ମନଃ+ସ୍ଥା ଧାତୁ+କର୍ତ୍ତୃ. ଅ)—୧ । ହୃଦୟସ୍ଥ; ଆନ୍ତରିକ—1. Of the heart; hearty. ୨ । କଳ୍ପିତ; ଅଭିପ୍ରେତ—2. Intended; desired. ଗ୍ରା. ବଣ—କୃତସଙ୍କଳ୍ପ—Determined; resolved upon.
Manastha
मनस्थ मनस्थ
(ମନଃସ୍ଥ—ଅନ୍ୟରୂପ)

**ମନସ୍ଥ କରିବା**—ଦେ. କ୍ରି—ସଙ୍କଳ୍ପ କରିବା—To resolve or
Manastha kariba মনস্থ করা be determined.
**मनस्थ करना**

**ମନ ସ୍ୱଚ୍ଛ**—ଦେ. ବି—(ସଂ, ମନସ୍ ଓ ସ୍ୱଚ୍ଛ)—୧ । ମନର ସ୍ୱଚ୍ଛତା ବା
Mana swachchha ନିର୍ମଳତା; ମନର ଅନାବିଳତା—
**मनकी स्वच्छता** 1. Frankness.
(ମନର ସ୍ୱଚ୍ଛ—ଅନ୍ୟରୂପ) ୨ । ସ୍ୱେଚ୍ଛା—2. One's free or
( ମନ କଲ୍ପନା[ଣା]—ଉପସ୍ଥିତ) unfettered wish. [ଦୃ—
ଅନ୍ୟଦ୍ୱାରା ବାଧ୍ୟ ନ ହୋଇ ଯାହା କରିବାକୁ ବା
ଦେବାକୁ ହୁଏ, ତାହା ମନସ୍ୱଚ୍ଛରେ କରାଗଲା ବା
ଦିଆଗଲା ବୋଲି ବୋଲାଯାଏ । ଯଥା—ମତେ
ଜଣେ ଟ ୨୫ଙ୍କା ସାହାଯ୍ୟ ମାଗିବାକୁ ଆସିଲା, ମୁଁ
ତାକୁ 'ମନ ସ୍ୱଚ୍ଛ'ରେ ଟ ୧୦ଙ୍କା ଦେଲି; କିନ୍ତୁ ମୋର
ବନ୍ଧୁମାନେ ମତେ ବାଧ୍ୟ କରିବାରୁ ମୁଁ ଆଉ ଟ ୫ଙ୍କା
ବାଧ୍ୟ ହୋଇ ଦେଲି । ଏ ଟ ୫ଙ୍କା ଦେଇ ମୋ 'ମନ
କଲ୍ପଣା' ହେଲା ବୋଲି କହାଯାଏ ।]

**ମନ ସ୍ୱଚ୍ଛ ହେବା**—ଦେ.ବି—(ସଂ.ମନଃ+ସ୍ୱଚ୍ଛ)—୧ । ଅନ୍ୟଦ୍ୱାରା ବାଧ୍ୟ
Mana swachchha heba ନ ହୋଇ ସ୍ୱେଚ୍ଛାକ୍ରମେ କୌଣସି
মন স্বছ হওয়া କାର୍ଯ୍ୟ କରିବା ପାଇଁ ବା କିଛି ବସ୍ତୁ ଦେବା ପାଇଁ
**मन स्वच्छ होना** ମନ ହେବା—1. Being prompted by
one's free will to do or give away something. ୨ । ମନ ଖୋଲି ଯିବା; ମନର ସରଳତା—
2. Frankness.

**ମନସ୍ୱିତା**—ସଂ. ବି—(ମନସ୍ୱିନ୍+ଭାବ. ତା)—୧ । ପ୍ରଶସ୍ତ ମନ—
Manaswita 1. High mind. ୨ । ଚିତ୍ତର ଉଦାରତା—
2. Magnanimity or liberality of mind.
୩ । ଆଶା (ପ୍ରକୃତିବାଦ)—3 Expectation;
hope.

**ମନସ୍ୱୀ**—ସଂ. ବିଣ. ପୁଂ—(ମନସ୍+ପ୍ରଶସ୍ତାର୍ଥେ ବିନ୍; ୧ମା. ୧ବ.)—
Manaswi ୧ । ଯାହାର ମନ ପ୍ରଶସ୍ତ ବା ଉଦାର; ଉଦାରଚେତାଃ;
(ମନସ୍ୱିନୀ—ସ୍ତ୍ରୀ) ମହାମନାଃ; ଉଚ୍ଚମନାଃ—1. High-minded;
magnanimous, liberal-minded. ୨ । ସ୍ଥିର-
ମନାଃ—2. Calm-minded.

**ମନ ହରିବା**—ଦେ. କ୍ରି—(ସଂ. ମନଃ+ହୃ ଧାତୁ)—ମୋହିତ କରିବା—
Mana hariba মন হরণ করা **मन हरना** To charm.
(ମନ ହରଣ—ବି) [ ଉ—ତତ୍କ୍ଷଣେ ପ୍ରଭୁ ନରହରି, ମାୟାରେ
ତାର ମନ ହରି । ଜଗନ୍ନାଥ. ଭାଗବତ ।]

**ମନ ହାଇଁ ପାଇଁ ହେବା**—ଦେ. ବି—କୌଣସି ବିଷୟ ପ୍ରତି ମନରେ
Mana hain pain heba ଲାଳସା ଜନ୍ମିବା—Hankering
মন হাঁই পাঁই হওয়া **मन ललाचाना** after a thing.

**ମନହାରି**—ଦେ. ବି—ମନିଆରି (ଦେଖ)
Manahari Maniari (See)

**ମନ ହିଆଳି**—ଦେ. ବିଣ. ଓ କ୍ରି. ବିଣ—(ପ୍ରାଚୀନ)—୧ । ମନମୁଖୀ—
Mana hiali একগুঁয়ে **मनमौजी** 1. Self-willed.
মনের মত ୨ । ମନ ମୁତାବକ—2. According to the
**मन माफिक** dictates of one's mind. [ଉ—ତରଣ
ପଶାଇ ଚଳଇ କାଲି, କରଇ ସଯାଗ ମନ ହିଆଳି ।
ପ୍ରାଚୀ. ପ୍ରତାପ—ଶଶିସେଣା ।]

**ମନ ହେବା**—ଦେ. ବି—ମନରେ ଇଚ୍ଛା ଜନ୍ମିବା—The arising
Mana heba মন হওয়া of a desire in the mind.
**मन होना**

**ମନା**—ଦେ. ବି—(ସଂ. ମା=ନିଷେଧ; ନ=ନାହିଁ)—୧ । ଅସ୍ୱୀକାର—
Mana মানা **मना** 1. Denial. ୨ । ନିଷେଧ—2. Prohibition. [ ଉ—ଶାସ୍ତ୍ରେ ଏକାଳେ ବୁଲିବାକୁ
ଶ୍ୱେତ ଯୋନକୁ ଅଛଇ ମନା । ରାଧାନାଥ ଖାଙ୍ଗ ।] ଦେ.
ବିଣ—(ସଂସ୍କୃତରେ ବହୁବ୍ରୀହି ସମାସରେ ମନସ୍ ଶବ୍ଦ ଅନ୍ୟ
ଶବ୍ଦ ସଙ୍ଗେ ଯୁକ୍ତ ହୋଇ ୧ମା. ଏକ ବଚନରେ 'ମନାଃ'
ହୁଏ । ଯଥା ଉଚ୍ଚ ମନସ୍; ୧ମା. ୧ବ. ଉଚ୍ଚମନାଃ)—
୧ । ଯାହାର ମନ ଅଛି (ଯଥା—ଉଦାରମନା)—
1. Having a mind. ୨ । ନିଷିଦ୍ଧ—2 Denied;
prohibited [ ଦୃ—ତୋତେ ହୋଇଛି କକୁଞ୍ଜ-
ନିଳୟ ଦୁଆର ମନା । କବିସୂର୍ଯ୍ୟ. ସଙ୍ଗୀତ ।] ଦେ. ଅ—
ଧନ ଆର ପୁଂ. ଓ ସ୍ତ୍ରୀଙ୍କ ପ୍ରତି ପ୍ରଯୋଜ୍ୟ)—ପ୍ରିୟ ଓ ପ୍ରିୟାଙ୍କୁ ସମ୍ବୋଧନ
ମନ, ମନଆ } —ଅନ୍ୟରୂପ (ଏଥିର ଅର୍ଥ—ସେ ମନକୁ ହରି
ମନୁ, ମନୁଆ } ନେଇ ଅଛି)—A term of
(ମନେଇ—ସ୍ତ୍ରୀ) endearment used in addressing
one's beloved. ଦେ. ବି (ପୁଂ ଓ ସ୍ତ୍ରୀ)—୧ ।
ଲୋକଙ୍କୁ ଦିଆ ଯିବା ନାମ—1. A name given to
males and females. ୨ । ମନମୋହନ,ମନମୋହିନୀ
ଆଦି ନାମ ଧାରୀ ବ୍ୟକ୍ତିଙ୍କୁ ଡାକିବା ନାମ—2. A name
for calling males and females whos-names begin with Mana.

**ମନା(ନେ)ଇବା**—ଦେ. କ୍ରି—(ସଂ. ମନନ; ମାନିବା କ୍ରିୟାର ଣିଜନ୍ତ ରୂପ)
Mana(ne)(in)ba ୧ । ରାଜି କରିବା—1. To make a
মনকে রাজি করা person consent or agree to a thing.
**मनाना** (ଉ—କିବ ପ୍ରମଦା ମଦାଳସୀ ଯୋଷାକୁ ଜଳକେଳିରେ
ମନାଇବ । ଭଞ୍ଜ. ପ୍ରେମସୁଧାନିଧି ।) ୨ । ଅନ୍ୟକୁ
ସ୍ୱୀକୃତ କରିବା—2. To cause one to admit.
୩ । ମନ ରଞ୍ଜିବା, ମନକୁ ମୁଗ୍ଧ କରିବା; ମଜାଇବା—
3. To please a person. ୪ । (ଦେବତା ଆଦିଙ୍କୁ
ପ୍ରସନ୍ନ କରିବା—4. To propitiate. (ଉ—
ବରଷ ଶହେ ତପରେ, ବର ସଶଙ୍କେ ଶତ ପୂର୍ବେ ପାଇଛି
ଶିବଙ୍କୁ ମନାଇବାରେ । କବିସୂର୍ଯ୍ୟ. ତୃଷ୍ଣା ଗୀତ ।)
୫ । (ସଂ. ମା ଧାତୁରୁ ମାନ) ମାପିବା—5. To measure
(ଉ—ଘର ମନାଇଁ ନୂଆ କରି କାଲି । ନେମ, ଯାଗକୁ
ଡକାଇ । ଭଞ୍ଜ. ଲାବଣ୍ୟବତୀ । ୬। କୌଣସି ବସ୍ତୁ (ଯଥା
କାଠର ଖିଲ )କୁ ତଣ୍ଟା ତଣ୍ଟି କରି ଅନ୍ୟ ବସ୍ତୁରେ

( କୌଣସି ଛିଦ୍ରରେ ) ଖାପ୍ ଖାଇଲା ଭଳି ବସାଇବା—6. To cause a thing to fit into another by modifying it. ୭ । ବଶୀଭୂତ କରିବା (ଯଥା—ଘୋଷ ମନାଇବା)—7. To make one subservient: to bring under control. ୮ । କଥା ମାନିବା ବା ପାଳିବା ଭଳି ଅବସ୍ଥାକୁ ଆଣିବା—8. To make a person act according to one's order. ( ଯଥା—ଅବଧାନେ ଛାତ୍ରକୁ ବହୁତ ବେତ ମାଡ଼ ଦେଲେ, ତଥାପି ଛାତ୍ରକୁ ତାଙ୍କ କଥା ମନାଇ ପାରିଲେ ନାହିଁ । ) ୯ । ମାନିବା; ଶୋଭା ପାଇବା; ଶୋଭାଯୁକ୍ତ ଦେଖାଯିବା—9. To look grand or beautiful. ( ଯଥା—ରଙ୍ଗମଣ୍ଡଳରେ ରଜାପୁଅଙ୍କୁ ଖୁବ ମନାଇ ଥିଲା ।) ୧୦ । ରୁଚିସମ୍ମତ ହେବା; ରୁଚିକର ହେବା—10. To seem very tasteful. ( ଯଥା—ଆମ ଗମିସ୍ତା ସାଆନ୍ତଙ୍କୁ ଠିଆ ମୁଛ ହଯଷ୍ଟା ଖୁବ ମନାଇଛି । )

ମନାଏବା—ପ୍ରାଦେ. ( ଉତ୍ତିଭାଷା ) କ୍ରି—ମନାଇବା ( ଦେଖ )
Manāebā Manāibā ( See )

ମନାକ୍—ସଂ. ଅ ( ମନ୍ ଧାତୁ=ଜାଣିବା + କର୍ମ. ଅକ୍ )—୧ । ଈଷତ୍; Manāk ଅଳ୍ପ—1. Little; slightly. ୨ । ମନ୍ଦ ମନ୍ଦ; ଅସ୍ତେ ଅସ୍ତେ—2. Slowly. ୩ । କେତେକ ଅଂଶରେ—3. Somewhat.

ମନାକ(କେ)—ଦେ. ଅ ( ସଂ. ମନାକ୍ )—ଥରେ—Once. [ ଉ— Manāk(ke) ବହୁ ବହୁଛି ଯାହା ମନା ମନାକେ କେ କରେ ତାହା—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ମନା କରିବା—ଦେ. କ୍ରି (ଆ. ମନା=ନିଷିଦ୍ଧ)—୧ । ବାରଣ କରିବା; Manā karibā ନିଷେଧ କରିବା—1. To prohibit.
**माना करा मना करना** [ ଉ—ରଘୁନାଥ ନନ୍ଦନ ଅନାଉଣଙ୍କ ମନା କରୁ ଯେ ଥାଉଁ ହଟ ଗୃହିଲୁ ରେ-'କବିସୂର୍ଯ୍ୟ. କଶୋଧାଚମ୍ପୂ ଘ ଗୀତ । ] ୨ । ଅସ୍ୱୀକାର କରିବା—2. To deny. ୩ । ବାଧା ଦେବା—3. To obstruct. [ ଉ—ମନା ନ କର ହୃତ, ଅନାଦର ରହୁତ, ଅନାଉଣି ନିରତ ଚୁନା କରୁ ଦୁରତ—କବିସୂର୍ଯ୍ୟ. କଶୋଧା ଚମ୍ପୂ-ମ ଗୀତ । ]

ମନାକା—ସଂ. ବି. ସ୍ତ୍ରୀ—ହାତୁଣୀ; ମାଈ ହାତୀ ( ହ୍ରି. ଶ )—
Manākā A female elephant.

ମନାକ୍କା—ବୈଦେ. ବି ( ଫା. ମୁନକ୍କା )—ମନକ୍କା; ଶୁଖାଯାଇ ରଖା Manākkā ଯାଇଥିବା ବଡ଼ ପକ୍ୱ ଅଙ୍ଗୁର କୋଳି—Large
মুনক্কা, মনক্কা **मुनक्का** dried raisin; dried grapes.

ମନାଙ୍ଗ—ଗ୍ରା. ବି—ମଲଙ୍ଗ ( ଦେଖ )
Manānga Malānga ( See )

ମନାତ୍ମଜ—ଦେ. ବି ( ସଂ. ମନଃ+ଆତ୍ମଜ )—ମନସିଜ; କାମ—
Manātmaja Cupid. [ ଉ—ମନାତ୍ମଜେ ଜୟକେତୁ ବନ୍ଧାଇବ କେଉଁ ପାପୁଁ ହେଲ ତବ ମନା—ଭଞ୍ଜ. ପ୍ରେମସୁଧାନିଧି । ]

ମନାଦି—ବୈଦେ. ବି ( ଆ. ମୁନାଦୀ ) ( କଟକୀ )—ଢଙ୍କା ପିଟିବା Manādi ଦ୍ୱାରା ହଅଯିବା ଘୋଷଣା; ମୁନାଦି ( ଦେଖ )—
ঢেটরা, ঢেঁড়া **म(मु)नादी** Proclamation by beat of drums.

ମନାଦି ଦାର୍—ବୈଦେ. ବି (ଆ. ମୁନାଦୀ + ଫା. ପ୍ରତ୍ୟୟ ଦାର୍; କଟକୀ) Manādidār —ଯେ ରାଜାଜ୍ଞାଦି ଘୋଷଣା କରିବା ପାଇଁ ଢଙ୍କା
টেঁটরাওয়ালা ପିଟେ—A drummer who beats the
**मुनादिदार** drum on the occasion of a proclamation.

ମନାଦି ହଅଯିବା—ଦେ. ବି ( ଆ. ମୁନାଦୀ )—ଘୋଷଣାବେଳେ ଢଙ୍କା Manādi diājibā ବଜାଯିବା—The beating of drums
ঢঁটরা পিটা on the occasion of a proclamation.
**मनादि फि(फे)रना** ( ମନାଦି ପିଟାଯି[ହେ]ବା, ମନାଦି ଫେରାଯି[ହେ]ବା, ମନାଦି ଫେରିବା—ଅନ୍ୟରୂପ )

ମନାଦି ଦେବା—ଦେ. କ୍ରି ( ଆ. ମୁନାଦୀ ) ( କଟକୀ )—୧ । ଢଙ୍କା Manādi debā ପିଟିବାଦ୍ୱାରା ଘୋଷଣା କରିବା; ଧେଣ୍ଡୁରା
ঢেঁটরা দেওয়া ଦେବା—1. To proclaim by beat of
**मनादि पीटना** drum. ୨ । ଘୋଷଣା ଦେବା ଉପଲକ୍ଷରେ ( ମନାଦିଦାର ) ଢଙ୍କା ବଜାଇବା—2. To beat the drum ( said of the drumer ) on the occasion of a proclamation.
ମନାଦି ପିଟିବା
ମନାଦି ଫେରା(ରେ)ଇବା } ପ୍ରଯୋଜକରୂପ
ମନାଦି ହଅଇବା

ମନା(ନୋ)ପଲି—ବୈଦେ. ବି (ଇଂ. ମନୋପଲି)—ଏକଚାଟିଆ ଅଧିକାର Manā(no)pali ବିକ୍ରୟାର୍ଥ କୌଣସି ବ୍ୟକ୍ତିକୁ ପ୍ରଦତ୍ତ ଏକାଧି-
মনোপলী **मनोपली** କାର—Monopoly.

ମନାବୀ(ୟୀ)—ସଂ. ବି. ସ୍ତ୍ରୀ ( ମନୁ+ ସ୍ତ୍ରୀ. ଈ )—ମନୁଙ୍କ ସ୍ତ୍ରୀ—Wife Manābī(yī) (ମନାବୀ, ମନାୟୀ—ଅନ୍ୟରୂପ) of Manu.

ମନାସ—ଦେ. ବି ( ସଂ. ମାନସ )—୧ । ବାଞ୍ଛା—1. Wish; desire. Manāsa ୨ । ଦେବତାଙ୍କ ନିକଟ ମାନସିକ କରିବା—2. Promise
মানৎ or vow made or taken before a deity.
**मन्नत, मानता, मनौती** [ ଉ—ବଳି ପୂଜା-ଶିରୋଦେଶ ପୂରିଲା ଏରୂପେ, ଅବଳା ବଳାପେ, ବଳ ବ୍ରତର ମନାସେ—ରାଧାନାଥ. ମହାଯାତ୍ରା । ]

ମନାସ ଚମ୍ପା—ପ୍ରାଦେ. ( ଗଞ୍ଜାମ; ଜୟପୁର; ବିଶାଖାପାଟଣା )—ଚନ୍ଦ Manāsa champā ଚମ୍ପା—Artabotrys Odoratissimus ( flowering crepper ). [ ଦ୍ର—ଏହା ଲତା, ଗଛରେ ମାଡ଼େ । ଫୁଲଗୁଡ଼ିକର ବର୍ଣ୍ଣ ପଚ୍ଚ ପର, ଗଛରେ ଫୁଲ ଫୁଟିଥିଲେ ଗୃହଅଡ଼ ମହକୁଥାଏ । ]

ମନାସ(ସି, ସେ)ଫ୍(ବ୍)—ବୈଦେ. ବିଣ ( ଆ. ମୁନାସିବ୍; କଟକୀ )—
Manāsa(si, se)ph(b) ୧ । ପସନ୍ଦ ସହିତ; ମନୋମତ—
মুনাসিব **मुनासिब** 1. According to one's choice or pleasure. ୨ । ଉପଯୁକ୍ତ; ସଙ୍ଗତ; ଉଚିତ—2 proper; fit. ୩ । ଯଥାଯୋଗ୍ୟ—3. Suitable.

[ ଯଥା—ମକଦମାର ଅବସ୍ଥା ଦେଖି ମନାସଚ୍ ହୁକୁମ ହଅଯିବ । ]

**ମନାସା**—ଦେ· ବି—ମନରେ ସ୍ଥିର କରିବା; ମନାସିବା—The act of
Manāsā settling a thing mentally ( without
मनेकरा expressing it ); mental statement.
**मन्नत करना, मनौती** [ ଦ୍ର—ଫୁଲ ମନାସାରେ ପ୍ରଶ୍ନକର୍ତ୍ତା ମନେ ମନେ ଗୋଟିଏ ଫୁଲର ନାମ ସ୍ଥିର କରେ ଓ ସମାଧାନକାରୀ ବ୍ୟକ୍ତି ଗଣନା କରି ଉକ୍ତ ଫୁଲର ନାମଟି କହି ଦିଏ ।]

**ମନାସିବା**—ଦେ. କ୍ରି ( ସ. ମନସ୍; ମାନସ )—୧ । ଭାବିବା; ଚିନ୍ତା
Manāsibā କରିବା—1. To think. [ ଉ—ଅନାରତ
भावना **सोचना** ମୋ ଚିତ୍ତ, ମନାସୁଛି ଅହ୍ନିତ, ଜନାର୍ଦ୍ଦନ ପଦ୍ମିତ, ଜନା-ବହିତ ଦେ—କବିସୂର୍ଯ୍ୟ. ବଶୋଷ୍ଟଚର୍ମ୍ । ] ୨ । ବାଞ୍ଛା
चाओया କରିବା—2. To wish for; to desire. [ ଉ—
**चाहना** ମନାସନ୍ତି ସିନା ସୁନ୍ଦରୀ ଶିଞ୍ଜିନୀ-କର୍ଷଣ-କର୍କଶ ପାଣି—
स्थिरकरा ରାଧାନାଥ, ପାର୍ବତୀ । ] ୩ । ମନରେ ସ୍ଥିର କରିବା—
**स्थिरकरना** 3. To settle a thing in one's mind. [ଉ—
ମନାସନ୍ତି ମହାରୂଢ଼ ଯାହା ମନେ—ରାଧାନାଥ. ନନ୍ଦିକେଶରୀ । ]
मानतकरा ୪ । ମନୋବାଞ୍ଛା ସିଦ୍ଧ ହେଲେ କୌଣସି ଦେବତାଙ୍କୁ
**मन्नत, मानना** ସଙ୍କଳ୍ପିତ ନୈବେଦ୍ୟାଦି ଦେବା ପାଇଁ ଅଙ୍ଗୀକାର କରିବା; ମାନସିକ କରିବା—4. To promise offerings to a Deity in the event of one's wish being fulfilled. ( ଉ—କେତେ ଦେବତାଙ୍କୁ କେତେ ଭୋଗ ମନାସିଲି—ଭକ୍ତ. ଲାବଣ୍ୟବତୀ । )

**ମନି**—ଦେ. ଅ—ମନା ( ଦେଖ )
Mani (ମନିଅ—ଅନ୍ୟରୂପ) Manā ( See )

**ମନି ଅ(ଆ)ଡ଼(ର୍ଡ଼)ର**—ବୈଦେ. ବି ( ଇଂ. ମନିଅର୍ଡ଼ର) —ପୋଷ୍ଟଅଫିସ
Mani a(ā)rḍa(rḍa)r ଜରିଆରେ ଏକସ୍ଥାନରୁ ଅନ୍ୟ ସ୍ଥାନକୁ
मनिअड़र **मनिआडर** ଟଙ୍କା ପଠାଇବାର ପଦ୍ଧତି—The system of remitting money to distant places through the Postal Department; money-order

**ମନିଅଡ଼ର କମିସନ୍** [ ଫିସ୍, ଫୀ ]—ବୈଦେ. ବି ( ଇଂ. ମନିଅର୍ଡ଼ର
Maniarḍar kamisan [ phis, phi ] + କମିସନ; ଫୀ;
मनिअड़र कमिसन ଫୀସ୍ )—ମନିଅଡ଼ରଦ୍ୱାରା ସ୍ଥାନାନ୍ତରକୁ ଟଙ୍କା
**मनिआडर कमिसन** ପଠାଇବା ପାଇଁ ପ୍ରେରକ ଡାକ ବିଭାଗକୁ ଯେଉଁ ନିର୍ଦ୍ଧାରିତ ଧନ ଦିଅନ୍ତି—Money-order fee. [ ଦ୍ର—ମନିଅଡ଼ରଦ୍ୱାରା ଦୁଇପ୍ରକାରେ ଟଙ୍କା ଦୂର ଦେଶକୁ ପଠାଯାଏ; ସାଧାରଣ ଡାକରେ ଟଙ୍କା ପଠାଇଲେ ଯେତେ ଦିନେ ଡାକ ଚିଠି ପହଞ୍ଚେ ସେତେ ଦିନେ ଉକ୍ତ ଟଙ୍କା ଅଭିପ୍ରେତ ବ୍ୟକ୍ତିଙ୍କଠାରେ ପହଞ୍ଚେ । ଏହାକୁ ପୋଷ୍ଟାଲ୍ ମନିଅଡ଼ର ବୋଲଯାଏ । ଯେବେ ଅଭିପ୍ରେତ ବ୍ୟକ୍ତି ଶୀଘ୍ର ଟଙ୍କା ପାଇବାକୁ ପ୍ରେରକ ଇଚ୍ଛା କରନ୍ତି ତେବେ ଟେଲିଗ୍ରାମ୍ [ତାରଡାକ] ଦ୍ୱାରା ଟଙ୍କା ପଠାଇଲେ ଅଭିପ୍ରେତ ବ୍ୟକ୍ତି ଟେଲିଗ୍ରାମ୍ ପହଞ୍ଚିବା ସମୟରେ ଉକ୍ତ ଟଙ୍କା ପାଆନ୍ତି । ଏହାକୁ ଟେଲିଗ୍ରାଫିକ୍ ମନିଅଡ଼ର ବୋଲଯାଏ ।]

**ମନିଅଡ଼ର କରିବା**—ଦେ. ବି [ଇଂ ମନିଅର୍ଡ଼ର୍ ]—ଡାକଦ୍ୱାରା ଏକ
Maniaḍar karibā ସ୍ଥାନରୁ ଅନ୍ୟ ସ୍ଥାନକୁ ଟଙ୍କା ପଠାଇବା-
मनिअड़र करा **मनिआडर करना** To remit money by postal money order.

**ମନିଅଡ଼ର କୁପନ୍**—ବୈଦେ. ବି (ଇଂ ମନିଅର୍ଡ଼ର୍ କୁପନ୍)—ମନିଅଡ଼ର
Maniarḍar kupan କରିବାବେଳେ ପ୍ରେରକ ମନିଅଡ଼ର
मनिअड़र कूपन ଫାରମର ଯେଉଁ ଅଂଶରେ ଟଙ୍କା ପାଇବା ବ୍ୟକ୍ତିଙ୍କ-
**मनिआडर कूपन** ଠାକୁ ଆପଣାର ବକ୍ତବ୍ୟ ଲେଖନ୍ତି—Money order coupon.

**ମନିଅଡ଼ର ଫାରମ୍**—ବୈଦେ.ବି (ଇଂ ମନିଅର୍ଡ଼ର୍ ଫର୍ମ )—ଡାକଘରରୁ
Maniarḍar phāram ମିଳିବା ଯେଉଁ ଛପା ଫାରମକୁ
मनिअड़र फारम **मनिआडर फारम** ପ୍ରେରକ ପୂରଣ କରି ପ୍ରେରିତ ଟଙ୍କା ସହିତ ଡାକଘରେ ଦାଖଲ କରନ୍ତି—
[ମନିଅଡ଼ର ଫ(ଫା)ର୍ମ—ଅନ୍ୟରୂପ] Money order form.

**ମନିଅଡ଼ର ରସିଦ୍**—ବୈଦେ. ବି (ଇଂ ମନିଅର୍ଡ଼ର୍ ରସିଦ୍)—ମନିଅଡ଼ର
Maniarḍar rasid ଦ୍ୱାରା ପ୍ରେରିତ ଟଙ୍କାର ପ୍ରାପ୍ତିସ୍ୱୀକାରସ୍ୱରୂପ
मनिअडर रसिद **मनिआडर रसिद** ଯେଉଁ କାଗଜରେ ଟଙ୍କା ପାଇବା ବ୍ୟକ୍ତି ଦସ୍ତଖତ କରନ୍ତି ଓ ଯାହା ପ୍ରେରକଙ୍କ ନିକଟକୁ ଡାକଦ୍ୱାରା ଫେରିଆସେ—Money order receipt or acknowledgement. [ ଦ୍ର—ମନିଅଡ଼ର ଫାରମ ପୂରଣ କରି ଟଙ୍କା ସହିତ ତାହା ଡାକଘରେ ଦାଖଲ କଲେ ଉକ୍ତ ଡାକଘରର ଭାରପ୍ରାପ୍ତ କର୍ମଚାରୀ ପ୍ରେରକଙ୍କୁ ଡାକଘରର ମୋହରଯୁକ୍ତ ରସିଦ ଦିଅନ୍ତି; ତାକୁ ପୋଷ୍ଟାଲ୍ ଅକ୍-ନଲେଜ୍‌ମେଣ୍ଟ ବା ରସିଦ୍ ବୋଲଯାଏ । ତତ୍ପରେ ଡାକରେ ପ୍ରେରିତ ଟଙ୍କାକୁ ଅଭିପ୍ରେତ ବ୍ୟକ୍ତି ପାଇଲେ ଯେ ଦସ୍ତଖତ କରି ଯେଉଁ ରସିଦ ଦିଅନ୍ତି ତାହା ପ୍ରେରକଙ୍କଠାକୁ ଡାକଦ୍ୱାରା ଆସେ; ତାକୁ ପ୍ରାପ୍ତିକାର ରସିଦ୍ ବୋଲଯାଏ; ପ୍ରାପ୍ତିକ ରସିଦ ମନିଅଡ଼ର ଫାରମରେ ଲାଗିଥାଏ ଓ ଫାରମର ଉକ୍ତ ଅଂଶ ଚିରା ହୋଇ ପ୍ରେରକଙ୍କ ଠାକୁ ଫେରି ଆସେ । ]

**ମନିଆରି**—ଦେ ଓ ବୈଦେ. ବି—ମନିଆରି ଜିନିଷ (ଦେଖ)
Maniāri Maniāri jinisa (See).

**ମନିଆରି ଜାହାଜ**—ବୈଦେ. ବି ( ଇଂ. ମାନ୍-ଓ-ୱାର୍ )—୧ । ଯୁଦ୍ଧ-
Maniāri jāhāja ଜାହାଜ—1. Man-o-war; battle-
मनिआरि जाहाज, मानोआरि जाहाज ship. ୨ । ଯେଉଁ
**मनियारी जहाज** ଜାହାଜରେ ବିଦେଶରୁ ଖେଳନା ଆଦି ଆସେ—2. Ships carrying toys etc from foreign countries.

**ମନି[ନୁ]ଆ[ହା]ରି ଜିନିଷ**—ଦେ. ବି [ ସ. ମନୋହର, ବମ୍ବା ଇଂ
Mani[nu]ā[hā]ri jinisa ମାନ୍-ଓ-ୱାର୍=ଯୁଦ୍ଧ ଜାହାଜ] --
मनियारि (मनिहारि) जिनिस ବିଦେଶରୁ ବାଣିଜ୍ୟାର୍ଥ ଏ ଦେଶକୁ
**मनियारी चीज** ଆସୁଥିବା ଖେଳନା, ଚୁଡ଼ି ଓ କାଚ ପ୍ରଭୃତିର ଶୌଖିନ ଓ ସୁନ୍ଦର ଜିନିଷମାନ—Toys and other gewgaws
ମନିଅ[ହା]ରି ଚିଜ } ଅନ୍ୟରୂପ—
ମନୁଅ[ହା]ରି ଚିଜ }

and fancy things imported from foreign countries. [ଦ୍ର—ପୂର୍ବେ ଜଳଦସ୍ୟୁମାନଙ୍କର ଉପଦ୍ରବ ଯୋଗୁଁ ଇଉରୋପରୁ ସମୁଦ୍ରପଥରେ ପଣ୍ୟବାହୀ ଜାହାଜମାନଙ୍କ ଯିବା ଆସିବା ନିରାପଦ ନ ଥିଲା । ଏଥିପାଇଁ ଭଲ ଜାହାଜମାନଙ୍କ ସଙ୍ଗେ ଯୁଦ୍ଧ ଜାହାଜ [ମାନ୍ ଓ-ୱାର୍] ଆସୁଥିଲା । କ୍ରମଶଃ ମାନ୍-ଓ-ୱାର୍ ଶବ୍ଦ ବିଦେଶରୁ ଆସୁଥିବା ଖେଳନା ଆଦିକୁ ବୁଝାଇଲା ବୋଲି ଅନୁମିତ ହୁଏ । ]

ମଣିଆରି ଦୋକାନ—ଦେ.ବି (ସଂ. ମନୋହର+ଫା. ଦୁକାନ୍)—ଯେଉଁ Maniāridokāna ଦୋକାନରେ ଖେଳନା ଆଦି ବିଳାସ ଜିନିଷ ମନିହାରିଦୋକାନ ମනିয়ারীতুকান ବିକ୍ରି ହୁଏ—Toy shop; a shop where imported fancy articles are sold.

ମଣିଚ୍ଛା(ଛା)—ଦେ. ବି (ସଂ. ମନଃ+ଇଚ୍ଛା)—ନିଜର ଇଚ୍ଛା; ସ୍ୱେଚ୍ଛା—Manichchhā(chhā) One's free will. ଦେ. କ୍ରି. ମনেরইচ্ছা मनइच्छा ବିଣ—୧ । ଅପଣାର ଇଚ୍ଛାନୁସାରେ;ଯଥେଚ୍ଛା—1. As one would have it. ୨ । ଅପଣା ସନ୍ତୋଷ ହେବା ପ୍ରକାରେ—2. To the heart's content.

ମଣିତ—ସଂ. ବିଣ ( ମଣ୍ ଧାତୁ+କର୍ମ. ତ )—ଜ୍ଞାତ—Known. Manita ସଂ.ବି (+ଭାବ.ତ)—୧ । ଜ୍ଞାନ—1. Knowledge. ୨ । କୂଜିତ ବା କଣ୍ଠ ଧ୍ୱନିବିଶେଷ—2. A kind of vocal sound.

ମଣି ବା(ବେ,ବ୍ୟା)ଗ୍—ବିଦେ. ବି (ଇଂ)—ଟଙ୍କା ରଖିବାର ଥଳି ବା Manibā(be,byā)g ବଟୁଆ—Money bag. মনিব্যা(বে)গ मनिबे(बै)ग

ମଣି ମକଦମା—ବିଦେ. ବି (କଚରାଅ, ଇଂ. ମନି+ଫା. ମୁକଦ୍ଦମା)—Mani makadamā ଟଙ୍କା ଦାବି କରାଯାଇ ଥିବା ମକଦମା; মনিস্নুট मनिकेश ଯେଉଁ ମକଦମାରେ ବାଦୀ ପ୍ରତିବାଦୀ ଉପରେ (ମନିକେସ୍—ଅନ୍ୟରୂପ) ଟଙ୍କା ଦାବି କରିଥାଏ—Money suit.

ମଣିଷ—ଗ୍ରା. ବି (ସଂ. ମନୁଷ୍ୟ)—୧ । ମଣିଷ; ମନୁଷ୍ୟ—1. Man; Manisha person. ୨ । ଲୋକ; ଚାକର—2. Servant. মনিষ্যি मानुस ୩ । ସ୍ୱାମୀ—3. Husband. ୪ । କଥକ ସ୍ୱୟଂ—4. The speaker himself. [ଦ୍ର—କଥାପ୍ରସଙ୍ଗରେ ଅପଣାକୁ ଲକ୍ଷ୍ୟ କରି ଅନ୍ୟ ପୁରୁଷରେ 'ମଣିଷ, ମଣଷ; ମନୁଷ୍ୟ' ଆଦି ଶବ୍ଦ ବ୍ୟବହାର କରାଯାଏ । ଯଥା—ନଈ କୂଳରେ ଅସି ପହଞ୍ଚ ବଡ଼ି ନଈରେ ଡଙ୍ଗା ନ ମିଳିବାରୁ ମଣିଷ ନଈକୂଳେ ଭାରି ହଇରାଣ ହେଲା । ଏହାର ଇଂରାଜି ବ୍ୟବହାର—One is put to much inconvenience]

ମଣିଷ କରିବା—ଦେ. କ୍ରି—୧ । ଶିଶୁକୁ ପ୍ରତିପାଳନ କରି ବୟଃସ୍ଥ Manisha karibā କରାଇବା; ଏଡ଼େଟିକି ଏଡ଼େ କରିବା—মানুষকরা मानुसकरना 1. To bring up a child till he is grown up. ୨ । ଶିକ୍ଷା ବା ସାହାଯ୍ୟଦ୍ୱାରା ମୂର୍ଖ ବା ନିର୍ଦ୍ଧନ ବ୍ୟକ୍ତିକୁ ପଣ୍ଡିତ ବା ସମ୍ମାନିତ ବା ଧନୀ କରିବା—2.To help a person in becoming learned, rich or respectable.

ମଣିଷ ପଣିଆ(ଆଁ)—ଦେ. ବି—ମନୁଷ୍ୟତା—Manliness. Manisha paniā(ān) মানুষপনা मनुसपना, मनुसाई (ମଣିଷପଣ—ଅନ୍ୟରୂପ)

ମଣୀକ—ସଂ. ବି—ଅଞ୍ଜନ (ହ୍ରି. ଶ)—Mankia Collyrium.

ମନୀଷା—ସଂ. ବି (ମନସ୍+ଈଷା=ଲଙ୍ଗଳଦଣ୍ଡ; ଈଷ ଲଙ୍ଗଳକୁ ଚଳାଇବା Manishā ପରି ଯାହା ମନୁଷ୍ୟର ମନକୁ ଚାଳିତ କରାଏ)—୧ । ବୁଦ୍ଧି; ପ୍ରଜ୍ଞା—1. Intellect; understanding;intellectual powers. [ଉ—ପଢ଼ୁଅଛି ବଳାଅ ଏଥିରେ ମନୀଷା—କୃଷ୍ଣସିଂହ ମହାଭାରତ. ସଭା ।] ୨ । ମନୋରଥ—2. Desire; wish. [ଉ—ଯିବାକୁ କେଉଁରୂପେ କଲଛି ମନୀଷା—କୃଷ୍ଣସିଂହ ମହାଭାରତ. ବନ] । ୩ । (ବୈଦିକ) ସ୍ତୁତି; ପ୍ରଶଂସା ( ହ୍ରି. ଶ )—3. (Vedic) Eulogy; praise. ଦେ. ବିଣ [ସଂ. ମନୀଷା=ଇଚ୍ଛା]—୧ । ଯେ କାମନା କରେ;କାମନାକାରୀ—1. Desirous;wishing. ୨ । ଇଚ୍ଛା ଅନୁସାରେ ଭିନ୍ନ ଭିନ୍ନ ରୂପ ଧାରଣକାରୀ—2. Assuming different shapes at will. [ଉ—ବାର ନୋହିଲା ପ୍ରଚୁର ନିଶାମୟ ମନୀଷା ଯେ ନିଶାଚର—ଭଞ୍ଜ. ବୈଦେହୀଶବିଳାସ ।]

ମନୀଷିତ—ସଂ. ବିଣ [ ମନସ୍+ଈଷ୍ ଧାତୁ+କର୍ମ ତ, ବା ମନୀଷା+ Manishita ସଞ୍ଜାତାର୍ଥେ ଇତ ]—ବାଞ୍ଛିତ; ଅଭୀପ୍ସିତ—Wished for; desired.

ମନୀଷିତା—ସଂ. ବି (ମନୀଷିନ୍+ତା)—ବୁଦ୍ଧିମତ୍ତା—Manishitā Intelligence.

ମନୀଷୀ—ସଂ. ବିଣ. ପୁଂ—(ମନୀଷା+ଇନ୍; ୧ମା. ୧ବ)—୧ । ପ୍ରଜ୍ଞାManishi ବାନ୍; ବୁଦ୍ଧିମାନ୍—1. Intelligent; talented. ୨ । ଜ୍ଞାନୀ—2 Wise; learned. ସଂ. ବି—(ମନୀଷିଣୀ—ସ୍ତ୍ରୀ) ପଣ୍ଡିତ; ଜ୍ଞାନୀ ବ୍ୟକ୍ତି—Learned man.

ମନି ସୁଟ୍—ବିଦେ.ବି—(ଇଂ) (କଚରାଅ)—ଟଙ୍କା ଦାବି କରାଯାଇଥିବା Mani sut ମକଦମା; ଯେଉଁ ମକଦମାରେ ବାଦୀ ପ୍ରତିବାଦୀ ଠାରୁ মনিস্নুট ନଗଦ ଧନ ପାଇବା ପାଇଁ ଦାବି କରିଥାଏ—मनिसुट (ଥାଇନ୍ସସୁଟ୍—ଅପଶବ୍ଦ) Money-suit.

ମନୁ—ସଂ. ବି. ପୁଂ (ମନ୍ ଧାତୁ=ଜାଣିବା+କର୍ତ୍ତୃ. ଉ)—୧ । ବ୍ରହ୍ମାଙ୍କର Manu ମାନସ ପୁତ୍ରଗଣ; ମନୁଷ୍ୟ ଜାତିର ଆଦି ପୁରୁଷଗଣ)—1. (ମନାବୀ, ମନାୟୀ—ସ୍ତ୍ରୀ) The sons of Brahmā born from his desires and the progenitors of mankind. [ଦ୍ର—ସେମାନଙ୍କର ନାମ ଯଥା—ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷ ସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମ ସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି, ଦେବସାବର୍ଣ୍ଣି ଓ ଇନ୍ଦ୍ରସାବର୍ଣ୍ଣି । ସୃଷ୍ଟିର ପ୍ରତ୍ୟେକ କଳ୍ପରେ ଏହି ୧୪ ଗୋଟି ମନୁ ବ୍ରହ୍ମାଙ୍କ ମନରୁ ଜାତ ହୁଅନ୍ତି ଓ ଯଥାକ୍ରମରେ ସୃଷ୍ଟି କର୍ମରେ ଲାଗନ୍ତି ଓ ସୃଷ୍ଟିରେ ଅଧିକାରୀ

ହୁଅନ୍ତି । ପୃଥିବୀର ବର୍ତ୍ତମାନ ମନ୍ୱନ୍ତରରେ ବୈବସ୍ୱତ ମନୁଙ୍କର ଅଧିକାର ।] ୨ । ବୈବସ୍ୱତ ମନୁ; ସୂର୍ଯ୍ୟଙ୍କ ପୁତ୍ର—2. The Baibaswata Manu; a son of the Sun-god. [ଦ୍ର—ସୂର୍ଯ୍ୟଙ୍କର ୧୦ଟି ପୁତ୍ରଙ୍କ ମଧ୍ୟରୁ ଇକ୍ଷ୍ୱାକୁ ଜ୍ୟେଷ୍ଠ । ହିନ୍ଦୁ ଶାସ୍ତ୍ର ମତରେ ଏହି ମନୁହିଁ ଆଦି ମାନବ । ] ୩ । ହିନ୍ଦୁ ସ୍ମୃତିଶାସ୍ତ୍ରପ୍ରଣେତା ମୁନି ବିଶେଷ, ମନୁସଂହିତା ବା ମାନବଧର୍ମଶାସ୍ତ୍ରର ସଂକଳୟିତା ମୁନି—3. The name of a sage who compiled a Hindu code of Law and Usuage, which still goes by his name. [ଦ୍ର—କେହି କେହି ଏହାଙ୍କୁହିଁ ବୈବସ୍ୱତ ମନୁ ବୋଲି କହନ୍ତି ।] ୪ । (+କର୍ମ. ଉ) ୭୧ ମହାଯୁଗ ବା ୨୮୪ ଯୁଗ (କାଳ)—4. A unit of time comprising 71×4320000 years of man (ଉ—କେଉଁ ମନୁରେ କେଉଁ ଯୁଗେ, କି ଲୀଳା କଲେ ପ୍ରଭୁ ରଙ୍ଗେ । ପ୍ରାଚୀ. ଦୃଷ୍ଟିଭମ ଚନ୍ଦ୍ରୋଦୟ ।) ୫ । (+କର୍ତ୍ତୃ.ଉ) ବିଷ୍ଣୁ (ହି. ଶ)—5. Bishṇu. ୬ । (+କରଣ. ଉ) ଅନ୍ତଃକରଣ; ମନ (ହି. ଶ)—6. The heart; mind. ୭ । (+କର୍ମ.ଉ) ମନ୍ତ୍ର (ହି. ଶ)—7. Vedic incantation or formula. ୮ । (+କର୍ତ୍ତୃ. ଉ) ଅଗ୍ନି (ହି. ଶ)—8. Fire. ୯ । ବ୍ରହ୍ମା (ହି. ଶ)—9. Brahmā. ୧୦ । ଚଉଦ ସଂଖ୍ୟା ( ହି. ଶ )—10 The number fourteen. ୧୧ । ( ସ୍ତ୍ରୀ ) ମନୁଙ୍କ ସ୍ତ୍ରୀ; ମନାୟୀ ( ହି. ଶ )—11. The wife of Manu. ୧୨ । ପୃକ୍କା; ପଡଙ୍ଗ ଶାଗ —12. A kind of pot herb; Trigonella Corniculata. ଦେ. ବି ( ସଂ. ମନ୍ୟୁ )—

मनामनि ୧ । ଶାପ—1. Curse. ୨ । ଅପଡ଼; ମନୋ-

मनान्तर ମାଳିନ୍ୟ—2. Ill-feeling; bad blood. ୩ । ରାଗ; କ୍ରୋଧ—3. Anger. [ ଉ—ଅଷ୍ଟାରେ ବାନ୍ଧି ଖଣ୍ଡା ଧରଥିଲେ ଧନୁ, ଧାଇଁଲେ ପାର୍ଥଠାକୁ ଧରି ହୁଦେ ମନୁ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ] ୪ । ପୁଂ (ସଂ. ଅଭିମନ୍ୟୁ ) ଅଭିମନ୍ୟୁ ନାମକ ବ୍ୟକ୍ତିର ଡାକନାମ —4. Name for calling Abhimanyu. ୫ । ( ଓଡ଼ିଆ ମନ ଶବ୍ଦର ୫ମୀ ବିଭକ୍ତି ଏକ ବଚନ ) ମନରୁ; ମନୁଁ—5. From one's mind.

ମନୁଆ(ଆଁ)—ଦେ. ବିଣ. ପୁଂ—୧ । କାମଚ୍ଛୁସି; ସ୍ୱୈର; ଯାହା ଇଚ୍ଛା
Manuā(āṅ) ହୁଏ ତାହା କରିବା ବ୍ୟକ୍ତି—1. Self-willed;
जीदवाज; मनसिरिया wilful. [ ଉ—ସେ ଲୋକ ଯୁଦ୍ଧରେ
दिलवाला, मनमाना ମନୁଆ ହୋଇଥିବ । କୃଷ୍ଣସିଂହ, ମହାଭାରତ.
ମନେଇ } ଅନ୍ୟରୂପ ସଭା । ] ୨ । ଏକବାଗିଆ—2. Way-
ମନୋ(ନୁ)ଇ } ward. ୩ । ଖିଆଲୀ—3. Whimsical. ୪ । ଦୃଢ଼ଚିତ୍ତ—4. Of firm determination; resolute. ୫ । ନିପୁଣ; ଧୁରନ୍ଧର—5. Skilful. [ ଉ—ଶଲ୍ୟ ଯୁଦ୍ଧରେ ତ ଅଟନ୍ତି ମନୁଆଟି— କୃଷ୍ଣସିଂହ. ମହାଭାରତ. ବନ । ] ୬ । ବୀର—6. Heroic. (ଉ—ସେତେକ ଯୋଦ୍ଧା । ତହିଁଥିଲେଟି ଭରୁଆ, ଭରିଲେ ହୁଷ୍ଟ ହେଲେ ତା ଦେଖି ମନୁଆ । କୃଷ୍ଣସିଂହ. ମହାଭାରତ. ବନ । ) ୭ । ସାହସୀ—7. Brave; bold. ( ଉ—ମନୁଆଁଏ ଭରୁଆ ପଣ୍ଡୟେ ରହିବେ । କୃଷ୍ଣସିଂହ. ମହାଭାରତ. ବନ । ) ଗ୍ରା. ବି (ସଂ. ମନସ୍;

मन्तुआँ ନିଜର ମନକୁ ସମ୍ବୋଧନ )—ମନ—Mind. ( ଉ —ଅରେ ମନୁଆ ବାଇ ! ଶରୀର ଭେଦ ତୁ ଜାଣିଲୁ ନାହିଁ—ଶରୀରଭେଦଭଜନ । )

ମନୁଖ୍—ପ୍ରାଦେ ( ଉତ୍ତରଭାଷା ) ବି ( ଭୁଲ. ହିନ୍ଦିରେ ଷ ସ୍ଥାନରେ ଖ
Manukh ଉଚ୍ଚାରଣ )—ମନୁଷ୍ୟ—Man.

ମନୁଜ—ସଂ. ବି. ପୁଂ ( ମନୁ+ଜନ୍ ଧାତୁ+କର୍ତ୍ତୃ. ଅ; ମନୁଙ୍କଠାରୁ
Manuja [ମନୁଜା(ଜୀ)—ସ୍ତ୍ରୀ] ଜାତ )—ମନୁଷ୍ୟ; ମାନବ—Man

ମନୁଜ କୁଳ —ସଂ. ବି (୬ଷ୍ଠୀ ତତ୍)—ମାନବଜାତି—
Manuja kuḷa Mankind.
(ମନୁଜ ସମାଜ, ମନୁଜ ବୃନ୍ଦ, ମନୁଜ ଗଣ—ଅନ୍ୟରୂପ)

ମନୁଜ ପୁଙ୍ଗବ—ସଂ. ବି (ଉପମିତ ବା ୭ମୀ ତତ୍; ମନୁଜ=ମନୁଷ୍ୟ+
Manuja puṅgaba ପୁଙ୍ଗବ=ବୃଷଭ)—ମାନବ ଶ୍ରେଷ୍ଠ—An
[ମନୁଜ ଶ୍ରେଷ୍ଠ, ମନୁଜ ବ୍ୟାଘ୍ର, ମନୁଜ ସିଂହ-ଅନ୍ୟରୂପ] excellent man.

ମନୁଜେନ୍ଦ୍ର—ସଂ. ବି (୬ଷ୍ଠୀ ବା ୭ମୀ ତତ୍)—ନୃପତି; ରାଜା;ନରେନ୍ଦ୍ର—
Manujendra [ମନୁଜାଧିପ—ଅନ୍ୟରୂପ] A king.

ମନୁଜ୍ୟେଷ୍ଠ—ସଂ. ବି—୧ । ଖଡ୍ଗ; ତରୁଆରି (ହି. ଶ)—
Manujyeshṭha 1. Sword. ୨ । ଲଉଡ଼ି; ଯଷ୍ଟି (ହି.ଶ)—2. A stick; cudgel.

ମନୁ ଯୁଗ—ସଂ. ବି (୬ଷ୍ଠୀ ତତ୍ ବା ମ. ପ. ଲୋ )—ମନ୍ୱନ୍ତର (ଦେଖ)
Manu juga Manwantara (See.)

ମନୁଷ୍—ପ୍ରାଦେ· (ସମ୍ବଲପୁର) ବି, [ସଂ. ମନୁଷ୍ୟ, ଭୁଲ. ବଂ· ମାନୁଷ; ହି. 
Manuṡ ମନୁଷ୍]—ମନୁଷ୍ୟ—Man.

ମନୁଷ୍ ମରା—ପ୍ରାଦେ (ସମ୍ବଲପୁର) ବିଣ ଓ ବି—ନରହନ୍ତା—
Manuṡ marā Killer or murderer of men.

ମନୁଶ—ପ୍ରାଦେ (ଯାଜପୁର) ବି (ଭୁଲ. ହି. ମନୁଷ୍ )—ମନୁଷ୍ୟ—
Manuṡa Man.

ମନୁଶ୍ରେଷ୍ଠ—ସଂ. ବି—ବିଷ୍ଣୁ (ହି. ଶ)—
Manu ṡreshṭha Bishṇu.

ମନୁଷ୍ୟ—ସଂ. ବି. ପୁଂ ( ମନୁ+ଜାତାର୍ଥେ. ଷ୍ୟ )—୧ । ମାନବ;
Manushya ଲୋକ-1. Man. ୨ । ବ୍ୟକ୍ତି—2. Person.
(ମନୁଷୀ—ସ୍ତ୍ରୀ) [ଦ୍ର—ହିନ୍ଦୁ ଶାସ୍ତ୍ରମାନଙ୍କରେ ସବୁ ପ୍ରାଣୀଙ୍କ ସଙ୍ଗତ
ମନୁଷ୍ୟ ଶବ୍ଦର ଅନ୍ୟ ସଂ. ନାମ— } ଏକ ସମୟରେ ମନୁଷ୍ୟର ଉତ୍ପତ୍ତି
ମାନୁଷ, ମନୁଜ, ମାନବ, ନର } ହୋଇଥିବା କଥିତ ଅଛି । କିନ୍ତୁ
ଦ୍ୱିପଦ— ଆଧୁନିକ ପ୍ରାଣିବିଜ୍ଞାନର ବିବର୍ତ୍ତନ ବାଦମତରେ ପ୍ରଥମେ ମେରୁଦଣ୍ଡହୀନ ପ୍ରାଣୀ, ସେମାନଙ୍କ ବିବର୍ତ୍ତନରୁ ମେରୁଦଣ୍ଡୀ ଅଣ୍ଡଜ, ସେମାନଙ୍କ ବିବର୍ତ୍ତନରୁ

ଜରାୟୁଜ ଓ ସବୁ ଜରାୟୁଜମାନଙ୍କ ପଛରେ ମାଙ୍କଡ଼ ବା ବନ ମନୁଷ୍ୟ ଓ ସେମାନଙ୍କ ବିବର୍ତ୍ତନରୁ ମନୁଷ୍ୟର ଉତ୍ପତ୍ତି ହୋଇ ଅଛି । ନରଶାସ୍ତ୍ରାନୁଶୀଳନକାରୀମାନେ ପୃଥିବୀର ମନୁଷ୍ୟଙ୍କୁ ପ୍ରଧାନ ପାଞ୍ଚ ଶ୍ରେଣୀରେ ବିଭକ୍ତ କରିଅଛନ୍ତି; ଯଥା— ୧ । କକେଶୀୟ (ଇଉରୋପ ଓ ଭାରତବାସୀ ଆର୍ଯ୍ୟ), Caucasian, ୨ । ମଙ୍ଗୋଲୀୟ (ଚୀନ, ଜାପାନ ଅଧିବାସୀ), Mangolian, ୩ । ଇଥିଓପୀୟ ବା ନିଗ୍ରୋ (ଆଫ୍ରିକାବାସୀ), Etheopean, ୪ । ପଲିନେସୀୟ (ପ୍ରଶାନ୍ତ ମହାସାଗର ଦ୍ୱୀପବାସୀ), Polinasian, ୫ । ଆଦିମ (ଅମେରିକ ଆମେରିକାବାସୀ), Red Indian. ଏହି ଭିନ୍ନ ଶ୍ରେଣୀଭୁକ୍ତ ବ୍ୟକ୍ତିମାନଙ୍କର ଦେହର ବର୍ଣ୍ଣ, କେଶର ବର୍ଣ୍ଣ, ମୁଖ, ଓଷ୍ଠ, କର୍ଣ୍ଣାଦିର ଗଢ଼ଣରେ ପାର୍ଥକ୍ୟ ଲକ୍ଷିତ ହୁଏ—ହି. ଶ ।]

**ମନୁଷ୍ୟ କଣ୍ଠ**—ସଂ. ବି (୬ଷ୍ଠୀ ତତ୍)—ମାନବର ଗଳା; ମନୁଷ୍ୟର କଣ୍ଠ ସ୍ୱର—Human voice.
Manushya kaṇṭha

**ମନୁଷ୍ୟକାର**—ସଂ. ଅ—ପୁରୁଷକାର; ଉଦ୍ୟୋଗ; ପ୍ରଯତ୍ନ (ହି. ଶ)—Exertion.
Manushya kāra

**ମନୁଷ୍ୟ କୃତ**—ସଂ. ବିଣ ( ୩ୟା ତତ୍ )—୧ । ମାନବ ରଚିତ—1. Done by man. ୨ । କୃତ୍ରିମ—2. Artificial.
Manushya kṛuta
(ଦୈବକୃତ—ବିପରୀତ)

**ମନୁଷ୍ୟ ଖାଦକ**—ସଂ. ବିଶ. ପୁଂ—ଯେ ମନୁଷ୍ୟ ମାଂସ ଖାଏ—Cannibal; man-eating.
Manushya khādaka
(ମନୁଜାଦ, ମନୁଷ୍ୟାଶୀ—ଅନ୍ୟରୂପ)

**ମନୁଷ୍ୟ ଚରିତ୍ର**—ସଂ. ବି ( ୬ଷ୍ଠୀ ତତ୍ )—୧ । ମନୁଷ୍ୟ ଜାତିର ପ୍ରକୃତି ବା ସ୍ୱଭାବ—1, Human nature. ୨ । ବ୍ୟକ୍ତିବିଶେଷର ସ୍ୱଭାବ—2. A man's peculiar nature. (ଉ—ମନୁଷ୍ୟ ପ୍ରକୃତି ମଲେ ତୁଟେ, ଘୁଷୁରି ପ୍ରକୃତି ପଙ୍କରେ ଲୋଟେ—ଢଗ ।)
Manushya charitra
ମନୁଷ୍ୟ ପ୍ରକୃତି, ମନୁଷ୍ୟ ସ୍ୱଭାବ—ଅନ୍ୟରୂପ

**ମନୁଷ୍ୟ ଜନ୍ମ**—ସଂ. ବି ( ୬ଷ୍ଠୀ ତତ୍ )—ମାନବ ଜନ୍ମ; ମନୁଷ୍ୟରୂପରେ ସଂସାରରେ ଜନ୍ମ ହେବା—The state of being born in this world as a man.
Manushya janma
(ମନୁଷ୍ୟ ଯୋନି—ଅନ୍ୟରୂପ)
[ଦ୍ର—ଏହିପରି ମନୁଷ୍ୟ ଦେହ, ମନୁଷ୍ୟ ଶରୀର, ମନୁଷ୍ୟ ସମାଜ ଆଦି ପଦ ହୁଏ ।]

**ମନୁଷ୍ୟତା(ତ୍ୱ)**—ସଂ. ବି—୧ । ଦୟା, ପରଦୁଃଖ କାତରତା ଓ ସ୍ନେହାଦି ମନୁଷ୍ୟୋଚିତ ଧର୍ମ—1. Humanity. ୨ । ମନୁଷ୍ୟପଣିଆ; ପୌରୁଷ; ସାହସିକତା—2, Manliness; courage. ୩ । ଶିଷ୍ଟତା—3. Civility. ୪ । ପୁରୁଷତ୍ୱ; ସ୍ତ୍ରୀ-ସଙ୍ଗମସାମର୍ଥ୍ୟ—4. Virility; potency.
Manushyatā(twa)
(ଅମନୁଷ୍ୟତା—ବିପରୀତ)

**ମନୁଷ୍ୟତା ବିବର୍ଜିତ**—ସଂ. ବିଣ ( ୩ୟା ତତ୍ )—୧ । ଅମାନୁଷ; ନିଷ୍ଠୁର—1. Inhuman; cruel; devoid of humanity. ୨ । ସାହସହୀନ; କାପୁରୁଷ—2 Unmanly; cowardly. ୩ । ପୁରୁଷତ୍ୱହୀନ; ସ୍ତ୍ରୀ-ସଙ୍ଗମଶକ୍ତିରହିତ—3. Impotent.
Manushyatā bibarjita
ମନୁଷ୍ୟତା ବିହୀନ, ମନୁଷ୍ୟତା ହୀନ, ମନୁଷ୍ୟତା ବିବର୍ଜିତ—ଅନ୍ୟରୂପ

**ମନୁଷ୍ୟ ଧର୍ମା**—ସଂ. ବିଣ (ମନୁଷ୍ୟ+ଧର୍ମନ୍; ୧ମା. ୧ବ)—ମନୁଷ୍ୟ ପରି ଆଚରଣକାରୀ—Acting like a man; having the qualities of a man. ସଂ. ବି—କୁବେର—The God of wealth.
Manushya dharmā

**ମନୁଷ୍ୟ ପଣ**—ଦେ. ବି—ମନୁଷ୍ୟତା ( ଦେଖ ) Manushyatā ( See )
Manushya paṇa
মানুষ্যপনা মনুষ্যতা
[ମନୁଷ୍ୟ ପଣିଆ(ଆଁ)—ଅନ୍ୟରୂପ]
(ଉ—ମନୁଷ୍ୟ ପଣରୁ ହୋଇଛନ୍ତି ଭ୍ରଷ୍ଟ । ରାଧାନାଥ. ଦରବାର ।)

**ମନୁଷ୍ୟ ଯଜ୍ଞ**—ସଂ. ବି—ନୃଯଜ୍ଞ; ଅତିଥି ସତ୍କାର—Hospitality.
Manushya jajñya

**ମନୁଷ୍ୟ ରଥ**—ସଂ. ବି (ମ. ପ. ଲୋ)—ମନୁଷ୍ୟବାହ୍ୟ ଚକ୍ର ଯାନ—A vehicle drawn by men.
Manushya ratha

**ମନୁଷ୍ୟ ରାଶି**—ସଂ. ବି (ଜ୍ୟୋତିଷ; ମ. ପ. ଲୋ; ମନୁଷ୍ୟରୂପ କଳ୍ପିତ ରାଶି)—କନ୍ୟା ରାଶି (ହି. ଶବ୍ଦସାଗର)—The Virgo sign of the zodiac.
Manushya rāśi

**ମନୁଷ୍ୟ ଲୋକ**—ସଂ. ବି ( ୬ଷ୍ଠୀ ତତ୍ )—ମର୍ତ୍ତ୍ୟ ଲୋକ; ଭୂଲୋକ—The earth (inhabited by human beings).
Manushya loka

**ମନୁଷ୍ୟୋଚିତ**—ସଂ. ବିଣ (୬ଷ୍ଠୀ ତତ୍ )—ମନୁଷ୍ୟର କର୍ତ୍ତବ୍ୟ; ମନୁଷ୍ୟ ଯାହା କରିବା ଉଚିତ—Becoming or befitting a man.
Manushyochita
(ମନୁଷ୍ୟସୁଲଭ—ଅନ୍ୟରୂପ)

**ମନୁ ସଂହିତା**—ସଂ. ବି ( ମ. ପ. ଲୋ; ମନୁ ସଙ୍କଳିତ ସଂହିତା )—ମନୁ ପ୍ରଣୀତ ସ୍ମୃତି ଶାସ୍ତ୍ର; ମାନବ ଧର୍ମ ଶାସ୍ତ୍ର—The code of Manu; the laws of Manu.
Manu saṁhitā
ମନୁ ଧର୍ମ ଶାସ୍ତ୍ର, ମନୁ ଶାସ୍ତ୍ର, ମନୁ ସ୍ମୃତି—ଅନ୍ୟରୂପ
[ଦ୍ର—ଏ ଗ୍ରନ୍ଥ ୧୪ ମନୁଙ୍କ ମଧ୍ୟରୁ ପ୍ରଥମ ସ୍ୱାୟମ୍ଭୁବ ମନୁଙ୍କ ସଙ୍କଳିତ ବୋଲି ଅନୁମିତ ହୋଇ ଥିଲେ ମଧ୍ୟ ପଣ୍ଡିତମାନଙ୍କ ମତରେ ଏହା ଭୃଗୁଙ୍କ ରଚିତ । ମନୁ ଓ ପରାଶରଙ୍କ ମଧ୍ୟରେ ମନୁ ପ୍ରାଚୀନ ଓ ପରାଶର ପରବର୍ତ୍ତୀ; ମନୁସଂହିତାରେ ସତ୍ୟଯୁଗର ଧର୍ମ ଏବଂ ପରାଶରରେ କଳିଯୁଗର ଧର୍ମ ବ୍ୟକ୍ତ ହୋଇଅଛି । ମନୁରେ ୧୨ଟି ଅଧ୍ୟାୟରେ ଅଢ଼େଇ ହଜାରରୁ କିଛି ଅଧିକ ଶ୍ଳୋକ ଅଛି ।]

**ମନୁହର(ରୀ)**—ଗ୍ରା. ବି ଓ ବିଣ—ମନୋହର ( ଦେଖ ) Manohara ( See)
Manuhara(ri)
মনোহারী **मनियार**

**ମନେ**—ପ୍ରାଦେ. (ସମ୍ବଲପୁର) ଅ ( ବହୁ ବଚନସୂଚକ ପ୍ରତ୍ୟୟ) ମାନେ—Suffix of plurality.
Mane
মনে **मनमे** ଦେ. ବି—ମନରେ—In the mind.

**ମନେଇ ହେବା**—ଦେ. କ୍ରି—ମାନି ହେବା; ଜାମିନ ହେବା—To stand surety.
Manei hebā
জামিন হওয়া **जमानत होना**

**ମନେ କରିବା**—ଦେ. କ୍ରି—୧ । ସ୍ମରଣ କରିବା—1. To remember. (ଉ—ସେ ଅମୃଙ୍କୁ ମନେ କରନ୍ତି ନାଁ ?—ମଧୁସୂଦନ. ଉତ୍ତର ରାମଚରିତ । ) ୨ । ଚେତିବା—2. To recollect. ୩ । ଚିନ୍ତା କରିବା; ଭାବିବା—3 To think. ୪ । କଳ୍ପନା କରିବା—4. To imagine. (ଉ—ଅର୍ଜୁନଙ୍କ ବାହୁଡା ସେଠାରେ ପାଇଲେ, ମନ୍ଦ ଦୁର୍ଯ୍ୟୋଧନ ବୋଲି ସେ ମନେ କଲେ । କୃଷ୍ଣସିଂହ. ମହାଭାରତ. ବନ ।)
Mane karibā
মনে করা
**मनन करना, याद करना**
**खयाल करना**
**सोचना**

**ମନେ ଥିବା**—ଦେ. କ୍ରି—ପାଶୋରି ନ ଯିବା; ସ୍ମରଣ ରହିବା—To be remembered; not to be forgotten.
Mane thibā
মনে থাকা **मनमे रहना**

**ମନେ ଧରିବା**—ଦେ. କ୍ରି ( ସ. ମନସ୍+ଧୃ ଧାତୁ )—୧ । ମନରେ ରଖିବା; ସ୍ମରଣ ରଖିବା—1. To remember. [ ଉ—ସୁକର୍ମ କଦର୍ଯ୍ୟଙ୍କୁ ଅତରେ, ଉତ୍ତମଜ୍ଞାନକୁ ମନେ ଧରେ । ପଣ୍ଡିତ ବୋଲିବା ତାହାରେ, ସେ ଶୁଦ୍ଧ ଏ ଘୋରସଂସାରେ—ଜଗନ୍ନାଥ. ଭାଗବତ । ] ୨ । କୌଣସି ବିଷୟକୁ ଗୁରୁତର ଭାବେ ଗ୍ରହଣ କରିବା—2. To take a thing seriously.
Mane dharibā
মনে ধরা
**मनमे धरना**

**ମନେ ପକା(କେ)ଇବା**—ଦେ. କ୍ରି—୧ । ସୁମରିବା; ସ୍ମରଣ କରିବା; ସ୍ମରଣ କରିବା—1.To remember; to cherish in memory. [ଉ—ପକାଉଥିବ ମନେ ଯାଉଅଛି ମୁହିଁ—କୃଷ୍ଣସିଂହ. ମହାଭାରତ. ସଭା ।] ୨ । ଅନ୍ୟ ବ୍ୟକ୍ତିକୁ ଚେତାଇ ଦେବା—2. To remind a person
Mane pakā(ke)ibā
মনে করা
**मनमे खयाल करना**
(ମନେ ପକାଇଦେବା—୨ ଅର୍ଥ ଅନ୍ୟରୂପ)

**ମନେ ପଡ଼ିବା**—ଦେ. କ୍ରି—ସ୍ମୃତ ହେବା; ସ୍ମରଣ ହେବା—To occur to one's mind or recollection. [ ଉ—ମନାଉଛି ତୋତେ, ମନେ ପଡୁଥିବ, ମୋର ଏତିକି ମାଗୁଣି—ଭଞ୍ଜ. ପ୍ରେମସୁଧାନିଧି । ]
Mane pa<u>r</u>dibā
মনে পড়া
**मनमे आना**

**ମନେମନ**—ଦେ. କ୍ରି. ବିଣ—ମନେ ମନେ ( ଦେଖ )—Mane mane ( See ) [ ଉ—ଥୋକାଏ ତୁଳସୀ-ଭଜନ, ଜପ କରନ୍ତି ମନେମନ—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ । ]
Manemana
মনে মনে **मनमन**

**ମନେ ମନେ**—ଦେ. କ୍ରି. ବିଣ—୧ । ଆପଣାର ମନରେ—1. In one's own mind. [ ଉ—କିଛିକି ରହିଲ ଅଛି ବସି ମନେ ମନେ—ରାଧାନାଥ. ମହାଯାତ୍ରା । ] ୨ । ଅନ୍ତରରେ—2, Mentally. ୩ । ଅପ୍ରକାଶ୍ୟରେ; ଗୋପନରେ—3. Secretly. ୪ । ଆପଣାର କଳ୍ପନାରେ—4. In one's imagination. (ଯଥା—ସେ ମନେ ମନେ ମିଠେଇ ଖାଉଛି । ) ୫ । ଆପଣାର ବିଚାରରେ—5. According to one's own estimation. ( ଯଥା—ସେ ମନେ ମନେ ଭାରି ସିଆଣା ଠାଏ । ) ୬ । ମୁହଁରେ କିଛି ପ୍ରକାଶ ନ କରି—6. Without speaking out any thing.
Mane mane
মনে মনে
**मनहीमन**

**ମନେ ମନେ ମିଠା(ଠେ)ଇ ଖାଇବା**—ଦେ. କ୍ରି (ବ୍ୟଙ୍ଗ୍ୟ)—ଭବିଷ୍ୟତ ସମ୍ବନ୍ଧେ କଳ୍ପିତ ଚିତ୍ର ବିଷୟ ଭାବି ଆନନ୍ଦ ଉପଭୋଗ କରିବା—To feel joy at some imaginary picture of the future.
Mane mane mi<u>t</u>hā(<u>t</u>he)i khāibā
মনে মনে লাড়ু খাওয়া
**मनकालड्डु खाना, मनमोदक खाना**

**ମନେ ରଖିବା**—ଦେ. କ୍ରି—୧ । ସ୍ମରଣ ରଖିବା; ଭୁଲି ନ ଯିବା—1. To bear in mind; to remember. ୨ । ସୁମରଣା କରିବା—2. To recollect. ୩ । ପ୍ରକାଶ ନ କରିବା; ଗୁପ୍ତ ରଖିବା—3. To keep a thing to one's self; not to divulge a thing.
Mane rakhibā
মনে রাখা
**मनमे रखना**

**ମନେ ହୁଏ**—ଦେ. ଅ (ବାକ୍ୟାଂଶ ଅବ୍ୟୟରୂପେ ବ୍ୟବହୃତ )—ମୋତେ ଜଣାଯାଏ ଯେ; ବୋଧହୁଏ; ସମ୍ଭବତଃ—Meseems, perhaps; probably
Mane hue
মনে হয় **शायद, मालुम होताहै**

**ମନେ ହେବା**—ଦେ. କ୍ରି—୧ । ବୋଧ ହେବା—1. To seem ( to me ). ୨ । ସ୍ମୃତ ହେବା—2. To be remembered; to be recalled to memory.
Mane hebā
মনে হওয়া
**खयाल होना**

**ମନୋଗତ**—ସ ବିଣ ( ୨ୟା ତତ୍; ମନସ୍+ଗତ=ପ୍ରାପ୍ତ )—ମାନସିକ; ଯାହା ମନରେ ଉଦିତ ହୁଏ—Mental.
Manogata

**ମନୋଗତ ଭାବ**—ସ. ବି ( କର୍ମଧା )—ଅନ୍ତରର ଇଚ୍ଛା; ଯେଉଁ ଭାବ ମନୁଷ୍ୟ ମନରେ ଉଦିତ ହୁଏ—Heart's wish or desire; mental thought not yet expressed or ventilated.
Manogata bhāba

**ମନୋଗତି**—ସ. ବି (୬ଷ୍ଠୀ ତତ୍; ମନସ୍+ଗତି)—କଳ୍ପନାର କ୍ରୀଡ଼ା—Flights of imagination; the play of fancy.
Manogati

**ମନୋଗମ୍ୟ**—ସ. ବିଣ ( ୩ୟା ତତ୍; ମନସ୍+ଗମ୍ୟ )—ଯାହା ମନରେ କଳ୍ପିତ ହୋଇପାରେ; ଚିନ୍ତନୀୟ—Conceivable; thinkable.
Manogamya

**ମନୋଜ**—ସ. ବିଣ ( ମନସ୍+ଜନ୍ ଧାତୁ+କର୍ତ୍ତୃ. ଅ )—୧ । ଯାହା ମନରେ ଉଦିତ ହୁଏ—1. Occuring to one's mind. ୨ । ଆପଣା ମନରୁ ଯାହା ଜନ୍ମେ—2. Born of one's own mind. ସଂ. ବି—କାମ; ମଦନ; ମାନସିଜ—Cupid.
Manoja

**ମନୋଜଗତ୍(ତ)**—ସଂ. ବି ( ମନଃ+ଜଗତ୍; ଅନ୍ତଃକରଣ ରୂପ ବିଶ୍ୱ; ରୂପକ ସମାସ)—ମନୁଷ୍ୟର ଅନ୍ତରରେ ବା କଳ୍ପନା ଚକ୍ଷୁରେ ଅଙ୍କିତ ବ୍ରହ୍ମାଣ୍ଡ—The microcosm; the sum total of a man's imagination and thoughts.
Manojagat(ta)

**ମନୋଜନ୍ମା**—ସ. ବି (ମନସ୍+ଜନ୍ମନ୍; ବହୁବ୍ରୀହି)—ମନୋଜ; କାମ—Cupid.
Manojanmā

**ମନୋଜବ**—ସ. ବିଣ ( ମନସ୍+ଜବ=ବେଗ )—୧ । ( ମନର ବେଗ ପରି ବେଗ ଯାହାର; ବହୁବ୍ରୀହି ) ମନପରି ଶୀଘ୍ରଗାମୀ—1. Swift like the mind; quick
Manojaba

as thought. ୨ । ( ୬ଷ୍ଠୀ ତତ୍ ) ମନର ଗତି—2. The movements of the mind; flights of imagination; the wings of fancy. ୩ । ମନର ଆବେଗ—3. Restlessness of mind.
ସଂ. ବି, ପୁଂ—ବିଷ୍ଣୁ—A name of Bishṇu.

ମନୋଜବା—ସଂ. ବି. ସ୍ତ୍ରୀ—ଅଗ୍ନି ଜିହ୍ୱାନାମ୍ନୀ ଦେବୀ ବିଶେଷ—
Manojabā Name of a Goddess.

ମନୋଜାତ—ସଂ. ବିଣ (୫ମୀ ବା ୭ମୀ ତତ୍; ମନସ୍ + ଜାତ) —ମନରେ
Manojāta ଉଦ୍ଭୂତ ହୋଇଥିବା; ମାନସିକ—Occuring to one's own mind; mental.

ମନୋଜ୍ଞ—ସଂ. ବି (ମନସ୍ + ଜ୍ଞା. ଧାତୁ + କର୍ମି. ଅ) —ମନୋହର;
Manojña ମନୋମୁଗ୍ଧକର; ଅତି ସୁନ୍ଦର—Charming;
(ମନୋଜ୍ଞା—ସ୍ତ୍ରୀ) beautiful; enchanting. ଦେ. ବିଣ—
୧ । ମନଗଢ଼ା; କଳ୍ପନାପ୍ରସୂତ; କାଳ୍ପନିକ—
1. Imaginary; born of one's imagination.
୨ । ମନୁଆ—2. Wilful.

ମନୋଜ୍ଞତା(ତ୍ୱ)—ସଂ. ବି. (ମନୋଜ୍ଞ + ଭାବ. ତା; ତ୍ୱ) —ସୌନ୍ଦର୍ଯ୍ୟ—
Manojñatā(twa) Beauty.

ମନୋଜ୍ଞା—ସଂ. ବିଣ. ସ୍ତ୍ରୀ (ମନୋଜ୍ଞ + ଆ) —ମନୋଜ୍ଞର ସ୍ତ୍ରୀଲିଙ୍ଗ—
Manojñā Feminine of Manojña. ସଂ. ବି—୧ । କଳାଜୀରା—1. Black cumin seed. ୨ । ଜାଇତ୍ରୀ (ହି. ଶ)—2. Mace (spice). ୩ । ମଦିରା (ହି.ଶ)—3. Wine.

ମନୋଦଣ୍ଡ—ସଂ. ବି (୬ଷ୍ଠୀ ତତ୍; ମନସ୍ + ଦଣ୍ଡ) —ମନୋବୃତ୍ତିମାନଙ୍କର
Manodaṇḍa ନିରୋଧ—Self-control.
(ମନୋନିଗ୍ରହ—ଅନ୍ୟରୂପ)

ମନୋଦତ୍ତ—ସଂ. ବିଣ ( ୩ୟା ତତ୍; ମନସ୍ + ଦତ୍ତ ) —ଦିଆଯିବାପାଇଁ
Manodatta ମନରେ ସଂକଳ୍ପିତ—( a thing ) Which
(ମନୋଦତ୍ତା—ସ୍ତ୍ରୀ) has been resolved to be given away.

ମନୋଦତ୍ତା କନ୍ୟା—ସଂ ବିଣ. ସ୍ତ୍ରୀ—ଯେଉଁ କନ୍ୟାକୁ କୌଣସି ବର
Manodattā kanyā ସହିତ ବିବାହ ଦେବାପାଇଁ କନ୍ୟାପିତା ମନେ ମନେ ସଙ୍କଳ୍ପ କରିଥାଆନ୍ତି—A daughter who has been bestowed on a bridegroom-elect by a mental resolution of her father or other guardian.

ମନୋଦୁଃଖ—ସଂ. ବି (୬ଷ୍ଠୀ ତତ୍; ମନସ୍ + ଦୁଃଖ ) —ମାନସିକ
Manoduḥkha ବେଦନା ବା ଅପ୍ରସନ୍ନତା—Mental affliction.

ମନୋଦୁଷ୍ଟ—ସଂ. ବିଣ. ପୁଂ—ଯାହାର ମନ ଦୂଷିତ ବା କଳୁଷିତ—
Manodushṭa (ମନୋଦୁଷ୍ଟା—ସ୍ତ୍ରୀ) Of sinful mind.

ମନୋଦୃଷ୍ଟି—ସଂ. ବି (୬ଷ୍ଠୀ ତତ୍; ମନସ୍ + ଦୃଷ୍ଟି) —ମନୋନେତ୍ର;
Manodṛushṭi ମନଶ୍ଚକ୍ଷୁଃ; କୌଣସି ବିଷୟକୁ କଳ୍ପନାନେତ୍ରରେ ଦେଖିବା—Mental vision.

ମନୋଦେବତା—ସଂ. ବି (୬ଷ୍ଠୀ ତତ୍ ବା ରୂପକ)—ଅନ୍ତରାତ୍ମା; ବିବେକ
Manodebatā (ହି. ଶ)—Conscience.

ମନୋଦ୍ୱେଗ—ସଂ. ବି ( ୬ଷ୍ଠୀ ତତ୍; ମନସ୍ + ଉଦ୍ବେଗ ) —ଚିତ୍ତର
Manodbega ଚାଞ୍ଚଲ୍ୟ—Mental anxiety or restlessness

ମନୋନୟନ—ସଂ. ବି ( ମନସ୍ + ନୟନ; ୩ୟା ତତ୍ ) —୧ ।
Manonayana ଅନୁମୋଦନ—1. Approval. ୨ । ପସନ୍ଦ କରି ନେବା; ବାଛିନେବା—2. Nomination; selection; choice. ୩ । ନିର୍ବାଚନ—3. Election. ୪ । ମନୋନେତ୍ର (ଦେଖ)—4. Manonetra ( See )

ମନୋନିବେଶ—ସଂ. ବି ( ୬ଷ୍ଠୀ ତତ୍; ମନସ୍ + ନିବେଶ ) —ମନୋ-
Manonibeśa ଯୋଗ; ଅଭିନିବେଶ—Attention; concentration of mind on a particular matter.

ମନୋନୀତ—ସଂ. ବିଣ ( ମନସ୍ + ନୀତ; ୩ୟା ତତ୍ ) —୧ । ନିର୍ବାଚିତ—
Manonīta 1. Selected; chosen; elected. ୨ ।
(ମନୋନୀତା—ସ୍ତ୍ରୀ) ଅନୁମୋଦିତ—2. Approved

ମନୋନେତ୍ର—ସଂ. ବି ( ରୂପକ ସମାସ; ମନସ୍ + ନେତ୍ର ) —ମନଶ୍ଚକ୍ଷୁ,
Manonetra କଳ୍ପନା ଚକ୍ଷୁ—The mind's eye, mental vision.

ମନୋପଲି—ବୈଦେ. ବି ( ଇଂ )—ବାଣିଜ୍ୟ କରିବା ପାଇଁ ସରକାର-
Manopali ଠାରୁ କୌଣସି ବ୍ୟକ୍ତିଙ୍କୁ ମିଳିବା ଏକଚେଟିଆ ଅଧିକାର;
मनोपली କୌଣସି ପଣ୍ୟଦ୍ରବ୍ୟର ବିକ୍ରୟ ସମ୍ବନ୍ଧେ ଏକାଧିକାର—
**मनोपली** Monopoly.

ମନୋବାଞ୍ଛା—ସଂ. ବି ( ୬ଷ୍ଠୀ ତତ୍; ମନସ୍ + ବାଞ୍ଛା ) —ଇପ୍ସିତ; ଅନ୍ତରିକ
Manobāñchhā ଇଚ୍ଛା—Heart's desire; wish.
(ମନୋବାସନା—ଅନ୍ୟରୂପ) (ମନୋବାଞ୍ଛିତ—ବିଣ)

ମନୋବାଞ୍ଛା ପୂରଣ—ସଂ. ବି ( ୬ଷ୍ଠୀ ତତ୍; ମନୋବାଞ୍ଛା + ପୂରଣ )—
Manobāñchhā pūraṇa ମନରେ ବିଗୁଢ଼ ଥିବା ବାସନାର
ମନୋବାଞ୍ଛା ପୂର୍ତ୍ତି } ଅନ୍ୟରୂପ
ମନୋବାଞ୍ଛା ସିଦ୍ଧି }
ସିଦ୍ଧି—Fulfilment of one's desire; attainment of one's wished-for object; realisation of one's wish.

ମନୋବିକାର—ସଂ ବି ( ୬ଷ୍ଠୀ ତତ୍; ମନସ୍ + ବିକାର ) —୧ । ମନ-
Manobikāra ବିଗଡ଼ା; ଚିତ୍ତର ଅସ୍ୱାଭାବିକ ଅବସ୍ଥା—
(ମନୋବିକୃତି—ଅନ୍ୟରୂପ) 1. Unnatural state of mind. ୨ । ଚିତ୍ତ ଚାଞ୍ଚଲ୍ୟ—2. Mental anxiety; perturbation of mind; revulsion of feeling. ୩ । ଚିତ୍ତର ଦୁର୍ବଳତା—3. Mental weakness; weakness of mind. ୪ । ଚିତ୍ତରେ କୌଣସି ସୁଖଜ ବା ଦୁଃଖଜ ଭାବ ବା ବିଗ୍ରହ ଉପସ୍ଥିତ ହେବା ଅବସ୍ଥା ( ହି. ଶ )—4. Emotion. [ ଦ୍ର—ରାଗ, ଦ୍ୱେଷ, କ୍ରୋଧ, ଦୟା ଆଦି ଚିତ୍ତବୃତ୍ତି ମନୋବିକାର

ଅଟେ । ସାଧାରଣତଃ ମନୋବିକାର ଜାତ ହେବା ସଙ୍ଗେ ସଙ୍ଗେ କେତେକ ଶାରୀରିକ ବିକାର ( ଯଥା—ସ୍ତେମ୍ଭ, ସ୍ୱେଦ, କମ୍ପ, ଅଶ୍ରୁ, ହୃଦସ୍ପନ୍ଦନ ) ଲକ୍ଷିତ ହୁଏ । )

ମନୋବିଚ୍ଛେଦ—ସଂ. ବି ( ୬ଷ୍ଠୀ ତତ୍, ମନସ୍+ବିଚ୍ଛେଦ )—ମନାନ୍ତର
Manobichchheda —Ill-feeling; estrangement

ମନୋବିଜ୍ଞାନ—ସଂ ବି ( ଆଧୁନିକ ବ୍ୟବହାର, ମ. ପ. ରେ. ମନ· Manobijñāna ସମ୍ବନ୍ଧୀୟ ବିଜ୍ଞାନ )—ଯେଉଁ ବିଜ୍ଞାନଶାସ୍ତ୍ରଦ୍ୱାରା ମନୋବୃତ୍ତିମାନଙ୍କ ସମ୍ବନ୍ଧେ ଜ୍ଞାନ ଜନ୍ମେ—Psychology.

ମନୋବିବାଦ—ସଂ. ବି ( ୬ଷ୍ଠୀ ତତ୍; ମନସ୍+ବିବାଦ )—ମନୋ-
Manobibāda ମାଳିନ୍ୟ; ଦୁଇଜଣଙ୍କର ମନର ଅମେଳ; ମନାନ୍ତର —Disagreement; ill-felling; bad blood; estrangement; difference of opinion between two persons.

ମନୋବୃତ୍ତି—ସଂ. ବି ( ୬ଷ୍ଠୀ ତତ୍; ମନସ୍+ବୃତ୍ତି )—୧ । ଚିନ୍ତା—
Manobrutti 1. Thought. ୨ । ସ୍ମରଣ, ମନନ, ଅନୁଧ୍ୟାନାଦି ମାନସିକ ବୃତ୍ତି ବା ମନର କାର୍ଯ୍ୟମାନ—2. The operations of the mind, such as memory, thinking, attention etc. ଗ୍ରା଼ଦେ. ( ଗଞ୍ଜାମ ) ବି—ସମ୍ପତ୍ତିରେ ଅଧିକାର ବା ସ୍ୱତ୍ୱ ନ ଥିବା ବ୍ୟକ୍ତିର ଭରଣପୋଷଣାର୍ଥ ନିର୍ଦ୍ଧାରିତ ଦେୟ—A grant for the maintenance of a person who has no title to a property.

ମନୋବେଗ—ସଂ. ବି ( ୬ଷ୍ଠୀ ତତ୍, ମନସ୍+ବେଗ )—୧ । ମନର
Manobega ବେଗ ବା ଚଞ୍ଚଳତା—1. Velocity of the thought. ୨ । ମନ ପରି ଚଞ୍ଚଳ ଗତି—2. Swiftness like that of the mind. ୩ । ମନୋଦ୍ୱେଗ, ଚିତ୍ତଚାଞ୍ଚଲ୍ୟ—3. Mental anxiety. ୪ । ମନୋବିକାର ( ଦେଖ )—4. Manobikāra ( See )

ମନୋବେଦନା—ସଂ. ବି ( ୬ଷ୍ଠୀ ତତ୍, ମନସ୍+ବେଦନା )—୧ ।
Manobedanā ମାନସିକ ଯାତନା—1. Mental affliction; (ମନୋବ୍ୟଥା—ଅନ୍ୟରୂପ) mental agony. ୨ । ଅନ୍ତରର ଦୁଃଖ; ମନୋଦୁଃଖ—2. Sadness of the heart; melancholy.

ମନୋଭଙ୍ଗ—ଦେ. ବି ( ୬ଷ୍ଠୀ ତତ୍, ମନସ୍+ଭଙ୍ଗ )—୧ । ମନୋ
Manobhanga ଦୁଃଖ—1. Dejection ୨ । ଆଶାର ଭଙ୍ଗ —2. Disappointment.

ମନୋଭବ—ସଂ. ବି ( ମନସ୍+ଭୂ ଧାତୁ+କର୍ତ୍ତୃ. ଅ )—ମନସିଜ,
Manobhaba କାମ, କନ୍ଦର୍ପ—Cupid. ସଂ. ବିଣ—ମନରୁ ଜାତ—Born of the mind.

ମନୋଭାବ—ସଂ. ବି ( ୬ଷ୍ଠୀ ତତ୍, ମନସ୍+ଭାବ)—ମନୋଗତ ଭାବ,
Manobhāba ଅନ୍ତରର ଇଚ୍ଛା—Intention; what is uppermost in one's thoughts or mind.

ମନୋଭିଲଷିତ—ସଂ. ବିଣ ( ୭ମୀ ତତ୍, ମନସ୍+ଅଭିଲଷିତ )—
Manobhilashita ମନୋଭୀଷ୍ଟ; ଇପ୍ସିତ—Wished-for; desired. ସଂ. ବି—ମନୋଭିଲାଷ ( ଦେଖ )—Manobhilāsha ( See )

ମନୋଭିଲାଷ—ସଂ. ବି ( ୬ଷ୍ଠୀ ତତ୍, ମନସ୍+ଅଭିଲାଷ )—
Manobhilāsha ମନସ୍କାମନା—Heart's desire.

ମନୋଭୀଷ୍ଟ—ସଂ. ବିଣ ( ୭ମୀ ତତ୍, ମନସ୍+ଅଭୀଷ୍ଟ )—ଇପ୍ସିତ—
Manobhishta Wished-for; desired; longed for. ସଂ. ବି ( ୬ଷ୍ଠୀ ତତ୍ )—ମନୋବାଞ୍ଛା; ମନସ୍କାମନା; ମନୋରଥ—One's cherished desire; longing of the heart.

ମନୋଭୀଷ୍ଟ ଫଳ—ସଂ. ବି (କର୍ମଧା, ମନୋଭୀଷ୍ଟ+ଫଳ)—ଯେଉଁ ଫଳ
Manobhishta phala ପାଇବାକୁ ମନୁଷ୍ୟ ବାଞ୍ଛା କରିଥାଏ—The fruits of one's desires.

ମନୋଭୀଷ୍ଟ ଫଳପ୍ରଦ—ସଂ. ବିଣ (ମନୋଭୀଷ୍ଟ ଫଳ+ପ୍ର+ଦା. ଧାତୁ+
Manobhishta phalaprada କର୍ତ୍ତୃ. ଅ)—ଯେ ମନୋବାଞ୍ଛା [ମନୋଭୀଷ୍ଟଫଳପ୍ରଦା—ସ୍ତ୍ରୀ] ଅନୁସାରେ ଫଳ ଦେଇପାରେ—Capable of granting one's desires.

ମନୋଭୀଷ୍ଟଫଳ ପ୍ରାପ୍ତି—ସଂ. ବି (୬ଷ୍ଠୀ ତତ୍; ମନୋଭୀଷ୍ଟ ଫଳ+
Manobhishta phala prāpti ପ୍ରାପ୍ତି )—ମନୋବାଞ୍ଛାର
ମନୋଭୀଷ୍ଟ ଫଳଲାଭ, ମନୋଭୀଷ୍ଟ ସିଦ୍ଧି } ଅନ୍ୟରୂପ ପୂରଣ; ମନରେ ଥାଇଥିବା ଫଳ ପାଇବା—The fulfilment or attainment of one's desires; the realisation of one's desires.

ମନୋଭୂ—ସଂ. ବି ( ମନସ୍+ଭୂ. ଧାତୁ+କର୍ତ୍ତୃ. କ୍ୱିପ୍ )—ମନସିଜ;
Manobhū ମନୋଭବ; ମଦନ; କାମ—Cupid.
[ମନୋମଥନ, ମନୋଯୋନି—ଅନ୍ୟରୂପ]

ମନୋମତ—ସଂ. ବିଣ ( ମନସ୍+ମତ)—ଇଚ୍ଛାନୁରୂପ; ବାଞ୍ଛାନୁରୂପ—
Manomata To one's liking; agreeable to one's mind; suiting one's fancy.

ମନୋମଦ—ସଂ. ବି (୬ଷ୍ଠୀ ତତ୍, ମନସ୍+ମଦ)—ମନର ଅହଙ୍କାର—
Manomada Pride felt in one's mind.

ମନୋମୟ—ସଂ. ବିଣ (ମନସ୍+ମୟ)—ମାନସିକ—
Manomaya Mental.

ମନୋମୟ କୋଷ—ସଂ. ବି—(ବେଦାନ୍ତଦର୍ଶନ) ମନୁଷ୍ୟର ଆତ୍ମାର
Manomaya kosha ଆବରଣରୂପେ ଆତ୍ମାକୁ ବେଢ଼ି ରହିଥିବା ୫ ଗୋଟି କୋଷ ବା ଖୋଳ ମଧ୍ୟରୁ ୨ୟ କୋଷ—The 2nd of the 5 sheaths said to envelop the soul of man (in Bedānta philosophy).

ମନୋମାଳିନ୍ୟ—ସଂ. ବି (୬ଷ୍ଠୀ ତତ୍; ମନସ୍+ମାଳିନ୍ୟ)—୨ ଜଣଙ୍କ
Manomālinya ମଧ୍ୟରେ ଅନ୍ତରର ଅମେଳ; ମନାନ୍ତର—Ill-feeling; disagreement; bad blood, estrangement.

**ମନୋମୁଗ୍ଧକର**—ସଂ. ବଣ (ମନସ୍+ମୁଗ୍ଧ+କୃ. ଧାତୁ+କର୍ତ୍ତୃ.ଅ)—
Manomugdhakara ଯେ ବା ଯାହା ମନକୁ ମୋହିତ କରେ-
[ମନୋମୁଗ୍ଧକରୀ—ସ୍ତ୍ରୀ] Enchanting; captivating; en-
(ମନୋମୁଗ୍ଧକାରୀ—ଅନ୍ୟରୂପ) thralling the mind.

**ମନୋମୋହନ**—ସଂ. ବଣ (୬ଷ୍ଠୀ ତତ୍; ମନସ୍+ମୋହନ)—
Manomohana ମନୋହର; ମନୋମୁଗ୍ଧକର; ଅତିବ ରମଣୀୟ—
[ମନୋଭିରାମ—ଅନ୍ୟରୂପ] Enchanting; fascinating.
(ମନୋମୋହିନୀ—ସ୍ତ୍ରୀ) [ଦୃ—ତପ ଫଳେ ଯେଉଁ ହୋଇଛ ଏ ବିଶ୍ୱମୋହନ-ମନମୋହିନୀ । ରାଧାନାଥ, ଯଯାତି ।]

**ମନୋଯାୟୀ**—ସଂ. ବଣ. ପୁଂ (ମନସ୍+ଯା. ଧାତୁ+କର୍ତ୍ତୃ. ଇନ୍; ୧ମା. Manojāyi ୧ବ)—ମନ ପରି ବେଗଶାଳୀ—As swift as
[ମନୋଯାୟିନୀ—ସ୍ତ୍ରୀ] thought.

**ମନୋଯୋଗ**—ସଂ. ବ (୬ଷ୍ଠୀ ତତ୍, ମନସ୍+ଯୋଗ)—ମନଃସଂଯୋଗ;
Manojoga କୌଣସି ବିଷୟ ପ୍ରତି ମନ ଦେବା; ଅଭିନିବେଶ—
[ଅମନୋଯୋଗ—ବିପରୀତ] Attention; concentration of one's mind to a particular matter.
(ମନୋନିବେଶ, ମନୋଭିନିବେଶ—ଅନ୍ୟରୂପ)

**ମନୋଯୋଗ ଆକର୍ଷଣ କରିବା**—ଦେ. କ୍ରି (ସଂ. ମନୋଯୋଗ+
Manojoga ākarshaṇa karibā ଆକର୍ଷଣ+କୃ. ଧାତୁ)—
मनोयोग आकर्षण करा କୌଣସି ବିଷୟ ପ୍ରତି କୌଣସି ବ୍ୟକ୍ତିର
**मनोयोग आकर्षण करना** ଦୃଷ୍ଟିକୁ ଆକର୍ଷଣ କରିବା—To draw a person's attention to any matter.

**ମନୋଯୋଗ କରିବା**—ଦେ. କ୍ରି (ସଂ. ମନୋଯୋଗ+କୃ. ଧାତୁ)—
Manojoga karibā କୌଣସି ବିଷୟ ପ୍ରତି ମନ ଦେବା; ମନ
मनोयोग देओया **मनोयोगदेना** ଲଗାଇବା—To closely
(ମନୋଯୋଗ ଦେବା—ଅନ୍ୟରୂପ) attend to a thing.

**ମନୋଯୋଗୀ**—ସଂ. ବଣ. ପୁଂ (ମନୋଯୋଗ+ଇନ୍, ୧ମା. ୧ବ)—
Manojogi କୌଣସି ବିଷୟ ପ୍ରତି ଅଭିନିବେଶକାରୀ—
(ମନୋଯୋଗିନୀ—ସ୍ତ୍ରୀ) Attentive.
(ଅମନୋଯୋଗୀ—ବିପରୀତ)

**ମନୋରଞ୍ଜକ**—ସଂ. ବଣ. ପୁଂ (ମନସ୍+ରନ୍ଜ୍. ଧାତୁ+କର୍ତ୍ତୃ. ଅକ)—
Manorañjaka ୧। ଚିତ୍ତର ତୁଷ୍ଟିବିଧାୟକ—1. Pleasing;
(ମନୋରଞ୍ଜିକା—ସ୍ତ୍ରୀ) amusing. ୨। ଚିତ୍ତର ମୁଗ୍ଧତା ସମ୍ପାଦକ—2. Enchanting.

**ମନୋରଞ୍ଜନ**—ସଂ. ବ—୧। ଚିତ୍ତର ସନ୍ତୋଷ ସାଧନ—1. Grati-
Manorañjana fication of mind; entertainment; diversion. ୨। ଚିତ୍ତର ମୁଗ୍ଧତା ସମ୍ପାଦନ—
2. Enchantment. ଦେ. ବଣ—ମନୋରଞ୍ଜକ; ଆନନ୍ଦଦାୟକ—Gratifying; entertaining; charming; enchanting.

**ମନୋରଞ୍ଜୀ**—ସ. ବଣ. ପୁଂ (ମନସ୍+ରନ୍ଜ୍ ଧାତୁ+ଇନ୍; ୧ମା. ୧ବ)-
Manorañji ମନୋରଞ୍ଜକ; ମନୋମୋହନ—Gratifying.
(ମନୋରଞ୍ଜିନୀ—ସ୍ତ୍ରୀ)

**ମନୋରଥ**—ସ. ବ (ମନସ୍+ରଥ; ୬ଷ୍ଠୀ ତତ୍)—୧। ମନର ବାଞ୍ଛା
Manoratha ବା ଅଭିଳାଷ; ମନସ୍କାମନା—1. Desire.
୨। ଅଭିଳଷିତ ବସ୍ତୁ—2. The desired object.

**ମନୋରଥ ଗତି**—ସ. ବ (ମ. ପ. ଲୋ; ମନୋରଥାନୁରୂପ ଗତି)—
Manorath gati ୧। ଯଥେଚ୍ଛା ଗମନ ଶକ୍ତି—1. The power of moving according to one's free will; freedom of movement. ୨। (୬ଷ୍ଠୀ ତତ୍) ମନର ଅଭିଳାଷର ଗତି—2. The movement of one's desires; ambition.
ସ. ବଣ (ବହୁବ୍ରୀହି)—ମନ ପରି ଦ୍ରୁତଗାମୀ—
As swift as thought.

**ମନୋରଥ ଦ୍ୱାଦଶୀ**—ସ. ବ—ଚୈତ୍ର ଶୁକ୍ଳ ଦ୍ୱାଦଶୀ ଓ ସେ ଦିନ
Manoratha dwādaśi ଅନୁଷ୍ଠେୟ ବ୍ରତ—The 12th day of the bright fortnight of Chaitra and a religious fast observed that day.

**ମନୋରଥ ଦ୍ୱିତୀୟା**—ସ. ବ—ଆଷାଢ଼ ଶୁକ୍ଳ ଦ୍ୱିତୀୟା; ଜଗନ୍ନାଥ ମହା-
Manoratha dwitiyā ପ୍ରଭୁଙ୍କର ରଥ ଯାତ୍ରା ବା ଗୁଣ୍ଡିଚା ଯାତ୍ରା—The 2nd day of the bright fortnight of Āshārdha; the day of the Puri car-festival.

**ମନୋରଥ ସିଦ୍ଧି**—ସ. ବ—ମନୋବାଞ୍ଛାର ସାଫଲ୍ୟ—The fulfil-
Manoratha siddhi ment or realisation of one's desires.

**ମନୋରମ**—ସ. ବଣ (ମନସ୍+ରମ୍ ଧାତୁ ଣିଚ୍, ରମି ଧାତୁ=ଆନନ୍ଦିତ
Manorama କରିବା+କର୍ତ୍ତୃ. ଅ)—ମନୋଜ୍ଞ; ମନୋହର;
(ମନୋରମା—ଅନ୍ୟରୂପ) ମନୋମୁଗ୍ଧକର; ସୁନ୍ଦର—Pleasing; charming; beautiful ଦେ. ବ (ପ୍ରାଚୀନ ପଦ୍ୟ)—
ସୌନ୍ଦର୍ଯ୍ୟ; ଶୋଭା—Beauty. [ଦୃ—ବର୍ଣ୍ଣିମାଯୁ ନୋହିଲା ତହିଁର ମନୋରମ । ଭଞ୍ଜ. ବୈଦେହୀଶ ବିଳାସ ।]

**ମନୋରମା**—ସ. ବଣ. ସ୍ତ୍ରୀ—ମନୋରମର ସ୍ତ୍ରୀଲିଙ୍ଗ—Feminine of
Manoramā Manorama. ସ. ବଣ. ସ୍ତ୍ରୀ—୧। କାର୍ତ୍ତ-ବୀର୍ଯ୍ୟାର୍ଜୁନଙ୍କର ଧର୍ମପରାୟଣା ପତିବ୍ରତା ମହିଷୀ—
1. Name of the pious wife of king Kārttabirjyārjuna. [ଦୃ—ପରଶୁରାମଙ୍କ ସଙ୍ଗେ ଯୁଦ୍ଧ ନ କରିବାକୁ ଏ ଏହାଙ୍କ ସ୍ୱାମୀଙ୍କୁ ବିଶେଷ ଅନୁରୋଧ କରିଥିଲେ; କିନ୍ତୁ ଏହା କ୍ଷତ୍ରିୟୋଚିତ କାର୍ଯ୍ୟ ହେବ ନାହିଁ ବୋଲି ସ୍ୱାମୀ କହିବାରୁ ପତିଙ୍କର ପରାଜୟ ଓ ମୃତ୍ୟୁ ଅବଶ୍ୟମ୍ଭାବୀ ବୋଲି ବୁଝିପାରି ଏ ସ୍ୱାମୀଙ୍କ ନିଧନ ପୂର୍ବରୁ ଯୋଗାବଲମ୍ବନପୂର୍ବକ ତନୁ ତ୍ୟାଗ କରିଥିଲେ ।] ୨। ପ୍ରଜାପତି ରୁଚିଙ୍କର ସ୍ତ୍ରୀ ଓ ରୌଚ୍ୟ ମନୁଙ୍କର ମାତା—2. Name of the wife of 'Ruchi' one of the progenitors of mankind. [ଦୃ—ବରୁଣ ପୁତ୍ର ପୁଷ୍କରଙ୍କ ଔରସରେ ପ୍ରମ୍ଲୋଚା ନାମ୍ନୀ ଅପ୍ସରା ଗର୍ଭରୁ ଏହାଙ୍କର ଜନ୍ମ ।]

୩ । ବୌଦ୍ଧମାନଙ୍କର ଉପାସ୍ୟ ଦେବତାବିଶେଷ—3. Name of a Buddhist Goddess. ୪ । ଦଶାକ୍ଷର ଛନ୍ଦୋବିଶେଷ—4. Name of a metre of 10 letter. [ଦ୍ର—ଏଥିର ପ୍ରଥମ, ଦ୍ୱିତୀୟ, ତୃତୀୟ, ସପ୍ତମ ଓ ନବମ ବର୍ଣ୍ଣ ଲଘୁ ଓ ଅନ୍ୟ ସମସ୍ତ ବର୍ଣ୍ଣ ଗୁରୁ—ହି. ଶବ୍ଦସାଗର ।] ୫ । ଗୋରୋଚନା—5. A yellow pigment obtained from the body of dead cows. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to females.

**ମନୋରମ୍ୟ**—ଦେ. ବିଣ ( ସଂ. ମନୋରମ )—ରମଣୀୟ; ମନୋମୁଗ୍ଧକର; ମନୋହର—Beautiful; charming.
Manoramya
( ମନୋରମ୍ୟା—ସ୍ତ୍ରୀ )

**ମନୋରାଜ୍ୟ**—ସଂ. ବି (ରୂପକ କର୍ମଧା; ମନସ୍+ରାଜ୍ୟ)—ଅଲ୍ଙ୍କାରଣରୂପ ରାଜ୍ୟ; ରାଜ୍ୟ ସଙ୍ଗେ ତୁଳନା କରାଯିବା ମନ; ହୃଦୟରାଜ୍ୟ—The mind or heart (compared to a kingdom).
Manorājya

**ମନୋଲୁବ୍ଧକ**—ସଂ. ବିଣ ( ମନସ+ଲୁବ୍ଧ+କ )—ଯାହା ପ୍ରତି ମନରେ ଲୋଭ ଜାତ ହୁଏ; ମନର ଲୋଭଜନକ; ମନୋହର—That which causes a hankering after it; fascinating.
Manolubdhaka
ମନଲୋଭା, ମନୋଲୋଭା } ଦେଶଜରୂପ
( ମନୋଲୁବ୍ଧକା—ସ୍ତ୍ରୀ )

**ମନୋହର**—ସଂ.ବିଣ (ମନସ୍+ହୃ ଧାତୁ=ହରଣ କରିବା+କର୍ତ୍ତୃ.ଅ)—କମନୀୟ; ଚିତ୍ତାକର୍ଷକ; ସୁନ୍ଦର—Enchanting; charming; lovely; beautiful; graceful; fascinating; captivating. ଦେ. ବି—୧ । ଲିଆକୁ ଚୂନା କରି ଗୁଡ଼ରେ ପାଗ କରି ତିଆରି କରାଯିବା ମୁଆଁ—1. Balls made of powdered fried paddy seasoned with molasses. [ ଦ୍ର—ଶାଶୁଘରକୁ ଯିବାବେଳେ ବୋଝଭାରରେ ଏହାକୁ ଝିଅଙ୍କ ସଙ୍ଗରେ ପଠାଯାଏ । ]
Manohara
(ମନୋହରତା[ତ୍ୱ]—ବିଶେଷ୍ୟ)
( ମନୋହରା—ସ୍ତ୍ରୀ )

**ମନୋହରା ଲଡ୍ଡୁ, ଲାଡୁ** ୨ । ଏକପ୍ରକାର ମିଠାଇ—2. A kind of sweetmeat.

**ମନୋହରଣ**—ସଂ. ବି ( ୬ଷ୍ଠୀ ତତ୍;ମନସ୍+ହରଣ)—୧ । ଚିତ୍ତାକର୍ଷଣ; ମନକୁ ମୁଗ୍ଧ କରିବା—1. Fascinating the mind; attracting a person's mind or heart. ୨। ମନରେ ଅନୁରାଗ ଉତ୍ପାଦନ—2. Sowing the seeds of love or attachment in the mind of a person.
Manoharaṇa

**ମନୋ(ନୁ)ହର ଫାସିଆରା ପାଲା**—ଦେ.ବି—ସତ୍ୟପୀର ବା ସତ୍ୟନାରାୟଣ ପାଲାର ଗୋଟିଏ ଗଳ୍ପ—One of the stories of the Satyapira Deity. [ଦ୍ର—ଏହି ଗଳ୍ପରେ ବର୍ଣ୍ଣିତ ହୋଇଅଛି ଯେ ମନୋହର ଫାସିଆରା ନାମକ ଜଣେ ଡକାଇତ ସତ୍ୟନାରାୟଣଙ୍କର ଜଣେ ବିଦେଶାଗତ ଭକ୍ତକୁ କୌଶଳକ୍ରମେ ଅପଣାର ଘରକୁ ଫସ୍ଲାଇ ନେଇ ଅର୍ଦ୍ଧ ରାତ୍ରର କନ୍ୟାଦ୍ୱାରା ପ୍ରଣୟମୁଗ୍ଧ କରାଇ ପଥିକକୁ ମାରି ପକାଇବାକୁ ବସିଥିଲା; କିନ୍ତୁ ସତ୍ୟପୀର ପ୍ରଭୁଙ୍କ ଦୟାରୁ ଉକ୍ତ ଡକାଇତର ଝିଅ ରଙ୍ଗଲତା ଉକ୍ତ ବିଦେଶାଗତ ବ୍ୟକ୍ତିର ରୂପରେ ମୁଗ୍ଧା ହୋଇ ତାହାଠାରେ ଦେହ ପ୍ରଣୟରେ ଆସକ୍ତା ହୋଇ ତାକୁ ସ୍ୱୀୟ ପିତାର ଚକ୍ରାନ୍ତରୁ ରକ୍ଷା କଲା । ]
Mano(nu)hara phāsiārā pālā

**ମନୋହରା**—ସଂ. ବି. ସ୍ତ୍ରୀ ( ମନୋହର+ସ୍ତ୍ରୀ. ଆ )—୧ । ଯୁଥିକା; ଯୁଈଫୁଲ—1. A kind of small jasmine. ୨ । ଜାତିପୁଷ୍ପ; ଜାଈଫୁଲ—2. Another kind of jasmine. ୩ । ସୁବର୍ଣ୍ଣ—3. Gold.
Manoharā

**ମନୋହରି**—ବେଦେ. ବି—ମନିଆରି (ଦେଖ)—Maniāri ( See ) ପ୍ରାଦେ. ( ବାଲେଶ୍ୱର ) ବି—ସାମୁଦ୍ରିକ କ୍ଷୁଦ୍ର ମତ୍ସ୍ୟବିଶେଷ—A kind of small seafish. [ ଦ୍ର—ଏହା ଦେଖିବାକୁ କେଉଣ୍ଟି ମାଛ ପରି । ]
Manohari
मनिहारी
मनिहारी

**ମନୋହର୍ତ୍ତା**—ସଂ. ବିଣ. ପୁଂ ( ମନସ୍+ହର୍ତ୍ତୃ, ୧ମା, ୧ବ )—ଚିତ୍ତାକର୍ଷକ—Fascinating.
Manoharttā (ମନୋହର୍ତ୍ତ୍ରୀ—ସ୍ତ୍ରୀ)

**ମନୋହାରିତା(ତ୍ୱ)**—ସଂ. ବି (ମନୋହାରିନ୍+ତା, ତ୍ୱ)—ସୌନ୍ଦର୍ଯ୍ୟ—Loveliness; charm.
Manohāritā(twa)

**ମନୋହାରୀ**—ସଂ. ବିଣ. ପୁଂ ( ମନସ୍+ହୃ ଧାତୁ+କର୍ତ୍ତୃ. ଇନ୍, ୧ମା, ୧ବ.)—ଚିତ୍ତାକର୍ଷକ—Fascinating; attractive. ଦେ. ବି (ସଂ ମନୋହାରିନ୍)—୧ । (ପୁଂ) ପ୍ରେମିକ—1. (a female's) Lover. [ ଉ—ନବମାଳ ପ୍ରେର ଶ୍ରୀଅଳା ମନୋହାରୀ—କୃଷ୍ଣସିଂହ. ମହାଭାରତ, ଆଦି । ] ୨ । (ସ୍ତ୍ରୀ; ସଂ. ମନୋହାରିଣୀ) ପତ୍ନୀ; ଭାର୍ଯ୍ୟା—2. Wife. ( ଉ—ଉଦ୍ବେଗ ମନେ ଧରି ନଳ-ମନୋହାରୀ, ସେଠାରୁ ଗଲେ ଯୌବନାଶ୍ୱକୁ ବାହୁଡ଼ି—କୃଷ୍ଣସିଂହ. ମହାଭାରତ. ଆଦି ।)
Manohārī
ମନୋହାରିଣୀ, ମନୋହାରିଣୀ } ସ୍ତ୍ରୀ
( ମନୋହାରୀ—ଅନ୍ୟରୂପ )

**ମନୋହ୍ୱା**—ସଂ. ବି (ମନସ୍+ହ୍ୱେ. ଧାତୁ+କର୍ମ. ଅ+ଆ)—ମନଃଶିଳା (ହି. ଶ)—Red arsenic.
Manohwā

**ମନ୍ତ**—ଦେ. ବିଣ. ପ୍ରତ୍ୟୟ ପୁଂ. (ସଂ. ମତ୍ ପ୍ରତ୍ୟୟର ଅପଭ୍ରଂଶ; ଯଥା—ଗୁଣମନ୍ତ, ଧନମନ୍ତ, ବୁଦ୍ଧିମନ୍ତ) ଯାହାର ଅଛି—A suffix which is a variation of the Sanskrit suffix 'Mat'. ଦେ. ଅ. ପ୍ରତ୍ୟୟ—(ସର୍ବନାମ ସଙ୍ଗେ ଯୁକ୍ତ; ଯଥା—ଏମନ୍ତ, କେମନ୍ତ, ତେମନ୍ତ ) ପରି; ପ୍ରକାରେ—(An affix added to pronouns meaning) Like; in (such) a manner.
Manta
मंत
मन्त
(ମନ୍ତୀ—ସ୍ତ୍ରୀ)

**ମନ୍ତବ୍ୟ**—ସଂ.ବିଣ (ମନ୍.ଧାତୁ+କର୍ମ ତବ୍ୟ)—୧ । ମନନୀୟ;କଳ୍ପନୀୟ—1. Conceivable. ୨ । ବିଚାର୍ଯ୍ୟ; ଚିନ୍ତନୀୟ—2. Thinkable. ୩ । ବିବେଚନା ଯୋଗ୍ୟ—3. Fit to be considered. ୪ । ମାନନୀୟ (ହି. ଶ)—4. Respectable. ଦେ. ବି—୧ । ଅଭିମତ—1. Remark. ୨ । ପ୍ରକାଶିତ ଅଭିପ୍ରାୟ—2. Expressed intention. ୩ । ମତ—3. Opinion.
Mantabya
मंतव्य
मन्तव्य

ମନ୍ତବ୍ୟ କ(କା)ଲମ୍—ଦେ. ବି (ମନ୍ତବ୍ୟ+ଇଂ. କଲମ; କଡ଼ଉଆ)—
Mantabya ka(kā)lam କାଗଜର ବା ଫାରମର ଯେଉଁ
ମନ୍তব্য কলম ଅଲେଖା ସ୍ତମ୍ଭ ମନ୍ତବ୍ୟ ଲେଖାଯିବା ପାଇଁ ଛଡ଼ାଯାଇ
मन्तव्य कलम ଥାଏ—A column of space left or
[ମନ୍ତବ୍ୟ ଘର(ର)—ଅନ୍ୟରୂପ] intended for the endorsement of remarks or opinions; the remarks-column of a form or statement.

ମନ୍ତବ୍ୟ ଦେବା—ଦେ. କ୍ରି—ଅଭିମତ ପ୍ରକାଶ କରିବା—
Mantabya debā To give an opinion.
মন্তব্য দেওয়া मन्तव्य देना

ମନ୍ତବ୍ୟ ପ୍ରକାଶ—ଦେ. ବି (ଆଧୁନିକ)—ଆପଣାର ଅଭିପ୍ରାୟର ବ୍ୟକ୍ତୀ-
Mantabya prakās କରଣ—Passing of a remark.
মন্তব্য প্রকাশ मन्तव्यप्रकाश

ମନ୍ତବ୍ୟ ଲିପି—ଦେ. ବି—ଅଭିମତ ପ୍ରକାଶକ ଲେଖା—A writing
Mantabya lipi embodying a person's opinion.
মন্তব্য লিপি मन्तव्य लेख (ମନ୍ତବ୍ୟଲେଖ—ଅନ୍ୟରୂପ)

ମନ୍ତବ୍ୟ ସ୍ତମ୍ଭ—ସଂ. ବି—(ଆଧୁନିକ ପ୍ରୟୋଗ)—ମନ୍ତବ୍ୟ କଲମ୍ (ଦେଖ)
Mantabya stambha Mantabya kalam (See)

ମନ୍ତର—ଗ୍ରା. (ପଦ୍ୟ) ବି -(ସଂ.ମନ୍ତ୍ର)—ମନ୍ତ୍ର(ଦେଖ)—Mantra (See)
Mantara মন্তর मन्तर [ ଦ୍ର—ମନ୍ତର ଦେଇ ଅନ୍ତର ଚଳ ଧ୍ୱଂସ । ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।]

ମନ୍ତର କରିବା—ଦେ. କ୍ରି—(ସଂ ମନ୍ତ୍ର+କୃ ଧାତୁ)—ମନ୍ତ୍ର କରିବା
Mantara karibā (ଦେଖ)—Mantra karibā (See)
মন্তর করা टोना मन्तर करना

ମନ୍ତର ଘି(ଘେ)ନିବା—ଗ୍ରା, କ୍ରି—(ସଂ. ମନ୍ତ୍ର+ଗ୍ରହଣ)—ମନ୍ତ୍ର ଗ୍ରହଣ
Mantara ghi (ghe)nibā କରିବା (ଦେଖ)—Mantra
মন্ত্র লওয়া मन्तर लेना grahaṇa karibā (See)
(ମନ୍ତର ନେବା—ଅନ୍ୟରୂପ)

ମନ୍ତର ଦେବା—ଗ୍ରା. କ୍ରି—(ସଂ. ମନ୍ତ୍ର+ଦା ଧାତୁ)—ମନ୍ତ୍ର ଦେବା
Mantara debā (ଦେଖ)—Mantra debā (See)
মন্ত্র দেওয়া मन्तर देना

ମନ୍ତର ଯନ୍ତର—ଗ୍ରା. ବି—(ସଂ. ମନ୍ତ୍ର+ଯନ୍ତ୍ର)—ମନ୍ତ୍ର ଯନ୍ତ୍ର (ଦେଖ)
Mantara jantara Mantra jantra (See)
যন্ত্র মন্ত্র मन्तर यन्तर

ମନ୍ତା—ସଂ ବଣ.ପୁଂ (ମନ୍ ଧାତୁ+କର୍ତ୍ତୃ ତୃ;୧ମା.୧ବ)—୧ । ମନନକାରୀ;
Mantā ଅନୁଚିନ୍ତନକାରୀ—1. Contemplating. ୨ ।
(ମନ୍ତ୍ରୀ—ସ୍ତ୍ରୀ) ମନ୍ତ୍ରଣାଦାତା; ମନ୍ତ୍ରୀ—2. Councillor; counsellor; advisor;

ମନ୍ତା(ନ୍ଥା)ରୀ(ଡ଼ୀ)—ଦେ. ବି—ମନ୍ଥରୀ (ଦେଖ)
Mantā(nthā)rī(ṛḍī) Mantharī (See)

ମନ୍ତି(ନ୍ତେ)—ଦେ. ଅ. ପ୍ରତ୍ୟୟ (ସର୍ବନାମ ସଙ୍ଗେ ଲାଗେ ଯଥା—
Manti [nte] ଏମନ୍ତି, ଏମନ୍ତେ; ସେମନ୍ତି, ସେମନ୍ତେ; କେମନ୍ତି,
মত, মতন କେମନ୍ତେ; ଯେମନ୍ତି, ଯେମନ୍ତେ)—ପ୍ରକାରେ—
सा Like.

ମନ୍ତିକା—ଦେ. ବିଣ ଓ ଅ—ପ୍ରକାରର—Of ( any ) kind. [ଦ୍ର—
Mantikā ସର୍ବନାମ ସଙ୍ଗେ ଯୁକ୍ତ । ଯଥା—ଏମନ୍ତିକା=ଏ
মতন सा ପ୍ରକାରର । ] ( ଯଥା—ମତେ ଏମନ୍ତିକା କଥା
(ମନ୍ତିକଆ—ଅନ୍ୟରୂପ) ଆସେ ନାହିଁ । )

ମନ୍ତିରି—ଗ୍ରା· ବି ( ସଂ. ମନ୍ତ୍ରୀ )—ମନ୍ତ୍ରୀ ( ଦେଖ )
Mantirī মন্ত্রী मन्तरी Mantrī ( See )

ମନ୍ତୁ—ସଂ. ବି ( ମନ ଧାତୁ+କର୍ତ୍ତୃ. ତୁ )—୧ । ମନୁଷ୍ୟ—1. Man.
Mantu ୨ । ରାଜା—2. King. ୩ । ପ୍ରଜାପତି—
3. The primordial progenitor of mankind. ୪ । ( +ଭାବ· ତୁ ) ଈର୍ଷା—4. Envy; spite; rancour. ୫ । କୋପ—5. Anger.
୬ । ( +କର୍ମ. ତୁ ) ଅପରାଧ—6. Fault; crime.

ମନ୍ତୁରା—ଦେ. ବି ( ସଂ. ମନ୍ତ୍ରଣ )—ଅଭିମନ୍ତ୍ରଣ—Act of consecra-
Manturā itng a thing by reciting mystic
পড়া पढ़ना incantations. ଦେ· ବିଣ—ଅଭିମନ୍ତ୍ରିତ—
পড়া पढ़ाहुआ Consecrated by the recital of mystic incantation.

ମନ୍ତୁରା(ରେ)ଇବା—ଦେ. କ୍ରି ( ସଂ. ମନ୍ତ୍ରଣ )—ଅଭିମନ୍ତ୍ରଣ କରିବା;
Manturā(re)ibā ମନ୍ତ୍ର ପଢ଼ି କୌଣସି ଦ୍ରବ୍ୟକୁ ଫୁଙ୍କିବା—
মন্ত্রিতকরা; মন্ত্রান To consecrate a thing by
मन्तराना uttering mystic formulas over it.
(ମନ୍ତୁରବା—ଅନ୍ୟରୂପ) [ଦ୍ର—ମନ୍ତ୍ରପାଠ କରି ଧୂଳ, ଲୁଣ ଓ ଜଳ-
ଆଦିକୁ ମନ୍ତୁରାଇବାକୁ ହୁଏ । ଏପରି କରିବାଦ୍ୱାରା ଉକ୍ତ
ଦ୍ରବ୍ୟମାନଙ୍କରେ ଅଶ୍ଚର୍ଯ୍ୟଜନକ ବା ଅସାଧାରଣ ଶକ୍ତି ପ୍ରବେଶ
କରିଲ ବୋଲି ଧରାଯାଏ । ]

ମନ୍ତ୍ର୍ (ଧାତୁ)—ସଂ—୧ । ମନ୍ତ୍ରଣା କରିବା—1. To consult; to
Mantr (root) take counsel; ୨ । ପରାମର୍ଶ ଦେବା
—2. To counsel; to give advice. ୩ ।
ବିଚାର କରିବା—3. To deliberate; to ponder.
୪ । ମନ୍ତ୍ର ଉଚ୍ଚାରଣ ବା ପ୍ରୟୋଗ ପୂର୍ବକ କୌଣସି
ବସ୍ତୁକୁ ବା ସ୍ଥାନକୁ ପବିତ୍ରୀକୃତ ବା ପ୍ରଭାବଶାଳୀ କରିବା
—4. To consecrate (a thing or place) by chanting or applying esoteric formulas; to enchant with spells or charms.
୫ । କହିବା; ଉଚ୍ଚାରଣ କରିବା—5. To speak; to mutter ( Apte ).

ମନ୍ତ୍ର—ସଂ. ବି ( ମନ୍ତ୍ର୍ ଧାତୁ+କର୍ମ. ଅ )—୧ । ବୈଦିକ ଉପାସନାରେ
Mantra ବ୍ୟବହୃତ ଦେବତାବିଶେଷଙ୍କର ଉପଯୁକ୍ତ ବାକ୍ୟ
ବା ପଦ—1. A sacred mystic text; mystic syllable or words used in the vedic worship of different Deities; incantation; mystic formula. [ ଦ୍ର—ଯାହାଦ୍ୱାରା ବିଶ୍ୱଜ୍ଞାନ
ଲାଭ ହୁଏ ଓ ସଂସାର ସାଗରରୁ ମନୁଷ୍ୟ ଉଦ୍ଧାର ପାଏ
ତାହାକୁ ମନ୍ତ୍ର ବୋଲାଯାଏ । ମନ୍ତ୍ରଦ୍ୱାରା ମନନ ଓ

ତ୍ରାଣ ଲାଭ ହୁଏ । ହିନ୍ଦୁଶାସ୍ତ୍ରରେ ପ୍ରତ୍ୟେକ ଦେବତାଙ୍କ ଉପାସନା ପାଇଁ ଓ ସ୍ୱକ ବାଞ୍ଛାପାଇଁ ଭିନ୍ନ ଭିନ୍ନ ମନ୍ତ୍ର ନିର୍ଦ୍ଦିଷ୍ଟ ଅଛି; ନିରୁକ୍ତ ଅନୁସାରେ ବୈଦିକ ମନ୍ତ୍ରକୁ ୩ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି । ଯେଉଁ ମନ୍ତ୍ରରେ ଦେବତାଙ୍କୁ ପରୋକ୍ଷଜ୍ଞାନ କରି ତାଙ୍କ ପ୍ରତି 'ସେ' ଶବ୍ଦ ପ୍ରୟୋଗ କରାଯାଏ ତାହାକୁ ପରୋକ୍ଷକୃତ, ଯହିଁରେ ଦେବତାଙ୍କୁ ପ୍ରତ୍ୟକ୍ଷ ଜ୍ଞାନ କରି ତାଙ୍କ ପ୍ରତି 'ତୁମ୍ଭେ' ଶବ୍ଦ ପ୍ରୟୋଗ କରାଯାଏ ତାହାକୁ ପ୍ରତ୍ୟକ୍ଷକୃତ; ଯହିଁରେ ନିଜଠାରେ ଦେବତାଙ୍କର ଆରୋପ କରାଯାଇ ଅଙ୍ଗନ୍ୟାସ ଓ ମୁଦ୍ରାଦିଦ୍ୱାରା ସ୍ତୁତି କରାଯାଏ ତାହାକୁ ଆଧ୍ୟାତ୍ମିକ ମନ୍ତ୍ର ବୋଲାଯାଏ । ମନ୍ତ୍ରର ବିଷୟ ପ୍ରାୟଶଃ ସ୍ତୁତି, ଆଶୀର୍ବାଦ, ଶପଥ, ଅଭିଶାପ, ପରିଦେବନା, ନିନ୍ଦା, ନିଜର ମଙ୍ଗଳକାମନା, ଶତ୍ରୁର ଅନିଷ୍ଟ କାମନା ଅଟେ । ମୀମାଂସା ଅନୁସାରେ ବେଦର ଯେଉଁ ବାକ୍ୟଦ୍ୱାରା କୌଣସି କର୍ମ କରିବାକୁ ପ୍ରେରଣା ବା ଉତ୍ସାହ ମିଳେ ତାହାକୁ ମନ୍ତ୍ର ବୋଲାଯାଏ । ମୀମାଂସାକାର ମନ୍ତ୍ରମାନଙ୍କୁ ଦେବତା ବୋଲି ମାନି ଅଛନ୍ତି ଓ ମନ୍ତ୍ର ଛଡ଼ା ଅନ୍ୟ ଦେବତା ନାହାନ୍ତି ବୋଲି କହି-ଅଛନ୍ତି । ବୈଦିକ ଗଦ୍ୟ ମନ୍ତ୍ରକୁ ଯଜୁଃ ଓ ପଦ୍ୟ ମନ୍ତ୍ରକୁ ଋକ୍ ଓ ଯେଉଁ ମନ୍ତ୍ର ଗୀତ ହୁଏ ତାକୁ ସାମନ୍ କହନ୍ତି । ତନ୍ତ୍ର ଅନୁସାରେ ଭିନ୍ନ ଭିନ୍ନ ଦେବତାଙ୍କ ପ୍ରସନ୍ନତା ଓ ଭିନ୍ନ ଭିନ୍ନ କାମନାର ସିଦ୍ଧି ପାଇଁ ଭିନ୍ନ ଭିନ୍ନ ମନ୍ତ୍ରର ପ୍ରୟୋଗ କରାଯାଏ; ବେଦର ଯେଉଁ ଅଂଶରେ ମନ୍ତ୍ରମାନ ସଂଗୃହୀତ ହୋଇଅଛି, ତାକୁ ସଂହିତା ବୋଲାଯାଏ । ଅଧିକାଂଶ ମନ୍ତ୍ରରେ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ଯୁକ୍ତ ଏକ ବା ତତୋଧିକ ଅକ୍ଷର ଥାଏ; ତାକୁ ଉକ୍ତ ମନ୍ତ୍ରର ବା ମନ୍ତ୍ରୋଦ୍ଦିଷ୍ଟ ଦେବତା-ଙ୍କର ବୀଜମନ୍ତ୍ର ବା ବୀଜ ବୋଲାଯାଏ । ସାଧାରଣତଃ ମନ୍ତ୍ରମାନ ଉଚ୍ଚାରଣ କରିବା ପୂର୍ବରୁ 'ଓଁ' ବୋଲାଯାଏ; ଯଥା—ଓଁ ନମଃ ଶିବାୟ । ]

୨ । ମନ୍ତ୍ରଣା; ଗୁପ୍ତବିଚାର; ପରାମର୍ଶ—2 Secret consultation; counsel; deliberation. ୩ । ସନ୍ଧିବିଗ୍ରହାଦି ବିଷୟକ ରାଜନୀତିକ ଗୁପ୍ତବିଚାର—3. Political consultation; policy; secret consultation regarding the administration of a state. ୪ । ବଶୀକରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନାଦି ଅଭିଚାର କର୍ମରେ ପ୍ରଯୁଜ୍ୟ ତନ୍ତ୍ରୋକ୍ତ ଭିନ୍ନ ଭିନ୍ନ ପଦମାନ—4. Spells or charms applied for the purpose of bringing persons under one's control, hypnotising or influencing the action of other people; a charm; a spell. ୫ । ରହସ୍ୟ; ଗୁପ୍ତକଥା—5. A secret. ୬ । କୌଣସି ଦେବତାଙ୍କ ଆରାଧନା ପାଇଁ ଶାସ୍ତ୍ରନିର୍ଦ୍ଦିଷ୍ଟ ବର୍ଣ୍ଣିଷ୍ଟ ପଦମାନ (ଯଥା—ନାରାୟଣ ମନ୍ତ୍ର, ଦୁର୍ଗାମନ୍ତ୍ର)—6. A formula specified for a particular Deity. ୭ । ବେଦର ଯେଉଁ ଅଂଶରେ ମନ୍ତ୍ରମାନ ସଂଗୃହୀତ ହୋଇ ଅଛି; ସଂହିତା—7. The portion of the Bedas containing the Mantras or formulas for prayers to different Deities ୮ । ଗୁପ୍ତ ବିଚାରଦ୍ୱାରା ସ୍ଥିର ଉପାୟ—8. Secret plan (Apte). ୯ । କୌଣସି କର୍ମର ମୂଳନୀତି—9. Policy (Apte). ୧୦ । ରାଜନୀତିକୁଶଳତା—10. Statesmanship (Apte). ୧୧ । ନିଜର ଇଷ୍ଟ ଦେବତାଙ୍କ ଉପାସନା ମନ୍ତ୍ର; ଯାହା ଗୁରୁଙ୍କଠାରୁ ଦୀକ୍ଷାରୂପେ ଗ୍ରହଣ କରାଯାଏ—11. Sacred formula for praying to one's particular titular Deity, which the spiritual preceptor whispers into the ears of devotee at the initiation of the latter. ୧୨ । ଭିନ୍ନ ଭିନ୍ନ ବୈଦିକ ଉପଚାର ପାଇଁ ଉଚ୍ଚାରିତ ମନ୍ତ୍ର (ଯଥା—ଧୂପମନ୍ତ୍ର, ଦୀପମନ୍ତ୍ର, ଅର୍ଘ୍ୟମନ୍ତ୍ର, ବଳମନ୍ତ୍ର, ସ୍ନାନ ମନ୍ତ୍ର)—12. Different formulas set for different vedic rituals. ଦେ. ବି—୧ । ( ଅମୁକ ହିଂସ୍ର ଜୀବର) ଉତ୍ପାତ ବା ଦଂଶନାଦିରୁ ରକ୍ଷା ପାଇବା ପାଇଁ ପ୍ରଯୁକ୍ତ ପଦ ( ଯଥା—ସାପମନ୍ତ୍ର, ବିଛାମନ୍ତ୍ର )—1. Set formula used as a charm against the attack or biting of snakes, scorpions, tigers and other animals. [ ଦ୍ର—ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ନିଯୋଜିତ ମନ୍ତ୍ରମାନଙ୍କ ପୂର୍ବରେ ତତ୍ତତ୍ ବିଷୟର ସୂଚକ ଶବ୍ଦମାନ ପ୍ରୟୋଗ କରାଯାଏ; ଯଥା—ଲୁଣମନ୍ତ୍ର, ଗାରୁଡ଼ ମନ୍ତ୍ର, ଡାହାଣୀ ଛଡ଼ା ମନ୍ତ୍ର, ରକ୍ତାଟଣା ମନ୍ତ୍ର, ସର୍ପବନ୍ଧନ ମନ୍ତ୍ର, ବିଷଝଡ଼ା ମନ୍ତ୍ର, ଚକ୍ରମନ୍ତ୍ର । ]

ମନ୍ତ୍ର କରିବା—ଦେ. କ୍ରି (ସ. ମନ୍ତ୍ର + କୃ. ଧାତୁ)—୧ । ମନ୍ତ୍ର ପ୍ରୟୋଗ Mantra karibā କରିବା—1. To apply spells or মন্ত্রকরা charm. ୨ । ମନ୍ତ୍ର ପ୍ରୟୋଗଦ୍ୱାରା ଅଭିଚାର କରିବା — যন্তরমন্তরকরনা To enchant by means of charm.

ମନ୍ତ୍ରକାର—ସ. ବି (ମନ୍ତ୍ର + କୃ. ଧାତୁ + କର୍ତ୍ତୃ. ଅ)—ମନ୍ତ୍ରର ରଚକ—Mantrakāra The composer of a Mantra.

ମନ୍ତ୍ର କୁଶଳ—ସ. ବିଣ. ପୁଂ (୭ମୀ ତତ୍)—ମନ୍ତ୍ରଣାପଟୁ; ପରାମର୍ଶ ଦାନରେ Mantra kuśala ଦକ୍ଷ—Adept in giving advice. (ମନ୍ତ୍ରକୁଶଳା—ସ୍ତ୍ରୀ) [ମନ୍ତ୍ରକୁଶଳତା—ବି]

ମନ୍ତ୍ରକୃତ୍—ସ. ବିଣ (ମନ୍ତ୍ର+କୃ. ଧାତୁ+କର୍ତ୍ତୃ. କ୍ୱିପ୍)—ମନ୍ତ୍ରର Mantrakṛut ରଚୟିତା—The composer of a Mantra. ସ. ବିଣ—୧ । ପରାମର୍ଶକାରୀ (ହି. ଶ)—1 Consulting. ୨ । ପରାମର୍ଶଦାତା (ହି. ଶ)—2. Advising; advisory. ୩ । ଦୌତ୍ୟକାରୀ (ହି. ଶ)—3. Acting as a messenger.

ମନ୍ତ୍ର ଗୁପ୍ତି—ସ. ବି (୬ଷ୍ଠୀ ତତ୍; ମନ୍ତ୍ର+ଗୁପ୍ତି)—ମନ୍ତ୍ରଣାକୁ ପ୍ରକାଶ ନ Mantra gupti କରି ମନେ ମନେ ରଖିବା—Keeping of a counsel to one's self.

ମନ୍ତ୍ର ଗୁରୁ—ସଂ. ବି (ମ. ପ. ଲୋ, ମନ୍ତ୍ରଦାତା ଗୁରୁ)—ଦୀକ୍ଷାଗୁରୁ—
Mantra guru Spiritual preceptor.

ମନ୍ତ୍ର ଗୂଢ଼—ସଂ. ବି (ବହୁବ୍ରୀହି)—ଗୁପ୍ତଚର; ଗୁଇନ୍ଦା—
Mantra gūrdha A spy.

ମନ୍ତ୍ର ଗୃହ—ସଂ. ବି (ମ. ପ. ଲୋ)—ମନ୍ତ୍ରଣାଗାର—
Mantra gruha A cabinet; a counsel chamber.
(ମନ୍ତ୍ର ଭବନ, ମନ୍ତ୍ର ପ୍ରକୋଷ୍ଠ, ମନ୍ତ୍ରଣାଗାର—ଅନ୍ୟରୂପ)

ମନ୍ତ୍ର ଗ୍ରହଣ—ସଂ. ବି (୬ଷ୍ଠୀ ତତ୍)—ଗୁରୁଙ୍କଠାରୁ ଶିଷ୍ୟର ବା ଶିଷ୍ୟାର
Mantra grahaṇa ଇଷ୍ଟମନ୍ତ୍ର ନେବା କର୍ମ; ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ—The acceptance of or the initiation into a mystic formula from or by one's spiritual preceptor.

ମନ୍ତ୍ର ଗ୍ରହଣ କରିବା—ଦେ. କ୍ରି—ଗୁରୁଙ୍କଠାରୁ ଇଷ୍ଟ ମନ୍ତ୍ରର ଦୀକ୍ଷା ପାଇବା—
Mantra grahaṇa karibā To be initiated into a
মন্ত্র গ্রহণ করনা mystic formula by the spiritual
मन्तर ग्रहण करना preceptor

ମନ୍ତ୍ର ଚୈତନ୍ୟ—ସଂ. ବି—(୬ଷ୍ଠୀ ତତ୍)—ଜପ ହେଉଥିବା ମନ୍ତ୍ରରେ
Mantra chaitanya ନିର୍ଦ୍ଦିଷ୍ଟ କ୍ରିୟାମାନଙ୍କ ଦ୍ୱାରା ପ୍ରବେଶିତ ଜୀବନୀ ଶକ୍ତି—Infusion of life or vitality or potency into a Mantra
[ ଦ୍ର—କୌଣସି ମନ୍ତ୍ରରେ ଚୈତନ୍ୟର ଅନୁପ୍ରବେଶ ନ କରାଇ ତାହା ଜପ କଲେ ତହିଁରେ ଅଭିପ୍ରେତ ଫଳ ଲାଭ ହୁଏ ନାହିଁ। ମନ୍ତ୍ର ମଧ୍ୟରେ ଚୈତନ୍ୟ ବା ଜୀବନୀଶକ୍ତି ପ୍ରବେଶ କରାଇବା ପାଇଁ କେତେକ ଅନୁଷ୍ଠାନ (ଯଥା—ପୂଜା, ଧ୍ୟାନ, ସ୍ତୋତ୍ର ପାଠ ଓ ନ୍ୟାସ ଆଦି) କରିବାର ବିଧି ଅଛି; ତାହା ହେଲେ 'ମନ୍ତ୍ର ଚୈତନ୍ୟ' ହୁଏ ଓ ପରେ ଉକ୍ତ ମନ୍ତ୍ର ଜପଦ୍ୱାରା ଫଳ ଲାଭ ହୁଏ।]

ମନ୍ତ୍ର ଜ(ଜା)ପ—ସଂ. ବି—(୬ଷ୍ଠୀ ତତ୍)—କୌଣସି ମନ୍ତ୍ରର ବାରଂବାର
Mantra ja(jā)pa ମାନସିକ ସ୍ମରଣ ବା ଅନ୍ୟଦ୍ୱାରା ଶୁଣା ନ ଯିବା ପ୍ରକାରେ ଉଚ୍ଚାରଣ—Repeated inaudible recitation or muttering of a mystic formula.

ମନ୍ତ୍ର ଜପିବା—ଦେ. କ୍ରି—(ସଂ. ମନ୍ତ୍ର+ଜପ ଧାତୁ)—୧। କୌଣସି
Mantra japibā ମନ୍ତ୍ରକୁ ବାରମ୍ବାର ସ୍ମରଣ କରିବା—1. To
মন্ত্র জপা मन्तर जपना repeatedly mutter a mystic formula mentally [ଦ୍ର—ଜପ କରାଯିବା ମନ୍ତ୍ରର ସଂଖ୍ୟା ଗଣନା କରିବା ପାଇଁ ନାନା ପ୍ରକାରର ମାଳା ବା ଆଙ୍ଗୁଠିର ପର୍ବଦ୍ୱାରା ଗଣନା ବ୍ୟବହୃତ ହୁଏ।] ୨। (ଲକ୍ଷଣାର୍ଥ) କୌଣସି ବିଷୟକୁ ବାରଂବାର ଅନୁଧ୍ୟାନ କରିବା—2. (figurative) To constantly or repeatedly ponder over a particular matter.

ମନ୍ତ୍ର ଜଳ—ସଂ. ବି—(ମ. ପ. ଲୋ)—ମନ୍ତ୍ରଦ୍ୱାରା ପ୍ରଭାବିତ ବା ଅଭିମନ୍ତ୍ରିତ
Mantra jala ଜଳ—Water consecrated by Mantra.

ମନ୍ତ୍ର ଜିହ୍ୱ—ସଂ. ବି—(ମନ୍ତ୍ର ଅଟେ ଜିହ୍ୱା ଯାହାଙ୍କର; ବହୁବ୍ରୀହି)—ଅଗ୍ନି—
Mantra jihwa Fire.

ମନ୍ତ୍ରଜ୍ଞ—ସଂ. ବିଣ. ପୁଂ—୧। ମନ୍ତ୍ରବିଦ୍; ଯେ ମନ୍ତ୍ର ଜାଣେ—1. Ver-
Mantrajña sed in mystic formulas. ୨। ମନ୍ତ୍ରଣା
(ମନ୍ତ୍ରଜ୍ଞା—ସ୍ତ୍ରୀ) କୁଶଳ—2 Adept or expert in giving counsel. ୩। ଯେ ଅନ୍ୟ ବ୍ୟକ୍ତିର ମନ୍ତ୍ରଣା ବିଷୟକୁ ଜାଣେ—3. Knowing the secret counsels of other people. ସଂ. ବି—୧। ମନ୍ତ୍ରୀ—1. A counsellor; a councillor. ୨। ଦୀକ୍ଷାଗୁରୁ—2. Spiritual preceptor. ୩। ଗୁପ୍ତଚର—3. A spy.

ମନ୍ତ୍ରଣ—ସଂ. ବି—(ମନ୍ତ୍ର ଧାତୁ+ଭାବ. ଅନ;)—୧। ପରାମର୍ଶ; ସଲ୍ଲା;
Mantraṇa କୌଣସି ବିଷୟରେ ଏକାଧିକ ବ୍ୟକ୍ତିଙ୍କ ମିଳିତ ବିଚାର-
(ମନ୍ତ୍ରଣୀୟ—ବିଣ) 1. Consultation; counsel; deliberation. ୨। ପରାମର୍ଶ ଦେବା—2. Advising; counselling. ଦେ. ବି—ଅଭିମନ୍ତ୍ରଣ; ମନ୍ତୁରିବା—Consecration of a thing by uttering specific formulas

ମନ୍ତ୍ରଣ କରିବା—ଦେ. ବି—(ସଂ. ମନ୍ତ୍ରଣ+କୃ ଧାତୁ)—ମନ୍ତୁରାଇବା
Mantraṇa karibā (ଦେଖ)—Manturāibā (See)

ମନ୍ତ୍ରଣା—ସଂ. ବି—(ମନ୍ତ୍ର ଧାତୁ+ଭାବ. ଅନ+ଆ)—୧। ମନ୍ତ୍ରଣ
Mantraṇā (ଦେଖ)—1. Mantraṇa (See) ୨। ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଗୁପ୍ତ ପରାମର୍ଶ—2. Secret consultation conspiracy.

ମନ୍ତ୍ରଣା କରିବା—ଦେ. କ୍ରି—(ସଂ ମନ୍ତ୍ରଣା+କୃ ଧାତୁ)-(ଏକାଧିକ ଲୋକ)
Mantraṇā karibā ଆପଣା ମଧ୍ୟରେ ) ଗୁପ୍ତ ପରାମର୍ଶ
মন্ত্রণা করা କରିବା—To hold a secret consultation;
मन्त्रणा करना to conspire.

ମନ୍ତ୍ରଣା ଦେବା—ଦେ. କ୍ରି—(ସଂ. ମନ୍ତ୍ରଣା+ଦା ଧାତୁ)—ଗୁପ୍ତରେ
Mantraṇā debā ପରାମର୍ଶ ଦେବା—To instigate;
মন্ত্রণা দেওয়া मन्त्रणा देना to tender secret advice.
(ମନ୍ତ୍ରଣା ନେବା—ବିପରୀତ)

ମନ୍ତ୍ରଣା ସଭା—ସଂ. ବି—(ମ. ପ. ଲୋ)—ଯେଉଁ ସଭାରେ ଗୁପ୍ତ ପରାମର୍ଶ
Mantraṇā sabhā କରାଯାଏ—Privy council; a secret sitting for consultation.

ମନ୍ତ୍ର ତନ୍ତ୍ର—ଦେ. ବି—(ସହଚର) ( ସଂ. ମନ୍ତ୍ର+ତନ୍ତ୍ର )—ମନ୍ତ୍ର ଓ
Mantra tantra ତାନ୍ତ୍ରିକ ବିଧିଦ୍ୱାରା ଦେବାରାଧନା—Mystic
তন্ত্র মন্ত্র मन्तर तन्तर charms and worship.

ମନ୍ତ୍ର ଦାତା—ସଂ. ବି. ପୁ—(୬ଷ୍ଠୀ ତତ୍)—୧। ଦୀକ୍ଷାଗୁରୁ; ଯେ ଇଷ୍ଟ
Mantra dātā ମନ୍ତ୍ର ଦିଅନ୍ତି—1. One's spiritual
(ମନ୍ତ୍ରଦ—ଅନ୍ୟରୂପ) preceptor. ୨। ପରାମର୍ଶଦାତା—
(ମନ୍ତ୍ରଦାତ୍ରୀ, ମନ୍ତ୍ରଦା—ସ୍ତ୍ରୀ) 2. Advisor.

ମନ୍ତ୍ର ଦାନ—ସଂ. ବି—(୬ଷ୍ଠୀ ତତ୍)—ମନ୍ତ୍ର ପ୍ରଦାନ (ଦେଖ)
Mantra dāna Mantra Pradāna (See)

ମନ୍ତ୍ର ଦେବା—ଦେ. କ୍ରି ( ସଂ. ମନ୍ତ୍ର+ଦା ଧାତୁ )—୧ । ମନ୍ତ୍ର ପ୍ରଦାନ
Mantra debā କରିବା (ଦେଖ)—1. Mantra pradāna
মন্ত্র দেওয়া karibā ( See ). ୨ । ମନ୍ତେଇବା—2. To
मन्त्र देना instigate; to insite. ୩ । ଅନ୍ୟକୁ ଗୁପ୍ତ
ବିଷୟର ଦେବା—3. To give advice in secret.

ମନ୍ତ୍ର ଦୀଧିତି—ସଂ. ବି. (ବହୁବ୍ରୀହି; ମନ୍ତ୍ର=ବେଦାଦି ଉପାସନାର ଉପ-
Mantra dīdhiti ଯୋଗୀ ବାକ୍ୟ+ଦୀଧିତି=ଆଲୋକ)—
ଅଗ୍ନି; ବହ୍ନି—Fire.

ମନ୍ତ୍ର ଦ୍ରଷ୍ଟା—ସଂ. ବିଣ. ପୁଂ—୧ । କୌଣସି ବୈଦିକ ମନ୍ତ୍ରକୁ ପ୍ରଥମେ
Mantra drashṭā ପ୍ରକାଶ ବା ଉଚ୍ଚାରଣ କରିଥିବା (ଋଷି)—
(ମନ୍ତ୍ରଦର୍ଶୀ—ଅନ୍ୟରୂପ) 1. (the sage) Who was the
ମନ୍ତ୍ର ଦ୍ରଷ୍ଟ୍ରୀ } ଅନ୍ୟରୂପ first to pronounce or proc-
ମନ୍ତ୍ର ଦର୍ଶିନୀ } laim any vedic Mantra.
[ଦ୍ର—ହିନ୍ଦୁମାନଙ୍କ ବିଶ୍ୱାସ ଯେ ମନ୍ତ୍ରମାନ ଅବହମାନ କାଳରୁ ଅଛି, ଯେଉଁ ଋଷିଙ୍କୁ ତାହା ପ୍ରଥମେ ସ୍ଫୁରିଲା, ସେ ଉକ୍ତ ମନ୍ତ୍ରକୁ ଦେଖି ପାରିଲେ ଓ ବୋଲିଲେ ଓ ଏଥିପାଇଁ ସେହିମାନଙ୍କୁ ମନ୍ତ୍ରଦ୍ରଷ୍ଟା ବୋଲାଯାଏ । ] ୨ । ବେଦଜ୍ଞ—
2. Versed in the Bedas.

ମନ୍ତ୍ର ଧୂଳି—ଦେ. ବି (ସଂ. ମନ୍ତ୍ରିତ+ଧୂଳି)—ଯେଉଁ ଧୂଳି ମନ୍ତ୍ରି ଯାଇଥାଏ;
Mantra dhūḷi ଅଭିମନ୍ତ୍ରିତ ଧୂଳି—Dust which has
মন্ত্রিত ধূলি been made potent for a certain pur-
मन्त्रित धूली, मन्तराई हुई धूली pose by spell.
(ଉ—ଭୀମ କ୍ରୋଧ ସର୍ପକୁ ବଳବା ଇଚ୍ଛାରେ, ପକାଇଲେ ମନ୍ତ୍ର ଧୂଳିକି ମନ୍ତ୍ରୀ ଶରେ । କୃଷ୍ଣସିଂହ. ମହାଭାରତ. ବନ .)
[ଦ୍ର—ମନ୍ତ୍ର ଧୂଳି ସର୍ପ ଓ ବ୍ୟାଘ୍ରାଦିଙ୍କ ଉପରକୁ ପିଙ୍ଗିଲେ ସର୍ପାଦି ଆକ୍ରମଣ କରି ପାରନ୍ତି ନାହିଁ ଓ ରୁଦ୍ଧ ବୀର୍ଯ୍ୟ ହୁଅନ୍ତି । ଚୋରମାନେ ନିଦ୍ରିତ ଗୃହସ୍ଥାଦିଙ୍କ ଉପରେ ମନ୍ତ୍ର ଧୂଳି ପକାଇଲେ ସେମାନେ ଗାଢ଼ ନିଦ୍ରାରେ ଅଭିଭୂତ ହୁଅନ୍ତି, ଏହି ସୁଯୋଗରେ ଚୋରମାନେ ଘରୁ ସର୍ବସ୍ୱ ଲୁଟି ନିଅନ୍ତି ।]

ମନ୍ତ୍ର ନେବା—ଦେ. କ୍ରି—ମନ୍ତ୍ର ଗ୍ରହଣ କରିବା ( ଦେଖ )
Mantra nebā Mantra grahaṇa karibā (See)
মন্ত্র নওয়া मन्त्र लेना

ମନ୍ତ୍ର ପୁରଶ୍ଚରଣ—ସଂ. ବି. ( ୬ଷ୍ଠୀ ତତ୍ )—ଅଭୀଷ୍ଟ ସିଦ୍ଧି ନିମନ୍ତେ ବିଧି
Mantra puraścharaṇa ପୂର୍ବକ ମନ୍ତ୍ର ଜପ—The reci-
tation of a mystic formula in the man-
ner enjoined in the text

ମନ୍ତ୍ର ପୂତ—ସଂ. ବିଣ (୩ୟା ତତ୍)—ମନ୍ତ୍ର ଦ୍ୱାରା ପବିତ୍ରୀକୃତ—
Mantra pūta Consecrated by means of
Mantras.

ମନ୍ତ୍ର ପ୍ରଦାନ—ସଂ ବି ( ୬ଷ୍ଠୀ ତତ )—ଗୁରୁଙ୍କର ଶିଷ୍ୟକୁ ଇଷ୍ଟ ମନ୍ତ୍ର
Mantra pradāna ଦେବା—The initiation of a dis-
ciple into a particular mystic formula
by a spiritual preceptor.

ମନ୍ତ୍ର ପ୍ରଦାନ କରିବା—ଦେ. କ୍ରି ( ସଂ. ମନ୍ତ୍ର ପ୍ରଦାନ)—୧ । ଗୁରୁଙ୍କର
Mantra pradāna karibā ଶିଷ୍ୟକୁ ଇଷ୍ଟମନ୍ତ୍ରର ଦୀକ୍ଷା ଦେବା
মন্ত্র প্রদান করা —1. To initiate a disciple.
मन्त्र प्रदान करना ୨ । ମନ୍ତ୍ରଣା ଦେବା; ପରାମର୍ଶଦେବା—
2. To instigate.

ମନ୍ତ୍ର ପ୍ରୟୋଗ—ସଂ. ବି. ( ୬ଷ୍ଠୀ ତତ୍ )—କୌଣସି ବିଶେଷ ଉଦ୍ଦେଶ୍ୟ-
Mantra prayoga ଲାଭାର୍ଥ ମନ୍ତ୍ରର ବ୍ୟବହାର—
(ମନ୍ତ୍ର ଯୋଗ—ଅନ୍ୟରୂପ) The application or exercise
of a mystic formula for a certain end.

ମନ୍ତ୍ର ଫୁଙ୍କା—ଦେ. ବି ( ସଂ. ମନ୍ତ୍ର+ଫୁତ୍କାର )—୧ । ଶିଷ୍ୟର କର୍ଣ୍ଣ
Mantra phuṅkā ନିକଟରେ ଗୁରୁଙ୍କର ଅନୁଚ୍ଚସ୍ୱରରେ ମନ୍ତ୍ରର
মন্ত্র ফুঙ্কা ଉଚ୍ଚାରଣ—1. The low mutterance of a
मन्तर फुकना Mantra near the ear of a disciple.
୨ । ଗୋପନରେ ମନ୍ତ୍ରଣା ଦାନ—2. Whispering
evil counsel into another's ears.
୩ । ଦୀକ୍ଷାଗୁରୁ—3. One's spiritual preceptor.
ଦେ. ବିଣ—୧ । ଯେ ଶିଷ୍ୟକୁ ଗୁରୁମନ୍ତ୍ର ଦିଅନ୍ତି—
1. Whispering secred formulas into the
disciple's ears. ୨ । ମନ୍ତ୍ରଣା ଦାତା—2. Giving
secret councels.

ମନ୍ତ୍ର ଫୁଙ୍କିବା—ଦେ. କ୍ରି ( ସଂ. ମନ୍ତ୍ର+ଫୁତ୍କାର )—୧ । ମନ୍ତ୍ର ପ୍ରଦାନ
Mantra phuṅkibā କରିବା ( ଦେଖ )—1. Mantra
মন্ত্র ফুঙ্কা pradāna karibā ( See ) ୨ । କାନରେ
मन्त्र फूकना ଗୋପନରେ କୁମନ୍ତ୍ରଣା ଦେବା—2. To whisper
evil counsel into one's ears.

ମନ୍ତ୍ର ବାଦୀ—ସଂ. ବି ଓ ବିଣ. ପୁଂ (ମନ୍ତ୍ର+ବଦ ଧାତୁ+କର୍ତ୍ତୃ. ଇନ୍; ୦ ମା
Mantra bādī ୧ବ)—ମନ୍ତ୍ରଜ୍ଞ (ହ୍ର, ଘ)—1. An adept
(ମନ୍ତ୍ର ବାଦିନୀ—ସ୍ତ୍ରୀ) in the Mantras. ୨ । ଯେ ମନ୍ତ୍ର
ଉଚ୍ଚାରଣ କରେ—2. A person who utters or
pronounces a Mantra.

ମନ୍ତ୍ର ବିଦ୍—ସଂ. ବି ଓ ବିଣ (ମନ୍ତ୍ର+ବିଦ୍ ଧାତୁ+କ୍ୱିପ୍)—
Mantrabid ମନ୍ତ୍ରଜ୍ଞ (ଦେଖ)—Mantrajña (See)

ମନ୍ତ୍ର ବିଦ୍ୟା—ସଂ. ବି (ମ. ପ. ଲୋ; ମନ୍ତ୍ରମୂଳକ ବିଦ୍ୟା )—ଯେଉଁ ବିଦ୍ୟା
Mantra bidyā ସାହାଯ୍ୟରେ ମନ୍ତ୍ରାଦିର ପ୍ରୟୋଗ ଶିକ୍ଷା କରାଯାଏ;
(ମନ୍ତ୍ର ଶାସ୍ତ୍ର—ଅନ୍ୟରୂପ) ତନ୍ତ୍ର—The Tantras; the
science of application of the different
Mantras.

ମନ୍ତ୍ର ବୀଜ—ସଂ. ବି. ( ୬ଷ୍ଠୀ ତତ୍ )—କୌଣସି ମନ୍ତ୍ରର ବୀଜ ବା ମୂଳ-
Mantra bīja ଭିତ୍ତି ରୂପେ କଳ୍ପିତ ନିର୍ଦ୍ଦିଷ୍ଟ ଏକ ବା ତତୋଽଧିକ
ଅକ୍ଷର—One or more letters used as the
primal seed or keystone to a Mantra.

ମନ୍ତ୍ର ମୁଗ୍ଧ—ସଂ. ବିଣ. ପୁଂ (୩ୟା ତତ୍)—ମନ୍ତ୍ରର ପ୍ରଭାବରେ ବଶୀଭୂତ—
Mantra mugdha Enchanted with incantations;
charmed by means of Mantras;
spell-bound.

ମନ୍ତ୍ର ମୂଳ—ସଂ. ବି (ବହୁବ୍ରୀହି; ମନ୍ତ୍ର ଅଟେ ମୂଳ ଯାହାର)—୧ । ମନ୍ତ୍ର
Mantra mūḷa ଓ ମନ୍ତ୍ର ସିଦ୍ଧ୍ୟର୍ଥ ବ୍ୟବହୃତ ରେଖା ଚିତ୍ରାଦି—
1. Mystic charms and symbols and drawings accompanying them. ୨ । ମନ୍ତ୍ରର ଉପାସନା—2. Mystic exercise. ଦେ. ବି—ତାନ୍ତ୍ରିକ ଅଭିଚାର; ଗୁଣିଗାରେଡ଼ି—Charms employed against others.

ମନ୍ତ୍ରଯାନ—ସଂ. ବି—ବୌଦ୍ଧ ଧର୍ମର ଶାଖାବିଶେଷ—A branch of
Mantrajāna the Buddhist faith. [ଦ୍ର—ମହାଯାନ ତଳେ ଟୀକା ଦେଖ; ବୌଦ୍ଧ ଧର୍ମର ଏହି ଶାଖାର ପ୍ରଚାର ତିବ୍ବତ, ନେପାଳ, ଭୂଟାନ ଆଦି ଦେଶରେ ହୋଇଅଛି । ଏ ଶାଖାର ଅନେକ ତନ୍ତ୍ର ଗ୍ରନ୍ଥ ଅଛି, ତଦନୁସାରେ ତାନ୍ତ୍ରିକ ଉପାସନା କରାଯାଏ । ଏହି ମତର ପ୍ରଧାନ ଆଚାର୍ଯ୍ୟ ସିଦ୍ଧ ନାଗାର୍ଜୁନ । ଏହାକୁ ବଜ୍ରଯାନ ମଧ୍ୟ ବୋଲାଯାଏ । ]

ମନ୍ତ୍ରରାଜ—ସଂ. ବି (ଆଟ୍ଟନକ; ଶବ୍ଦଭେଦ)—ମନ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ
Mantrarāja ମନ୍ତ୍ର; ଓଁ ଶ୍ରୀଁ କ୍ଲୀଁ କ୍ଲୀଁ ଗୋପୀଜନବଲ୍ଲଭାୟ ନମଃ; ଓଁ କ୍ଲୀଁ କ୍ଲୀଁ ଶ୍ରୀଁ—The chief amongst the Mantras [ ଉ—ଯଶୋବନ୍ତ ସିଂହ—ପ୍ରେମଭକ୍ତି ବ୍ରହ୍ମଗୀତା । ଦିବାକର ଦାସ—ଜଗନ୍ନାଥ ଚରିତାମୃତ ଦ୍ରଷ୍ଟବ୍ୟ । ]

ମନ୍ତ୍ର ସଂସ୍କାର—ସଂ. ବି ( ୬ଷ୍ଠୀ ତତ୍ )—୧ । ବିବାହରୂପ ସଂସ୍କାର ( ଗ୍ରା·
Mantra saṁskāra ଶ )—1. The sacrament of marriage. ୨ । ମନ୍ତ୍ର ଗ୍ରହଣ କରିବା ପୂର୍ବରୁ ମନ୍ତ୍ରକୁ ଫଳପ୍ରଦ କରିବା ପାଇଁ ଆଚରିତ ତନ୍ତ୍ରୋକ୍ତ କ୍ରିୟାବିଶେଷ—2. Some rituals enjoined in the Tantras for making the Mantras potential. [ ଦ୍ର—ଏହା ଦଶ ସଂଖ୍ୟକ ଯଥା—୧. ଜନନ—ମାତୃକା ଯନ୍ତ୍ରଦ୍ୱାରା ମନ୍ତ୍ରର ଉଦ୍ଧାର, ୨. ଜୀବନ—ମନ୍ତ୍ରର ପ୍ରତ୍ୟେକ ବର୍ଣ୍ଣକୁ ପ୍ରଣବଦ୍ୱାରା ସମ୍ପୁଟିତ କରି ଶତବାର ଲେଖାଏଁ ସମ୍ପୁଟିତ ବର୍ଣ୍ଣକୁ ଜପିବା, ୩. ତାଡ଼ନ—ମନ୍ତ୍ରର ପ୍ରତ୍ୟେକ ବର୍ଣ୍ଣ ପୃଥକ୍ କରି ଲେଖି ବାୟୁବୀଜ ପାଠ କରି ନାଲି କରବୀ ଫୁଲରେ ପ୍ରତ୍ୟେକ ବର୍ଣ୍ଣକୁ ଶହେ ଥର ଆଘାତ କରିବା, ୪. ବୋଧନ—ମନ୍ତ୍ରର ପ୍ରତ୍ୟେକ ବର୍ଣ୍ଣକୁ 'ରଂ' ବୀଜ ଉଚ୍ଚାରଣ କରି ନାଲି କରବୀ ଫୁଲରେ ଆଘାତ କରିବା, ୫. ଅଭିଷେକ—ମନ୍ତ୍ରର ପ୍ରତ୍ୟେକ ବର୍ଣ୍ଣକୁ 'ରଂ' ବୀଜ ଉଚ୍ଚାରଣ ପୂର୍ବକ ଶହେଥର ଅଭିସେଚନ କରିବା, ୬. ବିମଳୀକରଣ—ସୁଷୁମ୍ନା ( ବାମ ଦକ୍ଷିଣର ମଧ୍ୟବର୍ତ୍ତୀ ନାଡ଼ୀ )ରେ ମନୋଯୋଗପୂର୍ବକ ମନ୍ତ୍ରର ଚିନ୍ତା କରି ପ୍ରତ୍ୟେକ ବର୍ଣ୍ଣ ଉପରେ ଅଶ୍ୱତ୍ଥପତ୍ରଦ୍ୱାରା ଜଳସେଚନ, ୭. ଅଧ୍ୟାପନ—ଜ୍ୟୋତିର୍ମନ୍ତ୍ର ଉଚ୍ଚାରଣ କରି ସ୍ୱର୍ଣ୍ଣସ୍ପୃଷ୍ଟ ଜଳ ବା କୁଶୋଦକ ବା ପୁଷ୍ପୋଦକ ମନ୍ତ୍ରର ବର୍ଣ୍ଣମାନଙ୍କ ଉପରେ ସେଚନ, ୮. ତର୍ପଣ—ଜ୍ୟୋତିର୍ମନ୍ତ୍ର ଉଚ୍ଚାରଣପୂର୍ବକ ମନ୍ତ୍ରର ପ୍ରତ୍ୟେକ ବର୍ଣ୍ଣ ଉଦ୍ଦେଶ୍ୟରେ ଜଳାଞ୍ଜଳି ପ୍ରଦାନ, ୯. ଦୀପନ—ଜ୍ୟୋତିର୍ମନ୍ତ୍ରଦ୍ୱାରା ମନ୍ତ୍ରର ଦୀପ୍ତି ସାଧନ, ୧୦. ଗୋପନ—ମନ୍ତ୍ରକୁ ଅନ୍ୟତ୍ର ପ୍ରକାଶ ନ କରିବା ଓ ଓଷ୍ଠର ବାହାରକୁ ମନ୍ତ୍ରକୁ ବାହାର ନ କରିବା—ତ୍ରୈ. ଶ । ]

ମନ୍ତ୍ର ସଂହିତା—ସଂ. ବି—ମନ୍ତ୍ରମାନ ବେଦର ଯେଉଁ ଅଂଶରେ ସଂଗୃହୀତ
Mantra saṁhitā ହୋଇଅଛି—That part of the Bedas which contain the Mantras.

ମନ୍ତ୍ର ସାଧନ—ସଂ. ବି ( ୬ଷ୍ଠୀ ତତ )—ମନ୍ତ୍ରରେ ସିଦ୍ଧିଲାଭ କରିବା ପାଇଁ
Mantra sādhana ଉପଯୁକ୍ତ ପ୍ରଣାଳୀର ଅବଲମ୍ବନ—The taking of proper steps for attaining perfection or success in a Mantra.

ମନ୍ତ୍ର ସାଧିବା—ଦେ. କ୍ରି ( ସଂ. ମନ୍ତ୍ର+ସାଧନ )—ମନ୍ତ୍ର ସାଧନ କରିବା—
Mantra sādhibā To follow or adopt proper
মন্ত্র সাধন করা steps to attain perfection in a
মন্ত্র সাধনা mystic formula.

ମନ୍ତ୍ର ସିଦ୍ଧ—ସଂ. ବିଣ. ପୁଂ—୧ । ( ବହୁବ୍ରୀହି ) ମନ୍ତ୍ରର ସାଧନାଦ୍ୱାରା ସିଦ୍ଧି
Mantra siddha ପ୍ରାପ୍ତ ବା ସଫଳକାମ (ବ୍ୟକ୍ତି)—1. Accom-
(ମନ୍ତ୍ରସିଦ୍ଧା—ସ୍ତ୍ରୀ) plished in Mantras; having attained perfection in Mantras. ୨ । (୩ୟା ତତ୍) ମନ୍ତ୍ରଦ୍ୱାରା ଅମୋଘୀକୃତ—2 Made effectual with the help of Mantras; consecrated.

ମନ୍ତ୍ର ସିଦ୍ଧି—ସଂ. ବି ( ୭ମୀ ତତ୍ )—କୌଣସି ମନ୍ତ୍ରର ସାଧନରେ ସଫଳ-
Mantra siddhi କାମତ୍ୱ—Attainment of perfection in any incantation.

ମନ୍ତ୍ର ସୂତ୍ର—ସଂ. ବି (ମ. ପ. ଲୋ.)—ଅଭିମନ୍ତ୍ରିତ ବା ମନ୍ତ୍ରପୂତ ସୂତା, ଯାହାକୁ
Mantra sūtra ଅଙ୍ଗରେ ଧାରଣ କରିବାକୁ ହୁଏ; ବରତ—A string consecrated by Mantras and worn on a part of the body for a particular purpose.

ମନ୍ତ୍ରିକା—ଦେ. ବି—ମନ୍ତ୍ର ( ଦେଖ )—Mantra ( See ) [ ଉ—
Mantrikā ଓଁକାରୁ ଅକ୍ଷର ମାଳିକା, ପ୍ରକଟ ଗାୟତ୍ରୀ ମନ୍ତ୍ରିକା—ଭୂପତି. ପ୍ରେମପଞ୍ଚାମୃତ । ]

ମନ୍ତ୍ରିତ—ସଂ. ବି ( ମନ୍ତ୍ର ଧାତୁ+କର୍ମ. ତ )—୧ । ମନ୍ତ୍ରଦ୍ୱାରା ସଂସ୍କୃତ;
Mantrita ଅଭିମନ୍ତ୍ରିତ—1. Consecrated by means of incantations. ୨ । ମନ୍ତ୍ରଣାଦ୍ୱାରା ନିର୍ଦ୍ଧାରିତ—2. Deliberated upon; settled after consultation.

ମନ୍ତ୍ରିତ୍ୱ(ତା)—ସଂ. ବି ( ମନ୍ତ୍ରିନ୍+ତ୍ୱ; ତା )—୧ । ପରାମର୍ଶଦାତୃତ୍ୱ—
Mantritwa(tā) 1. The position of an adviser. ୨ । ମନ୍ତ୍ରୀ ବା ସଚିବର ପଦ; ମନ୍ତ୍ରୀପଣ—2. Ministry; the position of a minister.

ମନ୍ତ୍ରିବର—ସଂ. ( ମନ୍ତ୍ରିନ୍+ବର=ଶ୍ରେଷ୍ଠ )—ପ୍ରଧାନ ମନ୍ତ୍ରୀ—Prime
Mantribara minister; premier.
( ମନ୍ତ୍ରିପତି—ଅନ୍ୟରୂପ )

ମନ୍ତ୍ରିବା—ଦେ. କ୍ରି ( ସଂ. ମନ୍ତ୍ର ଧାତୁ )—ଅଭିମନ୍ତ୍ରଣ କରିବା—
Mantribā To consecrate a thing by muttering
মন্ত্রপূত করা mystic incantations over it. [ ଉ—

**मन्त्राना, मन्तराना** ସେ ଅମୃତ ଅଦ୍ଭୁତ ଦେଖି ମୁନିବର, ସେ ନୃପ
( ମନ୍ତ୍ରା[ନ୍ତେ]ଇବା—ଅନ୍ୟରୂପ ) ପୁତ୍ର ପାଇଁ ମନ୍ତ୍ରିଲେ ସତ୍ୱର—
କୃଷ୍ଣସିଂହ ମହାଭାରତ. ସଭା । ]

ମନ୍ତ୍ରୀ—ସଂ. ବିଣ. ପୁଂ (ମନ୍ତ୍ର ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ.)—ମନ୍ତ୍ରଣାଦାତା—
Mantri Counsellor; advisor. ସଂ. ବି—ସଚିବ; ଯେଉଁ
ପ୍ରଧାନ ରାଜକର୍ମଚାରୀଙ୍କ ପରାମର୍ଶରେ ରାଜ୍ୟ ଶାସିତ ହୁଏ—
A minister. ଦେ. ବି—୧ । ଗଞ୍ଜପା ଖେଳର ଏକାଦଶ
ସଂଖ୍ୟାସୂଚକ ଘୋଡ଼ାର ବା ହାତୀର ଚିତ୍ର—1. A picture
representing 11 in the Ganjapā game.
୨ । ସତରଞ୍ଚି ଖେଳରେ ରଜାଙ୍କ ତଳ ସାର—2. The
queen piece in the game of chess.

ମନ୍ଥ୍ [ଥ୍] (ଧାତୁ)—ସ—୧ । ବିଲୋଡ଼ନ କରିବା; ମନ୍ଥିବା; ମୋହିଁବା—
Manth [th] (root) 1. To churn; to agitate;
to stir up. ୨ । ମନ୍ଥିବାଦ୍ୱାରା ( ଲହୁଣୀ ) ବାହାର
କରିବା—2. To produce ( e.g. butter ) by
churning ( Apte ). ୩ । ଦଳିବା; ଚକଟିବା;
ଅତ୍ୟାଚାର କରିବା; ଦଣ୍ଡଗଞ୍ଜ କରିବା—3. To crush;
to oppress; to distress sorely ( Apte ).
୪ । ଆଘାତ କରିବା; ଅନିଷ୍ଟ କରିବା—4. To hurt;
to injure (Apte). ୫ । ବିନାଶ କରିବା; ହତ
କରିବା—5. To crush down; to kill; to
annihilate ( Apte ). ୬ । ଚ୍ୟୁତ କରିବା—
6. To tear off; to dislocate (Apte).

ମନ୍ଥ—ସ. ବି ( ମନ୍ଥ୍ ଧାତୁ+ଅ )—୧ । ( +କରଣ ଅ ) ମନ୍ଥନଦଣ୍ଡ;
Mantha ଦହିଖୁଆ—1. The churning rod; a
churner. ୨ । ( +ଭାବ. ଅ ) ବିଲୋଡ଼ନ—
2. Churning. ୩ । (+କର୍ତ୍ତୃ. ଅ) ନେତ୍ରରୋଗ ବିଶେଷ
—3. A disease of the eye. ୪ । ( +କରଣ.
ଅ ) ଅନ୍ତକ—4. A wooden spoon or ladle.
୫ । ( +କର୍ମ. ଅ ) ନେତ୍ରମଳ; ଲେଞ୍ଜେରା—5.
Rheum of the eye. ୬ । (+ଭାବ. ଅ ) ବିନାଶ;
ବଧ—6. Destroying; killing. ୭ । ( +
କର୍ମ. ଅ ) ଜଳ ମିଶ୍ରିତ ଘିଆଳୁ ଛତୁଆ—7. Flour
mixed with ghee and water. ୮ । ( +
କର୍ତ୍ତୃ. ଅ ) ସୂର୍ଯ୍ୟ—8. The sun. ୯ । ସୂର୍ଯ୍ୟକିରଣ
—9. Sun's ray (Apte). ୧୦ । (+କର୍ମ. ଅ)
ଘର୍ଷଣଦ୍ୱାରା ଅଗ୍ନି ଉତ୍ପାଦକ ଯନ୍ତ୍ର; ଅରଣି—10. An
instrument for kindling fire by attrition
(Apte). ୧୧ । ଏକପ୍ରକାର ମୃଗ—11. A kind of
antelope ( Apte ).

ମନ୍ଥଗିରି—ସ. ବି ( ମ. ପ. ଲୋ, ମନ୍ଥରୂପେ ବ୍ୟବହୃତ ଗିରି )—ମନ୍ଦର
Mantha'giri ପର୍ବତ—The mythological mountain
ମନ୍ଥପର୍ବତ, ମନ୍ଥଶୈଳ } ଅନ୍ୟରୂପ which was used as a
ମନ୍ଥାଚଳ, ମନ୍ଥାଦ୍ରି } churner for the ocean
by the gods and the demons.

ମନ୍ଥଗୁଣ—ସ. ବି ( ମ. ପ. ଲୋ; ବମ୍ଭା ୬ଷ୍ଠୀ ତତ୍ )—ଦହି ଖୁଆରେ
Mantha guṇa ଲାଗିଥିବା ଦଉଡ଼ି; ଖୁଆ ଦଉଡ଼ି—Churning
cord ( Apte ).

ମନ୍ଥଜ—ସ. ବି ( ମନ୍ଥ+ଜନ୍ ଧାତୁ+କର୍ତ୍ତୃ. ଅ)—ନବନୀତ; ନହୁଣୀ—
Manthaja Butter.

ମନ୍ଥଡ଼—ଦେ. ବି ( ସ. ମନ୍ଥର )—୧ । ଅନ୍ତର୍ବିବାଦ; ପରିବାରିକ
Mantharḍa କଳହ—1. Internal dissension in a
बाधा; गोलमाल family. ୨ । ବାଧା; ପ୍ରତିବନ୍ଧକ—2.
**बखेडा; गोलमाल** Obstacle; impedement. ଦେ. ବିଣ
(ମନ୍ଥଡ଼ା[ଡ଼ୀ]—ସ୍ତ୍ରୀ) ପୁଂ—୧ । ଯେ ପରିଙ୍କ ମଧ୍ୟରେ କଳି ଲଗାଏ;
**मन्थर** ପରଘରଭଙ୍ଗା—1. Bringing about or
fomenting dissension between two
persons in a family. ୨ । କଳିହୁଡ଼ା—2.
Quarrelsome.

ମନ୍ଥଡ଼ ପୂରା(ରେ)ଇବା—ଦେ. କ୍ରି—୧ । ଅନ୍ୟମାନଙ୍କ ମଧ୍ୟରେ ବିବାଦ
Mantharḍa pūrā(re)ibā ଜନ୍ମାଇବା—1. To foment
गोलमाल लागान a quarrel. ୨ । ବାଧା ଉପସ୍ଥାପିତ
**बखेडा लगाना** କରିବା—2. To set up an obstacle.
[ମନ୍ଥଡ଼ ଲଗା(ଗେ)ଇବା—ଅନ୍ୟରୂପ]

ମନ୍ଥଡ଼ା(ଡ଼ୀ)—ଦେ. ବି. ସ୍ତ୍ରୀ ( ସ. ମନ୍ଥରା=କୈକେୟୀଙ୍କ ଦାସୀ )—
Mantharḍā(rḍī) ୧ । ମନ୍ଥଡ଼ର ସ୍ତ୍ରୀଲିଙ୍ଗ—1. Feminine
मन्थरा of Mantharḍa. ୨ । ମନ୍ଥରା ( ଦେଖ )—
**मन्थरा** 2. Mantharā ( See)

ମନ୍ଥନ—ସ. ବି—(ମନ୍ଥ୍ ଧାତୁ+ଭାବ. ଅନ)—୧ । ଆଲୋଡ଼ନ;
Manthana ମୋହିଁବା—1. Churning. ୨ । (+କରଣ.
ଅନ)—ମନ୍ଥନ ଦଣ୍ଡ—2. Churning stick. ୩ ।
(+ଭାବ. ଅନ) ବିନାଶ—3. Destruction. ୪ ।
ଦୁଇ ବସ୍ତୁର ଘର୍ଷଣରେ ଅଗ୍ନି ଉତ୍ପାଦନ—4. Kindling
fire by attrition (Apte). ୫ । ଚକଟିବା,
ଦଳିବା—5. Shampooing; crushing. ଦେ. ବି—
(ସ. ମୈଥୁନ) ମୈଥୁନ—Copulation.

ମନ୍ଥନ ଘଟୀ—ସ ବି—(ମ. ପ. ଲୋ)—ମୋହିଁବା ପାତ୍ର; ଯେଉଁ ପାତ୍ରରେ
Manthana ghaṭī ଦହି ଅବା ମୁହିଁ ଯାଏ—Churning
(ମନ୍ଥନ ଭାଣ୍ଡ—ଅନ୍ୟରୂପ) vessel.

ମନ୍ଥନ ଦଣ୍ଡ—ସ. ବି—(ମ. ପ. ଲୋ; ମନ୍ଥନାର୍ଥ ବ୍ୟବହୃତ ଦଣ୍ଡ)—ଦହି-
Manthana daṇḍa ଖୁଆ—Churning rod.
(ମନ୍ଥ ଦଣ୍ଡ, ମନ୍ଥ ଦଣ୍ଡକ, ମନ୍ଥନ ଦଣ୍ଡକ—ଅନ୍ୟରୂପ)

ମନ୍ଥନ ରଜ୍ଜୁ—ସ. ବି—(ମ. ପ. ଲୋ)—ଯେଉଁ ଦଉଡ଼ିଦ୍ୱାରା ଦହି
Manthana rajju ଖୁଆକୁ ଗୁଳାଇ କରି ଯାଏ; ଦହି ମୁହିଁ
ଘଟେଣୀ; ଖୁଆ ଦଉଡ଼ି—Churning string or
rope.

ମନ୍ଥନୀ—ସ. ବି—(ମନ୍ଥନ+ଈ)—ଦହି ମୋହିଁବା ହାଣ୍ଡି—A pot in
Manthanī which curd is churned; churning
vessel.

**ମନ୍ଥର**—ସଂ. ବିଣ—(ମନ୍ଥ ଧାତୁ+କର୍ମି. ଅର)—୧ । ମନ୍ଦଗାମୀ; ମୃଦୁ-
Manthara ଗାମୀ—1. Going or moving very
(ମନ୍ଥରା—ସ୍ତ୍ରୀ) slowly; slow-paced. ୨ । ଅଳସ; ଦୀର୍ଘସୂତ୍ରୀ; ଚିର କ୍ରିୟ—2. Slow; tardy; lazy. ୩ । ପୃଥୁଳ; ସ୍ଥୂଳ—3. Fat; corpulent. ୪ । ନମ୍ର; ନତ—4. Bent; curved. ୫ । ନୀଚ—5. Low ୬ । ନିର୍ବୁଦ୍ଧିଆ—6. Stupid; foolish; silly (Apte). ୭ । ନୀଚ ସ୍ୱର ବିଶିଷ୍ଟ—7. Having a low tone (Apte). ୭ । ବଡ଼; ପ୍ରଶସ୍ତ—7. Big; large; wide (Apte.) ୮ । (ଅମୂଳ) ସୂଚକ—8. Indicating; showing. ସଂ. ବି—୧ । (+କରଣ ଅର) ମନ୍ଥନ ଦଣ୍ଡ—1. Churning rod. ୨ । (+କର୍ମି. ଅର)—କୋଷ; ସଞ୍ଚିତ ଧନ—2. Store; treasure. ୩ । (+କରଣ. ଅର) ବାଧା; ପ୍ରତିବନ୍ଧକ—3. Obstacle. ୪ । (+କର୍ତ୍ତୃ. ଅର) ଧୀରେ ଧୀରେ ଗତି କରୁଥିବା ଯୋଦ୍ଧା—4. A soldier moving slowly. ୫ । (+କର୍ମି. ଅର) ମୁଣ୍ଡର କେଶ—5. The hair of the head (Apte). ୬ । (+କର୍ତ୍ତୃ. ଅର) ରାଗ; କ୍ରୋଧ—6. Wrath; anger (Apte). ୭ । (+କର୍ମି. ଅର) ସଦ୍ୟ ନବନୀତ—7. Fresh butter (Apte). ୮ । ଦୁର୍ଗ-8. Stronghold (Apte). ୯ । ଫଳ—9. Fruit (Apte). ୧୦ । (+କର୍ତ୍ତୃ. ଅର)—ଗୁପ୍ତଚର-10. Spy; informer (Apte). ୧୧ । ବୈଶାଖ ମାସ—11. The month of Baisākha (Apte). ୧୨ । (+କରଣ. ଅର)—ମନ୍ଦର ପର୍ବତ—12. The Mandara Mountain. ୧୩ । କୁସୁମ ଫଳ—13. Safflower (Apte) ଦେ. ବି—ବିଳମ୍ବ—Delay. [ଉ—ରଥୀମାନେ ରଥ ବିଆର କରୁ କରୁ, ସାରଥୀକି ବୋଇଲେ ମନ୍ଥର କେତେ କରୁ । କୃଷ୍ଣସିଂହ. ମହାଭାରତ ବିରାଟ ।]

**ମନ୍ଥର ଗତି**—ସଂ. ବି (କର୍ମଧା)—ଧୀର ଗତି—Slow pace; slow
Manthara gati motion. ସଂ, ବିଣ. ପୁଂ ଓ ସ୍ତ୍ରୀ—(ବହୁବ୍ରୀହି) ମନ୍ଦଗାମୀ—Slow-paced; moving slowly.

**ମନ୍ଥର ଗମନ**—ସଂ. ବିଣ. ପୁଂ—ମନ୍ଥରଗତିବିଶିଷ୍ଟ—Moving
Manthara gamana slowly. ବି—ଧୀର ଗତି—Slow
[ମନ୍ଥର ଗମନା—ସ୍ତ୍ରୀ] motion.

**ମନ୍ଥର ଗମନୀ**—ଦେ. ବିଣ. ସ୍ତ୍ରୀ [ସଂ. ମନ୍ଥର ଗମନା]—ଧୀରଗାମିନୀ—
Manthara gamanī (woman) Moving very slowly.

**ମନ୍ଥରଗାମୀ**—ସଂ. ବିଣ. ପୁଂ (ମନ୍ଥର+ଗମ୍ ଧାତୁ+କର୍ତ୍ତୃ. ଇନ୍; ୧ମା
Mantharagāmī ୧ବ)—ଯେ ଧୀରେ ଧୀରେ ଚାଲେ—
[ମନ୍ଥରଗାମିନୀ—ସ୍ତ୍ରୀ] Walking with slow steps.

**ମନ୍ଥର ବିବେକ**—ସଂ ବିଣ. ପୁଂ (ବହୁବ୍ରୀହି; ମନ୍ଥର+ବିବେକ)—
Manthara bibeka ୧ । ବିଚାର ଶକ୍ତିରେ ଧୀର—1. Slow
(ମନ୍ଥର ବିବେକା—ସ୍ତ୍ରୀ) in judgment (Apte). ୨ । ବିଚାର-ଶକ୍ତି ହୀନ—2. Void of discrimination (Apte).

**ମନ୍ଥରା**—ସଂ. ବି. ସ୍ତ୍ରୀ (ମନ୍ଥର+ଆ)—୧ । ମନ୍ଥନ ଦଣ୍ଡ—1. Churn-
Mantharā ing stick. ୨ । କୈକେୟୀଙ୍କର କୁବ୍ଜା ଦାସୀ—2. Name of a hunch-backed maid of queen Kaikeyī. [ଦ୍ର—ଏହାର ମନ୍ତ୍ରଣାଦ୍ୱାରା ଚାଳିତା ହୋଇ ରାମଚନ୍ଦ୍ରଙ୍କ ଯୌବରାଜ୍ୟାଭିଷେକର ପ୍ରାକ୍‌କାଳରେ କୈକେୟୀ ଦଶରଥଙ୍କୁ ପୂର୍ବପ୍ରତିଶ୍ରୁତ ବରଦ୍ୱୟର ପୂରଣାର୍ଥ ରାମଚନ୍ଦ୍ରଙ୍କର ବନବାସ ଓ ସ୍ୱୀୟ ପୁତ୍ର ଭରତଙ୍କର ରାଜ୍ୟାଭିଷେକ ପ୍ରାର୍ଥନା କରିଥିଲେ । ] ଦେ ବି—ପ୍ରାଚୀନ ଜଳଯାନ ବିଶେଷ—A kind of ancient boat or vessel (ଜଗବନ୍ଧୁ. ପ୍ରାଚୀନ ଉତ୍କଳ) ।

**ମନ୍ଥରୀ**—ଦେ. ବି. ସ୍ତ୍ରୀ (ସଂ ମନ୍ଥରା)—ମନ୍ଥରା (ଦେଖ)—Mantharā
Mantharī (See). [ଉ—ବାଳଶା ଯେ ମନ୍ଥରୀ; ବେଗେ ଶ୍ରୀରାମ ସନ୍ନିଧି କରି । ଉପେ. ବୈଦେହୀଶବିଳାସ । ]

**ମନ୍ଥରୁ**—ସଂ. ବି (ମନ୍ଥ. ଧାତୁ+କର୍ମି. ଅରୁ)—ଚାମର ଚାଳନଦ୍ୱାରା
Mantharu ପ୍ରବାହିତ ବାୟୁ—The wind produced by the waving of a Chāmara (Apte).

**ମନ୍ଥା**—ଦେ. ବି (ସଂ. ମନ୍ଥନ)—ମନ୍ଥନ; ମନ୍ଥିବା; ମୋହିବା—
Manthā Churning. ଦେ. ବିଣ—୧ । ମଥିତ—
मथा **मथहना** 1. Churned. ୨ । ମନ୍ଥନକାରୀ—2. Churning.

**ମନ୍ଥା[ନ୍ଥେ]ଇବା**—ଦେ. କ୍ରି—ମନ୍ଥିବା କ୍ରିୟାର ଣିଜନ୍ତ ରୂପ—
Manthā(nthe)ibā Causative of Manthibā
मथान **मथाना, महाना** [ଉ—ମନ୍ଦରେ ମନ୍ଥାଇ ସାଗର—ଭୂପତି. ପ୍ରେମପଞ୍ଚାମୃତ । ]

**ମନ୍ଥା ଚକଟା(ଟ)**—ଦେ. ବି (ଏକାର୍ଥକ ସହଚର)-ଦଳାଦଳ; ଦଳାଚକଟା;
Manthā chakaṭā(ṭa) ବିଶେଷ ଭାବରେ ଆଲୋଡ଼ନ--Exces-
[ମନ୍ଥା ଚକଟ—ଅନ୍ୟରୂପ] sive churning. [ଲକ୍ଷଣାର୍ଥ ]—ଘାଁଟାଚକଟା କୌଣସି ବିଷୟର ବିଶେଷଭାବେ ଆଲୋଚନା; ଘଣ୍ଟାଚକଟା
**मन्थनमन्थन** A great deal of agitation.
[ମନ୍ଥାମନ୍ଥି—ଅନ୍ୟରୂପ]

**ମନ୍ଥାନ**—ସଂ. ବି (ମନ୍ଥ୍ ଧାତୁ+କରଣ. ଆନ)—ଦହିଖୁଆ; ମନ୍ଥନ ଦଣ୍ଡ-
Manthāna Churning stick.

**ମନ୍ଥାନ ଷଷ୍ଠୀ**—ଭାଦ୍ର ଶୁକ୍ଳ ଷଷ୍ଠୀ—The 6th day of the bright
Manthāna shashṭhī fortnight of Bhādra.

**ମନ୍ଥାନୀ**—ସଂ. ବି (ମନ୍ଥ୍ ଧାତୁ+ଅଧିକରଣ. ଆନ+ଈ)—ଦଧିଭାଣ୍ଡ;
Manthānī ମନ୍ଥନପାତ୍ର—Churning pot.

**ମନ୍ଥିବା**—ଦେ. କ୍ରି (ସଂ. ମନ୍ଥ୍ ଧାତୁ)—୧ । ଗୋଳାଇବା; ବିଲୋଡ଼ନ
Manthibā କରିବା—1. To churn. [ଉ—ଦେଖି
मथ ଦମୟନ୍ତୀଙ୍କ ହୃଦ ଦେଲା ମନ୍ଥି । କୃଷ୍ଣସିଂହ, ମହାଭାରତ ବନ ।]

**मथना, महना** ୨ । ଦଳିବା—2 To crush. [ ଉ—କମ୍ପାଟଳ ହୃଦୈଁ କ୍ୟର୍ଥେ ମୋ ଦର୍ପ ମନ୍ଥିଲ୍ଲ । ଉଙ୍କ. ବୈଦେହୀଶ-ବିଳାସ । ]

**ମନ୍ଥିବା ଚକଟିବା**—ଦେ. କ୍ରି (ସଡ଼ଚର)—୧ । ଦଳିବା ଓ ଚକଟିବା—Manthibā chakaṭibā 1. To crush. ୨ । ଅତ୍ୟାଚାର ସାଁଟିଚକଟା **महीमही करना** କରିବା; ଧଂସ କରିବା; ବିଧ୍ୱଂସନ [ ଚକଟିବା ମନ୍ଥିବା—ଅନ୍ୟରୂପ ] କରିବା—2. To commit depredation.

**ମନ୍ଥୀ**—ସ. ବିଣ. ପୁଂ [ ମନ୍ଥ୍. ଧାତୁ+କର୍ତ୍ତ. ଇନ୍, ୧ମା. ୧ବ ]—Manthī ମନ୍ଥନକାରୀ—Churning. ସଂ. ବି—ରେତଃ—[ମନ୍ଥିନୀ—ସ୍ତ୍ରୀ] Semen virile (Apte).

**ମନ୍ଦ୍** [ଧାତୁ]—ସଂ—୧ । ଜଡ଼ୀଭୂତ ହେବା—1. To become Mand (root) slow; to languish; to become slack. ୨ । ପ୍ରୀତ ହେବା; ଆନନ୍ଦିତ ହେବା—2. To be pleased; to be glad. ୩ । ନିଦ୍ରା ଯିବା—3. To sleep. ୪ । ଧୀରେ ଗତି କରିବା; ବିଳମ୍ବ କରି ଚାଲିବା—4. To move slowly; to loiter; to tarry ( Apte ) ୫ । ପ୍ରଶଂସା କରିବା—5. To praise [Apte]. ୬ । ଦୀପ୍ତିମନ୍ତ ହେବା—6. To shine ( Apte ). ୭ । ପ୍ରଶଂସିତ ବା ପ୍ରସିଦ୍ଧ ହେବା—7. To be praised or celebrated [Apte].

**ମନ୍ଦ**—ସଂ. ବିଣ (ମନ୍ଦ୍. ଧାତୁ+କର୍ତ୍ତୃ.ଅ)—୧ । ମୃଦୁ; ଧୀର—1. Slow. Manda soft; gentle; tardy. ୨ । ଅବୋଧ; ଜଡ଼; [ମନ୍ଦା—ସ୍ତ୍ରୀ] ମୂର୍ଖ—2. Dull; stupid; foolish. ୩ । ଅଳସ—[ ମନ୍ଦତା(ତ୍ୱ)—ବିଶେଷ୍ୟ ] 3. Lazy; idle. ୪ । ଅଶୀଘ୍ର; ବିଳମ୍ବିତ—4 Tardy. ୫ । ସୁକୁମାର; ଅତି ପତଳା ବା ସରୁ—5. Delicate. ୬ । ଅସୁସ୍ଥ—6. Sick. ୭ । ବାମ; ପ୍ରତିକୂଳ—7. Unfavourable. ୮ । ଖରାପ; ଗ୍ଲାନ—8. Bad; evil. ୯ । ଅଧମ; ନୀଚ—9. Low, mean. ୧୦ । ମତ୍ତ—10. Intoxicated. ୧୧ । ଅପକାରୀ; ଅନିଷ୍ଟକାରୀ—11. Injurious; mischievous; detrimental. ୧୨ । ଦୁଷ୍ଟ; ଖଳ—12. Wicked; vile. ୧୩ । ସାମାନ୍ୟ; କ୍ଷୁଦ୍ର; ଅଳ୍ପ—13. Little; slight. ୧୪ । ସଙ୍କୁଚିତ—14. Contracted. ୧୫ । ଅପକୃଷ୍ଟ—15. Inferior. ୧୬ । ଅପଟୁ—16. Incapable; unskilful. ୧୭ । ଅତୀକ୍ଷ୍ଣ; ବତୁରା—17. Blunt. ୧୮ । କଟୁ—18. Harsh; bitter. ୧୯ । ଅଶ୍ଳୀଳ—19. Coarse; indecent. ୨୦ । ଉଦାସୀନ—20. Indifferent; apathetic (Apte). ୨୧ । ମ୍ଳାନ—21. Faded [Apte] ୨୨ । ଅନୁଚ୍ଚ; ଗମ୍ଭୀର ( ଶବ୍ଦ )—22. Low; deep (sound). ୨୩ । ଦୁର୍ବଳ; କ୍ଷୀଣ (ଜଠରାଗ୍ନି)—23. Weak; defective ( digestion ). ୨୪ । ପାନାସକ୍ତ—24. Addicted to drink (Apte). ୨୫ । ହତଭାଗ୍ୟ—25. Unlucky (Apte). ୨୬ । ଦୁଃଖଗ୍ରସ୍ତ; ଅସୁଖୀ—26. Unhappy [Apte]. ୨୭ । ଶିଥିଳ (ଧନୁ)—27. Slackened ( bow ). ( Apte ). ୨୮ । ସ୍ୱତନ୍ତ୍ର—28. Independent [Apte] ସଂ. ବି—୧ । ମୂର୍ଖ ବ୍ୟକ୍ତି—1. Stupid person. ୨ । ଶନିଗ୍ରହ—2. The planet Saturn. [ଉ—ଭୁଲାଯାକ କର ମନ୍ଦ, ଭୁଲାବେ ଅଷ୍ଟମେ ମନ୍ଦ। ଉଙ୍କ. କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ । ] ୩ । କାକ—3. Crow. [ ଉ—ଦରବରେ ଭୁଲାସୂକୁ ଗମେ ମନ୍ଦପନ୍ତି । ଉଙ୍କ. କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ । ] ୪ । ଯମ—4. God of death. ୫ । ପ୍ରଳୟ—5. The dissolution of the world. ୬ । ଗଜ ବିଶେଷ—6. A kind of elephant (Apte). ଦେ. ବି—ଅପକାର; ଅନିଷ୍ଟ—Mischief; detriment.

**ମନ୍ଦ ଅଲଣା**—ଦେ. ବି (ସଂ.ମନ୍ଦ=ଈଷତ୍+ଅଲବଣ )-ଅଳ୍ପ ଅଲଣା—Manda alaṇā Slighty wanting in salt (curry). अल्पआलना **मंद[म्द]नोन**

**ମନ୍ଦଉଦରୀ**—ଦେ. ବିଣ. ସ୍ତ୍ରୀ—କୃଶୋଦରୀ (ସ୍ତ୍ରୀ)—Manda udarī Slender-waisted [woman]. [ଉ—କେଉଁ ସୁନ୍ଦରୀ, ମନ୍ଦଉଦରୀ, ପ୍ରୀତି ଆଦର, ସେହି—ଉଙ୍କ. ପ୍ରେମସୁଧାନିଧି । ]

**ମନ୍ଦ କଥା**—ଦେ. ବି ( ସ. ମନ୍ଦ+କଥା )—୧ । କଟୁ କଥା—Manda kathā 1. Harsh words. ୨ । ଅଶ୍ଳୀଳ କଥା—मन्द कथा 2. Coarse or indecent words. ୩ । ମନ୍ଦ **बुरी बात** ବିଷୟ—3. A bad thing.

**ମନ୍ଦ କରିବା**—ଦେ. କ୍ରି—ଅପକାର କରିବା; ଅନିଷ୍ଟ କରିବା—Manda karibā To injure; to commit mischief. मन्दकरा **मन्द करना**

**ମନ୍ଦ କର୍ଣ୍ଣ**—ସ. ବିଣ. ପୁଂ (ବହୁବ୍ରୀହି)—ବଡ଼ କାଲ୍ଲା, ଈଷତ୍ ବଧିର—Manda karṇṇa Slightly deaf (Apte). ସ. ବି. ପୁଂ (ମନ୍ଦ କର୍ଣ୍ଣୀ - ସ୍ତ୍ରୀ) ଜନୈକ ଋଷି—A sage. (ଉ—ବନୌକାଦ ନାମ ତା ମନ୍ଦକର୍ଣ୍ଣି, କରନ୍ତି ତପସ୍ୟା ବସି ବନ । ଉଙ୍କ. ବୈଦେହୀଶବିଳାସ । ) [ ବ୍ର—ଏ ଋଷି ବନରେ ତପସ୍ୟା-ଚରଣ କରିବା ସମୟରେ ତାଙ୍କର ତପସ୍ୟାସିଦ୍ଧି ହେଲେ ଋଷି ଇନ୍ଦ୍ରଙ୍କ ଇନ୍ଦ୍ରପଦ ପାଇବାର ଆଶଙ୍କା କରି ଇନ୍ଦ୍ରଦେବ ପାଞ୍ଚ ଜଣ ସ୍ୱର୍ଗବେଶ୍ୟାଙ୍କୁ ଉକ୍ତ ଋଷିଙ୍କର ତପୋଭଙ୍ଗ ପାଇଁ ପଠାଇଲେ । ଏମାନେ ଆସିବାରୁ ଋଷି କାମମୋହିତ ହେଲେ । ଉକ୍ତ ମଧ୍ୟରେ ବୃଦ୍ଧା ସ୍ୱର୍ଗଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା 'ପଞ୍ଚାପ୍ସର' ବା 'ପଞ୍ଚାପ୍ସର' ନାମକ ପୁଷ୍କରିଣୀର ଜଳ ତଳରେ ଗୋଟିଏ ମନୋହର ପୁର ନିର୍ମାଣ କରାଇଥିଲେ । ଉକ୍ତ ପୁରରେ ସେ ବେଶ୍ୟାମାନେ ନୃତ୍ୟ ଗୀତାଦରେ ମନ୍ଦ-କର୍ଣ୍ଣିଙ୍କୁ ସର୍ବଦା ବଶୀଭୂତ ରଖିଥିବାର ରାମାୟଣରେ ବର୍ଣ୍ଣିତ ଅଛି । ବ୍ର. ଗ ]

**ମନ୍ଦ କର୍ମ**—ସଂ. ବି (କର୍ମଧା)—ମନ୍ଦ ଭାଗ୍ୟ ( ଦେଖ )
Manda karma Manda bhāgya ( See )
ଦେ. ବି—ମନ୍ଦ କାର୍ଯ୍ୟ—Evil act.

**ମନ୍ଦ କାମ** -ଦେ. ବି—ଖରାପ କାର୍ଯ୍ୟ—Wicked or evil act.
Manda kāma मन्द काज **बुरा काम**
(ମନ୍ଦ କାର୍ଯ୍ୟ—ସଂସ୍କୃତ ରୂପ)

**ମନ୍ଦଗ**—ସଂ. ବିଣ. ପୁଂ—ଧୀରଗତିବିଶିଷ୍ଟ—Moving slowly.
Mandaga ସଂ. ବି—୧ । ଧୀରଗାମୀ ଯୋଦ୍ଧା—1. A soldier marching slowly. ୨ । ଶନି ଗ୍ରହ—2. Saturn (Apte).
ମନ୍ଦଗା } ସ୍ତ୍ରୀ
ମନ୍ଦଗାମିନୀ }
(ମନ୍ଦଗାମୀ—ଅନ୍ୟରୂପ)

**ମନ୍ଦ ଗତି**—ସଂ. ବି (କର୍ମଧା; ମନ୍ଦ+ଗତି)—ଧୀର ଗତି—
Manda gati Slow motion; slow progress.
ସଂ. ବିଣ (ବହୁବ୍ରୀହି)—ଧୀରଗତିବିଶିଷ୍ଟ—
Slow-going; moving by degrees

**ମନ୍ଦ ଗ୍ରହ**—ସଂ. ବି ( କର୍ମଧା )—୧ । ଶନି ଗ୍ରହ—1. Planet
Manda graha Saturn. ୨ । ଅମଙ୍ଗଳକାରକ ଗ୍ରହ—
2. Unpropitious or malicious planet.

**ମନ୍ଦ ଘଟଣା**—ସଂ. ବି—୧ । ଅମଙ୍ଗଳ ଘଟଣା—1. The befalling
Manda ghaṭanā of evil; inauspicious event.
[ମନ୍ଦ ଘଟଣ(ଣା)—ଦେ.ରୂପ] ୨ । ଦୁର୍ଘଟଣା—2. Mishap.

**ମନ୍ଦ ଚରିତ୍ର**—ସଂ. ବି ( କର୍ମଧା )—ଖରାପ ଆଚରଣ—Wicked or
Manda charitra bad conduct. ସଂ. ବିଣ. ପୁଂ
(ମନ୍ଦ ଚରିତ୍ରା—ସ୍ତ୍ରୀ) (ବହୁବ୍ରୀହି)—ଖରାପ ଆଚରଣ ବିଶିଷ୍ଟ;
ଦୁଶ୍ଚରିତ୍ର—Immoral; depraved.

**ମନ୍ଦ ଚାହିଁ(ହି)ବା**—ଦେ କ୍ରି—କୌଣସି ବ୍ୟକ୍ତିର ଅନିଷ୍ଟ କାମନା
Manda chāhiñ(hi)bā କରିବା—To think evil of a
मन्द चाओया person; to wish evil to a person.
**बुराइ चाहना** (ମନ୍ଦ ଚାହିଁବା—ଅନ୍ୟରୂପ)

**ମନ୍ଦ ଚେତାଃ**—ସଂ. ବିଣ (ବହୁବ୍ରୀହି; ମନ୍ଦ+ଚେତସ୍; ୧ମା. ୧ବ)—
Manda chetāḥ ୧ । ନିର୍ବୋଧ—1. Dull-witted; silly (Apte). ୨ । ଅନ୍ୟମନସ୍କ; ଅମନୋଯୋଗୀ—
2. Absent-minded (Apte). ୩ । ମୂର୍ଚ୍ଛା ଯାଉଥିବା
—3. Fainting away. (Apte).

**ମନ୍ଦ ଛାୟା**—ସଂ. ବିଣ ( ବହୁବ୍ରୀହି; ମନ୍ଦ+ଛାୟା )—୧ । ଅନୁଜ୍ଜ୍ୱଳ—
Manda chhāyā 1. Lustreless (Apte). ୨ । ଅସ୍ପଷ୍ଟ
ମନ୍ଦଭାଃ } ଅନ୍ୟରୂପ ଦେଖା ଯାଉଥିବା—2. Dim; faint
ମନ୍ଦଦ୍ୟୁତି } (Apte).

**ମନ୍ଦ ଜଳବାୟୁ**—ଦେ. ବି—ଅସ୍ୱାସ୍ଥ୍ୟକର ଅବ୍ ହାଓ୍ୱା—
Manda jaḷabāyu Bad or unhealthy climate.
मन्द आब हाओया **मन्द आबहवा**

**ମନ୍ଦ ଜଳ ବୃଷ୍ଟି**—ସଂ. ବି—ମନ୍ଦ ବୃଷ୍ଟି ( ଦେଖ )
Manda jaḷa bṛushṭi Manda bṛushṭi (See)
(ବହୁ ଜଳ ବୃଷ୍ଟି—ବିପରୀତ)

**ମନ୍ଦ ଜାଳ**—ଦେ. ବି ( ସଂ. ମନ୍ଦ+ଜ୍ୱଲ୍ ଧାତୁ )—୧ । ନିଆଁକୁ ଧୁକୁଧୁକୁ
Manda jāḷa ଜଳାଇବା ପାଇଁ ଚୂଲିରେ ଦିଆଯିବା ସାମାନ୍ୟ
ପରିମାଣରେ ଜାଳଣୀ କାଠ—1. A little of fuel added to a fire to make it burn slowly.
୨ । ନିଆଁର ସାମାନ୍ୟ ତାତି—2. Slow heat of fire; heat of a slow fire.

**ମନ୍ଦାଟ**—ସଂ. ବି—ମନ୍ଦାର ଫୁଲର ଗଛ—
Mandaṭa The coral tree (Apte).

**ମନ୍ଦ ତନୟ**—ଦେ. ବି—୧ । ମନ୍ଦ ଲୋକର ପୁତ୍ର—1. The son of
Manda tanaya a bad man. ୨ । କୋକିଳ; କୋଇଲି—
2. The cuckoo.
(ଉ—କୋଇଲି ମନ୍ଦ ତନୟ ଯେ, ବିଶେଷର ମନ୍ଦତନୟ ନ କର ପରିହିତ ନାମୋଦୟ । ଭଞ୍ଜ. ବୈଦେହୀଶବିଳାସ)

**ମନ୍ଦ ଦଶା**—ସଂ. ବି (କର୍ମଧା)—୧ । ଜୀବନରେ ଅମଙ୍ଗଳକର ଘଟଣା
Manda daśā ଘଟିବାର ଅବସ୍ଥା—1. Bad period of one's life ୨ । ଗ୍ରହମାନଙ୍କର ଅମଙ୍ଗଳକର ଅବସ୍ଥାନ-ଜନିତ ଜୀବନର ମନ୍ଦ ଅବସ୍ଥା—2. Adversity due to unpropitious position of planets. ୩ । ମନ୍ଦ ଭାଗ୍ୟ—3. Misfortune.

**ମନ୍ଦଧୀ**—ସଂ. ବିଣ (ବହୁବ୍ରୀହି)—ନିର୍ବୋଧ—
Mandadhī Dull-witted; silly (Apte).
(ମନ୍ଦବୁଦ୍ଧି, ମନ୍ଦପ୍ରଜ୍ଞ, ମନ୍ଦମେଧା—ଅନ୍ୟରୂପ)

**ମନ୍ଦନ**—ସଂ. ବି ( ମନ୍ଦ୍ ଧାତୁ=ପ୍ରୀତ ହେବା+କରଣ. ଅନ )—
Mandana ପ୍ରଶଂସା; ସ୍ତୁତି—Praise; eulogy (Apte).

**ମନ୍ଦ ପଦ**—ସଂ. ବି. (କର୍ମଧା)—ଧୀର ପଦକ୍ଷେପ—Slow steps.
Manda pada ସଂ. ବିଣ. ପୁଂ—ମନ୍ଦଗାମୀ—Slow-paced.
(ମନ୍ଦ ପଦା—ସ୍ତ୍ରୀ)

**ମନ୍ଦ ପବନ**—ସଂ. ବି—ମୃଦୁ ପବନ; ଧୀର ବାୟୁ; ଅଳ୍ପେ ଅଳ୍ପେ ବହୁଥିବା
Manda pabana ପବନ—Breeze.

**ମନ୍ଦ ପ୍ରକୃତି**—ସଂ. ବି (କର୍ମଧା)—କୁସ୍ୱଭାବ—Bad nature; evil
Manda prakṛuti propensity. ସଂ. ବିଣ—(ବହୁବ୍ରୀହି)-
କୁସ୍ୱଭାବଯୁକ୍ତ—Evil-natured.

**ମନ୍ଦ ପ୍ରକୃତିକ**—ସଂ. ବିଣ. ପୁଂ—୧ । କୁସ୍ୱଭାବାପନ୍ନ—1. Evil-
Manda prakṛutika natured. ୨ । ନୀଚପ୍ରକୃତିକ—
(ମନ୍ଦ ପ୍ରକୃତିକା—ସ୍ତ୍ରୀ) 2. Mean; ignoble.

**ମନ୍ଦ ଫଳ**—ସଂ. ବି—(କର୍ମଧା)—୧ । ଅସନ୍ତୋଷଜନକ ଫଳ—
Manda phaḷa 1. Unsatisfactory result. ୨ । କୁଫଳ; ଅଶୁଭ ପରିଣାମ—2. Bad result. ୩ । (ଜ୍ୟୋ ତି) ଶନି ଗ୍ରହର ଅଶୁଭ ଫଳ—3. Evil due to the planet Saturn. ୪ । ଜ୍ୟୋତିଷ ବିଜ୍ଞାନୋକ୍ତ ଗଣିତ ବିଶେଷ—4. The anomatistic equation of a planet (Apte).

ମନ୍ଦବସ୍ତ୍ର—ସଂ. ବି—(କର୍ମଧା)—ମୋଟା ଲୁଗା—
Manda bastra Coarse cloth.

ମନ୍ଦ ବିଭବ—ସଂ. ବିଣ. ପୁଂ—(ବହୁବ୍ରୀହି)—ଗରିବ—Poor; im-
Manda bibhaba (ମନ୍ଦ ବିଭବା—ସ୍ତ୍ରୀ) poverished (Apte).

ମନ୍ଦ ବୁଦ୍ଧି—ସଂ. ବି—(କର୍ମଧା)—୧ । ସ୍ଥୂଳ ବା ଜଡ ବୁଦ୍ଧି—1.
Manda buddhi Stupidity; dullness. ୨ । ଦୁର୍ବୁଦ୍ଧି -
2. Wicked inclination. ସଂ. ବିଣ (ବହୁବ୍ରୀହି)
୧ । ମାନ୍ଦା ବୁଦ୍ଧିଆ; ନିର୍ବୋଧ—1. Foolish; stu-
pid; dull. ୨ । ଦୁଷ୍ଟବୁଦ୍ଧି; ଦୁର୍ବୁଦ୍ଧିବିଶିଷ୍ଟ—
2. Wanton; wicked.

ମନ୍ଦ ବୃଷ୍ଟି—ସଂ. ବି (କର୍ମଧା)—୧ । ସାମାନ୍ୟ ବା ଅଳ୍ପ ବୃଷ୍ଟି—
Manda brushṭi Slight or little rain-fall. ୨ । ଝିପି-
ଝିପି ବର୍ଷା—2. Light shower.

ମନ୍ଦ ଭାଗ(ଗ୍ୟ)—ସଂ. ବି (କର୍ମଧା)—ଦୁରଦୃଷ୍ଟ—
Manda bhāga(gya) Ill luck; misfortune.
(ମନ୍ଦଭାଗା[ଗ୍ୟା]—ସ୍ତ୍ରୀ) ସଂ. ବିଣ. ପୁଂ—ହତଭାଗ୍ୟ—
Unfortunate; unlucky.

ମନ୍ଦଭାଗୀ—ଦେ. ବିଣ. ପୁଂ—(ମନ୍ଦ+ଭାଗ+ଇନ୍; ୧ମା. ୧ବ)—
Manda bhāgī ହତଭାଗ୍ୟ—Unfortunate (Apte).
(ମନ୍ଦଭାଗିନୀ—ସ୍ତ୍ରୀ) [ଦ୍ର—ଏ ଶବ୍ଦର ସ୍ତ୍ରୀଲିଙ୍ଗ ମନ୍ଦଭାଗିନୀ ସଂସ୍କୃତ
ବ୍ୟାକରଣସିଦ୍ଧ ପଦ ନୁହେଁ ବୋଲି ସୁବଳଚନ୍ଦ୍ର କହନ୍ତି,
କିନ୍ତୁ ଭାଗ ଶବ୍ଦର ଗୋଟିଏ ଅର୍ଥ ଭାଗ୍ୟ ଥିବାରୁ ଓ ଏ ଶବ୍ଦ
ସଂସ୍କୃତ ଥିବାର ଆପ୍ଟେ କହନ୍ତି ।] ଦେ. ବିଣ. ସ୍ତ୍ରୀ—
(ସଂ. ମନ୍ଦଭାଗିନୀ) ଦୁର୍ଭାଗ୍ୟବତୀ; ହତଭାଗ୍ୟା (ସ୍ତ୍ରୀ)—
Unfortunate (woman). [ଉ—ପୁଣି ବୋଲେ
ମନ୍ଦ ଭାଗୀ ମୁହିଁ ସେ ଏକା । ଶିଶୁଶଙ୍କର ଉଷାଅଭିଳାଷ ।]

ମନ୍ଦ ଭାଷଣ—ସଂ. ବି—(କର୍ମଧା)—ଧୀର ଭାଷଣ—
Manda bhāshaṇa Slow speech.

ମନ୍ଦଭାଷୀ—ସଂ. ବିଣ. ପୁଂ—(ମନ୍ଦ+ଭାଷ୍ ଧାତୁ+କର୍ତ୍ତୃ. ଇନ, ୧ମା.
Manda bhāshī ୧ବ.)—ଯେ ଧୀରେ ଧୀରେ କଥା କହେ—
(ମନ୍ଦଭାଷିଣୀ—ସ୍ତ୍ରୀ) Of slow speech

ମନ୍ଦ ମତି—ସଂ. ବି. ଓ ବିଣ—ମନ୍ଦବୁଦ୍ଧି (ଦେଖ)
Manda mati Manda buddhi (See)

ମନ୍ଦ ମଧୁର—ସଂ. ବିଣ (ଦ୍ୱନ୍ଦ୍ୱ)—ମୃଦୁ ଓ ମଧୁର—Sweet and
Manda madhura gentle; slight and sweet.

ମନ୍ଦ ମଧୁର ହାସ(ସ୍ୟ)—ସଂ. ବି (କର୍ମଧା)—ମୃଦୁ ଓ ମଧୁର ହସ—
Manda madhura hāsa(sya) Sweet simper; a
(ମନ୍ଦ ମଧୁର ହାସା[ସ୍ୟା]—ସ୍ତ୍ରୀ) sweet and gentle smile.
ସଂ. ବିଣ. ପୁଂ (ବହୁବ୍ରୀହି)—ଯେ ଅଳ୍ପ ଓ ମଧୁର ହସ
ହସେ—Having a sweet simper; smiling
sweetly.

ମନ୍ଦ ମଧୁର ହାସୀ—ଦେ.ବିଣ.ପୁଂ ଓ ସ୍ତ୍ରୀ—ମୃଦୁ ଓ ମଧୁର ଭାବରେ ହସୁଥିବା-
Manda madhura hāsī Smiling or simpering
(ମନ୍ଦ ମଧୁରହାସିନୀ—ସ୍ତ୍ରୀ) sweetly

ମନ୍ଦ ମନ୍ଦ—ଦେ. କ୍ରି. ବିଣ (ସଂ. ମନ୍ଦଂ ମନ୍ଦଂ)—୧ । ଧୀରେ ଧୀରେ;
Manda manda ହାଲୁକେ ହାଲୁକେ—1. Slowly. ୨ ।
ଈଷତ୍—2. Slightly. [ଉ—ତାମ୍ବୂଳ ଭଙ୍ଗି ଦିଅନ୍ତି
କାନ୍ତ, ମିତ୍ର ହସନ୍ତି ମନ୍ଦ ମନ୍ଦ । ଭୂପତି. ପ୍ରେମପଞ୍ଚାମୃତ ।]

ମନ୍ଦର—ସଂ. ବି (ମନ୍ଦ୍ ଧାତୁ+କରଣ. ଅର)—୧ । ପୌରାଣିକ ପର୍ବତ
Mandara ବିଶେଷ—1. Name of a mythological
mountain. [ଦ୍ର—ଦେବତା ଓ ଅସୁରମାନେ ସମୁଦ୍ର
ମନ୍ଥନ କରିବା ସମୟରେ ଏହି ପର୍ବତକୁ ମନ୍ଥନଦଣ୍ଡରୂପେ
ବ୍ୟବହାର କରିଥିଲେ ଓ ମନ୍ଥନର ଫଳରେ ଅମୃତ, ହଳା-
ହଳ, ଚନ୍ଦ୍ର, ଲକ୍ଷ୍ମୀ, ଉଚ୍ଚୈଃଶ୍ରବା ଅଶ୍ୱ ଆଦି ବାହାରି-
ଥିଲେ ।] ୨ । ମୁକୁର; ଦର୍ପଣ—2. Mirror; look-
ing glass. ୩ । ସ୍ତନ ଓ ନାଭି ମଧ୍ୟସ୍ଥ ଅଂଶ—
3. The part between the breast and the
navel ୪ । ମନ୍ଦାର (ଦେଖ)—4, Mandāra (See)
୫ । ଅଠସରିଆ ବା ଷୋଳସରିଆ ମୁକ୍ତାହାର—5. A
necklace of pearl of 8 or 16 strings
(Apte). ୬ । ସ୍ୱର୍ଗ—6. Heaven (Apte).
୭ । ବୃହତ୍ସଂହିତା ଅନୁସାରେ କୋଡ଼ିଏ ପ୍ରକାର ପ୍ରାସାଦ
ମଧ୍ୟରୁ ଏକତମ—7. One of 20 kinds of buil-
dings according to Hindu architecture.
[ଦ୍ର—ଏ ପ୍ରାସାଦ ଷଟ୍‌କୋଣ, ଏଥିର ବିସ୍ତାର ତିରିଶ ହାତ
ଓ ଏଥିରେ ଦଶ ଭୂମିକା ଥାଏ—ବୃ. ସ ।] ସଂ. ବିଣ—
୧ । ବହୁଳ—1. Excessive; numerous. ୨ । ମନ୍ଦ;
ଅଳସ—2. Lazy; tardy. ୩ । ଧୀର—3. Slow.
ଦେ. ବି—୧ । ଗୋବର୍ଦ୍ଧନ ଗିରି—1. A mountain
called Gobarddhana. ୨ । ମୁଙ୍ଗେର ନିକଟରେ ଥିବା
ଏକ ପାହାଡ଼—2. Name of a hill near
Monghyr. [ଦ୍ର—ଏ ପର୍ବତରେ ଅନେକ ହିନ୍ଦୁ, ଜୈନ
ଓ ବୌଦ୍ଧ ମନ୍ଦିର ଅଛି ଓ ସୀତାକୁଣ୍ଡ ନାମକ ଉଷ୍ଣ ପ୍ରସ୍ରବଣ
ଅଛି—ବୃ. ଷ ।] ୩ । (ପୁଂ) ଲୋକଙ୍କୁ ଦିଆଯିବା ନାମ—
3. A name given to males

ମନ୍ଦର ଦନ୍ତ—ସଂ. ବିଣ. ପୁଂ—ଦାନ୍ତୁରି—Having very big.
Mandara danta (ମନ୍ଦର ଦନ୍ତା—ସ୍ତ୍ରୀ) front teeth.

ମନ୍ଦର ଦାନ୍ତିଆ—ଦେ. ବିଣ (ସଂ. ମନ୍ଦର ଦନ୍ତ)—ଦନ୍ତୁର; ଦାନ୍ତୁରି—
Mandara dāntiā দেন্তো Having prominent teeth.
দাঁতুলা (ମନ୍ଦର ଦନ୍ତା—ଅନ୍ୟରୂପ)
(ମନ୍ଦର ଦାନ୍ତୋ[ନ୍ତେ]ଇ, ମନ୍ଦର ଦାନ୍ତୀ—ସ୍ତ୍ରୀ)

ମନ୍ଦର ଧର—ସଂ. ବି. ପୁଂ—(ମନ୍ଦର+ଧୃ ଧାତୁ+କର୍ତ୍ତୃ. ଅ; ଯେ ମନ୍ଦର
Mandara dhara ପର୍ବତକୁ ମନ୍ଥନବେଳେ ଟେକି ଧରିଥିଲେ)

ବିଷ୍ଣୁ—A name of Bishṇu. ଦେ. ବି. ପୁ—ଲୋକଙ୍କୁ ଦଅ ଯିବା ନାମ—A name given to males.

**ମନ୍ଦରବାସିନୀ**—ସଂ. ବି. ସ୍ତ୍ରୀ ( ମନ୍ଦର+ବାସ+ଇନ୍+ସ୍ତ୍ରୀ. ଈ )—ଦୁର୍ଗା—Durgā ( Apte ).
Mandar bāsinī
( ମନ୍ଦରବାସା—ଅନ୍ୟରୂପ )

**ମନ୍ଦରସ୍**—ପ୍ରାଦେ. ( ବସ୍ତର ) ବି (ଭୁଲନାକର ମରନ୍ଦ)—ମଧୁ—Honey.
Mandaras

**ମନ୍ଦ ସମୀରଣ**—ସଂ. ବି ( କର୍ମଧା )—ମୃଦୁ ବାୟୁ—Breeze; a light wind.
Manda samīraṇa
( ମନ୍ଦ ପବନ, ମନ୍ଦ ବାୟୁ, ମନ୍ଦ ବାତ—ଅନ୍ୟରୂପ )

**ମନ୍ଦସାନ(ନୁ)**—ସଂ. ବି—୧ । ଅଗ୍ନିଙ୍କର ଏକ ନାମ—1. A name of fire (Apte) ୨ । ଜୀବନ—2. Life ( Apte ). ୩ । ନିଦ୍ରା—3. Sleep ( Apte ).
Mandasāna(nu)

**ମନ୍ଦ ସୁତ**—ସଂ. ବି ( ମନ୍ଦ=କାକ+ସୁତ; ଏହାର ଡିମ୍ବ କୁଆ ଫୁଟାଇ ଥିବାରୁ )—କୋକିଳ—The cuckoo. [ ଉ—ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ, ବନ୍ଦେ ମନ୍ଦ ମନ୍ଦ ମନ୍ଦ ସୁତ କରେ ଗୀତ—ଭଞ୍ଜ. ବୈଦେହୀଶବିଳାସ । ]
Manda suta
( ମନ୍ଦପୁଷ୍ଟ—ଅନ୍ୟରୂପ )

**ମନ୍ଦ ସ୍ମିତ**—ସଂ. ବି ( କର୍ମଧା )—ମୃଦୁହାସ୍ୟ—Smile. ସଂ. ବିଣ—ମୃଦୁହାସ୍ୟକାରୀ—Smiling sweetly.
Manda smita
( ମନ୍ଦସ୍ମିତା—ସ୍ତ୍ରୀ )

**ମନ୍ଦ ହ(ହା)ସ**—ଦେ. ବି (ସଂ.ମନ୍ଦ+ହାସ )—ଈଷତ୍ହାସ୍ୟ—A smile. [ ଉ—କୃଷ୍ଣ ଅର୍ଜୁନଙ୍କୁ ବହୁତ ପ୍ରଶଂସା । କଲେ ବଚନରେ କରଣ ମନ୍ଦହସା—କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ]
Mandaha(sā)sa
মন্দহাঁসি **মন্দহাঁসী**

**ମନ୍ଦହାସ(ସ୍ୟ)**—ସଂ. ବି ( କର୍ମଧା )—ଈଷତ୍ହାସ୍ୟ; ମୁରୁକି ହସ—A smile; simper. ସଂ. ବିଣ. ପୁଂ—ସ୍ମେରମୁଖ—Smiling.
Mandahāsa(sya) ( ଅଟ୍ଟହାସ—ବିପରୀତ )
(ମନ୍ଦହାସା[ସ୍ୟା]—ସ୍ତ୍ରୀ)

**ମନ୍ଦହାସୀ**—ଦେ. ବିଣ. ସ୍ତ୍ରୀ ( ସଂ. ମନ୍ଦହାସା )—ଅଳ୍ପ ଅଳ୍ପ ହସୁଥିବା (ସ୍ତ୍ରୀ )—Smiling ( woman ).
Mandahāsī
( ମନ୍ଦହାସିନୀ—ଅନ୍ୟରୂପ )

**ମନ୍ଦ ହିଲ୍ଲୋଳ**—ସଂ. ବି ( କର୍ମଧା )—୧ । ମୃଦୁତରଙ୍ଗ—1. Light waves. ୨ । ମୃଦୁ କମ୍ପନ—2. Slight vibration.
Manda hillolā

**ମନ୍ଦା**—ସଂ. ବି (ମନ୍ଦ+ଆ)—୧ । ଗ୍ରହର ଗତିପଥର ଯେଉଁ ଅଂଶ କୋଣେଇ ହୋଇଥାଏ—1. The apsis of a planet's course. ୨ । ସଂକ୍ରାନ୍ତିବିଶେଷ—2 The name of a solar conjunction. [ ଦ୍ର—ଉତ୍ତର ଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ ବା ରୋହିଣୀ ନକ୍ଷତ୍ରଯୁକ୍ତ ସଂକ୍ରାନ୍ତିକୁ ମନ୍ଦା ବୋଲାଯାଏ । ଏ ସଂକ୍ରାନ୍ତିର ସଂକ୍ରମଣାନନ୍ତର ୩ ଦଣ୍ଡ ପୁଣ୍ୟକାଳ—ହି. ଶ ]
Mandā

୩ । ଲତା କରଞ୍ଜ ( ହି. ଶ. )—3. Latā karañja ( See). ଦେ. ବି ( ସଂ ବନ୍ଧ ) ୧ । ଗଛରେ ପାଣି ଦେବା ନିମନ୍ତେ ମୂଳର ଚାରି ପାଖରେ ହିଡ଼ ବନ୍ଧାଯାଇ କରାଯାଇଥିବା ମଣ୍ଡା; ଆଳବାଳ—1. A basin or hollow made round the foot of a tree for watering and where the water can be retained for some time. [ ଦ୍ର—ତରୁ ତଳେ ଆର୍ଦ୍ର-ମନ୍ଦାର ପ୍ରାଙ୍ଗଣେ ବସିଲ ଯାଇଁ ବହନ—ରାଧାନାଥ. ପାର୍ବତୀ ।] ୨ । ଲାଉ, କଖାରୁ, କାକୁଡ଼ି, କାକୁଡ଼ି ଆଦିର ବୀଜ ପୋତିବା ପାଇଁ ଭୂମିରେ ଖୋଳା ଯାଇଥିବା ଗୋଲ ଅଗଭୀର ଗାତ—2. Circular shallow patches dug in the ground by turning up the soil for planting the seeds of cucumber, pumpkin etc; a seedbed. ୩ । ଦେହରେ ବା ଲୁଗା ଆଦିରେ ହେବା ଖଣ୍ଡ ଖଣ୍ଡ ଗୋଲାକାର ଦାଗ—3. Circular patches appearing on the body or on clothes. ୪ । ( ସଂ. ବୃନ୍ଦ ) ମାଛ ଚାଆଁଳ ବା ଛୋଟ ମାଛମାନେ ଏକତ୍ର ପାଣିରେ ପହଁରୁ ଥିବା ଗୋଲାକାର ଦଳ; ପଞ୍ଝା—4. A circular shoal of small fry swimming on the water. ୫ । ( ସଂ. ମନ୍ଦ=ଅଳ୍ପ ) ମୁନ୍ଦା; ଜଳୀୟ ପଦାର୍ଥର ଅଳ୍ପ ପରିମାଣ—5. A small quantity of liquid. ୬ । କୀଟାଦିଙ୍କ ସମୂହ, ପୁଞ୍ଜ—6. Multitude; swarm of insects. [ ଯଥା—ପିମ୍ପୁଡ଼ି ମନ୍ଦା, ତେଲୁଣୀ-ପୋକ ମନ୍ଦା । ] ୭ । ବନ୍ଧୁଲଭାବରେ ଏକାଠି ଜନ୍ମିଥିବା ଗୁଳ୍ମପୁଞ୍ଜ—7. A group of young plants. ( ଯଥା—ଶାଗ ମନ୍ଦା । )
মাদা, মঁদা, থালা
**থালা**
মাদা
দ্বর
চাকতী
**চতমা**
মাছের ঝাঁক
**ছবরা**
একটু, কিছু[জল]
**থোডাসা**
ঝাঁক
**ঝুঁড**

**ମନ୍ଦା(ନ୍ଦି)ଏ**—ଦେ. ବିଣ ଓ ବି—ମୁନ୍ଦାଏ; ମୁନ୍ଦେ; ମୁନ୍ଦିଏ; ଅଳ୍ପ ପରିମିତ ( ଜଳାଦି )—A little quantity of ( liquid ). [ ଉ—ମନ୍ଦାଏ ତୋରାଣି ପିଇଲେ ଦେହ ଶାନ୍ତ । ନାଶିବ ଶୋଷରେ ମୁଁ ହେଲଣି ଆରତ । କୃଷ୍ଣସିଂହ. ମହାଭାରତ. ବିରାଟ । ] [ ଦ୍ର—'ମନ୍ଦାଏ' ପାଣି ଅପେକ୍ଷା 'ମନ୍ଦିଏ' ପାଣି ପରିମାଣରେ ଅଳ୍ପ । ]
Mandā(ndi)e
একটু **থোডাসা**

**ମନ୍ଦାକ**—ଦେ. ବିଣ—ମନ୍ଦାଏ ମାତ୍ର—A little quantity only of ( a liquid ). [ ଦ୍ର—'ମନ୍ଦାକ' ଅପେକ୍ଷା 'ମନ୍ଦିକ' ପରିମାଣରେ ଅଳ୍ପ । ] ସଂ. ବି ( ମନ୍ଦ ଧାତୁ=ପ୍ରୀତ ହେବା+କରଣ. ଆକ )—୧ । ପ୍ରଶଂସା—1. Praise ( Apte ) ୨ । ସ୍ରୋତଃ—2. Current; stream.
Mandāka
একটু **থোডাসা**

**ମନ୍ଦାକିନୀ**—ସଂ. ବି ( ମନ୍ଦାକ=ସ୍ରୋତଃ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ. ଈ )—୧ । ସ୍ୱର୍ଗଗଙ୍ଗା—1. The fabulous
Mandākinī

river flowing in the heaven. ୨ । ଗଙ୍ଗାନଦୀ—2. The river Ganges ( Apte ). ୩ । ଦ୍ୱାଦଶାକ୍ଷର ଛନ୍ଦୋବିଶେଷ—3. Name of a metre with 12 letters. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ୨ ନଗଣ ଓ ୨ ରଗଣ ଥାଏ—ବୃ. ର । ] ୪ । ଆକାଶ ଗଙ୍ଗା ( ହ୍ର. ଶ )—4. The milky way. ୫ । ହିମାଳୟରୁ ବାହାରି ଉତ୍ତର କାଶୀ ବାଟେ ବହି ଭାଗୀରଥୀ ନଦୀରେ ମିଳିଥିବା ଏକ କ୍ଷୁଦ୍ର ନଦୀ—5. Name of a small tributary of the Ganges. ୬ । ଚିତ୍ରକୂଟ ନିକଟ ଦେଇ ବହୁଥିବା ଏକ ନଦୀ ( ମହାଭାରତ; ହ୍ର. ଶ ) ( ଏହାର ଅନ୍ୟ ନାମ ପୟସ୍ୱିନୀ )—6. Name of a small river flowing by Chitrakūṭa. ୭ । ଦ୍ୱାରକା ପାଖ ଦେଇ ବହୁଥିବା ଏକ ନଦୀ ( ହରିବଂଶ; ହ୍ର. ଶ )—7. Name of a river flowing by Dwārakā.

ମନ୍ଦାକ୍ରାନ୍ତା—ସଂ. ବି ( ମନ୍ଦ+ଆକ୍ରାନ୍ତ+ଅ )—ସପ୍ତଦଶାକ୍ଷର ଛନ୍ଦୋବିଶେଷ—A metre in Sanskrit consisting of 17 syllables. [ ଦ୍ର—ଏଥିରେ ୧ମ, ୪ର୍ଥ, ୧୦ମ, ୧୧ଶ, ୧୩ଶ, ୧୪ଶ, ୧୬ଶ ଓ ୧୭ଶ ବର୍ଣ୍ଣମାନ ଗୁରୁ ଏବଂ ଅନ୍ୟ ବର୍ଣ୍ଣମାନ ଲଘୁ; ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ମଗଣ, ଭଗଣ, ନଗଣ, ଦୁଇଟି ତଗଣ ଓ ଅନ୍ତ୍ୟ ୨ ବର୍ଣ୍ଣ ଗୁରୁ ( ହ୍ର. ଶ ) । କାଳିଦାସଙ୍କ ମେଘଦୂତ ମନ୍ଦାକ୍ରାନ୍ତା ଛନ୍ଦରେ ରଚିତ । ]
Mandākrānta

ମନ୍ଦାକ୍ଷ—ସଂ. ବି (ବହୁବ୍ରୀହି; ମନ୍ଦ=ସଙ୍କୁଚିତ ହୁଏ ଅକ୍ଷି=ଆଖି ଯାହା ଯୋଗୁଁ; ମନ୍ଦ+ଅକ୍ଷି+ଅ)—୧ । ଲଜ୍ଜା; ତ୍ରପା—1. Modesty; shyness; shame; bashfulness. ୨ । (କର୍ମଧା; ମନ୍ଦ+ଅକ୍ଷି)—ସଙ୍କୁଚିତ ନେତ୍ର—2. Contracted eyes. [ଭି—ମନ୍ଦାକ୍ଷରେ କାହା ମୁଖ ଚାହିଁହୁଏ ନାହିଁ, ଧୀଥନରେ ତା ପଦ୍ମ ଅବା ରସିରୁ କାହିଁ—ଅଭିମନ୍ୟୁ. ବଦରଧଚନ୍ଦ୍ରାମଣି । ] ସ. ବିଣ. ପୁଂ—(ବହୁବ୍ରୀହି; ମନ୍ଦ ଅଟେ ଅକ୍ଷି ଯାହାର)—୧ । ଯାହାର ନେତ୍ର ସଙ୍କୁଚିତ—1. Having contracted eyes. ୨ । ଯାହା ଆଖି କ୍ଷୁଦ୍ର—2. Small-eyed. ୩ । ଟେରା—3. Squint-eyed. ୪ । ଯାହାର ଦୃଷ୍ଟି ଶକ୍ତି କମ୍—4. Weak-eyed (Apte).
Mandāksha
[ମନ୍ଦାକ୍ଷା—ସ୍ତ୍ରୀ]
(ମନ୍ଦାକ୍ଷୀ—ଦେ. ସ୍ତ୍ରୀଲିଙ୍ଗ)

ମନ୍ଦା ଖେଳା(ଲେ)ଇବା—ଦେ. କ୍ରି—(ଶେଉଳ ଆଦି ମାଛ-ମାଛମାନେ କଚ୍ଛବର୍ତ୍ତୀ ସ୍ଥାନରେ ଗଭୀର ପାଣି ଭିତରେ ବୁଡ଼ି ରହିବା ଓ ପାଣି ଉପରେ ଯାଆଁଳମାନେ ମନ୍ଦା ବାନ୍ଧି ଖେଳୁଥିବାର ଦେଖାଯିବାରୁ) ନିଜର ଛୁଆଁଳମାନଙ୍କୁ ଜଳ ଉପରେ ପଙ୍କା ହୋଇ ଖେଳିବା ବେଳେ ପାଣିଭିତରେ ସେମାନଙ୍କୁ ଜଗିବା—To watch one's own fry swimming on the surface of water in circular shoals (said of the mother-fish). ୨ । ( ଲକ୍ଷଣାର୍ଥ ) ଗୁଚ୍ଛେ ସନ୍ତାନସନ୍ତତି ଜନ୍ମ କରିବା—2. (figurative) To give birth to or bring forth a bevy of children.
Mandā khelā(le)ibā
[ମନ୍ଦା ଖେଳିବା—ଅନ୍ୟରୂପ]
झाङ्कखेलान
छवराखेलाना

ମନ୍ଦା ଗଡ଼ିଶ(ଶା)—ପ୍ରାଦେ ବାଲେଶ୍ୱର ବି—ଯେଉଁ ଗଡ଼ିଶା ବା ଶେଉଳ ନିଜର କ୍ଷୁଦ୍ର କ୍ଷୁଦ୍ର ପହଣା ବା ଛୁଆଁଳମାନଙ୍କ ସଙ୍ଗେ ସଙ୍ଗେ ଥାଇ ବୁଲିଥାଏ—The mother Gardisā or Seula fish which watches her own fry swimming nearby. [ଦ୍ର—ଶତ୍ରୁର ଆକ୍ରମଣରୁ ନିଜର ଛୁଆଁଳମାନଙ୍କୁ ରକ୍ଷା କରିବା ଲାଗି ଏ ଗଡ଼ିଶମାନେ ଏପରି ଜଗି ରହିଥାନ୍ତି ।]
Mandāgardisa(śā)

ମନ୍ଦାଗ୍ନି—ସ. ବି (ମନ୍ଦ=କ୍ଷୀଣ+ଅଗ୍ନି=ଜଠରାଗ୍ନି)—କ୍ଷୁଧାମାନ୍ଦ୍ୟ; ଜାଠର ଶକ୍ତିର ଅଳ୍ପତା—Dullness of appetite; slowness of digestion; apepsy; dyspepsia. ସ. ବିଣ (ବହୁବ୍ରୀହି)—ଯାହାର ଜାଠରଶକ୍ତି କ୍ଷୀଣ ଅଟେ—Having a weak digestion; dyspeptic. ଦେ.ବି—ଅଳ୍ପ ଅଳ୍ପ ଜାଳ ଦିଆଯିବାରୁ ଧକ୍ ଧକ୍ ହୋଇ ଜଳୁଥିବା ନିଆଁ—A slow fire.
Mandāgni
[ମନ୍ଦାନଳ—ଅନ୍ୟରୂପ]

ମନ୍ଦାତ୍ମ—ସ. ବିଣ (ମନ୍ଦ+ଆତ୍ମନ୍)—୧ । ନିର୍ବୋଧ—1. Silly [Apte]. ୨ । ମୂର୍ଖ; ଅଜ୍ଞ—2. Ignorant [Apte].
Mandātma

ମନ୍ଦାଦର—ସଂ. ବିଣ. ପୁଂ (ବହୁବ୍ରୀହି; ମନ୍ଦ+ଆଦର)—୧ । ଯାହାର କୌଣସି ବ୍ୟକ୍ତି ବା ବିଷୟ ପ୍ରତି ଆଦର ନ ଥାଏ—1. Having little respect for; caring little for [Apte]. ୨ । ଯେ କୌଣସି କାର୍ଯ୍ୟ ପ୍ରତି ହେଳା କରେ—2. Neglectful [Apte].
Mandādara
(ମନ୍ଦାଦରା—ସ୍ତ୍ରୀ)

ମନ୍ଦାନିଳ -ସ. ବି (କର୍ମଧା)—ଧୀରେ ଧୀରେ ବହୁଥିବା ବାୟୁ—Breeze; gentle wind.
Mandānila

ମନ୍ଦା ମନ୍ଦା—ଦେ.କ୍ରି.ବିଣ-(କ୍ଷୁଦ୍ର ମାଛ ଓ ପିମ୍ପୁଡ଼ି ଆଦି) ପଙ୍କା ପଙ୍କା ହୋଇ—In shoals (said of small fishes ants etc); in swarms.
Mandā mandā
झाङ्कझाङ्क झुंडकेझुंड

ମନ୍ଦା ଯାଦୁ—ଦେ. ବି—ଦେହରେ ମନ୍ଦା ମନ୍ଦା ହୋଇ ଭିନ୍ନ ଭିନ୍ନ ସ୍ଥାନରେ ଯେଉଁ ଯାଦୁ ଦେଖାଯାଏ—Ringworm appearing in circular patches on different parts of the body.
Mandā jādu
चाकतिदाद
चकत्तादाद्

ମନ୍ଦାର—ପ୍ରାଦେ (ସିଂହଭୂମ) ବି—ନେଉଆ; ଆତ—Custard apple.
Mardār

ମନ୍ଦାର—ସଂ. ବି (ମନ୍ଦ୍. ଧାତୁ=ପ୍ରୀତ ହେବା+କରଣ. ଆର)—୧ । ସ୍ୱର୍ଗୀୟ ଦେବତରୁ ବିଶେଷ; ପୁରାଣୋକ୍ତ ସ୍ୱର୍ଗର ୫ ଗୋଟି ବୃକ୍ଷରୁ ଏକତମ—1. One of the 5 celestial trees mentioned in the Purāṇas. [ଦ୍ର—ଅନ୍ୟ ୪ଟି ତରୁ ଯଥା-ପାରିଜାତ, ସନ୍ତାନ,
Mandāra
मादार, जबा; जुभा, ওরু
जामून, जामुराड
ଗୀ. ଶମ୍ପାଥପୁ
ତେ. ଜବାପୁଷ୍ପମୁ, ମଶମ

କଳ୍ପବୃକ୍ଷ ଓ ହରିଚନ୍ଦନ । ] ୨ । ଜବାଫୁଲ ଓ ଗଛ—
2. The china rose (tree and flower) Hibiscu Rosa Sinensis; the coral tree.
[ ଦ୍ର—ଏ ଗଛ ଉଚ୍ଚତାରେ ୫।୬ ହାତ ବଢ଼େ । ଏ ଗଛରେ ଫଳ ବା ମଞ୍ଜି ଧରିବା ଦେଖା ଯାଏ ନାହିଁ । ମନ୍ଦାର ଫୁଲର ମଝିରୁ ଗୋଟିଏ ସୂକ୍ଷ୍ମ କାଣ୍ଡ ବାହାରି ଥାଏ । ପାଖୁଡ଼ା ଭେଦରେ ମନ୍ଦାରର ପ୍ରକାର ମାନ ଯଥା—ଏକସ୍ତରିଆ, ଦୋସ୍ତରିଆ । ପୁଣି ବର୍ଣ୍ଣ ଭେଦରେ ଧଳା, ହଳଦିଆ, ନାଲି ଓ ଫିକା ରଙ୍ଗର ମନ୍ଦାର-ମାନ ଅଛି । ଏକପ୍ରକାର ଏକସ୍ତରିଆ ନାଲି ମନ୍ଦାରର ଗର୍ଭ କାଣ୍ଡର ଅଗରେ ପାଞ୍ଚ ଗୋଟି ଶାଖା ବାହାରେ ଓ ଏ ଫୁଲର ପାଖୁଡ଼ା ୫ଟି । ଏହାକୁ ପଞ୍ଚମୁଖୀ ମନ୍ଦାର କହନ୍ତି । ଏକ ପ୍ରକାର ମନ୍ଦାର ଘନ ସନ୍ନିବିଷ୍ଟ ପାଖୁଡ଼ାଯୁକ୍ତ ଓ ଏକ ପ୍ରକାର ମନ୍ଦାର ଫୁଲ ୫ଟି କଢ଼ ଓ ପାଖୁଡ଼ାବିଶିଷ୍ଟ ଦେଖାଯାଏ, ତାକୁ ମଧ୍ୟ ପଞ୍ଚମୁଖୀ ମନ୍ଦାର ବୋଲାଯାଏ । ସାଧାରଣତଃ ଦେବୀ ପୂଜାରେ ଓ ରାହୁ ଗ୍ରହଙ୍କ ପୂଜାରେ ମନ୍ଦାର ଫୁଲ ଲାଗେ ।] ୩ । ଅର୍କ ବା ଅରଖ ଗଛ—
3. The mudar plant; Calotropis Gigantea ୪ । ପାରିଭଦ୍ର; ପାଲଧୁଆ ଗଛ ଓ ଫୁଲ—
4. The Indian coral flower and the tree; Erithrina Indica. ୫ । ତୀର୍ଥବିଶେଷ—5. Name of a sacred place of pilgrimage. [ଦ୍ର—ଏହା ବିନ୍ଧ୍ୟ ପର୍ବତର ପାର୍ଶ୍ୱରେ—(ହି. ଶ) ।] ୬ । (ମନ୍ଦ ଧାତୁ+କର୍ତ୍ତୃ. ଆର; ଯେ ପରର ଅନିଷ୍ଟରେ ପ୍ରୀତ ହୁଏ)—ଧୂର୍ତ୍ତ ବ୍ୟକ୍ତି; ଶଠ—6. A wicked person; a cheat. ୭ । ମଙ୍ଗଳ ଗ୍ରହ—7. The planet Mars. ( ଉ—ମନ୍ଦାର ଚଳନେ ଘନ ରସ ବୃଷ୍ଟି ହେବାର ସୂଚକ ଶୁହିଁ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ) ପ୍ରାଦେ. (ବିଦଭୂମି) ବି—ଆତ ଫଳ—Custard apple.

ମନ୍ଦା ଶେଉଳ—ପ୍ରାଦେ. (ବାଲେଶ୍ୱର) ବି—ମନ୍ଦା ଗଡ଼ିଶ (ଦେଖ)—
Mandā ṡeula Mandā gardisa (See)

ମନ୍ଦାସା - ଗଞ୍ଜାମ ଜିଲ୍ଲାର ଗୋଟିଏ ବଡ଼ ଖଲାକାତ ଜମିଦାରୀ ମଞ୍ଜୁଷାର
Mandāsā ଇଂରାଜି ନାମ—Mandassa, the name of an Estate in district Ganjam.

ମନ୍ଦାସ୍ୟ—ସଂ. ବି—(ବହୁବ୍ରୀହି ମନ୍ଦ+ଆସ୍ୟ=ମୁଖ)—୧ । ହ୍ରୀ; ଲଜ୍ଜା-
Mandāsya 1. Shame; bashfulness. ୨ । (କର୍ମଧା) ସଙ୍କୁଚିତ ମୁଖ—2. Contracted face.

ମନ୍ଦିଏ—ଦେ. ବି ଓ ବିଣ—ମନ୍ଦିଏ; ଅଳ୍ପ ପରିମିତ (ଜଳୀୟ ପଦାର୍ଥ)—
Mandie A little quantity (of liquid). (ଉ—ସେ ଖୋଳୁଟିଆ ପାଣି ମନ୍ଦିଏ ପିଇଲେ, ମନ୍ଦିଏ ମସ୍ତକ ଉପରେ ନବେଶିଲେ । କୃଷ୍ଣସିଂହ. ମହାଭାରତ ଅନୁଶାସନ ।)

ମନ୍ଦିକ—ଦେ. ବିଣ. ଓ ବି—ମନ୍ଦିଏ ମାତ୍ର (ଜଳ)—
Mandika A little quantity only (of water).

ମନ୍ଦିର—ସଂ. ବି—(ମନ୍ଦ୍ ଧାତୁ=ନିଦ୍ରା ଯିବା+ଅଧିକରଣ ଇର; ଯେଉଁ-
Mandira ଠାରେ ଲୋକେ ନିଦ୍ରା ଯାଆନ୍ତି ।)—୧ । ଗୃହ; ଭବନ ଆବାସ; ବାସ ଗୃହ—1. Residence; house; dwelling; abode. ୨ । ପୁର—2 Premises. ୩ । ଦେଉଳ; ଦେବ ଗୃହ—3. A temple; a pagoda. ୪ । ନଗର—4. Town. ୫ । ଦେବାରାଧନ ସ୍ଥାନ; ଉପାସନା ଗୃହ—5. A place of worship; church. ୬ । ସମୁଦ୍ର—6. The ocean; the sea. ୭ । ଜାନୁର ବା ଆଣ୍ଠୁର ପଛଭାଗ—7. The back of the knee. ୮ । ଜଙ୍ଘର ପଛ—8. Ham. ୯ । ଶିବିର; ସେନାନିବାସ (ହି. ଶ)—9. Camp (Apte).

ମନ୍ଦିର କମି(ମେ)ଟି—ଦେ. ବି.—(ସଂ. ମନ୍ଦିର+ଇଂ କମିଟି)—
Mandira kami(me)ṭi କୌଣସି ଦେବତାଙ୍କ ପାଇଁ ଖଞ୍ଜା ଥିବା ଜମିର ଆୟରୁ ଦେବ ମନ୍ଦିରର ସେବା ଆଦି ପରିଚାଳନାର୍ଥ ୧୮୬୩ ସାଲର ୨୦ ଆଇନ ଅନୁସାରେ ଜିଲ୍ଲାର ଜଜଙ୍କ ଦ୍ୱାରା ନିଯୁକ୍ତ ସମିତି—Endowment committee appointed for managing the endowment attached to a temple in pursuance of Act XX of 1863. [ ଦ୍ର—ମାନ୍ଦ୍ରାଜରେ ଏପରି କମିଟିମାନଙ୍କୁ 'ଦେବସ୍ଥାନମ୍ କମିଟି' ବୋଲାଯାଏ । କେତେକ ସାଧାରଣ ମନ୍ଦିରର ପରିଚାଳନାର୍ଥ ସରକାର ଗୋଟିଏ ଆଇନ୍ କରିଅଛନ୍ତି । ସେହି ଆଇନ୍‌ଦ୍ୱାରା ହିନ୍ଦୁଙ୍କ ମନ୍ଦିର ଓ ମୁସଲମାନଙ୍କ ମସ୍‌ଜିଦ୍ ପାଇଁ ଖଞ୍ଜାଥିବା ସମ୍ପତ୍ତିର ଆୟରୁ ନିର୍ଦ୍ଧାରିତ ସେବା ପୂଜା ଓ ସଦାବ୍ରତ ଚଳାଇବା ପାଇଁ ଜଜ୍‌ସାହେବ ୩ ରୁ ଅଧିକ ଓ ୭ରୁ କମ୍ ମେମ୍ବର୍ ସମ୍ବଳିତ କମିଟି ମୁକରର କରନ୍ତି । ଓଡ଼ିଶାରେ ପୁରୀ ସହରର ଜଗନ୍ନାଥ ବଲ୍ଲଭ ମଠ, ପୁରୀ ଜିଲ୍ଲାର ସତ୍ୟବାଦୀ, ବାଣପୁର ଓ ଭୁବନେଶ୍ୱର, କଟକ ଜିଲ୍ଲାର ଝଙ୍କଡ଼, କେନ୍ଦ୍ରାପଡ଼ା ବଳଦେବ ଜିଉ ଆଦି ମନ୍ଦିରର ମନ୍ଦିରକମେଟି ଓ କଟକର କଦମ୍‌ରସୁଲଙ୍କ ପରିଚାଳନାର୍ଥ କମିଟି ଅଛନ୍ତି । କମିଟିର ମେମ୍ବର୍‌ମାନେ ଆଜୀବନ ମେମ୍ବର ପଦରେ ନିଯୁକ୍ତ ହେଉଥିବାରୁ ଓ ସେମାନଙ୍କ କାର୍ଯ୍ୟକୁ ତନ୍ନତନ୍ନ ପରୀକ୍ଷା କରିବା ପାଇଁ ବିନା ମକଦ୍ଦମାରେ ଜଜ୍‌ସାହେବଙ୍କର ଅଧିକାର ନ ଥିବାରୁ ଓ ଓଡ଼ିଶାର ହିନ୍ଦୁ ସାଧାରଣଙ୍କର ସାଧାରଣ କାର୍ଯ୍ୟ ସମ୍ବନ୍ଧେ ତୀବ୍ର ଦୃଷ୍ଟି ଓ ଠାଣୁଆ ଜନମତ (Public spirit or public opinion) ର ଅଭାବରୁ ଅଧିକାଂଶ କମେଟିଙ୍କର କାର୍ଯ୍ୟକଳାପ ଓ ପରିଚାଳନ ଅନିନ୍ଦ୍ୟ ନୁହେଁ ।]

ମନ୍ଦିର ଚୂଡ଼ା—ସଂ. ବି—(ଷଷ୍ଠୀ ତତ୍) — ଦେଉଳର ଅଗ—
Mandira chūrḍā The spire of a temple.

ମନ୍ଦିର ପଶୁ—ସଂ. ବି ( ମ. ପ. ଲୋ; ମନ୍ଦିର ବିହାରୀ ପଶୁ )—ବିରାଡ଼ି—
Mandira paṡu A cat (Apte).

ମନ୍ଦିରା—ସଂ. ବି (ମନ୍ଦ ଧାତୁ+କରଣ ଇର+ଆ)—୧ । କାଂସ୍ୟନିର୍ମିତ
Mandirā ଛୋଟ ଝାଞ୍ଜ; ଗିନି (ହି. ଶ)—1. Small cym-
मन्दिरा bals of bell metal. (ଉ—ଗ ଅଧର ହୋଇଛି
मञ्जिरा, मजीरा ମନ୍ଦିର ଯେ ଗିନି, ସୁସ୍ୱର ଶବଦ ବାଜୁଅଛି ଝଣିଝଣି
ପ୍ରାଚୀ. ବ୍ରହ୍ମକରୂପଣ ଗୀତା ।) ୨ । (ମନ୍ଦ ଧାତୁ+ଅଧି
କରଣ. ଇର+ଆ)—ଘୋଡ଼ାଶାଳ; ଅଶ୍ୱଶାଳା (ହି. ଶ)—
2. Stable (Apte).

ମନ୍ଦୀକୃତ—ସଂ. ବିଣ (ମନ୍ଦ+ଅଭୂତତଦ୍ଭାବେ ଚ୍ୱି+କୃତ)—ପୂର୍ବେ ମନ୍ଦ
Mandīkṛuta ନ ଥିବା, କିନ୍ତୁ ବର୍ତ୍ତମାନ ମନ୍ଦ କରି ଯାଇଥିବା-
(ମନ୍ଦୀକରଣ—ବି) Rendered slow; weakened, diminished; relaxed, slackened.

ମନ୍ଦୀଭୂତ—ସଂ. ବିଣ (ମନ୍ଦ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Mandībhūta ୧ । ଜଡ଼ୀଭୂତ—1. Grown inert.
(ମନ୍ଦୀଭବ—ବି) ୨ । ଅଧୁନା କ୍ଷୀଣ ହୋଇଥିବା—2. Recently emaciated; become weak. ୩ । କମି
ଯାଇଥିବା—3. Become less, diminished.
୪ । ସମ୍ପ୍ରତି ଶିଥିଳ ହୋଇଥିବା—4. Become slack; diminished.

ମନ୍ଦୁରା—ସଂ. ବି (ମନ୍ଦ୍ ଧାତୁ=ନିଦ୍ରାଯିବା+ଅଧିକରଣ ଉର+ଆ;
Mandurā ଯହିଁରେ ଅଶ୍ୱ ନିଦ୍ରା ଯାଏ)—୧ । ଅସ୍ତାବଲ;
ଅଶ୍ୱଶାଳା—1. A stable. ୨ । ଶଯ୍ୟା—
2. A bed (Apte). ୩ । (ଯାହା ଉପରେ ଲୋକେ
ଶୁଅନ୍ତି) ହେଁସ; ମୁନ୍ଦୁରା; ତୃଣ ନିର୍ମିତ ଆସନ—3 A mat;
a mat of reeds. [ ଦ୍ର—ଜୁଣ, ବେଲୁହାଁ, କାଣ୍ଡ-
କାଣ୍ଡିଆ ବା ସନ୍ଦୁରା ଅଦ୍ଧ ତୃଣର ଡାଙ୍ଗକୁ ବାଣୀ ବା
ସରୁ ଡୋର ଦ୍ୱାରା ବୁଣି ଏହା ତିଆର କରାଯାଏ । ମନ୍ଦୁରା
ଶବ୍ଦ ସଂସ୍କୃତ, ଏହାର ଅନ୍ୟ ସଂସ୍କୃତ ନାମ ମନ୍ଦୋଦରୀ । ]

ମନ୍ଦୁରା କାନି—ଦେ. ବି (ସଂ. ମନ୍ଦୁରା+କଣ୍ଠିକା)—ମୁନ୍ଦୁରା କାନି; ହେଁସ
Mandurā kāni କାନି; ବିଛା ହୋଇଥିବା ହେଁସର ଶେଷ ଅଂଶ-
माहुर कानि The end of a spread mat.
चटाइका कात

ମନ୍ଦୁରା ଗୁଣ୍ଡି—ଦେ. ବି—ଅଂଶତଃ ଗୁଡ଼ିଆ ହୋଇଥିବା ହେଁସର
Mandurā gurḍi ଗୁଡ଼ିଆ ଅଂଶ—The roller-like
गुटान माहुरई part of a partially rolled up mat
चटाईकी गुडी, मोडि हुई चटाई

ମନ୍ଦୁରିକ—ସଂ. ବି. ପୁଂ (ମନ୍ଦୁରା+ଇକ)—ଘୋଡ଼ା ସଇସ (ହି. ଶ)—
Mandurika Syce; a groom.

ମନ୍ଦେ—ଦେ. ବିଣ—ମନ୍ଦାଏ ( ଦେଖ )
Mande एकटु थोडा Mandāe ( See )
मन्द मन्द मन्द् मन्द् ଦେ. (ପଦ୍ୟ) କ୍ରି.ବିଣ (ସଂ.ମନ୍ଦଂମନ୍ଦଂ)—
ଧୀରେ ଧୀରେ—Slowly.

ମନ୍ଦେଣ—ପ୍ରା. କ୍ରି. ବିଣ (ପ୍ରାଚୀନ ପଦ୍ୟ)—ମନ୍ଦେ ( ଦେଖ )
Mandeṇa Mande ( See )
(ଉ—ଶୁଣି ଗୋବିନ୍ଦ ମନସିଜ ମନ୍ଦେଣ ବୋଲନ୍ତି ହେଜ ।
ପ୍ରାଚୀ. ରସକାଲ୍ପ ।)

ମନ୍ଦେ ମନ୍ଦେ—ଦେ. କ୍ରି. ବିଣ ( ସଂ. ମନ୍ଦଂ ମନ୍ଦଂ )—
Mande mande ଧୀରେ ଧୀରେ—Slowly.
मन्द मन्द (ଉ—ବେନି ପାଶରେ ମନ୍ଦେ ମନ୍ଦେ ଚାଳିବା କ
मन्द् मन्द् କହୁଛି ବଚନରେ । ପାନକୃଷ୍ଣ ଜଗମୋହନ ।)

ମନ୍ଦେହ—ସଂ. ବି (ମନ୍ଦ ଅଟେ ଈହା=ଚେଷ୍ଟା ଯାହାଙ୍କର, ବହୁବ୍ରୀହି;
Mandeha ମନ୍ଦ+ଈହା)—ରାକ୍ଷସଗଣ ବିଶେଷ (ଏମାନଙ୍କର
ସଂଖ୍ୟା ସାଢ଼େ ତିନି କୋଟି)—A class of demons,
35 millions in number.

ମନ୍ଦେହା—ସଂ. ବି (କର୍ମଧା; ମନ୍ଦ+ଈହା)—ମନ୍ଦ ଚେଷ୍ଟା—
Mandehā Evil endeavour.

ମନ୍ଦୋଚ୍ଚ—ସଂ. ବି ( ଗଣିତ ଜ୍ୟୋତିଷ )—ଗ୍ରହମାନଙ୍କ ଗତିରେ ନିମ୍ନତମ
Mandcchha ବିନ୍ଦ୍ୱାଂଶ—(astrology) The lower apsis
of a planet (Apte).

ମନ୍ଦୋତ୍ସାହ—ସଂ. ବିଣ. ପୁଂ (ବହୁବ୍ରୀହି; ମନ୍ଦ+ଉତ୍ସାହ)—ନିରୁତ୍ସାହ—
Mandotsāha Discouraged; one whose zeal
(ମନ୍ଦୋତ୍ସାହା—ସ୍ତ୍ରୀ) has abated; dispirited (Apte).
(ମନ୍ଦୌତ୍ସୁକ୍ୟ—ଅନ୍ୟରୂପ)

ମନ୍ଦୋଦରୀ—ସଂ. ବିଣ. ସ୍ତ୍ରୀ (ମନ୍ଦ=କୃଶ ଅଟେ ଉଦର ଯାହାର;
Mandodarī ବହୁବ୍ରୀହି; ମନ୍ଦ+ଉଦର+ସ୍ତ୍ରୀ. ଈ)—କୃଶୋଦରୀ
—(a woman) Having a thin or slender
belly. [ଦ୍ର—ମନ୍ଦୋଦର ସୁନ୍ଦରୀ ସ୍ତ୍ରୀମାନଙ୍କର ସୁଲକ୍ଷଣ
ରୂପେ ଗଣ୍ୟ ।] ସଂ. ବି.ସ୍ତ୍ରୀ—୧ । ମୟଦାନବର ଔରସରେ
ହେମା ନାମ୍ନୀ ଅପ୍ସରା ଗର୍ଭଜାତା କନ୍ୟା ଓ ରାବଣର
ପ୍ରଧାନ ମହିଷୀ—1. The chief queen of Rābaṇa
and daughter of Mayadānaba. [ ଦ୍ର—ଏ
ମେଘନାଦ (ଇନ୍ଦ୍ରଜିତ) ଓ ଅକ୍ଷୟକୁମାର ଆଦିଙ୍କ ମାତା ।
ରାବଣର ମୃତ୍ୟୁ ପରେ ରାମଚନ୍ଦ୍ରଙ୍କ ଅନୁରୋଧରେ ଏ ବିଭୀଷଣଙ୍କୁ
ବିବାହ କରିଥିଲେ । ଅହଲ୍ୟା, ଦ୍ରୌପଦୀ, କୁନ୍ତୀ ଓ ତାରାଙ୍କ
ସଙ୍ଗେ ଏ ଜଣେ ସତୀ ବା କନ୍ୟା ବୋଲି ଲେଖା ଅଛି ।
ପ୍ରତିଦିନ ସକାଳେ ପଞ୍ଚସତୀ ବା ପଞ୍ଚକନ୍ୟାଙ୍କ ନାମ ସ୍ମରଣ
କଲେ ମହାପାତକ ନାଶ ହୁଏ ।] ୨ । ମୁନ୍ଦୁରା; ହେଁସ—
2. A reed mat.

ମନ୍ଦୋଷ୍ଣ—ସଂ. ବିଣ (ମନ୍ଦ+ଉଷ୍ଣ)—କବୋଷ୍ଣ; ସାମାନ୍ୟ ଉଷ୍ମ—
Mandoshṇa Tepid; luke-warm.

ମନ୍ଦ୍ର—ସଂ. ବିଣ (ମନ୍ଦ୍ ଧାତୁ=ପ୍ରୀତ ହେବା+କର୍ତ୍ତୃ. ରା—
Mandra ୧ । ଗମ୍ଭୀର ଧ୍ୱନି—1. Grave (sound); deep
୨ । ଘଡ଼ଘଡ଼ ଧ୍ୱନିଯୁକ୍ତ (ଶବ୍ଦ)—2. Rumbling
(sound). ୩ । ନିମ୍ନ (ଶବ୍ଦ)—3. Low sound
(Apte). ୪ । (+କର୍ମ. ରା) ପ୍ରଶଂସନୀୟ—
4. Praiseworthy (Apte). ୫ । ମନୋହର;
ସୁନ୍ଦର ( ହି. ଶ )—5. Pleasant; pleasing.

୬ । ପ୍ରସନ୍ନ; ତୁଷ୍ଟ (ହି ଶ)—6. Delighted; joyful. ସଂ. ବି—୧ । ଗମ୍ଭୀର ଧ୍ୱନି—1. A deep or grave sound. (ଯଥା—ମେଘର ଧ୍ୱନି ।) ୨ । ଧ୍ୱନି; ଶବ୍ଦ—2. Sound; tone. ୩ । ନିମ୍ନ ଧ୍ୱନି—3. Low sound (Apte). ୪ । ( +କରଣ. ଅ ) ଅନଦ୍ଧ ବାଦ୍ୟଯନ୍ତ୍ରବିଶେଷ; ମୃଦଙ୍ଗ ( ହି. ଶ )—4. A sort of drum ( Apte ). ୫ । ସଙ୍ଗୀତର ସ୍ୱରବିଶେଷ; ଉଦାତ୍ତ ସ୍ୱର ( ହି. ଶ )—5. Low tune in music ୬ । ଏକଜାତୀୟ ହାତୀ ( ହି. ଶ )—6. A kind of elephant [ Apte ].

ମନ୍ନାଥ—ସଂ ବି. ପୁଂ ( ଅସ୍ମଦ୍+ନାଥ; ୬ଷ୍ଠୀ ତତ୍ )—ମୋହର ସ୍ୱାମୀ Mannātha ବା ପ୍ରଭୁ—My master; my lord. [ଉ—ମନ୍ନାଥ ବିଶ୍ୱନାଥ ସକଳ ଗୁଣ ଧାମ—ତୁଳସୀ. ବାଲ୍ମ ରାମାୟଣ । ]

ମନ୍ୱନ୍ତର— ସଂ. ବି (ମନୁ+ଅନ୍ତର; ଏକ ମନୁଙ୍କର ଅନ୍ତର ହୁଏ ଯହିଁରେ; Manwantara ବହୁବ୍ରୀହି)—୧ । ୩୦ କୋଟି ୬୭ ଲକ୍ଷ ୨୦ ହଜାର ବର୍ଷ ବ୍ୟାପୀ କାଳ; ଦେବତାମାନଙ୍କର ୭୧ଟି ଯୁଗ—1. The period of the reign of one of the 14 Manus. [ ଦ୍ର—ପ୍ରଜାପତିଙ୍କର ୧୪ଟି ମାନସ ପୁତ୍ର ବା ମନୁଙ୍କ ମଧ୍ୟରୁ ପ୍ରତ୍ୟେକେ ଦେବତାମାନଙ୍କର ୭୧ ଯୁଗ ବା ମନୁଷ୍ୟଗଣନାରେ ୭୧ ଚତୁର୍ଯୁଗ ବ୍ୟାପୀ କାଳ ରାଜତ୍ୱ କରନ୍ତି । ଏହା ବ୍ରହ୍ମାଙ୍କର ଏକ ଦିବସର ୧୪ ଭାଗରୁ ଏକ ଭାଗ ( ହି. ଶ ) । ମତାନ୍ତରରେ ଏହା ୪୩ ଲକ୍ଷ ୨୦ ହଜାର ମାନୁଷ ବର୍ଷର କାଳ ଅଟେ ( Apte ). ୧୪ଟି ମନ୍ୱନ୍ତର ହେଲେ ବ୍ରହ୍ମାଙ୍କ ଗୋଟିଏ ଦିବସ ହୁଏ । ଏକ ମନୁଙ୍କର ରାଜତ୍ୱର ଶେଷ ହେଲେ ପ୍ରଳୟ ଉପସ୍ଥିତ ହୁଏ । ବର୍ତ୍ତମାନ ୭ମ ମନୁ ବା ବୈବସ୍ୱତ ମନୁଙ୍କର ରାଜତ୍ୱ କାଳର ଅଷ୍ଟାବିଂଶ ଯୁଗର ୧୦ମ ଭାଗ ଭୋଗ ହେଉଅଛି ।] ୨ । ପୁରାଣର ଦଶ ଲକ୍ଷଣ ମଧ୍ୟରୁ ଏକତମ—2. One of the ten characteristics of a Purāna ଦେ. ବି—ମନ୍ୱନ୍ତରା ( ଦେଖ )—Manwantarā ( See )

ମନନ୍ତରା—ଦେ. ବି—(ସଂ. ମନ୍ୱନ୍ତର) ( ଲକ୍ଷଣାର୍ଥ )—ଖଣ୍ଡପ୍ରଳୟ (ଜଳ-Manwantarā ପ୍ଲାବନ ଓ ଦୁର୍ଭିକ୍ଷାଦି)—A partial deluge ମନ୍ୱନ୍ତର[ରା] (consisting of flood and famine). [ ଦ୍ର—ମନ୍ୱନ୍ତର ବଙ୍ଗଦେଶରେ ସନ ୧୨୭୬ ସାଲରେ ଯେଉଁ ବନ୍ୟା ଓ ଦୁର୍ଭିକ୍ଷ ପଡ଼ିଥିଲା ତାକୁ ବଙ୍ଗଦେଶରେ 'ଛେୟାତ୍ତରେ ମନନ୍ତର ବା ମନ୍ୱନ୍ତରା କହନ୍ତି । ] ସଂ. ବି—ପ୍ରାଚୀନ କାଳରେ ଆଷାଢ଼ ଶୁକ୍ଳଦଶମୀ, ଶ୍ରାବଣ କୃଷ୍ଣଅଷ୍ଟମୀ ଓ ଭାଦ୍ର ଶୁକ୍ଳଚତୁର୍ଥୀରେ ଅନୁଷ୍ଠିତ ଉତ୍ସବବିଶେଷ (ହି. ଶ)—A festival observed in ancient times on particular days of the months of Āshārdha, Srābana and Bhādra.

ମନ୍ୱନ୍ତ—ଗ୍ରା. ବି—ମନ୍ୱନ୍ତର ( ଦେଖ )—Manwantara (See) Manwantra [ ଉ—ଅନେକ ଜ୍ଞାନ ଶାସ୍ତ୍ର କଲେ, ସ୍ୱାୟମ୍ଭୁ ମନ୍ୱନ୍ତ ପାଳଲେ—ଜଗନ୍ନାଥ. ଭାଗବତ । ]

ମନ୍ମଥ—ସଂ. ବି ( ମନସ୍+ମଥ ଧାତୁ=ମନ୍ଥନ କରିବା+କର୍ତ୍ତୃ. ଅ; ଯାହା Manmatha ମନକୁ ମନ୍ଥି ପକାଏ )—୧ । ମଦନ; ମନସିଜ; କନ୍ଦର୍ପ; କାମଦେବ—1. The Deity Cupid. ୨ । ପ୍ରେମ; ପ୍ରୀତି; ପ୍ରଣୟ—2. Love. ୩ । ଇନ୍ଦ୍ରିୟଭୋଗ-ଲିପ୍ସା; କାମଚିନ୍ତା—3. Lust; amorous passion. ୪ । କପିତ୍ଥ; କଇଥ ( ହି. ଶ )—4. Wood apple [ Apte ]. ଦେ. ବି—ପୁରୁଷଙ୍କୁ ଦିଆଯିବା ନାମ—A name given to males.

ମନ୍ମଥ ପ୍ରିୟା—ସଂ. ବି (୬ଷ୍ଠୀ ତତ୍)—କାମଦେବଙ୍କର ପତ୍ନୀ; ରତିଦେବୀ—Manmatha priyā The wife of God Cupid.

ମନ୍ମଥ ଲେଖ—ସଂ. ବି ( ମ. ପ. ଲୋ )—ପ୍ରଣୟ ପତ୍ରିକା ( ହି ଶ )—Manmatha lekha Love-letter ( Apte ).

ମନ୍ମଥାନନ୍ଦ—ସଂ. ବି ( ମନ୍ମଥ+ଆନନ୍ଦ )—ଏକପ୍ରକାର ଉତ୍କୃଷ୍ଟ ଆମ୍ବ—Manmathānanda A kind of mango [ Apte ].

ମନ୍ମଥାଳୟ —ସଂ. ବି (ମନ୍ମଥ+ଆଳୟ)—୧ । ଆମ୍ବଗଛ ( ହି. ଶ )—Manmathālaya 1. The mango tree ( Apte ). ୨ । ପ୍ରେମୀ ଓ ପ୍ରେମିକାଙ୍କ ମିଳନ ସ୍ଥଳ; ବିହାର ସ୍ଥଳ ( ହି. ଶ )—2. A trysting place; a meeting place of lovers.

ମନ୍ମଥୀ—ସଂ. ବିଣ. ପୁଂ ( ମନ୍ମଥ+ଇନ୍; ୧ମା. ୧ବ )—କାମୁକ; କାମୀ Manmathī (ହି ଶ)—Amorous; enamoured (Apte). ( ମନ୍ମଥିନୀ—ସ୍ତ୍ରୀ )

ମନ୍ମନ—ସଂ. ବି ( ମନ୍ ଧାତୁ=ପ୍ରକାଶ କରିବା+କର୍ତ୍ତୃ. ମନ )—Manmana ୧ । ଗଦ୍ଗଦ ବା ଅସ୍ପଷ୍ଟ ଶବ୍ଦ—1. Tremulous or choked voice. ୨ । ଦମ୍ପତିଙ୍କ ମନ୍ଦ କଳ୍ପିତ—2. Confidential whisperings between husband and wife (Apte). ୩ । କାମଦେବ—3. The God of love (Apte).

ମନ୍ମନା(ନାଃ)—ସଂ. ବିଣ. ପୁଂ (ବହୁବ୍ରୀହି; ଅସ୍ମଦ୍+ମନସ୍; ୧ମା. ୧ବ)—Manmanā[nāḥ] ମୋଠାରେ ମନକୁ ଯେ ସମର୍ପଣ କରିଅଛି—One who has dedicated his mind to me.

ମନ୍ମୋହନ—ଗ୍ରା. ବି. ପୁଂ ( ସଂ. ମନୋମୋହନ ) —ଲୋକଙ୍କୁ ଦିଆ Manmohana ଯିବା ନାମ—A name given to males. मनमोहन ଦେ. ବିଣ ପୁଂ—ମନୋମୋହନ; ମନୋମୋହକାରୀ—Charming; enchanting. ( ମନ୍ମୋହନୀ; ମନ୍ମୋହନୀ, ମନ୍ମୋହେନୀ—ସ୍ତ୍ରୀ )

ମନ୍ୟ – ସଂ. ବିଣ. ପୁଂ—(ମନ ଧାତୁ+କର୍ତ୍ତୃ. ଯ; ଅନ୍ୟ ବିଶେଷଣ ଶବ୍ଦ Manya ପରେ ସମାସରେ ଲାଗେ, ଯଥା ପଣ୍ଡିତମ୍ମନ୍ୟ; ସୁଭଗଂ (ମନ୍ୟା—ସ୍ତ୍ରୀ) ମନ୍ୟା)—୧ । ଯେ ଆପଣାକୁ (ଅମୁକ) ପରି ବିଚାରେ 1. Thinking oneself to be. ୨ । ଯେ ଆପଣାକୁ (ଅମୁକ) ପରି ଦେଖାଇ ହୁଏ—2. Appearing as.

ମନ୍ୟା—ସଂ ବି—(ମନ୍ ଧାତୁ=ବୋଧ କରିବା+କର୍ମ. ଯ+ସ୍ତ୍ରୀ. ଆ)—
Manyā ୧ । ବେକ ଶିରା; ଗ୍ରୀବାର ପଶ୍ଚାଦ୍‌ଭାଗସ୍ଥ ଶିରା; ବେକର (ମନ୍ୟକା—ଅନ୍ୟରୂପ) ଶିରା—1. The muscles on the back of the neck. ୨ । ବେକମୁଣ୍ଡା—2. The nape of the neck. ୩ । (+ଭାବ. ଯ+ଆ)—ଜ୍ଞାନ—3. Knowledge.

ମନ୍ୟାସ୍ତମ୍ଭ—ସଂ. ବି—(ଆୟୁର୍ବେଦ)—ରୋଗବିଶେଷ, ଯହିଁରେ ବେକର
Manyā stambha ଶିରା ଅବଶ ହୋଇଯାଏ—A disease; paralysis of the muscles on the back of the neck.

ମନ୍ୟୁ—ସଂ. ବି.—(ମନ୍ ଧାତୁ+କର୍ମ. ଯୁ)—୧ । ଦୈନ୍ୟ; ଯାତନା—
Manyu 1. Distress; wretched condition. ୨ । ବିରକ୍ତି—2. Vexat :o. ୩ । ଶୋକ—3. Grief; sorrow. ୪ । ଘୃଣା—4. Hatred. ୫ । ଅହଙ୍କାର—5. Pride; arrogance. ୬ । କ୍ରୋଧ—6 Anger; rage; wrath; passio n. ୭ । ଘୋଡ଼ା ଆଦିଙ୍କର ତେଜ ଓ ଦର୍ପ—7. Spirit; mettle; courage (as of a horse) [Apte] ୮ । ତେଜ; ଉତ୍ସାହ—8. Ardour; zeal [Apte] ୯ । ସ୍ତୋତ୍ର—Hymn. ୧୦ । (+କରଣ. ଯୁ) ଯଜ୍ଞ—10. A vedic sacrifice or offering. ୧୧ । (+କର୍ତ୍ତୃ. ଯୁ) କ୍ଷତ୍ରିୟବିଶେଷ—11. A class of Kshatriyas ୧୨ । ଶିବ (ହି. ଶ)—12. An epithet of Śiba (Apte). ୧୩ । ଅଗ୍ନି (ହି. ଶ)—13. An epithet of Agni or fire.

ମନ୍ୟୁ ଦେବ—ସଂ. ବି—(ରୂପକ)—ଦେବରୂପେ କଳ୍ପିତ କ୍ରୋଧ (ହି.
Manyu deba ଶ. )—Anger personified; the personification of wrath.

ମନ୍ୟୁମାନ୍—ସଂ. ବିଣ.ପୁଂ—(ମନ୍ୟୁ+ମତ୍; ୧ମା. ୧ବ)—୧ । କ୍ରୋଧୀ;
Manyumān କ୍ରୋଧନ ସ୍ୱଭାବ—1. Angry; wrathful (ମନ୍ୟୁମତୀ—ସ୍ତ୍ରୀ) (Apte) ୨ । ଯାତନାଗ୍ରସ୍ତ—2. Distressed; afflicted (Apte) ୩ । ତେଜସ୍ୱୀ—3 Energetic; vehement(Apte).

ମନ୍ସୁବା—ବୈଦେ. ବି. (ଫା)—ମନ୍‌ସୁବା (ଦେଖ)
Mansubā Man-subā (See)

ମପ୍[ଫ୍,ଫ,ପ,]ସଲ—ବୈଦେ. ବି (ଅ. ମୁଫସ୍‌ସଲ୍)—୧ । ଗ୍ରାମ; ନଗରର
Map-(ph,pha,pa)sala ବାହାରସ୍ଥ ଦେଶାଂଶ; ସଦରଠାରୁ ଦୂରରେ [ ମପ(ଫ)ସ୍ୱଲ—ଅନ୍ୟରୂପ ] ଥିବା ଅଞ୍ଚଳ; ଗ୍ରାମ୍ୟ ପ୍ରଦେଶ—
मफस्सल 1. Village; countryside; mofussil; interior
मुफस्सल, देहात of a district. ୨ । ନିଭୃତ ବା ଅପ୍ରକାଶ୍ୟ [ସହର—ବିପରୀତ] ଅଞ୍ଚଳ—2. A solitary or out of (ସଦର—ବିପରୀତ) the way place. ୩ । ଲୁଗାର ବା କୁର୍ତ୍ତାର ଯେଉଁ ଅଂଶ ସାଧାରଣଙ୍କ ଦୃଷ୍ଟିରେ ନ ପଡ଼େ—3. The inside or inner surface of a cloth or garment. ୪ । ଜମିଦାରୀର ଅନ୍ତର୍ଗତ ଗ୍ରାମମାନ—4. The villages constituting a zamindary or estate.

ମପ[ଫ]ସଲ ଗସ୍ତ—ବୈଦେ. ବି (କଚେରୀ) (ଅ. ମୁଫସ୍‌ସଲ୍ ଗସ୍ତ୍)—
Mapa(pha)sala gasta ହାକିମମାନଙ୍କର ସହରରୁ ବାହାରି
मफस्सलगश्त ଗ୍ରାମମାନଙ୍କରେ ଭ୍ରମଣ—A tour undertaken
मुफस्सलगस्त by public servants to the countryside or in the interior.

ମପ(ଫ)ସଲ ଜମା—ବୈଦେ. ବି (କଚେରୀ) (ଅ. ମୁଫସ୍‌ସଲ୍+ଜମା)—
Mapa(pha)sala jamā ଜମିଦାରର ପ୍ରଜାମାନଙ୍କଠାରୁ
मफस्सलजमा ଜମିଦାର ଯେଉଁ ଖଜଣା ଆଦାୟ କରନ୍ତି—The
मुफस्सलजमा rent realised by a landlord from (ସଦରଜମା—ବିପରୀତ) the tenants. [ଦ୍ର—ଜମିଦାର ପ୍ରଜାଙ୍କଠାରୁ ମଫସଲ ଜମା ଆଦାୟ କରି ତହିଁରୁ ଆପଣା ନିର୍ଦ୍ଧାରିତ ପାରିଶ୍ରମିକ ବା ମାଲିକାନା କାଟି ରଖି ବାକି ଟଙ୍କା 'ସଦରଜମା' ବା ରାଜସ୍ୱରୂପେ ସରକାରଙ୍କଠାରେ ଦାଖଲ କରନ୍ତି ।

ମପ(ଫ)ସଲ ମୁଆସା—ବୈଦେ, ବି (ଅ)(କଚେରୀ)—ଜମିଦାରର ପ୍ରଜାଙ୍କ
Mapa(pha)sala mu ଠାରୁ ମଫସଲରୁ ଖଜଣା ଆଦି
मफस्सलमोकाबिला ଅସୁଲ କରୁଥିବା କର୍ମଚାରୀର କାଗଜପତ୍ରରେ
मुफस्सलमुकाबिला ଲେଖା ଥିବା ଅସୁଲ ପ୍ରସଙ୍ଗ ପ୍ରକୃତ ଅଟେ କି [ମପ(ଫ)ସଲ ମୁକାବିଲା—ଅନ୍ୟରୂପ] ନାହିଁ, ତାହା ମଫସଲରେ ଅର୍ଥାତ୍ ସରଜମିନରେ ପ୍ରଜାମାନଙ୍କଠାରୁ ପାଉତି ଓ ପ୍ରମାଣ ତଲବ କରି ଚେକ୍ କରିବା—The act of checking the correctness of a collecting officer's accounts by investigations made locally in the mofussil.

ମପ(ଫ)ସଲ ସରବରାକାର—ବୈଦେ. ବି [ ପ୍ରାଚୀନ ] (ଅ)—
Mapa( pha )sala sarabarākāra ମୁସଲମାନ୍ ରାଜତ୍ୱରେ ପ୍ରଜାଙ୍କଠାରୁ ରାଜସ୍ୱ ଆଦାୟ କରି ସଦରରେ ସରକାରଙ୍କଠାରେ ତାହା ଦାଖଲ କରିବା କର୍ମଚାରୀ—The Sarabarākār whose duty was to collect rents from the tenants and pay the same to the Government during theMahamedan rule.

ମପ(ଫ)ସଲ ହାକିମ—ବୈଦେ. ବି (ଅ. ମୁଫସ୍‌ସଲ୍+ହାକିମ୍)—ଗ୍ରାମ୍ୟ
Mapa(pha)sala hākima କର୍ମଚାରୀ—Officers in
मफस्सलेर हाकिम मुफस्सलका हाकिम charge of the interior.

ମପ(ଫ)ସଲି—ଦେ ବିଣ—୧ । ମଫସଲ ସମ୍ବନ୍ଧୀୟ; ଗ୍ରାମ୍ୟ—
Mapa(pha)sali 1 Rural; relating to the country
मफस्सले,गाँवली side or village. ୨ । ମଫସଲବାସୀ;
गँवारू;देहाती ଦେହାତୀ—2. Resident of the country- [ମପ(ଫ)ସଲିଆ—ଅନ୍ୟରୂପ] side; rustic. ୩ । ମଫସଲରେ (ସହରିଆ,ସଦରିଆ—ବିପରୀତ) ପ୍ରଚଳିତ—3. Obtaining in the countryside. ଦେ. ବି—ମଫସଲବାସୀ ଲୋକ

ଅର୍ଥାତ୍ ଯେଉଁମାନେ ସହରବାସୀଙ୍କ ଚତୁର ନୁହନ୍ତି—Country-folk; village folk, (who are generally not so clever as townspeople; a rustic.

ମପା—ଦେ. ବି (ସଂ. ମା. ଧାତୁ)—ମାପିବା; ମାପ କରିବା—Act of Mapā measuring; measurement. ଦେ. ବି—ମାପ ମାପା **नापना** ମାପା **नपाहुआ** ହୋଇଥିବା—Measured,

ମପା(ପେ)ଇବା—ଦେ କ୍ରି—(ସଂ. ମା ଧାତୁ ଣିଜନ୍ତ ମାପି ଧାତୁ)—ମାପିବା Mapā (pe)ibā କ୍ରିୟାର ଣିଜନ୍ତ ରୂପ—Causative of ମାପାନ **नपवाना** Māpibā

ମପା କାଠି—ଦେ. ବି—ମାପକାଠି (ଦେଖ)—Māpakāṭhi (See) Mapā kāṭhi ମାପ କାଠି **नापकाठी**

ମପା ମପି—ଦେ. ବି (ସଂ. ମାପନ)—ଅନେକ ପଦାର୍ଥ ବା ଅନେକବାର Mapā mapi ମାପିବା କ୍ରିୟା—The act of measuring ମାପା ମାପି many things; the act of measuring **नापा नापी** and remeasuring.

ମବ୍‌ଲକ୍[ଗ୍]—ବୈଦେ. ବି (ଆ. ମବଲ୍ଲଗ୍) (କଚେରିଆ)—୧ । ନଗଦ Mab-lak(g) ଟଙ୍କା; ରେକଡ଼—1. Ready money; ମବଲଗ hard cash. ୨ । ମୋଟ ଟଙ୍କା; ସର୍ବସୁଦ୍ଧା ଏତେ ଟଙ୍କା—**नकद्, मबल्लग** 2. Sum total of cash. ବୈଦେ. ବିଣ—(ଆ)—୧ । ନଗଦ—1. In cash; ready (money). ୨ । ସର୍ବସୁଦ୍ଧା; ମୋଟ—2. Total; in all. ବୈଦେ. କ୍ରି. ବିଣ (ଆ)—୧ । ହାତେ ହାତେ; ନଗଦାନଗଦ; ଦସ୍ତବଦସ୍ତ—1. In cash; in ready money; in hard cash. ୨ । ଅକ୍ଷରରେ (ଅଙ୍କକୁ ଲେଖିବା) 2. (writing the figures) In letters.

ମବଲକ୍(ଗ୍) ବନ୍ଦି—ବୈଦେ. ବି (ଫା) (କଚେରିଆ)—ଅକ୍ଷର ବା ଶବ୍ଦ Mabalak(g)-bandi ଦ୍ୱାରା ମୋଟ ଏତେ ଟଙ୍କା ବୋଲି ଲେଖିବା—Writing the total amount of money in words.

ମବେଷି—ପ୍ରାଦେ (ବାମଣ୍ଡା)(ସଂ. ଗୋମେଷ)—ଗୋମେଷାଦି ପଶୁ—Mabeshi Cattle.

ମମ୍—ପ୍ରାଦେ (ସିଂହଭୂମ) ବି. (ଭୂଲ. ବ ଓ ହି. ମୋମ୍)—ମହମ—Mam Wax

ମମ୍‌ଜାମା—ବୈଦେ. ବିଣ (ଫା. ମୋମ୍‌ଜାମା)—ମହମଦ୍ୱାରା ଲିପ୍ତ—Mam-jāmā On which a layer of wax has been ମୋମଜାମା laid. ଦେ. ବି—ମହମଜାମା; ଯେଉଁ ଲୁଗାରେ ମହମର **मोमजामा** ସ୍ତର ବୋଳାଯାଇଥିବାରୁ ଯେଉଁ ଲୁଗା ପାଣିରେ ଓଦା ହୁଏ ନାହିଁ ଓ ଯାହା ଉପରେ ପଡ଼ିବା ପାଣି ଲୁଗାରେ ନ ଭେଦି ଗଡ଼ିପଡ଼େ—Oil cloth; wax cloth; mackintosh cloth.

ମ(ମୁ)ମ୍‌ତାଜ୍ ମହଲ—ବୈଦେ. ବି (ଆ. ମୁମତାଜ୍ ମହଲ୍)—୧ । ତାଜ Ma(mu)m-tāj mahal ମହଲ (ଦେଖ)—1. Tājamahala ममताजमहल (See). ୨ । ସାହାଜାହାନଙ୍କ ମହିଷୀଙ୍କ ନାମ—**मुमताजमहल** 2. Name of the Moghul Emperor Sahajehan's queen.

ମମ—ଦେ. ଅ (ପଦ୍ୟ) (ସଂ. ଅସ୍ମଦ୍ ଶବ୍ଦର ଷଷ୍ଠୀ ୧ବଚନ)—ମୋହର—Mama My; mine. (ଉ—ହଦର୍ଭ ରାଜ୍ୟର ରାଜକୁଳ ପ୍ରସୂତା, मम ମମ ପ୍ରାଣ ପରାୟେଣ ଏ ନିଜ କାନ୍ତା । ପ୍ରାଚୀ. ରହସ୍ୟମଞ୍ଜରୀ ) **मम** [ଦ୍ର—ଆମ ଦେଶରେ ବୋଲାଯାଉଥିବା ବଙ୍ଗଳା ସଂକୀର୍ତ୍ତନ ପଦରେ ଏ ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ, ଯଥା—"ମମ ପ୍ରାଣନାଥ ଗୌରାଙ୍ଗ ହେ ! ମୋତେ କୃପା କରହେ ! ରସରାଜ ଚନ୍ଦ୍ରଗୌର ।"]

ମମକାର—ସଂ. ବି (ମମ=ମୋହର+କୃ. ଧାତୁ+ଭାବ. ଅ)—୧ । ଏ Mamakāra ଧନ ଜନ ମୋର ବୋଲି ମନରେ ବିଚାର କରିବା; ମୋର ପୁତ୍ର, ମୋର କଳତ୍ର, ମୋର ଧନ, ମୋର ଘର ଇତ୍ୟାକାର ଜ୍ଞାନ; ମମତା—Fondness or personal attachment for one's wordly possessions and family. ୨ । (+କର୍ମ. ଅ) ନିଜର ଅର୍ଜିତ ସମ୍ପତ୍ତି (ହି. ଶ)—2. One's self-acquired property.

ମମତ—ଦେ. ବିଣ (ପ୍ରାଚୀନ) (ସଂ. ମମତାଯୁକ୍ତ)—ଅନୁରକ୍ତ—Mamata Attached; fond. (ଉ—ମାର ଧର ବାନ୍ଧରେ ଯେ ହୋଇବେ ମମତ । ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା । ]

ମମତା(ତ୍ୱ)—ସଂ. ବି [ମମ+ଭାବେ. ତା, ତ୍ୱ]—୧ । ସ୍ୱାଭିମାନ; ମମକାର; Mamatā(twa) ଏ ପଦାର୍ଥ ମୋର, ଏ ଧନ ମୋର, ଏ ପୁଅ ଭାର୍ଯ୍ୟା ମୋର, ଏବମ୍ଭୂତ ଭାବ—1. Fondness or attachment for wordly possessions and family. ୨ । ଏ ସଂସାର ପ୍ରତି ମିଥ୍ୟାମାୟା; ମୋହ—2. Delusion as regards wordly matters, ୩ । ଅହଂଭାବ; ଅହଙ୍କାର; ଦର୍ପ—3. Pride; egotism. ୪ । ସହାନୁଭୂତି—4. Sympathy. ୫ । ସ୍ନେହ—5. Attachment; affectionate regard; love. [ଉ—ଜାଣି ମମତ୍ୱ, ଅଛି ଯେମନ୍ତ, ମୁଁ ସନମତ, କରେ ।ଭଞ୍ଜ. ପ୍ରେମସୁଧାନିଧି ।]

ମମତା ଯୁକ୍ତ—ସଂ. ବିଣ. ପୁଂ (ତୃତୀୟା ତତ୍)—୧ । ସ୍ନେହଶୀଳ—Mamatā jukta 1. Affectionate. ୨ । ସ୍ନେହାସକ୍ତ—(ମମତାଯୁକ୍ତା—ସ୍ତ୍ରୀ) 2. Fondly attached. ୩ । ବୈଷୟିକ ଅଭିମାନ ଯୁକ୍ତ—3. Having a personal feeling for one's temporal belongings. ୪ । ସହାନୁଭୂତି ଯୁକ୍ତ—4. Full of sympathy. ୫ । ଅସ୍ମମ୍ଭରି 5. Selfish.

ମମତା ଶୂନ୍ୟ—ସଂ. ବିଣ. ପୁଂ (ତୃତୀୟା ତତ୍)—୧ । ନିର୍ମମ—Mamatā śūnya 1. Devoid of sympathy; unsympathetic. (ମମତା ଶୂନ୍ୟା—ସ୍ତ୍ରୀ) ୨ । କ୍ରୂର—2. Cruel. ୩ । ସ୍ନେହବର୍ଜିତ—3. Having no fondness or affection. ୪ । ବୈରାଗ୍ୟଯୁକ୍ତ—4. Unattached; apathetic.

ମମତା ବିବର୍ଜିତ, ମମତା ବିହୀନ, ମମତା ହୀନ } ଅନ୍ୟରୂପ

ମମା— ଦେ. ବି ( ସଂ. ମାତୃ ସ୍ତନ ) —ପୟୋଧର; ସ୍ତ୍ରୀ ସ୍ତନ—Female
Mamā breast; the breast of woman.
माई, मेना (ଉ— ମମା ଗଣ୍ଡଣି କମା ଖାଇ, ଚଲ୍ଲୁଳ ପଢ଼ୁଛି ଟାକର
**चुच्चि, छाति** ହୋଇ—ଛଗ ।)

ମମାଦିଲା—ବୈଦେ. ବିଣ ( ଅ; ମୋଗଲ ବାଦସାହାଙ୍କ ଅମଳରେ
Mamādilā ଜମିଦାରୀ ପ୍ରଚଳିତ ଶବ୍ଦ )—ଅଲଗା; ସ୍ୱତନ୍ତ୍ର—
आलाहिदा **ममादिला** Separate (ଯଥା —ଚନ୍ଦ୍ରସିଲ
**अलग** ମମାଦିଲା ମୌଜେ କମାପୁର=କମାପୁର ମଜୁଜାର ସ୍ୱତନ୍ତ୍ର
ଅସୁଲ ଭୁକ୍ତ ଜମିଦାରୀ ।)

ମମୀ(ମ୍ମୀ)—ବୈଦେ.ବି (ଇଂ ମମ୍ମୀ; ଅ. ମୁମାୟିନ୍; ଫା.ମୋମ୍=ମହମ)—
Mamī(mmī) ମହମ ସହିତ ବିବିଧ ମସଲା ଦିଆଯାଇ ପ୍ରାଚୀନ
मम्मी ମିଶର ଦେଶୀୟ ପ୍ରଥା ଅନୁସାରେ ବହୁକାଳ ଅବିକୃତ
**मम्मी, मोमियाई** ଅବସ୍ଥାରେ ସଂରକ୍ଷିତ ହୋଇଥିବା ଶବଦେହ ବା
ମୁର୍ଦାର—A preserved dead body of Egypt; mummy; dead body preserved for a very long time with the help of wax and other spices. [ଦ୍ର—ଏପରି ସୁରକ୍ଷିତ ଶବଦେହମାନ ମିଶର ଦେଶର ପୁରାତନ କବରମାନଙ୍କରୁ ବର୍ତ୍ତମାନ ସମୟରେ ଖୋଳା ହୋଇ ବାହାର କରି ଯାଉଅଛି । ବହୁ ସହସ୍ର ବର୍ଷ ପୂର୍ବର ଶବମାନ ଆଜି ପର୍ଯ୍ୟନ୍ତ ଅବିକୃତ ଥିବା ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ ।]

ମୟ୍ (ଧାତୁ)—ସଂ—ଗମନ କରିବା; ଗତି କରିବା—
Ma-y (root) To walk; to move; to go.

ମୟ— ସଂ. ବି. ପୁଂ ( ମୟ୍ ଧାତୁ=ଗତି କରିବା+କର୍ତ୍ତୃ. ଅ )—
Maya ୧ । ରାବଣର ସ୍ତ୍ରୀ ମନ୍ଦୋଦରୀଙ୍କର ପିତା; ଇନ୍ଦ୍ରପ୍ରସ୍ଥରେ ରାଜା ଯୁଧିଷ୍ଠିରଙ୍କର ଅଦ୍ଭୁତ ସଭା ନିର୍ମାଣକାରୀ ଦାନବ ଶିଳ୍ପୀ—1 Name of a demon architect. [ଦ୍ର—ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଏ ଯୁଦ୍ଧରେ ପରାସ୍ତ କରିଥିଲେ । ଏ ଅସୁରମାନଙ୍କ 'ତ୍ରିପୁର' ନିର୍ମାଣ କରିଥିଲେ । ଏହାଙ୍କର ଦୁଇ ପୁତ୍ର ମାୟାବୀ ଓ ଦୁନ୍ଦୁଭି ଏବଂ କନ୍ୟା ମନ୍ଦୋଦରୀ । ବାଲ୍ମୀକିଙ୍କ ରାମାୟଣରେ ମୟ ଦିତିଙ୍କ ପୁତ୍ର ଥିବାର ଲେଖା ଅଛି ।] ୨ । ଅଶ୍ୱତର—2. A mule. ୩ । ଓଷ୍ଟ୍ର; ଓଟ—3. A camel ୪ । ଅଶ୍ୱ (ହ୍ରି. ଶ)—4. A horse (Apte). ୫ । (+କରଣ. ଅ) ସୁଖ (ହ୍ରି. ଶ)—5. Pleasure; happiness. ସଂ. ବିଣ. ପୁଂ—ନିମ୍ନ ଲିଖିତ ଅର୍ଥରେ ବିଶେଷ୍ୟ ସଙ୍ଗେ ଯୁକ୍ତ ହେବା ପ୍ରତ୍ୟୟ—A suffix added to nouns in the following
(ମୟୀ—ସ୍ତ୍ରୀ) senses. ସ. ତ—୧ । (ପୂର୍ଣ୍ଣତା ବୋଧକ) ଅମୁକରେ ପୂର୍ଣ୍ଣ—1. Full of. (ଯଥା—ମଧୁମୟ ସଂସାର, କଣ୍ଟକମୟ ବନ ।) ୨। (ବ୍ୟାପ୍ତ୍ୟର୍ଥେ) ଅମୁକ ଦ୍ୱାରା ବ୍ୟାପ୍ତ—2. Pervaded or spread over by. (ଯଥା—ଜଳମୟ ଦେଶ, ବାଲୁକାମୟ ସ୍ଥାନ ।) ୩ । (ବିକାରାର୍ଥେ) ଅମୁକରେ ନିର୍ମିତ ବା ଜଡ଼ିତ—3. Made of or set with. (ଯଥା—ସ୍ୱର୍ଣ୍ଣମୟ ଘଟ, ରତ୍ନମୟ ଅଙ୍ଗୁରୀୟକ, ମୃଣ୍ମୟ ପାତ୍ର ।) ୪ । (ବାହୁଲ୍ୟାର୍ଥେ) ଯହିଁରେ ଅମୁକ ବସ୍ତୁ ବହୁ ପରିମାଣରେ ଅଛି; ଅମୁକ ବହୁଳ—4. Abounding in. (ଯଥା—କଙ୍କର ମୟ ସ୍ଥାନ, କଦଳୀମୟ ଦେଶ ।) ୫ । (ସ୍ୱରୂପାର୍ଥେ) ଅମୁକ ରୂପେ କଳ୍ପିତ ବା ବ୍ୟବହୃତ—5. In which such a thing has been utilised as. (ଯଥା—ଗଜମୟ ସେତୁ ।) ୬ । ଯାହାଠାରେ ଅମୁକ ଗୁଣ ବହୁ ପରିମାଣରେ ଅଛି—6. Possessing a quality in great degree. (ଯଥା—ମାୟାମୟ ସଂସାର, ଦୟାମୟ ପ୍ରଭୁ, ପ୍ରେମମୟ ହୃଦୟ ।) ୭ । (ପୁରୀଷାର୍ଥେ) ଅମୁକର ବିଷ୍ଠା—7. The dung of. (ଯଥା—ଗୋମୟ=ଗୋବର, ଗୋବିଷ୍ଠା ।) ଦେ. ବି —୧ । ମଏ ( ଦେଖ )
मय **मय** 1. Mae ( See ) ୨ । ଦକ୍ଷିଣ ଆମେରିକାର ମେକ୍ସିକୋ ଦେଶର ବହୁ ପ୍ରାଚୀନ କାଳର ଖ୍ରୀଷ୍ଟ ସଭ୍ୟ ଅଧିବାସିଗଣ—2. Maya, the generic name of the ancient inhabitants of Mexico in South America. ୩।ଦକ୍ଷିଣ ଆମେରିକାର ବହୁ ପ୍ରାଚୀନ ଅଧିବାସିଗଣଙ୍କ ସଭ୍ୟତା; ମାୟା ସଭ୍ୟତା—3. Māyā, the high civilization of the ancient people of Mexico. [ଦ୍ର—ବର୍ତ୍ତମାନ ଭୂଗର୍ଭରୁ ବାହାରୁଥିବା ପ୍ରାସାଦ ଓ ଦ୍ରବ୍ୟମାନ ଦେଖି ପୁରାତତ୍ତ୍ୱବିଦ୍ ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ଆଜିକୁ ୩।୫ ହଜାର ବର୍ଷ ପୂର୍ବେ 'ମୟ'ମାନେ ସଭ୍ୟତାର ଅତ୍ୟୁଚ୍ଚ ସୋପାନରେ ଅବସ୍ଥାନ କରିଥିଲେ ଓ ଉକ୍ତ ସଭ୍ୟତା ସଙ୍ଗେ ଭାରତର ପ୍ରାଚୀନ ଆର୍ଯ୍ୟ ସଭ୍ୟତାର ବହୁତ ମେଳଥିବାର ଦେଖା ଯାଉଅଛି । ମାୟା ସଭ୍ୟତା ତଳେ ଟୀକା ଦେଖ ।]

ମୟ କାଳ—ଦେ· ବି—ମଏ କାଳ ( ଦେଖ )
Maya kāḷa Mae kāḷa ( See )
[ମୟ ଦିନ, ମୟ ଋ(ରୁ, ଋ)—ଅନ୍ୟରୂପ] ऋतुकाल

ମୟଦାନ୍—ବୈଦେ. ବି ( ଫା. ମୈଦାନ୍ )—୧ । ମଇଦାନ ( ଦେଖ )
Mayadān 1. Maidāna ( See ) ୨ । (ସ. ପ୍ରମୋଦ
बागान ଉଦ୍ୟାନ) ପ୍ରମୋଦ ଉଦ୍ୟାନ; ଆଧୁନିକ ପାର୍କ—
**रमना** 2. Pleasure garden; park.
(ଉ—ତୋଷାଲୀ ନଗରରେ ପୁଷ୍କରିଣୀ ଓ ମୟଦାନ ବା ଆଧୁନିକ ପାର୍କ ସ୍ଥାନେ ସ୍ଥାନେ ତିଆରି କରି ଯାଇଥିଲା । କୃପାସିନ୍ଧୁ, ଉତ୍କଳ ଇତିହାସ ।)

ମୟ ଦାନବ—ସଂ. ବି—ମୟ ୧ (ଦେଖ)—Maya 1 (See)
Maya dānaba (ମୟ ଦୈତ୍ୟ—ଅନ୍ୟରୂପ)

ମୟନା (ଇତ୍ୟାଦି)—ଦେ. ବି—ମଇନା ଇତ୍ୟାଦି (ଦେଖ)
Mayana (etc) Mayanā etc. (See)

ମୟୂର (ଇତ୍ୟାଦି)—ଗ୍ରା. ବି—(ସଂ. ମୟୂର) —ମୟୂର ଇତ୍ୟାଦି (ଦେଖ)
Mayara (etc) Mayūra etc. (See)

ମୟ(ୟୂ)ର ଜଟା—ଦେ. ବି—ଈଶ୍ୱର ଜଟା (ଦେଖ)
Maya(yū)ra jaṭā Isarajaṭā (See)

ମୟରା—ଦେ. ବି. ପୁଂ—(ସଂ. ମୋଦକକାର)—ମଇରା (ଦେଖ)
Mayarā (ମୟୁରାଣୀ—ସ୍ତ୍ରୀ) Mairā (See)

ମୟଲା (ଇତ୍ୟାଦି)—ଦେ. ବି. ଓ ବିଣ—ମଇଲା ଇତ୍ୟାଦି (ଦେଖ)
Mayalā (etc) Mailā etc (See)

ମୟା—ସଂ. ଚି. (ମୟ+ଆ)—ଚିକିତ୍ସା (ହି. ଶ)—Medical treatment.
Mayā ପ୍ରାଦେ. (ସମ୍ବଲପୁର) ବି.—(ଫା. ମେୱା)—
୧ । ପିଜୁଳି—1. Guava. ୨ । ଆତ; ମେୱାଆ—
2. Custard apple.

ମୟାଣ—ପ୍ରା (ପ୍ରାଚୀନ) ବି—(ସଂ.ମଦନ)—ମଦନ; କାମଦେବ—God
Mayāṇa Cupid. [ଦ୍ର—ବସନ୍ତ ସହିତ କନ୍ଦର୍ପେ କଲେ କି ପ୍ରବେଶେ ଦେବ ମୟାଣ । ଶିଶୁଶଙ୍କର ଉଷା ଅଭିଳାଷ ।]

ମୟାନ୍—ଦେ. ବି—(ସଂ. ମଥନୋତ୍ଥ=ଘିଅ; ବା ସଂ. ମର୍ଦ୍ଦନ; ବା ସଂ.
Mayān ମଦନ=ମହଣ)—କଚୁରି, ନିମ୍‌କି, ରୁଟି ଓ ଲୁଚି ଆଦି
ମୟାନ ମୋଯନ ତିଆରି କରିବା ପାଇଁ ଅଟାରେ ବା ମଇଦାରେ ପାଣି ମିଶାଇ ଦଳିବା ପୂର୍ବରୁ ଶୁଖିଲା ଅଟାରେ ବା ମଇଦାରେ ଦିଆ ଯିବା ଘିଅ; ଉକ୍ତ ଘିଅ—The leaven of ghee mixed with flour before it is kneaded into dough for making bread etc. [ଦ୍ର—ମଇଦା ଆଦିରେ ମୟାନ୍ ଦିଆ ଗଲେ ତହିଁରେ ପ୍ରସ୍ତୁତ ପୁରି, ଲୁଚି ଓ ନିମ୍‌କି ଆଦି ଖୁବ୍ ନରମ ଓ ମୁଚ୍‌ମୁଚିଆ ହୁଏ ।]

ମୟାନଦାର—ଦେ. ବି—ଯେଉଁ ଲୁଚି ଆଦିର ଅଟା ଚକଟା ହେବା ପୂର୍ବରୁ
Mayān-dār ଅଟାରେ ଉକ୍ତ ଘିଅ ଦିଆ ଯାଇଥାଏ—
ମୟାନଦାର ମୋଯନଦାର (bread or other cake) In which ghee had been added to the flour before kneading.

ମୟୀ—ସଂ. ବିଣ. ପ୍ରତ୍ୟୟ ସ୍ତ୍ରୀ. ( ମୟ+ଈ )—ମୟର ସ୍ତ୍ରୀଲିଙ୍ଗ—
Mayī Feminine of Maya. ସଂ. ବି. ସ୍ତ୍ରୀ—୧ । ମାଈ ଓଟ—1. A female camel. ୨ । ଘୋଡ଼ୀ—୨ ।
2. A mare.

ମୟୁ—ସଂ. ବି—୧ । (ମି ଧାତୁ=କ୍ଷେପଣ କରିବା+କର୍ତ୍ତୃ. ଉ)—
Mayu କିନ୍ନର; କିଂପୁରୁଷ—1. A class of semi-divine singers. ୨ । (ମୟ ଧାତୁ=ଗମନ କରିବା+କର୍ତ୍ତୃ. ଉ)—୨ । ମୃଗ—2. Deer; antelope (Apte). ୩ । ଅଶ୍ୱ—3. Horse. ୪ । ଅଶ୍ୱତର—4 Mule. ୫ । ଉଷ୍ଟ୍ର—5. Camel.

ମୟୂ(ୟ)ଷ୍ଟ—ସଂ. ବି—ବନମୁଗ—A kind of wild grain.
Mayū (ya)shṭha [ମୟୂ(ୟୂ)ଷ୍ଟକ—ଅନ୍ୟରୂପ]

ମୟୂକ—ସଂ. ବି—(ମୟ ଧାତୁ+କର୍ତ୍ତୃ. ଊକ)—ମୟୂର (ହି. ଶ)—
Mayūka Peacock.

ମୟୂଖ—ସଂ. ବି—( ମା ଧାତୁ=ମାପିବା+କର୍ମ ଊଖ )—୧ । କିରଣ;
Mayūkha ରଶ୍ମି—1. Ray; streak of light. ୨ । ଦୀପ୍ତି—2. Lustre; brilliance. ୩ । ଆଲୋକ; ଜ୍ୟୋତିଃ—3. Light. ୪ । ସୌନ୍ଦର୍ଯ୍ୟ; ଶୋଭା—4. Beauty. ୫ । ଅଗ୍ନିଶିଖା—5. A flame (Apte). ୬ । (+କରଣ ଊଖ)—ସୂର୍ଯ୍ୟଘଡ଼ିର କଣ୍ଟା—6. The pin of a sun-dial (Apte). ୭ । ପର୍ବତ (ହି. ଶ)—7. Mountain. ୮ । କୀଲକ; ଖିଲ—8. Peg; stake; pin

ମୟୂଖ ମାଳା—ସଂ. ବି—(୬ଷ୍ଠୀ ତତ୍)—କିରଣମାଳା—
Mayūkha mālā Rays of the sun.

ମୟୂଖମାଳୀ—ସଂ. ବି—(ମୟୂଖମାଳା+ଅସ୍ତି ଅର୍ଥରେ ଇନ୍ ୧ମା. ୧ବ)—
Mayūkha mālī କିରଣମାଳୀ; ସୂର୍ଯ୍ୟ—The sun.

ମୟୂଖୀ—ସଂ. ବି—(ମୟୂଖ+ଇନ୍; ୧ମା. ୧ବ)—ପ୍ରାଚୀନ ଭାରତର
Mayūkhī ଯୁଦ୍ଧାସ୍ତ୍ର ବିଶେଷ ( ହି ଶବ୍ଦସାଗର )—
1 A weapon of offence and defence of ancient India; a cudgel about 5 ft. long, to the top of which was attached a bunch of tinkling bells. [ଦ୍ର—ଏହା ପୁରୁଷର ଉଚ୍ଚତା ପ୍ରମାଣ ଦୀର୍ଘ ଯଷ୍ଟିବିଶେଷ; ଏହାର ଅଗ୍ରରେ କିଙ୍କିଣୀ ଗୁଚ୍ଛ ଲାଗି ଥାଏ । ଏହା ହୁମୁକା ବାଉଁଶ ଭଳି ଓ ଏଥିରେ ଦୂଠା ଲାଗି ଥାଏ । ଏହାର କାର୍ଯ୍ୟ ୫ ପ୍ରକାର :—ଅଘାତ, ପ୍ରତିଘାତ, ବିଘାତ, ପରମୋଚନ ଓ ଅବରୋଧନ ।] ସଂ. ବିଣ. ପୁଂ—ଉଜ୍ଜ୍ୱଳ; ଜ୍ୟୋତିର୍ମୟ
Radiant; brilliant.

ମୟୁ(ଜୁ)ର—ପ୍ରାଦେ. (ଗଡ଼ଜାତ) ବି—ମୟୂର (ଦେଖ)—
Maju(ju)ra (ମୟୁରୀ—ସ୍ତ୍ରୀ) Mayūra (See)

ମୟୂର—ସଂ. ବି. ପୁଂ—(ମି ଧାତୁ=କ୍ଷେପଣ କରିବା+କର୍ତ୍ତୃ. ଊର)—
Mayūra ୧ । କର୍କଶ କଣ୍ଠର ବୃହତ୍ ପକ୍ଷୀବିଶେଷ—1. The
ଅନ୍ୟ ସଂ. ନାମ—କେକୀ, pea fowl; Pava Cristatus;
ଶିଖୀ, ଶିଖଣ୍ଡୀ (male- peacock; female-
(ମୟୂରୀ—ସ୍ତ୍ରୀ) peahen.] [ ଦ୍ର—ଏମାନଙ୍କର ଲାଞ୍ଜର ବଡ଼ ପକ୍ଷମାନ ଓ କଣ୍ଠର ଛୋଟ ପରମାନ ନାନା ବର୍ଣ୍ଣରେ ଚିତ୍ରିତ । ଅଣ୍ଡିରା ମୟୂରଙ୍କର ଲାଞ୍ଜ ଖୁବ୍ ବଡ଼; ମାଈମାନଙ୍କର ଛୋଟ । ଏଥିପାଇଁ ଅଣ୍ଡିରା ମୟୂରକୁ ଲାଞ୍ଜମୟୂର ଓ ମାଈକୁ ଲାଣ୍ଡୀମୟୂର ବୋଲି ଯାଏ । ମେଘ ଉଠାଇଲେ ଅଣ୍ଡିରାମାନେ ଲାଞ୍ଜକୁ ପଛ ଆଡ଼େ ପଙ୍ଖା ପରି ଠିଆ କରି ନାଚନ୍ତି ଓ ବୋବାନ୍ତି । ଏମାନଙ୍କର ଶବ୍ଦ 'କେଓଁ କେଓଁ' (ସଂ.—କେକା) । ଏମାନେ ସାପକୁ ମାରି ପକାନ୍ତି ।] ୨ । ପୁଷ୍ପବିଶେଷ—2. A kind of flower (Apte) ୩ । ସୂର୍ଯ୍ୟ ଶତକ ନାମକ ଗ୍ରନ୍ଥର ରଚୟିତା କବିବିଶେଷ—3. Name of a Sanscrit author. ୪ । ସମୟ ମାପ କରିବା ପାଇଁ ବ୍ୟବହୃତ ଯନ୍ତ୍ର ବିଶେଷ—4. A kind of instrument for measuring time. ଦେ. ବି—ବାଦ୍ୟଯନ୍ତ୍ର ବିଶେଷ—A kind of musical instrument. ( ଦ୍ର—ଶଙ୍ଖ ବୀଣା ଖଞ୍ଜଣୀ ବଂଶୀ-

ଦ୍ୱିଜ ମୟୂର, ଏମାନ ବହୁଣ ଭୂମେ ଶ୍ରେଷ୍ଠ ଗୋପ ଭେଦ ।
ପ୍ରାଚୀ. ଶ୍ରୀଗୁରୁଚଣ୍ଡି ଗୀତା । )

ମୟୂରକ—ସଂ. ବି ( ମୟୂର+କ )—୧ । ମୟୂର—1. Peacock. Mayūraka ୨ । ମୟୂରଶିଖା; ମୟୂରର ମୁଣ୍ଡ ଉପରେ ଥିବା ପକ୍ଷର ଚୂଡ଼ା—2. The cockscomb on the head of a peacock. ୩ । ଅପାମାର୍ଗ—3. Achyranthus Aspera (plant). ୪ । ତୁତିଆ—4. Copper sulphate.

ମୟୂର କଣ୍ଠିଆ—ଦେ. ବିଣ ( ସଂ. ମୟୂର+କଣ୍ଠ )—ମୟୂରର କଣ୍ଠପରି Mayūra kanthiā ରଙ୍ଗର ( ନାଲି ଓ ସବୁଜ ) ବର୍ଣ୍ଣ ବିଶିଷ୍ଟ ମୟୂର କଣ୍ଠି ( ବସ୍ତ୍ର )—( a cloth ) Coloured like मयूर कण्ठी the neck of a peafowl. ( ଯଥା—ଭୂଷା (ମୟୂର କଣ୍ଠୀ—ଅନ୍ୟରୂପ) ରକ୍ତାଂଶୁକେ ରଞ୍ଜିତ ଶ୍ୟାମଳ ଭୂଧରଗଣ, ଚିହ୍ନିହେନ୍ତି ଅବା ହୃଦୟେ ମୟୂରକଣ୍ଠୀ ବସନ । ରାଧାନାଥ. ଚିଲିକା । ) ଦେ. ବି—ଏକପ୍ରକାର ଲୁଗା; ଧୂପଛାୟା ଲୁଗା—A kind of cloth ( with red woof and green warp threads ). [ ଦ୍ର—ଏହାର ଟାଣୀ ସୂତା ନାଲି ଓ ଭରଣୀ ସୂତା ସାବୁଜା । ]

ମୟୂରଗତି—ସଂ. ବି ( ବହୁବ୍ରୀହି )—୨୪ ଅକ୍ଷରର ବୃତ୍ତିବିଶେଷ—Mayūragati A Sanscrit metre of 24 syllables. [ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯଥାକ୍ରମେ ୪ ଯଗଣ, ମଗଣ, ଯଗଣ ଓ ଭଗଣ ଥାଏ—ବୃ. ର । ]

ମୟୂର ଗିରିଆ -ଦେ. ବି ( ସଂ. ମୟୂର ଗ୍ରୀବକ )—ତୁତ୍ଥ; ତୁତିଆ; Mayūra giriā ମୟୂର ଗିରିଆ—Sulphate of copper. ତୁତିଆ; ତୁଁତେ तुतथा; तुतिया ମ, ମୋରଚୁତ

ମୟୂର ଗୁଣା—ଦେ. ବି (ବିଶିଷ୍ଟ ଶବ୍ଦ)—ସ୍ତ୍ରୀମାନଙ୍କର ନାକରେ ନାକ-- Mayūra gunā ଫୁଡ଼ାରେ ପିନ୍ଧାଯିବା ଗୁଣା, ଯେଉଁ ଗୁଣା (ମୟୂର ବସାଗୁଣା—ଅନ୍ୟରୂପ) ବିସ୍ତାରିତ ପୁଚ୍ଛ ମୟୂରର ଅନୁକୃତ ମୟୂରବେସର ପରି ନିର୍ମିତ ହୋଇଥାଏ—A nose ornament मयूवाला नकवेसर representing a dancing peacock.

ମୟୂର ଗ୍ରୀବକ—ସଂ. ବି (ମୟୂରଗ୍ରୀବା+ତୁଲ୍ୟାର୍ଥେ କ)—ମୟୂରଗିରିଆ; Mayūra gribaka ତୁତ୍ଥ—Blue vitriol.

ମୟୂର ଚଟକ—ସଂ. ବି—ଗୃହପାଳିତ କୁକ୍କୁଟ—Mayūra chaṭaka The domestic cock.

ମୟୂର ଚନ୍ଦ୍ରକ—ସଂ. ବି ( ଷଷ୍ଠୀ ତତ୍ )—ମୟୂର ଚନ୍ଦ୍ରିକା (ଦେଖ) Mayūra chandraka Mayūra chandrikā (See)

ମୟୂର ଚନ୍ଦ୍ରିକା—ଦେ. ବି ( ସଂ. ମୟୂର ଚନ୍ଦ୍ରକ )—୧ । ମୟୂରର Mayūra chandrikā ଲାଞ୍ଜରେ ଥିବା ଚନ୍ଦ୍ରାକୃତି ବହୁ ବର୍ଣ୍ଣବିଶିଷ୍ଟ ଚିହ୍ନ—1. Rainbow-coloured rings or eyes on the tail-feather of a peacock. ୨ । ଚନ୍ଦ୍ରକ ବିଶିଷ୍ଟ ମୟୂର ପକ୍ଷ—2. Tail-feather of a peacock having rings or eyes on it. ୩ । ପଶ୍ଚିମଦିଗରେ ଦେଖାଯିବା ଇନ୍ଦ୍ରଧନୁ—3. A rain bow appearing in the west.

ମୟୂର ଚୂଡ଼ା—ସଂ. ବି ( ଷଷ୍ଠୀ ତତ୍ )—୧ । ମୟୂରର ମୁଣ୍ଡ ଉପରେ Mayūra chūrdā ଠିଆହୋଇ ଥିବା ଅବସ୍ଥିତ ପକ୍ଷଗୁଚ୍ଛ—1 The tuft of feathers standing on the head of a peafowl. ୨ । ( ସଂ. ମୟୂର ଶିଖା) ଏକ ପ୍ରକାର ପୁଷ୍ପ ଶାକ; ଈଶର ଜଟା ଫୁଲ; ମୟୂର ଶିଖା ୨ (ଦେଖ) 2. Colosia Cristata (plant) and flower.

ମୟୂର ଚୂଳ—ସଂ. ବି—ମୟୂର ଚୂଡ଼ା ( ଦେଖ )—Mayūra Mayūra chūḷa ময়ূরের চূড়া chūrdā ( See )
मयूरशिखा (ମୟୂରଜଟା—ଦେଶଜରୂପ)

ମୟୂର ଚୂଳିଆ—ଦେ. ବିଣ ( ସଂ. ମୟୂର ଚୂଳଧାରୀ )—ଯେ ମୟୂର Mayūra chūḷiā ଚୂଳ ମୁଣ୍ଡରେ ପିନ୍ଧିଥାଏ—Decorated ময়ূর চূড়া ধারী with a bunch of peacock's tail मयू शिखावाला feather on the head. ଦେ. ବି—୧ । ଈଶର ଜଟା ( ଦେଖ )—1. Īsara jaṭā ( See ) ୨ । ଶ୍ରୀକୃଷ୍ଣ—2. An epithet of Śrikṛushṇa.

ମୟୂର ଝଲି ପ୍ରାଦେ ( ବାମଣ୍ଡା ) ବି—ମୟୂରଚନ୍ଦ୍ରିକାଯୁକ୍ତ ପକ୍ଷ—Mayūra jhāli Peacock-feather having many coloured rings on it.

ମୟୂର ଝୁଲ—ପ୍ରାଦେ (ଗଞ୍ଜାମ) ବି—କେଳା, ଶବର ଓ ପାତୁଆମାନେ Mayūra jhula ମୁଣ୍ଡରେ ଟୋପି ଉପରେ ପିନ୍ଧିବା ମୟୂର ପକ୍ଷରେ ବୁଣା ହୋଇଥିବା ଫେନ୍ଥା—A tuft of peacock-feathers worn on the cap by certain dance loving wild tribes. [ ଦ୍ର—ଏମାନଙ୍କ ଟୋପି ଉପରେ ଗୁଡ଼ାଏ ଚନ୍ଦ୍ରିକାବିଶିଷ୍ଟ ମୟୂର ପକ୍ଷ ଠିଆ କାଗରେ ଖୋସା ଯାଇଥାଏ ।]

ମୟୂରଡିମ୍ବିଆ—ପ୍ରାଦେ [ଗଡ଼ଜାତ] ବି. (ସଂ. ମୟୂର+ଡିମ୍ବ; ଏହାର Mayūra dimbiā ଆକାର ମୟୂରର ଡିମ୍ବପରି ହେବାରୁ)—ଏକ ପ୍ରକାର ବଡ଼ ମୁଣ୍ଡିଆଳ ଛତୁ—A kind of mushroom with a big ball at the top.

ମୟୂରଧ୍ୱଜ—ସଂ. ବି (ମୟୂର+ଧଜ ' ବହୁବ୍ରୀହି)—ମୟୂରଭଞ୍ଜର ପୂର୍ବତନ Mayūra dhwaja ରାଜବଂଶର ଉପାଧି—The title of the ancient kings of Mayūrbhanj. [ଦ୍ର—ମୟୂରଧ୍ୱଜ ରାଜବଂଶର ଜଣେ ଭଞ୍ଜକ ବଳ ସିଂହାସନ ଅଧିକାର କରିଥିବାରୁ ବର୍ତ୍ତମାନ ରାଜବଂଶର ନାମ 'ମୟୂରଭଞ୍ଜ' ହୋଇଅଛି । ]

ମୟୂର ପଙ୍ଖା—ଦେ. ବି—ମୟୂର ପୁଚ୍ଛ ନିର୍ମିତ ବିଞ୍ଚଣା—Mayura pankhā A fan made of peacock's tail-ময়ূরপাখা मयूरपंखा feathers.

ମୟୂରପଦକ—ସଂ. ବି (ମୟୂର ପଦ+ସାଦୃଶ୍ୟାର୍ଥେ. କ)—ଶୃଙ୍ଗାର Mayūra padaka ସମୟରେ ସ୍ତ୍ରୀ- ପୁରୁଷଙ୍କର ଅନ୍ୟୋନ୍ୟଙ୍କ ଶରୀରରେ ପ୍ରଦତ୍ତ ନଖାଘାତର ଚିହ୍ନ—The marks

made with the nails on the body of a man or woman during amorous intercourse.

ମୟୂର ପୁଚ୍ଛ—ସଂ. ବି (୬ଷ୍ଠୀ ତତ୍)—ମୟୂରର ଲାଞ୍ଜ—
Mayūra puchchha Peacock's tail.

ମୟୂରଭଞ୍ଜ—ଦେ. ବି (ନାମ)—ଓଡ଼ିଆ ରାଜ୍ୟମାନଙ୍କ ମଧ୍ୟରେ ନେତୃସ୍ଥାନୀୟ ରାଜ୍ୟ—Name of a leading Oriya state in the Eastern States Agency.
Mayūrabhañja
ମୟୂରଭଞ୍ଜ
मोरभंज

[ଦ୍ର- ଓଡ଼ିଆ ଗଡ଼ଜାତମାନଙ୍କ ମଧ୍ୟରେ ଏହା ପ୍ରାଚୀନତମ ଓ ପ୍ରଧାନ ରାଜ୍ୟ । ଦୁଇ ହଜାର ବର୍ଷ ତଳେ ରାଜପୁତାନାର ଜୟପୁର ରାଜବଂଶର ଜଣେ ରାଜପୁରୁଷ ଏହି ରାଜ୍ୟ ସ୍ଥାପନ କରି ରାଜତ୍ୱ କରୁଥିଲେ । ପ୍ରଥମେ ଏହାର ନାମ ହରିହର ପୁର ଥିଲା । 'ମୟୂର' ରାଜବଂଶର ସଙ୍କେତ ଥିବାରୁ ଓ ରାଜାମାନେ ଭଞ୍ଜବଂଶୀୟ ଥିବାରୁ ରାଜ୍ୟପରେ ମୟୂରଭଞ୍ଜ ନାମରେ ପରିଚିତ ହେଲା । ଗଙ୍ଗପତି ରାଜାଙ୍କ ରାଜତ୍ୱରେ ମାଲଗିରି, ସିଂହଭୂମ, ବରାହଭୂମି, ଘାଟଶିଲା, ନରସିଂହପୁର, ସାରଣ୍ଡା, କେନ୍ଦୁଝର ଆଦି ଓ ସିଂହଭୂମି ଓ ମାନଭୂମିର ଅଞ୍ଚଳମାନ ଏହି ରାଜ୍ୟର ଅନ୍ତର୍ଗତ ଥିଲା । କାଳକ୍ରମେ ଏ ସବୁ ରାଜ୍ୟ ମୟୂରଭଞ୍ଜରୁ ବିଚ୍ଛିନ୍ନ ହୋଇଅଛି ।

କୃପାସିନ୍ଧୁ, ଇତିହାସ ।

ଏ ରାଜ୍ୟର ଅଧିପତିମାନଙ୍କର ମହାରାଜ ଉପାଧି ବଂଶାନୁଗତ ଅଟେ । ଏ ରାଜ୍ୟର ମହାରାଜମାନେ ବଂଶାନୁକ୍ରମେ ଉତ୍କଳରେ ବହୁ କୀର୍ତ୍ତି ସ୍ଥାପନ କରିଅଛନ୍ତି । ସ୍ୱର୍ଗୀୟ ମହାରାଜା କୃଷ୍ଣଚନ୍ଦ୍ର କଟକ ରେଭେନ୍ସା କଲେଜର ପ୍ରତିଷ୍ଠାକଲ୍ପେ ବହୁ ସହସ୍ର ମୁଦ୍ରା ଦାନ କରିଥିଲେ । ତାଙ୍କ ପୁତ୍ର ସ୍ୱର୍ଗୀୟ ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳର ଆଦର୍ଶ ଶାସକ ନରପତି ଓ ସାହିତ୍ୟାନୁରାଗୀ, ମହା ପଣ୍ଡିତ, ଦାତା ଓ ଉଦାରମନା ଥିଲେ । ତାଙ୍କର ପ୍ରଥମ ପୁତ୍ର ସ୍ୱର୍ଗୀୟ ମହାରାଜ ପୂର୍ଣ୍ଣଚନ୍ଦ୍ର ପିତୃଦେବଙ୍କ ପଦ ଅନୁସରଣ କରି ଥିଲେ । ସେ ନିଃସନ୍ତାନ ଅବସ୍ଥାରେ ମୃତ ହେବାରୁ ତାଙ୍କର କନିଷ୍ଠ ମହାରାଜ ପ୍ରତାପଚନ୍ଦ୍ର ବର୍ତ୍ତମାନ ମହାରାଜ ଅଟନ୍ତି । ପ୍ରତାପଚନ୍ଦ୍ର,ପିତୃ ମହୋଦୟଙ୍କ ପରି ଆଦର୍ଶ ନରପତି ଓ ଦାତା ଅଟନ୍ତି । ତାଙ୍କର ଭଗିନୀ ସହାୟତା ଲାଭ କରି ଥିବାରୁ ଶ୍ରୀ ରାମଚନ୍ଦ୍ର ମହାରାଜଙ୍କ ସୂଚନାକ୍ରମେ ପୂର୍ଣ୍ଣଚନ୍ଦ୍ରଙ୍କ ନାମ ଏ ଭାଷାକୋଷର ନାମ ପୂର୍ବେ ଯୁକ୍ତ ହୋଇଅଛି । ଓଡ଼ିଆ ଗଡ଼ଜାତମାନଙ୍କ ମଧ୍ୟରେ ଉଚ୍ଚ ଆଦର୍ଶ ଅନୁସାରେ ବଂଶାନୁକ୍ରମେ ଶାସିତ ମୟୂରଭଞ୍ଜ ରାଜ୍ୟର ବୈଶିଷ୍ଟ୍ୟ ଭାରତ ବିଶ୍ରୁତ । ]

ମୟୂର ରଥ—ସଂ. ବି—(ବହୁବ୍ରୀହି)—କାର୍ତ୍ତିକେୟ—
Mayūra ratha A name of Kārttikeya.
(ମୟୂରକେତୁ, ମୟୂର ବାହାନ, ମୟୂରେଶ—ଅନ୍ୟରୂପ)

ମୟୂର ଲଞ୍ଜା—ଦେ. ବି—୧ । ମୟୂରପୁଚ୍ଛ—1. Peacock's tail.
ময়ূরের লেজ मयुर पुच्छ ୨ । ପଶ୍ଚିମ ଦିଗରେ ମେଘରେ ସମୟେ ସମୟେ ଦେଖାଯିବା ମୟୂରପୁଚ୍ଛାକୃତି
(ମୟୂର ଲଞ୍ଜ—ଅନ୍ୟରୂପ)
ଚିହ୍ନ: ଶ୍ୱେତ (ଇନ୍ଦ୍ରଧନୁ ପରି)—2. A kind of rainbow in the shape of a peacock's tail.

ମୟୂର ଶିଖା—ସଂ. ବି—୧ । (୬ଷ୍ଠୀ ତତ୍)—ମୟୂର ଚୂଡ଼ା; ମୟୂରର ମୁଣ୍ଡ ଉପରେ ବାହାରି ଥିବା କ୍ଷୁଦ୍ର ପକ୍ଷଗୁଚ୍ଛ—The tuft of featheer on the head of a peacock. ୨ । ( ବହୁବ୍ରୀହି ) ପୁଷ୍ପ ଶାକ ବିଶେଷ—Cockscomb (plant); Celosia Crestata.
Mayūra sikhā
ମୋରଗ ଫୁଲ
मोरशिखा, लालमुरगा
ଅନ୍ୟ ସଂ. ନାମ—ସହସ୍ରାହି, ମଧୁଚ୍ଛଦା, ପ୍ରିୟଙ୍ଗମ, ବର୍ହିଚୂଡ଼ା, ଶିଖିନୀ, ଶିଖାଳୁ, ସୁଶିଖ, ଶିଖାବଲା, କେକି ଶିଖ
ଫା. ଅସ୍‌ନାନେ; ଅସ୍‌ଲାନ୍
ମ. ମୟୂର ଶିଖା
ଗୁ. ମୋର ଶିଖା
ତେ. ମୟୂର ଶିଖିଚୁଳେ
[ଦ୍ର—ଏହି ଗୁଲ୍ମ ନାଲି ଖଡ଼ା ବା ଡେଙ୍ଗା କୋଶଳା ଶାଗ ପରି ଦେଖାଯାଏ । ଏଥିର ନାଲି ପୁଷ୍ପମଞ୍ଜରୀ ଚେପଟା ହୋଇ କୁକୁଡ଼ାର ବା ମୟୂରର ଚୂଳ ପରି ଦେଖାଯାଏ । ଏଥିର ଫୁଲ ଶ୍ୱେତ, ନାଲି ଓ ପୀତଦଳ । ଏକ ଜାତୀୟ ଗଛର ମଞ୍ଜରୀ ଓ ଫୁଲ ନାଲି, ଅନ୍ୟ ଏକ ଜାତିର ଧଳା । ବୈଦ୍ୟଶାସ୍ତ୍ର ମତରେ ଏହା ଲଘୁ, ମଧୁର ରସ ଓ ପିତ୍ତ, କଫ, ଅତିସାର, ମୂତ୍ରକୃଚ୍ଛ ଓ ବାଳରୋଗ ନାଶକ । ବୈଦ୍ୟକ ଗ୍ରନ୍ଥରେ ଏହା ଗୁଡ଼ୂଚ୍ୟାଦି ବର୍ଗର ଅନ୍ତର୍ଗତ । (ଦ୍ରବ୍ୟଗୁଣ; ଯୋଗେଶଚନ୍ଦ୍ର)]

ମୟୂର ସିଂହାସନ—ସଂ. ବି—(ଅଧିକଳ; ମୟୂର ଚିହ୍ନିତ ସିଂହାସନ ମ. ପ. ଲୋ. କର୍ମଧା)—ମୋଗଲ ବାଦସାହା ଜାହାଙ୍ଗୀରଙ୍କର ଦିଲ୍ଲୀରେ ନିର୍ମିତ ମୟୂରାକୃତି ରତ୍ନ ସିଂହାସନ—A throne in the shape of a peacock built by the Moghal Emperor Jehangir at Delhi.
Mayūra simhāsana
ময়ূর সিংহাসন
मोर सिंहासन

ମୟୂଲ ଗିରିଆ—ପ୍ରାଦେ. (ଗଞ୍ଜାମ) ବି—ତୁତିଆ (ଦେଖ)
Mayūla giriā Tutiā (See)

ମର—ଦେ ଅ—୧ । (ବିରକ୍ତିସୂଚକ ଅବ୍ୟୟ) ଛିଃ !—1. (An interjection denoting disapproval) Fie !
Mar
মর
मर
୨ । (ଗାଳି ବା ଶାପ) ତୁ ମରୁ; ତୁ ମୃତ ହୋ; ତତେ ମରଣ ଘଟୁ—2. (Interjection used as a curse, meaning) May death overtake you ! ପ୍ରାଦେ—( ସମ୍ବଲପୁର ଓ କାଳାହାଣ୍ଡି ) ସଂ. ମୋର—Mine.

ମରଗେଜ୍—ବୈଦେ. ବି (ଇଂ. ମର୍ଟ୍‌ଗେଜ୍) (କଚେରୀ)—ଭୂସମ୍ପତ୍ତି ବନ୍ଧକ ଦେଇ ଟଙ୍କା ନେବା କାରବାର; ବନ୍ଧକ—Mortgage.
Mar-gej
মর্গেজ্
बन्धक,गीरवी

ମରଚି—ପ୍ରାଦେ (ସିଂହଭୂମ) ବି (ଭୁଲ ହି. ମିରଚୀ)—ଲଙ୍କାମରିଚ—
Mar-chi Red-pepper.

ମର୍ଡ଼ା—ପ୍ରାଦେ (ସମ୍ବଲପୁର) ବି ଓ ବିଣ (ଭୁଲ. ହି. ମୁର୍ଦା)-ମୁର୍ଦାର—
Mar-ṛdā Dead body; corpse.

ମର୍ଡ଼ା ଘର—ପ୍ରାଦେ (ସମ୍ବଲପୁର) ବି—ମୁର୍ଦାର ଖାନା; ଶବ ବ୍ୟବଚ୍ଛେଦ ଗୃହ—Morgue.
Mar-ṛdā ghar

ମରୁତେଲ୍—ପ୍ରାଦେ (ସମ୍ବଲପୁର) କ୍ରି. ବିଣ—ମରଣାନ୍ତକ ଭାବରେ; ମରିଯିବା ଭଳି—Mortally. (ଯଥା—ମାଷ୍ଟର୍ ପିଲାକେ ମରୁତେଲ୍ ପିଟିଦେଇ ଛନ୍ ) । (ଭୁଲ. ଇଂ. ମର୍ଟାଲି)
Mar-tel

ମରୂଦବା—ପ୍ରାଦେ (ସମ୍ବଲପୁର, ସଂ. ମର୍ଦ୍ଦନ) କ୍ରି—ଚକଟିବା; ମର୍ଦ୍ଦିବା—
Mar-dibā To press; to bruise.

ମରୂନେ—ପ୍ରାଦେ (ସମ୍ବଲପୁର) ଅ—ମୋ ପାଖରେ; ମୋଠାରେ;ମୋ ସହ—
Mar-ne Near me; with me.

ମରୂବା—ପ୍ରାଦେ (ସମ୍ବଲପୁର) କ୍ରି—ମରିବା—
Mar-bā To die.

ମରବା ତକ୍—ପ୍ରାଦେ (ସମ୍ବଲପୁର) କ୍ରି. ବିଣ—ମରିବା ପର୍ଯ୍ୟନ୍ତ; ଆମରଣ;
Mar-bā tak ଆଜୀବନ—Till one's death; throughout one's life.

ମର୍ ବାହାଞ୍ଚୋ—ଦେ. ଅ ( ଇତର ବ୍ୟବହୃତ )—ବିରକ୍ତିବ୍ୟଞ୍ଜକ
Mar bāhāñcho ଅବ୍ୟୟ—(Interjection) Fie ! (denoting disapproval).
मरभाञ्चोत् मरबाहनचोद्
(ମର୍ ବାହାଞ୍ଚୋତ୍ [ଦ୍]—ଅନ୍ୟରୂପ)

ମର୍ହା—ପ୍ରାଦେ (ସମ୍ବଲପୁର) ବି—ମଡ଼ା - Corpse. ପ୍ରାଦେ—
Mar-hā (ସମ୍ବଲପୁର) ବିଣ—ମୃତ—Dead.

ମର—ସଂ. ବି (ମୃଡ. ଧାତୁ=ମରିବା +ଭାବ. ଅ)—୧ । ମରଣ; ମୃତ୍ୟୁ—
Mara 1. Death. ୨ । (+ଅଧିକରଣ. ଅ) ପୃଥିବୀ; ଜଗତ—
2. The earth; the world. ସଂ. ବିଣ (+
'ଅମର—ବିପରୀତ) କର୍ତ୍ତୃ. ଅ)—୧ । ମରଣଶୀଳ; ମରଣାଧୀନ—
1 Subject to death; mortal. ୨ । ବିନାଶ-
ଶୀଳ—2 Subject to decay. ପ୍ରାଦେ (ବାଲେଶ୍ୱର)
[ମ'ର—ଅନ୍ୟରୂପ] ସର୍ବନାମ—ମୋର—Mine

ମରକ—ସଂ. ବି (ମୃ. ଧାତୁ+କରଣ ଅକ; ଯହିଁରେ ଲୋକ ମରନ୍ତି)—
Maraka ୧ । ମାରୀଭୟ; ମାରୀ; ମଡ଼କ—1. Pestilence;
plague; murrain. ୨ । ଦେଶସଂକ୍ରାମକ ବ୍ୟାଧି—
2. An epidemic.

ମରକଟ—ଗ୍ରା. (ପଦ୍ୟ) ବି. ପୁଂ (ସଂ. ମର୍କଟ)—୧ । ମର୍କଟ; ମାଙ୍କଡ଼—
Marakaṭa 1. Monkey. ୨ । [ ଲକ୍ଷଣାର୍ଥ ] ମାଙ୍କଡ଼ପରି
[ମରକଟୀ—ସ୍ତ୍ରୀ] ଅସୁନ୍ଦର ଲୋକ—2. ( figurative ) An
मर्कट मरकट ugly looking person (like an ape).

ମରକଟା—ଦେ. ବିଣ. ପୁଂ [ସଂ. ମର୍କଟ]—ମାଙ୍କୁଡ଼ିଆ; ମାଙ୍କଡ଼ ପରି
Marakaṭā ଶୀର୍ଣଦେହହସ୍ତପଦ—Having the body and
मु(मो)रकोटे limbs shrivelled or lean like those
मरकटिया of an ape; emaciated.
[ମରକଟୀ, ମରକଟେଇ—ସ୍ତ୍ରୀ]

ମରକଟି ହେବା—ଦେ. କ୍ରି (ସଂ. ମର୍କଟ; ମାଙ୍କଡ଼ ପରି ଖେଙ୍କାରହେବା)—
Marakaṭi hebā ତଦ୍ରୂପମର୍କଟ ହେବା; ଚିଡ଼ି କରି ମାଙ୍କଡ଼ ପରି
[ମରକଟେଇ ହେବା—ଅନ୍ୟରୂପ] ଖିଙ୍କାର ହେବା—To fret
रेगेमेगे दान्तदेखान and grin in rage like a monkey.
मर्कटीहोना; खीजना ( ଯଥା—ସେ ମରକଟି ହେଉଅଛି )

ମରକତ—ସଂ. ବି [ମରକ=ମାରୀଭୟ+ତୃ. ଧାତୁ=ପାର ହେବା+
Marakata କରଣ. ଅ; ଏହା ଧାରଣ କଲେ ମାରୀଭୟରୁ ମନୁଷ୍ୟ
[ମରକ୍ତ—ଅନ୍ୟରୂପ] ରକ୍ଷା ପାଏ ବୋଲି ବିଶ୍ୱାସ ଥିବାରୁ)—ସବୁଜ
ବା ହରିଦ୍‌ବର୍ଣ୍ଣ ମଣିବିଶେଷ; ପନ୍ନା—Emerald. [ଉ—
ଯେହ୍ନ ମରକତକେଶୀ କେଶୀ ରଘୁ-ସୁତ ଶାସ୍ତ୍ରକୁ ପଢ଼ାଇବ ।
ଉଞ୍ଜ. ପ୍ରେମସୁଧାନିଧି ।] [ଦ୍ର—ତୁଳନା କର. ପ୍ର ସିରୀୟାନ୍—
maragda (ମରଗଦ), ଲାଟିନ୍—Smaragdus
(ସ୍ମରାଗ୍‌ଡସ୍), ଫ୍ରେଞ୍ଚ—Emerande (ଏମେରଣ୍ଡେ) । ହିନ୍ଦୁ
ଜ୍ୟୋତିଷୀଙ୍କ ମତରେ ଏ ରତ୍ନ ବୁଧ ଗ୍ରହଙ୍କର ପ୍ରିୟ
ରତ୍ନ । ] ଦେ. ବି—ମରକତ କେଶରୀ (ଦେଖ)—
Marakata keśarī (See). ( ଉ—ପୁଣ୍ୟଶ୍ଳୋକ
ମରକତ ମଣ୍ଡପରେ । ରାଧାନାଥ· ଦରବାର । )

ମରକତ କେଶରୀ—ଦେ. ବି—କେଶରୀବଂଶର ନୃପ ବିଶେଷ—A king
Marakata keśarī of Keśarī dynasty of Orissa.
[ଦ୍ର-ଏ ଖ୍ରୀଷ୍ଟାବ୍ଦ ୧୦୨୪ ରୁ ୧୦୪୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ;
ବାରାଣସୀ କଟକ (ଅଧୁନାକ କଟକ ଓ କଟକର ଉପକଣ୍ଠସ୍ଥ
ଗ୍ରାମ ବଢ଼ାନାସି) ର ରକ୍ଷା ନିମନ୍ତେ କାଠଯୋଡ଼ି ଓ ମହାନଦୀ
କୂଳରେ ପଥରବନ୍ଧ କରାଇଥିଲେ । କୃପାସିନ୍ଧୁ. ଇତିହାସ ।]

ମରକୁମେ—ବୈଦେ. ଅ (କଚରିଆ) (ଆ. ମରକୁମ୍=ଲିଖିତ)—(ଦଲିଲ
Markume ଆଦିରେ ବ୍ୟବହୃତ) ଅମୁକ ତାରିଖରେ ଲିଖିତ—
मरकूमे (used in deeds) Dated; written on such
मरक्रुमे a date.

ମରଜା(ଜ,ଜେ,)ଦା [ଇତ୍ୟାଦି]—ଗ୍ରାମ୍ୟ. ବି (ସଂ. ମର୍ଯ୍ୟାଦା)—ମର୍ଯ୍ୟାଦା
Marajā(ja,je)dā [etc] ଇତ୍ୟାଦି [ଦେଖ]—Marjyādā
मरजादा मरजादा[द] etc [See].

ମରଜି—ବୈଦେ. ବି. (ଆ. ମର୍ଜୀ)—୧ । ଖୁସି; ଇଚ୍ଛା—1. Wish;
Maraji will; pleasure. ୨ । ସମ୍ମତି—2. Consent.
(ମର୍ଜି—ଅନ୍ୟରୂପ) ୩ । ଉଦ୍ଦେଶ୍ୟ; ଅଭିପ୍ରାୟ—3. Intention.
मर्जि ୪ । ମନ; ହୃଦୟ; ହୃଦ୍‌ଗତ ଭାବ—4. Mind; heart.
मर्जी [ଉ—ତୋ ଯେହ୍ନେ ତମାଲ ଶ୍ୟାମ ମୋ ମରଜି କଷିଲାରେ—
କବିସୂର୍ଯ୍ୟ. କିଶୋରଚନ୍ଦ୍ର, ଚ ଗୀତ । ]

ମରଜି ଜଗା(ଗେ)ଇବା—ଦେ. କ୍ରି (ଆ. ମର୍ଜୀ+ସଂ. ଜାଗୃ. ଧାତୁ)—ମନ
Maraji jagā(ge)ibā ଜଗାଇବା; ପ୍ରସନ୍ନ କରାଇବା; କୌଣସି
मनयोगान ବ୍ୟକ୍ତିର ଇଚ୍ଛା ଅନୁକୂଳରେ କାର୍ଯ୍ୟ କରିବା—To
ମରଜି ଜଗିବା, ମରଜି ରଖିବା, ମରଜା[ଜେ]ଇବା } ଅନ୍ୟରୂପ please a person; to act according to the wish of a person.

ମରଜି ପାଇବା—ଦେ. କ୍ରି (ଆ. ମର୍ଜୀ+ସଂ. ପ୍ରାପ, ଧାତୁ)—କୌଣସି
Maraji pāibā ବ୍ୟକ୍ତିର ଆନ୍ତରିକ ଇଚ୍ଛା ବୁଝିବାକୁ ସମର୍ଥ ହେବା-
मनपाओया To know the wishes of a person; to
मर्जीपाना fathom a person's mind.

ମରଜି ମିଳିବା—ଦେ. ବି—ଜଣକର ଆନ୍ତରିକ ଇଚ୍ଛା ଜଣା ପଡ଼ିବା—
Maraji miḷibā A person's mind or intention
मन जाना पड़ा being known or fathomed.
मर्जी मिलना

ମରଠା(ଠ୍ଠା, ଟ୍ଟା) (ଇତ୍ୟାଦି)—ଦେ. ବି ଓ ବିଣ ( ସଂ. ମହାରାଷ୍ଟ୍ର )—
Maraṭhā(ṭṭhā, ṭṭā) (etc) ମରହଟା ଇତ୍ୟାଦି ( ଦେଖ )
माराठा मरहट्टा Marahaṭā etc ( See )

**ମରଠୀ(ଠ୍ଠୀ,ଟ୍ଟୀ) (ଇତ୍ୟାଦି)**—ଦେ. ବିଣ—ମରହଟୀ ଇତ୍ୟାଦି ( ଦେଖ )
Marathi(tthi,tti) (etc) Marahati etc. (See)
मराठी ବି—ମହାରାଷ୍ଟ୍ରବାସୀ—Inhabitant of a
मरहट्टिया Maharashtra.

**ମରଡ଼—**ଦେ. ବି. ( ସ. ମରକ )—ମଡ଼କ; ମହାମାରୀ—
Marada Pestilence; plague.
মড়ক मरगी(की)

**ମରଡ଼ା**—ଦେ. ବି—ଚିଲିକାରେ ମିଳୁଥିବା ଏକ ପ୍ରକାର କଙ୍କଡ଼ା—
Mararda A kind of crab found in the Chilka.
(ମରଡ଼ିଆ—ଅନ୍ୟରୂପ) ଦେ. ବିଣ. ପୁଂ (ସ. ମୃତ ପ୍ରାୟ)—
(ମରଡ଼ା—ସ୍ତ୍ରୀ) ମହାମାରୀ ପ୍ରପୀଡ଼ିତ ରୋଗୀ ପରି କ୍ଷୀଣଦେହ-
মড়া ବିଶିଷ୍ଟ—Emaciated like a person attacked
मरगिया with pestilence

**ମରଡ଼ି**—ଦେ. ବି ( ସ. ମରକ )—୧ । ମରୁଡ଼ି; ମହାମାରୀ—
Marardi 1. Pestilence; plague. ୨ । ମାରାତ୍ମକ
মড়ক ସଂକ୍ରାମକ ରୋଗ—2. Mortal epidemic
मरगी ୩ । ବୃଷ୍ଟି ଅଭାବରୁ ଶସ୍ୟ ନାଶ—3. The wither-
শুকো रौदी ing of crops due to want of rain
আকাল মৃত্যু ୪ । ଅକାଳ ମରଣ—4. Untimely
अकाल मरण, मरत death; early death.

**ମରଣ**—ସ. ବି (ମୃ ଧାତୁ=ମରିବା+ଭାବ. ଅନ)—୧ । ପ୍ରାଣ ତ୍ୟାଗ;
Marana ମୃତ୍ୟୁ; ମରିବା; ଆତ୍ମାର ଦେହ ତ୍ୟାଗ—
(ଜୀବନ—ବିପରୀତ) 1. Dying; death. ୨ । ବିନାଶ—
মরা 2. Destruction. ୩ । ମହୁରା; ବତ୍ସନାଭ ନାମକ ବିଷ;
मरा हुआ କାଠ ବିଷ; ମିଠା ବିଷ—3. Aconite. ଗ୍ରା. ବିଣ—
ମଲା; ମୃତ—Dead. (ଉ—ମରଣଗଛ ଚନ୍ଦନ ଶ୍ରୀଖଣ୍ଡ ବସନରେ
ସ୍ଖଳନ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।)

**ମରଣ କାମନା**—ସ. ବି ( ୪ର୍ଥୀ ତତ୍ ବା ୬ଷ୍ଠୀ ତତ୍ )—
Marana kamana ମରିବାର ଇଚ୍ଛା; ମରିବା ପାଇଁ ଇଚ୍ଛା—
The wish to die

**ମରଣ କାମୀ**—ସ. ବିଣ. ପୁଂ—ମରିବାକୁ ଇଚ୍ଛୁକ—Wishing
Marana kami (ମରଣକାମିନୀ—ସ୍ତ୍ରୀ) death.

**ମରଣ କାଳ**—ସ. ବି. ( ୬ଷ୍ଠୀ ତତ୍ )—ମୃତ୍ୟୁ ଘଟିବା ସମୟ—
Marana kala The time of death.
[ଉ—ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା
ଜାଣି । ଜଗନ୍ନାଥ. ଭାଗବତ ।]

**ମରଣ ଦଶା**—ସ. ବି (୬ଷ୍ଠୀ ତତ୍)—ମରିବା ପର ଅବସ୍ଥା; ମରଣାପନ୍ନ
Marana dasa ଅବସ୍ଥା—Verge of death; grip of
death; dying condition.

**ମରଣ ଦୁଃଖ**—ସ. ବି (୬ଷ୍ଠୀ ତତ୍)—ମୃତ୍ୟୁ ସମୟରେ ଅନୁଭୂତ କଷ୍ଟ—
Marana duhkha The pangs of death.
(ମରଣ ଯାତନା, ମରଣ କ୍ଳେଶ, ମରଣ କଷ୍ଟ—ଅନ୍ୟରୂପ)

**ମରଣ ଧର୍ମ**—ସ. ବି—ମରଣ ରୂପ ଧର୍ମ; ମରିବା ରୂପ ଜୀବର ଧର୍ମ—
Marana dharma The incident of death
common to all animals.

**ମରଣ ଧର୍ମଶୀଳ**—ସ. ବିଣ ପୁଂ ( ବହୁବ୍ରୀହି; ମରଣଧର୍ମ+ଶୀଳ )—
Marana dharmasila ୧ । ମର୍ତ୍ତ୍ୟ; ମରଣାଧୀନ—1. Mortal;
ମରଣ ଧର୍ମୀ } ଅନ୍ୟରୂପ subject to death. ୨ । ନଶ୍ୱର—
ମରଣ ଧର୍ମା } 2. Subject to decay.
(ମରଣ ଧର୍ମଶୀଳା—ସ୍ତ୍ରୀ)

**ମରଣ ପାଞ୍ଚିବା**—ଦେ. କ୍ରି—ମରଣ କାମନା କରିବା; ଆପେ ବା ଅନ୍ୟ
Marana panchiba ବ୍ୟକ୍ତି ମରୁ ବୋଲି ଇଚ୍ଛା କରିବା—
মৃত্যু কামনা করা To wish death (to one's self
मरण बाँछना or to another).

**ମରଣ ସନ୍ତୋଷ**—ଦେ. ବି (ବ୍ୟଙ୍ଗ୍ୟ)—ଅତ୍ୟନ୍ତ ଅସନ୍ତୋଷ—
Marana santosha Utter dissatisfaction.
অতি অসন্তোষ मरण सन्तोष

**ମରଣାନ୍ତ**—ସଂ. ବିଣ ( ବହୁବ୍ରୀହି; ମରଣ ଅଟେ ଅନ୍ତ ଯାହାର )—
Marananta ଯେଉଁ ରୋଗର ବା ଯୁଦ୍ଧାଦିର ଫଳରେ ମୃତ୍ୟୁ
(ମରଣାନ୍ତକ—ଅନ୍ୟରୂପ) ଘଟେ; ଯାହାର ଶେଷ ଫଳ ମୃତ୍ୟୁ ଅଟେ-
মরণান্ত Fatal (disease); mortal; (a thing) end-
मरणान्त ing in or leading to death.
ଦେ. କ୍ରି. ବିଣ—ମରିବା ପର୍ଯ୍ୟନ୍ତ; ଆମରଣ—
Till death.

**ମରଣାପନ୍ନ**—ସଂ. ବିଣ. ପୁଂ (୨ୟା ତତ୍ ପୁରୁଷ; ମରଣକୁ ଆପନ୍ନ=
Maranapanna ପ୍ରାପ୍ତ )—୧ । ମୃତପ୍ରାୟ—1. Nearing
(ମରଣାପନ୍ନା—ସ୍ତ୍ରୀ) death; almost dead. ୨ । ମୁମୂର୍ଷୁ—
2. Dying.

**ମରଣାପନ୍ନ ଅବସ୍ଥା**—ସଂ. ବି (କର୍ମଧା)—ମୁମୂର୍ଷୁ ଅବସ୍ଥା—Dying
Maranapanna abastha condition; mortal con-
dition.

**ମରଣାଶୌଚ**—ସଂ. ବି. ( ମ. ପ. ଲୋ; ମରଣ ଜନିତ ଅଶୌଚ )—
Marana saucha ମୃତ୍ୟୁକୃତ୍ୟ; ମୃତକାଶୌଚ; କୌଣସି ବ୍ୟକ୍ତିର
ମୃତ୍ୟୁ ଯୋଗୁଁ ତାହାର ଜ୍ଞାତିମାନଙ୍କର ନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ
ଅଙ୍ଗାଶୁଦ୍ଧି—Impurity observed by kindreds
on the death of a person.

**ମରଣେଚ୍ଛୁ**—ସଂ. ବିଣ ( ୭ମୀ ତତ୍; ମରଣ+ଇଚ୍ଛୁ )—ମରିବାକୁ
Maranechchhu ଇଚ୍ଛୁକ—Wishing to die.
(ମରଣେଚ୍ଛୁକ—ଅନ୍ୟରୂପ)

**ମରଣୋଦ୍ୟତ**—ସଂ. ବିଣ. ପୁଂ (୭ମୀ ତତ୍)—୧ । ମରଣ ପାଇଁ ପ୍ରସ୍ତୁତ;
Maranodyata ମରିବାକୁ ଯାଉଥିବା—1. Going to die;
ମରଣୋଦ୍ୟତା } ସ୍ତ୍ରୀ prepared to die.
ମରଣୋନ୍ମୁଖୀ } ୨ । ମୁମୂର୍ଷୁ—2 Dying.
(ମରଣୋନ୍ମୁଖ—ଅନ୍ୟରୂପ)

**ମରତ**—ସଂ. ବି ( ମୃ ଧାତୁ+ଭାବ ଅତ )—ମରଣ; ମୃତ୍ୟୁ—Death.
Marata ଗ୍ରା. ବି ( ସଂ. ମର୍ତ୍ତ୍ୟ ) (ପଦ୍ୟ)—ମର୍ତ୍ତ୍ୟପୁର; ମର୍ତ୍ତ୍ୟ-
মরত मरत ଲୋକ; ପୃଥିବୀ—The earth; the world.
বার (ଉ—ମୋ ପେଟ ମରତେ କେତେ ମହାପ୍ରାଣୀ ଚେତକଲେ
मरतबा ପ୍ରାଣ । ରାଧାନାଥ. ଉଷା ।) ବୈଦେ. ବି (ଅ.ମରତବା)
ଥର; ଦଫା—Time.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଜ୍ଞ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଚ | ନ୍ହ |

**ମରତ ଭୁବନ**—ଗ୍ରା. (ପଦ୍ୟ) ବି—(ସଂ. ମର୍ତ୍ତ୍ୟଭୁବନ)—ଭୂମଣ୍ଡଳ;
Marata bhubana ପୃଥିବୀ—The globe; the world;
मरत भुवन मरत मण्डल मरत मंडल the earth.
(ମରତ ମଣ୍ଡଳ—ଅନ୍ୟରୂପ)

**ମରତ୍ୟ**—ଗ୍ରା (ପଦ୍ୟ) ବି—(ସଂ. ମର୍ତ୍ତ)—ମର୍ତ୍ତ୍ୟ—The world.
Maratya [ଉ—ବଳେ କଲେ ଏହ ମରତ୍ୟେ ଦେବତା ।
मरत मरतय ମଧୁସୂଦନ ଉତ୍ତରରାମଚରିତ ।]

**ମରଦ**—ବୈଦେ. ବି. ପୁଂ—(ଆ. ମର୍ଦ୍; ତୁଲ. ସଂ. ମର୍ତ୍ତ୍ୟ)—୧ । ମର୍ଦ୍ଦ
Marada ମନୁଷ୍ୟ; ପୁରୁଷ—1. Man. [ଯଥା—ପଞ୍ଚ(ଶ)-
मर्द्द ହତା ମରଦ ।] ୨ । ଅଣ୍ଡିରା—2. Male. ୩ । ସ୍ୱାମୀ;
मर्द, मरद ଗେରସ୍ତ—3. Husband. ଦେ. ବିଣ—ସାହସୀ—
ମର୍ଦ୍ଦ } —ଅନ୍ୟରୂପ Brave; manly.
ମର୍ଦ୍ଦ }

**ମରଦଗାଜୀ**—ଗ୍ରା. ବି—ମର୍ଦ୍ଦଗାଜି (ଦେଖ)
Maradagāji Marddagāji (See)

**ମରଦନ**—ଗ୍ରା. ବି (ସଂ. ମର୍ଦ୍ଦନ)—ମର୍ଦ୍ଦନ (ଦେଖ)—Marddana
Maradana (See) [ଉ—ପୀନ ପୟୋଧର ମରଦନେ କାଦମ୍ବ ।
मर्द्दन ରସବାରଧି ।] ପ୍ରାଚୀ. ପ୍ରାଦେ. (ଗଡ଼ଜାତ) ବି—ରାଜାଙ୍କର
मरदन ତେଲ ଲଗାଇବା ବିଧି—The rubbing of oil on
the body of a Rājā.

**ମରଦନ ବଢ଼ିବା**—ପ୍ରାଦେ. (ଗଡ଼ଜାତ) ବି—ରାଜାଙ୍କର ସ୍ନାନ ପୂର୍ବରୁ
Maradana bardhibā ଦେହରେ ତେଲ ଘଷିବା କାର୍ଯ୍ୟର ଶେଷ
ହେବା—The completion of the act of
rubbing oil on the body of a Rājā before
bath.

**ମରଦ ନାମା**—ଦେ. ବି—(ପା. ମର୍ଦ୍+ସଂ. ନାମ)—ପୁରୁଷ ନାମବାଚକ
Marada nāmā ବ୍ୟକ୍ତି; ପୁରୁଷ ଜାତୀୟ ବ୍ୟକ୍ତି—Male
পুরূষ মানুষ person. [ଯଥା—ସେ ଘରେ ମରଦନାମା କେହି
मरदनामा ନାହିଁ ।]

**ମରଦନିଆ(ଆଁ)**—ଦେ. ବିଣ—(ସଂ. ମର୍ଦ୍ଦନକାରୀ)—ଯେ ମର୍ଦ୍ଦନ କରେ;
Maradaniā(āṅ) ଯେ ପ୍ରଭୁଙ୍କ ଅଙ୍ଗ ଘଷେ—Rubbing the
যে গাটেপে body of the master. [ଉ—ଯାମଳ ଭୂଧର-
मरदनिआ ଜାତ ପୟୋଧର ମରଦନିଆ ଶୁକର । କବିସୂର୍ଯ୍ୟ. କଳୋଗ୍ରୀ
ଚମ୍ପୂ—ଯ ଗୀତ ।]

**ମରଦ ପଣ**—ଦେ. ବି—(ପା. ମର୍ଦାନା)—୧ । ପୌରୁଷ; ବୀରତ୍ୱ; ସାହସ-
Marada paṇa 1. Manliness; bravery; manly
मर्दानी; मर्दानगी courage. ୨ । ପୁଂସ୍ତ୍ୱ; ଅଣ୍ଡିରପଣିଆ—
मरदानि मरदानगी 2. Potency; virility.
[ମରଦପଣିଆ (ଆଁ)—ଅନ୍ୟରୂପ]

**ମରଦ ପିଲା**—ଦେ. ବି—(ହି. ମରଦ୍‌କା ବଚ୍ଚା)—୧ । ସାହସୀ ବ୍ୟକ୍ତି;
Marada pilā ବୀର୍ଯ୍ୟବାନ୍ ବ୍ୟକ୍ତି—1. A manly person;
मरदबाचा मर्द्दकाबच्चा a son of man. [ଦ୍ର—ଅର୍ଥାତ୍ ଯେ
(ମରଦ ପୁଅ; ମରଦ ବଚ୍ଚା[ଚ୍ଛା]—ଅନ୍ୟରୂପ) ଛୁଆ ହୁଏ, ଯେ
ମନୁଷ୍ୟପଦବାଚ୍ୟ ବ୍ୟକ୍ତିର ପୁତ୍ର, ଅମନୁଷ୍ୟ ବା ଛୁଆର
ପୁତ୍ର ହୁଏ ।] ୨ । ମନୁଷ୍ୟ—2. A man.

**ମରଦ ମାଇକିନିଆ**—ଗ୍ରା. ବି—(ଉପସ୍ଥିତ ଲିଙ୍ଗ ସହିତର)—୧ । ପୁରୁଷ
Marada māikiniā ଓ ସ୍ତ୍ରୀ—1. Male and female.
পুরুষ ও স্ত্রী ୨ । ସ୍ୱାମୀ ଓ ସ୍ତ୍ରୀ—2. Husband and wife.
मरदमादी

**ମରଦରାଜ**—ଗ୍ରା. ବି—ମର୍ଦ୍ଦରାଜ (ଦେଖ)
Maradarāja Marddarāja (See)

**ମରଦଳ**—ଗ୍ରା. (ପଦ୍ୟ) ବି—(ସଂ. ମର୍ଦ୍ଦଳ)—ମର୍ଦ୍ଦଳ (ଦେଖ)
Maradaḷa Marddaḷa (See) [ଉ—ବାଜନ୍ତି ବସନ୍ତ
मादल ବାଦ୍ୟ ମରଦଳ ମଧ୍ୟେ ବ୍ରହ୍ମଗିରି ଦେଇ । ଭଞ୍ଜ ବୈଦେହୀଶ
मरदल ବିଳାସ ।]

**ମରଦାଣୀ**—ଦେ. ବି—(ପା, ମର୍ଦ୍‌ର ଓଡ଼ିଆ ସ୍ତ୍ରୀଲିଙ୍ଗ)—୧ । ସାହସିକା
Maradāṇī ନାରୀ—1. A brave woman. ୨ । ଅଣ୍ଡିରା-
मरदानी मरदानो ଚଣ୍ଡୀ—2. An amazon.

**ମରଦାନା(ନି)**—ବୈଦେ. ବିଣ—(ପା.)—୧ । ପୁରୁଷ ସମ୍ବନ୍ଧୀୟ—
Maradānā(ni) 1. Relating to males. ୨ ।
मरदाना ପୁରୁଷୋଚିତ—2. Befitting a male. (ଯଥା—
मरदाना(नी) ମରଦାନା ବେଶ ।) ୩ । ବୀରୋଚିତ—3. Rela-
मरदानगी ting to a hero; heroic. ବୈଦେ. ବି—(ପା.
ମରଦାନଗୀ)—ମରଦପଣ (ଦେଖ)
Maradapaṇa (See)

**ମରଦିଆ**—ଦେ. ବିଣ—(ସଂ. ମର୍ଦ୍ଦନକାରୀ)—ମରଦନିଆ; ପ୍ରଭୁଙ୍କ ଅଙ୍ଗ-
Maradiā ମର୍ଦ୍ଦନକାରୀ (ଭୃତ୍ୟ)—(a servant) Who
যে টেপে मरदनिआ rubs his master's limbs.

**ମରଦିବା**—ଦେ. (ପଦ୍ୟ) କ୍ରି—(ସଂ. ମୃଦ୍ ଧାତୁ)—୧ । ଘଷିବା
Maradibā ମର୍ଦ୍ଦନ କରିବା—1. To rub. ୨ । ମଳିବା—
मरदनकरा, मरदा मरदन करना, मरदना 2. To crush.
(ମର୍ଦ୍ଦିବା—ଅନ୍ୟରୂପ) [ଉ—ଗଭା ଫୁଲ ଯାଦେ ମରଦିଲେ ମଦେ
ଲଭ ସିନା ଅଙ୍ଗାରତ ରେ ବନ୍ଧୁଅ । ସଙ୍ଗୀତ ।] ୩ ।
ଉତ୍ପୀଡ଼ନ କରିବା; କଷ୍ଟ ଦେବା—3. To oppress.
[ଉ—ସୁର ମରଦଇ ତା ବଚନ ପାଇ ବିଷମ ଶର ପଠାଣ ।
କବିସୂର୍ଯ୍ୟ. ସଙ୍ଗୀତ ।]

**ମରନ୍ଦ**—ସଂ. ବି—(ମର=ମୃତ୍ୟୁ+ଦୋ ଧାତୁ=ଛେଦନ କରିବା+
Maranda କର୍ତ୍ତୃ. ଅ—ଯାହା ଭ୍ରମରଙ୍କ ମୃତ୍ୟୁକୁ ଖଣ୍ଡନ କରେ)
(ମରନ୍ଦକ—ଅନ୍ୟରୂପ) ମକରନ୍ଦ; ପୁଷ୍ପ ମଧୁ—The honey
from flowers. [ଉ—ମରନ୍ଦ ସେକେ ଭ୍ରମର
ଲୋକେ ଭାଷିଲେ ଲକ୍ଷ୍ମୀ ମାରେ । କବିସୂର୍ଯ୍ୟ. କଳୋଗ୍ରୀଚମ୍ପୂ
ମ. ଗୀତ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; କଣ୍ଠ ନ ମିଳିଲେ 'କଣ୍ଠ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧ' ଦେଖିବେ; ଅଙ୍କା ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ମରବୁଦ—ଦେ. ବି ଓ ବିଣ—(ସଂ. ଅର୍ବୁଦ)—୧୦ କୋଟି (ସଂଖ୍ୟା)—
Marabuda One hundred million.
(ମରଭୂତ—ଅନ୍ୟରୂପ)

ମରମ—ଦେ. ବି. ପଦ୍ୟ (ସଂ. ମର୍ମ)—୧ । ଶରୀରର ମର୍ମ ସ୍ଥାନ ବା ସନ୍ଧି;
Marama ଶରୀରର ଜୀବସ୍ଥାନ (ଅର୍ଥାତ ଯେଉଁ ସ୍ଥାନରେ
ମରম ସାମାନ୍ୟ ଆଘାତ ଲାଗିଲେ ମୃତ୍ୟୁ ଘଟେ)—1. A vital
मरम part of the body; a vital organ of the body.
[ଉ—ମରମରେ ପଶି ଦରମରି କରେ ସରସ ହରଣ ନୋହି । କବିସୂର୍ଯ୍ୟ. ସଙ୍ଗୀତ ।] ୨ । ହୃଦୟ; ଅନ୍ତର—2. Heart; the quick. [ଉ—ପ୍ରେମ ଗଣ୍ଠି ବାନ୍ଧେ ବାମା ମରମେ । ନନ୍ଦକିଶୋର. କର୍ଣ୍ଣଭରଣୀ ।] ୩ । ମନୁଷ୍ୟର ଆନ୍ତରିକ ଉଦ୍ଦେଶ୍ୟ; ମର୍ମ କଥା; ଅନ୍ତରର କଥା—3. One's internal desire. ୪ । ଅପ୍ରକାଶ୍ୟ ବିଷୟ; ଗୁପ୍ତକଥା; ରହସ୍ୟ—4. A secret; a mystery. (ଉ—ସବୁ କହିବ ମରମ କଥା କହିବ ନାହିଁ-ଢଗ) ୫ । ବୀଜ; ଭେଦ; କୌଣସି ସମସ୍ୟା ସାଧନର ଗୁପ୍ତମନ୍ତ୍ର; ଗୂଢ଼ ରହସ୍ୟ—5. The key to a problem. ୬ । ଗୁପ୍ତ ଉଦ୍ଦେଶ୍ୟ—6. Hidden purpose. ୭ । କୌଣସି କଥାର ଗୁପ୍ତ ଅର୍ଥ—7. The secret meaning of a passage or expression. ୮ । ତାତ୍ପର୍ଯ୍ୟ—8. Gist; drift; purport. ୯ । ଉପସ୍ଥ—9. Male or female organ. ଦେ. ବିଣ—୧ । ଆନ୍ତରିକ—1. Internal. ୨ । ଗୁପ୍ତ; ଗୋପନୀୟ—2. Secret.
ବୈଦେ. ବି (ଇଂ. ମୋରମ୍)—ପକ୍କା ସଡ଼କରେ ବିଛା
ମୋରম ଯିବା ସାନ ସାନ ପଥରଗୋଡ଼ି; ଚୂନା ଚୂନା ପଥର-
रोडी ଗୋଡ଼ି—Bits of metal spread on the surface of metalled roads; morum. [ଦ୍ର—ପ୍ରଥମରେ ମାଟି ଉପରେ ଛିମା ପଥର ବିଛାଯାଇ ତା ଉପରେ ଗୋଡ଼ି ବିଛାଯାଏ ଓ ତା ଉପରେ 'ମରମ' ବିଛାଯାଇ ତାକୁ ଧୁର୍ମୁଷରେ ପିଟି କରି ବା ରୋଡ୍ ରୋଲର୍‌ର ସାହାଯ୍ୟରେ ସଡ଼କକୁ ଘନ ଓ ଦୃଢ଼ କରାଯାଏ ।]

ମରମ କଥା—ଦେ. ବି (ସଂ. ମର୍ମ କଥା)—୧ । କୌଣସି ବ୍ୟକ୍ତିର ଗୁପ୍ତ
Marama katha କଥା—1. The secrets of a
মরমেরকথা person. ୨ । ହୃଦୟର ଭାବ ପ୍ରକାଶକ ବାକ୍ୟ;
मरमकीबात ମନର କଥା—2. Words expressing one's desire of the heart. ୩ । ଯେଉଁ କଥା କହିଲେ ଲୋକର ହୃଦୟରେ କଷ୍ଟ ହୁଏ; ମର୍ମଭେଦୀ ବାକ୍ୟ—3. Words which hurt a person to the quick.

ମରମ କହିବା—ଦେ. କ୍ରି—କୌଣସି ବ୍ୟକ୍ତିର ଗୁପ୍ତ କଥା ପ୍ରକାଶ
Marama kahiba କରିବା—To speak out the
মরমেরকথা বলা मरमकीबात बोलना secrets of a person.

ମରମକୁ କାଟିବା—ଦେ. କ୍ରି—(କୌଣସି ବିଷୟ) କୌଣସି ବ୍ୟକ୍ତିର
Maramaku katiba ହୃଦୟରେ ବ୍ୟଥା ଜନ୍ମାଇବା; ହୃଦୟରେ
মরমে লাগা(বাজা) ବେଦନା ଦେବା—To cut a person
मरमें चोटदेना to the quick; to wound a person's sensitiveness (said of words or acts.)
ମରମକୁ ବାଧି(ଧି)ବା, ମରମକୁ ଲାଗିବା
ମରମକୁ(ରେ) ବାଜିବା, ମରମରେ ଚୋଟ ଦେବା
ମରମରେ ପଶିବା, ମରମରେ ଗଳିଯିବା —ଅନ୍ୟରୂପ
ମରମରେ ପଡ଼ିବା, ମରମକୁ(ରେ) ଭେଦିବା
ମରମ ଛିଣ୍ଡାଇବା, ମରମ ହାଣିବା

ମରମକୁ ଧରିବା—ଦେ. କ୍ରି—(ସଂ. ମର୍ମ+ଧୃ ଧାତୁ)—୧ । ଅନ୍ତରରେ
Maramaku dhariba ଅନୁଭୂତ ହେବା—To touch a
মরমে লাগা मरमसे लगना person's heart. ୨ । କୌଣସି ବ୍ୟକ୍ତିର ଭାବ ସଙ୍ଗେ ମେଳ ଖାଇବା—2. To tally with a person's internal wish (said of words or ideas.)
ମରମକୁ ପାଇବା
ମରମକୁ ଭେଦିବା } —ଅନ୍ୟରୂପ

ମରମକୁ ବଧା(ଧେ)ଇବା—ଦେ. କ୍ରି—(ସଂ. ମର୍ମ+ବ୍ୟଧ ଧାତୁ)—
Maramaku badha(dhe)iba କୌଣସି ବ୍ୟକ୍ତିର ହୃଦୟରେ
মরমকে লাগান ଆଘାତ ଦେବା; ମର୍ମବ୍ୟଥା ଦେବା—To
অাঁতে ঘা দেওয়া cut a person to the quick; to
मरमको लगाना wound a person's sensibility or sensitiveness.

ମରମ କୁହା—ଦେ. ବିଣ. ପୁଂ—(ସଂ. ମର୍ମ କଥକ)-ଯେ ଅନ୍ୟ ବ୍ୟକ୍ତିର
Marama kuha ମର୍ମ କଥା କହି ତା ମନରେ ମର୍ମବେଦନା
मर्मघाती ଜାତ କରାଏ; ମର୍ମଘାତୀ—Wounding the feelings
मरम कहनेवाला of others by speaking out their secrets.
(ମରମକୋହୀ—ସ୍ତ୍ରୀ)

ମରମ ଘାତୀ—ଦେ. ବିଣ—(ସଂ. ମର୍ମଘାତୀ) ହୃଦୟରେ ବେଦନା
Marama ghati ଦେବା (ବ୍ୟକ୍ତି ବା ବିଷୟ)—Causing pain
मर्मघाती मरमघाती to the heart; heartrending.
(ମରମଘାତକା, ମରମ ଘାତକା—ଗ୍ରାମ୍ୟରୂପ) [ଉ—ଯେସନ୍ତୁ ମରମଘାତୀ କଥାକୁ କରଇ, ବୁଝିଲେଟି ପାପିଙ୍କ ଅଗ୍ରଣୀଟି ସେହି । କୃଷ୍ଣସିଂହ. ମହାଭାରତ ସଭା ।]

ମରମ ଛିଣ୍ଡା—ଦେ. ବିଣ—ମରମ ବାଧକା (ଦେଖ)
Marama chhinda Marama badhaka (See)

ମରମ ଜାଗା—ଦେ. ବି—(ସଂ. ମର୍ମ+ପା. ଜଗହ୍)—୧ । ଶରୀରର
Marama jaga ଜୀବସ୍ଥାନ—1. The vital or
মরম যায়গা मरम जगह sensitive part of the body.
ମରମ ଥାନ
ମରମ ଥଳ —ଅନ୍ୟରୂପ
ମରମ ଥଳ
୨ । ଅଣ୍ଡକୋଷ, ଲିଙ୍ଗ ଓ ଯୋନି ଆଦି ଗୁପ୍ତ ସ୍ଥାନ—2. The privities; the private parts of the body.

ମରମତ୍(ତି)—ଗ୍ରାମ୍ୟ. ବୈଦେ. ବି—ମରାମତ୍ (ଦେଖ)
Maramat(ti) Marāmat (See)

ମରମ ଟୁଟ୍(ଟା)—ଦେ ବିଣ ପୁଂ—(ସଂ. ମର୍ମ + ତ୍ରୁଟ ଧାତୁ) ମରମ ବାଧକା
Maramatut (ṭā) (ଦେଖ)—Marama bādhakā
मर्मघाती **मरम तोडनेवाला** [ମରମ ଟୁଟୀ(ଟୁଟେଇ)—ସ୍ତ୍ରୀ] (See)

ମରମ ପାଇବା—ଦେ. କ୍ରି—(ସଂ. ମର୍ମ + ପ୍ରାପ୍ ଧାତୁ)—୧ । କୌଣସି
Marama pāibā ବ୍ୟକ୍ତିର ଅନ୍ତରର ଇଚ୍ଛା ବା ମନକୁ ବୁଝିବାକୁ
मर्म पाओया ସମ ହେବା—1. To be able to fathom a
**मरम पाना** person's intention. ୨ । କୌଣସି ବିଷୟର ବା ସମସ୍ୟାର ରହସ୍ୟ ଭେଦ କରିବା—2. To know the key or secret of a matter.

ମରମ ବାଧ(ଧି)କା—ଦେ. ବିଣ. ପୁଂ—(ସଂ. ମର୍ମ ବାଧକ)—ମର୍ମଘାତୀ
Marama bādha(dhi)kā (ବାକ୍ୟ, ବ୍ୟକ୍ତି); ଅତି ମନୋକଷ୍ଟ ଦାୟକ—Wounding a person's sensibility;
[ମରମବାଧ(ଧି)କା—ସ୍ତ୍ରୀ] (ମରମଦହଣା—ଅନ୍ୟରୂପ) cutting to the quick.

ମରମ ବେଦନା—ଦେ ବି—(ସଂ. ମର୍ମ ବେଦନା)—ମର୍ମ ବେଦନା
Marama bedanā (ଦେଖ)—Marma bedanā (See)
मर्मवेदना **मरम वेदना** (ମରମ ବାଧା—ଅନ୍ୟରୂପ)

ମରମ ଭିତର—ଦେ. ବି—ହୃଦୟର ଭିତର; ଅନ୍ତରର ଭାବ—
Marama bhitara The inmost recesses of the
মরমের ভিতর heart; the quick; the heart; one's
**मरम भितर** most internal or mental sense.
[ଉ—କଥା କହୁଥାଏ ଷରମକୁ, ଗୃହ ଯାଉଥାଏ ଭରମକୁ, ମରମ ଭିତରେ ଯାହା ହେଉଥାଏ ସାକ୍ଷିଦେଉଥାଏ ଧରମକୁ । ଉଗ ।]

ମରମ ଭେଦ—ଦେ. ବି—(ସଂ. ମର୍ମଭେଦ)—୧ । ମର୍ମଭେଦ (ଦେଖ)
Marama bheda मर्मभेद 1. Marma bheda (See)
**मरमभेद** ୨ । ଗୁପ୍ତ ରହସ୍ୟ—2. Secret. ୩ । ଅନ୍ୟର ଗୁପ୍ତ ରହସ୍ୟ ଜାଣିବା—3. Prying into the secrets of another.

ମରମ ଭେଦୀ—ଦେ. ବିଣ—(ସଂ ମର୍ମଭେଦୀ)—ମର୍ମଭେଦୀ; ଯେଉଁ
Marama bhedī କଥା ବା ଯାହା ମର୍ମକୁ ବ୍ୟଥା ଦିଏ; ମର୍ମ-
মরম ভেদ ବେଦନାଉତ୍ପାଦକ—Producing acute mental
**मरमको दुखानेवाली** anguish; cutting to the quick; heart rending.

ମରମର—ବେଦେ. ବି—(ଲାଟିନ୍ ମର୍ମର୍; ଗ୍ରୀକ୍ ମର୍ମର୍ସ୍, ଫ୍ରେଞ୍ଚ୍,ମର୍ବ୍ରେ,
Maramara ଇଂ. ମାର୍ବ୍ଲ)—୧ । ମର୍ମର; ଶଙ୍ଖମଲ୍ମଲ ପଥର—
মরমর **मरमर** 1. Marble. ଦେ. ଅ—(ଧ୍ୱନ୍ୟନୁକରଣ) (ସଂ. ମର୍ମର; ତୁଳ, ଇଂ. ମର୍ମର୍)—୨ । ଧୀର ପବନ ଯୋଗୁଁ ଗଛ ପତ୍ର ଆଦିର ମର୍ମର ଧ୍ୱନି—2. The murmuring or rustling sound of leaves of trees wafted or shakn by breeze. [ଉ—ମରମର ପତ୍ର ପତ୍ର ତରୁ ପତ୍ରଗଣ ନନ୍ଦକଶୋର.ନର୍ତ୍ତକୀ ।], [ଦ୍ର-'ମଡ଼ ମଡ଼' ଅପେକ୍ଷା ଅନୁଚ୍ଚ ଧ୍ୱନିକୁ ମର ମର ବୋଲି ଯାଏ ।] ଦେ. ବିଣ—(ସଂ. ମର; ମୁମୂର୍ଷୁ)—୧ । ମୁମୂର୍ଷୁ; ମରଣୋନ୍ମୁଖ—
মরমর 1. Dying; about to die; on the verge of
**मरजीया(वा)** death. ୨ । ଅଧମରା—2. Half-dead;

ମରମରିବା—ଦେ. (ପଦ୍ୟ) କ୍ରି—ମର୍ମର ଧ୍ୱନି କରିବା—To produce
Mara maribā a murmuring or rustling sound.
মরমরা (ଉ—ତାଳ ବନେ ଯହିଁ ମରମରେ ସିକ୍ତ ବାୟୁ ପ୍ରଚଣ୍ଡ ।
**मरमराना** ରାଧାନାଥ. ଉଷା ।)

ମରମରେ ଚୋଟ ଦେବା—ଦେ. କ୍ରି—କୌଣସି ବ୍ୟକ୍ତିର ମର୍ମ ବେଦନା
Maramare choṭa debā ଜାତ କରାଇବା—To wound a person's feeling; to cut a person to the quick.
ମରମରେ ଚୋଟ ଲଗା(ଗେ)ଇବା
ମରମରେ ଚୋଟ ମାରିବା
ମରମରେ ଚୋଟ(ଟେ) ହାଣିବା
ମରମ ହାଣିବା
} ଅନ୍ୟରୂପ
মরমে চোট দেওয়া **मरममे चोट देना**

ମରମରେ ଚୋଟ ଲଗିବା—ଦେ. କ୍ରି—କୌଣସି ବ୍ୟକ୍ତିର ମର୍ମ ବେଦନା
Maramare choṭa lāgibā ଜାତ ହେବା; ହୃଦୟରେ ଆଘାତ
মরমে চোট লাগা ଲାଗିବା—The feeling of a person
**मरममे चोट लगना** being wounded; being cut to the quick.

ମରମ ସନ୍ଧି—ଦେ. ବି (ସଂ. ମର୍ମ ସନ୍ଧି)—୧ । ମର୍ମ ସନ୍ଧି; ଶରୀରର ଜୀବ-
Marama sandhi ସ୍ଥାନ—1. Most vital or sensi-
মর্ম সন্ধি tive organ or part of the body.
**मरम सन्धि** ୨ । କୌଣସି ବିଷୟର ଗୁପ୍ତ ରହସ୍ୟ—2. The secret of a matter. (ଉ—ମରମ ସନ୍ଧି, କୁଅ ଧାନ ଖାଏ ବୋହୂକୁ ବାନ୍ଧ—ଉଗ ।)

ମରମାନ୍ତ—ଦେ. ବିଣ (ସଂ. ମର୍ମାନ୍ତିକ)—ମର୍ମାନ୍ତିକ; ମର୍ମଭେଦୀ; ମର୍ମ
Maramānta ବ୍ୟଥା ଉତ୍ପାଦକ—Piercing one's heart.
মর্মান্তিক **मरमांत** (ମରମାନ୍ତକ—ଅନ୍ୟରୂପ) heart rending.

ମରମେ ମରମେ—ଦେ. କ୍ରି. ବିଣ—୧ । ଆପଣାର ହୃଦୟ ଭିତରେ;
Marame marame ହୃଦୟ ବା ମର୍ମ ସ୍ଥଳକୁ ଭେଦ କରିବା
মরমে মরমে ପ୍ରକାରେ—1. In a manner penetrating
**मरमे मरमे** the inmost recesses of one's heart.
୨ । ମନେ ମନେ; ଅତି ଗୁପ୍ତ ଭାବରେ—2. Very secretly; mysteriously. ୩ । ଶିରରେ ଶିରରେ; ଶିର ପ୍ରଶିରରେ; ଦେହର ସମସ୍ତ ଅଂଶରେ—3. Throughout the whole body or system.

ମରମେ ମରମେ ମରିବା—ଦେ. କ୍ରି—୧ । ମର୍ମାନ୍ତିକ ଦୁଃଖରେ ବା
Marame marame maribā ଲଜ୍ଜାରେ ମ୍ରିୟମାଣ ହେବା—1. To be overcome with shame or sorrow, which can not be expressed to a third person.
ମରମେ ମରମେ ଜଳିବା
ମରମେ ମରମେ ସଢ଼ିବା
ମରମେ ମରମେ ପୋଡ଼ି ହେବା
ମରମେ ମରିବା
} ଅନ୍ୟରୂପ
মরমে মরমে মরা
**मरमे मरमसे मरजाना** ୨ । ହୃଦୟର ବେଦନା ବାହାରେ ପ୍ରକାଶ କରିବାକୁ ଅସମର୍ଥ ହୋଇ ହୃଦୟରେ ଦୁଃସହ ଜ୍ୱାଳା ଅନୁଭବ କରିବା—2. To suffer great mental pain

on account of not being able to give out one's grief to others.

**ମରଯା(ଯେ)ଦା (ଇତ୍ୟାଦି)**—ଗ୍ରାମ୍ୟ ବି (ସ ମର୍ଯ୍ୟାଦା)—ମର୍ଯ୍ୟାଦା ଇତ୍ୟାଦି
Maraja(je)da (etc) (ଦେଖ) Marjyada etc (See)
मरयादा **मरजादा**

**ମରଷଣ**—ଗ୍ରା. (ପଦ୍ୟ) ବି—୧ । ମର୍ଷଣ (ଦେଖ)
Marashana मरषण 1. Marashana (See)
**मरषण** ୨ । ପୀଡ଼ନ—2. Oppression; paining.

**ମରସିଆ**—ବୈଦେ. ବି. (ଅ. ମରସିଆ)—କୌଣସି ମୃତ ବ୍ୟକ୍ତିର ଗୁଣ
Marasia ଓ କୀର୍ତ୍ତି ଗାନ ଉଦ୍ଦେଶ୍ୟରେ ରଚିତ ଶୋକ-
ଶୋକସଂଗୀତ **मरसिया** ସଙ୍ଗୀତ—Dirge; a funeral song
[ଦ୍ର—ଉର୍ଦ୍ଦୁ ଭାଷାରେ ଏହା ଅନେକ ସ୍ଥଳରେ ରଚିତ ହୁଏ; ଏହା ଶୁଣିବା ବ୍ୟକ୍ତିର ହୃଦୟରେ ଶୋକ ଉତ୍ପାଦନ କରେ । ମୁସଲମାନମାନଙ୍କର ମହରମ ସମୟରେ ଏ ଶ୍ରେଣୀର ସଙ୍ଗୀତମାନ ବହୁଶଃ ବୋଲାଯାଏ—ହି. ଶ]

**ମରସୁମ୍(ମୀ)**—ବୈଦେ. ବି (ଫା. ମୋସମ୍=ଋତୁ)—୧ । ମୌସୁମୀ;
Marasum(mi) ମର୍ସୁମ୍; ଋତୁ—1. Weather; season.
मस्त्रम ୨ । ସୁଯୋଗ—2. Suitable opportunity.
**मोसम** ବୈଦେ. ବିଣ—ଋତୁକାଳୀନ—Happening in a particular weather or season; seasonable; monsoonic. (ଯଥା—ମରସୁମୀ ବାୟୁ, ମରସୁମୀ ବୃଷ୍ଟି ।)

**ମରହଟ୍ଟା(ଟ୍ଟା)**—ଦେ. ବି (ସ. ମହାରାଷ୍ଟ୍ର)—୧ । ମହାରାଷ୍ଟ୍ର ଜାତି—
Marahata(tta) 1. The Marhatta race (an
मराठा, मरठा, मारहाट्टा Aryan tribe of India).
**मरहट्टा(टा, ठा)** [ଦ୍ର—ଏ ମହାରାଷ୍ଟ୍ର ଅଞ୍ଚଳବାସୀ ଜାତି । ଶିବାଜି
(ମରଠା—ଅନ୍ୟରୂପ) ଏମାନଙ୍କର ପ୍ରଧାନ ନେତା ଥିଲେ । ମୋଗଲ-ମାନଙ୍କ ସମୟରେ ଏମାନେ ଓଡ଼ିଶାରେ ରାଜ୍ୟ ବିସ୍ତାର କରିଥିଲେ ଓ ୧୮୦୩ ପୂର୍ବରୁ ଅର୍ଥାତ୍ ଇଂରାଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ଓଡ଼ିଶା ଏମାନଙ୍କ ଅଧିକାରରେ
(ମରହଟ୍ଟଆଣୀ—ସ୍ତ୍ରୀ) ଥିଲା ।] ୨ । (ପୁଂ) ମହାରାଷ୍ଟ୍ର ଜାତୀୟ ପୁରୁଷ-
2. A male belonging to the Marhatta nation.
ଦେ. ବିଣ—୧ । ମହାରାଷ୍ଟ୍ର ଜାତୀୟ—1. Belonging to the Marhatta nation. ୨ । ମହାରାଷ୍ଟ୍ର ଦେଶୀୟ. 2. Belonging to the Marhatta country.

**ମରହଟ୍ଟା ଅମଲ**—ଦେ ବି (ସ. ମହାରାଷ୍ଟ୍ର+ଫା. ଅମଲ୍)—
Marahata amala ୧ । ଉତ୍କଳରେ ଇଂରେଜ ରାଜାଙ୍କ
मारांठा आमल ଅଧିକାର (୧୮୦୩ ସାଲ) ର ପୂର୍ବ ସମୟ (ଯେଉଁ
**मरहट्टा अमल** ସମୟରେ ମରହଟ୍ଟାମାନେ ଉତ୍କଳରେ ଅଧିପତି ଥିଲେ)—1. The period of the rule of the Marhattas in Orissa. [ଦ୍ର—ଖ୍ରୀ ୧୭୫୧ ରେ ରଘୁଜୀ ଭୋଁସଲ୍ଲ ଅଲିବର୍ଦ୍ଦିଖାଁଙ୍କଠାରୁ ଓଡ଼ିଶା ଜୟ କଲେ ଓ ୧୮୦୩ରେ ଦେଓଗାଁ ସନ୍ଧି ଦ୍ୱାରା ଭୋଁସଲ୍ଲ ରାଜା ଓଡ଼ିଶାକୁ ଇଂରାଜଙ୍କ ହସ୍ତରେ ଅର୍ପଣ କଲେ ।] ୨ । ପୂର୍ବକାଳ—2. Ancient times.

**ମରହଟ୍ଟା(ଟ୍ଟା) ଯୁଦ୍ଧ**—ଦେ. ବି—ଇଂରାଜମାନଙ୍କ ସଙ୍ଗେ ଶିବାଜିଙ୍କ ପରବର୍ତ୍ତୀ
Marahatta(tta) juddha ମହାରାଷ୍ଟ୍ରୀୟ ରାଜାମାନଙ୍କ ଯୁଦ୍ଧ—
मारांठा युद्ध, मारहटा युद्ध The Marhatta Wars; wars
**मरहट्टा लड़ाइ** between the English and the
(ମରହଟ୍ଟା ସମର—ଅନ୍ୟରୂପ) Marhattas in India.
[ଦ୍ର—ଇଂରାଜଙ୍କ ସଙ୍ଗେ ମରହଟ୍ଟାମାନଙ୍କର ତିନି ଥର ଯୁଦ୍ଧ ହୋଇଥିଲା । ପ୍ରଥମ ଥର ମରହଟ୍ଟାମାନେ ପରାସ୍ତ ହୋଇ ଇଂରାଜଙ୍କ ସଙ୍ଗେ ସନ୍ଧି ସ୍ଥାପନ କରିଥିଲେ । ପ୍ରଥମବାର ମରହଟ୍ଟା ଯୁଦ୍ଧ ୱାରେନ୍‌ହେଷ୍ଟିଙ୍ଗସ୍‌ଙ୍କ ସମୟରେ ଖ୍ରୀ ୧୭୭୫ ଠାରୁ ୧୭୮୧ ମଧ୍ୟରେ ହୋଇଥିଲା; ପ୍ରଥମେ ଇଂରାଜ ସେନା ପରାସ୍ତ ହୋଇଥିଲେ, କିନ୍ତୁ ଶେଷରେ ଇଂରାଜମାନେ ଜୟୀ ହେଲେ ଓ ସାଲବାଇ ଠାରେ ମରହଟ୍ଟା ଓ ଇଂରାଜଙ୍କ ମଧ୍ୟରେ ସନ୍ଧି ହେଲା । ୨ୟ ମରହଟ୍ଟା ଯୁଦ୍ଧ ଖ୍ରୀ. ୧୮୦୩ରେ ହୋଇଥିଲା; ଏଥିରେ ଇଂରାଜମାନେ ଜୟୀ ହେଲେ ଓ ମରହଟ୍ଟାମାନେ ଇଂରାଜମାନଙ୍କ ସଙ୍ଗେ ଦେଓଗାଁ ଠାରେ ସନ୍ଧି କଲେ । ଖ୍ରୀ୧୮୧୭ରେ ୩ୟ ମରହଟ୍ଟା ଯୁଦ୍ଧ ହୋଇଥିଲା ଏଥିରେ ମରହଟ୍ଟାମାନେ ପରାସ୍ତ ହେଲେ ଓ ପୁନାରେ ସ୍ୱାକ୍ଷରିତ ସନ୍ଧି ଫଳରେ ପେଶବାଙ୍କ ରାଜ୍ୟ ଇଂରାଜଙ୍କ ଶାସନାଧୀନ ହେଲା । ଏ ୩ୟ ମରହଟ୍ଟା ଯୁଦ୍ଧର ଫଳରେ ଶିବାଜୀଙ୍କ ପରେ ପ୍ରତିଷ୍ଠିତ ପୁନାର ପେଶବା, ଗୋଆଲିଅରର ସିନ୍ଧିଆ, ଇନ୍ଦୋରର ହୋଲକାର, ନାଗପୁରର ଭୋଁସ୍ଲା ରାଜାମାନେ ଇଂରାଜ ସରକାରଙ୍କ ଅଧୀନତା ସ୍ୱୀକାର କଲେ ଓ ଅନେକଗୁଡ଼ିଏ ମରହଟ୍ଟା ରାଜ୍ୟ ଇଂରାଜଙ୍କ ଖାସ୍ ହସ୍ତଗତ ହେଲା ।]

**ମରହଟ୍ଟୀ(ଟ୍ଟୀ)**—ଦେ. ବିଣ (ସ.ମହାରାଷ୍ଟ୍ରୀ, ପ୍ରା. ମରଠୀ)—୧ । ମହାରାଷ୍ଟ୍ର
Marahati(tti) ସମ୍ବନ୍ଧୀୟ—1. Relating to the
मारांठि, मारांठे, सेकेलव Marhatta race or
**मरहट्टी; मरहट्टीया, मरहठी** country ୨ । ମରହଟ୍ଟା
(ମରହଟ୍ଟଥ—ଅନ୍ୟରୂପ) ଅମଳର—2. Pertaining to the period of the Marhatta rule in India.
୩ । ପୁରୁଣାକାଳର (ଲୋକ ଓ ଦ୍ରବ୍ୟ)—3. Of ancient times. ୪ । ରକ୍ଷଣଶୀଳ (ବ୍ୟକ୍ତି)—
4. Conservative (person). (ଯଥା—ମରହଟ୍ଟୀ ବୁଢ଼ା ।) ୫ । ଯେଉଁ କଥା ବର୍ତ୍ତମାନ ଚଳୁ ନାହିଁ—
5. Exploded; obsolete; archaic. (ଉ—ମାତ୍ର ଆଜକାଲି ସେପରି ମରହଟ୍ଟୀ ବର୍ଣ୍ଣନା ଚଳବ ନାହିଁ । ଫକୀର ମୋହନ. ଛଅମାଣ ଅଠଗୁଣ୍ଠ ।) ୬ । ପୁରାତନ କାରିଗରଙ୍କ ଦ୍ୱାରା କରାଯାଇଥିବା (କୋଠା ଆଦି କାମ)—6. (Structures) Made by ancient architects.
[ଦ୍ର—ପୂର୍ବକାଳରେ ଯେଉଁ କୋଠା, ପଥର କାମ ଓ ଇଟା କାମମାନ କରା ଯାଇଥିଲା (ଯଥା—କଟକରେ ମହାନଦୀ ଓ କାଠଯୋଡ଼ିର ପଥରବନ୍ଧ, କଟକ ଷ୍ଟେସନର ପୂର୍ବରେ ଥିବା ମରହଟ୍ଟା ସୈନ୍ୟମାନଙ୍କର ଅସ୍ତାବଲ୍, କଟକ ସଡ଼କରେ ଥିବା ପୁରୁଣା ପଥର କୋଠାମାନ ଓ ଭୁବନେଶ୍ୱର

ଅଦ୍ଧର ଦେଉଳମାନ ) ସେମାନ. ଅନେକ ସ୍ଥଳରେ ଆଜ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଅଛି; କିନ୍ତୁ ଆଧୁନିକ ବା ଇଂରେଜ ଅମଳର ବଡ଼ ବଡ଼ କୋଠାମାନ (ଯଥା—କଟକର କମିଶନରଙ୍କ କଚେରି ଓ ନୂଆ ଅଦାଲତ କଚେରି ଆଦି)ଛଅରୁ ହେବାର ୬ । ୪ ବର୍ଷ ମଧ୍ୟରେ ଫାଟିବା ବା ଦରଜଗମ ହେବା ଦେଖା ଯାଉଅଛି । ଏଥିପାଇଁ ଲୋକଙ୍କର ବିଶ୍ୱାସ ଯେ ପୂର୍ବକାଳର କାରିଗରମାନଙ୍କ ହାତର କାମମାନ ଆଧୁନିକ କାରିଗରଙ୍କ କାମ ଅପେକ୍ଷା ବେଶୀ ଦୃଢ଼ ଓ ସ୍ଥାୟୀ । ]

**ମରହଟ୍ଟୀ ଜୋତା**—ଦେ. ବି—ଏକପ୍ରକାର ଚଟି ଯୋତା—A kind of slippers with a slender tongue at the toe. [ଦ୍ର—ଏଥିର ଅଗରେ ଗୋଟିଏ ଚୁଟି ବା ଚୂଲି ଲମ୍ବ ହୋଇ ବାହାରିଥାଏ । ଏ ପ୍ରକାର ଯୋତା ଅମ ଦେଶରେ ମରହଟ୍ଟା ଅମଳରେ ଚଳୁଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ମଫସଲରେ ପୁରୁଣା- କାଳିଆ ଲୋକେ ଏ ଜୋତା ବ୍ୟବହାର କରନ୍ତି ।
Marahaṭī jotā
মারাঠীচটি, নাগরাজুতা
काबुली जुता

**ମହରଟ୍ଟୀ ପାଲ(ଲ)କି(ଙ୍କି)**—ଦେ. ବି—ପୁରୁଣାକାଳିଆ ହସ୍ତିମୁଖ ଓ ଗ୍ରୀବାକାର ଦଣ୍ଡଯୁକ୍ତ ପାଲିକି ବା ଦୋଳା—Palanquins used in old times. [ ଦ୍ର—ଏ ପାଲିକିମାନଙ୍କ ଉପରେ ଓଟର ମୁହଁ ଓ ବେକ ଆକାରର ବକୁରଟିକୁର ଲମ୍ବା ବାଉଁଶ ବା ବଉଁହଲକୁ ବଙ୍କା ହୋଇ ଭିଡ଼ା ଯାଇଥାଏ । ବର୍ତ୍ତମାନ ପର୍ଯ୍ୟନ୍ତ ବରକନ୍ୟାଙ୍କ ବିବାହଯାତ୍ରାରେ ସେହି ପାଲିକି ବ୍ୟବହୃତ ହେଉଅଛି ଓ କେତେକ ସ୍ଥଳରେ ଦେବପ୍ରତିମାମାନ ସେହି ପାଲିକିରେ ଶୋଭାଯାତ୍ରା କରି ଯାଆନ୍ତି । ଅନ୍ୟତ୍ର ସେପରି ପାଲିକିର ବ୍ୟବହାର ହେଉ ନାହିଁ । ]
Marahaṭī pāli[ni]ki[ṅki]
নালকী, দোলা, ডুলী
नालकी

**ମରହଟ୍ଟୀ ବୁଢ଼ା**—ଦେ. ବି—ରକ୍ଷଣଶୀଳ ବୃଦ୍ଧ ବ୍ୟକ୍ତି—A conservative oldman; a votary of old and archaic customs
Marahaṭī buṛhā
সেকেলে বুড়ো
मरहटीया बूढ़ा (ମରହଟିଆ ବୁଢ଼ା—ଅନ୍ୟରୂପ)

**ମରହଟ୍ଟୀ ଭାଷା**—ଦେ. ବି— ବୋମ୍ବାଇ, ବେରାର ଓ ମଧ୍ୟ-ଭାରତରେ କଥିତ ଆର୍ଯ୍ୟ ଭାଷାବିଶେଷ—An Indo Aryan language spoken in Bombay, Berar and Central India. [ଦ୍ର—ଓଡ଼ିଆ, ବଙ୍ଗଳା, ହିନ୍ଦି ଆଦି ପରି ଏହା ସଂସ୍କୃତ ଭାଷାସମ୍ଭୂତ ପ୍ରାକୃତ ଅଟେ; ଏହା ଦେବନାଗରୀ ଅକ୍ଷରରେ ଲେଖାଯାଏ । ]
Marahaṭī bhāshā
মারাঠী ভাষা
मरहटी भाषा

**ମରହୁମ୍**—ବୈଦେ. ବିଣ (କଚେରିଆ) ( ଫା )—ସ୍ୱର୍ଗୀୟ; ମୃତ—Late; deceased.
Marahum মরহুম मरहुम

**ମରା**—ଦେ. ବି (ସଂ ମୃ. ଧାତୁରୁ ମରଣ)—୧ । ମରିବା; ମୃତ୍ୟୁ; ମରଣ—1. Dying; death. ୨ । ମଡ଼ା; ଶବ—2. Corpse ୩ । (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହେଲେ ଯଥା—ବାଣମରା; ଚଢ଼େଇମରା; ବନ୍ଧୁକମରା; ଉକୁଣୀମରା )—ମାରିବା—3. Killing; discharging. [ଦ୍ର—ମାରିବାର ଭିନ୍ନ ଭିନ୍ନ ଅର୍ଥ ଦେଖ । ] ଦେ. ବିଣ—୧ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଯଥା—ଚଢ଼େଇମରା ଲୋକ ) ଯେ ମାରେ—1. Killing; destroying. ୨ । ମୃତ; (ମରେଇ—ସ୍ତ୍ରୀ) ମରିଥିବା; ମଲା—2. Dead. ୩ । ଯେ ମରାଏ; ଯେ ଅନ୍ୟଦ୍ୱାରା ହତ୍ୟା କରାଏ—3. Causing the death of others. ( ଯଥା—ବାଉଁଶମରା ଭାତୁକ ।) [ଦ୍ର—ମରା ଶବ୍ଦ ନାନା ଅର୍ଥରେ ନାନା ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ ଯଥା—ହରମରା, ଖରମରା, ଉକୁଣି ମରା, ଜୀବନମରା, ବାଉଁଶମରା, ଘିଅମରା, ଧୂଳିମରା, ବନ୍ଧୁକ ମରା, ବାଣମରା । ]
Marā
মরা
मरना
মড়া
मडा
মারা
मारा
মারা
मारनेवाला; मारा

**ମରା(ରେ)ଇ**—ଦେ. ବି. ( ସଂ. ମରାର=ଖଳା )—ପାଳର ମୋଡ଼ା ବା ବଳିତ କୁଣ୍ଡଳାକାର ହୋଇ ଗୁଡ଼ିଆ ହୋଇ ଥିବା ଓ ଭିତରେ ଅବୃତ ସ୍ତୁପ,ଯହିଁ ଭିତରେ ବହୁ ପରିମିତ ଧାନ ବହୁକାଳ ସଞ୍ଚିତ ହୋଇ ରହେ—A hollow stack made of and covered with crushed straw in which a large quantity of paddy is stored for a long time. ଦେ. ବିଣ. ସ୍ତ୍ରୀ—(ଅଶ୍ଳୀଳ; ଗାଳିରେ ବ୍ୟବହୃତ)—ଅସଚ୍ଚରିତ୍ରା (ସ୍ତ୍ରୀ)—Depraved (woman).
Marā(re)i
মরাই
बखारी

**ମରା(ରେ)ଇବା**—ଦେ. କ୍ରି—(ସଂ. ମୃ ଧାତୁ ଣିଜନ୍ତ ମାର ଧାତୁ)—୧ । ମାରିବା କ୍ରିୟାର ଣିଜନ୍ତ ରୂପ—(ମାରିବା କ୍ରିୟାର ଭିନ୍ନ ଭିନ୍ନ ଅର୍ଥ ଦେଖ)—1. Causative of Māribā ( See ). [ ଉ—ଶ୍ରୀକୃଷ୍ଣଙ୍କ ନାତି ଭୀମାର୍ଜୁନ ବଳ, ସକାଶୁଁ ମରାଇଲେ ମଗଧ ଶିଶୁପାଳ । କୃଷ୍ଣସିଂହ. ମହାଭାରତ. ଆଦି ।] ୨ । ମରିବା କ୍ରିୟାର ଣିଜନ୍ତରୂପ—2. Causative of the verb Maribā (See). ୩ । (ଗ୍ରାମ୍ୟ ଅଶ୍ଳୀଳ; ଗାଳିରେ ବ୍ୟବହୃତ) (ସ୍ତ୍ରୀ ପକ୍ଷରେ) ପୁରୁଷର କାମବୃତ୍ତି ଚରିତାର୍ଥ କରାଇବା—3. To let oneself be cohabited by another (said of a female). ୪ । (ଗ୍ରାମ୍ୟ, ଅଶ୍ଳୀଳ; ଗାଳିରେ ବ୍ୟବହୃତ) (ପୁରୁଷ ପକ୍ଷରେ) ଗୁହ୍ୟଦେଶଥିବା ଦ୍ୱାରା ଅନ୍ୟ ପୁରୁଷର କାମବୃତ୍ତି ଚରିତାର୍ଥ କରାଇବା—3. To let another commit unnatural sexuality on oneself (said of a male).
Marā(re)ibā
মারান
मरोना, मरवाना

**ମରାଖାଇ**—ଦେ. ବି—୧ । ମଡ଼ାଖାଇ; ଶ୍ମଶାନ—1. Cremation ground. ୨ । ମୁର୍ଦ୍ଦାରଖାନା—2. Morgue.
Marākhāi
মশান मरघट (ମରାମଶାଣି—ଅନ୍ୟରୂପ)

**ମରାଚଣ୍ଡିଆ**—ଦେ. ବି—ମଡ଼ାଚଣ୍ଡିଆ (ଦେଖ)
Marāchaṇḍiā Maṛā chaṇḍiā (See).

**ମରାଜ**—ଦେ. ବି—ଲୁଗା ଆଦିର ଅଗରେ ବା ମୁହଣ୍ଡରେ ଲଗାଯିବା ଝୁମ୍ପା; ଝାଲର—Tassels attached to the end of cloths.
Marāji
ঝালর झब्बा;झालर

ମରାଟ - ଦେ.(ପ୍ରାଚୀନ) ବି—୧ । ମୁରାଟ (ଦେଖ)—1. Murāta
Marāṭa (See). ୨ । (ପ୍ରା. ମରଟ୍ଟ) ରାଜୋପକରଣ ବିଶେଷ—
2. One of the paraphernalia of royalty.

ମରାଟ କାଢ଼ିବା—ଦେ. ବି—ମୁରାଟ କାଢ଼ିବା (ଦେଖ)
Marāṭa kārdhibā Murāṭa kārdhibā (See).
[ମରାଟ୍ଟବା, ମରାଟ ଦେଖା(ଖେ)ଇବା—ଅନ୍ୟରୂପ]

ମରାଟି(ଠି)—ଗ୍ରା; ବିଣ—ମରହଟୀ (ଦେଖ)
Marāti(ṭhi) Marahaṭī (See).

ମରାତ(ତି)ବ୍—ବୈଦେ. ବି (ଆ· ମରାତବ୍) (କଚିତଥ) —୧ । ପଦବୀ;
Marāta(ti)b ପଦ—1. Position. ୨ । ଉତ୍ତରୋତ୍ତର
मरात(ति)ब ଘଟିବା ଅବସ୍ଥା—2. Successive condition or
मरातिब stage. ୩ । ଧ୍ୱଜା; ପତାକା—3. Flag.

ମରା(ଡ଼ା) ଦେଉଳ—ଦେ. ବି—ସମାଧି—Tomb.
Marā(rdā) deula (ଉ—ମରା ଦେଉଳ ଉପରେ ଚଢ଼ାଉ,
समाधि समाधि ବାଳେ ନାଗରୀ ଯି ଯି ଧାଉ ଧାଉ । ବ୍ରଜନାଥ.
ସମରତରଙ୍ଗ ।)

ମରା ପିଲା—ଦେ. ବି—ମଲା ପିଲା; ଗର୍ଭରୁ ମୃତ ହୋଇଥିବା ସନ୍ତାନ—
Marā pilā A still-born child.
মরা ছেলে मराहुआ बच्चा

ମରାମତ(ତି)—ବୈଦେ. ବି ( ଆ. ମରମ୍ମତ୍ )—
Marāmat(ti) ଜୀର୍ଣ୍ଣ ସଂସ୍କାର—Repairs. ଦେ. ବିଣ—
মেরামত मरम्मत ଯାହାର ଜୀର୍ଣ୍ଣସଂସ୍କାର କରା ଯାଇଅଛି—
[ମେରାମତ(ତି)—ଅପଭ୍ରଂଶ] Repaired.

ମରାମତ କରିବା—ଦେ. କ୍ରି (ଆ ମରମ୍ମତ) –ଜୀର୍ଣ୍ଣସଂସ୍କାର କରିବା—
Marāmat karibā To repair something; to
মেরামত করা मरम्मत करना mend.

ମରାମର—ସଂ. ବି ( ମର+ଅମର; ଦ୍ୱନ୍ଦ୍ୱ )—ମନୁଷ୍ୟ ଓ ଦେବତା—
Marāmara Man and God; the mortals and
the immortals. ସଂ. ବିଣ—ମରଣଶୀଳ ଓ ଅମର—
Mortal and immortal.

ମରାମରା—ଦେ. ବିଣ—ଅର୍ଦ୍ଧମୃତ—Half killed.
Marāmarā (ଉ—ଜଟାୟୁ ମରାମରା ହୋଇ ପଡ଼ି ରହିଲେ ।
আধ মরা अध मरा, मरजिया ନୀଳକଣ୍ଠ ଦାସ. ପିଲାଙ୍କ ରାମାୟଣ)

ମରାମରି—ଦେ. ବି (ସଂ. ମୃଡ ଧାତୁ ଣିଚ ମାର ଧାତୁ)—୧ । ଅନ୍ୟୋନ୍ୟ
Marāmari ମାଡ଼ ଦିଅ ଦେଇ; ପରସ୍ପରକୁ ପ୍ରହାର—1. Mutual
মারামারি beating or striking; affray; brawl.
मारामारि (ଉ—ପରସ୍ପର ମରାମରିଟ ସେ ହୋଇଲେ । କୃଷ୍ଣସିଂହ.
ମହାଭାରତ ଅଦି ।) ୨ । ମାରପିଟ; ବିଶେଷ ପ୍ରହାର—
2. Copious beating. ୩ । ଫିଙ୍ଗାଫିଙ୍ଗି; ଫୋପଡ଼ା-
ଫୋପଡ଼ି; ଅନ୍ୟୋନ୍ୟ ଫୋପାଡ଼ିବା କର୍ମ—3. The act
of throwing things at each other or one
another. (ଉ—ପରସ୍ପରେ କାଠ ପିଟିବା କରେ ଧରି,
ହୋଇଲେ ସେ ତନନ କାର ମରାମରି । କୃଷ୍ଣସିଂହ.
ମହାଭାରତ ଅଦି ।) ଦେ. ବିଣ—ଅନ୍ୟୋନ୍ୟ ମାରପିଟ
କରୁଥିବା—Beating each other.

ମରା ମଶାଣି—ଦେ. ବି (ସଂ. ମୃତ + ଶ୍ମଶାନ)—ଶ୍ମଶାନ—
Marā masāṇi Cremation ground.
মশান मरघट, मसान

ମରା ଯି(ହେ)ବା—ଦେ· କ୍ରି—[ମାରିବା କ୍ରିୟାର କର୍ମବାଚ୍ୟରେ ରୂପ—
Marā ji(he)bā Passive voice of the verb
মারা যাওয়া Maribā (see)]— ମାରିତ ବା ହତ ହେବା—
मारा जाना To be killed or beaten.
[ଦ୍ର—ମାରିବାର ଭିନ୍ନ ଭିନ୍ନ ଅର୍ଥ ଦେଖ ।]

ମରାର—ସଂ. ବି—ଖଳା (ହି. ଶ)—Threshing floor;
Marāra garnering yard.

ମରାଳ—ସଂ. ବି. ପୁଂ (ମୃ ଧାତୁ=ମରିବା + କର୍ତ୍ତୃ. ଆଲ)—୧ । ରାଜ-
Marāḷa ହଂସ; ଅରକ୍ତ ଚଞ୍ଚୁ ଓ ଚରଣ ବିଶିଷ୍ଟ ରାଜ ହଂସ—
(ମରାଳୀ—ସ୍ତ୍ରୀ) 1. Swan; gander. ୨ । ପାତିହଂସ—
ଭୁଜ ହଂସ; କାରଣ୍ଡବ—2. Drake (duck). ୩ । ଅଶ୍ୱ-
3. Horse. ୪ । ମେଘ—4. Cloud. ୫ । କଜ୍ଜଳ—
5. Collyrium. ୬ । ଡାଳିମ୍ବ ଗଛମାନଙ୍କ ପୁଞ୍ଜ—
6. A grove of pomegranate trees. ୭ । ଠକ-
7. A rogue; a cheat (Apte). ୮ । ହାତୀ (ହି.ଶ)
—8. Elephant. ସଂ. ବିଣ—୧ । ମସୃଣ; ଚିକ୍କଣ—
1. Smooth. ୨ । କୋମଳ—2. Soft; tender
(Apte). ୩ । ତେଲିଆ; ଚିକଣା—3. Oily;
greasy (Apte).

ମରାଳ ଗତି—ସଂ. ବି (୬ଷ୍ଠୀ ତତ୍)—ମରାଳର ଗତି ପରି ଗତି; ହଂସ ପରି
Marāḷa gati ଧୀର ଗତି—Slow steps like that of
a swan. ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି)—ମରାଳ ଗମନା
( ଦେଖ )—Marāḷa gamana ( See )

ମରାଳ ଗମନା—ସଂ. ବି. ସ୍ତ୍ରୀ (ବହୁବ୍ରୀହି) —ରାଜହଂସ ପରି ଧୀର ମନୋହର
Marāḷa gamanā ଗତିବିଶିଷ୍ଟା (ନାରୀ)—( a woman )
(ମରାଳ ଗାମିନୀ—ସ୍ତ୍ରୀ) Walking with measured and
slow steps like the swan.
[ ଦ୍ର—ଧୀରଗତିବିଶିଷ୍ଟ ପୁରୁଷମାନଙ୍କର ଗତିକୁ ମରାଳର
ଗତି ସଙ୍ଗେ କବିମାନେ ତୁଳନା କରିବାର ଦେଖା ଶୁଣା
ନାହିଁ ବୋଲି ଏହି ଶବ୍ଦର ପୁଂଲିଙ୍ଗ ଆକାର ଏଠାରେ ଦିଆ
ଗଲା ନାହିଁ ।]

ମରାଳ ଗମନୀ—ଦେ. (ପଦ୍ୟ) ବିଣ. ସ୍ତ୍ରୀ (ସଂ. ମରାଳ ଗମନା)—
Marāḷa gamanī ମରାଳ ଗମନା ( ଦେଖ )—Marāḷa
মরাল গমনী मराल गति gamanā ( See )

ମରାଳ ନିନ୍ଦିତ—ସଂ. ବିଣ (ମରାଳ ନିନ୍ଦିତ ହୁଏ ଯାହା ଦ୍ୱାରା)—ମରାଳ-
Marāḷa nindita ଠାରୁ ସୁନ୍ଦର ବା ମନୋହର—More
(ମରାଳ ଲଞ୍ଛିତ—ଅନ୍ୟରୂପ) lovely than the swan.
( ଯଥା—ସୁନ୍ଦରୀ ମରାଳନିନ୍ଦିତ ଗତିରେ ଅଗ୍ରସର ହେଲା ।)

**ମରାଳ ପନ୍ତି** - ଦେ. ବି (ସଂ. ମରାଳ ପଂକ୍ତି)—ହଂସମାନଙ୍କର ଧାଡ଼ି—Marāla panti A row of swans (walking or swimming together). ମরাল পংক্তি **मरालकी पाँती**

**ମରା ହଣା(କଟା)**—ଦେ. ବି—୧ । ଲୋକଙ୍କୁ ମାରିବା ଓ ହାଣିବା କ୍ରିୟା; Marā hanā(katā) মার হাণ; হাণ কাট—1. Killing and cutting of men. ମারা কাটা **मार काट** ୨ । ଘୋର ଯୁଦ୍ଧ—2. Fierce battle. ୩ । ଜମିକୁ କୋଡ଼ି ଓ କାଙ୍କ ଦ୍ୱାରା ଖୋଳା ଖୋଳ କରି ସମଭୂମ କରିବା; ଜମିରେ କୋଡ଼ି ମାରିବା ଓ କାଙ୍କରେ ହାଣିବା—3. Act of levelling the ground by means of spade and pickaxe etc.

**ମରି**—ଦେ. ଅ· ( ବଙ୍ଗଳାରୁ ଅନୁକୃତ )—୧ । ମୋ ଜୀବନ ସାର୍ଥକ ହେଲା !; ଅହା ! କେଡ଼େ ସୁନ୍ଦର !—1. (interjection) Mari (ମରିମରି, ମରିଟି—ଅନ୍ୟରୂପ) Aha ! How grand ! মরি মরি **अहहा, अहा, हम मरजायँ** [ଦ୍ର—ଏହାର ଅର୍ଥ ଏହିକି, ଏ ଦୃଶ୍ୟ ଦେଖି ବା ଏ କଥା ଶୁଣି ମୁଁ ଏତେ ଦୂର ଆନନ୍ଦିତ ହୋଇ ଯାଉଛି ଯେ ମୁଁ ଇଚ୍ଛା କରୁଛି ଏହାହିଁ ଦେଖି ଦେଖି ଆନନ୍ଦରେ ବୁଡ଼ିଥିବା ଅବସ୍ଥାରେ ମୁଁ ସୁଖରେ ମରି ଯାଆନ୍ତି] ୨ । ଅହା !; ହାୟ !—2 (interjection) Alas !; What a pity !

**ମରିଆ**—ଦେ. ବି—ବସ୍ତର ଗଡ଼ଜାତ ଅଧିବାସୀ କନ୍ଧମାନଙ୍କର ଭାଷା—Mariā The language spoken by the Kandhas in the Bastar state. ପ୍ରାଦେ· (ଗଡ଼ଜାତ) ବି—ଏକ ପ୍ରକାର ନିକୃଷ୍ଟ ଖାଦ୍ୟ—A sort of inferior food.

**ମରିଆ(ୟ)ମ୍**—ଦେ. ବି (ବାଇବ୍‌ଲ)—ଯୀଶୁଖ୍ରୀଷ୍ଟଙ୍କ ମାତା; କୁମାରୀ ମେରୀ—Mariā(ya)m মেরী **मरीयम** Virgin Mary.

**ମରି(ରୀ)ଚ**—ସଂ. ବି [ ମୃ. ଧାତୁ+ଅଣାଦୀ. ଇ(ଈ)ଚ ]—ଗୋଲ ମରିଚ—Black pepper (berry);Piper Mari(ri)cha Nigrum (creeper). ସଂ. ଧର୍ମପତ୍ତନ, ବୃତ୍ତଫଳ, ବଲ୍ଲୀଜ, କୋଲକ, କୃଷ୍ଣ, ଉଷଣ— মরিচ; কালমরিচ, গোলমরিচ **कालीमिरचा, मिर्चा, गोलमरिच कालामरिच, कालीमिरची** ଫା. ପିଲ୍‌ପିଲ୍ ସାହା, ପିଲ୍‌ପିଲ୍ ଗର୍ଦ୍ଦା, ପିଲ୍‌ପିଲେ ଅସୁଦ୍, ଫଲ୍‌ଫୀଲେ ଗୀର୍ଦ୍ । ଆ. ଫେଲ୍‌ଫିଲ୍ ଅସ୍ୱଦ୍, ଫିଲ୍‌ଫିଲେ ଅସ୍‌ୱଦ୍ । ମ. ମିରି, ମରେଚ ଗୁ. ମରୀ, ଖଣା । ତେ. ମରିଯାଲୁ, ମିରିଯା, ମରିଯନ ତା. ମିଲଗୁ, ମିଲଗୋ [ଦ୍ର—ଏହା ତାମ୍ବୁଲାଦି ବର୍ଗର ଲତା ବିଶେଷ । ଏହାର ଫଳ ଛୋଟ ଛୋଟ ଓ ଗୋଲ । ଫଳ ଶୁଖିଗଲେ କଳା କଳା ଓ କୁଞ୍ଚିଆ ଦେଖାଯାଏ । ଏହା ଗୁଣରେ କଟୁ ବା ତୀକ୍ଷ୍ଣ । ତରକାରିରେ ଓ ଔଷଧରେ ଏହା ବ୍ୟବହୃତ ହୁଏ । ଏ ଲତା ଦକ୍ଷିଣ ଭାରତରେ (ଯଥା—ତ୍ରିବାଙ୍କୁଡ଼, ମାଲାବାର ଉପକୂଳରେ) ବିନା କୃଷିରେ ଜନ୍ମେ । ଅନ୍ୟାନ୍ୟ ଅଞ୍ଚଳରେ କୃଷି ଦ୍ୱାରା ଏହା ଉତ୍ପାଦିତ କରାଯାଏ । ଅଣ୍ଡିରା ଓ ମାଈଗଛ ପୃଥକ୍ । ଏହି ମରିଚକୁ ଲଙ୍କାମରିଚ ଠାରୁ ପୃଥକ୍ ଚିହ୍ନାଇବାପାଇଁ ଏହାକୁ ଗୋଲମରିଚ ବୋଲାଯାଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା କଟୁ, ତୀକ୍ଷ୍ଣ, ଅଗ୍ନିଦୀପକ; କଫ ଓ ବାୟୁ ନାଶକ, ଉଷ୍ଣ, ପିତ୍ତକର ଓ ରୁକ୍ଷ । ଏହା ଶ୍ୱାସ, ଶୂଳ ଓ କୃମି ବିନାଶକ ଓ ଶ୍ଳେଷ୍ମ ନିଃସାରକ ।]

**ମରିଚ ଗୁଣ୍ଡ(ଣ୍ଡା)**—ଦେ. ବି (ସଂ. ମରିଚ+ଗୁଣ୍ଡକ)—ଚୂର୍ଣ୍ଣ ଯାଇଥିବା ମରିଚ—Powdered black-pepper. Maricha gunda(ndā) মরিচেরগুঁড়ো **मिरचीकाचूरन**

**ମରିଚ(ଚି) ପାଣି**—ଦେ. ବି—୧ । ମରିଚବଟା ମିଶ୍ରିତ ଜଳ, କମ୍ବା ମରିଚ ସିଝ ହୋଇଥିବା ଜଳ—1. Water mixed with powdered black-pepper or boiled with pepper. Maricha(chi) pāni গোলমরিচের ঝোল **गोलमिर्चका झोल** ୨ । ମରିଚ ମସଲା ମିଶ୍ରିତ ଜଳ ଦ୍ୱାରା ପ୍ରସ୍ତୁତ ତରକାରୀର ଝୋଳ—2. Soup prepared with pasted black pepper. ପ୍ରାଦେ· (ଘୁସୁରି, ସ୍ୱାହାଙ୍ଗ ଶାସନ) ବି. (ଅଦ୍ୟ ଅଦଳୋପୀ ଓଡ଼ିଆ ସମାସ ? ପତ୍ର+ମରିଚ+ପାଣି)—ଭାଙ୍ଗପାଣି; ପତ୍ରସଙ୍ଗେ ମରିଚ ବଟା ହୋଇ ପ୍ରସ୍ତୁତ କରାଯିବା ପାନୀୟ—Bhang; a drink made by mixing water in a paste of black pepper and Indian hemp-leaves. **मरीचका काढा**

**ମରିଚ(ଚି) ଲ(ନ)ଡ଼ୁ( ଡ୍ଡୁ )**—ଦେ. ବି—ମୁଗଖଣ୍ଡ ଶସ୍ୟଚୂନା ଘିଅରେ Maricha(chi) la(na)rdu(ddu) ଭଜା ହୋଇ ସେଥିରେ ମଗଜଲାଡ଼ୁ ଚିନି ଓ ମରିଚଗୁଣ୍ଡା ମିଶାଯାଇ ବନାଯାଇଥିବା ଲଡ଼ୁ—A sweetmeat ball seasoned with black pepper powder. **मगधलड्डु**

**ମରିଚପତ୍ରକ**—ସଂ. ବି (ମରିଚ+ପତ୍ର+କ)—ଏକପ୍ରକାର ଶାଳଗଛ—Maricha patraka A kind of Shoria Robusta (tree). ଅନ୍ୟ ସଂ. ନାମ—ସର୍ଜକ, ଅଜକର୍ଣ୍ଣ— ঝাংজৌশাল [ ଦ୍ର—ବୈଦ୍ୟକମତରେ ଏହା କଫ, ପାଣ୍ଡୁ, କର୍ଣ୍ଣରୋଗ, ପ୍ରମେହ, କୁଷ୍ଠ, ବ୍ରଣ ଓ ବ୍ରଣନାଶକ-ଦ୍ରବ୍ୟଗୁଣ । ]

**ମରିଚ ମସଲା**—ଦେ. ବି (ସଂ. ମରିଚ+ଫା. ମସାଲା)—ଭାଙ୍ଗ ତିଆର କରିବା ପାଇଁ ବ୍ୟବହୃତ ମରିଚ ଆଦି ମସଲା—Black pepper and other spices required to be mixed with ganja-leaves in preparing Bhāng. Maricha masalā মরিচমসলা **मरिच मसाला** [ଦ୍ର—କେତେକ ମରିଚମସଲାର ନାମ—ମରିଚ, ଲବଙ୍ଗ, ଅଳାଇଚ, ଗୁଳୁଚି, ଜାଇଫଳ, ନାଗେଶ୍ୱର କେଶର, ପୋସ୍ତକଦାନା, ଚନ୍ଦନ-ଗୁଣ୍ଡା, ଜାଇଣ୍ଡୀ । ]

**ମରି(ଡ଼ି)ଚା**—ବୈଦେ. ବି (ଫା. ମୋରଚା)—ଅବ୍ୟବହୃତ ଲୁହା ଉପରେ Mari(rdi)chā ଜାତ ହେବା କଳଙ୍କି; ମୁରୁ; କଳଙ୍କି—Rust (on iron). মরিচা, মরচে **मुरचा**

**ମରୀଚାଇ**—ଦେ· ବି. ସ୍ତ୍ରୀ—ଠାକୁରାଣୀ ବିଶେଷ—Marichāi The name of a popular Goddess.

**ମରିଚ୍ ଧରା**—ଦେ. ବଣ ଫା. ମୋରଚ୍+ଧୃ ଧାତୁ)—କଳଙ୍କ ଲାଗି
Marichā dharā ଯାଇଥିବା (ଲୌହ)—Rusted (iron).
মরিচা ধরা **मुरचालगाहुआ** [ମରିଚ୍ଧରା—ଅନ୍ୟରୂପ]

**ମରିଚ୍ ଧରିବା**—ଦେ. କ୍ରି—( ଲୁହା ) କଳଙ୍କିଯୁକ୍ତ ହେବା—To
Marichā dharibā rust (said of iron). ଦେ. ବି—
মরিচাধরা କଳଙ୍କି ଜାତ ହେବା—Rusting (of iron).
**मुरचालगना**
(ମରିଚ୍ ପଡ଼ିବା, ମରିଚ୍ ମାରିବା, ମରିଚ୍ ଲାଗିବା—ଅନ୍ୟରୂପ)

**ମରିଜ(ଜା, ଜେ)ଦା** (ଇତ୍ୟାଦି)—ଗ୍ରା. ବି—ମର୍ଯ୍ୟାଦା ଇତ୍ୟାଦି (ଦେଖ)
Marija(jā, je)dā (etc) Marjyādā etc (See).
মরজাদা **मरजादा**

**ମରି ପଡ଼ି କୌଣସି କାର୍ଯ୍ୟ କରିବା**—ଦେ. କ୍ରି—ନାନା ଶାରୀରିକ କଷ୍ଟ
Mari paṛi kaunasi kārjya karibā ଓ ପରିଶ୍ରମ ସହ୍ୟ
মরেপড়েকায করা କରି କୌଣସି କାର୍ଯ୍ୟ ସାଧନ କରିବା; ପ୍ରାଣ-
**मरपडकेकामकरना** ପଣେ କାମ କରିବା—To perform a work at the stake of one's life or at a great physical sacrifice and labour.

**ମରିବା**—ଦେ କ୍ରି (ସଂ ମୃ.. ଧାତୁ; ଅକର୍ମକ)—୧ । ମୃତ ହେବା; (ଜୀବ)
Maribā ପ୍ରାଣତ୍ୟାଗ କରିବା—1. To die; (said of
মরা living beings). ୨ । ଅଦୃଶ୍ୟ ହେବା; ଲୁପ୍ତ ହେବା—
**मरना** 2. To disappear; to cease. ( ଯଥା—ଭିଥଣରୁ ପାଣି ମଲାଣି ) ୩ । ବିନଷ୍ଟ ହେବା; ଧ୍ୱଂସପ୍ରାପ୍ତ ହେବା—3. To perish; to be destroyed or ruined. [ଯଥା—ମଲମ ଲଗାଇବାରୁ ମୋ ଦେହରୁ ସାବୁ ମଲା] ୪ । ଶୁଷ୍କ ହେବା; ଶୁଖିଯିବା—4. To dry
[ମରାଯି(ହେ)ବା—କର୍ମବାଚ୍ୟରୂପ] up. (ଯଥା—ଧାନକିଆରି
(ମରାଇବା—ଣିଜନ୍ତରୂପ) ଖରାରେ ମରିଗଲାଣି) ୫। ବିଶେଷ କଷ୍ଟ ବା ଦୁଃଖ ଭୋଗ କରିବା; ହୈରାଣ ହେବା—5. To suffer terribly. [ ଉ—ମାଳବ ମରନ୍ତି ଜରମାନାଦେଇ । ରାଧାନାଥ. ଦରବାର] ୬ । କୌଣସି ଦଳର ଜଣେ ଖେଳାଳି ବିପକ୍ଷ ଦଳର ଖେଳାଳିଦ୍ୱାରା ପରାସ୍ତ ହୋଇ କ୍ରୀଡ଼ାରୁ ଅନ୍ତରିତ ହେବା—6. To be out (said of a player in a game). [ଦୃ—(କ୍ରିକେଟ୍, ବୁଢ଼ିଆଣୀ ଓ ଡୁ ଡୁ ଖେଳରେ) କୌଣସି ଖେଳାଳି ପରାସ୍ତ ହେଲେ କ୍ରୀଡ଼ା ଭୂମିରୁ ଅନ୍ତରିତ ହୁଏ ।] ୭ । (ପଶା, କଉଡ଼ି, ସତରଞ୍ଜି ବା ବାଘ-ବକରୀ ଖେଳରେ ଏକ ଖେଳାଳିର ସାରି) ବିପକ୍ଷ ଦଳର ସାରି ଦ୍ୱାରା ମାଡ଼ ଖାଇବା—
7. To be discarded or overtaken by an adversary's set or piece in a game ( said of one player's set or piece in a game of dice, chess or cowrie being over taken or overpowered by another player's piece ). [ ଦୃ—ସତରଞ୍ଜି ଖେଳରେ ହାତୀ, ଘୋଡ଼ା ଓ ପାଇକ ଆଦି ମରନ୍ତି । ] ୮ । ଜୀବନୀଶକ୍ତି-ଶୂନ୍ୟ ହେବା—8. To lose vitality ( ଯଥା—ଜାବୁ ଯୋଗୁଁ ଜଣ ମରିଯାଏ । ) ୯ । ଅତି ଲଜ୍ଜିତ ହେବା—9. To be greatly humiliated [ ଉ—ମୋତେ ମାରନା ମୁଁ ମଲିଣି, ପାପ ଲଗେଇ ଦେଇ ଗିଠି, ଲାଜ୍ ଗେରେ ଭାବ ପାଇଲିଣି—ଭଗ । ] ୧୦ । ସଲଗ୍ନ କରାଯିବା; ମରାଯିବା—10. To be attached or struck ( ଯଥା—ଏ ଚଠି ଲଫାପା ଉପରେ ପାଞ୍ଚ ପଇସିଆ ଟିକଟ ମରିଛି । ) ୧୧ । ଝାଉଁଳିବା; (ବୃକ୍ଷାଦି) ବର୍ଦ୍ଧନଶକ୍ତିଶୂନ୍ୟ ହେବା—11. To wither ( said of plants ). [ ଉ—ଅମ୍ବ ଗଛରେ ପାଣି ଦଉଁ ଦଉଁ ଗ୍ରୀଷ୍ମ ଗଛ ମଲା—ଭଗ । ] ୧୨ । ଜ୍ୟୋତିଃଶୂନ୍ୟ ହେବା—12. To lose lustre. ( ଯଥା—ଜନ୍ତ ମରିବା । ) ୧୩ । ଜଳୀୟାଂଶ ଶୁଷ୍କ ହେବାଦ୍ୱାରା ନିର୍ଜଳ ବସ୍ତୁରେ ପରିଣତ ହେବା—13. To turn into a thing void of water by evaporation or heat ( ଯଥା—ଲହୁଣୀରୁ ଘିଅ ମରେ, କାଢ଼ିଆ ଉପରୁ କାଢ଼ିଆ ଘିଅ ମରେ । ) ୧୪ । ( ମନରୁ କ୍ରୋଧ ଆଦି ) ଉପଶାନ୍ତ ହେବା—14. To be assuaged. ( ଯଥା—ଏତେ ଦିନେ ତାଙ୍କର ମୋ ଉପରୁ ରାଗ ମରି ନାହିଁ । ) [ ଉ—ମରିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ, ମରି ଯିବା । ]

**ମରିଯାଏଁ ଟି**—ଦେ. ଅ ( ବାକ୍ୟ, ଅବ୍ୟୟରୂପେ ବ୍ୟବହୃତ )—୧ । ମରି
Marijāen ṭi ( ଦେଖ ) —1. Mari ( See ). ୨ । (ସ୍ୱଣ
**हाममरजाएँ** ପକାଇ କୌଣସି ବ୍ୟକ୍ତିଙ୍କୁ ଅନୁରୋଧ କରିବାରେ
(ମରେଁଟି—ଅନ୍ୟରୂପ) ବ୍ୟବହୃତ ) ମୋ ରାଣଟି !—2. ( used in
মরি, মইরী making a request by invoking one's own name )—( I request you ) On my life !
[ ଦୃ—ଏଥିର ତାତ୍ପର୍ଯ୍ୟ ଏହି କି, ଯେବେ ମୋ ଜୀବନ ପ୍ରତି ତୁମର ମାୟା ଥାଏ, ତେବେ ମୋ ଅନୁରୋଧ ରକ୍ଷା କର; ରକ୍ଷା ନ କଲେ ମୁଁ ମରିଯାଏଁଟି । ]

**ମରି ଶୋଇବା**—ଦେ. କ୍ରି—ପ୍ରାଣ ତ୍ୟାଗ କଲା ପରେ ଭୂଇଁରେ ଲମ୍ବ
Mari śoibā ହୋଇ ପଡ଼ି ରହିବା—To lay dead on the
মরে শোওয়া **मर पडना** ground.

**ମରି ହଜି ଯିବା**—ଦେ. ବି—(ଗ୍ରାମର ବା ବଂଶର କେହି କେହି ମରିଯିବା
Mari haji jibā ଓ କେହି କେହି ନିରୁଦ୍ଦେଶ ହେବାଦ୍ୱାରା)
মরে হেজে যাওয়া କୌଣସି ଗ୍ରାମର ବା ପରିବାରର ଲୋପ ସାଧନ
**मर हर जाना** ହେବା—The disappearance or extinction of a family or a village,(some of its members having died, the rest gone away to unknown places).

**ମରୀଚି**—ସଂ. ବି ( ମୃ ଧାତୁ=ନାଶ କରିବା+ଅପାଦାନ ବା କର୍ତ୍ତୃ. ଈଚି,
Marīchi ଯାହା ଅନ୍ଧକାର ନାଶ କରେ)—୧ । କିରଣ; ରଶ୍ମି—
1. Ray of light. ୨ । ଜ୍ୟୋତିଃ—2. Lustre;

radiance. ୩ । ସପ୍ତର୍ଷିମାନଙ୍କ ମଧ୍ୟରୁ ଜଣେ—3. Name of one of the seven primeval sages. [ ଦ୍ର—ଏ ବ୍ରହ୍ମାଙ୍କ ମାନସ ପୁତ୍ର । ଏ ପ୍ରଜା ସୃଷ୍ଟି କରିବା ପାଇଁ ବ୍ରହ୍ମାଙ୍କ ଦ୍ୱାରା ପ୍ରଜାପତି ରୂପରେ ନିଯୁକ୍ତ ହୋଇ କର୍ଦ୍ଦମ ଋଷିଙ୍କ କନ୍ୟା କଳା ( ମତାନ୍ତରରେ ସମ୍ଭୂତି )ଙ୍କୁ ବିବାହ କରିଥିଲେ ଓ ଏହାଙ୍କ ଔରସରେ କଶ୍ୟପ ମୁନି ଜନ୍ମିଥିଲେ ।] ୪ । ଭୃଗୁ ମୁନିଙ୍କର ଏକ ପୁତ୍ର—4. Name of a son of sage Bhṛugu. ୫ । ଦନୁଙ୍କର ଏକ ପୁତ୍ର—5. Name of a son of Danu. ୬ । ପ୍ରାଚୀନ ପରିମାଣବିଶେଷ; ୬ ତ୍ରସରେଣୁ (ହ୍ଲ. ଶ)—6. A standard of weight used in ancient times.

**ମରୀଚିକା**—ସଂ. ବି ( ମରୀଚି=କିରଣ+ସ୍ୱାର୍ଥେ. କ+ସ୍ତ୍ରୀ ଆ )—
Marīchikā ୧ । ମୃଗତୃଷ୍ଣା (ଦେଖ)—1. Mṛugatṛushṇā ( See ) ୨ । କିରଣ—2. Ray.

**ମରୀଚି ଜଳ(ତୋୟ)**—ସଂ. ବି—ମୃଗତୃଷ୍ଣା (ହ୍ଲ. ଶ.)—
Marīchi jaḷa(toya) Mirage.

**ମରୀଚି ନନ୍ଦନ**—ସଂ. ବି ( ୬ଷ୍ଠୀ ତତ୍ )—କଶ୍ୟପ ଋଷି—
Marīchi nandana Sage Kaśyapa.

**ମରୀଚି ମାଳୀ**—ସଂ. ବିଣ. ପୁଂ ( ମରୀଚି+ମାଳା+ଇନ୍; ୧ମା. ୧ବ )—
Marīchi māḷī ରଶ୍ମିଯୁକ୍ତ; କିରଣମାଳାବିଶିଷ୍ଟ—Having
(ମରୀଚି ମାଳିନୀ—ସ୍ତ୍ରୀ) rays; radiant. ସଂ. ବି—
(ମରୀଚି ଗର୍ଭ—ଅନ୍ୟରୂପ) ସୂର୍ଯ୍ୟ; ଅଂଶୁମାଳୀ—The sun.

**ମରୁ**—ସଂ. ବି ( ମୃ. ଧାତୁ+ଅଧିକରଣ. ଉ; ଯେଉଁ ସ୍ଥାନରେ ଲୋକେ ମରିଯାଆନ୍ତି )—୧ । ବୃକ୍ଷଶୂନ୍ୟ, ଉଦ୍ଭିଦଶୂନ୍ୟ ଓ ପ୍ରାଣିଶୂନ୍ୟ ଏବଂ କଙ୍କର ଓ ବାଲୁକାମୟ ବିସ୍ତୃତ ପ୍ରାନ୍ତର—
Maru 1. Desert. ୨ । ପର୍ବତ (ପ୍ରକୃତିବାଦ)—2. Mountain. ୩ । ନିର୍ଜଳ ପର୍ବତ (ହ୍ଲ. ଶ)—3. A waterless mountain. ୪ । ମାରବାଡ଼ ଦେଶ -4. Marwar;the desert country to the south-east of the Punjab. ୫ । ସୂର୍ଯ୍ୟବଂଶୀୟ ଭାବୀ ରାଜବିଶେଷ—5. Name of a future king of the Solar dynasty whose advent has been foretold in mythology. ୬ । ମରୁଆ ଗୁଳ୍ମ ( ହ୍ଲ. ଶ ) ( ଦେଖ )—6. Maruā plant ( See ) ୭ । ନରକାସୁରର ସହଚରବିଶେଷ—7. A friend of demon Narakāsura. ସଂ. ବିଣ—ଅନୁର୍ବର—Unfruitful; barren; sterile ( place )

**ମରୁଆ**—ଦେ. ବି ( ସଂ. ମରୁବକ )—୧ । ତୁଳସ୍ୟାଦି ବର୍ଗର ସୁଗନ୍ଧି ପତ୍ରବିଶିଷ୍ଟ ଶାକବିଶେଷ—1. Ocymum Caryophylatum (a plant having sweet-smelling leaves ); Origanum Marjorana ( Kirtikar ); Rut Graveolens; Rue. [ ହ୍ଲ—ତା ତଳେ ମାଳତୀ ମଲ୍ଲୀ ମରୁ... ସେବତୀ—ନନ୍ଦକିଶୋର. କାର୍ତ୍ତିକଶୀ... [ ଦ୍ର—କେହି କେହି ଏହାକୁ ଗନ୍ଧ... ତୁଳସୀ କହନ୍ତି । ଏହା ଶ୍ୱେତ ଓ କୃଷ୍ଣଭେଦରେ ଦୁଇ ପ୍ରକାର; ଏହ... ଅଗ୍ନିବର୍ଦ୍ଧକ, ସୁଗନ୍ଧ, ହୃଦୟଗ୍ରାହୀ, ରୁଚକର ଓ... ଦୃଷ୍ଟିକାଦର ବିଷ, କଫ, ବାୟୁ, କୁଷ୍ଠ ଓ କ୍ରିମିନାଶକ । ] ୨ । ଏକପ୍ରକାର ସୁଗନ୍ଧ, ସରୁ ଓ ଲମ୍ବ ପତ୍ରବିଶିଷ୍ଟ ବଣଜାତ ଶାକ—2. The sweet Marjoram. ୩ । ଏକପ୍ରକାର କୋକଲି ମାଛ—3. A kind of small sea-fish. [ ଦ୍ର—କୋକଲି ୪ ପ୍ରକାର ଯଥା— ୧. ଗୁହଳ ବା ଗୁହଳଆ କୋକଲି, ୨. ଗୁନ୍ଦ କୋକଲି, ୩. କାଉ କୋକଲି, ୪. ମରୁଆ କୋକଲି । ମରୁଆ କୋକଲି ଅନ୍ୟ ତିନପ୍ରକାର କୋକଲିଠାରୁ ଆକାରରେ ବଡ଼ ଓ ଅଧିକ ରୁଚକର । ] ୪ । ସ୍ତ୍ରୀଲୋକମାନଙ୍କୁ ଦିଆଯିବା ନାମ—4. A name given to women.
ସଂ. ମରୁତ୍, ମରୁବକ,
ମରୁତ୍ତକ, ମରୁ, ଖରପତ୍ର,
ଫଣିଜ୍ଝକ, ପ୍ରସ୍ଥପୁଷ୍ପ, ସମୀରଣ,
କୁଳସୌରଭ, ଫଣୀ, ଗନ୍ଧପତ୍ର
ହି. मरुआ, গেদরেত মরুআ
ତେ. ମରବକମୁ, ରୁଦ୍ରଜାଡ଼ୁ
ମ. ସବଜା ମରବା
ଗୁ. ମରବୋ
ଫା. ମର୍ଜଂଗୁସ୍
ଆ. ମର୍ଜଂଜୁସ୍

**ମରୁଆ ଦଅ(ୟ)ଣା**—ଦେ. ବି (ସହଚର, ସଂ. ମରୁବକ+ଦମନକ)—
Maruā da-a(ya)ṇā ମରୁଆ ଓ ଦୟଣା ଗୁଳ୍ମଦ୍ୱୟ—Two plants
मरुया দোনা मरुआ दोना with sweet-smelling leaves.

**ମରୁକ**—ସଂ. ବି—୧ । ମୟୂର (ହ୍ଲ. ଶ)—1. Peacock. ୨ । ଏକ
Maruka ପ୍ରକାର ମୃଗ (ହ୍ଲ. ଶ)—2. A kind of deer.

**ମରୁ କାନ୍ତାର**—ସଂ. ବି—ବାଲୁକାମୟ ବିସ୍ତୀର୍ଣ୍ଣ ପଡ଼ିଆ—A sandy
Maru kāntāra (ମରୁପ୍ରାନ୍ତର—ଅନ୍ୟରୂପ) desert.

**ମରୁଜ**—ସଂ. ବି—ନଖୀ ନାମକ ସୁଗନ୍ଧ ଦ୍ରବ୍ୟ (ହ୍ଲ. ଶ)
Maruja Shell (scent).

**ମରୁଜାତା**—ସଂ. ବି—କପିକଚ୍ଛୁ; ବାଇଡଙ୍କ (ହ୍ଲ. ଶ)—
Marujātā Cowhage.

**ମରୁଣ୍ଟା**—ସଂ. ବି. ସ୍ତ୍ରୀ—ଉଚ୍ଚକପାଳୀ ସ୍ତ୍ରୀ (ହ୍ଲ. ଶ)—A woman
Maruṭā with a prominent or builging forehead.

**ମରୁଡ଼ି**—ଦେ. ବି—(ସଂ. ମୃ ଧାତୁ)—୧ । ମରଡ଼ି; ଅକାଳ ମୃତ୍ୟୁ—
Marurḍi मारी, मड़क 1. Death before proper
मरगी age. ୨ । ବହୁ ସଂଖ୍ୟାରେ ମୃତ୍ୟୁ—2. Death in large numbers. [ ହ୍ଲ—ଏ ସକାଶରୁ ହାତୀ ଘୋଡ଼ାଙ୍କ ମରୁଡ଼ି, ପଡ଼ିଥିଲା ରଥିଏ ଦେଲେ ଖର ଖଡ଼ି । କୃଷ୍ଣସିଂହ. ମହାଭାରତ ଭୀଷ୍ମ ।] ୩ । ମଡ଼କ; ମହାମାରୀ; ମାରାତ୍ମକ ବ୍ୟାପକ ରୋଗ—3. Pestilence; mortal
শুখা epidemic. ୪ । ଜଳାଭାବରୁ ଶସ୍ୟ ନାଶ—4
रौदी Withering of crops due to drought.
୫ । ଦୁର୍ଭିକ୍ଷ—5. Famine. ୬ । ସଂକ୍ରାମକ ରୋଗ ପ୍ରଭାବରୁ ବହୁ ଲୋକଙ୍କର ମରଣ—6. Mortality due
मरगी, मरी to some epidemic disease.

**ମରୁଡ଼ିଆ**—ଦେ.ବଣ—୧ । ଦୁର୍ଭିକ୍ଷ ପ୍ରପୀଡ଼ିତ—1. Famine-stricken. Marurdiā ମଡ଼ା ୨ । ମହାମାରୀ ପ୍ରପୀଡ଼ିତ—2. Stricken with pestilence ୩ । ଅତି ଜୀର୍ଣ୍ଣଶୀର୍ଣ୍ଣ—3. Emaciated. ୪ । ଅସ୍ଥି କଙ୍କାଳାବଶିଷ୍ଟ—4. Reduced to skeleton. ୫ । (ଗାଳିରେ ବ୍ୟବହୃତ) ନଅଙ୍କିଆ (ଦେଖ) 5.—Na-ankiā (See) ୬ । ଜଳାଭାବରୁ ଯେଉଁ ଦେଶର ଶସ୍ୟ ନଷ୍ଟ ହୋଇଅଛି—6. (a country) In which the principal crop has failed on account of drought.

**ମରୁଡ଼ିଆ ମେଘ**—ଦେ. ବି—(ଯେଉଁ ମେଘ ମରୁଡ଼ି ହେବାର ସୂଚନା କରେ) ଅବର୍ଷୁକ ମେଘ—Unraining cloud. Marurdiā megha ଅବর্ষুক মেঘ; যে মেঘে জলহয়না দেখাবটি মেহ

**ମରୁତ(ତ)**—ସ ବି—(ମୃ ଧାତୁ+ଅପାଦାନ ଉତ୍, ଉତ; ଯାହା ଅଭାବରେ ଜୀବମାନେ ମରିଯିବେ)—୧ । ଦେବତା—1 Deity; an immortal. ୨ । ବାୟୁ; ପବନ; ପଞ୍ଚ ମହାଭୂତମଧ୍ୟରୁ ଏକତମ—2. The air (one of the 5 elements of the creation). ୩ । ବାୟୁ ବା ପବନ ଦେବତା—3. The air personified as a Deity; the Wind god. [ଦ୍ର—କଶ୍ୟପଙ୍କ ସ୍ତ୍ରୀ ଦିତିଙ୍କ ପୁତ୍ରମାନେ ଦେବତାମାନଙ୍କଦ୍ୱାରା ନିହତ ହେବାରୁ ସେ ପତିଙ୍କ ନିକଟରେ ଗୋଟିଏ ଅଜେୟ ପୁତ୍ର ପ୍ରାର୍ଥନା କରିଥିଲେ । ସେହି ଫଳରେ ଦିତି ବାୟୁଙ୍କୁ ଗର୍ଭରେ ଧାରଣ କରିଥିବା ଅବସ୍ଥାରେ ଦିତିଙ୍କ ସପତ୍ନୀ ପୁତ୍ର ଇନ୍ଦ୍ର ଗର୍ଭସ୍ଥ ଭ୍ରୂଣକୁ ବଜ୍ରଦ୍ୱାରା ୪୯ ଖଣ୍ଡ କରି କାଟି ପକାଇଲେ; କିନ୍ତୁ କଶ୍ୟପଙ୍କ ବର ପ୍ରଭାବରୁ ଏ ସ୍ୱତନ୍ତ୍ର ରୂପ ଧାରଣ କରି ୪୯ ଖଣ୍ଡ ୪୯ ବାୟୁ ନାମରେ ଖ୍ୟାତ ହେଲେ । ] ୪ । ବାୟୁ କୋଣ; ଉତ୍ତର ପଶ୍ଚିମ କୋଣ—4. The north west point of the compass. ୫ । ପ୍ରାଣ (ହି. ଶ)—5. Life. ୬ । ପ୍ରାଣ ବାୟୁ—6. The breath of life; the vital air inside the body. ୭ । ସୁନା (ହି. ଶ)—7. Gold. ୮ । ସୌନ୍ଦର୍ଯ୍ୟ (ହି. ଶ)—8. Beauty; grace. ୯ । ମରୁଆ (ହି. ଶ) (ଦେଖ)—9. Maruā (See) ୧୦ । ଗ୍ରନ୍ଥି ପର୍ଣ୍ଣି (ହି. ଶ)—10. Granthi parnna (See)

**ମରୁତ କ୍ରିୟା**—(୬ଷ୍ଠୀ ତତ୍; ମରୁତ୍=ବାୟୁ+କ୍ରିୟା)—ବାତ କର୍ମ; ଅଧୋବାୟୁ ତ୍ୟାଗ—Cracking wind; passing of wind through the anus. Marut kriyā

**ମରୁତ୍ କୋଣ**—ସଂ. ବି—ବାୟୁ କୋଣ; ଉତ୍ତର ପଶ୍ଚିମ କୋଣ—The north west quarter of the globe. Marut koṇa

**ମରୁତ୍ ପତି**—ସଂ. ବି—(୬ଷ୍ଠୀ ତତ୍)—୧ । ନାରାୟଣ; ବିଷ୍ଣୁ—1. Bishṇu. ୨ । ଇନ୍ଦ୍ର (ହି. ଶ)—2. Indra. Marut pati

**ମରୁତ୍ ପଥ**—ସଂ. ବି—(୬ଷ୍ଠୀ ତତ୍)—୧ । ଆକାଶ ପଥ; ଶୂନ୍ୟମାର୍ଗ; ବାୟୁ ମାର୍ଗ—The aerial route. ୨ । (ମରୁଦ୍‌ବର୍ତ୍ମ—ଅନ୍ୟରୂପ) ଆକାଶ—2. The sky; the space. Marut patha

**ମରୁତପାଳ**—ସଂ. ବି—ଇନ୍ଦ୍ର—Indra. Marut pāla

**ମରୁତ୍ ପୁତ୍ର**—ସଂ. ବି—(୬ଷ୍ଠୀ ତତ୍)—୧ । ବୀର ହନୁମାନ୍—1. The great monkey-warrior of the Rāmāyaṇa. ୨ । (ବାୟୁଙ୍କ ପୁତ୍ର) ଭୀମ—2. The 2nd Paṇḍaba brother; Bhīma. Marut putra (ମରୁତ ସୁତ—ଅନ୍ୟରୂପ)

**ମରୁତ୍ ଫଳ**—ସଂ. ବି (ମ. ଯ.କୋ)—କରକା; ଭୁଆପଥର—Hail-stone. Marut phala

**ମରୁତ୍ ସଖ**—ସଂ. ବି—(ମରୁତ+ସଖି+ଅ; ବହୁବ୍ରୀହି; ମରୁତ୍ ଅଟେ ସଖା ଯାହାର)—୧ । ଅଗ୍ନି—1. Fire. ୨ । ଇନ୍ଦ୍ର—2. Indra. ୩ । ଧଳା ଚିତା ଗଛ—3. The leadwort plant. Marut sakha (ମରୁତ୍ ସହାୟ—ଅନ୍ୟରୂପ)

**ମରୁତ ଛନ୍ଦ**—ଦେ. ବି—ପ୍ରାଣାୟାମ (ଦେଖ)—Prāṇāyāma (See) Maruta chhanda (ଦ୍ର—ତପ କରଣ ଅଧେ ସହି, ଅଧେ ମରୁତ ଛନ୍ଦ ଦେଇ, ଥୋକେ ଦୃଷ୍ଟି ଦେଇ କପାଳେ, ରହିଲେ ସମାଧି କାଳେ । ପ୍ରାଚୀ ନିର୍ଗୁଣ-ମାହାତ୍ମ୍ୟ । )

**ମରୁତ୍ତ**—ସ. ବି (ମରୁତ୍+ତନ୍ ଧାତୁ+କର୍ତ୍ତୃ.ଅ)—୧ । ଯଜ୍ଞଶୀଳ ଚନ୍ଦ୍ରବଂଶୀୟ ଜଣେକ ରାଜା—1. Name of a king of the Lunar dynasty. [ଦ୍ର—ଏ ବହୁବାର ଯଜ୍ଞ କରିଥିଲେ ଓ ଯଜ୍ଞରେ ସ୍ୱର୍ଣ୍ଣ ପାତ୍ରମାନ ବ୍ୟବହାର କରିଥିଲେ । ଏହାଙ୍କର ସାତରାଣୀ ଓ ୧୮ ପୁତ୍ର ଥିଲେ । ଏ କରନ୍ଧମଙ୍କ (ମତାନ୍ତରରେ ଅବୀକ୍ଷିତଙ୍କ) ପୁତ୍ର ଥିଲେ (ହି. ଶ) । ] ୨ । ବାୟୁ; ପବନ—2. The wind. Marutta

**ମରୁତ୍ୱାନ୍**—ସ. ବି (ମରୁତ୍+ବତୁ; ୧ମା. ୧ବ)—୧ । ଇନ୍ଦ୍ର—1. Indra ୨ । ବୀର ହନୁମାନ୍—2. The great Hanumān. ୩ । ସମୁଦ୍ର—3. The ocean. ୪ । ମେଘ—4. The clouds. ୫ । ମହାଭାରତୋକ୍ତ ଦେବତାଙ୍କ ଗଣ ବିଶେଷ—5. A class of mythological Deities. Marutwān

**ମରୁଦାନ୍ଦୋଳ**—ସ. ବି (୬ଷ୍ଠୀ ତତ୍, ମରୁତ୍+ଆନ୍ଦୋଳ)—ଭାତି (ହି. ଶ)—Bellows. Marudāndola (ମରୁଦାନ୍ଦୋଳକ—ଅନ୍ୟରୂପ)

**ମରୁଦିଷ୍ଟ**—ସ. ବି (ମରୁତ୍+ଇଷ୍ଟ)—ଗୁଗ୍‌ଗୁଳ (ହି. ଶ)—Bdellium. Marudishṭa

**ମରୁଦେଶ**—ସ. ବି—୧ । ମରୁମୟ ପ୍ରଦେଶ—1. A tract of desert; a desert country. ୨ । ରାଜପୁତନା ଅନ୍ତର୍ଗତ ମରୁମୟ ମାରବାର ପ୍ରଦେଶ—2. The country of Marwar in Rajputana. Marudeśa

ମରୁ ଦ୍ୱାର—ସଂ. ବି—୧ । ଧୂଆଁ—1. Smoke. ୨ । ଅଗ୍ନି ( ହି. ଶ )—2. Fire.
Maru dwāra

ମରୁଦ୍ୱିପ—ସଂ. ବି ( ୬ଷ୍ଠୀ ତତ୍; ମରୁ=ଜଳାଦି ଶୂନ୍ୟ ଦେଶ+ଦ୍ୱିପ =ହାତୀ )—ଓଷ୍ଟ୍ର; ଓଟ—The camel.
Maru dwipa
[ଦ୍ର—ତୁଳନା କର, ଇଂରାଜୀରେ ଓଟର ଏକ ନାମ ମରୁଭୂମିର ଜାହାଜ—The ship of the desert.]

ମରୁଦ୍ୱୀପ—ସଂ ବି—ମରୁଭୂମି ମଧ୍ୟସ୍ଥ ଉର୍ବର ଭୂଖଣ୍ଡ—Oasis; a bit of fertile land in a desert
Maru dwīpa

ମରୁଦ୍ରଥ—ସଂ. ବି ( ମରୁତ୍=ଦେବତା+ରଥ; ୬ଷ୍ଠୀ ତତ୍ )—୧ । ଦେବରଥ—1. The aerial car of gods. ୨ । ବ୍ୟୋମଯାନ—2. Balloon; aeroplane ୩ । ( ବହୁବ୍ରୀହି ) ଅଶ୍ୱ—3. Horse.
Marudratha

ମରୁପ୍ରଦେଶ—ସଂ. ବି—୧ । ମରୁଭୂମି—1. Desert. ୨ । ମରୁମୟ ଦେଶ—2 A desert country.
Maru pradeśa
(ମରୁଧନ୍ୱା, ମରୁସ୍ଥଳ—ଅନ୍ୟରୂପ)

ମରୁପ୍ରିୟ—ସଂ. ବି ( ମରୁ ଅଟେ ପ୍ରିୟ ଯାହାର; ବହୁବ୍ରୀହି )—ଉଷ୍ଟ୍ର; ଓଟ—The camel.
Marupriya

ମରୁବକ—ସଂ. ବି ( ମରୁ=ବାଲୁକାମୟ ସ୍ଥାନ+ବା ଧାତୁ=ଗମନ କରିବା, ଜନ୍ମିବା+କର୍ତ୍ତୃ. ଅ=ମରୁବ+ସ୍ୱାର୍ଥେ.କ ଯାହା ବାଲୁକାମୟ ସ୍ଥାନରେ ଜନ୍ମେ ବା ଗମନ କରେ )—୧ । ବ୍ୟାଘ୍ର—1. The tiger. ୨ । ରାହୁ—2. The Dragon's head; the ascending node, the earth's shadow which causes lunar eclipse. ୩ । ପିଣ୍ଡ ଖର୍ଜ୍ଜୁର—3. The Arabian date palm. ୪ । ଜମ୍ବୀର ଲେମ୍ବୁ (ଫଳ ଓ ଗଛ)—4. The citrus (tree and fruit). ୫ । ମଏଣା (ଦେଖ)—5. Maeṇa ( See ) ୬ । ମରୁଆ ( ଦେଖ )—6. Maruā ( See )
Marubaka

ମରୁଧର—ସଂ ବି—ମାରବାଡ଼ ଦେଶ ( ହି. ଶ )—Marwar; the desert country in Central India.
Marudhara

ମରୁଭୂମି—ସଂ. ବି—୧ । ମରୁ; ଜୀବଶୂନ୍ୟ, ଉଦ୍ଭିଦରହିତ ବାଲୁକାମୟ ପ୍ରଦେଶ—1. Desert. ୧ । ମାରବାଡ଼ ଦେଶ—2. The desert country in Central India to the south east of the Panjab
Maru bhūmi

ମରୁକ—ସଂ. ବି—୧ । ମୟୂର ( ହି ଶ )—1. Peacock. ୨ । ଏକପ୍ରକାର ମୃଗ—2. A kind of deer
Marūka

ମରୂଦ୍ୟାନ—ସଂ. ବି ( ମ. ପ. ଲୋ; ମରୁ+ଉଦ୍ୟାନ )—ମରୁଦ୍ୱୀପ—Oasis.
Marūdyāna

ମରୂର(ଲ)—ସଂ. ବି—ମୂର୍ଗା ( ଘାସ ) ( ହି. ଶ )—A kind of fibrous grass.
Marūra(la)

ମରେ(ଲେ)ଇ—ଦେ. ବି (ସଂ. ମରୁର=ଖଳା)—୧ । ଉଦରେ ଧାନ ରଖିବା ପାଇଁ ପାଳରେ ତିଆରି ଗଦା; ଧାନ ମେଢ—1. A hallow-rick of crushed straw for storing paddy. [ ଉ—
Mare(le)i
मराई, हामार
(ମରେଇ - ଅନ୍ୟରୂପ)

ଧାଡ଼ି ଧାଡ଼ି ହୋଇ ଧାନ ମରେଇ ବସି ଥିବ । ଫକୀରମୋହନ. ଛମାଣ. ଆଠଗୁଣ୍ଠ । ] ୨ । ଧାନ ରଖିବା ପାଇଁ ୫।୬ ହାତ ଉଚ୍ଚ ବାଉଁଶ ଡୋଲି—2. A big bamboo basket (about 6 feet high) to store grains. ୩ । ମରେଇ କଣ୍ଟା (ଦେଖ)—3. Marei kaṇṭā (See) ୪ । ମରେଇ ପୋକ (ଦେଖ)—4. Marei poka (See)

ମରେଇ କଣ୍ଟା—ପ୍ରାଦେ. (ଗଡ଼ଜାତ)—ବି—ଔଷଧରେ ବ୍ୟବହୃତ ହେବା ଏକ ପ୍ରକାର କଣ୍ଟା ଗୁଳ୍ମ—Zanthoxylum Ledrunga (Haines)
Marei kaṇṭā

ମରେଇ ପୋକ—ଦେ.ବି—କ୍ରିମିଜାତୀୟ ଏକପ୍ରକାର ସାମୁଦ୍ରିକ ପୋକ—A kind of sea-worm. [ ଦ୍ର—ଏମାନେ ଡଙ୍ଗାର ପାଣିରେ ବୁଡ଼ିଥିବା ଅଂଶର କାଠକୁ କାଟି ନଷ୍ଟ କରନ୍ତି । ]
Marei poka

ମରେ(ରା)ଇ—ଗ୍ରା.ବିଣ. ସ୍ତ୍ରୀ (ଅଶ୍ଳୀଳ ଗାଳିବିଶେଷ)—୧ । ନଷ୍ଟ ଚରିତ୍ରା; ଦୁଷ୍ଟା (ସ୍ତ୍ରୀ)—1. Adulterous (woman). ୨। କାମୁକା (ସ୍ତ୍ରୀ)—2.Licentious (woman); lustful; libidinous. ଦେ. ବି—ମରାଇ ( ଦେଖ )—Marāi ( See )
Mare(rā)i
मारानी
मरानी

ମରେ ନ ମରେ—ଦେ. ବିଣ—ମୁମୂର୍ଷୁ—About to die; moribund.
Mare na mare मर मर मरजीवा

ମରୋଲୀ—ସଂ. ବି—ମକରଜାତୀୟ ବୃହତ୍ ସାମୁଦ୍ରିକ ଜନ୍ତୁବିଶେଷ ( ହି. ଶ. )—A kind of big shark or sword-fish.
Marolī

ମର୍କ୍(ଧାତୁ)—ସଂ.—୧ । ଗମନ କରିବା—1. To walk. ୨ । ଗତି କରିବା—2. To move.
Mark (root)

ମର୍କ—ପ୍ରାଦେ. (ସମ୍ବଲପୁର, ଗଡ଼ଜାତ, ଗଞ୍ଜାମ)—ବି—(ସଂ. ମରକ; ତୁଳ ହି. ମରଗୀ=ସଂକ୍ରାମକ ଓ ମାରାତ୍ମକ ରୋଗ)—ହଇଜା ରୋଗ-Cholera. ସଂ. ବି—(ମର୍କ ଧାତୁ+କର୍ତ୍ତୃ. ଅ)—୧ । ବାୟୁ (ହି. ଶ)—1. Air. ୨ । ମାକଡ଼ (ହି. ଶ)—2. Monkey. ୩ । ଦେହ (ହି. ଶ)—3. Body. ୪ । ଶୁକ୍ରାଚାର୍ଯ୍ୟଙ୍କ ଏକ ପୁତ୍ରର ନାମ (ହି. ଶ)—4. Name of a son of Śukrāchārjyā.
Mark

ମର୍କକ—ସଂ. ବି—(ମର୍କ+କ)—୧ । ମାକଡ଼ସା (ହି. ଶ)—1. Spider. ୨ । ହାଡ଼ଗିଲା ପକ୍ଷୀ—2.Adjutant bird; Leptoptilus Dubius.
Markaka

ମର୍କଖିଆ—ପ୍ରାଦେ. ( ସମ୍ବଲପୁର, ଗଡ଼ଜାତ )—ବିଣ—( ସ୍ତ୍ରୀମାନଙ୍କର ପୁରୁଷଙ୍କୁ କହିଥିବା ଗାଳି ବିଶେଷ); ହାଡ଼ାବାନ୍ତିଆ—(A term of abuse used to males indicating a curse that the person abused will be) A victim to cholera.
Marka khiā

ମର୍କଟ—ସଂ. ବି—(ମର୍କ ଧାତୁ+କର୍ତ୍ତୃ ଅଟ)—୧ । ବାନର—1. Monkey. ୨ । ହାଡ଼ମାଙ୍କଡ଼—2 Ape. ୩ । ମାକଡ଼ସା; ବୁଢ଼ିଆଣୀ; ଊର୍ଣ୍ଣନାଭ—3. Spider.
Markaṭa
(ମର୍କଟୀ—ସ୍ତ୍ରୀ)

(ଉ—ବସ୍ତ୍ରଷଣ ଶୁଣି ଭୂଷଣ ମର୍କଟ ଜାଲରେ ମର୍କଟ ଜାଲ, ବନ୍ଧନ କର ଲାଧନ ବସ୍ତୁରବା ରହୁବା ଏ କେତେକାଳ । ଭଞ୍ଜ. ବେଦେସ୍ତ୍ରଣରଲାସ ।) ୪ । ହାଡ଼ଗିଲା ପକ୍ଷୀ—4. The adjutant bird, Leptoptilus Dubius. ୫ । ବିଷ ବିଶେଷ—5. A kind of poison.

**ମର୍କଟକ**—ସଂ. ବି. (ମର୍କଟ+ସ୍ୱାର୍ଥେ. କ)—ମାକଡ଼ସା; ବୁଢ଼ିଆଣି—Markataka Spider. ୨ । ଘାସ ବିଶେଷ (ହ୍ର. ଶ)—2. A kind of grass. ୩ । ମତ୍ସ୍ୟ ବିଶେଷ—3. A kind of fish. ୪ । ଦୈତ୍ୟ ବିଶେଷ—4. Name of a demon. ୫ । ମାକଡ଼ (ହ୍ର. ଶ)—5. Monkey. (ମର୍କଟିକା—ଅନ୍ୟରୂପ)

**ମର୍କଟ କେଶରୀ**—ଦେ. ବି—ମରକତ କେଶରୀ (ଦେଖ) Markata kesari Marakata kesari (See)

**ମର୍କଟ ତିନ୍ଦୁକ**—ସ. ବି—ମାକଡ଼ କେନ୍ଦୁ (ଗଛ)—Markata tinduka A kind of Diospyros Embryopteris (tree).

**ମର୍କଟ ବଦନ**—ସ. ବିଣ. ପୁଂ—(ବହୁବ୍ରୀହି)—ମାକଡ଼ମୁହାଁ; ବାନର-Marakata badana ମୁହାଁ—Having the face like (ମର୍କଟାସ୍ୟ—ଅନ୍ୟରୂପ) that of an ape; having an ugly [ମର୍କଟ ବଦନା, ମର୍କଟାସ୍ୟା—ସ୍ତ୍ରୀ] face.

**ମର୍କଟ ବଦନୀ**—ଦେ. (ପଦ୍ୟ) ବିଣ. ସ୍ତ୍ରୀ—(ସ. ମର୍କଟ ବଦନା)—ବାନର Markata badani ମୁହାଁ—(a woman) Having an ugly face like that of an ape.

**ମର୍କଟ ବାସ**—ସ. ବି—(୬ଷ୍ଠୀ ତତ୍; ମର୍କଟ=ମାକଡ଼ସା+ବାସ=ବାସ Markata bāsa ସ୍ଥାନ)—ବୁଢ଼ିଆଣୀ ଜାଲ—Spider's web; cobweb.

**ମର୍କଟ ରାଜ**—ସ. ବି—(୬ଷ୍ଠୀ ତତ୍ ବା ୭ମୀ ତତ୍)—୧ । ମର୍କଟମାନଙ୍କ Markata rāja ରାଜା—1. A king of monkeys, ୨ । ସୁଗ୍ରୀବ—2. Sugriba. ୩ । ବାଳି—3. Bāḷi. ୪ । ହନୁମାନ୍—4. Hanumān.

**ମର୍କଟ ଶୀର୍ଷ**—ସ. ବି—ହିଙ୍ଗୁଳ (ହ୍ର. ଶ)—Markata sirsha Vermilion.

**ମର୍କଟିଆ**—ଦେ. ବି—ମରକଟିଆ (ଦେଖ) Markatiā Marakatiā (See).

**ମର୍କଟି ହେବା**—ଦେ. କ୍ରି—ଦାନ୍ତ କର ମାକଡ଼ ପର ଖେଙ୍କାରିହେବା—Markati hebā To grin and fret like an ape. ରେଗେ দান্ত খিঁচান दाँतकीचकीचाना

**ମର୍କଟୀ**—ସ. ବି. ସ୍ତ୍ରୀ—(ମର୍କଟ+ଈ)—୧ । ମାଈମାକଡ଼—1. A Markati female monkey. ୨ । ମାଈ ମାକଡ଼ସା—2. A female spider. ୩ । ବାଇଡଙ୍କ (ହ୍ର. ଶ)—3. Cowhage. ୪ । ଅପାମାର୍ଗ (ହ୍ର. ଶ) (ଦେଖ)—4. Apāmārga (See). ୫ । ଅଜାମୋଦା (ହ୍ର. ଶ) (ଦେଖ)—5. Ajāmodā (See). ୬ । ଏକ ପ୍ରକାର କରଞ୍ଜ (ହ୍ର. ଶ)—6. A kind of Karañja tree. ଦେ. ବି. ସ୍ତ୍ରୀ—ଅସୁନ୍ଦରୀ ଓ କୃଶା ସ୍ତ୍ରୀ—A thin and ugly-looking woman.

**ମର୍କଟେନ୍ଦୁ**—ସ. ବି—କୋଚିଲା (ହ୍ର. ଶ) Markatendu Nux Vomica.

**ମର୍କତ**—ଦେ. ବି (ସ ମରକତ)—ମରକତ (ଦେଖ)—Markata मर्कत मकत Marakata (See). (ଉ—ମୁକୁତା ମର୍କତ ହେମ-ବିରଚିତ କମ ସ୍ୱେ । ପ୍ରାଚୀ. ଉଦ୍ଧବମଞ୍ଜରୀ ।)

**ମର୍କର**—ସ. ବି—ଭୃଙ୍ଗରାଜ (ଦେଖ) (ହ୍ର. ଶ) Markara Bhrungarāja (See).

**ମର୍କରା**—ସ.ବି.ସ୍ତ୍ରୀ (ମର୍କ. ଧାତୁ+କର୍ମ.ଅର+ଆ)—୧ । ଦରୀ; ଗୁହା—Markarā 1. Cave. ୨ । ଭାଣ୍ଡ; ପାତ୍ର—2. Receptacle. ୩ । ବନ୍ଧ୍ୟା ସ୍ତ୍ରୀ—3. A barren woman. ୪ । ସୁଡ଼ଙ୍ଗ (ହ୍ର. ଶ)—4. A subterranean passage.

**ମର୍ଗେଜ୍**—ବୈଦେ. ବି (ଇଂ. ମର୍ଟ୍ଗେଜ୍; ମର୍ଗେଜ୍ରୂପେ ଉଚ୍ଚାରିତ)—Margej (କଚରଥ)—ସମ୍ପତ୍ତି ବନ୍ଧକ—Mortgage. মর্গেজ, মর্গিজ मर्गेज, बन्धक (ମର୍ଟ୍ଗେଜ୍—ଅନ୍ୟରୂପ)

**ମର୍ଚ୍ଛା**—ବୈଦେ. ବି—ମରିଚ (ଦେଖ) Marchhā Marichā (See).

**ମର୍ଡ଼ା**—ଦେ. ବି—ଜଙ୍ଗଲରେ ବଢ଼ୁ ପାହାଡ଼ୀ ଗୁଳ୍ମ ବିଶେଷ—Marrdā Bridelia Montana (plant);

**ମର୍ତ୍ତ**—ସ. ବି (ମୃ. ଧାତୁ ମରିବା+କର୍ମ. ତ; ଯେଉଁଠାରେ ଜୀବମାନେ Martta ମରନ୍ତି)—୧ । ଭୂଲୋକ; ପୃଥିବୀ—1. The earth; the world. ୨ । (+କର୍ତ୍ତୃ ତ)ମାନବ; ମନୁଷ୍ୟ—2. Man. ୩ । ମାନବ ଜାତି—3. The mankind. ଦେ. ବିଣ—୧ । ନଶ୍ୱର; ମରଣଶୀଳ—1 Mortal; subject to decay. ୨ । ଅନିତ୍ୟ—2. Temporal. ବୈଦେ. ବି বার (ଫା. ମରତବା)—ଥର; ବାର—Time. (ଯଥା—मरतबा ମୁଁ ତତେ ଏ କଥା ୩ ମର୍ତ୍ତ କହିଲିଣି ।)

**ମର୍ତ୍ତ(ର୍ତ୍ତ୍ୟ) ଧର୍ମ**—ସ. ବି (ମର୍ତ୍ତ୍ୟ+ଧର୍ମ)—୧ । ମାନବ ଜୀବନର ସହଜ Martta(rttya) dharma ଗୁଣ—1. One of the attributes of man. ୨ । ମରଣଶୀଳତା; ନଶ୍ୱରତା—2. Mortality (Apte).

**ମର୍ତ୍ତ(ର୍ତ୍ତ୍ୟ) ଧର୍ମା**—ସ. ବିଣ (ମର୍ତ୍ତ୍ୟ+ଧର୍ମନ୍, ୧ମା. ଏକ)—Martta[rttya] dharmā ୧ । ମରଣଶୀଳ—1. Mortal. ୨ । ଅନିତ୍ୟ—2. Temporal. ୩ । ମନୁଷ୍ୟ ଧର୍ମୀ—3. Having the attributes of the mortal man.

**ମର୍ତ୍ତବ୍ୟ**—ସ. ବିଣ (ମୃ. ଧାତୁ+ଶୀଳାର୍ଥେ. ତବ୍ୟ)—୧ । ମରଣଶୀଳ—Marttabya 1. Liable to death. ୨ । ମରିବା ଯୋଗ୍ୟ—[ମର୍ତ୍ତବ୍ୟା—ସ୍ତ୍ରୀ] 2. Deserving death. ସ. ବି (+ଭାବ. ତବ୍ୟ)—ମରଣ; ମୃତ୍ୟୁ—Death.

ମର୍ତ୍ତ୍ୟ ଭାବ—ସଂ. ବି ( ୬ଷ୍ଠୀ ତତ୍ )—୧ । ମନୁଷ୍ୟ ପ୍ରକୃତି—
Martta bhāba 1. Human nature (Apte).
୨ । ମନୁଷ୍ୟ ପଣ—2. Humanity; manliness.

ମର୍ତ୍ତ୍ୟ[ର୍ତ୍ତ୍ୟ] ଭୁବନ—ସଂ. ବି (ମ ପ. ଲୋ; କର୍ମ୍ମ ୬ଷ୍ଠୀ ତତ୍)—ପୃଥିବୀ—
Martta(rttya) bhubana The earth (Apte).
[ମର୍ତ୍ତ୍ୟ(ର୍ତ୍ତ୍ୟ) ଲୋକ—ଅନ୍ୟରୂପ]

ମର୍ତ୍ତ୍ୟମହିତ—ସଂ ବି (୩ୟା ତତ୍; ମର୍ତ୍ତ୍ୟ+ମହିତ=ପୂଜିତ)-ଦେବ—
Martta mahita A god; a deity.

ମର୍ତ୍ତ୍ୟ(ର୍ତ୍ତ୍ୟ) ମୁଖ—ସଂ. ବି. ପୁଂ (ବହୁବ୍ରୀହି. ଏମାନଙ୍କର ମନୁଷ୍ୟପରି ମୁଖ
Martta(rttya) mukha ଓ ପଶୁପରି ଦେହ ଥିବାରୁ )—
କିନ୍ନର—A class of heavenly choristers with a human face and beastly body; satyr

ମର୍ତ୍ତୁକାମ—ସଂ. ବିଣ. ପୁଂ [ସଂ. ମର୍ତ୍ତୁଂ=ମରିବାକୁ+କାମ]—ମରିବାକୁ
Marttukāma ଅଭିଳାଷୀ—Wishing to die.
(ମର୍ତ୍ତୁକାମା - ସ୍ତ୍ରୀ)

ମର୍ତ୍ତ୍ୟ—ସଂ. ବି (ମୃ ଧାତୁ+କର୍ତ୍ତୃ. ତ+ଯ)—୧ । ମର୍ତ୍ତ୍ୟ ( ଦେଖ ) -
Marttya 1. Martta ( See ). ୨ । ଶରୀର; ଦେହ—
मर्त्तमान कला 2. Body (Apte). ୩ । ଅମୃତ ପାଣି କଦଳୀ;
अमृतबान् ଏକ ପ୍ରକାର ସ୍ଥୂଳ ଓ ସ୍ୱାଦୁ କଦଳୀ—3. A kind of excellent ripe banana; martaban banana.
[ ଦ୍ର—ଏହି କଦଳୀ ପାଚିଲେ ହଳଦିଆ ହୁଏ ଓ ଓ ଏହା ଚମ୍ପା କଦଳୀଠାରୁ ବଡ଼ ।] ସଂ. ବିଣ—ମର୍ତ୍ତ୍ୟ
(ଦେଖ) - Martta ( See).

ମର୍ତ୍ତ୍ୟ କଦଳୀ—ସଂ. ବି—ମର୍ତ୍ତ୍ୟ ୩ ( ଦେଖ )—
Marttya kadaḻi Marttya 3 ( See )

ମର୍ତ୍ତ୍ୟ ଲୀଳା—ସଂ. ବି ( ୬ଷ୍ଠୀ ତତ୍ ବା ୭ମୀ ତତ୍ )—ମାନବ ଲୀଳା;
Marttya līḻā ସଂସାରରେ ଜନ୍ମ ଲାଭ କରି ମୃତ୍ୟୁ ପର୍ଯ୍ୟନ୍ତ ବଞ୍ଚିବା
ରୂପ ଖେଳ—Worldly events of a man's life, birth and life till death.

ମର୍ତ୍ତ୍ୟ ଲୀଳା ସଂବରଣ—ସଂ. ବି (୬ଷ୍ଠୀ ତତ୍)—ମୃତ୍ୟୁ—
Marttya līḻā sambaraṇa Death.

ମର୍ତ୍ତ୍ୟ ଲୋକ—ସଂ. ବି—୧ । ଭୂଲୋକ; ପୃଥିବୀ - 1. The earth.
Marttya loka ୨ । ସମସ୍ତ ମାନବ ଜାତି—2. The mankind; humanity.
(ମର୍ତ୍ତ୍ୟ ଜଗତ୍—ଅନ୍ୟରୂପ)

ମର୍ଦ୍ଦ—ସଂ. ବି ( ମୃଦ୍ ଧାତୁ=ମଳିବା+ଭାବ. ଅ )—୧ । ପେଡ଼ିବା;
Mardda ପିଷ୍ଟ କରଣ; ପେଷଣ; ଦଳିବା; ପେଷିବା; ଦଳନ;
मला मर्दना ମଳିବା—1. Trampling; thrashing; crushing; bruising, ୨ । ଚୂରିବା—
2. Grinding; pounding ୩ । ସମ୍ବାହନ;
ଘଷିବା—3. Robbing; shampooing. ୪ ।
ଚିପିବା; ଚିପିବା—4. Sqeezing; pressing.
मर्द मर्द ବୈଦେ. ବି. ଓ ବିଣ ପୁଂ (ଫା. ମର୍ଦ୍ଦ; ତୁଳ. ସଂ. ମର୍ତ୍ତ୍ୟ)—
ମରଦ ଇତ୍ୟାଦି ( ଦେଖ )—Marada etc. (See)
[ମାଈ, ମାଈ, ମାଈକିନିଆ(ଆଁ)—ସ୍ତ୍ରୀ] (ମର୍ଦ୍ଦ—ଅନ୍ୟରୂପ)

ମର୍ଦ୍ଦକ—ସଂ.ବିଣ, ପୁଂ (ମୃଦ୍ ଧାତୁ+କର୍ତ୍ତୃ. ଅକ)—୧ । ଦଳନକାରୀ—
Marddaka 1. Crushing. ୨ । ତେଲ ଆଦି ଯେ ଅନ୍ୟର
(ମର୍ଦ୍ଦିକା, ମର୍ଦ୍ଦିନୀ—ସ୍ତ୍ରୀ) ଦେହରେ ମର୍ଦ୍ଦନ କରେ—2. Anointing; shampooing.
(ମର୍ଦ୍ଦୀ—ଅନ୍ୟରୂପ)

ମର୍ଦ୍ଦଗାଜି—ଦେ. ବି ପୁଂ-୧ । କ୍ଷତ୍ରିୟମାନଙ୍କର ରାଜଦତ୍ତ ଉପାଧିବିଶେଷ—
Marddagāji 1. A title bestowed by kings on a
मर्द मर्द distinguished warrior. ୨ । ନାମ ବିଶେଷ—
2. A name given to males. ଦେ. ବିଣ-ବାହାଦୁର;
ବୀର—Heroic; valiant. (ଉ—ଅଗ, ସୁନା ପାଗ ! ହି, ମର୍ଦ୍ଦଗାଜି! ପଢ଼, ଗୁହ ପୋଛ ! ଶିଶୁରଞ୍ଜନ ଗୀତ ।)

ମର୍ଦ୍ଦଗାଜି ପାଲା—ଦେ. ବି—ସତ୍ୟନାରାୟଣ ପାଲାରେ ବର୍ଣ୍ଣିତ ଗୋଟିଏ
Marddagāji pālā ରାଜପୁତ୍ରର ଗଳ୍ପ—One of the ballads sung in the Satyanārāyaṇa Pālā, describing the story of a prince.
[ ଦ୍ର—ଏହା ଦୁଇଟି ଯଥା—୧. ମର୍ଦ୍ଦଗାଜି ଜନ୍ମ ପାଲା
୨. ମର୍ଦ୍ଦଗାଜି ବିଭା ପାଲା ।]

ମର୍ଦ୍ଦନ—ସଂ. ବି (ମୃଦ୍ ଧାତୁ+ଭାବ. ଅନ)—ମର୍ଦ୍ଦ ( ଦେଖ )
Marddana Mardda ( See )
ପ୍ରାଦେ. (ଗଡ଼ଜାତ) ବି—ତେଲ ମର୍ଦ୍ଦନ; ସ୍ନାନ ପୂର୍ବରୁ
ତୈଳାଭ୍ୟଙ୍ଗ—Anointing oil on the body before bath. (ଉ—ବର୍ଷା କୋହିଲା ମର୍ଦ୍ଦନ ମାରଣା, ବେଗେ ଗଳିତ ନ ଯାଇ ଏ ଜଣା । ଉପେ. ଲାବଣ୍ୟବତୀ ।)

ମର୍ଦ୍ଦ(ର୍ଦ୍ଦ)ନ ରାଇ(ୟ,ଏ)—ଦେ.ବି—ଭଣ୍ଡାରୀମାନଙ୍କୁ ରାଜପ୍ରଦତ୍ତ ଉପାଧି-
Mardda(rda)na rāi(ya,e) ବିଶେଷ—A title conferred on barbers by the Chiefs of Orissa.
ମର୍ଦ୍ଦନିଆଁ } ଅନ୍ୟରୂପ
ମର୍ଦ୍ଦନ ସିଂହ }

ମର୍ଦ୍ଦ(ର୍ଦ୍ଦ)ନିଆ(ଆଁ)—ଦେ ବିଣ ଓ ବି—ମରଦନିଆ ( ଦେଖ )
Mardda(rda)niā(āṅ) Maradaniā ( See )

ମର୍ଦ୍ଦ(ର୍ଦ୍ଦ)ରାଜ—ଦେ. ବି—ଉତ୍କଳର କ୍ଷତ୍ରିୟ ଓ ରାଜାମାନଙ୍କର ବଂଶଗତ
Mardda(rda)rāja ଉପାଧି ବିଶେଷ—One of the family-titles of some kings and Kshatriyas of Orissa. [ଦ୍ର—କେତେକ ରାଜ ବଂଶଙ୍କ ଉପାଧି—
ହିନ୍ଦୋଳ—ମର୍ଦ୍ଦରାଜ ଜଗଦେବ
ଖଣ୍ଡପଡ଼ା—ମର୍ଦ୍ଦରାଜ ଭ୍ରମରବର
ନୀଳଗିରି—ମର୍ଦ୍ଦରାଜ ହରିଚନ୍ଦନ
ଖଲ୍ଲିକୋଟ—ମର୍ଦ୍ଦରାଜ ଦେବ ।]

ମର୍ଦ୍ଦଳ—ସଂ. ବି (ମର୍ଦ୍ଦ=ମର୍ଦ୍ଦନ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ.
Marddaḻa ଅ)—ମାଦଳ; ଆନଦ୍ଧ ବାଦ୍ୟଯନ୍ତ୍ର ବିଶେଷ; ମୃଦଙ୍ଗ;
ପଖୋଜ—A drum covered over with skin and struck at both ends.
[ଦ୍ର—ଦୁଇ ହାତ ଦ୍ୱାରା ଏହାର ଦୁଇ ପାଖରେ ଆଘାତ କରାଯାଏ ।]

ମର୍ଦ୍ଦା(ର୍ଦ୍ଦା)—ବୈଦେ.ବିଣ ପୁଂ (ଫା.ମର୍ଦ୍ଦ)—ଇତର ଜୀବ ଜାତିର ପୁରୁଷ
Marddā(rdā) ଜୀବ—Male (of an animal).
मर्द्दा, मद्दा मर्द (ମାଈ—ସ୍ତ୍ରୀ)

**ମର୍ଦ୍ଦିତ**—ସ. ବି. ( ମୃଦ୍ ଧାତୁ ଣିଚ ମର୍ଦ୍ଦି ଧାତୁ+କର୍ମ. ତ )—
Marddita ୧ । ପିଷ୍ଟ—1. Pounded; bruised. ୨। ଦଳିତ —2. Crushed; trampled. ୩ । ଚୂର୍ଣ୍ଣିତ— 3. Powdered.

**ମର୍ଦ୍ଦି(ର୍ଦ୍ଦି)ବା**—ଦେ. କ୍ରି (ସ. ମୃଦ ଧାତୁ)—ଦଳିବା—To crush.
Marddi(rddi)bā (ଉ—ଦୁର୍ମ୍ମଦ ରଣ ରଙ୍ଗେ ଯାଇ, ଯାଦେ
ମର୍ଦ୍ଦନ କରା मर्दन करना, मरदना ମର୍ଦ୍ଦିଲ୍ଲ ଦୃଢ଼ାସୁର ।
ଜଗନ୍ନାଥ. ଭାଗବତ ।)

**ମର୍ଫିଆ**—ବୈଦେ ବି (ଇଂ. ମର୍ଫିଆ)—ରାସାୟନିକ ପ୍ରକ୍ରିୟାରେ ଅଫିମରୁ
Marphiā ପ୍ରସ୍ତୁତ ଧଳା ଗୁଣ୍ଡା ଓ ଅରକ—Morphia.
মরফিআ मर्फ़िया [ଦ୍ର—ଏହା ଔଷଧ, ବେଦନାହାରକ ଓ ମାଦକ ରୂପେ ବ୍ୟବହୃତ ହୁଏ ।]

**ମର୍ବୁ(ର୍ଭୁ)ଦ**—ଦେ. ବି ଓ ବିଣ (ସ. ଅର୍ବୁଦ)—୧୦ କୋଟି ସଂଖ୍ୟା—
Marbu(rbhu)da 100 millions. ଦେ. ବି—ଗଞ୍ଜିଫା ବା
(ମର୍ଭୁଡ଼—ଅନ୍ୟରୂପ) ଦଶ ଖେଳର କ୍ରମ ବିଶେଷ—A step in
मर्बद the game of country cards.

**ମର୍ମ (ର୍ମ୍ମ)**—ସ. ବି (ମୃ ଧାତୁ=ମରିବା+ଅପାଦାନ ମନ୍; ୧ମା. ୧ବ;
Marma(rmma) ପ୍ରା. ମମ୍ମ)—୧ । ପ୍ରାଣ ସ୍ଥାନ; ଶରୀରର ଅତି ସୁକୁମାର ସନ୍ଧି ସ୍ଥାନ; ଜୀବ ସ୍ଥାନ; ଶରୀରର ଯେଉଁଠାରେ ଆଘାତ ଲାଗିଲେ ପ୍ରାଣ ଛାଡ଼ିଯାଏ—1. A vulnerable part of the body; most vital parts of the body. ୨ । ଶିରା, ସ୍ନାୟୁ, ସନ୍ଧି, ଅସ୍ଥି ଓ ମାଂସାଦିର ଏକତ୍ର ମିଳନ ସ୍ଥାନ—2. The points in the body where veins, muscles, joints, bones and flesh meet. [ଦ୍ର—ଏହି ମର୍ମ୍ମସ୍ଥାନମାନଙ୍କରେ ଜୀବର ପ୍ରାଣ ବିଶେଷ ଭାବରେ ଅବସ୍ଥିତ କରେ । ଏଠାରେ ଆଘାତ ଲାଗିଲେ ମର୍ମାନ୍ତିକ କଷ୍ଟ ହୁଏ । ଦେହ ମଧ୍ୟରେ ୧୦୭ ଟି ମର୍ମ୍ମ ଅଛି ଯଥା—ମାଂସରେ ୧୧, ଅସ୍ଥିରେ ୮ ଟି, ସନ୍ଧିରେ ୨୦, ସ୍ନାୟୁରେ ୨୭ ଓ ଶିରାରେ ୪୧ । ଏଥି ମଧ୍ୟରୁ ପାଦଦ୍ୱୟରେ ୨୨, ହସ୍ତଦ୍ୱୟରେ ୨୨, ବକ୍ଷରେ ଓ ଉଦରରେ ୧୨, ପୃଷ୍ଠରେ ୧୪, ଏବଂ ଗ୍ରୀବାରେ ଓ ତଦୂର୍ଦ୍ଧ୍ୱରେ ୩୭ଟି । ମର୍ମ୍ମ ୫ ପ୍ରକାରର ଯଥା—
୧. ସଦ୍ୟ ପ୍ରାଣହର—ଏଥିରେ ଆଘାତ ଲାଗିଲେ ତତ୍କ୍ଷଣାତ୍ ମୃତ୍ୟୁ ଘଟେ, ଏଥିର ସଂଖ୍ୟା ୧୯ । ୨. କାଳାନ୍ତର ପ୍ରାଣହର—ଏଥିରେ ଆଘାତ ହେଲେ କିଛି ଦିନ ପରେ ମୃତ୍ୟୁ ଘଟେ, ଏଥିର ସଂଖ୍ୟା ୩୩ । ୩. ବୈକଲ୍ୟକର—ଏଥିରେ ଆଘାତ ଲାଗିଲେ ଅଙ୍ଗ ବିକଳ ହୁଏ, ଏଥିର ସଂଖ୍ୟା ୪୪ । ୪. ପୀଡ଼ାକର—ଏଥିରେ ଆଘାତ ଲାଗିଲେ ଗୁରୁତର ପୀଡ଼ା ଜନ୍ମେ, ଏଥିର ସଂଖ୍ୟା ୮ । ୫. ବିଶଲ୍ୟଘ୍ନ—ଏଥିରେ ଶଲ୍ୟାଦି ବିଦ୍ଧ ହେଲେ ତାହା ଉତ୍ପାଟନ ମାତ୍ରକେ ମୃତ୍ୟୁ ଘଟେ, ଏଥିର ସଂଖ୍ୟା ୩—ହି. ଶ । ] ୩ । ଅନ୍ତର; ଅନ୍ତରର ଭିତର; ହୃଦୟ—3. The heart; the corner or recess of the heart. ୪ । ଗୁପ୍ତ କଥା; ରହସ୍ୟ; ଗୂଢ଼ କଥା—4. Secret; key to a matter ୫ । ସାରାଂଶ; ତତ୍ତ୍ୱ—5. Essence; truth of a matter. ୬ । ଅଭିପ୍ରାୟ; ତାତ୍ପର୍ଯ୍ୟ—6. Gist; drift. ଦେ. ବି. ଓ ବିଣ—ମରମ ( ଦେଖ )—
মরম मरम Marama (See) [ଉ—ସବୁରି ସଙ୍ଗେ ମର୍ମେ ମିଶି, ଖୋଜଇ ସବୁ ଘରେ ପଶି—ଭୂପତି. ପ୍ରେମପଞ୍ଚାମୃତ ।—ମର୍ମ ସେ କହୁ ନବ ହୋଇ—ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।] ୭ । ପାରିବାରିକ ବା ବ୍ୟକ୍ତିଗତ କଳଙ୍କ—7. Scandal; family-secret.

**ମର୍ମ କଥା**—ସ. ବି—ମରମ କଥା ( ଦେଖ )
Marma kathā Marama kathā ( See )

**ମର୍ମ କାତରତା**—ସ. ବି ( ଲକ୍ଷଣାର୍ଥ )—ଅନ୍ତରର ବ୍ୟାକୁଳତା—
Marma kātaratā ( figurative ) The bleeding of a person's heart.

**ମର୍ମକୀଲ**—ସ. ବି—ସ୍ୱାମୀ—
Marmakila Husband ( Apte ).

**ମର୍ମ ଗ୍ରହଣ**—ସ. ବି (୬ଷ୍ଠୀ ତତ୍)—ତାତ୍ପର୍ଯ୍ୟାବଧାରଣ; ରହସ୍ୟବୋଧ—
Marma grahaṇa Understanding the sense or secret of a matter.

**ମର୍ମଗ୍ରାହୀ**—ସ. ବିଣ. ପୁଂ ( ମର୍ମ+ଗ୍ରାହିନ୍; ୧ମା. ୧ବ )—ଯେ କଥାର
Marmagrāhī ତାତ୍ପର୍ଯ୍ୟ ଗ୍ରହଣ କରେ—Grasping the
( ମର୍ମଗ୍ରାହିଣୀ—ସ୍ତ୍ରୀ ) purport of a thing; able to
[ମର୍ମଗ୍ରାହକତା(ତ୍ୱ)—ବି] understand the gist of a matter.

**ମର୍ମଘାତ**—ସ. ବି(୬ଷ୍ଠୀ ତତ୍)—୧ । ପ୍ରାଣଘାତ; ହତ୍ୟା—1. Murder.
Marmaghāta ୨ । ହୃଦୟରେ ଦୁଃଖ ଦେବା—2. Afflicting
ମର୍ମଘାତନ, ମର୍ମଚ୍ଛେଦନ, ମର୍ମପ୍ରହାର, ମର୍ମଭେଦନ } ଅନ୍ୟରୂପ one's mind. ୩ । ମର୍ମସ୍ଥଳରେ ଆଘାତ ବା ଚୋଟ—3. Striking or a blow at a vital part.

**ମର୍ମଘାତୀ**—ସ. ବିଣ. ପୁଂ ( ମର୍ମ+ହନ୍ ଧାତୁ+କର୍ତ୍ତୃ. ଇନ୍; ୧ମା.
Marmaghātī ୧ବ )—୧ । ମର୍ମଭେଦୀ; ହୃଦୟରେ ବ୍ୟଥାଦାୟକ—1. Cutting to the quick. ୨ । ପ୍ରାଣଘାତୀ—
ମର୍ମଘାତିନୀ, ମର୍ମଚ୍ଛେଦିକା, ମର୍ମ ଚ୍ଛେଦନୀ } ସ୍ତ୍ରୀ
( ମର୍ମଘାତକ, ମର୍ମଚ୍ଛେଦକ, ମର୍ମଚ୍ଛେଦୀ, ମର୍ମପ୍ରହାରକ— 2. Mortal. ଅନ୍ୟରୂପ ) [ମର୍ମଘାତ(ତି, ତେ)କା—ଗ୍ରାମ୍ୟରୂପ]

**ମର୍ମଜ୍ଞ**—ସ. ବିଣ, ପୁଂ (ମର୍ମ+ଜ୍ଞା. ଧାତୁ=କର୍ତ୍ତୃ. ଅ)—୧ । ରହସ୍ୟଜ୍ଞ;
Marmajña ତତ୍ତ୍ୱଜ୍ଞ—1. Knowing the secret. ୨ ।
ମର୍ମଗ, ମର୍ମବେତ୍ତା } ଅନ୍ୟରୂପ ତାତ୍ପର୍ଯ୍ୟଗ୍ରାହୀ—2. Discerning the hidden meaning. ସ. ବି. ପୁଂ—
(ମର୍ମଜ୍ଞା, ମର୍ମଗା, ମର୍ମବେଦିତ୍ରୀ—ସ୍ତ୍ରୀ) A learned man.

**ମର୍ମଚର**—ସ. ବି ( ମର୍ମ+ଚର ଧାତୁ+କର୍ତ୍ତୃ. ଅ )—ହୃଦୟ—
Marmachara The heart ( Apte).

**ମର୍ମନ୍ତୁଦ**—ସ. ବିଣ ( ଉପପଦ ତତ୍ପୁରୁଷ; ମର୍ମ+ତୁଦ୍ ଧାତୁ=ପୀଡ଼ା ଦେବା+କର୍ତ୍ତୃ. ଅ )—ହୃଦୟବିଦାରକ—
Marmatuda Heart-rending.
( ମର୍ମନ୍ତୁଦା—ସ୍ତ୍ରୀ )

ମର୍ମନ୍ତୁଦ—ଦେ. ବଣ ( ହୃଦ୍‌ନୁଦ ଓ ଧନଞ୍ଜୟ ଆଦି କେତେକ ଶବ୍ଦ Marmantuda ଅନୁକରଣରେ ଆଧୁନିକ ଲେଖକମାନଙ୍କଦ୍ୱାରା ମର୍ମନ୍ତୁଦ ବ୍ୟବହୃତ, କିନ୍ତୁ ଏହା ବ୍ୟାକରଣ ଶୁଦ୍ଧ ନୁହେଁ )—ମର୍ମନୁଦ (ମର୍ମନ୍ତୁଦା—ସ୍ତ୍ରୀ) ( ଦେଖ )—Marmatuda ( See )

ମର୍ମ ପୀଡ଼କ—ସ. ବଣ, ପୁଂ (ମର୍ମ+ପୀଡ଼କ)—ଯାହା ମର୍ମରେ ବା ହୃଦ- Marma pirdaka ୟରେ ବେଦନା ଦିଏ—Heart-rending. ( ମର୍ମପୀଡ଼ାଦାୟକ, ମର୍ମପୀଡ଼ାଦାୟୀ—ଅନ୍ୟରୂପ ) [ ମର୍ମପୀଡ଼କା, ମର୍ମପୀଡ଼ାଦାୟିକା(ନୀ)—ସ୍ତ୍ରୀ ]

ମର୍ମପୀଡ଼ା—ସ. ବି—ମର୍ମବେଦନା—Marmapirdā Mental agony.

ମର୍ମ ପୀଡ଼ିତ—ସ. ବଣ. ପୁଂ ( ୭ମୀ ତତ୍ )—ମର୍ମାହତ ( ଦେଖ ) Marma pirdita Marmāhata ( See ) ( ମର୍ମପୀଡ଼ିତା—ସ୍ତ୍ରୀ )

ମର୍ମ ବଚନ—ସ. ବି ( ମ. ପ. ଲୋ; ମର୍ମଭେଦୀ ବାକ୍ୟ )—୧ । ମର୍ମ- Marma bachana ଭେଦୀ ବାକ୍ୟ; ଯେଉଁ ବାକ୍ୟଦ୍ୱାରା ମନୁଷ୍ୟର (ମର୍ମବାକ୍ୟ—ଅନ୍ୟରୂପ) ମନରେ ଅତ୍ୟନ୍ତ କଷ୍ଟ ହୁଏ—1. Heart-rending words. ୨ । ଗୁପ୍ତ କଥା; ରହସ୍ୟ—2. Secret.

ମର୍ମବିଦ୍—ସ. ବଣ. ପୁଂ ( ମର୍ମ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍ )—ମର୍ମଜ୍ଞ Marmabid ( ଦେଖ )—Marmajna ( See )

ମର୍ମବିଦ୍ଧ—ସ. ବଣ ପୁଂ (୭ମୀ ତତ୍)—ମର୍ମାହତ (ଦେଖ)—Marmā Marmabiddha (ମର୍ମବିଦ୍ଧା—ସ୍ତ୍ରୀ) hata ( See )

ମର୍ମ ବେଦନା—ସ. ବି ( ୭ମୀ ତତ୍; ମର୍ମ+ବେଦନା )—ଅନ୍ତରର Marma bedanā କ୍ଲେଶ—Mental agony. ( ମର୍ମବ୍ୟଥା, ମର୍ମଯନ୍ତ୍ରଣା—ଅନ୍ୟରୂପ )

ମର୍ମବେଦୀ—ସ. ବଣ. ପୁଂ—ମର୍ମଜ୍ଞ (ଦେଖ)—Marmajna (See) Marmabedi ( ମର୍ମବେଦିନୀ—ସ୍ତ୍ରୀ )

ମର୍ମଭେଦ—ସ. ବି—୧ । ଗୁପ୍ତ ରହସ୍ୟର ଅବଧାରଣ—1. Penetra- Marmabheda tion into a secret. ୨ । ଦୁଃଖରେ ( ମର୍ମବିଦାରଣ—ଅନ୍ୟରୂପ ) ଛାତି ଫାଟିଯିବା; ହୃଦୟ ବେଦନା—2. The breaking or bursting of the heart. ୩ । ଶର ଆଦି ମର୍ମ ସ୍ଥଳରେ ପୂରିବା—3. The piercing of a vital part of the body by a weapon.

ମର୍ମଭେଦୀ—ସ. ବଣ. ପୁଂ (ମର୍ମ+ଭିଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ) Marmabhedi ୧ । ମର୍ମରେ ବ୍ୟଥାଦାୟକ—1. Cutting ( ମର୍ମଭିଦ୍—ଅନ୍ୟରୂପ ) one to the quick; heart- ( ମର୍ମଭେଦିନୀ—ସ୍ତ୍ରୀ ) rending; breaking one's heart. ୨ । ଜୀବସ୍ଥାନକୁ ଭେଦକାରୀ—2. Piercing a vital part of the body.

ମର୍ମର—ସ. ବି( ମୃ. ଧାତୁ+କର୍ତ୍ତୃ. ଅର; 'ମ' ଆଗମ )—୧ । ପତ୍ରାଦିର Marmara ବାୟୁ ହିଲ୍ଲୋଳାଦିଜନିତ ଅବ୍ୟକ୍ତ ଧ୍ୱନି—1. The rustling or crackling sound of leaves, ଶଙ୍ଖମର୍ମର, मार्बेल when trodden or wafted by breeze

संगमर्मर ବୈଦେ. ବି (ଇଂ. ମାର୍ବଲ୍)—ମାର୍ବଲ୍ ପଥର; ଶଙ୍ଖମର୍ମର ପଥର—Marble. [ ଦ୍ର—ଭାରତର ଜବଲପୁର ଓ ରାଜପୁତନାର ମର୍ମର ପ୍ରସ୍ତର ପ୍ରସିଦ୍ଧ । ଧଳା, କଳା ଓ ହଳଦିଆ ଓ ଛିଟିକା ଆଦି ନାନାରଙ୍ଗର ମର୍ମର ପଥର ଅଛି । ଆଗ୍ରାର ତାଜମହଲ ମର୍ମର ପଥରରେ ନିର୍ମିତ । ଆଗ୍ରାରେ ଏହି ପଥରର ବାସନ ମିଳେ । ଇଟାଲିରେ ଉତ୍କୃଷ୍ଟ ମର୍ମର ମିଳେ । ]ସଂ. ବଣ—ମର୍ମର ଶବ୍ଦକାରକ—Making मर्मर सागर a rustling sound. ବୈଦେ. ବି ( ନାମ )—

मर्मर सागर ଏହି ନାମର ସାଗର—The Sea of Marmora; an inland sea to the southwest of the Black Sea. [ ଦ୍ର—ଏହି ସାଗର ଇଉରୋପୀୟ ତୁରସ୍କ ଓ ଏସିଆଟିକ ତୁରସ୍କ ମଧ୍ୟରେ ଅବସ୍ଥିତ । ଏହି ବାଟେ କୃଷ୍ଣସାଗର ( Black Sea )କୁ ଭୂମଧ୍ୟସାଗରରୁ ଯିବା ଆସିବା କରାଯାଏ; ଏହା କୃଷ୍ଣସାଗରର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ; ଏହାର ଉତ୍ତର ପୂର୍ବ କୋଣରେ ଇଉରୋପୀୟ ତୁରସ୍କର ରାଜଧାନୀ କନଷ୍ଟାଣ୍ଟିନୋପଲ୍ ଅବସ୍ଥିତ । ] ଦେ. ବଣ—

मरमर मरतेदम, मरताहुआ ମୁମୂର୍ଷୁ—Dying.

ମର୍ମରିବା—ଦେ. (ଯଦ୍ୟ) କ୍ରି—(ସ. ମର୍ମର)—ମର୍ମର ଧ୍ୱନି କରିବା—Marmaribā मर्मरा मरमराना To rustle. [ଉ—ବୌରଭ ହର, ତରୁ ପଟଳ ମର୍ମରି । ଶ୍ରୀଧାନାଥ. ମେଘଦୂତ ।]

ମର୍ମରୀ—ସ. ବି—(ମର୍ମର+ଈ)—୧ । ଏକ ପ୍ରକାର ଦେବଦାରୁ—Marmari A kind of pine tree (Apte). ୨ । ହଳଦୀ—2. Turmeric (Apte).

ମର୍ମରୀକ—ସ. ବି (ମର୍ମର+ଈକ)—୧ । ଗରିବ ଲୋକ—1. A Marmarika poor man; a pauper ( Apte ). (ମର୍ମରୀକା—ସ୍ତ୍ରୀ) ୨ । ଖଳ ବ୍ୟକ୍ତି—2. A wicked man. (Apte).

ମର୍ମ ସ୍ଥଳ—ସ. ବି—୧ । ଦେହର ଯାହାତିକ ସନ୍ଧିସ୍ଥଳ—1. A Marma sthala vital or most sensitive (ମର୍ମସ୍ଥାନ—ଅନ୍ୟରୂପ) part of the body. ୨ । ହୃଦୟ; ଅନ୍ତର—2. The heart; the inmost recess of the heart. ଦେ, ବି—ଗୁପ୍ତସ୍ଥାନ—Secret place. [ଉ—ସେ ନଗ୍ନ ତହିଁ ଲଜ୍ଜା ବଳ, ଗୁପତ ହେମ ମର୍ମ ସ୍ଥାନ । ଜଗନ୍ନାଥ. ଭାଗବତ ।]

ମର୍ମସ୍ପର୍ଶୀ—ସ. ବଣ (ମର୍ମ+ସ୍ପୃଶ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—Marma sparsi —୧ । ମର୍ମଭେଦୀ—1. Heart-rend- (ମର୍ମସ୍ପର୍ଶ; ମର୍ମସ୍ପୃକ୍—ଅନ୍ୟରୂପ) ing. ୨ । ହୃଦୟରେ ଦୟାର (ମର୍ମସ୍ପର୍ଶିନୀ, ମର୍ମସ୍ପୃଶା—ସ୍ତ୍ରୀ) ଉଦ୍ରେକକାରୀ—2. Pathetic; touching the heart.

ମର୍ମାଘାତ—ସ. ବି—(୭ମୀ ତତ୍)—୧ । ମର୍ମସ୍ଥଳରେ ଅଘାତ—Marmāghāta 1. A blow on a vital part of the body. ୨ । ହୃଦୟରେ ଜନିତ ବେଦନା—2. A wound in the heart.

ମର୍ମାନ୍ତ(ନ୍ତି)କ—ସ. ବିଣ ( ମର୍ମ+ଅନ୍ତକ; ଅନ୍ତକ=ଅନ୍ତର୍ଭେଦୀ; Marmānta (nti)ka ୬ଷ୍ଠୀ ତତ୍)—ମର୍ମଭେଦୀ; ହୃଦୟବିଦାରକ (ମର୍ମଗତ—ଅନ୍ୟରୂପ) Heart-rending; stinging to the quick.

ମର୍ମାନ୍ତ(ନ୍ତି)କ ବେଦନା—ସ. ବି—(କର୍ମଧା)—ହୃଦୟବିଦାରକ କଷ୍ଟ— Marmānta(nti)ka bedanā A sorrow that (ମର୍ମାନ୍ତକ ବ୍ୟଥା—ଅନ୍ୟରୂପ) rends the heart.

ମର୍ମାନ୍ୱେଷଣ—ସ. ବି—(୬ଷ୍ଠୀ ତତ୍; ମର୍ମ+ଅନ୍ୱେଷଣ )—୧ । Marmānweshana ଦେହର ମର୍ମ ସନ୍ଧାନ ଖୋଜିବା—(ମର୍ମାନୁସନ୍ଧାନ—ଅନ୍ୟରୂପ) 1. Probing the vital parts. (ମର୍ମାନ୍ୱେଷୀ, ମର୍ମାନୁସନ୍ଧାୟୀ—ବି. ପୁଂ) ୨ । ମନୁଷ୍ୟର ଦୁର୍ବଳତାର ଓ ଗୁପ୍ତ ବିଷୟର ଅନୁସନ୍ଧାନ—2. Seeking the weak or vulnerable points of a person.

ମର୍ମାବଧାରଣ—ସ. ବି (୬ଷ୍ଠୀତତ୍)—ସ୍ୱରୂପାର୍ଥ ନିର୍ଣ୍ଣୟ— Ascertainment of the real meaning or mysteries of a matter. Marmābadhārana

ମର୍ମାବରଣ—ସ. ବି—(୬ଷ୍ଠୀ ତତ୍; ମର୍ମ+ଆବରଣ) ସାଞ୍ଜୁ— Marmābarana A coat of mail; armour (Apte). (ମର୍ମତ୍ର, ମର୍ମତ୍ରାଣ—ଅନ୍ୟରୂପ)

ମର୍ମାର୍ଥ—ସ. ବି—୧ । ତାତ୍ପର୍ଯ୍ୟାର୍ଥ—1. Gist; hidden meaning; Marmārtha the long and short of a matter. ୨ । ପ୍ରକୃତ ତତ୍ତ୍ୱ; ସ୍ୱରୂପାର୍ଥ—2. The real meaning of a matter.

ମର୍ମାହତ—ସ. ବିଣ. ପୁଂ—(୭ମୀ ତତ୍)—୧ । ମର୍ମରେ ଆଘାତପ୍ରାପ୍ତ— Marmāhata 1. Mortally wounded; wounded at (ମର୍ମାହତା - ସ୍ତ୍ରୀ) a vulnerable part. ୨ । ଅନ୍ତରରେ ବେଦନାପ୍ରାପ୍ତ—2. Cut to the quick.

ମର୍ମିକ—ସ. ବିଣ. ପୁଂ—(ମର୍ମ+ଜ୍ଞାନାର୍ଥେ ଇକ;)—୧ । ମର୍ମଜ୍ଞ (ଦେଖ) Marmika 1. Marmajña (See) ୨ । ଗୂଢ଼ଜ୍ଞାନବାଦୀ (ମର୍ମୀ—ଅନ୍ୟରୂପ) —2. Mystic. (ମର୍ମିକା, ମର୍ମିଣୀ—ସ୍ତ୍ରୀ)

ମର୍ମୋଦ୍‌ଘାଟନ—ସ. ବି—(୬ଷ୍ଠୀ ତତ୍; ମର୍ମ+ଉଦ୍‌ଘାଟନ)—୧ । Marmodghātana ରହସ୍ୟଭେଦ—1. Diving into (ମର୍ମଭେଦ—ଅନ୍ୟରୂପ) secrets of a matter. ୨ । ସ୍ୱରୂପାର୍ଥ ପ୍ରକାଶ—2. The divulging of the inner meaning of a matter.

ମର୍ଯା(ର୍ଯ୍ୟା)—ସଂ. ବି—ସୀମା— Marjā(jyā) Limit; boundary (Apte)

ମର୍ଯ୍ୟାଦା—ସଂ. ବି—(ମର୍+ଆ+ଦା ଧାତୁ=ଦେବା+ଅ କର୍ମ+ସ୍ତ୍ରୀ. ଆ Marjyādā ; ମ ସ୍ଥାନରେ ନିପାତନ ସିଦ୍ଧ )—୧ । ଗୌରବ; ସମ୍ଭ୍ରମ;ସମ୍ମାନ—1. Respect; regard; honour. [ଉ—ମର୍ଯ୍ୟାଦା ଛାଡ଼ିଲେ ପୁରୁଷ ନାଶଏ । କୃଷ୍ଣସିଂହ. ମହାଭାରତ ସଭା ।] ୨ । ସୁନାମ—2. Reputation. ୩ । ସଦାଚାର; ସତ୍‌ପଥରେ ସ୍ଥିତି—3. Good conduct; propriety of conduct. ୪ । ନିୟମ—4. Rule. ୫ । ( ମର୍ଯ୍ୟା = ସୀମା + ଦା ଧାତୁ+କର୍ମ. ଅ)—ସୀମା—5. Boundary; limit; border. ୬ । ତଟ; କୂଳ—6. Shore. ୭ । ଶେଷ; ସମାପ୍ତି—7. End; termination ( Apte ). ୮ । ଚିହ୍ନ; କମ୍ପିବା ବିଶିଷ୍ଟ ଚିହ୍ନ—8. Mark; landmark (Apte]. ୯ । ନିର୍ଦ୍ଧାରିତ ବା ଅପରିବର୍ତ୍ତନୀୟ ସ୍ଥିତି—9. Fixed law; established rule (Apte). ୧୦ । ନୈତିକ ନିୟମ—10. Moral law (Apte). ୧୧ । ଚୁକ୍ତି-11 Contract; covenant.

ମର୍ଯ୍ୟାଦା ବିଦାଇ ଦେ. ବି—୧ । ଲୌକିକତା, ବେଭାର; ବିବାହାଦି ଉତ୍ସବରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଦିଆଯିବା ଉପଢୌକନ- 1. Presents given to guests invited on ceremonial occasion. ୨ । ନିମନ୍ତ୍ରିତ ବନ୍ଧୁଙ୍କୁ ସମ୍ମାନସ୍ୱରୂପ ଦିଆଯିବା ଲୁଗା—2. Cloth presented to invited guests.

ମର୍ଯ୍ୟାଦାକର—ସଂ. ବିଣ ( ମର୍ଯ୍ୟାଦା + କୃ. ଧାତୁ + କର୍ତ୍ତୃ. ଅ)— ସମ୍ମାନ- Marjyādākara ଜନକ—Honourable. ( ମର୍ଯ୍ୟାଦାଜନକ—ଅନ୍ୟରୂପ )

ମର୍ଯ୍ୟାଦା କରିବା—ଦେ. କ୍ରି—୧ । ସମ୍ମାନ ଦେଖାଇବା—1. To Marjyādā kariba respect. ୨ । ( ନିମନ୍ତ୍ରିତ ବନ୍ଧୁଙ୍କୁ ) ଉପଢୌକନ ଓ ସତ୍କାରଦ୍ୱାରା ସମ୍ମାନିତ କରିବା—2. To honour a guest with proper attention मर्यादा करना मर्य्यादा करना and presents.

ମର୍ଯ୍ୟାଦାକୁ ପୋଡ଼ି ଖାଇବା—ଦେ, କ୍ରି—କୁଳ ମର୍ଯ୍ୟାଦା ବା ସଦାଚାରକୁ Marjyādāku pordi khāibā ସମ୍ପୂର୍ଣ୍ଣରୂପେ ପାଶୋରିବା— মর্য্যাদা পুড়িয়ে খাওয়া To forget etiquette or famliy-custom entirely.

ମର୍ଯ୍ୟାଦାଗିରି—ସ, ବି ( ମ. ପ. ଲୋ. )—କୌଣସି ଦେଶର ସୀମାରେ Marjyādāgiri ଅବସ୍ଥିତ ପର୍ବତ—A mountain standing (ମର୍ଯ୍ୟାଦାଚଳ, ମର୍ଯ୍ୟାଦା ପର୍ବତ—ଅନ୍ୟରୂପ) on the frontier.

ମର୍ଯ୍ୟାଦାବନ୍ତ—ଦେ. ବିଣ—ମର୍ଯ୍ୟାଦାବାନ୍ (ଦେଖ)— Marjyādābanta Marjyādābān (See). मर्यादामन्त मर्य्यादाबन्त

ମର୍ଯ୍ୟାଦାବାନ୍—ସ ବିଣ ପୁଂ—୧ । ସମ୍ଭ୍ରାନ୍ତ—1. Respectable. Marjyādābān ୨ । ସମ୍ମାନିତ—2. Honoured. ୩ । ଯେ ସଦାଚାର ଅନୁସାରେ କାର୍ଯ୍ୟ କରେ—3. Respectful; acting according to approved custom.

ମର୍ଯ୍ୟାଦା ବିହୀନ—ସ. ବିଣ (୩ୟା ତତ୍)—୧ । ଅସମ୍ମାନିତ— Marjyādā bihina 1. Unhonoured; not treated with due respect. ୨ ।ଅସମ୍ମାନ ଦେଖାଇବା (ବ୍ୟକ୍ତି); ସମ୍ମାନରହିତ- 2. Disrespectful. ୩ । ସମ୍ଭ୍ରମହୀନ—3. Shorn of regard; disregarding. (ମର୍ଯ୍ୟାଦାରହିତ, ମର୍ଯ୍ୟାଦାହୀନ—ଅନ୍ୟରୂପ)

**ମର୍ଯ୍ୟାଦା ଲଂଘନ**—ସଂ. ବି ( ୬ଷ୍ଠୀ ତତ୍ )—ସଦାଚାରର ସୀମା ଅତିକ୍ରମ—Overstepping the limits of propriety or etiquette.
Marjyādā laṁghana
ମର୍ଯ୍ୟାଦାତିକ୍ରମ (କ୍ରମଣ) } ଅନ୍ୟରୂପ
ମର୍ଯ୍ୟାଦା ବ୍ୟତିକ୍ରମ

**ମର୍ଯ୍ୟାଦା ଲଂଘିବା**—ଦେ. କ୍ରି—ସଦାଚାରର ସୀମାକୁ ଅତିକ୍ରମ କରିବା—To overstep the boundary or limits of etiquette.
Marjyādā laṁghibā
मर्यादालंघन करना **मर्यादालांघना**
(ମର୍ଯ୍ୟାଦା ଅତିକ୍ରମ କରିବା—ଅନ୍ୟରୂପ)

**ମର୍ଯ୍ୟାଦାଶାଳୀ**—ସଂ. ବିଣ, ପୁଂ (ମର୍ଯ୍ୟାଦା+ଶାଳିନ୍)—ସମ୍ମାନ୍ତ—Respectable.
Marjyādāśāḻi
[ମର୍ଯ୍ୟାଦାଶାଳିନୀ—ସ୍ତ୍ରୀ]

**ମର୍ଯ୍ୟାଦାଶୀଳ**—ସଂ. ବିଣ. ପୁଂ (ବହୁବ୍ରୀହି)—ମର୍ଯ୍ୟାଦାବାନ୍ (ଦେଖ) Marjyādābān (See)
Marjyādāśiḻa
(ମର୍ଯ୍ୟାଦାଶୀଳା—ସ୍ତ୍ରୀ) (ମର୍ଯ୍ୟାଦାଶୀଳତା—ବିଶେଷ୍ୟ)

**ମର୍ଶ**—ସଂ. ବି (ମୃଶ୍. ଧାତୁ=ପରାମର୍ଶ କରିବା+ଭାବ. ଅ)—୧ । ମନ୍ତ୍ରଣା; ପରାମର୍ଶ—1. Consultation; deliberation. ୨ । ଉପଦେଶ—2. Advice. ୩ । ନାସ; ଯେଉଁ ବସ୍ତୁ ସୁଂଘିଲେ ଛିଙ୍କ ହୁଏ-3. A sternutatory (Apte). ୪ । ଘର୍ଷଣ; ଘଷିବା—4. Rubbing (Apte). ୫ । ଦେହରୁ ମଳ ଛଡ଼ାଇବା—5. Rubbing off dirt from the body. (Apte).
Marśa
(ମର୍ଶନ—ଅନ୍ୟରୂପ)

**ମର୍ଷଣ**—ସଂ. ବି (ମୃଷ୍. ଧାତୁ=କ୍ଷମା କରିବା+ଭାବ. ଅନ)—୧ । କ୍ଷମା କରିବା—1. Forgiveness. ୨ । ସହିବା; ସହନ—2. Fortitude, forbearance; endurance. ୩ । ନାଶନ—3. Destruction; ruination. ୪ । ଧୈର୍ଯ୍ୟ—4. Patience.
Marshaṇa
(ମର୍ଷ—ଅନ୍ୟରୂପ)

**ମର୍ଷଣୀୟ**—ସଂ. ବିଣ (ମୃଷ. ଧାତୁ+କର୍ମ. ଅନୀୟ)—କ୍ଷମ୍ୟ; କ୍ଷମାପାଇବା ଯୋଗ୍ୟ—Forgivable; excusable.
Marshaṇiya

**ମର୍ଷିତ**—ସଂ. ବିଣ (ମୃଷ୍. ଧାତୁ+କର୍ମ. ତ)—୧ । ଯାହାକୁ କ୍ଷମା ଦିଆଯାଇଥାଏ—1. Excused; forgiven. ୨ । ଯାହା ସହା ଯାଇଥାଏ—2. Endured. ୩ । (+କର୍ତ୍ତୃ. ତ) କ୍ଷମାଶୀଳ—3. Forgiving. ସଂ. ବି (+ଭାବ. ତ) ୧ । କ୍ଷମା—1. Forgiveness. ୨ । ଧୈର୍ଯ୍ୟ—2. Patience.
Marshita

**ମର୍ଷିତବାନ୍**—ସଂ. ବିଣ. ପୁଂ (ମୃଷ. ଧାତୁ+କର୍ତ୍ତୃ. ତବତ୍;୧ମା. ୧ବ.)—୧ । କ୍ଷମା-ଶୀଳ—1. Forgiving. ୨ । ସହିଷ୍ଣୁ—2. Forbearing. ୩ । ଯେ କ୍ଷମା କରିଅଛି—3. One who has forgiven.
Marshitabān
(ମର୍ଷିତବତୀ—ସ୍ତ୍ରୀ)

**ମର୍ସୁମ୍**—ବୈଦେ. ବି (ପା. ମୌସିମ୍; ଏହାର ଇଂରାଜି ଆକାର ମନ୍‌ସୁନ୍, monsoon) ୧ । ଋତୁ; ଉପଯୁକ୍ତ ସମୟ—1. Season. ୨ । ସୁଯୋଗ—2, Opportunity.
Marsum
मरसुम
**मौसिम**

**ମର୍ସୁମୀ**—ବୈଦେ. ବିଣ (ପା. ମୌସୁମୀ)—ମୌସୁମୀ; ଋତୁ ଅନୁସାରେ ଘଟିବା ( ବର୍ଷା ଓ ବାୟୁ )—Occurring in proper season; seasonable ( wind and rain). ବି—ମରସୁମୀ ବାୟୁ—Monsoon.
Marsumi
मरसुमी
**मौसुमी**

**ମଲ୍(ଲ୍)** [ଧାତୁ]—ଧାରଣ କରିବା—To hold.
Mal(l) (root)

**ମଲ୍‌କିବା**—ପ୍ରାଦେ (ସମ୍ବଲପୁର) କ୍ରି.—(ଗୋଡ଼ ଆଦି) ମକଚ ହୋଇଯିବା; ମୋଡ଼ି ହୋଇଯିବା—To be sprained; to be wrenched.
Mal-kibā

**ମଲ୍ ମଲ୍**—ଦେ. ବି (ସଂ. ମଲ ମଲ୍ଲକ=କୌପୀନ [ହି. ଶ]—୧ । ଅତି ସୂକ୍ଷ୍ମ ସୂତାର ଲୁଗା—1. Muslin; mull. [ ଦ୍ର—ପୂର୍ବେ ଢାକା ଓ କାଲିକଟ ଆଦି ସ୍ଥାନର ତନ୍ତ୍ରମାନେ ଅତି ସୂକ୍ଷ୍ମ ବସ୍ତ୍ର ପ୍ରସ୍ତୁତ କରୁଥିଲେ । ବର୍ତ୍ତମାନ ବିଲାତି ମଲମଲର ପ୍ରାଦୁର୍ଭାବ ସଙ୍ଗେ ସଙ୍ଗେ ଆମ ଦେଶର ସୂକ୍ଷ୍ମ ବସ୍ତ୍ର ଲୁପ୍ତପ୍ରାୟ ହୋଇଅଛି । ପୂର୍ବେ ଇଷ୍ଟଇଣ୍ଡିଆ କମ୍ପାନି ବଣିକଦଳ ଆମ ଦେଶରୁ ଲକ୍ଷ ଲକ୍ଷ ଟଙ୍କାର ମଲ୍ ମଲ୍ ବିଲାତକୁ ନେଉଥିଲେ । ମସ୍‌ଲିନ୍ ଶବ୍ଦରୁ ମସଲିପଟ୍ଟମ ନଗରର ନାମକରଣ ହୋଇଥିଲା । ମଲମଲର ଇଂରାଜି ଶବ୍ଦ ମସ୍‌ଲିନ୍ ଆସିରିଆ ଭୂଖଣ୍ଡର 'ମୋସୁଲ' ନାମକ ନଗରରୁ ଉତ୍ପନ୍ନ ହୋଇଅଛି; କାରଣ ଭାରତର ଆବିଷ୍କାର ପୂର୍ବରୁ ଇଉରୋପର ବଣିକମାନେ ମୋସୁଲ୍ ନଗରରେ ଏ ସୂକ୍ଷ୍ମ ବସ୍ତ୍ର ପ୍ରସ୍ତୁତ ହେଉଥିବାର ବିଶ୍ୱାସ କରୁଥିଲେ । ] ୨ । ମର୍ମର (ଦେଖ)—2. Marmara (See). (ଉ—କେତେ ଘର ମଲ୍‌ମଲ ପଥରରେ ତିଆର ହୋଇଥାଏ । ନୀଳକଣ୍ଠ ଦାସ. ପିଲାଙ୍କ ରାମାୟଣ ।) ଦେ. ବିଣ—ଅତି ସୂକ୍ଷ୍ମ(ବସ୍ତ୍ର)—Of very fine texture; very fine (cloth)
Mal mal
मलमल
**मलमल**

**ମଳ**—ସଂ. ବି [ମଲ୍. ଧାତୁ=(ଶରୀରରେ ଧାରଣ କରିବା+କର୍ମ. ଅ)—୧ । ଶରୀରରୁ ବାହାରିବା ବିଷ୍ଠା, ମୂତ୍ର, ଶିଂଘାଣି ଆଦି ମଇଳା—1. Excretions or secretions from the body of animals; sordes of the body.
Maḻa
[ଦ୍ର—ଶରୀରରୁ ନାନାପ୍ରକାରରେ ନାନାବାଟେ ମଳ ବହିର୍ଗତ ହୁଏ ଯଥା—

| ଅଙ୍ଗର ନାମ | ସଂସ୍କୃତ ଶବ୍ଦ | ଦେଶଜ ଶବ୍ଦ |
|---|---|---|
| ସର୍ବାଙ୍ଗରୁ | ସ୍ୱେଦ | ଝାଳ |
| ପେଟରୁ ଗୁହ୍ୟବାଟେ | ବିଷ୍ଠା | ଗୁହ |
| ପେଟରୁ ମୂତ୍ରଦ୍ୱାର ବାଟେ | ମୂତ୍ର | ମୂତ |
| ନାକବାଟେ | ଶ୍ଳେଷ୍ମା | ଶିଂଘାଣି |
| କାନବାଟେ | କର୍ଣ୍ଣମଳ | କାନଗଇ |
| ଆଖି ବାଟେ | ଚକ୍ଷୁର୍ମଳ | ଲେଟେଇ |
| ପାଟିବାଟେ | ଲାଳ | ଖଙ୍କାର,ଛେପ,ନାଳ |
| ଜିଭ ଓ ଦାନ୍ତର ମଳ | ଜିହ୍ୱା ବା ଦନ୍ତମଳ | ଛିତିଆ |
| ଲିଙ୍ଗ ମଧ୍ୟରେ ଜାତ | ଲିଙ୍ଗମଳ | ଗେନ୍ଧା |

ସ୍ତ୍ରୀ ଗାତ୍ରରୁ ମାସାନ୍ତରରେ ନିର୍ଗତ ଋତୁସ୍ରାବ ମଧ୍ୟ ମଳ ଅଟେ । ମନୁସଂହିତାରେ ମଳ ୧୨ ପ୍ରକାର ବୋଲାଯାଇ ଅଛି, ଯଥା—ବସା, ଶୁକ୍ର, ରକ୍ତ, ମଜ୍ଜା, ମୂତ୍ର, ବିଷ୍ଠା, କର୍ଣ୍ଣମଳ, ନାସାମଳ, ଶ୍ଳେଷ୍ମା ବା କଫ, ଅଶ୍ରୁ, ଚକ୍ଷୁର୍ମଳ ବା ଲେଟେଇ,

ଓ ସ୍ଥାନ ( ମନୁ ୫।୧୩୫ ); ଦେହରୁ ବହିର୍ଗତ ମଳ ଅପବିତ୍ର ( ମନୁ ୫।୧୩୨ ) । ଦେହରୁ ଉକ୍ତ ୧୨ ପ୍ରକାର ମଳ ବହିର୍ଗତ ହେବା ଅଙ୍ଗ ଓ ଇନ୍ଦ୍ରିୟମାନଙ୍କୁ ଜଳ ଓ ମୃତ୍ତିକାଦ୍ୱାରା ଶୁଦ୍ଧ କରିବ ( ମନୁ ୧।୧୩୪ ) । ଦେହସ୍ଥ ରସରୁ ନିର୍ଗତ ଶ୍ଳେଷ୍ମା, ରକ୍ତରୁ ପିତ୍ତ, ମାଂସରୁ ନାସା ଓ କର୍ଣ୍ଣମଳ, ଚର୍ବୀରୁ ସ୍ୱେଦ, ଅସ୍ଥିରୁ ନଖ ଓ କେଶର ଓ ମସ୍ତିଷ୍କରୁ ନିର୍ଗତ ଲେବେଳକୁ ମଳ ବୋଲାଯାଏ ( M. W. )
ଘନ, ତରଳ ଓ ବାଯୁବୀୟ ଆକାରରେ ମଳ ତିନି ପ୍ରକାର ହୁଏ । ଯଥା--ଘନ ବିଷ୍ଠା, ତରଳ ଯଥା-ମୂତ୍ର, ବାଯୁବୀୟ ଯଥା-ଅଧୋବାୟୁ; ହାଲୁଟ । ଯାହାସବୁ ଏ ଉପାୟରେ ବାହାର ନ ଯାଏ ତାହା ବଥ, ବାଘୀ, ବିସ୍ଫୋଟକ, କାଛୁ, ବସନ୍ତ, ହାଡ଼ଫୁଟୀ ଆଦି ଦ୍ୱାରା ପୂଯ ଓ ପାଣି ରୂପେ ଦେହରୁ ବାହାରେ ।] ୨ । ଶରୀରସ୍ଥ ପ୍ରକୃତ ଦୋଷ; ଶରୀରସ୍ଥ ବାତ, ପିତ୍ତ ଓ କଫ—2. The 3 humours of the system (rheum, phlegm, bile). ୩ । ଲୁହା ଆଦିର କଳଙ୍କି; ମରଚ୍—3. Rust. ୪ । ତରଳ ପଦାର୍ଥର ତଳେ ଯାହା ବସିଯାଏ—4. Dregs of a liquid ୫ । ତେଲାଦିର କାଣ୍ଟି ବା ସିଠା—5. Sediment. ୬ । ତରଳ ପଦାର୍ଥର ଉପରେ ଯାହା ଭାସି ଉଠେ; ଫେଣ—6. Scum or froth of a liquid. ୭ । ଦେହରେ ଓ ବସ୍ତ୍ର ଆଦିରେ ବସିଥିବା ମଳ ବା ମଇଳା—7. Dirt; filth. ୮ । ( ଲକ୍ଷଣାର୍ଥ ) ପାପ—8. (figurative) Sin. ୯ । ହୃଦୟର ଅସରଳତା—9. Want of frankness. ୧୦ । ହୃଦୟର ସନ୍ଦେହ-10. Doubt. ୧୧ । ବିଷ୍ଠା—11. Faecus; dung [ଦ୍ର—ଶରୀରର ସବୁ ପ୍ରକାର ମଇଳାକୁ ମଳ ବୋଲା ଗଲେହେଁ ବିଷ୍ଠା ପ୍ରତି ଏହା ସାଧାରଣତଃ ବ୍ୟବହୃତ ହୋଇଥାଏ ।] ୧୨ । କଳଙ୍କ—12. Stain ୧୩ । କର୍ପୂର—13. Camphor. ୧୪ । ସମୁଦ୍ର-ଫେଣ—14. Cuttle-fish bone. ୧୫ । କଷା ଯାଇଥିବା ଚମଡ଼ା—15. Tanned leather. ୧୬ । ଚମଡ଼ାର ପୋଷାକ—16. A leather garment. ୧୭ । ତରଳ ଧାତୁରୁ ବାହାରିବା ମଇଳା—17. Dross; scoria; slag. ୧୮ । ଦୋଷ (ବି. ଶ)—18. Fault; defect; blemish. ସଂ.ବିଣ.୧ । କୃପଣ-1. Miserly. ୨ । ମଳଯୁକ୍ତ—2. Dirty; filthy.

ମଲ—ଦେ. ବି. (ସଂ. ବଳୟ; ଏହା ବଙ୍ଗ ଦେଶରେ ପ୍ରଚଳିତ ଅଳଙ୍କାର; Mala ବଙ୍ଗୀୟମାନଙ୍କଠାରୁ ଏହା ଆମ ଦେଶରେ ଓ ଭାଷାରେ ପ୍ରବେଶ ମଲ **କଡା** କରିଅଛି )—୧ । ଗୋଡ଼ର ଚକ୍ରାକୃତ ବଳା; ପାଦ ବଳୟ—1. Circular anklet. [ଦ୍ର—ଏହା ପାଦ-ଗଣ୍ଠି ତଳେ ପିନ୍ଧାଯାଏ । ଏହା ସାଧାରଣତଃ ପୋଲା । ଚେପଟା ବା ଗୋଲ ବଳୟକୁ ମୋଡ଼ି କରି ମଧ୍ୟ ଏକ ପ୍ରକାର ମଲ କରାଯାଏ, ଏହାକୁ ବାଙ୍କ ମଲ କହନ୍ତି ।] ୨ । ମଲ୍ଲ (ଦେଖ)—2. Malla (See) ୩ । ଗୁଡ଼ିଆ ଓ ଗଉଡ଼ଙ୍କ ଉପାଧି ବିଶେଷ—3. A family title of some confectioners and milkmen. ୪ । ମାରବାଡ଼ିମାନଙ୍କ ଉପାଧି ବିଶେଷ—4. A family title amongst the Marwaris.

ମଲ କଡ଼(ଢ଼ି)—ଦେ. ବି. (ସଂ. ମଲ୍ଲୀ ଓ କଲୀ)—କାନର ଉପର ପାଖରେ Mala kardi(rdhi) ପିନ୍ଧାଯିବା ଦୁଇଟି ମଲ୍ଲି କଢ଼ି ଆକୃତିର ଗୋଲକ ମଲ୍ଲି କଲି ସଂଯୁକ୍ତ କାଠି—A kind of gold ornament worn on the upper part of the ear (resembling dumb bells).
[ଦ୍ର—ଏହାର ଦୁଇଟି କଢ଼ିକୁ ଦୁଗାଳ ଦେଇ ଏକ ପଟର କାଠିକୁ ଅନ୍ୟ ପଟର ଛିଦ୍ରରେ ଗଳାଇ ଦୁଇଆଡ଼ୁ ଦୁଇଟି କଢ଼ିକୁ ସଂଲଗ୍ନ କରାଯାଇ ପିନ୍ଧାଯାଏ ।]

ମଲ(ଳୁ)କୁ(ଖୁ)ଟି—ଦେ. ବି ( ସଂ. ମଳ + କୀଟ )—ମଳଯୁକ୍ତ ଦେହକୁ Mala(lu)ku(khu)ṭi ବା ହଳଦିଲଗା ଦେହକୁ ହାତରେ ମୟଲା, ମଳି ଘଷି ଦେଲେ ଯେଉଁ ମଳ ବଳବଳ ହୋଇ ଦେହରୁ ଖସି मैल, मरोड़ी ପଡ଼େ—Particles or tiny rolls of dirt coming out of a dirty or turmeric-anointed body when rubbed with the palm or fingers.

ମଳଘ୍ନ—ସଂ. ବିଣ (ମଳ + ହନ୍ ଧାତୁ + କର୍ତ୍ତୃ. ଅ)—୧ । ମଳ ନାଶକ; Malaghna ଯାହା ମଳ ଦୂର କରେ—1. Removing dirt. ୨ । ମଳ ପରିଷ୍କାରକ—2. Cleaning the dirt. ସଂ. ବି—୧ । ଶାଲ୍ମଳୀ କନ୍ଦ; ଶିମିଳି ମୂଷଳ—1. The root of the silk cotton tree ୨ । ଏକ ପ୍ରକାର ଲତା କାଞ୍ଚନ (ବି.ଶ)—2. A kind of creeping Kañchana plant

ମଲ(ଲ)ଙ୍ଗ—ଦେ ବି—ଲୁଣ ମାରିବାର ସ୍ଥାନ—A place where Mala(la)ṅga salt is manufactured.

ମଲ(ଲ)ଙ୍ଗୀ—ଦେ. ବି—୧ । ଏକ ପ୍ରକାର ଦେଶୀ ଡଙ୍ଗା—Mala(la)ṅgī 1. A kind of country boat.
[ଦ୍ର—ଏହା ଲମ୍ବରେ ପଟୁଆ ଅପେକ୍ଷା ସାନ ଓ ଉଚ୍ଚତାରେ ପଟୁଆ ଅପେକ୍ଷା ବେଶି । ଏଥିର ପଛ ଏବଂ ଆଗ ମଝିଠାରୁ ଅଧିକ ଉଚ୍ଚ । ଏହି ପ୍ରକାର ଡଙ୍ଗା କୁଜଙ୍ଗ ଓ କନିକାଞ୍ଚଳର ଉପକୂଳରେ ବ୍ୟବହୃତ ହୁଏ ।] ୨ । ସମୁଦ୍ର ପାଣିରୁ ଲୁଣ ମାରିବା ମୂଲିଆ—2. Labourers employed in manufacturing salt from sea-water.
ସଂ. ବି—ମହୁରାଡ଼ି ମାଛ (ଦ୍ରବ୍ୟଗୁଣ) ( ଦେଖ ) Mahurārdi māchha ( See )

ମଳଜ—ସଂ. ବିଣ. (ମଳ + ଜନ୍ ଧାତୁ + କର୍ତ୍ତୃ. ଅ)—ମଳରୁ ବା ମଇଳାରୁ Malaja ଜାତ—Produced from dirt.
ସଂ. ବି—ପୂଯ (ବି. ଶ)—Pus.

ମଲଟ—ଦେ ଓ ବୈଦେ. ବି—ମଲାଟ ( ଦେଖ ) Malaṭa Malāṭa ( See )

ମଳତା—ଗ୍ରା. ବି—ମଳ; ଦାଗ—
Malatā Dirt; stain.

ମଳ ତ୍ୟାଗ—ସଂ. ବି (୬ଷ୍ଠୀ ତତ୍)—ଝାଡ଼ା ଫେରିବା; ବିଷ୍ଠା ତ୍ୟାଗ—
Mala tyāga Discharge of faeces; evacuation of the bowels.
(ମଳୋତ୍ସର୍ଗ, ମଳ ପରିତ୍ୟାଗ, ମଳ ବିସର୍ଜନ, ମଳ ବିସର୍ଗ, ମଳ ଶୁଦ୍ଧି—ଅନ୍ୟରୂପ)

ମଳ ଦୂଷିତ—ସଂ. ବିଣ (୩ୟା ତତ୍)—୧ । ମଳଦ୍ୱାରା ଅପବିତ୍ର ବା
Mala dūshita ନଷ୍ଟ—1. Spoiled or defiled with dirt; soiled. ୨ । ମଳିନ—2. Dirty; filthy.
( ମଳଦୂଷ୍ଟ—ଅନ୍ୟରୂପ )

ମଳ ଦ୍ୱାର—ସଂ. ବି (୬ଷ୍ଠୀ ତତ୍)—୧ । ଗୁହ୍ୟଦ୍ୱାର—1. The
Mala dwāra anus. ୨ । ଶରୀରର ଯେଉଁ ଇନ୍ଦ୍ରିୟ-ଦ୍ୱାର ବାଟେ ଦେହର ମଳ ବାହାରେ—2. The organs through which excretions from the body come out. [ ଯଥା—ଚକ୍ଷୁ, କର୍ଣ୍ଣ, ମୁଖ, ନାସିକା, ଗୁହ୍ୟ, ଲିଙ୍ଗ । ]

ମଳଦ୍ରାବୀ—ସଂ. ବି ( ମଳ+ଦ୍ରୁ ଧାତୁ+ଣିନ୍; ୧ମା. ୧ବ. ଏହା ମଳକୁ
Maladrābī ଦ୍ରାବୀଭୂତ ବା ତରଳ କରାଏ )—ଜୟପାଳ—Croton seed.

ମଳଧାତ୍ରୀ—ସଂ. ବି. ସ୍ତ୍ରୀ ( ମ. ପ. ଲୋ )—ଶିଶୁର ମଳମୂତ୍ର ସଫା
Maladhātrī କରିବା ପାଇଁ ନିଯୁକ୍ତା ଧାତ୍ରୀ ( ହି. ଶ )—A nurse who in engaged to cleanse the nightsoil and urine of an infant.

ମଳନ—ସଂ. ବି (ମଲ୍ ଧାତୁ+ଭାବ ଅନ)—୧ । ବିଲେପନ, ଲିପିବା—
Malana 1. Anointing; besemearing. ୨ । ମର୍ଦ୍ଦନ; ମଳିବା—2. Rubbing; shampooing; pressing. ୩ । ( +କର୍ତ୍ତୃ. ଅନ ) ବସ୍ତ୍ରାବାସ; ଖଟୁଲି—3. Tent. ଦେ. ବି—ମଅଳନ ( ଦେଖ )—Ma-alana ( See)

ମଳ ନିଃସରଣ—ସଂ. ବି ( ୬ଷ୍ଠୀ ତତ୍ )—ମଳୋତ୍ସର୍ଗ; ମଳତ୍ୟାଗ—
Mala nihsarana Discharge of faeces.

ମଳପୂ—ସଂ. ବି—କାକୋଡୁମ୍ବରିକା, ଡିମିରି ଗଛ—
Malapū The opposite-leaved fig-tree.

ମଳପୃଷ୍ଠ—ସଂ. ବି—ପୁସ୍ତକର ବାହାରର ପୃଷ୍ଠା (ଯାହା ମଳଆ ହେବ ବୋଲି
Malaprushtha ଅଲେଖା ରଖା ଯାଇଥାଏ )—The outer page of a book (left unwritten because liable to be dirtied ) ( M. W ).

ମଳବତୀ—ସଂ. ବିଣ. ସ୍ତ୍ରୀ ( ମଳବତ୍+ଈ )—ମଳବାନ୍‌ର ସ୍ତ୍ରୀଲିଙ୍ଗ—
Malabatī Feminine of Malabān. ସ ବି. ସ୍ତ୍ରୀ—ଋତୁମତୀ ସ୍ତ୍ରୀ—A menstruous woman (M. W).

ମଳବଦ୍ଧ—ସଂ. ବିଣ ପୁଂ (ବହୁବ୍ରୀହି, ମଳ+ବଦ୍ଧ)—ଯାହାର କୋଷ୍ଠବଦ୍ଧ
Malabaddha ହୋଇଥାଏ—Costive; suffering from constipation. ଦେ. ବି—କୋଷ୍ଠବଦ୍ଧ; ପରିଷ୍କାର ଝାଡ଼ା ନ ହେବା; ମଳକାଠିନ୍ୟ—Costiveness; constipation.
(ମଳବଦ୍ଧା—ସ୍ତ୍ରୀ)

ମଳବଦ୍ଧତା—ସଂ. ବି—କୋଷ୍ଠ ଶୁଦ୍ଧି ନ ହେବା; ଝାଡ଼ା ବନ୍ଦ—
Malabaddhatā Constipation; costiveness.

ମଳବା—ଦେ. ବି ( ସ. ମଳ )—ଭଙ୍ଗା କୋଠା ଆଦିରୁ ବାହାରିବା
Malabā ଇଟା ଓ ଚୂନ ଆଦିର କ୍ଷୁଦ୍ର ଖଣ୍ଡମାନ—Broken bits of brick and lime from a dilapidated or dismantled building; debris; rubbish.
ৱাবিস
मलबा(मा)

ମଳବାନ୍—ସଂ. ବିଣ. ପୁଂ (ମଳ+ବତ୍, ୧ମା. ୧ବ)—ମଇଳା; ମଳପୂର୍ଣ୍ଣ;
Malabān (ମଳବତୀ—ସ୍ତ୍ରୀ) ମଳପୂର୍ଣ୍ଣ—Dirty; filthy (M.W)

ମଲ(ଲ)ବାର—ସ.ବି (ସଂ. ମଳୟ)—ଦକ୍ଷିଣ ଭାରତର ପଶ୍ଚିମ ଉପକୂଳରେ
Mala(la)bāra ତ୍ରିବାଙ୍କୁଡ଼ ରାଜ୍ୟ ଉତ୍ତରସ୍ଥ ପ୍ରଦେଶବିଶେଷ—The Malabar country in S. India; the Mopla country ( M. W ). [ ବି—ଏଠାରେ ମୋପଲାମାନଙ୍କର ବାସ । ଏହାର ପ୍ରଧାନ ନଗର କାଲିକଟ; କାଲିକଟ ଜାମୋରିନ୍ ନାମକ ମୁସଲମାନ୍ ରାଜାଙ୍କଦ୍ୱାରା ଶାସିତ । ]
মালবাব
मालबार

ମଲବାର ଉପକୂଳ—ଦେ. ବି—ଦକ୍ଷିଣ ଭାରତର ପଶ୍ଚିମ ଉପକୂଳ—
Malabāra upkūla The Malabar coast of West India.
মালবাব উপকূল मालबार उपकूल

ମଳବେଗ—ସଂ. ବି—୧ । (୬ଷ୍ଠୀ ତତ୍) ଝାଡ଼ା ଲାଗିବା—
Mala bega 1. Being called by nature, the tendency to pass stools. ୨ । ( ବହୁବ୍ରୀହି ) ଅତିସାର ( ହି. ଶ )—2. Dysentery; diarrhoea ( M.W ).

ମଳ ଭାଣ୍ଡ—ସଂ.ବି ୧। (୬ଷ୍ଠୀ ତତ୍)—ଶରୀର ମଧ୍ୟରେ ଥିବା ମଳାଧାର—
Mala bhānda 1. Intestines; bowels.
( ମଳାଶୟ—ଅନ୍ୟରୂପ ) ୨ । (ମ. ପ. ଲୋ) ମଳପୂର୍ଣ୍ଣ ଭାଣ୍ଡ—2. A pot full of faeces.

ମଳଭୁକ୍(ଜ)—ସଂ. ବିଣ ( ମଳ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍+ଅ)—
Malabhuk(ja) ମଳଖାଦକ; ବିଷ୍ଠାଖାଦକ; ଗୁହଖିଆ—Subsisting on dung. ସଂ. ବି—କାକ—The crow.

ମଳଭେଦିନୀ—ସଂ. ବିଣ. ସ୍ତ୍ରୀ ( ମଳଭେଦିନ+ଈ )—ମଳଭେଦୀର
Malabhedinī ସ୍ତ୍ରୀଲିଙ୍ଗ—Feminine of Malabhedī. ସଂ. ବି—କଟୁକୀ—Black hellebore.

ମଳ ଭେଦୀ—ସଂ. ବିଣ ( ମଳ+ଭିଦ୍ ଧାତୁ+କର୍ତ୍ତୃ. ଇନ୍ )—ଯାହା
Mala bhedī କଠିନ ମଳକୁ ତରଳ କରାଏ—Cathartic.
( ମଳ ଭେଦିନୀ—ସ୍ତ୍ରୀ )

ମଲମ୍—ବୈଦେ. ବି ( ଫା. ମରହମ୍, ମଲହମ୍ )—ଔଷଧରୂପେ ପ୍ରଯୁକ୍ତ
Malam ଲେପ; ପ୍ରଲେପ—Plaster; ointment.
মলম मलहम, मरहम

**ମଲମଲ**—ଦେ ବିଣ ( ସଂ. ମଲ; ନିଦ ଓ ଆଖି ଶବ୍ଦ ସଙ୍ଗେ ବ୍ୟବହୃତ, Malamala ଯଥା—ନିଦ ମଲମଲ, ଆଖି ମଲମଲ)—ନିଦ୍ରା ଯୋଗୁଁ **आँख झलपलाते** ବାରଂବାର ଘୋଡ଼ାଇ ହୋଇ ପଡ଼ୁଥିବା ବା ମଳନିଦ୍ରା ଛାଡ଼ି ନ ଥିବା ଚକ୍ଷୁ ବା ଚକ୍ଷୁଯୁକ୍ତ (ବ୍ୟକ୍ତି)—Repeatedly drooping (eyes) ( on account of the effect of sleep); still under the influence of sleep; ( eyes or person ) which has not yet shaken off the state of slumber (said of a person or the eyes of a person awakened from a deep slumber.

**ମଲମଲା(ଳି)**—ଦେ. ବି—ଜଳ ସ୍ରୋତର ଆବର୍ତ୍ତ ବା ଭଉଁରି; ଜଳାବର୍ତ୍ତ; Malamalā(li) ଜଳଭଉଁରି—Eddy; whirlpool of a জলের পাক strong current of water; mael- **चक्कर, भँवर, घुमरी** strom. [ ଦ୍ର—ଛୋଟ ଆବର୍ତ୍ତକୁ ଭଉଁରି ଓ ବଡ଼ ଏବଂ ବିପଜ୍ଜନକ ଆବର୍ତ୍ତକୁ ମଲମଲ ବୋଲାଯାଏ । ]

**ମଲ ମଲ୍ଲକ**—ସଂ. ବି—କୌପୀନ ( ବି. ଣ. ) ( ଦେଖ )
Mala mallaka Kaupīna (See)

**ମଲମାସ୍‌** ପ୍ରାଦେ ( ସମ୍ବଲପୁର ) ବି—ମଲମାସ ( ଦେଖ )
Malamās Malamāsa ( See )

**ମଲମାସ**—ସଂ. ବି—ଅମାବାସ୍ୟାଦ୍ୱୟ ଯୁକ୍ତ ଓ ରବି ସଂକ୍ରାନ୍ତିବର୍ଜିତ ଚାନ୍ଦ୍ରମାନ ମାସ; ଅଧିମାସ; ମାସବୃଦ୍ଧି—A leap-month of the Hindu almanac; an intercalary lunar month; a lunar month intercalated or added to the ordinary lunar months in order to compensate the deficit between the solar and the lunar months [ ଦ୍ର—ସୌରମାନ ବର୍ଷ ୩୬୫ ଦିନ ୬ ଘଣ୍ଟା ଓ ଚାନ୍ଦ୍ରମାନ ବର୍ଷ ପ୍ରାୟ ୩୫୪ ଦିନ । ଏଣୁ ସୌରମାନ ବର୍ଷ ଅପେକ୍ଷା ଚାନ୍ଦ୍ରମାନ ବର୍ଷ ୧୧ ଦିନ ୬ ଘଣ୍ଟା କମ୍ । ସୌରମାନ ବର୍ଷ ସଙ୍ଗେ ଚାନ୍ଦ୍ରମାନ ବର୍ଷର ମେଳ ରଖି ଏହି ଅଳ୍ପତାକୁ ପୂରଣ କରିବାପାଇଁ ଚାନ୍ଦ୍ରମାନ ମାସ ଗଣନାରେ ଅଢ଼େଇ ବର୍ଷ ଅନ୍ତରରେ ଗୋଟିଏ ଅଧିକା ମାସ ଗଣାଯାଏ ଓ ସେହି ମାସଟି ଯେଉଁ ଚାନ୍ଦ୍ରମାନ ମାସ ମଧ୍ୟରେ ପଡ଼େ ସେହି ଚାନ୍ଦ୍ରମାନ ମାସର ନାମରେ ଡକାହୁଏ ଯଥା, 'କାର୍ତ୍ତିକମଲ', 'ବୈଶାଖମଲ' ଇତ୍ୟାଦି ।

ପ୍ରଥମେ ଅସଲ ଚାନ୍ଦ୍ରମାନ ମାସର ପ୍ରଥମ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ କୃଷ୍ଣପକ୍ଷକୁ ଅସଲ ଚାନ୍ଦ୍ରମାନ ମାସର କୃଷ୍ଣପକ୍ଷ ବୋଲି ଗଣାଯାଏ; ଅମାବାସ୍ୟାଠାରୁ ଆଗାମୀ ଅମାବାସ୍ୟା ପର୍ଯ୍ୟନ୍ତ ମଲମାସ ଗଣାଯାଏ; ପୁଣି ସେହି ଅମାବାସ୍ୟାର ପରଦିନ ପ୍ରତିପଦଠାରୁ ଅସଲ ଚାନ୍ଦ୍ରମାନ ମାସର ବାକି ଥିବା ଶୁକ୍ଳପକ୍ଷ ଗଣତି କରାଯାଏ । ଏଥିରୁ ଦେଖାଯିବ ଯେ ମଲମାସଟି ଅସଲ ଚାନ୍ଦ୍ରମାନ ମାସର କୃଷ୍ଣପକ୍ଷ ଓ ଶୁକ୍ଳପକ୍ଷଦ୍ୱାରା ସଂଶ୍ଳିଷ୍ଟୀକୃତ ହୁଏ । ମଲମାସରେ ଦୈବ ଓ ପୈତ୍ରାଦି କାର୍ଯ୍ୟ ନିଷିଦ୍ଧ । ସାଧାରଣ ମାସରେ ପ୍ରଥମେ କୃଷ୍ଣପକ୍ଷ ଓ ପରେ ଶୁକ୍ଳପକ୍ଷ ପଡ଼େ କିନ୍ତୁ ଚାନ୍ଦ୍ରମାନ ମଲ; ମାସରେ ପ୍ରଥମେ ଶୁକ୍ଳପକ୍ଷ ଓ ପରେ କୃଷ୍ଣପକ୍ଷ ପଡ଼େ । ଏ ମାସକୁ 'ମଲମାସ', 'ଚାନ୍ଦ୍ରମଲମାସ' ବା 'ଚାନ୍ଦ୍ରମାନ ମଲ' ବା 'ଅଧିମାସ' ବୋଲାଯାଏ । ଏହି ମଲମାସରେ ପ୍ରାତଃସ୍ନାନ, ହବିଷ୍ୟ ଓ ବହୁଜପାଦି ବ୍ରତ କର୍ତ୍ତବ୍ୟ ।

ହିନ୍ଦୁ ଗଣନାରେ ମଲମାସର ବ୍ୟବହାର ଥିବାରୁ ପର୍ବ ଓ ଉତ୍ସବମାନ ଋତୁ ଅନୁସାରେ ପଡ଼େ; କିନ୍ତୁ ମୁସଲମାନ୍‌ମାନେ ଚାନ୍ଦ୍ରମାସ ଅନୁସାରେ ମାସ ଗଣୁଥିବାରୁ ଓ ସେମାନଙ୍କର ମଲମାସଦ୍ୱାରା ଚାନ୍ଦ୍ର ଓ ସୌର ମାସର ସମତା ରକ୍ଷା କରାଯାଉ ନ ଥିବାରୁ ତାଙ୍କର ପର୍ବ ଓ ଉତ୍ସବମାନ (ଯଥା—ଇଦ, ମହରମ ) ସବୁ ଋତୁରେ ପଡ଼ିଯାଏ ।

ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ତାଙ୍କର 'ଆମାଦେର ଜ୍ୟୋତିଷୀ' ଗ୍ରନ୍ଥରେ ମଲମାସ ସମ୍ବନ୍ଧରେ ଅନେକ ଜ୍ଞାତବ୍ୟ ବିଷୟ ଲେଖି ଅଛନ୍ତି ।

ଏକ ଚାନ୍ଦ୍ରମାନ ବର୍ଷ = ୩୫୪ ଦିନ = ୧୨ ଟି ଚାନ୍ଦ୍ରମାନ ମାସ ।

ଏକ ସୌରମାନ ବର୍ଷ = ୩୬୬ ଦିନ = ୧୨ ସୌରମାନ ମାସ ।

ଅତଏବ ୧ ସୌର ବର୍ଷ = ୧ ଚାନ୍ଦ୍ରମାନ ବର୍ଷ + ୧୨ ଦିନ ।

ପ୍ରତି ବର୍ଷର ଏହି ୧୨ ଦିନର ପାର୍ଥକ୍ୟକୁ ଭରଣା କରିବାପାଇଁ ୨½ ବର୍ଷ ପରେ ଥରେ ଅଧିମାସ ସୃଷ୍ଟି କରାଯାଇଅଛି । ଅର୍ଥାତ୍ ୩୦ ଚାନ୍ଦ୍ରମାସ ପରେ ଗୋଟିଏ ମଲମାସ ପଡ଼େ ।

∵ ସୌର ବର୍ଷ = ୩୬୬ ଦିନ ।
∴ ୫ ସୌର ବର୍ଷ = ୧୮୩୦ ଦିନ ।
୧ ଚାନ୍ଦ୍ରମାନ ମାସ = ୨୯·୫୩୦୬ ଦିନ ।
∴ ୧ ଚାନ୍ଦ୍ରମାନ ବର୍ଷ = ୩୫୪·୧୯୨ ଦିନ ।
ଅତଏବ ୫ ଚାନ୍ଦ୍ରମାନ ବର୍ଷ = ୧୭୭୦·୯୬୦ ଦିନ ।

ଅତଏବ ୫ ବର୍ଷରେ ସୌରମାନ ବର୍ଷ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ଦିନର ଭଗ୍ନାଂଶ ବାଦ୍ ଦେଇ ହିସାବ (ଫଳେ ୧୮୩୦ ଦିନ—୧୭୭୦ ଦିନ = ୬୦ ଦିନ ବା ) ୨ ଚାନ୍ଦ୍ରମାସ ପ୍ରଭେଦ ପଡ଼େ । ତେଣୁ ଚାନ୍ଦ୍ରମାନ ଅଢ଼େଇ ବର୍ଷ ଅନ୍ତରରେ ଗୋଟିଏ ଚାନ୍ଦ୍ର ମଲମାସ ମିଶାଇ ଦେଲେ ସୌର ବର୍ଷ ଓ ଚାନ୍ଦ୍ର ବର୍ଷମଧ୍ୟରେ ସମତା ରକ୍ଷା ହୁଏ । ମଲମାସର ବିଷୟ ମୋଟାମୋଟି ନିମ୍ନଲିଖିତମତେ ପ୍ରକାଶ କରାଯାଇ ପାରେ । ଦିନ ଓ ରାତିକୁ ସୌରଗଣନା ଅନୁସାରେ ୬୦ ଦଣ୍ଡ ଧରାଯାଏ । କିନ୍ତୁ ପ୍ରତ୍ୟେକ ଚାନ୍ଦ୍ର ତିଥିର ମାନ ୫୮ ଦଣ୍ଡ । ଅତଏବ ପ୍ରତି ସୌରଦିନଠାରୁ ଚାନ୍ଦ୍ରତିଥି ୨ ଦଣ୍ଡ କମି ଅଛି ଓ ସୌର ୧ ମାସରେ ଚାନ୍ଦ୍ର ୩୧ ଟି ତିଥି ହୁଏ । ଅର୍ଥାତ୍ ପ୍ରତି ସୌରମାସରେ ଗୋଟିଏ ଚାନ୍ଦ୍ର ଦିନ ବଢ଼ିଛି ହୁଏ । ଅତଏବ ୧୨ ସୌରମାସ = ୧୨ ଟି ଚାନ୍ଦ୍ର ମାସ + ୧୨ ଦିନ । ଅତଏବ ପ୍ରତି ୨½ ବର୍ଷରେ ଚାନ୍ଦ୍ର ଗଣନା କରାଯିବା ମାସ-

ମାନଙ୍କରେ ଅଧିକା ୧ ମାସ ଯୋଗ କଲେ ସୌର ଓ ଚାନ୍ଦ୍ରଗଣନା ମଧ୍ୟରେ ସମତା ରକ୍ଷା ହୁଏ । ଏହି ଅଧିକା ମାସକୁ ମଳମାସ ବୋଲାଯାଏ । ଏହି ମଳମାସରେ ସଂକ୍ରାନ୍ତି ପଡ଼େ ନାହିଁ । ଥରେ ମଳମାସ ପଡ଼ିବାର ୨୫ ବର୍ଷ ପରେ ଆଉ ଏକ ମଳମାସ ପଡ଼େ । ମଳମାସରେ ବିବାହାଦି ଶୁଭକୃତ୍ୟ ନିଷିଦ୍ଧ । ସଂକ୍ରାନ୍ତି ବର୍ଜିତମାସ ୩ ପ୍ରକାର ଅଟେ; —ଭାନୁଲଂଘିତ, କ୍ଷୟ ଓ ମଳମାସ । ମଳମାସ ଫାଲ୍ଗୁନଠାରୁ ମାର୍ଗଶିର ଏହି ୧୦ ମାସରେ ପଡ଼େ । ପୌଷମାସ କେବେହେଁ ମଳମାସ ହୁଏ ନାହିଁ ଓ ମାଘରେ କ୍ୱଚିତ୍ ମଳମାସ ପଡ଼େ (ହି. ଶ) ଏଥିର ବିସ୍ତାରିତ ବିବରଣ ପାଇଁ କୌଣସି ଜ୍ୟୋତିଷ ଗ୍ରନ୍ଥ ଦ୍ରଷ୍ଟବ୍ୟ । ]

ମଳମାସ କୃତ୍ୟ—ସଂ. ବି (୭ମୀ ତତ୍)—ମଳମାସରେ କର୍ତ୍ତବ୍ୟ
Malamāsa kṛutya ପ୍ରାତଃସ୍ନାନ, ହବିଷ୍ୟ ଓ ବହୁଜପାଦି ବ୍ରତ
(ମଳମାସ ବ୍ରତ—ଅନ୍ୟରୂପ) —Religious austerities or penance observed during an intercalary month.

ମଳମାସ ମାହାତ୍ମ୍ୟ—ସଂ. ବି (୬ଷ୍ଠୀ ତତ୍ ପୁରୁଷ)—ମଳମାସରେ କୃତ
Malamāsa māhātmya ବ୍ରତାଦିର ଫଳ—The results expected from the observance of prescribed religious austerities during an intercalary month.

ମଳମୂତ୍ର ପରିତ୍ୟାଗ—ସଂ. ବି (ଦ୍ୱନ୍ଦ୍ୱ ଓ ୬ଷ୍ଠୀ ତତ୍)—ଝାଡ଼ା ଫେରିବା
Malamūtra parityāga ଓ ପ୍ରସ୍ରାବ କରିବା—Evacuation of fœces and urine.
(ମଳମୂତ୍ରୋତ୍ସର୍ଗ, ମଳମୂତ୍ର ତ୍ୟାଗ—ଅନ୍ୟରୂପ)

ମଳମୂତ୍ର ରୋଧ—ସଂ. ବି (ଦ୍ୱନ୍ଦ୍ୱ ଓ ୬ଷ୍ଠୀ ତତ୍)—ରୋଗ ବିଶେଷ;
Malamūtra rodha ଯେଉଁ ରୋଗରେ ରୋଗୀର ମଳର ଓ ମୂତ୍ରର ଉତ୍ସର୍ଗ ବନ୍ଦ ହୋଇଯାଏ—Strangury; obstruction of the bowels and the kidney
(ମଳମୂତ୍ର ରୋଧନ—ଅନ୍ୟରୂପ)

ମଳମ୍ବା(ମ୍ମା)—ବୈଦେ. ବିଣ (ଅ. ମଲମ୍ମା)—ତମ୍ବା ଉପରେ ସୁନାର
Malambā(mmā) ଗିଲ୍ଟି କରାଯିବା—Of copper gilt with a layer of gold; having a layer ot gold on copper plate. ବୈଦେ. ବି—ତମ୍ବା ଉପରେ ସୁନା ଗିଲ୍ଟି ହୋଇଥିବା ଜରି; ଝୁଟାଜରି—Gilt lace. ( ଉ—ମଲମ୍ବା-ଅମ୍ବରେ, ହେଲା ଏ ଭୂମିର, ସୁବର୍ଣ୍ଣ ଭ୍ରମ କେବଳ । ରାଧାନାଥ. ଯଯାତି । )
मलम्बा
मलम्मा

ମଳୟ—ସଂ. ବି ( ମଲ୍ ଧାତୁ=ଧାରଣ କରିବା+କର୍ତ୍ତୃ. ଅୟ; ଯାହା
Malaya ଚନ୍ଦନ ବୃକ୍ଷକୁ ଧାରଣ କରେ, ସଂ. ମାଲ=ଜଙ୍ଗଲ; ଦ୍ରାବିଡ଼. ମଲୈ=ପର୍ବତ)—୧ । ମହୀଶୂର ରାଜ୍ୟର ଦକ୍ଷିଣ ଓ ତ୍ରିବାଙ୍କୁଡ଼ ରାଜ୍ୟର ପୂର୍ବସୀମାରେ ଅବସ୍ଥିତ ପଶ୍ଚିମଘାଟ ପର୍ବତର ଅଂଶ; ଚନ୍ଦନାଦ୍ରି—1. A range of mountains running along the west or Malabar coast of India; the Malaya range of hills. [ ଦ୍ର—ଦ୍ରାବିଡ଼ 'ମଲୈ' ଶବ୍ଦ (=ପର୍ବତ)ରୁ ଦାକ୍ଷିଣାତ୍ୟ ପର୍ବତମାଳାର ନାମ ମଳୟ ପର୍ବତ ହୋଇଅଛି । ଏହି ପର୍ବତ ଅର୍ଥବାଚୀ ମଳୟ ଶବ୍ଦ ଅନୁସାରେ ଦକ୍ଷିଣ ଦିଗରୁ ବହୁଥିବା ପବନକୁ ମଳୟ ପବନ କହନ୍ତି । ପଶ୍ଚିମଘାଟ ପର୍ବତର ଯେଉଁ ଦକ୍ଷିଣ ଅଂଶ ମହୀଶୂର ରାଜ୍ୟର ଦକ୍ଷିଣରୁ ତ୍ରିବାଙ୍କୁଡ଼ ରାଜ୍ୟର ପୂର୍ବ ସୀମା ପର୍ଯ୍ୟନ୍ତ ବ୍ୟାପି ରହିଅଛି ତାହାହିଁ ପ୍ରାଚୀନ ଭାରତର ମଳୟ ପର୍ବତ ବୋଲି ଆଧୁନିକ ଭୂଗୋଳବିଦ୍ମାନଙ୍କ ମତ; ଏହି ପର୍ବତ-ଶ୍ରେଣୀର ଉତ୍ତର ଅଂଶକୁ ନୀଲଗିରି ପର୍ବତ ଓ ଦକ୍ଷିଣ ଅଂଶକୁ Cardamom ବା ଅଲାଇଚ ପର୍ବତ ବୋଲାଯାଏ । ନୀଲଗିରି ପର୍ବତ ଉପରେ ମାନ୍ଦ୍ରାଜ ସରକାରଙ୍କ ଗ୍ରୀଷ୍ମ ନିବାସ ଉତ୍ତକାମଣ୍ଡ ବା ଉଦକମଣ୍ଡଳ (Ooty) ଅବସ୍ଥିତ, ଏହି ମଳୟ ପର୍ବତରେ ଚନ୍ଦନ ବୃକ୍ଷର ବଣ ଅଛି ।] ୨ । ମଳୟ ପବନ; ଆରାମପ୍ରଦ ଦକ୍ଷିଣା ପବନ; ବସନ୍ତପବନ—2. The south breeze blowing in spring ( in India ). ୩ । ଭାରତର ଦକ୍ଷିଣ ପଶ୍ଚିମ ଉପକୂଳସ୍ଥ ଦେଶାଂଶ (ତ୍ରିବାଙ୍କୁରର ଉତ୍ତର ପଶ୍ଚିମ ଓ ବମ୍ବେର ଦକ୍ଷିଣ)—3. The Malabar coast; the Malabar country. ୪ । ଆରାମ; ଉପବନ—4. A pleasure garden. ୫ । ଦ୍ୱୀପ ବିଶେଷ—5. Name of an island. ୬ । ନନ୍ଦନକାନନ—6. The pleasure-garden or park of Indra.

ମଳୟ ଉପକୂଳ—ଦେ. ବି—ଭାରତର ପଶ୍ଚିମ ଉପକୂଳ ( ବମ୍ବେର ଦକ୍ଷିଣ
Malaya upakūla ଓ ତ୍ରିବାଙ୍କୁଡ଼ର ପଶ୍ଚିମ ଓ ଉତ୍ତର ); ମାଲବାର ଉପକୂଳ—The Malabar coast of India.

ମଳୟ ଗିରି—ସଂ. ବି—ଚନ୍ଦନାଦ୍ରି; ( ମଳୟ ଦେଶ )—The
Malaya giri Western Ghats range of mountains running along the Malabar coast of India. ଦେ ବି—ପାଲଲହଡ଼ା ରାଜ୍ୟର ଗୋଟିଏ ପର୍ବତ—A mountain of Pālalaharḍā state.
ମଳୟ ପର୍ବତ
ମଳୟାଚଳ } ଅନ୍ୟରୂପ
ମଳୟାଦ୍ରି
[ ଦ୍ର—ଏହାର ଉଚ୍ଚତା ୩୮୯୫ ଫୁଟ । ]

ମଳୟ ଚନ୍ଦନ—ସଂ. ବି (୬ଷ୍ଠୀ ତତ୍)—ଅଗୁରୁ ଚନ୍ଦନ; ମଳୟଗିରି
Malaya chandana ଜାତ ଉତ୍କୃଷ୍ଟ ଚନ୍ଦନ—Excellent sandal wood growing in the Western Ghat mountains.

ମଳୟଜ—ସଂ. ବି ( ମଳୟ+ଜନ୍ ଧାତୁ=ଜାତ ହେବା+କର୍ତ୍ତୃ. ଅ )
Malayaja —ମଳୟ ପର୍ବତ ଜାତ—Growing in the Western Ghats. ସଂ. ବି—୧ । ଚନ୍ଦନ କାଠ—1. Sandal wood. ୨ । ଘୋରି ଚନ୍ଦନ—2. Sandal paste. ୩ । ରାହୁ—3. The Dragon's head; the ascending node.

ମଲୟଜ ପଙ୍କ—ସଂ. ବି (୬ଷ୍ଠୀ ତତ୍)—ଘୋରା ଚନ୍ଦନ—
Malayaja paṅka Sandal paste.

ମଲୟଜ ଶୀତଳ—ସଂ. ବିଣ (ଉପମାନ କର୍ମଧାରୟ)—ଘୋରା ଚନ୍ଦନ ପରି
Malayaja śitala ଥଣ୍ଡା—Cool and refreshing
(ମଲୟଜ ଶୀତଳା—ସ୍ତ୍ରୀ) like sandal paste.

ମଲୟ ପବନ—ସଂ. ବି (୬ଷ୍ଠୀ ତତ୍)—ବସନ୍ତ ପବନ; ଦକ୍ଷିଣା ପବନ
Malaya pabana —The sweet south breeze blowing in the spring.
ମଲୟ ବାତ, ମଲୟ ବାୟୁ, ମଲୟ ମରୁତ୍(ତ), ମଲୟ ମାରୁତ, ମଲୟ ସମୀର, ମଲୟ ସମୀରଣ, ମଲୟାନିଳ [ଅନ୍ୟରୂପ]
[ଦ୍ର—ବସନ୍ତକାଳରେ ପୁଷ୍ପମାନ ଫୁଟିବାରୁ ସ୍ନିଗ୍ଧ ଦକ୍ଷିଣା ପବନରେ ସୁବାସ ଅନୁଭୂତ ହୁଏ । ଏଥିପାଇଁ ପ୍ରାଚୀନ ଲୋକେ ଅନୁମାନ କରୁଥିଲେ ଯେ ମଲୟ ପର୍ବତରେ ଥିବା ଚନ୍ଦନ ଗଛରେ ଏ ପବନ ଲାଗି ବହି ଆସି ଥିବାରୁ ସେହି ଚନ୍ଦନ ଗଛର ସୁବାସ ଏ ପବନ ନେଇ ଆସେ ।]

ମଲୟ ବାସୀ—ସଂ. ( ମଲୟ+ବସ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )
Malaya bāsi —ମଲୟ ପର୍ବତରେ ବା ମଲୟ ଦେଶରେ ବାସ କରୁଥିବା—Living in the Malabar country or hills. ସଂ. ବି—ଦକ୍ଷିଣାପବନ—The south breeze.

ମଲଲ—ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ବି—କରାଣ୍ଡି ଆଳୁ ( ଦେଖ )
Malalā Karāṇḍi ālu ( See )

ମଲ ରୋଧ—ସଂ. ବି (୬ଷ୍ଠୀ ତତ୍)—୧ । ମଳବଦ୍ଧତା—
Mala rodha 1. Constipation of the bowels.
(ମଲ ରୋଧନ—ଅନ୍ୟରୂପ) ୨ । ମଲ ବେଗକୁ କଷ୍ଟକ୍ଷଣ ଧାରଣ କରିବା—2. Retention the fæcus inspite of a call of nature.

ମଲ ରୋଧକ—ସଂ. ବିଣ (୬ଷ୍ଠୀ ତତ୍) ଯାହା କୋଷ୍ଠବଦ୍ଧତା କରାଏ—
Mala rodhaka Causing constipation.
(ମଲ ରୋଧୀ—ଅନ୍ୟରୂପ) (ମଲ ରୋଧିକା, ମଲ ରୋଧିନୀ—ସ୍ତ୍ରୀ)

ମଲ ଶୁଦ୍ଧି—ସଂ. ବି. (୬ଷ୍ଠୀ ତତ୍)—ସଫା ହୋଇ ଝାଡ଼ା ହେବା—
Mala śuddhi Evacuation of the bowels; a free movement of the bowels.
(ମଲ ବଦ୍ଧତା—ବିପରୀତ)

ମଲା—ସଂ. ବି ( ମଲ+ଆ )—୧ । ବିଛାର ଲାଞ୍ଜର ଅଗ୍ରଭାଗ;
Malā କଙ୍କଡ଼ା ବିଛାର ନାହୁଡ଼—1. The tip of a scorpion's tail (M. W.) ୨ । ଏକ ପ୍ରକାର କଂସା ବା ପିତ୍ତଳ—2 A kind of brass or bell-metal (M. W.) ୩ । ବିକଙ୍କତ; ଭଇଞ୍ଚ—3, Flacourtia Cataphracta (M. W.)
ଦେ. ବି ( ସଂ. ମଣ୍ଡଳ )—୧ । ବୃତ୍ତାକାର ରେଖା—
मण्डल 1. Circle. ୨ । ଗୋଲାକାର ଚିହ୍ନ—2. Circular
मण्डली spot or patch. ୩ । ଗଛ ମୂଳରେ ପାଣି ଦେବା
माँदा ନିମନ୍ତେ ଖୋଳଥିବା ଥାଳବାଳ; ମନ୍ଦା—3. A basin
थालियाना, माँदा dug at the foot of a tree for watering it. ୪ । ଅଗାଣ୍ଡିଆ ପାତ୍ର ଆଦି ରଖିବା ପାଇଁ ମାଟିରେ ଖୋଳା ହେବା ଅଗଭୀର ଗୋଲ ଗାତ—
मोडा 4. Circular groove made on the ground to place round-bottomed pots. ୫ । ଅଗାଣ୍ଡିଆ ହାଣ୍ଡି ମାଠିଆ ଆଦି ଭୂମିରେ ଅଟଳ କରି ରଖିବା ପାଇଁ ପ୍ରସ୍ତୁତ ପାଳ ଆଦି ନିର୍ମିତ ଶୂନ୍ୟଗର୍ଭ ବଇଠି; ମୋଡ଼ା—
चिमला 5. Circular rings of straw on which
बीडा round-bottomed pots are kept stable on even ground. ୬ । ବୋହିଆମାନେ ମୁଣ୍ଡରେ ବୋଝ ରଖିବା ପାଇଁ ତିଆରି କରିଥିବା ଚମୁଲା ବା ମୁତୁଲା—6. Circular cushions put over the head to carry loads thereon. ୭ । ସାପ, ଚେଲୁଣୀପୋକ ଆଦିଙ୍କର ଶୋଇବାର କୁଣ୍ଡଳୀ—7. Coil (of serpents etc). ୮ । ଉଈ, ପିମ୍ପୁଡ଼ି ଆଦିଙ୍କ ଗୋଲାକାର ମଣ୍ଡା—7. A circular swarm of white ants and other insects.
मला ୯ । ମଳିବା (ଦେଖ)—9. Maliba ( See ) ୧୦ ।
मलना (ଲକ୍ଷଣାର୍ଥ) ଅନୁସରଣ ପୂର୍ବକ ଖୋସାମଦ କରିବା—10 (figurative) Act of dancing attendance; flattering a person for favours.
ଦେ. ବିଣ—୧ । ଯେ ମଳେ ବା ମଳିବା କ୍ରିୟା କରେ—
मला 1. Engaged in twisting and twirling.
मलने वाला ୨ । ଖୋସାମଦିଆ—2. Flattering; given to flattery.
(ମଲେଇ—ସ୍ତ୍ରୀ)

ମଲା—ଦେ. ବିଣ (ସଂ.ମୃତ)—୧ । ମୃତ—1. Dead. (ଉ—ମଲା ଲୋକ
Malā କୀର୍ତ୍ତି ଅଟଇ ସେହିପରି । କୃଷ୍ଣସିଂହ· ମହାଭାରତ ବନ ।)
मरा(ड़ा) ୨ । ମୁମୂର୍ଷୁ; ମୃତପ୍ରାୟ—2. Dying; moribund.
मरा(डा) (ଉ—ମଲାଠେଇଁ ଚନ୍ଦନ ପାଟୀ ପାଟୀ । ଚଗ ।) ୩ । ମରଣାପନ୍ନ ବ୍ୟକ୍ତି ପରି କ୍ଷୀଣ—3. Emaciated like a dying person. ୪ । ଶୁଷ୍କ (ବୃକ୍ଷ)—4. Withered (tree). ୫ । ନିଷ୍ପ୍ରଭ; ପ୍ରଭାହୀନ—5. Lustreless. (ଯଥା—ମଲାଜହ ।) ଦେ.ବି—୧ । ମୁମୂର୍ଷୁ ଅବସ୍ଥା—1. Dying condition. ୨ । ଅତି ଦୁଃଖମୟ ଅବସ୍ଥା; ଅତି ଗରିବ ଅବସ୍ଥା—2. Very impoverished condition. (ଉ—ଏଡ଼େ ମଲାଠେଇଁ ହଉଛି ବି ଚଇଲା ଖିଆ !—ଚଗ ।)
मलो ଦେ. ଅ ( ବିରକ୍ତି ଓ ଅବମାନନା ପ୍ରଦର୍ଶନ ସୂଚକ
मर ଅବ୍ୟୟ)—ଛିଆ !; ଛି !; ଛିଆ ଲୋ !—(interjection denoting displeasure or disregard) Fie !
(ଉ—ମଲା ଯା । ଛଟା ଟଙ୍କା ପଡ଼ିଲା ଭେଣ୍ଡି ।
(ମଲାଯା, ମଲାମୋର, ମଲାମିଁ—ଅନ୍ୟରୂପ) ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ମଲା(ଲେ)ଇ—ଦେ. ବି—ମରେଇ ( ଦେଖ )
Malā(le)i Marei ( See )

ବ ଓ ବଣ—ମଲେଇ (ଦେଖ)—Malei (See)

ମଲ୍ଲ(ଲେ)ଇ—ବୈଦେ.ବ (ଫା. ବାଲାଇ=ଦୁଧର ସର)—ଘନ ଅଭ୍ଟା ଦୁଧ; ସବୃଦ୍ଧ—Thickened milk; condensed milk.
Malā(le)i
ମାଲାଈ मलाई

ମଲ୍ଲ(ଲା,ଲେ)ଇ ବରଫ—ବୈଦେ. ବ (ଫା. ବାଲାଇ+ବର୍ଫ)—ଯେଉଁ ସବୃଦ୍ଧୀଙ୍କୁ ଟଣ ଛାଞ୍ଚରେ ଟୁଷର ବରଫ ମଧ୍ୟରେ ରଖି ଘନ କରାଯାଇ ଥାଏ; କୁଲ୍ଫି ବରଫ—Condensed milk frozened into ice
Mālā(lā,le)i barapha
ମାଲାଈ ବରଫ
मलाई बर्फ

ମଲା(ଲେ)ଇବା—ଦେ. କ୍ରି—ମଲବା କ୍ରିୟାର ଣିଜନ୍ତ ରୂପ—Causative of Maliba.
Malā[le]ibā
ମଲାନ (ଉ—ସ୍ୱର୍ଣ୍ଣୱକ ବର ଯୁଗେ ଇନ୍ଦ୍ରବର ଯୁଗଳୀ ଲଚାଇବାକୁ,
मलवाना ମର୍ଦ୍ଦିବା ଲକ୍ଷନ ତା ପିଣ୍ଡେ କନକ ମଞ୍ଜସ୍ସ ମଲାଇବାକୁ।
କବସୂର୍ଯ୍ୟ, ଦ୍ୱର୍ଗୀତ।)

ମଲାକର୍ଷୀ—ସ. ବ. ପୁଂ (ମଳ+ଅ+କୃଷ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)—ମେହେନ୍ତର; ହାଡ଼ୀ—A sweeper; a remover of night soil; scavenger.
Malākarshī
(ମଲାପକର୍ଷୀ—ଅନ୍ୟରୂପ)
(ମଲାକର୍ଷିଣୀ—ସ୍ତ୍ରୀ)

ମଲାକା—ସ. ବ—୧ । ସଂବାଦବାହିକା; ଦୂତୀ—1. A female messenger (M. W.). ୨ । ସଖୀ—2. A confidante (M. W). ୩ । କାମୁକା ସ୍ତ୍ରୀ—3. An amorous woman (M. W). ୪ । ମାଈ ହାତୀ; ହାତୁଣୀ—4. A female elephant (M W.).
Malākā

ମଲା କେଚେଣ୍ଡି—ପ୍ରାଦେ. ( ବାଲେଶ୍ୱର ) ବ ( ଦେ. ନାମ କେନ୍ଦ୍ର)—ତେଲୁଣୀ ପୋକ ( ଦେଖ ) Teluṇi poka ( See )
Malā kechendi

ମଲା ଗଲା—ଦେ. ବଣ (ସହଚର)—ମୃତ ଓ ଦେଶତ୍ୟାଗୀ ବ୍ୟକ୍ତିଗଣ—Persons dead and those who have left the country.
Malā galā
ମରାହାଜା मरा हरा

ମଲା ଗି(ଗ୍ୟା)ହାଲିପ(ପୋ,ପୁଅ)!—ଗ୍ରା. ଅ (ଅଶିଷ୍ଟ) (A term of vulgar disregard, ବେଖାତିରସୂଚକ ଅବ୍ୟୟ) ମଲ୍ଲ (ଦେଖ)—Malā (See).
Malā gi(gyā)hālipa(po,pa)!
(ମଲଗ୍ୟାହିପ—ଅନ୍ୟରୂପ)

ମଲା(ନା)ଙ୍ଗ—ଦେ. ବ (ସ. ବନ୍ଦା)—ଅନ୍ୟ ବୃକ୍ଷୋପଜୀବୀ ବୃକ୍ଷ; ନିର୍ମୂଳୀ ଗଛ; ପରବୃକ୍ଷଜୀବୀ ବୃକ୍ଷ; ପରାଙ୍ଗପୁଷ୍ଟ ଉଦ୍ଭିଦ—Orchid; epiphyte; a parasitic shrub growing on the trunk of other trees; Loranthus. [ ଦ୍ର—ଏହା ଆମ୍ବ, ଅଶ୍ୱତ୍ଥ, ସାହାଡ଼ା, ଜାମୁ, କୋଚିଲା ଆଦି ଗଛର ଶାଖା ଉପରେ ଉଠେ। ଏହାର ପତ୍ର ସବୁଜ ବର୍ଣ୍ଣ ଓ ମୋଟ; ଏହାର ଫୁଲ ଅରକ୍ତ, କେଶର ଅଟେ। ଏହାର ଫଳ ପାଚିଲେ ନାଲି ହୁଏ। ଚଟଚଟିଆ ଅଠା ଭିତରେ ମଞ୍ଜି ଥାଏ ଅନେକ ଔଷଧ ଓ ଗୁଣିଗାରେଡ଼ିରେ ଏହା ଲାଗେ।]
Malā(nā)ṅga
ସ. ବଲା, ବୃକ୍ଷାଦନୀ ବୃକ୍ଷରୁହା, ପରପୁଷ୍ଟା, ପରାଶ୍ରୟ, ବନ୍ଦା—
परगाछा; बाँदु, मन्दा; मान्दा
बान्दा, बान्दड़ा; परगाछा
बला, बन्दा, बान्दा
ତେ. ବଦନିକା, ବନ୍ଦା
ମ. ବନ୍ଦାଗୁଲ
ଚଟ୍ଟଗ୍ରାମ. ମଦାଙ୍ଗ

ମଲାଙ୍ଗି ଡଙ୍ଗା—ଦେ. ବ—ଏକ ଜାତୀୟ ନୌକା—A kind of boat. [ ଦ୍ର—ଏଥିରେ ଆଗେ ଧାନ ପ୍ରଭୃତି ଆଦି ଯାତାୟାତ କରୁଥିଲା। ଜଗବନ୍ଧୁ ପ୍ରାଚୀନ ଉତ୍କଳ।]
Malāṅgi daṅgā

ମଲା ଚମ—ଦେ. ବ—(ସଂ. ମୃତ ଚର୍ମ)—୧। ଦେହର ବାହାର ଅଂଶରୁ ବାହାରିବା ଶୁଖିଲା ଚମଡ଼ାର ସ୍ତର—1. Dry skin or scale peeling off from the body; scurf. ୨। ମୁଣ୍ଡର ରୂପୀ—2 Dandruff.
Malā chama
ମରାମାସ
मुरदाचमडा, मराचमडा

ମଲା ଜହ୍ନ—ଦେ. ବ—୧। ଦିବସରେ ଆକାଶରେ ଦେଖାଯିବା ପ୍ରଭା-ହୀନ ଚନ୍ଦ୍ର—1. Lustreless moon seen in the sky in the day time. ୨। ଦ୍ୱିତୀୟାଠାରୁ ୭ମୀ ବା ୮ମୀ ପର୍ଯ୍ୟନ୍ତ ରାତ୍ରିରେ ଚନ୍ଦ୍ରମଣ୍ଡଳର ଯେଉଁ ଅଂଶ ନିଷ୍ପ୍ରଭ ଦେଖା ଯାଉଥାଏ—2. The part of the moon's orb which looks lustreless during the night when the moon is below its 8th digit.
Malā jahna

ମଲାଟ—ଦେ ବ (ସ. ମଳପୃଷ୍ଠ=ପୁସ୍ତକର ଉପର ପୃଷ୍ଠା)—୧। ତାଳ-ପତ୍ର ପୋଥି ଉପରେ ଦିଆଯିବା ପଟା; ପୋଥିପଟା—1. Wooden boards put on a palm-leaf manuscript to keep it undamaged. ୨। କାଗଜ ବହି ଉପରେ ଦିଆ ଯିବା ପଟା ବା ମୋଟ କାଗଜର ଆବରଣ; ପିଠିବା—2. The cardboard binding or cover of a book; the stiff outer page of a book. ବୈଦେ. ବ—୧। (ଇ. ମାଲେଟ୍=ଖୁଣ୍ଟମାନଙ୍କୁ ଭୂମିରେ ବାଡ଼େଇ କରି ବସାଇବାରେ ବ୍ୟବହୃତ କାଠର ବଡ଼ ହାତୁଡ଼ୀ; ହାତୁଡ଼ିଦ୍ୱାରା ଏ ଖୁଣ୍ଟିମାନ ପୋତା ଯିବାରୁ) ମଲାଟ; ନଦୀବନ୍ଧକୁ ବଢ଼ିପାଣି ଅତଡ଼ ନ ଖାଇବା ପାଇଁ ବନ୍ଧମୂଳରେ ପୋତାଯିବା କାଠର ବା ବାଉଁଶର ଖୁଣ୍ଟି ମାନ—1. Wooden or bamboo pegs or posts driven deep at the foot of embankments to save them from erosion ୨। (ଇ.ମାଲେଟ୍) ଖୁଣ୍ଟି ଆଦିକୁ ଭୂମିରେ ବାଡ଼େଇ ପୋତିବା ପାଇଁ ବ୍ୟବହୃତ କାଠର ବଡ଼ ହାତୁଡ଼ା; ପିଟଣା—Big wooden mallet. ୩। (ଛାପାଖାନାରେ ବ୍ୟବହୃତ ଶବ୍ଦ, ଇଂ. ମାଲେଟ) ଛାପା ହେବା ପୂର୍ବରୁ ସୀସାର ଟାଇପମାନଙ୍କୁ ଫାର୍ମରେ ବସାଇ ସମଗୁଳ କରିବା ପାଇଁ ବ୍ୟବହୃତ କାଠର ହାତୁଡ଼ା; ପିଟଣା—3. Printer's mallet.
Malāṭa
ମଲାଟ
मलाट

ମଲ୍ଲ(ଲ)ଟ(ଟି) ବାଡ଼—ଦେ. ବ (ଇଂ. ମାଲେଟ୍=କାଠର ବଡ଼ ହାତୁଡ଼ା)—ନଦୀବନ୍ଧର ମାଟିକୁ ନଦୀଜଳର ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ହାତୁଡ଼ାଦ୍ୱାରା ଦୃଢ଼ରୂପେ
Malā(la)ṭa(ṭi)

ବାନ୍ଧରେ ଯାଇ ପୋତା ଯିବା କାଠ ବା ବାଉଁଶ ଖୁଣ୍ଟିର ବାଡ଼—A fence of bamboo or wooden posts driven deep at the foot of an embankment to save it form erosion.

**ମଲଣି**—ପ୍ରାଦେ (ଯାଜପୁର) ଅ—ମଲା (ଦେଖ)
Malāṇi Malā (See).

**ମଲାପଣା**—ପ୍ରାଦେ (ଗଞ୍ଜାମ) ବି. (ସ ମୃତ+ପ୍ରପାନକ)—୪ର୍ଥ, ୭ମ ଓ
Malā paṇā ୯ମ ଶୀତଳ; ମୃତ ବ୍ୟକ୍ତିର ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷରେ ମୃତ୍ୟୁର ୪ର୍ଥ, ୭ମ ଓ ୯ମ ଦିନ ସମବେତ କୁଟୁମ୍ବ, ବନ୍ଧୁ ଓ ବ୍ରାହ୍ମଣମାନଙ୍କୁ ଖାଇବାକୁ ଦିଆଯିବା ଶୀତଳ ବା ଜଳଖିଆ ସାମଗ୍ରୀ--Tiffin or light refreshments served to friends, relatives and Brāhmaṇas during the obsequies.

**ମଲା ପ[ସ]ରି**—ଦେ. ବିଣ—୧ । ମୃତବତ୍—1. Like one dead.
Malā pa[sa]ri [ଉ—ଖାଇଲେ ସେ ନପଡ଼ି ଜାଣ ମଲାପରି । ମରার মতন କୃଷ୍ଣସିଂହ. ମହାଭାରତ. ଆଦି । ] ୨ । ମୁମୂର୍ଷୁ—2.
**मरासा** Dying. [ଉ—ମଲୁ ନାହିଁ କି ମଲାପରି ହେଲୁ ନାହିଁ । ଭଗ ]

**ମଲାପସାରକ**—ସଂ.ବିଣ (ମଲ+ଅପ+ସୃ. ଧାତୁ+କର୍ତ୍ତୃ. ଅକ)—ଯାହା
Malāpasāraka ମଲ (ମଇଳା, ପାପ ଇତ୍ୟାଦି) ଦୂର କରେ—(ମଲାପହ, ମଲାପସାରୀ—ଅନ୍ୟରୂପ) Removing impurities [ମଲାପସାରିକା, ମଲାପହା—ସ୍ତ୍ରୀ] or sin or stains.

**ମଲାବରୋଧ**—ସ. ବି (୬ଷ୍ଠୀ ତତ୍)—ମଲରୋଧ (ଦେଖ)
Malābarodha Malarodha (See).

**ମଲାବରୋଧକ**—ସ. ବିଣ—ମଲ ରୋଧକ ( ଦେଖ )
Malābarodhaka Mala rodhaka ( See )
(ମଲାବରୋଧୀ—ଅନ୍ୟରୂପ) (ମଲାବରୋଧିକା—ସ୍ତ୍ରୀ)

**ମଲା ବାନ୍ଧି ଶୋଇବା**—ଦେ, କ୍ରି (ସଂ. ମଣ୍ଡଳ)—କୁଣ୍ଡଳପରି ଦେହକୁ
Malā bāndhi śoibā ଚକା କରି ଶୋଇବା (ଯଥା—ସାପ, କୁণ্ডলীপাকিয়ে শোয়া ଟେଲୁଣୀ ପୋକ)—To lie coiled
**चक्करदेकरसोना** up (said of a snake etc).

**ମଲା ମ(ମୁ)ର(ରୁ)କୁଟିଆ**—ଦେ· ବିଣ (ସଂ. ମୃତ+ମର୍କଟ)—ମୁରୁକୁଟିଆ
Malā ma(mu)r(ru)kuṭiā ( ଦେଖ )—Murukuṭiā
রোগা, মড়ারআকার **दुबलापतला** [See].

**ମଲା ମର(ରୁ)ଡ଼ି**—ଦେ. ବି (ସଦ୍ଭବ)—ଅନାବୃଷ୍ଟିଜନିତ ଶସ୍ୟହାନି—
Malā mara(ru)ṛdi Failure of crops due to drought.
শুকো (ଉ—×××ଅଛି ମଲା ମରଡ଼ିରେ ଭାଡ଼ିଆ ବାବଦକୁ କିଛି
**सौखी** ଖର୍ଚ୍ଚା××ଫକୀରମୋହନ. ଛମାଣ ଆଠଗୁଣ୍ଠ । )

**ମଲା ମର(ରୁ)ଡ଼ିଆ**—ଦେ. ବିଣ—୧ । ମୁରୁକୁଟିଆ (ଦେଖ)
Malā mara(ru)ṛdiā 1. Murukuṭiā ( See )
মরারমতন ୨ । ଦୁର୍ଭିକ୍ଷ ପ୍ରପୀଡ଼ିତ—2. Famine-stricken.
**सौखीया** ୩ । ଖାଇବା ପାଇଁ ନ ପାଇ ଶୀର୍ଣ୍ଣ; ଅନାହାରକ୍ଳିଷ୍ଟ—3. Hunger-stricken; famished.

**ମଲାମଲା**—ଦେ. ବିଣ—୧ । (ସ. ମଣ୍ଡଳ) ଚକ୍ରାକାର ବନ୍ଧୁରେଖା ସମନ୍ବିତ
Malāmalā —1. In circles; in patches. ୨ । (ସ.
চাকাচাকা ମଳିନ ) ମେଘାଚ୍ଛନ୍ନ—2. Cloudy; overclouded.
**चकेत्ता चकेत्ता** [ ଉ—ଦିନକୁ ମଲାମଲା ରାତିକି ନିର୍ମଳା, ନାଥ ବୋଲେ ପୁତା ରେ ! ଖରିକି ଖଣ୍ଡି ପଲା—ଖନାବଚନ । ]
ଦେ.ବି—ମନ୍ଦା ମନ୍ଦା; ଚକା ଚକା ଦାଗମାନ—Circular-patches. [ ଯଥା—ତା ଦେହସାରା ଯାହୁ ମଲା ମଲା ମାଡ଼ି ଗଲାଣି । ] ଦେ. କ୍ରି. ବିଣ—ଚକା ଚକା ଦାଗ ମାଡ଼ିବା ପ୍ରକାରେ—In circular patehes.

**ମଲାମଲି**—ଦେ. ବି ( ସ. ଦଳନ, ମର୍ଦ୍ଦନ )—୧ । ବନ୍ଧୁବାର ମଳିବା
Malāmali କ୍ରିୟା; ଦଳାଦଳି;ଘଷାଘଷି—1. Act of trampl-
दलामला ing; crushing or rubbing. ୨ । ବହୁଥର
**मलामली** ଖୋସାମଦ—2. Much flattering.

**ମଲା ମାଇଲା କାଳ**—ଦେ. ବି— ଅତି ସଙ୍କଟମୟ ସମୟ; ଯେଉଁ ସମୟରେ
Malā māilā kāla ଲୋକେ ବ୍ୟାଧି ଓ ଉପବାସରୁ ମରୁଥାଆନ୍ତି—
আকাল A time of great distress; a time of high
**अकाल** mortality ( due to famine, pestilence contagionse disease war).

**ମଲା ମୁର୍ଦ୍ଦାରିଆ**—ଦେ. ବିଣ—ମୁର୍ଦ୍ଦାର ପରି ଅତି କ୍ଷୀଣ—
Malā murddāriā Emaciated and lean like
মরকুটে **मडासा** a corps..

**ମଲାୟନ**—ସ· ବି ( ୬ଷ୍ଠୀ ତତ୍, ମଲ+ଆୟନ )—ପେଟ ମଧ୍ୟରୁ
Malāyana ଗୁହ୍ୟଦ୍ୱାରକୁ ମଲ ଆସିବାର ବାଟ—The rectum ( M. W ).

**ମଲାର**—ଦେ. ବି ( ସଂ. ମଲ୍ଲାର )—ମଲ୍ଲାର ( ଦେଖ )
Malāra Mallāra ( See )

**ମଲାଶାଶୁ**—ଦେ. ବି. ସ୍ତ୍ରୀ ( ସଂ. ମାତୁଳ ଓ ଶ୍ୱଶ୍ରୂ )—ମାଇଁଶାଶୁ; ଅପଣା
Malāśāśu ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ମାଇଁ—The maternal
মামাশাশুড়ী, মাসশাশুড়ী **मामीशास** uncle's wife of one's husband or wife.

**ମଲାଶୁର**—ଦେ. ବି. ପୁଂ (ସ ମାତୁଳ+ଶ୍ୱଶୁର)—ଅପଣା ସ୍ୱାମୀଙ୍କର ବା
Malāśura ସ୍ତ୍ରୀଙ୍କର ମାମୁ—The maternal uncle of
মামাশশুর **मामासतुर** one's husband or wife.
( ମଲାଶ୍ୱଶୁର—ଅନ୍ୟରୂପ )

**ମଲା ସାପ**—ଦେ. ବି—୧ । ମୃତ ସର୍ପ—1. A dead snake. ୨ ।
Malā sāpa ( ଲକ୍ଷଣାର୍ଥ ) ଅକର୍ମଣ୍ୟ ଲୋକ—2. ( figura-
মরা সাপ **मरा साप** tive ) One who is not useful in any way.

**ମଲା ସାପ ବେକରେ ପକା( କେ )ଇବା**—ଦେ. କ୍ରି ( ଲକ୍ଷଣାର୍ଥ )—
Malā sāpa bekare pakā(ke)ibā କୌଣସି ବ୍ୟକ୍ତିକୁ
মরাসাপ গলায় ফেলা ଅପମାନ ଦେବା—( figurative )
**मडा साप गलामे डालना** To insult a person.

**ମଲା ସାପ ବେକରେ ବାନ୍ଧିବା**—ଦେ. ଭଗ—୧ । ଅକର୍ମଣ୍ୟ ବ୍ୟକ୍ତିର
Malā sāpa bekare bāndhibā ଭରଣ ପୋଷଣ ଭାର ଗ୍ରହଣ

ମরা সাপ গলায় বাঁধা **मरा साप गलामे बाँधना** କରିବା—
ମଲା ସାପ ବେକରେ ଗୁଡ଼ା(ଡ଼େ)ଇବା } ଅନ୍ୟରୂପ To undertake the maintenance of a lazy person.
ମଲା ସାପ ବେକରେ ଲଦିବା
୨ । ଅନ୍ୟ ବ୍ୟକ୍ତିଠାରେ ଅକର୍ମଣ୍ୟ ବ୍ୟକ୍ତିର ଭରଣ ପୋଷଣର ଭାର ଅର୍ପଣ କରିବା—2. To lay upon another the burden of maintaining a useless person. ୩ । ନିଜର ବାଳବିଧବା ଝିଅ ବା ଅପୁତ୍ରକ ବୋହୂର ଭରଣ ପୋଷଣ ଭାର ବାଧ୍ୟ ହୋଇ ଗ୍ରହଣ କରିବା—3. To be burdened with the duty of maintaining one's child-widow-daughter or issueless daughter-in-law.

**ମଳି**—ଦେ. ବି ( ସଂ. ମଳ )—୧ । ଗାତ୍ର ମଳ; ଦେହ ଉପରେ
Mali ଜମିଥିବା ମଇଳାର ସ୍ତର—1 A layer of dirt on the
ময়লি, মলা body. [ଉ—ଜଳେ ସ୍ନାନ କଲେ ଦେହୁ ମଳି ଛାଡ଼ିଯାଏ—
मल ପ୍ରାଚୀ,ଶ୍ରୀଗୁରୁଭକ୍ତିଗୀତା ।] ୨ । ମଇଳା—2. Filth. ଦେ. ବିଣ (ସଂ. ମଳିନ)—ମଳିନ; ମଳଯୁକ୍ତ—Dirty; filthy,

**ମଲି**—ଦେ. ବି ( ସଂ. ମଲ୍ଲୀ )—୧ । ମଲ୍ଲୀଫୁଲ—1. Jasminum
Mali Samback (Kirtikar); jasmine. ୨ । ମଲ୍ଲୀନାମ୍ନୀ
বেল্, মল্লিকা ফুল ସ୍ତ୍ରୀର ଡାକନାମ—2. Name for calling
**चम्बा; मुग्रा; बेला** a woman named Malli. ଦେ. ଅ—
(ମଲି ମଲି—ଅନ୍ୟରୂପ) ( ମରିବା କ୍ରିୟାର ପ୍ରଥମ ପୁରୁଷ ଏକବଚନ
মলু মলুম **मरगये** ଭୂତକାଳର ଆକାର; ଅବ୍ୟୟରୂପେ ବ୍ୟବହୃତ)—
୧ । (ଗ୍ରାମୀଣ କବିମାନଙ୍କ) ବର୍ଣ୍ଣିତ କାମକ୍ରୀଡ଼ା କାଳରେ ରସିକାର ମୁଖରୁ ବାରଂବାର ନିଃସୃତ ବାକ୍ୟ—1. An expression said to repeatedly issue from the mouth of a young woman during coition. (ଉ—ହାଁ ହାଁ ହୁଁ ହୁଁ ନା ନା ମଲି ଇତି ଭାଷାକୁ କସ ଭୁଲାଇବ । ଭଞ୍ଜ, ପ୍ରେମସୁଧାନିଧି ।) ୨ । ପୀଡ଼ାସୂଚକ ଆର୍ତ୍ତନାଦ—2. (interjection) Oh ! I am dying. ପ୍ରାଦେ. (ସମ୍ବଲପୁର) ବି (ଳ ସ୍ଥାନରେ ଲ ଉଚ୍ଚାରଣ)—ମଳି; ମଇଳା—Dirt.

**ମଳିଆ(ହା)**—ଦେ. ବିଣ (ସଂ. ମଳିନ)—ମଳଯୁକ୍ତ; ମଇଳା—
Maliā(hā) Dirty; filthy.
ময়লা (ଉ—ମେଲିଛ ପ୍ରାଏକ ଦିଶେ ହୃଦୟ ମଳିଆ । ପ୍ରାଚୀ
मैला ବ୍ରହ୍ମନିରୂପଣ ଗୀତା ।)

**ମଲିଆ**—ଦେ. ବି—୧ । ଭୁବନେଶ୍ୱର ନିକଟସ୍ଥ କପିଳେଶ୍ୱର ମହାଦେବଙ୍କ ମାଳ ସେବକ—1. The flower sup-
Maliā plying Sebakas of the Śiba at Kapi-
জলা leśwara (near Bhubaneśwara). ୨ । ପାଣିର
दलदल ସୋଅ—2. A marsh; a long strip of water; a long fen. ପ୍ରାଦେ. (ସମ୍ବଲପୁର) ବିଣ. ପୁଂ—ପିଙ୍ଗଳ ଚକ୍ଷୁ ଓ ତାମ୍ର ବର୍ଣ୍ଣ କେଶ ବିଶିଷ୍ଟ ( ବ୍ୟକ୍ତି )—A person with brown eyes and reddish hair.

**ମଳିକ**—ଦେ. ବି ( ଅ. ମହଲ୍ଲକ, ମହଲ୍ଲିକ=ଅନ୍ତଃପୁର ରକ୍ଷକ )—
Malika ୧ । ଚଉକିଦାର ବା କଣ୍ଡରାମାନଙ୍କ ବଂଶୋପାଧି—
মল্লিক 1. The family title of Kaṇḍarās ( a low caste of hereditary watchm (ଉ—ଘୋଡ଼ା ମଳିକ; ସଙ୍ଗାଳ କରନ୍ତି ଯୂଥ ବଳକ । ଭଗ । ) ୨ । (ଅ.
**मालिक; मलिक** ମଳିକ=ରଜା—M.W) ଗ୍ରାମର ଅଧିକାରୀ;ଗ୍ରାମର ମୁଖ୍ୟ ବ୍ୟକ୍ତି—2. The headman of a village. ୩ । ଶୂଦ୍ରମାନଙ୍କର ଉପାଧି ବିଶେଷ—3. A family-title of Śūdras.

**ମଲ(ଲ୍ଲି) କଢ଼ି(ଢ଼)**—ଦେ. ବି ( ସଂ. ମଲ୍ଲୀ ବା ମଲ୍ଲିକା ଓ କଳି )—
Mali(lli) kaṛdhi(ṛdh a) ୧ । ମଲ୍ଲୀଫୁଲ କଢ଼ି ପରି ଗୋଟି
[ମଲ୍ଲିକାକଢ଼(ଢ଼)—ଅନ୍ୟରୂପ] ଗୋଟିକିଆ ରୂପାର ବା ସୁନାର
মল্লিকাকুঁড়ী ଗୋଲକ ମାଳରୂପେ ଗୁନ୍ଥା ହୋଇଥିବା ଅଳଙ୍କାର (ଏହା
**वेलाकीकुँढी** ସ୍ତ୍ରୀଲୋକମାନଙ୍କ ଜୁଡ଼ାରେ ଗୁନ୍ଥା ଯାଏ )—
1. A string of gold or silver balls resembling Jasmine-buds and used as a tape ( tied round the
বেলাবকলী chignon). ୨ । ମଲ୍ଲୀପୁଷ୍ପର କଳି—2. Jasmine-
बेलेकीकली bud. ୩ । ତଳ କାନର ଅଳଙ୍କାର ବିଶେଷ—
3. An ornament for the lower part of the ear. (ଉ—ଚିକ ବୋଲେ ଏ ଚନ୍ଦ୍ରମଲ୍ଲୀକଢ଼ୀ ନୋହେ, ଘୋଇଛି ଚନ୍ଦ୍ର କର୍ଣ୍ଣପାଳୀ ଶେଷେ ହୋଇ । କୃଷ୍ଣସିଂହ, ମହାଭାରତ. ବନ । )

**ମଳି(ଲି)ଙ୍ଗ(ଙ୍ଗି)**—ଦେ. ବି—ଏକ ପ୍ରକାର ସରୁଆ ଡଙ୍ଗା—
Mali(li)ṅga(ṅgi) A kind of narrow country
বালাম **टकटकिआनाव; मल्हनी** boat or canoe.

**ମଳି ଚମ**—ଦେ. ବି (ସ. ମଳ+ ଚର୍ମ —ମନୁଷ୍ୟର ଦେହର ଉପରେ
Mali chama ଥିବା ଖୁବ୍ ପତଳା ଚମ (ଯାହା ଉପରେ ଦେହର
মরামাস ମଳି ବସିଯାଏ )—The epidermis; cuticle;
**पोस्तीन; उपरकीखाल** scarf skin; the thin outer layer of skin. [ଦ୍ର—ମନୁଷ୍ୟ ଦେହର ଅସଲ ଚମଡ଼ା ଉପରେ ଏକ ପରସ୍ତ ଖୁବ୍ ପତଳା 'ମଳିଚମ' ଅଛି । ସେ ମଳିଚମ ଉଠିଗଲେ କଷ୍ଟ ବୋଧ ହୁଏ ନାହିଁ । ଏହି ମଳିଚମ କ୍ରମଶଃ ଦେହରୁ କାଛ ଭଳି ଛାଡ଼ୁଥାଏ ଓ ନୂଆ ଚମ ବଢ଼ୁଥାଏ । ]

**ମଳି ଛଡ଼ା(ଡ଼େ)ଇବା**—ଦେ. କ୍ରି—ଦେହରୁ ବା ବସ୍ତୁରୁ ମଳି ସଫା
Mali chhaṛdā(ṛde)ibā କରିବା—To cleanse or
মলাতোলা remove dirt from the body or from
मैलछुडाना anything.

**ମଳି ଛାଡ଼ିବା**—ଦେ. ବି—କୌଣସି ବସ୍ତୁ ଉପରେ ଜମିଥିବା ମଳି
Mali chhāṛdibā ପରିଷ୍କୃତ ହେବା—The cleansing
ময়লাছাড়া or removal of dirt from a thing
**मैलछूटना** ଦେ. କ୍ରି—ନିଜ ଦେହର ମଳି ତ୍ୟାଗ କରିବା—To part with the dirt of one's body. [ ଦ୍ର—

ଅତି କୃପଣ ଲୋକକୁ ଲକ୍ଷ୍ୟ କରି ଲୋକେ କହନ୍ତି, ସେ ଏଡ଼େ କାଙ୍କି ଯେ, ତା ଦେହରୁ ଝଡ଼େ ମଳ ଖଣ୍ଡିବ ନାହିଁ । ]

**ମଳ(ଳ)ଛିଆ**—ଦେ. ବିଣ. ପୁଂ (ସ. ମ୍ଳେଚ୍ଛ)—୧ । ଅତିଶୟ ମଳଯୁକ୍ତ; Mali(la)chhiā ମଇଳା—1. Dirty; filthy ୨ । ଯେଉଁ ମୟଳା ବ୍ୟକ୍ତିର ଦେହ ଓ ବସ୍ତ୍ରାଦି ମଳଯୁକ୍ତ—2. (a person) **मलेछा** With dirty body and clothes. ୩ । ଅତି ମଳ(ଳ)ଛେଇ } ସ୍ତ୍ରୀ ମଳ(ଳ)ଛି } କୃପଣ—3. Very niggardly. ୪ । ଅପରିଷ୍କୃତ (ବସ୍ତ୍ର)—4. Soiled or unclean (cloth).

**ମଳଣ**—ଗ୍ରା. ବିଣ (ସ. ମଳିନ)—ମଳିନ (ଦେଖ) Malina ମଳିନ **मलिन** Malina [See].

**ମଲିଦା**—ବୈଦେ. ବି (ଫା. ମଲୀଦହ୍; ମୂଳ. ସ. ମର୍ଦ୍ଦିତ ଓ ମଳିତ)—Malidā କାଶ୍ମୀର ଦେଶ ନିର୍ମିତ ମେଷ ଲୋମର ବସ୍ତ୍ର ବିଶେଷ—मलीदा Felt. [ଦ୍ର—ଏ ଲୁଗା ବୁଣାଯିବା ପରେ ଏହାକୁ ଦଳିମଳି **मलीदा** ଘନ ଓ କୋମଳ କରାଯାଏ—ହି, ଶ । ]

**ମଳି ଧୂଳି**—ଦେ. ବି (ସ. ମଳ ଓ ଧୂଳି)—୧ । ଧୂଳିମଳି; ମଳ ଓ Mali dhūli ଧୂଳି—1. Dirt and dust. ୨ । ମଇଳା—धूलामला 2. Filth; dirt. ୩ । (ଲକ୍ଷଣାର୍ଥ) ଛିଲେ ମାତ୍ର ସନ୍ଦେହ—**मैलऔरधूली; मैलापन** 3. The slightest doubt; any particle of doubt. ( ଯଥା—ତା କଥାରେ ମଳି ଧୂଳି ନାହିଁ । )

**ମଳିନ**—ସ. ବିଣ ( ମଳ+ଅସ୍ତି ଅର୍ଥରେ ଇନ )—୧ । ମଳଯୁକ୍ତ; Malina ମଇଳା; ମଳଥା—1. Filthy; dirty; foul. (ମଳିନା—ସ୍ତ୍ରୀ) ୨ । ବିବର୍ଣ୍ଣ; ମ୍ଳାନ; ତେଜୋହୀନ; ଫିକା—2. Pale; wan. ( ଉ—ବ୍ୟୋମକେଶ ଆକାଶର, ମଳିନ ସୁଖ ନକର, ଖସି ପଡ଼ିଲାର ପରି ଦିଶି । ଭଞ୍ଜ. ବୈଦେହୀଶବିଳାସ ।) ୩ । ଦୂଷିତ; କଳଙ୍କିତ—3. Stained; corrupted; spoiled. ୪ । ପାପଯୁକ୍ତ; ପାପୀ—4. Sinful; sinning. ୫ । କୃଷ୍ଣବର୍ଣ୍ଣବିଶିଷ୍ଟ—5. Black. ୬ । ନିତ୍ୟ ନୈମିତ୍ତିକ କ୍ରିୟା ତ୍ୟାଗୀ—6. One who has forsaken the performance of the prescribed daily rites. ସ. ବି—୧ । କଳଙ୍କ-1. Stain. ୨ । ପାପ—2. Sin. ୩ । ପାଶୁପତ; ଏକ ଶ୍ରେଣୀର ସାଧୁ, ଯେଉଁମାନେ ମଳଥା ଲୁଗା ପିନ୍ଧନ୍ତି—3. A class of anchorites who wear dirty cloth. ୪ । ଘୋଳ ଦହି(ହ୍ର.ଶ)-4. Churned sour milk. ୫ । କୃଷ୍ଣାଗୁରୁ (ହ୍ର. ଶ)—5. Black agallochium. ୬ । ତାଜା ଗାଈଦୁଧ (ହ୍ର. ଶ)—6. Fresh cow's milk. ୭ । ହଂସ (ହ୍ର. ଶ)—7. Swan. ୮ । ବେଣ୍ଟ (ହ୍ର. ଶ)—8. Handle of a weapon. ୯ । ଦୋଷ (ହ୍ର. ଶ)—9. Defect; blemish. ୧୦ । ରତ୍ନର ଫିକା ପଣ ଓ ଧୂମ୍ର ବର୍ଣ୍ଣ ହେବା ଦୋଷ (ହ୍ର. ଶ)—10. Paleness and smokiness of gems. ଦେ. ବି—ମ୍ଳାନ ଭାବ; ମଳିନତା—Paleness. (ଉ—ଚନ୍ଦ୍ର ପ୍ରାପ୍ତ ହୋଇ ଭୂମି ଗ୍ଲାରତ୍ତ ବିଶ୍ୟାତ ଶୋଷ କରେ ସର୍ବ ମଳ, ପଦ୍ମନା ପ୍ରକାଶ ପର ଗ୍ରମାର ମଳିନ । ଭଞ୍ଜ. ପ୍ରେମସୁଧାନିଧି ।)

**ମଳିନତା(ତ୍ୱ)**—ସ. ବି (ମଳିନ+ତା, ତ୍ୱ)—ମାଳିନ୍ୟ; ମ୍ଳାନତା—Malinatā(twa) Filthiness; paleness.

**ମଳିନ ବଦନ**—ସ. ବି. ( କର୍ମଧା )—୧ । ମ୍ଳାନ ମୁଖ—1. Pale Malina badana face; sad face. ୨ । କୃଷ୍ଣ ମୁଖ—(ମଳିନ ମୁଖ—ଅନ୍ୟରୂପ) 2. Black face. ୩ । ମଳ ଯୁକ୍ତ ମଳିନ ବଦନା } ସ୍ତ୍ରୀ ମଳିନ ମୁଖୀ } ମୁଖ—3. Unclean or filthy face. ୪ । (ବହୁବ୍ରୀହି)ବାନର; ପୋଡ଼ାମୁହାଁ ବାନର—4. The black-faced monkey. ୫ । ପ୍ରେତ—5. Goblin; ghost. ୬ । ଅଗ୍ନି—6. Fire. ୭ । ବଳଦର ଲାଙ୍ଗୁଡ଼—7. The tail of a bullock. ସ. ବିଣ. ପୁଂ ( ବହୁବ୍ରୀହି )—୧ । ମ୍ଳାନମୁଖଯୁକ୍ତ—1. Pale-faced. ୨ । କୃଷ୍ଣ ମୁଖ ଯୁକ୍ତ—2. Black-faced. ୩ । ଯାହାର ମୁଖ ମଳଯୁକ୍ତ—3. Having a dirty face. ୪ । କ୍ରୂର; ଖଳ (ହ୍ର. ଶ)—4. Wicked; wanton.

**ମଳିନ ବସନ**—ସ. ବି ( କର୍ମଧା )—ମଳଥା ଲୁଗା—Malina basana Dirty cloth. (ମଳିନ ବସନା—ସ୍ତ୍ରୀ) ସ. ବିଣ ପୁଂ(ବହୁବ୍ରୀହି)—ମଳିନ ବସ୍ତ୍ରଧାରୀ—Wearing soiled cloth.

**ମଳିନ ବାସଃ**—ସ. ବି (କର୍ମଧା; ମଳିନ+ବାସସ୍)—ମଇଳା ଲୁଗା—Malina bāsah Soiled cloth.

**ମଳିନ ବାସାଃ**—ସ. ବିଣ. ପୁଂ (ବହୁବ୍ରୀହି; ମଳିନ+ବାସସ୍; ୧ମା. Malina bāsāh ୧ବ)—ମଳିନ ବସ୍ତ୍ରଧାରୀ—Wearing a soiled cloth.

**ମଳିନା**—ସ. ବିଣ. ସ୍ତ୍ରୀ (ମଳିନ+ଆ)—ମଳିନର ସ୍ତ୍ରୀ ଲିଙ୍ଗ—Malinā Feminine of Malina. ସ. ବି, ସ୍ତ୍ରୀ—୧ । ରଜସ୍ୱଳା ସ୍ତ୍ରୀ (ହ୍ର. ଶ)—1. Menstruated woman. ୨ । ନାଲି ଖଣ୍ଡ; କନ୍ଦ (ହ୍ର.ଶ)—2. Red sugar. ୩ । ଭେଜା ବାଇଗଣ (ହ୍ର. ଶ)—3. Solanum Nigrum.

**ମଳିନାମ୍ବୁ**—ସ. ବି. (କର୍ମଧା)—ମସୀ; କାଳି—Malināmbu Ink.

**ମଳିନିମା**—ସ. ବି (ମଳିନ+ଭାବାର୍ଥେ. ଇମନ୍; ୧ମା. ୧ବ)—Malinimā ମଳିନତା (ଦେଖ)—Malinatā (See)

**ମଳିନୀ**—ସ. ବି. ସ୍ତ୍ରୀ (ମଳ+ଇନ୍+ସ୍ତ୍ରୀ. ଈ)—ରଜସ୍ୱଳା ସ୍ତ୍ରୀ—Malinī A woman in her menses. (ମଳିଷ୍ଠା, ମଳୀମସୀ—ଅନ୍ୟରୂପ)

**ମଲ୍ଲି(ଲ୍ଲି) ଫୁଲ**—ଦେ. ବି—୧ । ମଲ୍ଲୀ ନାମକ ଗଛର ଫୁଲ—1. Flower Malli(lli) phula of Jasmine. ୨ । (କଣିଆ ଶବ୍ଦ) ମୁଣ୍ଡର ବେଳ ଫୁଲ ଜୁଡ଼ାରେ ପିନ୍ଧା ଯିବା ମଲ୍ଲି ଫୁଲ ଆକାରର ସୁନାର ବା

बेला फुल ରୂପାର ଫୁଲ ବା ଅଲଙ୍କାର—2. Gold or silver ornaments resembling Malli flowers worn on the chignon.

ମଳିବା—ଦେ. କ୍ରି ( ସଂ. ମର୍ଦ୍ ବା ମୃଦ୍ ଧାତୁ; ପା. ମଦ୍ଦନ )—
Maḻibā ୧ । ଳଡ଼ିବା; ଦଳିବା; ମର୍ଦ୍ଦିବା—1. To thresh; to crush. ୨ । ଘଷିବା—2. To rub. (ଉ—
मला
रौंदना, मलना କମ୍ବୁ କଣ୍ଠୀ ବାଷ୍ପ-ରୁଦ୍ଧ କଣ୍ଠେ କହେ କରେ ନେତ୍ର-ଯୁଗ ମଳି । ରାଧାନାଥ ପାର୍ବତୀ ।) ୩ । ଚିପିବା—3, To press. ୪ । ମାଜିବା—4. To scour. (ଯଥା—ବାସନ ମଳିବା ।) ୫ । ଲୁଗାରେ ବା ହାତରେ ଲୋତକ ଯୁକ୍ତ ବା ନିଦ୍ରାଭିଭୂତ ଅଖିକୁ ଦଳିବା—5 To wipe or rub off the tears or sleepiness from (the eyes).

ମଳିବା ମଚକିବା—ଦେ. କ୍ରି ( ଏକାର୍ଥ ସହଚର )—ମଳାମଳ କରିବା;
Maḻibā machakibā ଉତ୍ତମରୂପେ ଦଳିବା—To crush. (ମଳିବା ଚକଟିବା, ମଳିବା ମକଚିବା, ମଳିବା ଦଳିବା, ମଳିବା ମକ୍ତିବା
दलामला मलना मसकना —ଅନ୍ୟରୂପ)

ମଳି ମୁଣ୍ଡ—ଦେ. ବି. ( ସଂ. ମଳିନ+ମୁଣ୍ଡ )—୧ । ମଳଯୁକ୍ତ ମସ୍ତକ;
Maḻi muṇḍa ମଳମୟ ମସ୍ତକ—1 Filthy head. ୨ । ମଳ-
मयला माथा ଯୁକ୍ତ କେଶ ଥିବା ମୁଣ୍ଡ—2. A head with
मैला शिर dirty hair. ୩ । (ଲକ୍ଷଣାର୍ଥ) ଅତି ଗରିବ ବ୍ୟକ୍ତି—3. (figurative) Indigent person.

ମଳି ମୁଣ୍ଡା—ଦେ. ବିଣ ପୁଂ—୧ । ଅପରିଷ୍କୃତଦେହ ( ବ୍ୟକ୍ତି )—
Maḻi muṇḍā 1. Unclean (person); nasty or
(ମଳି ମୁଣ୍ଡିଆ—ଅନ୍ୟରୂପ) filthy. ୨ । ଅପରିଷ୍କୃତ କେଶ (ବ୍ୟକ୍ତି)
(ମଳି ମୁଣ୍ଡୀ—ସ୍ତ୍ରୀ) —2. (a person) With uncleansed
गरीब or filthy hair. ୩ । ଅତି କୃପଣ—3. Very
दुखिया miserly. ୪ । ଅତି ଗରିବ—4. Indigent.

ମଳିମ୍ଳୁଚ—ସଂ. ବି (ମଳିନ୍+ମ୍ଳୁଚ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ)
Maḻi mḻucha ୧ । ମଳମାସ—1. Intercalary month ୨ । ଅଗ୍ନି—2. Fire. ୩ । ବାୟୁ—3. Air. ୪ । ଚୋର—4. Thief. ୫ । ପଞ୍ଚ ଯଜ୍ଞକାରୀ ଗୃହସ୍ଥ (ବି. ଣ)—5. A householder who regularly performs the daily offerings enjoined in the śastras.

ମଳିଷ୍ଠ—ସଂ ବିଣ (ମଳ+ଇଷ୍ଠ ପ୍ରାଚୁର୍ଯ୍ୟାର୍ଥେ)—୧ । ଅତି ମଳଯୁକ୍ତ—
Maḻishṭha 1. Very filthy. ୨ । ଅତି ମଳିନ—
(ମଳିଷ୍ଠା—ସ୍ତ୍ରୀ) (ମଳିଷ୍ଠତା—ସ୍ତ୍ରୀ) 2. Very pale

ମଳୀ—ସଂ. ବିଣ. ପୁଂ—(ମଳ+ଇନ୍; ୧ମା. ୧ବ)—୧ । ମଳଯୁକ୍ତ—
Maḻī 1. Full of impurities; filthy; dirty.
(ମଳିନୀ—ସ୍ତ୍ରୀ) ୨ । କୃଷ୍ଣବର୍ଣ୍ଣ ବିଶିଷ୍ଟ—2. Black.

ମଳୀମସ—ସଂ. ବିଣ (ମଳ+ଯୁକ୍ତାର୍ଥେ ଈମସ; ନିପାତନ)—୧ । ମଳିନ—
Maḻīmasa 1. Pale. ୨ । ମଳ ଦୂଷିତ—2. Filthy; dirty; befouled. ସଂ. ବି—୧ । ଲୌହ—1. Iron. ୨ । ମଳମାସ—2. Intercalary month. ୩ । ପାପ (ବି. ଣ)—3. Sin.

ମଳୀୟାନ୍—ସଂ. ବିଣ. ପୁଂ—(ମଳ+ପ୍ରାଚୁର୍ଯ୍ୟାର୍ଥେ ଈୟସ; ୧ମା. ୧ବ.)-
Maḻīyān ୧ । ଅତି ବିବର୍ଣ୍ଣ—1. Very pale. ୨ । ଅତି
(ମଳୀୟସୀ—ସ୍ତ୍ରୀ) ମଳଥ—2. Very filthy.

ମଳୁ—ଦେ. ବି—(ସଂ. ମଳ=ବାତ, ପିତ୍ତ ଓ କଫ)—୧ । ପୀଡ଼ାଗ୍ରସ୍ତ
Maḻu ରୋଗୀ मरीज ବ୍ୟକ୍ତି; ରୋଗୀ—1. A sick person. [ଉ—ମଳୁ ପଥ୍ୟ ଔଷଧ ନ ଖାଇଲା ପ୍ରାୟେ, ଅମୃତ ବଚନକୁ ନ ଶୋଭଲେ ସ୍ୱୟେ । କୃଷ୍ଣସିଂହ.ମହାଭାରତ ଦ୍ରୋଣ ।] ୨ । ବୈଦ୍ୟଙ୍କ ଚିକିତ୍ସାଧୀନ ବ୍ୟକ୍ତି—2. A patient. [ଉ—ମଳୁ ଲୋଡ଼ୁଥିଲା ପଇଡ଼ପାଣି, ବଇଦ ବୋଇଲା ପି ତୋଡ଼ାଣି । ଢଗ ।]

ମଳୁଆଣି—ପ୍ରାଦେ. (ଯାଜପୁର) ଅ—ମଳା (ଦେଖ)
Maḻuāṇi Maḻā (See)

ମଳୁକ—ସଂ ବି—(ମଳ+ବଶିଷ୍ଟାର୍ଥେ ଉକ)—୧ । ଉଦର; ପେଟ
Maḻuka (ବି. ଣ)—1. Belly. ୨ । ଏକପ୍ରକାର ପଶୁ—2. A kind of beast.

ମଳୁକୁ(ଖୁ)ଟି—ଦେ. ବି—ମଳକୁଟି (ଦେଖ)
Maḻuku(khu)ṭi Maḻakuṭi (See)

ମଳୁଖ—ଦେ. ବି—(ତୁଳନା କର ସଂ. ମଣ୍ଡ=ନୈବେଦ୍ୟର ଅବ-
Maḻukha ଶିଷ୍ଟାଂଶ)—୧ । କ୍ଷୁଦ ବଛା ହୋଇଥିବା ମୋଟ
गोटा चाल ଚାଉଳ—1. Whole rice from amongst
बढ़िया चावल which rice particles or broken rice have been sifted or picked out. ୨ । ଅଟାକୁ ଚାଲୁଣିରେ ଚଳାଇବା ପରେ ଯେଉଁ ଭୂଷି ଚାଲୁଣିରେ ରହି ଯାଏ; ଚୋକଡ଼—2. Refuse of flour left after being sifted in a sieve; bran. ୩ । କୁଟା ଧାନକୁ ଚାଲୁଣିରେ ଚଳାଇ କୁଲାରେ ପାଛୁଡ଼ିବା ପରେ ଯେଉଁ ଗୋଟା ଚାଉଳ ଓ ତାହା ସଙ୍ଗେ ମିଶି ଗୋଟାଏ ଗୋଟାଏ ଧାନ ରହି ଯାଏ—The whole rice mixed with unhusked grains of paddy left in the winnowing fan after the fine rice is separated from them. [ଦ୍ର—ଅରୁଆ ଚାଉଳରେ ମିଶି ଥିବା ଧାନମାନଙ୍କୁ ବାଛି ଦେଲେ ଯେଉଁ ଗୋଟା ଚାଉଳମାନ ରହେ ତାହାକୁ ଅସତ କହନ୍ତି] ୪ । ମଣ୍ଡାପିଠା ପ୍ରସ୍ତୁତ ପାଇଁ କୁଟା ଯିବା ବତୁରା ଚାଉଳର ଚୂନାକୁ କୁଲାରେ ପାଛୁଡ଼ିଲେ ଯେଉଁ ଖଦଡ଼ ଅଂଶ ବାକି ରହି ଯାଏ, (ଏହାକୁ ଚୂନା ମଳୁଖ ମଧ୍ୟ କହନ୍ତି ।)—4. The unpowdered particles of rice which remain after winnowing the powder of moistened rice pounded for preparing Maṇḍā cake.

ମଳୁଖ ମାଳ(ଳି)—ଦେ. ବି—ମଳୁଖ ଚାଉଳକୁ ସୂତାରେ ଫାସଦ୍ୱାରା
Malukha māla(li) ବାନ୍ଧି ତିଆର କରାଯିବା ମାଳ ବା ହାର—
ଗোটা চালের মালা Garland made by stringing together grains of whole rice in nooses.
[ଦ୍ର—ଏହା ଦେବପ୍ରତିମାଙ୍କୁ ଲାଗି କରାଯାଏ ।]

ମଳୁ(ଲୁ)ଳ—ପ୍ରାଦେ.—(ଗଡ଼ଜାତ) ବି—ବସ୍ତ୍ର ବିଶେଷ—
Malu(lu)la A kind of cloth.

ମଳେଇ—ଦେ.ବି—୧ । ଗାଈର ବାଛୁରୀ ମରି ଗଲେ ତାକୁ ଲୁଣ ଚଟାଇ
Malei ବା ଅନ୍ୟ ଗାଈର ବାଛୁରୀ ଲଗାଇ ତା ଠାରୁ ଦୁଧ ଦୁହିଁବା—
1. The act of milking a cow (whose calf is dead) by making it lick salt or by engaging another calf. ୨ । ମଳେଇ ଗାଈ (ଦେଖ)—2. Malei gāi (See) ୩ । ମରେଇ (ଦେଖ)—3. Marei (See). ପ୍ରାଦେ (ଗଡ଼ଜାତ) ବି—ଗୋରୁ ମଇଁଷିଙ୍କ ଗୋବର ଓ ମୂତକୁ ବିଲରେ ସାରରୂପେ ସଞ୍ଚାଇବା ଉଦ୍ଦେଶ୍ୟରେ ଗୋରୁ ବା ମଇଁଷି ପଲଙ୍କୁ ନେଇ କ୍ଷେତ୍ରସ୍ୱାମୀଙ୍କ ବିଲରେ ରାତିରେ ଗଉଡ଼ ପକାଇବା—The system of confining or stalling a herd of cattle or buffaloes in a field for the night so that their dung and urine left in the field will act as manure.
[ଦ୍ର—ଏଥିପାଇଁ କ୍ଷେତ୍ରସ୍ୱାମୀ ଗଉଡ଼ଙ୍କୁ କିଛି ଅର୍ଥ ଦିଅନ୍ତି ।] ପ୍ରାଦେ. (ଗଡ଼ଜାତ) ବି ଓ ବିଣ—ତଇଳା (ଦେଖ)—Tailā (See)

ମଳେଇ—ବୈଦେ. ବି—(ଫା ବାଲାଇ)— ରବଡ଼ି; ଘନୀକୃତ ଦୁଧସର—
Malei रावड़ी, मालाई Milk made thick over fire,
**मालाइ, मलाइ** thickened cream.

ମଳେଇ ଗାଈ—ଦେ. ବି—ଯେଉଁ ଗାଈର ବାଛୁରୀ ମରି ଯିବାରୁ ତାକୁ
Malei gāi ଲୁଣ ଚାଟିବାକୁ ଦେଇ ଅଥବା ତା ଠାରେ ଅନ୍ୟ
**बिना बाछडूवाली गाय** ଗାଈର ବାଛୁରୀ ଲଗାଇ ତାହାରୁ ଦୁଧ ଦୁହାଁଯାଏ—A cow milched by making her lick salt when her calf is dead or by employing another cow's calf to suck, to induce her to give milk.

ମଳେଇବା—ଦେ. କ୍ରି (ସଂ. ମୃଦ ଧାତୁ=ମର୍ଦ୍ଦନ; ସଂ ଦଲ. ଧାତୁ;
Maleibā ଦଳନ)—୧ । ମଳିବା କ୍ରିୟାର ଣିଜନ୍ତରୂପ—
मलान दलान 1. Causative of Malibā. ୨ । ମୃତବତ୍ସା
**मलवाना** ଗାଈକୁ ଲୁଣ ପ୍ରଭୃତି ଚାଟିବାକୁ ଦେଇ ବା ଅନ୍ୟ ବାଛୁରି ଲଗାଇ ତା ଠାରୁ ଦୁଧ ଦୁହିଁବା—2. To milk a cow whose calf is dead, by giving her a lump of salt to lick or by engaging another calf to suck.

ମଲ୍ଲ (ଧାତୁ)—ସ—୧ । ଧାରଣ କରିବା—1. To hold. ୨ ।
Mall (root) ପିନ୍ଧିବା—2. To wear; to put on.

ମଲ୍ଲ—ସଂ. ବି (ମଲ୍ଲ ଧାତୁ+କର୍ତ୍ତୃ. ଅ)—୧ । ବାହୁଯୋଦ୍ଧା; ମାଲ;
Malla ପହଲୱାନ୍; ଯେ କୁସ୍ତି ବା କସରତ୍ କରେ—1. A wrestler; an athlete; a boxer. ୨ । କପୋଳ; ଗଣ୍ଡସ୍ଥଳ; ଗାଲ—2. Cheek; the cheek and temple (Apte). ୩ । ମାଳା—3. Wreath; necklace; garland. ୪ । ପାନପାତ୍ର—4. A drinking vessel; cup (Apte). ୫ । ମଲ୍ଲଭୂ; ମାଲବାର ଦେଶ—5. The Mālabāra country. ୬ । ବର୍ଣ୍ଣସଙ୍କର ଜାତିବିଶେଷ—6 Name of a mixed caste born of an outcaste Kshatriya by a Kshatriya woman. [ଦ୍ର—ମଲ୍ଲ ନାମକ ପ୍ରାଚୀନ ଜାତିର ନାମ ଓ ସେମାନଙ୍କ ଦେଶର ଓ ରାଜାଙ୍କର ନାମ ମହାଭାରତରେ ଉଲ୍ଲେଖ ଅଛି । ମନୁସଂହିତାରେ (୧୦।୨୨)ରେ ମଲ୍ଲ ଜାତି ବ୍ରାତ୍ୟ ବା ସଂସ୍କାରଚ୍ୟୁତ କ୍ଷତ୍ରିୟ ଥିବାର ଉଲ୍ଲେଖ ଅଛି । ପରେ ମଲ୍ଲ ଜାତି ବୌଦ୍ଧଧର୍ମ ଗ୍ରହଣ କରିଥିବା ବିଷୟ ତ୍ରିପିଟକରେ ମିଳେ । ଏମାନେ ଦ୍ୱନ୍ଦ୍ୱ ଯୁଦ୍ଧରେ ଖୁବ୍ ନିପୁଣ ଥିଲେ । ଏଥିପାଇଁ ଦ୍ୱନ୍ଦ୍ୱ ଯୁଦ୍ଧକୁ ମଲ୍ଲଯୁଦ୍ଧ ବୋଲାଯାଏ । ମଲ୍ଲମାନେ ଶସ୍ତ୍ରବୃତ୍ତି, ଦ୍ୟୂତାସକ୍ତ, ପାନାସକ୍ତ ଓ ରଜୋଗୁଣ ପ୍ରଧାନ ଥିବା ମନୁ ସ୍ମୃତି (୧୨।୪୫)ରେ ଉଲ୍ଲେଖ ଅଛି । ମୁଲତାନ (ମଲ୍ଲସ୍ଥାନ), ମଳବାର, ମାଳବ ଆଦି ସ୍ଥାନର ନାମରୁ ସେଠାରେ ମଲ୍ଲମାନେ ପୂର୍ବେ ବାସ କରୁଥିବା ଅନୁମିତ ହୁଏ । ବ୍ରହ୍ମବୈବର୍ତ୍ତ ପୁରାଣରେ ମଲ୍ଲ ଜାତିକୁ ଲେଟପିତା ଓ ତୀବରୀମାତା ଓ ପରାଶର ସ୍ମୃତିରେ କୁନକାର ପିତା ଓ ତନ୍ତୁବାୟ ମାତାଠାରୁ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତି ବୋଲି ଯାଇଅଛି ।] ୭ । ନୈବେଦ୍ୟର ଅବଶିଷ୍ଟାଂଶ—7. The remnant of an oblation (Apte). ୮ । ମତ୍ସ୍ୟବିଶେଷ (ହ୍ରି. ଶ)—8 A kind of fish. ୯ । ବିରାଟଦେଶ ନିକଟସ୍ଥ ପ୍ରାଚୀନ ଦେଶ (ହ୍ରି ଶ)—9. Name of an ancient country. ୧୦ । ଦୀପ (ହ୍ରି. ଶ)—10. Lamp. ସଂ. ବିଣ—୧ । ବଳଷ୍ଠ—1. Strong; robust. ୨ । ଉତ୍ତମ; ଉତ୍କୃଷ୍ଟ—2. Good; excellent. ଦେ. ବି (ସଂ.
मल कांडा ବଳଯୁ)—୧ । ମଲ (ଦେଖ)—1. Mala (See) ୨ । ଚନ୍ଦ୍ରାବଳୀଙ୍କ ସ୍ୱାମୀ ଗୋବର୍ଦ୍ଧନ ମଲ୍ଲ—2. Gobarddhana Malla, the husband of Chandrābali. [ଉ—ଚଳଲେ ବହନ ମିଳଲେ ଯାଇଁ ମଲ୍ଲ ନଗର—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।]

ମଲ୍ଲକ—ସ, ବି (ମଲ୍ଲ+ସ୍ୱାର୍ଥେ. କ)—୧ । ଦୀପ (ହ୍ରି. ଶ)—
Mallaka 1. A lamp vessel (Apte). ୨ । ଦୀପରୁଖା; ଦୀପବୃକ୍ଷ (ହ୍ରି. ଶ)—2. A lampstand (Apte). ୩ । ନଡ଼ିଆ ସଢ଼େଇରେ ନିର୍ମିତ ପାତ୍ର (ହ୍ରି. ଶ)—3. A cup made out of cocoanut shell (Apte). ୪ । ଦାନ୍ତ (ହ୍ରି, ଶ)—4. Tooth.

୫ । ପାତ୍ର; ବାସନ ( ହି. ଶ )—5. Cup; utensil. ୬ । ଡବାର ସମ୍ପୁଟ ( ହି. ଶ )—6. The lid of a box or case. ୭ । ଏକପ୍ରକାର ମଲ୍ଲୀଫୁଲ—7. A kind of jasmine.

ମଲ୍ଲ କ୍ରୀଡ଼ା—ସଂ. ବି—(୬ଷ୍ଠୀ ତତ୍)—୧ । ମଲ୍ଲମାନଙ୍କର କୁସ୍ତି ଖେଳ—
Malla kriṛā 1. Athletic feats. ୨ । ମଲ୍ଲଯୁଦ୍ଧ—2. Wrestling; boxing.

ମଲ୍ଲଜ—ସଂ. ବି (ମଲ୍ଲ=ମାଲବାର ଦେଶ+ଜନ୍ ଧାତୁ+କର୍ତ୍ତୃ. ଅ)—
Mallaja କଳା ମରିଚ; ଗୋଲ ମରିଚ ( ହି. ଶବ୍ଦସାଗର )—Black pepper.

ମଲ୍ଲ ନାଗ—ସଂ. ବି (ମଲ୍ଲ=ବଳିଷ୍ଠ+ନାଗ=ହାତୀ) —୧ । ଐରାବତ;
Malla nāga ଇନ୍ଦ୍ରଙ୍କ ହସ୍ତୀ—1. The elephant of Indra. ୨ । କାମସୂତ୍ର ରଚୟିତା ବାତ୍ସ୍ୟାୟନ ମୁନି—2 A name of sage Bātsyāyana ୩ । ରଣ-ହସ୍ତୀ—3 An elephant used in war. ୪ । ପତ୍ରବାହକ—4. Letter-carrier.

ମଲ୍ଲ ବିଦ୍ୟା—ଦେ. ବି—କୁସ୍ତି ବିଦ୍ୟା; କସରତ—
Malla bidyā The art of wrestling; gymnastics.

ମଲ୍ଲଭୂ—ସଂ. ବି. ( ୬ଷ୍ଠୀ ତତ୍ )—୧ । ରଣଭୂମି—1. Battlefield.
Malla bhū (Apte). ୨ । ମଲ୍ଲମାନଙ୍କର କ୍ରୀଡ଼ାସ୍ଥଳ ବା (ମଲ୍ଲ ଭୂମି—ଅନ୍ୟରୂପ) ଆଖଡ଼ା; ବ୍ୟାୟାମଶାଳା (ହି. ଶ)—2. A place where athletes exercise wrestling; gymnasium. ୩ । ମଲ୍ଲକ୍ରୀଡ଼ାର ରଙ୍ଗଭୂମି—3. An arena for wrestling; wrestling ground. ୪ । ମାଲବାର (ଦେଶ)—4. Mālabāra (See) ୫ । ମାଲଭୂମ; ବଙ୍ଗର ବାଙ୍କୁଡ଼ା ଜିଲ୍ଲାର ଅନ୍ତର୍ଗତ ବିଷ୍ଣୁପୁର ଅଞ୍ଚଳ—5 A tract of country (modern Bishṇupur in the district Bankurā).

ମଲ୍ଲ ଯୁଦ୍ଧ—ସଂ. ବି. (୬ଷ୍ଠୀ ତତ୍)—ଦୁଇ ଜଣ ମାଲଙ୍କ ମଧ୍ୟରେ ଲଢ଼ା-
Malla juddha ଲଢ଼ି; ବାହୁ ଯୁଦ୍ଧ—A wrestling match; a boxing contest. (ଉ—ଏ ବାହାରେ ତ ମଲ୍ଲ ଯୁଦ୍ଧ ମୁଁ ଜାଣଇଁ, କରିକର ପରି ଦେଖ ମୋ ବାହୁ ଦୁଇ । କୃଷ୍ଣସିଂହ, ମହାଭାରତ. ବିରାଟ ।)

ମଲ୍ଲ ଯୋଦ୍ଧା—ସଂ. ବି—ଯେଉଁ ମଲ୍ଲ ଅନ୍ୟ ମଲ୍ଲ ସଙ୍ଗେ ଯୁଦ୍ଧ କରେ—
Malla joddhā A wrestler; a boxer; a pugilist.

ମଲ୍ଲଶାଳା—ସଂ. ବି. (୬ଷ୍ଠୀ ତତ୍)—ମଲ୍ଲଭୂମି; ଆଖଡ଼ା (ହି. ଶ)—
Mallaśāḷā Gymnasium.

ମଲ୍ଲା—ସଂ. ବି ସ୍ତ୍ରୀ ( ମଲ୍ଲ+ଅ )—୧ । ସ୍ତ୍ରୀ; ନାରୀ—1. A
Mallā woman (Apte). ୨ । ମଲ୍ଲୀ ଫୁଲ ବିଶେଷ—2. The Arabian Jasmine (Apte). ୩ । ଦେହରେ ସୁବାସ ଚନ୍ଦନ ଓ ଲେପ ଆଦି ବୋଳିବା—3. Decorating the person with cosmetics or coloured unguents (Apte). ୪ । ଲତା ବିଶେଷ; ପତ୍ରବଲ୍ଲୀ (ହି. ଶ)—4. A kind of leafy creeper.

ମଲ୍ଲା, ମଲ୍ଲା मल्लाह—ବୈଦେ. ବି (ଅ. ମଲ୍ଲାହ୍=ନାବିକ)—ମଲ୍ଲା; ନୌକାବାହକ ଜାତିବିଶେଷ; ନାବିକ; ମାଝୀ—A caste of boatmen or sailors. [ ଦ୍ର—ଓଡ଼ିଶାରେ କୈବର୍ତ୍ତମାନେ ମାଛ ମାରନ୍ତି; କିନ୍ତୁ ମଲ୍ଲାମାନେ ମାଛ ମାରନ୍ତି ନାହିଁ । ମଲ୍ଲାମାନେ କେବଳ ନୌକା ବୁହାନ୍ତି । କେଉଟୁଣୀମାନେ ପିତଳ ଖଡ଼ୁ ପିନ୍ଧନ୍ତି ଓ ଗୁଣାବସଣୀ ଆଦି ପିନ୍ଧନ୍ତି ନାହିଁ । ମଲ୍ଲା-ସ୍ତ୍ରୀମାନେ ପିତଳ ଖଡ଼ୁ ପିନ୍ଧନ୍ତି ନାହିଁ ଓ ନାକରେ ଗୁଣାବସଣୀ ପିନ୍ଧନ୍ତି । ମଲ୍ଲାମାନଙ୍କର ଗୋତ୍ର ଭରଦ୍ୱାଜ ଓ ନାଗସ । ମନୁସଂହିତା ୧୦ମ ଅଧ୍ୟାୟରେ ସଙ୍କର ଜାତିମାନଙ୍କ ମଧ୍ୟରେ ମଲ୍ଲ ନାମକ ଯେଉଁ ଜାତିର ଉଲ୍ଲେଖ ଅଛି ସେ ବ୍ରାତ୍ୟ କ୍ଷତ୍ରିୟଙ୍କଠାରୁ ଉତ୍ପନ୍ନ ବୋଲି ଲେଖାଅଛି ( ୧୦।୨୨ ), । ମଲ୍ଲାମାନେ ସମ୍ଭବତଃ ଉକ୍ତ 'ମଲ୍ଲ'ଙ୍କ ବଂଶଧର ନୁହନ୍ତି । ପରାନ୍ତରରେ ନୌକା ଚାଳନ ମଲ୍ଲର କର୍ମ ଥିବାରୁ 'ମଲ୍ଲ' ଶବ୍ଦରୁ ଏହି ମଲ୍ଲା ଶବ୍ଦର ଉତ୍ପତ୍ତି ହେବାର ସମ୍ଭବ । ମନୁ ୧୦।୩୪ ଅନୁସାରେ ନିଷାଦ (ମତ୍ସ୍ୟଜୀବୀ ) ପୁରୁଷ କର୍ତ୍ତୃକ ଅୟୋଗବୀ (କାଷ୍ଠ ଛେଦକ ଓ ତକ୍ଷକ) ସ୍ତ୍ରୀ ଗର୍ଭରୁ ନୌକର୍ମଜୀବୀ ମାର୍ଗବ ଓ ଦାସ ଜାତି ବା କୈବର୍ତ୍ତ ଜାତି ଉତ୍ପନ୍ନ (ମନୁ ୧୦।୪୮); କିନ୍ତୁ ମଲ୍ଲାମାନେ ମାଛ ନ ମାରିବା ଯୋଗୁଁ ସେମାନେ ମତ୍ସ୍ୟଜୀବୀ ପିତା ଔରସ ବୋଲି ବୋଲାଯାଇ ପାରୁ ନାହିଁ । କେଉଟଙ୍କ ସନ୍ତକ ଜାଲ ବୁଣା କାଠି ବା ସଢ଼ଙ୍ଗ; କିନ୍ତୁ ମଲ୍ଲାଙ୍କ ସନ୍ତକ ଡଙ୍ଗାର ମଙ୍ଗଧରି । ସମାଜରେ ମଲ୍ଲାମାନଙ୍କ ଆସନ କେଉଟମାନଙ୍କ ଅପେକ୍ଷା ଉଚ୍ଚ ଥିବାର ଦେଖାଯାଏ ଓ ମଧ୍ୟ ଶ୍ରେଣୀର ବ୍ରାହ୍ମଣମାନେ ମଲ୍ଲାଙ୍କର ପୁରୋହିତ ଓ ମନ୍ତ୍ରଗୁରୁ ଥିବାର ଦେଖାଯାଏ; କିନ୍ତୁ କେଉଟଙ୍କ ମନ୍ତ୍ରଗୁରୁ କେଉଟ ଜାତୀୟ ବୈଷ୍ଣବ ଓ ପୁରୋହିତ ମଢ଼ିଆ ପଣ୍ଡା ଶ୍ରେଣୀର ବ୍ରାହ୍ମଣ ଅଟନ୍ତି । ଜଗନ୍ନାଥ, ଲିଙ୍ଗରାଜ ଓ ସାରଳା ଆଦିଙ୍କ ଚନ୍ଦନ ଯାତ୍ରାରେ ସନନ୍ଦଦ୍ୱାରା ଚାପ ବୁହାଇବା ଅଧିକାର ମଲ୍ଲାମାନଙ୍କର ଅଛି; କିନ୍ତୁ କେଉଟମାନଙ୍କର ଏପରି ସନନ୍ଦ ନାହିଁ । ଜଗନ୍ନାଥଙ୍କ ମନ୍ଦିରର ବାଇଶି ପାହାଚରେ ଯେଉଁ ପାହାଚଟି (୩ୟ ବା ୪ର୍ଥ) ମାଙ୍କଡ଼ା ପଥରରେ ତିଆରି ସେ ପାହାଚରେ ମଲ୍ଲାମାନଙ୍କର କୌଳିକ ଅଧିକାର ଥିବାର ଦେଖାଯାଏ । ପୁରୀ ଗୁଣ୍ଡିଚା ଘର ପାଖେ 'ମଲ୍ଲେଇମଠ' ନାମରେ ଗୋଟିଏ ମଠ ଏମାନଙ୍କର ଅଛି ଓ ସେଥିରେ ଥିବା ମଲ୍ଲା ଜାତିର ବୈଷ୍ଣବଙ୍କ ପାଇଁ ପୂର୍ବେ ଜଗନ୍ନାଥ ମନ୍ଦିରରୁ ଅଭଡ଼ା ଖଞ୍ଜାଥିଲା ବୋଲି ବୁଢ଼ାମାନେ କହନ୍ତି । ]

ମଲ୍ଲାର—ସଂ ବି ( ମଲ୍ଲ+ରୁ ଧାତୁ=ଗମନ କରିବା+କର୍ତ୍ତୃ ଅ;+
Mallāra ଇ)—ସଙ୍ଗୀତର ରାଗ ବିଶେଷ—A musical-air. [ଦ୍ର—କେହି କେହି ସଙ୍ଗୀତାଚାର୍ଯ୍ୟ ଏହାକୁ ସଙ୍ଗୀତର ପ୍ରଧାନ ୬ ରାଗ ମଧ୍ୟରୁ ଗୋଟିଏ ଓ କେହି କେହି ଏହାକୁ

ହିନ୍ଦୋଲ ବା ମେଘ ବା ବସନ୍ତରାଗର ରାଗିଣୀ ବୋଲି କହି ଅଛନ୍ତି । ଏହା ବର୍ଷା ଋତୁରେ ରାତ୍ରର ୨ୟ ପ୍ରହରରେ ଗେୟ । ବେଲାବଲୀ, ପୂରବୀ, କାନଡ଼ୀ, ମାଧବୀ, କୋଡ଼ା, କୋଦରକାଙ୍କୁ ଏଥିର ରାଗିଣୀ ବୋଲି କେହି କେହି କହିଅଛନ୍ତି । କେହି କେହି ଏହାକୁ ମେଘ ରାଗର ପୁତ୍ର ବୋଲି କହିଅଛନ୍ତି; (ହି.ଶ) । ରାଗ ଶବ୍ଦ ଟୀକା ଦେଖ ।]
ଦେ. ବି—ଦେଶ ବିଶେଷ—The name of a country ( in ancient India ). ( ଉ— ମଲ୍ଲାରେ ମଲ୍ଲରସମ ହେଲେ ସୁନ୍ଦରୀ । ଉଙ୍. ପ୍ରେମସୁଧାନିଧି । )

ମଲ୍ଲାରୀ——ସଂ. ବି—( ମଲ୍ଲାର+ଈ )—୧ । ମଲ୍ଲାର ରାଗ—1.
Mallārī Name of an air in music. ୨ । ବସନ୍ତ ରାଗର ଓ ମତାନ୍ତରରେ ମେଘ ରାଗର ରାଗିଣୀ ବିଶେଷ (ହି ଶ 2. Name of a secondary musical air.

ମଲ୍ଲି(ଲ୍ଲୀ)—ସଂ. ବି—(ମଲ୍ଲ ଧାତୁ=ଧାରଣ କରିବା+କର୍ମ. ଇ, ଈ)—
Malli(llī) ମଲ୍ଲିକା (ଦେଖ)—Mallikā (See)
ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ମଲ୍ଲିକ—ସଂ. ବି—( ମଲ୍ଲି+ସ୍ୱାର୍ଥେ କ )—୧ । ଧୂସର ବା କୃଷ୍ଣ ଚରଣ
Mallika ଓ ଚଞ୍ଚୁ ଯୁକ୍ତ ହଂସ ବିଶେଷ—1. A grey swan
(ମଲ୍ଲିକା—ସ୍ତ୍ରୀ) with brown or black legs and bill.
୨ । ମାଘ ମାସ (ହି.ଶ)
2. The month of Māgha.
ବୈଦେ.ବି.—(ଫା. ମହଲ୍ଲିକ=ବୃଦ୍ଧ,ଜ୍ଞାନବୃଦ୍ଧ,ଫା. ମଲ୍ଲିକ= ବାଦସାହା; ସଂ.ମଲକ=ରାଜା)—୧ । ମୁସଲମାନ୍ ବାଦସାହା ପ୍ରଦତ୍ତ ସମ୍ମାନସୂଚକ ଉପାଧି ବିଶେଷ—1. A title bestowed by Mahomedan emperors. ୨ । ବଙ୍ଗଦେଶର ବଂଶୋପାଧି ବିଶେଷ—2. A family title in Bengal. ୩ । ଶାସନ ଓ ସମାଜ ବିଷୟ ବୁଝିବା ପାଇଁ ଭିନ୍ନ ଭିନ୍ନ ଗ୍ରାମରୁ ବା ସମାଜରୁ ରାଜାଙ୍କଦ୍ୱାରା ନିର୍ବାଚିତ ପଞ୍ଚାୟତ ସଭାର ମେମ୍ବର; ଗାଁ ବେହେରା—3. The member or the headman of a society or of a village.

ମଲ୍ଲିକା ସଂ ବି—(ମଲ୍ଲି+ସ୍ୱାର୍ଥେ. କ+ସ୍ତ୍ରୀ. ଆ)—୧ । ଏକ ପ୍ରକାର
Mallikā ମଲ୍ଲି ଫୁଲ; ଏକ ପାଖୁଡ଼ିଆ ମଲ୍ଲିଫୁଲ—1. A species of single-petalled jasmine; Jasminum Sambac; Arabian Jasmine. [ଦ୍ର—ଏହା ଉଦ୍ୟାନପାଳିତ ଲଟାଳିଆ ଗୁଳ୍ମ । ୨ ହାତ ଉଚ୍ଚତାକୁ ବଢ଼ିବା ପର୍ଯ୍ୟନ୍ତ ଏଗୁଳ୍ମ ସିଧା ଠିଆ ହୋଇ ବଢ଼େ; ଦୁଇ ହାତରୁ ବେଶି ଉଚ୍ଚ ହେଲେ ଶୋଇ ପଡ଼ି ଭୂମିରେ ଲଟାଏ । ଏହାର ଫୁଲ ଧଳା ଓ ସୁଗନ୍ଧ । ଫୁଲର ପାଖୁଡ଼ାଭେଦରେ ଏକ ପରସ୍ତିଆ (ସଂ. ଏକ ଦଳ), ଦୋପରସ୍ତିଆ, (ସଂ. ବହୁ ଦଳ) ଓ ବହୁ ପରସ୍ତିଆ (ସଂ. ଶତଦଳ ମଲ୍ଲିକା, ବ. ମୋତିୟା ବେଲ, ଓଡ଼ିଆ ମୁଗୁରା ମଲ୍ଲି) ମଲ୍ଲିଫୁଲ ବୋଲା ଯାଏ । ଏକ ପରସ୍ତିଆ ବା ଦୋପରସ୍ତିଆ ମଲ୍ଲୀ ଫୁଲ ବଡ଼ ଓ ସାନ ଭେଦରେ ୨ ପ୍ରକାର । ଏହାର କଢ଼ମାନ ଗୋଲ ବଡ଼ ମୋତି ଭଳି ଦେଖା ଯାଏ । ଏ ଫୁଲର ଡେଙ୍ଫ ନଳାକାର ଓ ଉକ୍ତ ନଳରେ ସୂତା ଗଳାଇ ମାଳା କରାଯାଏ । ବଣରେ ଫୁଟିବା ଏହି ଜାତୀୟ ଫୁଲର ପାଖୁଡ଼ା ଛୋଟ ଓ ପତଳା ଓ ସରୁନଳିଆ । ସାଧାରଣତଃ ଉଦ୍ୟାନପାଳିତ ବହୁଦଳକୁ ମଲ୍ଲିକା ବୋଲା ଯାଏ । ଫୁଲ ପୂର୍ଣ୍ଣ ପରିପକ୍ୱତା ଲାଭ କରିବା ପରେ ବୃନ୍ତ ଉପରେ କଳା ବଟିକା ପରି ଦୁଇ ଫଳ ଧରେ । ବୈଦ୍ୟକ ମତରେ ଏହା ଉଷ୍ଣବୀର୍ଯ୍ୟ, ଲଘୁ, ଶୁକ୍ରବର୍ଦ୍ଧକ, ଓ ତିକ୍ତକଟୁରସ; ଏହା ବାୟୁ, ପିତ୍ତ, ମୁଖରୋଗ, ନେତ୍ର ରୋଗ, କୁଷ୍ଠ, ଅରୁଚି, ବିଷ ଓ ବ୍ରଣନାଶକ । ଫୁଲକୁ ଡାଳରୁ ଛିଣ୍ଡାଇ ଦେଲେ ନଳାକାର ଡେଙ୍ଫର ମୁଣ୍ଡରୁ ଗୋଟିଏ ଖିଲ ବାହାରିଯାଏ । ଉକ୍ତ ନଳାକାର ଡେଙ୍ଫକୁ ଶୋଷିଲେ ତା ମଧ୍ୟରୁ ଅଳ୍ପ ଟିକିଏ ମଧୁର ରସ ପାଟି ଭିତରକୁ ଯାଏ । ଏ ନଳାକାର ଡେଙ୍ଫ ବାଟେ ସୂତା ଗଳାଇ ମାଳା ଗୁନ୍ଥିବା ସୁବିଧାଜନକ ଥିବାରୁ ଲୋକେ ଏ ଫୁଲକୁ ମାଳା କରି ପିନ୍ଧିବାକୁ ସୁଖ ପାଆନ୍ତି । ଏ ଫୁଲକୁ ପିଇବା ପାଣିରେ ପକାଇଲେ ପାଣି ବାସେ । ମଲ୍ଲୀ ଫୁଲରୁ ମଧ୍ୟ ଅତର ଓ ଏସେନ୍ସ ଓ ଫୁଲର ତେଲ ତିଆରି ହୁଏ । ]

ସଂ. ମଲ୍ଲି, ମଲ୍ଲିକା, ମଲ୍ଲୀ, ମଦୟନ୍ତୀ, ବେଲ୍ଲୀ, ଶୀତଭୀରୁ, ଭୂପଦୀ, ମୋଦନୀ
ଗୁ. ଡୋଲର
ତେ. ମଲ୍ଲେଚେଟ୍ଟୁ
ମ. ରାନ ମୋଗରୀ
ବେଲ,ବେଲା,ବେଲୀ
**मोतियावेला, घुघुरुमोतिया**

୨ । ମୃତ୍ପାତ୍ର ବିଶେଷ—2. A kind of earthen pot. ୩ । ମତ୍ସ୍ୟ ବିଶେଷ—3. A kind of fish.
ଦେ. ବି—ସ୍ତ୍ରୀଲୋକଙ୍କ ନାମ—A name given to females.

ମଲ୍ଲିକାକ୍ଷ—ସଂ. ବି (ମଲ୍ଲିକା+ଅକ୍ଷି, ବହୁବ୍ରୀହି)—୧ । ଧୂସର ଚରଣ ଓ
Mallikāksha ଚଞ୍ଚୁ ବିଶିଷ୍ଟ ହଂସ ବିଶେଷ—1. A swan with brown legs and beak ୨ । ଧୂସର ବର୍ଣ୍ଣ ହଂସ—2. Grey swan. ୩ । ଶ୍ୱେତ ରେଖା-ବିଶିଷ୍ଟ, ନୟନଦ୍ୱୟଯୁକ୍ତ ଅଶ୍ୱ—3. A horse having white streaks on its eyes ସଂ. ବିଣ. ପୁଂ—
(ମଲ୍ଲିକାକ୍ଷୀ—ସ୍ତ୍ରୀ) ଯାହାର ଆଖି ଧଳା—White eyed.

ମଲ୍ଲିକାଖ୍ୟ—ସଂ. ବି (ମଲ୍ଲିକ+ଆଖ୍ୟା=ନାମ; ବହୁବ୍ରୀହି)—ରକ୍ତାଭ
Mallikākhya ଚଞ୍ଚୁ ଓ ଚରଣବିଶିଷ୍ଟ ଧୂସର ବର୍ଣ୍ଣ ହଂସ—A grey swan.

ମଲ୍ଲିକାଖ୍ୟା—ସଂ. ବି. ସ୍ତ୍ରୀ (ମଲ୍ଲିକାଖ୍ୟ+ଆ)—ଏକପ୍ରକାର ଯୂଥିଫୁଲ—
Mallikākhyā A kind of tiny jasmine.

ମଲ୍ଲିକା ପୁଷ୍ପ—ଦେ. ବିଣ (ବହୁବ୍ରୀହି)—ଗିରିମଲ୍ଲିକା; କୁଟଜ; ପିତା-
Mallikā pushpa କୋରୁଆ ଗୁଳ୍ମ ଓ ଫୁଲ (ଦ୍ରବ୍ୟଗୁଣ)—Wrightea Antidysenterica ( plant and flower).

ମଲ୍ଲିକାର୍ଜ୍ଜୁନ —ସଂ. ବି — ଶ୍ରୀଶୈଳରେ ପ୍ରତିଷ୍ଠିତ ଶିବଲିଙ୍ଗ—
Mallikārjjuna Name of the phallic image of Siba in Srīsaila.

ମଲ୍ଲିଗନ୍ଧି—ସଂ. ବି (ମଲ୍ଲି+ଗନ୍ଧ+ଇ)—ଅଗୁରୁ ଚନ୍ଦନ—
Malligandhi An excellent species of sandal; eagle wood.

ମଲ୍ଲି ତେଲ—ଦେ. ବି—ମଲ୍ଲି ଫୁଲଦ୍ୱାରା ସୁବାସିତ ରାଶି ତେଲ—
Malli tela Sesamum oil scented with Jasmine.
বেলতেল बेलाकातेल

ମଲ୍ଲିନାଥ—ସଂ. ବି. ନାମ—୧ । ବିଖ୍ୟାତ ସଂସ୍କୃତ ପଣ୍ଡିତ ଓ ଟୀକାକାର—
Mallinātha 1. Name of the famous Sanscrit commentator of Kālidāsa and other poets. [ଦ୍ର—ଏ କାଳିଦାସ, ମାଘ, ଭାରବି ଓ ଶ୍ରୀହର୍ଷଙ୍କ ପ୍ରଣୀତ କାବ୍ୟମାନଙ୍କର ସହଜବୋଧ୍ୟ ଟୀକା ରଚନା କରି ସାଧାରଣଙ୍କୁ କାବ୍ୟମାନଙ୍କ ରସାସ୍ୱାଦନର ସୁବିଧା କରିଦେଇ ଚିରସ୍ମରଣୀୟ ହୋଇଅଛନ୍ତି । ଓରଙ୍ଗଲ୍‌ର କାକତେୟ ବଂଶୀୟ ରାଜାମାନଙ୍କ ଆଶ୍ରୟରେ ରହି ଏ ଏହି ଟୀକାମାନ ରଚନା କରିଥିଲେ (ସୁବଳଚନ୍ଦ୍ର) । ୨ । ଜୈନମାନଙ୍କର ଊନବିଂଶ ତୀର୍ଥଂକର—2. Name of a Jaina saint.

ମଲ୍ଲିନାଥୀ ଟୀକା—ସଂ. ବି—ମଲ୍ଲିନାଥଙ୍କ କୃତ କାବ୍ୟମାନଙ୍କର ଟୀକା—
Mallinātha ṭikā The commentaries of Mallinātha on Kālidāsa's and other poets' works.

ମଲ୍ଲୁ—ସଂ. ବି (ମଲ୍ଲ୍ ଧାତୁ+କର୍ତ୍ତୃ. ଉ)—୧ । ଭଲ୍ଲୁକ; ଭାଲୁ—
Mallu 1. The bear. ୨ । ମାଙ୍କଡ଼ (ହେ. ଶ)—2. The monkey.

ମଲ୍ଲୂର—ସଂ. ବି—ଲୁହାର କଳଙ୍କି; ମଣ୍ଡୁର—
Mallura The rust of iron (Apte).

ମଲ୍ହ—ସଂ. ବି—ଗୋସ୍ତନ—
Malha The udder of the cow (Apte).

ମଲ୍ହାର—ସଂ. ବି—ସଙ୍ଗୀତର ରାଗ ବିଶେଷ—Name of an air
Malhāra in music. ପ୍ରାଦେ (ଢେଙ୍କାନାଳ) ବି—ଅନାର୍ଯ୍ୟଜାତି ବିଶେଷ; ବନ୍ୟ ଯାଯାବର ଜାତି ବିଶେଷ—A non Aryan tribe found in the Dhenkānāla State

ମୱାଜିବ୍—ବୈଦେ. ବି (ଆ. କଟିରଥ)—ମାମୁଲି; ମାମୁଲ; ନିୟମିତ
Mawājib ସମୟରେ ନିୟମିତ ମାତ୍ରାରେ ବ୍ୟକ୍ତିବିଶେଷଙ୍କୁ ମିଳିବା
मवाजिब ପଦାର୍ଥ; ଜଞ୍ଜା ବସ୍ତୁ—A thing which is fixed
মামুলী to be given to a person at stated times in a fixed quantity;customary gift.

ମଶ୍ (ଧାତୁ)—ସ—୧ । ଶବ୍ଦ କରିବା—1. To make a sound.
Mas (root) ୨ । କ୍ରୁଦ୍ଧ ହେବା—2. To be angry.
୩ । ଗୁଣୁଗୁଣୁ ଶବ୍ଦ କରିବା—3. To buzz; to hum.

ମଶ୍(କୁ)ଗୁଲ୍—ବୈଦେ. ବିଣ (ଫା. ମଶ୍‌ଗୁଲ)—୧ । ମୁସଲ୍‌ଗୁଲ୍; ଅତ୍ୟନ୍ତ;
Mas-ku(gu)l ବଡ଼—1. Very; much; great. ୨ । କାର୍ଯ୍ୟରେ ଅତି ବ୍ୟସ୍ତ; କାର୍ଯ୍ୟରେ ଅସକ୍ତ—Absorbed in
মশগুল मशगुल work.

ମଶ୍‌ଜିଦ୍(ତ୍)—ବୈଦେ. ବି (ଆ. ମସ୍‌ଜୀଦ୍)—ମୁସଲମାନଙ୍କ ପ୍ରାର୍ଥନା ମନ୍ଦିର;
Mas-jid(t) মসজীদ मसजीद ମଜ୍‌ଜିଦ୍—A mosque.

ମଶମଶ୍—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ଶୁଖିଲା ପତ୍ର ଉପରେ
Mas-mas ଚାଲିଲେ ଯେଉଁ ଶବ୍ଦ ହୁଏ—1. Rustling
মশমশ sound; the sound made by treading
मचमच on dry leaves. ୨ । ଡାଳ ପତ୍ର ଭାଙ୍ଗିବାର ଲଘୁ ଶବ୍ଦ—2. Soft sound of breaking branches. ୩ । ମଚମଚ; ଜୋତା ମାଡ଼ି ଚାଲିବାର ଶବ୍ଦ—3. The sound of squeaking produced by walking briskly with tight shoes on. ୪ । କାକୁଡ଼ି, ମୂଳା ଆଦି ଖାଇବାରବାର ଶବ୍ଦ—4. Mumbling sound produced by chewing cucumber, radish etc. [ ଦ୍ର—ମଶ୍‌ମଶ୍‌ଠାରୁ ରଶ୍‌ରଶ୍ ଉଚ୍ଚତର ଓ ମଶମଶ ଠାରୁ ମୁଶ୍‌ମୁଶ୍ କୋମଳତର ।]

ମଶମଶ୍ ଚାଲି—ଦେ. ବି—ଦ୍ରୁତଗମନ—Walking by produ-
Mas-mas chāli cing sound; rustling brisk wal-
মশমশ করে চলা king [ଦ୍ର—ଏହା ରଶ୍‌ରଶ୍‌ଠାରୁ ଧୀରତର ।]
मचमच चाल

ମଶ୍‌ମଶିଆ—ଦେ. ବିଣ ( ସଂ. ମଶ୍ ଧାତୁ=ଶବ୍ଦ କରିବା )—୧ । ମସକା,
Mas-masiā ଭଙ୍ଗପ୍ରବଣ; ଭଙ୍ଗୁର ( ଡାଳ )—1. Fran-
মসকা, মুড়মুড়া gible; fragile. ୨ । ଯାହା ସହଜରେ ଖିଆଯାଇ
मुरमुर, खस्ता ହୁଏ; ମୁଡ଼ୁମୁଡ଼ିଆ—2. Crumbly; crisp.

ମଶ—ସଂ. ବି ( ମଶ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ )—୧ । ମଶା
Masa ( ହେ. ଶ. )—1. Mosquito. ୨ । (+ଭାବ. ଅ) କ୍ରୋଧ ( ହେ. ଶ. )—2. Anger. ୩ । (+କର୍ମ. ଅ) ଗୁଣୁଗୁଣୁ ଶବ୍ଦ—3. Hum; humming ( Apte ).

ମଶକ—ସଂ. ବି ( ମଶ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅକ; ଲାଟିନ୍
Masaka Musca (ମକ୍ଷୀ); ଇଂ. Mosquito (ମସ୍କିଟୋ); ଆ. ଓ ଫା. ମଶ୍‌କ)—୧ । ମଶା—1. Gnat; mosquito. ୨ । ଚର୍ମରୋଗବିଶେଷ; ଆଞ୍ଚିଡ—2. A kind of skin-disease; wart. ୩ । ( ଭୁଲ. ଫା. ଏହି ଅର୍ଥରେ ମଶକ୍) ଜଳ ବହନ କରିବା ପାଇଁ ଚର୍ମମୟ ପାତ୍ର (ଶବ୍ଦ. କଳ୍ପଦ୍ରୁମ); ଭସ୍ତ୍ରୀ—3. A big leathern bag for carrying water. ୪ । ଶାକଦ୍ୱୀପସ୍ଥ କ୍ଷତ୍ରିୟ ଅଧ୍ୟୁଷିତ ଦେଶବିଶେଷ (ହେ. ଶ)—4. Name of an ancient country inhabited by Kshatriyas. ୫ । କଳ୍ପସୂତ୍ର ରଚୟିତା ଗାର୍ଗ୍ୟ ଗୋତ୍ରଜ ମୁନିବିଶେଷ ( ହେ. ଶ. )—5. Name of a sage; the author of Kalpasūtra. ୬ । ତେଲାଦି ରଖିବାର ବଡ଼ ଚର୍ମପାତ୍ର—6. Leathern oil can or cask.

ମଶକା —ଦେ. ବଣ ( ସ. ମଶ. ଧାତୁ=ଶବ୍ଦ କରିବା )—ଭଙ୍ଗପ୍ରବଣ
Maśakā ( ଗଛର ଡାଳ ); ଯାହା ଅଳ୍ପ ବଳ ପ୍ରୟୋଗରେ ଭାଙ୍ଗି
ମସକା ମුරමুর ଯାଏ—Frangible ( tree or branch ).

ମଶକୁଟି(ଟୀ)—ସ. ବି—ମଶା ତଡ଼ାଇବା ପାଇଁ ବ୍ୟବହୃତ ଚାମର—
Maśakuṭi(ṭī) A whisk for scaring away mos-
(ମଶବାରଣ—ଅନ୍ୟରୂପ) quitoes from the body. (Apte).

ମଶଣିଆ—ଦେ. ବି—ତମ୍ବାଳୁ ( ଦେଖ )—
Maśaṇiā Tambālu ( See )

ମଶନଦ୍—ବୈଦେ. ବି ( ଅ )—୧ । ସିଂହାସନ—1. Throne.
Maśanad ୨ । ବଡ଼ ତକିଆ; ଗାଡ଼ି ତକିଆ—2. A big
ମସନଦ ମসনদ্ bolster for leaning on while sitting.

ମଶଲା—ବୈଦେ. ବି ( ଅ. ମଶାଲ୍ଲ, ଫା. ମସ୍ଲହ )—୧ । ମସଲା;
Maśalā ବ୍ୟଞ୍ଜନକୁ ସରସ, ସୁଗନ୍ଧ ଓ ରୁଚକର କରିବାର ଉପ-
ମସଲା, ମସାଲା କରଣ—1. Condiments; spices. ୨ । ଖିଲିପାନ,
ମসালা ତେଲ ଓ ମୁଖକୁ ସୁବାସିତ କରିବାର ଉପକରଣ—
( ମସଲା—ଅନ୍ୟରୂପ ) 2. Spices used to add scent to betel, oil and the mouth ୩ । ଔଷଧରେ ବ୍ୟବହୃତ ଉଦ୍ଭିଦ ଉପକରଣ—3. Ingredients used in the preparation of medicine;drugs. ୪ । ପକ୍କା ଓ କୋଠା ଆଦିର ଗାନ୍ଥନି କରିବା ପାଇଁ ବ୍ୟବହୃତ ଚୂନ, ବାଲି ଓ ସୁରୁକି ଆଦି ମିଶ୍ରିତ ଉପକରଣ—4. Mixture of sand and lime etc used in raising pucca structures or masonry.
ପ୍ରାଦେ (ଗଞ୍ଜାମ) ବି—ତମାଖୁ ବା ଧୂଆଁପତ୍ରର ଗୁଣ୍ଡା ସଙ୍ଗେ ଧନିଆ ଓ ପାନମହୁରୀ ଆଦି ମିଶାଯାଇ ପାନ ସଙ୍ଗେ ଖିଆଯିବା ଗୁଣ୍ଡି—Tobacco powder mixed with spices and taken with betel.

ମଶଲା ମଶଲି—ଦେ. ବି ( ସହଚର )—ନାନାପ୍ରକାରର ମଶଲା—
Maśalā maśali Various kinds of spices or
ମଶଲା ମଶଲି ମসালা উসালা condiments.

ମଶଳିବା -ବୈଦେ. କ୍ରି ( ସ. ମୃଦ ଧାତୁ; ମର୍ଦ୍ଦନ )—(କାନ) ମୋଡ଼ିବା,
Maśalibā ହାତରେ ଘଷିବା ବା ଦଳିବା—To twist
ମଲା with the hands (one's ears as a
ମসলনা punishment); to wrench.

ମଶହରୀ—ସ ବି. ସ୍ତ୍ରୀ ( ମଶ=ମଶା+ହୃ ଧାତୁ+କର୍ତ୍ତୃ ଇ+ଈ.
Maśaharī ଈ )—ମଶାରି; ମଶାଙ୍କ ଦାଉରୁ ରକ୍ଷା ପାଇବା
(ମଶକହରୀ—ଅନ୍ୟରୂପ) ପାଇଁ ବ୍ୟବହୃତ ଜାଲିକନା ନିର୍ମିତ ଛାଡ଼ଯୁକ୍ତ ଘରୁଆ—Mosquito curtain.
( ଉ—ଧନେ ସ୍ୱରତେ ମଣ୍ଡିତ ମଶହରୀ, ଜାଣି ନୋହିଲା ଢଳ୍ପ ତମସ ହରି । ଭଞ୍ଜ. ପ୍ରେମସୁଧାନିଧି । ).

ମଶା—ଦେ. ବି ( ସ.ମଶ, ମଶକ )—୧ । ଦ୍ୱିପକ୍ଷୀ ଷଟ୍ପଦୀ କୀଟବିଶେଷ
Maśā —1 Gnat; mosquito; culex.
ମଶା [ ଟ—ଏମାନେ ମନୁଷ୍ୟ ଓ ପଶୁଆଦି ଜୀବଙ୍କ ରକ୍ତଶୋଷଣ
ମসান କରନ୍ତି ଓ ଗୁଣୁ ଗୁଣୁ ଶବ୍ଦ କରନ୍ତି । ଏମାନଙ୍କର ମୁହଁରେ ଥିବା ନାକୁଡ଼ି ଅତି ସୂକ୍ଷ୍ମ ଓ ଏହି ନାକୁଡ଼ିକୁ ଜୀବମାନଙ୍କ ଲୋମକୂପରେ ଡଳାଇ ଦେଇ ଉଦ୍ଧାର ରକ୍ତ ଶୋଷନ୍ତି । ଏମାନେ ମଇଳାପାଣିରେ ଜନ୍ମନ୍ତି । ପ୍ରଥମେ ମସ୍ତକଯୁକ୍ତ କୃମି ପରପୋକ ( wrigglers ) ହୋଇ ପାଣିରେ ଖାଲୁ-ଖାଲୁ ହୁଅନ୍ତି ଓ ପରେ ପକ୍ଷ ଲାଗି ଉଡ଼ନ୍ତି । ନାନାପ୍ରକାରର ମଶା ଅଛନ୍ତି । ମଶାମାନେ ରାତିରେ ବାହାର ଜୀବଙ୍କୁ କାମୁଡ଼ନ୍ତି । ଏମାନଙ୍କ କାମୁଡ଼ାରେ ଖତସ୍ଥାନ ଫୁଲିଯାଇ ବେଳେ ବେଳେ ବିଶେଷ ଯନ୍ତ୍ରଣା ହୁଏ । ଏକପ୍ରକାର ମଶା ( Anophyle ) ଙ୍କ ନାକୁଡ଼ିରେ ଥିବା ବିଷ ମନୁଷ୍ୟ ଦେହରେ ପ୍ରବେଶ କରି ମାଲେରିଆ, ଆମବାତ ଓ ବାତ-ଜ୍ୱରର ବୀଜ ମନୁଷ୍ୟଠାରେ ପ୍ରବେଶ କରାଏ । ଶୀତପ୍ରଧାନ ଦେଶରେ ଏମାନେ କମ୍ ଜନ୍ମନ୍ତି । ଧୂଆଁ ଦେଲେ ଏମାନେ ଧୂଆଁର ଗନ୍ଧ ଯୋଗୁଁ ପଳାଇ ଯାଆନ୍ତି; ପୁଣି ଧୂଆଁ କମିଗଲେ ଏମାନେ ଆସନ୍ତି । ନଡ଼ିଆଗଛର ଶିପ ବା ଖୋସାର ଧୂଆଁ ଅନ୍ୟ ଧୂଆଁ ଅପେକ୍ଷା ମଶାଙ୍କୁ ବେଶି ପରିମାଣରେ ନିବାରଣ କରେ । ମଶା କାମୁଡ଼ାରୁ ରକ୍ଷା ପାଇବା ନିମନ୍ତେ ଲୋକେ ଜାଲିଯୁକ୍ତ ମଶାରି ବ୍ୟବହାର କରନ୍ତି । ମଶାମାନେ କାନପାଖରେ ଗୁଣୁ ଗୁଣୁ ଶବ୍ଦ କରିବାରୁ ଓ ମନୁଷ୍ୟଙ୍କୁ କାମୁଡ଼ିବାରୁ ଲୋକେ ଖଳ ଓ କାନଭୁହା ( ଚୁଗୁଲିଆ ) ବ୍ୟକ୍ତିଙ୍କୁ ମଶା ସଙ୍ଗେ ତୁଳନା କରନ୍ତି । ] ୨ । ମଶାପରି ଅତି କ୍ଷୁଦ୍ର ଜୀବ—2. Any small animal compared to a mosquito. ୩ । ମଶାପରି ଅତି କ୍ଷୁଦ୍ର ଓ ହାଲୁକା ପଦାର୍ଥ—3. Any tiny light thing compared to a mosquito.

ମଶା କାମୁଡ଼ା—ଦେ.ବି—ମଶକ ଦଂଶନ—The biting of mos-
Maśā kamuṛā ମশারকামড় মচ্ছর কা কাটনা quitoes.

ମଶାଖିଆ—ଦେ. ବି—୧ । ମଶାମରା ( ଦେଖ )—1. Maśāmarā
Maśākhiā ( See ) ୨ । ମଶକ ଦଂଶନ—2. The
ମশাব কামড় bite of mosquito. ୩ । ମଶକଦଂଶନ
ମশাব কামড়ের দাগ ଜନିତ କ୍ଷତ—3. The wound made by the bite of the mosquito.
ଦେ. ବି—ମଶକଦଂଶନ ଜନିତ—Caused by the biting of mosquitoes.

ମଶାଣ(ଣି)—ଦେ. ବି ( ସ. ଶ୍ମଶାନ )—୧ । ମଡ଼ାଶଗଡ଼ା—1.
Maśāṇa(ṇi) cemetery. ୨ । ଶ୍ମଶାନ; ଶବଦାହସ୍ଥାନ—
ସ. ନାମ—ଶ୍ମଶାନ, ପିତୃବନ, 2. Crematory. ( ଉ—ଶଭାନକ, ରୁଦ୍ରାକୀଡ଼, ଦାହସର, ଦକ୍ଷିଣ ମଶାଣ ରାଜସ୍ୱରେ ଅନ୍ତଶଯ୍ୟା, ପିତୃକାନନ, ପିତୃଭୂମି, ଜଳେ ଲୋହେ ଉତ୍ସବ, ପ୍ରେତଭୂମି, ପରେତଭୂମି ମশান মসান,মরঘট ରାଧାନାଥ. ଉଷା )

ମଶାଣ(ଣି) ଚଣ୍ଡିଆ—ଦେ. ବି—ମଡ଼ାଚଣ୍ଡିଆ ( ଦେଖ )
Maśāṇa(ṇi) chandiā Marḍāchandiā ( See )

ମଶାଣ(ଣି) ଚଣ୍ଡୀ—ଦେ. ବି ( ସ. ଶ୍ମଶାନ ଚଣ୍ଡୀ )—ଶ୍ମଶାନ
Maśāṇa(ṇi) chandī ଚଣ୍ଡୀ; ଶ୍ମଶାନ ବାସିନୀ ଠାକୁରାଣୀ

ମଶାଣଚଣ୍ଡୀ ବିଶେଷ—Name of a Goddess presi-
মশাণচণ্ডী
मशानोचराडी, मशानी ding on a cremation ground.

ମଶାଣ(ଣି) ପଦା—ଦେ. ବି—ଶ୍ମଶାନ ଭୂମି—Cremation
Maśāṇa (ṇi) padā মশাণ ground; cemetery
मरघट, मशान ground. [ଦ୍ର—ପୂର୍ବେ ରାଜଦଣ୍ଡିତ ବ୍ୟକ୍ତିଙ୍କୁ
(ମଶାଣ[ଣି] ଭୂଇଁ—ଅନ୍ୟରୂପ) ମଶାଣିରେ ନେଇ ଶୂଳୀ ଦେଉ-
ଥିଲେ ।]

ମଶାଣିଆ—ଦେ. ବି—(ବୈଦ୍ୟକ) ତମ୍ବାଳୁ (ଦେଖ)—Tambālu
Maśāṇiā (See) [ଦ୍ର—ଏହାର ଛାଲ ବାଟି ଲେପନ କଲେ
ଶୋଥ, ବ୍ରଧ୍ନ, ବଳା ବା ବାଗି ବସିଯାଏ ଏବଂ ସଦ୍ୟୋବ୍ରଣ
ଦୁଷ୍ଟବ୍ରଣର ଦାହ ଓ ବେଦନା ନିବାରିତ ହୁଏ । ଦ୍ରବ୍ୟଗୁଣ
କଳ୍ପଦ୍ରୁମ ।] ଦେ. ବିଣ. ପୁଂ—୧ । ଗାଳିବିଶେଷ (ଅର୍ଥ,
(ମଶାଣି ଶୁଆ—ଅନ୍ୟରୂପ) ତୁ ମଶାଣିକୁ ଯା)—1. A term
of abuse or curse. ୨ । ଯେ ସର୍ବଦା ଶ୍ମଶାନରେ
ରହେ; ଶ୍ମଶାନବାସୀ (ପ୍ରେତ)—2. Living in the
cremation ground; like a goblin frequen-
ting the cremation ground.

ମଶା ମରା—ଦେ. ବି—୧ । ମଶାଙ୍କୁ ଘଉଡ଼ାଇବା ନିମନ୍ତେ ଧୂଆଁ ଦେବା
Maśā marā ପାଇଁ ବ୍ୟବହୃତ ଅଟା ବା ନଡ଼ିଆ ବଉଳିଆ—
मच्छर भगाने वाला 1. A plaited length of straw used
for fumigation in order to drive away
mosquitoes. ୨ । ମଶକନିବାରକ ଧୂପ ବା ଔଷଧ
ବିଶେଷ—2 Any incense for driving away
mosquitoes.

ମଶାର—ପ୍ରାଦେ. ( ବାମଣ୍ଡା ) ବି—ବଢ଼ିଥିବା ନଦୀରେ ଭାତ ଫୁଟିଲା
Maśāra ପରି ଫୁଟୁଥିବା ପାଣି—The state of water
of a swollen river resembling boiling
water.

ମଶାରି—ଦେ. ବି (ସଂ. ମଶହରୀ ବା ମଶ+ଅରି)—୧ । ମଶୁରି; ଜାଲୁଆ
Maśāri ଲୁଗାରେ ତିଆରି ଚନ୍ଦ୍ରାତପ ବିଶେଷ—1. Mosquito
মশারী curtain. ୨ । ମଶାରି ଦଉଡ଼ା ( ଦେଖ )
मशहरी 2. Maśāri daurḍā ( See ) ୩ । ମଶାରି
ଖୁଣ୍ଟ ୨ ( ଦେଖ )—3. Maśāri khuṇṭa 2
( See )

ମଶାରି ଉଠା(ଠେ)ଇବା—ଦେ. କ୍ରି—ବିଛଣାର ଚାରି ପାଖକୁ ଆବରଣ
Maśāri uṭhā(ṭhe)ibā କରିଥିବା ମଶାରିକୁ ଟେକିଦେବା—
মশারি তোলা To lift up the sides of a mos-
मशहरी उठाना quito curtain.
(ମଶାରି ଟେକିବା—ଅନ୍ୟରୂପ)

ମଶାରି କଣ୍ଟା—ଦେ. ବି—ମଶାରିର ଦଉଡ଼ାକୁ ବାନ୍ଧି ମଶାରି ଟାଙ୍ଗିବା
Maśāri kaṇṭā ପାଇଁ କାନ୍ଥରେ ମରା ଯାଇଥିବା ଲୁହା କଣ୍ଟା—
মশারি কাঁটা Iron nails driven into walls for
मशहरीका काँटा hanging mosquito curtain.

ମଶାରି ଖଟା(ଟେ)ଇବା—ଦେ. କ୍ରି—ବିଛଣା ଉପରେ ଚାନ୍ଦୁଆ ପରି ମଶାରିକୁ
Maśāri khaṭā(ṭe)ibā ଡୋରିଦ୍ୱାରା ଲଟକାଇବା—To
মশারি খাটান, মশারি টাঙ্গা hang or ring up a mosquito
मशहरी टाँगना curtain; to tuck the curtain.
[ମଶାରି ଟଙ୍ଗା(ଙ୍ଗେ)ଇବା, ମଶାରି ଟାଙ୍ଗି(ଙ୍ଗି)ବା—ଅନ୍ୟରୂପ]

ମଶାରି ଖୁଣ୍ଟ(ଣ୍ଟି)—ଦେ. ବି—୧ । ଖଟପଲଙ୍କର ଚାରି କୋଣରେ ଥିବା
Maśāri khuṇṭa(ṇṭi) ଯେଉଁ ଖୁଣ୍ଟମାନଙ୍କରେ ମଶାରିର
মশারি খুঁটি କୋଣମାନ ବନ୍ଧାଯାଏ—1. Posts set at the
मशहरी खूंटी corners of a bed-stead to hang the
corners of a curtain. ୨ । ନାଆର ଛାଇର
ଗୋଟିଏ ପାଖକୁ ଟେକି ଦେଇ ତା ତଳେ ଠେସଦେବା ପାଇଁ
ଦେଉ଼ ହାତ ଉଚ୍ଚ ବାଉଁଶର ବା କାଠର ଠିଆ ବା ଖୁଣ୍ଟି—
2. A small peg or post used to support
one side of the thatch over a country
boat.

ମଶାରି ଛାତ—ଦେ. ବି—ମଶାରିର ଉପର ଅଂଶରେ ଥିବା ଚାନ୍ଦୁଆ—
Maśāri chhāta The cloth roof of a mosquito
মশারির ছাদ मशहरीकी छत curtain.

ମଶାରି ଦଉଡ଼ା(ଡ଼ି, ରା, ରି)—ଦେ. ବି—୧ । ମଶାରି ଟାଙ୍ଗିବା ପାଇଁ
Maśāri daurḍā(rḍi, rā, ri) ମଶାରିର ଚାରି କୋଣରେ
মশারীর দড়ী ଲାଗିଥିବା ସରୁ ଦଉଡ଼ି—1 Slender strings
मशहरीकी डोरी attached to the corners of the
[ମଶାରି ଡୋରି(ରୀ)—ଅନ୍ୟରୂପ] roof of a mosquito-
curtain by means of which it is hung up
by tying the strings to the pegs in
the wall. ୨ । ଡଙ୍ଗାର ମଶାରି ଖୁଣ୍ଟି ହଜି ନ ଯିବ
ବୋଲି ତହିଁରେ ଯେଉଁ କ୍ଷୁଦ୍ର ସୂତୁଲି ବା ଦଉଡ଼ି ଲାଗି
ଡଙ୍ଗାର ପନ୍ଦ ସଙ୍ଗେ ବନ୍ଧା ଯାଇଥାଏ—2. A string
attached to the thatch-supporting pegs
of a country boat and which is tied to
the edge of a boat so that they will not
be mislaid or lost when not in use.

ମଶାରି ପକା(କେ)ଇବା—ଦେ. କ୍ରି—୧ । ମଶାରି ଖଟାଇବା—
Maśāri pakā(ke)ibā 1. To tuck the curtain.
মশারি ফেলা, মশারি নামান ୨ । ମଶାରିର ଚାରି ପାଖର ପରଦା-
मशहरी गीराना ମାନଙ୍କୁ ବିଛଣାର ଧାଡ଼ି ସଙ୍ଗେ ସଂଲଗ୍ନ କରିବା—
2. To let down the sides of a curtain.

ମଶାରି ବାଡ଼(ଡ଼ା)—ଦେ. ବି—ମଶାରିର ଚାରି ପାଖେ ତଳକୁ ଓହଳି
Maśāri bārḍa(rḍā) ଥିବା କନା ବା ପରଦା—The
মশারি বাড় sides or hangings of a mosquito
मशहरी परदा curtain.

ମଶାଲ—ବୈଦେ. ବି—(ଅ॰ ମଶ୍ଅଲ୍)—ସ୍ଥୂଳ ବର୍ତ୍ତିକା; ବନ୍ଧୁଡ଼ି; ଆଲୋକ
Maśāla ଦେଖାଇବା ପାଇଁ ବ୍ୟବହୃତ କନାଗୁଡ଼ିଆ କାଠି ଯହିଁରେ
মশাল ତେଲ ଦିଆଯାଇ ନିଆଁ ଲଗାଯାଏ—Torch; flam-
मशाल beau. [ ଉ—ଭରଣୀରେ ଜାଳି ଦେଲାଣି ମଶାଲ ।
ରାଧାନାଥ. ଚିଲିକା ।] [ ଦ୍ର—ମଶାଲଦ୍ୱାରା ଚାରିଆଡ଼
ଆଲୋକିତ ହୁଏ କିନ୍ତୁ ତହିଁର ଠିକ୍ ତଳ ପ୍ରଦେଶରେ

ମଶାଲର ଆଲୁଅ ପଡ଼ୁ ପାରେ ନାହିଁ। ନ୍ୟାୟ ବଗୃହକ ବା ରାଜା ଆଦଙ୍କ ଦ୍ୱାରେ ଅନ୍ୟାୟ ଘଟିଲେ ବା ବିଦ୍ୱାନ୍ ଲୋକର ପରିବାରସ୍ଥ ବ୍ୟକ୍ତି ମୂର୍ଖ ହେଲେ 'ମଶାଲ ତଳେ ଅନ୍ଧାର ନ୍ୟାୟ' ପ୍ରବଚନ ବୋଲାଯାଏ।]

ମଶାଲ କନା—ଦେ. ବି—ଲତା କନା; କାଠିରେ ଗୁଡ଼ାଇ ମଶାଲ ତିଆର Maśāla kanā କରିବା ପାଇଁ ବ୍ୟବହୃତ ଚିରା କନା— मशाल कानी Rags used for being tied round a मशालका चिथडा stick to be used as a torch.

ମଶାଲ ଗୁଲ—ଦେ. ବି—ଜଳୁଥିବା ମଶାଲରୁ ଝଡ଼ିବା ଜଳନ୍ତା ବସ୍ତ୍ର Maśāla gula ଖଣ୍ଡମାନ—Particles of burning मशाल किचिनगारी rags detached from a burning torch.

ମଶାଲ(ଲ୍)ଚି—ବୈଦେ. ବି- (ଫା.)—୧। ବଳୁଆ; ମଶାଲ ଧରିବା Maśāla(l-)chi ବ୍ୟକ୍ତି—1. Torch bearer. ୨। (ଭାରତ- मशालची ବର୍ଷରେ) ସାହେବମାନଙ୍କ କୋଠିରେ ଆଲୁଅ ଆଦ मशालची ଲଗାଇବା ଚାକର—2. A servant who lights lamps in a European's bungalow (in India). ୩। ମଶାଲଦାନି (ଦେଖ)— 3. Maśāladāni (See)

ମଶାଲଦାନି—ବୈଦେ. ବି—(ଫା. ମସ୍ଅଲ୍‌ଦାନ୍)—ମଶାଲରେ ଦିଆ Maśāla dāni ଯିବା ତେଲ ଯେଉଁ ସରୁ ମୁହାଁ ଭାଣ୍ଡରେ ଥାଏ ଓ मशालदानी ମଶାଲର ଯହିଁରୁ ଟୋପା ଟୋପା କରି ତେଲ ମଶାଲରେ मशालदानी ଢାଳେ—A narrow-necked or spouted receptacle used for dropping oil on a torch.

ମଶାଲ ଦେଖା(ଖେ)ଇବା—ଦେ. କ୍ରି—ମଶାଲର ଆଲୋକଦ୍ୱାରା ବାଟ Maśāla dekhā(khe)ibā ଦେଖାଇବା—To hold up मशाल देखान a torch to a person; to show the way मशाल दिखाना by means of a torch.

ମଶାଲ ଧରା—ଦେ. ବିଣ—ମଶାଲ ଧରିବା ବ୍ୟକ୍ତି; ବଳୁଆ— Maśāla dharā मशाल धर्वा Torch bearer. मशाल पकडने वाला (ମଶାଲଧାରୀ—ଅନ୍ୟରୂପ)

ମଶାଲ ଧରିବା—ଦେ. କ୍ରି—ଜଳୁଥିବା ମଶାଲକୁ ବେଷ୍ଟଦ୍ୱାରା ଟେକ Maśāla dharibā ଧରିବା—To bear a lighted मशाल धरा मशाल धरना torch.

ମଶାଲ ନାଳୁଆ—ଦେ. ବି—ନଳାକୃତି ଯେଉଁ ସୂକ୍ଷ୍ମ ଲୌହପାତ୍ରରୁ Maśala nāluā ମଶାଲରେ ତେଲ ଢଳା ଯାଏ—A spout- मशालदान ed can for pouring oil on a lighted मशालकी नली torch.

ମଶାଲ ଲଗା(ଗେ)ଇବା—ଦେ. କ୍ରି—ମଶାଲରେ ଆଲୋକ ସଂଯୁକ୍ତ Maśāla lagā(ge)ibā କରିବା; ମଶାଲକୁ ଜଳାଇବା— मशाल लागान मशाल बारना To light a torch.

ମଶାଲିଆ—ଦେ. ବି—ମଶାଲ ଧରିବା ବ୍ୟକ୍ତି; ବଳୁଆ—Torch- Maśāliā मशालची मशालची bearer.

ମଶି(ଶୀ,ଷି,ଷୀ,ସି,ସୀ)—ସଂ. ବି—(ମଶ୍ ଧାତୁ=ଓଜନ କରିବା+କର୍ତ୍ତୃ. Maśi(śī,shi, shī;si, sī) ଇ;ଈ)—୧। ଲେଖିବାର କାଳି— 1. Writing ink. ୨। ଦାଣ୍ଡିକଳା; ପାପକଳା; ଅଙ୍ଗାର କଳା ଆଦ ନାନା ପ୍ରକାର କଳା—2. Carbon from charcoal; lampblack etc; soot. ୩। ଶେଫାଳିକା ବୃନ୍ତ— 3. The stem of Śephālikā flower.

ମଶିଆ—ଦେ. ବିଣ. (ସଂ. ମଶୀ)—ମଳିଆ; ମଳଯୁକ୍ତ; ମଇଳା—Dirty; Maśiā begrimed; filthy; soiled. ଦେ. ବି—ଆଳୁ ময়লা ଘୁଆ; ଆଳୁବାଡ଼ିର; ଆଳୁର ଗୁଳ, ବାଇଡ଼ା, ଦେଶୀଆଳୁର मैला ଲତାର ଗଣ୍ଠିରେ ଫଳଥିବା ଗୋଲାକାର ଆଳୁ—Potato-like tubers coming out at the joints of the yam creeper.

ମଶିଆରି—ପ୍ରାଦେ (ଗଞ୍ଜାମ) ବି—ମଇଣ (ଦେଖ) Maśiāri Maeṇa (See).

ମଶି(ଶୀ,ଷି,ଷୀ,ସି,ସୀ)କୂପିକା—ସଂ. ବି (ମଶି+କୂପିକା=କୁମ୍ଭ)— Maśi(śī,shi,shī,si,sī)kūpikā ଦୁଆତଘଡ଼ି;ଦୁଆତ କୁମ୍ଭି— [ମସି(ଶୀ,ଷି,ଷୀ,ସି,ସୀ)କୂପୀ—ଅନ୍ୟରୂପ] Inkpot; inkstand.

ମଶିଗୁଣ୍ଡ(ଣ୍ଡା)—ଦେ. ବି—୧। ସୂକ୍ଷ୍ମ ଚୂର୍ଣ୍ଣ—1. Minute powder. Maśigunḍa(ṇḍā) ୨। ଯେଉଁ ଚୂନାରେ ପାଣି ପକାଇଲେ গুঁড়োকালী କାଳି ତିଆରି ହୁଏ—2. Ink-powder. ୩। ଅଙ୍ଗାର स्याहीका चूरन ଚୂନା; କଳା ମୁରୁଜ—3. Powdered (ମଶିଚୂର୍ଣ୍ଣ—ସଂ. ରୂପ) charcoal.

ମଶି(ଶୀ) ଚିହ୍ନିତ—ସଂ. ବିଣ (ଆଦ୍ୟା ତତ୍)—କାଳିର ଦାଗଯୁକ୍ତ— Maśi(śī) chihnita Marked with ink. [ମଷି(ଷୀ)ଚିହ୍ନିତ, ମସି(ସୀ) ଚିହ୍ନିତ—ଅନ୍ୟରୂପ]

ମଶି[ଶୀ]ଜୀବୀ—ସଂ. ବିଣ. ପୁଂ [ମଶି+ଜୀବ୍ ଧାତୁ+କର୍ତ୍ତୃ. ଇନ୍; ୧ମା. Maśi(śī)jībī ୧ବ)—ଯେ ଲେଖାଲେଖି କରି ଜୀବିକା ନିର୍ବାହ ମଷି[ଷୀ]ଜୀବୀ, ମସି[ସୀ]ଜୀବୀ } ଅନ୍ୟରୂପ କରେ—Living on the earnings of his writing; following clerkship as a profession. ସଂ. ବି—୧। ଲେଖକ; ମୋହରିର—1. A writer by profession; a scribe by profession. ୨। [ମସି(ଶୀ)ଜୀବିନୀ—ସ୍ତ୍ରୀ] କିରାଣୀ—2. Clerk.

ମଶିଣ[ଣି]—ଗ୍ରା. ବିଣ—ମସୃଣ— Maśiṇa(ṇi) Smooth.

ମଶିଣା—ଦେ. ବି (ସଂ. ମସୃଣ)—(ମେଦିନୀପୁର ଅଞ୍ଚଳରେ ପ୍ରସ୍ତୁତ)— Maśiṇā ଚଟେଇ; ସପ; ସୂକ୍ଷ୍ମ ଇଷୁ ବା ସୁନ୍ଦର ତୃଣ মাদুর ହୋଇଥିବା ତୃଣର ଅସ୍ତରଣ ବା ପଟି—A fine rush चटाई mat; a fine matting of reed.

ମଶି[ଶୁ]ଣା(ଣେ)ଇବା—ଦେ. କ୍ରି (ସଂ. ମସୃଣ)—(ହଳଦିକୁ) ମସୃଣ Maśi(śu)ṇā(ṇe)ibā ଭାବରେ ବାଟିବା—To make চিকনকরে বাটা (turmeric) into a smooth or fine महीनपीसना paste. [ଦ୍ର—ପ୍ରଥମେ ହଳଦିକୁ ଖଣ୍ଡି ଖଣ୍ଡି ଆ

କରି ଛେଚି ଖଦଡ଼ା କରି ବାଟିବାକୁ ଏକେଇବା ବୋଲା-
ଯାଏ । ପରେ ତାହାକୁ ଚିକ୍କଣ କରି ବାଟିବାକୁ
ମଶୁଣାଇବା ବୋଲାଯାଏ । ]

ମଶି[ଶୀ] ଧାନ[ନୀ]-ସଂ. ବି (ମଶି+ଧାନୀ=ପାତ୍ର)-ଦୁଆତ; କାଳପାତ୍ର—
Maśi(śī)dhāna(nī) Inkpot.
[ମଷି(ଷୀ)ଧାନ(ନୀ), ମସି(ସୀ)ଧାନ(ନୀ), ମଶି(ଶୀ,ଷି;ଷୀ,ସି,ସୀ)ମଣି—
ଅନ୍ୟରୂପ]

ମଶିନା—ଦେ. ବି—ମଶୁଣିଆ (ଦେଖ)
Maśinā Maśuṇiā [See].

ମଶିନନ୍ଦିତ—ସଂ. ବିଣ —ମଶିଲାଞ୍ଛିତ (ଦେଖ)
Maśinindita Maśilāñchhita [See].

ମଶିପଣ୍ୟ—ସଂ. ବିଣ ଓ ବି (ମଶି ଅଟେ ପଣ୍ୟ ଯାହାର; ବହୁବ୍ରୀହି)—
Maśipaṇya ମଶିଜୀବୀ (ଦେଖ)—Maśijībī [See].
(ମଶିପଣ୍ୟା—ସ୍ତ୍ରୀ)

ମଶିପଥ—ସଂ. ବି (ଷଷ୍ଠୀ ତତ୍)—କଲମ—
Maśipatha Pen [Apte].

ମଶିପ୍ରସୂ—ସଂ ବି—୧ । ମସ୍ୟାଧାରଃ ଦୁଆତ—1. Ink-pot.
Maśi prasū ୨ । ଲେଖନୀ; କଲମ—2. Pen. ୩ । ପେନ୍ସିଲ୍—
3. Pencil. ୪ । (ଆଧୁନିକ) ଫାଉଣ୍ଟେନ୍ ପେନ୍—
4. Stylo pen; (modern) fountain pen.

ମଶି ବର୍ଣ୍ଣ—ସ. ବିଣ ( ବହୁବ୍ରୀହି )—ସ୍ୟାହି ପରି କାଳିଆ—
Maśi barṇṇa Black as ink; inky.

ମଶି ବିନ୍ଦୁ—ସ. ବି ( ଷଷ୍ଠୀ ତତ୍ )—ଶିଶୁମାନଙ୍କୁ କୁଦୃଷ୍ଟିର କୁଫଳରୁ
Maśi bindu ରକ୍ଷା କରିବା ପାଇଁ ସେମାନଙ୍କ ମୁଣ୍ଡରେ ଯେଉଁ
କଜ୍ଜଳ ଟୋପି ଦିଆଯାଏ ( ହ୍ରୁ. ଶ )—Circlets or
points of collyrium put on the forehead
of infants to counteract the effect of
evil eyes on them.

ମଶି ମଣି—ସ. ବି—୧ । ଲେଖନୀ; କଲମ—1. Pen. ୨ । ପେନ୍ସିଲ୍—
Maśimaṇi 2. Pencil.

ମଶିମୟ—ସ. ବିଣ—କାଳିମୟ; କାଳି ବୋଳା ହୋଇଥିବା—Stained
Maśimaya with ink; smeared with ink.

ମଶି ଲାଞ୍ଛିତ—ସ. ବି—୧ । (ବହୁବ୍ରୀହି; ମଶି ହୋଇଅଛି ଲାଞ୍ଛିତ ଯାହା
Maśi lāñchhita ଦ୍ୱାରା) କାଳି ଅପେକ୍ଷା ଅଧିକତର କୃଷ୍ଣବର୍ଣ୍ଣ; ଘୋର
କଳା—1. Blacker than ink; very black;
deep black. ୨ । ( ତୃତୀୟା ତତ୍ ) କାଳିରେ ଦାଗ
ଦିଆ ଯାଇଥିବା—2. Marked with ink.

ମଶିଲିପ୍ତ—ସ. ବିଣ ( ତୃତୀୟା ତତ୍ )—କାଳି ବୋଳା ହୋଇଥିବା—
Maśilipta Smeared with ink.

ମଶୁ—ପ୍ରାଦେ ( ଗଡ଼ଜାତ ) ବି—ଏକପ୍ରକାର ଅରଣ୍ୟ ଗଛ—
Maśu A kind of wild tree.
[ ଦ୍ର—ଏଥିର ଡାଳ ଖୁବ୍ ଟାଣ, ଏଥିର କାଠ ହାତ ଦାଣ୍ଡି
ପରି ହୁଏ, ଏଥିରେ ବାଡ଼ି ହୁଏ । ]

ମଶୁଣ—ଦେ. ବିଣ ( ସ. ମସୃଣ )—ମସୃଣ—Smooth.
Maśuṇa मसृण चिकना

ମଶୁଣା—ଦେ. ବିଣ ( ସ. ମସୃଣୀକୃତ )—୧ । ମଶୁଣ ( ଦେଖ )—
Maśuṇā 1. Maśuṇa (See) ୨ । ମସୃଣୀକୃତ ( ହଳଦୀ
चिक्कन বাটা ଲେପ ); ଚିକ୍କଣ ( ହଳଦୀ ବଟା )—2. Smooth
महीनपिशी हुई (turmeric paste). ଦେ. ବି—ମଶୁଣାଇବା
( ଦେଖ )—Maśuṇāibā ( See )

ମଶୁଣା(ଣେ)ଇବା—ଦେ. ବି ( ମସୃଣ )—( ହଳଦୀକୁ ) ଖୁବ୍ ଚିକ୍କଣ
Maśuṇā(ṇe)ibā କରି ବାଟିବା—Pestling turmeric
চিক্কন করে বাটা महीन पीसना into a smooth paste.

ମଶୁଣି—ଦେ. ବି (ସ. ମସୃଣ)—୧ । ମଶିଣା (ଦେଖ)—1 Maśiṇā
Maśuṇi ( See ) ୨ । ବାଛୁରି ବାନ୍ଧିବାର ଛୋଟ ଦଉଡ଼ି—
বাছুর चटाइ ডোর ज्ञान 2. A small string for tying
calves. [ ଉ—ପାଣ୍ଡୋଇ କଠାଉ ମଶୁଣି, ଅଣ ଭୁ
ଦୁଧର ଦୁହୁଣୀ—ଜଗନ୍ନାଥ, ଭାଗବତ । ]

ମଶୁଣିଆ—ଦେ. ବି—ଗଡ଼ଜାତର ବନ୍ୟ ବୃକ୍ଷବିଶେଷ—
Maśuṇiā Ehretia Laevis tree ( Haines ),

ମଶୁଣି ଶିଳ—ଦେ. ବି ( ସ. ମସୃଣ+ଶିଳା )—ଯେଉଁ ଶିଳରେ ପ୍ରଥମେ
Maśuṇiśiḷa ବଟା ଯାଇଥିବା ପଦାର୍ଥକୁ ଚିକଣ କରି ବଟାଯାଏ—
চিক্কন বাটা শিল A pestling stone-slab on which
तेजशिल roughly pestled articles are turned into
fine paste.

ମଶୁନ—ସ. ବି ( ମଶ ଧାତୁ, ଶବ୍ଦ କରିବା+କର୍ତ୍ତୃ. ଉନ )—କୁକୁର—
Maśuna Dog.

ମଶୁର—ବୈଦେ. ବିଣ ( ଫା. ମଶହୁର )—୧ । ଖୁବ୍; ଅତ୍ୟନ୍ତ—
Maśur 1. Very; much. ୨ । ପ୍ରସିଦ୍ଧ; ଖ୍ୟାତ—
পাঁড় 2. Notable; notorious. [ ଉ—ଏବଂ ସେ
मशहूर ଜଣେ ମଶୁର ବଦମାଏସ୍ ଏବଂ ଜାଲିଆତ୍ ଥିବା ବାଲିକ—
ଫକୀରମୋହନ· ଛଅମାଣ ଆଠଗୁଣ୍ଠ । ]

ମଶୁରି—ଦେ. ବି (ସ. ମଶହରୀ)—ମଶାରି—Mosquito curtain.
Maśuri মশারি मशहरी

ମଷକ୍ଦାନା—ବୈଦେ. ବି ( ଫା. ମୁଷକ୍ଦାନା; ତୁଳ. ସ. ମୁଷ୍କ; ଅ.
Mashak-dānā ମିସକ୍ଦାନା )—କଳା କସ୍ତୁରି—Black
কস্তুরী, মসকদানা मशकदाना musk.

ମଷ୍ (ଧାତୁ)—ସ—୧ । ଆଘାତ କରିବା—1. To hurt; to
Mash(root) injure ( Apte ). ୨ । ହତ୍ୟା କରିବା;
ବିନାଶ ଘଟାଇବା—2. To kill; to destroy
( Apte ).

ମଷା—ଦେ. ବି ( ସ. ମାଷ ବା ମାଷ )—ପରିମାଣ ବିଶେଷ; ୧୦ ରତି
Mashā মশা माशा ଓଜନ—A unit of weight.

ମଷାଏ—ଦେ. ବି ଓ ବିଣ ( ସ. ମାଷ )—ଏକ ମଷା ପରିମାଣ—
Mashāe One Mashā in weight.

ମଷ୍ଟିବା—ପ୍ରାଦେ. ( ସିଂହଭୂମି ) କ୍ରି ( ତୁଳ. ଏହି ଅର୍ଥରେ ବ. ମଷ୍ଟା;
Mashṭibā ସ° ମୃଷ୍ଟ )—ଚକଟିବା ( ଦେଖ )—
Chakaṭibā ( See )

ମସ୍ (ଧାତୁ)—ସ—୧ । ପରିମାଣ କରିବା; ମାପିବା—1. To
Mas (root) measure. ୨ । ଓଜନ କରିବା—2. To
weigh. ୩ । ଆକାର ବଦଳାଇବା—3. To
change form.

ମସ୍କ—ବୈଦେ. ବି ( ଅ )—ଅଭ୍ୟାସ—Habit.
Mas-k ମଷକ **मसक**

ମସ୍କରା—ବୈଦେ. ବି ( ଆ. ମସ୍ ଖରାହ୍=ପରିହାସ ପ୍ରିୟ; ମସ୍ଖରା=
Maskarā ଥଟ୍ଟା )—୧ । ଥଟ୍ଟା; ପରିହାସ—1. Jesting,
ମସ୍କରା; ଠଟ୍ଟା joking. ୨ । ବ୍ୟଙ୍ଗ୍ୟ—2. Irony;
**मसखरी** satire; buffoonery. ବୈଦେ. ବିଣ ( ଆ.
ଠଟ୍ଟାବାଜ ମସ୍ଖରାହ୍=ଥଟ୍ଟିଲ )—୧ । ଥଟ୍ଟିଲ; ପରିହାସକାରୀ—
**मसखरा** 1. Jesting, jestive. ୨ । ବ୍ୟଙ୍ଗ୍ୟକାରୀ—
2. Ironical; sarcastic. ( ଯଥା—ଗାଁର ମସ୍କରା
ଲୋକ ଲୋକମାନେ ସେମାନଙ୍କୁ ଦେଖି ହସ ମେଲନ୍ତି ।
(ମସ୍କରା—ଅନ୍ୟରୂପ) ଫକୀରମୋହନ ଛମାଣ ଆଠଗୁଣ୍ଠ । )

ମସ୍କରା କରିବା—ଦେ. କ୍ରି—ଥଟ୍ଟା କରିବା—To cut jokes; to
Mas-karā karibā ଠଟ୍ଟାକରା, ମସ୍କରାକରା jest.
**मसखरी करना** (ମସ୍କରା ମାରିବା, ମସ୍କରା ଲଗାଇବା—ଅନ୍ୟରୂପ)

ମସ୍କରିଆ—ଦେ. ବିଣ. ପୁଂ—ଥଟ୍ଟିଲ—Jesting; jocular.
Mas-kariā [ ଯ—ଗୋପୀ ବାବୁ ଜଣେ ମସ୍କରିଆ ଭଳିଆ ଲୋକ
ରସିକ, ଠଟ୍ଟାବାଜ **मसखरिया, मसखरा** —ଫକୀରମୋହନ. ଗଳ୍ପସ୍ୱଳ୍ପ]
( ମସକରିବାଜ୍, ମସକରିବାଲ, ମସ୍କରିଆ—ଅନ୍ୟରୂପ )
( ମସକରୀ, ମସକରେଇ, ମସ୍କରେଇ—ସ୍ତ୍ରୀ )

ମସକ—ଦେ. ବିଣ ( ସ. ମସ୍ ଧାତୁ=ଆକାର ବଦଳାଇବା )—ମସ-
Masaka ମସିଆ; ମୁସୁମୁସୁ—( a crisp edible thing )
ମୁଚମୁଚେ Prodicing a very low rustling noise
**मुडमुडिया** when chewed, on account of there
being no water in it. [ ଯଥା—ଦହିଭୁ
ମସକ ଚୁଡ଼ା ଭଜା । ]

ମସକା—ଦେ. ବି—ଭଙ୍ଗପ୍ରବଣ ( ଡାଳ )—Fragile.
Masakā **फुसफुसा ढोल ठुमाक** ପଳକା

ମସତ—ପ୍ରାଦେ.—(ସମ୍ବଲପୁର)—ବିଣ—(ଭୁଲ. ବଂ. ଏହି ଅର୍ଥରେ
Masat ମସ୍ତ)—ମସ୍ତ; ଅତ୍ୟନ୍ତ ବଡ଼—Very large. ପ୍ରାଦେ.
ପ୍ରାଦେ. (ସମ୍ବଲପୁର) ବିଣର ବିଣ—ଅତ୍ୟନ୍ତ—
Very much.

ମସନି—ପ୍ରଦେ (କଟକ) ବି—ମସିଣା—
Masani Mat.

ମସଲା—ପ୍ରାଦେ. (ବାଲେଶ୍ୱର)—ବି—(ବଂ. ଗୁଣ୍ଡ)—୧ । ମାଛ ଧରିବା
Masalā ଗୁଣ୍ଡ ଭିଆର କରିବା ନିମନ୍ତେ ମିଳିଥିବା ମସଲା ବିଶେଷ--
(ମାଛ ମସଲା—ଅନ୍ୟରୂପ) 1. A mixture used as bait
୨ । ମାଛ ଧରିବା ପାଇଁ ବ୍ୟବହୃତ ଗୁଣ୍ଡ—2. Bait
for fishes. ୩ । ମସଲା (ଇତ୍ୟାଦି) (ଦେଖ)
3. Masalā etc (See)

ମସଲା ପାଣି—ଦେ. ବି—ତରକାରୀରେ ଦିଆଯିବ ପାଇଁ ବଟା ହୋଇ-
Masalā pāṇi ଥିବା ମସଲା ପାଣି—A paste of condi-
ମସଲାର ଜଳ ments mixed with water for being
**मसालाका पानी** used in curry.

ମସ(ଛ)ଲିପଟ୍ଟମ—ଦେ. ବି. (ନାମ)—ପ୍ରାଚୀନ କଳିଙ୍ଗର ବନ୍ଦରବିଶେଷ
Masa(chha)li patama A seaport of ancient
ମସଲି ପଟମ **मसलिपट्टाम** Kaliṅga.

ମସା—ଦେ. ବି—(ସ. ମାଷ) ସ୍ୱର୍ଣ୍ଣାଦିର ପରିମାଣ ବିଶେଷ ୧/୧୦ ଭରି—
Masā ମାଷା **मासा** A standard weight of gold.
[ଦ୍ର—୧ ଭରି=୧୦ ମସା, ୧ ମସା=୮ ରତି;
୧ ରତି=୪ ଧାନ । ]

ମସାଲି—ପ୍ରାଦେ. (ବାଲେଶ୍ୱର) ବି—ନଈ ମୁହଁରୁ ଧରାଯିବା ଏକ ପ୍ରକାର
Masāli ଲୁଣି ମାଛ—A species of sea fish, caught
at the muoths of sea-going rivers.

ମସି(ସୀ) (ଇତ୍ୟାଦି)—ସ. ବି—ମଷି ଇତ୍ୟାଦି (ଦେଖ)—
Masi(si) (etc) Maṣi etc (See)

ମସିକ—ସ. ବି—ସାପଗାତ—A serpent's hole (Apte.)
Masika

ମସି ଗୁଣ୍ଡା—ଦେ. ବିଣ—ଖଣ୍ଡ ଖଣ୍ଡ; ଚିକ ଚିକ—Bits; scraps.
Masi gundā ଚୁନୋ **चुर चूर** [ ଯ—ରଥର ଅଙ୍ଗେ
ପଡ଼ିଲେ ହେବ ମସି ଗୁଣ୍ଡା । ପ୍ରାଚୀ. ବ୍ରହ୍ମକରୂପଣ ଗୀତା । ]

ମସିଣା—ପ୍ରାଦେ. ( ଜୟପୁର ) ବି—ବନ୍ୟବୃକ୍ଷବିଶେଷ—A tree
Masiṇā found in the forest. [ ଦ୍ର—ଏ ଗଛର
(ମସାଣିଆଁ—ଅନ୍ୟରୂପ) ଛେଲିକୁ ବାଟିଲେ ଭାର ଅଠାଳିଆ ହୁଏ ।
ଏହି ବଟାକୁ ଉଷୁମ କରି ବୋଳିଲେ ବଥ ବାଗୀ ଆଦି
ବସିଯାଏ । ]

ମସିହ—ବୈଦେ. ବି—(ଆ. ମସୀହ୍) ଯୀଶୁଖ୍ରୀଷ୍ଟ—Jesus Christ.
Masiha ମସୀହ **मसीह**

ମସିହା(ଆ)—ବୈଦେ. ବି—(ଆ. ମସୀହ୍; ଖ୍ରୀଷ୍ଟିୟାନ୍ଙ୍କ ଧର୍ମର ହର୍ତ୍ତାକର୍ତ୍ତା
Masihā(ā) ଈଶା); ଇଂ. ମେସାୟା=ଯୀଶୁଖ୍ରୀଷ୍ଟ; ଆ. ମସୀହୀ
ମସିହା **इसवी. मसीहा** ଖ୍ରୀଷ୍ଟ ସମ୍ବନ୍ଧୀୟ)—ଖ୍ରୀଷ୍ଟାବ୍ଦ; ଇଂରାଜୀ
ସନ—A year of the Christian calendar
[ ଦ୍ର—ବ୍ୟବହାରରେ ଲେଖା ଯାଏ—ସନ ୧୩୩୨ ସାଲ
ମାହେ ଜାନୁଆରୀ ୧୯୨୫ ମସିହା, ଅର୍ଥାତ୍ ଓଡ଼ିଶା
ପ୍ରଚଳିତ ୧୩୩୨ ସାଲ ଓ ଖ୍ରୀଷ୍ଟାବ୍ଦ ୧୯୨୫ ସାଲ । ]
ବୈଦେ. ବିଣ—ଖ୍ରୀଷ୍ଟ ସମ୍ବନ୍ଧୀୟ; ଖ୍ରୀଷ୍ଟୀୟ (ବର୍ଷ)—
Christian (year.)

ମସୀନା—ସ. ବି.—(ମସ୍ ଧାତୁ=ପରିମାଣ କରିବା+କର୍ମ. ଈନ୍+ଆ
Masinā ଅତସୀ (ଦେଖ)—Atasi (See)

ମସୀନା ତୈଳ—ସ. ବି—୧ । ଆୟୁର୍ବେଦ ପ୍ରକ୍ରିୟାରେ ପ୍ରସ୍ତୁତ ତୈଳ--
Masina taila 1. Medicinal oil prepared from
linseed. [ ଦ୍ର—ଏହା ଅଗ୍ନି ଗୁଣ ବହୁଳ, ସ୍ନିଗ୍ଧ,
ଉଷ୍ଣବୀର୍ଯ୍ୟ, କଫ ଓ ପିତ୍ତବର୍ଦ୍ଧକ, କଟୁ ବିପାକ, ଚକ୍ଷୁର
ଅହିତକର, ବଳଜନକ, ମଳବର୍ଦ୍ଧକ, ମଧୁର ରସ, ଧାରକ
ପାପଦୋଷନାଶକ ଓ ଘନ । ବସ୍ତିକ୍ରିୟାରେ, ପାନ,
ଅଭ୍ୟଙ୍ଗ, ନସ୍ୟ, କର୍ଣ୍ଣପୂରଣ, ଓ ଅନୁପାନରେ ବାୟୁ ଶାନ୍ତ,

ନମିତ୍ତ ଏହା ବୀଧ୍ୟବର୍ଦ୍ଧକ—ଦ୍ରବ୍ୟଗୁଣ ।] ୨ । ନସୁନସ୍ୱକ ତେଲ (ଦେଖ)—2. Linseed oil (See).

ମସୁ(ସୋ,ସୌ)ଦା(ଧା)—ବୈଦେ. ବି. (ଆ. ମୁସଵଦା) (କଚରଥା)—୧ । ପ୍ରସ୍ତାବ—1. Proposal. ୨ । ପରାମର୍ଶ—2 Consultation. ୩ । କୌଣସି ଲେଖାର ଚଠା—3. Draft of a deed. ୪ । ଯୁକ୍ତି—4. Reasoning; argument. ୫ । ଉପାୟ—5. Plan; resource.
Masu(so, sau)dā(dhā) मसूदा **मसौदा**

ମସୁ(ସୋ,ସୌ)ଦା କାଢ଼ିବା (ବାନ୍ଧିବା)—ଦେ. କ୍ରି—କୌଣସି କାର୍ଯ୍ୟ ସାଧନାର୍ଥ ଉପାୟ ଉଦ୍ଭାବନ କରିବା—To find out the means for fulfilment of an object.
Masu(so, sau)dā kārḍhibā (bāndhibā)
मसूदा वाहिर करा **मसौदा गांठना(बांधना)**

ମସୁ(ସୋ, ସୌ)ଦା ବାଜ୍—ବୈଦେ. ବିଣ. (ଆ. ମୁସଵଦା+ଫା. ପ୍ରତ୍ୟୟ ବାଜ୍) (କଚରଥା)—୧ । ଉପାୟ ଉଦ୍ଭାବନ କରିବାରେ ସମର୍ଥ—1. Resourceful. ୨ । ଚତୁର—2. Cunning.
Masu(so, sau)dā bāj
मसूदा बाज **मसौदे बाज**

ମସୁବିଦା(ଧା)—ବୈଦେ. ବି (ଆ. ମସଵଦା) (କଚରଥା)—ଚଠା; ଖସଡ଼ା—A draft.
Masubidā(dhā)
मसूविदा **मसविदा**

ମସୁର୍—ପ୍ରାଦେ. (ମେଦନାପୁର) ବି—ମଶାରି—Mosquito curtain.
Masur

ମସୁର ଦନ୍ତା—ଦେ. ବି—ଏକ ପ୍ରକାର ବନ୍ୟ ଗୁଳ୍ମ—Linocora Intermedia (Haines).
Masur dantā

ମସୁ(ସୂ)ର—ସଂ. ବି ( ମସ୍ ଧାତୁ=ମାପିବା+କର୍ମ. ଉର; ଊର )—ମୁଗ ବର ଜାତୀୟ ଲତାଜାତ ଶସ୍ୟ—Cicerles, Lentil; Lens Esculenta. [ଦ୍ର—ଏହା ଶିମ୍ବାବର୍ଗର କୃଷି ଜାତ ଶସ୍ୟ; ଏଥିର ଛୁଇଁ ଚେପ୍ଟା ଓ ଉଚ୍ଚରେ ଶସ୍ୟ ଥାଏ । ଛୁଇଁରେ ଦୁଇଟି ମଞ୍ଜି । ଏହା ନାଲି ଗୋଲାପି ବର୍ଣ୍ଣ ଓ ପୁଷ୍ଟିକର । ବୈଦ୍ୟକ ମତରେ ଏହା ମଧୁର, ଶୀତଳ, ସଂଗ୍ରାହକ, କଫ ଓ ପିତ୍ତ ନାଶକ ଓ ଜ୍ୱର ନାଶକ ।]
Masu(sū)ra
ଅ ୧ ସଂ. ନାମ—ମାଙ୍ଗଲ୍ୟକ, ବ୍ରୀହିକାଞ୍ଚନ, ମସୂରକ, ପୃଥୁବୀଜକ, ଶୂର, କଲ୍ୟାଣବୀଜ, ମସୂରିକା, ମଙ୍ଗଲ୍ୟା
मसूर
**मसुर री)**
ମ. ଚଣଇ, ମସୁରି
ତେ. ଚିରି ସନମଲୁ, ମିସିରପପ୍ପୁ
ତା. ମିସୁର, ଯୁରପୁର
ଫା. ବୁନୋସୁର୍ଖ ଆ. ଅଦସ ଓଡ଼ିଆ. ମସୁରି

ମସୁ(ସୂ)ରକ—ସଂ. ବି ( ମସୁର+କ )—୧ । ମସୁର ( ଦେଖ ) 1. Masura ( See ) ୨ । ତକିଆ—2 A pillow (Apte).
Masu(sū)raka

ମସୁ(ସୂ)ର ବିଦଳା—ସଂ. ବି—କୃଷ୍ଣ ତିହୁଡ଼ି ( ଦେଖ ) The black variety of Tihurdi (See)
Masu(sū)ra bidaḷā

ମସୁ(ସୂ)ରା—ସଂ. ବି—୧ । ମସୁର ଶସ୍ୟ—1. Lentil. ୨ । ବେଶ୍ୟା—2. A prostitute. ୩ । ମସୁରବଟାରେ ତିଆରି ବଡ଼ି (ଦ୍ରବ୍ୟ)—3. Small balls of pestled lentil dried and kept for curry.
Masu(sū)rā

ମସୁ(ସୋ,ସୌ)ରି—ଦେ. ବି (ନାମ)—ହିମାଳୟ ଅଞ୍ଚଳର ଏକ ସ୍ୱାସ୍ଥ୍ୟକର ସ୍ଥାନର ନାମ—A sanitarium of that name in the Himalayas.
Masu(so, sau)ri
मसोरी **मसोरी**

ମସୁରିଆ—ଦେ ବିଣ (ସଂ. ମସୁର)—ମସୁର ଆକୃତି ବିଶିଷ୍ଟ—Shaped like a Masura (lentil).
Masuriā

ମସୁରେ ଦେ. ବି—ମସୁରଫାଳ ପରି ଆକୃତିବିଶିଷ୍ଟ ବସନ୍ତ ରୋଗ—A kind of small pox, the pimples of which resemble grains of Masura (lentil).
**मसुरिआ**

ମସୁ(ସୂ)ରୀ—ସଂ.ବି (ମସୁର+ଈ)—୧ । ବେଶ୍ୟା—1. Prostitute. ୨ । ଦୁଷ୍ଟା ସ୍ତ୍ରୀ—2. An adulteress. ୩ । ଛୋଟା-ବସନ୍ତ ରୋଗ—3. Small pox. ୪ । ମସୁର ପରି କ୍ଷୁଦ୍ର ପୀଡ଼କା ଯୁକ୍ତ ବସନ୍ତ—4. Small-pox with small postules. ୫ । କୁଟ୍ଟିନୀ—5. A procuress ୬ । ରକ୍ତ ନିସୁତ୍ (ଦ୍ରବ୍ୟଗୁଣ)—6. Ipomoea Turpethum.
Masu(sū)rī
[ମସୁ(ସୂ)ରିକା—ଅନ୍ୟରୂପ]

ମସୃଣ—ସଂ. ବିଣ. ( ମସ୍ ଧାତୁ=ପରିମାଣ କରିବା+କର୍ମ ଋଣ )—୧ । ସ୍ନିଗ୍ଧ; ତେଲିଆ—1. Oily; unctuous. ୨ । ଚକ-ଚକିଆ 2. Glistening. ୩ । ଚିକ୍କଣ—3. Smooth. ୪ । କୋମଳ—4. Soft; velvety. ୫ । କର୍ଣ୍ଣମଧୁର—5. Sweet (to hear); bland. (ଉ—ସ୍ତୋକ ଉଚ୍ଚ ମସୃଣ ଯେ ହେଲିକା ବଦେ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।) ୬ । ମନୋହର—6. Lovely; charming.
Masṛuṇa
(ମସୃଣା-ସ୍ତ୍ରୀ)
[ମସୃଣତା(ତ୍ୱ)—ବି]

ମସୃଣା—ସଂ. ବିଣ. ସ୍ତ୍ରୀ—ମସୃଣର ସ୍ତ୍ରୀଲିଙ୍ଗ—Feminine of Masṛuṇa.
Masṛuṇā
ସଂ. ବି—ମସୀନା; ଅତସି; ପେଶି—Linseed.

ମସ୍କ୍ (ଧାତୁ)—ସଂ—ଗତି କରିବା—To go; to move.
Mask (root)

ମସ୍କର—ସଂ. ବି (ମସ୍କ ଧାତୁ+କର୍ତ୍ତୃ. ଅର୍)-୧ । ବାଉଁଶ-1. Bamboo. ୨ । ବଂଶ ଯଷ୍ଟି—2. Bamboo stick. ୩ । (+ଭାବ.ଅର) ଗମନ—3. Going; motion (Apte); ୪ । (+କରଣ ଅର). ଜ୍ଞାନ—4. Knowledge (Apte).
Maskara

ମସ୍କରୀ—ସଂ. ବି ପୁଂ (ମସ୍କର+ଇନ୍; ୧ମା.୧ବ)—୧। ଭିକ୍ଷୁ; ଚତୁର୍ଥାଶ୍ରମୀ—1. A man (Hindu) who has taken to the 4th stage of life ( begging alms ) (porbably from their using bamboo sticks at that stage on account of old age) ୨ । ଚନ୍ଦ୍ର—2. The moon.
Maskarī

ମସ୍କଲ—ଦେ. ବି (ବିଦେଶୀ ଶବ୍ଦ)—ଅଳଙ୍କାରକୁ ଚକ୍କଣ କରିବାପାଇଁ ଏକ ପ୍ରକାର ଲୁହାର ହତିଆର—A kind of iron implement for polishing ornaments.
Maskalā

ମସ୍କା—ଦେ. ବ—ମସକା (ଦେଖ)
Maska Masakā (See).

ମସ୍କାମସ୍କି—ପ୍ରାଦେ (ସମ୍ବଲପୁର) ବ—[ଦୁଇ ଜଣ] ଧସ୍ତାଧସ୍ତି—
Maskāmaski Seizing each other (said of two persons).

ମସ୍ଜ୍ (ଧାତୁ)—ସ—୧ । ପାଣିରେ ବୁଡ଼ିବା—1 To sink in
Masj (root) water. ୨ । ମୁଣ୍ଡ ବୁଡ଼ାଇ ଗାଧୋଇବା—2. To take a plunge. ୩ । ପାଣିରେ ବୁଡ଼ିମରିବା—3. To be drowned.

ମସ୍ତ—ସ. ବ (ମସ୍. ଧାତୁ=ପରିମାଣ କରିବା+କର୍ତ୍ତୃ. ତ)--ମୁଣ୍ଡ--Head.
Masta ଦେ. ବଣ (ସଂ. ମସ୍ତକ)—୧ । ବିଶାଳ; ପ୍ରକାଣ୍ଡ—
मस्त 1. Gigantic. ୨ । ଅତି ବୃହତ୍; ମହତ୍ - 2. Very
बहुत बडा large or great; very big. ବୈଦେ. ବଣ. ପୁଂ (ମସ୍ତା—ସ୍ତ୍ରୀ) (ଆ. ମସ୍ତ; ମୂଳ. ସଂ. ମତ୍ତ)—୧ । ଉନ୍ମତ୍ତ; ମତ୍ତ;
मत्त ନିଶାରେ ଚୂର—1. Intoxicated; excited; mad-
मस्त dened. ୨ । କାମୋନ୍ମତ୍ତ—2. Maddened with lust; excited by amour ୩ । ଗର୍ବୋନ୍ମତ୍ତ—3. Swollen with pride. ବୈଦେ. ବ -ମତ୍ତତା—Excitement; madness; intoxication. ଦେ. କ୍ରି. ବଣ—ଅତ୍ୟନ୍ତ—Very.

ମସ୍ତକ—ସ. ବ (ମସ୍ ଧାତୁ+କର୍ତ୍ତୃ. ତ+କ)—୧ । ମୁଣ୍ଡ—1. Head.
Mastaka ୨ । ଖପୁରି—2. Skull [Apte]. ୩ । ଅଗ୍ରଭାଗ; ଶିରୋଦେଶ—3. Top; summit; peak. ୪ । ତାଳ, ନଡ଼ିଆ, ଖଜୁରି ଆଦି ଗଛର ଅଗରେ ଥିବା ଶାଖାଗୁଚ୍ଛ—4. The tuft of branches on the top of palm, cocoanut and date trees.

ମସ୍ତକଚ୍ଛେଦନ—ସଂ ବ (୬ଷ୍ଠୀ ତତ୍; ମସ୍ତକ+ଛେଦନ; ସନ୍ଧିଦ୍ୱାରା ଚ୍ଛ)
Mastaka chchhedana --ମୁଣ୍ଡକାଟ—Decapitation; cutting off of the head.

ମସ୍ତକ ମୁଣ୍ଡନ—ସଂ. ବ (୬ଷ୍ଠୀ ତତ୍)—ମୁଣ୍ଡ ଲଣ୍ଡା ହୋଇ କ୍ଷୌର
Mastaka mundana ହେବା—Shaving of the head.

ମସ୍ତକମୂଳକ—ସଂ. ବ (୬ଷ୍ଠୀ ତତ୍)—ବେକ—
Mastaka mūlaka Neck (Apte).
( ମସ୍ତ ମୂଳକ—ଅନ୍ୟରୂପ )

ମସ୍ତକ ସ୍ନେହ—ସଂ. ବ (୬ଷ୍ଠୀ ତତ୍)— ମସ୍ତିଷ୍କ—
Mastaka sneha The brain (Apte).

ମସ୍ତକି(ଗି)—ବୈଦେ. ବ [ ଆ. ମସ୍ତକୀ(ଗୀ) ]— ଭୂମଧ୍ୟସାଗର
Mastaki(gi) ନିକଟବର୍ତ୍ତୀ ପ୍ରଦେଶରେ ଜନ୍ମିବା ଆମ୍ବ ବର୍ଗର
मस्तकी କ୍ଷୁଦ୍ର ବିଶେଷ ( Pistacia Lentiscus ) ରୁ ଉତ୍ପନ୍ନ
मस्तगी ଝୁଣା ତୁଲ୍ୟ ପଦାର୍ଥ—Mastic. [ଦ୍ର—ଏହା ବାର୍ଣ୍ଣିସ୍‌ରେ 'ରୁମି ମସ୍ତକି—ଅନ୍ୟରୂପ) ଓ ଔଷଧରେ ଲାଗେ । ଦନ୍ତ ରୋଗରେ ମଧ୍ୟ ଏହା ଉପକାରୀ । କେହି କେହି ଏହା ଅଭ୍ୟାସ କରି ଚୋବାନ୍ତି । ମସ୍ତିକା ତୁଲ୍ୟ କାବୁଲ ଦେଶରୁ ଆସିଥିବା ପଦାର୍ଥକୁ କାବୁଲୀ ମସ୍ତକୀ Pistacia Mutica କହନ୍ତି । ]

ମସ୍ତକେ ଧରିବା—ଦେ. କ୍ରି —ମାନିବା; ଶିରୋଧାର୍ଯ୍ୟ କରିବା—
Mastake dharibā To obey; to bow down to (one's
মাথায়লওয়া order) (ଉ—କଷ୍ଟେ ଚିତ୍ତବେଗ ରୋଧି ଗୁରୁଆଜ୍ଞା
मस्तकपर लेना ମସ୍ତକେ ଧରି । ରାଧାନାଥ, ଋଷ୍ୟ । )

ମସ୍ତ ଦାରୁ—ସଂ. ବ - ଦେବଦାରୁ—
Masta dāru Pine (tree); Pinus Deodara.

ମସ୍ତ ବଡ଼—ଦେ. ବଣ—ଅତି ବୃହତ୍—Very big; very very
Masta barda big. (ଉ—ସେଠାରୁ ଦଶରଥ ମନ୍ତ୍ରୀମାନଙ୍କଦ୍ୱାରା
মস্তবড় ଗୋଟାଏ ମସ୍ତବଡ଼ ସଭା ଡକାଇଲେ । ମାଳକଣ୍ଠ. ପ୍ରିୟଙ୍କ
बहुत बडा ରାମାୟଣ । )

ମସ୍ତ ବଡ଼ ଲୋକ—ଦେ. ବ—ଧନାଢ୍ୟ; ଖୁବ୍ ଧନୀ—
Masta barda loka . A millionaire
মস্তবড় লোক बहुतबडाआदमी

ମସ୍ତର—ଦେ. ବ—ପ୍ରକାର—Pattern; model. (ଯଥା -- ମୋତେ
Mastara বকম, নমুনা तरह;नमुना ଏ ମସ୍ତରର ଲୁଗା ଦିଅ ।)

ମସ୍ତରାମ୍—ଦେ. ବ—୧ । ପାଗଳପରି କାମ କରିବା ବ୍ୟକ୍ତି—
Mastarām 1. Madcap. ୨ । ବାୟା—2. Mad man;
পাগল मस्तराम lunatic. ୩ । ପୁରୁଷଙ୍କ ନାମ—3 A name given to males.
[ ଦ୍ର—କଟକ ସହରରେ ମସ୍ତରାମ୍ ନାମକ ଜଣେ ସାଧୁ ମହାତ୍ମାଙ୍କ ନାମ ଅନୁସାରେ ଡକା ଯାଉଥିବା ଗୋଟିଏ ମଠ ଅଛି । ]

ମସ୍ତ ଲୋକ—ଦେ. ବ—୧ । ବଡ଼ ଲୋକ; ଧନୀ ଲୋକ—1. Rich
Masta loka man ୨ । ଖ୍ୟାତ ଲୋକ—2. A cele-
মস্তলোক brated person ୩ । ମହାପୁରୁଷ—3. A great
बडाआदमी man; a genius.

ମସ୍ତ ହାତୀ—ଦେ. ବ ( ଫା ମସ୍ତ+ସ. ହସ୍ତୀ; ପ୍ରା. ହାତ୍ଥୀ )—୧ ।
Masta hāti ମତ୍ତହସ୍ତୀ; ମଦମତ୍ତ ହସ୍ତୀ—1. An elephant
मत्त हाथी in rut; an elephant infuriated through
मस्त हाथी lust. ୨ । ବଡ଼ ହାତୀ—2. A big elephant.

ମସ୍ତ ହେବା—ଦେ. କ୍ରି ( ସ. ମତ୍ତ; ଆ. ମସ୍ତ )—ବ୍ୟବହାରଦ୍ୱାରା
Masta hebā ମତ୍ତତା ପ୍ରକାଶ କରିବା; ମାତିବା — To show
মত্ত হওয়া excitement by conduct; to act like a
मस्त होना mad person.

ମସ୍ତା—ଦେ. ବ—ଉନ୍ମତ୍ତ—Maddened; excited.
Mastā मत्त मस्त ( ମସ୍ତାନ—ଅନ୍ୟରୂପ )
( ମସ୍ତା, ମସ୍ତାନୀ—ସ୍ତ୍ରୀ )

ମସ୍ତାନ—ବୈଦେ. ବଣ. ଓ ବ ପୁ. (ଆ. ମସ୍ତାନହ୍=ଉନ୍ମତ୍ତ ପ୍ରାୟ)—
Mastān ଈଶ୍ୱରଭକ୍ତିବିହ୍ୱଳ(ବ୍ୟକ୍ତି)—Mad in devotion to
মস্তান मस्ताना God.( ମସ୍ତାନୀ—ସ୍ତ୍ରୀ )

ମସ୍ତାନି—ବୈଦେ. ବ ( ଫା ମସ୍ତାନୀ )—ମତ୍ତତା—Madness.
Mastāni मत्तता मस्तानी

ମସ୍ତି - ସଂ. ବି (ମସ. ଧାତୁ+ଭାବ. କ୍ତି) — ୧ । ମାପିବା—1. Measuring
Masti ୨ । ଓଜନ କରିବା—2. Weighing. ବୈଦେ.
मत्तता मस्ती ବି. ( ଫା. ମସ୍ତୀ )—ମତ୍ତତା—Madness.

ମସ୍ତିକ—ସଂ. ବି ( ମସ୍ତ+ଇକ )—ମସ୍ତକ; ମୁଣ୍ଡ—The head
Mastika ( Apte ). ଗ୍ରା. ବି—ମସ୍ତିଷ୍କ ( ଦେଖ )—
Mastishka ( See )

ମସ୍ତିଷ୍କ—ସଂ. ବି ( ମସ୍ ଧାତୁ=ମାପିବା+ଭାବ. କ୍ତି=ମସ୍ତି କମ୍ମ ମସ୍ତ
Mastishka ଧାତୁ=ଗମନ କରିବା+କରଣ ଅ. ନିପାତନ)—
( ମସ୍ତୁଲୁଙ୍ଗ—ଅନ୍ୟରୂପ ) ୧ । ମଗଜ, ମୁଣ୍ଡ ଭିତରେ ଥିବା ଲହୁଣି
ପରି ବସ୍ତୁ; ମଜ୍ଜା—1. Brain. ୨ । ବୁଦ୍ଧି—2 Intelligence. ୩ । ମସ୍ତିଷ୍କ ଉପରେ କ୍ରିୟା କରିବା କୌଣସି
ଔଷଧ—3. Any medicine acting upon the
brain (Apte).

ମସ୍ତିଷ୍କ ଖରଚ କରିବା—ଦେ. କ୍ରି—କୌଣସି କାର୍ଯ୍ୟରେ ବୁଦ୍ଧିବୃତ୍ତିକୁ
Mastishka kharacha kariba ଗ୍ଲେଶ କରି ଚିନ୍ତା କରିବା—
মাথা খরচ করা To apply one's brain to a matter.
मस्तिष्क खरच करना (ମସ୍ତିଷ୍କ ଲଗା [ଗେ]ଇବା—ଅନ୍ୟରୂପ)

ମସ୍ତିଷ୍କହୀନ—ସଂ. ବିଣ. ପୁଂ—ନିର୍ବୁଦ୍ଧିଆ—Unintelligent, dunce.
Mastishkahina (ମସ୍ତିଷ୍କହୀନା—ସ୍ତ୍ରୀ)

ମସ୍ତୁ—ସଂ. ବି ( ମସ ଧାତୁ=ଆକାର ବଦଳାଇବା+କର୍ମ ତୁ, କମ୍ବା
Mastu ମସ ଧାତୁ=ଆହ୍ଲାଦିତ କରିବା+କର୍ତ୍ତୃ. ତୁ )—୧ । ଜଳ-
ଯୁକ୍ତ ଦହି; ଘୋଳ ଦହି—1. Churned curd mixed
with water. ୨ । ଛେନାପାଣି ( ହି. ଶ. )—
2. Whey. ୩ । ବସାଦହିର ମଣ୍ଡ ( ଦ୍ରବ୍ୟଗୁଣ ) —
3. The sediment or dregs of curd. [ ଦ୍ର—
দই বমাত ବସାଦହିର ଉପରେ ପଡ଼ିଥିବା ଘନ ସ୍ତରକୁ ସର ଓ ମଣ୍ଡକୁ
ମସ୍ତୁ ବୋଲାଯାଏ । ଏହା କ୍ଲମହର, ବଲ୍ୟ, ଲଘୁ, ଅନ୍ନା-
ଭିଳାଷଜନକ, ଦେହସ୍ଥ ସ୍ରୋତଃସମୂହର ଶୋଧନକାରକ,
ଆହ୍ଲାଦକର, କଫଘ୍ନ, ପିପାସାନାଶକ, ବାତାପହାରକ,
ଅବୃଷ୍ୟ ଓ ତୃପ୍ତିଜନକ । ଏହା ଶୀଘ୍ର ସଞ୍ଚିତ ମଳକୁ
ବହିଷ୍କୃତ କରେ—ଦ୍ରବ୍ୟଗୁଣ । ]

ମସ୍ନଦ୍ - ବୈଦେ. ବି (ଅ ମସ୍ନଦ୍=ଗାଡ଼ି ତକିଆ)—୧ । ରାଜସିଂହାସନ
Masnad —1. Throne ୨ । ଆଉଜି ବସିବା ପାଇଁ
মসনদ ବ୍ୟବହୃତ ତକିଆ; ଗାଡ଼ି ତକିଆ—2 A big pillow
मसनद for leaning on while sitting.

ମସ୍ୟାଧାର—ସ ବି ( ୬ଷ୍ଠୀ ତତ୍ )—ଦୁଆତ—
Masyādhāra Ink-pot

ମହ୍ (ଧାତୁ)—ସଂ—୧ । ପୂଜା କରିବା; ମାନ୍ୟ କରିବା—1. To
Mah (root) worship, to honour; to revere.
୨ । ଆହ୍ଲାଦିତ କରିବା—2. To gladden; to
delight. ୩ । ବଢ଼ାଇବା—3. To increase;
to aggrandise.

ମହ—ସଂ. ବି ( ମହ୍ ଧାତୁ+କରଣ ଅ )—୧ । ଯଜ୍ଞ—1.
Maha Vedic sacrifice or oblation. ୨ । ତେଜଃ
—2. Lusture; radiance. ୩ । ଉତ୍ସବ—
3. Festival; festive occasion. ୪ । ସପ୍ତ
ଭୁବନ ମଧ୍ୟରୁ ଚତୁର୍ଥ ଭୁବନ—4. The 4th of the
7 worlds of the Hindus [ ଦ୍ର—ଏହା
ପୃଥିବୀଠାରୁ ଉପରେ ଅବସ୍ଥିତ ୪ର୍ଥ ସ୍ୱର୍ଗ । ] ୫ ।
ମହିଷି —5. A buffalo ( Apte ). ସଂ. ବିଣ—
ପୂଜ୍ୟ; ପୂଜନୀୟ—Worshippable; adorable.
ସଂ. ପୁଂ. ପ୍ରତ୍ୟୟ ( ପିତୃ ଓ ମାତୃ ଶବ୍ଦ ସଙ୍ଗେ ତାହାଙ୍କର
(ମହୀ—ସ୍ତ୍ରୀ) ପିତା ଅର୍ଥରେ ମହ ଓ ମାତା ଅର୍ଥରେ ମହୀ ପ୍ରତ୍ୟୟ
ହୁଏ; ଯଥା—ପିତାମହ, ମାତାମହ; ପିତାମହୀ, ମାତାମହୀ )
—A suffix added to the words Pitā and
Mātā. ଦେ. ବିଣ ( ସଂ ମହତ୍ )—ମହତ; ମହା—
मह Great; much. ଦେ. କ୍ରି. ବିଣ—ଅତ୍ୟନ୍ତ—
Very; much [ ଦ୍ର—ମହ ଇତ୍ୟାଦି । ଛାନ୍ଦ ଗ୍ରନ୍ଥ
ଅଚଳ ସତ । ଉଦା. ପ୍ରେମସୁଧାନିଧି । ]

ମହ(ହା)ଋଷି—ଗ୍ରା. ବି ( ସଂ. ମହର୍ଷି )—ମହର୍ଷି—A great sage.
Maha(hā)rushi মহর্ষি महरिषि

ମହଃ—ସଂ. ବି (ମହ୍ ଧାତୁ+କରଣ ଅସ୍; ମହସ୍ ଶବ୍ଦ )—୧ । ଯଜ୍ଞ
Mahah —1. Vedic oblation. ୨ । ଉତ୍ସବ—
2. Festival. ୩ । ତେଜଃ—3. Radiance.

ମହଙ୍ଗୀ - ପ୍ରାଦେ (ଜାଜପୁର) ବି—ଦୁର୍ଭିକ୍ଷ—
Mahañgi Famine.

ମହକ—ସଂ. ବି (ମହ୍. ଧାତୁ+କର୍ମ. ଅ+କ)—୧ । ମହଦ୍‌ବ୍ୟକ୍ତି;
Mahaka ଶ୍ରେଷ୍ଠପୁରୁଷ—1. A great man; an eminent
man. ୨ । ବିଷ୍ଣୁ—2 Bishnu. ୩ । କଚ୍ଛପ—
3. Tortoise. ଦେ. ବି (ଅ. ମହକ୍)—୧ । ସୌରଭ;
সুবাস ସୁଗନ୍ଧ—1. Sweet smell; sweet scent. ୨ ।
महक ଚତୁର୍ଦ୍ଦିଗବ୍ୟାପୀ ସୁଗନ୍ଧ—2. A diffused or wide-
spread fragrance. ଦେ ବିଣ—ସୁଗନ୍ଧିଯୁକ୍ତ—
Sweet smelling. [ ଦ୍ର—ଚୈତନ୍ୟ ଗନ୍ଧରେ ମହକ—
ଛଗ । ]

ମହକ ଉଠିବା—ଦେ. କ୍ରି—ବାସ ଚହଟିବା—
Mahaka uthibā The diffusion of sweet smell.
সুবাস উঠা महकउठना (ମହକ ହେବା—ଅନ୍ୟରୂପ)

ମହକ ଦେବା - ଦେ. କ୍ରି (ଅ. ମହକ୍—(କୌଣସି ଦ୍ରବ୍ୟ ବାଜର)
Mahaka debā ସୁଗନ୍ଧ ବିସ୍ତାରିତ କରିବା; ବାସିବା—To
সুবাস করা spread its sweet smell, to emit its
महक देना fragrance.

ମହକ ଫଳ—ଦେ. ବି—ସୁଗନ୍ଧଯୁକ୍ତ ଫଳ—
Mahaka phaḷa A fruit with sweet smell.
সুবাসিতফল महकिलाफल

ମହକ ଫୁଲ—ଦେ. ବି—ସୁଗନ୍ଧଯୁକ୍ତ ଫୁଲ—
Mahaka phula A sweet-scented flower.
সুবাসিতফুল महकीलाफुल.

**ମହକ ବାସ**—ଦେ. ବି ( ଏକାର୍ଥକ ସମାହାର )—ସୁରଭିତ ଗନ୍ଧ;
Mahaka bāsa ଚତୁର୍ଦ୍ଦିଗରେ ବ୍ୟାପ୍ତ ସୁବାସ; ବିଗନ୍ତପ୍ରସାରିତ
সুবাস ସୁବାସ—A scent which is diffused to some
**सुबास; गमक; महक** distance.

**ମହକା(କେ)ଇବା**—ଦେ. କ୍ରି (ମହକିବା କ୍ରିୟାର ଣିଜନ୍ତରୂପ—Causa-
Mahakā(ke)ibā tive of Mahakibā) —୧ । ସୁବାସରେ
সুবাসে মোহিত করা ମୁଗ୍ଧ କରିବା—1. To charm by
**महकाना** sweet smell. [ଉ—ହେମ ବସ ସୁବାସିତ ତନରେ
ଚଳିଲ, ମହକାଇ ଦେଉଥିଲା ଦର୍ଶକର ଚିତ୍ତ । ନନ୍ଦ-
କିଶୋର. ନର୍ତ୍ତକୀ । ] ୨ । ବାସିବା—2. To smit
[ମହକା(କେ)ଇଦେବା—ଅନ୍ୟରୂପ] fragrance.

**ମହକି ଉଠିବା**—ଦେ. କ୍ରି—ଗାତ୍ର ସୁଗନ୍ଧଦ୍ୱାରା ସୁରଭିତ ହେବା—
Mahaki uṭhibā To be filled with sweet smell.
[ମହକି ପଡ଼ିବା, ମହକି ଯିବା—ଅନ୍ୟରୂପ] (ଉ—ଦିଅର ବାସନାରେ
সুরভিত হওয়া ଗୃହଥାଉ ମହକି ଉଠୁଛି । ନୀଳକଣ୍ଠ ଦାଶ. ପିଲାଙ୍କ
**महक उठना** ରାମାୟଣ । ]

**ମହକିବା**—ଦେ. କ୍ରି (ସଂ. ମହକ୍କ)—ବାସିବା; ବାସନା କରିବା;
Mahakibā ଦୂରଅବଧି ନିଜର ସୁବାସ ପ୍ରସାରିତ କରିବା—
সুগন্ধ দেওয়া To smell very sweetly to a distance
**महकना** to emit its fragrance
(ସମ୍ବଲପୁର—ଭଗୋଭଗୋ)

**ମହ(ହୁ,ହୋ)କିଲ**—ବୈଦେ. ବି (ଫା ମୁଅକ୍କିଲ୍)—ମକ୍କେଲ; ମୁକ୍ତାର
Maha(hu,ho)kila ଓକିଲଙ୍କୁ ମକଦ୍ଦମାପାଇଁ ନିଯୁକ୍ତ କରିବା ପକ୍ଷ
মক্কেল **मवक्किल** —Client of a legal practitioner.

**ମହକୁପ୍(ବ୍)**—ବୈଦେ. ବିଣ (ଫା· ମୌକୁଫ୍)—ମକୁବ୍ (ଦେଖ)
Mahakup(b) Makub (See).

**ମହକୁମା**—ବୈଦେ. ବି (ଅ. ମହ୍‌କମା)—୧ । ହାକିମଙ୍କର ଅଧିଷ୍ଠିତ
Mahakumā ସ୍ଥାନ; ଇଜଲାସ୍; ବିଚାରାସନ—1. A seat of
মহকুমা justice; a seat of a public servant. (ଯଥା—
**महकमा** କଲେକ୍ଟରୀ ମହକୁମା; ଜଜ୍ ମହକୁମା ।) ୨ । ବିଚାରାଳୟ—
2. Court of justice; a tribunal. ୩ । ଇଂରାଜ-
ଶାସିତ ଜିଲ୍ଲାର ବିଭାଗ; ସବ୍‌ଡିଭିଜନ୍—3. A sub-
division. [ ଦ୍ର—ଇଂରାଜ ଶାସନାଧୀନ ଗୋଟିଏ
ଜିଲ୍ଲା କେତେଗୁଡ଼ିଏ ମହକୁମାରେ ବିଭକ୍ତ । ] ୪ । ସବ୍-
ଡିଭିଜନର ରାଜଧାନୀ; ଯେଉଁଠାରେ ଜଣେ ମାଜିଷ୍ଟ୍ରେଟ୍
ବା ମୁନ୍‌ସଫ୍‌ଙ୍କ କଚେରି ଥାଏ—4. Sub-divisional
head quarters. ୫ । ହାକିମଙ୍କର ଇଲାକା ବା
ଅଧିକାରଭୁକ୍ତ ଅଞ୍ଚଳ—5. The jurisdiction of a
court or public officer. ୬ । ସରକାରଙ୍କ ଭିନ୍ନ
ଭିନ୍ନ ଶାସନ ବିଭାଗ—6. A department of the
Government.

**ମହକୁମା ହାକିମ**—ବୈଦେ. ବି. (ଫା) ( ଫା. ମହକମା+ହାକିମ୍ )
Mahakumā hākima ( କଚେରୀ )—୧ । ସବ୍‌ଡିଭିଜନର
মহকুমার হাকিম ମାଜିଷ୍ଟ୍ରେଟ୍—1. Sub-divisional magis-
**महकमाका हाकिम** trate. ୨ । ମୁନସଫ—2. Munsif.
୩ । କୌଣସି ସରକାରୀ ବିଭାଗର ସର୍ବୋଚ୍ଚ କର୍ମଚାରୀ—
3 Departmental head

**ମହକୁମେ ସଦର**—ବୈଦେ. ବିଣ (ଫା) (କଚେରୀ)—ଜିଲ୍ଲାର ସଦର
Mahakume sadar ମହକୁମାର ଅନ୍ତର୍ଗତ—Within the
মহকুমে সদর jurisdiction of the Sadar Sub-
**महकमे सदर** division. [ଦ—ଏହିପରି ମହକୁମେ କେନ୍ଦ୍ରା-
ପଡ଼ା, ମହକୁମେ ଯାଜପୁର । ସବ୍‌ଡିଭିଜନ୍‌ମାନଙ୍କ ନାମ
ପୂର୍ବେ ଏ ଶବ୍ଦ ବ୍ୟବହୃତ ହୁଏ ।]

**ମହକ୍କ**—ସଂ. ବି ( ମହ ଧାତୁ=ଆନନ୍ଦିତ କରିବା+କର୍ତ୍ତୃ. ଅକ୍କ )—
Mahakka ବହୁଦୂର ପ୍ରସାରିତ ସୁଗନ୍ଧ—Wi-despread
fragrance (Apte).

**ମହଙ୍ଗା**—ଦେ. ବିଣ. ( ସଂ. ମହାର୍ଘ )—ମହର୍ଘ; ମହାର୍ଘ—
Mahaṅgā Dear in price.
মাগ্‌গী ଦେ.ବି—୧ । ଦ୍ରବ୍ୟର ସାଧାରଣ ମୂଲ୍ୟ ଅପେକ୍ଷା ଅଧିକ
**महंगा, महँगा** ମୂଲ୍ୟ; ଚଢ଼ା ମୂଲ୍ୟ—1 High price of an
(ସସ୍ତା—ବିପରୀତ) article ୨ । ବଜାରରେ ପଣ୍ୟ ଦ୍ରବ୍ୟ-
ମାନଙ୍କର ମୂଲ୍ୟ ବଢ଼ିଯିବା ଅବସ୍ଥା—2. Rise in the
price of commodities. ୩ । (ସଂ. ମହାଙ୍ଗ) ଏକ
ପ୍ରକାର କୋଳି; ମେହେଙ୍ଗା କୋଳି—3. A kind of
edible berry with sour taste.
[ଦ୍ର—ଏ କୋଳି ପାଚିଲେ ଖଟା ହୁଏ । ଏହାକୁ ଡାଲିରେ
ପକାଇ ଆମ୍ବିଲ କରନ୍ତି ।]

**ମହଙ୍ଗିଆ**—ଦେ. ବିଣ. ପୁଂ—ମହଙ୍ଗିଆ, ଯେଉଁ ଦୋକାନୀ ବଜାରର
Mahaṅgiā ଦର ଅପେକ୍ଷା ମହର୍ଘରେ ଜିନିଷ ବିକେ—
যে চড়া দামে বিক্রি করে (a shopkeeper) Selling
**महंङ्गिया** things more dearly than the market
rate.

**ମହଜର୍ ନାମା**—ବୈଦେ. ପ୍ରାଦେ. (ଗଞ୍ଜାମ, ଜୟପୁର) ବି (ଅ. ମହଜର
Maıjar nāmā =ନିର ହତ୍ୟା+ଫା. ନାମାହ୍=ଲେଖ;
**महज़र नामा** ଯେଉଁ ଲେଖାରେ ହତ୍ୟା ଅପରାଧ ବିଷୟ ବା ପ୍ରମାଣ
ଲେଖାଯାଏ)—ଦରଖାସ୍ତ—Petition.

**ମହଜରା**—ଦେ. ବି—କରଣ ସମାଜର ବିବାହରେ ବର ଯାତ୍ରୀମାନେ ଆସି
Mahajarā କନ୍ୟାଙ୍କ ଘରେ ପହଞ୍ଚିବା ପରେ ଉଭୟ ଦଳଙ୍କ ମଧ୍ୟରେ
ନିଜ ନିଜର ମାନ, ଅଭିଜାତ୍ୟ ଆଦି ବିଷୟରେ ଯେଉଁ
(ଅପ୍ରୀତିକର) ବାକ୍‌ବିତଣ୍ଡା ଓ ବାଦ୍‌ଯୁଦ୍ଧ ହୁଏ—A hot
discussion ( generally unpleasant) which
takes place between the bride-groom's
and the bride's party after the arrival
of the bride-groom's party during the
marriage, in the Karaṇa society.
(ଉ—ଭରଣ ଧରୁଛ ପାଇଁକ ସାଥିରେ କେତେ ମହଜରା
କଲେ, ମାଲା କ ଚନ୍ଦନ ଧରି ଉଭା ହେଲେ ନ କହନ୍ତି
ଚାହିଁ ରହିଲେ । ଉକାର. ସାଥିରୁଥ ବାହା ।)

**ମହଜତ୍(ତି, ଦ୍, ଦି)**—ବୈଦେ. ବି ( ଆ. ମସଜିଦ୍ )—ମୁସଲମାନ୍-
Mahajit(ti, d, di) ମାନଙ୍କର ପ୍ରାର୍ଥନା ମନ୍ଦିର—
মসজিদ **महजिद** Mosque.

**ମହ(ହୁ)ଜୁତ୍(ଦ୍)**—ବୈଦେ. ବିଣ (ଫା. ମୌଜୁଦ୍)—୧ । ବର୍ତ୍ତମାନ;
Maha(hu)jut(d) ଉପସ୍ଥିତ; ବିଦ୍ୟମାନ—1. Existing. ୨ ।
মজুদ (ত্) ପ୍ରସ୍ତୁତ—2. Ready. ୩ । ସଞ୍ଚିତ—3. Stored;
**मौजूद** funded. ବୈଦେ. ବି. (ଆ. ମସ୍ଜିଦ୍)—ମହଜତ୍
(ଦେଖ)—Mahajit ( See )

**ମହଡ଼ା**—ପ୍ରାଦେ. ( ଗଡ଼ଜାତ ) ବି—ବନ୍ୟ ଗୁଳ୍ମବିଶେଷ—
Mahardā Dodonaea Viscosa (plant) (Haines).
[ଦ୍ର—ଏ ଗୁଳ୍ମ ପ୍ରାୟ ୧୦ ଫୁଟ ଉଚ୍ଚ ହୁଏ ।]

**ମହଣ**—ଦେ. ବି ( ସଂ. ମଧୂଜ; ମଦନ )—୧ । ମହୁ ଶିଠା; ମଧୂଚ୍ଛିଷ୍ଟ—
Mahaṇa 1. Beeswax [ ଦ୍ର—ମହୁ-
ସଂ. ମଧୂଜ, ମଦନ, ମଦନକ, ମାଛିଙ୍କ ଫେଣାରେ ମହୁ ସଞ୍ଚିତ ହୋଇ-
ମଧୂଚ୍ଛିଷ୍ଟ, ମଧୂଶେଷ, ସିକ୍ଥକ, ଥିବା କୋଷମାନଙ୍କ କାନ୍ଥ ଏକପ୍ରକାର
ମଧୂଧାତୁ, ମଧୂଷିତ ଅଠାଳିଆ ବସ୍ତୁରେ ନିର୍ମିତ । ସେହି
মোম ଅଠାଳିଆ ବସ୍ତୁକୁ ପାଣିରେ ସିଝାଇଲେ
**मोम** ମହଣ ବାହାରେ । ବୈଦ୍ୟଶାସ୍ତ୍ର
ତେ. ମୈନମ ମତରେ ଏହା କୋମଳ, ସ୍ନିଗ୍ଧ,
ତା. ମେଝୁଗୁ ଭୂତାପସାରକ, ବ୍ରଣରୋଧକ ଓ ଭଗ୍ନ-
କ. ମେଣ ସନ୍ଧାୟକ । ଏହା ବାୟୁ, କୁଷ୍ଠ, ବିସର୍ପ
ଗୁ. ମିଣ ଓ ରକ୍ତଦୋଷ ନାଶକ । ଏହା ଅନେକ
ଫା. ମୋମେଜର୍ଦ କାର୍ଯ୍ୟରେ ଲାଗେ । ସ୍ତ୍ରୀଲୋକମାନେ
କେଶ ଭୁଣ୍ଡାଇ ତା ଉପରେ ମହଣ ବୋଳନ୍ତି । ମହଣରେ
ବତି ଓ ପିତୁଳା ତିଆରି ହୁଏ । ] ୨ । ( ସଂ. ମାନ;
মণ **मन** ଆ. ମନ୍ ) ୪୦ ସେର ଓଜନ ପରିମାଣ—2. A weight
of 40 seers; maund, [ ଦ୍ର—ଏହାର ସାଙ୍କେତିକ
'ମ' ସଂଖ୍ୟାର ପୂର୍ବେ ଲେଖାଯାଏ, ମ ୪=୪ ମହଣ;
ବାଲେଶ୍ୱର ଓ କଟକ ସେରର ତାରତମ୍ୟ ଅନୁସାରେ
ମହଣ ଓଜନର ତାରତମ୍ୟ ହୋଇଥାଏ । ୧ ମହଣ=୪୦
ସେର=୮ ପସୁରି । ୫୬=ବାଲେଶ୍ୱରୀ ୨୭ ମହଣ । ]
ময়না কাঁটা **मइन फल** ୩ । ( ସଂ. ମଦନ )—ମଏଣ ( ଦେଖ )
মানকচু 3 Maeṇa ( See ) ୪ । (ସଂ. ମାଣକ) ମାଣସାରୁ—
**मानकचु, मानकन्द** 4. Alocasia Indica; a kind of
সায়েস্তা taro. ୫ । ବଳଦ ଓ ଘୋଡ଼ା ଆଦିଙ୍କୁ ତାଲିମ କରିବା
**साधना** ପ୍ରକ୍ରିୟା; ମଣ—5. The process or act of train-
ing bullocks, horses etc. ୬ । ( ସଂ. ମଥନ)
ময়ান ଫେଣୀ ବା ଖଜା ଜାତିକ ବହୁ ପରସ୍ତର ପିଠା ତିଆରି
**मोयन** କରିବା ପାଇଁ ବ୍ୟବହୃତ ଘୃତମିଶ୍ରିତ ଚାଉଳ ଅଟାର
ଲେପ—6. A leaven consisting of a liquid
dough of pasted rice mixed with ghee,
smeared inside the folds of the rolls before
they are fried in ghee or oil, [ ଦ୍ର—ଅଟା
ବା ମଇଦାକୁ ଚକଟି, ବେଲି ତହିଁ ଉପରେ ମହଣର ଲେପ
ଦେଇ ଗୁଡ଼ାଇ ନେବାକୁ ହୁଏ ଓ ଗୁଡ଼ା ହୋଇଥିବା
ଚକଟକୁ ପୁଣି ବେଲି, ଖଣ୍ଡ ଖଣ୍ଡ କରି କାଟି ଘିଅରେ
ଛଣାଯାଏ । ମହଣ ଯୋଗୁ ଖଜାର ସ୍ତରମାନ ପୃଥକ୍ ପୃଥକ୍
সায়েস্তা ହୋଇ ରହେ । ] ଦେ. ବିଣ—୧ । ମଣ ହୋଇଥିବା
**साधाहुआ** —1. Trained or broken to work ( animal ). ୨ । ମହଣରେ ପ୍ରସ୍ତୁତ—2 Waxen.

**ମହଣ କଣ୍ଟା**—ଦେ. ବି (ସଂ. ମଦନ ଓ କଣ୍ଟକ)—ମଏଣ (ଦେଖ)
Mahaṇa kaṇṭā Maeṇa ( See )

**ମହଣ କନା**—ଦେ. ବି—ମମ୍‌ଜାମା (ଦେଖ)—Mam-jāmā (See)
Mahaṇa kanā মোমজামা, মোমঢালা **मोम जामा**

**ମହଣ କରିବା**—ଦେ. କ୍ରି—ପଶୁ ଆଦିଙ୍କୁ କାମ କରିବା ପାଇଁ ତାଲିମ
Mahaṇa karibā କରିବା; ମଣ କରିବା—To train
সায়েস্তা করা **साधना** or break a horse or bullock.

**ମହଣକା(କୁ) ମହଣ**—ଦେ. କ୍ରି. ବିଣ ଓ ବିଣ—ମହଣ ମହଣ ପରିମିତ;
Mahaṇakā(ku) mahaṇa ମହଣ ମହଣ କରି; ବହୁ ପରି-
মণকে মণ ମାଣରେ—In maunds; by maunds; in
**मनका मन** large quantities. ( ଯଥା—ରାଜାଙ୍କ ମଙ୍ଗଳ-
କୃତ୍ୟରେ ସିଠେଇ ମହଣକା ମହଣ ଗଛଜପାଳ ଲଗା
ହେଲା । )

**ମହଣ(ଣି)କିଆ**—ଦେ. ବିଣ—ଏକ ମହଣ ଓଜନଯୁକ୍ତ—
Mahaṇa(ṇi)kiā Weighing one maund.
এক মণ **एक मना**

**ମହଣ ଛତା**—ଦେ. ବି—କନା ଛତା; ବନାତ ଛତା; ଯେଉଁ ଛତାରେ
Mahaṇa chhatā ମହଣ କନା ଲଗିଥାଏ ବସ୍ତ୍ର ନିର୍ମିତ ଛତା—
মোম জামার ছাতা An umbrella covered with wax
**छाता** cloth.

**ମହଣ ତେଲ**—ଦେ. ବି—ମହଣ ସଙ୍ଗେ ଅନ୍ୟ ପଦାର୍ଥ ମିଶାଇ ପ୍ରସ୍ତୁତ କରି
Mahaṇa tela ଯାଉଥିବା ତେଲ ( ଏହା ବାତ, ବ୍ରଣ ଓ
মোমের তেল ଔଷଧରୂପେ ବ୍ୟବହୃତ ହୁଏ )—Medicated oil
**मोमका तेल** prepared from certain ingredients mixed with wax.

**ମହଣ ପତର**—ଦେ. ବି ( ସଂ. ମାଣକ+ପତ୍ର )—ମାଣସାରୁ ଗଛର
Mahaṇa patara ବଡ଼ ପତ୍ର—The big leaves of the
মানকচুর পাতা Māṇasāru plant. [ ଉ—ବେଙ୍ଗ କାନ୍ଦଇ
**मानकंदका पत्ता** ଟପର ଟପର, ମୋ ବାଡ଼ିଅଡ଼େ ଢଏ ରେ । ବାଡ଼ି-
( ମହଣ ପତ୍ର - ଅନ୍ୟରୂପ ) ଅଡ଼େ ଅଛି ମହଣ ପତର ମୁଣ୍ଡରେ
ଘୋଡ଼ିଏ ଦେଏ ରେ—ଶିଶୁରଞ୍ଜନ ଗୀତ । ]

**ମହଣ ପାତିଆ**—ଦେ. ବି ( ସଂ. ମଦନ+ସଂ. ପତ୍ର )—ମହଣ ସୁନ୍ଥା
Mahaṇa pātiā ( ଦେଖ )—Mahaṇa sunthā ( See )

**ମହଣ ପିତୁଳା(ଳି)**—ଦେ. ବି ( ସଂ. ମଦନ+ସଂ. ପୁତ୍ତଳୀ )—ମହଣ
Mahaṇa pituḷā(ḷi) ନିର୍ମିତ ପ୍ରତିମା—Doll or idol
মোমের পুতুল **मोमकी पुतलि** made of wax.

**ମହଣ ବତି(ତ୍ତି)**—ବୈଦେ. ବି (ପ୍ରା ମୋମ୍‌ବତ୍ତୀ; ସଂ. ମସୃଣ + ବର୍ତ୍ତୀ) —
Mahaṇa bati(tti) ଯାହାରୂପେ ବ୍ୟବହୃତ ମହଣରେ ନିର୍ମିତ
মোমবাতী **मोमबत्ती** ବତି—Wax candle.

**ମହଣବତି ଝାଡ**—ଦେ. ବି—ଯେଉଁ ଶାଖାଯୁକ୍ତ କାଚ ପ୍ରଦୀପରେ ମହଣ
Mahaṇabati jhāṛḍa ବତି ଜଳେ—Chandelier;
মোমবাতির ঝাড় **मोमबतीका झाड** candelabrum.

**ମହଣବତି ଶେଯ**—ଦେ ବି—ଯେଉଁ ଲମ୍ପରେ ମହଣବତି ଜଳେ—
Mahaṇabati śeja A candle lamp; a candlestick
মোমবাতির সেয protected by a glass chimney.
**मोमबत्ती बैठकी** (ମହଣବେଡ ବୈଠକ —ଅନ୍ୟରୂପ)

**ମହଣ ବ(ଶ)ଳିତା**—ଦେ. ବି—ଦୀପ ପରି ଜଳାଇବା ପାଇଁ ମହଣ
Mahaṇa ba(śa)litā ବୋଲା ଯାଇଥିବା ମୋଟ ବଳିତା;
মোমের বাতী **मोमकी बत्ती** ବଡ଼ବତି—A thick wick saturated with wax and used as a light.

**ମହଣ ମେଥି ଗୁଣ୍ଡା**—ଦେ ବି ( ସହଚର )—ସ୍ତ୍ରୀଲୋକମାନେ କେଶ
Mahaṇa methi guṇḍā ସାଉଁଳିବା ପାଇଁ ଲଗାଇବା ମହଣ
মোম আর মেথির গুঁড়ো ଓ କେଶକୁ ସୁବାସିତ କରିବା ପାଇଁ ତହିଁ ଉପରେ ଛିଞ୍ଚିବା ମେଥି ଗୁଣ୍ଡା—Wax ointment, used in keeping the hair smooth and powdered fenugreek (2 of the chief ingredients of the hair dressing of ladies in old times.) [ ଦ୍ର—ପୂର୍ବକାଳରେ ସ୍ତ୍ରୀମାନଙ୍କ ଅଙ୍ଗରାଗ ନିମନ୍ତେ ସ୍ନୋ, ପାଉଡର୍, ସୁବାସ ନିମନ୍ତେ ଏସେନ୍‌ସ, ଅତର ଓ ବାସନା ତେଲ ଆଦିର ବ୍ୟବହାର ନ ଥିଲା । ସେ କାଳରେ ଅଙ୍ଗରାଗ ପାଇଁ ହଳଦୀ ଓ କେଶ ସଜ୍ଜା ପାଇଁ ମହଣ ଓ ସୁବାସ ନିମନ୍ତେ ଚୂଆ, ଚନ୍ଦନ ଓ ମେଥିଗୁଣ୍ଡା ବ୍ୟବହୃତ ହେଉଥିଲା । ମେଥିକୁ ଭାଜି, ଚୂରି ସେହି ଗୁଣ୍ଡାକୁ ମହଣ ଲଗାଯାଇ ସାଉଁଳା ହୋଇ ଥିବା କେଶ ଉପରେ ଛିଞ୍ଚା ଯାଉଥିଲା । ଏବେ ମଧ୍ୟ ଗରିବଲୋକମାନେ ମହଣ ଓ ମେଥିଗୁଣ୍ଡା ବ୍ୟବହାର କରନ୍ତି । ]

**ମହଣ ରାନ୍ଧିବା**—ଦେ. କ୍ରି—ପରିଷ୍କୃତ ମହଣ ବାହାର କରିବା ପାଇଁ
Mahaṇa rāndhibā ମହଣକୁ ପାଣିରେ ଗରମ କରିବା—
মোম ফুটান, মোম গালা To boil wax in water for
**मोम बरकाना (राँधना)** cleansing it. [ ଦ୍ର—ମଧୁଚକ୍ରରୁ ସଂଗୃହୀତ ମହଣକୁ ପାଣିରେ ଫୁଟାଇଲେ ମହଣଯାକ ତରଳି ଯାଇ ତଳୀ ପରି ପାଣି ଉପରକୁ ଭାସି ଉଠେ ଓ ତହିଁରେ ଥିବା ମଳପାକ ପୃଥକ୍ ହୋଇଯାଏ । ]

**ମହଣ ସାରୁ**—ଦେ. ବି—ମାଣସାରୁ (ଦେଖ )—Māṇasāru (See)
Mahaṇa sāru মানকচু **मानकच्चु**

**ମହଣ ସିନ୍ଦୂର**—ଦେ. ବି (ସହଚର)—ସ୍ତ୍ରୀଲୋକମାନେ କେଶ ସାଉଁଳିବା
Mahaṇa sindūra ପାଇଁ ବ୍ୟବହାର କରିବା ମହଣ ଓ
মোম আর সিন্দূর କପାଳରେ ବା ସୁନ୍ଥାରେ ଲଗାଇବା ପାଇଁ ବ୍ୟବହୃତ
**मोम और सिंदूर** ସିନ୍ଦୂର—Wax and vermilion (two of the ingredients of a woman's toilette).

**ମହଣ ସୁନ୍ଥା**—ଦେ. ବି ( ସଂ. ମସୃଣ + ସୀମନ୍ତ )—ସ୍ତ୍ରୀଲୋକମାନେ
Mahaṇa sunthā କେଶକୁ କୁଣ୍ଡାଇ ଜୁଡ଼ା ବାନ୍ଧିବା ପରେ ସାମନା
মোমের পাতা ଆଡ଼ର ଦ୍ୱିଧାକୃତ କେଶ ( ସୁନ୍ଥା)କୁ ମହଣ ଲଗାଇ
**मोम पट्टी** ଚିକ୍କଣ କରିବା ଅବସ୍ଥା—Plaits of the parted hair on the front of a woman's head made smooth with the application of wax
[ ଦ୍ର—ଆଜିକାଲି ଶିକ୍ଷିତ ଓ ସଭ୍ୟସମାଜର ସ୍ତ୍ରୀମାନେ ମହଣ ପରିବର୍ତ୍ତରେ ପମେଟମ୍ ବ୍ୟବହାର କରିବା ଦେଖାଯାଏ । ]

**ମହଣ ସୁନ୍ଥା ପକା(କେ)ଇବା**—ଦେ. କ୍ରି—ମୁଣ୍ଡର ଆଗପାଖର ବାଳକୁ
Mahaṇa sunthā pakā(ke)ibā ଦୁଇଫାଳ କରି କୁଣ୍ଡାଇ
ମହଣ ପାଟିଆ ପକା(କେ)ଇବା }
ମହଣ ସୁନ୍ଥା ପାରିବା } ଅନ୍ୟରୂପ
ସୁନ୍ଥା କରି ତହିଁ ଉପରେ ମହଣ ଲଗାଇ ତାକୁ
মোমের পাতা পাড়া ଚିକ୍କଣ କରି ନାନାଭଙ୍ଗୀରେ ସଜ୍ଜିତ କରିବା
**मोमपाटी बनाना (बैठाना)** —To dress the hair into various designs or plaits and smooth the plaits with wax.

**ମହଣା(ଣେ)ଇବା**—ଦେ. ବ ( ମହଣ ଖାଇଲେ ଯେଉଁପରି ଵିତୃଷ୍ଣା
Mahaṇā(ṇe)ibā ଘାଟିରେ ଜନ୍ମେ ସେହିପରି ହେବାରୁ )—
ମହଣା(ଣେ)ଇ ଉଠିବା }
ମହଣା(ଣେ)ଇ ହେବା } ଅନ୍ୟରୂପ
ବିଶେଷ ପରିମାଣରେ ମିଠା ବା ସ୍ନିଗ୍ଧ ପଦାର୍ଥ ଖାଇବା ପରେ
মুখ মেরে যাওয়া ଯେଉଁ ବିତୃଷ୍ଣା ଓ ଅନିଚ୍ଛା ଜନ୍ମେ—A
**जी उमठना** feeling of revulsion or averseness which overtakes a person when he eats sweet or oily food to excess; feeling of revulsion against eating. [ ଦ୍ର—ଏ ଶବ୍ଦ ପାଟି ମହଣାଇବା, ହୃଦ ମହଣାଇବା ଆକାରରେ ବ୍ୟବହୃତ ହୁଏ । ]

**ମହଣିଆ**—ଦେ. ବିଣ ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ଦୁଇ
Mahaṇiā ମହଣିଆ ବସ୍ତା )—୧ । ଏତେ ମହଣ ଓଜନର—
মন ওজনের 1. Weighing so many maunds.
**मनिया; मना** ୨ । ଏତେ ମହଣ ସମ୍ଭାଳିବା ଭଳି—2. Of the capacity of so many maunds.

**ମହଣିବା**—ଦେ. କ୍ରି ( ସଂ. ମସୃଣ )—ମହଣରେ ମୂର୍ତ୍ତି ତିଆରି କରିବା
Mahaṇibā —To mould or make images
মোমের মূর্ত্তিকরা **मोमकी मूर्त्तीबनाना** with wax.

**ମହଣି ହେବା**—ଦେ. କ୍ରି—ମହଣାଇବା ( ଦେଖ )
Mahaṇi hebā Mahaṇāibā ( See )
(ମହଣିବା—ଅନ୍ୟରୂପ)

**ମହତ୍**—ସଂ. ବିଣ. (ମୂଳଶବ୍ଦ) ( ମହ୍ ଧାତୁ = ପୂଜା କରିବା + କର୍ମ. ଅତ୍ )—୧ । ଅତ୍ୟଧିକ—1. Excessive;
Mahat
(ମହାନ୍—ପୁଂ) intense. ( ଯଥା—ମହାଦୁଃଖ, ମହତ୍ତ୍ୱ
(ମହତୀ—ସ୍ତ୍ରୀ) ଇଚ୍ଛା । ) ୨ । ପ୍ରଧାନ—2. Chief, ୩ । ଶ୍ରେଷ୍ଠ—3. Excellent, ୪ । ବେଶି; ଅନେକ; ବହୁ—4. Much; many. ୫ । ବଡ଼; ବୃହତ୍—5. Great; big; large; huge. ୬ । ମହଳ-

ବଳଶାଳୀ—6. Strong; powerful. ( ଯଥା—ମହାବୀର । ) ୭ । ସତ୍ ସ୍ୱଭାବଯୁକ୍ତ; ଉଦାର—7. Noble. ( ଯଥା—ମହାମନାଃ; ମହାଜନ । ) ୮ । ଅତି ଉତ୍ତମ—8. Very good. ( ଯଥା—ମହତ୍ କାର୍ଯ୍ୟ । ) ୯ । ଦୀର୍ଘ—9. Long. ( ଯଥା—ମହାବାହୁ । ) ୧୦ । ଉଚ୍ଚ; ସତ୍; ପ୍ରସିଦ୍ଧ—10. High. ( ଯଥା—ମହତ୍କୁଳ । ) ୧୧ । ଗମ୍ଭୀର—11. Gross; thick; dense. ( ଯଥା—ମହାନ୍ ଅନ୍ଧକାର । ) ୧୨ । ପ୍ରୟୋଜନୀୟ—12. Important. ( ଯଥା—ମହଦ୍ଭାବାର୍ଥ । ) ୧୩ । ଉଚ୍ଚୈଃସ୍ୱର ବିଶିଷ୍ଟ—13. Loud ( ଯଥା—ମହାନ୍ ଘୋଷ । ) [ ଦ୍ର—ଏହାର ପୁଂଲିଙ୍ଗରେ ମହାନ୍ ଓ ସ୍ତ୍ରୀଲିଙ୍ଗରେ ମହତୀ ହୁଏ । ସାଧାରଣତଃ ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୋଇ ବହୁବ୍ରୀହି ଓ କର୍ମଧାରୟ ସମାସରେ 'ମହତ୍' ଶବ୍ଦ 'ମହା' ରୂପ ଧାରଣ କରେ ଓ ତତ୍ପୁରୁଷ ସମାସରେ 'ମହତ୍' ଆକାରର ପରିବର୍ତ୍ତନ ଘଟେ ନାହିଁ । କିନ୍ତୁ ଏହି ନିୟମର ଅଳ୍ପ କେତେକ ସ୍ଥଳରେ ବ୍ୟତିକ୍ରମ ଦେଖାଯାଏ । ଏହି ଶବ୍ଦର ଅନ୍ୟ ଶବ୍ଦ ପୂର୍ବେ ବ୍ୟବହାର ବିଷୟରେ ବିଶେଷତ୍ୱ ଅଛି । ସାଧାରଣତଃ ଏ ଶବ୍ଦର ଅର୍ଥ ଶ୍ରେଷ୍ଠ, ଉଦାର, ଉତ୍କୃଷ୍ଟ; ଓ ଏହା ଅନ୍ୟ ଶବ୍ଦ ପୂର୍ବେ ବ୍ୟବହୃତ ହେଲେ ପରବର୍ତ୍ତୀ ଶବ୍ଦର ପ୍ରାଧାନ୍ୟାର୍ଥ ପ୍ରକାଶ କରେ । କିନ୍ତୁ 'ଶଙ୍ଖେ ତୈଳେ ତଥା ମାଂସେ ବୈଦ୍ୟେ ଜ୍ୟୋତିଷିକେ ଦ୍ୱିଜେ, ଯାତ୍ରାୟାଂ ପଥି ନିଦ୍ରାୟାଂ ମହଚ୍ଛବ୍ଦୋ ନ ଦୀୟତେ' ଏହି ବଚନରୁ ଶଙ୍ଖ, ତୈଳ, ମାଂସ, ବୈଦ୍ୟ, ଜ୍ୟୋତିଷିକ, ଦ୍ୱିଜ, ଯାତ୍ରା, ପଥ, ନିଦ୍ରା, ଏହି ୯ଟି ଶବ୍ଦ ପୂର୍ବେ ମହତ୍ ଶବ୍ଦର ପ୍ରୟୋଗ କରାଯାଏ ନାହିଁ ବୋଲି ପ୍ରାଚୀନ ଶାବ୍ଦିକମାନେ କହିଅଛନ୍ତି; କିନ୍ତୁ ସଂସ୍କୃତ ଅଭିଧାନ ଓ ଗ୍ରନ୍ଥମାନଙ୍କରେ ମହାଶଙ୍ଖ (ନରକରୋଟୀ),ମହାମାଂସ (ନରମାଂସ), ମହାବ୍ରାହ୍ମଣ ( ପତିତ ବ୍ରାହ୍ମଣ ), ମହାଯାତ୍ରା ( ମୃତ୍ୟୁ ଉଦ୍ଦେଶ୍ୟରେ ତୀର୍ଥଯାତ୍ରା ), ମହାପଥ (ମୃତ୍ୟୁ), ମହାନିଦ୍ରା (ମୃତ୍ୟୁ) ଶବ୍ଦମାନ ମିଳେ ।] ସଂ. ବି—୧ । ରାଜ୍ୟ—1. Kingdom, dominion. ୨ । ( ସାଂଖ୍ୟ ) ମହତ୍ତତ୍ତ୍ୱ; ବୁଦ୍ଧି—2. ( Saṁkhya philosopy ) The intellect as distinguished from the mind. ୩ । ଜଳ ( ହ୍ରି. ଶ )—3. Water. ୪ । ତତ୍ତ୍ୱଜ୍ଞାନ—4. Spiritual knowledge (Apte). ୫ । ମଠର ଅଧ୍ୟକ୍ଷ; ମହନ୍ତ—5. The abbot of a monastery ( Apte ). ୬ । ମହତ୍ତ୍ୱ—6. Greatness ( Apte ). ୭ । ବହୁ ସଂଖ୍ୟକତା—7. Numerousness ( Apte ). ୮ । ଅନନ୍ତତା—8. Infiniteness ( Apte ). ୯ । ଶିବ—9. Śiba ( Apte ). ୧୦ । ଉଷ୍ଟ୍ର—10. Camel ( Apte).

**ମହତ୍କ୍ଷେତ୍ର**—ସଂ. ବିଣ (ବହୁବ୍ରୀହି)—ଯାହା ବିସ୍ତୃତ ଅଞ୍ଚଳ ବା ସ୍ଥାନ
Mahat-kshetra ଅଧିକାର କରିଥାଏ—Occupying a wide territory ( Apte ).

**ମହତ୍ ସେବା**—ସଂ. ବି ( ଷଷ୍ଠୀ ତତ୍; ମହତ୍+ସେବା )—ମହାପୁରୁଷଙ୍କର ବା ବଡଲୋକଙ୍କ ସେବା—
Mahat-sebā Service of the great ( Apte ).

**ମହତ୍ ସ୍ଥାନ**—ସଂ. ବି ( କର୍ମଧା )—୧ । ଉଚ୍ଚସ୍ଥାନ—1. A
Mahat-sthana high or lofty place ( Apte ). ୨ । ଉଚ୍ଚପଦ—2. A high position (Apte).

**ମହତ**—ଦେ. ବି ( ସଂ ମହତ୍ତ୍ୱ )—୧ । ସମ୍ମାନ; ମର୍ଯ୍ୟାଦା—
Mahata 1. Respect; honour. ୨ । ଇଜ୍ଜତ୍—
महत 2. Prestige. ୩ । ସତୀତ୍ୱ—3. Chastity.
महत ୪ । କୁଳମର୍ଯ୍ୟାଦା—4. Family prestige
(ଅମହତ—ବିପରୀତ) ଦେ. ବିଣ ଓ ବିଣର. ବିଣ (ସଂ. ମହତ୍)—
महा ୧ । ମହତ୍ ( ଦେଖ )—1. Mahat ( See ).
महत ୨ । ଅତ୍ୟନ୍ତ—2. Much. [ ଉ—ଦୁର୍ଯ୍ୟୋଧନ କାଣ୍ଡେ ଭୀମସେନ ଧ୍ୱଜ, କାଟନ୍ତେ ହସିଲ ମହତ ଅଶ୍ଚର୍ଯ୍ୟ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।]

**ମହତ କଥା**—ଦେ. ବି ( ସଂ. ମହତ୍ତ୍ୱ+କଥା )—୧ । ଉଦାରଭାପୂର୍ଣ୍ଣ
Mahata kathā ବାକ୍ୟ—1. Magnanimous words.
मडन कथा ୨ । ଉଦାରତାପୂର୍ଣ୍ଣ କାର୍ଯ୍ୟ—2. Magnani-
महत कथा mous or noble act. ୩ । ମହଦାଚରଣ—3 Noble conduct. [ ଉ—ମହତଲୋକର ମହତ କଥା । ଡଗ । ]

**ମହତ ଜଗା(ଗେ)ଇବା**—ଦେ. କ୍ରି—ଯେପରି ପର ନିଜର ସମ୍ମାନର ବା
Mahata jagā(ge)ibā ମର୍ଯ୍ୟାଦାର ହାନି ନ ହୁଏ ତତ୍ପ୍ରତି
(ମହତ ଛଡ଼ିବା—ଅନ୍ୟରୂପ) ସାବଧାନ ହେବା—To be
मानबाखा careful about or to preserve one's
महत रखा करना own respect or prestige.

**ମହତ ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ା(ଡ଼େ)ଇବା**—ଦେ. ବି—
Mahata dāṇḍare paṛi hāṭare gaṛagaṛā(ṛe)ibā
मान हाटेव माझे पड़ा ସାଧାରଣଙ୍କ ଭିତରେ କୌଣସି ବ୍ୟକ୍ତିର
महत चला जाना ସମ୍ମାନହାନିର ରଟନା ହେବା—The loss of one's prestige or honour being published in public; the publication of
(ମହତ ଦାଣ୍ଡରେ ପଡ଼ିବା—ଅନ୍ୟରୂପ) one's dishonour.

**ମହତ ନେବା**—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିଙ୍କୁ ବେଇଜ୍ଜତ୍ କରିବା
Mahata nebā —1. To disgrace or dishonour
इज्जत लओया a person; to rob a person of
इज्जत उतारना his or her honour. ୨ । କୁଳସ୍ତ୍ରୀର ସତୀତ୍ୱ ନାଶ କରିବା—2. To deflower a lady; to dishonour a lady by committing rape on her.

**ମହତ୍‌ପଣ**—ଦେ. ବ ( ସ. ମହତ୍ତ୍ୱ )—୧ । ମହତ୍ ବ୍ୟକ୍ତିଙ୍କ ଆଚରଣ—
Mahata pana 1. Conduct becoming a great
[ମହତ ପଣିଆ(ଆଁ)—ଅନ୍ୟରୂପ] man. ୨ । ମହତ୍ତ୍ୱ; ଉଦାରତା
মানমর্য্যাদা —2. Nobility; magnanimity; great-
**महताई** ness of mind. [ ଉ—ଧର୍ମ ଏକା ଯିନା ମହତ
ପଣିଆ, ଆଉ ବଡ଼ ପଣ ଅଛେଇ ବହିଆ । ରାଧାନାଥ—
ଦରବାର । ]

**ମହତ ପଦାରେ ପଡ଼ିବା**—ଦେ. କ୍ରି—ମର୍ଯ୍ୟାଦାର ହାନି ହେବା; ସମ୍ମାନ
Mahata padāre pardibā ବା ମର୍ଯ୍ୟାଦା ନଷ୍ଟ ହେବା—
মান হাটে পড়া Loss of prestige or honour.
**महत्व गीरजाना** (ଉ—ଲକ୍ଷ୍ମୀ ପାଟିକ ପାନ ଗଲା, ପାନ କହିଲା
ମୋ ମହତ ଗଲା—ଭଗ ।)
(ମହତ ଦାଣ୍ଡରେ ପଡ଼ିବା, ମହତ ଯିବା, ମହତ ସରିବା—ଅନ୍ୟରୂପ)

**ମହତ ମର୍ଯ୍ୟା(ଯାଁ)ଦା**—ଦେ. ବ ( ସଂକର; ମହତ୍ତ୍ୱ ଓ ମର୍ଯ୍ୟାଦା )—
Mahata marjyā(jā)dā ୧ । ମାନମହତ୍ତ୍ୱ; ସମ୍ମାନ—
মান মর্য্যাদা 1. Respect; prestige. ୨ । ଭଦ୍ର ସମା-
**महत्व मर्यादा** ଜୋଚିତ ବ୍ୟବହାର; କାଏଦା—2. Etiquette.
[ମହତ୍ତ୍ୱ ମରଜା(ଜେ)ଦା—ଅନ୍ୟରୂପ] ୩ । ଭଦ୍ରତା—3. Nobi-
lity; nobleness; gentlemanliness.
୪ । ଲେଖାର ଦିଆନେଇ—4. Exchange of
social presents.

**ମହତ ଲୋକ**—ଦେ. ବ—୧ । ମହାନ୍ ବ୍ୟକ୍ତି; ଉଦାରମନାଃ ବ୍ୟକ୍ତି—
Mahata loka 1. A magnanimous person.
ମହତ ଲେ(ବ୍ୟ)କ୍ତି } ଗ୍ରାମ୍ୟରୂପ (ଉ—ଲୋଭର କଥର, ମହତ
ମହତ ଲେକେଇ } ଲୋକର ହାବୁଡ଼େ ପଡ଼ିବ—ଭଗ)
**महान आदमी** ୨ । ମହା ପୁରୁଷ—2. A great man;
a noble person. ୩ । ସାଧୁ ବ୍ୟକ୍ତି—3 A saint-
মহত ব্যক্তি ly person.

**ମହତ ସମ୍ଭାଳିବା**—ଦେ. କ୍ରି—ଆପଣାର ବା ପରର ସମ୍ମାନ ରକ୍ଷା
Mahata sambhālibā କରିବା—To save the pres-
মান রক্ষা করা tige or honour of one's self or
**मान रखना** (ମହତରଖିବା—ଅନ୍ୟରୂପ) of another.
[ଅନ୍ୟେ ସଖି । ଆପଣା ମହତ ଅପେ ରଖି—ଭଗ ।]

**ମହତ ସରା**—ଦେ. ବଣ—୧ । ମର୍ଯ୍ୟାଦା ହାନିକର; ଯେଉଁ କାର୍ଯ୍ୟ ଦ୍ୱାରା
Mahata sarā ସମ୍ମାନ ନଷ୍ଟ ହୁଏ—1. Disgraceful; de-
(ମହତ ସରେଇ—ସ୍ତ୍ରୀ) rogatory to one's prestige or
মান হানি করা honour. ୨ । ଯେଉଁ ବ୍ୟକ୍ତି ପରର ମର୍ଯ୍ୟାଦା
**बेइज्जती** ହାନି କରେ—2. One who puts ano-
ther to disgrace or dishonour. ୩ । ଯେଉଁ
ବ୍ୟକ୍ତି ଆପଣାର କାର୍ଯ୍ୟ କଲାପ ଦ୍ୱାରା ନିଜର ସମ୍ମାନକୁ
ହରାଏ—3. Bringing dishonour or disgrace
on one's self by one's own conduct or
action.

**ମହତ ସାରିବା**—ଦେ. କ୍ରି—୧ । ଆପଣାର ମହତ୍ତ୍ୱ ନିଜେ ହାନି କରିବା—
Mahata sāribā 1. To disgrace one's self by
অপমান করা one's own acts. ୨ । ମହତ ନେବା (ଦେଖ)
**इज्जत तारना** 2. Mahata nebā ( See ) (ଉ—ଗାଳି
ইজ্জত লওয়া ଦିଆଇ ମହତ ସାରି ଦେଇ । କବିସୂର୍ଯ୍ୟ. ସଙ୍ଗୀତ ।)
**इज्जत लेना** ୩ । ସ୍ତ୍ରୀର ସତୀତ୍ୱ ନାଶ କରି—3. To deflower
a woman to rape.

**ମହତ ସୈନ୍ୟ**—ଦେ. ବ (ସଂ. ମହତ୍+ସୈନ୍ୟ)—ବହୁସଂଖ୍ୟକ ସୈନ୍ୟ-
Mahata sainya A number of soldiers.
**बड़ी सेना** (ଉ—ତାଙ୍କ ସଙ୍ଗେ ମହତ ସୈନ୍ୟ ଗୋଡ଼ାଇଲେ ।
କୃଷ୍ଣସିଂହ. ମହାଭାରତ ସଭା ।)

**ମହତ ହ(ସ)ରା(ରେ)ଇବା**—ଦେ. କ୍ରି—ମନ୍ଦ ବା ଅନୁଚିତ କାର୍ଯ୍ୟ ଦ୍ୱାରା
Mahata ha(sa)rā(re)ibā ଆପଣାର ମର୍ଯ୍ୟାଦା ହାନିର
মান হারান କାରଣ ହେବା—To bring disgrace upon
**इज्जत खोना** one's self by one's own conduct, to
allow one's self to be dishonoured by
another. (ଉ—ବୃଥା ହରେଇଲି ଛାର ଗୃହିଣୀ ସେବକ
ପାଇଁ ମହତ ସରେଇଲି—ଭଗ ।)

**ମହତ ହାନି**—ଦେ. ବ. ( ସ. ମହତ୍ତ୍ୱ ହାନି )—ମାନନାଶ; ମର୍ଯ୍ୟାଦା
Mahata hāni ଲୋପ—Loss of prestige or honour
মর্য্যাদা হানি **बेइज्जती**

**ମହତ ହୁର(ରୁ)ମତ୍**—ଦେ. ବ (ସଂକର; ସ. ମହତ୍ତ୍ୱ ଓ ଫା. ହୁରମତ୍).
Mahata hur-(ru)mat ମାନସମ୍ଭ୍ରମ—Prestige; res-
মান সংভ্রম **मान मर्यादा** pect; honour.

**ମହତାପ୍(ବ୍)**—ବୈଦେ. ବ (ଫା. ମହତାବ୍=ଚନ୍ଦ୍ର କିରଣ; ଜ୍ୟୋତ୍ସ୍ନା ।,
Mahatap(b) ଜେ୍)—୧ । ତନ ଉଦିଆ ବାଣ—1. A
মহাতাব fire-work which emits a dazzling
**महताब(बी)** light. [ଦ୍ର—ଆଲୋକର ରଙ୍ଗ ଅନୁସାରେ
[ମହତା—ଅନ୍ୟରୂପ] ମହତାପର ନାମ ହୁଏ, ଯଥା—ଲାଲ ବା
ନାଲି ମହତାପ୍, ଧଳା ବା ସାଦା ମହତାପ୍, ନେଳ ମହତାପ୍
ସବୁଜ ବା ହରି ମହତାପ୍ ଇତ୍ୟାଦି ।] ୨ । ପଶ୍ଚିମା କ୍ଷତ୍ରିୟ-
ମାନଙ୍କ ବଂଶଗତ ଉପାଧିବିଶେଷ—2. A family-
title of Kshatriyas of the N. W. India.
୩ । ମହତା ପାନ ( ଦେଖ )—3. Mahatā pāna
( See )

**ମହତା ପାନ**—ଦେ. ବ. (ସ. ମହତ୍ ଓ ପର୍ଣ୍ଣ)—ବଡ଼ ପାନ; ଭଡ଼ପାନ—
Mahatā pāna Big betel leaves.
খুব বড় পান **बड़ा पान**

**ମହତାବ୍ ଚାନ୍ଦ**—ଦେ. ବ (ନାମ)—ବର୍ଦ୍ଧମାନର ସ୍ୱର୍ଗୀୟ ମହାରାଜା—
Mahatāb chānd The late adoptive father of
the present Maharajadhiraj of Burdwan.
[ଦ୍ର—ଜନ୍ମ ଖ୍ରୀ. ୧୭୩୨ ମୃତ୍ୟୁ ଖ୍ରୀ. ୧୮୦୧ । ଏହାଙ୍କ
ସହାୟତାରେ ମହାଭାରତର ବଙ୍ଗାନୁବାଦ ପ୍ରକାଶିତ ହୋଇ-
ଥିଲା । ଏ ଓଡ଼ିଶାର କୁଜଙ୍ଗ ରାଜ୍ୟକୁ ରାଜସ୍ୱ ନିଲାମରେ
କଲିକତାରେ ନିଲାମ ଡାକ କିଣିଥିଲେ । ଏ ଗଭର୍ଣ୍ଣମେଣ୍ଟଙ୍କ
ଦ୍ୱାରା ବିଶେଷ ସମ୍ମାନିତ ହୋଇଥିଲେ । ବର୍ତ୍ତମାନ ମହା-
ରାଜାଧିରାଜ ବିଜୟଚନ୍ଦ୍ରଙ୍କର ଏ ପୋଷ୍ୟ ପିତା ।]

ମହତା ସିବ୍—ଦେ. ବି—ମୁସଲମାନ ରାଜତ୍ୱରେ ପ୍ରଦେଶରେ ପ୍ରଧାନ କର୍ମ-
Mahatā sib ଚାରୀଙ୍କ ଉପାଧିବିଶେଷ—A title of the superintendent of a province during the Mahomedan rule. (ଉ—ସେକ୍ ଯୁନେଦ୍ କଟକରେ ମହତାସିବ ହେଲେ । ଜଗବନ୍ଧୁ. ପ୍ରାଚୀନ. ଉତ୍କଳ ।)

ମହତିଆ—ଦେ, ବିଣ (ଫ. ମହତ୍ତ୍ୱଯୁକ୍ତ)—ମହତ୍ତ୍ୱଯୁକ୍ତ—
Mahatiā Honourable; noble.
ইজ্জতদার इज्ज़तदार

ମହତୀ—ସଂ. ବିଣ• ସ୍ତ୍ରୀ ( ମହତ୍+ଈ )—ମହତ୍ ଶବ୍ଦର ସ୍ତ୍ରୀଲିଙ୍ଗ—
Mahatī Feminine of Mahat, ସଂ. ବି. ସ୍ତ୍ରୀ—୧ । ନାରଦ ଋଷିଙ୍କ ବୀଣାର ନାମ—1. The name of Nārada's lute or harp. (ଉ—ଧାତା ସନ୍ତୁଷ୍ଟ ମହତୀ ନାଦେ ହତ କଲେ ସେ ସଂଶୟ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।) ୨ । ବୃହତୀ; କଣ୍ଟକାରୀ (ଜ୍ଞା. ଶ)—2. Solanum Indicum. ୩ । ବାଇଗଣ—3. Eggplant (Apte). ୪ । ମହତ୍ତ୍ୱ (ଜ୍ଞା. ଶ)—4. Greatness; importance (Apte).

ମହତୀ ଦ୍ୱାଦଶୀ—ସଂ. ବି—ଶ୍ରବଣାନକ୍ଷତ୍ରଯୁକ୍ତ ଭାଦ୍ର ଶୁକ୍ଳଦ୍ୱାଦଶୀ
Mahatī dwādaśī (ଜ୍ଞା. ଶ)—The 12th day of the bright fortnight of Bhādra if it falls on the Śrabaṇā asterism.

ମହତୀ ଦେବତା—ସଂ, ବି—ସର୍ବୋତ୍ତମା ବା ଶ୍ରେଷ୍ଠା ଦେବତା—The
Mahatī debatā supreme Deity or Goddess; a great Divinity.

ମହତେ(ତ୍ତେ)ଇ ଯିବା—ଦେ. କ୍ରି (ସଂ. ମହତ୍ତ୍ୱ+ହି+ ଯା ଧାତୁ)—
Mahate(tte)i jibā ମହତ୍ତ୍ୱର ଲୋପ—The loss of one's prestige.
[ମହତେ(ତ୍ତେ)ଇ ସରିବା—ଅନ୍ୟରୂପ]

ମହତ୍କଥ—ସଂ. ବିଣ. ପୁଂ (ବହୁବ୍ରୀହି; ମହତୀ+କଥା)—୧ । ମଧୁର
Mahatkatha ବାକ୍ୟଦ୍ୱାରା ପରର ମନୋରଞ୍ଜନକାରୀ; ଚାଟୁଭାଷୀ ( ଜ୍ଞା. ଶ )—1. Flattering; captivating men's minds by oily words. ୨ । (ଚାଟୁଭାଷୀ)
(ମହତ୍କଥା—ସ୍ତ୍ରୀ) ବଡ଼ଲୋକ ବା ମହାପୁରୁଷମାନଙ୍କଦ୍ୱାରା କଥିତ—2. Talked of or mentioned by the great (Apte).

ମହତ୍ତ—ଗ୍ରା. ବି (ସଂ. ମହତ୍ତ୍ୱ)—ମହତ୍ତ୍ୱ (ଦେଖ)
Mahatta Mahatwa (See).

ମହତ୍ତତ୍ତ୍ୱ—ସଂ. ବି (କର୍ମଧା)—୧ । ସାଂଖ୍ୟଦର୍ଶନୋକ୍ତ ସୃଷ୍ଟିର ଚତୁର୍ବିଂଶତି
Mahattattwa ତତ୍ତ୍ୱାନ୍ତର୍ଗତ ଦ୍ୱିତୀୟ ବା ବୁଦ୍ଧିସ୍ୱରୂପ ତତ୍ତ୍ୱ—1. (Sāṁkhya philosophy) The 2nd of the 24 primary principles in the creation, which consists of the intelligence. ୨ । ଜୀବାତ୍ମା (ଜ୍ଞା. ଶ)—2. The animal Soul.

ମହତ୍ତମ—ସଂ. ବିଣ (ମହତ୍+ଅତିଶୟାର୍ଥେ. ତମ)—ଅନେକଙ୍କ ମଧ୍ୟରେ
Mahattama ବଡ଼; ଅତିମହତ୍—Greatest; highest;
(ମହତ୍ତମା—ସ୍ତ୍ରୀ) noblest.

ମହତ୍ତର—ସଂ, ବିଣ (ମହତ୍+ଅତିଶୟାର୍ଥେ. ତର)—ଦୁଇଟି ମଧ୍ୟରେ
Mahattara ବଡ଼ ଅପେକ୍ଷାକୃତ; ମହତ୍; ଉତ୍କୃଷ୍ଟତର—Greater;
(ମହତ୍ତରା—ସ୍ତ୍ରୀ) nobler; higher. ସଂ ବି—୧ । ଶୂଦ୍ର (ଜ୍ଞା. ଶ)—1. A Śūdra. ୨ । ଗ୍ରାମର ବୟୋଜ୍ୟେଷ୍ଠ ବ୍ୟକ୍ତି—2. The oldest man of a village (Apte). ୩ । ଗ୍ରାମର ମୁଖ୍ୟବ୍ୟକ୍ତି ବା ନେତା—3. The head of a village (Apte). ୪ । ରାଜସଭାର ସଦସ୍ୟ—4. A courtier (Apte). ୫ । ରାଜ-ଶୟନାଗାରରକ୍ଷକ; ରାଜାଙ୍କ ପାରିବାରିକ ବିଷୟର ଭାରପ୍ରାପ୍ତ କର୍ମଚାରୀ—5. Chamberlain; a palace superintendent (Apte) ୬ । ଦଳରେ ସର୍ବମାନ୍ୟ ବା ପ୍ରଧାନ ବ୍ୟକ୍ତି—6. The most respectable or chief person; the principal (Apte).

ମହତ୍ତରକ—ସଂ. ତ. ପୁଂ (ମହତ୍ତର+ସ୍ୱାର୍ଥେ. କ)—ମହତ୍ତର ୪।୫
Mahattaraka (ଦେଖ)—Mahattara 4, 5 ( See ) (Apte).

ମହତ୍ତରିକା—ସଂ. ବି (ମହତ୍ତର+କ+ଆ) -ବର୍ଣ୍ଣସଙ୍କର ଜାତିବିଶେଷ—
Mahattarikā Name of a hybrid or mixed caste amongst the Hindus.

ମହତ୍ତା—ସଂ. ବି (ମହତ୍+ତା)—ମହତ୍ଭାବ; ମହାନୁଭବତା—
Mahattā Magnanimity; greatness.

ମହତ୍ତ୍ୱ—ସଂ. ବି (ମହତ୍+ତ୍ୱ)—୧ । ମହାନୁଭବତା; ଉଦାରତା;
Mahattwa ଔଦାର୍ଯ୍ୟ—1 Nobility; magnanimity. ୨ । ପ୍ରକର୍ଷ; ଶ୍ରେଷ୍ଠତ୍ୱ—2. Excellence; superiority ୩ । ବୃହତ୍ତ୍ୱ—3. Largeness; magnitude; great extent. ୪ । ପ୍ରାଧାନ୍ୟ; ଆଧିକ୍ୟ—4. Greatness; predominance ୫ । ମର୍ଯ୍ୟାଦା; ସମ୍ମାନ; ସମ୍ଭ୍ରମ—5. Respect; noblity; honour. ୬ । ତୀବ୍ରତା; ପ୍ରଖରତା—6 Intensity; violence (Apte). ୭ । ଉଚ୍ଚତା—7. Height; elevation (Apte). ୮ । ଉଚ୍ଚପଦ-8. Exalted position (Apte). ୯ । ଜରୁରୀ; ଆବଶ୍ୟକତା; ଗୁରୁତା—9. Importance (Apte); urgency. ୧୦ । ଗୌରବ; ଐଶ୍ୱର୍ଯ୍ୟ—10. Majesty (Apte), ଦେ. ବି—୧ । ମହତ୍ତତ୍ତ୍ୱ (ଦେଖ)—1. Mahattattwa (See). [ ଉ—ମହତ୍ତ୍ୱ, ଅହଂକାର ଜାତ, ତା ତହୁଁ ପଞ୍ଚ ତନମାତ୍ର । ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । ] ୨ । ସମ୍ଭ୍ରାନ୍ତପଣିଆ; ଉଚ୍ଚବଂଶୀୟତା; କୁଳୀନତା—2. Respectability. ୩ । ବଂଶ ମର୍ଯ୍ୟାଦା; ଉଚ୍ଚ କୁଳରେ ଜନ୍ମିଥିବା ଓ ବଡ଼ ବାନ୍ଧିଥିବା ଜନିତ ମର୍ଯ୍ୟାଦା—3. Prestige or social position due to noble blood and high and respectable connection; high familystatus. [ଦ୍ର—ବର-କନ୍ୟା ପ୍ରସଙ୍ଗରେ ବର ବଂଶ ଓ କନ୍ୟାର ବଂଶ ମଧ୍ୟରେ 'ମହତ୍ତ୍ୱ' କଷାକଷି ହୁଏ ଓ ବରର ବଂଶ ଉଚ୍ଚତର ବା

କନ୍ୟାର ବଂଶ ଉଚ୍ଚତର, ଏହା ସ୍ୱୀକାର କରାଯାଇ ଉଭୟଙ୍କ ମଧ୍ୟରେ କେଉଁଭଳି ଦାୟନଥ ସ୍ୱୀକୃତ ହୁଏ ।] ୪ । ଉଚ୍ଚକୁଳ ସଙ୍ଗେ ବିବାହ ସମ୍ପର୍କ ସ୍ଥାପନ—4. Establishment of connection with a high family by marriage.

ମହତ୍ତ୍ୱ କଷିବା—ଦେ. କ୍ରି—ଦୁଇ ଜଣଙ୍କର କୁଳୀନତା ତୁଳନା କରିବା—Mahattwa kashibā To compare the respectability of two persons. मान कषाकषि करा फरक तोडना [ଦ୍ର—ବିବାହ ପ୍ରସଙ୍ଗରେ ଭୁଆ ବର କନ୍ୟାଙ୍କ (ମହତ୍ତ୍ୱ ତୁଳିବା—ଅନ୍ୟରୂପ) ବଂଶ ଦ୍ୱୟ ମଧ୍ୟରେ ମହତ୍ତ୍ୱ କଷା [ମହତ୍ତ୍ୱ କଷା(ତୁଳା)ଯିବା—କର୍ମବାଚ୍ୟ ରୂପ) ଯାଏ ।]

ମହତ୍ତ୍ୱ ମର୍ଯ୍ୟାଦା—ଦେ. ବି (ସଦ୍ଧତର)—୧ । ସଦାଚାର—1. Approved conduct. ୨ । ମର୍ଯ୍ୟାଦା—Mahattwa marjyādā 2. Respect. ୩ । ସମ୍ମାନ ପ୍ରଦର୍ଶନ—3. Showing respect to a person. ୪ । ବନ୍ଧୁମାନଙ୍କର ମଧ୍ୟରେ ସମୁଚିତ କେଉଁରଙ୍କ ଆଦାନ ପ୍ରଦାନ—4. Exchange of proper social presents amongst relations. मान मर्यादा मान मर्यादा

ମହତ୍ତ୍ୱ ସ(ହ)ର(ରେ)ଇବା—ଦେ. କ୍ରି—ଆପଣାର ମହତ୍ତ୍ୱ ବା ମର୍ଯ୍ୟାଦାର ନାଶ ଘଟାଇବା—To bring one's self to dishonour; to lose one's honour. Mahattwa sa(ha)rā(re)ibā अपमान पाओया इज्जत खोना(गमाना)

ମହତ୍ତ୍ୱ ସାରିବା—ଦେ. କ୍ରି—ମହତ ସାରିବା ( ଦେଖ ) Mahattwa sāribā Mahata sāribā ( See )

ମହତ୍ୱ (ଇତ୍ୟାଦି)—ଦେ. ବି (ସଂ. ମହତ୍ତ୍ୱ)—ମହତ୍ତ୍ୱ ଇତ୍ୟାଦି (ଦେଖ) Mahatwa (etc) Mahattwa etc. ( See )

ମହତ୍ରା(ତ୍ତ୍ରା)ଣ—ଦେ. ବିଣ ( ସଂ. ମହତ୍ ଓ ତ୍ରାଣ ) (କଟକଥ)—Mahatrā(ttrā)na ଭଦ୍ର ଲୋକଙ୍କ ଭରଣ ପୋଷଣ ପାଇଁ ଲଗା ଯାଇଥିବା (ଜମି)—( land ) Assigned rent free for the maintenance of noble families. ଦେ. ବି—ମହତ୍ରାଣ ଜାଗିର ( ଦେଖ ) Mahattrāna jāgiri ( See ) महत्राण

ମହତ୍ତ୍ରାଣ ଜାଗିର(ରୁ)—ଦେ. ବି—ବ୍ରାହ୍ମଣେତର ଶ୍ରେଷ୍ଠ, ସଦ୍ବଂଶୀୟ ବା ଭଦ୍ର ପରିବାରଙ୍କ ଭରଣ ପୋଷଣାର୍ଥ ରାଜାଙ୍କ ଦ୍ୱାରା ଲଗା ନିଷ୍କର ଜାଗିର ବା ଜମି—Mahattrāna jāgiri(r) Land assigned rent free by the king for the maintenance of noble families or families of gentlemen. (besides Brāhmanas). महत्राण जायगीर मद्दमास जागीर

ମହଦ୍‌ବ୍ୟକ୍ତି—ସଂ. ବି ( କର୍ମଧା; ମହତ୍+ବ୍ୟକ୍ତି; ସନ୍ଧି ଯୋଗୁଁ ତ ସ୍ଥାନରେ ଦ )—ମହାନୁଭବ ବ୍ୟକ୍ତି; ଉଦାର ବ୍ୟକ୍ତି—A magnanimous person. Mahad-byakti (ମହାପୁରୁଷ -ଅନ୍ୟରୂପ)

ମହଦାବାସ—ସଂ. ବି. ( କର୍ମଧା; ମହତ୍+ଆବାସ )—ବଡ଼ ଘର—Mahadābāsa A specious or large building; mansion (Apte.) (ମହଦାଶ୍ରମ—ଅନ୍ୟରୂପ)

ମହଦାଶୟ—ସଂ. ବି (କର୍ମଧା; ମହତ୍+ଆଶୟ)—୧ । ସତ ଅଭିଳାଷ; ସଦିଚ୍ଛା—1. Noble wish; noble intention. ୨ । ଉଚ୍ଚାକାଙ୍କ୍ଷା—2. Noble ambition. ୩ । ଉଦାର ହୃଦୟ—3. Magnanimous heart. Mahadāsaya (ମହଦାଶୟା—ସ୍ତ୍ରୀ) ସଂ.ବିଣ. ପୁଂ (ବହୁବ୍ରୀହି)—ସଦାଶୟ; ଉଦାରଚେତାଃ—Noble-minded; magnanimous.

ମହଦାଶା—ସଂ.ବି (କର୍ମଧା, ମହତୀ+ଆଶା)—ମହତୀ ଆଶା; ଉଚ୍ଚ ଆଶା—Mahadāsā High hope; ambition (Apte).

ମହଦାଶ୍ଚର୍ଯ୍ୟ—ସଂ ବିଣ (ମହତ୍+ଆଶ୍ଚର୍ଯ୍ୟ)—ଅତ୍ୟନ୍ତ ବିସ୍ମୟଜନକ—Mahadāscharjya Very wonderful (Apte).

ମହଦାଶ୍ରୟ—ସଂ. ବି. (୬ଷ୍ଠୀ ତତ୍; ମହତ୍+ଆଶ୍ରୟ)—ମହତ୍ ବ୍ୟକ୍ତିଙ୍କର ଅନୁଗତ୍ୟ—Shelter under a great man; dependence on or seeking protection with the great. Mahadāsraya

(ମହଦାଶ୍ରୟା—ସ୍ତ୍ରୀ) ଦେ. ବିଣ. ପୁଂ(ବହୁବ୍ରୀହି)—ମହଦାଶ୍ରିତ (ଦେଖ) Mahadāsrita ( See )

ମହଦାଶ୍ରିତ—ସଂ. ବିଣ. ପୁଂ—ଯେ ମହତ୍ ବ୍ୟକ୍ତିଙ୍କର ଆଶ୍ରୟ ଗ୍ରହଣ କରିଥାଏ; ମହଦ୍‌ବ୍ୟକ୍ତିଙ୍କଠାରେ ଶରଣାପନ୍ନ—Mahadāsrita (ମହଦାଶ୍ରିତା—ଅନ୍ୟରୂପ) One who has taken shelter under or seeks protection with a high personage.

ମହଦେଶ୍ୱର—ସଂ. ବି—ମହୀଶୂରରେ ଜାତ ଏକ ଜାତୀୟ ହୃଷ୍ଟପୁଷ୍ଟ ଓ ବଳବାନ୍ ବଳଦ (ପ୍ର. ଶବ୍ଦସାଗର)—A species of strong and stout bullocks found in Mysore. Mahadeswara

ମହଦ୍ଗୁଣ—ସଂ. ବିଣ. ପୁଂ ( ବହୁବ୍ରୀହି; ମହତ୍+ଗୁଣ)—ମହାପୁରୁଷମାନଙ୍କ ଗୁଣ ବିଶିଷ୍ଟ (ବ୍ୟକ୍ତି)—Having the qualities of the great (Apte). Mahadguna (ମହଦ୍ଗୁଣା—ସ୍ତ୍ରୀ)

ମହନ୍ ଦାର୍—ଦେ. ବିଣ—ମଅନ୍ ଦାର୍ ( ଦେଖ ) Mahan dār Ma-an dāra ( See )

ମହନ—ଗ୍ରା. ବି (ସଂ. ମୋହନ)—୧ । ଅସଲ ଦେଉଳଲଗ୍ନ ଲାଗିଥିବା କ୍ଷୁଦ୍ରତର ଦେଉଳ; ଜଗମୋହନ—1. A smaller temple attached to the main temple. ( ଯଥା—ପୁରୀର ଲକ୍ଷ୍ମୀ ଠାକୁରାଣୀଙ୍କ ମହନ । ) ୨ । ରାଧାମୋହନ ଓ କୃଷ୍ଣମୋହନ ଆଦି ବ୍ୟକ୍ତିଙ୍କର ଡାକ ନାମ—2. A name for calling people whose names end with the word 'Mohana.' ଦେ. ବିଣ. ପୁଂ (ସଂ. ମୋହନ)—ମହନିଆ ( ଦେଖ )—Mahaniā ( See ) Mahana জগমোহন जगमोहन মোহন मोहन মোহন मोहनिया (ମହନୀ—ସ୍ତ୍ରୀ) (ମହନା, ମହନଆ—ଅନାଦରାର୍ଥକରୂପ) (ମହନ—ଆଦରାର୍ଥକ ରୂପ)

ମହନଭୋଗ—ଦେ. ବି ( ସଂ. ମୋହନଭୋଗ )—ହାଲୁଆ; ଘିଅରେ ଖରଡ଼ା ହୋଇଥିବା ସୁଜି ସଙ୍ଗେ ପାଣି, ଦୁଧ, କଦଳୀ ଓ ମସଲା ମିଶାଇ ପ୍ରସ୍ତୁତ ଖାଦ୍ୟ—Halwa; a paste ( food ) made from coarse flour; halwa. Mahanabhoga মোহনভোগ मोहनभोग, हलवा

ମହନମାଳ(ଳା)—ଗ୍ରା. ବି ( ବଣିଆ ଶବ୍ଦ )—ମଉନମାଳ ( ଦେଖ )—
Mahanamā̱la(̱lā) Maunamā̱la ( See )

ମହନିଆ(ଆଁ)—ଗ୍ରା. ବିଣ. ପୁଂ (ସଂ. ମୋହନ)-ମୁଗ୍ଧକାରୀ—Enchanting; enslaving; fascinating. ଗ୍ରା. ବି.
Mahaniā(āñ) মোহনিয়া मोहनिया (ମହନେଈ—ସ୍ତ୍ରୀ)
ପୁଂ—ମନମୋହନ ଆଦି ବ୍ୟକ୍ତିଙ୍କ ଅନାଦରାର୍ଥ ଡାକ —A name for calling Manamohan in slight.

ମହନି ଲଗା(ଗେ)ଇବା—ଗ୍ରା. କ୍ରି—୧ । ମନ୍ତ୍ର ସାହାଯ୍ୟ ବା ଛାନ୍ଦିକ ପ୍ରୟୋଗଦ୍ୱାରା ( କୌଣସି ବ୍ୟକ୍ତିକୁ ) ବିମୋହିତ କରିବା—1. To enchant or fascinate a person by means of charms. ୨ । କୌଣସି ବ୍ୟକ୍ତିକୁ ମୁଗ୍ଧ କରିବା—2. To enchant a person; to fascinate a person.
Māhani lagā(ge)ibā ( ମହନି କରିବା —ଅନ୍ୟରୂପ ) মন্ত্রমুগ্ধকরা; মন্ত্রনাগান मोहनी लगाना (डालना) (ମହନି ଲଗିବା—ବିଶେଷ୍ୟରୂପ)

ମହନୀ—ଗ୍ରା. ବି ( ସଂ. ମୋହନୀ )—୧ । କୌଣସି ବ୍ୟକ୍ତିକୁ ମୋହନ ବା ବଶୀକରଣ କରିବା ଉପାୟ—1. Power of enchanting others; a charm ୨ । ଅନ୍ୟ ଲୋକର ମନକୁ ମୋହିବାର ଶକ୍ତି—2. The charm or power possessed by a person to fascinate others; enchantment. ୩ । କୌଣସି ବ୍ୟକ୍ତିକୁ ମୋହିତ କରିବାର ଗୁଣ ବା ଗୁପ୍ତ ରହସ୍ୟ—3. The secret of fascinating a person. ୪ । (ସ୍ତ୍ରୀ) ମନୋମୋହିନୀ ଓ ମୋହିନୀ ଆଦି ନାମଧାରିଣୀ ସ୍ତ୍ରୀଙ୍କର ଡାକ ନାମ—4. A name for calling women whose names end with the word Mohinī. ୫ । ( ପୁଂ ) ମନମୋହନ, ସୁଧାମୋହନ ଆଦିଙ୍କ ଆଦରାର୍ଥକ ଡାକ ନାମ —5. A name for calling males whose names end with Mohana, in fondness. ଦେ. ବିଣ. ସ୍ତ୍ରୀ—ମୋହିନୀ; ମୁଗ୍ଧକାରିଣୀ—Fascinating; enchanting
Mahanī মোহিনীশক্তি मोहनी মোহিনী मोहनी

ମହନୀ କନ୍ୟା—ଗ୍ରା. ବି. ସ୍ତ୍ରୀ—ମୋହିନୀ କନ୍ୟା ( ଦେଖ )—
Mahanī kanyā Mohinī kanyā ( See )
মোহিনী কন্যা मोहनी कन्या

ମହନୀୟ—ସଂ. ବିଣ. ପୁଂ ( ମହ୍ ଧାତୁ+କର୍ମ ଅନୀୟ )—୧ । ପୂଜନୀୟ —1. Worthy of homage; illustrious. ୨ । ମହତ୍—2. Noble; glorious
Mahanīya (ମହନୀୟା—ସ୍ତ୍ରୀ)

ମହନ୍ତ—ସଂ. ବି. ପୁଂ—ମଠାଧୀଶ; ମଠର ମାଲିକ୍ ବା—The trustee or superior of a religious endowment or monastery; the head of a religious trust or institution ( Apte ). ଦେ. ବି ( ସଂ. ମହତ୍ ଶବ୍ଦର ବହୁବଚନ ମହାନ୍ତଃ )—୧ । ସଙ୍କୀର୍ତ୍ତନ ମଣ୍ଡଳୀର ବା ଅଖଡ଼ାର କର୍ତ୍ତୃତ୍ୱଭାର ଧାରଣକାରୀ ବ୍ୟକ୍ତି—1. The head of a religious choir formed for chanting Samkīrtana with the help of drums and cymbals. ୨ । ଗଉଡ଼ଆଦି ବାଡ଼ୁଆଜାତି-ମାନଙ୍କର ସାମାଜିକ ଅନୁଶାସନ ଓ ନିୟମ ଚଳାଇବା ମୋଖ ବ୍ୟକ୍ତି—2. The head of a caste-guild. ୩ । ( ସଂ. ମହାମାତ୍ର )—ହାତୀର ମାହୁନ୍ତ ବା ଗୁଳନ; ହାତୀଖଲ—3. The driver of an elephant. ୪ । ମହାପୁରୁଷ—4. A great man. ୫ । ସାଧୁବ୍ୟକ୍ତି—5. A saintly person. ୬ । ବୈରାଗୀ ବା ବୈଷ୍ଣବମାନଙ୍କ ଦଳର ବା ଆମ୍ନାୟର ନେତା—6. The head or leader of a particular order of anchorites.
Mahanta মহ(হা)ন্ত, মোহ(হা)ন্ত महंत মাহুত महावत

ମହନ୍ତ ମହାରାଜ—ଦେ. ବି ( ସଂ. ମହନ୍ତ+ମହାରାଜ )—ମଠାଧୀଶଙ୍କର ମାନସୂଚକ ସମ୍ବୋଧନ—A respectful appellation of the head of a religious trust.
Mahanta mahārāja মহন্ত মহারাজ महन्त महाराज

ମହନ୍ତା(ନ୍ତେ)ଇ—ଦେ. ବିଣ—ମଠର ମହନ୍ତ ସମ୍ବନ୍ଧୀୟ—Relating to the head of a religious trust. ଦେ. ବି—ମହନ୍ତପଣ—The position or power or rights of the head of a religious institution.
Mahantā(nte)i महन्ताई মহন্তগিরি महन्ती, महन्ताई

ମହନ୍ତା(ନ୍ତେ)ଇ ଶାଢ଼ୀ—ଦେ. ବି—ମଠର ମହନ୍ତଙ୍କ ଦେହାନ୍ତ ଘଟିଲେ ନୂତନ ମହନ୍ତ ଗାଦିନସୀନ୍ ହେବା [ମହନ୍ତାଇ ଶାଢ଼ୁ(ଢ଼ୋ)ପା—ଅନ୍ୟରୂପ) ସମୟରେ ସର୍ବସାଧାରଣ ବା ଉକ୍ତ ମଠର ମହନ୍ତନିବାଚକ ସାଧୁଗଣ ଉକ୍ତ ବ୍ୟକ୍ତିକୁ ମହନ୍ତ ପଦରେ ପ୍ରତିଷ୍ଠିତ ଓ ତାଙ୍କୁ ମହନ୍ତରୂପେ ସ୍ୱୀକାର କରିବାର ନିଦର୍ଶନ ସ୍ୱରୂପ ନୂଆ ମହନ୍ତଙ୍କ ମୁଣ୍ଡରେ ବନ୍ଧାଯିବା ଶାଢ଼ୀ ବା ପାଗ—A cloth or turban tied round the head of a new Mahanta on the occasion of his succession to and public installation in the spiritual seat of the endowment.
Mahantā(nte)i śāṛhi মহন্তের পদ महन्ताई पगड़ी

ମହନ୍ତିଆ—ଦେ. ବିଣ—୧ । ମହନ୍ତ ସମ୍ବନ୍ଧୀୟ—1. Relating to a Mahanta. ୨ । ମହନ୍ତଙ୍କ ଯୋଗ୍ୟ—2. Befitting to a Mahanta
Mahantiā মহন্ত সম্বন্ধীয় महन्तीया

ମହନ୍ତିଆଣୀ—ଦେ. ବି. ସ୍ତ୍ରୀ—୧ । ମଠର ସ୍ତ୍ରୀ ମାଲିକ୍ ବା—1. The female head of a religious trust. ୨ । ଗୃହୀ ମହନ୍ତଙ୍କ ସ୍ତ୍ରୀ—2. The wife of a house-keeping Mahanta.
Mahantiāṇi শ্রীমহন্ত महन्तनी

ମହଫିଲ୍—ବୈଦେ. ବି ( ଅ )—୧ । ସଭା; ବହୁଲୋକଙ୍କ ସମ୍ମେଳନ—1. Assembly. ୨ । ନୃତ୍ୟଗୀତାଦିର ସଭା —2. A dancing or music party.
Mahaphil মাহ্ফিল महफ़िल

**ମହମ**—ଦେ. ବି ( ସଂ. ମଧୂନ; ମଦନ; ଫା. ମୋମ୍ )—ମହଣ;
Mahama মোম **मोम** ମହୁ ଶିଠା—Beeswax.

**ମହମ ଜାମା**—ବୈଦେ. ବି ଓ ବିଣ ( ଫା. ମୋମ୍ ଜାମା )—ମମ୍ ଜାମା
Mahama jāmā ( ଦେଖ )—Mam jāmā ( See )
মোম জামা **मोम जामा**

**ମହମଦ୍**—ବୈଦେ. ବି ( ନାମ )—ମହମ୍ମଦ ( ଦେଖ )
Mahamad Mahammad ( See )

**ମହମ(ଣ) ପିତୁଳା(ଳୀ)**—ଦେ. ବି ( ସଂ. ମଧୂନ+ପୁତ୍ତଳିକା )—
Mahama(ṇa) pituḷā(ḷī) ୧ । ମହମରେ ନିର୍ମିତ ମୂର୍ତ୍ତି—
মোমের পুতুল 1. A figure made of wax. ୨ । ( ଲକ୍ଷ-
**मोमकी मरीयम** ଣାର୍ଥ ) ଅତି ସୁକୁମାରୀ ସ୍ତ୍ରୀ—2. (figurative)
A very delicate and soft-bodied woman.

**ମହମ ବତି**—ଦେ. ବି ( ସଂ. ମଧୂନ+ବର୍ତ୍ତୀ )—୧ । ମହଣ ବଳିତା
Mahama bati (ଦେଖ)—1. Mahaṇa baḷitā (See)
মোমবাতী **मोमबत्ती** ୨ । ମହଣବତି—2. Wax candle.
[ ଦ୍ର—ଆଗେ ଆମ ଦେଶରେ ମହଣବତୀ ମହଣରେ ହେଉଥିଲା । ଏବେ ଚର୍ବୀ ( Tallow )ରେ ଓ କୋଇଲା ବା କେରେସିନ୍ ଖଣିରୁ ବାହାରିବା ଏକପ୍ରକାର ସ୍ନିଗ୍ଧ ପଦାର୍ଥ ( Paraffin ) ଆଦି ଦ୍ୱାରା ବତି ପ୍ରସ୍ତୁତ ହେଉଅଛି । ]

**ମହମହ**—ଦେ. ଅ ( ସଂ. ମହକ୍କ )—ଉତ୍କଟ ବାସନାଯୁକ୍ତ; ମହକ ବାସନା
Mahamaha ଯୁକ୍ତ; ସୌରଭଯୁକ୍ତ; ବହୁଦୂର ବିସ୍ତାରିତ ସୁଗନ୍ଧ
মহমহ **महमह** ଯୁକ୍ତ—Having a sweet smell which is diffused over a wide area. [ ଉ—ହେଙ୍ଗୁ ହୋଇ କଣ୍ଠରେ ପଶିବ, ମହମହ ହୋଇ ବାସିବ—ଛଗ । ]

**ମହମହ ବାସିବା**—ଦେ. କ୍ରି ( ସଂ. ମହକ୍କ )—( କୌଣସି ଦ୍ରବ୍ୟ )
Mahamaha bāsibā ଖୁବ୍ ବାସିବା; ସୁବାସଦ୍ୱାରା ଚତୁର୍ଦ୍ଦିଗ
মহমহ গন্ধ করা ସୁଗନ୍ଧିତ କରିବା—To diffuse or emit
**महमहाना** its sweet smell.

**ମହମୁଦ୍ ଗଜନୀ**—ବୈଦେ. ବି (ନାମ) (ଗଜନୀ ଦେଶର ମହମୁଦ ନାମକ
Mahamud gajanī ବ୍ୟକ୍ତି)—ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦିରେ
মামুদ গজনী **महमूद गज़नवी** ଉତ୍ତର ଭାରତ ଆକ୍ରମଣକାରୀ
( ମାମୁଦ୍ ଗଜନୀ—ଅନ୍ୟରୂପ ) ମୁସଲମାନ୍ ରାଜା—Mahamud of Ghazni. [ ଦ୍ର—ଏ ଆଫଗାନିସ୍ଥାନ ଦେଶର ଗଜନୀ ରାଜ୍ୟର ସୁଲତାନ୍ ଭାରତ ଆକ୍ରମଣକାରୀ ସୁବକ୍ତିଗିନଙ୍କ ପୁତ୍ର । ଜନ୍ମ ଖ୍ରୀ. ୯୭୧, ମୃତ୍ୟୁ ଖ୍ରୀ. ୧୦୩୦ । ସୁବକ୍ତିଗିନଙ୍କ ମୃତ୍ୟୁ ପରେ ଏ ୯୮୭ ଖ୍ରୀଷ୍ଟାବ୍ଦରେ ଗଜନୀର ସୁଲତାନ୍ ହେଲେ ଓ ଖ୍ରୀ. ୧୦୦୧ ରେ ଲାହୋରର ରାଜା ଜୟପାଳଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ ଓ ତାଙ୍କୁ ପରାସ୍ତ କଲେ । ଜୟପାଳ ପରାସ୍ତ ହୋଇ ଆତ୍ମହତ୍ୟା କଲେ । ଖ୍ରୀ. ୧୦୦୫।୬ରେ ଏ ମୁଲତାନ ଆକ୍ରମଣ କଲେ । ଖ୍ରୀ. ୧୦୦୯ ରେ ଏ ହିନ୍ଦୁମାନଙ୍କ ସମ୍ମିଳିତ ସେନାଙ୍କୁ ପେଶାବରଠାରେ ପରାସ୍ତ କରି ଅନେକ ଦେବ ମନ୍ଦିର ଲୁଣ୍ଠନ କଲେ; ଖ୍ରୀ ୧୦୧୧ରେ ଥାନେଶ୍ୱର ମନ୍ଦିର ଲୁଣ୍ଠନ କଲେ; ଖ୍ରୀ. ୧୦୧୮।୧୯ରେ ମଥୁରା ଲୁଣ୍ଠନ କଲେ ଓ ଖ୍ରୀ. ୧୦୧୯।୨୫ରେ କାନ୍ୟକୁବ୍ଜ ଓ କାଲଞ୍ଜର ରାଜ୍ୟ ଅଧିକାର କଲେ; ୧୦୨୪ରେ ଗୁଜରାଟର ପ୍ରସିଦ୍ଧ ଶିବମନ୍ଦିର ସୋମନାଥକୁ ଲୁଣ୍ଠନ କରି ଲୁଣ୍ଠିତ ଦ୍ରବ୍ୟମାନ ନିଜ ଦେଶକୁ ନେଇ ନେଲେ ଏବଂ ସୋମନାଥଙ୍କ ମୂର୍ତ୍ତିକୁ ଭାଙ୍ଗି ତହିଁର ଖଣ୍ଡେ ପଥର ଗଜନୀର ମସଜିଦ୍‌ରେ ଗୋଡ଼ଘଷା (ପାଦପୋଛା) ପଥର ରୂପେ ପକାଇଲେ । ଭାରତ ଲୁଣ୍ଠନ ଏହାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓ ଭାରତରେ ରାଜ୍ୟ ସ୍ଥାପନ ଏହାଙ୍କର ଗୌଣ ଉଦ୍ଦେଶ୍ୟ ଥିଲା । ଏ ଖ୍ରୀ. ୧୦୩୦ରେ ମୃତ ହେଲେ । ଏହାଙ୍କ ବଂଶଧରମାନେ ଉତ୍ତର ପଶ୍ଚିମ ଭାରତରେ ପ୍ରାୟ ୧୫୦ ବର୍ଷ ରାଜତ୍ୱ କଲା ପରେ ଖ୍ରୀ. ୧୧୮୮ରେ ମହମ୍ମଦ ଘୋରୀଙ୍କଦ୍ୱାରା ବିତାଡ଼ିତ ହେଲେ—ପ୍ରୋଥେରୋ ସାହେବଙ୍କ ଇଂରାଜୀ ପ୍ରାଥମିକ ଭାରତ ଇତିହାସ । ]

**ମହମ୍ମଦ୍**—ବୈଦେ. ବି ( ନାମ ) ( ଆ. ମୁହମ୍ମଦ୍ )—ମୁସଲମାନ୍ ଧର୍ମ-
Mahammad ପ୍ରବର୍ତ୍ତକ ଈଶ୍ୱର ପ୍ରେରିତ ଦୂତ ବା ମହା-
মহম্মদ **महम्मद, मुहम्मद** ପୁରୁଷଙ୍କ ନାମ—Mahomed; the Apostle of God who first introduced Mahomedanism. [ ଦ୍ର—ମହାପୁରୁଷ ବା ହଜରତ୍ ମହମ୍ମଦ ଆରବର ମକ୍କା ନଗରୀରେ ଖ୍ରୀ. ୫୭୦ରେ କୋରେଶ୍ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପିତାଙ୍କର ନାମ ଅବଦୁଲ୍ଲା ଓ ମାତାଙ୍କ ନାମ ବିବି ଅମିନା । ହାଲିମା ବିବି ଏହାଙ୍କର ପାଳିତା ମା । ମହମ୍ମଦଙ୍କର ୮ ଗୋଟି ସ୍ତ୍ରୀଙ୍କ ମଧ୍ୟରେ ଖୋଦିଜା ( ଖାଦିଜା (ପ୍ରଥମା ଓ ଆୟେସା ସିଦିକା ସବୁଠାରୁ ବେଶି ସୁନ୍ଦରୀ ଓ ଗୁଣବତୀ ଥିଲେ । ଖାଦିଜାଙ୍କ ଗର୍ଭଜାତ ପୁତ୍ରଙ୍କ ନାମ ଅବୁତାୟୁବ୍ ଓ ଅବୁ-ତାହେର୍ ଓ ଝିଅ ଫାତମା ଜୋହୋରା । ଏହି କନ୍ୟା ମହମ୍ମଦଙ୍କ ଖୁଡ଼ୁତା ପୁଅ ଭାଇ ଆଲିଙ୍କୁ ବିବାହ କରିଥିଲେ ଏବଂ ଅତ୍ୟନ୍ତ ରୂପବତୀ, ଗୁଣବତୀ ଏବଂ ଧାର୍ମିକା ଥିଲେ । ମହମ୍ମଦଙ୍କର ପିତୃବ୍ୟଙ୍କ ନାମ ଆବୁତାଲିବ୍ ଓ ପିତାମହଙ୍କ ନାମ ଅବ୍ଦୁଲ ମୋତଲିବ୍ । ଅଳ୍ପ ବୟସରେ ଏହାଙ୍କର ପିତୃ-ବିୟୋଗ ଘଟିବାରୁ ଏ ଜଣେ ଧନୀ ବଣିକଙ୍କ ପଣ୍ୟବାହୀ ଉଷ୍ଟ୍ରଚାଳକରୂପେ ୨୫ ବର୍ଷ ବୟସ ପର୍ଯ୍ୟନ୍ତ ବହୁ ଦୁଃଖରେ କାଳାତିପାତ କରିଥିଲେ । ତତ୍ପରେ ଖାଦିଜାନାମ୍ନୀ ଜଣେ ଧନବତୀ ବିଧବାଙ୍କ ପାଣିଗ୍ରହଣ କରିବାରୁ ସୁଖରେ ରହିଲେ । ଏହାଙ୍କର ବାଲ୍ୟକାଳରେ ବିଦ୍ୟା ଶିକ୍ଷାଲାଭ ହୋଇ ନ ଥିଲେହେଁ ଏ ସ୍ୱଭାବତଃ ଚିନ୍ତାଶୀଳ ଥିଲେ । ଆରବ ଦେଶ-ବାସୀଙ୍କର ପୌତ୍ତଳିକତା ଓ ତଜ୍ଜନିତ ମତଭେଦ ଓ ବିବାଦ ଦେଖି ଏ ବ୍ୟଥିତ ହୋଇଥିଲେ । ଗୋଟିଏ ଗିରିଗୁହାକୁ ଯାଇ ଧ୍ୟାନମଗ୍ନ ହୋଇ ତପସ୍ୟା କରିବା ସମୟରେ ଈଶ୍ୱର ଗେବ୍ରିଏଲ୍ ନାମକ ସ୍ୱର୍ଗଦୂତଦ୍ୱାରା ଏହାଙ୍କୁ ଈଶ୍ୱରଙ୍କର ଆଜ୍ଞାମାନ ( ଏକେଶ୍ୱରବାଦ ଆଦି ) ଶୁଣାଇଥିଲେ ଓ ସେହି ସେହି ଆଜ୍ଞାମାନ ମହମ୍ମଦ୍ 'କୋରାନ୍'ରୂପେ ପ୍ରଚାର କଲେ । ଏକେଶ୍ୱରବାଦ ଧର୍ମର ପ୍ରଚାର ମହମ୍ମଦଙ୍କର ୪୦ ବର୍ଷ

ବୟସରେ ଅଭିବ୍ୟକ୍ତ ହେଲା । ପ୍ରଥମେ ଏହାଙ୍କର ପତ୍ନୀ ଓ ଅତି ଦୁଇଜଣ ମାତ୍ର ବନ୍ଧୁ ଏହି ମତ ଗ୍ରହଣ କଲେ । କ୍ରମେ କ୍ରମେ ଏହାଙ୍କର ଶିଷ୍ୟସଂଖ୍ୟା ବଢ଼ିଲା । କିନ୍ତୁ ମକ୍କାବାସୀମାନେ ଏହାଙ୍କ ପ୍ରଚାରିତ ଧର୍ମର ବିରୋଧୀ ହୋଇ ଏହାଙ୍କ ଉପରେ ନାନାପ୍ରକାର ଉତ୍ପୀଡ଼ନ ଆରମ୍ଭ କଲେ । ଶେଷରେ ମହମ୍ମଦ୍ ମଦିନା ନଗରକୁ ଗଲେ ଓ ଏହାଙ୍କର କେତେକ ଶେଷ ଅନୁଚର ଅନୁଗାମୀ ହେଲେ । ମହମ୍ମଦଙ୍କୁ ଆତ୍ମରକ୍ଷା କରିବା ପାଇଁ ଅସ୍ତ୍ରଧାରଣ କରିବାକୁ ହୋଇଥିଲା । କ୍ରମଶଃ ଏହାଙ୍କ ଶିଷ୍ୟସଂଖ୍ୟା ବଢ଼ିଲା ଓ ଶିଷ୍ୟମାନେ ଆରବଦେଶ ସମସ୍ତ ଏହି ଧର୍ମ ପ୍ରଚାର କଲେ । କ୍ରମେ କ୍ରମେ ମହମ୍ମଦ୍ ସେନାନାୟକ ହୋଇ ଅନେକ ସ୍ଥାନ ଓ ନଗର ଅଧିକାର କଲେ । ଏହାଙ୍କୁ ୬୨ ବର୍ଷ ବୟସ ହୋଇଥିବା ସମୟରେ ଅର୍ଥାତ୍ ୬୩୨ ଖ୍ରୀଷ୍ଟାବ୍ଦରେ ଏହାଙ୍କର ଦେହାନ୍ତ ହୋଇଥିଲା । ଏହାଙ୍କ ପ୍ରବର୍ତ୍ତିତ ଧର୍ମ 'ଇସ୍‌ଲାମ୍' ଓ ଏହି ଧର୍ମାବଲମ୍ବୀମାନେ 'ମୁସଲମାନ୍' ନାମରେ ଖ୍ୟାତ । ମୁସଲମାନ୍ ଶବ୍ଦର ଅର୍ଥ 'ଭକ୍ତ ପୁଣ୍ୟ, ଭକ୍ତ' । ଏମାନଙ୍କ ଧର୍ମ-ଶାସ୍ତ୍ର କୋରାନ୍ । ଏ ଧର୍ମର ପ୍ରଧାନ ମତ ଏହି କି 'ଈଶ୍ୱର' ବା 'ଅଲ୍ଲା'ଙ୍କ ଛଡ଼ା ଅନ୍ୟ କେହି ଏ ଜଗତର ପ୍ରଭୁ ନୁହନ୍ତି ଓ ମହମ୍ମଦ ଈଶ୍ୱରନିଯୁକ୍ତ ପ୍ରଚାରକ । ଯେଉଁମାନେ ଏହି ଏକେଶ୍ୱର ବା ଅଲ୍ଲାଙ୍କର ଉପାସନା ନ କରନ୍ତି ସେମାନେ ବିଧର୍ମୀ ବା 'କାଫର୍' ଓ କାଫର୍‌ମାନଙ୍କ ସଙ୍ଗରେ ଧର୍ମଯୁଦ୍ଧ (ଜିହାଦ)ରେ ପ୍ରାଣନାଶ ହେଲେ ଅନନ୍ତସ୍ୱର୍ଗ ଲାଭ ହୁଏ । ମୁସଲମାନ୍‌ମାନେ ଚାରିରୁ ଅଧିକ ସ୍ତ୍ରୀ ବିବାହ କରିବେ ନାହିଁ ଓ ମଦ୍ୟ ଏବଂ ଶୂକର ମାଂସ ଖାଇବା ଏମାନଙ୍କ ପକ୍ଷରେ ନିଷିଦ୍ଧ । ମୁସଲମାନ୍‌ମାନେ ଜାତିଭେଦ ସ୍ୱୀକାର କରନ୍ତି ନାହିଁ ।

ମହମ୍ମଦ ମଦିନାକୁ ଯିବା ସମୟ (ଖ୍ରୀ. ୬୨୨)ରୁ ମୁସଲମାନମାନଙ୍କର 'ହିଜିରା' ସନ ଗଣନା ଆରମ୍ଭ ହେଲା । ମକ୍କାରୁ ମଦିନାକୁ ଯିବା ପରେ ବିଧର୍ମୀମାନେ ତାଙ୍କୁ ମଦିନାରେ ମଧ୍ୟ ଶାନ୍ତିରେ ରହାଇ ଦେଲେ ନାହିଁ । ସେଠାରେ ବିଧର୍ମୀ-ମାନଙ୍କ ସଙ୍ଗେ ଯେଉଁ ଯୁଦ୍ଧ ହୋଇଥିଲା ସେହି ଯୁଦ୍ଧରେ ଏହାଙ୍କ ଦଳ ପରାସ୍ତ ହୋଇଥିଲେ । ମହମ୍ମଦଙ୍କ ପୂର୍ବେ ମକ୍କା ନଗରରେ ଯେଉଁ ଦେଉଳରେ ପ୍ରତିମା ପୂଜା କରାଯାଉଥିଲା ମହମ୍ମଦ୍ ତାହାକୁହିଁ ଏକେଶ୍ୱର ଉପାସନାର ମନ୍ଦିରରେ ପରିଣତ କଲେ । ବର୍ତ୍ତମାନ ମକ୍କାନଗରୀର ଏହି ମନ୍ଦିର ବା 'କବା' ମୁସଲମାନ୍‌ମାନଙ୍କର ପ୍ରଧାନ ତୀର୍ଥ ଏବଂ ଏଠାକୁ ଲକ୍ଷ ଲକ୍ଷ ମୁସଲମାନ୍ ଯାତ୍ରୀ 'ହଜ୍' କରିବାକୁ (ଅର୍ଥାତ୍ ଈଶ୍ୱରଙ୍କ ନାମରେ ଉତ୍ସର୍ଗ କରି ପୂଜା କରିବାକୁ) ଯାଆନ୍ତି । ଯେଉଁମାନେ ମକ୍କାକୁ ଯାଇ 'ହଜ୍' କରନ୍ତି ସେମାନଙ୍କୁ 'ହାଜୀ' କହନ୍ତି । ମୁସଲମାନ୍ ପୂଜିତ 'ଅଲ୍ଲା'ଙ୍କର ପ୍ରାର୍ଥନା-ରୂପେ ଅଲ୍ଲୋପନିଷଦ୍ ନାମରେ ଗୋଟିଏ ସୂକ୍ତ ଅଥର୍ବ ବେଦରେ ଲେଖାଅଛି (ଅଲ୍ଲୋପନିଷଦ୍ ଦେଖ) ଓ ତହିଁରେ ମହମ୍ମଦଙ୍କ ନାମୋଲ୍ଲେଖ ଅଛି । ବର୍ତ୍ତମାନ ପୃଥିବୀର ପ୍ରାୟ ⅙ ଲୋକ ମୁସଲମାନ୍‌ଧର୍ମାବଲମ୍ବୀ ।

ମୁସଲମାନ୍‌ମାନଙ୍କର ପ୍ରଧାନ କର୍ତ୍ତବ୍ୟ କର୍ମ—୧. ପାଞ୍ଚ ଥର ଦୈନିକ ପ୍ରାର୍ଥନା ବା ନମାଜ ପାଠ, ୨. ଭିକ୍ଷା ଦେବା, ୩. ରମଜାନ୍ ମାସର ଉପବାସ ଓ ୪. ମକ୍କାକୁ ତୀର୍ଥଯାତ୍ରା । ମୁସଲମାନ୍‌ମାନେ ମହମ୍ମଦଙ୍କୁ ପୟଗମ୍ବର (ଦୂତ) ବା ହଜରତ୍ ମହମ୍ମଦ ବୋଲି କହନ୍ତି । ମୁସଲମାନ୍‌ମାନେ ସାଧାରଣତଃ ୨ ଶ୍ରେଣୀରେ ବିଭକ୍ତ ଯଥା—ଶୀଆ ଓ ସୁନ୍ନୀ ।

ବର୍ତ୍ତମାନ ମୁସଲମାନ୍ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଅହମ୍ମଦୀୟ (ଆ. ଅହମ୍ମଦୀ) ନାମକ ନୂଆ ଶାଖା ପ୍ରବର୍ତ୍ତିତ ହୋଇଛି ।

ଏହି ଅହମ୍ମଦୀୟ ଦଳର ପ୍ରତିଷ୍ଠାତା ହଜରତ୍ ମିର୍ଜା ଗୋଲାମ୍ ଅହମ୍ମଦ୍ ପଞ୍ଜାବ ପ୍ରଦେଶର ଗୁରୁଦାସପୁର ଜିଲ୍ଲା ଅନ୍ତର୍ଗତ କାଦିଆନ୍ ନାମକ ସ୍ଥାନର ଅଧିବାସୀ ଥିଲେ ଓ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଅହମ୍ମଦୀୟ ବା କାଦିଆନ୍ ମତ ପ୍ରଚାର କଲେ । ମୁସଲମାନ୍ ଧର୍ମ ମଧ୍ୟରେ ଯେଉଁ କେତେଗୁଡ଼ିଏ ମନ୍ଦ ପ୍ରଥା ଇତି ମଧ୍ୟରେ ପ୍ରବେଶ କରିଥିଲା ତାହା ହଜରତ୍ ଅହମ୍ମଦ୍ ସଂସ୍କାର କଲେ । ଏହାଙ୍କର ଉପାଧି ମେହେଦୀ ଅର୍ଥାତ୍ ମହମ୍ମଦଙ୍କର ଈଶ୍ୱରପ୍ରେରିତ ଶିଷ୍ୟ । ଏହି ମତାବଲମ୍ବୀମାନଙ୍କୁ ସାଧାରଣତଃ ଅହମ୍ମଦୀ ବୋଲାଯାଏ ଓ ଅନ୍ୟ ମତାବଲମ୍ବୀ ମୁସଲମାନ୍‌ମାନେ ଏମାନଙ୍କୁ ବ୍ୟଙ୍ଗୋକ୍ତିରେ କାଦିଆନୀ (କାଦିଆନ୍ ସ୍ଥଳରେ) ସମ୍ପ୍ରଦାୟ ବୋଲି କହନ୍ତି ।] ୨. ମୁସଲମାନମାନଙ୍କର ବଂଶୋପାଧି ବିଶେଷ—2. A family title of Mahomedans.

**ମହମ୍ମଦ୍ ଘୋ(ଗୋ)ରୀ**—ବୈଦେ. ବି (ନାମ)—ଭାରତରେ ପ୍ରଥମ Mahammad ghō(gō)ri ମୁସଲମାନ ରାଜ୍ୟର ପ୍ରତିଷ୍ଠାତା—मुहम्मद गोरी Name of the founder of the Maho-मुहम्मद घोरी medan dynasty of kings in India (12th century A.D). [ଦ୍ର-ଏ ପ୍ରଥମେ ୧୧୭୭ ଖ୍ରୀଷ୍ଟାବ୍ଦରେ ଭାରତରେ ପ୍ରବେଶ କରିଥିଲେ କିନ୍ତୁ ପରେ ଦିଲ୍ଲୀ ରାଜା ପୃଥ୍ୱୀରାଜ ଓ କନ୍ୟାକୁବ୍ଜର ରାଜା ଜୟଚନ୍ଦ୍ରଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ ଜୟଚନ୍ଦ୍ରଙ୍କ ନିମନ୍ତ୍ରଣକ୍ରମେ ଏ ଆସି ଶେଷରେ ପୃଥ୍ୱୀରାଜଙ୍କୁ ଥାନେଶ୍ୱର ଯୁଦ୍ଧରେ ପରାଜିତ ନିହତ କଲେ । ତତ୍ପରେ କାନ୍ୟକୁବ୍ଜ ଆକ୍ରମଣ କରି ଜୟଚନ୍ଦ୍ରଙ୍କୁ ନିହତ କଲେ । ମହମ୍ମଦ ଘୋରୀଙ୍କ ଦ୍ୱାରା ଖ୍ରୀ: ଶତାବ୍ଦୀରେ ଭାରତରେ ମୁସଲମାନ ରାଜ୍ୟର ହୋଇଥିଲେହେଁ ଖ୍ରୀ: ୧୧୮୮ ରେ ଏହାଙ୍କ ବଡ଼ ଭାଇ ଓ ଏ ମହମୁଦ ଗଜନୀଙ୍କ ବଂଶଧର ଗିୟସୁଦ୍ଦିନଙ୍କୁ ବିତାଡ଼ିତ କରି ଭାରତରେ ମୁସଲମାନ ରାଜ୍ୟର ସ୍ଥାୟୀ ଭିତ୍ତି ସ୍ଥାପନ କଲେ । ଏହାଙ୍କ ବଡ଼ ଭାଇ ଗିୟାସୁଦ୍ଦିନଙ୍କ ମୃତ୍ୟୁ ପରେ ଏ ଖ୍ରୀ ୧୨୦୨ ରେ ଅଫଗାନିସ୍ଥାନର ଘୋର ରାଜ୍ୟର ରାଜା ହେଲେ; କିନ୍ତୁ ଖ୍ରୀ: ୧୨୦୬ ରେ ପଞ୍ଜାବରେ ଏକ ଯୁଦ୍ଧ ଅଭିଯାନରେ ହତ ହେଲେ ।]

**ମହମ୍ମଦ୍ ତୋଗଲକ୍**—ବୈଦେ. ବି (ନାମ)—ଭାରତର ତୋଗଲକ Mahammad Togalak ବଂଶୀୟ ମୁସଲମାନ ରାଜା—

Mahomed Tughlak; a Mahomedan king of N. India of the 14th century. [ଦ୍ର—ଏ ଖିଲଜୀ ବଂଶୀୟ ରାଜାଙ୍କର ପଞ୍ଜାବ ପ୍ରଦେଶରେ ଶାସନକର୍ତ୍ତା ଓ ଟୋଗଲକ ରାଜବଂଶର ଆଦ୍ୟ ପୁରୁଷ ଗିୟାସ୍ ଉଦ୍ଦିନ୍ ଟୋଗଲକଙ୍କ ପୁତ୍ର । ଏ ଖ୍ରୀ: ୧୩୨୫ରେ ସିଂହାସନ ଆରୋହଣ କରି ଖ୍ରୀ: ୧୩୫୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏ ବିଦ୍ୱାନ୍, ନିର୍ଦ୍ଦୟ ଓ ବିକୃତମସ୍ତିଷ୍କ ଥିଲେ । ଏ ଦିଲ୍ଲୀରୁ ରାଜଧାନୀ ଉଠାଇ ନେଇ ୧୬ ମାଇଲ ଦୂରବର୍ତ୍ତୀ ଟୋଘଲକାବାଦ୍ ଓ ପରେ ୮୦୦ ମାଇଲ ଦୂରବର୍ତ୍ତୀ ଦେଓଗିରିକୁ ରାଜଧାନୀ କଲେ । ଏହାଙ୍କ ଅମଳରେ ପଠାଣ ସାମ୍ରାଜ୍ୟର ଭିନ୍ନ ଭିନ୍ନ ପ୍ରଦେଶ ବିଦ୍ରୋହୀ ହେଲେ ଓ ଏ ଖ୍ରୀ: ୧୩୫୧ରେ ସିନ୍ଧୁ ପ୍ରଦେଶରେ ଆତ୍ମହତ୍ୟା କଲେ । ଏହାଙ୍କ ଅମଳରେ ଦାକ୍ଷିଣାତ୍ୟରେ ବାହାମନୀ ରାଜ୍ୟ ସ୍ୱାଧୀନ ମୁସଲମାନ୍ ରାଜ୍ୟରୂପେ ପ୍ରତିଷ୍ଠିତ ହେଲା । ଷ୍ଟୋଥେରେ ସାହେବଙ୍କ ଇତିହାସ ।]

**ମହମ୍ମଦ୍ ବିନ୍ କାସୀମ୍**—ବୈଦେ. ବି. (ନାମ)—ଭାରତର ପ୍ରଥମ ମୁସଲମାନ ଆକ୍ରମଣକାରୀ—
Mahammad bin kāsim
Mahomed Bin Kasim, the 1st Mahomedan invader of India in the 8th century A. D. [ ଦ୍ର—ଏ ଖ୍ରୀ: ୭୧୧ ରେ ଭାରତ ଆକ୍ରମଣ କରି ସିନ୍ଧୁର ରାଜା ଦାହିରଙ୍କୁ ପରାସ୍ତ କରି ଆଲୋର ଓ ବ୍ରାହ୍ମଣାବାଦ୍ ନଗରମାନ ଲୁଣ୍ଠନ କରି ସିନ୍ଧୁ ଅଧିକାର କଲେ । ଏହାଙ୍କ ବଂଶଧରମାନେ ସୌମାର ନାମକ କ୍ଷତ୍ରିୟମାନଙ୍କ ଦ୍ୱାରା ଖ୍ରୀ ୭୫୦ ରେ ଭାରତରୁ ବିତାଡ଼ିତ ହେଲେ । ଷ୍ଟୋଥେରେ ସାହେବଙ୍କ ଇତିହାସ ।]

**ମହମ୍ମଦ୍ ମହ୍(ମୋ)ସୀନ୍**—ବୈଦେ. ବି. (ନାମ) (ଫା ମୁହମ୍ମଦ ମହସୀନ୍)—ବଙ୍ଗଦେଶର ହୁଗୁଳି ନିବାସୀ ଧର୍ମପରାୟଣ ଓ ଦାନଶୀଳ ମୁସଲମାନ୍—A pious and bounteous Mahomeddan of Hugly in Bengal. [ ଦ୍ର—ଏହାଙ୍କର ଜନ୍ମ ୧୭୩୨ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ଏ ପ୍ରାୟ ୯ ଲକ୍ଷ ଟଙ୍କା ଦାନ କରି ସରକାରଙ୍କ ଜିମାରେ ଗୋଟିଏ ମୂଳପାଣ୍ଠି ସୃଷ୍ଟି କରି ଯାଇଅଛନ୍ତି । ଏହି ପାଣ୍ଠିର ସୁଧରୁ ଶତ ଶତ ଗରିବ ମୁସଲମାନ ଛାତ୍ରଙ୍କୁ ବିଦ୍ୟାଦାନ କରାଯାଉଅଛି ।]
Mahammad mah-(mo)sin
মহম্মদ মোসীন
**मुहम्मद महसीन**

**ମହମ୍ମଦୀୟ**—ଦେ. ବିଣ (ଫା. ମହମ୍ମଦ+ସଂ. ପ୍ରତ୍ୟୟ ଈୟ)—ମହମ୍ମଦଙ୍କ ସମ୍ବନ୍ଧୀୟ; ମୁସଲମାନ ଧର୍ମ ସମ୍ବନ୍ଧୀୟ—Mahomedan.
Mahammadiya
মহম্মদীয় **मुहम्मदी**

**ମହମ୍ମଦୀୟ ଧର୍ମ ଶାସ୍ତ୍ର**—ଦେ. ବି—ମୁସଲମାନମାନଙ୍କର ଧର୍ମଶାସ୍ତ୍ର; କୋରାନ୍; ମହମ୍ମଦଙ୍କ ମୁଖନିଃସୃତ ବାକ୍ୟସମ୍ବଳିତ ଗ୍ରନ୍ଥ—The Koran (Mahomedan Scripture).
Mahammadiya dharma śāstr
মহম্মদীয় ধর্ম শাস্ত্র **मुहम्मदी धर्म शास्त्र**

**ମହମାନ**—ଦେ. ବି—ବାଲେଶ୍ୱରର ଗୋଟିଏ ପର୍ବତର ନାମ—A large hill in Balasore.
Mahamāna

**ମହର୍**—ସଂ. ବି ( ମହ୍ ଧାତୁ+ପୂଜା କରିବା=କର୍ମ. ଅର୍ )—୧ । ମହର୍ଲୋକ ( ଦେଖ )—1. Maharloka ( See ) ୨ । ( +କରଣ. ଅର୍ ) ବ୍ୟାହୃତିବିଶେଷ—2. A kind of Byāhṛuti ( Apte ). ବୈଦେ. ବି ( ଫା. ମହର୍ )—ଦେନ୍ ମେହେର୍ ( ଦେଖ )—Den meher ( See )
Mahar
দেনমেহের **मह्‌र**

**ମହର**—ସଂ. ବି ( ମହ୍ ଧାତୁ+କର୍ମ. ଅର )—ମହର୍ଲୋକ ( ଦେଖ ) Maharloka ( See ) ଗ୍ରାଦେ. ( ଗଡ଼ଜାତ ) ବି—ଶଗଡ଼ର ଅକ୍ଷର ଆଗପାଖ ଦଣ୍ଡାରେ ପଛପାଖ ଅପେକ୍ଷା ବେଶି ବୋଝ ଲଦା ହେବା ଅବସ୍ଥା, ଦବକ—The state of a cart when the front part is loaded more heavily than the back part, and so there is no equilibrium.
Mahara

**ମହରଗ**—ଦେ. ବିଣ ( ସଂ. ମହାର୍ଘ )—୧ । ମହଙ୍ଗା; ଦୁର୍ମୂଲ୍ୟ—1 Dear in price. ୨ । ଯେଉଁ ସମୟରେ ଖାଦ୍ୟ ଦ୍ରବ୍ୟାଦି ଦୁର୍ମୂଲ୍ୟ ହୁଏ—2. (a time) Of high prices. ଦେ. ବି—୧ । ପଣ୍ୟଦ୍ରବ୍ୟର (ମହର୍ଗ—ଅନ୍ୟରୂପ) ଦୁର୍ମୂଲ୍ୟତା—1. Dearness of price; a rise in price of commodities. ୨ । ଦୁର୍ଭିକ୍ଷ; ଯେଉଁ ସମୟରେ ଖାଦ୍ୟ ଦ୍ରବ୍ୟାଦି ମହାର୍ଘ ହୁଏ—2. A time of high prices; famine; scarcity.
Maharaga
মাগ্‌গী, মাগ্‌ঘী, মাঙ্গা **महंगा**

**ମହରଗ କାଳ**—ଦେ. ବି—ଯେଉଁ ସମୟରେ ପଣ୍ୟ ଦ୍ରବ୍ୟାଦି ମହାର୍ଘ୍ୟ ହୁଏ—A time of high prices.
Maharaga kāḻa
মাগ্‌গী, আকাল **अकाल, महंगा काल, महंगी**

**ମହରଗ ପକା(କେ)ଇବା**—ଦେ. କ୍ରି—ଦେଶରେ ଦ୍ରବ୍ୟାଦିର ଦୁର୍ମୂଲ୍ୟତା ଜାତ କରାଇବା—To bring about a rise in the prices of articles in a country. [ ଯଥା—ପୂର୍ବରେ ଅଗେ ବିଶ୍ୱମାନଙ୍କ ଠଙ୍କ ପଇସାକୁ ପୁଞ୍ଜାଏ ଲେଖାଏଁ ମିଳୁଥିଲା, ଏବେ ବିଦେଶୀ ପଣ ପଣ ହୋଇ ଆସି ମହରଗ ପକାଇ ଦେଲେଣି । ]
Maharaga pakā(ke)ibā
দাম চড়ান
**महंगा बनाना**

**ମହରଗ ପଡ଼ିବା**—ଦେ. ବି—ଦେଶରେ ମହାର୍ଘକାଳ ଉପସ୍ଥିତ ହେବା—A state of the rise of the price of staple food in a country; being affected by scarcity.
Maharaga paṛḍibā
আকাল পড়া
**अकाल पडना**

**ମହରଗିଆ**—ଦେ. ବିଣ—୧ । ଯେଉଁ ଦୋକାନୀ ବା ପଣ୍ୟବିକ୍ରେତା ପଣ୍ୟଦ୍ରବ୍ୟମାନଙ୍କ ପାଇଁ ବାଣିଜ୍ୟର ଅପେକ୍ଷା ବେଶୀ ଦର ନିଏ—1. (a trader or shop-keeper) Who charges higher price than the market rate; high-charging. ୨ । ଦୁର୍ଭିକ୍ଷପୀଡ଼ିତ—2 Famine-stricken.
Maharagiā
যে চড়া দামে বেচে থাকে
**महरगिआ, महंगिया**
ମହରଗୀ, ମହରଗିଆଣୀ, ମହରଗେଇ } ସ୍ତ୍ରୀ

**ମହରଡ଼ା**—ଦେ. ବି—୧ । ଏକପ୍ରକାର ବଡ଼ ଶିମ୍ବଜାତୀୟ ଲତାଫଳ—1. A kind of big bean; the sword-
Mahararḍā

माखन शिम, बाङ्गामाखन bean; Canavalia Ensifermis: **कबङ्कुआ सीम, सेमा** the large cutlass kidney bean. [ ଦ୍ର—ଏହାର ଫଳ ଲମ୍ବରେ ଖଣ୍ଡେ ଓ ଚଉଡ଼ାରେ ୩ ଅଙ୍ଗୁଳ ପର୍ଯ୍ୟନ୍ତ ହୁଏ ଓ ଛଡ଼ବାର ପର ଅକୃତବିଶିଷ୍ଟ । ଏହାର ମଞ୍ଜି ନାଲି, ଚେପଟା ଓ ବଡ଼ ବଡ଼ । ଏହାକୁ ତରକାରି କରି ଖାଆନ୍ତି । ଏ କୁଳର ଅବଳଣକୁ ଖାଇଲେ କাংশিম, কালাশিম ଲକ୍ଷ୍ମୀ ପର ହୁଏ । ] ୨ । ବାହାଡ଼ା ଶିମ୍—2 Canavalia Virosa. [ ଦ୍ର—ଏହାର ମଞ୍ଜି ବିଷାକ୍ତ । ]

ମହରତ—ଦେ. ବି—ଦୋକାନର ବନ୍ଧା ଗ୍ରାହକମାନେ ନବବର୍ଷାରମ୍ଭ Maharata ଦିନ ଦୋକାନକୁ ଆସି ବର୍ଷର ପ୍ରଥମ କାରବାର ଅନୁକୂଳ କରିବା; ବହୁନି—The first transaction of a regular constituent with a trader on the new year's day.

ମହରମ—ବୈଦେ. ବି. ( ଆ. ମହରମ୍, ମୁହରମ )—୧ । ମୁସଲମାନଙ୍କର Maharama ଖେଦପ୍ରକାଶକ ପ୍ରଧାନ ଯାତ୍ରା—1. The chief মহৰম festival of the Mahomedans; the **महरम, मुहर्रम** Mohorrum. ୨ । ମୁସଲମାନୀ ଚାନ୍ଦ୍ର ମାସ; ମୁସଲମାନ୍‌ମାନଙ୍କର ହିଜରୀ ବର୍ଷର ପ୍ରଥମ ମାସ—2. The 1st month of the Mahomedan year [ଦ୍ର—ମୁସଲମାନ୍‌ମାନେ ମହରମ୍ ମାସର ୨ୟ ଦିବସଠାରୁ ୧୦ମ ଦିନ ପର୍ଯ୍ୟନ୍ତ ୯ ଦିନ ପାଳିବା ଯାତ୍ରାର ନାମ ମହରମ୍ । ଏହା କୋରାନରେ ନାହିଁ । ମହମ୍ମଦଙ୍କ ମୃତ୍ୟୁର ୩୦ ବର୍ଷ ପରେ ତାଙ୍କ କନ୍ୟା ଫାତମା ଜୋହୋରାଙ୍କ ବଡ଼ ପୁଅ ଇମାମ୍ ହସନ୍ ଖଲିଫା (ଧର୍ମଗୁରୁ) ପଦରେ ବସିବାର ଛଅ ମାସ ପରେ ଦାମିସ୍କର ଶାସନକର୍ତ୍ତା 'ମାଉଆ' ଖଲିଫା ହେବାକୁ ଚାହିଁବାରୁ ବୃଥା ରକ୍ତପାତର ଆଶଙ୍କା ଦୂର କରିବା ପାଇଁ ହସନ୍ ତାଙ୍କୁ ଉକ୍ତ ଅଧିକାର ବା 'ଖିଲାଫତ୍' ଛାଡ଼ି ଦେଲେ । ତଥାପି ମାଉଆଙ୍କ ପୁଅ ଦୁଷ୍ଟ ଏଜିଦ୍ ହସନଙ୍କୁ ବିଷ ଖୁଆଇ ମାରିଦେଲା । ଏଥିରେ ମଧ୍ୟ ସନ୍ତୁଷ୍ଟ ନ ହୋଇ ମାଉଆର ସାନ ପୁଅ ହସନଙ୍କ ଭାଇ ହୋସେନଙ୍କୁ ଓ ତାଙ୍କର ୭୨ ଜଣ ସଙ୍ଗୀଙ୍କୁ ବିଶ୍ୱାସରେ 'କୁଫା' ନାମକ ସ୍ଥାନକୁ ଡକାଇ ନେଇ ସେଠାରେ ତାଙ୍କୁ ଜଳାହାର ବନ୍ଦ କରି ନିଷ୍ଠୁରଭାବରେ 'କତଲ୍' ( ହତ୍ୟା ) କଲା । ଏହି ଦୁର୍ଘଟଣା ମହରମ୍ ମାସରେ ହୋଇଥିବାରୁ ମୁସଲମାନ୍‌ମାନେ ଏହାର ସ୍ମରଣାର୍ଥ ମହରମ୍ ପାଳନ୍ତି । ଏ ସମୟରେ ପ୍ରତ୍ୟେକ ମୁସଲମାନ ଶୋକ, ଦାନ ଓ ଗରିବ ଲୋକଙ୍କୁ ପାନ ଭୋଜନ ଦେବା ବିଧାନ ପାଳନ୍ତି । ମୁସଲମାନ୍‌ମାନେ ବାହାର କରିବା ତାଜିଆ ଓ ତରବାରୀ ଖେଳ ତାମସା ଧର୍ମବିରୁଦ୍ଧ । କିନ୍ତୁ କାଳକ୍ରମେ ଏ ଖେଦ-ପ୍ରକାଶକ ଯାତ୍ରା ଉତ୍ସବ ଓ ରଙ୍ଗରେ ପରିଣତ ହୋଇଅଛି । କଥିତ ଅଛି ଯେ ତୈମୁରଲଙ୍ଗ୍ ଭାରତବର୍ଷରେ ତାଙ୍କ ସୈନ୍ୟଙ୍କ ପାଳିତ ( ଖ୍ରୀ. ୧୩୯୮ ) ମହରମ୍ ଉପଲକ୍ଷରେ ତାଜିଆ ନିର୍ମାଣ କରି ତାଜିଆ ସହିତ ଶୋଭାଯାତ୍ରା କରିବା ପ୍ରଥମ ଆରମ୍ଭ କରିଥିଲେ ଓ ସେହି ସମୟରୁ ଏହା କ୍ରମଶଃ ସମସ୍ତ ଭାରତର ମୁସଲମାନଙ୍କ ମଧ୍ୟରେ ଚଳି ଆସୁଅଛି । ସେହି ଯୁଦ୍ଧର ସ୍ମରଣାର୍ଥ ମହରମ୍ ପାଳିତ ହୁଏ ତାହା ମୁସଲମାନୀ ମହରମ୍ ମାସର ୨ୟ ଦିନ ଆରମ୍ଭ ହୋଇ ୧୦ମ ଦିନ ଶେଷ ହେଲା ଓ ହୋସେନ୍ ୧୦ମ ଦିନ ଆରବର କରବଲା ନାମକ ରଣକ୍ଷେତ୍ରରେ ନିହତ ହେଲେ । ମହରମରେ ଶୋକ-ପ୍ରକାଶର ଚିହ୍ନରୂପେ ମୁସଲମାନମାନେ ସାବଲା ରଙ୍ଗର ପୋଷାକ ପିନ୍ଧନ୍ତି । ଶୋଭାଯାତ୍ରା ସହ ସେମାନେ ଯେଉଁ 'ତାଜିଆ' ବାହାର କରନ୍ତି ତାହା ହୋସେନଙ୍କ କଫନ୍ ବା ଶବରଥର ପ୍ରତିକୃତି ଅଟେ ।

ମୁସଲମାନ୍‌ମାନେ ଏହି ରଣଯାତ୍ରାର ସ୍ମରଣ ଚିହ୍ନସ୍ୱରୂପ ହୋସେନଙ୍କ ହାତୁଲିର ପ୍ରତିରୂପ ପିତଳର 'ପାଞ୍ଜା' ବା କରତଳ ପରି ଗୋଟିଏ ରୂପକୁ କାଗଜ ଓ ଜରିରେ ନିର୍ମିତ ବିମାନରେ ରଖି ତହିଁ ସଙ୍ଗେ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ଯୁଦ୍ଧଯାତ୍ରା କରନ୍ତି । ମହରମ୍ ମାସର—

୭ମ ଦିନ—ଆଉଲିଆ ମାହାତମ୍—ପାଞ୍ଜାକୁ ତାଜିଆରେ ସ୍ଥାପନ କରି ଫାତିଆ (ପୂଜା) କରନ୍ତି ।

୭ମ ଦିନ—ଦୋପହରିଆ ମାତାତମ—ଫାତମାଙ୍କ ପୁତ୍ର-ଶୋକ ସମାପ୍ତିର ସ୍ମାରକ ସ୍ୱରୂପ ଦିନ ଦ୍ୱିପ୍ରହର ବେଳେ-ଫାତିଆ କରନ୍ତି ।

୮ମ ଦିନ—ଗୁମ୍‌ସୁମ୍ ବା ବିଶ୍ରାମ—ଏ ଦିନ ଶତ୍ରୁ ଭୟରେ ଜଙ୍ଗଲ ମଧ୍ୟରେ ଗୋଟିଏ କୂଅ ଭିତରେ ହୋସେନ୍ ପଶି ରହିଥିବାରୁ ସେ ଦିନ କିଛି ଯାତ୍ରା କରାଯାଏ ନାହିଁ ।

୯ମ ଦିନ—କତଲ୍—ଏ ଦିନ ମୁସଲମାନଙ୍କ ବିଭିନ୍ନ ଦଳମାନ ରାତିରୁ ତାଜିଆ ବାହାର କରି ନିଜ ନିଜ ଆଖଡ଼ାରେ ଅସ୍ତ୍ର ଶସ୍ତ୍ରଖେଳ ନ କରନ୍ତି । ଏହି ଦିନ ଯୁଦ୍ଧରେ ହୋସେନ୍ ଓ ତାଙ୍କ ପକ୍ଷମାନେ ନିହତ ହୋଇଥିଲେ ।

୧୦ମ ଦିନ—ଅଲ୍‌ବିଦା—ଏ ଦିନ ସକାଳେ ତାଜିଆକୁ ନେଇ ନଗର ଯାତ୍ରା କରି ଫେରି ବିଶ୍ରାମ କରନ୍ତି ଓ ପୁଣି ରାତିରୁ ତାଜିଆକୁ ନେଇ ନଦୀଆଡ଼େ ( କରବଲା ନାମକ ଯୁଦ୍ଧକ୍ଷେତ୍ର କଳ୍ପନା କରି ତହିଁରେ ) ତାଜିଆକୁ ବିସର୍ଜନ କରନ୍ତି । ]

ମହର(ରୁ)ଷି—ଗ୍ରା. ବି ( ପଦ୍ୟ )—ମହର୍ଷି ( ଦେଖ )—Maharshi. Mahara(ru)shi (See). [ଉ—ନାରଦ ମହରଷି ଆଦରକୁ ପାଇ, କହିଲେ କଥା ଯୁଧିଷ୍ଠିରଙ୍କ ଅନାଇ । କୃଷ୍ଣସିଂହ **महर्षि** মহাঋষি ମହାଭାରତ. ବନ । ]

ମହରି—ପ୍ରାଦେ (ସମ୍ବଲପୁର) ବି (ସଂ. ମଟରୀ)—ପେଏଁ କାଳ, ମହୁରୀ—Mahari A small clarion. মহুৰি, সানাই **पिपही; सहनाई**

ମହରେଲ୍—ପ୍ରାଦେ (ସମ୍ବଲପୁର) ବି (ସଂ. ମଧୁଶଳକା; ସଂ. ମୁରଲ)—Maharel ମହୁରିଆ ମାଛ—Aspidoparia Marar (a small kind of fish).

**ମହର୍ଗ** (ଇତ୍ୟାଦି)—ଦେ. ବି—ମହରଗ ଇତ୍ୟାଦି ( ଦେଖ )
Maharga (etc) Maharaga etc ( See )

**ମହର୍ଲୋକ**—ସଂ. ବି (ମହଃ+ଲୋକ)—ସପ୍ତଲୋକ ବା ସପ୍ତସ୍ୱର୍ଗମଧ୍ୟରୁ ୪ର୍ଥ ଲୋକ—The 4th of the 7 heavens of the Hindus ( calculated from the earth ).
Maharloka

**ମହର୍ଷଭି**—ସଂ. ବି (ମହା+ଋଷଭ+ଈ)—ବାଇଡଙ୍କ ( ହି. ଶ )—Cowhage.
Maharshabhī

**ମହର୍ଷି**—ସଂ. ବି ( ମହାନ୍+ଋଷି; କର୍ମଧା; ମହତ୍ ଶବ୍ଦରୁ ମହା+ଋଷି )—୧ । ଶାସ୍ତ୍ରକଥିତ ସାତ ପ୍ରକାର ଋଷି ( ଦେବର୍ଷି, ମହର୍ଷ, ବ୍ରହ୍ମର୍ଷ, ଶ୍ରୁତର୍ଷି, ରାଜର୍ଷି, କାଣ୍ଡର୍ଷି, ପରମର୍ଷି )ଙ୍କ ମଧ୍ୟରୁ ଏକତମ—1. One of the 7 classes of saints mentioned in the Sāstras. ୨ । ଶ୍ରେଷ୍ଠ ଋଷି; ପ୍ରଧାନ ମୁନି—2. An eminent sage. ୩ । ପ୍ରଜାପତି; ବ୍ରହ୍ମାଙ୍କଠାରୁ ଜାତ ୧୦ ପ୍ରଜାପତି ( ମନୁ. ୧।୩୪ )—3 The ten patriarchs of mankind procreated by Brahmā. ( ଉ—ଏମାନଙ୍କ ନାମ ଭୃଗୁ, ମରୀଚି, ଅତ୍ରି, ଅଙ୍ଗିରାଃ, ପୁଲହ, କ୍ରତୁ, ମନୁ, ଦକ୍ଷ, ବଶିଷ୍ଠ, ପୁଲସ୍ତ୍ୟ । ) ୪ । ମରୀଚି ଅଙ୍ଗିରା ପ୍ରଭୃତି ବ୍ରହ୍ମାଙ୍କର ୭ ଜଣ ମାନସପୁତ୍ର ( ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ )—4. The seven primordial sages born of Brahmā's mind. ୫ । ଭୈରବ ରାଗର ପୁତ୍ର, ରାଗବିଶେଷ ( ହି. ଶ )—5. Name of a secondary musical air.
Maharshi

**ମହର୍ଷି ଦେବେନ୍ଦ୍ରନାଥ ଠାକୁର**—ଦେ. ବି ( ନାମ )—ବଙ୍ଗର ଠାକୁର ଜମିଦାର ବଂଶର ଜଣେ ମହାପଣ୍ଡିତ, ସାଧକ ଓ ପ୍ରଧାନ ଧାର୍ମିକ ବ୍ୟକ୍ତି—Name of a saintly personage and a member of the Tagore zamindar family of Bengal. [ ଦ୍ର—ଜନ୍ମ ୧୮୧୭ ଓ ମୃତ୍ୟୁ ୧୯୦୫ ଖ୍ରୀଷ୍ଟାବ୍ଦ । ଏ ଦ୍ୱାରକାନାଥ ଠାକୁରଙ୍କ ଜ୍ୟେଷ୍ଠପୁତ୍ର । ଏ ଏକେଶ୍ୱରବାଦୀ ଥିଲେ ଓ ପ୍ରତିମାପୂଜାର ବିରୋଧୀ ଥିଲେ ଏବଂ ଏକେଶ୍ୱର ବ୍ରହ୍ମ ପ୍ରତିପାଦକ ତତ୍ତ୍ୱ ପ୍ରବର୍ତ୍ତନାର୍ଥ ତତ୍ତ୍ୱବୋଧିନୀ ନାମରେ ଏକ ମାସିକ ପତ୍ରିକା ଚଳାଉଥିଲେ । ଏ କବିବର ରବୀନ୍ଦ୍ରନାଥଙ୍କର ପିତା । ଏ ୧୮୪୩ ସାଲରେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ ଓ ଆଦି ବ୍ରାହ୍ମସମାଜର ନେତୃସ୍ଥାନୀୟ ଥିଲେ । ]
Maharshi debendranātha ṭhākura

**ମହଲ୍**—ବୈଦେ. ପ୍ରାଦେ ( ସମ୍ବଲପୁର ) ବି ( ତୁଳ. ହି. ମହଲ୍, ଆ. ମହଲ୍ )—୧ । ପକ୍କାଘର; କୋଠା—1. Building. ୨ । ରାଜଯୋଗ୍ୟ ପ୍ରାସାଦ—2. Palatial building; mansion.
Mahal
(ମହଲ୍ଘର—ଅନ୍ୟରୂପ)

**ମହଲ**—ଗ୍ରା. ବିଣ (ସଂ. ମଳିନ)—ମଳିନ; ମଳଯୁକ୍ତ—Dirty; soiled. ବି ( ସଂ. ମଳ )—ମଳ; ମଳି—Dirt. ମଳିଆ ଲୁଗା—Dirty cloth. [ ଉ—ଖାଇବ ସହଲ, ପିନ୍ଧିବ ମହଲ, ଦାଣ୍ଡପର ଖଣ୍ଡି ଅଳୁଆ କର, ଅଧେ ଆପଣା ଅଧେ ପର, ତେବେ ଯାଇଁ ଏ ସଂସାରରେ କରିବ ଘର—ଢଗ । ]
Mahala
मैला
मयला

**ମହଲ**—ବୈଦେ. ବି (ଆ)—୧ । ଆଲୟ; ଆଗାର; ବାସସ୍ଥାନ; ପୁର—1. House; residence. ୨ । ପ୍ରକୋଷ୍ଠ; କୋଠରୀ; କାମରା—2. Room; compartments hall. ୩ । ଗୃହ ବା ବାସସ୍ଥାନର ଅଂଶ—3. A part or division of a house; apartment. ୪ । ପ୍ରାସାଦ; ରାଜୋଚିତ ଅଟ୍ଟାଳିକା—4. Palatial building; mansion. ୫ । ରାଜବାଟୀ—5. Royal palace. ୬ । ଅନ୍ତଃପୁର—6. The zenana of a palace.
Mahala
মহল
महल

ଦେ. ବି—୧ । ବନ୍ୟବୃକ୍ଷ ବିଶେଷ—1. A wild tree. ୨ । ଗୋଷ୍ଠୀ; ମେଳ; ସମାଜ—2. Society. ( ଉ—ସାଙ୍ଗ ମହଲରେ କଥଭୁଣ୍ଡୀ କଥା ରାଷ୍ଟ୍ର ହେଲା । କୁନ୍ତଳାକୁମାରୀ. କଥଭୁଣ୍ଡୀ । )
(ମହ.ଲ—ଅନ୍ୟରୂପ)
মহল
महल

**ମହଲଣ(ନ)**—ଗ୍ରା. ବିଣ (ସଂ. ମଳିନ )—୧ । ମଳିନ—1. Pale. ୨ । ମଉଳି ଯାଇଥିବା (ବୃକ୍ଷ)—2. Withered (plant).
Mahaḷaṇa(na)
মলিন मलिन

**ମହଲଣ(ନ) ପଡ଼ିବା**—ଦେ. କ୍ରି—୧ । ମଉଳିଯିବା; ମଳିନ ହେବା—1. To become pale; to wane. ୨ । ଝାଉଁଳିବା—2. To wither.
Mahaḷaṇa(na) paṛibā
মলিন হওয়া
मलिन होना (ମହଲିବା—ଅନ୍ୟରୂପ)

**ମହଲତ୍**—ବୈଦେ. ବି ( ଆ. ମୁ[ମୋ]ହଲତ୍ ) ( କଚେରୀ )—୧ । ମକଦ୍ଦମାରେ ପକ୍ଷମାନଙ୍କୁ ହାକିମଙ୍କଦ୍ୱାରା ଦିଆଯିବା ଅବକାଶ ବା ସମୟ—1. Time allowed to parties in a case. ୨ । ମକଦ୍ଦମାର ଶୁଣାଣିର ଅନ୍ୟ ତାରିଖକୁ ଘୁଞ୍ଚିଯିବା—2. Adjournment of the hearing of a case. ( ଉ—କି ଦେବେ ମାଗିଲେ ମହଲତ ମାସେ । ରାଧାନାଥ. ଦରବାର । )
Mahalat
মহলত
मु(मो)हलत

**ମହଲତ୍ କରା(ରେ)ଇବା**—ଦେ. କ୍ରି—କଚେରୀ; ଆ. ମୁହଲତ)—ମକଦ୍ଦମାର ଶୁଣାଣି ତାରିଖ ଘୁଞ୍ଚିବାର ହୁକୁମ ମିଳିବାର ବନ୍ଦୋବସ୍ତ ବା ତଦ୍ବିର କରିବା—To arrange for time being granted for the hearing of a case; to take steps for the adjournment of a case.
Mahalat karā(re)ibā
মহলত করান
मुहलत करना

**ମହଲତ କରିବା**—ଦେ. କ୍ରି—(ଆ. ମୁହଲତ୍) (କଚେରୀ)—୧ । ମହଲତ କରାଇବା (ଦେଖ)—1. Mahalata karāibā (See) ୨ । (ହାକିମ କର୍ତ୍ତୃକ) ମକଦ୍ଦମାର ପକ୍ଷଙ୍କୁ ସମୟ ଦେଇ ମକଦ୍ଦମାର ଅନ୍ୟ ତାରିଖ କରିବା—2. (the court) To fix another date for a case.
Mahalata karibā
মহলত করা মहलत करना

**ମହଲତ ଗୁହିଁ(ହି)ବା**—ଦେ. କ୍ରି. (କଚେରୀ) (ଆ. ମୁହଲତ)—ମହଲତ ପାଇଁ ହାକିମଙ୍କ ନିକଟ ପ୍ରାର୍ଥନା
Mahalata chāhĩ(hi)bā

महलत चाओ्या करवा— To ask of the court for time.
**मुहलत मांगना** (ମହଲତ ମାଗିବା—ଅନ୍ୟରୂପ)

**ମହଲତ ଦରଖାସ୍ତ(ସ)**—ବୈଦେ. ବ (ଅ. ମୁହଲତ; କଚେରୀ)— Mahalata darakhāsta (sa) ସମୟ ନେବା ପାଇଁ ହାକିମଙ୍କ মহলত দরখাস্ত ନିକଟରେ ପକ୍ଷଙ୍କର ଆବେଦନପତ୍ର—A petition for time filed by a party to a case; a petition for adjournment.
**मुहलत दरख्वास्त**

**ମହଲତ ଦେବା**—ଦେ. କ୍ରି—(ଅ. ମୁହଲତ) (କଚେରୀ)—(ହାକିମ) Mahalata debā ମକଦ୍ଦମାର ଶୁଣାଣି ପାଇଁ ପକ୍ଷଙ୍କୁ ପ୍ରାର୍ଥିତ ସମୟ মহলত দেওয়া ଦେବା—(a court) To grant or allow time to parties in a case; to grant an adjournment.
**मुहलत देना**

**ମହଲତ ନେବା**—ଦେ. କ୍ରି (ଅ. ମୁହଲତ; କଚେରୀ)—(ମକଦ୍ଦମାର Mahalata nebā ପକ୍ଷ ) ହାକିମଙ୍କଠାରୁ ନିର୍ଦ୍ଦିଷ୍ଟ କାଳ মহলত লওয়া ପାଇଁ ସମୟ ନେବା—(a party in a case) To take time from the court.
**मुहलत लेना**

**ମହ(ହା)ଲଦାର**—ବୈଦେ. ବ (ଅ. ମାହାଲଦାର)—ଜମିଦାର— Maha(hā)ladār **माहालदार** A zamindar.

**ମହଲ ମେଲେଛ(ଚ୍ଛ)**—ଦେ. ବଣ. ପୁଂ ( ସ. ମଳିନ ଓ ମ୍ଲେଚ୍ଛ )— Mahala melechha(chhā) ଅତି ଅପରିଷ୍କୃତ ଶରୀର ଓ ময়লা মেলেছ ବସ୍ତ୍ରଧାରୀ (ବ୍ୟକ୍ତି)—(a person) With dirty body and clothes.
**मैला मलेछ**
(ମହଲ ମେଲେଚ୍ଛିଆ—ଅନ୍ୟରୂପ) [ ମହଲ ମେଲେଛୀ, (ମହଲ ମେଲେଚ୍ଛେଣୀ, ମଇଳ ମେଲେଚ୍ଛିଆଣୀ, ମହଲ ମେଲେଚ୍ଛ—ସ୍ତ୍ରୀ)

**ମହଲ(ଲ୍ଲା)**—ବୈଦେ. ବ (ଅ. ମହଲ)—୧ । ଉଚ୍ଚକଣିଷ୍ଠ କୋଠା— Mahalā(llā) 1. A storeyed building. ୨ । କୋଠାର ତାଲା,মহল্লা ତଳ ବା ସ୍ତର; ମାହାଲ—2. Storey of a **महल्ला(ल), मंजील** building. ଦେ. ବଣ (ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୁକ୍ତ ଯଥା—ଏକ ମହଲା କୋଠା, ଦୋମହଲା କୋଠା ଇତ୍ୟାଦି) (ଏତେ) ତଳଯୁକ୍ତ—Having (so many) storeys; storied. ବୈଦେ. ବ— মহল্লা (ଫା. ମହଲ୍ଲା; ମୁହଲ୍ଲା)—୧ । ନଗରର ଭିନ୍ନ ଭିନ୍ନ ଅଂଶ
**महल्ला** ବା ବସ୍ତି ବା ପଲ୍ଲୀ—1. Different parts or quarters of a town. [ ଦ୍ର—କଟକର ଭିନ୍ନ ଭିନ୍ନ ମହଲାକୁ ଗଳି, ସମ୍ବଲପୁରରେ ପଡ଼ା, ପୁରୀରେ ସାହି ଓ ବାଲେଶ୍ୱରରେ ଗଞ୍ଜ କହନ୍ତି । ] ୨ । ମୁସଲମାନ ଗ୍ରାମର ଅଂଶ ବା ପଡ଼ା—2. A particular part of a মাল্লা Mahomedan village. ୩ । (ଫା. ମଲ୍ଲାହ୍) ମଲ୍ଲା;
**मल्लाह** ମଲ୍ଲି; ଏକ ପ୍ରକାର ନୌକାବାହୀ ଜାତି— 3. Title of a class of boatmen.

**ମହଲ(ଲ୍ଲା)ଦାର**—ବୈଦେ. ବ (ଫା)—ସହରର କୌଣସି ମହଲାର Mahalā(llā)dār ବା ବଜାରର ଉଚ୍ଚମୁଖ୍ୟ—The head- মহল্লাদার man of a particular quarter of a town.
**महल्लादार**

**ମହଲିଆ**—ଦେ. ବଣ (ସ. ମଳିନ)—୧ । ମଳଯୁକ୍ତ, ମଳିଆ, ମଅଳିଆ; Mahaliā ମଳିଆ—1. Dirty; filthy.
ময়লা **मैला** ୨ । ବିବର୍ଣ୍ଣ—2. Pale.

**ମହସିଲଦାର**—ବୈଦେ (ଫା)—୧ । (କଚେରୀ) (ଫା. ମୁହସ୍ସିଲ୍)— Mahasil-dār ଅର୍ଥଦଣ୍ଡରେ ଦଣ୍ଡିତ ବ୍ୟକ୍ତିଠାରୁ ଜୋରିମାନା **मुहसिल** ଅଦାୟ କରିବାପାଇଁ ଭାରପ୍ରାପ୍ତ କର୍ମଚାରୀ—1 An officer deputed to realise fines imposed by a public officer. ୨ । ତହସିଲଦାର— 2. Rent-collecting officer.

**ମହ(ହୁ)ଶୁ(ଶ)ମ୍[ନ୍]**—ବୈଦେ. ବ (ଇଂ. ମୋସନ୍) (କଚେରୀ)— Maha(hu)śu(śa)m(n) ୧ । ମଉଷନ୍; ହାଇକୋର୍ଟ ଅଦାଲତରେ মোসন ନିମ୍ନ ଅଦାଲତଙ୍କ ଆଦେଶ ବିରୁଦ୍ଧରେ ଆଇନ୍ ସମ୍ବନ୍ଧ
**मोशन** ସମ୍ବନ୍ଧରେ ଦାଏର୍ କରାଯିବା ଅପିଲ୍—1. Motion filed for revision of a lower court's judgment by the High Court; an appeal on a point of law. ୨ । ମଉସୁମ୍ (ଦେଖ)—2. Mausum (See).

**ମହ[ହୁ]ଶୁ(ଶି)ମି**—ବୈଦେ. ବ ଓ ବଣ (ଅ. ମୌସିମ୍=ଋତୁ, ମୌସିମୀ Maha(hu)śu(śi)mi =ଋତୁକାଳୀନ)—ମଉସୁମି (ଦେଖ)— মরসুমী **मौसमी,मौसु(सि)मी** Mausumi (See).

**ମହସ୍**—ସ. ବ (ମହ୍ ଧାତୁ+ଅସ୍)—୧ । (+କର୍ମ. ଅସ୍) ତେଜଃ— Mahas 1. Brilliance. ୨ । (+ଅଧିକରଣ, ଅସ୍) ଉତ୍ସବ— 2. Festival. ୩ । (+କରଣ, ଅସ୍) ଯଜ୍ଞ— 3. A vedic sacrifice.

**ମହସ**—ସ ବ (ମହ୍ ଧାତୁ+କରଣ ଅସ)—୧ । ଜ୍ଞାନ—1. Know- Mahasa ledge. ୨ । ପ୍ରକାର—2. Kind. ୩ । ପ୍ରଭେଦ— 3. Difference.

**ମହ(ହୁ)ସୁପ୍[ଫ୍]**—ଦେ. ବଣ. ପୁଂ (କଚେରୀ)—ମୌସୁଫ (ଦେଖ). Maha(hu)sup(ph) [ମହସୁଫିଆ—ସ୍ତ୍ରୀ] Mausup (See).

**ମହ(ହୁ)ସୁମ[ମି]**—ଦେ.ବ (ଅ.ମୌସିମ୍=ଋତୁ)—୧ । ଶସ୍ୟୋତ୍ପତ୍ତି— Maha(hu)sum(mi) 1. The production of grains. ୨ । କୃଷିର କୌଣସି କର୍ମ କରିବାର ଉପଯୁକ୍ତ ଋତୁ— 2. The proper season for a particular agricultural operation.

**ମହସୁଲ୍**—ବୈଦେ. ବ (ଫା. ମୌସିମ୍)—୧ । ପ୍ରକାର; ରକମ— Mahasul 1. Kind; variety. ୨ । ଋତୁ—2. Season.
রকম ଦେ. ବ—ମହସୁମ୍ ( ଦେଖ )
**रकम** Mahasum ( See )

**ମହା**—ଦେ. ବଣ (ମହ୍ ଧାତୁ+କରଣ. ଅ; ମହତ ଶବ୍ଦର ଗୋଟିଏ Mahā ରୂପ)—୧ । ଶ୍ରେଷ୍ଠ; ଉତ୍କୃଷ୍ଟ—1. Excellent. ୨ । ପ୍ରଧାନ—2. Chief. ୩ । ଅତ୍ୟନ୍ତ; ବିଶେଷ; ବେଜାୟ—3. Too much; much; excessive. ୪ । ବଡ଼—4. Big; large. ଦେ. ବଣର ବିଣ— ଅତ୍ୟନ୍ତ—Very; much; very much. [ଦ୍ର— ମହତ୍ ଶବ୍ଦ ତଳେ ଟୀକା ଦେଖ ।]

**ମହା ଅକଡ଼(ଳ)**—ଦେ. ବି—ଅତ୍ୟନ୍ତ ଅସୁବିଧା – Great inconvenience or awkwardness.
Mahā akarda(la)
ମহা বিপদ　ଦେ. ବିଣ—ଅତ୍ୟନ୍ତ ଅସୁବିଧାଜନକ—Very inconvenient [ଦ୍ର—ଏହିପରି ଅନେକସ୍ଥଳେ
**মহা অসুবিধা**
[ମହା ଅକଣ୍ଡ(ଡ଼)—ଅନ୍ୟରୂପ] ଦେଶୀୟ ଶବ୍ଦ ସଙ୍ଗେ ସନ୍ଧି ନ ହୋଇ ମହା ଶବ୍ଦ ଭାଷାରେ ବ୍ୟବହୃତ ହୁଏ ।]

**ମହା ଅକଡ଼(ଳ)ିଆ**—ଦେ. ବିଣ—୧ । ଭାରି ଅଖଣ୍ଡିଆ; ଅତ୍ୟନ୍ତ ଅସୁବିଧା ଯୁକ୍ତ (କାର୍ଯ୍ୟ)—1. Very inconvenient or awkward. ୨ । ଅତି ଅଖାଡ଼ୁଆ (ବ୍ୟକ୍ତି)—2. Rash (person).
Mahā akardi(li)ā
মহা বিপদের　**মহা উৎকট**
[ମହା ଅଖଣ୍ଡି(ଡ଼)ଆ—ଅନ୍ୟରୂପ]

**ମହା ଅଖାଡ଼ୁ**—ଦେ. ବିଣ—୧ । ଭାରି ଅବୁଝାମଣା (ଲୋକ)—1 Very unreasonable (person). ୨ । ଦୁଃଶାସ୍ୟ (ବ୍ୟକ୍ତି)—2 Unmanageable or ungovernable (person). ୩ । ଅବିବେକ—3. Rash.
Mahā akhārdu
(ମହା ଅଖାଡ଼ୁଆ—ଅନ୍ୟରୂପ)
বড় অবুঝ
**মহা বেবুঝ**

**ମହା ଅସାଧ୍ୟ**—ଦେ. ବିଣ—୧ । ଅତ୍ୟନ୍ତ ଅସାଧ୍ୟ—1. Very impracticable; very unmanageable. ୨ । ଅତ୍ୟନ୍ତ ଅଗମ୍ୟ—2. Very unapproachable. ୩ । ମହା ଅଖାଡ଼ୁ (ଦେଖ) 3. Mahā akhārdu ( See )
Mahā asādhya
ভাবী অসাধ্য
**মহা অসাধ্য**

**ମହା ଆନନ୍ଦ**—ଦେ. ବି (ସଂ. ମହାନନ୍ଦ)—ବିଶେଷ ଆନନ୍ଦ—Great delight.
Mahā ānanda
মহা আনন্দ　ଦେ. ବିଣ (ସଂ. ମହାନନ୍ଦ)—ବିଶେଷ ଆନନ୍ଦିତ—Greatly delighted; overjoyed.
**মহা আনন্দ**
[ଦ୍ର—ଏହିପରି ମହାପ୍ରେମ, ମହା ଖୁସି ଓ ମହାସୁଖ ଆଦିର ପ୍ରୟୋଗ ହୁଏ ।]

**ମହା ଋଷି**—ଦେ. ବି (ସଂ. ମହର୍ଷି)—ମହର୍ଷି; ଶ୍ରେଷ୍ଠ ଋଷି; ମହାମୁନି—A great sage.
Mahā rushi
মহা ঋষি　(ଛ—ଋଷିଙ୍କ ଘରକୁ ମହା ଋଷି ଗଲେ, ଖାଇ ପିଇକୁ ଶିରି କାଢ଼ିଲେ—ଢଗ ।)
**মহা ঋষি**

**ମହା କଚ୍ଛ**—ସଂ. ବି (ବହୁବ୍ରୀହି; ମହତ୍ ଅଟେ କଚ୍ଛ=ତୀର ଯାହାର)—୧ । ପର୍ବତ—1. Mountain. ୨ । ସମୁଦ୍ର—2. Ocean. ୩ । ବରୁଣ—3. The God of ocean.
Mahā kachchha

**ମହା କନ୍ଦ**—ସଂ. ବି (କର୍ମଧା)—ରସୁଣ—Garlic (Apte).
Mahā kanda

**ମହା କପିତ୍ଥ**—ସଂ. ବି—୧ । ବେଲ ଗଛ—1 The Marmalus tree (Apte). ୨ । ନାଲି ରସୁଣ—1. Red garlic (Apte).
Mahā kapittha

**ମହା କବି**—ସଂ. ବି—୧ । ମହାକାବ୍ୟର ପ୍ରଣେତା—1. An epic poet. ୨ । ଉଚ୍ଚ ଶ୍ରେଣୀର କବି—2 A great or high class poet. [ଦ୍ର—ମହା କବି ବ୍ୟାସ, ବାଲ୍ମୀକି, କାଳିଦାସ, ଉପେନ୍ଦ୍ରଭଞ୍ଜ, ସେକ୍ସପିଅର, ଡାଣ୍ଟେ, ଗେଟେ, ହୋମର, ରବୀନ୍ଦ୍ରନାଥ ଇତ୍ୟାଦି ।]
Mahā kabi

**ମହା କବି ପ୍ରୟୋଗ**—ସଂ. ବି. (ଷଷ୍ଠୀ ତତ୍) —ମହା କବିମାନେ ସେମାନଙ୍କର ରଚନାରେ ବ୍ୟବହାର କରିଥିବା ବ୍ୟାକରଣବିରୁଦ୍ଧ ବା ଭାଷାର ରୀତି ବିରୁଦ୍ଧ ପ୍ରୟୋଗ; ଶିଷ୍ଟ ପ୍ରୟୋଗ—Ungrammatical or unidiomatic use of words or sentencess appearing in the writings of great poets; archaic use of words found in the work of great poets. [ଦ୍ର—ଢଗ ଅଛି ଯେ 'କବି ଭୁଣ୍ଡ ମେଣ୍ଢା ମୁଣ୍ଡ' ଅର୍ଥାତ୍ ମେଣ୍ଢା ମୁଣ୍ଡ ଯେପରି କୌଣସି ବାଧା ମାନେ ନାହିଁ, କବି ତୁଣ୍ଡ ମଧ୍ୟ ସେହିପରି ବ୍ୟାକରଣର ନିୟମକୁ ସବୁ ବେଳେ ମାନେ ନାହିଁ । ସବୁ ଦେଶର ସବୁ ମହାକବିମାନଙ୍କ ରଚନାରେ ଅନେକ ସ୍ଥଳରେ ବ୍ୟାକରଣବିରୁଦ୍ଧ ଓ ରୀତି ବିରୁଦ୍ଧ ପ୍ରୟୋଗମାନ ଦେଖାଯାଏ; ସେମାନ ବ୍ୟାକରଣବିରୁଦ୍ଧ ହେଲେ ମଧ୍ୟ ମହାକବିଙ୍କ ପ୍ରୟୋଗ ଥିବାରୁ ଅଶୁଦ୍ଧ ବୋଲି ବୋଲାଯାଏ ନାହିଁ । ବିଶ୍ୱାସ ଶବ୍ଦ ବିଶେଷ୍ୟ, ମାତ୍ର ମହାକବି ଜଗନ୍ନାଥ ଦାସ ଭାଗବତରେ 'ସେ ମୋର ଭକତ ବିଶ୍ୱାସ' ଏ ସ୍ଥଳରେ ଏଶବ୍ଦକୁ ବିଶେଷଣ ରୂପେ ବ୍ୟବହାର କରିଅଛନ୍ତି । ସୁତରାଂ ଏହାକୁ ମହାକବି ପ୍ରୟୋଗ ବୋଲାଯିବ ।]
Mahā kabi prayoga

**ମହା କମ୍ବୁ**—ସଂ. ବିଣ—ନଗ୍ନ—Stark naked (Apte).
Mahā kambu　ସଂ. ବି—ଶିବ—Śiba (Apte).

**ମହା କର**—ସଂ. ବିଣ. ପୁଂ ( ବହୁବ୍ରୀହି)—୧ । ଯାହାର ହାତ ବଡ଼—1. Large-handed. ୨ । ଯାହାର ରାଜସ୍ୱ ଅଧିକ—2. Having a large revenue (Apte).
Mahā kara
ସଂ. ବି—ଏକ ବୋଧିସତ୍ତ୍ୱ—Name of a Buddhist saint.
(ମହାକରା—ସ୍ତ୍ରୀ)

**ମହା କରଞ୍ଜ**—ସଂ. ବି—ଏକ ପ୍ରକାର କରଞ୍ଜ ( ଦେଖ ) A kind of Karañja ( See )
Mahā karañja
[ଦ୍ର—ଏଥିର ଫଳ ସାଧାରଣ କରଞ୍ଜ ଫଳ ଅପେକ୍ଷା ବଡ଼ । ବୈଦ୍ୟଶାସ୍ତ୍ର ମତରେ ଏହାର ମୂଳର ତ୍ୱକ୍ ଗ୍ରହଣୀୟ । ଏହା ତୀକ୍ଷ୍ଣ, ଉଷ୍ଣ, କଟୁ ଓ ବିଷ, କୁଷ୍ଠ, କଣ୍ଡୁ, ବ୍ରଣ ଓ ଚର୍ମ ରୋଗ ନାଶକ—(ହି. ଶ) । ଏହାର ଅନ୍ୟ ସଂ. ନାମ ହସ୍ତିଚାରଣୀ, ବିଷଘ୍ନୀ, କାଳଘ୍ନୀ, ଷଡ଼ଗ୍ରନ୍ଥା, ରସାୟନୀ, ସୁମନାଃ, ମଦହସ୍ତିନୀ, ହସ୍ତି କରଞ୍ଜକ, କାକ ଭାଣ୍ଡୀ, ମଧୁମତ୍ତା ।]

**ମହା କର୍ମା**—ସଂ. ବିଣ. ( ବହୁବ୍ରୀହି; ମହତ୍+କର୍ମନ୍ )—ମହତ କର୍ମ ସାଧନକାରୀ—Doing great works.
Mahā karmā
ସଂ. ବି—ଶିବ—Śiba (Apte).

**ମହାକର୍ଷଣ**—ସଂ. ବି ( ଆଧୁନିକ ବିଜ୍ଞାନ ପରିଭାଷା; ମହତ୍+ଆକର୍ଷଣ)—୧ । ଅତି ପ୍ରବଳ ଭାବରେ ଆକର୍ଷଣ—1. Strong attraction. ୨ । ଯେଉଁ ପ୍ରଚ୍ଛନ୍ନ ଶକ୍ତିଦ୍ୱାରା ପ୍ରତ୍ୟେକ ବସ୍ତୁ ଅନ୍ୟ ବସ୍ତୁକୁ ଯଥାଶକ୍ତି ଆପଣା ନିକଟକୁ ଆକର୍ଷଣ କରେ; ମାଧ୍ୟାକର୍ଷଣ—2. Force of gravitation.
Mahākarshaṇa

ମହାକଲରବ—ସଂ. ବି ( କର୍ମଧା)—ଭୟାନକ ଗୋଳମାଳ; ହୋହା—
Mahākaḷaraba Much ado; uproar.

ମହାକଷ୍ଟ—ସଂ. ବି ( କର୍ମଧା )—ଅତି ଦୁଃଖ—Great difficulty;
Mahākashṭa much hardship. ସଂ. ବିଣ (ବହୁବ୍ରୀହି)
—ଅତି ଦୁଃଖୀ—Very miserable.

ମହା କଷ୍ଟୀ—ଦେ. ବିଣ (ସଂ. ମହାକଷ୍ଟ)—ବିଶେଷରୂପେ ଦୁଃଖୀ; ଯେ
Mahākashṭī ଅତ୍ୟନ୍ତ ଦୁଃଖଭୋଗ କରୁଥାଏ—Suffering
great hardship; very miserable.

ମହାକାବ୍ୟ—ସଂ. ବି (କର୍ମଧା; ମହତ୍‌+କାବ୍ୟ)—ପୁରାଣାନ୍ତର୍ଗତ ପ୍ରସିଦ୍ଧ
Mahākābya ବୃତ୍ତାନ୍ତ ବା ଦେବତା, ଉଚ୍ଚବଂଶୀୟ ବ୍ୟକ୍ତି,
ମହାପୁରୁଷ ବା ରାଜାଆଦିଙ୍କ ଚରିତ ବା ବଂଶାନୁଚରିତ ଆଦି
ଯେଉଁ କାବ୍ୟରେ ବର୍ଣ୍ଣିତ ହୋଇଥାଏ—A great epic.
[ ଦ୍ର—ଏଥିରେ ମୂଳ ଆଖ୍ୟାନକୁ ଅବଲମ୍ବନ କରି
ପ୍ରାକୃତିକ ଦୃଶ୍ୟ, ଋତୁ, ଯୁଦ୍ଧ, ଜନ୍ମ, ମୃତ୍ୟୁ, ବିବାହ,
ବିରହ, ମିଳନ, ଧର୍ମାଦି ଚତୁର୍ବର୍ଗ, ପ୍ରେମ ଓ ଉତ୍ସବାଦି ବର୍ଣ୍ଣିତ
ହୋଇଥାଏ । ମହାକାବ୍ୟରେ ଆଠରୁ ଅଧିକ ସର୍ଗ ଥାଏ
ଏବଂ ସର୍ଗମାନ ଏକ ବା ବିବିଧ ଛନ୍ଦରେ ରଚିତ ହୋଇଥାଏ ।
ମଙ୍ଗଳାଚରଣରେ ଇଷ୍ଟଦେବତାଙ୍କ ସ୍ତୁତି ବା ସାଧାରଣଙ୍କ
ମଙ୍ଗଳ କାମନା କରି କାବ୍ୟାରମ୍ଭ କରାଯାଏ । ପ୍ରତ୍ୟେକ ସର୍ଗର
ଶେଷ କେତେକ ପଂକ୍ତି ସର୍ଗର ଅନ୍ୟ ଶ୍ଳୋକମାନଙ୍କ ଅପେକ୍ଷା
ଭିନ୍ନ ଛନ୍ଦରେ ରଚିତ ହୋଇଥାଏ । ସର୍ଗରେ ବର୍ଣ୍ଣିତ
ପ୍ରଧାନତମ ବିଷୟ ଅନୁସାରେ ସର୍ଗର ନାମକରଣ ହୁଏ ଏବଂ
ବର୍ଣ୍ଣନୀୟ ବିଷୟ ବା ନାୟକ ନାୟିକାଙ୍କ ନାମ ଅନୁସାରେ
ମହାକାବ୍ୟର ନାମକରଣ ହୁଏ । ମହାକାବ୍ୟରେ ବୀର,
କରୁଣ, ଶୃଙ୍ଗାର ଓ ଶାନ୍ତ ଏହି ଚାରୋଟି ରସରୁ କୌଣସି
ଗୋଟିଏ ରସର ପ୍ରାଧାନ୍ୟ ଥାଏ । ହାସ୍ୟ, ରୌଦ୍ର ଓ
ଭୟାନକାଦି ରସମାନ ଅପ୍ରଧାନ ଭାବରେ ବିଦ୍ୟମାନ ଥାଏ ।
ସଂସ୍କୃତ ରାମାୟଣ, ମହାଭାରତ, ରଘୁବଂଶ, କୁମାରସମ୍ଭବ,
ଭଟ୍ଟୀ, କିରାତାର୍ଜୁନୀୟ, ଇଂରାଜୀ ପାରାଡାଇଜ୍‌ଲଷ୍ଟ,
ଲାଟିନ୍ ଇଲିଅଡ୍, ଓଡ଼ିଆ ବୈଦେହୀଶବିଳାସ, ବିଦଗ୍ଧ-
ଚିନ୍ତାମଣି, ରସକଲ୍ଲୋଳ ଓ ବଙ୍ଗଳା ମେଘନାଦବଧ
ଇତ୍ୟାଦି ମହାକାବ୍ୟ ଅଟେ । ]

ମହାକାୟ—ସଂ. ବିଣ, ପୁଂ ( ମହାନ୍‌+କାୟ=ଶରୀର ଯାହାର;
Mahākāya ବହୁବ୍ରୀହି )—ପ୍ରକାଣ୍ଡ ବା ବୃହତ୍ ଶରୀର ବିଶିଷ୍ଟ
(ମହାକାୟା—ସ୍ତ୍ରୀ) —Gigantic; big-bodied; bulky.
ସଂ. ବି ( ବହୁବ୍ରୀହି )—୧ । ଅତିକାୟ; ବଡ଼ ହାତୀ—
1. A big elephant. ୨ । ନନ୍ଦୀ; ଶିବଙ୍କର ଦ୍ୱାରପାଳ
—2. One of the door-keepers of Śiba.
୩ । ଶିବ—3. Śiba ( Apte ). ୪ । ବିଷ୍ଣୁ—
4. Bishṇu ( Apte ).

ମହାକାର୍ତ୍ତିକ—ଦେ. ବି—ମହାପୁଣ୍ୟମୟ କାର୍ତ୍ତିକମାସ—The month
Mahākārttika of Kārttika which is a
মহাকার্ত্তিক period of great sancttiy.—ଉ [ ଲୁଣ ଘିଅ ଖାଇବି, ଅଦା ଘିଅ ଖାଇବି, ଏଡ଼େ
ବଡ଼ ମହାକାର୍ତ୍ତିକ ଥିଉ କାହୁଁ ପାଇବି ?—ଚଗ ।] [ ଦ୍ର—
ଏହିପରି ମହାବୈଶାଖ ଓ ମହାମାଘ ଶବ୍ଦମାନଙ୍କର ପ୍ରୟୋଗ
ହୁଏ । ]

ମହାକାର୍ତ୍ତିକୀ—ସଂ. ବି—୧ । କାର୍ତ୍ତିକ ପୂର୍ଣ୍ଣିମାର ରାତ୍ରି—1. The night
Mahākarttikī of the full moon of the month
of Kārttika ( Apte ). ୨ । ଯେଉଁ କାର୍ତ୍ତିକ-
ପୂର୍ଣ୍ଣିମାରେ ରୋହିଣୀ ନକ୍ଷତ୍ର ପଡ଼େ ( ହ. ଷ )—2. The
night of the full moon of Kārttika in
which the 4th asterism falls.

ମହାକାଳ—ସଂ. ବି. ପୁଂ (ମହାନ୍‌+କାଳ)—୧ । ରୁଦ୍ର; ସୃଷ୍ଟିର ଅନ୍ତକର
Mahākāḷa ଶିବ—1 Śiba in his character
(ମହାକାଳୀ—ସ୍ତ୍ରୀ) of the Destroyer of the
ସଂ. ଇନ୍ଦ୍ରାବରୁଣୀ, universe. ୨ । ଉଜ୍ଜୟିନୀସ୍ଥ ପ୍ରସିଦ୍ଧ
ସାର୍ବବଲ୍ଲୀ, ମହାକାଳ, ଶିବ ଲିଙ୍ଗ—2. Name of the
ଚିତ୍ରା, ଗବାକ୍ଷୀ, ଗବାଦନୀ, phallic image of Śiba in
ବାରୁଣୀ, ଅମରା, କ୍ଷୁଦ୍ରା, Ujjain. [ ଦ୍ର—ମେଘଦୂତର ୩୦-
ଶ୍ବେତପୁଷ୍ପା, ମୃଗାକ୍ଷୀ, ୩୮ ଶ୍ଳୋକମାନଙ୍କରେ କବି କାଳିଦାସ
ମୃଗେର୍ବାରୁ, ମୃଗାଦନୀ; ଉଜ୍ଜୟିନୀର ଓ ସେଠାରେ ପ୍ରତିଷ୍ଠିତ
ମହାଫଳା, ଚିତ୍ରଫଳା, ମହାକାଳ ଲିଙ୍ଗଙ୍କର ବର୍ଣ୍ଣନା, ମନ୍ଦିର ଓ
ଐନ୍ଦ୍ରୀୟ । ପୂଜା ବିଷୟ ମନୋହର ରୂପରେ ବର୍ଣ୍ଣି
माकाल, राखालशशा ଅଛନ୍ତି । ] ୩ । ଅନନ୍ତକାଳ
लालइन्द्रायण; इन्द्रायन ( ଦେବତାରୂପେ କଳ୍ପିତ )—3. The
ମ. କୌଣ୍ଡଲ, ଇନ୍ଦ୍ରବଣ Eternity ( personified ). ୪ ।
ତେ. ଅଡବିପୁଚ୍ଚପଣ୍ଡୁ, ମହାଦୁର୍ଭିକ୍ଷ; ଦେଶବ୍ୟାପୀ ଦୁର୍ଭିକ୍ଷ—
ଏତିପୁଚ୍ଚା 4. A very great famine.
ଗୁ. ଇନ୍ଦରବାଣୀଚୁଁ, ୫ । ଭୈରବ ବିଶେଷ—5 Name
ଗାବସୁକଣ୍ଡୁ of a Bhairaba. ୬ । ପ୍ରମଥଗଣ
ଫା. ଖର୍ଯ୍ୟୋତଲ୍‌ଖ ବିଶେଷ—6. Name of a class
ଆ. ହଂଜଲ of attendants of Śiba. ୭ ।
ଇଂଲିଶ. ମେଡେଙ୍କାଲ, କୁଷ୍ମାଣ୍ଡାଦି ବର୍ଗର ସାର୍ଦ୍ଧ ବନ୍ୟପ୍ରତାନୀ
ମାହାକାଲ ବିଶେଷ ଓ ତହିଁର ଫଳ ( ଶବ୍ଦ କଳ୍ପ-
ଦ୍ରୁମ )—7. Encumis Madraspatams;
Trichosanthes Palmata; Colocynth;
Citriullus Colocynthas. [ ଦ୍ର—ଏଥିର ପତ୍ର
ପାଞ୍ଚଅଙ୍ଗୁଳିଆ, ପତ୍ରର ତଳ ପାଖ ରୋମଯୁକ୍ତ, ଫୁଲ ପୀତବର୍ଣ୍ଣ;
ଫଳଗୁଡ଼ିକ ଦେଖିବାକୁ ଛୋଟ ବେଲ ପରି ଗୋଲ ଓ ପାଚିଲେ
ଖୁବ୍ ନାଲି, କିନ୍ତୁ ଫଳ ଭିତରେ ଗୋବର ପରି କୃଷ୍ଣବର୍ଣ୍ଣ
ତିକ୍ତ ରସ ଥାଏ । ଏହି ଲତାକୁ ଓଡ଼ିଆରେ ପାଞ୍ଚକେତ-
ମେଇଅ କହନ୍ତି । ଫଳ କ୍ଷୁଦ୍ର ଓ ବୃହତ୍ ଭେଦରେ ଏହା
ଦୁଇପ୍ରକାର । ବୈଦ୍ୟଶାସ୍ତ୍ର ମତରେ ଏହା ତିକ୍ତରସ,
କଟୁବିପାକ, ସାରକ, ଲଘୁ ଓ ଉଷ୍ଣବୀର୍ଯ୍ୟ । ଏହା କାମଳା,
ପିତ୍ତ, କଫ, ପ୍ଳୀହା, ଉଦର ରୋଗ, ଶ୍ୱାସ, କାସ, କୁଷ୍ଠ, ଗୁଳ୍ମ,

ଗ୍ରନ୍ଥି, ବ୍ରଣ, ପ୍ରମେହ, ମୂଢ଼ଗର୍ଭ, ଆମଦୋଷ, ଗଳଗଣ୍ଡ ଓ ବିଷନାଶକ ( ଦ୍ରବ୍ୟଗୁଣ ) ।

ଏହାର ଫଳ ବାହାରେ ଦେଖିବାକୁ ଅତି ସୁନ୍ଦର ଓ ନାଲି, କିନ୍ତୁ ଫଳଭିତରେ ଗୋବର ଭଳି ବିଷାକ୍ତ ଶସ ଥିବାରୁ, ମୁଖରେ ମଧୁରଭାଷୀ କିନ୍ତୁ ଅନ୍ତରରେ କପଟତା ପୂର୍ଣ୍ଣ ବ୍ୟକ୍ତିଙ୍କୁ ଲୋକେ ମହାକାଳ ଫଳ ସଙ୍ଗେ ତୁଳନା କରନ୍ତି ।] ୮ । ଶିବଙ୍କର ଏକ ପୁତ୍ର—8. Name of a son of Śiba. [ ଦ୍ର—କାଳିକା ପୁରାଣରେ ଲେଖାଅଛି ଯେ ଏକଦା ଦେବତାମାନେ ଶିବଙ୍କ ବୀର୍ଯ୍ୟକୁ ଧାରଣ କରିବାକୁ ଅଗ୍ନିଙ୍କୁ କହିବାରୁ ଅଗ୍ନି ତାହା ଧାରଣ କରିବା ସମୟରେ ସେଥିରୁ ଦୁଇଟୋପା ଛିଟିକି ପଡ଼ିଲା । ତହିଁରୁ ମହାକାଳ ଓ ଭୃଙ୍ଗୀ ନାମକ ଦୁଇ ପୁତ୍ର ଉତ୍ପନ୍ନ ହେଲେ । ଥରେ ଶିବଙ୍କ ସଙ୍ଗେ ବିହାର କରି ପାର୍ବତୀ ବିହାରସ୍ଥଳରୁ ବାହାରି ଆସୁଥିବା ସମୟରେ ଏ ଦୁଇ ପୁତ୍ର ତାଙ୍କୁ ଦେଖିଲେ । ଏଥିରେ ପାର୍ବତୀ କ୍ରୁଦ୍ଧା ହୋଇ ସେ ଦୁହିଙ୍କୁ ଅଭିଶାପ ଦେଲେ ଓ ତହିଁ ଫଳରେ ମହାକାଳ ବେତାଳ ଓ ଭୃଙ୍ଗୀ ଭୈରବ ରୂପ ଧାରଣ କଲେ —ହି. ଶ] ଦେ. ବି—ହିନ୍ଦୁମାନଙ୍କର ତୀର୍ଥ ବିଶେଷ—Name of a place of Hindu pilgrimage. [ ଉ—ମହାକାଳ କୋଟି ତୀର୍ଥ ରହିଅଛନ୍ତି, ତହିଁରେ ସ୍ନାନ କଲେ ହୁଅଇ ମୁକତି । କୃଷ୍ଣସିଂହ. ମହାଭାରତ. ବନ । ]

**ମହାକାଳୀ**—ସଂ. ବି. ସ୍ତ୍ରୀ ( ମହାକାଳ + ସ୍ତ୍ରୀ. ଈ )—ରୁଦ୍ରାଣୀ; ଶିବପତ୍ନୀ; କାଳୀ; ଶ୍ୟାମା; ପାର୍ବତୀଙ୍କ ରୂପ ବିଶେଷ—
Mahākāḷi
An incarnation of Goddess Kāḷi in her ferocious and naked form. [ ଦ୍ର—ଏହାଙ୍କର ପଞ୍ଚମୁଖ ଓ ଅଷ୍ଟଭୁଜ ଥିବାର ପୁରାଣରେ ବର୍ଣ୍ଣିତ—ହି. ଶ ]

**ମହାକାଳୀ ପୂଜା**—ଦେ. ବି—କାର୍ତ୍ତିକ ଅମାବାସ୍ୟା ଅର୍ଦ୍ଧ ରାତ୍ରରେ କରାଯିବା ମହାକାଳୀଙ୍କର ପୂଜନ—Worship of the Goddess Mahākāḷi or Śyāmā at midnight of Kārttika new-moon.
Mahākāḷi pūjā

**ମହାକାଶ**—ସଂ. ବି—୧ । ମହାଶୂନ୍ୟ; ଅନନ୍ତ ଆକାଶ—1. The infinite space. ୨ । ଏକ ପର୍ବତର ନାମ ( ହି. ଶ )—2. Name of a mountain.
Mahākāśa

**ମହାକୁ(ଖ, ଙ୍କୁ)ଡ଼**—ଦେ. ବି ( ସଂ. ମହାକୁଳ )—୧ । ଗଉଡ଼; ଗୋପାଳ—1. A cowherd. [ ଉ—ତୁ ଅଟୁ ଯଶୋଦା କୁମର, ନନ୍ଦ ମହାଖୁଡ଼ ଟିଅର । ଜଗନ୍ନାଥ. ଭାଗବତ । ] ୨ । ଗଉଡ଼ଙ୍କର ବଂଶୋପାଧି ବିଶେଷ—2. A family-title of cowherds. ୩ । ଗାଈମାନଙ୍କର ସଂଖ୍ୟା ବିଶେଷ—3. A fixed number of cattle. [ ଦ୍ର—୧୦୦୦ ଗାଈ= ୧ ଗୋଗୋଷ୍ଠ, ୧୦୦୦ ଗୋଷ୍ଠ=୧ ପଲ୍ଲି, ୧୦୦ ପଲ୍ଲି =୧ ଲଉଡ଼ି, ୧୦୦ ଲଉଡ଼ି=୧ ମହାକୁଡ଼, ୧୦୦ ମହାକୁଡ଼=୧ ମହାଭୋଇ, ୧୨ ମହାଭୋଇ=୧ ଗୋଧନ ।—ସାରଳା, ମହାଭାରତ]
Mahāku(khu, ṅku)ṛda

**ମହାକୁମାର**—ସଂ. ବି—ଯୁବରାଜ; ରାଜାଙ୍କର ଜ୍ୟେଷ୍ଠପୁତ୍ର ( ହି. ଶ )—
Mahākumāra The eldest son of a reigning king ( Apte ).

**ମହାକୁଳ**—ସଂ. ବି ( ମହତ୍ + କୁଳ=ବଂଶ; କର୍ମଧା )—୧ । ପ୍ରସିଦ୍ଧ ବଂଶ—1. A celebrated race. ୨ । ସତ୍-କୁଳ; ଉଚ୍ଚକୁଳ—2. A high family; a noble family. ସଂ. ବିଣ ପୁଂ (ବହୁବ୍ରୀହି )—ସତ୍କୁଳଜାତ—Of noble birth. ଦେ. ବି—ମହାକୁଡ଼ ( ଦେଖ )—
Mahākuḷa
(ମହାକୁଳା—ସ୍ତ୍ରୀ) Mahākuṛda ( See )

**ମହାକୁଷ୍ଠ**—ସଂ. ବି ( କର୍ମଧା )—ଗଳିତକୁଷ୍ଠ ( ହି. ଶ )—
Mahākushṭha Leprosy with ulcers.

**ମହାକେତୁ**—ସଂ. ବି—ଶିବ ( ହି. ଶ )—
Mahāketu Śiba.
(ମହାକୋଶ, ମହାଗୀତ, ମହାକାନ୍ତ, ମହାଶୂର୍ଯ୍ୟ, ମହାନାସ—ଅନ୍ୟରୂପ)

**ମହାକୋଶା(ଷା)ତକୀ**—ସଂ. ବି—ତରଡ଼ା ( ଦେଖ )
Mahākośā(shā)taki Taraṛdā ( See )
(ଅନ୍ୟ ସଂ. ନାମ—ହସ୍ତିଘୋଷା, ମହାଫଳା, ଧାମାର୍ଗବ, ଘୋଷକ, ହସ୍ତିପର୍ଣ୍ଣୀ) धुन्दल, परोल, तरुई **नेनुआँ(या), घीआ तरोई**

**ମହାକ୍ରତୁ**—ସଂ. ବି ( କର୍ମଧା )—ବୃହତ୍ ଯଜ୍ଞ ( ଯଥା, ରାଜସୂୟ, ଅଶ୍ୱମେଧ )—A great vedic sacrifice.
Mahākratu

**ମହାକ୍ରୋଧ**—ସଂ. ବି—୧ । ( କର୍ମଧା ) ଭୟଙ୍କର ରାଗ—1. Great anger; fierce rage. ୨ । (ବହୁବ୍ରୀହି) ଶିବ ( ହି. ଶ )—2. Śiba. ଦେ. ବିଣ ପୁଂ—ଅତ୍ୟନ୍ତ କ୍ରୁଦ୍ଧ—Enraged.
Mahākrodha
(ମହାକ୍ରୋଧା—ସ୍ତ୍ରୀ)

**ମହାକ୍ରୋଧୀ**—ସଂ. ବିଶ. ପୁଂ ( ମହାକ୍ରୋଧ + ଇନ୍; ୧ମା. ୧ବ )—ଅତ୍ୟନ୍ତ କ୍ରୁଦ୍ଧ ପ୍ରକୃତିକ; ଅତି କ୍ରୋଧନ—
Mahākrodhi
(ମହାକ୍ରୋଧିନୀ—ସ୍ତ୍ରୀ) Very angry; very passionate.

**ମହାକ୍ଷ**—ସଂ. ବି ( ବହୁବ୍ରୀହି; ମହତ୍ + ଅକ୍ଷି )—୧ । ଶିବ ( ହି. ଶ )—
Mahāksha 1. Śiba. ୨ । ବିଷ୍ଣୁ (ହି. ଶ)—2. Bishṇu.
( ମହାଗର୍ଭ—ଅନ୍ୟରୂପ )

**ମହାକ୍ଷ(କ୍ଷେ)ତ୍ରି**—ଦେ. ବିଣ ଓ ବି—ମହାକ୍ଷତ୍ରିୟ ( ଦେଖ )—Mahā-kshatriya ( See ) [ ଉ—ତୁହେଁ ମହାକ୍ଷତ୍ରି କେହି କାହାକୁହିଁ ନୋହୁଲେ ବଡ଼ ସାନ—ବିଶ୍ୱନାଥ. ବିଚିତ୍ର ରାମାୟଣ । ]
Mahāksha(kshe)tri

**ମହାକ୍ଷତ୍ରିୟ**—ଦେ. ବିଣ ପୁଂ—ପ୍ରବଳ ପରାକ୍ରମୀ—Mighty. ଦେ. ବି—୧ । ମହାବୀର; ମହାଯୋଦ୍ଧା—1. A great warrior. [ ଉ—ମହାକ୍ଷତ୍ରିୟ ସେ ଯେଣୁ, ପଛକୁ ହଟିବା, ଅବା ପଳାୟନେ କେବେ ନ ବଳାଏ ମତି ରାଧାନାଥ. ମହାଯାତ୍ରା ।] ୨ । ମହାବଳୀ—2. Mighty person. ୩ । ମହାପୁରୁଷ—3. A genius; a great man ୪ । ମହାବଳ ବାଘ—4. A man-eater (tiger); the royal Bengal tiger.
Mahākshatriya

**ମହାକ୍ଷୀର**—ସଂ. ବି ( ବହୁବ୍ରୀହି; ମହତ୍ + କ୍ଷୀର )—ଅଖୁ (ହି. ଶ)—
Mahākshira Sugarcane ( Apte ).

ମହାଖଲା—ଦେ. ବିଣ—୧ । ସୁବିସ୍ତୃତ—1. Wide; extensive;
Mahākhaḻā spacious. ୨ । ମହତ୍; ବୃହତ୍—2. Great; big. ଦେ. ବି—ସୁବିସ୍ତୃତ ସ୍ଥାନ—An extensive place; a spacious place.

ମହାଖୁସି(ସି)—ଦେ. ବି ( ସ. ମହତ୍ + ପା. ଖୁସୀ )—ମହାଆନନ୍ଦ—
Mahākhusi(s) Delight; utter joy. ଦେ ବିଣ (ସ. ବଡ଼ଖୁସୀ **महाखुसी** ମହତ୍+ପା. ଖୁସ୍ )—ଅତି ଆନନ୍ଦିତ—Much delighted,

ମହାଗଜ—ସ. ବି ( ମହାନ୍+ଗଜ)—ଦିଗ୍ଗଜ—The elephants
Mahāgaja said to guard the quarters of the globe.

ମହାଗଦ—ସ. ବି ( କର୍ମଧା )—୧ । ଜ୍ୱର ( ହି. ଶ )—1. Fever.
Mahāgada ୨ । କଠିନ ରୋଗ; ଦୁଶ୍ଚିକିତ୍ସ୍ୟ ରୋଗ (ହି.ଶ)—2. A serious disease. ୩ । ଶୁଣ୍ଠି, ପିପ୍ପଳି, ଗୋଲ ମରିଚ ଆଦିରେ ପ୍ରସ୍ତୁତ ଔଷଧବିଶେଷ—3. A kind of medicine prepared with dry ginger; long pepper and black pepper.

ମହାଗନ୍ଧ—ସ. ବିଣ (ବହୁବ୍ରୀହି; ମହତ୍+ଗନ୍ଧ)—ଖୁବ୍ ସୁଗନ୍ଧଯୁକ୍ତ—
Mahāgandha Exceedingly fragrant. ସ. ବି—୧ । କୁଟଜ (ହି. ଶ)—1. Wrightea Dysenterica. ୨ । ଜଳ ବେତସ—2. Water ratan. ୩ । ଚନ୍ଦନ—3. Sandal.

ମହାଗନ୍ଧା—ସ, ବିଣ. ସ୍ତ୍ରୀ ( ମହାଗନ୍ଧ+ଆ )—ମହାଗନ୍ଧର ସ୍ତ୍ରୀଲିଙ୍ଗ—
Mahāgandhā Feminine of Mahāgandha. ସ. ବି. ସ୍ତ୍ରୀ—୧ । ଚାମୁଣ୍ଡା—1. A name of Chāmuṇḍā. ୨ । ନାଗବଳା ( ହି. ଶ ) ( ଦେଖ ) 2, Nāgabaḻā ( See ) ୩ । କିଆ ( ହି. ଶ )—3. Pandanus odoratissimus ( plant ).

ମହାଗବ—ସ, ବି ( ମହତ୍+ଗୋ )—ଗବୟ; ଗୟଲ; ଗଳକମ୍ବଳଶୂନ୍ୟ
Mahāgaba ଗୋସଦୃଶ ବନ୍ୟ ଜନ୍ତୁ—A species of wild ox; Bos Frontalis

ମହାଗିରି—ସ. ବି—୧ । ( କର୍ମଧା ) ବଡ଼ ପର୍ବତ—1. A big or
Mahāgiri lofty mountain. ୨ । (ନାମ) କୁବେରଙ୍କର ୮ ପୁତ୍ର ମଧ୍ୟରୁ ଏକ—2. Name of one of the 8 sons of Kubera. [ଦ୍ର—ଏ ପିତାଙ୍କ ଶିବପୂଜନ ପାଇଁ ଆଣିଥିବା ଫୁଲକୁ ଶୁଙ୍ଘିବାରୁ କୁବେରଙ୍କ ଶାପରେ କଂସର ଭାଇରୂପେ ଜନ୍ମିଥିଲେ ଓ କୃଷ୍ଣଙ୍କଦ୍ୱାରା ନିହତ ହେଲେ—ହି. ଶ । ]

ମହାଗୁରୁ—ସ. ବି ( ମହାନ୍+ଗୁରୁ; କର୍ମଧା )—ଶ୍ରେଷ୍ଠ ଗୁରୁଜନ—
Mahāguru One's most venerable elder. [ ଦ୍ର—ପୁରୁଷର ମହାଗୁରୁ—ପିତା, ମାତା ଓ ଆଚାର୍ଯ୍ୟ । ଅବିବାହିତା କନ୍ୟାର ମହାଗୁରୁ—ପିତା ଓ ମାତା । ବିବାହିତା କନ୍ୟାର ମହାଗୁରୁ—ସ୍ୱାମୀ । ]

ମହାଗୋଧୂମ—ସ. ବି—ବଡ଼ ଗହମ—
Mahā godhūma A big species of wheat.

ମହାଗୌରୀ—ସ. ବି—୧ । ଦୁର୍ଗା—1. Durgā. ୨ । ବିନ୍ଧ୍ୟାଚଳରୁ
Mahāgauri ବାହାରିଥିବା ପୁରାଣୋକ୍ତ ନଦୀବିଶେଷ—2. Name of a mythological river issuing from the Bindhya hills.

ମହାଗିଆନ୍ତା—ଗ୍ରା. ବିଣ ( ସ. ମହାନ୍+ଜ୍ଞାତା )—ମହାଜ୍ଞାନୀ—
Mahāgyāntā Very wise. [ ଉ—ଶୁଣ ହୋ ପୁତ୍ର ମହାଗିଆନ୍ତା । ପୁତ୍ରଙ୍କୁ ଯେବଣ ବାରତା—ପ୍ରାଚୀ. କାର୍ତ୍ତିକ ମାହାତ୍ମ୍ୟ । ]

ମହାଗ୍ରନ୍ଥ—ସ. ବି—ଶ୍ରେଷ୍ଠ ଓ ବଡ଼ ଗ୍ରନ୍ଥ—
Mahāgrantha A big and excellent book.

ମହାଗ୍ରନ୍ଥିକ—ସ. ବି—ଯେଉଁ ଔଷଧ ସେବନରେ ରୋଗ ନିଶ୍ଚିତରୂପେ
Mahāgranthika ଉପଶାନ୍ତ ହୁଏ ଓ ବଢ଼େ ନାହିଁ (ହି.ଶ)—A medicine which prevents the aggravation of a disease.

ମହାଗ୍ରହ—ସ. ବି ( କର୍ମଧା )—୧ । ପ୍ରଧାନ ଗ୍ରହ—1. A chief
Mahāgraha planet. ୨ । ରାହୁ ( ହି. ଶ )—2. The ascending node.

ମହାଗ୍ରୀବ—ସ. ବିଣ, ପୁଂ ( ମହତୀ ଅଟେ ଗ୍ରୀବା ଯାହାର; ବହୁବ୍ରୀହି;
Mahāgriba ମହତୀ+ଗ୍ରୀବା )—ବୃହତ ଗ୍ରୀବାବିଶିଷ୍ଟ; ବିଶାଳ ଗ୍ରୀବାଯୁକ୍ତ—Having a big neck. ସ. ବି—୧ । ଉଷ୍ଟ୍ର; ଓଟ—1. The camel. ୨ । ଶିବ ( ହି. ଶ )—2. Śiba. ୩ । ଶିବଙ୍କ ଅନୁଚରବିଶେଷ—3. An attendant of Śiba.
(ମହାଗ୍ରୀବକ—ଅନ୍ୟରୂପ) (ମହାଗ୍ରୀବା—ସ୍ତ୍ରୀ)

ମହାଘୂର୍ଣ୍ଣା—ସ. ବି. ସ୍ତ୍ରୀ ( ମହା+ଘୂର୍ଣ୍ଣି ଧାତୁ+କର୍ତ୍ତୃ. ଅ+ଆ )—ସୁରା;
Mahāghūrṇṇa ମଦିରା—Wine.

ମହାଘୃତ—ସ. ବି ( ବୈଦ୍ୟକ )-୧୧୧ ବର୍ଷ ସଞ୍ଚିତ ପୁରୁଣା ଘିଅ—
Mahāghṛuta Ghee, 111 years old [ ଦ୍ର—କଫ ରୋଗରେ ଏହା ଛାତିରେ ମାଲିଶ କରାଯାଏ; ଏହା କଫନାଶକ, ବଳକାରକ ଓ ମେଧାଜନକ—ହି. ଶ । ]

ମହାଘୋର—ସ. ବିଣ—ଅତି ଭୟାନକ—
Mahāghora Very awful.

ମହାଘୋଷ—ସ. ବି—୧ । ( କର୍ମଧା ) ଉଚ୍ଚ ଶବ୍ଦ—1. Loud voice
Mahāghosha or sound; report. ୨ । ( ବହୁବ୍ରୀହି ) ହାଟ; ବଜାର ( ହି. ଶ )—2. Market.

ମହାଙ୍କାଳ—ଗ୍ରା. ବି—ମହାକାଳ ( ଦେଖ )
Mahāṅkāḻa Mahākāḻa ( See )

ମହାଙ୍ଗ—ସ. ବିଣ ପୁଂ ( ବହୁବ୍ରୀହି )—ବିପୁଳାବୟବବିଶିଷ୍ଟ—Big-
Mahāṅga bodied; gigantic. ସ. ବି—ଉଷ୍ଟ୍ର; ଓଟ—The camel.
(ମହାଙ୍ଗୀ—ସ୍ତ୍ରୀ)

ମହାଚଞ୍ଚୁ—ସ. ବି—ଏକପ୍ରକାର ବନ୍ୟ ଶାକ—A kind of wild
Mahāchañchu pot herb. [ ଦ୍ର—ଏହା କଟୁ-କଷାୟରସ, ମଳଶୋଧକ ଓ ବିଷନାଶକ । ଏହା ଔଷଧରେ ଲାଗେ । ]
ସ—ସ୍ଥୂଳଚଞ୍ଚୁ, ସୁଚଞ୍ଚୁକ, ପାର୍ଶ୍ୱପର୍ଣ୍ଣୀ, ଦିବ୍ୟଗନ୍ଧା
বড় চেঁচকো चेंच

ମହାଚକ୍ରୀ—ସ. ବି. ପୁଂ ( ମହତ + ଚକ୍ର + ଇନ୍; ୧ମା. ୧ବ. )—
Mahāchakrī ୧ । ଷଡ଼ଯନ୍ତ୍ରରେ ପ୍ରବୀଣ ବ୍ୟକ୍ତି—1. A conspirator; a plotter. ୨ । ବିଷ୍ଣୁ—2. Bishṇu. ସ. ବିଣ. ପୁଂ—ଷଡ଼ଯନ୍ତ୍ରକାରୀ—Conspirant; plotting.

ମହାଚଣ୍ଡ—ସ. ବିଣ—ପ୍ରଚଣ୍ଡ—Very violent; ferocious.
Mahāchaṇḍa ସ. ବି—୧ । ଯମଦୂତ—1. The messengers or minions of the God of death. ୨ । ଶିବାନୁଚରବିଶେଷ—2. Name of an attendant of Śiba.

ମହାଚ୍ଛାୟ—ସ. ବିଣ ( ମହତୀ ଛାୟା ଯାହାର, ବହୁବ୍ରୀହି )—ବିପୁଳ
Mahāchchhāya ଛାୟାଯୁକ୍ତ—Shady; having a big shade ସ. ବି. ବଟବୃକ୍ଷ—Banyan tree.

ମହାଜନ—ସ. ବିଣ (ମହାନ୍ + ଜନ; କର୍ମଧା )—୧ । ଧାର୍ମିକ—
Mahājana 1. God-fearing; righteous; pious. ୨ । ବେଦରେ ଶ୍ରଦ୍ଧାବାନ୍—2. Having faith in the Bedas; the faithful. ୩ । ଯଶସ୍ୱୀ—3. Famous. ୪ । ଭକ୍ତିମାନ୍—4. Devout. ୫ । ସାଧୁ—5. Honest; saintly. ସ. ବି—୧ । ମହାପୁରୁଷ—1 Great man. ୨ । ସାଧୁପୁରୁଷ 2. Saintly person. ୩ । ମୁଖିଆ ବା ଶ୍ରେଷ୍ଠ ବ୍ୟକ୍ତି—3. A chief or leading person. ୪ । ଋଷି; ମୁନି—4. Sage; saint. ୫ । ବହୁବ୍ୟକ୍ତି—5. A gret many persons. [ଦ୍ର—'ମହାଜନୋ ଯେନ ଗତଃ ସ ପନ୍ଥା' ବାକ୍ୟର ଅର୍ଥ ମହାଭାରତର ପ୍ରଧାନ ଟୀକାକାର ନୀଳକଣ୍ଠ 'ବହୁଜନ ଯେଉଁ ପଥ ଅନୁସରଣ କରି ଅଛନ୍ତି ତାହାହିଁ ପ୍ରକୃତ ପନ୍ଥା ଅଟେ' ବୋଲି ନିର୍ଦ୍ଦେଶ କରିଅଛନ୍ତି । ] ୬ । ଉତ୍ତମର୍ଣ୍ଣ; ଋଣଦାତା—6. A
মহাজন **महाजन** creditor. ୭ । ଶ୍ରେଷ୍ଠୀ; ବଣିକ; ସାଧବ; ସାଧୁତ; ସାହୁକାର—7. Trader; merchant [ଦ୍ର—ଓଡ଼ିଆରେ ଶ୍ରେଷ୍ଠ ବ୍ୟବସାୟୀଙ୍କୁ ବେପାରୀ ଓ ବଡ଼ ବ୍ୟବସାୟୀଙ୍କୁ ମହାଜନ ବୋଲାଯାଏ ।] ୮ । ଧନୀ ବ୍ୟକ୍ତି (ହି. ଶ)—8. A rich man. ପ୍ରାଦେ. (ପୁରୀ) ବ୍ରାହ୍ମଣଶାସନବାସୀ କୁଳୀନ ବ୍ରାହ୍ମଣ ପରିବାରମାନଙ୍କ କର୍ତ୍ତା—The head of each family of high caste Brahman families in a Brāhmaṇa Śāsana village. [ଦ୍ର—ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନମାନଙ୍କର କୋଠ ସ୍ୱତ୍ୱ, ଦେବତା, ଜଳକର, ଅନାବାଦ ଇତ୍ୟାଦିରେ ମହାଜନମାନଙ୍କର ଇଜମାଲି ଅଧିକାର ଅଛି । ସେମାନେ ଉକ୍ତ ଗ୍ରାମର ଗ୍ରାମ୍ୟ ମଣ୍ଡଳୀ (village community)ର ସଭ୍ୟ ଅଟନ୍ତି । ଏହି ଶ୍ରେଣୀର ବ୍ରାହ୍ମଣମାନଙ୍କ ଛଡ଼ା ଅନ୍ୟ ବ୍ୟକ୍ତି (ଯଥା କୌଣସି ଶୁଦ୍ର, ପଣ୍ଡା, ସାରୁଆ ବା ମାସ୍ତାନ) ସେ ଗ୍ରାମରେ ବାସ କଲେ ବା ଅନ୍ୟ ଗ୍ରାମର ଅଧିବାସୀ ବ୍ୟକ୍ତି ସେ ଗ୍ରାମରେ ଜମି ଓ ଘର ଉନ୍ନତ କରିଲେ ସେ ଗ୍ରାମର ମହାଜନ ବୋଲି ଅଭିହିତ ହୋଇ ପାରନ୍ତି ନାହିଁ । ]

ମହାଜନ ଖାତକ—ଦେ. ବି ( ସହଚର )—ଉତ୍ତମର୍ଣ୍ଣ ଓ ଅଧମର୍ଣ୍ଣ—
Mahājana khātaka Creditor and debtor.
মহাজনখাতক **महाजनखत्तुका**

ମହାଜନ(ନୀ) ମର୍ଯ୍ୟାଦା—ପ୍ରାଦେ ( ପୁରୀ ) ବି—ବିବାହ ବ୍ରତ ଆଦି
Mahājana(nī) marjyādā ଉପଲକ୍ଷରେ କୌଣସି ବ୍ରାହ୍ମଣ ଶାସନର ମହାଜନମଣ୍ଡଳୀଙ୍କୁ ପ୍ରଦତ୍ତ ସମ୍ମାନସୂଚକ ଉପହାର—Any present given to the village community of a Brāhmaṇa village ( collectively ) by a person on the occasion of some family ceremony.

ମହାଜନ ସଭା—ପ୍ରାଦେ (ବୋମ୍ବାଇ) ବି—ଆପୋଷରେ ବିବାଦ ମେଣ୍ଟାଇବା
Mahājana sabhā ପାଇଁ ପ୍ରତିଷ୍ଠିତ ବୋମ୍ବାଇରେ ପଞ୍ଚାୟତ ସଭା—
মহাজন **सभा** Name of an association formed in Bombay for amicable settlement of disputes. ଦେ. ବି—୧ । ଉତ୍ତମର୍ଣ୍ଣମାନଙ୍କର ସଭା—1. A meeting of creditors. ପ୍ରାଦେ (ପୁରୀ) ବି—ଶାସନର ବ୍ରାହ୍ମଣମାନଙ୍କର ସଭା—An assemblage of the Brāhmaṇas of a Śāsana village in the Puri district.

ମହାଜନାନ୍—ପ୍ରାଦେ (ପୁରୀ) ବି (ବହୁବଚନ)—( ସ. ମହାଜନ + ଆ.
Mahājanān ବହୁବଚନାନ୍ତ ପ୍ରତ୍ୟୟ ଆନ୍ )—ଗ୍ରାମବାସୀ
**महाजनान** ମହାଜନମାନେ—The village Mahājanas of a Brāhmaṇa village.

ମହାଜନାନ୍ କୋଠ—ପ୍ରାଦେ ( ପୁରୀ ) ବି—( ଓଡ଼ିଶାର ସେଟେଲମେଣ୍ଟ
Mahājanān koṭh a ଉପଲକ୍ଷରେ ପ୍ରଚଳିତ ବା ବ୍ୟବହୃତ
**गैरमजुरि आम** ଶବ୍ଦ )—ଗ୍ରାମବାସୀ ବ୍ରାହ୍ମଣମାନଙ୍କର ସାଧାରଣ ବା ଇଜମାଲି ସମ୍ପତ୍ତି—The common property of the village community of a Brāhmaṇa village, which is jointly held by all the Brāhmaṇa-villagers.

ମହାଜନି—ଦେ. ବିଣ—ମହାଜନ ସମ୍ବନ୍ଧୀୟ—Relating to trade
Mahājani or business. ( ଯଥା—ମହାଜନି ଜାହାଜ,
মহাজনী ମହାଜନି କାରବାର ଓ ମହାଜନି ଖାତା । ) ଦେ. ବି—
**महाजनी** ୧ । କାରବାର; ବେପାର; ବାଣିଜ୍ୟ—1. Trade; commerce. [ଦ୍ର—ବେଶି କାରବାରକୁ ମହାଜନି ଓ ସାମାନ୍ୟ କାରବାରକୁ ବେପାର ବୋଲାଯାଏ । ] ୨ । ଟଙ୍କା ବା ଧାନକୁ ସୁଧରେ ଲଗାଇବା—2. Usury; investment of money or paddy on loan. ୩ । ମାରବାଡ଼ୀମାନଙ୍କ ଖାତା ଲେଖାରେ ପ୍ରଚଳିତ ଏକପ୍ରକାର ବିକୃତ ଦେବନାଗର ଲିପି, ଯହିଁରେ ମାତ୍ରା ଆଦି ଲେଖାଯାଏ ନାହିଁ—3. A kind of script used by the

Marwaris in writing their accounts in which no dipthong or spelt letters are used. ପ୍ରାଦେ (ପୁରୀ) ବି—ବ୍ରାହ୍ମଣଗ୍ରାମର 'ମହାଜନ'ରୂପ ସ୍ୱତ୍ୱ ଓ ଅଧିକାର—The status and privileges of being a member of the village community of a Brāhmaṇa village. ପ୍ରାଦେ (ଗଞ୍ଜାମ) ବି (ଫା॰ ମହଜର୍ ନାମା)—କର୍ତ୍ତୃପକ୍ଷଙ୍କୁ ଦିଆଯିବା ବହୁଲୋକଙ୍କ ସ୍ୱାକ୍ଷରଯୁକ୍ତ ଆବେଦନ ପତ୍ର—A representation made to the authorities under the signature of numerous persons.

ମହାଜନିଆ—ଦେ. ବିଣ—ମହାଜନ ସମ୍ବନ୍ଧୀୟ—Relating to Mahājaniā trade or commerce. (ଭ—ମହାଜନିଆ ମହାଜନୀ **महाजनी** ଢଙ୍ଗ।)

ମହାଜବ—ସଂ. ବିଣ. ପୁଂ (ବହୁବ୍ରୀହି; ମହତ୍ ଜବ=ଗତି ଯାହାର)—Mahājaba ବେଗଗାମୀ—Swift. [ଉ—ମହାଜବ ପୃଷ୍ଠ୍ୟ (ମହାଜବା—ସ୍ତ୍ରୀ) ପୃଷ୍ଠେ ଅସେ ଅସ୍କନ୍ଦତେ । ରାଧାନାଥ—ମହାଯାତ୍ରା ।]

ମହାଜମ୍ବୀର—ସଂ. ବି—ବଡ଼ ଜମ୍ବୀର; ଟାଭ ଲେମ୍ବୁ—Mahājambira A large species of citron.

ମହାଜମ୍ବୁ(ମ୍ବୂ)—ସଂ. ବି—୧ । ବଡ଼ ଜାମୁ କୋଳି ଓ ବୃକ୍ଷ—1 Big Mahājambu(mbū) black-berry. ୨ । ଗୋଲାପଜାମୁ [ଅନ୍ୟ ସଂ. ନାମ—ରାଜଜମ୍ବୁ, ମହାଫଳା] (ଦ୍ରବ୍ୟଗୁଣ)—2 Rose ଫଳେନ୍ଦ୍ରା, ନନ୍ଦା, ସୁରଭିପତ୍ରା । apple. ବଡ଼ଜାମ୍ **बड़ाजामुन** (ମ॰ ମହାରାଯ୍ଯ ଜମ୍ବୁ, ବୈ. ସାଇଜେରଜ଼ୀ-ଚେଟ୍ଟି ।)

ମହାଜୟା—ସଂ. ବି. (ମହତ୍+ଜୟ+ଆ)—ଦୁର୍ଗା (ହ୍ରି. ଶ) Mahājayā Durgā.

ମହା(ହ)ଜର—ପ୍ରାଦେ (ଜୟପୁର) ବୈଦେ. ବି (କଟକଆ) (ଆ. Mahā(ha)jara ମହଜର୍=ହାଜିର+ଫା. ନାମାହ୍)—ଦରଖାସ୍ତ; [ମହା(ହ)ଜର୍ ନାମା—ଅନ୍ୟରୂପ] ବହୁଲୋକଙ୍କ ସ୍ୱାକ୍ଷରିତ ଆବେଦନ ପତ୍ର—Petition; application signed by many persons. (ଫା. ମହଜର୍‌ନାମା ଶବ୍ଦର ଅର୍ଥ ଯେଉଁ ଲେଖାରେ ବା ପତ୍ରରେ କୌଣସି ନରହତ୍ୟାର ବା ହତ୍ୟାକାରୀ ବ୍ୟକ୍ତିର ପ୍ରମାଣ ଲିପିବଦ୍ଧ ହୋଇଥାଏ ।

ମହାଜରି—ପ୍ରାଦେ. (ଜୟପୁର, ଗଞ୍ଜାମ) ବି (ଫା. ମହଜର୍‌ନାମା)—Mahājari ଗ୍ରାମର ପ୍ରତ୍ୟେକ ଲୋକଙ୍କ ଦ୍ୱାରା ସ୍ୱାକ୍ଷରିତ ଆବେଦନ ପତ୍ର—A petition signed by all the villagers of a village.

ମହା ଜଳ—ସଂ. ବି (ବହୁବ୍ରୀହି)—ସମୁଦ୍ର (ହ୍ରି. ଶ)—Mahā jala The sea.

ମହା ଜାଲ(ଲି)—ପ୍ରାଦେ. (ଗଡ଼ଜାତ) ବି—ମାଟି ତଳରେ ବହୁ ଆଡ଼କୁ Mahā jāla(li) ଚେର ମାଡ଼ି ଉଠିଥିବା ଲତା—A creeper which spreads out it roots under the ground in all directions.

ମହା ଜାଲୀ—ସଂ. ବି—କାଙ୍କଡ଼; କକୋଟକୀ (ଦ୍ରବ୍ୟଗୁଣ)—Mahā jāli A kind of cucurbitacious fruit and its creeper

ମହା ଜ୍ଞାନୀ—ସଂ. ବିଣ. ପୁଂ (ମହତ୍+ଜ୍ଞାନ+ଇନ୍; ୧ମା. ୧ବ)—Mahā jnāni ଅତ୍ୟନ୍ତ ଜ୍ଞାନବାନ୍—Very wise. ସଂ. ବିଣ ପୁଂ—୧ । ଅତ୍ୟନ୍ତ ଜ୍ଞାନବାନ୍ ବ୍ୟକ୍ତି—1. A very wise person; a seer. ୨ । ଶିବ (ହ୍ରି. ଶ)—2. Śiba.

ମହା ଜ୍ୱାଳ—ସଂ. ବି (ବହୁବ୍ରୀହି; ମହତୀ+ଜ୍ୱାଳା)—୧ । ଯଜ୍ଞାଗ୍ନି; Mahā jwāla ହୋମାଗ୍ନି (ହ୍ରି. ଶ)—1. The fire kindled for a fire-sacrifice. ୨ । ଏକ ନରକର ନାମ (ହ୍ରି. ଶ)—2. Name of a part of hell. [ଦ୍ର—ପୁତ୍ରବଧୂ ବା କନ୍ୟା ସଙ୍ଗେ ସହବାସ କରିବା ପାପୀଙ୍କୁ ଏ ନରକରେ ଦଣ୍ଡ ଦିଆଯାଏ—ହ୍ରି. ଶ] ୩ । ମହାଦେବ; ଶିବ (ହ୍ରି. ଶ)—3. Śiba.

ମହା ଜୈଷ୍ଠୀ—ସଂ. ବି (ମହତ୍+ଜୈଷ୍ଠ+ଈ)—ଜ୍ୟୋତିଷୋକ୍ତ ଶୁଭ Mahā jaishṭhi ଯୋଗ ବିଶେଷ—Name of an auspicious time according to Hindu astrology. [ଦ୍ର—ରବିବାର ଦିନ ଜୈଷ୍ଠ ମାସର ପୂର୍ଣ୍ଣିମା ହେଲେ, ଜୈଷ୍ଠ ମାସରେ ଗୁରୁବାର ବା ସୋମବାର ଦିନ ଜ୍ୟେଷ୍ଠା ନକ୍ଷତ୍ର ପଡ଼ିଲେ କିମ୍ବା ଜୈଷ୍ଠ ମାସର ରବିବାର ଦିନ ରୋହିଣୀ ନକ୍ଷତ୍ର ପଡ଼ିଲେ ଏ ଯୋଗ ପଡ଼େ (ହ୍ରି.ଶ.) । କିନ୍ତୁ ମଦନମୋହନଙ୍କ ତୀର୍ଥ ଦର୍ଶନରେ ଲେଖାଅଛି ଯେ ଜ୍ୟେଷ୍ଠ ମାସର ପୂର୍ଣ୍ଣିମା ଗୁରୁବାର ଦିନ ହେଲେ ଚନ୍ଦ୍ର ଓ ବୃହସ୍ପତି ଜ୍ୟେଷ୍ଠା ନକ୍ଷତ୍ରରେ ରହିଲେ ଏହି ଶୁଭଯୋଗ ପଡ଼େ ।]

ମହା ଜ୍ୟୋତିଷିକ—ସଂ. ବି. ପୁଂ—ଅଜ୍ଞ ଜ୍ୟୋତିଷବିଦ୍ୟାବ୍ୟବସାୟୀ; Mahā jyotishika ଜ୍ୟୋତିଷ ବିଦ୍ୟାରେ ମୂର୍ଖ—A quack astronomer or astrologer; an ignorant astrologer. [ଦ୍ର—ସଂସ୍କୃତ ବ୍ୟାକରଣର ନିୟମ ଅନୁସାରେ ଅନ୍ୟ କେତେକ ଶବ୍ଦ ଓ ଜ୍ୟୋତିଷିକ ଶବ୍ଦ ପୂର୍ବରେ 'ମହତ୍' ଶବ୍ଦ ଯୋଗ କରି ଯାଏ ନାହିଁ, କିନ୍ତୁ ଦେଖାଯାଏ ଯେ ପ୍ରାମାଣିକ କାବ୍ୟକାର ଓ ଗ୍ରନ୍ଥକାରମାନେ ଉକ୍ତ ଶବ୍ଦ ପୂର୍ବରେ 'ମହତ୍' ଶବ୍ଦ ଯୋଗ କରି 'ମହତ୍' ଶବ୍ଦକୁ ନିକୃଷ୍ଟ ବା ନିନ୍ଦିତ ବା ମୃତ୍ୟୁ ସମ୍ବନ୍ଧୀୟ ଅର୍ଥରେ ବ୍ୟବହାର କରି ଅଛନ୍ତି ।]

ମହା ଜ୍ୟୋତିଷ୍ମତୀ—ସଂ. ବି—ଫଟଫଟକା (ଦେଖ) Mahā jyotishmati Phaṭaphaṭakā (See)

ମହାଢ୍ୟ—ସଂ ବିଣ. ପୁଂ(ମହତ୍+ଆଢ୍ୟ)—ମହା ଧନୀ—Mahāḍhya Very rich; affluent. ସଂ. ବି—କଦମ୍ବ (ଦେଖ)—Kadamba (See) (ମହାଢ୍ୟା—ସ୍ତ୍ରୀ) (ମହାଢ୍ୟତା—ବିଶେଷ୍ୟ)

ମହା ତପାଃ—ସଂ. ବିଣ (ମହତ୍+ତପସ୍=ତପସ୍ୟା ଯାହାର; ମହା-Mahā tapāḥ ତପସ୍ ୧ମା. ୧ବ)—ଘୋର ତପସ୍ୟାସାଧନ କାରୀ-

(ମହାତପା—ଦେଖନ୍ତକରୂପ) Practising great religious austerities.

ମହା ତପ୍ତ କୃଚ୍ଛ୍ର—ସଂ. ବି—୪ ଦିନ ବ୍ୟାପୀ ବ୍ରତ ବା ଏକ ପ୍ରକାର Mahā tapta kruchchhra ପ୍ରାୟଶ୍ଚିତ୍ତ—A kind of penance or religious vow. [ଦ୍ର—ଏଥିରେ ୩ ଦିନ କେବଳ ଗରମ ଦୁଧ, ଗରମ ଘିଅ ବା ଗରମ ପାଣି ପିଇବାକୁ ହୁଏ ଓ ୪ର୍ଥ ଦିନ ଉପବାସ ରହିବାକୁ ହୁଏ—ହି ଶ]

ମହାତମ(ମ୍ୟ)—ଗ୍ରା. ବି. (ସଂ. ମାହାତ୍ମ୍ୟ)—୧ । ମାହାତ୍ମ୍ୟ; ମହିମା—Mahātama(mya) 1. Greatness. (ଉ—ଯେ ନର- ମହାତ୍ତମ ପଦ୍ମଙ୍କର ଥିଲ ଏବା କର୍ମ, ମହାତମ୍ୟ ତ୍ୟାଗ ଶକ୍ତା माहातम ପରାକ୍ରମ । କୃଷ୍ଣସିଂ. ମହାଭାରତ ଅଦ ।) ୨ । ଗୌରବ- [ମାହାତମ(ମ୍ୟ)—ଅନ୍ୟରୂପ] 2. Glory.

ବୈଦେ. ବି. (ଆ. ମାତମ୍)—ମୃତ ବ୍ୟକ୍ତି ପାଇଁ ଅସ୍ମୀୟ- মাতম ମାନଙ୍କ ଶୋକ—Lamentation by the rela- मातम tives of a deceased person. (ଯଥା—ମହରମରେ ମୁସଲମାନ୍‌ମାନଙ୍କର ହାସହାରଥା ମହାତମ୍ ।)

ମହାତମା—ଗ୍ରା. ବି. ପୁଂ—ମହାତ୍ମା (ଦେଖ) Mahātamā মহাতমা महातमा Mahātmā (See) ମହାତମୋଣୀ } ସ୍ତ୍ରୀ ମହାତମୀ } (ଉ—ସେ ପୁଣ୍ୟମୟ ମହାତମା, ତାହାଙ୍କ ସେହି ସେ ଉପମା । ଭୂପତି. ପ୍ରେମପଞ୍ଚାମୃତ ।)

ମହା ତମ୍ବି—ଦେ. ବି—୧ । କୌଣସି ବ୍ୟକ୍ତି ସଙ୍ଗେ କୌଣସି କଥା Mahā tambi ପାଇଁ ବିଶେଷ ଯୁଲମ ସହିତ ଅଳ—1. Pres- ভারী তম্বী sing demand. ୨ । ବିଶେଷ ଧମକାଣ—2. Much महातंबी, तङ्गी threatening.

ମହାତରେ—ଦେ. କ୍ରି. ବିଣ (ସଂ. ମହତ୍ତର)—ଅପେକ୍ଷାକୃତ ବେଶି ବା Mahātare ଅଧିକ—Comparatively better or महत्तर larger or greater. (ଉ—ମହାତରେ ବଳତ, ବାଜୁଅଛି ଲଳତ, ବ କେ କୁଳବଧୀମାନ ଏବ ବଳତ । ଅଭିମନ୍ୟୁ ହବଦୋଷ ଚନ୍ଦ୍ରାମଣି ।)

ମହା ତଳ—ସଂ. ବି—ହିନ୍ଦୁ ପୁରାଣ ମତରେ ସପ୍ତ ପାତାଳାନ୍ତର୍ଗତ ୫ମ Mahā taḷa ପାତାଳ—The 5th of the seven nether worlds according to the Hindu mythologies.

ମହା ତାପ—ସଂ. ବି(କର୍ମଧା)—୧ । ଅତିଶୟ ତାପ—1. Great heat. Mahā tāpa ୨ । ଗୁରୁ ଅନୁତାପ—2. Sore repentance. ୩ । ଅତିଶୟ ଜ୍ୱାଳା; ଅତ୍ୟନ୍ତ ଜଳା ପୋଡ଼ା—3. Great burning sensation

ମହା ତାରା—ସଂ. ବି. ସ୍ତ୍ରୀ—ତନ୍ତ୍ରୋକ୍ତ ତାରିଣୀ ଦେବୀ—Name of a Mahā tārā Tantric Goddess.

ମହାତିକ—ଗ୍ରାମ୍ୟ. ବିଣ (ସଂ. ମହାନ୍ ଓ ଅତତାୟୀ)—ମହାଆତତାୟୀ; Mahātika ପରର ଅତିଶୟ ଅନିଷ୍ଟକାରୀ—Very harmful; very injurious. [ଉ—ଅପେ ମହାଯୋଗୀ ହୁଏ ଅପେ ମହାତିକ । ପ୍ରାଚୀ. ବ୍ରହ୍ମନିରୂପଣଗୀତା ]

ମହାତିକ୍ତ—ସଂ. ବିଣ—ଅତ୍ୟନ୍ତ ପିତା; ଅତି ତିକ୍ତ ସ୍ୱାଦଥିବା ଯାହା—Mahā·tikta Very bitter (in taste). ସଂ. ବି—୧ । ମାହାଳ ଗଛ—1. Melia Azadarachta (tree). ୨ । ନିମ୍ବ ଗଛ—2. Neem tree. ୩ । ଚିରେଇତା—3. Agathitis Chirayata. ୪ । ଯବତିକ୍ତା (ଦ୍ରବ୍ୟଗୁଣ)—4 A species of Chirayata.

ମହାତେଜସ୍ୱୀ—ସଂ ବିଣ. ପୁଂ—୧ । ଅଗାଧ ତେଜସ୍ୱୀ—1. Very Mahā tejaswī radiant. ୨ । ଅତ୍ୟନ୍ତ ପ୍ରଭାବଶାଳୀ—(ମହାତେଜସ୍ୱିନୀ—ସ୍ତ୍ରୀ) 2. Mighty.

ମହାତେଜାଃ—ସଂ. ବିଣ, ପୁଂ (ମହତ୍+ତେଜସ୍; ୧ମା. ୧ବ. Mahātejāḥ ବହୁବ୍ରୀହି)—୧ । ମହାତେଜସ୍ୱୀ—1. Very radiant. ୨ । ମହାସାମର୍ଥ୍ୟଶାଳୀ; ଅତ୍ୟନ୍ତ ପ୍ରଭାବଶାଳୀ—2. Heroic; mighty. ସଂ. ବି—୧ । ଅଗ୍ନି—1. Fire ୨ । ପାରଦ—2. Mercury. ୩ । (ହି. ଶ)—3. Śiba.

ମହାତୈଳ—ସଂ. ବି (ମହତ+ତୈଳ)—ମନୁଷ୍ୟଦେହରୁ ନିର୍ଗତ ଚର୍ବି Mahātaila —Fat got from human body. [ଦ୍ର—ତୈଳ ଶବ୍ଦ ଦୂର୍ବେ ମହତ୍‌ଶବ୍ଦର ବ୍ୟବହାର ଲକ୍ଷିତ ଥିଲେହେଁ ଏପରି ବ୍ୟବହାର ସଂସ୍କୃତ ଗ୍ରନ୍ଥକାରମାନେ କରି ଅଛନ୍ତି ।]

ମହାତ୍ମା—ସଂ. ବିଣ. ପୁଂ ଓ ସ୍ତ୍ରୀ (ମହତ୍+ଆତ୍ମନ୍; ୧ମା. ୧ବ. Mahātmā ବହୁବ୍ରୀହି)—୧ । ମହୋଦୟ, ଉଦାରସ୍ୱଭାବାପନ୍ନ; ମହାନୁଭବ; ମହାମନାଃ—1. Noble; high-minded; magnanimous. ୨ । ବଦାନ୍ୟ—2. Liberal. ସଂ. ବି—୧ । ମହାପୁରୁଷ—1. A great man; a genius ୨ । ମହାନ୍ ସାଧୁ; ମହର୍ଷି (ହି. ଶ)—2. A great sage. ୩ । ପରମାତ୍ମା (ହି. ଶ)—3. The Divine Soul pervading the universe. ୪ । ପିତୃମାନଙ୍କ ଗଣ ବିଶେଷ (ହି. ଶ) 4. A class of the manes. ୫ । ମହତ୍ତତ୍ତ୍ୱ (ହି.ଶ) (ଦେଖ)—5. Mahattatwa (See) ୬ । ଶିବ (ହି. ଶ)—6. Śiba.

ମହାତ୍ମା ଗାନ୍ଧି—ଦେ. ବି—ଭାରତର ଅତ୍ୟାଧୁନିକଯୁଗର ଜଗତ୍ ପରିଚିତ Mahātmā gandhi ମହାପୁରୁଷ; ମୋହନ ଦାସ କରମଚାନ୍ଦ ମହାত্মা গান্ধী ଗାନ୍ଧୀ—Mahātmā Gāndhi; the greatest महात्मा गान्धी modern regenerator of India. [ଦ୍ର—ଗାନ୍ଧି ମହାତ୍ମା ଶବ୍ଦରେ ଏ ଗ୍ରନ୍ଥର ୨ୟ ଖଣ୍ଡ ୨୧୯୮ ପୃଷ୍ଠାର ଦ୍ୱିତୀୟ ସ୍ତମ୍ଭରେ 'ମୋହନଲାଲ କରମ ଚାନ୍ଦ ଗାନ୍ଧି' ବୋଲି ଲେଖାଅଛି । ତାହା 'ମୋହନ ଦାସ କରମ ଚାନ୍ଦ ଗାନ୍ଧୀ' ପଢ଼ିବାକୁ ହେବ ।]

ମହାତ୍ମାଣୀ—ଗ୍ରା. ବି. ସ୍ତ୍ରୀ—ଉଦାରସ୍ୱଭାବା ସ୍ତ୍ରୀ—Mahātmāṇī A noble woman.

ମହାଦଂଷ୍ଟ୍ରା—ସଂ. ବି (ବହୁବ୍ରୀହି;ମହତ୍‌+ଦଂଷ୍ଟ୍ରା)—ବଡ଼ଦାନ୍ତବିଶିଷ୍ଟ—
Mahādaṁshṭrā Having big teeth or tusks.

ମହାଦନ୍ତ—ସଂ. ବି—୧ । ( କର୍ମଧା )—ହାତୀଦାନ୍ତ ( ହି. ଶ )—
Mahādanta 1. Tusk; ivory. ୨ । ( ବହୁବ୍ରୀହି )
ମହାଦେବ ( ହି. ଶ. )—2. Śiba.

ମହାଦଶା—ସଂ. ବି—୧ । ମହା ବିପଦ୍—1. Great or critical
Mahādaśā danger. ୨ । ( ଜ୍ୟୋତିଷ ) ମନୁଷ୍ୟର
ଜାତକର ରାଶି ଅନୁସାରେ ଭୋଗ ହେଉଥିବା ପ୍ରଧାନ
ଗ୍ରହର ସର୍ବ୍ବଜନକ ଅବସ୍ଥା—2. (astrology) The
condition of a man due to the position
of the ruling planet in his zodiac sign of
nativity at a period of his life.

ମହାଦାନ—ସଂ ବି ( ମହତ୍‌+ଦାନ; କର୍ମଧାରୟ )—୧ । ବଡ଼ ବା
Mahādān ବହୁମୂଲ୍ୟ ବସ୍ତୁର ଦାନ—1 A big or large or
very valuable gift. [ ଦ୍ର—ତୁଳାପୁରୁଷଦାନ,
ଲକ୍ଷଧେନୁଦାନ, ସ୍ୱର୍ଣ୍ଣର ଗବାଦପଶୁମୂର୍ତ୍ତି ଦାନ, ଭୂମି ବା
ପୃଥିବୀ ଦାନ, ହସ୍ତୀ, ରଥ ଓ କନ୍ୟା ଆଦି ବହୁମୂଲ୍ୟ ବସ୍ତୁର
ଦାନ ପୁରାଣାନୁସାରେ ମହାଦାନରୂପେ ଗଣ୍ୟ । ]
୨ । ଗ୍ରହଣ ଆଦି ସମୟରେ ଡମ ଚମାର ଆଦି ନିମ୍ନ ଶ୍ରେଣୀର
ଲୋକଙ୍କୁ ଦିଆଯିବା ଦାନ (ହି. ଶ)—2. Gifts made
to very low caste people on the occasion
of eclipse and such other extraordinary
events.

ମହାଦାରୁ—ସଂ. ବି—ଦେବଦାରୁ—The Deodar tree; the
Mahādaru Himalayan cedar.

ମହାଦୀପ—ଦେ. ବି—ଶିବରାତ୍ରି ଦିନ ରାତିରେ ମହାଦେବଙ୍କ ମନ୍ଦିରର ଚୂଡ଼ାକୁ
Mahādīpa ନିଆଯାଇ ସେଠାରେ ରଖାଯିବା ପ୍ରଦୀପ—Lamp
महादीप carried to and put over the top of a
**महादीप** Śiba's temple on the night of Śibarātri.

ମହାଦୀପ ଉଠିବା—ଦେ. ବି—ଶିବରାତ୍ରି ଦିନ ରାତିରେ ଶିବମନ୍ଦିରର
Mahādīpa uṭhibā ଶିଖରକୁ ପ୍ରଦୀପ ନିଆଯିବା—The act
महादीप ऊठा of lifting of a lamp to the top of
**महादीप उठना** a Śiba temple on the night of
Śibarātri.

ମହାଦେଈ—ଦେ. ବି. ସ୍ତ୍ରୀ (ସଂ. ମହାଦେବୀ)—୧ । ରାଣୀ; ରାଜ
Mahādeī ପତ୍ନୀ—1. A queen; a ranee. [ ଉ—ସେ
महादेवी ଦଶରଥଙ୍କ ବଡ଼ୋଇ ମହାଦେଈ । କୃଷ୍ଣସିଂହ. ମହାଭାରତ.
**महादेवी** ବନ । ] ୨ । ରାଣୀମାନଙ୍କ ନାମ ପରେ ଲେଖାଯିବା
ଉପାଧି—2. A title added to the names of
Ranees.

ମହାଦେବ—ସଂ. ବି—(ମହାନ୍‌+ଦେବ; କର୍ମଧାରୟ, କିଂବା ମହତ୍‌=
Mahādeba ବଡ଼ଦେବତାଙ୍କର+ଦେବ; ୬ଷ୍ଠୀ ତତ୍)—
୧ । ଶିବ; ମହେଶ—1. Lord Śiba. [ ଦ୍ର—ଏ
ମହାକାଶ
ମହାତେଜ } ଅନନ୍ତରୂପ
ମହାନୃତ୍ୟ
ହିନ୍ଦୁମାନଙ୍କ ଶ୍ରେଷ୍ଠ ଦେବତାତ୍ରୟଙ୍କ
ମଧ୍ୟରୁ ଅନ୍ୟତମ ଓ ପରମେଶ୍ୱରଙ୍କ
ସଂହାରଶକ୍ତି । ପୁରାଣରେ ବର୍ଣ୍ଣିତ ଅଛି
ଯେ, ପ୍ରଥମେ ଏ ମହାପୁରୁଷଙ୍କ (ପରମେଶ୍ୱରଙ୍କ) ଦ୍ୱାରା ସୃଷ୍ଟ
ହୋଇ ତପସ୍ୟାରେ ପ୍ରବୃତ୍ତ ହେଲେ ଏବଂ ଯୋଗିବେଶ
ଧାରଣ କଲେ । ଏହାଙ୍କର ପରିଧାନ ବ୍ୟାଘ୍ରଚର୍ମ; ସର୍ପ
ଏହାଙ୍କର କଣ୍ଠବନ୍ଧ ଓ ଉତ୍ତରୀୟ; ଦେହ ଭସ୍ମବୋଳା;
ମୁଣ୍ଡରେ ଜଟା ଓ ଜଟାରେ ଗଙ୍ଗା ପ୍ରବହମାନା । ଏହାଙ୍କର
ତିନିଗୋଟି ଆଖି; ସେଥିପାଇଁ ତାଙ୍କର ଅନ୍ୟ ନାମ ତ୍ରିଲୋଚନ;
କପାଳରେ ଅର୍ଦ୍ଧେନ୍ଦୁ ତିଳକରୂପେ ବିଦ୍ୟମାନ;ପାଞ୍ଚଗୋଟି ମୁଖ;
ସେଥିପାଇଁ ତାଙ୍କର ନାମ ପଞ୍ଚାନନ । ନନ୍ଦୀ ଏହାଙ୍କର
ପ୍ରଧାନ ପାର୍ଶ୍ୱଚର । ଶ୍ମଶାନରେ ଏହାଙ୍କର ବିଚରଣ, ପ୍ରମଥଗଣ
ବା ଭୂତପ୍ରେତ ଏହାଙ୍କର ସହଚର । ବୃଷଭ ଏହାଙ୍କର
ବାହନ; ଏ ଅତ୍ରିମୁନିଙ୍କର ଶିଷ୍ୟ । ସବୁପ୍ରକାର ଅସ୍ତ୍ରଶସ୍ତ୍ରରେ ଏ
ସୁପଣ୍ଡିତ । ତ୍ରିଶୂଳ ଏହାଙ୍କର ପ୍ରଧାନ ଆୟୁଧ । ଏହାଙ୍କ ଧନୁର
ନାମ ପିନାକ । ଯୁଦ୍ଧ ସମୟରେ ଏହା ଧନୁରୂପେ ଓ ଅନ୍ୟ
ସମୟରେ ଏହା ବାଦ୍ୟରୂପେ ବ୍ୟବହୃତ ହୁଏ । ଡମରୁ
ଏହାଙ୍କର ବାଦ୍ୟ । ଏହାଙ୍କର ତାଣ୍ଡବନୃତ୍ୟ ଅତି
ଭୟଙ୍କର । ଏ ତ୍ରିପୁରାସୁରକୁ ବଧ କରିଥିଲେ । ସେଥିପାଇଁ
ଏହାଙ୍କର ନାମ ତ୍ରିପୁରାରି । ବିଷ୍ଣୁଙ୍କ ସାହାଯ୍ୟରେ ଏ ଜଳନ୍ଧର
ନାମକ ଅସୁରକୁ ବଧ କରିଥିଲେ । ଏ ଯୁଦ୍ଧରେ ଅଜେୟ;
କିନ୍ତୁ ଥରେ ବିଷ୍ଣୁଙ୍କ ସହିତ ସଂଗ୍ରାମରେ ପରାଜିତ
ହୋଇଥିଲେ । ଏହାଙ୍କ ବାସ କୈଳାଶଶିଖର ।

ଅସୁର ଓ ଦେବତାମାନଙ୍କ ଦ୍ୱାରା ସମୁଦ୍ରମନ୍ଥନ
ସମୟରେ ସର୍ବଶେଷରେ ଏ ଉପସ୍ଥିତ ହୋଇ ପୁନର୍ବାର
ସମୁଦ୍ରକୁ ମନ୍ଥିବା ପାଇଁ ଆଦେଶ କରିବାରୁ ଦ୍ୱିତୀୟବାର
ସମୁଦ୍ର ମନ୍ଥନରୁ ହଳାହଳ (ବିଷ) ବାହାରିଲା । ତାହାକୁ ସେ
ପାନ କରି ବିଷଜ୍ୱାଳାରେ ଅସ୍ଥିର ହେଲେ ଏବଂ
ତାଙ୍କର କଣ୍ଠ ନୀଳବର୍ଣ୍ଣ ଧାରଣ କଲା । ଏଥିପାଇଁ
ଏହାଙ୍କର ଅନ୍ୟ ନାମ ନୀଳକଣ୍ଠ । ଏ ତପସ୍ୟାଦ୍ୱାରା ଅତି
ଶୀଘ୍ର ତୁଷ୍ଟ ହୁଅନ୍ତି ବୋଲି ଏହାଙ୍କର ନାମ ଆଶୁତୋଷ ।
ପରଶୁରାମ ଏହାଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ ।
ବାଣାସୁର ଏହାଙ୍କଠାରୁ କେତେକ ଅସ୍ତ୍ର ଲାଭ କରିଥିଲେ ।
ଅର୍ଜୁନଙ୍କ ତପସ୍ୟାରେ ଏ ସନ୍ତୁଷ୍ଟ ହୋଇ କିରାତବେଶରେ
ତାହାଙ୍କୁ ଦର୍ଶନ ଦେଇ ପ୍ରଥମେ ତାଙ୍କ ସଙ୍ଗେ ଯୁଦ୍ଧ
କରିଥିଲେ ଏବଂ ଶେଷରେ ପ୍ରସନ୍ନ ହୋଇ ତାହାଙ୍କୁ ପାଶୁପତ
ଅସ୍ତ୍ର ପ୍ରଦାନ କରିଥିଲେ ।

ମହାଦେବ ପ୍ରଥମେ ଦକ୍ଷକନ୍ୟା ସତୀଙ୍କୁ ବିବାହ କରିଥିଲେ । ଥରେ ଭୃଗୁମୁନିଙ୍କ ଯଜ୍ଞରେ ଏ ଶ୍ୱଶୁରଙ୍କ
ଯଥୋଚିତ ଅଭିବାଦନ ନ କରିବାରୁ ଦକ୍ଷ କୁପିତ ହୋଇ
ତାଙ୍କୁ ଏବଂ ନିଜ କନ୍ୟା ସତୀଙ୍କୁ ଯଜ୍ଞକୁ ନିମନ୍ତ୍ରଣ କଲେ
ନାହିଁ । ନିମନ୍ତ୍ରିତ ନ ହୋଇସୁଦ୍ଧା ସତୀ ହିନ୍ଦୁ ଯଜ୍ଞ ସମୟରେ
ପିତୃଗୃହକୁ ଗଲେ । ସେଠାରେ ଦକ୍ଷ ସ୍ୱୀୟ କନ୍ୟା ସତୀଙ୍କ

ଆଗରେ ମହାଦେବଙ୍କ ନିନ୍ଦା କରିବାରୁ ସେ ପତିନିନ୍ଦା ସହି ନ ପାରି ସେହି ଯଜ୍ଞକୁଣ୍ଡରେ ଝାସ ଦେଲେ । ମହାଦେବ ଏ ସମ୍ବାଦ ପାଇ ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ତାଙ୍କ ଜଟାରୁ ବୀରଭଦ୍ର ନାମକ ବୀର ପୁରୁଷ ଜାତ ହୋଇ ଦକ୍ଷଙ୍କ ଯଜ୍ଞକୁ ନାଶ କଲେ ଓ ଦକ୍ଷଙ୍କ ମୁଣ୍ଡ ଛେଦନ କଲେ । ପରେ ମହାଦେବ ଦକ୍ଷଙ୍କୁ ଜୀବନ ଦେଲେ । ତତ୍ପରେ ସତୀଙ୍କର ମୃତ ଦେହକୁ କାନ୍ଧରେ ପକାଇ ଶିବ ପତ୍ନୀଶୋକରେ ଉନ୍ମତ୍ତ ହୋଇ ବ୍ରହ୍ମାଣ୍ଡ ଭ୍ରମଣ କଲେ । ଏହା ଦେଖି ବିଷ୍ଣୁ ସ୍ୱୀୟ ଚକ୍ର ଦ୍ୱାରା ମହାଦେବଙ୍କ ସ୍କନ୍ଧସ୍ଥିତ ସତୀ-ଶବକୁ ଖଣ୍ଡ ଖଣ୍ଡ କରି ପକାଇଲେ । ସତୀଙ୍କ ଦେହର ଅଂଶ ପୃଥିବୀର ନାନା ସ୍ଥାନରେ ଛିନ୍ନଭିନ୍ନ ହୋଇ ପଡ଼ିଲା । ସେ ସ୍ଥାନମାନ ପୀଠ ଓ ଉପପୀଠ ହେଲା (ପୀଠ ଦେଖ) । ତତ୍ପରେ ମହାଦେବ କୈଳାସରେ ଯୋଗମଗ୍ନ ହେଲେ । ଏଣେ ସତୀ ହିମାଳୟଙ୍କ କନ୍ୟା ରୂପେ ପାର୍ବତୀ ନାମରେ ଜନ୍ମ ଗ୍ରହଣ କଲେ ଓ ମହାଦେବଙ୍କୁ ପତି ରୂପେ ପାଇବାକୁ ଦୃଢ଼ ସଙ୍କଳ୍ପ କରି କଠୋର ତପସ୍ୟାଚରଣପୂର୍ବକ ଯୋଗନିରତ ମହାଦେବଙ୍କ ସେବାରେ ନିଜକୁ ନିଯୁକ୍ତ କଲେ, ସେତେବେଳେ ତାରକ ନାମଧାରୀ ଏକ ଅସୁରଦଳପତି ସ୍ୱର୍ଗରାଜ୍ୟ ପ୍ରତି ବାରମ୍ବାର ଅଭିଯାନ ଚଳାଇ ଦେବତାମାନଙ୍କ ଉପରେ ନାନା ଅନ୍ୟାୟ ଅତ୍ୟାଚାର କରୁଥିଲା । ତାକୁ ବଧ କରି ଅସୁରମାନଙ୍କୁ ପରାଜିତ କରିବା ପାଇଁ ଦେବସେନାମାନଙ୍କର ଅଗ୍ରଣୀ ରୂପେ ଯେଉଁ ଭଳି ଯୋଦ୍ଧା ଆବଶ୍ୟକ, ତାହାଙ୍କୁ ପାଇବାକୁ ଦେବତାମାନେ ଚିନ୍ତିତ ହେଲେ ଏବଂ ଶେଷରେ ସ୍ଥିର କଲେ ଯେ, ମହାଦେବଙ୍କ ଔରସରେ ପାର୍ବତୀଙ୍କ ଗର୍ଭରୁ ଯେଉଁ ପୁତ୍ର ଜାତ ହେବେ, ସେହି ଏକା ଦେବସେନାନୀରୂପେ ଏ କାର୍ଯ୍ୟରେ ସମର୍ଥ ହେବେ । ସେଥିପାଇଁ ସେମାନେ ମହାଦେବଙ୍କ ତପସ୍ୟା ଭଙ୍ଗାଇ ତାଙ୍କୁ ପାର୍ବତୀଙ୍କଠାରେ ଆସକ୍ତ କରାଇବା ପାଇଁ ମଦନ ବା କାମଦେବଙ୍କୁ ନିଯୁକ୍ତ କଲେ । ମଦନ ମହାଦେବଙ୍କ ପ୍ରତି ତାଙ୍କର ପଞ୍ଚବାଣ ପ୍ରୟୋଗ କଲା ମାତ୍ରେ ପାର୍ବତୀଙ୍କୁ ଦେଖି ମହାଦେବ କ୍ଷଣକ ପାଇଁ ବିଚଳିତ ହୋଇ ଉଠିଲେ ସତ୍ୟ, କିନ୍ତୁ ପର ମୁହୂର୍ତ୍ତରେ ଚିତ୍ତକୁ ସଂଯତ କଲେ ଓ ତାଙ୍କ ମନରେ ଜନ୍ମିବା ଏ ଚାଞ୍ଚଲ୍ୟ ମଦନଙ୍କ କାର୍ଯ୍ୟ ବୋଲି ଜାଣି ପାରିଲେ ଏବଂ କୋପାନ୍ୱିତ ହୋଇ ମଦନ ପ୍ରତି କୋପଦୃଷ୍ଟି ନିକ୍ଷେପ କଲେ । ସେତେବେଳେ ତାଙ୍କ ତୃତୀୟ ନେତ୍ରରୁ ଅଗ୍ନି ନିର୍ଗତ ହୋଇ ମୁହୂର୍ତ୍ତକ ଭିତରେ ମଦନଙ୍କୁ ଭସ୍ମ କରିଦେଲା । ଏଥିପାଇଁ ମହାଦେବଙ୍କର ଅନ୍ୟ ଏକ ନାମ ସ୍ମରହର । ପାର୍ବତୀ ଏହିରୂପେ ବିଫଳମନୋରଥା ହୋଇ ଅତି କଷ୍ଟସାଧ୍ୟ କଠୋର ତପଶ୍ଚରଣରେ ପ୍ରବୃତ୍ତ ହେଲେ । ଶେଷରେ ମହାଦେବ ତାଙ୍କ ତପସ୍ୟାରେ ପରିତୁଷ୍ଟ ହୋଇ ତାଙ୍କୁ ବିବାହ କଲେ ଏବଂ ନିଜର ଅର୍ଦ୍ଧାଙ୍ଗରୂପେ ତାହାଙ୍କୁ ସର୍ବଦା ଦେହରେ ଧାରଣ କଲେ । ଏହି ବିବାହରେ ପାର୍ବତୀଙ୍କଠାରୁ ଗଣେଶ ଓ କାର୍ତ୍ତିକେୟ ଜନ୍ମଗ୍ରହଣ କଲେ । ହିମାଳୟଙ୍କ ଜ୍ୟେଷ୍ଠା କନ୍ୟା ଗଙ୍ଗା ମଧ୍ୟ ମହାଦେବଙ୍କୁ ପତି-ରୂପେ ବରଣ କରିଥିଲେ । ମହାଦେବଙ୍କର ଆଠ ଗୋଟି ମୂର୍ତ୍ତି, ଯଥା—ସର୍ବ ବା କ୍ଷିତିମୂର୍ତ୍ତି, ଭବ ବା ଜଳମୂର୍ତ୍ତି, ଉଗ୍ର ବା ବାୟୁମୂର୍ତ୍ତି, ଭୀମ ବା ଆକାଶମୂର୍ତ୍ତି, ଈଶାନ ବା ସୂର୍ଯ୍ୟ-ମୂର୍ତ୍ତି, ମହାଦେବ ବା ଚନ୍ଦ୍ରମୂର୍ତ୍ତି, ପଶୁପତି ବା ଯଜମାନ-ମୂର୍ତ୍ତି । ସାଧାରଣ ଲୋକଙ୍କ ବିଶ୍ୱାସ ଯେ ମହାଦେବ ସର୍ବଦା ଗଞ୍ଜାଇ ନିଶାରେ ଭୋଳ ଥାଆନ୍ତି, ଏଥିପାଇଁ ତାଙ୍କର ଦେଶଜ ନାମ ଭୋଳାନାଥ ।

ମହାଦେବଙ୍କୁ ଶକ୍ତିସହିତ ଲିଙ୍ଗମୂର୍ତ୍ତିରେ ପୂଜା କରାଯାଏ । ଗୋଟିଏ ସ୍ତ୍ରୀଯୋନି ଆକାରର ଶକ୍ତିର କେନ୍ଦ୍ର-ସ୍ଥିତ ବିବରରେ ପୁରୁଷଲିଙ୍ଗ ଆକାରର ପ୍ରସ୍ତର ବା ମଣିମୟ ବା ଧାତୁମୟ ବା ମୃତ୍ତିକାମୟ ବିଗ୍ରହ ସଂଯୁକ୍ତ ହୋଇ ତାହା ଶିବରୂପେ ପୂଜିତ ହୁଅନ୍ତି । ନାନା ପ୍ରକାର ଶିବ ଲିଙ୍ଗ ଦେଖା ଯାଆନ୍ତି । ଯଥା—ସ୍ୱୟଂଭୂ, ଜ୍ୟୋତିର୍ଲିଙ୍ଗ, ପାର୍ଥିବ ଲିଙ୍ଗ, ବାଣଲିଙ୍ଗ ଇତ୍ୟାଦି । ପାର୍ବତୀଙ୍କୁ ଦୁର୍ଗା, କାଳୀ, ଚଣ୍ଡୀ, ଶ୍ୟାମା, ଜଗଦ୍ଧାତ୍ରୀ, ଅନ୍ନପୂର୍ଣ୍ଣା, ଦଶମହାବିଦ୍ୟା ଆଦି ନାନା ରୂପରେ ପୂଜା କରାଯାଏ । କେତେକ ଶିବଲିଙ୍ଗ ଶକ୍ତି-ଗହ୍ୱରରେ ଅନ୍ତର୍ନିହିତ ଥାଆନ୍ତି ।

ଯେଉଁମାନେ ମହାଦେବଙ୍କର ଭକ୍ତ ସେମାନଙ୍କୁ ଶୈବ ବୋଲାଯାଏ । ମହାଦେବଙ୍କ ମୁଖରୁ ତନ୍ତ୍ର ଶାସ୍ତ୍ର ବାହାରିଅଛି । ତନ୍ତ୍ର ଶାସ୍ତ୍ରରେ ଶକ୍ତି ପୂଜାହିଁ ପ୍ରଧାନ ଅଙ୍ଗ । ଯେଉଁମାନେ ତାନ୍ତ୍ରିକ ମତରେ ଶକ୍ତି ଉପାସନା କରନ୍ତି, ସେମାନଙ୍କୁ ଶାକ୍ତ ବୋଲାଯାଏ ।]

**ମହାଦେବ ଦାସ**—ଦେ. ବି—ଜଣେ ଓଡ଼ିଆ ପୁରାଣ ଲେଖକ—Mahādeba dāsa A writer of some Purāṇas in Oriya [ଦ୍ର—ଏ ଜାତିରେ ଶୂଦ୍ର; ପିତାଙ୍କ ନାମ ଲକ୍ଷ୍ମଣ ଦାସ । ଏ ସପ୍ତଦଶ ଶତାବ୍ଦୀର କବି । (ବିନାୟକ. ଉତ୍କଳ ସାହିତ୍ୟ ଇତିହାସ)

'ପଦ୍ମପୁରାଣ, ମାର୍କଣ୍ଡ ପୁରାଣ, କାର୍ତ୍ତିକ ମାହାତ୍ମ୍ୟ' ଆଦି ସାତ ଖଣ୍ଡ ପୁସ୍ତକ ଏହାଙ୍କ ଦ୍ୱାରା ରଚିତ । ତାରିଣୀ. ଉତ୍କଳ ସାହିତ୍ୟ ଇତିହାସ ।]

**ମହାଦେବୀ**—ସଂ. ବି—୧ । ଦୁର୍ଗା (ହି. ଶ)—1. Durgā, ୨। ରାଜାଙ୍କ Mahādebī ପ୍ରଧାନ ପତ୍ନୀ ବା ପଟ୍ଟମହିଷୀଙ୍କ ଉପାଧି—2. Title of a Raja's principal Rānee.

**ମହା ଦେଶ**—ସଂ. ବି (ଭୂଗୋଳ)—ବହୁଦେଶର ସମଷ୍ଟି; ଯେଉଁ ବିସ୍ତୀର୍ଣ୍ଣ Mahā deśa ଭୂଖଣ୍ଡରେ ଅନେକ ଦେଶ ଥାଏ—Continent. (ଯଥା—ଆସିଆ, ଇଉରୋପ, ଆଫ୍ରିକା, ଆମେରିକା ।)

**ମହା ଦ୍ୱିଜ**—ସଂ. ବି—ମହା ବ୍ରାହ୍ମଣ ( ଦେଖ ) Mahā dwija Mahā brāhmaṇa ( See )

**ମହା ଦ୍ୱୀପ**—ସଂ. ବି (କର୍ମଧା)—ମହାସାଗରବେଷ୍ଟିତ ସୁବିସ୍ତୀର୍ଣ୍ଣ ଦ୍ୱୀପ—Mahā dwipa An island continent.

[ ଦ୍ର—ପ୍ରାଚୀନ ହିନ୍ଦୁମାନଙ୍କ ମତରେ ପୃଥିବୀ ୭ଗୋଟି ମହାସାଗର ବେଷ୍ଟିତ ୭ଗୋଟି ମହାଦ୍ୱୀପରେ ବିଭକ୍ତ ଥିଲା; ଯଥା—ଜମ୍ବୁ ( ଭାରତବର୍ଷ ), ପ୍ଲକ୍ଷ, ଶାଲ୍ମଳି, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର ।

ଆଧୁନିକ ପଣ୍ଡିତମାନଙ୍କ ମତରେ ପୃଥିବୀ ୭ଟି ମହା-ଦ୍ୱୀପରେ ବିଭକ୍ତ ଯଥା—ଅସିଆ, ଇଉରୋପ ଓ ଅଫ୍ରିକା ମିଶି ପ୍ରାଚୀନ ମହାଦ୍ୱୀପ ଏବଂ ଉତ୍ତର ଆମେରିକା ଓ ଦକ୍ଷିଣ ଆମେରିକା ମିଶି ନୂତନ ମହାଦ୍ୱୀପ । ଅଷ୍ଟ୍ରେଲିଆ ମଧ୍ୟ ଗୋଟିଏ ମହାଦ୍ୱୀପ ଅଟେ । ]

**ମହା ଦ୍ୟୁତି**—ସଂ. ବିଣ ( ବହୁବ୍ରୀହି; ମହତ୍+ଦ୍ୟୁତି=ତେଜଃ )—
Mahā dyuti ବିଶେଷ ତେଜୋମୟ—Dazzling; very brilliant or shining. ସଂ. ବି ( କର୍ମଧାରୟ )—ସମୁଜ୍ଜ୍ୱଳ ଜ୍ୟୋତିଃ—Bright light.

**ମହା ଦ୍ରୁମ**—ସଂ. ବି ( କର୍ମଧା )—୧ । ଖୁବ୍ ବଡ଼ ଗଛ—1. Very
Mahā druma big tree. ୨ । ବଟ ଗଛ—2. Banyan tree. ୩ । ଅଶ୍ୱତ୍ଥ ଗଛ—3. The religious or sacred fig tree. ୪ । ତାଳ ଗଛ ( ହି. ଶ )—4. The palm tree. ୫ । ମହୁଆ ଗଛ ( ହି. ଶ )—5. Bassia Latifolia ( tree ). ୬ । ଏକ ପୌରାଣିକ ବର୍ଷ ବା ଦେଶ—6. Name of a mythological country.

**ମହାଦ୍ରୋଣୀ(ଣା)**—ସଂ.ବି—ଦ୍ରୋଣପୁଷ୍ପ; ଏକପ୍ରକାର ଗନ୍ଧୟୁକ୍ତ ବଡ଼ଗଛ (କ୍ଷୁପ)
Mahādroṇī(ṇā) —Leucas Cepholotes (plant)
বড় ঘলঘসে বড় গয়স্ত

**ମହାଧନ**—ସଂ. ବି ( କର୍ମଧା )—୧ । ସବୁ ଧନ ମଧ୍ୟରେ ଶ୍ରେଷ୍ଠ; ଶ୍ରେଷ୍ଠ
Mahādhana ଧନ—1. Prominent property. ୨ । ସ୍ୱର୍ଣ୍ଣ—2. Gold. ୩ । (ବହୁବ୍ରୀହି) କୃଷି କାର୍ଯ୍ୟ—3. Agriculture. ୪ । ସୁଗନ୍ଧ ଧୂପ—4. Incense. ୫ । ବହୁମୂଲ୍ୟ ବସ୍ତୁ—5. Very precious thing ( ଉ—ଧର୍ମଧୈର୍ଯ୍ୟ, ଯେନରେ ଶାନ୍ତ୍ୱନା, ଅଛି ସେହି ମହାଧନ, ସେ ମହାସ୍ୱର୍ଣ୍ଣ-ଭଜନ । ମଧୁସୂଦନ । ) ସଂ. ବିଣ ( କର୍ମଧା )—୧ । ଧନାଢ୍ୟ; ଧନୀ—1. Rich; affluent; opulent. ୨ । ବହୁମୂଲ୍ୟ—2. Very valuable; precious.

**ମହା ଧନୀ**—ଦେ. ବିଣ( ସଂ. ମହାଧନ )—ଖୁବ୍ ଧନଶାଳୀ ( ଲୋକ )—
Mahā dhanī Very rich ( man ).

**ମହା ଧାତୁ**—ସଂ. ବି ( କର୍ମଧା )—ସ୍ୱର୍ଣ୍ଣ—
Mahā dhātu Gold.

**ମହା ଧ୍ୱନିକ**—ସଂ. ବି. ପୁଂ ( ମହତ୍ ଶବ୍ଦ ଜାତ ମହା+ଅଧ୍ୱନ୍+ଇକ )
Mahād hwanika —ଯେଉଁ ବ୍ୟକ୍ତି ପୁଣ୍ୟ ଅର୍ଜନାର୍ଥ ହିମାଳୟକୁ ଯାଇ ସେଠାରେ ମୃତ ହୋଇଥାନ୍ତି—A person who undertook a pilgrimage to the Himalayas and died there.

**ମହାନ୍**—ସଂ. ବିଣ. ପୁଂ ( ମହତ୍ ଶବ୍ଦର ପୁଲିଙ୍ଗ ୧ମା. ୧ବ )—
Mahān ମହତ୍ ( ଦେଖ )—Mahat ( See ).
( ମହତୀ—ସ୍ତ୍ରୀ )

**ମହା ନଗର(ରୀ)**—ସଂ. ବି ( କର୍ମଧା )—୧ । ରାଜଧାନୀ; ପ୍ରଧାନନଗର
Mahā nagara(rī) 1. Capital. ୨ । ଶିଳ୍ପ ଓ ବାଣିଜ୍ୟାଦିର ପ୍ରଧାନ ସ୍ଥାନ ବା କେନ୍ଦ୍ର—2. A big city.

**ମହାନଟ**—ସଂ. ବି. ପୁଂ ( କର୍ମଧା )—ଶିବ; ମହାଦେବ— Śiba.
Mahānata [ ଦ୍ର—ଏହାଙ୍କର ତାଣ୍ଡବ ବ୍ରହ୍ମାଣ୍ଡରେ ଶ୍ରେଷ୍ଠ ନୃତ୍ୟ । ]

**ମହାନଈ**—ଦେ ବି—ମହାନଦୀ ( ଦେଖ )—
Mahānaī Mahānadī ( See )

**ମହାନଗ୍ନ**—ସଂ. ବି—୧ । ପ୍ରଣୟୀ; ପ୍ରେମିକ ( ହି. ଶ )—1. A
Mahānagna lover. ୨ । ଉପପତି; ଜାର ( ହି. ଶ )—2. Paramour. ୩ । ପ୍ରାଚୀନ ଭାରତର ଉଚ୍ଚପଦସ୍ଥ ରାଜକର୍ମଚାରୀବିଶେଷ ( ହି. ଶ )—3. Title of a high government official in ancient India.

**ମହାନ(ଲ)ଦା (ଦ୍ଦା, ଦ୍ଦି)**—ପ୍ରାଦେ (କଟକ ସହର; ଇତର ପ୍ରୟୋଗ)—
Mahāna(la)dā(ddā, ddi) ମହାନଦୀ ( ଦେଖ )—Mahānadī ( See ) [ ଦ୍ର—କଟକ ସହରବାସୀ ଇତର ଲୋକେ 'ମହାନଦୀ'କୁ ଏହି ନାମରେ ଡାକନ୍ତି । ]

**ମହାନଦୀ**—ସଂ. ସ୍ତ୍ରୀ ( ମହତୀ+ନଦୀ; କର୍ମଧା )—୧ । ବଡ଼ ନଦୀ;
Mahānadī ପ୍ରକାଣ୍ଡ ନଦୀ; ପର୍ବତରୁ ବାହାରି ସମୁଦ୍ରରେ ପଡ଼ୁଥିବା ନଦୀ—1. A great river. ଦେ. ବି (ନାମ)—୧ । ମଧ୍ୟପ୍ରଦେଶରୁ ବାହାରି ଓଡ଼ିଶା ବାଟେ ପ୍ରବାହିତ ହୋଇ ବଙ୍ଗୋପସାଗରରେ ପଡ଼ୁଥିବା ନଦୀ—1. The Mahānadī river which passes through Orissa. [ ଦ୍ର—ମହାନଦୀ ମଧ୍ୟପ୍ରଦେଶସ୍ଥ ବସ୍ତର ରାଜ୍ୟରୁ ବାହାରି ଛତିଶଗଡ଼ ବିଭାଗର ରାୟପୁର ଜିଲ୍ଲା, ଓଡ଼ିଶାର ସମ୍ବଲପୁର ଜିଲ୍ଲା ଓ ସୋନପୁର, ବୌଦ, ଦଶପଲ୍ଲା, ଆଠମଲ୍ଲିକ, ନରସିଂହପୁର, ବଡ଼ମ୍ବା, ଆଠଗଡ଼ଆଦି ଗଡ଼ଜାତ ରାଜ୍ୟ ବାଟେ କଟକ ଜିଲ୍ଲାରେ ପ୍ରବେଶ କରି କଟକ ଜିଲ୍ଲାର ଫଲ୍ସପଏଣ୍ଟ ଠାରେ ବଙ୍ଗୋପ-ସାଗରରେ ପଡ଼ୁଅଛି । ଏଥିର ଗୋଟିଏ ଶାଖା କାଠଯୋଡ଼ୀରୁ ଯୋଡ଼ିଏ ଶାଖା ବାହାରି ପୁରୀଜିଲ୍ଲାରେ ଚିଲିକାରେ ଓ ସମୁଦ୍ରରେ ପଡ଼ୁଅଛନ୍ତି । ପୂର୍ବେ ମହାନଦୀର ନାମ ଚିତ୍ରୋତ୍ପଳା ଥିବାର କଥିତ । ହସଦୁ, ତେଲ, କମାଇ, ଇବ, ମେହରଣୀ, ଶାଲୁକୀ, ବାଘନଦୀ, ସାପୁଆ ଆଦି ମହାନଦୀର ଉପନଦୀ । କାଠଯୋଡ଼ୀ, ଚିତ୍ରୋତ୍ପଳା, ବିରୂପା, ଲୁଣୀ ଓ ପାଇକା ଆଦି ମହାନଦୀର ଶାଖାନଦୀ । ଏହି ନଦୀକୂଳରେ ସୋନପୁର, ସମ୍ବଲପୁର, ବୌଦ, ବାଙ୍କୀ ଓ କଟକ ନଗରମାନ ଅବସ୍ଥିତ । ପୁରୀଜିଲ୍ଲାର ସମସ୍ତ ନଦୀ ଏହି ମହାନଦୀର ଶାଖା କାଠଯୋଡ଼ୀରୁ ବାହାରି ଅଛି । ] ୨ । ଗଞ୍ଜାମ ଜିଲ୍ଲାର ଅସିକା ନିକଟରେ ପ୍ରବାହିତ ହେଉଥିବା ଏକ ନଦୀ—2. The name of a river flowing by Aska in the Ganjam district.

**ମହାନନ୍ଦ**—ସଂ. ବି. (କର୍ମଧା)—୧ । ଅତ୍ୟନ୍ତ ହର୍ଷ—1. Great joy.
Mahānanda ୨ । ମୋକ୍ଷ; ମୁକ୍ତି—2. Beatiwtude. ୩ । ୧୦ ଅଙ୍ଗୁଳ ଲମ୍ବ ବଂଶୀ (ହି. ଶ)—3. A flute. 10 digits long. ୪ । (ନାମ) ମଗଧର ନନ୍ଦବଂଶୀୟ ଶେଷ ନୃପତି—4. The last king of the Nanda dynasty of Magadha ( Bihar ).
[ ଦ୍ର—ଏହାଙ୍କର ଅନ୍ୟ ନାମ ମହାପଦ୍ମନନ୍ଦ । ଏ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦିରେ ରାଜତ୍ୱ କରୁଥିଲେ । ମୁରା ନାମ୍ନୀ ଶୂଦ୍ରା ଦାସୀ ଗର୍ଭରେ ଏହାଙ୍କ ଔରସ କୁମାର ଚନ୍ଦ୍ରଗୁପ୍ତ ନାମ ଧାରଣ କରି ରାଜା ହେଲେ । ମହାନନ୍ଦ ରାଜା ଏହାଙ୍କର ଶକଟା ନାମକ ମନ୍ତ୍ରୀଙ୍କୁ ବିନାଦୋଷରେ ଅବମାନିତ କରିବାରୁ ଶକଟାର ଦାଉ ସାଧିବା ଉଦ୍ଦେଶ୍ୟରେ ପଣ୍ଡିତ ଚାଣକ୍ୟଙ୍କ ରାଜସଭାରେ ଉପସ୍ଥିତ କରାଇଲେ ଏବଂ ରାଜାଙ୍କଦ୍ୱାରା କୌଶଳରେ ଚାଣକ୍ୟଙ୍କୁ ଅବମାନିତ କରାଇବାରୁ ଚାଣକ୍ୟ କୁମାର ଚନ୍ଦ୍ରଗୁପ୍ତଙ୍କୁ ହସ୍ତଗତ କରି ମହାନନ୍ଦଙ୍କ ବଂଶର ବିନାଶ ସାଧନ କଲେ ଓ ଚନ୍ଦ୍ରଗୁପ୍ତଙ୍କୁ ଖ୍ରୀ: ପୂର୍ବ ୩୨୧ ଅବ୍ଦରେ ମଗଧର ରାଜସିଂହାସନରେ ବସାଇଲେ । ଚନ୍ଦ୍ରଗୁପ୍ତ ପ୍ରତାପୀ ରାଜା ଥିଲେ ଓ ଏହାଙ୍କ ଡରରେ ମହାବୀର ସିକନ୍ଦର ମଗଧ ଆକ୍ରମଣ ନ କରି ପଞ୍ଜାବରୁ ସ୍ୱଦେଶକୁ ଲେଉଟି ଗଲେ ।

(ମହାନନ୍ଦା—ସ୍ତ୍ରୀ) (ହି. ଶ)—ସଂ. ବିଣ. ପୁଂ—ଅତ୍ୟନ୍ତ ଆନନ୍ଦିତ—Overjoyed. ଦେ. ବି. ପୁଂ—ପୁରୁଷଙ୍କ ନାମ— A name given to males

**ମହାନନ୍ଦା**—ସଂ. ବି. ସ୍ତ୍ରୀ—୧ । ନଦୀବିଶେଷ—1. Name of a
Mahānandā river. [ଦ୍ର-ଏହା ହିମାଳୟରୁ ଦାର୍ଜିଲିଙ୍ଗ ନିକଟରୁ ବାହାରି ବଙ୍ଗଦେଶ ବାଟେ ପ୍ରବାହିତ ହୋଇଅଛି—ହି. ଶ ] ୨ । ମାଘ ମାସ ଶୁକ୍ଳ ନବମୀ—2. The ninth day of the bright fortnight of Magha. ୩ । ସୁରା; ମଦ୍ୟ—3. Wine. ସଂ. ବିଣ. ସ୍ତ୍ରୀ—ମହାନନ୍ଦର ସ୍ତ୍ରୀ ଲିଙ୍ଗ—Feminine of Mahā. nanda-

**ମହା ନବମୀ**—ସଂ. ବି. ସ୍ତ୍ରୀ—(କର୍ମଧା; ମହତୀ+ନବମୀ)—ଆଶ୍ୱିନ ଶୁକ୍ଳ
Mahā nabamī ନବମୀ; ଦଶହରାର ପୂର୍ବ ଦିନ—The 9th day of the bright fortnight of Aświna.

**ମହା ନରକ**—ସଂ. ବି—ନରକର ୨୧ ଗୋଟି ଅତ୍ୟନ୍ତ ଯନ୍ତ୍ରଣାଦାୟକ
Mahā naraka ସ୍ଥାନ—Name of 21 particular parts of the hell of the Hindus.

**ମହାନସ**—ସଂ. ବି (ମହତ୍+ଅନସ=ଅନ୍ନ+ସ୍ୱାର୍ଥେ. ଅ; ବହୁବ୍ରୀହି)—
Mahānasa ୧ । ରନ୍ଧନଗୃହ, ପାକଶାଳା—1. Cooking room; kitchen. ୨ । ଭାରି ଗାଡ଼ି—2. A heavy carriage. ୩ । ରନ୍ଧନପାତ୍ର—3. Cooking utensil.

**ମହା ନା(ଲା)ଏ(ୟ)କ**—ଦେ.ବି(ସଂ. ମହାନ୍+ନାୟକ) ଖଣ୍ଡାଏତ (ଦେଖ)
Mahā nā(lā)e(ya)ka Khaṇḍāeta ( See )

[ଦ୍ର—ଏମାନେ ପୂର୍ବେ ଜମିଦାର ଥିଲେ । ବର୍ତ୍ତମାନ ଏମାନେ ଜାତୀୟ ଉପାଧିରେ ପରିଣତ ହୋଇଅଛି ।]

**ମହା ନାଗ**—ସଂ. ବି—ବାସୁକି; ଅନନ୍ତ ନାଗ—The great ser-
Mahā nāga pent of the Hindus mythologies,

**ମହା ନାଟକ**—ସଂ. ବି—୧ । ନାଟକ ଲକ୍ଷଣ ଯୁକ୍ତ ୧୦ ଅଙ୍କ ବିଶିଷ୍ଟ
Mahā nāṭaka ନାଟକ—1. A drama in 10 acts. ୨ । ହନୁମାନଙ୍କ ପ୍ରଣୀତ ରାମଚରିତବର୍ଣ୍ଣନାତ୍ମକ ସଂସ୍କୃତ ନାଟକ ବିଶେଷ—2. A Sanskrit drama said to have been composed by an author named Hanumān.

**ମହା ନାଦ**—ସଂ. ବି. (କର୍ମଧା)—୧ । ଘୋର ନାଦ; ଅତି ଉଚ୍ଚ ଶବ୍ଦ;
Mahā nāda ଗର୍ଜନ—1. A roar; a very loud sound. ୨ । (ବହୁବ୍ରୀହି) ବର୍ଷଣୋନ୍ମୁଖ ମେଘ—2. Cloud which is about to burst into rain. ୩ । ଶଙ୍ଖ 3. Conch shell. ୪ । ହସ୍ତୀ—4. Elephant. ୫ । ସିଂହ—5. Lion. ୬ । ଉଷ୍ଟ୍ର—6. Camel. ୭ । ବଡ଼ ଢୋଲ—7. A big drum. ୮ । ଶିବ (ହି. ଶ)—8. Śiba. ସଂ. ବିଣ. (ବହୁବ୍ରୀହି)—ଗମ୍ଭୀର ନାଦକାରୀ—Making a loud noise; roaring.

**ମହା ନିଦ୍ରା**—ସଂ. ବି. ( କର୍ମଧା )—ଚିର ନିଦ୍ରା; ମୃତ୍ୟୁ— Death;
Mahā nidrā 'sleep that knows no waking'. [ଦ୍ର—ସଂସ୍କୃତ ବ୍ୟାକରଣରେ ନିଦ୍ରା ଆଦି ଶବ୍ଦ ପୂର୍ବେ ମହା ଶବ୍ଦ ପ୍ରୟୋଜିତ କରାଯାଏ ନାହିଁ ବୋଲି ଲେଖାଅଛି; କିନ୍ତୁ କବି ଓ ଗ୍ରନ୍ଥକାରମାନେ ଏହି ଅର୍ଥରେ ମହାନିଦ୍ରାର ପ୍ରୟୋଗ ବହୁଶଃ କରିଅଛନ୍ତି ।]

**ମହାନିଦ୍ରା ଗତ**—ସଂ. ବିଣ. ପୁଂ—ମୃତ—Dead.
Mahānidrā gata (ମହାନିଦ୍ରାଗତା—ସ୍ତ୍ରୀ)

**ମହା ନିମ୍ବ**—ସଂ ବି—୧ । ଏକ ପ୍ରକାର ବଡ଼ ଲମ୍ବ ଗଛ; ଘୋଡ଼ା ନିମ୍ବ—
Mahā nimba 1. The Persian lilac; Melia Azadirachta; Melia Sempervirens.

ସଂ—ମହାତିକ୍ତ; ଗିରି ନିମ୍ବ, ଦ୍ରେକା, ରମ୍ୟକ, କେଶମୁଷ୍ଟିକ, କେଶ ମୁଷ୍ଟି, ନିମ୍ବକ, ଅକ୍ଷୀବ, କାର୍ମୁକ
बननिम, घोड़ानिम, महानिम
**बकाइ( य )न, महानीम**
ମ—ଡୌଙ୍ଗ୍ରଙ୍ଗ୍ନ ନିମ୍ବାଗ୍ ଝାଡ଼
ବକାଣୀ ନିମ୍ବ, କଟୁ ନିମ୍ବ
ତେ-ତୁରକ ବେପ, କଣ୍ଡବେପ,
ତା. ମାଲାଇବେମ୍ବୁ ବାବେପ୍ୟମ
ଗୁ. ବକାନ୍ୟ
ଫା. ଆଜାଦ ଦରଖ୍ତ
ଆ. ବାନ

[ଦ୍ର—ଏହାର ପତ୍ର ନିମ୍ବପତ୍ର ପରି କିନ୍ତୁ ବଡ଼; ଗଛ ମଧ୍ୟ ନିମ୍ବ ଗଛ ପରି, କିନ୍ତୁ ତେଙ୍ଗା ଓ ଉଚ୍ଚ । ଏହାର କାଠ ନାଲିଆ, ଓ ହାଲୁକା; ଏ କାଠରେ ସବାରି, ସିନ୍ଦୁକ ଆଦି ହୁଏ । ଏହା ଗମ୍ଭାରୀଜାତୀୟ କାଠ । ଫଳ ଗମ୍ଭାରୀ ଫଳ ପରି । ତେଲ ଓ ପତ୍ର ଔଷଧରେ ବ୍ୟବହୃତ ହୁଏ । ବୈଦ୍ୟକମତରେ ଏହା ଶୀତବୀର୍ଯ୍ୟ, ରୁକ୍ଷ, ତିକ୍ତକଷାୟ ଓ ଧାରକ; ଏହା କଫ, ପିତ୍ତ, ଭ୍ରମ, ବମି କୁଷ୍ଠ, ହୃଲ୍ଲାସ, ରକ୍ତଦୋଷ, ପ୍ରମେହ, ଶ୍ୱାସ, ଗୁଳ୍ମ, ଅର୍ଶଃ ଓ ମୂଷିକବିଷର ବିନାଶକ ]

बन निम्ब ୨ । ମହାଲ ଗଛ—2. Ailanthus Excelsa. (tree). महारुख [ ଦ୍ର—ଏହାର ପତ୍ର ନିମ୍ବ ପତ୍ର ପରି, କିନ୍ତୁ ୪।୫ ଅଙ୍ଗୁଳ ଡେ—ଗଙ୍ଗାସିଉଳିଠାରୁ ଲମ୍ବ । ଗୋଟିଏ ଗୋଟିଏ ଡେଙ୍ଗ ୨ ହାତ ଅ. ହବୁଲ ଲମ୍ବ । ଡେଙ୍ଗରେ ପତ୍ର ଧାଡ଼ି ଧାଡ଼ି ହୋଇ ବିପରୀତ ପାଖରେ ଧରେ । ଏ ଗଛ ପାହାଡ଼ରେ ଓ ନଈ ଅତଡ଼ାରେ ଜନ୍ମେ । ଗଛ ୪୦।୫୦ ହାତ ଉଚ୍ଚ ହୁଏ । କାଠ ହାଲୁକା, ଧଳା ଓ ମସୃଣ । ଏହା ଜାଳ ଛଡ଼ା ଅନ୍ୟ କାମରେ ଲାଗେ ନାହିଁ ।] ୩ । ମହାନିମ୍ବ (ଦେଖ)—3. Mahānimba (See).

ମହାନିର୍ବାଣ—ସଂ. ବି—ଆତ୍ମାର ସମ୍ପୂର୍ଣ୍ଣ ନିର୍ବାଣ ବା ମୁକ୍ତି—Total
Mahānirbāṇa extinction of the soul; final absorption of the human soul in the Supreme Soul. [ ଦ୍ର—ବୌଦ୍ଧମାନେ ଏହାକୁ ପରିନିର୍ବାଣ କହନ୍ତି ।]

ମହାନିର୍ବାଣ ତନ୍ତ୍ର—ସଂ. ବି—ତାନ୍ତ୍ରିକ ଗ୍ରନ୍ଥ ବିଶେଷ—Name of a
Mahānirbāṇa tantra Tantric work. [ ଦ୍ର—ଏଥିରେ ତନ୍ତ୍ର ସାଧନାର ପ୍ରଣାଳୀ ଓ ଶରୀରସ୍ଥ ଷଟ୍‌ଚକ୍ରର ବିବରଣ ଆଦି ବର୍ଣ୍ଣିତ ହୋଇଅଛି । ]

ମହାନୀଚ—ସଂ. ବି—ଧୋବା ( ହି. ଶ )—
Mahānicha Washerman,

ମହାନିଶା—ସଂ. ବି ( କର୍ମଧା )—୧ । ନିଶୀଥ; ଅର୍ଦ୍ଧରାତ୍ର; ରଜନୀର
Mahāniśā ମଧ୍ୟ ଭାଗ—1. Midnight; the dead of night. ୨ । ରଜନୀର ମଧ୍ୟ ପ୍ରହରଦ୍ୱୟ—2. The middle portion of the night ( from 9 p. m. to 3 a.m ). ୩ । କଳ୍ପାନ୍ତ ବା ପ୍ରଳୟ ରାତ୍ରି—3. The night of the great dissolution of the universe.

ମହାନୀଳ—ସଂ. ବି—୧ । ସିଂହଳ ଦ୍ୱୀପଜାତ ନୀଳକାନ୍ତମଣି—
Mahānīla 1. A sapphire found in Ceylon. ୨ । ନାଗ ବିଶେଷ—2. Name of a serpent. ୩ । ଭୃଙ୍ଗରାଜ ପକ୍ଷୀ ( ହି. ଶ )—3. The black drongo bird ) ୪ । ମେରୁ ପର୍ବତ ପାର୍ଶ୍ୱସ୍ଥ ପୌରାଣିକ ପର୍ବତ—4. Name of a mythological mountain.

ମହାନୁପ୍ରାଣତା—ସଂ. ବି ( ମହା + ଅନୁ ପ୍ରାଣ + ତା )—ମହାନୁଭବତା
Mahānu prāṇatā ( ଦେଖ )—Mahānu bhabatā ( See )

ମହାନୁଭ(ଭା)ବ—ସଂ. ବି [ କର୍ମଧା; ମହତ୍ + ଅନୁଭ(ଭା)ବ=ପ୍ରଭାବ;
Mahānubha(bhā)ba ମହିମା ]—ଅତ୍ୟନ୍ତ ପ୍ରଭାବ ବା ପ୍ରତାପ Great power. ସଂ. ବିଣ. ପୁଂ ( ବହୁବ୍ରୀହି )—୧ । ମହାମହିମ; ମହାପ୍ରଭାବଶାଳୀ—1. Mighty; high-spirited. ୨ । ଉଦାରପ୍ରକୃତିକ; ମହାଶୟ; ମହାମନାଃ; ସଦାଶୟ—2. Noble-minded; magnanimous; very liberal-minded.

ମହାନୁଭ(ଭା)ବତା(ତ୍ୱ)—ସଂ. ବି—ଉଦାରତା—Magnanimity;
Mahānubha(bhā)batā(twa) nobility of mind.

ମହା ନେମି—ସଂ. ବି. (ବହୁବ୍ରୀହି)—କୁଆ (ହି. ଶ)—
Mahā nemi Crow

ମହାନ୍ତ—ଦେ. ବି—ମହନ୍ତ (ଦେଖ)—Mahanta (See). (ଉ—
Mahānta ସନ୍ତ କେ ଟିକେଣ ସେ ମହାନ୍ତ ଏକ ଜାଣ—
मोह(हा)न्त महंथ ପ୍ରାଚୀ. ବିହସ୍ୟମଞ୍ଜରୀ । )

ମହାନ୍ତି—ଦେ. ବି. ପୁଂ (ସଂ. ମହତ୍ ଶବ୍ଦଜ)—୧ । ଉତ୍କଳର କରଣ
Mahānti ଜାତି; ମାହାନ୍ତି—1. The Karaṇa caste of
মাইতি Utkal [ ଦ୍ର—'ମହାନ୍ତି' ଶବ୍ଦ ମେଦିନୀପୁରଅଞ୍ଚଳରେ
( ମହାନ୍ତିଆଣୀ—ସ୍ତ୍ରୀ ) ବଙ୍ଗଳାରେ 'ମାଇତି'ରୂପେ ବ୍ୟବହୃତ ହୋଇଅଛି ।] ୨ । ଶୂଦ୍ର ଓ ମାସ୍ତାନ ବ୍ରାହ୍ମଣଙ୍କର ବଂଶୋପାଧି ବିଶେଷ—2. A family title of Śūdras and Māstānas. [ ଦ୍ର—ବଙ୍ଗର କାୟସ୍ଥ ଓ ବିହାରର ଲାଲାମାନଙ୍କ ପରି ଉତ୍କଳରେ ମହାନ୍ତି ବା କରଣମାନଙ୍କର ସ୍ଥାନ । ଓଡ଼ିଶାରେ କରଣମାନଙ୍କ ଆସନ ବ୍ରାହ୍ମଣ ଓ ରାଜନ୍ୟବର୍ଗଙ୍କର ଅବ୍ୟବହିତ ନିମ୍ନରେ । ବ୍ରାହ୍ମଣ, ରାଜନ୍ୟ ଓ ବୈଶ୍ୟମାନଙ୍କ ସମାଜପରି ଏମାନଙ୍କ ସମାଜରେ ମଧ୍ୟ ବିଧବା-ବିବାହ ବା ଦ୍ୱିତୀୟ ପ୍ରଥା ନାହିଁ । ଶୂଦ୍ରବଂଶୀୟା ସ୍ତ୍ରୀମାନଙ୍କ ଉପାଧି ଦାସୀ; ରାଜନ୍ୟ ଓ କରଣ ସ୍ତ୍ରୀମାନଙ୍କ ଉପାଧି ଦେଈ ଓ ବ୍ରାହ୍ମଣୀମାନଙ୍କ ଉପାଧି ଦେବୀ । ଉତ୍କଳରେ ଏମାନଙ୍କର ଆସନ ଓ ପ୍ରତିପତ୍ତି ଉଚ୍ଚ ଅଟେ । ଲେଖକବୃତ୍ତି ଓ ରାଜକର୍ମରେ ଏମାନେ ବହୁଶଃ ନିଯୁକ୍ତ । ଉତ୍କଳରେ ଇଂରାଜୀ ଶିକ୍ଷା ପ୍ରବେଶ କରିବାବେଳେ ଏମାନେ ସେହି ଶିକ୍ଷା ପ୍ରତି ଆଗ୍ରହ ଦେଖାଇଥିଲେ । ଅନ୍ୟ ସମାଜମାନଙ୍କ ତୁଳନାରେ କରଣ ସମାଜରେ ଉଚ୍ଚ ଶିକ୍ଷିତଙ୍କ ସଂଖ୍ୟା ଅଧିକ । ଦେଶର ସାମାଜିକ, ରାଜନୀତିକ, ଶିକ୍ଷା ସମ୍ବନ୍ଧୀୟ ଓ ଅନ୍ୟାନ୍ୟ ଦେଶହିତକର ଆନ୍ଦୋଳନରେ ଏ ସମାଜର ଅନେକ ବ୍ୟକ୍ତି ଅଗ୍ରଣୀ ଅଟନ୍ତି । ଉତ୍କଳର କରଣମାନେ କ୍ଷତ୍ରିୟ ଥିବା ବିଷୟ ଏ ପ୍ରଦେଶର ଉଚ୍ଚତମ ବିଚାରାଳୟରେ ସ୍ଥିର ସିଦ୍ଧାନ୍ତ ହୋଇଅଛି ।]

ମହାନ୍ତିଆ (ୟା)—ଦେ. ବିଣ—ମହାନ୍ତିସମ୍ବନ୍ଧୀୟ—
Mahāntiā(yā) Relating to Mahānti.

ମହାପସାଦ—ଗ୍ରା. ବି (ସଂ. ମହାପ୍ରସାଦ)—ମହାପ୍ରସାଦ (ଦେଖ)
Mahāp-sāda Mahāprasāda (See).
মহাপ্রসাদ, পেসাদ महापरसाद

ମହାପଣ୍ଡିତ—ସଂ. ବିଣ ଓ ବି ପୁଂ—ଗଭୀର ପାଣ୍ଡିତ୍ୟଯୁକ୍ତ; ଅଗାଧ ବିଦ୍ୟାଯୁକ୍ତ
Mahāpaṇḍita (ବ୍ୟକ୍ତି)—Of deep learning;
(ମହାପଣ୍ଡିତା—ସ୍ତ୍ରୀ) highly learned (man).

ମହାପଞ୍ଚମୂଳ—ସଂ. ବି—ବୃହତ୍ ପଞ୍ଚମୂଳ (ଦେଖ)
Mahā pañchamula Bṛuhat pañchamūla (See)

ମହାପଞ୍ଚବିଷ—ସଂ. ବି—ଶୃଙ୍ଗୀ, କାଳକୂଟ, ମୁସ୍ତକ, ବସ୍ତନାଭ ଓ
Mahāpañchabisha ଶଙ୍ଖକର୍ଣ୍ଣୀ ନାମକ ୫ଟି ଉଗ୍ର ବିଷ—
Five deadly poisons.

ମହାପଥ –ସଂ. ବି—୧ । ମହା ପ୍ରସ୍ଥାନର ମାର୍ଗ, ହିମାଳୟର ଉତ୍ତରସ୍ଥ
Mahāpatha ଯେଉଁ ପଥରେ ପଞ୍ଚପାଣ୍ଡବ ସ୍ୱର୍ଗକୁ ଯାଇଥିଲେ—
1. The road taken by the Pāṇḍaba brothers when they left the earth and wended thir way to heaven. ୨ । ମୃତ୍ୟୁ—
2. Death. [ ଦ୍ର—ମହତ୍ ଶବ୍ଦ ସଙ୍ଗେ ପଥିନ୍ ଶବ୍ଦ ଯୁକ୍ତ ହେବା ନିଷିଦ୍ଧ ଥିଲେହେଁ ଏହି ଅର୍ଥରେ ବହୁ ଗ୍ରନ୍ଥକାର ଏହା ବ୍ୟବହାର କରିଥିବାର ଦେଖାଯାଏ । ] ୩ । ରାଜ-ମାର୍ଗ; ଖୁବ୍ ଲମ୍ବ ଓ ଚଉଡ଼ା ରାସ୍ତା—3. Highway, a long and broad road. ୪ । ହିମାଳୟସ୍ଥ ତୀର୍ଥ ବିଶେଷ ( ହି· ଶ )—4. A place of pilgrimage on the Himalayas. ୫ । ସୁଷୁମ୍ନା ନାଡ଼ୀ (ହି.ଶ)—
5. The midmost of the three principal arteries of the human body. ୬ । ଶିବ (ହି.ଶ)—6. Siba. ୭ । ସ୍ୱର୍ଗକୁ ଯିବାର ମାର୍ଗ—7. The way to heaven (Apte) ୮ । କେଦାର ପର୍ବତକୁ ତୀର୍ଥ ଯାତ୍ରା—8 The long pilgrimage to mount Kedāra (Apte).

ମହାପଦ୍ମ—ସଂ. ବି—୧ । କୁବେରଙ୍କ ନିଧିବିଶେଷ; ପଦ୍ମନିଧି—1. Name
Mahāpadma of one of the great gems of the God of riches ୨ । ( ନାମ ) ମହାନନ୍ଦ ୪ (ଦେଖ)—2. Mahānanda 4 (See) ୩ । ନାଗ ବିଶେଷ—3. Name of a serpent. ୪ । ଶ୍ୱେତ ପଦ୍ମ—4. The white lotus. ୫ । ଦଶ ସହସ୍ର କୋଟି ସଂଖ୍ୟା—5. One hundred thousand millions. [ ଦ୍ର—ମତାନ୍ତରରେ ଲକ୍ଷକୋଟି, ଅନ୍ୟ ମତରେ ଶତଲକ୍ଷ କୋଟି ଏବଂ ଆଉ କେତେକଙ୍କ ମତରେ ଶତକୋଟି ପରିମିତ ସଂଖ୍ୟା ଏହି ନାମରେ ନାମିତ ହୁଏ । ]

ମହାପଦ୍ମ ନନ୍ଦ—ଦେ. ବି—ମହାନନ୍ଦ ୪ ( ଦେଖ )
Mahāpadma nanda Mahānanda 4 ( See )

ମହାପଶୁ—ଦେ. ବି—ବଳି ନିମିତ୍ତ ଉତ୍ସୃଷ୍ଟ ମହିଷ; ମହିଷ ବଳି—
Mahāpaśu A buffalo sacrificed to a Goddess.
[ ଉ—ଅତ୍ୟନ୍ତ ପୁତ୍ରକାମୀ ହୋଇ । ଦେବୀଙ୍କି ମହାପଶୁ ସହି—ଜଗନ୍ନାଥ. ଭାଗବତ । ]

ମହା ପାତକ—ସଂ. ବି ( କର୍ମଧା )—ଘୋର ପାତକ; ମହାପାପ—
Mahā pātaka A great sin; a heinous sin.
[ ଦ୍ର—ଶାସ୍ତ୍ର ମତରେ ୫ ଗୋଟି କର୍ମ ମହାପାତକ ଅଟେ । ବ୍ରହ୍ମହତ୍ୟା, ସୁରାପାନ, ଗୁରୁପତ୍ନୀ ହରଣ, ସୁବର୍ଣ୍ଣ ଚୋରି ଏବଂ ଏହି ୪ କର୍ମ ଯେ କରନ୍ତି ତାଙ୍କ ସଙ୍ଗେ ସଂସର୍ଗ—ମନୁ. ୧୧।୫୫ ଓ ୯।୨୩୫ । ]

ମହା ପାତକା—ଦେ. ବିଣ. ପୁଂ ( ସଂ. ମହାପାତକୀ )—ମହାପାତକୀ
Mahā pātakā ( ଦେଖ )—Mahāpātakī ( See )
ମହାପାତକୀ ( ମହାପାତକୀ—ସ୍ତ୍ରୀ ) (ମହାପାତେକୀ—ଗ୍ରାମ୍ୟରୂପ)

ମହା ପାତକୀ—ସଂ. ବିଣ. ପୁଂ ( ମହାପାତକ+ଇନ୍; ୧ମା. ୧ବ )—
Mahā pātakī ୧ । ମହାପାପୀ; ଯେ ମହାପାତକ କରେ—
( ମହାପାତକିନୀ—ସ୍ତ୍ରୀ ) 1. Committing the 5 great sins; a great sinner. ୨ । ପତିତ ( ବ୍ୟକ୍ତି )—
2. Outcasted.

ମହାପାତ୍ର—ସଂ. ବି (ମହତ୍+ପାତ୍ର=ଆଧାର; ସ୍ଥାନ)—୧ । ମହାମାତ୍ୟ-
Mahāpātra ପ୍ରଧାନ ମନ୍ତ୍ରୀ—1 Prime minister. ୨ । ନଦୀ ଆଦିର ଉଭୟ ତୀରର ମଧ୍ୟସ୍ଥାନ—2. The place midway between the two shores of a river ୩ । ମହାବ୍ରାହ୍ମଣ (ଦେଖ)(ହି.ଶ)—3. Mahābrāhmaṇa ( See ). ଦେ. ବି—୧ । ରାଜଦତ୍ତ ସମ୍ମାନସୂଚକ ଉପାଧିବିଶେଷ—1. A title bestowed by kings. ୨ । ସେନାପତି—2. A commander; a general. ୩ । ଖଣ୍ଡାଏତ ବା ମହାନାଏକମାନଙ୍କ ଉପାଧିବିଶେଷ—3. Family-title of Mahānāekas. ୪ । ଉତ୍କଳୀୟ ବ୍ରାହ୍ମଣଙ୍କ ଉପାଧି ବିଶେଷ—4. A family title of Brahmaṇas. ୫ । ଶୂଦ୍ରଙ୍କ ଉପାଧିବିଶେଷ—5. A family title of Śūdras. ୬ । ମାଳି ସେବକଙ୍କ ଉପାଧିବିଶେଷ—
6. A family title of flower gardeners.
[ ଉ—ବିପ୍ରା ଭୂପତସ୍ତୈବ ଯେଷାଂ ଯୋଗ୍ୟତ୍ୱଦର୍ଶନାତ୍, ବିମୁଖ୍ୟାସ୍ତାଦୃଶା ବିପ୍ରା ମହାପାତ୍ରା ଉଦାହୃତାଃ, କେଚନ୍ମହାପାତ୍ର ସଂଜ୍ଞାଂ ରାଜକାର୍ଯ୍ୟାଂ ପ୍ରଚକ୍ଷତେ, ଦାନଗ୍ରାହକ ମପ୍ୟନ୍ୟେ ମହାପାତ୍ରଂ ପ୍ରଚକ୍ଷତେ—'ବ୍ରହ୍ମପରଭାଷା ଗ୍ରନ୍ଥୋଦ୍ଧୃତ—ଉତ୍କଳ ବ୍ରାହ୍ମଣକୁଳସଂଜ୍ଞା'—ରୁଦ୍ରନାରାୟଣ ଷଡ଼ଙ୍ଗୀ । ]

ମହାପାପ—ସଂ. ବି—ମହାପାତକ ( ଦେଖ )
Mahāpāpa Mahāpātaka ( See )

ମହାପାପୀ—ସଂ. ବିଣ. ପୁଂ—ମହାପାତକୀ ( ଦେଖ )—Mahāpātakī
Mahāpāpī ( See ) ସଂ, ବି—ଗୁରୁତର ପାପ ( ମହାପାପୀ—ଅନ୍ୟରୂପ ) କର୍ମକାରୀ ବ୍ୟକ୍ତି—A great sinner.
( ମହାପାପିନୀ—ସ୍ତ୍ରୀ )

ମହାପାରୁଶ୍ୱ -ଦେ. ବି ( ମହାପାର୍ଶ୍ୱ )—ରାମାୟଣ ବର୍ଣ୍ଣିତ ରାବଣର ପୁତ୍ର-
Mahāpāruśwa ବିଶେଷ—A son of Rābaṇa desscribed in the Rāmāyaṇa. [ ଉ—ବିରୁଧେ ମହାପାରୁଶ୍ୱ ପାରୁଶରେ ନ ବସନ୍ତି ଭୟ ବହି ସେ—ଭଞ୍ଜ. ବୈଦେହୀଶ ବିଳାସ । ]

ମହା ପାରେବତ—ସଂ. ବି—ଏକପ୍ରକାର ବଡ଼ ପିଜୁଳି—
Mahā pārebat A large species of guava.

ମହା ପାସକ—ସଂ. ବି—ବୌଦ୍ଧ ଭିକ୍ଷୁ; ଶ୍ରମଣ—
Mahā pāsaka A Buddhist monk.

ମହା ପଣ୍ଡିତକ—ସଂ. ବି—ମଏଣ ( ଦେଖ )
Mahā pinḍitaka Maena ( See )

ମହାପି(ଫି)ସ୍(ସି)—ବୈଦେ.ବି ( ଅ. ମୁହାଫିଜ୍ )—ମହାଫିଜ୍ (ଇତ୍ୟାଦି)
Mahāpi(phi)s(si) (ଦେଖ)—Mahāphij (etc) ( See )

ମହାପୁଣ୍ୟ—ସଂ. ବି ( କର୍ମଧା )—ବିଶେଷ ପୁଣ୍ୟ—Great piety;
Mahāpuṇya a high order of piety or religious excellence.

ମହାପୁରାଣ—ସଂ. ବି—ମହର୍ଷି ବେଦବ୍ୟାସ ରଚିତ ଅଷ୍ଟାଦଶ ପୁରାଣ—
Mahāpurāṇa The eighteen Purāṇas composed by the great sage Bedabyāsa. [ ଦ୍ର—ପୁରାଣ ଦେଖ । ]

ମହାପୁରୁ—ଗ୍ରାମ୍ୟ. ବି—ମହାପ୍ରଭୁ ( ଦେଖ )
Mahāpuru Mahāprabhu ( See )

ମହାପୁରୁଷ—ସଂ. ବି—୧ । ପରମପୁରୁଷ; ପରମେଶ୍ୱର; ନାରାୟଣ;
Mahāpurusha ଭଗବାନ—1. God; Bishṇu. ୨ । ( ମହାପୁଂସ—ଅନ୍ୟରୂପ ) ଦେବତା—2. Deity. ୩ । ଦୈବ-ଶକ୍ତିସମ୍ପନ୍ନ ବ୍ୟକ୍ତି—3. A person endowed with divine gifts. ୪ । ମହାତ୍ମା; ସାଧୁବ୍ୟକ୍ତି—4. A saint. ୫ । ପ୍ରଧାନ ବ୍ୟକ୍ତି; ଅସାଧାରଣ ଶକ୍ତିଶାଳୀ ବ୍ୟକ୍ତି—5. A great man; a genius.

ମହାପୁରୁଷ ଲକ୍ଷଣ—ସଂ. ବି—୧ । ସାଧୁବ୍ୟକ୍ତିଙ୍କର ବିଶିଷ୍ଟ ଲକ୍ଷଣ
Mahāpurusha lakshaṇa ( ଯଥା—ଦୟା, କ୍ଷମା, ଅହିଂସା, ସତ୍ୟ, ଧୈର୍ଯ୍ୟ, ସରଳତା ଓ ଉଦାରତା ଇତ୍ୟାଦି )—1. The attributes or characteristics of a great man. ୨ । ଜ୍ୟୋତିଷାଦି ଶାସ୍ତ୍ରରେ ବର୍ଣ୍ଣିତ ମହାପୁରୁଷଙ୍କଠାରେ ଲକ୍ଷିତ କେତେକ ବାହ୍ୟ ବା ଶାରୀରିକ ଚିହ୍ନ—2. External signs of a great man as described in the śāstras. [ ଦ୍ର—ଯଥା; ଆଜାନୁଲମ୍ବିତ ଭୁଜ, ଆକର୍ଣ୍ଣବିସ୍ତୃତ ନୟନ, ତ୍ରିବଳୀ ମଣ୍ଡିତ କପାଳ, ପ୍ରଶସ୍ତ ହୃଦେଶ ଇତ୍ୟାଦି ୩୨ଟି ଲକ୍ଷଣ । ]

ମହା ପୂଜା—ଦେ. ବି- ଶାରଦୀୟ ଦୁର୍ଗାପୂଜା—The worship of
Mahā pūjā Durgā held in autumn.

ମହାପ୍ରପଞ୍ଚ—ସଂ. ବି ( କର୍ମଧା )—ବ୍ରହ୍ମାଣ୍ଡ—The great uni-
Mahāprapañcha verse; the macrocosm. ଦେ. ବି—ଅତ୍ୟନ୍ତ ଭୟାନକ ଘଟଣା—A frightful event. ଦେ. ବିଣ—ଅତ୍ୟନ୍ତ ଦୁଷ୍ଟ ( ବ୍ୟକ୍ତି )—Very wicked (person).

ମହାପ୍ରଭୁ—ସଂ. ବି ( କର୍ମଧା )—୧ । ପରମେଶ୍ୱର—1. God; the
Mahāprabhu Supreme Being. ୨ । ମହେଶ୍ୱର; ଶିବ;
महाप्रभु महाप्रभु ମହାଦେବ—2. Śiba. ୩ । ଦେବତା—3. Deity. ୪ । ବିଷ୍ଣୁ ( ହୁ. ଶ )—4. Bishṇu. ୫ । ଦେବରାଜ; ଇନ୍ଦ୍ର—5. Indra. ୬ । ସନ୍ନ୍ୟାସୀ ବା ସାଧୁ ( ହୁ. ଶ )—6. An anchorite. ଦେ. ବି—୧ । ଋଷି; ମୁନି—1. Sage. ୨ । ବ୍ରାହ୍ମଣ; ଗୋସାଇଁ—2. A Brāhmaṇa. ୩ । ଶ୍ରୀ ଚୈତନ୍ୟଦେବ—3. Srī Chaitanya. ୪ । ରାଜା—4. A king. ଦେ. ଅ(ସଂ. ମହାପ୍ରଭୋ)–(ସମ୍ବୋଧନ) ବୈଷ୍ଣବ, ଦେବତା, ବ୍ରାହ୍ମଣ ଓ ରାଜାଙ୍କ ପ୍ରତି ସମ୍ମାନସୂଚକ ସମ୍ବୋଧନ-A term of respectful address used towards a Baishṇaba, a Deity, a Brāhmaṇa and a king.

ମହାପ୍ରଭୋ—ସଂ. ବି ( ସଂ. ମହାପ୍ରଭୁର ସମ୍ବୋଧନରୂପ )—ହେ
Mahāprabho ମହାପ୍ରଭୁ !—Oh ! Lord !.

ମହାପ୍ରୟାଣ—ସଂ. ବି—ମହାପ୍ରସ୍ଥାନ ( ଦେଖ )
Mahāprayāṇa Mahāprasthāna ( See )

ମହାପ୍ରଳୟ—ସଂ. ବି—ବ୍ରହ୍ମାଙ୍କର ଓ ବ୍ରହ୍ମାଣ୍ଡର ନାଶକାଳ; ଏକକାଳୀନ
Mahāpralaya ବ୍ରହ୍ମାଙ୍କର ଆୟୁଷ୍କାଳର ଅବସାନ—A universal cataclysm, the great extinction of the universe. [ ଦ୍ର—ଶାସ୍ତ୍ର ମତେ ଏହା ୪୩୨ କୋଟି ବର୍ଷରେ ଥରେ ଘଟେ । ] ଦେ. ବି—୧ । ତୁମୁଳ କାଣ୍ଡ—
ତୁମୁଳକାଣ୍ଡ 1. A frightful catastrophe. ୨ । ମହାବିପଦ—2. A great calamity.

ମହାପ୍ରସାଦ—ସଂ. ବି (କର୍ମଧା)—୧ । ଅତି ପ୍ରସନ୍ନତା; ଖୁବ୍ ଅନୁଗ୍ରହ—
Mahā prasāda 1. Much favour; grace; a great favour. ୨ । ଦେବତାଙ୍କୁ ନିବେଦିତ ଦ୍ରବ୍ୟ; ନୈବେଦ୍ୟ 2. An offering when it has been offered to a Deity. ୩ । ବିଷ୍ଣୁଙ୍କ ପାଦୋଦକ, ନିର୍ମାଲ୍ୟ ଓ ନୈବେଦ୍ୟ—3. The water with which the feet of an idol is washed, the flower taken off from an idol and the food offered to a Deity. ୪ । ପୁରୀ ଜଗନ୍ନାଥଦେବଙ୍କୁ ନିବେଦିତ ଖାଦ୍ୟ ବା ପ୍ରସାଦ; ମାହାର୍ଦ୍ଦ—4. Food offered to the Deity Jagannātha at Puri. ଦେ. ବି—ଭୁବନେଶ୍ୱରର ଲିଙ୍ଗରାଜଦେବଙ୍କୁ ଅର୍ପିତ ଖାଦ୍ୟ—Food offered to the Deity Lingarāja of Bhubaneśwara. [ଦ୍ର—ଦେବତାଙ୍କୁ ଭୋଗ ଦିଆଯିବା ନିମନ୍ତେ ଅଭିପ୍ରେତ ବସ୍ତୁକୁ ଅମୁନିଆ ବୋଲାଯାଏ, ତାହା ଭୋଗ ଲାଗି ସାରିଲେ 'ମହାପ୍ରସାଦ' ହୁଏ । ଭାରତ ବର୍ଷରେ କେବଳ ପୁରୀ ଜଗନ୍ନାଥଙ୍କ ଅନ୍ନ ଭୋଗକୁ ଲୋକେ ମହାପ୍ରସାଦରୂପେ ଛୁଆଁ ଅଛୁଆଁ ଓ ଶଙ୍କା ଓ ଅଇଁଠା ବାରଣ ନ କରି ଖାଇ ଥାଆନ୍ତି । ଶାସ୍ତ୍ର ଅନୁସାରେ ଶିବଙ୍କ ନିବେଦିତ ଅନ୍ନ ସାଧାରଣ ହିନ୍ଦୁମାନଙ୍କର ଖାଇବା ଉଚିତ ନୁହେଁ । କିନ୍ତୁ ଅଳ୍ପଦିନ ହେବ, ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଠାରେ ନିବେଦିତ ଅନ୍ନଭୋଗକୁ ସ୍ଥାନୀୟ ଲୋକେ ପୁରୀ ଜଗନ୍ନାଥଙ୍କ ମହାପ୍ରସାଦ ପରି ବ୍ୟବହାର କରୁଅଛନ୍ତି; କିନ୍ତୁ ଏହା ସର୍ବବାଦିସମ୍ମତ ନୁହେ । କେହି କେହି କହନ୍ତି ଯେ ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁ 'ସ୍ୱୟଂଭୁ ଲିଙ୍ଗ' ଥିବାରୁ ଏହାଙ୍କର ପ୍ରସାଦ ('ଶିବ ନିର୍ମାଲ୍ୟ' ହେଲେହେଁ)

ସମସ୍ତଙ୍କର ସେବନୀୟ । ଆଉ କେହି କେହି କହନ୍ତି ଯେ, ଏହା ଲିଙ୍ଗରାଜଙ୍କୁ ଭୋଗ ଲାଗିବା ପରେ ବିଷ୍ଣୁଙ୍କ ନାମରେ ଅର୍ପଣ କରାଯାଏ; ଏଥିପାଇଁ ଏହା ମହାପ୍ରସାଦ ଅଟେ । କେହି କେହି କହନ୍ତି, ଭୁବନେଶ୍ୱରର ଲିଙ୍ଗରାଜ ହରିହର ମୂର୍ତ୍ତି, ଏଥିପାଇଁ ତାଙ୍କ ଠାରେ ନିବେଦିତ ଦ୍ରବ୍ୟ ଶିବ ନିର୍ମାଲ୍ୟ ନ ହୋଇ ମହାପ୍ରସାଦ ଅଟେ । ଫଳତଃ ଭୁବନେଶ୍ୱରର ଲିଙ୍ଗରାଜଙ୍କ ଅନ୍ନ ଭୋଗ ଭାରତର ଅନ୍ୟ ଶିବଙ୍କ ଠାରେ ଦେଖାଯାଏ ନାହିଁ । ରାମେଶ୍ୱରର ରାମନାଥ, ଦେଓଘରର ବାବା ବୈଦ୍ୟନାଥ, ଓ କାଶୀର ବିଶ୍ୱନାଥ ଆଦି ଶିବଙ୍କ ବିଗ୍ରହ ଉପରେ ନୈବେଦ୍ୟମାନ ଢଳାଯାଏ । ପୁରୀରେ ଯେଉଁ ମହାସୁଆରମାନେ ଅନ୍ନ ବ୍ୟଞ୍ଜନାଦି ମହାପ୍ରସାଦ ରାନ୍ଧନ୍ତି, ସେମାନେ ଉଚ୍ଚ ଶ୍ରେଣୀର ବ୍ରାହ୍ମଣ ନୁହନ୍ତି । ସମାଜରେ ଉଚ୍ଚ ଶ୍ରେଣୀର ବ୍ରାହ୍ମଣମାନେ ଉକ୍ତ ସୁଆର ଶ୍ରେଣୀର ବ୍ରାହ୍ମଣମାନଙ୍କଦ୍ୱାରା ପାକ ହୋଇ ଥିବା ଅନ୍ନ ବ୍ୟଞ୍ଜନାଦି ସାଧାରଣ ଭାବରେ ଖାଆନ୍ତି ନାହିଁ; କିନ୍ତୁ ବଡ଼ ଦେଉଳରେ ସେହିମାନେ ରାନ୍ଧିଥିବା ଅନ୍ନ ବ୍ୟଞ୍ଜନାଦି ଭୋଗ ହୋଇ ସାରିବା ପରେ କୁଳୀନ ବ୍ରାହ୍ମଣ ଓ ବୈଷ୍ଣବମାନେ ବିନା ଆପତ୍ତିରେ ଗ୍ରହଣ କରନ୍ତି । ଶୂଦ୍ର ଓ ଚଣ୍ଡାଳ ଛୁଇଁଲେ ମଧ୍ୟ ସେ ମହାପ୍ରସାଦକୁ ବ୍ରାହ୍ମଣମାନେ ଭକ୍ଷଣ କରିବା ଶାସ୍ତ୍ରସିଦ୍ଧ । ଭିନ୍ନ ଭିନ୍ନ ପ୍ରଣାଳୀରେ ପ୍ରସ୍ତୁତ ଅନ୍ନ ଓ ମିଷ୍ଟାନ୍ନ ମହାପ୍ରସାଦର ଭିନ୍ନ ଭିନ୍ନ ନାମ ଅଛି । (ଯଥା— ଘିଅନ୍ନ, ଖେଚୁଡ଼ି, କାନିକା, ସରପୁଲି, କାକରା, ଛେନା, ମାଣ୍ଡୁଅ, ଭାତଅନ୍ନ, ଖୁରୁମା, ଗଜା, କାକରା ଇତ୍ୟାଦି । ଜଗନ୍ନାଥ ମନ୍ଦିରରେ ଯେଉଁ ବ୍ୟଞ୍ଜନମାନ ହୁଏ ସେଥିରେ ବିଲାତି ଆଳୁ, ଲାଉ, ସଜନାଛୁଇଁ, ପିଆଜ, ଆଦି କେତେ ପରିବା ମିଶେ ନାହିଁ ।

ପରସ୍ପର ପାଟିରେ ଦିଆଦେଇ ହୋଇ ଯେଉଁ ବନ୍ଧୁତା ସ୍ଥାପିତ ହୁଏ ତାହା ପବିତ୍ର ଓ ଅଚ୍ଛେଦ୍ୟ; ଲୋକେ ମହାପ୍ରସାଦ ଦିଆଦେଇ ହୋଇ ଧର୍ମ ବାପ, ଧର୍ମ ପୁଅ, ଧର୍ମ ଭାଇ, ଧର୍ମ ଭଉଣୀ, ଧର୍ମ ମାଆ, ସଙ୍ଗାତ, ମଇତ୍ରଆଦି ଧର୍ମ ସମ୍ପର୍କ ପରସ୍ପରରେ ବସାନ୍ତି । ବିବାହ ପ୍ରସଙ୍ଗରେ ବରପକ୍ଷ ଓ କନ୍ୟାପକ୍ଷଙ୍କ ମଧ୍ୟରେ ନିର୍ବନ୍ଧ ବା ଜବାବ୍ ମହାପ୍ରସାଦକୁ ସାକ୍ଷୀ ରଖି କରାଯାଏ; ଏହାକୁ ମହାପ୍ରସାଦ ନିର୍ବନ୍ଧ କହନ୍ତି । ଲୋକେ ମହାପ୍ରସାଦକୁ ସ୍ପର୍ଶ କରି ହଲପ କରନ୍ତି ଓ ମହାପ୍ରସାଦକୁ ଛୁଇଁ 'ସତ୍ୟ' ବା 'ପ୍ରତିଜ୍ଞା' କରନ୍ତି । 'ମହାପ୍ରସାଦ' ମୂଳକ ବନ୍ଧୁତା, ନିର୍ବନ୍ଧ ଓ ସତ୍ୟକୁ ଯେ ଲଙ୍ଘନ କରେ ସେ ପାପଭାଗୀ ହୁଏ । 'ମହାପ୍ରସାଦ' ଲଙ୍ଘନ କରି ଓ ତହିଁର ଦୋହାଇଦେଇ ଅକାର୍ଯ୍ୟ ସାଧନ କରିବା ଘଟନା ପ୍ରତି ବ୍ୟଙ୍ଗ କରି ଲୋକେ କହି ଥାଆନ୍ତି 'ମହାନଦୀ ମହାପ୍ରସାଦ' ଏହାଙ୍କୁ ବିଶ୍ୱାସ ନାହିଁ । ]

ମହାପ୍ରସାଦ ଉଠା(ଠେ)ଇବା—ଦେ. କ୍ରି - ୧ । ମହାପ୍ରସାଦକୁ ସାକ୍ଷୀ
Mahāprasāda uṭhā(ṭhe)ibā ରଖି କୌଣସି ଅଙ୍ଗୀକାର
महाप्रसाद ओठान କରିବା—1. To make a solemn
गङ्गाजल उठाना promise by touching the
पाकादेखा Mahāprasāda. ୨ । ମହାପ୍ରସାଦ
सिद्धान्त करना; मंगनी करना ନିର୍ବନ୍ଧଦ୍ୱାରା ବର କନ୍ୟାଙ୍କର ବିବାହ ସ୍ଥିର କରିବା—2. To perform the ceremony of formal betrothal after exchange of Mahāprasāda between the guardians of the bride and bridegroom. ୩ । ମହାପ୍ରସାଦ ଛୁଇଁ ଶପଥ ବା ହଲପ କରିବା— 3. To take a solemn oath by touching Mahāprasāda. ୪ । ମହାପ୍ରସାଦକୁ ସାକ୍ଷୀ ରଖି ପରସ୍ପର ମଧ୍ୟରେ ବନ୍ଧୁତା ସ୍ଥାପନ କରିବା—4. To set up a god-relationship between each other by exchange or mutual feeding of Mahāprasāda.

ମହାପ୍ରସାଦ କଣିକା—ସଂ. ବି (୬ଷ୍ଠୀ ତତ୍)—କଣିକା ମାତ୍ର ମହାପ୍ରସାଦ
Mahāprasāda kaṇikā —A small particle of Mahāprasāda.

ମହାପ୍ରସାଦ ଛୁ(ଛୋ)ଇଁବା—ଦେ. କ୍ରି ( ସଂ. ମହାପ୍ରସାଦ + ସ୍ପୃଶ୍ ଧାତୁ )
Mahāprasāda chhu(chho)iñbā —୧ । ମହାପ୍ରସାଦକୁ
महाप्रसाद छोआँ (धरा) ସ୍ପର୍ଶ କରି ହଲପ କରିବା—1 To
गङ्गाजल छूना testify to a matter by
(ମହାପ୍ରସାଦ ଧରିବା—ଅନ୍ୟରୂପ) touching the Mahāprasāda. ୨ । ମହାପ୍ରସାଦକୁ ଧରି ସତ୍ୟ ବା ଅଙ୍ଗୀକାର କରିବା—2. To make a solemn promise by touching the Mahāprasāda.

ମହାପ୍ରସାଦ ଟେକିବା—ଦେ. କ୍ରି —କନ୍ୟାପକ୍ଷର କର୍ତ୍ତା "ମୋ କନ୍ୟାକୁ
Mahāprasāda ṭekibā ମନୋନୀତ ବରଙ୍କ ସଙ୍ଗେ ବିବାହ
(ମହାପ୍ରସାଦ ଟେକିଦେବା—ଅନ୍ୟରୂପ) ଦେବି" ଏହି ବାକ୍ୟ ବୋଲି
पाकादेखा ବରପକ୍ଷୀୟ କର୍ତ୍ତାଙ୍କ ହାତକୁ 'ମହାପ୍ରସାଦ' ଟେକି
सिद्धान्तकरना ଦେବା—(a bride's guardian) To hand over Mahāprasāda to the bridegroom's party as a formal and solemn token of betrothal. [ ଦ୍ର—ଏ କର୍ମକୁ ମହାପ୍ରସାଦ ନିର୍ବନ୍ଧ ବୋଲାଯାଏ । ଯେଉଁ କନ୍ୟା ସମ୍ବନ୍ଧେ ମହାପ୍ରସାଦ ନିର୍ବନ୍ଧ ହୋଇଥାଏ ତାକୁ 'ବାଗ୍‌ଦତ୍ତା' କନ୍ୟା ବୋଲାଯାଏ । ]

ମହାପ୍ରସାଦ ତୋରା(ଡ଼ା)ଣି—ଦେ. ବି—ଦହି, ଅଦାଛେଚା, ଲଙ୍କାମରିଚ
Mahāprasāda torā(ṛdā)ṇi ପ୍ରଭୃତି ମିଶାଯାଇ ପ୍ରସ୍ତୁତ
महाप्रसाद आमानी ହୋଇଥିବା ଅନ୍ନ ମହାପ୍ରସାଦ ମିଶ୍ରିତ ରୁଚିକର ପାନୀୟ—A palatable drink made of curd, ginger, red pepper etc. mixed with the rice water of Mahāprasāda. [ ଦ୍ର—ଏଥିରେ ଅଳ୍ପ ପରିମାଣରେ ଜଗନ୍ନାଥଙ୍କର ଅନ୍ନ ମହାପ୍ରସାଦ ଦିଆ ହେଉଥିବାରୁ ଏପରି ନାମ ହୋଇ ଅଛି । ]

**ମହା ପ୍ରସାଦ ଦେବା**—ଦେ· କ୍ରି—କୌଣସି ବ୍ୟକ୍ତିଙ୍କ ହାତରେ ବା
Mahā prasāda debā ପାଟିରେ ମହାପ୍ରସାଦ ଅର୍ପଣ କରି ବନ୍ଧୁତା
महा प्रसाद पातान ସ୍ଥାପନ କରିବା—To set up a god-relationship with a person by handing over or putting in his mouth Mahāprasāda.

**ମହା ପ୍ରସାଦ ଦ୍ରୋହୀ**—ସ. ବିଣ (ଅଧୁନାକ ପ୍ରୟୋଗ)—ଯେଉଁ ବ୍ୟକ୍ତି
Mahā prasāda drohī ମହାପ୍ରସାଦ ଲଙ୍ଘନ କରେ—
महा प्रसाद द्रोही One who breaks a promise made,
**गङ्गा जल उठाकर तोनेड वाला** relationship start-
(ମହାପ୍ରସାଦ ଦ୍ରୋହିଣୀ—ସ୍ତ୍ରୀ) ed or betrothal perfor-
[ମହାପ୍ରସାଦ ଦୋରେ(ରି,ରୋ)ହା—ଦେଶଜରୂପ] med through the medium of Mahāprasāda.

**ମହା ପ୍ରସାଦ ନିର୍ବନ୍ଧ**—ଦେ. ବି—ବରକର୍ତ୍ତା ଓ କନ୍ୟାକର୍ତ୍ତାଙ୍କ
Mahā prasāda nirbandha ମଧ୍ୟରେ ମହାପ୍ରସାଦ ହାତ-
पाका देखा ଦେଇ ହୋଇ ବିବାହ ସମ୍ବନ୍ଧ ଯେଉଁ ସ୍ଥିର କରାଯା
**सिद्धान्त, मंगनी** ବା ବାଗଦାନ କରାଯାଏ—The ceremony of formal betrothal solemnized by the exchange of Mahāprasāda between the bride's and bridegroom's guardians

**ମହା ପ୍ରସାଦ ବନ୍ଧୁ**—ଦେ. ବି—ଧର୍ମବନ୍ଧୁ; ପ୍ରୀତିବନ୍ଧୁ; ପରସ୍ପର ମଧ୍ୟରେ
Mahā prasāda bandhu ମହାପ୍ରସାଦ ହାତଦେଇ ହୋଇ ବା
महा प्रसाद बन्धु, धर्मबन्धु ଧର୍ମଦେବତାଙ୍କୁ ସାକ୍ଷୀ ରଖି ଯେଉଁମାନଙ୍କ
**धर्म बन्धु** ମଧ୍ୟରେ ବନ୍ଧୁତା ସ୍ଥାପିତ ହୋଇଥାଏ—God-relations; persons between whom a solemn relationship has been set up by the exchange of Mahāprasāda. [ଦ୍ର—ସାଧାରଣତଃ ଦେଖାଯାଏ ଯେ ଲୋକେ ମହାପ୍ରସାଦ ହାତଦେଇ ହୋଇ ପିତା-ପୁତ୍ର, ଭାଇ-ଭଉଣୀ, ମାତା-ପୁତ୍ର, ପିତା-କନ୍ୟା, ମାତା-କନ୍ୟା, ଭାଇ-ଭାଇ ଆଦି ସମ୍ବନ୍ଧ ବସାନ୍ତି । ଏ ସମ୍ବନ୍ଧ ବେଳେବେଳେ ରକ୍ତ ସମ୍ବନ୍ଧ ଓ ବିବାହ ସମ୍ବନ୍ଧଠାରୁ ଘନିଷ୍ଠତର ହେବା ଦେଖାଯାଏ । ବେଳେ ବେଳେ ମଧ୍ୟ ଲୋକେ ଏହି ସମ୍ବନ୍ଧର ଅପବ୍ୟବହାର କରନ୍ତି । ଯେଉଁମାନେ ମହାପ୍ରସାଦ ହାତଦେଇ ହୋଇ ବନ୍ଧୁ ବସିଥାଆନ୍ତି ସେମାନେ ପରସ୍ପରକୁ 'ସଙ୍ଗାତ', 'ଅଭଡ଼ା', 'ପହିଲି ଭୋଗ', 'ସଇପ୍ରଲ' ଓ 'ମହାପ୍ରସାଦ' ଆଦି ନାମରେ ଡକାଡକି କରନ୍ତି । ଏହି ଧର୍ମବନ୍ଧୁତା ଉତ୍ତର ଭାରତ ଅଞ୍ଚଳରେ ଦେଖି ହେଲେ ନାହିଁ, କେବଳ ଦୁଇ ଜଣ ବ୍ୟକ୍ତି ଗଙ୍ଗା ଜଳ ହାତଦେଇ ହୋଇ ଧର୍ମ ବନ୍ଧୁତା ବାନ୍ଧନ୍ତି । ]

**ମହାପ୍ରସାଦ ବନ୍ଧୁତା**—ଦେ. ବି—ପ୍ରୀତି ବନ୍ଧୁତା; ମହାପ୍ରସାଦ ହାତ-
Mahāprasāda bandhutā ଦେଇ ହୋଇ ସ୍ଥାପିତ ବନ୍ଧୁତା-
महा प्रसाद बन्धुता, धर्मबन्धुता God-relationship set up
**धर्म बन्धुता** by the exchange of Mahāprasāda
(ମହାପ୍ରସାଦ ସମ୍ପର୍କ, ମହାପ୍ରସାଦ ସମ୍ବନ୍ଧ—ଅନ୍ୟରୂପ)

**ମହାପ୍ରସାଦ ଲଙ୍ଘନ କରିବା**—ଦେ. କ୍ରି—ମହାପ୍ରସାଦ ଦ୍ରୋହୀ ହେବା;
Mahāprasāda laṅghana karibā ମହାପ୍ରସାଦ ହାତ
(ମହାପ୍ରସାଦ ଲଙ୍ଘିବା—ଅନ୍ୟରୂପ) ଦେଇ ହୋଇ ସ୍ଥାପିତ ବନ୍ଧୁତା
महा प्रसाद लंघन करा, धर्म लंघन करा ବା ନିର୍ବନ୍ଧ ବା ସତ୍ୟକୁ
**सत्य भंग करना** ପାଳନ ନ କରିବା—To act against one's solemn promise or solemnized betrothal or god-relationship.

**ମହାପ୍ରସାଦ ସେବା**—ଦେ. ବି—୧ । ମହାପ୍ରସାଦ ଭୋଜନ—
Mahāprasāda Sebā 1. Partaking of Mahā-
महा प्रसाद सेवा prasāda. ୨ । ପ୍ରତିଦିନ ସନ୍ଧ୍ୟା ବନ୍ଦନାଦି ପରେ
**प्रसाद सेवा** ମହାପ୍ରସାଦର କଣିକା ମାତ୍ର ସେବନ—2. Partaking of a particle of Mahāprasāda after one's daily prayers, ୩ । ବିବାହାଦି ଉତ୍ସବରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ନାମମାତ୍ର ମହାପ୍ରସାଦ ସହ ଜଳଖିଆ ଆଦି ଭୋଜନ—3. Partaking of refreshments by the invited guests on festive occasions. [ଦ୍ର—ଭକ୍ତିର ଦୃଷ୍ଟିରେ 'ମହାପ୍ରସାଦ' ଅତ୍ୟନ୍ତ ପବିତ୍ର । ତେଣୁ ତାହା ପ୍ରତି 'ଖାଇବା' ଶବ୍ଦ ବ୍ୟବହୃତ ନ ହୋଇ 'ସେବା କରିବା' ବ୍ୟବହୃତ ହୁଏ । ବିବାହାଦି ଉତ୍ସବରେ ଆମନ୍ତ୍ରିତ ବ୍ୟକ୍ତିମାନଙ୍କୁ ମିଷ୍ଟାନ୍ନାଦି ଭୋଜନ ଦିଆଯିବା ଆରମ୍ଭରେ ଭୋଜନ ପତ୍ରରେ ପ୍ରଥମେ ନାମମାତ୍ର ମହାପ୍ରସାଦ ପରିବେଷଣ କରାଯିବା ପରେ ଅନ୍ୟାନ୍ୟ ମିଷ୍ଟାନ୍ନ ଲଗାଯାଏ; ଏଥିପାଇଁ ଏପରି ମିଷ୍ଟାନ୍ନ ଭୋଜନକୁ ମଧ୍ୟ 'ମହାପ୍ରସାଦ ସେବା' ବୋଲାଯାଏ ।]

**ମହା ପ୍ରସ୍ଥାନ**—ସଂ. ବି (କର୍ମଧା; ମହତ୍ ଶବ୍ଦ ତଳେ ଟୀକା ଦେଖ)—
Mahā prasthāna ୧ । ମହାଯାତ୍ରା; ମରିବା ନିମନ୍ତେ ତୀର୍ଥ ଆଦିର ଉଦ୍ଦେଶ୍ୟରେ ଜୀବନର ଶେଷ ଯାତ୍ରା—1 The final starting for a place of pilgrimage with a view to meet one's death there. ୨ । ମୃତ୍ୟୁ—2. Death. ୩ । ମରଣ ପଥ—3. The road leading to death. ୪ । ପାଣ୍ଡବମାନଙ୍କର ସ୍ୱଦେହରେ ସ୍ୱର୍ଗକୁ ଯିବା ପାଇଁ ହିମାଳୟର ଉଚ୍ଚ ଦେଶକୁ ଯାତ୍ରା—4. The journey of the Pāṇḍaba-brothers to the Himalayan region to bodily go to heaven ୫ । ପାଣ୍ଡବମାନଙ୍କର ମହାପ୍ରସ୍ଥାନ ବର୍ଣ୍ଣିତ ହୋଇଥିବା ମହାଭାରତର ପର୍ବ ବିଶେଷ—5. The title of one of the 18 sections or books of the great Sanscrit epic Mahābhārata describing the final journey of the Pāṇḍaba-brothers towards heaven.

**ମହା ପ୍ରଭୁ**—ଗ୍ରା. ବି (ସ. ମହାପ୍ରଭୁ)—ମହା ପ୍ରଭୁ ( ଦେଖ )
Mahā prahu महा प्रभु Mahā-prabhu ( See )
(ମହାପ୍ରୁ, ମହାପ୍ରେଭୁ—ଅନ୍ୟରୂପ)

ମହା ପ୍ରାଣ—ସଂ.ବି.(ମହତ୍ + ପ୍ରାଣ=ପ୍ରାଣ ବାୟୁ ଯାହାର; ବହୁବ୍ରୀହି)—
Mahā prāṇa ୧ । (ବ୍ୟାକରଣ) ବର୍ଗର ୨ୟ ଓ ୪ର୍ଥ ବର୍ଣ୍ଣମାନ 'ଖ, ଘ, ଛ, ଝ, ଠ, ଢ, ଥ, ଧ, ଫ, ଭ) ଓ ଶ, ଷ, ସ, ଓ ହ—1. The 2nd and 4th letters of the 5 Bargas of the consonants and the sibiliants of S and H; the aspirates among the consonants. [ ଦ୍ର—ଯେଉଁ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ବେଶି ନିଶ୍ୱାସ ଦରକାର ହୁଏ ତାକୁ ମହାପ୍ରାଣ ବର୍ଣ୍ଣ ବୋଲାଯାଏ । ] ୨ । ଉପଯୁକ୍ତ ବର୍ଣ୍ଣମାନଙ୍କ ଉଚ୍ଚାରଣରେ ବ୍ୟବହୃତ ଶ୍ୱାସ—2. The hard breathing or aspirate sound made in the pronunciation of the aspirates ( Apte ). ୩ । ଡାମରକୁଆ—3. The crow; rook. ବିଣ. ପୁଂ—୧ । ଅତି ଉଦାର ହୃଦୟଯୁକ୍ତ ( ବ୍ୟକ୍ତି )—1. High-minded. ୨ । (ବ୍ୟାକରଣ) ଯେଉଁ ବର୍ଣ୍ଣମାନଙ୍କ ଉଚ୍ଚାରଣ ପାଇଁ ବେଶି ଶ୍ୱାସ ଦରକାର ହୁଏ—2. ( grammar ) (letters) Requiring hard breathing or aspirate sound.

ମହାପ୍ରାଣୀ—ସଂ. ବି ( ମହତ୍+ପ୍ରାଣିନ୍; କର୍ମଧା )—ଉଚ୍ଚଶ୍ରେଣୀସ୍ଥ ଜୀବ
Mahāprāṇī ( ଯଥା—ମନୁଷ୍ୟ )—An animal of a high order

ମହାଫଳ—ସଂ. ବିଣ (ମହତ୍+ଫଳ ଯାହାର; ବହୁବ୍ରୀହି) ୧ । ବୃହତ୍
Mahāphala ଫଳବିଶିଷ୍ଟ—1. Bearing large fruits.
(ମହାଫଳା—ସ୍ତ୍ରୀ) ୨ । ଯେଉଁ କାର୍ଯ୍ୟଦ୍ୱାରା ମହତ୍‌ଫଳ ପ୍ରାପ୍ତି ହୁଏ—2. Resulting in the achievement of great results. ୩ । ବହୁ ଫଳ ପ୍ରସବକାରୀ—3. Bearing much fruit ( Apte ). ୪ । ଯହିଁରୁ ବହୁ ପୁରସ୍କାର ଲାଭ ହୁଏ—4. Bringing much reward. ବି—୧ । ବେଲବୃକ୍ଷ ଓ ଫଳ—1. The Marmelus( tree and fruit) ୨ । (କର୍ମଧା) ବୃହତ ଫଳ—2 Great result; big fruit. ୩ । ଅଧିକ ପୁରସ୍କାର—3. Great reward.

ମହାଫଳା—ସଂ. ବି ( ମହାଫଳ + ଆ )—୧ । ଇନ୍ଦ୍ରବାରୁଣୀ; ପାଞ୍ଚ-
Mahāphalā କୋଡ଼ିଆଲଇ ଲତା; ମହାକାଳ ଲତା ( ମହାକାଳ ଦେଖ )—1. Colocynth ( creeper ). ୨ । ପିତା ଲାଉ—2. The bitter gourd (Apte). ୩ । ଏକପ୍ରକାର ବର୍ଚ୍ଛା—3. A kind of spear ( Apte ). ସଂ. ବିଣ. ସ୍ତ୍ରୀ ( ବହୁବ୍ରୀହି )—ମହାଫଳର ସ୍ତ୍ରୀଲିଙ୍ଗ—Feminine of Mahāphala.

ମହାଫିଜ(ସ୍, ସି)—ବୈଦେ. ବି ( ଆ. ମୁହାଫୀଜ୍; କଚେରୀଆ )—
Mahāphij(s, si) ୧ । ଅଫିସର କାଗଜ ପତ୍ରର ରକ୍ଷକ କର୍ମ-
ମହାଫି(ଫେ)ଜ, ମୋହାଫେଜ ଚାରୀ—1. Record-keeper of an
ମୁହାଫୀଜ office. ୨ । ନାବାଳଗର ଅଭିଭାବକ—2. The guardian of a minor. [ ଦ୍ର—ଏହି ମହାଫିଜ୍ ଶବ୍ଦଯୁକ୍ତ ମାଲ ମହାଫିଜ୍, ଫୌଜଦାରୀ ମହାଫିଜ୍, ଭାଇ ମହାଫିଜ୍, ସାର୍ଟିଫିକେଟ୍ ପ୍ରାପ୍ତ ମହାଫିଜ୍, ସଙ୍ଗୀତ ମହାଫିଜ୍, ଶରାର ମହାଫିଜ୍ ଓ ଦଫ୍ତରମାଲ ମହାଫିଜ୍ ଆଦି କଚେରୀଆ ଶବ୍ଦମାନ ଭାଷାରେ ବ୍ୟବହୃତ ହୁଏ ।]

ମହାଫିଜ୍(ସ୍, ସି)ଖାନା—ବୈଦେ. ବି (ଆ. ମୁହାଫିଜ୍‌ଖାନା; କଚେରୀଆ)—
Mahāphij(s, si)khānā ଯେଉଁ ସ୍ଥାନରେ କାଗଜପତ୍ର ଜମାଇ
ମୋହାଫେଜଖାନା ମୁହାଫୀଜଖାନା ହୋଇଥାଏ—Record-room. [ଦ୍ର—ଦେୱାନୀ ଅଦାଲତ କଚେରୀରେ, କଲେକ୍ଟରୀ କଚେରୀରେ ଓ ଫଉଜଦାରୀ କଚେରୀ ଆଦିରେ ଯେଉଁ ଯେଉଁ ଇଲାକା ସମ୍ପର୍କୀୟ କାଗଜପତ୍ର ଯେଉଁ ଯେଉଁ ସ୍ଥାନରେ ରଖାଯାଏ ସେହି ସେହି ଇଲାକାର ନାମରେ ଉକ୍ତ ମହାଫିଜଖାନାର ନାମ ଡକା ହୁଏ; ଯଥା—ଅଦାଲତ ମହାଫିଜଖାନା, କଲେକ୍ଟରୀ ମହାଫିଜଖାନା, ଫଉଜଦାରୀ ମହାଫିଜଖାନା । ]

ମହା ବଂଶ—ସଂ. ବି ( କର୍ମଧା )—୧ । ମହତ୍‌କୁଳ; ଉଚ୍ଚବଂଶ; ପ୍ରସିଦ୍ଧ
Mahā bamśa ବଂଶ—1. Noble family; a celebrated race ୨ । ସଂସ୍କୃତଗ୍ରନ୍ଥବିଶେଷ—2. Title of a Sanskrit work. ସଂ. ବିଣ. ପୁଂ ( ବହୁବ୍ରୀହି )—
(ମହାବଂଶା—ସ୍ତ୍ରୀ) ଉଚ୍ଚକୁଳସମ୍ଭୂତ—Born of a high or noble family.

ମହାବନ—ସଂ. ବି. ( କର୍ମଧା )—୧ । ଅଗମ୍ୟ ବନସ୍ଥ; ଗଭୀର
Mahābana ଅରଣ୍ୟ; ଘୋର ଜଙ୍ଗଲ; ଯେଉଁ ଜଙ୍ଗଲ ବଡ଼ ବଡ଼ ଗଛ ଲତାଆଦିରେ ପୂର୍ଣ୍ଣ—1. A dense or deep forest. ୨ । ବୃନ୍ଦାବନସ୍ଥ ୮୪ ବନ ମଧ୍ୟରୁ ଏକତମ—2. Name of one of the 84 forests of Bṛundābana ( mentioned in the Bhāgabata ).

ମହା ବରାହ—ସଂ. ବି—୧ । ବିଷ୍ଣୁଙ୍କର ତୃତୀୟ ବା ବରାହ ଅବତାର—
Mahā barāha 1. The 3rd incarnation of Bishṇu as the Great Boar. ୨ । ବିଷ୍ଣୁଙ୍କ ସହସ୍ରନାମୋକ୍ତ ଏକ ନାମ—2. A name of Bishṇu. ଦେ. ବି—ବରାହନାଥ ( ଦେଖ ) 3. Barāhanātha ( See )

ମହାବଳ—ସଂ. ବିଣ. ପୁଂ ( ମହତ୍ + ବଳ; ବହୁବ୍ରୀହି )—ପ୍ରବଳ;
Mahābala ଅତ୍ୟଧିକ ବଳଶାଳୀ—Mighty; very
(ମହାବଳୀ—ସ୍ତ୍ରୀ) powerful; very strong. ସଂ. ବି—୧ । ବୁଦ୍ଧଦେବ—1. The Buddha. ୨ । ପବନ; ବାୟୁ—2. The air; the wind. ୩ ।
ମହାବଳବାଘ ସୀସା ଧାତୁ—3 Lead (metal). ୪ । ବତାସ—
ଗୋନାଘା 4. Tempest; storm (Apte). ଦେ. ବି—୧ ।
ମହାବଳବାଘ ବଡ଼ ବାଘ—1. A very big tiger. ୨ । ପଟାବାଘ ମଣିଷଖିଆ ବାଘ—2. The Bengal man-eating tiger; the Royal Bengal tiger. (ଢ଼—ଢଳୀସାଇରେ କଟାସ ମହାବଳ—ନ୍ୟାୟ; ମହାବଳଙ୍କୁ ଗୋହଡ଼ିଆ ପାର୍—ଇତ । )

**ମହାବଳା**—ସଂ. ବି (ମହାବଳ + ଅ)—୧ । ଶ୍ୱେତ ବାଡ଼ ଅଁଳା—Mahābaḷā 1. Sida Rhomboidea. ୨ । ବଜ୍ରମୂଳି (ଦେଖ)—2 Bajramūḷi (See) (ଦ୍ରବ୍ୟଗୁଣ)

**ମହାବଳୀ**—ସଂ. ବିଣ. ପୁଂ (ମହାନ୍ + ବଳନ୍; ୧ମା. ୧ବ)—ଅତ୍ୟନ୍ତ ବଳଶାଳୀ; ପ୍ରବଳ ପରାକ୍ରମଶାଳୀ—Mahābaḷi Very mighty or powerful. ସଂ. ବି. ପୁଂ—୧ । ମହାବୀର; ମହାଯୋଦ୍ଧା—1. A great warrior; a hero. ୨ । ଦେବତାରୂପେ ପୂଜିତ ହନୁମାନ୍ ମୂର୍ତ୍ତି—2. Hanumān who is worshipped as a Deity and is represented to be a warrior of great valour.

**ମହାବାକ୍ୟ**—ସଂ. ବି (କର୍ମଧା)—୧ । ବଡ଼ ବାକ୍ୟ—1. A big Mahā bākya sentence; a collection of words. ୨ । ମହତ୍ ବା ମୂଲ୍ୟବାନ୍ ବାକ୍ୟ—2. A great or valuable saying. ୩ । ମହାଜନମାନଙ୍କ ବାଣୀ; ଆପ୍ତବାକ୍ୟ-3. The saying of great men. ୪ । ପ୍ରବଚନ—4. Proverb; wise saws. ୫ । ବ୍ରହ୍ମ ପ୍ରତିପାଦକ ବାକ୍ୟ; ଓଁ ତତ୍ ସତ୍; ସର୍ବଂ ଖଲ୍ୱିଦଂ ବ୍ରହ୍ମ—5. A great formula establishing the existence of the Supreme Being.

**ମହାବାୟୁ**—ସଂ. ବି (କର୍ମଧା)—୧ । ତୋଫାନ—1. Hurricane; Mahābāyu storm. ୨ । ପ୍ରାଣବାୟୁ—2 The (ମହାବାତ—ଅନ୍ୟରୂପ) vital airs of the body. ୩ । ପଞ୍ଚ ମହାଭୂତର ଏକତମ; ମରୁତ୍—3. The air as one of the elements of the creation (Apte).

**ମହାବା(ବ, ବି)ରା**—ଦେଶଜ. ବି (ଫା. ମୁହାବ(ବି)ରା)—୧ । ଅଭ୍ୟାସ—1 Habit. ୨ । ବିଶେଷ Mahābā(ba, bi)rā ଅଭ୍ୟାସ; ବୁଲୀ ବିଶିଷ୍ଟାର୍ଥବୋଧକ ବାକ୍ୟ ବା ପ୍ରୟୋଗ; ବୋଲି ମୁହାବି(ବ)ରା; —2. Idiom. [ଦ୍ର—ଇଂରାଜୀର Idiom **रोजमरा, बोलचाल** ଓ ପାରସୀ 'ମୁହାବରା' ଅର୍ଥବୋଧକ ପ୍ରତିଶବ୍ଦ ଓଡ଼ିଆରେ ନ ଥିବାରୁ ଏ ଶବ୍ଦର ବ୍ୟବହାର ପ୍ରଚଳିତ ହୋଇଅଛି । ଲକ୍ଷଣା ବା ବ୍ୟଞ୍ଜନାଦ୍ୱାରା ସିଦ୍ଧ ବାକ୍ୟ ବା ପ୍ରୟୋଗ, ଯାହା କୌଣସି ଏକ ଭାଷାରେ ବା ଏକ ଭାଷାରେ ପ୍ରଚଳିତ ହୁଏ ଓ ଯହିଁର ଅର୍ଥ ପ୍ରତ୍ୟକ୍ଷ (ଅଭିଧେୟ) ଅର୍ଥରୁ ପୃଥକ୍ ଥାଏ,ତାହା 'ମୁହାବରା' । କୌଣସି ଭାଷାରେ ପ୍ରଚଳିତ ଅସାଧାରଣ ଶବ୍ଦଯୋଜନା ଅଥବା ପ୍ରୟୋଗକୁ ଇଂରାଜୀରେ ଓ ଫାରସୀରେ 'ମୁହାବରା' ବୋଲାଯାଏ । ଯଥା—'ମାଡ଼ଖାଇବା' । ଏଠାରେ ଖାଇବା ଶବ୍ଦ ସାଧାରଣ ଅର୍ଥରେ ବ୍ୟବହୃତ ହୋଇ ନାହିଁ; ଏହା ଲାକ୍ଷଣିକ ଅର୍ଥରେ ବ୍ୟବହୃତ ହୋଇଅଛି; କାରଣ ମାଡ଼'ଖାଇବାର ଦ୍ରବ୍ୟ' ନୁହେଁ; କିନ୍ତୁ ଓଡ଼ିଆଭାଷାରେ ମାଡ଼ ଖାଇବାର ଅର୍ଥ 'ଅନ୍ୟ ବ୍ୟକ୍ତିଠାରୁ ମାଡ଼ ବା ପ୍ରହାର ସହିବା' ଅଟେ । ଏହିପରି ଓଡ଼ିଆ ଭାଷାରେ 'ଠକୁଣ କଥା', 'ଘର କରିବା' 'ରସ ନିକଳିଯିବା' ପ୍ରଭୃତିର ପ୍ରୟୋଗ ଅଛି । ଏହି ସବୁ ମହାବାରାକୁ ଅନ୍ୟ ଭାଷାରେ ଅକ୍ଷରକ ଅନୁବାଦ କଲେ, ଉକ୍ତ ଭାଷାନ୍ତରିତ ଅନୁବାଦ ସେହି ଭାଷାରେ ହାସ୍ୟାସ୍ପଦ ହୁଏ । ]

**ମହାବାରୁ(ରେ)ଣୀ**—ଗ୍ରା. ବି (ସଂ. ମହାବାରୁଣୀ)—ମହାବାରୁଣୀ Mahābāri(re)ṇi (ଦେଖ)—Mahābāruṇi (See) মহাবারুণী **महावारुनी**

**ମହା ବାରୁଣୀ**—ସଂ. ବି (ମହତୀ + ବାରୁଣୀ)—(ଜ୍ୟୋତିଷ) ଚୈତ୍ର କୃଷ୍ଣ Mahā bāruṇi ପକ୍ଷ ତ୍ରୟୋଦଶୀ ଦିନ ଶନିବାର ଓ ଶତଭିଷା (ମହା ମହାବାରୁଣୀ—ଅନ୍ୟରୂପ) ନକ୍ଷତ୍ର ପଡ଼ିଲେ ଯେଉଁ ମହାପୁଣ୍ୟମୟ ଯୋଗ ଘଟେ—A very auspicious conjunction which happens if the asterism Śatabhishā falls on a Saturday on the 13th day of the dark fortnight of the month of Chaitra. [ଦ୍ର—ଏ ଯୋଗରେ ଗଙ୍ଗାରେ ସ୍ନାନ କଲେ କୋଟି ଅଶ୍ୱମେଧ ଯାଗ କରିବାର ଫଳ ଲାଭ ହୁଏ । ବାରୁଣୀ ତଳେ ଟୀକା ଦେଖ ।]

**ମହାବାହୁ**—ସଂ. ବିଣ (ବହୁବ୍ରୀହି)—୧ । ବିଶାଳ ଭୁଜବିଶିଷ୍ଟ; ଆଜାନୁବାହୁ-Mahābāhu ବିଶିଷ୍ଟ—1. Having long arms. ୨ । ଅତି ଶକ୍ତିଶାଳୀ—2 Very powerful. ସଂ. ବି (ଆପଣାର ବାହୁଦ୍ୱାରା ତ୍ରିଭୁବନକୁ ଧାରଣ କରିଥିବାରୁ)—ଶ୍ରୀକୃଷ୍ଣ; ନାରାୟଣ; ଭଗବାନ; ବିଷ୍ଣୁ—God; Bishṇu.

**ମହାବିକ୍ରମ**—ସଂ. ବି (କର୍ମଧା)—ପ୍ରବଳ ପରାକ୍ରମ—Might. ସଂ. ବିଣ. Mahābikrama ପୁଂ—ପ୍ରବଳ ପରାକ୍ରମଶାଳୀ—Mighty. (ମହାବିକ୍ରମା—ସ୍ତ୍ରୀ)

**ମହାବିକ୍ରମଶାଳୀ**—ସଂ ବିଣ. ପୁଂ—ଅତିଶୟ ପରାକ୍ରମଶାଳୀ—Mahā bikramaśāli Very mighty. (ମହାବିକ୍ରମଶାଳିନୀ—ସ୍ତ୍ରୀ)

**ମହାବିଦ୍ୟା**—ସଂ. ବି—ଦଶମହାବିଦ୍ୟା; ଦୁର୍ଗା ବା ଶକ୍ତିଙ୍କର ତନ୍ତ୍ରୋକ୍ତ Mahābidyā ୧୦ଗୋଟି ମୂର୍ତ୍ତି—The ten incarnations of Durgā worshipped according to the Tantric rites. [ଦ୍ର—ଦଶମହାବିଦ୍ୟା—କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳା । ]

**ମହାବିନାୟକ**—ଦେ. ବି—ଉତ୍କଳର ପ୍ରଧାନ ପଞ୍ଚତୀର୍ଥ ମଧ୍ୟରୁ ଗୋଟିଏ Mahā binayaka ତୀର୍ଥ—The name of one of the five main holy places of Utkal (ମହାବିନା, ମହାବିନାକ, ମହାବିଣାଏକ—ଗ୍ରାମ୍ୟରୂପ) [ଦ୍ର—ମହାବିନାୟକ କଟକ ଜିଲ୍ଲାଅନ୍ତର୍ଗତ ଦର୍ପଣ କିଲ୍ଲା ମଧ୍ୟରେ ବରୁଣାବନ୍ତ ବା ବରୁଣିଆ ପାହାଡ଼ର କଟୀଦେଶରେ ଅବସ୍ଥିତ । ] (ଦ୍ର—ବିନାୟକ ବା ଗଣନାଥ ଏଠାର ଆରାଧ୍ୟ ଦେବତା । ମଦନମୋହନ. ତୀର୍ଥଦର୍ଶନ । ) ସଂ. ବି—ଗଣପତି; ଗଣେଶ—The Deity Ganesa.

**ମହାବିପଦ୍(ତ୍ତି)** —ସଂ. ବି (କର୍ମଧା)—ଘୋର ବିପତ୍ତି—
Mahābipad(tti) A great calamity.
(ମହାବିପଦ—ଦେଶଜରୂପ)

**ମହାବିପ୍ଳବ**—ସଂ. ବି (କର୍ମଧା)—ଘୋର ଗୋଳମାଳ—
Mahābiplaba Great confusion; much ado.

**ମହାବିଳ**—ସଂ. ବି (କର୍ମଧା)—୧ । ବୃହତ୍ ଓ ଗମ୍ଭୀର ଗର୍ତ୍ତ—1. A
Mahābila great and deep hole; abyss. ୨ । ଆକାଶ; ବାୟୁମଣ୍ଡଳ—2. The sky; the atmosphere. ୩ । ଅନ୍ତଃକରଣ; ମନ—3. Mind; the heart. ୪ । ଜଳଘଟ—4. A water-jar; pitcher (Apte)

**ମହାବିଷ**—ସଂ. ବି ( ବହୁବ୍ରୀହି )—ଦୋମୁଣ୍ଡିଆ ସାପ—A serpent
Mahābisha having two mouths (Apte)

**ମହାବିଷୁବ**—ସଂ. ବି (ମହତ୍+ବିଷୁବ=ମେଷ ସଂକ୍ରାନ୍ତି)—ପଣାସଂକ୍ରାନ୍ତି;
Mahābishuba ବୈଶାଖ ସଂକ୍ରାନ୍ତି; ରବିଙ୍କର ମେଷରାଶିକୁ ( ମହାବିଷୁବ ସଂକ୍ରାନ୍ତି—ଅନ୍ୟରୂପ ) ସଂକ୍ରମଣ—The sun's entry into the sign of Aries; the vernal equinox. [ଦ୍ର—ଏହି ଦିବସଠାରୁ ସୌରମାନ ବର୍ଷର ପ୍ରଥମ ଗଣନା ଆରମ୍ଭ ହୁଏ; ଏହା ସୌର ବୈଶାଖର ପ୍ରଥମ ଦିବସ ଓ ଏହିଠାରୁ ନୂତନ ଶକାବ୍ଦ ଗଣନାର ଆରମ୍ଭ । ]

**ମହାବିଷୁବ ଚକ୍ର**—ସଂ. ବି—(ଜ୍ୟୋତିଷ) ଅଙ୍ଗ ବିଶେଷରେ ୨୭ନକ୍ଷତ୍ର
Mahābishuba chakra ଚିତ୍ରିତ ନରାକୃତି ଜ୍ୟୋତିଷଚକ୍ର ବା ସଂକ୍ରାନ୍ତି ପୁରୁଷ—A figure of man drawn according to astrological calculations, showing the different asterisms on the different limbs of its body (according to which persons born in those asterisms undergo bliss or woe during the impending month).

**ମହାବୀଚି**—ସଂ. ବି (ବହୁବ୍ରୀହି; ମହାରୌରବ ତଳେ ଟୀକା ଦେଖ)—
Mahābichi ନରକବିଶେଷ—Name of a part of the hell

**ମହାବୀର**—ସଂ. ବିଣ (ମହାନ୍+ବୀର; କର୍ମଧାରୟ)—ଅତିଶୟ ବଳବାନ୍—
Mahābira Mighty; very valiant; heroic. ସଂ. ବି—
୧ । ପ୍ରଧାନ ବା ପ୍ରସିଦ୍ଧ ଯୋଦ୍ଧା—1. A mighty or distinguished warrior; a great warrior or hero, ୨ । ହନୁମାନ୍—2. The mighty monkey-hero. ୩ । ଦେବତାରୂପେ ପୂଜିତ ହନୁମାନ୍ ମୂର୍ତ୍ତି—3. The image of Hanumān worshipped as a Deity. ୪ । ଗରୁଡ଼—4. Garurda, the king of birds.
୫ । ଲକ୍ଷ୍ମଣ—5. Rāma's younger brother.
୬ । ସିଂହ—6. Lion ୭ । ଯଜ୍ଞୀୟ କଟାହ; ଯଜ୍ଞପାତ୍ର—7. A sacrificial pot or vessel. ୮ । ଯଜ୍ଞାଗ୍ନି—8. The sacrificial fire. ୯ । ବଜ୍ର—9. Thunderbolt. ୧୦ । ଶ୍ୱେତାଶ୍ୱ—10. A white horse. ୧୧ । ଜୈନ ତୀର୍ଥଙ୍କର ବିଶେଷ 11. Name of a Jaina saint. ୧୨ । ଜୈନ ଧର୍ମର ପ୍ରବର୍ତ୍ତକ ବିଶେଷ—12. Name of a preacher of Jainism. [ ଦ୍ର—ଏ କ୍ଷତ୍ରିୟ ଥିଲେ । ଏହାଙ୍କ ଜନ୍ମ ପାଟଣା ନିକଟ ବୈଶାଳୀ (ଖ୍ରୀ. ୫୯୯ ।] ୧୩ । କୋକିଳ—13. The cuckoo (Apte). ୧୪ । ଏକ ପ୍ରକାର ବାଜ ପକ୍ଷୀ—14. A kind of hawk (Apte). ୧୫ । ଅର୍ଜ୍ଜୁନ—15. An epithet of Arjuna. [ ଦ୍ର—ମହାବୀର ଶବ୍ଦ ସ୍ଥାନବିଶେଷରେ ଭୀମ, କର୍ଣ୍ଣ, ସିକନ୍ଦର ଆଦି ବଳଶାଳୀ ବ୍ୟକ୍ତିଙ୍କ ପ୍ରତି ପ୍ରୟୋଗ କରାଯାଏ । ]

**ମହାବୀର୍ଯ୍ୟ**—ସଂ. ବି—ଗୁହ୍ୟ ଓ ଲିଙ୍ଗମୂଳ ମଧ୍ୟସ୍ଥ ଶରୀରାଂଶ—The
Mahābirjya perineum; the lower part of the body between the genital organ and the rectum (Apte). ସଂ. ବିଣ. ପୁଂ—ମହାବିକ୍ରମ (ମହାବୀର୍ଯ୍ୟା—ସ୍ତ୍ରୀ) ( ଦେଖ )—Mahābikrama ( See

**ମହାବୀର ଚରିତ**—ସଂ. ବି—ମହାକବି ଭବଭୂତିଙ୍କ ପ୍ରଣୀତ ସଂସ୍କୃତ
Mahābira charita ନାଟକବିଶେଷ; ରାମଚରିତ ନାଟକ—The title of a Sanskrit drama by poet Bhababhūti. [ ଦ୍ର—ମହାକବି ଭବଭୂତିଙ୍କ ପ୍ରଣୀତ 'ଉତ୍ତର ରାମଚରିତ'ରେ ରାମାୟଣର ଉତ୍ତରାକାଣ୍ଡର ବିଷୟ ନାଟକାକାରରେ ବର୍ଣ୍ଣିତ ହୋଇଅଛି, କିନ୍ତୁ 'ମହାବୀର ଚରିତ'ରେ ରାମଙ୍କର ବିବାହଠାରୁ ବନବାସ, ସୀତାହରଣ, ଲଙ୍କାଯୁଦ୍ଧ, ରାବଣ ବଧ ଓ ଅଯୋଧ୍ୟା ପ୍ରତ୍ୟାଗମନ ଯାଏ ସମସ୍ତ ବିବରଣ ନାଟକାକାରରେ ଲିପିବଦ୍ଧ ହୋଇଅଛି । ମୂଳ ରାମାୟଣରେ ପ୍ରଦତ୍ତ ବିବରଣରୁ ଏ ସମସ୍ତ ବିବରଣରେ ଅନେକ ପାର୍ଥକ୍ୟ ପରିଲକ୍ଷିତ ହୁଏ ।]

**ମହାବୀର ସାଧନ(ନା)**—ସଂ. ବି—ତନ୍ତ୍ର ଶାସ୍ତ୍ରୋକ୍ତ ସାଧନା ବିଶେଷ—
Mahābira sādhana(nā) A Tantric rite practised for bringing the mighty 'Mahābira' under one's control. [ଦ୍ର—ଏହି ସାଧନାର ସିଦ୍ଧି ଲାଭ କଲେ ସାଧକ 'ମହାବୀର'ଙ୍କ ଦ୍ୱାରା ଅସାଧ୍ୟ କାର୍ଯ୍ୟମାନ ସାଧନ କରିଇ ପାରନ୍ତି ।]

**ମହାବୀର ସି(ସେ)କନ୍ଦର**—ଦେ. ବି—ପ୍ରବଳ ପରାକ୍ରମୀ ଗ୍ରୀସ୍‌ଦେଶୀୟ
Mahābira si(se)kandara ବୀର ଅଲେକ୍‌ଜାଣ୍ଡର—
মহাবীর সেকন্দর Alexandar the Great. [ ଦ୍ର—ଏହି-
**महावीर सिकन्दर** ପରି ମହାବୀର ନେପୋଲିୟନ୍, ମହାବୀର ୱାସିଙ୍ଗ୍‌ଟନ୍ ଆଦି ହୁଏ । ]

**ମହାବୀରା**—ସଂ ବି—କ୍ଷୀର କାଙ୍କୋଳି (ଦେଖ)—Kshira kānkoli
Mahābirā (See) ଦେ. ବିଣ ଓ ବି. (ପ୍ରାଚୀନ ପଦ୍ୟ)—ବଳବନ୍ତ; ବଳିଷ୍ଠ; ଯୋଦ୍ଧା—A great warrior.

(ଦ୍ର—ସପ୍ତମ କାଣ୍ଡ ଦଣ୍ଡ ସାଡ୍ୟର ମହାବୀର୍ଯ୍ୟ ବଳେ ଅଶ୍ୱତ୍ଥାମାଙ୍କ ଦେବୁଛନ୍ତି ଛନ୍ଦ । କୃଷ୍ଣଦ୍ୱି. ମହାଭାରତ. ଶ୍ଳୋ ।) ବୈଦେ. ବି—ମହାବୀର୍ଯ୍ୟ ( ଦେଖ ) Mahābārā ( See )

**ମହାବୀରିଆ**—ଦେ. ବିଣ—ମହାବୀର ଦେବତା ସମ୍ବନ୍ଧୀୟ—
Mahābiriā Relating to Mahābira.
**महावीरिया** (ଯଥା—ମହାବୀରିଆ ମଠ ।)

**ମହାବୀର୍ଯ୍ୟ**—ସ. ବିଣ. ପୁଂ (ବହୁବ୍ରୀହି)—ଖୁବ୍ ବଳଶାଳୀ—
Mahābirjya Very powerful; mighty.
(ମହାବୀର୍ଯ୍ୟା—ସ୍ତ୍ରୀ) ସ. ବି—ପରଂବ୍ରହ୍ମ; ପରମେଶ୍ୱର—
The Supreme Soul; God.

**ମହାବୀର୍ଯ୍ୟା**—ସ. ବିଣ. ସ୍ତ୍ରୀ (ମହାବୀର୍ଯ୍ୟ+ଆ)—ମହାବୀର୍ଯ୍ୟର ସ୍ତ୍ରୀଲିଙ୍ଗ—
Mahābirjyā Feminine of Mahābirjya.
ସ. ବି. ସ୍ତ୍ରୀ—୧ । ବନ୍ୟ କାର୍ପାସ ଗୁଳ୍ମ—1. The wild cotton shrub (Apte). ୨ । ସୂର୍ଯ୍ୟ ପତ୍ନୀ ସଂଜ୍ଞା—2. A name of Samjnā, a wife of the Sun-god (Apte).

**ମହା ବୁଦ୍ଧ**—ସ. ବି—ବୁଦ୍ଧଦେବ—
Mahā buddha The great Buddha.

**ମହା ବେଗ**—ସ. ବି (କର୍ମଧାରୟ)—୧ । ଅତ୍ୟନ୍ତ ବେଗ—1. Great
Mahā bega velocity. ୨ । (ବହୁବ୍ରୀହି) ଶିବ—2. Siba.
୩ । ଗରୁଡ଼—3. Garurda (Apte). ୪ । ପାଳ ମାଙ୍କଡ଼—4. An ape (Apte). ସ. ବିଣ. ପୁଂ—
ଅତିଶୟ ବେଗ ଯୁକ୍ତ—Having a great velocity or speed.
(ମହାବେଗା—ସ୍ତ୍ରୀ)

**ମହା ବେଦୀ ମହୋତ୍ସବ**—ସ. ବି—ଶ୍ରୀ ଜଗନ୍ନାଥଙ୍କର ଗୁଣ୍ଡିଚା ବିଜୟ
Mahā bedi mahotsaba ଉତ୍ସବ (ମଦନମୋହନ, ତୀର୍ଥ ଦର୍ଶନ)—The Gundichā festival of the idol Jagannātha of Puri.

**ମହା ବେଳ**—ସ. ବି. (ବହୁବ୍ରୀହି; ମହତ୍+ବେଳା)—ତରଙ୍ଗମୟ—
Mahā bela Billowy (Apte).

**ମହା ବୈଦ୍ୟ**—ସ. ବି. ପୁଂ (କର୍ମଧା)—ନିକୃଷ୍ଟ ଚିକିତ୍ସକ—A
Mahā baidya quack doctor. [ଦ୍ର—ମହତ୍ ଶବ୍ଦ ଟୀକା ଦେଖ; ବୈଦ୍ୟ ଶବ୍ଦ ପୂର୍ବେ ମହତ୍ ଶବ୍ଦର ପ୍ରୟୋଗ ନାହିଁ; ତଥାପି ସଂସ୍କୃତ ଲେଖକମାନଙ୍କ ଦ୍ୱାରା ନିକୃଷ୍ଟ ବୈଦ୍ୟ ଅର୍ଥରେ ଏ ଶବ୍ଦର ପ୍ରୟୋଗ ଦେଖାଯାଏ ।]

**ମହା ବୈର**—ସ. ବି (ମହତ୍+ବୈର; କର୍ମଧା)—ଭୟାନକ ଶତ୍ରୁତା;
Mahā baira ଘୋର ଶତ୍ରୁତା—A great enmity.

**ମହା ବୈରୀ**—ସ. ବି. ପୁଂ (ମହାନ୍+ବୈରୀ; କର୍ମଧା)—ଘୋର ଶତ୍ରୁ—
Mahā bairi An implacable enemy.
(ମହା ବୈରିଣୀ—ସ୍ତ୍ରୀ)

**ମହା ବୋଧି**—ସ. ବି. (ମହାନ୍+ବୋଧି=ଶିକ୍ଷକ)—୧ । ବୁଦ୍ଧଦେବ-
Mahā bodhi 1. The great Buddha. ୨ । ବୌଦ୍ଧ ଭିକ୍ଷୁ—2. A Buddhist monk. ୩ । 'ବୁଦ୍ଧ' ବା ଜ୍ଞାନୀଙ୍କର ବୋଧ ଶକ୍ତି—3. The great intelligence of a Buddha or wise man.

**ମହା ବୋଧି ଦ୍ରୁମ**—ସ. ବି—ବୋଧିତରୁ ୨ଦେଖ; ଗୟା ନିକଟସ୍ଥ ବୃକ୍ଷ-
Mahā bodhi druma ଗୟା ନାମକ ସ୍ଥାନରେ ଥିବା ପୁରାତନ ଅଶ୍ୱତ୍ଥ ବୃକ୍ଷ—An old Pippala (religious fig) tree under which the great Buddha practised meditation and attained wisdom. [ଦ୍ର—ପ୍ରସିଦ୍ଧି ଅଛି ଯେ ବୁଦ୍ଧଦେବ ଏହି ଗଛ ମୂଳରେ ତପସ୍ୟା କରି ଦିବ୍ୟ ଜ୍ଞାନ ଲାଭ କରିଥିଲେ ।]

**ମହାବୋଧି ସତ୍ତ୍ୱ**—ସ. ବି—ବୁଦ୍ଧ ଦେବ—
Mahābodhi satwa The great Buddha.

**ମହା ବ୍ୟସ୍ତ**—ସ. ବିଣ (ମହତ୍+ବ୍ୟସ୍ତ; କର୍ମଧା)—୧ । ଅତି ଦୁଃଖିତ—
Mahā byasta 1. Very sorry. ୨ । ଅତି ଚିନ୍ତିତ—
**महाव्यस्त** 2. Very anxious. ୩ । ଅତି କାର୍ଯ୍ୟ ବ୍ୟସ୍ତ—
**महा व्यस्त** 3. Very busy.

**ମହା ବ୍ୟାଧି**—ସ. ବି—(ମହତ୍+ବ୍ୟାଧି; କର୍ମଧା)—୧ । ଦୁରାରୋଗ୍ୟ
Mahābyādhi ପୀଡ଼ା—1. Incurable disease. ୨ । କୁଷ୍ଠରୋଗ—2. Leprosy. ୩ । ଏକ ପ୍ରକାର କୃଷ୍ଣବର୍ଣ୍ଣ କୁଷ୍ଠ ରୋଗ—. A very bad kind of leprosy; black leprosy (Apte).

**ମହା ବ୍ୟାହୃତି**—ସ. ବି—(କର୍ମଧା)—ଗାୟତ୍ରୀ ମନ୍ତ୍ରାଦ୍ୟରେ 'ଓଁ ଭୂଃ,
Mahā byāhruti ଓଁ ଭୁବଃ, ଓଁ ସ୍ୱଃ' ଏହି ୩ ଗୋଟି ମନ୍ତ୍ରବାକ୍ୟ—The 3 great esoteric or spiritual expressions used at the beginning of the Gāyatri mantra.

**ମହା ବ୍ରଣ**—ସ. ବି (କର୍ମଧା)—୧ । ଦୁଷ୍ଟ ବ୍ରଣ; ନାଲୀ ଘାଅ—
Mahā brana 1. Fistula; a dull boil. ୨ । ଦୁରାରୋଗ୍ୟ ବ୍ରଣ—2. Incurable sore or ulcer sinus

**ମହା ବ୍ରତ**—ସ. ବି—(କର୍ମଧା)—୧ । ଜୀବନର ପ୍ରଧାନ ଉଦ୍ଦେଶ୍ୟ
Mahā brata ସାଧନାର୍ଥ ଅବଲମ୍ବିତ ବ୍ରତ—1. One's life's mission; one's fundamental duty. ୨ । ଦ୍ୱାଦଶ ବାର୍ଷିକ ବ୍ରତ—2. A series of austerities performed during a period of 12 years. ୩ । ଯଜ୍ଞବିଶେଷ—3. Name of a Bedic sacrifice.
ସ. ବିଣ. ପୁଂ (ବହୁବ୍ରୀହି) ବ୍ରତପାଳନ ବିଷୟରେ ଦୃଢ଼
(ମହାବ୍ରତା—ସ୍ତ୍ରୀ) ସଙ୍କଳ୍ପ—Rigid in the observance of vows.

**ମହା ବ୍ରାହ୍ମଣ**—ସ. ବି—(କର୍ମଧା; ବ୍ରାହ୍ମଣ ଶବ୍ଦ ପୂର୍ବେ ମହତ୍ ଶବ୍ଦ
Mahā brāhmana ନିକୃଷ୍ଟାର୍ଥ ବୋଧକ, ମହତ୍ ଶବ୍ଦ ତଳେ ଟୀକା ଦେଖ)—୧ । ନିକୃଷ୍ଟ ବ୍ରାହ୍ମଣ—1. A low or inferior Brāhmana. ୨ । ସମାଜଚ୍ୟୁତ ବ୍ରାହ୍ମଣ—2. A fallen Brāhmana. ୩ । ମଢ଼ିଆ ବ୍ରାହ୍ମଣ; ଶୂଦ୍ରମାନଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ପୌରୋହିତ୍ୟ

କରିବା ବ୍ରାହ୍ମଣ; ଅଗ୍ରଦାନୀ ବ୍ରାହ୍ମଣ—3 A Brāhmaṇa who officiates at the funeral of Śudras. ୪ । ଶ୍ରେଷ୍ଠ ବା ବିଦ୍ୱାନ୍ ବ୍ରାହ୍ମଣ—4. A great or learned Brāhmaṇa.

ମହା ଭୟ—ସଂ. ବି—(କର୍ମଧା)—ଅତ୍ୟନ୍ତ ଭୟ—
Mahā bhaya A great fright; terror.

ମହା ଭୟଙ୍କର—ସଂ ବିଣ.—(କର୍ମଧା)—ଅତ୍ୟନ୍ତ ଭୀଷଣ—
Mahā bhayaṅkara Terrible; very frightful.
(ମହା ଭୟଙ୍କରୀ—ସ୍ତ୍ରୀ)

ମହାଭରୀ—ସଂ. ବି.—ଏକ ପ୍ରକାର ବଚ; ଘୋଡ଼ାବଚ—
Mahābharī Curcuma Zedoaria; Curcuma
মহাভরি বচ, নরকচুর; কুলিঞ্জন Zerumbet (plant root);
**महाभरि वच;नरकचुर** Zengiber Zerumbet (Kirtikar);
ସଂ. ସ୍ଥୂଳଗ୍ରନ୍ଥି, ସୁଗନ୍ଧା Alpina Galanga; Zedoar
(ମହାଭରୀ ବଚ—ଅନ୍ୟରୂପ) (root). [ଦ୍ର—ଏହା ବଚ ଦୁଇ ପ୍ରକାର । ଏକ ପ୍ରକାର ସୁଗନ୍ଧ ଓ ଅନ୍ୟ ପ୍ରକାର ଉଗ୍ରଗନ୍ଧ । ଏହା ହରିଦ୍ରାଦି ବର୍ଗର ବୃକ୍ଷବିଶେଷର ମୂଳ; ଚଟ୍ଟଗ୍ରାମ ଓ ପୂର୍ବ ହିମାଳୟରେ ଜନ୍ମେ । ଏହା କଫନାଶକ, ସୁସ୍ୱରକାରକ, ରୁଚିକର ଓ ହୃଦ୍ୟ, କଣ୍ଠ ଓ ମୁଖ ଶୋଧକ । ମହାଭରୀ ବଚ ସ୍ଥୂଳଗ୍ରନ୍ଥି ବିଶିଷ୍ଟ ଓ ସୁଗନ୍ଧ ବଚ ।]

ମହାଭରୀ ବଚ—ଦେ. ବି—(ସଂ, ମହାଭରୀ ବଚ)—ମହାଭରୀ (ଦେଖ)
Mahābharī bacha Mahābharī (See)

**ମହାଭାଗ**—ସଂ. ବିଣ. ପୁଂ—( ମହତ୍+ଭାଗ=ଭାଗ୍ୟ ଯାହାର;
Mahābhāga ବହୁବ୍ରୀହି) —୧ । ଅତିଶୟ ସୌଭାଗ୍ୟଶାଳୀ—
(ମହାଭାଗୀ—ଅନ୍ୟରୂପ) 1. Very fortunate or prosperous.
(ମହାଭାଗା, ମହାଭାଗିନୀ—ସ୍ତ୍ରୀ) ୨ । ଦୟା ଦାକ୍ଷିଣ୍ୟାଦି
(ମହାଭାଗତା (ଭା) ବି) ଗୁଣଯୁକ୍ତ—2. Endowed with noble qualities. ୩ । ମହାଶୟ; ଉଦାରଚେତା; ମହତ୍ମା—3. Noble; magnanimous; great (person). [ଯଥା—ଅଶ୍ୱିନୀକୁମାରଙ୍କୁ ତହିଁ ସୋମ ଭାଗ, ଦେଲେ ଋଷିକୁଳମଣି ମହାଭାଗ । କୃଷ୍ଣସିଂହ. ମହାଭାରତ ଅରଣ୍ୟ ।]

ମହାଭାଗବତ—ସଂ. ବି. ପୁଂ (କର୍ମଧା)—୧ । ପରମ ବୈଷ୍ଣବ; ବିଷ୍ଣୁଙ୍କର
Mahābhāgabata ଶ୍ରେଷ୍ଠ ଭକ୍ତ—1. A great devotee of Bishṇu. ୨ । ଭାଗବତ ପୁରାଣ—2. The Bhāgabata Purāṇa ୩ । କେତେଜଣ ପ୍ରସିଦ୍ଧ ମହାଭକ୍ତ (ଯଥା, ମନୁ ସନକାଦି ସପ୍ତ ଋଷି, ନାରଦ, ଜନକ, କପିଳ, ବ୍ରହ୍ମା, ବଳି, ଭୀଷ୍ମ, ପ୍ରହ୍ଲାଦ, ଶୁକଦେବ, ଧର୍ମରାଜ ଓ ଶିବ—ହି. ଶ)—3. Name of some great devotees of Bishṇu.

ମହାଭାଗ୍ୟ—ସଂ. ବି (କର୍ମଧା)—ଅତ୍ୟନ୍ତ ସୌଭାଗ୍ୟ—Much pros-
Mahābhāgya perity or good fortune. ସଂ. ବିଣ.
(ମହାଭାଗ୍ୟା—ସ୍ତ୍ରୀ) ପୁଂ—ଅତିଶୟ ସୌଭାଗ୍ୟଶାଳୀ—Very prosperous.

ମହାଭାର—ସଂ ବି—(କର୍ମଧା)—୧ । ଗୁରୁ ଭାର—1. A great
Mahābhāra weight. ୨ । ଗୁରୁ ଦାୟିତ୍ୱ—2. A great responsibility.

ମହାଭାରତ—ସଂ. ବି. (କର୍ମଧା; ମହତ୍+ଭାରତ=ଭରତ ବଂଶ; ଏଥିରେ
Mahābhārata ଭରତ ରାଜବଂଶର ବର୍ଣ୍ଣନା ଥିବାରୁ)—ମହର୍ଷି ବ୍ୟାସଦେବ କୃତ ଅଷ୍ଟାଦଶ ପର୍ବ ଯୁକ୍ତ ବିରାଟ ସଂସ୍କୃତ ପଦ୍ୟ ଗ୍ରନ୍ଥ ବା ମହାକାବ୍ୟ—The great Indian epic,—the Mahābhārata. [ଦ୍ର—ଏଥିରେ ୧୮ଟି ପର୍ବ ଅଛି ଯଥା—ଆଦି, ସଭା, ବନ, ବିରାଟ, ଉଦ୍‌ଯୋଗ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ସୌପ୍ତିକ, ନାରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ଆଶ୍ରମବାସ, ମୂଷଳ, ମହାପ୍ରସ୍ଥାନ ଓ ସ୍ୱର୍ଗାରୋହଣ । ଏପରି ବିସ୍ତୃତ ଗ୍ରନ୍ଥ ପୃଥିବୀରେ ନାହିଁ । ଏଥିରେ ପ୍ରାୟ ଏକଲକ୍ଷ ଶ୍ଳୋକ ଓ ପ୍ରତି ଶ୍ଳୋକରେ ଚାରି ଚରଣ ବା ଦୁଇ ଧାଡ଼ି ଅଛି । ସୁତରାଂ ଏହାର ଧାଡ଼ି ସଂଖ୍ୟା ଅନ୍ତତଃ ୨ ଲକ୍ଷ ହେବ । ମହାଭାରତର ମୂଳ ଘଟନା କୁରୁ ପାଣ୍ଡବଙ୍କର ଯୁଦ୍ଧାଦି ବର୍ଣ୍ଣନା । ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ବର୍ଣ୍ଣନା ଏହାର ଶେଷ ପର୍ବ । କିନ୍ତୁ ଏଥିରେ ପ୍ରସଙ୍ଗକ୍ରମେ ବେଦର ନିଗୂଢ଼ ତତ୍ତ୍ୱ-ଉପନିଷଦର ବ୍ୟାଖ୍ୟା, ଇତିହାସ, ପୁରାଣ, ବର୍ତ୍ତମାନ, ଭୂତ ଓ ଭବିଷ୍ୟତ କାଳତ୍ରୟ ନିରୂପଣ, ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି ଆଦିର ବିବରଣ, ବିବିଧ ଧର୍ମ ଓ ବର୍ଣ୍ଣ ଓ ଆଶ୍ରମର ଲକ୍ଷଣ, ବର୍ଣ୍ଣମାନଙ୍କର ଆଚାର, ଦାନ, ତପସ୍ୟା, ବ୍ରହ୍ମଚର୍ଯ୍ୟ, ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ଯୁଗଚତୁଷ୍ଟୟ, ଆତ୍ମତତ୍ତ୍ୱ ନିରୂପଣ, ନ୍ୟାୟ, ଦର୍ଶନ, ଶିକ୍ଷା, ଚିକିତ୍ସା, ତୀର୍ଥ, ଦେଶ, ନଦୀ, ପର୍ବତ, ବନ, ସମୁଦ୍ର, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ରାଜନୀତି, ଧର୍ମନୀତି, ସମାଜନୀତି, ଶିଳ୍ପ, କୃଷି, ବାଣିଜ୍ୟ, ଲୋକବ୍ୟବହାର, ଦୁର୍ଗ, ସେନାଚାଳନ, ବ୍ୟୂହ ରଚନା ଆଦି ଲୋକଯାତ୍ରା ବିଧାନମାନ ବର୍ଣ୍ଣିତ ହୋଇଅଛି । ପରବ୍ରହ୍ମତତ୍ତ୍ୱ ପ୍ରତିପାଦନ ଏହାର ଅନ୍ୟତର ବର୍ଣ୍ଣନୀୟ ବିଷୟ । ଏହି ମହାଭାରତ ପଞ୍ଚମ ବେଦ ନାମରେ କଥିତ । ରଣକ୍ଷେତ୍ରରେ ଅର୍ଜୁନଙ୍କ ସାରଥି ରୂପରେ ଶ୍ରୀକୃଷ୍ଣ ଉପସ୍ଥିତ ହୋଇ ଉପଦେଶ ଛଳରେ ଆଧ୍ୟାତ୍ମିକ ନିଗୂଢ଼ ତତ୍ତ୍ୱର ବା ଯୋଗର ଯେଉଁ ଉପଦେଶତତ୍ତ୍ୱ ଦେଇଅଛନ୍ତି ତାହା 'ଭଗବଦ୍‌ଗୀତା, ନାମରେ ପୃଥିବୀରେ ପ୍ରସିଦ୍ଧ । ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚତୁର୍ବର୍ଗ ମହାଭାରତରେ ପ୍ରତିପାଦିତ ହୋଇଅଛି । ଏଥିପାଇଁ ଲୋକେ କହନ୍ତି 'ଯାହା ମହାଭାରତରେ ନାହିଁ ତାହା ଭାରତ(ବର୍ଷ)ରେ ନାହିଁ' ।

ଭାରତବର୍ଷରେ ଚନ୍ଦ୍ରବଂଶୀୟ ରାଜା ହସ୍ତିନାପୁରରେ ରାଜତ୍ୱ କରୁଥିଲେ । ଶାନ୍ତନୁ ନାମକ ଏହି ବଂଶର ପରମଧାର୍ମିକ ରାଜା ପ୍ରଥମେ 'ଗଙ୍ଗା'ଙ୍କୁ ବିବାହ କରିଥିଲେ ଓ ଗଙ୍ଗାଙ୍କ ଗର୍ଭରୁ ଭୀଷ୍ମ ନାମକ କୁମାର ଜନ୍ମ ହେଲେ । ପରେ ଶାନ୍ତନୁ ଧୀବରରାଜକନ୍ୟା ସତ୍ୟବତୀଙ୍କୁ ବିବାହ କରିବାକୁ ଇଚ୍ଛାକଲେ; କିନ୍ତୁ ଶାନ୍ତନୁଙ୍କର ପୁତ୍ର ଭୀଷ୍ମ ଶାନ୍ତନୁଙ୍କ ଅନ୍ତେ

ରାଜା ହେବେ ଓ ସତ୍ୟବତୀଙ୍କର ପୁତ୍ର ରାଜା ହୋଇ ପାରବେ ନାହିଁ, ଏହି ଆଶଙ୍କାରେ ଧୀବରରାଜ ସ୍ୱୀୟ କନ୍ୟାଙ୍କୁ ଶାନ୍ତନୁଙ୍କୁ ଦେବାକୁ ଅସ୍ୱୀକାର କଲେ । ଭୀଷ୍ମ ଏହା ଜାଣିପାରି ନିଜେ ଭାବୀ ରାଜପଦର ଦାବୀ ତ୍ୟାଗ କଲେ ଓ ରାଜପଦ ପାଇଁ ଭବିଷ୍ୟତରେ ଦାବୀଦାର ହେବାକୁ ତାଙ୍କର କେହି ବଂଶଧର ଜନ୍ମିବେ ନାହିଁ ବୋଲି ସେ ନିଜେ ଚିରକୁମାର ବ୍ରତ ଅବଲମ୍ବନ କରିବାକୁ ଦୃଢପ୍ରତିଜ୍ଞା କଲେ । ଏହି ଅଟଳ ପ୍ରତିଜ୍ଞା ସେ ପାଳନ କଲେ । ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇକୁମାର ଜାତ ହେଲେ । ଚିତ୍ରାଙ୍ଗଦ ଅଳ୍ପ ବୟସରେ ମଲେ । ବିଚିତ୍ରବୀର୍ଯ୍ୟ ପିତାଙ୍କର ସିଂହାସନରେ ବସିଲେ । ସେ ଦୁଇ ସ୍ତ୍ରୀ ବିବାହ କରିଥିଲେ, କିନ୍ତୁ ନିଃସନ୍ତାନ ଅବସ୍ଥାରେ ମୃତ ହେବାରୁ ଏହାଙ୍କ ଅନ୍ତେ ଏହାଙ୍କ ସ୍ତ୍ରୀଙ୍କ ଗର୍ଭରେ ଶାସ୍ତ୍ରବିଧି (ନିୟୋଗ) ଅନୁସାରେ ବ୍ୟାସଦେବଙ୍କ ଔରସରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମକ କ୍ଷେତ୍ରଜ ପୁତ୍ରଦ୍ୱୟ ଜନ୍ମ ହେଲେ । ଧୃତରାଷ୍ଟ୍ର ଜ୍ୟେଷ୍ଠ, କିନ୍ତୁ ଜନ୍ମାନ୍ଧ ଥିବାରୁ କନିଷ୍ଠ ଭାଇ ପାଣ୍ଡୁ ରାଜା ହେଲେ । ପାଣ୍ଡୁଙ୍କର ଦୁଇ ସ୍ତ୍ରୀ କୁନ୍ତୀ ଓ ମାଦ୍ରୀ । କୁନ୍ତୀଙ୍କ ଗର୍ଭରେ ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଏବଂ ମାଦ୍ରୀଙ୍କ ଗର୍ଭରେ ନକୁଳ ଓ ସହଦେବ ଜନ୍ମ ହେଲେ । ଏହିମାନେହିଁ ପଞ୍ଚ ପାଣ୍ଡବ । ଏତଦ୍‌ଭିନ୍ନ ଅବିବାହିତା ଅବସ୍ଥାରେ କୁନ୍ତୀଙ୍କଠାରୁ ସୂର୍ଯ୍ୟଙ୍କ ଔରସରେ କାନୀନ କୁମାର 'କର୍ଣ୍ଣ' ଜନ୍ମିଥିଲେ । ଧୃତରାଷ୍ଟ୍ର ଗାନ୍ଧାରୀଙ୍କୁ ବିବାହ କରିଥିଲେ ଓ ଗାନ୍ଧାରୀଙ୍କ ଗର୍ଭରୁ ଦୁର୍ଯ୍ୟୋଧନ ଓ ଦୁଃଶାସନ ଆଦି ଶତ ପୁତ୍ର ଜନ୍ମ ହେଲେ । ଏହିମାନେହିଁ କୌରବ । ପାଣ୍ଡବମାନଙ୍କ ବାଲ୍ୟକାଳରେ ପିତୃବିୟୋଗ ଘଟିଥିଲା ଓ ସେମାନଙ୍କୁ ଧୃତରାଷ୍ଟ୍ର ପୁତ୍ରନିର୍ବିଶେଷରେ ପାଳନ କରିଥିଲେ । ପାଣ୍ଡବମାନଙ୍କ ମଧ୍ୟରେ ଯୁଧିଷ୍ଠିର ଧାର୍ମିକ, ଭୀମ ଶାରୀରିକବଳଶାଳୀ ଓ ଅର୍ଜୁନ ରଣବିଦ୍ୟାନିପୁଣ ଥିଲେ । ଦୁର୍ଯ୍ୟୋଧନ ହିଂସାପରାୟଣ ଥିଲେ । ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ରାଜପଦରେ ଅଭିଷିକ୍ତ କରିବାକୁ ଇଚ୍ଛା କରିଥିଲେ; କିନ୍ତୁ ଏ ପ୍ରସ୍ତାବରେ ଦୁର୍ଯ୍ୟୋଧନ ଅସନ୍ତୁଷ୍ଟ ହୋଇ ଆପଣାର ମାମୁ ଶକୁନି ଓ ମନ୍ତ୍ରୀ କର୍ଣ୍ଣଙ୍କ ପରାମର୍ଶରେ ପାଣ୍ଡବମାନଙ୍କ ବିନାଶସାଧନାର୍ଥ ନାନା ଉପାୟ ଅବଲମ୍ବନ କରି ଅକୃତକାର୍ଯ୍ୟ ହେଲେ । ଦୁର୍ଯ୍ୟୋଧନ କୌଶଳକ୍ରମେ ପାଣ୍ଡବମାନଙ୍କୁ ବାରଣାବତ ନଗରକୁ ପ୍ରେରଣ କରିଥିଲେ । ସେଠାରେ ପାଣ୍ଡବମାନଙ୍କୁ ପୋଡ଼ିକରି ମାରିପକାଇବା ପାଇଁ ଗୋଟିଏ ଜତୁଗୃହ ତାଙ୍କ ଆଦେଶରେ ପୂର୍ବରୁ ନିର୍ମିତ ହୋଇଥିଲା । ପାଣ୍ଡବମାନେ ପୂର୍ବରୁ ବିଶ୍ୱସ୍ତସୂତ୍ରରେ ତାହା ଜାଣିପାରି ଗୃହଦାହ ପୂର୍ବରୁ ସେଠାରୁ ପଳାୟନପୂର୍ବକ ପ୍ରାଣରକ୍ଷା କଲେ ଏବଂ ନାନା ଦେଶ ଭ୍ରମଣକରି ଶେଷରେ ଛଦ୍ମବେଶରେ ପାଞ୍ଚାଳ ରାଜ୍ୟରେ ଉପସ୍ଥିତ ହେଲେ । ସେଠାରେ ଦ୍ରୁପଦ ରାଜକନ୍ୟା ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ଉପସ୍ଥିତ କୌଣସି ରାଜା ଭେଦ କରି ପାରିଲେ ନାହିଁ; ଦୁର୍ଯ୍ୟୋଧନ ମଧ୍ୟ ଲକ୍ଷ୍ୟ-ଭେଦରେ ଅକୃତକାର୍ଯ୍ୟ ହେଲେ । ଶେଷରେ ଛଦ୍ମବେଶ-ଧାରୀ ଅର୍ଜୁନ ସେହି ଲକ୍ଷ୍ୟକୁ ଭେଦ କରି ଦ୍ରୌପଦୀଙ୍କୁ ପ୍ରାପ୍ତ ହେଲେ ଓ ମାତାଙ୍କ ଆଦେଶରେ ପାଞ୍ଚ ଭାଇଯାକ ଦ୍ରୌପଦୀଙ୍କୁ ବିବାହ କଲେ । ତତ୍ପରେ ଧୃତରାଷ୍ଟ୍ର ରାଜ୍ୟକୁ ଦୁଇ ଭାଗ କରି ଦୁର୍ଯ୍ୟୋଧନଙ୍କୁ ହସ୍ତିନାରେ ଓ ଯୁଧିଷ୍ଠିରଙ୍କ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ ପ୍ରଦାନ କଲେ ।

ଅନନ୍ତର ଦୁର୍ଯ୍ୟୋଧନ ଶକୁନିଙ୍କ ପରାମର୍ଶରେ ଏକ କପଟ ପାଶକ୍ରୀଡ଼ା(ପଶା ଖେଳ)କୁ ଯୁଧିଷ୍ଠିରଙ୍କୁ ଆହ୍ୱାନ କଲେ । ଏହି କପଟ ପାଶକ୍ରୀଡ଼ାରେ ଯୁଧିଷ୍ଠିର ଧନ, ରାଜ୍ୟ, ଭ୍ରାତୃଗଣ ଓ ଶେଷରେ ପତ୍ନୀଙ୍କୁ ପଣ ରଖି ଶେଷରେ ତାହା ସମସ୍ତ ହାରି ବସିଲେ । ପଣରେ ଦ୍ରୌପଦୀଙ୍କୁ ଲାଭ କରି ତାଙ୍କୁ ଦୁର୍ଯ୍ୟୋଧନ ଅନ୍ତଃପୁରରୁ ଟାଣିଆଣି ସଭା ମଧ୍ୟରେ ବିବସ୍ତ୍ରା କଲେ; କିନ୍ତୁ ଶ୍ରୀକୃଷ୍ଣଙ୍କ ଦୟାରୁ ଦ୍ରୌପଦୀଙ୍କ ମାନ ରକ୍ଷା ହେଲା । ଶେଷରେ ଉକ୍ତ କ୍ରୀଡ଼ାର ପଣ ଅନୁସାରେ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ୧୨ ବର୍ଷ ବନବାସ ଓ ୧ ବର୍ଷ ଅଜ୍ଞାତବାସ କଲେ । ଏହି ୧୩ ବର୍ଷ ଶେଷରେ ପାଣ୍ଡବମାନେ ଯେତେବେଳେ ଆପଣା ରାଜ୍ୟକୁ ଆସି ଦୁର୍ଯ୍ୟୋଧନଙ୍କୁ ନିଜର ରାଜ୍ୟ ଫେରାଇ ଦେବାକୁ କହିଲେ, ସେତେବେଳେ ଦୁର୍ଯ୍ୟୋଧନ କହିଲେ ଯେ, ବିନା ଯୁଦ୍ଧରେ ସେ ସେମାନଙ୍କୁ ସୂଚ୍ୟଗ୍ର ପରିମିତ ସ୍ଥାନ ଦେବେ ନାହିଁ । ତେଣୁ ପାଣ୍ଡବମାନେ ବାଧ୍ୟ ହୋଇ ଯୁଦ୍ଧ ଘୋଷଣା କଲେ । ଏହି ଯୁଦ୍ଧରେ ଭାରତର ବିଭିନ୍ନ ପ୍ରଦେଶର ରାଜାମାନେ ଏ ପକ୍ଷ ଅଥବା ସେ ପକ୍ଷ ଅବଲମ୍ବନ କଲେ । ଏହି ଯୁଦ୍ଧ କୁରୁକ୍ଷେତ୍ର ନାମକ ରଣଭୂମିରେ ୧୮ଦିନ ବ୍ୟାପି ଲାଗିଥିଲା । ଉଭୟ ପକ୍ଷର ମୋଟ ସୈନ୍ୟସଂଖ୍ୟା ଅଷ୍ଟାଦଶ ଅକ୍ଷୌହିଣୀ ଥିଲା । ୧୦୯୩୫୦ ପଦାତି, ୬୫୬୧୦ ଅଶ୍ୱ, ୨୧୮୭୦ ଗଜ ଓ ୨୧୮୭୦ ରଥବିଶିଷ୍ଟ ସେନାଦଳର ନାମ ଅକ୍ଷୌହିଣୀ । ଏହି ସଂଖ୍ୟାରୁ ମହାଭାରତ ଯୁଦ୍ଧର ସର୍ବମୋଟ ସୈନ୍ୟସଂଖ୍ୟା କେତେ ବିଶାଳ ଓ ଅପରିମିତ ଥିଲା, ତାହା ସହଜେ କଳ୍ପନା କରି ହେବ । ଏହି ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷର ସେନାପତି ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଶଲ୍ୟ ପ୍ରଭୃତି ମହାରଥୀମାନେ ପରାଜିତ ଓ ନିହତ ହେଲେ । ଶ୍ରୀକୃଷ୍ଣ ଭ୍ରାତୃବିବାଦମୂଳକ ଏ ଯୁଦ୍ଧରେ ଅସ୍ତ୍ରଧାରଣ କରିବେ ନାହିଁ ବୋଲି ସତ୍ୟ କରିଥିଲେ; କିନ୍ତୁ ଅର୍ଜୁନଙ୍କ ସାରଥିରୂପେ ଏବଂ ପରାମର୍ଶଦାତାରୂପେ ପାଣ୍ଡବମାନଙ୍କର ସହାୟତା କରିଥିଲେ । ଅବଶେଷରେ ଭୀମ ଗଦାଦ୍ୱାରା ଦୁର୍ଯ୍ୟୋଧନଙ୍କୁ ନିହତ କଲେ । ଏହି ଯୁଦ୍ଧର ଅବସାନରେ ଯୁଦ୍ଧକ୍ଷେତ୍ରରେ ସମବେତ ସମସ୍ତ ବୀର ନିହତ ହେଲେ ଓ କେବଳ ପାଣ୍ଡବଙ୍କ ପକ୍ଷରୁ ୭ଜଣ ଓ କୌରବଙ୍କ ପକ୍ଷରୁ ୩ଜଣ ମାତ୍ର ବୀର ଜୀବିତ ରହିଲେ । କିନ୍ତୁ କୌରବ ପକ୍ଷୀୟ ଜୀବିତ ବୀରମାନଙ୍କ ମଧ୍ୟରୁ କେହି ସିଂହାସନ ଅଧିକାର କରିବାର ଯୋଗ୍ୟ ନ ଥିବାରୁ ପାଣ୍ଡବମାନେ ରାଜ୍ୟ ପାଇଲେ । ତତ୍ପରେ ଧୃତରାଷ୍ଟ୍ର ତାଙ୍କ ସ୍ତ୍ରୀ ଗାନ୍ଧାରୀ ଓ ଭ୍ରାତୃବଧୂ କୁନ୍ତୀଙ୍କ ସହିତ ତପସ୍ୟାର୍ଥ ବନକୁ ଗଲେ ।

ଅଳ୍ପକାଳ ପରେ ଦାବାନଳରେ ପୋଡ଼ି ହୋଇ ମଲେ । ଯୁଧିଷ୍ଠିର ଜ୍ଞାତିବଧ ପାପରୁ ନିଷ୍କୃତି ପାଇବାପାଇଁ ଅଶ୍ୱମେଧ ଯଜ୍ଞ କଲେ; ତତ୍ପରେ ଅର୍ଜୁନଙ୍କ ପୌତ୍ର ପରୀକ୍ଷିତଙ୍କୁ ରାଜ୍ୟଭାର ଦେଇ ଆପଣାର ଚାରିଭାଇ ଓ ଦ୍ରୌପଦୀଙ୍କ ସହିତ ସଶରୀର ସ୍ୱର୍ଗକୁ ଯିବାପାଇଁ ହିମାଳୟାଭିମୁଖେ 'ମହାପ୍ରସ୍ଥାନ' କଲେ । ତାଙ୍କ ସଙ୍ଗେ ସଙ୍ଗେ ଗୋଟିଏ କୁକୁର ଅନୁସରଣ କରୁଥିଲା । ବାଟରେ କ୍ରମଶଃ ତାଙ୍କ ଭାଇମାନେ ଓ ଦ୍ରୌପଦୀ ଜଣଙ୍କ ପରେ ଜଣେ ଦେହ ତ୍ୟାଗ କଲେ । ଶେଷକୁ ଯୁଧିଷ୍ଠିର ଓ କୁକୁରଟି ରହିଗଲେ । ସେ କୁକୁର ସ୍ୱୟଂ ଧର୍ମଦେବତା । ଅନନ୍ତର ଇନ୍ଦ୍ରଙ୍କ ପ୍ରେରିତ ରଥରେ ସେମାନେ ସ୍ୱର୍ଗକୁ ଗମନ କଲେ । ଏହି ବିଷୟମାନ ମହାଭାରତରେ ଏକ ଚତୁର୍ଥାଂଶରେ ବର୍ଣ୍ଣିତ ହୋଇଅଛି । ବାକି ତିନି ଅଂଶରେ ଧର୍ମ, ସମାଜ, ରାଜନୀତି ଆଦି ନାନା ବିଷୟ ବର୍ଣ୍ଣିତ ହୋଇଅଛି । ମହାଭାରତରେ ଗାନ୍ଧାର, ସିନ୍ଧୁ, ହସ୍ତିନା, ପଞ୍ଚାଳ, ବାରାଣସୀ, ମଗଧ, ଅଙ୍ଗ, ମତ୍ସ୍ୟ, ଚେଦି, ଦ୍ୱାରକା, ବିଦର୍ଭ, ପ୍ରାଗ୍‌ଜ୍ୟୋତିଷ ଓ କଳିଙ୍ଗ ଆଦିର ପରାକ୍ରାନ୍ତ ରାଜାମାନଙ୍କ ଯୋଗ ଦେଇଥିବା ବର୍ଣ୍ଣନା ଅଛି । ସେ ସମୟରେ ଅନାର୍ଯ୍ୟ ଜାତିମାନେ ସମ୍ପୂର୍ଣ୍ଣ ବିଜିତ ହୋଇ ନ ଥିଲେ ଓ ବକାସୁର, ମୟଦାନବାଦି ଅସୁରମାନେ ମଧ୍ୟ ସେ ସମୟରେ କ୍ଷମତାଶାଳୀ ଥିଲେ । ମହାଭାରତର ଘଟନା ଆଜକୁ ଚାରିହଜାର ବର୍ଷପୂର୍ବେ ଘଟିଥିବାର ଆଧୁନିକ ପଣ୍ଡିତମାନେ ଅନୁମାନ କରନ୍ତି । ସଂସ୍କୃତ ମହାଭାରତ ବେଦବ୍ୟାସଙ୍କ ରଚିତ । ଉତ୍କଳର ଶୂଦ୍ରମୁନି ସାରଳାଦାସ ମହାଭାରତକୁ ଓଡ଼ିଆ ପଦ୍ୟରେ ଲେଖିଅଛନ୍ତି; କିନ୍ତୁ ସେଥିରେ ମୂଳଗ୍ରନ୍ଥର ଅନେକ ବିଷୟ ଛାଡ଼ିଯାଇ ଅଛନ୍ତି । ଗଞ୍ଜାମ ଧରାକୋଟ ରାଜାଙ୍କର ପୂର୍ବପୁରୁଷ ରାଜା କୃଷ୍ଣସିଂହ ସମଗ୍ର ସଂସ୍କୃତ ମହାଭାରତକୁ ଓଡ଼ିଆ ପଦ୍ୟରେ ଅନୁବାଦ କରି ଉତ୍କଳ ସାହିତ୍ୟରେ ଅକ୍ଷୟକୀର୍ତ୍ତି ରଖି ଯାଇ ଅଛନ୍ତି ।

ମହାଭାରତ-ପର୍ବ-ସଂଗ୍ରହାଧ୍ୟାୟ (Index chapter) ରେ ସୂଚିତ ଅଧ୍ୟାୟ ଓ ଶ୍ଳୋକମାନଙ୍କ ସଂଖ୍ୟାକୁ ମୋଟ କଲେ ମହାଭାରତରେ ୧୯୨୩ ଟି ଅଧ୍ୟାୟ ଓ ୧୦୪୮୩୬ ଶ୍ଳୋକ ଥିବାର ଜଣାଯାଏ କିନ୍ତୁ ବର୍ତ୍ତମାନ ମିଳୁଥିବା ମହାଭାରତର ଅଧ୍ୟାୟ ଓ ଶ୍ଳୋକ ଗଣନା କଲେ ୨୧୦୭ଟି ଅଧ୍ୟାୟ ଓ ୯୬୨୨୭ଟି ଶ୍ଳୋକ ଥିବାର ଦେଖାଯାଏ ଓ ତହିଁ ମଧ୍ୟରୁ ଅନେକ ଶ୍ଳୋକ ପ୍ରକ୍ଷିପ୍ତ ଓ ସେମାନ ପରବର୍ତ୍ତୀ ଲେଖକମାନଙ୍କ ଦ୍ୱାରା ଯୋଡ଼ା ହୋଇଥିବା ପଣ୍ଡିତମାନେ ସିଦ୍ଧାନ୍ତ କରନ୍ତି । ]. ଦେ. ବି—

মহাভারত ୧ । ମହାଭାରତ ପରି ପ୍ରକାଣ୍ଡ ଗ୍ରନ୍ଥ—1. A big and

महाभारत voluminous work. (ଯଥା— ସମୁଦାୟ ଘଟଣା ଲେଖି ବସିଲେ ଗୋଟିଏ ମହାଭାରତ ହେବ ।) ୨ । ମହାଭାରତ ଯୁଦ୍ଧପରି ଲମ୍ବା କଳହ ବା ବିବାଦ—2. A big quarrel.

ମହାଭାରତ ପର୍ବ—ସଂ. ବି—ମହାଭାରତ ଗ୍ରନ୍ଥର ୧୮ଟି ଭାଗ ବା ଖଣ୍ଡ—
Mahābhārata parba The 18 volumes or parts
মহাভারত পর্ব্ব of the Mahābhārata ସଂ. ବି—
महाभारत पर्व ମହାଭାରତ ବର୍ଣ୍ଣିତ କୁରୁ ପାଣ୍ଡବ ବିବାଦ ଓ
(ମହାଭାରତ ପରବ— ଗ୍ରାମ୍ୟ ରୂପ) ଯୁଦ୍ଧ ପରି ବହୁଦିନ ବ୍ୟାପୀ ବା ଲମ୍ବା କାଣ୍ଡ—A long drawn or big matter compared to the dispute and the war between the Pāṇḍabas and Kaurabas.

ମହାଭାରତ ଯୁଦ୍ଧ—ସଂ. ବି—୧୮ଦିନ ବ୍ୟାପୀ କୁରୁ ପାଣ୍ଡବଙ୍କ ମଧ୍ୟରେ
Mahābhārata juddha କୁରୁକ୍ଷେତ୍ର ଯୁଦ୍ଧ – The great war of Kurukshetra bet ween the Kuarabas and Pāṇḍabas which lasted for 18 days. ଦେ. ବି. ମହାଭାରତ ଯୁଦ୍ଧ ପରି ବହୁଦିନ ବ୍ୟାପୀ ଓ ଅସଂଖ୍ୟ ପକ୍ଷମାନଙ୍କ ମଧ୍ୟରେ ଯୁଦ୍ଧ ବା
(ମହାଭାରତ ଲଢ଼େଇ ଦେ. ରୂପ) ବିବାଦ—Long drawn dispute or fight in which many person- take part.
[ମହା ଭାରତ(ଥ) ଯୁଦ୍ଧ (ଝୁଣ୍ଡ) —ଗ୍ରାମ୍ୟରୂପ]

ମହାଭାରତୀୟ—ସ. ବିଣ.—(ମହାଭାରତ+ଈୟ)—୧ । ମହାଭାରତ
Mahābhāratiya ସମ୍ବନ୍ଧୀୟ—1. Relating to the Mahābhārata. ୨ । ମହାଭାରତରେ ବର୍ଣ୍ଣିତ— 2. Described in the Mahābhārata.

ମହାଭାରଥ—ଗ୍ରା. ବି (ସଂ. ,ମହାଭାରତ)—ମହାଭାରତ (ଦେଖ)—
Mahābhāratha Mahābhārata (See)

ମହା ଭାର—ଦେ ବି—(ସଂ. ମହତ୍+ଭାର)—୧ । ଗୁରୁ ଭାର ବା
Mahābhārā ଦାୟିତ୍ୱ—1. A heavy responsibility.
মহাভার महाभारा ୨ । ମହାବାର (ଦେଖ)
2. Mahābārā (See)

ମହାଭାଷ୍ୟ—ସଂ. ବି—ପାଣିନୀଙ୍କର ସଂସ୍କୃତ ବ୍ୟାକରଣ ସୂତ୍ର ଉପରେ
Mahābhāshya ପତଞ୍ଜଳିକୃତ ଟୀକା; ଫଣି ଭାଷ୍ୟ—The title of a celebrated commentary by Patañjali on the Sanscrit grammatical aphorisms of Panini.

ମହାଭୀତ—ସଂ. ବିଣ. ପୁଂ—ଅତ୍ୟନ୍ତ ଭୟ ପ୍ରାପ୍ତ—Much fright-
Mahā bhita ened. ସଂ. ବି—ଲଜ୍ଜାଳୁ ଲତା; ଲାଜକୋଳି
(ମହାଭୀତା—ସ୍ତ୍ରୀ) ଲତା (ଉ. ଶ)—Mimosa Pudica (creeper).

ମହା ଭୀମ—ସଂ. ବି—୧ । ଶିବାନୁଚର ଭୃଙ୍ଗୀ—1. One of the
Mahā bhima attendants of Siba. ୨ । ମହାରାଜ ଶାନ୍ତନୁ—2. King Śāntanu, the ancestor of the Pāṇḍabas. ସଂ. ବିଣ ପୁଂ—ଅତି ଭୟଙ୍କର—
(ମହାଭୀମା —ସ୍ତ୍ରୀ) Very ferocious or frightful.

ମହା ଭୀରୁ—ସଂ. ବିଣ—ଅତ୍ୟନ୍ତ ଭୟଶୀଳ—Very timid. ସଂ. ବି—
Mahā bhiru ୧ । ଗଜଭୃଙ୍ଗୀ ପୋକ (ଉ. ଶ)—1. The black myriapod (insect). ୨ । ତେଲୁଣି ପୋକ

—2. Galley worm. [ଦ୍ର—ସାମାନ୍ୟ ମାତ୍ର ଆଘାତ ପାଇଲେ ଏ କୁଣ୍ଡଳାକାର ଧାରଣ କରେ ।]

**ମହାଭୁଜ**—ସଂ. ବି ଓ ବିଣ—ମହାବାହୁ ( ଦେଖ )
Mahābhuja Mahābāhu ( See )

**ମହାଭୂତ**—ସଂ. ବି (କର୍ମଧା)—୧ । ସୃଷ୍ଟିର ପଞ୍ଚଗୋଟି ପ୍ରଧାନ ଉପାଦାନ
Mahābhūta (କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ)—1. The 5 primordial elements of nature (viz, the earth, water, light, air and ether). ୨ । ବିଶେଷର; ଶିବ—2. Siba. ୩ । ଶ୍ରେଷ୍ଠ ଜୀବ—3. An animal of a higher order; a noble creature. ୪ । ପରମେଶ୍ୱର—4. God.

**ମହାଭୈରବ**—ସଂ. ବି—ଭୟଙ୍କରରୂପୀ ମହାଦେବ—An incarna-
Mahābhairaba tion of Siba. [ଦ୍ର—ଭୈରବାଷ୍ଟମୀ ଦିନ ହିନ୍ଦୁମାନଙ୍କ ଦାଣ୍ଡ କାନ୍ଥରେ ବା ଦାଣ୍ଡ କବାଟରେ ମହାଭୈରବଙ୍କରୂପ ଅଙ୍କିତ ହୋଇ ପୂଜା କରାଯାଏ । ]

**ମହାଭୈରବ(ବୀ) ବଚ**—ଦେ. ବି ( ସଂ. ମହାଭରୀ ବଚ୍ଚ )—ମହାଭରୀ
Mahābhairaba(bī) bacha (ଦେଖ)—Mahābharī
ମহାভরীবচ महाबरीवच (See).

**ମହାଭୈରବୀ**—ସଂ. ବି—ତାନ୍ତ୍ରିକମାନଙ୍କଦ୍ୱାରା ପୂଜିତା ଦେବୀ ବା ଦେବୀ
Mahābhairabī ବିଶେଷ—Name of a Goddess worshipped by the Tantra-worshippers.

**ମହାଭୋଇ**—ଦେ. ବି—୧ । ଗଉଡ଼ମାନଙ୍କ ଉପାଧିବିଶେଷ—1. A
Mahābhoi family title of cowherds ୨ । ଗୋରୁମାନଙ୍କର ସଂଖ୍ୟା ବିଶେଷ; ୧୦୦ ମହାଭୁଡ଼ ଗାଈ—2. A fixed number of cattle. [ ଦ୍ର—ମହାଭୁଡ ତଳେ ଟୀକା ଦେଖ । ]

**ମହାଭୋଗ**—ସଂ. ବି—୧ । (ବହୁବ୍ରୀହି) ସର୍ପ (ହି. ଶ)—1. Serpent.
Mahābhoga ୨ । (କର୍ମଧା) ଅତ୍ୟନ୍ତ ଭୋଗ—2. Great enjoyment.

**ମହାଭୋଗୀ**—ସଂ. ବି (ମହତ୍ + ଭୋଗିନ୍; ୧ମା. ୧ବ)—ବଡ଼ ଫଣାଧର
Mahābhogī ସର୍ପ (ହି. ଶ)—A serpent with a large hood.

**ମହାଭୋଳ(ଳା)**—ଦେ. ବିଣ—୧ । ଅତ୍ୟନ୍ତ ବିହ୍ୱଳ—1. Much
Mahābhola(lā) bewildered. ୨ । ଯେ ସବୁ କଥା ଭୁଲି
মহাভোলা भोलाभाला ଯାଏ—2. Very forgetful.

**ମହାଭ୍ରମ**—ସଂ. ବି (କର୍ମଧା)—ଅତ୍ୟନ୍ତ ଭୁଲ୍—A great mistake;
Mahābhrama a serious error.

**ମହାମଙ୍ଗଳା**—ଦେ. ବି ( ସଂ. ମହତ୍ + ମଙ୍ଗଳା )—ପୁରୀଜିଲ୍ଲାର
Mahāmangalā କାକଟପୁରରେ ଥିବା ପ୍ରସିଦ୍ଧ ଠାକୁରାଣୀ—A famous idol (Goddess) at Kākatapur in the district of Puri. [ ଉ—ଭକ୍ତକ-ବିକଟ କାକଟପୁର ମହାମଙ୍ଗଳା । ରାଧାନାଥ. ଚନ୍ଦ୍ରଭାଗା ।] [ଦ୍ର—ଏ ମଙ୍ଗଳଦ୍ୱୀପରୁ ଅସିଥିବାରୁ ଜନଶ୍ରୁତି ଅଛି ଓ ଏଥିଯୋଗୁଁ ଏ ନାମ ହୋଇଅଛି । ବୋଧହୁଏ, ସେ କାଳରେ ସିଂହଳ ଦ୍ୱୀପକୁ ଲୋକେ ମଙ୍ଗଳାଦ୍ୱୀପ କହୁଥିଲେ । ]

**ମହାମଣି**—ସଂ. ବି—୧ । ମହାରତ୍ନ (ଦେଖ)—1. Mahāratna
Mahāmani (See). ୨ । ଶିବ—2. Siba (Apte).

**ମହାମଣ୍ଡଳ**—ସଂ. ବି—ମହାସଭା; ବୃହତ୍ସଭା—A very big
Mahāmandala assembly or society. [ ଯଥା—ଧର୍ମମହାମଣ୍ଡଳ (ଅର୍ଥାତ୍ ଧର୍ମରକ୍ଷା ଓ ଉନ୍ନତି ଓ ପ୍ରଚାର ଉଦ୍ଦେଶ୍ୟରେ ଗଠିତ ମହାସଭା । ]

**ମହାମତି**—ସଂ. ବିଣ (ବହୁବ୍ରୀହି)—୧ । ଅତି ବୁଦ୍ଧିମାନ୍—1. Very
Mahāmati intelligent ୨ । ଉଦାରଚେତା—2. Noble-minded; magnanimous. ସଂ. ବି—୧ । ଗଣେଶ (ହି. ଶ)—1. A name of Ganesa. ୨ । ଯକ୍ଷବିଶେଷ (ହି. ଶ)—2. Name of a Jaksha. ୩ । ବୌଦ୍ଧସନ୍ଥ ବିଶେଷ (ହି. ଶ)—3. Name of a Buddhist sage. ୪ । ବୃହସ୍ପତି—4. A name of Bruhaspati (Apte).

**ମହାମଦ**—ସଂ. ବି (କର୍ମଧା)—୧ । ଅତ୍ୟନ୍ତ ହର୍ଷ—1. Great joy
Mahāmada ୨ । ପ୍ରମତ୍ତତା—2. Madness; ecstacy. ୩ । (ବହୁବ୍ରୀହି) ମତ୍ତହସ୍ତୀ—3. An elephant in
(ମହାମଦା—ସ୍ତ୍ରୀ) rut. ସଂ. ବିଣ. ପୁଂ—ପ୍ରମତ୍ତ—Maddened infuriated.

**ମହାମନା**—ଦେ. ବି (ସଂ. ମହାମନାଃ)—ମହାମନାଃ (ଦେଖ)
Mahāmanā Mahāmanāh (See).
মহামনা महामना

**ମହା ମନାଃ**—ସଂ. ବିଣ ( ମହତ୍ + ମନସ୍ ଯାହାର; ୧ମା. ୧ବ )—
Mahā manāh ପୁଂ । ମହାମତି; ଉଦାରଚେତାଃ; ମନସ୍ୱୀ—
(ମହାମନସ୍—ଅନ୍ୟରୂପ) 1. Noble-minded; magnanimous. ୨ । ଗର୍ବିତ—2. Proud; haughty (Apte).

**ମହା ମନ୍ତ୍ର**—ସଂ. ବି. ( କର୍ମଧା )—୧ । ପ୍ରଧାନ ବା ଶକ୍ତିଶାଳୀ ମନ୍ତ୍ର—
Mahā mantra 1. A very efficacious charm or formula. ୨ । ଇଷ୍ଟ ମନ୍ତ୍ର; ଗୁରୁ ମନ୍ତ୍ର—2. The formula to which a person is initiated by his spiritual preceptor.

**ମହା ମନ୍ତ୍ରୀ**—ସଂ. ବି ( ମହତ୍ + ମନ୍ତ୍ରିନ୍; ୧ମା. ୧ବ )—ରାଜ୍ୟର ପ୍ରଧାନ
Mahā mantrī ମନ୍ତ୍ରୀ—Prime minister.
(ମହାମାତ୍ୟ—ଅନ୍ୟରୂପ)

**ମହା ମଲ୍ଲ**—ସଂ. ବିଣ ( କର୍ମଧାରୟ; ମହାନ୍ + ମଲ୍ଲ=ଯୋଦ୍ଧା )—
Mahā malla ବଳବାନ୍ ଯୋଦ୍ଧା; ମହାବଳ ବୀର—A great hero. (ଉ—କି ବୁଦ୍ଧି କର ତୁମ୍ଭେ ଜାତି ଶ୍ରେଷ୍ଠ ହେଲ, କହତ ମୋତେ ହେ ବୀର ମହାମଲ୍ଲ । କୃଷ୍ଣସିଂହ. ମହାଭାରତ ଅନୁଶାସନ ।)

**ମହା ମହ**—ଦେ. ବିଣ ( ସଂ. ମହତ୍ + ମହସ୍=ତେଜଃ ) - ମହାମହିମ
Mahā maha (ଦେଖ)—Mahāmahima (See) (ଉ—ମହାମହ ପଣ୍ଡିତ ଏମନ୍ତେ, ପୁଣି ମାତ୍ର ଗଣେଶ କେମନ୍ତେ । ଭଞ୍ଜ.

କୋଟି ବ୍ରହ୍ମାଣ୍ଡ ଭୁବନ ।) ସଂ. ବି—ମହୋତ୍ସବ (ହ୍ନି. ଶ)—
A great festival.

**ମହା ମହା ବାରୁଣୀ**—ସଂ. ବି—ମହା ବାରୁଣୀ ( ଦେଖ )
Mahā mahā bāruṇī Mahā bāruṇī ( See )

**ମହା ମହାରଥୀ**—ଦେ. ବି—ଅତ୍ୟନ୍ତ ବଳଶାଳୀ ଯୋଦ୍ଧାମାନେ—
Mahā mahārathī Many a great hero.
মহা মহারথী (ଯଥା—ଏ କାମରେ ମହା ମହା ରଥୀମାନେ ହଟି
**महा महारथी** ଗଲେଣି ।)

**ମହା ମହା ରୂପକ**—ଦେ. ବି—କାବ୍ୟାଲଙ୍କାର ବିଶେଷ—A figure
Mahā mahā rūpaka of speech. [ଦ୍ର—ଯେତେବେଳେ
ଗୋଟିଏ ବସ୍ତୁକୁ ଅନେକ ଗୁଡ଼ିଏ ବସ୍ତୁ ସଙ୍ଗେ ତୁଳନା କରି
ଯାଏ ସେତେବେଳେ ମହା ମହା ରୂପକ ହୁଏ ।
ଉଦାହରଣ—ଘନ ରସଦାମା ପ୍ରେମ ସାଗର ନାରୀ
କଳାନିଧି ଶୁଚିପଦ ବର୍ଦ୍ଧନେ ଶର୍ବରୀ
ଧର୍ମମାନଙ୍କ ସୁଖକୁ ଦେବାରେ ତ ଶିରୀ
କଞ୍ଜ ନେତ୍ର ରୋଚନକୁ ସତତ ଗଉରୀ ।
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।]

**ମହା ମହିମ**—ସଂ. ବିଣ. ପୁଂ (ବହୁବ୍ରୀହି; ମହତ୍‌+ମହିମନ୍; ୧ମା.୧ବ)—
Mahā mahima ବିଶେଷ ମହିମାଯୁକ୍ତ—Majestic; very
(ମହା ମହିମା—ସ୍ତ୍ରୀ) noble or glorious.

**ମହା ମହିମା**—ସଂ. ବି. ( କର୍ମଧା )—ବିଶେଷ ମହିମା—Great
Mahā mahimā majesty. ସଂ. ବିଣ. ସ୍ତ୍ରୀ—ମହାମହିମର
ସ୍ତ୍ରୀ ଲିଙ୍ଗ—Feminine of Mahāmahima.

**ମହା ମହିମାନ୍ୱିତ**—ସଂ. ବିଣ ( ମହାମହିମା+ଅନ୍ୱିତ; ତୃତ୍ୟା ତତ୍ )—
Mahā mahimānwita ଅତି ଗୌରବାନ୍ୱିତ—Very
(ମହା ମହିମାନ୍ୱିତା—ସ୍ତ୍ରୀ) majestic or noble.

**ମହା ମହିମାର୍ଣ୍ଣବ**—ସଂ. ବିଣ. ପୁଂ—ବିଶେଷ ଗୌରବାନ୍ୱିତ—
Mahā mahimārṇṇaba Very glorious.

**ମହା ମହେଶ**—ସଂ. ବି. ପୁଂ—୧ । ପରମେଶ୍ୱର—1. The Great
Mahā maheśa God. ୨ । ଶିବ—2. Śiba.
(ମହା ମହେଶ୍ୱର—ଅନ୍ୟରୂପ)

**ମହା ମହୋପାଧ୍ୟାୟ**—ସଂ. ବି. ପୁଂ—ମହା ପଣ୍ଡିତ ବା ଆଚାର୍ଯ୍ୟ—A
Mahā mahopādhyāya great Pandit ଦେ. ବି—
মহা মহোপাধ্যায় ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ପ୍ରସିଦ୍ଧ ପଣ୍ଡିତ-
**महा महोपाध्याय** ଙ୍କର ସମ୍ମାନସୂଚକ ଉପାଧିବିଶେଷ—
A title bestowed on eminent Pandits
by the Indian Government

**ମହାମାଈ**—ଦେ. ବି. (ସଂ. ମହତୀ ମାତା)—୧ । ଦେବତା; ଠାକୁରାଣୀ—
Mahāmāī 1. A Goddess. ୨ । (ସଂ. ମହାମାୟା)—
মহামায়ী ମହାମାୟା ବା ଦୁର୍ଗା ବା କାଳୀ—2. Goddess
**महामाई** Durgā or Kālī. ୩ । ମହତୀ ମାତା—
3. The Great mother. (ଉ—ମହାନଦୀ ମହାମାଈ,
ଉତ୍କଳ ମାତାଙ୍କ ପ୍ରଧାନ ଧମନୀ ସମୁଦ୍ରେ ମିଶୁଛି ଯାଇ ।
ଉତ୍କଳ. ଗୀତ ଲହରୀ ।)

**ମହା ମାଂସ**—ସଂ. ବି (ମହତ୍ ଉଲ୍ଲେ ଟୀକା ଦେଖ; ମହତ୍ ଶବ୍ଦ ମାଂସ
Mahā māṁsa ଶବ୍ଦ ସଙ୍ଗେ ବ୍ୟବହୃତ ହେବା ନିଷିଦ୍ଧ ଥିଲେହେଁ
ଛନ୍ଦକାରମାନେ ଏହା ପ୍ରୟୋଗ କରିଥିବାର ଦେଖାଯାଏ)—
୧ । ନର ମାଂସ—1. Human flesh.
୨ । ଗୋ ମାଂସ (ହ୍ନି. ଶ)—2. Beef.

**ମହା ମାତ୍ର**—ସଂ. ବିଣ. ପୁଂ ( ମହତ୍‌+ମାତ୍ରା=ବସ୍ତ୍ୱାଦି ବା ଧନ
Mahā mātra ଯାହାର ଅଛି; ବହୁବ୍ରୀହି)—୧ । ରାଜ୍ୟର କର୍ତ୍ତା
(ମହାମାତ୍ରୀ—ସ୍ତ୍ରୀ) —1. The head of a kingdom.
୨ । ଧନୀ ସେନାପତି—2. A rich general. ୩ ।
ଶ୍ରେଷ୍ଠ ବ୍ୟକ୍ତି—3. An eminent person. ୪ ।
ଆଚାର୍ଯ୍ୟ—4. A preceptor. ୫ । ସଚିବ—
5. Minister. ୬ । ଧନୀ ବ୍ୟକ୍ତି—6. A rich person. ୭ । ହସ୍ତିପକ; ହାତୀର ମାହୁନ୍ତ; ହସ୍ତି ରକ୍ଷକ—
7. The driver or keeper of an elephant.
୮ । ମହାମନ୍ତ୍ରୀ ( ହ୍ନି. ଶ )—8. Prime minister
(Apte). ୯ । ହାତୀମାନଙ୍କ ତତ୍ତ୍ୱ ନେବା କର୍ମଚାରୀ (ହ୍ନି.
ଶ)—9. The supervisor of elephants.
ସଂ. ବିଣ—୧ । ପ୍ରଧାନ (ହ୍ନି. ଶ)—1. Principal;
chief. ୨ । ସମୃଦ୍ଧ (ହ୍ନି. ଶ)—2. Affluent. ୩ ।
ଧନୀ (ହ୍ନି. ଶ)—3. Rich. ୪ । ବହୁ ପରିମିତ; ଖୁବ ବଡ଼
—4. Very great or large.

**ମହା ମାନ**—ସଂ. ବି. (କର୍ମଧା)—ବିଶେଷ ସମ୍ମାନ—
Mahā māna Great respect.

**ମହା ମାନୀ**—ସଂ. ବିଣ. ପୁଂ (ମହାମାନ୍‌+ଇନ୍; ୧ମା. ୧ବ)—ଅତ୍ୟନ୍ତ
Mahā mānī ସମ୍ମାନିତ—Highly respected. ଦେ. ବି—
(ମହା ମାନିନୀ—ସ୍ତ୍ରୀ) ଅତି ଅଭିମାନୀ—Prone to take off-
মহাঅভিমানী ence on slight causes.

**ମହା ମାୟ**—ସଂ. ବିଣ. ପୁଂ—ଅତ୍ୟନ୍ତ ମାୟାବୀ—Very illusive.
Mahā māya ସଂ. ବି. ପୁଂ—ମହାଦେବ—Śiba (Apte).

**ମହାମାୟା**—ସଂ. ବି—(ମହତୀ+ମାୟା)—୧ । (କର୍ମଧା) ଜଗତରେ
Mahā māyā ବ୍ୟାପି ଥିବା ଅବିଦ୍ୟା ବା ମାୟା—1. The
delusion which envelops the creation.
୨ । ( ସ୍ତ୍ରୀ ) ( ବହୁବ୍ରୀହି ) ଦୁର୍ଗା—2. Goddess
Durgā. ୩ । (ସ୍ତ୍ରୀ) ( ବହୁବ୍ରୀହି ) ଲକ୍ଷ୍ମୀ; କମଳା—
3. The Goddess of wealth. ୪ । ( ସ୍ତ୍ରୀ )
ଗଙ୍ଗାନଦୀ (ହ୍ନି. ଶ)—4. The Ganges. ୫ । ( ସ୍ତ୍ରୀ)
ଆର୍ଯ୍ୟାଛନ୍ଦର ୧୩ ପ୍ରକାର ମଧ୍ୟରେ ଏକ—5. One of
the modifications of the Sanscrit Ārjyā
metre. ୬ । (ପୁଂ) ବିଷ୍ଣୁ (ହ୍ନି. ଶ)—6. Bishṇu.
୭ । (ପୁଂ) ଶିବ (ହ୍ନି. ଶ)—7. Śiba. ୮ । ( ପୁଂ )
ବିଦ୍ୟାଧରବିଶେଷ ( ହ୍ନି. ଶ )—8. Name of a
heavenly being. ଦେ. ବି ( ନାମ )—୧ । ବୁଦ୍ଧ-
ଦେବଙ୍କ ମାତା; ମାୟାଦେବୀ—1. Name of the
mother of the Buddha. ୨ । ଗ୍ରାମଦେବତା-

ବିଶେଷ—2. Name of a popular village Goddess. [ ଦ୍ର—ପୁରୀ ଜିଲ୍ଲା ସାକ୍ଷିଗୋପାଳ ଷ୍ଟେସନ ନିକଟରେ ମହାମାୟୀ ନାମରେ ଏକ ଦେବୀ ଅଛନ୍ତି । ]
ସଂ. ବିଣ. ସ୍ତ୍ରୀ—ମହାମାୟୀର ସ୍ତ୍ରୀଲିଙ୍ଗ—Feminine of Mahāmāyā.

ମହାମାରୀ—ସଂ. ବି ( କର୍ମଧା; ମହାନ୍+ମାରୀ=ମଡ଼କ ଓ ଦୁର୍ଗାଙ୍କର Mahāmāri ଶକ୍ତିବିଶେଷ )—୧ । ମହାକାଳୀ ( ଦେଖ )— 1. Mahākāli ( See ) ୨ । କୌଣସି ଅଞ୍ଚଳରେ ବ୍ୟାପିଥିବା ମଡ଼କ—2. A great pestilence or plague. [ ଯଥା—ଯଥା; ଓଲାଉଠା, ବସନ୍ତ, ପ୍ଲେଗ୍ ଇତ୍ୟାଦି । ]

ମହାମାଷ—ସଂ. ବି—ବରଗୁଡ଼ି ( ଦେଖ )
Mahāmāsha Baragurdi ( See )

ମହାମାଷ ତୈଳ—ସଂ. ବି—ଅମବାତ ଓ ଛିଡ଼ା ରୋଗ ନିବାରକ Mahāmāsha taila ଆୟୁର୍ବେଦୋକ୍ତ ତୈଳବିଶେଷ—A medicinal oil used in acute rheumatism and aching.

ମହାମୀନ—ସଂ. ବି ( ମହାନ୍+ମୀନ; କର୍ମଧା )—ବଡ଼ ମାଛ—A big Mahāmina fish. [ ଉ—ବହୁଳ କୁମ୍ଭୀର ମହାମୀନମାନ ଗଢ଼ କରନ୍ତି ତ ରଙ୍ଗେ ସେ—ଉଞ୍ଜ. ବୈଦେହୀଶବିଳାସ । ]

ମହାମୁଖ—ସଂ. ବି—୧ । ( ବହୁବ୍ରୀହି ) କୁମ୍ଭୀର ( ହ୍ର. ଶ )— Mahāmukha 1. Alligator. ୨ । ମହାଦେବ (ହ୍ର. ଶ)— 2. Mahādeba. ୩ । ( କର୍ମଧା ) ନଦୀର ମୁହାଣ ( ହ୍ର. ଶ )—3. The mouth of a river.

ମହାମୁଣ୍ଡୀ—ସଂ. ବି ( ବୈଦ୍ୟକ )—ଭୂଇଁକଦମ୍ବ ( ଦେଖ )
Mahāmundi Bhuiṅkadamba ( See )

ମହାମୁଦ୍ରା—ସଂ. ବି ( କର୍ମଧା )—ତନ୍ତ୍ରୋକ୍ତ ଅଙ୍ଗୁଳ୍ୟାଦି ରଚିତ ମୁଦ୍ରା- Mahāmudrā ବିଶେଷ—A pose of the fingers used during Tantric rites.

ମହାମୁନି—ସଂ. ବି (କର୍ମଧା)—୧ । ମୁନିଶ୍ରେଷ୍ଠ; ମହର୍ଷି; ଅଗସ୍ତ୍ୟ ପ୍ରଭୃତି— Mahāmuni 1. A great sage. ୨ । ବୁଦ୍ଧଦେବ— 2.The Buddha. ୩ । କୃପାଚାର୍ଯ୍ୟ—3. Preceptor Krupa. ୪ । କାଳ—4. Time personified. ୫ । ବ୍ୟାସ—5. Sage Byāsa. ୬ । ତୁମ୍ବୁରୁବୃକ୍ଷ— 6. Xanthoxylum Alatum (tree). ୭ । ଔଷଧ ବିଶେଷ ( ପ୍ରକୃତିବାଦ )—7. A kind of medicine. ୮ । ଅଗସ୍ତ୍ୟ ଋଷି ( ହ୍ର. ଶ )—8. Sage Agastya.

ମହାମୂଳ—ସଂ. ବି ( କର୍ମଧା ବା ବହୁବ୍ରୀହି )—୧ । ପିଆଜ ( ହ୍ର. ଶ )— Mahāmūla 1. Onion. ୨ ।ମୂଳା—2. Radish (Apte).

ମହାମୂଲ୍ୟ—ସଂ. ବିଣ ( ବହୁବ୍ରୀହି )—ଅତି ମୂଲ୍ୟବାନ୍; ମହାର୍ଘ— Mahāmūlya Very valuable; costly; precious.
ସଂ. ବି—ପଦ୍ମରାଗମଣି—Ruby ( Apte ).

ମହାମୃଗ—ସଂ. ବି ( କର୍ମଧା )—୧ । ଶରଭ—1. A kind of Mahāmruga fabulous deer. ୨ । ହସ୍ତୀ—2. Elephant. ୩ । ବୃହତ୍ ଜୀବ—3. A big animal ( Apte ).

ମହା ମୃତ୍ୟୁଞ୍ଜୟ—ସ ବି—ଶିବ—
Mahā mrutyuñjaya Siba.

ମହା ମୃତ୍ୟୁଞ୍ଜୟ ମନ୍ତ୍ର—ସଂ. ବି—ମହାଦେବଙ୍କ ମନ୍ତ୍ରବିଶେଷ—Name Mahā mrutyuñjaya mantra of a mystic formula for propitiating God Siba. [ ଦ୍ର—ଏହି ମନ୍ତ୍ର ଜପ କଲେ ଅକାଳ ମୃତ୍ୟୁ, ଅସନ୍ନ ମୃତ୍ୟୁ ଓ ଗୁରୁତର ରୋଗ କବଳରୁ ରକ୍ଷା ମିଳେ । ]

ମହାମେଦ—ସଂ.ବି—୧ । ମହାମେଦା (ହରେକୃଷ୍ଣ. ଦ୍ରବ୍ୟଗୁଣ) (ଦେଖ)— Mahāmeda 1. Mahāmedā (See)— ୨ । ମନ୍ଦାର ଗଛ—2. The coral tree (Apte).

ମହାମେଦା—ସଂ. ବି—ଔଷଧବିଶେଷ; ଏକପ୍ରକାର ଲତାର ମୂଳ (ଏହାର Mahāmedā ଆକାର ଧଳା ଅଦା ପରି )—
ସଂ. ସୁରମେଦା, ଦେବଗନ୍ଧା, ଦେବେଷ୍ଟ, ଦିବ୍ୟା, ସୋମା, ଦେବତାମଣି, ଦେବମଣି, ଐନ୍ଦ୍ରୀ; ବସୁଚ୍ଛିଦ୍ରା
ତେ. ମହାମେଦସ୍ଵିରଚେଟ୍ଟୁ
ମହାମେଦା महामेदा
A kind of medicinal root. [ ଦ୍ର—ଏହା ମୋରଙ୍ଗ ଦେଶରେ ଜନ୍ମିବା କଥିତ । ଏହା ବର୍ତ୍ତମାନ ସହଜରେ ମିଳୁ ନ ଥିବାରୁ, ଏହାର ପରିବର୍ତ୍ତରେ ଅନନ୍ତମୂଳ ବା ଚେମିଡ଼ି ନେଇ ମୂଳ ବ୍ୟବହାର କରିବାକୁ ବୈଦ୍ୟଶାସ୍ତ୍ରରେ ଉପଦେଶ ଅଛି । ଏହା ସ୍ଵାଦୁ, ଶୁକ୍ରଜନକ, ସ୍ତନ୍ୟବର୍ଦ୍ଧକ, କଫକାରକ, ପୁଷ୍ଟିକର, ଶୀତଳ ଓ ରକ୍ତପିତ୍ତ ଓ ବାତଜ୍ଵର ବିନାଶକ—ଦ୍ରବ୍ୟଗୁଣ । ]

ମହାମେରୁ—ଦେ, ବିଣ—୧ । ମେରୁ ପର୍ବତ ପରି ବଡ଼ ଓ ଦୃଢ଼— Mahāmeru 1. Gigantic and strong. ( ଉ—
ଖୁବ ବଡ଼
महामेरु
ହେବାଲିନ୍ତି ମୋତେ ବିଷଗୁରୁ । ଯାର ମହିମା ମହାମେରୁ—ଜଗନ୍ନାଥ. ଭାଗବତ । ) ୨ । ଅତିବଡ଼— 2. Very big. ( ଉ—ଗଛ ମହାମେରୁ ପଥର ସରୁ, ତା ଫଳଟି ବାଜିଥ ମେରୁ—ନାଆଁ କିଅ । ଉତ୍ତର=କସ୍ତୁରିଗଛ ।) ଦେ. ବି—୧ । ପର୍ବତବିଶେଷ—1. Name of a mountain. ( ଉ—ଉତ୍ତର ଦିଗରେ ଦିଶୁଅଛି ଯେଉଁ ଗିରି । ମହାମେରୁ ନାମଟି ଅଟଇ ତାହାରି— କୃଷ୍ଣସିଂହ. ମହାଭାରତ. ବନ । ) ୨ । ଏକପ୍ରକାର ଜଙ୍ଗଲୀ ବଡ଼ ଗଛ—2 A kind of wild big tree.

ମହାମୋହ—ସଂ. ବି—୧ । ସଂସାରର ବିଷୟବାସନାରୂପ ଅଜ୍ଞାନ— Mahāmoha 1. The great infatuation of mind towards worldly objects. ୨ । ମହାମାୟା— 2. Great delusion. ୩ । ମୈଥୁନାଦି ସୁଖଭୋଗେଚ୍ଛାରୂପ ଅନ୍ତଃକରଣବୃତ୍ତିବିଶେଷ—3 Amour; lust.

ମହାମୋହା—ସଂ. ବି (ମହା+ମୋହ+ଆ)—ଦୁର୍ଗା—
Mahāmohā A name of Durgā.

ମହାମ୍ଳ—ସଂ. ବି (ମହତ୍+ଅମ୍ଳ)—ତେନ୍ତୁଳି—
Mahāmla Tamarind.

**ମହାଯଜ୍ଞ**—ସଂ. ବି (ମହତ୍+ଯଜ୍ଞ, କର୍ମଧାରୟ)—୧ । ପ୍ରଧାନ ଯଜ୍ଞ— Mahājajna 1. A great Vedic oblation. ୨ । ହିନ୍ଦୁ ଗୃହସ୍ଥର କର୍ତ୍ତବ୍ୟ ୫ ଗୋଟି ନିତ୍ୟ କାର୍ଯ୍ୟ—2. The five great sacrifices enjoined on a Hindu householder. [ ଦ୍ର—ଏହି ପାଞ୍ଚ ଗୋଟି ମହାଯଜ୍ଞ ଅଟେ । ଯଥା—
୧ । ବ୍ରହ୍ମଯଜ୍ଞ—ବେଦାଧ୍ୟୟନ ।
୨ । ଦେବଯଜ୍ଞ—ଅଗ୍ନିହୋତ୍ର ହୋମାଦି ।
୩ । ପିତୃଯଜ୍ଞ—ତର୍ପଣ ।
୪ । ନୃଯଜ୍ଞ—ଅତିଥିସେବା ।
୫ । ଭୂତଯଜ୍ଞ—ଜୀବଗଣଙ୍କୁ ଖାଦ୍ୟଦାନ ବା ବୈଶ୍ୱଦେବ । ]
୩ । (ବହୁବ୍ରୀହି)—ବିଷ୍ଣୁ—3. Bishnu.

**ମହାଯମକ**—ସଂ. ବି—କାବ୍ୟାଦିରେ ବ୍ୟବହୃତ ଶବ୍ଦାଲଙ୍କାରବିଶେଷ— Mahājamaka A figure of speech. [ଦ୍ର—ଯେଉଁ ଯମକରେ ଶ୍ଳୋକର ବା ପଦର ପ୍ରତ୍ୟେକ ଧାଡ଼ିର ଅକ୍ଷର ମାନଙ୍କରେ ବହୁବାର ସମାନତା ଥାଏ, କିନ୍ତୁ ଅର୍ଥ ପୃଥକ୍, ତାକୁ ମହାଯମକ ବୋଲିଯାଏ । ଯଥା—ତପର ତପନବେଶ ତ ପର ତପନ, ତପର ତପନ ଭୁଳ ତ ପର ତପନ— ଉପେ. ପ୍ରେମମଞ୍ଜରୀ । ସଂସ୍କୃତ କିରାତାର୍ଜୁନୀୟକାବ୍ୟର ୧୫ଶ ସର୍ଗ ୫୨ ଶ୍ଳୋକରେ ୪ ଧାଡ଼ିରେ ଅକ୍ଷରମାନ ଏକ, କିନ୍ତୁ ପ୍ରତ୍ୟେକ ଧାଡ଼ିର ଅର୍ଥ ଭିନ୍ନ ଅଟେ ।]

**ମହାଯଶ**—ଦେ. ବି (ସଂ. ମହତ୍ ଓ ଯଶସ୍; କର୍ମଧା)—ଖୁବ୍ କୀର୍ତ୍ତି— Mahājaśa महायश महायश A great fame. (ମହାଯଶଃ—ସଂସ୍କୃତ ରୂପ)

**ମହାଯଶାଃ**—ସଂ. ବିଣ ( ମହା+ଯଶସ୍; ୧ମା, ୧ବ; ବହୁବ୍ରୀହି )— Mahājaśāḥ ଅତିଶୟ ଯଶସ୍ୱୀ—Much renowned, very famous.

**ମହାଯାତ୍ରା**—ସଂ. ବି—୧ । ମହାପ୍ରସ୍ଥାନ ( ଦେଖ )—Mahā Mahājātrā prasthāna (See). ( ମହତ୍ ଚଳେ ଶୀଘ୍ର ଦେଖ) ୨ । ଗର୍ଥ ମୃତ୍ୟୁ ଲଭିବାପାଇଁ କାଶୀ ଯାତ୍ରା— 2. A pilgrimage to Benares to die there (Apte). ଦେ. ବି—ପାଣ୍ଡବମାନଙ୍କର ମହାପ୍ରସ୍ଥାନ-ବର୍ଣ୍ଣନାତ୍ମକ କବିବର ରାଧାନାଥଙ୍କର ଅସମ୍ପୂର୍ଣ୍ଣ ଓଡ଼ିଆ କାବ୍ୟବିଶେଷ—An incomplete poem in Oriya by Rādhānātha.

**ମହାଯାନ**—ସଂ. ବି—ବୌଦ୍ଧସଂପ୍ରଦାୟବିଶେଷ—A sect of later Mahājāna Buddhists. [ ଦ୍ର—ବୁଦ୍ଧଦେବଙ୍କ ମହାନିର୍ବାଣ ପରେ ତାଙ୍କ ଶିଷ୍ୟୋପଶିଷ୍ୟମାନଙ୍କ ମତଭେଦରୁ ବୌଦ୍ଧଧର୍ମର ନାନା ଶାଖା, ଉପଶାଖା ଏବଂ ବିଭିନ୍ନ ମତବାଦ ଉଦ୍ଭୂତ ହୋଇଥିଲା । ମହାଯାନ ମତବାଦ ତନ୍ମଧ୍ୟରୁ ଏକତମ । ଯେଉଁ ବୌଦ୍ଧମାନେ ସେ ମତବାଦକୁ ଗ୍ରହଣ କଲେ, ସେମାନେ ମହାଯାନସଂପ୍ରଦାୟ ନାମରେ ଅଭିହିତ । ବର୍ତ୍ତମାନ ତିବ୍ବତ, ନେପାଳ, ଚୀନ ଓ ଜାପାନ ପ୍ରଭୃତିରେ ଏହି ମହାଯାନ ବୌଦ୍ଧଧର୍ମର ପ୍ରଚଳନ ଦେଖାଯାଏ । ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ଉଭୟ ମଧ୍ୟରେ ଗୋଟାଏ ସମନ୍ୱୟ ସାଧନ କରିବା ପାଇଁ ପ୍ରଥମେ ଏହି ମତବାଦର ସୂତ୍ରପାତ ହୋଇଥିଲା । ମହାଯାନ ବୌଦ୍ଧମାନେ ଉଭୟ ଧର୍ମସମନ୍ୱୟ ରକ୍ଷା କରି ଚଳୁଥିଲେ । ଶିବଙ୍କର ଶକ୍ତି ପରି ବୁଦ୍ଧଦେବଙ୍କର କେତେଗୁଡ଼ିଏ ଶକ୍ତି ବା ଦେବୀ ଏ ମତବାଦରେ କଳ୍ପିତ ହୋଇଥିଲେ । ଏହି ମତବାଦରେ ହିନ୍ଦୁ ତନ୍ତ୍ର ଓ ଯୋଗ-ସାଧନ ମତର ଆଧିକ୍ୟ ପରିଦୃଷ୍ଟ ହୁଏ । ଉତ୍କଳର 'ଶୂନ୍ୟବାଦୀ' ଓ 'ଶରୀରଭେଦ' ଯୋଗସାଧକମାନେ ଏହି ସଂପ୍ରଦାୟର ଅନ୍ତର୍ଭୁକ୍ତ ବୋଲି କେତେକ ପଣ୍ଡିତ ମତପ୍ରକାଶ କରନ୍ତି । ଜଗନ୍ନାଥଙ୍କୁ ଲୋକେ ବୌଦ୍ଧାବତାର ବୋଲି ଯେ କହନ୍ତି, ତାହା ଏହି ସଂପ୍ରଦାୟର ପ୍ରଭାବଜନିତ ଫଳ ବୋଲି କେତେକ ପଣ୍ଡିତ ଅନୁମାନ କରନ୍ତି । ]

**ମହାଯୁଗ**—ସଂ. ବି—ଚାରିଯୁଗର ସମଷ୍ଟି—A unit of 4320,000 Mahājuga years. [ଦ୍ର—ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରି ଯୁଗର ସମଷ୍ଟି ବା ୪୩ ଲକ୍ଷ ୨୦ ହଜାର ବର୍ଷ ମହାଯୁଗ ନାମରେ ଅଭିହିତ । ଏହା ଦେବତାମାନଙ୍କ ଗଣନାରେ ଗୋଟିଏ ଯୁଗ ଅଟେ ।]

**ମହାଯୁଦ୍ଧ**—ସଂ. ବି (କର୍ମଧାରୟ; ମହତ୍+ଯୁଦ୍ଧ)—ତୁମୁଳ ସଂଗ୍ରାମ— Mahājuddha A great or fierce war.

**ମହାଯୋଗ**—ସଂ. ବି (ମହାନ୍+ଯୋଗ; କର୍ମଧା)—୧ । ପ୍ରଧାନ ଯୋଗ Mahājoga ବା ସୁସମୟ—1. A great or favourable conjunction or opportune moment. ୨ । କଠୋର ତପସ୍ୟା—2. Great austerities or concentration practised by a devotee.

**ମହାଯୋଗୀ**—ସଂ. ବିଣ (ମହାନ୍+ଯୋଗୀ; କର୍ମଧା)—ତପୋନିରତ; Mahājogī ମହାତପାଃ—Practising great austerities. ସଂ. ବି—୧ । ମହାଦେବ; ଶିବ—1. Śiba. ୨ । ବିଷ୍ଣୁ—2. Bishnu (Apte). ୩ । କୁକ୍କୁଟ— 3. A cock (Apte).

**ମହାଯୋଗେଶ୍ୱର**—ସଂ. ବି. ପୁଂ—୧ । ଭଗବାନ୍; ହରି; କୃଷ୍ଣ Mahājogeśwara ( ଭଗବଦ୍ଗୀତା )—1. Hari; Bishnu. ୨ । ମହର୍ଷି ଓ ଯୋଗୀରୂପେ ବିଖ୍ୟାତ କତିପୟ ଋଷି—2. Some great sages. (ଏମାନଙ୍କ ନାମ—ପିତାମହ, ପୁଲସ୍ତ୍ୟ, ବଶିଷ୍ଠ, ପୁଲହ, ଅଙ୍ଗିରା, କ୍ରତୁ, କଶ୍ୟପ—ହ. ଶ । )

**ମହାଯୋଗେଶ୍ୱରୀ**—ସଂ. ବି. ସ୍ତ୍ରୀ—୧ । ଦୁର୍ଗା—1. Durgā. ୨ । Mahājogeśwarī ନାଗଦମନୀ ( ହ. ଶ )—2. Indian 'wormwood'.

**ମହାରଜତ**—ସଂ. ବି—(ମହତ୍+ରଜତ; କର୍ମଧା)—୧ । ସ୍ୱର୍ଣ୍ଣ— Mahārajata 1. Gold. ୨ । ଧୁସ୍ତୁର—2. Thorn-apple (Apte).

ମହାରଜନ—ସଂ. ବି—୧ । ସ୍ୱର୍ଣ୍ଣ—1. Gold. ୨ । କୁସୁମ ଫୁଲ—
Mahārajana 2. Safflower (Apte).

ମହାରଜା—ଗ୍ରା. ବି (ସଂ. ମହାରାଜନ୍ ଶବ୍ଦ)—ମହାରାଜ; ସମ୍ରାଟ—
Mahārajā An emperor. ଗ୍ରା. ଅ—ରାଜାଙ୍କ ପ୍ରତି
ମହାରାଜା ଚାକରମାନଙ୍କ ସଂବୋଧନ—A term used in
महाराज addressing a Raja by his attendants.
(ମହାରଜା—ଅନ୍ୟରୂପ)

ମହାରଣ—ସ. ବି (କର୍ମଧାରୟ; ମହତ୍+ରଣ)—ମହାଯୁଦ୍ଧ (ଦେଖ)—
Mahāraṇa Mahājuddha (See).

ମହାରଣା—ଦେ. ବି—ପଥୁରିଆ, ବଢ଼େଇ, କମାର ଓ ଚିତ୍ରକରଙ୍କ
Mahāraṇā ବଂଶୋପାଧି ବିଶେଷ—A family title of
stone masons, carpenters and painters
[ଦ୍ର—ଯେଉଁ ବଢ଼େଇ କରିଥିବା କାମଯାକ ଶୀଘ୍ର କୁଶଳ-
ପାଏ ତାହାଙ୍କୁ ବ୍ୟଙ୍ଗରେ କୁଶଳ ମହାରଣା କହନ୍ତି ।]

ମହାରଣ୍ୟ—ସଂ. ବି ( କର୍ମଧା; ମହତ୍+ଅରଣ୍ୟ )—ନିବିଡ଼ ଅରଣ୍ୟ;
Mahāraṇya ଘୋର ଅରଣ୍ୟ; ଅଗମ୍ୟ ବନସ୍ଥଳ; ଅରଣ୍ୟାନୀ—
A dense forest.

ମହାରତ୍ନ—ସଂ. ବି (କର୍ମଧା; ମହତ୍+ରତ୍ନ)—୧ । ଶ୍ରେଷ୍ଠ ମଣି—
Mahāratna 1. Chief gem. ୨ । ନବରତ୍ନ—2 Nine
kinds of excellent gems. [ଦ୍ର—ହୀରା, ନୀଳା,
ମୋତି, ମାଣିକ୍ୟ, ପଦ୍ମରାଗ, ଗୋମେଦ, ପୁଷ୍ପରାଗ, ପ୍ରବାଳ
ଓ ବୈଦୂର୍ଯ୍ୟ । କେହି କେହି କହନ୍ତି—ମଣି, କରକତ,
ବଜ୍ରମଣି, ପଦ୍ମରାଗ ଓ ଗୁହନାୟିକା—ଏହି ୫ଟି
ମହାରତ୍ନ—ପ୍ରକୃତିବାଦ ।]

ମହାରଥ—ସଂ. ବି (ମହତ୍ ଅଟେ ରଥ ଯାହାର; ବହୁବ୍ରୀହି)—
Mahāratha ୧ । ଅସାଧାରଣ ଯୁଦ୍ଧକୁଶଳ ବ୍ୟକ୍ତି—1. A great
warrior or hero. [ଦ୍ର—ଭିନ୍ନ ଭିନ୍ନ ଗ୍ରନ୍ଥରେ ମହା-
ରଥର ଭିନ୍ନ ଭିନ୍ନ ସଂଜ୍ଞା ଦିଆଯାଇଅଛି, ଯଥା—(କ) ଯେଉଁ
ଯୋଦ୍ଧା ଏକାକୀ ଦଶହଜାର ଧନୁର୍ଦ୍ଧାରୀଙ୍କ ସଙ୍ଗେ ଯୁଦ୍ଧ
କରିବାକୁ କ୍ଷମ, (ଖ) ଯେଉଁ ଯୋଦ୍ଧା ଆପଣାକୁ, ସାରଥିକୁ ଓ
ରଥର ଅଶ୍ୱମାନଙ୍କୁ ଶତ୍ରୁର ଆକ୍ରମଣରୁ ରକ୍ଷାକରି ଯୁଦ୍ଧ କରେ,
(ଗ) ଯୁଦ୍ଧବିଦ୍ୟାରେ ସୁନିପୁଣ ଯେଉଁ ବୀର ଏକମାତ୍ର ରଥରେ
ଆରୋହଣ କରି ଶତ୍ରୁର ସମ୍ମୁଖୀନ ହୁଅନ୍ତି, (ଘ) ଅସ୍ତ୍ର ଶସ୍ତ୍ର-
ବିଦ୍ୟା ଓ ଶାସ୍ତ୍ର ବିଦ୍ୟାରେ ପାରଙ୍ଗମ ଯୋଦ୍ଧା ।] ୨। (କର୍ମଧା)
ବଡ଼ ରଥ—2. A great chariot. ୩। ମନୋରଥ—
3. Desire, longing (Apte.)

ମହାରଥା—ଦେ. ବି. (ଦେଶ୍ୟ) (ସ. ମହାରଥ)—୧ । ମହାରଥ (ଦେଖ)
Mahārathā 1. Mahāratha (See) (ଭୂ—ଜାଣିଛଟିକ
ମହାରଥୀ } ଅନ୍ୟରୂପ ଯୁଝନ୍ତି ବ ମହାରଥା-କୃଷ୍ଣସିଂହ ମହାଭାରତ ।)
ମହାରଥିଆ } ୨ । ମହାରଥୀ ( ଦେଖ )
महारथी 2. Mahārathī ( See )

ମହାରଥୀ—ଦେ. ବି—କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—
Mahārathī A family title of Kshatriyas.
(ମହାର୍ଥୀ—ଗ୍ରାମ୍ୟରୂପ)

ମହାରବ—ସ. ବି (କର୍ମଧାରୟ)—ଘୋର ଶବ୍ଦ—
Mahāraba A great noise; a loud noise.

ମହାରୟ—ସ. ବିଣ (ବହୁବ୍ରୀହି; ମହାନ୍+ରୟ)—ଅତି ବେଗଶାଳୀ—
Mahāraya Very swift ସ. ବି (କର୍ମଧା)—ଦ୍ରୁତ ବେଗ—
Great velocity.

ମହାରସ—ସ. ବିଣ. ( ବହୁବ୍ରୀହି )—ଅତିଶୟ ରସମୟ ବା ସ୍ୱାଦୁ ବା
Mahārasa ରୁଚିକର—Very savoury ( Apte).
ସ. ବି—୧ । ପାରଦ—1. Mercury. ୨। ଖର୍ଜୁର—
2. Date (tree or fruit). ୩ । ଆଖୁ—3 Sugar-
cane (Apte). ୪ । ମୂଲ୍ୟବାନ୍ ଖନିଜ ଦ୍ରବ୍ୟ—
4. A precious mineral (Apte). ୫ । ବୈଦ୍ୟ-
ଶାସ୍ତ୍ର ମତରେ ହିଙ୍ଗୁଳ, ପାରଦ, ବୈକ୍ରାନ୍ତ, କାନ୍ତଲୌହ,
ଅଭ୍ରକ, ମାକ୍ଷିକ, ବିମଳ, ଶସ୍ୟ (କଶେରୁ) ଏହି ଅଠଟି ବସ୍ତୁ—
5 Name of 8 substances mention-
ed in the Ayurbeda (Apte) ୬ । କାଞ୍ଜି;
ତୋରାଣି—6. Sour rice water (Apte).

ମହା ରହସ୍ୟ—ସ. ବି. (କର୍ମଧା)—ଅତି ଗୁପ୍ତ ବିଷୟ—
Mahā rahasya Very secret matter.

ମହା ରାଗ—ଦେ. ବି—ଅତ୍ୟନ୍ତ କ୍ରୋଧ—Rage.
Mahā rāga ଦେ. ବିଣ—କ୍ରୁଦ୍ଧ—Angry.
বড় রাগ महारंज

ମହା ରାଗୀ—ଦେ. ବିଣ. ପୁଂ—ଅତ୍ୟନ୍ତ କ୍ରୋଧୀ—
Mahā rāgī Of a very angry temper.
(ମହାରାଗୁଆ—ଅନ୍ୟରୂପ) (ମହାରାଗେଇ—ସ୍ତ୍ରୀ)
বড় রাগী महारागी

ମହାରାଜ—ଦେ. ଅ. (ସମ୍ବୋଧନ)—(ରାଜା, ମହନ୍ତ, ବାବାଜୀ, ସମ୍ମାନୀ
Mahārāja ଉଚ୍ଚ ବ୍ୟକ୍ତି ଓ ବ୍ରାହ୍ମଣଙ୍କ ପ୍ରତି ଉପଯୁକ୍ତ ଉକ୍ତି)—
ମହିମା ! ମହାପ୍ରଭୁ !—(a term used in address-
ing a king, a Mahant, a Brahman, a
respectable person etc) Your Majesty !
Your Highness !

ମହାରାଜ—ସଂ. ବି. ପୁଂ ( କର୍ମ ମହାନ୍+ରାଜନ୍ )—୧ । ରାଜଶ୍ରେଷ୍ଠ;
Mahārāja ସମ୍ରାଟ୍; ରାଜେନ୍ଦ୍ର—1. Emperor. ୨ । ବୁଦ୍ଧ
(ମହାରାଜା—ସ୍ତ୍ରୀ) ଜିନ ବିଶେଷ—2. Name of a saint who
(ମହାରାଜ୍ଞୀ ନୁହେଁ) came before the Buddha. ୩ । ନଖ
3. Finger nail. ୪ । ପ୍ରଧାନ କ୍ଷତ୍ରିୟ—4. An
eminent Kshatriya. ସଂ. ଅ (ରାଜା ବା ମାନ୍ୟ
ବ୍ୟକ୍ତିମାନଙ୍କୁ ସମ୍ବୋଧନ) ହଜୁର ! ମହିମା !—Your
Highness ! your Majesty ! your Honour !
(Apte).

ମହାରାଜକୁମାର—ସଂ. ବି—ସମ୍ରାଟଙ୍କ ପୁତ୍ର—
Mahārājakumāra A prince of an emperor.
महाराजकुमार ଦେ. ବି—ଗଭର୍ଣ୍ଣମେଣ୍ଟଙ୍କଠାରୁ ମହାରାଜା ଉପାଧି
महाराजकुँअर ପ୍ରାପ୍ତ ମହାରାଜାଙ୍କର କୁମାରଙ୍କ ଉପାଧି—
Title of the son of a titled Maharaja.

ମହାରାଜଗାନ୍—ଦେ. ବ ( ମହାରାଜ+ ଫା. ପ୍ରତ୍ୟୟ ଗାନ୍ )—
Mahārājagān ମହାରାଜାମାନେ; ମହାରାଜଗଣ—
All the great kings; the Maharajas.

ମହାରାଜ ପନ୍ଥୀ—ଦେ. ବ—ଦକ୍ଷିଣ ଭାରତର ବୈଷ୍ଣବ ସମ୍ପ୍ରଦାୟବିଶେଷ-
Mahārāja panthī Name of a Baishnaba sect in southern India.

ମହାରାଜା—ଦେ. ବ. ପୁଂ (ସଂ. ମହାରାଜ)—୧ । ସମ୍ରାଟ—
Mahārājā 1. Emperor ୨ । ରାଜେନ୍ଦ୍ର; ଶ୍ରେଷ୍ଠ ରାଜା—
(ମହାରାଣୀ—ସ୍ତ୍ରୀ) 2. A great or eminent Rājā. ୩ ।
মহারাজা ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧିବିଶେଷ—
**महाराजा** 3. A title bestowed by the Indian Government. ଦେ. ଅ—ମହାରାଜ ( ଦେଖ ) Mahārāja ( See ) [ଦ୍ର—'ମହାରାଜ' ଶବ୍ଦ ସ୍ଥଳରେ 'ମହାରାଜା' ଶବ୍ଦର ପ୍ରୟୋଗ ସଂସ୍କୃତ ବ୍ୟାକରଣ ଦୃଷ୍ଟିରେ ଅଶୁଦ୍ଧ ।]

ମହାରାଜାଧିରାଜ—ସଂ. ବ. (ମହାରାଜ+ଅଧିରାଜ=ପ୍ରଧାନ ରାଜା)—
Mahārājādhirāja ରାଜେନ୍ଦ୍ର; ରାଜଚକ୍ରବର୍ତ୍ତୀ; ସାର୍ବଭୌମ—
মহারাজাধিরাজ An emperor; a lord over many
**महाराजाधिराज** kings ଦେ. ବ—ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧିବିଶେଷ—A title bestowed by the Indian Government.

ମହାରାଜା ବାହାଦୁ(ଦ୍ଦ)ର—ଦେ. ବ (ସଂ. ମହାରାଜ+ଫା.ବାହାଦୁର)-
Mahārājā bāhādu(dda)r ଭାରତ ସରକାରଙ୍କ ପ୍ରଦତ୍ତ
মহারাজা বাহাদুর ଉପାଧିବିଶେଷ—A title conferred
**महाराजा बाहादुर** by the Indian Government.

ମହାରାଜା ସାହେ(ହା)ବ—ଦେ. ବ—ମହାରାଜାଙ୍କ ପ୍ରତି ପ୍ରଯୁକ୍ତ ଉକ୍ତି -
Mahārājā sāhe(hā)b A term used in respect
মহারাজা সাহেব of persons who have got
**महाराजा साहे(हा)ब** the title of Mahārāja.

ମହାରାଜିକ—ସଂ. ବ. ( ମହାରାଜ+ସଜ୍ଞାର୍ଥେ. ଇକ )—୧ । ୨୨୦ ବା
Mahārājika ୨୩୬ ସଂଖ୍ୟକ ଗଣଦେବତା ବିଶେଷ—
1. A class or group of Deities,220 or 236 in number. ୨ । ବିଷ୍ଣୁ—2. Bishṇu (Apte).

ମହାରାଜ୍ଞୀ—ଦେ. ବ. ସ୍ତ୍ରୀ ( ସଂ. ମହାରାଜ୍ଞୀ )—୧ । ସମ୍ରାଜ୍ଞୀ—
Mahārājnī 1. Empress. ୨ । ମହାରାଜ ମହିଷୀ—
মহারাজ্ঞী 2. The queen of Mahārājā. ସଂ. ବ. ସ୍ତ୍ରୀ—
**महारानी** (କର୍ମଧା; ମହତ+ରାଜ୍ଞୀ)—ବହୁଗୁଣ ବିଭୂଷିତା ମହାମନାଃ ରାଜ୍ଞୀ—A magnanimous and noble queen. [ଦ୍ର—ମହାରାଜ ଶବ୍ଦର ସ୍ତ୍ରୀଲିଙ୍ଗରେ ଅର୍ଥାତ୍ ମହାରାଜଙ୍କ ସ୍ତ୍ରୀ ଅର୍ଥରେ ମହାରାଜ୍ଞୀ ଶବ୍ଦର ପ୍ରୟୋଗ ସଂସ୍କୃତ ବ୍ୟାକରଣ ନିୟମ ଅନୁସାରେ ଅଶୁଦ୍ଧ, କିନ୍ତୁ ଯଦି କୌଣସି ରାଣୀଙ୍କ ଗୁଣ ଜ୍ଞାପନାର୍ଥ ରାଜ୍ଞୀ ଶବ୍ଦ ପୂର୍ବରେ ମହତ୍ ଶବ୍ଦ ଲଗାଯାଏ, (ଅର୍ଥାତ୍ ମହାମନାଃ ରାଣୀ ଅର୍ଥରେ) ତେବେ 'ମହାରାଜ୍ଞୀ' ଶବ୍ଦର ପ୍ରୟୋଗ ସଂସ୍କୃତ ବ୍ୟାକରଣ ନିୟମ ସଙ୍ଗତ ।]

ମହାରାଣା—ଦେଦେ. ବ. (ହି)·-ରାଜପୁତାନାର ରାଜବଂଶର ଉପାଧି
Mahārāṇā ବିଶେଷ—A family title of certain Rājput chiefs of N. W. India.

ମହାରାଣୀ—ଦେ. ବ. ସ୍ତ୍ରୀ (ସ. ମହାରାଜ୍ଞୀ; ସ. ମହତ+ରାଜ୍ଞୀ)—
Mahārāṇī ମହାରାଜ୍ଞୀ (ଦେଖ)—Mahārājnī (See)
মহারাণী **महारानी**

ମହାରାତ୍ର(ତ୍ରି)—ସ. ବ—(ମହତ+ରାତ୍ରି; କର୍ମଧା)—୧ । ଅର୍ଦ୍ଧରାତ୍ରର
Mahārātra(tri) ପରବର୍ତ୍ତୀ ମୁହୂର୍ତ୍ତଦ୍ୱୟ—1. 2 moments just after midnight. ୨ । କାଳରାତ୍ରି—2. A fearful night. ୩ । ମହା ପ୍ରଳୟର ରାତ୍ରି—3. The utter darkness following the great cataclysm. ୪ । ଅର୍ଦ୍ଧରାତ୍ର—4. Midnight (Apte). ୫ । ମହାଷ୍ଟମୀର ରାତ୍ରି—5. The night of the 8th day of the bright fortnight of Āswina (Apte).

ମହାରାୟ(ଏ)—ଦେ. (ପଦ୍ୟ) ବ.—(ସ. ମହାରାଜ)—୧ । ମହାରାଜ
Mahārāya(e) মহারায় 1. Mahārāja (See) ୨ । କ୍ଷତ୍ରିୟମାନଙ୍କ ବଂଶୋପାଧି ବିଶେଷ—2. A family title of Kshatriyas.

ମହାରାଷ୍ଟ୍ର—ସ. ବ—(କର୍ମଧା; ମହତ୍+ରାଷ୍ଟ୍ର=ରାଜ୍ୟ)—୧ । ମରହଟ୍ଟା
Mahārāshṭra ଦେଶ—1. The Marhatta country ( a province in western India ) [ଦ୍ର—ମହାରାଷ୍ଟ୍ର ଦେଶ ଭାରତର ପଶ୍ଚିମାଂଶରେ ଅବସ୍ଥିତ । ଏହାର ଉତ୍ତର ସୀମାରେ ଗୁଜରାଟ ଓ ସାତପୁରା ପର୍ବତ; ପଶ୍ଚିମରେ ଆରବ ସାଗର, ଦକ୍ଷିଣରେ କର୍ଣ୍ଣାଟ ଓ ପୂର୍ବରେ ଗଣ୍ଡୱାନା ଓ ତେଲିଙ୍ଗ ଦେଶ । ଏହାର ଲୋକ ସଂଖ୍ୟା ୩ କୋଟି । ଏହା ପ୍ରାଚୀନ କାଳରେ ଦଣ୍ଡକାରଣ୍ୟ ନାମରେ ପରିଚିତ ଥିଲା ।] ୨ । ମହାରାଷ୍ଟ୍ର ଦେଶବାସୀ ବ୍ୟକ୍ତି—2. The people of Mahārāshṭra (Apte)

ମହାରାଷ୍ଟ୍ରୀ—ସ. ବ—(ମହାରାଷ୍ଟ୍ର+ଈ)—୧ । ମରହଟ୍ଟୀ ଭାଷା—
Mahārāshṭrī 1. The Marhattee language. ୨ । ମରହଟ୍ଟା ଦେଶର ଅଧିବାସୀ—2. An inhabitant of the Marhatta country; a Marhatta. ୩ । ଏକପ୍ରକାର ଶାକ; ଜଳ ପିପ୍ପଳୀ; ମହାରୁଣ୍ଠା; କଳାଶିରୀ ବା କାଳଶିରୀ ଶାଗ—3. A kind of pot-herb.

ମହାରାଷ୍ଟ୍ରୀୟ—ସ. ବଣ—(ମହାରାଷ୍ଟ୍ର+ସମ୍ବନ୍ଧାର୍ଥେ ଈୟ)—ମହାରାଷ୍ଟ୍ର
Mahārāshṭriya ସମ୍ବନ୍ଧୀୟ; ମରହଟ୍ଟୀ—Relating to the Marhatta country.

ମହା ରିଷ୍ଟ—ସ. ବ—ପାର୍ବତ୍ୟ ନିମ୍ବ ବୃକ୍ଷ—A kind of Nimba
Mahārishṭa tree growing on mountains (Apte).

ମହାରୁଣ୍ଠା—ଦେ. ବ—(ସ. ମହାରାଷ୍ଟ୍ରୀ, ଅନ୍ୟ ସ. ନାମ କଞ୍ଚଟ)—
Mahā ruṇṭhā କଳଶିର; ଏକ ପ୍ରକାର ଶାକ; ଜଳ ପିପ୍ପଳୀ—

କାঁচড়া, কানসিড়ে A kind of pot-herb; Commelyna सरहंची Bengalensis. [ ଯଥା—ଏହା ପାଇବ ଦୋଷ ଭାରୀ କୃପଣ ନାଶକ ।] ୨ଦେ. ବଣ. ପୁଂ—ଅତି କୃପଣ—महा कञ्जूस Very miserly or niggardly. (ମହାରୁଣ୍ଠୀ, ମହାରୁଣ୍ଠେଇ—ସ୍ତ୍ରୀ)

ମହାରୁଣ୍ଠୀ—ପ୍ରାଦେ. (ସମ୍ବଲପୁର) ବି—ହଳଦିଆ ଫଳଯୁକ୍ତ ଗୋଟିଏ ଗୁଳ୍ମ Mahā runthī ଗୁଳ୍ମ ପର ଏକ ଜାତୀୟ ଗୁଳ୍ମ—Blumia Flava (Haines). [ଦ୍ର—ଏହାର ଫଳ ଛିଟିଲଙ୍କ ପରି । ଫଳକୁ ପାଟିରେ ପକାଇଲେ ତୁଣ୍ଡ ଝିମିଝିମି ହୋଇ ଯାଏ ।]

ମହାରୁଦ୍ର—ସ. ବି—ମହାଦେବ; ଶିବ—
Mahā rudra Śiba.

ମହାରୂପକ—ସ. ବି—୧ । କାବ୍ୟରେ ବ୍ୟବହୃତ ଅର୍ଥାଲଙ୍କାର ବିଶେଷ—Mahā rūpaka A figure of speech used in epics [ଦ୍ର—ଯେଉଁଠାରେ ଏକ ବସ୍ତୁର ବର୍ଣ୍ଣନାରେ ଏକାଧିକ ରୂପକାଳଙ୍କାରର ବ୍ୟବହାର ହୋଇଥାଏ, ତାହାକୁ ମହାରୂପକ ବୋଲାଯାଏ । ଯଥା—
ଦେହ-ପଞ୍ଜରୀ ପକ୍ଷୀ ଯାଯ୍ୟ ଜୀବାତୁ ଯେ
ମନ ମୀନ ପ୍ରେମବନ ବର୍ଦ୍ଧନା ଅମ୍ବୁସେ ।
କାମ ତାପ କୃପା ଗଙ୍ଗା ଲୁଚେ ଶିବ ଅଛୁ
ରସ ରତ୍ନ ମନକୋଷ ନିଧାମା ମଣିଛୁ ।
—ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।] ୨ । ସଂସ୍କୃତନାଟ୍ୟ ଗ୍ରନ୍ଥ-ବିଶେଷ—2. Name of a Sanscrit drama.

ମହାରୋଗ—ସ. ବି—( ମହତ୍+ରୋଗ; କର୍ମଧା )—ଉନ୍ମାଦ, କୁଷ୍ଠ, Mahāroga ରାଜଯକ୍ଷ୍ମା ଆଦି ଅସାଧ୍ୟ ବା ମାରାତ୍ମକ ରୋଗ—A dangerous illness; incurable disease; (eg. leprosy, insanity, and pthisis).

ମହା ରୋଗୀ—ସ. ବଣ. ପୁଂ—(ମହାରୋଗ+ଅସ୍ତି ଅର୍ଥରେ ଇନ୍)—Mahā rogi ମହା ରୋଗ ଦ୍ୱାରା ଆକ୍ରାନ୍ତ—Suffering from an incurable disease.

ମହାରୋମା—ସଂ. ବି.—(ମହାରୋମନ୍ ଶବ୍ଦ ୧ମା. ୧ବ.)—ଶିବ—Mahā romā Śiba. ସଂ. ବଣ—ଅତି ରୋମଯୁକ୍ତ—Shaggy; hairy.

ମହା ରୋଷ—ସଂ. ବି—( କର୍ମଧା, ମହାନ୍+ରୋଷ)—ବିଶେଷ କ୍ରୋଧ-Mahā rosha A great rage or anger.

ମହାରୌଦ୍ର—ସଂ. ବଣ. ପୁଂ—ଅତି ଭୟଙ୍କର—Very dreadful. Mahā raudra (ମହା ରୌଦ୍ରା—ସ୍ତ୍ରୀ)

ମହା ରୌରବ—ସଂ. ବି—(ମହତ୍+ରୁରୁ+ଜାତାର୍ଥେ. ଅ) ନରକ-Mahārauraba ବିଶେଷ; ମହାପାପୀମାନଙ୍କର ଯନ୍ତ୍ରଣା ଭୋଗ କରିବାର ସ୍ଥାନ; ନରକର ଅଂଶବିଶେଷ—A part of the hell where sinners undergo great tormentings. [ଦ୍ର—ମନୁ ୪।୮୮ ଠାରୁ ୯୦ରେ ୨୧ଟି ନରକର ବର୍ଣ୍ଣନା ଅଛି, ଯଥା—ତାମିସ୍ର, ଅନ୍ଧତାମିସ୍ର, ମହାରୌରବ, ରୌରବ, କାଳସୂତ୍ର, ମହାନରକ, ସଞ୍ଜୀବନ, ମହାବୀଚି, ତପନ, ସମ୍ପ୍ରତାପନ, ସଂଘାତ, ସକାକୋଲ କୁଡ୍ମଲ, ପୂତିମୃତ୍ତିକ, ଲୋହଶଙ୍କୁ, ଋଜୀଷ, ପନ୍ଥାନ, ଶାଲ୍ମଳୀ, ନଦୀ, ଅସିପତ୍ର ବନ, ଲୋହଦାରକ । ଯେଉଁ ଲୋକ ଶାସ୍ତ୍ର ମାର୍ଗପରିତ୍ୟାଗୀ ବ୍ରାହ୍ମଣ ରାଜାଠାରୁ ଦାନ ନିଏ ସେ କ୍ରମାନ୍ୱୟରେ ଏହି ୨୧ ନରକରେ ପଡ଼ିଥାଏ— ମନୁ ୪ । ୮୭ ।]

ମହାର୍ଘ—ସଂ. ବି (ମହତ୍+ଅର୍ଘ=ମୂଲ୍ୟ ଯାହାର; ବହୁବ୍ରୀହି)—Mahārgha ୧ । ବାଟିକା; ଅତି ମୂଲ୍ୟବାନ୍—1. Precious; costly. ୨ । ମହର୍ଘ; ଦୁର୍ମୂଲ୍ୟ—2. Dear (in price). [ଦ୍ର—ଏହାର ଅପଭ୍ରଂଶ ମହର୍ଘ, ମହଙ୍ଗ ।]

ମହାର୍ଘ୍ୟ—ସଂ. ବଣ (ମହତ୍+ଅର୍ଘ+ଯ)—ବହୁମୂଲ୍ୟ—
Mahārghya Precious; very valuable.

ମହାର୍ଣ୍ଣବ—ସଂ. ବି (ମହାନ୍+ଅର୍ଣ୍ଣବ; କର୍ମଧା)—୧ । ମହାସାଗର—Mahārnnaba 1. Ocean. ୨ । ମହାଦେବ—2. Śiba (Apte).

ମହାର୍ଚ୍ଚି—ସଂ. ବଣ (ବହୁବ୍ରୀହି; ମହତ୍+ଅର୍ଚ୍ଚିସ୍)—ଅତ୍ୟୁଚ୍ଚ ଶିଖାଯୁକ୍ତ—Mahārchchih Flaming high.

ମହାର୍ଥ—ସଂ. ବଣ (ବହୁବ୍ରୀହି; ମହତ୍+ଅର୍ଥ)—୧ । ଧନୀ—1. Rich. Mahārtha ୨ । ମହତ୍—2. Great; noble. ୩ । ଗୁରୁ ଦରକାରୀ; ଜରୁରୀ—3. Important; weighty. ୪ । ଅର୍ଥପୂର୍ଣ୍ଣ—4. Significant.

ମହାର୍ଦ (ଇତ୍ୟାଦି)—ଗ୍ରା. ବି (ସଂ. ମହାପ୍ରସାଦ)—ମହାପ୍ରସାଦ ଇତ୍ୟାଦି Mahārda (ଦେଖ)—Mahāprasāda etc (See). মহাপ্রসাদ महाप्रसाद्

ମହାର୍ଦ୍ରକ—ସଂ. ବି—ବନ୍ୟ ଅଦା; ବଣ ଅଦା—
Mahārdraka মহাদা, बनअदा Wild ginger.

ମହାର୍ବୁଦ—ସଂ. ବି—ଶତ କୋଟି ସଂଖ୍ୟା; ଏକ ବୃନ୍ଦ—
Mahārbuda 1000 millions or one billion (in number.)

ମହାର୍ହ—ସ. ବଣ. ( ମହା+ଅର୍ହ=ମୂଲ୍ୟ ଯାହାର; ବହୁବ୍ରୀହି )—Mahārha ୧ । ମହାର୍ଘ; ବହୁ ମୂଲ୍ୟ—1. Precious; costly. ୨ । ଅମୂଲ୍ୟ—2. Invaluable. ସଂ. ବି—ଶ୍ୱେତ ଚନ୍ଦନ—The white sandal wood.

ମହାଲ—ବୈଦେ. ବି (ଫା.)—ମାହାଲ ( ଦେଖ )
Mahāla Māhāla ( See )

ମହା ଲକ୍ଷ୍ମୀ—ସଂ. ବି. ସ୍ତ୍ରୀ—୧ । ନାରାୟଣୀ; ଧନଦା ଦେବୀ; ଶ୍ରୀ—Mahā lakshmi 1. The Goddess of wealth. ୨ । ବିଭବ; ସଂପତ୍ତି—2. Riches; prosperity. ୩ । ଦୁର୍ଗାପୂଜାରେ ଦୁର୍ଗାରୂପେ କଳ୍ପିତା ଓ ପୂଜିତା ବାଳିକା—3 A girl worshipped as Durgā during the Durgā Pūjā (Apte).

ମହାଲକ୍ଷ୍ମୀ ଓଷା(ଷା)—ଦେ. ବି—ମାର୍ଗଶିର ମାସର ପ୍ରତି ଗୁରୁବାର Mahālakshmī osā(shā) ଧନ ଲକ୍ଷ୍ମୀ ପୂଜନ ରୂପ ଉତ୍ସବ; महालक्ष्मी व्रत ମାଣବସା ବା ଗୁରୁବାର ଓଷା—A festival.

(ମହାଲକ୍ଷ୍ମୀ ବ୍ରତ—ସଂ. ରୂପ) of worshipping the Goddess of wealth on all the Thursdays of the month of Margasira.

**ମହାଲକ୍ଷ୍ମୀ ପୂଜା**—ସଂ. ବି—କୁମାରୋତ୍ସବ; କୁମାର ପୂର୍ଣ୍ଣିମା; ଆଶ୍ୱିନ Mahālakshmī pūjā ପୂର୍ଣ୍ଣିମା; କୋଜାଗର ପୂର୍ଣ୍ଣିମା—The full moon of the month of Āswina.

**ମହାଲକ୍ଷ୍ମୀ ବୁଡ଼**—ଦେ. ବି (ଶୂଦ୍ର ଭାଷା)—ଠାକୁରାଣୀ ଗାଧୁଆ; ରଜ Mahālakshmī burḍa ସଂକ୍ରାନ୍ତିର ତୃତୀୟ ଦିବସ—The third day of Raja Sankrānti on which the Goddess of wealth is bathed. [ଦ୍ର—ଏ ଦିନ ବଡ଼ ସକାଳୁ ସ୍ତ୍ରୀଲୋକମାନେ ଅଗଣାରେ ଗୋଟିଏ ସ୍ଥାନ ଲିପା ପୋଛା କରି ଓ ମୁରୁଜ ଦେଇ ସେଠାରେ ମହାଲକ୍ଷ୍ମୀଙ୍କୁ କଳ୍ପନା କରି ଗୋଟିଏ ଗୁଆ, ଲଙ୍ଗଳ ଲୁହା ଓ ଗୋଟିଏ ସୁନାର ଅଳଙ୍କାର ବସାଇ ତାହାକୁ ପୂଜା କରନ୍ତି ।]

**ମହାଲଜ୍ଜା**—ସ. ବି—ଅତ୍ୟନ୍ତ ଲଜ୍ଜା—Great shame.
Mahālajjā (ମହାଲଜ୍ଜିତ[ତା]—ବିଣ)

**ମହାଲଦ୍ଦା(ଦୀ)**—ପ୍ରାଦେ (କଟକ ସହର) ବି—(କଟକ ସହରର ଇତର Mahālddā(dī) ଲୋକଙ୍କ ଭାଷା; 'ନ' ସ୍ଥାନରେ 'ଲ' ପ୍ରୟୋଗ,-
ମହାନଦୀ ମହାନଦୀ (ଦେଖ)—Mahānadī (See). [ଉ—
**महालद्दी** ଅଇ ଗାଡ଼ି ପାହାଲବେଳକୁ କେମିତି ମହାଲଦୀ ପାରି ନ ହେଲେ ଆଉ ଗତି ନାହିଁ । ଉକାସ. କଟକବାକ୍ୟ । ]

**ମହାଲୟ**—ସ. ବି—୧ । ବୃହତ୍ ଘର—1. A big house. ୨ ।
Mahālaya ତୀର୍ଥ—2. A holy place. ୩ । ପରମାତ୍ମା—3. The Divine Essence in the creation. ୪ । ଆଶ୍ୱିନ କୃଷ୍ଣପକ୍ଷ; ଅପରପକ୍ଷ; ପିତୃପକ୍ଷ—4. The dark fortnight of the month of Āswina. [ଦ୍ର—ଏହି ପକ୍ଷରେ ପିତୃଲୋକଙ୍କୁ ତର୍ପଣ କରାଯାଏ ।]

**ମହାଲୟା**—ସ. ବି. ସ୍ତ୍ରୀ—ଆଶ୍ୱିନ ମାସର ଅମାବାସ୍ୟା—The new Mahālayā moon of the month of Āswina. [ଦ୍ର—ଏହାର ଅପଭ୍ରଂଶ ମହଳା ଓ ମଉଳା ।]

**ମହାଲୟା ଶ୍ରାଦ୍ଧ**—ସ. ବି—ଯେଉଁ ତିଥିରେ ପିତାଙ୍କର ମୃତ୍ୟୁ ହୋଇଥାଏ Mahālayā śrāddha ଆଶ୍ୱିନ ମାସର ପିତୃପକ୍ଷରେ ସେହି ତିଥିରେ କିମ୍ବା ଆଶ୍ୱିନ ମାସର ଅମାବାସ୍ୟା ଦିନ କରଯିବା ପିତୃଶ୍ରାଦ୍ଧ; ମଉଳା ଶ୍ରାଦ୍ଧ—Offering of rice-cakes to one's ancestors on the new moon of Āswina.

**ମହାଲାଏ(ୟ)କ**—ଦେ. ବି—ମହାନାୟକ (ଦେଖ)—Mahānāyaka
Mahālāe(ya)ka (See). ଦେ. ବିଣ—ଅତି ଯୋଗ୍ୟ ବ୍ୟକ୍ତି—
**महालायक** Very able (person).

**ମହାଲିଆ**—ଦେ. ବିଣ ( ଭୁଲକାକର ଅସାମୀ, ମାଲହା=ମାଗଣା )—
Mahāliā ୧ । ନିଷ୍ପ୍ରୟୋଜନ—1. Unnecessary. ୨ ।
ମାଗନା ନିଷ୍ଫଳ—2. Fruitless; vain. ୩ । ମାଗଣା—3. Got
**फोकटिया; मांगना** gratis; gratuitous ଦେ. ବି (ସ.

ମହାଲୟା )—ମହାଲୟା ( ଦେଖ )—Mahālayā (See). ଦେ. କ୍ରି. ବିଣ—୧ । ବୃଥାରେ—1. In
**फोकट, माङ्गना** vain. ୨ । ଅକାରଣରେ—2. Unnecessarily. ୩ । ମାଗଣାରେ—3. Gratis; for nothing.

**ମହାଲିଆ ଖିଆ**—ଦେ. ବିଣ ଓ ବି.—ପରାନ୍ନଭୋଗୀ—A toady;
Mahāliā khiā depending on others for one's
ମଗନାଖେକୋ meals; feeding at another's expense.
**फोकटखिया, माङ्गनाखिहा**

**ମହାଲିଆ ଭୋଜନ**—ଦେ. ବି—ବିନା ବ୍ୟୟରେ ଭୋଜନ—
Mahāliā bhojana Eating one's meals at
ମାଗନାଭୋଜନ **मांगनाभोजन** another's expense.

**ମହାଲିଆ ମ(ମୁ)କୁନ୍ଦଦେବ**—ଦେ. ବି—ଜନୈକ ପ୍ରାଚୀନ ପୁରୀ ରାଜାଙ୍କର
Mahāliā ma(mu)kunda deba ଉପାଧି ବିଶେଷ—A title
**ललवबुआ** of a Rajā of Puri. ଦେ. ବି (ଲକ୍ଷଣାର୍ଥ) ଉପାଧି ଅନୁସାରେ କାର୍ଯ୍ୟ ନ କରିବା ବ୍ୟକ୍ତି—A person who does not act according or befitting to the title he bears.

**ମହାଲିଆ ଶ୍ରାଦ୍ଧ**—ଦେ. ବି (ସଂ. ମହାଲୟା ଶ୍ରାଦ୍ଧ)—ମହାଲୟା ଶ୍ରାଦ୍ଧ
Mahāliā śrāddha (ଦେଖ)—Mahālayā śrāddha (See).

**ମହାଲିମ୍ବ**—ଦେ. ବି (ସ. ମହାନିମ୍ବ)—ବଡ଼ ବଡ଼ ପତ୍ରଯୁକ୍ତ ନିମ୍ବବର୍ଗର
Mahālimba ତରୁ—The toon or Indian maho-
ତୁନି(ନ),ଲଡ଼,ଟୁନା gany tree; Cedrely Toona.
**महानिम; तुना** ମ. ତଏଡାର, ତୁତୁକ; ତା. ତୁନୁମାରମ୍, ମାଲ, ତୁନ୍-ମାରମ୍, ଉଞ୍ଜୁଲ; ତେ. ନାନ୍ଦି ।)

**ମହାଶକ୍ତି**—ସ. ବି (କର୍ମଧା)—୧ । ପ୍ରବଳ ପରାକ୍ରମ ବା କ୍ଷମତା—
Mahāśakti 1. Great strength or energy. ୨ ।
ଆଦ୍ୟାଶକ୍ତି; ଦୁର୍ଗା; ଭଗବତୀ—2. The Primary Energy which created the universe. ୩ । (ପୁଂ) (ବହୁବ୍ରୀହି)—ଦେବସେନାପତି କାର୍ତ୍ତିକେୟ—3. The commander of the gods; Kārttikeya. ୪ । ଶିବ—4. Śiba. ସ. ବିଣ—ପ୍ରବଳ ପରାକ୍ରମଶାଳୀ—Mighty; of great energy

**ମହାଶଙ୍ଖ**—ସ ବି (ମହତ୍ ଶବ୍ଦ ତଳେ ଟୀକା ଦେଖ; ଶଙ୍ଖ ଶବ୍ଦ ପୂର୍ବେ
Mahāśankha ମହତ୍ ଶବ୍ଦ ପ୍ରୟୋଗ କରିବା ଥିଲେହେଁ ଗ୍ରନ୍ଥକାର-ମାନେ ଏହା ବ୍ୟବହାର କରିଅଛନ୍ତି)—୧ । ବଡ଼ଶଙ୍ଖ—1. A big conch. ୨ । ଭୀମଙ୍କ ଶଙ୍ଖ—2. The conch which Bhima used to blow. ୩ । କୁବେରଙ୍କ ନିଧି ବିଶେଷ; ଶଙ୍ଖ ନିଧି—3. Name of a precious gem of Kubera. ୪ । ସଂଖ୍ୟା ବିଶେଷ, ୧୦ ଶଙ୍ଖ ସଂଖ୍ୟା; ୧୦ ଲକ୍ଷ କୋଟି ସଂଖ୍ୟା—4. A thousand billions. ୫ । ଅସ୍ତ୍ର ବିଶେଷ—5. Name of a weapon. ୬ । ନରକପାଳାସ୍ଥି—

6. Human skull. ୭ । ଲଲାଟାସ୍ଥି—7. The bone of the forheead. ୮ । କର୍ଣ୍ଣ ଓ ଚକ୍ଷୁର ମଧ୍ୟବର୍ତ୍ତୀ ହାଡ଼—8. The malar bone; the cheek bone. ୯ । ତନ୍ତ୍ର ମତେ ଶାକ୍ତଗୃହପ୍ରସିଦ୍ଧ ନରକପାଳାସ୍ଥି ନିର୍ମିତ ମାଲ୍ୟ ବିଶେଷ—9 A garland of skulls used by devotees during Tantric rites.

**ମହା ଶତାବରୀ**—ସ. ବ—ଏକ ପ୍ରକାର ବଡ଼ ଛତୁଆର ଲତା—
Mahā śatābari A kind of Asparagus Recemosa (thorny creeper).

**ମହାଶନି**—ସ. ବ—୧ । ( ମହା + ଅଶନି )—ଭୟଙ୍କର ବଜ୍ର—
Mahāśani 1. A great thunder. ୨ । ରାମାୟଣୋକ୍ତ ଦୈତ୍ୟବିଶେଷ —2. A Rākshasa described in the Rāmāyaṇa. (ଦ୍ର—ବାଡ ସ୍ତଭ ମୁଷ୍ଟି ମହାଶନି ହନୁ ସାନୁ ଚୂର । ଉପେ. ବୈଦେହୀଶବିଳାସ ।)

**ମହା ଶମ୍ଭୁ**—ସ. ବ—ପ୍ରସିଦ୍ଧ ଶିବ ଲିଙ୍ଗ—A celebrated idol
Mahā śambhu representing Śiba.

**ମହାଶୟ**—ସ ବିଣ. ପୁଂ ( ମହତ୍ + ଆଶୟ ଯାହାର; ବହୁବ୍ରୀହି )—
Mahāśaya ମହାମନାଃ; ମହାନୁଭବ; ଉଦାରହୃଦୟ—
মহাশয় High-minded; noble-minded; magnanimous
(ମହାଶୟା—ସ୍ତ୍ରୀ) ସଂ. ବ—ସମୁଦ୍ର—Ocean.
ଦେ. ବ—୧ । ଭଦ୍ର ବ୍ୟକ୍ତି; ସମ୍ଭ୍ରାନ୍ତ ଲୋକ—1 A gentleman; a respectable person. ୨ । ବଙ୍ଗ ଦେଶର ପ୍ରାଚୀନ ରାଜାଦତ୍ତ ସମ୍ମାନସୂଚକ ବଂଶୋପାଧି—2 A family-title given by the kings of ancient Bengal. ୩ । ଓଡ଼ିଶାରେ ଉପନିବେଶ ସ୍ଥାପନ କରିଥିବା ସମ୍ଭ୍ରାନ୍ତ ବଙ୍ଗୀୟ ଜମିଦାର ବଂଶର ଉପାଧି ବିଶେଷ—3. A family title of certain Bengal Zamindars of Orissa. [ଦ୍ର—ବାଲେଶ୍ୱର ଜିଲ୍ଲାର କାଜିପୁର,ଲକ୍ଷଣନାଥ, ଦେହୁଡ଼ିଆ ଓ କଟକ ଜିଲ୍ଲାର କିଶନ୍ ନଗର ଓ ରାମେଶ୍ୱରପୁର (ପାଳପୁର)ର ପ୍ରାଚୀନ ବଙ୍ଗୀୟ ଜମିଦାର ବଂଶର ଏହି ଉପାଧି ।] ୪ । ଗୁରୁଜନ ଓ ସମ୍ମାନନୀୟ ବ୍ୟକ୍ତିଙ୍କୁ ସମ୍ବୋଧନ—4 A term used in addressing one's teacher, elders and respectable persons. (ଯଥା—ଗୁରୁ ମହାଶୟ, ପଣ୍ଡିତ ମହାଶୟ ।) [ଦ୍ର—ମାନ୍ୟାସ୍ପଦ ବ୍ୟକ୍ତି ବା ଭଦ୍ର ଲୋକଙ୍କ ନାମ ଶେଷରେ ଏ ପଦ ମଧ୍ୟ ଯୋଗ କରାଯାଏ, ଯଥା—ଶ୍ରୀ ପଣ୍ଡିତ ରାମଚନ୍ଦ୍ର ମିଶ୍ର ମହାଶୟ ସମୀପେଷୁ ।]

**ମହାଶୟ(ୟୀ) କାରଖାନା**—ଦେ. ବ—ବହୁ ଆଡ଼ମ୍ବର—Much
Mahāśaya(yi) kārakhānā ado; grand style.
মহাশয়ী কারখানা [ଦ୍ର—ଉତ୍କଳର ମହାଶୟ ଉପାଧିଧାରୀ ବଙ୍ଗୀୟ
**নবাবী কারখানা** ଜମିଦାରମାନଙ୍କର ଆଡ଼ମ୍ବର ଯୁକ୍ତ ଢଙ୍ଗରୁ ଏ ଶବ୍ଦ ପ୍ରଚଳିତ ହୋଇଅଛି । ଫଳତଃ ଏହି ମହାଶୟୀ ଆଡ଼ମ୍ବର ଓ ବ୍ୟୟ ଯୋଗୁଁ ଉତ୍କଳର 'ମହାଶୟ' ବଂଶୀୟ ଜମିଦାରମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଅବସ୍ଥା ବର୍ତ୍ତମାନ ଖରାପ ହେବାର ଦେଖା ଯାଇଅଛି ।]

**ମହା ଶଯ୍ୟା**—ସଂ. ବ. (କର୍ମଧା)—ରାଜ ଯୋଗ୍ୟ ଶଯ୍ୟା; ବହୁ ମୂଲ୍ୟ
Mahā śajyā ଶଯ୍ୟା—A very costly bed.

**ମହା ଶରୀର**—ସଂ. ବ. (କର୍ମଧା)—ବୃହତ୍ ଦେହ—Big body.
Mahā śarira ସଂ. ବିଣ. ପୁଂ (ବହୁବ୍ରୀହି) - ବୃହତ୍କାୟ—
Big-bodied; gigantic.
(ମହାଶରୀରା—ସ୍ତ୍ରୀ)

**ମହାଶଲ୍କ**—ସ. ବିଣ ( ବହୁବ୍ରୀହି )—ବୃହତ୍ ଶଲ୍କ ବା କାତିବିଶିଷ୍ଟ—
Mahāśalka Having big scales. ସ. ବ—୧ । ଚିଙ୍ଗୁଡ଼ି ମାଛ—1 Shrimp. ୨ । ସମୁଦ୍ରଜାତ ଚିଙ୍ଗୁଡ଼ି—2. Prawn; sea shrimp (Apte) [ ଦ୍ର—ମନୁ. ୩।୨୭୨ ରେ ଅଛି ଯେ ମହାଶଲ୍କ ପିତୃଲୋକଙ୍କୁ ଶ୍ରାଦ୍ଧରେ ଅର୍ପଣ କଲେ ପିତୃଗଣଙ୍କର ଅନନ୍ତକାଳ ତୃପ୍ତି ହୁଏ । ]

**ମହାଶାଳି**—ସ. ବ—ମୋଟା ବା ବଗଡ଼ା ସାରଦ ଧାନ—
Mahāśāli Coarse winter paddy.

**ମହାଶୁକ୍ଳ**—ସ.ବିଣ—ଅତି ଶୁଭ୍ର—Very white; milken white.
Mahāśukla ( ମହାଶୁକ୍ଳା—ସ୍ତ୍ରୀ )

**ମହାଶୁକ୍ଳା**—ସ. ବ. ସ୍ତ୍ରୀ—ସରସ୍ୱତୀ—The Goddess of lear-
Mahāśuklā ning. ସ. ବିଣ. ସ୍ତ୍ରୀ—ମହାଶୁକ୍ଳର ସ୍ତ୍ରୀଲିଙ୍ଗ—
Feminine of Mahāśukla.

**ମହାଶୂଦ୍ର**—ସ. ବ. ପୁଂ—୧ । ଅହୀର; ଗୋପ; ଗଉଡ଼—1. A cow
Mahāśūdra herd. ୨ । ଉଚ୍ଚପଦ ଅଧିକାରୀ ଶୂଦ୍ର—2. A Śūdra of a high position (Apte). ୩ । ଉଚ୍ଚଶ୍ରେଣୀର ଭୃତ୍ୟ—3. An upper servant (Apte).

**ମହାଶୂନ୍ୟ**—ସ. ବ—ଅନନ୍ତଆକାଶ—The limitless sky; the
Mahāśūnya great void ସ. ବିଣ—ସମ୍ପୂର୍ଣ୍ଣରୂପେ ଶୂନ୍ୟ—
Quite empty.

**ମହାଶୂର**—ସ. ବିଣ—ଅତିଶୟ ବଳବାନ୍—
Mahāśūra Very strong or mighty

**ମହାଶ୍ୱେତା**—ସଂ. ବ. ସ୍ତ୍ରୀ—୧ । ସରସ୍ୱତୀ—1. The Goddess of
Mahāśwetā learning. ୨ । ଦୁର୍ଗା—2. Goddess Durgā. ୩ । ଶ୍ୱେତ ଅପରାଜିତା ଫୁଲ—3. The white clitoris flower ୪ । ଭୂଇଁକଖାରୁ; ଭୂଇଁ କୁମ୍ଭଣ୍ଡ—4. Ipomoeia Digitata ୫ ପ୍ରାଚୀନ ଭାରତର ନଗରବିଶେଷ—5. Name of a town of ancient India. ୬ । ସଂସ୍କୃତ କାଦମ୍ବରୀ ଉପନ୍ୟାସର ଉପନାୟିକା—6. Name of a secondary heroine in the Sanscrit novel Kādambari. ୭ । ଧଳା ଚିନି—7. White sugar (Apte)

**ମହାଶ୍ମଶାନ**—ସଂ. ବି—୧ । ଯେଉଁଠାରେ ସର୍ବଦା ଶବଦାହ ହୁଏ—
Mahāśmaśāna 1. A great cremation ground where cremation is going on for the most part of the day. [ ଯଥା—କାଶୀକ୍ଷେତ୍ରର ମଣିକର୍ଣ୍ଣିକା ଘାଟର ଶ୍ମଶାନ । ] ୨ । କାଶୀ; ବାରାଣସୀ—2. Benares.

**ମହାଶ୍ରାବଣୀ**—ସଂ. ବି—ଭୂଇଁକଦମ୍ବ ( ଦେଖ )
Mahāsrābanī Bhūiṅkadamba (See).

**ମହାଷ୍ଟମୀ**—ସଂ. ବି—ଆଶ୍ୱିନ ଶୁକ୍ଳ ଅଷ୍ଟମୀ—
Mahāshṭamī The 8th day of bright lunar fortnight of Āswina.

**ମହାସତୀ**—ସଂ. ବି—ଅତ୍ୟନ୍ତ ସ୍ୱାମୀପରାୟଣା ସ୍ତ୍ରୀ—
Mahāsatī A very chaste and devoted wife.

**ମହାସତ୍ତ୍ୱ**—ସଂ. ବଣ. ପୁଂ—୧ । ମହା ବଳଶାଳୀ—1. Mighty.
Mahāsatwa ୨ । ମହାମନାଃ—2. Magnanimous;
( ମହାସତ୍ତ୍ୱା—ସ୍ତ୍ରୀ ) noble. ୩ । ଧର୍ମପରାୟଣ—3. Righteous ( Apte ). ସଂ. ବି—୧ । ବୃହତ୍କାୟ ଜୀବ—1. A gigantic animal. ୨ । କୁବେର—2. Kubera ( Apte ). ୩ । ଶାକ୍ୟମୁନି—3. The Buddha.

**ମହାସଫର**—ସଂ. ବି—ଛେଲି କେର୍ଣ୍ଣି ମାଛ; ସେରଣା ମାଛ—
Mahāsaphara বড়পুঁটি, Barbus Sarana fish.
সরলপুঁটি, সরণাপুঁটি **बडापोठा; बडीपोठी**

**ମହାସମଙ୍ଗା**—ସଂ. ବି—ଏକପ୍ରକାର ବାତ୍ତାଅର୍ଥ ଲାଜକୋଲି ଔଷଧିଗୁଳ୍ମ—
Mahāsamaṅgā Name of a medicinal plant.

**ମହାସମୁଦ୍ର**—ସଂ. ବି—ମହାର୍ଣ୍ଣବ; ଯେଉଁ ସୁବିସ୍ତୀର୍ଣ୍ଣ ଜଳରାଶି ପୃଥିବୀର
Mahāsamudra ସ୍ଥଳଭାଗକୁ ବେଷ୍ଟନ କରିଅଛି—The great
ମହାସାଗର } ଅନ୍ୟରୂପ ocean. [ ଦ୍ର—ପୃଥିବୀ ବେଷ୍ଟନକାରୀ
ମହାସିନ୍ଧୁ } ମହାସମୁଦ୍ର ଗୋଟିଏ । କିନ୍ତୁ ସୁବିଧା ପାଇଁ ଭୂଗୋଳରେ ମହାସମୁଦ୍ରର କ୍ଷୁଦ୍ର ଅଂଶକୁ ସାଗର ( ଯଥା—ଲୋହିତ ସାଗର, ଭୂମଧ୍ୟ ସାଗର ) ଓ ବୃହତ୍ ଅଂଶକୁ ମହାସାଗର ( ଯଥା—ପ୍ରଶାନ୍ତ ମହାସାଗର, ଭାରତ ମହାସାଗର, ଆଟଲାଣ୍ଟିକ ମହାସାଗର, ଉତ୍ତର ମହାସାଗର, ଦକ୍ଷିଣ ମହାସାଗର ) ବୋଲାଯାଏ । ]

**ମହା ସର୍ବ ଯମକ**—ସଂ. ବି—ଶବ୍ଦାଳଙ୍କାରବିଶେଷ—A figure of
Mahā sarba jamaka speech. [ ଦ୍ର—ଏଥିରେ ପ୍ରତ୍ୟେକ ଚରଣର ପ୍ରତ୍ୟେକ ଅକ୍ଷର ସଙ୍ଗେ ଅନ୍ୟ ଚରଣର ପ୍ରତ୍ୟେକ ଅକ୍ଷର ସମାନ ଅଟେ; କିନ୍ତୁ ଚରଣମାନଙ୍କର ଅର୍ଥ ପୃଥକ୍ ।]

**ମହା ସାନ୍ତପନ**—ସଂ. ବି. ( ମହତ୍+ସାନ୍ତପନ=ବ୍ରତବିଶେଷ )—
Mahā sāntapana ଛଅ ଦିବସ ସାଧ୍ୟ ବ୍ରତ ବା ପ୍ରାୟଶ୍ଚିତ୍ତ ବିଶେଷ—An expiation which takes 6 days to be completed.

**ମହା ସୁଆର**—ଦେ. ବି ( ସଂ. ମହାନ୍ ଓ ସୂପକାର )—ଦେବତାଙ୍କ ଓ
Mahā suāra ରାଜାଙ୍କ ଅନ୍ନାଦି ପାକ କରିବା ବ୍ରାହ୍ମଣ ସୂପକାର—
প্রধান সূপকার A cook who cooks for a king or a Deity.
**देवरसोया**

**ମହାସୁଲ୍**—ଦେ. ବି ( ଫା. ମହସୁଲ୍ )—୧ । ମାସୁଲ; ରାଜାଙ୍କଦ୍ୱାରେ
Mahāsul ଅଦାୟ କରାଯିବା ଶୁଳ୍କ—1. A cess or custom
মাশুল or duty realised under the authority of
महसुल Government. ୨ । ଡାକ ମାହାସୁଲ—2. Postage.
(ମାହାସୁଲ୍—ଅନ୍ୟରୂପ)

**ମହା ସୁଖ**—ସଂ. ବି (କର୍ମଧା)—୧ । ଅତ୍ୟନ୍ତ ଆନନ୍ଦ; ମହା ଆନନ୍ଦ—
Mahā sukha 1. Great pleasure or happiness; supreme felicity or bliss ୨ । (ବହୁବ୍ରୀହି) ରତି; ମୈଥୁନ—2. Copulation. ୩ । ବୁଦ୍ଧଦେବ ପ୍ରାପ୍ତ ବ୍ୟକ୍ତି—3. A Buddha (Apte).

**ମହା ସିଂହ**—ସଂ. ବି—୧ । ପାର୍ବତୀ ବା ଦୁର୍ଗାଙ୍କର ବାହନ ସିଂହ—
Mahā simgha 1. The lion that carries the Goddess Durgā on its back. ୨ । ଶରଭ—2. A fabulous animal. ଦେ. ବି—ପଞ୍ଜାବର ରାଜା ରଣଜିତ୍ ସିଂହଙ୍କ ପିତା—Name of the father of Ranjeet Singh, the famous Sikh king of the Punjāb.

**ମହାସେନ**—ସଂ. ବି. (ମହତ୍+ସେନା+ଅ; ମହତୀ ସେନା ଯାହାର;
Mahāsena ବହୁବ୍ରୀହି)—୧ । ଦେବସେନାପତି କାର୍ତ୍ତିକେୟ—1 Kārttikeya, the commandar of the Gods. ୨ । ମହାଦେବ; ଶିବ—2 Śiba.

**ମହା ସେନା**—ସଂ. ବି. (କର୍ମଧା)—ବୃହତ୍ ସେନା—
Mahā senā A large army.

**ମହା ସ୍କନ୍ଧ**—ସଂ. ବି. (ବହୁବ୍ରୀହି)—ଉଷ୍ଟ୍ର; ଓଟ—
Mahā skandha Camel (Apte).

**ମହା ସ୍ନାନ**—ସଂ. ବି—ଦେବତାଙ୍କ ଶରୀର କୌଣସି କାରଣରୁ ଅଶୁଦ୍ଧ
Mahā snāna ହେଲେ ତାହାଙ୍କର ଅନୁଷ୍ଠିତ ସ୍ନାନ—Bath given to a Deity when it becomes impure for some reason or other.

**ମହା ସ୍ନା(ସ୍ରା)ହାନ**—ଗ୍ରା. ବି. (ସଂ. ମହାସ୍ନାନ)—ମହାସ୍ନାନ (ଦେଖ)
Mahā snā(srā)hāna Mahā snāna ( See )
মহাস্নান **महास्नान**

**ମହା ସ୍ୱନ**—ସଂ. ବଣ (ବହୁବ୍ରୀହି)—ମହା ଧ୍ୱନି ବିଶିଷ୍ଟ—
Mahā swana Having a great sound.
ସଂ. ବି—ରଣ ବାଦ୍ୟ—War drum.

**ମହା ହାସ**—ସଂ. ବି—ଉଚ୍ଚ ହାସ୍ୟ—Loud or boisterous
Mahā hāsa laughter (Apte).

**ମହି(ହୀ)**—ସଂ. ବି. ସ୍ତ୍ରୀ ( ମହ ଧାତୁ+କର୍ମ ଇ; ଈ )—୧ । ପୃଥିବୀ;
Mahi(hī) ଧରଣୀ—1. The earth. ୨ । ଭୂମି—2. The
দহল, সাজ, সাজা ground. ୩ । ଗୌ; ଗାଈ—3. Cow.
**मही, जोरन** ୪ । ମହତ୍ତ୍ୱ—4. Greatness. ୫ । ବୁଦ୍ଧି—5. Intellect. ଦେ. ବି. ( ସଂ. ମଦ୍ୟ-ସନ୍ଧାନ=କାଞ୍ଜିର)—୧ । ଦଧିମନ୍ଥନ; ଦୁଧକୁ ଦହିରେ ପରିଣତ କରିବା ପାଇଁ

ଯେଉଁରେ ପକାଯିବା ଖଟା ଦହି—1. Curd ferment; rennet used to co-agulate milk; sour whey used in curdling milk; Bulgarian milk. ୨ । ମଇ ( ଦେଖ )—2. Mai ( See ) मैं
हिं.गा ୩ । (ଆଦରାର୍ଥକ) ମହେଶ୍ୱରଙ୍କ ଡାକ ନାମ—3. Name for calling Maheśwar. ଗ୍ରାଦେ. (କଳାହାଣ୍ଡି) ବି—ଦହି—Curd. ଗ୍ରାଦେ. (ସମ୍ବଲପୁର ଓ ବୌଦ୍ଧ) ବି—ଘୋଳ ଦହି—Whey; churned buttermilk. माहा

ମହିଆ—ଦେ. ବିଣ—ଖଟା ଓ ଉହଁଣିଆ (ଦୁଧର ଗନ୍ଧ); ପଚ୍ଚ (ଗନ୍ଧ)—Mahiā Foetid (smell); putrid (smell). ଦେ. ବି—ଟକগন্ধ; টোকো (ଅନାଦରାର୍ଥକ) ମହେଶ୍ୱରଙ୍କ ଡାକ ନାମ—ফোকরাহন Name for calling Maheśwara

ମହିଁମ—ଦେ. ବି—ମାହାତ୍ମ୍ୟ—Nobility; glory. ( ଉ—Mahiñma ବ୍ୟସ୍ତ କେଶ ଲମ୍ବେଶ, ସୁତ ଚଢ଼ି ମହିଷ, ମହିଁମ ଇଚ୍ଛି ଣ ଦକ୍ଷିଣ । ଭକ୍ତ. ବୈଦେହୀଶବିଳାସ ।)

ମହିଁମାଇ—ଦେ. ବିଣ (ପ୍ରାଚୀନ ଧର୍ମ୍ୟ)—ମହିମାଯୁକ୍ତ ବ୍ରହ୍ମ—The Mahiñmāi Supreme Being. (ଉ—ଅଥବା ସେ ଖାଲ ଚଳ କର୍ଣ୍ଣ ଡକେ ଯାଇ, ଏଥି ଅବା ବଳେ କରଇନ୍ତି ମହିଁମାଇ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।)

ମହିକା—ସଂ. ବି (ମହ୍ ଧାତୁ+ଅକ+ଆ)—୧ । ତୁଷାର; ହିମ—Mahikā 1 Frost. ୨ । କୁହୁଡ଼ି—2 Mist.

ମହିଖୁଣ୍ଟ—ଗ୍ରାଦେ (ବାଲେଶ୍ୱର) ବି(ସଂ. ମେଧି)—ଧାନ୍ୟଲୁଣ୍ଡ ବା ବେଙ୍ଗଲା Mahikhunṭa ପକାଇବାବେଳେ ଯେଉଁ ଖୁଣ୍ଟ ଦେହରେ ଦଉଡ଼ି (ମେଧିଖୁମ୍—ଅନ୍ୟରୂପ) ବାନ୍ଧି ଯାହାର ଚାରିଆଡ଼େ ବଳଦମାନେ ଘୂରନ୍ତି; মেধখুণ্ঠ—The central post around which bullocks revolve, while treading paddy-sheaves.

ମହିତ—ସଂ. ବିଣ (ମହ୍ ଧାତୁ +କର୍ମ, ତ)—୧ । ପୂଜିତ—1. Wor-Mahita shipped. ୨ । ସମ୍ମାନିତ—2. Respected; honoured. ସଂ. ବି—ଶିବଙ୍କ ତ୍ରିଶୂଳ—The trident of Siba

ମହି(ହୀ)ତଳ—ସଂ. ବି (୬ଷ୍ଠୀ ତତ୍)—୧ । ଭୂତଳ; ଭୂପୃଷ୍ଠ—1. The Mahi(hī)taḷa face of the earth. ୨ । ଭୂଇଁ—2 The ground

ମହି ଦେବା—ଦେ. କ୍ରି—୧ । ଦହି ବସାଇବା ପାଇଁ ଦୁଧରେ ଖଟାଦହି Mahi debā ଯୋଗ କରିବା—1 To put curd-সাজদেওয়া ferment into milk. ୨ । ମଇ ଦେବା (ଦେଖ)—जोरन(मही)देना Mai debā (See), मैंदेओया हिं.गादेना

ମହି(ହୀ)ଧର—ସଂ. ବି (ମହୀ+ଧୃ ଧାତୁ=ଧାରଣ କରିବା+କର୍ତ୍ତୃ ଅ)—Mahi(hī)dhara ଭୂଧର; ପର୍ବତ—Mountain. [ମହି(ହୀ)ଧ୍ର—ଅନ୍ୟରୂପ],

ମହିନା—ବୈଦେ. ବି (ପା. ମସ୍ତାନା=ମାସ; ଦରମାହା=ମାସିକ Mahinā ବେତନ)—ମାସିକ ଦରମା ବା ବେତନ—माइना महीना Monthly pay or salary.

ମହିନ୍ଧକ—ସଂ. ବି—୧ । ମୂଷା—Rat (Apte) ୨ । ନେଉଳ—Mahindhaka 2. Ichneumon (Apte). ୩ । ବାହୁଙ୍ଗିରେ ବୋଝ ବୋହିବା ପାଇଁ ଲାଗିଥିବା ଦଉଡ଼ି; ଶିକା—3. The string suspended from a pole used for carrying loads (Apte).

ମହି ପକା(କେ)ଇବା—ଦେ. କ୍ରି—ମହି ଦେବା (୧) (ଦେଖ) Mahi pakā(ke)ibā Mahi debā (1) (See).

ମହିପଦ୍ମ—ଦେ. ବି (ସଂ. ମହାପଦ୍ମ)—ଏକପ୍ରକାର ନାଗସାପ—Mahipadma A species of cobra.

ମହି(ହୀ)ଭୃତ୍—ସଂ.ବି (ମହୀ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ.କ୍ୱିପ୍)—Mahi(hī) bhṛut ୧ । ପର୍ବତ-1 Mountain. ୨।ରାଜା—2 King,

ମହି(ହୀ)ପତି—ସଂ. ବି (୬ଷ୍ଠୀ ତତ୍)—ରାଜା—King. Mahi(hī)pati (ମହୀଭୁକ୍, ମହି[ହୀ]ପାଳ, ମହି[ହୀ]ଭର୍ତ୍ତା—ଅନ୍ୟରୂପ)

ମହି(ହୀ)ପୁତ୍ର—ସଂ. ବି (୬ଷ୍ଠୀ ତତ୍)—ମଙ୍ଗଳଗ୍ରହ—Mahi(hī) putra The planet Mars.

ମହି(ହୀ)ପ୍ରାଚୀ(ବ)ର—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ର—Mahi(hī) prāchī(ba)ra The ocean.

ମହିମ—ଦେ. ବି—ଜୟ—Victory ( ଉ—ମହିମହିଲା ବଚନ Mahima ଲଳନ, ମହିମା ମହିମ କରେ ତ୍ରୈଲୋକ୍ୟ । ଭକ୍ତ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । )

ମହିମ କୀର୍ତ୍ତନ—ସଂ. ବି (ମହିମନ୍+ କୀର୍ତ୍ତନ)—ମାହାତ୍ମ୍ୟ କଥନ—Mahima kīrttana Singing one's glory.

ମହିମଣ୍ଡନ—ସଂ. ବିଣ ପୁଂ—ପୃଥିବୀର ଅଳଙ୍କାରସ୍ୱରୂପ; ଅତି ସୁନ୍ଦର—Mahi manḍana Who is an ornament or (ମହିମଣ୍ଡନା—ସ୍ତ୍ରୀ) decoration to the earth; very graceful,

ମହି(ହୀ)ମଣ୍ଡଳ—ସଂ. ବି—ଭୂମଣ୍ଡଳ; ସମଗ୍ର ପୃଥିବୀ—Mahi(hī) manḍaḷa The globe; the whole world.

ମହିମ ବ୍ୟଞ୍ଜକ—ସଂ ବିଣ (ମହିମନ୍ +ବ୍ୟଞ୍ଜକ)—ଗୌରବସୂଚକ—Mahima byañjaka Indicating glory. [ ଡ—ମହିମାବ୍ୟଞ୍ଜକ - ବ୍ୟାକରଣ ଅନୁସାରେ ଭ୍ରମଯୁକ୍ତ ପ୍ରୟୋଗ । ]

ମହିମମୟ—ସଂ ବିଣ (ମହିମନ୍+ ମୟ)—ଗୌରବମୟ—Mahimamaya Glorious; majestic. (ମହିମମୟୀ – ସ୍ତ୍ରୀ)

ମହିମା—ସଂ. ବି (ମହତ୍+ଇମନ୍; ମହିମନ୍ ଶବ୍ଦ; ୧ମା. ୧ବ)—Mahimā ୧ । ଉତ୍କର୍ଷ—1. Excellence. ୨ । ମହତ୍ତ୍ୱ—2. Glory; greatness. ୩ । ଗୌରବ—3. Majesy; dignity. ୪ । ମାହାତ୍ମ୍ୟ—4. Magnitude. ୫ । ଐଶ୍ୱର୍ଯ୍ୟ—5. Grandeour. ୬।ଶକ୍ତି—6. Energy; power. ୭ । ଉଚ୍ଚପଦବୀ—7. High exalted position. ୮ । ମହାଦେବଙ୍କ ଅଷ୍ଟ ବିଭୂତି ମଧ୍ୟରୁ ଏକତମ—8. One of the 8 divine

peculiarities of Siba. [ ଦ୍ର—ଏହି ବିଭୂତି ସାହାଯ୍ୟରେ ମହାଦେବ ସ୍ୱେଚ୍ଛାକ୍ରମେ ଆକାର ଧାରଣ କରନ୍ତି ।] ଦେ. ବି—୧ । ମହତ୍ତ୍ୱର ଚରମ ସୀମା—1, The acme of greatness or glory [ଦ୍ର—ସେହି ତଦ୍ରୂପ ମହିମା ସାହାଯ୍ୟରେ ଜଗତରେ ସମୁଦାୟ ବସ୍ତୁ ପ୍ରକାଶିତ ହୋଇଅଛି । ମହିମା ଚିତ୍ସ୍ୱରୂପ ଅଟନ୍ତି । ସିଦ୍ଧ ଯୋଗୀମାନେ ଚରମ ଅବସ୍ଥା ପ୍ରାପ୍ତ ହେଲେ ସୁଖଦୁଃଖବିହୀନ ମହିମାକୁ ପ୍ରାପ୍ତ ହୁଅନ୍ତି ।] ୨ । ମହାନ୍ ପୁରୁଷ; ସମସ୍ତଙ୍କର ପ୍ରଭୁ—2. The universal God. ୩ । ମହିମାଧର୍ମ (ଦେଖ)—3. Mahimādharma (See). [ଦ୍ର—ଏ ଅନ୍ତଃକରଣର ପ୍ରବର୍ତ୍ତକ ଜ୍ଞାନଜ୍ୟୋତିଃ ସ୍ୱରୂପ ଅନନ୍ତ ଈଶ୍ୱର ଅଟନ୍ତି । ସକଳ ଇନ୍ଦ୍ରିୟ ତାହାଙ୍କ ସାହାଯ୍ୟରେ ପ୍ରକାଶିତ, କିନ୍ତୁ ସେ ସକଳ ଇନ୍ଦ୍ରିୟବିବର୍ଜିତ ପ୍ରଭୁ ଅଟନ୍ତି । ଏହି ଅର୍ଥର ବିଶିଷ୍ଟ ବିବରଣ ପାଇଁ ବିଶ୍ୱନାଥବାବାଙ୍କ ମହିମାଧର୍ମ ପ୍ରତିପାଦକ ଗ୍ରନ୍ଥ ଦ୍ରଷ୍ଟବ୍ୟ ।]

**ମହିମା କୀର୍ତ୍ତନ**—ଦେ. ବି. ( ସଂ ମହିମକୀର୍ତ୍ତନ; ଏହିଶବ୍ଦ ସଂସ୍କୃତବ୍ୟାକରଣ Mahimā kirttana ଅନୁସାରେ ଅଶୁଦ୍ଧ)—ମାହାତ୍ମ୍ୟକଥନ—**महिमाकीर्तन महिमाकीर्त्तन** Singing the praise of one's greatness.

**ମହିମା ଗାଦି**—ଦେ. ବି—ଢେଙ୍କାନାଳ ଅନ୍ତର୍ଗତ ଜୋରନ୍ଦା ଗ୍ରାମରେ Mahimā gādi ଅବସ୍ଥିତ ମହିମାଧର୍ମର ପୀଠ—A seat of **महिमागादी** Mahimā dharma, at Jorandā in the State of Dhenkānāḷ. [ ଦ୍ର—ଏହା ଅନନ୍ତ କ୍ଷେତ୍ର ମହିମାଗାଦି ନାମରେ ପ୍ରସିଦ୍ଧ । ସତ୍ୟ-ମହିମାଧର୍ମୀମାନଙ୍କର ଉକ୍ତ ସ୍ଥାନ ଗୁରୁପୀଠ ଅଟେ । ଯେହେତୁ ପ୍ରବୁଦ୍ଧଗୁରୁ ମହିମା ଗୋସାଇଁ ସେହିଠାରେ ଇହଲୀଳା ସମ୍ବରଣ କରିଥିଲେ । ସେହି ଦିନଠାରୁ ମହିମା ଗାଦିର ନାମ ପ୍ରସିଦ୍ଧି ଲାଭ କରିଅଛି । ବର୍ତ୍ତମାନ ଉକ୍ତ ଗାଦିର ମାହାତ୍ମ୍ୟ ଚତୁର୍ଦ୍ଦିଗ ବ୍ୟାପିବାରୁ ଅନେକ ମହିମା ଧର୍ମାବଲମ୍ବୀ ସେହି ଗାଦିକୁ ପ୍ରଭୁଙ୍କ ପୀଠ ବିଶ୍ୱାସ କରି ନାନା ପ୍ରକାର ଭେଟି ଦିଅନ୍ତି । ଉକ୍ତ ଦ୍ରବ୍ୟମାନ ସେଠାରେ ମହିମା ଲୀଳା (ଧୃତାହୁତି, ବାଲ୍ୟଲୀଳା, ନିରାକାର ଈଶ୍ୱରଙ୍କ ଭଜନ, ଆଗନ୍ତୁକ ବ୍ୟକ୍ତିଙ୍କ ସତ୍କାର)ରେ ବ୍ୟୟ କରା-ଯାଏ । ଅଭି ମଧ୍ୟ ଏହି ଧନ ଅଟ୍ଟାଳିକା, କୂପ, ତଡ଼ାଗାଦି ନିର୍ମାଣରେ ଜଗଜ୍ଜନହିତରେ ବ୍ୟୟିତ ହୁଏ । ସତ୍ୟ ସନାତନ ମହିମା ଧର୍ମର ଅବଧୂତାଶ୍ରମୀ 'ପର' ଓ 'ଅପର' ସନ୍ନ୍ୟାସୀ-ମାନେ ସେହିଠାରେ ଗୁରୂପଦେଶ ଦ୍ୱାରା କୌପୀନ ଓ ଲୁମ୍ବୀପଟ୍ଟ ଗ୍ରହଣ ପୂର୍ବକ ସନ୍ନ୍ୟାସ ପନ୍ଥାରେ ଭୁକ୍ତ ହୁଅନ୍ତି । ମହିମା ଗାଦିର ତତ୍ତ୍ୱାବଧାରକ କେବଳ 'ପର ସନ୍ନ୍ୟାସୀ' ବଳ୍କଳଧାରୀ ବାବାମାନେ ଅଟନ୍ତି । ସେହି ସାଧୁମାନେ ସେହି ଗାଦିକୁ ଉଚ୍ଛିଷ୍ଟ କୌଣସି ଦ୍ରବ୍ୟ ଗ୍ରହଣ ନ କରି ଭିକ୍ଷା ଦ୍ୱାରା କାଳାତିପାତ କରନ୍ତି । ସେମାନଙ୍କ ଆଦେଶମତେ ସାଧୁ ଭକ୍ତଗଣ ପୀଠର ପରିଚାଳନ ଓ ପୂର୍ବୋକ୍ତ ସତ୍କାର୍ଯ୍ୟମାନ ସମାଧାନ କରନ୍ତି । ପ୍ରତି ମାସ ଶୁକ୍ଳ ଚତୁର୍ଦ୍ଦଶୀରେ ବିଶେଷ ଭାବେ ପୂର୍ବୋକ୍ତ ସତ୍କାର୍ଯ୍ୟମାନ (ଧୃତାହୁତି, ବାଲ୍ୟଲୀଳା, ଭଜନ) ଅନୁଷ୍ଠିତ ହୁଏ । ତନ୍ମଧ୍ୟରେ ମାଘ ଶୁକ୍ଳ ଚତୁର୍ଦ୍ଦଶୀ ସର୍ବଶ୍ରେଷ୍ଠ ଭାବେ ବିଖ୍ୟାତ । ଏହି ହେତୁରୁ ଉକ୍ତ ଚତୁର୍ଦ୍ଦଶୀରେ ଦେଶ ବିଦେଶରୁ ଧର୍ମପ୍ରଶ୍ରୟାର୍ଥ ଯାଇଥିବା ସିଦ୍ଧ ସାଧୁଗଣ, ଗୃହସ୍ଥ ଭକ୍ତବୃନ୍ଦ ଓ ସାଧାରଣ ଯାତ୍ରୀଗଣ ସମବେତ ହୋଇ ମହିମା ଲୀଳା ବିନୋଦରେ ପ୍ରମୋଦିତ ହୁଅନ୍ତି । ସେଠାରେ ବିଷୟଲାଳସୀ ବ୍ୟକ୍ତିମାନଙ୍କର ଅଧିକାର ନ ଥିବା ହେତୁ ମହିମା ଗାଦିର ମାହାତ୍ମ୍ୟ ସନ୍ନ୍ୟାସୀମାନଙ୍କ ଦ୍ୱାରା ବିଶେଷ ପ୍ରକଟିତ ହେଉଅଛି । ଆଉ ମଧ୍ୟ, ସନ୍ନ୍ୟାସୀମାନଙ୍କ ସହିତ କାମିନୀମାନଙ୍କର ବାସ ଓ ସ୍ପର୍ଶ ନିଷିଦ୍ଧ ଥିବା ହେତୁ ଗାଦି ପୀଠ ସ୍ଥାନ ତରଫ ଦୃଷ୍ଟିରେ ନିଷ୍କଳଙ୍କ ରହିଅଛି । ଗାଦିର ବିସ୍ତାର ନିମିତ୍ତ-ଢେଙ୍କାନାଳର ରାଜା ସାହେବ ଉକ୍ତ ଭୂମି ଉପରେ କୌଣସି କର ଧାର୍ଯ୍ୟ ନ କରି ଅବଶ୍ୟକମତେ ଜମିମାନ ମହିମା ଗୋସେଇଁଙ୍କ ନାମରେ ସନ୍ନ୍ୟାସୀମାନଙ୍କ ମାରଫତରେ ଛାଡ଼ି କରୁଅଛନ୍ତି । ଉକ୍ତ ଭୂମିରେ କୌଣସି ପ୍ରକାର କୃଷି ଆଦି ଫସଲ କର୍ମ କରାଯାଏ ନାହିଁ । ଯେହେତୁ ପୂର୍ବରୁ ତାହା ମହିମା ଗୋସାଇଁଙ୍କ ଆଜ୍ଞାରେ ନିଷିଦ୍ଧ ରହିଅଛି । କେବଳ ସେହି ପ୍ରଭୁଙ୍କ ମହିମାରେ ଭକ୍ତମାନଙ୍କର ମନସ୍କାମନା ପୂର୍ଣ୍ଣ ହେଲେ ସେମାନେ ଯାହା ଅର୍ଥ ଦାନ କରନ୍ତି ବା ଧର୍ମାଶ୍ରିତ ଭକ୍ତଗଣ ସ୍ୱେଚ୍ଛାକ୍ରମେ ସଦ୍ଭାବରେ ଯାହା ଅର୍ଥ ଦାନ କରନ୍ତି ତାହାଦ୍ୱାରା ମହିମା ଗାଦିର ଯାବତୀୟ କାର୍ଯ୍ୟ ନିର୍ବାହ କରା-ଯାଏ । ଏକ ବର୍ଷରୁ ଅଧିକକାଳ ନିମିତ୍ତ ବ୍ୟବହାରୋପଯୋଗୀ ଅର୍ଥ ସଞ୍ଚିତ ରଖାଯାଏ ନାହିଁ । ଆୟକୁ ଦେଖି ବ୍ୟୟ କରା-ଯାଏ । ବିଶ୍ୱନାଥ ବାବା]

**ମହିମା ଗୋସା(ସେ)ଇଁ**—ଦେ. ବି—ମହିମା ଧର୍ମର ପ୍ରତିଷ୍ଠାତା ମହା-Mahimā gosā(se)iñ ପୁରୁଷ—The founder of the Mahima dharma. [ଦ୍ର—ସେ ସ୍ୱୟଂ ଈଶ୍ୱର ପୁରୁଷ ଅଟନ୍ତି । ଭାରତ ଭୂମିରେ ଧର୍ମର ଗ୍ଳାନି ଉପସ୍ଥିତ ହେବାରୁ ସିଦ୍ଧ ସାଧୁ ଭକ୍ତବୃନ୍ଦଙ୍କ ବାସନାରୁ ଜଗଦ୍ଗୁରୁ ମହିମା ଗୋସାଇଁ ସ୍ୱଶକ୍ତି ବଳରେ ଅଯୋନିସମ୍ଭୂତ ହୋଇ ପ୍ରବୁଦ୍ଧ ଗୁରୁ ସ୍ୱରୂପେ ଅବତୀର୍ଣ୍ଣ ହୋଇ ବାୟୁ ଆହାର କରି ହିମାଳୟର କୈଳାସ ପର୍ବତ ଶିଖରରେ ବହୁ ସମ୍ବତ୍ସର ଆତ୍ମ-ଯୋଗ ସମାଧିରେ କାଳାତିପାତ କରି ଗୁପ୍ତଭାବେ ନାନା ଦେଶ ବିଦେଶ ଭ୍ରମଣପୂର୍ବକ ସତ୍ୟ ସନାତନ ମହିମା ଧର୍ମ ସ୍ଥାପନାର୍ଥେ ଉତ୍କଳ ପ୍ରଦେଶକୁ ବିରାଜମାନ ହେଲେ । ସେ ସର୍ବ ପ୍ରଥମେ ଖ୍ରୀଷ୍ଟାବ୍ଦ ୧୬୩୩ରେ ପୁରୀଠାରେ ଲୋକଙ୍କ ନୟନଗୋଚର ହେଲେ । ସେ ସମୟରେ ସେ ଚୂଳରେ ଶୟନ ଓ ଉପବେଶନ କରୁଥିଲେ; ସାଧାରଣ ଜନସମାଜରେ ବିଶେଷ ବାକ୍ୟାଳାପ କରୁ ନ ଥିଲେ; ଶରୀର ତାମ୍ର ବର୍ଣ୍ଣ ଓ ତେଜୋମୟ ଥିଲା । କଟିରେ ଗୈରିକ ବସ୍ତ୍ରର କୌପୀନ, ମସ୍ତକରେ ଜଟାର ଭାର ଥିଲା । ସେ ସମୟରେ ତାହାଙ୍କୁ

ଟୁଙ୍ଗିଆ ଗୋସାଇଁ ବୋଲି ଲୋକେ କହୁଥିଲେ । ଗୋସାଇଁ ସେ ସମୟରେ ବାରବର୍ଷ ପର୍ଯ୍ୟନ୍ତ କେବଳ ଜଳପାନ କରି ପୁରୀ, ଖଣ୍ଡଗିରି, ଧଉଳଗିରି ପ୍ରଭୃତିର ଗୁମ୍ଫାମାନଙ୍କରେ ସମାଧି ଯୋଗ ଅବଲମ୍ବନ ପୂର୍ବକ କାଳାତିପାତ କରୁଥିଲେ । ଏ ହେତୁରୁ ତାଙ୍କୁ ଲୋକେ ନାରିହାରି ଗୋସାଇଁ ମଧ୍ୟ କହୁ-ଥିଲେ । ଉକ୍ତ ଦ୍ୱାଦଶ ବର୍ଷ ମଧ୍ୟରେ ମହିମା ଗୋସାଇଁ ପୁରୀ ପଣ୍ଡିତ ମଣ୍ଡଳୀଙ୍କ ଧର୍ମ ସଭାରେ ବ୍ରହ୍ମାତ୍ମଜ୍ଞାନ ଲାଭ କରି-ଥିଲେ ଓ ତନ୍ମଧ୍ୟରେ ଜ୍ଞାନଭକ୍ତିଯୋଗର ବିଦ୍ୱାନ୍ ମହାମାୟାଙ୍କ ଦର୍ପ ବିନାଶ ପୂର୍ବକ ତାହାଙ୍କୁ ସ୍ୱଶକ୍ତିର ତେଜ ପ୍ରତ୍ୟକ୍ଷ କରାଇଥିଲେ ଓ ଖଣ୍ଡଗିରି ସମୀପରେ ହାଲଦିପିରୁ ନାମକ ଏକ ବ୍ରହ୍ମଜ୍ଞାନୀ ବାବାଙ୍କର ଗର୍ବ ଖଣ୍ଡନ କରି ତାହାଙ୍କୁ ସଦ୍‌ଜ୍ଞାନ ପ୍ରଦାନ କରିଥିଲେ । ତହିଁଉତ୍ତାରୁ ସେ ୧୨୫୪ ଅବ୍ଦରେ ଢେଙ୍କାନାଳ କପିଳାସଗିରିକୁ ପ୍ରସ୍ଥାନ କଲେ । ସେଠାରେ ଗୈରିକ କୌପୀନ ଓ କନ୍ଥାଦିର ପରିତ୍ୟାଗ କରି କୁମ୍ଭି ବୃକ୍ଷର ବଲ୍କଲ ଦ୍ୱାରା କୌପୀନ ଗ୍ରହଣ ପୂର୍ବକ ଗିରି-ଶିଖରର ଦକ୍ଷିଣଭାଗସ୍ଥିତ ଏକ ଚକ୍ରାକାର ପ୍ରସ୍ତରୋପରି ଅନନ୍ତ ଶଯ୍ୟାରେ ପୂର୍ବାଭିମୁଖ ହୋଇ ପଦ୍ମାସନରେ ଉପବେଶନ ପୂର୍ବକ ଅବିଚଳିତ ଭାବେ ଏକବିଂଶତି ଦିବସ ଅତିବାହିତ କଲେ । ଅନନ୍ତ ସପ୍ତଫଣୀ ଛତ୍ରୂପ ସ୍ୱାମୀଙ୍କ ଶୀର୍ଷ ଦେଶକୁ ଆବୃତ କରି ରହିଥାଏ । ଏହାପରେ କେତେ ଦିନ ଉତ୍ତାରୁ ସଦାନନ୍ଦ ନାମକ ଶବର ସେଠାରେ ଉପନୀତ ହୋଇ ଏହା ଦେଖି ଭୟ ମିଶ୍ରିତ ଭକ୍ତିପୂର୍ବକ ସାଷ୍ଟାଙ୍ଗେ ତାଙ୍କୁ ପ୍ରଣାମ କଲା । ସ୍ୱାମୀ ଅନନ୍ତ ଶଯ୍ୟା ପରିହାର କରି ସଦାନନ୍ଦ ସମୀପକୁ ବିରାଜମାନ ହୋଇ ତାହାକୁ ଅଭୟବାଣୀ କହି ସ୍ୱାମୀଙ୍କର ଦ୍ୱାଦଶ ବର୍ଷ ଫଳାହାର ନିମିତ୍ତ ଫଳମୂଳ ଓ ଧୁନି ନିମିତ୍ତ କାଷ୍ଠ ଯୋଗାଇବାକୁ ଆଦେଶ ଦେଲେ । ସଦାନନ୍ଦ ପ୍ରବୁଦ୍ଧ ସ୍ୱାମୀଙ୍କର ଆଜ୍ଞାରେ ଅଙ୍ଗୀକୃତ ହୋଇ ଫଳମୂଳାଦି ଯୋଗାଇବାରେ ଲାଗିଲା । ଅନନ୍ତଶାୟୀ ବିଭୁ ଚକା ପ୍ରସ୍ତର ସମୀପସ୍ଥ ଏକ ଗୁମ୍ଫାରେ ଅବସ୍ଥାନ କଲେ । ଇତିମଧ୍ୟରେ ସିଦ୍ଧ ଗୋବିନ୍ଦ ବାବା ସେଠାରେ ଉପସ୍ଥିତ ହୋଇ ମହିମା ସ୍ୱାମୀଙ୍କ ଚରଣରେ ଶରଣ ନେଇ ସର୍ବ ପ୍ରଥମେ ସ୍ୱାମୀଙ୍କଠାରୁ ଅଲେଖ ବ୍ରହ୍ମ ମହାମନ୍ତ୍ର ଉପଦେଶ ଗ୍ରହଣ କରି ସତ୍ୟ ସନାତନ ମହିମା ଧର୍ମରେ ଦୀକ୍ଷିତ ହେଲେ । ତାହାର କେତେକ ଦିନ ପରେ ଅନାଦି ସିଦ୍ଧଗୁରୁ ମହିମା ଗୋସାଇଁ ତାହାଙ୍କୁ ଡୋର ଓ କୁମ୍ଭି ବଲ୍କଲ ଦ୍ୱାରା ପ୍ରଦାନ କରି ଅଦ୍ୟରେ ଅବଧୂତ ସିଦ୍ଧାଶ୍ରମୀ ପରିସନ୍ନ୍ୟାସୀ କରାଇ ଦେଶ ବିଦେଶରେ ସତ୍ୟଧର୍ମ ପ୍ରଚାରାର୍ଥେ ପ୍ରେରଣ କଲେ । ଫଳାହାର ପରିଶେଷରେ ସ୍ୱାମୀଙ୍କର ଅଦ୍ଭୁତ କ୍ରିୟା ଢେଙ୍କାନାଳ ରାଜା ୰ଭାଗୀରଥୀ ଭ୍ରମରବର ବାହାଦୁର ଅବଗତ ହୋଇ ସ୍ୱାମୀଙ୍କୁ ଜଗତ୍‌ସ୍ୱାମୀ ବୋଲି ମାନି ତାହାଙ୍କଠାରୁ ଶିଷ୍ୟତ୍ୱ ଗ୍ରହଣ କଲେ । ସ୍ୱାମୀ ତାହାଙ୍କୁ ସଦୁପଦେଶ ପ୍ରଦାନ ପୂର୍ବକ ଦ୍ୱାଦଶ ବର୍ଷ ଗୋଦୁଗ୍ଧ ଯୋଗାଇବା ନିମିତ୍ତ ଆଜ୍ଞା ଦେଲେ । ରାଜା ବାହାଦୁର ଜଗତ୍-ସ୍ୱାମୀଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି କ୍ଷୀର ଯୋଗାଇବାକୁ ସମ୍ମତ ହୋଇ ସ୍ୱାମୀଙ୍କ ଆଜ୍ଞା ଅନୁସାରେ ପର୍ବତର ସାନୁଦେଶରେ ଏକ ନୂତନ ଆଶ୍ରମ ନିର୍ମାଣ କରାଇ ସେହିଠାରେ ନିତ୍ୟ ବ୍ରାହ୍ମ ମୁହୂର୍ତ୍ତ ସମୟରେ ଗୋପାଳମାନଙ୍କ ଦ୍ୱାରା କ୍ଷୀର ଯୋଗାଇ-ବାରେ ଲାଗିଲେ । ସ୍ୱାମୀ ସେହି ନୂତନ ଆଶ୍ରମରେ ବିରାଜିତ ହୋଇ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ କେବଳ କ୍ଷୀର ଗ୍ରହଣ କଲେ । ଏହିରୂପେ ଚତୁର୍ବିଂଶ ବର୍ଷ କପିଳାସଗିରିରେ ଆତ୍ମଯୋଗ ସମାଧି ଅବଲମ୍ବନ କଲେ । ଇତିମଧ୍ୟରେ ପ୍ରବୁଦ୍ଧ ସ୍ୱାମୀ ଦିନେ ନିଶାର୍ଦ୍ଧ ସମୟରେ ଆକାଶ ମାର୍ଗରେ ଗମନ କରି ବୌଦ ରାଜ୍ୟର ବଉସିଂହାଠାରୁ ଗୋବିନ୍ଦ ବାବାଙ୍କୁ ଗହଣରେ ବେଡ଼ାଖୋଲ ଅନ୍ତର୍ଗତ ଗ୍ରାମତିହା ମୌଜାବାସୀ ଭୀମଭୋଇ ଦ୍ୱାରେ ଅଦ୍ଭୁତ ଭାବେ ବିରାଜମାନ ହୋଇ ଭୀମଙ୍କୁ ଚକ୍ଷୁଦାନ କରି ସତ୍ୟମହିମାଧର୍ମର ଉପଦେଶ ପ୍ରଦାନ କଲେ । ଭୀମଭୋଇ ଜ୍ଞାନଚକ୍ଷୁ ପ୍ରାପ୍ତ ହେବାରୁ ବହିର୍ଦୃଷ୍ଟି ଶକ୍ତିର ଲୋପ ନିମିତ୍ତ ଗୁରୁଙ୍କୁ ପ୍ରାର୍ଥନା କଲେ । ଜଗତ୍ ସ୍ୱାମୀ ଗୁରୁ ତଥାସ୍ତୁ କହି ଭୀମଙ୍କୁ କବିତାଇରଚନାଶକ୍ତି ପ୍ରଦାନ କରି ଗୋବିନ୍ଦ ବାବାଙ୍କୁ ବୌଦ ରାଜ୍ୟକୁ ବିଦାୟ ଦେଇ ପୂର୍ବବତ୍ ଅନ୍ତର୍ଦ୍ଧାନ ହୋଇ କପିଳାସଗିରିକୁ ତତ୍ରାଗମାନ ହେଲେ । କ୍ଷୀରାହାର ଶେଷରେ ଢେଙ୍କାନାଳର ରାଜା ବାହାଦୁରଙ୍କର ମନୋରଥ ପୂରଣ ନିମିତ୍ତ ରାଜଦୁର୍ଗକୁ ବିରାଜମାନ ହୋଇ ରାଜବଂଶରକ୍ଷାର୍ଥେ ମଙ୍ଗଳ ବାଞ୍ଛା କରି ତହିଁର ସୁବ୍ୟବସ୍ଥା କଲେ ।

ସ୍ୱାମୀଙ୍କର ଅନ୍ନଭିକ୍ଷା ନିମିତ୍ତ ଜଗନ୍ମାତା ପୃଥ୍ୱୀ ଦେବୀ ଅଦ୍ଭୁତ ମାନବୀରୂପ ଧାରଣ କରି, ଉକ୍ତ ଗିରିର ଚକା ପ୍ରସ୍ତର ସମୀପରେ ଭକ୍ତି ସହକାରେ ଦଣ୍ଡ ପ୍ରଣାମ ପୂର୍ବକ ଜଗତ୍-ପ୍ରାଣୀଙ୍କ ରକ୍ଷାର୍ଥେ ପ୍ରାର୍ଥନା କଲେ । ସ୍ୱାମୀ ତାହାଙ୍କ ପ୍ରାର୍ଥନା ଗ୍ରହଣ କରି ଜଗତର ମଙ୍ଗଳ ସାଧନାର୍ଥେ ୧୨୭୯ ଅବ୍ଦରେ କପିଳାସ ତ୍ୟାଗ କରି ଉକ୍ତ ରାଜ୍ୟସ୍ଥ କାଶୀପୁର ମୁକାମରେ ବୈଷ୍ଣବ ଗଙ୍ଗାଧର ସାହୁଙ୍କୁ ସତ୍ୟମହିମା ଧର୍ମରେ ଦୀକ୍ଷିତ କରାଇ ସେହିଠାରେ ପ୍ରଥମେ ରାଜଦାଣ୍ଡରେ ନୂତନ ମୃତ୍ତିକା ପାତ୍ରରେ ଗଙ୍ଗାଧରଙ୍କ ଗୃହରେ ପାକ ହୋଇଥିବା ଅନ୍ନଭିକ୍ଷା ଗ୍ରହଣ କଲେ । ଏଥି ଉତ୍ତାରୁ କେତେକ ଦିନ ପରେ ଉକ୍ତ ଭୀମସେନଙ୍କ ଦ୍ୱାରେ ଭିକ୍ଷା ଗ୍ରହଣ ପୂର୍ବକ ବୌଦରାଜ୍ୟକୁ ଗମନ କଲେ । ସ୍ୱାମୀ ଗୋବିନ୍ଦ ବାବାଙ୍କୁ ସଙ୍ଗରେ ନେଇ ବୌଦ, ସୋନପୁର, ସମ୍ବଲପୁର ପ୍ରଭୃତି ଦେଶରେ ଧର୍ମ ପ୍ରଚାରାର୍ଥ ଭ୍ରମଣ କରିବାରେ ଲାଗିଲେ । ଇତିମଧ୍ୟରେ ବୌଦର ରାଜାବାହାଦୂର ଗୋବିନ୍ଦ ବାବାଙ୍କ-ଠାରୁ ମହିମା ଗୋସାଇଁଙ୍କର ଆଶ୍ଚର୍ଯ୍ୟ ଲୀଳା ଅବଗତ ହୋଇ ମହିମାଧର୍ମ ସତ୍‌ପଥ ଅବଲମ୍ବନ କରି ଥାଆନ୍ତି । ପରେ ସେହି ରାଜ୍ୟରେ ସ୍ୱାମୀଙ୍କ ଗହଣରେ ଗୋବିନ୍ଦ ବାବା ରହି ମୃତ ଶବକୁ ଜୀବଦାନ, ନଦୀର ବନ୍ୟାଜଳ ଉପରେ ଗମନ, ରୂପର ପରିବର୍ତ୍ତନ ପ୍ରଭୃତି ଅଲୌକିକ ଘଟନା ଘଟାଇବାରୁ ସେ ଅଞ୍ଚଳରେ ତାଙ୍କର ବିଶେଷ ମହିମା ପ୍ରକଟିତ ହେଲା ଓ ସେ ଦେଶର କେତେକ ବ୍ୟକ୍ତି ସତ୍ୟମହିମା ଧର୍ମରେ ଦୀକ୍ଷିତ

ହେଲେ । ତହିଁପରେ ସ୍ୱାମୀ ଢେଙ୍କାନାଳରେ ବିରାଜମାନ ହୋଇ ସତ୍ୟ ଧର୍ମ ପ୍ରଚାରାର୍ଥେ ସ୍ଥାନେ ସ୍ଥାନେ ଆଶ୍ରମ ନିର୍ମାଣ କରାଇଲେ । ଉକ୍ତ ଆଶ୍ରମମାନଙ୍କରେ ଜଗତ୍‌ସ୍ୱାମୀ ଅତିଥି-ଭାବେ ଏକ ଏକ ଦିବସ ଅତିବାହିତ କରି ତତ୍ରତ୍ୟ ଅଞ୍ଚଳରେ ବିଶେଷଭାବେ ଧର୍ମ ପ୍ରଚାର କରିବାରେ ଲାଗିଲେ । ଅନ୍ନଭିକ୍ଷାର ପ୍ରାରମ୍ଭ ଦିବସଠାରୁ ଏକ ଏକ ଗ୍ରାମରେ ଏକ ଏକ ଦିବସ ଅତିବାହିତ କରି ପ୍ରାତଃକାଳରୁ ଭିକ୍ଷା ଗ୍ରହଣ କରି ଅନ୍ୟ ସ୍ଥାନକୁ ପ୍ରସ୍ଥାନ କରନ୍ତି । ଏକ ସମୟରେ ବ୍ରାହ୍ମଣୀ ନଦୀରେ ବିଶେଷ ବନ୍ୟାଭୟ ହେବାରୁ ଜଗତ୍ ସ୍ୱାମୀ ଆଶ୍ଚର୍ଯ୍ୟଭାବେ ବନ୍ୟାଭୟ ଦୂରୀଭୂତ କରି ପ୍ରାଣୀମାନଙ୍କୁ ରକ୍ଷା କରିଥିଲେ । ସ୍ୱାମୀ ଡାଳଯୋଡ଼ା, ଆଠଗଡ଼ ପ୍ରଭୃତିରେ ଭ୍ରମଣ କରି ୧୨୭୦ ଅବ୍ଦରେ ଆଠଗଡ଼ ଖୁଣ୍ଟୁଣି ମୁକାମରେ ବିଶେଷ ଭାବେ ଏକ ମହିମାଲୀଳା (ବାଲ୍ୟଲୀଳା ପ୍ରଭୃତି) କରାଇଲେ, ଆଉ ମଧ୍ୟ ସେଠାରେ ଏକ ଧୂନି ମନ୍ଦିର ଭକ୍ତମାନଙ୍କ ଦ୍ୱାରା ପ୍ରସ୍ତୁତ କରାଇ ଗୋବିନ୍ଦ ବାବାଙ୍କ ଦ୍ୱାରା ଧୂନିରେ ଘୃତ ଚନ୍ଦନାଦି ଆହୁତି ପ୍ରଦାନ କରାଇଲେ । ସେ ସମୟରେ ଉକ୍ତ ରାଜ୍ୟର ଜଙ୍ଗଲି ହସ୍ତିମାନେ ମଧ୍ୟ ସ୍ୱାମୀଙ୍କ ଆଜ୍ଞା ପାଳନ କରୁଥିଲେ । ଏହି ମହିମା ଲୀଳା ଦିବସଠାରୁ ଜଗତ୍-ସ୍ୱାମୀଙ୍କର ଐଶ୍ୱରିକ ମହିମା ଦେଶରେ ବିଶେଷଭାବେ ପ୍ରକଟିତ ହେଲା । ତହିଁ ଉତ୍ତାରୁ ସ୍ୱାମୀ ଖୋର୍ଦ୍ଧା ଅଞ୍ଚଳରେ ବିରାଜମାନ ହୋଇ ପଟିଆ ଅନ୍ତର୍ଗତ ଜମଣା ମୁକାମରେ ପଟିଆ ରାଜାଙ୍କ ସାହାଯ୍ୟରେ ଭକ୍ତମାନଙ୍କ ଦ୍ୱାରା ଏକ ଧୂନି ମନ୍ଦିର ପ୍ରସ୍ତୁତ କରାଇଲେ; ଉକ୍ତ ମନ୍ଦିରରେ ୧୨୭୧ ଅବ୍ଦ ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିବସ ଗୋବିନ୍ଦ ବାବାଙ୍କ ଦ୍ୱାରା ଧୂନିରେ ଘୃତାହୁତି ଓ ବାଲ୍ୟଲୀଳା କରାଇଲେ । ସେହିଠାରେ ସିଦ୍ଧ ଗୋବିନ୍ଦ ବାବା ଗୁରୁଙ୍କ ଆଜ୍ଞାନୁସାରେ ନୃସିଂହ ବାବା ପ୍ରଭୃତି ସପ୍ତ ମୂର୍ତ୍ତି ସାଧୁଙ୍କୁ ବଳ୍କଳ ବାନା ପ୍ରଦାନ କରି ଅବଧୂତ ସିଦ୍ଧାଶ୍ରମଭୁକ୍ତ କରାଇଲେ । ଏହାପରେ ମହିମାସ୍ୱାମୀ ଏକସମୟରେ ପାଦପଦ୍ମ ମୁଣ୍ଡିଆସ୍ଥିତ ଏକ ଗୁହା-ମଧ୍ୟରେ ଏକବିଂଶତି ଦିବସ ପର୍ଯ୍ୟନ୍ତ ଅମୃଯୋଗାସନରେ ସମାଧିସ୍ଥ ହେଲେ । ଗୁହାର ବହିର୍ଭାଗରେ ସିଦ୍ଧ ଗୋବିନ୍ଦ ବାବା ଓ ନୃସିଂହ ବାବା ଉକ୍ତ ଦିବସ ପର୍ଯ୍ୟନ୍ତ ଆପଣା-ମଧ୍ୟରେ ପାଳି କରି ଜଗି ରହିଥିଲେ । ଆଉ ମଧ୍ୟ ସ୍ୱାମୀ ସେଠାରେ ଯୋଗନିଦ୍ରା ପରିହାର କରି ଅନନ୍ତଶଯ୍ୟାରେ ଉପବେଶନ କରିଥିଲେ । ଏହିପରି ଡାଳଯୋଡ଼ା ଅନ୍ତର୍ଗତ ଶିଶୁପାଟଣା ଆଶ୍ରମରେ ସପ୍ତଦିନ ସ୍ୱାମୀ ଯୋଗନିଦ୍ରା ଯାଇଥିଲେ; ତତ୍‌ପରେ ଅକାଲୁଆ, ଦାରୁଠେଙ୍ଗ ପ୍ରଭୃତି ଗ୍ରାମମାନଙ୍କରେ ଧୂନିଘର କରାଇ ଘୃତ ଚନ୍ଦନାଦି ଆହୁତି ପ୍ରଦାନ କରାଇଲେ । ଉକ୍ତ ଦାରୁଠେଙ୍ଗଠାରେ ଭୂମିକୁ ତ୍ୟାଗ କରି ପ୍ରବୃଦ୍ଧଗୁରୁ ଶୂନ୍ୟରେ କିଛି କାଳ ଉଭା ହୋଇଥିଲେ । ଭୁବନେଶ୍ୱର ସମୀପବର୍ତ୍ତୀ ବରଗଡ଼ ଗ୍ରାମ ବିଦ୍ୟାଳୟରେ ଧୂନି ସ୍ଥାପନ ପୂର୍ବକ ଘୃତାହୁତି ପ୍ରଦାନ କରି ଉକ୍ତ ଧୂନି ଶିଖା ମଧ୍ୟରେ ପଦ୍ମାସନରେ ସୂକ୍ଷ୍ମରୂପେ ଯବ ପ୍ରମାଣ ଆକାରରେ ଉପବେଶନ କଲେ; ସେଠାରେ କୁଷ୍ଠରୋଗୀ ଓ ବିସୂଚିକାକ୍ରାନ୍ତ ବ୍ୟକ୍ତିଙ୍କୁ ରୋଗରୁ ମୁକ୍ତ କରି, ମୃତ ଗୋରୁକୁ ଜୀବଦାନ କରି ସେ ଅଞ୍ଚଳରେ ସତ୍ୟ ମହିମାଧର୍ମ ପ୍ରଚାର କରିବାକୁ ଲାଗିଲେ ପୁନଶ୍ଚ ଏକ ସମୟରେ ସର୍ବାନ୍ତର୍ଯ୍ୟାମୀ ଗୁରୁ ଜମଣା ଗ୍ରାମ ଆଶ୍ରମରେ ବିରାଜମାନ ହୋଇ ଏକ ଭିକ୍ଷୁକ ଓ ତତ୍‌ପୁତ୍ରଙ୍କୁ ବ୍ୟାଘ୍ରାକ୍ରମଣ ଭୟରୁ ରକ୍ଷା କରିବାପୂର୍ବରୁ ତତ୍‌ସମ୍ବନ୍ଧେ ଭବିଷ୍ୟତ୍ ବାକ୍ୟ ପ୍ରକାଶ କରିଥିଲେ। ଆଉ ମଧ୍ୟ ଏକସ୍ଥାନରେ ବନ୍ଧ୍ୟା ଗାଭୀଠାରୁ ଦୁଗ୍ଧ ଦୋହନ କରାଇ ତାହାର ବନ୍ଧ୍ୟା ଦୋଷ ନିବାରଣ କଲେ । ଏହା ପରେ ଜଗତ୍‌ସ୍ୱାମୀ ଢେଙ୍କାନାଳରେ ବିରାଜମାନ ହୋଇ କାଶୀପୁର ଗ୍ରାମ ଆଶ୍ରମରେ ଭକ୍ତମାନଙ୍କ ସମ୍ମୁଖରେ ଅଦଭୁତ ସ୍ୱରୂପ ପ୍ରକାଶ କରି, ଅନ୍ୟ ଏକ ଗ୍ରାମରେ ଏକ ବ୍ୟକ୍ତିକୁ ମୃତ ଶଯ୍ୟାରୁ ବଞ୍ଚାଇ ଦୀର୍ଘାୟୁ କରାଇଲେ ।

ସ୍ୱାମୀ ଡାଳଯୋଡା ଅଗ୍ରାହାଟଠାରେ ଗ୍ରାମବାସୀମାନଙ୍କୁ ଦର୍ଶନ ଦେଇ ହଠାତ୍ ଅନ୍ତର୍ଦ୍ଧାନ ହୋଇ ଆଠଗଡ଼ରେ ବିରାଜମାନ ହେଲେ । ସେ ଅଞ୍ଚଳରେ ଏକ ଗୋପାଳ ପୁତ୍ରକୁ ବ୍ୟାଘ୍ର ମୁଖରୁ ରକ୍ଷା କରି ଅନ୍ୟ ଏକ ଦରିଦ୍ର ଅନ୍ଧ ବ୍ୟକ୍ତିକୁ ଚକ୍ଷୁ ଦେଲେ, ତତ୍ପରେ ବାଙ୍କି ପ୍ରଭୃତି ଅଞ୍ଚଳରେ ସତ୍ୟ ମହିମାଧର୍ମ ପ୍ରଚାର କରି ଅଁଶୁପା ହ୍ରଦ ସମୀପରେ ବୃହଦାକାରେ ମହିମା ପୂଜା, ବାଲ୍ୟଲୀଳା ପ୍ରଭୃତି କରାଇ ୧୨୭୨ ଅବ୍ଦରେ ଉକ୍ତ ହ୍ରଦର ଉତ୍ତର ଏବଂ ମାଲବେହାରପୁର ଗ୍ରାମରେ ଦକ୍ଷିଣ ଦିଗରେ ଅତି ବିଚିତ୍ର ବୃହଦାକାର ଧୂନି ମନ୍ଦିର ନିର୍ମାଣ କରାଇ ସେଠାରେ ନୃସିଂହ ବାବାଙ୍କ ଦ୍ୱାରା ଧୂନି ସ୍ଥାପନ ପୂର୍ବକ ନିତ୍ୟ ତ୍ରିସନ୍ଧ୍ୟାରେ ଶତ ଶତ ମହଣ ଘୃତ ଚନ୍ଦନାଦି ଆହୁତି ପ୍ରଦାନ କରାଇଲେ ଏବଂ ସେହିଠାରେ ଚତୁର୍ଦ୍ଦିଗରୁ ସହସ୍ର ସହସ୍ର ବ୍ୟକ୍ତି ଉପସ୍ଥିତ ହୋଇ ସତ୍ୟ ମହିମାଧର୍ମର ଉପଦେଶ ଗ୍ରହଣପୂର୍ବକ ଅଲେଖ ବ୍ରହ୍ମ ନାମ ସ୍ମରଣ ଭଜନରେ ରତ ହେଲେ । ତାହା ପରେ ସେହିଠାରେ ଗୁରୁ ମହିମା ଗୋସାଇଁଙ୍କ ଆଜ୍ଞାନୁସାରେ ନୃସିଂହ ବାବାଙ୍କ ଠାରୁ ଚୌରାଶୀ ମୂର୍ତ୍ତି ପର୍ଯ୍ୟନ୍ତ ସାଧୁ ବଳ୍କଳ ବାନା ଗ୍ରହଣ କରି ଅବଧୂତ ସିଦ୍ଧାଶ୍ରମ ପନ୍ଥାରେ ଭୁକ୍ତ ହେଲେ ।

ଏକ ସମୟରେ ଆଠଗଡ଼ ମଧ୍ୟରେ ମହିମା ସ୍ୱାମୀଙ୍କ ଆଦେଶାନୁସାରେ ରୋଗୀମାନେ ବିସୂଚିକା ରୋଗରୁ ମୁକ୍ତ ହେଲେ । ଅନ୍ୟ ଏକ ସମୟରେ କ୍ଷଣ କାଳ ମଧ୍ୟରେ ସ୍ୱାମୀଙ୍କ ଆଜ୍ଞାରେ ଜଳବୃଷ୍ଟି ହୋଇଥିଲା । ମାଲବେହାରପୁର ଧୂନି ମନ୍ଦିରର ଟୂନିର ପ୍ରଜ୍ୱଳିତ ଶିଖା ମଧ୍ୟରେ ପ୍ରବୁଦ୍ଧ ସ୍ୱାମୀ ଦିବ୍ୟ ଜ୍ୟୋତିଃ ସ୍ୱରୂପରେ ନୃସିଂହ ବାବାଙ୍କୁ ଦର୍ଶନ ଦେଇଥିଲେ । ଢେଙ୍କାନାଳ ଅନ୍ତର୍ଗତ ଏକ ଗ୍ରାମରେ ମୃତ ଶିଶୁକୁ ଜୀବଦାନ ଓ ଅପୁତ୍ରକଙ୍କୁ ପୁତ୍ର ଦାନ କରି ବିଶେଷଭାବେ ଖେଳା ଲୀଳା ବିସ୍ତାର-ପୂର୍ବକ ସତ୍ୟ ଧର୍ମ ପ୍ରଚାର କରିବାରେ ଲାଗିଲେ ।

ସ୍ୱାମୀ କେତେକ ପଣ୍ଡିତଙ୍କୁ ସଦ୍‌ଯୁକ୍ତି ବଳରେ ଓ ଅନ୍ୟ ଭାବଲମ୍ବୀ ସିଦ୍ଧାନ୍ତ ସନ୍ନ୍ୟାସୀମାନଙ୍କ ଐଶ୍ୱରିକ ଯୋଗ-

ବଳରେ ପରାସ୍ତ କରି ସ୍ୱାମୀ ସତ୍ୟ ମହିମା ଧର୍ମରେ ଦୀକ୍ଷିତ କରାଇ ଅବଧୂତ ସନ୍ନ୍ୟାସୀ କରାଇଲେ ।

ସ୍ୱାମୀ ୧୬୭୭ ଅବ୍ଦରେ ଢେଙ୍କାନାଳ କପିଳପୁର ମୁକାମରେ ଏକ ମହିମା ଲୀଳା (ବାଲ୍ୟଲୀଳା ପ୍ରଭୃତି) ବିଶେଷଭାବେ କରାଇଲେ । ତହିଁରେ ଢେଙ୍କାନାଳର ରାଜା ବାହାଦୁର ମଧ୍ୟ ଭକ୍ତିପୂର୍ବକ ସାହାଯ୍ୟ ପ୍ରଦାନ କରିଥିଲେ । ଉକ୍ତ ସମୟରେ କଟକ ମୋଗଲବନ୍ଦି ଅଞ୍ଚଳରେ ପ୍ରକାଶ୍ୟଭାବେ ଧର୍ମପ୍ରଚାର ଆରମ୍ଭ ହେଲା । ତତ୍ପରେ ଏକ ପାଦ୍ରୀସାହେବ ଡାଳିଯୋଡ଼ା ଅନ୍ତର୍ଗତ ମଙ୍ଗଳପୁରା ଗ୍ରାମରେ ସ୍ୱାମୀଙ୍କ ସହିତ ସତ୍ୟ ମହିମା ଧର୍ମ ବିଷୟ ଚର୍ଚ୍ଚା କରି ଜଗତ୍ ସ୍ୱାମୀଙ୍କୁ ଧନ୍ୟବାଦ ଦେଇ ଭକ୍ତିଭାବେ ପ୍ରଣାମ କରି ବିଦାୟ ଗ୍ରହଣ କଲେ ।

ତତ୍ପରେ ଢେଙ୍କାନାଳ, ହିନ୍ଦୋଳ, ଅନୁଗୋଳ ପ୍ରଭୃତି ସ୍ଥାନେ ସ୍ଥାନେ ଧର୍ମାଶ୍ରମମାନ ଭକ୍ତମାନଙ୍କ ଦ୍ୱାରା ନିର୍ମାଣ କରାଇ ନିଷ୍କାମ ଖେଳା ଲୀଳା ବିସ୍ତାରପୂର୍ବକ ସହସ୍ର ସହସ୍ର ବ୍ୟକ୍ତିଙ୍କୁ ବ୍ରହ୍ମ-ମହାମନ୍ତ୍ର ଉପଦେଶଦ୍ୱାରା ସତ୍ୟ ମହିମାଧର୍ମରେ ଦୀକ୍ଷିତ କରାଇଥିଲେ । ଏହି ଧର୍ମାଶ୍ରମ ସ୍ଥାନମାନଙ୍କ ମଧ୍ୟରେ ହିନ୍ଦୋଳର ବ୍ରହ୍ମପୁର, ଅନୁଗୋଳର ଅଙ୍ଗାରବନ୍ଧ, ଢେଙ୍କାନାଳ ଅନ୍ତର୍ଗତ ମଡ଼ି, ଜକା ଓ ଜୋରନ୍ଦା ଆଶ୍ରମ ପ୍ରସିଦ୍ଧ ଅଟେ ।

ସ୍ୱାମୀ ଏହି ସ୍ଥାନମାନଙ୍କରେ ଟୁଙ୍ଗି ସ୍ଥାପନ ସମୟରେ ବିଶେଷ ଖେଳାଲୀଳା ବିସ୍ତାର କରି ଅତ୍ୟାଶ୍ଚର୍ଯ୍ୟଜନକ ଐଶ୍ୱରିକଶକ୍ତି ପ୍ରଦର୍ଶନ କରିଥିଲେ । ଦେଶ ମଧ୍ୟରେ ସେ ସମୟରେ କେତେକ ବ୍ରାହ୍ମଣ, ରାଜା ଓ ପ୍ରଜା ସତ୍ୟ ମହିମାଧର୍ମର ନିନ୍ଦା ରଟନା ଓ ସନ୍ନ୍ୟାସୀ ଓ ଭକ୍ତମାନଙ୍କର ଅନିଷ୍ଟାଚରଣ କରି ପାପଭାଗୀ ହୋଇ ଅପଯଶ ଅର୍ଜନ କଲେ । ତନ୍ମଧ୍ୟରେ ଧାର୍ମିକ ବ୍ୟକ୍ତିଗଣ ସତ୍ୟ ମହିମାଧର୍ମର ଯଶଃ ଏବଂ ସ୍ୱାମୀଙ୍କର ମାହାତ୍ମ୍ୟ ଗାନ କରି ଧନ୍ୟ ହୋଇଥିଲେ ।

ଏତନ୍ମଧ୍ୟରେ ୧୬୭୯ ଅବ୍ଦରେ ମାଳବେହାରପୁର ଟୁଙ୍ଗି ମନ୍ଦିରରେ ବିଦ୍ୟୁତ୍‌ପାତ ହେବାରୁ ଜଗତ୍‌ସ୍ୱାମୀଙ୍କର ଆଜ୍ଞାନୁସାରେ ସେ ଧୂନି ମନ୍ଦିର ଭସ୍ମୀଭୂତ ହୋଇଗଲା । ତାହା ପରେ ବିଶେଷଭାବେ ଗଡ଼ଜାତମାନଙ୍କରେ ମହିମାଲୀଳା ପ୍ରକଟିତ କରାଇ ସ୍ୱାମୀ ସାଧୁ ସନ୍ନ୍ୟାସୀଙ୍କଦ୍ୱାରା ସତ୍ୟମହିମାଧର୍ମର ନିୟମାବଳୀ ପ୍ରଚାର କରାଇଥିଲେ । ଦିନକୁ ଦିନ ଜଗତ୍-ସ୍ୱାମୀଙ୍କର ଐଶ୍ୱରିକ ପ୍ରଭା ଓଡ଼ିଶା ମଧ୍ୟରେ ବିଶେଷଭାବେ ବ୍ୟାପିଗଲା । ପୂର୍ବପୁରୁଷମାନଙ୍କର କଥିତ ଜଗତର ଅମଙ୍ଗଳ-ସୂଚକ ଭବିଷ୍ୟତ୍ ବାକ୍ୟମାନ ଖଣ୍ଡନ କରି ସେ ଜଗତମଙ୍ଗଳ ସାଧନାର୍ଥେ ସଦୁପଦେଶ ପ୍ରଚାର କଲେ । ଏପରି ଅଲୌକିକ ବିଷୟ ଘଟିଲା ଯେ, ସ୍ୱର୍ଗରୁ ଦେବତାମାନେ ଆସି ସ୍ୱାମୀଙ୍କ ସେବାରେ ନିଯୁକ୍ତ ହେଲେ । ଆଉ ମଧ୍ୟ ପ୍ରଭୁଙ୍କ ମହିମାରେ ସର୍ବ ଭକ୍ତବୃନ୍ଦଙ୍କର ମାହାତ୍ମ୍ୟ ବିଶେଷରୂପେ ପ୍ରକଟିତ ହେଲା ।

ଢେଙ୍କାନାଳ ଜକା ଆଶ୍ରମଠାରେ ବାଞ୍ଛାନିଧି ବାବାଙ୍କ ଦ୍ୱାରା ସ୍ୱାମୀ ଅପର ସନ୍ନ୍ୟାସୀ ପନ୍ଥାର ସୃଷ୍ଟି କରାଇଲେ । ଜଗତ୍‌ସ୍ୱାମୀଙ୍କ ଆଦେଶମତେ ସିଦ୍ଧ ବାଞ୍ଛାନିଧି ବାବା ପଞ୍ଚ-ଶତାଧିକ ପର୍ଯ୍ୟନ୍ତ ଅପର ବୈରାଗୀ ତ୍ୟାଗୀମାନଙ୍କୁ ଅପର ସନ୍ନ୍ୟାସ ଯୋଗର ଉପଦେଶ ପ୍ରଦାନ କରି ଡୋର ଓ ଗୈରିକ ବସ୍ତ୍ରର କୌପୀନ ଗ୍ରହଣ ନିମିତ୍ତ ଆଦେଶ ଦେଲେ । ତ୍ୟାଗୀମାନେ ସ୍ୱାମୀଙ୍କ ଆଜ୍ଞାନୁସାରେ କୌପୀନ ଗ୍ରହଣ କରି 'ଦାସ' ଉପାଧି ଲାଭପୂର୍ବକ ସିଦ୍ଧ ଗୁରୁଜନଙ୍କ ଆଦେଶ ପାଳନରେ ନିଯୁକ୍ତ ରହିଲେ ।

ଯେତେ ସ୍ଥାନରେ ପ୍ରବୁଦ୍ଧଗୁରୁ ମହିମା ଗୋସାଇଁଙ୍କର ମହିମାଲୀଳା ପ୍ରଭୃତି ଶୁଭକାର୍ଯ୍ୟ ଅନୁଷ୍ଠିତ ହୁଏ, ତାହା ଶୁକ୍ଳପକ୍ଷ ଚତୁର୍ଦ୍ଦଶୀରେ କରାଯାଏ । ବାଲ୍ୟଲୀଳା, ଧୂନିହୁତି, ଅଲେଖ ପରଂବ୍ରହ୍ମଙ୍କର ନାମସ୍ମରଣ, ଭଜନ, ଗାୟନ ଇତ୍ୟାଦି ନିଷ୍କାମ ମହିମାଲୀଳାର ଅଙ୍ଗ ଅଟେ ।

ମହିମା ସ୍ୱାମୀଙ୍କର ମହିମାଲୀଳା ଶ୍ରବଣ କରି ଇଂରେଜ ଗଭର୍ଣ୍ଣମେଣ୍ଟ ସ୍ୱାମୀଙ୍କୁ ଧରି ନେବା ନିମିତ୍ତ ଯତ୍ନବାନ ହୋଇ, କୌଣସି ପ୍ରକାରେ ସ୍ୱାମୀଙ୍କୁ ଧରି ପାରିଲେ ନାହିଁ । ଜଗଦ୍‌ଗୁରୁ ମହିମାଗୋସାଇଁ ମହିମା ଗାଦିର ଭବିଷ୍ୟତ ବ୍ୟବସ୍ଥାର ବିଷୟ ସିଦ୍ଧସାଧୁ ଭକ୍ତମାନଙ୍କୁ ଓ ରାଜବାହାଦୂରଙ୍କୁ ଶ୍ରବଣ କରାଇ ୧୮୮୩ ଅବ୍ଦ ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦଶମୀ ସୋମବାର ଦିନ ଢେଙ୍କାନାଳ ଜୋରନ୍ଦା ଆଶ୍ରମରେ ବିରାଜମାନ ହେଲେ । ସେଠାରେ ସିଦ୍ଧସାଧୁ ଭକ୍ତମାନଙ୍କୁ ବହୁ ସଦୁପଦେଶ ପ୍ରଦାନ କରି, ଅପରାହ୍ନ ପାଞ୍ଚଘଣ୍ଟା ବାଇଶି ମିନିଟ୍ ସମୟରେ ପଦ୍ମାସନରେ ଉପବିଷ୍ଟ ହୋଇ ଚିରସମାଧି ଅବଲମ୍ବନ କଲେ । ତତ୍ପରେ ସିଦ୍ଧସାଧୁ ଭକ୍ତଗଣ ଶୂନ୍ୟ ଦୈବବାଣୀ ଶ୍ରବଣ କରି ସ୍ୱାମୀଙ୍କ କଳେବରକୁ ଭୂମଧ୍ୟରେ ସମାଧି ଗାଦିରେ ନ୍ୟସ୍ତ କଲେ । ବର୍ତ୍ତମାନ ଉକ୍ତ ସ୍ଥାନ ମହିମାଗାଦି ଅନନ୍ତ କ୍ଷେତ୍ରନାମରେ ପ୍ରସିଦ୍ଧ ହୋଇଅଛି । ମହିମାଗୋସାଇଁଙ୍କ ପ୍ରସଙ୍ଗ 'ସତ୍ୟମହିମା ଧର୍ମ ଇତିହାସ' ଗ୍ରନ୍ଥରେ ଉତ୍ତମରୂପେ ବ୍ୟାଖ୍ୟା କରାଯାଇଅଛି ।

ଲେଖକ—ଅବଧୂତ-ବିଶ୍ୱନାଥ ବାବା ।]

**ମହିମାଧର୍ମ**—ଦେ. ବି.—ଅଲେଖ ଧର୍ମ—A religious faith in Orissa, the followers of which worship the Great Formless God. Mahimādharma

[ ଦ୍ର—ଏହାର ପୂର୍ଣ୍ଣନାମ ସତ୍ୟ ସନାତନ ମହିମାଧର୍ମ ଅଟେ । ଉକ୍ତ ଧର୍ମ ପ୍ରବର୍ତ୍ତକ ଜଗଦ୍‌ଗୁରୁ ମହିମା ଗୋସାଇଁ ଅଟନ୍ତି । ମହିମାଧର୍ମୀମାନେ ଏକ ଅଲେଖ ନିର୍ଗୁଣ ପରଂ-ବ୍ରହ୍ମଙ୍କର ଉପାସନା କରନ୍ତି ଓ ନିତ୍ୟ ପ୍ରାତଃ ସାୟଂ ବ୍ରହ୍ମ ମୁହୂର୍ତ୍ତକାଳେ ଶୁଚି ହୋଇ କାୟମନୋବାକ୍ୟରେ ପ୍ରଭୁ ପରମାତ୍ମାଙ୍କଠାରେ ଶରଣ ପ୍ରାପ୍ତ ହୁଅନ୍ତି । ପ୍ରାତଃ ବ୍ରାହ୍ମ-ମୁହୂର୍ତ୍ତରେ ପୂର୍ବାଭିମୁଖ ହୋଇ ଏକାଗ୍ରମନରେ ଶୂନ୍ୟରେ ଦୃଷ୍ଟି ସ୍ଥାପନ ପୂର୍ବକ ଛନ୍ଦବନ୍ଦ ନିୟମାନୁସାରେ ମୁକ୍ତ ସୁନିର୍ମଳ ସ୍ଥାନରେ ସପ୍ତବାର କିମ୍ବା ପରଂବ୍ରହ୍ମଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରନ୍ତି । ତଦ୍ରୂପ ସୂର୍ଯ୍ୟାସ୍ତ ହେଲେ ପଶ୍ଚିମାଭିମୁଖ ହୋଇ ପ୍ରଭୁ ପରମାତ୍ମାଙ୍କୁ ପଞ୍ଚବାର ଦଣ୍ଡ ପ୍ରଣାମ ପୂର୍ବକ ଶରଣ ପ୍ରାପ୍ତ

ହୁଅନ୍ତି; ବାକ୍ୟରେ ମଧ୍ୟ ପ୍ରଭୁଙ୍କୁ ସ୍ତୁତି ଜଣାଣ ସହକାରେ ଅଲେଖ ବ୍ରହ୍ମ ନାମ ଗାୟନ କରନ୍ତି; ମାନସିକ ଶରଣ ଅର୍ଥାତ୍ ମନ ମଧ୍ୟରେ ବ୍ରହ୍ମ ମହାମନ୍ତ୍ର ସ୍ମରଣ ପୂର୍ବକ ଅଜପା ସୂକ୍ଷ୍ମ ଭଜନରେ ନିବିଷ୍ଟ ରହନ୍ତି । ଏକ ପରଂବ୍ରହ୍ମଙ୍କ ଆଶ୍ରୟ ବ୍ୟତୀତ ଯେତେ ପ୍ରକାର ସାକାର ଦେବଦେବୀଙ୍କ ଆରାଧନା ରହିଅଛି ଓ ବ୍ରହ୍ମ ମହାମନ୍ତ୍ର ବ୍ୟତୀତ ଅନ୍ୟାନ୍ୟ ମନ୍ତ୍ର ତନ୍ତ୍ର ସାଧନ ଭଜନାଦି ସାଧାରଣ ଭାବେ ଯାହା ପ୍ରଚଳିତ ହେଉଅଛି, ସେ ସମସ୍ତ ମହିମା ଧର୍ମରେ ନିଷିଦ୍ଧ ।

ମହିମାଧର୍ମୀମାନେ ବିଷ୍ଣୁଙ୍କ ଅବତାରମାନଙ୍କ ଆରାଧନା ଓ ତାହାଙ୍କ ନାମ ସ୍ମରଣ, ଏପରିକି ବିରାଟାଦି ଛାୟାସନ୍ତ ବସାଣର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ପୁନଶ୍ଚ ସେମାନେ ଭୂତ ପ୍ରେତାଦିଙ୍କ ପୂଜା, କାମ୍ୟ କର୍ମ, ଶ୍ରାଦ୍ଧ ପିଣ୍ଡଦାନ, ତୀର୍ଥାଟନ, ସାଧାରଣ ବ୍ରତୋପବାସର ନିୟମପାଳନ ତ୍ୟାଗ କରିଥାଆନ୍ତି; ଦେବଦେବୀ ଉଦ୍ଦେଶ୍ୟରେ ଅର୍ପିତ ଦ୍ରବ୍ୟ ଗ୍ରହଣ ବା ସ୍ପର୍ଶ କରନ୍ତି ନାହିଁ । ବିଷ୍ଣୁ ପ୍ରତିମାଦିର ଆରାଧନା ଓ ତୁଳସୀ ପ୍ରଭୃତି ପ୍ରସାଦ ସ୍ପର୍ଶ ବା ସେବା ନ କରି ଅଦ୍ୱିତୀୟ ପରମେଶ୍ୱରଙ୍କ ଆଶ୍ରୟରେ ଥାଆନ୍ତି । ମହିମାଧର୍ମୀମାନେ ନିମ୍ନଲିଖିତ ନିର୍ମିତମାନ ଅବଲମ୍ବନ କରିଥାଆନ୍ତି :—

ଶରୀର ଶୋଧନାର୍ଥେ ବସ୍ତ୍ରତଳେ ଗୋମୟ ଅଙ୍ଗରେ ମାର୍ଜନ, ମୃତ୍ତିକାଦିଦ୍ୱାରା ଦନ୍ତଧାବନପୂର୍ବକ ଜଳରେ ସ୍ନାନ କରି ତତ୍ପରେ ଉକ୍ତ ଗୋମୟ, ଗୋମୂତ୍ର ଜଳ ଓ ରେଣୁ ମିଶାଇ ପାନ କରନ୍ତି । ତତ୍ପରେ ଶୁଦ୍ଧ ଚୈତନ୍ୟ ବସ୍ତ୍ରପରିଧାନପୂର୍ବକ ବ୍ରହ୍ମରେ ଶରଣାପନ୍ନ ହୁଅନ୍ତି ।

ଏମାନେ ଦିବସରେ ସୂର୍ଯ୍ୟନାଡ଼ୀ (ଦକ୍ଷିଣନାସା)ରେ ନିଶ୍ୱାସ ବହୁଥିବା ସମୟରେ ଭୋଜନ ପାନ କରନ୍ତି; କୁଭୋଜନ ଅର୍ଥାତ୍ ରାଜସିକ ତାମସିକ ପ୍ରଭୃତି ଦ୍ରବ୍ୟ ଗ୍ରହଣ କରନ୍ତି ନାହିଁ । ସୂର୍ଯ୍ୟାସ୍ତଠାରୁ ପ୍ରାତଃକାଲ ପର୍ଯ୍ୟନ୍ତ ସର୍ବେରେ ଚତୁର୍ବିଧ (ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟବସ୍ତୁ ଗ୍ରହଣ) ଆହାର କରନ୍ତି ନାହିଁ । ତଦ୍ରୂପ ଜୀବହିଂସା, ବେଶ୍ୟା, ପରଦାର, ମଦ୍ୟପାନ, ଜୁଆଖେଳ, ନୃତ୍ୟ, ଅସତ୍‌ଶାସ୍ତ୍ର ଓ କୁସଙ୍ଗ ବର୍ଜନୀୟ । ସତ୍ୟ, ଶାନ୍ତି, ଦୟା, କ୍ଷମା, ସରଳତା, ଅକୁଟିଳତା, ସତ୍‌ଶାସ୍ତ୍ର ଅଧ୍ୟୟନ, ବ୍ରହ୍ମନିଷ୍ଠସିଦ୍ଧସାଧୁଜନଙ୍କ ସଂସର୍ଗ ସର୍ବଦା ସେମାନଙ୍କର ସେବନୀୟ ।

ବାଲ୍ୟ, ଯୌବନ ପ୍ରଭୃତି ଅବସ୍ଥାରେ ସ୍ତ୍ରୀ ବା ପୁରୁଷ, ବ୍ରାହ୍ମଣଠାରୁ ଅନ୍ତ୍ୟଜ ଜାତି ପର୍ଯ୍ୟନ୍ତ ସମସ୍ତେ ଉକ୍ତ ଧର୍ମ ଗ୍ରହଣ କରିପାରନ୍ତି ।

ଏହି ଧର୍ମରେ ଦୁଇଟି ପନ୍ଥା ଅଛି । ଯଥା—ଗୃହସ୍ଥ ଓ ଅବଧୂତାଶ୍ରମ । ଉକ୍ତ ନିୟମ ସମସ୍ତ ଉଭୟ ପନ୍ଥାରେ ପାଳନୀୟ । ଗୃହସ୍ଥଗଣ ଯେ ସମସ୍ତ ଶୁଭ ସତ୍‌କର୍ମର ଅନୁଷ୍ଠାନ କରନ୍ତି, ତାହା ପ୍ରଥମେ ପରଂବ୍ରହ୍ମଙ୍କୁ ସରଣ ପୂର୍ବକ କର୍ମ କରିବାରେ ନିଯୁକ୍ତ ହୁଅନ୍ତି । କଦାପି କାମ୍ୟ, ନିଷିଦ୍ଧ କର୍ମର ଅନୁଷ୍ଠାନ କରନ୍ତି ନାହିଁ । ପ୍ରକୃତ ଭକ୍ତ ଓ ତତ୍ପତ୍ନୀ ଉଭୟେ ସତ୍ୟ ଧର୍ମରେ ଦୀକ୍ଷିତ ହେଲା ପରେ ସ୍ତ୍ରୀ ଅସ୍ପୃଶ୍ୟା ହେଲେ ଅସ୍ପୃଶ୍ୟତା ଦୋଷ ସପ୍ତଦିନ ପାଳନ କରି ପୁତ୍ରଜନ୍ମାର୍ଥେ ସ୍ତ୍ରୀ ସଂସର୍ଗ କରନ୍ତି । ଅନ୍ୟ ଦିନରେ ସଙ୍ଗମ ବର୍ଜନୀୟ ।

ସାଧୁ ସନ୍ନ୍ୟାସୀ ଅତିଥିମାନଙ୍କୁ ଅନ୍ନ ବସ୍ତ୍ରାଦିଦ୍ୱାରା ସତ୍କାର କରି ଭକ୍ତ ଗୁରୁଜନଙ୍କ ସେବାରେ ନିଯୁକ୍ତ ରହନ୍ତି । ତଦ୍ରୂପ ବାଲ୍ୟଲୀଳା ( ନାନାପ୍ରକାର ସୁମିଷ୍ଟ ସୁଖାଦ୍ୟ ଦ୍ରବ୍ୟମାନ ନୂତନ ମୃତ୍ତିକା ଭାଣ୍ଡରେ ପୂରଣ କରି ପରଂବ୍ରହ୍ମଙ୍କୁ ଅର୍ପଣ ପୂର୍ବକ ଆବାଳବୃଦ୍ଧ ସମସ୍ତଙ୍କୁ ବ୍ରହ୍ମ ମହାପ୍ରସାଦ ବିତରଣ ) କରି ଧୂତ ପାପାବଳମାନ ଜାଳି ପ୍ରତି ଶୁକ୍ଳ ଚତୁର୍ଦ୍ଦଶୀରେ ବା ଅନ୍ୟାନ୍ୟ ସମୟରେ ତାହାର ଅନୁଷ୍ଠାନ ପୂର୍ବକ ଆଶ୍ରମମାନଙ୍କରେ ନାମ ଭଜନ ଗାୟନରେ ରାତ୍ରି ଅତିବାହିତ କରନ୍ତି ।

ଭକ୍ତ ସତ୍‌କାର ସୂତକାଦି ଅଶୌଚ ମଧ୍ୟରେ ନିଷେଧ । ଭକ୍ତ ଅଶୌଚବିହିତ ନିୟମମାନ ପାଳନ କରି ଗୁରୁଆଜ୍ଞା ଅନୁସାରେ ପବିତ୍ର ଗୋମୟଦ୍ୱାରା ଶୌଚ ହୁଅନ୍ତି । ଗୃହମଧ୍ୟରେ ବା ଶରୀରରେ କୌଣସି ପ୍ରକାର ବିଘ୍ନଜାତ ହେଲେ ପ୍ରଭୁଙ୍କଠାରେ ସାଧୁ ଭକ୍ତଗଣ—ଶରଣ ପ୍ରାପ୍ତ ହୋଇ ଉକ୍ତ ବିଘ୍ନଦୂରୀକରଣ କର୍ମର ଅନୁଷ୍ଠାନ କରନ୍ତି ।

ଅବଧୂତ ସନ୍ନ୍ୟାସାଶ୍ରମ ଗ୍ରହଣ କରିବା ନିମିତ୍ତ ବାଲ୍ୟଯୌବନାଦି ଅବସ୍ଥା ଓ ବ୍ରାହ୍ମଣାଦି ଜାତିଭେଦ ନାହିଁ । କେବଳ ପୂର୍ବଭାଗ୍ୟାନୁସାରେ ଯାହାର ହୃଦୟରେ ବିବେକ ବୈରାଗ୍ୟ ଜାତ ହୁଏ, ସେ ସିଦ୍ଧ ଗୁରୁଙ୍କର ଅନୁସରଣ କରି ବିଧିମତେ ଗୃହତ୍ୟାଗ ପୂର୍ବକ ମହିମା ଗାଦି ଗୁରୁପୀଠସ୍ଥାନରେ ସିଦ୍ଧଗୁରୁଙ୍କ ଆଜ୍ଞାନୁସାରେ ସମସ୍ତ ଚିହ୍ନ ପରିତ୍ୟାଗ କରି ମସ୍ତକମୁଣ୍ଡନ ପୂର୍ବକ ଡୋରକୌପୀନ ବସ୍ତ୍ର କୌପୀନ ଧାରଣ କରି ଅପର ସନ୍ନ୍ୟାସାଶ୍ରମଭୁକ୍ତ ହୁଅନ୍ତି । ଅପର ସନ୍ନ୍ୟାସୀମାନେ ସେ ସମୟରେ କେବଳ ଦାସୋପାଧି ଲାଭ କରିଥାନ୍ତି । ତତ୍ପରେ ସିଦ୍ଧ ଗୁରୁଜନଙ୍କ ଆଦେଶରେ ନିଯୁକ୍ତ ରହି ବୈରାଗ୍ୟାଦି ସାଧନ ଚତୁଷ୍ଟୟ ସମ୍ପନ୍ନ ହେଲେ, ସେ ସମୟରେ ବ୍ରହ୍ମଭାବନାଦ୍ୱାରା ପରଂବ୍ରହ୍ମ ସହିତ ଆତ୍ମାର ଐକ୍ୟ ସଂସ୍ଥାପନସହ ଆତ୍ମାକୁ ଉତ୍ତମରୂପେ ଅବଗତ ହୋଇ ପରମାତ୍ମାରେ ପରମପ୍ରୀତି ସ୍ଥାପନ ପୂର୍ବକ ପରମାନନ୍ଦ ଲାଭ କରନ୍ତି । ଅତି ମଧ୍ୟ ଅଜପା ସୂକ୍ଷ୍ମରେ ସୋଽହଂଭାବ ଅବଲମ୍ବନ ପୂର୍ବକ ଗୁଣଯୁକ୍ତ ବିଷୟରେ ଯାହାର ତୀବ୍ର ବୈରାଗ୍ୟ ଜନ୍ମିଥାଏ, ସେହି ବ୍ରହ୍ମଶରଣାପନ୍ନ ବ୍ୟକ୍ତି ଅବଧୂତ ସିଦ୍ଧାଶ୍ରମ ପରସନ୍ନ୍ୟାସୀ ପନ୍ଥାରେ ଭୁକ୍ତ ହେବାର ଉପଯୋଗୀ ହୁଅନ୍ତି । ଅବଧୂତ ସିଦ୍ଧଗୁରୁ ତାହାଙ୍କୁ ମହାବାକ୍ୟ ପ୍ରଭୃତିର ତତ୍ତ୍ୱ ଉତ୍ତମରୂପେ ଉପଦେଶ ପ୍ରଦାନ କରି ଅବଧୂତ ପରସନ୍ନ୍ୟାସ ପନ୍ଥରେ ଭୁକ୍ତ କରନ୍ତି ।

ଅବଧୂତ ସିଦ୍ଧଗୁରୁ ମହିମାଗୋସାଇଁଙ୍କର ଆଜ୍ଞାନୁସାରେ ତାଙ୍କୁ ଅବଧୂତ ବଲ୍କଲବାନା ପ୍ରଦାନ କରନ୍ତି । ବୈରାଗ୍ୟସମ୍ପନ୍ନ ବ୍ୟକ୍ତି ତାହାର ଓ ଅପର ସନ୍ନ୍ୟାସୀର ଚିହ୍ନ

ତ୍ୟାଗ କରି ଦିଗମ୍ବର ହୋଇ ଗୁରୁପୀଠ ସ୍ଥାନରେ ବ୍ରାହ୍ମ ମୁହୂର୍ତ୍ତ ସମୟରେ ବଲ୍କଲ ବାନା ଅଲେଖପରଂବ୍ରହ୍ମଙ୍କୁ ଅର୍ପଣପୂର୍ବକ କୌପୀନ ପରିଧାନ କରି, ଆତ୍ମା ସହିତ ବ୍ରହ୍ମର ଅଭେଦଭାବ ଅବଲମ୍ବନପୂର୍ବକ ବ୍ରହ୍ମ ଦର୍ଶନ କରନ୍ତି । ତତ୍ପରେ ସିଦ୍ଧଗୁରୁ ତାହାଙ୍କୁ 'ବାବା' ଉପାଧି ପ୍ରଦାନ କରି ତାଙ୍କ ସଙ୍ଗେ ଏକତ୍ର ଉପବେଶନ ଓ ଭୋଜନ ପାନ କରନ୍ତି । ଅପର ସନ୍ନ୍ୟାସପତ୍ନୀ ଓ ଗୃହସ୍ଥପତ୍ନୀ ତଦ୍ରୂପ ନିଜ ପନ୍ଥାରେ ଏକତ୍ର ଆଚରଣମାନ୍ୟ ହୁଅନ୍ତି । ଉକ୍ତ ଅବଧୂତ ସନ୍ନ୍ୟାସୀମାନେ କାମିନୀ ସଙ୍ଗ ବା ସ୍ପର୍ଶ କରନ୍ତି ନାହିଁ; ସ୍ତ୍ରୀମାନଙ୍କୁ 'ମା' ଶବ୍ଦରେ ସମ୍ବୋଧନ କରନ୍ତି ଓ ସେମାନଙ୍କ ବାସସ୍ଥାନରେ ବାସ କରନ୍ତି ନାହିଁ ।

ସେମାନେ ଏକ ସ୍ଥାନରେ ମଠ କରି ରହନ୍ତି ନାହିଁ । ଏକ ଗ୍ରାମରେ ଏକ ଦିବସ ମାତ୍ର ରହି ଯାଚ୍ଞା ବା ଅଯାଚ୍ଞାଭାବେ ଏକ ଗୃହରୁ ପ୍ରାପ୍ତ ଏକବକ୍ତ ମଧ୍ୟାହ୍ନ ବ୍ୟଞ୍ଜନାଦି ସହ ଧର୍ମଶାଳାରେ ବା ଗ୍ରାମାନ୍ତରର ସୁନିର୍ମଳ ସ୍ଥାନରେ ନୂତନ ମୃତ୍ତିକା ପାତ୍ରରେ ବା ତମ୍ବାଦି ପାତ୍ରରେ ଅଳ୍ପ ବନ୍ଧୁତ ବା ଭଲ ମନ୍ଦ ନ ଭାବି ବ୍ରହ୍ମ ସ୍ମରଣପୂର୍ବକ ଆନନ୍ଦ ମନରେ ଭୋଜନ କରନ୍ତି; ପର ଦିବସ ନିମିତ୍ତ ଭିକ୍ଷା ଦ୍ରବ୍ୟ ସଞ୍ଚିତ ରଖନ୍ତି ନାହିଁ; ଅଥବା ଭିକ୍ଷା ଦ୍ରବ୍ୟ ନେଇ ଏକ ସ୍ଥାନରୁ ସ୍ଥାନାନ୍ତରକୁ ପ୍ରସ୍ଥାନ କରନ୍ତି ନାହିଁ । ସ୍ୱୟଂ ଭିକ୍ଷା ଦ୍ରବ୍ୟ ରନ୍ଧନ କରିବା ଉକ୍ତ ଆଶ୍ରମ ବିଧାନରେ ନିଷିଦ୍ଧ । ସେମାନେ ଯାହା ଦ୍ୱାରେ ଭିକ୍ଷା କରନ୍ତି, ତାହାର ମଙ୍ଗଳ ନିମିତ୍ତ ପ୍ରଭୁଙ୍କଠାରେ ପ୍ରାର୍ଥନା କରନ୍ତି । ଅବଧୂତ ସନ୍ନ୍ୟାସୀମାନେ କାମିନୀକାଞ୍ଚନଶୂନ୍ୟ ଗୃହରେ ବା ବୃକ୍ଷମୂଳରେ ଅବସ୍ଥାନ କରନ୍ତି; ସାୟଂକାଳରେ ଧୁନିସ୍ଥାପନପୂର୍ବକ ବ୍ରହ୍ମଶରଣ ଭଜନ କରି ଆଗନ୍ତୁକ ବ୍ୟକ୍ତିମାନଙ୍କୁ ସଦୁପଦେଶ ପ୍ରଦାନପୂର୍ବକ ବିଳାସ ଆସନ ତ୍ୟାଗପୂର୍ବକ ଭୂପୃଷ୍ଠରେ ଶୟନ ଓ ଉପବେଶନ କରନ୍ତି । ପର ଦିନ ପ୍ରାତଃକାଳରୁ ଦର୍ଶନ ଭଜନ ଶେଷ କରି ଗ୍ରାମରେ ଭିକ୍ଷାଗ୍ରହଣପୂର୍ବକ ଗ୍ରାମର ମଙ୍ଗଳ ବାଞ୍ଛା କରି ଅନ୍ୟ ସ୍ଥାନକୁ ପ୍ରସ୍ଥାନ କରନ୍ତି । ଭିକ୍ଷା ଅପ୍ରାପ୍ତ ହେଲେ ଗ୍ରାମାନ୍ତର ଜଳାଶୟରେ ଜଳପାନ କରି ଗ୍ରାମର ମଙ୍ଗଳବାଞ୍ଛା କରିବା ସେମାନଙ୍କ ସ୍ୱାଭାବିକ ଧର୍ମନୀତି ଅଟେ ।

ସେମାନେ ଏକ ଗ୍ରାମରେ ଏକ ଦିନରୁ ଅଧିକ ନ ରହି ସତ୍ୟମହିମାଧର୍ମ ପ୍ରଚାରାର୍ଥ ଭିନ୍ନ ଭିନ୍ନ ଗ୍ରାମରେ ବିଚରଣ କରନ୍ତି । ଯଦି କେହି ତାହାଙ୍କୁ ଅର୍ଥ ପ୍ରଦାନ କରନ୍ତି, ତାହା ଉପଯୁକ୍ତ ପ୍ରକାରେ ବ୍ୟୟ କରନ୍ତି ।

ସେମାନେ ଉପବୀତ ଓ ମାଳା ପ୍ରଭୃତି ଧାରଣ ନ କରି ଦଣ୍ଡକୌପୀନ ଓ ଚାଲପତ୍ର ପଙ୍ଖା ଆତପତ୍ରରୂପେ ଧାରଣ କରି ଥାଆନ୍ତି । ସେମାନେ ତାମ୍ବୂଳ ଭକ୍ଷଣ କରନ୍ତି ନାହିଁ; ଯାନ ବାହାନାଦି ଆରୋହଣ ନ କରି ସ୍ୱପଦରେ ଗମନ କରନ୍ତି; ତୀର୍ଥ, ବ୍ରତ, ଯଜ୍ଞାଦି ମେଳା, ମହୋତ୍ସବ ସ୍ଥାନକୁ ଗମନ କରନ୍ତି ନାହିଁ; ଜଗତ ମଙ୍ଗଳାର୍ଥେ ସର୍ବଦା ପ୍ରଭୁଙ୍କୁ ଜଣାଇ ଲୋକମାନଙ୍କୁ ବ୍ରହ୍ମଜ୍ଞାନ ଭକ୍ତିଯୋଗର ଉପଦେଶ ପ୍ରଦାନ କରନ୍ତି । ଅସ୍ପୃଶ୍ୟ, ନୃପ, କାପିଳ, ରଜକ, ଗଣକ, ଗଣିକା, ଖୋପାମାଳୀ, ଭାଟ, ବୈଦ୍ୟ, ଭିକ୍ଷାଜୀବୀ ଓ ଗୃହୀ ବୈଷ୍ଣବ ପ୍ରଭୃତି ନୈବେଦ୍ୟାହାରୀ ବ୍ୟକ୍ତିଙ୍କ ଗୃହରେ ସତ୍ୟମହିମାଧର୍ମର ସାଧୁ ସନ୍ନ୍ୟାସୀ ବା ଗୃହସ୍ଥ ଭକ୍ତଗଣ ଭୋଜନ କରନ୍ତି ନାହିଁ; ତଦ୍ରୂପ ଶ୍ରାଦ୍ଧାନ୍ନ ଓ ବନ୍ଧୁମେଳ ଅନ୍ନ ଭୋଜନ କରନ୍ତି ନାହିଁ; ଉକ୍ତ ଦେବନୈବେଦ୍ୟାହାରୀ ବ୍ୟକ୍ତି ସତ୍ୟମହିମାଧର୍ମରେ ଦୀକ୍ଷିତ ହେଲେ ତାଙ୍କ ପ୍ରତି ଘୃଣା ପରିହାର କରନ୍ତି; ଯେ କେହି ସାଧୁ ସନ୍ନ୍ୟାସୀ ଦେହ ତ୍ୟାଗ କଲେ, ଉକ୍ତ ଘଟକୁ ଭୂମି ମଧ୍ୟରେ ସମାଧି କରିଦିଅନ୍ତି । ଏକ ଅଲେଖ ପରଂବ୍ରହ୍ମଙ୍କୁ ଉପାସନା କରାଯାଏ ବୋଲି ଏହି ସତ୍ୟମହିମାଧର୍ମକୁ ମଧ୍ୟ ଅଲେଖଧର୍ମ ବୋଲି କୁହାଯାଏ । ଉକ୍ତ ଅବଧୂତ ପର ସନ୍ନ୍ୟାସୀମାନେ କୁମ୍ଭୀ ବୃକ୍ଷର ବଲ୍କଲ ଧାରଣ କରୁଥିବା ହେତୁ, କେହି କେହି ସାଧାରଣ ବ୍ୟକ୍ତି ଏମାନଙ୍କୁ କୁମ୍ଭିପଟିଆ ବୋଲି କହନ୍ତି ।

ବର୍ତ୍ତମାନ ସତ୍ୟ ମହିମାଧର୍ମ ଉତ୍କଳ, ବଙ୍ଗ, ବିହାର ପ୍ରଭୃତି ଦେଶରେ ଓ ଦକ୍ଷିଣାଞ୍ଚଳ ହାଇଦ୍ରାବାଦ, ଗୁଣ୍ଟୁରୁ, ଇଲୁରୁ ଓ ଗୋଦାବରୀ ପ୍ରଭୃତି ସ୍ଥାନରେ ଓ ପଶ୍ଚିମାଞ୍ଚଳ ସୁଦୂର ଇନ୍ଦୋର ରାଜ୍ୟ ପର୍ଯ୍ୟନ୍ତ ବ୍ୟାପି ଅଛି । ସତ୍ୟମହିମାଧର୍ମ ତତ୍ତ୍ୱର ତାତ୍ପର୍ଯ୍ୟ ବୁଝିବାକୁ ହେଲେ ମହିମାଧର୍ମ ପ୍ରତିପାଦକ ଗ୍ରନ୍ଥ ଦେଖନ୍ତୁ—ଲେଖକ. ବ୍ରହ୍ମଅବଧୂତ ଶ୍ରୀ ବିଶ୍ୱନାଥ ବାବା । ]

ମହିମାଧର୍ମୀ—ଦେ. ବିଣ—ମହିମାଧର୍ମ ଅବଲମ୍ବନକାରୀ ( ବ୍ୟକ୍ତି )—
Mahimādharmi ( person ) Following the creed of the Mahimādharma.

ମହିମା ବ୍ୟଞ୍ଜକ—ଦେ. ବିଣ (ସଂ. ମହିମାବ୍ୟଞ୍ଜକ) —ମାହାତ୍ମ୍ୟଜ୍ଞାପକ—
Mahimā byañjaka महिमा व्यंजक Indicating glory.

ମହିମାର୍ଣ୍ଣବ—ସଂ ବିଣ—ସମୁଦ୍ର ପରି ଅପରିମେୟ ଗୌରବବିଶିଷ୍ଟ—
Mahimārṇṇaba Having illimitable glory; very glorious.

ମହିମିତା—ଦେ. ବିଣ—ମହିମାଯୁକ୍ତା—Endowed with glory
Mahimitā or excellence. [ ଉ—ଏ ଉତ୍କଳ ମଧ୍ୟ କୁହେ ମହିମିତା ସ୍ୱଭାବ ସମ୍ପଦେ—ଚନ୍ଦ୍ରାମଣି. ବିକମାହିତ୍ୟ ]

ମହିମ୍ନ—ଦେ. ବି. ( ମହିମନ୍ ଶବ୍ଦର ୬ଷ୍ଠୀ ବିଭକ୍ତି ଏକବଚନ ମହିମ୍ନଃ
Mahimna ଶବ୍ଦ; ଶିବଙ୍କର ଏ ସ୍ତୋତ୍ରର ଆଦ୍ୟରେ 'ମହିମ୍ନଃ ମହିମ୍ନ ମାହିମ୍ନ ପାରନ୍ତେ' ଥିବାରୁ )—ଶିବଙ୍କର ପ୍ରସିଦ୍ଧ ସ୍ତୋତ୍ର—( ମହିମ୍ନସ୍ତବ, ମହିମ୍ନସ୍ତୋତ୍ର—ଅନ୍ୟରୂପ ) ବିଶେଷ—Name of a celebrated hymn to Śiba.

ମହିର୍(ରି)ଗିରିଆ—ଦେ. ବି—ମଇରିଗିରିଆ ( ଦେଖ )
Mahir(ri)giriā Mairigiriā ( See )

ମହିର—ସଂ ବି. ( ମହ ଧାତୁ+କର୍ମ. ଇର )—୧ । ସୂର୍ଯ୍ୟ—
Mahira 1. The Sun ( Apte ). ୨ । ଅର୍କଗଛ—
2. Calotropis Gigantea ( tree ).

ମହି(ଇ)ରା—ଦେ. ବି. ( ସଂ. ମୋଦକକାର ? )—ଗୁଡ଼ିଆ —
Mahi(i)rā मयरा हलवाई, मोदी Confectioner.

ମହିରାଣ—ଦେ. ବି. (ପ୍ରାଚୀନ ପଦ୍ୟ) ( ସଂ. ମହି + ରାଜନ୍ )—ରାଜା—
Mahirāṇa ମହିরাজ महिराणा King.

ମହି(ଇ)ରି ପରି ଗଡ଼ିବା—ଦେ. କ୍ରି—ଅତି ବେଦନା ଯୋଗୁଁ ଭୂଇଁରେ
Mahi(i)ri pari gaṛibā ଲୋଟିବା—To wallow or
মাটিতে গড়াগড়ি দেওয়া roll on the ground in great
भूमिमें छटपटाना agony.

ମଇଁର ଭଳି ଗଡ଼ିବା, ମହିର ପରି
ଲୋଟିବା, ମହିର ଭଳି ଲୋଟିବା } ଅନ୍ୟରୂପ

ମହି(ହେ)ଳା—ସଂ. ବି. ସ୍ତ୍ରୀ ( ମହ୍ ଧାତୁ+କର୍ମ. ଇଳ + ଆ )—୧ ।
Mahi(he)ḷā ନାରୀ—1. Woman. ୨ । ମହିଷୀ—
2. A queen. ୩ । ମଦମତ୍ତ ସ୍ତ୍ରୀ—3. A woman
excited with lust; an amorous or
intoxicated woman (Apte). ୪ । ଗନ୍ଧଦ୍ରବ୍ୟ
ବିଶେଷ; ରେଣୁକା ( ହି. ଶ. )—4. A kind of
scented herb. ୫ । ପ୍ରିୟଙ୍ଗୁଲତା—5. Ichno-
মহিলা carpus Frutescens ( creeper ). ଦେ. ବି—
महिला ଉଦ୍‌ବଂଶୀୟା ସ୍ତ୍ରୀ—A lady.

ମହିଶୂର୍—ଦେ. ବି. ( ସଂ. ମହୀଶୂର )—ଦକ୍ଷିଣ ଭାରତର ସ୍ୱାଧୀନ ରାଜ୍ୟ
Mahiśūr —The state of Mysore in S. India.
মহিশূর, মৈশূর मैसूर

ମହିଷ—ସଂ. ବି. ପୁଂ ( ମହ୍ ଧାତୁ+କରଣ ବା କର୍ମ ଇଷ )—୧
Mahisha ମଇଁଷି—1. Buffalo. [ ଦ୍ର—ଏ ଯମଙ୍କର
(ମହିଷୀ—ସ୍ତ୍ରୀ) ବାହନ ଅଟେ । ] ୨ । ମହିଷାସୁର; ଅସୁର
ବିଶେଷ ( ଏହାକୁ ଦୁର୍ଗା ବଧ କରିଥିଲେ )—2. Name
of a demon killed by Durgā ୩ । କ୍ଷତ୍ରିୟ
ପିତା ଓ ବୈଶ୍ୟା ମାତାଠାରୁ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତି ବିଶେଷ
( ହି. ଶ. )—3. Name of a mixed caste
amongst the Hindus.

ମହିଷ(ଷୀ) କନ୍ଦ—ସଂ. ବି (ଏହାର ବାହାର ମଇଁଷି ପରି ପାଣ୍ଡୁର ଓ ଲୋମ-
Mahisha(shī) kanda ଯୁକ୍ତ ଥିବାରୁ )—ଧଳା ଦେଶୀଆଳୁ—
ସଂ. ଶୁଭ୍ରାଳୁ, ଶୁକ୍ଳକନ୍ଦ White yam.

ମହିଷ(ଷି) ଟିପା—ଦେ. ବି—ଦୁଷ୍ଟ ମଇଁଷି ବେକରେ ବନ୍ଧା ହୋଇଥିବା
Mahisha(shi) ṭipā କାଠର ଘଣ୍ଟି—A wooden bell
(ମହିଷ ଟିପେଇ—ଅନ୍ୟରୂପ) hung from the neck of a
গলঘণ্ট भैसकाघण्टा vicious buffalo.

ମହିଷଧ୍ୱଜ—ସଂ. ବି. ପୁଂ ( ବହୁବ୍ରୀହି )—ଶମନ; ଯମ—
Mahisha dhwaja The God of death.
(ମହିଷ ବହନ, ମହିଷ ବାହନ—ଅନ୍ୟରୂପ)

ମହିଷ ପଟା—ଦେ. ବି—ବାଲେଶ୍ୱରର ଗୋଟିଏ ପର୍ବତର ନାମ—
Mahisha paṭā Name of a mountain in
Balasore. [ ଉ—ମେହେରିଆ-ଶିଖ ଅକାଶେ
ଦିଶୁଅଛି ମହିଷ ପଟା । ରାଧାନାଥ. ଉଷା । ]

ମହିଷପାଳ—ସଂ. ବି. ପୁଂ—ମଇଁଷି ଜଗିବା ବ୍ୟକ୍ତି—A person
Mahishapāḷa who tends buffaloes.
(ମହିଷପାଳକ—ଅନ୍ୟରୂପ)

ମହିଷ ବଳି—ସଂ. ବି—ଶାରଦୀୟ ଦୁର୍ଗାପୂଜା ସମୟରେ ଦୁର୍ଗାଙ୍କ ଆଗରେ
Mahisha baḷi କଟାଯିବା ମଇଁଷି ବୋଦା—A buffalo
killed as a victim before Durgā.

ମହିଷ ବଲ୍ଲୀ—ସଂ. ବି—ସୋମଲତା ପରି ଏକପ୍ରକାର ଲତା—A kind
Mahishaballī of medicinal creeper.
[ ଦ୍ର— ଏହା ଔଷଧରେ ବ୍ୟବହୃତ ହୁଏ । ]

ମହିଷ ମତ୍ସ୍ୟ—ସଂ. ବି - କୃଷ୍ଣବର୍ଣ୍ଣ ଶଲ୍କଯୁକ୍ତ ରୋହି ମାଛ ଶ୍ରେଣୀର ବଡ଼
Mahisha matsya ମାଛ; କଳାବାଇଁସି ମାଛ—A kind
কালবসু; কালবাস of big fresh water fish with
scales ( of blackish colour ); Labeo
Calbasu. [ ଦ୍ର—ଏମାନେ ମଧୁର ପାଣିରେ ରହନ୍ତି ।
ମୁହଁ ପାଖରେ ୨ଟା ବଡ଼ ଓ ୨ଟା ସାନ ନିଶ ଥାଏ । ]

ମହିଷ ମର୍ଦ୍ଦିନୀ—ସଂ. ବି. ସ୍ତ୍ରୀ ( ମହିଷ + ମର୍ଦ୍ଦିନ୍ + ସ୍ତ୍ରୀ. ଈ )—ମହିଷାସୁର
Mahisha marddinī ବିନାଶିନୀ ଦେବୀ; ଦଶଭୁଜା ଦୁର୍ଗା—
ମହିଷ ଘାତିନୀ Durgā who killed the
ମହିଷଘ୍ନୀ demon Mahishāsura. [ ଦ୍ର
ମହିଷ ମଥନୀ } ଅନ୍ୟରୂପ —ଶରତ୍‌କାଳରେ ଦୁର୍ଗାଙ୍କୁ ଏହି ରୂପରେ
ମହିଷ ମର୍ଦ୍ଦନୀ ପୂଜା କରାଯାଏ; ମହିଷାସୁରବଧ ବିଷୟ
ମହିଷ ସୂଦନୀ ଚଣ୍ଡୀ ପୁରାଣର ୨ୟ ଓ ୩ୟ ଅଧ୍ୟାୟରେ
ବର୍ଣ୍ଣିତ ହୋଇଅଛି । ]

ମହିଷାର୍ଦ୍ଦନ—ସଂ. ବି—କାର୍ତ୍ତିକେୟ ( ହି. ଶ )—
Mahishārddana A name of Kārttikeya.

ମହିଷାଳ—ଗ୍ରା. ବି ( ସଂ. ମହିଷପାଳ )—ମହିଷପାଳ ( ଦେଖ )—
Mahishāḷa Mahisha pāḷa ( See ) [ ଉ—
(ମହିଷିଆଳ—ଅନ୍ୟରୂପ) ମହାନଦୀ-ପଠାବାସୀ ମହିଷାଳ ।
ରାଧାନାଥ. ନନ୍ଦିକେଶ୍ୱରୀ । ]

ମହିଷାସୁର—ସଂ. ବି. ପୁଂ—୧ । ଦୈତ୍ୟ ବିଶେଷ—1. Name of a
Mahishāsura demon. [ ଦ—ଏ ଶିବଙ୍କର ବରପୁତ୍ର
(ମହିଷେଶ—ଅନ୍ୟରୂପ) ରମ୍ଭାସୁର ନାମକ ଅସୁର ଶିବଙ୍କ
ତପସ୍ୟାରେ ସନ୍ତୁଷ୍ଟ କରି ଏହି ପୁତ୍ରଲାଭ କରିଥିଲା । ଏ
ଅତ୍ୟନ୍ତ ଦୁର୍ଦ୍ଦାନ୍ତ ହୋଇ ଉଠିବାରୁ ଦେବତାମାନଙ୍କ
ଅନୁରୋଧରେ ହରିହରଙ୍କ ତେଜସମ୍ଭୂତା ଭଗବତୀ ବା ଦୁର୍ଗା
ଏହାକୁ ବଧ କରିଥିଲେ । (ଚଣ୍ଡୀ ପୁରାଣ ୨ୟ ଓ ୩ୟ ଅଧ୍ୟାୟ)
ଏହାର ଚିହ୍ନସ୍ୱରୂପ ବର୍ତ୍ତମାନ ପର୍ଯ୍ୟନ୍ତ ଦୁର୍ଗାଙ୍କ ନିକଟରେ
ଦୁର୍ଗାପୂଜା ସମୟରେ ମହିଷ ବଳି ଦିଆଯାଏ । ] ୨ ।
ସ୍କନ୍ଦଙ୍କଦ୍ୱାରା ନିହତ ଦୈତ୍ୟ—2. A demon killed
by Skanda. [ଉ—ତୁମ୍ଭ ବିନା ମହିଷକୁ ଆନ ଲୋକ
ଦେଖାଇ ନ ପାରଇ ଯମଙ୍କର ଲୋକ । କୃଷ୍ଣସିଂହ.
ମହାଭାରତ. ବନ । ]

ମହିଷାସୁର ମର୍ଦ୍ଦିନୀ—ସଂ. ବି. ସ୍ତ୍ରୀ—ମହିଷ ମର୍ଦ୍ଦିନୀ ( ଦେଖ )
Mahishāsura marddinī Mahisha marddinī (See)

ମହିଷୀ—ସଂ. ବି. ସ୍ତ୍ରୀ ( ମହିଷ + ଈ )—୧ । ସ୍ତ୍ରୀ ମହିଷ; ମାଈ ମଇଁଷି—
Mahishī 1. A she-buffalo. [ ଉ—ବିଶ୍ରାମନ୍ତି ସେହି-
କାଳି,ଜୀବନ ଯିବାର ମୂଳ, ହେଲା ଅଶୁଭ ସ୍ୱପ୍ନ ମହିଷୀ ଯେ ।

ଭଞ୍ଜ. ବୈଦେହୀଶବିଳାସ । ] ୨ । କୃତାଭିଷେକା ରାଜ୍ଞୀ —2. The chief queen of a king; the queen consort. ୩ । ବ୍ୟଭିଚାରିଣୀ ସ୍ତ୍ରୀ—3 An adulteress. ୪ । ବ୍ୟଭିଚାରିଣୀ ସ୍ତ୍ରୀର ଉପାର୍ଜିତ ଧନ —4. Money earned by a woman by adultry. ୫ । ସୈରିନ୍ଧ୍ରୀ—5. A lady's maid (Apte). ୬ । ନିଜର ସ୍ତ୍ରୀର ବ୍ୟଭିଚାର ଲବ୍ଧ ଧନ— 6. Money earned by the prostitution of one's wife (Apte). ୭ । ରାଣୀ—7. A queen in general (Apte).

ମହିଷ୍ଠ—ସ. ବିଣ.ପୁଂ—(ମହତ୍ + ଅତିଶୟାର୍ଥେ ଇଷ୍ଠ)—ଅତିଶୟ ମହତ୍ Mahishtha ବା ବଡ଼—Very great; noblest. (ମହିଷ୍ଠା—ସ୍ତ୍ରୀ)

ମହୀଆଳୀ(ଳ)—ଦେ. (ପଦ୍ୟ) ବି—ଭୂମି; ପୃଥିବୀ—Earth. Mahīāli(la) [ଉ—ଯେ ପୁତ୍ର ପାଣ୍ଡବରୁ ଯେନ ତ ପାଞ୍ଚାଳୀ, ମଣ୍ଡଳେ ନାହିଁ ଇନ୍ଦ୍ରପ୍ରସ୍ଥ ମହୀଆଳ । କୃଷ୍ଣସିଂହ. ମହାଭାରତ ଆଦି ।]

ମହୀ ଇନ୍ଦ୍ର—ଦେ. ବି. (ପଦ୍ୟ) (ସ.ମହୀନ୍ଦ୍ର)—ରାଜା—King. [ଉ— Mahī indra ମାନାତା ନାମେ ମହୀ ଇନ୍ଦ୍ର, ତାର ଭୂମର ମୁଚୁକୁନ୍ଦ । ମହୀନ୍ଦ୍ର महीन्द्र ଜଗନ୍ନାଥ. ଭାଗବତ ।]

ମହୀ(ହି)କ୍ଷିତ—ସ. ବି (ମହୀ+କ୍ଷି ଧାତୁ=ପ୍ରଭୁତ୍ୱ କରିବା+କର୍ତ୍ତୃ.କ୍ୱିପ୍)— Mahī(hi)kshit ଭୂଭୃତ୍; ରାଜା—King. [ଉ—ମାତା (ମହୀକ୍ଷିତ—ଦେଶଜରୂପ) ଚର୍ମ ପୁତ୍ରା ସ୍ୱରୂପା ମହୀକ୍ଷିତ । ତା ଠାରେ ପୁତ୍ର ରୂପେ ପିତା ଜନ୍ମ ଜାତ । କୃଷ୍ଣସିଂହ. ମହାଭାରତ. ଆଦି ।]

ମହୀ(ହି)ଗତ—ସ. ବିଣ—୧ । ପୃଥିବୀରେ ପତିତ—1. Fallen to Mahī(hi)gata the ground. ୨ । ଭୂପୃଷ୍ଠରେ ଲଗ୍ନ— 2. Attached to the ground. ୩ । ଭୂମିରେ ଶାୟିତ— 3. Lying on the ground. [ଉ—ଦୁର୍ବେ ହେବା ସଙ୍ଗାତ, ମୁଁ ହେବି ମହୀଗତ ମଦେନ୍ଦ୍ରବନରେ । କବିସୂର୍ଯ୍ୟ. ସଙ୍ଗୀତ ।]

ମହୀ(ହି)ଜ—ସ. ବିଣ—(ମହୀ + ଜନ୍ ଧାତୁ+କର୍ତ୍ତୃ.ଅ)—ଭୂମିରୁ ଜାତ Mahī(hi)ja ବା ଉତ୍ପନ୍ନ—Produced or born from (ମହୀଜା—ସ୍ତ୍ରୀ) the earth. ସ. ବି—୧ । ମଙ୍ଗଳଗ୍ରହ— 1. The planet Mars. ୨ । ନରକାସୁର— 2. Name of a demon. ୩ । ଆର୍ଦ୍ରକ; ଅଦା— (ହି. ଶ)—3. Ginger.

ମହୀ(ହି)ଦେବ—ସ. ବି—ବ୍ରାହ୍ମଣ— Brāhmana. [ଉ—ଗୃହି Mahī(hi)deba ମହୀଦେବ ବସ୍ତ୍ରରେ ପଙ୍କିତା ବହୁ ପୁଲକିତ ଗାତ୍ରକୁ । ଭଞ୍ଜ. ଲାବଣ୍ୟବତୀ ।]

ମହୀଧର—ସ. ବି—(ମହୀ+ଧୃ ଧାତୁ+କର୍ତ୍ତୃ. ଅ)—୧ । ପର୍ବତ— Mahīdhara 1. Mountain. ୨ । ଶେଷ ନାଗ; ବାସୁକି- (ମହୀଧ୍ର; ମହୀଧୃକ—ଅନ୍ୟରୂପ) 2. The great mythological serpent, holding up the universe on his hood.

ମହୀନ୍ଦ୍ର—ସ. ବି—(ମହୀ+ଇନ୍ଦ୍ର)—୧ । ମହୀପ (ଦେଖ)—1. Mahīndra Mahīpa (See) ୨ । ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତି ବିଶେଷ—2. A monkey-chief described in the Rāmāyana [ଉ—ବିକାଶି ମହୀନ୍ଦ୍ର ଶିଖ ମହୀନ୍ଦ୍ରେ ଚପଳ । ଭଞ୍ଜ. ବୈଦେହୀଶବିଳାସ ।]

ମହୀନ୍ଦ୍ର ବାହାଦୁର—ଦେ. ବି—ଓଡ଼ିଶା ଗଡ଼ଜାତ ଢେଙ୍କାନାଳ ରାଜ- Mahīndra bāhādur ବଂଶର ଉପାଧି—A family title of the Ruling Chief of Dhenkānāl State. [ଉ—ତ୍ରିଲୋଚନ ନାମେ ଖ୍ୟାତ ଯେ; ରାଜ ମହୀନ୍ଦ୍ର ବାହାଦୁର ସବାର ମଧ୍ୟେ ବଡ଼ତ ଯେ । ବ୍ରଜନାଥ. ସମର ତରଙ୍ଗ । ] [ ଦ୍ର—ଏ ଉପାଧି ପୁଣ୍ଣାର ଗଜପତି ମହାରାଜା ଢେଙ୍କାନାଳର ରାଜା ତ୍ରିଲୋଚନ (୧୭୬୪— ୧୭୯୮)ଙ୍କୁ ତାଙ୍କର ଶୌର୍ଯ୍ୟ ଓ ଗୁଣରେ ମୁଗ୍ଧ ହୋଇ ଦେଇଥିଲେ । ସେହି କାଳରୁ ଢେଙ୍କାନାଳର ରାଜାମାନେ ବଂଶାନୁକ୍ରମେ ଏ ଉପାଧିରେ ଭୂଷିତ ହୋଇ ଆସୁଅଛନ୍ତି ।]

ମହୀ(ହି)ପ—ସ. ବି—(ମହୀ+ପା ଧାତୁ+କର୍ତ୍ତୃ. ଅ)—ନୃପତି; ଭୂପତି; Mahī(hi)pa ରାଜା—King. [ମହୀ(ହି)ପତି, ମହୀ(ହି)ପାଳ—ଅନ୍ୟରୂପ]

ମହୀ(ହି)ପ୍ରାଚୀର—ସ. ବି—ସମୁଦ୍ର—The sea. Mahī(hi) prāchīra

ମହୀ(ହି)ମଣ୍ଡନ—ସ. ବିଣ. ପୁଂ—ଯେଉଁ ବ୍ୟକ୍ତି ଆପଣାର ଅଙ୍ଗଶୋଭା Mahī (hi) mandana ଦ୍ୱାରା ପୃଥିବୀକୁ ବା ଭୂପୃଷ୍ଠକୁ ମଣ୍ଡିତ ବା (ମହୀମଣ୍ଡନା—ସ୍ତ୍ରୀ) ଶୋଭିତ କରେ—One who adorns the earth place with his beauty

ମହୀମହିଳା—ସ. ବି—ପୃଥିବୀର ସାକଲ୍ୟ ସ୍ତ୍ରୀ—All the women Mahīma(hi)lā of the world. [ଉ—ମହୀମହିଳା ବଚନ୍ତୁ ଭଳକ, ମହିମା ମହିମ କରେ ତ୍ରୈଲୋକ୍ୟ— ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]

ମହୀୟାନ୍—ସ. ବିଣ. ପୁଂ (ମହତ୍+ଅତିଶୟାର୍ଥେ ଈୟସ୍; ୧ମା ୧ବ)— Mahīyān ଅତି ମହତ୍—Very great or noble. (ମହୀୟସୀ—ସ୍ତ୍ରୀ)

ମହୀଯ୍ୟମାନ—ସ.ବିଣ. ପୁଂ (ମହ୍ ଧାତୁରୁ ମହୀୟ ନାମ ଧାତୁ+କର୍ତ୍ତୃ. Mahījyamāna ଆନ)—୧ । ପୂଜ୍ୟ—1. Fit to be worshipped. ୨ । ପୂଜ୍ୟମାନ—2. Being (ମହୀଯ୍ୟମାନା—ସ୍ତ୍ରୀ) worshipped

ମହୀ(ହି)ରାବଣ—ଦେ. ବି—ଅସୁରବିଶେଷ—Name of a demon. Mahī(hi)rābana [ ଦ୍ର—ଏ ପାତାଳରେ ବାସ କରୁଥିଲା । महिरावण ଲକ୍ଷ୍ମଣ ଇନ୍ଦ୍ରଜିତଙ୍କୁ ମାରିବା ପରେ ଏ ରାମ ଲକ୍ଷ୍ମଣଙ୍କୁ ଘେନିଯାଇ ପାତାଳରେ ରଖିଲା । ପରେ ହନୁମାନ୍ ପାତାଳକୁ ଯାଇ ଏହାକୁ ବଧ କରି ରାମ ଓ ଲକ୍ଷ୍ମଣଙ୍କୁ ଉଦ୍ଧାର କଲେ । ଏ ଚରିତ ବାଲ୍ମୀକି ରାମାୟଣରେ ବା କୌଣସି ସଂସ୍କୃତ ପୁରାଣରେ ନାହିଁ ।

ବଳରାମ ଦାସଙ୍କ ରାମାୟଣ ମତରେ ଏ ଇନ୍ଦ୍ରଜିତର ପୁତ୍ର (ଯଥା;—ଇନ୍ଦ୍ରଜିତ ସୁତ ମହୀରାବଣ ଧୀର, ପାତାଳ

ଭୁବନେ ଅଛେ ସେ ଦଣ୍ଡଧର ) । ଭଞ୍ଜ ବୈଦେହୀଶବିଳାସ ମତରେ ଏ ରାବଣର ପୁତ୍ର ଯଥା; ( ଉ—ବୀଜ୍ୟ ମହୀରାବଣ ନାମର, ବାଶ୍ମେ ମହମ ବସ୍ତୁ ଉପର ।) ହିନ୍ଦି ଶବ୍ଦସାଗରରେ ଏହାଙ୍କୁ ରାବଣର ପୁତ୍ର ବୋଲି ଯାଇଅଛି । ]

ମହୀ(ହି)ରୁହ—ସଂ. ବି (ମହୀ+ରୁହ୍ ଧାତୁ+କର୍ତ୍ତୃ.ଅ )—ବୃକ୍ଷ; ଗଛ—
Mahī(hi)ruha Tree.

ମହୀ(ହି)ଲତା—ସଂ. ବି ( ମହୀ+ଲତା; ରୂପକ )—ଜିଆ; କେଞ୍ଚୁଆ—
Mahī(hi)latā Earthworm.

ମହୀଶ—ସଂ. ବି ( ୬ଷ୍ଠୀ ତତ୍; ମହୀ+ଈଶ)—ଭୂପତି; ରାଜା—
Mahīśa King.

ମହୀଶୂର—ସଂ. ବି—ମହୀଶୂର୍ ( ଦେଖ )
Mahīśūra Mahiśūr ( See )

ମହୀସାଇଁ—ଦେ. ବି. ( ସଂ. ମହୀସ୍ୱାମୀ )—ରାଜା; ମହୀପତି—King.
Mahīsāiñ [ ଉ—ତପସ୍ୟା କଲେ ଲୋକ ହୁଏ ମହୀସାଇଁ—
ମହীপতি **महीसाइँ** କୃଷ୍ଣସିଂହ ମହାଭାରତ. ବନ । ]

ମହୀ(ହି)ସୁତ—ସଂ. ବି. ପୁଂ (୬ଷ୍ଠୀ ତତ୍ )—୧ । ମଙ୍ଗଳଗ୍ରହ—1. The
Mahī(hi)suta planet Mars. ୨ । ନରକାସୁର—
2. Name of a demon.

ମହୀ(ହି)ସୁତା—ସଂ. ବି. ସ୍ତ୍ରୀ—(ଏ ପୃଥିବୀପୃଷ୍ଠରୁ ମିଳିଥିବାରୁ)—ସୀତା-
Mahī(hi,sutā ( ମହୀଜା—ଅନ୍ୟରୂପ ) A name of Sitā

ମହୁ—ଦେ. ବି ( ସଂ. ମଧୁ; ପ୍ରା. ମହୁ )—୧ । ମଧୁ—1 Honey.
Mahu [ ଦ୍ର—ମଧୁ ଶବ୍ଦରେ ଟୀକା ଦେଖ । ] ୨ । ପୁଷ୍ପର ମଧୁ;
মউ, মৌ ମକରନ୍ଦ—2. The sweet juice found inside
**मधु, शरद** the flowers. ୩ । ମହୁମାଛି—3. Bee.
ମ. ମଧ୍

ମହୁଆ—ଦେ. ବିଣ—ମହୁପରି ମିଠା—Sweet like honey
Mahuā মহুয়া **महुआ** ବି—୧ । ମହୁଲ—1. Bassia Latifolia. ୨ । ଗୋରୁଙ୍କର ଏକପ୍ରକାର ଚର୍ମରୋଗ—2. A kind of skin disease of cattle. [ ଦ୍ର—ଏ ରୋଗ ସାଧାରଣତଃ ଗୋରୁ ବା ମଇଁଷି ବାଛୁରୀଙ୍କ ଦେହରେ ମଲା ମଲା ହୋଇ ଦେଖାଯାଏ । ]

ମହୁଆ ଆଳୁ—ଦେ. ବି ( ସଂ. ମଧ୍ୱାଳୁ )—ମଧୁମୂଳ ( ଦେଖ )—
Mahuā ālu মউআলু Madhumūla ( See )
**मिठाआलु** ( ମହୁଆଳୁ—ଅନ୍ୟରୂପ )

ମହୁଆ ମଦ—ଦେ. ବି—ମହୁଲ ମଦ ( ଦେଖ )
Mahuā mada Mahula mada ( See )

ମହୁଆ ମାରିବା—ଦେ. ବି—( ବାଛୁରୀ ଦେହରେ ) ମହୁଆ ରୋଗ
Mahuā māribā ପ୍ରକାଶ ପାଇବା—Appearance of Mahuā disease ( in the body of calves ),

ମହୁକ—ଦେ. ବି. ( ସଂ ମଧୁକ )—ଏକପ୍ରକାର ମିଠା ଶିମ୍ବ—
Mohuka A kind of sweet bean.
( ମହୁକାଙ୍କ—ଅନ୍ୟରୂପ )

ମହୁକା—ଦେ. ବି ( ସଂ. ମଧୁକ )—୧ । ଗୁଳ୍ମ ବିଶେଷ—1. A kind
Mahukā of shrub. ୨ । ମହୁକ (ଦେଖ)—2. Mahuka ( See ) ୩ । ମଉକା ( ଦେଖ )—3. Maukā
অতি মধুর ( See ) ବିଣ—ମହୁପରି ଅତିରିକ୍ତ ମିଷ୍ଟ ସ୍ୱାଦବିଶିଷ୍ଟ—
**बहुत मिठा** Excessively sweet like honey. ପ୍ରାଦେ. ( ବାଲେଶ୍ୱର ) ବି—ଶିମ୍ବଜାତୀୟ ବଡ଼ ଓ ମାଂସଳ ଫଳ—A kind of big fleshy fruit of the bean variety. [ ଦ—ଏହା ପରିବାରୂପେ ବ୍ୟବହୃତ ହୁଏ ]

ମହୁକା ଫଳ—ଦେ. ବି—ମହରଡ଼ା (ଦେଖ)
Mahukā phala Mahararḍā (See)

ମହୁକିଆ—ଦେ. ବିଣ.—ମହୁକା (ଦେଖ)
Mahukiā Mahukā (See)

ମହୁଖଣ୍ଡ(ଣ୍ଡା)—ଦେ. ବି—ମଧୁମକ୍ଷିକାସଞ୍ଚିତ ଏକ ପ୍ରକାର କଠିନ ମଧୁ—
Mahu khanḍa(ṇḍā) A kind of congealed honey.
মধুখণ্ড **मधुखण्ड** [ଦ—ଏହା ଗଡ଼ଜାତରେ ମିଳେ ।]

ମହୁ ଘର—ଦେ. ବି—(ସଂ. ମଧୁଚକ୍ର)—ମହୁମାଛିଙ୍କ ଦ୍ୱାରା ପ୍ରସ୍ତୁତ
Mahu gharā ଚକ୍ରାକାର ବସା—Bee hive; honey-
মৌচাক **महुकाछता** comb. [ଉ—ବ୍ରାହ୍ମଣଙ୍କ ଭୁଲରେ ଗନ୍ଧମାଦନରେ, ମହୁଫେଣାଟି ଦେଖିଲି ନୟନରେ । କୃଷ୍ଣସିଂହ. ମହାଭାରତ. ଉଦ୍‌ଯୋଗ ।]
ମହୁ ଚକା, ମହୁଚକ, ମହୁ ଫେଣା, ମହୁବସା }—ଅନ୍ୟରୂପ

ମହୁଛ(ସ)ଞ୍ଚା—ଦେ. ବିଣ—(ସଂ. ମଧୁସଞ୍ଚୟୀ)—୧ । ମଧୁମକ୍ଷିକା ପରି ଯେ
Mahu chha(sa)nchā ଧନ ସଞ୍ଚୟ କରେ—1. Given to
[ମହୁଛ(ସ)ଞ୍ଚୀ—ସ୍ତ୍ରୀ] hoarding wealth like bees
অতি সংচয় **मधूसचयी** ୨ । କୃପଣ—2. Very miserly.
ଦେ. ବି—ମହୁମାଛି ପରି ଅଳ୍ପ ଅଳ୍ପ ପରିମାଣରେ ସଞ୍ଚୟ କରି କରି ବହୁ ଧନ ସଞ୍ଚୟ—Hoarding of money by saving little by little.

ମହୁଛତା(ତ୍ତା)—ଦେ. ବି—(ସଂ. ମଧୁ+ଛତ୍ର)—ମହୁ ଫେଣା—
Mahu chhatā(ttā) মৌচাক Bee hive.

ମହୁଡ଼—ଦେ. ବି—ମଉଡ଼ (ଦେଖ)
Mahurḍa Maurḍa (See)
[ଉ—ମାଳତୀର ସନ୍ଧି ମାରିଗ ମହୁଡ଼, ଟେକିଛି ଅମ୍ବରେ ଟେକି ସ୍ୱର୍ଣ୍ଣ ଚୂଡ଼ । ରାଧାନାଥ. ଚନ୍ଦ୍ରଭାଗା ।]

ମହୁତରଡ଼ା—ଦେ. ବି—ଏକ ଜାତୀୟ ମିଷ୍ଟ ତରଡ଼ା ଫଳ; ମଧୁରତରଡ଼ା
Mahu tararḍā A kind of sweet cucurbitacious
মধুর তরুই fruit. ବିଣ—ଅତିଶୟ ମିଷ୍ଟ—Very sweet

ମହୁ ଟାଟ—ଦେ. ବି.—(ସଂ. ମଧୁଚକ୍ର)—ମହୁଘର (ଦେଖ)
Mahu tāṭa Mahu gharā (See)

ମହୁବାଙ୍କେ(ଙ୍କୋ)ଇ—ଦେ. ବି—ଏକ ପ୍ରକାର ସରୁ ଧାନ—
Mahu bāṇke(ṇko)i A species of fine paddy.

ମହୁ ମାଛି—ଦେ. ବି- (ସଂ. ମଧୁମକ୍ଷିକା)—ମଧୁ ସଂଗ୍ରହ କରି ସଞ୍ଚୟ
Mahu māchhi କରିବା ପକ୍ଷଯୁକ୍ତ କୀଟବିଶେଷ—The bee; apis; the honey bee. [ଦ୍ର—ସାଧାରଣତ ଛଅ

মৌমাছি

**मधुमक्खी**

କାଛର ମହୁ ଓ ମହୁମାଛି ଦେଖାଯାଆନ୍ତି । ଯଥା :—

୧ । ବାଘର—( Apis Dorsata) (ସ. ଛତ୍ରାକ ମଧୁ ବା ଆର୍ଘ୍ୟମଧୁ) ।

ଏମାନେ ଦେଖିବାକୁ ଭଅଁରପରି, ପ୍ରାୟ ଏକଇଞ୍ଚ ଲମ୍ବ । ଏମାନଙ୍କର ନାହୁଡ଼ ଅଛି । ଏମାନଙ୍କର ଫେଣାକୁ ଭାଙ୍ଗିଲେ ଏମାନେ ମନୁଷ୍ୟଙ୍କୁ ବେଢ଼ିଯାଇ

**बडी मधुमक्खी**

ଅତ୍ୟନ୍ତ କଲବଲ କରି ନାହୁଡ଼ରେ ମାରନ୍ତି ଓ ଏମାନଙ୍କ ନାହୁଡ଼ ଆଘାତରେ ମନୁଷ୍ୟର ଦେହ ଗଡ଼ପରି ଫୁଲିଯାଏ; ଦଂଶିତ ସ୍ଥାନରେ ଗୋଟିଏ ଲେଖାଏଁ ନାହୁଡ଼ ପଶି ଯାଇଥାଏ । ଏମାନଙ୍କ ଫେଣା ଅର୍ଦ୍ଧମୁଣିପରି ଚନ୍ଦ୍ରାକୃତି ୨ । ୩ ଫୁଟ ବ୍ୟାସ ବିଶିଷ୍ଟ ହୁଏ । ଏମାନେ ଉଚ୍ଚବୃକ୍ଷର ଶାଖାରେ, କୋଠାର କଡ଼ରେ, ଘରର କୋରଡ଼ରେ, ପର୍ବତ-ଗୁହାର ପ୍ରାନ୍ତରେ, ଦେଉଳର ଛାତରେ ଫେଣା ବାନ୍ଧନ୍ତି, ଏମାନଙ୍କ ମହୁ ନାଲି ଓ ଗାଢ଼ ।

**पीली मधुमक्खी**

୨ । ହେଙ୍ଗୁଳା ମହୁ—(Apis Mellifica) (ସ. ଭ୍ରାମର ମଧୁ)—

ଏମାନେ ଦେଖିବାକୁ ହଳଦିଆ ଓ ବାଘର ମହୁମାଛିପରି ବଡ଼ ଓ ନାହୁଡ଼ଯୁକ୍ତ । ଏମାନଙ୍କ ମହୁ ହଳଦିଆ । ଏମାନେ ମଧ୍ୟ ଉଚ୍ଚବୃକ୍ଷର ଶାଖା ଆଦିରେ ଫେଣା ବାନ୍ଧନ୍ତି । ହୋମିଓପାଥିର ବିଷଜ୍ୱାଳା ନାଶକ ଔଷଧ (Apis Mel) ଏହି ମହୁମାଛିଙ୍କ ମହୁରୁ ପ୍ରସ୍ତୁତ ହୁଏ ।

সাতপুরিয়া

**सातछत्तिया मधुमक्खी**

୩ । ସାତଫେଣିଆ ମହୁ (Apis Indica)—ଏମାନେ ବାଘରଙ୍କଠାରୁ ଛୋଟ ଓ ଏମାନଙ୍କର ନାହୁଡ଼ ଅଛି, କିନ୍ତୁ ଏମାନଙ୍କ ଦଂଶନ ବାଘରଙ୍କ ଦଂଶନପରି କଷ୍ଟପ୍ରଦ ନୁହେଁ । ଏମାନେ ଏକତ୍ର ବହୁଶାଖା (ଦଳ) ଯୁକ୍ତ ଚାକ ପ୍ରସ୍ତୁତ କରନ୍ତି । ଏମାନେ ବୃକ୍ଷ କୋଟରରେ ଓ ଗୁହା ମଧ୍ୟରେ ଫେଣା ବାନ୍ଧନ୍ତି । ଏମାନଙ୍କ ଫେଣାଗୁଡ଼ିକ ବାଘରଙ୍କ ଫେଣା ଅପେକ୍ଷା ଛୋଟ । ଏମାନଙ୍କ ମହୁ ପାଣ୍ଡୁର ଓ ପତଳା ।

୪ । ବଣ୍ଟଣି ମହୁ—

ଏମାନେ ବଣ୍ଟଣା ବା ପଙ୍ଖାପରି ଛୋଟ (ଏକଫୁଟ ବ୍ୟାସରୁ ବେଶୀ ନୁହେଁ ) ଫେଣା ବାନ୍ଧନ୍ତି । ଏମାନେ ସାଧାରଣ ମାଛିପରି ଛୋଟ, ନାହୁଡ଼ ନାହିଁ । ଏମାନଙ୍କ ମହୁ ମଳିନବର୍ଣ୍ଣ ଓ ପତଳା ।

୫ । ଡାଳମହୁ—(ସ. ଦାଳକ ମଧୁ) । ଏମାନେ ସାଧାରଣ ମାଛିଙ୍କଠାରୁ ଛୋଟ; ଗଛର ଛୋଟ ଡାଳ ଗୁଡ଼ପାଖେ ଛୋଟ ଫେଣା ବାନ୍ଧନ୍ତି । ଏମାନଙ୍କର ନାହୁଡ଼ ନାହିଁ । ମହୁ ଈଷତ୍ ନାଲି ଓ ପତଳା ।

ছোট মৌমাছি

**छोटी मधुमक्खी**

୬ । ନକ(କୁ)ଟ ମହୁ—(Apis Florea)—ଏମାନେ ମାଛିଙ୍କଠାରୁ ଅତି କ୍ଷୁଦ୍ର । ଏମାନେ କାନ୍ଥର ଫଣା ମଧ୍ୟରେ ଅତି ପତଳା ଓ ଛୋଟ ଫେଣା କରନ୍ତି । ଏମାନଙ୍କର ନାହୁଡ଼ ନାହିଁ । ଏମାନଙ୍କ ମଧୁ ଅଳ୍ପ ଓ ଅତ୍ୟନ୍ତ ତରଳ ଓ ଥଳା ।

ଆଧୁନିକ ପ୍ରାଣିତତ୍ତ୍ୱବିତ୍ ପଣ୍ଡିତମାନେ ଗବେଷଣା ପୂର୍ବକ ସ୍ଥିର କରିଅଛନ୍ତି ଯେ ଗୋଟିଏ ମହୁମାଛିଦଳରେ ଗୋଟିଏ ମାତ୍ର ରାଣୀ (Queen bee) ଥାଏ । ସେହି ରାଣୀ ଗୁଡ଼ିଏ ଅଣ୍ଡା ପ୍ରସବ କରେ । ଫେଣାରେ ଗୁଡ଼ାଏ ଅଳସୁଆ ଅଣ୍ଡିରା ମାଛି (Drone) ଥାଆନ୍ତି । ସେମାନେ କିଛି କାମ କରନ୍ତି ନାହିଁ । ବାଞ୍ଝ ମାଈମାଛିମାନେହିଁ ମହୁ ସଂଗ୍ରହ କରି ଫେଣା ତିଆରି କରି ସେଥିରେ ମଧୁ ଓ କେଶର ସଞ୍ଚୟ କରନ୍ତି । ଫେଣାର କୋଠରିମାନ ସମଷଡ଼ଭୁଜ, କେତେକ କୋଠରିରେ ମହୁମାଛିଙ୍କ ଡିମ୍ବମାନ ରହେ; କେତେକରେ ତରଳ ମହୁ ପୂର୍ଣ୍ଣ ହୋଇଥାଏ; କେତେକରେ ଛୁଆ ମାଛିମାନଙ୍କ ଖାଇବାପାଇଁ ହଳଦିଆ କେଶର ବା ପୁଷ୍ପପରାଗ ସଞ୍ଚିତ ହୋଇଥାଏ । ମହୁଫେଣାର କୋଠରିମାନଙ୍କ କାନ୍ଥମାନ ଏକପ୍ରକାର ଅଠାଳିଆ ପଦାର୍ଥରେ ଗଢ଼ା ହୋଇଥାଏ । ସେହି ଅଠାଳିଆ ପଦାର୍ଥକୁ ମହଣ କହନ୍ତି । ମହୁମାଛିମାନେ ବହୁଦୂରରୁ ଫୁଲରୁ ମଧୁ ଓ କେଶର ସଂଗ୍ରହ କରି ଫେଣାକୁ ଆଣନ୍ତି । ଆଜିକାଲି ଲୋକେ ମହୁମାଛିଙ୍କୁ ଆଣି ପୋଷି ମହୁ ଆମଦାନି କରୁଅଛନ୍ତି । ରାଣୀମାଛିକୁ ବାନ୍ଧି ରଖିଲେ ଅନ୍ୟମାଛିମାନେ ସେହି ସ୍ଥାନକୁ ଉଡ଼ି ଆସି ଫେଣା ବାନ୍ଧନ୍ତି । ]

୨ । ଏକ ପ୍ରକାର ନାଲି ସରୁଧାନ—2. A kind of fine red-coloured pady.

**ମହୁ ମାରିବା**—ଦେ. କ୍ରି—ମହୁମାଛିମାନଙ୍କୁ ଫେଣାରୁ ବିତାଡ଼ିତ କରି Mahu māribā ମୌଚକରେ ମଧୁମକ୍ଷିକାଙ୍କ ସଞ୍ଚିତ ମଧୁକୁ ସଂଗ୍ରହ କରିବା—To gather honey from bee hives by scaring away the bees. [ ଦ୍ର—ଲୋକେ ଖଡ଼ରେ ଧୂଆଁ ଆଦି ପ୍ରୟୋଗ କରି ମହୁଫେଣାରୁ ମହୁମାଛିମାନଙ୍କୁ ହୁରୁଡ଼ାଇ ଦିଅନ୍ତି ଓ ଉକ୍ତ ଫେଣାକୁ ଭାଙ୍ଗି ଆଣି ତହିଁରେ ଥିବା ମହୁଘରମାନଙ୍କରୁ ମହୁ ନିଗାଡ଼ି ନିଅନ୍ତି ଓ ମହୁଘରର କାନ୍ଥରେ ଥିବା ବସ୍ତୁକୁ ମହଣ କହନ୍ତି । ]

মধু সংগ্রহ করা

**मधु निकालना, मधु छुडाना**

**ମହୁର**—ଦେ. ବି ( ସ. ମଧୁର )—କଦଳୀ, ବାଇଗଣ, ଆଳୁ, ସାରୁ ଆଦି ନାନାପ୍ରକାର ପରିବା ମିଶି ରନ୍ଧା ହୋଇଥିବା ଘାଣ୍ଟିଆ ତରକାରି—A hodgepodge or curry prepared by cooking many sorts of vegetables. [ ଉ—ଯହିଁ କରଣ ମାଂସ କଦଳୀ ମହୁର । ଦିଅନ୍ତେ ହିଁକେ କରି ଦିଅନ୍ତି ଆହାର—କୃଷ୍ଣସିଂହ. ମହାଭାରତ. ସଭା । ] [ ଦ୍ର—ଯେଉଁ ମହୁରରେ ଆମିଷ ( ମତ୍ସ୍ୟ ବା ମାଂସ ) ମିଶା ଯାଇଥାଏ ତାହାକୁ ଅମିଷ( ଆଇଁଷ )ମହୁର କହନ୍ତି ଓ ଯହିଁରେ ଅମିଷ ଦିଆ ହୋଇ ନ ଥାଏ ତାହାକୁ ନିରାମିଷ (ନିରେଇଁଷ) ମହୁର କହନ୍ତି ।

Mahura

ঘণ্ট

**सबनेजा, सतंजा**

ଯେଉଁ ମହୁରରେ ପଡ଼ିଥିବା ମାଛରୁ କଣ୍ଟାଯାକ ହିବାକୁ ଛଡ଼ା ହୋଇ କଢ଼ାଯାଇ କେବଳ କୋମଳ ଅଂଶଯାକ ମିଶାଯାଇ ଥାଏ ତାହାକୁ ଛଡ଼ା ମହୁର କୁହାଯାଏ । ]

**ମହୁର ବେଶର**—ଦେ. ବି ( ସହଚର ଶବ୍ଦ )—ମହୁର ( ନାନାପ୍ରକାର
Mahura beśara ପରିବା ସଙ୍ଗେ ମାଛ ମିଶି ରନ୍ଧା ଯାଇଥିବା
ଘଣ୍ଟ ଚଡ଼ଚଡ଼ୀ ତରକାରି ) ଓ ବେଶର (ମାଛରେ ବେସର ଓ ସାମାନ୍ୟ
तरकारी କେତେକ ପରିବା ମିଶାଯାଇ ରନ୍ଧା ଯାଇଥିବା ତରକାରି)–
Curry made of vegetables mixed with fish and curry made of fish seasoned with pasted rye.

**ମହୁରା**—ଦେ. ବି—ଅତିବିଷା (ଦେଖ)—Atibishā ( See )
Mahurā আতিষ, মিঠাবিষ **महुरा**

**ମହୁରଡ଼ି(ଳି)**—ଦେ. ବି (ସଂ. ମଟୁରଳିକା)—ଏକପ୍ରକାର ଶ୍ରେଷ୍ଠ ମାଛ—
Mahurāṛi(ḷi) A kind of small fresh water fish;
মরুলা **डेरवा, कंजली** Aspidoparia Marar,

**ମହୁରା ରୁପା**—ଦେ. ବି ( ସଂ. ମୃତ+ରୌପ୍ୟ )—କଳାରୁପା; ଯେଉଁ
Mahurā rūpā ରୁପାରେ ଖପରର ବେଶି ଖାଦ ମିଶିଥିବାରୁ
মরারূপা **कालारूपा** ତାହା ବ୍ୟବହାର କଲେ କଳା ହୋଇଯାଏ ଓ
**टलहाचांदी** ପୋଡ଼ିଲେ ମଧ୍ୟ କଳା ହୋଇଯାଏ—Mixed silver; silver mixed with zinc; impure silver which turns black after use.

**ମହୁରିଆ**—ଦେ. ବି (ସଂ. ମଟୁର)—୧ । ଯେଉଁ ଲୋକ ମହୁରି ବଜାଏ—
Mahuriā 1. One who blows the clorion; a
সানাইদার bugler. ୨ । ପାଣଙ୍କ ପରି ନୀଚ ଜାତିବିଶେଷ —
**पीपहिवाला** 2. A low caste of pipers. [ଦ୍ର—ଏମାନେ କେବଳ ମହୁରି ବଜାନ୍ତି; ଢୋଲ ବଜାନ୍ତି ନାହିଁ । ]

**ମହୁରି**—ଦେ. ବି ( ସଂ. ମଧୁର; ଏହା ମଧୁର ଶବ୍ଦ କରୁଥିବାରୁ )—
Mahurī ୧ । ମୁହଁରେ ଫୁଙ୍କି ବଜାଇବା ଉପଯୋଗୀ ସ୍ୱରଯୁକ୍ତ
সানাই ଏକପ୍ରକାର ତୁରୀ; ସେଁକାଳୀ—1. A kind of
**पीपही** clarionet; clorion; a bugle. [ଦ୍ର—ତେଲଙ୍ଗୀ ବାଜାରେ ଦୁଇ ପ୍ରକାର ମହୁରି ବାଜେ; ଯଥା—୧. ଗୀତ ମହୁରି ( ବଂ. ଗାନ୍ ସାନାଇ )—ଏହା ଗୀତର ସ୍ୱର ଅନୁସାରେ ଫୁଙ୍କାଯାଏ । ୨. ସ୍ୱର ମହୁରି (ବଂ. ପେଁ ସାନାଇ)—ଏହା କେବଳ ଗୋଟିଏ ସ୍ୱରରେ ଅନବରତ ବାଜୁଥାଏ । ]
୨ । ( ସଂ. ମଧୁରିକା ) ପାନମହୁରି—2. Fennel. ● । ପାଣି ବୋହିଯିବାର ନଳା—3. A drain.

**ମହୁଲ୍**—ପ୍ରାଦେ. ( ସମ୍ବଲପୁର ) ବି—ମହୁଲ ( ଦେଖ )
Mahul Mahula ( See )

**ମହୁଲ୍ କୁଁଚି**—ଦେ. ବି—ମହୁଲ ଫୁଲର ସଙ୍କୁଚିତ କଢ଼—The
Mahul kuñchi contracted bud of the Mahuā
**महुएका कुञ्चियाना** ( ମହୁଲ୍ କୁଞ୍ଚି—ଅନ୍ୟରୂପ ) flower.

**ମହୁଲ**—ଦେ. ବି ( ସଂ. ମଟୁକ; ପ୍ରା. ମହୁଅ )—ବକୁଳାଦି ବର୍ଗର
Mahula ଅରଣ୍ୟ ତରୁ—Mahua; Bassia
ସଂ. ମହାଦ୍ରୁମ, ମାଧକ, ମଧୁଗ, Latifolia. [ ଦ୍ର—ଏହା ବକୁଳାଦି
ବାନପ୍ରସ୍ଥ, ତୀକ୍ଷ୍ଣସାର, ମଟୁକ, ବର୍ଗର ଅରଣ୍ୟ ତରୁ । ଏଥିର
ଗୁଡ଼ପୁଷ୍ପ, ମଧୁକ, ମଧୁଷ୍ଠୀଳ, ପତ୍ର ୬।୭ ଅଙ୍ଗୁଳ ଚଉଡ଼ା ଓ
ମଧୁସ୍ରବା, ମଧୁପୁଷ୍ପ, ରୋଧ୍ରପୁଷ୍ପ, ଦୁଇଗଣ୍ଡେ ପର୍ଯ୍ୟନ୍ତ ଲମ୍ବ ଓ ଏଥିର
মউল, মহুয়া, মৌল ଦୁଇ ମୁଣ୍ଡ ଗୋଜିଆ । କେବଳ ପଞ୍ଜାବ
**महुआ, महुवा** ଛଡ଼ା ଭାରତରେ ଅନ୍ୟତ୍ର ଏହାର ଗଛ
ତେ. ପିନ୍ନା, ଇପ୍ପାପିନ୍ନା ବନ୍ୟ ଓ ପାହାଡ଼ିଆ ସ୍ଥାନରେ ଜନ୍ମେ ।
ତା. କଟ୍ଟଇଲିପୁ ଏ ଗଛ ୩୦।୪୦ ହାତ ଉଚ୍ଚ ହୁଏ ଓ
କୋଲ୍ଲଭାଷା-ମଦକୁମ ଡାଳମାନ ଛଡା ପରି ଗଛର ଚାରି-
ଗୁ. ମହୁଡ଼ୋ ପାଖେ ବିସ୍ତୃତ ହୁଏ । ଗଛ ୨୦।୨୫
ମ. ମୋହାଗ୍ ବର୍ଷରେ ଫୁଲ ଫଳ ଧରେ ଓ ଶହେ
ଫା. ଚକାଂ ବର୍ଷ ପର୍ଯ୍ୟନ୍ତ ଗୋଟିଏ ଗଛ ଫୁଲ ଓ ଫଳ ଧରେ । ଏ ଗଛର ପତ୍ର ଫଗୁଣ ଓ ଚୈତ୍ରରେ ଝଡ଼ିପଡ଼େ । ପତ୍ର ଝଡ଼ିବା ପରେ ଡାଳମାନଙ୍କ ଅଗରେ କଢ଼ ଧରେ । ଏ କଢ଼ମାନ ଖୋଲି ଯାଇ ବସନ୍ତକାଳରେ ଭିତରରେ କସି ପରି ବସ୍ତୁ ଥିବା ଫିକା ନାଲି ବା ଈଷତ୍ ରଙ୍ଗର ଫୁଲ ଫୁଟେ । ଏ ଗଛରୁ ଫୁଲ ୨୦।୨୨ ଦିନ ପର୍ଯ୍ୟନ୍ତ ଝଡ଼େ । ଏ ଫୁଲରେ ଶତକଡ଼ା ●୦ ଅଂଶ ମିଠା ଥାଏ । ଏ ଫଳକୁ ବନ୍ୟ ଓ ଗୃହପାଳିତ ପଶୁ, ପକ୍ଷୀ ଓ ମନୁଷ୍ୟମାନେ ଖୁବ୍ ଆଦର ସହକାରେ ଖାଆନ୍ତି । ଏ ଫୁଲ ବହୁତ ଦିନ ଅବିକୃତ ଅବସ୍ଥାରେ ରହେ । ଲୋକେ ଏହାକୁ ବାଟି କରି ଚୁଡ଼ା ବା ଅଟା ମିଶାଇ ପିଠା କରନ୍ତି; ମହୁଲକୁ ଭାଜି କରି ମଧ୍ୟ ଖାଆନ୍ତି ଏବଂ ଏଥିରୁ ଗଡ଼ଜାତର ଲୋକେ ଏକପ୍ରକାର ମଦ ତିଆରି କରନ୍ତି । ଏ ମଦର ସଂସ୍କୃତ ନାମ ମାଧ୍ୱୀ ଓ ଦେଶୀ ନାମ ମହୁଲି । ଭାଲୁମାନେ ଏହି ଫୁଲ ଖାଇବାକୁ ଖୁବ୍ ସୁଖ ପାଆନ୍ତି । ମହୁଲର ଫଳ ଟୋଲି ପରି ଓ ତହିଁ ଭିତରେ ଗୋଟିଏ ମଞ୍ଜି ଥାଏ । ମହୁଲର ମଞ୍ଜିରୁ ଏକପ୍ରକାର ତେଲ ବାହାରେ. ଏହା ଦେଖିବାକୁ ଘିଅ ପରି ( Mahua butter ) । ଏ ତେଲକୁ ମହାଜନମାନେ ଘିଅରେ ମିଶାନ୍ତି । ଏହାର କାଠ ଖଦିର ବର୍ଣ୍ଣ, କିନ୍ତୁ ମାଟି ଏ କାଠକୁ ଶୀଘ୍ର ଖାଇଯାଏ । ବୈଦ୍ୟକ ମତରେ ମହୁଲ ଫୁଲ ମଧୁର, ଶୀତଳ, ଧାତୁବର୍ଦ୍ଧକ, ଦାହ, ପିତ୍ତ ଓ ବାତ ନାଶକ, ହୃଦ୍ୟ । ମହୁଲ ଫଳ ଶୀତଳ, ଶୁକ୍ରଜନକ, ଧାତୁ ଓ ବଳବର୍ଦ୍ଧକ ଓ ବାତ, ପିତ୍ତ, ତୃଷା, ଦାହ, ଶ୍ୱାସ,କ୍ଷୟ ଆଦି ପ୍ରଶମକ । ଏଥିର ଛାଲି ରକ୍ତପିତ୍ତନାଶକ ଓ ବ୍ରଣ ଶୋଧକ । ଏଥିର ତୈଳ କଫପିତ୍ତ ଓ ଦାହନାଶକ ଓ ଭୂତବାଧା ନିବାରକ । ଆଉ ଏକପ୍ରକାର ମହୁଆ ଗଛ ପାଣିରେ ଉଠେ । ତହିଁର ସଂ. ନାମ; ଧୂମକଳ । ]

**ମହୁଲ ଗୁଡ଼**—ଦେ. ବି—ମହୁଲ ଫୁଲକୁ କୁଟି ତାକୁ ପାଣିରେ ସିଝାଇ
Mahula guṛa ସେହି ସିଝା ପାଣିକୁ ନିଆଁରେ ବସାଇଲେ
মহুযার গুড় ତହିଁରୁ ଯେଉଁ ଗୁଡ଼ ପ୍ରସ୍ତୁତ ହୁଏ—The molas-
**महुआ गूड** ses prepared for Mahwa by boiling and drying up the solution of the pasted flowers.

**ମହୁଲ ଗୁଣ୍ଡି**—ପ୍ରାଦେ. (ସମ୍ବଲପୁର) ବି—ଗୁଣ୍ଡି ଖିଆ ( ଦେଖ )
Mahula guṇḍi Guṇḍi khiā ( See )

ମହୁଲ ଫାଶ(ଶୁ)—ପ୍ରାଦେ. (ଗଡ଼ଜାତ) ବ—ମହୁଲରୁ ମଦ ବାହାରକା Mahula phāsa(su) ପରେ ରହୁଥିବା ସିଠା—The thick dreg left after distilling Mahwa liquor. [ଦ୍ର—ଏ ସିଠା ଖଡ଼ ରୂପେ ବ୍ୟବହୃତ ହୁଏ ।]

ମହୁଲ ମଦ—ଦେ. ବ (ସ. ମଧୂକ ମଦ୍ୟ; ସ. ମାଧ୍ବୀ)—ମହୁଲ ଫୁଲକୁ Mahula mada ପାଣିରେ ସଢ଼ାଇ ତାହାକୁ ସିଝାଇ ସେଥିରୁ (ମହୁଲି—ଅନ୍ୟରୂପ) ଅର୍କ ରୂପେ ବାହାର କରାଯିବା ମଦ— ମହୁଆ ମଦ Wine destilled from Mahwa महुआ मद, ठर्रा flowers.

ମହୁଲ ଶୀତ—ପ୍ରାଦେ. (ଗଡ଼ଜାତ) ବ—ଫାଲ୍ଗୁନ ଓ ଚୈତ୍ର ମାସର Mahula sita ଶେଷରାତ୍ରିରେ ଅନୁଭୂତ ସାମାନ୍ୟ ବା ଅଳ୍ପ (ମହୁଲ ଜାଡ଼—ଅନ୍ୟରୂପ) ଶୀତ—The mild cold felt during the latter part of the nights of the months of Falguna and Chaitra.

ମହୁଲା—ଦେ. ବ—ପକ୍ଷିବିଶେଷ— Mahulā A kind of bird.

ମହୂଷଧ(ଧୀ, ଦ, ଦୀ)—ଗ୍ରା. ବ. ( ସ. ମହୌଷଧ )—୧ । ମହୌଷଧ; Mahushadha(dhi, da, di) ଔଷଧ—1. Medicine. ୨ । ଜଡ଼ିବୁଟି—2. Herb.

ମହୁ ସିଠା—ଦେ. ବ. ( ସ. ମଟ୍ଟୁ; ମଧୁଚ୍ଛିଷ୍ଟ )—ମହମ— Mahu sithā ମୋମ मोम Beeswax.

ମହେଚ୍ଛ—ସ. ଣ. ପୁଂ (ବହୁବ୍ରୀହି; ମହତ୍+ଇଚ୍ଛା)— Mahechchha ଉଦାରସ୍ୱଭାବ; ମହାମନାଃ ମହାଶୟ— (ମହେଚ୍ଛା—ସ୍ତ୍ରୀ) Magnanimous; noble-minded.

ମହେଞ୍ଜୋଦାରୁ—ଦେ. ବ. (ନାମ)—ପଞ୍ଜାବର ସ୍ଥାନ ବିଶେଷ— Mahenjodāru Name of a place in the Punjab. ମହେଞ୍ଜୋଦାରୁ महेनजा दारु [ଦ୍ର—ଏଠାରେ ୫ହଜାର ବର୍ଷ ତଳର ଭାରତ ସଭ୍ୟତାର ନିଦର୍ଶନ ଭୂଗର୍ଭରୁ ମିଳିଅଛି ।]

ମହେନ୍ଦ୍ର—ଦେ. ବ. (ମହାନ୍+ଇନ୍ଦ୍ର; କର୍ମଧାରୟ)—୧ । ଦେବରାଜ; Mahendra ଇନ୍ଦ୍ର—1. Indra; the king of Gods. ୨ । ବିଷ୍ଣୁ—2. Bishnu. ୩ । ଓଡ଼ିଶାର ଦକ୍ଷିଣରେ ଗଞ୍ଜାମ ଜିଲ୍ଲାରେ ଥିବା ପର୍ବତଶ୍ରେଣୀ—3. Name of a range of mountains in Ganjām (South of Orissa). [ଦ୍ର—ଗୋଦାବରୀ ନିକଟସ୍ଥ ପୂର୍ବଘାଟ ପର୍ବତମାଳାକୁ ଏବଂ ଗଞ୍ଜାମ ନିକଟସ୍ଥ ପାହାଡ଼କୁ ବର୍ତ୍ତମାନ ମହେନ୍ଦ୍ର ବୋଲିଯାଏ । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।

ଏ ପର୍ବତଶ୍ରେଣୀ ଗଞ୍ଜାମର ଉତ୍ତର ସରକାରଠାରୁ ଗଣ୍ଡୱାନା ପର୍ଯ୍ୟନ୍ତ ବିସ୍ତୃତ ଓ ଐତିହାସିକ ଉତ୍କଳରେ ଏ ସର୍ବୋଚ୍ଚ ପର୍ବତ । ଏହାର ଉଚ୍ଚତା ସମୁଦ୍ରପୃଷ୍ଠରୁ ପ୍ରାୟ ଏକ ମାଇଲ ।

କଥିତ ଅଛି ଏହିଠାରେ ପରଶୁରାମ ତପସ୍ୟା କରୁଥିଲେ ଏବଂ ପାଣ୍ଡବମାନେ ବନବାସ ସମୟରେ ରହିଥିଲେ । ଏହି ପର୍ବତରେ ଅନେକ ଶୃଙ୍ଗକ ପକ୍ଷୀ ଦେଖା ଯାଆନ୍ତି । ଏହା ମଞ୍ଜୁଷା ନାମକ ଜମିଦାରୀ ରାଜ୍ୟର ଅନ୍ତର୍ଗତ; ଏହା ପୌରାଣିକ ସପ୍ତକୁଳାଚଳରୁ ଏକତମ ।] ୪ । ଅଶୋକଙ୍କର ପୁତ୍ରମାନଙ୍କ ମଧ୍ୟରୁ ଜଣେ—4. Name of a son of Asoka. [ଦ୍ର—ଏ ବୌଦ୍ଧ ଧର୍ମ ପ୍ରଚାର କରିବା ନିମନ୍ତେ ତାଙ୍କ ଭଗିନୀ ସଂଘମିତ୍ରାଙ୍କ ସହିତ ସିଂହଳକୁ ଯାଇଥିଲେ ।] ଦେ. ବ ପୁଂ. ଲୋକଙ୍କୁ ଦିଆଯିବା ନାମ—A name given to males.

ମହେନ୍ଦ୍ର କଦଳୀ—ସ. ବ—ଏକ ପ୍ରକାର ବନ୍ୟ କଦଳୀ—A kind Mahendra kadali of plantain growing wild.

ମହେନ୍ଦ୍ର ଗିରି—ସ. ବ—ମହେନ୍ଦ୍ର ୩ ( ଦେଖ ) Mahendra giri Mahendra 3 ( See )

ମହେନ୍ଦ୍ର ଚାପ—ସ. ବ (ଷଷ୍ଠୀ ତତ୍)—ଇନ୍ଦ୍ର ଧନୁ— Mahendra chāpa Rainbow.

ମହେନ୍ଦ୍ର ନଗରୀ—ସ. ବ—ଇନ୍ଦ୍ରଙ୍କ ନଗରୀ; ଅମରାବତୀ—The mytho-Mahendra nagari logical city of Indra in heaven. (ମହେନ୍ଦ୍ରପୁରୀ—ଅନ୍ୟରୂପ)

ମହେନ୍ଦ୍ର ବାରୁଣୀ—ସ. ବ—ବଡ଼ ମହାକାଳ ଲତା ଓ ଫଳ— Mahendra bāruni A kind of big Mahākāla creeper and its fruit; Trichosanthes Palmata. [ ଦ୍ର—ମହାକାଳ ତଳେ ଟୀକା ଦ୍ରଷ୍ଟବ୍ୟ । ]

ମହେନ୍ଦ୍ରଲାଲ ସରକାର—ଦେ. ବ ( ନାମ )—କଲିକତାର ପ୍ରଧାନ Mahendralāl sarakāra ଦେଶହିତୈଷୀ ସ୍ୱର୍ଗୀୟ ଡାକ୍ତର ଓ ବିଜ୍ଞାନାଚାର୍ଯ୍ୟ—Name of a famous doctor and scientist of Calcutta. [ଦ୍ର—ଏ ଖ୍ରୀ୧୮୩୩ ସାଲରେ ଜାତ ହୋଇଥିଲେ ଓ ୧୯୦୪ ରେ ପ୍ରାଣତ୍ୟାଗ କରିଥିଲେ । ଏହାଙ୍କର ପୂର୍ଣ୍ଣନାମ ଡାକ୍ତର ମହେନ୍ଦ୍ରଲାଲ ସରକାର । ଏ ପାଶ୍ଚାତ୍ୟ ଚିକିତ୍ସା ବିଦ୍ୟାଧ୍ୟୟନ କରି ସର୍ବୋଚ୍ଚ ଏମ୍. ଡି ( M. D ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବ୍ରିଟିସ ମେଡିକାଲ ଆସୋସିଏସନ୍ ନାମକ ବିଲାତ ଚିକିତ୍ସାସଙ୍ଘର ଭାରତୀୟ ଶାଖା ( The Indian branch of the British Medical Association ) ର ସମ୍ପାଦକ ଓ ସହକାରୀ ସଭାପତି ଥିଲେ । ଏ ପ୍ରଥମେ ହୋମିଓପାଥିକ୍ ଚିକିତ୍ସାର ବିଦ୍ୱେଷୀ ଥିଲେ, କିନ୍ତୁ ପରେ ମତପରିବର୍ତ୍ତନ କରି ସ୍ୱୟଂ ଭାରତ ବିଖ୍ୟାତ ହୋମିଓପାଥିକ୍ ଚିକିତ୍ସକ ହୋଇ-ଥିଲେ ଓ ଏହି ଚିକିତ୍ସାର ପୋଷକ Calcutta Journal of Medicine ନାମକ ପତ୍ରିକା ମୃତ୍ୟୁପର୍ଯ୍ୟନ୍ତ ୧୭ ବର୍ଷ ସମ୍ପାଦନ କରିଥିଲେ । ବଙ୍ଗର ଗଭର୍ଣ୍ଣର୍ ସର୍ ରିଚାର୍ଡ଼ ଟେମ୍ପଲଙ୍କ ପୃଷ୍ଠପୋଷକତାରେ ଏ Indian Association for the cultivation of Science ନାମକ ଗୋଟିଏ ଶିକ୍ଷାଗାର ସ୍ଥାପନ କରିଥିଲେ । ଏ ବହୁକାଳେବେ କଲିକତାର ସେରିଫ୍ ଓ ବ୍ୟବସ୍ଥାପକ ସଭାର ସଦସ୍ୟ ଥିଲେ । ଏ ସି. ଆଇ. ଇ ଓ ଡି. ଏଲ୍. ଉପାଧି ଲାଭ କରିଥିଲେ । ଏହାଙ୍କର ପୁତ୍ର ଡାକ୍ତର ଅମୃତଲାଲ ସରକାର ପିତୃପଦାଙ୍କ

ଅନୁସରଣ କରି ଫିତୁପରସ୍ତଳର ପଦ୍ଧତିର ସମ୍ପାଦନ ଚଳାଉ ଅଛନ୍ତି । ସ୍ବକଲଚନ୍ଦ୍ର—ବାଗାଲ୍ଲ ଅଉଧାନ । ]

ମହେନ୍ଦ୍ର ସୂରି—ସ. ବି ( ନାମ )—ଫିରୋଜ୍ ସାହା ତୋଗଲକଙ୍କ Mahendra sūri ସଭାର ପ୍ରଧାନ ପଣ୍ଡିତ—Name of a famous court Pandit of Phiroje Saha Toghlak. [ ଦ୍ର—ଏ ଖ୍ରୀ ୧୪ଶ ଶତାବ୍ଦୀର ଲୋକଥିଲେ ଓ ପାରସୀଭାଷାରେ ଯନ୍ତ୍ରରାଜ ନାମକ ଗ୍ରନ୍ଥ ଲେଖି ଥିଲେ ।]

ମହେନ୍ଦ୍ରାଣୀ—ସ. ବି. ସ୍ତ୍ରୀ—ଇନ୍ଦ୍ରପତ୍ନୀ; ଶଚୀ— Mahendrāṇi The queen of Indra.

ମହେଲା—ସ. ବି ( ମହ=ଉତ୍ସବ+ଇଲ୍ଲ=ପୃଥ୍ବୀ )— Mahelā ମହିଳା ( ଦେଖ )—Mahilā ( See ) (ମହେଲକା—ଅନ୍ୟରୂପ)

ମହେଶ—ସ. ବି ( ମହା+ଈଶ )—ଶିବ; ମହାଦେବ—Siba. Mahesa ଦେ. ବି. ପୁଂ—ଲୋକଙ୍କ ନାମ—A name given (ମହେଶାନ, ମହେଶ୍ବର—ଅନ୍ୟରୂପ) to males. (ମହେଶୀ, ମହେଶ୍ବରୀ—ସ୍ତ୍ରୀ)

ମହେଶ ବନ୍ଧୁ—ସ. ବି. ପୁଂ—୧ । ବିଲ୍ବବୃକ୍ଷ—1. The Bel tree Mahesa bandhu ( Apte ). ୨ । ବଳଦ (ହି. ଶ)— 2. Bull.

ମହେଶୀ—ସ. ବି. ସ୍ତ୍ରୀ ( ମହେଶ, +ସ୍ତ୍ରୀ ଈ )—୧ । Mahesi ପାର୍ବତୀ; ମହେଶ୍ବର ପତ୍ନୀ—1. Pārbatī. ୨ । (ମହେଶ୍ବରୀ, ମହେଶାନୀ—ଅନ୍ୟରୂପ) କଂସା—2. Bell metal.

ମହେଷ୍ବାସ—ସ. ବି ( ମହାନ୍+ଇଷ୍ବାସ=ଧନୁ )—୧ । ( କର୍ମଧା ) Maheshwāsa ବୃହତ୍ ଧନୁ—1. A big bow. ୨ । ( ବହୁବ୍ରୀହି ) ମହା ଧନୁର୍ଦ୍ଧର—2. A great archer. ( ଭ—ହେ ଖ୍ବସ୍ତ ଏହାଙ୍କ ପର କେ ମହେଷ୍ବାସ । କୃଷ୍ଣସିଂହ. ମହାଭାରତ ସଭା । )

ମହୋକ୍ଷ—ସ. ବି ( କର୍ମଧା ମହାନ୍+ଉକ୍ଷନ୍=ବୃଷ )—ପୁଙ୍ଗବ; Mahoksha ବଡ଼ ଷଣ୍ଢ—A big bull

ମହୈଲା—ସ. ବି ( ମହତ+ଏଲା )—ବଡ଼ ଅଲେଇଚ— Mahailā Cardamom.

ମହୋଛ(ଚ୍ଛ)ବ—ଦେ. ବି ( ସ. ମହୋତ୍ସବ; ପ୍ରା. ମହୋଚ୍ଛବ )— Mahochha(chchha)ba ମଉଛବ ( ଦେଖ )— (ମହୋଚ୍ଛା—ଅନ୍ୟରୂପ) Mauchhaba ( See )

ମହୋତ୍ପଳ—ସ. ବି ( କର୍ମଧା )—୧ । ନୀଳପଦ୍ମ; ନୀଳକଇଁ— Mahotpala 1. The blue waterlily ( Apte ). ୨ । ସାରସ ପକ୍ଷୀ—2. The Sārasa bird ( Apte ).

ମହୋତ୍ସବ—ସ. ବି ( କର୍ମଧା; ମହାନ୍+ଉତ୍ସବ )—୧ । ଅତ୍ୟନ୍ତ Mahot-saba ଆନନ୍ଦଜନକ ବ୍ୟାପାର—1. Festivity; festival. ୨ । ( ବହୁବ୍ରୀହି ) କାମଦେବ—2. Cupid ( Apte ). ଦେ. ବି—ବୈଷ୍ଣବମାନଙ୍କର ଭୋଜି; ମଉଛବ—A feast of the Baishnabas.

ମହୋତ୍ସାହ—ସ. ବି ( କର୍ମଧା; ମହାନ୍+ଉତ୍ସାହ )—୧ । Mahot-sāha ଅତିଶୟ ଉତ୍ସାହ—1. Great exertion; vast encouragement. ୨ । ଅଧ୍ୟବସାୟ— 2. Perseverance. ବିଣ ( ବହୁବ୍ରୀହି ) ଅତ୍ୟନ୍ତ (ମହୋତ୍ସାହା—ସ୍ତ୍ରୀ) ଉତ୍ସାହୀ; ବିଶେଷ ଉଦ୍ୟମଶୀଳ—Making great exertions.

ମହୋଦଧି—ସ. ବି ( ମହାନ୍+ଉଦଧି )—୧ । ( କର୍ମଧା ) ସାଗର; Mahodadhi ସମୁଦ୍ର—1. The sea. ୨ । ମହାସାଗର— 2. Ocean. ୩ । ଇନ୍ଦ୍ର—3. Indra (Apte).

ମହୋଦୟ—ସ. ବିଣ. ପୁଂ ( ବହୁବ୍ରୀହି; ମହାନ୍ ହୋଇଅଛି ଉଦୟ= Mahodaya ଉନ୍ନତି ଯାହାର )—୧ । ଅତି ଉନ୍ନତ; ଅତି (ମହୋଦୟା—ସ୍ତ୍ରୀ) ସମୃଦ୍ଧ—1. Great; very prosperous. ୨ । ମହାନୁଭବ—2. Noble. ୩ ଅତି ଭାଗ୍ୟବାନ୍—3. Very lucky. ବି—୧ । ମହାଶୟ ବ୍ୟକ୍ତି—1. A great man. ୨ । ପୂଜ୍ୟ ବ୍ୟକ୍ତି—2. A respectable person. ୩ । ସ୍ବାମୀ; ପ୍ରଭୁ—3. Lord; master. [ ଦ୍ର—ମାନ୍ୟ ବ୍ୟକ୍ତି-ମାନଙ୍କ ନାମ ପରେ ସମ୍ବୋଧନରେ ଏ ଶବ୍ଦ ଯୁକ୍ତ ହୁଏ । ଯଥା—ଶ୍ରୀଯୁକ୍ତ ଜଗନ୍ନାଥ ରଥ ଜ୍ୟୋତିଷରତ୍ନ ମହୋଦୟ ସମୀପେଷୁ ।] ୪ । କାନ୍ୟକୁବ୍ଜ ଦେଶ—4. Kannouj. ୫ । (କର୍ମଧା) ମୁକ୍ତି; ମୋକ୍ଷ—5. Salvation; beatitude; final emancipation of the soul. ୬ । କର୍ତ୍ତୃତ୍ବ—6. Mastery. ୭ । ସମୃଦ୍ଧି; ବଡ଼ତ୍ବ —7. Greatness; prosperity; great elevation. ୮ । ସୌଭାଗ୍ୟ—8. Good luck (Apte). ୯ । ମଧୁମିଶ୍ରିତ ଦଧି—9. Sour milk mixed with honey ( Apte ).

ମହୋଦର—ସ. ବିଣ. ପୁଂ ( ବହୁବ୍ରୀହି; ମହାନ୍+ଉଦର )—ଯାହାର Mahodara ପେଟ ବଡ଼—Having a big belly; big-bellied. ସ. ବି—୧ । ( କର୍ମଧା )—ବଡ଼ ବା ସ୍ଥୂଳ ପେଟ—1. A big belly. ୨ । ( ବହୁବ୍ରୀହି ) ଜଳୋଦରୀ ରୋଗ—2. Dropsy ( Apte ). ଦେ. ବି—ଲଙ୍କାର ରାକ୍ଷସବିଶେଷ—Name of a demon of Lankā. ( ଉ—ବଡ଼ ଦରଦାଣ୍ଡା ମହୋଦର, ବାମେ ଟେକି ପାରଇ ମନ୍ଦର । ଭଞ୍ଜ. ବୈଦେହୀଶ-ବିଳାସ । )

ମହୋଦରୀ—ସ. ବି. ସ୍ତ୍ରୀ ( ମହାନ୍+ଉଦର+ସ୍ତ୍ରୀ ଈ; ବହୁବ୍ରୀହି ) Mahodari ( ସମସ୍ତ ବ୍ରହ୍ମାଣ୍ଡ ଏହାଙ୍କ ଗର୍ଭରେ ଥିବାରୁ )— ଭଗବତୀ; ଦୁର୍ଗା—1. Goddess Durgā. ୨ । ମହାଶତାବରୀ—2. A kind of asparagus.

ମହୋଦ୍ୟମ—ସ. ବି ( କର୍ମଧା; ମହାନ୍+ଉଦ୍ୟମ )—ବିଶେଷ ଉଦ୍ୟମ Mahodyama —Great exertion. ବିଣ. ପୁଂ (ମହୋଦୋଗ—ଅନ୍ୟରୂପ) ( ବହୁବ୍ରୀହି )—ବିଶେଷ ଉଦ୍ୟମଶୀଳ ମହୋଦ୍ୟମା, ମହୋଦ୍ୟୋଗା } ସ୍ତ୍ରୀ —Very energetic; persevering; exerting.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍ଘ | ଜ | ଶ,ଷ | ଙ୍କ | ଇସ୍ତ୍ର | ଉଅ | ଧ୍ବ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଘ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ବ |

ମହୋନ୍ନତ—ସ. ବଣ. ପୁଂ—ଅତ୍ୟନ୍ତ ଉନ୍ନତ—Much exalted
Mahonnata or lofty; very high; very noble.
(ମହୋନ୍ନତା—ସ୍ତ୍ରୀ)

ମହୋନ୍ନତି—ସ. ବ ( କର୍ମଧା; ମହତ୍+ଉନ୍ନତି )—ବିଶେଷ ସମୃଦ୍ଧି—
Mahonnati Great improvement; a great rise.

ମହୋପକାର—ସ ବ (କର୍ମଧା, ମହାନ୍+ଉପକାର )—ବିଶେଷ
Mahopakāra ଉପକାର ବା ହିତ—Great benefit or obligation.

ମହୋପକାରୀ—ସ. ବଣ. ପୁଂ ( ମହାନ୍+ଉପକାରୀ )—ବିଶେଷ
Mahopakāri ହିତକର—Much beneficial; much
(ମହୋପକାରିଣୀ—ସ୍ତ୍ରୀ) benefitting; rendering great services to a person.

ମହୋପାଧ୍ୟାୟ—ସ. ବ. ପୁଂ (ମହାନ୍+ଉପାଧ୍ୟାୟ)—ବିଦ୍ୱାନ୍ ଗୁରୁ—
Mahopādhyāya A learned teacher.

ମହୋରଗ—ସ. ବ (ମହାନ୍+ଉରଗ=ସର୍ପ)—୧ । ବୃହତ୍ ସର୍ପ;
Mahoraga ଅଜଗର—1. A big serpent; the Python. ୨ । ଟଗର ବୃକ୍ଷର ମୂଳ—2. The root of Tagara tree.

ମହୋରସ୍କ—ସ. ବଣ. ପୁଂ (ମହତ୍+ଉରସ୍+କ)—ଯାହାର ଛାତି
Mahoraska ଚଉଡ଼ା—Broad-breasted; broad-
(ମହୋରସ୍କା—ସ୍ତ୍ରୀ) chested. ସ. ବ—ଶିବ—Śiba.

ମହୋଲ୍କା—ସ. ବ (କର୍ମଧା; ମହତ୍+ଉଲ୍କା)—୧ । ବୃହତ୍ ଉଲ୍କା—
Mahol̤kā 1. A big shooting star; a great meteor. ୨ । ବଡ଼ ମଶାଲ—2. A great fire-brand.

ମହୋଲ୍ଲାସ—ସ. ବ (କର୍ମଧା; ମହାନ୍+ଉଲ୍ଲାସ)—ଅତ୍ୟନ୍ତ ଆନନ୍ଦ—
Mahollāsa Great delight; joy

ମହୌଜାଃ—ସ. ବଣ ( ବହୁବ୍ରୀହି; ମହତ୍+ଓଜସ୍ ଯାହାର;
Mahaujāḥ ମହୌଜସ୍; ୧ମା. ୧ବ)—ମହାଶକ୍ତିଶାଳୀ—Very powerful; mighty. ସଂ. ବ - ମହାବୀର—A great hero(Apte).

ମହୌଷଧ—ସଂ. ବ (କର୍ମଧା; ମହାନ୍+ଔଷଧ)—୧ । ଉତ୍କୃଷ୍ଟ
Mahaushadha ଔଷଧ—1. A very efficacious medicine; a sovereign remedy; a panacea. ୨ । ଶୁଣ୍ଠି, ପିପ୍ପଳୀ ଓ ରସୁଣ—2. Dried ginger, long pepper and garlic. ୩ । ବିଷ-ନାଭି; ମହୁରା—3. Aconite. ୪ । ରସୁଣ—4. Garlic.

ମହୌଷଧି(ଧୀ)—ସଂ. ବ (କର୍ମଧା; ମହାନ୍+ଓଷଧି, ଧୀ)—୧ । ରାତ୍ରି
Mahaushadhi(dhī) କାଳରେ ଦୀପ୍ତିଶୀଳ ତୃଣଲତାଦି—1 Creepers and plants emitting light in the night. ୨ । ଦୁବ୍ବା—2. The dooba grass. ୩ । ବ୍ରାହ୍ମୀ; ଶ୍ୱେତକଣ୍ଟକାରୀ; ହଲମୋଚକା; କଟୁକା—3. Name of different herbarious plants. ୪ । ଅତିବିଷା; ମହୁରା—4. Aconite.

ମହ୍ଲା—ଦେ. ବ—ମଲ୍ଲା (ଦେଖ)
Mahlā Mallā (See).

ମହ୍ଲାର୍ଡ—ଦେ. ବ—ମହ୍ଲାର ପ୍ରାଦେ (ଦେଖ)
Mahlārḍa Mahlāra (See).

ମହ୍ଲାର—ଦେ. ବ—ମଲ୍ଲାର (ଦେଖ)—Mallāra (See).
Mahlāra ପ୍ରାଦେ ( କେନ୍ଦୁଝର ଓ ଢେଙ୍କାନାଳ ) ବ—
मल्हार ଜଙ୍ଗଲ ଜାତି ବିଶେଷ—A race of wild peopl.
मलार dealing with honey and such other forest-produce. [ଦ୍ର—ଏମାନେ ମହୁ ଓ ଅନ୍ୟାନ୍ୟ ବନଜାତ ଦ୍ରବ୍ୟ ସଂଗ୍ରହ ଓ ବିକ୍ରୟ କରନ୍ତି ଓ ଗଛମୂଳରେ ବାସ କରନ୍ତି । ]

ମା (ଧାତୁ)—ସଂ—୧ । ପରିମାଣ କରିବା; ମାପିବା—1. To
Mā (root) measure. ୨ । ପାଳନ କରିବା—2. To bring up; to maintain. ୩ । ସମ୍ଭାଇବା—3. To be contained in. ୪ । ନିର୍ମାଣ କରିବା; ପ୍ରସ୍ତୁତ କରିବା—4. To prepare; to make; to builde ୫ । ବାଣ୍ଟିବା—5. To apportion; to mete out. ୬ । ଦେଖାଇବା—6. To show; to display. ୭ । ଶବ୍ଦ କରିବା—7. To roar; to sound (Apte).

ମା—ସଂ. ବ. ସ୍ତ୍ରୀ (ମା, ଧାତୁ+କର୍ତ୍ତୃ. କ୍ୱିପ୍; ମୂଳ (ସଂ) ଅମ୍ବା, ମାତୃ,
Mā ମା; (ଇଂ) ମାମା; (ଲ) ମାଟର; (ହି) ଅମ୍ମା, ମାଇ; (ତେ) ଅମ୍ମା; (ଅ) ଅମ; (ପା) ମାଦାର୍;—୧ । ମାତା; ଜନନୀ—1. Mother. [ଦ୍ର—ପୁରୀ ଓ କଟକ ଜିଲ୍ଲାର କେତେକ ସ୍ଥାନର ବ୍ରାହ୍ମଣମାନେ ମାତାଙ୍କୁ 'ବୋଉ' ଓ ପିତାମହୀଙ୍କୁ 'ମା' ବୋଲି ସମ୍ବୋଧନ କରନ୍ତି ।

କୌଣସି ବ୍ୟକ୍ତିର ମାତାଙ୍କୁ ସେହି ବ୍ୟକ୍ତିର ନାମ ସହିତ 'ମା' ଶବ୍ଦ ଯୋଗ କରି ଡକାଯାଏ । ଯଥା—ଦଶରଥ ମା, ରାମ ମା । ] ୨ । ଲକ୍ଷ୍ମୀ; କମଳା—2. The Goddess of wealth. ୩ । (+କରଣ କ୍ୱିପ୍)ଶ୍ରୀ; ସୌନ୍ଦର୍ଯ୍ୟ—3. Beauty. ୪ । ( +ଭାବ. କ୍ୱିପ୍ ) ପରିମାଣ—4. Measure. ୫ । (+କରଣ. କ୍ୱିପ୍) ଜ୍ଞାନ—5. Knowledge. ୬ । କାନ୍ତି—6 Lustre. ଅ—ନାହିଁ, ବିକଳ୍ପ ଓ ନିଷେଧାର୍ଥକ ଅବ୍ୟୟ—No. ଦେ. ବ—(ସ. ମଧ୍ୟମ)—୧ । ସଙ୍ଗୀତର ସପ୍ତ ସ୍ୱରର ଚତୁର୍ଥ ସ୍ୱର—
मा
मा 1. The 4th scale in the Hindu music.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ ଗାଇ' ଖୋଜିବେ; 'କୂଅ ନ ମିଳିଲେ 'କୁଅ ଖୋଜିବେ; 'ବନ୍ଧୁ ନ ମିଳିଲେ 'ବନ୍ଧୁ ଦେଖିବେ; 'ଆଗଁା' ନ ପାଇଲେ 'ଅଗ୍ରା' ଦେଖିବେ, 'ଅଳବତ' ନ ପାଇଲେ 'ଅଲ୍‌ବତ' ଦେଖିବେ ।

୨ । ମାଆ ( ଦେଖ )—2. Mā-ā ( See ) ଅ—୧ । ଭୟ, ବିସ୍ମୟ ଓ ଅଭିଭୂତଭାବସୂଚକ ଅବ୍ୟୟ; ହେ ମା !—
ওমা
माँ, ओमा 1. Interjection used in giving vent to fear wonder or bewilderment; Oh my Mother ! ୨ । (ସାଙ୍କେତିକ, କଚେରିଆ) ମାରଫତେ—2. Through; per; by the hands of. (ଯଥା—। ମା । ଅମୁକ=ଅମୁକ ଲୋକ ମାରଫତେ । ) ୩ । (ଜମିର ମାପ ପରିମାଣ) 'ମାଣ'ର ସାଙ୍କେତିକ—3. An abbreviation for 'Māṇa' of land. (ଯଥା—ମା ୧୫। ୦=ପନ୍ଦର ମାଣ ଜମି ।) ଗ୍ରା ପ୍ରତ୍ୟୟ (କ୍ରିୟା ସହିତ ବ୍ୟବହୃତ)—'ବା' ସ୍ଥାନରେ ଲାଗେ—Used with a verb in the place of the ending 'bā' in the future tense. (ଉ—ଅନ କେବା ତାହା କହେ ଅର୍ଜି-ମା ଅର୍ଜୁନ । ସାରଳା. ମହାଭାରତ ।) ପ୍ରାଦେ. (ଗଞ୍ଜାମ) ଅ—(ସ୍ତ୍ରୀମାନଙ୍କ ଦ୍ୱାରା ବ୍ୟବହୃତ) ଗୋ; ହେ; ଅହେ—Oh ! (ଉ—ମୋହନ ସାଙ୍ଗ ଚାଲା ପଡଲା ମା । ଗୋପାଳକୃଷ୍ଣ ସଙ୍ଗୀତ ।)

ମା ଅଂ(ଆଂ)ଶିଆ—ଦେ. ବିଣ. ପୁଂ (ସଂ. ମାତୃ ଓ ଅଂଶୀୟ)—ଯେଉଁ Mā aṁ(āṁ)śiā ଶିଶୁର ଚେହେରା ବର୍ଣ୍ଣକେଶ ମାତାଙ୍କ ଚେହେରା (ମାଆ ଅଂଶିଆ—ଅନ୍ୟରୂପ) ଆଦି ସଙ୍ଗେ ବେଶି ମେଳ ଥିବା ଦେଖା- (ବାପ ଅଂଶିଆ—ବିପରୀତ) ଯାଏ—(a child) Resembling its mother in appearance (as regards the face, colour of the skin, density of the hair etc.)
মা মুখো
माइ मुहाँ
(ମା ଅଂଶୀ, ମାଆ ଅଂଶୀ—ସ୍ତ୍ରୀ)

ମାଆ—ଦେ. ବି. ( ସଂ. ମା, ମାତୃ )—୧ । ଠାକୁରାଣୀ ଦେବୀ—; Mā-ā 1. A Goddess. (ଯଥା—ମାଆ କମଳା, ମା କାଳୀ ।)
মা
୨ । ମାତା; ଜନନୀ—2. Mother. ୩ । ଗୁରୁ ପତ୍ନୀ ଆଦି ପୂଜ୍ୟା ସ୍ତ୍ରୀ—3. The wife of one's elders. [ଦ୍ର—ଗୁରୁ ପତ୍ନୀ, ପିତୃବ୍ୟ ପତ୍ନୀ, ଜ୍ୟେଷ୍ଠଭ୍ରାତୃଜାୟା, ମାତୁଳାନୀ, ମାତୃଷ୍ୱସା, ପିତୃଷ୍ୱସା, ଶାଶୁ, ବଡ଼ ଭଉଣୀ ଇତ୍ୟାଦି 'ମା' ଅଟନ୍ତି ।] ଦେ. ଅ—୧ । ଆପଣାଠାରୁ ବୟସରେ ବଡ଼ ଓ ମାତୃସ୍ଥାନୀୟା ସ୍ତ୍ରୀମାନଙ୍କ ପ୍ରତି ସମ୍ବୋଧନ—1. A term used in addressing females much older than one's self ୨ । କନ୍ୟା ଓ ଆପଣାଠାରୁ ବୟସରେ ଶ୍ରେଷ୍ଠ ଓ କନ୍ୟାସ୍ଥାନୀୟା ବାଳିକାମାନଙ୍କ ପ୍ରତି ବାତ୍ସଲ୍ୟସୂଚକ ସମ୍ବୋଧନ—2. A term of endearment used towards one's daughter and younger girls. (ଉ—ତୁହେଁ ପିତା ଯୋଗ୍ୟ କେବେ ତୋ ପର ଦେଖାର, ମୁହିଁ ସିନା ଅଭାଜନ, ମାତ୍ର ତୁ ମା ଅଟେ ! ଦୟା, କ୍ଷମା, ସ୍ନେହ, ପ୍ରୀତି, ଭକ୍ତି ପ୍ରସ୍ରବଣ । ଚନ୍ଦ୍ରାମଣି ବିକ୍ରମାଦିତ୍ୟ)

ମାଆଁ(ଏଁ)ସ—ଗ୍ରା. ବି—ମାଂସ ( ଦେଖ )—Māṁsa ( See ) Mā-āṅ(eṅ)sa (ଉ—ବୋଲନ୍ତି ସଖିରେ । ବ୍ୟଞ୍ଜନ କର ଆନ ମାଏଁସ । ବିଶ୍ୱନାଥ. ବିଚିତ୍ର ରାମାୟଣ ।)
মাংস माँस

ମାଆ ଗୋସା(ସେ)ଇଁ—ଦେ. ବି. ସ୍ତ୍ରୀ—କଥାପ୍ରସଙ୍ଗରେ ଓ ପତ୍ର Mā-ā gosā(se)iṅ ଆଦିରେ ମାତାଙ୍କ ପ୍ରତି ପ୍ରଯୁକ୍ତ ସମ୍ମାନସୂଚକ ବାକ୍ୟ—A term of respectful address to one's mother; in the course of conversation or in a letter
মা গোসাই
मा गोसाइँ

ମାଆ ଛୁ(ଛେ)ଉଣ୍ଡ(ଣ୍ଡା)—ଦେ. ବିଣ—ବାଲ୍ୟକାଳରୁ ମାତୃହୀନ—Māā chhi(chhe)uṇḍa(ṇḍā) Motherless from childhood.
মাতৃহীন टुगड़ा, टुगर
( ମାଆ ଛୁ[ଛେ]ଉଣ୍ଡିଆ—ଅନ୍ୟରୂପ )
( ମାଆ ଛୁ[ଛେ]ଉଣ୍ଡୀ, ମାଆ ଛୁ[ଛେ)ଉଣ୍ଡେଇ—ସ୍ତ୍ରୀ )

ମାଆ ଝିଅ—ଦେ. ବି. ( ଅପେକ୍ଷିକ ସହଚର ଶବ୍ଦ; ମାତା+ଦୁହିତା )—Mā-ā jhia ମାତା ଓ କନ୍ୟା—Mother and daughter.
মা মেয়ে मा बेटी
[ ଉ—ମାଆ ଝିଅ ଦହେଁ ଦେଉଳକୁ ଗଲେ, ଯେଉଁ ଶୁଭ ଯେ ମନାସିଲେ—ଭଗ । ]

ମାଆ ଠାକୁରାଣୀ—ଦେ. ବି. ସ୍ତ୍ରୀ—୧ । ( ଲକ୍ଷ୍ମୀ, ଭଗବତୀ ଓ ଗ୍ରାମ Mā-ā ṭhākurāṇī ଦେବତା ଆଦି ) ଦେବୀଙ୍କ ପ୍ରତି ସମ୍ବୋଧନ-ଉକ୍ତି—1. Address to a Goddess.
মা ঠাকুরান
माताजी; मया
୨ । ବସନ୍ତ ରୋଗର ଅଧିଷ୍ଠାତ୍ରୀ ଦେବୀ; ଶୀତଳା—(ମାଆ ଠାକୁରାଣ—ଅନ୍ୟରୂପ) 2 The Goddess said to preside over small pox. (ଯଥା—ତାଙ୍କ ଗାଁଅଁରେ ମାଆ ଠାକୁରାଣୀ ବିଜେ କରିଛନ୍ତି ।) ୩ । ମାଆ ଗୋସାଇଁ ( ଦେଖ )—3. Mā-ā gosāiṅ ( See )

ମାଆ ପୁଅ—ଦେ. ବି ( ଅପେକ୍ଷିକ ସହଚର ଶବ୍ଦ )—ମାତା ଓ ପୁତ୍ର—Māā pua Mother and son.
মাএ ছেলে मा बेटा
( ମାଏ ପୁଏ—ବହୁବଚନ )

ମାଆ ପେଟ—ଦେ. ବି—ମାତୃଗର୍ଭ—Mother's womb.
Mā-ā peṭa মাএর পেট माका पेट

ମାଆ ବାପ—ଦେ. ବି. ( ସହଚର ଶବ୍ଦ )—୧ । ମାତା ଓ ପିତା—Mā-ā bāpa 1. Mother and father. ୨ । ରକ୍ଷକ; ପୃଷ୍ଠପୋଷକ—2. Patron; helper. ( ଯଥା—ହଜୁର ଗରିବ ଲୁକୁବାଙ୍କର ମାଆ ବାପ । )
মা বাপ माँ बाप

ମାଆ ଭଉଣୀ—ଦେ. ବି. (ସହଚର ଶବ୍ଦ)—ଜଣକର ମାତା ଓ ଭଗ୍ନୀ—Mā-ā bhauṇī One's mother and sister.
মা বোন माँ बहीन

ମାଆ ଭଉଣୀ ଜୋରୁ ବେଟୀ କରିବା—ଦେ. କ୍ରି—ଜଣକର ମାତା, Mā-ā bhauṇī joru beṭī karibā ଭଗ୍ନୀ, ସ୍ତ୍ରୀ ଓ କନ୍ୟାଙ୍କ ନାମ ଧରି ଗାଳି ଦେବା-To call names by using the names of one's
মা বোন জোরু বেটীকরা
मतरिया बहिनिया करना,

**मइया बहिनिया करना** mother, sister, wife and daughter.

ମାଅ ଭାରିଯା—ଦେ. ବି ( ସହଚର ଶବ୍ଦ )—ଅପଣାର ମାତା ଓ ସ୍ତ୍ରୀ—
Mā-ā bhārijā মা স্ত্রী One's mother and wife.
**माँ जोरू** ( ମାଅ ମାଇପ—ଗ୍ରାମ୍ୟରୂପ )

ମାଅ ମାଅରେ—ଦେ. ଅ (ଶିଶୁ ବଚନ)—ମାତାଙ୍କୁ ପୁତ୍ରର ସମ୍ବୋଧନ;
Mā-ā mā-āre ହେ ମାତଃ ! —Oh mother !. ( ଉ—ମାଅ
ও মা **माँ माँरे** ମାଅରେ ! ପାଠପଢ଼ା ବଡ଼ ଦୁଃଖ, ହାତ ଗୋଡ଼ ଦୁଇ ଲାଗଇରେ, ପଖାଳେ ବଡ଼ ସୁଖ୍—ଶିଶୁ ଗୀତ । )

ମାଅ ମାଉସୀ—ଦେ. ବି ( ସହଚର ଶବ୍ଦ; ମାତା+ମାତୃସ୍ୱସା )—
Mā-ā māusī ୧ । ମାତା ଓ ମାତୃସ୍ୱସା—1. One's mother
মা মাসী **माँ मौसी** and mother's sister. ୨ । ଅପଣାର ମାତୃସ୍ଥାନୀୟ ସ୍ତ୍ରୀଗୁରୁଜନ—2. Elderly females who are to be looked upon as one's mother.

ମାଅ ମାଟି—ପ୍ରାଦେ. ( ସମ୍ବଲପୁର ) ବି ( ସଂ. ମାତୃ ଓ ମୃତ୍ତିକା )—
Mā ā māṭi ଜନ୍ମଭୂମି—Mother-country; one's brith-place.

ମାଅରାଣୀ—ଦେ. ଅ—କାନ୍ଦୁନ କରି କାନ୍ଦିବା ଝିଅର ମାଅଙ୍କ ପ୍ରତି ଓ
Mā-ārāṇī ମାଅଙ୍କର ଝିଅ ପ୍ରତି ସମ୍ବୋଧନ—A term used
মারাণী **माँरानी** by a weeping girl to her mother and vice versa ଗ୍ରା. ବି—ମହାରାଣୀ ( ଦେଖ )
Mahārāṇī ( See )

ମାଅ(ହା)ଲକ୍ଷ୍ମୀ—ଦେ ବି ( ସଂ. ମହାଲକ୍ଷ୍ମୀ )—ମହାଲକ୍ଷ୍ମୀ ( ଦେଖ )—
Mā-ā(hā)lakshmī Mahālakshmī (See) ଦେ. ଅ—
মা লক্ষ্মী **माँ लक्ष्मी** ଅପଣାର କନ୍ୟା, ବଧୂ ଓ ଭ୍ରାତୃବଧୂଙ୍କୁ ସ୍ନେହ-ସମ୍ବୋଧନ—A term of endearment used to one's daughter, daughter-in-law and younger brother's wife.
ମାଅ(ହା)ଲଛୀ(ଚ୍ଛୀ) } ଗ୍ରାମ୍ୟରୂପ
ମାଅ(ହା)ଲଙ୍ଗୀ }

ମାଅଲୋ—ଦେ. ଅ (ଭୟ ଓ ବିସ୍ମୟରେ ବ୍ୟବହୃତ ଆର୍ତ୍ତନାଦ )—ଅଲୋ
Mā ālo ମାଅଲୋ—Interjection used in agony,
ওমা, মাগো **मारे** fear or wonder; Oh my mother I am dying.

(ମାଅଲୋ ବାପଲୋ, ମାଅଲୋ ମରିଗଲି, ମାଅଲୋ ମଲି—ଅନ୍ୟରୂପ)

ମାଅଲୋ ବାପଲୋ ହେବା (କରିବା)—ଦେ. କ୍ରି—ଅତି କରୁଣରେ
Mā-ālo bāpalo hebā (karibā) ଆର୍ତ୍ତସ୍ୱର କରିବା—
মারে বাপরে করা To wail very piteously.
**माँ बाप करना**

ମାଅ ସାଆନ୍ତାଣୀ—ଦେ. ବି—୧ । ଗୃହକର୍ତ୍ତ୍ରୀଙ୍କ ପ୍ରତି ଭୃତ୍ୟାଦିଙ୍କର
Mā-ā sā-āntāṇi ସମ୍ମାନଜନକ ଉକ୍ତି—1. A term used
মা ঠাকরান for and in addressing the lady of
**माताजी, महतारी** the house. ୨ । କନ୍ୟା ପ୍ରତି ମାତାଙ୍କର ସ୍ନେହ ଉକ୍ତି—2. A term of endearment used to one's daughter. [ ଉ—ମାଅ ସାଆନ୍ତାଣୀ ରାଣୀ ! ଦେଇଥେବ ଗଡ଼ମାଳଅ ଘରେ, ଗଞ୍ଜଡ଼ା ବୋହୁବେ ପାଣି—ଛଗ । ] ୩ । ଦେବୀଙ୍କୁ ସମ୍ବୋଧନ—
3. Address to a Goddess.

ମାଇ ( ଇତ୍ୟାଦି )—ମାଈ ଇତ୍ୟାଦି ( ଦେଖ
Māi ( etc ) Māī etc ( See )

ମାଇଆ—ଦେ. ବିଣ. ପୁଂ—୧ । ସ୍ତ୍ରୀ ପ୍ରକୃତିବିଶିଷ୍ଟ ( ପୁରୁଷ );
Māiā ମାଇଗ୍—1. ( a male ) Having the charac-
মেয়েলি teristics of a female; womanish; feminine.
**मेहरा; मौगा: मोगियाहा** [ ଦ୍ର—ଏମାନେ ସ୍ତ୍ରୀମାନଙ୍କ ପରି ଭୀରୁ, ଲଜ୍ଜାଶୀଳ ଓ କୋମଳସ୍ୱଭାବ ଅଟନ୍ତି । ] ୨ । ସ୍ତ୍ରୀଜନୋଚିତ—
2. Becoming or befitting a woman, womanly. ୩ । ସ୍ୱୈଣ, ସ୍ତ୍ରୀମାନଙ୍କ ପ୍ରତି ଅତିରିକ୍ତ-ଭାବରେ ଆସକ୍ତ—3. Addicted to females; effeminate; voluptuous. ୪ । ସ୍ତ୍ରୀବଶୀଭୂତ—
4. Hen-pecked; led by the nose by a
মেয়েরা woman. ଗ୍ରା ବି—୧ । ସ୍ତ୍ରୀଲୋକମାନେ—1. Females.
୨ । ( ପଦ୍ୟ ) ମାୟା—2. Deception; illusion; delusion.

ମାଇକି—ପ୍ରାଦେ. ( ସମ୍ବଲପୁର; ଅଠମଲ୍ଲିକ ) ଅ. (ହି. ମାଁକୀ କସମ୍)—
Māiki ମୋ ମାଅଙ୍କ ରାଣ—I swear by the name of my mother. ( ଯଥା—ମାଇକି ମତେ=ମତେ ମୋ ମାଅଙ୍କ ରାଣ ଅଛି ।)

ମାଇକିନା—ଦେ. ବି ସ୍ତ୍ରୀ ( ସଂ. ମାତୃ ଓ କନ୍ୟା; ତୁଳ୍ୟ ମାତୃଗ୍ରାମ=
Māikinā ମାତୃଜାତି; ପାଲି—ମାତୁଗାମ; ପ୍ରା. ମଉଗାଅଁ ସଂ.
[ମାଇକିନିଆ(ଆଁ)—ଅନ୍ୟରୂପ] ମାତୃକା; ସଂ. ମେହନା=ସ୍ତ୍ରୀ;
(ଅଶ୍ଳୀଳ—ଉପସର୍ଗ) ମହିଳା—ହି. ଶ )—୧ । ନାରୀ; ସ୍ତ୍ରୀଲୋକ
মেয়ে; মাগী; মাগী মাইয়া —1. Woman. ୨ । ପତ୍ନୀ; ସ୍ତ୍ରୀ
**मउगी; मौगी; मेहरिया** —2. Wife. ୩ । ସ୍ତ୍ରୀ ଜାତି—
3. Womankind. [ ଦ୍ର—ସାଧାରଣତଃ 'ମାଇକିନିଆ' ଶବ୍ଦର ବ୍ୟବହାର ଇତର ବା ଶିଷ୍ଟତାବର୍ଜିତ; କଳହପ୍ରିୟା, ଦୁଷ୍ଟା ସ୍ତ୍ରୀମାନଙ୍କ ପ୍ରତି ଓ ଗାଳିରେ ଏ ଶବ୍ଦ ବ୍ୟବହୃତ ହୁଏ । ସଧବାମାନଙ୍କୁ ଅହୁଅ ମାଇକିନିଆ ଓ ବିଧବାମାନଙ୍କୁ ରାଣ୍ଡ ମାଇକିନିଆ କୁହାଯାଏ । ]

ମାଇକିନିଆ(ଆଁ) ଝିଅ—ଦେ. ବି. ସ୍ତ୍ରୀ—୧ । ମାଇପି ଲୋକ; ସ୍ତ୍ରୀ
Māikiniā(ān̄) jhia ଜାତୀୟା ବ୍ୟକ୍ତି—1 A female;
(ଅଶ୍ଳୀଳ ପୁଅ—ଉପସର୍ଗ) a woman. ୨ । ସ୍ତ୍ରୀ ଶିଶୁ—
মেয়েছেলে 2. Female child. ୩ । ବାଳିକା—
**बच्ची; मउगी; लुगाई** 3. Girl.

ମାଇକିନିଆ ପିଲା—ଦେ. ବି—୧ । ବାଳିକା ଶିଶୁ—1. A female;
Māikiniā pilā child; a female infant.
(ଅଶ୍ଳୀଳ ପିଲା—ଉପସର୍ଗ) ୨ । ବାଳିକା—2. A girl.
মেয়েছেলে **बच्ची**

**ମାଇକିନିଆ ଲୋକ**—ଦେ. ବି. ସ୍ତ୍ରୀ—ସ୍ତ୍ରୀ ବ୍ୟକ୍ତି; ନାରୀ—
Māikinia loka A woman; a female folk.
মেয়েমানুষ **औरत आदमी**

**ମାଇକେଲ୍ ମଧୁସୂଦନ ଦତ୍ତ**—ଦେ. ବି ( ନାମ )—ମଧୁସୂଦନ ଦତ୍ତ
Māikel madhusūdana dutta ( ଦେଖ—Madhusūdana dutta ( See )

**ମାଇଗାଣ୍ଡିଆ**—ଦେ. ବିଣ. ପୁଂ ( ଅଶ୍ଳୀଳ )—୧ । ମାଇଆ ( ଦେଖ )
Māigāṇḍiā —1. Māiā ( See ). ୨ । ନାମର୍ଦ୍ଦ;
माइआमुखा माइआमुखो ସ୍ତ୍ରୀଲୋକ ପରି ଭୀରୁ—2 Timid
**नामर्द** like a woman; effeminate. ୩ । ପୁଂସ୍ତ୍ୱହୀନ; ଅଣପୁରୁଷ—3. Impotent (male)

**ମାଇଗାତ**—ଦେ. ବି—ସାତଗାତି ( ଦେଖ )—
Māigāta Sātagāti ( See )

**ମାଇଗୁଲିଆ**—ଦେ. ବିଣ. ପୁଂ—୧ । ମାଇପି ବୋଲକର; ଯେ ମାଇପର
Māiguliā କଥାରେ ଚଳେ; ସ୍ତ୍ରୀବଶ; ସ୍ତ୍ରୀଣ; ସ୍ତ୍ରୈଣ—1. Led by
माइआमुखा the nose by one's wife; hen-pecked
**मौगियाहा** ୨ । ମାଇଚ୍ଛା—2. Having the characteristics and habits of a female.

**ମାଇଚ୍ଛା(ଚ୍ଛା)**—ଦେ. ବିଣ. ପୁଂ—୧ । ସ୍ତ୍ରୀ ସ୍ୱଭାବଯୁକ୍ତ ( ପୁରୁଷ )—
Māichā(chhā) 1. ( a man ) With female
[ମାଇଚ(ଚ୍ଛ)ଆ—ଅନ୍ୟରୂପ) nature. ୨ । ଯେ ସର୍ବଦା ସ୍ତ୍ରୀ-
(ଅଣ୍ଡି ସ୍ୱଚଣ୍ଡୀ—ବିପରୀତ) ମହଲରେ ରହିବାକୁ ସୁଖପାଏ—
माइआमुखा, মেয়েমুখো 2. Effeminate; clinging to
**मेहरा, मौगियाहा** the apron strings of women.
୩ । ମାଇଆ ( ଦେଖ )—3. Māiā ( See )

**ମାଇ(ଏ)ଝୀ**—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବି—୧ । ମାଇପି-
Māi(e)jhī ଲୋକ; ସ୍ତ୍ରୀ ବ୍ୟକ୍ତି—1. A woman; a female folk. ୨ । ସ୍ତ୍ରୀ ଜାତି—2. The female-kind. ୩ । ବାଳିକା—3. A girl

**ମାଇତି**—ପ୍ରାଦେ ( ମେଦିନୀପୁର ) ବି—୧ । ମାହିଷ୍ୟ ଓ କୈବର୍ତ୍ତଙ୍କ
Māiti ବଂଶୋପାଧି ବିଶେଷ—1. A family title of
মাইতি Māhishya and fishermen in Midnapur.
[ ଦ୍ର—ଚୈତନ୍ୟ ଚରିତାମୃତରେ 'ମହାନ୍ତି' ଅର୍ଥାତ୍ କରଣ ଜାତି ଅର୍ଥରେ 'ମାଇତି' ଶବ୍ଦ ବ୍ୟବହୃତ ହୋଇଅଛି । ]

**ମାଇନ୍**—ବୈଦେ. ବି ( ଇଂ )—ଖଣି—A mine. [ ଦ୍ର—ଏହି
Māin ଇଂରାଜି ଶବ୍ଦ ସଙ୍ଗେ କୋଇଲା ସମ୍ବନ୍ଧୀୟ ଅନେକଗୁଡ଼ିଏ ବୈଦେଶିକ ଶବ୍ଦ ଭାଷାରେ ଚଳୁଛି । ମାଇନ୍-ହେଡ୍, ମାଇନ୍ ଇନ୍ସପେକ୍ଟର । ]

**ମାଇନ**—ଦେ. ବି ( ସଂ. ମାନ୍ୟ )—୧ । ସ୍ତ୍ରୀମାନଙ୍କର ପୁରୁଷଙ୍କ ଆଗରେ
Māina ବା ସର୍ବସାଧାରଣରେ ବା ଗୁରୁଜନଙ୍କ ପ୍ରତି ସମ୍ମାନ
সামনে না বেরুন ଦେଖାଇବା ଚିହ୍ନସ୍ୱରୂପ ସେମାନଙ୍କ ସାମନାକୁ ନ
**शरम, परदा, मा** ଆସିବା; ସଭ୍ରମ; ମାନନା—1. Modesty shown by females in the public or in the society of males and before their elders; observance of purda by females.
୨ । ମାନ୍ୟ; ମର୍ଯ୍ୟାଦା—2. Respect. ୩ । ସଦାଚାର-ନିୟମ—3. Rules of etiquette. ୪ । ଗୁରୁଜନଙ୍କ ପ୍ରତି ବାଳକମାନଙ୍କର ପ୍ରଦର୍ଶିତ ସଭ୍ରମ—4. Respect shown to elders by youngsters.

**ମାଇନ କରିବା**—ଦେ. କ୍ରି—୧ । ସମାଜୋଚିତ ମର୍ଯ୍ୟାଦା ଅନୁସାରେ
Māina karibā ଚଳିବା; ଗୁରୁଜନଙ୍କୁ ସମ୍ମାନ ଦେଖାଇବା—
সামনে না বেরুন 1. To show proper respect and
**शरम करना, परदा करना;** modesty to one's elders or
**संकोच करना; मान करना** to outsiders. ୨ । (ବଧୂମାନେ) ସମାଜୋଚିତ ବିଧି ଅନୁସାରେ ଗୁରୁଜନଙ୍କୁ ଓ ଅପରିଚିତ ବ୍ୟକ୍ତିମାନଙ୍କୁ ଦେଖା ନ ଦେବା ବା ସେମାନଙ୍କ ସଙ୍ଗେ କଥା ନ କହିବା—2. Not to appear before and talk to one's elders and to outsiders according to the etiquette observed in society ( said of young daughters-in-law etc ). [ ଦ୍ର—ଆମ୍ଭମାନଙ୍କ ସମାଜରେ ମାଇନ କରିବା ପ୍ରଥା ପୂର୍ବେ ଖୁବ୍ କଡ଼ା ଥିଲା । ନବାଗତ ବଧୂ ଶାଶୂ, ନଣନ୍ଦ ଓ ଅନ୍ୟ ବର୍ଷିୟସୀମାନଙ୍କ ସହିତ ପାଟି ଫିଟାଇ କଥାବାର୍ତ୍ତା ନ କରି ହୁଁ ହୁଁ ଶବ୍ଦ କରି ଓ ହାତରେ ଠାରି ମନର ଭାବ ପ୍ରକାଶ କରୁଥିଲେ; ସ୍ୱାମୀଙ୍କ ସଙ୍ଗେ ଦିବସରେ ବା ପ୍ରକାଶ୍ୟରେ ଦେଖା ବା କଥାଭାଷା କରୁ ନ ଥିଲେ; ଶଶୁର, ଅଧିକ ବୟସ୍କ ଦିଅର ଓ ବାହାରର ଲୋକଙ୍କ ଦେଖା ଦେଉ ନ ଥିଲେ; ସବୁବେଳେ ଓଢ଼ଣା ପକାଉଥିଲେ । ସ୍ତ୍ରୀମାନେ ଆପଣା ଦେଢ଼ଶୁର, ମଉଳାଶୁର, ସାନଭଉଣୀର ସ୍ୱାମୀଙ୍କୁ ଦେଖା ଦେଉ ନ ଥିଲେ କିମ୍ବା ସେମାନଙ୍କ ସଙ୍ଗେ କଥା କହୁ ନ ଥିଲେ । ସ୍ତ୍ରୀମାନେ; ବିଶେଷତଃ ବଧୂମାନେ ଦାଣ୍ଡକୁ ବାହାରୁ ନ ଥିଲେ; ବାହାରର ପୁରୁଷମାନଙ୍କୁ ଦେଖା ଦେଉ ନ ଥିଲେ କିମ୍ବା ସେମାନଙ୍କ ସଙ୍ଗେ କଥାଭାଷା କରୁ ନ ଥିଲେ; ଏ ସବୁ ମାଇନ ପ୍ରଥା ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ପ୍ରଭାବରୁ ସମାଜରୁ କମି ଗଲାଣି । ]

**ମାଇନକାରିଆ**—ଦେ. ବିଣ. ପୁଂ ( ସଂ. ମାନ + କାରୀ )—ଯେ
Māinakāriā ଗୁରୁଜନଆଦିଙ୍କୁ ସାମାଜିକ ଶିଷ୍ଟାଚାରସମ୍ମତ
(ମାଇନକା[ରୋ]ରି—ସ୍ତ୍ରୀ) ସମ୍ମାନ ଦେଖାଏ—( a male )
(ମାଇନକାରୀ—ପୁଂ ଓ ସ୍ତ୍ରୀରୂପ) Showing due respect
সমীহকারী and modesty to his elders.
**शिष्ट; नम्र; मानकरनेवाला**

**ମାଇନ ମର୍ଯ୍ୟାଦା**—ଗ୍ରା. ବି—ମାନ୍ୟ ମର୍ଯ୍ୟାଦା ( ଦେଖ )—
Māina marjyādā Mānya marjyādā ( See )
(ମାଇନମହତ—ଅନ୍ୟରୂପ) মানমর্য্যাদা **मानमर्यादा**

**ମାଇନର୍**—ବୈଦେ. ବି. ( ଇଂ )—୧ । ନାବାଳକ ପିଲା—1. A
Māinar minor boy or girl. ୨ । ଗଭର୍ଣ୍ଣମେଣ୍ଟଙ୍କ
মাইনর ପ୍ରବର୍ତ୍ତିତ ପ୍ରାଥମିକ ଶିକ୍ଷାର ପରବର୍ତ୍ତୀମାନ; ମଧ୍ୟ—
**माइनर** ଇଂରାଜି—2. Middle English or Minor

standard of secondary education approved by the Education Department of the Government. [ ଦ୍ର—ଉଚ୍ଚ ପ୍ରାଇମେରୀ ପରୀକ୍ଷାରେ ପାସ୍ କରି ଯେଉଁମାନେ କେବଳ 'ମାତୃଭାଷା'ରେ ଉଚ୍ଚତର ଶିକ୍ଷା ପାଆନ୍ତି ସେମାନେ ଭର୍ଣ୍ଣାକୁଲର (Vernacular) ଓ ଯେଉଁମାନେ ତହିଁ ସଙ୍ଗେ ଇଂରାଜୀ ଶିକ୍ଷା କରନ୍ତି ସେମାନେ ମାଇନର (Minor or Middle English) ପଢ଼ନ୍ତି । ]

ମାଇନର ସ୍କୁଲ—ବୈଦେ. ବି (ଇଂ)—ଯେଉଁ ବିଦ୍ୟାଳୟରେ Māinar skula 'ମାଇନର' ମାନ ପର୍ଯ୍ୟନ୍ତ ବିଦ୍ୟାଶିକ୍ଷା ମାইনর স্কুল ଦିଆଯାଏ; 'ମଧ୍ୟ-ଇଂରାଜୀ' ବା 'ମିଡ଼ିଲ୍ ଇଂଲିସ୍' **माईनर स्कूल** ବିଦ୍ୟାଳୟ—Middle English or Minor School. [ ଦ୍ର—ଏହିପରି 'ମାଇନର' ଶବ୍ଦ ସଙ୍ଗେ ବୃତ୍ତି, ପରୀକ୍ଷା, ପାସ୍, ଫେଲ୍, କ୍ଲାସ୍, ଷ୍ଟାଣ୍ଡାର୍ଡ଼, ସାର୍ଟିଫିକେଟ୍ ଆଦି ଶବ୍ଦ ଯୋଗ କରାଯାଇ ଓଡ଼ିଆ ଭାଷାରେ ଶବ୍ଦମାନ ବ୍ୟବହାର କରାଯାଏ । ]

ମାଇ(ଏ)ନା—ବୈଦେ. ବି—୧ । (ପା. ମାଅଏନାହ୍)—ଉତ୍ତମରୂପେ Māi(e)nā ପରୀକ୍ଷା କରିବା—1. Thorough examination. ମায়না [ ଉ—ପ୍ରଥମ ଦିନରେ ବୁଝିଲେଣି ଗୌରବାର ଉମଗ୍ରଏ **माइना** କ୍ଲାସ୍ ମାଇନା ସବାରେ କଠିନ ବୁଝିଲେଣି ଦିଆଗଲା । ଫକୀରମୋହନ. ଛମାଣ ଆଠଗୁଣ୍ଠ ।] [ଦ୍ର- ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ମଧ୍ୟ ବ୍ୟବହୃତ ହୁଏ; ଯଥା—ଡାକ୍ତରୀମାଇନା; କ୍ଲାସ୍ ମାଇନା; ସରକମିନ ମାଇନା । ] ୨ । ମাইনা (ପା. ମାହିନା)—ମାସିକ ଦରମା—2. Monthly **महीना** salary.

ମାଇନା କରିବା—ଦେ. କ୍ରି—କୌଣସି ବିଷୟ ଉତ୍ତମରୂପେ ପରୀକ୍ଷା Māinā kariba କରିବା—To investigate; to test মায়না করা **माइना करना** or examine a matter thoroughly.

ମାଇପ—ଗ୍ରା. ବି (ସ. ମାତୃ; ମାତୃକା; ପ୍ରା. ମାଇଅ)—୧ । ସ୍ତ୍ରୀ; Māipa ଭାର୍ଯ୍ୟା—1. Wife. [ ତାଙ୍କମାନଙ୍କର ତ ମাগ ମାଇପଙ୍କୁ ଥମ୍ଭେ, ଯେତେ କ୍ଲେଶ ଦେଲେ ବା ଜାଣିଥିଲ **जोरू, बहू मेहरी** ତୁମ୍ଭେ । କୃଷ୍ଣସିଂହ. ମହାଭାରତ ସଭା । [ ଦ୍ର—ମାଇପ ଆଗରେ ପାଇକ ପଣ କାଢ଼ିବା ନ୍ୟାୟ—ଭୀରୁ ବ୍ୟକ୍ତି ଅପଣା ସ୍ତ୍ରୀ ଆଗରେ ମୁହଁରେ ସାହସ ପ୍ରକାଶ କରିବା କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଭୀରୁତା ଦେଖାଇବା (ମିଝିପ—ଅନ୍ୟରୂପ) ଘଟଣାରେ ଏ ଉକ୍ତ ବୋଲାଯାଏ ।

ଏହି ଶବ୍ଦ ଅନ୍ୟ ଶବ୍ଦମାନଙ୍କ ପରେ ମଧ୍ୟ ଲାଗେ; ଯଥା—ଅମମା ମାଇପ, କନ୍ୟା ମାଇପ, ଟୋକା ମାଇପ, ଥୋଉ ବା ଥୋଇଲା ମାଇପ, ବୁଢ଼ିଆ ମାଇପ, ପୋଇଲା ମାଇପ, ବାଞ୍ଝ ମାଇପ, ବୁଢ଼ୀ ମାଇପ, ମଲଦ ମାଇପ, ଭଖେର ମାଇପ ଇତ୍ୟାଦି ।

ମାଇପ ଶବ୍ଦ ପୂର୍ବରେ ଉକ୍ତ କେତେକ ବିଶେଷଣ ପ୍ରୟୋଗ ନିମ୍ନଲିଖିତ ଭାବରେ ଦେଖାଯାଏ । ଯଥା—'ଅମମା ମାଇପ ମନ କରୁଛି, ମଲଦ ମାଇପ ଶୋକ ପାଉଛି, ଥୋଉ ମାଇପର ପାଳ, କନ୍ୟା ମାଇପ ବନ୍ଦାପନା ବିଭ, ଗେରସ୍ତ ବସିଛି ଭାଳ' । ମାଇପ ଶବ୍ଦ ଭାର୍ଯ୍ୟା ଅର୍ଥରେ ଓ ମାଇପୀ ବା ମାଇପେ ଶବ୍ଦ ସାଧାରଣ ସ୍ତ୍ରୀ ବା ସ୍ତ୍ରୀ ଜାତି ଅର୍ଥରେ ବ୍ୟବହୃତ ହୁଏ । ]

ମାଇପ(ପୀ) କଥା—ଗ୍ରା. ବି—୧ । ସ୍ତ୍ରୀର ଉପଦେଶ—1. Wife's Māipa(pi) kathā advice. [ ଉ—ମାଇପୀ କଥା, [ମାଇପ(ପି)କୁଥା—ଅନ୍ୟରୂପ] ପାଣ ବାଇଚା, ଯା ନ ଶୁଣିବ ମেয়েলী কথা କାଳେ । ଭଗ । ] ୨ । ସ୍ତ୍ରୀର ଅନୁରୋଧ— **औरतकी बात** 2. Wife's request. ୩ । ସ୍ତ୍ରୀ ଉଚିତ କଲା ବା କର୍ମ ବା ବିଷୟ—3. Words or acts or art befitting a female.

ମାଇପ କରିବା—ଗ୍ରା. କ୍ରି (ଅଶ୍ଳୀଳ)—ପରସ୍ତ୍ରୀର ବା ଯେ ନିଜର Māipa kariba ସ୍ତ୍ରୀ ନୁହେଁ ତାହାର ସହବାସ କରିବା— রাখা To cohabit a woman who is not **रखेली बनाना** one's wife.

ମାଇପ କାନିଧରା—ଗ୍ରା. ବିଣ. ପୁଂ—୧ । ସ୍ତ୍ରୈଣ; ଯେ ସର୍ବଦା ଅପଣା Māipa kānidharā ସ୍ତ୍ରୀର ସାହଚର୍ଯ୍ୟ ପାଇବା ପାଇଁ ଉତ୍କଣ୍ଠିତ আঁচল ধরা —1. Addicted to the company of **मौगियाहा** one's wife; clinging to the apron strings of one's wife; effeminate; voluptuous. ୨ । ଅତି ଭୀରୁ—2. Very cowardly. (ମାଇପ କଣ୍ଠଧରା—ଅନ୍ୟରୂପ) ✱ । ସ୍ତ୍ରୀବୁଦ୍ଧି ଚାଳିତ-3. Hen-pecked.

ମାଇପ(ପୀ) ଚଟା—ଗ୍ରା. ବିଣ. ପୁଂ—୧ । ଯେ ସ୍ତ୍ରୀର ମନରକ୍ଷା କରିବାକୁ Māipa(pi) chatā ସ୍ତ୍ରୀକୁ ସର୍ବଦା ତୋଷାମଦ କରେ— [ମାଇପ(ପୀ)ଚଟୁଆ—ଅନ୍ୟରୂପ] 1. A person given to স্ত্রৈণ flattering his wife to gain her favour. **मौगियाहा** ୨ । ସ୍ତ୍ରୀ ପ୍ରତି ଅତ୍ୟନ୍ତ ଆସକ୍ତ—2. Excessively attached to one's wife; hen-pecked.

ମାଇପ(ପୀ) ବୁଦ୍ଧି—ଗ୍ରା. ବି—୧ । ଅପଣାର ସ୍ତ୍ରୀର ପରାମର୍ଶ—1. The Maipa(pi) buddhi advice of one's wife. ୨ । মেয়ে মানুষের বুদ্ধি ସ୍ତ୍ରୀ ଜାତିର ବୁଦ୍ଧି—2. Womanly **औरतकी बुद्धि** intellect.

ମାଇପ(ପୀ) ବୁଦ୍ଧି(ଧି)ଆ—ଗ୍ରା. ବିଣ. ପୁଂ—ସ୍ତ୍ରୀ ବୁଦ୍ଧି ଦ୍ୱାରା ପରିଚାଳିତ; Miāpa(pi) buddhi(dhi)ā ନିର୍ବୋଧ—Hen-pecked; স্ত্রীবুদ্ধিতে চালিত **मौगियाहा**

ମାଇପ(ପୀ) ବୋଲ—ଗ୍ରା. ବି—ସ୍ତ୍ରୀର ଆଦେଶ—The order or Māipa(pi) bola স্ত্রীর কথা wish of one's wife. **औरतकी आज्ञा**

ମାଇପ(ପୀ) ବୋଲକରା—ଗ୍ରା. ବିଣ. ପୁଂ—ସ୍ତ୍ରୀର ଆଦେଶ ପ୍ରତିପାଳନକାରୀ—Hen-pecked; ruled Māipa(pi) bolakarā স্ত্রীর কথায় চলা by one's wife; acting in obedience **मौगियाहा** to the order or wishes of one's wife. (ମାଇପ(ପୀ) ବୋଲକାରିଆ—ଅନ୍ୟରୂପ)

ମାଇପ(ପୀ) ରଣ୍ଡା—ଗ୍ରା. ବିଣ. ଓ ବି. ପୁଂ—୧ । ମୃତଦାର—
Māipa(pī) raṇḍā 1. Widower. ୨ । (ଗଳ) ଯେଉଁ
মগ্ রাঁড়িআ ପୁରୁଷ ବଞ୍ଚି ଥାଇଁ ଥାଇଁ ତାର ଭାର୍ଯ୍ୟା ବିଧବା ପରି
रंडुआ, रँडा ନିସ୍ସହାୟା ହୋଇ ଚଳେ—2. A person
(ମାଇପ[ପୀ] ରଣ୍ଡି[ଣ୍ଡୁ]ଆ--ଅନ୍ୟରୂପ) whose wife's condition
is as helpless as that of a widow.

ମାଇପ(ପୀ) ସୁହା(ଆ)ଗ—ଗ୍ରା ବି-୧ । ନିଜର ସ୍ତ୍ରୀ ପ୍ରତି ଅଯଥା ବା ଅଧିକରୁ
Māipa(pī) suhā(ā)ga ଆଦର—1. Undue or exces-
স্ত্রীর সোহাগ sive fondness for or doting on one's
स्त्रीको प्यार करना wife. ୨ । ନିଜର ସ୍ୱାମୀ ପ୍ରତି ଅଧିକରୁ
ଆଦର—2. Excessive fondness for one's
husband.

ମାଇପ(ପୀ) ସୁହା(ଆ)ଗିଆ—ଗ୍ରା. ବିଣ. ପୁଂ—୧ । ଯେ ଆପଣା
Māipa(pī) suhā(ā)giā ସ୍ତ୍ରୀ ପ୍ରତି ଅଧିକରୁ ଆଦର
স্ত্রী সোহাগী ଦେଖାଏ—1. Doting on or showing
स्त्रीको बहुत प्यार करने वाला excessive fondness for
one's wife. ୨ । ଯାହାକୁ ନିଜର ସ୍ତ୍ରୀ ଅତ୍ୟଧିକ ଆଦର
ଦେଖାଏ—2. Excessively fondled by one's
(ମାଇପ ସୁହା[ଆ]ଗୀ —ଅନ୍ୟରୂପ) own wife.

ମାଇପ ହେବା—ଗ୍ରା. କି ( ଅଶ୍ଳୀଳ )—(କୌଣସି ସ୍ତ୍ରୀ) ପରପୁରୁଷଦ୍ୱାରା
Māipa hebā ରକ୍ଷିତା ହେବା—( a female ) To be
স্ত্রী হওয়া रखेली होना in the keeping of a person
as his mistress.

ମାଇପୀ—ଗ୍ରା. ବି, ସ୍ତ୍ରୀ—ସ୍ତ୍ରୀଲୋକ; ନାରୀ—Woman. [ ଯଥା—
Māipī মাগী ମାଇପୀଟା ଖିଏଣ୍ଟୀ ତାର ଘରେ ଗଲି । ପୁଚାଇଲେ
औरत; मेहरी (ଓଡ଼ିଶା—ଷଷ୍ଠସର୍ଗ) ବୁଦ୍ଧିର ମୋର ଛାତ୍ରିଏଣ୍ଟି—
মেয়েলী ଦୃଷ୍ଟିସିଂହ, ମହାରାଣୀର ଉଦ୍‌ଯୋଗ । ] ବିଣ—୧ । ସ୍ତ୍ରୀ
मौगियाहा ସୁଲଭ; ସ୍ତ୍ରୀଜନୋଚିତ—1. Befitting a female
୨ । ସ୍ତ୍ରୀଜାତୀୟ—2. Female.

ମାଇପୀ କଥା—ଗ୍ରା. ବି—୧ । ସ୍ତ୍ରୀଲୋକଙ୍କ ମଧ୍ୟରେ କଥାଭାଷା—
Māipī kathā 1. Conversation amongst females.
মেয়েলী কথা ୨ । ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଚର୍ଚ୍ଚା ହେବାର
औरतोंकी बात; मौगियाहा बात ଯୋଗ୍ୟ ବିଷୟ—
2. Minor matter which is fit for discussion amongst females. ୩ । ( ଲକ୍ଷଣାର୍ଥ )
ଅତ୍ୟନ୍ତ ନିରର୍ଥକ ବା ନିଷ୍ପ୍ରୟୋଜନ କଥା—3. (figurative ) Useless talk. ୪ । ସ୍ତ୍ରୀଜନୋଚିତ ବାକ୍ୟ
ବା ବିଷୟ—4. Any speech or matter befitting a female. ୫ । ଭାର୍ଯ୍ୟାର ଆଦେଶ—5. One's
wife's order.

ମାଇପୀ କାଳ—ଦେ॰ ବି॰-ଯେଉଁ ସମୟରେ ସ୍ତ୍ରୀଲୋକଙ୍କ ମତ ପ୍ରବଳ
Māipī kāla ହୁଏ—An age when the voice of
মেয়েদের যুগ women predominates; the age
औरतोंकी ज़माना; मौगियाहा ज़माना when the women
( ମାଇପୀ ଯୁଗ—ଅନ୍ୟରୂପ ) reign supreme.

ମାଇପୀ(ପେ) ଗାଧୁଆବେଳ(ଳା)—ଗ୍ରା. ବି—ସକାଳ ଓଳିର ପ୍ରଥମ ପ୍ରହର
Māipī(pe) gādhuā beḷa(ḷā) ବେଳ—The first quarter
মেয়েদের নাইবার সময় of the day when the women
औरतोंके नहानेका वक्त (the matrons) take their
bath.

ମାଇପୀ ଜାତି—ଗ୍ରା. ବି—ନାରୀଜାତି—Womankind; the
Māipī jāti women; women as a class.
নারীজাতি स्त्रीजाति

ମାଇପୀ ଡାହାଣା—ଗ୍ରା. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ସ୍ତ୍ରୀଲୋକଙ୍କୁ
Māipī ḍāhāṇā ଦେଖିବାକୁ ଲାଳାୟିତ ହୁଏ—1. Hanker-
স্ত্রীসঙ্গলোভী ing after the company or society
औरतलोभी; छिनरा or sight of females; voluptuous
୨ । ଯେଉଁ ବ୍ୟକ୍ତି ପରସ୍ତ୍ରୀ ଉପରେ ଲୋଭଦୃଷ୍ଟି ପକାଏ—
2. Casting sinister or lustful eyes on
other people's wives.

ମାଇପୀ ବିଚାର—ଦେ, ବି—କେତେଗୁଡ଼ିଏ ସ୍ତ୍ରୀଲୋକ ଏକତ୍ର ହୋଇ
Māipī bichāra ପରସ୍ପର ସମ୍ବନ୍ଧେ କରିବା ବିଚାର—Gossips
মেয়েলী বিচার amongst females when they meet
औरतोंका विचार together.

ମାଇପୀ ବୁଝାମ(ବ)ଣା—ଗ୍ରା. ବି—ସ୍ତ୍ରୀଲୋକମାନଙ୍କର ଅବୁଝାମଣା
Māipī bujhāma(ba)ṇā କଥା—Judgment or
মেয়েলী বিচার औरतोंका न्याय decision given by
women ( which is not just or correct ).

ମାଇପୀ ଲୋକ—ଗ୍ରା. ବି—ସ୍ତ୍ରୀ ବ୍ୟକ୍ତି—A woman; a female.
Māipī loka মেয়ে মানুষ, औरत

ମାଇପୀ ସଭା—ଗ୍ରା. ବି—ସ୍ତ୍ରୀଲୋକମାନଙ୍କର ଏକତ୍ର ବୈଠକ—
Māipī sabhā A gathering of females.
মেয়েদের সভা औरतोंकी सभा

ମାଇପେ—ଗ୍ରା. ବି. (ବହୁବଚନ)—୧ । ସ୍ତ୍ରୀଲୋକମାନେ—1. Women.
Māipe ୨ । ସ୍ତ୍ରୀଜାତି—2. Women generally; woman-
মেয়েরা औरतें kind. ୩ । ଭାର୍ଯ୍ୟାମାନେ—3. Wives.

ମାଇପୋ—ପ୍ରାଦେ. ( ଗଡ଼ଜାତ ) ବି. ସ୍ତ୍ରୀ—ମାଇଝି ( ଦେଖ )
Māipo Mā-ijhi (See)

ମାଇମୁହାଁ—ଦେ. ବି. ପୁଂ—୧ । ସ୍ତ୍ରୀଲୋକ ପରି ସୌମ୍ୟମୁଖବିଶିଷ୍ଟ—
Māimuhāṅ 1 (male) Having a womanly face.
মেয়েমুখো; মেয়েমুখো ୨ । ସ୍ତ୍ରୈଣ; ମାଇଚିଆ—2. Effeminate.
मौगमुहाँ ୩ । ସ୍ତ୍ରୀଙ୍କ ପରି ଭୀରୁ—3. Timid like a woman.
୪ । ସ୍ତ୍ରୀଙ୍କ ପରି ଲଜ୍ଜାଶୀଳ; ଲଜକୁଳୀ; ଲଜ୍ଜାଶୀଳ—
4. Modest; coy (like a woman); bashful.

ମାଇଲ୍(ଲି)—ବୈଦେ. ବି.(ଇଂ. ମାଇଲ)—ଦୂରତାର ଇଂରାଜୀ ପରିମାଣ,
Māil(li) ଏକ କୋଶର ପ୍ରାୟ ଅଧେ ଦୂରତ୍ୱ—One mile,
মাইল मील ସ୍ତ୍ରୀ, ମେଲି, ମାଇଲ (measure of distance

ମାଇଲ(ଲି)ଖୁଣ୍ଟ(ଣ୍ଟି)—ଦେ. ବି—ସଡ଼କରେ ମାଇଲ୍ର ସଂଖ୍ୟା ଲେଖା ହୋଇଥିବା ଦୂରତ୍ୱଜ୍ଞାପକ ପଥର ଖୁଣ୍ଟ— Māil(li)khuṇṭa(ṇṭi) ମାଇଲ খুঁটি **माइल खूंटि** Mile stone. [ଦ୍ର—ଏହା ସଡ଼କ ପାଖରେ ପ୍ରତି ମାଇଲ୍ ଶେଷରେ ପୋତା ହୋଇଥାଏ ଓ ଏଥିର ଭିନ୍ନ ଭିନ୍ନ ବଗରେ ଥିବା ସ୍ଥାନମାନ ଏହି ଖୁଣ୍ଟଠାରୁ କେତେ ଦୂରରେ ଅବସ୍ଥିତ ତାହା ଲେଖାଥାଏ ।]

ମାଇଲା—ଦେ. ବଣ—୧ । ମାରିଥିବା (ବ୍ୟକ୍ତି)—1.(one) Who has Māilā beaten. ୨ । ମାରୁଥିବା—2. Beating. ଦେ. হাততোলা କ୍ରି—ମାରିବା ଧାତୁର ଅତୀତକାଳ (ଅନାଦରାର୍ଥକ; **मारने वाला** ତୃତୀୟ ପୁରୁଷ, ଏକ ବଚନ; 'ସେ' କର୍ତ୍ତା ସଙ୍ଗେ ବ୍ୟବ- মারল ହୃତ ମାଇଲାର ବଳନ୍ତ ରୂପ—A form of '(he)' **मारा** beat. [ଦ୍ର—ଅଇଲା ତଳେ ଟୀକା ଦେଖ ।]

ମାଈ—ଦେ. ବଣ. ସ୍ତ୍ରୀ (ସ. ମାତୃ; ପ୍ରା. ମାଈ)—ସ୍ତ୍ରୀ ଜାତୀୟ (ଜୀବ)— Māī Female. (ଉ—ଧୂତରାଷ୍ଟ୍ର ବୋଇଲେ ମୋ ଜଥିଏ মাদী ମାଈ, ହେଲେ କି ହେ ସଞ୍ଜୟ କହ ତା କଥାଇ । କୃଷ୍ଣସିଂହ **मादी, मादा** ମହାଭାରତ. ଦ୍ରୋଣ ।) ବି—୧ । ସ୍ତ୍ରୀ ଜାତୀୟ ପ୍ରାଣୀ- 1. The female of an animal. ୨ । (ବ୍ୟଙ୍ଗ) ସ୍ତ୍ରୀ; ନାରୀ—2. Woman. (ଉ—କାଳୀ ମାଈ ! ତୁନ ବୋଲଲେ କି ଗୋଷ୍ଠ ହୋଇ ?—ଗୀତ) ୩ । ମଥା ଉଡ଼ିଁରୁ ଜାଲର ଏକ ଘର (ଯେଉଁ ଘରର ଫାନରୁ ସୂତା କାହାର କରାଯାଇ ଜାଲରେ ନୂଆ ଘର ବୁଣା ହୁଏ-3. A separately woven quadrangle of a casting net, which is attached to another new strip by means of a thread. ପ୍ରାଦେ. (ସମ୍ବଲପୁର) ବି—ସ୍ତ୍ରୀ ଲୋକ—A woman, (ଯଥା—ଗଉଡୁଣୀ ମାଈ ।) [ଦ୍ର—କୌଣସି ଜନ୍ତୁବାଚକ ଶବ୍ଦ ପୂର୍ବରେ ମାଈ ଶବ୍ଦ ଲାଗିଲେ ସେହି ଶବ୍ଦର ପୁଂଲିଙ୍ଗ ରୂପ ନ ବଦଳି ମଧ୍ୟ ସ୍ତ୍ରୀଜାତୀୟ ପ୍ରାଣୀକୁ ବୁଝାଏ ଯଥା— ମାଈ ଘୋଡ଼ା, ମାଈ ହାତୀ, ମାଈ ମଇଁଷି, ମାଈ କାକୁଆ; ମାଈ ମିରିଗ, ମାଈ ହଂସ ଇତ୍ୟାଦି ।]

ମାଈ ଅଣ୍ଡିରା—ଦେ. ବି ଓ ବଣ (ବିପରୀତ ଲିଙ୍ଗ ସହଚର ଶବ୍ଦ; ସ. Māī aṇḍirā ମାତୃ+ଅଣ୍ଡୀର)—ସ୍ତ୍ରୀଜାତୀୟ ଓ ପୁରୁଷଜାତୀୟ মাদী মদ্দা ଜୀବ—A female and a male animal; **मादी मर्द** female and male.

ମାଇଁ—ଦେ. ବି. ସ୍ତ୍ରୀ (ସ. ମାତୁଲାନୀ)—ମାମୁଙ୍କର ସ୍ତ୍ରୀ— Māiñ Maternal uncle's wife. (ମାମୁଁ[ମୁ]—ପୁଂ) মামী **मामी**

ମାଇଁ ଆଈ—ଦେ. ବି. ସ୍ତ୍ରୀ ( ସ. ମାତୁଲାନୀ+ଆର୍ଯ୍ୟା )—୧ । ଆପଣା Māiñ āī ପିତାଙ୍କର ବା ମାତାଙ୍କର ମାଇଁ—1. The wife of বাবার মামী one's father's or mother's maternal **माई, बुढी मामी** uncle. ୨ । (ବୃଦ୍ଧାର୍ଥକ ସହଚର ଶବ୍ଦ) ମାଇଁ ଓ (ମାମୁ ଅଜା—ପୁଂ) ଆଈ—2. Maternal aunt and mother's mother.

ମାଇଁ ଭଣଜା—ଦେ. ବି(ଆପେକ୍ଷିକ ସହଚର ଶବ୍ଦ)-ମାଇଁ ଓ ଭଣିଜେଯ— Māiñ bhaṇajā One's maternal uncle's wife and মামা ভাগনে one's self (both being related to **मामा भागिना** each other as aunt and nephew).

ମାଈ କାକର—ଦେ. ବି—ମାଘ, ଫଗୁଣ (ବସନ୍ତ କାଳ)ର ରାତ୍ରାନ୍ତରେ Māī kākara ପଡ଼ିବା କାକର—The dew that falls বসন্তের শিশির in the last part of the nights of **थोडा ओस, बसन्ती ओस** the months of Māgha and Phaguṇa (spring).

ମାଈ ଗଛ—ଦେ. ବି—ଯେଉଁ ଗଛରେ ଫଳ ଧରେ—A fruit- Māī gachha bearing tree. [ଦ୍ର—କେତେକ ଜାତିର ফলন্ত গাছ ଗଛ ଓ ଲତାରେ କେବଳ ଫୁଲ ଧରେ, କିନ୍ତୁ ଫଳ **फलदार पेड** ଧରେ ନାହିଁ ଓ କେତେକ ଗଛରେ ଫୁଲ ଧରି ଫଳ ଧରେ । ଶେଷୋକ୍ତ ଗଛକୁ ମାଈ ଗଛ ବୋଲାଯାଏ ।]

ମାଈ ଗିହା—ପ୍ରାଦେ. (ବାଲେଶ୍ୱର) ଗ୍ରା. (ଅଶ୍ଳୀଳ) ବଣ (ଭୁଲ ସ୍ଥ. ଏହି Māī gihā ଅର୍ଥରେ ସୌମ୍ୟାହା)—ମାଇଚ୍ (ଦେଖ) Māichā ( See )

ମାଈ ଗୋବର—ଦେ. ବି—ଗାଈର ଗୋବର—The dung of Māī gobara a cow, as distinguished from that গাভীর গোবর of a bull or bullock. [ଦ୍ର—ମାଈ **गाईका गोबर** ଗୋବର ବଳଦ ଗୋବର ଅପେକ୍ଷା ଚକ୍କଣ ।]

ମାଈ ଛୁଆ—ଦେ. ବି—ଜୀବମାନଙ୍କର ସ୍ତ୍ରୀ ଶିଶୁ—Female off- Māī chhuā springs of animals. (ମାଈ ପିଲା—ଅନ୍ୟରୂପ) মাদী বাচ্চা **मादी बच्चा**

ମାଈ ଦୁଧ—ଦେ. ବି. ( ସ. ମାତୃ+ଦୁଗ୍ଧ )—୧ । ସ୍ତ୍ରୀସନ୍ତାନ ଜନ୍ମ Māī dudha କରିଥିବା ମାତାର ଦୁଗ୍ଧ—1. The milk of a মাই দুধ mother when she has given birth to **माय दूध, जनाना का दूध** a female child. [ଦ୍ର—ଶିଶୁମାନଙ୍କ ଔଷଧ ଦେବା ପାଇଁ କେତେକ ଔଷଧକୁ ମାଈ ଦୁଧ ସଙ୍ଗେ ଗୋଳ କରି ଦେବାକୁ ହୁଏ । କେତେକ ନେତ୍ର ରୋଗରେ ମଧ୍ୟ ମାଈ ଦୁଧ ପକାଇବାକୁ ହୁଏ ।] ୨ । ସ୍ତ୍ରୀ ସ୍ତନରୁ ଉତ୍ପନ୍ନ ଦୁଧ—2. Milk from a woman's breast.

ମାଈ ନୁହେଁ କି ଗାଈ ନୁହେଁ—ଦେ. ବଣ—ଅତ୍ୟନ୍ତ ନିଷ୍କପଟ; ନିରୀହ; Māī nuheñ ki gāī nuheñ ଯେ ସହଜରେ ସବୁ କଥାରେ সাদাসিদে ଲାଗିଯାଏ—Very innocent; pliable. **भोलाभाला, माउग न पुरुष, बलगोबिना** [ଉ—ବୁଢ଼ାଟା ମାଈ ନୁହେଁ କି ଗାଈ ନୁହେଁ । କୁନ୍ତଳାକୁମାରୀ. ନଅଭୁଣୀ । ]

ମାଈ ଫାଶ—ପ୍ରାଦେ ( ବାଲେଶ୍ୱର ) ବି—ଜାଲ ବୁଣିବାରେ ବ୍ୟବହୃତ Māī phāsa ଫାଶ ବିଶେଷ—A kind of noose used in weaving nets. [ ଦ୍ର—ଏହି ଫାଶ ସାହାଯ୍ୟରେ ଜାଲର କୌଣସି ଧାଡ଼ିର ଫାଶ ସଂଖ୍ୟା ଇଚ୍ଛାନୁସାରେ ଅଧିକା କରି ହୋଇପାରେ ।]

ମାଈ ଫୁଲ—ଦେ. ବି—ବୃକ୍ଷଲତାର ଯେଉଁ ଫୁଲରେ ଫଳ ଧରେ— Māī phula Flowers which bring forth fruits.

(ଅଣ୍ଡିରି ଫୁଲ—ବିପରୀତ) [ ଦ୍ର—କଖାରୁ, ଲାଉ, କାକୁଡ଼, ଜହ୍ନି,
স্ত্রীপুষ্প କାଙ୍କଡ଼ ପ୍ରଭୃତି ଗଛରେ ଦୁଇ ପ୍ରକାର ଫୁଲ ଧରେ ।
स्त्रीपुष्प ଏକପ୍ରକାର ଅଣ୍ଡିରି ବା ଖାଲି ଫୁଲ ଓ ଅନ୍ୟଟି ଫଳ ସହିତ
ସଲଗ୍ନ ଫୁଲ ବା ମାଈ ଫୁଲ । ପ୍ରଥମ ପ୍ରକାର ଫୁଲ ଫୁଟି ଅଳ୍ପ
ସମୟ ପରେ ଝଡ଼ିପଡ଼େ । ]

ମାଈ ବାଛୁରି—ଦେ. ବି. ( ସଂ. ମାତୃ+ବତ୍ସା )—ସ୍ତ୍ରୀ ବତ୍ସା—
Māi bāchhuri A female calf.
মাঈবাছুর बाछी; बाछड़ी

ମାଈ ମାଛ—ଦେ. ବି—ଚିଙ୍ଗୁଡ଼ି ଛଡ଼ା ଅନ୍ୟ ଛୋଟ ମାଛ—
Māi māchha Small fishes except shrimps.
ছোটমাছ गीधनी

ମାଈ ରୁଅ—ଦେ. ବି—ଛଳଘରର ଯେଉଁ ରୁଅର ଉପର ମୁଣ୍ଡରେ
Māi rua ଅନ୍ୟ ରୁଅ ଗଳଥାଏ—A rafter to the upper end of which is thrust the lower end of the upper rafter in a thatched house.

ମାଉଁସ—ଦେ. ବି ( ସଂ. ମାଂସ; ପ୍ରା. ମାଅଁସ )—ମାଂସ ୧ ଓ ୨
Māunsa ( ଦେଖ )—Māmsa 1 and 2 ( See )
মাস; মাঁস [ ଉ—ଏହିରୂପେ ବହୁତ ଥର ସେ ମାଉଁସ ।
मांस, मास କୃଷ୍ଣସିଂହ. ମହାଭାରତ ବନ । ] [ ଉ—ଉମ୍ବ
ଛଅଣ କି ମାଉଁସରେ ଲେଖା ?—ଢଗ । ]

ମାଉଁସ ତରକାରି—ଦେ. ବି—ଜୀବର ମାଂସରେ ପ୍ରସ୍ତୁତ ତରକାରି—
Māunsa tarkāri Meat curry.
(ମାଉଁସ ଛଅଣ—ଅନ୍ୟରୂପ) মাঁসের তরকারী मांसकीतरकारी

ମାଉଁସ ଲଗିବା—ଦେ. ବି—ଶୀର୍ଣ୍ଣଦେହର ମାଂସ ବୃଦ୍ଧି ଯୋଗୁଁ ସ୍ଥୂଳତ
Māunsa lāgibā ଭାବ; ମେଦୋବୃଦ୍ଧି—Adding flesh;
মাংসলাগা मांसलगना, मांसबढ़ना becoming corpulent

ମାଉଁସିଆ—ଦେ. ବିଣ. ( ସଂ. ମାଂସଲ )—୧ । ମାଂସଲ—1. Fleshy
Māunsiā ୨ । ଥାକୁଲା; ମୋଟା; ସ୍ଥୂଳକାୟ—2. Corpulent
মাংসল; মোটা माँसवाला; मोटा fat; plump.

ମାଉଗ—ପ୍ରାଦେ. (ମେଦିନାପୁର) ବି (ବ. মাগী)—
Māuga ସ୍ତ୍ରୀ; ଭାର୍ଯ୍ୟା; ପତ୍ନୀ—Wife.

ମାଉନ୍ଦା—ଦେ. ବିଣ. ( ସଂ. ମନ୍ଦ )—୧ । ମାନ୍ଦା—1. Slow.
Māundā ୨ । ଅଳସ—2 Idle; lazy. ୩ । ନିରୁଦ୍ୟମ—
মান্দা 3. Having no exertion. [ଉ—ଏବେ ସେ
मन्दा କାଳ ଅସି ପ୍ରାପତ ହୋଇଛି, ମାଉନ୍ଦା ପରି କଷ୍ଟା ହେବ
କୁନ୍ତି ବସି । କୃଷ୍ଣସିଂହ. ମହାଭାରତ ଶାନ୍ତି ।]

ମାଉଳ—ପ୍ରାଦେ. (ବାଲେଶ୍ୱର) ବି—ଖାଳଅ ପତର—
Māuḷa The civet cat.

ମାଉଲି—ପ୍ରାଦେ. ( ସମ୍ବଲପୁର ) ବି. ସ୍ତ୍ରୀ—ପ୍ରେତଯୋନିବିଶେଷ—
Māuli A class of ghosts.

ମାଉସ(ସା)ଦ—ପ୍ରାଦେ. ( ବାଲେଶ୍ୱର ) ବି—ମହାପ୍ରସାଦ (ଦେଖ )
Māusa(sā)da Mahāprasāda ( See )

ମାଉସ(ସା)ଦ ତୋରାଣି—ପ୍ରାଦେ. (ବାଲେଶ୍ୱର) ବି—ମହାପ୍ରସାଦ
Māusa(sā)da torāṇi ତୋରାଣି (ଦେଖ)—Mahāprasāda torāṇi ( See ).

ମାଉସୀ—ଦେ. ବି. ସ୍ତ୍ରୀ (ସଂ. ମାତୃଷ୍ୱସୃ ଶବ୍ଦଜ ମାତୃଷ୍ୱସା; ପ୍ରା. ମାଉସିଆ)
Māusi ୧ । ମାଆଙ୍କ ଭଉଣୀ—1. Mother's sister.
মাসী, মাসী মা मावसी, [ ଦ୍ର—ମାତାଙ୍କ ପରି ମାଉସୀ ମଧ୍ୟ
माउसी; मौसी; मासी ପୁଅଝିଅମାନଙ୍କୁ ସ୍ନେହ କରନ୍ତି ।
( ମାଉସୀ ମା—ଅନ୍ୟରୂପ ) ଅନେକ ସମୟରେ ମାତୃଶୂନ୍ୟ ସନ୍ତାନ-
ସନ୍ତତିଙ୍କୁ ମାଉସୀ ପିଲାଦିନୁ ବଢ଼ାଇ ମନୁଷ୍ୟ କରିବାର
ଦେଖାଯାଏ । ଢଗ ମଧ୍ୟ ଅଛି—'ମାଆ ନଥିଲେ ମାଉସୀ
ଗାଈ ନ ଥିଲେ ମଇଁଷି, 'ଏ ଘର ମାଉସୀ ସେ ଘର
ପିଇସୀ;—ଢଗ । ବଙ୍ଗଳାରେ—ବରେର ଘରେ ମାସୀ;
କନେର ଘରେ ପିସୀ;) ଯେଉଁ ସ୍ତ୍ରୀ ସଙ୍ଗେ ବରକୁଳର
ଓ କନ୍ୟାକୁଳର ସମ୍ପର୍କ ଥାଏ ସେ ଉଭୟ କୁଳର କଥା
ଜାଣନ୍ତି । ସେହିପରି ଯେଉଁ ବ୍ୟକ୍ତି ବିପକ୍ଷ ଓ ପ୍ରତିଦ୍ୱନ୍ଦ୍ୱୀ,
ଉଭୟ ପକ୍ଷଙ୍କ ସହିତ ଘନିଷ୍ଠତା ରଖିଥାଆନ୍ତି ତାଙ୍କ ପ୍ରତି
ଏ ଢଗ ବୋଲାଯାଏ । ] ୨ । ସଙ୍ଗାତଙ୍କର ବା ଆପଣାର
ମିତ୍ରଙ୍କ ମାତା—2. The mother of one's friend.
୩ । ମାତୃସ୍ଥାନୀୟା ଓ ଆପଣାଠାରୁ ବୟୋଜ୍ୟେଷ୍ଠାମାନଙ୍କ
ପ୍ରତି ପ୍ରଯୁକ୍ତ ଉକ୍ତି—3. A term used in addressing elderly females and those who stand in the relation of a mother to the speaker.

ମାଉସୀ ନାନୀ—ଦେ. ବି. ସ୍ତ୍ରୀ—୧ । ମାତାଙ୍କର ଭଗିନୀ—1. The
Māusi nāni sister of one's mother. ୨ । ଦିତାମହୀଙ୍କ
ঠাকুরমা ଭଗିନୀ—2. The sister of one's grand-
बुढीदादी mother.

ମାଉସୀ ପୁଅ ଭାଇ—ଦେ. ବି. ପୁଂ. ( ସଂ. ମାତୃଷ୍ୱସ୍ରେୟ ଭ୍ରାତା )—
Māusi pua bhāi ଆପଣାର ମାଉସୀଙ୍କଠାରୁ ଜନ୍ମ ହୋଇଥିବା
মাসতুতো ভাই ପୁଅ ( ସେ ସମ୍ପର୍କରେ ଭାଇ ହୋଇଥିବାରୁ )—
मौसेरा भाइ One's cousin, being the son of one's
(ମାଉସୀ ଝିଅ ଭଉଣୀ—ବିପରୀତ) mother's sister.

ମାଉସୀ ମା—ଦେ. ବି. ସ୍ତ୍ରୀ—୧ । ପିତାଙ୍କ ମାଉସୀ—1. The mother's
Māusi mā sister of one's father. ୨ । ମାଉସୀ;
ঠাকুর মা ମାଆଙ୍କ ଭଉଣୀ—2. Mother's sister. ( ଦ୍ର—
मौसी; बुढीदादी ଜଗନ୍ନାଥଙ୍କ ମାଉସୀ ମା—ଏହା ବଡ଼ଦାଣ୍ଡର
ଦକ୍ଷିଣପାଖରେ ଥିବା ଗୋଟିଏ ଠାକୁରାଣୀଙ୍କ ଲୋକପ୍ରଚଳିତ
ନାମ । ଜଗନ୍ନାଥ ରଥଯାତ୍ରା ସମୟରେ ବଡ଼ଦାଣ୍ଡରେ
ଯିବାବେଳେ ଏହିଠାରେ ରଥ ଅଟକା ଯାଇ ଜଗନ୍ନାଥଙ୍କୁ
ପୋଡ଼ପିଠା ଭୋଗ ଲଗାଯାଏ । ] ପ୍ରାଦେ. (ସମ୍ବଲପୁର)
ଧାତ୍ରୀ; ଉପମାତା—One's foster-mother.

ମାଉସୀ ଶାଶୁ—ଦେ. ବ. ସ୍ତ୍ରୀ—ଆପଣାର ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ମାଉସୀ—
Māusi śāśu The sister of one's mother-in-law.
মাসশাস, মাশাশ मउसीशास; मौसेरा शास
( ମଉସା ଶଶୁର; ମଉସାଶୁର—ପୁଂ )

ମାଏ—ଦେ. ବି—୧ । ( ବହୁବଚନ ) ମାତାମାନେ—1. Mothers.
Māe ୨ । ( ଏକବଚନ; ସମ୍ମାନାର୍ଥେ ବହୁବଚନ ରୂପ ) ମାତା—
মা माँ 2. Mother. [ ଦ୍ର—ଛାଟ ଧର ମାଏ ବହୁତ ଗଞ୍ଜେ—
ଭକ୍ତଚରଣ. ମଥୁରାମଙ୍ଗଳ । ] ୩ । ( ସମ୍ବୋଧନ ) ହେ
ମାତଃ—3. O Mother! ବୈଦେ. ଅ. (ଫା. ମମ୍)—
माय मय ସବ; ସହିତ; ଏକତ୍ରରେ—Together; in all.

ମାଏଁସ—ଗ୍ରା. ବି ( ସ. ମାଂସ )—ମାଂସ ( ଦେଖ )
Māeṅsa Māṁsa ( See )

ମାଏକିରେ—ପ୍ରାଦେ. (ସମ୍ବଲପୁର) ଅ. ( ତୁଳ. ବ. ମାଇରି; ମାରକିରେ;
Māekire ହି. ମାତୃକିରିଆ )—( ଶପଥ ) ମୋ ମାଆଙ୍କ ରାଣ—
( an oath ) In the name of my mother.

ମାଏନ୍ ମନସା—ପ୍ରାଦେ. ( ସମ୍ବଲପୁର ) ବିଣ—ବହୁବିଧ; ଅନେକ-
Māen manasā ପ୍ରକାର—Various; of many kinds.

ମାଏପୋ—ପ୍ରାଦେ. ( ସମ୍ବଲପୁର ) ବି—ମାଇପ; ସ୍ତ୍ରୀ—
Māepo Wife.

ମାଂସ—ସ. ବି (ମନ୍ ଧାତୁ=ବୋଧ କରିବା+କର୍ମ. ସ)—୧ । ଶରୀରସ୍ଥ
Māṁsa କୋମଳାଂଶବିଶେଷ; ପିଶିତ—1. Flesh. [ ଦ୍ର—
ମାଂସ ଶରୀରସ୍ଥ ସପ୍ତ ଧାତୁ ମଧ୍ୟରେ ଏକ; ଏହା ଚକ୍କଣ
ବା ସ୍ନିଗ୍ଧ, କୋମଳ, ସ୍ଥିତିସ୍ଥାପକ ଓ ରକ୍ତବର୍ଣ୍ଣ ଅଟେ ।
ଏହା ଶରୀରର ରକ୍ତ, ହାଡ଼, ଚମଡ଼ା, ନାଡ଼ୀ, ଶିରା ଓ
ଚର୍ବିଠାରୁ ପୃଥକ୍ ବସ୍ତୁ ଅଟେ । ମାଂସର ପିଣ୍ଡମାନ ପରସ୍ପର
ସହିତ ସୂକ୍ଷ୍ମମାନଙ୍କଦ୍ୱାରା ବଦ୍ଧ ଥାଏ । ଏ ସୂତ୍ରମାନଙ୍କୁ
ମାଂସପେଶୀ କୋହାଯାଏ । ଶରୀରର ସବୁ ଅଂଶରେ ଅଳ୍ପ
ବେଶୀ ମାଂସ ଥାଏ । ମାଂସ କୋମଳ ହେବାରୁ ତାକୁ
ସହଜରେ ଛୁରିରେ କଟାଯାଇ ପାରେ । ମାଂସପେଶୀକୁ
ଇଚ୍ଛାନୁସାରେ ସଙ୍କୁଚିତ ପ୍ରସାରିତ କରାଯାଇ ପାରେ ।
ସୁଶ୍ରୁତ ମତରେ ଶରୀରସ୍ଥ ମାଂସପେଶୀର ସଂଖ୍ୟା ୫୦୦; କିନ୍ତୁ
ଆଧୁନିକ ବିଜ୍ଞାନ ମତରେ ଏଥିର ସଂଖ୍ୟା ୫୧୯ ଅଟେ ।
ବୈଦ୍ୟକ ମତରେ ଏହା ରକ୍ତରୁ ଉତ୍ପନ୍ନ ଗୋଟିଏ ଧାତୁ
ଅଟେ । ଭାବପ୍ରକାଶ ମତରେ ରକ୍ତ ଶରୀରର ତାପ ବା
ଅଗ୍ନିଦ୍ୱାରା ପରିପାକ ହେଲେ ତାହା ବାୟୁର ସଂଯୋଗରେ
ଘନୀଭୂତ ହୋଇ ମାଂସ ହୁଏ । ମାଂସର ଅନ୍ୟ ସଂସ୍କୃତ ନାମ
ଆମିଷ, ପିଶିତ, ପାଲଲ, କ୍ରବ୍ୟ, ପଲ, ଅସ୍ରଜ—ହି. ଶ । ]
୨ । ଖାଦ୍ୟାର୍ଥେ ବ୍ୟବହୃତ ମୃତ ବା ହତ ଜୀବର ମାଂସ—
2. Meat ( used as food ). [ ଦ୍ର—
ବୈଦ୍ୟକ ମତରେ ସବୁପ୍ରକାରର ମାଂସ ବାୟୁନାଶକ,
ଉପଚୟକାରକ, ବୃଂହଣ, ବଳବର୍ଦ୍ଧକ, ପୁଷ୍ଟିକାରକ, ଗୁରୁ,
ହୃଦୟଗ୍ରାହୀ ଓ ମଧୁର ରସ ଅଟେ । ବୈଦ୍ୟଶାସ୍ତ୍ର ମତରେ
ଖାଦ୍ୟ ମାଂସକୁ ଜାଙ୍ଗଲ ଓ ଅନୂପ ଭେଦରେ ୨ ଶ୍ରେଣୀରେ
ବିଭକ୍ତ କରାଯାଇଅଛି । ଜାଙ୍ଗଲ ମାଂସ ୮ ପ୍ରକାର; ଯଥା—
ଜଂଘାଳ, ବିଲସ୍ଥ, ଗୁହାଶୟ, ପର୍ଣ୍ଣମୃଗ, ବିଷ୍କିର, ପ୍ରତୁଦ,
ପ୍ରସହ ଓ ଗ୍ରାମ୍ୟ । ଅନୂପ ମାଂସ—କୁଲେଚର, ପ୍ଲବ,
କୋଶସ୍ଥ, ପାଦୀ ଓ ମତ୍ସ୍ୟ ଏହି ୫ ପ୍ରକାର । ପକ୍ଷୀମାନଙ୍କର
ପୁରୁଷଜାତିର ମାଂସ ଓ ପଶୁମାନଙ୍କର ସ୍ତ୍ରୀଜାତିର ମାଂସ
ସୁଖାଦ୍ୟ—ହି. ଶ. । ] ୩ । କାଳ—3. Time
(Apte). ୪ । କୀଟ—4 Insect; worm (Apte).
୫ । ଫଳର କୋମଳାଂଶ—5. The fleshy part of
a fruit ( Apte ).

ମାଂସକନ୍ଦୀ—ସ. ବି ( ୬ଷ୍ଠୀ ତତ୍ )—ମାଂସର ଫୁଲା ରୋଗ—
Māṁsakandī The swelling of the flesh.

ମାଂସକାରୀ—ସ. ବି (ମାଂସ+କୃ ଧାତୁ+କର୍ତ୍ତୃ. ଇନ୍; ମା. ୧ବ.)—
Māṁsakārī ରକ୍ତ—Blood.

ମାଂସ ଖଣ୍ଡ—ସ. ବି. ( ୬ଷ୍ଠୀ ତତ୍; ମାଂସ+ଖଣ୍ଡ )—ଖଣ୍ଡେ ମାଂସ;
Māṁsa khaṇḍa ଫାଳାଏ ମାଂସ—A bit of flesh; a
piece of meat; a lump of flesh.

ମାଂସ ଗ୍ରନ୍ଥି—ସ. ବି ( ୬ଷ୍ଠୀ ତତ୍ )—ଗିଲ୍ଟି; ପିଳୁଲୀ—
Māṁsa granthi A gland.

ମାଂସଜ—ସ. ବି ( ମାଂସ+ଜନ ଧାତୁ+କର୍ତ୍ତୃ. ଅ )—ଚର୍ବି—
Māṁsaja Fat; adeps (Apte).
( ମାଂସତେଜ—ଅନ୍ୟରୂପ )

ମାଂସତାନ—ସ. ବି—ଗଳାର ମାଂସବୃଦ୍ଧି ରୋଗ—
Māṁsatāna Polypus of the throat.

ମାଂସଦ୍ରାବୀ—ସ. ବି. ( ୬ଷ୍ଠୀ ତତ୍, ଏହା ମାଂସକୁ ଶୀଘ୍ର ସିଝାଇ ଦିଏ )—
Māṁsadrābī ଅମ୍ଳବେତସ; ଖଟାପାଳଙ୍ଗ ( ହି. ଶ )—
( ମାଂସାରୁ—ଅନ୍ୟରୂପ ) A kind of sorrel (Apte).

ମାଂସ ନିର୍ଯାସ—ସ. ବି ( ୬ଷ୍ଠୀ ତତ୍ )—ଦେହର କେଶ; ଲୋମ—
Māṁsa nirjāsa The hair of the body (Apte).

ମାଂସପ—ସ. ବି ( ମାଂସ+ପା ଧାତୁ+କର୍ତ୍ତୃ. ଅ )—ପିଶାଚ—
Māṁsapa Piśācha; goblin.

ମାଂସ ପଚନ—ସ. ବି ( ବହୁବ୍ରୀହି )—ମାଂସ ପାକ କରିବା ପାତ୍ର—
Māṁsa pachana A vessel for cooking meat
( Apte ).

ମାଂସ ପାକ—ସ. ବି—ଲିଙ୍ଗର ମାଂସ ଫାଟି ଯାଇ ପୀଡ଼ା ଦେବା ରୋଗ-
Māṁsa pāka ବିଶେଷ ( ହି. ଶ )—A disease causing
the bursting of the flesh of the penis.

ମାଂସ ପିଟକ—ସ. ବି—୧ । ମାଂସପୂର୍ଣ୍ଣ ଟୋକେଇ—1. A basket of
Māṁsa piṭaka meat. ୨ । ବହୁପରିମିତ ମାଂସ—
2. A large quantity of flesh.

ମାଂସ ପିଣ୍ଡ—ସ. ବି. (୬ଷ୍ଠୀ ତତ୍)—୧ । ଦେହ; ଶରୀର—1. Body.
Māṁsa piṇḍa ୨ । ମାଂସଖଣ୍ଡ—2. A lump of flesh.

ମାଂସ ପିତ୍ତ—ସ. ବି(୬ଷ୍ଠୀ ତତ୍ )—ଅସ୍ଥି—
Māṁsa pitta Bone ( Apte ).

ମାଂସ ପେଶୀ—ସଂ. ବି (୬ଷ୍ଠୀ ତତ୍)—ଶରୀରର ମାଂସପିଣ୍ଡମାନଙ୍କୁ ପରସ୍ପର
Māṁsa peśī ବାନ୍ଧିବା ମାଂସର ସୂତା—Muscle. [ ଦ୍ର—
ଆଧୁନିକ ଦେହତତ୍ତ୍ୱଜ୍ଞ ମତରେ ମାନବ ଦେହରେ ସର୍ବ-
ସମେତ ୫୧୯ ମାଂସପେଶୀ ଅଛି । ତନ୍ମଧ୍ୟରୁ ହସ୍ତ ପାଦରେ
୨୦୦, କୋଷ୍ଠଦେଶରେ ୬୬; ଗ୍ରୀବା ଓ ତାହାର ଊର୍ଦ୍ଧ୍ୱରେ
ଅର୍ଥାତ୍ ମସ୍ତକରେ ୩୪ଗୋଟି । ଶିରା, ସ୍ନାୟୁ, ଅସ୍ଥି, ପର୍ବ ଓ
ସନ୍ଧିସମୂହ ମାଂସପେଶୀଦ୍ୱାରା ଆବୃତ ହେବାରୁ ବଳବାନ୍ ଓ
କାର୍ଯ୍ୟକ୍ଷମ ହୁଏ । ]

ମାଂସ ଫଳ—ସଂ, ବି. (ଏହାର ଭିତର ମାଂସ ପରି ନାଲିଆ ଥିବାରୁ)—
Māṁsa phala ତରଭୁଜ ( ହି. ଶ. )—Melon.

ମାଂସଫଳା—ସଂ. ବି—ଭେଣ୍ଡି ( ହି. ଶ. )—
Māṁsaphalā Lady's finger.

ମାଂସ ବାରୁଣୀ—ସଂ. ବି—(ମ. ପ. ଲୋ)—ହରିଣ ଆଦି ମାଂସରୁ ପ୍ରସ୍ତୁତ
Māṁsa bāruṇī ଏକପ୍ରକାର ମଦିରା ( ହି. ଶ. )—A kind
of wine prepared from meat.

ମାଂସ ବିକ୍ରୟୀ—ସଂ. ବିଣ. ଓ ବି. ପୁଂ. ( ୬ଷ୍ଠୀ ତତ୍ )—୧ । ଯେ ମାଂସ
Māṁsa bikrayī ବିକ୍ରୟ କରେ; କଂସେଇ—1. Meat-
seller; butcher. ୨ । ଧନ ଲୋଭରେ ନିଜର
କନ୍ୟା ବିକ୍ରୟକାରୀ ବ୍ୟକ୍ତି (ହି. ଶ.)—2. One who
sells his daughter to a bridegroom for
money.

ମାଂସ ବୃଦ୍ଧି—ସଂ, ବି. (୬ଷ୍ଠୀ ତତ୍)—୧ । ଦେହସ୍ଥ ମାଂସର ବୃଦ୍ଧି—
Māṁsa bṛuddhi ( ଯଥା—ଗୋଦର; ଅର୍ବୁ; ଗଳଗଣ୍ଡ )—
1, Increase of the flesh in the body.
୨ । ଘାଆରେ ବା କ୍ଷତରେ ଛତୁ ପରି ମାଂସ ବଢ଼ିଯିବା—
2, Proud flesh; a fungus-like growth of
flesh in a wound. ୩ । ଅଣ୍ଡକୋଷର ମାଂସବୃଦ୍ଧି—
3. Scrotal tumour.

ମାଂସଭୁକ୍—ସଂ. ବିଣ. (ମାଂସ + ଭୁଜ୍ ଧାତୁ + କର୍ତ୍ତୃ. କ୍ୱିପ୍; ୧ମା. ୧ବ)
Māṁsabhuk ମାଂସଖାଦକ; ଯେଉଁ ଜୀବ ମାଂସ ଭକ୍ଷଣ କରେ
(ମାଂସ ଭୋଜୀ—ଅନ୍ୟରୂପ) ମାଂସାଦ, ମାଂସାଶୀ—Carnivo-
rous; flesh-eating; meat-eating,
(ମାଂସଭକ୍ଷ; ମାଂସ ଭକ୍ଷକ, ମାଂସ ଭକ୍ଷୀ —ଅନ୍ୟରୂପ)
ମାଂସ ଭକ୍ଷା, ମାଂସ ଭକ୍ଷିକା } —ସ୍ତ୍ରୀ
ମାଂସ ଭୋଜୀନୀ, ମାଂସ ଭକ୍ଷିଣୀ }

ମାଂସ ମଣ୍ଡ—ସଂ. ବି—ମାଂସର ଝୋଳ ବା ସୋରୁଆ—
Māṁsa maṇḍa Meat soup.

ମାଂସ ରସ—ସଂ ବି—(ବୈଦ୍ୟକ)—୧ । ବୈଦ୍ୟ ଶାସ୍ତ୍ର ନିର୍ଦ୍ଦେଶମତେ
Māṁsa rasa ପାକ କରିଯାଇ ମାଂସରୁ ପ୍ରସ୍ତୁତ ଏକ ପ୍ରକାର ରସ—
1. A kind of medicinal soup of
meat. [ ଦ୍ର—କୌଣସି ଔଷଧ ମିଶାଇ ମାଂସରସ
ପ୍ରସ୍ତୁତ କରିବାକୁ ହେଲେ, ଏକ ଭାଗ ଉକ୍ତ ଦ୍ରବ୍ୟ, ଦୁଇଭାଗ
ମାଂସ ଏକତ୍ର ସମୁଦାୟର ଦୁଇଗୁଣ ଜଳରେ ପାକ କରି
ଚତୁର୍ଥଭାଗରୁ ଏକ ଭାଗ ଜଳ ଅବଶିଷ୍ଟ ରହି ଛାଣିବ । ପରେ
ଏଥିରେ ଘିଅ ଓ ଲବଣ ସଂଯୋଗ କରି ସମ୍ଭାର କରିବ ।
ଦ୍ରବ୍ୟଗୁଣ କଳ୍ପଦ୍ରୁମ ।] ୨ । ସୋରୁଆ; ମାଂସ ସିଦ୍ଧ
କରି ଯାଇଥିବା ଝୋଳ—2, Meat soup. ୩ ।
(ଆଧୁନିକ) ଦେହର ପୁଷ୍ଟି ନିମନ୍ତେ ବ୍ୟବହୃତ କଞ୍ଚା ମାଂସ
ଚିପୁଡ଼ା ହୋଇ ତହିଁରୁ ବାହାରିବା ରସ—3. Meat
juice; liquid pressed out of raw meat.

ମାଂସ ରୋହିଣୀ—ସଂ. —ଏକ ପ୍ରକାର ଜଙ୍ଗଲୀ ଲତାଣିଆ ଗୁଳ୍ମ—
Māṁsa rohiṇī The Redwood tree; Soymida
Febrifuga. [ଦ୍ର—ଏହାର ପ୍ରତ୍ୟେକ ଡାଳର ଅଗରେ କ୍ଷୀରକ
କୋଳ ଗଛର ପତ୍ରପରି ୭।୮ଟି ପତ୍ର ଲାଗି ଥାଏ । ବୈଦ୍ୟକ ମତରେ ଏହା
ସାରକ, ବୃଷ୍ୟ, ତ୍ରିଦୋଷଘ୍ନ, ଶୀତ-
ବୀର୍ଯ୍ୟ, କଷାୟ ରସ, ରୁଚିଜନକ,
କ୍ରିମିନାଶକ ଓ କଣ୍ଠ ବିଶୋଧକ
(ଦ୍ରବ୍ୟଗୁଣ) ଓ ବ୍ରଣର କ୍ଷତକର
(ହି. ଶ) ।
ଅନ୍ୟ ସଂ. ନାମ—ଅତିରୁହା, ବୃତ୍ତା, ଚର୍ମକଷା(ଶା ), କଷା, ପ୍ରହାରବଲ୍ଲୀ, ବିକଷା, ବୀରବତୀ, ଅଗ୍ନିରୁହା, ଚର୍ମକଷା, କଷାମାଂସୀ, ମହାମାଂସୀ, ମାଂସରୋ(ରୁ)ହା; ରସାୟନୀ, ସୁଲୋମା, ଲୋମକର୍ଣ୍ଣୀ, ରୋହିଣୀ; ଚନ୍ଦ୍ରବଲ୍ଲଭା
[ମାଂସରୁ(ରୋ)ହା—ଅନ୍ୟରୂପ)
ଗୁ. ରୋଣ୍ୟ
ମ. ରୋହିଣୀ ଚାମରକଷା रोहणी

ମାଂସଲ—ସଂ. ବିଣ. ପୁଂ—(ମାଂସ + ଅସ୍ତି ଅର୍ଥରେ ଲ)—୧ । ମାଂସ-
Māṁsala ବିଶିଷ୍ଟ; ମାଉଁସିଆ—1. Fleshy. ୨ । ସ୍ଥୂଳକାୟ;
(ମାଂସଲା—ସ୍ତ୍ରୀ) ପୁଷ୍ଟ; ମୋଟା—2. Corpulent; fat.
[ମାଂସଲତା(ତ୍ୱ)—ବିଶେଷ୍ୟ]

ମାଂସଲଫଳା—ସଂ. ବି ( ବହୁବ୍ରୀହି )—୧ । ତରଭୁଜ ( ହି. ଶ. )—
Māṁsalaphalā 1. Melon. ୨ । ଭେଣ୍ଡି ( ହି. ଶ. )—
2. Lady's finger.

ମାଂସ ସମୁଦ୍ଭବା—ସଂ.ବି (ବହୁବ୍ରୀହି; ମାଂସ + ସମୁଦ୍ଭବ + ଆ)—ଚର୍ବି—
Māṁsa samudbhabā (ହି. ଶ )—Fat.
[ ମାଂସସ୍ନେହ—ଅନ୍ୟରୂପ ]

ମାଂସ ସାର—ସଂ. ବି ( ୬ଷ୍ଠୀ ତତ୍ )—ଶରୀରର ଅନ୍ତର୍ଗତ ମେଦ ନାମକ
Māṁsa sāra ଧାତୁ ( ହି. ଶ )—Marrow. ସଂ. ବିଣ
(ମାଂସସାରା—ସ୍ତ୍ରୀ) ପୁଂ ( ବହୁବ୍ରୀହି )—ହୃଷ୍ଟପୁଷ୍ଟ—Corpulent.

ମାଂସହାସା—ସଂ. ବି ( ମାଂସ + ହାସ + ଆ )—ଚମଡ଼ା ( ହି. ଶ )—
Māṁsahāsā Skin.

ମାଂସାଦ—ସଂ. ବିଣ. ପୁଂ (ମାଂସ + ଅଦ୍ ଧାତୁ = ଖାଇବା + କର୍ତ୍ତୃ. ଅ)—
Māṁsāda ମାଂସଭୋଜୀ—Carnivorous; flesh-eating;
meat-eating. ସଂ. ବି—ରାକ୍ଷସ—
A demon; a cannibal.
ମାଂସାଶନ } ଅନ୍ୟରୂପ
ମାଂସାଶୀ }
[ ମାଂସାଦା, ମାଂସାଶିନୀ—ସ୍ତ୍ରୀ ]

ମାଂସାଷ୍ଟକ—ସଂ. ବି. ସ୍ତ୍ରୀ—ମାଘମାସର କୃଷ୍ଣାଷ୍ଟମୀରେ କର୍ତ୍ତବ୍ୟ ମାଂସଯୁକ୍ତ
Māṁsāshṭaka ଶ୍ରାଦ୍ଧବିଶେଷ—An offering of meat
to the manes on the 8th day of the dark
fortnight of Māgha.

ମାଂସାହାର—ସଂ. ବି ( ୬ଷ୍ଠୀ ତତ୍ )—ମାଂସ ଭୋଜନ—Eating of
Māṁsāhāra meat. ସଂ. ବିଣ. ପୁଂ (ବହୁବ୍ରୀହି)—ମାଂସାହାରୀ
( ଦେଖ )—Māṁsāhārī ( See )

**ମାଂସାହାରୀ**—ସଂ. ବିଣ. ପୁଂ ( ମାଂସାହାର+ଇନ୍; ୧ମା. ୧ବ )—ମାଂସାଦ; ମାଂସଭୋଜୀ—Carnivorous; meat-eating.
Māṁsāhārī
(ମାଂସାହାରିଣୀ—ସ୍ତ୍ରୀ)

**ମାଂସିକ**—ସଂ. ବି ( ମାଂସ+ଜୀବିକାର୍ଥେ. ଇକ )—ଶୌନିକ; ମାଂସୋପଜୀବୀ; ମାଂସବିକ୍ରୟୀ; କଂସାଇ—A butcher; a meat-seller.
Māṁsika

**ମାଂସିକା**—ସଂ. ବି—ଜଟାମାଂସୀ ( ହି. ଶ )—Spikenard.
Māṁsikā

**ମାଂସୀ**—ସଂ. ବି—ଜଟାମାଂସୀ—1. Spikenard. ୨ । କାକୋଲୀ [ ହି. ଶ ] ( ଦେଖ )—2. Kākolī ( See ). ୩ । ମାଂସରୋହିଣୀ [ ହି. ଶ ] ( ଦେଖ )—3. The Redwood tree. ୪ । ଚନ୍ଦନ ତେଲ [ ହି. ଶ ]—4. Sandal oil. ୫ । ଅଲାଇଚ [ ହି. ଶ ]—5. Cardamom.
Māṁsī

**ମାଂସୌଦନ**—ସଂ. ବି ( ମ. ପ. ଲୋ; ମାଂସ+ଓଦନ; ମାଂସ ସହିତ ପକ୍ୱ ଅନ୍ନ )—ପଲାଉ—Pilau; rice boiled with meat and spices.
Māṁsaudana

**ମାଁମାଁ**—ପ୍ରାଦେ ( ଗଞ୍ଜାମ ) ବି—ମାତା; ମା; ଜନନୀ—Mother.
Mām̐mām̐

**ମାକ୍(ଙ୍କ)ଡ଼ି**—ପ୍ରାଦେ. (ବାଲେଶ୍ୱର) ବି. ( ସଂ. ମକରକୁଣ୍ଡଳ; ଭୁଲ. ବି. ମାକଡ଼ୀ)—କର୍ଣ୍ଣାଲଙ୍କାରବିଶେଷ—Name of a kind of earring.
Māk-(ṅk-)ṛḍi
( ମାଁକଡ଼ି—ଅନ୍ୟରୂପ )

**ମାକ(ଙ୍କ)ଡ଼**—ଦେ. ବି. ପୁଂ. ( ସଂ. ମର୍କଟ; ପ୍ରା. ମକଡ଼ )—ବାନର—Monkey. [ ଦ୍ର—ଆମ ଦେଶରେ ସାଧାରଣତଃ ଦୁଇପ୍ରକାର ମାକଡ଼ ଦେଖାଯାଆନ୍ତି । 'ହନୁମାକଡ଼' ଓ 'ପାଞ୍ଚମାକଡ଼' । ହନୁମାକଡ଼ଙ୍କ ମୁହଁ ଓ ହାତ ପାପୁଲି ଓ ତଳପା କଳା, ଲାଞ୍ଜ ବଡ଼ । ଏମାନେ ପାଞ୍ଚମାକଡ଼ ଅପେକ୍ଷା ଆକାରରେ ବଡ଼ । ପାଞ୍ଚମାକଡ଼ର ମୁହଁ ନାଲିଆ ଓ ଲାଞ୍ଜ ଛୋଟ । ପୁରୀ, ମଥୁରା, ବୃନ୍ଦାବନ ଆଦି ତୀର୍ଥ ସ୍ଥାନରେ ପାଞ୍ଚମାକଡ଼ମାନେ ଘରେ ପଶି ଲୁଗାପଟା, ଖାଦ୍ୟ ପଦାର୍ଥ ଓ ଛୋଟ ବାସନ ଆଦି ନେଇ ଯାଆନ୍ତି । ମଫସଲରେ ହନୁମାକଡ଼ମାନେ ଫସଲ ନଷ୍ଟ କରନ୍ତି, ଏପରିକି, ନଡ଼ିଆ ଗଛରେ ଚଢ଼ି କଞ୍ଚା ନଡ଼ିଆର କଡା ଛଡ଼ାଇ ଖାଇ ଯାଆନ୍ତି । ଏବେ ସହରରେ ମଧ୍ୟ ମାକଡ଼ଙ୍କ ଉପଦ୍ରବ ବେଶୀ ହେଲାଣି । ଏମାନେ ଅନେକ ଗଛର କଅଁଳ ପତ୍ର ଓ କଞ୍ଚା ବେଲକୁ ଗଛରୁ ଛିଣ୍ଡାଇ ପଥରରେ ପିଟି ତା ମଧ୍ୟରୁ ଶସ ଖାଉଥିବାର ଦେଖାଯାଇଅଛି । ବୋମ୍ୱାଇ ପ୍ରଦେଶରେ ଆଉ ଏକପ୍ରକାର ମାକଡ଼ ଅଛନ୍ତି ( ନୀଲବାନର ) । ଏମାନଙ୍କର ଦେହ ସବୁ, ଲାଙ୍ଗୁଡ଼ରେ ଗୋଛାଏ ବାଳ ଓ ମୁହଁ ଚାରିପାଖେ ବାଳ ଥାଏ । ଯାବା, ବୋର୍ଣ୍ଣିଓ, ଆଫ୍ରିକା, ଆମେରିକା ଆଦି ପ୍ରଦେଶରେ ନାନାପ୍ରକାର ମାକଡ଼ ଅଛନ୍ତି । ଏକପ୍ରକାର ମାକଡ଼ଙ୍କର ଲାଞ୍ଜ ଖୁବ୍ ଲମ୍ବ ଓ ଏମାନେ ଲାଞ୍ଜକୁ ଗଛର ଡାଳରେ ଗୁଡ଼ାଇ ଦେଇ ତଳକୁ ଝୁଲିପଡ଼ି ଏକ ଗଛରୁ ଅନ୍ୟ ଗଛକୁ ଡିଅନ୍ତି । ଏକପ୍ରକାର ମାକଡ଼ଙ୍କୁ 'ବନମନୁଷ୍ୟ' ବୋଲାଯାଏ । ଏମାନେ ମଧ୍ୟ ନାନା ଶ୍ରେଣୀରେ ବିଭକ୍ତ । ଏମାନଙ୍କର ଲାଞ୍ଜ ନାହିଁ । ଏମାନେ ଜଙ୍ଗଲରେ ଡାଳ ପତ୍ରରେ ଘର ତିଆରି କରି ରହନ୍ତି ।
Māka(ṅka)ṛḍa
ହି. बन्दर बन्दर, माकड़
ମାକ[ଙ୍କୁ]ଡ଼ୀ } ସ୍ତ୍ରୀ
ମାଙ୍କ[ଙ୍କୁ]ଡ଼ୀ

ରାମାୟଣରେ ରାମଚନ୍ଦ୍ର କପିରାଜ ସୁଗ୍ରୀବଙ୍କ ସହାୟତାରେ ବାନରସୈନ୍ୟଙ୍କଦ୍ୱାରା ସମୁଦ୍ରରେ ସେତୁବନ୍ଧ ନିର୍ମାଣ କରାଇ ଲଙ୍କା ଆକ୍ରମଣପୂର୍ବକ ରାବଣକୁ ବିନାଶ କରିବା ବର୍ଣ୍ଣିତ ହୋଇଅଛି । ରାମଚନ୍ଦ୍ରଙ୍କର ବନବାସ ସମୟରେ ଗୋଟିଏ ମର୍କଟବୀର ( ହନୁମାନ ) ସୀତାଙ୍କ ଠାବ କରି ଅସାଧ୍ୟ ସାଧନ କରି ରାମଚନ୍ଦ୍ରଙ୍କର ବହୁ ଉପକାର କରିଥିଲେ ଓ ସେ ରାମଚନ୍ଦ୍ରଙ୍କର ପ୍ରଧାନ ଭକ୍ତ । ଏଥିପାଇଁ ମାକଡ଼ମାନେ ଅତି ଅତ୍ୟାଚାର କଲେ ମଧ୍ୟ ହିନ୍ଦୁମାନେ ସେମାନଙ୍କୁ ହନୁମାନର ବଂଶଧର ଭାବି ବଧ କରନ୍ତି ନାହିଁ । ମାକଡ଼ମାନେ ଦଳ ବାନ୍ଧି ରହନ୍ତି ଓ ଗୋଟିଏ ବଳିଷ୍ଠ ଅଣ୍ଡିରା ମାକଡ଼ ସ୍ତ୍ରୀଦଳ ମଧ୍ୟରେ ସର୍ଦ୍ଦାର ( ଗୋଧ )ରୂପେ ଥାଏ । ଦଳ ମଧ୍ୟରେ ଅଣ୍ଡିରା ପିଲା ଜନ୍ମ ହେଲେ ଗୋଧ ସେମାନଙ୍କୁ ମାରିପକାଏ । ତେଣୁ ଅଣ୍ଡିରା ପିଲାମାନେ ପଳାଇ ଯାଇ ଜୀବନ ରକ୍ଷା କରନ୍ତି ସେମାନେ ଏକତ୍ର ଦଳ ବାନ୍ଧି ରହନ୍ତି; ସେମାନଙ୍କୁ 'ପାଞ୍ଚଭାଇଆ ଗୋଧ' କହନ୍ତି । ଏମାନେ ଭାରି ଦୁର୍ଦ୍ଦାନ୍ତ ହୁଅନ୍ତି ଓ ସମୟ ସମୟରେ ସ୍ତ୍ରୀଦଳର ଦଳପତି ସଙ୍ଗେ ଯୁଦ୍ଧ କରନ୍ତି ଓ ଉକ୍ତ ଦଳରୁ କେତେକ ସ୍ତ୍ରୀଙ୍କୁ ନେଇ ନିଜେ ଗୋଟିଏ ଗୋଟିଏ ଦଳପତି ହୁଅନ୍ତି । ହନୁଙ୍କ ଶିଶୁମାନେ ମାଆର ପେଟତଳକୁ ମୁଠାଇ ଧରି ଝୁଲି ରହନ୍ତି ଓ ପାଞ୍ଚଙ୍କ ଶିଶୁମାନେ ମାଆର ପିଠିରେ ଲାଖି ହୁଅନ୍ତି । ପାଞ୍ଚମାନେ ଅତ୍ୟନ୍ତ ଅନୁକରଣପ୍ରିୟ । ଲୋକେ ପାଞ୍ଚଙ୍କୁ ପୋଷି ନାନାପ୍ରକାର ଖେଳ କୌତୁକ ଦେଖାଇ ରୋଜଗାର କରନ୍ତି । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ମାକଡ଼ମାନେ ମନୁଷ୍ୟମାନଙ୍କର ପୂର୍ବପୁରୁଷ ଥିଲେ । ସାହେବମାନେ ଭିନ୍ନ ଭିନ୍ନ ଦେଶର ମାକଡ଼ମାନଙ୍କ ବିଷୟ ଗବେଷଣା କରି ମାକଡ଼ମାନଙ୍କ ମଧ୍ୟରେ ପ୍ରଚଳିତ ପରସ୍ପର ଭାବ ଆଦାନ ପ୍ରଦାନର ଭାଷା ସ୍ଥିର କରିଅଛନ୍ତି ।

ନିମ୍ନରେ କେତେଗୁଡ଼ିଏ ମାକଡ଼ଙ୍କର ନାମ, ବିବରଣ ବାସସ୍ଥାନ ୱେବ୍‌ଷ୍ଟରର ଇଂରାଜୀ ଡିକ୍‌ସିନାରୀ ( Webster's Dictonary )ରୁ ସଂଗୃହୀତ ହୋଇଅଛି ।

୧ । Ape ( ଏପ୍ ) ପାଞ୍ଚ ମାକଡ଼ । [ No 20 Rhesus (ନଂ ୨୦ ରେସସ୍) ଦେଖ । ] ୨ । Barbary ape ( ବାର୍ବେରୀ ଏପ୍ ) ଏମାନେ ଉତ୍ତର ଆଫ୍ରିକାରେ ଓ ଦକ୍ଷିଣ ଇଉରୋପରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ନାହିଁ; ୨ ଗୋଡ଼ରେ ଚାଲନ୍ତି । ଇଉରୋପରେ ଏହି ମାକଡ଼ଙ୍କ ଛଡ଼ା ଅନ୍ୟ ମାକଡ଼

ଜାହାନ୍ତି । ( Macacus Innuus.) ୩ । Baboon ( ବାବୁନ୍ ) ଆଫ୍ରିକାରେ ବାସ କରନ୍ତି । ଏମାନେ ଦେଖିବାକୁ ପାଭଙ୍କ ପରି, କିନ୍ତୁ ଏମାନଙ୍କର ମୁହଁ କୁକୁର ମୁହଁ ଭଳି; (Cinocephalus Porcarius.) ୪ । Capuchin ( କାପୁଚିନ୍ )—ଦେଖିବାକୁ ହନୁ ପରି Cebus Capucinus [ No. 23 Sapajou ( ନ ୨୩ ସାପାଜୌ ) ଦେଖ ] ୫ । Coaita ( କୋଅଇଟା )—ଦକ୍ଷିଣ ଭାରତୀୟ ଦ୍ୱୀପପୁଞ୍ଜରେ ବାସ କରନ୍ତି । ଏମାନଙ୍କ ଲାଞ୍ଜ ଓ ହାତଗୋଡ଼ ଲମ୍ବ । ଏମାନେ ହନୁ ମାକଡ଼ ଜାତୀୟ ଅଟନ୍ତି; ( Atelus Paniscus.) ୬ । Drill ( ଡ୍ରିଲ୍ )—ପାଭମାକଡ଼ ପରି । ୭ । Cimpānzee ( ସିମ୍ପାଞ୍ଜି )—ଆଫ୍ରିକାରେ ବାସ କରନ୍ତି । ଏମାନଙ୍କୁ ବନ ମନୁଷ୍ୟ କୁହାଯାଏ । ଏମାନଙ୍କର ଲାଞ୍ଜ ନାହିଁ; ଉଚ୍ଚରେ ୩।୪ ଫୁଟ ପର୍ଯ୍ୟନ୍ତ ହୁଅନ୍ତି । ଏମାନଙ୍କର ଦେହର ମନୁଷ୍ୟର ଦେହ ସଙ୍ଗେ ବହୁପରିମାଣରେ ସାଦୃଶ୍ୟ ଅଛି; [ Ānthropithecus Troglodites ] ୮ । Entellus ( ଏଣ୍ଟେଲସ୍ ), Honuman ( ହନୁମାନ୍ ) ବା Hongoor [ହଙ୍ଗୁର୍ ]—ଭାରତରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ବଡ଼ । ଏମାନଙ୍କୁ ହନୁମାକଡ଼ କୁହାଯାଏ । [ Semnopithecus Entellus.] ୯ । Gibbon ( ଗିବନ୍ )—ଦକ୍ଷିଣ ଆସିଆ ଓ ଭାରତୀୟ ଦ୍ୱୀପପୁଞ୍ଜରେ ବାସ କରନ୍ତି । ଏମାନେ ଏକପ୍ରକାର ବନ ମନୁଷ୍ୟ । ଏମାନଙ୍କର ଲାଞ୍ଜ ନାହିଁ । ହାତ ଖୁବ୍ ଦୀର୍ଘ । [ Genus Hylobates ] ୧୦ । Gorilla ( ଗରିଲା )—ପଶ୍ଚିମ ଆଫ୍ରିକାରେ ବାସ କରନ୍ତି । ଏମାନେ ଏକପ୍ରକାର ବନ ମନୁଷ୍ୟ । ମନୁଷ୍ୟଠାରୁ ଦୀର୍ଘତର; ଅତ୍ୟନ୍ତ ଉଗ୍ରପ୍ରକୃତି, ଯୁଦ୍ଧପ୍ରିୟ ଓ ଖୁବ୍ ବଳବାନ୍ । [ Ānthropythecus; Troglodite ]. ୧୧ । Howler ( ହାଉଲର୍ )—ଦକ୍ଷିଣ ଆମେରିକାରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ବଡ଼; ମୁହଁରେ ଦାଢ଼ି ଅଛି । ଏମାନେ ଭାରି ଗର୍ଜନ କରନ୍ତି । [Genus, Mycetes ] ୧୨ । Indris ( ଇଣ୍ଡ୍ରିସ୍ )—ମାଡାଗାସ୍କାର ଦ୍ୱୀପରେ ବାସ କରନ୍ତି । ଏମାନେ ରୋମଶ ଓ ଲେମୁର୍ ଜାତୀୟ ଅଟନ୍ତି । ୧୩ । Kaha (କାହା) ବା Kāhāu (କାହାଉ) —ବୋର୍ଣ୍ଣିଓ ଦ୍ୱୀପରେ ବାସ କରନ୍ତି । ଏମାନଙ୍କର ଦାଢ଼ି ଅଛି; ନାକ ଦୀର୍ଘ; ବର୍ଣ୍ଣ ସଫା ହଳଦିଆ ଓ ଆରକ୍ତ । [ Semnopithecus Nāsālis]. ୧୪ । Kukāng ( କୁକାଙ୍ଗ୍ ), Lemur ( ଲେମୁର ), Gālāgo ( ଗାଲାଗୋ )—ମାଡାଗାସ୍କାର ଓ ଭାରତୀୟ ଦ୍ୱୀପପୁଞ୍ଜରେ ବାସ କରନ୍ତି; ମାକଡ଼ଙ୍କଠାରୁ ଶ୍ରେଷ୍ଠ; ଲାଞ୍ଜଯାକ କେଶପୂର୍ଣ୍ଣ । ଏମାନଙ୍କ ମୁହଁ ଗୋଜିଆ, ଦେହଯାକ ପଟା ପଟା ଦାଗ । ଏମାନେ ମାଂସାଶୀ ଓ ରାତ୍ରିଚର ଅଟନ୍ତି । ୧୫ । Māndril ( ମାଣ୍ଡ୍ରିଲ୍ )—ପଶ୍ଚିମ ଆଫ୍ରିକାରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ନାହିଁ; ମୁହଁ ଅତି ବଡ଼; ଗୋଟିଏ ଥୋମଣି ଅଛି । ଏମାନେ ଚାରିଗୋଡ଼ରେ ଚାଲନ୍ତି । ୧୬ । Lori ( ଲୋରି ) ବା Loris (ଲୋରିସ୍)—ସିଂହଳ ବା ଲଙ୍କା ଦ୍ୱୀପରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ନାହିଁ, ମୁହଁର ଥୋମଣି ଗୋଜିଆ । ଏମାନେ ଏକଫୁଟ ଉଚ୍ଚ ହୁଅନ୍ତି । [ Genus Stenops ] ୧୭ । Orāng ( ଓରାଙ୍ଗ ), Orāng outāng ( ଓରାଙ୍ଗ୍ ଅଉଟାଙ୍ଗ୍ ) Orāng utān ( ଓରାଙ୍ଗ ଉଟାନ୍ )—ବୋର୍ଣ୍ଣିଓ ଓ ସୁମାତ୍ରା ଦ୍ୱୀପପୁଞ୍ଜରେ ବାସ କରନ୍ତି । ଏମାନେ ଏକପ୍ରକାର ବନ ମନୁଷ୍ୟ; ଅବିକଳ ମନୁଷ୍ୟ ପରି । ଏମାନଙ୍କର ବର୍ଣ୍ଣ ଆରକ୍ତ ପାଣ୍ଡୁର । ଏମାନେ ଠିଆ ହେଲେ ହାତ ଭୂଇଁରେ ଲାଗେ [ Simiā Sātyrus]. ୧୮ । Ouākāri ( ଓକାକାରି )—ଦକ୍ଷିଣ ଆମେରିକାରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ଛୋଟ । ଏମାନେ ଦେଖିବାକୁ ପାଭଙ୍କ ପରି । ଏମାନଙ୍କ ପିଠିର ଲୋମ ବଡ଼ । [ Brāchyrus Ouākāri ]. ୧୯ । Potto [ ପୋଟୋ ], Kukājou [ କୁକାଜୌ ], Bushdog [ ବୁସ୍‌ଡଗ୍ ]—ପଶ୍ଚିମ ଆଫ୍ରିକାରେ ବାସ କରନ୍ତି । ଏମାନଙ୍କର ହାତ ଗୋଡ଼ର ପାପୁଲି ବଡ଼ ଓ ଆଙ୍ଗୁଠି ବଡ଼ । ଏମାନେ ରାତ୍ରିଚର । ୨୦ । Rhesus [ ରେସସ୍ ] Ape [ ଏପ୍ ]—ଦକ୍ଷିଣ ଇଉରୋପରେ ବାସ କରନ୍ତି । ଏମାନେ ଏକପ୍ରକାର ପାଭ ମାକଡ଼ । ଏମାନଙ୍କର ଲାଞ୍ଜ ଅଛି । ଭାରତର ପାଭ ମାକଡ଼ ମଧ୍ୟ ଏହି ଜାତୀୟ ଅଟନ୍ତି । [ Genus Simiadae]. ୨୧ । Pluto monkey. ( ପ୍ଲୁଟୋ ମଙ୍କି )—ଆଫ୍ରିକାରେ ବାସ କରନ୍ତି । ଏମାନଙ୍କର ଦେହ ଓ ମୁହଁତମାମ୍ ଅତ୍ୟନ୍ତ ଲୋମଶ । ଏମାନଙ୍କର ଗାଲମୁଛ ଅଛି । [ Cercopythecus Pluto ] । ୨୨ । Sāki [ ସାକି ]—ଦକ୍ଷିଣ ଆମେରିକାରେ ବାସ କରନ୍ତି । ଏମାନଙ୍କର ଦେହ, ମୁହଁ ଓ ଲାଞ୍ଜ ଲୋମଶ । ଏମାନଙ୍କ ଦେହ କୃଷ୍ଣବର୍ଣ୍ଣ, ମୁହଁ ଧଳା, ଏମାନେ ହାତ ଅଞ୍ଜୁଳା କରି ପାଣି ପିଅନ୍ତି । [ Genus, Pithecia ] ୨୩ । Sāpājou [ ସାପାଜୌ ], Sājou [ ସାଜଉ ], Sāi [ ସାଇ ], Cāpuchin [ କାପୁଚିନ୍ ]—ଦକ୍ଷିଣ ଆମେରିକାରେ ବାସ କରନ୍ତି । ଏମାନଙ୍କ ଲାଞ୍ଜ ଓ ହାତଗୋଡ଼ ଲମ୍ବା । ଏମାନଙ୍କ ଦେହ ସରୁ । [ Genus-Cebds ] ୨୪ । Spider monkey ( ସ୍ପାଇଡର ମଙ୍କି )—ଦକ୍ଷିଣ ଆମେରିକାରେ ବାସ କରନ୍ତି । ଏମାନଙ୍କ ଦେହ ଖୁବ୍ ସରୁ । ଏମାନଙ୍କ ଲାଙ୍ଗୁଡ଼ ଓ ହାତଗୋଡ଼ ଖୁବ୍ ଲମ୍ବା ଓ ସରୁ । ଏମାନେ ଲାଙ୍ଗୁଡ଼କୁ ଡାଳରେ ଛନ୍ଦାଇ ଝୁଲି ପଡ଼ି ଅନ୍ୟ ଡାଳକୁ ଯାଆନ୍ତି । [ Genus Atelus ] ୨୫ । Squirrel monkey ସ୍କୁଇରେଲ୍

ମଙ୍କି )—ଦକ୍ଷିଣଅମେରିକାରେ ବାସ କରନ୍ତି । ଏମାନେ ହନୁଙ୍କ ପରି, କିନ୍ତୁ ଆକାରରେ ଶ୍ରେଷ୍ଠ । [ Callithrix Sceuria ] ୧୬ । Vervet ( ଭର୍ଭେଟ୍ )—ଦକ୍ଷିଣ-ଆଫ୍ରିକାରେ ବାସ କରନ୍ତି, ଏମାନେ ପାଙ୍ଗଙ୍କ ପରି, କିନ୍ତୁ ଦାଢ଼ି ଅଛି । [ Cercopythecus Pygerythrus ] ୧୭ । Wanderoo ( ୱାଣ୍ଡରୁ )—ବମ୍ବେ ଓ ମାଲବାର ଉପକୂଳରେ ବାସ କରନ୍ତି । ଏମାନେ ଦୀର୍ଘକାୟ, ଲୋମଶ ଓ ଏମାନଙ୍କ ଲାଞ୍ଜ ଅଗରେ ଗୋଛାଏ ବାଳ ଅଛି । ଏମାନଙ୍କ ମୁହଁ ଚାରିପାଖେ ଦାଢ଼ି ବେଢ଼ିଥାଏ; ଦେହ କୃଷ୍ଣବର୍ଣ୍ଣ । ଏମାନଙ୍କୁ ମାଲବାନର କହନ୍ତି । [Macacus Silenus] ୧୮ । Yuen ( ଇଉଏନ୍ )—ଶ୍ୟାମ ଓ ଦକ୍ଷିଣ ଚୀନ୍‌ରେ ବାସ କରନ୍ତି । ଏମାନଙ୍କ ଲାଞ୍ଜ ଓ ଦେହ ଲୋମଶ, ହାତ ଗୋଡ଼ ଲମ୍ବା । ଏମାନେ ପାଳି ଜାତୀୟ ଅଟନ୍ତି ।

ମାକଡ଼ ହାତରେ ଶାଳଗ୍ରାମ, ହଲେଇ ହଲେଇ ନେଲା ପ୍ରାଣ । ନ୍ୟାୟ--ମାକଡ଼ ଶାଳଗ୍ରାମଙ୍କର ଦେବତ୍ୱ ନ ବୁଝି ତାଙ୍କୁ ଅନାଦର କଲାପରି, କୌଣସି ଲୋକ କୌଣସି ପୂଜ୍ୟ ବା ମୂଲ୍ୟବାନ ଜିନିଷର ଅସଦ୍‌ବ୍ୟବହାର କଲେ ଏହି ନ୍ୟାୟ ଲୁହାଯାଏ । ]

ମାକଡ଼ କେନ୍ଦୁ—ଦେ. ବି. ( ସଂ. ତିନ୍ଦୁକ )—ଏକପ୍ରକାର କେନ୍ଦୁ ଗଛ
Mākarda kendu —Diospyrus Embreyopteris;
গাব; আবলুস ebony [ ଦ୍ର—ଏହି ଗଛର ମଞ୍ଜିରୁ ଅବଲୁସ୍
आबनूस; माकरकेन्दि କାଠ ହୁଏ । ଏହା ଅତ୍ୟନ୍ତ କୃଷ୍ଣବର୍ଣ୍ଣ । ]
ଅ. ଆବନସ—ଇ—ହିନ୍ଦ

ମାକଡ଼ଚିତି—ଦେ. ବି—ଉଚ୍ଚସ୍ଥାନରୁ ବଙ୍କା ଭାଙ୍ଗି ପାଣି ଉପରକୁ ଡେଇଁ
Mākardachiti ପାଣିରେ ଚିତ୍ ହୋଇ ପଡ଼ିବା—
ডীগবাজী अलङ्घित Somersault on water.

ମାକଡ଼ଚିତି ମାରିବା—ଦେ. କ୍ରି—ଉଚ୍ଚସ୍ଥାନରୁ ଡେଇଁ ପାଣି ଉପରେ
Mākardachiti māribā ଲେଉଟି ପଡ଼ି ଚିତ ହୋଇଯିବା—
ডীগবাজী খাওয়া To turn a somersault over
अलंगचीत फानना (कुदना) water.

ମାକଡ଼ ଫାଶ—ପ୍ରାଦେ ( ସମ୍ବଲପୁର ) ବି—ବାନ୍ଧୁଆ ଫାଶ—
Mākarda phāśa Reef knot.

ମାକଡ଼ ବସା—ଦେ. ବି—ଛୋଟ ପାଣ୍ଡୁର କଙ୍କଡ଼ା ବିଛା—Small
Mākarda basā brown scorpion; whip scorpion.
ছোট কাঁকড়া বিছে [ ଦ୍ର—ଏମାନେ ମାକଡ଼ସା ଶ୍ରେଣୀର
छोटा ककर बिच्छा ଅନ୍ତର୍ଗତ । ]

ମାକଡ଼ ମୁହାଁ—ଦେ. ବିଣ. ପୁଂ ( ସଂ. ମର୍କଟ+ମୁଖ )—ମର୍କଟବଦନ;
Mākarda muhān ଅସୁନ୍ଦରମୁହାଁ—Ape-faced.
(ମାକଡ଼[ଡ଼ୀ]ମୁହାଁ—ସ୍ତ୍ରୀ) বাঁদর মুখো बंदर मुहाँ

ମାକ(ଙ୍କ)ଡ଼ସା—ଦେ. ବି ( ସଂ. ମର୍କଟି; ମର୍କଟକ )—ବୁଢ଼ିଆଣି;
Māka(ṅka)rdasā ଊର୍ଣ୍ଣନାଭ; ଅଷ୍ଟପଦୀ କୀଟବିଶେଷ—
মাকড়; মাকড়সা Spider; Arachnid, genus-Araneae.
मकडा [ ଦ୍ର—ଏମାନେ ଗଛରେ, ପାଣିରେ, ଘରେ, ଘାସରେ, ଭୂଇଁରେ, ଏପରି ନାନା ସ୍ଥାନରେ ରହନ୍ତି । ମାକଡ଼ସା ନାନା ଜାତୀୟ ଓ ନାନା ଶ୍ରେଣୀର ଅଛନ୍ତି । ଆକାର ପଦମାନ ଲମ୍ବ । ଏମାନଙ୍କର ଆଖି ୬ ଠାରୁ ୮ ଗୋଟି ପର୍ଯ୍ୟନ୍ତ ଥାଏ । ଏମାନଙ୍କ ନାଭିରୁ ସୂକ୍ଷ୍ମ ସୂତା ବାହାରେ । ସେହି ସୂତାରେ ସେମାନେ ସୂକ୍ଷ୍ମ ଜାଲ ତିଆରି କରି ଜାଲକୁ ଶୂନ୍ୟରେ ଝୁଲାଇ ରଖି ଥାଆନ୍ତି ଓ ମାଛିଆଦି ପୋକମାନେ ଏହି ଜାଲରେ ପଡ଼ିଲେ ବନ୍ଦ ହୋଇ ରହି-ଯାଆନ୍ତି ଓ ଏମାନେ ସେହି ମାଛିଆଦିଙ୍କୁ ଧରି ଖାଆନ୍ତି । ଘରେ ଏମାନେ ଯେଉଁ ଜାଲ ତିଆରି ଥାଆନ୍ତି ସେଥିରେ ଧୂଆଁର କଳାମ୍ୱଳି ଲାଗି ତାହା 'ଝୁଲ' ହୁଏ । ସ୍ତ୍ରୀ ମାକଡ଼ସା ଅଧୁଲି ଆକାରର ଦୁଇଫାଳିଆ ଧଳା ଖୋସା ମଧ୍ୟରେ ଡିମ୍ବ ପାଡ଼େ । କୌଣସି କୌଣସି ମାକଡ଼ସାଙ୍କ ମୂତ୍ର ବିଷାକ୍ତ । ଏହି ମୂତ୍ର ମନୁଷ୍ୟ ଦେହରେ ଲାଗିଲେ ଭୟାନକ ଘାଆ ହୋଇଯାଏ ଓ ତାହା ସହଜରେ ଭଲ ହୁଏ ନାହିଁ ।

ଇଂରାଜୀରେ ଘରେ ରହୁବା ମାକଡ଼ସା ( Home spider ), ଘାସ ପତ୍ରରେ ଥିବା ( Grass spider ) ପାଣିରେ ରହୁବା ( Water spider ); ଡିଆଁ ମାକଡ଼ସା ( Jumping spider ); ରେଶମ୍ ଶ୍ରେଷ୍ଠ କଣ୍ଟକଣ୍ଟିଆ ମାକଡ଼ସା ( Silk spider ) ଆଦିଙ୍କର ଭିନ୍ନ ଭିନ୍ନ ନାମ ଅଛି ।

କଙ୍କଡ଼ାବିଛା ମଧ୍ୟ ଏହି ମାକଡ଼ସା ଶ୍ରେଣୀର; ଟିକ୍କମାନେ ମଧ୍ୟ ଏହି ଶ୍ରେଣୀର ( ଅଷ୍ଟପଦୀ ); ସଂସ୍କୃତ ସୁଶ୍ରୁତ ଶାସ୍ତ୍ରରେ ୧୬ ପ୍ରକାର ମାକଡ଼ସା ବା ଷୋଡ଼ଶ ଲୂତାଙ୍କର ନାମ ଓ ବିଶେଷତ୍ୱ ଓ ଗୁଣ ବର୍ଣ୍ଣିତ ହୋଇଅଛି । ]

ମାକଡ଼ସା ଜାଲ—ଦେ. ବି ( ସଂ. ମର୍କଟ+ଜାଲ )—ବୁଢ଼ିଆଣୀ ଜାଲ
Mākardasā jāla —Spider's net; cobweb.
মাকড়সার জাল मकडाका जाल

ମାକ(କେ, ଙ୍କ, ଙ୍କେ)ଡ଼ା ପଥର—ଦେ. ବି ( ସଂ. ମର୍କଶ=ବନ୍ଧ୍ୟା )
Māka(ke, ṅka, ṅke)rdā pathara —ଏକପ୍ରକାର
মাকড়াপথর ନାଲିଆ ଛିଦ୍ରବହୁଳ ପଥର—Laterite stone.
उबडखाबड पत्थर [ ଦ୍ର—ଏହା ନାଲି ଓ କଳା ମିଶା ଓ ଏହା ମଧ୍ୟରେ ବହୁତ ଛିଦ୍ର ଥାଏ । ଏହି ପଥରକୁ କାଟିବା ପରେ ଏହା ଟାଣ ହୁଏ । ଓଡ଼ିଶାର ଓ ଗଡ଼ଜାତର ଅଧିକାଂଶ ପାହାଡ଼ରେ ଓ ଟାଙ୍ଗରା ଭୂମିରେ ଏହି ପଥର ମିଳେ ।

ଏହି ଜାତୀୟ ଆଉ ଏକପ୍ରକାର ପଥରକୁ ମୁଗେଇ ମାକଡ଼ା କହନ୍ତି । ଏହା ମଧ୍ୟସ୍ଥ ଗୋଡି ବା କଙ୍କରମାନ ମୁଗ ଆକାର ବିଶିଷ୍ଟ । ଏହା ମଧ୍ୟରେ ଛୋଟ ଛୋଟ ଛିଦ୍ର ଥାଏ । ତେଣୁ ଏହା ସାଧାରଣ ମାକଡ଼ା ପଥର ଅପେକ୍ଷା ଟାଣୁଆ । ]

ମକା(କି, କେ, ଙ୍କ, ଙ୍କି)ଡ଼ି—ଦେ ବି—୧ । ( ସଂ. ମକର କୁଣ୍ଡଳ )
Māka(ki, ke, ṅka, ṅki)rdi ସୁନାର ମକରମୁଖ କୁଣ୍ଡଳ
মাকড়ি कुंडल ବା ଅର୍ଦ୍ଧଚନ୍ଦ୍ରାକୃତି କର୍ଣ୍ଣବଳୟ—1. A kind of ear-ring ( crescent-shaped ) .[ ଦ୍ର—ଏହା ବଙ୍ଗଦେଶରୁ ଆସି ଆମ୍ଭଦେଶରେ ପ୍ରଚଳିତ ହୋଇ ଅଛି । ] ୨ । ପାଣି ବୁହା ଟେଣ୍ଡା ବା ଯନ୍ତ୍ରର ଦୁଇ-ଖୁଣ୍ଟ ଉପରେ ଯେଉଁ ଆଡ଼ଧାରଣା ପଡ଼ିଥାଏ ସେହିଆଡ଼

ଧାରଣାରେ ଲାଗିଥିବା ଛିଦ୍ରଯୁକ୍ତ କାଠ, ( ଯେଉଁ କାଠରେ ବାହ'ଲ ବାଉଁଶ ବନ୍ଧାଯାଏ )—2. A long piece of wood having a hole through which the cross-beam of a water-lifting contrivance passes and over which is tied the crane-bamboo. ୩ । ଖର୍ଦ୍ଦମା (ଦେଖ) 3. Khardamā ( See ).

ମାକ( ଙ୍କ, ଡ, କି, ଙ୍କି, କୁ, ଙ୍କୁ, କେ, ଙ୍କେ )ଡିଆ—ଦେ. ବିଣ. ପୁଂ—୧ । Māka(ṅka, ki, ṅki, ku, ṅku; ke; ṅke)rḍiā ବାନର) ମାକ[ଡି, ଡୁ, କେ]ଡ଼ୀ ମାଙ୍କ[ କିଂ, ଙ୍କୁ, ଙ୍କେ]ଡ଼ୀ } ସ୍ତ୍ରୀ ମର୍କଟ ପରି ଅସୁନ୍ଦର ଓ କ୍ଷୀଣକାୟ—1. Haggard; ( a person ) बान्दहा बांदरा having an ugly face and a lean body like those of a monkey. ୨ । ରୋଗ ଆଦି କୌଣସି କାରଣରୁ ବିକୃତ ହୋଇଥିବା ( ଫଳ )—2. ( fruit ) Deformed owing to some disease. मदारी ଦେ. ବି—୧ । ଯେ ମାକଡ଼ ନଚାଇ ପେଟ ପୋଷେ—1. A person who earns his living by making a tame ape dance. ୨ । ଯେଉଁ ଅନାର୍ଯ୍ୟ ଲୋକେ ମାକଡ଼ ମାରନ୍ତି ଓ ମାକଡ଼ ମାଉଁସ ଖାଆନ୍ତି—2. A class of aboriginal tribes who kill monkeys and eat their meat.

ମାକ(କି, କୁ, କେ)ଡ଼ି ଦୁଧୀ—ଦେ. ବିଣ. ସ୍ତ୍ରୀ—କ୍ଷୀଣସ୍ତନା ( ନାରୀ ); Māka(ki; ku; ke)rḍi dudhi ସେମଟଦୁଧୀ; ମର୍କଟସ୍ତନୀ—मर्कटस्तनी ( a woman ) With monkey-like or मर्कटस्तनी; बनरचुची suppressed breasts.

ମାକନ୍ଦ—ସ. ବି ( ମା=ଲକ୍ଷ୍ମୀ; ସୌନ୍ଦର୍ଯ୍ୟ+କନ୍ଦ=ମୂଳ )—୧ । ଆମ୍ର Mākanda ବୃକ୍ଷ; ଆମ୍ବଗଛ—1. Mango tree ୨ । ଆମ୍ବ ଫଳ—2. Mango fruit. ୩ । ଚନ୍ଦନ ବୃକ୍ଷ—3. Sandal wood tree.

ମାକନ୍ଦୀ—ସ. ବି ( ମାକନ୍ଦ+ଈ )—୧ । ପୀତ ଚନ୍ଦନ—1. Yellow Mākandī sandal wood. ୨ । ଆମଳକୀ; ଅଁଳା—2. Embelic Myrobalan. ୩ । ଗଙ୍ଗାକୂଳରେ ଅବସ୍ଥିତ ମହାଭାରତୋକ୍ତ ପ୍ରାଚୀନ ନଗରୀବିଶେଷ—3. Name of an ancient city on the Ganges mentioned in the Mahābhārata.

ମାକର—ପ୍ରାଦେ. ( ସମ୍ବଲପୁର ) ବି—ମାକଡ଼—Mākar Monkey.

ମାକର—ସ. ବିଣ ( ମକର+ଅ )—ମକର ସମ୍ବନ୍ଧୀୟ—Relating Mākara ( ମାକରୀ—ସ୍ତ୍ରୀ ) to Makara.

ମାକରନ୍ଦ—ସ. ବିଣ ( ମକରନ୍ଦ+ଅ )—ମକରନ୍ଦ ସମ୍ବନ୍ଧୀୟ—Mākaranda Relating to Makaranda. ( ମାକରନ୍ଦୀ—ସ୍ତ୍ରୀ )

ମାକରୀ—ସଂ. ବି—ମାଘ ଶୁକ୍ଳ ସପ୍ତମୀ ( ପୁଣ୍ୟତିଥି )—The 7th Mākarī day of the bright fortnight of the month of Māgha.

ମାକଲା—ସ. ବି. ପୁଂ—ଅଜାତଦନ୍ତ ହ୍ରସ୍ୱଦେହ ହସ୍ତୀ; ଦନ୍ତହୀନ ସ୍ଥୂଳକାୟ Mākalā ହସ୍ତୀ; ମାଖୁନାହାତୀ—A dwarfish male elephant without tusks.

ମାକଲି—ସ. ବି—୧ । ମାତଲି; ଇନ୍ଦ୍ର ସାରଥି—1. The chari- Mākali oteer of India. ୨ । ଚନ୍ଦ୍ର—2. The moon.

ମାକି(କେ)ଣ୍ଡି—ଦେ. ବି ( ଭୁଲ· ଇଂ. ମାକ୍କେରେଲ୍ )—ଏକପ୍ରକାର Māki(ke)ndi ଛୋଟ ଖାଣ ମାଛ—Chotoessus थयरा खेरा Mauminna; a kind of thin and ଛାଲ୍କାରେ—ଶୃଙ୍ଗଳ small scaly fresh-water fish ( 3 inches long like dollar fish). [ ଦ୍ର—ଏମାନେ ୨।୨ ଅଙ୍ଗୁଳରୁ ବେଶୀ ବଢ଼ନ୍ତି ନାହିଁ । ଏମାନଙ୍କର ପିଠିର ବର୍ଣ୍ଣ ଖଇରା ଓ ପେଟ ଧଳା । ଏମାନଙ୍କ ଗଢ଼ଣ ଇଲିଶି ମାଛ ପରି ପତଳା । ଏମାନେ ମଧୁର ପାଣିରେ ଥାଆନ୍ତି । ]

ମାକୁ—ଦେ. ବି ( ସ. ମକ୍ଷିକା=ଅପ୍ରେ )—ତନ୍ତରେ ଲୁଗା ବୁଣିବା Māku ପାଇଁ ବ୍ୟବହୃତ ଯନ୍ତ୍ରବିଶେଷ—Weaver's shuttle. ସ. ମକ୍ଷିକ, ଏସର, ଭୁଷ मांकु घोटे, नारी, ढरकी म धोटे [ ଦ୍ର—ଏହା ପ୍ରାୟ ଏକଫୁଟ ଲମ୍ବ କାଠ । ଏହାର ଦୁଇ ମୁଣ୍ଡ ମୁନିଆ ଓ ଉଭର ପଖା ଓ ଉଚ୍ଚ ପଖା ମଧ୍ୟରେ ଘର ଥାଏ; ସେହି ଘର ମଧ୍ୟରେ ଭରଣୀ ସୂତା ଗୁଡ଼ା ହୋଇଥିବା କଣ୍ଡା ଖଞ୍ଜା ହୁଏ ଓ ସେ କଣ୍ଡାରୁ ସୂତାଖିଅ ଏହି ମାକୁର ଗୋଟିଏ ଛିଦ୍ରବାଟେ ବାହାରକୁ ବାହାର ଥାଏ । ] ୨ । ମାଖୁ (ଦେଖ)—2. Mākhu ( See )

ମାକୁ(ଖୁ)ନ୍ଦା(ନ୍ଧା)—ଗ୍ରା. ବି—ମାଖୁନା ( ଦେଖ ) Māku(khu)ndā(ndhā) Mākhunā ( See )

ମାକେରି(ଡ଼ି)—ଦେ. ବି—ଘରଚାଳର ଗୁଜ ଓ ଷେଣୀ ମଧ୍ୟରେ ଲାଗିଥିବା Mākeri(rḍi) କାଠଖଣ୍ଡ—A piece of wood placed between the wall-plate and the hanging pin of a thatched house. [ ଉ—ଅମାକେର ଅପାରେର ବଢ଼ାଇଛି ପରେ—ପ୍ରାଚ . ବ୍ରହ୍ମକରୂପଣଗୀତା । ]

ମାକ୍ଷି(କ୍ଷୀ)କ—ସ. ବି (ମକ୍ଷିକା+ଅ)—୧ । ମଧୁ; ମହୁ—1. Honey. Mākshi(kshī)ka ୨ । ତାରମାକ୍ଷିକ ଓ ସ୍ୱର୍ଣ୍ଣମାକ୍ଷିକ ନାମକ ଉପଧାତୁ—2. Iron pyrites. ୩ । ବାଘରା ମହୁମାଛିଙ୍କ ସଞ୍ଚିତ ମଧୁ—3. Honey gathered by big ( ମାକ୍ଷି[କ୍ଷୀ]କୀ—ସ୍ତ୍ରୀ ) bees. ସ. ବିଣ—୧ । ମକ୍ଷିକା ସମ୍ବନ୍ଧୀୟ—1. Relating to fleas. ୨ । ମଧୁମକ୍ଷିକା ସମ୍ବନ୍ଧୀୟ—2. Relating to bees.

ମାକ୍ଷିକଜ—ସ. ବି ( ମାକ୍ଷିକ+ଜନ ଧାତୁ+କର୍ତ୍ତୃ. ଅ )—ମହଣ—Mākshikaja Bees wax.

ମାକ୍ଷିକ ଶର୍କରା—ସ. ବି—୧ । ମଧୁଜାତ ଚିନି—1. Sugar made Mākshika śarkarā from honey. ୨ । ମିଶ୍ରି—2. Candied sugar ( Apte ).

ମାକ୍ଷିକାଶ୍ରୟ—ସ. ବି—ମଧୁ ଚକ୍ର—Mākshikāśraya Beehive.

ମାକ୍ଷିବା—ଦେ. କ୍ରି. (ସଂ. ମ୍ରକ୍ଷଣ)—ମାଖିବା ( ଦେଖ )
Mākshibā Mākhibā ( See )
মাখা লগানা

ମାକ୍ସ୍‌ମୁଲ୍ଲର୍—ବୈଦେ. ବି. (ନାମ) ପ୍ରଧାନ ସଂସ୍କୃତଜ୍ଞ ଅନୁସନ୍ଧିତ୍ସୁ ପୃଥିବୀ ବିଖ୍ୟାତ ଜର୍ମାନ ପଣ୍ଡିତ—Dr. Fredrich Maxmuller; the editor of the Rug-beda in 4 volumes.
Māksmullar
মাক্‌সমুলার
मावसमुलार
[ଦ୍ର—ଏ ମହାପୁରୁଷ ଖ୍ରୀ ୧୮୨୩ରେ ଜନ୍ମଗ୍ରହଣ କରିଥିଲେ ଓ ୨୦ ବର୍ଷ ବୟସରେ ଜର୍ମାନୀର ଲୀପ୍‌ଜୀଗ୍ ବିଶ୍ୱବିଦ୍ୟାଳୟରୁ ଦର୍ଶନାଚାର୍ଯ୍ୟ ( Doctor of philosophy) ଉପାଧି ଲାଭ କରିଥିଲେ । ତତ୍ପରେ ବର୍ଲିନ୍ ଓ ପାରୀ ନଗରର ସଂସ୍କୃତଭାଷା ପଣ୍ଡିତମାନଙ୍କଠାରୁ ସଂସ୍କୃତଶିକ୍ଷା କରି ୨୩ ବର୍ଷ ବୟସରେ ଇଂଲଣ୍ଡର ଅକ୍ସ୍‌ଫୋର୍ଡ ନଗରକୁ ଆସି ସେଠାରେ ସ୍ଥାୟୀଭାବେ ବାସ କଲେ । ଇଷ୍ଟ୍ ଇଣ୍ଡିଆ କୋମ୍ପାନୀଙ୍କ ନିର୍ଦ୍ଦେଶକ୍ରମେ ଏ ସାୟଣାଚାର୍ଯ୍ୟଙ୍କ ଭାଷ୍ୟସହ ଋଗ୍ବେଦକୁ ପ୍ରକାଶ କରିଥିଲେ । ୧୮୬୮ ଠାରୁ ଏ ଅକ୍ସ୍‌ଫୋର୍ଡ ବିଶ୍ୱବିଦ୍ୟାଳୟରେ ଭାଷାତତ୍ତ୍ୱର ଅଧ୍ୟାପକ ନିଯୁକ୍ତ ହେଲେ । ଖ୍ରୀ ୧୯୦୦ ରେ ଅକ୍ସ୍‌ଫୋର୍ଡଠାରେ ୭୭ ବର୍ଷ ବୟସରେ ଏହାଙ୍କ ଦେହତ୍ୟାଗ ଘଟିଲା । ସଂସ୍କୃତରେ ଏହାଙ୍କର ଅସାଧାରଣ ଗଭୀର ପାଣ୍ଡିତ୍ୟ ଥିଲା । ଭାରତବର୍ଷ ପ୍ରତି ଓ ଭାରତୀୟମାନଙ୍କ ପ୍ରତି ଏହାଙ୍କର ଗଭୀର ଅନୁରାଗ ଥିଲା । ଏ ଇଂରାଜୀ ଭାଷାରେ ହିନ୍ଦୁଧର୍ମ, ସଂସ୍କୃତ ସାହିତ୍ୟ ଓ ଭାଷାତତ୍ତ୍ୱ ସମ୍ବନ୍ଧେ ବହୁ ଗ୍ରନ୍ଥ ରଚନା କରିଥିଲେ । ଯଥା—The History of Ancient Sanscrit literature, The origin and growth of Religion, Sacred books of the East. The science of Languages, India-what it can teach us, Chips from a German workshop, Auld Lang Syne, Ramkrishna-His life and sayings. ଏ ଇଂରାଜୀ ଜାତୀୟ ସଙ୍ଗୀତ (National Anthem) କୁ ସଂସ୍କୃତ ପଦ୍ୟରେ ଅନୁବାଦ କରିଥିଲେ (ସୁବଳଚନ୍ଦ୍ର ବାଙ୍ଗାଲା ଅଭିଧାନ)]

ମାଖ—ସଂ. ବିଣ. ( ମଖ+ଅ )—ଯଜ୍ଞ ସମ୍ବନ୍ଧୀୟ—Sacrificial.
Mākha (ମାଖୀ—ସ୍ତ୍ରୀ)

ମାଖ(ଖୁ)—ପ୍ରାଦେ. (ଗଡ଼ଜାତ) ବି—କଉଡ଼ି ଖେଳରେ କଉଡ଼ି ମୁହଁ ମାଡ଼ି ପଡ଼ିବା—The state of a cowrie falling on the ground with its ventral side down ( in the game of cowries).
Mākha(khu)
ବିଣ—ଭୂଇଁରେ ଓଲଟି ବା ମୁହଁମାଡ଼ି ପଡ଼ିଥିବା (କଉଡ଼ି)-(cowrie) Falling from the hand of the player with its ventral side down.

ମାଖନ—ଦେ. ବି. ( ସଂ. ମକ୍ଷଣ )—ମଖନ ( ଦେଖ )
Mākhana Makhana ( See )
মাখন
मक्खन
ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର)—ବୋଇତି କଖାରୁ—Sweet pumpkin.
ଫା. ମସକାହ

ମାଖ(ଖୁ)ନା—ଦେ. ବିଣ. ପୁଂ (ସଂ. ମତ୍କୁଣ)—ଶ୍ମଶ୍ରୁହୀନ (ପୁରୁଷ)—( a male ) Having no mustaches or beard on the chins or hair on the breast.
Mākha(khu)nā
মাকনা, মাকুন্দা(ন্দ)মুখ
মাকুন্দ
मखना
ବି—୧ । ମୁହଁରେ ଓ ଛାତିରେ ବାଳ ନ ଥିବା ପୁରୁଷ—1. A beardless person having no hair on the breast also. (ଉ—ମାଖୁନାକୁ ଦଶ ଭୁଠରେ ଖିଡ଼ ନାହିଁ—ଢଗ ।) ୨ । (ସଂ. ମାକଳ) ଅଜାତଦନ୍ତ ବାଙ୍ଗୁରୁ ହାତୀ—2. A dwarfish male elephant without tusks.
ଦ୍ର. ମୁକଣା
মাখনা
मखुनी हाथी
୩ । (ସଂ. ମଖାନ୍ନ) ତାଳମାଖନା ନାମକ ଜଳଜଲତାଫଳ; କଣ୍ଟାପଦ୍ମ—3. Euryeli Ferox.
ସଂ. ନାମ—ମଖାନ୍ନ, ପଦ୍ମବୀଜାଭ, ପାନୀୟ ଫଳ
মাখনা
मखना, तालमखना
ମ. ମଖାଣେ
ଗୁ. ମଖାନା
[ଦ୍ର—ବୈଦ୍ୟକ ମତରେ ଏହା ପଦ୍ମବୀଜ ସଦୃଶ ଗୁଣବିଶିଷ୍ଟ; ଏହା ପୋଖରୀମାନଙ୍କରେ ଜନ୍ମେ; ଏଥିର ଦେହରେ କଣ୍ଟା ଅଛି; ପତ୍ର ପ୍ରାୟ ଗୋଲ; ପାଣିରେ ଏଥିର ଫୁଲ ଅଂଶତଃ ବୁଡ଼ିଥାଏ । ଏଥିର ମଞ୍ଜି ପଦ୍ମ ମଞ୍ଜି ପରି ଓ କଳା । ମଞ୍ଜିକୁ ଭାଜିଲେ ତାହା ଖଇ ପରି ଫୁଟେ ଓ ଖାଇବାକୁ ଖଇ ପରି ସ୍ୱାଦୁ ।]

ମାଖ(ଖେ)ରା—ଦେ. ବିଣ. ପୁଂ ଓ ସ୍ତ୍ରୀ—(ସଂ. ରୁକ୍ଷ)—୧ । ରୁଖୁରା; ଯାହା ତୈଳଲିପ୍ତ ନୁହେ—1. Not oiled.
Makha(khe)rā
[ମାଖ(ଖେ)ରୀ—ସ୍ତ୍ରୀ] ( ଯଥା—ମାଖରାବାଳ, ମାଖରା ମୁଣ୍ଡ । )
রূক্ষ(ক্ষু),রূখা(খু)
रूखा; माखरा
୨ । ଅସ୍ନିଗ୍ଧ; ଅମସୃଣ—2. Not glossy. ୩ । ଶୁଖିଲା—3. Dry. ୪ । (ଲକ୍ଷଣାର୍ଥ) କପର୍ଦ୍ଦକଶୂନ୍ୟ—4. ( figurative ) Penniless.

ମାଖରା ମୁଣ୍ଡା—ଦେ. ବିଣ. ପୁଂ—ଯାହାର ମୁଣ୍ଡରେ ବା ମୁଣ୍ଡର କେଶରେ ତେଲ ଲାଗି ନ ଥାଏ; ରୁକ୍ଷକେଶ—Not having one's head or hair oiled.
Mākharā muṇḍā
রূক্ষ মাথা
(ମାଖରାମୁଣ୍ଡୀ; ମାଖରା ମୁଣ୍ଡେଇ—ସ୍ତ୍ରୀ) (ମଖରା ମୁଣ୍ଡିଆ—ଅନ୍ୟରୂପ)

ମାଖିବା—ଦେ. କ୍ରି—(ସଂ. ମ୍ରକ୍ଷ୍ ଧାତୁ)—ଦେହରେ ତେଲ ଆଦି ବୋଳିବା; ଲେପିବା—To smear the body with oil; to anoint.
Mākhibā
মাখা
मालिस करना; मलना; लगाना
(ଉ—ଦୂଷଣରେ ସେ କଲା ପାଉଁଶ ଦେଇ ମାଖି, ଗୁହିଁବେ ରଙ୍ଗ କରି ତରୁଟ ହ ଅଛି । କୃଷ୍ଣସିଂହ. ମହାଭାରତ ବିରାଟ ।)

ମାଖିମୁଖି ହେବା—ଦେ. କ୍ରି—(ସଂ. ମ୍ରକ୍ଷ୍ ଧାତୁ)—ଦେହରେ ଉତ୍ତମ ରୂପେ ତେଲ ବୋଳି ହେବା—To smear one's body well with oil.
Mākhimukhi hebā
(ମାଖିବା ମୁଖିବା—ଅନ୍ୟରୂପ)
মেখে মুখে হওয়া; মলিস করা
पचाकर (तेल)लगाना; मलमल कर लगाना

ମାଖି ହେବା—ଦେ. କ୍ରି.—(ସଂ. ମ୍ରକ୍ଷିତ)—ଆପଣା ଦେହରେ ତେଲ ବୋଳି ହେବା—To smear one's own body with oil.
Mākhi hebā
মেখে হওয়া; মাখা
मालिस करना; मखाना

ମାଖୁଲୁ—ପ୍ରାଦେ. (ଗଞ୍ଜାମ ଓ ଗଡ଼ଜାତ) ବି.—କଉଡ଼ି ଖେଳରେ
Mākhulu ସବୁଯାକ କଉଡ଼ି ମାଙ୍କ ବା ମୁହଁ ମାଡ଼ି ହୋଇ ପଡ଼ିବା- The throw in the game of cowries resulting in all the cowries falling on the ground with their ventral sides down.

ମା(ମାଁ)ଗୁନି—ପ୍ରାଦେ. (ସମ୍ବଲପୁର) ବି.—(ଭୁଲ. ହି. ମଂଗନୀ)—
Mā(māṅ)guni (ଶୂଦ୍ରମାନଙ୍କର) ବିବାହ ପୂର୍ବରୁ କନ୍ୟା ଘରଠାରେ ବରକର୍ତ୍ତା ଓ କନ୍ୟାକର୍ତ୍ତାର ବିବାହ ପାଇଁ ସମ୍ପ୍ରଦାନ ନିବନ୍ଧ ସ୍ୱୀକାର - The ceremony of formal betrothal amongst the Sudras(in Sambalpur) when the bridegroom elect's party goes to the bride elect's house and both parties make solemen promise for the coming marriage.

ମାଗ—ଦେ. ବି.—(ସଂ. ମାର୍ଗଣ)—୧ । ମାଗିବା କର୍ମ—1. The act
Māga of begging or asking for a thing. ୨ । (ପୁଂ. ଓ ସ୍ତ୍ରୀ)—ମାଗୁଣି ନାମକ ପୁରୁଷ ଓ ମାଗୁଣୀ ନାମ୍ନୀ ସ୍ତ୍ରୀକୁ ଡାକିବା ଅବଜ୍ଞାର୍ଥକ ନାମ—2. A name for calling a male or a female named Māguṇi in fondness.

ମାଗ(ଙ୍ଗ)ଣ—ଦେ. ବି—(ସଂ. ମାର୍ଗଣ)—୧ । ମାଗିବା—
Māga(ṅga)ṇa 1. Begging. ୨ । ରାଜା ବା ଜମିଦାର
ମାଗନ, ମାଙ୍ଗଣ ପ୍ରଜାଙ୍କ ଠାରୁ ନିଜର ଅବଶ୍ୟକ ବା ପାରିବାରିକ
**माँगना; मगनी; मांगन** ଉତ୍ସବାଦି ଉପଲକ୍ଷରେ (ପ୍ରଜାର ଦେୟ ଖଜଣା ଛଡ଼ା) ଧନ ସାହାଯ୍ୟ ମାଗିବା—2. Requisition made to the tenants by a king or zamindar for contribution for some special personal necessity or ceremony of his (paid over and above the rent).
[ଦ୍ର—ରାଜା ଓ ଜମିଦାରମାନେ ପରିବାରର ବିବାହ ବ୍ରତ ଆଦି ଉପଲକ୍ଷରେ ବା ଆପଣାର ଦେଣା ଆଦି ସୁଝିବାକୁ ପ୍ରଜାଙ୍କ ଠାରୁ ମାଗଣ କରନ୍ତି ।]
୩ । ଜମିଦାରଙ୍କୁ ବା ରାଜାଙ୍କୁ ପ୍ରଜା ବିଶିଷ୍ଟ ଘଟନା ଉପଲକ୍ଷରେ ଅର୍ଥ ସାହାଯ୍ୟଦାନ—3. Voluntary contribution or help made to the zamindar or the king by his rayats or subjects for some private necessity of the former. ୪ । ତାସ୍‌ଖେଳର ଗୋଟିଏ ପ୍ରକାର—4. A kind of card-play. [ଦ୍ର—ଏହି ଖେଳରେ ଦୁଇ ଜଣ କିମ୍ବା ଗୁରୁଜଣ ଖେଳନ୍ତି । ପ୍ରଥମ ବାଜି ଖେଳ ହେଲା ପରେ ଯାହାର (ଯେଉଁ ପକ୍ଷର) ଯେତେ ମୁଠା ତାସ୍ ହୁଏ ତାହା ଗଣାଯାଏ ଏବଂ କେଉଁ ଖେଳାଳିର ବା କେଉଁ ପକ୍ଷ ଅନ୍ୟ କେଉଁ ପକ୍ଷ ଅପେକ୍ଷା କେତେ ଗଣ୍ଡା ତାସ୍ ବେଶୀ ପାଇଅଛି ତାହା ଗଣାଯାଏ; ଦ୍ୱିତୀୟ ଥର ବେଶୀ ତାସ୍ ପାଇଥିବା ଖେଳାଳୀ କମ୍ ତାସ୍ ପାଇଥିବା ଖେଳାଳିଙ୍କଠାରୁ ନିଜ ଇଚ୍ଛାନୁସାରେ ଆପଣାର ପ୍ରାପ୍ୟ ସଂଖ୍ୟକ ତାସ ମାଗି ନିଅନ୍ତି ଓ ତହିଁ ପରିବର୍ତ୍ତେ ନିଜେ ପାଇଥିବା ତାସ ମୁଠାରୁ ସେତିକି ସଂଖ୍ୟକ କମ୍ ମୂଲ୍ୟର ତାସ୍ ତାଙ୍କୁ ଦିଅନ୍ତି ଓ ପୂର୍ବ ବାଜି ହାରିଥିବା ଖେଳାଳି ନିଜ ଭାଗ୍ୟକୁ ଅଦର ତାଙ୍କ ହାତକୁ ଆସିବା ତାସରେ ଖେଳନ୍ତି ।]

ମାଗଣ କରିବା—ଦେ. କ୍ରି—(ଜମିଦାର) ପ୍ରଜାଙ୍କଠାରୁ ଆପଣାର
Māgaṇa kariba ବିଶିଷ୍ଟ ଅବଶ୍ୟକ ବ୍ୟୟ ନିର୍ବାହାର୍ଥ
ମାଙ୍ଗନ କରା ଅର୍ଥ ସାହାଯ୍ୟ ମାଗିବା—To ask for contri-
**मगनी करना** butions from royats for zamindar's private necessity.

ମାଗଣା—ଦେ. ବିଣ(ସଂ. ମାର୍ଗଣ)—ଯାଚଞ୍ଚାହାରା; ଅର୍ଥାତ୍ ବିନା ମୂଲ୍ୟରେ
Māgaṇā ପ୍ରାପ୍ତ; ମାହାଳିଆ; ଫୋକଟ; ବିନା ଅର୍ଥରେ ପ୍ରାପ୍ତ—
ମାଗନା **मगना** (anything) Got gratis; gratuitous. କ୍ରି. ବିଣ—ମୂଲ୍ୟ ନ ଦେଇ; ବିନା ମୂଲ୍ୟରେ—Gratis. [ଦ୍ର—ମାଗଣାକୁ ମହର୍ଘ—ଢଗ ବା ନ୍ୟାୟ । ଯେଉଁ ପଦାର୍ଥ ବିନା ମୂଲ୍ୟରେ ମିଳେ, ତାହା ମହର୍ଘ ହେଲା ବୋଲି ବିଚାର କରିବା ଲୋକ ପ୍ରବୃତ୍ତ ଏହି ଢଗ ବୋଲାଯାଏ ।]

ମାଗଣା କଥା—ଦେ. ବି.- ୧ । ମୂଲ୍ୟହୀନ ବାକ୍ୟ—1. Valueless
Māgaṇā kathā words. ୨ । ଅପ୍ରାର୍ଥିତପୂର୍ବ ଉପଦେଶ;
ମାଗନା କଥା ଅଯାଚିତ ଉପଦେଶ—2. Gratuitous advice;
**मगनी बात** advice given without being asked for it. ୩ । ଯେଉଁ ଉପଦେଶ ପାଇ ଉପଦେଶଗ୍ରାହୀଙ୍କୁ କିଛି ଅର୍ଥ ଦେବାକୁ ପଡ଼େ ନାହିଁ—3. Advice for getting which one has not to pay anything.

ମାଗଣା ଖିଆ—ଦେ. ବିଣ. ଓ ବି.—ପରାନ୍ନଭୋଜୀ; ଯେଉଁ ଲୋକ ପରର
Māgaṇākhiā ଉପରେ ପଡ଼ି ଭୋଜନ ମାରେ—A hanger
ମାଗନ କୁ(ଭୁ)ଡ଼େ **मगनी खानेवाला** on; a toady; a parasite ବି. ପରାନ୍ନ ଭୋଜନ—Living on (ମାଗଣା ଭୋଜନ—ଅନ୍ୟ ବି. ରୂପ) the charity of another.

ମାଗଣା ପରିଶ୍ରମ—ଦେ. ବି—୧ । ଯେଉଁ ପରିଶ୍ରମ ପାଇଁ ପାରିଶ୍ରମିକ
Māgaṇā pariśrama ମିଳେ ନାହିଁ; ବେଠି—Labour.
ମାଗନା ପରିଶ୍ରମ without remuneration; forced
**मंगनी मिहनत** labour. ୨ । ନିଷ୍ଫଳ ପରିଶ୍ରମ; ବୃଥା ପରିଶ୍ରମ—
ମାଗଣାମି(ମେ)ହନ୍ତ, ମାଗଣାମି(ମେ)ହନତ } —ଅନ୍ୟରୂପ 2. Vain or fruitless labour.

ମାଗଣା ମାଲ—ଦେ. ବି—ଯେଉଁ ଦ୍ରବ୍ୟ ପାଇଁ ଦ୍ରବ୍ୟଗ୍ରାହୀଙ୍କୁ ଧନ
Māgaṇā māla ଦେବାକୁ ପଡ଼େ ନାହିଁ—A thing for
ମାଗନା ମାଲ which one has not to pay any price.
**मंगनी माल** (ମାଗଣାଚିଜ, ମଗଣା ଦରବ —ଅନ୍ୟରୂପ)

ମାଗଣାହାରୀ—ଦେ. ବିଣ ଓ ବି (ପୁଂ ଓ ସ୍ତ୍ରୀ) (ସଂ. ମାର୍ଗଣ)—୧ ।
Māgaṇāhārī ମାଗତା (ଦେଖ)—1. Māgatā (See).
୨ । ମାଗଣାଖିଆ (ଦେଖ)—2. Māgaṇākhiā (See)

ମାଗତା(ନ୍ତା) ଦେ. ବିଣ—(ସଂ. ମୃଗଧାତୁ; ମାର୍ଗ)-ଯେ ମାଗେ; ଯାଚକ—Māgatā(ntā) Begging. ବି. ଭିକ୍ଷୁକ—Beggar. ମାଗ୍ନା; मंगनीया (ଉ—କାହା ମଲାକୁ ଦେବି ନାହିଁ, କାହା ମାଗତା (ନ୍ତା) କୁ ଦେଖନ୍ତା ନାହିଁ—ଭଗ)—ପ୍ରାଦେ (ଗଞ୍ଜାମ) ବି ପୁଂ—ଅପତ୍ତିଶୀ ବାଳକକୁ ଦେଆଯିବା ନାମ—A name given to a boy, who has lost his immediate elder brother or sister before he was born.

ମାଗଧ—ସଂ. ବିଣ—(ମଗଧ+ଜାତାର୍ଥେ ଅ)—୧ । ମଗଧ ବା ଦକ୍ଷିଣ Māgadha ବିହାର ଦେଶସମ୍ଭୂତ—1. Produced in the (ମାଗଧୀ—ସ୍ତ୍ରୀ) country of Magadha or South Bihār. ୨ । ଗୁଜରାଟୀ (ପ୍ରକୃତିବାଦ)—2. Belonging to Gujarat. ସଂ. ବି—୧ । ବନ୍ଦୀ; ସ୍ତୁତିପାଠକ—1. A panegyrist; a bard; a herald. ୨ । ବୈଶ୍ୟ ଔରସରେ କ୍ଷତ୍ରିୟା ଗର୍ଭରେ ଜାତ ଜାତି ବିଶେଷ; ଭାଟ ଜାତି—2. A hybrid caste ( born of Baisya father and Kshatriya mother)—[ଦ୍ର—ବୈଶ୍ୟ ପିତା ଓ କ୍ଷତ୍ରିୟା ମାତା ଗର୍ଭରୁ ପ୍ରତିଲୋମ ଜାତ ସନ୍ତାନଙ୍କୁ ମାଗଧ ବୋଲାଯାଏ—ମନୁ ୧୦।୧୭ ॥ ଭାଟପଣ ଓ ସ୍ତୁତିପାଠ ଦ୍ୱାରା ଏମାନେ ଜୀବିକା ନିର୍ବାହ କରୁଥିଲେ—ଅପ୍ଟେ )—୩ । ମଗଧର ରାଜା—3. A king of the Magadhas (Apte). ୪ । ମଗଧଦେଶବାସୀ ବ୍ୟକ୍ତି—4. An inhabitant of the Magadha country. ଦେ. ବି—୧ । ଉତ୍କଳର ସମତଳ ପ୍ରଦେଶ—1. Name of the tract of level country of Orissa. [ଉ—ମାଗଧ ଅନୂପେ ସୀମାସ୍ତମ୍ଭରୂପେ ଚେତେଛି ଶିର ଯେ ଦେଶେ । ବିରାଜି ନାଗସ୍ୱର୍ଣ୍ଣଙ୍କର ଭୁଜଂ ମନ୍ଦର । ରାଧାନାଥ. ଉଷା ।) [ଦ୍ର—ପ୍ରାକୃତିକ ଓଡ଼ିଶା (ଉତ୍କଳ)କୁ ଜାଙ୍ଗଲ (ପାହାଡ଼ିଆ ଅଞ୍ଚଳ), ମାଗଧ (ସମତଳ ଅଞ୍ଚଳ) ଓ ଅନୂପ (ଜଳ ମାଳ ଅଞ୍ଚଳ) ଭେଦରେ ତିନି ଭାଗରେ ବିଭକ୍ତ କରାଯାଏ)—୨ । ଦେଶ ବିଶେଷ—2. Name of a country. [ଉ—ମାଗଧେ ମାଗଧେ ନାମ ବର୍ତ୍ତି ପୁଚ୍ଛିଲେ । ଭଞ୍ଜ ପ୍ରେମସୁଧାନିଧି ।]

ମାଗଧା—ସଂ. ବି. ସ୍ତ୍ରୀ (ମାଗଧ+ଆ)—୧ । ମଗଧ ରାଜପୁତ୍ରୀ—1. A Māgadhā princess of the Magadhas. (Apte). (ମାଗଧିକା—ଅନ୍ୟରୂପ) ୨ । ପିପ୍ପଳୀ—2. Long pepper (Apte).

ମାଗଧୀ—ସଂ. ବି—ସ୍ତ୍ରୀ. (ମାଗଧ+ସ୍ତ୍ରୀ. ଈ)—୧ । ମଗଧ ଦେଶର ଭାଷା; Māgadhī ପାଲି ପ୍ରାକୃତ ଭାଷା—1. The Pali language. [ଦ୍ର—ଏ ଭାଷାରେ ବୌଦ୍ଧଗ୍ରନ୍ଥମାନ ଲେଖା ହୋଇଅଛି, ଏହା ୪ଟି ପ୍ରଧାନ ପ୍ରାକୃତ ଭାଷାର ଏକତମ ।]—୨ । ମଗଧରାଜକନ୍ୟା—2. A princess of the Magadhas. ୩ । ମଗଧଦେଶୀୟା ଗଣିକା—3. A prostitute hailing from Magadha country. ୪ । ଶ୍ୱେତ ଅଳାଇଚ; ଗୁଜୁରାତି—4. The small cardamum; Elettoria Cardamomum; ୫ । ଯୂଥିକା; ଯୂଇଫୁଲ—5. Jasminum Auriculatum. ୬ । ପିପ୍ପଳୀ—6. Long pepper (Apte). ୭ । ଧଳା ଜୀରା—7. White cumin (Apte). ୮ । ଚିନି—8. Refined sugar (Apte). ୯ । କ୍ଷତ୍ରିୟା ମାତା ଓ ବୈଶ୍ୟ ପିତାଙ୍କ ଔରସ କନ୍ୟା—9. The daughter of a Baisya father and Kshatriya mother (Apte). ୧୦ । ଜୁଆଣି—10. Anise (Apte). ୧୧ । ଶୋଣନଦୀ—A name of the Sone river (Apte).

ମାଗଧୀ ପ୍ରାକୃତ—ସଂ. ବି—ମଗଧ (ଆଧୁନିକ ଦକ୍ଷିଣ ବିହାର) ଅଞ୍ଚଳରେ Māgadhi prākruta ପୂର୍ବେ ପ୍ରଚଳିତ ପ୍ରାକୃତ ଭାଷା; ପାଲି ଭାଷା—The old Prākruta dialect of the country now known as South Bihar, the Pali language.

ମାଗ ଯାଚ—ଦେ. ବି (ଏକାର୍ଥକ ସହଚର ଶବ୍ଦ; ସଂ. ମାର୍ଗଣ ଓ ଯାଚ୍ଞା)·Māga jācha ମାଗିବା; ମଗାଯାଚ୍—Begging and asking. ମାগাযাচা मांगयांच

ମାଗା—ଦେ. ବି. ପୁଂ—ମାଗୁଣି ନାମକ ବ୍ୟକ୍ତିର ଅନାଦରସୂଚକ ଡାକନାମ-Māgā A name for calling Maguni in familiarity.

ମାଗି ଓଳିକ ଯାଚି କଲ୍ୟାଣ—ଦେ. ବି—କାହାଙ୍କଠୁଁ ସମ୍ମାନ ଦେଖାଇବା Māgi oliki jāchi kalyāna ସକାଶେ ଅନ୍ୟକୁ ଅନୁରୋଧ ଯেচেমানকেঁদেপেম କରିବା ବା ଅଯାଚିତଭାବରେ (ଏକିନା ନମସ୍କାରରେ ) ଅନ୍ୟକୁ ଆଶୀର୍ବାଦ କରିବାରୂପ କର୍ମ—Begging respect from another or blessing another when the latter does not ask for it or pay respects to the blesser. [ଦ୍ର—କୌଣସି ଲୋକ ସମ୍ମାନ ପାଇବା ପାଇଁ ଲାଳାୟିତ ହେଲେ ଓ ତାକୁ ନମସ୍କାର ନ କରିବା ବ୍ୟକ୍ତିକୁ ଅଯାଚିତ ଭାବରେ ଆଶୀର୍ବାଦ କଲେ ତା ପ୍ରତି ଏ ବାକ୍ୟ ପ୍ରୟୋଗ କରାଯାଏ । ]

ମାଗି ଆଣିବା—ଦେ. କ୍ରି—କୌଣସି ଦ୍ରବ୍ୟ ନିଜର ବ୍ୟବହାରାର୍ଥ ଅନ୍ୟ-Māgi ānibā ଠାରୁ ଆଣିବା—To bring a thing চেয়েআনা माँगकरलाना from another for use. (ଉ—ମାଗିଆଣିଲି ବଉଳ ସୋଡ଼କାଏ—ଭଜ ।)

ମାଗି ଖାଇବା—ଦେ. କ୍ରି—ଭିକ୍ଷାନ୍ନ ଦ୍ୱାରା ଉଦର ପୂରଣ କରିବା—Māgi khāibā To live on food begged of others. (ଲାଗି ଖାଇବା—ବିପରୀତ) (ଉ—ଯେ ମାଗି ଖାଏ, ସେ ଲାଗି ଖାଏ ମেগেখাওয়া माँगकरखाना नाहि [ଦ୍ର—ଯେ ଗରିବ ଓ ଯାହା ଘରେ ଧାନ ଚାଉଳ ଅଦ ନ ଥାଏ ସେ ଲୋକ ମାଗିଆଣି ତାହା ରାନ୍ଧିକରି ଖାଏ, କିନ୍ତୁ ଯେ ଏପରି ଗରିବ ଯେ ସେ ଲୋକ

ମାଗି ଆଣିଲେ ଯୁକ୍ତା ଭିକ୍ଷାଲବ୍ଧ ତଣ୍ଡୁଳାଦିକୁ ରନ୍ଧି ଖାଇବା ପାଇଁ ତାର ସ୍ଥାନ ବା ପାକପାତ୍ର ଅବ ନ ଥାଏ ସେ ପର ଘରୁ ପକ୍ୱାନ୍ନ 'ମାଗି ଖାଏ' । ଅତଏବ ସାଧାରଣ ଭିକ୍ଷୁକ ଅପେକ୍ଷା ମାଗିଖିଆର ଅବସ୍ଥା ଅଧିକ ହୀନ । ]

ମାଗିଖାଇଯିବା—ଦେ. କ୍ରି—ଦରିଦ୍ରତା ଓ ଗୃହହୀନତାର ଶେଷ ସୀମାରେ Māgikhāijibā ଉପନୀତ ହୋଇ ପର ଘରୁ ପକ୍ୱାନ୍ନ ଭିକ୍ଷା କରି ପଥେବসা; পথে ভিখারী হওয়া ପେଟ ପୋଷିବା—To be बिलट जाना reduced to beggary; to be reduced to the extremes of poverty and homelessness; to beg one's morsel of cooked food of others. ( ଯଥା—ସେ ଅଗେ ବଡ଼ଲୋକ ଥିଲେ, ଏବେ ତାଙ୍କ ଭରବ ଅସ୍ତ ହେବାରୁ ତାଙ୍କ ପିଲାଏ ମାଗିଖାଇ ଗଲେଣି । )

ମାଗିଖିଆ—ଦେ. ବଣ. ପୁଂ—୧ । ଯେ ଭିକ୍ଷାକରି ପେଟ ପୋଷେ—Māgikhiā 1. Living by begging. ୨ । ଯେ ପର (ମାଗିଖାଈ—ସ୍ତ୍ରୀ) ଘରୁ ଭିକ୍ଷାଲବ୍ଧ ଅନ୍ନାଦି ଆଣି ଖାଏ—মাগনকু(শু)ড়ে भिखमगा 2. Subsisting on cooked food begged of others. ୩ । (ଗାଳି) ଅତି ଗରିବ 3 (Abuse)—Very poor.

ମାଗି ପଠା(ଠେ)ଇବା—ଦେ. କ୍ରି—କୌଣସି ପଦାର୍ଥକୁ ଦୂରବର୍ତ୍ତୀ ସ୍ଥାନରୁ Māgi pathā(the)ibā ଅନ୍ୟ ବ୍ୟକ୍ତିଙ୍କଠାରୁ ମାଗି ଆଣିବାକୁ চেযেপাঠান मांगपठाना ଲୋକ ପଠାଇବା—To send for a thing. (ଉ—ବୋଲ ହେଜି ପାରନାହୁଁ ଭୁହି, ବେଳେବେଳେ ମାଗି ପଠିଆଇ—ଭଞ୍ଜ. ବୈଦେହୀଶବିଳାସ । )
ମଗାଇପଠା(ଠେ)ଇବା, ମାଗିପଠିଆଇବା } ଅନ୍ୟରୂପ

ମାଗିବା—ଦେ. କ୍ରି (ସଂ. ମାର୍ଗ ଧାତୁ, ତୁଳ. ପ୍ରା. ମଗ୍ଗ)—୧ । କୌଣସି Māgibā ବସ୍ତୁ କୌଣସି ବ୍ୟକ୍ତିଠାରୁ ପ୍ରାର୍ଥନା କରିବା ବା ଭିକ୍ଷା মাগা माँगना मांगना କରିବା; ଯାଚଞ୍ଚା କରିବା—[ମଗା(ଗେ)ଇବା—ଣିଜନ୍ତରୂପ) 1. To beg for a thing; to pray to get a thing. [ ଉ—ରଘୁପତି ରଙ୍କା ତା ଶୁଣିଣ ହସିଲେ, ଯେ ଇଚ୍ଛା ଅଛି ତାହା ମାଗତ ଭାଷିଲେ । କୃଷ୍ଣସିଂହ. ମହାଭାରତ. ବନ । ] ୨ । ବିନୟ ସହକାରେ ଅନୁରୋଧ କରିବା—2. To request humbly; to entreat. [ ଉ—ସବୁ ସଜନାଙ୍କି, ହାତ ଧରି ମୁଁ ମାଗୁଛି ଏତିକି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ] ୩ । କୌଣସି ବ୍ୟକ୍ତି ନିକଟରେ କୌଣସି ବିଷୟରେ ଅନୁମତି ପାଇଁ ପ୍ରାର୍ଥନା କରିବା—3. To ask for permission of a person. [ ଉ—ବରିଛି ନଳଙ୍କୁ ଆମ୍ଭଙ୍କୁ ମାଗି କରି । କୃଷ୍ଣସିଂହ. ମହାଭାରତ ବନ । ] ୪ । ଭିକ୍ଷା କରିବା—4. To beg alms. ୫ । କୌଣସି ସଂଖ୍ୟାକୁ ଅନ୍ୟ ସଂଖ୍ୟାରେ ଗୁଣନ କରିବା—5. To multiply a number by another number. [ ଦ୍ର—ପଣିକିଆ ମାଗିବାଦ୍ୱାରା ଗୋଟିଏ ରାଶିର ଅନ୍ୟରାଶି ସଙ୍ଗେ ଗୁଣଫଳ ସ୍ଥିର ହୋଇଯାଏ । ]

ମାଗିବା ଯାଚିବା—ଦେ. କ୍ରି ( ଏକାର୍ଥକ ସହଚର ଶବ୍ଦ )—ମାଗିବା; Māgibā jāchibā ଭିକ୍ଷା କରିବା; ପ୍ରାର୍ଥନା କରିବା—চেয়েচিন্তে কবা माँगना चाँचना To ask or beg for a thing.

ମାଗି ଯାଚି ଆଣିବା—ଦେ. କ୍ରି ( ସଂ. ମାର୍ଗଣ ଓ ଯାଚ୍ଞା )—କୌଣସି Māgi jāchi āṇibā ଦ୍ରବ୍ୟକୁ ଦ୍ରବ୍ୟସ୍ୱାମୀଙ୍କ ଅନୁମତିରେ চেবে চিন্তে আনা ଗ୍ରହଣ କରିବା—To bring a thing मांगचांग करलाना from the owner by begging.

ମାଗୀ—ଦେ. ବି ପୁଂ ଓ ସ୍ତ୍ରୀ—ମାଗୁଣି ନାମକ ବ୍ୟକ୍ତିର ଆଦରସୂଚକ Māgi ଡାକ ନାମ—A name for calling Māguṇi in fondness (ମାଗୁ—ଅନ୍ୟରୂପ)

ମାଗୁଣି—ଦେ. ବି ( ସଂ. ମାର୍ଗଣ )—୧ । ମାଗଣ ( ଦେଖ )—Māguṇi 1. Māgaṇa ( See ) ୨ । ମାଗିବା—মাঙ্গন 2. Begging. ୩ । ପ୍ରାର୍ଥନା—3. Request; मंगनी prayer. [ ଉ—ମନେ ପଡ଼ିବ ପୁଣି ମୋର ମାଗୁଣି । मंगत्तु ରାଧାନାଥ. ମେଘ ଦୂତ । ] ୪ । (ପୁଂ ଓ ସ୍ତ୍ରୀ) (ମାଗ, ମାଗୀ, ମାଗୁ—ଆଦରାର୍ଥକ) ଅପତ୍ତିଆଣି ପୁରୁଷ ଓ ସ୍ତ୍ରୀଶିଶୁଙ୍କ ଦିଆଯିବା ନାମ—4. A name given to infants whose elders have predeceased them.
ମାଗା, ମାଗୁଆ, ମାଗୁଣିଆ } ଅନାଦରାର୍ଥକରୂପ

ମାଗୁଣିଆ(ଆଁ)—ଦେ. ବଣ—ମାଗନ୍ତା; ଯେ ମାଗେ; ପ୍ରାର୍ଥନାକାରୀ—Māguṇiā(āṅ) Begging. ବି—ମାଗୁଣି ନାମକ ପୁରୁଷର ভীকমাগা ଅନାଦରାର୍ଥକ ଡାକନାମ—Name for calling म"गनीया, मं(मां)गन Māguṇi in familiarity. (ମାଗୁଆ—ଅନ୍ୟରୂପ)

ମାଗୁଣି ଚରଣ—ଦେ. ବି. ପୁଂ—ଅପତ୍ତିଆଣୀଙ୍କୁ ଦିଆଯିବା ନାମ—Māguṇi charaṇa A name given to Aparttiāṇi boys.

ମାଗୁଣି ପଟ୍ଟନାୟକ—ଦେ. ବି ( ନାମ )—'ରାମଚନ୍ଦ୍ର ବିହାର' ନାମକ Māguṇi paṭṭanāyaka ଗ୍ରନ୍ଥର ରଚୟିତା ( ଭାରତୀ. ଉ. ସା. ଇତିହାସ )—Name of an Oriya poet; the author of Rāmachandra Bihāra.

ମାଗୁର—ଦେ. ବି ( ସଂ. ମଦ୍ଗୁର )—ମଧୁର ଜଳରେ ବାସ କରୁଥିବା Māgura ଏକପ୍ରକାର କାତି ନ ଥିବା ମାଛ—A kind of মাগুর scaleless fresh water fish with मगोर; मङ्गुर, मङ्गरी, मगुरी spines on the side of the head ( like the sheat fish of Europe in formation); Clarius Magur. [ଦ୍ର—ଏମାନେ ମଧୁର ପାଣିରେ ପଙ୍କ ଭିତରେ ଥାଆନ୍ତି । ଏମାନଙ୍କ ବର୍ଣ୍ଣ ଧୂସର କଳା । ଏ ମାଛ ଲମ୍ବରେ ଏକହାତ ପର୍ଯ୍ୟନ୍ତ ବଢ଼ନ୍ତି; ମୁଣ୍ଡ ଚେପ୍ଟା, ମୁହଁର ଦୁଇ ପାଖରେ ୮ ଗୋଟା ନିଶ ଥାଏ; ଗାଲସି ପାଖରେ ଦୁଇଟା ମୁନିଆଁ କଣ୍ଟା ବାହାରି ଥାଏ । ଏମାନେ ଏହି କଣ୍ଟାରେ ମନୁଷ୍ୟଙ୍କୁ ଫୋଡ଼ି ଦେଲେ ବିଶେଷ ଯନ୍ତ୍ରଣା ହୁଏ । ଏହି ଯନ୍ତ୍ରଣା ସ୍ଥାନରେ ମନ୍ଦୁର ପ୍ରଲେପ

ଦେଲେ ଯନ୍ତ୍ରଣାର ଉପଶମ ହୁଏ । ଏମାନଙ୍କୁ ଧଇଲେ ଏମାନେ କିଁ କିଁ ଶବ୍ଦ କରନ୍ତି । ମାଗୁର ମାଛର ଝୋଳ ରୋଗୀର ପଥ୍ୟ ଓ ବିଶେଷ ବଳଦାୟକ ବୋଲି ବିବେଚିତ । ] [ ଉ—ମାଗୁର ମାଛର ଝୋଲ୍, ବେଟା ! ଧର ଧର ବୋଲ୍—ଢଗ । ]

ମାଗୁର ନିଶା—ଦେ. ବିଣ. ପୁଂ—ଯେଉଁ ପୁରୁଷର ମୁହଁରେ ମାଗୁରର ନିଶ Māgura nisā ପରି ସାମାନ୍ୟ ଗୋଟି କେତେ କହରା ନିଶଥାଏ; ମାଗୁର ନିଶୁଆ } ଅନ୍ୟରୂପ ମାଗୁରମୁଛା(ମୁଛିଆ) } ମାଖୁନ୍ଦା—A person who has got a few brown hairs only over his upper lip. ଚିଂଗଡ଼ି ଶୁଂଗୋ **मंगुर मोछा** [ ଉ—କୁଞ୍ଚୁକୁଞ୍ଚିଆ, ମାଗୁର ନିଶା, ହୁଅଇ ନ ଥାଏ ବାଳ । ଏ ତିନିଙ୍କି ପରତେ ନ ଯିବ, ଥିବାଯାଏ ଜନ କାଳ । ଢଗ ।—ଲୋକମାନଙ୍କର ବିଶ୍ୱାସ ଯେ ମାଗୁରନିଶୁଆ ବ୍ୟକ୍ତିମାନେ ଅଣବିଶ୍ୱାସୀ ଅଟନ୍ତି । ]

ମାଗୁର ମୁହାଁ—ଦେ. ବିଣ—ମାଗୁର ପରି ଯେଉଁମାନଙ୍କ ମୁହଁ ଚେପ୍ଟା; Māgura muhān̄ ଚେପ୍ଟା ମୁହାଁ—Having the face (ମାଗୁର ମୁହାଁ—ସ୍ତ୍ରୀ) flat like of the Māgura fish. ମାଗୁର ମୁଖୋ **मंगुर मुहाँ**

ମାଗୁର ମେ(ମି)ଞ୍ଚି(ଚି)—ଦେ. ବି—ଏକପ୍ରକାର ସରୁ ଓ ଲମ୍ବା ଧାନ—Māgura me(mi)n̄chi(chi) A kind of fine paddy.

ମାଗୁରିଆ—ଦେ. ବିଣ. ( ଭୁଲ. ଏହି ଅର୍ଥରେ ଗୁଲୁଗୁଲିଆ )—ଛୋଟ ଓ Māguriā ହୃଷ୍ଟପୁଷ୍ଟ ( ବ୍ୟକ୍ତି )—Small and stout ମୋଟାସୋଟା **खोखना, मोटासोटा** ( person ). (ମାଗୁରା—ଅନ୍ୟରୂପ)

ମା ଗୋସା(ସେ)ଇଁ—ଦେ. ବି ସ୍ତ୍ରୀ—ମାତାଙ୍କ ପ୍ରତି ବ୍ୟବହୃତ ଭକ୍ତିସୂଚକ Mā gosā(se)in̄ ବାକ୍ୟ—A word used in respect ମା ଗୋସାଇଁ **मतारी; महतारी** toward's one's mother.

ମାଘ—ସଂ. ବି ( ମଘା+ଅ+ଈ=ମାଘୀ=ମଘାନକ୍ଷତ୍ରଯୁକ୍ତା ପୂର୍ଣ୍ଣିମା; Māgha ମାଘୀ+ତଦ୍‌ଯୁକ୍ତ କାଳାର୍ଥେ. ଅ )—୧ । ମଘା ନକ୍ଷତ୍ର ଯୁକ୍ତ ପୌର୍ଣ୍ଣମାସୀବିଶିଷ୍ଟ ଚାନ୍ଦ୍ରମାସ—1. The lunar month of Māgha ( corresponding to January—February ). [ ଦ୍ର—ଏହା ସୌର ମକରମାସ ସଙ୍ଗେ ସମାନ । ଏହା ଶୀତଋତୁର ଶେଷମାସ । ଏହି ମାସ ହିନ୍ଦୁମାନଙ୍କର ଗୋଟିଏ ଧର୍ମମାସ । ଏହି ମାସରେ ପ୍ରାତଃସ୍ନାନ ଓ ହବିଷ୍ୟାନ୍ନ କର୍ତ୍ତବ୍ୟ । ମାଘମାସ ସମ୍ବନ୍ଧରେ ଅନେକଗୁଡ଼ିଏ ଢଗ ପ୍ରଚଳିତ ଅଛି । ଯଥା—୧ । ମାଘ, ଶୀତ ହୁଏ ବାଘ । ମାଘ, ଶୀତର ବଡ଼ ରାଗ—ମାଘମାସରେ ଶୀତର ପ୍ରାବଲ୍ୟ ହେବା ହେତୁରୁ ଏହି ଢଗ କୁହାଯାଏ । ୨ । ଏକାମାଘକେ ଶୀତ ଯାଏ ନାହିଁ—ପ୍ରତିବର୍ଷ ମାଘମାସ ଆସେ ଓ ଶୀତର ପ୍ରାବଲ୍ୟ ହୁଏ । ଯେଉଁ କଥା ପୁଣି ଘଟିବ ତହିଁପ୍ରତି ଲକ୍ଷ୍ୟ କରି ଏହି ଢଗର ଉପମା ଦିଆ-ହୁଏ । ୩ । ମାଘେ ଶୀତ, ମେଘେ ଶୀତ, ଯଦି ବାତ ବହୁ ଶୀତ—ଶୀତ କେଉଁ କେଉଁ ସମୟରେ ଅନୁଭୂତ ହୁଏ, ଏପ୍ରଶ୍ନର ଉତ୍ତରରେ ଏହା ଗୋଟିଏ ବେତାଳୋକ୍ତି ଢଗ । ୪ । ମାଘେ ମୂଳା, ଗୋରୁ ମାଉଁସ ପୁଳା ପୁଳା—ମାଘମାସରେ ମୂଳା ଖାଇବା ଶାସ୍ତ୍ରରେ ନିଷିଦ୍ଧ ଥିବାରୁ ମାଘମାସରେ ମୂଳା ଖାଇଲେ ଗୋମାଂସ ଭକ୍ଷଣର ପାପ ହୁଏ, ଏହି ଅର୍ଥରେ ଏ ଢଗ ପ୍ରଚଳିତ ହୁଏ ।] ୨ । 'ଶିଶୁପାଳ ବଧ' ସଂସ୍କୃତ କାବ୍ୟର ରଚୟିତା—2. Name of the poet of a Sanscrit poem 'Śiśupāla badha.' [ଦ୍ର—ଏ ଖ୍ରୀଷ୍ଟୀୟ ୯ମ ବା ୧୦ମ ଶତାବ୍ଦିରେ ଗୁଜରାଟ ପ୍ରଦେଶରେ ଜନ୍ମ ଗ୍ରହଣ କରି-ଥିଲେ । ଏହାଙ୍କ ପିତାଙ୍କ ନାମ ଦତ୍ତକ, ଏହାଙ୍କ ପିତାମହ ସୁପ୍ରଭ ଦେବ ଶ୍ରୀ ଧର୍ମନାଭ ନାମକ ରାଜାଙ୍କର ମନ୍ତ୍ରୀ ଥିଲେ । ଏହାଙ୍କ କାବ୍ୟରୁ ଏହାଙ୍କର ପ୍ରଗାଢ଼ କବିତ୍ୱ, ରାଜନୀତିକ ଓ ଦାର୍ଶନିକ ଜ୍ଞାନର ପରିଚୟ ମିଳେ । ଶ୍ରୀକୃଷ୍ଣଙ୍କ ଦ୍ୱାରା ଶିଶୁପାଳର ବଧ ଏ କାବ୍ୟର ପ୍ରତିପାଦ୍ୟ ବିଷୟ ଅଟେ । ଗୋଟିଏ ସଂସ୍କୃତ ଶ୍ଳୋକ ଅଛି—ଉପମା, କାଳିଦାସସ୍ୟ, ଭାରବେ ରର୍ଥ ଗୌରବଂ, ଦଣ୍ଡିନଃ ପଦଲାଳିତ୍ୟଂ, ମାଘେ ସନ୍ତି ତ୍ରୟୋ-ଗୁଣାଃ । ମାଘଙ୍କ କାବ୍ୟରେ ଉପମା, ଅର୍ଥ ଗୌରବ ଓ ପଦ ଲାଳିତ୍ୟର ସମାବେଶ ଦେଖାଯାଏ—ସ୍ୱବଳଚନ୍ଦ୍ର ଓ ଆପ୍ଟେ ।]

ମାଘ ପଞ୍ଚମୀ—ସଂ. ବି—ମାଘ ଶୁକ୍ଳ ପଞ୍ଚମୀ; ସରସ୍ୱତୀ ପୂଜା; ଶ୍ରୀପଞ୍ଚମୀ; Māgha pan̄chamī ବସନ୍ତ ପଞ୍ଚମୀ—The 5th day of the bright fortnight of 'Māgha.'

ମାଘବତ(ନ)—ସଂ. ବିଣ. (ମଘବତ୍; ମଘବନ୍+ସମ୍ବନ୍ଧାର୍ଥେ ଅ)—Māghabata(na) ଇନ୍ଦ୍ର ସମ୍ବନ୍ଧୀୟ—Relating to Indra [ମାଘବତୀ(ନୀ)—ସ୍ତ୍ରୀ] (ଯଥା—ମାଘବତ ଚାପ=ଇନ୍ଦ୍ରଧନୁ ।)

ମାଘବତୀ(ନୀ)—ସଂ.ବି.ସ୍ତ୍ରୀ (ମାଘବତ[ନ]+ଈ)—ମାଘବତର ସ୍ତ୍ରୀ ଲିଙ୍ଗ-Māghabatī(nī) Feminine of Māghabata. ସଂ. ବି. ସ୍ତ୍ରୀ—ପୂର୍ବଦିଗ—The east (Apte).

ମାଘ ବ୍ରତ—ସଂ. ବି—ମାଘ ମାସରେ ହିନ୍ଦୁମାନଙ୍କର କରଣୀୟ ପ୍ରାତଃସ୍ନାନ, Māgha brata ହବିଷ୍ୟ ଓ ଜପ ଆଦି ବ୍ରତ—Austerities observed by pious Hindus during Māgha.

ମାଘ ସପ୍ତମୀ—ସଂ. ବି—ମାଘ ଶୁକ୍ଳ ସପ୍ତମୀ—The 7th day of Māgha saptamī the bright fortnight of Māgha. [ଦ୍ର—ଏ ଦିନ ପୁରୀ ଜିଲ୍ଲାର ସମୁଦ୍ର କୂଳବର୍ତ୍ତୀ ଚନ୍ଦ୍ରଭାଗା ତୀର୍ଥରେ ଅରୁଣୋଦୟ ସମୟରେ ସ୍ନାନ କଲେ ଓ ସୂର୍ଯ୍ୟୋଦୟ ଦର୍ଶନ କଲେ ମହାପୁଣ୍ୟ ହୁଏ । ଏ ଦିନ ଲିଙ୍ଗରାଜ ମହାପ୍ରଭୁଙ୍କର ଯାତ୍ରା ହୁଏ ।]

ମାଘ ସ୍ନାନ—ସଂ. ବି—୧ । ମାଘ ମାସରେ ଶାସ୍ତ୍ର-ବିହିତ ପ୍ରାତଃସ୍ନାନ—Māgha snāna 1. Early morning bath prescribed by the Hindu Śāstras during the lunar month of Māgha. ମାଘ ସ୍ନାଅ(ହା)ନ } ଗ୍ରାମ୍ୟରୂପ ମାଘ ସ୍ନାଅ(ହା)ନ } ୨ । ପ୍ରୟାଗଠାରେ ତ୍ରିବେଣୀରେ କରାଯିବା ସ୍ନାନ—2. Auspicious bath at Allahbad taken in the month of Māgha.

ମାଘ ହବିଷ୍ୟ—ସ. ବି—ମାଘମାସରେ ହିତ ଏକଭକ୍ତ ଉପବାସ; Māgha habishya (ଏଥିରେ ଦିନରେ ଥରେ ମାତ୍ର ଅରୁଆ ଓ [ମାଘ ହବିଷ(ଷ୍ୟ)—ଦେଶଜରୂପ] ନିର୍ଦ୍ଦିଷ୍ଟ ଭୋଜନ କରାଯାଏ)— ମାଘହବିସୀ Moderate, meatless and regulated meal prescribed for the month of Māgha.

ମାଘୀ—ସ. ବି. (ମଘା+ଅ+ଈ)—ମଘା ନକ୍ଷତ୍ରଯୁକ୍ତ ପୌର୍ଣ୍ଣମାସୀ— Māghī The full moon of the month of Māgha. ମାଘୀ ଦେ. ବିଣ—ମାଘ ମାସରେ ଜାତ ବା ଅମଳ କରାଯିବା— माघी Produced or harvestced in the month of Māgha.

ମାଘୀ ଖସା—ଦେ. ବି—ମାଘ ମାସରେ ଅମଳ କରାଯିବା ତିଳ ବା ରାଶି— Māghī khasā Sesamum seeds harvested in the মাঘী তিল माघी तील month of Māgha. (ମାଘୀ ତିଳ, ମାଘୀ ରାଶି—ଅନ୍ୟରୂପ)

ମାଘୀ ପୂର୍ଣ୍ଣିମା—ସ. ବି—ଅଗ୍ନ୍ୟୁତ୍ସବ ପୂର୍ଣ୍ଣିମା; ମାଘ ମାସର ପୌର୍ଣ୍ଣମାସୀ; Māghī pūrṇṇimā ଅଇଁସରା ବା ଅଗିଜଳା ପୂର୍ଣ୍ଣମୀ— ମାଘ ପୁନେଇଁ, ମାଘ ପୁନଅଁ, ମାଘ ପୂର୍ଣ୍ଣମୀ, ମାଘ ପୁର୍ଣ୍ଣ(ନ)ମୀ—ଗ୍ରାମ୍ୟରୂପ The full moon of the month of Māgha. [ଦ୍ର—ଏ ଦିନ ସନ୍ଧ୍ୟାରେ ଗ୍ରାମମାନଙ୍କରେ କୁଟା ଆଦି ଜମା କରି ଉହିଁରେ ନିଆଁ ଲଗାଇ ଓ ଅଗ୍ନିଦେବଙ୍କୁ ପୂଜା କରି ଅଗ୍ନ୍ୟୁତ୍ସବ କରାଯାଏ; ଅଇଁସରା ଦେଖ ।]

ମାଘୀ ଲଇ—ଦେ. ବି. (ବୈଦ୍ୟକ)—ଲତା ବିଶେଷ—Name of a Māghī lai creeper. [ଦ୍ର—ଏହାର ଉଚ୍ଚ ବଡ଼ ଓ ବହୁଦୂର ପର୍ଯ୍ୟନ୍ତ ଡାଳମାନ ବିସ୍ତାର କରେ । ଏ ଲତାର ପତ୍ରର ପୃଷ୍ଠଭାଗ ଶୁକ୍ଲବର୍ଣ୍ଣ ମଖମଲ ପରି ଦେଖାଯାଏ । ଏହି ପତ୍ରରେ କଡ଼ା ତେଲ ଲଗାଇ ଅଳ୍ପ ଉଷ୍ମ କରି ବ୍ରଣ ଉପରେ ପକାଇଲେ ବ୍ରଣ ପାଚି ଫାଟି ଯାଏ । ଏହି ପତ୍ରର ପ୍ରଲେପ ନାନାବିଧ ଚର୍ମରୋଗନାଶକ । (ଦ୍ରବ୍ୟଗୁଣ. କଳ୍ପଦ୍ରୁମ)]

ମାଘୁଆଣି—ଦେ. ବିଣ—ମାଘ ମାସରେ ହେବା (ବର୍ଷା, ଫଳ ଇତ୍ୟାଦି)— Māghuāṇi মাঘের माघकी (rain, fruits etc) Produced in Māgha.

ମାଘ୍ୟ—ସ. ବି—(ମାଘ+ଯ; ଏ ଫୁଲ ମାଘ ମାସରେ ବା ଶୀତ Māghya କାଳରେ ଫୁଟେ)—କୁନ୍ଦ ଫୁଲ—A kind of mild-scented white flower; Jasminum Pubescens. ସ. ବିଣ—ମାଘ ମାସରେ ଜାତ—Produced during Māgha.

ମାଙ୍କି—ପ୍ରାଦେ. (ସିଂହଭୂମ) ବି—ମାଣକି (ଦେଖ) Mānki Māṇ-ki (See)

ମାଙ୍କ୍ଷ (ଧାତୁ)—ଇଚ୍ଛା କରିବା— Māṅksh (root) To wish or desire (Apte).

ମାଙ୍ଗଟି—ଦେ. ବି. (ସ. ମାନ)—ଅଭିମାନ କରି କଥା ନ କହିବା— Māṅg-ṭi Silence due to sullenness or displeasure. ମୁଖଫୁଲାନ मुख फुलाना

ମାଙ୍ଗଟି କରିବା—ଦେ. କ୍ରି—ଅଭିମାନ କରି କଥା ନ କହିବା— Māṅgaṭi karibā To be sullenly silent. ମୁଖ ଫୁଲାନ मुखफुलाना

ମାଙ୍ଗ ସରାସରି—ବୈଦେ. ବି—(ଅ)—ମୁସଲମାନୀ ଅଳଙ୍କାର ବିଶେଷ; Māṅg sarāsari ମୁସଲମାନ ସ୍ତ୍ରୀଲୋକମାନେ କପାଳର ମଝିରେ ପିନ୍ଧିବା ଅଳକା ମାଙ୍ଗଟୀକା; ମଥାମଣି—An ornament worn by Muhamadān ladies on their forehead, along the middle line of the parted hair.

ମାଙ୍ଗ—ଦେ. ବି—(ସ. ମାଗ)—ସୀମନ୍ତ; ସୁନ୍ଥା; ମୁଣ୍ଡର ଲମ୍ବ ବାଳକୁ Māṅga କପାଳର ଦୁଇ ପାଖକୁ କୁଣ୍ଡାଇବାରେ ଦେଖାଯାଏ ସୀତେ, সিঁথী ମସ୍ତକର ସମ୍ମୁଖସ୍ଥ ବିନ୍ୟସ୍ତ କେଶର ମଧ୍ୟରେଖା— मांग The middle line which parts the front hair of the head by combing; the parting line of the front hair of the head. [ଦ୍ର— ସ୍ତ୍ରୀଲୋକଙ୍କ ସଜ୍ଜିତ କେଶର ମଧ୍ୟରେଖାକୁ ମାଙ୍ଗ ଓ ଲଣ୍ଡ, ମନୁଷ୍ୟଙ୍କ ମଧ୍ୟରେଖାକୁ ଟେଖ ( ବି. ଟେଢ଼ୀ; ଟେଖ ), କହନ୍ତି ।]

ମାଙ୍ଗଟ—ଦେ. ବି—ମାଙ୍ଗଟି (ଦେଖ) Māṅgaṭa Māṅg-ṭi (See)

ମାଙ୍ଗଟିଆ—ଦେ. ବିଣ.—ଅଭିମାନୀ—Prone to be sullen or Māṅgaṭiā অভিমানী to take offence at little अभिमानी (ମାଙ୍ଗଟୀ; ମାଙ୍ଗଟେଇ—ସ୍ତ୍ରୀ) things.

ମାଙ୍ଗଟିକା—ଦେ. ବି—( ସ. ନାମ ଲଲାଟିକା )—ସ୍ତ୍ରୀଲୋକମାନେ Māṅgaṭikā ମାଙ୍ଗରେ କପାଳ ଉପରେ ପିନ୍ଧିବା ଅଳଙ୍କାର সীথীপাটী, সিথীফুল ବିଶେଷ; ଲଲାଟିକା; ମଥାମଣି— माङ्गटीका; माङ्गफुल An ornament worn by females (ମାଙ୍ଗ ଫୁଲ, ମାଙ୍ଗ ମଣି—ଅନ୍ୟରୂପ) at the parting of the hair over the forehead.

ମାଙ୍ଗ ପକା(କେ)ଇବା—ଦେ. କ୍ରି—ମୁଣ୍ଡର କପାଳ ଉପରର କେଶକୁ Māṅga pakā(ke)ibā ପାନିଅହ୍ଵାରା ଦୁଇ ଫାଳ କରି କୁଣ୍ଡାଇ সীথীপাড়া, সীথীকাটা ସାଉଁଳି କରି ମହଣ ଆଦି ଦେଇ ସଜ୍ଜିତ मांगफाडना; सोतकाडना କରିବା—To arrange the (ମାଙ୍ଗ ପାଡ଼ି(ରି)ବା, ମାଙ୍ଗ ଭାଙ୍ଗିବା—ଅନ୍ୟରୂପ] front hair of the head into plaits (by means of comb and wax.)

ମାଙ୍ଗ ଭଙ୍ଗୀ—ଦେ. ବି—ସୀମନ୍ତରଚନା; ସ୍ତ୍ରୀମାନଙ୍କ ମଥା ଉପରର ଲମ୍ବ Māṅga bhaṅgī କେଶକୁ ଦ୍ବିଭାଗ କରି ପାନିଅହ୍ଵାରା ସାଉଁଳି সীথীর ভঙ্গী କରାଯିବା ବିନ୍ୟାସ—The arrangement of the hair on the front of the head (ମାଙ୍ଗଭାଙ୍ଗ—ଅନ୍ୟରୂପ) into plaits by means of comb and wax. [ ଉ—ହେମାଙ୍ଗୀର ମାଙ୍ଗଭାଙ୍ଗେ ମଥାମଣି ବିହରଇ ଦିବ୍ୟ ପ୍ରଭା—ରାଧାନାଥ. ପର୍ବତ ।]

ମାଙ୍ଗଳିକ—ସ. ବଣ ( ମଙ୍ଗଳ+ସ୍ୱାର୍ଥେ. ଇକ )—୧ । ମାଙ୍ଗଲ୍ୟ;
Māngaḻika ମଙ୍ଗଳଜନକ; ଶୁଭକର—1. Auspicious; propitious. ୨ । ହିତକର—2. Beneficial. ୩ । ଶୁଭଫଳର ଲାଭ ଆଶାରେ ବା ପାରିବାରିକ ଉତ୍ସବର ଆରମ୍ଭରେ ଅନୁଷ୍ଠିତ ( କାର୍ଯ୍ୟ )—3. ( acts ) Performed in connection with family celebrations or to secure weal; propitiatory. ୪ । ସୌଭାଗ୍ୟବାନ୍—4. Fortunate ( Apte ). ବି—୧ । ଶୁଭ; ମଙ୍ଗଳ—1. Weal; auspices; prosperity. ୨ । ମଙ୍ଗଳାଚାର—2. Acts performed at the beginning to bring or invoke prosperity. ୩ । ମାଙ୍ଗଲ୍ୟ ଦ୍ରବ୍ୟ—3. Articles used in connection of invoking prosperity. [ଦ୍ର—ଦୂବ, ବରକୋଳି ପତ୍ର, କଡ଼ୁଆ, ଅକ୍ଷତ, ଶୁକ୍ଳଧାନ୍ୟ, ଚନ୍ଦନ, ଫୁଲ, ବର୍ଣ୍ଣୟ ପଇତା, ନବବସ୍ତ୍ର ଆଦିକୁ ମାଙ୍ଗଳିକ ଦ୍ରବ୍ୟ କୁହାଯାଏ । ] ୪ । ନାଟକର ଯେଉଁ ନଟ ମଙ୍ଗଳ ଗୀତ ପାଠ କରେ ( ହି. ଶ )—4. The player who recites the invocatory song in a dramatic performance.

ମାଙ୍ଗଳିକ ଉତ୍ସବ—ସ. ବି—ବିବାହ, ବ୍ରତ, ଯଜ୍ଞ, ହୋମ ଆଦି ଶୁଭକର
Māngaḻika utsaba କାର୍ଯ୍ୟ—Ceremonial; ceremonial rite; festival.

ମାଙ୍ଗଳିକ କାର୍ଯ୍ୟ [କର୍ମ], ମାଙ୍ଗଳିକ ଅନୁଷ୍ଠାନ, ମାଙ୍ଗଲ୍ୟ ଉତ୍ସବ, ମାଙ୍ଗଲ୍ୟ ଅନୁଷ୍ଠାନ, ମାଙ୍ଗଲ୍ୟ କାର୍ଯ୍ୟ (କର୍ମ) } ଅନ୍ୟରୂପ

ମାଙ୍ଗଳିକ ଦ୍ରବ୍ୟ—ସ. ବି—ମାଙ୍ଗଳିକ ଉତ୍ସବରେ ବ୍ୟବହୃତ ଦ୍ରବ୍ୟାଦି—
Māngaḻika drabya Articles used in ceremonials ( ମାଙ୍ଗଲ୍ୟ ଦ୍ରବ୍ୟ—ଅନ୍ୟରୂପ ) which are intended to bring prosperity or blessing. [ ଦ୍ର—ପୂର୍ଣ୍ଣକୁମ୍ଭ ସ୍ଥାପନ, କଦଳୀଗଛ ରୋପଣ, ଦ୍ୱାରରେ ପତାକା ତୋରଣାଦି ସ୍ଥାପନ, ଗଣେଶ ପୂଜା, ସ୍ୱସ୍ତିବାଚନରେ ବ୍ୟବହୃତ ଦୂବ, ବରକୋଳିପତ୍ର, ଅକ୍ଷତ, ଚନ୍ଦନ, ନାରିକେଳ, ଦର୍ପଣ, ଉପବୀତ, ନବବସ୍ତ୍ର ଆଦିକୁ ମାଙ୍ଗଳିକ ଦ୍ରବ୍ୟ କୁହାଯାଏ । ]

ମାଙ୍ଗଲ୍ୟ—ସ. ବଣ ( ମଙ୍ଗଳ+ସ୍ୱାର୍ଥେ. ଯ )—୧ । ମଙ୍ଗଳସୂଚକ;
Māngalya ଶୁଭକର; କଲ୍ୟାଣକର—1. Propitious; auspicious. ୨ । ହିତକର—2. Beneficial. ବି—୧ । କଲ୍ୟାଣ; ଶୁଭ; ମଙ୍ଗଳ—1. Weal; welfare; bliss. ୨ । ସୌଭାଗ୍ୟ—2. Prosperity.

ମାଙ୍ଗାନିଜ୍—ବୈଦେ. ବି ( ଇଂ )—ଲୌହ ପରି ଖନିଜଦ୍ରବ୍ୟବିଶେଷ—
Māngānij Manganese. [ ଦ୍ର—ଏହା ଖନିଜ ଅଟେ । ମାଁ(ମେ)ଙ୍ଗାନୀଜ ଏହାର ବର୍ଣ୍ଣ ପାଉଁଶିଆ କଳା । ଏହା ଅତ୍ୟନ୍ତ ଶକ୍ତ ମैंगानीज ଅଟେ ଓ ସହଜରେ ତରଳେ ନାହିଁ; କିନ୍ତୁ ସହଜରେ ପାଉଁଶ ହୋଇଯାଏ । ଏହା ଇସ୍ପାତକୁ ଶକ୍ତ କରିବାରେ ଓ କାଚ ତିଆରି କରିବାରେ ବ୍ୟବହୃତ ହୁଏ । ]

ମାଙ୍ଗୋଷ୍ଟିନ୍—ବୈଦେ. ବି ( ଇଂ )—ଫଳବିଶେଷ—Mango-
Māngoshṭin steen. [ ଦ୍ର—ଏହାର ପାଚିଲା ଫଳ ସୁସ୍ୱାଦୁ ମাঙ্গোষ্টিন ଅଟେ । ଏହାର ଚୋପା ମୋଟା ଓ ନାଲି ଓ मैंगोस्टीन ଏଥିର ଶସ ଧଳା ଅଟେ । ]

ମା(ମ୍ୟା, ମେ)ଚ୍—ବୈଦେ. ବି ( ଇଂ. ମାଚ୍ )—୧ । ଫୁଟବଲ୍,
Mā(myā, me)ch କ୍ରିକେଟ୍ ଆଦି ଖେଳରେ ଏକାଧିକ ପକ୍ଷଙ୍କ ম্যাচ मैच ପ୍ରତିଯୋଗିତା—1. Match ( in the game of cricket, football etc ). ୨ । ଦିଆସିଲିଇ—2. Matches.

ମା(ମ୍ୟା, ମେ)ଚ୍ ବକ୍ସ—ବୈଦେ. ବି ( ଇଂ )—ଦିଆସିଲିଇ ପେଡ଼ି—
Mā(myā, me)ch baks Match box.
ম্যাচবাক্স मैच बकस

ମାଚିକା—ସ. ବି—୧ । ମାଛି ( ହି. ଶ )—1. Flea. ୨ । ଆମ୍ବଡ଼ା
Māchikā ଗଛ (ହି. ଶ)—2. Hogplum tree.

ମା(ମ୍ୟା, ମେ)ଚି(ଚେ)ସ୍—ବୈଦେ. ବି(ଇଂ. ମାଚେସ୍=ଦିଆସିଲିଇମାନ)—
Mā(myā, me)chi(che)s ୧ । ଦିଆସିଲିଇ—1. Matchbox. ୨ । ଦିଆସିଲିଇ କାଠି—2. Matches.

ମାଚିସ୍ଖାଡ଼ି—ବୈଦେ. ( ଇଂ ) ପ୍ରାଦେ. ( ସମ୍ବଲପୁର ) ବି— ଦିଆସିଲି
Māchis-khāṟdi କାଠି—Matches; matchstick.
( ମା[ମ୍ୟା]ଚି[ଚେ]ସ୍ କାଠି—ଅନ୍ୟରୂପ ]

ମାଛ—ଦେ. ବି. ( ସ. ମତ୍ସ୍ୟ, ପ୍ରା. ମଚ୍ଛ; ପାଲି. ମାଛ )—ମୀନ;
Māchha ମତ୍ସ୍ୟ; ଖାଦ୍ୟରୂପେ ବ୍ୟବହୃତ ଜଳଜନ୍ତୁବିଶେଷ—
মাছ Fish. [ ଦ୍ର—ମାଛମାନେ ବାସସ୍ଥାନ ଭେଦରେ मछली, माछ ଓ କାତି ଥିବା ନ ଥିବା ଭେଦରେ ନାନାପ୍ରକାର । ସମୁଦ୍ରରେ ଥିବା ମାଛମାନଙ୍କୁ ସାମୁଦ୍ରିକ ବା 'ଲୁଣିମାଛ' ଓ ନଦୀ ପୁଷ୍କରିଣୀ ଆଦି ମିଷ୍ଟ ଜଳରେ ଥିବା ମାଛମାନଙ୍କୁ 'ମଧୁର ମାଛ' ବୋଲାଯାଏ । ଶଳ୍କଯୁକ୍ତ ମାଛମାନଙ୍କୁ କାତି ମାଛ ଏବଂ ଅଶଳ୍କ ମାଛମାନଙ୍କୁ ଅକାତିଆ ମାଛ ବୋଲାଯାଏ । ପାଶ୍ଚାତ୍ୟମାନେ ଅନେକ ପ୍ରକାରର ସାମୁଦ୍ରିକ ଓ ମିଷ୍ଟ-ଜଳବାସୀ ମାଛମାନଙ୍କର ଶ୍ରେଣୀବିଭାଗ କରି ନାମ ଦେଇଅଛନ୍ତି, କିନ୍ତୁ ଆମ୍ଭମାନଙ୍କ ଭାଷାରେ ନାମ ବେଶୀ ନାହିଁ ।

କେତେକ ଲୁଣି ମାଛଙ୍କର ନାମ ଯଥା—ଲୁଣି ଚିଙ୍ଗୁଡ଼ି, କଣ୍ଟାବା(ମା)ଳିଆ ଚିଙ୍ଗୁଡ଼ି, ଖଙ୍ଗା, ଇଲିସି, ଡାହାଙ୍ଗରି, ଭେକଟା, ସାହାଳ; ଖୁରୁଣ୍ଡି, କବରି, ଘୀଇଗୁନ୍ଦି, ଟଙ୍କାଗୁନ୍ଦି, କୋକଲ, ଷାଙ୍କୁଚ, ଖଣ୍ଡାମଗର, ମୁଣ୍ଡାମଗର, ଭମ୍ମୀ, ଗୋଳକଡ଼ମା, ଫିରକ, ବାହାଲ, ଗୋଛିଆ ଇତ୍ୟାଦି ।

କେତେକ ମଧୁର ମାଛଙ୍କର ନାମ ଯଥା—ଭାକୁଡ଼ି, ଚିତଳ, ଜଳପୁ, ମିରକାଲି, କଳାବାଇଁସୀ, ବାଲିଆ ଶେଉଳ, ଜଳଙ୍ଗ, ଫଳି, ଶାଲ, ଆଡ଼ି, ଗଡ଼ିଶା, ପୋହଳା, ଏଣ୍ଡୁଲା, ଛେଳିକେଶିଣ୍ଡି, କଉ, ରଘା, ମାଗୁର, ଶିଙ୍ଗି,

ବାଉଁଶପତ୍ରୁଆ, ହାଣ୍ଡିଭଙ୍ଗା, ଭୋଦ୍ଭ, ଗଣିଅଭୋଦ୍ଭ, ବାଲିଗରଡ଼ା, ଜମିଖାଡ଼ୀ, ବମି, ଚ(ଚୁ)ଙ୍ଗୁଡ଼, ବାଇଖୋଲି, ଗିଙ୍ଗିଟାଲି, ବୋଦଣ୍ଡୀ, ଲହୁଆକିରି, ଶେରଣା, କୋଚଥା, କମୀ, ଦଣ୍ଡିକସ୍ତ୍ର, ମହୁରାଳି(ଳ), କେରଣ୍ଡି ଇତ୍ୟାଦି ।

ଯେଉଁ ମାଛମାନେ ପଙ୍କଯୁକ୍ତ ପାଣିରେ ରହନ୍ତି ସେମାନଙ୍କୁ ପଙ୍କୁଆ ମାଛ ବୋଲାଯାଏ । ଯଥା—କଉ, ଗଡ଼ିଶା, ଶେଉଳ, ରଡା, ମାଗୁର, ଭୋଡ଼ୀ, ଖାଲ, ବମୀ ଇତ୍ୟାଦି ।

ଅତି ଶ୍ରେଷ୍ଠ ମାଛମାନଙ୍କୁ ମୀନ ମାଛ ବା ଚୂନା ମାଛ କୁହାଯାଏ । ଯଥା—ଦଣ୍ଡିକସ୍ତ୍ର, ମହୁରାଳି, କେରଣ୍ଡୀ, ପୋଇଚଙ୍ଗୁଡ଼, ବାଇଖୋଲି, ଜମିଖାଡ଼ୀ ଇତ୍ୟାଦି ।

ଚଙ୍ଗୁଡ଼ ଛଡ଼ା ଅନ୍ୟ ଶ୍ରେଷ୍ଠ ମାଛମାନଙ୍କୁ ମାଇ ମାଛ କୁହାଯାଏ । ଦଳପୂର୍ଣ୍ଣ ଜଳାଶୟରେ ( ଅର୍ଥାତ୍ ଯେଉଁ ପୋଖରୀ ଅବର ପାଣିରେ ପବନ ବାଜେ ନାହିଁ ) ଥିବା ମାଛମାନଙ୍କୁ ଦଳୁଆ ମାଛ କହନ୍ତି । ଏମାନଙ୍କର ସ୍ୱାଦ ଭଲ ନୁହେଁ । ମାଛ ପରି ଦେଖାଯାଉଥିବା ଅଥଚ ଅଖାଦ୍ୟ ମାଛଙ୍କୁ ଅମଛ ବୋଲାଯାଏ ।

ବର୍ଷାଦିନରେ ନଦୀ ପୋଖରୀରୁ ଛୁଟି ଆସି ଜଳପୂର୍ଣ୍ଣ ଧାନ୍ୟ କ୍ଷେତ୍ରରେ ଯେଉଁ ଶ୍ରେଷ୍ଠ ମାଛମାନେ ରହନ୍ତି ଓ ଶରତ୍‌କାଳରେ କ୍ଷେତଆଡ଼ୁ ପାଣି ଶୁଖିଗଲେ ବିଲରେ ରହିଯାଇ ଖେତୁଅମାବସର ଖରାର ଉତ୍ତାପରେ ବିଲରେ ମରିଯାଆନ୍ତି ତାଙ୍କୁ କଣମଛ ବୋଲାଯାଏ । ଖରାଦିନରେ ଜଳାଶୟର ଜଳ ଗରମ ହୋଇଗଲେ କମ୍ପା ଜଳ ବର୍ଷାକୁ ହେଲେ ମାଛମାନେ ମରି ଯାଇ ପାଣି ଉପରେ ଭାସିବାକୁ 'ମାଛ ବଉଳିବା' ବୋଲାଯାଏ । ଏହି କାରଣରୁ ବଡ଼-ମାଛମାନେ ପାଣି ଉପରୁ ଭାସି ଉଠି ଦରମରା ହୋଇ ଚିତ ହୋଇ ପହଁରିଲେ 'ମାଛଙ୍କୁ ଲହୁଆ ମାରିଲା' ବୋଲି କହନ୍ତି ।

ବଡ଼ ବଡ଼ ମାଛଙ୍କ ଅନ୍ତ୍ରକୁ ନିଆଁରେ ଗରମ କରି ତହିଁରୁ ମାଛ ଚର୍ବୀ ବା ମାଛ ତେଲ ବାହାର କରାଯାଏ । ସେ ତେଲ ଦୀପରେ ଜଳେ, ଔଷଧରେ ଲାଗେ । ଛମି ମାଛଙ୍କ ଚର୍ବିରୁ ମହମବତି ତିଆରି ହୁଏ । କଉ ନାମକ ମାଛର ଅନ୍ତ୍ରରୁ ଶ୍ୱାସ, କାସ, ଦୁର୍ବଳତାର ନିବାରକ ତୈଳ ତିଆରି ହୁଏ ।

ମାଛମାନେ ଅଣ୍ଡଜ । ସେମାନଙ୍କ ପେଟ ମଧ୍ୟରେ ଅଣ୍ଡା ବା ମଞ୍ଜି ମାନ ଦୁଇଟି ନୋଳା ବା ନଳାକୃତି ହୋଇ ରହିଥାଏ । ବର୍ଷାର ପ୍ରାରମ୍ଭରେ ବର୍ଷାଜନିତ ଜଳସ୍ରୋତରେ ଗର୍ଭିଣୀ ମାଛମାନେ ସ୍ରୋତ ବିରୁଦ୍ଧରେ ଖୁବ୍‌ଜୋରରେ ଗତି କରିବା ସମୟରେ ସେ ଡିମ୍ବଗୁଡ଼ିକ ତାଙ୍କ ପେଟରୁ ବାହାରି ପଡ଼େ ଓ ସେହି ଡିମ୍ବଗୁଡ଼ିକ ଅଣ୍ଡିରାମାଛଙ୍କ ବୀର୍ଯ୍ୟ ସଙ୍ଗେ ମିଶି ତହିଁରୁ କେତେ ସମୟ ପରେ ମାଛ ଛୁଆ ବାହାରନ୍ତି । ଏ ମାଛ ଛୁଆମାନଙ୍କୁ ଜାଆଁଳ ବୋଲାଯାଏ । ନଈବଢ଼ିରେ ଭାସି ଆସୁଥିବା ଫେଣରେ ମାଛ ଜାଆଁଳମାନେ ଆଶ୍ରୟ ନେଇ ଥାଆନ୍ତି । ଲୋକେ ସେହି ଫେଣମାନ ସଂଗ୍ରହ କରି ସେଥିରୁ ଜାଆଁଳ ଧରି ପୋଖରୀରେ ଉକ୍ତ ଜାଆଁଳମାନଙ୍କୁ ଛାଡ଼ନ୍ତି ଓ କାଳକ୍ରମେ ସେହି ଜାଆଁଳମାନେ ବଢ଼ି ବଡ଼ ମାଛ ହୁଅନ୍ତି । ମାଛଥିବା ଜଳାଶୟମାନଙ୍କୁ ଅନ୍ୟସ୍ଥାନରୁ ଜଳ-ସ୍ରୋତଦ୍ୱାରା ଜଳ ଆସିଲେ ମାଛମାନେ ସେହି ଜଳାଶୟରୁ ସ୍ରୋତର ବିପରୀତ ଦିଗରେ ଗତିକରନ୍ତି ବା ଉଠନ୍ତି, ତାହାଙ୍କୁ ଉଠାମାଛ କହନ୍ତି । ଜାଆଁଳ ବା ଶ୍ରେଷ୍ଠ ମାଛର ଦଳକୁ 'ମନ୍ଦା' କହନ୍ତି ଓ ବଡ଼ ମାଛର ଦଳକୁ 'ସାହାଣ' ବୋଲାଯାଏ । ନାନା ବର୍ଣ୍ଣର, ନାନା ଆକାରର ନାନା ଶ୍ରେଣୀର ସାମୁଦ୍ରିକ ମାଛ ଅଛନ୍ତି ।

ଚ(ଚୁ)ଙ୍ଗୁଡ଼ିମାନଙ୍କୁ ଲୋକେ ମାଛ ବୋଲି କହନ୍ତି ଓ ଖାଆନ୍ତି, କିନ୍ତୁ ପ୍ରକୃତରେ ଏମାନେ ମାଛ ଶ୍ରେଣୀର ନୁହନ୍ତି; ଏକପ୍ରକାର ଜଳଜ ପୋକ । ଚଙ୍ଗୁଡ଼ିମାଛଙ୍କ ମଞ୍ଜି ସେମାନଙ୍କ ପେଟ ମଧ୍ୟରେ ନ ଥାଏ; ତାହା ସେମାନଙ୍କ ପେଟତଳେ ଶ୍ରେଷ୍ଠ ଗୋଡମାନଙ୍କ ସନ୍ଧିରେ ଲାଗି ରହିଥାଏ । ଯେଉଁ ମାଛଙ୍କ ଦେହରେ ବେଶି କଣ୍ଟା ଥାଏ ସେମାନଙ୍କ 'କଣ୍ଟାମାଛ' ଓ ଯାହାଙ୍କ ଦେହରେ କଣ୍ଟା ଅଳ୍ପଥାଏ ସେମାନଙ୍କୁ ଅକଣ୍ଟା ମାଛ କହନ୍ତି । ଯେଉଁ ମାଛଙ୍କ ଦେହରେ କାତି ଥାଏ ତାଙ୍କୁ କାତିଆ ମାଛ ବୋଲାଯାଏ ଓ କାତି ନ ଥିବା ମାଛଙ୍କୁ ଅକାତିଆ ମାଛ ବୋଲାଯାଏ । ସମୁଦ୍ରରୁ ଓ ଜଳାଶୟରୁ ଖାଦ୍ୟ ନିମିତ୍ତ ମାଛ ଧରିବା ପାଇଁ ମନୁଷ୍ୟ ନାନାପ୍ରକାରର ଯନ୍ତ୍ର ଓ ଅସ୍ତ୍ର ବ୍ୟବହାର କରେ । ଯଥା—ଭେଣ୍ଡା, ବନସି, ନାନାପ୍ରକାର ଜାଲ, ପୋଲୁହ, ଜାଲ ପୋଲୁହ, ଖେପିଜାଲ, ଖଇଞ୍ଚ, ବଜା, ମୁଗୁରା ଇତ୍ୟାଦି ।

ମାଛ ଓ ମାଛ ମଞ୍ଜିଦ୍ୱାରା ଲୋକେ ନାନାପ୍ରକାରର ଖାଦ୍ୟ ଓ ବ୍ୟଞ୍ଜନାଦି ପ୍ରସ୍ତୁତ କରନ୍ତି । ଯଥା—ପଲଉ, ଛତଅଣ, ମହୁର, ବେସର, ଅମ୍ବିଳ, ଭଜା, ବରା, ଘୋଡ଼ା, ସିକ୍ଲୋଲା, କାଳିଆ ଇତ୍ୟାଦି ।

ମାଛ ଓ ମାଛ ମଞ୍ଜିକୁ ଶୁଖାଇ ତହିଁରେ ଲୁଣ ଦେଇ ପରେ ଖାଦ୍ୟରୂପେ ବ୍ୟବହାର କରିବାପାଇଁ ତାହା ସାଇତି ରଖାଯାଏ; ତାକୁ ଶୁଖୁଆ ବୋଲାଯାଏ । ଯଥା—ମଞ୍ଜି ଶୁଖୁଆ; କୋକଳି ଶୁଖୁଆ; ବଡ଼ ଶୁଖୁଆ; ଇଲିସି ଶୁଖୁଆ; ଚଙ୍ଗୁଡ଼ି ଶୁଖୁଆ; ପିତା ଶୁଖୁଆ ଇତ୍ୟାଦି ।

ହିନ୍ଦୁମାନଙ୍କ ମଧ୍ୟରେ କେତେକ ପ୍ରଦେଶର ବ୍ରାହ୍ମଣଙ୍କ ଛଡ଼ା ( ଯଥା—ମାରୱାଡ଼ୀ ବ୍ରାହ୍ମଣ, ଦ୍ରମା ବ୍ରାହ୍ମଣ ) ଭାରତରେ ଓ ଅନ୍ୟଦେଶରେ ଅଧିକାଂଶ ଲୋକେ ମାଛକୁ ଖାଦ୍ୟରୂପେ ବ୍ୟବହାର କରନ୍ତି । ହିନ୍ଦୁମାନଙ୍କର ଉପବାସ, ହବିଷ୍ୟଅଦିରେ ମତ୍ସ୍ୟଭୋଜନ ନିଷିଦ୍ଧ । ଉଚ୍ଚ ଜାତୀୟ ହିନ୍ଦୁ ବିଧବାମାନଙ୍କ ପକ୍ଷରେ ମଧ୍ୟ ମତ୍ସ୍ୟଭୋଜନ ନିଷିଦ୍ଧ ।

ଚଙ୍ଗୁଡ଼ ଛଡ଼ା ପ୍ରାୟ ସବୁ ମାଛଙ୍କ ଦେହ ଭିତରେ ମନୁଷ୍ୟର ମେରୁଦଣ୍ଡ ପରି ମଝିରେ ଗୋଟିଏ ଲମ୍ବ ଶାଖାଯୁକ୍ତ

କଣ୍ଟା ଥାଏ । ମଧୁର ମାଛ ମଧ୍ୟରେ ବାଲଅ, ଶାଳ ଓ ଚଉଳ ମାଛ ୩।୪ ହାତ ବଢ଼ିବାର ଦେଖାଯାଅନ୍ତି ।

ସାମୁଦ୍ରିକ ମାଛଙ୍କ ମଧ୍ୟରେ ଛମୀ ସବୁଠାରୁ ବଡ଼ ଓ ଏହା ୫୦ହାତ ପର୍ଯ୍ୟନ୍ତ ଲମ୍ବ ଓ ସାର୍ଦ୍ଧଶତ ହେବାର ଦେଖାଯାଏ । ଜାହାଜରେ ଲୋକେ ଯାଇ ବଡ଼ ବଡ଼ ଲୌହାସ୍ତ୍ରରେ ଏମାନଙ୍କୁ ମାରନ୍ତି । ଗୋଟିଏ ଗୋଟିଏ ଛମୀମାଛ ଦେହରୁ ଶହ ଶହ ମହଣ ଚର୍ବି ବାହାରେ ଓ ଏ ଚର୍ବିରେ ମହଣବଣା ହୁଏ ।

କୋଚଅ, ଚୋଡ଼ୁ, ଗଣିଅ ଚୋଡ଼ୁ, ସାପ ପରି ଦେଖାଗଲେ ମଧ୍ୟ ମାଛଜାତୀୟ ଅଟନ୍ତି ।

ମାଛମାନଙ୍କ ଦେହରେ ଭିନ୍ନ ଭିନ୍ନ ଅଂଶ—ଶୃଙ୍ଗ—( ବ. ଶୃଂଗ, ହି. ସୁଂଗ )—ମାଛମାନଙ୍କ ମୁହଁରେ ଥିବା ସରୁ କେଶ—Feelers. ମୁଣ୍ଡ—( ବ. ମୁଡ଼ୋ; ହି. ମୁଡ୍ଡା ) —ମାଛର ମସ୍ତକ—Head. ଗାଲ ବା ଗାଲସି— ( ବ. କାନାସି, ଗାଲସି; ହି. ଗଲଫଡ଼ )—ମାଛ ମୁଣ୍ଡର ଦୁଇକଡ଼ରେ ଥିବା ଅସ୍ଥିଫଳକ—Cheek bone. କାତି —( ବ. ଆଁଶ, ହି. ଛିଲକା )—ଶଲ୍କ—Scale. ଲାଞ୍ଜ—( ବ. ଲେଜା, ନେଜା; ହି. ପୁଚ୍ଛ )—ଲାଙ୍ଗୁଡ଼—Tail. ପକ୍ଷୀ—( ବ. ପାଖନା, ଡାନା; ହି. ଡେନା )—ଡେଣା—Fin. ଅନ୍ତ—( ବ. ଅଁତ; ହି. ଅତଡ଼ୀ )—ମାଛର ଗର୍ଭସ୍ଥ ନାଡ଼ି ଆଦି—Entrails. ପୁଣ୍ଠା ବା ପୁଠୀ—( ବ. ଫୁସ୍‌ଫୁସ୍, ପଟକା; ହି. ଫୁସଫୁସ )—ଫୁସ୍‌ଫୁସ୍—Lungs. ପିତ୍ତ—( ବ. ପିତ୍ତ )—ପିତ୍ତ—Bile. ଫୁଲ—( ବ. ଫୁଲକା; ହି. ଫୁଲ )—ମାଛ ମୁଣ୍ଡର ଦୁଇ ପାଖରେ ଗାଲସି ତଳେ ଥିବା ଦଳୁର ବସ୍ତୁ; ଫୁଲ—The red gills inside the cheek of fishes. କଣ୍ଟା—( ବ. କାଁଟା; ହି. କାଁଟା )—ମାଛର ହାଡ଼—Fish bone. ଚିଙ୍—( ବ. ଶିଂଗ; ହି. ଶିଂଗ )—କେତେକ ମାଛଙ୍କ ବେକ ପାଖରେ ଥିବା ଦାନ୍ତୁଅ ଓ ମୂନିଆ କଣ୍ଟା—Spines or prickles or spikes on the sides of the head of some fishes. ଓଠ—( ବ. ଥୁତ୍‌ନି; ହି. ଥୁଥନ )—ଓଷ୍ଠ—The chin.] ୨ । ମାଛ ପରି ଦେଖା ଯାଉଥିବା ସୁନାର ବା ରୁପାର ଅଲଙ୍କାର—2. An ornament of the shape of a fish.

**ମାଛ ଆଖି**—ଦେ. ବି—୧ । ମତ୍ସ୍ୟର ଚକ୍ଷୁ—1. The eye of a Māchha ākhi fish. ୨ । ଏହା ମାଛ ଆଖି ପରି ଗୋଲ ଓ ମାଛେର ଚୋଖ ଉମ୍ଭା ଦେଖାଯିବାରୁ ) ପାଦରେ କଣ୍ଟା ଗଳ ବନ୍ଦୁହନ **କୁଟକୀ, ମଛଲିକୀ ଆଁଖ** ରହିଗଲେ ଯେଉଁ ଚକାକାର ଘାଅ ହୁଏ—**କୋଦାଁଠି** 2. Circular patches or sores appearing on the sole due to its being pricked by thorn which is not extracted from it.

**ମାଛ ଆଖିଆ**—ଦେ. ବି—୧ । ତଳପାରେ ଏକପ୍ରକାର ରୋଗ—Māchha ākhiā 1. A disease; circular sores **କୁଟକୀ** appearing on the sole of the foot. [ଦ୍ର— **କୋଦାଁଠି** ଏଥିରେ ତଳପାରେ ମାଛ ଆଖି ପରି ଗୋଲ ଗୋଲ ଘାଅ ହୋଇଯାଏ ଓ ତାହା ଦରଜ ହେବାରୁ ମନୁଷ୍ୟ ଗୋଡ଼ ମାଡ଼ି କରି ଭଲ ପାରେ ନାହିଁ । ] ୨ । ମାଛ ଆଖି ୨ ( ଦେଖ )—2. Māchha ākhi 2 ( See ).

**ମାଛ କଣ୍ଟା**—ଦେ. ବି—୧ । ମାଛ ମଧ୍ୟରେ ଥିବା ଅସ୍ଥି—1. Fish-Māchha kanṭā bone. ୨ । ଏକପ୍ରକାର ସରୁ ଧାନ—ମାଛେର କାଁଟା 2. A kind of fine paddy. ୩ । **ମାଛକା କାଁଟା** ମାଛର ଶାଖାଯୁକ୍ତ କଣ୍ଟା ପରି ଏକପ୍ରକାର ସିଲେଇ—3. A kind of sewing in the shape of fish-bone.

**ମାଛ କର**—ଦେ. ବି ( ସଂ. ମତ୍ସ୍ୟ ଓ କର )—ନଈ ପୋଖରୀରୁ ମାଛ Māchha kara ମାରିବା ପାଇଁ ଜମିଦାରଙ୍କୁ ଦିଆଯିବା ଖଜଣା—ମାଛ କର **माछ कर** Fishery rent.

**ମାଛ ଗାର**—ପ୍ରାଦେ. ( ବସ୍ତର ) ବି—ମାଛ ମଞ୍ଜି—Māchha gāra Fish roe.

**ମାଛ ଗାରକ**—ଦେ. ବି—ଓଜନରେ ବିଶାଏ ମାଛ—One Bisā of Māchha gāraka ( ମାଛ ଗାରେ—ଅନ୍ୟରୂପ ) fish

**ମାଛ ଜାଆଁଳି**—ଦେ. ବି—ବଡ଼ ମାଛଙ୍କର ଶିଶୁ—The fry of Māchha jā-āṅla fishes. ମାଛେର ଚାରା **माछ(मछली)का राजी**

**ମାଛ ଡିମ୍ବ**—ଦେ. ବି—ମାଛର ପେଟ ମଧ୍ୟରେ ଥିବା ଅଣ୍ଡାକାର ପଦାର୍ଥ—Māchha ḍimba ମାଛେର ଡିମ୍ବ Fish-roe; seed fish. **माछका अंडा** [ ଦ୍ର—ମାଈ ମାଛମାନେ ଜଳସ୍ରୋତର ବିପରୀତରେ ମାଛ ବଢ଼ନ } ଅନ୍ୟରୂପ ମାଛ ମଞ୍ଜି } ଉଠିଲାବେଳେ ସ୍ୱଚ୍ଛଜଳରେ ଅଣ୍ଡେ ଅଣ୍ଡେ ଛାଡ଼ନ୍ତି । ସେହି ସମୟରେ ପୁଂମତ୍ସ୍ୟ ମଧ ଶାର୍ଯ୍ୟ ତ୍ୟାଗ କରେ । ଏହି ଉଭୟ ମିଳିତ ହୋଇ ୮ଘଣ୍ଟା ପରେ ଛୁଆରେ ପରିଣତ ହୁଏ—ବଳଭଦ୍ର. ଗ୍ରନ୍ଥାବଳୀ ।

ଅତଏବ ମାଈ ମାଛଙ୍କ ପେଟରେ ଯେଉଁ ଅଣ୍ଡାକାର ପଦାର୍ଥ ଦେଖାଯାଏ ତାହା କେବଳ ରଜଃ ଅଟେ ଓ ତହିଁରେ ଅଣ୍ଡିରା ମାଛର ଶାର୍ଯ୍ୟ ସଂଯୋଗ ନ ହେଲେ ତହିଁରୁ ଛୁଆ ଜାତ ହୋଇ ପାରେ ନାହିଁ । ]

**ମାଛ ତରକାରୀ**—ଦେ. ବି—ମତ୍ସ୍ୟରେ ପ୍ରସ୍ତୁତ ବ୍ୟଞ୍ଜନ—Fish curry. Māchha tarakāri [ ଦ୍ର—ଏହିପରି ମାଛ ଅମ୍ବିଳ, ମାଛ ମାଛେର ତରକାରି ଠକୁଠକା, ମାଛ ଝୋଳ, ମାଛ ପଲଉ, ମାଛ **मछलीकी तरकारी** ପୋଡ଼ା, ମାଛ ବେସର, ମାଛ ଭଜା, ମାଛ (ମାଛ ତଅଣ-ଅନ୍ୟରୂପ) ବଡ଼ା, ମାଛ ମହୁର, ମାଛ ସନ୍ତୁଳା ଆଦି ହୁଏ । ]

**ମାଛ ଧ(ମା)ରିବା**—ଦେ. କ୍ରି—ଜଳାଶୟରୁ ଜାଲ ଆଦିଦ୍ୱାରା ମାଛ Māchha dha(mā)ribā ସଂଗ୍ରହ କରିବା—To catch fishes ମାଛ ଧରା (ମାରା) **मछली पकडना (मारना)** with nets etc.

**ମାଛ ପେଟ**—ଦେ. ବି—ପେଟ ମାଛ; ମାଛର ପେଟିର ବିପରୀତ ଦିଗର Māchha peṭa ମାଂସଖଣ୍ଡ—The belly protion of a

ମାଛେର ପেট মছলীকা পেট fish; the ventral part of a fish.

ମାଛ ଭାତ—ଦେ. ବି. ( ସହଚର ଶବ୍ଦ; ସଂ. ମତ୍ସ୍ୟ+ଭକ୍ତ )—ଭାତ ଓ Māchha bhāta ତା ସଙ୍ଗେ ଖାଇବାକୁ ଦଆଯିବା ମାଛ ତରକାରୀ ମাছ ভাত মাছ ভাত ଓ ଭଜା ଅଦି—Food consisting of cooked rice and fish.

[ଦ୍ର—କୁଟୁମ୍ବରେ କେହି ମୃତ ହେଲେ ମୃତକାଶୌଚର ଶେଷ ପର୍ଯ୍ୟନ୍ତ କୁଟୁମ୍ବ ଲୋକେ ମାଛ ମାଂସ ଖାଆନ୍ତି ନାହିଁ। ଅଶୌଚର ଶେଷ ହେବା ପର ଦିନ (ଦ୍ୱାଦଶ ଦିନ) କୁଟୁମ୍ବମାନେ ମାଛ ଭାତ ଖାଆନ୍ତି। ]

ମାଛ ମଣ୍ଡା—ଦେ. ବି—ଛୋଟ ମାଛମାନଙ୍କର ଦଳ—Māchha mandā A shoal of fry.
ছোট মাছের ঝাঙ্ক মছলিকা ঝুংড(থর)

ମାଛ ମ(ଧ)ରା—ଦେ. ବି—୧। ଖାଦ୍ୟପାଇଁ ଜାଲଆଦିଦ୍ୱାରା ମାଛ ଧରିବା—Māchha ma(dha)rā 1. Catching of fishes for food
মছলি মারনা ମାଛ ଧ(ମା)ରା ୨। ମାଛୁଆ; କେଉଟ—Fisherman.

ମାଛ ମାଂସ—ଦେ. ବି—(ସହଚର ଶବ୍ଦ; ସଂ. ମତ୍ସ୍ୟ+ମାଂସ)—ଖାଦ୍ୟାର୍ଥ Māchha māṁsa ବ୍ୟବହୃତ ମତ୍ସ୍ୟ ଓ ମାଂସ—Fish and মাছ মাংস মাছ মাঁস meat; animal food.
(ମାଛ ମାଛିଁ(ଇଁ,ଏଁ)ସ—ଗ୍ରାମ୍ୟରୂପ)

ମାଛ ମାରିହେବା—ଦେ. କ୍ରି—ମାଛ ଜଳର ଉପରିଭାଗକୁ ଉଠି ଜଳକୁ Māchha mārihebā ବିଶେଷରେ ଆଲୋଳିତ କରିବା—; মাছ উলটান মাছ উলটনা The flapping of fishes on (ମାଛ ଲେଉଟିବା—ଅନ୍ୟରୂପ) the surface of water.

ମାଛ ମୁଣ୍ଡା—ଦେ. ବି—କଟା ହୋଇଥିବା ମାଛର ବଡ଼ ଖଣ୍ଡ—Māchha mundā A big lump cut off from a মাছের মুড়া মাছকা মুংডা big fish.

ମାଛ ମୁଦି—ଦେ. ବି—(ବର୍ଣ୍ଣିଅ ଶବ୍ଦ)—ମାଛର ଛବି ଅଙ୍କିତ ହୋଇଥିବା Māchha mudi ମୁଦି—A finger-ring with the figure or form of a fish embossed on it.
[ଦ୍ର—ରାଜାମାନଙ୍କ ବିବାହ ଦୂର୍ବାରୁ ବର ଘରପରୁ ଏହିପରି ମୁଦି କନ୍ୟା ଘରକୁ ପଠାଯାଏ ।]

ମାଛରଙ୍କା—ଦେ. ବି—(ସଂ. ମତ୍ସ୍ୟରଙ୍କ: ମତ୍ସ୍ୟରଙ୍ଗ)—୧। ଗଙ୍ଗେଇ Māchha rankā ଚଢ଼େଇ; ଖାଖାଶୃଙ୍ଗୀ ପକ୍ଷିବିଶେଷ—মাছরাঙা রাম চিরযা 1. Kingfisher; Alcedo Ispida. [ ଦ୍ର—ଏମାନେ ମତ୍ସ୍ୟଖାଆ ଶ୍ରେଷ୍ଠ ପକ୍ଷୀ, ଏମାନଙ୍କ ମୁଣ୍ଡ ଓ ପିଠି ନେଳଥ, ଚଞ୍ଚୁ ସାଦା ଓ ଡେଣା, ଲାଞ୍ଜ ଶ୍ରେଷ୍ଠ; ଲମ୍ବରେ ୭।୮ ଅଙ୍ଗୁଳ ପର୍ଯ୍ୟନ୍ତ ହୁଅନ୍ତି।
ଏମାନେ ପାଣି କୂଳରେ ଥିବା ଗଛ ଉପରେ ବସି ଥାଅନ୍ତି ଓ ପାଣିର ଊର୍ଦ୍ଧ୍ୱରେ କେତେକ ଉଚ୍ଚରେ ପକ୍ଷର ଡେଣାଦ୍ୱାରା ଏକ ସ୍ଥାନରେ ସ୍ଥିରଭାବରେ ଉଡ଼ି କରି ରହିଥାନ୍ତି। ପାଣି ଭିତରେ ମାଛକୁ ଦେଖିଲାକ୍ଷଣି ହଠାତ୍ ଏକ ଲମ୍ଫରେ ପାଣି ଭିତରକୁ ଖରବେଗରେ ଖସି ପଡ଼ି ମାଛକୁ ଧରି ଉପରକୁ ଉଠାଇ ନେଇ ଗିଳି ଦିଅନ୍ତି। ଏମାନେ ଛୋଟ ଛୋଟ ମାଛ ଧରନ୍ତି ।] ୨। ଗଙ୍ଗେଇ ଜାତୀୟ ଏକପ୍ରକାର ପକ୍ଷୀ—2. Another kind of kingfisher; Halcyon Smyrnensis. [ ଦ୍ର—ଏମାନେ ଗଙ୍ଗେଇ ଚଢ଼େଇଙ୍କଠାରୁ ବଡ଼। ଏମାନଙ୍କର ମୁଣ୍ଡ ଓ ପିଠି କଳା, ପେଟ ଧଳା, ଥଣ୍ଟ ଲାଲିଆ। ଏମାନେ ଏକଫୁଟ ପର୍ଯ୍ୟନ୍ତ ଲମ୍ବା ହୁଅନ୍ତି; କେଁ କେଁ ଶବ୍ଦ କରନ୍ତି। ଏମାନେ ମଧ୍ୟ ପାଣିରେ ହଠାତ୍ ପଡ଼ି ଛୋଟ ମାଛ ଧରି ଆଣି ଶୁଖିଲାରେ ବସି ଖାଆନ୍ତି। ଏମାନେ ନଦୀକୂଳରେ ବେଶି ପରିମାଣରେ ଦେଖା ଯାଆନ୍ତି ।] ୩। ଗଙ୍ଗେଇଜାତୀୟ ଅନ୍ୟ ଏକପ୍ରକାର ପକ୍ଷୀ—3. Another kind of kingfisher; Ceryle Varia; cormorant. [ଦ୍ର—ଏମାନଙ୍କର ବର୍ଣ୍ଣ ପାଣ୍ଡୁରିଆ; ୧୫।୧୬ ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି; ଏମାନେ ସମୁଦ୍ର ଓ ନଦୀକୂଳରେ ବେଶି ଦେଖା ଯାଆନ୍ତି ଓ ଘୋରରେ ଶବ୍ଦ କରନ୍ତି ।]
ବିଣ. ପୁଂ—ମାଛରଙ୍କା ପରି ଯେଉଁ ଲୋକର ପ୍ରତିଦିନ ମାଛ ଖାଇବାକୁ ଭାରି ଲାଳସା ବା ପ୍ରବୃତ୍ତି ଥାଏ; ମାଛ ଖାଇବା ପାଇଁ ଉତ୍କଣ୍ଠା ଲୋକ—(a person) Having a hankering after taking fish every day.

ମାଛ ରଙ୍କ(ଙ୍କୁ)ଣା—ଦେ. ବିଣ. ପୁଂ—ମାଛରଙ୍କା (ଦେଖ)
Māchha ranka(nku)nā Māchharankā (See)
[ମାଛରଙ୍କ(ଙ୍କୁ)ଣୀ—ସ୍ତ୍ରୀ) ]

ମାଛ ସାହାଣ—ଦେ. ବି—ବଡ଼ ମାଛର ଦଳ—A shoal of big Māchha sāhāna মাছের ঝাঙ্ক মছলিকা ঝুংড fishes.

ମାଛ ହାଟ—ଦେ. ବି—(ସଂ. ମତ୍ସ୍ୟହଟ୍ଟ)—ଯେଉଁ ହାଟରେ ମାଛ ବିକି Māchha hāta মাছের হাট ହୁଏ—Fish market. [ଦ୍ର—মাছকা হাট ମାଛ ହାଟରେ ବିଶେଷ ଗୋଳମାଳ ଲାଗେ ଓ କେଉଟୁଣୀମାନେ ଅତ୍ୟନ୍ତ କଡ଼ା କଥା ବ୍ୟବହାର କରନ୍ତି। ଏଥିପାଇଁ କୌଣସିଠାରେ ବିଶେଷ ଗୋଳମାଳ ବା କଳକଳି ହେଲେ 'ସେଠାରେ ମାଛ ହାଟ ବସିଛି' ବୋଲି ଲୋକେ କହନ୍ତି ।]

ମାଛି—ଦେ. ବି—(ସଂ: ମକ୍ଷିକା, ମାଚିକା; ପ୍ରା. ମଚ୍ଛିଆ—୧। ଦ୍ୱିପକ୍ଷଯୁକ୍ତ Māchhi ଷଟ୍ପଦ କୀଟ; ମକ୍ଷିକା—1. House fly; a মাছি মক্খী মাক্খী common fly; flea; Nuscidae Diptera; Musca Domestica. [ ଦ୍ର—ମାଛିମାନେ ଷଟ୍ପଦ ଓ ଦୁଇଟି ପକ୍ଷଯୁକ୍ତ ଅଟନ୍ତି। ନାନାପ୍ରକାର ମାଛି ଅଛନ୍ତି। ଏମାନେ ଖାଦ୍ୟଦ୍ରବ୍ୟରେ, ପଚା ଜନ୍ତୁଦେହରେ ଓ ଜୀବ ଦେହର କ୍ଷତାଦିରେ ବସନ୍ତି। ଏମାନଙ୍କଦ୍ୱାରା ଦୂଷିତ କୀଟାଣୁମାନ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନୀତ ହୁଅନ୍ତି। ସାଧାରଣତଃ ମାଛିକୁ ଲୋକେ ଖୁବ୍ ଶାନ୍ତ ଓ ନମ୍ରହ ବୋଲି ମନେ କରନ୍ତି। ଏଥିପାଇଁ ଯେଉଁ ଲୋକ ଶାନ୍ତ ଓ ନମ୍ର ତାଙ୍କୁ 'ସେ ମାଛିଟିଏ' ବା 'ସେ ମାଛିକୁ ମ' ବୋଲି କହେ ନାହିଁ' ବୋଲି କହନ୍ତି। ମାଛିମାନଙ୍କର ପ୍ରକାର ଯଥା—କୁକୁର ମାଛି, ମହୁମାଛି, ଗଣଗଣିଆ ମାଛି, ନୈଳ

ମାଛି । 'ମାଛି ପଡ଼ିଲେ ନାକଖଣ୍ଡ ହେଉଛି' ଦେ. ବାକ୍ୟ—ସେଠାରେ ଘର କଡ଼ା ପହରା ବନ୍ଧ ହୋଇଛି; ଯେଉଁ ସ୍ଥାନରେ (ଯଥା, ରାଜାଙ୍କ ଅନ୍ତଃପୁର, ରାଜ ଧନାଗାର) ଏପରି କଠୋର ନିୟମ ଓ ପହରାବାଲା ଥାଆନ୍ତି ଯେ ଅନ୍ୟ ଜୀବ ସେଠାକୁ ଯିବା ଦୂରେ ଥାଉ, ମାଛି ପରି ଜୀବ ଗଲେ ତାକୁ ପ୍ରହରୀମାନେ ଖଣ୍ଡ ଖଣ୍ଡ କରି କାଟି ପକାଇବେ, ସେହି ସ୍ଥାନ ପ୍ରତି ଏ ବାକ୍ୟ ପ୍ରୟୋଗ ହୁଏ । ] ୨ । ବନ୍ଧୁକ ନଳର ଅଗ୍ରଭାଗର ଊର୍ଦ୍ଧ୍ୱାଂଶରେ ଥିବା ମାଛି ଆକାରର କ୍ଷୁଦ୍ର ଲୁହାର ଗୁଳି—2. The fly of a gun; a fly-like small ball of iron attached to the upper end of the muzzle of the barrel of a gun to help the gunner to fix his sight. [ ଦ୍ର—ବନ୍ଧୁକ ମାରିବା ବ୍ୟକ୍ତି ଏହାକୁ ଦୃଷ୍ଟି ରଖି ଲକ୍ଷ୍ୟ ପ୍ରତି ନଳର ଠିକ୍ କରେ । ] ୩ । ( ବର୍ଣ୍ଣିଆ ଶବ୍ଦ ) ମାଛି ପରି ଦିଶୁଥିବା ନାକରେ ପିନ୍ଧାଯିବା ଅତି କ୍ଷୁଦ୍ର ସୁନାର ଅଳଙ୍କାରବିଶେଷ—3. Name of a gold ornament in the shape of a fly, worn by females on the nostrils. ୪ । ଲୁଗାର ମୁଣ୍ଡରେ ସୂତାରେ ବୁଣା ହୋଇଥିବା ମାଛି ଆକାରର ଚିହ୍ନ—4. Marks ( resembling a fly ) woven at the ends of clothes.

ମାଛି ଅନ୍ଧାର—ଦେ. ବି—(ଏ ସମୟରେ ଆଖିକୁ ମାଛି ଦେଖା ନ ଯିବାରୁ) Māchhi andhāra ମୁହଁସଞ୍ଜ; ଭୁମଲ୍ଲିଆ ଅନ୍ଧାର—Dusk. ମୁଖଆଁଧାର माछि अँधार

ମାଛିଆ—ଦେ. ବି—ମାଛି ୨ ( ଦେଖ ) Māchhiā ମେଛୋ मछुआ Māchhi 2 ( See) ଭିଣ—ମାଛୁଆ; ମତ୍ସ୍ୟଜୀବୀ—Fisherman.

ମାଛି ଆଖିଆ—ଗ୍ରାଦେ. ( କଟକ ) ବି—ମାଛ ଆଖି ୨ ( ଦେଖ ) Māchhi ākhiā Māchha ākhi 2 ( See )

ମାଛିଆ ପାତକ—ଦେ. ବି ( ସ. ମକ୍ଷିକା+ପାତକ )—ମନୁଷ୍ୟର Māchhiā pātaka ଘାଆରେ ପୋକ ଜନ୍ମିବାଜନିତ ପାପ; ঘায়ে পোকা পড়িলে ଘାଆରେ ପୋକ ପଡ଼ିବା ଯୋଗୁ ଅପ- যে পাতক হয় ବିତ୍ରତା—Impurity due to one's sore having been infested with maggots. [ ଦ୍ର—ସଢ଼ା ଘାଆ ଉପରେ ମାଛି ବସିବା ଯୋଗୁଁ ତହିଁରେ କୀଟ ଦେଖାଗଲେ ଉକ୍ତ ଲୋକ ଶାସ୍ତ୍ରାନୁସାରେ ପାତକୀ ବା ଅପବିତ୍ର ହୁଏ ଓ ପ୍ରାୟଶ୍ଚିତ୍ତ ନ କଲେ ସେ ଉକ୍ତ ପାତକରୁ ମୁକ୍ତ ହୁଏ ନାହିଁ ।]

ମାଛି କଣ୍ଠି—ଦେ. ବି ( ବର୍ଣ୍ଣିଆ ଶବ୍ଦ )—ମାଛି ପରି ଦେଖା ଯାଉଥିବା Māchhi kanthi ତିନକୋଣିଆ ଚେପ୍ଟା ରୂପାର ବା ସୁନାର କଣ୍ଠି—Three-cornered flat silver or gold beads ( worn in strings ) resembling flies in shape.

ମାଛି ଖସି ପଡ଼ିବା—ଦେ. ବି—କୌଣସି ବ୍ୟକ୍ତିର ବା ପଶୁର ଦେହ Māchhi khasi pardibā ହୃଷ୍ଟପୁଷ୍ଟ ହୋଇଥିବା ଯୋଗୁ ଅତି মাছি বসলে পিছলে যাওয়া ଚିକ୍କଣ ଦେଖାଯିବା ଅବସ୍ଥା—आब फिसलना The condition of the body being smooth and shining on account of plumpness-as if a fly can not sit tight on it.

ମାଛି ଚ(ଚି)ପା—ଦେ. ବିଣ. ( ଘିଅରେ ମାଛି ପଡ଼ିଯାଇଥିଲେ ଯେଉଁ Māchhi chi(ṭi)pā ଲୋକ ମାଛିକୁ ଚିପି କରି ମାଛିରେ ଥିବା মাছিটেপা, মাছি মারা ଘିଅକୁ ବାହାର କରେ )—୧ । ମକ୍ଷିଚୂଷ୍; मक्खिचूस ଅତି କୃପଣ—1. Very niggardly; ( ମାଛି ଶୋଷା—ଅନ୍ୟରୂପ ) parsimonious. ୨ । ଅତି ଲୋଭୀ—2. Very avaricious.

ମାଛି ପରି ଜୀବ—ଦେ. ବି—ମାଛି ଭଳି କ୍ଷୁଦ୍ର ବା ନଗଣ୍ୟ ଜୀବ ବା Māchhi parā jība ବ୍ୟକ୍ତି—A very insignificant मक्खीसा जीव being (compared to a fly.

ମାଛି ବସା(ସେ)ଇ ନ ଦେବା—ଦେ. କ୍ରି—ଶରୀର ବା ଖାଦ୍ୟ ଉପରେ Māchhi basā(se)i na debā ମାଛି ନ ବସିବା ପାଇଁ ଯତ୍ନ मक्खी नहीं बैठने देना মাছি না বসিতে দেওয়া କରିବା—To [ ମାଛି ତୁରୁଡ଼ା(ଡ଼)ଇବା—ଅନ୍ୟରୂପ ] scare away flies from the body or food. [ ଉ—କାହିଁ ଖାଇବ ବ ମାଛି ତୁରୁଡ଼େଇବ ?—ଡଗ । ]

ମାଛି ବସିବା—ଦେ. କ୍ରି—୧ । ଖାଦ୍ୟ ଦ୍ରବ୍ୟ ଉପରେ ମାଛି ବସିବା—Māchhi basibā 1. ( Flies ) To infect a food. মাছি বসা मक्खी बैठना ୨ । ଘାଆ ଉପରେ ମାଛି ବସିବାଦ୍ୱାରା ତହିଁରେ ଅଂଶେଇ ବା କ୍ଷୁଦ୍ର କୀଟ ଜାତ ହେବା—2. The appearance of maggots on a sore.

ମାଛି ବେଢ଼ିବା—ଦେ. ବି—ଖାଦ୍ୟ ଦ୍ରବ୍ୟ, ପଚା ଘାଆ ବା ପଚା ଜିନିଷ Māchhi berdhibā ଉପରେ ବହୁ ସଂଖ୍ୟାରେ ମାଛି ବସିବା মাছি ভনভন করা ଓ ଭଣ ଭଣ ଶବ୍ଦ କରିବା—Swarm मक्खीका भनभनाना of flies infesting a rotten ( ମାଛି ଭଣ ଭଣ ହେବା—ଅନ୍ୟରୂପ ) article or sore or unclean food.

ମାଛି ମଣିବା—ଦେ. କ୍ରି—( କୌଣସି ବ୍ୟକ୍ତିକୁ ) ଅତି ହେୟ ବୋଲି Māchhi maṇibā ଜ୍ଞାନ କରିବା; ନ ଗଣିବା; ଖାତିର ନ মাছি মনে করা କରିବା—To care a fig for a person; मक्खी समजना not to count one as a man. [ ଉ—ମନୁଷ୍ୟଙ୍କୁ ଯେହୁ ମଣୁଥିଲା ମାଛି—ରାଧାନାଥ ଚିଲିକା । ]

ମାଛି ମରା ରାଇଟର—ବୈଦେ. ବି ( ବ୍ୟଙ୍ଗ ) ( ଓ. ମାଛିମରା ଓ ଇଂ. Māchhi marā rāiṭar ରାଇଟର )—୧ । ଯେଉଁ ଲେଖକ মাছি মারা কেরানী ଅତି କ୍ଷୁଦ୍ର ଅକ୍ଷର ଲେଖି ପାରେ—1. A मक्खीमरा लिखने वाला writer who can write very ( ମାଛି ମରା କରଣି[କ]—ଅନ୍ୟରୂପ ) small letters ୨ । ଯେଉଁ ବ୍ୟକ୍ତିର ଲେଖା ଅତି କଦର୍ଯ୍ୟ ଓ ମସୀଲିପ୍ତ—

2. A slovenly writer. ୩ । ଯେଉଁ ଲେଖକ ବାକ୍ୟର ବିବେକ ପ୍ରୟୋଗ ନ କରି କେବଳ ଅନ୍ୟର ଲେଖାକୁ ନକଲ କରିଥାଏ—3. A senseless and slavish copyist.

**ମାଛ ମରିଯିବା**—ଦେ. କ୍ରି—କୌଣସି ସ୍ଥାନ ଜନଶୂନ୍ୟ ହେବା—Māchhi marijibā A place becoming lonely or devoid of all living creatures.
ମাছিটিও নাই
**मक्खी मरजाना**

**ମାଛି ଲାଗିବା**—ଦେ. କ୍ରି.—ଗୋମେଷାଦିଙ୍କ ଦେହକୁ ଆକ୍ରମଣ କରିବା, ଯଥା ମାଛି ତାଙ୍କ ଦେହରେ ସଲଗ୍ନ ହେବା—Māchhi lāgibā (Gadflies) Infesting the body of cattle.
গায়ে মাছি লাগা
**मक्खी लगना**

**ମାଛି ଲାଗିବା(ଲା)ପରି ହେବା**—ଦେ କ୍ରି—(ଗୋରୁ ଗାଈଙ୍କ ଦେହରେ ମାଛି ଲାଗିଲେ ସେମାନେ ଯେଉଁ ପରି ଅସ୍ଥିର ହୁଅନ୍ତି ସେହିପରି,ଅସ୍ଥିର ହେବା—To be restless (like cattle pestered with gadflies).
Māchhi lāgibā(lā)pari hebā
ମାଛି ଲାଗିବା ଭଳି ହେବା } ଅନ୍ୟରୂପ
ମାଛି ଲାଗିଲାପ(ପି)ରି ହେବା }
মাছি লাগলে যেমন হয় তেমন হওয়া
**मक्खी लगनेका एसा होना**

**ମାଛୁଆ**—ଦେ. ବି. ପୁଂ—କେଉଟ; ମତ୍ସ୍ୟଜୀବୀ—Fishmonger; fisherman. ବିଣ—୧ । ମାଛ ପରି ଗନ୍ଧ ବିଶିଷ୍ଟ; ଅଇଁଷିଆ ଗନ୍ଧ ବିଶିଷ୍ଟ—1. Having a fishy smell. ୨ । ମତ୍ସ୍ୟପ୍ରିୟ—2. Fond of fish. ୩। ମତ୍ସ୍ୟଜୀବୀ—3. Subsisting on fish. (ଯଥା—ମାଛୁଆ କମାର ।)
Māchhuā
(ମାଛେଇ—ସ୍ତ୍ରୀ)
মাছুয়া, মেছো
**मछुआ(वा)**

**ମାଛୁଆ କମାର**—ଗ୍ରାଦେ. ବି. ( ବାଙ୍କି ଓ ଗଡ଼ଜାତ )—ଏକ ଜାତୀୟ କେଉଟ—A caste of fishermen of Banki and of the adjoining Oriya States.
Māchhuā kamāra

**ମାଛୁଆ ଡ(ଡୁ)ଙ୍ଗି**—ଦେ. ବି-ଦୁର୍ବଳ ଡଙ୍ଗା; ଯେଉଁ ଛୋଟ ଡଙ୍ଗା ସାହାଯ୍ୟରେ କେଉଟମାନେ ମାଛ ଧରନ୍ତି—A slender canoe-like boat; dinghi used by fishermen.
Māchhuā ḍa(ḍu)ṅgi
মেছো ডোংগা
**मछुआडोंगी, मछवा**

**ମାଛୁଆ ପତ(ତି, ତୁ)ରିଆ**—ଗ୍ରାଦେ. (ପୁରୀ) ବି—ଗୃହସ୍ଥର ବିବାହ ଆଦି ଉତ୍ସବ ଉପଲକ୍ଷରେ ମାଛ ଓ କଦଳୀ ପତ୍ର ଯୋଗାଉଥିବା ଛୋଟ ଜାତି (ଯଥା—ବାଉରି, କଣ୍ଡରା)—Low caste people who supply fish and plantain leaves on marriage and other feasts of a household.
Māchhuā pata(ti, tu)riā

**ମାଜଣା**—ଦେ. ବି (ସଂ. ମାର୍ଜନା)—୧ । ମାର୍ଜନା—1. Polishing. ୨ । ଦେହ ମାଜିବା; ସ୍ନାନ—2. Scouring of the body at bath. (ଉ—ସୁଗନ୍ଧ ମାଜଣା କରାଇ, ଦଧି ଲବଣୀ ଅଙ୍ଗ ଦେଇ । ଜଗନ୍ନାଥ. ଭାଗବତ ।) ୩ । ଦେବତାଙ୍କ ଓ ରାଜାଙ୍କ ସ୍ନାନବିଧି—3. The ceremony of the bathing of idols and kings. (ଉ—ନଥିଲା ମାଜଣା ବୋଲି ମୋତେ ଜଣା । କବିସୂର୍ଯ୍ୟ. ସଙ୍ଗୀତ ।) ୪ । ରାଜ୍ୟାଭିଷେକ—4. Coronation. ୫ । ସେଚନ—5. Sprinkling. (ଉ—ପଞ୍ଚବେ ଯୋଗ ଜଳ ଦଣା, ମୁନିଏ କରନ୍ତି ମାଜଣା । ଜଗନ୍ନାଥ. ଭାଗବତ ।)
Mājaṇā
মার্জনা
**मार्जना**

**ମାଜଣା ନୀତି**—ଦେ. ବି—ରାଜାଙ୍କର ସ୍ନାନ ଓ ଅଙ୍ଗମାର୍ଜନା—The act of a king or a Deity being given a bath. (ଉ—କ୍ରମଶରେ ମାଜଣା ବିଧି କରି ଶେଷ । ପାନକୃଷ୍ଣ. ରସକଲ୍ଲୋଳ ।)
Mājaṇā niti
(ମାଜଣା ବିଧି—ଅନ୍ୟରୂପ)
রাজস্নান, দেবস্নান
**राजस्नान, देवस्नान**

**ମାଜଣା ବଢ଼ିବା**—ଦେ. ବି—ରାଜାଙ୍କର ଓ ଦେବତାଙ୍କର ସ୍ନାନବିଧିର ସମାପ୍ତି—Completion of the bath of a Deity or a king.
Mājaṇā barḍhibā
স্নান শেষ হওয়া
**स्नान निपट जाना**

**ମାଜନ୍**—ଦେ. ବି (ସଂ. ମାର୍ଜନ, ମଞ୍ଜନ)—ଦାନ୍ତ ଘଷିବା ଚୂନା—Tooth powder
Mājan
মাজন, মাংজন **मंजन**

**ମାଜା(ଝା)**—ଗ୍ରାଦେ. (ବାଲେଶ୍ୱର) ବି. (ଭୁଲ. ବ. ମাংজা)—ମାଞ୍ଜା ( ଦେଖ )—Mānjā ( See )
Mājā(jhā)

**ମାଜରା**—ବୈଦେ. ବି. (ଫା) (ଜଚରଅ)—୧ । ଘଟନା; ଅଳ୍ପ—1. Occurrence. ୨ । ମକଦ୍ଦମାର ହାଲ; ଅବସ୍ଥା—2. The circumstances of a case.
Mājarā
অকু **माजरा**

**ମାଜରା ଜାଗା**—ବୈଦେ. ବି· (ଜଚରଅ) (ଫା. ମାଜରା ଜଗହ୍)—ଘଟନା ସ୍ଥଳ—Place of occurrence.
Mājarā jāgā
অকুস্থান **माजरा जगह**

**ମାଜି(ଝି)**—ଦେ. ବି. (ସଂ. ମଧ୍ୟ; ଯେ ନୌକାର ମଧ୍ୟରେ ରହି ଅବସ୍ଥାନ ପକାଏ ବା ମଙ୍ଗଧରି ଚଳାଏ)—୧ । ନାବିକ; ନୌକାବାହକ; ନାଉରି—2. Boatman. ୨। ନୌକାର କର୍ଣ୍ଣଧାର; ମଙ୍ଗଧରି—2. Helmsman. ୩ । ସାମାନ୍ୟ ସରକାରୀ ବା ପେଆଦାଙ୍କ ଉପାଧିବିଶେଷ—3. Title of petty officials or peons. [ ଉ—କଟେରୀ ଘର ଅଗଣାରେ ଗୋଟିଏ କଣରେ ମାଝି ସ୍ୱରୂପ ବେଦେହୀ ପାସ୍ମୂଳରେ ଗ ଲରେ ହାତ ଦେଇ ମୁହଁ ପୋତି ବସିଛି । ଫକୀରମୋହନ. ଗଳ୍ପ ସ୍ୱଳ୍ପ ।] ୪ । କେଉଟମାନଙ୍କ ବଂଶୋପାଧି—4. Family-title of fishermen or boatmen. ୫ । ସାମନ୍ତ ରାଜାଙ୍କ ଉପାଧିବିଶେଷ—5. A Title of petty landlords. ୬ । ମହାଲାୟକ ବା ଡଗରମାନଙ୍କ ବଂଶୋପାଧି ବିଶେଷ—6. A family-title of certain Dagarās and Mahālāyakas.
Māji(jhi)
মাঝি **माँझि**

ମା(ମେ, ମ୍ୟା)ଜିକ —ବୈଦେ. ବି—(ଇଂ)—କୁହୁକ; ଭେଲ୍‌କିବାଜି;
Mā(me,myā)jik ଭେଲ୍କି ବିଦ୍ୟା—Magic.
ম্যাজিক मैजिक

ମା(ମେ, ମ୍ୟା)ଜିକ୍ ଲଣ୍ଠ(ଣ୍ଟ)ନ୍(ଣ୍)—ବୈଦେ. ବି—(ଇଂ)—ଯେଉଁ
Mā(me, myā)jik lanṭa(nṭha)n(ṇ) ଲଣ୍ଠନ୍ ସାହାଯ୍ୟରେ
ম্যাজিক লণ্ঠন ବସ୍ତ୍ରପଟାଦି ଉପରେ ଛାୟାଚିତ୍ର ପ୍ରତିଫଳିତ କରାଯାଇ
मैजिक लालटेन ସମବେତ ବ୍ୟକ୍ତିମାନଙ୍କ ଚିତ୍ତରଞ୍ଜନ କରାଯାଏ—
Magic lantern.

ମାଜିବା—ଦେ. କ୍ରି—[ସଂ. ମୃଜ୍ ଧାତୁ; ସଂ. ମଞ୍ଜ ଧାତୁ] ୧ । ମାର୍ଜନା
Mājibā କରିବା; ଘଷି ପରିଷ୍କାର କରିବା—1. To scour; to
মাজা, মাঁজা माँजना cleanse by rubbing. [ଉ—ଧୃତ
[ମଜା(ଜେ)ଇବା—ପ୍ରଯୋଜକ ରୂପ] ଦୋଇ ବଳସ୍ଥିତ ଟୂସର ବାମନ,
ଧୋଇ ଚନ୍ଦ୍ରା ସମାଜ ମାଜ । କବିସୂର୍ଯ୍ୟ ବଳଦେବରଥ୍ଙ୍କ ଧ
ଗୀତ ।] ୨ । ଘଷି କରି ପାଲିସ୍ ବା ଚିକ୍କଣ କରିବା—
2. To polish. [ଯଥା—ବାସନ ମାଜିବା ।] ୩ ।
(ଗୋଡ଼) ଘଷିବା—3. To rub, to massage. [ଉ—
ପଦ୍ମଭୁଷ ମୋହର, ନଉକର ଛାହାର, ଚରଣ ମାଜିବାର,
ସୁଶୀଳାରେ । କବିସୂର୍ଯ୍ୟ. ସଙ୍ଗୀତ ।] ୪ । ପ୍ରସାଧନାର୍ଥ
ନଖକୁ ନହୁରୁଣିରେ କାଟି ଚାଞ୍ଛି ସଫା କରିବା—4. To
pair and polish the finger-nails. [ଉ—
କେତେବେଳେ କେଶ ସାଜିବ, କେତେବେଳେ କରଜ-
ମାନଙ୍କୁ ମାଜିବ । ଭଞ୍ଜ. ପ୍ରେମସୁଧାନିଧି । ୫ । (କୌଣସି
ବିଷୟ) ଉଦ୍ୟମରୂପେ ଆନ୍ଦୋଳନା ବା ଆନ୍ଦୋଳନ କରିବା—
5. To agitate (about a matter). (ଉ—
ସୂତା ମାଜିଲେ ସରୁ, କଥା ମାଜିଲେ ମୋଟ—ଢଗ ।)
୬ । ଅଠା ବା ମଣ୍ଡଦ୍ୱାରା ଟାଣୀ ସୂତାକୁ ଘଷିବା—
6. To rub the warp thread with gum.
୭ । ଅଠା ଓ କାଚ ଗୁଣ୍ଡି ଲଗାଇ ଘୁଡ଼ିର ସୂତାକୁ ଟାଣ
କରିବା—7. To strengthen the string of a
kite by applying gum and powdered
glass. ୮ । ସୁତୁଲି ବା ସରୁ ଦଉଡ଼ିକୁ ବଳ ସାରି
ତାକୁ କତା ଆଦି ଦ୍ୱାରା ଘଷି ଚିକ୍କଣ କରିବା—
9. To rub or polish a string after it is
woven.

ମାଜିବା ଘଷିବା—ଦେ. କ୍ରି—(ଏକାର୍ଥକ ସହଚର)—ମାର୍ଜନ କରିବା
Mājibā ghashibā ଓ ଘର୍ଷଣ କରିବା—To scour; to
মাজা ঘষা माँजना घषना cleanse; to rub and polish.

ମାଜି ମୁଜି—ଦେ. କ୍ରି. ବିଣ—ଉଦ୍ୟମରୂପେ ମାଜି କରି (ସଫା କରିବା)—
Māji muji মেজেমুজে माँजउँज कर Scouring much.
[ ଯଥା—ସେ ବାସନକୁ ମାଜିମୁଜି ଝକ୍ ଝକ୍ କରି
ଦେଲଣି । ]

ମା(ମେ,ମ୍ୟା)ଜିଷ୍ଟ୍ରେଟ୍—ବୈଦେ. ବି. (ଇଂ)—ଫୌଜଦାରି ମକଦମାର
Mā(me,myā)jishṭreṭ ବିଚାରକ ହାକିମ—Magistrate.
মাজিষ্ট্রেট मैजेस्ट्रेट, माजिस्ट्रेट [ମା(ମେ)ଜି(ଜେ)ଷ୍ଟର—ଅନ୍ୟରୂପ]

[ଦ୍ର—ଭିନ୍ନ ଭିନ୍ନ କାର୍ଯ୍ୟ ଅନୁସାରେ ଭିନ୍ନ ଭିନ୍ନ ଶ୍ରେଣୀର
ମାଜିଷ୍ଟ୍ରେଟ୍ ଅଛନ୍ତି ଯଥା—ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍, ସବ୍‌ଡିଭିଜନ୍
ମାଜିଷ୍ଟ୍ରେଟ୍, ଡେପୁଟି ମାଜିଷ୍ଟ୍ରେଟ୍, ସବ୍‌ଡେପୁଟି ମାଜିଷ୍ଟ୍ରେଟ୍,
ସବ୍ ମାଜିଷ୍ଟ୍ରେଟ୍, ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟ୍, ଜଏଣ୍ଟ ମାଜିଷ୍ଟ୍ରେଟ୍
ପ୍ରେସିଡେନ୍ସି ମାଜିଷ୍ଟ୍ରେଟ୍, ଅନରେରି ମାଜିଷ୍ଟ୍ରେଟ୍, ପୋଲିସ୍
ମାଜିଷ୍ଟ୍ରେଟ୍ । ମାଜିଷ୍ଟ୍ରେସୀ=ମାଜିଷ୍ଟ୍ରେଟଙ୍କ ଅଫିସ ।]

ମାଜୁ—ପ୍ରାଦେ. (ମେଦିନୀପୁର) ବି—(ତୁଳ. ବ. ମାଝୁ)—ମଧ୍ୟସ୍ଥଳ;ମଝି—
Māju Middle.

ମାଜୁଫଳ—ଦେ. ବି (ସଂ. ମଜ୍ଜଫଳ ବା ମାୟୁଫଳ; ସଂ. ଅନ୍ୟନାମ
Mājuphaḷa କାଠରେଖା; ତୁଳ. ଫା. ମାଜୁ)—୧ । ପାଶ୍ଚାତ୍ୟ
মাজুফল ଦେଶର ଓକ୍ ନାମକ ଗଛର ଗଣ୍ଡି ମଧ୍ୟରୁ ପୋକମାନେ
माजूफल; माइफल, ଗାଳିଥିବା ଏକପ୍ରକାର ଅଣ୍ଡାକାର କୋଷ—
सागरगोटा; मायाफल 1. Gall nuts; oak galls.
[ଦ୍ର—ଏହା ଦେଖିବାକୁ ଗୁଆଫଳ ପରି, କିନ୍ତୁ ପ୍ରକୃତରେ
ଏହା ଫଳ ନୁହେ । ଏହା ପୋକଙ୍କ ମୁଖନିଃସୃତ ଅଠା । ଏହା
କେଶର କୃଷ୍ଣତା ସମ୍ପାଦକ ଓ ଶିଥିଳ ଅଙ୍ଗର ସଙ୍କୋଚ-
କାରକ ଔଷଧରୂପେ ବ୍ୟବହୃତ ହୁଏ । ଏହା କଷାୟ ତିକ୍ତ
ରସ । ଏଥିରୁ ମଧ୍ୟ ଲେଖିବା କାଳି ପ୍ରସ୍ତୁତ ହୁଏ । ଏଥିରୁ
ଗାଲୋଟାନିକ୍ ଏସିଡ଼୍ (Gallotanic acid) ନାମକ
ଅମ୍ଳରସ ରାସାୟନିକ ପ୍ରକ୍ରିୟାରେ ବାହାର କରାଯାଏ ।
ଏହାର ବର୍ଣ୍ଣି ନେଳୀ; ମଜ୍ଜାଫଳ ଦେଖ । ] ୨ । ରିଠା
(ଦେଖ)—2. Riṭhā (See)

ମାଜୁମ୍—ବୈଦେ. ବି (ଆ. ମାଜୁନ୍)—ଗଞ୍ଜେଇ ଚିନି ସଙ୍ଗେ ଚକି
Mājum ମିଶାଇ ତିଆରି କରାଯିବା ମାଦକ ମିଷ୍ଟାନ୍ନ—
মাজুম; ভাংগের বরফী An intoxicating sweetmeat
माजन prepared from ganjā mixed with
sugar. [ଉ—ତହିଁ କାହାକୁ ଖୁଆଇ ମାଜୁମ୍, ଗୁଳ
କାଢ଼ନ୍ତେ ଯାଉଥିଲୁ ଧାମ । ବ୍ରଜନାଥ. ସମରତରଙ୍ଗ । ]

ମାଜୁ(ଦୁ)ଲ—ବୈଦେ. ବି (ଫା. ମାଜୁଲ୍=କର୍ମଚ୍ୟୁତ)—କର୍ମଚ୍ୟୁତି—
Māju(du)l Dismissal from service. ବିଣ—
বরখাস্ত କର୍ମଚ୍ୟୁତ—Dismissed from service.
बरखस्ती बरखास्त बरखास्त

ମା(ମେ ମ୍ୟା)ଜେଣ୍ଡ(ଣ୍ଟା)ର—ବୈଦେ. ବି (ଇଂ. ମାଜେଣ୍ଟା)—
Mā(me,myā)jenḍa(nṭa)r ଅଲକାତରାରୁ ରାସାୟନିକ
মাজেণ্টা; মাজেণ্ডার ପ୍ରକ୍ରିୟାରେ ଉତ୍ପାଦିତ କୃତ୍ରିମ ଲାଲ ରଙ୍ଗର ଚୂର୍ଣ୍ଣ—
मैजेण्डर Magenta; fuchsine. [ଦ୍ର—ଏହାକୁ
ପାଣିରେ ଗୋଳାଇଲେ ନାଲି ବା ନେଳି ବା ବାଇଗଣୀ
ଆଦି ବର୍ଣ୍ଣର କାଳି ତିଆରି ହୁଏ । ]

ମାଝ—ଦେ. ବି (ସଂ. ମଧ୍ୟ; ତୁଳ ପ୍ରା. ମଜ୍ଝ)—୧ । ମଧ୍ୟସ୍ଥଳ—
Májha 1. The middle. [ଉ—ବନ୍ଦର ଅଶ୍ଚେ ନଳ
মাঝ ରଣମାଝ । ଭଞ୍ଜ. ବୈଦେହୀଶବିଳାସ ।] ୨ ।
माँझ ଅଭ୍ୟନ୍ତର; ଅନ୍ତଃସ୍ଥଳ; ଭିତର—2. Inside. ୩ ।
মাজা କଟି; ଅଣ୍ଟା—3. The waist.

ମା ଝିଅ—ଦେ. ବି. ସ୍ତ୍ରୀ ( ଯଦ୍ୱନ୍ଦ ଶବ୍ଦ )—ମାତା ଓ କନ୍ୟା—
Mā jhia মা"ও"মেয়ে **माबेटी** Mother and daughter.
(ମାଝୁଅ—ଗ୍ରାମ୍ୟରୂପ) (ମାଅ ଝି[ଝୁ]ଅ—ଅନ୍ୟରୂପ)

**ମାଝିଆରି କଣ୍ଟା**—ପ୍ରାଦେ. ( ବାଲେଶ୍ୱର ) ବି ( ବଂ. মাঝারি কাঁটা )
Mājhiāri kanṭā —ମାଛ ଧରିବା ପାଇଁ ବ୍ୟବହୃତ ମଧ୍ୟମ ଆକାରର ବନଶି କଣ୍ଟା—A fishing hook of medium size.

**ମାଞ୍ଚି**—ଦେ. ବି ( ସଂ. ମଞ୍ଚ; ତୁଳ, ଦ୍ରା. ମାଞ୍ଚ=ଚଉକି )—ଚଉକି—
Mānchi Chair. ପ୍ରାଦେ ( ପୁରୀ ଓ ଗଞ୍ଜାମ; ତେଲଗୁ- চৌকী ମାଞ୍ଚ ) ବିଣ—ଉତ୍କୃଷ୍ଟ; ଉତ୍ତମ—Very good;
**मंभा, मंचिया** excellent.

**ମାଞ୍ଚିଆ**—ଦେ. ବି—ମାଞ୍ଚ ( ଦେଖ )—Mānchi ( See )
Mānchiā (ମାଞ୍ଚିଆ—ଅନ୍ୟରୂପ)

ମା(ମେ,ମ୍ୟା)ଞ୍ଚେଷ୍ଟର—ବୈଦେ. ବି (ନାମ)—(ଇଂ) କଲଲୁଗା ତିଆରି
Mā(me,myā)ncheshṭar ହେଉଥିବା ଇଂଲଣ୍ଡର ଲଙ୍କାସାୟର
মাঞ্চেষ্টার **मैंचेष्टर** କାଉଣ୍ଟିର ଗୋଟିଏ ନଗର—Manchester.

**ମାଞ୍ଜା**—ଦେ. ବି ( ସଂ. ମାର୍ଜନ, ମଞ୍ଜନ )—ଗୁଡ଼ିର ସୂତାକୁ ମାଜି କରି
Mānjā ଶକ୍ତ କରିବା ପାଇଁ କାଚଗୁଣ୍ଡା ବା ବାଲିଅଦ ମିଶାଇ
মাঞ্জা ତିଆରି କରାଯିବା ଅଠା—Gum mixed with
**माँझा** powdered glass and used in scouring the strings of paper kites. [ ଦ୍ର—ଗୁଡ଼ିର ସୂତାର ଦେହରେ ପ୍ରଥମେ ଅଠା ବା ଅଠାଳିଆ ମଣ୍ଡ ବୋଳି ଦିଆ ଯାଏ । ସେହି ଅଠା ଶୁଖିଯିବା ପୂର୍ବରୁ ତା ଦେହରେ କଠିନଗୁଣ ସଂପନ୍ନ କୌଣସି ପଦାର୍ଥର ( ଯଥା—କାଚର ବା ଖଦଡ଼ା ବାଲିର ) ଚୂନା ଲଗାଇ ଦିଆଯାଏ । ପରେ ସୂତା ଦେହରୁ ଅଧିକା ଚୂନା ଛଡ଼ାଇବା ପାଇଁ ଏବଂ ସୂତାକୁ ମସୃଣ କରିବାପାଇଁ କନାଅଦରେ ତାକୁ ଘଷାଯାଏ । ମାଞ୍ଜ ତିଆରି କରିବା ସମୟରେ ମଇଦା, ଅଠା, ଭାତର ବା ଚୂଡ଼ାର ମଣ୍ଡ,ଅଣ୍ଡାର ଲାଳ, କଇବଠା, ଡିଲୁଆଁ ଗାପତ୍ରର ରସ, ସିଝୁଖୀର, ଶିରସ ଅଠା ପ୍ରଭୃତି ବ୍ୟବହୃତ ହୁଏ । ପୁଣି ସୂତାକୁ କଠିନ ଗୁଣସଂପନ୍ନ କରିବାଲାଗି ତା ଦେହରେ ଖୁବ୍ ପତଳ କାଚଗୁଣ୍ଡା, ଚିନାବାସନ ଗୁଣ୍ଡା କିମ୍ବା ସଫା ସରୁ ଓ ଖଦଡ଼ିଆ ବାଲି ବୋଳାଯାଏ । ସର୍ବଶେଷରେ ଶିପ ବୋତାମ୍, ଲୁଗା, କନା ବା କନା କିମ୍ବା କେବଳ ମାତ୍ର ନଖ ସାହାଯ୍ୟରେ ସୂତା ଦେହରୁ ଅଧିକା ଗୁଣ୍ଡତକ ପୋଛି ଦିଆଯାଏ । ପରେ ସୂତା ଶୁଖିଗଲେ ତାକୁ ସାବଧାନତା ସହିତ ଚରଖିରେ ଗୁଡ଼ାଇ ରଖାଯାଏ । ଏହି ମାଞ୍ଜାଦିଆ ସୂତା ବା ମାଞ୍ଜା ସୂତା ଅନ୍ୟ ସୂତାକୁ କାଟି ଦେଇ ପାରେ । ପ୍ରତିଦ୍ୱନ୍ଦୀ ଗୁଡ଼ି-ଉଡ଼ାଳମାନେ ପରସ୍ପରର ସୂତାକୁ କାଟିବାକୁ ଚେଷ୍ଟା କରନ୍ତି । ଏ ସୂତାରେ ଲାଗିଥିବା କାଚଗୁଣ୍ଡିର ଦାନ୍ତ ଅନ୍ୟ ସୂତାକୁ କାଟିଦିଏ । ଏକ ଗୁଡ଼ିର ସୂତାଦ୍ୱାରା ଅନ୍ୟ ଗୁଡ଼ିର ସୂତାକୁ କାଟିବାକୁ 'ପେଞ୍ଚ' କହନ୍ତି । ପେଞ୍ଚର ଫଳାଫଳ ମାଞ୍ଜାର ଉତ୍କୃଷ୍ଟତା ଉପରେ ଅନେକ ପରିମାଣରେ ନିର୍ଭର କରେ ।] ୨ । ବାଲି ବା କାଚର ଗୁଣ୍ଡ ମିଶ୍ରିତ ଅଠା ବୋଳା ଯାଇଥିବା ଗୁଡ଼ିର ସୂତା—The string of paper-kite which has been hardened with gum mixed with powdered glass.
[ ଦ୍ର—ମାଞ୍ଜା ଅନେକ ପ୍ରକାର ହୁଏ । ଯଥା—

(୧) ଖଦଡ଼ା ମାଞ୍ଜା—ସୂତା ଦେହରେ ମାଞ୍ଜାର ମସଲା ସମାନଭାବରେ ଲାଗି ନ ଥାଏ ।

(୨) ଗୋଲ ମାଞ୍ଜା—ସୂତା ଦେହରେ ମସଲା ଲଗାଇ ଦେବା ପରେ ତାକୁ କୌଣସି ଗୋଟିଏ ଛୋଟ ଗୋଲ ଗର୍ତ୍ତ ଭିତରେ ଟାଣିବା ଦ୍ୱାରା ସୂତା ଉପରେ ଚାରିଆଡ଼େ ସମାନ ହୋଇ ଓ ଗୋଲ ହୋଇ ମସଲା ଲାଗିଯାଏ ।

ଶିପ ବୋତାମର ଛିଦ୍ର ଭିତର ଦେଇ ସୂତକୁ ଚଳାଇ ଯେଉଁ ସୂତା ତିଆରି ହୁଏ ତାକୁ 'ବୋତାମ ମାଞ୍ଜା' କୁହାଯାଏ ।

(୩) ଟଣା ମାଞ୍ଜା—ପେଞ୍ଚ ମାରିବା ସମୟରେ ସୂତାକୁ ଟାଣି ବିପକ୍ଷ ପକ୍ଷର ଗୁଡ଼ିକୁ କାଟିବା ପାଇଁ ଯେଉଁ ମାଞ୍ଜା ଉପଯୋଗୀ ।

(୪) ନଖ ମାଞ୍ଜା—ଖୁବ୍ ପତଳାଭାବରେ ମସଲା ଦିଆ ଯାଇଥିବା ଓ ନଖଦ୍ୱାରା ମଜା ଯାଇଥିବା ଏକପ୍ରକାର ମାଞ୍ଜା ।

(୫) ବାଲି ମାଞ୍ଜା—ବାଲି ସାହାଯ୍ୟରେ ତିଆରି ମାଞ୍ଜା । ଏହା ନିକୃଷ୍ଟ ।]

**ମାଞ୍ଜା କରିବା**—ଦେ. କ୍ରି—ମାଞ୍ଜା ଲଗାଇ ସୂତାକୁ ତିଆରି କରିବା—
Mānjā karibā To prepare string for flying মাজা করা **माँजा करना** paper-kite by applying
[ମାଞ୍ଜା ଘଷିବା, ମାଞ୍ଜା ଦେବା—ଅନ୍ୟରୂପ) gum and sharp-edged powder.

ମାଞ୍ଜିଷ୍ଠ—ସଂ. ବିଣ—(ମଞ୍ଜିଷ୍ଠା=ରକ୍ତବର୍ଣ୍ଣ ଲତା+ରକ୍ତାର୍ଥେ. ଅ)—
Mānjishṭha ରକ୍ତବର୍ଣ୍ଣ—Red. ସଂ. ବି.—ରକ୍ତବର୍ଣ୍ଣ ପ୍ରସ୍ରାବ ହେବା ଏକ ପ୍ରକାର ପ୍ରମେହ—A kind of gonorrohea in which the urine becomes red.

ମାଞ୍ଜୁ—ପ୍ରାଦେ. (କଳାହାଣ୍ଡି) ବି—(ସଂ. ମାର୍ଜାର)—ବିଲେଇ; ବିରାଡ଼ି—
Mānju Cat.

ମାଠ୍ ଖେଡ଼ା—ପ୍ରାଦେ. (ବସ୍ତର) ବି—ଖଡ଼ା ଶାଗ—
Māṭa-kherdā Amaranthus Frumentaceus.

ମାଟଣି—ପ୍ରାଦେ. (ସମ୍ବଲପୁର)—ବି—ମାଠିଣି (ଦେଖ)
Māṭaṇi Māthiṇi (See)

ମାଟ ପକା—ପ୍ରାଦେ. (ସିଂହଭୂମି) ବି (ହି. ଲୁମଡମ)—ବାଟଘଷ; ବିବାହ
Māṭa pakā ବା ବ୍ରତ ଘରର ଦୁଇ ଦିନ ପୂର୍ବରୁ ହେବା ଉତ୍ସବ—The festivity performed two days before a marriage or thread ceremony.

ମାଟାପଲମ୍—ବୈଦେ. ବି. (ଇଂ. ମାଡାପୋଲାମ୍)—ବିଦେଶୀ ବା ଦେଶୀ Māṭā palam କଲ ବୁଣା ମୋଟା ଥାନ ଲୁଗା—Mada-(ମାଟିଅ ପଲମ—ଅନ୍ୟରୂପ) pollam; long piece of মাটাপালাম, মাঠাফালাম coarse mill-made cloth.
बिलती थान [ଦ୍ର—ମାନ୍ଦ୍ରାଜର ମାଡ୍‌ପୋଲମ୍ ନାମକ ସ୍ଥାନରେ ଏ ଜାତୀୟ ଲୁଗା ପ୍ରଥମେ ପ୍ରସ୍ତୁତ ହେଉଥିବାରୁ ଏହି ନାମ ।]

ମାଟି—ଦେ. ବି. (ସଂ. ମୃତ୍ତିକା; ତୁଳ. ପ୍ରା. ମଟ୍ଟୀ)—୧ । ମୃତ୍ତିକା—Māṭi 1. Soil. [ଦ୍ର—ସାଧାରଣତଃ ମାଟି ବାଲିଆ, মাটি ଗୋଡ଼ିଆ, ମଟାଳ, ଅଠାଳିଆ ବା ଚିକିଟା, ଲୁଣି ଓ ପଙ୍କ मिट्टी, माटी ଏହି ଛଅ ଶ୍ରେଣୀରେ ବିଭକ୍ତ; ବାଲି ଓ ମାଟି ମିଶା ମାଟିକୁ ଦୋରସା ମାଟି ବୋଲାଯାଏ ।

ସାଧାରଣ ଗୃହ ଜମିକୁ ଜଳ ଜମି ଓ ନଈକୂଳିଆ ଜମିକୁ ପାଳଜମି ବୋଲାଯାଏ । ଘର ଓ ଘରବାଡ଼ି ଜମିକୁ ଉଚ୍ଚ ଜମି ଓ ଗ୍ରାମ ନିକଟସ୍ଥ ଉର୍ବର ଜମିକୁ କଲା ଜମି ବୋଲାଯାଏ । ପଙ୍କ ପଡ଼ିଥିବା ଜମିକୁ ପଙ୍କଜମି ବୋଲାଯାଏ । ଯେଉଁ ମାଟିରେ ମୃତ୍ତିକାର ଭାଗ ବେଶି ତାକୁ 'ମଟାଳ' ବୋଲାଯାଏ । ଏଥିର ଉପର ଶୁଖିଗଲେ ମଧ୍ୟ ଭିତର ଓଦା ଥାଏ । ଏହା କୃଷି ପକ୍ଷରେ ଉପଯୋଗୀ । ମଟାଳ ଜମିର ଅନେକଗୁଡ଼ିଏ ଶ୍ରେଣୀ ବିଭାଗ ଅଛି । ଯଥା—ବାଲିଆ ମଟାଳ, ଗୋଡ଼ିଆ ମଟାଳ, ଭୁଷିଆ ମଟାଳ, ତେଲିଆ ମଟାଳ, ଶୁଧ ମଟାଳ, ଗୁହଳିଆ ମଟାଳ, ପାଉଁଶିଆ ମଟାଳ, ବାଘୁଆ ମଟାଳ, କର୍ମୁରିଆ ମଟାଳ, ତେଲବାଲିଆ ମଟାଳ, ଧଉଳିଆ ମଟାଳ, ନାଲିଆ ମଟାଳ, ହଳଦିଆ ମଟାଳ, ଜଳ ମଟାଳ, ହାଡ଼ୁଆ ମଟାଳ, ଖଲି ବା ଖଡ଼ି ମଟାଳ, ଚିକିଟା ମଟାଳ, କଳା ମଟାଳ, ନ(ଲ୍ଲ)ଣିଆ ମଟାଳ ।

ଏହି ଶ୍ରେଣୀବିଭାଗ ମାଡକ୍ସ ସାହେବଙ୍କ ଓଡ଼ିଶ ସେଟଲ୍‌ମେଣ୍ଟ ରିପୋର୍ଟରୁ ଗୃହୀତ ହୋଇଅଛି ।

ଏକପ୍ରକାର ମାଟିକୁ ପାଣି ଦେଇ ହାତରେ ଘଷିଲେ ତହିଁରୁ ବାହାରିବା ଘୋରା ଚନ୍ଦନ ପରି ଧଳା ଲେପକୁ ଲୋକେ ତିଳକରୂପେ ଦେହରେ ଲଗାନ୍ତି, ତାକୁ ତିଳକମାଟି କହନ୍ତି । ଗଙ୍ଗାନଦୀର ପଙ୍କକୁ ବଲ କରି ଶୁଖାଇ ରଖାଯାଏ ଓ ଯେଉଁଠାରେ ଗଙ୍ଗାନଦୀ ପାଖରେ ନ ଥାଏ ସେଠାରେ ଏ ମାଟିକୁ ପାଣି ଦେଇ ହାତରେ ଘଷି ତହିଁରୁ ବାହାରିବା ଲେପକୁ ଲୋକେ ତିଳକରୂପେ ଦେହରେ ଲଗାନ୍ତି; ତାକୁ, ଗଙ୍ଗା ମାଟି ବା ଗଙ୍ଗା ମୃତ୍ତିକା ବୋଲାଯାଏ । ନାଲି ହଳଦିଆ ଓ ଧଳା ରଙ୍ଗର ମାଟିକୁ ପାଣିରେ ଗୋଳି ଲୋକେ କାନ୍ଥରେ କାନ୍ଥ ଲିପନ୍ତି; ତାକୁ ବନମାଟି ବୋଲାଯାଏ । କ୍ଷାରଯୁକ୍ତ ମୃତ୍ତିକାକୁ ସାଜିମାଟି ବୋଲାଯାଏ । ଏକପ୍ରକାର ମାଟି ଖୁବ୍ ଚିକ୍କଣ ଓ ଧଳା, ଏହାକୁ ଚିନାମାଟି ବୋଲାଯାଏ । ମାଟିକୁ ଚକଟି ଯୋଡ଼ି ହାଣ୍ଡି, ମାଠିଆ, ନାଳ, ପାଏ, ଇଟା, ଟାଇଲ୍, ଖପରଲ ତିଆରି ହୁଏ । ମାଟିକୁ ଚକଟି ସେଥିରେ କାନ୍ଥ ହୁଅଯାଏ ଓ କାଦୁଅ କରି ଇଟାରେ ବା ପଥରରେ ଗାନ୍ଥନି କରାଯାଏ । ମାଟିକୁ ବଲ ବାଟୁଳି କରାଯାଏ । ]

୨ । ଭୂତଳ—2. The surface of the earth. ୩ । ଭୂମି—3. Ground. ୪ । ଧୂଳି—4. Dust. ୫ । ( ମୃତ୍ତିକାମୟ ) ଶରୀର—5. The material body. ୬ । ଭିଜି ବା ନଷ୍ଟ ହୋଇଥିବା ବସ୍ତୁ—6. Soiled or damaged article. ବିଣ—୧ । ପଣ୍ଡ; ବୃଥା; ନିଷ୍ଫଳ—1. Vain; fruitless; abortive, (ଯଥା—ମୋ ପରିଶ୍ରମ ମାଟି ହେଲା ।) ୨ । ଆଳସ୍ୟଯୁକ୍ତ—2. Lazy. (ଯଥା—ତା ଦେହ ମାଟି ପରି ଲାଗୁଛି ।) ୩ । ଅଯୋଗ୍ୟ—3. Unfit. (ଯଥା—ପିଲାଟି ଅସତ୍ ସଂସର୍ଗରେ ପଡ଼ି ମାଟି ହୋଇ ଗଲାଣି ।) ୪ । ନିର୍ବୁଦ୍ଧିଆ—4. Dunce. ୫ । ଭିଜି ବା ନଷ୍ଟ—5. Soiled or damaged (article). (ଯଥା—ମୁଁ ଗୋଟିଏ ବସ୍ତାରେ ଲଙ୍କାମରିଚ ରଖିଥିଲି, ବର୍ଷକ ବାଦ୍ ବସ୍ତା ଫିଟାଇଲା ବେଳକୁ ସେଗୁଡ଼ିକ ମାଟି ହୋଇ ଗଲାଣି ।)

ମାଟିଆ—ଦେ. ବିଣ (ସ. ମାର୍ତ୍ତିକ)—୧ । ମୃତ୍ତିକାମିଶ୍ରିତ—1. Mixed Māṭiā with earth. ୨ । ମୃତ୍ତିକାସମ୍ବନ୍ଧୀୟ—2. Relating মাটিয়া, মেটে to the soil. ୩ । ମାଟି ପରି ସ୍ୱାଦଯୁକ୍ତ—मटिया, मटमैला 3. Having a soily taste or flavour. ୪ । ମାଟି ପରି ପାଣ୍ଡୁର ରଙ୍ଗଯୁକ୍ତ—4. Having the colour of soil. ବି—୧ । ପୁରୀ ଜିଲ୍ଲା ବ୍ରାହ୍ମଣଙ୍କର ବଂଶ ପରିଚୟବିଶେଷ—1. Family distinction of some Brāhmaṇas of Purī district. (ଯଥା—ଦେଉପୁର ମାଟିଆ ମିଶ୍ରେ ।) ୨ । ତାନ୍ତ୍ରିକ ଅଭିଚାରଦ୍ୱାରା ପେଷା ଯିବା ଖରବାବୁଡ଼ି—2. Evil spirits made to possess people by means of charms. ପ୍ରାଦେ. (ଜୟପୁର) ବି—୧ । କୃଷିଜୀବୀ ଓଡ଼ିଆ ଜାତିବିଶେଷ—1. A class of Oriya agriculturists. ୨ । ଏକପ୍ରକାର ଲମ୍ବ ଓ ବଡ଼ ଜହ୍ନି—2. A species of big kitchen. vegetable; Luffa Acutangula

ମାଟିଆ କେଲା—ଦେ. ବି—ଏକପ୍ରକାର ଦକ୍ଷିଣିଆ କେଲା—A sect Māṭiā kelā of wandering tribes of gipsies who मुसहर; खानाबदोस, कंजर roam about doing earth-বেদে work and digging earth for wages.

ମାଟିଆ ଚିଲ—ଦେ. ବି (ସ. ମାର୍ତ୍ତିକ+ଚିଲ୍ଲ)—ମାଟିଆ ରଙ୍ଗର ଏକ-Māṭiā chila ପ୍ରକାର ଚିଲ—The brown kite; Marsh মাঠচিল, মাটিআচিল harrier; Circus Aeruginosus. মেটেচিল,গোদাচিল [ଦ୍ର—ଏମାନେ ଏକ ହାତ ପର୍ଯ୍ୟନ୍ତ ଲମ୍ବ; मटियाचील ଏମାନଙ୍କର ବର୍ଣ୍ଣ ଶଳସ; ଏମାନେ ଚଲିଜଳାଶୟ । ]
( ମାଟିଚିଲ—ଅନ୍ୟରୂପ )

ମାଟିଅଟୁ—ଦେ. ବି—ବାଉଁଶ ଉପରେ ମାଟି ଲେସା ଯାଇ କରାଯାଇଥିବା Māṭi aṭu ଘରର ଭିତର ଛାତ—Inner roof of a house

ମାଟକୋଠା made of mud plastered over bamboo
**पाटन** framework.

**ମାଟିଆ ତେଲ**—ଦେ. ବି—ଭୂଗର୍ଭରୁ ପ୍ରାପ୍ତ ଏକପ୍ରକାର ମଇଳା କେରୋସିନ୍
Māṭiā tela ତେଲ—A sort of crude kerosine oil;
মেটেতেল mineral oil; rock oil; crude petroleum.
**मटिया तेल** [ ଦ୍ର—ଦେହ ଅଢ଼ ଦରକ ହେଲେ ଏହି ତେଲ ମାଲିସ୍ କରାଯାଏ । ]

**ମାଟିଆ ପେଷଣ କରିବା**—ଦେ. କ୍ରି—ବୀର ପେଷିବା ( ଦେଖ )
Māṭiā peshaṇa karibā Bira peshibā ( See )
ভূত লগান **जादु हाँकना** ( ମାଟିଆ ପେଷିବା—ଅନ୍ୟରୂପ )

**ମାଟିଆ ଫ(ଫୁ)ରୋ(ରୁ)ସ୍**—ଦେ. ବି—( ଏମାନଙ୍କ ବର୍ଣ୍ଣ ମାଟି ପରି
Māṭiā pha(phu)ro(ru)s ପାଣ୍ଡୁର ଥିବାରୁ ) ସାହେବ ଓ
মেটেফুরুস **दोगला अँग्रेज** ଦେଶୀ ଲୋକଙ୍କଠାରୁ ଉତ୍ପନ୍ନ ମିଶ୍ରିତ ଜାତି; କଳା ଫିରଙ୍ଗି—Brown-skinned half-caste Eurasian.

**ମାଟିଆ ବୁରୁଜ**—ଦେ. ବି—ଗଡ଼ର କାନ୍ଥରେ ମାଟିରେ ତିଆରି ସ୍ତୂପ—
Māṭiā buruja Earthen revetment along the
মেটেবুরুজ **मटियाबुरुज** walls of a fort. [ ଦ୍ର—କଲିକତା ଉପକଣ୍ଠରେ ଅଯୋଧ୍ୟାର ପେନ୍ସନପ୍ରାପ୍ତ ପ୍ରାଚୀନ ନବାବ ବଂଶର ବାସସ୍ଥାନ ଅଞ୍ଚଳକୁ ଅଦ୍ୟାପି ମାଟିଆ ବୁରୁଜ ବୋଲାଯାଏ । ]

**ମାଟିଆ ମଙ୍ଗ(ଙ୍ଗୁ)ଲା**—ଦେ. ବିଣ. ପୁଂ—ବିଷୟବାନ୍ ହେଲେ ମଧ୍ୟ
Māṭiā maṅga(ṅgu)lā ଯେଉଁ ବ୍ୟକ୍ତି ମୋଟା ଓ ମଇଳା
(ମାଟିଆ ମଙ୍ଗୁଳୀ—ସ୍ତ୍ରୀ) ଲୁଗା ପିନ୍ଧେ, ମୋଟ ଖାଏ ଓ କୃପଣତା
মলেছ ଦେଖାଏ—Dressing oneself with coarse
**तेलियाह** dirty clothes, eating coarse meal and showing niggardliness, though rich.

**ମାଟିଆ ମିଶ୍ର**—ପ୍ରାଦେ. (ପୁରୀ) ବି—ପୁରୀ ଜିଲ୍ଲାବାସୀ ଏକ ଜାତୀୟ ମିଶ୍ର
Māṭiā miśra ଉପାଧିଧାରୀ ବ୍ରାହ୍ମଣ—A distinguishing title of some family of Brahmans of Puri district.

**ମାଟିଆ ବର୍ଣ୍ଣ**—ଦେ. ବି—ମାଟି ପରି ପାଣ୍ଡୁର ବର୍ଣ୍ଣ; ଖାକି—
Māṭiā barṇṇa Khaki; brown colour.
(ମାଟିଆ ରଙ୍ଗ—ଅନ୍ୟରୂପ) মেটে রং **मटमैला रंग**

**ମାଟି ଉଠା(ଠେ)ଇବା**—ଦେ. କ୍ରି—୧ । ଖାତ ଅନ୍ଦରୁ ମାଟି ବାହାର
Māṭi uṭhā(ṭhe)ibā କରି ବାହାରକୁ ଆଣିବା—1. To
মাটী উঠান bring out earth from a pit. ୨ ।
**मिट्टी उठाना, डीह उजाडना** (ଲକ୍ଷଣାର୍ଥ) ଲୋକର ସର୍ବନାଶ ଘଟାଇବା—2. (figurative) To bring about ruin of a person. ୩ । (ମୁସଲମାନମାନଙ୍କ ମଧ୍ୟରେ ପ୍ରଚଳିତ) ପଶ୍ଚିମ ମୁଖ ହୋଇ ହାତରେ କିଛି ମୃତ୍ତିକା ଧରି ଶପଥ କରିବା—3. (in the case of the Mahomedans) To take an oath by holding some earth and turning towards the west.

**ମାଟି କରିବା**—ଦେ. କ୍ରି. (ଲକ୍ଷଣାର୍ଥ)—୧ । କୌଣସି ଉତ୍କୃଷ୍ଟ ବସ୍ତୁକୁ
Māṭi karibā ନଷ୍ଟ କରିବା—1 ( figurative ) To
মাটি করা spoil a good thing. ୨ । ପରିଶ୍ରମକୁ ପଣ୍ଡ ବ
**मिट्टी करना** ବୃଥା ବା ବ୍ୟର୍ଥ କରି ଦେବା—2. To make one's labours or efforts abortive. ୩ । କୌଣସି ବ୍ୟକ୍ତିକୁ ଅଳସୁଆ କରାଇବା—3. To cause a person to become lazy. ୪ । କୌଣସି ବସ୍ତୁକୁ ନିକମା ବା ରଦ୍ଦି କରି ଦେବା—4. To render a good thing useless.

**ମାଟି କଳ**—ପ୍ରାଦେ. (ପୁରୀ) ବି—ତୁମ୍ବ ବାଣର ବାରୁଦ ଉପରେ ଦିଆ
Māṭi kaḷa ଯିବା ମାଟିର ସ୍ତର—The layer of clay put on the gunpowder of a Tumba firework.

**ମାଟି କାମ**—ଦେ. ବି—ଅନ୍ୟ ସ୍ଥାନରୁ ମାଟି ଖୋଳି ଆଣି ସଡ଼କ
Māṭi kāma ଆଦିରେ ପକାଇବା ବା ଘରର ମୂଳଦୁଆରେ ପକାଇବା
মাটির কায **मिट्टीका काम** ମାଟି—Earthwork.

**ମାଟି କାମୁ(ମୋ)ଡ଼ିବା**—ଦେ. କ୍ରି—୧ । ବାଧା, ଗୁପୁଡ଼ା ବା ବେତମାଡ଼
Māṭi kāmu(mo)ṛḍibā ଆଦି ପ୍ରହାରରେ ଜର୍ଜରିତ ହୋଇ
মাটি কামড়া ଭୂମିରେ ମୁହଁ ଲଗାଇ କରି ପଡ଼ିବା—1. To lie
**दाँतसे मिट्टी पकडना** with the face touching the
[ମାଟି କାମୁଡ଼ି ପଡ଼ିବା(ରହିବା)—ଅନ୍ୟରୂପ] ground as the result of hard blows. ୨ । (ଲକ୍ଷଣାର୍ଥ) କୌଣସି ସ୍ଥାନକୁ ବା ଅଞ୍ଚଳକୁ ନ ଛାଡ଼ି ନାନା କଷ୍ଟ ଓ ଦୁଃଖ ଭୋଗ କରି ସୁଦ୍ଧା ସେହିଠାରେ ଦୃଢ଼ ବ୍ରତ କରି ରହିବା—2. (figurative) To stick to a place permanently or for a long time, in spite of various troubles for it. (ଯଥା—ଗାଁଆଁର ସମସ୍ତେ ଏ ସ୍ଥାନ ଛାଡ଼ି ଚାଲିଗଲେ ସୁଦ୍ଧା ମୁଁ ଏଠାରେ ଦଶ ବର୍ଷ ହେଲା ମାଟି କାମୁଡ଼ି ପଡ଼ିଛି ।) ୩ । ମୃତ ହେବା (ମୃତ ବ୍ୟକ୍ତିର ମୁହଁ ଭୂଇଁରେ ଲାଗି ଥିବାରୁ)—3. To die. (ଉ—ଆସିଥିଲେ ଦମ୍ଭେ ଓଷ୍ଠ କାମୋଡ଼ିଣ, ପଡ଼ିଲେ ମାଟି କାମୋଡ଼ି
[ମାଟି କାମୁଡ଼ା(ଡ଼େ)ଇବା—ଣିଜନ୍ତ ରୂପ] ରାଧାନାଥ. ପାର୍ବତୀ ।)

**ମାଟି କିଣିବା**—ଦେ. କ୍ରି—କୌଣସି ସ୍ଥାନରେ ମରି ସେହି ସ୍ଥାନର
Māṭi kiṇibā ମୃତ୍ତିକାରେ ଦେହକୁ ମିଶାଇବା ପାଇଁ ସେଠାକୁ
মাটি কেনা ପୂର୍ବରୁ ଟାଣି ହୋଇଯିବା—To be fated to
**(इसको यहाँकी)मिट्टी लिखा होना** die at a certain place and to consign one's body to the soil thereof.

**ମାଟି କୋଠା**—ଦେ. ବି—ମାଟିରେ ନିର୍ମିତ ଛାତଯୁକ୍ତ କୋଠା—
Māṭi koṭhā A building made of earthen roof.
মাট(টি)কোঠা [ଦ୍ର—ଯେଉଁ ଦ୍ୱିତଳ ଗୃହର ତଳ ମହଲାର ଛାତ
**मिट्टीका कोठा** ମାଟିରେ ଆବୃତ ଓ ଉପର ମହଲାର ଛାତ ଛପର ହୋଇଥାଏ ତାକୁ ମାଟି କୋଠା କହନ୍ତି । ଅର୍ଥାତ୍ ଘରର ଛାତ ମଧ୍ୟ ମାଟିର ତିଆରି; କିନ୍ତୁ ସେ ଛାତରେ ମନୁଷ୍ୟ ଚଳାଚଳ

ହୁଅନ୍ତି ନାହିଁ; କିନ୍ତୁ ମାଟିକୋଠାର ତଳ ମହଲାର ମାଟିଛାତ ଉପରେ ଲୋକେ ଶୁଆ ଉଠା ବସା କରନ୍ତି ।]

ମାଟି ଖାଇବା କ୍ରି—ଦେ. ବି—୧।(ଶିଶୁମାନେ) ମୃତ୍ତିକା ଭକ୍ଷଣ କରିବା— Māṭi khāibā 1. (infants) To eat particles of earth. ୨ । (ଗର୍ଭିଣୀମାନେ) ଦୋହଦଯୁକ୍ତ ହେବା ଯୋଗୁଁ ମାଟି ଖାଇବା—2. ( pregnant women ) To chew particles of earth during pregnancy. ୩ । ମୃତ୍ୟୁ ପରେ ଶବ ରୂପେ ମାଟିରେ ପୋତା ହେବା—3. To be buried. [ଦ୍ର—ମୁସଲମାନମାନେ ଶବକୁ ପୋତି ସାରି କବର ନିକଟରେ ବସି ରୁଟି ଖାଆନ୍ତି ଓ କହନ୍ତି—ତୁମ୍ ଖାଓ ମିଟ୍ଟି, ହାମ୍ ଖାବେଁ ରୋଟି, ଅର୍ଥାତ ତୁମେ ଖାଅ ମାଟି ଆମ୍ଭେମାନେ ଖାଉଁ ରୋଟି ।] ୪ । କୁସ୍ତି ଖେଳରେ ଭୂତଳଶାୟୀ ହେବା—4. To fall on the ground in a duel. ୫ । (ଲକ୍ଷଣାର୍ଥ) କୁକର୍ମ କରିବା ବିଷୟ ସ୍ୱୀକାର କରିବା—5. To admit that one has done an improper or vile act.

মাটি খাওয়া

**मिट्टी खाना**

**गाडाजाना, मिट्टी लेना**

ମାଟି ଖୋଳିବା—ଦେ. କ୍ରି—ମାଟିରେ ଗର୍ତ୍ତ ଖନନ କରିବା— Māṭi kholibā To dig the earth.

মাটিখোঁড়া(কাটা) **मिट्टिखोदना, मिट्टिकाटना**

(ମାଟିକାଟିବା—ଅନ୍ୟରୂପ)

ମାଟିଗଣ୍ଠି—ପ୍ରାଦେ (ପୁରୀ) ବି—ଘଡ଼ିବାଣ ବା ତୁମ୍ବ ବାଣରେ ବାରୁଦ ଖୁନ୍ଦିବା ପୂର୍ବରୁ ଟିକିଏ ମାଟି ଖୁନ୍ଦାହୋଇ ଯେଉଁ ଟାଣୁଆ ପଟଳ କରାଯାଏ—The hard layer of sticky clay below the gunpowder of a Tumba or Ghaṛdi firework.

Māṭigaṇṭhi

মাটিরস্তর

ମାଟି ଗାନ୍ଥ(ନ୍ଥି)ନି—ଦେ. ବି—ଇଟାକୁ ମାଟି ବା କାଦୁଅଦ୍ୱାରା ଯୁଡ଼ି ଯୁଡ଼ି କରି ବସାଇ କାନ୍ଥ ତିଆରି କରିବା କାମ—Laying of bricks with mud; mud-and-brick masonry.

Māṭi gāntha(nthi)ni

মাটীর গাঁথুনি

ମାଟି ଗୋବର—ଦେ. ବି—ଘର ଆଦି ଲିପିବାପାଇଁ ବ୍ୟବହୃତ ମୃତ୍ତିକା ଓ ଗୋମୟ—Earth and cowdung mixed with water and used for smearing over earthen walls and floors.

Māṭi gobara

গোবরমাটি **मिट्टिगोबर**

ମାଟି ଗୋବର କନା—ଦେ. ବି—ଯେଉଁ କନାରେ ମାଟି ଗୋବର ପାଣି ଘରର କାନ୍ଥ ଆଦିରେ ଲିପାଯାଏ—A rag used in besmearing the walls and floors with cowdung and water.

Māṭi gobara kanā

ন্যাতা, নাতা **नूँड**

ମାଟି ଗୋବର ପାଣି——ଦେ. ବି—ମାଟି ଘରର କାନ୍ଥ ଓ ତଳ ଆଦି ଲିପିବା ପାଇଁ ମାଟି ଓ ଗୋବରଗୋଳିଆ ଜଳ—Water mixed with earth and cowdung and used for smearing over earthen walls and floors.

Māṭi gobara pāṇi

গোবর মাটি জল **मढिगोबरपानी**

ମାଟି ଗୋବର ହାଣ୍ଡି—ଦେ. ବି—ହିନ୍ଦୁ ପରିବାରର ସ୍ତ୍ରୀମାନେ ସକାଳୁ ମାଟି ଗୋବର ପାଣିରେ ଘର, ପିଣ୍ଡା ଓ ଅଗଣା ଆଦି ଲିପିବାପାଇଁ ଯେଉଁ ପାତ୍ରରେ ମାଟି ଗୋବର ପାଣି ଓ ମାଟି ଗୋବର କନା ରଖନ୍ତି—A pot containing watered mixture of earth and cowdung for daily washing of the earthen walls and floors and courtyards.

Māṭi gobara hāṇḍi

নাতারছাড়ি **गोबरौड**

ମାଟି ଘର—ଦେ. ବି—ମାଟିରେ କାନ୍ଥ, ମେଜିଆ ଓ ମୂଳଦୁଆ ଆଦି ତିଆରି ହୋଇଥିବା ଖଡ଼ ଘର—Mud house; mud-walled and mud-floored thatched house

Māṭi ghara

মাটিঘর **मिट्टिकाघर**

ମାଟିଘରା—ଦେ. ବି—କୁମ୍ଭାରିଆ ପୋକ ବା ମାଟି ଭଅଁର (ଭ୍ରମର)ମାନେ ତିଆରି କରିଥିବା ମାଟିର ଘର—The bulbons earthen nests made by mud-wasps.

Māṭigharā

ମାଟି ଘୋଡ଼ା—ଦେ. ବି—ଗ୍ରାମଦେବତାଙ୍କୁ ଭେଟି ଦିଆଯିବା ମାଟିର ଘୋଡ଼ାମୂର୍ତ୍ତି—Earthen horses presented to a village Goddess.

Māṭighoṛā

মটিরঘোড়া **मिट्टिकाघोडा**

ମାଟି ଘେ(ଘି)ନିବା—ଦେ. କ୍ରି-୧ (ହିନ୍ଦୁଙ୍କ ପକ୍ଷରେ) ମଳତ୍ୟାଗ ପରେ ଗୁହ୍ୟଦ୍ୱାରରେ, ହାତରେ ଓ ଗୋଡ଼ରେ ମାଟି ବୋଳି ଜଳଦ୍ୱାରା ମଳକୁ ପରିଷ୍କାର କରିବା—1. (said of the Hindus) To smear earth on the anus, palms and feet and wash the body with water after passing stools [ଦ୍ର—ହିନ୍ଦୁମାନଙ୍କର ଶାସ୍ତ୍ରରେ ଝାଡ଼ା ଫେରିବା ଓ ପରିସ୍ରା କରିବା ପରେ ଗୁହ୍ୟ, ଲିଙ୍ଗ, କରତଳ ଓ ପଦତଳରେ ମାଟି ବୋଳି ପରେ ତାହା ଜଳ ଦ୍ୱାରା ଉତ୍ତମରୂପେ ପରିଷ୍କୃତ କରିବା ବିଧି ଅଛି । କିନ୍ତୁ ସାଧାରଣତଃ ହିନ୍ଦୁମାନେ ମଳୋତ୍ସର୍ଗ କରିବା ପରେ ମାଟି ଘେନିବାର ଦେଖାଯାଏ । ରଜସ୍ୱଳା ସ୍ତ୍ରୀମାନେ ଶୁଦ୍ଧସ୍ନାନ ସମୟରେ ସର୍ବାଙ୍ଗରେ ମାଟି ଲେପିବାର ଦେଖାଯାଏ । ଫଳତଃ ଦେହରେ ମାଟି ବୋଳିହୋଇ ପରେ ପାଣିରେ ଧୋଇଲେ ଦେହ ଖୁବ୍ ପରିଷ୍କୃତ ଓ ମଳଶୂନ୍ୟ ହୁଏ ।] ୨ । (ମୁସଲମାନ୍‌ପକ୍ଷରେ) ମଳ ଓ ମୂତ୍ର ତ୍ୟାଗ ପରେ ଗୁହ୍ୟଦ୍ୱାର ବା ଲିଙ୍ଗକୁ ମଳ ବା ମୂତ୍ର ଶୂନ୍ୟ କରିବା ପାଇଁ ମାଟିର ଖଣ୍ଡ ତକ୍ତ ଅଙ୍ଗରେ ପ୍ରୟୋଗ କରିବା—2. ( said of the Mahomedans ) To apply a bit of earth to the anus or the mouth of the urinary organ to cleanse it after a call of nature. [ ଦ୍ର—ହିନ୍ଦୁମାନେ ସ୍ନାନ କରିବା ପୂର୍ବରୁ ମନ୍ତ୍ରପାଠପୂର୍ବକ ଦେହରେ ମୃତ୍ତିକା ଲେପନ କରନ୍ତି ଓ ମଳତ୍ୟାଗ ପରେ ଗୁହ୍ୟଦ୍ୱାରରେ ଓ ହସ୍ତ ପଦାଦିରେ ମୃତ୍ତିକା ଲେପନ କରି

Māṭi ghi(ghe)nibā

মটিলাগনা **मिट्टिलेना**

ଜଳରେ ଧୁଅନ୍ତି । ହିନ୍ଦୁ ସ୍ତ୍ରୀମାନେ ରତୁସ୍ନାନ ଦିନ ଅଙ୍ଗରେ ମୃତ୍ତିକା ଲେପନ କରନ୍ତି । ଏଥିକୁ ମାଟି ଘେନିବା ବୋଲାଯାଏ । ହିନ୍ଦୁମାନେ ପ୍ରସ୍ରାବ କରି ସାରି ଲିଙ୍ଗରେ ଜଳ ଘେନନ୍ତି, କିନ୍ତୁ ମୁସଲମାନମାନେ ଜଳ ନ ଘେନି ଶୁଖିଲା ମାଟି ଢେଲା ଦ୍ୱାରା ଲିଙ୍ଗାଗ୍ରରେ ଲାଗିଥିବା ମୂତ୍ରକୁ ଶୁଖିଦିଅନ୍ତି । ]

ମାଟିଚଟା—ଦେ. ବି—ଏକପ୍ରକାର ପକ୍ଷୀ—A kind of bird.
Māṭichaṭa (ଉ—ସାଗୁଣା ମାଟିଚଟା ବାଇଚାହୋଇ ଜଳ—ପୀଡାମୃତ. ନୃସିଂହପୁରାଣ ।)

ମାଟି ଛଟା—ଦେ. ବି—କାନ୍ଥ, ବାଡ଼ଆଦିରେ ଖଣ୍ଡା ଖଣ୍ଡା କାଦୁଅ
Māṭi chhaṭā ଲଗାଇବା କର୍ମ—Act of daubing mud
କାଦାଛାଟା on walls. ଦେ. ବିଣ—ଯେଉଁ କାନ୍ଥରେ ବା
मिट्टीसाटना ବାଡ଼ରେ ମାଟି ଛଟା ହୋଇଥାଏ—( a wall )
କାଦାଛାଟା मिट्टीलेवा हुआ Daubed with mud.

ମାଟି ଛାଟିବା—ଦେ. କ୍ରି—କାନ୍ଥଆଦିରେ କାଦୁଅକୁ ଫୋପାଡ଼ି ଲଗାଇବା
Māṭi chhāṭibā —To daub a wall with mud.
କାଦାଛାଟା मिट्टी साटना (लेवना)

ମାଟି ତେଲ—ପ୍ରାଦେ ( ବସ୍ତର ) ବି ( ଭୂଲ. ହିନ୍ଦୀ. ମଟିଯା ତେଲ=
Māṭi tela କେରସିନ୍ ତେଲ )—କେରୋସିନ ତେଲ—Kerosine oil

ମାଟି ଦବକିବା—ଦେ. କ୍ରି—୧ । ମାଟିର ତଳେ ପାଣିଥିବା ଯୋଗୁଁ
Māṭi dabakibā ମାଟି ନରମ ହେବା ବା ଗୋଡ଼ ପାଇଲେ
ମାଟି ଦଲଦଲ(ଲେ)ଇବା } ଅନ୍ୟରୂପ ତଳକୁ ବସିଯିବା ଓ ଗୋଡ଼ ଛାଡ଼
ମାଟି ଦଲ୍ ଦଲ୍ ହେବା } ଦେଲେ ଉଠିଯିବା—1.
ମାଟି ଦଲ ଦଲ କରା ( the earth ) Becoming elastic
मिट्टी पल पल करना or soft ( owing to presence of water below ). ୨ । ଉପରେ ଅତ୍ୟନ୍ତ ଭାର ରଖାଯିବା ଯୋଗୁଁ ଭୂମି ତଳକୁ ଚାପିଯିବା—2. The sinking of the surface of land on account of heavy weight put on it.

ମାଟି ଦବିବା—ଦେ. କ୍ରି—୧ । ନୂଆ ମୃତ୍ତିକାରେ ଜଳ ପଡ଼ିବାରୁ ତାହା
Māṭi dabibā ତଳକୁ ଲହିଁଯିବା—1. ( the earth )
ମାଟି ବସେ(ଦବେ) ଯାଓୟା Settling down or setting.
मिट्टी दबना ୨ । ମାଟି ଦବକିବା ( ଦେଖ )—2. Māṭi
(ମାଟି ଦବିଯିବା—ଅନ୍ୟରୂପ) dabakibā ( See )

ମାଟି ଦେବା—ଦେ. କ୍ରି—୧ । ମୃତ୍ୟାର୍ତ୍ତକୁ ପୋତିବା; କବର ଦେବା—
Māṭi debā 1. To bury a dead body; to inter.
ମାଟିଦେଓୟା ୨ । (ଏକ ଯୋଦ୍ଧା ବା ପହିଲ୍‌ବାନ୍ ବିପକ୍ଷ ନିକଟକୁ)
मिट्टीदेना ଯୁଦ୍ଧାର୍ଥ ଅହ୍ୱାନସୂଚକ ଚିହ୍ନ ମାଟି ପଠାଇଦେବା—2. To challenge an adversary to a duel by sendig to him a bit of earth.

ମାଟି ଧରିବା—ଦେ. କ୍ରି—୧ । କୁସ୍ତି ଇତ୍ୟାଦିରେ ( ମଲ୍ଲ ) ଭୂମିକୁ
Māṭi dharibā ଦୃଢ଼ କରି ଧରିବା—1. To hold
ମାଟିଧରা fast to the earth (said of an athlete).
मिट्टी पकड़ना ୨ । ( କୁମ୍ଭୀରଆଦି ଜଳଚର ଜୀବ ) ବନ୍ଧୁକର ଗୁଳିରେ ଅହତ ହୋଇ ଜଳାଶୟର ତଳଦେଶକୁ ଯିବା—2. ( said of alligator ) wounded by a bullet ) To sink to the bottom.

ମାଟି ଧୂଳି—ଦେ. ବି (ସଙ୍କର; ସ. ମୃତ୍ତିକା+ଧୂଳି )—ମୃତ୍ତିକା ଓ ଧୂଳି
Māṭi dhuḷi —Earth and dust.

ମାଟି ଧୂଳି ସାପ—ପ୍ରାଦେ ( ସିଂହଭୂମି ) ବି—ମାଟିବିରାଡ଼ି ସାପ (ଦେଖ)
Māṭi dhuḷi sāpa Māṭibirāṛdi sāpa ( See )

ମାଟି ନେବା—ଦେ. କ୍ରି—୧ । କୌଣସି ସ୍ଥାନରେ ମୃତ ହେବା—
Māṭi nebā 1. To die at a place. ୨ । ମାଟି ଘିନିବା
ମାଟିନେଓୟା मिट्टीलेना ( ଦେଖ )—2. Māṭi ghinibā ( See )

ମାଟି ପରି ଲାଗିବା—ଦେ. ବି—ଆଳସ୍ୟ ବୋଧ ହେବା—Feeling
Māṭi pari lāgibā of laziness or indisposition to
(ମାଟିପରି ହେବା—ଅନ୍ୟରୂପ) ମାଟିମାଟି କরা work.
मिट्टीसा मालुम होना

ମାଟି ବଂଶ ନାୟ(ହା)କ—ଦେ. ବି—ଓଡ଼ିଶାର ନାୟକ ( ଗଣକ )
Māṭi bamśa nāya(hā)ka ଶ୍ରେଣୀର ଏକଶାଖା; ସିଦ୍ଧ ବଂଶ
(ମାଟିବଂଶ ଅବଧାନ—ଅନ୍ୟରୂପ) ଅବଧାନ—A class of astrologers of Orissa. [ ଦ୍ର—ଓଡ଼ିଶାର ନାୟକମାନେ ୨ ଶ୍ରେଣୀର,—ସିଦ୍ଧବଂଶ ବା ମାଟିବଂଶ ନାୟକ ଓ ଖଡ଼ି ବଂଶ ନାୟକ । ଖଡ଼ି ବଂଶ ନାୟକମାନେ ଗଣକବୃତ୍ତି କରନ୍ତି । ମାଟିବଂଶ ନାୟକମାନେ ପାଠଶାଳାରେ ଶିକ୍ଷକତା କରୁଥିଲେ । ]

ମାଟିପୁରା—ପ୍ରାଦେ ( ମେଦିନୀପୁର ) ବି—ମାଟିବିରାଡ଼ି ସାପ ( ଦେଖ )
Māṭipurā Māṭibirāṛdi sāpa ( See )

ମାଟିବଂଶ କରଣ—ଦେ. ବି—ବୈଶ୍ୟ କରଣ ( ଦେଖ )
Māṭibamśa karaṇa Baiśya karaṇa ( See )

ମାଟି ବସିବା—ଦେ. ବି—୧ । ବର୍ଷାଦ୍ୱାରା ମାଟି ଆର୍ଦ୍ର ହୋଇ ତଳକୁ
Māṭi basibā ଦବି ଟାଣ ହୋଇଯିବା—1. The settling
ମାଟିବসা of earth after the rains. ୨ ।
मिट्टी बैठना ମାଟି ଦବିବା (ଦେଖ)—Māṭi dabibā ( See )
(ମାଟି ବସିଯିବା—ଅନ୍ୟରୂପ)

ମାଟିବିରାଡ଼ି ସାପ—ଦେ. ବି—ମାଟିଆ ରଙ୍ଗର ନିର୍ବିଷ ସାପ—A kind
Māṭibirāṛdi sāpa of non-poisonous snake;
ମାଟିବିରାଡ଼ିଆ ସାପ } Tropidonotus Stolatus.
ମଟିମାର୍ଜାରି ସପ } ଅନ୍ୟରୂପ [ ଉ—କୋମଳ କର ଗାଇଲେ
ମାଟିମାର୍ଜାର ଫଣୀ } ପଦ୍ମତୋଳା ଗୀତ, କରେ ମାଟି-
ମେଟେଳି ସାଁପ ମାର୍ଜାର ଫଣୀ ଫଣା ଉନ୍ନତ ? ପାନକୃଷ୍ଣ.
मटमैला साँप ରସକଲ୍ଲୋଳ । ] [ ଦ୍ର—ଏମାନଙ୍କର ବର୍ଣ୍ଣ ଧୂସର ସାବଳା ଓ ମାଟିର ବର୍ଣ୍ଣ ; ଦେହରେ ଧୂସର କଳ ଦାଗ ଥାଏ; ପେଟତଳ ଧଳା । ଏମାନେ ବେଙ୍ଗ, ମାଛ ପୋକ ପ୍ରଭୃତି ଖାଆନ୍ତି । ଏମାନେ ଉମ୍ଭ ପର୍ବତଶୃଙ୍ଗରେ ଭୁଆ ଜନ୍ମ କରନ୍ତି—ଯୋଗେଶଚନ୍ଦ୍ର; ଏମାନେ ନିର୍ବିଷ । ]

ମାଟି ବୋଳିବା—ଦେ. କ୍ରି—କାନ୍ଥରେ ବା ଘରର ତଳରେ ପାଣିଆ ମାଟିର ପ୍ରଲେପ ଦେବା—To lay a thin layer of mud on a floor or wall; to besmear with mud. [ଦ୍ର—ମାଟି ବୋଳିବାରେ ମାଟି ଲେପିବା ଅପେକ୍ଷା ମାଟିର ସ୍ତର ମୋଟ ବା ଘନ ହୁଏ ।]
Māṭi boḷibā
ମାଟି ଲ(ଲେ)ପିବା } ଅନ୍ୟରୂପ
ମାଟି ଲେପିବା }
মাটি লেপা
**मट्टीलेपना**

ମାଟି ଭଅଁର—ଦେ. ବି. ( ସଂ. ମୃତ୍ତିକା ଭ୍ରମର)—କୁମ୍ଭାର ପୋକ; କାଠୁଅରେ ବସା ବାନ୍ଧିବା ଏକ ପ୍ରକାର ଭଅଁର—Mud wasp.
Māṭi bha-aṅra
[ମାଟି ବ(ଭ)ରୁଡ଼—ଅନ୍ୟରୂପ]
কুমরে পোকা **कुम्हाहन कीडा**

ମାଟି ଭରିବା—ଦେ. କ୍ରି—କୌଣସି ଗର୍ତ୍ତରେ ବା ଖାଲରେ ମାଟି ପୂର୍ଣ୍ଣ କରିବା—To fill up a pit with earth.
Māṭi bharibā
(ମାଟି ଭରେ[ର୍]ଇ କରିବା—ଅନ୍ୟରୂପ)
মাটিভরা **मिट्टी भरना**

ମାଟି ଭାଉ—ଦେ.ବି—ଅତି ସୁଲଭ ମୂଲ୍ୟ—Very cheap price. (ଯଥା—ଅଚଳାକୁ ବଜାରରେ ମାଛ ମାଟିଭାଉରେ ବିକା ହେଉଅଛି ।]
Māṭi bhāu
( ମାଟି ଦର, ମାଟି ମୂଲ୍ୟ, ମାଟି ଦାମ—ଅନ୍ୟରୂପ )
মাটীৰ দৰ **मिट्टीका भाव**

ମାଟି ମାଟି ଲାଗିବା—ଦେ. ବି—ଅବସନ୍ନତା ବୋଧ ହେବା; ଆଳସ୍ୟ ବୋଧ ହେବା—A feeling of langour or laziness.
Māṭi māṭi lāgibā
মাটি মাটি করা
(ପ୍ରୟୋଗ—ମୋ ଦେ(ହ)ହ ମାଟି ମାଟି ଲାଗୁଛି ।)

ମାଟିରେ ପୋକ ହେବା—ଦେ. କ୍ରି—ଗୃଷକାଯରେ ଅଶେଷ ପରିଶ୍ରମ କରିବା; ଖୁବ୍ ଗଭୀର ଗୃଷ କରିବା—To plough deeply; to labour very hard in agriculture.
Māṭire poka hebā
মাটিরপোকা হওয়া
**मिट्टीका कीडा बनना**

ମାଟିରେ ମିଶିବା—ଦେ. କ୍ରି—୧ । (ମନୁଷ୍ୟ) ମୃତ ହେବା; ଦେହ ତ୍ୟାଗ କରିବା—1. To die. ୨ । (କୋଠା, ଘର ଅଦ) ଭାଙ୍ଗି ଯାଇ ଭୂମିସାତ୍ ହେବା—2. To fall down to the ground; to be razed to the ground. ୩ । (କୌଣସି ବସ୍ତୁ) ସଢ଼ି ପଚି ମୃତ୍ତିକାରେ ମିଶିଯିବା—3. (any organic matter) To become turned into the soil.
Māṭire misibā
মাটিতে মেশা
**मिट्टीमे मिलजाना; मट्टीयामेट होना**
[ ମାଟିରେ ମିଶା(ଶେ)ଇବା—ଣିଜନ୍ତରୂପ ]

ମାଟି ଶୁଙ୍ଘିଲେ ଶୋଇବା—ଦେ. କ୍ରି—ବିଛଣାରେ ଶୋଇବା ମାତ୍ରକେ ଗାଢ଼ ନିଦରେ ଅଭିଭୂତ ହେବା—To have sound or deed sleep as soon as one lies down.
Māṭi suṅghile soibā
বিছানা ধৰলেই ঘুমন
**विछौना पर जानेसेही शोजाना**

ମାଟି ହାତୀ—ଦେ. ବି—ଗ୍ରାମଦେବତାଙ୍କୁ ଭେଟି ଦିଆଯିବା ମାଟିରେ ତିଆରି ହାତୀମୂର୍ତ୍ତି—Earthen elephants offered to the village-Goddess. [ ଦ୍ର—ଏହିପରି ମାଟିଘୋଡ଼ା ହୁଏ]
Māṭi hāti
মাটিৰ হাতী
**मिटीका हाथी**

ମାଟି ହେବା—ଦେ. କ୍ରି—୧ । ପଣ୍ଡ ହେବା; ବ୍ୟର୍ଥ ହେବା—1. To miscarry; to turn into nothing; to be frustrated. ୨ । ସମ୍ପୂର୍ଣ୍ଣରୂପେ ନଷ୍ଟ ହେବା—2. To be completely spoiled.
Māṭi hebā
মাটি হওয়া **मिट्टी होना**

ମାଟୁ—ଦେ. ବି—ଅଟୁ; ମାଟି ଘରର ଖପର ତଳରେ ମାଟି ଛାଟ ହୋଇ ଛାତର କରି ଯାଇଥିବା ଛାତ—The inner roof of a thatched house, which is daubbed with mud. ପ୍ରାଦେ. (ଗଡ଼ଜାତ) ଶିକାରୀ ଲୁଚି କରି ବନ୍ୟଜନ୍ତୁଙ୍କୁ ଜଗିବା ପାଇଁ ମାଟି ଭିତରେ ଯେଉଁ ଗର୍ତ୍ତ ଖୋଳା ହୋଇଥାଏ, ଏବଂ ଯାହା ଉପରେ ଡାଳପତ୍ର ଆଦି ଘୋଡ଼ା ଯାଇଥାଏ—A hole below the ground where the hunter lies in ambush for hunting.
Māṭu
মাটি কোঠা **पाटन**

ମାଟୁ(ଣ୍ଟୁ)ବେଣ୍ଟ—ପ୍ରାଦେ. ( ଗଡ଼ଜାତ ) ବି—ଏକପ୍ରକାର ଶିକାର କରିବା ପ୍ରଣାଳୀ—A device for hunting in which the hunter lies in ambush in a concealed hole under ground and shoots animals when they come near it. [ ଦ୍ର—ଏଥିରେ ଶିକାରୀ ଭୂମିତଳେ ଗାତଖୋଳି ସେ ଗାତ ମୁହଁରେ ଡାଳ ପତ୍ର ଆଦି ଘୋଡ଼ାଇ ତହିଁ ମଧ୍ୟରେ ଲୁଚି କରି ଜଗି ବସିଥାଏ । ନିକଟକୁ ବନ୍ୟ ଜନ୍ତୁ ଆସିଲେ ସେହି ଗାତ ମଧ୍ୟରୁ ଶିକାରୀ ବନ୍ୟଜନ୍ତୁଙ୍କୁ ଲକ୍ଷ୍ୟ କରି ବନ୍ଧୁକ ବା ଶର ମାରେ । ]
Māṭu(ṇṭu)beṇṭa
গর্তহইতে শিকাব

ମାଟେ(ଣ୍ଟେ)ଇବା—ଦେ. କ୍ରି ( ସଂ. ମନ୍ଥର )—୧ । ମଠ କରିବା; ବିଳମ୍ବ କରିବା—1. To delay. ୨ । କୌଣସି କାର୍ଯ୍ୟ ଧୀରେ ଧୀରେ କରିବା—2. To do a work slowly. ୩ । ସ୍ଥଗିତ ହେବା—3. To be in abeyance; to stop. ୪ । ( କୌଣସି କାର୍ଯ୍ୟ ) ଧୀରଗତିବିଶିଷ୍ଟ ହେବା—4. (a work ) To proceed very slowly. ୫ । କୌଣସି ସ୍ଥାନରେ ଅପେକ୍ଷା କରିବା—5. To wait or loiter at a place. ୬ । ମାଟିର ପ୍ରଲେପ ଦେବା—6. To besmear or daub clay on something.
Māṭe(ṇṭe)ibā
দেবীকৰা
**देरि करना**
মাঠকৰা
**धीमा होना**
**बाटजोहना**
মাটিলেপা
**मिट्टी लेवना**

ମା(ମେ,ମ୍ୟା)ଟ୍ରିକ୍—ବୈଦେ. ବି (ଇଂ. 'ମାଟ୍ରିକୁଲେସନ୍'ର ସଂକ୍ଷିପ୍ତ ଆକାର)—୧ । ମାଟ୍ରିକୁଲେସନ୍ (ଦେଖ)—1. Mātrikulesan ( See ) ୨ । ମାଟ୍ରିକୁଲେଟ୍ ( ଦେଖ )—2. Mātrikuleṭ ( See )
Mā(me,myā)ṭrik
ম্যাট্রিক
**मैट्रिक**

ମା(ମେ, ମ୍ୟା)ଟ୍ରିକୁ(କ୍ୟୁ)ଲେଟ୍—ବୈଦେ. ବିଣ ( ଇଂ )—ପ୍ରବେଶିକା ପରୀକ୍ଷାରେ ପାସ କରିଥିବା (ଛାତ୍ର)—Matriculate. ବି—ପ୍ରବେଶିକା ପରୀକ୍ଷାରେ ପାସ କରିଥିବା ବ୍ୟକ୍ତି—A matriculate.
Mā(me,myā)ṭriku(kyu)leṭ
ম্যাট্রিকুলেট
**मैट्रिकुलेट**

ମା(ମେ,ମ୍ୟା)ଟ୍ରି କୁ(କ୍ୟୁ)ଲେସନ୍— ବୈଦେ. ବି (ଇଂ)—ବିଶ୍ୱବିଦ୍ୟାଳୟର
Mā(me,myā)ṭriku(kyu)lesan ପ୍ରବେଶିକା ପରୀକ୍ଷା—The
ম্যাটি্কুলেসন matriculation or University
मैट्रिकुलेसन Entrance Examination.

ମା(ମେ,ମ୍ୟା)ଟ୍ରି କୁ(କ୍ୟୁ)ଲେସନ୍ କ୍ଲାସ୍—ବୈଦେ.ବି (ଇଂ)--ହାଇସ୍କୁଲର
Mā(me,myā)ṭriku(kyu)lesan klās ଏଣ୍ଟାନ୍ସ ବା ଶେଷ ଶ୍ରେଣୀ
ম্যাটি্কুলেসন ক্লাস —The matriculation class of
मैट्रिकुलेसन क्लास a High English school.

ମାଠ—ସଂ. ବି—ରାସ୍ତା—A road ( Apte ). ଦେ. ବି—୧ ।
Māṭha କଳା ସୂତାରେ ପ୍ରସ୍ତୁତ ଦେଶୀ ତନ୍ତରେ ବୁଣା ମୋଟା
দলাই ଦୁଇପରସ୍ତିଆ ଶୀତ ଗୁଦଡ଼—1. A double two-strip-
सलिगा ped sheet made of cotton thread hand-woven. [ ଦ୍ର—୧ ବା ୧୨ ହାତ ଓସାରର ମୋଟ ପଟ୍ଟ ଦୁଇଟିକୁ ଲମ୍ବ ବାଗରେ ସିଲାଇ କରି ସିଲାଇ ହୋଇଥିବା ୧୨ ହାତ ଲମ୍ବ ଦୋପଟ୍ଟା ଗୁଦଡ଼ର ଲମ୍ବକୁ ୬ପରସ୍ତ କରି ଭାଙ୍ଗି ଯେଉଁ ୬ ହାତଥି ଦୋହୋର ଦୋପଟ୍ଟା ଗୁଦଡ଼ ହୁଏ ତାକୁ ମାଠ ବୋଲାଯାଏ । ଏହାକୁ ମଫସଲରେ ସାଧାରଣ ମଧ୍ୟବିତ୍ତ ଲୋକେ ଶୀତବସ୍ତ୍ରରୂପେ ବ୍ୟବହାର କରନ୍ତି ।] ୨ ।
(ସଂ. ମନ୍ଥଧାତୁ; ସଂ. ମୃଜ ଧାତୁରୁ ମୃଷ୍ଟ)--ଚକ୍କଣ ବା ପାଲିସ୍
মাঠন କରିବାର ହତିଆର—2. An instrument for
मठेरा polishing articles [ ଉ—ଯୌବନର ମାଠେ ମଠା ହୋଇ ଅଙ୍ଗ-ସନ୍ଧି ଦିଶା ପଶ୍ଚାତା । ରାଧାନାଥ. ଯଯାତି । ] ୩ । ନୀଚ ଜାତିର ସ୍ତ୍ରୀଲୋକମାନେ ମଣିବନ୍ଧରେ ପିନ୍ଧିବା ପିତ୍ତଳର ପାଲିସ୍ ହୋଇଥିବା ଖଡ଼ୁ—Polished bangles worn on the wrist by females of low castes. ବିଣ ( ସଂ. ମୃଷ୍ଟ )—
মাঠা ଚକ୍କଣ ବା ପାଲିସ୍ କରାଯାଇ ଥିବା ( ଅଳଙ୍କାର ଆଦି )
मठीर·कियाहुआ —Polished ( ornaments etc ).
ପ୍ରାଦେ. ( ଉତ୍ତର ବାଲେଶ୍ୱର ) ବି ( ତୁଳ ବ. ମାଠ )—
ପଡ଼ିଆ ଜମି—Waste land; meadow.

ମାଠ ଗୁଣା—ଦେ. ବି—ଏକପ୍ରକାର ପାଲିସ୍ କରାଯାଇ ଥିବା ଗୁଣା ବା
Māṭha guṇā ନାକପୁଡ଼ାର ଅଳଙ୍କାର ବିଶେଷ—A polished
বেসর flower ( ornament ) for the nostril
मठोराहुआ बेसर [ ଉ—ନାସିକାରେ ମଠଗୁଣା, କରଇ ବିବେକ ବଣା—ଭଞ୍ଜ. ଲାବଣ୍ୟବତୀ । ]

ମାଠଣ(ଣି)—ଦେ. ବି ( ସଂ. ମନ୍ଥନ; ସଂ. ମୃଜ ଧାତୁରୁ ମୃଷ୍ଟ )—୧ ।
Māṭhaṇa(ṇi) ଅଳଙ୍କାରଆଦିକୁ ବାରମ୍ବାର ଘଷିବାଦ୍ୱାରା ଉତ୍ପନ୍ନ
মাঠন ପାଲିସ୍ ବା ମସୃଣତା—1. Polish of ornaments
चिकनाहट and other things produced by constant rubbing. ୨ । ପାଲିସ୍ କରିବା କର୍ମ—
2. The act of polishing.

ମାଠଣ(ଣି) କରିବା—ଦେ. କ୍ରି. ( ସଂ. ମୃଷ୍ଟ )—କୌଣସି ପଦାର୍ଥକୁ
Māṭhaṇa(ṇi) karibā ବାରମ୍ବାର ଘଷି ପାଲିସ୍ କରିବା—
মাঠন করা मठोरना To polish ornaments and other things.

ମାଠଣେଇବା—ପ୍ରାଦେ. ( ସମ୍ବଲପୁର ) କ୍ରି—ମାଠଣ କରିବା ( ଦେଖ )
Māṭhaṇeibā Māṭhaṇa karibā ( See )

ମାଠତିସ୍—ଦେ. ବି ( ତୁଳ. ଇଂ. ମାଚେଟ୍ matchet; ଓଡ଼ିଆ
Māṭhatis ଛୁରି )—ବଢ଼େଇମାନଙ୍କ ସରୁ କତାଣ—
নিহানি हथानी Carpenter's slender chisel.

ମାଠ ପଥର—ଦେ. ବି ( ସଂ. ମୃଜ୍ ଧାତୁରୁ ମୃଷ୍ଟ+ପ୍ରସ୍ତର )—ସୁନା
Māṭha pathara ରୁପାର ଅଳଙ୍କାରକୁ ଚକଚକିଆ କରିବା ପାଇଁ ବଣିଆଙ୍କ ବ୍ୟବହୃତ ଏକପ୍ରକାର ଚିକ୍କଣ ପଥର—
Goldsmith's polishing stone.
[ମାଠ(ଠି,ଠେ)ଣି ପଥର—ଅନ୍ୟରୂପ]

ମାଠର—ସଂ. ବି ( ମଠ୍ ଧାତୁ=ବାସ କରିବା+କର୍ତ୍ତୃ. ଅର୍ )—
Māṭhara ୧ । ସୂର୍ଯ୍ୟଙ୍କର ପାରିପାର୍ଶ୍ୱିକ ଗ୍ରହବିଶେଷ—1. Name of a minor planet near or attendant on the sun ( Apte ). ୨ । ବ୍ୟାସଦେବ—2. The sage Byāsa. ୩ । ଶୌଣ୍ଡିକ; ଶୁଣ୍ଡି—3. Wine-vender. ୪ । ବ୍ରାହ୍ମଣ—4. Brāhmaṇa. ଦେ. ବି—ପ୍ରାଚୀନ ଉତ୍କଳର ରାଜବଂଶବିଶେଷ—A dynasty of ancient kings of Orissa.

ମାଠ ରନ୍ଦା—ଦେ. ବି—କାଠକୁ ଚକ୍କଣ କରିବା ପାଇଁ ବ୍ୟବହୃତ
Māṭha randā ଛୋଟ ରନ୍ଦା—Carpenter's small
মাঠারাঁ(রেঁ)দা मठौरा polishing plane.

ମାଠା—ଦେ. ବି ( ସଂ. ମନ୍ଥ୍ ଧାତୁ; ସଂ. ମଥନୋତ୍ଥ; ତୁଳ. ବ. ମାଠା =
Māṭhā ଘୋଲଦହି; ଲହୁଣୀ )—ନବନୀତ; ଲହୁଣୀ (ନାଦେ)—
মাঠা मक्खन Butter.

ମାଠି—ଦେ. ବି—୧ । ( ସଂ. ମୃଷ୍ଟବଳୟ ) ଏକପ୍ରକାର ପାଲିସ୍ କରା-
Māṭhi ଯାଇଥିବା ରୁପାର ବା କଂସାର ମୋଟ ଖଡ଼ୁ ବା ବଳୟ
पालिसदार कंगन, मठिया ବଳୟ—1. A kind of polished wristlet of silver or bell metal.
मठरना ୨ । ବଣିଆଙ୍କର କ୍ଷୁଦ୍ର ପାନ ହାତୁଡ଼ି—2. Goldsmith's tiny hammer.

ମାଠିଆ—ଦେ. ବି ( ସଂ. ମୃଦ୍ଘଟ )—ମାଟିର କୁମ୍ଭ; କଳସ—An
Māṭhiā earthen pitcher; a narrow-necked
ঘড়া, কলসী, মেটে কলসী earthen jar. [ଉ—ଦେଖିବୁ କେହୁ
घडा, मटका, मट, माट ଭୁଛା ମାଠିଆ ଭୁମୁର—କୃଷ୍ଣସିଂହ. ମହାଭାରତ । ] [ ଦ୍ର—ମାଠିଆ ଓ ହାଣ୍ଡି ପ୍ରଭୃତିର ଗୋଲାକାର ତଳଭାଗକୁ ଗାଣ୍ଡି ଓ ମେଲା ବା ଉପରର ପାଖକୁ ମୁହ କହନ୍ତି; ବଡ଼ ଘଟକୁ ମାଠିଆ ଓ ଛୋଟ ଘଟକୁ ଘଡ଼ି କହନ୍ତି । ] ପ୍ରାଦେ. ( ସିଂହଭୂମ ) ବି—ଛୋଟ ଓ ବଡ଼ ମାଟିର ଘଟ—Small or big earthen jar.
[ ଦ୍ର—ଛୋଟ ମାଟ ଘଡ଼ିକୁ ମଧ୍ୟ ସିଂହଭୂମରେ ମାଠିଆ କହନ୍ତି । ]

ମାଠି(ଠେ)ଣି—ଦେ. ବି—୧ । ମାଠଣ ( ଦେଖ )—1. Māṭhaṇa
Māṭhi(ṭhe)ṇi ( See ). ୨ । ପଲସ୍ତରା ହୋଇଥିବା ଚୂନ
ମାଠନ **चिकनाहट; पलस्तर** ଉପରେ କରଣୀ ଘଷି କରାଯିବା ପାଲିସ୍—2. Polish made on a plaster by repeated rubbings with the mason's trowel. ୩ । କାନ୍ଥ ବା ଚଟାଣ ଉପରେ ଚୂନ ବା ସିମେଣ୍ଟର ପଲସ୍ତରା—3. Plastering of a wall or floor with lime or cement.

ମାଠି(ଠେ)ଣି ଚୂନ—ଦେ. ବି—ଲୁଗାରେ ଛଣା ହୋଇ କାନ୍ଥ ଆଦିକୁ
Māṭhi(ṭhe)ṇi chūna ମାଠେଣି କରିବା କାମରେ ବ୍ୟବହୃତ
ମାଠନ ଚୁନ **पलस्तरका चूना** ଚୂନ—Sifted lime-paste used in polishing floors and walls. [ ଦ୍ର—ପୂର୍ବେ ସାଧାରଣରେ ସିମେଣ୍ଟର ବ୍ୟବହାର ଚଳୁ ନ ଥିବା କାଳରେ ପଥରଚୂନକୁ ବାଟି ଛାଣି କନାରେ ଛାଣି ସେହି ସୂକ୍ଷ୍ମ ଲେପଦ୍ୱାରା ମାଠିଣି କରାଯାଉଥିଲା । ]

ମାଠିବା—ଦେ. କ୍ରି ( ସ. ମୃଜ ଧାତୁରୁ ଉତ୍ପନ୍ନ ମୃଷ୍ଟ; ତୁଳ. ପ୍ରା. ମଟ୍ଠ )—
Māṭhibā ୧ । କୌଣସି ବସ୍ତୁକୁ ଘଷି କରି ମସୃଣ କରିବା—
ମାଠା **मठोरना** 1. To polish a thing by repeated
(ମାଠେଇବା—ଅନ୍ୟରୂପ) rubbing [ଦ୍ର--କୋଠାର ତଳରେ ବା
[ମଠା(ଠେ)ଇବା—ଣିଜନ୍ତରୂପ] କାନ୍ଥରେ ଚୂନ ପଲସ୍ତରା କରି ତାକୁ କରଣୀର ପଛଅଡ଼େ ନ ମାଠିଲେ ତାହା ମସୃଣ ହୁଏ ନାହିଁ । ହାଣ୍ଡି ମାଠିଥିଲେ କୁମ୍ଭାର ଗଢ଼ି ସାରିବା ପରେ ତାକୁ ମାଠେ । ଖଡ଼ୁଗ୍ରମାନେ କଂସା ଓ ଗୁଷ ଖଡ଼ୁକୁ ମାଠି ଚକ୍କଣ କରନ୍ତି । ବର୍ଣ୍ଣାଥମାନେ ଅଳଙ୍କାରକୁ ମାଠପଥରଦ୍ୱାରା ମାଠି କରି ଚକ୍କଣ କରନ୍ତି । ] ୨ । ( ଦେହରେ ତେଲାଦି ) ଚକ୍କଣ କରି ବୋଳିବା; ମାଖିବା—2. To anoint ( oil
ମାଖା **लेपना** etc ).

ମାଠି ହେବା—ଦେ. କ୍ରି—ନିଜ ଦେହରେ ତେଲ, ହଳଦି ଆଦି ଉତ୍ତମ
Māṭhi hebā ରୂପେ ବୋଳି ହେବା—To anoint ( oil
(ମାଠିମୁଠି ହେବା—ଅନ୍ୟରୂପ) etc ) on one's body. (ଉ—ହଳଦି ତେଲ ବୋଳି ହୋଇବ ମାଠି ଅଙ୍ଗେ—ପୀତାମ୍ବର.
ମାଖା ନୃସିଂହପୁରାଣ ।)

ମାଠୀ—ସ. ବି—ସାଞ୍ଜୁ—
Māṭhī An armour; mail ( Apte ).

ମାଠୁଆ—ଦେ. ବିଣ. ପୁଂ ( ସ. ମନ୍ଥର )—୧ । ମଠୁଆ; ଯେ ଅତ୍ୟନ୍ତ
Māṭhuā ବିଳମ୍ବରେ କୌଣସି କାର୍ଯ୍ୟ କରେ—1. One who
ଆଲସେ takes much time to finish a work; lazy
**मट्ठर; मंदा** tardy, ୨ । ଯେ ବିଳମ୍ବରେ, କିନ୍ତୁ ଭଲରି କରି
(ମାଠେ[ଠୋ]ଇ—ସ୍ତ୍ରୀ) କୌଣସି କାର୍ଯ୍ୟ କରେ—2. One who does any work thoroughly but slowly. ୩ । (ସମ୍ପୃଷ୍ଟ) ଯେ ଆପଣା ଦେହରେ ଚକ୍କଣ କରି ତେଲ ହଳଦୀ ଲଗାଇ ହୁଏ—3. One who takes care to smear his body thoroughly with oil and turmeric.

ମାଠୁଣି—ଦେ. ବି. ସ୍ତ୍ରୀ ( ବଣିଆ ଶବ୍ଦ )—କ୍ଷୁଦ୍ର ହାତୁଡ଼ି—Small
Māṭhuṇi ছোট হাতড়ী **हथौडी, मठरना** hammer.

ମାଠୁଲି—ପ୍ରାଦେ. ( ସମ୍ବଲପୁର ) ବି—କୁମ୍ଭ; ମାଠିଆ—
Māṭhul Pitcher.

ମାଡ଼ପିଟ୍—ଦେ. ବି. ( ସହଚର ଶବ୍ଦ )—ମାରପିଟ୍ ( ଦେଖ )
Mārd-piṭ মারপিট **मरपीट** Mār-piṭ ( See )

ମାଡ଼ବାର—ଦେ. ବି. ( ସ. ମରୁରୁ ମାରବ=ମରୁ ଦେଶ )—ରାଜ-
Mārdbār ପୁତାନାର ଉତ୍ତର ପଶ୍ଚିମାଂଶ ମରୁ ଦେଶ; ମାରବାଡ଼
ମାଡ଼ୁଆର } ଅନ୍ୟରୂପ ଦେଶ; ଜୟପୁର, ବିକାନୀର, ମେବାର
ମାର୍ବାଡ଼ ଯୋଧପୁର ଆଦି ରାଜ୍ୟ; ମାରୁଆଡ଼
ମାରୁଆଡ଼(ର) ରାଜ—The states of Joy-
মাড়োয়ার pur, Bikaneer, Jodhpur, Mewar in
**मारवाड** Rajputana (N. W. India).
[ ଦ୍ର—ଏ ଅଞ୍ଚଳ ମାରବାଡ଼ୀମାନଙ୍କର ବାସସ୍ଥାନ । ବାହାବଲପୁର, ଜସଲମିର, ଯୋଧପୁର, ବିକାନୀର ଆଦି ଅଞ୍ଚଳ ମରୁମୟ ଅଟେ । ]

ମାଡ଼ବାରି—ଦେ. ବି—୧ । ମାରୁବାଡ଼; ମାରବାଡ଼ ଦେଶବାସୀ; ରାଜ-
Mārd-bāri ପୁତନା ରାଜ୍ୟର ଜୟପୁର ଅଞ୍ଚଳବାସୀ—1. An
মারুআরি, মাড়োয়ারি inhabitant of Marwar in
**मारवाडी** Rajputna. ୨ । (ଲକ୍ଷଣାର୍ଥ) ବ୍ୟବସାୟ ବୁଦ୍ଧିଥିବା
( ମାଡ଼ୁଆଲି, ମାରବାଡ଼ି, ମାରୁଆଡ଼ି—ଅନ୍ୟରୂପ ) ବ୍ୟକ୍ତି—2. (figurative) A person with business instincts.

ମାଡ଼—ସ. ବି—୧ । ବନ୍ୟବୃକ୍ଷ ବିଶେଷ-1. A species of wild
Mārḍa tree. (Apte) ୨ । ପରିମାଣ; ଓଜନ—2. Weight;
মারমারি **मार** measure. ଦେ. ବି—(ସ. ମୃଦ୍ ଧାତୁ=ମର୍ଦ୍ଦନ; ମୃ ଧାତୁ ଣିଚ ମାର ଧାତୁ)—୧ । ପ୍ରହାର; ପିଟା; କ୍ଷେପ; ତାଡ଼ନ; ବାଡ଼ଆ—1. Beating; assault. [ଦ୍ର—ହାତ, ଗୋଡ଼ ଆଦି ଅଙ୍ଗଦ୍ୱାରା ବିଭିନ୍ନ ପ୍ରହାରର ଭିନ୍ନ ଭିନ୍ନ ନାମ ଅଛି ଯଥା, ମୁଣ୍ଡଦ୍ୱାରା ମାଡ଼—ମୁଣ୍ଡିଆ; ଦାନ୍ତଦ୍ୱାରା—କାମୁଡ଼ା; ହାତଦ୍ୱାରା ମାଡ଼—ବିଧା, ଗୁସୁଡ଼ା (ଢାକୁଡ଼ା), ମୁଷ୍ଟି, ମୁଥ, ଖୁନ୍ଦା, ଲେଉଡ଼ା, କହୁଣିଆ, ହାରୁକା, ଛଞ୍ଚିଆ, ଗଦମ, ଗଳଥା, ଧକ୍କା, ଠେଲି, ପେଲି, ଚିହ୍ନା, ଲେଉଡ଼ା, ବାହୁଛଟା, ଶାଙ୍କୋଳ ବା କଠା ପକାଇବା, ଚପା, ଭୁଣ୍ଡିଆ,ଘୋଷରା,ଓଟରା,କଚୁଡ଼ିବା, ତଳେ ପକାଇବା, ପାଣି ଛାଟା, ପାଣି ଉଡ଼ା, ଆଙ୍ଗୁଠିଦ୍ୱାରା-ଚିମୁଟା, ନାକମୋଡ଼ା, କାନ ମୋଡ଼ା, ଥୋପି, ଟେଙ୍ଗା, ଚ(ଚ)ମୁଟା, ଠଣା, ଚୁଟିଆ, ଅଙ୍ଗୁଠି ଗେଣ୍ଡା, ମୁଣ୍ଡ ଟଣା, ଚୁଟି ଚିହ୍ନା, ଥୋଡ ଟଣା, ଗାଲ ଚୋଡ଼ା; ଅଙ୍ଗୁଳେଇବା; ନଖଦ୍ୱାରା—ରାମ୍ପୁଡ଼ା; ଗୋଡ଼ଦ୍ୱାରା—ଗୋଇଠା, ଆଣ୍ଠୁଆ, ଗୋଇ, ଚକଟା, ଦଳାମଳା, ଗୋଡ଼ଦ୍ୱାରା ପେଷ । ଅନ୍ୟ-ବସ୍ତୁଦ୍ୱାରା ମାଡ଼—ଜୋତା,ଖଡ଼ମ ବା କଠଉମାଡ଼, ବେତ, କାଣ୍ଟିଲ ବେତ, ବାଡ଼ି, ଠୋକାବାଡ଼ା, ଠେଙ୍ଗା, ଠେଙ୍ଗଣି,

ଛଟ, ପାଞ୍ଚଣ, ଡାଙ୍ଗ, ଖୋବା, କୁନ୍ଦା, କେଞ୍ଚା, ଭୂଷା, ଗୋବା, ପିଟା; ଚଟକା ଓ ବୋଲଥ ଫୋପାଡ଼ିବା, ବାଟୁଳ ଖଡ଼ା; କନ୍ଟୁର କୁରାଢ଼ି ଆଦିର ବେଣ୍ଟ, କୁରାଢ଼ି ଆଦିର ପଖା, ଲୁଲ୍ ବାଡ଼ି, ବନ୍ଧୁକ, ଧନୁ, କାଣ୍ଡ, ଗଦା, ମୁଗୁର, ଖଣ୍ଡା, କଟୁରି, କୁରାଢ଼ି, ଠେଙ୍ଗା ଆଦି ଅସ୍ତ୍ର ଶସ୍ତ୍ରଦ୍ୱାରା ମାଡ଼; ତାଛଲ୍ୟ ଜନାରେ ଚଡ଼ୁ, ଚଉଁ ଦେବା ବା ଲଛିବା । ମୁନିଆ ଶସ୍ତ୍ରଦ୍ୱାରା ଭୁଷାଇବା, ଫୋଡ଼ିବା,କେଞ୍ଚିବା;ପଶୁଆଦିଙ୍କ ଶିଙ୍ଗଦ୍ୱାରା-ହାଣିବା; ଗୋଡ଼ଦ୍ୱାରା—ନାଡ, ଜାଡ଼ିଲ୍ନା ନାଡ । ପକ୍ଷୀଆଦିଙ୍କ ଥଣ୍ଟ ଓ ପଞ୍ଝାଦ୍ୱାରା ଅଘାତ । ଏହିପରି ନାନା ପ୍ରକାରରେ ନାନା ଉପାୟରେ ମାଡ଼ ଦିଆଯାଏ । ସଂସ୍କୃତ ଶ୍ଳୋକାନୁକରଣରେ ରଚିତ ନିମ୍ନଲିଖିତ ଓ ହାସ୍ୟୋଦ୍ଦୀପକ ଓଡ଼ିଆ ଶ୍ଳୋକରୁ କେତେଗୁଡ଼ିଏ ମାଡ଼ର ନାମ ଜଣା ପଡ଼େ :—

କେଶାକର୍ଷଣ,ହାତୁକା,ଗଡ଼ଗଡ଼ା, ଗୃପୋଡ଼, ଚଟା,ଚଡ଼, କେଲଡ଼ା, ନାକମୋଡ଼ା, କହୁଣି,କୋରଡ଼ା, ପାଶୋଇ,ଠେଙ୍ଗା ହଣ୍ଡ । ଝିଙ୍କା, ବାହୁଛଟା, ସମର୍ଥ ଗୋଇଠା, ଠେଙ୍ଗା, ମୁଷ୍ଟି, ଠେଙ୍ଗି ବା; ଖାଙ୍କୋଳ, ତଉକାଣ୍ଡ, ଗୃବୁକ,ଡାଙ୍ଗ,ବେଏପ୍ରହାର ସ୍ତୁତଃ । ମାଡ଼କୁ ମହାଦେବ ଡରନ୍ତି । ଇତି । ଏହାର ଅର୍ଥ ଏହି ଯେ—ଅତି ଷମତାଶାଳୀ ଲୋକ ମଧ୍ୟ ପ୍ରହାରକୁ ଭୟ କରନ୍ତି ।] ୨ । ଅଘାତ—2. Stroke. [ଉ—ପଥର ମାଡ଼େ ଯେ ଦେଖିଲ ଯମପୁରୀ । କୃଷ୍ଣସିଂହ. ମହାଭାରତ. ବନ]। ୩ । ମାରଣ; ହତ୍ୟା—3. Slaughter. ୪ । କୌଣସି କାର୍ଯ୍ୟର ହଣ୍ଡା ବା ତୋଡ଼—4. A paroxysm; a fit; a heat.

ମାଡ଼ ଖାଇବା—ଦେ. କ୍ରି—୧ । ଅନ୍ୟ ଦ୍ୱାରା ପ୍ରହୃତ ହେବା—1. To
Mārḍa khāibā be beaten or assaulted.
(ମାଡ଼ ପାଇବା—ଅନ୍ୟରୂପ) (ଉ—ଲୁହା ଲାଗି ଅଗ୍ନି ଦେବତା
মার খাওয়া ଖାଇଲେ—ଇତି ) । ୨ । ଆହତ ହେବା—
मारखाना 2. To be wounded or struck. ୩ ।
(ଜାହାଜଆଦି ଭଳି) ଜୋରରେ ବାଜିବା; ଧକ୍କା ଖାଇବା—3. To collide. (ଉ—ତେର ତେର ଜାହାଜ ମାଡ଼ ଖାଇଛନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ମାଡ଼ ଖାଇଯିବା—ଦେ. କ୍ରି—୧ । ପ୍ରହୃତ ହୋଇ ମୃତ ହେବା; ହତ
Mārḍa khāijibā ହେବା —1. To be killed. ୨ ।
মার খেয়ে যাওয়া ସମ୍ପୂର୍ଣ୍ଣ ରୂପେ ବିନଷ୍ଟ ହେବା—2. To be
मार खाजाना destroyed or annihilated. (ଯଥା—ଏ ନଇ ବଢ଼ିରେ ମୋ ବିଲର ଚଳଗୁଡ଼ିକ ବିବାକ ମାଡ଼ ଖାଇଗଲା ।) ୩ । ପ୍ରହୃତ ହୋଇ ପଳାଇଯିବା—3. To flee away after being beaten. ୪ । ପ୍ରହାର ପାଇବା—4. To be beaten.

ମାଡ଼ ଖିଆ—ଦେ. ବିଣ. ପୁଂ—ମାଡ଼ୁଆ (ବ୍ୟକ୍ତି)—One who is
Mārḍa khiā beaten constantly. ବି—ମାଡ଼ ଖାଇବା
(ମାଡ଼ ଖାଇ—ସ୍ତ୍ରୀ) କର୍ମ—The act of being beaten.
মার খেগো, মার খাওয়া (ଉ—ମୋ ମାଡ଼ଖିଆ ଦେଖି ଦୁଃଖେ
मारखिया ଭୁଜ ହେଲେ । କୃଷ୍ଣସିଂହ. ମହାଭାରତ ବିରାଟ ।)
মার খাওয়া मारखाना

ମାଡ଼ ଖୁଆଇବା—ଦେ. କ୍ରି ( ମାଡ଼ ଖାଇବାର ପ୍ରଯୋଜକ ରୂପ )—
Mārḍa khuāibā କୌଣସି ବ୍ୟକ୍ତିକୁ ପ୍ରହାର ଦେବା ପାଇଁ
ମାଡ଼ ଖାଇବା } ଅନ୍ୟରୂପ ଯାହାଙ୍କର ଅଧିକାର ବା ପ୍ରଭୁତ୍ୱ
ମାଡ଼ ମରା(ରେ)ଇବା } ଅଛି,ସେହି ବ୍ୟକ୍ତି ବିରୁଦ୍ଧରେ ଉକ୍ତ
মার খাওয়ান ପ୍ରଭୁଙ୍କ, ଶିକ୍ଷକଙ୍କ ବା ହାକିମଙ୍କ ଆଗରେ ଫେରାଦ
मार खिलाना ହୋଇ ପ୍ରଭୁ ଆଦିଙ୍କ ଦ୍ୱାରା ଉକ୍ତ ବ୍ୟକ୍ତିକୁ ପ୍ରହୃତ କରାଇବା—To cause a person to be beaten by his master or by a person in authority by complaining against him.

ମାଡ଼ ଚୁଳିଆ—ଦେ. ବି—କ୍ଷୁଦ୍ର ବନ୍ୟବୃକ୍ଷ ବିଶେଷ—A species of
Mārḍa chuḻiā small tree whose flowers are yellowish white (Haines). [ଦ୍ର—ଏହାର ଫୁଲ ହଳଦିଆ ମିଶା ଧଳା ।]

ମାଡ଼ନ—ଦେ. ବି ( ସଂ. ମର୍ଦ୍ଦନ; ମାରଣ )—୧ । ମାଡିବା; ଚପିବା—
Mārḍana 1. Pressing. ୨ । ମାରଣ—2. Killing;
মারণ मारण slaughter. ୩ । (ସଂ. ମାରଣ) ମାଡ଼ିକରି ମାରି ପକାଇବା ଯୁଦ୍ଧାସ୍ତ୍ର—3. A weapon of war by which a person is crushed to death.
(ଉ—ଅକାଳ ମହାକାଳ ବିକାଳ ବଜ୍ରବାଣ, ଉଡ଼ାଣ ବୁଡ଼ାଣ ମିଶି ତାଡ଼ଣ ମାଡ଼ଣ । ପୀତାମ୍ବର. ନୃସିଂହପୁରାଣ ।)

ମାଡ଼ ଦ(ଦେ)ବା—ଦେ. କ୍ରି—ପ୍ରହାର କରିବା—
Mārḍa da(de)bā To deal blows; to beat.
মার দেওয়া मार देना, मारना
[ମାଡ଼ ଚଢ଼ା(ଢ଼େ)ଇବା, ମାଡ଼ ମାରିବା, ମାଡ଼ ବସା(ସେ)ଇବା, ମାଡ଼ ଲଦିବା, ମାଡ଼ ଲଗା(ଗେ)ଇବା—ଅନ୍ୟରୂପ]

ମାଡ଼ ପିଠିଆ—ଦେ. ବିଣ—ମାଡ଼ୁଆ ( ଦେଖ )
Mārḍa piṭhiā Mārḍuā ( See )
কীলকুটো, মারখেগো मारुआ

ମାଡ଼ ବସିବା—ଦେ. ବି—(କୌଣସି ବ୍ୟକ୍ତି ଉପରେ) ପ୍ରହାର ବୃଷ୍ଟି
Mārḍa basibā ହେବା—Being beaten or given
মারবসা मार बैठना blows; being struck.
[ମାଡ଼ ବାଜିବା, ମାଡ଼ ଚଳିବା, ମାଡ଼ ଲଗା(ଦା)ହେବା—ଅନ୍ୟରୂପ]

ମାଡ଼ ବୃଷ୍ଟି—ଦେ, ବି—ଅତ୍ୟଧିକ ଉପର୍ଯ୍ୟୁପରି ବୃଷ୍ଟି ପରି ପ୍ରହାର—
Mārḍa bṛushṭi Dealing of blows, one over the
মার বৃষ্টি मार वृष्टि other like a torrent of rain.

ମାଡ଼ ମରାମରି—ଦେ. ବି—ଅନ୍ୟୋନ୍ୟରେ ପ୍ରହାର—
Mārḍa marāmari Mutual beating.
মারামারি मारामारि

ମାଡ଼ ମୁଲା(ଲେ)ଇବା—ଦେ. କ୍ରି—ମାଡ଼ ଖାଇବାର ଯୋଗ୍ୟ କାର୍ଯ୍ୟ
Mārḍa mulā(le)ibā କରିବା—To do something to
কীল কীনা मार मोलाना deserve a beating.
(ମାଡ଼ କିଣିବା, ମାଡ଼କୁ ନିମନ୍ତ୍ରଣ କରିବା—ଅନ୍ୟରୂପ)

ମାଡ଼ରେ କୁଆଁକୁଆ ଉଡ଼ିଯିବା—ଦେ. ବ—ମାଡ଼ ବୃଷ୍ଟି ହେବା—
Mārdre kuāchhuā urdijibā Dealing of repeated blows like torrents; a shower of blows.
[ମାଡ଼ରେ ଧର୍ପ(ପୁ)ଙ୍ଗା ଉଡ଼ିଯିବା—ଅନ୍ୟରୂପ]
মারের বৃষ্টি হওয়া, কীল বৃষ্টি, নিঘাত মার
मारसे धुर्पुज्जा उड़जाना
[ ଉ—ଏହାର ତାତ୍ପର୍ଯ୍ୟ ଏହି ଯେ ଏପରି ଭୟଙ୍କର ପ୍ରହାର ଯେ ତହିଁର ଶବ୍ଦରେ ଭୀତ ହୋଇ କୁଆ ବସାରେ ଥିବା କୁଆଛୁଆମାନେ ବସାରୁ ଉଡ଼ି ପଳାଇବେ ।]

ମାଡ଼ି—ସଂ. ବି—ରାଜପ୍ରାସାଦ—A palace (Apte). ଦେ. ବି.
Mārdi (ସଂ. ମାଢ଼ୀ=ଦନ୍ତବେଷ୍ଟ)—୧ । ମାଢ଼ି; ଦନ୍ତବେଷ୍ଟ; ଦାନ୍ତର ମୂଳ—1. The gum. ୨ । (ସଂ. ମୃଦ୍ ଧାତୁ) ଲମ୍ବା କାଠ ଥୁଇ ରଖିବା ପାଇଁ ପ୍ରଥମେ ଭୂଇଁ ଉପରେ ଅଡ଼ବାଗରେ ଯେଉଁ ଛୋଟ କାଠ ଦୁଇଖଣ୍ଡ ରଖାଯାଏ—2. Wedges or cross-pieces put on the ground over which are laid long timbers etc. ୩ । ଶ୍ମଶାନରେ ଶବଦାହ କରିବାପାଇଁ ପ୍ରଥମେ ଯେଉଁ କାଠର ବଡ଼ ଗଡ଼ ଦୁଇଟା ରଖାଯାଇ ତା ଉପରେ ସୂକ୍ଷ୍ମ କାଠ ସଜ୍ଜାଯାଏ—3. Two big trunks laid on the ground over which smaller logs are put crosswise for cremation. ୪ । ମୁର୍ଦାରକୁ ଚିତା ଉପରେ ମୁହଁ ମଡ଼ାଇ ଶୁଆଇ ଦେବା ପରେ କାଳେ ଅଗ୍ନି ଲାଗିବା ପରେ ତାହାର ମୁଣ୍ଡ ଉପରଆଡ଼କୁ ଛିଡ଼ା ହୋଇ ଉଠିଯିବ, ଏହି ଆଶଙ୍କାରେ ତାହାର ବେକ ଉପରେ କାଠର ଯେଉଁ ବଡ଼ ଗଡ଼ଟାଏ ମଡ଼ାଇ ଦିଆଯାଏ; ବେକମାଡ଼ିକାଠ—4. A big log of wood put over the neck of a corpse when it is laid on the funeral pyre with the face towards the ground. ୫ । ପଥର ଆଦି କୌଣସି ଖୁବ୍ ଭାରି ପଦାର୍ଥକୁ ଭୂମିରେ ଗଡ଼ାଇ ନେବାକୁ ହେଲେ ଭୂମି ଉପରେ ଯେଉଁ ଲମ୍ବ କାଠ ବା ବାଉଁଶ ପକାଯାଏ ଓ ଯାହା ଉପରେ ଉକ୍ତ ଭାରି ଜିନିଷକୁ ସହଜରେ ଗଡ଼ାଇ ନିଆଯାଇ ପାରେ—5. A long lever or rod which is put on the ground over which a very heavy stone is rolled. ଦେ. କ୍ରି. ବିଣ—ଅବୋର; ଅଧିକାର କରି—Occupying. (ଉ—ବର୍ଷିଲେ ସଭି ମାଡ଼ି କରେ ଧରି ନାରା କୃଷ୍ଣସିଂହ. ମହାଭାରତ ଆଦି ।)
মাড়ী मसकूर तरटन
সাইন साइन
জমিয়ে जमाकर

ମାଡ଼ିଆ—ପ୍ରାଦେ. ( ବସ୍ତର ) ବି—କୃଷକ ଜାତିବିଶେଷ—Name of a peasant class in Bastar.
Mārdiā

ମାଡ଼ି ଆସିବା—ଦେ. କ୍ରି—୧ । ପ୍ରବଳ ବେଗରେ ଅଗ୍ରସର ହେବା—
Mārdi āsibā 1. To advance swiftly and violently.
বেড়ে আসা, ঝোঁকে আসা, হেনে আসা
जोरसे आना
(ଉ—ପ୍ରବଳ ବେଗରେ, ଘୋର ବୃଷ୍ଟିକାଳ, ଆସିଲା ବର୍ଷାରେ ମାଡ଼ି । ନନ୍ଦକିଶୋର. କଳ୍ପଲତା ) [ପ୍ରୟୋଗ—ନଈବଢ଼ି ମାଡ଼ି ଆସୁଛି; ପର ଘୋଡାର ଜାଆଁ ମାଡ଼ି ଆସୁଛି, ବର୍ଷା ମାଡ଼ି ଆସୁଛି, ଶତ୍ରୁ ସୈନ୍ୟ ମାଡ଼ି ଆସୁଛନ୍ତି ।] ୨ । ସର୍ବତ୍ର ବ୍ୟାପିବା—2. To overspread; to be diffused. (ଉ—ଧୂମାକାରେ ଦୂରେ ପର୍ବତର ଛାଇ, ମାଡ଼ି ଆସୁଅଛି ଜଳସ୍ଥଳ ଛାଇ । ରାଧାନାଥ. ଚନ୍ଦ୍ରଭାଗା ।) ୩ । ବିଛଣା ଆଦିରେ ବା କୌଣସି ସ୍ଥାନରେ କ୍ଷଣମାତ୍ର ପାଦ ଦେଇ ସେଠାରୁ ଚାଲି ଆସିବା—3. To come away from a place or a bed shortly after stepping on it. (ଯଥା—ବେଦୀକର୍ମ ସରୁ ସରୁ ରାତି ଭୋର ହୋଇ ଯିବାରୁ ବରକନ୍ୟା ମାତ୍ର ମଟୁକସଯ୍ୟା ମାଡ଼ି ଆସିଲେ )
মেড়ে আসা
माडकर आना

ମାଡ଼ି କାଠ—ଦେ. ବି—ମାଡ଼ି ୨।୩।୪ ( ଦେଖ )—Mārdi 2,3 4 ( See)
Mārdi kātha
साइन

ମାଡ଼ି ଦେବା—ଦେ. କ୍ରି ( ସଂ. ମୃଦ ଧାତୁ )—୧ । କୌଣସି ବସ୍ତୁକୁ ବା ବ୍ୟକ୍ତିକୁ ଭୂମିତଳକୁ ବା ପାଣି ଭିତରକୁ ଚାପିଦେବା—1. To press a person or thing down to the ground or into the water. ୨ । ( ମୁହଁକୁ ) ତଳକୁ ପୋତିବା—2. To droop down one's head. ୩ । ବଳପୂର୍ବକ ପୂରାଇବା; ଭର୍ତ୍ତି କରି ଦେବା; ଗୁଞ୍ଜିବା—3. To thrust forcibly; to ram. [ ଉ—ସେ କଣ୍ଟା ଋଷିଙ୍କ ଅକ୍ଷିରେ ମାଡ଼ି ଦେଲା । କୃଷ୍ଣସିଂହ. ମହାଭାରତ, ବନ । ] ୪ । କୌଣସି ଦ୍ରବ୍ୟକୁ ଅନ୍ୟ ବଡ଼ ଦ୍ରବ୍ୟ ମଧ୍ୟରେ ପୂରାଇ ଲୁଚାଇବା—4. To conceal a thing by putting it inside a bigger thing. [ ଉ—ଦୈତ୍ୟେ ଯେ ବେଦକୁ ହରିଲେ, ନେଇ ସମୁଦ୍ରେ ମାଡ଼ି ଦେଲେ । ଜଗନ୍ନାଥ. ଭାଗବତ । ]
Mārdi debā
চাপান घुसाना নীচুকরা मारना জোরে ঢুকান माडदेना লুকান, লুকানো लुकाना

ମାଡ଼ି ପକା(କେ)ଇବା—ଦେ. କ୍ରି—ଅକସ୍ମାତ୍ ବା ଅଜାଣତରେ କୌଣସି ବସ୍ତୁ ଉପରେ ପାଦ ପକାଇ ଦେବା—To tread upon a thing unwares. ( ଯଥା—ମୁଁ ବାଟରେ ଯାଉଁ ଯାଉଁ ଲଣ୍ଡାଏ ଗୋବର ମାଡ଼ି ପକାଇଲି । )
Mārdi pakā(ke)ibā
মাড়া माडदेना

ମାଡ଼ି ପଡ଼ିବା—ଦେ. କ୍ରି—୧ । ଉପରୁ କିଏ ତଳକୁ ଆପଣାକୁ ଚାପିବା ପରି ଜଣାଯିବା—1. To feel the sensation of being pressed down from above. [ ଉ—ତାହା ଦେଖି ଅସୁର ଜ୍ଞାନ ଗଲା ବୁଡ଼ି, ପଡ଼ିଲା କିବା ମହାଗିରି ମୁଣ୍ଡେ ମାଡ଼ି । କୃଷ୍ଣସିଂହ, ମହାଭାରତ. ଆଦି । ] ୨ । ଅସ୍ୱସ୍ତିଥିବା ବୋଧ ହେବା; ବାଧିବା—2. To produce an uneasy or awkward sensation in one's mind. ( ଯଥା—ସାଥୀକୁ
Mārdi pardibā
চেপেপড়া जबर मालुमहोना; गीरपडना
খারাপলাগা बुरालगना

ମୋର ତଳେ ଠିଆ ହେଲେ, ମୁଁ ମସିଣା ଉପରେ ବସିଲି;
ଏ କଥାଟା ମତେ ଭାରି ମାଡ଼ି ପଡ଼ିଲା ।) ୩ । ଗଦା ବା ଜମା
জমা হওয়া ହେବା—3. To gather; to conglomerate.
**जमाहोना** [ଉ—କେସେ ଗୁଣ୍ଡି ଗୁପାତ, ପ୍ରାୟେ ଲୋକ ବହୁତ, ଦେଖୁଁ
ଦେଖୁଁ ମାଡ଼ି ପଡ଼ିଲେ ॥ ଘାନକୃଷ୍ଣ. ରସକଲ୍ଲୋଳ । ]
চাপা ୪ । ଉପରେ ଲଦି ହୋଇ ଚାପି ହେବା—4. To press
**गीरपडना** down (a person or thing) from
above [ ଉ—ପର୍ବତ ନ ପଡ଼ିଲା ମାଡ଼ି, ବୃକ୍ଷ ପଡ଼ିଲା
ତାଙ୍କୁ ଛାଡ଼ି । ଭୂପତି. ପ୍ରେମପଞ୍ଚାମୃତ ।]

**ମାଡ଼ି ବସିବା**—ଦେ. କ୍ରି—୧ । ହଠାତ୍ ଆସି କୌଣସି ବ୍ୟକ୍ତିଙ୍କୁ ବା
**Mārḍi basibā** ଜନ୍ତୁକୁ ଆକ୍ରମଣ କରି ତାଙ୍କୁ ତଳେ ପକାଇ
চেপেবসা ତା ଉପରେ ଚଢ଼ି ବସିବା—1. To grapple;
**मारबैठना** to suddenly pounce upon and lay
ones-self on the body of another; to
overpower a person. ( ଯଥା—ବାଘଟା ଆସି ସେ
চাকা ବାଛୁରିକି ମାଡ଼ି ବସିଲା । ) ୨ । ଘୋଟି ଯିବା—
**ढाँपना; ढकदेना** 2. To over-cloud; to envelop;
to enshroud. ( ଯଥା—ଏ ଫଟୋଗ୍ରାଫ୍‌ରେ ବାବୁଙ୍କ
ମୁହଁ ଉପରେ କଳାଛାଇଟାଏ ମାଡ଼ି ବସିଛି । ) ୩ ।
**हडपलेना** ଯବରଦସ୍ତି କୌଣସି ସ୍ଥାନକୁ ବା ସମ୍ପତ୍ତିକୁ ଅଧିକାର କରିବା-
3. To take forcible possession of a thing
**पचालेना** or place. ୪ । ପରର ପ୍ରାପ୍ୟକୁ ନ ଦେଇ ଅନ୍ୟାୟ ପୂର୍ବକ
ରଖିବା—4. To illegally retain another's
dues. ୫ । କୌଣସି ସ୍ଥାନ ଅଧିକାର କରି ରହିବା—
5. To keep up one's hold or possession over an area. ୬ । ବଳାତ୍କାରରେ
বালাৎকার করা ସ୍ତ୍ରୀକୁ ସଙ୍ଗମ କରିବା—6. To commit rape
**बलजोरी करना** on or outrage a woman.

**ମାଡ଼ିବା**—ଦେ. କ୍ରି ( ସଂ. ମୃଦ୍ ଧାତୁ=ମର୍ଦ୍ଦନ କରିବା; ତୁଳ ପ୍ରା. ମଡ୍ଡ )
**Mārḍibā** —୧ । ( ସକର୍ମକ ) ଉପରୁ ତଳକୁ ଚାପିବା—
(ମଡ଼ାଇବା—ପ୍ରଯୋଜକରୂପ) 1. To press down from
মাড়া, চাপা above. [ ଉ—ଦୁଃଶାସନଙ୍କୁ ମୋ ମାଡ଼ି
**चापना** ବସି ବଳେ, ପିଇଲା ରକ୍ତ ଭୀମ ଚଢ଼ି ବକ୍ଷସ୍ଥଳେ ।
মাড়া, মলা କୃଷ୍ଣସିଂହ. ମହାଭାରତ. ଆଦି । ] ୨ । ମର୍ଦ୍ଦନ
**दलना** କରିବା; ଦଳିବା; ମଳିବା—2. To crush; to
মাড়া bruise. ୩ । ଗୋଡ଼ରେ ଦଳିବା; ଗୋଡ଼ରେ
**माडना** ଚକଟିବା; ପାଦଦ୍ୱାରା ମର୍ଦ୍ଦନ ବା ଦଳନ କରିବା—
3. To crush with the feet; to tread upon.
[ ଉ—ପଦ୍ମ ବଦନୀ, ଗଜମୁକ୍ତା, ବିବେକ ନ କରଣ
ମାଡ଼ି ତା, ଭମିଲେ ଦୈନ୍ୟ ଯେ । ଭଞ୍ଜ. ଲାବଣ୍ୟବତୀ । ]
୪ । ଆକ୍ରମଣାର୍ଥ ଅଗ୍ରସର ହେବା; ଆଗକୁ ଗତି କରିବା—
4. To advance; to set upon; to attack.
**चढाइ करना; धावा करना** [ ଉ—ଏ ସକାଶୁଁ କୁରୁଏ କରି
ସିଂହରଡ଼ି, ଅସୁରନ୍ତି ଅମୂର ଉପରକୁ ମାଡ଼ି । କୃଷ୍ଣସିଂହ.
ମହାଭାରତ. ଦ୍ରୋଣ । ] ୫ । ( ଲତା ) ଲଟାଇବା—
লতান 5. To creep ( said of creepers ). [ ଉ—
**लतडना** ଚହିଁରେ ଲତା ମଧ୍ୟ ବହୁତ ମାଡ଼ିଲା । କୃଷ୍ଣସିଂହ.
অধিকার করা ମହାଭାରତ. ବନ ।] ୬ । ଆପଣାର ସୀମାକୁ ଲଙ୍ଘନ
**दबालेना** କରି ଅନ୍ୟ ବ୍ୟକ୍ତିର ସୀମାକୁ ଅଧିକାର ବା ପ୍ରବେଶ କରିବା-
6. To overtop one's own boundary and
set foot on another's ground;
to encroach upon. ( ଯଥା—ତୋ ବାଡ଼
ମୋ ଜମିକୁ ୪ ହାତ ମାଡ଼ିଅଛି । ) ୭ । ପାଦ
পা দেওয়া ପକାଇବା; ଚାଲିବା; ଗୋଡ଼ ଦେବା; ପ୍ରବେଶ
**माडना** କରିବା—7. To set foot on; to pace; to
walk; to enter. [ ଉ—ଏହିକଥି ମାଡ଼ିବ ଭୂମେ
ସ୍ୱର୍ଗପୁରୀ । କୃଷ୍ଣସିଂହ. ମହାଭାରତ. ବନ । ] ୮ । ଗ୍ରାସ
গ্রাসকরা କରିବା; ସବାକୁ ଘୋଡ଼ାଇ ପକାଇବା; ଘୋଟିବା—8.
**ढाँकना; निगलना** To overcloud; to completely
envelop; to enshroud. ( ଯଥା—ଏଥର
ଚନ୍ଦ୍ରଗ୍ରହଣ ବେଳେ ରାହୁ ଚନ୍ଦ୍ରଙ୍କର ବାରଭାଗ ମାଡ଼ିବ ।)
୯ । (ବୃକ୍ଷର ଡାଳ ବା ଚେର ବା ଜଳ ଆଦି) କୌଣସି
ঘেরা ସ୍ଥାନରେ ବିସ୍ତୃତ ହେବା—9. To spread about
**फैल जाना** (said of a tree or root or water); to
spread over an area. (ଉ—ବରଷା ସମୟେ
ବଢ଼େ ସ୍ରୋତ ସ୍ୱଚ୍ଛ, ମାଡ଼ଇ ସ୍ରୋତ ପ୍ରସର । ନନ୍ଦକିଶୋର.
କର୍ଣ୍ଣରଣୀ ।) ୧୦ । (ଘାଉ ବା ଛଉ ବା ରୋଗ) ଦେହ-
ତମାମ୍ ବିସ୍ତୃତ ହେବା; ବ୍ୟାପିବା—10. To spread
ঘিরা over the body (said of ringworm etc.
**फैलना** to pervade. (ଉ—ତ କହିବ ବାବୁ ମୁଁ ଏ ଅଣ୍ଠା-
ଯାଉକୁ, ଅଣ୍ଠାଯାଉ ମାଡ଼ିଗଲା ପେଟ ତଳକୁ । ସୁଆଙ୍ଗ,
ଗୀତ ।) ୧୧ । (ପୋଷରା, ପରିସ୍ରା, ହସ, ଲାଜ, ଡର ଆଦିର
ବେଗ) ମନୁଷ୍ୟଙ୍କୁ ଅଭିଭୂତ କରିବା; ଅନୁଭୂତ ହେବା—
পাওয়া 11. To attack or overtake a person
**आना** (said of a strong tendency to laugh, to
make water, to ease one's self, to fear,
to feel modest). (ଯଥା—ମତେ ମୂତ ମାଡ଼ିଲାଣି, ହଗ
ମାଡ଼ିଲାଣି, ମଜା କଥା ଶୁଣି ମତେ ହସ ମାଡ଼ୁଛି; ଭୂତର
କାହାଣି ଶୁଣି ମତେ ଡର ମାଡ଼ିଲାଣି, ଦାଣ୍ଡଲୋକଙ୍କୁ ମୁହଁ
ଦେଖାଇବାକୁ ମତେ ଲାଜ ମାଡ଼ୁଛି; ନିଦ ମାଡ଼ିଲାଣି ।)(ଉ-
କୃଷ୍ଣବର୍ଣ୍ଣି ଶେଯେ ନ ମାଡ଼ଇ ନିଦ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି
୧୨ । ବସ୍ତ୍ରାଦିକୁ ଏକ ସ୍ଥାନରେ ଉପର୍ଯ୍ୟୁପରି ଗଦା କରିବା
গাদা করা —12. To heap up clothes etc. promis-
**उपर उपर रखना, टाल करना** cuously or indiscriminately at a place. (ଯଥ—ଓଦା ଲୁଗା ଗୁଡ଼ାକ
ଦିନ ଦିନ ହେଲା ଘର କଣରେ ମାଡ଼ି ହେବାରୁ ଭାଲ ସଡ଼ି
ଗଲେ ।) ୧୩ । ଜୋର୍‌ପୂର୍ବକ ଚାପିବା—13. To
চাপা press tightly. (ଯଥା—ଏ କଲମକୁ ମାଡ଼ିକରି ନ

चापना ଲେଖିଲେ କାଗଜରେ ଅକ୍ଷର ଭଲ ରୂପେ ଦେଖାଯିବ ନାହିଁ ।) ୧୪ । ଛିଦ୍ର ଅଦର ମୁଖ ବନ୍ଦ କରିବା ପାଇଁ ସେ ଛିଦ୍ରରେ ଶିଠା, କନାଖଣ୍ଡ, ଠିପି ଆଦି ବସ୍ତୁ ଭରିବା—
লাগান 14. To thrust (a stopper) into; to push
घुसाना (a cork or gag) to a hole to stop it. (ଯଥା—କଣା ଗାଲରେ ପୁଳାଏ ମଣ୍ଡ ଶିଠା ମାଡ଼ି ଦେଲେ କାମ ଚଳିଯିବ ।) ୧୫ । (ଲକ୍ଷଣାର୍ଥ) କୌଣସି ପ୍ରସ୍ତାବକୁ ବା ଭାବକୁ ଗ୍ରହଣ କରିବା—15. (figurative) To
শুনা अडना accept a proposal; to appreciate an idea. (ଯଥା—ମୁଁ ତାଙ୍କୁ ଡାକ୍ତରୀ ପଢ଼ିବାକୁ ଯେତେ ବୁଝାଇଲି, ସେ ମୋ କଥାକୁ ଆଦୌ ମାଡ଼ିଲେ ନାହିଁ ।) ୧୬ । ମୁହଁକୁ ଭୂମି ଆଡ଼କୁ ନତ
নীচু করা, পুতা କରିବା—16. To hang down (one's
माडना head. (ଯଥା—ସେ ମୁହଁଟାକୁ ତଳକୁ ମାଡ଼ିଛି ।) ୧୭ । (ଚାଲିବା ପାଇଁ) ପାଦରେ (ଜୋତା ବା କଠାଉ)
পরা ସଂଯୁକ୍ତ କରିବା—17. To put on shoes or
पहनना sandals while walking. ୧୮ । ଜୋର୍ ପୂର୍ବକ
ঢুকান घुसेड देना ପୂରାଇବା—18. To thrust with force. ୧୯ । ସ୍ପର୍ଶ କରିବା; ସୀମା ମଧ୍ୟକୁ ଯିବା—19. To
মাড়া touch; to enter into the precincts or
पाँव देना vicinity of. (ଯଥା—ଅଜିକୁ ବରଷେ ହେବ ସେ ଆମ ଦୁଆର ମାଡ଼ୁ ନାହାନ୍ତି; ସେ ମୋ ଘର ମାଡ଼ ନାହିଁ, ମୁଁ ସେ ଅବୁଝାମଣା ରାଜ୍ୟର ଚୌସୀମାକୁ ମାଡ଼ିବି ନାହିଁ ବୋଲି ସଂକଳ୍ପ କରିଛି ।) ୨୦ । ବୁଝିବା; ହୃଦୟଙ୍ଗମ କରିବା—20. To understand; to comprehend. (ଯଥା—ଯେତେ ବୁଝାଇଲେ ସ୍କୁଲମାଷ୍ଟର ବାଳକମାନେ ବୀଜଗଣିତ ସମସ୍ୟାମାନ ମାଡ଼ୁ ନାହାନ୍ତି ।) ୨୧ । ଅଗ୍ରସର ହେବା—21. To progress; to advance. ୨୨ । ଦେହରେ ଦୃଢ଼ତା ସହକାରେ ଗେଞ୍ଜି ଦେବା—22. To poke or push something strongly an another. (ଯଥା—ଦୁଷ୍ଟ ପିଲାଟା ମୋ ଦେହରେ ନିଅଁ ଖୁଣ୍ଟାଟାଏ ମାଡ଼ିବାକୁ ବଢ଼ୁଛି ।) ୨୩ । ମାଡ଼ି ଦେବା (ଦେଖ)—23. Mārdi debā (See) ପ୍ରାଦେ. (ଉତ୍ତର ବାଲେଶ୍ୱର) କ୍ରି—ଲାଗିବା; ବୋଧ ହେବା —To seem; to appear. (ଯଥା—ମତେ ତା କଥା ଭଲ ମାଡ଼ୁଛି ।)

ମାଡ଼ିବା ଦଳିବା—ଦେ. କ୍ରି (ସହଚର) (ସଂ. ମୃଦ ଧାତୁ ଓ ଦଳ ଧାତୁ.)
Mārdibā dalibā ୧ । ଗୋଡ଼ରେ ଚକଟିବା—1. To
(ମାଡ଼ିବା ମକଚିବା—ଅନ୍ୟରୂପ) trample with the feet.
মাড়া, চটকা ୨ । ଗୋଡ଼ ଦ୍ୱାରା ମଳାମଳି କରି ନଷ୍ଟ କରିବା—
माडना पीसना 2. To spoil a thing by trampling
(ମାଡ଼ି ଦଳିଦେବା—ଅନ୍ୟରୂପ) upon it.

ମାଡ଼ି ମକଚି ହୋଇ ରହିବା—ଦେ. କ୍ରି—(ଲକ୍ଷଣାର୍ଥ) ବହୁ କଷ୍ଟକର
Mārdi makachi hoi rahibā ଚେଷ୍ଟା ପରେ ଉପାୟାନ୍ତର
(ମା[କ୍ଷୋ]ଡ଼ି ମୁ[ମା]ଡ଼ି ହୋଇ ରହିବା—ଅନ୍ୟରୂପ) ନ ଦେଖି ଶେଷକୁ
চুপচাপ থাকা ତୁନି ହୋଇ ରହିବା; କର୍ମ ଆଦରି ରହିବା—
मोडमाड होकर रहना (figurative) To keep quiet and be reconciled to one's lot after a good deal of fruitless efforts.

ମାଡ଼ି ମଖାସା—ପ୍ରାଦେ. (ଗଞ୍ଜାମ) ବି—ଜାଗିର—
Mārdi makhāsā Service grant.

ମାଡ଼ି ମାଡ଼ି ଚାଲିବା—ଦେ. କ୍ରି—୧ । ଧୀରେ ଧୀରେ ଅଗ୍ରସର ହେବା—
Mārdi mārdi chālibā 1. To advance slowly.
(ମାଡ଼ି ମାଡ଼ି ଯିବା—ଅନ୍ୟରୂପ) ୨ । ଅଗ୍ରସର ହେବା—2. To
ধীরে ধীরে চলা, পা গুনে চলা advadce. (ଉ—ଜନ୍ମିଥିବା
धीरे धीरे चलना ପୁଣେ ଭୂମିରେ ଥାନ୍ତି ପଡ଼ି, ଏତ ଚଡ଼ବଡ଼େ ପଳାଉଅଛି ମାଡ଼ି ମାଡ଼ି । ପୀତାମ୍ବର. ନୃସିଂହପୁରାଣ ।)

ମାଡ଼ି ମାଲ—ଦେ. ବି—ଚାବୁକ; କୋରଡ଼ା—Whip. (ଉ—ଏହା
Mārdi māla ଶୁଣି କୃଷ୍ଣ ଅର୍ଜୁନ ଶୁକଳ, ଘୋଡ଼ାଙ୍କର ଉପରେ
কোড়া পିଟିଲେ ମାଡ଼ିମାଲ । କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।)
कोडा

ମାଡ଼ି ମୁଡ଼ି ପୂରା(ରେ)ଇବା—ଦେ. କ୍ରି.—କୌଣସି ସଙ୍କୀର୍ଣ୍ଣ ଆଧାରରେ
Mārdi murdi pūrā(re)ibā ବେଶି ପରିମାଣର ଜିନିଷ
(ମାଡ଼ିମୁଡ଼ି ଭର୍ତ୍ତି କରିବା—ଅନ୍ୟରୂପ) ଜୋରପୂର୍ବକ ଭର୍ତ୍ତି କରିବା
মেড়ে মুড়ে ঢোকানো To fill up a receptacle by pres-
माड मुड कर घुसाना sing or squeezing things into it.

ମାଡ଼ି ଯିବା—ଦେ. କ୍ରି—୧ । ବିସ୍ତାରିତ ହେବା—1. To spread.
Mārdi jibā ୨ । ବୃଦ୍ଧି ପାଇବା—2. (number of chil-
বেড়ে যাওয়া बढना dren) To be on the increase.
[ଉ—ଭାଇ ! ସେ ବଡ଼ମ୍ୱନା କେତେ ପୁତ୍ର କନ୍ୟା; ମାଡ଼ିଗଲେ ବଡ଼ି ପର କେ କରେ ମନା । ଭକ୍ତାସ୍. ଗୀତଲହରୀ ।]
୩ । ଚାଲିଯିବା—3. To walk. (ଯଥା—ଏଇ ବାଟେ ମାଡ଼ି ଯା ହୋ ।) ୪ । ବ୍ୟାପି ଯିବା—4. To overspread; to be diffused.

ମାଡ଼ି ରହିବା—ଦେ. କ୍ରି—୧ । ଆଚ୍ଛାଦିତ କରି ରହିବା; ଆବରଣ
Mārdi rahibā କରିବା; ଘୋଡ଼ାଇବା—1. To envelop;
অধিকার করে থাকা to overcloud. ୨ । ସ୍ଥାୟୀ ଭାବରେ
माड़ करके रहना ଅଧିକାର କରିବା—2. To possess; to accupy permanently. [ଉ—ଗୋପସୁତଙ୍କ ଛାଡ଼ କହ, ଏ ବନଭୂଇଁ ମାଡ଼ି ରହ । ଭୂପତି. ପ୍ରେମପଞ୍ଚାମୃତ ।] ୩ । ସ୍ଥାନ ଅଧିକାର କରିବା—3. To occupy a space. [ଉ—ନବଯୁଣ ମାଡ଼ି ରହିଛି ତାର ଥାଟ । ସାରଳା ମହାଭାରତ ।]

ମାଡ଼ୁ—ଦେ. ବ—(ସ. ମଣ୍ଡ)—କଞ୍ଚା ଆମ୍ବକୁ ଚିର ଅଗୁର ବା ଅଡ଼ଙ୍ଗା Mārdu କରିବା ପାଇଁ ତହିଁ ମଧ୍ୟରେ ଭରଣ କରିବା ମସଲାଗୁଣ୍ଡା আচারের মসলা (ନନ୍ଦେ)—Condiment-powder put अचारकी मसाला inside split mangoes to prepare pickle.

ମାଡ଼ୁଆ—ଦେ. ବିଣ. ପୁଂ—୧ । ଯେ ପରଠାରୁ ମାଡ଼ ଖାଇବାରେ Mārdua ଅଭ୍ୟସ୍ତ—1. Habituated to be beaten মারখেগো मारखा by others. ୨ । ପ୍ରହାର ଖାଇବାର ଯୋଗ୍ୟ—2. Deserving to be thrashed. [ଯଥା—ସେ ଟୋକାଏ ଭାରି ମାଡ଼ୁଆ ।] ବ—୧ । ଅନ୍ୟଠାରୁ ମାଡ଼ ଖାଇଥିବା ବ୍ୟକ୍ତି—1. One who has been beaten by another. ୨ । ମାଡ଼ ମାରିବା ବ୍ୟକ୍ତି—2. A person who beats another. [ଭି—ମାଡ଼ୁଆ ନ ଥାଇ ଗୁହାଳଥା । ଭଗ ।]

ମାଡ଼ୁଣୀ, ମାଡ଼ୁଣୀ }—ସ୍ତ୍ରୀ

ମାଡ଼ୁ ମାଡ଼ୁ—ଦେ. ( ଧ୍ୱନ୍ୟନୁକରଣ ) ଅ—(ଭୁଲନାକର ସ. ମଡ଼-Mārdu mārdu ମଡ଼ାୟିତ ଯାହାକୁ ମଡ଼ମଡ଼ କରି ଚୋବାଇ ମড়মড়,কড়মড় করে খাওয়া যায়) —କାଞ୍ଚ କନ୍ଦକ ବା କଞ୍ଚାଫଳକୁ मड मड़ ଚୋବାଇବାର ଉଚ୍ଚ ଶବ୍ଦ; ଖୁଡ଼ୁ ଖୁଡ଼ୁ; ମଡ଼ ମଡ଼—Rattling sound caused by chewing a hard or thing raw fruit.

ମାଡ଼େ—ଦେ. ବ—ମାଡ଼ର ଏକ ବର୍ଷା—A shower of beating Mārde বেদম মার मार or thrashing. [ ଯଥା—ଚଳେ ମୁଁ ମାଡ଼େ ଚଢ଼ାଇବି ଯେ, ତୋର ବାଜାକେତେ ଯାଏ ମନେ ଥିବ ।] ପ୍ରାଦେ. (ଉତ୍ତର ବାଲେଶ୍ୱର) (ମାଡ଼େ—ଅନ୍ୟରୂପ) ଅ—ବୋଧ ହୁଏ—Perhaps.

ମାଡ଼ୁକ—ସ. ବ. ପୁଂ—ଢୋଲଅ; ଢୋଲ ବଜାଇବା ବ୍ୟକ୍ତି—A Mādduka (ମାଡ଼ୁକକ—ଅନ୍ୟରୂପ) drummer (Apte).

ମା(ମେ,ମ୍ୟା)ଡ୍ରାସ୍—ବୈଦେ. (ପ୍ରାଦେ) (ଗଞ୍ଜାମ) ବ—(ଇଂ. ନାମ)—Mā(me,myā)drās ମାନ୍ଦ୍ରାଜ (ପ୍ରଦେଶ ଓ ନଗର)—মাদ্রাজ मद्रास Madras. (town and rovinec).

ମା(ମେ,ମ୍ୟା)ଡ୍ରାସ୍ ମେଲ—ବୈଦେ. (ପ୍ରାଦେ) (ଗଞ୍ଜାମ) ବ—(ଇଂ)—Mā(me,myā)drās mel କଲିକତା ଆଦି ସ୍ଥାନରୁ ମାନ୍ଦ୍ରାଜ মাদ্রাজ মেল ନଗରକୁ ଓ ମାନ୍ଦ୍ରାଜରୁ ସେସବୁ ସ୍ଥାନକୁ ଯାଉଥିବା ଡାକ- मद्रास मेल ଡାକ-ରେଲଗାଡ଼ି—The Madras mail train.

ମାଢ଼—ଦେ. ବ—(ସ. ମାଡ଼=ପରିମାଣ; ଓଜନ)—୧ । ୧୦ ରତି Mārdha ଓଜନର ସୁନା ବା ଓଜନ ହେବା ଅନ୍ୟ ଦ୍ରବ୍ୟ—1. A small weight of gold or any other article. ୨ । ଓଜନ ବିଶେଷ; ଦଶ ରତି ବା ଅଧ ତୋଳା—2. A standard weight; half a tola. [ଦ୍ର—ସୁନା ରୂପା ଓ ବାସନ ଆଦି ଓଜନ କରିବାରେ ମାଢ଼ ଶବ୍ଦ ବ୍ୟବହୃତ ହୁଏ:—

୪ ଧାନ=୧ ରତି (ସ. ରକ୍ତିକ=କାଇଞ୍ଚ)
୪ ରତି=୧ ରତି (ସ. ଚତ୍ରକ)
୨ ରତି=୧ ମସା (ସ· ମାଷକ)
୫ ମସା=୧ ମାଢ଼
୨ ମାଢ଼=୧ ତୋଳା (ସ. ତୋଳକ)
୪ ବା ୨ ତୋଳା=୧ ପଲ
୧୮ ବା ୨୦ ପଲ=୧ ସେର.

ଅତଏବ ୧ ମାଢ଼=ଅଧ ତୋଳା ବା ଅଧ ଭରି । ଏ ମାଢ଼ ଶବ୍ଦର ବ୍ୟବହାର ମାଦଳା ପାଞ୍ଜିରେ ବହୁବାର ହୋଇଅଛି ।] [ଉ—ସୁବର୍ଣ୍ଣ ଦଶଲକ୍ଷ ମାଢ଼—ଦାର୍ଢ୍ୟତା-ଭକ୍ତି ।] ଦେ. ବିଣ—(ପ୍ରା. ମୋହର=ସ୍ୱର୍ଣ୍ଣମୁଦ୍ରା)—ବହୁ ପରିମିତ (ମୁଦ୍ରା)—3. A large amount of money. [ଯଥା—ତା ଉପରେ ମୋର ମାଢ଼େ ଟଙ୍କା ଅଛି ।]

ମାଢ଼ି—ସ. ବ ( ମହ୍ ଧାତୁ=ପୂଜା କରିବା+କରଣ ଇ )—୧ । Mārdhi ପତ୍ରର ଶିରା—1. The ridge on the back of a leaf; the tissue of a leaf. ୨ । ଦାରିଦ୍ର୍ୟ; ଦୈନ୍ୟ—2, Poverty. ୩ । ଦାନ୍ତ ମୂଳ—3. The gum of teeth. ୪ । ଦାନ୍ତମୂଳକୁ ଆବରଣ କରିଥିବା ମାଂସର ହୁଡ଼ି—4. The ridge of flesh covering the roots of the teeth. ୫ । ଗଛର ଅଫୁଟା ପତ୍ର; ବିସ୍ତୃତ ବା ମେଲା ହେବା ପୂର୍ବରୁ ଗଛର ପତ୍ର—5; The young leaf before it opens (Apte). ୬ । ବାହାଡ଼ା ଦାନ୍ତ—6. A double tooth (Apte). ୭ । (+ଭାବ. ଇ) ସମ୍ମାନ ଦେଖାଇବା; ପୂଜନ—7. Honouring (Apte). ୮ । କ୍ରୋଧ—8. Anger; passion ( Apte ). ୯ । ମନୋଦୁଃଖ; ବିମର୍ଷତା—9. Sadness; dejection (Apte). ୧୦ । ବସ୍ତ୍ରର ଧଡ଼ି—10. The border or hem of a garment (Apte). बरेका छत्ता ଦେ. ବ—୧ । କଇଁ ଫୁଲ ଆଦିର ଖଣ୍ଡକୋଷ—1. The calyx of some flowers, as water-lily, lotus. ( ଯଥା—କଇଁ ମାଢ଼ି; ପଦ୍ମ ମାଢ଼ି । ) ୨ । ମାଢ଼ି (ଦେଖ)—2. Mārdi (See)

ମାଢ଼ିଆ—ଦେ. ବ—(ସ. ମାଢ଼ି) —ମାଢ଼ି ୪ (ଦେଖ) Mārdhia মাড়ি मसकुर Mārdhi 4 (See)

ମାଢ଼ିବା—ଦେ. କ୍ରି—ମାଢ଼ିବା; ଏକ ଦ୍ରବ୍ୟ ଉପରେ ଅନ୍ୟ ଦ୍ରବ୍ୟକୁ Mārdhibā ସଲଗ୍ନ କରିବା—To put or press a thing মাড়ান चपाना upon another

ମାଢ଼େ—ଦେ· କ୍ରି. ବିଣ—୧ । ଅତି ସାମାନ୍ୟ ମାତ୍ର; ଅଳ୍ପ ପରିମାଣରେ Mārdhe একটু कुछ 1. A little; a bit. [ ଉ—ସ୍ୱେ ବ୍ରହ୍ମଜ୍ଞାନ ଯେଉଁଅଛେ, ଭୂମିରୁ ନ ଛାଡ଼ନ୍ତି ମାଢ଼େ । ପ୍ରାଚୀ. ବ୍ରହ୍ମକରୁପଣ ଗୀତା । ] ୨ । ଅନେକ; ପ୍ରଚୁର—3. Much, ( ଯଥା—ସେ ବଡ଼ସ୍ତମ ଠାରୁ ମାଢ଼େ ଧାରନ୍ତି ।) ଦେ. ବିଣ.—୧ । ଏକ ମାଢ଼ ପରିମିତ—1. Weighing half a tolā. ୨ । ବହୁ ପରିମିତ

2. Much; large in quantity. ଦେ. ବି—ସାମାନ୍ୟ ପରିମିତ ବସ୍ତୁ—A very little quantity.

ମାଢ଼ୋର—ଦେ. ବି—ଗଣିତ ସମସ୍ୟା ସାଧନ କରିବାର ସାଙ୍କେତିକ ସୂତ୍ର ବା
Mārdhori ସୂକ୍ଷ୍ମ ପ୍ରଣାଳୀ—A set formula or key for solving arithmetical problems.

ମାଣ୍(ନ)କି—ପ୍ରାଦେ. ( ସିଂହଭୂମି ) ବି—କୋହ୍ଲମାନଙ୍କର ଅନେକ-
Mān(n)ki ଗୁଡ଼ିଏ ମୁଣ୍ଡା ବା ଗ୍ରାମସର୍ଦ୍ଦାରଙ୍କ ଉପରେ ପ୍ରଧାନ
मानकी ସର୍ଦ୍ଦାର—The head Sarddāra of the Kohla tribes.

ମାଣ—ଦେ. ବି ( ସଂ. ମା. ଧାତୁରୁ ଉତ୍ପନ୍ନ 'ମାନ' )—୧ । ପଚିଶ ଗୁଣ୍ଠ
Māna ପରିମିତ ଜମି—1. A measure of land consis-
अढ़ाई बिघा ting of 25 Gunthas. [ ଦ—୧ ବାଟି = ୨୦ ମାଣ, ୧ ମାଣ = ୨୫ ଗୁଣ୍ଠ, ୧ ଗୁଣ୍ଠ = ୧୬ ବିଶ୍ୱା । ଦୀର୍ଘ ୨୦ ପଦିକା ଓ ପ୍ରସ୍ଥ ୨୦ ପଦିକା ହେଲେ ଏକମାଣ ଜମି ହୁଏ, ତନ୍ତୁ ପଦିକାର ଲମ୍ବର ତାରତମ୍ୟ ଅନୁସାରେ ମାଣର ପରିମାଣର ତାରତମ୍ୟ ହୁଏ ।
୨୪ ଦସ୍ତିଆ ମାଣ = ଏକ ଏକର = ପ୍ରାୟ ୨୫ ବିଘା; ଷଷ୍ଠି ଦସ୍ତିଆ, ଚଉଦ ଦସ୍ତିଆ ଓ ବାର ଦସ୍ତିଆ ମାଣ ଅଛି । ବାର ଦସ୍ତି ପଦିକାର ଏକ ମାଣ = $\frac{1}{8}$ ଏକର । ଚବିଶ ଦସ୍ତି ପଦିକାର ଲମ୍ବ = ୬ ହାତ ୧ କାଣ୍ଠି = ୬ ହାତ ୨୨ ଅଙ୍ଗୁଳ । ମାଣର ସାଙ୍କେତିକ 'ମା'; ଯଥା—ଏକମାଣ
माना ଜମି = ମା୧।° । ] ୨ । ଏକ ଗଉଣୀର ୧୨ ଭାଗର ଏକ ଭାଗ; ଶସ୍ୟର ପରିମାଣ—2. A measure of grain one 12th of a Gauni. [ ଦ୍ର—ଏକ ଭରଣ = କୋଡ଼ିଏ ଗଉଣୀ; ଏକ ଗଉଣୀ = ବାର ମାଣ । ଗଉଣୀର ତାରତମ୍ୟ ଅନୁସାରେ ମାଣର ତାରତମ୍ୟ ହୋଇଥାଏ । କଟକୀ ଗୁରୁ ସେରଆ ଗଉଣୀର ମାଣ = $\frac{1}{8}$ ସେର । ଛଅ ସେରଆ ଗଉଣୀର ମାଣ $\frac{1}{2}$ ସେର । ତିନି ସେରଆ ଗଉଣୀର ମାଣ = $\frac{1}{4}$ ସେର । ] ୩ । ମାଣେ ପରିମିତ ଶସ୍ୟାଦି ମପାଯିବା ପାତ୍ର—3. A pot for measuring one Māna of grain. [ ଉ—ଗୋପୀ ବୋଲନ୍ତି କୃଷ୍ଣ ଶୁଣ । ଘର ଭିତରୁ ମାଣ ଆଣ—ଜଗନ୍ନାଥ. ଭାଗବତ । ] ୪ । କେଉଟମାନଙ୍କ ଚୂଡ଼ାକୁଟା ଢିଙ୍କିମୁଣ୍ଡାରେ ଥିବା ଗର୍ତ୍ତ ବା ଉଗ୍ଣି—4. The hole or receptacle for holding the paddy to be flattened by the Dhinki by Keutas who pound
मानकचू paddy into Churdā. ୫ । ( ସଂ. ମାନକ )
मानकंद ମାଣସାରୁ ( ହରେକୃଷ୍ଣ. ଦ୍ରବ୍ୟଗୁଣ )—5. Arum Indicum. ପ୍ରାଦେ. ( ଗଡ଼ଜାତ ) ବି—୧ । ଶସ୍ୟାଦିର ମାପବିଶେଷ; ୪୨ ଟଙ୍କା ଓଜନର ପରିମାଣ; ଅଧସେର—1. Half a seer. ୨ । ୧ ବିଶା; ୧୨୦ ବା ୧୫୦ ତୋଳା—2, One Bisā; 120 or 150 Tolās.

ମାଣ ଓ(ବ)ସା—ଦେ. ବି—ମାର୍ଗଶିର ବା ମାଘ ମାସ ଗୁରୁବାର ଦିନ ଲକ୍ଷ୍ମୀ
Māna-o(ba)sā ରୂପେ କଳ୍ପିତ ଧାନପୂର୍ଣ୍ଣ ମାଣକୁ ସାଧାରଣ କରାଯିବା
लक्ष्मीपूजा ଲକ୍ଷ୍ମୀପୂଜା ।-A religious rite observed in honour of Goddess Lakshmī represented by a māna or corn-measuring pot on Thursdays in the month of Mārgaśira or Māgha. [ ଦ୍ର—କେଉଁ ଅଞ୍ଚଳରେ ମାର୍ଗଶିର ମାସରେ; କେଉଁ ଅଞ୍ଚଳରେ ମାଘ ବା ଶ୍ରାବଣ ମାସରେ ଏ ବ୍ରତ କରାଯାଏ । ]

ମାଣ ଓ(ବ)ସା ଗୁରୁବାର—ଦେ. ବି—ମାର୍ଗଶିର ବା (କେଉଁ ଅଞ୍ଚଳରେ)
Māna o(ba)sā gurubāra ମାଘ ବା ଶ୍ରାବଣ ମାସର ଗୁରୁବାର ମାନ—The thursdays of the month of Mārgaśira ( or at some places ) Māgha or Śrābana when Lakshmī is worshipped ). [ ଦ୍ର—ଏ ଦିନ ଗୁଡ଼ିଏ ଶୁକ୍ଳ ଧାନ୍ୟ-ପୂର୍ଣ୍ଣ ମାଣକୁ ଖଟୁଲିରେ ସ୍ଥାପିତ କରି ତାକୁ ଲକ୍ଷ୍ମୀରୂପେ କଳ୍ପନା କରି ପୂଜା କରାଯାଏ । ]

ମାଣକ—ସଂ. ବି ( ମା. ଧାତୁ + କର୍ମ. ଅନ + କ )—ମାଣସାରୁ (ଦେଖ)
Mānaka (ମାଣକନ୍ଦ—ଅନ୍ୟରୂପ) Mānasāru ( See )

ମାଣକନ୍ଦା—ଦେ. ବି. ( ସଂ. ମାଣକ + କନ୍ଦ )—ମାଣସାରୁ ( ଦେଖ )
Mānakandā Mānasāru ( See )
मानकचू मानकचु

ମାଣ ଗଉଣୀ—ଦେ. ବି. ( ସହଚର ଶବ୍ଦ )—ଶସ୍ୟ ମାପିବାର ପାତ୍ରଦ୍ୱୟ;
Māna gaunī ଶସ୍ୟ ମାପିବାର ପରିମାଣଦ୍ୱୟ;—ମାଣ (କ୍ଷୁଦ୍ର)
(ମାଣ ଗୌଣୀ—ଅନ୍ୟରୂପ) ଓ ଗଉଣୀ ( ବଡ଼ )—A smaller and a bigger measure of corn

ମାଣ ଗାଣ୍ଡି—ଦେ. ବି—ଧାନ ମାପିବାର ପାତ୍ର 'ମାଣ'ର ପିଠିପାଖ—
Māna gāndi The back or downside face of a
मानका पेँद Māna pot,

ମାଣ ଗାଣ୍ଡିରେ ଧାନ ମାପିବା—ଦେ. କ୍ରି—( ଅଶୁଭ ) ( ମୃତାହ କ୍ରିୟା
Māna gāndire dhāna māpibā ସମୟରେ ଦଶାହରୁ
मानका पेँदमें धान नापना ଫେରି ଅସି କ୍ରିୟା ଧରିଥିବା ବ୍ୟକ୍ତି ) ମାଣର ପିଠିପାଖ ଧରି ତା ଉପରେ ଗଣ୍ଡାଏ ଗଣ୍ଡାଏ କରି ଧାନ ରଖି ମାପିବା—To measure grain by the back or buttom side up of a Māna pot on 10th day of a funeral ceremony, after returning from the funeral ghat. [ ଦ୍ର—ଅନ୍ୟ ସମୟରେ ମାଣ ଗଣ୍ଡିରେ ଧାନ ମାପିବା ଅମଙ୍ଗଳସୂଚକ । ]

ମାଣ ଗୁଣ୍ଠ ବିଶ୍ୱା—ଦେ. ବି. ( ସହଚର ଶବ୍ଦ )—ଜମି ମାପିବାର ମାଣ,
Māna guntha biswā ଗୁଣ୍ଠ ଓ ବିଶ୍ୱା—Measure of
बिघा काठा बिश्वा land by Māna, Guntha and
मान बिघा घूरकट्टा Biswā. [ ଦ୍ର—ମାଣ ଓ ଗୁଣ୍ଠ ଅଙ୍କରେ ଲେଖାଯାଏ ଓ ବିଶ୍ୱା ପଣରେ ଲେଖାଯାଏ; ମାଣ ଓ ଗୁଣ୍ଠ ମଧ୍ୟରେ ଗୋଟିଏ ଗାର ପଡ଼େ; ଯଥା—୩ ମାଣ ୫ ଗୁଣ୍ଠ ୬ ବିଶ୍ୱା = ମା ୩।୫।୬ । ]

**ମାଣ ପୂରିବା**—ଦେ. କ୍ରି (ଲକ୍ଷଣାର୍ଥ)—ପରମାୟୁ ଶେଷ ହୋଇଯିବା—
Māṇa pūribā One's life coming to an end; the
অন্নজল শেষ হওয়া full measure or span of a life
मान पूरना [ ଉ—ମାଣ ପୂରିଲା ଉଠ୍‌ରେ ପୂତା !—ଶିଶୁବଚନ ।]

**ମାଣବ**—ସଂ. ବି. ପୁଂ (ମନୁ=ମନୁଷ୍ୟ+କ୍ଷୁଦ୍ରାର୍ଥେ. ଅ;+ସ୍ୱାର୍ଥେ. କ)—
Māṇaba ୧ । ଶ୍ରେଷ୍ଠ ମନୁଷ୍ୟ; ଟେଢ଼ା ଲୋକ;—1. A manikin.
(ମାଣବକ—ଅନ୍ୟରୂପ) ୨ । (ଅବଜ୍ଞାର୍ଥକ) ବାଳକ;
(ମାଣବକା—ସ୍ତ୍ରୀ) ଅର୍ଭକ ଟୋକା—2. (contemptuous) A boy; a youngster; a lad.
୩ । କୁତ୍ସିତ ଲୋକ—3. An ugly man. ୪ । ବ୍ରାହ୍ମଣ ବାଳକ—4. A Brāhmaṇa boy. ୫ । ଷୋଡ଼ଶ ବର୍ଷୀୟ ବାଳକ—5. A boy of 16 years of age. ୬ । ଅଷ୍ଟାକ୍ଷର ଛନ୍ଦୋବିଶେଷ—6. Name of a metre of 8 syllables.
୭ । ବିଂଶତିଯଷ୍ଟିକ ହାର; କୋଡ଼ିଏସରିଆ ହାର—7. A 20-stringed necklace. ୮ । ୧୬ ସରିଆ ହାର—8. A 16-stringed necklace. ୯ । ଅର୍ଦ୍ଧୋଚ୍ଚାରିତ ମନ୍ତ୍ର—9. Half-uttered hymn.
[ଭି—(୭ ଓ ୮) କଳ୍ପ ସେ ପ୍ରମାଣ ମାଣବକ ମୁଗନେତ୍ରାର ହେଲା 'ମାଣବକ' ।] ୧୦ । ମନୁଷ୍ୟ (ହି. ଗ.)—10. Man ୧୧ । ନିର୍ବୋଧ ବ୍ୟକ୍ତି—11. A silly fellow (Apte.) ୧୨ । ଧର୍ମ ବିଷୟ ଶିକ୍ଷା କରୁଥିବା ଛାତ୍ର—12. A scholar; a religious student (Apte)

**ମାଣ ବସା(ସେ)ଇବା**—ଦେ. କ୍ରି—ମାର୍ଗଶିର ବା ମାଘ ମାସ ଗୁରୁବାର
Māṇa basā(se)ibā ଦିନ ମାଣରେ ଧଳା ଧାନ ଭର୍ତ୍ତି କରି ବସ୍ତ୍ରାଦିରେ ବିଭୂଷିତ କରି ତାକୁ ମହାଲକ୍ଷ୍ମୀ ରୂପେ ପୂଜା କରିବା—To worship a measuring pot filled with white paddy on every thursday of the month of 'Mārgaśira' or Māgha.

**ମାଣ ବସା ଗୁରୁବାର**-ଦେ. ବି-ମାର୍ଗଶିର ବା ମାଘମାସର ପ୍ରତି ଗୁରୁବାର
Māṇa basā gurubāra —The thursdays of the
(ମାଣ ବସା ଓଷା—ଅନ୍ୟରୂପ) month of Mārgaśira or Māgha. [ଦ୍ର—ମାର୍ଗଶିର ବା ମାଘ ମାସର ଗୁରୁବାର ଦିନ ହିନ୍ଦୁ ଗୃହସ୍ଥ ଘରେ ଗୋଟିଏ ଧାନମପା ମାଣରେ ଧଳା ଧାନ ପୂରାଇ ତାକୁ ବସ୍ତ୍ରାଦିଦ୍ୱାରା ବିଭୂଷିତ କରି ତାହାକୁ ମହାଲକ୍ଷ୍ମୀ କଳ୍ପନା କରି ଲକ୍ଷ୍ମୀ ପୂଜା କରନ୍ତି ଓ ମାଘ ମାସର ଗୋଟିଏ ଗୁରୁବାରରେ ଏ ବ୍ରତ ଉଦ୍ୟାପନ କରନ୍ତି । ]

**ମାଣବୀନ**—ସଂ. ବିଣ (ମାଣବ + ଈନ)—ଟୋକାଳିଆ; ଶିଶୁଜନୋଚିତ—
Māṇabīna Boyish; childish (Apte).

**ମାଣବ୍ୟ**—ସଂ. ବି (ମାଣବ+ଯ)—୧ । ସମୂହ ବାଳକ—1. A
Māṇabya number or company of boys.
୨ । ବାଲ୍ୟକାଳ—2. Boyhood. ୩ । ଶୈଶବ—3 Childhood

**ମାଣ ସାରୁ**—ଦେ. ବି. (ସଂ. ମାଣକ)—ମହଣସାରୁ; ସାରୁ ଜାତୀୟ ଏକ
Māṇa sāru ପ୍ରକାର କନ୍ଦ—Arum Indicum; Alocacia Indica.
ସଂ. ନାମ—ମାଣକ, ମାଣକନ୍ଦ, ମହାପତ୍ର
मान कचु
मान कन्द
ମ. ମାଣ କନ୍ଦ
[ଦ୍ର—ଏହାର ମୂଳ ଶିଳପୁଆ ପରି ଲମ୍ବ ଓ ବଡ଼ ଓ ଏହାର ପତ୍ର ସାରୁ ପତ୍ର ପରି, କିନ୍ତୁ ୩ ଫୁଟ୍ ପରିଧି ବିଶିଷ୍ଟ । ଏହାର କନ୍ଦ ଭକ୍ଷ୍ୟ । ଶଙ୍ଖସାରୁ ମଧ୍ୟ ଏହି ଜାତୀୟ କୃଷିଜାତ କନ୍ଦ । ବୈଦ୍ୟକ ମତରେ ଏହା ଶୋଥ ହାରକ, ଶୀତବୀର୍ଯ୍ୟ, ଲଘୁ ଏବଂ ଏହା ପିତ୍ତ ଓ ରକ୍ତଦୋଷ ଓ ଉଦରୀ ରୋଗ ନାଶକ ।]

**ମାଣି**—ଦେ. ବି. (ସଂ. ମାନ)—ଅଭିମାନ (ନଦେ)—
Māṇi Hauteur; sullenness due to displeasure
मान अभिमान

**ମାଣିଆ(ଆଁ)**—ଦେ. ବିଣ. (ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ;
Māṇiā(āṅ) ଯଥା—ବାରମାଣିଆ ଚକ; ତିନ ମାଣିଆ କିଆରି)—
मानिआँ ଏତେ ମାଣ ପରିମିତ—Measuring so many Māṇas.

**ମାଣିଆ ବନ୍ଧ(ନ୍ଧି)** ଦେ.ବି.-ଓଡ଼ିଆ ଗଡ଼ଜାତର ବଡ଼ମ୍ବା ରାଜ୍ୟର ମାଣିଆବନ୍ଧ
Māṇiā bandi(ndhi) ନାମକ ସ୍ଥାନର ତନ୍ତୀମାନଙ୍କ ଦ୍ୱାରା ବୁଣା ହେବା ରେସମଧଡ଼ିଆ ଧଳା ସୂତା ଲୁଗା ଓ ଶାଢ଼ୀ—A kind of cloth hand-woven by weavers of a village 'Māṇiābāndha in the Oriya State of Bardambā.
[ଦ୍ର—ପୂର୍ବେ ଏମାନେ ଖୁବ୍ ସରୁ ଓ ମସୃଣ ଲୁଗା ବୁଣୁଥିଲେ; ଏମନ୍ତ କି, ୧୦ ହାତ ଲମ୍ବର ଲୁଗା ଓ ୬ ହାତ ଲମ୍ବର ଗୋଦର ଏକତ୍ର ଗୁଡ଼ା ହୋଇ ଖଣ୍ଡିଏ ବାଉଁଶ ନଳ ମଧ୍ୟରେ ରହି ପାରୁଥିଲା । ବର୍ତ୍ତମାନ ଉତ୍ସାହ ଓ ଆଦର ଅଭାବରୁ ଏ ଲୁଗାର ଉତ୍କୃଷ୍ଟତା କମିଯାଇ ଅଛି । ମାଣିଆବନ୍ଧରେ ଜଥା, ଶାଢ଼ୀ ଓ ଦୋପଟ୍ଟା ଗୋଦରମାନ ବୁଣାଯାଏ । ଏ ଲୁଗାମାନଙ୍କରେ ଏକ ଫୁଲିଆ ଓ ଏକାଧିକ ଫୁଲିଆ ଚଉଡ଼ା ରେସମୀ ଧଡ଼ି ଥାଏ । ]

**ମାଣିଆ ବନ୍ଧ(ନ୍ଧି) ଜଥା**—ଦେ. ବି—ମାଣିଆବନ୍ଧରେ ପ୍ରସ୍ତୁତ ସରୁ
Māṇiā bandi(ndhi) jathā ଧୋତି ଗୋଦର (ଏକତ୍ର ଲାଗିଥିବା)—A pair of clothes (lower and upper pieces) woven in one length in 'Māṇiābandha.'

**ମାଣିଆ ବନ୍ଧ(ନ୍ଧି) ଶାଢ଼ୀ**—ଦେ. ବି—ଚଉଡ଼ା ରଙ୍ଗୀନ୍ ଧଡ଼ି ଥିବା
Māṇiā bandi(ndhi) ମାଣିଆବନ୍ଧରେ ବୁଣା ସୂତା ଶାଢ଼ୀ—Cotton Śārḍhis woven in Māṇiābandha

**ମାଣିକ୍(କ)ଚାନ୍ଦି**—ଦେ. ବି—୧ । ବଙ୍ଗ ଓ ଉତ୍କଳ ଦେଶରେ ଲଗା
Māṇik(ki)chāndi ଯାଇଥିବା ଗୁଆ ଗଛରୁ ଉତ୍ପନ୍ନ ନିକୃଷ୍ଟ ଓ
চান্দী(সুপুরী) ଶ୍ରେଷ୍ଠ ଗୁଆ—1. The areca nut (grown
मानिक चंदी in this country); Indian Camomyle:
ছোটকচু Chrysanthemum Indicum. ୨ । ଏକ·

छोटा साह ପ୍ରକାର ଶ୍ରେଷ୍ଠ ସାରୁ—2. A kind of edible
वृन्दावनी(गेंदा) arum. ୩ । ଏକ ପ୍ରକାର ହଳଦିଆ ଓ ନାଲି
गुलदावदी ମିଶା ପାଙ୍ଗୁଡ଼ା ଯୁକ୍ତ ସାନ ଗେଣ୍ଡୁ ଫୁଲ—
3. French marigold.

**ମାଣିକ(କି) ମକଡଳ**—ପ୍ରାଦେ (ଗଡ଼ଜାତ) ବି—ମାଣିକ ଚାନ୍ଦି ୩ (ଦେଖ)
Māṇik(ki) makadala Māṇik chāndi 3 ( See )

**ମାଣିକ**—ଦେ. ବି. ( ସଂ. ମାଣିକ୍ୟ )—୧ । ମାଣିକ୍ୟ; ପଦ୍ମରାଗ ମଣି;
Māṇika ରକ୍ତ ବର୍ଣ୍ଣର ମଣିବିଶେଷ—1. Ruby. ( ଉ—
মাণিক ଦେଖାଇଲା ହୀର, ନୀଳା, ମାଣିକ—ଉଞ୍ଜ· ଲାବଣ୍ୟବତୀ ।)
मानिक, लाल [ ଦ୍ର—ହାଣ୍ଡି ସାଇରେ ମାଣିକ ପଡ଼ିବା ନ୍ୟାୟ—
ହାଣ୍ଡିମାନେ ମାଣିକ୍ୟର ମୂଲ୍ୟ ବୁଝି ନ ପାରି ତାକୁ ଅନାଦର
କରି ପାରନ୍ତି, କୌଣସି ଗୁଣୀ ଲୋକ ନିର୍ଗୁଣ ଲୋକଙ୍କ
ଦେଶରେ ପହଞ୍ଚି ଅନାଦୃତ ହେବା ସ୍ଥଳରେ ଏ ନ୍ୟାୟର
ଉପମା ଦିଆଯାଏ । ] ୨ । (ସ୍ତ୍ରୀ) ମାଣିକ୍ୟ ନାମ
ସ୍ତ୍ରୀର ଡାକ ନାମ—2 A name for calling a
female named Māṇikya.

**ମାଣିକ ଚୁନା(ରା)**—ଦେ. ବି (ସଂ. ମାଣିକ୍ୟ ଚୂର୍ଣ୍ଣ )—ଅଳଙ୍କାରକୁ ଘଷି ସଫା
Māṇika chūnā(rā) ଓ ଚକଚକିଆ କରିବା ପାଇଁ ବଣିଆଙ୍କ
मानिकचूर ବ୍ୟବହୃତ ମାଣିକ୍ୟର ଚୂର୍ଣ୍ଣ—Powdered
मानिकरेत ruby used by goldsmiths for
polishing ornaments.

**ମାଣିକ (କି)ଜୋଡ଼(ଡ଼ା)**—ଦେ. ବି (ପୁଂ ଓ ପୁଂ. ସ୍ତ୍ରୀ) (ସଂ. ମାଣିକ୍ୟ +
Māṇika (ki)jorḍa(rḍā) ଯୁଗ୍ମ )—୧ । (ବ୍ୟଙ୍ଗ୍ୟ) ପରସ୍ପରଙ୍କ
(ମାଣିକ ଜୋଡ଼ୀ—ସ୍ତ୍ରୀ) ପ୍ରିୟ ସଙ୍ଗୀଦ୍ୱୟ—1. A pair of
মাণিক জোড় bosom friends. ୨ । ପ୍ରେମିକାପ୍ରେମିକ-
मानिक जोर(ड) ଦ୍ୱୟ—2. A couple of lovers.

**ମାଣିକା**—ଦେ. ବି (ସଂ. ମା ଧାତୁଜ ମାନ )—୧ । ତେଲ, ଘିଅ ଓ
Māṇikā ଶସ୍ୟାଦି ମାପିବାର ପିତଳ ମାଣ—1. A measuring
पितलको मान pot of brass for measuring oil,
ghee and grains. ୨ । ମାଣିକୀ ଗଉଡୁଣୀ
( ଦେଖ )—2. Māṇikī gaurḍuṇī ( See )
ସଂ. ବି—୧ । ମଦ୍ୟ ( ଦ୍ରବ୍ୟଗୁଣ )—1. Wine. ୨ ।
ଅଠପଲ ଓଜନ ପରିମାଣ ବିଶେଷ—2. A particular
weight (equal to eight Palas) (Apte)

**ମାଣିକୀ**—ଦେ. ବି. ସ୍ତ୍ରୀ—ମାଣିକ୍ୟ ନାମ୍ନୀ ସ୍ତ୍ରୀର ଡାକ ନାମ—A name
Māṇikī for calling a woman named Māṇikya.
[ ଉ—ଜଳଜଳି ମାଣିକୀ ! ଜଳ ଜଳ କରି ଅନେଇ
ଥାଏ ନଈବନ୍ତି ପାଣିକି—ଛଗ । ]

**ମାଣିକୀ ଗଉଡୁଣୀ**—ଦେ. ବି—ଉତ୍କଳର ଇତିହାସପ୍ରସିଦ୍ଧା ଗୋଟିଏ
Māṇikī gaurḍuṇī ଗଉଡୁଣୀ—A milkmaid fam-
ous in the history of Orissa. [ ଦ୍ର—କଥିତ
ଅଛି ଯେ ଉତ୍କଳର ରାଜା ପୁରୁଷୋତ୍ତମଦେବ ଯେତେବେଳେ
କାଞ୍ଚିରାଜାଙ୍କ କୃତ ଅବମାନନାର ପ୍ରତିଶୋଧ ନେବା ପାଇଁ
କାଞ୍ଚିରାଜ୍ୟକୁ ଆକ୍ରମଣ କରିବାକୁ ଦ୍ୱିତୀୟ ଥର ଯୁଦ୍ଧଯାତ୍ରା
କରୁଥିଲେ, ତାଙ୍କ ଆଗେ ଆଗେ ଶଣ୍ଡୁଦୁଇ ଘୋଡ଼ାରେ ଜଗନ୍ନାଥ
ଓ ବଳଭଦ୍ର ଠାକୁର ଯଥାକ୍ରମେ କଳା ଘୋଡ଼ା ଓ ଧଳା
ଘୋଡ଼ା ଚଢ଼ି ଯାଉ ଥାଆନ୍ତି; ବାଟରେ ମାଣିକୀ ଗଉଡୁଣୀ
ଦହି ବିକୁଥିଲା; ଏ ଦୁଇ ଜଣ ଅଶ୍ୱାରୋହୀ ତା ଠାରୁ ଦହି
ଖାଇଲେ, ମାଣିକୀ ତାଙ୍କୁ ଦହିର ମୂଲ୍ୟ ମାଗିବାରୁ
ସେମାନଙ୍କଠାରେ ଅର୍ଥ ନ ଥିବାରୁ କହି ଜଗନ୍ନାଥେ ମାଣିକୀକୁ
ତାଙ୍କ ହାତରେ ଥିବା ନାମାଙ୍କିତ ମୁଦି ( ଯାହା କି ବଡ଼
ଦେଉଳରେ ଜଗନ୍ନାଥଙ୍କ ପ୍ରତିମାଙ୍କଠାରେ ଲାଗି ହୋଇ
ଥାଏ ତାହା ) ଦେଲେ ଓ କହିଲେ ଯେ, କିଛିକ୍ଷଣପରେ
ଏ ବାଟେ ଯେଉଁ ରାଜା ସୈନ୍ୟ ସହିତ ଆସିବେ, ତାଙ୍କ
ଏ ମୁଦି ଦେଲେ ସେ ମାଣିକୀକୁ ଦହିର ଦାମ ଦେବେ ।
ଏହା କହି ଅଶ୍ୱାରୋହୀ ଦୁହେଁ ଅଗୋଚର ହେଲେ ।
ମାଣିକୀ ସେହିଠାରେ ଅପେକ୍ଷା କଲା । କିଛିକ୍ଷଣ ପରେ ରାଜା
ପୁରୁଷୋତ୍ତମଦେବ ଦଳବଳ ସହ ସେହିଠାରେ ପହଞ୍ଚିବାରୁ
ମାଣିକୀ ସେହି ମୁଦି ଦେଖାଇ ରାଜାଙ୍କୁ ଦହିର ଦାମ ମାଗନ୍ତେ,
ରାଜା ସେ ମୁଦି ଜଗନ୍ନାଥଦେବଙ୍କର ଥିବାର ଦେଖି
ଅତି ବିସ୍ମିତ ହୋଇ ପଚାରିବାରୁ ମାଣିକୀ ସେ ଦୁଇ ଜଣ
ଅଶ୍ୱାରୋହୀ (ରାଉତ)ଙ୍କର ରୂପଆଦି (ବଡ଼ ଜଣକ ଗୋରା ଓ
ସାନ ଜଣକ କଳା ଥିବା) ବର୍ଣ୍ଣନା କଲା । ଏଥିରେ ରାଜା
କୃତକୃତ୍ୟ ହୋଇ ଜାଣିଲେ ଯେ ଜଗନ୍ନାଥ ଓ ବଳଦେବ ସ୍ୱୟଂ
ଅଶ୍ୱାରୋହୀ ଯୋଦ୍ଧା ବେଶରେ ତାଙ୍କ ଆଗେ ଆଗେ କାଞ୍ଚି
ବିଜୟ ଉଦ୍ଦେଶ୍ୟରେ ଯାଉଅଛନ୍ତି । ମାଣିକୀକୁ ରାଜା ବହୁତ
ପୁରସ୍କାର ଦେଲେ ଓ ସେଠାରେ 'ମାଣିକୀ ପଟଣା' ନାମରେ
ଗୋଟିଏ ଗ୍ରାମ ବସାଇଲେ । ରାଜା ଏହି ଶକୁନଦ୍ୱାରା ଉତ୍ସାହିତ
ହୋଇ ଯୁଦ୍ଧ କରି କାଞ୍ଚିରାଜାଙ୍କୁ ପରାସ୍ତ କରି ତାଙ୍କ ଝିଅ
ପଦ୍ମାବତୀଙ୍କୁ ଆଣିଲେ । ]

**ମାଣିକୀ ପ(ପା)ଟଣା**—ଦେ. ବି ( ନାମ )—ପୁରୀ ଜିଲ୍ଲାର ଦକ୍ଷିଣରେ
Māṇikī pa(pā)ṭaṇā ଚିଲିକାକୂଳବର୍ତ୍ତୀ ଗୋଟିଏ
ଗ୍ରାମ—Name of a village in the south of
the Puri district on the shore of the
Chilka Lake, [ ଦ୍ର—ମାଣିକୀ ଗଉଡୁଣୀର
ନାମରେ ଏ ଗ୍ରାମ ପୁରୀ ରାଜା ପୁରୁଷୋତ୍ତମ ଦେବଙ୍କ ଦ୍ୱାରା
ସ୍ଥାପିତ ହୋଇଥିଲା । ଏଠାରେ ଉତ୍କୃଷ୍ଟ ଓ ଘନ ବସାଦହି
ମିଳେ; ସେ ଦହି ବାଉଁଶ ପାତ୍ରଥରେ ବସାଯାଏ । ]

**ମାଣିକ୍ୟ**—ସଂ. ବି—୧ । ( ମଣି = ରତ୍ନ + କୈ ଧାତୁ = ଦୀପ୍ତି ପାଇବା
Māṇikya + କର୍ତ୍ତୃ.ଯ)—ପଦ୍ମରାଗ ମଣି; ରକ୍ତବର୍ଣ୍ଣ ରତ୍ନ-
ଅନ୍ୟ ସଂ, ନାମ— ବିଶେଷ; ଚୁନୀ—1. Ruby; Rubinus.
ପଦ୍ମରାଗ, ଶୋଣରତ୍ନ, [ ଦ୍ର—ଏହା ଖଣିରୁ ବାହାରେ । ବ୍ରହ୍ମଦେଶ,
ତରୁଣ, ଲୌହିତକ, ଶ୍ୟାମ, ଲଙ୍କା, ମଧ୍ୟଆସିଆ, ୟୁରୋପ,
ଶୃଙ୍ଗାରି, ରବିରତ୍ନକ, ଅଷ୍ଟ୍ରେଲିଆରେ ମାଣିକ୍ୟର ଖଣି ଅଛି ।
ଲୋହିତ, କୁରୁବିନ୍ଦ, ରାସାୟନିକ ବିଶ୍ଳେଷଣଦ୍ୱାରା ଦେଖାଯାଇ
ସୌଗନ୍ଧିକ ଅଛି ଯେ ଏଥିରେ ଆଲୁମିନିୟମ୍, ମାଗ୍ନେସିୟମ୍
মাণিক, চুনী ଓ ଅକ୍ସିଜେନ୍ ଅଛି । ଗାଢ଼ନାଲି, ଫିକାନାଲି

ମାଣିକ; ଲାଲ — ନା ଗୋଲାପୀ, ନାରଙ୍ଗୀ ଓ ବାଇଁଗଣୀ,
ମ. ମାଣିକ — ଏପରି ନାନା ବର୍ଣ୍ଣର ମାଣିକ୍ୟ ଅଛି ।
ଗୁ. ମାଣ୍ୟକ, ଚୁନୀ — ମାଣିକ୍ୟକୁ ସୋହାଗା ସଙ୍ଗେ ଅଧିକ ତାପରେ
ତେ. ମାଣିକ୍ୟ — ତରଳାଇଲେ ଏହା କାଚ ପରି ତରଳ ଯାଏ
ଫା. ଲାଲ୍‌ବଦଖଶାନୀ — ଓ ଏଥିର ବର୍ଣ୍ଣ ଉଭେଇ ଯାଏ । ଯେଉଁ
ଆ. ଲାଲ — ମାଣିକ୍ୟ ଗାଢ଼ନାଲ ଓ ଯେଉଁ ମାଣିକ୍ୟକୁ
ଅନ୍ୟ ମାଣିକ୍ୟରେ ଘଷିଲେ ଦାଗ ପଡ଼େ ନାହିଁ ତାହା ଉତ୍କୃଷ୍ଟ ବୋଲି ବିବେଚିତ ହୁଏ । ପଦ୍ମଫାଖୁଡ଼ା ବର୍ଣ୍ଣର ମାଣିକ୍ୟକୁ ପଦ୍ମରାଗ, ଗାଢ଼ରକ୍ତ ବା ଈଷତ୍ ନୀଳବର୍ଣ୍ଣର ମାଣିକ୍ୟକୁ ସୌଗନ୍ଧିକ, ପଳାଶଫୁଲ ପରି ଫୋପା ନାଲି ରଙ୍ଗର ମାଣିକ୍ୟକୁ କୁରୁବିନ୍ଦ ଓ ନୀଳରକ୍ତ ମିଶ୍ରିତ ବର୍ଣ୍ଣର ମାଣିକ୍ୟକୁ ନୀଳଗନ୍ଧିକ ବୋଲାଯାଏ । ବୈଦ୍ୟକମତରେ ମାଣିକ୍ୟ ମଧୁର, ସ୍ନିଗ୍ଧ ଓ ବାତପିତ୍ତନାଶକ । ଏଥିର ଚୂନାରେ ଅଳଙ୍କାର ଆଦି ଘଷାଯାଇ ପାଲିସ୍ କରାଯାଏ । ହି. ଶ. ] (ଯଥା—ରତ୍ନ ତଳେ ଟୀକା ଦେଖ ।) ୨ । ଏକପ୍ରକାର ଉତ୍କୃଷ୍ଟ କଦଳୀ (ଦ୍ରବ୍ୟଗୁଣ)—2. A species of excellent plantain. ୩ । ଆଠ-ପଲର ଏକ ମାନ—3. A standard of weight of 8 Pal̤as.

ମାଣିକ୍ୟ(କ୍) ଖମ୍ବ—ଦେ. ବି (ସଂ. ମାଣିକ୍ୟ ସ୍ତମ୍ଭ)—ବାଲେଶ୍ୱର ନଗରର
Māṇikya(k) khamba ବହୁ ଜନାକୀର୍ଣ୍ଣ ଅଂଶ ବିଶେଷ—
A populous quarter of the Balasore town. [ ଉ— ଅଦ୍ୟାପି ମାଣିକ୍ୟ-ଖମ୍ବ ନାମ ଲୋକେ ଯେଣୁ ପ୍ରଥିତ । ରାଧାନାଥ. ଉଷା । ] [ ଦ୍ର—କଥିତ ଅଛି ଯେ ବାଣାସୁର ରାଜା ଏଠାରେ ଗୋଟିଏ ମାଣିକ୍ୟର ସ୍ତମ୍ଭ ତିଆରି କରାଇଥିଲେ । ଏହି ଅଞ୍ଚଳରେ ବାଲେଶ୍ୱର ରାଜବଂଶର ରାଜବାଟି ଅଛି ।]

ମାଣିକ୍ୟ ଦେବ—ଦେ. ବି—(ନାମ)—ସଂସ୍କୃତରେ 'ଶୁଦ୍ଧି ଗ୍ରନ୍ଥ' ପ୍ରଣେତା
Māṇikya deba (ଜଗନ୍ନାଥ ପ୍ରାଚୀନ ଉତ୍କଳ)—The author of a Sanscrit work on purificatory rites.

ମାଣିକ୍ୟା—ସ. ବି.—୧ । ଶ୍ୱେତ ଝିଟିପିଟି—1. A small house-
Māṇikyā lizard (Apte). ୨ । ତମ୍ପେଇ ନେଉଳ (?)—2. A small house-lizard with a shining scaly skin and red tail.

ମାଣିକ୍ୟାଦି ବର୍ଗ—ବି.—ସମସ୍ତ ପ୍ରକାରର ରତ୍ନ—All sorts of
Māṇikyādi barga gems. [ ଦ୍ର—ମାଣିକ୍ୟ, ମୁକ୍ତା, ସ୍ଫଟିକ, ପ୍ରବାଳ, ଇନ୍ଦ୍ରନୀଳ, ଗୋମେଦ, କ୍ଷୁଦ୍ର ହୀରକ, ପୁଷ୍ପରାଗ, ସୂର୍ଯ୍ୟକାନ୍ତ, ଚନ୍ଦ୍ରକାନ୍ତ, ହୀରକ, ଇନ୍ଦ୍ରନୀଳ, ରାଜାବର୍ତ୍ତ, ମରକତ, ବୈଦୂର୍ଯ୍ୟ ପ୍ରଭୃତି ବୈଦ୍ୟଶାସ୍ତ୍ରରେ ମାଣିକ୍ୟାଦି ବର୍ଗର ଅନ୍ତର୍ଗତ ।]

ମାଣିଖୁଣ୍ଟ(ଣ୍ଟି)—ଦେ. ବି—ପେଷଣା ଚକିର ତଳ ପଟର କେନ୍ଦ୍ରରେ
Māṇikhuṇṭa (ṇṭi) ପୋତା ଯାଇଥିବା କାଠର କୀଲକ—
চাকীরখুঁট; খুঁজী कील A peg driven into the centre
(ମାଣିକାଠି—ଅନ୍ୟରୂପ) of the lower mill-stone and round which the upper stone revolves. [ଦ୍ର—ପେଷଣା ଚକିର ଉପର ପଟର କେନ୍ଦ୍ରରେ ଥିବା ବଡ଼ ଛିଦ୍ର ମଧ୍ୟରେ ଖଣ୍ଡିଏ ଶ୍ୱେତ ରନ୍ଧ୍ରଯୁକ୍ତ କାଠ ଥାଏ ତାକୁ ପିହାଣ, ପିହାଣି ବା ପିହାଣିଆ ବୋଲାଯାଏ । ଏହି 'ପିହାଣିଆର' ଛିଦ୍ରରେ ମାଣିଖୁଣ୍ଟି ପଶେ । ଏହି ମାଣି-ଖୁଣ୍ଟିକି କେନ୍ଦ୍ର କରି ଉପର ପଟ ଚକି ଘୁରେ ।]

ମାଣି ଚକି—ଦେ. ବି.—ଚକିର ପିହାଣିଆ; ଚକିର ଉପର ପଟର ମଝିରେ
Māṇi chaki କଣା ମଧ୍ୟରେ ଛିଦ୍ରଯୁକ୍ତ ଯେଉଁ କାଠଖଣ୍ଡ ଭରି-
हथर ଯାଇ ଥାଏ ଓ ଯାହାର ଛିଦ୍ରରେ ମାଣିଖୁଣ୍ଟି ପ୍ରବେଶ କରିବାରୁ ଚକି ଘୁରେ—A circular bit of wood (with a hole in the middle) which revolves round the peg of the lower mill-stone.

ମାଣି ବନ୍ଧ—ସ. ବି.—(ସଂ. ମଣିବନ୍ଧ=ପର୍ବତ ବିଶେଷ+ଭବାର୍ଥେ. ଅ)
Māṇi bandha ସୈନ୍ଧବ ଲବଣ—Rock salt; chloride
(ମାଣିମନ୍ଥ—ଅନ୍ୟରୂପ) of sodium.

ମାଣି ହଂସ(ସା)—ଦେ. ବିଣ. ପୁଂ—ଯେ ଅତି ଅଦରରେ ଓ ସ୍ନେହରେ
Māṇi haṁsa(sā) ପିଲାଦିନୁ ବଢ଼ି ଥାଏ ଓ ଯେ ଅତି
আলালের ঘরের দুলাল ସୁକୁମାରଆ—( A boy or girl)
दुलारू Tenderly and affectionately brought up from childhood. [ଉ—ଏଡ଼େ ମାଣିହଂସୀ ଅଟଇ
(ମାଣିହଂସୀ—ସ୍ତ୍ରୀ) ଗାଈ—ପ୍ରାଚୀ. ପରତେ ଗୀତା ।]

ମାଣେ ଗେଲ—ପ୍ରାଦେ. (ଗଡ଼ଜାତ) ବି—ଢେର୍ ବେଶି ଆନନ୍ଦ—
Māṇe gela Great joy.

ମାଣ୍ଟୁ—ଦେ. ବି—୧ । ମାଟୁ (ଦେଖ)—1. Māṭu (See)
Māṇṭu মাঠ কোঠা पपाट মাঠ मौदान
୨ । (ବଙ୍ଗଳା 'ମାଠ' ଶବ୍ଦରୁ ଅନୁକୃତ, ଯଥା—କଲିକତା-ଗଡ଼ମାଣ୍ଟୁ) ବିସ୍ତୀର୍ଣ୍ଣ ପଡ଼ିଆ—A big field.

ମାଣ୍ଡବୀ—ସ. ବି. ସ୍ତ୍ରୀ—ରାମାନୁଜ ଭରତଙ୍କର ସ୍ତ୍ରୀ—The wife of
Māṇḍabī Bharata, younger brother of Rāma-chandra. [ ଦ୍ର—ଏ ଜନକ ରାଜାଙ୍କ ଭାଇ କୁଶ-ଧ୍ୱଜଙ୍କର କନ୍ୟା ଥିଲେ । ଭରତଙ୍କ ଔରସରେ ଏହାଙ୍କର ତକ୍ଷ ଓ ପୁଷ୍କର ନାମରେ ଦୁଇଟି ପୁତ୍ର ଜନ୍ମ ହୋଇଥିଲେ ।]

ମାଣ୍ଡବ୍ୟ—ସ. ବି. ପୁଂ ( ନାମ )—ଋଷିବିଶେଷ—Name of a
Māṇḍabya sage. [ ଦ୍ର—ଏ ତପସ୍ୟାରେ ସିଦ୍ଧ ହୋଇଥିଲେ । ଏକଦା ଏ ସମାଧିମଗ୍ନ ଥିବା ଅବସ୍ଥାରେ କେତେଗୁଡ଼ିଏ ଚୋର ଆସି ଏହାଙ୍କ ଆଶ୍ରମରେ ଲୁଚିଲେ । ଚୋରଙ୍କୁ ଧରିବା ପାଇଁ ପଛରେ ଗୋଡ଼ାଉଥିବା ରାଜଦୂତ-ମାନେ ଆସି ଚୋରମାନଙ୍କ ସଙ୍ଗେ ଏହାଙ୍କୁ ମଧ୍ୟ ରାଜ-ଦ୍ୱାରକୁ ଚୋର ବୋଲି ଧରି ନେଇଗଲେ । ଏ ତୂଷ୍ଣୀଭୂତ ଧ୍ୟାନମଗ୍ନ ଥାଆନ୍ତି । ବିଚାରରେ ଏହାଙ୍କୁ ଚୋରଙ୍କ ସଙ୍ଗରେ ଶୂଳୀ ଦଣ୍ଡ ଆଦେଶ ହେଲା । ରାଜପୁରୁଷମାନେ ନେଇ ଏହାଙ୍କୁ ଶୂଳୀରେ ବସାଇ ଦେଲେ; କିନ୍ତୁ ଏ ସମାଧିସ୍ଥ ଥିବାରୁ ତାହାଙ୍କର ମୃତ୍ୟୁ ହେଲା ନାହିଁ ଓ ଶୂଳୀ ଉପରେ ତଦବସ୍ଥ ହୋଇ ବସି ରହିଲେ । ଇତ୍ୟବସରରେ ରାଜ-

ପୁରୁଷମାନେ ଏହାଙ୍କୁ ନିର୍ଦୋଷ ତପସ୍ୱୀ ବୋଲି ବୁଝି ପାରି ଏହାଙ୍କୁ ଶୂଳୀରୁ ଉଠାଇ ଦେଲେ । ତତ୍ପରେ ଏ ଋଷି କ୍ରମନ୍ତେ ଶୂଳୀ ଦଣ୍ଡ ଭୋଗ କଲେ ଏହା ଜାଣିବା ପାଇଁ ଋଷି ଧର୍ମ-ରାଜଙ୍କୁ ପଚାରିବାରୁ ଧର୍ମରାଜ କହିଲେ ଯେ ଏ ଶୈଶବ କାଳରେ କ୍ରୀଡ଼ାଚ୍ଛଳରେ ଗୋଟିଏ ପତଙ୍ଗର ଗୁହ୍ୟଦେଶରେ ଗୋଟିଏ କଣ୍ଟା ଫୋଡ଼ି ଦେଇଥିଲେ ବୋଲି ତହିଁର ଦଣ୍ଡ ସ୍ୱରୂପ ଏହାଙ୍କୁ ଶୂଳବେଧ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଲା ।]

**ମାଣ୍ଡ ମାଣ୍ଡ**—ପ୍ରାଦେ ( ବାଲେଶ୍ୱର ) ବିଣ—ଅନିଚ୍ଛୁକ; ପଶ୍ଚାତ୍‌ପଦ—
Māṇḍa māṇḍa Unwilling; hesitating. [ ଦ୍ର—ସେ ମାଣ୍ଡ ମାଣ୍ଡ ହୋଇ ଶେଷ ଦମ୍ଭ କରି କଟେରରେ ପଶିଲା—ସହକାର ପତ୍ରିକା । ]

**ମାଣ୍ଡଳିକ**—ସଂ. ବିଣ ( ମଣ୍ଡଳ + ଇକ )—୧ । ମଣ୍ଡଳ ସମ୍ବନ୍ଧୀୟ—
Māṇḍaḻika 1. Relating to Maṇḍaḻa ( See ) ୨ । ପ୍ରାଦେଶିକ—2. Provincial. ସଂ. ବି. ପୁଂ—
(ମାଣ୍ଡଳିକା—ସ୍ତ୍ରୀ) ପ୍ରାଦେଶିକ ଶାସନକର୍ତ୍ତା—The ruler of a Province ( Apte ).

**ମାଣ୍ଡି**—ଦେ. ବି ( ସଂ. ମୁଣ୍ଡ; ମୁଣ୍ଡତଳେ ଦିଆ ଯିବାରୁ )—୧ । ତକିଆ;
Māṇḍi ମୁଣ୍ଡଲା—1. Pillow; bolster. [ ଦ୍ର—
বালিস ଜାଗି ଦେଖୁଥିଲି କରି-ମାଣ୍ଡି ମାତ୍ର ଲୁଣ୍ଠାଇଛି ଭ୍ରାନ୍ତ
तकिया ସ୍ୱପ୍ନେ । ରାଧାନାଥ. ଯଯାତି । ] ୨ । ବୋହିଥି-
চিমলা ମାନଙ୍କର ମୁଣ୍ଡରେ ଓ ସବାରୀ ବେହେରାମାନଙ୍କର କାନ୍ଧରେ
बीडा ପକାଇବା କନାର ମୁଣ୍ଡଲା; ଚମ୍ବଲା—2. Cushions. of rags-placed over the head by porters and on the shoulders by palki-bearers
ଦେ. ବିଣ ( ପୁଂ ଓ ସ୍ତ୍ରୀ )—ହୃଷ୍ଟପୁଷ୍ଟ ଓ ଗେଡ଼ା ( ଶିଶୁ )—Small in stature and robust ( child )
ପ୍ରାଦେ ( ଗଡ଼ଜାତ ) ବି—୧ । ଛୁଆଣି କରିବା ଘରର ଗଡ଼—1. A belt of thatching of a thatched house. ୨ । ( କୋହ୍ଲ ଓ ଅନାର୍ଯ୍ୟ ଭାଷା; ତୁଳ. ସଂ. ମଣ୍ଡ )—ଭାତ—2. Boiled rice.

**ମାଣ୍ଡିଆ**—ଦେ. ବି ( ସଂ. ମଣ୍ଡ )—୧ । ଟିପ ବିଲରେ ଶରତ୍‌କାଳରେ
Māṇḍiā ଜନ୍ମିବା ଏକପ୍ରକାର କଦନ୍ନ ବା ନିକୃଷ୍ଟ ଖାଦ୍ୟ ଶସ୍ୟ—
ସଂ. ମଣ୍ଡ, ରାଗି, ଲାଞ୍ଛନ, 1. A kind of small round
ଲାଞ୍ଛନା, ଗୁଚ୍ଛକଣିଶ, ବଟ୍ଟକ, grain grown in autumn;
ସ୍ଥୂଳକଙ୍ଗୁ, ରୂକ୍ଷ, ସ୍ଥୂଳପ୍ରିୟଙ୍ଗୁ, Elesine Coracana. [ ଦ୍ର—
ରାଜିକା, ବହୁଦଳ କଣିଶ ଏହାର ଗଛ ଧାନ ଗଛ ପରି, କିନ୍ତୁ
মড়ুআ ପତ୍ର ଶ୍ରେଷ୍ଠ ଓ ଚଉଡ଼ା ଓ ଏଥିର ନଡ଼ା
मागडुआ, माड्आ, ମୋଟା । ଏ ଗଛର ଅଗରେ ବାଜରା
मक्रा, रेटका ପରି କେଣ୍ଡା ବାହାରେ ଓ କେଣ୍ଡା
ତେ. ରାଗୀ ମଧ୍ୟରୁ ସୋରିଷଠାରୁ ବଡ଼ ନାଲି ଶସ୍ୟ ବାହାରେ । ଏହା ବାଜରା ଜାତୀୟ କଦନ୍ନବିଶେଷ । ଏହା ଭାରତର ଅନେକ ସ୍ଥାନରେ କୃଷିଦ୍ୱାରା ଓ ବନ୍ୟ ଅବସ୍ଥାରେ ଉତ୍ପନ୍ନ ହୁଏ । ଏ ଫସଲ ପାଇଁ ବେଶି ପାଣି ଲୋଡ଼ା ହୁଏ ନାହିଁ ଓ ଏହା ଟିପ ଜମିରେ ଓ ପର୍ବତର ଗାଲୁ ଦେଶରେ ଅନାୟାସରେ କରାଯାଏ । ଅଧିକ ବର୍ଷା ହେଲେ ଏ ଫସଲର କ୍ଷତି ହୁଏ । ଏ ଗଛରେ ଶସ୍ୟ ପାଚିଗଲେ ମଧ୍ୟ ଧାନ ପରି ଏହା କିଆରିରେ ଝଡ଼ି ପଡ଼େ ନାହିଁ । ଗରିବ ଲୋକେ ଓ ବିଶେଷତଃ ଦୁର୍ଭିକ୍ଷ ସମୟରେ ଲୋକେ ଏଥିର ଚୂନାରେ ଜାଉ ( ଅମ୍ବିଳ ) ଓ ତକୁଳିପିଠା କରି ଖାଆନ୍ତି ଓ ଚାଉଳ ସଙ୍ଗେ ମିଶାଇ ସିଝି କରି ଖାଆନ୍ତି । ଏଥିରୁ ଏକ-ପ୍ରକାର ସରାପ ମଧ୍ୟ ତିଆରି ହୁଏ । ବୈଦ୍ୟକମତରେ ଏହା କଷାୟିଆ, ତୃପ୍ତିଜନକ, ବଳବର୍ଦ୍ଧକ, ତ୍ରିଦୋଷନାଶକ ଓ ରକ୍ତଦୋଷ ଦୂରକାରକ ( ହି.-ଶ ) । ବଡ଼ଲୋକମାନେ ଦେହକୁ ଓ ମସ୍ତିଷ୍କକୁ ଥଣ୍ଡା ରଖିବା ପାଇଁ ସକାଳୁ ଏହାର ବାସି ଜାଉ ଖାଆନ୍ତି । ଦାକ୍ଷିଣାତ୍ୟ ଅଞ୍ଚଳରେ ଏହାର ଆଦର ବେଶି । ମାଣ୍ଡିଆର ଭିନ୍ନ ଭିନ୍ନ ପ୍ରକାର, ଯଥା—(କ) ଗାଈ-ଠେଉଆ—ଗାଈ ଠେଙ୍ଗପରି ଏକ ଥୋପାରେ ଗୁଡ଼ିଏ କେଣ୍ଡା ଥାଏ । (ଖ) କଲେଇ—ଏଥିର ଶସ୍ୟ ମେଞ୍ଚା ଓ ଲମ୍ବା । (ଗ) ବୁଢ଼ା—ବଡ଼, ତଭୁମାସ୍ୟାରେ ବୁଣାଯାଏ, ମାଘରେ କଟା ଯାଏ । (ଘ) ମାକଡ଼ ମୁଠିଆ—ଶସ୍ୟର ଥୋପା ପାଚିଗଲେ ମୁଠାପରି ସଙ୍କୁଚିତ ହୋଇଯାଏ । (ଙ) ଲଘୁ ବା ଥୋଲି ମାଣ୍ଡିଆ—ଗଛ ଧୋବ ଓ ଖାଗୁଆ; ଶସ୍ୟ ଶ୍ରେଷ୍ଠ; ଭାଦ୍ରମାସରେ କଟାଯାଏ । ] ୨ । ମାଣ୍ଡିଆ କଙ୍କଡ଼ା ( ଦେଖ )—2. Māṇḍiā kaṅkaṟḍā ( See ) ବିଣ—ମାଣ୍ଡୁଆ ( ଦେଖ )—Māṇḍuā ( See ) ପ୍ରାଦେ ( ବାଲେଶ୍ୱର ) ବି—ପିତଳର ବଡ଼ କୁଣ୍ଡ—A big brass tub.

**ମାଣ୍ଡି(ଣ୍ଡୁ)ଆ କଙ୍କଡ଼ା**—ଦେ. ବି—୧ । ବଡ଼ କଳା କଙ୍କଡ଼ା—1. Big
Māṇḍi(ṇḍu)ā kaṅkaṟḍā black crabs. ୨ । ସମୁଦ୍ରରେ
বড় কাঁকড়া ମିଳିବା ବଡ଼ କଙ୍କଡ଼ା—2. Big sea-crabs.
बडा कॅकडा [ ଦ୍ର—ଏହା ଜଳାଶୟର ତଳେ ବା କୂଳର ଭୂମିରେ ଗାତ କରି ରହେ; ଖାଇବାକୁ ସୁସ୍ୱାଦୁ । ଏହାକୁ ଗାଡ଼ି(ଡୁ)ଆ କଙ୍କଡ଼ା ମଧ୍ୟ କହନ୍ତି । ]

**ମାଣ୍ଡିକିଳା**—ପ୍ରାଦେ ( ଗଞ୍ଜାମ ) ବି—ମାଣ୍ଡୁକିଳା ( ଦେଖ )
Māṇḍikiḻā Māṇḍukiḻā [ See ]

**ମାଣ୍ଡି କୋଳଥ**—ଦେ. ବି ( ସହରର ଶବ୍ଦ ସଂ. ମଣ୍ଡ + କୁଳତ୍ଥ )—
Māṇḍi koḻatha ୧ । ମାଣ୍ଡିଆ ଓ କୋଳଥ—1. Māṇḍiā
মাড়ুআ কুলথি and horse-gram. [ ଦ୍ର—ଏ ଦୁଇ
मांडुआ कुलथि ଶସ୍ୟ ଟିପ ଓ ନିକୃଷ୍ଟ ଜମିରେ ହୁଏ । ଏଥିପାଇଁ ମାଣ୍ଡିଆ ଓ କୋଳଥ ଜନ୍ମିବା ଉପଯୁକ୍ତ ଜମିକୁ ମାଣ୍ଡିକୋଳଥ ଜମି ବୋଲାଯାଏ । ] ୨ । ମାଣ୍ଡିଆ ଓ କୋଳଥ ଫସଲ ହେବା ଉପଯୋଗୀ ନିକୃଷ୍ଟ ଜମି—2. Inferior soil; soil fit for growing Māṇḍiā and horse-gram.

**ମାଣ୍ଡିବା**—ପ୍ରାଦେ ( ବାଲେଶ୍ୱର ) କ୍ରି—ମାଡ଼ିବା—
Māṇḍibā To tread upon.

ମାଣ୍ଡୁ—ଦେ. ବି (ତୁଳ. ସଂ. ମଣ୍ଡଳ; ଦେବତାବିଶେଷଙ୍କୁ ଆବାହନ କରିବା
Māṇḍu ପାଇଁ ଭୂମିରେ ଅଙ୍କିତ ଚକ୍ର ବିଶେଷ—A particular mystical diagram used in
ପରୀକ୍ଷା
धर्म परीक्षा invoking a Divinity. (Apte)—୧ । ଧର୍ମମାଣ୍ଡୁ; ଅଭିଯୁକ୍ତ ବ୍ୟକ୍ତିଙ୍କୁ ପରୀକ୍ଷା କରିବା ପାଇଁ ପୂର୍ବକାଳରେ ବ୍ୟବହୃତ ଅଗ୍ନିଆଦିଦ୍ୱାରା ପରୀକ୍ଷା; ଧର୍ମ ପରୀକ୍ଷା; ଧର୍ମମାଣ୍ଡୁ—1. Ordeal [ of fire, hot iron, etc ) through which an accused person had to pass, before he was declared innocent. [ ଦ୍ର—ଅଭିଯୁକ୍ତ ବ୍ୟକ୍ତି ନିଜ ହାତରେ ତାତିଲା ଲୁହା ଧରିଲେ, କିମ୍ବା ନିଆଁ ଉପରେ ଚାଲିଗଲେ, କିମ୍ବା ବିଷଧର ସର୍ପ ଥିବା ମାଠିଆ ମଧ୍ୟରେ ହାତ ପୂରାଇ ଦେଲେ, କିମ୍ବା ଫୁଟିଲା ତେଲରେ ହାତ ବୁଡ଼ାଇ ଦେଲେ ଯେବେ ଉକ୍ତ ବ୍ୟକ୍ତି ଆହତ ହେଉ ନ ଥିଲା, ତେବେ ସେ ନିର୍ଦ୍ଦୋଷ ବୋଲି ପ୍ରତିପାଦିତ ହେଉଥିଲା। ଅଭିଯୁକ୍ତ ବ୍ୟକ୍ତିର ଅଗ୍ନିଦ୍ୱାରା ପରୀକ୍ଷାକୁ ଅଗ୍ନିମାଣ୍ଡୁ, ଉତ୍ତପ୍ତ ତୈଳଦ୍ୱାରା ପରୀକ୍ଷାକୁ ତୈଳମାଣ୍ଡୁ, ତପ୍ତଲୌହଦ୍ୱାରା ପରୀକ୍ଷାକୁ ଲୌହମାଣ୍ଡୁ, ଉତ୍ତପ୍ତ ଜଳଦ୍ୱାରା ପରୀକ୍ଷାକୁ ଜଳମାଣ୍ଡୁ, ସର୍ପଦ୍ୱାରା ପରୀକ୍ଷାକୁ ସର୍ପମାଣ୍ଡୁ ବୋଲି ଯାଉଥିଲା । ]

୨ । ଚେନ୍ତୁରି; ଶଗଡ଼ର ଦୁଇ ଦଣ୍ଡା ତଳେ ଅଖ ଉପରେ ଅଖର ଆଡ଼ବାଗରେ ବସା ଯାଇଥିବା ଦୁଇଖଣ୍ଡ ଲମ୍ବା କାଠ—2. Two long bits of wood put crosswise on the axle and over which the beams of a cart are securely set by means of wooden pins. [ଦ୍ର—ଚେନ୍ତୁରି କାଠରେ ଘର କରାଯାଇ ଏହା ଅଖ ଉପରେ ଆଡ଼ବାଗରେ ଦୃଢ଼ଭାବରେ ବସାଯାଏ ଓ ଏହି କାଠ ଦୁଇଖଣ୍ଡି ଉପରେ ଶଗଡ଼ର ଦୁଇ ଦଣ୍ଡାକୁ ରଖି ମାଣ୍ଡୁକୀଳାଦ୍ୱାରା ଆବଦ୍ଧ କରାଯାଏ । ] ୩ । ( ସଂ. ମଣ୍ଡ ) ମାଡ଼ୁ (ଦେଖ)—3. Māṛḍu (See) ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ )—କଞ୍ଚା ତାଳ—Green or raw palm fruit. ପ୍ରାଦେ. (ବାଲେଶ୍ୱର ) ବି—ଏକଜାତୀୟ ଧାନ—A species of paddy

ମାଣ୍ଡୁଆ—ଦେ. ବି ( ସଂ. ମଣ୍ଡକ )—ପିଠା ଓ ମଇଦା ମିଶା ଛେନାରେ
Māṇḍua ପ୍ରସ୍ତୁତ ଏକପ୍ରକାର ପିଠା—
মণ্ডা माँडा A cake made of cheese. ପ୍ରାଦେ. (ସମ୍ବଲ
ম. মাংডে ପୁର, ଗଡ଼ଜାତ ଓ ବାଲେଶ୍ୱର )ବି—ମାଣ୍ଡୁ (ଦେଖ)
Māṇḍu (See). ପ୍ରାଦେ. ( ଖୋର୍ଦ୍ଧା ) ବି—ନାନମାନ ( ଦେଖ )—Nānamāna ( See )

ମାଣ୍ଡୁଆ—ଦେ. ବିଣ. ପୁଂ ( ସଂ. ମନ୍ଦ )—୧ । ନିର୍ବୋଧ; ମୋଟା-
Māṇḍuā ବୁଦ୍ଧିଆ—1. Dllw; foolish; of slow under-
বোকা मंदा standing. ୨ । ମୋଟ; ବହଳିଆ—2. Coarse.

ମାଣ୍ଡୁଇ } ସ୍ତ୍ରୀ ୩ । ମୋଟା; ସ୍ଥୂଳକାୟ—3. Corpulent; fat.
ମାଣ୍ଡୁଣୀ }
মোটা ବି—ମାଣ୍ଡୁଆ ( ଦେଖ )—Māṇḍua ( See )

ମାଣ୍ଡୁକୀଳା—ଦେ. ବି—ଚେନ୍ତୁରି କିଲ; ଶଗଡ଼ ଦଣ୍ଡାସହିତ ମାଣ୍ଡୁକୁ ସଲଗ
Māṇḍukīlā କରିବା ନିମନ୍ତେ ବ୍ୟବହୃତ କୀଳା—Pegs which keep together the beams and the Māṇḍu-pieces of a cart.

ମାଣ୍ଡୁ ଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ମାଣ୍ଡୁ ପ୍ରଣାଳୀଦ୍ୱାରା ଶପଥ
Māṇḍu debā କରାଇବା—To administer an ordea.
হলফ দেওয়া हलफ देना to a person

ମାଣ୍ଡୁ ଧରିବା—ଦେ. କ୍ରି—ମାଣ୍ଡୁଦ୍ୱାରା ଶପଥ କରିବା—To swear
Māṇḍu dharibā by means of an ordeal.
হলফ করা हलफ करना

ମାଣ୍ଡୁକୀ—ସଂ. ବି—ଥାଲକୁଡ଼ି ( ଗୁଳ୍ମ )—
Māṇḍukī Indian pennywort ( plant )

ମାତ୍—ଦେ. ବି ( ସଂ. ମତ୍ତତା )—୧ । ମାତୁ; ମତ୍ତତା—1. Intoxi-
Māt cation; excitement. ୨ । ଜିଗର; ଜିଦ୍—2. Zid.
মত্ততা मस्ती মাত্ मात ବୈଦେ. ବି. ( ଅ )—ପରାଜୟ—
Defeat. [ ଯଥା—ସତରଞ୍ଜି ଖେଳରେ ବାଜିମାତ୍ । ]
( ତୁଳ. ସଂ. ମାଥ=ବିନାଶ )

ମାତ୍ ଉଠିବା—ଦେ. କ୍ରି—୧ । ମାତୁ ଉଠିବା; କୌଣସି କାର୍ଯ୍ୟ ନିମନ୍ତେ
Māt uṭhibā ମତ୍ତତା ଜନ୍ମିବା—1. The state of being
মত্ততা উঠা mad after a thing. ୨ । କୌଣସି ବିଷୟରେ
मस्ती चढना ଜିଦ୍ ଲାଗିବା—2. Zid in a matter; importunacy.

ମାତ୍ବା—ପ୍ରାଦେ ( ସମ୍ବଲପୁର ) କ୍ରି ( ସଂ. ମତ୍ତ )—ନିଶାରେ ଭୋଳ
Mat-bā ହେବା—To be intoxicated.

ମାତ୍ସର—ସଂ. ବିଣ. ପୁଂ (ମତ୍ସର+ଅ)—ପରର ଉନ୍ନତିରେ ଦୁଃଖିତ—
Māt-sara (ମାତ୍ସରିକ—ଅନ୍ୟରୂପ) Envious; jealous.
( ମାତ୍ସରୀ, ମାତ୍ସରିକା—ସ୍ତ୍ରୀ )

ମାତ୍ସର୍ଯ୍ୟ—ସଂ. ବି ( ମତ୍ସର+ଭାବ. ଯ )—ପରର ଉନ୍ନତିରେ
Māt-sarjya ଦୁଃଖିତ ହେବା ମନୋଭାବ; ପରଶ୍ରୀକାତରତା—
( ମାତ୍ସର୍ଯ୍ୟ—ଅନ୍ୟରୂପ ) Envy at another's weal.

ମାତ୍ସି(ସ୍ୟି)କ—ସଂ. ବି ପୁଂ (ମତ୍ସ, ମତ୍ସ୍ୟ+ଜୀବିକାର୍ଥେ. ଇକ)—ମାଛମରା
Māt-si(syi)ka ବ୍ୟବସାୟୀ; ଜାଲିକ; ଧୀବର—A fisherman ( Apte ).

ମାତ—ଗ୍ରା. ବି—୧ । ମାତ୍ ( ଦେଖ )—1. Māt ( See ).
Māta ୨ । ମାତୁ ( ଦେଖ )—2. Mātu ( See ) ୩ । (ସଂ.
मात ମା ମାତୃ) ମାତା—3. Mother. ୪ । (ସମ୍ବୋଧନ. ମାତଃ)
ହେ ମାତଃ—4. ( interjection ) Oh mother.
[ଉ—ହନୁ ବୋଇଲେ ଯେ ତୁମ୍ଭଙ୍କୁ ମାତ ମୁହିଁ—କୃଷ୍ଣସିଂହ. ମହାଭାରତ. ବନ । ]

ମାତଃ—ସଂ. ଅ ( ସମ୍ବୋଧନ; ମାତୃ ଶବ୍ଦର ସମ୍ବୋଧନ )—ହେ ମାତଃ;
Mātaḥ ହେ ମାଆ !—Oh ! Mother.

ମାତଙ୍ଗ—ସଂ. ବି. ପୁଂ ( ମତଙ୍ଗ+ସ୍ୱାର୍ଥେ. ଅ )—୧। ହସ୍ତୀ—
Mātaṅga 1. Elephant. [ ଦ୍ର—ଏ ଶବ୍ଦ ଶ୍ରେଷ୍ଠତାବାଚକ
( ମାତଙ୍ଗୀ—ସ୍ତ୍ରୀ ) ଶବ୍ଦରୂପେ ଅନ୍ୟ ଶ୍ରେଣୀବାଚକ ଶବ୍ଦ ପରେ
ଯୁକ୍ତ ହୁଏ; ଯଥା—ବଳାହକ ମାତଙ୍ଗ ( Apte ). ]
୨। ଚଣ୍ଡାଳ; ଈଷତ—2. A pariah; a sweeper; a person belonging to the untouchable class. ୩। କିରାତ; ପାହାଡ଼ିଆ ଲୋକ—3. A hunter; a mountaineer (Apte). ୪। ଅଶ୍ୱତ୍ଥବୃକ୍ଷ—4. The Religious Indian fig tree. ୫। ସବର୍ତ୍ତକ ମେଘ ( ହି. ଶ )— . A kind of cloud. ୬। ନାଗ ବିଶେଷ [ହି.ଶ.]—6 A kind of a mythological serpent. ୭। ଋଷିବିଶେଷ—7. Name of sage. [ ଦ୍ର—ଏ ଋଷି ଋଷ୍ୟମୂକ ପର୍ବତରେ ତପସ୍ୟା କରୁଥିଲେ । ବାଳୀ ଦୁନ୍ଦୁଭ ରାକ୍ଷସକୁ ମାରି ଫିଙ୍ଗି ଦେଲାବେଳେ ତା ଦେହର ରକ୍ତ ଋଷିଙ୍କ ଉପରେ ପଡ଼ିବାରୁ ସେ ବାଳୀକୁ କ୍ରୋଧରେ ଅଭିଶାପ ଦେଲେ; ତୁ ଏହି ପର୍ବତକୁ ଆସିଲେ ତୋ ମୁଣ୍ଡ ଫାଟିଯିବ । ବାଳୀ ତା ଭାଇ ସୁଗ୍ରୀବକୁ ମାରି ତଡ଼ି ଦେବାରୁ ସୁଗ୍ରୀବ ଏହି ପର୍ବତକୁ ନିରାପଦ ସ୍ଥାନ ଜାଣି ତହିଁରେ ବାସ କରୁଥିଲା । ସେହିଠାରେ ସେ ରାମଚନ୍ଦ୍ରଙ୍କ ସହିତ ସାକ୍ଷାତ୍ କରି ମିତ୍ରତା ସ୍ଥାପନ କରିଥିଲା । ଏ ଋଷି ଶବରୀର ଗୁରୁ ଓ ମାତଙ୍ଗୀ ଦେବୀଙ୍କ ଉପାସକ ଓ ମୌନବ୍ରତୀ ଥିଲେ । ଏଥିପାଇଁ ଏହାଙ୍କ ଅଧ୍ୟୁଷିତ ପର୍ବତର ନାମ ଋଷ୍ୟମୂକ ହୋଇଥିଲା—ହି. ଶବ୍ଦସାଗର । ]

ମାତଙ୍ଗ ନକ୍ର—ସଂ.ବି—୧। ଜଳହସ୍ତୀ—1. Walrus; sea-elephant
Mātaṅga nakra ( M. W ). ୨। ହାତି ପରି ବଡ଼ କୁମ୍ଭୀର—2. An alligator as large as an elephant ( Apte ).

ମାତଙ୍ଗୀ—ସଂ. ବି. ସ୍ତ୍ରୀ—୧। ହସ୍ତିନୀ; ହାତୁଣୀ—1. She-elephant.
Mātaṅgī ୨। ତନ୍ତ୍ରୋକ୍ତ ଦଶ ମହାବିଦ୍ୟା ମଧ୍ୟରୁ ଏକ ଦେବୀ—2. One of the 10 Goddesses mentioned in the Tantras. ୩। ଚଣ୍ଡାଳୁଣୀ—3. Sweeper woman. [ ଉ—ବୋଇଲ । ବ୍ରହ୍ମକନ୍ୟାକୁ ମାତଙ୍ଗୀ । ଉଞ୍ଜ. ବୈଦେହୀଶବିଳାସ । ] ୪। କଶ୍ୟପଙ୍କ ଏକ କନ୍ୟା—[ଦ୍ର-ଏହାଙ୍କଠାରୁ ହସ୍ତୀମାନେ ଉତ୍ପନ୍ନ ହୋଇଥିଲେ (ହି. ଶ]—4. Name of a daughter of Sage Kaśyapa.

ମାତ (ତୁ,ଥ) ଟ—ଦେ. ବି.—ମଥୋଟ (ଦେଖ)—Mathoṭ (See)
Māta(tu, tha)ṭ মথোট **मथोट; जमाइ**
(ମ[ମା]ଥୋଟ, ମଥଟ, ମଥୌଟ—ଅନ୍ୟରୂପ).

ମାତପ, (ବ, ବ୍ବ)ର—ବୈଦେ. ବି—( ଅ ମୋତବାର୍ = ବିଶ୍ୱାସଯୋଗ୍ୟ;
Mata pa(ba,bba)r ବିଶ୍ୱସନୀୟ )—୧। ମୁରବୀ—1.
মাতবর **मातवर** Guardian; patron. ୨। ଗ୍ରାମର ଭଦ୍ର—2. Headman of a village. ୩। ଗ୍ରାମର ପ୍ରଧାନ ବ୍ୟକ୍ତି—3. Prominent man of a village. ୪। ବଡ଼ଲୋକ; ଧନୀବ୍ୟକ୍ତି—4. Rich person; moneyed man. [ ଉ—ମଫସଲର ଜଣେ ମାତବର ଜମିଦାର ମଜିଷ୍ଟ୍ରେଟଙ୍କୁ ସାମନ୍ତରେ ଉପସ୍ଥିତ ହୋଇ ଅଛନ୍ତି । ଫକୀରମୋହନ ଛମାଣ ଆଠଗୁଣ୍ଠ ।] ୫। ମହାପୁରୁଷ—5. Great man. ୬। ପ୍ରତିଭୂ; ଯାମିନ୍—6. Security; surety. ୭। ବିଶ୍ୱାସ—7. Trust; reliance. ୮। ବ୍ୟବସାୟିକ ଖାତିର—8. Credit in business. ବିଣ—୧। ସମ୍ଭ୍ରାନ୍ତ; ମାନ୍ୟ—1. Respectable. ୨। ଯୋଗ୍ୟ—2. Worthy. ୩। ବିଶ୍ୱାସଯୋଗ୍ୟ; ବିଶ୍ୱସନୀୟ—3. Trustworthy; reliable. ୪। ବୃହତ୍; ପ୍ରଧାନ; ମହତ୍—4. Great; big. ୫। ଧନୀ—5. Rich. [ଉ—ମାତବର ବ୍ୟକ୍ତିମାନେ ଇତର ବ୍ୟକ୍ତିଠାରୁ ବେଶି ଆଦର ପାନ୍ତି । ରାଧାନାଥ. ବିବେକୀ ।] ୬। ଯାହାର ବ୍ୟବସାୟ କ୍ଷେତ୍ରରେ ଖାତିର ଅଛି—6. Having credit in business circles.

ମାତପ(ବ,ବ୍ବ)ରି—ବୈଦେ. ବି—(ଅ. ମାତ୍‌ବରୀ)—୧। ଯାମିନ୍; ପ୍ରତିଭୂତା—1. Security. ୨। ବ୍ୟବସାୟ କ୍ଷେତ୍ରରେ ଖାତିର—2. Credit in business. ୩। ବିଶ୍ୱାସ—3. Trust. ୪। ବିଶ୍ୱସନୀୟତା—4. Trustworthiness.
Māta pa(ba, bba)ri
মাতব্বরি
**मातवरी**

ମାତମ—ବୈଦେ. ବି.—(ଆ.)—ମୃତଜନଜନିତ ଶୋକ—Lamentation for a dead person.
Matam মাতম **मातम**
(ମା[ଥ]ତମ୍—ଅନ୍ୟରୂପ)

ମାତର—ଗ୍ରା. (ପଦ୍ୟ) ଅ—(ସଂ ମାତ୍ରଂ)—୧। କିନ୍ତୁ; ମାତ୍ର—1. But. ୨। କେବଳ; ମାତ୍ର—2. Only. [ ଉ—ବୋଲୁ ରାମ ପ୍ରତ୍ୟୁତ୍ତର, ରହିଲା ବୃଥା ମାତର ହେଲା ପଲ୍ଲବ ହତ ସମୟେ ସେ । ଉଞ୍ଜ. ବୈଦେହୀଶବିଳାସ ।]
Mātara মাত্র **लेकीन, सिर्फ**
(ମାତରକ,ମାତ୍ରକ—ଅନ୍ୟରୂପ)

ମାତରଙ୍ଗ—ପ୍ରାଦେ. ( ଗଞ୍ଜାମ ) ବି—(ସଂ. ମାତୁଳଙ୍ଗ)—ନାରଙ୍ଗ—
Mātaraṅga A kind of orange; the sweet orange.

ମାତରା—ଗ୍ରା. ବି—୧। (ସଂ. ମାତ୍ରା)—ମାତ୍ରା (ଦେଖ) Matrā (See)
Mātarā গুটলা **फडुआ**
୨। ଅଳୁବାତରା (ଦେଖ)—2. Alubātarā (See)

ମାତରି ପୁରୁଷ—ସଂ.ବି. ପୁଂ(ସଂ ମାତରି +ପୁରୁଷ)—ଯେଉଁ ବ୍ୟକ୍ତି ଆପଣା ଘରେ ନିଜର ମାଆ ଓ ସ୍ତ୍ରୀ ଆଦିଙ୍କ ପାଖେ ବୀରତାର ଅସ୍ଫାଳନ କରେ, କିନ୍ତୁ ବାହାରେ କିଛି କରିପାରେ ନାହିଁ; ଘେରକେସୂର (ହି.ଶ)—A person who brags of his valour before the womenfolk of his house, but does nothing valorous outside; a cowardly boaster; a paltroon (Apte).
Mātari purusha

**ମାତରିଶ୍ୱା**—ସ. ବି (ମାତରି=ଆକାଶରେ+ଶ୍ୱି ଧାତୁ=ବୃଦ୍ଧିପାଇବା+ କର୍ତ୍ତୃ. ଅନ୍ ମାତରିଶ୍ୱନ୍ ଶବ୍ଦ; ୧ମା. ୧ବ)—
Mātariśwā
୧ । ବାୟୁ; ପବନ—1. Wind; air. ୨ । ଏକପ୍ରକାର ଅଗ୍ନି—2. A kind of fire.

**ମାତଲାମି**—ଦେ. ବି. ( ବଙ୍ଗଳାରୁ ଅନୁକୃତ )—୧ । ମଦ ନିଶାରେ ଉନ୍ମତ୍ତତା; ମାତୁ—1. Intoxication. ୨ । ମଦ୍ୟୋନ୍ମତ୍ତ ବ୍ୟକ୍ତିର ଆଚରଣ; ମତୁଆପଣ—
Mātalāmi
मातलामि
**मस्ती, मतताइ** 2. The conduct of an intoxicated person. ୩ । ଉନ୍ମତ୍ତତା—3. Madness.

**ମାତଲି**—ସ. ବି. ପୁଂ (ନାମ)—ଇନ୍ଦ୍ରଙ୍କ ସାରଥି—The name of
Mātali
the charioteer of Indra. ଦେ. (ପ୍ରାଚୀନ) ବି—(ବିଶ୍ୱାସ) ଘାତକତା—Breach (of faith) the killing (of faith). (ଉ—ଗୋ ବ୍ରହ୍ମହତ୍ୟା ଯେ ମାତୃ ହରଣ ବଶୁଳ, ସୁରାପାନ ଜୀବ ହତ୍ୟା ବିଶ୍ୱାସ-ମାତଳି । ପ୍ରାଚୀ. ଗୁରୁଭକ୍ତି ଗୀତା ।)

**ମାତହତ୍**—ବୈଦେ. ବି (ଅ. କଟରଥ)—ଅଧୀନ କର୍ମଚାରୀ—
Mātahat मातहत **मातहत** A subordinate.
(ମାତହତୀ—ଅବସ୍ଥାବାଚକ ବିଶେଷ୍ୟ)

**ମାତା**—ସ. ବି. ସ୍ତ୍ରୀ (ମାତୃ ଶବ୍ଦ; ୧ମା. ୧ବ)—୧ । ଜନନୀ; ମାଆ;
Mātā
ଜନ୍ମଦାତ୍ରୀ; ଗର୍ଭଧାରିଣୀ—1. Mother. ୨ । ମାତୃ-
(ପିତା—ପୁଂ)
ସ୍ଥାନୀୟା ସ୍ତ୍ରୀ—2. A female who is as adorable as one's own mother. [ଦ୍ର—ଶାସ୍ତ୍ର ଅନୁସାରେ ଜନନୀ, ସ୍ତନ୍ୟଦାତ୍ରୀ, ଗୁରୁପତ୍ନୀ, ପିତୃରମଣୀ, ସ୍ନେହଦାତ୍ରୀ, ଶ୍ୱଶ୍ରୂ, ପିତାମହୀ, ମାତାମହୀ, ମାଉଳାଣୀ, ମାତୃଷ୍ୱସା, ପିତୃଷ୍ୱସା, ପିତୃବ୍ୟସ୍ତ୍ରୀ, ଜ୍ୟେଷ୍ଠସହୋଦରୀ, ଭ୍ରାତୃଭାର୍ଯ୍ୟା ପୁତ୍ରବଧୂ ଓ କନ୍ୟା ଏ ଷୋଡ଼ଶ ମାତା ଅଟନ୍ତି; ମତାନ୍ତରରେ ଗର୍ଭଧାରିଣୀ, ଧାତ୍ରୀ, ଗୁରୁପତ୍ନୀ, ବ୍ରାହ୍ମଣୀ, ରାଜପତ୍ନୀ, ପୃଥିବୀ ଓ ଗାଈ ଏ ସପ୍ତ ମାତା ଅଟନ୍ତି ।] ୩ । ଶ୍ରୀ; ଲକ୍ଷ୍ମୀ; କମଳା—3. The Goddess of wealth. ୪ । ସୃଷ୍ଟିର ଆଠ ଗୋଟି ଶକ୍ତି ବା ଦେବତା—4. The 8 forms of the Creative Energy. [ ଦ୍ର—ଶାସ୍ତ୍ର ଅନୁସାରେ ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ, କୌମାରୀ, ଚାମୁଣ୍ଡା ଓ ଚର୍ଚ୍ଚିକା ଏହି ଅଷ୍ଟ ଶକ୍ତି ଅଟନ୍ତି ।] ୫ । ଜୀବ—5. Animal lite. ୬ । ଗମନ—6. Going. ୭ । ଆକାଶ—7. The sky; ether. ବିଣ. ପୁଂ. (ମା ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—ପରିମାଣକର୍ତ୍ତା—
(ମାତ୍ରୀ—ସ୍ତ୍ରୀ) Measuring. ଦେ. ବି. ସ୍ତ୍ରୀ—୧ । ଦେବୀ; ଠାକୁରାଣୀ—1. Goddess, ୨ । ମାତାଜୀ; ସଂସାର-
(ବାବାଜୀ—ପୁଂ) ତ୍ୟାଗିନୀ ସ୍ତ୍ରୀ—2. A female recluse; a nun. ୩ । ମେଣ୍ଢାମାନଙ୍କର ଏକ ପ୍ରକାର ରୋଗ—3. Variola; a disease of lambs. ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ)—ବସନ୍ତ ରୋଗ—Small-pox. (ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ)

**ମାତାଜୀ**—ଦେ. ବି. ସ୍ତ୍ରୀ—ସଂସାରତ୍ୟାଗିନୀ ସ୍ତ୍ରୀ; ସ୍ତ୍ରୀ ସାଧୁ—A female
Mātājī माताजी **माई राम** recluse; a nun.
(ବାବାଜୀ—ବିପରୀତ)

**ମାତା ଟିପା**—ପ୍ରାଦେ. (ସମ୍ବଲପୁର) ବି—୧ । ବସନ୍ତ ଟୀକା—
Mātā ṭipā 1. Vaccination. ୨ । ବସନ୍ତ ଟୀକା ଦେବା ବ୍ୟକ୍ତି; ଟୀକାଦିଆ—2. Vaccinator.

**ମତା ଟିପାଇ ହେବା**—ପ୍ରାଦେ. (ସମ୍ବଲପୁର) କ୍ରି—ବସନ୍ତ ପାଇଁ ଟୀକା
Mātā ṭipāi hebā
ନେବା—To be vaccinated or inoculated for smallpox.

**ମାତା ଠାକୁରାଣୀ**—ଦେ. ବି—(ମାତାଙ୍କ ପ୍ରତି ସମ୍ମାନସୂଚକ ଶବ୍ଦ)
Mātā ṭhākurāṇī ଦେବତାକଳ୍ପା ମାତା; ମାତୃ ଦେବୀ—
माता ठाकुराणी (A word used in respect for mother),
**माताजी** One's revered mother
(ଯଥା—ମାତା ଠାକୁରାଣୀଙ୍କୁ ଗୋପାଳର ନମସ୍କାର ।)

**ମାତା ପିତା**—ଦେ. ବି. ( ଦ୍ୱନ୍ଦ୍ୱ; ସ. ମାତା+ପିତା=ମାତାପିତୃ
Mātā pitā
ଶବ୍ଦର ଦ୍ୱିବଚନରେ ମାତାପିତରୌ; ମାତର-ପିତରୌ)—One's parents; mother and father.

**ମାତା ପିତୃ ହୀନ**—ସ. ବିଣ. ପୁଂ (ଦ୍ୱନ୍ଦ୍ୱ ଓ ତୃତୀୟା ତତ୍; ମାତୃ ଓ ପିତୃ
Mātā pitṛu hīna
=ମାତାପିତୃ ଶବ୍ଦ+ହୀନ )—ଯେଉଁ
(ମାତା ପିତୃ ହୀନା—ସ୍ତ୍ରୀ) ଶିଶୁର ପିତା ମାତା ମରି ଅଛନ୍ତି; ଅନାଥ
ମାତୃ ପିତୃ ହୀନ } ଦେଶଜ ଅଶୁଦ୍ଧ } (ଶିଶୁ)—Orphaned; (a
ମାତା ପିତାହୀନ } ରୂପ } child) destitute of both parents. [ଦ୍ର—'ମାତୃ ପିତୃହୀନ' ଓ 'ମାତା ପିତାହୀନ' ଶବ୍ଦ ସଂସ୍କୃତ ବ୍ୟାକରଣ ଅନୁସାରେ ଅଶୁଦ୍ଧ । 'ପିତୃ ମାତୃହୀନ' ଶବ୍ଦ ମଧ୍ୟ ଅଶୁଦ୍ଧ । କାରଣ ବ୍ୟାକରଣ ନିୟମ ଅନୁସାରେ ଅଧିକ ସ୍ୱର ବିଶିଷ୍ଟ ନ ହେଲେ ଦ୍ୱନ୍ଦ୍ୱ ସମାସରେ ସ୍ତ୍ରୀଲିଙ୍ଗ ଶବ୍ଦହିଁ ପୂର୍ବରେ ବସେ ଓ ସମଗୋତ୍ର ସୂଚକ ଋକାରାନ୍ତ ଶବ୍ଦ ପରେ ରହିଲେ ପୂର୍ବବର୍ତ୍ତୀ ଋକାରାନ୍ତ ଶବ୍ଦ ଆକାରାନ୍ତ ହୁଏ ।]

**ମାତା ମହ**—ସ. ବି. ପୁଂ ( ମାତୃ+ତତ୍ ପିତା ଅର୍ଥରେ, ଆମହ )—
Mātā maha ମାତାଙ୍କର ପିତା; ଅଜା—Maternal grand-
(ମାତାମହୀ—ସ୍ତ୍ରୀ) दादा मशाय **नाना** father.

**ମାତାଲ୍**—ଦେ. ବିଣ. (ସ. ମତ୍ତ)—ମତୁଆଲ; ନିଶା ଯୋଗୁଁ ମତ୍ତ—
Mātāl Intoxicated with drugs.
मातल, मातोयाल **मतवाला** ( ମାତୁଆଲ—ଅନ୍ୟରୂପ )

**ମାତି**—ସ. ବି. ( ମା ଧାତୁ+ଭାବ. ତି )—୧ । ପରିମାଣ—
Māti 1. Measure (Apte). ୨ । (+କରଣ. ତି)—ଚିନ୍ତା; ଭାବ—2. Thought; conception (Apte). ୩ । ପ୍ରକୃତ ବା ଯଥାର୍ଥ ଜ୍ଞାନ—3. Accurate knowledge (Apte).

ମାତି ଉଠିବା—ଦେ. କ୍ରି—( ସଂ. ମତ୍ତ+ଉତ୍+ସ୍ଥା ଧାତୁ )—୧ । Māti uthibā ହଠାତ୍ ଉନ୍ମତ୍ତତା ପ୍ରକାଶ କରିବା—1. To ମେତେଉଠ୍‌ନା become excited at once. ୨ । ( ଦଦ୍ରୁ ଅବ ମତ୍ତ ହୋନା; मातना ରୋଗ ) ଖୁବ୍ କଣ୍ଡୁଯୁକ୍ତ ହେବା—2. (Said of ringworm and scabies) To become very itching or painful. ୩ । ଉନ୍ମାଦକ ଗୁଣ ପ୍ରାପ୍ତ ହେବା—3. To attain the power of intoxicating. [ଯଥା—ତାଡ଼ିରେ ଖଟ୍ଟ ଲାଗିଲେ ତାହା ମାତି ଉଠେ । ]

ମାତିବା—ଦେ. କ୍ରି—(ସଂ. ମଦ୍ ଧାତୁ=ମତ୍ତ ହେବା)—୧ । ମତ୍ତହେବା; Mātibā ମାତା मातना ଉନ୍ମତ୍ତ ହେବା; ଉନ୍ମାଦଗ୍ରସ୍ତ ହେବା,—[ମତା(ତେ)ଇବା—ଅନ୍ୟରୂପ] 1. To be maddened. ୨ । ଉନ୍ମତ୍ତତା ପ୍ରକାଶ କରିବା—2. To act madly. ୩ । ଅସ୍ଵଚ୍ଛନ୍ଦ ବା ବାହ୍ୟଜ୍ଞାନଶୂନ୍ୟ ହୋଇ କୌଣସି ବିଷୟରେ ଲିପ୍ତ ହେବା ବା ଆସକ୍ତ ହେବା—3. To be mad after a thing; to be infatuated with a matter. [ ଉ—ଲବଣ ଅଶେଷ ବିଭୁତି । ମାତିଲ ଯେହ୍ନେ ମତ୍ତହସ୍ତୀ—ଜଗନ୍ନାଥ. ଭାଗବତ । ] ୪ । ଉତ୍ତେଜିତ ହେବା—4. To be excited; to become restive. ୫ । ବିଶେଷ ଉତ୍ସାହ ସହିତ କୌଣସି କାର୍ଯ୍ୟରେ ଲାଗିବା; ମନପ୍ରାଣ ଲଗାଇ କୌଣସି କାର୍ଯ୍ୟ କରିବା—5. To throw one's self, body and soul, into a work. ୬ । କାମରେ ବା ନିଶାରେ ଉନ୍ମତ୍ତପ୍ରାୟ ହେବା; ପ୍ରେମରେ ଉନ୍ମତ୍ତ ହେବା—6. To be excited with lust or intoxicating drugs; to be intoxicated. [ଉ—ମାତି ତାଙ୍କର ରତରେ ଦେବଦାସୀଏ ସାବଧାନେ । କବିସୂର୍ଯ୍ୟ. ବିଶୋଷ୍ଣଚନ୍ଦ୍ରାନନ୍ଦଲହ୍ମୀ 'ମ' ଗୀତ ।] ୭ । କୁପିତ ହେବା—7. To be infuriated. ୮ । ( ଶିଶୁ ) ଅବୁଝା ହୋଇ କାନ୍ଦିବା—8. To cry persistently (said of जिद् करना children and infants). ୯ । (କ୍ଷତ ଅର୍ଥ) फोफनाना କୁପିତ ହେବା; ବାଢ଼ କରିବା—9. To become virulent; to assume a malignant condition (said of a sore). ୧୦ । କୁଣ୍ଡେଇ ହେବା, खुजलाना ଗଲ୍ କରିବା—10. To be itching. ୧୧ । (ବାଘ, ଚୋର ଅର୍ଥ) ପ୍ରାଦୁର୍ଭୂତ ହେବା; ପ୍ରବଳ ହେବା—11. To predominate; to infest ( said of robbers and wild animals in a particular localitiy ). ୧୨ । ( ରୁଗ୍ଣ ଲକ୍ଷଣ ) ବର୍ଦ୍ଧିତ ହେବା; ବିଶେଷ ପରିମାଣରେ ବ୍ୟାପିବା—12. To increase; to spread. [ଉ—ଛଇଲେ ଛତୁ ! ମେଘ ବରଷିଲେ କେତେ ଦୁ ମାତୁ—ଇଗ । ] लहलहाना ୧୩ । (କୌଣସି ବୃକ୍ଷ ବା ଲତା) ବଳିଷ୍ଠ ହୋଇ ବଢ଼ିଯିବା—13. To grow very luxuriantly. [ ଉ—ଧାନ ଗଛ, ମୁଗ ଗଛ ଆଦି ମାତିଗଲେ ତାହାର ପତ୍ର ଆଦି ଖୁବ୍ ବଢ଼େ, କିନ୍ତୁ ଫଳ ବେଶି ଫଳେ ନାହିଁ । ] ୧୪ । [ବିଃ खमीरहोना ପଦାର୍ଥ ( ଯଥା—କଞ୍ଜିକା ) ଓ ରସ ( ତାଡ଼ି )] ଦୀର୍ଘକାଳ ରଖାଯିବା ପରେ ଫେଣଯୁକ୍ତ ହୋଇ ଫୁଲିଯିବା—14. To ferment; to become frothy and bloated by fermentation; to swell in volume. ୧୫ । ( ଖଜୁରି ରସ ବା ତାଡ଼ି ) ବାସି ହେବାଦ୍ଵାରା ମାଦକତାଶକ୍ତି ପ୍ରାପ୍ତ ହେବା—15. To become intoxicant by fermentation. ୧୬ । (ପ୍ରଜା ଅର୍ଥ) ସ୍ଵଜାଶକ୍ତି ବିରୁଦ୍ଧରେ ବିଦ୍ରୋହୀ ହେବା—16. To revolt.

ମାତିଯିବା—ଦେ. କ୍ରି—୧ । ଉନ୍ମତ୍ତତାସହିତ କୌଣସି କାର୍ଯ୍ୟରେ Mātijibā ଲାଗିଯିବା—1. To be mad in the pursuit ମେତେ ଯାଓୟା of a thing. ୨ । ଅଧ୍ୟବସାୟ ସହିତ କୌଣସି मत्तहोना କାର୍ଯ୍ୟରେ ଲାଗିବା—2. To pursue a work with zeal; to persevere.

ମାତୁ—ଦେ. ବି ( ସଂ. ମତ୍ତତା )—୧ । ମତ୍ତତା—1. Madness. Mātu ୨ । କାମୋନ୍ମାଦ—2. Madness or excitement ମତ୍ତତା मस्ती due to lust. ୩ । ଅତ୍ୟନ୍ତ ଗଲ୍; କଣ୍ଡୁ—3. Violent or excessive itching. ୪ । ଚୁଲକୁ(କା)ନି କୌଣସି ବିଷୟରେ ଜିଦ ବା ଜିଗର—4. Infatuचूल, लत ation; zid; intense longing; insisting on a matter. ୫ । କୌଣସି କାର୍ଯ୍ୟ ପାଇଁ ଉତ୍ସାହ ବା ବ୍ୟଗ୍ରତା—5. Zeal; zest; ardour. [ ଉ—ବନସାକରେ ମାତୁ ଥାଏ ତୋଷକହି—କୃଷ୍ଣସିଂହ. ମହାଭାରତ. ବନ । ]

ମାତୁଆ—ଦେ. ବିଣ. ପୁଂ ( ସଂ. ମତ୍ତ )—୧ । ଯେ ମାତେ—Mātuā 1. Acting madly or with eagerness. ମାତୁୟାରା ୨ । ଉନ୍ମତ୍ତ—2. Maddened; intoxicated. मतवाला, मस्त ୩ । ( ଶିଶୁ ) ଅବୁଝା; ଅଳିଆ; ଯେଉଁ ଶିଶୁ ମାତେଇ } ସ୍ତ୍ରୀ ମାତୋଇ } କୌଣସି କଥା ପାଇବା ପାଇଁ ମାତେ ବା କାନ୍ଦେ, ଓ ଯେତେ ବୁଝାଇଲେ ବୁଝେ ନାହିଁ—ଜେଦବାଜ जिद्दी 3. Unreasonable; fretful; given to much crying and unreasonable zid. ( ଯଥା—ମାତୁଆ ପିଲା । )

ମାତୁଆସ(ଳା, ଲ)—ଦେ. ବିଣ ( ସଂ. ମତ୍ତ )—୧ । ଉନ୍ମତ୍ତ—Mātuāsā(lā, lā) 1. Maddened. ୨ । ଉତ୍ତେଜିତ—ମାତୋୟାରା, মাতোয়ালা 2. Excited. ୩ । ନିଶାରେ ଚୁର—मतवाला 3 Intoxicated; inebriated.

ମାତୁ ଉଠିବା—ଦେ. ବି( ସଂ. ମତ୍ତତା )—୧ । ଉନ୍ମତ୍ତତା ଜାତ ହେବା - Mātu uthibā 1. Having a fit excitement or ମତ୍ତତା ଉଠା intoxication. ୨ । କଣ୍ଡୁ ଉଠିବା—2. Having मस्ती आना a fit of itching sensation. ( ମାତୁ ମରିବା—ବିପରୀତ )

ମାତୁ କରିବା—ଦେ. କ୍ରି ( ସଂ ମତ୍ତ )—୧ । ( ବ୍ରଣ ବା ଘାଆ ଆଦି )
Mātu karibā ପ୍ରକୁପିତ ହୋଇ ବିଶେଷ କଷ୍ଟ ଦେବା;
ব্যতিব্যস্ত করা फौफलाना ବିଷିପିଯିବା—1. To give much agony by becoming malignant (said of sores, boils and itches). ୨ । (କାଉ, କୁଣ୍ଡିଆ ଆଦି ) କୁଣ୍ଡେଇ ହେବା; ଗଲ୍ କରିବା—2. To produce intensive itching sensation. ( ଯଥା—ମୋ କୋଡ଼ଣାଟୁ ରାତିକ ଭାରି ମାତୁ କରୁଛି । ]

ମାତୁଣି—ଦେ. ବି ( ସଂ. ମତ୍ତତା )—୧ । ମାତି ଯାଇ ଆକ୍ରମଣ କରିବା;
Mātuṇi ଉତ୍ତେଜନାଜନିତ ଆକ୍ରମଣ—1. Attacking
মাতন উন্মত্তাপন another with excitement ୨ । ମାତିବା ଅବସ୍ଥା—2. Excited state; inebriety.

ମାତୁ ମରିବା—ଦେ. କ୍ରି—୧ । କଣ୍ଡୁୟନର ନିବୃତ୍ତି ହେବା—1. The
Mātu māribā satiation or subsidence of
মাতামাতি কমা, চুলকুনি বন্দ হওয়া itching. ୨ । କୌଣସି
खाज मरना, दील टूटना ବିଷୟ ପ୍ରତି ଜନ୍ମିଥିବା ଉତ୍ସାହ ବା ଝୁଙ୍କ କମିଯିବା—2. The cooling of zeal; the subsidence of one's zeal or ardour.

ମାତୁ ମାରିବା—ଦେ. କ୍ରି- ୧ । କୌଣସି ବ୍ୟକ୍ତିର କଣ୍ଡୁ ନିବାରଣ କରିବା—
Mātu māribā 1. To satiate another's itching; to
চুলকুনি বন্দ করা soothe one's itching ( by the
खाज मारना application of proper remedies).
୨ । କୌଣସି ବ୍ୟକ୍ତିର କୌଣସି ବିଷୟ ପ୍ରତି ଜନ୍ମିଥିବା ଉତ୍ସାହର ବା ଝୁଙ୍କର ନିବୃତ୍ତି ଘଟାଇବା—2. To cool one's zeal for a matter.

ମାତୁରା—ଦେ. ବିଣ. ପୁଂ—୧ । ମାତୁଆ ( ଦେଖ )—1. Mātuā
Māturā ( See ) ୨ । ଯେଉଁ ଗଛ ବା ଲତା ଆଦି ବଳ୍ଦା
মাতোয়ারা ହୋଇ ବଢ଼େ—2. ( trees and plants )
लहलहा(ह) Growing up very luxuriantly ( but
(ମାତୁରୀ—ସ୍ତ୍ରୀ) producing less fruits ). ୩ । ହଠାତ୍ ସମୃଦ୍ଧିମନ୍ତ—3. Suddenly become prosperous.

ମାତୁରା ଗଛ—ଦେ. ବି—ଯେଉଁ ଗଛ ବଳ୍ଦା ହୋଇ ବଢ଼ିଯାଏ—
Māturā gachha A plant growing up very
लहलहा पौधा luxuriantly. [ ଦ୍ର—ଏପରି ଗଛରେ ବେଶି ଫଳ ଧରେ ନାହିଁ । ]

ମାତୁରା ମାଟି—ଦେ. ବି—ଯେଉଁ ମାଟିରେ ବେଶି ପରିମାଣରେ ରସ
Māturā māṭi ବା ସାର ଥିବାରୁ ତହିଁରେ ଜନ୍ମିବା ଗଛ ବା
অত্যন্ত উর্ব্বর মাটি ଫସଲମାନ ବଳ୍ଦା ହୋଇ ବଢ଼ିଯାଏ ଓ ଫଳ
बौकार मिट्टी କମ୍ ହୁଏ—An excessively rich soil.

ମାତୁଳ—ସଂ. ବି. ପୁଂ ( ମାତୃ+ଭ୍ରାତୃ ଅର୍ଥେ. ଡୁଳ )—୧ । ମାତାଙ୍କ
Mātuḻa ଭ୍ରାତା; ମାମୁ—1. Maternel uncle. [ ଦ୍ର—
ମାତୁଳା, ମାତୁଳାନୀ, ମାତୁଳୀ } ସ୍ତ୍ରୀ ଏଥିର ଅପଭ୍ରଂଶ ମଉଳା । ମାଆଙ୍କ ଭଉଣୀକୁ ମାଉସୀ ( ବା ମାଉସୀ ) ବୋଲଯାଏ । ]
୨ । ଧାତୁରା ଗଛ—2. The Datura plant ( Apte ) ୩ । ସର୍ପବିଶେଷ; ବୋଡ଼ାସାପ ?—3. A kind of snake (Apte); viper. ୪ । ଏକପ୍ରକାର ଚାଉଳ—4. A kind of rice (Apte).

ମାତୁଳକ—ସଂ. ବି ( ମାତୁଳ+ସ୍ୱାର୍ଥେ କ)—୧ । ମାତୁଳ ୧।୨ (ଦେଖ)
Mātuḻaka 1. Mātuḻa 1. 2 (See)

ମାତୁଳଙ୍ଗ—ଦେ. ବି—ମାତୁଲୁଙ୍ଗ ୨ ( ଦେଖ )
Mātulaṅga Mātuluṅga 2 ( See )

ମାତୁଳ ପୁତ୍ର—ସଂ. ବି. ପୁଂ (୬ଷ୍ଠୀ ତତ୍)—ମାମୁ ପୁଅ ଭାଇ; ମଉଳା ପୁଅ—
Mātuḻa putra Maternal uncle's son.
(ମାତୁଳ ପୁତ୍ରୀ, ମାତୁଳେୟୀ—ସ୍ତ୍ରୀ) (ମାତୁଳେୟ—ଅନ୍ୟରୂପ)

ମାତୁଳ ପୁତ୍ରକ—ସଂ. ବି—୧ । ମାମୁ ପୁଅ ଭାଇ—1. One's mater-
Mātuḻa putraka nal uncle's son. ୨ । ଧତ୍ତୁରର ଫଳ; ଧାତୁରା ଫଳ—2. The fruit of the Dhāturā plant (a very narcotic and fatal poison ).

ମାତୁଳ ବ୍ୟବହାର—ସଂ. ବି—ମଉଳା ଭେଟିର—Customary
Mātuḻa byabahāra presents given to a person by his maternal uncle on festive occasions in response to the formal invitation which is sent to him.

ମାତୁଳାନୀ—ସଂ. ବି. ସ୍ତ୍ରୀ ( ମାତୁଳ+ସ୍ତ୍ରୀ. ଅନୀ ବା ଈ; ଅନ୍. ଆଗମ )—
Mātuḻānī ୧ । ମାଇଁ—1. Maternal uncle's wife.
୨ । ଭଙ୍ଗା; ଭାଙ୍ଗ; ସିଦ୍ଧି; ବିଜୟା ( ହି. ଶ. )—2. Cannabis Indica ( plant and leaves ).

ମାତୁଳାଳୟ—ସଂ. ବି ( ୬ଷ୍ଠୀ ତତ୍; ମାତୁଳ+ଆଳୟ )—ମାମୁଘର—
Mātuḻāḻaya The house of one's maternal uncle.
( ମାତୁଳାଶ୍ରମ—ଅନ୍ୟରୂପ )

ମାତୁଳାହି—ସଂ. ବି (ମାତୁଳ+ଅହି)—୧ । ବୋଡ଼ାସାପ—1. Viper
Mātuḻāhi (snake). ୨ । ଅଜଗର ସାପ—2. Boa constictor. [ ଉ—ବିଭୂଷା ଗଣ୍ଡ ଜବ ମାତୁଳାହି ପ୍ରଭାବ ଗରସି ଦେଉଅଛି ପ୍ଲବ ସେ—ଭଞ୍ଜ. ବୈଦେହୀଶବିଳାସ । ]

ମାତୁଳି—ସଂ. ବି. ପୁଂ—ମାତଳି ( ଦେଖ )
Mātuḻi Mātaḻi ( See )

ମାତୁଲି(ଲୁ)ଙ୍ଗ(ଙ୍ଗା)—ସଂ. ବି.—(ମା=ନିଷେଧ+ତୁଳା=ନିକଟ+ଗମ ଧାତୁ+କର୍ତ୍ତୃ. ଅ; ଯାହା ଓଜନ ହୋଇ ବିକା ହୁଏ ନାହିଁ)—୧ । ଲେମ୍ବୁ—1. Lemon. ୨ । ଟଭା ଲେମ୍ବୁ; ବୀଜପୂର—2. Citron; Citrus Medica; variety-Typica. [ ଦ୍ର—ଏହାର ରସ ଔଷଧାଦିରେ ବ୍ୟବହୃତ ହୁଏ; ଏହା ଅମ୍ଳ ମଧୁର ରସ, ଅଗ୍ନି ଦୀପକ, ଲଘୁ, ହୃଦ୍ୟ, ଗ୍ରାହୀ ଓ କଣ୍ଠ, ଜିହ୍ୱା ଓ ହୃଦୟଶୋଧକ; ଏହା ରକ୍ତ ପିତ୍ତ, ଶ୍ୱାସ,

Māluli(lu)ṅga(ṅgā)
ସଂ. ନାମ—ବୀଜପୂର, ଫଳପୂର, ଫଳ ପୂରକ, ଅମ୍ଳକେଶର, ଶୈଲଙ୍ଗ, ଜମ୍ଭୀ(ମ୍ବୀ; ମ୍ଭ)ର, ରୁଚକ, ବୀରପୂର ଫଳ ।
ମ ମାହୁଲଙ୍ଗ, ମହୁଲୁଙ୍ଗ
ଫା. ତୁରଞ୍ଜ
ତେ. ମାଦୋଫଲପୁଚେଟ୍ଟୁ, ଦାବାକାୟା
ଅ. ଉତ୍ରଂଜ

ସୁ. ସାନୋବୁଲଂବୁ କାସ, ଅରୁଚ ଓ ପିପାସାନାଶକ ।] ଟାବା, ছোলঙ্গ, হংসনেবু ୩ । ଡାଳମ୍—3. Pomegranate. बिजौरा, कुटला (ମାଲୁଙ୍ଗକ—ଅନ୍ୟରୂପ)

ମାତୃ—ସ. ବି. ସ୍ତ୍ରୀ—(ମା. ଧାତୁ=ପୂଜା କରିବା+କର୍ମ. ତୃ; ମାତୃ Mātṛu ଶବ୍ଦର ୧ମା. ୧ ବଚନରେ ମାତା ହୁଏ । ସ୍ୱସ୍ତ୍ରରେ ଅନ୍ୟ ଶବ୍ଦ ସଙ୍ଗେ ସମାସ ହେଲେ ମାତୃ ଆକାର ରହେ; କିନ୍ତୁ ଓଡ଼ିଆରେ ମାତୃ ଶବ୍ଦ ସ୍ୱତନ୍ତ୍ର ମାତା ଅର୍ଥରେ ବ୍ୟବହୃତ ହୁଏ । )—୧ । ଜନ୍ମଦାତ୍ରୀ; ମାତା—1. Mother. ୨ । ମାତୃସ୍ଥାନୀୟା ସ୍ତ୍ରୀ; ମାତାବତ୍ ପୂଜ୍ୟା ସ୍ତ୍ରୀ—2. A woman who is considered as adorable as one's mother. ( ମାତା ଭଲେ ନୋହୁ ଦେଶ ।) ୩ । ଗାଈ—3. A cow (Apte). ୪ । ଲକ୍ଷ୍ମୀ—4. Lakshmi (Apte). ୫ । ଦୁର୍ଗା—5. Durgā (Apte). ୬ । ଆକାଶ—6. The sky (Apte). ୭ । ପୃଥିବୀ—7. The earth (Apte). ୮ । ସପ୍ତମାତୃକା—8. The seven Divine Mothers. [ଦ୍ର—ଏମାନଙ୍କ ନାମ—ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ, କୌମାରୀ, ଚାମୁଣ୍ଡା ।] ୯ । ଅଷ୍ଟମାତୃକା—9. The eight Divine mothers. [ଦ୍ର—ଏମାନେ ଉପର୍ଯ୍ୟୁକ୍ତ ସପ୍ତ ମାତୃକା ଓ ଚଣ୍ଡିକା—(Apte)]. ୧୦ । ଷୋଡ଼ଶମାତୃକା—9. The 16 Divine Mothers. [ଦ୍ର—ଏମାନଙ୍କ ନାମ—ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସ୍ୱଧା, ସ୍ୱାହା, ଶାନ୍ତି, ପୁଷ୍ଟି, ଧୃତି, ତୁଷ୍ଟି, କୁଳଦେବତା, ଆତ୍ମଦେବତା—(Apte) ୧୧ । ( ବୈଦ୍ୟକ ) ଅଶ୍ୱକର୍ଣ୍ଣୀ; ଇନ୍ଦ୍ରବାରୁଣୀ, ଜଟାମାଂସୀ ଆଦି ଗୁଳ୍ମଗଣ—11. A generic name of some medicinal plants (Apte). ୧୨ । ପିତୃଲୋକଙ୍କ ମଧ୍ୟରେ ସ୍ତ୍ରୀଜାତୀୟ ୮ ଶ୍ରେଣୀ—12. Name of 8 clasess of female ancestors (Apte).ସ.ବିଣ. ପୁଂ. (ମା ଧାତୁ=ପରିମାଣ କରିବା; କର୍ତ୍ତ୍ରି. ତୃ; ମାତୃ ଶବ୍ଦ ଏଥିର ପୁଂଲିଙ୍ଗ ମାତା; ସ୍ତ୍ରୀ-ମାତ୍ରୀ)—ପରିମାଣକାରୀ—Measuring.

ମାତୃ ଅଂଶ—ଦେ. ବି.—(ସ. ମାତୃ+ଅଂଶ)—ଶିଶୁ ଧାରଣ କରିଥିବା Mātṛu aṁśa ଅପଣା ମାତାଙ୍କ ଚେହେରା ଓ ଗୁଣ—মাতৃঅংশ Qualities and appearance etc of the महतारीका अश mother ( inherited by a child.) (ପିତୃଅଂଶ—ବିପରୀତ) (ଯଥା—ଏ ପିଲାଟି ମାତୃ ଅଂଶରେ ଜନ୍ମ ହୋଇଅଛି ।)

ମାତୃଅଂଶିଆ—ଦେ. ବିଣ ପୁଂ—(ସ. ମାତୃ+ଅଂଶୀ)—ମାଆ ଅଂଶିଆ; Mātṛu aṁsiā ମାତାଙ୍କ ଗୁଣ ଓ ଚେହେରା ଧରି ଜନ୍ମ ହୋଇ মামুখো मौमुहाँ ଥିବା (ପିଲା)—( Child ) Inheriting (ମାତୃ ଅଂଶେଇ—ସ୍ତ୍ରୀ) the qualities and appearance (ମାତୃଅଂଶୀ—ଅନ୍ୟରୂପ; ପୁଂ ଓ ସ୍ତ୍ରୀ) of its mother.

ମାତୃକ—ସ. ବିଣ—(ମାତୃ+ସମ୍ବନ୍ଧାର୍ଥେ. କ; ଅନ୍ୟ ଶବ୍ଦ ସଙ୍ଗେ Mātṛuka ସମାସ ହୋଇ ଯୁକ୍ତ ହୁଏ)—୧ । ମାତୃ ସମ୍ବନ୍ଧୀୟ (ମାତୃକା—ସ୍ତ୍ରୀ) 1. Relating to mother; motherly. [ ଯଥା—ଜୀବନ ମାତୃକ=ଯାହାଙ୍କର ମାତା ଜୀବିତା ଅଛନ୍ତି । ] ୨ । ମାତୃ ବା ପାଳକରୂପେ ପରିଣତ—2. Acting or bringing up a child like its own mother ( ଯଥା—ନଦୀ ମାତୃକ ଦେଶ=ନଦୀଜଳଦ୍ୱାରା ଯେଉଁ ଦେଶରେ ଶସ୍ୟ ଜାତ ହୁଏ ।) ୩ । ମାତାଙ୍କଠାରୁ ଉତ୍ତରାଧି-କାରୀରୂପେ ପ୍ରାପ୍ତ ( ସମ୍ପତ୍ତି )—3. Property inherited from one's mother; maternal. (ମାତୃକା—ସ୍ତ୍ରୀ) ସ. ବି. ପୁଂ—ମାମୁ—Maternal uncle.

ମାତୃକଚ୍ଛିଦ୍—ସ. ବି. ପୁଂ. (ମାତୃକା+ଛିଦ୍ ଧାତୁ+କର୍ତ୍ତ୍ରି. କ୍ୱିପ୍; ଯେ Mātṛukachchhid ମାତାଙ୍କ ବଧ କରିଥିଲେ )—ପରଶୁରାମ—(matricide) Paraśurāma.

ମାତୃକଳ୍ପା—ସ. ବି. ସ୍ତ୍ରୀ—ମାତାଙ୍କ ପରି ପୂଜ୍ୟା—Standing in the Mātṛukalpā position of a mother to a person.

ମାତୃକା—ସ. ବି. ସ୍ତ୍ରୀ (ମାତୃ+ସ୍ୱାର୍ଥେ. କ+ସ୍ତ୍ରୀ. ଆ)—୧ । ମାତା—Mātṛukā 1. Mother. ୨ । ମାତାମହୀ—2. Materna. grand-mother. ୩ । ଧାତ୍ରୀ; ଧାଈମା—3. Foster-mother; one's nurse. ୪ । ଉପମାତା; ସାବତ ମା ( ହି. ଶ )—4. Step-mother. ୫ । ବର୍ଣ୍ଣମାଳା—5. The alphabets. ୬ । ବର୍ଣ୍ଣମାଳାର ସ୍ୱରବର୍ଣ୍ଣମାନଙ୍କର ୧୨ ଗୋଟି ମାତ୍ରା ( ଆକାର, ଇକାର, ଈକାର, ଉକାର, ଊକାର, ଋକାର, ୠକାର, ୯ କାର, ଏକାର, ଐକାର, ଓକାର, ଔକାର ), ବାରଖଡ଼ି—6. The 12 signs or marks of vowels when added to consonants. ୭ । ମାତୃ ୮ ( ଦେଖ )—7. Matru 8 ( See ) ୮ । ମାତୃ ୯ ( ଦେଖ )—8. Matru 9 ( See ) ୯ । ମାତୃ ୧୦ ( ଦେଖ )—9. Matru 10 ( See ) ୧୦ । ଦେବୀ—10. Divine Mother ( Apte ). ୧୧ । ମୂଳକାରଣ; ଆଦିକାରଣ—11. Source; origin ( Apte )

ମାତୃକାକୁଣ୍ଡ—ସ. ବି—ଶିଶୁମାନଙ୍କ ଗୁହ୍ୟଦ୍ୱାରରେ ହେବା ବ୍ରଣ ( ହି. Mātṛukākuṇḍa ଶ ) A boil in the anus of children.

ମାତୃକୁଳ—ସ. ବି ( ୬ଷ୍ଠୀ ତତ୍; ମାତୃ+କୁଳ )—ମାତାଙ୍କର ଜନ୍ମବଂଶ Mātṛukula —The family in which one's (ପିତୃକୁଳ—ବିପରୀତ) mother was born.

ମାତୃଗଣ—ସ. ବି. ସ୍ତ୍ରୀ—ଦେବାଂଶ ରୂପଧାରିଣୀ ଦୁର୍ଗାଙ୍କର ଭିନ୍ନ ଭିନ୍ନ ୮
Mātṛugaṇa ଗୋଟି ରୂପ; ଅଷ୍ଟଶକ୍ତି; ତନ୍ତ୍ରମତରେ ସୃଷ୍ଟିର ଜନ୍ମ, ପାଳନ ଓ ବିନାଶକାରିଣୀ ୮ ଗୋଟି ଦେବୀ—Eight Deities representing the forces controlling the creation. [ଦ୍ର—ଅଷ୍ଟଶକ୍ତି ଯଥା—ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ, କୌମାରୀ, ଚାମୁଣ୍ଡା ବା କୌବେରୀ, ଚର୍ଚ୍ଚିକା; ମତାନ୍ତରରେ 'ଚଣ୍ଡୀ' ସ୍ଥଳରେ 'ଐନ୍ଦ୍ରୀ'।

ମାର୍କଣ୍ଡେୟ ପୁରାଣାନ୍ତର୍ଗତ ହରିହରବ୍ରହ୍ମବିରଚିତ ଦେବୀକବଚରେ ୧୧ ଟି ମାତୃଗଣଙ୍କ ନାମ ଓ ବର୍ଣ୍ଣନା ଅଛି। ଯଥା—୧। ପ୍ରେତସଂସ୍ଥା—ଚାମୁଣ୍ଡା; ୨। ମହିଷାସନା—ବାରାହୀ; ୩। ଗଜସମାରୂଢ଼ା—ଐନ୍ଦ୍ରୀ; ୪। ଗରୁଡ଼ାସନା—ବୈଷ୍ଣବୀ; ୫। ମହାବୀର୍ଯ୍ୟା—ନାରସିଂହୀ; ୬। ମହାବଳା—ଶିବଦୂତୀ; ୭। ଶିଖିବାହନା—କୌମାରୀ, ୮। ବୃଷାରୂଢ଼ା—ମାହେଶ୍ୱରୀ, ୯। ପଦ୍ମାସନା—ଲକ୍ଷ୍ମୀ; ୧୦। ହଂସସମାରୂଢ଼ା—ବ୍ରାହ୍ମୀ; ୧୧। ବୃଷବାହନା—ଈଶ୍ୱରୀ।]

ମାତୃଗନ୍ଧିନୀ—ସ. ବି. ସ୍ତ୍ରୀ (ମାତୃ+ଗନ୍ଧ+ଇନ୍+ଈ)—୧। ସାବତ
Mātṛugandhinī ମା—1. Step-mother. ୨। ପିତାଙ୍କ ଉପପତ୍ନୀ—2. Father's concubine.

ମାତୃଗର୍ଭ—ସ. ବି (୬ଷ୍ଠୀ ତତ୍; ମାତୃ+ଗର୍ଭ)—ମାତାଙ୍କର ପେଟ—
Mātṛugarbha Mother's womb.

ମାତୃଗାମୀ—ସ. ବି ଓ ବିଣ. ପୁଂ (ମାତୃ+ଗମ ଧାତୁ+କର୍ତ୍ତୃ. ଇନ୍;
Mātṛugāmī ୧ମା ୧ବ.)—ମାତାଙ୍କ ସହ ସହବାସକାରୀ —One who has committed incest with his mother (Apte).

ମାତୃଗ୍ରାମ—ସ. ବି (ମାତୃ+ଗ୍ରାମ=ସମୂହ; ଜାତି)—ସ୍ତ୍ରୀ ଜାତି;
Mātṛugrāma ମାଇପେ—The female sex; the womankind (Apte).

ମାତୃଘାତୀ—ସ. ବି. (ମାତୃ+ହନ୍ ଧାତୁ+କର୍ତ୍ତୃ. ଇନ୍; ମାତୃଘାତିନ୍;
Mātṛughātī ୧ମା. ୧ବ)—ମାତୃହତ୍ୟାକାରୀ—Matricide;
(ମାତୃଘାତିନୀ—ସ୍ତ୍ରୀ) murderer of one's own mother.
ମାତୃଘାତୁକ } ଅନ୍ୟରୂପ
ମାତୃଘାତକ }
ବି. ପୁଂ—ପରଶୁରାମ—The great Brahmaṇa warrior Paraśurāma. [ଦ୍ର—ଏ ପିତାଦେଶରେ ଅପଣା ମାତା ରେଣୁକାଙ୍କୁ ବଧ କରିଥିଲେ।]

ମାତୃଘ୍ନ—ସ. ବି. ପୁଂ (ମାତୃ+ହନ୍ ଧାତୁ+ଭାବ. ଅ)—ମାତୃଘାତୀ
Mātṛughna (ଦେଖ)—Mātṛughātī (See)
(ମାତୃଘ୍ନୀ—ସ୍ତ୍ରୀ)

ମାତୃ ତୀର୍ଥ—ସ. ବି. (ବହୁବ୍ରୀହି; ଯେଉଁ ତୀର୍ଥରେ ମାତାଙ୍କୁ ଜଳ ତର୍ପଣ
Mātṛu tīrtha କରାଯାଏ)—କାନି ଅଙ୍ଗୁଠିର ନିମ୍ନରେ ଥିବା କରତଳାଂଶ (ହ. ଣ)—The part of the palm below the little finger.

ମାତୃତ୍ୱ—ସ. ବି (ମାତୃ+ଭାବ. ତ୍ୱ)—ସନ୍ତାନ ପ୍ରସବ କରିବାର ଅବସ୍ଥା—
Mātṛutwa Parenthood.

ମାତୃଦାୟ—ସ. ବି—ମାତୃ ବିୟୋଗଜନିତ ଦାୟିତ୍ୱ, ମୃତ ମାତାଙ୍କ ଶ୍ରଦ୍ଧା-
Mātṛudāya ଶ୍ରାଦ୍ଧ କରିବାର ଅବଶ୍ୟକର୍ତ୍ତବ୍ୟ ଦାୟିତ୍ୱ—The heavy and unavoidable necessity which befalls on a person on the death of one's mother (i.e. the due performance of her funeral and obsequial rites).

ମାତୃଦାୟ ଗ୍ରସ୍ତ—ସ. ବିଣ. ପୁଂ (୬ଷ୍ଠୀ ଓ ୩ୟା ତତ୍)—ମାତାଙ୍କର
Mātṛudāya grasta ମୃତ୍ୟୁ ହେତୁ ଯାହା ଉପରେ ଅବଶ୍ୟ
(ମାତୃଦାୟ ଗ୍ରସ୍ତା—ସ୍ତ୍ରୀ) କର୍ତ୍ତବ୍ୟ ମାତୃଶ୍ରାଦ୍ଧ କାର୍ଯ୍ୟ ନିଷ୍ପନ୍ନ କରିବାର ଦାୟିତ୍ୱ ପଡ଼ିଥାଏ—Burdened with the unavoidable responsibility of an obsequial offering to his mother on her death.

ମାତୃ ଦିବସ—ସ. ବି. (୬ଷ୍ଠୀ ତତ୍)—ସାମ୍ବତ୍ସରିକ ମାତୃଶ୍ରାଦ୍ଧ—
Mātṛu dibasa Srāddha performed on the an-
(ମାତୃ ଦିବସା—ଦେଶଜରୂପ) niversary of the death of one's mother.

ମାତୃ ଦେବ—ସ. ବିଣ. ପୁଂ (ବହୁବ୍ରୀହି; ମାତୃ+ଦେବ)—ଯେ ମାତାଙ୍କ
Mātṛu deba ଦେବତା ତୁଲ୍ୟ ପୂଜା କରେ— Adoring one's mother like one's God (Apte).

ମାତୃ ଦ୍ରୋହ—ସ. ବି. (୬ଷ୍ଠୀ ତତ୍)—ମାତାଙ୍କର ବିରୁଦ୍ଧାଚରଣ—
Mātṛu droha Offending one's mother; revolt against one's mother.

ମାତୃ ଦ୍ରୋହୀ—ସ ବିଣ. ପୁଂ (୬ଷ୍ଠୀ ତତ୍)—ଯେ ଅପଣା ମାତାଙ୍କ ପ୍ରତି
Mātṛu drohī ଶତ୍ରୁତାଚରଣ କରେ—Offending one's
(ମାତୃଦ୍ରୋହିଣୀ—ସ୍ତ୍ରୀ) own mother; acting against the wishes or welfare of one's own
(ମାତୃଦ୍ରୋହିତା—ବି) mother.

ମାତୃ ନନ୍ଦନ—ସ. ବି. (୬ଷ୍ଠୀ ତତ୍)—କାର୍ତ୍ତିକେୟ—
Mātṛu nandana Kārttikeya.

ମାତୃ ପିତୃ—ଦେ. ବି. (ସ. ମାତୃ+ପିତୃ=ମାତାପିତାରୌ; ମାତର:
Mātṛu pitṛu ପିତରୌ; ପିତରୌ)—ମାତା ଓ ପିତା—
মা বাপ माँ बाप Mother and father.
[ଦ୍ର—ଏହା ସଂସ୍କୃତ ବ୍ୟାକରଣ ଅନୁସାରେ ଅସିଦ୍ଧ। ମାତାପିତୃସ୍ଥାନ ତଳେ ନୋଟ ଦେଖ।]

ମାତୃ ପିତୃ ଉଖାଳିବା—ଦେ. କ୍ରି—କୌଣସି ବ୍ୟକ୍ତିର ପିତା ଓ ମାତାଙ୍କ
Mātṛu pitṛu ujhāḷibā ପ୍ରତି ଅଶ୍ଳୀଳ ଶବ୍ଦ ପ୍ରୟୋଗ ପୂର୍ବକ
ମାତୃପିତୃ ନ ରଖିବା } ଗୋଧିବା ବା ତିରସ୍କାର କରିବା—
ମାତୃପିତୃ ଲଗାଇ ଗାଳିଦେବା } To abuse a person by
মা বাপ তুলে গাল দেওয়া calling names to his par-
माता पिता उकटना, मतरिया बहिनिया करना ents.

ମାତୃ ପୂଜନ—ସ. ବି. (୬ଷ୍ଠୀ ତତ୍; ମାତୃ+ପୂଜନ)—୧। ବିବାହ
Mātṛu pūjana ଅବସର ପୂର୍ବରୁ ପିଷ୍ଟକ ଦ୍ୱାରା ମାତୃକାମାନଙ୍କ
(ମାତୃ ପୂଜା—ଅନ୍ୟରୂପ) ପୂଜା—1. Worship of the Divine Mothers by the offering of cakes during the marriage ritual. ୨। ଜନନ-

ମାତାଙ୍କର ସେବା—2. Worshipping one's mother. ୩। (ଅଧୁନିକ) ଦେଶମାତା ବା ଜନ୍ମଭୂମିର ପୂଜା—3. Worship or honouring of one's motherland. ୪। (ଆଧୁନିକ) ନିଜ ଜନ୍ମଭୂମିର ବା ଜନ୍ମଭୂମିବାସୀମାନଙ୍କର ସେବା—4. Serving one's countrymen.

ମାତୃପୂଜା ମଣ୍ଡପ—ସଂ. ବି (ଅଧୁନିକ ବ୍ୟବହାର)—୧। ଯେଉଁ ମଣ୍ଡପରେ
Mātṛupūjā maṇḍapa ବା ବେଦୀରେ ମାତୃପୂଜାର ବିଧାନ ଅନୁଷ୍ଠିତ ହୁଏ—1. An altar where a person performs the rites of worshipping the Divine mother, (i. e, one's motherland).
୨। ଦେଶର ଉନ୍ନତିକର ଜାତୀୟ ଅନୁଷ୍ଠାନର ବା ସଭାର ମଣ୍ଡପ; ଦେଶବାସୀଙ୍କର ସମ୍ମେଳନୀମଣ୍ଡପ—2. A pandal where the people of a nation gather for discussing the good of the motherland.

ମାତୃବତ୍—ସଂ. ଅ (ମାତୃ+ତୁଲ୍ୟାର୍ଥେ ବତ୍)—ମାତାଙ୍କପରି; ମାତାଙ୍କ
Mātṛubat ତୁଲ୍ୟ—Like one's mother. (ଯଥା—ପର ସ୍ତ୍ରୀକୁ ମାତୃବତ୍ ଜ୍ଞାନ କରିବ। ମାତୃଭୂମି ଓ ମାତୃଭାଷା ମାତୃବତ୍ ଆଦରଣୀୟ।)

ମାତୃବତ୍ସଳ—ସଂ. ବି—କାର୍ତ୍ତିକେୟ—
Mātṛubatsaḻa An epithet of Kārttiikeya.
(ମାତୃବତ୍ସଳା—ସ୍ତ୍ରୀ) ସଂ. ବଣ. ପୁଂ—(୭ମୀ ତତ୍)—ମାତାଙ୍କ ପ୍ରତି
(ମାତୃବତ୍ସଳତା—ବି) ସ୍ନେହୀ—Mother-loving (M.W.)

ମାତୃବନ୍ଧୁ—ସଂ. ବି (୬ଷ୍ଠୀ ତତ୍, ମାତୃ+ବନ୍ଧୁ)—ଅପଣା ମାତାଙ୍କର ମାମୁଁ-
Mātrubandhu ପୁଅ ଭାଇ, ମାଉସୀପୁଅ ଓ ପିଉସୀପୁଅ ଭାଇ—One's distant maternal uncles, being related to one's mother through her paternal and maternal aunts; the causins of one's mother. [ଦ୍ର—ଏଥିର ସ୍ମୃତି-ବାକ୍ୟ—ମାତୁଃ ପିତୁଃ ସ୍ୱସୁଃ ପୁତ୍ରା, ମାତୁର୍ମାତୁଃ ସ୍ୱସୁଃସୁତାଃ, ମାତୁର୍ମାତୁଲପୁତ୍ରାଶ୍ଚ ବିଜ୍ଞେୟା ମାତୃବନ୍ଧବଃ।]

ମାତୃବାନ୍ଧବ—ସଂ. ବି (୬ଷ୍ଠୀ ତତ୍; ମାତୃ+ବାନ୍ଧବ)—ଅପଣା ମାତାଙ୍କର
Mātṛubāndhaba ମାତା, ପିତା, ଭାଇ, ଭ୍ରାତୃଷ୍ପୁତ୍ର ଓ ପିତୃ-ସହୋଦର ଭ୍ରାତା (ଅର୍ଥାତ୍, ଅପଣାର ଆଈ, ଅଜା, ମାମୁଁ, ମଉଳାପୁଅ ଭାଇ ଓ ଅଜାଙ୍କ ଭାଇ)—One's maternal relations (e.g. maternal grandfather, maternal grand-mother, maternal uncle, maternal causin, maternal grandfather's brother). [ଦ୍ର—ହିନ୍ଦୁ ସ୍ମୃତିର ବିଧାନ ଅନୁସାରେ ମୃତବ୍ୟକ୍ତିର ନିକଟତର କୁଟୁମ୍ବ ବା ପିତୃବନ୍ଧୁ ନ ଥିଲେ ମାତୃବନ୍ଧୁ ଓ ମାତୃବାନ୍ଧବମାନେ ତାଙ୍କ ସମ୍ପତ୍ତିର ଅଧିକାରୀ ହୁଅନ୍ତି।]

ମାତୃବିଚ୍ଛେଦ—ସଂ. ବି (୬ଷ୍ଠୀ ତତ୍)—୧। ମାତୃବିୟୋଗ—
Mātṛu bichchheda 1. Death of one's mother.
୨। ମାତାଙ୍କଠାରୁ ପୃଥକ୍ ହେବା—
2. Separation from one's mother.

ମାତୃବିଯୋ(ୟୋ)ଗ—ସଂ. ବି (୬ଷ୍ଠୀ ତତ୍)—ମାତାଙ୍କର ମୃତ୍ୟୁ—
Mātṛu bijo(yo)ga Mother's death; bereavement due to the death of one's mother.

ମାତୃଭକ୍ତ—ସଂ. ବଣ. ପୁଂ (୬ଷ୍ଠୀ ତତ୍; ମାତୃ+ଭକ୍ତ)—ଅପଣାର
Mātṛubhakta ମାତାଙ୍କ ପ୍ରତି ଭକ୍ତିଯୁକ୍ତ—Devoted to
(ମାତୃଭକ୍ତା—ସ୍ତ୍ରୀ) the service of one's own mother.

ମାତୃଭକ୍ତି—ସଂ. ବି—ମାତାଙ୍କ ପ୍ରତି ଶ୍ରଦ୍ଧା—Devotion to or
Mātṛubhakti regard for one's own mother.

ମାତୃଭାବ—ସଂ. ବି (୬ଷ୍ଠୀ ତତ୍)—ସନ୍ତାନ ପ୍ରତି ମାତାଙ୍କର ମନର ଭାବ
Mātṛubhāba ବା ସ୍ନେହ—Mother's feelings; the feelings of a mother to her child.

ମାତୃଭାଷା—ସଂ. ବି (ମ. ପ. ଲୋ)—(ମାତୃକୋଳରେ ଥିବା ସମୟରେ
Mātṛubhāshā ମାଆଙ୍କ ମୁହଁରୁ ମନୁଷ୍ୟ ଯେଉଁ ଭାଷା ଶୁଣେ) ଅପଣାର ଜାତୀୟ ଭାଷା; ଅପଣାର ଘରୋଇ ଭାଷା—One's mother tongue; a vernacular which a man uses at home since child-hood.

ମାତୃଭୂମି—ସଂ. ବି—ନିଜର ଜନ୍ମଭୂମି—One's motherland.
Mātṛubhūmi [ଦ୍ର—ପିତୃଭୂମି=ଯମପୁର; ଶ୍ମଶାନ। ମାତୃଭୂମି=ସ୍ୱଦେଶ। ତୁଳ. ଇଂ Fatherland (ଫାଦର୍‌ଲାଣ୍ଡ); Motherland (ମଦର୍‌ଲାଣ୍ଡ)।]

ମାତୃମଣ୍ଡଳ—ସଂ. ବି—୧। ନେତ୍ର କୋଣ ଦ୍ୱୟର ମଧ୍ୟସ୍ଥାନ—1. The
Mātṛu maṇḍaḻa middle of the two eyes; the bridge of the nose. ୨। ମାତୃକାଗଣଙ୍କର ସମୂହ—2. The collection of the Divine Mothers (Apte).
ଦେ. ବି—୧। ଅରୁନ୍ଧତୀ, ଧ୍ରୁବ ଓ କୃତ୍ତିକା ଏହି ତିନି-ଗୋଟି ନକ୍ଷତ୍ରମଣ୍ଡଳ—1. The circle formed by the three asterisms—Arundhatī, Dhṛuba, and Kṛuttikā. (ଉ—ଅରୁନ୍ଧତୀ ଯେଉଁ ତାହା ଅବର ଯେ ଧ୍ରୁବ, କୃତ୍ତିକାକୁ ଯେ ମାତୃମଣ୍ଡଳ ବୋଲି ସର୍ବ—ପ୍ରାଚୀ. ଶିବସ୍ୱରୋଦୟ।) ୨। ଚକ୍ଷୁମଧ୍ୟସ୍ଥ ତାରକା—2. The pupil of the eye. (ଉ—ଅକ୍ଷି ମଧ୍ୟେ ତାରକା ଯେ ଯେ ମାତୃମଣ୍ଡଳ—ପ୍ରାଚୀ. ଶିବସ୍ୱରୋଦୟ।)

ମାତୃମୁଖ—ସଂ. ବଣ. ପୁଂ—୧। ନିର୍ବୋଧ—1. Foolish; dull;
Mātṛumukha stupid. ୨। ଅଜ୍ଞ; ମୂର୍ଖ—2. Dunce;
(ମାତୃଶାସିତ—ଅନ୍ୟରୂପ) illiterate. ୩। ସ୍ତ୍ରୀବୁଦ୍ଧିପରିଚାଳିତ—3. Governed by the advice of females.
ସଂ. ବି. ପୁଂ—୧। ନିର୍ବୋଧ ବ୍ୟକ୍ତି—1. A foolish person; a simpleton (Apte) ୨। ମୂର୍ଖ ବ୍ୟକ୍ତି—2. A dunce (Apte).

ମାତୃମୁଖା—ଦେ. ବଣ. ପୁଂ—ମା ଅଂଶିଆ (ପିଲା); ଅପଣା ପିତାଙ୍କ
Mātṛumukhā ଚେହେରା ଅପେକ୍ଷା ମାତାଙ୍କ ଚେହେରା ସଙ୍ଗେ
(ମାତୃମୁଖୀ—ସ୍ତ୍ରୀ) ବେଶି ମେଳ ଖାଉଥିବା (ଶିଶୁ)—(a child)
मामुखो मैमुहा Bearing resemblance to the outlines of its mother's face; whose facial outlines resemble those of its mother.

ମାତୃରିଷ୍ଟି(ଷ୍ଟ)—ସଂ. ବ (୬ଷ୍ଠୀ ତତ୍; ମାତୃ+ରିଷ୍ଟି—ହିନ୍ଦୁ ଜ୍ୟୋତିଷ
Mātṛurishṭi(shṭa) (ଫଳଜ୍ୟୋତିଷ) ମତରେ ଜାତ ଶିଶୁର ମାତାଙ୍କର ଅନିଷ୍ଟକାରକ ଯୋଗ ବା ଶିଶୁର ଜାତକରେ ଶିଶୁର ଜନନୀଙ୍କ ମୃତ୍ୟୁକାରକ ଗ୍ରହମାନଙ୍କ ସ୍ଥିତିବିଶେଷ—A particular conjunction of planets at the nativity of a child, which results in the death of its mother. [ ଦ୍ର—୧ । ଜନ୍ମିତ ଶିଶୁର ଜନ୍ମଲଗ୍ନର ୪ର୍ଥ ସ୍ଥାନରେ ବଳବାନ ପାପଗ୍ରହ ଥିଲେ ଏବଂ ଏହି ପାପଗ୍ରହର କେନ୍ଦ୍ର (ଅର୍ଥାତ ୪ର୍ଥ, ୭ମ ବା ୧୦ମ ସ୍ଥାନରେ ପାପଗ୍ରହ ଥିଲେ, ଅଥବା ଶିଶୁର ଜନ୍ମ ଲଗ୍ନର ୪ର୍ଥ, ୭ମ, ୧୦ମ, ୫ମ ବା ୯ମ ସ୍ଥାନରେ ପାପଗ୍ରହ ରହିଲେ ଏବଂ ପାପଗ୍ରହଯୁକ୍ତ ଚନ୍ଦ୍ରର ୪ର୍ଥ ସ୍ଥାନରେ ପାପଗ୍ରହ ରହିଲେ ଓ ୫ଟ ପାପଗ୍ରହ କର୍ତ୍ତୃକ ଦୃଷ୍ଟ ଚନ୍ଦ୍ରଙ୍କର ୬ଷ୍ଠ ସ୍ଥାନରେ ପାପଗ୍ରହ ରହିଲେ 'ମାତୃରିଷ୍ଟି' ଯୋଗ ଘଟେ । ଏହି ଯୋଗରେ ଜାତ ଶିଶୁର ମାତାଙ୍କର ଶୀଘ୍ର ମୃତ୍ୟୁ ଘଟେ । ]

ମାତୃଶ୍ରାଦ୍ଧ—ସଂ. ବ—ମୃତ ମାତାଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ ଓ ଧନାଦ
Mātṛuśrāddha ଦାନରୂପ କର୍ମ—A Śrāddha or offering of oblations made to the spirit of one's departed mother (on the 11th day of her death and on the anniversary of her death) [ ଦ୍ର—ଏହା ମାତାଙ୍କ ମୃତ୍ୟୁର ଏକାଦଶ ଦିନ ଓ ପ୍ରତି ବର୍ଷ ମାତାଙ୍କ ମୃତ୍ୟୁଦିବସର ତିଥିରେ ଅନୁଷ୍ଠିତ ହୁଏ । ]

ମାତୃଷ୍ୱ(ସ୍ୱ)ସା—ସଂ. ବ. ସ୍ତ୍ରୀ ( ମାତୃ+ସ୍ୱସୃ, ୧ମା ୧ବ )—ମାଉସୀ;
Mātṛushwa(swa)sā ମାତାଙ୍କ ଭଗିନୀ—Mother's sister; one's maternal aunt

ମାତୃଷ୍ୱ(ସ୍ୱ)ସେ(ସ୍ତ୍ରୀ,ସ୍ରେ)ୟ—ସଂ, ବ. ପୁଂ (ମାତୃଷ୍ୱସୃ ଅପତ୍ୟାର୍ଥେ ଏୟ;
Mātṛushwa(swa)se(srī, sre)ya ଢଣ୍ )—ମାଉସୀପୁଅ
ମାତୃଷ୍ୱସେୟୀ
ମାତୃଷ୍ୱସ୍ରୀୟୀ } ବିପରୀତ ଲିଙ୍ଗ ଭାଇ—One's maternal causin (male).
ମାତୃଷ୍ୱସ୍ରେୟୀ

ମାତୃସପତ୍ନୀ—ସଂ. ବ (୬ଷ୍ଠୀ ତତ୍, ମାତୃ+ସପତ୍ନୀ) —ସାବତ ମାଆ—
Mātṛusapatnī Stepmother.

ମାତୃସମ୍ବତ୍ସର—ସଂ. ବ—ମାତାଙ୍କର ମୃତ୍ୟୁଦିବସଠାରୁ ଏକ ବରଷ କାଳ
Mātṛu sambatsara —A period of one year
(ପିତୃ ସମ୍ବତ୍ସର—ବିପରୀତ) from the death of one's mother.

ମାତୃସେବକ—ସଂ. ବଣ. ପୁଂ—ଯେ ମାତାଙ୍କର ସେବା କରେ—
Mātṛu sebaka Devoted to the service of
(ମାତୃସେବିକା—ସ୍ତ୍ରୀ) (ମାତସେବାରତ—ଅନ୍ୟରୂପ) one's mother.

ମାତୃସେବା—ସଂ. ବ. ( ୬ଷ୍ଠୀ ତତ୍; ମାତୃ+ସେବା )—ମାତାଙ୍କର
Mātṛusebā ଶୁଶ୍ରୂଷା—Filial service; service rendered to one's mother.

ମାତୃସେବା ବ୍ରତ—ସଂ. ବ ( ରୂପକ; ମାତୃସେବା+ବ୍ରତ )—ମାତାଙ୍କ
Mātṛusebā brata ସେବାରୂପ ବ୍ରତ; ବ୍ରତରୂପେ ପାଳିତ ମାତୃସେବା—Service of one's mother as a religious duty.

ମାତୃସ୍ତନ—ସଂ. ବ ( ୬ଷ୍ଠୀ ତତ୍ )—ମାତାଙ୍କର ସ୍ତନ; ମାଆ ଥନ—
Mātṛustana Mother's breast.

ମାତୃସ୍ତନ୍ୟ—ସଂ. ବ ( ୬ଷ୍ଠୀ ତତ୍; ମାତୃ+ସ୍ତନ୍ୟ )—ମାତାଙ୍କ ସ୍ତନଦୁ
Mātṛustanya ଜାତ ଦୁଗ୍ଧ; ମାଆ ଦୁଧ—Milk from the mother's breast; mother's milk.

ମାତୃସ୍ଥାନୀୟା—ସଂ. ବଣ. ସ୍ତ୍ରୀ—ମାତୃକଳ୍ପା; ମାତାଙ୍କ ପଦ ପ୍ରାପ୍ତା—
Mātṛusthānīyā ( women ) In the position of one's mother. [ ଦ୍ର—ମାତାଜଲେ ଜୋଡ଼ି ଦେଖ । ]

ମାତୃସ୍ନେହ—ସଂ. ବ—ମାତାଙ୍କର ଅପତ୍ୟସ୍ନେହ—Mother's affec-
Mātṛusneha tion or fondness for her child.

ମାତୃହତ୍ୟା—ସଂ. ବ—ଅପଣାର ମାଆଙ୍କୁ ମାରି ପକାଇବା—Killing
Mātṛuhatyā of one's mother; matricide.
(ମାତୃବଧ—ଅନ୍ୟରୂପ)

ମାତୃହନ୍ତା—ସଂ. ବଣ. ପୁଂ—ଯେ ଅପଣାର ମାତାଙ୍କୁ ବଧ କରେ—
Mātṛuhantā Murdering one's mother;
(ମାତୃହନ୍ତ୍ରୀ—ସ୍ତ୍ରୀ) matricide.

ମାତୃହରଣ—ସଂ. ବ—ଗୁରୁପତ୍ନୀଆଦି ଅଭିଗମନରୂପ ମହାପାପ—
Mātṛuharaṇa The heinous sin of outraging the modesty of women who stand in the relationship of a mother to a person.

ମାତୃହୀନ—ସଂ.ବଣ.ପୁଂ—୧ । ଯାହାର ଜନନୀ ମରି ଅଛନ୍ତି; ମାଉଛେଉଣ୍ଡ—
Mātṛuhīna 1. Motherless; orphaned by the
(ମାତୃହୀନା—ସ୍ତ୍ରୀ) mother's death. ୨ । ଯେଉଁ ଘରେ (ବା ପରିବାରରେ ) ମାତା ନ ଥାନ୍ତି—2. ( a house or family ) Which has lost its mother.

ମାତ୍ର—ସଂ. ବ ( ମା ଧାତୁ=ପରିମାଣ କରିବା+କରଣ ତ୍ର )—୧ ।
Mātra ସୀମା; ପର୍ଯ୍ୟନ୍ତ—1. Boundary; limit. ୨ । ( +କର୍ମ. ତ୍ର ) ସମୁଦାୟ—2. Whole. ୩ । ( +ଭାବ. ତ୍ର ) ଅବଧାରଣ—3. Ascertaining. ୪ । ମାପ; ପରିମାଣ—4. A measure of length, breadth, height, size, space, distance or number. ବଣ. (ମାତ୍ରା+ଅ; ଅନ୍ୟ ଶବ୍ଦ ସଙ୍ଗେ

ବ୍ୟବହୃତ ଯଥା—ତନ୍ମାତ୍ର; ତଣ୍ଣାତ୍ର )—୧ । ପରିମିତ—1. In quantity. ୨ । ପ୍ରକାରେ—2. In quality. ୩ । ଶ୍ରେଣୀର ସମସ୍ତ ବସ୍ତୁ ବିଶିଷ୍ଟ—3 Comprising of all the members of a class. [ ଯଥା—ପ୍ରସ୍ଥର ପରିମାଣ ଅର୍ଥରେ—ଅଙ୍ଗୁଳିମାତ୍ର ସ୍ଥାନ, ଦୂରତ୍ୱର ପରିମାଣ ଅର୍ଥରେ—କ୍ରୋଶମାତ୍ର ପଥ, ସମୟର ପରିମାଣ ଅର୍ଥରେ—କ୍ଷଣମାତ୍ର ବିଶ୍ରାମ, ସଂଖ୍ୟା ପରିମାଣ ଅର୍ଥରେ—ଏକମାତ୍ର, ଶ୍ରେଣୀର ସମସ୍ତ ବସ୍ତୁ ଅର୍ଥରେ—ପ୍ରାଣିମାତ୍ର ଜଗତ୍, 'କେବଳ' ଅର୍ଥରେ—ଏ କାର୍ଯ୍ୟରେ ମୁଁ ନିମିତ୍ତମାତ୍ର ଅଟେ । ] ଅ—୧ । କେବଳ—1. Only; merely. ୨ । ମାତ୍ରକେ; ଯଣି—2. As soon as; no sooner than; just as. ଦେ.ଅ—୧ । ପକ୍ଷାନ୍ତରରେ—1. On the other hand. ୨ । କିନ୍ତୁ—2. But. [ ଉ—ମୁଁ ତାଙ୍କୁ ୫ ବର୍ଷ ଅନୁସରଣ କଲି; ମାତ୍ର ତାଙ୍କୁ କିଛି ଫଳ ପାଇଲି ନାହିଁ । ]

मात्र
मगर

ମାତ୍ରକ—ଦେ. ବିଣ ( ସଂ. ତଣ୍ଣାତ୍ର )—ନିମାତ୍ରକ; ଅତି ସାମାନ୍ୟ—Mātraka Very insignificant. [ ଯଥା—ପିମ୍ପୁଡ଼ି ମାତ୍ରକ ଜୀବର ମଧ୍ୟ ଜୀବ ଅଛି । ] ଅ—ମାତ୍ର (ଦେଖ) Mātra (See)

मात्रक
किस तरह

ମାତ୍ରକେ—ଦେ. ଅ—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ମନୁଷ୍ୟ ମାତ୍ରକେ; ଭ୍ରମ ପ୍ରମାଦ କରନ୍ତି)—୧ । ଶ୍ରେଣୀର ସମସ୍ତ; ସକଳ—Mātrake मात्रे; मात्रेई केसात 1. All of class. ୨ । ଯଣି; ତତ୍କ୍ଷଣାତ୍; ପର ମୁହୂର୍ତ୍ତରେ—2. Immediately after; instantly; in the next moment; no sooner than; as soon as. (ଯଥା—ଏ ପତ୍ର ପାଠ ମାତ୍ରକେ ବସିଲ ଠଉଁ ଉଠି ଆସିବ)—୩ । କେବଳ—3. Only. [ଯଥା—ମାତ୍ର ମାତ୍ରକେ ଗୁଣଶାଳୀ । ଭୂପତି. ପ୍ରେମ ପଞ୍ଚାମୃତ ।]

ମାତ୍ରେ, ମାତ୍ରେଇ (ହିଁ) }—ଅନ୍ୟରୂପ

ମାତ୍ରା—ସଂ. ବି.—(ମା ଧାତୁ+କର୍ମ. ତ୍ର+ସ୍ତ୍ରୀ. ଆ)—୧ । ପରିମାଣ—Mātrā 1. Quantity; measure. ୨ । ଅକ୍ଷରାବୟବ; ଅକ୍ଷରର ଅଂଶ; ଅସଲ ଅକ୍ଷର ସଙ୍ଗେ ଯେଉଁ ଅଂଶ ଯୋଗ କରାଯାଏ; ଅକ୍ଷରର ଫୁଡ଼ା—2. Minor signs added to a letter; strokes added to a letter. ୩ । ଏକ ବ୍ୟଞ୍ଜନବର୍ଣ୍ଣ ଅନ୍ୟ ବ୍ୟଞ୍ଜନ ବର୍ଣ୍ଣ ସଙ୍ଗେ ଯୁକ୍ତ ହେଲେ ଯେଉଁ ଯୁକ୍ତାକ୍ଷରଜ୍ଞାପକ ରୂପ ଧାରଣ କରେ; ଫଳା—3. The sign representing a consonant when added to another consonant to make a dipthong. [ ଦ୍ର—କ ବର୍ଣ୍ଣର ମାତ୍ରା (କ୍କ), ତ ର ମାତ୍ରା, (କ୍ତ), ନ ର ମାତ୍ରା (କ୍ନ), ମ ର ମାତ୍ରା (କ୍ମ), ବ ର ମାତ୍ରା (କ୍ୱ), ଯ ର ମାତ୍ରା ୟ (କ୍ୟ), ର ର ମାତ୍ରା (କ୍ର), ର ର ମାତ୍ରା (ର୍କ), ଲ ର ମାତ୍ରା (କ୍ଲ) ।]

୪ । ( ବ୍ୟାକରଣ ) ହ୍ରସ୍ୱ ସ୍ୱରର ଉଚ୍ଚାରଣକାଳ—4. (grammar) The time taken to utter a short vowel; a prosodial or syllabic instant. [ଦ୍ର—ହ୍ରସ୍ୱ ସ୍ୱରର ଏକ ମାତ୍ରା ଓ ଦୀର୍ଘ ସ୍ୱରର ଦୁଇ ମାତ୍ରା ।] ୫ । (ସଙ୍ଗୀତ) ପ୍ରତ୍ୟେକ ସ୍ୱରର ଅବସ୍ଥାନକାଳ; ହସ୍ତର ଏକବାର ପତନ ଓ ଉତ୍ଥାନର କାଳ—5. (music) The time-measure in music; time taken to raise the hand and to let it down once; beat; duration of each tone. [ଦ୍ର—ଏହା ଦ୍ରୁତ ଓ ବିଲମ୍ବିତ ଭେଦରେ ଦୁଇ ପ୍ରକାର ।] ୬ । ଥରେ ଔଷଧ ସେବନ କରିବାର ପରିମାଣ; ଔଷଧର ଯାନ—6. Dose of a medicine prescribed; quantity of a medicine taken at a time. ୭ । ମୁହୂର୍ତ୍ତ; କ୍ଷଣ—7. Moment. ୮ । ଅଂଶ—8. Portion. ୯ । କର୍ଣ୍ଣାଲଙ୍କାର; କର୍ଣ୍ଣଭୂଷଣ—9. An ornament for the ear; an earring. ୧୦ । ଇନ୍ଦ୍ରିୟ—10. Organ of sense or action. ୧୧ । ସନ୍ନ୍ୟାସୀଙ୍କର ପରିଚ୍ଛଦ—11. Dress of an ascetic. ୧୨ । ଅବିଚ୍ଛେଦ—12. Continuity. ୧୩ । ଅବିଚ୍ଛେଦ ଇନ୍ଦ୍ରିୟବୃତ୍ତି—13. Uninterrupted sensual enjoyment. ୧୪ । ଧନ; ସମ୍ପତ୍ତି—14. Property; wealth. [ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ଶେଷରେ ଯୁକ୍ତ ହୋଇ ସମାସ ହେଲେ 'ମାତ୍ର' ଆକାର ଧାରଣ କରେ । ଯଥା—ଅତିମାତ୍ର, ଅଳ୍ପମାତ୍ର ।] ୧୫ । ପରିମାଣ ବା ମାପର ନିର୍ଦ୍ଧାରିତମାନ; ବଟକରା ବା ନିର୍ଦ୍ଧାରିତମାନର ପାତ୍ର—15. A standard of measure; standard rule (Apte). ୧୬ । ଯଥାର୍ଥ ମାପ—16. The correct measure (Apte). ୧୭ । କଣିକା; କ୍ଷୁଦ୍ରାଂଶ—17. Particle; a little quantity (Apte). ୧୮ । ଅଂଶ—18. Part; portion (Apte). ୧୯ । ମହାଭୂତ—19. An elenent (Apte). ୨୦ । ଜଡ଼ ଜଗତ୍—20. Matter; the material world (Apte). ୨୧ । ଇନ୍ଦ୍ରିୟ ବୃତ୍ତି—21. Function of the organs (Apte). ୨୨ । ଅଳଙ୍କାର—22. Ornament; jewel (Apte). ୨୩ । ଦେବନାଗର ଅକ୍ଷରର ଊର୍ଦ୍ଧ୍ୱାଂଶ—23. The upper part of the Debanāgara characters. (Apte.) ଦେ. ବି.—(ଏହା ଅକ୍ଷରର ମାତ୍ରା ପରି ଆଳୁ ଲତାର ଝୁଲୁଥିବାରୁ— ଅନୁବାଦଣ; ଦେଶୀ ଆଳୁର ଲତାର ଗଣ୍ଠିରେ ଗୋଲ ସାରୁ ପରି ଯେଉଁ କ୍ଷୁଦ୍ର କ୍ଷୁଦ୍ର ଗୋଲ କନ୍ଦ ଫଳେ—Small balls shooting out from the joints of the yam-creeper. [ ଦ୍ର—ଫିଲତା

ଏଗୁଡ଼ିକ ଅଳ୍ପ ଲତାର ବାୟୁଶାୟୁ ତେର ବା ଓହଲ। ଏଗୁଡ଼ିକ ଭୂମିରେ ପୋତିଲେ ବା ଭୂମିରେ ଲାଗି ଗଲେ ଅଳ୍ପ ପତ୍ର ଭୂମି ଉପରକୁ ଗଳ ପତ୍ର ବଢ଼ି ଯାଏ । ଗୋଦର ଗୋଡ଼ରେ ବେଲେ ବେଲେ ଯେଉଁ ଅର୍ବୁଦଗୁଡ଼ିକ ବାହାରେ ସେଗୁଡ଼ିକ ଦେଖିବାକୁ ଅଳ୍ପ 'ମାତର' ପର ଥିବାରୁ ଲୋକେ କହନ୍ତି 'ଗୋଦର ଗୋଡ଼ରେ ଅଳ୍ପମାତର' । ]

ମାତ୍ରାଗତ—ଦେ. ବଣ ( ୨ୟା ତତ୍ )—ମାତ୍ରା ସମ୍ବନ୍ଧୀୟ, ପରମାଣ ସମ୍ବନ୍ଧୀୟ—Relating to quantity; quantitative.
Mātrāgata
[ମାତ୍ରାସଙ୍ଗତ—ଅନ୍ୟରୂପ]

ମାତ୍ରାଚ୍ଛନ୍ଦଃ—ସଂ. ବି—ପଦ୍ୟରେ ସ୍ୱରର ଉଚ୍ଚାରଣକାଳପରିମିତ ଛନ୍ଦଃ; ଗୁରୁଲଘୁ ମାତ୍ରା ଅନୁସାରେ ରଚିତ ପଦ୍ୟ—Poetical metre modulated according to the long and short measures of the letters or syllables comprising it.
Mātrāchchhandaḥ
[ମାତ୍ରାବୃତ୍ତ—ଅନ୍ୟରୂପ]

ମାତ୍ରାଦୋଷ—ଦେ. ବି—୧ । ବ୍ୟକ୍ତିବିଶେଷଙ୍କର ଇନ୍ଦ୍ରିୟ ସୁଖଭୋଗଜନିତ ବ୍ୟସନ—1. Personal defects of a person consisting of sensual enjoyment. ୨ । ମଦ୍ୟପାନରୂପ ଦୋଷ—2. Defect of drunkenness in a person. ୩ । ମୁଦ୍ରାଦୋଷ; କଥା କହିବା ସମୟରେ ହାତ ହଲାଇବା, କିମ୍ବା କୌଣସି ନିରର୍ଥକ ବୋଲି ବ୍ୟବହାର କରିବା ରୂପ କୁଅଭ୍ୟାସ—3. A bad personal habit with some people while talking, of using redundant expressions.
Mātrādosha
মাত্রাদোষ
মুদ্রাদোষ

ମାତ୍ରାଧିକ୍ୟ—ସଂ. ବି ( ୬ଷ୍ଠୀ ତତ୍ )—୧ । ପରମାଣର ଆଧିକ୍ୟ—1. Excess of quantity. ୨ । ଔଷଧର ନିୟମିତ ପରମାଣରୁ ଆଧିକ୍ୟ—2. Overdose.
Mātrādhikya

ମାତ୍ରାପାନ—ସଂ. ବି—ପରିମିତ ପାନ; ଅଳ୍ପ ଅଳ୍ପ ପରମାଣରେ ପିଇବା—Drinking in small doses; dram-drinking.
Mātrāpāna

ମାତ୍ରା ବସ୍ତି—ସଂ. ବି—ଗୁହ୍ୟ ଦ୍ୱାର ବାଟେ ମଳ ଭାଣ୍ଡରେ ଦିଆଯିବା ପିଚକାରୀ—An oily clyster (Apte); washing the intestines with oil.
Mātrā basti

ମାତ୍ରା ଭସ୍ତ୍ରା—ସଂ. ବି—ଟଙ୍କାର ଥଳି—A money bag (Apte).
Mātrā bhastrā

ମାତ୍ରାସଙ୍ଗ—ସଂ. ବି (୬ଷ୍ଠୀ ତତ୍ )—ସାଂସାରିକ ସମ୍ପତ୍ତି ପାଇଁ ମମତା (ମନୁ ୬।୫୭)—Attachment to or regard for household possessions or property (Apte).
Mātrāsaṅga

ମାତ୍ରା ସମକ ଛନ୍ଦଃ—ସଂ. ବି—ଗୁରୁ ଲଘୁ ମାତ୍ରାଗତ ଛନ୍ଦୋବିଶେଷ—A particular musical tune consisting of long and short syllables. [ବି—ଏହି ଛନ୍ଦର ୪ ଗୋଟି ପାଦ; ପ୍ରତି ପାଦରେ ୧୬ଟି ବର୍ଣ୍ଣ ଥାଏ । ପ୍ରତି ପାଦର ଶେଷରେ ଗୋଟିଏ ଗୁରୁ ବର୍ଣ୍ଣ ଥାଏ ଏବଂ ନବମ ଲଘୁ ବର୍ଣ୍ଣ ହୁଏ । ଏହି ଛନ୍ଦର ଅନେକ ପ୍ରକାର ଅଛି । ଯଥା—ବାନବାସିକା (୯ମ ଓ ୧୨ଶ ଲଘୁ ଓ ୧୫ଶ ଓ ୧୬ଶ ଗୁରୁ); ଚିତ୍ରା (୫ମ, ୮ମ ଓ ୯ମ ଲଘୁ ଓ ୧୫ଶ ଓ ୧୬ଶ ଗୁରୁ), ଉପଚିତ୍ରା (୫ମ, ୮ମ ଲଘୁ ଓ ୯ମ, ୧୦ମ, ୧୫ଶ, ୧୬ଶ ଗୁରୁ); ବିଶ୍ଲୋକ (୫ମ, ୮ମ ଓ ୧୨ଶ ଲଘୁ ଓ ୧୫ ଓ ୧୬ଶ ଗୁରୁ) ପାଦାକୁଳକ (ପ୍ରତି ପାଦରେ ୧୬ଟି ବର୍ଣ୍ଣ ଛଡ଼ା ଏଥିର ବର୍ଣ୍ଣ ବିନ୍ୟାସରେ ଅନ୍ୟ ନିୟମ ନାହିଁ । ଶଙ୍କରାଚାର୍ଯ୍ୟଙ୍କ ରଚିତ ମୋହ ମୁଦ୍ଗରର ମାତ୍ରା ସମକଛନ୍ଦ ଅଟେ—Apte]
Mātrā samaka chhandaḥ

ମାତ୍ରା ସ୍ପର୍ଶ—ସଂ. ବି—୧ । ରୂପରସାଦି ବାହାରର ବିଷୟ ସଙ୍ଗେ ଇନ୍ଦ୍ରିୟର ଯୋଗ—1. The contact of the sense organs with external objects; sense perception of external objects. ୨ । ଜଡ଼ଭୂତ ସଙ୍ଗେ ସମ୍ପର୍କ—2. Contact with the material elements (Apte).
Mātrāsparśa

ମାତ୍ସର (ଇତ୍ୟା)—ସଂ. ବଣ. ପୁଂ—ମାତ୍ସର ଇତ୍ୟାଦି ( ଦେଖ )—Māt-sara etc. ( See )
Mātsara (etc)

ମାତ୍ସି(ତ୍ସ୍ୟ)କ—ସଂ. ବି. ପୁଂ—ମାତ୍ସି(ସ୍ୟ)କ ( ଦେଖ )—Māt-si(syi)ka ( See )
Mātsi(tsyi)ka

ମାଥ—ସଂ. ବି. (ମଥ୍ ଧାତୁ=ମନ୍ଥନ କରିବା; ବଧ କରିବା+ଭାବ.ଅ)—୧ । ମନ୍ଥନ; ବିଲୋଡ଼ନ—1. Churning; stirring. ୨ । ବଧ—2. Slaughter. ୩ । ବ୍ୟଥା—3. Agony. ୪ । (+କର୍ମ. ଅ) ପଥ; ମାର୍ଗ—4. Road; path. ଦେ. ବି. (ସଂ. ମସ୍ତ)—ମସ୍ତକ; ମୁଣ୍ଡ; ମଥା—Head. [ଉ—ସେହି ଗାଣ୍ଡିବ ସେହି ପାର୍ଥ, ସେହି ଗାଣ୍ଡିବ ଏବେ ମାଥ !—ଭଗ; ଉପର୍ଯ୍ୟୁକ୍ତ ଉଗର ଅର୍ଥ ଏହି ଯେ ପୂର୍ବେ ପାର୍ଥ ଅର୍ଥାତ୍ ଅର୍ଜୁନ ଯେଉଁ ଗାଣ୍ଡିବ ଧନୁକୁ ଅନାୟାସରେ ଉଠାଇ ପାରୁଥିଲେ ଏବେ ତାଙ୍କଠାରୁ ବିଷ୍ଣୁଶକ୍ତି ଅନ୍ତର୍ହିତ ହେବାରୁ ଅର୍ଜୁନ ସେହି ଗାଣ୍ଡିବକୁ ବହୁ କଷ୍ଟରେ ମୁଣ୍ଡରେ ବୋହି କରି ନେଉଅଛନ୍ତି ।]
Mātha
মাথা মাথ

ମାଥୁର—ସଂ. ବଣ ( ମଥୁରା+ଅ )—୧ । ମଥୁରା ସମ୍ବନ୍ଧୀୟ—1. Relating to Muthurā (name of a town). ୨ । ମଥୁରାବାସୀ—2. Residing in Mathurā. ୩ । ମଥୁରାରେ ଜାତ—3. Produced in Mathurā.
Māthura
(ମାଥୁରୀ—ସ୍ତ୍ରୀ)

ମାଥୁରୀ—ଦେ. ବି. (ସଂ. ମାଥୁରୀ ଭାଷା)—ବ୍ରଜ ଭାଷା ( ଦେଖ )—Braja bhāshā ( See )
Māthurī
ସଂ. ବଣ. ସ୍ତ୍ରୀ (ମାଥୁର+ଈ)—ମାଥୁରର ସ୍ତ୍ରୀ ଲିଙ୍ଗ—Feminine of Māthura.

ମାଥେ ଘେନିବା—ଦେ. କ୍ରି—(ଆଦେଶ) ପାଳନ କରିବା; ଶିରୋଧାର୍ଯ୍ୟ କରିବା—To carry out; to obey
Māthe ghenibā

মাথায় ধরা (বা তোলা) (an order or behest)
मत्था चढना, माथे लेना (ଦ୍ର—ଯେ ବସ୍ତୁ ଅଛି ଯେଉଁ ମାଥେ, ବୃନ୍ଦାଶ୍ରୁ ମୃକଳ ଯେମନ୍ତେ । ଜଗନ୍ନାଥ. ଭାଗବତ ।)

ମାଦ୍(ଦୁ)କୁରୀ—ଦେ. ବି. (ସଂ. ମାଧୁକରୀ)—ମାଧୁକରୀ ( ଦେଖ )
Mād-(du)kurī Mādhukarī ( See )
মাধুকরী माधुकरी

ମାଦ—ସଂ. ବି (ମଦ ଧାତୁ=ମତ୍ତହେବା+ଭାବ. ଅ)—୧ । ମତ୍ତତା—
Māda I. Madness. ୨ । ଅହଙ୍କାର—2. Pride. ୩ । ହର୍ଷ; ଅହ୍ଲାଦ—3. Joy; delight.

ମାଦକ—ସଂ. ବିଣ (ମଦ ଧାତୁ ଣିଚ ମାଦ ଧାତୁ+ଅକ)—୧ । ମତ୍ତତା ଜନକ; ଯାହା ନିଶା କରାଏ—1. Intoxicating.
Mādaka
(ମାଦକା—ସ୍ତ୍ରୀ) ୨ । ଯାହା ଉନ୍ମତ୍ତତା ଜନ୍ମାଏ—2. Madening. ୩ । ଯାହା ହର୍ଷ ବା ଆନନ୍ଦ ଜନ୍ମାଏ—3. Gladdening.
ବି.—୧ । ନିଶା ଉତ୍ପାଦକ ଦ୍ରବ୍ୟ—1. Intoxicant; an intoxicating drug. ୨ । ଡାହୁକ ପକ୍ଷୀ—2. A gallinule (Apte). ଦେ. ବି—୧ । ମାଉଁ ନିଶା; ମତ୍ତତା—1. Intoxication. ୨ । ମଜା; ମଉଜ—2. Pleasure; amusement; cheer; good cheer.

ମାଦକ ଉଠିବା—ଦେ. ବି.—୧ । ଉପର୍ଯ୍ୟୁପରି ମାଦକସେବନଦ୍ୱାରା
Mādaka uṭhibā ଘୋର ନିଶା ଜନ୍ମିବା—1. Deepen-
(ମାଦକ ଜମିବା—ଅନ୍ୟରୂପ) ing of intoxication on
নেশা উঠা account of repeated doses of intoxi-
मस्तीउठना cants being taken. ୨ । ମାଉଁ ବା ମଉଜ ଘନୀଭୂତ ହୋଇଆସିବା—2. The rising of good cheer.

ମାଦକତା—ସଂ. ବି ( ସଂ. ମାଦକ+ଭାବାର୍ଥେ. ତା )—୧ । ନିଶା—
Mādakatā 1. Intoxication. ୨ । ନିଶା ଜନ୍ମାଇବାର କ୍ଷମତା—2. The power or property of producing intoxication.

ମାଦକ ଦ୍ରବ୍ୟ—ସଂ. ବି (କର୍ମଧା)—ଯେଉଁ ଦ୍ରବ୍ୟ ସେବନ କଲେ ନିଶା
Mādaka drabya ହୁଏ—Intoxicating drug.

ମାଦକ ସେବନ—ସଂ. ବି (୬ଷ୍ଠୀ ତତ୍)—ନିଶା ଖାଇବା—
Mādaka sebana The taking of intoxicants.
(ମାଦକ ସେବା—ଅନ୍ୟରୂପ)

ମାଦକସେବୀ—ସଂ. ବିଣ. ପୁଂ—ନିଶାଖୋର୍—
Mādakasebī Habituated to taking intoxicants.
(ମାଦକସେବିନୀ—ସ୍ତ୍ରୀ)

ମାଦକୀ—ସଂ. ବିଣ. ପୁଂ—ମାଦକସେବୀ; ନିଶାଖୋର; ମାତାଲ—
Mādakī Habituated to taking intoxicants.
(ମାଦକିନୀ—ସ୍ତ୍ରୀ) [ଦ୍ର—ବିଜ୍ଞାନ ନୋହେ ମାଦକୀ ଚେଲା ଅଟଇ । ଭକ୍ତ. ବୈଦେହୀଶବିଳାସ ।]

ମାଦନ—ସଂ. ବିଣ. ପୁଂ (ସଂ. ମଦ. ଧାତୁ. ଣିଚ୍=ମାଦ. ଧାତୁ+କର୍ତ୍ତୃ.
Mādana ଅନ)—ମତ୍ତତା ଉତ୍ପାଦକ—Intoxicating. ସଂ. (ମାଦନୀ—ସ୍ତ୍ରୀ) ପୁଂବି—୧ । କାମଦେବ—1. Cupid. ୨ । ଧୁତୁରା—2. The thorn apple (Apte). ୩ । ଲବଙ୍ଗ—3. Cloves (Apte). ୪ । ( +ଭାବ. ଅନ ) ହର୍ଷ—4. Exhilaration (Apte). ୫ । ନିଶା—5. Intoxication (Apte).

ମାଦନୀୟ—ସଂ. ବି (ମଦ. ଧାତୁ. ଣିଚ୍=ମାଦ. ଧାତୁ+କର୍ମ.ଅନୀୟ)—
Mādanīya ୧ । ନିଶା ଉତ୍ପାଦକ ପାନୀୟ—1. An intoxicating drink (Apte) ୨ । ଭାଙ୍ଗପାଣି; ସିଦ୍ଧି—2. An intoxicating drink made with the leaves of Cannabis Indica.

ମାଦ(ଦୁ)ର ଚୋ( ଚୁ )ତ୍,ଦ୍(ଦା)—ବୈଦେ. ବିଣ. ପୁଂ (ଗାଳି ଅ)
Māda(du)r cho(chu)t(d,dā) ମାଦର୍‌ଚୋଦ୍; ତୁଳନା ଇଂ.
মাদরচুদ; মাতৃচোদ ମଦର୍, ଲାଟିନ୍ ମେଟର, ସଂ. ମାତୃ=ମାତା)-
मादरचोद् ମାତୃଗାମୀ; ମାତୃହରଣକାରୀ—(a term of vile abuse) Committing incest with one's own mother.

ମାଦଳ—ଦେ. ବି (ସଂ ମର୍ଦ୍ଦଳ)—୧ । ଘଣାଉଜ; କାଠର ତୁଳ
Mādaḷa ମୁହଁରେ ଚମଡ଼ା ଛାଉଣି ଏକହାତ ବା ଦେଢ଼ହାତ ଲମ୍ବ
মাদল ବାଦ୍ୟ—1. A small woooden drum. [ ଦ୍ର—
मानर,मांदर ଏହା ମୃଦଙ୍ଗଠାରୁ ଆକାରରେ ଶ୍ରେଷ୍ଠ ଓ ସ୍ୱରର
গণ্ডি; মাদলা ଗମ୍ଭୀରତାରେ ସମତୁଲ । ଏହା ଦୁଇ ହାତର କରତଳଦ୍ୱାରା
घड ବଜାଯାଏ । ମୃଦଙ୍ଗ ମାଟିରେ ତିଆରି, ଏହା କାଠରେ ତିଆରି । ] ୨ । କୌଣସି ଜୀବର ମୁଣ୍ଡ ଓ ହାତ ଗୋଡ଼ ହୀନ ହୋଇଥିବା ଶରୀରାଂଶ—2. The headless and limbless trunk of an animal. [ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ମଧ୍ୟ ଯୁକ୍ତ ହୁଏ ଯଥା—ଘଣ୍ଟ ମାଦଳ; ଗେଣ୍ଡେଇ ମାଦଳ । ]

ମାଦଳା—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ରକ୍ଷିତ ତାଳପତ୍ର
Mādaḷā ପଞ୍ଜିକା—Palm-leaf archives maintained in the temple of Jagannāth at Puri.[ଦ୍ର—ଏଥିରେ ଜଗନ୍ନାଥ ମନ୍ଦିରର ଇତିହାସ, ପୁରୀ ରାଜବଂଶର ଇତିହାସ, ଜଗନ୍ନାଥଙ୍କର ପୂଜା ଓ ପର୍ବାଦି ଅଧିକ ବିବରଣ ପ୍ରାଚୀନକାଳରୁ ଲିଖିତ ହୋଇ ଆସୁଅଛି । ଏଥିରେ ଲେଖାଥିବା ଅନେକ ବିଷୟ କାଳ୍ପନିକ ଥିବାର ଦେଖାଯାଏ ।
ଏହାର ଅନେକ ତାଳପତ୍ର ପାଞ୍ଜିମାନଙ୍କ ଦ୍ୱାରା ବନ୍ଧା ମର୍ଦ୍ଦଳପରି ଥିବାରୁ ଏହାର ଏପରି ନାମ ହୋଇଅଛି—ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।]

ମାଦ(ଦେ)ଳୀ—ଦେ. ବି—୧ । ମାଦଳିଆ (ଦେଖ)—1. Mādaḷiā
Māda(de)ḷī (See) ୨ । କେଉଟ ଜାତିର ବଂଶୋପାଧି--2. The family title of fisherman. [ ଦ୍ର—ପୁରୀ ଜିଲ୍ଲାର ସାକ୍ଷୀଗୋପାଳରେ ଏହି ଉପାଧିଧାରୀ କେତେକ ପରିବାର ଅଛନ୍ତି । ] ୩ । ମାଦୁଳି ( ଦେଖ )—Māduḷi ( See )

ମାଦ(ଦେ)ଳିଆ—ଦେ. ବି—୧ । ଯେ ମର୍ଦ୍ଦଳ ବଜାଏ—1. One Māda(de)ḷiā who plays on the 'Mādaḷa'. ୨ । ଯେ মাদল বজায়; মাদলওয়ালা ନର୍ତ୍ତକୀ ବେଶ୍ୟା ସଙ୍ଗେ ଯେ ମାଦଳ मृदंगीया ବଜାଏ; ଦାସୀଘର ଭଡ଼ୁଆ—2. A player of drum with a dancing girl. [ ଉ—ଦାସୀର ମାଦେଳିଆ ସାକ୍ଷୀ ; ଛଗ ।] [illegible] । ଭଡ଼ୁଆ ଜାତିର ବଂଶୋପାଧି—3. Family title of a caste of professional musicians in the party of dancing girls.

ମାଦା(ଧା)—ଦେ. ବିଣ—(ସ. ମନ୍ଦ)—୧ । ଅଳସୁଆ—1. Lazy. Mādā (dhā) ୨ । ନିର୍ବୁଦ୍ଧିଆ—2. Dull-headed; dunce মাদা मंदा(द) ୩ । ଯେ ସମସ୍ତ କାର୍ଯ୍ୟ ଧୀରେ ଧୀରେ କରେ—3. Slow.

ମାଦନୀ—ସ. ବି—(ମଦ୍ ଧାତୁ ଣିଚ୍=ମାଦ ଧାତୁ+କର୍ତ୍ତୃ. ଅନ+ସ୍ତ୍ରୀ.ଈ) Madinī ୧ । ଭାଙ୍ଗ; ସିଦ୍ଧି; ପତ୍ର (ଦ୍ରବ୍ୟଗୁଣ)—1. The leaves of Cannabis Indica. ୨ । ମାଦନୀୟ (ଦେଖ)—2. Mādaniya (See)

ମାଦୀ—ବୈଦେ. ବିଣ. ସ୍ତ୍ରୀ—(ଫା. ମାଦା)—ମାଈ; ସ୍ତ୍ରୀ ଜାତୀୟ (ଜୀବ)—Mādī Female (animal). ( ଯଥା—ମାଦୀ ପାରି=ମାଈ মাদী मादी,मदा ପାରି; ନର ପାରି=ଅଣ୍ଡିରା ପାରି ।] ବି.—(ମର୍ଦ୍ଦ—ପୁଂ) ୧ । ମାଈ ଜୀବ—1. A female animal. ୨ । (ନର—ବିପରୀତ ଲିଙ୍ଗବାଚକ) (ପୁଂ) ସ୍ତ୍ରୀସ୍ୱଭାବଯୁକ୍ତ ବା ଭୀରୁ ପୁରୁଷ—2. A coward.

ମାଦୁ—ଦେ. ବି—୧ । ଶୋଥ ବ୍ରଣ; ବ୍ରଣ ଶୋଥ—1. An abscess, Mādu ফোড়া फोडा ୨ । ବାଳମୁଳିଆ; ବଥ—2. A boil.

ମାଦୁ(ଦି)ଆନ୍ (ନୀ)—ବୈଦେ. ବି—(ଫା. ମାଦୀଆନ୍)—ମାଈ ଘୋଡ଼ା, Mādu(di)ān(nī) (ମାଦାନ୍—ଅନ୍ୟରୂପ) ଘୋଡ଼ୀ—A mare. মাহুয়ান, মাদোয়ান घोडी

ମାଦୁର—ଦେ. ବି.—(ସ. ମନ୍ଦୁରା)—୧ । ମୁନ୍ଦୁରା—1. Mat. ୨ । Mādura মাদুর पटिया ଘୋଡ଼ାଶାଳ—2. Stable.

ମାଦୁଲ୍—ବୈଦେ. ବି.—(ଫା)—ବରଖାସ୍ତ; କାର୍ଯ୍ୟ ରହିତ୍ୟ—Mādul বরখাস্ত बरखास्त Dismissal from service ବିଣ—ବରଖାସ୍ତ ହୋଇଥିବା—Dismissed from service.

ମାଦୁଲ କରିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ କର୍ମଚ୍ୟୁତ କରିବା—Mādul kariba To dismiss a person from বরখাস্ত করা बरखास्त करना service.

ମାଦୁଲ୍ ହେବା—ଦେ. କ୍ରି—କର୍ମଚ୍ୟୁତ ହେବା; କାର୍ଯ୍ୟରୁ ରହିତ ହେବା—Mādul hebā To be dismissed from service. বরখাস্ত হওয়া बरखास्त होना

ମାଦୁଳି(ଳି)—ଦେ. ବି.—(ସ. ମର୍ଦ୍ଦଳ; ଏହା ମର୍ଦ୍ଦଳାକୃତି ଥିବାରୁ) Māduḷi(li) ତେନ୍ତୁଳିଆ—A charm or amulet of মাহুলী यंत्र metal (shaped like two faced drum) tied with a string and worn on the neck or arms.

ମାଦୃକ୍(କ୍ଷ, ଶ)—ସ. ବିଣ. ପୁଂ—(ଅସ୍ମଦ୍‌ର ମଦ୍+ଦୃଶ୍ ଧାତୁ+କର୍ତ୍ତୃ. Mādṛuk (ksha, śa) କ୍ୱିପ୍; ମାଦୃଶୀ ସ୍ତ୍ରୀ. ୧ବ; ମତ+ଦୃଶ୍ [ମାଦୃଶା, ମାଦୃଶୀ, ମାଦୃକ୍ଷୀ—ସ୍ତ୍ରୀ) ଧାତୁ+କର୍ତ୍ତୃ. ଶ; ମଦ୍+ଦୃଶ୍ ଧାତୁ+କର୍ତ୍ତୃ. ଅ; ମୋ ପରି ଦେଖା ଯାଉଥିବା)—ମତ୍-ସଦୃଶ; ମୋ ତୁଲ୍ୟ—Like me; like myself. resembling me.

ମାଦ୍ରବତୀ—ସ. ବି. ସ୍ତ୍ରୀ—୧ । ରାଜା ପରୀକ୍ଷିତଙ୍କ ସ୍ତ୍ରୀ (ହ୍ର ଶ.)—Mādrabatī 1. Name of the queen of Rājā Parīkhita. ୨ । ମାଦ୍ରୀ; ପାଣ୍ଡୁଙ୍କର କନିଷ୍ଠା ସ୍ତ୍ରୀ—2. The second wife of king Pāṇḍu.

ମାଦ୍ରାଜ୍(ସ)—ଦେ. ବି—ମାନ୍ଦ୍ରାଜ୍ (ଦେଖ) Mādrāj(s) Māndrāj (See).

ମାଦ୍ରାସା—ବୈଦେ. ବି—(ଆ. ମଦାରସ୍; ଫା. ମଦ୍‌ରସା)—ମୁସଲମାନଙ୍କ Mādrāsā ଉଚ୍ଚଶିକ୍ଷାର୍ଥ ବିଦ୍ୟାଳୟ; ପାରସୀ ଓ ଆରବୀ ଭାଷାର মাদ্রাসা मदरसा ଉଚ୍ଚ ପାଠଶାଳା—A school for secondary education in Arabic or Persian. [ଦ୍ର—ପ୍ରାଥମିକ ଆରବୀ ବା ପାରସୀ ଶିକ୍ଷାର ପାଠଶାଳାକୁ ମକ୍ତବ୍ କହନ୍ତି ।]

ମାଦ୍ରୀ—ସ. ବି. ସ୍ତ୍ରୀ—୧ । ( ମଦ୍ର=ମଦ୍ରଦେଶର ରାଜା+ଅପତ୍ୟାର୍ଥେ. Mādrī ଅ+ସ୍ତ୍ରୀ. ଈ )—ପାଣ୍ଡୁଙ୍କର ଦ୍ୱିତୀୟା ସ୍ତ୍ରୀ; ନକୁଳ-ସହଦେବଙ୍କ ମାତା—1. Name of the 2nd wife of king Pāṇḍu. [ ଦ୍ର—ଅଶ୍ୱିନୀକୁମାରଦ୍ୱୟଙ୍କ ଔରସରେ ଏହାଙ୍କ ଗର୍ଭରୁ ନକୁଳ ଓ ସହଦେବ ଜନ୍ମଗ୍ରହଣ କରିଥିଲେ । ପାଣ୍ଡୁ ରାଜା ଏହାଙ୍କ ସହବାସ କରିବା ସମୟରେ ଅଗ୍ନିକା ବା କିମିନ୍ଦମ ଋଷିଙ୍କ ଅଭିଶାପରୁ ପାଣ୍ଡୁଙ୍କଠାରେ ଗୋଟିଏ 'ଅକାଳ କାଣ୍ଡ' ବାଜିବାରୁ ପାଣ୍ଡୁ ପ୍ରାଣତ୍ୟାଗ କଲେ । ପାଣ୍ଡୁ ରାଜାଙ୍କ ମୃତ୍ୟୁହେବାରୁ ମାଦ୍ରୀ ପୁତ୍ରଦୁହିଙ୍କୁ ସପତ୍ନୀ କୁନ୍ତୀଙ୍କ ହସ୍ତରେ ଅର୍ପଣ କରି ସ୍ୱାମୀଙ୍କ ଚିତାନଳରେ ଦେହତ୍ୟାଗ କଲେ । ଅକାଳକାଣ୍ଡ ତଳେ ଟୀକା ଦେଖ । ] ୨ । ଅତିବିଷା; ମହୁରା ( ହ୍ର. ଶ )—2. Aconite.

ମାଦ୍ରେୟ—ସ. ବି. ପୁଂ ( ମାଦ୍ରୀ+ଉତ୍ପନ୍ନାର୍ଥେ. ଏୟ )—ମାଦ୍ରୀଙ୍କ ଗର୍ଭ-Mādreya ଜାତ ପାଣ୍ଡୁଙ୍କର ପୁତ୍ରଦ୍ୱୟ; ନକୁଳ ଓ ସହଦେବ—The 4th and 5th Pāṇḍaba brothers.
ମାଦ୍ରୀସୁତ, ମାଦ୍ରୀନନ୍ଦନ, ମାଦ୍ରସୁତ (ହ୍ର. ଶ) } ଅନ୍ୟରୂପ

ମାଧବ—ସ. ବି—୧ । ( ୬ଷ୍ଠୀ ତତ୍; ମା=ଲକ୍ଷ୍ମୀ+ଧବ=ସ୍ୱାମୀ )—Mādhaba ବିଷ୍ଣୁ; ଶ୍ରୀକୃଷ୍ଣ, ନାରାୟଣ—1. Bishṇu; Nārāyaṇa; Śrikṛushṇa. ୨ । ( ମଧୁ=ବସନ୍ତ କାଳ+ଅ )—ବସନ୍ତକାଳ—2. The spring. ୩ । ବୈଶାଖ ମାସ—3. The month of Baiśākha. ୪ । ( ମଧୁ=ମହୁ+ଅ ) ମଧୁକ ବୃକ୍ଷ; ମହୁଲ ଗଛ—4. The mahua tree. ୫ । କାମଦେବଙ୍କ ସହଚର ବସନ୍ତ—5. The spring personified; the boon companion of Cupid. ୬ । ଇନ୍ଦ୍ର—

6. Indra ( Apte ). ୭ । ଯାଦବଗଣ—7. Name of the Jādabas ( See ). ୮ । ମାଧବାଚାର୍ଯ୍ୟ ( ଦେଖ )—8. Mādhabāchārjya (See) ୯ । ୨୪ ଅକ୍ଷରର ବର୍ଣ୍ଣବୃତ୍ତ ବିଶେଷ ( ହି. ଶ )—9. Name of a metre. ୧୦ । ଭୈରବରାଗର ୮ ପୁତ୍ର ମଧ୍ୟରୁ ଏକ ( ହି. ଶ )—10. One of the secondary tunes of Hindu music. ୧୧ । ମଲ୍ଲାର, ବିଲାବଲ ଓ ନଟନାରାୟଣ ରାଗତ୍ରୟର ମିଶ୍ରିତ ରାଗିଣୀ ( ହି. ଶ )—11. Name of a mixed tune. ବିଣ ( ମଧୁ+ଅ )—୧ । ମଧୁସମ୍ବନ୍ଧୀୟ—1. Relating to madhu. ୨ । ମଧୁ ପରି ମଧୁର—2. Sweet like honey. ୩ । ବସନ୍ତକାଳୀନ—3, Vernal. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.

(ମାଧବୀ } ସ୍ତ୍ରୀ; ମାଧବିକା)

(ମାଧବାନନ୍ଦ—ଅନ୍ୟନାମ)

**ମାଧବକ**—ସଂ. ବି ( ମାଧବ+କ )—ମହୂଲରୁ ପ୍ରସ୍ତୁତ ମଦ ( ହି. ଶ )
Mādhabaka —Wine made from Mahwa flowers.

**ମାଧବ କର**—ଦେ. ବି ( ନାମ )—'ମାଧବକର ନିଦାନ' ନାମକ
Mādhaba kara ବୈଦ୍ୟଶାସ୍ତ୍ରର ପ୍ରଣେତା—The author of 'Mādhaba kara Nidāna', a treatise on Hindu medical science. [ ଦ୍ର—ଏ ୪୦୦ ବର୍ଷ ପୂର୍ବେ ଏହି ବୈଦ୍ୟଶାସ୍ତ୍ର ପ୍ରଣୟନ କରିଥିଲେ । ଜଗବନ୍ଧୁ. ପ୍ରାଚୀନ. ଉତ୍କଳ । ]

**ମାଧବ ଧାରା**—ଦେ. ବି ( ନାମ )—ବିଶାଖାପାଟଣା ଜିଲ୍ଲାର ଗୋଟିଏ
Mādhaba dhārā ପ୍ରଧାନ ସ୍ଥାନ—Name of a famous place in the Vizag district. [ ଦ୍ର—ଏହା ବିଶାଖା ପାଟଣା ଜିଲ୍ଲାର ସୀମାଚଳ ପର୍ବତର ପୂର୍ବଦିଗରେ ଅବସ୍ଥିତ । ଏଠାରେ ଗୋଟିଏ ଶ୍ରେଷ୍ଠ ମହାଦେବ ମନ୍ଦିର ଅଛି ଏବଂ ସାତଗୋଟି ଝର ପ୍ରବାହିତ ହେଉଅଛି । ]

**ମାଧବ ବଲ୍ଲୀ**—ସଂ. ବି—ମାଧବୀ ଲତା—The creeper Mādhabī
Mādhaba ballī ( Apte ).

**ମାଧବ ରାଓ**—ଦେ. ବି ( ନାମ )—ରାଜା ସର୍ ଟାଞ୍ଜୋର୍ ମାଧବ ରାଓ—
Mādhaba rāo Raja Sir; T. Mādhaba Rao, an eminent Marhatta Brāhmaṇa (1821—1891)
(ମାଧ ରାଓ, ମାଧୋରାଓ } ଅନ୍ୟରୂପ)
[ ଦ୍ର—ଏ ମହାରାଷ୍ଟ୍ରୀୟ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏ ଖ୍ରୀ ୧୮୨୮ ରେ ଜନ୍ମଗ୍ରହଣ କରି ୧୮୯୧ ରେ ପ୍ରାଣତ୍ୟାଗ କରିଥିଲେ । ଏ ଯଥାକ୍ରମେ ତ୍ରିବାଙ୍କୁଡ଼ ମହାରାଜାଙ୍କର ଶିକ୍ଷକ, ଦେୱାନ ଓ ଇନ୍ଦୋର ମହାରାଜାଙ୍କ ଦେୱାନ ଓ ବରୋଦା ରାଜାଙ୍କର ଦେୱାନ ହୋଇଥିଲେ ଓ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କଠାରୁ ରାଜା ଓ ସର୍ ଉପାଧି ପାଇଥିଲେ ।]

**ମାଧବ ଶ୍ରୀ**—ସଂ. ବି—ପ୍ରକୃତିର ବସନ୍ତକାଳୀନ ସୌନ୍ଦର୍ଯ୍ୟ—Vernal
Mādhaba śrī beauty of nature (Apte).

**ମାଧବାଚାର୍ଯ୍ୟ**—ଦେ. ବି ( ନାମ )—ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀର
Mādhabāchārjya ମଧ୍ୟଭାଗର ବିଖ୍ୟାତ ପଣ୍ଡିତ, ସଂସ୍କୃତ ଗ୍ରନ୍ଥକାର ଏବଂ ବେଦର ଟୀକାକାର—A Sanscrit scholar, author, religious reformer, and minister of South India of the 15th century A. D. [ଦ୍ର—ଏ ବିଜୟନଗରର ଉଦାସୀନ୍ତନ ରାଜାଙ୍କର ପ୍ରଧାନ ମନ୍ତ୍ରୀ ଓ ସେନାପତି ଥିଲେ । ଏ ବହୁ ଚେଷ୍ଟା କରି ଭାରତର ଅନେକ ସ୍ଥାନରେ ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା କରିଥିଲେ ଓ ଗୋଟିଏ ବୈଷ୍ଣବ ସମ୍ପ୍ରଦାୟ ପ୍ରତିଷ୍ଠା କରିଥିଲେ । ଏହାଙ୍କ ସମ୍ପ୍ରଦାୟ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ ବର୍ତ୍ତମାନ ବଙ୍ଗ, ଉତ୍କଳ ଓ ଦାକ୍ଷିଣାତ୍ୟରେ ଚଳୁଅଛି । ଏହାଙ୍କ ପିତାଙ୍କ ନାମ ମାୟଣ; ଏ ଏହାଙ୍କ ଭାଇ ସାୟନାଚାର୍ଯ୍ୟଙ୍କ ସହିତ ଋଗ୍ବେଦର ପ୍ରସିଦ୍ଧ ଟୀକା ସଙ୍କଳନ କରିଥିଲେ (Apte).]

**ମାଧବାନନ୍ଦ ନ୍ୟାୟବାଚସ୍ପତି**—ଦେ. ବି ( ନାମ )—ଉତ୍କଳୀୟ
Mādhabānanda nyāyabāchaspati ନୈୟାୟିକ ସ୍ୱର୍ଗୀୟ ପଣ୍ଡିତ—The name of a great logician of Utkal. [ଦ୍ର—ଏ କେନ୍ଦୁଝର ଋଷିପୁର ଗ୍ରାମବାସୀ । ଏ ରାଜା ଧୁନଞ୍ଜୟ ଭଞ୍ଜଙ୍କ ସଭାପଣ୍ଡିତ ଥିଲେ; ବଗଳା ମନ୍ତ୍ରର ବିଶିଷ୍ଟ ସାଧକ ଥିଲେ । ଏ ୫୩ ବର୍ଷ ଦେଶବିଦେଶରେ ବୁଲି ବହୁ ବିଦ୍ୟା ଲାଭ କରିଥିଲେ । ଏ ମୈଥିଳୀ, ବଙ୍ଗଳା, ମହାରାଷ୍ଟ୍ରୀ ଓ ହିନ୍ଦୀ ଭାଷାରେ ପଣ୍ଡିତ ଓ ବକ୍ତା ଥିଲେ । ଶ୍ରୀଯୁକ୍ତ କେଶବ ମିଶ୍ର ତାଙ୍କ ବୈତରଣୀ ପୁସ୍ତକରେ ଏହାଙ୍କ ବିଷୟ ବର୍ଣ୍ଣନା କରିଅଛନ୍ତି ।]

**ମାଧବିକା**—ସଂ. ବି. ସ୍ତ୍ରୀ ( ମଧୁ+ଅ=ମାଧବ+କ+ସ୍ତ୍ରୀ. ଆ )—
Mādhabikā ମାଧବୀ ୧ ( ଦେଖ )—Mādhabī 1 (See)

**ମାଧବୀ**—ସଂ. ବି. ସ୍ତ୍ରୀ ( ମଧୁ+ଅ+ସ୍ତ୍ରୀ. ଈ )—୧ । ପ୍ରସିଦ୍ଧ ପୁଷ୍ପଲତା—
Mādhabī I. A flowering creeper; the spring creeper; Hiptage Madablata; Jasminum Arborescens; Clustered Hiptage; ( Kirtikar ). [ ଦ୍ର—ଏହାର ପ୍ରତି ଗଣ୍ଠିରୁ ଦୁଇଟି ଲେଖାଏଁ ଡାଳ ବାହାରେ । ଏହାର ଫୁଲ ଧଳା ଓ ହଳଦିଆ । ଫୁଲର ଗନ୍ଧ ଅତି ମୃଦୁ ମଧୁର । ଫୁଲର ତିନୋଟି ପକ୍ଷ ଥାଏ ।

ଅନ୍ୟ ସଂ. ନାମ—ବାସନ୍ତୀ, ଅତିମୁକ୍ତା, ବିମୁକ୍ତା, ଚନ୍ଦ୍ରବଲ୍ଲୀ, ନବମଲ୍ଲିକା, କାମୁକ, ସପ୍ତଲା, ପୁଣ୍ଡ୍ରକ, ମଣ୍ଡକ, ଭ୍ରମରୋତ୍ସବ
ଆଧବ ଲତା, ବଡ଼ କୁନ୍ଦ
ହାଟି, মধমালতি,
মুক্তা, বড কুন্দ, মাধবী
ମ. ମଧୁମାଲତି, ପୀତବେଲ
ତେ. ବାଦ୍ଲବ୍ୟାଗଲ, ପୋତୁବାଦଲ, ମାଧବତୋଗେ,
ପୁଷ୍ପଲତାରବନ
ଗୁ. ମାଧବୀଲତା, ରକ୍ତପିତି

ଏହାର ମୂଳ, ଚେଲ୍ଲ ଓ ପତ୍ର ଔଷଧରେ ଲାଗେ ( କୀର୍ତ୍ତିକାର ); ବୈଦ୍ୟଶାସ୍ତ୍ର ମତରେ ଏହା ତିକ୍ତ ମଧୁର, କଷାୟ ରସ, ଲଘୁ, ଶୀତବୀର୍ଯ୍ୟ, ତ୍ରିଦୋଷନାଶକ,

ମଦଗନ୍ଧ, ଦାହ ଓ ବ୍ରଣନାଶକ—ଦ୍ରବ୍ୟଗୁଣ । ] ୨ । ତୁଳସୀ—2. The holy Basil plant. ୩ । ଦୁର୍ଗା—3. Durgā. ୪ । ଲକ୍ଷ୍ମୀ—4. Lakshmī. [ଉ—ମାଧବୀଙ୍କ ଗୃହିଁ ମାଧବୀ ବୋଲନ୍ତେ ଏହି ମଧୁପୁର ଭୂପଇ—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୫ । ମଧୁଜାତ ମଦିରା—5. Wine made from honey. ୬ । ମଧୁଶର୍କରା—6. Sugar made from honey. ୭ । ମହାବ୍ୟାଧି କୁଷ୍ଠରୋଗ—7. Leprosy. ୮ । ଓଡ଼ିବ ଜାତିର ରାଗିଣୀବିଶେଷ—8. Name of a musical air. ୯ । କୁଟଣୀ ( ହି. ଷ )—9. Aprocuress; bawd (Apte). ୧୦ । ମିଶ୍ରୀ—10. Candied sugar (Apte). ୧୧ । ଗୋଧନରେ ଧନବତ୍ତା—11. Affluencein cattle (Apte). ଦେ. ବି—ସ୍ତ୍ରୀମାନଙ୍କୁ ଦିଆଯିବା ନାମ—Name given to females.

**ମାଧବୀ କୁଞ୍ଜ**—ସ. ବି--ମାଧବୀ ଲତାଚ୍ଛାଦିତ କୁଞ୍ଜ-A grove travers-
Mādhabī kuñja ed by Mādhabī creeper.

**ମାଧବୀ ଦେଈ**—ଦେ. ବି. ସ୍ତ୍ରୀ ( ନାମ )—ଶ୍ରୀ ଚୈତନ୍ୟ ଦେବଙ୍କର
Mādhabī dei ପ୍ରଧାନ ଭକ୍ତ ଉତ୍କଳୀୟ କରଣ ସ୍ତ୍ରୀ—Name of a Karaṇa widow who was a devotee of Sri Chaitanya at Purī. [ ଦ୍ର—ଶ୍ରୀଚୈତନ୍ୟ ଦେବ ପୁରୀରେ ଥିବା ସମୟରେ ଏହାଙ୍କର ଭକ୍ତିଦ୍ୱାରା ମୁଗ୍ଧ ହୋଇଥିଲେ । ଏ ପ୍ରତାପରୁଦ୍ର ଦେବଙ୍କର ମନ୍ଦିର କର୍ମଚାରୀ ଶିଖୀ ମହାନ୍ତିଙ୍କର ଭଗିନୀ ଥିଲେ; ଶ୍ରୀ ଚୈତନ୍ୟ ସ୍ତ୍ରୀମାନଙ୍କ ପ୍ରତି ବିମୁଖ ଥିଲେ, କିନ୍ତୁ ଏହାଙ୍କର ପ୍ରଗାଢ଼ ଭକ୍ତିରେ ମୁଗ୍ଧ ହୋଇ ଏହାଙ୍କୁ ଭକ୍ତ-ରୂପେ ଗଣନା କରୁଥିଲେ ଓ ଭକ୍ତ ତାଲିକାରେ ଏହାଙ୍କ ଜଣେ ବୋଲି ଗଣୁଥିଲେ । ]

**ମାଧବୀ ମଣ୍ଡପ**—ସ. ବି—ମାଧବୀ ଲତାଚ୍ଛାଦିତ ମଣ୍ଡପ—A shade
Mādhabī maṇḍapa made of overhaning Mādhabī creeper. [ ଉ—ମାଧବୀ ମଣ୍ଡପେ ବିନେ ଭ୍ରମର ବିରସେ—ଗୋଲକ. ଇନ୍ଦୁରେଖା । ]

**ମାଧବୀୟ**—ସ. ବିଣ ( ମାଧବ+ଈୟ )—ମାଧବସମ୍ବନ୍ଧୀୟ—
Mādhabīya Relating to Mābhaba

**ମାଧା**—ଗ୍ରା. ବି. ପୁଂ. ( ଅନାଦରାର୍ଥକ )—ମାଧବର ଡାକ ନାମ—
Mādhā A name for calling Mādhaba. ଦେ. ବିଣ ( ମାଧିଆ—ଅନ୍ୟରୂପ ) ପୁଂ. ( ସ. ମେଧାହୀନ; ମନ୍ଦ )—୧ ( ମାଧି—ଅଦରାର୍ଥକ ) ନିର୍ବୋଧ; ବୁଦ୍ଧିହୀନ, ନିର୍ବୁଦ୍ଧିଆ—। (ମାଧୀ, ମାଧେଇ—ସ୍ତ୍ରୀ) 1. Stupid; unintelligent. ୨ । ଅଳସୁଆ—2. Lazy; idle ୩ । ( ଫା. ମାଦା=ମାଈ ) ଭୀରୁ—3. Timid; coward.

**ମାଧିଆ ଖଡ଼ା**—ପ୍ରାଦେ. ( ଗଡ଼ଜାତ ) ବି—ଖଡ଼ାଜାତୀୟ ଏକପ୍ରକାର
Mādhiā khaṛdā ବନ୍ୟଗୁଳ୍ମ—A species of wild plant. [ ଦ୍ର—ଏହା ଅମ୍ଳିଆ ଲାଗେ । ଲୋକେ ଏହାକୁ ଅମ୍ଳିଲ କରି ଖାଆନ୍ତି । ]

**ମାଧୁ**—ଦେ. ବି ( ବଣିଆ ଶବ୍ଦ )—୧ । ଦସ୍ତା—1. Zinc. ୨ ।
Mādhu ( ଆଦରାର୍ଥକ ) ମାଧବ ନାମକ ବ୍ୟକ୍ତିର ଡାକ ନାମ—2. Name calling for Mādhaba.

**ମାଧୁକର**—ସ ବି. (ମଧୁକର+ଅ)—ଭ୍ରମର ସମ୍ବନ୍ଧୀୟ—
Mādhukara Relating to the black bee.
(ମାଧୁକରୀ—ସ୍ତ୍ରୀ)

**ମାଧୁକରୀ**—ସ. ବି. (ମଧୁକର+ଅ+ଈ; ଅର୍ଥାତ୍ ମଧୁକର ଅନେକ
Mādhukarī ସ୍ଥାନରୁ ମଧୁ ସଂଗ୍ରହ କରିବା ପରି ଭିକ୍ଷା ବୃତ୍ତି)—୧ । ପଞ୍ଚଗୃହରୁ ପ୍ରାପ୍ତ ଭିକ୍ଷା—1. Alms obtained from 5 places (Apte). [ଦ୍ର—ବୈଷ୍ଣବ ଓ ଭକ୍ତ-ମାନେ ବୃନ୍ଦାବନ ତୀର୍ଥରେ ୫ ଜଣ ଗୃହସ୍ଥଙ୍କ ଘରକୁ ଯାଇ ସେଠାରୁ ଯାହା ଭିକ୍ଷା ପାଆନ୍ତି ତାହା ଭୋଜନ କରିବାର ବିଧି ଚୈତନ୍ୟ ଦେବଙ୍କ ଅମଳରୁ ଚଳି ଆସୁଅଛି ।] ୨ । ବହୁ ଗୃହରୁ ଭିକ୍ଷା କରି ଅନ୍ନ ସଂଗ୍ରହ କରିବା—2. Collecting alms by begging from door to door.

**ମାଧୁକୀ**—ସ. ବି. (ମଧୁକ+ଈ)—ମହୁଲ ଫୁଲର ମଦ; ମାଧ୍ୱୀକ—
Mādhukī The wine from Mahuā.

**ମାଧୁପର୍କିକ**—ସ. ବିଣ. (ମଧୁପର୍କ+ଇକ)—ସମ୍ମାନ ପ୍ରଦର୍ଶନ ପୂର୍ବକ
Mādhuparkika ଅତିଥିଙ୍କୁ ଅର୍ପିତ—Offered to a
(ମାଧୁପର୍କିକୀ—ସ୍ତ୍ରୀ) guest as a token of respect (Apte).

**ମାଧୁର**—ସ. ବିଣ. (ମଧୁର+ଅ)—ମଧୁ ରସଜାତ; ପୁଷ୍ପରସୋତ୍ପନ୍ନ—
Mādhura Produced from the honey of flowers. ସ. ବି (ମଧୁ=ପୁଷ୍ପ ରସ+ରା. ଧାତୁ=ଦାନ କରିବା+କର୍ତ୍ତୃ.ଅ)—ମଲ୍ଲିକା ପୁଷ୍ପ—Jasmine flower. [ଦ୍ର—ମଲ୍ଲୀ ଫୁଲର ଡେମ୍ଫର ତଳୁ ଖିଲ ବାହାର କରି ଶୋଷି ନେଲେ ହିତିଏ 'ମହୁ' ବାହାରେ ।]

**ମାଧୁରୀ**—ସ. ବି. (ମଧୁର+ଅ+ଈ)—୧ । ମିଷ୍ଟତା; ମଧୁରତା; ମାଧୁର୍ଯ୍ୟ
Mādhurī 1. Sweetness; savoury taste. ୨। ହୃଦୟ-ହାରିତା—2, Attractiveness; charm. ୩ । ଲାବଣ୍ୟ; ସୌନ୍ଦର୍ଯ୍ୟ; ଶୋଭା—3. Beauty; delicate or soft beauty. ୪ । ଉତ୍କୃଷ୍ଟତା—4. Excellence. ୫ । ମୃଦୁତା; ଧୀରତା—5. Calmness; mildness. ୬ । ମାଧ୍ୱୀକ; ମହୁଲ ମଦ—6. The wine destilled from Mahua flowers. ୭ । ମଧୁରୁ ପ୍ରସ୍ତୁତ ମଦ୍ୟ—7. Mead (Apte). ୮ । ସରାପ--8. Spirituousliquor (Apte). ଦେ. ବି—୧ । ଶକ୍ତତା; କଠିନତା—1. Hardness. (ଉ—ବୋଲେ ଏକ କଥା ଅଛି ଆନ୍ତୁରି, ବଜ୍ରୁଁ ଅଧିକ ସପ୍ତଶାଳ ମାଧୁରୀ । ଭଞ୍ଜ. ବୈଦେହୀଶବିଳାସ ।) ୨ । ମହୁରୀ—2. Clarion. (ଉ—ସୁର ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମାଧୁରୀ । ଘଣ୍ଟ ପଟହ କଂସାଳ ତାଳ ତୂରୀ ଭେରୀ । ଭଞ୍ଜ. ଲାବଣ୍ୟବତୀ ।)

ମାଧୁରୀ ନଳ—ଦେ. ବି—ସ୍ତନ—Female breast.
Mādhurī naḻa (ଉ—ବେନି ଦିଗେ ରହି ପରେ ମାଧୁରୀ ନଳ ରଖିଲା ପ୍ରାୟେ ଜଳେ। ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ।)

ମାଧୁରୀ ମୟ—ସଂ. ବିଣ—ମାଧୁର୍ଯ୍ୟ ପୂର୍ଣ୍ଣ; ମଧୁରତାପୂର୍ଣ୍ଣ—
Mādhurī maya Full of sweetness

ମାଧୁର୍ଯ୍ୟ(ର୍ଯ୍ୟ)—ସଂ. ବି. ( ମଧୁର+ଯ )—୧। ମଧୁରତା; ମାଧୁରୀ—
Mādhurjya(rja) 1. Sweetness. ୨। ଲାବଣ୍ୟ; ରୂପର ଅନିର୍ବାଚ୍ୟତା—2, Loveliness; attractive. beauty. ୩। ଦୟା; ଦାକ୍ଷିଣ୍ୟ—3. Kindness; amiability. ୪। କାବ୍ୟର ଗୁଣ ବିଶେଷ; କାବ୍ୟର ଯେଉଁ ଗୁଣ ଥିଲେ ଶ୍ରବଣ ମାତ୍ରକେ ଚିତ୍ତ ଆର୍ଦ୍ର, ଭାବମୟ ଓ ଦ୍ରବୀଭୂତ ହୁଏ—4. Elegance of style in literature, which melts the hearers of the hearers, [ଦ୍ର—ଏହା ଆଦ୍ୟ, କରୁଣ, ବିପ୍ରଲମ୍ଭ ଓ ଶାନ୍ତ ରସରେ ଅପେକ୍ଷାକୃତ ଅଧିକ ଅନୁଭୂତ ହୁଏ। ମାଧୁର୍ଯ୍ୟ-ବ୍ୟଞ୍ଜକ ବର୍ଣ୍ଣ, ଯଥା—ଟ ବର୍ଗ ବ୍ୟତୀତ ଯେ କୌଣସି ବର୍ଗର ପଞ୍ଚମ ବର୍ଣ୍ଣ ଯେବେ ସେହି ବର୍ଗର ପ୍ରଥମ, ଦ୍ୱିତୀୟ, ତୃତୀୟ ବା ଚତୁର୍ଥ ବର୍ଣ୍ଣ ସଙ୍ଗେ ସଂଯୁକ୍ତ ହୁଏ ଏବଂ ଣ ଓ ର ଯେବେ ଅସଂଯୁକ୍ତ ହୁଏ ଏବଂ ରଚନା ଯେବେ ସମାସରହିତ ବା ଅଳ୍ପ ସମାସଯୁକ୍ତ ହୁଏ, ତାହାହେଲେ ସେହି ସବୁ ବର୍ଣ୍ଣ ବା ରଚନା ରସବିଶେଷରେ ମାଧୁର୍ଯ୍ୟ ବ୍ୟକ୍ତ କରେ।

ଯଥା—ବନ ଦେବୀଙ୍କର ଅଭିସାର ଲୀଳା
ଚଳୁଥାଇ ଅବିରତେ,
ଚନ୍ଦ୍ରାଲୋକେ ଯାର ଅଭ୍ର ତାରକିତ
ବିଶାଳ ଶୁଭ୍ର ସୈକତେ।
ତରୁ ବ୍ରତତୀର ପ୍ରେମେ ବନ୍ଧାବନ୍ଧି,
ଛନ୍ଦାଛନ୍ଦି ଯେନାଯେନ;
ଯୋଗୁଁ କୁଞ୍ଜ ପୁଞ୍ଜେ ଅନ୍ଧାରିତ ଯାର
ଠାବେ ଠାବେ ନୀର ବେଣୀ।
ରାଧାନାଥ. ଯଯାତି।]

ମାଧୁର୍ଯ୍ୟରସଯୁକ୍ତ ଭକ୍ତି—ସଂ. ବି—(ବଙ୍ଗୀୟ ଆଧୁନିକ ବୈଷ୍ଣବ ଶାସ୍ତ୍ର)—
Mādhurjya rasajukta bhakti ଶ୍ରୀକୃଷ୍ଣଙ୍କୁ ଗୋପୀମାନେ ଓ ସଖାମାନେ ଯେଉଁ ରସଦ୍ୱାରା ଭକ୍ତି କରୁଥିଲେ; ସ୍ନେହ-ରସମୟ ଭକ୍ତି—Devotion mixed with sweet affection.

ମାଧୁକ—ସଂ. ବିଣ ( ମଧୁକ+ଅ )—ମଧୁରଭାଷୀ—
Mādhuka Sweet speaking (Apte).

ମାଧେ(ଧୋ)ଇ—ଦେ. ବି—୧। ମାଧବ ବା ଶ୍ରୀକୃଷ୍ଣଙ୍କୁ ସ୍ନେହସମ୍ବୋଧନ—
Mādhe(dho)i 1. A term of endearment used to
ମାଧେ(ଧୋ)ଈ Śrīkrushṇa. ୨। ଚୈତନ୍ୟ ଦେବଙ୍କ ସମସାମୟିକ
ମାଧୋ ନଦିଆନିବାସୀ ବ୍ୟକ୍ତିଙ୍କ ନାମ—2. Name of one of the two wicked brothers of Nadiā who were changed from their ways of sin to devotion by Chaitanya Deb and Nityānanda. [ ଦ୍ର— ଏ ଜଗାଇ ବା ଜଗେଇଙ୍କ ଭାଇ ଥିଲେ। ଏ ଦୁଇ ଭାଇ ଘୋର ପାଷଣ୍ଡ, ପାପୀ, ମଦ୍ୟପାୟୀ ଏବଂ ଅତ୍ୟାଚାରୀ ଥିଲେ; ନିରୀହ ବ୍ୟକ୍ତିଙ୍କୁ ଓ ବିଶେଷତଃ ବୈଷ୍ଣବମାନଙ୍କୁ ଦେଖିଲେ ସେମାନଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ। ଦିନେ ସାଧୁ ହରିଦାସ ଓ ନିତ୍ୟାନନ୍ଦ ମହାପ୍ରଭୁ ସଙ୍କୀର୍ତ୍ତନ କରି ନଗରଭ୍ରମଣରୁ ଫେରିବା ସମୟରେ ଏ ଦୁଇ ଭାଇଙ୍କ ହାବୁଡ଼ରେ ପଡିଲେ ଓ ମାଧୋଇ ନିତ୍ୟାନନ୍ଦଙ୍କ ଉପରକୁ ଗୋଟାଏ ଭଙ୍ଗା ମାଠିଆର ଖପର ଫୋପାଡ଼ିବାରୁ ତାହା ତାଙ୍କ ମୁଣ୍ଡରେ ବାଜି, ମୁଣ୍ଡ ଫାଟି ଝର ଝର ରକ୍ତ ବୋହିଲା; ଜଗାଇ ତାଙ୍କୁ ନିବାରଣ କଲା। ଶ୍ରୀଚୈତନ୍ୟ ଏହା ଶୁଣିପାରି ସଦଳ ସେଠାକୁ ଆସି ସଙ୍କୀର୍ତ୍ତନ ଆରମ୍ଭ କଲେ ଓ ସଙ୍କୀର୍ତ୍ତନ ପ୍ରଭାବରେ ଏ ଦୁଇ ଭାଇଙ୍କ ହୃଦୟ ଦ୍ରବୀଭୂତ ହେଲା ଓ ଦୁଇ ଭାଇ ମହାଭକ୍ତ ଓ ପରମ ସାଧୁ ବୈଷ୍ଣବ ହେଲେ।]
୩। ମାଧବର ଡାକ ନାମ—3. A name for calling Madhaba.

ମାଧୋଜୀ ହରି—ଦେ. ବି (ନାମ)—ସାବାଜୀ ଭୋଁସ୍ଲାଙ୍କ ଦ୍ୱାରା ନାଗ-
Mādhojī hari ପୁରରୁ ଓଡିଶାକୁ ପ୍ରେରିତ ମରହଟ୍ଟୀ ସୁବାଦାର—Name of a Marhattā Governor of Orissa. [ ଦ୍ର—ଏ ଏହାଙ୍କ ପୂର୍ବତନ ସୁବାଦାର ବାବାଜୀଙ୍କୁ ବନ୍ଦୀ କରି ସୁବାଦାର ହୋଇଥିଲେ। ]

ମାଧ୍ୱ—ସଂ. ବିଣ (ମଧୁ+ଅ)—୧। ମଧୁରୁ ପ୍ରସ୍ତୁତ—1. Made from
Mādhwa honey. ୨। ମଧୁର—2. Sweet (Apte). ସଂ.ବି—
୧। ମଧୁରୁ ପ୍ରସ୍ତୁତ ମଦ—1. Mead; metheglin; liquor made from honey. ୨। ମହୁଲରୁ ପ୍ରସ୍ତୁତ ମଦ (ହି. ଶ)-2. Liquor made form Mahwa flowers. ୩। ମଧୁର କଣ୍ଟକ; ମହୁରାଡ଼ି ମାଛ (ହି.ଶ)—3. Aspidoparia Marar ( fish ). ଦେ. ବି—
ମାଧ୍ୱ ୧। ମାଧବାଚାର୍ଯ୍ୟ (ଦେଖ)—1 Mādhabāchār-
ମାଧ୍ୱ jya (See). ୨। ମାଧବାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ସମ୍ପ୍ରଦାୟ—2. A sect of Baishṇabas.

ମାଧ୍ୱକ—ସଂ. ବି—(ମାଧ୍ୱ+ସ୍ୱାର୍ଥେ. କ)—୧। ମଧୁରୁ ପ୍ରସ୍ତୁତ ମଦ୍ୟ—
Mādhwaka 1, Mead. ୨। ମହୁଲରୁ ପ୍ରସ୍ତୁତ ମଦ—2. Wine made from Mahwa flowers.

ମାଧ୍ୱିକ—ସଂ. ବି. ପୁଂ (ମଧୁ+ଇକ)—ମଧୁସଂଗ୍ରହକାରୀ ବ୍ୟକ୍ତି—
Mādhwika A person who collects honey (Apte).
(ମାଧ୍ୱିକୀ—ସ୍ତ୍ରୀ)

ମାଧ୍ୱୀ—ସଂ. ବିଣ ( ମାଧ୍ୱ+ଈ )—ମାଧ୍ୱର ସ୍ତ୍ରୀଲିଙ୍ଗ—Feminine of
Mādhwī Mādhwa. ସଂ. ବି—୧। ମଧୁରୁ ପ୍ରସ୍ତୁତ ମଦ୍ୟ—1. Mead. ୨। ମହୁଆରୁ ପ୍ରସ୍ତୁତ ମଦ—2. Liquor made from Mahwa flowers. ୩। ମାଧବୀ ଲତା—3. The Mādhabī creeper (Apte). ୪। ସରାବ (ହି. ଶ)—4. Spirituous liquor. ୫। ମଧୁର କଣ୍ଟକ; ମହୁରାଡ଼ି ମାଛ—5. Aspidoparia Marar (fish). ୬। ପୌରାଣିକ ନଦୀବିଶେଷ (ହି.ଶ)-6. Name of a mythological river.

ମାଧ୍ୱୀକ—ସଂ. ବି (ମାଧ୍ୱୀ+କ) #୧ । ମହୁରୁ ପ୍ରସ୍ତୁତ ମଦ—1. Mead. Mādhwīka ୨ । ମହୁଆ ମଦ—2. Liquor made from Mahwa flowers. ୩ । ମଧୁ; ମକରନ୍ଦ (ହ୍ର. ଶ)—3. Honey. ୪ । ଦ୍ରାକ୍ଷାରୁ ପ୍ରସ୍ତୁତ ମଦ୍ୟ—4. Wine made from grapes. ୫ । ଦ୍ରାକ୍ଷା—5. A grape (Apte). ୬ । ଶିମ୍ବ (ହ୍ର. ଶ)—6. Bean.

ମାଧ୍ୱୀକା—ସ. ବି. ( ମାଧ୍ୱୀକ+ଆ )—ଶିମ୍ବ ( ହ୍ର. ଶ )—Mādhwīkā Bean.

ମାଧ୍ୱୀମଧୁରା—ସ. ବି—ମିଠାଖଜୁରୀ ( ହ୍ର. ଶ )—Mādhwīmadhurā Sweet date.

ମାଧ୍ୟ—ସଂ ବିଣ ( ମଧ୍ୟ+ଅ )—ମଧ୍ୟସ୍ଥ; କେନ୍ଦ୍ରସ୍ଥ—Mādhya Middle; central ( Apte ).

ମାଧ୍ୟନ୍ଦିନ—ସ. ବି ( ମଧ୍ୟନ୍ଦିନ+ଅ )—୧ । ମଧ୍ୟାହ୍ନ—1. Noon Mādhyandina day. ୨ । ବାଜସନେୟୀମାନଙ୍କର ଏକ ଶ୍ରେଣୀ—2. Name of a branch of the Bājasaneyis. ସ. ବିଣ—ମଧ୍ୟସ୍ଥ; କେନ୍ଦ୍ରସ୍ଥ—Middle; central ( Apte ).

ମାଧ୍ୟନ୍ଦିନୀ—ସ. ବି—ଶୁକ୍ଳ ଯଜୁର୍ବେଦୀୟ ଶାଖାବିଶେଷ—Name of a Mādhyandinī branch of white Jajurbeda. [ଦ୍ର—ବାଜସନେୟୀମାନଙ୍କର ମାଧ୍ୟନ୍ଦିନ ଶ୍ରେଣୀ ଏହି ଶାଖାଧ୍ୟାୟୀ ଅଟନ୍ତି । ]

ମାଧ୍ୟମ—ସ. ବିଣ ( ମଧ୍ୟମ+ସ୍ୱାର୍ଥେ. ଅ )—୧ । ମଧ୍ୟମ; ମଧ୍ୟରେ Mādhyama ସ୍ଥିତ—1. Middle. ୨ । କେନ୍ଦ୍ରିକ—(ମାଧ୍ୟମିକ – ଅନ୍ୟରୂପ) 2. Middlemost; central. ( ମାଧ୍ୟମୀ, ମାଧ୍ୟମିକା—ସ୍ତ୍ରୀ )

ମାଧ୍ୟମିକ—ସ. ବି ( ମଧ୍ୟମ+ଇକ )—ବୌଦ୍ଧମାନଙ୍କ ସମ୍ପ୍ରଦାୟ-Mādhyamika ବିଶେଷ—Name of a sect of (ମାଧ୍ୟମିକା—ସ୍ତ୍ରୀ) the Buddhists. ସ. ବିଣ—ମାଧ୍ୟମ (ଦେଖ) Mādhyama ( See ) ଦେ. ବିଣ—ଉଚ୍ଚ ଶିକ୍ଷା ଓ ପ୍ରାଥମିକ ଶିକ୍ଷାର ମଧ୍ୟବର୍ତ୍ତୀ (ଶିକ୍ଷାର ମାନ)—Intermediate (standard in education ).

ମାଧ୍ୟସ୍ଥ—ସ.ବିଣ. ପୁଂ (ମଧ୍ୟସ୍ଥ+ଅ)—୧ । ଅପକ୍ଷପାତ—1. Impar-Mādhyastha tial. ୨ । ଉଦାସୀନ—2. Indifferent. (ମାଧ୍ୟସ୍ଥା— ସ୍ତ୍ରୀ) ୩ । ମଧ୍ୟସ୍ଥ—3. Neutral.

ମାଧ୍ୟସ୍ଥ୍ୟ—ସ. ବି ( ମଧ୍ୟସ୍ଥ+ଯ )—୧ । ମଧ୍ୟସ୍ଥତା—1. Media-Mādhyasthya tion; arbitration. ୨ । ଔଦାସିନ୍ୟ—2. Apathy. ୩ । ମଧ୍ୟବର୍ତ୍ତିତା; ଦୁଇ ଜଣଙ୍କ ମଧ୍ୟରେ ସ୍ଥିତି—3. Intermediate position; position between two things or persons.

ମାଧ୍ୟାକର୍ଷଣ—ସଂ ବି ( ଆଧୁନିକ ବିଜ୍ଞାନ ପରିଭାଷା; ମଧ୍ୟ+ଆକର୍ଷଣ+Mādhyākarshaṇa ଅ )—ପୃଥିବୀର ଯେଉଁ ଆକର୍ଷଣଶକ୍ତି ପ୍ରଭାବରୁ ବସ୍ତୁ ସକଳ ପୃଥିବୀର କେନ୍ଦ୍ର ଆଡ଼କୁ ଟାଣି ହୋଇ ଭୂମିରେ ପଡ଼ନ୍ତି ତାଏ ( ଏହି ଶକ୍ତି ପୃଥିବୀର କେନ୍ଦ୍ରରୁ ବା ମଧ୍ୟସ୍ଥ ବିନ୍ଦୁରୁ କାର୍ଯ୍ୟକାରୀ ହେବାରୁ ବୈଜ୍ଞାନିକମାନେ ଏହାକୁ ଏହି ନାମ ଦେଇଅଛନ୍ତି )—Gravitation. [ଦ୍ର—ପୃଥିବୀର ଏହି ମାଧ୍ୟାକର୍ଷଣ ଶକ୍ତି ଥିବା ବିଷୟ ଭାରତୀୟ ପ୍ରସିଦ୍ଧ ଜ୍ୟୋତିଷୀ ଭାସ୍କରାଚାର୍ଯ୍ୟ ୧୨୦୦ ସମ୍ୱତ୍(ଖ୍ରୀ. ୧୧୪୪)ରେ ସୂଚନା କରିଥିଲେ । ତାଙ୍କ ସିଦ୍ଧାନ୍ତ ଶିରୋମଣି ଗ୍ରନ୍ଥରେ ସେ ଲେଖିଅଛନ୍ତି ଯେ ପୃଥିବୀ ଭାରି ପଦାର୍ଥକୁ ଆପଣା ଆଡ଼କୁ ଆକର୍ଷଣ କରେ ଓ ଏହି ଆକର୍ଷଣ ଶକ୍ତି ବଳରେ ଭାରି ପଦାର୍ଥ ପୃଥିବୀ ପୃଷ୍ଠକୁ ଖସିପଡ଼େ । ଇଉରୋପରେ ନିଉଟନ୍ ୧୬୮୭ ଖ୍ରୀଷ୍ଟାବ୍ଦରେ ପୃଥିବୀର ଏହି ଶକ୍ତି ଥିବାର ଆବିଷ୍କାର କଲେ । ]

ମାଧ୍ୟାକର୍ଷଣ ହେତୁକ ସ୍ଥିତିଗତି—ସ. ବି ( ବିଜ୍ଞାନ ପରିଭାଷା )—Mādhyākarshaṇa hetuka sthitigati ଉଦ୍ଭିଦର ଚେର-ଗୁଡ଼ିକ ଭୂଗର୍ଭକୁ ଭେଦ କରି କେନ୍ଦ୍ରଆଡ଼କୁ ଗତି କରିବାର ପ୍ରବୃତ୍ତି—Geotropism.

ମାଧ୍ୟାହ୍ନିକ—ସ. ବିଣ ( ମଧ୍ୟାହ୍ନ+ଇକ )—ମଧ୍ୟାହ୍ନକାଳୀନ—Mādhyāhnika Pertaining to the time of noon. ( ମାଧ୍ୟାହ୍ନିକା—ସ୍ତ୍ରୀ )

ମାନ୍ ( ଧାତୁ )—ସ—ପୂଜା କରିବା—Mān ( root ) To adore; to worship.

ମାନ୍—ଦେ. ବିଣ. ପୁଂ ( ସ. ମତ୍ ପ୍ରତ୍ୟୟର ୧ମା. ୧ବ )—ଯାହାର Mān ଅଛି—Having; possessing. (ଯଥା—ବୁଦ୍ଧିମାନ୍) (ମତୀ-ସ୍ତ୍ରୀ) ବୈଦେ. ବି ( ଅ. ମାନେ )—୧ । ମାନେ; ଅର୍ଥ—ମାନେ ମାନେ 1. Meaning; object; significance. ୨ । ଶବ୍ଦାର୍ଥ—2. Meaning of words. ପ୍ରାଦେ ( ସମ୍ବଲପୁର ) ବି—( ଣ ସ୍ଥାନରେ ନ ଓ ଶେଷ ବର୍ଣ୍ଣର ହଲନ୍ତ ଉଚ୍ଚାରଣ ) ମାଣ; ଶସ୍ୟ ମାପିବା ମାଣ; ପାହିଲି—A small standard pot for measuring rains. ପ୍ରାଦେ. ( କଳାହାଣ୍ଡି ) ବି—ମରଦ; ପୁରୁଷ ଲୋକ—Male person.

ମାନ—ସ. ବି—୧ । ( ମା. ଧାତୁ=ମାପ କରିବା+ଭାବ. ଅନ )—Māna ତୁଳିବା; ଓଜନ କରିବା—1. Weighing; ୨ । ମାପିବା; ମାପ—2. Measuring; measurement. [ ଦ୍ର—ଚାନ୍ଦ୍ରମାନ, ସୌରମାନ ଓ ନାକ୍ଷତ୍ରମାନ ଶବ୍ଦର ଅର୍ଥ—ଯାହା ଚନ୍ଦ୍ର ସମ୍ବନ୍ଧୀୟ, ସୂର୍ଯ୍ୟ ସମ୍ବନ୍ଧୀୟ ଓ ନକ୍ଷତ୍ର ସମ୍ବନ୍ଧୀୟ ମାପଦ୍ୱାରା ସ୍ଥିର କରାଯାଏ । ] ୩ । ( ମା. ଧାତୁ+କରଣ. ଅନ ) ପରିମାଣ ସାଧନ; ଯେଉଁ ପାତ୍ର, ଯନ୍ତ୍ର ବା ଆଦର୍ଶ-ଦ୍ୱାରା ଓଜନ ବା ପରିମାଣ ବା ଦୈର୍ଘ୍ୟ ଆଦି ସ୍ଥିର କରା-ଯାଏ—3. Standard of weight or measure; measuring instrument; a measure or weight. [ ଦ୍ର—ଭିନ୍ନ ଭିନ୍ନ ବସ୍ତୁର ପରିମାଣ ଭିନ୍ନ ଭିନ୍ନ ପ୍ରକାରରେ ଓ ଭିନ୍ନ ଭିନ୍ନ ଯନ୍ତ୍ରଦ୍ୱାରା ସ୍ଥିର କରାଯାଏ । ଯଥା—ଜମିକୁ--ପଦିକା, ଶିକୁଳି, ଫିତା ଓ ହାତଦ୍ୱାରା; ଲୁଗା ଆଦିକୁ—ହାତ ଓ ଗଜ କାଠିଦ୍ୱାରା; ତରଳ ପଦାର୍ଥକୁ—ପାତ୍ରଦ୍ୱାରା ଓ ସେର ତରାଜୁ ଓଜନଦ୍ୱାରା; ଘନ ପଦାର୍ଥକୁ—ପାତ୍ରଦ୍ୱାରା ଓ ଓଜନଦ୍ୱାରା, ଶସ୍ୟାଦିକୁ—ପାତ୍ରଦ୍ୱାରା ଓ ସେର ତରାଜୁରେ

ଓଜନଦ୍ୱାରା ମାପ କରାଯାଏ । ] ୪ । ଆଦର୍ଶ—4. Standard. ୫ । ( ସଙ୍ଗୀତ ) ତାଳର ବିଭାଗ ସ୍ଥାନ; ତାଳର ବିରାମ—5. The stop in musical measure. [ ଦ୍ର—ଏହା ସମ, ବିଷମ, ଅତୀତ ଓ ଅନାଘାତ ଭେଦରେ ଚାରି ପ୍ରକାର । ] ୬ । ( ମା. ଧାତୁ + କର୍ମ. ଅନ ) ପରିମାଣ—6. Quantity. ୭ । ( ମାନ୍ ଧାତୁ = ପୂଜା କରିବା + ଭାବ. ଅ ) ସମ୍ମାନ; ପୂଜା—7. Worship; respect. ୮ । ମର୍ଯ୍ୟାଦା; ମାନ—8. Honour; dignity. ୯ । ( ମାନ୍ ଧାତୁ + କରଣ. ଅ ) ଇଜ୍ଜତ୍—9. Prestige. ୧୦ । ସୁନାମ—10, Reputation; credit. ୧୧ । ପଦମର୍ଯ୍ୟାଦା—11. Rank. ୧୨ । ( ମାନ୍ ଧାତୁ + ଭାବ. ଅ )—କ୍ରୋଧ—12 Anger. ୧୩ । ଗର୍ବ; ଅହଙ୍କାର; ମୋଠାରୁ ବଳି କେହି ନାହିଁ, ମନରେ ଏ ପ୍ରକାର ଭାବ—13. Pride; hauteur; arrogance; self-sufficiency; haughtiness. ୧୪ । ଅଭିମାନ—14. Sensitiveness; taking offence; sulks; wounded sense of honour. ୧୫ । ( ମନ୍ ଧାତୁ + କରଣ. ଅ ) ପ୍ରଣୟୀର ଅପରାଧ ଦର୍ଶନରେ ପ୍ରଣୟିନୀର ଗମ୍ଭୀର କୋପ ବା ଅସନ୍ତୋଷ; ରୁଷା—15. Anger or displeasure or reserve excited by the feeling of a wife or beloved woman being wronged or wounded on account of actual or supposed infidelity or neglect of her husband or lover; anger excited in the heart of a jealous woman. [ ଦ୍ର—ଆପଣାର ପ୍ରିୟ ବ୍ୟକ୍ତି ( ପ୍ରେମିକ, ପ୍ରେମିକା, ସ୍ତ୍ରୀ, ସ୍ୱାମୀ )ଙ୍କର କୌଣସି ଅପରାଧ ଦର୍ଶନରେ ମନରେ ଯେଉଁ ବିକାର ଜନ୍ମେ ତାକୁ ସାହିତ୍ୟରେ 'ମାନ' ବୋଲାଯାଏ । ଅଧିକତଃ ସ୍ତ୍ରୀମାନେ ପୁରୁଷଙ୍କଠାରେ ମାନ କରନ୍ତି । ନିଜର ପ୍ରେମିକଙ୍କୁ ବା ସ୍ୱାମୀଙ୍କୁ ଅନ୍ୟ ସ୍ତ୍ରୀଠାରେ ଆସକ୍ତ ଥିବାର ଦେଖିଲେ ବା ପ୍ରମାଣ ପାଇଲେ ବା ସନ୍ଦେହ କଲେ, ଆପଣାର ଅଭିଳଷିତ ବା ଫରମାସୀ ବସ୍ତୁ ନ ପାଇଲେ, ଆପଣା ଇଚ୍ଛା ଅନୁସାରେ କୌଣସି କାର୍ଯ୍ୟ କରି ନ ଦେଲେ ବା ଆପଣା ପ୍ରତି ଅନାଦର ଦେଖିଲେ ସ୍ତ୍ରୀମାନେ ମାନ କରନ୍ତି ବା ରୁଷନ୍ତି । ସ୍ତ୍ରୀଲୋକମାନଙ୍କର ମାନ ଅଧିକାଂଶ ସମୟରେ, ମୌନ, ମୁଖଭଙ୍ଗୀ ଓ କ୍ୱଚିତ୍ ବ୍ୟଙ୍ଗ ଓ ତିରସ୍କାରଦ୍ୱାରା ସୂଚିତ ହୁଏ । ଏହି ମାନ ୩ ପ୍ରକାର ଯଥା—ଲଘୁ, ମଧ୍ୟମ ଓ ଗୁରୁ ।

ଲଘୁମାନ କଳ୍ପିତ କୌତୁକାଦିଦ୍ୱାରା ସହଜରେ; ମଧ୍ୟମ ମାନ ଶପଥାଦିଦ୍ୱାରା କଷ୍ଟରେ ଓ ଗୁରୁମାନ ଚରଣଧାରଣ ଓ କ୍ଷମାପ୍ରାର୍ଥନାଦିଦ୍ୱାରା ଅତି କଷ୍ଟରେ ନିବାରିତ ହୁଏ । ] ୧୬ । ( ଅଧୁନିକ ପ୍ରୟୋଗ ) ବିଦ୍ୟାଳୟରେ ନିର୍ଦ୍ଦିଷ୍ଟ ପାଠ—କ୍ରମ ଅନୁସାରେ ରଚିତ ଭିନ୍ନ ଭିନ୍ନ ଶ୍ରେଣୀ ବିଭାଗ—16. Standard or class in a school. ୧୭ । ଆତ୍ମପ୍ରତ୍ୟୟ—17. Self-confidence ( Apte ). ୧୮ । ସାମ୍ୟ; ସମାନତା—18. Equality; resemblance ( Apte ). ୧୯ । ପ୍ରମାଣ—19. Proof ( Apte ). ୨୦ । ପ୍ରାମାଣିକତା—20. Authority; means of proof or demonstration ( Apte ). ୨୧ । ମତ—21. Opinion ( Apte ). ୨୨ । ପରିମାଣ; ଆକାର—22. Dimension ( Apte ). ୨୩ । ପୌରାଣିକ ପୁଷ୍କର ଦ୍ୱୀପର ପର୍ବତବିଶେଷ ( ହି. ଶ )—23. Name of a mythological mountain. ୨୪ । ସାମର୍ଥ୍ୟ; ଶକ୍ତି ( ହି. ଶ )—24. Power; ability; strength. ୨୫ । ଉତ୍ତର ଦିଗର ଦେଶବିଶେଷ ( ହି. ଶ )—25. Name of a northern country. ୨୬ । ଗ୍ରହ ( ହି. ଶ )—26. Planet. ୨୭ । ମନ୍ତ୍ର ( ହି. ଶ )—27. Mystic formula.

मान ଦେ. ବି—୧ । ଅପମାନ—1. Insult. ( ଉ—
अपमान ବଳିଷ୍ଠ ଶ୍ରେଷ୍ଠ ଗରିଷ୍ଠ ମାନ ଯେବେ ଉଦ୍ଧରି ପାରିବ । ଭଞ୍ଜ, ବୈଦେହୀଶବିଳାସ । ) ୨ । ମାନଗୋବିନ୍ଦର ଡାକ ନାମ—2. Name for calling Māna-gobinda. ଦେ.ବିଣ—ମାନ୍ (ଦେଖ)—Mān (See).

রা ଦେ. (ପ୍ରତ୍ୟୟ) (ବହୁବଚନାନ୍ତ ପ୍ରୟୋଗ, ଅଚେତନ ବସ୍ତୁ
सब; लोक ଓ ନିକୃଷ୍ଟ ଜୀବଙ୍କ ପ୍ରତି; ତୁଳ. ପ୍ରା. ମାଗଧୀ=ବନ୍; ପ୍ରାଚ୍ୟ ହିନ୍ଦୀ=ବନ୍; ପ୍ରା. ଆସାମୀ; ମାନ୍-ଇଂ. ମେନି)—ସମୂହ; ଗଣ—Many (a plural suffix). [ ଦ୍ର—ମନୁଷ୍ୟଙ୍କ ବହୁବଚନରେ ମନୁଷ୍ୟମାନେ, ବସ୍ତୁର ବହୁବଚନରେ ବସ୍ତୁମାନ । ]

ମାନ ଅପ(ଭି)ମାନ—ଦେ. ବି ( ସହଚର ଶବ୍ଦ )—ସମ୍ମାନ ଓ ଅପମାନ
Māna apa(bhi)māna —Respect and disrespect;
मानअपमान **मानअपमान** honour and dishonour.

ମାନକ—ସଂ. ବି—ମାଣସାରୁ ( ଦେଖ )—
Mānaka Māṇasāru ( See )

ମାନ କରିବା—ଦେ. କ୍ରି—୧ । ଅଭିମାନ କରିବା—1. To take
Māna kariba offence; to be gravely or sullenly
मानकरा displeased with a person; to sulk. [ଉ—
**मान करना** ଗୋରୁକୁ ମାନକରି ଖପରିରେ ଖାଇବା ନ୍ୟାୟ ।) ୨ । (ନାୟିକା) ନାୟକ ପ୍ରତି କୋପ କରିବା—2. (a lady) To be sullen by being jealous towards a lover.

ମାନ କଳହ—ସଂ ବି ( ମ. ପ. ଲୋ; ମାନ + କଳହ )—ଅଭିମାନ-
Māna kalaha ଜନିତ ନାୟକ ନାୟିକା ମଧ୍ୟରେ କଳିଆ;
(ମାନକଳି—ଅନ୍ୟରୂପ) ରୁଷାରୁଷି—Love-quarrels.

ମାନଗଣ୍ଠି—ଦେ. ବି (ସଂ. ମାନ+ଗ୍ରନ୍ଥି, ରୂପକ)—ସ୍ତ୍ରୀର ଗୁରୁ ଅଭି-
Mānaganṭhi ମାନରୂପ ଦୁରପନେୟ ଗ୍ରନ୍ଥି—A woman's sullenness, when it is very hard to be overcome. [ ଉ—କର କରୁଣା ବୋଲି, ଯେତେ ଗୁହ୍ରି ହଲି, ତେବେ ତା ମାନଗଣ୍ଠି ନ ଫିଟିଲା ରେ । ସଙ୍ଗୀତ । ]

ମାନଗୃହ—ସଂ. ବି. (ମ. ସ. ଲେ)—କୋପଭବନ; ରୁଷିବା ଲୋକ
Mānagṛuha ଯେଉଁ ଘରେ ଏକୁଟିଆ ବସିରହେ—A room to which a person withdraws when in sulks.

ମାନଗୋବିନ୍ଦ—ସଂ. ବି—ଦୁର୍ଯୋଧନଙ୍କର ଗୋଟିଏ ନାମ—A name
Mānagobinda of Durjyodhana. ଦେ. ବି. ପୁଂ—ପୁରୁଷ ଲୋକଙ୍କୁ ଦିଆଯିବା ନାମ—A name given to males.

ମାନଗ୍ରନ୍ଥି—ସଂ ବି—ସମ୍ମାନର ବା ଗର୍ବର ହାନି—
Mānagranthi Injury to honour or pride (Apte).

ମାନଘ୍ନ—ଦେ ବିଣ.ପୁଂ—ଅଭିମାନନାଶକ-Dispelling conjugal
Mānaghna sulks or discontent growing in the mind of a friend due to wounded desires or expectations. [ ଉ—ବିଘ୍ନ ନାହିଁ ହନୁମାନ ଅନୁମାନ ମାନଘ୍ନ ହେବ ସାଥେଣେ । ଭଞ୍ଜ. ବୈଦେହୀଶବିଳାସ । ] ସଂ. ବିଣ—ସମ୍ମାନ ବିନାଶକ—
(ମାନଘ୍ନୀ—ସ୍ତ୍ରୀ) Destructive of self-respect.

ମାନଚିତ୍ର—ସଂ. ବି. (ଅଧୁନିକ ବ୍ୟବହାର)—ଦେଶ ଆଦିର ଆକାର ଓ
Mānachitra ଭୌଗୋଳିକ ବିଷୟ ଆଦି ପ୍ରଦର୍ଶକ ନକ୍ସା—A map.

ମାନ ଛାଡ଼ିବା—ଦେ. କ୍ରି—ମନରୁ ଅଭିମାନ ତ୍ୟାଗ କରିବା—To
Māna chhāṛibā free one's (a woman's) own
मान त्याग करा mind from sullen jealousy; to give
मान छोडना up the feeling of displeasure entertained by a woman against her lover or husband. (ମାନ ଟେଳିବା, ମାନ ଭେଳ୍ୟା କରିବା, ମାନ ବାରି ଦେବା—ଅନ୍ୟରୂପ)

ମାନଜ—ସଂ. ବିଣ—ମାନରୁ ଉତ୍ପନ୍ନ—Resulting from Māna.
Mānaja ସଂ. ବି—କ୍ରୋଧ (ହ୍ରି. ଶ)—Anger.

ମାନ ଜଗିବା—ଦେ. କ୍ରି—ଆପଣାର ମହତ୍ତ୍ୱ ବା ସୁନାମ ନଷ୍ଟ ନ ହେବା
Māna jagibā ପ୍ରତି ସତର୍କ ହେବା—To be on watch
मान रेखे चला to save one's prestige, honour or
मान रखना reputation; to guard one's prestige honour or reputation.

ମାନତ(ନ୍ତ)—ଦେ. ବି. (ସଂ. ମନସ୍ତ)—୧ । ଦେବାନୁଗ୍ରହଲାଭାର୍ଥ ମନେ
Mānat(nta) ମନେ ସଙ୍କଳ୍ପ; ମାନସିକ; ମନାସ—1. Mental
মানত, মানান resolution or vow taken to perform
मन्नत, मानता certain apts to please or show gratitude to a Deity. ୨ । (ଭୁଲ. ଫା. ଜମାନତ୍) ଜାମିନ—2. Security; surety. ବିଣ. (ସଂ. ମାନିତ)
जामिन
जमानत —୧ । ମାନ୍ୟ ପାଇବାର ଉପଯୁକ୍ତ; ସମ୍ମାନଯୋଗ୍ୟ—
मान्य 1. Deserving respect. ୨ । ଅନ୍ୟପାଇଁ ଜାମିନ
जमानत ହୋଇଥିବା—2 One who has stood security for another.

ମାନତ କରିବା—ଦେ. କ୍ରି—ମାନସିକ କରିବା; ଫଳସିଦ୍ଧି କାମନା କରି
Mānat karibā ଦେବତାଙ୍କୁ କୌଣସି ବିଷୟ ମାଗିବା—
মানত করা मन्नत मानना To make a vow to deity.

ମାନତ ମଣ(ଣି, ନି)ଷ—ଗ୍ରା. ବି—ମାନନା ବା ସମ୍ମାନର ଉପଯୁକ୍ତ
Mānat maṇa(ṇi, ni)sha ବ୍ୟକ୍ତି—A person deser-
(ମାନତ ଲୋକ—ଅନ୍ୟରୂପ) ving to be shown respect
माननीय लोक by one; a person standing in the
मानय आदमी relation of an elder to a person. (ଯଥା—ଗୁରୁଜନମାନେ ଆପଣାର ମାନତ ଲୋକ; ଭାଇ-ବୋହୂର ଦେଢ଼ଶୁର ମାନତ ମଣଷ ଅଟନ୍ତି ।)

ମାନଦ—ସଂ. ବିଣ. ପୁଂ—୧ । ଯେ ସମ୍ମାନ ଦାନ କରି ପାରେ—
Mānada 1. Giver of honour; bestowing
(ମାନଦା—ସ୍ତ୍ରୀ) honour. ୨ । ମାନରକ୍ଷକ—2. Saving the prestige of another. ୩ । ସମ୍ମାନପ୍ରଦର୍ଶକ—3. Showing respect (Apte). ୪ । ଗର୍ବୀ—4. Proud (Apte). ୫ । ଗର୍ବବିନାଶକ—5. Destroying pride (Apte). ବି—୧ । ବିଷ୍ଣୁଙ୍କ ନାମ—1. A name of a Bishṇu. ୨ । 'ଅ' ଅକ୍ଷରର ଗୁପ୍ତ ନାମ—2. A mystical name for the letter 'ଅ'.

ମାନ ଦଣ୍ଡ—ସଂ. ବି. (ମ. ସ. ଲେ)—୧ । ମାପିବା ଦଣ୍ଡ; ପଦିକା—
Māna daṇḍa 1. A measuring rod. ୨ । ତୁଲା ଦଣ୍ଡ—2. The beam of a balance.

ମାନ ଦେବା—ଦେ. କ୍ରି—ମାନ୍ୟ ପାଇବାର ଉପଯୁକ୍ତ ବ୍ୟକ୍ତିଙ୍କୁ ସମ୍ମାନ
Māna debā ଦେଖାଇବା—To show respect to
মান দেখান मान देना a deserving person.

ମାନ ଧନ—ସଂ. ବିଣ. (ବହୁବ୍ରୀହି)—୧ । ଅତ୍ୟନ୍ତ ସମ୍ମାନିତ—
Māna dhana 1. Rich in honour (Apte). ୨ । ଅତି ଅଭିମାନୀ—2. Very prone to take offence.

ମାନ ଧାତା—ଗ୍ରା. ବି (ପଦ୍ୟ)—୧ । ମାନ୍ଧାତା (ଦେଖ)—1. Mān-
Māna dhātā dhātā (See) (ଉ—ଏ ଅନ୍ତେ ପଞ୍ଚାଶ ମାନ୍ଧାତା ଦୁହିତା, ଉତ୍ପନ୍ନ କଲେ ମାନଧାତା । ଜଗନ୍ନାଥ. ଭାଗବତ ।)
मान धाता ୨ । କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—2. A family-title of Kshatriyas.

ମାନ ଧାନିକା—ସଂ. ବି—କାକୁଡ଼ି (ହ୍ରି. ଶ)—
Māna dhānikā Cucumber (Apte).

ମାନନ—ସ. ବି (ମାନ୍ ଧାତୁ=ପୂଜା କରିବା+ଭାବ. ଅନ)—୧ । ମାନ୍ୟ
Mānana କରିବା; ସମ୍ମାନ ପ୍ରଦର୍ଶନ—1. Showing of respect.
(ମାନଣା—ଗ୍ରାମ୍ୟ ରୂପ) ୨ । ଅର୍ଚ୍ଚନ; ପୂଜାକରଣ—
2. Act of worshipping; paying of homage.
୩ । ଆଦର କରଣ—3. Showing of regard to a person.

ମାନନା—ସ. ବି—ମାନନ (ଦେଖ)—Mānana ( See ) ଦେ. ବି
Mānanā —ଚୁଲୀ ପାଇଁ ଭୂମିରେ ଗାତ କରି ମାଟିର କୁଣ୍ଡ ବା ହାଣ୍ଡି ପୋତି ତାହା ଉପରେ ବହଳଆ କରି ମାଟି ଲେସିବା
—Plastering a thick layer of mud over an earthen pot or tub which is sunk in the ground for preparing an oven.

ମାନନା କରିବା—ଦେ. କ୍ରି—ଗୁରୁଜନ ଆଦିଙ୍କୁ ସମ୍ମାନ ଦେଖାଇବା—
Mānanā kariba To show proper respect to
মান্য করা मान करना one's elders.

ମାନ ନାଶ—ସ. ବି ( ୬ଷ୍ଠୀ ତତ୍; ମାନ+ନାଶ )—ସମ୍ମାନର ନାଶ;
Māna nāśa ଅପମାନ—Insult; loss of prestige; humiliation; indignity.
(ମାନ ନାଶନ, ମାନ ଭଙ୍ଗ, ମାନ କ୍ଷତି—ଅନ୍ୟରୂପ)

ମାନନୀୟ—ସ. ବିଣ. ପୁଂ. (ମାନ୍ ଧାତୁ+କର୍ମ ଅନୀୟ)—୧ । ପୂଜନୀୟ;
Mānaniya ପୂଜାର୍ହ—1. Deserving respect;adorable.
(ମାନନୀୟା—ସ୍ତ୍ରୀ ୨ । ମାନ୍ୟ—2. Respectable; venerable; honourable.

ମାନ ପତ୍ର—ସ. ବି ( ଆଧୁନିକ )—ଯେଉଁ ପତ୍ରଦ୍ୱାରା କୌଣସି ବ୍ୟକ୍ତିଙ୍କ
Māna patra ଠାରେ ସମ୍ମାନ ଅର୍ପିତ ହୁଏ—Certificate of honour.
[ ମାନଲିପି, ମାନ ଲେଖ—ଅନ୍ୟରୂପ ]

ମାନ ପାଇବା—ଦେ. କ୍ରି—ଆପଣାର ଯଥୋଚିତ ସମ୍ମାନ ଅନ୍ୟଠାରୁ
Māna pāibā ପ୍ରାପ୍ତ ହେବା—To receive one's due
মান পাওয়া मान पाना share of respect.

ମାନ ପାତ୍ର—ସ. ବି—୧ । ଘଡ଼ି; ସମୟ ଜାଣିବା ପାଇଁ ବାଲି କିମ୍ବା ପାଣି
Māna pātra ଭର୍ତ୍ତି ହେବା ନିମନ୍ତେ ନିର୍ମିତ ପାତ୍ର—Sand-glass or water-glass used for measuring time. [ଉ—ଦୃଢ଼ାଇ ମାନପାତ୍ର କରି ଦଲେ, ବୁଝିଲେ ଶୁଭ ଅଶୁଭ ବେଳେ । ଉପେ. ବୈଦେହୀଶ-ବିଳାସ ।] ୨ । ମାପିବା ପାତ୍ର—2. A pot for measuring things

ମାନବ—ସ. ବି. ପୁଂ—(ମନୁ=ବ୍ରହ୍ମାଙ୍କ ପୁତ୍ର+ଅପତ୍ୟାର୍ଥେ ଅ)—
Mānaba ୧ । ନର; ମନୁଷ୍ୟ—1. Man. ୨ । ବାଳକ,
(ମାନବୀ—ସ୍ତ୍ରୀ) ଟୋକା—2. A lad; a boy (Apte). ୩ ।
ଅର୍ଥଦଣ୍ଡ ବିଶେଷ—3. A particular fine (Apte).
ବିଣ.— (ମନୁ+ଅ)—୧ । ମନୁଙ୍କ ସମ୍ବନ୍ଧୀୟ—
. Relating to Manu. ୨ । ମନୁଙ୍କଦ୍ୱାରା ସଂକଳିତ (ସଂହିତା)—2. Compiled by the great lawgiver Manu. ୩ । ମନୁଙ୍କଠାରୁ ଜାତ—
3. Descended from Manu. ୪ । ମନୁଷ୍ୟ ସମ୍ବନ୍ଧୀୟ—4. Human (Apte).

ମାନବକ—ସ. ବି—(ମାନବ+ହ୍ରସ୍ୱାର୍ଥେ କ)—ବାଳକ—
Mānabaka Boy; manikin.

ମାନବ ଜାତି—ସ. ବି—ମନୁଷ୍ୟ ଜାତି; ପୃଥିବୀର ମନୁଷ୍ୟଗଣ—
Mānaba jāti The men (as a class );mankind.

ମାନବ ଦେବ—ସ. ବି. ପୁଂ—(୬ଷ୍ଠୀ ତତ୍)—ରାଜା—A king; a
Mānaba deba lord of men.
(ମାନବ ପତି, ମାନବେନ୍ଦ୍ର—ଅନ୍ୟରୂପ)

ମାନବ ଧର୍ମ—ସ. ବି—(୬ଷ୍ଠୀ ତତ୍; ମାନବ+ଧର୍ମ )—ମନୁଷ୍ୟର
Mānaba dharma ସ୍ୱାଭାବିକ ଗୁଣ—The attributes of human beings.

ମାନବ ଧର୍ମଶାସ୍ତ୍ର—ସ. ବି—(କର୍ମଧା)—ମନୁଙ୍କର ରଚିତ ସଂହିତା—
Mānaba dharmaśāstra The great Hindu code of Manu.

ମାନବ ପ୍ରକୃତି—ସ. ବି.—(କର୍ମଧା)—ମନୁଷ୍ୟର ହୃଦୟଗତ ବା ସହଜ
Mānaba prakruti ପ୍ରକୃତି—Human nature.

ମାନବ ମଣ୍ଡଳୀ—ସ. ବି—(୬ଷ୍ଠୀ ତତ୍)—ମାନବସମୂହ; ମାନବଜାତି—
Mānaba maṇḍaḷi Mankind.

ମାନବର୍ଜ୍ଜିତ—ସ. ବିଣ (୩ୟା ତତ୍)—୧ । ସମ୍ମାନ ରହିତ; ଅପ୍ରତିଷ୍ଠିତ—
Māna barjjita 1. Devoid of honour. ୨ । ଅବମାନିତ—2. Humiliated. ୩ । ଅପବାଦକାରୀ—
3. Slanderous; libellous.

ମାନବ ରାକ୍ଷସ—ସ. ବି—ନରରୂପଧାରୀ ରାକ୍ଷସ; ରାକ୍ଷସପ୍ରକୃତିର
Mānaba rākshasa ମନୁଷ୍ୟ—A demon or fiend in the form of a man; fiendish person.
[ ମାନବାସୁର, ମାନବ ପିଶାଚ—ଅନ୍ୟରୂପ ]

ମାନବଲୀଳା—ସ. ବି (୬ଷ୍ଠୀ ତତ୍)-ନରଲୀଳା;ମନୁଷ୍ୟର ଜୀବିତ କାଳର କାର୍ଯ୍ୟ
Mānabaḷiḷā କଳାପ—The actions performed by a man while living.

ମାନବଲୀଳା ସମ୍ବରଣ—ସ. ବି(୬ଷ୍ଠୀତତ୍)—ମରଣ; ମୃତ୍ୟୁ—
Mānabaḷiḷā sambaraṇa Death; dying.

ମାନବ ଶାସ୍ତ୍ର—ସ. ବି—୧ । (ଆଧୁନିକ) ଯେଉଁ ଶାସ୍ତ୍ରରେ ମାନବଜାତିର
Mānaba śāstra ଉତ୍ପତ୍ତି, ବିକାଶ, ଭିନ୍ନ ଭିନ୍ନ ଅଞ୍ଚଳକୁ
ମାନବ ବିଜ୍ଞାନ } ଅନ୍ୟରୂପ
ମାନବ ବିଦ୍ୟା }
ଗମନ, ମନୁଷ୍ୟମାନଙ୍କ ଶ୍ରେଣୀବିଭାଗ, ଜୀବଜଗତରେ ମନୁଷ୍ୟର ସ୍ଥାନ, ମନୁଷ୍ୟ ସମାଜରେ ସଭ୍ୟତାର କ୍ରମ ବିସ୍ତାର ଆଦି ଆଲୋଚିତ ହୋଇଥାଏ—1. Anthropology; ethnology.
୨ । ମନୁସଂହିତା—2. The codes of Manu.

ମାନବ ସମାଜ—ସଂ. ବି(୬ଷ୍ଠୀ ତତ୍)—ବହୁ ମନୁଷ୍ୟଙ୍କଦ୍ୱାରା ଗଠିତ ଦଳ—
Mānaba samāja Human society; humanity.

ମାନବ ହୃଦୟ—ସଂ. ବି—(୬ଷ୍ଠୀ ତତ୍)—ମନୁଷ୍ୟର ମନ—Human
Mānaba hrudaya mind; the heart of man.

ମାନବା—ଗ୍ରା ବି—(ସଂ. ମାନବ ଶବ୍ଦର ବହୁବଚନ ମାନବାଃ)—
Mānabā ୧ । ମନୁଷ୍ୟମାନେ—1. Men. ୨ । ମନୁଷ୍ୟ ଜାତି—
मानवेरा 2. Mankind. ୩ । ରାଜାଙ୍କର ପ୍ରଜାବର୍ଗ—
**मानवों** 3. The subjects of a king. ପ୍ରାଦେ (ଭକ୍ତି ଭାଷା)
କ୍ରି—ମାନିବା—To obey.

ମାନବାନ୍—ସଂ. ବିଣ. ପୁଂ (ମାନ+ବତ୍; ୧ମା. ୧ବ)—୧ । ଗର୍ବିତ—
Mānabān (ମାନବତୀ—ସ୍ତ୍ରୀ) 1. Proud; haughty.
୨ । ଯେ ଅଭିମାନ କରିଅଛି—2. Sullen; scowling.

ମାନବୀ—ସଂ. ବି. ସ୍ତ୍ରୀ ( ମାନବ+ ଈ )—୧ । ନାରୀ; ସ୍ତ୍ରୀ—
Mānabī 1. Woman. ୨ । ସ୍ୱୟମ୍ଭୁବ ମନୁଙ୍କ କନ୍ୟା—
2. The daughter of Swayambhuba Manu.

ମାନବୀୟ—ସଂ. ବିଣ—୧ । (ମନୁ+ଈୟ) ମନୁ ସମ୍ବନ୍ଧୀୟ—
Mānabīya 1. Relating to Manu. ୨ । (ମାନବ+ଈୟ )
ମାନବ ସମ୍ବନ୍ଧୀୟ—2. Human; manly. ୩ । ମନୁଙ୍କ
ବଂଶୋତ୍ପନ୍ନ-3 Descended from Manu (Apte).
ସଂ. ବି—ଅର୍ଥଦଣ୍ଡ ବିଶେଷ—A particular fine
(Apte).

ମାନବେନ୍ଦ୍ର(ଶ)—ସଂ. ବି (୭ମୀ ତତ୍)—ରାଜା—
Mānabendra(śa) A king.

ମାନବୋଚିତ—ସଂ. ବିଣ (୬ଷ୍ଠୀ ତତ୍)—ମନୁଷ୍ୟର ଉପଯୁକ୍ତ—
Mānabochita Befitting a man; fit for a human
(ମାନବସୁଲଭ—ଅନ୍ୟରୂପ) being.

ମାନବ୍ୟ—ସଂ. ବି (ମାନବ +ଯ)—୧ । ବାଳକ ବା ଯୁବକ ସମୂହ—
Mānabya 1. A number of boys or youths.
୨ । ମାନବମଣ୍ଡଳୀ-2. Mankind. ୩ । ଶୈଶବାବସ୍ଥା—
3. Childhood; boyhood. ୪ । (ମାନ +ବ୍ୟ)—
ମାନମନ୍ଦିର—4. Observatory.

ମାନଭଙ୍ଗ—ସଂ. ବି (୬ଷ୍ଠୀ ତତ୍)—୧ । ସମ୍ମାନର ନାଶ; ମାନହାନି—
Mānabhanga 1. Indignity. ୨ । ଅପମାନ—
2. Insult. । ଅଭିମାନ ଭୁଷ୍ଟ ଥିବା—3. Conciliation.

ମାନଭଞ୍ଜନ—ସଂ. ବି (୬ଷ୍ଠୀ ତତ୍)—ଅଭିମାନର ନିରସନ—The
Mānabhañjana breaking of a woman's love-reserve
(ମାନ ମୋଚନ—ଅନ୍ୟରୂପ) or sulkiness; conciliation
between lovers after a love-qurrel. [ ଦ୍ର—
ସାହିତ୍ୟ ଗ୍ରନ୍ଥ ଅନୁସାରେ ମାନଭଞ୍ଜନ କରିବାର
ପ୍ରକ୍ରିୟା ୬ଟି ନିର୍ଦ୍ଦିଷ୍ଟ ହୋଇଅଛି:—( ୧ ) ସାମ,
(୨) ଦାନ, (୩) ଭେଦ, (୪) ପ୍ରଣତି, (୫) ଉପେକ୍ଷା ଓ
(୬) ପ୍ରସଙ୍ଗ ବିଧ୍ୱଂସ—ହି. ଶ ।]

ମାନ ଭଙ୍ଗିବା—ଦେ. କ୍ରି-କୌଣସି ବ୍ୟକ୍ତିର ଅଭିମାନକୁ ନିରସନ ବା ଦୂର
Māna bhangibā କରିବା—To remove or conciliate
ভাঙা **मानमनाना; मानतोडना** a person's sullenness
or reserve.

ମାନଭାବ—ସଂ. ବି—ଥଟ୍ଟା; ଖେଳ ( ହି. ଶ )—
Mānabhāba Jesting.

ମାନ ମନ୍ଦିର—ସଂ. ବି—୧ । ଗ୍ରହ ନକ୍ଷତ୍ରାଦି ପର୍ଯ୍ୟବେକ୍ଷଣ କରିବାର ଗୃହ;
Māna mandira ବେଧଶାଳା—1. Observatory.
[ ଦ୍ର—ଏଠାରେ ବଡ଼ ବଡ଼ ବୈଜ୍ଞାନିକ ଯନ୍ତ୍ର ଆଦି
ସାହାଯ୍ୟରେ ଗ୍ରହ ନକ୍ଷତ୍ରାଦିଙ୍କ ଆକାର, ଦୂରତ୍ୱ ଓ ଗତି
ଆଦି ନିରୂପିତ ହୁଏ ।
ଆକବରଙ୍କଠାରୁ ଜୟପୁର ରାଜ୍ୟ ପାଇବା ପୂର୍ବରୁ
ଆକବରଙ୍କ ହିନ୍ଦୁ ସେନାପତି ରାଜା ମାନସିଂହ ଓଡ଼ିଶାରୁ
ଫେରି ଯାଇ କୋଣାର୍କ ମନ୍ଦିର ଅନୁକରଣରେ କାଶୀର
ବିଖ୍ୟାତ ମାନମନ୍ଦିରକୁ ନିର୍ମାଣ କରାଇଥିଲେ । ] ୨ । ମାନ
ଗୃହ (ଦେଖ)( ହି. ଶ)—2. Māna gṛuha (See.

ମାନ ମର୍ଯ୍ୟାଦା—ସଂ. ବି ( ଏକାର୍ଥକ ସହଚର )—ସମ୍ମାନ—Honour;
Māna marjyādā (ମାନ ମହତ—ଦେଶଜରୂପ) dignity.
( ମାନ ମହତ୍ତ୍ୱ, ମାନ ସମ୍ଭ୍ରମ—ଅନ୍ୟରୂପ )

ମାନ ମହାନ୍—ସଂ. ବିଣ. ପୁଂ—ଅତ୍ୟନ୍ତ ଗର୍ବୀ—Greatly proud
Māna mahān (ମାନମହତୀ—ସ୍ତ୍ରୀ) ( Apte )
( ମାନଉଚ୍ଚ, ମାନପର—ଅନ୍ୟରୂପ )

ମାନ ମାନସେ—ଦେ. କ୍ରି ବିଣ—ଗର୍ବସହକାରେ—Proudly
Māna mānase [ ଉ—ବିମାନ ଅରୋହି ମାନ ମାନସେ ଅସି
गर्व सहकारे **घमंडसे** —ଉଞ୍ଜ. ବୈଦେହୀଶବିଳାସ । ]

ମାନ ମାନ୍ୟତା—ସଂ. ବି—ଇଜ୍ଜତ; ପ୍ରତିଷ୍ଠା ( ହି. ଶ )—
Māna mānyatā Prestige.

ମାନ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତି ପ୍ରତି ଅଭିମାନ ପ୍ରକାଶ
Māna māribā କରିବା—To maintain or show
অভিমান করা **मान मारना** reserve or sullenness ( on
account of wounded feelings) towards
a person.

ମାନ ମିଳିବା—ଦେ. ବି—୧ । କୌଣସି ବ୍ୟକ୍ତିର ପ୍ରାପ୍ୟ ସମ୍ମାନ ତାଙ୍କୁ
Māna milibā ପ୍ରାପ୍ତ ହେବା—Receiving one's due
মান রক্ষা হওয়া **मान मिलना** share of respect. ୨ । ମାନ
ରକ୍ଷା ହେବା—2. The retrieval of one's
prestige.

ମାନ ଯୋଗ—ସଂ. ବି (୬ଷ୍ଠୀ ତତ୍)—ମାପିବାର ବା ତଉଲିବାର ଯଥାର୍ଥ
Māna joga ପ୍ରଣାଳୀ—The correct mode of measuring or weighing ( Apte ).

ମାନ ରକ୍ଷା—ସଂ. ବି ( ୬ଷ୍ଠୀ ତତ୍ )—କୌଣସି ବ୍ୟକ୍ତିର ଇଜ୍ଜତ୍ ବା
Māna rakshā ସମ୍ମାନର ଅକ୍ଷୁଣ୍ଣତା—The preservation
of a person's prestige or honour.

ମାନ ରଖିବା—ଦେ. କ୍ରି—କୌଣସି ବ୍ୟକ୍ତିର ସମ୍ମାନକୁ ଅକ୍ଷୁଣ୍ଣ ରଖିବା
Māna rakhibā —To maintain or save a person's
মান রাখা **मान रखना** honour or prestige.

ମାନ ରନ୍ଧ୍ରା—ସଂ. ବି (ମାନ=ପରିମାଣ, ତତ୍‌ସମ୍ବନ୍ଧେ ରନ୍ଧ୍ର=ନିରୂପକ)—
Māna randhrā ପ୍ରାଚୀନ ହିନ୍ଦୁମାନଙ୍କର ସମୟ ନିରୂପକ ଯନ୍ତ୍ର

ବିଶେଷ; ତାମ୍ରୀ; ଜଳଘଡ଼ି—A contrivance for measuring time used by ancient Hindus, consisting of a copper cup with a hole at the bottom; a kind of clepsydra. [ ଦ୍ର—ତଳରେ ସୂକ୍ଷ୍ମ ଛିଦ୍ର ଥିବା ଏହା ଗୋଟିଏ ତାମ୍ରପାତ୍ର। ଏଥିରେ ପାଣି ଭର୍ତ୍ତି କରି ରଖାଯାଉଥିଲା ଓ କ୍ରମେ କ୍ରମେ ପାଣି ଝରିବାଦ୍ୱାରା ପାତ୍ରରେ ଥିବା ଅବଶିଷ୍ଟ ଜଳରୁ ସମୟ ନିରୂପଣ କରାଯାଉଥିଲା । ]

**ମାନସ**—ସଂ. ବି ( ମନସ୍+ଅ )—୧ । ମନ; ଚିତ୍ତ—1. Mind.
Mānasa ୨ । କଳ୍ପନା—2. Idea; imagination; fancy. ୩ । ଇଚ୍ଛା; ଅଭିଳାଷ—3. Wish; desire; intention. ୪ । ମନର ତାପ; ମାନସିକ ଦୁଃଖଭୋଗ—4. Mental suffering. ୫ । ମାନସରୋବର (ଦେଖ) 5. Mānasarobara (See) ୬ । ( ହିନ୍ଦୁ ଆଇନ୍ ) ମୌନ ସମ୍ମତି—6. (law) Tacit or implied consent ( Apte ). ୭ । ଏକପ୍ରକାର ଲୁଣ—7. A kind of salt ( Apte). ୮ । ବିଷ୍ଣୁଙ୍କର ପ୍ରତିମାବିଶେଷ—8. An image of Bishṇu ( Apte ). ୯ । କାମଦେବ ( ହି. ଶ )—9. Cupid. ୧୦ । ସଙ୍କଳ୍ପବିକଳ୍ପ ( ହି. ଶ )—10. Determination and hesitation. ୧୧ । ( ନାମ ) ଏକ ନାଗର ନାମ ( ହି. ଶ )—11. Name of a mythological serpent. ୧୨ । ( ନାମ ) ଶାଲ୍ମଳୀ ଦ୍ୱୀପର ଏକ ବର୍ଷ ବା ଦେଶ(ହି. ଶ)—12. Name of a country in the mythological Śālmalī island. ୧୩ । ( ନାମ ) ପୁଷ୍କର ଦ୍ୱୀପର ଏକ ପର୍ବତ ( ହି. ଶ )—13. Name of a mythological mountain. ୧୪ । ମାନବ; ମନୁଷ୍ୟ (ହି. ଶ)—14. Man. ବିଣ—୧ । ମନଃ ସମ୍ବନ୍ଧୀୟ; ମାନସିକ—1. Mental. ୨ । ମନଗଢ଼ା; ମନୋକଳ୍ପିତ—2. Imaginary; ideal; born of one's imagination. ୩ । ଆଧ୍ୟାତ୍ମିକ—3. Spiritual. ୪ । କଳ୍ପନୀୟ—4. Conceivable (Apte). ୫ । ମନରୁ ଜାତ; ଇଚ୍ଛାମାତ୍ରେଜାତ-5. Produced from the mind; sprung at will (Apte). ୬ । ସୂଚନା—6. Implied; tacit (Apte). ୭ । ମାନସରୋବରରେ ବାସ କରୁଥିବା—7. Dwelling in the Mānasarobara lake.

**ମାନସ କରିବା**—ଦେ. କ୍ରି—୧ । ଇଚ୍ଛା କରିବା—1. To wish; to
Mānasa karibā desire. ୨ । ସଙ୍କଳ୍ପ କରିବା—2. To
मानस करा **मनमें करना** resolve.

**ମାନସଚାରୀ**—ସଂ. ବିଣ. ପୁଂ ( ମାନସ+ଚର ଧାତୁ+କର୍ତ୍ତୃ. ଇନ୍; ୧ମା.
Mānasachārī ୧ବ )—ଯେ ( ଯେଉଁ ହଂସ ) ମାନସହ୍ରଦରେ
( ମାନସବିହାରୀ—ଅନ୍ୟରୂପ ) ବିଚରଣ କରନ୍ତି—( swans )
( ମାନସଚାରିଣୀ—ସ୍ତ୍ରୀ ) Frequenting the Mānasarobara lake. ସଂ. ବି—ରାଜହଂସ—Swan (Apte).

**ମାନସ ଜନ୍ମା**—ସଂ. ବିଣ ( ମାନସ+ଜନ୍ମନ୍; ୧ମା. ୧ବ; ବହୁବ୍ରୀହି )—
Mānasa janmā ୧ । ମନରୁ ଜାତ—1. Born of the mind. ୨ । ମାନସରୋବରରେ ଜାତ—2. Produced in the Mānasa lake. ବି—୧ । କାମ; ମଦନ—1. Cupid. ୨ । ରାଜହଂସ—2. A swan ( Apte ).

**ମାନସ ଜପ**—ସଂ. ବି ( କର୍ମଧା )—ମନେ ମନେ ଦେବତାଙ୍କର ନାମ
Mānasa japa ଜପିବା—Taking the name of a Deity mentally.

**ମାନସତପଃ**—ସଂ. ବି—ମନଃପ୍ରସାଦ, ସୌମ୍ୟତ୍ୱ, ମୌନ, ଆତ୍ମବିନିଗ୍ରହ
Mānasatapaḥ ଓ ଭାବସଂଶୁଦ୍ଧି—Favourable disposition or tranquility of mind, sweet-nature, silence, selfcontrol and purity of thought [ ଦ୍ର—ଭଗବଦ୍‌ଗୀତା ୧୭ଶ ଅଧ୍ୟାୟରେ ତପଃକୁ ୩ ଶ୍ରେଣୀରେ ବିଭକ୍ତ କରାଯାଇଅଛି । ଯଥା—୧ । ଶାରୀର ତପଃ—ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନ, ଶୌଚ, ଆର୍ଜବ ବା ସରଳତା, ବ୍ରହ୍ମଚର୍ଯ୍ୟ, ଅହିଂସା—୨ । ବାଙ୍ମୟ ତପଃ—ଅନୁଦ୍ବେଗକର ବାକ୍ୟ, ସତ୍ୟ, ପ୍ରିୟ ଓ ହିତବାକ୍ୟ, ସ୍ୱାଧ୍ୟାୟାଭ୍ୟାସନ ବା ବେଦାଭ୍ୟାସ ଓ—୩ । ମାନସତପଃ—ମନଃପ୍ରସାଦ, ସୌମ୍ୟତ୍ୱ, ମୌନ, ଆତ୍ମବିନିଗ୍ରହ ଓ ଭାବସଂଶୁଦ୍ଧି । ୧୪।୧୫।୧୬ ଶ୍ଳୋକ । ]

**ମାନସ ତୀର୍ଥ**—ସଂ. ବି—ହିଂସାକ୍ରୋଧାଦିବର୍ଜିତ ମନ; ରିପୁବର୍ଜିତ ମନ—
Mānasa tīrtha A mind free from envy, anger and evil positions.

**ମାନସ ନ ପାଇବା**—ଦେ. କ୍ରି—ମନ ନ ହେବା; ଇଚ୍ଛା ନ ହେବା—
Mānasa na pāibā Want of a desire or liking for.
मन ना याओया [ ଉ—ଅର୍ଜୁନଙ୍କୁ ନ ଦେଖି ଏ ବନରେ ବାସ,
**मन नही भरना** କରିବାକୁ ମୋହର ନ ପାଏ ମାନସ । କୃଷ୍ଣସିଂହ ମହାଭାରତ. ବନ । )

**ମାନସ ନେତ୍ର**—ସଂ. ବି ( ରୂପକ; ମାନସ+ନେତ୍ର )—ମନଶ୍ଚକ୍ଷୁ—
Mānasa netra The mind's eye.
( ମାନସ ଲୋଚନ; ମାନସ ଚକ୍ଷୁଃ—ଅନ୍ୟରୂପ)

**ମାନସ ପଟ**—ସଂ ବି ( ରୂପକ; ମାନସ+ପଟ )—ଚିତ୍ତପଟ; ଚିତ୍ତରୂପକ
Mānasa paṭa ପଟ—The canvas of the mind.

**ମାନସ ପୁତ୍ର**—ସଂ. ବି. ପୁଂ—( ଦେବତାଦିଙ୍କର ) ମନ ମଧ୍ୟରୁ ଜାତ
Mānasa putra କରାଯିବା ପୁତ୍ର—A son begotten
(ମାନସ ପୁତ୍ରୀ—ସ୍ତ୍ରୀ) of the mind ( of a Deity ); a son sprung at will. [ ଦ୍ର—ବୈବସ୍ୱତାଦି ମନୁ ଓ ସନକ, ସନନ୍ଦାଦି ଋଷିମାନେ ବ୍ରହ୍ମାଙ୍କ ମାନସ ପୁତ୍ର ଅଟନ୍ତି; ଅର୍ଥାତ୍ ବ୍ରହ୍ମା ମନରେ ଚିନ୍ତିଲେ ଯେ ଏମାନେ ଜନ୍ମଗ୍ରହଣ କରନ୍ତୁ ଓ ଏମାନେ ଜନ୍ମିଲେ । ]

**ମାନସ ପୂଜା**—ସଂ. ବି ( ମାନସୀ+ପୂଜା; କର୍ମଧା )—ମନଃକଳ୍ପିତ
Mānasa pūjā ଉପକରଣଦ୍ୱାରା ପୂଜା; ବାହ୍ୟ ଉପକରଣ-
ମାନଙ୍କର ବିନା ସାହାଯ୍ୟରେ ମନେ ମନେ ପୂଜା )—
Mental worship; worship of a Deity by means of abstract contemplation.

**ମାନସ ବଳା(ଳେ)ଇବା**—ଦେ. କ୍ରି—ମନ ବଳାଇବା; କୌଣସି
Mānasa ba<u>l</u>ā(<u>l</u>e)ibā କାର୍ଯ୍ୟପ୍ରତି ଅଗ୍ରହାନ୍ୱିତ ହେବା—
মন বাড়ান; মন দৌড়ান To be bent on doing a
**मनबढाना; मनदौडाना** thing; to hanker after a thing.

**ମାନସ ବଳିବା**—ଦେ. ବି—କୌଣସି ବିଷୟ ପ୍ରତି ବିଶେଷ ଆଗ୍ରହ ଜନ୍ମିବା।
Mānasa ba<u>l</u>ibā —The state of having an
মন দৌড়া **मन बढना** intensive desire for a thing.

**ମାନସ ବିଜ୍ଞାନ**—ସଂ. ବି ( ମ. ପ. ଲୋ)—ମନୋବିଜ୍ଞାନ; ମନର କାର୍ଯ୍ୟ,
Mānasa bijñāna ମନର ଗତି ଆଦି ଯେଉଁ ବିଦ୍ୟାରେ
ମାନସ ବିଦ୍ୟା } ଅନ୍ୟରୂପ ଅଲୋଚିତ ହୁଏ— Psychology.
ମାନସ ଶାସ୍ତ୍ର }

**ମାନସ ବ୍ରତ**—ସଂ. ବି—ଲୋଭରହିତତ୍ୱ, ଅହିଂସା, ସତ୍ୟ, ଦାନ,
Mānasa brata ଅକ୍ରୋଧ, ବ୍ରହ୍ମଚର୍ଯ୍ୟାଦି ବ୍ରତ ( ହି. ଶ )
—Mental piety; (e, g. uncovetuousness; truthfulness; abstinence or continence, absence of revenge ) or hurting others, freedom from anger etc.

**ମାନସ ମନ୍ଦିର**—ସଂ. ବି ( ରୂପକ; ମାନସ+ମନ୍ଦିର )—ମନୋମନ୍ଦିର;
Mānasa mandira ମନୋରୂପ ଗୃହ—The mind compared to a temple or a house.

**ମାନସର**—ଦେ. ବି ( ସଂ. ମାନସ ସରଃ )—ମାନ ସରୋବର ( ଦେଖ )
Mānasara Māna sarobara ( See ) ( ଉ—
মান সরোবর ବିହରିବା ମାନସର ମଧ୍ୟେ ହଂସକୁ ସୁନ୍ଦର, ଅନ
**मानसर** ପକ୍ଷୀରେ କି ସେ ବାଞ୍ଛିତ । ଭଞ୍ଜ. ବୈଦେହୀଶ-
ବିଳାସ । )

**ମାନସ ରାଜ୍ୟ**—ସଂ. ବି ( ରୂପକ; ମାନସ+ରାଜ୍ୟ )—ମନୋରାଜ୍ୟ
Mānasa rājya. —The kingdom of mind.

**ମାନ ସରୋବର**—ଦେ ବି ( ସଂ. ମାନସ ସରୋବର )—ମାନସ ନାମକ
Māna sarobara ହିମାଳୟର ଉତ୍ତରଦେଶସ୍ଥ ହ୍ରଦଦ୍ୱୟ—
(ମାନସସରୋବର—ସଂ. ରୂପ) Name of a couple of lakes
মানস সরোবর to the north of the Himalayas; the
**मान सरोबर** Manasarobara lakes. [ ଦ୍ର—ଏହା ପ୍ରକୃତରେ ଦୁଇଟି ହ୍ରଦ, ଗୋଟିଏ ହ୍ରଦ ଅନ୍ୟ ହ୍ରଦର ପଶ୍ଚିମରେ ଅବସ୍ଥିତ । ପୂର୍ବପାର୍ଶ୍ୱସ୍ଥ ହ୍ରଦଟି ବଡ଼ ଓ ପଶ୍ଚିମପାର୍ଶ୍ୱସ୍ଥ ହ୍ରଦଟି ସାନ । କେହି କେହି ପଶ୍ଚିମ ହ୍ରଦକୁ ରାବଣହ୍ରଦ ଓ ପୂର୍ବ ହ୍ରଦକୁ ମାନସରୋବର କହନ୍ତି । ଏଦୁଇ ହ୍ରଦ ଓ ଆଉ ଗୋଟିଏ ହ୍ରଦ ହିମାଳୟର ଉତ୍ତରରେ ତିବ୍ବତ ଦେଶରେ ଅବସ୍ଥିତ । ଏ ହ୍ରଦର ଉତ୍ତର ପଶ୍ଚିମରେ ଥିବା କୈଳାସ ଶୃଙ୍ଗର ଉଚ୍ଚତା ୨୧୯୦୦ ଫୁଟ୍ । ଏଥିର ପୂର୍ବ ହ୍ରଦରୁ ପୂର୍ବ ଅଭିମୁଖରେ ବ୍ରହ୍ମପୁତ୍ର ଓ ପଶ୍ଚିମ ହ୍ରଦରୁ ପଶ୍ଚିମ ଅଭିମୁଖରେ ଶତଦ୍ରୁ ଓ ସିନ୍ଧୁନଦୀ ବାହାରି ଅଛନ୍ତି ।

ହିନ୍ଦୁ ପୁରାଣମତେ ଏହାକୁ କୈଳାସ ପର୍ବତରେ ବ୍ରହ୍ମା ଖୋଳିଥିଲେ । ଏହାର ଉତ୍ତରରେ କୈଳାସ ଓ ଦକ୍ଷିଣରେ ହିମାଳୟ ପର୍ବତ । ରାମାୟଣରେ ଲେଖାଅଛି ଯେ କୈଳାସଶିଖରରେ ବ୍ରହ୍ମାଙ୍କ ମନ ଅନୁସାରେ ଏ ହ୍ରଦ ନିର୍ମିତ ହୋଇଥିଲା । ଏଥିପାଇଁ ଏହାର ନାମ ମାନସ ସରୋବର ହୋଇଅଛି ।

ଏହିଠାରୁ ଶୀତକାଳରେ ରାଜହଂସମାନେ ଭାରତକୁ ଉଡ଼ି ଆସନ୍ତି ବୋଲି କବି ପ୍ରସିଦ୍ଧି ଅଛି । ପୁଣି ଶୀତ ଗଲେ ଏଠାକୁ ଫେରି ଯାଆନ୍ତି ।

ଏହା ହିନ୍ଦୁମାନଙ୍କର ପୀଠବିଶେଷ । ସତୀଙ୍କ ଶବର ଦକ୍ଷିଣ ହସ୍ତ ଏହିଠାରେ ପଡ଼ିଥିଲା । ଏହି ପୀଠର ଭୈରବ ଅମର ଓ ଭୈରବୀ ଦାକ୍ଷାୟଣୀ । କୈଳାସ ପର୍ବତର ମୂଳଦେଶସ୍ଥ ଦାରଚନ ମଠଠାରୁ ମାନସରୋବର ଦୁଇଦିନର ପଥ । ମଝିରେ ରାବଣ ହ୍ରଦ ( ଯାହା ମାନ ସରୋବରର ପଶ୍ଚିମରେ ଅବସ୍ଥିତ, ତାକୁ ) ଅତିକ୍ରମ କରିବାକୁ ପଡ଼େ । ରାସ୍ତା ଭେଡ଼ି ପରି ଉଚ୍ଚ ନୀଚ । ଚାରିଆଡ଼େ ପର୍ବତମାଳା ବେଷ୍ଟିତ, ମଧ୍ୟରେ ନୀଳବର୍ଣ୍ଣ ଜଳରାଶି ପବନବେଗରେ ଆନ୍ଦୋଳିତ । ଏହି ଜଳ ମଧ୍ୟରେ ଅସଂଖ୍ୟ ଚକ୍ରବାକ, ଚକ୍ରବାକୀ ଓ ବହୁ ସଂଖ୍ୟକ ରାଜହଂସ କ୍ରୀଡ଼ା କରନ୍ତି । ଏମାନେ କର୍ପୂର ପରି ଶୁଭ୍ର । ମାନସରୋବରର ଚାରିପାଖରେ ୧୦।୧୨ ମାଇଲ୍ ଛଡ଼ାରେ ୮ଗୋଟି ମଠ ଅଛି । ମାନସରୋବରର ପରିଧି ପ୍ରାୟ ୮୦ ମାଇଲ୍ । ଏହି ମଠମାନଙ୍କ ମଧ୍ୟରେ ଜୁଗୁମ୍ଫା ମଠ ସର୍ବ ପ୍ରଧାନ । ଏହି ପ୍ରଧାନ ମଠରେ ହର ପାର୍ବତୀ ମୂର୍ତ୍ତି ପ୍ରତିଷ୍ଠିତ । ମଠର ଗୁପ୍ତ ଗୁହା ମଧ୍ୟରେ ରାଶି ରାଶି ହସ୍ତଲିଖିତ ପୋଥି ଗୋପନରେ ସୁରକ୍ଷିତ ହୋଇଅଛି । ଏହା ଗୁପ୍ତ ଗୁହାହିଁ ପୀଠସ୍ଥଳ । ମାନସରୋବରର ଜଳ ଅତ୍ୟନ୍ତ ସ୍ୱଚ୍ଛ ଓ ତଳର ପଥରମାନ ଉପରକୁ ସ୍ପଷ୍ଟ ଦେଖାଯାଏ । ଜୁଗୁମ୍ଫା ମଠର ସକଳ ବାବାଜୀ ଜପଯୋଗୀ; କେବଳ ପ୍ରଧାନ ଲାମା ପ୍ରାଣାୟାମ ଯୋଗୀ । ଏମାନେ ମହାଶଙ୍ଖମାଳା, କେହି କେହି ରୁଦ୍ରାକ୍ଷମାଳାରେ ଜପ କରନ୍ତି । ସ୍ୱାମୀ. ରାମାନନ୍ଦ । ]

**ମାନସ ସନ୍ନ୍ୟାସୀ**—ସଂ. ବି. ପୁଂ—ଯେଉଁ ବ୍ୟକ୍ତିଙ୍କର ମନରେ ବୈରାଗ୍ୟ
Mānasa sannyāsī ଉଦୟ ହେବାରୁ ସେ ଗୃହସ୍ଥାଶ୍ରମ ତ୍ୟାଗ
(ମାନସ ସନ୍ନ୍ୟାସୀ—ଅନ୍ୟରୂପ) କରି ବନରେ ରହି ତପସ୍ୟା କରନ୍ତି ।
(ହି. ଶ)—A person who renounces his home and goes to the forest and does penance there, [ ଦ୍ର—ଏ ସନ୍ନ୍ୟାସୀମାନେ ସନ୍ନ୍ୟାସୀମାନଙ୍କର ବେଶ (ଗେରୁଆ ଲୁଗା ଆଦି) ପିନ୍ଧନ୍ତି ନାହିଁ—ହି. ଶ]

ମାନସ ସରୋବର—ସ. ବି—ମାନ ସରୋବର ( ଦେଖ )
Mānasa sarobara Mānasa sarobara (See)
(ମାନସ ହ୍ରଦ—ଅନ୍ୟରୂପ)

ମାନସ ସିଦ୍ଧି—ସ. ବି. (୬ଷ୍ଠୀ ତତ୍)—ଅଭିଳାଷର ପୂରଣ—
Mānasa siddhi Fulfilment of one's desire.

ମାନସ ହଂସ—ସ. ବି. (ମ. ପ. ଲୋ)—୧ । ମାନସସରୋବରରେ ବିହାରୀ
Mānasa haṁsa ରାଜହଂସ—1. A swan frequenting the Mānasa lake. ୨ । ଏକ ବର୍ଣ୍ଣବୃତ୍ତ—2. Name of a Sanscrit metre. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ 'ସ ଜ ଜ ଭ ର' ରହେ—ବୃ. ର]

ମାନସାଙ୍କ—ସ. ବି. (ଅଧୁନିକ)—ଗଣିତର ଯେଉଁ ପ୍ରଶ୍ନ ଲେଖାଲେଖି
Mānasāṅka ନ କରି ମନେ ମନେ ସମାଧାନ କରି ମୁଖରେ ତହିଁର
मानसाङ्क ଉତ୍ତର ଦେବାକୁ ହୁଏ; ଭୁଣ୍ଡ ଅଙ୍କ—Mental
मौखिक arithmetic.

ମାନସାଳୟ—ସ. ବି. (ବହୁବ୍ରୀହି; ମାନସ + ଆଳୟ)—ରାଜହଂସ—
Mānasālaya Swan.

ମାନସିଂହ—ଦେ. ବି—୧ । ମୋଗଲ ସମ୍ରାଟ ଆକବରଙ୍କ ଅଧୀନ ରାଜପୁତ
Mānasiṁha ସେନାପତି—1. Name of a Rajput
मानसिंह general under Akbar. [ଦ୍ର—ଏହାଙ୍କର
मानसिंह ପିଉସୀଙ୍କୁ ଆକବର ବିବାହ କରିଥିଲେ ଓ ଏହାଙ୍କ ଭଉଣୀଙ୍କୁ ଜାହାଙ୍ଗୀର ବିବାହ କରିଥିଲେ; ଆକବର ଏହାଙ୍କୁ ଜୟପୁର ରାଜ୍ୟର ରାଜା କରିଥିଲେ । ] ୨ । କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ—2. Name of a family-title of Kshatriyas.

ମାନସିକ—ସ.ବିଣ. (ମାନସ + ଇକ)—୧ । ମନଃ ସମ୍ବନ୍ଧୀୟ; ଆନ୍ତରିକ;
Mānasika ମନୋଗତ—1. Mental. ୨ । କାଳ୍ପନିକ—
मानसिक 2. Imaginary. ଦେ. ବି—୧ । ଦେବଦେବୀଙ୍କ
मन्नत, मान मनौति ସମୀପରେ କୌଣସି ଅଭୀଷ୍ଟ ସାଧନାର୍ଥ ଭୋଗ ଆଦି ଯାଚିବା କାର୍ଯ୍ୟ; ମାନତ—1. Vow taken before a Deity to perform certain acts in case one's particular desire is fulfilled. ୨ । କଳ୍ପନା—2. Imagination. (ଉ—ମାନସିକେ ତାର ମୂର୍ତ୍ତି ଦେଖୁଅଛି କୁଟିଳ କୋପଭରେଣ । ପ୍ରାଚୀ. ଉପ-ବାଉଥ ।] ୩ । ବିଷ୍ଣୁ (ବୃ. ଶ)—3. A name of Bishṇu.

ମାନସିକ କରିବା—ଦେ. କ୍ରି—ମାନତ କରିବା ( ଦେଖ )
Mānasika kariba Mānat kariba ( See )
मानसिक करा मन्नत करना

ମାନସୀ—ସ. ବିଣ. ସ୍ତ୍ରୀ ( ମାନସ + ଈ; ମାନସର ସ୍ତ୍ରୀଲିଙ୍ଗ—Feminine of Mānasa )—ମାନସ ସମ୍ବନ୍ଧୀୟା—
Mānasī
Mental. ବି—୧ । ବିଦ୍ୟାଧରୀ ବିଶେଷ—1. Name of a female demigod. ୨ । ମାନସ ପୂଜା (ବୃ.ଶ) (ଦେଖ)—2. Mānasa pūjā (See)

ମାନସୀ କନ୍ୟା—ସ. ବି. ସ୍ତ୍ରୀ—ମନରୁ ଜାତ କନ୍ୟା; ମନରେ କନ୍ୟା
Mānasī kanyā ଜାତ ହେଉ ବୋଲି କଳ୍ପନା କରିବା ମାତ୍ରେ
(ମାନସୀ ପୁତ୍ରୀ—ଅନ୍ୟରୂପ) ଯେଉଁ କନ୍ୟା ଜାତ ହୁଏ—
A daughter begotten of the mind; a daughter sprung at one's will.

ମାନସୀ କାର୍ଯ୍ୟ—ଦେ. ବି. (ସ. ମାନସିକ + କାର୍ଯ୍ୟ)—ମନରେ ସଙ୍କଳ୍ପିତ
Mānasī kārjya କର୍ମ—An act resolved to be done.

ମାନସୀ ମୂର୍ତ୍ତି—ସ. ବି—ମନଃକଳ୍ପିତ ରୂପ—An image formed
Mānasī mūrtti in the mind; imaginary form.

ମାନସୂତ୍ର—ସ. ବି—୧ । ମୂଲ୍ୟବାନ୍ ଧାତୁ ନିର୍ମିତ କଟିସୂତ୍ର; ଅଣ୍ଟା ସୂତା; ଉଡ଼ୁଣୀ-
Mānasūtra 1. A waist chain of any valuable metal. ୨ । ମାପ କରିବାର ସୂତୁଲି—2. A measuring string or rope.

ମାନସୋତ୍କ—ସ. ବିଣ. ପୁଂ (ମାନସ + ଉତ୍କ)—ମାନସସରୋବରକୁ ଯିବା
Mānasotka ପାଇଁ ଅତ୍ୟୁତ୍ସାହିତ (ହଂସ)—( a swan )
(ମାନସୋତ୍କା—ସ୍ତ୍ରୀଲିଙ୍ଗ) Eager to proceed to the Mānasarobara lake.

ମାନସୌକାଃ—ସ. ବି. (ବହୁବ୍ରୀହି; ମାନସ = ମାନସ ସରୋବର ଅଟେ
Mānasaukāḥ ଓକସ୍ = ଗୃହ ଯାହାର )—ରାଜହଂସ—
Swan. ବି—ମାନସବାସୀ—Living in Mānasa (lake or mind).

ମାନ ହଂସ—ସଂ. ବି—ମାନସ ହଂସ ୨ ( ଦେଖ )
Māna haṁsa Mānasa haṁsa 2 ( See )

ମାନ ହରା(ରେ)ଇବା—ଦେ. କ୍ରି—ଆପଣାର ସମ୍ମାନ ନଷ୍ଟ ହେବା ଭଳି
Māna harā(re)ibā କାର୍ଯ୍ୟ କରିବା—To lose one's
मान हारान, मान खुयान prestige; to act to the detriment of one's honour.
मान खोना

ମାନ ହାନି—ସଂ. ବି. ( ୬ଷ୍ଠୀ ତତ୍ )—୧ । ମହତ୍ତ୍ୱର ହାନି; ମାନର
Māna hāni ନାଶ; ଅପମାନ—1. Loss of one's prestige or respect; insult. ୨ । ଅପବାଦ ହାରା ପରର ମର୍ଯ୍ୟାଦା ନାଶ—2. Libel; defamation.

ମାନହାନି କର—ସ. ବି ( ଷଷ୍ଠୀ ତତ୍ )—ମର୍ଯ୍ୟାଦାର ଷତିକାରକ—
Mānahāni kara Defamatory; libellous.
(ମାନହାନିଜନକ—ଅନ୍ୟରୂପ

ମାନହାନି ମକଦ(ଦ୍ଦ)ମା—ଦେ. ବି ( କଚେରୀ )—ଆପଣାଠାରେ ମାନହାନି
Mānahāni makada(dda)mā ଘଟାଇବା ବ୍ୟକ୍ତିର ବିରୁ-
मानहानि मोकद्दमा ଦ୍ଧରେ ମକଦମା; ଇଜ୍ଜତଦାବୀ ମକଦମା—
मानहानि मुकदमा Libel suit; suit for damages
[ ମାନହାନି ମାମଲା—ଅନ୍ୟରୂପ ] for defamation.

ମାନହାନିର କ୍ଷତିପୂରଣ—ଦେ. ବି ( କଚେରୀ )—ଆପଣାର ମାନନାଶ
Mānahānira kshatipūraṇa ହୋଇଥିବାରୁ ତହିଁ ନିମନ୍ତେ
मानहानिर क्षतिपूरण ମାନନାଶକାରୀ ବ୍ୟକ୍ତିଠାରୁ ଦାବୀ କରାଯିବା
मानहानिका क्षतिपूरण ଅର୍ଥ—Compensation or damage

[ ମାନହାନିର ଖେସା(ସ)ର—ଅନ୍ୟରୂପ ] . for one's loss of honour.

**ମାନହୀନ**—ସ. ବଣ. ପୁଂ—୧ । ମର୍ଯ୍ୟାଦାହୀନ; ହୀନମାନିଆ—
Mānahīna 1. Destitute of respect or prestige
( ମାନଶୂନ୍ୟ—ଅନ୍ୟରୂପ ) or honour. ୨ । ଗର୍ବହୀନ—
( ମାନହୀନା—ସ୍ତ୍ରୀ ) 2. Free from pride.

**ମାନା(ନ୍ନା)**—ବୈଦେ. ବ ( ଇଂ. ମାନ୍ନା )—କେତେକ ବୃକ୍ଷରୁ ଉତ୍ପନ୍ନ
Mānā(nnā) ମିଷ୍ଟ ନିର୍ଯ୍ୟାସବିଶେଷ—Manna. [ ଦ୍ର—ଏହା
मान्ना **माना** ଦେଖିବାକୁ ହଳଦିଆ ଓ ସ୍ୱଚ୍ଛ ଏବଂ ପ୍ରଧାନ ରସା-
ୟନରୂପେ ଆୟୁର୍ବେଦିକ ଚିକିତ୍ସାରେ ବ୍ୟବହୃତ ହୁଏ ।
(ଯଥା—ବଂଶଲୋଚନା । )]

**ମାନାମାନ**—ଦେ. ବ ( ସ. ମାନ+ଅପମାନ )—ମାନ ଓ ଅପମାନ—
Mānāmāna Honour and dishonour; respect
मानामान **मानापमान** and insult.
( ମାନ ଅପମାନ—ଅନ୍ୟରୂପ; ମାନାପମାନ—ସ. ରୂପ )

**ମାନି**—ଦେ. ବ—ପ୍ରତିଭୂ; ଜାମିନ—Security; surety ବଣ—
Māni ୧ । ଅନ୍ୟ ନିମନ୍ତେ ଜାମିନ୍ ହୋଇଥିବା—1. Stand-
जामिन ing surety for another. ୨ । ସ୍ୱେଚ୍ଛାପ୍ରଣୋଦିତ—
**जमानत; मानी** 2. Voluntary.

**ମାନିଆ(ଆଁ)**—ଦେ. ବଣ. ପୁଂ—୧ । (ସ. ମାନୀ) ଅଭିମାନୀ—
Māniā(āṅ) 1. Prone to take offence at small
(ମନେ[ନୋ]ଇ—ସ୍ତ୍ରୀ) things. ୨ । ଯେ ଗୁରୁଜନ ଆଦିଙ୍କୁ
ଅଭିମାନୀ, ମାନୀ ସମ୍ମାନ ଦେଖାଏ—2. Showing respect
**अभिमानी** to elders. [ଉ—ଅମାନିଆଁ ପୁଅ କଣରେ ପଶେ,
मान्यकारी ମାନିଆଁ ପୁଅ କୋଳରେ ବସେ । ଚିଗ । ] ୩ । (ପୁଂ.
**मानन करनेवाला** ଓ ସ୍ତ୍ରୀ; ସ. ମାନ୍ୟ) ମାନ୍ୟ; ମାନନୀୟ
मान्य (ବ୍ୟକ୍ତି)—3. Respectable. ୪ । ଭକ୍ତ; ଯେ ରାଜା
**मान्य** ଆଦିଙ୍କ ବଶବର୍ତ୍ତୀ ହୋଇ ଚଳେ—4. Loyal; devoted.
[ଉ—ନୃପତିହିତେ ଅମ୍ଭେ କରୁଁ ସବୁ କାର୍ଯ୍ୟ, ରାଜାମାନିଆ
ହୋଇ ରହିବୁଁ ଅମ୍ଭ ରାଜ୍ୟ । ପୀତାମ୍ବର. ନୃସିଂହପୁରାଣ । ]
ଦେ. ବ—୧ । ଏକ ପ୍ରକାର ଫୁଲ ଗଭା—1. A kind
of nosegay. [ଉ—ଦଳମାନ ହରିକର ସେବତୀ;
ଗୁନ୍ଥିଅଛ ମାନିଆ କେ ଯୁବତୀ । ଭଞ୍ଜ. ଲାବଣ୍ୟବତୀ । ]
୨ । ବାଉଁଶ ଟୋକାଇ—2. Bamboo basket.
କ୍ରି. ବଣ—୧ । (ନିର୍ଦ୍ଦିଷ୍ଟ ସମୟ) ପାଇଁ; ସକାଶେ—
जन्य; जन्य 1. For (a fixed line). (ଯଥା—ତୁମେ ବନକ
**मुताबिक, वास्ते** ମାନିଆଁ କଟକ ଆସିବ ) ୨ । (ନିର୍ଦ୍ଦିଷ୍ଟ ସଙ୍ଖ୍ୟକ
ବ୍ୟକ୍ତିଙ୍କ ପାଇଁ) ଯଥେଷ୍ଟ ହେବା ପ୍ରକାରେ—2. In a
manner or quantity sufficient for (a
number of persons). [ ଉ—ମହାନ୍ତିଏ ସଖାଙ୍କୁ
ଉଠି ଦୁଇ ଜଣ ମାନିଆ ଖଇଲ ମାଣର ଠିକ୍ କଣ୍ଠରେ
ମାପି ଦେଇଯାନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ । ]

**ମାନି କରିବା**—ଦେ. କ୍ରି—ଆପଣାପାଇଁ ଅନ୍ୟ ବ୍ୟକ୍ତିଙ୍କୁ ଜାମିନ୍‌ରୂପେ
Māni karibā ଠିଆ କରାଇବା—To produce a person
जामिन देओया as surety for one's own actions.
**मानी करना**

**ମାନିକା**—ସଂ. ବ (ମାନ୍ ଧାତୁ+କର୍ମ. ଇକ+ଆ)—୧ । ମଦ୍ୟ
Mānikā (ବ୍ର. ଣ)—1. Wine. ୨ । ୮ ପଳ ବା ୬୦
ତୋଳାର ଏକ ମାନ (ବ୍ର. ଣ)—2. A standard of
weight equal to 8 palas.

**ମାନିତ**—ସ. ବଣ (ମାନ୍ ଧାତୁ+ଣିଚ୍ କର୍ମ. ତ)—୧ । ପୂଜିତ—
Mānita 1. Worshipped. ୨ । ସମ୍ମାନିତ—2. Ho-
(ମାନିତା—ସ୍ତ୍ରୀ) noured; respected. ୩ । ସମ୍ମାନଯୋଗ୍ୟ—
3. Respectable; esteemable. [ ଉ—ମାନିତ
ମିତ୍ରଙ୍କୁ ହରଇ ବଳେ ପଣି, ସେ ଦୋଷ କ୍ଷୟ ଯାଇ
ହୋଇଲେ ତୀର୍ଥବାସୀ । ପୀତାମ୍ବର. ନୃସିଂହ ପୁରାଣ ।]ଦେ.
मानित ବଣ—୧ । (ନିତରଥ) ମକଦ୍ଦମାର କୌଣସି ପକ୍ଷଦ୍ୱାରା
**मानाहुआ** ସ୍ୱୀକୃତ ବା ଜଜେରରେ ଉପସ୍ଥିତ ହେବାପାଇଁ ଉଲ୍ଲିଖିତ
ସାକ୍ଷୀ ବା ମଧ୍ୟସ୍ଥ—1. ( witness or umpire )
Cited by a party. ( ଯଥା—ଉଭୟ ପକ୍ଷଙ୍କ ମାନିତ
मानी ପଞ୍ଚାଏତ) ୨ । ଅଭିମାନଯୁକ୍ତ; ଅଭିମାନୀ—2. Prone
**अभिमानी, घमंडी** to take offence. [ଉ—×× ଦୁର୍ଜନମିତ;
ଉଙ୍କମାନିତ; ସର୍ଜୀ ଗୋ । ମଦ ଏ । ଚ.ଗ । ]

**ମାନିତବ୍ୟ**—ସଂ. ବଣ. ପୁଂ—(ମାନ୍ ଧାତୁ+କର୍ମ. ତବ୍ୟ)—ପୂଜିତବ୍ୟ
Mānitabya ମାନ୍ୟ—Venerable; adorable.
( ମାନିତବ୍ୟା—ସ୍ତ୍ରୀ )

**ମାନିତା**—ସଂ. ବଣ. ସ୍ତ୍ରୀ (ମାନିତ+ଆ)—ମାନିତର ସ୍ତ୍ରୀଲିଙ୍ଗ—
Mānitā Feminine of Mānita. ସଂ. ବ ( ମାନିନ୍+
ଭାବ. ତା)—୧ । ସମ୍ମାନ; ଗୌରବ (ବ୍ର. ଣ)—
1. Respect; prestige. ୨ । ଅହଙ୍କାର; ଗର୍ବ
(ବ୍ର. ଣ)—2. Pride.

**ମାନିନୀ**—ସଂ. ବଣ. ସ୍ତ୍ରୀ (ମାନିନ୍+ସ୍ତ୍ରୀ. ଈ)—୧ । ଅଭିମାନବତୀ—
Mānini 1. Haughty or reserved (woman).
(ମାନି—ପୁଂ) ୨ । ସ୍ୱାମୀ ବା ପ୍ରେମିକଙ୍କ ପ୍ରତି ଅଭିମାନବତୀ—
2. (a lady) Reserved or sullenly indig-
nant towards her lover or husband;
sullenly displeased with hear sweetheart.
ବ—୧ । ପ୍ରିୟଙ୍ଗୁଲତା—1. Aglaia Roxburghiana.
୨ । ଅତିଶକ୍ୱରୀ ନାମକ ଛନ୍ଦୋବିଶେଷ—2. Name
of a Sanscrit metre.

**ମାନି ନେବା**—ଦେ. କ୍ରି—ଯୁକ୍ତି ପ୍ରସଙ୍ଗରେ ସ୍ୱୀକାର କରିବା—
Māni nebā To admit for the sake of argument.
मेने लओया **मान लेना**

**ମାନିବା**—ଦେ. କ୍ରି ( ସ. ମାନ୍ ଧାତୁ )—୧ । ମାନ୍ୟ କରିବା; ସମ୍ମାନ
Mānibā କରିବା; ସମ୍ମାନ ଚକ୍ଷୁରେ ଦେଖିବା—1. To show
माना **मानना** respect; to honour; to do homage;

[ ମନା(ନେ)ଇବା— ପ୍ରଯୋଜକରୂପ ] to esteem; to treat with due regard. [ ଉ—ମାନିଲେ ଦେବତା, ନ ମାନିଲେ ପଥର—ଢଗ । ] ୨ । ଆଦେଶ ପାଳନ କରିବା—2. To obey; to comply with an order. [ ଉ—ଧାଇ ଦମୟନ୍ତୀଙ୍କ କଥାକୁ ମାନିଲା—କୃଷ୍ଣସିଂହ. ମହାଭାରତ ବନ । ] ୩ । ସଂକଳ୍ପ କରିବା; ଦେବତାଙ୍କ ଉଦ୍ଦେଶ୍ୟରେ କୌଣସି ପଦାର୍ଥ ମାନିବା; ମାନସିକ କରିବା; ମାନତ କରିବା; ଅଙ୍ଗୀକାର କରିବା—3 To make a vow or mental offering to a Deity; to promise a votive offering to a Deity. (ଯଥା—ମୁଁ ସତ୍ୟନାରାୟଣଙ୍କୁ ଷୋଳ ପାଲି ମାନିଛି ।) ୪ । (ଅକର୍ମକ) ଶୋଭା ପାଇବା; ସୁନ୍ଦର ଦେଖା

सुन्दर दीखना ଯିବା—4. To look graceful. [ ଉ—ଭଲ ମାନୁଛି ଦେଖ, ସୁଧାମୟୂଖମୁଖ—କବିସୂର୍ଯ୍ୟ. ଚକୋର-ଚନ୍ଦ୍ରାନନ୍ଦଚମ୍ପୂ. ଭ ଗୀତ ।] ୫ । (ସକର୍ମକ) ଗ୍ରାହ୍ୟ କରିବା; ଖାତିର କରିବା—5. To care for. [ ଉ—ବୃଷ୍ଟି ବାଉଁଶ ଛତ୍ର ନ ପକାଇ, ନ ମାନେ ନଭ ମାସ ଜଗାଇଛି—

मानना କବିସୂର୍ଯ୍ୟ. କବିତା । ] ୬ । ଅନ୍ୟର ଅନୁରୋଧକୁ ବା ଉପଦେଶକୁ ଗ୍ରହଣ କରିବା—6. To accept another's advice or request. [ ଉ—ଆରେ ଭଣ୍ଡା ଭାଇ ମାନ୍ ରେ, ଯହିଁ ପାଣି ତହିଁ ଧାନ୍ ରେ—କୃଷିବଚନ । ] ୭ । (ସକର୍ମକ) (ଆପଣାର ଦୋଷ ବା ତ୍ରୁଟି ବା ଅପରାଧ) ସ୍ୱୀକାର କରିବା—7. To admit (one's guilt or fault). ୮ । ସାକ୍ଷୀ ବା ମଧ୍ୟସ୍ଥରୂପେ କୌଣସି ବ୍ୟକ୍ତିକୁ ସ୍ୱୀକାର କରିବା ବା ଉଲ୍ଲେଖ କରିବା—8, To name or cite a person as witness or arbitrator. ( ଯଥା—ଏ ମକଦମାରେ ମୁଁ ଗୋଟିଏ

মানান ଜଣ ତଉହିଦ ସାକ୍ଷୀ ମାନିବି । ) ୯ । ( ଅକର୍ମକ )

मानना ରୂପକୁ ଗୁହିଁ ଶୋଭା ପାଇବା; ସାଜିବା; ଦେଶକାଳ ପାତ୍ରକୁ ଗୁହିଁ ଉପଯୁକ୍ତ ଦେଖାଯିବା—9. To befit; to fit in; to suit. [ ଉ—ନଥ ଭୁଲେ କାହିଁ, ବାଦେ କର ହିଁ, ଭୁଲି କି ଝୁଲି କି ମାନୁଥାଏ—କବିସୂର୍ଯ୍ୟ. କବିତା । ] ୧୦ । ( ଅକର୍ମକ ) ( ମନ ) ରାଜି ହେବା; ବୁଝିବା—10. ( the mind ) To agree; to acknowledge. ୧୧ । ଆୟତ୍ତରେ ରହିବା; ଆୟତ୍ତାଧୀନ ହେବା—11. To be under control. [ ଦ୍ର—ହାତୀ ଘର ଜୀବ ଛାର ମାହୁନ୍ତକୁ ଠେଲେ କି ଉପରନ୍ତା ସେହି? ମନ ମାନିଅଛି ବୋଲି ରହିଅଛି ଅଙ୍କୁଶ। ଶିକୁଳ ସହି—ଶିଶୁ ଗୀତ । ] ୧୨ । ବୋଧ କରିବା; ମନେ କରିବା—12. To think. ( ଯଥା—ମୁଁ ପର ତା କଥାକୁ ହିଦ୍ ମାନିଲିଣି । ) ୧୩ । କୌଣସି ବିଷୟକୁ କର୍ଣ୍ଣପାତ କରିବା ବା ଭ୍ରୂକ୍ଷେପ କରିବା; ଖାତିର କରିବା—13. To mind or regard a thing or person.

୧୪ । ( ଗୁଣ ଆଦିକୁ ) ସମ୍ମାନ କରି କାର୍ଯ୍ୟ କରିବା—14. To act by respecting or honouring a person's name when invoked. ( ଯଥା—ନଈ ବଢ଼ି କି ହଥଙ୍କ ଗୁଣ ମାନିବ ?—ଢଗ । ) ୧୫ । ଦକ୍ଷ, କ୍ଷମତାବାନ୍, ଯୋଗ୍ୟ, ପୂଜ୍ୟ ବା ଶ୍ରେଷ୍ଠ ବୋଲି ସ୍ୱୀକାର କରିବା; ଗଣନା କରିବା—15. To admit a person as an excellent person; to count. ( ଯଥା—ରଜା ମହାରଜାଙ୍କ ଭିତରେ ମୁଁ କେବଳ ଜଣକୁ ଅଭିମାନଶୂନ୍ୟ ବୋଲି ମାନେ ।) ୧୬ । କଳ୍ପନା କରିବା—16. To imagine. ( ଯଥା—ଏ ବିଷୟ ବିଷୟ ଜଣେ ବିଶ୍ୱକର୍ମୀ ଅଛନ୍ତି ବୋଲି ମାନିବାକୁ ହେବ । ) ୧୭ । ସ୍ୱୀକୃତ ହେବା—17. To agree. ( ଯଥା—ମହାରାଜ ସାହେବ ମୋ ପ୍ରସ୍ତାବ ଅନୁସାରେ ଟଙ୍କା ଦେବାକୁ ମାନିଲେ । ) ୧୮ । ଅଙ୍ଗୀକାର କରିବା—18. To promise. ୧୯ । ଲକ୍ଷ୍ୟ କରିବା—19. To notice. [ ଉ—ମାନି ନ ଥିଲେ ବିପତ୍ତି ହେଲା ପ୍ରାପତ—ଭକ୍ତ. ପ୍ରେମସୁଧାନିଧି । ]

ମାନି ବୃତ୍ତ(ତ୍ତି)—ଦେ. ବି—୧ । ସ୍ୱେଚ୍ଛାପ୍ରଣୋଦିତ କର୍ମ—1. Voluntary act. ୨ । ଯେଉଁ ବ୍ୟବସାୟରେ ମମ ମାନା ବୃତ୍ତି ବା ଜୀବିକାରେ ଉଭୟ ପକ୍ଷଙ୍କ ଇଚ୍ଛାହିଁ କାରବାର ଚଳେ—2. A profession which depends upon the free will of both the parties. [ଦ୍ର—ଜଗନ୍ନାଥଙ୍କ 'ପଣ୍ଡା' ବୃତ୍ତି ମାନି ବୃତ୍ତି ଅଟେ । ଏହାର ଅର୍ଥ ଏହି ଯେ, ଯାତ୍ରୀର ମନ ଯେଉଁ ପଣ୍ଡାଠାରେ ମାନେ ସେ ତାକୁ ପଣ୍ଡା ବୋଲି ସ୍ୱୀକାର କରେ । ]

Māni brutta(tti) मानीवृत्ति

ମାନି ଯିବା—ଦେ. କ୍ରି—୧ । ଦୋଷ ଆଦି ସମ୍ପୂର୍ଣ୍ଣରୂପେ ସ୍ୱୀକାର କରିବା—1. To admit one's guilt; to confess unconditionally. ୨ । ସମ୍ପୂର୍ଣ୍ଣରୂପେ ଅଯତ୍ତା-ଧୀନ ହେବା; ପୋଷ ମାନିବା—2. To come fully under a person's control; to be fully domesticated.

Māni jibā মেনে যাওয়া मान जाना

ମାନି ହେବା—ଦେ. କ୍ରି—କୌଣସି ବ୍ୟକ୍ତି ପାଇଁ ଜାମିନ୍ ହେବା—To stand surety for another.

Māni hebā জামিন হওয়া जमानत होना

ମାନୀ—ସଂ. ବିଂ. ପୁଂ. (ମାନ + ଇନ୍, ୧ମା. ୧ବ.)—୧ । ଅଭିମାନୀ—1. Prone to take offence; excessively sensitive; sulky; of a very sensitive temperament. ୨ । ଅହଙ୍କାରୀ—2. Proud; arrogant; conceited; self-sufficient. ୩ । ମାନ୍ୟ; ମାନନୀୟ—3. Honourable; esteemable. ୪ । ସମ୍ମାନିତ—4. Honoured. ୫ । ମନସ୍ୱୀ; ଉଦାରମନାଃ—5. Magnanimous; noble-minded.

Māni (ମାନିନୀ—ସ୍ତ୍ରୀ)

ମାନୁଷ—ସ. ବ. ପୁଂ ( ମନୁ+ଅପତ୍ୟାର୍ଥେ. ଅ; ଜଯାଗନ )—ମାନବ; Mānusha ମନୁଷ୍ୟ; ନର—Man. ବଣ—୧ । (ମନୁଷ (ମାନୁଷୀ—ସ୍ତ୍ରୀ) +ଅ )—ମନୁଷ୍ୟସମ୍ବନ୍ଧୀୟ—1. Human. (ମାନୁଷତା—ବ) ୨ । ମନୁଷ୍ୟକୃତ—2. Man-made. ୩ । ଦୟାଳୁ—3. Humane; kind ( Apte ).

ମାନୁଷ ଲୋକ—ସ. ବ—ଇହଲୋକ; ପୃଥିବୀ—The earth; the Mānusha loka terrestrial world. [ ଭୁ—ଏ ମାନୁଷ ଲୋକେ ଜେତେ ଋଷି ଭଲେ, ଏ ମହାଭାରତ ସୁଗୁଣ ଖ୍ୟାତ କଲେ । କୃଷ୍ଣସିଂହ. ମହାଭାରତ. ଅଦ୍ଧ । ]

ମାନୁଷିକ—ସ. ବଣ ( ମାନୁଷ + ଇକ )—ମାନବସମ୍ବନ୍ଧୀୟ—Mānushika Human. (ଅମାନୁଷିକ—ବ୍ୟପଷ୍ଟ) ମାନୁଷୀୟ—ଅନ୍ୟରୂପ)

ମାନୁଷ୍ୟ—ସ. ବ ( ମାନୁଷ+ଯ )—୧ । ମନୁଷ୍ୟତା—1. Manliness. Mānushya ୨ । ମାନବଧର୍ମ—2. Human attributes. ୩ । ମାନବ ଦେହ—3. The human body. ସ. ବଣ—ମନୁଷ୍ୟ ସମ୍ବନ୍ଧୀୟ ( ଦ୍ଧ. ଶ )—Human.

ମାନୁଷ୍ୟକ—ସ. ବ ( ମନୁଷ୍ୟ+ସମୂହାର୍ଥେ. କ )—ମନୁଷ୍ୟସମୂହ—Mānushyaka A number of men. ସ. ବଣ. ( ମାନୁଷ୍ୟ+କ )—ମନୁଷ୍ୟ ସମ୍ବନ୍ଧୀୟ ( ଦ୍ଧ. ଶ )—Human.

ମାନେ—ବୈଦେ. ବ ( ଅ. ମାନେ; ମାନା )—୧ । ଅର୍ଥ—1. Māne Meaning. ୨ । ତାତ୍ପର୍ଯ୍ୟ—2. Purport. ମানে ୩ । ଶବ୍ଦାର୍ଥ—3. Meaning of words. ଦେ. मानें ( ବହୁବଚନାନ୍ତ ପ୍ରତ୍ୟୟ )—ଗଣ; ସମୂହ [ ଦ୍ର—ମନୁଷ୍ୟ রা ଦେବତାଆଦି ପରେ 'ମାନେ' ଓ ଅନ୍ୟ ଜନ୍ତୁ ଏବଂ सब, लोक ଅଚେତନ ପଦାର୍ଥ ପରେ 'ମାନ' ପ୍ରତ୍ୟୟ ହୁଏ । ]—( a suffix denoting the plural number, used after words denoting higher beings, e. g. man, Deity etc)—A number of.

ମାନେଇ—ଦେ. ବଣ. ସ୍ତ୍ରୀ ( ସ. ମାନିନୀ )—ମାନିନୀ; ଅଭିମାନିନୀ—Mānei মানিনী अभिमानवाली Sulky; sensitive. [ମାନିଆ(ଆଁ)—ପୁଂ]

ମା(ମେ, ମ୍ୟା)ନେଜ୍ କରିବା—ଦେ. କ୍ରି ( ଇଂ. ମାନେଜ୍ )—Mā(me, myā)nej kariba କୌଣସି କର୍ମ ବା ସମ୍ପତ୍ତି ଆଦି ম্যানেজ করা मैनेज करना ଚଳାଇବା—To manage.

ମା(ମେ, ମ୍ୟା)ନେଜ୍ ମେଣ୍ଟ—ବୈଦେ. ବ ( ଇଂ. ମାନେଜ୍ମେଣ୍ଟ )—Mā(me, myā)nej-ment କୌଣସି କର୍ମର ବା ବିଷୟର ম্যানেজমেন্ট ନିର୍ବାହ ଦେବା ବିଷୟରେ ତତ୍ତ୍ୱ ନେବା କର୍ମ—मैनेजमेण्ट Management.

ମା(ମେ, ମ୍ୟା)ନେଜର—ବୈଦେ. ବ ( ଇଂ. ମାନେଜର )—କର୍ମ-Mā(me, myā)nejar ନିର୍ବାହକ; ନିର୍ବାହକାରୀ—Manager. ম্যানেজর, মেনেজার मैनेजर ·

ମା(ମେ, ମ୍ୟା)ନେଜରି—ଦେ. ବ ( ଇଂ. ମାନେଜର+ଦେଶଜ Mā(me, myā)nejari ପ୍ରତ୍ୟୟ ଇ )—୧ । ମାନେଜରର କର୍ମ মেনেজারী —1. The act of a manager. ୨ । मैनेजरी ମନେଜରର ପଦବୀ ବା ଗୁରୁତ୍ୱ—2. Managership.

ମା(ମେ, ମ୍ୟା)ନେଜିଙ୍ଗ୍ କମି(ମେ)ଟି—ବୈଦେ. ବ ( ଇଂ )—କାର୍ଯ୍ୟ-Mā(me; myā)nejiṅg kami(me)ṭi ନିର୍ବାହକ ସମିତି—ম্যানেজিঙ্গ কমিটি Managing committee. मैनेजिङ्ग कमीटी

ମାନେ ବହି—ବୈଦେ ବ ( ଅ. ମାନେ+ବହି )—ଅର୍ଥପୁସ୍ତକ—Māne bahi Meaning book; key. মানেবই मानें पुस्तक

ମାନେ ମାନେ—ଦେ. କ୍ରି. ବଣ—ସମ୍ମାନ ବଜାୟ ଥାଉଁ ଥାଉଁ; ଅପଣାର Māne māne ଇଜ୍ଜତକୁ ଅକ୍ଷୁଣ୍ଣ ରଖି—Without running মানে মানে the risk of being dishonoured. ( ଯଥା, मानकेसाथ —ଏ ଝିଅକାଙ୍କ ହାତରୁ ମୁଁ ମାନେ ମାନେ ଖସି ଆସି ରକ୍ଷା ପାଇଛି ।)

ମାନୋ(ନୁ)ଆ(ହା)ର—ବୈଦେ. ବ (ଇଂ. ମାନ୍-ଓ-ୱାର୍ )—ରଣତରୀ; Māno(nu)ā(hā)r ଯୁଦ୍ଧଜାହାଜ—Man-o'war; war-মানোয়ারী लड़ी जाहाज vessel; battle ship.

ମନୋଆ(ହା)ରୀ—ଦେ. ବଣ—୧ । ରଣତରୀ ସମ୍ବନ୍ଧୀୟ—1. Māno ā(hā)ri Relating to man o'war. ୨ । মানোয়ারী ବିଦେଶରୁ ଏ ଦେଶକୁ ଜାହାଜରେ ଆସି ବିକ୍ରି ହୁଏଥାଇ-মানোহারি ଥିବା (ଖେଳନା, କଣ୍ଢେଇଆଦି) ମନୋହର (ଜିନିଷ)-मनियारी Fancy things ( e. g. toys, dolls ) imported by ships from foreign countries.

ମାନୋଜ୍ଞକ—ସ. ବ ( ମନୋଜ୍ଞ+ଅ+କ )—ମନୋଜ୍ଞତା; କମନୀୟତା Mānojñaka —Beauty; loveliness (Apte).

ମାନ୍ତ(ନ୍ତେ)ର—ଦେ. ବ—ମାତ୍ରା ( ଦେଖ )—Mātrā ( See ) Mānta(nte)ra (ମାନ୍ତ୍ରା—ଅନ୍ୟରୂପ)

ମାନ୍ତ୍ରିକ—ସ. ବଣ. ଓ ପୁଂ ( ମନ୍ତ୍ର+ଇକ )—୧ । ମନ୍ତ୍ରଜ୍ଞ—1. Māntrika Versed in 'Mantras' or sacred formulae. ୨ । ମନ୍ତ୍ରସିଦ୍ଧ—2. One who has attained success in mastering 'mantras'. ୩ । ମନ୍ତ୍ରରଚୟିତା—3. Composer of 'mantras'. ୪ । ଗୁଣିଆ—4. A conjurer; a sorcerer.

ମନ୍ଥ୍ ( ଧାତୁ )—ସ—୧ । ଅଘାତ କରିବା—1. To hurt ( Apte ), Mānth (root) ୨ । ଅନିଷ୍ଟ କରିବା—2. To injure (Apte).

ମାନ୍ଥର୍ଯ୍ୟ—ସ. ବ ( ମନ୍ଥର+ଭାବ. ଯ )—୧ । ମନ୍ଥରତା; ଗତିର-Mānthar̄jya ଧୀରତା—1. Slowness. ୨ । ଦୁର୍ବଳତା —2. Weakness (Apte).

ମାଣ୍ଡଲ—ପ୍ରାଦେ (ସମ୍ବଲପୁର) ବ. (ସ. ମର୍ଦ୍ଦଳ)—ମାଦଳ (ଦେଖ) Māndal Mādaḷa (See)

ମାନ୍ଦା—ଦେ. ବିଣ ( ସଂ. ମନ୍ଦ )—୧ । ଅଳସୁଆ—
Māndā 1. Lazy; idle. ୨ । ମନ୍ଦ; ଧୀର—2. Slow.
(ମାନ୍ଦୀ—ସ୍ତ୍ରୀ) ୩ । ହ୍ରାସଯୁକ୍ତ—3. Lessened; diminished.
মান্দা मं(मां)दा ୪ । ରୋଗଯୁକ୍ତ ହେବାରୁ ଅଳସ—4. Lazy (on account of illness). ୫ । ଅଳ୍ପ—5. Little. ୬ । ପଣ୍ୟଦ୍ରବ୍ୟାଦିର ଦର ଭାଉ କମିବା ଯୋଗୁଁ କ୍ରୟବିକ୍ରୟ କମିଥିବା (ବଜାର)—6. (market) Which has become dull owing to fall in prices. ୭ । କୌଣସି ପଣ୍ୟଦ୍ରବ୍ୟ ପ୍ରତି ଗ୍ରାହକଙ୍କ ଆଗ୍ରହ ନ ଥିବାରୁ କମି ଯାଇଥିବା କାରବାର—7. ( business in a certain article) Which has become dull on account of want of demand.
মান্দ্য ବି. (ସଂ. ମାନ୍ଦ୍ୟ)—୧ । ମାନ୍ଦ୍ୟ; ମନ୍ଦତା—1. Slow-
मांद्गी ness. ୨ । ହ୍ରାସ—2. Dwindling; lessening; diminution. ୩ । ଅଳସ୍ୟ—3. Laziness.

ମାନ୍ଦା ପଡ଼ିବା—ଦେ. କ୍ରି—୧ । ଆଳସ୍ୟ ଦ୍ୱାରା ଆକ୍ରାନ୍ତ ହେବା—
Māndā pardibā 1. To be overtaken with lazi-
(ମାନ୍ଦା ହେବା—ଅନ୍ୟରୂପ) ness. ୨ । କମିଯିବା; ହ୍ରାସ ହେବା—
মান্দা পড়া 2. To deteriorate; to become slow;
मंदा पडना to dwindle; to be diminished; to wane.

ମାନ୍ଦା ବୁଦ୍ଧି—ଦେ. ବି (ସଂ. ମନ୍ଦ ବୁଦ୍ଧି)—ସ୍ଥୂଳବୁଦ୍ଧି; ମୋଟା ବୁଦ୍ଧି;
Māndā buddhi ଜଡ଼ ବୁଦ୍ଧି—Slowness of intellect;
মান্দা বুদ্ধি dullness. ବିଣ—ମାନ୍ଦା ବୁଦ୍ଧିଆ ( ଦେଖ )
मन्दा बुद्धि Māndā buddhiā ( See)

ମାନ୍ଦା ବୁଦ୍ଧିଆ—ଦେ. ବିଣ. (ସଂ ମନ୍ଦ ବୁଦ୍ଧି)—ଜଡ଼ା; ମୋଟାବୁଦ୍ଧିଆ;
Māndā buddhiā ସ୍ଥୂଳବୁଦ୍ଧି ବିଶିଷ୍ଟ—Slow in under-
মান্দা বুদ্ধি मन्दा बुधिया standing; dull.

ମାନ୍ଦାର—ଦେ. ବି—ବୃକ୍ଷ ବିଶେଷ; ଲକୁଚ; ଜେଉଟେ—A kind of
Māndāra tree (Apte); The monkey-jack; Arto-
ଅନ୍ୟ ସଂ. ନାମ—ଲକୁଚ, ଡହୁ carpus Lacoocha ( tree
लकुट, लुकाठ, लखोट and fruit) (Apte).
(ମାନ୍ଦାଉଳ—ଅନ୍ୟରୂପ)

ମାନ୍ଦାର୍ଯ୍ୟ—ସଂ. ବିଣ—ବୀତରାଗ; ବିଷୟରୁ ବିଗତସ୍ପୃହ—(a person)
Māndārjya Who has dissociated himself from mundane affairs.

ମାନ୍ଦ୍ୟ—ସଂ. ବି. (ମନ୍ଦ+ଯ)—୧ । ଅଳ୍ପତା—1. Littleness. ୨ ।
Māndya ନ୍ୟୂନତା—2. Lessening; diminution. ( ଯଥା—ଅଗ୍ନିମାନ୍ଦ୍ୟ; କ୍ଷୁଧାମାନ୍ଦ୍ୟ ଇତ୍ୟାଦି ।) ୩ । ହାନି—3. Loss. ୪ । ଜଡ଼ତା; ଅଳସ୍ୟ—4. Laziness; sluggishness. ୫ । ପୀଡ଼ା; ରୋଗ—5 Illness; sickness.

ମାନ୍ଦ୍ରାଜ—ଦେ. ବି (ସଂ. ମଦ୍ରରାଜ୍ୟ)—ଭାରତର ଦକ୍ଷିଣାଂଶ (ଦାକ୍ଷିଣାତ୍ୟ)
Māndrāja ର ପୂର୍ବ ଭାଗରେ ଥିବା ସମୁଦ୍ରର ଉପକୂଳସ୍ଥ ପ୍ରଦେଶ
মাদ্রাজ ଓ ନଗର—Name of a province and capital
मद्रास in the east coast of South India; Madras. [ଦ୍ର—ମହାଭାରତରେ ଦୁଇଟି 'ମଦ୍ର' ଦେଶର ଉଲ୍ଲେଖ ଅଛି । ଗୋଟିଏ ଶଲ୍ୟ ରାଜାଙ୍କର, ପଞ୍ଜାବ ଅନ୍ତର୍ଗତ ଇରାବତୀ ଓ ଚନ୍ଦ୍ରଭାଗା ନଦୀର ମଧ୍ୟବର୍ତ୍ତୀ ଦେଶ; ଓ ଅନ୍ୟଟି ଭାରତର ଦକ୍ଷିଣାଂଶରେ ଥିବା ଆଧୁନିକ ମାନ୍ଦ୍ରାଜ ଅଞ୍ଚଳ ।

ଏହାହିଁ ଭାରତରେ ଇଂରାଜମାନଙ୍କର ପ୍ରଥମ ଅଧିକୃତ ସ୍ଥାନ । ଏହି ପ୍ରଦେଶର ସ୍ୱତନ୍ତ୍ର ଗଭର୍ଣ୍ଣର, ବିଶ୍ୱବିଦ୍ୟାଳୟ, ହାଇକୋର୍ଟ ଓ ଶାସନବିଭାଗ ଅଛି । ଏହି ପ୍ରଦେଶର ରାଜଧାନୀ ସମୁଦ୍ରକୂଳରେ ଅବସ୍ଥିତ । ସହରଟି ନଡ଼ିଆ ଗଛର ବଗିଚାମାନଙ୍କ ମଧ୍ୟରେ ଅବସ୍ଥିତ ସୁରମ୍ୟ ଅଟ୍ଟାଳିକାମାନଙ୍କଯୋଗୁଁ ଅତି ରମଣୀୟ ଦେଖାଯାଏ । ସମୁଦ୍ରରୁ 'ନାଳ'ମାନ କଟା ହୋଇ ଏ ସହର ମଧ୍ୟରେ ଜାଲି ପରି ଛନ୍ଦା ହୋଇଅଛି ।

ଏହି ପ୍ରଦେଶର ଉତ୍ତରାଂଶରେ 'ତେଲଙ୍ଗା' ଓ ଦକ୍ଷିଣାଂଶରେ 'ତାମିଲ' ଜାତିଙ୍କର ବାସ । ମାନ୍ଦ୍ରାଜର ଉତ୍ତରାଂଶରେ ଥିବା 'ଗଞ୍ଜାମ' ଓ 'ଭିଜାଗାପଟଣା' ଜିଲ୍ଲାରେ ଓଡ଼ିଆ ଜାତି ଅଛନ୍ତି ଓ ଏ ଦୁଇଟି ଉତ୍କଳଭାଷୀ ଜିଲ୍ଲାକୁ ଓଡ଼ିଶାରେ ମିଶାଇ ଏକ ଶାସନାଧୀନ କରିବା ପାଇଁ ଉତ୍କଳୀୟମାନେ ବହୁକାଳରୁ ଚେଷ୍ଟା କରୁଥିଲେ । ବର୍ତ୍ତମାନ ବ୍ରିଟିଶ୍ ସରକାର ଓ ପାର୍ଲିଆମେଣ୍ଟ୍ ବହୁ ଅନୁସନ୍ଧାନ ଓ ଆଲୋଚନା ପରେ ଗଞ୍ଜାମ ଓ ଭିଜାଗା ପଟଣାର ଅଧିକାଂଶ ଓଡ଼ିଆଭାଷୀ ଅଞ୍ଚଳକୁ ଓଡ଼ିଶା ସଙ୍ଗେ ମିଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେବା ଘୋଷଣା କରିଅଛନ୍ତି ଓ ଖ୍ରୀ ୧୯୩୬ ସାଲ ଅପ୍ରେଲ ମାସରୁ ଏହି ନୂତନ ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ପ୍ରଦେଶ ରୂପେ ଚଳିବାର ସ୍ଥିର କରିଅଛନ୍ତି ।

ଇଉରୋପୀୟ ସଭ୍ୟତା ପ୍ରଥମେ ମାନ୍ଦ୍ରାଜରେ ପ୍ରବେଶ କରିଥିଲା ଓ ଇଂରାଜମାନେ ମାନ୍ଦ୍ରାଜ ଆଡ଼ରୁ ଅଗ୍ରସର ହୋଇ ଚିଲିକା ମୁହାଣ ବାଟେ ଓଡ଼ିଶାକୁ ଅଧିକାର କରିଥିଲେ । ଇଉରୋପୀୟମାନଙ୍କ ଔରସରୁ ଭାରତୀୟା ସ୍ତ୍ରୀଙ୍କ ଗର୍ଭରେ ଜାତ ହୋଇଥିବା କଳା ଫିରଙ୍ଗୀ ବା ଆଙ୍ଗ୍ଲୋ-ଇଣ୍ଡିୟାନ୍ (Anglo Indian) ଜାତିଙ୍କ ବଂଶଧର ଏହି ପ୍ରଦେଶରେ ଅଧିକ ଅଛନ୍ତି ଓ ଏମାନଙ୍କୁ ମାନ୍ଦ୍ରାଜୀ ସାହେବ ବା କଳା ସାହେବ ବୋଲଯାଏ ।]

ମାନ୍ଦ୍ରାଜ ହତା—ଦେ. ବି—ଇଂରେଜ ଶାସିତ ମାନ୍ଦ୍ରାଜ ପ୍ରଦେଶ—
Māndrāja hatā The province or Presidency
মাদ্রাজ প্রদেশ मद्रास प्रान्त of Madras.

ମାନ୍ଦ୍ରାଜି—ଦେ. ବିଣ—୧ । ମାନ୍ଦ୍ରାଜ ସମ୍ବନ୍ଧୀୟ—1. Relating to
Māndrāji Madras. ୨ । ମାନ୍ଦ୍ରାଜ ଦେଶୀୟ ବା ଦେଶ-
(ମାନ୍ଦ୍ରାଜିଆ—ଅନ୍ୟରୂପ) ଜାତ—2. Produced or resid-
মাদ্রাজী ing in or belonging to Madras.
मद्रासी ବି—୧ । ମାନ୍ଦ୍ରାଜି ସାହେବ ( ଦେଖ )—1. Māndrāji

sāheba (See) ୨ । ମାନ୍ଦ୍ରାଜ ପ୍ରଦେଶବାସୀ ବ୍ୟକ୍ତି—2. A resident of Madras.

**ମାନ୍ଦ୍ରାଜି ସାହେ(ହା,ହି)ବ**—ଦେ. ବି—କଳା ଫିରଙ୍ଗୀ; ପୂର୍ବକାଳରେ ମାନ୍ଦ୍ରାଜ ଉପକୂଳକୁ ଆସିଥିବା ଇଉରୋପୀୟମାନଙ୍କ ଔରସରେ ଭାରତୀୟା ସ୍ତ୍ରୀମାନଙ୍କ ଗର୍ଭରୁ ଜାତ ସନ୍ତାନ ଓ ସେମାନଙ୍କ ବଂଶଧର—
Māndrāji sāhe(hā, hi)ba
মাদ্রাজি সাহেব
Anglo Indians of Madras (of a darker complexion than other Anglo Indians of India). [ଦ୍ର—ଏମାନେ ଅନ୍ୟ ଦୋଆଁସିଆ ଫିରଙ୍ଗିମାନଙ୍କଠାରୁ ବର୍ଣ୍ଣରେ ବେଶି କଳା ।]

**ମାନ୍ଧାତା**—ସଂ. ବି—(ମାଂ=ମତେ+ଧେ ଧାତୁ=(ଦୁଗ୍ଧ) ପାନ କରିବା +କର୍ତ୍ତୃ. ତୃ; ମାନ୍ଧାତୃ ଶବ୍ଦ; ୧ମା. ୧ବ.)—ଜଣେ ସୂର୍ଯ୍ୟବଂଶୀୟ ସମ୍ରାଟ—Name of an ancient emperor of the solar dynasty.
Māndhātā
[ଦ୍ର—କଥିତ ଅଛି ଯେ ରାଜା ଯୁବନାଶ୍ୱ ଅପତ୍ୟହୀନ ହେବାରୁ ଋଷିମାନଙ୍କଦ୍ୱାରା ପୁତ୍ରେଷ୍ଟି ଯଜ୍ଞ କରାଇଲେ । ଗୋଟିଏ ଘଡ଼ାରେ ଗର୍ଭଧାରଣାର୍ଥ ଅଭିମନ୍ତ୍ରିତ ଜଳ ଯଜ୍ଞବେଦୀରେ ରଖି ଯାଜ୍ଞିକମାନେ ଶୋଇ ପଡ଼ିଲେ । ଏହି ସମୟରେ ଯୁବନାଶ୍ୱଙ୍କୁ ଖୁବ୍ ଶୋଷ କରିବାରୁ ସେ ଅଜାଣତରେ ଯଜ୍ଞବେଦୀରେ ଥିବା ଉକ୍ତ ଅଭିମନ୍ତ୍ରିତ ଜଳକୁ ପିଇ ଦେଲେ ଓ ଫଳତଃ ଯୁବନାଶ୍ୱ ଗର୍ଭଧାରଣ କଲେ । ଯୁବନାଶ୍ୱ ରାଜାଙ୍କର ଗର୍ଭର ଦକ୍ଷିଣ ପାର୍ଶ୍ୱରୁ ମାନ୍ଧାତା ଜନ୍ମ ହେଲେ । ସେହି ସମୟରେ ମୁନିମାନେ ଇନ୍ଦ୍ରଙ୍କୁ ପଚାରିଲେ ;-ଏ ବାଳକ କଅଣ ପାନ କରି ବଞ୍ଚିବ ? ଇନ୍ଦ୍ର କହିଲେ 'ମାଂ ଧାସ୍ୟତି', ଅର୍ଥାତ୍ ସେ ମୋଠାରୁ ସ୍ତନ୍ୟ ପାନ କରିବ, ଅର୍ଥାତ୍ ମୋ ଅଙ୍ଗୁଠିକୁ ଚୁଚୁମି ସେଥିରୁ ବାହାରିବା ଦୁଗ୍ଧବତ୍ ରସ ପାନ କରିବ । ଏଥିପାଇଁ ଏହାଙ୍କ ନାମ ମାନ୍ଧାତା ହେଲା । ଏ ଖୁବ୍ ପ୍ରତାପୀ ଚକ୍ରବର୍ତ୍ତୀ ରାଜା ଥିଲେ । ଏହାଙ୍କ ରାଜଧାନୀ ଅଯୋଧ୍ୟାରେ ଥିଲା । ଶଶବିନ୍ଦୁଙ୍କ କନ୍ୟା ବିନ୍ଦୁମତୀଙ୍କୁ ଏ ବିବାହ କରିଥିଲେ । ଏହାଙ୍କ ୩ ପୁତ୍ରଙ୍କ ନାମ ମୁଚୁକୁନ୍ଦ, ପୁରୁକୁତ୍ସ ଓ ଅମ୍ବରୀଷ । ଏହାଙ୍କର ୫୦ କନ୍ୟା ହୋଇଥିଲେ । ମାନ୍ଧାତା ଦିଗ୍ବିଜୟପୂର୍ବକ ସୁମେରୁ ପର୍ବତରେ ରାବଣକୁ ଭେଟିଲେ । ଯୁଦ୍ଧରେ ଦୁହେଁ ସମବଳ ହେବାରୁ ଦୁହେଁ ସଖ୍ୟସୂତ୍ରରେ ଅବଦ୍ଧ ହେଲେ । ଏ ସସାଗରା ପୃଥିବୀକୁ ଜୟ କରି ସ୍ୱର୍ଗଜୟକାମନାରେ ଅମରାବତୀରେ ଉପସ୍ଥିତ ହେବାରୁ ଇନ୍ଦ୍ର ଏହାଙ୍କୁ ମଧୁତନୟ ଲବଣ ସଙ୍ଗେ ଯୁଦ୍ଧ କରିବାକୁ ପଠାଇଲେ ଓ ଲବଣକ୍ଷିପ୍ତ ଶୂଳରେ ଏ ନିହତ ହେଲେ ।]

**ମାନ୍ଧାତା ଅମଳ**—ଦେ. ବି—ବହୁ ପୂର୍ବକାଳ; ଅତି ପ୍ରାଚୀନକାଳ—Very ancient times; days long gone-by.
Māndhātā amaḷa
মান্ধাতার আমল मान्धाता के समय
[ଦ୍ର—ଅଳ୍ପଦିନ ପୂର୍ବର ପୁରୁଣା ସମୟକୁ 'ମରହଟ୍ଟା(ଟ୍ଟି) ଅମଳ' ଓ ବହୁ ପ୍ରାଚୀନ ସମୟକୁ 'ମାନ୍ଧାତା ଅମଳ' ବୋଲାଯାଇ ଥାଏ ।]

**ମାନ୍ମଥ**—ସଂ. ବିଣ.—( ମନ୍ମଥ+ଅ )—କାମ ସମ୍ବନ୍ଧୀୟ—Relating to cupid or carnal love.
Mānmatha
( ମାନ୍ମଥୀ—ସ୍ତ୍ରୀ )

**ମାନ୍ୟ**—ସଂ. ବିଣ.ପୁଂ—୧ । (ମାନ୍ ଧାତୁ=ପୂଜା କରିବା+କର୍ମ. ଯ)—ପୂଜନୀୟ; ମାନନୀୟ; ଆଦରଣୀୟ—1. Respectable; honourable. ୨ । (ମନ୍ ଧାତୁ ଣିଚ୍, ମାନ ଧାତୁ+କର୍ମ. ଯ )—ପ୍ରାର୍ଥନୀୟ (ବି. ଶ)—2 Fit to be prayed to, or prayed for. ସଂ. ବି—୧ । ବିଷ୍ଣୁ (ବି. ଶ.)—1. Bishṇu. ୨ । ଶିବ (ବି.ଶ.)-2. Śiba. ୩ । ମିତ୍ରାବରୁଣ (ବି. ଶ) (ଦେଖ)—Mitrābaruṇa (See). ଦେ. ବି.—୧ । ସମ୍ମାନ; ମର୍ଯ୍ୟାଦା—1. Respect; honour; homage. [ଉ—ବେଗେ ରାଜା ଆଣ ବୋଲି ନେଲା ମୁନି ବଶିଷ୍ଠରେ ନମି ନୃପ ମାନ୍ୟ ଘେନ । ଉଞ୍ଜ. ବୈଦେହୀଶବିଳାସ ।] ୨ । ସମ୍ମାନସୂଚକ ଉପଢୌକନ; ଭେଟି; ସଲାମି—2. Present offered as a sign of homage. [ ଦ୍ର—କେହି ଗରିବ ଜାତଭାତ ଦେଇ ନ ପାରିଲେ ପଞ୍ଚ-ଗୋସାଇଁ କିଛି ମାନ୍ୟ ନେଇ ତାହାକୁ ଉଠାଇ ନଅନ୍ତି ଫକୀରମୋହନ. ଛମାଣ ଆଠଗୁଣ୍ଠ ।]
Mānya
(ମାନ୍ୟା—ସ୍ତ୍ରୀ)

**ମାନ୍ୟ କରିବା**—ଦେ. କ୍ରି—୧ । ମାନିବା; ସମ୍ମାନ ଦେଖାଇବା—1. To show respect; to treat with regard; to honour; to pay homage. ୨ । ନମସ୍କାର କରିବା—2. To make obeisance.
Mānya karibā
মান্য করা
मानय करना

**ମାନ୍ୟ ଗଣ୍ୟ**—ସଂ. ବିଣ. (ସହଚର ଶବ୍ଦ)—ଗଣ୍ୟ ଓ ମାନ୍ୟ; ସମାଜରେ ମାନନୀୟ ଓ ଗଣନୀୟ (ବ୍ୟକ୍ତି); ସମ୍ଭ୍ରାନ୍ତ—Respectable and respected; (a person) of light and leading; (a man) of position and respectability.
Mānya gaṇya

**ମାନ୍ୟ ଧର୍ମ**—ଦେ. ବି ( ସହଚର ଶବ୍ଦ )—୧ । ଗୁରୁଜନ ଆଦିଙ୍କ ପ୍ରଦର୍ଶିତ ସମ୍ଭ୍ରମ; ସମ୍ମାନ—1. Respect shown to one's elders; homage. ୨ । ନମସ୍କାର—2. Obeisance. (ଉ—ଶାଶୁଙ୍କଠାରେ ନିତି କରି ମାନ୍ୟ ଧର୍ମ, କରୁଥାଏଁ ମୁହିଁ ସମସ୍ତ ଗୃହ କର୍ମ । କୃଷ୍ଣସିଂହ. ମହାଭାରତ. ବନ ।)
Mānya dharma
মান্য
মান

**ମାନ୍ୟନ୍ତ**—ଦେ. ବି (ପ୍ରାଚୀନ ଗ୍ରନ୍ଥରେ ବ୍ୟବହାର)—୧ । ସମ୍ମାନନା—1. Showing respect; tendering of homage. ୨ । ନମସ୍କାର—2. Obeisance. ( ଉ—ସମସ୍ତ ଋଷି ପୁରୋହିତ ଅଇଲେ ସମ୍ମୁଖ ହୋଇ ହାକରି ସେ; ରାମ ମାନ୍ୟନ୍ତ କଲେ; ବସିବାକୁ ଦିବ୍ୟାସନ ଦେଲେ—ବିଶ୍ୱନାଥ. ବିଚିତ୍ରରାମାୟଣ । )
Mānyanta

**ମାନ୍ୟପାତ୍ର**—ସଂ. ବି (କର୍ମଧା)—ସମ୍ମାନ ପାଇବାର ଉପଯୁକ୍ତ ବ୍ୟକ୍ତି—A person deserving respect or homage; a person to whom homage is due.
Mānya pātra

ମାନ୍ୟବର—ସ. ବିଣ. ପୁଂ (ମାନ୍ୟମାନଙ୍କ ମଧ୍ୟରେ ବର=ଶ୍ରେଷ୍ଠ)—Mānyabara ମାନ୍ୟବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରେଷ୍ଠ; ମହାମାନ୍ୟ-(ମାନ୍ୟବରା—ସ୍ତ୍ରୀ) Revered; very respectable; very honourable. [ ଦ୍ର—ମାନ୍ୟବରଙ୍କଠାରୁ ଅଧିକର ଉଚ୍ଚତର ବ୍ୟକ୍ତିଙ୍କୁ ମହାମାନ୍ୟବର କୁହାଯାଏ । ] ଦେ. ବି—ବଡ଼ଲାଟ, ହାଇକୋର୍ଟ ଜଜ୍, 'ବଡ଼ଲାଟଙ୍କ ସଭାର ସଦସ୍ୟଆଦିଙ୍କ ନାମ ପୂର୍ବରେ ଲାଗିବା ବିଶେଷଣାର୍ଥ ଉପାଧି—The title of 'Honourable' or 'the Hon'ble' used before the name of Governers High Court Judges and members of the Imperial Council etc.

ମାନ୍ୟବରେଷୁ—ସ ବିଣ (ମାନ୍ୟବର ଶବ୍ଦର ୭ମୀ ବିଭକ୍ତି ବହୁବଚନ; Mānyabareshu ମାନ୍ୟାର୍ଥେ ବହୁବଚନ ପ୍ରୟୋଗ)-ଯେଉଁ ମାନନୀୟ ବ୍ୟକ୍ତିଙ୍କ ବା ସ୍ନେହାସ୍ପଦ ବ୍ୟକ୍ତିଙ୍କ ନିକଟକୁ ପତ୍ର ଲେଖା ଯାଉଥାଏ ତାଙ୍କ ନାମ ଲେଖି ନାମ ଶେଷରେ ଏହି ଶବ୍ଦ ଓ ସମ୍ମାନାର୍ଥକ ବା ସ୍ନେହସୂଚକ ଅନ୍ୟ ଶବ୍ଦମାନ ୭ମୀ ବିଭକ୍ତି ବହୁବଚନରେ ପତ୍ରର ଶିରୋନାମାରେ ବ୍ୟବହାର କରାଯାଏ) ଅମୁକ ମାନ୍ୟବରଙ୍କଠାରେ (ଏହି ନିବେଦନ )—A term added to the name of a person, and written on the heading of a letter, meaning; "unto the very honourable" ( ଉ—ଶ୍ରୀଯୁକ୍ତ ଶ୍ରୀ ସ୍ୱରନ୍ ରଥ ମହୋଦୟ ମାନ୍ୟବରେଷୁ) [—ସମ୍ମାନାର୍ଥକ ଅନ୍ୟ ଶବ୍ଦମାନଙ୍କର ୭ମୀ ବିଭକ୍ତି ବହୁବଚନ ଅକାର ମଧ୍ୟ ଏହିସ୍ଥଳରେ ବ୍ୟବହୃତ ହୁଏ; ଯଥା ସମ୍ମାନାସ୍ପଦେଷୁ, ମହାମାନ୍ୟ ଭକ୍ତିଭାଜନେଷୁ, ଉଦାର ହୃଦୟେଷୁ, ଅଗ୍ରଜ ପ୍ରତିମେଷୁ, ପୂଜନୀୟେଷୁ, ସ୍ନେହାସ୍ପଦେଷୁ, ଶ୍ରଦ୍ଧାସ୍ପଦେଷୁ; ପିତୃକଳ୍ପେଷୁ ।] [ମାନ୍ୟବରାସୁ—ସ୍ତ୍ରୀମାନଙ୍କ ପ୍ରତି ବ୍ୟବହାର]

ମାନ୍ୟବାନ୍—ସ. ବିଣ. ପୁଂ—(ମାନ୍ୟ+ବତ୍; ୧ମା. ୧ବ)—୧ । Mānyabān ସମ୍ମାନିତ—1. Honoured. ୨ । ମାନନୀୟ-(ମାନ୍ୟବତୀ—ସ୍ତ୍ରୀ) 2. Honourable.

ମାନ୍ୟ ମର୍ଯ୍ୟା(ର୍ଯ୍ଯା)ଦା—ଦେ. ବି—(ସହଚର ଶବ୍ଦ)—ସମ୍ମାନ; ମାନ-Mānya marjyā(rja)dā ମହତ୍ତ୍ୱ—Respect; honour. (ମାନ୍ୟ ମହତ୍ତ୍ୱ[ତ], ମାନ୍ୟ ସଭ୍ରମ--ଅନ୍ୟରୂପ) मानमर्यादा **मानमर्जादा**

ମାନ୍ୟମାନ୍—ଦେ. ବିଣ—(ସ. ମାନ୍ୟବାନ୍)—ମାନ୍ୟବାନ୍ (ଦେଖ) Mānyamān मान्यमान Mānyabān (See) [ମାନ୍ୟମ(ବ)ନ୍ତ—ଅନ୍ୟରୂପ]

ମାନ୍ୟମାନ—ଦେ ବି—(ଏକାର୍ଥକ ସହଚର ଶବ୍ଦ)—ମାନମର୍ଯ୍ୟାଦା—Mānyamāna मानमर्य्यादा Honour; dignity. **मानमर्य्यादा** ଗ୍ରା. ବିଣ—(ସ. ମାନ୍ୟବାନ୍)—ମାନ୍ୟବାନ୍ (ଦେଖ) Mānyabān (See).

ମାନ୍ୟରକ୍ଷା—ଦେ. ବି—କୌଣସି ବ୍ୟକ୍ତିଙ୍କର ସ ନକୁ ଅକ୍ଷୁଣ୍ଣ ରଖିବା--Mānya rakshā Maintaining or upholding a person's respect or dignity. मानरक्षा **मानरद्दा**

ମାନ୍ୟ ସୂଚକ—ଦେ. ବି—(ସ. ମାନ+ସୂଚକ)—ଯଦ୍ଦ୍ୱାରା କୌଣସି Mānya sūchaka ବ୍ୟକ୍ତିଙ୍କର ସମ୍ମାନ ସୂଚିତ ହୁଏ—Indi-(ମାନ୍ୟାର୍ଥକ—ଅନ୍ୟରୂପ) cating respect; respectful. मान्यसूचक **मानसूचक** (ଯଥା—ମହାତ୍ମା ଶବ୍ଦ ଗୋଟିଏ ମାନ୍ୟ-ସୂଚକ ଉପାଧି ଅଟେ ।]

ମାନ୍ୟସ୍ଥାନ—ସ. ବି.—୧ । ଆଦର ବା ସମ୍ମାନର କାରଣ; ଯେଉଁ Mānyasthāna କାରଣ ବା ଗୁଣ ବିଦ୍ୟମାନ ଥିବାରୁ ବ୍ୟକ୍ତି-ବିଶେଷ ମାନ୍ୟ ହୁଅନ୍ତି—1. Things or possession for which a person is respected. [ ଦ୍ର—ମନୁ ୫ଟି ବିଷୟକୁ ମାନ୍ୟସ୍ଥାନ ନିର୍ଦ୍ଦେଶ କରିଅଛନ୍ତି; ଯଥା—ବିତ୍ତ, ବନ୍ଧୁ, ବୟସ, କର୍ମ ଓ ବିଦ୍ୟା; ଅର୍ଥାତ୍ ଏହି ସବୁ ଥିବା ବ୍ୟକ୍ତିଙ୍କୁ ଲୋକେ ସମ୍ମାନ ଦେଖାନ୍ତି । ହି. ଶ]

ମାନ୍ୟ ସ୍ଥାନୀୟ—ସ. ବିଣ. ପୁ—ମାନନୀୟ (ଦେଖ)—Mānaniya Mānya sthāniya (ମାନ୍ୟସ୍ଥାନୀୟା—ସ୍ତ୍ରୀ) (See)

ମାନ୍ୟସ୍ଥାପନ—ଦେ. ବି—୧ । କୌଣସି ବ୍ୟକ୍ତିଙ୍କର ସମ୍ମାନ ରକ୍ଷା Mānya sthāpana କରିବା—1. Maintenance or upholding of the respect due to a person. ୨ । ସମ୍ମାନ ଦେଖାଇବା—2. Showing of respect to a person.

ମାନ୍ୟ ସ୍ୱରୂପ—ଦେ. କ୍ରି. ବିଣ—ସମ୍ମାନ ପ୍ରଦର୍ଶନର ଚିହ୍ନ ବା ନିଦର୍ଶନ Mānya swarūpa ସ୍ୱରୂପ—As a token of respect. मान्यस्वरूप **मानसे**

ମାନ୍ୟାର୍ହ—ସ. ବିଣ. ପୁଂ—(ସ. ମାନାର୍ହ)-ସମ୍ମାନିତ ହେବାର ଯୋଗ୍ୟ; Mānyārha ମାନନୀୟ—Deserving respect; honour-(ମାନ୍ୟାର୍ହା—ସ୍ତ୍ରୀ) मान्यार्ह **मानार्ह; मानकेयोग्य** able. (ମାନ୍ୟାର୍ହତା—ବିଶେଷ୍ୟ)

ମାନ୍ୟାସ୍ପଦ—ଦେ. ବିଣ. ପୁଂ—(ସଂ ମାନାସ୍ପଦ)—ମାନନୀୟ; ସମ୍ମାନିତ Mānyāspada ହେବାର ଉପଯୁକ୍ତ—Respectable; (ମାନ୍ୟାସ୍ପଦା—ସ୍ତ୍ରୀ) मान्यास्पद **मानास्पद** deserving honour.

ମା(ମେ,ମ୍ୟା)ପ—ବୈଦେ. ବି—୧ । (ଇଂ)—ମାନଚିତ୍ର; ଭୂଭାଗର Mā(me,myā)p ନକ୍ସା—1. Map. ୨ । (ଫା, ମୁଆଫ୍)—ম্যাপ, মাফ **मैप, माफ** ମାଫ୍ (ଦେଖ)—2. Maph (See).

ମାପ୍‌ଚୁପ୍—ଦେ. ବି—(ନିରର୍ଥକ ସହଚର ଶବ୍ଦ)—ମାପକାକ୍ରିୟା—Māp-chup Measurement. [ ଉ--ବି ସଉଦା ନେବ মাপজোখ (প) **मापतप, नापतप** ...କିସ ମୁଁ କହିଲି ତସି (ମାପ ଜୋଖ—ଅନ୍ୟରୂପ) ମାପଚ୍ ବେଳେ ହୋଇଛି ମୁଁ କଣ୍ଡ । ଉକାସ. ଗୀତଲହରୀ । ]

ମାପସାଦ (ଇତ୍ୟାଦି)—ଗ୍ରା. ବି (ସ. ମହାପ୍ରସାଦ)—ମହାପ୍ରସାଦ Map-sāda (etc) (ଇତ୍ୟାଦି)—(ଦେଖ)—Mahāprasāda etc (See).

ମାପ—ସଂ. ବି—(ମା ଧାତୁ ଣିଜନ୍ତ=ମାପି. ଧାତୁ+ଭାବ ଅ)—ବସ୍ତୁର
Māpa ପରିମାଣ ସ୍ଥିରୀକରଣ; ମାପିବା କ୍ରିୟା—Act of
ମାପ measuring; measurement.—କୌଣସି ବସ୍ତୁର
मा(ना)प ସ୍ଥିରୀକୃତ ପରିମାଣ—Measure of a thing. [ଦ୍ର—
ନାନାଦେଶରେ ଓ ଭିନ୍ନ ଭିନ୍ନ ବସ୍ତୁର ମାପିବା ପ୍ରଣାଳୀ
ପୃଥକ୍ ପୃଥକ୍ ଅଟେ ।

୧ । ଲୁଗା ଆଦିକୁ ଓ ଦୂରତ୍ୱକୁ ଦେଶୀୟ ରୀତିରେ ହାତ, ଗୃଖଣ୍ଡ ଓ ଅଙ୍ଗୁଳଦ୍ୱାରା ମାପ କରାଯାଏ—୮ ଯବ= ୧ ଅଙ୍ଗୁଳ; (ସଂସ୍କୃତଗ୍ରନ୍ଥରେ ୮ ଯବ=୧ ଜ୍ୟେଷ୍ଠ ଅଙ୍ଗୁଳ; ୭ ଯବ=୧ ମଧ୍ୟମା ଅଙ୍ଗୁଳ; ୬ ଯବ=୧ କନିଷ୍ଠ ଅଙ୍ଗୁଳ; ଯବଧାନକୁ ଚଉଡ଼ାବାଗରେ ରଖିଦେଲେ ୧ ଯବ ହୁଏ) ୪ ଅଙ୍ଗୁଳ=୧ ଚଉକ=୧ ମୁଠା (୧ ମୁଷ୍ଟି); ୩ ମୁଠା =୧୨ ଅଙ୍ଗୁଳ=୧ ଗୃଖଣ୍ଡ (ସଂ ବିତସ୍ତି ଓ ବଂ. ବିଘତ୍); ୨° ଅଙ୍ଗୁଳ=୧ ମୁଠୁଣି (ସଂ. ଅରତ୍ନି ଓ ବଂ. ମୁଠମା); ୨ ଗୃଖଣ୍ଡ=୨୪ ଅଙ୍ଗୁଳ=୧ ହାତ (ସଂ. ହସ୍ତ ଓ ବଂ. ହାତ୍); ୪ ହାତ=୧ ବେଁ (ସଂ. ବ୍ୟାମ ଓ ବଂ. ବାଓଁ) ୮ ହଜାର ହାତ=୧ କ୍ରୋଶ=୨ ମାଇଲ୍; ୪ କ୍ରୋଶ =୧ ଯୋଜନ; ବର୍ଗଫଳ ପାଇଁ ଭୂମି ମାପିବା ସକାଶେ ଓଡ଼ିଶାରେ ଭିନ୍ନ ଭିନ୍ନ ଦୈର୍ଘ୍ୟର ପଦିକା ବ୍ୟବହୃତ ହୁଏ । ଯଥା—ଚବିଶ ଦସ୍ତି, ବିଶ ଦସ୍ତି; ଚଉଦ ଦସ୍ତି ଓ ବାର ଦସ୍ତି । ବଙ୍ଗଦେଶର ପଦିକା ବା କାଠା=୪ ହାତ । ୧ ଦସ୍ତି=କହୁଣିଠାରୁ କାଣି ଅଙ୍ଗୁଠିର ଅଗ ପର୍ଯ୍ୟନ୍ତ ୨୨ ଅଙ୍ଗୁଳ; ଏହି ଦସ୍ତି ଅନୁସାରେ ପଦିକାମାନ କରାଯାଏ ।

୨ । ଦୂରତ୍ୱ ଓ ଲୁଗା ଆଦିକୁ ଇଉରୋପୀୟ ରୀତିରେ ଇଞ୍ଚ, ଫୁଟ୍, ଗଜ ଆଦି ଦ୍ୱାରା ମାପ କରାଯାଏ । ଚଉଡ଼ା ବାଗରେ ୮ ଯବ ବା ଲମ୍ବ ବାଗରେ ୩ ଯବ=୧ ଇଞ୍ଚ, ୧୨ ଇଞ୍ଚ=୧ ଫୁଟ୍, ୩ ଫୁଟ୍=୧ ଗଜ, ୨୨° ଗଜ= ୧ ଫର୍ଲଙ୍ଗ୍, ୪୪୦ ଗଜ=୧ କ୍ୱାର୍ଟର୍, ୮ ଫର୍ଲଙ୍ଗ୍= ୪ କ୍ୱାର୍ଟର୍=୧ ମାଇଲ୍, ୨ ମାଇଲ୍=୧ କ୍ରୋଶ । କ୍ଷେତ୍ରର ବର୍ଗଫଳ ବାହାର କରିବା ପାଇଁ ଭୂମି ମାପ ଆମ ଦେଶରେ ପଦିକାରେ ହୁଏ । ଇଉରୋପୀୟ ରୀତି ଅନୁସାରେ ଚେନ୍ ବା ଜରିବ୍ ବା ଲୁହା ଶିକୁଳିଦ୍ୱାରା ଭୂମି ମାପ କରାଯାଏ । ୧ ଚେନ୍=୬୬ ଫୁଟ=୧୦୦ ଲିଙ୍କ୍)

୩ । ଦରଜୀମାନଙ୍କ ଲୁଗା ମାପ—୩ ଅଙ୍ଗୁଳ= ୧ ଗିରି, ୪ ଗିରି=୧ ପାଆ, ୧୬ ଗିରି=୧ ଗଜ ।

୪ । ଶସ୍ୟ ଆଦିକୁ ମାଣ, ଗଉଣୀ ଆଦି ପାତ୍ରଦ୍ୱାରା ମାପ କରାଯାଏ । ୧୨ ମାଣ=୧ ଗୌଣୀ, ୨୦ ଗଉଣୀ= ୧ ପଉଟୀ, ୪ ପଉଟୀ=୧ ଭରଣ ।

ଭିନ୍ନ ଭିନ୍ନ ଅଞ୍ଚଳରେ କଟକୀ ୨ ସେର ୩ ସେର, ୩୳ ସେର, ୪ ସେର, ୪୳ ସେର, ୫ ସେର; ୬ ସେର ଓ ୮ ସେରର ପରିମିତ ଗଉଣୀମାନ ବ୍ୟବହୃତ ହୁଏ ।

ଗଞ୍ଜାମରେ ଶସ୍ୟାଦି ମାପର ପରିମାଣ—୨ ସୋଲି =୧ ବୋଡ଼ା, ୨ ବୋଡ଼ା=୧ ଅଡ଼ା (୬୪ ତୋଲା ଓଜନ ୪ ଅଡ଼ା=୧ ଗୌଣୀ, ୪ ଗୌଣୀ=୧ ନଉତି, ୨୦ ନୌତି=୧ ଭରଣ, ୩ ଭରଣ=୧ ଶଗଡ଼; ଭରଣ=୧ ଗଡ଼ିଶ ।

ସମ୍ବଲପୁରରେ ଓ ଗଞ୍ଜାମରେ ଶସ୍ୟାଦି ମାପିବାରେ ବ୍ୟବହୃତ ଛାମ୍ପି ମାପ, ଯଥା—୧ ଭୁତ ଛାମ୍ପି=୧୦୫ ତୋଲା ଓଜନ; (ଏଥିରେ ମଲିଆଙ୍କୁ ମୂଲ ଦିଆଯାଏ) । ୨ । କଠା ଛାମ୍ପି=୯୦ ତୋଲା ଓଜନ (ଗୁଡ଼ଲ ଆଦି ଶସ୍ୟ ମାପିବାରେ ବ୍ୟବହୃତ) । ୩ । ସେର ଛାମ୍ପି=୮୦ ତୋଲା ଓଜନ (ଘିଅ ତେଲ ଆଦି ମପାଯାଏ) । ୪ । କରଜା ଛାମ୍ପି=୧୨୦ ତୋଲା ଓଜନ (ଧାନ କରଜ ଦେବା ନେବା ବେଳେ ବ୍ୟବହୃତ ହୁଏ) ଶସ୍ୟ ଆଦିର ପରିମାଣ ତଉଲ ଦ୍ୱାରା ମଧ୍ୟ ସ୍ଥିର କରାଯାଏ । ଏହାକୁ 'ତଉଲବା କହନ୍ତି ।

୫ । ତରଳପଦାର୍ଥକୁ ଛଟାଙ୍କି, ପାଆ, ସେର ଆଦି ପରିମିତ ପାତ୍ରଦ୍ୱାରା ମଧ୍ୟ ମାପ କରାଯାଏ । ପ୍ରାୟ ୬ ଟଙ୍କା ଓଜନର ବସ୍ତୁ=୧ ଛଟାଙ୍କି, ୪ ଛଟାଙ୍କି=୧ ପାଆ, ୨ ପାଆ=୧ ଅଧସେର, ୨ ଅଧସେର=୧ ସେର, ୨୳ ସେର =ଅଢ଼େଇଆ, ୫ ସେର=୧, ପଶୁରି ୮ ପଶୁରି= ୧ ମହଣ ।

କଟକୀ ୧ ସେରର ଓଜନ=୧୦୫ ତୋଲା (ଟଙ୍କା)
ବାଲେଶ୍ୱରୀ ୧ ସେରର ଓଜନ=୮° ଟଙ୍କା ।
ପାଟ ଆଦି ୧ ସେରର ଓଜନ=୧୬ ଟଙ୍କା ।

୬ । ଜଳର ଗଭୀରତା ଲଗୀ ବା ସୁତୁଲୀ ଦ୍ୱାରା ମାପ କରାଯାଏ ।

ଭିନ୍ନ ଭିନ୍ନ ସ୍ଥାନରେ ଓ ଅଞ୍ଚଳରେ ଭିନ୍ନ ଭିନ୍ନ ପ୍ରକାରର ମାପ ଅଛି । 'ମାପ' ଆକାର ବା ଦୈର୍ଘ୍ୟଦ୍ୱାରା ସ୍ଥିର କରାଯାଏ । ଓଜନ ଦ୍ରବ୍ୟକୁ ତଉଲବାଦ୍ୱାରା ସ୍ଥିର କରାଯାଏ ।]

ମାପକ—ସଂ. ବିଣ. (ମା. ଧାତୁ ଣିଚ୍=ମାପି ଧାତୁ+କର୍ତ୍ତୃ. ଅକ)—
Māpaka ୧ । ମାପୁଣୀ; ଯେ ମାପେ—1. Measuring.
(ମାପିକା—ସ୍ତ୍ରୀ) ୨ । ଯେଉଁ ବସ୍ତୁ ବା ସାଧନ ସାହାଯ୍ୟରେ କୌଣସି ପଦାର୍ଥ ମାପ କରାଯାଏ—
2. Used for measuring a thing.

ମାପ କରିବା—ଦେ. କ୍ରି—ମାପିବା (ଦେଖ)—Māpibā (See)
Māpa karibā ମাপকরা; मा(ना)प करना

ମାପ କାଠି—ଦେ. ବି—ପରିମାଣ କରିବା ବା ମାପିବା ପାଇଁ ବ୍ୟବହୃତ
Māpa kāṭhi ଦଣ୍ଡ ବା ଯଷ୍ଟି—Measuring rod.
মাপকাঠি; मा(ना)पकाठी

ମାପତ୍ୟ—ସଂ.—ବି—କାମ ଦେବ—The God of love (Apte)
Māpatya

ମାପନ—ସଂ. ବି—୧ । (ମା. ଧାତୁଣିଚ୍=ମାପି ଧାତୁ+କରଣ ଅନ)—
Māpana ତୁଲା ଦଣ୍ଡ—1. Balance; a pair of scales.
୨ । (+ଭାବ ଅନ) - ମାପିବା କର୍ମ—Measuring,

ମାପନୀୟ—ସଂ. ବିଣ—(ମା ଧାତୁଣିଚ ମାପି ଧାତୁ+କର୍ମ ଅନୀୟ)—
Māpaniya ମାପିବାର ଯୋଗ୍ୟ—Measurable.

**ମାପିଖିଆ**—ପ୍ରାଦେ (କଟକ) ବି—ଯେଉଁ ମାଣରେ ପ୍ରତିଦିନ ଚାଉଳ
Māpikhiā ମପାଯାଇ ଖାଇବା ପାଇଁ ଦିଆ ହୁଏ—The
(ମାପିଖିଆ ମାଣ—ଅନ୍ୟରୂପ) measuring pot by which the daily consumption of rice is measured.

ମାପିବା—ଦେ. କ୍ରି—(ସଂ. ମା ଧାତୁ ଣିଚ୍ ମାପି ଧାତୁ)—କୌଣସି ବସ୍ତୁର
Māpibā ପରିମାଣ ନିର୍ଣ୍ଣୟ କରିବା—To measure (the
মাপা, **मा(ना,पना** capacity or length and breadth etc). [ଭ—ମୋହର ଏହି ପାଦ ତିନି, ମପିଣ ଦିଅ ତୁ ମେଦିନୀ । ଜଗନ୍ନାଥ. ଭାଗବତ ] [ଦ୍ର—ହାତେ ମପି ଚାଖେଣ୍ଡେ ଚାଲିବା—ତଗ—ଏହାର ଅର୍ଥ, ଉତ୍ତମ ରୂପେ ବୁଝି ବିଚାରି କୌଣସି କାମ କରିବା; କୌଣସି ବିଷୟ ବା କାର୍ଯ୍ୟ କରିବା ପୂର୍ବରୁ ଆଗ ପଛ ଭାବି କାର୍ଯ୍ୟ କରିବା । ଯେପରି ବାଟ ଚାଲିବାବେଳେ ଆଗରୁ ଏକହାତ ମାପିଲେ ଆଗର ଏକହାତ ସ୍ଥାନର ଅବସ୍ଥା କିପରି, ତାହା ଜଣାଯାଏ; ଏହା ସ୍ଥିର କରି ସାରି ତହିଁ ମଧ୍ୟରୁ ଏକଖଣ୍ଡ ସ୍ଥାନରେ ଗୋଡ଼ ପକାଇଲେ ଆଉ ଭୟର କୌଣସି ଆଶଙ୍କା ନ ଥାଏ; ସେହିପରି କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ ତାହାକୁ ଉତ୍ତମରୂପେ ପରୀକ୍ଷା କରି କଲେ ବିପଦର ଆଶଙ୍କା ନ ଥାଏ ।]

ମାପିବା ଚୁପିବା—ଦେ. କ୍ରି—(ନିରର୍ଥକ ସହଚର ଶବ୍ଦ)—ଉତ୍ତମରୂପେ
Māpibā chupibā ପରିମାଣ କରିବା—To measure a
মাপা জোখা, **नापनातपना मापना उपन** thing thoroughly.

ମା ପୁଅ—ଦେ. ବି—ମାତା ଓ ପୁତ୍ର—Mother and son, [ଦ୍ର—
Mā pua মাছেলে **मावेटा** ଏହିପରି ମା ଝିଅ ଶବ୍ଦ ମଧ୍ୟ ହୁଏ)—
(ମାଆପୁଅ—ଅନ୍ୟରୂପ)

ମାପୁଣି—ଦେ. ବି. (ସଂ ମା ଧାତୁ ଣିଚ ମାପି ଧାତୁ)—୧ । ପରିମାପକ;
Māpuṇi ଶସ୍ୟ ଆଦିକୁ ମାପ କରିବା ଲୋକ—1. Measurer.
মাপানি; ୨ । ମାପିବା କ୍ରିୟା—2 Act of measur-
**मापदार, हटवे मापनेवाला** ing. ୩ । ଶସ୍ୟାଦି ମାପିବା ବ୍ୟକ୍ତିକୁ ଦିଆଯିବା ପାରିଶ୍ରମିକ—3. Remuneration paid to a measurer of grains.

ମାପୁଣି କରଣି—ଦେ. ବି—କରଜ ଦିଆଯିବା ଶସ୍ୟାଦିକୁ ମାପିବା ବ୍ୟକ୍ତିର
Māpuṇi karaṇi ଓ ତାହା ଖାତାରେ ଲେଖିବା ବ୍ୟକ୍ତିର
মাপার ও লেখাবতহুরী, মাপানিতহুবী ପାରିଶ୍ରମିକ ସ୍ୱରୂପ ଦିଆ-
**हटवेका और मुनीमका मिहनताना** ଯିବା ଧାନ—Paddy paid as remuneration to the measuring servant and the clerk of the creditor.
[ଦ୍ର—ଧାନ ମହାଜନଙ୍କଠାରୁ ଯେଉଁ ଖାତକମାନେ ଧାନ କରଜ ନିଅନ୍ତି ସେମାନେ ଧାନ ନେବା ସମୟରେ ଓ ଧାନକୁ ସୁଧ ମୂଳ ସୁଝିବା ସମୟରେ ମହାଜନଙ୍କ ପକ୍ଷରୁ ଜଣେ ମାପୁଣି ସେ ଧାନକୁ ମାପ କରେ ଓ ଜଣେ କରଣ ବା ଗୁମାସ୍ତା ଦିଆ ଧାନର ପରିମାଣ ଖାତାରେ ଲେଖି ରଖେ । ଏହି ଦୁଇ ଜଣ ବ୍ୟକ୍ତିଙ୍କପାଇଁ ମହାଜନମାନେ ଖାତକମାନଙ୍କଠାରୁ ଅପଣାର ପ୍ରାପ୍ୟ ଧାନର ମୂଳ ଓ ସୁଧ ଉପରେ 'ମାପୁଣି କରଣି' ନାମରେ ଭରଣକେ ଗଉଣିଏ ଦୁଇ ଗଉଣୀ ଧାନ ଆଦାୟ କରି ନିଅନ୍ତି ଓ ଖାତକ ଅନନ୍ୟୋପାୟ ହୋଇ ତାହା ଦେବାକୁ ବାଧ୍ୟ ହୁଏ । ]

ମାଫ୍—ବୈଦେ. ବିଣ ( ଅ. ମୁଆଫ୍=କ୍ଷମିତ ) ୧ । ଯାହା କ୍ଷମା
Māph କରାଯାଇଅଛି; କ୍ଷମିତ—1. Forgiven; excused.
মাফ **माफी** ୨ । ରହିତ; ସ୍ଥଗିତ (କର୍ମ)—2. Suspended; kept in abeyance. ବି.( ଅ. ମାଫୀ, ମୁଆଫୀ )—
୧ । ( ଦୋଷର ) ମାର୍ଜନା; କ୍ଷମା—1 Pardon; forgiving. ୨ । ( ଖଜଣା ଆଦି ଦାୟିତ୍ୱରୁ ) ଛାଡ଼; ମୁକ୍ତି; ଅବ୍ୟାହତି—2. Remission; exemption from payment. ୩ । ( ଅଦଣ୍ଡ ଦଣ୍ଡ ଆଦିର ) ରହିତକରଣ—3. Suspension; keeping in abeyance ( of punishment etc ).

ମାଫ୍ କରିବା—ଦେ. କ୍ରି—କ୍ଷମା ଦେବା—To pardon; to
Māph karibā মাফ করা(দেওয়া) **माफ करना** excuse.
( ମାଫ୍ ଦେବା—ଅନ୍ୟରୂପ )

ମାଫ୍ ଚାହିଁବା—ଦେ. କ୍ରି—କ୍ଷମା ପ୍ରାର୍ଥନା କରିବା—To solicit
Māph chāhibā মাফ চাওয়া pardon.
**माफी चाहना (माँगना)** (ମାଫ୍ ମାଗିବା—ଅନ୍ୟରୂପ)

ମାଫ୍ ପାଇବା—ଦେ. କ୍ରି—ଦୋଷମୁକ୍ତ ହୋଇ କ୍ଷମା ପାଇବା—To be
Māph pāibā মাফ পাওয়া pardoned or excused.
**माफी पाना**

ମାଫି—ବୈଦେ. ବିଣ ( ଅ. ମୁଆଫୀ: ମାଫୀ=ନିଷ୍କର )—୧ । ନିଷ୍କର
Māphi ( ବୃତ୍ତି )—1. Rentfree (holding). ୨ । ଲାଖରାଜ
মাফী (ବୃତ୍ତି)—2 Revenue-free ( land ) ୩ । ମାଫ୍
**माफी** ଇତ୍ୟାଦି (ଦେଖ)—3. Māph etc (See) ବି—୧ । ନିଷ୍କର ବୃତ୍ତି—1. Rent-free holding. ୨ । ( ଅ. ମାଫୀ ) ମାଫ୍ ( ଦେଖ )—2. Māph ( See ) ୩ । ମାଫ୍ ଇତ୍ୟାଦି ( ଦେଖ )—3. Māph etc ( See )

ମାଫିକ୍(କେ)—ବୈଦେ. ଅ ( ଅ. ମୁଆଫିକ୍ )—ଅନୁରୂପ; ମୁତାବକ
Māphik(ke) ଅନୁସାରେ—According to; agreeing
মাফিক **माफिक** with. [ ଭ—ଇଚ୍ଛା ମାଫିକେ ତୋ ବିଭୂଷଣା ବନାଇ ଦିଅଇବ ହୋଇ ଛିଡ଼ା ରେ—କବିସୂର୍ଯ୍ୟ. ସଙ୍ଗୀତ]

ମାଫି ଖରିଦା—ବୈଦେ. ବି (ପା)—ଏକପ୍ରକାର ନିଷ୍କର ମଧ୍ୟସତ୍ତ୍ୱ (ଭୂମି)
Māphi kharidā —A class of rent-free tenures.
মাফি **माफी**

ମାଫିଦାର୍—ବୈଦେ. ବି (ପା)—୧ । ନିଷ୍କର ବୃତ୍ତି ଭୋଗ କରୁଥିବା ବ୍ୟକ୍ତି
Māphidār —1. A person holding a rent-free
মাফিদার tenure. ୨ । ଲାଖରାଜଦାର୍—2. A person
**माफिदार** holding a revenue-free land.

ମାଫି ବୃତ୍ତି—ଦେ. ବି—ଯେଉଁ ଜମିର ଖଜଣା ବା ରାଜସ୍ୱ ମାଫ୍ ହୋଇ
Māphi brutti ମାଫିବୃତ୍ତି ଅଛି—Rent-free tenure.
**माफी** ( ମାଫି ସତ୍ୱ—ଅନ୍ୟରୂପ )

ମା ବାପ(ପା)—ଦେ. ବି ( ସହଚର ଶବ୍ଦ )—୧ । ମାତା ଓ ପିତା—
Mā bāpa(pā) 1. Mother and father. ୨ । କୌଣସି
ମା ବାপ **मा बाप** ରକ୍ଷକ ବା ଅଭିଭାବକ—2. Any protector
(ମାଅ ବାପ[ଆ]—ଅନ୍ୟରୂପ) or patron. ୩ । ନିୟାମକ—
3. Ragulator. (ଯଥା—ଆଜିକାଲି ଓଡ଼ିଆ ସାହିତ୍ୟର
କେହି ମା ବାପ ଥିଲା ଭଳି ଜାଣ ପଡ଼ୁନାହିଁ । )

ମା ଭଉ(ଇ, ଏ)ଣୀ—ଦେ. ବି ( ସହଚର ଶବ୍ଦ )—ମାତା ଓ ଭଗିନୀ—
Mā bhau(i, e)ṇī ମା ବোন **मा बहीन** Mother and
( ମାଅ ଭଉ[ଇ, ଏ]ଣୀ—ଅନ୍ୟରୂପ ) sister.

ମା ଭଉଣୀ ଜୋରୁ(ରି) ବେଟୀ—ଦେ. ବି. ( ସହଚର ଶବ୍ଦ; ସ. ମାତୃ,
Mā bhauṇī joru(ri) beṭī ଭଗିନୀ, ଫା. ଜୋରୁ, ବେଟୀ)—
ମା বোন মাগি বেটী ମାତା, ଭଗ୍ନୀ, ସ୍ତ୍ରୀ ଓ କନ୍ୟା—One's
**मा बहीन जोरु बेटी** mother, sister, wife and
daughter ( all the female members of a
(ମା ଭଉଣୀ ଜୋରୁ ବେଟୀ—ଅନ୍ୟରୂପ) person's family.)

ମା ଭଉଣୀ ଜୋରୁ(ରି) ବେଟୀ କରିବା—( ସ. ମାତା; ଭଗିନୀ; ଫା.
Mā bhauṇī joru(ri) beṭī kariba ଜୋରୁ; ବେଟୀ)—
মা'বোন তুলে গালাগালি দেওয়া କୌଣସି ବ୍ୟକ୍ତିର ମା, ଭଗିନୀ,
**मतरीया बहिनीया करना** ସ୍ତ୍ରୀ ଓ କନ୍ୟାଙ୍କ ପ୍ରତି ଅଶ୍ଳୀଳ
ଭାଷା ପ୍ରୟୋଗପୂର୍ବକ ଇତରାମି କରିବା—To abuse a
person filthily by taking the names of
his mother, sister, wife and daughter.
ମା ଭଉଣୀ ଜୋରୁ[ରି] ବେଟୀ କରି ଗାଳି ଦେବା } ଅନ୍ୟରୂପ
ମା ଭଉଣୀ ଜୋରୁ[ରି] ବେଟୀ ନେବା }

ମା ଭାରିଯା—ଦେ. ବି ( ସହଚର ଶବ୍ଦ )—ମାତା ଓ ସ୍ତ୍ରୀ—Mother
Mā bhārijā মা ও মাগী **मा और जोरु** and wife.

ମାଭୈଃ—ସ. (ବାକ୍ୟ) (ଅବ୍ୟୟରୂପେ ବ୍ୟବହୃତ)—'ତୁମ୍ଭେ ଭୟ କର
Mābhaiḥ ନାହିଁ' ଏବମ୍ଭୂତ ଆଶ୍ୱାସବାଣୀ—( literally; Dont
মাভৈঃ **माभैः** fear ) An assurance given by a
person to another not to fear-Dont
you fear !

ମାମ୍‌ଦି—ପ୍ରାଦେ. ( ବାଲେଶ୍ୱର ) ବି. ( ତୁଳ. ଏହି ଅର୍ଥରେ ବଂ.
Mām-di ମାମ୍‌ଦୋ; ଫା. ମହମ୍ମଦ୍ )—ପଠାଣ ଭୂତ—
The spirit or ghost of a Mahomedan dead
man.

ମାମୁବାପା—ଗ୍ରା. ବି. ପୁଂ. ( କରଣସମାଜରେ ବ୍ୟବହୃତ ଶବ୍ଦ )—
Mām-bāpā ମାମୁଁ ବାପା (ଦେଖ)—Māmuṅ bāpā (See)
( ମାମୁ ମା—ସ୍ତ୍ରୀ )

ମାମ—ସ. ବି. ପୁଂ ( ମମ+ଅ )—ମାତୁଳ; ମାମୁ—Mother's
Māma brother. ବିଣ—ମାମକ ( ଦେଖ )—Māmaka
( ମାମୀ—ସ୍ତ୍ରୀ ) ( See )

ମାମକ—ସ. ବିଣ. ପୁଂ ( ମମ+କ+ଅ )—୧ । ମଦୀୟ; ମତ୍‌ସମ୍ବନ୍ଧୀୟ—
Māmaka 1. Relating to me. ୨ । ମୋର—
( ମାମକା—ସ୍ତ୍ରୀ ) 2. Mine. ୩ । ମମତାଯୁକ୍ତ—3. Having
attachment for. ୪ । ସ୍ୱାର୍ଥପର—4. Selfish.
୫ । କୃପଣ—5. Miserly. ସ. ବି. ପୁଂ—୧ । କୃପଣ
ବ୍ୟକ୍ତି—1. A miser (Apte). ୨ । ମାମୁଁ; ମାତୁଳ—
2. Maternal uncle (Apte ).

ମାମକୀନ—ସ. ବିଣ. ପୁଂ ( ମମକ+ଈନ )—ମତ୍‌ସମ୍ବନ୍ଧୀୟ—
Māmakīna (ମାମକୀନା—ସ୍ତ୍ରୀ) Relating to myself.

ମାମଥ—ବୈଦେ. ବି (ଇଂ. ମାମଥ୍)—ହସ୍ତୀର ଅଳୁପ୍ତବିଶିଷ୍ଟ ପ୍ରାଚୀନ
Māmath ଜନ୍ତୁ ବିଶେଷ—Mammoth (an extinct
মামথ species of wooly elephants). [ ଦ୍ର—ଏହାର
**मैमथ** ଦେହସାରା ଲମ୍ବ ଲୋମରେ ଆବୃତ ଥିଲା ଓ ଦନ୍ତଦ୍ୱୟ ଅର୍ଦ୍ଧଚନ୍ଦ୍ରାକୃତି
ଓ ଦନ୍ତାଗ୍ର ଉପରକୁ ବାଙ୍କେଇ ହୋଇ ଉଠିଥିଲା; ଏହା ହାତୀ
ଠାରୁ ଖୁବ୍ ବଡ଼ ଥିଲା । ଏ ଜୀବ ବର୍ତ୍ତମାନ ପୃଥିବୀରୁ
ଲୁପ୍ତ ହୋଇଅଛି ଓ ଏହାର କଙ୍କାଳ ଭୂଗର୍ଭରୁ ସ୍ଥାନେ ସ୍ଥାନେ
ମିଳୁଅଛି ।]

ମାମଲତ(ତି)—ବୈଦେ. ବି ( ଆ. ମୁଆମିଲତ୍ )—୧ । ମାମଲା
Māmalat(ti) ( ଦେଖ )—1. Māmalā (See). ୨—
(ମାମଲ୍ତି—ଅନ୍ୟରୂପ) ବୈଷୟିକ କାର୍ଯ୍ୟଭାର—2. Worldly
মামলত affairs or matters. ୩ । ବ୍ୟବହାର; ବ୍ୟବସାୟ—
**मामलत** 3. Business. ୪ । ବ୍ୟାବହାରିକ କଥୋପକଥନ—
4. Negotiation; business talk.

ମାମଲତକାର—ବୈଦେ. ବି(ଫା. ମୁଆମିଲତ୍‌କାର୍)—ଯେଉଁ ବ୍ୟକ୍ତି ଗୃହର
Māmalat-kār ବୈଷୟିକ କାର୍ଯ୍ୟମାନ ବୁଝେ—A person
মামলতকার who manages or looks after the busi-
**मामलतकार** ness of a family (e. g. litigation, trad),
management of propertye.
(ମାମଲତକାରୀ—ଭାବବାଚକ ବିଶେଷ୍ୟ)

ମାମଲତଦାର—ବୈଦେ. ବି—୧ । (ଫା. ମୁଆମିଲତ୍‌ଦାର୍)-ଯେ ଅନ୍ୟ
Māmalat-dār ବ୍ୟକ୍ତିମାନଙ୍କ ମକଦମା ଆଦି ବୁଝିବାପାଇଁ ସରକାର
মামলতদার ପକ୍ଷରୁ ନିଯୁକ୍ତ ହୁଏ—1. A public servant
**मामलतदार** engaged to decide matters arising
between parties. ୨ । ( ବମ୍ବାଇ
ପ୍ରଦେଶର) ଗ୍ରାମ୍ୟ ବିଚାରପତି କର୍ମଚାରୀ—2. (In the
Bombay presidency) Village-court; a
village magistrate in Bombay;

ମାମଲା—ବୈଦେ. ବି (ଆ. ମୁଆମିଲା)—୧ । ବ୍ୟାପାର—1. Affair.
Māmalā business. ୨ । କେଶ୍; ମକଦମା—2. Liti-
মামলা gation; case; law suit. ( ଯଥା—ଫଉଜଦାରୀ
**मामला** ମାମଲା, ଦେୱାନୀ ମାମଲା, ଦଉରା ମାମଲା, ସେସନସ୍ ମାମଲା,
ଖୁଣୀ ମାମଲା, ସଙ୍ଗିନ୍ ମାମଲା ଇତ୍ୟାଦି ।)

ମାମଲା ଦାଏ(ୟ)ର—ବୈଦେ. ବି (କଚେରୀ) ( ଫା. ମୁଆମିଲା +
Māmalā dāe(ya)r ଦାୟର୍)—କୋର୍ଟରେ ଅର୍ଜି ବା ଦରଖାସ୍ତ

ମଲା ଦାଏର — ଦାଖଲ କରିବାଦ୍ୱାରା ମକଦ୍ଦମାର ଆରମ୍ଭ—
मामलादायर Institution of a case.

ମାମଲା ଫଇ(ଏ)ସଲ୍—ବୈଦେ. କତିରଥ (ଫା. ମୁଆମିଲା + ଫୈସଲ୍)—
Māmalā phai(e)sal ମକଦ୍ଦମାର ନିଷ୍ପତ୍ତି—Decision or
মামলাফয়েসল मामलाफैसला disposal of a case.

ମାମଲା ବାଜ୍—ବୈଦେ. ବିଣ (ଫା. ମୁଆମିଲାବାଜ୍)—ମକଦ୍ଦମା
Māmalā bāj କରିବାରେ ପଟୁ; ବିବାଦପଟୁ—Litigious.
মামলাবাজ मामलाबाज (ମାମଲାଖୋର—ଦେ. ରୂପ)

ମାମଲା ମକଦ(ଦ୍ଦ)ମା—ବୈଦେ. ବି (ଫା. ମୁଆମିଲା + ମୁକଦ୍ଦମା)—
Māmalā makada(dda)mā (ଏକାର୍ଥକ ସହଚର)—ମକଦ୍ଦମା
মামলামোকদ্দমা ମାମଲା; ମାଲିମକଦ୍ଦମା; ମାଲିମାମଲା; ନାନାପ୍ରକାରର
मामलामुकद्दमा ମକଦ୍ଦମା—Litigation.

ମାମା—ଦେ. ବି. ସ୍ତ୍ରୀ (ସଂ. ମାତା, ମା; ଫା. ମାମା)—ସ୍ୱଳ୍ପ ପରିବାରରେ
Māmā ବ୍ୟବହୃତ ଓ ଶିଶୁଭାଷା)—ମାତା—Mother. [ଉ—
মা ମାମାରେ ! ପାଠପଢ଼ା ବଡ଼ ଦୁଃଖ, ହାତ ଗୋଡ଼ ଦୁଇ ଲାଗଇ
मामा ରେ ! ପଶ୍ଚାତେ ବଡ଼ ସୁଖ । ଶିଶୁବଚନ । ] ପ୍ରାଦେ.
(ବାଲେଶ୍ୱର) ବି. ପୁଂ. (ତୁଳ. ବଂ. ମାମା; ହି ମାମା)—
ମାମୁଁ—Maternal uncle.

ମାମୀ—ସଂ. ବି. ସ୍ତ୍ରୀ (ମାମ + ଈ)—ମାଇଁ; ମାତୁଳାନୀ—Maternal
Māmī uncle's wife. [ଦ୍ର—ବଙ୍ଗଳାରେ ମାଇଁଙ୍କୁ ମଧ୍ୟ ମାମୀ
(ମାମିକା—ଅନ୍ୟରୂପ) କହନ୍ତି । ]

ମାମୁଁ(ମୁ)—ଦେ. ବି. ସ୍ତ୍ରୀ. (ସଂ. ମାମ, ମାମକ)—ମାତୁଳ—Maternal
Māmuñ(mu) uncle. (ଉ—ତା ଶୁଣି ନକୁଳ ସେଠାରୁ
(ମାଇଁ—ସ୍ତ୍ରୀ) ବାହାରିଲେ, ମଗଧ ଦେଶେ ମାମୁଁ ସଙ୍ଗତେ ଦେଖା-
মামা ହେଲେ । କୃଷ୍ଣସିଂହ, ମହାଭାର. ସଭା ) [ଦ୍ର—ମାମୁଁ ଭଣଜା
मामु ସମ୍ପର୍କ ପ୍ରଗାଢ଼ ସ୍ନେହଯୁକ୍ତ ଓ ମଧୁରତାପୂର୍ଣ୍ଣ ସମ୍ପର୍କ ଅଟେ ।
ମାମୁଁ ଭଣଜା ପ୍ରତି ପ୍ରଗାଢ଼ ବାତ୍ସଲ୍ୟଭାବ ଦେଖାଉଥିବାରୁ
ସ୍ନେହସୂଚକ ସମ୍ବୋଧନରେ ବାଘକୁ ଓ ଜହ୍ନକୁ ଶିଶୁର ମାମୁଁ
ରୂପେ କଳ୍ପନା କରାଯାଏ, (ଯଥା—ବାଘମାମୁଁ, ଜହ୍ନମାମୁଁ) ।
ମଦ୍ୟପ ଶ୍ରେଣୀ ଜାତିମାନେ ଶୁଣ୍ଡିକୁ ଓ ଶିଆଳକୁ ମାମୁଁ
ସମ୍ବୋଧନ କରନ୍ତି ।

ମାମୁଁ ଶବ୍ଦ ସମ୍ପର୍କରେ କେତେଗୁଡ଼ିଏ ଢଗ ଓ ପ୍ରବଚନ;—
ଯଥା—୧ । ମାମୁଘରେ ପଡ଼ିରହି ଖଣ୍ଡିଏ ଦଖଣ୍ଡି କରିବା,
ଅର୍ଥାତ୍—କୌଣସି ପରିଶ୍ରମ ନ କରି ମାତୁଳାଳୟରେ
ଆଦର ଓ ଯତ୍ନ ସହିତ ପ୍ରତିପାଳିତ ହେବା ।]

নেই মামাথেকে ୨ । ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ—
কাণামামু ভাল ଅର୍ଥାତ୍—ଆଦୌ ମାମୁଁ ନ ଥିବାଠାରୁ, କଣା
नहिमामासे ହେଉ, ଛୋଟା ହେଉ, ଅଯୋଗ୍ୟ ହେଉ,
कणाहा मामा अच्छा ଗୋଟିଏ ମାମୁଁ ଥିଲେ ତାହାଙ୍କଠାରୁ ଭଣଜା
କେତେକ ପରିମାଣରେ ଆଦର ଓ ଯତ୍ନ ଲାଭକରେ ।
ଏଥିର ସମଭାବାତ୍ମକ ଇଂରାଜୀ ପ୍ରବଚନ—Half a
loaf is better than no loaf.

মামামামী দুইপ্রাণী ୩ । ମାମୁଁ ମାଇଁଙ୍କ ପରିଣୀ—ସନ୍ତାନହୀନ
दोही प्रानी ଦମ୍ପତିଙ୍କ ପ୍ରତି ଏ ବାକ୍ୟ ବ୍ୟବହୃତ ହୁଏ ।
ଅର୍ଥାତ୍—ଉକ୍ତ ପରିବାରରେ ମାମୁଁ (ସ୍ୱାମୀ) ଓ ମାଇଁ
(ସ୍ତ୍ରୀ), ଏ ଦୁଇଜଣଙ୍କ ଛଡ଼ା ଅନ୍ୟ କେହି ନାହାନ୍ତି ।

୪ । ମାମୁଁ ବେକ ଧରି କାନ୍ଦିବା ଓ ମାଇଁ ବେକ ଧରି
କାନ୍ଦିବା । ଅର୍ଥାତ୍—ଯେଉଁ ବ୍ୟକ୍ତି ଉଭୟ ପକ୍ଷଙ୍କ ସଙ୍ଗେ
ମିଳିତ କରି ଉଭୟପକ୍ଷଙ୍କଠାରୁ ସାହାଯ୍ୟ କାମନା କରେ ବା
ଉଭୟପକ୍ଷଙ୍କ ନିକଟରେ ସମବେଦନା ପ୍ରକାଶ କରେ ।

୫ । ମାମୁଙ୍କର ବାଟେ, ତ ମାଇଁଙ୍କର ବାଟେ । ଅର୍ଥାତ୍
—ଯେଉଁ ପରିବାରରେ ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ ମତଭେଦ
ଘଟିଥାଏ । ]

ମାମୁଁ(ମୁ)ଅଜା—ଦେ. ବି. ପୁଂ (ସଂ. ମାମ + ଆର୍ଯ୍ୟ)—୧ । ଅପଣାର
Māmuñ(mu)ajā ପିତାଙ୍କ ମାମୁଁ—1. One's father's
(ମାଇଁ ଆଈ—ସ୍ତ୍ରୀ) maternal uncle. ୨ । ଅପଣାର
বাবারমামা ମାଆଙ୍କର ମାମୁଁ—2. One's mother's
बाबाकामामा; नाना maternal uncle.

ମାମୁଁ(ମୁ)ଘର—ଦେ. ବି—୧ । ମାତୁଳାଳୟ—1. One's
Māmuñ(mu)ghara maternal uncle's house.
মামারবাড়ি ୨ । (ଲକ୍ଷଣାର୍ଥ) ଜେଲ୍‌ଖାନା—2. (figurative)
ममाना; ममहारा, Jail. ୩ । ମଦଖଟି; ଶୌଣ୍ଡିକାଳୟ—
ममियैरा; ममियाऊर 3. Tavern.

ମାମୁଁ(ମୁ) ଘରକୁ ଯିବା—ଦେ.କ୍ରି—୧ । ( ମଦ୍ୟପାୟୀ ଇତରଲୋକଙ୍କ
Māmuñ(mu) gharaku jibā ବ୍ୟବହୃତ )—ମଦ ବା ତାଡ଼ି
মামারবাড়ি যাওয়া ପିଇବାକୁ ଖଟିକୁ ଯିବା—1. To go to
ममहारा जना the tavern to drink. ୨ ।
( ଲକ୍ଷଣାର୍ଥ ) ଜେଲ୍‌ଖାନାକୁ ଯିବା—2. (figurative)
To go to jail. ୩ । ମାତୁଳାଳୟକୁ ଯିବା—3.
To go to one's maternal uncle's house.

ମାମୁଁ(ମୁ)ଘର ପାଣି—ଗ୍ରା. କ୍ରି. ( ମଦ୍ୟପାୟୀ ଇତରଜନ ବ୍ୟବହୃତ )—
Māmuñ(mu)ghara pāṇi ମଦ ବା ତାଡ଼ି—Wine or
লালপানি आकासपानी toddy.

ମାମୁଁ(ମୁ)ଝି(ଝୁ)ଅ ଭଉଣୀ—ଦେ. ବି. ସ୍ତ୍ରୀ—ଅପଣାର ମାମୁଁଙ୍କ ଝିଅ
Māmuñ(mu)jhi(jhu)a bhauṇī ଥିବାରୁ ଅପଣାର ଭଗିନୀ—
মামাতো বোন One's causin, being the maternal
ममेरी बहीन uncle's daughter.

ମାମୁଦ୍—ବୈଦେ. ବି ( ନାମ ) ( ଫ —ଭାରତ ଆକ୍ରମଣକାରୀ ଗଜନୀ
Māmud ବଂଶୀୟ ମୁସଲମାନ୍ ରାଜା—Name of a
মামুদ Mahomedan king of Gaznee who
महमुद invaded India 17 times. [ ଦ୍ର
(ମାମୁଦ୍ ଗଜନୀ—ଅନ୍ୟରୂପ) — ଭାରତରେ ପ୍ରଚୁର ଧନ ଥିବାର
ଶୁଣି ଏ ୧୭ ଥର ଭାରତ ଆକ୍ରମଣ କରିଥିଲେ ଓ ଶେଷଥର
ଗୁଜରାଟର ସୋମନାଥ ମନ୍ଦିର ଆକ୍ରମଣ କରି ମୂର୍ତ୍ତି ଭାଙ୍ଗି
ବହୁ ଧନରତ୍ନ ଲୁଣ୍ଠନ କରି ନେଇଯାଇଥିଲେ; ମହମୁଦ୍
ଗଜନୀ ଦେଖ । ]

ମାମୁଁ(ମୁ)ପୁଅ ଭାଇ—ଦେ. ବ. ( ସଂ- ମାମ+ପୁତ୍ର+ଭ୍ରାତା )—
Māmuñ(mu)pua bhāi ଅପଣାର ମାମୁଙ୍କ ପୁଅ ଥିବା ଭାଇ—One's causin, being the son of the maternal uncle.
ମାମାତୋ ଭାଈ ममेरा भाई

ମାମୁଁ ବାପା—ଦେ. ବ ( କରଣ ସମାଜ ବ୍ୟବହୃତ )—ମାମୁଙ୍କର ପିତା; ମାଆଙ୍କର ବାପା—Maternal grandfather; mother's father.
Māmuñ bāpā
দাদ মহাশয় मामाकाबाबा; नाना

ମାମୁଁ(ମୁ) ଭଣଜା(ଞ୍ଜା)—ଦେ. ବ (ଅପେକ୍ଷିକ ସମ୍ବନ୍ଧର ଶବ୍ଦ)—ମାମୁଁ ଓ ଭଣଜା—Maternal uncle and sister's son.
Māmuñ(mu) bhaṇajā(ñjā)
মামা ভাগনা मामा भांजा

ମାମୁଁ(ମୁ) ଭଣଜା(ଞ୍ଜା) କଦଳୀ—ଦେ. ବ—ଏକଜାତୀୟ କଦଳୀ—A species of plantain. [ ଦ୍ର—ଏହି କଦଳୀକାନ୍ଧର ମୂଳାଂଶରେ କେତେକ ଫେଣାର କଦଳୀ ବଡ଼ ବଡ଼ ହୁଏ। ମଝିର କେତେକ ଅଂଶରେ କଦଳୀ ନ ଥାଏ । କାନ୍ଧର ଅଗଅଡ଼କୁ ଥିବା ତଳ ଫେଣାମାନଙ୍କରେ ଲଗାଲଗି ହୋଇ କେତେଗୁଡ଼ାଏ ଛୋଟ ଛୋଟ କଦଳୀ ଥାଏଁ । ]
Māmuñ(mu) bhaṇajā(ñjā) kadaḷi

ମାମୁଁ(ମୁ) ଭଣଜା(ଞ୍ଜା) ପାହାଡ଼—ସ. ବିଶ—ଚିଲ୍‌କାକୂଳରେ ପୁରୀଜିଲ୍ଲା ବାଲୁଗାଁର ନିକଟରେ ଥିବା ଗୋଟିଏ ବଡ଼ ଓ ତତ୍‌ସନ୍ନିହିତ ଗୋଟିଏ ସାନ ପାହାଡ଼ର ସ୍ଥାନୀୟ ନାମ—Local name of a big and a small hill situated near the Chilka Lake. [ ଉ—ବୃକ୍ଷଘନ ଶିଳାରୁକ୍ଷ କଳେବର, ସିଂହେଶ୍ୱରଙ୍କର ଯାମଳ ଭୂଧର । ରାଧାନାଥ. ଚିଲ୍‌କା । ] [ ଦ୍ର—ଏଥିର ବଡ଼ ପାହାଡ଼ରେ ସିଂହେଶ୍ୱର ନାମକ ଶିବଙ୍କ ମନ୍ଦିର ଅଛି । ]
Māmuñ(mu) bhaṇajā(ñjā) pāhāṟḍa

ମାମୁର(ରି, ଲ୍, ଲି)—ବୈଦେ. ବ ( ଅ. ମାମୁଲ୍ =୧ । ସିଦ୍ଧ; ୨ । ନିରୂପିତ ସମୟ ବ୍ୟବଧାନ ଅନ୍ତେ ଯେଉଁ ଧନ କୌଣସି ବ୍ୟକ୍ତିକୁ ବା କାର୍ଯ୍ୟପାଇଁ ଦିଆଯିବାର ବ୍ୟବସ୍ଥା ହୋଇଥାଏ )—୧ । ପୂର୍ବରୁ ନିର୍ଦ୍ଦିଷ୍ଟ ବା ନିର୍ଦ୍ଧାରିତ ହୋଇଥିବା ବିଷୟ—1. A matter already settled. ୨ । ନିୟମିତ ବା ନିର୍ଦ୍ଧାରିତ କାର୍ଯ୍ୟକ୍ରମ—2. Routine. ୩ । ପ୍ରଚଳନ; ଚଳନ—3. Currency; use. ୪ । ଅଭ୍ୟସ୍ତ କାର୍ଯ୍ୟ—4. Customary or habitual act. ୫ । ନିୟମ—5. Rule. ୬ । ଦସ୍ତୁର; ଚିରପ୍ରଚଳିତ ପ୍ରଥା—6. Custom or usage. ୭ । ଅଭ୍ୟାସ—7. Habit. ୮ । ନିର୍ଦ୍ଧାରିତ ସମୟରେ ପ୍ରାପ୍ୟ ବା ଦେୟ ନିର୍ଦ୍ଧାରିତ ଧର୍ମ—8. A fixed payment; the payment of a particular amount at a particular period. ବିଣ ( ଅ. ମାମୁଲ୍ = ନିର୍ଦ୍ଧାରିତ) ୧ ପୂର୍ବରୁ ନିଶ୍ଚିତକୃତ—1. Fixed; long settled; previously arranged. ୨ । ପ୍ରଚଳିତ—2. Usual; current. ୩ । ନିୟମିତ—3. Regular. ୪ । ସାଧାରଣ—4. Ordinary. ୫ । ଚିରସ୍ଥାୟୀରୂପେ ନିର୍ଦ୍ଧାରିତ—5. Fixed permanently. ୬ । ଚିର ପ୍ରଚଳିତ—6. Customary; habitual.
Māmur(ri, l, li)
মামুল मामुल
মামুলী मामुली

ମାମୁର(ଲି) କଥା—ଦେ. ବ—୧ । ଚିରସ୍ଥାୟୀ ବିଷୟ—1. A customary act. ୨ । ପୂର୍ବରୁ ନିର୍ଦ୍ଧାରିତ ବା ସ୍ଥିରୀକୃତ କଥା—2. A thing long settled.
Māmuri(li) kathā
মামুলি কথা मामुली बात

ମାମୁର(ଲି) କାମ(ର୍ଯ୍ୟ)—ଦେ.ବ—୧ । ଯେଉଁ କାର୍ଯ୍ୟର କ୍ରମ ବହୁକାଳରୁ ନିର୍ଦ୍ଧାରିତ ହୋଇ ଚଳି ଆସୁଅଛି—1. Routine work; customary acts; acts of a routine nature. ୨ । ସାଧାରଣ କାରିଗରୀ; ଯେଉଁ ବସ୍ତୁରେ କିଛି ଅସାଧାରଣ କାରିଗରୀ ନ ଥାଏ—2. A thing having no peculiar workmanship.
Māmuri(li) kāma(rjya)
মামুলী কায मामुली काम

ମାମୁର(ଲି) ଖରଚ—ବୈଦେ. ବ (ଅ. ମାମୁଲୀ+ଖର୍ଚ୍ଚ)—୧। ସାଧାରଣ ବ୍ୟୟ—1. Ordinary expenses. ୨ । ଚିର ପ୍ରଚଳିତ ବ୍ୟୟ—2. Usual or customary expenses.
Māmuri(li) kharacha
মামুলি খরচ खर्चा मामूली

ମାମୁରି ଖୁରୁଡ଼—ପ୍ରାଦେ. (ପୁରୀ) ବ—ଛୋଟ ଗୁଳାକୃତି ଖୁରୁଡ଼—Dried kernal of a small species of cocoanut.
Māmuri khururḍa

ମାମୁର(ଲି) ଜମା—ବୈଦେ. ବ (ଅ) (ଜମିଦାରୀ)—ଖଜଣା ଛଡ଼ା ଯେଉଁ ଜମା ପ୍ରଜାଠାରୁ ଚିରପ୍ରଚଳିତ ପ୍ରଥା ଅନୁସାରେ ଆଦାୟ ହୋଇ ଆସୁଅଛି—Customary receipts from tenants over and above the rent.
Māmuri(li) jamā
মামুলি জমা मामुलीजमा

ମାମୁଲ—ପ୍ରାଦେ. (ବସ୍ତର) ବିଣ—ଅକିଞ୍ଚିତ୍‌କର—Insignificant; trite. ପ୍ରାଦେ. (ଜୟପୁର) ବିଣ—ସାଧାରଣ—Ordinary. ବ—ପରମ୍ପରା—Tradition.
Māmula

ମାମେର—ପ୍ରାଦେ. (ସମ୍ବଲପୁର) ବ—ଏକ ପ୍ରକାର ବନ୍ୟ ଖାଦ୍ୟ ଶାକ—A kind of wild herb used as cooked salad. [ଦ୍ର—'ମାମସୀ' ନାମକ ଗୋଟିଏ ବନ୍ୟ ବୃକ୍ଷର କାଠ ଖୁବ୍ ଦୃଢ଼ ଓ ଚିକ୍କଣ; ଏଥିର କାଠରେ କାଙ୍ଗିସି ଦେଲେ ଖୁବ୍ ଚକଚକିଆ ହୁଏ; ଏଥିର କାଠରେ ମେଜ୍, ଚଉକି, ଆଲମାରି ଆଦି ତିଆରି ହୁଏ । ଏଥିର ଛାଲ ଔଷଧରେ ଲାଗେ । ସର୍ପ ଦଂଶନରେ ଏଥିର ମୂଳ ବ୍ୟବହୃତ ହୁଏ । ଦ୍ର. ଶବ୍ଦସାଗର; ମାମେର ଏହି ଗଛ ହେବ କି ?]
Māmer

ମାୟ—ବୈଦେ. ଅ ( ଅ. ଫ. ମଅ )—ସହ; ସହିତ; ମିଶାଇ କରି; ଏକତ୍ର—With; together with; along with; together. (ଯଥା—ମେନେଜରଙ୍କ ଦରମା ମାୟ୍ ଗସ୍ତ ଖର୍ଚ୍ଚ ମାସକୁ ଟ ୧୦୦୯ ଦିଆଯିବ ।)
Māy
মায় मै, माय

ମାୟ—ସ. ବ. ପୁଂ (ମା ଧାତୁ+କର୍ତ୍ତୃ. ଯ)—୧। ଅସୁର—1. Demon. ୨ । ଐନ୍ଦ୍ରଜାଲିକ—2. Magician; a mime; a
Māya

(ମାୟା—ସ୍ତ୍ରୀ) conjurer, ସ. ବିଣ—କୁହୁକ ବିଦ୍ୟାରେ ନୈପୁଣ୍ୟ—Possessing magical powers (Apte).

**ମାୟା**—ସ. ବି. (ମା ଧାତୁ=ପରିମାଣ କରିବା+କରଣ. ଯ+ଅ; ଯାହା Māyā ଦ୍ୱାରା ଏହି ବିଶ୍ୱ ପରିମିତ ହୋଇଅଛି)—୧।(ବେଦାନ୍ତ) ଅବିଦ୍ୟା; ବିସଦୃଶ ପ୍ରତୀତି ସାଧନ; ଯେଉଁ ଗୁଣ ଦ୍ୱାରା ପ୍ରକୃତ ବିଷୟ ଅନ୍ୟରୂପେ ଦେଖାଯାଏ; ମିଥ୍ୟା ଜ୍ଞାନ; ଭ୍ରାନ୍ତି; ମୋହ; ଅବିଦ୍ୟା—1. Unreality; illusion; delusion; idealism. [ଦ୍ର—ବେଦାନ୍ତ ଦର୍ଶନ ମତରେ ଏହି ଜଗତ୍ ଅବାସ୍ତବ ଓ ଅନିତ୍ୟ ଅଟେ ଓ ପରମେଶ୍ୱର ବାସ୍ତବ ଓ ନିତ୍ୟ ଅଟନ୍ତି । ଯେଉଁ ମିଥ୍ୟା ପ୍ରତୀତି ଯୋଗୁଁ ଜଗତକୁ ବାସ୍ତବ ଓ ନିତ୍ୟ ବୋଲି ମନୁଷ୍ୟ ଭ୍ରମ କରେ ତାହାର ନାମ ମାୟା ।

ଈଶ୍ୱର ଆପଣାର ମାୟା ବା ଅବିଦ୍ୟା ରୂପ ଶକ୍ତି ଦ୍ୱାରା ଏ ପୃଥିବୀକୁ ସୃଷ୍ଟି କରିଅଛନ୍ତି; ଏଥିପାଇଁ ଶକ୍ତି ବା ଦୁର୍ଗାଙ୍କୁ ମହାମାୟା ଆଖ୍ୟା ଦିଆ ଯାଇଅଛି ।] ୨ । କୁହୁକ; ଇନ୍ଦ୍ରଜାଲ —2. Magic; jugglery; sorcery. ୩ । ଆସକ୍ତି; ମମତା; ସ୍ନେହ—3. Attachment; affection; love. ୪ । ଛଳ; ଶଠତା; କପଟତା—4. Deceit; hypocricy. ୫ । ଆଖିରେ ଦେଖାଯିବା ଅବାସ୍ତବ ମୂର୍ତ୍ତି (ଯଥା—ଭୂତ)—5. An illusory image; phantom (Apte). ୬ । ରାଜନୀତିକ ଗୋଲ୍—6. A political trick; diplomatic feat (Apte). ୭ । ଗୟା ନଗରର ଏକ ନାମ—7. A name of the city of Gaya (Apte). ୮ । ଦୁଷ୍ଟତା ଖଳତା—8. Wickedness (Apte). ୯ । ଶୈବ; ମତ ଅନୁସାରେ ମନୁଷ୍ୟଙ୍କୁ ଘେରିବା ୪ଟି ସାଂସାରିକ ପାଶ ମଧ୍ୟରୁ ଗୋଟିଏ—9. One of the four worldly snares which beset mankind (according to the Saibas) (Apte). ୧୦ । ପୁରୁଷଠାରୁ ଭିନ୍ନ ପ୍ରକୃତି—10. The Nature, as distinct from God. [ଦ୍ର—ଈଶ୍ୱରଙ୍କର ଯେଉଁ କଳ୍ପିତ ଶକ୍ତି ଈଶ୍ୱରଙ୍କ ଆଜ୍ଞାରେ ଏ ବିଶ୍ୱକୁ ପରିଚାଳିତ କରୁଅଛି ତାହା ପ୍ରକୃତି ବା ମାୟା । ଏହା ଈଶ୍ୱରଙ୍କଠାରୁ ପୃଥକ୍ ଥିବା କଳ୍ପିତ ଏବଂ ଏହାହିଁ ସୃଷ୍ଟିର ମୁଖ୍ୟ କାରଣ ଅଟେ ।] (ଉ—କାଳ ମାୟାର ପରେ ରହି, ପର ଆପଣା ଭେଦ କାହିଁ ? ଜଗନ୍ନାଥ ଭାଗବତ ।) ୧୧ । ଛଦ୍ମବେଶ—11. A mask. ୧୨ । କରୁଣା; କୃପା—12. Kindness; pity; compassion. ୧୩ । ସଂସାର ପ୍ରତି ଆସକ୍ତି—13. Wordly attachment. ୧୪ । ମହାମାୟା; ଦୁର୍ଗା—14. Goddesss Durg ୧୫ । ନାରୀ; ସ୍ତ୍ରୀ—15. Woman. ୧୬ । କମଳା, ଲକ୍ଷ୍ମୀ—16. The Goddess of beauty and wealth. ୧୭ । ମାୟାଦେବୀ; ବୁଦ୍ଧ ଦେବଙ୍କ ମାତା—17. The name of the mother of Buddha Deba. ୧୮ । ଧନ; ସମ୍ପତ୍ତି (ହ୍ର. ଶ)—18. Wealth; riches, property. ୧୯ । ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରା ନାମକ ବର୍ଣ୍ଣବୃତ୍ତଦ୍ୱୟଙ୍କ ମିଶ୍ରଣରେ ରଚିତ ବର୍ଣ୍ଣବୃତ୍ତବିଶେଷ (ହ୍ର. ଶ.)—19. Name of a mixed metre. ୨୦ । (ମୟ+ଅପତ୍ୟାର୍ଥେ. ଅ+ସ୍ତ୍ରୀ, ଆ) ମୟଦାନବର କନ୍ୟା; ରାବଣଙ୍କ ସ୍ତ୍ରୀ ଏବଂ ଖର, ଦୂଷଣ, ତ୍ରିଶିର ଓ ସୂର୍ପଣଖାଙ୍କ ମାତା (ହ୍ର. ଶ)—20. A demoness; daughter of Maya demon. ୨୧ । ମର୍ତ୍ତ୍ୟରେ ଦେବତାଙ୍କ ଲୀଳା (ହ୍ର. ଶ)—21. The sportive exhibitions of the Gods on the earth. ୨୨ । ଆଦରଣୀୟା ସ୍ତ୍ରୀ (ହ୍ର ଶ)—22. A beloved or respected woman. ୨୩ । ବୁଦ୍ଧି; ଅକଲ (ହ୍ର. ଶ)—23. Intelligence. ୨୪ । କାଳ୍ପନିକ ମୂର୍ତ୍ତି—24. Phantom; an illusory image (Apte).

মায়া
मामा

ଦେ. ବି—୧ । (ଅଧୁନା ଭୂଗର୍ଭରୁ ଆବିଷ୍କୃତ ନାନା ପ୍ରାଚୀନ ବସ୍ତୁରୁ ସ୍ଥିରୀକୃତ) ଦକ୍ଷିଣ ଆମେରିକାର ପ୍ରାଚୀନ ସଭ୍ୟତା; ମୟ ସଭ୍ୟତା—1. Māyā; the civilisation of ancient South America. [ଦ୍ର—ଆଜିକୁ ୭୫୦୦ ବର୍ଷ ପୂର୍ବରୁ ୫୦୦୦ ବର୍ଷ ପୂର୍ବ ପର୍ଯ୍ୟନ୍ତ ଏ ସଭ୍ୟତା ଦକ୍ଷିଣ ଆମେରିକାରେ ପ୍ରଚଳିତ ଥିଲା । ଏହି ସଭ୍ୟତାର ଧ୍ୱଂସାବଶେଷ ବର୍ତ୍ତମାନ ମେକ୍ସିକୋରେ ମିଳୁଅଛି । ଭାରତବର୍ଷ ନିକଟସ୍ଥ ଯାଭା ଓ ବାଲି ଦ୍ୱୀପରେ ଉପନିବେଶ କରିଥିବା କଳିଙ୍ଗବାସୀ (ପ୍ରାଚୀନ ଓଡ଼ିଆ) ହିନ୍ଦୁମାନେ ଯାଇ ଏଠାରେ ସଭ୍ୟତା ବିସ୍ତାର କରିଥିବାର ବର୍ତ୍ତମାନ ଐତିହାସିକ ରାଖାଲ ଦାସ ବନ୍ଦୋପାଧ୍ୟାୟଙ୍କଦ୍ୱାରା ପ୍ରମାଣିତ ହୋଇଅଛି ।] ୨ । ମାୟାଧରର ଡାକ ନାମ—2. Name for calling Māyādhara. ବିଣ—

স্ত্রৈণ; মেয়েমুখো ୧ । ସ୍ତ୍ରୈଣ—1. Voluptuous; fond of
मौगमुहाँ; मौगिआहा women. ୨ । ମାଇଚିଆ; ସ୍ତ୍ରୀସ୍ୱଭାବଯୁକ୍ତ—2. Womanish; effeminate. ୩ । ଭୀରୁ—3. Cowardly.

**ମାୟା କର**—ସ. ବି. ପୁଂ (ଉପପଦ ସମାସ)—ଐନ୍ଦ୍ରଜାଲିକ—
Māyā kara Magician. ବି—ଯେ ମାୟା ଘଟାଏ—
(ମାୟାକାରୀ, ମାୟାକୃତ୍—ଅନ୍ୟରୂପ) Delusive.

**ମାୟା କାନନ**—ସ. ବି (ମ. ପ. ଲୋ. କର୍ମଧା)—କୁହୁକବିଦ୍ୟ
Māyā kānana ପ୍ରଭାବରେ ସୃଷ୍ଟ ଉପବନ—An illusive garden set up by magic.

**ମାୟା କାନ୍ଦଣା**—ଦେ. ବି (ସ. ମାୟାମୟ କ୍ରନ୍ଦନ)—ମିଛ କାନ୍ଦଣା;
Māyā kāndaṇā ଲୋକଙ୍କୁ ଦେଖାଇବା ପାଇଁ କାନ୍ଦ—
মায়া কান্না Weeping done or sorrow expressed
मायाकांदना as a show.

**ମାୟା କୁହୁକ**—ଦେ. ବି (ସ. ମାୟା+କୁହୁକ) (ଦ୍ୱିରୁକ୍ତ ଶବ୍ଦ)—
Māyā kuhuka ଇନ୍ଦ୍ରଜାଲ—Magic.
মায়া কুহক इन्द्रजाल

ମାୟା କୁହୁକିଆ—ଦେ. ବିଣ. ପୁଂ—ଯେ ମାୟା ଘଟାଏ—Illusive;
Māyā kuhukiā delusive. ଦେ. ବି ପୁଂ—ଐନ୍ଦ୍ରଜାଲିକ—
( ମାୟା କୁହୁକିଆ—ଅନ୍ୟରୂପ ) Magician.
( ମାୟା କୁହୁକିନୀ, ମାୟା କୁହୁକେଇ—ସ୍ତ୍ରୀ )

ମାୟାଗ୍ରସ୍ତ—ସଂ. ବିଣ ( ୩ୟା ତତ୍; ମାୟା+ଗ୍ରସ୍ତ )—ମାୟାରୂପ
Māyāgrasta ଅବରଣଦ୍ୱାରା ଅଚ୍ଛନ୍ନ—Overclouded
( ମାୟାଚ୍ଛନ୍ନ, ମାୟାଜଡ଼ିତ—ଅନ୍ୟରୂପ ) with illusion.

ମାୟାଚଣ—ସଂ. ବିଣ. ପୁଂ ( ମାୟା+ପଟୁ ଅର୍ଥରେ. ଚଣ )—୧ । କୁହୁକ
Māyāchaṇa ବିଦ୍ୟାରେ ପଟୁ—1. Noted for jugglery
( Apte ). ୨ । ଅତ୍ୟନ୍ତ ମାୟାବୀ—2. Very
(ମାୟାଚଣା—ସ୍ତ୍ରୀ) deceitful (Apte).

ମାୟାଚାର— ସଂ. ବି ( ମ. ଘ. ଶ୍ଳୋ. )—ମାୟାମୟ ବ୍ୟବହାର; ଛଳନା-
Māyāchāra ମୟ ଆଚରଣ—Acting deceitfully;
( ମାୟାଚାରୀ—ସ୍ତ୍ରୀ ) deceitful conduct ( Apte ).
( ମାୟାଚରଣ—ଅନ୍ୟରୂପ ) ବିଣ. ପୁଂ—ମାୟାବୀ—Deceitful.

ମାୟା ଛୁଆ—ପ୍ରାଦେ ( ଝିଅର ବାଲେଶ୍ୱର ) ବି ( ଇଂ. ବ. ମେୟେ-
Māyā chhuā ଛେଲେ )—ମାଇକିନିଆ ଝିଅ—Girl.

ମାୟାଜାଳ—ସଂ. ବି ( ୬ଷ୍ଠୀ ତତ୍ )—ମାୟାସମୂହ; ଅନେକ ପ୍ରକାରର
Māyājāḷa ମାୟା—Illusions in various forms
or shapes.

ମାୟା ଜାଲ—ସଂ. ବି (ରୂପକ; ମାୟା+ଜାଲ)—ଜାଲପରି ବେଢ଼ିଥିବା
Māyā jāla ମାୟା—Illusion compared to an
entangling net. ପ୍ରାଦେ ( ସାକ୍ଷୀଗୋପାଳ ) ବି—
ସାଧାରଣ ଲୋକମାନେ କଣ୍ଟି, ପୋଷଣା ପ୍ରଭୃତିରୁ ଶ୍ରେଷ୍ଠ
ମାଛ ଧରିବା ପାଇଁ ବାଉଁଶବତାରେ ତିଆରି କରିବା ଯନ୍ତ୍ର-
ବିଶେଷ—A contrivance made of split
bamboo laths used by ordinary people
to catch small fishes.

ମାୟା ଜୀବ(ବୀ)—ସଂ. ବି. ପୁଂ ( ବହୁବ୍ରୀହି; ମାୟା+ଜୀବ୍ ଧାତୁ+
Māyā jība(bī) ଇନ୍ )—ଐନ୍ଦ୍ରଜାଲିକ; ଯେ କୁହୁକ ଦେଖାଇ
ମାୟାଜୀବା / ମାୟାଜୀବିନୀ } ସ୍ତ୍ରୀ ପେଟ ପୋଷେ; କୁହୁକୀ—Magician;
conjurer; a juggler.

ମାୟା ଡୋର(ରି)—ଦେ. ବି—୧ । ଦଉଡ଼ିପରି ମନୁଷ୍ୟକୁ ଛନ୍ଦିଥିବା ମାୟା
Māyā ḍora(ri) —1. Delusion compared to a
ମାୟାଡୋର string. ୨ । ସ୍ନେହବନ୍ଧନ—
मायाडोर(री) 2. Tie of attachment; a string
of magic.

ମାୟାତି—ସଂ. ବି ( ମାୟା+ତି )—୧ । ମନୁଷ୍ୟର ସନ୍ତୋଷବିଧାନାର୍ଥ
Māyāti ଦିଆଯିବା ବଳି—1. The sacrifice to
men ( Apte ). ୨ । ନରବଳି; ଦେବଦେବୀ
ତୁଷ୍ଟ୍ୟର୍ଥେ ମନୁଷ୍ୟବଳି; ମେରିଆ—2. Human
sacrifice; killing of a man to propitiate
a deity.

ମାୟାତ୍ମକ—ସଂ. ବିଣ ( ମାୟା+ଅତ୍ମନ୍+କ )—୧ । ମାୟାମୟ—
Māyātmaka 1. Illusory. ୨ । ମିଥ୍ୟା—2. False
( ମାୟାତ୍ମିକା—ସ୍ତ୍ରୀ) ( Apte ).

ମାୟାଦ—ସଂ. ବି. ପୁଂ ( ମାୟା+ଦା ଧାତୁ+କର୍ତ୍ତୃ. ଅ )—କୁମ୍ଭୀର—
Māyāda Crocodile.

ମାୟାଦେବୀ—ସଂ. ବି. ସ୍ତ୍ରୀ ( ନାମ )—ବୁଦ୍ଧଦେବଙ୍କ ମାତା—Name
Māyādebī of the mother of the Buddha.

ମାୟାଧର—ସଂ. ବିଣ. ପୁଂ—୧ । ଶଠ; କପଟାଚାରୀ—1. Deceitful
Māyādhara ୨ । କପଟବେଶଧାରୀ—2. Wearing a
mask. ୩ । ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କ ବିଶେଷଣ—
3. An epithet of Bishṇu or Śrīkṛushṇa.
ସଂ. ବି—ଭଗବାନ୍; ଶ୍ରୀକୃଷ୍ଣ—God; Śrīkṛushṇa.
ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name
given to males.

ମାୟାଧାରୀ—ସଂ. ବିଣ. ପୁଂ—ଛଦ୍ମବେଶଧାରୀ—Wearing a mask.
Māyādhārī (ମାୟାଧାରିଣୀ—ସ୍ତ୍ରୀ)

ମାୟାପଟୁ—ସଂ. ବିଣ ( ୭ମୀ ତତ୍; ମାୟା+ପଟୁ )—ମାୟାବୀ—
Māyāpaṭu Deceitful.

ମାୟାଫଳ—ସଂ. ବି ( ମାୟା+ଫଳ )—ମାଜୁଫଳ—
Māyāphaḷa Gall-nut.

ମାୟାବତୀ—ସଂ. ବିଣ. ସ୍ତ୍ରୀ ( ମାୟାବତ୍+ସ୍ତ୍ରୀ. ଈ )—ମାୟାବିନୀ—
Māyābatī Illusive ( female ). ବି—୧ । କୁହୁକିନୀ
(ମାୟାବାନ୍—ପୁଂ) —1. A female magician. ୨
ଶମ୍ବରାସୁର ଗୃହରେ ପାଳିତା ହେବା ସମୟରେ କାମପତ୍ନୀ
ରତିଙ୍କର ନାମ—2. Name of the wife of
Cupid in her second birth in the house
of demon Śambara. [ ଦ୍ର—ହରକୋପାନଳରେ
କାମ ଭସ୍ମୀଭୂତ ହେବାରୁ ତତ୍ପତ୍ନୀ ରତି ସେହି ଅଗ୍ନିରେ
ଝାସ ଦେବାକୁ ଉଦ୍ୟତା ହେଲେ; କିନ୍ତୁ ମହାଦେବଙ୍କ
ବଚନାନୁସାରେ ଶମ୍ବରାସୁରର ଘରେ 'ମାୟାବତୀ' ନାମ ଗ୍ରହଣ
କରି ଜନ୍ମି କାମଙ୍କ ପୁନର୍ଜନ୍ମକୁ ଅପେକ୍ଷା କରି ରହିଥିଲେ
କାମଦେବ ଶ୍ରୀକୃଷ୍ଣଙ୍କ ଔରସରେ ରୁକ୍ମିଣୀଙ୍କ ଗର୍ଭରୁ ପ୍ରଦ୍ୟୁମ୍ନ
ନାମରେ ପୁନର୍ଜନ୍ମ ଗ୍ରହଣ କରି ଶମ୍ବରାସୁରକୁ ବଧ କଲେ ଓ
ମାୟାବତୀଙ୍କୁ ପତ୍ନୀରୂପେ ଗ୍ରହଣ କଲେ ।] ୩ । ମାୟାଦେବୀ
(ଦେଖ)—3. Māyādebī ( See )

ମାୟାବଦ୍ଧ—ସଂ. ବିଣ ( ତୃତୀୟାତତ୍; ମାୟା+ଅବଦ୍ଧ )—ମାୟାପାଶରେ
Māyābaddha ଅବଦ୍ଧ—Entangled by delusion.

ମାୟାବଳ—ସଂ. ବି ( ୬ଷ୍ଠୀ ତତ୍; ମାୟା+ବଳ )—ମାୟାର ପ୍ରଭାବ—
Māyābaḷa The power of delusion.

ମାୟା ବଶ—ସଂ. ବିଣ ପୁଂ (୬ଷ୍ଠୀ ତତ୍ )—ମାୟାର ଅଧୀନ—
Māyā baśa (ମାୟାବଶା—ସ୍ତ୍ରୀ) Subject to illusion.

ମାୟାବସାନ—ସଂ. ବି. ( ୬ଷ୍ଠୀ ତତ୍; ମାୟା+ଅବସାନ )—
Māyā basāna ମାୟାର ବା ଅଜ୍ଞାନର ବିନାଶ—The clear-
ing or vanishing of delusion.

ମାୟାବସିକ—ସ. ବଣ. ପୁଂ (ମାୟା+ଅବ+ବସ. ଧାତୁ+ଇକ)—
Māyābasika ୧ । ପ୍ରତାରକ—1. Deceptive. ୨। ପ୍ରବଞ୍ଚକ
(ମାୟାବସିକା—ସ୍ତ୍ରୀ) —2. Cheating; fraudulent.

ମାୟା ବାଦ—ସ. ବି—୧ । ଏ ସଂସାର ମାୟାମୟ ଅଟେ, ଏହି ମତବାଦ—
Māyā bāda 1. The theory or doctrine of the illusory nature of the creation. ୨। ବୌଦ୍ଧ ଧର୍ମମତବାଦ—2. Buddhism (Apte). [ଦ୍ର—ଈଶ୍ୱରଙ୍କ ଛଡ଼ା ଜଗତର ସମସ୍ତ ବସ୍ତୁ ମାୟା ବା ମିଥ୍ୟା ଅଟେ, ଏହି ମତକୁ ମାୟାବାଦ ବୋଲଯାଏ । ]

ମାୟା ବାଦୀ—ସ. ବଣ ଓ ବି ପୁଂ (ମାୟାବାଦ+ଇନ୍; ୧ମା. ୧ବ)—
Māyā bādi ୧ । ମାୟାବାଦରେ ବିଶ୍ୱାସକାରୀ ( ବ୍ୟକ୍ତି )—
(ମାୟା ବାଦନୀ—ସ୍ତ୍ରୀ) 1. ( a persen ) Holding the Māyā theory. ୨ । ବୌଦ୍ଧମତାବଲମ୍ବୀ—2. Holding the doctrines of Buddhism.

ମାୟାବାନ୍—ସ. ବଣ. ପୁଂ (ମାୟା+ବତ୍; ୧ମା. ୧ବ)—୧ । କପଟୀ-
Māyābān ଗୁଣ; ମାୟାବୀ—1. Illusive. ୨ । ମାୟାଯୁକ୍ତ;
(ମାୟାବତ୍—ଅନ୍ୟରୂପ) ମୋହାବିଷ୍ଟ—2. Deluded. ୩ । କୁହୁ-
(ମାୟାବତୀ—ସ୍ତ୍ରୀ) କଥା—3. Skilled in magic.
ବି—ଐନ୍ଦ୍ରଜାଲିକ—Magician; juggler.

ମାୟା ବିଦ୍ୟା—ସ. ବି—କୁହୁକ ବିଦ୍ୟା; ଇନ୍ଦ୍ରଜାଲ—Magical
Māyā bidyā art; necromancy; sorcery.

ମାୟାବୀ—ସ. ବଣ. ପୁଂ ( ମାୟା+ଅସ୍ତି ଅର୍ଥରେ ବିନ୍; ୧ମା. ୧ବ )—
Māyābī ୧ । ମାୟାକାରୀ—1. Delusive. ୨ । କପଟାଚାରୀ—
(ମାୟାବିନୀ—ସ୍ତ୍ରୀ) 2. Deceptive; hypocrite. ୩ । ଇନ୍ଦ୍ରଜାଲରେ ପାରଦର୍ଶୀ—3. Skilled in magical art. ୪ । ମିଥ୍ୟା; ଅବାସ୍ତବ—4. Unreal. ବି—୧।ଯାଦୁକର; ଐନ୍ଦ୍ରଜାଲିକ; କୁହୁକୀ—1. Magician. ୨ । ଦୁନ୍ଦୁଭି ଅସୁରର ଜ୍ୟେଷ୍ଠ ପୁତ୍ର—2. Name of a demon whose father and who himself were killed by the monkey king Bāḷi. [ଦ୍ର—ବାନରରାଜ ବାଳି ଏହାର ପିତାକୁ ବଧ କରିବାରୁ ଏ ବାଳୀଙ୍କୁ ବଧ କରିବାକୁ ଉଦ୍ୟତ ହୋଇଥିଲା; କିନ୍ତୁ ବାଳି ଏହାକୁ ଗୋଡ଼ାଇବାରୁ ଏ ଭୟରେ ଗୋଟିଏ ଗୁହାର ଭିତରେ ପଶିଗଲା । ବାଳି ତହିଁରେ ପ୍ରବେଶ କରି ଏହାକୁ ବଧ କଲେ ।] ୩ । ବିରାଡ଼ି (ହି. ଶ)—3. A cat. ୪ । ପରମାତ୍ମା (ହି. ଶ)—4. God; the Supreme Being. ୫ । ମାଜୁ ଫଳ—5. Gall-nut (Apte).

ମାୟା ବୀଜ—ସ. ବି—'ହ୍ରୀଂ' ନାମକ ତାନ୍ତ୍ରିକ ବୀଜମନ୍ତ୍ର—
Māyā bīja The mystic syllable Hrīṁ.

ମାୟାବୃତ—ସ. ବଣ. (କର୍ମ ତତ୍; ମାୟା+ଆବୃତ)—ମାୟାଗ୍ରସ୍ତ—
Māyābṛuta Enveloped with delusion.

ମାୟାବେଶ—ସ. ବି. (ମ. ପ. ଲୋ)—ମାୟା ଦ୍ୱାରା ରଚିତ ବେଶ—
Māyābeśa ଛଦ୍ମବେଶ—Masked from; a disguise.

ମାୟା ମମତା—ସ. ବି (ଏକାର୍ଥକ ସହଚର ଶବ୍ଦ)—ସ୍ନେହ ଓ ମମତା—
Māyā mamatā Attachment and love.

ମାୟାମୟ—ସ. ବଣ—ମାୟା ଦ୍ୱାରା ପୂର୍ଣ୍ଣ; ମାୟାଚ୍ଛନ୍ନ—
Māyāmaya Full of illusion.
(ମାୟାମୟୀ—ସ୍ତ୍ରୀ)

ମାୟା ମୁକ୍ତ—ସ. ବଣ ପୁଂ (ତୃତୀ ତତ୍; ମାୟା+ମୁକ୍ତ)- ବିଗତମୋହ—
Māyā mukta Freed from illusion.
( ମାୟାମୁକ୍ତା—ସ୍ତ୍ରୀ )

ମାୟା ମୃଗ—ସ. ବି. ( ମ. ପ. ଲୋ; ମାୟା ଦ୍ୱାରା ସୃଷ୍ଟ ମୃଗ )—ମାୟା
Māyā mṛuga ବିଦ୍ୟା ଦ୍ୱାରା ସୃଷ୍ଟ ମୃଗ—A deer created by magic. [ ଦ୍ର—ସୀତାହରଣାଭିଳାଷୀ ରାବଣର ଆଦେଶରେ 'ମାରୀଚ' ଅସୁର 'ମାୟାମୃଗ' ରୂପ ଧାରଣ କରି ପଞ୍ଚବଟୀରେ ସୀତାଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ସୀତା ତାହାକୁ ଧରିବା ପାଇଁ ରାମଚନ୍ଦ୍ରଙ୍କୁ ପଠାଇଲେ । ସେ ମୃଗ ରାମଚନ୍ଦ୍ରଙ୍କୁ ଦେଖି ଦୂରକୁ ପଳାଇଲା ଓ ସେଠାରୁ ରାମଚନ୍ଦ୍ରଙ୍କ ସ୍ୱର ପରି ସ୍ୱର କରି 'ହାହା ଲକ୍ଷଣ' ବୋଲି ଲକ୍ଷ୍ମଣଙ୍କୁ ଡାକ ପକାଇଲା । ସୀତା ଏ ସ୍ୱର ଶୁଣି ଭ୍ରମରେ ପଡ଼ି ରାମଚନ୍ଦ୍ର ଆର୍ତ୍ତନାଦ କରୁଅଛନ୍ତି ବୋଲି ଅନୁମାନ କରି ତାଙ୍କୁ ସାହାଯ୍ୟ କରିବା ପାଇଁ ଲକ୍ଷ୍ମଣଙ୍କୁ ପଠାଇଲେ । ଏହି ଅବସରରେ ରାବଣ ଆସି ସୀତାଙ୍କୁ ଏକାକିନୀ ଦେଖି ହରଣ କରି ନେଇଗଲା ।]

ମାୟା ମୋହ—ସ. ବି— (ମ. ପ. ଲୋ)—୧ । ମାୟା ବା ଅବିଦ୍ୟାଜନିତ
Māyā moha ଅଜ୍ଞାନ ବା ମୁଗ୍ଧତା—1. Folly or fascination due to delusion. ୨ । ବିଷ୍ଣୁଙ୍କ ଦେହନିଃସୃତ ଅସୁରମୋହନକାରୀ ପୁରୁଷବିଶେଷ—2. An image of a man which issued from the body of Bishṇu and fascinated the demons. ୩ । ( ଏକାର୍ଥକ ସହଚର ) ମାୟା—3. Illusion.

ମାୟାଯୁଦ୍ଧ—ସ. ବି—ମାୟା ବା ଛଳନାପୂର୍ଣ୍ଣ ଉପାୟ ପ୍ରୟୋଗଦ୍ୱାରା ଯୁଦ୍ଧ-
Māyā juddha Fighting by the employment of
(ମାୟାଯୋଧୀ—ବଣ) deceitful means.

ମାୟା ଯୋଗ—ସ. ବି.—(୬ଷ୍ଠୀ ତତ)—କୁହୁକର ପ୍ରୟୋଗ—
Māyā joga Empolyment of magic.
(ମାୟା ପ୍ରୟୋଗ—ଅନ୍ୟରୂପ)

ମାୟା ରୂପ—ସ. ବି. (ମ. ପ. ଲୋ)—୧ । ମାୟାଦ୍ୱାରା ସୃଷ୍ଟ ମୂର୍ତ୍ତି—
Māyā rūpa 1. A form set up by magic. ୨ । ଛଦ୍ମରୂପ— 2. A form assumed in disguise.

ମାୟା ରୂପୀ—ସ. ବଣ. ପୁଂ—୧ । ଛଦ୍ମରୂପଧାରୀ—1. Assuming a
Māyā rūpi masked form; disguised. ୨ । ଯେ
(ମାୟାରୂପିଣୀ—ସ୍ତ୍ରୀ) ଇନ୍ଦ୍ରଜାଲଦ୍ୱାରା ନାନା ମିଥ୍ୟାରୂପ ଧାରଣ କରି ପାରେ—2. Assuming different forms by magic

**ମାୟା ଲୋକ**—ପ୍ରାଦେ.—(ସ୍ତ୍ରୀର ବାଲେଶ୍ୱର) ବି—(ଭୁଲ ବି. ମେଷ୍ଟେ
Māyā loka +ଲୋକ)—୧। ମାଇକିନିଆ; ସ୍ତ୍ରୀ ବ୍ୟକ୍ତି—
1. A woman. ୨ । (ବହୁବଚନ) ସ୍ତ୍ରୀମାନେ—
2. Women; females.

**ମାୟା ସଂସାର**—ସଂ. ବି—(ଷ. ତ. ଲୋ; ମାୟା + ସଂସାର)—ମାୟାଦ୍ୱାରା
Māyā saṁsāra କଳ୍ପିତ ସୃଷ୍ଟି—The world which is
nothing but illusion.

**ମାୟା ସାଗର**—ସଂ. ବି.—(ରୂପକ; ମାୟା+ସାଗର)—ସାଗର ପରି
Māyā sāgara ମହା ଗମ୍ଭୀର ବା ବିସ୍ତୃତ ମାୟା—Illusion,
compared to the deep and wide ocean.

**ମାୟା ସୀତା**—ସଂ. ବି—ଅଗ୍ନିଦେବଙ୍କଦ୍ୱାରା ଯୋଗବଳରେ ସୃଷ୍ଟ ସୀତା
Māyā sitā ଦେବୀଙ୍କର ପ୍ରତିମୂର୍ତ୍ତି—An image or shadow
of Sitā which was created by the Fire god
and kept with Ramachandra when Sitā
was taken away by Rābaṇa and which
was afterwards given back by the Firegod
when Sitā was made to pass through the
ordeal of fire after her rescue from
Lankā. [ ଦ୍ର—ସୀତାହରଣ ପୂର୍ବରୁ ଅଗ୍ନିଦେବ
ମାୟାସୀତାଙ୍କୁ ସୃଷ୍ଟି କରି ରାମଚନ୍ଦ୍ରଙ୍କ ନିକଟରେ ଛାଡ଼ି
ଦେଲେ ଓ ଅସଲ ସୀତାଙ୍କୁ ନେଇ ଆପଣା ପାଖେ ରଖିଲେ;
ଏ କଥା ରାମଚନ୍ଦ୍ର ଜାଣିଥିଲେ, କିନ୍ତୁ ଲକ୍ଷ୍ମଣ ଜାଣି ନ
ଥିଲେ । ରାବଣ ଆସି ଅସଲ ସୀତା ଜ୍ଞାନରେ ମାୟା ସୀତାଙ୍କୁ
ହରି ନେଲା । ସୀତା ହରଣ ଓ ରାବଣ ନିଧନ ପରେ ସୀତାଙ୍କ
ଅଗ୍ନି ପରୀକ୍ଷା ସମୟରେ ଅଗ୍ନି ଅସଲ ସୀତାଙ୍କୁ ରାମଚନ୍ଦ୍ରଙ୍କୁ
ପ୍ରତ୍ୟର୍ପଣ କଲେ ଓ ମାୟାସୀତାଙ୍କୁ ଫେରାଇ ନେଲେ ।
ଅଗ୍ନିଙ୍କ ଆଦେଶରେ ମାୟା ସୀତା ଯାଇ ପୁଷ୍କର ତୀର୍ଥରେ
ତପସ୍ୟା କଲେ ଏବଂ ଦ୍ୱାପର ଯୁଗରେ ପାଣ୍ଡବମହିଷୀ
ଦ୍ରୌପଦୀ ରୂପରେ ଅବତୀର୍ଣ୍ଣା ହେଲେ ।]

**ମାୟା ସୁତ**—ସଂ. ବି. (୬ଷ୍ଠୀ ତତ୍)—ବୁଦ୍ଧଦେବ—
Māyā sutā The great Buddha.
(ମାୟାଦେବୀ ସୁତ—ଅନ୍ୟରୂପ)

**ମାୟାସ୍ତ୍ର**—ସଂ. ବି.—ଏକ କଳ୍ପିତ ଅସ୍ତ୍ର, ଯାହାର ପ୍ରୟୋଗ ବିଶ୍ୱାମିତ୍ର
Māyāstra ରାମଚନ୍ଦ୍ରଙ୍କୁ ଶିଖାଇଥିଲେ [ହି ଶ]—A kind of
weapon, the use of which the sage
Biswāmitra taught Rāma.

**ମାୟିକ**—ସଂ. ବିଣ. ପୁଂ (ମାୟା+ଇକ)—୧ । ମାୟାବୀ—1.
Māyika Deceptive; delusive. ୨ । ମାୟାରେ
(ମାୟିକା—ସ୍ତ୍ରୀ) ରଚିତ; କାଳ୍ପନିକ—2. Unreal. ବି—୧ ।
(ଅମାୟିକ—ବିପରୀତ) ମାଜୁଫଳ—1. Gall-nut. ୨ ।
ଯାଦୁକର—2. Conjurer; juggler.

**ମାୟୀ**—ସଂ. ବିଣ. ପୁଂ (ମାୟା+ଇନ; ୧ମା. ୧ବ)—ମାୟାବୀ (ଦେଖ)
Māyī Māyābi (See) ବି—୧ । ବାଜିଗର—
1. Magician. ୨ । ଅଗ୍ନି—2. Firegod.
(ମାୟିନୀ—ସ୍ତ୍ରୀ) ୩ । ଶିବ—3. Siba. ୪ । ବ୍ରହ୍ମା—4. Brahmā.
୫ । କାମଦେବ—5. The God Cupid. ୬ ।
ଶଠବ୍ୟକ୍ତି—6. A deceitful person (Apte).
୭ । ବାଜିଗରୀ; କୁହୁକ—7. Magic; the magical
art (Apte). ଦେ. ବି. ସ୍ତ୍ରୀ—୧ । ନାରୀ; ସ୍ତ୍ରୀ—
1. Woman. [ ଯ—କାଳୀମାୟୀ, ତୁନି ବୋଲିଲେ
କି ଦୋଷ ହୋଇ ? ଉପ । ] ୨ । ଦେବୀ—2.
Goddess. (ଯଥା—ମହାମାୟୀ ।)

**ମାୟୁ**—ସଂ. ବି (ମା. ଧାତୁ=ଦେହକୁ କ୍ଷେପଣ କରିବା+କର୍ମ+କର୍ତ୍ତୃ.
Māyu ଉ)—୧ । ପିତ୍ତ; ଶରୀରସ୍ଥ ଧାତୁବିଶେଷ—1.
Bile; gall; one of the three humours of
the human system. ୨ । ସୂର୍ଯ୍ୟ—2. The
sun (Apte). ୩ । ବାକ୍ୟ (ହି. ଶ)—3.
Speech. ୪ । ଶବ୍ଦ (ହି. ଶ)—4. Sound;
word.

**ମାୟୁରାଜ**—ସଂ. ବି—କୁବେରଙ୍କ ପୁତ୍ର—
Māyurāja The son of Kubera.

**ମାୟୂର**—ସଂ. ବିଣ. (ମୟୂର+ଅ)—୧ । ମୟୂର ସମ୍ବନ୍ଧୀୟ—
Māyūra 1 Relating to peacocks. ୨ । ମୟୂର
ପକ୍ଷନିର୍ମିତ—2. Made of peacock-feathers.
୩ । ମୟୂର ଦ୍ୱାରା ଟଣାଯିବା ଯାନ—3. (vehicle)
drawn by a peacock. ବି—ମୟୂରସମୂହ—
A flock of peacocks.

**ମାୟୂରି(ର)କ**—ସଂ. ବି (ମୟୂର+ଇକ; ଅକ୍)—ମୟୂର ଶିକାରୀ—
Māyūri(ra)ka A hunter of peacocks; a
peacock-catcher.

**ମାୟୂରୀ**—ସଂ. ବି (ମୟୂର+ସ୍ତ୍ରୀ. ଈ)—ଅଜମୋଦା; ବଣ ଯୁଆଣୀ—
Māyūrī Carum Roxburghianum.

**ମାର୍**—ଦେ. ଅ (ମୃ ଧାତୁ ଣିଚ୍ ମାର ଧାତୁ)—ଭର୍ତ୍ସନା ଓ ଘୃଣାସୂଚକ
Mār ସମ୍ବୋଧନ—An interjection denoting abuse
मार मार and hatred)—ଦୂର୍ ! ଛି !—Be off ! Fie !
[ଦ୍ର—ଏଥିର ଶାବ୍ଦିକ ଅର୍ଥ—ଏ ବ୍ୟକ୍ତି ପ୍ରହାର ପାଇବା
ଯୋଗ୍ୟ; ଏହାକୁ ପ୍ରହାର କର=Beat this man,
he deserves beating].

**ମାର୍ ଉତାର୍**—ଦେ. ବି—ମନ୍ତ୍ର ଯନ୍ତ୍ରାଦିର ପ୍ରୟୋଗ ଏବଂ ସଂହାର; ମନ୍ତ୍ର
Mār utār ଉଚ୍ଚାରଣ ପୂର୍ବକ ଲୋକକୁ ବାଣ ମାରିବା ଓ ପରେ
मार उतार ତାହା ପ୍ରତ୍ୟାହାର କରିବା—Application of
मारना उतारना incantations and charm towards
a person and its withdrawal.

**ମାର୍ କାଟ୍**—ଦେ. ବି (ସହଚର ଶବ୍ଦ)—ମାରିବା ଓ ହାଣିବା—
Mār kāt Beating and cutting.
मार काट (ଯ—ଘୋର ଅଡ଼େ ମାର୍ କାଟ୍ ଲାଗିଗଲା । ଗୋଲକଣ୍ଠ.
ପିଲ୍ଲଙ୍କ ରାମାୟଣ ।];

ମାର୍କିନ୍(ନି)—ବୈଦେ. ଵଣ (ଇଂ. ଅମେରିକାନ୍)—୧ । ଅମେରିକା Mār-kin(ni) ଦେଶୀୟ—1. American. ୨ । ଅମେରିକାର [ମାର୍କିନ୍(ନି))—ଅନ୍ୟରୂପ] ଅଧିବାସୀ—2. Residing in মার্কিন America. ୩ । ଅମେରିକା ଦେଶ ଜାତ—3. Made मार्कीन in America. ଵ—ବିଦେଶର କଳରୁଣା ମୋଟା-ସୂତାର ଏକ ପ୍ରକାର ଲୁଗାର ଥାନ—A kind of imported cloth of foreign mill, consisting of long pieces. [ ଦ୍ର—ଏହା ପ୍ରଥମେ ଅମେରିକାରୁ ଭାରତକୁ ଆସୁଥିଲା; ଏବେ ବିଦେଶୀ କଳରୁଣା ଥାନକୁ ମଧ୍ୟ ମାର୍କିନ୍ ଥାନ ବୋଲାଯାଏ ।]

ମାର୍କିନ୍(ନି) ଥାନ—ଦେ. ଵ—ଅମେରିକା ଓ ଅନ୍ୟ ଦେଶର ମିଲ୍ ବା Mārkin(ni) thāna ଲୁଗାବୁଣା କଳ ଦ୍ୱାରା ଲୁଗା ଥାନ—[ମାର୍କିନ୍(ନି)ଲୁଗା—ଅନ୍ୟରୂପ] Long pieces of cloth মার্কিন থান manufactured by American and other मारकीन थान mills.

ମାର୍କେ(କ,କି)ଟ୍—ବୈଦେ. ଵ (ଇଂ. ମାର୍କେଟ୍)—ହାଟ—Mār-ke(ka,ki)ṭ Market. মার্কেট मार्कीट

ମାର୍‌ଖୋର୍—ବୈଦେ. ଵ (ଫା)—କାଶ୍ମୀର ଓ ଅଫଗାନ ସ୍ଥାନର ଏକ Mār-khor ପ୍ରକାର ବଡ଼ ମେଣ୍ଢା—A kind of big sheep মারখোর found in Kashmeer. [ଦ୍ର—ଏ ଛେଳି ଭଳି ଜାତର मारखोर ୨ । ୩ ହାତ ବଡ଼ନ୍ତି; ଋତୁ ଅନୁସାରେ ଏମାନଙ୍କ ଦେହର ବର୍ଣ୍ଣ ବଦଳେ । ଏମାନଙ୍କ ଶିଂଘ ମୁଣ୍ଡ ଉପରେ ପ୍ରାୟ ଲମ୍ବ ରହିଥାଏ । ଏମାନଙ୍କ ବାଳ ଖୁବ୍ ଲମ୍ବ ଓ ଘନ ।]

ମାର୍‌ଗୁ(ଗୋ)ଲି—ବୈଦେ. ଵ (ଇଂ. ମାର୍ବଲ୍)—ପିଲାଙ୍କ ଖେଳିବା Mār-gu(go)li କାଚର ବା ଚିନା ମାଟିର ଗୋଟିକା—Playing মার্বেল marbles or small balls of glass or china. गोली

ମାର୍‌ତୁ(ତୋ)ଲ୍—ବୈଦେ. ଵ—( ପର୍ତ୍ତୁଗୀଜ୍—ମାର୍ଟେଲୀ; ଇଟାଲୀୟ-Mār-tu(to)l ମାର୍ଟେଲ୍ଲୋ; ଲାଟିନ୍ ମାର୍ଟୁଲସ୍)—ଲୁହାର ବଡ଼ মারতোল मारतोल ହାତୁଡ଼ି—A big iron hammer. [ମାର୍ତୁ(ତୋ)ଲ—ଅନ୍ୟରୂପ]

ମାର୍ ତେରି—ଦେ. ଅ.—(ଘୃଣା ଓ ଅବମାନନାର୍ଥକ ଅବ୍ୟୟ)—ଧତ୍-Mār-teri ତେରି ' ଧୁତ୍ ! ଦୂର ହୋ ! ଛି !—(Interjection মারতেরি used in showing hatred and disrespect) मारतेरी, मारतेरिके Be off ! Fie ! [ମାର୍‌ତେରିକି (କେ), ମାର୍ତେରି, ମାର୍ତେରିକା(କେ)—ଅନ୍ୟରୂପ]

ମାର୍ ଧର୍—ଦେ. ଵ—(ସ. ମାରଣ+ଧାରଣ)—ପ୍ରହାର—Mār dhar মার ধর मारधर Beating.

ମାର୍ ପିଟ୍ (ଟା)—ଦେ. ଵ—(ସହଚର ଶବ୍ଦ)—୧ । ବିଶେଷ ପ୍ରହାର—Mār piṭ (ṭā) মারপিট मारपिट 1. Sound beating. (ମାର୍ ଗୋଳ—ଅନ୍ୟରୂପ) ୨ । ଅନ୍ୟୋନ୍ୟରେ ମରାମରି—2. Mutual beating. ୩ । ବହୁଲୋକଙ୍କ ମଧ୍ୟରେ ଦଙ୍ଗା; ମାଡ଼ପିଟ; ଫୌଜଦାରୀ—3. Scuffle; an affray.

ମାର୍ ପେଞ୍ଚ୍(ଚ)—ଦେ. ଵ—କୁଚକ୍ର; ଛଳ୍‌ବାଜୀ—Strategem; Mār peñch(ch) মারপ্যাঁচ मारपेंच, मारपेच artifice.

ମାର୍‌ଫତ୍(ତେ)—ବୈଦେ. ଅ (କଚରାଥ)(ଫା. ମାର୍‌ଫତ୍)—୧ । ଜମା—Mār-phat(te) 1. Custody. ୨ । ଜରିଆରେ; ଦ୍ୱାରା—মার্ফত मारफत 2. Through; with; per [ ଦ୍ର—( ମାର୍ଫତ୍(ତେ)—ଅନ୍ୟରୂପ ) ଏଥିର ସାଙ୍କେତିକ ଚିହ୍ନ । ମା । ]

ମାର୍‌ଫତ୍ କରିବା—ଦେ. କ୍ରି—କୌଣସି ପଦାର୍ଥକୁ ରଖିବା ପାଇଁ କାହା Mār-phat karibā ଜମା କରିବା—To entrust a মার্ফত করা thing to the custody of a person. मारफत करना ( ମାର୍ଫତ୍ କରିବା—ଅନ୍ୟରୂପ )

ମାର୍‌ଫତ୍‌ଦାର୍—ବୈଦେ.ଵ(କଚରାଥ) (ଫା)—୧ । ଜମାଦାର; କୌଣସି ବସ୍ତୁ Mār-phat-dār ସୁରକ୍ଷିତ ହେବା ପାଇଁ ଯାହା ଜିମାରେ ଥାଏ—মার্ফতদার 1. Custodian of a property. ୨ । ଦେବୋ-मारफतदार ତ୍ତର ବା ସାଧାରଣ ସମ୍ପତ୍ତିର ପରିଚାଳନାର୍ଥ ନିଯୁକ୍ତ ବ୍ୟକ୍ତି—(ମାର୍ଫତ୍‌ଦାର୍—ଅନ୍ୟରୂପ) 2. Marfatdar; custodian of an endowment or trust property; trustee of any trust property. [ ଦ୍ର—ଦେବୋତ୍ତର ସମ୍ପତ୍ତିର ରକ୍ଷଣାବେକ୍ଷଣର ଭାର ଯାହାଙ୍କଠାରେ ନ୍ୟସ୍ତ ଥାଏ ସେ 'ମାର୍ଫତ୍‌ଦାର୍' ବା ଟ୍ରଷ୍ଟୀ ଅଟନ୍ତି ଏବଂ ଦେବତାଙ୍କ ସେବାପୂଜା ଆଦିର ତତ୍ତ୍ୱାବଧାରଣ ଯାହାଙ୍କଠାରେ ନ୍ୟସ୍ତ ଥାଏ ସେ 'ସେବାଏତ' ଅଟନ୍ତି ଏବଂ ଦେବତାଙ୍କର ଭିନ୍ନ ଭିନ୍ନ ସେବାକୁ ଯେ ନିଜେ ଭୃତ୍ୟରୂପେ ସମାଧାନ କରନ୍ତି ସେ 'ସେବକ' ଅଟନ୍ତି । ]

ମାର୍‌ବ(ବୁ,ବେ)ଲ୍—ବୈଦେ.ଵ (ଇଂ.ମାର୍ବ୍‌ଲ୍)—୧ । ମାର୍ବଲ୍ (ଦେଖ) Mār-ba(bu,be)l 1. Mārbal ( See) ୨ । ମାର୍‌ଗୁଲି ( ଦେଖ )—2. Mār-guli ( See ).

ମାର୍‌ବାଡ଼(ର)—ଦେ. ଵ ( ସ. ମାରବ )—ମେବାର ଦେଶ—Mār-bārḍa(ra) মারবাড় मारवाड Mewar.

ମାର୍‌ବାଡ଼ି(ରି)—ଦେ. ଵଣ—ମାରବାଡ଼ ଦେଶବାସୀ—Inhabiting Mār-bārḍi(ri) the country of Mewar. ଵ—মারবাড়ী मारवाडी ମାରୁଆଡ଼ି (ଦେଖ)—Māruārḍi ( See )

ମାର୍‌ମା(ଦୂ)ର୍ କରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ପ୍ରହାର କରି Mār-mā(dū)r karibā ତଡ଼ି ଦେବାକୁ ଅନ୍ୟ ବ୍ୟକ୍ତିକୁ ଆଦେଶ মার মার করা ଦେବା—To order a person to be मार मा(दू)र करना beaten and driven away.

ମାର୍ ମାର୍ ଠେଙ୍ଗା ବାନ୍ଧ୍ ବାନ୍ଧ୍ ଦଉଡ଼ି—ଦେ. ଵ—କାହାଣୀରେ ବର୍ଣ୍ଣିତ Mār mār ṭhengā bāndh bāndh daurḍi ଆଶ୍ଚର୍ଯ୍ୟଶକ୍ତି-মার মার ঠেঙ্গা বাঁধ বাঁধ দড়ী ବିଶିଷ୍ଟ ଠେଙ୍ଗା ଓ ଦଉଡ଼ି—A cudgel and a rope mentioned in the folk-tales which possess extraordinary powers of beating and entangling a victim on the order of their possessor.

[ ଦ୍ର—ଏ ଦଉଡ଼ିର ଓ ଠେଙ୍ଗାର ଏପରି ଅଦ୍ଭୁତ ଶକ୍ତି ଅଛି ଯେ, ଏମାନଙ୍କର ସ୍ୱାମୀ 'ହେ ଦଉଡ଼ି ! ଅମୁକଙ୍କୁ ବାନ୍ଧ୍ ଓ ହେ ଠେଙ୍ଗା ! ଅମୁକଙ୍କୁ ମାର୍' ବୋଲି ଆଦେଶ ଦେବା ମାତ୍ରେ ଦଉଡ଼ି ଉକ୍ତ ବ୍ୟକ୍ତିଙ୍କୁ ଛନ୍ଦି କରି ବାନ୍ଧି ପକାଏ ଓ ଠେଙ୍ଗା ତାଙ୍କୁ ଏପରି ମାଡ଼ ମାରେ ଯେ ଉକ୍ତ ବ୍ୟକ୍ତି ଦରମଲା ହୋଇଯାଏ । ]

ମାର୍‌ମୁସ୍କିଲ୍—ଦେ. ବିଣ—ଖୁବ୍ କ୍ରୋଧାନ୍ୱିତ ହୋଇ ମାରିବାକୁ ଉଦ୍ୟତ—Mār-muskil About to beat in anger. [ ଉ—ତା ମାରମୁଖ କଥା ଶୁଣି ସେ ମାର୍‌ମୁସ୍କିଲ୍—କୁନ୍ତଳାକୁ ମାଣ୍ଡ. ନଅଭୁଣ୍ଡୀ । ]
मार मशगुल ( ମାରମୁସ୍କିଲ—ଅନ୍ୟରୂପ )

ମାର୍‌ହାଣ—ଦେ. ବି—୧ । ହାଣ ଓ ମାରଣ; ମାରିବା ଓ ହାଣିବା; Mār-hāṇ ମାରଣ ଓ ହନନ; ମରା ହଣା—1. Killing and মারাকাটা मारकाट cutting. ୨ । ଜଙ୍ଗଲ ଜମିକୁ କାଟି ହାଣି ସମତୁଲ କରିବା—2. Clearing and levelling a ground.

ମାର—ସଂ. ବି ( ମୃ. ଧାତୁ=ମରିବା+ଭାବ. ଅ )—୧ । ମୃତ୍ୟୁ—Māra 1. Death. ୨ । ( ମୃ. ଧାତୁ. ଣିଚ୍ ମାରି ଧାତୁ+ଭାବ. ଅ ) ବଧ; ମାରଣ; ହନନ; ହତ୍ୟା—2. Slaughter. ୩ । ବାଧା; ବିଘ୍ନ—3. Obstruction; obstacle; impediment. ୪ । ( ମୃ. ଧାତୁ; ଣିଚ୍. ମାରି ଧାତୁ+କର୍ତ୍ତୃ. ଅ ) କାମ; ମଦନ; ମନସିଜ—4. Cupid. ୫ । ଧାତୁରା—5. The thorn apple (Apte). ୬ । ବିନାଶକ—6. Destroyer ( Apte ). ୭ । ପ୍ରେମ; ପ୍ରଣୟ—7. Love; passion ( Apte ).

ମାରକ—ସଂ. ବିଣ. ପୁଂ (ମୃ. ଧାତୁ; ଣିଚ୍. ମାରି ଧାତୁ+କର୍ତ୍ତୃ.ଅକ)—Māraka ୧ । ଘାତକ; ହତ୍ୟାକାରୀ—1. Killing; slaughtering. ( ମାରିକା—ସ୍ତ୍ରୀ ) ୨ । ମୃତ୍ୟୁକାରକ—2. Causing death. ୩ । ବିନାଶକ—3. Destructive. ବି—୧ । ମଡ଼କ; ମାରୀ; ମହାମାରୀ—1. Plague, ୨ । ସଂକ୍ରାମକ ବ୍ୟାଧି—2. A fatal epidemic; pestilence. ୩ । ବାଜ; ବଜ୍ରପକ୍ଷୀ; ଛଞ୍ଚାଣ—3. Falcon; hawk. ୪ । ମୃତ୍ୟୁକାରକ ଗ୍ରହ—4. A planet causing a person's death. ୫ । ମୃତ୍ୟୁକାରକ ଗ୍ରହଦଶା—5. A conjunction of planets causing a person's death. ୬ । କାମଦେବ ( ହ୍ରି. ଷ )—6. Cupid. ୭ । ଘାତକ ବ୍ୟକ୍ତି—7. A murderer. ୮ । ବିନାଶକ ବ୍ୟକ୍ତି ବା ବସ୍ତୁ—8. A destroyer. ଦେ. ବି—ମୃତ୍ୟୁ ଘଟିବାର ଆନୁପୂର୍ବିକ ଅବସ୍ଥା—Circumstances resulting in a person's death.

ମାରକ ଗ୍ରହ—ସଂ. ବି—ନିଧନାଧିପତି ଗ୍ରହ; ଜାତକ ଗଣନା କ୍ରମେ ଯେଉଁ Māraka graha ଗ୍ରହର ପ୍ରାବଲ୍ୟ ହେଲେ ମନୁଷ୍ୟର ମୃତ୍ୟୁ ( ମାର୍କଗ୍ରହ—ଦେଶଜରୂପ ) ଘଟେ—A planet which causes a person's death when it is in the ascendant.

ମାରକ(କି,କେ)ଟ୍—ଗ୍ରା. ବୈଦେ. ବି ( ଇଂ. ମାର୍କେଟ୍ )—ହାଟ—Māraka(ki, ke)ṭ মার্কেট मार्केट Market.

ମାରକଣ୍ଡ—ଗ୍ରା. ( ପଦ୍ୟ )—ମାର୍କଣ୍ଡ ( ଦେଖ )—Mārkaṇḍa Mārakaṇḍa ( See ) [ ଉ—ଏହା ଜାଣିଲେକ ମାରକଣ୍ଡ ଋଷି—ପ୍ରାଚୀ. ନଳଚରିତ । ] মারকণ্ড मारकण्ड ପ୍ରାଦେ. (ପୁ ସ୍ୱ) ବି—ମାର୍କଣ୍ଡେୟ ୪ (ଦେଖ)—Mārkaṇḍeya 4. ( See )

ମାରକ(କୁ)ଣ୍ଡି—ଦେ. ବି—ବିବାହାର୍ଥୀ ବର ବିବାହ ନିମନ୍ତେ କନ୍ୟା ଗୃହକୁ ଯାତ୍ରା କରିବା ସମୟରେ ତାହା ସଙ୍ଗେ ପାଲିଙ୍କିରେ ବସି ଯିବା ବାଳକ—Māraka(ku)ṇḍi মিতবর शहवाला, सहिवाला A boy who accompanies the bridegroom in the procession to the bride's house for marriage.

ମାରକ(କୁ)ଣ୍ଡି ଯିବା—ଦେ. ବି—ବିବାହାର୍ଥୀ ବର ସଙ୍ଗେ ବାଲ-ସହଚରରୂପେ ଯିବା—To go as Māraka(ku)ṇḍi jibā মিতবর হয়ে যাওয়া a boy-companion with a bridegroom. शहवाला जाना
(ମାରକ[କୁ]ଣ୍ଡିରେ ଯିବା, ମାରକ[କୁ]ଣ୍ଡି ହୋଇ ଯିବା—ଅନ୍ୟରୂପ)

ମାରକତ—ସଂ. ବିଣ—(ମରକତ+ଅ)—୧ । ମରକତ ସମ୍ବନ୍ଧୀୟ—Mārakata 1. Relating to emerald. ୨ । ମରକତ ମଣିନିର୍ମିତ—2. Made of emerald. (ମାରକତୀ—ସ୍ତ୍ରୀ)

ମାରକ ଦଶା—ସଂ. ବି.—ଯେଉଁ ଗ୍ରହଦଶାରେ ମନୁଷ୍ୟର ମୃତ୍ୟୁ ଘଟେ—Māraka daśā A conjunction of planets which results in a person's death. (ମାରକଯୋଗ—ଅନ୍ୟରୂପ) (ମାର୍କ ଦଶା—ଦେଶଜରୂପ)

ମାରକମା—ଦେ. ବି.—ଦେବୀ ବିଶେଷ—Mārakamā Name of a popular Goddess. [ ଉ—ବାହୁଡ଼ି ସାରକମା ମାରକମା ହିଙ୍ଗୁଳା—ପୀତାମ୍ବର. ନୃସିଂହପୁରାଣ ।]

ମାରକା—ବୈଦେ. ବି—(ଇଂ ମାର୍କ୍)—ମାର୍କା (ଦେଖ) Mārakā মার্কা मारका Mārkā (See)

ମାରକାଧିପ—ସଂ. ବି—ନିଧନାଧିପତି; ମନୁଷ୍ୟର ଜାତକରେ ମୃତ୍ୟୁ ଘଟାଇବା ଗ୍ରହ—A planet which, on account of its position in a person's horoscope, causes his death. Mārakādhipa
ମାରକାଧିପତି }
ମାରକାଧୀଶ } —ଅନ୍ୟରୂପ

ମାରଗ (ଇତ୍ୟାଦି)—ଗ୍ରା. (ପଦ୍ୟ)—ବି—(ସଂ. ମାର୍ଗ)—ମାର୍ଗ ଇତ୍ୟାଦି (ଦେଖ)—Mārga etc. (See) Māraga (etc) মারগ मारग

ମାରଗଣ—ଗ୍ରା. (ପଦ୍ୟ)—ବି.—ମାର୍ଗଣ; ଶର—Māragaṇa মারগণ मारगन Arrow; dart.

[ ଉ—ବଜାରେ ମାରଗଣ ଗଣନ୍ତୁ ସେ ଅଟେ । କୃଷ୍ଣବିହ. ମହାଭାରତ ବନ ।]

ମାରଗଡ—ଦେ. ବଣ—ମାଡ଼ ବା ପ୍ରହାରଦ୍ୱାରା ବଶୀଭୂତ—Brought
Māragata under control by beating.
মারদিয়ে একতার মারকর অখতিয়ার করনা
[ଉ—ବଣର ମାକଡ଼ ସବେ, ମାରଗଡ ହୋଇ ବଗଡ ହେଲେ ସମ୍ଭ୍ରମ କରନ୍ତି କେତେ । ଛଗ ।]

ମାରଚ—ବୈଦେ. ବ. (ଇଂ. ମାର୍ଚ୍)—ଇଂରାଜି ଗଣନାରେ ତୃତୀୟ ମାସ;
Mārach ମାର୍ଚ ମାସ—The month of March.
মারচ मारिच

ମାରଜିତ୍—ସ. ବ—(ମାର=କନ୍ଦର୍ପ+ଜି ଧାତୁ=ଜୟ କରିବା—
Mārajit କର୍ତ୍ତି. କ୍ୱିପ୍)—୧ । ମହାଦେବ; ଶିବ—1. Siba.
୨ । ବୁଦ୍ଧଦେବ—2. The great Buddha.

ମାରଣ—ସ. ବ—(ମୃ ଧାତୁ ଣିଚ୍=ମାର ଧାତୁ+ଭାବ. ଅନ)—
Mārana ୧ । ବଧ; ହନନ; ହତ୍ୟା—1. Killing; slaughter; murder. [ ଉ—ମାର ମାରଣକୁ କାରଣ ବର ଭୂଷ—ପ୍ରାଚୀନ ସଙ୍ଗୀତ ।] ୨ । (ତନ୍ତ୍ର) ଶତ୍ରୁର ମୃତ୍ୟୁ ଘଟାଇବା ପାଇଁ ତାନ୍ତ୍ରିକ ପ୍ରୟୋଗବିଶେଷ; ତାନ୍ତ୍ରିକ ଅଭିଚାର ବିଶେଷ—2. Tantric spells or charm employed to kill an enemy. ୩ । ଆକ୍ରମଣ; ଅତ୍ୟାଚାର—3. Oppression; attack. ୪ । (ବୈଦ୍ୟଶାସ୍ତ୍ର) ସ୍ୱର୍ଣ୍ଣ ଆଦିକୁ ଭସ୍ମରେ ପରିଣତ କରିବା ପ୍ରକ୍ରିୟା—4. The process of oxidizing gold etc according to the Hindu medical science; calcination; oxidization. ୫ । ବିଷ ବିଶେଷ—5. A kind of poison(Apte).

ମାରଣ ରସ—ଦେ. ବି—୧ । ରସ ବା ଧାତୁ ଆଦିର ଭସ୍ମୀକରଣ—
Mārana rasa 1. The process of oxidizing or calcination of metals. ୨ । ବୀର ରସ—2. The sentiment of heroism in literature. [ଉ—ହେଲେ ଉଠିଲେ ମାରଣ ରସହେଲେ, ପ୍ରବୋଧନରେ ବି ମଞ୍ଜୁଳେ । ଉଷ. ବୈଦେହୀଶବିଳାସ ।]

ମାରଣା—ଦେ. ବଣ. ପୁଂ ଓ ସ୍ତ୍ରୀ (ସ. ମାରଣ)—୧ । (ପଶୁ) ଯେ ମାରେ;
Māranā ଯେ ହାଣେ; ହାଣଣା—1. An animal given
[ମାର(ରୁ)ଣୀ— ଅନ୍ୟରୂପ) to goring; vicious (beast).
মারকুটে [ ଉ—କମଳାକୁ ଗୋଟାଏ ମାରଣା ବଳଦ ହାଣିବାକୁ
मरकहा; मरखा; मरखन्ना ଗୋଡ଼ାଇଲା । ଫକୀରମୋହନ. ଲେଖକ ।] ୨ । ଘାତକ—2. Slaughtering;
মারাত্মক killing; murdering. ୩ । ବିଶ୍ୱାସଘାତକ
मारक —3. Faithless; perfidious; betraying.
বাটপাড়, ঠেঙাড়ে ବି—୧ । ଦସ୍ୟୁ; ଡକାଏତ; ଯେଉଁମାନେ
डाकू; डकैत; बटमार ମନୁଷ୍ୟଙ୍କୁ ମାରି ଦ୍ରବ୍ୟ ଅପହରଣ କରନ୍ତି;
যে মারে ତାଙ୍କୁ—1. Dacoit. ୨ । ବୈଦ୍ୟଶାସ୍ତ୍ରୋକ୍ତ

मारक ଉପାୟରେ ଧାତୁ ଦ୍ରବ୍ୟାଦିକୁ ମାରଣ କରିବା ବ୍ୟକ୍ତି—
2. A person who oxidizes metals etc by Hindu medical process. ଗ୍ରା. ବ—ମହାରଣା; କାରିଗର; ବଢ଼େଇ, ପଥୁରିଆ, କମାର ଆଦି—Artisans (e. g. carpenters, ironsmiths, stone-masons).

ମାର(ରୁ, ରେ)ଣୀ—ଦେ. ବ (ସ. ମାରଣ)—ମାରଣ; ହତ୍ୟା; ବଧ—
Māra(ru, re)ni Slaughter. ( ଯଥା—ଅମ
বধ मारनी ଠାଆରେ ଅଛ କଂସମାରଣୀ ଯାହା ହେବ । )

ମାରଣ୍ଡ—ସ. ବ—୧ । ସର୍ପାଣ୍ଡ—1. Serpent's egg. ୨ । ପଥ;
Māranda ପନ୍ଥା—2. Road. ୩ । ଗୋମୟମଣ୍ଡଳ; ଗୋବର ଲିପା ହୋଇଥିବା ସ୍ଥାନ—3. A patch of ground which has been smeared over with cowdung.

ମାରତଣ୍ଡ—ଗ୍ରା (ପଦ୍ୟ) ବ—ମାର୍ତ୍ତଣ୍ଡ; ସୂର୍ଯ୍ୟ—The sun. [ ଉ
Māratanda —ଭୁବେରଠାରୁ ଜଳଜଳଜକୁ ମୀନ ସମ୍ପଦ
মারতণ্ড मारतण्ड ମାରତଣ୍ଡ । କବିସୂର୍ଯ୍ୟ. ସଙ୍ଗୀତ । ]

ମାରତୋଡ଼—ପ୍ରାଦେ (ଉତ୍ତରଭାଷା) ବ (ସହରର ଶବ୍ଦ)—ମାଡ଼;
Mārator ମାଡ଼ପିଟ—Beating.

ମାର(ରା)ତ୍ମକ—ଗ୍ରା. ବଣ (ସ. ମାରାତ୍ମକ)—ସାଂଘାତିକ—
Māra(rā)twaka Fatal.

ମାରଥା—ଦେ. ବଣ (ସ. ମହାରଥ)—ଖଣ୍ଡାୟତ ଓ କ୍ଷତ୍ରିୟଙ୍କ
Mārathā ବଂଶୋପାଧି ବିଶେଷ—Name of a family-
(ମାର୍ଥା—ଅନ୍ୟରୂପ) title of Kshatriyas.

ମାରଦା—ପ୍ରାଦେ (ଗଡ଼ଜାତ) ବ—ଥଳିଆଟୁ (ଦେଖ)—
Māradā (ମାରଦାଆଟୁ—ଅନ୍ୟରୂପ) Thaliātu (See)

ମାରଦା ଲଇ—ପ୍ରାଦେ (ଗଡ଼ଜାତ) ବ—ଲଇ ଦେବା ଯୋଗ୍ୟ ଏକ-
Māradā lai ପ୍ରକାର ଲତା—A kind of creeper, capable of being used as a tying string. [ ଉ—ଏହାର ପତ୍ର ଶିଆଳି ପତ୍ର ପରି, ମାତ୍ର ଗୋଟିଏ ଥାଏ ।]

ମାରବା—ପ୍ରାଦେ (ଉତ୍ତରଭାଷା) କ୍ରି—ମାରିବା—
Mārabā To beat.

ମାରଲସ—ପ୍ରାଦେ (ଉତ୍ତରଭାଷା) କ୍ରି—ମାରିବା କ୍ରିୟାର ଅତୀତକାଳ ଅନ୍ୟ
Māralas ପୁରୁଷ ବହୁବଚନ ରୂପ—ସେମାନେ ମାରିଲେ—(they) Did beat. [ ଉ—ହିଁସ୍ମନ୍ ମାରଲସ =ସେମାନେ ମାରିଲେ । ]

ମାରଲି—ପ୍ରାଦେ (ଉତ୍ତରଭାଷା) କ୍ରି (ମାରିବାର ଅନଦ୍ୟତନ ଅତୀତ
Mārali ରୂପ)—(ମୁଁ, ତୁ, ସେ) ପ୍ରହାର କଲି—(I, you, he) Did beat (past tense form of the verb to beat).

ମାରହଟା—ଦେ. ବଣ. ପୁଂ--ଅନ୍ୟ ବ୍ୟକ୍ତିଙ୍କୁ ବା ଶିଶୁଙ୍କୁ ମାଡ଼ ମାରିବାରେ
Mārahatā ଅଭ୍ୟସ୍ତ (ଶିଶୁ)—(a child) Habituated to beating others;
ମାରହାଡ, ମାରହାଟିଆ, ମାରହାଟୁଆ } ଅନ୍ୟରୂପ given to beating others.

(ମାରହୋତା, ମାରହାତେର, ମାରହାଭୂଷା—ସ୍ତ୍ରୀ)
মারহাত, মারকুটিয়া, মারকুটে **मारहता**

ମାରା—ଦେ. ବଣ ( ସଂ. ମୃ ଧାତୁ )—୧ । ନଷ୍ଟ—1. Spoiled. ୨ । Mārā ସ୍ପର୍ଶଦୂଷିତ; ମାରୁ—2. Polluted by touch; মারা befouled. ୩ । ବୃଥାରେ ଯାପିତ ( ସମୟ )—**मारा** 3. Wasted ( time ). ବ—କ୍ଷତି; ଲୋକସାନ মারা Loss. [ ଦ୍ର—କୌଣସି ଖାଦ୍ୟ ଦ୍ରବ୍ୟକୁ ବଜାଗାସ୍ତ **घटी** ବ୍ୟକ୍ତି ଛୁଇଁଲେ ବା ଅଇଁଠା କଲେ, କୁକୁରଅଦ ଜୀବ ସେଥିରେ ମୁହଁ ଲଗାଇଲେ, ଦେବତାଙ୍କ ଅମଣିଆକୁ କେହି ଛୁଇଁଲେ, ପାଗହାଣ୍ଡିକୁ କେହି ଛୁଇଁ ଦେଲେ, ଉଚ୍ଚ ଜାତିର ବ୍ୟକ୍ତିଙ୍କୁ ଅସ୍ପୃଶ୍ୟ ଜାତି ଛୁଇଁ ଦେଲେ, ଲୁଗା ପିନ୍ଧି ଝାଡ଼ା ଫେରିଗଲେ, ରଜସ୍ୱଳା ସ୍ତ୍ରୀକୁ ଛୁଇଁ ଦେଲେ, ଦେବତାଙ୍କ ପାଇଁ ଅଭିପ୍ରେତ ଫୁଲ ବା ମାଳକୁ ବ୍ୟବହାର କଲେ ଉକ୍ତ ବସ୍ତୁ ମାରା ବା ଦୂଷିତ ହୁଏ । ] ପ୍ରାଦେ ( ଯାଜପୁର ) ବଣ—ଋତୁମତୀ ହେବା ଯୋଗୁଁ ଅସ୍ପୃଶ୍ୟା ( ସ୍ତ୍ରୀ )—Menstruated ( woman ).

ମାରା କରିବା—ଦେ. କ୍ରି—୧ । କୌଣସି ଶୁଦ୍ଧ ବସ୍ତୁକୁ ସ୍ପର୍ଶ ବା ଭୋଗ-Mārā karibā ଆଦିଦ୍ୱାରା ଦୂଷିତ କରିବା—1. To pollute মারাকরা a thing by touch, enjoyment etc. **मारा करना** ୨ । କୌଣସି କାର୍ଯ୍ୟକୁ ନଷ୍ଟ କରିବା—2. To spoil a thing. ୩ । କ୍ଷତିଗ୍ରସ୍ତ କରାଇବା—3. To cause loss. ୪ । ( ସମୟକୁ ) ବୃଥାରେ କଟାଇବା—4. To waste ( time ).

ମାରାଗ—ଦେ. ବ ( ସଂ. ମରକତ )—ମରକତ ମଣି—Emerald. Mārāga [ ଉ—ଘଲଙ୍କେ ସ୍ୱାଗ ମାରାଗେ ଏହି ଖଞ୍ଜିଥିଲେ । মরকত **मरकत** ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ବଣ—ମରକତ ମଣିର ବର୍ଣ୍ଣ ବିଶିଷ୍ଟ—Of emerald green colour.

ମାରାତ୍ମକ—ସଂ. ବଣ. ପୁଂ ( ମାର+ଆତ୍ମନ୍+କ )—ପ୍ରାଣନାଶକ; Mārātmaka ସାଂଘାତିକ; ଯାହା ମୃତ୍ୟୁ ଘଟାଏ—Fatal; (ମାରାତ୍ମିକା—ସ୍ତ୍ରୀ) mortal; deadly.

ମାରା ପଡ଼ିବା—ଦେ. କ୍ରି—୧ । ( ସ୍ୱାଭାବିକରୂପେ ) ମରିବା—Mārā paṛibā 1 To die. ୨ । ନିହତ ହେବା—মারাপড়া **मारा पडना** 2. To be killed.

ମାରା ଯି(ହେ)ବା—ଦେ. କ୍ରି—୧ । ଅସ୍ପୃଶ୍ୟ ବା ଅପବିତ୍ର ବା ଦୂଷିତ Mārā ji(he)bā ହେବା—1. To become polluted মারা যাওয়া or untouchable. ୨ । (ସମୟ ବା ଧନ) କ୍ଷତି ହେବା—2. (time or money) To be lost. ୩ । (ବଙ୍ଗଳାରୁ ଅନୁକୃତ; ବ. ମାରା ଯାଓୟା) ସ୍ୱାଭାବିକ କାରଣରୁ ମୃତ ହେବା—3. To die.

ମାରାରେ ପଡ଼ିବା—ଦେ. କ୍ରି—କ୍ଷତିଗ୍ରସ୍ତ ହେବା—Mārāre paṛibā To suffer loss. ক্ষতিগ্রস্ত হওয়া **घटीमे पडना**

ମାରି—ସଂ. ବ (ମୃ ଧାତୁ ଣିଚ୍ ମାରି ଧାତୁ+ଭାବ. ଇ)—ମାଡ଼କ; ସଂକ୍ରାମକ Māri ରୋଗଜନିତ ଲୋକକ୍ଷୟ; ମହାମାରୀ—Plague; pestilence; a mortal epidemic.

ମାରି ଆଣିବା—ଦେ. କ୍ରି—୧ । କୌଣସି ଜୀବକୁ ବଧ କରି ଗୃହକୁ Māri āṇibā ଆଣିବା—1. To bring an animal মেরে আনা home after killing it. (ଉ—ପଧାନ **मारकर लाना** ଯାଇଛି ଧାନ ବିଲକୁ, ମାରି ଆଣି ଦବ ଶଙ୍ଖଚିଲକୁ—ଶିଶୁ ଗୀତ ।) ୨ । ଠକାଇ କରି ହସ୍ତଗତ କରିବା—2. To take a thing fraudulently.

ମାରି ଆସିବା—ଦେ. କ୍ରି—୧ । କୌଣସି ଦେଶକୁ ବା ବ୍ୟକ୍ତିକୁ ଜୟ Māri āsibā କରି ରଣସ୍ଥାନରୁ ଫେରିବା—1. To return মেরে আসা after winning. ୨ । ଦେଶ ପର୍ଯ୍ୟଟନ ପ୍ରଭୃତି **मारकर आना** ସ୍ଥଗିତକୁ ବାହୁଡ଼ି ଆସିବା—2. To return after a long journey. ୩ । କୌଣସିମତେ ସମୟ ଯାପନ କରିବା—3. To spend time somehow.

ମାରି ଖାଇବା—ଦେ. କ୍ରି (ବ୍ୟଙ୍ଗାର୍ଥ)—୧ । ଅଶୋଭା ଦେଖାଯିବା—Māri khāibā 1. To look very odd. (ଉ—মানান ଠାକୁଆ ଗାଲକୁ ବନ ହଳଦୀ ମାରି ଖାଉଛି ସିନା—ଚଳିତ ।) **रंग लाना** ୨ । କୌଣସି ଜୀବକୁ ହତ୍ୟା କରି ତା ମାଂସକୁ মেরে খাওয়া ଖାଇବା—2. To kill an animal and **मारकर खाना** eat its meat.

ମାରି ଗୋଡ଼ା(ଡ଼େ)ଇବା—ଦେ. କ୍ରି—୧ । ପ୍ରହାର କରିବାକୁ ଆକ୍ରମଣ Māri gorḍā(rḍe)ibā ବା ପଶ୍ଚାଦ୍ଧାବନ କରିବା—1. To মারতে দৌড়া chase some one for attacking him. **मारने दौडना** ୨ । (ଲକ୍ଷଣାର୍ଥ) ଭୟ ଦେଖାଇବା—2. To threaten. ୩ । (ଲକ୍ଷଣାର୍ଥ) ଖାଇ ଗୋଡ଼ାଇବା (ଦେଖ)—3. Khāi gorḍāibā (See)

ମାରିଚିକ—ସଂ. ବଣ (ମରିଚ+ଇକ)—ମରିଚ ମିଶ୍ରିତ—Seasoned Mārichika with black pepper; peppered.

ମାରିତ—ସଂ ବଣ ( ମୃ ଧାତୁ ଣିଚ=ମାରି ଧାତୁ+କର୍ମ. ତ )—Mārita ୧ । ବିନାଶିତ—1. Killed; destroyed. ୨ । ଆହତ—2. Wounded. ୩ । (ବୈଦ୍ୟକ) (ଧାତୁ ଆଦି) ଭସ୍ମୀକୃତ—3. Oxidized; reduced to ashes; calcined. ୪ । (ବୈଦ୍ୟକ) ଜାରିତ—4. (medical) Dessolved; reduced to an applicable form.

ମାରି ଦେବା—ଦେ. କ୍ରି—୧ । ହତ୍ୟା କରିବା; ବଧ କରିବା—Māri debā 1. To kill. ୨ । ବିନାଶ କରିବା—2. To মেরে দেওয়া exterminate; to destroy. (ଉ—ଇନ୍ଦ୍ର **मार देना** ଝିପିଝିପି କରିଣ ଜଳ ବୃଷ୍ଟି, ମାରି ଦେଲେ ପୃଥ୍ୱୀରେ ଥିବାର ଧୂଳିଟି । କୃଷ୍ଣସିଂ. ମହାଭାରତ ବନ ।) ୩ । ଚଞ୍ଚଳ ଚଞ୍ଚଳ ଭୋଜନ କରିବା—3. To eat briskly. (ଉ—ଅଣାଇ ନାମ ନ ଖାଏ ଭାତ, ମାରି ଦଉଥାଏ

ପିନ୍ଧାଣ ସାଡ଼—ଉଗ ।) [ଦ୍ର—ଏହିପରି ପେଟେ ମାରି ଦେବା, ଢୋଲେ ମାରି ଦେବା, ଥାଳେ ଭାତ ମାରି ଦେବା, କଂସାଏ ପଖାଳ ମାରି ଦେବା ଇତ୍ୟାଦି ହୁଏ ।] ୪ । (କୌଣସି କାର୍ଯ୍ୟ) ଶୀଘ୍ର ସମାଧା କରିବା—4. To accomplish a thing briskly; to hurry up ୫ । ଚଞ୍ଚଳ କୌଣସି କଥା ଉଚ୍ଚାରଣ କରିବା—5. To speak briskly. ୬ । ଆଗ ପଛ ନ ବିଚାରି କଥା ପଦେ କହି ଦେବା—6. To make an offhand remark. (ଉ—ହାଣ୍ଡିଶାଳେ ଭୁଗୁଥିଲ, ପଦେ ଦୁଇ ପଦ ମାରି ଦଅନ୍ତି ଲୋ ! ସାଙ୍ଗେ ସାଙ୍ଗେ ଜଗୁଥିଲ—ଉଗ)

ମାରି ନେବା—ଦେ, କ୍ରି—ବଳ ବା କୌଶଳ ପୂର୍ବକ କୌଣସି ପଦାର୍ଥକୁ Māri nebā ନେଇଯିବା; ଛଡ଼ାଇ ନେବା—To take away মেরে লওয়া a thing by force or artifice; to मारलेना snatch off. (ଉ—ଅନ୍ତରୀକ୍ଷେ ଶ୍ୟେନ ପକ୍ଷୀ ଭୁଜ ନେଲା ମାରି । ରାଧାନାଥ. ବେଣୀ ସଂହାର ।)

ମାରି ପକା(କେ)ଇବା—ଦେ. କ୍ରି—୧ । ହତ୍ୟା କରିବା; ବଧ କରିବା—Māri pakā(ke)ibā 1. To kill; to murder. ୨ । মেরে ফেলা ଖାଦ୍ୟ ଓ ଯତ୍ନ ଅଭାବରୁ (କୌଣସି ଜୀବକୁ) ଶୁଖାଇ ମରଣା- मार डालना ପନ୍ନ କରିବା—2. To starve and neglect an animal to the point of death. (ଯଥା—ନିର୍ଦ୍ଦୟ ବାପ ପିଲାଗୁଡ଼ାକୁ ଖାଇବାକୁ ନ ଦେଇ ମାରି ପକାଇଲା ) ୩ । (ହସାଇ ହସାଇ ବା କନ୍ଦାଇ କନ୍ଦାଇ) ଅକ୍ରାନ୍ତ ବା ବେଦମ୍ କରିବା—3. To cause a person to laugh or weep to bursting; to cause a person to split his sides with laughter, weeping etc. (ଉ—ଧନ୍ଦାଥି ଧମକ ଧମେଇଲା ! ଖାଉଁଳି ନାକରେ ଲାଉଁଳି ଗୁଣା, ମାରି ତ ପକେଇଲା—ଉଗ ।) ୪। (ବ୍ୟଙ୍ଗ) ଅତି ଅସୁନ୍ଦର ଦେଖାଯିବା—4. (ironical) To look very odd or ugly.

ମାରିବା—ଦେ. କ୍ରି. ( ସଂ. ମୃ ଧାତୁ ଣିଚ୍, ମାର ଧାତୁ )—୧ । ହତ୍ୟା Māribā କରିବା; ପ୍ରାଣନାଶ କରିବା; ବଧ କରିବା—1. To [ମରା(ରେ)ଇବା—ଣିଜନ୍ତରୂପ] kill; to murder; to মারা मारना slaughter. (ଯଥା—ମାଛ ମାରିବା; ମନୁଷ୍ୟ ମାରିବା ।) ୨ । ଅଘାତ କରିବା; ପ୍ରହାର କରିବା; ବାଡ଼େଇବା—2. To strike; to beat. (ଯଥା—ବାଧା ମାରିବା, ବେତ ମାରିବା, ନାଡ଼ ମାରିବା, ଗୋଇଠା ମାରିବା ।) [ଦ୍ର—ପ୍ରହାର କରିବାର ସାଧାରଣ ପିଟିବା ଅର୍ଥରେ ମାରିବା ଶବ୍ଦ ପ୍ରୟୋଗ କରାଯାଏ, ମଧ୍ୟ ଯେଉଁ ପ୍ରଣାଳୀରେ ଯେଉଁ ଅଙ୍ଗ ବା ଯନ୍ତ୍ର ବ୍ୟବହାର ପୂର୍ବକ ପ୍ରହାର କରାଯାଏ ତତ୍ ଶବ୍ଦ ପ୍ରୟୋଗ କରି ମାରିବା ଶବ୍ଦ ବ୍ୟବହୃତ ହୁଏ । ପୁନଶ୍ଚ ଭୂମି ଅର୍ଥରେ ମୁଣ୍ଡକୁ ଅଘାତ କରିବା ଅର୍ଥରେ ମୁଣ୍ଡ ଶବ୍ଦ ପରେ ମାରିବା ଶବ୍ଦ ପ୍ରୟୋଗ କରାଯାଏ, ଯଥା—ମୁଣ୍ଡ ମାରିବା ।] ୩ । ବିନାଶ କରିବା; ଲୋପ କରିବା—3. To destroy. (ଯଥା—ଜଡ଼ ମାରିବା, ତେର ମାରିବା, ଜାଦୁ ମାରିବା, ଉକୁଣି ମାରିବା ।) ୪ । ବାଡ଼େଇ କରି ପ୍ରବିଷ୍ଟ କରାଇବା—4. To drive (e.g. a nail into the wall) by hammering. (ଯଥା—କଣ୍ଟା ମାରିବା; କିଲା ମାରିବା ।) ୫ । ସଲଗ୍ନ କରାଇବା; ଲଗାଇବା—5. To attach; to stick; to apply. (ଯଥା—କାନ୍ଥରେ ଛବି ମାରିବା; ଲଫାପାରେ ଡାକ ଟିକଟ୍ ମାରିବା ।) ୬ । ଛାପ ବସାଇବା—6. To stamp to seal. [ ଉ—କୋମଳ କପୋଳେ ଦାରୁଣ କଷଣ ମାରଛି ନିଜ ମୁଦ୍ରିକା । ରାଧାନାଥ. ପାର୍ବତୀ ।] ୭ । ଶୁଖାଇବା; କୌଣସି ବସ୍ତୁରେ ଥିବା ଜଳୀୟାଂଶକୁ ଉତ୍ତାପଦ୍ୱାରା ନିଃଶେଷିତ କରାଇବା—7. To dry up (the water from a thing); to exhaust water from a thing by drying it in the sun or over fire. (ଯଥା—ଭଅଣରୁ ପାଣି ମାରିବା; ଲହୁଣୀ ମାରିବା ) ୮ । ହରଣ କରିବା; କାଢ଼ିନେବା—8. To take away; to snatch off; to rob. (ଯଥା—ଡକାଇତମାନେ ମୋ ଠାରୁ ଟଙ୍କା କଉଡ଼ିତକ ମାରିଲେ ।) ୯ । ଅତ୍ମସାତ୍ କରିବା; (ତହବିଲ ଆଦି) ତୋସରପ କରିବା—9. To misappropriate. (ଯଥା—ତହବିଲ ମାରିବା ।) ୧୦ । ବାଣ ବନ୍ଧୁକ ଆଦି ଫୁଟାଇବା—10. To fire (a gun or firework). (ଯଥା—ବାଣ ମାରିବା; ବନ୍ଧୁକ ମାରିବା ।) ୧୧ । ନିକ୍ଷେପ କରିବା—11. To throw. (ଯଥା—ବାଟୁଳି ମାରିବା; ଟେକା ମାରିବା ।) ୧୨ । ଲମ୍ବିଥିବା ବସ୍ତ୍ର ଆଦି ଖୋସି ଦେବା—12. To tuck up. (ଯଥା—କଚ୍ଛା ମାରିବା; ଖୋସଣି ମାରିବା; ଫେର କାନି ମାରିବା ।) ୧୩ । କୌଣସି କାର୍ଯ୍ୟ ବା କୌଣସି ଫଳ ଉତ୍ପାଦନ କରିବା—13. To do a thing with certain result. (ଯଥା—ଦଉଡ଼ି ମାରିବା, ଡୁ ମାରିବା, ମୁଣ୍ଡିଆ ମାରିବା; ତାଳ ମାରିବା, ବାଜି ମାରିବା ।) ୧୪ । ଅଗ୍ନି ଉତ୍ପାଦନାର୍ଥ ଘଷିବା—14. To strike (e.g. a match) for producing fire. (ଯଥା—ଦିଆସିଲି ମାରିବା, ଚକମକି ମାରିବା ।) ୧୫ । କୌଣସି କାର୍ଯ୍ୟ ସମ୍ପାଦନ କରିବା—15. To perform a special act. (ଯଥା—ଡୁବ ମାରିବା, ଗୋଡା ମାରିବା, ହାଇ ମାରିବା, ଢୁଅଁ ମାରିବା; ଡରି ମାରିବା ।) ୧୬ । (ସକର୍ମକ) ଉଚ୍ଚୈଃସ୍ୱରରେ ଉଚ୍ଚାରଣ କରିବା; ଉଚ୍ଚ ଶବ୍ଦ କରିବା—16. To utter loudly; to make a loud sound. (ଯଥା—ଡାକ ମାରିବା, କୁହାଟ ମାରିବା ।) ୧୭ । (ସକର୍ମକ) ଚଞ୍ଚଳ ବା ପେଟୁ ଭାବରେ ଖାଇବା—17. To eat greedily. (ଯଥା—ସେ କଂସାଏ ପଖାଳ

ମାର ଖେଳବାକୁ ଚାଲିଗଲା ।) ୧୮ । (ସକର୍ମକ) କୌଣସି ପ୍ରବୃତ୍ତିକୁ ବା. କ୍ଷୁଧା ଆଦିର ବେଗକୁ ନିରୋଧ କରିବା—18. To bring under control; to restrain. [ଦ୍ର—ଲୁବ୍ଧକ ପବନ ଆହାର କରୁଅଛି, ଶୋଷକୁ ମାରିଦେଇ ସେ ପାଣି ମୁରୁଛି । କୃଷ୍ଣସିଂହ. ମହାଭାରତ. ଶାନ୍ତି ।] ୧୯ । (ସକର୍ମକ) ଦେହରେ ବୋଳିବା—19. To anoint, (ଯଥା—ଦେହରେ ତେଲ ମାରିବା) ୨୦ । (ଅକର୍ମକ) ପୀଡ଼ା ଦେବା; ପୀଡ଼ାଯୁକ୍ତ କରିବା—20. To be ailing. (ଯଥା—ପେଟକୁ ମାରିବା, ଖିଲକୁ ମାରିବା, କଙ୍କାଳକୁ ମାରିବା ) ୨୧ । (ସକର୍ମକ) ପ୍ରସ୍ତୁତ କରିବା—21. To prepare; to manufacture. (ଯଥା—ଘିଅ ମାରିବା; ଲୁଣ ମାରିବା ।) ୨୨ । (ସକର୍ମକ) ଭୂମିରେ ପୋତି କରି ଠିଆ କରାଇବା—22. To set up on the ground. (ଯଥା—ଯନ୍ତ୍ର ମାରିବା, ପତାକା ମାରିବା ) ୨୩ । (ସକର୍ମକ) ବେଗପୂର୍ବକ କୌଣସି ସ୍ଥାନରୁ ଗତି କରିବା—23. To move rapidly. ( ଯଥା—ଘୋଡ଼ା ମାରି ଚାଲିଯିବା ) ୨୪ । (ସକର୍ମକ) କୌଣସି ଦ୍ରବ୍ୟର ଉପଯୁକ୍ତ ବ୍ୟବହାର କରିବା—24. To apply a thing to its proper use. (ଯଥା—କଲମ ମାରିବା, ବ୍ରୁସ ମାରିବା) ୨୫। (ଅକର୍ମକ ଓ ସକର୍ମକ) କୌଣସି ପ୍ରକାରେ ସମୟ ଯାପନ କରିବା; କାଳ କାଟିବା-25. To spend one's time any how; to while away. [ ଉ—ମାରି ମାରି ଗଲା କାଳକ, ଅଭିରହିଗଲା ଫାଳକ । ଢଗ । ] ୨୬ । (ସକର୍ମକ) ଦାଢ଼ୁଆ ଅସ୍ତ୍ରଦ୍ୱାରା ହାଣିବା—26. To cut with a sharp weapon. ( ଯଥା—ବାଉଁଶର ଗଣ୍ଠି ମାରିବା ) ୨୭ । (ସକର୍ମକ, ଗୀଘ୍ରତାବୋଧକ) ଅଙ୍କିତ କରିବା; ଲେଖିବା—27. To write; to draw (ଯଥା—ଗାର ମାରିବା, ଦସ୍ତଖତ ମାରିବା ) ୨୮ । (ସକର୍ମକ) ରନ୍ଦା ଆଦି ଯନ୍ତ୍ରକୁ ଚାଳିତ କରିବା—28. To move; to ply, (an instrument). ( ଯଥା—କାଠରେ ରନ୍ଦା ମାରିବା) ୨୯ । (ସକର୍ମକ) ଖୋସି କରି ରଖିବା; ବାନ୍ଧି ରଖିବା; ଗୁଞ୍ଜିବା—29. To keep tied up or tucked up. (ଯଥା—ଅଣ୍ଟାରେ ଟଙ୍କା ପଇସା ମାରିବା) ୩୦ । (ସକର୍ମକ) ଆୟୁର୍ବେଦୋକ୍ତମତେ ଧାତୁ ଆଦି ମାରଣ କରିବା ବା ଭସ୍ମ କରିବା—30. To oxydize metals etc. by the Āyurbedic process. (ଯଥା—ସୁନା ମାରିବା, ପାରା ମାରିବା ) ୩୧ । (ଅକର୍ମକ) ପ୍ରକଟିତ ହେବା; ଜ୍ୟୋତିଃ ପ୍ରକାଶ କରିବା—30. To flash. ( ଯଥା—ବିଜୁଳି ମାରିବା; ଘଡ଼ଘଡି ମାରିବା) ୩୨ । (ସକର୍ମକ) ପଶୁ ପ୍ରଭୃତିଙ୍କ ହାତରେ ଚାପୁଡ଼ାଇବା—32. To pat. [ ଉ—ତୁରୁକାର କରି ଘୋଡ଼ାକୁ ମାରି କରି, ଦେଲେ ହରି ଫିଙ୍ଗାଇ ଦଉଡ଼ି ବେକର । କୃଷ୍ଣସିଂହ. ମହାଭାରତ ଦ୍ରୋଣ । ] ୩୩ । (ଅକର୍ମକ) କାଟିବା; ବାଧିବା—33. To affect painfully. ( ଯଥା—ଭେଣ୍ଡୁଅ ମାସିଆ ଖରା ମାରୁଛି) ୩୪ । (ସକର୍ମକ) ଲେଖା ହୋଇଥିବା ବିଷୟ ଉପରେ ଗାର ପକାଇବା; କାଳି ଦେବା—34. To score through a writing. ୩୫ । (ସକର୍ମକ) ଅନ୍ଧାରରେ ବା ପାଣି ଭିତରେ ( ଯେଉଁଠାରେ ଆଖିକୁ ଦେଖାଯାଏ ନାହିଁ ସେଠା ) ଭୂତଳକୁ ଜାଣିବା ପାଇଁ ହାତକୁ ବା ଗୋଡ଼କୁ ବା ହାତରେ ଥିବା ଯଷ୍ଟିକୁ ଭୂମିରେ ଲଗାଇବା—35. To feel one's way with the help of one's hands, legs or stick.) ୩୬ । (ସକର୍ମକ) କୌଣସି ଦ୍ରବ୍ୟ ପ୍ରୟୋଗପୂର୍ବକ ନିଷେଧ ବା ଅନ୍ୟ ସୂଚନା କରିବା ବା ଠାରିବା—36. To covertly indicate or hint by the help of some article. ( ଉ—ଧାତାବଣ୍ଟୁ ପ୍ରୀତି ଘଟିଲେ ଜନ୍ମିତ ବହି ତେଲାଞ୍ଚଳ ମାରିବାର—କବିସୂର୍ଯ୍ୟ. ବଳାକର ଚମ୍ପୂ ଧ ଗୀତ ।) ୩୭ । (ସକର୍ମକ) ପ୍ରୟୋଗ କରିବା; ବ୍ୟବହାର କରିବା; ବ୍ୟବହାରରେ ଲଗାଇବା—37. To apply; to bring into use. (ଉ—ନିତମାଇଲ ! କାହିଁ କଥା ନେଇ କାହିଁ ମାଇଲ—ଢଗ) । ୩୮ । (ସକର୍ମକ) ଦେହରେ ସଂଯୁକ୍ତ କରିବା; ଭରିବା—38. To put on the body. (ଯଥା—ମୁଣ୍ଡରେ ଟାହ୍ୟା ମାରିବା; ଟୋପା ମାରିବା) । ୩୯ । (ସକର୍ମକ) ମନକୁ ବିରସ କରିବା—39. To sadden. (ଯଥା—ସେ ମନ ମାରିକରି ବସିଛି) । ୪୦ । (ସକର୍ମକ) କଣ୍ଡୁ ଉପଶାନ୍ତ କରିବା—40. To satiate ( itching)(ଯଥା—କଣ୍ଡୁ ମାରିବା) । ୪୧ । (ସକର୍ମକ) ଜଳ ସିକ୍ତକରିବା;ପାଣି ଛିଞ୍ଚାଡିବା; ଛାଟିବା—41. To splash or sprinkle with water. (ଯଥା—ଆଖିରେ ପ୍ରାତଃଦିନ ଥଣ୍ଡା ଚଳା ପାଣି ମାରିଲେ ଦୃଷ୍ଟିଶକ୍ତି ଭଲ ରହେ; (ଉ—ନିଆମୀ ନାନୀ ! ବାହାରେ ମାରୁଛି ଗୋବର ପାଣି—ଢଗ) । ୪୨ । (ସକର୍ମକ) (ଜାତି) ନଷ୍ଟ କରିବା; ଅପକୃଷ୍ଟ କରିବା—42. To spoil; to cause loss (of caste). ( ଯଥା—ବିଜାତୀୟ ରଜା ଅମେଧ ଖୁଆଇ ବ୍ରାହ୍ମଣମାନଙ୍କ ଜାତି ମାଇଲେ । ୪୩ । (ସକର୍ମକ) ( ଆଖି ) ଠାରିବା; ଆଖିଦ୍ୱାରା ଇଙ୍ଗିତ କରିବା— 43. To wink significantly. (ଯଥା-ମୁଁ ବିପଦ କହିବାକୁ ବାହାରିଥିଲି, କିନ୍ତୁ ସେ ମୋତେ ଆଖି ମାରିଦେବାରୁ ମୁଁ ଚୁପ ହୋଇଗଲି ) । [ଦ୍ର – ମାରିବା କ୍ରିୟା ସଙ୍ଗେ ଧରିବା, କାଟିବା, ହାଣିବା ଆଦି କ୍ରିୟା ସହକାରରୂପେ ବ୍ୟବହୃତ ହୁଏ । ମାରିବା ଶବ୍ଦର ବ୍ୟବହାର ହୋଇ ପ୍ରଚଳିତ କେତେକ ପ୍ରବଚନ । ଯଥା—୧ । ଛେଳିକି ମାରି ବଣି ପୋଷିବା ନ୍ୟାୟ । ୨ । ଝିଅକୁ ମାରି ବୋହୂକୁ ଶିଖାଇବା ।

୫ । ହାତରେ ନ ମାରି ଭାତରେ ମାରିବା । ୪ । ମୂଳ୍ୟୁଁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କଥାଁ କଳ । ୫ । ଦେଏ-ଦେଉଳୀଙ୍କି କୋଲଥ ମଣ୍ଡା, ତହିଁ ମାରୁଥିବ ଗେଳ, ଯେଏ-ଯିମିତି ମାଗି ଅଇଲେ ଗେଳ ତନ୍ଧିକରି ଦେବ । ୬ । ଧରି ମାଇଲେ ଯେ, ବାନ୍ଧି ମାଇଲେ ସେ । ୭ । ଧରି ମାଇଲେ ସିଦ୍ଧେ ମରନ୍ତି । ୮ । ମାରଗଲେ ମହାପାତ୍ରେ ଗୃହଁଥିଲେ କଲବା । ୯ । ଖାଲି ମକୁନ୍ଦା ଫେର୍‌ଫାର୍, ଦୋହୋର ପଇସା ଅଣ୍ଟାରେ ମାର୍ ।]

[ଦ୍ର—ମାରିବା କ୍ରିୟା ନାନା ଶବ୍ଦ ସଙ୍ଗେ ଭିନ୍ନ ଭିନ୍ନ ଅର୍ଥରେ ଓଡ଼ିଆରେ ମହାବରା ( idiom ବା ବିଶିଷ୍ଟ ପ୍ରୟୋଗ )ରୂପେ ବ୍ୟବହୃତ ହୁଏ । ନିମ୍ନରେ ତହିଁର କେତେ-ଗୁଡ଼ିଏ ଦୃଷ୍ଟାନ୍ତ ଦିଆଗଲା :—

**ଅକ୍ଷର ମାରିବା**—ଦେ. କ୍ରି—୧ । ଶୀଘ୍ର ଗୁଡିଏ ଅକ୍ଷର ଲେଖିବା; ୨ । ଲେଖା ହୋଇଥିବା ଅକ୍ଷର ଉପରେ ଗାର ପକାଇ କାଟି ଦେବା ।

**ଅଣଉଦିଆ ମାରିବା**—ଦେ. କ୍ରି ( ବ୍ୟଙ୍ଗ୍ୟାର୍ଥ )—ସୂର୍ଯ୍ୟୋଦୟ ପୂର୍ବରୁ ଭୋଜନ କରିବା ।

**ଅଣିକିଲା(ଳ) ମାରିବା**—ଦେ. କ୍ରି—ଶଗଡ଼ର ଅଖର ଦୁଇ ମୁଣ୍ଡରେ ଚକକୁ ପିନ୍ଧାଇ ଦେବା ପରେ ଅଖର ଚୂଳରେ ଥିବା ଛିଦ୍ରରେ ଖିଲ ଭରିବା ( ଯେପରି କି, ଚକ ବୁଲିବାବେଳେ ଅଖରୁ ଖସିଗଳି ନ ଯିବ ) ।

**ଅଣ୍ଟାକୁ ମାରିବା**—ଦେ. ବି—ଅଣ୍ଟାବିନ୍ଧା ।

**ଅଣ୍ଟାରେ** ( ଗୋହାଳି, ପଇସା, ଟଙ୍କା ) **ମାରିବା**—ଦେ. କ୍ରି—ପିନ୍ଧା ଯାଇଥିବା ଲୁଗାର ଯେଉଁ ଧଡି ଅଣ୍ଟାକୁ ବେଢ଼ିଥାଏ, ସେହି ଧଡି ମଧ୍ୟରେ ଗୋଟାଳି ଆଦି ରଖି ଖୋସଣି ମାରିବା ।

**ଅନ୍ଧାଜ ମାରିବା, ଅନ୍ଧାରୁଆ ମାରିବା**—ଦେ. କ୍ରି—କୌଣସି ବିଷୟର ତଥ୍ୟ ବା ପ୍ରକୃତ କଥା ନ ବୁଝି ଅନୁମାନ କରି କହିବା ।

**ଅନ୍ଧାରି ମାରିବା**—ଦେ. କ୍ରି—ଗୃହର ହାତିଅନ୍ଧାର ତ୍ରିକୋଣାକାର ମେଲା ଅଂଶକୁ ପଟାଦ୍ୱାରା ବନ୍ଦ କରିବା ।

( ଅମୁକକୁ ) **ଅପସ(ସା) ମାରିବା**—ଦେ. କ୍ରି—ଉଲୁଗୁଣା ଦେବା; ( ଅପସରା ମାରିବା—ଅନ୍ୟରୂପ ) କୌଣସି ବ୍ୟକ୍ତିକୁ ଲକ୍ଷ୍ୟ କରି ଛିଗୁଲେଇବା ବା ବ୍ୟଙ୍ଗ କରିବା ।

**ଅପସ୍ମାର(ରୁ) ମାରିବା**—ଦେ. ବି—ଅପସ୍ମାର ବାତର ଆକ୍ରମଣ ।

( ଡଙ୍ଗାରେ ) **ଅସ୍ତା ମାରିବା**—ଦେ. କ୍ରି—ନୌକାର ପଟାମାନଙ୍କ ଫାଟରେ ବା ସନ୍ଧିରେ ଛେଚି ହୋଇଥିବା ଶଣମୟ ଛେଲି ଭରିତ କରି ଫାଟକୁ ନିରୁଦ୍ଧ କରିବା ।

**ଆଖି ମାରିବା**—ଦେ. କ୍ରି—୧ । ଅକ୍ଷିଦ୍ୱାରା ଠାରିବା; ୨ । ଅଖିଠାର- ( ଆଖିଠାର ମାରିବା—ଅନ୍ୟରୂପ ) ଦ୍ୱାରା କୌଣସି ବ୍ୟକ୍ତିକୁ ନିଷେଧ କରିବା ।

**ଆଖି ମିଟିକା ମାରିବା**—ଦେ. କ୍ରି—ଅକ୍ଷିପତାକୁ ବାରଂବାର ଖୋଲିବା ଓ ବୁଜିବା; ଆଖିକୁ ମିଟି ମିଟି କରିବା; ଆଖିକୁ ବାରଂବାର ମିଟିଡ଼ିବା ।

**ଆଫା(ପ୍ପା) ମାରିବା**—ଦେ. କ୍ରି—ଅପ୍ପା କରିବା; ଆଖିରେ ଗୁଣ୍ଡ ଆଦି ପଡ଼ି ଆଖି ଭିତର ଝୁଣ୍ଟି ହେଲେ ମୁହଁକୁ ଆଁ କରି ମୁହଁରେ ହାତ ପାପୁଲିକୁ ବା କନାଖଣ୍ଡାକୁ ମାଡ଼ି ତହିଁ ଉପରେ ଜୋର୍‌ରେ ପାଟିବାଟେ ନିଶ୍ୱାସ ମାରି ହାତ ପାପୁଲି ବା ଉକ୍ତ କନାଖଣ୍ଡା ଉଷୁମ ଥାଉଁ ଥାଉଁ ତାକୁ ଝୁଣ୍ଟୁଥିବା ଆଖି ଉପରେ ମାଡ଼ିବା (ଏପରି କଲେ ଆଖିର ଝୁଣ୍ଟା କମିଯାଏ ) ।

( ଅମୁକକୁ ) **ଆହାର ମାରିବା**—ଦେ. ବି—ମୃଗୀ ବାତର ଆକ୍ରମଣ । ( ଆହାର ଛଟା ମାରିବା, ଆହାର ଛାଟ ମାରିବା—ଅନ୍ୟରୂପ )

**ଆହୁ(ଉ)ଲ ମାରିବା**—ଦେ. କ୍ରି—ନୌକାକୁ ଚଳାଇବା ପାଇଁ ଆହୁଲା ଚଳାଇବା ବା ଆହୁଲାଦ୍ୱାରା ପାଣିକୁ ଆଘାତ କରିବା ।

**ଉକୁଣି ମାରିବା**—ଦେ. କ୍ରି—ମୁଣ୍ଡର କେଶ ମଧ୍ୟରେ ଥିବା ଉକୁଣିମାନଙ୍କୁ ବାଛି ନାଶ କରିବା ।

**ଉଙ୍କି ମାରିବା**—ଦେ. କ୍ରି—( ବଙ୍ଗଳାରୁ ଅନୁକୃତ ) ଝାଙ୍କିବା; ଲୁଚି କରି ବାରଂବାର ମୁଣ୍ଡ ଟେକି ଦେଖିବା ।

**ଉହା ମାରିବା**—ଦେ. କ୍ରି—୧ । କମ୍ପ ଜ୍ୱରରେ ନାକପୁଡ଼ା ମଧ୍ୟରେ ଉଠିଥିବା ରକ୍ତସ୍ଫୋଟକକୁ କଅଁ କଣ୍ଟା ବା ଅନ୍ୟ ସୂକ୍ଷ୍ମ କଣ୍ଟା-ଦ୍ୱାରା ଫୋଡ଼ି ତହିଁରୁ ରକ୍ତମୋକ୍ଷଣ କରାଇବା; ୨ । ପାଲିସ୍ କରିବା ପାଇଁ ଧାତୁ ଓ କାଠ ଜିନିଷ ଉପରେ ଉହା ଘଷିବା ।

**ଉହୁଙ୍କା ମାରିବା**—ଦେ. କ୍ରି—ଉହୁଙ୍କିବା; ଉପରକୁ ଉହୁଙ୍କି ଉଠିବା ।

**ଓଡ଼ଶ ମାରିବା**—ଦେ. କ୍ରି—ଲୁଗା ଓ ବିଛଣା ଆଦିରୁ ଛାରପୋକଙ୍କ ନଷ୍ଟ କରିବା ।

**କଉପୁନ ମାରିବା**—ଦେ. କ୍ରି—କୌପୀନ ପରିଧାନ କରିବା ।

**କଂସାଏ ପଖାଳ ମାରିବା**—ଦେ. କ୍ରି ( ବ୍ୟଙ୍ଗ )—ଏକ କଂସାପୂର୍ଣ୍ଣ ପଖାଳ ଭାତ ଖାଇବା ।

**କଂସା କଂସା ପଖାଳ ମାରିବା**—ଦେ. କ୍ରି—ଉପର୍ଯ୍ୟୁପରି କଂସାଏ ଲେଖାଏଁ (କଂସାକୁ କଂସା ପଖାଳ ମାରିବା—ଅନ୍ୟରୂପ) ପଖାଳ ଭାତ ଖାଇବା ।

**କଙ୍କାଳକୁ ମାରିବା**—ଦେ. କ୍ରି—କଙ୍କାଳରେ ବିନ୍ଧା ବା ବ୍ୟଥା ହେବା । ( କଙ୍କାଳ ବାଡ଼ିକ ମାରିବା—ଅନ୍ୟରୂପ )

**କଚ୍ଛ ମାରିବା**—ଦେ. କ୍ରି—(ଲୁଗା ପିନ୍ଧିବା ବ୍ୟକ୍ତି) ପିନ୍ଧା ଲୁଗାର ଗୋଟାଏ ମୁଣ୍ଡକୁ ଆଗ ପାଖରୁ ବୁଲାଇ କରି ନେଇ ପଛଅଡ଼େ ଖୋସିବା; (ଲୁଗା ପିନ୍ଧିବା ବ୍ୟକ୍ତି) ଗୋଟିଏ କାନକୁ ନେଇ ପଛଅଡ଼େ ଖୋସିବା ।

( ଏହିପରି କାଣିଅକଚ୍ଛ ମାରିବା, ମୁଠି କଚ୍ଛ ମାରିବା, ପାଇକଚ୍ଛ ମାରିବା ଆଦି ହୁଏ । )

**କଣ ମାରିବା**—ଦେ. କ୍ରି—କାଠ ଆଦିରେ ଥିବା କୋଣକୁ କାଟି ଗୋଲ କରିବା ।

**କଣା ମାରିବା**—ଦେ. କ୍ରି—କଣା ବା ଗାତକୁ ବୁଜି ଦେବା ।

**କଣ୍ଟା ମାରିବା**—ଦେ. କ୍ରି—୧ । କଣ୍ଟାକୁ ବାଡ଼େଇ କରି ଭର୍ତ୍ତି କରିବା; ୨ । କଣ୍ଟାରେ ବଥ ଆଦିକୁ ଫୋଡ଼ିବା ।

**କଣ୍ଟିକିଲା ମାରିବା**—ଦେ. କ୍ରି—ଲଙ୍ଗଳ-ମୁଣ୍ଡାକୁ କଣ୍ଟି ସଙ୍ଗେ ସଂଯୁକ୍ତ କରିବା ପାଇଁ ଖିଲ ମାରିବା ।

**କତ ମାରିବା**—ଦେ. କ୍ରି—କୋଡ଼ଦ୍ୱାରା ହିଡ଼ର ଦୁଇପାଖ ମାଟିକୁ ପତଳା କରି ଚାଞ୍ଛିବା; ହିଡ଼ଂକତ କରିବା ।

କଥା ଦୁ' ପଦ ମାରିବା (ମାରିଦେବା)—ଦେ, କ୍ରି—୧ । ଅନ୍ୟ ବ୍ୟକ୍ତି-ଙ୍କର କଥାବାର୍ତ୍ତା ମଧ୍ୟରେ ଦୁଇ ପଦ କଥା କହିଦେବା; ୨ । ଆଗ ପଛ ବିଚାର ନ କରି ମନ୍ତବ୍ୟ ପ୍ରକାଶ କରିବା ।

କବାଟ ମାରିବା—ଦେ. କ୍ରି—୧ । ଦୁଆର ବନ୍ଦ କରିବା; କବାଟ ଦେବା; ୨ । କବାଟକୁ ସ୍ଥାୟିଭାବରେ ବନ୍ଦ କରି ସେଠାରେ ଥିବା ବାଟକୁ ରୋକିବା ।

କବାଟରେ ମାରିବା—ଦେ. କ୍ରି—ବନ୍ଦ ହୋଇଥିବା କବାଟକୁ ଖୋଲିଦେବା ପାଇଁ କବାଟରେ ହାତ ବା ଅଙ୍ଗୁଠିଦ୍ୱାରା ଆଘାତ କରିବା ।

କଲମ ମାରିବା—ଦେ. କ୍ରି—କଲମରେ ଚଞ୍ଚଳ ଲେଖିଦେବା ।

(କାନରେ) କଲମ ମାରିବା—ଦେ. କ୍ରି—କାନ ଓ ମୁଣ୍ଡ ମଧ୍ୟସ୍ଥ ଫାଙ୍କରେ କଲମ ଖୋସିବା ।

(ଗାମୁଛରେ) କଳାଚିତ ମାରିବା—ଦେ. କ୍ରି—ଗାମୁଛରେ ଚକା ଚକା କଳା ଦାଗମାନ ଜନ୍ମିବା ।

କହୁଣୀ ମାରିବା—ଦେ. କ୍ରି—କହୁଣୀରେ ଆଘାତ କରିବା ।

କାଚ ମାରିବା—ଦେ. କ୍ରି—ମୁନିଆ କାଚଦ୍ୱାରା ଶରୀରକୁ ଫୋଡ଼ି ଦେହରୁ ରକ୍ତ ମୋକ୍ଷଣ କରାଇବା ।

କାଛୁ ମାରିବା—ଦେ. କ୍ରି—କାଛୁ ଆଦିକୁ ଚିପି ତହିଁରୁ ପୂଜ ବା ଜଳ ବାହାର କରିବା । (ଏହିପରି ଘିମିରି ମାରିବା; କୁଣ୍ଡିଆ ମାରିବା ହୁଏ ) ।

କାଡ଼ୁଆ ମାରିବା—ଦେ. କ୍ରି—ଡଙ୍ଗାକୁ ଖଟାଇବାପାଇଁ କୂଳର ଖଣ୍ଡଦୂରରେ ମାଟି ଉପରେ କିଲା ପୋତିବା ।

କାଡ଼ୁ(ଣ୍ଡୁ) ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିର ବଳକ୍ଷୟ କରାଇବା ।

କାଣ୍ଡ ମାରିବା—ଦେ. କ୍ରି—ଧନୁଦ୍ୱାରା ଶର ମାରିବା ।

କାଣ୍ଡୁ ମାରିବା—ଦେ. କ୍ରି—କଣ୍ଡୁର ଉପଶମ କରାଇବା ।

କାତ ମାରିବା—ଦେ. କ୍ରି—ଡଙ୍ଗାକୁ ଚଳାଇବା ପାଇଁ ଲମ୍ବ ବାଉଁଶକୁ ଜଳାଶୟର ନିମ୍ନଭୂମିରେ ଲଗାଇ ଠେଲିବା ।

କାଦ ମାରିବା—ପ୍ରାଦେ (ଗଞ୍ଜାମ) କ୍ରି—କାତ ମାରିବା ।

କାନରେ (ଫୁଲ ଆଦି) ମାରିବା—ଦେ. କ୍ରି—କାନର ଓ ମୁଣ୍ଡର ମଝି-ଫାଙ୍କରେ (ଫୁଲ ଆଦି) ଖୋସିବା । (ଏହିପରି ପେନସିଲ ମାରିବା, ପିକା ମାରିବା ହୁଏ । )

କାନ୍ଧ ମାରିବା—ଦେ. କ୍ରି (ଥଟାରିଙ୍କ ଭାଷା)—ଲୋଟାର ବା ଗରାର (ତଳ ମାରିବା—ବିପରୀତ) ମୁହଁପାଖ ବା ପନ୍ଦ ପାଖର ଅର୍ଦ୍ଧାଂଶକୁ ଛିଆର କରିବା ।

କିରିଆ ମାରିବା—ଦେ. କ୍ରି—ମୃତବ୍ୟକ୍ତିର ମୃତାହ କ୍ରିୟା ସମ୍ପାଦନ କରିବା; କ୍ରିୟା ଧରିବା । ଦେ. କ୍ରି—ଗୁଡ଼ଲ ଆଦିରେ ପୋକ ଲାଗିଯିବା ।

କିଳା ମାରିବା—ଦେ. କ୍ରି—ଭୂମି ଭିତରକୁ ଖିଲ ଭର୍ତ୍ତି କରିବା ।

କୁଆଁ ମାରିବା—ଦେ. କ୍ରି (ଗଛ ବା ଗଜା)—ଅଗରୁ କୋମଳ ଶାଖା ବାହାର କରିବା ।

କୁଡ଼ିଆ ମାରିବା—ଦେ. କ୍ରି—ଅସ୍ଥାୟୀ କୁଟୀର ନିର୍ମାଣ କରିବା ।

କୁଣ୍ଡିଆ ମାରିବା—ଦେ. କ୍ରି—ଚମକୁ ଚିପି କୁଣ୍ଡିଆକୁ ଲୋପ କରିବା ।

କୁଦା ମାରିବା—ଦେ. କ୍ରି—ଲମ୍ଫ ପ୍ରଦାନ କରିବା, କୁଦିବା ।

କୁହାଟ ମାରିବା—ଦେ. କ୍ରି—ଦୂରକୁ ଶୁଭିବା ଭଳି ଉଚ୍ଚ ଧ୍ୱନି କରିବା ।

କେଞ୍ଚା ମାରିବା—ଦେ. କ୍ରି—୧ । ଚିମ୍ଟାରେ କେଞ୍ଚିବା ।
୨ । ମୁନିଆ ଅସ୍ତ୍ରାଦିଦ୍ୱାରା କେଞ୍ଚିବା;

କେରେଆ ମାରିବା—ଦେ. କ୍ରି—ରଣ ପକାଇବା । ଦେ. କ୍ରି—କଟିଆ ମାରିବା (ଦେଖ)

କୋତର<br>କୋବଡ଼ା } ମାରିବା—ଦେ. କ୍ରି—ଗୋଇଠି ବା ଗୋଡ଼କରେ ପ୍ରହାର କରିବା ।<br>କୋରେଡ଼ା

କୋଡ଼ ମାରିବା—ଦେ. କ୍ରି—ହଣା ଯାଇଥିବା ବା ଅଳ୍ପ ଅସମତଳ ମାଟିକୁ କୋଡ଼ିରେ ସମତୁଲ କରିବା ।

ଖଙ୍କାର ଖା ମାରିବା—ଦେ. କ୍ରି—ତଣ୍ଟିରୁ ଶ୍ଳେଷ୍ମା ସଫା କରିବାଦ୍ୱାରା ଶବ୍ଦ କରିବା ।

(ମୁହଁକୁ) ଖଗ ମାରିବା—ଦେ. କ୍ରି—୧ । ଖରାର ତେଜ ମୁହଁକୁ ପୀଡ଼ା ଦେବା; ୨ । ଖରା ବକ୍ରଭାବରେ ଦେହରେ ପଡ଼ିବା ।

ଖଡୁମୁସା ମାରିବା—ଦେ. କ୍ରି-(ସ୍ତ୍ରୀଲୋକ) ହାତରେ ପିନ୍ଧିଥିବା ଖଡୁଦ୍ୱାରା କୌଣସି ବ୍ୟକ୍ତିକୁ ଆଘାତ କରିବା ।

ଖଣ୍ଡ ମାରିବା—ଦେ. କ୍ରି—ଖଣ୍ଡା ବା ଡକାଇତଙ୍କଦ୍ୱାରା ଦ୍ରବ୍ୟର ବଳ-ପୂର୍ବକ ଅପହରଣ ।

ଖଣ୍ଡିକାଶ ମାରିବା—ଦେ. କ୍ରି—ନିଜର ଉପସ୍ଥିତି ଅନ୍ୟକୁ ଜଣାଇବା ଉଦ୍ଦେଶ୍ୟରେ ଏକାଧିକ ଥର ସାମାନ୍ୟ କାଶିବା ।

ଖରଡ଼ା ମାରିବା—ଦେ. କ୍ରି—ଘୋଡ଼ା ଦେହକୁ ଲୁହାର ପାନିଆଦ୍ୱାରା କୁଣ୍ଡାଇବା ।

ଖିଲ ମାରିବା—ଦେ. କ୍ରି—ଛୋଟ କିଲାକୁ ଭୂମିରେ ବା କାଠରେ ଭର୍ତ୍ତି କରିବା ।

ଖୁଞ୍ଚ ବା ଖୁଞ୍ଚାଣିଆ ମାରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତି ନାମରେ ଚୁଗୁଲି କହିବା ।

ଖୁଞ୍ଚା ମାରିବା—ଦେ. କ୍ରି—୧ । ଘରର ଚାଳରୁ ସ୍ଥାନେ ସ୍ଥାନେ ଉଡ଼ି ଯାଇଥିବା କୁଟା ଜାଗାରେ ନୂଆ କୁଟା ବା ନଡ଼ା ପୂରାଇବା; ୨ । ଧାନ କିଆରୀର ଯେଉଁ ଅଂଶମାନଙ୍କରୁ ଧାନ ଗଛ ନଷ୍ଟ ହୋଇଥାଏ, ସେହି ସ୍ଥାନରେ ଅନ୍ୟ ସ୍ଥାନରୁ ବା ଖେତରୁ ରୁଆ ବା ତଳି ଆଣି ରୋଇବା ।

ଖୁନ୍ଦା ମାରିବା—ଦେ. କ୍ରି—ମୁଠାର ତର୍ଜନୀ ଅଙ୍ଗୁଠି ପାଖ ଦ୍ୱାରା ଗାଲରେ ଆଘାତ କରିବା ।

ଖୁର ମାରିବା—ଦେ. କ୍ରି—୧ । ଖୁରରେ କ୍ଷୌର କରିବା ।
୨ । ଖୁରରେ ହାଣିବା ।

ଖୁରା ମାରିବା—ଦେ. କ୍ରି—ଖୁର ଖାଇବା (ଘୋଡ଼ା ଓ ବଳଦ ଆଦି) ଖୁରାରେ ଭୂଇଁକୁ ବାମ୍ପୁଡ଼ିବା; ଖୁରାରେ ଆଘାତ କରିବା ।

ଖୁରୁଡ଼(ଡ଼ୁ) ମାରିବା—ଦେ. କ୍ରି—ଶୁଖିଲା ନଡ଼ିଆକୁ ଦିନା କେତେ ଘରେ ରଖିବାଦ୍ୱାରା ନଡ଼ିଆରୁ ପାଣି ଶୁଖିଯାଇ ତାହା ଖୁରୁଡ଼ରେ ପରିଣତ ହେବାର ଉପାୟ କରିବା ।

ଖୋଞ୍ଚା ମାରିବା—ଦେ. କ୍ରି—କୌଣସି ପ୍ରସ୍ତାବିତ କାର୍ଯ୍ୟ ସମାହିତ ହେବା ସମ୍ବନ୍ଧେ ବିଘ୍ନ ଘଟାଇବା ।

ଖେତ ମାରିବା— ଦେ. କ୍ରି—ଜଳ ଅଭାବରୁ ବା ଯତ୍ନ ଅଭାବରୁ ଫସଲ ଶୁଖି ମରିଯିବାର କାରଣ ହେବା; ଶୁଖି ଯାଉଥିବା ଫସଲକୁ ପାଣି ନ ମଡ଼ାଇବା ।

ଖେପା ମାରିବା—ଦେ. କ୍ରି—୧ । ଦୁଇ ଗୋଡ଼କୁ ଏକତ୍ର ଚଳାଇ କୁଦା ମାରିବା । ୨ । ଖେପା ଦଉଡ଼ି ସାହାଯ୍ୟରେ ନଡ଼ିଆ ଗଛ ଓ ତାଳ ଗଛ ଆଦିକୁ ଚଢ଼ିବା ।

ଖେପି ମାରିବା—ଦେ. କ୍ରି—୧ । ଖେପା ମାରିବା । ୨ । (ଘୋଡ଼ା) ଚାରି ଗୋଡ଼ରେ କୁଦି ଦଉଡ଼ିବା ।

ଖୋଷା ମାରିବା—ଦେ. କ୍ରି—ମୁଣ୍ଡରେ ଜୁଡ଼ା ପକାଇ ବାନ୍ଧିବା ।

ଖୋସଣି ମାରିବା—ଦେ. କ୍ରି—ପିନ୍ଧିଥିବା ଲୁଗାର ଅଣ୍ଟା ପାଖେ ଥିବା ଦୁଇ ବିପରୀତ ଅଂଶକୁ କଣ୍ଟି ପକାଇ ଖୋସିବା ।

ଗଜା ମାରିବା—ଦେ. କ୍ରି—ଗଜୁରିବା ।

ଗଡ଼ା(ଡ଼େ)ଇ ମାରିବା—ଦେ. କ୍ରି—୧ । ଖାଇବାକୁ ନ ଦେଇ ଉପବାସରେ ମାରି ପକାଇବା; ୨ । କୌଣସି ପରିବାରର ବ୍ୟକ୍ତିମାନେ କ୍ରମାଗତରେ ମରିବାର କାରଣ ହେବା ।

ଗଡ଼େଇ ତଡ଼େଇ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତି ମାଡ଼ ଖାଇ ଭୂଇଁରେ ଗଡ଼ୁଥିବା ଅବସ୍ଥାରେ ତାକୁ ଉପର୍ଯ୍ୟୁପରି ପ୍ରହାର ବା ଆଘାତ କରିବା ।

(କାଉଁଶର ବା ବାଡ଼ର) ଗଣ୍ଠି ମାରିବା—ଦେ. କ୍ରି—କଟୁରି, ବାସି ବା କୁରାଢ଼ିରେ ବାଉଁଶର ଗଣ୍ଠିକୁ ହାଣିବା ।

ଗଦା ମାରିବା—ଦେ. କ୍ରି—କୌଣସି ପଦାର୍ଥକୁ ଗଦା କରି ରଖିବା ।

ଗପ(ପା, ପ୍ପା) ମାରିବା—ଦେ. କ୍ରି—୧ । ଲୁଚି କରି ରହିବା । ୨ । ମୌନ ରହିବା ।

ଗପ ମାରିବା—ଦେ. କ୍ରି—ବୃଥା ଗପିବା ।

ଗଫା ମାରିବା—ଦେ. କ୍ରି (ବ୍ୟଙ୍ଗ)—ବଡ଼ ବଡ଼ ଗୁଣ୍ଡାରେ ଭୋଜନ କରିବା ।

ଗଲୁ ମାରିବା—ଦେ. କ୍ରି—କାଣ୍ଡୁ ମାରିବା ( ଦେଖ )

ଗସ୍ତ ମାରିବା—ଦେ କ୍ରି—ଏଣେ ତେଣେ ବୁଲିବା; ପର୍ଯ୍ୟଟନ କରିବା ।

ଗାଣ୍ଡି ମାରିବା—ଦେ. କ୍ରି (ଅଶ୍ଳୀଳ)—୧ । ଗୁଦା ମୈଥୁନ କରିବା । ୨ । ସ୍ତ୍ରୀ ମୈଥୁନ କରିବା । ୩ । ପ୍ରତାରଣା କରିବା; ଠକାଇବା ।

ଗାତ ମାରିବା—ଦେ. କ୍ରି—ଗାତକୁ ପୋତିବା ।

ଗାତେ ମାରିବା—ଦେ. କ୍ରି—ବାଡ଼ ଦେବା ପାଇଁ ବୁଦାଏ କଣ୍ଟା ଗୋଟିଏ ଗାତରେ ପୋତିବା ।

ଗାର(ରେ) ମାରିବା—ଦେ. କ୍ରି—୧ । ଅଙ୍କ ବିଷୟ ଲେଖି ଦେବା । ୨ । ଲେଖାଦ୍ୱାରା ଶେଷ ହୁକୁମ ଦେବା ବା ଦସ୍ତଖତ୍ କରିବା । ୩ । ବିଲରେ ପ୍ରଥମ ଓଡ଼ ହଳ କରିବା ।

ଗାଲ ଫି(ଫୁ)ଲ(ଲ୍ଲ, ଲ୍ଲୁ)କା(କି) ମାରିବା—ଦେ. କ୍ରି—(ବାଘ) ଅଗରେ ଶିକାରକୁ ଦେଖି ଗାଲ ସାହାଯ୍ୟରେ ବିକଟ ମୁଖଶବ୍ଦ କରିବା ।

ଗାଲୁ ମାରିବା—ଦେ. କ୍ରି—ଦାମ୍ଭିକତା ପ୍ରକାଶ କରି କୌଣସି ବିଷୟକୁ ଭୁରୁଡ଼ାଇବା ।
(ଗାଲୁ ଭୁରୁଡ଼ ମାରିବା—ଅନ୍ୟରୂପ)

ଗିଲା ମାରିବା—ଦେ. କ୍ରି (ବ୍ୟଙ୍ଗ)—ଖାଇବା ।

ଗିଲା(ଲେ)ଇ-ମାରିବା—ଦେ. କ୍ରି. କୌଣସି ଲୋକକୁ ବାରମ୍ବାର ଖାଇବାକୁ ଦେଇ ବ୍ୟତିବ୍ୟସ୍ତ କରାଇବା ।

ଗିଲା(ଲେ)ଇ ଗିଲା(ଲେ)ଇ ମାରିବା—ଦେ. କ୍ରି—ଅତିରିକ୍ତ ଭୋଜନ କରାଇ କୌଣସି ବ୍ୟକ୍ତିକୁ ବା ଜୀବକୁ ରୋଗଗ୍ରସ୍ତ କରାଇ ମାରି ପକାଇବା ।

ଗୁଣ୍ଡା ମାରିବା—ଦେ. କ୍ରି—ଗଫା ମାରିବା ( ଦେଖ )

ଗୁଞ୍ଜା ମାରିବା—ଦେ. କ୍ରି—ଖୁଲରେ ମଝିରୁ ଭାଙ୍ଗି ଯାଇଥିବା ରୁଅର ସ୍ଥାନରେ ନୂଆ ରୁଅ ଗୁଞ୍ଜିକରି ଭରତି କରିବା ।

ଗୁଡ଼େଇ ତୁଡ଼େଇ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଉପର୍ଯ୍ୟୁପରି ଦେହର ଚାରିପାଖେ ପ୍ରହାର କରିବା ।

ଗୁମ୍ ମାରିବା—ଦେ. କ୍ରି—ଚୁପ୍ ହୋଇ ରହିବା ।
(ଗୁମ୍‌ଗୁମ୍ ମାରିବା—ଅନ୍ୟରୂପ)

ଗୁଲି ମାରିବା—ଦେ. କ୍ରି—ବନ୍ଧୁକଦ୍ୱାରା ଗୁଳି ଫାଏର୍ କରିବା ।

ଗୁଲୁମ ମାରିବା—ଗ୍ରା. କ୍ରି—ପେଟ ଉପରେ ବିଷାପ୍ତ ଔଷଧାଦି ଲେପନ-ପୂର୍ବକ ଅଗ୍ନ୍ୟୁତ୍ତାପନ କରି ପେଟରେ ହୋଇଥିବା ପ୍ଲୀହାବୃଦ୍ଧି ରୋଗକୁ ନାଶ କରିବା ।
(ଗୁଲୁ ମାରିବା—ଦେଶଜ ରୂପ)

ଗେଫା(ବା) ମାରିବା—ଦେ. କ୍ରି ( ବ୍ୟଙ୍ଗ )—ଗଫା ମାରିବା, ଖାଇବା ।

ଗେର ମାରିବା—ଦେ. କ୍ରି—ଭିନ୍ନ ଭିନ୍ନ ଶ୍ରେଣୀର ମଣ୍ଡାପିଠା ଆଦି ( ଯଥା—କୋଳଥ ପୁରିଦିଆ ମଣ୍ଡା, ନଡ଼ିଆ ପୁରିଦିଆ ମଣ୍ଡା, ମୁଗ ପୁରିଦିଆ ମଣ୍ଡା ) କୁ ବାଣ୍ଟିବା ବେଳେ ଚିହ୍ନି ପାରିବା ପାଇଁ ତହିଁ ଉପରେ ସଙ୍କେତ ସ୍ୱରୂପ ଭିନ୍ନ ଭିନ୍ନ ଛାପଚିହ୍ନ ଦେବା ।

ଗୋଇଠା ମାରିବା—ଦେ. କ୍ରି—ଗୋଡ଼ଦ୍ୱାରା ବଳ ସହିତ ଅନ୍ୟ ବ୍ୟକ୍ତିକୁ ଆଘାତ କରିବା । [ ଦ୍ର—ମନୁଷ୍ୟର ପଦାଘାତକୁ ଗୋଇଠା ଓ ଅନ୍ୟ ଜୀବର ପଦାଘାତକୁ ନାତ ମାରିବା ବୋଲାଯାଏ । ]

ଗୋଡ଼ ମାରିବା—ଦେ. କ୍ରି—୧ । ଅନ୍ଧାର ରାତିରେ ବାଟରେ କିମ୍ବା ପାଣିରେ ଯିବା ସମୟରେ ପାଣିର ଗଭୀରତା ଆଦି ଜାଣିବା ପାଇଁ ସେଠାରେ ଚାଲିବା ପୂର୍ବରୁ ଗୋଡ଼ଦ୍ୱାରା ସେ ସ୍ଥାନକୁ ଛୁଇଁବା । ୨ । କାଦୁଅ ବା ମାଟିଗୁଳା ଆଦି ଥିବା ଅସମତଳ ସ୍ଥାନକୁ ସମତଳ କରିବା ଲାଗି ଗୋଡ଼ଦ୍ୱାରା ଚଳାଇବା ।

ଗୋତା ମାରିବା—ଦେ. କ୍ରି—୧ । ପାଣିରେ ଏକ ସ୍ଥାନରେ ବୁଡ଼ ଦେଇ ଅନ୍ୟ ସ୍ଥାନରେ ଉଠିବା—୨ । ବିଶ୍ୱାସଘାତକତା କରିବା ।

ଗୋଦ ମାରିବା—ଦେ. କ୍ରି—କୌଣସି ଜୀବର ବା ବ୍ୟକ୍ତିର ବଂଶର ସମସ୍ତ ଜୀବଙ୍କୁ ହତ୍ୟା କରିବା ବା କରାଇବା ।

ଗୋବର ମାରିବା—ଦେ. କ୍ରି—ଭୂମିରେ ଗୋବର ଲେପିବା ।

ଗୋବରପାଣି ମାରିବା—ଦେ. କ୍ରି—କୌଣସି ସ୍ଥାନକୁ ପରିଶୁଦ୍ଧ କରିବା ପାଇଁ ସେଠାରେ ଗୋବର ପାଣି ଛିଞ୍ଚିବା । [ ଭୂ—ଜାଆଁମିନାଆଁ, ଦାଣ୍ଡରେ ମାରୁଛି ଗୋବର ପାଣି —ଲୋକ । ]

ଗୋରୁ ମାରିବା—ଦେ. କ୍ରି—୧ । ଗୋବଧ କରିବା—୨ । ନିଜର ପାଳିତ ଗୋରୁର ଅପମୃତ୍ୟୁ ହେଲେ ପୁରାଣର ବିଧାନ ଅନୁସାରେ ଗୋ-ସ୍ୱାମୀ ରୂପେ ଉକ୍ତ ଅପମୃତ୍ୟୁର ପାପରେ ଭାଗୀ ହେବା ।

ଗ୍ରାସ ମାରବା—ଦେ. କ୍ରି ( ବ୍ୟଙ୍ଗ )—ଭୋଜନ କରବା ।

ଘଣ୍ଟି ମାରିବା—ଦେ. କ୍ରି ( କଂସାରଙ୍କ ବ୍ୟବହୃତ ଭାଷା )— ତମ୍ବା, କଂସାର ଅଦିକୁ ଏକକ କର ଆବୃତ୍ତ, ତାକୁ ଠେଙ୍ଗା ଠେକା କର ଢାଳିବା ପରେ, ତାକୁ ହାତୁଡ଼ିରେ ପିଟି ପତଳା କରିବା ।

ଘଡଘଡ଼ି ମାରିବା—ଦେ. କ୍ରି—ବଜ୍ରଧ୍ୱନି ହେବା ।

ଘଣ୍ଟା ମାରିବା—ଦେ. କ୍ରି—ପିଟା ଘଣ୍ଟା ବଜାଇବା ।

ଘା } ମାରିବା—ଦେ. କ୍ରି—ଅସ୍ତ୍ରଶସ୍ତ୍ରାଦିଦ୍ୱାରା ଶ୍ରେଷ୍ଠ ମାରବା ।
ଘାଅ }

ଘାଏ ମାରିବା—ଦେ. କ୍ରି—ଥରେ ଅଘାତ କରିବା ।

ଘାଏ ଘାଏ ମାରିବ—ଦେ. କ୍ରି—ଅସ୍ତ୍ରାଦିଦ୍ୱାରା ଥର ଥର କର ଶ୍ରେଷ୍ଠ ମାରବା ।

ଘାସ ମାରିବା—ଦେ. କ୍ରି—ଭୂମିରୁ ଘାସକୁ ନିର୍ମୂଳ କରିବା ବା ଚାଞ୍ଛିବା ।

ଘିଅ ମାରିବା—ଦେ. କ୍ରି—ଲହୁଣୀକୁ ଅଗ୍ନି ଉତ୍ତାପରେ ନିର୍ଜଳା କର ତହିଁରୁ ଘୃତ ପ୍ରସ୍ତୁତ କରିବା । [ ଦ୍ର—ମୂଳରେ ଘିଅ ମରିଯାଏ ନାହିଁ; ଲହୁଣୀକୁ ନିଆଁରେ ବସାଇ ତାକୁ ନିର୍ଜଳ କରିବାଦ୍ୱାରା ଘୃତ ପ୍ରସ୍ତୁତ କରାଯାଏ ।]

ଘେମିରି ମାରିବା—ଦେ. କ୍ରି—ଦେହରେ ଉଠିଥିବା ଘିମିରିକୁ ନଖ ଅଗ୍ର ଦ୍ୱାରା ଚିପି ତାକୁ ଲୁପ୍ତ କରିବା ।

ଘୁଙ୍ଗୁଡ଼ି ମାରିବା—ଦେ. କ୍ରି—ନିଦ୍ରାବସ୍ଥାରେ ନାକଦ୍ୱାରା ଉଚ୍ଚ ଶବ୍ଦ- ପୂର୍ବକ ନିଶ୍ୱାସ ମାରିବା ।

ଘୋଁଘା, ଘୋଉଘା, } ମାରିବା—ଦେ. କ୍ରି—ବହୁଲୋକଙ୍କର ଗୋଳ-
ଘୋ ଓ ଘାଅ } ମାଳରେ ଅପଣାର ସ୍ୱରକୁ ମିଶାଇ ପାଟି କରିବା ।

ଘୋଡ଼ା ମାରିବା—ଦେ. କ୍ରି—ଘୋଡ଼ା ଉପରେ ବସି ଘୋଡ଼ାକୁ ଦଉଡ଼ାଇ ନେଇ ଚାଲିଯିବା ।

ଘାଅଁରଉଣ୍ଡ ମାରିବା—ଦେ. କ୍ରି. (ପ୍ରତିଦ୍ୱନ୍ଦ୍ୱୀ ପାଲାବାଲାଦଳର ଗାୟକ)— ଚାମରର ମୂଳ ବା ବେଣ୍ଟଦ୍ୱାରା ଅପର ପକ୍ଷକୁ ତାଡ଼ି ମାରିବାର ବା ଭୂଷିବାର ଅଭିନୟ କରିବା ।

ଚକ ମାରିବା—ଦେ. କ୍ରି—ପଦ୍ମଆ ମାରିବା ( ଦେଖ )

ଚକମକି ମାରିବା—ଦେ. କ୍ରି—ଅଗ୍ନି ଝିଲିଙ୍ଗ ବାହାର କରିବା- ପାଇଁ ଚକମକି ପଥରରେ ଲୁହାକୁ ଆଘାତ କରିବା ।

ଚକରେ ମାଣିକାଠି(ଖୁଣ୍ଟି) ମାରିବା—ଦେ. କ୍ରି—ଚକର ତଳପଟର କେନ୍ଦ୍ରରେ କାଠି ପୋତିବା ।

ଚଟକଣା ମାରିବା—ଦେ. କ୍ରି—ଚଟକା କରତଳଦ୍ୱାରା କୌଣସି ମନୁଷ୍ୟର ମାଂସଳ ସ୍ଥାନ ( ଯଥା—ଗାଲ )ରେ ଆଘାତ କରିବା ।

ଚଟକଣି, ମାରିବା—ଦେ. କ୍ରି—କରତଳର ଅଗ୍ରଭାଗଦ୍ୱାରା ସାମାନ୍ୟ ଚଟକଣା ମାରିବା ।

ଚଟୁ ମାରିବା—ଦେ. କ୍ରି—ହାଣ୍ଡିରେ ଥିବା ଖାଦ୍ୟଦ୍ରବ୍ୟ ବା ପାକ ଦ୍ରବ୍ୟକୁ ଚଟୁଦ୍ୱାରା ଘାଣ୍ଟିବା ।

ଚଡ଼ଚଡ଼ି ମାରିବା—ଦେ. କ୍ରି—ଘଡ଼ଘଡ଼ି ମାରିବା (ଦେଖ)

ଚଡ଼ୁ ମାରିବା—ଦେ. କ୍ରି—(ରୋଗ ଅଦି ନିବାରଣାର୍ଥ) ଲୁହାର ଚଡ଼ୁ- କାଠିକୁ ଅଗ୍ନିଦ୍ୱାରା ଉତ୍ତପ୍ତ କର, ଦେହର ଶିର ଦେଖି, ତାହା ଲଗାଇ ଦେବା ।

ଚନ୍ଦନ ମାରିବା—ଦେ. କ୍ରି—ଦେହରେ ଚନ୍ଦନ ଘୋରି ବୋଳିବା ।

ଚନ୍ଦନ ଠୋପା ମାରିବା—ଦେ. କ୍ରି—କପାଳରେ ଚନ୍ଦନର ବଡ଼ ବିନ୍ଦୁ ଲଗାଇବା ।

ଚାଇଁ ମାରିବା—ଦେ. କ୍ରି—ଅପ୍ରକାଶିତ ଭାବରେ କୌଣସି ପଦାର୍ଥ
(ଚାଇଁଅଁ ମାରିବା—ଅନ୍ୟରୂପ) ଦେଖିନେବା ।

ଚାଉଁ(ଇଁ) ଚାଉଁ(ଇଁ) ମାରିବା—ଦେ. କ୍ରି—ଦେହର କୌଣସି ଅଂଶ ଘୋର ବେଦନାପୂର୍ବକ ବିନ୍ଧିବା ।

ଚାପ(ପୁ)ଡ଼ା ମାରିବା—ଦେ. କ୍ରି—ଚଟକଣା ମାରିବା (ଦେଖ)

ଚାବୁକ ମାରିବା—ଦେ. କ୍ରି—ଚାବୁକଦ୍ୱାରା ପ୍ରହାର କରିବା ।

ଚାଲଗୁଡ଼ି ମାରିବା—ଦେ କ୍ରି - ଘରର ଚାଲର ତଳ ପାଖର ବାଉଁଶକୁ ବା ବତାକୁ ହାତରେ ଗୋଡ଼ରେ ଧରି ଧରି ଗତି କରିବା ।

ଚିଅଁ ମାରିବା—ଦେ. କ୍ରି—ତାତିଲା ଲୌହଶଳାକା ଦେହରେ ମାଡ଼ି ଦେବା ।

ଚିଡ଼େଇ ଚିଡ଼େଇ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଉପର୍ଯ୍ୟୁ- ପରି ଦିକ୍ କରି ଅଥୟ କରିବା ।
(ଚିଡ଼େଇ ମାରିବା—ଅନ୍ୟରୂପ)

ଚିତା ମାରିବା—ଦେ. କ୍ରି—ଚିତା କାଟିବା, ଦେହରେ ଚନ୍ଦନ ବା ତିଳକ ରେଖାମାନ ଚିତ୍ରିତ କରିବା ।

ଚିରି ମାରିବା—ଦେ. କ୍ରି.—ଖୁବ୍ ଉଚ୍ଚ ଲମ୍ଫ ଦେବା ।

ଚିଲ ମାରିବା—ଦେ. କ୍ରି.—ଚିଲ ପରି ଝାମ୍ପି କରି କୌଣସି ପଦାର୍ଥକୁ ନେଇଯିବା ।

ଚିନ୍(ନ) ଚିନ୍(ନ) ମାରିବା—ଦେ. କ୍ରି—ଚୁଣ୍ଟରେ ଫୋଟିବା ପରି ଶରୀରରେ ତୀକ୍ଷ୍ଣ ବେଦନା ଜଣାଯିବା ।
[ଦ୍ର—'ଚାଉଁ ଚାଉଁ' ଅପେକ୍ଷା ଚିନ୍ ଚିନ୍ ଲଘୁତର ।]

ଚୁଁ ମାରିବା—ଦେ. କ୍ରି—ଚୁଁ କରିବା; (ନବାଗତ ବଧୂମାନେ) କଥା
(ଚୁଁ ଚୁଁ ମାରିବା—ଅନ୍ୟରୂପ) ନ କହି 'ଚୁଁ' ଶବ୍ଦଦ୍ୱାରା ଗୁରୁଜନଙ୍କ ଦୃଷ୍ଟି ଆକର୍ଷଣ କରିବା ।

ଚୁଚୁକାଳ(ର)ମାରିବା—ଦେ. କ୍ରି—ମୁଖଦ୍ୱାରା ଚୁ ଚୁ ଶବ୍ଦ କରି ପାଳିତ ପଶୁ ଆଦିଙ୍କ ପ୍ରତି ବାତ୍ସଲ୍ୟ ପ୍ରକାଶ କରିବା ।

ଚୁପ୍ ମାରିବା—ଦେ. କ୍ରି—ମୌନାବଲମ୍ବନ କରିବା ।

(ଗାଲରେ) ଚୂନ କଳା ମାରିବା—ଦେ. କ୍ରି—ଅପରାଧୀ ବ୍ୟକ୍ତିକୁ ଦଣ୍ଡ ଦେବା ବା ଲଜ୍ଜିତ କରାଇବା ପାଇଁ, ତାହାର ଏକ ଗାଲରେ ପଟାଏ ଚୂନ ଓ ଅନ୍ୟ ଗାଲରେ ପଟାଏ କଳା ବୋଳିବା ।
(ଚୂନ କାଳି ମାରିବା—ଅନ୍ୟରୂପ)

ଚୂନ ମାରିବା—ଦେ. କ୍ରି—୧ । ପାନରେ ଚୂନ ଲଗାଇବା । ୨ । ଘରର କାନ୍ଥରେ କଳି ଚୂନ ଗୋଳିଆ ପାଣି ଲେପିବା, ଚୂନ ସଫେଦ କରିବା ।

ଚେର ମାରିବା—ଦେ. କ୍ରି—(ଗଛ) ଆପଣାର ଚେରକୁ ଭୂଇଁ ମଧ୍ୟକୁ ବିସ୍ତାରିତ କରିବା ।

ଚୋଞ୍ଚ ମାରିବା—ଦେ. କ୍ରି—୧ । (ସାପ) କୌଣସି ଜୀବକୁ ଦନ୍ତଦ୍ୱାରା ଥରେ ଆଘାତ କରିବା । ୨ । କୌଣସି ଶସ୍ତ୍ରଦ୍ୱାରା ଆଘାତ କରିବା ।

**ଛଡା(ଡ଼)ମାରିବା**—ଦେ. କ୍ରି—୧ । ମେଲ୍ଲ ଛଡାକୁ ବୁଢ଼ିବା; ୨। ମେଲ୍ଲ ଛଡାକୁ ଭୁଇଁରେ ପୋତି ତା ଉପରେ ବସିବା । [ଦ୍ର—ଯେପରି ଘୁଡ଼ୁଲିଆ, ମଇଁଷିଆଳ ଓ ବାବାଜୀମାନେ କରନ୍ତି ।]

**ଛତିଆ ମାରିବା**—ଦେ. କ୍ରି.—(ଦାନ୍ତ ବା ଛତ ବା କୌଣସି ପଦାର୍ଥ) ଛତିଆ ବା ଲୋମାକାର ଛତୁଦ୍ୱାରା ଆବୃତ ହେବା ।

**ଛପଟିଆ ମାରିବା**—ଦେ. କ୍ରି—୧ । ଧପାବାଜି କରି କୌଣସି ପଦାର୍ଥ ନେଇଯିବା । ୨ । (ବ୍ୟାଘ୍ର, ବଗୁଲ ଆଦି) ଲୁଚି କରି ଅପେକ୍ଷା କରି ବସି ରହି ସୁଯୋଗ ଦେଖି ଶିକାରକୁ ନେଇ ପଳାଇବା ।

**ଛପା ମାରିବା**—ଦେ. କ୍ରି—୧ । ଛପି କରି ବା ଲୁଚି କରି ରହିବା । ୨ । ମୋହର ମାରିବା । ୩ । ବହି ଆଦିରେ ଚଳଚ୍ଛବି ମାରିବା ।

**ଛବି ମାରିବା**—ଦେ. କ୍ରି—କାନ୍ଥ ଆଦିରେ ଛବି ଲଗାଇବା ।

**ଛାଞ୍ଚୁଣି ମାରିବା**—ଦେ. କ୍ରି—୧ । ସମ୍ମାର୍ଜନୀଦ୍ୱାରା ଥରେ ଓଳାଇ ଆଣିବା ୨ । ଛାଞ୍ଚୁଣିର ମୁଠାଦ୍ୱାରା କୌଣସି ବ୍ୟକ୍ତିକୁ ପ୍ରହାର କରିବା ।

**ଛାଞ୍ଚୁଣିବାଡ଼ ମାରିବା**—ଦେ. କ୍ରି—ଛାଞ୍ଚୁଣିଦ୍ୱାରା କୌଣସି ବ୍ୟକ୍ତିକୁ ପ୍ରହାର କରିବା ।

**ଛାଟ ମାରିବା**—ଦେ କ୍ରି—୧ । ସରୁ ଯଷ୍ଟିରେ ପ୍ରହାର କରିବା । ୨ । (ବର୍ଷା ପାଣି) ଭୂର୍ଯ୍ୟକ୍ ଭାବରେ କୌଣସି ସ୍ଥାନରେ ପଡ଼ିବା । ୩ । ପାଣିକୁ ଛାଟି କରି ପକାଇବା ।

**ଛାଟପାଣି ମାରିବା**—ଦେ. କ୍ରି—ବର୍ଷାପାଣି ତିର୍ଯ୍ୟଗ୍‌ଭାବରେ କୌଣସି ସ୍ଥାନରେ ପଡ଼ିବା ।

**ଛାତି** / **ଛାତିରେ** } **ମାରିବା**—ଦେ. କ୍ରି—ଶୋକଯୋଗୁଁ ଛାତିକୁ କରତଳଦ୍ୱାରା ବାରଂବାର ଆଘାତ କରିବା ।

**ଛାତିକ(କୁ) ମାରିବା**—ଦେ. କ୍ରି—ବକ୍ଷଃସ୍ଥଳରେ ଅତ୍ୟନ୍ତ ବେଦନା ବା ଶୂଳ ଅନୁଭୂତ ହେବା ।

**ଛାପ ମାରିବା**—ଦେ. କ୍ରି—୧ । ମୋହର ମାରିବା । ୨ । କୌଣସି ବସ୍ତୁ ଉପରେ ଭେଦସୂଚକ ଚିହ୍ନ ଦେବା । ୩ । (ବସ୍ତ୍ର ଆଦିରେ) ପାଟିର ଛେପ ଲଗାଇବା; ୪ । ଦେହରେ ଚନ୍ଦନାଦି ବା ଦ୍ୱାରକା ଛାପାଦ୍ୱାରା ସାମ୍ପ୍ରଦାୟିକ ଚିହ୍ନ ମୁଦ୍ରିତ କରିବା ।

**ଛାପା ମାରିବା**—ଦେ. କ୍ରି—୧ । ମୋହର ମାରିବା; ୨ । ମାର୍କା ମାରିବା; ୩ । ଛବି ମାରିବା ।

**ଛିଞ୍ଚି(ଞ୍ଚି)ଡ଼ା ମାରିବା**—ଦେ. କ୍ରି—ଛାଟପାଣି ମାରିବା ( ଦେଖ ) ।

**ଛିଟି(ଟି)କା ମାରିବା**—ଦେ. କ୍ରି—ଛାଟପାଣି ମାରିବା ( ଦେଖ ) । ଦେ. କ୍ରି—ଛିଟା ମାରିବା ( ଦେଖ ) ।

**ଛିଟି(ଟି)କଣି ମାରିବା**—ଦେ. କ୍ରି—ଦଉଡ଼ି ଫାଶରେ ଟେକା ଲଗାଇ ହାତ୍ରୁ ଟେକାକୁ ଦୂରକୁ ଫୋପାଡ଼ିବା ।

**ଛିଟା ମାରିବା**—ଦେ. କ୍ରି—ପାଣି ଆଦି ତିର୍ଯ୍ୟଗ୍‌ଭାବରେ ଛିଞ୍ଚିବା ।

**ଛୁଞ୍ଚି ମାରିବା**—ଦେ. କ୍ରି—ଛୁଞ୍ଚିରେ ଫୋଡ଼ିବା; ଦେ. କ୍ରି—ସୂଚିବେଧନବତ୍ ତୀବ୍ର ଯାତନା ଅନୁଭୂତ ହେବା ।

**ଛୁର(ରି) ମାରିବା**—ଦେ. କ୍ରି—ଛୁରିର ଅଘାତଦ୍ୱାରା କାଟିବା ।

**ଛେପ ମାରିବା**—ଦେ. କ୍ରି—ବ୍ରଣ ଆଦିରେ ମୁହଁର ଛେପ ଲଗାଇବା ।

**ଛୋରି ମାରିବା**—ଦେ. କ୍ରି—ଛୋରିଦ୍ୱାରା ଅଘାତ କରିବା ।

**(ଗଛରେ) ଜଉ ମାରିବା**—ଦେ. କ୍ରି—( ବୃକ୍ଷଯୁକ୍ତାସ୍ଥ ରୋଗବିଶେଷ ) ଗଛ ଆଦିର ଡାଳରେ ବା ଗଣ୍ଡି ଉପରେ ଜଉ ପରି ଦେଖାଯାଉଥିବା ଏକପ୍ରକାର ପୋକଙ୍କ ସ୍ତୂପ (ଜଉଅ ମାରିବା—ଅନ୍ୟରୂପ) ପଡ଼ିଯିବା ।

**ଜଉ ମୁଦ ମାରିବା**—ଦେ. କ୍ରି—ଚିଠିକୁ ବା ଲଫାପାକୁ ବନ୍ଦ କରି ତହିଁ ଉପରେ ଜଉକୁ ତରଳାଇ କରି ଦେଇ ତହିଁ ଉପରେ ମୋହର ବସାଇବା ।

**ଜଖ ମାରିବା**—ଦେ. କ୍ରି—ଚଳନଶୀଳ ଜୀବରୂପେ ଗୃହରକ୍ଷକ ଜଗୁଥିବା 'ଜଖ'କୁ ମନ୍ତ୍ରରେ ପରିଣତ କରିବା । [ ଦ୍ର—ସାଧାରଣ ଲୋକଙ୍କର ବିଶ୍ୱାସ ଅଛି ଯେ, ବହୁକାଳର ପୋତାଧନ 'ଜଖ' ବା ଚଳନଶୀଳ ଚକଚକିଆ ଜୀବ ପାଲଟି ଯାଇ ପୋତା ହୋଇଥିବା ସ୍ଥାନ ନିକଟରେ ନିର୍ଜନ ସ୍ଥଳରେ ବୁଲେ ଓ କେହି ଲୋକ ତାକୁ ଖଣ୍ଡି କରି ତା ଉପରେ ହଳଦୀପାଣି ଛାଟିଦେଲେ ସେ ଚଳନଶୀଳ 'ଜଖ' ନିର୍ଜୀବ ସୁନା ପାଲଟି ଯାଏ ।]

**ଜଡ଼ ମାରିବା**—ଦେ. କ୍ରି—ମୂଳରୁ ମାରିବା; କୌଣସି ଗଛକୁ, (ଜଡ଼ରୁ ମାରିବା—ଅନ୍ୟରୂପ) ରୋଗକୁ ବା ବସ୍ତୁକୁ ନିର୍ମୂଳ କରିବା ।

**ଜନ୍ତ ମାରିବା**—ଦେ. କ୍ରି—ପାଣି ବୋହିବା ନିମନ୍ତେ କୌଣସି ସ୍ଥାନରେ ଜନ୍ତୁଶାଳ ପ୍ରସ୍ତୁତ କରିବା ।

**ଜଲଛ(ଛା)ପା ମାରିବା, ଜଲଛବି ମାରିବା**—ଦେ. କ୍ରି—ପାଣି ସାହାଯ୍ୟରେ ଅନ୍ୟ କାଗଜରୁ ଜଲଛବି ଉଠାଇ ବହି ଆଦିରେ ଲଗାଇବା ।

**ଜଲା ମାରିବା**—ଦେ କ୍ରି—ଛିଦ୍ର ବୁଜିବା ବା ବନ୍ଦ କରିବା ।

**ଜାନ୍ ମାରିବା**—ଦେ. କ୍ରି—ପ୍ରାଣାନ୍ତକ କଷ୍ଟ ଦେବା ।

**ଜାନ୍‌ରେ ମାରିବା**—ଦେ. କ୍ରି—ହତ୍ୟା କରିବା; ମାରି ପକାଇବା ।

**ଜାବ(ବୁ)ଡ଼ା ମାରିବା**—ଦେ. କ୍ରି—ଚଟକଣା ମାରିବା ।

**ଜାଲ ମାରିବା**—ଦେ. କ୍ରି—ପାଣିରେ ମେଲା ହୋଇଥିବା ଜାଲକୁ ଟାଣି ନେଇ ଗୋଠାଇବା ।

**ଜିଦ(ଦ୍,ଦି) ମାରିବା**—ଦେ. କ୍ରି—କୌଣସି କାର୍ଯ୍ୟ ପାଇଁ ପଣ ରଖିବା ।

**ଜିଭ ମାରିବା**—ଦେ. କ୍ରି—କୌଣସି ଖାଦ୍ୟ ବସ୍ତୁରେ ଜିଭ ବୁଲାଇବା ବା ଲଗାଇବା; ଚାଟିବା ।

**ଜୀବ ମାରିବା**—ଦେ. କ୍ରି—ଜୀବହତ୍ୟା କରିବା ।

**ଜୀବନ ମାରିବା**—ଦେ. କ୍ରି—ଜାନ୍ ମାରିବା ( ଦେଖ )

**ଜୀବନରେ ମାରିବା**—ଦେ. କ୍ରି—ଜାନ୍‌ରେ ମାରିବା ( ଦେଖ )

**ଝଅକ ମାରିବା**—ଦେ. କ୍ରି—୧ । ବେଲୁବ କାର୍ଯ୍ୟ କରିବା । ୨ । (ଝକ୍ ମାରିବା—ଅନ୍ୟରୂପ) ଅପଣାର ବେଲୁବ ସ୍ୱୀକାର କରିବା ।

**ଝକ୍‌ମକ୍ ମାରିବା**—ଦେ. କ୍ରି—ଚକ୍‌ମକି ମାରିବା ( ଦେଖ ) ।

**ଝାଇଁ ମାରିବା**—ଦେ. କ୍ରି—୧ । ଝୋଲ ମାରିବା । ୨ । କାନରେ ଭାଁ ଭାଁ ଶବ୍ଦ ହେବା ।

**ଝାଙ୍କି ମାରିବା**—ଦେ. କ୍ରି—ଉଙ୍କି ମାରିବା; କୌଣସି ସ୍ଥାନରେ ଲୁଚି ରହି ଉପର୍ଯ୍ୟୁପରି ମୁହଁ ବାହାର କରି ବା ଉହୁଙ୍କି କୌଣସି ବସ୍ତୁକୁ ଶୁଙ୍ଘିବା ।

**ଝାଞ୍ଜୁ ମାରିବା**—ଦେ. କ୍ରି—ଝଞ୍ଜୁଣି ମାରିବା ( ଦେଖ ) ।

**ଝାମ ମାରିବା**—ଦେ. କ୍ରି—ଝୋଲ ମାରିବା ( ଦେଖ ) ।

**ଝାମା ମାରିବା**—ଦେ. କ୍ରି—ଯୋଡ଼ା ଇଟାଖଣ୍ଡଦ୍ୱାରା ଘଷି କାଠକୁ ପାଲିସ କରିବା ।

**ଝାମ୍ପ ମାରିବା**—ଦେ. କ୍ରି—ଝାମ୍ପିବା, ଡେଇଁ ମାରିବା ।

**ଝାଳ ମାରିବା**—ଦେ. କ୍ରି—ପରିଶ୍ରମ ଯୋଗୁଁ ଦେହରୁ ବୋହୁଥିବା ଘର୍ମକୁ ପବନ ସାହାଯ୍ୟରେ ଶୁଖାଇବା । [ ଦ୍ର—ମୁଣ୍ଡଝାଳ ଗୋଡ଼ରେ ମାରିବା—ଲଗ; ଅର୍ଥାତ୍ ମୁଣ୍ଡରୁ ଝାଳ ବୋହି ଝାଳର ଧାର ଗୋଡ଼ ପର୍ଯ୍ୟନ୍ତ ବୋହି ଆସିବାଯାଏ ପରିଶ୍ରମ କରିବା; କଠୋର ପରିଶ୍ରମ କରିବା । ]

**ଝିଙ୍କ୍(ଙ୍କି)କା ମାରିବା**—ଦେ. କ୍ରି—ଘୋଡ଼ାର ଲଗାମକୁ ବା ଦଉଡ଼ି ଆଦିକୁ ଜୋରରେ ଉପର୍ଯ୍ୟୁପରି ଝିଙ୍କିବା ଓ ଝଟ୍କା ଦେବା ।

**ଝିଣ୍ଟିକା ମାରି ବଣି ପୋଷିବା**—ଦେ. ଲଗ—ଗୋଟିଏ ବଣି ଚଢ଼େଇକୁ ଆହାର ଦେବା ପାଇଁ ବହୁସଂଖ୍ୟକ ଝିଣ୍ଟିକାଙ୍କୁ ବଧ କରିବା, ଅର୍ଥାତ୍ ଅନେକ ଗରିବ ଲୋକଙ୍କୁ କଷ୍ଟ ଦେଇ ଜଣେ ବଡ଼ ଲୋକକୁ ସୁଖରେ ରଖିବା ।

**ଝୁଣ୍ଟା ମାରିବା**—ଦେ. କ୍ରି—ରାଜା ଆଦିଙ୍କ ନାମ ଉଚ୍ଚାରଣପୂର୍ବକ ଗୋଟିଏ ବାଉଁଶ ଅଗରେ ପୁଳାଏ କୁଟା ଗୁଡ଼ାଇ କୌଣସି ଜମିରେ ବା ପଦାର୍ଥ (ଯଥା—ଫସଲ) ନିକଟରେ ଉକ୍ତ ବାଉଁଶକୁ ପୋତିବା । (ଏଥିର ଉଦ୍ଦେଶ୍ୟ ଏହି ଯେ, ଉକ୍ତ ଜମିରେ ବା ପଦାର୍ଥରେ ନାମୋଚ୍ଚାରିତ ବ୍ୟକ୍ତିଙ୍କ ବିନା ଆଦେଶରେ କେହି ହସ୍ତକ୍ଷେପ କରିବେ ନାହିଁ ।)

**ଝୋଲ ମାରିବା**—ଦେ. କ୍ରି—ବିଶେଷ ପରିଶ୍ରମ ଯୋଗୁଁ ମୂର୍ଚ୍ଛିତ ହେବା ।

**ଟକ(କ୍କ)ର ମାରିବା**—ଦେ. କ୍ରି—ଟକ୍କର ମାରିବା; ପ୍ରତିଦ୍ୱନ୍ଦ୍ୱିତା ବା ପ୍ରତି-ଯୋଗିତା କରିବା ।

**ଟଙ୍କ(କ) ମାରିବା**—ଦେ. କ୍ରି—୧ । (ଦହି, ପଖାଳ) ବହୁଦିନ ରହିବା [ଟଙ୍କ(କ) ମାରିଯିବା—ଅନ୍ୟରୂପ] ଯୋଗୁଁ ଅତ୍ୟନ୍ତ ଖଟା ହେବା । ୨ । (ଦାନ୍ତ, ପାଟି) ଖଟା ପଦାର୍ଥ ଖାଇବାଦ୍ୱାରା ବିକାର-ଯୁକ୍ତ ହେବା ।

**ଟର୍ ମାରିବା**—ଦେ. କ୍ରି ( ଅଧୁନିକ )—ବିଜୁଳି ବତିଯୁକ୍ତ ଟର୍ଚ୍ଚର (ଟର୍ଚ୍ଚ ଲାଇଟ୍ ମାରିବା—ଅନ୍ୟରୂପ) ଆଲୋକକୁ କୌଣସି ବ୍ୟକ୍ତି ବା ବସ୍ତୁ ଉପରକୁ ପକାଇବା ।

**ଟହଲ ମାରିବା**—ଦେ. କ୍ରି—ଟହଲିବା; ଧୀରଭାବରେ ଆଗକୁ ଓ ପଛକୁ ଚାଲିବା ।

**ଟାଙ୍କର ମାରିବା**—ଦେ. କ୍ରି—ବକ୍ରାଙ୍ଗୁଳିର ପୃଷ୍ଠଦ୍ୱାରା କୌଣସି ବ୍ୟକ୍ତିର ମୁଣ୍ଡର ଖପୁରିରେ ଆଘାତ କରିବା ।

**ଟାକସି ମାରିବା**—ଦେ. କ୍ରି—ଟାକସି ଫୁଟାଇବା; ଜିଭ ଓ ତାଳୁ ଦ୍ୱାରା 'ଟକ୍ ଟକ୍' ଶବ୍ଦ କରିବା । [ଦ୍ର—ଗୋରୁ ଆଦିଙ୍କୁ ଚଲାଇବା ପାଇଁ ଏ ଶବ୍ଦ କରାଯାଏ ।]

**ଟାଙ୍ଗା ମାରିବା**—ଦେ. କ୍ରି—ଚିରି ଯାଇଥିବା ଲୁଗା ବା କନାର ଦୁଇ ଅଂଶକୁ ଯୋଡ଼ି ମୋଟା ବା ଦୂର ଖଡ଼ିଆ କରି ସିଲାଇ କରିବା ।

**ଟାଙ୍କୁ ମାରିବା**—ଦେ. କ୍ରି—୧ । କୌଣସି ପଦାର୍ଥକୁ ଜଡ଼ରୁ ମାରିବା । [ଦ୍ର—ଉଇ ହୁଙ୍କାକୁ ଥରେ ଭାଙ୍ଗି ଦେଲେ ପୁଣି ଉଇ-ମାନେ ଅଳ୍ପକାଳ ମଧ୍ୟରେ ସେ ହୁଙ୍କାକୁ ତିଆରି କରି ପକାନ୍ତି; କିନ୍ତୁ ଉଇ ହୁଙ୍କାର ମୂଳ ଖୋଳି ଗଭୀର ଭୂମିରେ ଥିବା ଉଇଙ୍କ ଟାଙ୍କୁକୁ ନଷ୍ଟ କରିଦେଲେ ସେଠାରୁ ଉଇ ଲୋପ ପାଆନ୍ତି ଓ ସେ ସ୍ଥାନରେ ଆଉ ଉଇ ହୁଙ୍କା ହୋଇ ପାରେ ନାହିଁ ।] ୨ । କୌଣସି ବ୍ୟକ୍ତିର ଶକ୍ତିକୁ ବା ଗର୍ବକୁ ସମ୍ପୂର୍ଣ୍ଣରୂପେ ଚୂର୍ଣ୍ଣ କରିବା । [ଦ୍ର—କୌଣସି ମନୁଷ୍ୟର 'ଟାଙ୍କୁ' ବା ଗୋଡ଼କୁ ଭାଙ୍ଗିଦେଲେ ସେ ଅଚଳ ଓ ଅବଶ ହୋଇଯାଏ ।]

**ଟାପୁ ମାରିବା**—ଦେ. କ୍ରି ( ଘୋଡ଼ା ) ଖୁରଦ୍ୱାରା ଭୂମିକୁ ବାରମ୍ବାର ଆଘାତ କରିବା ବା ଖୁମ୍ପୁଡ଼ିବା ।

**ଟାହୁଆ ମାରିବା**—ଦେ. କ୍ରି—ଫୁଲର ବା ପକ୍ଷୀର ବିଚିତ୍ର ପରାକୁ ଖୋସି (ଟାହୁଆ ମାରିବା—ଅନ୍ୟରୂପ) କମନୀୟ କୌଣସିଠାରେ ଖୋସିବା ।

**ଟାହି ମାରିବା, ଟାହି(ହୁ)ଲି ମାରିବା**—ଦେ. କ୍ରି—୧ । ଟାପରା କରିବା; ଥଟ୍ଟାରେ ପଦେଅଧେ କଥା କହିବା । ୨ । ବ୍ୟଙ୍ଗ ବିଦ୍ରୂପ କରିବା ।

**ଟିକ(କି,କେ)ଟ୍ ମାରିବା, ଟିକଟି ମାରିବା**—ଦେ. କ୍ରି—୧ । ଚିଠି ଆଦିର ଲଫାଫା ଉପରେ ଡାକ ଟିକଟ ଲଗାଇବା । ୨ । କୌଣସି ପଦାର୍ଥର ମୂଲ୍ୟାଦି ଜ୍ଞାପନାର୍ଥ ତହିଁ ଉପରେ ମୂଲ୍ୟଗୁଣାଦି ବର୍ଣ୍ଣିତ କାଗଜର ଛୋଟ ଖଣ୍ଡ ଲଗାଇବା ।

**ଟିକଲି ମାରିବା, ଟିକ୍ଲି ମାରିବା**—ଦେ. କ୍ରି—୧ । ଟିକଟ ମାରିବା । ୨ । (ସ୍ତ୍ରୀମାନେ) କପାଳର ମଧ୍ୟରେ ଧାତୁ ଆଦିର ଗୋଲା-କାର କ୍ଷୁଦ୍ର ଫଳକ ଲଗାଇବା ।

**ଟିପ ମାରିବା**—ଦେ. କ୍ରି—୧ । ଆଙ୍ଗୁଠିର ଅଗରେ କୌଣସି ବସ୍ତୁକୁ ଧୀରଭାବରେ ଆଘାତ କରିବା ବା ଚିପିବା । ୨ ଆଙ୍ଗୁଠିର ଅଗରେ କୌଣସି ବ୍ୟକ୍ତିର ଅଙ୍ଗକୁ ସ୍ପର୍ଶ କରି କୌଣସି ସଙ୍କେତ ଦେବା ।

**ଟେକା ମାରିବା**—ଦେ. କ୍ରି—କ୍ଷୁଦ୍ର ଲୋଷ୍ଟ୍ରଖଣ୍ଡ ନିକ୍ଷେପ କରିବା ।

**ଟେଲା ମାରିବା**—ଦେ. କ୍ରି—ବଡ଼ ବଡ଼ ପ୍ରସ୍ତର ବା ମାଟିର ଖଣ୍ଡ ନିକ୍ଷେପ କରିବା ।

**ଟୋପା(ପି) ମାରିବା**—ଦେ. କ୍ରି—ଚନ୍ଦନର ବିନ୍ଦୁ କପାଳରେ ଲଗାଇବା

**ଠଣା ମାରିବା**—ଦେ. କ୍ରି—୧ । ଠଣା ଠୁକିବା; ଟାଙ୍କର ମାରିବା; ଆଙ୍ଗୁଠିକୁ ମୁଠା କରି ଆଙ୍ଗୁଠିର ଗୋବାଦ୍ୱାରା କୌଣସି ବ୍ୟକ୍ତିକୁ ଆଘାତ କରିବା । ୨ । କାନ୍ଥରେ ଥିବା ଠଣାକୁ ରୁଦ୍ଧ ଦେବା ।

**ଠାର ମାରିବା**—ଦେ. କ୍ରି—ଠାରଦ୍ୱାରା ମାନସିକ ଭାବ ପ୍ରକାଶ କରିବା ।

**ଠିପି ମାରିବା**—ଦେ. କ୍ରି—ବୋତଲର ମୁହଁରେ ସୋଲ ବା କାଠ ଆଦି ଲଗାଇ ମୁହଁକୁ ବନ୍ଦ କରିବା ।

ଠେଲା ମାରିବା—ଦେ. କ୍ରି—କରତଳ ବା ବାହୁଦ୍ୱାରା ଠେଲିବା ।

ଠୋକର ମାରିବା—ଦେ. କ୍ରି—୧ । ହାକର ମାରିବା; ମୁଠା କରାଯାଇଥିବା ଅଙ୍ଗୁଳିର ପୃଷ୍ଠଦ୍ୱାରା କୌଣସି ବ୍ୟକ୍ତିଙ୍କୁ ଆଘାତ କରିବା । ୨ । ପାଦତଳର ଅଗଦ୍ୱାରା କୌଣସି ବସ୍ତୁକୁ ଆଘାତ କରିବା ।

ଡଙ୍କ ମାରିବା—ଦେ. କ୍ରି—୧ । ( ଲତା ) ଡଙ୍କାଇବା ବା ଲଟାଇବା । ୨ । ( ବିଷ ଅଙ୍ଗ ନାହୁଡ଼ବିଶିଷ୍ଟ ଜୀବ ) ନାହୁଡ଼ଦ୍ୱାରା କୌଣସି ଜୀବକୁ ଆଘାତ କରିବା ।

ଡଙ୍କା ମାରିବା— ଦେ. କ୍ରି—ନିଆଁ ଉପରେ ପାକ କରାଯାଉଥିବା ଛଅଣ ଆଦିକୁ ଡଙ୍କା ବା ଅଣକଦ୍ୱାରା ଘାଣ୍ଟିବା ।

ଡାଇ(ହି)କା ମାରିବା—ଦେ. କ୍ରି ( ପାଲାବାଲାମାନେ ) ବ୍ୟଙ୍ଗ-ବିଦ୍ରୂପାତ୍ମକ ପଦ୍ୟ ବା ଗୀତ ବୋଲି ପ୍ରତିଦ୍ୱନ୍ଦ୍ୱୀ ଦଳକୁ ଗାଳିଦେବା ।

ଡାକ ମାରିବା—ଦେ. କ୍ରି—୧ । ଡାକ ଛାଡ଼ିବା; ଉଚ୍ଚୈଃସ୍ୱରରେ ଚିତ୍କାର କରିବା । ୨ । ଦୂରସ୍ଥ ବ୍ୟକ୍ତିକୁ ଉଚ୍ଚୈଃସ୍ୱରରେ ଡାକିବା ।

ଡାକୁ ମାରିବା—ଦେ. ବି—ଡକାଇତଙ୍କଦ୍ୱାରା ଦ୍ରବ୍ୟାଦିର ବଳପୂର୍ବକ ଅପହରଣ ।

ଡିଆଁ ମାରିବା—ଦେ କ୍ରି—୧ । ଡେଇଁବା । ୨ । ଲୁଦା ମାରି ଗଡ଼ କରିବା । ୩ । ଦଉଡ଼ କରି ପଳାଇଯିବା ।

ଡିଟୋ ମାରିବା—ଦେ. କ୍ରି (ଇଂ. ଡିଟ୍ଟୋ )—ଅଗ୍ର ପଶ୍ଚାତ୍ ବା ଭଲ ମନ୍ଦ ବିଚାର ନ କରି କୌଣସି ବ୍ୟକ୍ତିଙ୍କ ପ୍ରକାଶିତ ମତରେ ଏକମତ ପ୍ରକାଶ କରିବା ।

ଡିହ ମାରିବା—ଦେ. କ୍ରି—ଯଷ୍ଟି ଆଦିର ମୂଳଦ୍ୱାରା ଆଘାତ କରିବା । (ଢିଅ ମାରିବା—ଅନ୍ୟରୂପ)

ଡୁବ(ବା) ମାରିବା—ଦେ. କ୍ରି ( ବଙ୍ଗଳାରୁ ଅନୁକୃତ; ବଂ. ଡୁବମାରା ) —ପାଣିରେ ବୁଡ଼ିବା ବା ବୁଡ଼ିଯିବା ।

ଡୁହା ମାରିବା —ଦେ. କ୍ରି—କୌଣସି ବ୍ୟକ୍ତିକୁ ଲକ୍ଷ୍ୟ କରି ବ୍ୟଙ୍ଗ୍ୟାତ୍ମକ ପ୍ରବଚନ ବୋଲିବା ।

ଢାଇ ମାରିବା—ଦେ. କ୍ରି. (ଶିଶୁବଚନ) ଅନ୍ୟ ବ୍ୟକ୍ତିର ଲେଣ୍ଡିକୁ ବା ମୁଣ୍ଡକୁ ଲକ୍ଷ୍ୟ କରି ଆପଣା ମୁଣ୍ଡଦ୍ୱାରା ମୁଣ୍ଡିଆ ମାରିବା ।

ଢାଗା ମାରିବା—ଦେ. କ୍ରି—୧ । ଠାଙ୍କା ମାରିବା (ଦେଖ) । ୨ । କଳରେ ସିଲାଇ କରିବା ପୂର୍ବରୁ ଲୁଗା ୨ ଖଣ୍ଡକୁ ଦୂରଛାଡ଼ିଆ କରି ସିଲାଇ କରିବା ।

ଢୁଆ ମାରିବା—ଦେ. କ୍ରି—ଡୁହା ମାରିବା (ଦେଖ) ।

ଢୁ ମାରିବା—ଦେ. କ୍ରି—ବନ୍ଧୁକ ଫୁଟାଇବା ।

ଢୁଁ ମାରିବା—ଦେ. କ୍ରି (ଅଶ୍ଳୀଳ) —୧ । କୌଣସି ବ୍ୟକ୍ତି କଥାପ୍ରସଙ୍ଗରେ 'ହୁଁ' ଶବ୍ଦ ଉଚ୍ଚାରଣ କଲେ, ତାକୁ ଉପହାସ କରିବାକୁ 'ଢୁଁ' ଶବ୍ଦ ଉଚ୍ଚାରଣ କରିବା ।

ଢେଲା ମାରିବା--ଦେ. କ୍ରି-[ବଙ୍ଗଳାରୁ ଅନୁକୃତ; ବଂ. ଢେଲା (ଢିଲ୍)ମାରା] ଢେଲା ମାରିବା (ଦେଖ) ।

ଢୋଲେ ମାରିବା—ଦେ. କ୍ରି. ( ବ୍ୟଙ୍ଗ)—ପେଟ ପୂରା କରି ଭୋଜନ କରିବା ।

ତଣ୍ଟିଆ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିର ତଣ୍ଟି (ଗଳାର ସମ୍ମୁଖ ଭାଗ)ରେ ଅର୍ଦ୍ଧଚନ୍ଦ୍ରୀକୃତ କରତଳଦ୍ୱାରା ଧକ୍କା ଦେବା ।

ତର ମାରିବା—ଦେ. କ୍ରି—କଥାରେ ଭଣ୍ଡାଇବା; ବାହାନା କରିବା; ପ୍ରକୃତ କଥା ଗୋପନ ରଖି କୌଣସି ପ୍ରକାରେ କଥାକୁ ଚଳାଇନେବା ।

ତରକ ମାରିବା—ଦେ. କ୍ରି—ସତର୍କ ହୋଇ କଥା କହିବା ।

ତଲ ମାରିବା—ଦେ. କ୍ରି ( ଥନ୍ତାରୀଙ୍କ ବ୍ୟବହୃତ ଶବ୍ଦ )—ଡାଲ, ଗଛ ପ୍ରଭୃତିର ତଳଖଣ୍ଡକୁ ବାଡ଼େଇ ବା ପିଟି ଛଆଇ କରିବା ।

ତହ ମାରିବା—ଦେ. କ୍ରି—୧ । ତର ମାରିବା । ୨ । ସ୍ତର ସ୍ତର କରି ସଜ୍ଜିତ କରିବା ।

ତାଙ୍କ ମାରିବା— ଦେ. କ୍ରି—ବସ୍ତ୍ର ଆଦିକୁ ଉପର୍ଯ୍ୟୁପରି ସଜାଇ କରି ରଖିବା ।

ତାଲଫ(ଫେ)ଟକା }
ତଲଫୁଟୁକା } ମାରିବା—ଦେ. କ୍ରି—ତାଲପତ୍ରରେ ଛଅର ହୋଇଥିବା ଫଟକାରେ ଅଗ୍ନି ସଂଯୋଗ କରି ଫୁଟାଇବା ।

ତାଲି ମାରିବା—ଦେ. କ୍ରି—ଦୁଇ ହାତର ପାପୁଲିକୁ ପରସ୍ପର ଆଘାତ କରି ଶବ୍ଦ କରିବା ।

ତେଣ୍ଟା ମାରିବା—ଦେ. କ୍ରି—ତେଣ୍ଟା ବା ଲମ୍ବ ମୁନିଆ ଅସ୍ତ୍ରଦ୍ୱାରା ମାଛ ବା ଅନ୍ୟ ଜୀବଙ୍କୁ କିଛି ଦୂରରେ ରହି ଉପରଆଡ଼ୁ ଜୋରରେ କେଞ୍ଚିବା ।

ତେଣ୍ଡା ମାରିବା —ଦେ. କ୍ରି—କୌଣସି ଉଚ୍ଚ ସ୍ଥାନକୁ ପାଣି ବୋହିବାକୁ ଜଳାଶୟର କୂଳରେ ବାଉଁଶ, ଖୁଣ୍ଟ ପ୍ରଭୃତି ପୋତି ଓ ଅନ୍ୟାନ୍ୟ ଉପକରଣମାନ ଠିକ୍ କରି ସଜାଡ଼ି ରଖିବା ।

ତେଲ ମାରିବା—ଦେ. କ୍ରି—୧ । ତେଲକୁ କୌଣସିଠାରେ ସାମାନ୍ୟ ଭାବରେ ବୋଳିବା; ୨ । ତୈଳପ୍ରଧାନ ଦ୍ରବ୍ୟକୁ ସିଝାଇ ବା ଅନ୍ୟ ପ୍ରକ୍ରିୟାଦ୍ୱାରା ତହିଁରୁ ତେଲ ବାହାର କରିବା ।

ତେଲ ହାତ ମାରିବା—ଦେ. କ୍ରି—କୌଣସି ଦ୍ରବ୍ୟରେ ବା ଦେହରେ ହସ୍ତଦ୍ୱାରା ସାମାନ୍ୟ ମାତ୍ର ତୈଳ ଲଗାଇବା ।

ଥକା(କ୍ଲା) ମାରିବା—ଦେ. କ୍ରି—ଅତିଶୟ କ୍ଲାନ୍ତ ହୋଇ ରହିଯିବା ।

ଥଣ୍ଟ ମାରିବା—ଦେ. କ୍ରି—(ପକ୍ଷୀ) ଥଣ୍ଟଦ୍ୱାରା କୌଣସି ପଦାର୍ଥକୁ ଖୁମ୍ପିବା ବା ସ୍ପର୍ଶ କରିବା ।

ଥପ୍ପ ମାରିବା—ଦେ. କ୍ରି—ଚୁପ୍ ମାରିବା ଦେଖ) ।

ଥାକ ମାରିବା—ଦେ. କ୍ରି—୧ । ତାକ ମାରିବା (ଦେଖ); ୨ । କୌଣସି ବିଷୟର ପ୍ରସଙ୍ଗକ୍ରମେ ତହିଁର ବିରୁଦ୍ଧ ବା ନିଃସମ୍ପର୍କୀୟ ବା ଅସମ୍ଭବ ବିଷୟ ଉତ୍ଥାପନ କରିବା ।

ଥାଳି ମାରିବା—ଦେ. କ୍ରି—କୌଣସି ସମତୁଲ ସ୍ଥାନରେ ଥାଳିକୁ ଏପରି ଭାବରେ ପକାଇବ, ଯେପରି କି ଉକ୍ତ ଥାଳି ଉପରେ ଉପରେ ଖସି ଚାଲିଯିବ ।

[ ଦ୍ର—ଏ ବାକ୍ୟ ସବୁ ସ୍ଥାନରେ ବ୍ୟବହୃତ ହୁଏ ନାହିଁ । କେବଳ କୌଣସି ସ୍ଥାନରେ ଅତ୍ୟଧିକ ଲୋକ-ସମାଗମ ହେଲେ ସେମାନଙ୍କର ମୁଣ୍ଡକୁ ମୁଣ୍ଡ ଏପରି ଲାଗିଯାଏ ଯେ ସେମାନଙ୍କ ମୁଣ୍ଡ ଉପରେ ଗୋଟିଏ ଥାଳିକୁ ପାଣିରେ ଭସାଇଲା ପରି ଛାଡ଼ିଦେଲେ , ଉକ୍ତ ଥାଳି ଲୋକଙ୍କ ମୁଣ୍ଡ

ଉପରେ ଉପରେ ଗଡ଼ କରି ଗଳିଯିବ—ମଝିରେ କୌଣସି ସ୍ଥାନରେ ତଳକୁ ପଡ଼ିଯିବ ନାହିଁ । ଏହିପରି ସ୍ଥଳରେ ଏଥିର ପ୍ରୟୋଗ ହୁଏ ।

ଥାଳକ ଥାଳ / ଥାଳ ଥାଳ କରି ଭାତ } ମାରିବା—ଦେ. କ୍ରି—( କୌଣସି ଲୋକ ) ଉପର୍ଯ୍ୟୁପରି ଦୁଇ ତିନ ଥାଳ ଭାତ ଖାଇବା; ଅତ୍ୟଧିକ ଖାଇବା ।

ଥୁକ ମାରିବା—ଦେ. କ୍ରି—ଛେପ ମାରିବା ( ଦେଖ ) ।

ଥୁକ୍କାଥା ମାରିବା—ଦେ. କ୍ରି—'ଥୁକ୍' ବା 'ଥୁକ୍କାଥା' ଶବ୍ଦ ଉଚ୍ଚାରଣ କରି କୌଣସି ପଦାର୍ଥକୁ ଅନ୍ୟ ବ୍ୟକ୍ତି ସ୍ପର୍ଶ କରିବ ନାହିଁ ବୋଲି ନିଷେଧ କରିବା ।

ଥୁ(ଥୋ)ପା(ପି) ମାରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତିର ମୁଣ୍ଡର ପଛଆଡ଼େ ଆଙ୍ଗୁଠିର ଟିପଦ୍ୱାରା ଧୀରଭାବରେ ଆଘାତ କରିବା ।

ଦଉଡ଼ି ମାରିବା—ଦେ. କ୍ରି—( ବଙ୍ଗଳାରୁ ଅନୁକୃତ ) ଏକା ଦମକେ ଦଉଡ଼ିବା ।

ଦଉଡ଼େଇ ଦଉଡ଼େଇ ମାରିବା—ଦେ. କ୍ରି—କୌଣସି ଲୋକକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଚଳାଇ ଚଳାଇ ଅତିଶୟ ବ୍ୟସ୍ତ ବା କ୍ଳାନ୍ତ କରାଇବା ।

ଦମ୍ / ଦମ୍ଭ } ମାରିବା—ଦେ. କ୍ରି—ଅତ୍ୟଧିକ ପରିଶ୍ରମ କରି ଆଉ କାର୍ଯ୍ୟ କରିବାକୁ ଅକ୍ଷମ ହେଲେ କିଛି ସମୟ ବିଶ୍ରାମ କରି ପୁଣି ବଳ ସଞ୍ଚୟ କରିବା ।

ଦମେ ମାରିବା—ଦେ. କ୍ରି—ଗଞ୍ଜାଇ, ଗୁଡ଼ାଖୁ ପ୍ରଭୃତିର ଧୂମ ଏକା ଥରକେ ଶୋଷି ନେବା ।

ଦାଇ(ହି)କା ମାରିବା—ଦେ. କ୍ରି—ନାଟରେ, ବାଦୀ ପାଲାରେ କିମ୍ବା କଳହ ସମୟରେ ବିପକ୍ଷକୁ ଜବାବ ଦେବା କିମ୍ବା ନାନା କରି କହିବା ।

ଦାଉଁ ମାରିବା—ଦେ. କ୍ରି—ଖଞ୍ଜ ଖାଞ୍ଜରେ, କୌଣସି ଧନ ବା ବସ୍ତୁ ହସ୍ତଗତ କରିବା ।

ଦାଣ୍ଡି ମାରିବା—ଦେ. କ୍ରି—ବୃଥାରେ ବୁଲିବା ।

ଦାନା / ଦାନା ପାଣି } ମାରିବା—ଦେ. କ୍ରି-କୌଣସି ଲୋକର ଭରଣପୋଷଣର ଉପାୟ ନିଜେ ବନ୍ଦ କରିବା ବା ଅନ୍ୟଦ୍ୱାରା ବନ୍ଦ କରାଇବା ।

ଦିଆସିଲାଇ, ଦିଆସିଲି, / ଦିଆସିଲି କାଠି } ମାରିବା—ଦେ. କ୍ରି—ଦିଆସିଲି କାଠିକୁ ଘଷି ଜଳାଇବା ।

ଦିନା କେତେ ମାରିବା—ଦେ. କ୍ରି—କିଛି ଦିନ ବା ଅଳ୍ପ କାଳ କଟାଇ ନେବା ।

ଦିହକ ମାରିବା—ଦେ. କ୍ରି—ଜୀବନର ଅଧିକାଂଶ ସମୟ କଟାଇ ନେବା ।

ଦିହେ ଦିହେ ରୋଗ ମାରିବା—ଦେ. କ୍ରି—କୌଣସି ରୋଗ ଆକ୍ରମଣ (ଦିହେ ଦିହେ ମାରିବା—ଅନ୍ୟରୂପ) କଲେ ତାକୁ ଖାତିର ନ କରି କାର୍ଯ୍ୟ ପ୍ରଭୃତି କରିବା ।

ଦୀର୍ଘ ନିଃଶ୍ୱାସ ମାରିବା—ଦେ. କ୍ରି—କ୍ଳାନ୍ତି, ଦୁଃଖ ବା ଚିନ୍ତା ଯୋଗୁଁ ବଡ଼ କରି କିମ୍ବା ଖୁବ୍ ଜୋରରେ ନିଶ୍ୱାସ ଛାଡ଼ିବା ।

ଦୀପ ମାରିବା—ଦେ. କ୍ରି—ଦୀପ ଲିଭାଇ ଦେବା ।

ଦୁଆର ମାରିବା—ଦେ. କ୍ରି—କୌଣସି ଗୃହକୁ ଯିବାର ଦ୍ୱାର ବା ବାଟକୁ ସ୍ଥାୟୀଭାବରେ ବନ୍ଦ କରିଦେବା ।

ଧକା(କ୍କା) ମାରିବା—ଦେ. କ୍ରି—ବାହୁଦ୍ୱାରା କୌଣସି ଲୋକକୁ ଆଘାତ କରିବା ।

ଧନ ମାରିବା—ଦେ. କ୍ରି—ପରଠାରୁ କୌଶଳରେ ଧନ ହସ୍ତଗତ କରିବା ।

ଧପା(ପ୍ପା) ମାରିବା—ଦେ. କ୍ରି—ଠକାଇବା; ପ୍ରତାରଣା କରିବା ।

ଧର ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ହାତରେ ଧରି ପ୍ରହାର କରିବା ।

ଧଳା ଶଡ଼ ମାରିବା—ଦେ. କ୍ରି—ପାଚିଲା କାମୁଡ଼ିର ସ୍ଥାନେ ସ୍ଥାନେ ରଙ୍ଗ ଛାଡ଼ିଯାଇ ଚକା ଚକା ଧଳା ଦାଗମାନ ଦେଖାଯିବା ।

ଧୂଳି ମାରିବା—ଦେ. କ୍ରି—୧ । ପାଣି ଆଦି ଛିଞ୍ଚିବା ଦ୍ୱାରା କୌଣସି ସ୍ଥାନରେ ଉଡ଼ୁଥିବା ଧୂଳିକୁ ବସାଇ ଦେବା; ୨ । ଧାନ କୋଠିରେ ବନ୍ଦ ହୋଇଥିବା ପଟାମାନଙ୍କ ସନ୍ଧି ବୁଜିବା ପାଇଁ କାଠର ସରୁ ବଟମାନ କଣ୍ଟାଦ୍ୱାରା ଲଗାଇବା ।

ଧୂଳିଆ ମାରିବା—ଦେ. କ୍ରି—୧ । ଟୂଳିଆ ( କାଠର ରୁଅ ଓ ବତା-ବିଶିଷ୍ଟ ) ଘରର ଛାତରେ କାଠର ରୁଅ ଉପରେ କାଠର ବଟ ବା ବତା ବିଛାଇ କଣ୍ଟା ମାରିବା; ୨ । ( ପ୍ରାଦେ. ପୁରୀ ) (ଏକ ପଣ୍ଡାର ଯାତ୍ରୀକୁ ଅନ୍ୟ ପଣ୍ଡାର ଗୁମାସ୍ତା ) ବାଟରେ ଭେଟି ତାକୁ ଫୁସୁଲାଇ ଯାତ୍ରୀର କୌଳିକ ପଣ୍ଡା ନିକଟକୁ ସେ ଯାତ୍ରୀକୁ ନ ନେଇ ଆପଣାର ମୁନିବ ପଣ୍ଡା ନିକଟରେ ଆଣି ଉକ୍ତ ଯାତ୍ରୀକୁ ପହଞ୍ଚାଇବା ।

ନଖ ମାରିବା—ଦେ. କ୍ରି—ବିମ୍ପୁଡ଼ିବା; ନଖଦ୍ୱାରା ବିଞ୍ଜୁଡ଼ିବା ।

ନଂ(ଲଂ)ଘା ମାରିବା—ଦେ. କ୍ରି—ସମକୋଣଭାବରେ ପରସ୍ପର ସଙ୍ଗେ ମିଳିଥିବା ଦୁଇଟି ଗୃହର ଯୋଡ଼ ସ୍ଥାନରେ ବର୍ଷାପାଣି ନ ଭେଦିବା ଭଳି ତହିଁରେ ଘନଭାବରେ ନଡ଼ା ବା କୁଟା ଭରିବା ।

ନଡ଼ିଆ ଘିଅ ମାରିବା—ଦେ. କ୍ରି—ନଡ଼ିଆ କୋରିର ରସକୁ ନିଆଁରେ ବସାଇ ତହିଁରୁ ଘିଅ ବାହାର କରିବା ।

ନନ୍ଧା ମାରିବା—ଦେ. କ୍ରି—ନନ୍ଧିବା; ଶଗଡ଼ର ଦୁଇ ଦଣ୍ଡା ସମ୍ମୁଖରେ ଯେଉଁ ସ୍ଥାନରେ ମିଳି ଯାଇଥାଅନ୍ତି, ସେହି ସ୍ଥାନରେ ଯୁଆଳିର ମଧ୍ୟଭାଗ ସହିତ ମିଳିତ ଦଣ୍ଡା ଦୁହିଙ୍କୁ ଦଉଡ଼ିଦ୍ୱାରା ଶକ୍ତ କରି ବାନ୍ଧିବା ।

ନଳ ମାରିବା—ଦେ. କ୍ରି—ବନ୍ଧୁକ ଫୁଟାଇବା; ବନ୍ଧୁକ ଫାଏର କରିବା ।

ନ(ଲ)ହୁଣୀ ମାରିବା—ଦେ. କ୍ରି—ନହୁଣୀକୁ ନିଆଁରେ ବସାଇ ଘିଅ ପ୍ରସ୍ତୁତ କରିବା ।

ନାଖ ମାରିବା—ଦେ. କ୍ରି—ଲାଖ ମାରିବା (ଦେଖ) ।

ନା(ଲା)ତ ମାରିବା—ଦେ. କ୍ରି—(ଗୋରୁ ଆଦି ପଶୁ) ପଛ ଗୋଡ଼ରେ ଆଘାତ କରିବା ।

ନାହୁଆ ମାରିବା—ଦେ. କ୍ରି—ଲହୁଆ ମାରିବା (ଦେଖ) ।

ନାହୁଡ଼ ମାରିବା—ଦେ. କ୍ରି—୧ । (ବିଶେଷ ଅର୍ଥ) ଲଙ୍ଗୁଡ଼ ଦ୍ୱାରା ଆଘାତ କରିବା; ୨ । (ବିରୁଦ୍ଧ ଅର୍ଥ) ମୁହଁରେ ଦଂଶନ କରିବା ।

ନିଶ୍ୱାସ ମାରିବା—ଦେ. କ୍ରି—୧ । ନାକ ବାଟେ ପବନ ନେବା ଆଣିବା କରିବା; ୨ । (ଲକ୍ଷଣାର୍ଥ) ଅଳ୍ପ ସମୟ ବିଶ୍ରାମ କରିବା; ଫୁରୁସତ୍ ନେବା ।

ନେଡ଼ା ମାରିବା—ଦେ. କ୍ରି—ଲେଡ଼ା ମାରିବା (ଦେଖ) ।

ନୋ(ନୁ,ଲୋ,ଲୁ)ଟିସ ମାରିବା—ଦେ. କ୍ରି—କାନ୍ଥରେ ବା ପଟା ଆଦିରେ ବିଜ୍ଞାପନ କାଗଜକୁ ଲଗାଇବା ।

ପଚରା ମାରିବା—ଦେ. କ୍ରି—୧ । ଝୋଟର ଗୁମ୍ଫରକୁ ଚୂନ ପାଣିରେ ବୁଡ଼ାଇ କାନ୍ଥକୁ ସଫେଦ କରିବା । ୨ । ଶଗଡ଼ ଚକର ପୁଟିକୁ ଅର ସଙ୍ଗେ ଦୃଢ଼ କରି ବସାଇବା ପାଇଁ ଖିଲ ଦେବା ।

ପ(ପି,ପୁ)ଚ(ଚ,ଚୁ)ଙ୍ଗାଲା ମାରିବା—ଦେ. କ୍ରି—ଶଗଡ଼ ଚକର କୌଣସି ଅଂଶ ଦୁଗୁଲା ହେଲେ ଓ ଚକରୁ ହାଲ ଦୁଗୁଳ ଗଲେ ତହିଁର ସନ୍ଧିରେ ପତଳା କାଠ ବା ବାଉଁଶ ପାତିଆର ଖିଲ ବାଡ଼େଇ କରି ଭର୍ତ୍ତି କରିବା ।

ପଟକଣ(ନ୍) ମାରିବା—ଦେ. କ୍ରି—ଗୋଡ଼ର ପେଣ୍ଡା ଦ୍ୱାରା ଅନ୍ୟ ଲୋକର ଗୋଡ଼ରେ ଆଘାତ କରି ତାକୁ ଭୂଇଁରେ ପକାଇଦେବା ।

ପଟି(ଟେ) ମାରିବା—ଦେ. କ୍ରି—୧ । ଠକାଇବା, ଭଣ୍ଡାଇବା; ୨ । ଲୁଗା ଆଦିର କୌଣସି ଛିଦ୍ରରେ ବା ମଇଳା ଅଂଶ ଉପରେ ଚକଡ଼ି ପକାଇ ତାକୁ ବନ୍ଦ କରିବା ।

ପତ(ତା)କା ମାରିବା—ଦେ. କ୍ରି—ଭୂମିରେ ପତାକା ପୋତିବା ।

ପରର ସମ୍ପତ୍ତି ମାରିବା—ଦେ. କ୍ରି—ଅନ୍ୟର ସମ୍ପତ୍ତିକୁ ଧପ୍ପା ଦେଇ ଯୋଗକରିବା ।

ପହୁଆ ମାରିବା—ଦେ. କ୍ରି—ବଳି ବା ଗାଡ଼ି ପ୍ରଭୃତିର ଚକ ବାଲିରେ ବା କାଦୁଅରେ ବୁଡ଼ିଗଲେ ତାହାକୁ ହାତ ଦ୍ୱାରା ପେଲିବା ।

ପାଇକଗୁଁ ମାରିବା—ଦେ. କ୍ରି—ମିଛା ଲୁଗାର ଫେରିକୁ କୋଡ଼ଗାଡ଼ (ଫଇକଣ ମାରିବା—ଅନ୍ୟରୂପ) ବାଟେ ବୁଲାଇ ଅଣ୍ଟାର ପଛ ପାଖରେ ଖୋସିବା ।

ପାଞ୍ଚ(ଚୁ) ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଭୁଲାଇ ବା ଧପ୍ପାଇ କରି କୌଣସି ଜିନିଷ ତାଠାରୁ ନେବା ।

ପାଣି ମାରିବା—ଦେ., କ୍ରି—୧ । ମୁହଁ ଆଦିରେ ଜଳ ଲଗାଇବା, ୨ । (ଅଶ୍ଳୀଳ) ସ୍ତ୍ରୀଲୋକର କାମ କଣ୍ଡୁର ନିବୃତ୍ତି କରାଇବା ।

ପାଣେ(ଣ୍ଡୋ)ଇ ମାରିବା—ଦେ. କ୍ରି—ଜୋଡ଼ା ମାରିବା (ଦେଖ) ।

ପାରା ମାରିବା—ଦେ. କ୍ରି—ବୈଦ୍ୟଶାସ୍ତ୍ରୋକ୍ତ ଉପାୟରେ ପାରାକୁ ଭସ୍ମ କରିବା । (ଏହିପରି ଅନ୍ୟାନ୍ୟ ଧାତୁ ମାରିବା ବୋଲାଯାଏ ।)

ପିଶକା ମାରିବା—ଦେ. କ୍ରି—୧ । ରକ୍ତ ବା ପାଣି ଆଦି କୌଣସି ଛିଦ୍ରବାଟେ ସୂକ୍ଷ୍ମଭାବରେ ଜୋରରେ ବାହାରିବା; ପିଚକିବା; ୨ । ପିଚକାରି ମାରିବା (ଦେଖ) ।

ପିଚକାରି(ଲ) ମାରିବା—ଦେ. କ୍ରି—ପିଚକାରି ଦ୍ୱାରା ଜଳ ଆଦି ଦୂରକୁ ଫୋପାଡ଼ିବା ।

ପି(ପୁ)ଚ(ଚୁ)କଲା ମାରିବା—ଦେ. କ୍ରି—ଲଙ୍ଗଳର ମୁଣ୍ଡା ବା ଦେହ ସଙ୍ଗେ ଇଷକୁ ସଲଗ୍ନ କରି ଖିଲ ବାଡ଼େଇବା ।

ପିଛି ମାରିବା—ଦେ. କ୍ରି—ଗୋମେଷାଦି ଧାନ ଗଛକୁ ନ ଖାଇବା ପାଇଁ ଖଜୁରି ଛାଲ (ପିଛି)କୁ ଗୋବରପାଣିରେ ବୁଡ଼ାଇ ଧାନ ଗଛରେ ଘଷିବା ।

ପିଠିକି(କୁ) ମାରିବା—ଦେ. କ୍ରି—(ଶସ୍ତ୍ର) ତିର୍ଯ୍ୟଗ୍‌ଭାବରେ ପିଠିରେ ପଡ଼ିବା । ଦେ. ବି.—ପିଠିକି ଶୂଳ ମାରିବା; ପୃଷ୍ଠଶୂଳ ।

ପିଠା ମାରିବା—ଦେ. କ୍ରି—ଛାଞ୍ଚଣରେ ବା ଝୋଲରେ ପିଠା ମିଶାଇବା ଓ ପିଠା ବଗାଇବା ।

ପିରିକ(କି) ମାରିବା—ଦେ. କ୍ରି—କୌଣସି ବସ୍ତୁରେ ଛୋଟ କଣ୍ଟା ବାଡ଼େଇବା ।

ପିହାଣେ ମାରିବା—ଦେ. କ୍ରି—(ବ୍ୟଙ୍ଗ)—ଏକ ପଲମ ଗୁଡ଼ ଖାଇବା । (ପଲମେ ମାରିବା—ଅନ୍ୟରୂପ) [ଦ୍ର—କଂସାଏ ମାରିବା, ଥାଳିଏ ମାରିବା ଅପେକ୍ଷା ପିହାଣେ ମାରିବା ବେଶି ପରିମିତ ଅଳ୍ପର ସୂଚନା କରେ ।]

ପେଚ(ଞ୍ଚ)ମାରିବା—ଦେ. କ୍ରି—୧ । ପାଦଦ୍ୱାରା ଅନ୍ୟ ଲୋକର ପାଦକୁ ଆଘାତ କରିବା; ୨ । ପେଚ କଣ୍ଟାକୁ କାଠ ଆଦି ଭିତରେ ପ୍ରବେଶ କରାଇବା; ୩ । (ଲକ୍ଷଣାର୍ଥ) କୂଟ କୌଶଳ ପ୍ରୟୋଗ କରିବା ।

ପେଟକୁ ମାରିବା—ଦେ. ବି—ପେଟରେ ଶୂଳ ରୋଗର ବ୍ୟଥା ଅନୁଭୂତି । [ଦ୍ର—ଏହିପରି ପିଠିକି, କଙ୍କାଳକୁ, ଅଣ୍ଟାକୁ, ଛାତିକି ଆଦି ଶବ୍ଦ ସଙ୍ଗେ ମାରିବା ଶବ୍ଦ ପ୍ରୟୋଗ କରା ଯାଇ ସେହି ସେହି ଅଙ୍ଗରେ ଅନୁଭୂତ ଶୂଳ ବେଦନାକୁ ବୁଝାଏ ।]

ପେଟ ମାରିବା—ଦେ. କ୍ରି—ନିଜ ଖାଦ୍ୟର ପରିମାଣ କମାଇବା ।

ପେଟେ ମାରିବା—ଦେ. କ୍ରି—(ବ୍ୟଙ୍ଗ୍ୟ) ପୂର୍ଣ୍ଣଭାବରେ ଖାଇବା; ପୂର୍ଣ୍ଣ ଭୋଜନ କରିବା ।

ପୋକ ମାରିବା—ଦେ. କ୍ରି—ଗଛରେ, ଦେହରେ, କେଶରେ ଜନ୍ମିଥିବା ପୋକକୁ ଔଷଧାଦି ପ୍ରୟୋଗପୂର୍ବକ ନାଶ କରିବା ।

ପୋଚରା ମାରିବା—ଦେ. କ୍ରି—ପଚରା ମାରିବା (ଦେଖ) ।

ଫଟକା ମାରିବା—ଦେ. କ୍ରି—ତାଳଫଟକା (ବାଣ)ରେ ନିଆଁ ଲଗାଇ ଫୁଟାଇବା ।

ଫାଉ ମାରିବା—ଦେ. କ୍ରି—୧ । ବିନା ମୂଲ୍ୟରେ କୌଣସି ପଦାର୍ଥ ଅପଣାର ଲାଭ ସ୍ୱରୂପ ପାଇବା; ୨ । କଣିବା ଦ୍ରବ୍ୟ ସଙ୍ଗେ କିଣା ଯିବା ପରିମାଣ ଛଡ଼ା ଅଧିକା ଦ୍ରବ୍ୟ ପାଇବା; ୩ । ପାଞ୍ଚୁ ମାରିବା (ଦେଖ)

ଫାଲୁଆ ଗୁଣ୍ଡା ମାରିବା—ଦେ. କ୍ରି—ବଡ଼ ବଡ଼ କରି ଗୁଣ୍ଡା ବଲ ଖାଇବା; ଚର ଚର ହୋଇ ଅଧିକ ପରିମାଣରେ ଖାଇବା ।

ଫୁଟ୍(ଟୁ)କ ମାରିବା—ଦେ. କ୍ରି—୧ । ପୃଷ୍ଠୀକୃତ କରତଳଦ୍ୱାରା ଦେହକୁ ଆଘାତ କରିବା । ୨ । ବୃଦ୍ଧା ଓ ମଧ୍ୟମାଙ୍ଗୁଷ୍ଠଦ୍ୱାରା ଶବ୍ଦ କରିବା ।

ଫୁଲ ମାଁରିବା—ଦେ. କ୍ରି—(କାନରେ, ଜୁଡ଼ାରେ) ଫୁଲ ଖୋଷିବା ।

ଫେଜ୍ ମାରିବା—ଦେ. କ୍ରି—ମିଛ କହି ଭୁଲାଇ ଦେବା; ଭଣ୍ଡାଇବା ।

ଫୋପଡ଼ ମାରିବା—ଦେ. କ୍ରି—ଗଛରେ ଥିବା ଫଳକୁ ବା ଉଚ୍ଚ ସ୍ଥାନରେ ଅବସ୍ଥିତ କୌଣସି ଜନ୍ତୁକୁ ଲକ୍ଷ୍ୟ କରି ମୋଟ ଓ ଖେଟ ଠେଙ୍ଗଣୀ ଫିଙ୍ଗିବା ।

ବନ୍ଧୁକ ମାରିବା—ଦେ. କ୍ରି—ବନ୍ଧୁକରେ ବାରୁଦ ଦେଇ କୌଣସି ପଦାର୍ଥକୁ ଲକ୍ଷ୍ୟ କରି ବା ଖାଲି ଫୁଟାଇବା; ବନ୍ଧୁକ ଫାଏର କରିବା ।

ବାଜି ମାରିବା—ଦେ. କ୍ରି—୧ । ପଣ ରଖି ଖେଳିବା ବା ଅନ୍ୟ କଷ୍ଟ କାର୍ଯ୍ୟ କରିବା । ୨ । ଖେଳରେ ବା ଅନ୍ୟ କୌଣସି କାର୍ଯ୍ୟରେ ପଣ ରଖା ଯାଇଥିବା ପଦାର୍ଥକୁ ଜିତି କରି ଆଣିବା । ୩ । ଜିତିବା, ଜୟଲାଭ କରିବା ।

ବାଟ ମାରିବା—ଦେ. କ୍ରି—୧ । ପଥକୁ କଣ୍ଟା ଆଦି ପୋତି ବନ୍ଦ କରି ଦେବା । ୨ । (ଲକ୍ଷଣାର୍ଥ) ଜଣେ ବ୍ୟକ୍ତି କୌଣସି କାର୍ଯ୍ୟ କରିବାକୁ ବସିଥିଲେ ତାର କରିବାର ଉପାୟ ବନ୍ଦ କରି ଦେବା ।

ବାଟୁଲ ମାରିବା—ଦେ. କ୍ରି—ବାଟୁଳଙ୍ଗଡ଼ାରେ ବାଟୁଳ ଦେଇ କୌଣସି ପଦାର୍ଥ ବା ପ୍ରାଣୀକୁ ଲକ୍ଷ୍ୟ କରି ଫିଙ୍ଗିବା ।

ବାଡ଼ି ମାରିବା—ଦେ. କ୍ରି—୧ । ଅନ୍ଧାରରେ ଚାଲିବା ବାଟକୁ ବା ପାଣିକୁ ଯଷ୍ଟି ସାହାଯ୍ୟରେ ଋଣ୍ଡି କରି ଯିବା । ୨ । ବାଡ଼ିଦ୍ୱାରା ଜଳର ଗଭୀରତାକୁ ଜାଣିବା ।

ବାଣ ମାରିବା—ଦେ. କ୍ରି—୧ । ବାଣକୁ ନିଆଁ ଲଗାଇ ଫୁଟାଇବା; ୨ । କୌଣସି ବ୍ୟକ୍ତିର ମୃତ୍ୟୁ ଘଟାଇବା ପାଇଁ ତାନ୍ତ୍ରିକ ଉପାୟ ପ୍ରୟୋଗ କରିବା ।

ବାତ ମାରିବା—ଦେ. କ—ମୂର୍ଚ୍ଛା, ଅପସ୍ମାର ରୋଗଦ୍ୱାରା ଆକ୍ରାନ୍ତ ହେବା ।

ବାଡ଼ି ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ବା ଜୀବକୁ ଦଣ୍ଡରେ ବାଡ଼ି ପ୍ରହାର କରିବା ।

ବିଛା ମାରିବା—ଦେ. କ—ନାଙ୍ଗୁଡ଼ଦ୍ୱାରା ବିଛାର ଅନ୍ୟ ପ୍ରାଣୀକୁ ଦଂଶନ ।

ବିଜୁଳି ମାରିବା—ଦେ. କ.—ବିଜୁଳିର ଆଲୋକ ପ୍ରକାଶିତ ହେବା ।

ବିଟ ମାରିବା—ଦେ. କ୍ରି—କାଠର ବା ଧାତୁର ସରୁ ଓ ଲମ୍ବା ଫାଳିଆକୁ ଅଲମାରି ଆଦିର ଖଣ୍ଡରେ କଣ୍ଟାଦ୍ୱାରା ସଂଲଗ୍ନ କରିବା ।

ବିଣ୍ଡା ମାରିବା—ଦେ. କ୍ରି—ମାଠିଆ ମୁହଁକୁ କିମ୍ବା କୌଣସି ବିସ୍ତୃତ ଛିଦ୍ରର ମୁଖକୁ କନା, କୁଟା ବା କାଗଜ ଆଦିର ବିଣ୍ଡା-ଦ୍ୱାରା ବନ୍ଦ କରିବା ।

ବିଧା ମାରିବା—ଦେ. କ୍ରି—ହାତ ମୁଠା କରି କାଣି ଅଙ୍ଗୁଠି ପାଖଦ୍ୱାରା କୌଣସି ବ୍ୟକ୍ତିକୁ ବା ଜନ୍ତୁକୁ ଆଘାତ କରିବା ।

ବିହନ ମାରିବା—ପ୍ରାଦେ. (କଟକ) କ୍ରି—୧ । ଧାନ କିଆରିର ଘନ ଅଂଶରୁ କେତେକ ବୁଆ ଧାନ ଗଛ ଉପାଡ଼ି ଆଣି ଅନ୍ୟ କିଆରିରେ ବା କିଆରିର ଗଛ ନ ଥିବା ସ୍ଥାନରେ ପୋତିବା ବା ରୋଇବା । ୨ । ବିହନ ବୁଡ଼ାଇବା; କୌଣସି ଫସଲର ବୀଜକୁ ଆଗାମୀ ବର୍ଷ ପାଇଁ ସଂଗ୍ରହ କରି ନ ରଖିବାଦ୍ୱାରା ଉକ୍ତ ଗଛର ଭବିଷ୍ୟତ ଉତ୍ପାଦନ କର୍ମ ବନ୍ଦ କରିବା ।

ବୀଜ ମାରିବା—ଦେ. କ୍ରି—କୌଣସି ପଦାର୍ଥର ମୂଳ ଶେଷ କରିଦେବା; ସମୂଳ ବିନାଶ କରିବା ।

ବୁଡ଼୍(ଡ଼ା) ମାରିବା—ଦେ. କ୍ରି—ପାଣିରେ ବା କୌଣସି ତୀର୍ଥ ଜଳରେ ମୁଣ୍ଡକୁ ବୁଡ଼ାଇ ଗାଧୋଇବା; ବୁଡ଼ ପାରିବା ।

ବୁଡ଼ା(ଡ଼େ)ଇ ମାରିବା—ଦେ. କ୍ରି—୧ । ପାଣିରେ ବୁଡ଼ାଇ କରି କୌଣସି ଜୀବକୁ ମାରି ପକାଇବା । ୨ । (ଲକ୍ଷଣାର୍ଥ) କୌଣସି ଲୋକ ନାମରେ ମିଛ ସତ ଲଗାଇ କରି କହି ତାର ଅନିଷ୍ଟ କରିବା ବା ତାକୁ ଅପବାଦଗ୍ରସ୍ତ କରିବା ।

ବୁଲେଇ ବୁଲେଇ ମାରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ବହୁ ପଥ ଚଲେଇ ଚଲେଇ ଆକ୍ରାନ୍ତ କରି ଦେବା । ୨ । ବୃଥାରେ ହରକତ କରିବା ।

ବ୍ରୁରୁସ୍ / ବ୍ରୁସ } ମାରିବା—ଦେ. କ୍ରି—କୌଣସି ପଦାର୍ଥକୁ ବ୍ରୁସ୍‌ଦ୍ୱାରା ସଫା କରିବା ।

ବେତ ମାରିବା—ଦେ. କ୍ରି.—ବେତରେ ବାଡ଼େଇବା ।

ବୋଲୁଅ ମାରିବା—ଦେ. କ୍ରି—ବଡ଼ ବଡ଼ ଠେକା ଫୋପାଡ଼ିବା ।

ଭାଡ଼ି ମାରିବା—ଦେ. କ୍ରି—୧ । ଘର ମଧ୍ୟରେ ଖୁଣ୍ଟ ପୋତି ତା ଉପରେ ପଟା ପକାଇ ଭାଡ଼ି ତିଆରି କରିବା । ୨ । ରାତିରେ କ୍ଷେତ ଜଗିବା ପାଇଁ କ୍ଷେତରେ ବା କ୍ଷେତ ପାଖରେ ଖୁଣ୍ଟ ପୋତି ଭାଡ଼ି ତିଆରି କରିବା ।

ଭାତରେ ମାରିବା—ଦେ. କ୍ରି—ଖାଇବାକୁ ନ ଦେଇ ହରକତ କରିବା ବା ମାରି ପକାଇବା ।

ଭୁଚ(ର୍ଚ୍ଚୁ)କା ମାରିବା—ଦେ. କ୍ରି—ଭୁର୍‌ଚୁକା ମାରିବା (ଦେଖ)

ଭୁଡ଼ି, / ଭୁଡ଼ୁକା(କି) / ଭୁଠ / ଭୁଡ଼(ଡ଼ୁ)ଭୁଡ଼ି } ମାରିବା—ଦେ. କ୍ରି (ମାଛ, କଇଁଛ, କୁମ୍ଭୀର ଆଦି) ଜଳ ଭିତରେ ଥାଇ ନିଶ୍ୱାସ ମାରିବାଦ୍ୱାରା ଜଳ ଉପରକୁ ବୁଦ୍‌ବୁଦ ଉଠାଇବା ।

ଭୁର(ରୁ)ଚୁକା ମାରିବା—ଦେ. କ୍ରି—୧ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଖୁନ୍ଦି ନଲକା ବନାଇବା ପ୍ରତାରଣା କରି, ତାହାର କବଳରୁ ଖସିଯିବା । ୨ । (କଲୁଆ) କୁକୁରର ଆସନ୍ନ ଆକ୍ରମଣରୁ ରକ୍ଷା ପାଇବାପାଇଁ ବାତକର୍ମ କରିବା । [ଦ୍ର—କଲୁଆମାନଙ୍କୁ ଶିକାର କରିବାକୁ କୁକୁର କଲୁଆ ପଛରେ ଗୋଡ଼ାଇ ଗୋଡ଼ାଇ ଯେତେବେଳେ କଲୁଆର ଅତି ନିକଟବର୍ତ୍ତୀ ହୋଇଯାଏ ଓ ପରବର୍ତ୍ତୀ ମୁହୂର୍ତ୍ତରେ କଲୁଆକୁ ମାଡ଼ିବସିବା ଅବଶ୍ୟମ୍ଭାବୀ ହେବାର କଲୁଆ ଦେଖିପାରେ, ସେତେବେଳେ କଲୁଆ ବାତକର୍ମ କରେ (ଭୁର୍‌ଚୁକା ମାରେ) ଓ ସେହି ଅଧୋବାୟୁର ଉତ୍କଟ ଓ ଅସହ୍ୟ ଦୁର୍ଗନ୍ଧରେ ଉତ୍ତ୍ୟକ୍ତ ହୋଇ କୁକୁର କଲୁଆର ପଶ୍ଚାଦ୍ଧାବନରୁ କ୍ଷଣକାଳ ନିବୃତ୍ତ ହୋଇ ମୁହଁ ମୋଡ଼ିଦିଏ ଓ ସେଥିଯୋଗୁଁ କୁକୁରର ଦଉଡ଼ିବାର ବେଗ କ୍ଷଣକାଳପାଇଁ ମନ୍ଦୀଭୂତ ହୁଏ । ଇତ୍ୟବସରରେ କଲୁଆଟି କୁକୁରର ଆସନ୍ନ କବଳରୁ ରକ୍ଷା ପାଇ ପଳାଇଯାଏ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ । ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; ଆଗଂ। ନ ପାଇଲେ 'ଆଜ୍ଞା' ଦେଖିବେ,'ଅଲବତ' ନ ପାଇଲେ 'ଅଲ୍‌ବତ'ଦେଖିବେ ।

ଭୁରୁଡ଼(ଡ଼ୁ)ମାରବା—ଦେ. କ୍ରି—ମିଛକଥା କହି ଦାମ୍ଭିକତା କରିବା; ଭୁରୁଡ଼ାଇବା; ଅମାନିଆ ହୋଇ କଥାକହିବା ।

ଭୋକ ମାରବା—ଦେ.କ୍ରି—କ୍ଷୁଧାର ବେଗ ସମ୍ଭାଳିବା; କ୍ଷୁଧା ହେଲେ କିଛି ନ ଖାଇ ତାହା ସମ୍ଭାଳିନେବା ।

ଭୋକରେ ମାରବା—ଦେ. କ୍ରି—ଖାଇବାକୁ ନ ଦେଇ କୌଣସିବ୍ୟକ୍ତିକୁ ଭୋକରେ ଛଟପଟ କରିବା ।

ଭୋଜନ ମାରବା—ଦେ. କ୍ରି—(ବ୍ୟଙ୍ଗ)ଖାଇବା ।

ମକଦମା ମାରବା—ଦେ. କ୍ରି—୧ । ସାକ୍ଷୀମାନଙ୍କୁ ଅକ୍ତିଆର କରି ବା (ମାମଲା ମାରବା—ଅନ୍ୟରୂପ) ପ୍ରମାଣମାନଙ୍କୁ ନଷ୍ଟ କରି ବା ଲୁଚାଇ ମକଦମାକୁ ଅପ୍ରମାଣିତ କରିବା । ୨ । (ହାକମ) ଉତ୍କୋଚ ଖାଇ ବା ମୋହବଶରେ ପଡ଼ି ୯। ପ୍ରୁପାତସରେ ବଶ ହୋଇ ପ୍ରମାଣ ଥାଇ ସୁଦ୍ଧା ମକଦମାକୁ ଡିସ୍‌ମିସ କରିବା ।

ମଥାନ ମାର୍‌ବା—ଦେ. କ୍ରି—ଘରଘରର ମଥାନ (ଚୂଳ)ରେ ନଡ଼ା ଦେଇ ତହିଁ ଉପରେ ବତା ବାନ୍ଧି ଠିକ୍‌ରୂପେ ଛୁଆଣି କରିବା ।

ମଥାନଗୁଞ୍ଜ ମାର୍‌ବା—ଦେ. କ୍ରି—ଘରର ମଥାନର ଦୁଇ ପାଖର ବାଉଁଶ ଓ ବତାକୁ ହାତ ଓ ଗୋଡ଼ଦ୍ୱାରା ଜାବୁଡ଼ି ଧରି ଝିଟିପିଟି ପରି ଚଢ଼ି ହୋଇ ଗଛ କରିବା ।

ମନ ମାର୍‌ବା—ଦେ. କ୍ରି—ନିଜର ମନକୁ ବିରସ କରିବା ।

ମଶା ମାର୍‌ବା—ଦେ. କ୍ରି—ଦେହରେ ବସିଥିବା ମଶାକୁ ହାତରେ ଆଘାତ କରି ମାରି ପକାଇବା ।

ମନ୍ଥ ମାର୍‌ବା—ଦେ. କ୍ରି—ମନ୍ଥମାଛମାନଙ୍କର ଫେଣା ଭାଙ୍ଗି ମନ୍ଥ ଅଣିବା ।

ମାକଡ଼ଚଢ଼ ମାର୍‌ବା—ଦେ. କ୍ରି—ହାତକୁ ତଳେ ଲଗାଇ ଗୋଡ଼କୁ ଉପରକୁ ଟେକି ଆଗପାଖକୁ ଲେଉଟି ପଡ଼ି ଲୁଦା ମାରି ବଙ୍କ ଭାଙ୍ଗିବା ।

ମାଛ ମାର୍‌ବା—ଦେ. କ୍ରି—ଜଳାଶୟାଦିରୁ ଜାଲ, ଖିଅ, ପୋଲୁହ, ବନଶୀ ଆଦି ଦ୍ୱାରା ଖାଦ୍ୟାର୍ଥ ମାଛ ଧରିବା ।

ମାଟି ଗୋବର ମାର୍‌ବା—ଦେ. କ୍ରି—୧ । ମାଟି ଓ ଗୋବର ଏକତ୍ର କରି ପାଣି ମିଶାଇ କୌଣସି ସ୍ଥାନକୁ ଲିପିବା । ୨ । ସ୍ତ୍ରୀମାନେ ସ୍ନାନ ସମୟରେ ) ଦେହର ଭିନ୍ନ ଭିନ୍ନ ଅଙ୍ଗରେ ମୃତ୍ତିକା ମିଶ୍ରିତ ଗୋମୟ ବୋଳି ଦେବା ।

ମାଟି ମାର୍‌ବା—ଦେ. କ୍ରି—୧ । କୌଣସି ସ୍ଥାନରେ ବା ମଳତ୍ୟାଗ ପରେ ଦେହରେ ମାଟି ଲଗାଇବା । ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟରେ ଲାଗି ତାକୁ ନଷ୍ଟ କରିଦେବା ।

ମାଡ଼ ମାର୍‌ବା—ଦେ. କ୍ରି—ହାତ ବା ବେତ ପ୍ରଭୃତିଦ୍ୱାରା କୌଣସି ବ୍ୟକ୍ତିକୁ ପ୍ରହାର କରିବା ।

ମାନ ମାର୍‌ବା—ଦେ. କ୍ରି—ଅଭିମାନରେ କଥା କହିବା ।

ମାରକା (ମାର୍କା) ମାର୍‌ବା—ଦେ କ୍ରି—କୌଣସି ପଦାର୍ଥକୁ ଭବିଷ୍ୟତରେ ଚିହ୍ନିବା ପାଇଁ ସେଥିରେ ବିଶିଷ୍ଟ ଚିହ୍ନ ଦେବା ।

ମାଲକଣ୍ଠ ମାର୍‌ବା—ଦେ. କ୍ରି—ପାଇକଣ୍ଠ ମାରବା ( ଦେଖ )

ମାଲ ମାର୍‌ବା—ଦେ. କ୍ରି—ଅନ୍ୟଠାରୁ କୌଶଳରେ ଧନ ହସ୍ତଗତ କରିବା; ଧନ ମାରିବା ।

ମିଞ୍ଜା ମାର୍‌ବା—ଦେ. କ୍ରି—ଦୁଇଟି ପଦାର୍ଥକୁ ଯୋଡ଼ିବା ସମୟରେ ତହିଁ ମଧ୍ୟରେ ଥିବା ବ୍ୟବଧାନକୁ ଅଚ୍ଛିଦ୍ର କରିବା ।

ମୁଖି ମାରବା—ଦେ. କ୍ରି—ବଦ୍ଧମୁଷ୍ଟି କରି ତର୍ଜନୀ ଓ କନିଷ୍ଠା ଅଙ୍ଗୁଳିର ପାର୍ଶ୍ୱରେ କୌଣସି ବ୍ୟକ୍ତିର ମୁହଁରେ ଆଘାତ କରିବା ।

| | | |
|---|---|---|
| ମୁଣ୍ଡ ଝାଳ ଗୋଡ଼ରେ<br>ମୁଣ୍ଡଝାଳ ତୁଣ୍ଡରେ<br>ମୁଣ୍ଡ ପାଣି ତୁଣ୍ଡରେ | ମାରିବା | ଦେ. କ୍ରି—ଏପରି ଓ ଏତେକାଳ ପରିଶ୍ରମ କରିବା କି, ଯହିଁରେ ମୁଣ୍ଡରୁ ଅବିରାମ ଧାରରେ ଝାଳବୋହି ସେ |

ଝାଳ ଯାଇ ତୁଣ୍ଡରେ ବା ଗୋଡ଼ରେ ପହଞ୍ଚୁଛି ।

ମୁଣ୍ଡ ମାର୍‌ବା—ଦେ. କ୍ରି—(ଗଭୀର ଶୋକରେ) ନିଜର ମୁଣ୍ଡକୁ କୌଣସି କଠିନ ପଦାର୍ଥରେ ଆଘାତ କରିବା ।

ମୁଣ୍ଡରେ ତିନୁଳିଆ ବାଡ଼ି ମାର୍‌ବା—(ଲକ୍ଷଣାର୍ଥ) ଦେ. ବି.—କୌଣସି ବିଷୟର ସମାଧାନ ପାଇଁ କିଛି ଉପାୟ ନ ଦେଖି ଅତ୍ୟନ୍ତ ଚିନ୍ତାକୁଳିତ ହେବା ଅବସ୍ଥା ।

ମୁଣ୍ଡିଆ ମାର୍‌ବା—ଦେ କ୍ରି—୧ । ପ୍ରଣାମାର୍ଥ କୌଣସି ବ୍ୟକ୍ତିଙ୍କ ବା ଦେବତାଙ୍କ ଗୋଡ଼ ନିକଟରେ ଆପଣା ମୁଣ୍ଡକୁ ଭୂମିରେ ଛୁଆଁଇବା; ଗୋଡ଼ତଳେ ପଡ଼ିବା । ୨ । ଆପଣା ମୁଣ୍ଡଦ୍ୱାରା କୌଣସି ବସ୍ତୁକୁ ଆକ୍ରମଣ ବା ଆଘାତ କରିବା । ୩ । (ମାତୃଗର୍ଭସ୍ଥ ଭ୍ରୂଣ) ଜୀବିତାବସ୍ଥା ପ୍ରାପ୍ତ ହୋଇ ଗର୍ଭରେ ଇତସ୍ତତଃ ଗତିଶୀଳ ହେବା ଅବସ୍ଥାରେ ମାତାର ପେଟର କାନ୍ଥରେ ଭ୍ରୂଣର ମୁଣ୍ଡ ବାଜିବା ।

ମୁଥ ମାର୍‌ବା—ଦେ. କ୍ରି—ମୁହଁର ବା ମୁଣ୍ଡର କୌଣସି ଅଂଶରେ ବାଧା ମାରିବା ।

ମୁଦ(ଦା) ମାର୍‌ବା—ଦେ. କ୍ରି.—କୌଣସି ଚିଠିକୁ ବା ପାତ୍ରର ମୁଖକୁ ବନ୍ଦକରି ତା ଉପରେ ଜଉ ଦ୍ୱାରା ମୋହର ବସାଇବା ।

ମୁହଁଖସ ମାରବା—ଦେ. ବି—ମନୁଷ୍ୟ ଯେଉଁ ଅଡ଼କୁ ମୁହଁ କରିଥାଏ ସେହିଦିଗରୁ ତୀକ୍ଷ୍ଣ ଖରା ତାହା ମୁହଁରେ ତୀର୍ଯ୍ୟଗ୍‌ଭାବରେ ପଡ଼ି ତାକୁ ପୀଡ଼ା ଦେବା ।

ମୁହଁପାଣି ମୁହଁରେ ମାର୍‌ବା—ଦେ. କ୍ରି—କୌଣସି ବ୍ୟକ୍ତିର ଦାମ୍ଭିକତା ଓ ମୁହଁବାଲିଙ୍ଗିକୁ ଭାଙ୍ଗିଦେଇ ତାକୁ ଲଜ୍ଜିତ କରାଇବା ।

ମୁହଁ ମାର୍‌ବା—ଦେ. କ୍ରି—୧ । କୌଣସିଠାରେ ବା କୌଣସି ଲୋକକୁ ଦେଖାଦେଇ ଅଳ୍ପ ସମୟ ରହି ଚାଲିଯିବା । ୨ । (ପଶୁ-ମାନେ) ଖାଇବାପାଇଁ କୌଣସି ପଦାର୍ଥରେ ମୁହଁ ଲଗାଇବା (ଅଥଚ ନ ଖାଇବା) ।

ମୂଲ୍ହୁଁ ମାର୍‌ବା—ଦେ. କ୍ରି—କୌଣସି ପଦାର୍ଥର ଉତ୍ପତ୍ତିକୁ ନିଃଶେଷ [ମୂଳରୁ (ମୂ)ମାରବା—ଅନ୍ୟରୂପ] କରିବା; ନିର୍ମୂଳ କରିବା ।

ମେଖ ମାର୍‌ବା—ଦେ. କ୍ରି—୧ । କୀଳା ପୋତିବା । ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ସୁରୁଖୁରୁ ହୋଇ ଚାଲୁଥିବା ଅବସ୍ଥାରେ

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଗ୍ୟ | ସ | ଗଁ୍ୟ | ଇଅ | ଙ୍ଗ | ନ୍ନ |

ତାହା ବନ୍ଦ କରଦେବା । ୩ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟର ପ୍ରାରମ୍ଭରେ ଗୁରୁତର ଆପତ୍ତି ଉଠାଇବା ।

ମୋହ୍ର(ହୋ)ର ମାରିବା – ଦେ. କ୍ରି—କୌଣସି ପଦାର୍ଥ ଉପରେ ମୋହର ଦ୍ୱାରା ଅକ୍ଷର ବା ଚିହ୍ନ ଅଙ୍କିତ କରବା ।

ଯା(ଦା)ଦୁ ମାରବା – ଦେ. କ୍ରି—୧ । ଔଷଧ ଦ୍ୱାରା ଯାଦୁକୁ ଆରୋଗ୍ୟ କରବା—୨ । ନଖ ଦ୍ୱାରା ବା ଦାରୁଅ ଶସ୍ତ୍ର ଦ୍ୱାରା ଯାଦୁର ଗୁଆମାନଙ୍କୁ ଛାଞ୍ଚି ବା ଚିପି ବା ଫୁଟାଇ ଯାଦୁକୁ ଶୁଖାଇବା ।

ଯିଦ(ଦ୍ଦି)ମାରିବା—ଦେ. କ୍ରି—୧ । ପଣ ରଖି କୌଣସି କର୍ମ କରବା । ୨ । ଦୃଢ଼ତା ସହକାରେ କଡ଼ା କଥା କହବା ।

ଯୋତା ମାରବା—ଦେ. କ୍ରି—୧ । ଯୋତା ଦ୍ୱାରା ପ୍ରହାର କରବା । ୨ । (ଲକ୍ଷଣାର୍ଥ) ପ୍ରକାଶ୍ୟରୂପେ ବିଶେଷ ଅପମାନ ଦେବା ।

ରଗ ମାରବା—ଦେ. କ୍ରି—କୌଣସି ବ୍ୟକ୍ତିର ଅଙ୍ଗ ଭାଙ୍ଗିଦେବା; ବଳ ଭାଙ୍ଗି ଦେବା ।

ରଡ଼ା ମାରବା—ଦେ. ବି—ପ୍ରାୟ ସନ୍ଧ୍ୟା ହେବା; ଅଳ୍ପ ଅଳ୍ପ ଦିନ ଥିବା । କ୍ରି. (ରଡ଼ା ବା ଶିଙ୍ଗି ମାଛ) ଗାଲିଶିରେ ଥିବା କଣ୍ଟା ଦ୍ୱାରା ମାଛଧରାଳର ହାତ ଆଦିକୁ ବିନ୍ଧିବା ।

ରନ୍ଦା ମାରବା—ଦେ. କ୍ରି—କାଠକୁ ପାଲିସ୍ କରବାକୁ ତା ଉପରେ ରନ୍ଦା ଚଳାଇବା ।

ରାଗ ମାରବା—ଦେ. କ୍ରି - ଆପଣାର ବା ଅପର ବ୍ୟକ୍ତିର କ୍ରୋଧକୁ ଶାନ୍ତ କରବା ।

ରୁମ ମାରବା – ଦେ. ବି (ଘୋଡ଼ା ଆଦିଙ୍କର) ଦେହର ଅସୁସ୍ଥତା ହେତୁ ଲୋମସବୁ ଶୋଇପଡ଼ିବା ଦ୍ୱାରା ଶରୀରର ତେଜୋହୀନ ଦେଖାଯିବା ।

ରୋଗ ଦବେଇ ଦବେଇ ମାରବା—ଦେ. କ୍ରି—ବେମାରକୁ ଖାତିର ନ କରି ଦେହ ଭଲ ଥିଲା ପରି କାର୍ଯ୍ୟ କରବା; ରୋଗର ଆକ୍ରମଣକୁ ଗ୍ରାହ୍ୟ ନ କରବା ।

ରୋଗ ମାରବା—ଦେ କ୍ରି—୧ । ଔଷଧ ବା ଅନ୍ୟ ଉପାୟରେ ରୋଗକୁ ପୂର୍ଣ୍ଣରୂପେ ଆରୋଗ୍ୟ କରବା ବା କଟାଇବା । ୨ । (ରୋଗ) କୌଣସି ବ୍ୟକ୍ତିକୁ ମୃତପ୍ରାୟ କରବା ।

ଲଙ୍ଗଳ ମାରବା—ଦେ. କ୍ରି—୧ । ଲଙ୍ଗଳଦ୍ୱାରା ଚାଷ କରବା; ୨ । ଭୂଇଁର ଉପରେ ଉପରେ ଚାଷ କରବା; ଗଭୀର ଚାଷ ନ କରବା ।

ଲଘା ମାରବା—ଦେ. କ୍ରି—ପଟିଶିରକୁ ଯୋଗ କରିଥିବା ଦୁଇ ଗୁଳର ସମକୋଣବିଶିଷ୍ଟ କାନ୍ଥକୁ ନଡ଼ା ବା କୁଟା ଆଦିଦ୍ୱାରା ଘନଭାବରେ ଛପର କରବା ।

ଲହଡ଼ା(ଡି) ମାରବା—ଦେ. ବି—ପାଣିରେ ଉପର୍ଯ୍ୟୁପରି ଲହରୀ ବା ଢେଉ ଉଠିବା ।

ଲହୁଣୀ ମାରବା—ଦେ. କ୍ରି—ଲହୁଣୀକୁ ନିଆଁରେ ବସାଇ ନିର୍ମଳ କରି ଘିଅ ପ୍ରସ୍ତୁତ କରବା ।

ଲଖ ମାରବା— ଦେ. କ୍ରି—୧ । ଲକ୍ଷଦ୍ୱାରା ଚଟି ଆଦି ମୁଦିବା; ୨ । ଲକ୍ଷ୍ୟ ଭେଦ କରବା ।

( ମାଛଙ୍କୁ ) ଲହିଆ ମାରବା—ଦେ. ବି—ମାଛମାନେ ଏକପ୍ରକାର ରୋଗରେ ଆକ୍ରାନ୍ତ ହୋଇ ମରିଯିବା । [ ଦ୍ର—ଏ ରୋଗ ଦ୍ୱାରା ମାଛଙ୍କର ଲହି ଫୁଲି ଯାଇ ମାଛମାନେ କେତେ ସମୟ ଚିତ ହୋଇ ପହଁରି ମରିଯାଆନ୍ତି ।]

ଲୁଣ ମାରବା—ଦେ. କ୍ରି—ସମୁଦ୍ର ପାଣିକୁ ନିଆଁରେ ଫୁଟାଇ ବା ଖରାରେ ଶୁଖାଇ ବା ଲୁଣମିଶା ପାଣିକୁ ପାତ୍ରରେ ବା କ୍ଷେତରେ କେତେ କାଳ ସ୍ଥିରଭାବରେ ରଖି ଲୁଣ ତିଆରି କରବା ।

( କୌଣସି ସ୍ଥାନ ) ଲୁଣି ମାରବା —ଦେ. କ୍ରି—ମନୁଷ୍ୟ ବା ଗୋମେଷାଦି ମୂତିବା ସ୍ଥାନର ଭୂମିରେ ବା କାନ୍ଥରେ ଥିବା ମାଟି ଧୂଳିମୟ ହୋଇ ଝଡ଼ି ପଡ଼ିବା ଓ ତା ଉପରେ ଲୁଣର ଧଳା ସ୍ତର ପଡ଼ିଯିବା ।

ଲେଙ୍ଗୁଟି ମାରବା—ଦେ. କ୍ରି—୧ । କଉପୁନି ମାରିବା; ଛୋଟ କନାଦ୍ୱାରା କେବଳ ଗୁହ୍ୟ ଦେଶ ଓ ମୂତ୍ରେନ୍ଦ୍ରିୟକୁ ଘୋଡ଼ାଇବା । ୨ । ବୈରାଗୀ ହେବା; ସଂସାରତ୍ୟାଗୀ ହେବା ।

ଲେଡ଼ା(ଡ୍ଡା) ମାରବା—ଦେ. କ୍ରି—ହାତପାପୁଲି ( ଲେଡ଼ା )ର ମୂଳ ଅଂଶ ଦ୍ୱାରା କୌଣସି ବ୍ୟକ୍ତିକୁ ଆଘାତ କରି ଜୋର୍‌ରେ ଠେଲିବା ।

ଶଣ୍ଠା(ଣ୍ଡା) ମାରବା—ଦେ. କ୍ରି—( କ୍ଷୁଦ୍ର ଗଛ) ମୂଳରୁ ବା ସ୍କନ୍ଧରୁ ନୂତନ କାଣ୍ଡ ବା ଶାଖା ବାହାର କରବା ।

ଶର ମାରବା—ଦେ. କ୍ରି.—କାଣ୍ଡ ବା ଧନୁଦ୍ୱାରା ଶର ପ୍ରୟୋଗ କରବା ।

ଶାବଳ ମାରବା—ଦେ. କ୍ରି—୧ । ପାନବରଜ ପ୍ରଥମରେ ବସାଇଲାବେଳେ କ୍ଷେତରେ ମାଟି ପକାଇ ମାଟିକୁ ଉତ୍ତମରୂପେ ରଖି ସମତୁଲ କରବା ପରେ ପ୍ରଥମରେ ରୋପିତ ପାନ ଲତାକୁ ପୋତିବା ପାଇଁ କ୍ଷେତ୍ରର କେନ୍ଦ୍ରରେ ଗୋଟିଏ ଗାତ କରବାକୁ ଶାବଳକୁ ଭୂମିରେ ବସାଇବା । [ ଦ୍ର—ଶାବଳ ମାରି ପ୍ରଥମ ପାନଲତା ରୁଆ ହେବା ପରେ ସେ କ୍ଷେତ୍ରରେ ଅନ୍ୟ ସବୁ ଲତା ପୋତାଯାଏ । ] ୨ । ଭୂମିରେ ବା ପଥର-ସନ୍ଧିରେ ଶାବଳକୁ ଜୋରରେ ଭର୍ତ୍ତି କରବା ।

ଶୂନ୍(ନ୍ୟ)ତଗ ମାରବା – ଦେ. କ୍ରି—ଉପରକୁ ଡେଇଁ ମାକଡ଼ତଡ଼ି ମାରି ତଳେ ପଡ଼ିବା ।

ସନ୍ତେଇ ମାରବା—ଦେ. କ୍ରି—କୌଣସି ଲୋକକୁ ଲଜ୍ଜା, ଅପମାନ ବା ଦୁଃଖ ଦେଇ ତା ମନରେ ବିଶେଷ କଷ୍ଟ ଦେବା ।

ସନ୍ଧିଆ ପ(ପୋ)ତର ମାରବା—ଦେ. କ୍ରି—୧ । ଶଗଡ଼ଚକର ପୁଟୀ-ମାନଙ୍କୁ ପରସ୍ପର ସଙ୍ଗେ ଓ ଅରକୁ ପୁଟୀ ସଙ୍ଗେ ଯୋଡ଼ିବା ପାଇଁ ଖିଲମାନ ମାରିବା; [ ଦ୍ର—ଶଗଡ଼ଚକର ପୁଟୀ-ମାନଙ୍କୁ ଯୋଡିବା ଖିଲକୁ ସନ୍ଧିଆ ଓ ଅରକୁ ପୁଟୀ ସଙ୍ଗେ

ଯୋଡିବା ଖିଲକୁ ଯୋଡଣ ବୋଲାଯାଏ । ] ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟକୁ ଖୁବ୍ ମଜଭୁତ୍ ଓ ନିର୍ଦ୍ଦୋଷ କରି ସମ୍ପାଦନ କରିବା ।

ସନ୍ଧି(ନ୍ଧି)ଅ ମାରିବା—ଦେ. କ୍ରି—ଶଗଡ଼ଚକର ପୁଠୀ (ପରିଧିସ୍ଥ ବଉଳ ଖଣ୍ଡ)ମାନଙ୍କୁ ପରସ୍ପର ସଙ୍ଗେ ଦୃଢ଼ସଂଲଗ୍ନ କରିବା ପାଇଁ ଦୁଇଟି ପୁଠୀ ମଧ୍ୟରେ ଖଣ୍ଡେ ଖଣ୍ଡେ ଖିଲ ବସାଇବା ।

ସନ୍ଧି ମାରିବା—ଦେ. କ୍ରି—ଇଟା ବା ପଥର କାମରେ ଯେଉଁ ସ୍ଥାନରେ ଫାଙ୍କ ରହିଯାଇଥାଏ ତାହାକୁ ଚୂନ ବା ମାଟିଦ୍ୱାରା ବନ୍ଦ କରିବା ।

ସାଇକ(କେ)ଲ୍ ମାରିବା—ଦେ. କ୍ରି—ବାଇସାଇକେଲ୍‌ଦ୍ୱାରା ଖୁବ୍ ଚଞ୍ଚଳ ଯିବା । ( ଟ୍ରେନ୍[ନ୍]ଗାଡି ମାରିବା—ଅନ୍ୟରୂପ )

ସାପ ମାରି ବେଙ୍ଗ ଉପରେ ପକାଇବା—ଦେ. କ୍ରି—( ବେଙ୍ଗ ସାପ ଉପରେ ପକାଇବାର ବିକୃତରୂପ ) ନିଜେ କୌଣସି ଦୋଷ କରି ତାହା କୌଶଳକ୍ରମେ ଅନ୍ୟ ଲୋକଠାରେ ଆରୋପ କରିବା ।

ସାର ମାରିବା—ଦେ. କ୍ରି—ପଶା ବା କଉଡ଼ି ଖେଳରେ ଦାନ ପକାଇ ବିପକ୍ଷର ସାରକୁ ବା ଗୋଟିକୁ ନିଜ ଗୋଟିଦ୍ୱାରା ମାରି ସେ ସ୍ଥାନରୁ ଉଠାଇ ଦେବା ।

ସିଙ୍ଗ(ଙ୍ଘି) ମାରିବା—ଦେ. କ୍ର—( ସିଙ୍ଗିମାଛ ) ଗାଲସିର କଣ୍ଟାକୁ କଣ୍ଟାଦ୍ୱାରା ମାଛଧରାଳର ଦେହର କୌଣସି ଅଂଶକୁ ବିଦ୍ଧ କରିବା । [ ଦ୍ର—ଏହି କଣ୍ଟା ଯେଉଁ ସ୍ଥାନରେ ବିଦ୍ଧ ହୁଏ ସେଠାରେ ଅତ୍ୟନ୍ତ ଯନ୍ତ୍ରଣା ହୁଏ । ]

ସିଙ୍ଗି ମାରିବା(ଲା) ପରି ହେବା—ଦେ.କ୍ର-୧ । ଅତ୍ୟନ୍ତ ଥଣ୍ଡା ହେତୁ ହାଡ଼ଗୋଡ଼ ଆଦିରେ ସିଙ୍ଗିମାଛ ମାରିବା ପରି ଯନ୍ତ୍ରଣା ବୋଧ ହେବା; ୨ । ଅତି ଅସ୍ଥିର ହେବା ।

ସିଟି ମାରିବା—ଦେ. କ୍ରି—୧ । ସିଟିକୁ ତୁଣ୍ଡଦ୍ୱାରା ଫୁଙ୍କି ବଜାଇବା; ୨ । ଦୁଇ ଓଠକୁ ସଙ୍କୁଚିତ କରି ତଦ୍ଦ୍ୱାରା ସିଟି ପରି ଶବ୍ଦ କରିବା ।

ସିନ୍ଦୁର ଟୋପା(ପି) ମାରିବା—ଦେ. କ୍ରି—ସିନ୍ଦୂରରେ ଟୋପା ମୁଣ୍ଡରେ ଲଗାଇବା ।

ସିନ୍ଦୂର ମାରିବା—ଦେ. କ୍ରି—ମୁଣ୍ଡରେ ବା ଦେବପ୍ରତିମାଙ୍କ ଅଙ୍ଗରେ ସିନ୍ଦୁର ଲଗାଇବା ।

ସିନ୍ଦୁରା / ସୁନ୍ଦ(ନ୍ଦୂ)ରା } ମାରିବା—ଦେ. କ୍ରି—ସକାଳୁ ପୂର୍ବଦିଗ ସୂର୍ଯ୍ୟୋଦୟ ପୂର୍ବରୁ ନାଲି ଦେଖାଯିବା; ଅରୁଣୋଦୟ ।

ସିଲ୍ / ସିଲ୍‌ମୋହର } ମାରିବା—ଦେ. କ୍ରି—ଚିଠି ଆଦିକୁ ମୁଦି ମୁଦ୍ରିତ ସ୍ଥାନରେ ଲାଖ ଦେଇ ଲାଖ ଉପରେ ନାମାଙ୍କିତ ମୁଦ୍ରା ବସାଇବା ।

ସୁନା ମାରିବା—ଦେ. କ୍ରି—ସ୍ୱର୍ଣ୍ଣଧାତୁକୁ ବୈଦ୍ୟଶାସ୍ତ୍ରୋକ୍ତ ଉପାୟରେ ମାରଣ ବା ଭସ୍ମ କରିବା; [ ଦ୍ର—ଏହିପରି ରୁପା, ତମ୍ବା, ଅଭ୍ର, ବଙ୍ଗ, ମଣ୍ଡୁର, କାନ୍ତ, ଶଙ୍ଖ, ମୁକ୍ତା, ପ୍ରବାଳ ଆଦି ମାରିବା ବୋଲାଯାଏ । ]

ସୁନ୍ଦା ମାରିବା—ଦେ. କ୍ରି—( ଇତରଜାତୀୟା ସ୍ତ୍ରୀମାନେ ) ମଥାଘଷା, ମେଥିଗୁଣ୍ଡା ଆଦି ସୁଗନ୍ଧ ମସଲାକୁ ବାଟି ମୁଣ୍ଡର ବାଳ ଉପରେ ମର୍ଦ୍ଦନ ପରି ବୋଳିବା ।

ହଁ ମାରିବା—ଦେ. କ—କୌଣସି ବିଷୟରେ ସ୍ୱୀକୃତ ହୋଇ (ଅନ୍ତତଃ ମୁହଁରେ ସ୍ୱୀକୃତ ହୋଇ) 'ହଁ' ବୋଲି କହିବା ।

ହରଣଚୁଲ ମାରିବା—ଦେ. କ୍ରି—୧ । ଠକାଇ କରି ନେବା । ୨ । ଲୁଟିଇ କରି ନେବା । ୩ । ଚୋରି କରି ନେବା ।

ହଳଦୀ ମାରିବା—ଦେ. କ୍ରି—ଦେହରେ ସାମାନ୍ୟ ପରିମାଣରେ ବଟା ହଳଦୀ ଲଗାଇବା ।

ହସେଇ ହସେଇ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ବହୁତ ହସାଇ କରି ଅକ୍ରାନ୍ତ କରିବା ।

ହାଇ ମାରିବା—ଦେ. କ୍ରି—ମୁଖ ବ୍ୟାଦାନ କରି ପାଟି ବାଟେ ପବନ ନେବା ଆଣିବା ଦ୍ୱାରା ଅଳସ ଭାଙ୍ଗିବା ।

ହାଉଡ଼ି ମାରିବା—ଦେ. କ୍ରି—ଭୋଜନରେ ତୃପ୍ତ ହୋଇ 'ହେଉଡ଼ି' ଉଚ୍ଚାରଣ କରି ପେଟରୁ ପବନ ବାହାର କରିବା ।

ହାକୁଟି ମାରିବା—ଦେ. କ୍ରି-ଅଜୀର୍ଣ୍ଣ ବା ଗୁରୁ ଭୋଜନ ଯୋଗୁଁ ଊର୍ଦ୍ଧ୍ୱ-ବାୟୁ କରିବା ।

ହାତ ମାରିବା—ଦେ. କ୍ରି—୧ । କୌଣସି ପଦାର୍ଥକୁ ଛୁଇଁ ଦେବା ବା ତା ଉପରେ ସ୍ଥିର କରି ହାତ ଚଳାଇବା; ୨ । କୌଣସି ପଦାର୍ଥକୁ କୌଶଳରେ ଚୋରି ଅପିବା ବା କରାୟତ୍ତ କରିବା; ୩ । ଢିଙ୍କିକୁଣ୍ଡିରେ ଥିବା ଧାନ ବା ଚାଉଳ ଆଦି କୁଟାଯିବା ବେଳେ ତାକୁ ଢିଙ୍କିର ମୁଷଳ ମୂହଁକୁ ଠେଲି ଦେବା; ୪ । ଅଣ୍ଡାଳିବା; ୫ । (ଅଶ୍ଳୀଳାର୍ଥକ) ପରସ୍ତ୍ରୀ ରମଣ କରିବା; ଅବୈଧ ପ୍ରଣୟ କରିବା ।

ହାଫା ମାରିବା—ଦେ. କ୍ରି—ଅଫା ମାରିବା (ଦେଖ)

ହାବ(ବେ)ଲ ମାରିବା—ଦେ. କ୍ରି—ହାବଲ(ବାଣ)ରେ ନିଆଁ ଲଗାଇ ଉପରକୁ ଛାଡ଼ିବା ।

ହାବୁକା ମାରିବା—ଦେ. କ୍ରି—୧ । ଦୁଇ ହାତରେ ପାଣିକୁ ଆଘାତ କରି ଲହଡ଼ା ଉଠାଇବା । ୨ । ବୁଢ଼ା ଅଙ୍ଗୁଠି ଓ ବାକି ଅଙ୍ଗୁଠିକୁ ମେଲା କରି, ଅର୍ଦ୍ଧ ଚନ୍ଦ୍ରାକୃତି କରତଳ ଦ୍ୱାରା କୌଣସି ବ୍ୟକ୍ତିର ବେକରେ ଠେଲି ଦେବା ।

ହାବୁଡ଼ା ମାରିବା—ଦେ. କ୍ରି—ବାହା ଓ କହୁଣି ଦ୍ୱାରା ନିଜର କାଖରେ ଓ କଡ଼ରେ ଉପର୍ଯ୍ୟୁପରି ଆଘାତ କରି ଶବ୍ଦ କରିବା ।

ହାମ୍ପୋ(ମ୍ପୋ)ଳ ମାରିବା—ଦେ. କ୍ରି—୧ । ଓଷ୍ଠ ଦ୍ୱାରା ପବନ ଛାଡ଼ିବା; ୨ । କରତଳ ଦ୍ୱାରା ଫୁଟୁକି ମାରିବା ।

ହାର୍ ଜିତ୍(ଣ) / ହାର୍ ଜିଦ୍(ଦ) } ମାରିବା—ଦେ. କ୍ରି—ଜିଦି ବା ପଣ ରଖି କାର୍ଯ୍ୟରେ ପଶିବା ।

ହୁଁ ମାରିବା—ଦେ. କ୍ରି—୧ । କୌଣସି କାହାଣୀକୁ ବା ବିଷୟକୁ ଶ୍ରୋତା ମନ ଦେଇ ଶୁଣୁଛି ବୋଲି କହିବା ଲୋକ ଜାଣି ପାରିବା ଉଦ୍ଦେଶ୍ୟରେ 'ଶ୍ରୋତା' ମଝିରେ ମଝିରେ 'ହୁଁ' ବୋଲି କହିବା; ୨ । ହଁ ମାରିବା (ଦେଖ) .

ହେଉଁ(ଉ)ଡ଼ି ମାରିବା—ଦେ. କ୍ରି—ହାଉଡ଼ି ମାରିବା (ଦେଖ)

ହେ(ହ)ଣ୍ଟାଳ ମାରିବା—ଦେ. କ୍ରି—(ବାଘ) କ୍ଷୁଧିତ ଅବସ୍ଥାରେ ବାରମ୍ବାର ଗର୍ଜନ କରିବା

**ହେଣ୍ଡି ମାରିବା**—ଦେ. କ୍ରି—ହାବୁଡ଼ା ମାରିବା ।୨। (ଲକ୍ଷଣାର୍ଥ) ବିଶେଷ ଆନନ୍ଦ ବା ନିଶ୍ଚିନ୍ତତା ପ୍ରକାଶ କରିବା; ଆନନ୍ଦରେ ନାଚିବା ।

**ହୋଇ / ହୋଇ, ହୋଇ** } ମାରିବା—ଦେ. କ୍ରି—ଉଚ୍ଚୋ ମାରିବା (ଦେଖ)

**ହୋ ମାରିବା**—ଦେ. କ୍ରି—ହୋ ହା ମାରିବା (ଦେଖ)

**ହୋ ହା ମାରିବା**—ଦେ. କ୍ରି—୧ । ଘୋଷା ମାରିବା (ଦେଖ); ୨ । ହୋ ହା ଶବ୍ଦ କରିବା; ୩ । ଉଚ୍ଚୋ ମାରିବା ।

**ମାରିବା ତାରିବା**—ଦେ. କ୍ରି (ବିପରୀତାର୍ଥ ସହଚର; ମୃ ଧାତୁ ଣିଚ ମାର ଧାତୁ ଓ ତୃ ଧାତୁ ଣିଜନ୍ତ ତାର ଧାତୁ)—କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା ଓ ତାକୁ ରକ୍ଷା କରିବା—To ruin and save a person.
Māribā tāribā
মাঁরা তারা
**मारना तारना**

**ମାରିବା ଧରିବା**—ଦେ. କ୍ରି ( ସଂ. ମାର ଧାତୁ ଓ ଧୃ ଧାତୁ )—ମାରପିଟ କରିବା; ମାରଧର କରିବା;ପ୍ରହାର କରିବା-- To beat
Māribā dharibā
মারাধরা, মারাপেটা **मारना धरना**
(ମାରିବା ପିଟିବା—ଅନ୍ୟରୂପ)

**ମାରିବା ହାଣିବା**—ଦେ. କ୍ରି (ସହଚର ଶବ୍ଦ) (ସଂ. ମାର ଧାତୁ ଓ ହନ ଧାତୁ)—୧ । ପ୍ରହାର କରିବା ଓ ଶସ୍ତ୍ର ଦ୍ୱାରା କାଟିବା—1. To strike and cut with weapons. ୨ । ଜଙ୍ଗଲ ଓ ପଡ଼ିଆ ଜମିର ଗଛମାନ ହାଣି ମାଟିକୁ ହୋଡ଼ ଆଦି ଦ୍ୱାରା ସମତୁଲ କରିବା—2. To reclaim a waste land or jungle by cutting the trees and levelling up the ground.
Māribā hāṇibā
মারাকাটা
**मारना काटना**

**ମାରି ମନ କରିବା**—ଦେ.କ୍ରି—୧ । ଦୃଢ଼ସଂକଳ୍ପ ପୂର୍ବକ ପ୍ରହାର କରିବା —1. To beat after firm resolve. ୨ । ଖୁବ୍ ଜୋର୍‌ରେ ମାରିବା—2. To beat with force. ୩ । ମାଡ଼ ମାରିବାକୁ ଇଚ୍ଛା ବା ସଂକଳ୍ପ କରିବା—3. To wish or resolve to strike a blow.
Māri mana kāribā
**मारनेको मन करना**

**ମାରି ମ(ମା)ହାପାତ୍ରେ ବୋଲା(ଲେ)ଇବା**—ଦେ.କ୍ରି-ଅନ୍ୟ ଲୋକମାନଙ୍କୁ ମାଡ଼ମାରି ବା ଧମକାଇ ଅପଣା ବୀରତ୍ୱର ପରିଚୟ ଦେବା—To show one's heroism by beating, striking or terrifying others.
Māri ma(mā)hāpātre bolā(le)ibā
**मारकर बीरता दिखाना**

**ମାରି ମିଶିବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ମାଡ଼ ମାରିବା ପାଇଁ ଆକ୍ରମଣ କରିବା ବା ଉଦ୍ୟତ ହେବା—To attack or fall upon a person to beat him; to assault.
Māri misibā
মারতে উদ্যত হওয়া
**मारनेको झूकना**

**ମାରି ଯିବା**—ଦେ. କ୍ରି—୧ । ଯେ କୌଣସି ପ୍ରକାରେ କାମ ଚଳାଇ ନେବା—1. To get on anyhow. (ଉ—ମାରିଗଲେ ମାହାପାତ୍ରେ, ଗୁହିଁଥିଲେ କଲକା—ଛଗ) ୨ । କାଳ ଯାପନ କରିବା—2. To pass time; to go on. [ ଉ—ମାରି ମାରି ଚଲେ କାଳକ —ଛଗ । ]
Māri jibā
মেরে যাওয়া
**मारजाना**

**ମାରିଷ**—ସ. ବି. (ମୃଷ୍ ଧାତୁ=କ୍ଷମା କରିବା+କର୍ତ୍ତୃ. ଅ; ନିପାତନ; ଅଥବା ମା=ନିଷେଧ+ରିଷ୍ ଧାତୁ=ହିଂସା କରିବା+କର୍ତ୍ତୃ. ଅ)—୧ । (ନାଟ୍ୟୋକ୍ତିରେ) ଶ୍ରେଷ୍ଠ ବ୍ୟକ୍ତି ବା ନଟ ବା ସୂତ୍ରଧାରଙ୍କ ପ୍ରତି ସମ୍ବୋଧନ—1. A term of respect used to an elder (specially to an actor or manager) in dramatic parlance. ୨ । ତଣ୍ଡୁଲୀୟ; ଶାକ ବିଶେଷ; କେଉଁଟିଆ ଶାଗ—2. A kind of potherb; Amaranthus Oleraceus. ୩ । ଖଡ଼ା ଶାଗ—3. Amaranthus Gangeticus.
Mārisha

**ମାରିଷ ଦଣ୍ଡା**—ପ୍ରାଦେ. (ସମ୍ବଲପୁର) ବି—ଖଡ଼ା ଶାଗ—Amaranthus Gangeticus.
Mārisha daṇḍā

**ମାରିଷା**—ସ. ବି. ସ୍ତ୍ରୀ—ଦକ୍ଷ ମୁନିଙ୍କର ମାତା—The name of the mother of Sage Daksha.
Mārishā
ଦେ. ବି—ମାରିଷ ୨ ଓ ୩ ( ଦେଖ )
Mārisha 2 & 3 ( See )

**ମାରିଷି**—ଦେ. ବି—ମାରିଷ ୨ ଓ ୩ ( ଦେଖ ) Mārisha 2 & 3 ( See )
Mārishi

**ମାରିଷିଆ ମାରିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଶୃଙ୍ଗରେ ବିନ୍ଧିବା—To gore.
Mārishiā māribā

**ମାରି ସାବାଡ଼୍ ବନା(ନେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ବହୁତ ମାରି ଜବତ୍ କରିବା—To bring one under subjection by giving him a sound beating.
Māri sābārḍ banā(ne)ibā
(ମାରି ଦ[ଥ]ଣ୍ଡା କରିବା—ଅନ୍ୟରୂପ)
মেরে সাবাড় করা
**मारकर सीधा करना, मारकर सूला देना**

**ମାରି ହେବା**—ଦେ. କ୍ରି—୧ । (ସକର୍ମକ)—ଆପଣା ଦେହରେ ତେଲ ବା ହଳଦୀ ଆଦି ନିଜେ ଲଗାଇ ହେବା—1. To smear one's own body with oil, turmeric paste etc. ( ଯଥା—ତୁ ଶୀଘ୍ର ଦେହରେ ଟିକିଏ ତେଲ ମାରି ହୋଇ ଗାଧୋଇ ପଡ଼୍ । ) ୨ । (ଅକର୍ମକ) ଆପଣା ଦେହରେ ହସ୍ତ ବା ଅସ୍ତ୍ରାଦି ପ୍ରହାର କରିବା—2. To strike one's hand or a weapon on one's body. [ ଉ—ଛେଦ ହୋଇବାକୁ ହାତ ହୁଏ ବୁଦ୍ଧି, ଛେଦ ମାରି ହେବ କହି ରହି ଥାଉ ସିଦ୍ଧି । କବିସୂର୍ଯ୍ୟ. କବିତା ।] ୩ । (ଅକର୍ମକ) ଛଟ ପିଟ ହେବା; ଆପଣାର ଅଙ୍ଗ ପ୍ରତ୍ୟଙ୍ଗକୁ ଭୂମିରେ ବା ପାଣିରେ ବା ଇତସ୍ତତଃ ବାଡ଼େଇବା—3. To strain one's limbs; to strike one's body against the ground or water or in the air. ( ଯଥା—ଏ ପୋଖରୀରେ ସବୁବେଳେ ମାଛ ମାରି ହେଉଥାନ୍ତି ।) ୪ । (ସକର୍ମକ) (ଆପଣାର ମୁଣ୍ଡକୁ) ଭୂମିରେ ଆଘାତ କରିବା—4. To strike ( one's head ) on the ground. ( ଯଥା—ଏଠାରେ ତିନିଦିନ ମୁଣ୍ଡ ମାରି ହେଲେ ସୁଦ୍ଧା କେହି ଶୁଣିବାକୁ ନାହିଁ ।)
Māri hebā
মাথা
**मखालेना**
চাপড়ান
**मारना**
উলটান
**उलटना**
কুড়া
**पीटना**

ମାରୀ—ସଂ. ବି—( ମୃ ଧାତୁ ଣିଚ୍=ମାରି ଧାତୁ + କର୍ତ୍ତୃ. ଈ)—୧ । ମାରି ( ଦେଖ )—1. Māri ( See ) ୨ । (ସ୍ତ୍ରୀ) ମାହେଶ୍ୱରୀ ଶକ୍ତି; ଚଣ୍ଡୀ—2. Goddess Chaṇḍī.
Māri

ମାରୀଚ—ସଂ. ବିଣ ( ମରୀଚ + ଅ )—ମରୀଚ ସମ୍ବନ୍ଧୀୟ—Relating to black pepper. ବି—୧ । ମରୀଚ କ୍ଷେତ୍ର—1. A field of black pepper. ୨। ସୁନ୍ଦ ନାମକ ରାକ୍ଷସର ଔରସରେ ତାଡ଼କା ନାମ୍ନୀ ରାକ୍ଷସୀ ଗର୍ଭରେ ଜାତ ମାୟାବୀ ରାକ୍ଷସ—2. Name of a demon who assumed the shape of a golden deer and cheated Sītā into believing it to be a real one and sending away Rāmachandra after it. [ ଦ୍ର—ମାୟାମୃଗ ଭଳେ ଟୋଠ ଦେଖ ।] ୩ । ରାଜ ହସ୍ତୀ; ପାଟ ହାତୀ—3. An elephant ridden by a king.
Mārīcha

ମାରୀଚ ମାରି—ଦେ. ବି—ମାରୀଚହନ୍ତା; ରାମଚନ୍ଦ୍ର—Killer of Māricha; Rāma Chandra. [ଦ୍ର—ବିଳାସରେ କେତେ ମାରିଚମାରିର ଜାଣି ଭୂଷାସରେ ଧାଇଁ । ଉପେ. ବୈଦେହୀଶବିଳାସ ।]
Mārīcha māri

ମାରୀଚୀ—ସଂ. ବି. ସ୍ତ୍ରୀ—ଦେବୀବିଶେଷ; ବଜ୍ରକାଳିକା ବା ବଜ୍ରବାରାହୀ ଦେବୀ—Name of a Goddess ( an incarnation of Durgā ).
Mārīchī

ମାରୀ ଭୟ—ସଂ.ବି. (୬ଷ୍ଠୀ ତତ୍)-୧ । ମାରାତ୍ମକ ସଂକ୍ରାମକ ରୋଗ ଦେଶରେ ବ୍ୟାପିବା ସମୟରେ ଜାତ ଭୟ 1. Fear due to the raging of a mortal epidemic in a locality. ୨ । ମଡ଼କ; ମହାମାରୀ—2. Plague, pestilence.
Māri bhaya

ମାରୁ—ସଂ. ବି—(ମୃ ଧାତୁ ଣିଚ୍=ମାରି ଧାତୁ + ଭାବ ଉ )—୧ । ହତ୍ୟା; ମାରଣ; ବଧ; ବିନାଶ—1. Slaughter; destruction. ୨ । ( + କର୍ତ୍ତୃ. ଉ )—ମହାମାରୀ—2. Plague; pestilence. ୩ । (+ଭାବ. ଉ) ଆଘାତ; ପ୍ରହାର—3. Stroke. ଦେ. ବି—(ସଂ. ମାରକ)—୧ । ଘାତୁକ ବ୍ୟକ୍ତି—1. Assassin; murderer. ୨ । ପଦାର୍ଥର ବା ମନୁଷ୍ୟର ଅପବିତ୍ର ଅବସ୍ଥା—2. Impure condition of a thing or a person.
Māru
मारात्मक लोक
मारु, मारक
मारा अछूत

(ମାରୁଣୀ—ସ୍ତ୍ରୀ) ବିଣ. ପୁଂ ଓ ସ୍ତ୍ରୀ—୧ । ଘାତୁକ; ହତ୍ୟାକାରୀ—1. Murderous. ୨ । ନଷ୍ଟ—2. Spoiled. ୩ । ଦୂଷିତ—3. Contaminated. ୪ । ସଢ଼ି ଯାଇଥିବା—4. Rotten. ୫ । ଅପବିତ୍ରୀକୃତ—5. Polluted. ୬। ଅସ୍ପୃଶ୍ୟର ସ୍ପର୍ଶଯୋଗୁଁ ଅପବିତ୍ର; ଛୁଆଁ—6. Polluted by the touch of a prohibited thing or person. ୭ । (ସ୍ତ୍ରୀ) ଋତୁମତୀ; ରଜସ୍ୱଳା ( ସ୍ତ୍ରୀ )—7. Menstruated (woman). [ଦ୍ର—ସ୍ତ୍ରୀ ରଜସ୍ୱଳା ହେଲେ ବା ରଜସ୍ୱଳା ସ୍ତ୍ରୀକୁ ଛୁଇଁଲେ, ମଳ ଇତ୍ୟାଦି ଅପବିତ୍ର ପଦାର୍ଥକୁ ଛୁଇଁଲେ, ସଦ୍ୟଃପ୍ରସୂତାକୁ ଛୁଇଁଲେ, ଅନ୍ତ୍ୟଜ ଶାଳକୁ ପ୍ରବେଶ କଲେ, ଅସ୍ପୃଶ୍ୟ ଜାତୀୟ ବ୍ୟକ୍ତିକୁ ଛୁଇଁଲେ, ଲୁଗା ପିନ୍ଧି ଝାଡ଼ା ଫେରି ଗଲେ ଓ ମୃତ୍ୟୁର କାନ୍ଧେଇଲେ ବା ଶ୍ମଶାନକୁ ଶବ ସଙ୍ଗେ ଗଲେ ସେ ଲୋକ ଓ ବସ୍ତ୍ରାଦି ମାରୁ ହୁଏ ଓ ସ୍ନାନ ନ କଲେ ପବିତ୍ରତା ଲାଭ ହୁଏ ନାହିଁ ।] ୮ । ମନ୍ଦ; ନିକୃଷ୍ଟ—8. Inferior. ୯ । କାର୍ଯ୍ୟର ଅଯୋଗ୍ୟ; ଅକର୍ମଣ୍ୟ—9. Unfit; worthless. ଗ୍ରାଦେ. (ଉତ୍ତର ବାଲେଶ୍ୱର) ବି (ତୁଳ. ବଂ. ମାର)—ମାଡ଼—Beating. (ଯଥା—ଆଜି ତାକୁ ଭାରି ମାରୁ ଦେଲା ।)
मारात्मक
मारा
कुआजाना
सडा
अछूत
अछूती

ମାରୁ ଅଗ୍ର—ଦେ. ବି—କ୍ଷେତ୍ରରେ ହଳ ବୁଲାଇ ଚାଷ କଲା ବେଳେ ଲଙ୍ଗଳ ଦ୍ୱାରା ଯେଉଁ ଅଗ୍ର ବା ବୃତ୍ତାଭାସ ରେଖା-(ମାରୁଣୀ ଅଗ୍ର—ଅନ୍ୟରୂପ) ମାନ ଖୋଳା ହୋଇଥାଏ ସେହି ଅଗ୍ରମାନଙ୍କ କେନ୍ଦ୍ରସ୍ଥଳରେ ଯେଉଁ କ୍ଷୁଦ୍ର ଅଂଶ ହଳ ଦ୍ୱାରା କର୍ଷିତ ହୋଇ ନ ପାରି ପଡ଼ିଆ ରହିଯାଏ—The elliptical and very narrow strip of unploughed land left in the centre of a ploughed field when it is ploughed in concentric elliptical furrows. [ଦ୍ର—କ୍ଷେତ୍ରକୁ ଚାଷ କରିବା ପରେ ଯେଉଁ ଯେଉଁ ସ୍ଥାନରେ 'ମାରୁ ଅଗ୍ର'ମାନ ରହି ଯାଇଥାଏ ସେହି ସେହି ସ୍ଥାନକୁ ଶେଷରେ ହଳ ବୁଲାଇ ଚଷି ଦିଆଯାଏ ଏହାକୁ ମାରୁ ଅଗ୍ର ମାରିବା କହନ୍ତି ।]
Māru achā
अखरी शिराह

ମାରୁ ଅଗ୍ର ମାରିବା—ଦେ. କ୍ରି—କ୍ଷେତ୍ରରେ ପ୍ରଥମେ ହଳ ବୁଲାଇବା ବେଳେ ଏକକେନ୍ଦ୍ରିକ 'ଅଗ୍ର' ବା ଲଙ୍ଗଳ ଶିଅରମାନଙ୍କରେ ଯେଉଁ ଅକର୍ଷିତ କେନ୍ଦ୍ରାଂଶମାନ ରହି ଯାଇଥାଏ ତାକୁ ଶେଷରେ ହଳ କରିବା—To plough up the unploughed patches left in the centre of a ploughed field.
Māru achā māribā

ମରୁଆ—ଦେ. ବିଣ. ପୁଂ (ସଂ. ମାରକ)—୧ । ଯେ ମାରେ ବା ପ୍ରହାର କରେ—1. Beating. ୨ । ହତ୍ୟାକାରୀ—[ମାରେ(ରେ)ଇ—ସ୍ତ୍ରୀ] 2. Killing. ୩ । ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିକୁ ଷଡ଼ରେ ପକାଏ—3. Putting another to loss. (ଦ୍ର—ଜନ୍ମ ମାଲ-ମାରୁଆ-ମରୁଳା ଲୋଚା । ଗ୍ରାଚୀ. ରହସ୍ୟ ମଞ୍ଜରୀ ।) ୪ । ନଷ୍ଟ—4. Spoiled. ୫ । ଦୂଷିତ—5. Polluted. ୬ । ଅନ୍ତଃସାରଶୂନ୍ୟ—6. Unsubstantial.
Mrāuā
मारकुतट
मारु
मारा
खराब

ମାରୁଆ ମଲ୍(ଲ୍ଲି)ଆ—ଦେ. ବିଣ—(କାଠ ବା କଡ଼ି ଅନ୍ତ ସଢ଼ି ଯିବାରୁ ବା ଉଇର ପୋକ ବା ଘୁଣ ଖାଇ ଯିବାରୁ ) ଅକର୍ମଣ୍ୟ; ଅନ୍ତଃସାରଶୂନ୍ୟ—Worthless (said of a timber or log of wood which is hollow
Māruā mali(lli)
खाराप
खराब
[ମାରୁ ମଲ(ଲ୍ଲି)ଆ—ଅନ୍ୟରୂପ]

or ant-eaten in the interior; unsound in the core. ଦେ. ବ—ମାଗ୍ଧ କାଠର ଭିତରେ ଥିବା ଓ ବାହାରକୁ ଦେଖା ଯାଉ ନ ଥିବା ଅନ୍ତଃସାରଶୂନ୍ୟ ଅଂଶ—Unsubstantial portion inside a damaged timber.

ମାରୁଁ ଗେଲା—ଗ୍ରାଦେ. (ଉତ୍ତରିଆ) କ୍ରି—ମରି ଗଲା—
Māruñ gelā (He) Died.

ମାରୁ(ରେ, ରୋ)ଙ୍ଗା(ଙ୍ଗେ)—ବୈଦେ. କ୍ରି—(ହିନ୍ଦୀ ଭାଷାର ମାରୁବା
Māru(re, ro)ngā (nge) କ୍ରିୟାର ଭବିଷ୍ୟତ କାଳ ୧ମ ପୁରୁଷ ୧ ବଚନରେ (ମୈ) ମାରୁଙ୍ଗା, (ହମ୍) ମାରେଙ୍ଗେ) ମୁଁ ମାରିବି ବା ପ୍ରହାର କରିବି—I shall beat. [ଉ—ଉଠି ନ ପାରି ମାରୁଙ୍ଗା । ଉଗ ।—ଏହାର 'ଅର୍ଥ ଏହି ଯେ, ଯେଉଁ ବ୍ୟକ୍ତିର ଶଯ୍ୟାରୁ ଉଠିବାର ଶକ୍ତି ନାହିଁ, ସେ ମୁହଁରେ ମୈ ମାରୁଙ୍ଗା (ମୁଁ ମାରିବି) ବୋଲି ଅହଙ୍କାର କରିବା ନ୍ୟାୟ । ଭୁଲ. ହିନ୍ଦୀ ପ୍ରବଚନ—ଉତ୍କଳେଶ୍ୱରଙ୍କ ନାମ ଜଗନ୍ନାଥ ଯାଏ 'କହାଁ ନ ଚଲେ କେଲଙ୍କା ଭାର'।]

ମାରୁ(ରେ)ଣୀ—ଦେ. ବ. (ସଂ. ମାରଣ)—୧ । ମାରଣ ୧ । (ଦେଖ)
Māru(re)ṇī मारण मारणा 1. Maraṇa 1 (See) [ଉ—ବାଇ ଯେ ବସିଲେ ଗ୍ରାମଙ୍କ ମାରୁଣୀରୁ, ହରି ମୃତ ପକାଇଲେକ ସେ ବନରୁ । କୃଷ୍ଣସିଂ. ମହାଭାରତ. ବନ] ୨ । ମାରୁଅଣ୍ଟ (ଦେଖ)—2. Māruachā (See)
(ମାରଣା—ପୁଂ) ୩ । ବ. ସ୍ତ୍ରୀ—ଘାତୁକୀ ସ୍ତ୍ରୀ—3. A murderous woman.
ବଣ. ସ୍ତ୍ରୀ—ହତ୍ୟାକାରିଣୀ; ଘାତୁକୀ—Murderous (woman.)

ମାରୁଣୀ ମାରିବା—ଦେ. କ୍ରି—ମାରୁଅଣ୍ଟମାନଙ୍କୁ ପୁନର୍ବାର ହଳ ବୁଲାଇ
Māruṇī māribā ଚଷିବା—To plough up the parts of the field left untouched by the plough.

ମାରୁତ—ସଂ. ବ (ମରୁତ+ସ୍ୱାର୍ଥେ ଅ)—୧ । ପବନ; ବାୟୁ—
Māruta 1. Air; wind. ୨ । ଊନଞ୍ଚାଶ ପବନ—2. The airs (49 in number) represented as demigods. [ଦ୍ର—ଏହି ଶବ୍ଦର ବ୍ୟୁତ୍ପତ୍ତି 'ମା ରୋଦୀ'+ଅ ମଧ୍ୟ ହୋଇପାରେ । ସ. ମାରୋଦୀ= କାନ୍ଦନାହିଁ; ଦିତିଙ୍କ ଗର୍ଭରେ 'ପବନ' ଭ୍ରୂଣରୂପେ ଅବସ୍ଥାନ କରୁଥିବା ସମୟରେ ଇନ୍ଦ୍ର ବଜ୍ରଦ୍ୱାରା ସେ ଭ୍ରୂଣକୁ ପ୍ରଥମେ ୭ ଖଣ୍ଡ କରି କାଟି ପକାଇଲେ ଓ ପରେ ପ୍ରତ୍ୟେକ ଖଣ୍ଡକୁ ୭ ଖଣ୍ଡ ଲେଖାଏଁ ଏପରି ୪୯ ଖଣ୍ଡ କଲେ । ଏଣୁ ଗର୍ଭନାଶ ହେବାର ଦେଖି କାନ୍ଦିବାରୁ ଇନ୍ଦ୍ର ତାଙ୍କୁ କହିଥିଲେ :— ମାରୋଦୀ=ତୁମେ କାନ୍ଦନାହିଁ ।]

ମାରୁତାତ୍ମଜ—ସଂ. ବ (୬ଷ୍ଠୀ ତତ୍; ମାରୁତ+ଆତ୍ମଜ)—୧ ।
Mārutātmaja ପବନଙ୍କ ସ୍ତ୍ରୀ ଅଞ୍ଜନାଙ୍କ ଗର୍ଭଜାତ ସାର
(ମାରୁତି—ଅନ୍ୟରୂପ) ,ହନୁମାନ୍—1. The name of the monkey devotee of Rāma Chandra. ୨ । (ପାଣ୍ଡୁଙ୍କ ସ୍ତ୍ରୀ କୁନ୍ତୀଙ୍କ ଗର୍ଭରେ ପବନଙ୍କ ଔରସରେ ଜାତ) ଭୀମ—2. Bhīma, the 2nd Pāṇḍaba brother.

ମାରୁତାଶନ—ସଂ. ବଣ (ବହୁବ୍ରୀହି; ମାରୁତ ଅଟେ ଅଶନ ଯାହାର)—
Mārutāśana ଯେ ପବନ ଖାଇ ପ୍ରାଣଧାରଣ କରେ—Subsisting on air only. ବ—ସର୍ପ—Serpent.

ମାରୁ ମରୁଡ଼ି—ଦେ. ବ (ଯୁଗ୍ମପଦ ଶବ୍ଦ)—ମାରୀ ଓ ଦୁର୍ଭିକ୍ଷ—
Māru maruṛi Pestilence and famine.
(ମାରୁ ମଡ଼କଗ—ଅନ୍ୟରୂପ)

ମାରେଜ୍—ବୈଦେ. ବ (ଇଂ. ମାର୍‌ରେଜ୍)—ବିବାହ—Marriage.
Mārej ম্যারেজ मैरेज

ମାରେଜ୍ ରେଜ(ଜେ)ଷ୍ଟର(ରୀ)—ବୈଦେ. ବ. (ଇଂ. ମାର୍‌ରେଜ୍
Mārej reji(je)shṭar(rī) ରେଜିଷ୍ଟର୍)—୧ । ମୁସଲମାନ ଓ ବ୍ରାହ୍ମ ম্যারেজ রেজিষ্টার ଅବଳମ୍ବ ବିବାହ ବିଷୟରେ ବର କନ୍ୟାଙ୍କ ମଧ୍ୟରେ मैरेज रजिष्टर ହେବା ଚୁକ୍ତି ଆଇନ୍ ଯେଉଁ ନିର୍ଦ୍ଦିଷ୍ଟ ଖାତାରେ ଲିପିବଦ୍ଧ ହୁଏ—1. Marriage register. ୨ । ମାରେଜ୍ ରେଜିଷ୍ଟ୍ରେସନ୍ (ଦେଖ) 2. Marej rejishṭresan (See)

ମାରେଜ୍ ରେଜିଷ୍ଟ୍ରାର୍—ବୈଦେ. ବ. (ଇଂ.—ମାର୍‌ରେଜ୍ ରେଜିଷ୍ଟ୍ରାର୍)
Mārej rejishṭrār ମୁସଲମାନ୍ ଓ ବ୍ରାହ୍ମମାନଙ୍କର ବିବାହରେ ম্যারেজ রেজিষ্টার ଦମ୍ପତିଙ୍କର ଚୁକ୍ତିକୁ ସରକାରୀ ଆଇନର ବିଧି मैरेज रजिष्टर ଅନୁସାରେ ସାକ୍ଷୀଙ୍କ ଉପସ୍ଥିତିରେ ଲିପିବଦ୍ଧ କରିବା ପାଇଁ ଗଭର୍ଣ୍ଣମେଣ୍ଟଙ୍କ ନିଯୁକ୍ତ ବ୍ୟକ୍ତି; ମୁସଲମାନ୍‌ମାନଙ୍କର କାଜୀ—Marriage registrar; Registrar of Mahomedan and Brahmo marriages.

ମାରେଜ୍ ରେଜିଷ୍ଟ୍ରେସନ୍—ବୈଦେ. ବ (ଇଂ)—ମୁସଲମାନ୍ ଓ
Mārej rejishṭresan ବ୍ରାହ୍ମମାନଙ୍କ ଦମ୍ପତିଙ୍କ ବିବାହବିଷୟକ ম্যারেজ রেজিষ্ট্রেসন मैरेज रजिष्ट्रेसन ଚୁକ୍ତିକୁ ଆଇନ୍ ଅନୁସାରେ ଲିପିବଦ୍ଧ କରିବା ଗାର୍ଯ୍ୟ—Registration of marriages amongst the Mahomedans and Brahmos.

ମାରୋଦ୍ୟମ—ଦେ. ବ (ସଂ. ମାର+ଉଦ୍ୟମ)—କାମ ଚେଷ୍ଟା—
Mārodyama Amour. (ଉ—ତାର କୁଟିଳ କୁନ୍ତଳ ସୁନ୍ଦରଶ୍ରୀ କରଇ କାମ ସ୍ୱରୂପ ମାରୋଦ୍ୟମ ପ୍ରେ । ପ୍ରାଚୀ. ରସକାରିଧ ।]

ମାର୍କ—ବୈଦେ. ବ. (ଇଂ)—୧ । ପରୀକ୍ଷାରେ ଛାତ୍ର ପାଇଥିବା ନମ୍ବର—
Mārk 1. Marks obtained by an examinee. ୨ । ବଇଜ୍ଞାପକ ଚିହ୍ନ—2. Distinctive mark. [ଦ୍ର—ଏହି ଶବ୍ଦବିଶିଷ୍ଟ ଅନ୍ୟ କେତେକ ଇଂରାଜୀ ଶବ୍ଦ ମଧ୍ୟ ଭାଷାରେ ଚଳନ୍ତି ଯଥା; ଟ୍ରେଡ଼୍ ମାର୍କ, ଚେକ ମାର୍କ, ଇତ୍ୟାଦି) ଦେ. ବ—ମାରକ (ଦେଖ)—Māraka (See) ସ. ବ—ଭୃଙ୍ଗରାଜ (ଦେଖ) (ହ. ଷ.) Bhruṅgarāja (See).

ମାର୍କ(ର୍କି,ର୍କେ)ଟ୍— ବୈଦେ. ବି. (ଇଂ. ମାର୍କେଟ୍)—ହାଟ—
Mārk(rki, rke)ṭ মার্কেট मारकेट Market.

ମାର୍କଣ୍ଡ—ସଂ. ବି ପୁଂ—( ମୃକଣ୍ଡ ଋଷି+ଅପତ୍ୟାର୍ଥେ. ଅ)—କଳ୍ପାନ୍ତଜୀବୀ
Mārkaṇḍa ମୁନିବିଶେଷ; ମାର୍କଣ୍ଡେୟ—Name of a sage said to live for the period of the created world. ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—Name given to males.

ମାର୍କଣ୍ଡ ଦାସ—ଦେ. ବି—ଉତ୍କଳୀୟ ପ୍ରସିଦ୍ଧ କବିବିଶେଷ—Name
Mārkaṇḍa dāsa of a famous poet of Utkal.
[ଦ୍ର—ଏ ଖ୍ରୀଷ୍ଟୀୟ ଷୋଡ଼ ଶତାବ୍ଦୀ ବା ତତ୍ ପୂର୍ବର କବି ଅଟନ୍ତି । ଏ ପୁରୀ ଜିଲ୍ଲାବାସୀ ବ୍ରାହ୍ମଣ ଥିଲେ । ବିନାୟକ. ଉତ୍କଳ ସାହିତ୍ୟ ଇତିହାସ । ସମଗ୍ର ଉତ୍କଳଭାଷୀ ପ୍ରଦେଶରେ ସୁପରିଚିତ 'କେଶବ କୋଇଲି' ଓ 'ଜ୍ଞାନୋଦୟ କୋଇଲି' ଏହାଙ୍କ ଦ୍ୱାରା ରଚିତ । ତାରିଣୀ. ଉତ୍କଳସାହିତ୍ୟ ଇତିହାସ ।]

ମାର୍କଣ୍ଡି—ଦେ. ବି—ମାରକଣ୍ଡି (ଦେଖ)— Mārakaṇḍi (See).
Mārkaṇḍi ପ୍ରାଦେ. ( ଯାଜପୁର ) ବି—ବିବାହତୁଡ଼ାରେ କନ୍ୟା ସଙ୍ଗେ ବର ଘରକୁ ଆସିଥିବା କନ୍ୟାର ଭାଇ ବା ଅନ୍ୟ କୁଟୁମ୍ବୀ ବାଳକ—A boy who accompanies the bride to her father-in-law's house just after the marriage.

ମାର୍କଣ୍ଡେୟ—ସଂ. ବି—(ମୃକଣ୍ଡ+ଅପତ୍ୟାର୍ଥେ. ଏୟ)—୧ । ମାର୍କଣ୍ଡ ମୁନି·
Mārkaṇḍeya 1. Name of a sage. ୨ । ମାର୍କଣ୍ଡଋଷି ଭାଷିତ ପୁରାଣ—2. Name of a Purāṇa said to have been composed by sage Mārkaṇḍa. ୩ । ପୁରୁଷୋତ୍ତମ କ୍ଷେତ୍ରସ୍ଥ ଗୋଟିଏ ତୀର୍ଥ ପୁଷ୍କରିଣୀ—3. Name of a sacred tank in Puri. [ଦ୍ର—ପଞ୍ଚତୀର୍ଥ ତଳେ ଟୀକା ଦେଖ ।] ଦେ.ବି.ପୁଂ —ଲୋକଙ୍କୁ ଦିଆଯିବା ନାମ—Name given to males.

ମାର୍କଣ୍ଡେୟ ପୁରାଣ—ସଂ. ବି—ମାର୍କଣ୍ଡ ଋଷିଙ୍କ ଭାଷିତ ପୁରାଣବିଶେଷ—
Mārkaṇḍeya purāṇa Name of a Purāṇa ascribed to sage Mārkaṇḍa [ ଦ୍ର—ଏହି ପୁରାଣରେ ଦେବୀ ମାହାତ୍ମ୍ୟ ବା ଦୁର୍ଗାଙ୍କର ଚଣ୍ଡୀ ନାମକ ସ୍ତୋତ୍ର ଅଛି ।]

ମାର୍କଣ୍ଡେୟାବଟ—ସ ବି—( ମାର୍କଣ୍ଡେୟ+ଅବଟ=ପୁଷ୍କରିଣୀ )—
Mārkaṇḍeyābaṭa ମାର୍କଣ୍ଡେୟ ନାମକ ପୁରୁଷୋତ୍ତମର ତୀର୍ଥ ଜଳାଶୟ—The sacred tank named after Mārkaṇḍeya in Puri.

ମାର୍କଣ୍ଡେଶ୍ୱର—ଦେ. ବି—ମାର୍କଣ୍ଡେୟ ପୁଷ୍କରିଣୀର କୂଳରେ ପ୍ରତିଷ୍ଠିତ
Mārkaṇḍeśwara ମହାଦେବ—Name of a Śibaliṅga set up on the bank of Mārkaṇḍeya tank in Puri.

ମାର୍କଣ୍ଡେଶ୍ୱର ସାହି—ଦେ. ବି—ମାର୍କଣ୍ଡେୟ ପୁଷ୍କରିଣୀ ଠାରୁ ପୁରୀର ବଡ଼
Mārkaṇḍeśwara sāhi ଦେଉଳକୁ ଆସିଥିବା ଗୋଟିଏ ରାସ୍ତାର ଉଭୟ ପାର୍ଶ୍ୱସ୍ଥ ବସ୍ତି—Name of a bustee in Puri on both sides of the road leading from the Mārkaṇḍeya tank to the great temple.

ମାର୍କଣ୍ଡେଶ୍ୱରିଆ ଭଣ୍ଡାରି—ଦେ. ବି. ( ଲକ୍ଷଣାର୍ଥ )—ଯେଉଁ ବ୍ୟକ୍ତି ପାଞ୍ଚ
Mārkaṇḍeśwariā bhaṇḍāri ଜଣଙ୍କ ସେବାକୁ, ଆଦରି
गयाजीके पण्डा ସମସ୍ତଙ୍କୁ ଅର୍ଦ୍ଧସେବିତ କରି ବିରକ୍ତ କରେ— A person who takes in hand more work than he can smoothly cope with and accordingly keeps the persons concerned waiting for a long time. [ ଦ୍ର—ମାର୍କଣ୍ଡେଶ୍ୱରିଆ ଭଣ୍ଡାରି ପରି କରିବା—ଢଗ । ଏହାର ତାତ୍ପର୍ଯ୍ୟ ଏହି ଯେ, ଯାତ୍ରୀମାନେ ମାନସିକ ପାଳନ କରିବା ପାଇଁ ମାର୍କଣ୍ଡେୟ ପୁଷ୍କରିଣୀ କୂଳରେ ଶିରୋମୁଣ୍ଡନ କରି ସ୍ନାନ କରନ୍ତି; ଅନେକ ଯାତ୍ରୀ ସେଠାରେ ମୁଣ୍ଡିତ ହୁଅନ୍ତି, ସେଠାରେ ମଧ୍ୟ ଅନେକଗୁଡ଼ିଏ ଭଣ୍ଡାରି ଯାତ୍ରୀମାନଙ୍କୁ କ୍ଷୌର କରିବାକୁ ଉପସ୍ଥିତ ଥାଆନ୍ତି । ପ୍ରବାଦ ଅଛି ଯେ ଭଣ୍ଡାରିମାନେ ଲୋଭପରବଶ ହୋଇ ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ ଭଣ୍ଡାରିମାନଙ୍କଠାରୁ ଯାତ୍ରୀମାନଙ୍କୁ ଅଟକାଇ ଅକୋଉ କରି ରଖିବା ପାଇଁ ଜଣେ ଯାତ୍ରୀକୁ କ୍ଷୌର କରିବାକୁ ଆରମ୍ଭ କରି ତାଙ୍କୁ ଅଧା କ୍ଷୌର କରି ଛାଡ଼ି ଦେଇ ଆଉ ଜଣେ ଯାତ୍ରୀକୁ ଅଧିକାର କରି ତାଙ୍କୁ ମଧ୍ୟ ଅଧା କ୍ଷୌର କରି ପୁଣି ଅନ୍ୟ ଯାତ୍ରୀକୁ ଧରନ୍ତି । ଏହିପରି ଅର୍ଦ୍ଧ ମୁଣ୍ଡିତ ଅବସ୍ଥାରେ ପାଞ୍ଚ ସାତ ଜଣ ଯାତ୍ରୀଙ୍କୁ ପ୍ରଥମେ ଅକୋଉ କରି ଅଟକାଇ ରଖନ୍ତି । ଜଣେ ଭଣ୍ଡାରି ଯେଉଁ ଯାତ୍ରୀକୁ ଅଧେ କ୍ଷୌର କରି ଛାଡ଼ି ଦେଇଥାଏ ସେ ଯାତ୍ରୀକୁ ଅନ୍ୟ କେହି ଭଣ୍ଡାରି ଆଦରିବାକୁ ସାହସ କରନ୍ତି ନାହିଁ ଓ ସେ ଅର୍ଦ୍ଧମୁଣ୍ଡିତ ଯାତ୍ରୀଟି ସେହି ଭଣ୍ଡାରିକୁ ଅପେକ୍ଷା କରି ବସି ରହିଥାଏ । ଜଣେ ଭଣ୍ଡାରି ଏହିପରି ୫।୭ ଜଣ ଯାତ୍ରୀଙ୍କୁ ଅକୋଉ ସାରିବା ପରେ ଅର୍ଦ୍ଧମୁଣ୍ଡିତ ବ୍ୟକ୍ତିଙ୍କୁ ଜଣ ଜଣ କରି ପରେ କ୍ଷୌର କରେ । ଜଣେ ଲୋକ ଅନେକଗୁଡ଼ିଏ କାମକୁ ଆଦରି ପକାଇ ସବୁ କାମକୁ ପୂରା ନ କରି ଅଧା କରି ପକାଇ ରଖିଲେ ଲୋକେ ଏହି ଢଗ ବୋଲନ୍ତି । ]

ମାର୍କା—ବୈଦେ. ବି ( ଇଂ. ମାର୍କ )—୧ । ବିଭିନ୍ନତାଜ୍ଞାପକ ଚିହ୍ନ ବା
Mārkā ମୋହର—1. Distinctive mark or seal.
मार्का ୨ । ଚିହ୍ନ; ଦାଗ—2. A mark. ୩ । ଛାପ;
मारका ମୋହର—3. Seal. ୪ । ପଣ୍ୟଦ୍ରବ୍ୟ ଉପରେ ମରାଯାଇଥିବା ଛାପ; ଟ୍ରେଡ୍‌ମାର୍କ—4. Trade-mark.

ମାର୍କାଦିଆ—ଦେ. ବିଣ—୧ । ଚିହ୍ନଯୁକ୍ତ; ସୁଚିହ୍ନିତ—1. Well-
Mārkādiā marked. ୨ । ବିଖ୍ୟାତ—2. Celebrated;

ମାର୍କାମରା } ଅନ୍ୟରୂପ notorious.(ଯଥା,ଅମୁକ ଲୋକ ମାର୍କା-
ମାର୍କାଲଗା } ମରା ଚୋର ।) ୩ । ନିର୍ଦ୍ଧାରିତ—
मार्कामारा 3. Settled. ୪ । ବିଶିଷ୍ଟ ଟ୍ରେଡ୍‌ମାର୍କ ଯୁକ୍ତ
**मार्का दिया हुआ** (ପଣ୍ୟ ଦ୍ରବ୍ୟ)—4. (a commodity)
Having a special trademark.

ମାର୍କା ଦେବା—ଦେ. କ୍ରି—୧ । ଛାପ ମାରିବା—1. To put a
Mārkā debā seal. ୨ । ଚିହ୍ନ ମାରିବା—2. To
(ମାର୍କା ମାରିବା—ଅନ୍ୟରୂପ) put a mark.
मार्कामारा **मार्का देना**

ମାର୍କିନ୍(ନି) (ଇତ୍ୟାଦି)—ବୈଦେ. ବିଣ ଓ ବି—ମାର୍‌କିନ୍(ନି) ଇତ୍ୟାଦି
Mārkin(ni) (etc) (ଦେଖ)—Mār-kin(ni) etc
(See)

ମାର୍ଗ୍ (ଧାତୁ)—ପ—୧ । ପ୍ରସ୍ତୁତ କରିବା—1. To prepare.
Mārg (root) ୨ । ଗମନ କରିବା—2. To go. ୩
ପଥ ପ୍ରସ୍ତୁତ କରିବା—3. To construct a road.
୪ । ଶରରେ ବା ବାଣରେ ପକ୍ଷ ବସାଇବା—4. To
feather an arrow. ୫ । ଅନ୍ୱେଷଣ କରିବା—
5. To search.

ମାର୍ଗ—ସ. ବି (ମୃଗ୍ ଧାତୁ=ଅନ୍ୱେଷଣ କରିବା+କର୍ମ. ଅ)—୧ ।
Mārga ପଥ; ବର୍ତ୍ମ; ବାଟ—1. Way; road; passage.
୨ । (ମୃଜ୍ ଧାତୁ=ଶୁଦ୍ଧ କରିବା+କର୍ମ. ଅ)—
ମଳଦ୍ୱାର; ଗୁହ୍ୟ; ପାୟୁ—2. Anus. ୩ । (ମାର୍ଗ
ଧାତୁ=ଗମନ କରିବା; ଅନ୍ୱେଷଣ କରିବା+ଭାବ. ଅ)
ଅନ୍ୱେଷଣ—3. Searching. ୪ । ଗବେଷଣା—
4. Enquiry. ୫ । (ମୃଗ=ମୃଗଶିର ନକ୍ଷତ୍ର+
ଯୁକ୍ତାର୍ଥେ. ଅ) ମୃଗଶିର ନକ୍ଷତ୍ର ଯୁକ୍ତ ମାର୍ଗଶିର ମାସ—
5. The month of Mārgaśira. ୬ । ମୃଗଶିର
ନକ୍ଷତ୍ର—6. Name of the 4th asterism.
୭ । (ମୃଗ+ଜାତାର୍ଥେ. ଅ) ମୃଗନାଭି; କସ୍ତୁରୀ—
7. Musk. ୮ । ବିଷ୍ଣୁ—8. Bishṇu. ୯ ।
କାଠକୁ କରତରେ ଚିରିବାବେଳେ କରତଦ୍ୱାରା କାଠରେ
ଯେଉଁ ମାର୍ଗ ବା ଗାର ପଡ଼େ—9. A line or mark
left on a timber by the saw passing
through it; the passage left by the saw
along a timber. ୧୦ । (ଲକ୍ଷଣାର୍ଥ) ମନୁଷ୍ୟର
ଆଚରିତ ପନ୍ଥା—10. (figurative) The way
of one's conduct. ୧୧ । ପ୍ରକାର; ନିର୍ଦ୍ଦିଷ୍ଟ
ଉପାୟ—11. Mode; means. ୧୨ । ମାର୍ଗ ବିଦ୍ୟା
୧ (ଦେଖ)—12. Mārga bidyā 1 (See)
ବିଣ (ମୃଗ+ଅ)—ମୃଗ ସମ୍ବନ୍ଧୀୟ—Relating to
deer.

ମାର୍ଗ କଢ଼ା(ଢ଼େ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ବାଟ ଦେଖାଇ
Mārga kaṛhā(ṛhe)ibā ନେଇ ନେବା—To lead the
রাস্তা দেখান **मार्ग दिखलाना.** way.

ମାର୍ଗଣ—ସ. ବି (ମାର୍ଗ ଧାତୁ+ଭାବ ଅନ)—୧ । ପ୍ରାର୍ଥନା କରିବା
Mārgaṇa —1. Entreating. ୨ । ଯାଚଣା; ମାଗିବା
—2. Begging for; praying for. ୩
ପ୍ରଣୟ—3. Love; attachment. ୪ । ଅନୁ-
ସନ୍ଧାନ; ଅନ୍ୱେଷଣ—4. Searching; enquiry.
୫ । (+କରଣ ଅନ) ଶର; ଶର; ବାଣ—
5. Arrow; shaft; dart. ବିଣ, ପୁଂ (+କର୍ତ୍ତୃ.
ଅନ)—ପ୍ରାର୍ଥୀ;
(ମାର୍ଗଣା—ସ୍ତ୍ରୀ) ପ୍ରାର୍ଥକ; ଯାଚକ—Entreating; begging;
suppliant. [ଦ୍ର—ଏହି ଶବ୍ଦରୁ ମାଗଣ, ମାଗିବା
ଆଦି ଅପଭ୍ରଂଶ ହୋଇଅଛି ।]

ମାର୍ଗଣକ—ସ. ବିଣ. ପୁଂ (ମାର୍ଗଣ+କ)—ଯାଚକ—
Mārgaṇaka Suppliant.
(ମାର୍ଗଣିକା—ସ୍ତ୍ରୀ)

ମାର୍ଗଦ—ସ. ବି. ପୁଂ (ମାର୍ଗ+ଦା ଧାତୁ=କର୍ତ୍ତୃ. ଅ)—
Mārgada କେଉଟ; ନାଉରୀ (ହ୍ର. ଶ)—A boatman.

ମାର୍ଗ ଦେଖା(ଖେ)ଇବା—ଦେ. କ୍ରି—୧ । କୌଣସି ପଥିକର ଆଗେ
Mārga dekhā(khe)ibā ଆଗେ ଯାଇ ବାଟ କଢ଼ାଇବା—
পথ দেখান 1. To lead the way. ୨ । ରାସ୍ତା ଜାଣି ନ
**मार्ग दिखलाना** ଥିବା ପଥିକକୁ ହସ୍ତାଦିର ସଙ୍କେତଦ୍ୱାରା ଗନ୍ତବ୍ୟପଥର
ସୂଚନା ଦେବା—2. To indicate the way by
pointing the fingers towards the direc-
tion which the wayfarer has to take.
୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅଭିଲଷିତ କାର୍ଯ୍ୟ-
ସାଧନାର୍ଥ ଅବଲମ୍ବନୀୟ ଉପାୟ ବତାଇବା—3. (figur-
ative) To suggest to a person how to
proceed in a matter.

ମାର୍ଗ ଧରା(ରେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ପ୍ରବର୍ତ୍ତାଇ
Mārga dharā(re)ibā କୌଣସି ବାଟରେ ନେବା—
পথ ধরান To succeed in inducing a person to
**मार्ग धराना** proceed along a certain path.

ମାର୍ଗ ଧରିବା—ଦେ. କ୍ରି—୧ । ନିର୍ଦ୍ଦିଷ୍ଟ ବାଟରେ ଗଲିବା—1. To
Mārga dharibā walk along a particular road.
পথ ধরা ୨ । କୌଣସି ନିର୍ଦ୍ଦିଷ୍ଟ ଉପାୟ ଅବଲମ୍ବନ କରିବା—
**मार्ग धरना** 2. To have recourse to a certain
(ମାର୍ଗ ପଗଡ଼ିବା—ଅନ୍ୟରୂପ) means or mode.

ମାର୍ଗ ଧେନୁ—ସ. ବି—ଏକ ଯୋଜନ ପରିମିତ ଦୂରତ୍ୱ; ୪ କ୍ରୋଶ ବା
Mārga dhenu ୮ ମାଇଲ୍—A distance of 8 miles.
(ମାର୍ଗ ଧେନୁକ—ଅନ୍ୟରୂପ)

ମାର୍ଗପ—ସ. ବି.—(ମାର୍ଗ+ପା ଧାତୁ+କର୍ତ୍ତୃ. ଅ)—ଯେଉଁ ରାଜ-
Mārgapa କର୍ମଚାରୀଙ୍କଠାରେ ରାଜ୍ୟର ମାର୍ଗମାନଙ୍କ ରକ୍ଷଣ
(ମାର୍ଗପତି—ଅନ୍ୟରୂପ) କରିବା ଭାର ଥାଏ (ହ୍ର. ଶ)—
An official in charge of highways.

ମାର୍ଗ ପାଳୀ—ସ. ବି—୧ । କୁଶକାଷମୟ ସ୍ତମ୍ଭ—1. A pillar
Mārga pāḻi made of grass ୨ । ପଦ୍ମପୁରାଣୋକ୍ତ ଦେବତାବିଶେଷ—2. Name of a Goddess (M. W.)

ମାର୍ଗବ—ସ. ବି—ନିଷାଦ ପିତା ଓ ଅଯୋଗବୀ ମାତାଠାରୁ ଉତ୍ପନ୍ନ ସଙ୍କର
Mārgaba ଜାତି ବିଶେଷ (ହି. ଶ)—Name of a hybrid caste.

ମାର୍ଗ ବତା(ତେ)ଇବା—ଦେ. କ୍ରି—୧ । ବାଟ କହି ଦେବା—
Mārga batā(te)ibā 1. To instruct a person as
পথ বাতালান रास्ता बतलाना to the road.
୨ । (ଲକ୍ଷଣାର୍ଥ) ଉପାୟ କହିଦେବା—2. (figurative) To suggest the means; to suggest the mode.

ମାର୍ଗବତୀ—ସ. ବି. ସ୍ତ୍ରୀ—ପଥିକମାନଙ୍କ ରକ୍ଷାକାରିଣୀ ଦେବୀବିଶେଷ
Mārgabatī ( ହି. ଶ )—Name of a Goddess who is said to guard travellers.

ମାର୍ଗ ବିଦ୍ୟା—ସ. ବି—୧ । ପ୍ରାଚୀନ ଋଷି ପ୍ରଣୀତ ଗୀତ, ବାଦ୍ୟ, ନୃତ୍ୟ
Mārga bidyā ବିଦ୍ୟା—1. The science of music of ancient Hindus. ୨ । ପଥ ନିର୍ମାଣର ସାଙ୍କେତିକ ବିଦ୍ୟା—2. A treatise on road-making.

ମାର୍ଗ ମଡ଼ା(ଡ଼େ)ଇବା—ଦେ. କ୍ରି ( ଲକ୍ଷଣାର୍ଥ )—କୌଣସି ଉପାୟ
Mārga marḍā(rḍe)ibā ଅବଲମ୍ବନ କରିବା ନିମନ୍ତେ
পথ ধরান କୌଣସି ବ୍ୟକ୍ତିକୁ ପ୍ରବର୍ତ୍ତାଇବା—(figurative)
माग धराना To induce a person to act in a certain manner or to take a certain course

ମାର୍ଗ ମାଡ଼ିବା—ଦେ. କ୍ରି (ଲକ୍ଷଣାର୍ଥ)—ନିର୍ଦ୍ଦିଷ୍ଟ ଉପାୟ ଅନୁଧାବନ
Mārga mārḍibā କରିବାକୁ ସ୍ୱୀକୃତ ହେବା—(figura-
পথে আসা tive) To be prevailed upon to act
मार्ग धरना in a certain manner.

ମାର୍ଗଶିର—ସ. ବି (ମାର୍ଗଶିର୍ଷ+ଅ)—ମଗୁଶିର; ଅଗ୍ରହାୟଣ ମାସ—
Mārgaśira The lunar month of Maguśira.

ମାର୍ଗଶିରୀ—ସ. ବି ( ମୃଗଶିର+ଈ )—ମଗୁଶିର ପୂର୍ଣ୍ଣିମା; ମୃଗଶିରା ନକ୍ଷତ୍ର-
Mārgaśirī ଯୁକ୍ତା ପୂର୍ଣ୍ଣିମା—The fullmoon of the month of Mārgaśira.

ମାର୍ଗ ଶୀର୍ଷ—ସ. ବି (ମାର୍ଗ ଶୀର୍ଷୀ+ଅ)—ମାର୍ଗଶିର ( ଦେଖ )
Mārga śirsha Mārgaśira ( See )

ମାର୍ଗ ଶୀର୍ଷୀ—ସ ବି. ସ୍ତ୍ରୀ (ମୃଗ ଶୀର୍ଷ+ଅ+ଈ)—ମାର୍ଗଶିରୀ (ଦେଖ)
Mārga śirhsi Mārgaśirī ( See )

ମାର୍ଗାବଲମ୍ବନ—ସ. ବି. ( ୬ଷ୍ଠୀ ତତ୍ )—କୌଣସି ପନ୍ଥା ଧରିବା—
Mārgābalambana Taking to or following a course.

ମାର୍ଗାବଲମ୍ବୀ—ସ. ବିଣ. ପୁଂ—କୌଣସି ପନ୍ଥାର ଅନୁଧାବନକାରୀ—
Mārgābalambi Taking to a road or means;
(ମାର୍ଗାବଲମ୍ବିନୀ—ସ୍ତ୍ରୀ) following a path.

ମାର୍ଗିକ—ସ. ବି. ପୁଂ (ମାର୍ଗ+ଇକ)—୧ । ପଥିକ—1. Wayfarer;
Mārgika traveller. ୨ । (ମୃଗ+ଇକ) ବ୍ୟାଧ; ଶିକାରୀ
(ମାର୍ଗିକା—ସ୍ତ୍ରୀ) —2. Hunter.

ମାର୍ଗିତ—ସ. ବିଣ. ( ମୃଗ୍ ଧାତୁ ଣିଚ୍=ମାର୍ଗି ଧାତୁ+କର୍ମ କ୍ତ )—
Mārgita ୧ । ଅନ୍ୱିଷ୍ଟ—1. Searched for. ୨ । ପ୍ରାର୍ଥିତ—2. Prayed for; wished for. ୩ । ଅନୁଧାବିତ—3. Pursued.

ମାର୍ଗୀ—ସ. ବିଣ. ପୁଂ (ମାର୍ଗ+ଇନ୍; ୧ମା ୧ବ, ଅନ୍ୟ ଶବ୍ଦ ସଙ୍ଗେ
Mārgī ବ୍ୟବହୃତ ହୁଏ, ଯଥା—ବେଦମାର୍ଗୀ)—(ଅମୁକ) ମାର୍ଗ
(ମାର୍ଗିଣୀ—ସ୍ତ୍ରୀ) ଅବଲମ୍ବନକାରୀ—Following a particular path or course. ସ. ବି. ପୁଂ—୧ । ନେତା—1. Leader (Apte). ୨ । ପଥ ପ୍ରଦର୍ଶକ—2. A guide (Apte). ୩ । ଅଗ୍ରଗାମୀ ବ୍ୟକ୍ତି—3. A pioneer (Apte). ୪ । ସଙ୍ଗୀତର ମୂର୍ଚ୍ଛନା ବିଶେଷ—4. A particular modulation of tunes in Hindu music.
[ଦ୍ର—ଏଥିର ସ୍ୱର ଗ୍ରାମ—ନିସରେଗମପଧା—ମପଧନିସରେ ଗମ—ପଧନିସ—ହି. ଶ]

ମାର୍ଗୁ(ର୍ଗୋ)ଲ୍(ଲି) (ଇତ୍ୟାଦି)—ମାର୍ବଲ୍ ଇତ୍ୟାଦି ( ଦେଖ )
Mārgu(rgo)l(li) (etc) Mārbal etc. ( See )
গোলি गोली

ମାର୍ଚ୍ଚ(ର୍ଚ୍ଚ)—ବୈଦେ. ବି. (ଇଂ)—୧ । ଇଂରାଜୀ ଗଣନାର ତୃତୀୟ ମାସ
Mārchch(rch) (ଫାଲ୍ଗୁନ—ଚୈତ୍ର)—1. The month of
মার্চ March. ୨ । ପାଦ ଦ୍ୱାରା ଗତି କରିବା କ୍ରିୟା—
मारच, मार्च 2. Marching. ୩ । ସେନାମାନଙ୍କ ନିୟମିତ ଗତି-3. The march of soldiers. [ଦ୍ର—ବାଳକମାନଙ୍କୁ ବିଦ୍ୟାଳୟରେ ଡ୍ରିଲ୍ (Drill) ବା ସୈନିକ ବିଦ୍ୟା ଶିକ୍ଷା ଦେବାରେ Quick march (କ୍ୱିକ୍ ମାର୍ଚ୍ଚ)=ଚଞ୍ଚଳ ଗତି; Slow march (ସ୍ଲୋ ମାର୍ଚ୍ଚ)=ଧୀର ଗତି, Double march ଡବଲ୍ ମାର୍ଚ୍ଚ) ଖୁବ ଚଞ୍ଚଳ ଚାଲିବ, ଆଦି ଇଂରାଜୀ ଡାକମାନ ବ୍ୟବହୃତ ହୁଏ ।]

ମାର୍ଚ୍ଚା(ର୍ଚ୍ଚେ)ଣ୍ଟ—ବୈଦେ. ବି—(ଇଂ. ମର୍ଚ୍ଚାଣ୍ଟ) ବଣିକ—
Mārchchā(rchche)nṭ Merchant.
মার্চেন্ট मर्चेंट

ମାର୍ଜ୍ଜ (ଧାତୁ)—ସ—୧ । ମାଜିବା; ଘଷିବା—1. To scour; to
Mārjj (root) rub. ୨ । ପୋଛିବା—2. To wipe. ୩ । ଶୋଧନ କରିବା; ପରିଷ୍କାର କରିବା—3. To cleanse. ୪ । ପାଣିଦ୍ୱାରା ଧୋଇବା—4. To wash. ୫ । କ୍ଷମା ଦେବା—5. To forgive; to excuse. ୬ । ପାଲିସ୍ କରିବା—6. To polish. ୭ । ଶବ୍ଦ କରିବା—7. To sound (Apte). [ଦ୍ର—ଏହାର ଅପଭ୍ରଂଶ ମାଜିବା ।]

ମାର୍ଜ—ସ. ବି. ପୁଂ (ମାର୍ଜ ଧାତୁ+କର୍ତ୍ତୃ. ଅ)—୧ । ଧୋବା; ରଜକ
Mārja (ହି. ଶ)—1. Washerman. ୨ । ବିଷ୍ଣୁ (ହି. ଶ)—2. Bishṇu. ୩ । (+ଭାବ. ଅ) ମାର୍ଜନ ( ଦେଖ )
3. Mārjana ( See )

ମାର୍ଜକ—ସ. ବି. ପୁଂ (ମାର୍ଜ ଧାତୁ+କର୍ତ୍ତୃ. ଅକ)—୧ । ଯେ ମାର୍ଜନ Mārjaka କରେ—1. Cleansing; wiping. ୨ । ଯେ (ମାର୍ଜିକା—ସ୍ତ୍ରୀ) କ୍ଷମା ଦିଏ—2. Forgiving.

ମାର୍ଜନ—ସ. ବି. (ମୃଜ୍ ଧାତୁ=ପରିଷ୍କାର କରିବା+କରଣ. ଅନ)— Mārjana ୧ । ଲୋଧ୍ର ଗଛ—1. The lodhra tree. ୨ । (+ଭାବ. ଅନ) ମାର୍ଜନା (ଦେଖ)—2. Mārjanā (See) ଦେ. ବି—ଟଙ୍କାର—Twang. [ଦ୍ର—ଲକ୍ଷ୍ମଣେ କଲେ ଗର୍ଜନ, ସେ ଧନୁର୍ଗୁଣ ମାର୍ଜନ, ରଣରେ ଦେବେ ସର୍ଜନ, କର ତର୍ଜନ । ଉପ. ବୈଦେହୀଶବିଳାସ ।]

ମାର୍ଜନ(ନା) କରିବା—ଦେ. କ୍ରି—୧ । ପରିଷ୍କାର କରିବା—1. To Mārjana(nā) kariba cleanse. ୨ । ମାଜିବା—2. To मार्जन(ना) करा scour; to rub. ୩ । ପାଲିସ୍ କରିବା— मार्जन(ना) करना 3. To polish. ୪ । କ୍ଷମା ଦେବା—4. To pardon; to excuse.

ମାର୍ଜନା—ସ. ବି (ମାର୍ଜ. ଧାତୁ+ଭାବ. ଅନ+ଆ)—୧ । ପରିଷ୍କାର Mārjanā କରଣ—1. Cleansing. ୨ । ମାଜିବା—2. Scouring; rubbing; polishing. ୩ । ସ୍ନାନ—3. Washing; bath. ୪ । ଦୋଷ ଅପରାଧ କ୍ଷମା—4. Forgiving of a fault; pardon. ୫ । ମୃଦଙ୍ଗର ଧ୍ୱନି—5. Sound of drum. ୬ । ପୋଛିବା—6. Wiping; rubbing off. ୭ । ଲିଭାଇବା—7. Effacing; wiping away. ୮ । ବଳଣ; ତେଲ ଅବା କୋଳ ଦେହରେ ଘଷା କରିବା—8. Cleansing the body by rubbing it with unguents. ୯ । ଅଙ୍ଗୁଠିଦ୍ୱାରା ବା କୁଶାଗ୍ରଦ୍ୱାରା ଦେହରେ ଜଳ ଛିଞ୍ଚିବା—9. Sprinkling the person with water by means of the hand or a blade of Kuśa grass. ୧୦ । ଶୁଦ୍ଧୀକରଣ—10 Purification; refining. ୧୧ । (ଆଧୁନିକ) ଦେଶକାଳପାତ୍ର ଅନୁସାରେ ସମାଜର ଦୋଷମାନଙ୍କ ଦୂରୀକରଣ—11. (modern use) Reformation of society; social reform. [ଦ୍ର—ଏଥିର ଅପଭ୍ରଂଶ ମାଜଣା ।]

ମାର୍ଜନୀ—ସ. ବି (ମାର୍ଜ. ଧାତୁ+କରଣ. ଅନ+ଈ)—୧ । ଝାଡ଼ୁଣୀ; Mārjanī ସମ୍ମାର୍ଜନୀ; ଝାଡ଼ୁ—1. Broomstick; sweeping brush. ୨ । ବ୍ରୁସ୍—2. Brush. ୩ । ଚଦରିଆ; ଗାମୁଛା; ପୋଛା—3. Napkin; towel. ୪ । ଝାଡ଼ନ—4. Duster. ୫ । (+କର୍ତ୍ତୃ. ଅନ+ଈ) ଦୁର୍ଗାଙ୍କ ସହଚରୀବିଶେଷ—5. Name of a female companion of Durgā. ୬ । ସଙ୍ଗୀତର ପ୍ରଥମ ସ୍ୱରର ଶ୍ରୁତି ମଧ୍ୟରୁ ଅନ୍ତିମ ଶ୍ରୁତି (ହ. ଶ)—6. The last of the Śrutis of the 1st tune in Hindu

ମାର୍ଜନୀୟ—ସ. ବିଣ (ମାର୍ଜ. ଧାତୁ+କର୍ମ. ଅନୀୟ)—୧ । କ୍ଷମଣୀୟ; Mārjanīya କ୍ଷମାର୍ହ—1. Excusable; fit to be forgiven; pardonable. ୨ । ପରିଷ୍କୃତ ହେବା ଯୋଗ୍ୟ—2. Fit to be cleansed. ୩ । ଘଷିବାର ଯୋଗ୍ୟ—3. Fit or requiring to be brushed or rubbed. ସ. ବି—ଅଗ୍ନି (ହ. ଶ)—Fire.

ମାର୍ଜାର(ଲ)—ସ. ବିଣ. ପୁଂ (ମାର୍ଜ ବା ମୃଜ ଧାତୁ=ପରିଷ୍କାର କରିବା Mārjāra(la) +କର୍ତ୍ତୃ. ଆର; ଯେ ଜିହ୍ୱାଦ୍ୱାରା ଦେହକୁ (ମାର୍ଜାରୀ—ସ୍ତ୍ରୀ) ପରିଷ୍କାର କରେ)—୧ । ବିରାଡ଼ି—1. The domestic cat. ୨ । ଗନ୍ଧଗୋକୁଳ; ଖଟାଶପରି ପଶୁ—2. The civet cat. ୩ । ଖଟ୍ଟାଶ; କଟାଶ; ବନ୍ୟ ମାର୍ଜାର—3. The wild cat; the pole cat. ୪ । ରକ୍ତଚିତା (ପ୍ରକୃତିବାଦ)—4. Plumbago Zeylanica (red variety).

ମାର୍ଜାରକ—ସ. ବି (ମାର୍ଜାର+କ)—୧ । ମୟୂର; ଶିଖୀ—1. Peacock. ୨ । ବିରାଡ଼ି—2. Cat. Mārjāraka (ମାର୍ଜାରିକା—ସ୍ତ୍ରୀ)

ମାର୍ଜାର କଣ୍ଠ—ସ. ବି (ବହୁବ୍ରୀହି)—ମୟୂର—Peacock (Apte). Mārjāra kaṇṭha

ମାର୍ଜାର କରଣ—ସ. ବି—ରତିବନ୍ଧବିଶେଷ—A kind of coitus (Apte). Mārjāra karaṇa

ମାର୍ଜାର କର୍ଣ୍ଣିକା—ସ. ବି. ସ୍ତ୍ରୀ—ଚାମୁଣ୍ଡା ଦେବୀ; ଦୁର୍ଗାଙ୍କ ରୂପାନ୍ତର—Mārjāra karṇnikā One of the incarnations of (ମାର୍ଜାର କର୍ଣ୍ଣୀ—ଅନ୍ୟରୂପ) Durgā.

ମାର୍ଜାରଗନ୍ଧା—ସ. ବି—ମୁଦ୍‌ଗପର୍ଣ୍ଣୀ; ବଣ ମୁଗ—A kind of wild Mārjāragandhā pulse; Phaseolus Trilobus. (ମାର୍ଜାର ଗନ୍ଧିକା—ଅନ୍ୟରୂପ)

ମାର୍ଜାରୀ—ସ. ବି. ସ୍ତ୍ରୀ (ମାର୍ଜାର+ଈ)—୧ । ମାଈ ବିରାଡ଼ି—Mārjārī 1. A female cat. ୨ । କସ୍ତୁରୀ—2. Musk (Apte). ୩ । ଗନ୍ଧନାକୁଳ (ହ. ଶ)—3. Ophioxylon Serpentinum (plant).

ମାର୍ଜାରୀୟ—ସ. ବି (ମାର୍ଜାର+ଈୟ)—୧ । ବିରାଡ଼ି—1. Cat. ୨ । Mārjārīya ଶୂଦ୍ର—2. A Śūdra. ୩ । ଶରୀର ଶୋଧନ—3. Cleansing of the body. ୪ । ଯେ ନିଜର ଶରୀର ଶୋଧନ କରେ—4. One who cleanses his body (Apte). ସ. ବିଣ—ବିରାଡ଼ିସମ୍ବନ୍ଧୀୟ—Feline.

ମାର୍ଜାଲୀୟ—ସ. ବି (ମାର୍ଜାଲ+ଈୟ)—୧ । ବିରାଡ଼ି (ହ. ଶ)—Mārjālīya 1. The cat. ୨ । ଶୂଦ୍ର (ହ. ଶ)—2. A Śūdra. ୩ । ଶିବ (ହ. ଶ)—3. Śiba. ୪ । (ନାମ) ଋଷିବିଶେଷ (ହ. ଶ)—4. Name of a saint.

ମାର୍ଜିତ—ସ. ବିଣ (ମାର୍ଜ ଧାତୁ+କର୍ମ. ତ)—୧ । ଶୋଧିତ; ପରିଷ୍କୃତ—Mārjita 1. Cleansed. ୨ । ମଜା ହୋଇଥିବା—(ମାର୍ଜିତା—ସ୍ତ୍ରୀ) 2. Polished; rubbed; scoured;

brushed. ୩ । ସସ୍କୃତ; ବିଶୁଦ୍ଧୀକୃତ—3. Purified; reformed; refined. ୪ । କ୍ଷମାପ୍ରାପ୍ତ—4. Forgiven; pardoned. ୫ । ବୋଳା ଯାଇଥିବା—5. Smeared. ୬ । ଧଆଯାଇ ସଫା କରାଯାଇଥିବା—6. Washed away (Apte). ୭ । ଅଳଂକୃତ—7. Adorned (Apte). ସ. ବି—ଦହି, ଚିନି, ମହୁ, ଗୋଲମରିଚ ଓ କର୍ପୂର ମିଶ୍ରିତ ଏକପ୍ରକାର ପ୍ରାଚୀନ ଖାଦ୍ୟ ବା ପେୟ ( ହ୍ର. ଶ )—A kind of dainty food or drink prepared by mixing together curd, sugar, honey, black pepper and camphor.

ମାର୍ଜିତ ବୁଦ୍ଧି—ସ. ବିଣ ( ବହୁବ୍ରୀହି )—ତୀକ୍ଷ୍ଣ ବୁଦ୍ଧିବିଶିଷ୍ଟ—Mārjita buddhi Enlightened; of sharpened intellect. ସ. ବି ( କର୍ମଧା )—ତୀକ୍ଷ୍ଣ ବୁଦ୍ଧି—Sharp intellect.

ମାର୍ଜିତ ରୁଚି—ସ. ବି (କର୍ମଧା. ମାର୍ଜିତ+ରୁଚି)—ଦୋଷଶୂନ୍ୟ ରୁଚି; Mārjita ruchi ବିଶୁଦ୍ଧ ରୁଚି—Refined taste; pure taste. ବିଣ—( ବହୁବ୍ରୀହି ) ଯାହାର ରୁଚି ବିଶୁଦ୍ଧ ଅଟେ—Genteel; of pure or refined taste.

ମାର୍ଜିତ ସମାଜ—ଦେ. ବି—୧ । ସଭ୍ୟ ସମାଜ—1. Polished Mārjita samāja society; genteel society. ୨ । ସଂସ୍କୃତ ସମାଜ; ଯେଉଁ ସମାଜରେ ଦେଶକାଳୋଚିତ ସଂସ୍କାରମାନ ପ୍ରବର୍ତ୍ତିତ ହୋଇଅଛି—2. Reformed society.

ମାର୍ଜିତା—ସଂ. ବି. ସ୍ତ୍ରୀ (ମାର୍ଜିତ+ସ୍ତ୍ରୀ. ଆ)—ରସାଳା; ଶର୍କରା ଓ ସୁବାସ Mārjitā ମିଶ୍ରିତ ଦଧି—Curd mixed with sugar and spices (Apte). ସଂ. ବିଣ. ସ୍ତ୍ରୀ—ମାର୍ଜିତର ସ୍ତ୍ରୀଲିଙ୍ଗ—Feminine of Mārjita.

ମାର୍ଜିନ—ବୈଦେ. ବି (ଇଂ)—ଲେଖା ବା ଛପା ହୋଇଥିବା କାଗଜର Mārjin ପାର୍ଶ୍ୱାଂଶ; ହାସିଆ—The margin of a paper on which something has been written or printed. मार्जिन्; मार्जिन; हाशीया

ମାର୍ଜିବା—ଦେ (ପଦ୍ୟ) କ୍ରି—(ସଂ. ମାର୍ଜ୍. ଧାତୁ)—୧ । ପରିଷ୍କାର Mārjibā କରିବା; ବିଶୁଦ୍ଧ କରିବା—1. To cleanse; to purify. ୨ । ଝାଡିବା—2. To sweep clean. মারজা मारजना [ ଉ—ତୋହର ଗୃହକୁ ମାର୍ଜିଲୁ, ଅମ୍ଭଙ୍କ ସଙ୍ଗ ଭଗ ଦେଲୁ । ଜଗନ୍ନାଥ. ଭାଗବତ । ]

ମାର୍ଟିଆ—ବୈଦେ. ବି (ଇଂ)—ଦକ୍ଷିଣ ଆଫ୍ରିକାରେ ଜାତ ଏକ ପ୍ରକାର Martiā ଗୁଳ୍ମ—Martia; a kind of thorny and poisonous plant of South Africa. [ ଦ୍ର—ଏ ଗୁଳ୍ମ ୪।୨ ଇଞ୍ଚ ପର୍ଯ୍ୟନ୍ତ ବଢ଼େ । ଏହା ଅତ୍ୟନ୍ତ ବିଷାକ୍ତ ଓ ଦାର୍ଘ କଣ୍ଟକଯୁକ୍ତ । ସେ କଣ୍ଟା ପଶୁମାନଙ୍କ ଦେହରେ ଫୋଡ଼ି ହୋଇଗଲେ ପଶୁମାନେ ମରଯାଆନ୍ତି । ] মার্টিয়া; मार्टिया

ମାର୍ତ୍ତ(ର୍ତ୍ତା)ଣ୍ଡ—ସଂ. ବି—(ମୃତାଣ୍ଡ+ଅପତ୍ୟାର୍ଥେ. ଅ; ମୃତ ଅଣ୍ଡରୁ ଜାତ Mārtta(rttā)ṇḍa ହୋଇ ଥିବାରୁ; କମ୍ବା ମା+ଆର୍ତ୍ତ+ଅଣ୍ଡ; ଦ୍ୱିଧାକୃତ ହେବା ସମୟରେ ପିତା କହିଲେ 'ହେ ଅଣ୍ଡ ! ମା ଅର୍ତ୍ତୋଭବ'—ହେ ଅଣ୍ଡ ! ତୁମ୍ଭେ ଆର୍ତ୍ତ ହୁଅନାଁ । ଏଥିପାଇଁ ଏହି ନାମ ହୋଇଅଛି)—୧ । ସୂର୍ଯ୍ୟ; ତପନ—1. The sun. ୨ । ଅର୍କନ ଗୁଳ୍ମ; ଅର୍କ ଗଛ—2. The mudar plant; the swallowwart; Calotropis Gigantea. ୩ । ଶୂକର; ଘୁଷୁରି—3. Hog. ୪ । ସ୍ୱର୍ଣ୍ଣମାକ୍ଷିକ (ହ୍ର. ଶ)—4. Iron pyrites. ୫ । ଦ୍ୱାଦଶ ସଂଖ୍ୟା—5. The number 12 (Apte).

ମାର୍ତ୍ତିକ—ସ. ବିଣ ( ମୃତ୍ତିକା+ଅ )—ମୃତ୍ତିକାନିର୍ମିତ—Made of Mārttika earth. ସ. ବି—୧ । ଏକପ୍ରକାର ମାଟିଆ—(ମାର୍ତ୍ତିକା—ସ୍ତ୍ରୀ) 1. A kind of pitcher (Apte). ୨ । ମାଟିଆ ମୁହଁର ଘୋଡ଼ଣୀ—2. The lid of a pitcher (Apte). ୩ । ମାଟିର ଢେଲା—3. A clod or lump of earth (Apte).

ମାର୍ତ୍ତ୍ୟ—ସଂ. ବିଣ ( ମର୍ତ୍ତ୍ୟ+ଅ )—୧ । ମର୍ତ୍ତ୍ୟ ସମ୍ବନ୍ଧୀୟ—Mārttya 1. Relating to the earth. ୨ । ମରଣଶୀଳ—2. Mortal (Apte). ସଂ ବି—ମରଣଶୀଳତା—Mortality (Apte).

ମାର୍ଥା—ଗ୍ରା· ବି (ସ. ମହାରଥ)—ମହାରଥୀ (ଦେଖ) Mārthā Mahārathā (See).

ମାର୍ଦ୍ଦଙ୍ଗ—ସଂ. ବିଣ. ପୁଂ ( ମୃଦଙ୍ଗ+ବାଦକାର୍ଥେ. ଅ )—ମୃଦଙ୍ଗ Mārddanga ବାଦକ—One who beates a mrudang-(ମାର୍ଦ୍ଦଙ୍ଗିକ—ଅନ୍ୟରୂପ) drum. ବି.—ନଗର; ସହର—Town; city (Apte).

ମାର୍ଦ୍ଦବ—ସଂ. ବି (ମୃଦୁ+ଭାବାର୍ଥେ. ଅ)—୧ । ମୃଦୁତା—1. Gentle-Mārddaba ness; mildness; tenderness. ୨।କୋମଳତା—2. Softness.

ମା(ମେ)ର୍ଦ୍ଦା ଘର—ପ୍ରାଦେ (ଗଡ଼ଜାତ) ବି—ଅଟୁ ଘର—Mā(me)rddā ghara Aṭu ghara (See)

ମାର୍ଦ୍ଦିକ—ସ. ବି (ମୃଦ୍ୱୀକା=ସୁପକ୍ୱ ଦ୍ରାକ୍ଷା+ଇକ)—ସୁପକ୍ୱ ଅଙ୍ଗୁରରୁ Mārddika ପ୍ରସ୍ତୁତ ମଦ୍ୟ—Wine distilled from ripe grapes. ବିଣ. ଅଙ୍ଗୁର ସମ୍ବନ୍ଧୀୟ—Relating to grapes.

ମାର୍ବ(ର୍ବି, ର୍ବୁ, ର୍ବେ)ଲ୍—ବୈଦେ. ବି—(ଇଂ)—୧ । ଶଙ୍ଖମର୍ମର ପ୍ରସ୍ତର—Marba(rbi, rbu rbe)l 1. Marble stone. ୨ । କାଚର ( ମାର୍ବ୍ଲ—ଅନ୍ୟରୂପ ) ବା ପଥରର କ୍ରୀଡ଼ନକ ଗୋଟାଳ—মারবেল मार्बुल 2. Marble (for playing with). ୩ । ବହି ଅବର ମଲାଟରେ ମଡ଼ାଯିବା ନାନାପ୍ରକାରର ରଙ୍ଗୀନ୍ କାଗଜ—3. Marble paper.

ମାର୍ମିକ—ସ. ବିଣ.ପୁଂ (ମର୍ମ+ଜାଣିବା ଅର୍ଥରେ ଇକ)—ମର୍ମଜ୍ଞ; କୌଣସି Mārmika ବିଷୟର ତତ୍ତ୍ୱଜ୍ଞ—Fully conversant (ମାର୍ମିକା—ସ୍ତ୍ରୀ) with ;having a deep insight into.

ମାର୍ଷ୍ଟି—ସ. ବ (ମୃଜ୍ ଧାତୁ ବା ମାର୍ଜ୍ ଧାତୁ+ କ୍ତିବ. ତି)—୧ । ମାର୍ଜନା
Mārshti (ଦେଖ)—1. Marjanā (See) ୨ । ତେଲ ଲଗାଇବା—2. Anointing with oil.

ମାର୍ଶା(ର୍ଶେ)ଲ୍—ବୈଦେ. ବ (ଇଂ ମାର୍ଶାଲ୍)--ସେନାପତିଙ୍କ ଉପାଧିବିଶେଷ—
Mārsā(rse)l Marshal; a title of a commander of
ମାରସାଁ ଲ मार्शल an army.

ମାର୍ଶାଲ୍ ଲ—ବୈଦେ. ବ (ଇଂ)—ଶୃଙ୍ଖଳା ଶାନ୍ତିଭଙ୍ଗ ହେବାର ସମ୍ଭାବନା
Mārsāl la ଥିବା ସ୍ଥାନରେ ନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ସ୍ୱାଭାବେଶରେ
মাসালল मार्शल ଲ ଜାରି ହେବା ନିର୍ଦ୍ଦିଷ୍ଟ ଆଇନ; ସାମରିକ ଆଇନ—
(ମାର୍ଶାଲ ଆଇନ—ଅନ୍ୟରୂପ) Martial law.

[ ଦ୍ର—ମାର୍ଶାଲ୍ ଲ ଜାରି ହେବା ସ୍ଥାନରେ ଓ ସମୟରେ ଦେଶପ୍ରଚଳିତ ସାଧାରଣ ଆଇନର ଚଳନ ସ୍ଥଗିତ ରହେ; ଏବଂ ସାମରିକ ଆଇନ୍ ଅନୁସାରେ ଅପରାଧୀମାନଙ୍କର ବିଚାର ଶୀଘ୍ର କରାଯାଏ ଓ ଅପରାଧ ରୋଧ କରିବା ପାଇଁ ସାମରିକ ବିଭାଗର କର୍ତ୍ତୃପକ୍ଷମାନଙ୍କଠାରେ ନିର୍ଦ୍ଦିଷ୍ଟ କ୍ଷମତା ଅର୍ପିତ ହୁଏ ।]

ମାଲ୍—ବୈଦେ. ବ (ଅ. ମାଲ୍)—୧ । ପଣ୍ୟଦ୍ରବ୍ୟ—1. Commodity; goods. ୨ । ଦ୍ରବ୍ୟ—2. Thing; article. ୩ । ସମ୍ପତ୍ତି; ଧନ—3. Riches; wealth; property. ୪ । ନଗଦ ଧନ—4. Hard cash. ୫ । ଉପାଦାନ—5. Ingredient. ୬ । ମାଦକଦ୍ରବ୍ୟ—6. Exciseable article. ୭ । ଗଭର୍ଣ୍ଣମେଣ୍ଟଙ୍କୁ ରାଜସ୍ୱ ଦେବା ଭୂମି; ମହାଲ—7. Revenue-paying estate; Mahal. ୮ । ଜମିର ଖଜଣା; ଗଭର୍ଣ୍ଣମେଣ୍ଟଙ୍କୁ ଦେୟ ରାଜସ୍ୱ— 8. Revenue payable to Government; land revenue ୯ । (ଅ. ମଲ୍)—ମଦ୍ୟ; ସରାପ—9. Wine. ୧୦ । ଉପକରଣ—10. Materials. ୧୧ । ଚଳନ୍ତି ସମ୍ପତ୍ତି-11. Moveable property. ୧୨ । ଇନ୍ଦ୍ରିୟଦ୍ୱାରା ଉପଭୋଗ୍ୟ ବସ୍ତୁ—12. A thing worth enjoying with the senses. ୧୩ । (ଇତର; କାମୋପଭୋଗୋଦ୍ଦେଶ୍ୟସୂଚକ ) ସୁଖୋପଭୋଗ୍ୟା ଯୁବତୀ ସ୍ତ୍ରୀ—13. A sensually enjoyable young lady.
Māl
ମାଲ୍ माल

[ ଦ୍ର—ଉକ୍ତ ଉକ୍ତ ଇନ୍ଦ୍ରିୟଦ୍ୱାରା ସୁଖୋପଭୋଗ୍ୟ ବସ୍ତୁ ପ୍ରତି 'ମାଲ୍' ଶବ୍ଦ ବ୍ୟବହୃତ ହୁଏ । ଯଥା—ସୁଖାଦ୍ୟ, ସୁଖୋପଭୋଗ୍ୟ ଆସନ, ସୁଖଭୋଗ୍ୟା ବା ରତିକୁଶଳା ଯୁବତୀ ।]

ପ୍ରାଦେ (ସମ୍ବଲପୁର) ବ—ଧାନ ଫସଲ ହେବା ଉପଯୋଗୀ ପର୍ବତ ପାର୍ଶ୍ୱରେ କାଟିକରି ଯାଇଥିବା ଉଚ୍ଚ ଭୂମି— A plot of land on the slope of a hill which has been ploughed and levelled and made fit for cultivation.

ମାଲ ଅଦାଲତ—ବୈଦେ. ବ. (ଅ. ମାଲ୍ ଅଦାଲତ୍)—ଯେଉଁ
Māl-adālata ଅଦାଲତରେ ରାଜସ୍ୱ ସଂକ୍ରାନ୍ତ ମକଦ୍ଦମାର
মালআদালত ବିଚାର ହୁଏ—Revenue court; rent-
मालअदालत court.

ମାଲକାନା—ଦେ. ବ ( ହି. मालकाना )—ଅଧୁନା ଉତ୍ତର ଭାରତ
Māl-kānā ଅଞ୍ଚଳବାସୀ ଯେଉଁ ହିନ୍ଦୁ ବା ରାଜପୁତମାନେ
মালকানা ଦୁଷ୍କାର୍ଯ୍ୟକରଣଯୋଗୁଁ ପତିତ ହୋଇ ଅଛନ୍ତି—The
मालकाना Rajputs who have fallen from their social status owing to doing forbidden acts.

ମାଲଖାନା—ବୈଦେ. ବ ( ଫା )—୧ । ଧନାଗାର—1. Treasury;
Māl-khānā treasury room. [ଦ୍ର—ଧନେ ପୁରାଇବା
মালখানা ଲାଗି ମାଲଖାନା । ରାଧାନାଥ. ଦରବାର ।] ୨ ।
मालखाना ଭଣ୍ଡାର ଘର—2. Storehouse. ୩ । କବଜ ବା ସରକାର ମାଲ ରଖାଯିବାର ଘର—3. Mālkhānā; a room where attached or government properties are kept.

ମାଲଖେଁ(ଖୋଁ)ଖାରି—ପ୍ରାଦେ ( ସମ୍ବଲପୁର ) ବ (ଭୁଲ. ହି. ଖୁଁଖାରୀ)
Māl-kheñ(khoñ)khāri —କୋକଶିଆଳ—Fox.

ମାଲ ଧାନ—ପ୍ରାଦେ ( ସମ୍ବଲପୁର ) ବ—ପାହାଡ଼ ପାର୍ଶ୍ୱରେ କାଟିକରି
Māl-dhān କରାଯାଇ ଥିବା ଛିଡ଼ ଜମିରେ ଉତ୍ପନ୍ନ ଧାନ— Paddy grown on terraced plots on the slope of a hill.

ମାଲପୀ—ଦେ. ବ—ବନ୍ୟ ଗୁଳ୍ମ ବିଶେଷ—Petalidium (plant).
Māl-pī [ ଦ୍ର—ଏହା ୨ ଫୁଟଠାରୁ ୫ ଫୁଟ ଉଚ୍ଚ; ଫୁଲ ଧଳା; ସୁନ୍ଦରଗଡ଼ ଓ ଗଡ଼ଜାତ ଅଞ୍ଚଳରେ ଏହି ଗୁଳ୍ମ ଦେଖାଯାଏ ।]

ମଳ—ସ. ବ ( ମା—ଲକ୍ଷ୍ମୀ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ; କିମ୍ବା ମା ଧାତୁ=ପରିମାଣ କରିବା+କର୍ତ୍ତୃ. ଲ)—୧ । ବିଷ୍ଣୁ—1. Bishnu. ୨ । ମନୁଷ୍ୟ—2. Man. ୩ । ପ୍ରାଚୀନ ଅନାର୍ଯ୍ୟ ଜାତି ବିଶେଷ—3. Name of an ancient non-aryan tribe. ୪ । ସମୁନ୍ନତ ଭୂତଳ; ଉଚ୍ଚଭୂମି—4. High land ୫ । ପର୍ବତର ଉପରିସ୍ଥ ସମତଳ ପ୍ରଦେଶ—5. Table land; plateau. ୬ । କାପଟ୍ୟ—6. Hypocrisy. ୭ । ଛଳନା—7. Deceit; fraud. ୮ । ଗ୍ରାମ ନିକଟସ୍ଥ ବନ—8. A wood near a village. ୯ । କ୍ଷେତ୍ର ( ହି. ଶ )—9. An agricultural field. ୧୦ । ହରିତାଳ ( ହି. ଶ )—10. Yellow orpiment. ୧୧ । ପ୍ରାଚୀନଦେଶ ବିଶେଷ ( ହି. ଶ )—11. Name of an ancient country. ଦେ. ବ—( ସ. ମାଳା )—୧ । ପୁଷ୍ପାଦିର ମାଳା; ମାଲ୍ୟ—1. Garland. ୨ । ଗଳାର ହାର—2. Necklace. ୩ । ସମୂହ—3. Collection; multitude. [ ଦ୍ର—ବୃନ୍ଦାବନ ମଧ୍ୟ ଯେ ହୋଇଣ ପ୍ରବଳ, ଦମସୃଷ୍ଟିକର ଦେହରୁ ଝାଳମାଳ । କୃଷ୍ଣସିଂହ. ମହାଭାରତ. ବନ ।] ୪ ପଂକ୍ତି—4. Row. ୫ । ( ଶବରଭାଷା ମାଲ=ଜଙ୍ଗଲ; ତା. ମଲୈ=ପର୍ବତ )
Māla
মালা
माल
মালা
माल
জঙ্গল

जंगल, झाड —ବନ; ଜଙ୍ଗଲ—5. Jungle; forest. ୬ । ଅଞ୍ଚଳ; ପ୍ରଦେଶ—6. Tract of country. ( ଯଥା—ଜଳମାଳ, ଉପରମାଳ, ଗଡ଼ମାଳ । ) ପ୍ରାଦେ ( ଗଡ଼ଜାତ ) ବି—୧ । ଜଙ୍ଗଲ ମଧ୍ୟରେ ଗୋଟିଏ ଜାଗା ସଫା କରି ବହୁ ଲୋକ ଚଷିବାରେ ଖଣ୍ଡିଏ ଖଣ୍ଡିଏ କରିଥିବା କୃଷିକ୍ଷେତ୍ର—1. A group of paddy fields reclaimed by several individual royats in a jungle. ୨ । ଗାଈମଇଁଷିଙ୍କ ପଲ —2. Herd ( of cattle ). ପ୍ରାଦେ (ବାଲେଶ୍ୱର) ବି—୩ । ସମୁଦ୍ରରେ ମାଛ ଧରିବା ଲାଗି ବ୍ୟବହୃତ ଜାଲବିଶେଷ—3. A kind of V-shaped net for fishing in the sea. [ ଦ୍ର—ଏହା ସମୟେ ସମୟେ ଏକ ମାଇଲରୁ ଅଧିକ ଲମ୍ବା ହୋଇଥାଏ । ମାଲରେ ମାଛ ଧରିବାର ଉପାୟ :—ସମୁଦ୍ରରେ ଜୁଆର ନ ଥିବା ବେଳେ ଅଗଣ୍ଠିର ଅଂଶରେ ଖୁଣ୍ଟ ଗୋଡ଼ି ଏହି ଜାଲକୁ ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ଭୂମିଖଣ୍ଡ ଉପରେ ବାଡ଼ଭଳି ବସାଇ ଦିଆଯାଏ । ମାଲ ବସିଲା ପରେ ଏହା ଗୋଟିଏ ପ୍ରକାଣ୍ଡ ଇଂରାଜୀ 'V' ଅକ୍ଷର ଭଳି ଦେଖାଯାଏ । 'V'ର ମୁନିଆ ଅଂଶଟି ସମୁଦ୍ରଆଡ଼କୁ ଥାଏ ଓ ମେଲାମୁହଁ କୂଳଆଡ଼କୁ ଥାଏ । 'V'ର ମୁନିଆ ମୁହଁରେ ଜାଲର ଦୁଇଟି ପାଖ ଏକାବେଳକେ ମିଶି ନ ଯାଇ ଗୋଟିଏ ପାଖର ଜାଲ ଅନ୍ୟଟିକୁ ଘେରି ଅନ୍ୟ ପାଖରେ ବହୁଦୂର ପର୍ଯ୍ୟନ୍ତ କୂଳଆଡ଼କୁ ଲମ୍ବିଥାଏ । ଜୁଆର ଆସିଲେ ପାଣିର ଢେଉ ଜାଲର ଉଚ୍ଚତାକୁ ଡେଇଁ 'V' ଭିତରକୁ ପଶିଯାଏ । ପାଣି ସହିତ ଯେଉଁ ସବୁ ମାଛ ଜାଲଭିତରକୁ ପଶି ଯାଆନ୍ତି, ପୁଣି ଜୁଆର ଛାଡ଼ିଲେ ସେମାନେ ଆଉ ସମୁଦ୍ରଭିତରକୁ ଫେରିଯାଇ ପାରନ୍ତି ନାହିଁ । 'V'ର ମୁନିଆ ମୁହଁ ପର୍ଯ୍ୟନ୍ତ ଆସି, ଆଉ ବାହାରିବାର ବାଟ ପାଆନ୍ତି ନାହିଁ; ସେତେବେଳେ କେଉଟମାନେ ଛୋଟ ଛୋଟ ଜାଲ ସାହାଯ୍ୟରେ ମାଛଗୁଡ଼ିକୁ ଧରି ନିଅନ୍ତି । ସାଧାରଣତଃ —'ମାଲ' ବଡ଼ ଜୁଆର ସମୟରେ ବସେ । ମାଲରେ ଯେଉଁ ମାଛ ଧରା ହୁଅନ୍ତି; ତାକୁ 'ମାଲମାଛ' କହନ୍ତି । ଏହି ଉପାୟରେ ଥରକେ ହଜାର ହଜାର ମାଛ ଧରାପଡ଼ନ୍ତି । ] ୪ । ମୁଣ୍ଡ ନ ଜାଲ ପରି ଛୋଟ ଜାଲ ବିଶେଷ—4. A kind of small casting net.

ମାଲ—ବୈଦେ. ବି—(ଅ. ମାଲ୍)—୧ । ଅରଟର ଚକ ଓ ତାକୁଡ଼ Māla ସଙ୍ଗେ ସଂଲଗ୍ନ ସୂତା—1. The string round the মালসুতা माल spinning wheel which turns the spindle of a spinning wheel. ୨ । ତନ୍ତୀର ମାଲ माल ଲୁଗା ବୁଣିବାର ଉପାଦାନ ତୁଳା ଓ ସୂତା—2. A weaver's ingredients (e. g. cotton and thread.) [ଦ୍ର—ତନ୍ତୀ ପୁଚ୍ଛା ! ଖାଏ ମାଲ,ଶ୍ରେଷ୍ଠ ସୂତା—ଉପ।] ୩ । ମାଲ୍ (ଦେଖ)—3. Māl (See) ୪ । ସୁସ୍ୱାଦ୍ୟ ଦ୍ରବ୍ୟ—4. Dainty food. ୫ । (ଉତ୍ତର) ସୁସମ୍ଭୋଗ୍ୟା ସୁନ୍ଦରୀ ଯୁବତୀ ସ୍ତ୍ରୀ—5. A young, beautiful and enjoyable woman. ୬ । ଗୃହର ଚଳନ୍ତି ଅସବାବ୍—6. Moveables and furnitures of a house. ୭ । ପଣ୍ୟ ଦ୍ରବ୍ୟ—7. Commodity. ଦେ. ବି.—୧ । (ସଂ. ମଲ୍ଲ)—मल्ल ମଲ୍ଲ; ପହଲ୍‌ମାନ୍—1. A wrestler. [ଦ୍ର—ହାତୀ ଘୋଡ଼ା माल, पहलवान ମାଲ ଯେ ଯେ ଦେଶକୁ, ଆସିଲେ ଯୁଝିବାକୁ । କୃଷ୍ଣସିଂହ ମହାଭାରତ. ବିରାଟ । ] ୨ । ଯୋଦ୍ଧା—2. Warrior. ୩ । ବୀର—3. A hero. ୪ । पट କ୍ଷେତକୁ ପାଣି ବୁହାଇବା ପାଇଁ ପ୍ରସ୍ତୁତ ହେବା ପାଣି ମାହାଳ; ପଟଣି—4. A channel prepared for conveying water for irrigating fields. ୫ । ( ସଂ. ମାଲ )—ବନ୍ୟ ଅସଭ୍ୟ ଜାତିବିଶେଷ—5. Name of a wild aboriginal tribe. ୬ । (ସଂ. ମଲ୍ଲ)—ମାଲ ପଥର (ଦେଖ)—6. Māl pathara (See)

ମାଲ ଅଟିକା—ପ୍ରାଦେ. (ବାଲେଶ୍ୱର) ବି—ବାଜି ଅଟିକା (ଦେଖ) Māla āṭikā (ମାଲହାଣ୍ଡି—ଅନ୍ୟରୂପ) Bāji āṭikā (See)

ମାଲ ଉଡ଼ା(ଢ଼େ)ଇବା—ଦେ. କ୍ରି—୧ । ଧନ ଅପବ୍ୟୟ କରିବା—Māla urḍā(rḍe)ibā 1. To squander away money. ধন উড়ান माल उडाना ୨ । ସୁସ୍ୱାଦୁ ଓ ମୂଲ୍ୟବାନ୍ ଖାଦ୍ୟ ବସ୍ତୁ ପରିମାଣରେ ଖାଇବା—2. To partake profusely of sweet and valuable food. ୩ । ବହୁ ପରିମିତ ମଦ୍ୟାଦି ବା ମାଦକ ଦ୍ରବ୍ୟ ସେବନ କରିବା—3. To partake profusely of intoxicating drugs.

ମାଲକ—ସଂ. ବି—(ମାଲ+କ)—୧ । ନିମ୍ବ ବୃକ୍ଷ—1. The Nimba Mālaka tree. ୨ । ସ୍ଥଳପଦ୍ମ—2. The Hibiscus Mutabilis. ୩ । ଅଲସୀ—3. A kind of oilseed; linseed. ୪ । ନାରକେଳର ମାଳା; ନଡ଼ିଆ ଖପୁରି—4. A cup made from the hard covering or shell of cocoanut. ୫ । ଗ୍ରାମ ନିକଟସ୍ଥ ବନ—5. A wood near a village (Apte). ୬ । ମାଳା—6. A garland (Apte.).

ମାଲ କଚ୍ଛ—ଦେ. ବି—(ସଂ. ମଲ୍ଲ+କଚ୍ଛ)—ମାଲ କାଛ (ଦେଖ) Māla kachhā Mālakāchha (See)

ମାଲ କ(କା)ଟତି—ଦେ. ବି—(ହିନ୍ଦି ଓ ବଙ୍ଗଳାରୁ ଅନୁକୃତ)—ପଣ୍ୟ Māla ka (kā)ṭati ଦ୍ରବ୍ୟର ବିକ୍ରୟଦ୍ୱାରା ଶେଷ—Exhaustive মালের কাটতী मालकी कटती sale of merchandise.

ମାଲ(ଲ)କର୍ଡ଼(ଢ଼ି)—ଦେ. ବି.—(ସଂ. ମଲ୍ଲି+କଣ୍ଠିକା)—ମଲକର୍ଢ଼ି Māla(la)karḍi(rḍhi) (ଦେଖ) Malakarḍhi (See) মাকড়ী.

ମାଲକ(ଖ)ର୍ଡ଼ି—ପ୍ରାଦେ. (ଜୟପୁର) ବି—ମାଇପଙ୍କ ଚଳକାନର ଶିକୁଳି Māla ka(kha)rḍi ଲଗା ନୋଳି—The ear-ring of females with chain attached to it.

ମାଲ କାଛ(ଛା)—ଦେ. ବି—ପାଇକଛ; ମଲ୍ଲମାନେ ପିନ୍ଧିଥିବା ଲୁଗାର ଆଗ
Māla kāchha (chhā) ପାଶ କାନକୁ ପଛ ପାଖେ ନେଇ ଖୋସି-
মালকোচাঁ, মালকাছা ବା—A mode of tucking the
मालकाछ hanging front end of the loincloth back down the privities towards the back, as is done by athletes. [ଉ—ସୁବଳ ପୁଷ୍ପଶିଖି ଗୁଚ୍ଛ, ରଙ୍ଗ ମୁଣ୍ଡିକା ମାଲକାଛ । ଜଗନ୍ନାଥ. ଭାଗବତ ।]

ମାଲକୁ ମାଲ—ଦେ. କ୍ରି. ବିଣ—ଦଳ ଦଳ ହୋଇ—In bands;
Mālaku māla দলে দলে दलबदल in troops
[ନାଦ ବାଦ୍ୟକାରେ ସବାଗ୍ରେ ଚାଲନ୍ତି ମାଲକୁ ମାଲ । ରାଧାନାଥ. ଉଷା ।]

ମାଲକୁସ୍ତି—ଦେ. ବି.—(ସଂ. ମଲ୍ଲ+ଫା. କୁସ୍ତି)—ମଲ୍ଲଯୁଦ୍ଧ; ବାହୁଯୁଦ୍ଧ
Māla kusti Wrestling.

ମାଲକେଳି—ପ୍ରାଦେ· (ଗଡ଼ଜାତ) ବି—ପିଲାମାନେ ପରସ୍ପରର ହାତ
Māla keli ଧରାଧରି ହୋଇ ମାଳାକାରରେ ଠିଆ ହୋଇ ଖେଳିବାର ଖେଳ—A play of children by holding one another's hands and forming a circle thereby.

ମାଲ(ଲ)କୋ(କୌ)ଶ—ସଂ ବି—ସଙ୍ଗୀତର ରାଗବିଶେଷ; କୌଶିକ
Māla(la)ko (kau)śa ରାଗ—Name of a Hindu musical air. [ଦ୍ର—ହନୁମାନ୍ ଏହାକୁ ପ୍ରଧାନ ୬ ରାଗର ଅନ୍ତର୍ଗତ ଥିବାର କହି ଅଛନ୍ତି । ଏହା ସମ୍ପୂର୍ଣ୍ଣ ଜାତିର ରାଗ । ଏହା ଗାନ କରିବାର ଋତୁ ଶରତ, ମତାନ୍ତରରେ ଶିଶିର, ମତାନ୍ତରରେ ବସନ୍ତ; ଓ ଗାନ ସମୟ ରାତ୍ରିର ଶେଷ ପ୍ରହର; କେହି କେହି ଏହାକୁ ସଙ୍କର ରାଗ ଥିବାର କହନ୍ତି (ହି. ଶ) ।]

ମାଲକ୍କା—ଦେ. ବି.—୧ । ମାଲୟ ଉପଦ୍ୱୀପର ଗୋଟିଏ ନଗର—
Mālakkā 1. Malacca; name of a town in the Malay peninsula. ୨ । ପ୍ରଶାନ୍ତ ମହାସାଗରର ଦ୍ୱୀପପୁଞ୍ଜ—( ଅଷ୍ଟ୍ରେଲିଆର ଉତ୍ତରରେ )—2. The Mallucca islands in the Pacific Ocean. ୩ । ସୁମାତ୍ରା ଓ ମାଲୟ ଉପଦ୍ୱୀପ ମଧ୍ୟସ୍ଥ ପ୍ରଣାଳୀ—3. The strait between Sumatra and the Malay archipelago.

ମାଲ ଖଜଣା—ବୈଦେ.ବି (ଅ. ମାଲ+ଖଜାନା; ଏକାର୍ଥକ ସହଚର)—
Māla khajaṇā ଜମିଦାରଙ୍କୁ ଦେୟ କର—Rent paid to
মালখাজনা मालखजाना the Zamindar.

ମାଲ ଖ(ଖୁ)ମ୍ବ—ଦେ. ବି ( ସଂ. ମାଲ+ସ୍ତମ୍ଭ )—ମାଲଖୁଣ୍ଟ ( ଦେଖ )
Māla kha(khu)mba Mālakhunṭa ( See ) [ଉ—"ଜୟ ଗଙ୍ଗେଶ୍ୱର" ବୋଲି ମାଲ ଖମ୍ବ କମ୍ପାନ୍ତି ବାହୁ-ଷ୍ଫୋଟକେ—ରାଧାନାଥ ପାର୍ବତୀ । ]

ମଲ ଖୁଣ୍ଟ—ଦେ. ବି—ମଲ୍ଲମାନଙ୍କ ବାହୁଯୁଦ୍ଧ କ୍ରିୟା କରିବା ପାଇଁ
Māla khunṭa କ୍ରୀଡ଼ାଗୃହରେ ପୋତା ହୋଇଥିବା କାଠର
মালখুঁট ଖୁଣ୍ଟ—A pillar on which wrestlers exer-
मलखम, मलखंभ cise their arms.

ମାଲ ଖୁଣ୍ଟି—ଦେ. ବି—୧ । ଢିଙ୍କିର ଦୁଇ ପକ୍ଷି ରଖାଯିବା ଖୁଣ୍ଟଦ୍ୱୟ—
Māla khunṭi 1, The two posts on which rest
মাল খুঁটী the two wings of a husking
ढेंकी की खुटी, जंघा jack.

ମାଲ ଗାଡ଼ି—ଦେ. ବି—ଯେଉଁ ରେଲଗାଡ଼ିରେ ପଣ୍ୟ ଦ୍ରବ୍ୟମାନ ବୁହା
Mālagārdi ଯାଏ—Goods-train; railway waggon
মালগাড়ি मालगाडि for carrying goods.

ମାଲଗୁଜାର(ରି)—ବୈଦେ. ବି ( ଫା ମାଲ୍ ଗୁଜାରୀ )—ଜମିଦାର
Mālgujāra(ri) ଜମି ନାମରେ ଗଭର୍ଣ୍ଣମେଣ୍ଟଙ୍କୁ ଦେବା ରାଜସ୍ୱ—
মালগুজারী Revenue paid to the Government
मालगुजारी by a Zamindar. ପ୍ରାଦେ. ( ସମ୍ବଲପୁର ) ବି —ଜମିଦାର ବା ଗଉନ୍ତିଆ ଗଭର୍ଣ୍ଣମେଣ୍ଟଙ୍କୁ ଦେବା ପାଇଁ ପ୍ରଜାଙ୍କଠାରୁ ଅସୁଲ କରିବା ସମସ୍ତ ଖଜଣା —The rent realised by the Gaūntia or Zamindar in order to pay to the Government.

ମାଲଗୁଜାର୍‌ଦାର—ବୈଦେ.ବିଣ (ଅ.ମାଲ୍‌ଗୁଜାର୍‌ଦାର୍)—ରାଜସ୍ୱ ଆଦାୟ
Mālagujār-dār କରି ଗଭର୍ଣ୍ଣମେଣ୍ଟରେ ଦାଖଲକାରୀ—Paying
মালগুজারদার मालगुजारदार or depositing revenue. ବୈଦେ. ବି. ଜମିଦାର—A Zamindar.

ମାଲ ଗୁ(ଗେ)ରୁଡ଼ି—ଦେ. ବି—ବଣରେ ମନକୁ ଉଠିଥିବା ଆମ୍ବ ଗଛର
Māla gu(ge)rurdi ଛୋଟ ଛୋଟ ଆମ୍ବ ଫଳ—Pigmy
(ମାଲଗିରଡ଼ି, ମାଲଗେରେଡ଼ି—ଅପଭ୍ରଂଶ) mango fruits of
জঙ্গলীছোটআম जंगलीगुरूडि trees growing wild in the jungles.

ମାଲ ଗୁର୍ଜରୀ—ସଂ ବି—ରାଗିଣୀ ବିଶେଷ—
Māla gurjarī Name of a musical tune.

ମାଲ ଗୋ(ଗୁ)ଦାମ—ବୈଦେ. ବି.—( ଫା. ମାଲ୍+ଗୋଦାମ )—୧ ।
Māla go(gu)dāma ଯେଉଁ ପ୍ରକୋଷ୍ଠରେ ରେଲରେ ପଣ୍ୟ-
মাল গুদাম माल गोदाम ଦ୍ରବ୍ୟମାନ ସଞ୍ଚିତ ହୁଏ—1. Railway goods shed. ୨ । ବେପାରୀମାନଙ୍କ ପଣ୍ୟଦ୍ରବ୍ୟର ସଞ୍ଚୟଶାଳା—2, A warehouse.

ମାଲ ଗୋବା—ବୈଦେ. ବି—ଏକ ପ୍ରକାର ବଡ଼ ଆମ୍ବ ।(ଏହା ବିଦେଶରୁ
Māla gobā ଏ ଦେଶକୁ ଆସି ବିକି ହୁଏ ।)—A kind of
মালগুবা माल गोबा big mango imported to Orissa in the mango season.

ମାଲ ଚକ୍ରକ—ସଂ. ବି.—ପଛଆ; ପିଣ୍ଡର ଯେଉଁ ଅଂଶ ଅଣ୍ଟା ଓ ଜଙ୍ଘ
Māla chakraka ମଧ୍ୟରେ ଅବସ୍ଥିତ—The posterior
पहुला part of the body between the waist and the hip joint.

ମାଲ ଚନ୍ଦନ—ଦେ. ବି.—( ସଂ.ମାଳା ଓ ଚନ୍ଦନ; ସହଚର )—
Māla chandana ଦେବତାଙ୍କ ପରିହିତ ମାଳା ଓ ଚନ୍ଦନ—
মালা চন্দন माल चन्दन Garland and sandal paste put on the image of a Deity.

ମାଲ ଚାଲଣ(ଣି)—ବୈଦେ. ବି—(ଫା.)—୧ । ପୁଲିସଦ୍ୱାରା ଧୃତ
Māla chalāṇa(ṇi) ବସ୍ତୁକୁ କୋର୍ଟକୁ ପ୍ରେରଣ—1. The
মাল চালানী माल चलानी sending up of seized

articles by the police to the court. ୨ । ଦ୍ରବ୍ୟ ପ୍ରେରଣ—2. Despatch or sending up of articles. ୩ । ପ୍ରେରିତ ଦ୍ରବ୍ୟର ତାଲିକା, ଯାହାକି ପ୍ରେରକ ପ୍ରେରିତ ଦ୍ରବ୍ୟ ସଙ୍ଗେ ପଠାଏ—3. Invoice of goods despatched; bill of of lading.

ମାଲ ଚୂଳ—ଦେ. ବି—(ସଂ. ମାଳା+ଚୂଡ଼ା)—ଜଗନ୍ନାଥ ମହାପ୍ରଭୁ
Māla chula ବେକରେ ପିନ୍ଧିଥିବା ମାଳା ଓ ଚୂଳରେ ପିନ୍ଧିଥିବା
মালা চুল माला चुडा ପୁଷ୍ପଗୁଚ୍ଛ, ଯାହା ତାଙ୍କ ଠାରେ ଲାଗି ହେବା ପରେ କଢ଼ା ହୋଇଥାଏ—Garlands and nosegays taken off after they are worn by the Deity Jagannath.

ମାଲ୍ ଜବତ୍(ଦ୍,ତି)—ବୈଦେ. ବି—(ଉତ୍ତରଅ; ଅ. ମାଲ୍+ଜପ୍ତ)—
Māla jabat(d,ti) କୌଣସି ଧୃତ ଦ୍ରବ୍ୟକୁ ଅଟକାଇ ରଖିବା—
মাল জবত(জব্দ) Detention of a seized article.
माल जफ्त (ମାଲ୍ ଜବ୍ଦ [ପ୍ର, ପ୍ରୁ°]—ଅନ୍ୟରୂପ)

ମାଲ ଜମା(ମେ)ଇବା—ଦେ, କ୍ରି.—୧ । ପଣ୍ୟ ଦ୍ରବ୍ୟ ଏକତ୍ର କରିବା—
Māla jamā(me)ibā 1.To gather up commodities;
মাল জমান माल जमाना to stock articles.
୨ । ଧନ ସଞ୍ଚୟ କରିବା—2. To amass riches.

ମାଲ ଜାତକ—ସଂ. ବି—ଗନ୍ଧମାର୍ଜାର (ହି. ଶ)
Māla jātaka Civet cat.

ମାଲ୍ ଜାମିନ—ବୈଦେ. ବି(ଫା)—(ଉତ୍ତରଅ)—୧ । ପର ନିମନ୍ତେ ଧନ
Māl jāmin মাল জামিন ଦାଖଲ କରି ହେବା ଜାମିନ୍ ବା ପ୍ରତି-
माल जमानत ଭୂ—1. Standing security for another (ଖାତିର ଜାମିନ୍—ବିପରୀତ) by depositing cash. ୨ । ସମ୍ପତ୍ତି ରକ୍ଷା ପାଇଁ ଜିମାଦାରଙ୍କ ଦ୍ୱାରା ଦିଆ ଯିବା ଜାମିନ୍—2. Security given for the safe custody of a property.

ମାଳ(ଳା) ଝୁଲ(ଲି)—ଦେ.ବି. (ସହଚର) (ସଂ.ମାଳ+ଦୋଳା)—ଜପିବା
Māla(lā) jhulā (li) ମାଳ ଓ ଜପିବା ମାଳ ରଖାଯିବା କନାର
মালাঝোলা मालाझोला ମୁଣି—String of beads and the bag of cloth which contains it.
[ଦ୍ର—ବୈଷ୍ଣବମାନେ ମାଳ ଝୁଲି ଧରି ହରି ନାମ ଜପିବାର ପରି ଅଣ୍ଟି ବୁଲି ଯାଇ କରୁଅଛନ୍ତି '। ଫକୀରମୋହନ. ଛମାଣ ଅଠଗୁଣ୍ଠ ।]

ମାଳଞ୍ଚ—ଦେ. ବି—(ସଂ, ମାଳା+ମଞ୍ଚ)—ପୁଷ୍ପୋଦ୍ୟାନ; ମାଳର ପୂଲ
Mālancha মালঞ্চ फुलवारी ବଗିଚ୍—Flower-garden

ମାଳତ—ପ୍ରାଦେ (ସିଂହଭୂମି) ବି—ଧାନ୍ୟ ବିଶେଷ—
Mālata A species of paddy.

ମାଲ ତାଲିକା—ବୈଦେ. ବି· (ଉତ୍ତରଅ)—ପଦାର୍ଥମାନଙ୍କର ତାଲିକା
Māla tālikā ବା ଲିଷ୍ଟ—A list of articles.
মাল তালিকা माल तालिका

ମାଳତି—ପ୍ରାଦେ. (ଉତ୍ତର) ବି—ପଲାଣର ପଛ ପାଖରେ ଥିବା ଗଦି,ଯହିଁର
Mālati ଦେହରେ ଖୁଣ୍ଟି କାଠି ଲାଗି ଥାଏ—The cushion behind the pack saddle to which are attached the fastening pins. ସଂ. ବି—ମାଳତୀ ଦେଖ—Mālatī (See)

ମାଳତି ଭେଦ—ଦେ. ବି—ସର୍ପଦଷ୍ଟ ବା କ୍ଷତ ଓ ରକ୍ତାକ୍ତ ବ୍ୟକ୍ତିକୁ
Mālati bheda କେହି ସ୍ତ୍ରୀଲୋକ ଛୁଇଁଲେ, ତାହା ତାଙ୍କୁ ହୋଇବା ବିଷମ ମାରାତ୍ମକ ଅବସ୍ଥା—The serious condition of a snake-bitten person or a person with bleeding wounds of he is touched by a female. [ ଦ୍ର—ଲୋକ ବିଶ୍ୱାସ ଏହିକି, ମାଳତିଭେଦ ହେବ । ବ୍ୟକ୍ତି ଜୀବିତ ବଞ୍ଚନ୍ତି ।]

ମାଳତୀ—ସଂ. ବି (ମା=ନାହିଁ+ଲତ୍ ଧାତୁ=ଅଘାତ କରିବା+କର୍ତ୍ତୃ. ଅ
Mālatī +ସ୍ତ୍ରୀ. ଈ; ବା ମା=ଲକ୍ଷ୍ମୀ, ଶୋଭା+ଲଟ୍ ଧାତୁ=
ଅନ୍ୟ ସଂ. ନାମ—ସୁମନା, ବେଷ୍ଟନ କରିବା+କର୍ତ୍ତୃ. ଅ+ସ୍ତ୍ରୀ-
ଜାତି, ଜାତୀ, ରାଜପୁତ୍ରିକା, ଈ; ଅଥବା ମାଲ=ବସ୍ତ୍ର+ଅତ୍
ହୃଦ୍ୟଗନ୍ଧା, ସନ୍ଧ୍ୟାପୁଷ୍ପା, ଧାତୁ=ଗମନ କରିବା+କର୍ତ୍ତୃ. ଅ+
ଚେତକୀ (ଦ୍ରବ୍ୟଗୁଣ-କଳ୍ପଦ୍ରୁମ) ସ୍ତ୍ରୀ ଈ)—୧ । ଜାତି ପୁଷ୍ପ ଓ ତହିଁର
মালতী ଲତା—1. A kind of jas-
मालती mine; Echites-Caryophy
ମ. ପୀବଲି ଜାଈ lata; Aganosma Cali-
ତେ. ଜାଇପୁଷ୍ପାଲୁ cina. [ଦ୍ର—ଏହା ଉଗସ୍ରାବ ବର୍ଗର ବୃହତ୍ ଲତା ବିଶେଷ; ଏହାର ପତ୍ର ୪।୫ ଅଙ୍ଗୁଳ ଲମ୍ବ ଓ ୨।୩ ଅଙ୍ଗୁଳ ଓସାର ଓ ପତ୍ରର ଅଗ ମୁନିଆ । ଏହାର ଫୁଲ ଗୁଚ୍ଛ ଶାଖଗ୍ରା ବିଶିଷ୍ଟ ଓ ଧଳା; ଫୁଲର ଚେଙ୍କ ଲମ୍ବ; ବର୍ଷା ଦୁଇ ମାସ ଫୁଲ ଫୁଟେ । ରାତିରେ ଫୁଲର ଈଷତ୍ ମଧୁର ଗନ୍ଧରେ ଗୃହଅଙ୍ଗ ଆମୋଦିତ ହୁଏ । ଶୀତକାଳରେ ଏ ଲତାରୁ ଛୁଇଁ ହୁଏ । ଏ ଲତା ବଡ଼ ଗଛ ଉପରେ ଖୁବ୍ ମାଡ଼େ । ବୈଦ୍ୟକ ମତରେ ଏହା ଶିରୋରୋଗ, ନେତ୍ରରୋଗ, ମୁଖ ରୋଗ, ଦନ୍ତ ରୋଗ,ବିଷ,କୁଷ୍ଠ ଓ ବାତ ରକ୍ତ ନାଶକ । ଏହାର କଢ଼ ବ୍ରଣ, କୁଷ୍ଠ ଓ ନେତ୍ର ରୋଗ ନାଶକ । କେହି କେହି ଏହାକୁ ଜାତୀ ବା ଜାଇ ଫୁଲ (Jasminium Grandiflorum) (ବ. ଜାଇ, ଚମେଲି, ହି. ଚମେଲି) ବୋଲି କହନ୍ତି । କିନ୍ତୁ ଜାଇ ଫୁଲ ଓ ମାଳତୀ ଫୁଲ ପୃଥକ୍] ୨ । ଯୁବତୀ—2. A youthful woman. ୩ । ନିଶା; ରାତ୍ରି—3. Night. ୪। ଚନ୍ଦ୍ରିକା; ଜ୍ୟୋତ୍ସ୍ନା—4. Moon-light. ୫ । କଳିକା—5. Bud. ୬ । ନଦୀ ବିଶେଷ—6. The name of a river. ୭ । ପଞ୍ଚଦଶାକ୍ଷର ବା ଦ୍ୱାଦଶାକ୍ଷର ଛନ୍ଦୋବିଶେଷ—7. Name of a metre of 15 or 12 letters. ୮ । ଜାଇଫଳ ଗଛ (ହି. ଶ) 8. Myristica Fragrans (tree). ୯ । ଅକାଳ-ବନ୍ଧ ଲତା (ହି. ଶ)—9. Stephania Hernandi-folia (creeper). ୧୦ । କୁମାରୀ—10. A virgin (Apte). ଦେ. ବି—ସ୍ତ୍ରୀଲୋକଙ୍କ ନାମ—A name given to females.

ମାଲତୀ କ୍ଷାରକ—ସଂ. ବି—ସୋହାଗା (ହି. ଶ)—
Mālatī kshāraka Borax.
(ମାଲତୀ କ୍ଷାର, ମାଲତୀ ତୀରଜ—ଅନ୍ୟରୂପ)

ମାଲତୀ ପତ୍ରିକା—ସଂ. ବି—ଜାଇପତ୍ରୀ (ହି. ଶ)—
Mālatī patrikā Mace (spice).

ମାଲତୀ ଫଳ—ସଂ. ବି—ଜାଇଫଳ (ହି. ଶ)—
Mālatī phala Nutmeg.

ମାଲତୀ ମାଧବ—ସଂ. ବି—କବି ଭବଭୂତି ପ୍ରଣୀତ ସଂସ୍କୃତ ନାଟକ-
Mālatī mādhaba ବିଶେଷ—Name of a Sanskrit drama by Bhababhūti. [ଦ୍ର—ଏହା ଗୋଟିଏ ପ୍ରକରଣ ଶ୍ରେଣୀର କବିକଳ୍ପିତ ନାଟକ । ଏଥିର ରଚନା-କାଳ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦି ବୋଲି ଅନୁମିତ । ଏ ନାଟକର କଥାବସ୍ତୁ ଏହା;—ବିଦର୍ଭ ଦେଶର କୁଣ୍ଡିନ-ପୁରର ଏକ ରାଜାଙ୍କ ଦୁଇ ମନ୍ତ୍ରୀ ଭୂରିବସୁ ଓ ଦେବରାତଙ୍କ ମଧ୍ୟରେ ପରସ୍ପର ସତ୍ୟ ହୋଇଥିଲା ଯେ, ଯେବେ ଜଣକର ପୁତ୍ର ଓ ଜଣକର କନ୍ୟା ଜନ୍ମିବ ତେବେ ସେମାନଙ୍କୁ ପରସ୍ପର ସଙ୍ଗେ ବିବାହିତ କରାଇବେ । ଦେବରାତଙ୍କର ମାଧବ ନାମରେ ପୁତ୍ର ଓ ଭୂରିବସୁଙ୍କର ମାଲତୀ ନାମରେ କନ୍ୟା ହେଲା । କିନ୍ତୁ ରାଜାଙ୍କର ଅନ୍ୟ ଏକ ମନ୍ତ୍ରୀ ନନ୍ଦନ ମାଲତୀକୁ ବିବାହ କରିବାକୁ ଇଚ୍ଛା କଲେ ଓ ରାଜା ମଧ୍ୟ ଭୂରିବସୁଙ୍କୁ ଏଥିପାଇଁ ଅନୁରୋଧ କଲେ । ରାଜାଙ୍କ କଥା ଭାଙ୍ଗିଦେଲେ ରାଜା ଅସନ୍ତୁଷ୍ଟ ହେବେ, ଏଥିଯୋଗୁଁ ଭୂରିବସୁ ଓ ତାଙ୍କ ସ୍ତ୍ରୀ ପଦ୍ମାବତୀ ଅତି ଶଙ୍କିତ ହେଲେ, ଅଥଚ ସତ୍ୟଭଙ୍ଗ କରିବାକୁ କୁଣ୍ଠିତ ହେଲେ । ପତିପତ୍ନୀ କାମନ୍ଦକୀନାମ୍ନୀ ଜଣେ ପରିବ୍ରାଜିକାଙ୍କଠାରେ ମାଲତୀ ଓ ମାଧବଙ୍କୁ ମିଳିତ କରାଇବା ଭାର ଦେଲେ । ମାଲତୀ ଓ ମାଧବ ପିତାଙ୍କ ସତ୍ୟପ୍ରତିଜ୍ଞା କଥା ଜାଣି ନ ଥିଲେ । ସେମାନେ ପରସ୍ପରକୁ ଭେଟି ପରସ୍ପର ପ୍ରତି ପ୍ରଣୟାସକ୍ତ ହେଲେ । ଏଣେ ରାଜାଜ୍ଞାରେ ନନ୍ଦନ ସଙ୍ଗେ ମାଲତୀର ବିବାହର ସମସ୍ତ ଆୟୋଜନ ହେଲା, କିନ୍ତୁ କାମନ୍ଦକୀଙ୍କ କୌଶଳରେ ମାଲତୀ ସହିତ ମାଧବର ବିବାହ ହେଲା ଓ ଶେଷରେ ରାଜା ମଧ୍ୟ ଏ ବିବାହରେ ସମ୍ମତି ଦାନ କଲେ । ଏହି ନାଟକ କୌଣସି ପୌରାଣିକ ବା ପ୍ରସିଦ୍ଧ ଉପାଖ୍ୟାନକୁ ଅବଲମ୍ବନ କରି ରଚିତ ହୋଇ ନ ଥିବାରୁ ସମାଲୋଚକମାନେ ଏହାକୁ ଅବଜ୍ଞା ଚକ୍ଷୁରେ ଦେଖିଲେ । ଏହି ବିଷୟକୁ ଲକ୍ଷ୍ୟ କରି କବି ନିମ୍ନଲିଖିତ ପ୍ରସିଦ୍ଧ ଓ ବହୁଶଃ ଉଦ୍ଧୃତ ଶ୍ଳୋକ ରଚନା କରିଥିଲେ ;—"ଯେ ନାମ କେଚିଦିହ ନଃ ପ୍ରଥୟନ୍ତ୍ୟବଜ୍ଞାଂ, ଜାନନ୍ତୁ ତେ କିମପି ତାନ ପ୍ରତି ନୈଷ ଯତ୍ନଃ; ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା, କାଲୋହ୍ୟୟଂ ନିରବଧି ର୍ବିପୁଲାଚ ପୃଥ୍ୱୀ" । ଏଥିର ଅର୍ଥ—ଯେଉଁମାନେ ଏ ନାଟକ ସମ୍ବନ୍ଧରେ ମୋତେ ଅବଜ୍ଞା ବାଦ କରୁଅଛନ୍ତି, ସେମାନେ ଜାଣନ୍ତୁ ଯେ ମୁଁ ତାଙ୍କ ପାଇଁ ଏ ଗ୍ରନ୍ଥ ରଚନା କରି ନାହିଁ । କାଳର ବା ସମୟର ଅନ୍ତ ନାହିଁ ଓ ଏ ପୃଥିବୀ ବିପୁଳ ଅଟେ । ଅତଏବ ମୋର ସମାନଧର୍ମା କେହି ବ୍ୟକ୍ତି ଏ ସଂସାରରେ ଅଛନ୍ତି ବା ପରେ ଜନ୍ମିବେ, ତାଙ୍କ ଉଦ୍ଦେଶ୍ୟରେ ମୋର ଏହି ପରିଶ୍ରମ ଅଟେ । ]

ମାଲଦହ—ଦେ. ବି (ନାମ)—ବଙ୍ଗଦେଶର ଜିଲ୍ଲା ଓ ନଗର ବିଶେଷ
Māladaha —Malda; name of a town and
মালদহ district in Bengal, famous for its
मालदह mangoes. [ଦ୍ର—ଏହା ବଙ୍ଗ ଦେଶର
(ମାଲଦା—ଅନ୍ୟରୂପ) ଗୋଟିଏ ଜିଲ୍ଲା ଓ ନଗର । ଏଠାର ଆମ୍ବ ଭାରତ ବିଖ୍ୟାତ । ଏହା ରାଜସାହି ବିଭାଗର ଅନ୍ତର୍ଗତ । ]

ମାଲଦହି—ଦେ. ବିଣ—ମାଲଦହ ଜାତ—Produced in Malda
Māladahī district. ଦେ. ବି—ମାଲଦହ ଜାତ ଉତ୍କୃଷ୍ଟ
মালদহী ଆମ୍ବ—Excellent mango produced in
मालदही Malda.

ମାଲ ଦାର—ବୈଦେ. ବିଣ (ଫା)—ଧନୀ—Rich.
Māla dār মালদার मालदार

ମାଲ ଦି(ଦୁ)ହୁଡ଼ି—ଦେ. ବି (ସଂ. ମାଲ+ସାପଯାଜ)—ଗୋଟିଏ
Māla di(du)hurdi ବାଉଁଶରେ ଖଞ୍ଜା ହୋଇ ମାଳ ପରି
মসালেরমালা ଲମ୍ବା ଓ ବହୁ ସଂଖ୍ୟକ ବର୍ତ୍ତି ଜଳୁଥିବା
मालमसाल ମଶାଲ—Torches attached together
(ମାଲମଶାଲ—ଅନ୍ୟରୂପ) and looking like a garland when lighted.

ମାଲଦ୍ୱୀପ—ଦେ. ବି (ସଂ. ମଲୟଦ୍ୱୀପ; କିମ୍ବା ଦ୍ୱୀପମାଳା)—ଭାରତ
Māladwipa ମହାସାଗରରେ ଆରବ ଉପସାଗରର ଦକ୍ଷିଣ
মালদ্বীপ ଓ ଭାରତବର୍ଷର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ କ୍ଷୁଦ୍ର
मालद्वीप କ୍ଷୁଦ୍ର ବହୁଦ୍ୱୀପର ପୁଞ୍ଜ—The Maldive islands in the Indian Ocean.

ମାଲ ଧାନୁଆ—ପ୍ରାଦେ (ଗଡ଼ଜାତ) ବି—ଜଙ୍ଗଲରେ ହେବା ଧାନୁଆ
Māla dhānuā ଲଙ୍କାମରିଚ—A kind of small capsicum growing in jungles.

ମାଲପତ୍ର—ଦେ. ବି (ନିରର୍ଥକ ସହଚର)—ଧନଆଦି; ଚଳନ୍ତି
Māla patra মালপত্র मालपतर ସମ୍ପତ୍ତି—Moveable property.

ମାଲ ପଥର—ଦେ. ବି (ସଂ. ମଲ୍ଲ+ପ୍ରସ୍ତର, ତୁଳ. ଫା. ମାଲ୍)—
Māla pathara ମଲ୍ଲମାନଙ୍କର ଭାର ବସ୍ତୁ ଉଠାଇବାର
মালপথর ଶକ୍ତି ପରୀକ୍ଷା କରିବା ପାଇଁ ବ୍ୟବହୃତ, କେନ୍ଦ୍ରରେ
नाल ଛିଦ୍ର ବା ବେଣ୍ଟଥିବା ବଡ଼ ଗୋଲ ଓ ଖୁବ୍ ଭାରି ପଥର—A big circular very heavy stone with a hole or handle in the middle which is used for testing heavy-weight-lifting capacity of athletes.

ମାଲପା(ପି)—ଦେ. ବି (ସଂ. ମାଲକ=ତିସୀ ?)—ତେଲ; ତୈଳ—Oil.
Mālapā(pi) [ଉ—ମାଲପା ବିନା ସେ ନ କରନ୍ତି ଭୋଜନ ।
তেল କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ । ] ପ୍ରାଦେ·
तेल (ବାମଣ୍ଡା) ବି—ରାଶିତେଲ—Sesamum oil.

ମାଲପା କୁଞ୍ଚା(ଘଡ଼ି)—ଦେ. ବି—ତୈଳଭାଣ୍ଡ—A small pitcher
Mālapā kuñchā(ghardi) তেলের ভাঁড় for oil.
टारो

ମାଲପୁ(ପୋ)ଆ—ଦେ.ବି ସଂ.ମାଳକ=ଛସି ଓ ପୂପ=ପିଠା)—ଅପମାଲ୍; Mālapu(po)ā ଅପମାଲ୍; ମଇଦାର ପଠଲ ସଙ୍ଗେ ଗୁଡ଼ ଚକାସାଏ ଘିଅରେ ଛଣା ପିଠା ବିଶେଷ— মালপোয়া, मालपुआ A kind of cake prepared from मालपो(पु)आ flour and sugar mixed into a paste and fried n ghee.

ମାଲ ପ୍ରଦେଶ—ଦେ.ବି(ଭା· ମାଲ+ସଂ. ପ୍ରଦେଶ)—ଜଙ୍ଗଲମୟ ଅଞ୍ଚଳ— Māla pradeśa A locality consisting of wild মালপ্রদেশ जङ्गली प्रदेश tracts.

ମାଲ(ଲ)ବ—ସଂ. ବି—(ମାଲ+ବା.ଧାତୁ ଗମନ କରିବା+କର୍ତ୍ତୃ.ଅ;ଅଥବା ମରୁ+ଅ ମାରବ ବା ମାଲବ,ମରୁମୟ ପ୍ରଦେଶ)— Māla(la)ba ୧ । ମଧ୍ୟଭାରତର ଉତ୍ତରାଞ୍ଚଳସ୍ଥ ମରୁମୟ ପ୍ରଦେଶ— 1. The Country of Mālwa in the north of Central India. [ ଉ—ଅସ୍ତକୁନ୍ତ ମାଲବେଶେ ମାଲବଜନବାସ । ସୁଧାକାଥ. ମହାଯାତ୍ରା । ] [ଦ୍ର—ଅବନ୍ତୀ ବା ଉଜ୍ଜୟିନୀ ଏଥିର ପ୍ରାଚୀନ ପ୍ରଧାନ ନଗରୀ । ଇନ୍ଦୋର, ଭୂପାଳ, ଧାର, ରତଲାମ ଆଦି ରାଜ୍ୟ ଏଥିର ଅନ୍ତର୍ଗତ—ହି. ଶ. । ] ୨ । ସଙ୍ଗୀତର ରାଗ-ବିଶେଷ — 2. Name of a musical air. [ଦ୍ର—ଏହାର ଅନ୍ୟ ନାମ ଭୈରବ ରାଗ । ଏହା ରାତ୍ରି ୧୬ ଠାରୁ ୨୦ ଦଣ୍ଡ ମଧ୍ୟରେ ଗେୟ—ହି. ଶ. । ]

ମାଲ(ଲ)ବକ—ସଂ. ବିଣ (ମାଲବ+କ)—ମାଲବ ଦେଶ ସମ୍ବନ୍ଧୀୟ— Māla(la)baka Relating to Mālwa country. ସଂ. ବି—ମାଲବବାସୀ ବ୍ୟକ୍ତି—An inhabitant of Mālwa.

ମାଲବ ଗୌଡ଼(ଡ଼ା)—ସଂ· ବି ( ସଂ. ମାଲବ+ଗୌଡ଼ )—ମିଶ୍ରରାଗିଣୀ Mālaba gaurda(rdā) ବିଶେଷ—Name of a mixed মালবগৌড়া musical air which is sung in the मालबगौडा evening· [ଦ୍ର—ଏହା ଷାଡ଼ବ ଜାତିର ସଙ୍କର ରାଗ; ଏଥିରେ ପଞ୍ଚମସ୍ୱର (ପ) ଲାଗେ ନାହିଁ; ଏଥିର ସ୍ୱର-ଗ୍ରାମ ମଧନିସରିଗମ । ଶାନ୍ତରସରେ ଏଥିର ଉପଯୋଗ କରାଯାଏ; ଏହା ଗାଇବା ସମୟ ସାୟଂକାଳ—ହି· ଶ ]

ମାଲବନ୍ଧ—ଦେ· ବି (ସଂ. ମଲ୍ଲ ବନ୍ଧନ)—୧ । ମଲ୍ଲମାନଙ୍କର କସରତ— Mālabandha 1. Wrestling. ୨ । ମଲ୍ଲମାନଙ୍କର ଭିନ୍ନ ଭିନ୍ନ মালসাট ପ୍ରକାରର ପେଁଚ—2 Different artful poses in कसरत wrestling. [ଉ—ବେନି ଭାଇଙ୍କର ମାଲବନ୍ଧେ ଯୁଦ୍ଧ ହେଲା—ବିଶ୍ୱନାଥ. ବିଚିତ୍ରରାମାୟଣ । ]

ମାଲବ ଶ୍ରୀ—ସଂ. ବି—ଶ୍ରୀ ରାଗର ରାଗିଣୀବିଶେଷ —Name of Mālaba śrī secondary musical air. [ଦ୍ର—ମତାନ୍ତରରେ ଏହା ମାଲବ ରାଗର ରାଗିଣୀ । ଏଥିର ଗାନ ସମୟ ସାୟଂକାଳ—ହି. ଶ. ]

ମାଲବା—ଦେ. ବି (ସଂ. ମାଲବ)—ମାଲବ ପ୍ରଦେଶ— Mālabā মালব मालबा The Malwa Country.

ମାଲ ବା(ବେ)ଈ(ଶ୍ରୀ)—ପ୍ରାଦେ. (ଗଡ଼ଜାତ) ବି. ସ୍ତ୍ରୀ—ରାଜାମାନଙ୍କ Māla bā(be)ī(hi) ରକ୍ଷିତା ସ୍ତ୍ରୀ ବିଶେଷ—A class of (ମାଲବେଈ,ଶ୍ରୀ—ଅନ୍ୟରୂପ) concubines of Rajas. [ଦ୍ର—ରାଜା ଏହାଙ୍କୁ ଗୋଟିଏ ମାଲା ଦେଇ ରକ୍ଷିତା ସ୍ତ୍ରୀରୂପେ ବରଣ କରନ୍ତି ।]

ମାଲ ବାବୁ—ଦେ. ବି—ରେଲର ମାଲଗୋଦାମର ଭାରପ୍ରାପ୍ତ ଦେଶୀୟ Māla bābu କର୍ମଚାରୀ—The Indian goods clerk in মালবাবু मालबाबु a Railway goods shed.

ମାଲାବାର—ଦେ. ବି (ନାମ)—୧ । ଦକ୍ଷିଣ ଭାରତବର୍ଷର ପଶ୍ଚିମ Mālabāra ଉପକୂଳରେ ଥିବା ପ୍ରଦେଶ—1. The Malbar মালবার country in Southern India. ୨ । ଦକ୍ଷିଣଭାରତର मालबार ପଶ୍ଚିମ ଉପକୂଳ—2. The Malabar or west coast of Southern India.

ମାଲବିକ—ସଂ.ବିଣ ପୁଂ(ମାଲବ+ସମ୍ବନ୍ଧାର୍ଥେ. ଇକ)—ମାଲବଦେଶୀୟ— Mālabika Belonging or relating to Mālaba (ମାଲବିକା—ସ୍ତ୍ରୀ) country

ମାଲବିକା—ସଂ. ବି. ସ୍ତ୍ରୀ (ନାମ)—୧ । କାଳିଦାସଙ୍କର 'ମାଲବିକାଗ୍ନିମିତ୍ର' Mālabikā ନାମକ ନାଟକର ନାୟିକା—1. The heroine in the drama of Kalidasa,named Mālabikāgnimitra. ୨ । ନିଶୁତ୍; ତିଉଡ଼ି (ଔଷଧିବିଶେଷ)- 2. A creeper with laxative roots; Operculina Turpethum; Ipomoea Turpethum.

ମାଲବିକାଗ୍ନିମିତ୍ର—ସଂ. ବି (ନାମ)—କାଳିଦାସଙ୍କର ନାଟକ ବିଶେଷ— Mālabikāgnimitra Name of a drama of Kālidāsa.

ମାଲ ବିଜୁଳି—ଦେ. ବି (ସଂ. ମାଲ+ବିଦ୍ୟୁତ୍)—ଚଡ଼କମାଳା; ମାଳାପରି Māla bijuli ଝଟକୁଥିବା ଚଡ଼ଚ—The garland-like বিদ্যুতের মালা बिजलीमाला flashes of lightning.

ମାଲ ବିନ୍ଧାଣ(ଣି)—(ସଂ.ମଲ୍ଲ+ବିଧାନ)—୧ । ମଲ୍ଲଯୁଦ୍ଧ—1. Wrest-Māla bindhāna(ni) ling match. ୨ । (ସଂ. ମଲ୍ଲ+ दङ्गलजङ्गना ବିଧାନ)—ମଲ୍ଲଯୋଦ୍ଧା—2 Athlete; wrestler. [ଉ—ପାଦ ଅଗ୍ରେ ଯେ ଗୁଳଉ ଯେପିଣ; ତାଙ୍କୁ ସେ ଜାଣିବୁ ମାଲ ବିନ୍ଧାଣ । ପ୍ରାଚୀ. ପରେଚଗୀତା । ]

ମାଲବି(ବେ)ହାର—ଦେ· ବି—ଓଡ଼ିଶାରେ କ୍ଷତ୍ରିୟମାନଙ୍କର ବଂଶୋପାଧି-Mālabi(be)hāra ବିଶେଷ—A family title of Kshatriyas in Orissa.

ମାଲଶ୍ରୀ—ସଂ. ବି—ରାଗିଣୀବିଶେଷ; ଶ୍ରୀ ରାଗର ପତ୍ନୀ—Name of a Mālabī secondary tone in music. [ଦ୍ର—ଏଥିରେ ଋଷଭ ଓ ପଞ୍ଚମ ସ୍ୱର ବର୍ଜିତ ଅଟେ—ହି. ଶ ]

ମାଲବୀୟ—ସଂ.ବିଣ ପୁଂ(ମାଲବ+ସମ୍ବନ୍ଧାର୍ଥେ. ଈୟ)—ମାଲବିକ(ଦେଖ) Mālabīya (ମାଲବୀୟା—ସ୍ତ୍ରୀ) Mālabika·( See )

ମାଲବ୍ୟ—ଦେ. ବି (ସଂ. ମାଲବୀୟ)—ଉତ୍ତର ପଶ୍ଚିମ ପ୍ରଦେଶର ବ୍ରାହ୍ମଣ-Mālabya ମାନଙ୍କ ବଂଶୋପାଧି ବିଶେଷ—A family-title of Brāhmaṇas in N. W. Provinces. (ଯଥା—ପଣ୍ଡିତ ମଦନମୋହନ ମାଲବ୍ୟ ।)

ମାଲ ଭାଇ—ଦେ. ବି—ଶବ କାନ୍ଧେଇବା ଜ୍ଞାତି ଭାଇ—Relatives
Māla bhāi who shoulder the dead body to the
शववाही **गोतीया** cremation ground.

ମାଲଭୂମ(ମି)—ଦେ. ବି (ସଂ. ମଲ୍ଲଭୂମି; ଜମା ମାଲଭୂମି)—ପଶ୍ଚିମ ବଙ୍ଗର
Mālabhūma(mi) ପାର୍ବତ୍ୟ ଦେଶ ବିଶେଷ—Name of a
मालभूम hilly tract in West Bengal. [ଦ୍ର—ଏହା
**मालभूमि** ନେପାଳର ପୂର୍ବରେ ଅବସ୍ଥିତ—ହି. ଶ]

ମାଲ ଭୂମି—ସଂ. ବି—ଯେଉଁ ବିଶାଳ ଭୂଭାଗ ସାଧାରଣ ଭୂଭାଗ ଅପେକ୍ଷା
Māla bhūmi ବେଶି ଉଚ୍ଚ—Plateau; table-land.
[ଦ୍ର—ହିମାଳୟର ଉତ୍ତରସ୍ଥ ତିବତ ଦେଶ ଓ ମଧ୍ୟଭାରତ
ଗୋଟିଏ ଲେଖାଏଁ ପ୍ରକାଣ୍ଡ ମାଲଭୂମି ।]

ମାଲ ମତା(ତ୍ତା)—ଦେ. ବି ( ଅ. ମାଲ୍+ସଂ. ମାତ୍ରା=ଧନ )—
Māla matā(ttā) ୧ । ଚଳନ୍ତିସମ୍ପତ୍ତି ଓ ଟଙ୍କା କଉଡ଼ି—
माल मसला 1. Moveable properties and cash. ୨। ମୂଲ୍ୟ-
**मालमता** ବାନ୍ ଦ୍ରବ୍ୟ—2. Precious things or articles.
(ଉ—ଜମାଦାର ଘରେ ଯେତି ମାଲମତା ଗୁଡ଼ାକ ବହୁ ଅତି
ଦାଣ୍ଡରେ ଜମା କରୁଅଛନ୍ତି । ଫକୀରମୋହନ. ଛମାଣ
ଅଠଗୁଣ୍ଠ ।)

ମାଲ ମସଲା—ବୈଦେ. ବି—୧ । ଘର ତିଆରି କରିବାର ଉପକରଣ—
Māla masalā 1. Materials for building a
माल मसला house. ୨ । କୌଣସି କାର୍ଯ୍ୟ ସାଧନାର୍ଥ ପ୍ରୟୋ-
**माल मसला** ଜନୀୟ ଉପକରଣ—2. Materials necessary
for any object.

ମାଲ ମହାପ୍ରସାଦ—ଦେ. ବି (ସହଚର)—ଜଗନ୍ନାଥ ବା ଅନ୍ୟ ଦେବତା-
Māla mahāprasāda ଙ୍କର ପ୍ରସାଦୀକୃତ ଫୁଲହାର ଓ
माला प्रसाद ଭୋଗ—Garland and food already
**माला और प्रसाद** offered to Lord Jagannath or any
(ମାଳ ମାହାପ୍ର—ଅନ୍ୟରୂପ) other Deity.

ମାଲ ଯୁଦ୍ଧ—ଦେ. ବି (ସଂ. ମଲ୍ଲଯୁଦ୍ଧ)—ବାହୁ ଯୁଦ୍ଧ—Wrestling.
Māla juddha (ଉ—ନାକଠେ ମିଳି ଘୋର ନାଦେ, ଯୁଦ୍ଧ
माल युद्ध करନ୍ତି ମାଲ ଯୁଦ୍ଧେ । ଜଗନ୍ନାଥ. ଭାଗବତ ।)
**दंगल**

ମାଲ ମାଲ—ଦେ. ବିଣ—ଅସଂଖ୍ୟ—Numerous. (ଉ—ବ୍ରହ୍ମାଣ୍ଡ
Māla māla ମାଲ ମାଲ ହୋଇ, ଟୋ ଲୋମକୂପେ ବସୁଛଇ ।
असंख्य ଜଗନ୍ନାଥ. ଭାଗବତ ।) ଦେ. କ୍ରି. ବିଣ—୧ । ବହୁ
**बहुत, झुंडकेझुंड** ସଙ୍ଘରେ—1. In herds. ୨ । ପଞ୍ଝା ପଞ୍ଝା
(ମାଲେ ମାଲେ—ଅନ୍ୟରୂପ) ହୋଇ—2. In groups or
packs. (ଉ—ମାଲେ ମାଲେ ଭିଡ଼ି ହୋଇ ବିଶାଳ
ପ୍ରାନ୍ତରେ । ରାଧାନାଥ. ମହାଯାତ୍ରା ।)

ମାଲ(ଲ)ୟ—ସଂ. ବିଣ. (ମଳୟ+ଅ)—ମଳୟସମ୍ବନ୍ଧୀୟ—Relating
Māla(la)ya to Malaya. ସଂ. ବି—ଚନ୍ଦନ ବୃକ୍ଷ—The
Sandal tree. ଦେ. ବି ( ସଂ. ମାଲୟ,
ଦ୍ରା. ମାଳ=ଜଙ୍ଗଲ; ଏହି ପ୍ରଦେଶ ଜଙ୍ଗଲମୟ ଥିବାରୁ ଏହି
ନାମ)—ବଙ୍ଗୋପସାଗରର ପୂର୍ବଉପକୂଳସ୍ଥ ଉପଦ୍ୱୀପ—
Mālay; a peninsula on the Bay of
Bengal towards the east of India. [ଦ୍ର—
ଏହି ଉପଦ୍ୱୀପର ପୂର୍ବରେ ଚିନ୍ ସାଗର,ପଶ୍ଚିମରେ ବଙ୍ଗୋପ-
ସାଗର ଓ ସୁମାତ୍ରା ଦ୍ୱୀପ, ଦକ୍ଷିଣରେ ଭାରତ ମହାସାଗରସ୍ଥ
ସୁମାତ୍ରା ଆଦି ପୂର୍ବଭାରତୀୟ ଦ୍ୱୀପପୁଞ୍ଜ; ଉତ୍ତରରେ ଶ୍ୟାମ
ଓ ବ୍ରହ୍ମଦେଶ । ଏହାର ପ୍ରଧାନ ନଗର ପେନାଙ୍ଗ୍ ଓ
ସିଂଗାପୁର ।]

ମାଲ ଯମକ—ସଂ. ବି—ଶବ୍ଦାଳଙ୍କାର ବିଶେଷ (ଏହି ଅଳଙ୍କାରରେ
Māla jamaka ପ୍ରତ୍ୟେକ ପଦରେ ଏକ ଶବ୍ଦର ବହୁବାର
ସମାବେଶ ହୋଇଥାଏ)—A figure of rhetoric in
which one word appears many times
in the same line of the poetry
(ଉ—କୁକୁଯଶ୍ଚ ଚଳ ଚଳ ଚଳ କଲେ ଚୋଷେ,
ପାଞ୍ଚାଳୀ କାରର ଭର ଭର ଦୁଃଖା ରୋଷେ ।
କୃଷ୍ଣା ଉପବାସ ବାସ ବାସରେ କାଢ଼ଇ,
ପଣ ସହୋଦର ଦର ଦର କଣ୍ଠୀ ଗଢ଼ି ।
ଟେକନ୍ତି ପୁଷ୍କର କର କରଜେରୁ ଛାଏ,
ଦେଉଛନ୍ତି ବ୍ରହ୍ମଋଷି ଋଷି ଗ୍ରାସ ବାଏ ।
ଗୋଲକ. ଇନ୍ଦୁରେଖା ।)

ମାଲୟାଲମ୍—ଦେ. ବି—ମାଲୟ ଦେଶୀୟ ଭାଷା—Name given
Mālayālam to the vernacular language of
मालयालम **मालयालम** the Malay peninsula

ମାଲଶ୍ରୀ—ଦେ. ବି ( ସଂ. ମାଲବଶ୍ରୀ )—ରାଗିଣୀବିଶେଷ; ଶ୍ରୀରାଗର ପତ୍ନୀ;
Mālasri ( ଏହା ଗାଇବାର ସମୟ ଦିବା ୪ର୍ଥ ପ୍ରହର )—
मालश्री Name of a secondary tune in Hindu
**मालश्री(सी)** music.

ମାଲଶ୍ରୀ କରିବା—ଦେ. କ୍ର—କୌଣସି କଥାକୁ ଉପର୍ଯ୍ୟୁପରି କହିବା ବା
Mālasri karibā ଘୋଷି ହେବା—To recite a matter
बारबार बला repeatedly. [ଦ୍ର—ଜଣେ ବ୍ୟକ୍ତି କୌଣସି
**राम अलापना** ବିଷୟକୁ ବାରଂବାର ପାଟି କରି କହିଲେ ବା
ମାଲଶ୍ରୀ ମେଲ୍ହା(ଲେ)ଇବା } ଅନ୍ୟରୂପ ଝୁରି ହେଲେ କହନ୍ତି, ଅମୁକ
ମାଲଶ୍ରୀ ଲଗା(ଗେ)ଇବା } ଲୋକ ଅମୁକ ବିଷୟକୁ ମାଲଶ୍ରୀ
କରୁଛି ବା ହରିଗୁଣ ଘୋଷି କରୁଛି । ]

ମାଲ(ଲି)ସ୍—ବୈଦେ. ବି ( ଅ. ମାଲିଶ୍ )—ଦେହରେ ତୈଳାଦିର
Māla(li)s ମର୍ଦ୍ଦନ—Rubbing of oil on the body.
मालिस **मालिश**

ମାଲସା—ଦେ. ବି ( ସଂ. ମଲ୍ଲିକା ବା ମାଲାକାର=ମୃତ୍ପାତ୍ରବିଶେଷ)—
Mālasā ମାଟିର ଗଭୀର ବଡ଼ ପଲମ; ଢାଙ୍କୁଆ; ଉମ୍ବେଇ—
मालसा **ढकना** A deep earthen pan. ପ୍ରାଦେ.( ମେଦିନୀ-
ପୁର ) ବି—ଛୋଟ ସରେଇ—Small cup-like
hard-shell of cocoanut.

ମାଲସା ଭୋଗ—ଦେ. ବି—ଠାକୁରଙ୍କୁ ଯେଉଁ ମିଷ୍ଟାନ୍ନାଦି ମାଲସାରେ ବା
Mālasā bhoga ଢାଙ୍କୁଆରେ ଭୋଗ କରାଯାଏ—Sweetmeat
मालसा भोग offered to a deity in a big pan.

ମାଲଶୀ—ସ. ବି—୧ । କେଶପୁଷ୍ପ ବୃକ୍ଷ—1. Name of a tree.
Mālasī ୨ । ମେଘ ବା ମାଳବ ରାଗର ପତ୍ନୀ; ମାଳବଶ୍ରୀ—2. Name of a secondary tune.

ମାଲ ସୂତା—ଦେ. ବି (ସ. ମାଳା+ସୂତ୍ର)—ଅରଟ ଚକର ଖୁର ପାଖେ Māla sūtā ଗୁଡ଼ାଥିବା ହୋଇ ଢାକୁଡ଼ିରେ ଲଗ୍ନ ହୋଇଥିବା ସୂତ—ମାଲସୂତା माल The string used in furning round the spindle of a spinning wheel.
[ ଦ୍ର—ଅରଟ ଘୁରାଇଲେ ଏହି ସୂତା ଢାକୁଡ଼ିକୁ ଘୁରାଏ । ]

ମାଲ(ଲ) ହାଣ୍ଡି—ଦେ. ବି—୧ । ମୃତାହର ଦଶଦିନ ରାତିରେ ବିସର୍ଜନ Māla(la) hāndi କରାଯିବା ପାଗ ହାଣ୍ଡି—1. The cooking earthen pots which are thrown away on the tenth night of one's death. ୨ । ଦଶ-ଘାଟରେ ଦଗ୍ଧ ହାଣ୍ଡି—2. The burning earthen pot set ablaze on the tenth day at the bathing ghat. ୩ । (ସ. ମାଳବ) ରାଗବିଶେଷ—3. A kind of tune.

ମାଲା—ସ. ବି ( ମା=ଲକ୍ଷ୍ମୀ; ପାପ୍ତି+ଲା. ଧାତୁ=ଗ୍ରହଣ କରିବା+ Mālā କର୍ତ୍ତୃ. ଅ+ସ୍ତ୍ରୀ. ଆ )—୧ । ମାଳ; ମାଲ୍ୟ; ପୁଷ୍ପାଦିରଚିତ ହାର; ସ୍ରକ୍—1. Garland. ୨ । ବେକରେ ପିନ୍ଧା-ଯିବା ସୁନା ଆଦିର ହାର ବା କଣ୍ଠି—2. Necklace. ୩ । ସମୂହ; ସଂଗ୍ରହ—3. Collection. ୪ । ପନ୍ତି; ଶ୍ରେଣୀ; ଧାଡ଼ି—4. Row. [ ଦ୍ର—ଶବର ଭାଷାରେ ମାଲ=ଜଙ୍ଗଲ; ଜଙ୍ଗଲରୁ ଆସୁଥିବା ଫୁଲରେ ପ୍ରସ୍ତୁତ ହେବାରୁ ଏହାର ନାମ ମାଲା । ଏହି ଶବ୍ଦ ଶବର ଭାଷାରୁ ସଂସ୍କୃତକୁ ଆସିଅଛି । ]

ମାଲ—ଗ୍ରାଦେ. ( ବସ୍ତର ) ବି—ମାଲା ( ଦେଖ )
Māla Mālā ( See )

ମାଲଏକ—ଦେ. ବି—ମହାନାଏକ ( ଦେଖ )
Mālaeka Mahānaeka ( See )
[ ମାଅ(ହା)ନା(ଲ) ଏକ—ଅନ୍ୟରୂପ ]

ମାଲା କଉ(କୌ)ପୁନି—ଦେ. ବି ( ସ. ମାଲ, କୌପିନ; ସଙ୍କର )—Mālā kau(kau)puni ବାବାଜିମାନଙ୍କ ବେଶର ଦୁଇଟି ପ୍ରଧାନ माला कौपीन ଉପକରଣ; କଣ୍ଠର ମାଲା ଓ କଟିଦେଶ ନିମ୍ନରେ माला कौपीन ପରିହିତ କୌପିନ—Necklace of beads and a strip of rag worn by anchorites.

ମାଲକ୍କା—ଦେ. ବି—ମଲକ୍କା ( ଦେଖ )—Mālakkā ( See )
Mālakkā ମାଲକ୍କା मालक्का

ମାଲା କାର—ସ. ବି. ପୁଂ (ମାଲା+କୃ ଧାତୁ=କରିବା+କର୍ତ୍ତୃ. ଅ)—Mālā kāra ୧ । ଯେ ମାଲା ଗୁନ୍ଥେ—1. One who prepares garlands. ୨ । ହାଠର ମାଲା ପ୍ରସ୍ତୁତକାରୀ ଜାତିବିଶେଷ—2. A caste manufacturing beads. ୩ । ମାଳୀ; ଫୁଲଫଳର ଉଦ୍ୟାନରକ୍ଷକ; ଉଦ୍ୟାନପାଳ—3. A gardener. ୪ । ଯେ ଫୁଲର ମାଲ ବିକି ପେଟ ପୋଷେ—4. One who maintains himsilf by selling garlands of flowers; a florist. ସ. ବିଣ—ମାଲା ଗ୍ରଥନକାରୀ—Preparing strings of garlands.

ମାଲା ଗୌଡ଼(ର)—ସଂ. ବି—ମାଳବ ଗୌଡ଼ ( ଦେଖ )
Mālā gaurda(ra) Mālaba gaurda ( See )

ମାଲା ତିଲକ—ସଂ. ବି ( ମାଲା+ତିଲକ )—ବାବାଜିମାନେ ସାମ୍ପ୍ରଦାୟିକ Mālā tilaka ବିଶେଷଚିହ୍ନରୂପେ ଧାରଣ କରିଥିବା ମାଲା ଓ ଚିତା—Distinctive beads and painting of anchorites. [ ଦ୍ର—ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ଆଦି ସଂପ୍ରଦାୟମାନଙ୍କରେ ମାଲା ଓ ଚିତା ଭିନ୍ନ ଭିନ୍ନ ଥିବାରୁ, ମାଲା ଓ ତିଳକ ଦେଖି କେଉଁ ବାବାଜି କେଉଁ ସଂପ୍ରଦାୟଭୁକ୍ତ, ଏହା ଜଣା ପଡ଼େ । ]

ମାଲା ତିଲଖ—ଦେ. ବି—ମାଲା ତିଲକ ( ଦେଖ )
Mālā tilakha मालातिलक Mālā tilaka (See)

ମାଲା ତୃଣକ—ସଂ. ବି ( ମାଲା+ତୃଣକ )—ଗନ୍ଧତୃଣ; ଗନ୍ଧବେଣା; Mālā truṇaka ଧନ୍ୱନ୍ତରୀ ଘାସ—A fragrant sort of grass.

ମାଲା ଦୀପକ—ସଂ. ବି—ଅର୍ଥାଲଙ୍କାରବିଶେଷ; ଦୀପକାଲଙ୍କାରର ମାଲା—Mālā dīpaka A string of figures of speech

ମାଲା ଦୂର୍ବା—ସଂ. ବି ( ମାଲା=ମାଲାକାର+ଦୂର୍ବା )—ଗଣ୍ଠି ଦୂବ; Mālā dūrbā ଲମ୍ବ ଦୂବ—The Dūba grass creeper.

ମାଲା ବଟୀ—ସଂ. ବି—ସଙ୍କର ରାଗିଣୀ ବିଶେଷ—Name of a Mālā batī mixed musical air.

ମାଲାବାର—ଦେ. ବି—ମାଲବାର ( ଦେଖ )
Mālābāra Mālabāra ( See )

ମାଲାମ୍—ଦେ. ବି ( ସଂ. ମଲ୍ଲ )—ମଲ୍ଲକ୍ରୀଡ଼ା—
Mālām कुश्ती दंगल Wrestling; athletic sports.

ମାଲାମାଲ୍—ଦେ· ବି ( ଜଠରଥ )—୧ । ସ୍ଥାବର ଓ ଅସ୍ଥାବର ସମ୍ପତ୍ତି Mālāmal —1. Moveable and immoveable माल properties. ୨ । ପଣ୍ୟଦ୍ରବ୍ୟ—2. Goods; मालमत्ता merchandise. ୩ । ମାଲପତ୍ର; ଅଳଙ୍କାର; ବାସନ ଓ ଅସବାବ୍ ଆଦି ମାଲ—3. Moveable properties. ୪ । ଗୃହର ସମୁଦାୟ ଚଳନ୍ତି ପଦାର୍ଥ—4. All the moveable properties of a house. [ଦ୍ର—ହିନ୍ଦୀରେ ମାଲାମାଲ ଶବ୍ଦ ବିଶେଷଣ ଓ ଏଥିର ଅର୍ଥ ଧନଧାନ୍ୟରେ ପୂର୍ଣ୍ଣ (ବ୍ୟକ୍ତି) । ]

ମାଲା ରୂପକ—ସ. ବି—ରୂପକ ( ଦେଖ )
Mālā rūpaka Rūpaka ( See )

ମାଲାଲିକା—ସ. ବି—ପୁକ୍କା; ପିଡ଼ଙ୍ଗ ଶାକ—A potherb; Mālālikā Trigonella Corniculata.
(ମାଲାଲୀ—ଅନ୍ୟରୂପ)

ମାଲି—ସ. ବି—ସୁକେଶ ରାକ୍ଷସର ପୁତ୍ର ଓ ରାବଣର ମାତାମହ—Māli Name of a demon, the maternal माली grandfather of Rābaṇa. ଦେ. ବି ୧ । ( ସ. माला ( ମାଲା )—ଜପମାଳା—1. Rosary. [ ଦ୍ର

—ଭିନ୍ନ ଭିନ୍ନ ଉପାଦାନ ଅନୁସାରେ ମାଳର ବା ଜପମାଳାର ଭିନ୍ନ ଭିନ୍ନ ନାମ ହୁଏ, ଯଥା—ରୁଦ୍ରାକ୍ଷମାଳ, ଭଦ୍ରାକ୍ଷମାଳ, ସ୍ୱର୍ଣ୍ଣରମାଳ, ତୁଳସୀମାଳ । ] ୨ । ଶୂଦ୍ର ଓ ବୈଷ୍ଣବଙ୍କ ବେକରେ ପିନ୍ଧାଯିବା ମାଳ—2. String of beads worn by anchorites and Śūdras. ୩ । (ସଂ. ମାଳିକ ) ପୁଂ ମାଳାକାର—3. A garland-maker. ୪ । ପୁଷ୍ପ ବ୍ୟବସାୟୀ—4. A florist. ୫ । ମାଳା ନିର୍ମାଣକାରୀ—5. A manufacturer of beads. ୬ । ଉଦ୍ୟାନ ରକ୍ଷକ—6. Gardener. ୭ । ଦେବତାଙ୍କୁ ଫୁଲ ପାଣିଦେବା ଶୂଦ୍ର ସେବକ—7. A Śūdra sebaka of a Deity who offers or supplies flowers and water. ପ୍ରାଦେ ( ପୁରୀ; ଗଞ୍ଜାମ ) ବି—କଣ୍ଠି; ଛୋଟ କଣ୍ଠମାଳା—Small necklace. [ ଉ—ଶଙ୍ଖମାଳୀ ମୁଦି ଯେ ସାରବଳି ଅଛି । କୃଷ୍ଣସିଂହ. ମହାଭାରତ. ବନ । ] [ ଦ୍ର—ପୁରୀରେ ଓ ଗଞ୍ଜାମରେ କଣ୍ଠମାଳାର ଉପାଦାନ, ଉପକରଣ ଓ ଦାନାର ଆକାରଅଦି ଯୋଗୁଁ ମାଳର ଭିନ୍ନ ଭିନ୍ନ ନାମ ହୁଏ । ଯଥା—( ଉପାଦାନ ଅନୁସାରେ ) ସୁନାମାଳ, ରୂପାମାଳ, ଯୋଡ଼ିହାଲାମାଳ, ଅଠିଲମାଳ । ( ଆକାର ସାଦୃଶ୍ୟରେ ) ମୁଗେଇମାଳ, ଧାନୁଆମାଳ, ପଦ୍ମିମାଳ, ସୋରିଷିଆମାଳ, ଧନିଆଫାଳିଆ ମାଳ, ହରଡ଼ଫାଳିଆ ମାଳ ଓ ହରଡ଼ାମାଳ ଇତ୍ୟାଦି ]

ମାଳୀ, ମାଲी, ମାଲी (margin variants)

ମାଲିଆଣୀ, ମାଲ୍ୟାଣୀ, ମାଲିଣୀ, ମାଲୁଣୀ, ମାଲେଣୀ — ସ୍ତ୍ରୀ

**ମାଲି**—ପ୍ରାଦେ ( ସମ୍ବଲପୁର; 'ଳ' ସ୍ଥାନରେ 'ଲ' ଉଚ୍ଚାରଣ ) ବି—ମାଳି
Māli —Māḻi. ବୈଦେ ( ଅ. ମୁଆମଲା ) ବି—ମକଦ୍ଦମା
माली मामला Litigation; case; suit.

**ମାଳିଆ**—ଦେ. ବିଣ. ପୁଂ ( ସାଧାରଣତଃ ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ )
Māḻiā —୧ । ମାଳା ବ୍ୟବହାରକାରୀ ବା ପରିଧାନ କରିଥିବା ବ୍ୟକ୍ତି—1. Wearing beads. [ ଉ—ବଳିବେନି ତନନକୁ ପଲ୍ଲବମାଳିଆଙ୍କୁ । କବିସୂର୍ଯ୍ୟ, ସଙ୍ଗୀତ । ୨ । ମାଳର ବା ଅଞ୍ଚଳରେ ବାସ କରୁଥିବା ବ୍ୟକ୍ତି—2. Living in a particular country. ( ଯଥା—ଗଡ଼ମାଳିଆ, ଡଙ୍ଗମାଳିଆ । ) ୩ । ଜଙ୍ଗଲର ଅଧିବାସୀ—3. Inhabiting a wild country.
मालाधारी
मालवाला
ମାଲେଇ, ମାଲୋଇ — ସ୍ତ୍ରୀ
जङ्गली
जङ्गली

**ମାଳିଆଣୀ**—ଦେ. ବି. ସ୍ତ୍ରୀ ( ସଂ. ମାଳିନୀ )—୧ । ମାଳାକାରଣୀ ସ୍ତ୍ରୀ—
Māḻiāṇi 1. A female florist or garland-maker. ୨ । ମାଳିର ସ୍ତ୍ରୀ—2. The wife of a Māḻi. [ଦ୍ର—ମାଲ୍ୟାଣୀ ପୁଷ୍ପ ଓ ହାର ଆଦି ଯୋଗାଇ ରାଜାଙ୍କ ଅନ୍ତଃପୁରକୁ ଅବାରିତ ଭାବରେ ଯିବା ପାଇଁ ତାଙ୍କୁ ଛାଡ଼ ଥିବାରୁ, ଆମ ଦେଶର କବି ଓ ଗଳ୍ପକାରମାନେ ମାଳିଆଣୀକୁ ଏହା ରାଜାଙ୍କ ଅନ୍ତଃପୁରସ୍ଥା ପ୍ରେମା ଆଦିଙ୍କ ନିକଟକୁ ଯାଇ ଦୌତ୍ୟ କାର୍ଯ୍ୟ କରିବାର ବର୍ଣ୍ଣନା କରି ଅଛନ୍ତି । କେହି କେହି କବି ଏହାର ଯୌବନ, ବେଶଭୂଷା ଓ ରସିକତା ବର୍ଣ୍ଣନାରେ କୁଶଳତ୍ୱ ଦେଖାଇ ଥିବାର ଦେଖାଯାଏ ।]
ମାଲିଣୀ, ମାଲୁଣୀ, ମାଲେ(ଲେ)ଣୀ, ମାଲ୍ୟାଣୀ
मालिनी
मालिन

**ମାଳିଆଳି**—ଦେ. ବି—ମାଳିମାନେ; ଦେବ ସେବକଗଣ—
Māḻiāḻi The Sebakas of a Deity.
(ଉ—ମାଳିଆଳି ଦକ୍ଷିଣା ବର୍ତ୍ତକ ବିନା କମ୍ଭୁ, ନ ଯୋଗନ୍ତି ଦେବାଙ୍କୁ ହର ତରଣେ ଅମ୍ଭୁ ଯେ । ଉଞ୍ଜ. ଲାବଣ୍ୟବତୀ ।)

**ମାଳିକ**—ସଂ. ବିଣ. ପୁଂ ( ମାଳା + ସମ୍ବନ୍ଧାର୍ଥେ ଇକ )—୧ । ମାଳା
Māḻika ସମ୍ବନ୍ଧୀୟ—1. Relating to garland. ୨ । (ମାଳିକା—ସ୍ତ୍ରୀ) ମାଲ୍ୟ ନିର୍ମାଣକାରୀ—2. Preparing beads or garlands. ସଂ.ବି—୧ । ମାଳାକାର;ମାଳି—1.Florist; gardener. ୨ । ଚିତ୍ରକର—2. A painter. ୩ । ପକ୍ଷିବିଶେଷ—3. Name of a bird. ୪ । ରଜକ; ଧୋବା—4. Washerman.

**ମାଲିକ୍ ମକ୍ ବୁଜା**—ପ୍ରାଦେ. ( ସମ୍ବଲପୁର ) ବି—ଯେଉଁ ରୟତ ଏକ
Mālik mak bujā କ୍ଷେତ୍ର ବା ବନ୍ଧ କ୍ଷେତ୍ର ଚାଷ କରେ, କିନ୍ତୁ ସାଧାରଣ ଖଜଣାଠାରୁ ତାହାର ଖଜଣାର ପ୍ରକାର ଭିନ୍ନ ହୁଏ ଓ ସେ ନିଜେ ମାଲଗୁଜାର ନୁହେଁ କି ମଧ୍ୟସ୍ୱତ୍ୱାଧିକାରୀ ମଧ୍ୟ ନୁହେଁ (ସମ୍ବଲପୁର ମାନୁଆଲ୍ ୧୯୨୮)—A raiyat who cultivates a field but pays rent different in kind from ordinary tenants and is neither a revenue-payer nor a tenureholder.

**ମାଲିକ**—ବୈଦେ.ବି.ପୁଂ (ଅ. ମାଲିକ୍)—୧ । ବସ୍ତୁର ବା ସମ୍ପତ୍ତିର ସ୍ୱାମୀ
Mālika ବା ସ୍ୱତ୍ୱାଧିକାରୀ—1. Proprietor; owner. (ଉ—ଏକ କାର୍ଯ୍ୟେ ଦୁଇ ଜଣ ମାଲିକ ହେଲେ, ସେ କାର୍ଯ୍ୟ ନାଶ ଯାଏ ବିରୋଧ ଘଟିଲେ । କୃଷ୍ଣସିଂହ. ମହାଭାରତ ଶାନ୍ତି ।) ୨ । ଅଧିକାରୀ—2. Possessor; holder. ୩ । ଗୃହର କର୍ତ୍ତା; ପ୍ରଭୁ—3. Lord; master. ୪ । ଗ୍ରାମର ଜମିଦାର—4. Zamindar of a village. ୫ । ରାଜା—5. King. ୬ । ଦଳର ନେତା ବା ପ୍ରଧାନ ବ୍ୟକ୍ତି—6. Leader or headman of a group.
मालिक
मालिक
ମାଲିକାଣୀ, ମାଲିକିଆଣୀ — ସ୍ତ୍ରୀ

**ମାଲିକ(କି) ସ(ସ୍ୱ)ତ୍ୱ**—ଦେ. ବି [ଫା. ମାଲିକ + ସଂ.ସ୍ୱତ୍ୱ; କଟିଉଆ]—
Mālika(ki) sa(swa)twa ୧ । ସମ୍ପତ୍ତିର ସ୍ୱାମିତ୍ୱ; ମିଲିକିୟତ୍—1. Proprietory right. ୨ । ପୂର୍ଣ୍ଣ ସ୍ୱାମିତ୍ୱ; ନିର୍ବ୍ୟୂଢ଼ ସ୍ୱତ୍ୱ—2. Absolute proprietory right in a property.
मालिकि सत्व
मालिकी स्वत्व

**ମାଳିକା**—ସଂ. ବି. ସ୍ତ୍ରୀ ( ମାଳିକ + ସ୍ତ୍ରୀ. ଆ )—୧ । ସୁପ୍ରଲା; ମଲ୍ଲିକା;
Māḻikā ମଲ୍ଲୀ ଫୁଲ—1. Jasmine. ୨ । ଡବଲ ମଲ୍ଲି; ସାତ ପାଖୁଡ଼ିଆ ମଲ୍ଲି; ମୁଗୁରା ମଲ୍ଲି—2. Jasmine having many folds of petals. ୩ । ପୁଷ୍ପ ମାଲ୍ୟ; ଫୁଲ ହାର—3. A chaplet ୪ । ପୁତ୍ରୀ; କନ୍ୟା; ଦୁହିତା; ତନୟା—4. Daughter. ୫ । କଣ୍ଠଭୂଷଣ; କଣ୍ଠି; ମାଳି—5. Necklace. ୬ । ନଦୀ ବିଶେଷ—6. Name of a river. ୭ । ମଦିରା ବିଶେଷ—7. Name of a kind of wine. ୮ । ଝୁମା; ଅତସୀ; [illegible]—8. L[illegible] ଦେ. ବି—ଅତ୍ୟୂତାନନ୍ଦ ଦାସ

ଅଚ୍ୟୁତଙ୍କ ଭବିଷ୍ୟତ ବାଣୀ ନିହିତ ପଦ୍ୟ ପୁସ୍ତକ—Poems containing predictions and prophesies about future and composed by Achyutananda Dāsa and others.
ମାଲିକା
[ଦ୍ର—କଳିକାଳରେ ବିଷ୍ଣୁ କଳ୍କୀ ଅବତାରରେ ମନୁଷ୍ୟ ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ପାପୀ ଓ ମ୍ଳେଚ୍ଛମାନଙ୍କୁ ନାଶ କରି ପୃଥିବୀରେ ପୁଣି ସତ୍ୟର ରାଜତ୍ୱ ସ୍ଥାପନ କରିବେ ବୋଲି ମାଳିକାରେ ଲେଖା ଅଛି । କଟକ ଜିଲ୍ଲାର ନେମାଳ ଗାଦିର ମହାନ୍ତ ଶ୍ରୀ ଚୈତନ୍ୟଙ୍କ ସମସାମୟିକ ଅଚ୍ୟୁତାନନ୍ଦ ଦାସ ଓ ତଦାନୀନ୍ତନ ଅନ୍ୟାନ୍ୟ ଭକ୍ତକବିମାନେ ଏ ମାଳିକାମାନ ରଚନା କରିଅଛନ୍ତି । ଏଥିରେ ଅନେକ ଦୁର୍ବୋଧ୍ୟ ଭାଷା ଓ ସଙ୍କେତମାନ ଲେଖା ଅଛି ଓ ଭିନ୍ନ ଭିନ୍ନ ସ୍ଥାନର ସଙ୍କେତ ଦିଆ ଯାଇଅଛି ଯେ, ସେହି ସେହିଠାରେ ଭଗବାନ କଳ୍କୀ ଅବତାରରୂପେ ଜନ୍ମ ହୋଇ ଭକ୍ତମାନଙ୍କୁ ଏକତ୍ର କରିଇ ଦଳ ବଳ ସଂଗ୍ରହ କରି ଦୁଷ୍ଟଙ୍କୁ ଓ ପାପୀମାନଙ୍କୁ ନିପାତ କରିବେ; ଦେଶରେ ରକ୍ତ ନଦୀ ପ୍ରବାହିତ ହେବ; ତତ୍ପରେ ସତ୍ୟର ରାଜତ୍ୱ ପ୍ରତିଷ୍ଠିତ ହେବ । ମାଳିକାର ଗୋଟିଏ ବାକ୍ୟ ଏଠାରେ ଦିଆଗଲା; ଏଥିରୁ ଭାଷାର ଓ ସମସ୍ତର ଦୁର୍ବୋଧ୍ୟତା ଅନୁମିତ ହେବ । "ତିରିକି ଥିବୁ ତେଏରିକୁ, ଚଉଦ ପନ୍ଦର କେହି ନ ରହିବେ, ସତ ଉପୁଜିବ ସତରିକୁ ।" ଏ କେଉଁ ୧୩ ଓ କେଉଁ ୧୪।୧୫ ବା ୧୭, ତାହା ଅନୁମାନ କରିବା ଦୁଃସାଧ୍ୟ ।]

**ମାଳିକା ଡାକ**—ଦେ. ବି (ମାଳିକା+ଡାକ)—ମାଳିକାରେ ଲେଖାଥିବା ଭବିଷ୍ୟଦ୍‌ବାଣୀ—Prophesies mentioned in the Mālikā.
Mālikā ḍāka

**ମାଲିକାନା**—ବୈଦେ ବି (ଆ)—୧ । ସ୍ୱାମୀ ବା ପ୍ରଭୁର ପ୍ରାପ୍ୟ—1. Dues payable to a proprietor, ୨ । ରାଜାଙ୍କ ପ୍ରାପ୍ୟ ଶୁଳ୍କ—2. Royalty; cess. ୩ । ପ୍ରଜାଠାରୁ ଆଦାୟ ହେବା ଖଜଣାରୁ ଜମିଦାର ବା ମକଦମ ଶତକଡ଼ା ଯେଉଁ ଅଂଶ ନିଜର ପ୍ରାପ୍ୟ ସ୍ୱରୂପ କାଟି ରଖିବା ପରେ ଗଭର୍ଣ୍ଣମେଣ୍ଟଙ୍କୁ ରାଜସ୍ୱ ଦିଅନ୍ତି—3. The fixed percentage of rent which is deducted and kept to himself by the zamindar after realisation and before payment to the Government.
Mālikānā
মালিকানা
**मालिकाना**

**ମାଲିକି**—ବୈଦେ· ବିଣ. (ଆ)—ମାଲିକ ସମ୍ବନ୍ଧୀୟ—Proprietory; relating to ownership. ବୈଦେ. ବି (ଆ)—ସୁନ୍ନୀ ସମ୍ପ୍ରଦାୟ ଭୁକ୍ତ ମୁସଲମାନଙ୍କର ଶ୍ରେଷ୍ଠ ଶାଖା ମଧ୍ୟରୁ ଏକ ଶାଖା—One of the four sects of the Sunni Mahomedans. [ଦ୍ର—ଏ ଶାଖାର ପ୍ରବର୍ତ୍ତକ ଧର୍ମଗୁରୁ ଇମାମ୍ 'ମାଲିକ୍ ବିନ୍ ଅଂସ୍'ଙ୍କ ନାମରୁ ଏହି ନାମ । ମାଲିକୀମାନେ ଆରବ ଓ ଉତ୍ତର ଆଫ୍ରିକାରେ ଅଛନ୍ତି । ଅନ୍ୟ ତିନି ଶାଖାର ନାମ—ହନାଫି, ହନବଲୀ, ସାଫେଇ ।]
Māliki
মালিকী
**मालिकी**

**ମାଲି ଝୁଲି**—ଦେ. ବି—ମାଳ ଝୁଲି (ଦେଖ)—
Māli jhuli Māla jhuli (See)
মালা ঝোলা **मालाफुला**

**ମାଳିନୀ**—ସଂ. ବିଣ. ସ୍ତ୍ରୀ (ମାଳୀ ବା ମାଳିନ୍ ଶବ୍ଦର ସ୍ତ୍ରୀଲିଙ୍ଗ; ମାଳା + ଅସ୍ତ୍ୟର୍ଥେ. ଇନ୍+ସ୍ତ୍ରୀ. ଈ)—ମାଳାଧାରିଣୀ—Wearing a garland. ସଂ. ବି. ସ୍ତ୍ରୀ—୧ । ମାଳୀର ପତ୍ନୀ; ମାଳୁଣୀ; ମାଳିଆଣୀ—1. A female florist; flower-girl. (ଉ—ଦ୍ରୌପଦୀ ଦେଇଥିଲେ ମାଳିନୀ ନାମ ମୋତେ । କୃଷ୍ଣସିଂହ. ମହାଭାରତ. ବିରାଟ ।) ୨ । ମାତୃକା-ଭେଦ—2. One of the Goddesses of the Mātṛukā class. ୩ । କାଳୀ; ଦୁର୍ଗା—3. Durgā; Goddess. ୪ । ଚମ୍ପାନାମ୍ନୀ ନଗରୀ—4. Name of an ancient city. ୫ । ସୁରନଦୀ; ମନ୍ଦାକିନୀ—5. The celestial Ganges. ୬ । ପଞ୍ଚଦଶାକ୍ଷର ଛନ୍ଦୋବିଶେଷ—6. A metre of 15 letters. [ଦ୍ର—ଏହା କାବ୍ୟର ସର୍ଗମାନଙ୍କ ଶେଷ ଶ୍ଳୋକରେ ବ୍ୟବହୃତ ହୁଏ । ଏଥିର ୧ମ, ୨ୟ, ୩ୟ, ୪ର୍ଥ, ୫ମ, ୬ଷ୍ଠ ୧୦ମ, ୧୩ଶ ସ୍ୱର ଲଘୁ ଓ ୭ମ, ୮ମ, ୯ମ, ୧୧ଶ, ୧୨ଶ, ୧୪ଶ ଓ ୧୫ଶ ସ୍ୱର ଗୁରୁ ।] ୭ । ଏକପ୍ରକାର ରାଗ—[ଦ୍ର—ରାଗ ତଳେ ନୋଟ୍ ଦେଖ]—7. A kind of Rāga (See).
Mālini

**ମାଲିମ୍**—ବୈଦେ. ବି (ଆ. ମୁଅଲ୍ଲିମ୍)—ଜାହାଜର ଚାଳକ—A pilot of a vessel; ships' mate.
Mālim **मुअल्लिम**

**ମାଳିନ୍ୟ**—ସଂ. ବି (ମଳିନ+ଭାବାର୍ଥେ. ଯ)—୧ । ମଳିନତା—1. Dirtiness; filthiness, paleness. ୨ । ମନୋଦୁଃଖ—2. Gloominess; grief; melancholy. ୩ । ମନୋବିବାଦ—3. Mental difference or dessension.
Mālinya

**ମାଳିନ୍ୟ ନିର୍ମଳ**—ସଂ. ବିଣ (ବହୁବ୍ରୀହି; ମାଳିନ୍ୟ+ନିର୍ମଳ)—ମଳିନତା-ରହିତ; ଯହିଁରୁ ମଳିନତା ଦୂର କରି ଯାଇଅଛି—Freed from dirt. [ଉ—ମାଳିନ୍ୟ ନିର୍ମଳ ମୁକୁରେ ଗ୍ରହି, ପ୍ରତିବିମ୍ବ ଯେବେ ଦଶିବ ନାହିଁ—କବିସୂର୍ଯ୍ୟ. ସଙ୍ଗୀତ ।)
Mālinya nirmala

**ମାଲି ମକଦ(ଦ୍ଦ)ମା**—ବୈଦେ. ବି ( ଏକାର୍ଥକ ସହଚର; ଆ. ମୁଆମଲ୍ଲା, ମୁକଦ୍ଦମା)—ମାମଲା ମକଦ୍ଦମା—Litigation; case; suit.
Māli makada(dda)mā
মালিমকদমামা **मला मुकद्दमा**

**ମାଲି ମ(ମା)ହାପାତ୍ର**—ଦେ. ବି—ମହାପାତ୍ର ଉପାଧିଧାରୀ ମାଳିଜାତୀୟ ବ୍ୟକ୍ତି—A person of the florist caste
Māli ma(mā)hāpātra

**ମାଲି ମାମଲା**—ବୈଦେ. ବି (ଏକାର୍ଥକ ସହଚର; ଆ. ମୁଆମଲ୍ଲା)—ମକଦ୍ଦମା—Case; suit. (ଉ—ମାଲି ମାମଲା ପଡ଼ିଲେ ମଙ୍ଗଳାଙ୍କର କିଛି କିଛି ଲାଭ ହୁଏ । ଫକୀ. ମୋହନ. ଛମାଣ ଆଠଗୁଣ୍ଠ ।)
Māli māmalā
মালিমামলা
**मामला**

ମାଲିସ(ସି)—ବୈଦେ. ବ (ଫା. ମାଲିଶ୍)—ତୈଳାଦି ମର୍ଦ୍ଦନ—Rubbing of oil on the body.
Mālis(si) মালিস **मालिश**

ମାଳି ସେବକ—ଦେ. ବ(ସ.ମାଳ+ସେବକ)-ଦେବତାଙ୍କର ପୁଷ୍ପଯୋଗାଇବା ଶୁଦ୍ର ଭୃତ୍ୟ—A Sūdra temple servant supplying flowers to a Deity.
Māli sebaka
মালি **शूद्रसेवक**

ମାଳୀ—ସ. ବ. ପୁଂ (ମାଳା+ଅସ୍ତ୍ୟର୍ଥେ. ଇନ୍, ମାଳନ୍, ୧ମା.୧ବ)—୧ । ମାଳାକାର—1. Florist; bead-maker. ୨ । (ମ ଳମା—ସ୍ତ୍ରୀ) ରାକ୍ଷସ ବିଶେଷ—2. Name of a demon. [ ଦ୍ର—ଏ ସୁକେଶ ରାକ୍ଷସର ପୁତ୍ର ଓ ମାଲ୍ୟବାନଙ୍କର ଓ ସୁମାଲୀଙ୍କର ଭାଇ ଥିଲେ । ] ୩ । ଉଦ୍ୟାନପାଳକ—3. Gardener.
Māli
ସ. ବଣ. ପୁଂ—ମାଳାଧାରୀ—Wearing a garland. [ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଯାହାର ମାଳା ଅଛି ବା ମାଳା ଧାରଣକାରୀ ଅର୍ଥରେ ବ୍ୟବହୃତ ହୁଏ ।] ଦେ. ବ(ସଂ. ମାଳ)—ଉର ମାଳା—Necklace. (ଉ—ବଳୁମାଳୀ ବଳୁମାଳୀ ଅଷ୍ଟଶସ୍ତ୍ର ବସ୍ତ୍ର ଅଳଙ୍କାର ଦେଇ । ଭକ୍ତ. ବୈଦେହୀଶବିଳାସ ।)

ମାଳୀୟ—ସ. ବ ( ମାଳ+ସମ୍ବନ୍ଧାର୍ଥେ. ଈୟ )—ମାଳ ସମ୍ବନ୍ଧୀୟ—Relating to Māla or jungle; jungly.
Māliya

ମାଲୁ—ଦେ. ବ ( ସ. ମଲ୍ଲ )—୧ । ମାଲ; ମଲ୍ଲ—1. A wrestler. ୨ । ଯୋଦ୍ଧା—2. A warrior. [ ଉ—ଶାଲୁଲୁ ମାଲୁ ସଙ୍ଗ କୁନ୍ଦେ—ଛଗ । ]
Mālu
**मॉल माल**

ମାଳୁ—ସ. ବ. ସ୍ତ୍ରୀ ( ମଲ୍ ଧାତୁ=ଧାରଣ କରିବା+କର୍ତ୍ତୃ. ଉ )—୧ । ନାରୀ—1. Woman. ୨ । ପତ୍ରମୟ ଲତା—2. A leafy creeper. ୩ । ବନ୍ୟଜାତିବିଶେଷ—3. Name of a wild tribe.
Mālu

ମାଳୁଆ—ଦେ. ବଣ ( ସ. ମାଳୀୟ )—୧ । ମାଳ ବା ଜଙ୍ଗଲ ପ୍ରଦେଶ ସମ୍ବନ୍ଧୀୟ; ଜଙ୍ଗଲୀ—1. Jungly; relating to wild country. [ ଯଥା—ମାଳୁଆ ପ୍ରଦେଶ ] ୨ । ଜଙ୍ଗଲବାସୀ—2. Residing in the forests.
Māluā
জঙ্গলী **जंगली**
ଦେ. ବ ( ସ. ମାଳୁ )—କନ୍ଧଜାତି—Name of a wild tribe (the Khonds) of Orissa.

ମାଳୁଆ ଜ(ଜ୍ୱ)ର—ଦେ. ବ (ସ. ମାଳୀୟ+ଜ୍ୱର)—ଜଙ୍ଗଲ ଦେଶରେ ମନୁଷ୍ୟଙ୍କୁ ଧରିବା ଜର; ମାଲେରିଆ—Malarial fever prevalent in wild tracts.
Māluā ja(jwa)ra
জঙ্গলের জ্বর
**मलेरिया**

ମାଳୁଆ ଗାଈ—ପ୍ରାଦେ. ( ଗଡ଼ଜାତ ) ବ—ବର୍ଷାଦିନରେ ଜଙ୍ଗଲରେ ଓ କନ୍ଧପଲ୍ଲିରେ ଯେଉଁ ଗାଈମାନଙ୍କୁ ଚରିବାକୁ ଛଡ଼ା ଯାଏ—The cows that are left in jungles and in Kandha hamlets for the purpose of grazing during the rains.
Māluā gāi

ମାଳୁ(ଳୁ)ଣୀ—ଦେ. ବ. ସ୍ତ୍ରୀ ( ସ. ମାଳିନୀ )—୧ । ମାଳାକାରର ସ୍ତ୍ରୀ—1. A female florist. ୨ । ମାଳୀଜାତୀୟା ସ୍ତ୍ରୀ—2. A female of the gardener caste. [ ଉ—ହୋଇଛନ୍ତି ମାଳୁଣୀମାନେ ଦିବ୍ୟ ବେଶ—କୃଷ୍ଣସିଂହ. ମହାଭାରତ. ସଭା]
Mālu(lu)ṇi
মালিনী
**मालिन**

ମାଲୁଦ—ଦେ ବ ( ନାମ ) ( ସ. ମାଲ ଓ ହ୍ରଦ )—ପୁରୀର ଚିଲିକା-ହ୍ରଦ ନିକଟସ୍ଥ ବାଲୁକାମୟ ପ୍ରଦେଶ—A sandy tract along the Chilkā lake of the Puri district.
Mālud

ମାଲୁଦ୍ ଜାଗିରଦାର—ଦେ. ବ—ଇଂରାଜମାନେ ପ୍ରଥମେ ଓଡ଼ିଶାକୁ ଅଧିକାର କରିବା ସମୟରେ ଇଂରାଜଙ୍କୁ ସାହାଯ୍ୟ କରିଥିବା ହେତୁ, ମାଲୁଦ୍ ଅଞ୍ଚଳ ରାଜ୍ୟକୁ ପୁରସ୍କାର ରୂପେ ଜାଗିର ପାଇଥିବା ମୁସଲମାନ୍ ଜମିଦାର ଓ ତାଙ୍କ ବଂଶଧର—The Jaigirdar of the Malud estates in the district of Puri.
Mālud jāgir-dār

ମାଲୁ ଧାନ—ସ. ବ ( ମାଲୁ=ପତ୍ରଲତା+ଧା. ଧାତୁ=ଧାରଣ କରିବା +କର୍ତ୍ତୃ. ଅନ )—୧ । ଅଷ୍ଟନାଗ ମଧ୍ୟରୁ ଏକତମ—1. Name of a snake; a variegated snake. ୨ । ମହାପଥ ( ହ. ଶ )—2. Highway.
Mālu dhāna

ମାଲୁମ୍(ମୁ)—ବୈଦେ. ବଣ ( ଅ. ମଅଲୁମ୍; ମାଲୁମ୍ )—୧ । ଜ୍ଞାତ—1. Known. [ ଉ—ସମସ୍ତ ମାଲୁମ୍ ମୋତେ—ଗକାର. କଟକ ବିଜୟ । ] ୨ । ଦୃଷ୍ଟ—2. Seen; visible. ବ—ଜ୍ଞାନ—Knowledge.
Mālum(mu)
মালুম **मालूम**

ମାଲୁମ୍ କରିବା—ଦେ. କ୍ରି—୧ । ଜାଣିବା; ଜ୍ଞାତ ହେବା—1. To know. ୨ । ଅବଗତ ହେବା—2. To learn; to come to know. ( ମାଲୁମ କରା[ଏ]ଇବା—ଣିଜନ୍ତରୂପ )
Mālum kāribā
মালুম করা **जानना**

ମାଲୁମ୍ କାଠ—ଦେ. ବ ( ଅ. ମୁଅଲ୍ଲିମ୍ )—ଜାହାଜର ପ୍ରଧାନ ମାସ୍ତୁଲ—The main mast of a ship.
Mālum kātha
মালুম কাঠ **मस्तूल**

ମାଲୁମ୍ ପଡ଼ିବା (ହେବା)—ଦେ. କ୍ରି ( ଅ. ମଅଲୁମ୍ )—୧ । ଜଣା ପଡ଼ିବା; ଜଣାଯିବା—1. To be known. ୨ । ଦୃଷ୍ଟ ହେବା—2. To be visible; to be seen.
Mālum pardibā (hebā)
মালুম পড়া; মালুম হওয়া
**मालुम पडना (होना)**

ମାଲୂ(ଲୁ)ର—ସ. ବ ( ମା=ଲକ୍ଷ୍ମୀ+ଲା ଧାତୁ=ଗ୍ରହଣ କରିବା+କର୍ମ. ଉର [ ଉର ]; ( ପୁରାଣରେ କଥିତ ଅଛି ଯେ ଲକ୍ଷ୍ମୀ ଆପଣାର ସ୍ତନ କର୍ତ୍ତନ କରି ଶିବଙ୍କ ସନ୍ତୋଷାର୍ଥେ ତାହା ପ୍ରଦାନ କରିଥିଲେ )—୧ । ଶ୍ରୀଫଳ ବୃକ୍ଷ ଓ ଫଳ—1.The Bel tree and fruit; Egle Marmelos. ୨ । କପିତ୍ଥ ଗଛ ଓ ଫଳ—2. The wood-apple tree and fruit; the elephant apple; Ferona Elephantinum.
Mālū(lu)ra

ମାଲେ(ଲୋ)ଇ—ଦେ. ବଣ—ନିକୃଷ୍ଟଜାତୀୟ ( ବାସନ ଆଦି )—Inferior kind of ( metal-wares ). ( ଯଥା—ମାଲେଇ ଥାଳ, ମାଲେଇ କଂସା ) ।
Māle(lo)i

ମାଲେ(ଲୋ)ଇ ଆମ୍ବ—ଦେ. ବ ( ଶବର ଭାଷା. ମାଲ )—ଅରଣ୍ୟଜାତ ନିକୃଷ୍ଟ ଆମ୍ବ; ମାଳ ଗୁରୁଡ଼ି ( ଦେଖ )—Māla gururdi (See)
Māle(lo)i āmba
জঙ্গলী আম **जंगली आम**

ମାଲେନ୍—ପ୍ରାଦେ. ( ସମ୍ବଲପୁର ) ବ. ସ୍ତ୍ରୀ—ମାଳୀର ସ୍ତ୍ରୀ; ମାଳିଆଣୀ—A female florist or garland maker.
Mālen

ମାଲେୟ—ସଂ. ବି (ମାଳା + ସମ୍ବନ୍ଧାର୍ଥେ. ଏୟ)—ମାଳାସମ୍ବନ୍ଧୀୟ—
Mālеya Relating to garlands.

ମାଲେୟା—ସଂ. ବି. ସ୍ତ୍ରୀ (ମାଳା + ସମ୍ବନ୍ଧାର୍ଥେ ଏୟ; ସ୍ତ୍ରୀ. ଆ)—ସ୍ଥୂଳେଳା;
Māleyā ବଡ଼ ଅଳେଇଚ—Large cardamom.

ମାଲେରିଆ—ବୈଦେ. ବି—ମେଲେରିଆ (ଦେଖ)—Meleriā (See)
Māleriā ম্যালেরিয়া मैलेरिया

ମାଲୋ—ଦେ. ଅ—ମାଆଲୋ (ଦେଖ)—Mā-ālo (See)
Mālo ওমা ओमा

ମାଲୋଇ—ଦେ. ବି—୧ । ମାଲେଇ (ଦେଖ)—1. Mālei (See).
Māloi ୨ । ପାନବରଜ ଜାତିବିଶେଷ—2. A clan of betel leaf growers. ପ୍ରାଦେ. (ଗଡ଼ଜାତ) ବି—ମାଲ (ଦେଖ)—Māla (See)

ମାଲୋପମା—ସଂ. ବି (ମାଳା + ଉପମା)—କାବ୍ୟାଲଙ୍କାରବିଶେଷ;
Mālopamā ଯେଉଁଠାରେ ଏକ ଉପମେୟର ବହୁ ଉପମାନ ଦେଖାଯାଏ—A simile in which the things compared with the object of comparson are more than one. ( ଦ୍ର—ମାଲୋପମା ଅଳଙ୍କାରର ଉଦାହରଣ ଯଥା—
ମିଶିଯାଏ ଯଥା ପ୍ରଭାତ ତାରା ରବିକରଣେ,
ମିଶିଯାଏ ଯଥା ଜୀବାତ୍ମା ପରମାତ୍ମା ଚରଣେ,
ମିଶିଯାଏ ଯଥା ଚପଳା ନୀଳଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେହି ନୀଳତରଙ୍ଗେ—
ରାଧାନାଥ. ଚନ୍ଦ୍ରଭାଗା । )

ମାଲୋ ବାପଲୋ—ଦେ. ଅ—ମାଆଲୋ (ଦେଖ)—Mā-ālo (See)
Mālo bāpalo মারে বাপরে

ମାଲୋ ମ(ଗ)ଲି—ଦେ. ଅ—ମାଆଲୋ (ଦେଖ)—Mā-ālo (See)
Mālo ma(ga)li মারেগেলুম ( ମାଆଲୋ ମଲି—ଅନ୍ୟରୂପ )

ମାଲ୍ୟ—ସଂ. ବି ( ମାଳା + ସ୍ୱାର୍ଥେ ଯ )—୧ । ମାଳା—1.
Mālya Garland. ୨ । ପୁଷ୍ପ; ଫୁଲ—2. Flower. ୩ । ଶିରୋମାଳା—3. A chaplet for the head. ସଂ. ବିଣ (ମାଳା+ସମ୍ବନ୍ଧାର୍ଥେ. ଯ)—ମାଳା ଗୁନ୍ଥା ହେବାର ଉପଯୁକ୍ତ—Fit for being made or strung into a garland.

ମାଲ୍ୟଗିରି—ସଂ. ବି (ନାମ)—ପାଲହଡ଼ାରେ ଅବସ୍ଥିତ ଉତ୍କଳର ସର୍ବୋଚ୍ଚ
Mālyagiri ପର୍ବତ ବିଶେଷ—The highest
(ମାଲୟଗିରି—ଅନ୍ୟନାମ) mountain of Utkal in the State of Pallaharā. [ ଉ ମାଲ୍ୟଗିରିବାସୀ ଦୁର୍ବର୍ଷ ଭୂଅଙ୍ଗ । ରାଧାନାଥ. ନନ୍ଦିକେଶ୍ୱରୀ । ]

ମାଲ୍ୟ ଚନ୍ଦନ—ସଂ. ବି ( ଦ୍ୱନ୍ଦ୍ୱ; ଦ୍ୱନ୍ଦ୍ୱ )—ଅତିଥିଙ୍କ ସମ୍ମାନାର୍ଥ ପ୍ରଦତ୍ତ
Mālya chandana ପୁଷ୍ପମାଳା ଓ ଚନ୍ଦନ—Garland and sandal paste offered to a distinguished guest.

ମାଲ୍ୟଦାନ—ସଂ. ବି ( ୬ଷ୍ଠୀ ତତ୍; ମାଲ୍ୟ+ଦାନ )—କୌଣସି ବ୍ୟକ୍ତିଙ୍କୁ
Mālyadāna ଫୁଲମାଳ ଭେଟିବା—The presentation of a garland to a person.

ମାଲ୍ୟବନ୍ତ—ଦେ. ବି ( ସଂ. ମାଲ୍ୟବାନ୍ )—୧ । ମାଲ୍ୟବାନ୍ ପର୍ବତ—
Mālyabanta 1. The Mālyabān range of
মাল্যবন্ত mountains. [ ଉ—ଗିରି-ମାଲ୍ୟବନ୍ତ ଗିରି-
माल्यवन्त ମଧ୍ୟ ମଣି । ରାଧାନାଥ. ମହାଯାତ୍ରା । ] ୨ । ରାକ୍ଷସ ବିଶେଷ—2. Name of demon. [ ଦ୍ର—ଏହାର ଭାଇ ନାମ ସୁମାଳି; ସୁମାଳୀର ରାବଣ ଦୌହିତ୍ର । ] [ ଉ—ବିଦ୍ୟୁତ କେଶ ବଂଶରେ ଜାତ, ସୁମଳୀ ମାଳୀ ଯେ ମାଲ୍ୟବନ୍ତ, ସ୍ୱର୍ଗ ଲୁଣ୍ଠନେ ଅତି ଅଦ୍ଭୁତ, ଧ୍ୱଂସନ କରୁ ଯେ । ଉଞ୍ଜ. ବୈଦେହୀଶବିଳାସ । ] ଦେ. ବିଣ—ମାଳାଭୂଷିତ—Garlanded. [ ଉ—ବ୍ୟବସ୍ଥିତେ ଦେଖ ମାଲ୍ୟବନ୍ତ କେଣି ମାଲ୍ୟବନ୍ତ ରାମ କଥିତ । ଉଞ୍ଜ. ବୈଦେହୀଶବିଳାସ । ]

ମାଲ୍ୟବାନ୍—ସଂ. ବି. ପୁଂ ( ମାଲ୍ୟ+ଅସ୍ତ୍ୟର୍ଥେ ବତ୍; ୧ମା. ୧ବ )—
Mālyabān ୧ । ପର୍ବତ ବିଶେଷ—1. Name of a mountain range of South India. [ ଦ୍ର—ପୁରାଣମତରେ ଏହା କେତୁମାଲ ଓ ଇଳାବୃତ ବର୍ଷର ସୀମାପର୍ବତ ଓ ଏହାର ବିସ୍ତାର ନୀଳ ପର୍ବତଠାରୁ ନିଷଧ ପର୍ବତ ପର୍ଯ୍ୟନ୍ତ (ହି. ଶ ) । ବନବାସ ସମୟରେ ରାମଚନ୍ଦ୍ର କିଛିକାଳ ଏହି ପର୍ବତରେ ବାସ କରିଥିଲେ । ] ୨ । ରାକ୍ଷସ ବିଶେଷ—2. Name of a demon who was the maternal granduncle of Rābaṇa. [ ଦ୍ର—ଏ ସୁକେଶ ରାକ୍ଷସର ପୁତ୍ର; ଗନ୍ଧର୍ବକନ୍ୟା ଦେବବତୀଙ୍କ ଗର୍ଭରୁ ଜାତ । ଏହାଙ୍କର ଭାଇ ସୁମାଳୀର କନ୍ୟା ନିକଷା ବା କୈକଶୀ ରାବଣର ମାତା ଥିଲେ । ଏ ରାବଣର ମନ୍ତ୍ରିତ୍ୱ କରୁଥିଲେ ଓ ରାମାୟଣ ଯୁଦ୍ଧରେ ହତ ହୋଇଥିଲେ । ]

ମାଲ୍ୟ ବିନିମୟ—ସଂ. ବି—(୬ଷ୍ଠୀ ତତ୍; ମାଲ୍ୟ+ବିନିମୟ)—ବିବାହ
Mālya binimaya ସମୟରେ ବର କନ୍ୟାଙ୍କ ମଧ୍ୟରେ ମାଳାର ବଦଳା ବଦଳି—The mutual exchange of garlands during marriage between the bridegroom and the bride.

ମାଲ୍ଲ—ସଂ. ବି—(ମଲ୍ଲ+ଅ)—ଅସଭ୍ୟ ଜାତିବିଶେଷ—
Mālla Name of a wild tribe.

ମାଲ୍ଲବି—ସଂ.ବି.—(ମଲ୍ଲ+ଅବ୍ ଧାତୁ=ରକ୍ଷାକରିବା+ଇ )—ମଲ୍ଲ ଯୁଦ୍ଧ—
Māllabi A wrestling match.

ମାଶବ୍ଦିକ—ସଂ. ବିଣ. ପୁଂ—( ମା=ନିଷେଧ+ଶବ୍ଦ+କୃତାର୍ଥେ ଇକ )
Māśabddika ନିଷେଧକାରକ—Prohibiting; forbidding.
(ମାଶବ୍ଦିକା—ସ୍ତ୍ରୀ)

ମାଶୟ(ଏ)—ଗ୍ରା. ବି. ଓ ଅ—(ସଂ. ମହାଶୟ)—ଗୁରୁ, ମାଷ୍ଟର
Māśaya(e) ଆଦିଙ୍କୁ ସମ୍ବୋଧନ; ହେ ମହାଶୟ !—Oh Sir !
[ ଯଥା—ପଣ୍ଡିତ ମାଶୟ, ମାଷ୍ଟର ମାଶୟ ।]

ମାଶୁଲ୍—ବୈଦେ. ବି—( ଆ. ମହ୍ସୂଲ୍ )—ମାହାଶୁଲ୍ ; ଶୁଳ୍କ; ଟିକସ;
Māśul মাসুল महसूल କର—Tax; cess; duty; customs. [ ଦ୍ର—ଜମି ପାଇଁ ରାଜାଙ୍କୁ ଦେୟ କରକୁ ରାଜସ୍ୱ ବା ଖଜଣା ବା କର ବୋଲାଯାଏ । ଅନ୍ୟ ପଦାର୍ଥର ବ୍ୟବହାର ପାଇଁ ଦେୟ, ଶୁଳ୍କକୁ ମାଶୁଲ୍ ବୋଲାଯାଏ ।]

ମାଶୁଦ—ଦେ. ବି.—ଭାରତର ଉତ୍ତରପଶ୍ଚିମ ପ୍ରାନ୍ତରେ ବାସ କରୁଥିବା
Māśuda ଯୁଦ୍ଧପ୍ରିୟ ମୁସଲମାନ ଜାତିବିଶେଷ—The Mashoods;
মাসুদ मासूद a warlike tribe of Mabamedans inhabiting the N. W. forntier of India.

ମାଶୁମ୍—ଦେ. ବି.—ମୌଶୁମ୍—(ଦେଖ)
Māśum Mauśum (See)

ମାଷ(ସ)—ସଂ. ବି—(ମଷ ବା ମସ୍ ଧାତୁ=ବଧ କରିବା+କର୍ତ୍ତୃ. ଅ)—
Māsha(s) ୧। କୃଷି ଜାତ ଲତାରୁ ଉତ୍ପନ୍ନ କୃଷ୍ଣବର୍ଣ୍ଣ ଶସ୍ୟବିଶେଷ;
ସଂ. ନାମ—କୁରୁବିନ୍ଦ, ଧାନ୍ୟବୀର, ବ୍ରୀହି; ବିରି—1. A species,
ପିତୃଭୋଜନ, ପିତ୍ୟ, ମାଂସଲ, of pulse; Phaseolus
ବଳାଢ୍ୟ, ବୃଷାକର। Radiatus; Dolichus
ଓ. ବିରି Pilosus. [ଦ୍ର—ବୈଦ୍ୟକ
ଗୁ. ଅଡ଼ଦ ମତରେ ଏହା ଗୁରୁ, ମଧୁର-
ତେ. ମିନୁମୁଲୁ କଷାୟ, ସ୍ନିଗ୍ଧ, ରୁଚିକର,
ମ. ଉଡ଼ଦୀ; ଉଡ଼ୀଦ ବାୟୁ ନାଶକ, ଉଷ୍ଣବୀର୍ଯ୍ୟ, ବଳ
ପା. ମାସ ଓ ଶୁକ୍ରକର, ଶରୀରର ଉପଚୟ-
ଆ. ମାସ କର, ମଳ ମୂତ୍ର ବର୍ଦ୍ଧକ, ମେଦୋ-
মাসকলাই ବର୍ଦ୍ଧକ, ସ୍ତନ୍ୟବର୍ଦ୍ଧକ, ପିତ୍ତ ଓ କଫ
उरीद, उड़द ବର୍ଦ୍ଧକ; ଏହା ପରିଣାମ ଶୂଳନାଶକ
୨। ସ୍ୱର୍ଣ୍ଣାଦିର ପରିମାଣ ବିଶେଷ; ୧ ମସା; ୮ ରତି—
2. A goldsmith's weight equal to the European weight of 17 grains troy.
[ଦ୍ର—ମତାନ୍ତରରେ—୫ ଠାରୁ ୧୨ ଗୁଞ୍ଜା ପରିମାଣ ଓଜନରେ ୧ ମାଷ; କବିରାଜ ଓଜନରେ ୧ଭରି=୮ ମାଷ ବଣିଆ ଓଜନରେ ୧ ଭରି=୧୦ ମାଷ।]
୩। ମୂର୍ଖ—3. A dunce; a blockhead. ୪। ଚର୍ମରୋଗ ବିଶେଷ—4. A skin disease.

ମାଷକ—ସଂ. ବି—(ମାଷ+ସ୍ୱାର୍ଥେ. କ)—ମାଷ (ଦେଖ)
Māshaka Māsha (See)

ମାଷ ତୈଳ—ସଂ. ବି—(ମାଷ+ତୈଳ)—ଆମବାତ ରୋଗ ନିମନ୍ତେ
Māsha taila ଆୟୁର୍ବେଦୋକ୍ତ ବିଧିରେ ପ୍ରସ୍ତୁତ ତୈଳବିଶେଷ—(ଏହାର ପ୍ରଧାନ ଉପକରଣ ବିରି)—An oil prepared according to the prescription of Hindu medical books and used in rubbing the limbs affected by acute rehumatism.

ମାଷ ପର୍ଣ୍ଣୀ—ସଂ. ବି—(ମାଷ+ପର୍ଣ୍ଣ+ଇନ୍)—ଶିମ୍ବାଦିବର୍ଗର ବନ୍ୟ
Māsha parṇṇi ଲତା ବିଶେଷ—A wild creeper of
মাষানি the bean species; Grangea Madrass-
माषोणी, मषीवन, बनउरदी patna; Teramuns labialis.
ଗୁ. ଅଡ଼ ବାଡ଼; ଅଡ଼ଜବେଲ [ଦ୍ର—ଏହାର ପତ୍ର ତ୍ରିପର୍ଣ୍ଣ ଓ
ମ. ରାଣଉଡ଼ୀଦ ପତ୍ରର ପୃଷ୍ଠଦେଶ ଘନ ଲୋମଶ; ଫୁଲ
ତେ. କୁକମାରୁ; କାଲୁ ମନୁରୁ] ଆଲ ରକ୍ତ। ଏହା କଫକାରକ ଓ ଧାରକ ଓ ଶୁକ୍ରବର୍ଦ୍ଧକ। ଏହା ଶୋଥ, ବାୟୁ, ପିତ୍ତ ଜ୍ୱର ଓ ରକ୍ତଦୋଷ ନାଶକ। ଏହା ମାଷଜାତୀୟ ବନ୍ୟ ଶସ୍ୟ।]

ମାଷ ବଟକ—ସଂ. ବି (ମାଷ+ବଟକ)—ବିରିବରା—A cake
Māsha baṭaka made of Biri paste and fried in ghee or oil. [ଦ୍ର—ବିରିକୁ ବାଟି ତା ସଙ୍ଗେ ହେଙ୍ଗୁ ଲୁଣ ଅଦା ଆଦି ମିଶାଇ ଘିଅରେ ବା ତେଲରେ ଭାଜି ଏହା ତିଆରି କରାଯାଏ।]

ମାଷ ବର୍ଦ୍ଧକ—ସଂ. ବି (ମାଷ=ମାଷ ପରିମିତ ସ୍ୱର୍ଣ୍ଣ+ବର୍ଦ୍ଧ ଧାତୁ=
Māsha bardhaka ଛେଦନ କରିବା+କର୍ତ୍ତୃ. ଅକ)—
(ମାଷର୍ଦ୍ଧକ—ଅନ୍ୟରୂପ) ବଣିଆ; ସ୍ୱର୍ଣ୍ଣକାର—Goldsmith.

ମାଷ ଭକ୍ତ ବଳି—ସଂ. ବି. (ମ ପ. ଲୋ ଓ ରୂପକ, ମାଷ+ଭକ୍ତ+
Māsha bhakta bali ବଳି)—ବ୍ରୀହି (ବିରି), ତଣ୍ଡୁଳ ଓ ଦଧି ମିଶ୍ରିତ ପୂଜୋପହାର ବିଶେଷ—A present or offering made up of Māsha, rice and curd.

ମାଷ ରୋଟିକା—ସଂ. ବି—(ମାଷ+ରୋଟିକା)—ବିରି ପିଠା—A
Māsha rotikā pastry cake made from the flour of Masha.

ମାଷାଦ—ସଂ. ବିଣ. ପୁଂ—(ମାଷ+ଅଦ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ.
Māshāda ଅ)—ବ୍ରୀହି ଭକ୍ଷଣକାରୀ—Eating the Phaselua bean. ସଂ. ବି—କଚ୍ଛପ—Toitoise.

ମାଷାନ୍ନ—ସଂ. ବି—(ମ. ପ. ଲୋ; ମାଷ+ଅନ୍ନ)—ବିରି ଓ ଚାଉଳରେ
Māshānna ପ୍ରସ୍ତୁତ ଖେଚୁଡ଼ି—Rice boiled with split Māsha.

ମାଷାଶ—ସଂ. ବି (ମାଷ+ଅଶ୍ ଧାତୁ+କର୍ତ୍ତୃ. ଅ)—ଘୋଡ଼ା (ହି. ଶ)—
Māshāśa Horse.

ମାଷୀଣ—ସଂ. ବି—(ମାଷ+ଈନ)—ମାଷ କ୍ଷେତ୍ର; ବିରି ବିଲ—A
Māshiṇa field on which the kidney bean is grown.

ମାଷ୍ଟର—ବୈଦେ. ବି.—(ଇଂ ମାଷ୍ଟର୍)—ଶିକ୍ଷକ; ବିଦ୍ୟାଳୟ ଗୁରୁ—
Māshṭara A teacher; tutor; master.
মাষ্টার मास्टर (ମାଷ୍ଟରାଣୀ; ମାଷ୍ଟରଆଣୀ—ସ୍ତ୍ରୀ) [ଦ୍ର—ଏ ଶବ୍ଦ ଇଂରାଜୀ ପଢ଼ାଇବା ଶିକ୍ଷକଙ୍କ ପ୍ରତି ବ୍ୟବହୃତ ହୁଏ। ଦେଶୀୟ ଭାଷାର ଓ ସଂସ୍କୃତର ଶିକ୍ଷକଙ୍କୁ ପଣ୍ଡିତ ଓ ଉର୍ଦ୍ଦୁ ପଢ଼ାଇବା ଶିକ୍ଷକଙ୍କୁ ମୌଲବୀ ବା ଆଖୁନ୍ କହନ୍ତି।]

ମାଷ୍ଟର ମହାଶୟ—ଦେ. ବି ଓ ଅ—(ଇଂ. ମାଷ୍ଟର୍+ସଂ. ମହାଶୟ)—
Māshṭara mahāśaya ଶିକ୍ଷକଙ୍କ ସମ୍ମାନସୂଚକ ସମ୍ବୋଧନ—
মাষ্টার মশাই A respectful address to a teacher.
मास्टर महाशय (ମାଷ୍ଟର ମାଶୟ—ଅନ୍ୟରୂପ)

ମାଷ୍ଟରି—ଦେ. ବି—୧। ମାଷ୍ଟର ପଣ; ଶିକ୍ଷକତା—1. Teacher-
Māshṭari মাষ্টারি मास्टरी ship. ୨। ମାଷ୍ଟରର କାର୍ଯ୍ୟ
(ମାଷ୍ଟରଅ—ଅନ୍ୟରୂପ) 2. Post of a teacher. ଦେ. ବିଣ ୧। ମାଷ୍ଟର ସମ୍ବନ୍ଧୀୟ; ଶିକ୍ଷକ ସମ୍ବନ୍ଧୀୟ—1. Relating to a master. ୨। ମାଷ୍ଟରଙ୍କ ଯୋଗ୍ୟ—2. Fit for a teacher.

ମାଷ୍ଟ୍ର—ବୈଦେ. ପ୍ରାଦେ. (ଗଞ୍ଜାମ) ବି. (ଇଂ. ମାଷ୍ଟର୍)—୧ । ଶିକ୍ଷକ—
Māshṭra 1. Teacher, ୨ । ଇଂରାଜୀ ଶିକ୍ଷକ—2. Teacher of English; English teacher. [ ଦ୍ର—ଇଂରାଜୀ Master ଶବ୍ଦର ପ୍ରକୃତ ଉଚ୍ଚାରଣ ମାଷ୍ଟର୍, କିନ୍ତୁ ଲୋକେ ଓ ବିଶେଷତଃ ଗଞ୍ଜାମୀମାନେ ଏହାକୁ 'ମାଷ୍ଟ୍ର' ରୂପରେ ଉଚ୍ଚାରଣ କରନ୍ତି ଓ ସମ୍ବାଦ-ପତ୍ରାଦିରେ ମଧ୍ୟ ଏହି ପ୍ରକାର ଲେଖନ୍ତି ।]

ମାଷ୍ୟ—ସଂ. ବି.—(ମାଷ+ଯ)—ମାଷୀଣ (ଦେଖ)
Māshya Māshiṇa (See)

ମାସ୍ ବଡ଼ା(ଢ଼ା) ବରଷ—ପ୍ରାଦେ. (ସମ୍ବଲପୁର) (ଭୁଲ ବି. ମାସବାଢ଼ା
Mās-barḍā (rḍhā) barash ବତ୍ସର)—ଅଧିବତ୍ସର; ଯେଉଁ ବର୍ଷରେ ଗୋଟିଏ ଅଧିମାସ ବା ମଳମାସ ଥାଏ—An year with an intercalary month.

ମାସ୍ ମିଟିଙ୍ଗ୍—ବୈଦେ. ବି. (ଇଂ)—ଆପାମର ସାଧାରଣ ଯେଉଁ ସଭାରେ
Mās-miṭiṅg ଯୋଗ ଦିଅନ୍ତି—Mass meeting.
(ମାସ୍ ମିଟିଂ—ଅନ୍ୟରୂପ)

ମାସ—ସଂ. ବି—(ମସ=ଚନ୍ଦ୍ର+ଅସ୍ତ୍ୟର୍ଥେ. ଅ; ମସ୍ ଧାତୁ=ପରିମାଣ
Māsa କରିବା+କରଣ. ଅ)—୧ । ଶୁକ୍ଳ କୃଷ୍ଣ ପକ୍ଷାତ୍ମକ କାଳ; ବୈଶାଖ, ଜ୍ୟୈଷ୍ଠ, ଆଷାଢ଼, ଶ୍ରାବଣ, ଭାଦ୍ରବ, ଆଶ୍ୱିନ, କାର୍ତ୍ତିକ, ମାର୍ଗଶିର, ପୌଷ, ମାଘ, ଫାଲ୍‌ଗୁନ ଓ ଚୈତ୍ର ଏହି ବାର ଗୋଟି ୩୦ ତିଥି ସମ୍ବଳିତ କାଳ—1. Lunar month.

୨ । ସୂର୍ଯ୍ୟଙ୍କର ଏକ ରାଶିରେ ଅବସ୍ଥାନ କରିବା ସମୟ; ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ, ମୀନ ଏହି ବାର ଗୋଟି କାଳ ପରିମାଣ—2. Solar month.

୩ । ଇଂରାଜୀ ଗଣନା କ୍ରମେ ୩୬୫ ଦିନକୁ ୧୨ ଭାଗରେ ବିଭକ୍ତ କରି ଯାଇଥିବା କାଳ; ଜାନୁଆରି, ଫେବୃଆରି, ମାର୍ଚ୍ଚ, ଏପ୍ରେଲ୍, ମେ, ଜୁନ୍, ଜୁଲାଇ, ଅଗଷ୍ଟ, ସେପ୍ଟେମ୍ବର୍, ଅକ୍ଟୋବର୍, ନଭେମ୍ବର୍, ଡିସେମ୍ବର୍ ଏହିପରି ୧୨ ଟି କାଳ ପରିମାଣ—3. An English month.

୪ । ମଷା; ଏକ ଭରିର ଦଶଭାଗର ଏକଭାଗ ପରିମାଣ—4 A standard of weight; 17 grains troy.

୫ । ଦ୍ୱାଦଶ ସଂଖ୍ୟା—5. The number twelve (Apte). ୬ । (ମସ୍ ଧାତୁ=ବଧ କରିବା+କର୍ତ୍ତୃ. ଅ) ମାଷ; ମାଣ୍ଡି; ବିରି—6. A kind of pulse.

[ ଦ୍ର—ଚନ୍ଦ୍ର ପୃଥିବୀର ଚାରିପାଖରେ ଯେଉଁ ସମୟ ମଧ୍ୟରେ ଥରେ ବୁଲି ଆସେ ତାହା ଚାନ୍ଦ୍ରମାସ ନାମରେ ଅଭିହିତ । ଏହା ପୂର୍ଣ୍ଣିମାର ପରଦିନ (କୃଷ୍ଣ ପ୍ରତିପଦ) ଠାରୁ ଆରମ୍ଭ ହୋଇ ପରବର୍ତ୍ତୀ ପୂର୍ଣ୍ଣିମାରେ ଶେଷ ହୁଏ । ଏହାକୁ ଗୌଣ ଚାନ୍ଦ୍ରମାସ ବୋଲାଯାଏ । ମୁଖ୍ୟ ଚାନ୍ଦ୍ରମାସ ଅମାବାସ୍ୟା ପରଦିନ (ଶୁକ୍ଳ ପ୍ରତିପଦ) ଠାରୁ (ଅର୍ଥାତ୍ ନୂତନ ଚନ୍ଦ୍ରକଳା ଦର୍ଶନ ଠାରୁ) ଆରମ୍ଭ ହୋଇ ପରବର୍ତ୍ତୀ ଅମାବାସ୍ୟାରେ ଶେଷ ହୁଏ । ସୂର୍ଯ୍ୟ ଯେଉଁ ସମୟରେ ଏକ ରାଶିରେ ଅବସ୍ଥାନ କରେ ତାହା ସୌରମାସ । ଏହା ସଂକ୍ରାନ୍ତିରୁ ଆରମ୍ଭ ହୋଇ ପରବର୍ତ୍ତୀ ମାସାନ୍ତରେ ଶେଷ ହୁଏ । ନାକ୍ଷତ୍ରିକ ମାସର ଗଣନା ୨୭ଟି ନକ୍ଷତ୍ରର ଉଦୟ ଓ ଅସ୍ତଦ୍ୱାରା ନିରୂପିତ ହୁଏ । ଏକ ସୂର୍ଯ୍ୟୋଦୟ ଠାରୁ ଅନ୍ୟ ସୂର୍ଯ୍ୟୋଦୟକୁ ଏକ ଦିନ ଗଣି ଏହିପରି ୩୦ ଦିନରେ ଏକ ସାବନ ମାସ ହୁଏ । ବୃହସ୍ପତି ଗ୍ରହଙ୍କ ଉଦୟ ଓ ଅସ୍ତକୁ ଏକ ଦିନ ଧରିଯାଇ ତଦ୍ରୂପ ୩୦ ଦିନରେ ଏକ ବାର୍ହସ୍ପତ୍ୟ ମାସ ହୁଏ । ୧୨ ଟି ସୌରି ମାସର ପରିମାଣ ୩୬୫ ଦିନ, ୧୨ଟି ଚାନ୍ଦ୍ର ମାସର ପରିମାଣ ୩୫୪ ଦିନ । ଏହି ଦ୍ୱିବିଧ ଗଣନା-ଯୁକ୍ତ ବର୍ଷ ମଧ୍ୟରେ ଥିବା ୧୧ ଦିନର ପ୍ରଭେଦ ବିଷୟରେ ସମତା ରକ୍ଷା କରି ଏହି ୨ ପ୍ରକାର ବର୍ଷର ଗଣନାକୁ ମିଳାଇବା ପାଇଁ ହିନ୍ଦୁମାନେ ପ୍ରତି ତୃତୀୟ ବର୍ଷରେ ଗୋଟିଏ ଅଧିମାସ ବା ମଳମାସର ସୃଷ୍ଟି କରିଅଛନ୍ତି । ଇଂରାଜ-ମାନଙ୍କର ସୌରି ମାସ ସମ୍ବଳିତ ୧ ବର୍ଷ=୩୬୫ ଦିନ; ମୁସଲମାନ୍‌ମାନଙ୍କର ମାସ ଗଣନା ଶୁକ୍ଳ ପକ୍ଷର ପ୍ରଥମ ଚନ୍ଦ୍ର-ଦର୍ଶନଠାରୁ ଆରମ୍ଭ ହୁଏ । ମୁସଲମାନ୍‌ମାନଙ୍କର ସୌରି ଗଣନାମତେ ମାସ ଚଳୁ ନ ଥିବାରୁ ସେମାନଙ୍କର ନିର୍ଦ୍ଦିଷ୍ଟ ମାସ ସଙ୍ଗେ ନିର୍ଦ୍ଦିଷ୍ଟ ଋତୁ ମେଳ ଖାଏ ନାହିଁ । ଏଥିପାଇଁ ସେମାନଙ୍କର ପର୍ବମାନ ଭିନ୍ନ ଭିନ୍ନ ଋତୁରେ ପଡ଼େ । ଯେବେ ଏକ ବର୍ଷରେ ମହରମ ବର୍ଷାଦିନେ ପଡ଼େ, ୨।୩ ବର୍ଷ ବାଦ ଶରତ୍‌ରେ, ପରେ ପୁଣି ବସନ୍ତରେ ଓ ତା ପରେ ଗ୍ରୀଷ୍ମକାଳରେ ପଡ଼େ ।

| ସୌରମାସମାନଙ୍କ ନାମ | ଚାନ୍ଦ୍ର ମାସମାନଙ୍କର ନାମ |
|---|---|
| ମେଷ | ବୈଶାଖ (ଦେଶଜ. ବଇଶାଖ୍ୟ) |
| ବୃଷ | ଜ୍ୟୈଷ୍ଠ (ଦେଶଜ. ଜେଷ୍ଠ) |
| ମିଥୁନ | ଆଷାଢ଼ (ଦେଶଜ. ଅଷାଢ଼) |
| କର୍କଟ, (ଦେ. କକଡ଼ା) | ଶ୍ରାବଣ (ଦେ. ଶିରାବଣ) |
| ସିଂହ | ଭାଦ୍ର (ଦେ. ଭାଦ୍ରବ) |
| କନ୍ୟା (ଦେ. କନ୍ୟ) | ଆଶ୍ୱିନ (ଦେ. ଅଶିଣ) |
| ତୁଳା (ଦେ. ତୁଳ) | କାର୍ତ୍ତିକ (ଦେ. କାରତିକ) |
| ବିଛା | ମାର୍ଗଶିର ( ଦେ. ମଗୁଶିର ) |
| ଧନୁ | ପୌଷ ( ଦେ. ପୁଷ ) |
| ମକର | ମାଘ ( ଦେ. ମାଘ ) |
| କୁମ୍ଭ | ଫାଲ୍‌ଗୁନ ( ଦେ. ଫଗୁଣ ) |
| ମୀନ | ଚୈତ୍ର ( ଦେ. ଚଇତ ) |

| ଇଂରାଜୀ ମାସ | ମୁସଲମାନୀ ମାସ |
|---|---|
| ଜାନୁଆରି ( ଓଡ଼ିଆ. ଜନୋରି ) | ମହରମ୍ |
| ଫେବୃଆରି ( ଓ. ଫିବ୍ରୋରି ) | ସଫର୍ |
| ମାର୍ଚ୍ଚ ( ଓ. ମାରଚ ) | ରବିଉଲ୍‌ଆଉଅଲ୍ |
| ଏପ୍ରିଲ୍ ( ଓ. ଅପ୍ରେଲ୍ ) | ରବିଉସ୍‌ସାନି |
| ମେ ( ଓ. ମଇ ) | ଜମାଦିଉଲ୍‌ଅଉଅଲ |
| ଜୁନ୍ ( ଓ. ଜୁନ୍ ) | ଜମାଦିଉସ୍‌ସାନୀ |

ଜୁଲାଇ (ଓ. ଜୁଲେଇ) ରଜବ୍
ଅଗଷ୍ଟ (ଓ. ଅଗଷ୍ଟ) ସାବାନ୍
ସେପ୍ଟେମ୍ବର (ଓ. ସିତମ୍ବର) ରମଜାନ୍
ଅକ୍ଟୋବର (ଓ. ଅକ୍ଟୁବର) ସଉଆଲ୍
ନଭେମ୍ବର (ଓ. ନବମ୍ବର) ଜିଲ୍‌କଦ୍
ଡିସେମ୍ବର (ଓ. ଦିସମ୍ବର) ଜିଲ୍‌ହଜ୍

ଇଂରେଜି ମାସ ସଙ୍ଗେ ମୁସଲମାନୀ ମାସର ସମତା ପ୍ରାୟ ଦେଖାଯାଏ ନାହିଁ । କାରଣ ମୁସଲମାନୀ ମାସ ଚାନ୍ଦ୍ରମାସ । ମାତ୍ର ଇଂରାଜୀ ମାସ ସୌର ମାସ ଅଟେ ।

ସୂର୍ଯ୍ୟଙ୍କର ଏକ ରାଶିରେ ଉଦୟ ହେବା କାଳକୁ ସୌର ମାସ ବୋଲାଯାଏ, ଏହା କେବେ ୨୯, କେବେ ୩୦, କେବେ ୩୧ ଦିନ, କେବେ ୩୨ ଦିନ ବ୍ୟାପୀ ହୁଏ । ଚାନ୍ଦ୍ର ମାସ କେବେ କେବେ ୨୭, ୨୮, ୨୯ ଓ ୩୦ ଦିନ ବ୍ୟାପୀ ହୁଏ ।

ଚନ୍ଦ୍ରଙ୍କର ଅଶ୍ୱିନୀ ନକ୍ଷତ୍ରରେ ଉଦୟ ହେବା ସମୟଠାରୁ ଯଥାକ୍ରମେ ପରବର୍ତ୍ତୀ ରେବତୀ ନକ୍ଷତ୍ରରେ ଉଦୟ ହେବା ଦିନର ଶେଷ ପର୍ଯ୍ୟନ୍ତ କାଳକୁ ନାକ୍ଷତ୍ର ମାସ ବୋଲାଯାଏ । ନାକ୍ଷତ୍ର ମାସ ୨୭ଦିନ ବ୍ୟାପୀ ହୁଏ । ସାବନ ମାସ ବ୍ୟବସାୟ, ବେପାର ଆଦିରେ ବ୍ୟବହୃତ ହୁଏ ଓ ଏହା ୩୦ ଦିନ ବ୍ୟାପୀ ହୁଏ । ଏହା ଯେ କୌଣସି ଦିନ ଆରମ୍ଭ ହୋଇ ତିଂଶ ଦିନରେ ସମାପ୍ତ ହୁଏ । ( ହି. ଶ )

ମାସ ଶବ୍ଦ ସଂସ୍କୃତ ମସ (ଚନ୍ଦ୍ର) ଶବ୍ଦରୁ ଉତ୍ପନ୍ନ । ଇଂରାଜୀରେ month (ମନ୍ଥ=ମାସ) moon (ଅର୍ଥାତ୍ ଚନ୍ଦ୍ର) ଶବ୍ଦରୁ ମଧ୍ୟ ଉତ୍ପନ୍ନ ହୋଇଅଛି । ବୈଦିକ ସାହିତ୍ୟରେ ମାସର ଗୋଟିଏ ଅର୍ଥ ମଧ୍ୟ ଚନ୍ଦ୍ର । ଋଗ୍‌ବେଦରେ 'ଚନ୍ଦ୍ରମସ୍'ର ଅର୍ଥ ଚନ୍ଦ୍ର ଓ ସୂର୍ଯ୍ୟ—The sun and the moon; ଚନ୍ଦ୍ରଙ୍କର ଗୋଟିଏ ନାମ ମାସକୃତ୍; ପାର୍ସୀଭାଷାରେ ମାସର ନାମ ମାହ୍; ଗ୍ରୀକ୍‌ଭାଷାରେ ମୀନ୍, ଲାଟିନରେ ମେନ୍‌ସିସ୍ । ]

**ମାସ ଅଖର(ରି)**—ଦେ. ବି—ମାସର ଶେଷ—The end of a
Māsa ākhara(ri) মাসের শেষ month.
**मासकी आखरी**

**ମାସ(ଷ)କ**—ସ. ବି—୧ । ଏକମଷା ପରିମାଣ ବା ଓଜନ—1. Weight of 17 grains troy. ୨ । Māsa(sha)ka
ମାସ; ( ହି. ଶ )—2. Month. ଦେ. ଅ—ଏକମାସ କାଳ—A period of one month.

**ମାସିକ ଧର୍ମ**—ଦେ. ବି—ଏକମାସ ମଧ୍ୟରେ ସଞ୍ଚିତ ବା ଅର୍ଜିତ ପୁଣ୍ୟ—
Māsaka dharmma Piety accumulated or earned
একমাসের ধর্ম by a person during a month's
**मासका धरम** performance of religious acts.
(ଯଥା—ଅକାମାର୍ବେ, ପାନଗୁଆ ଖାଇ, ପାନଗୁଆ ଚୋର—ମାସକ ଧର୍ମ ମୋର, କାର୍ତ୍ତିକ ପୂର୍ଣ୍ଣିମାରେ ସ୍ନାନ କଲା ସମୟରେ ସ୍ତ୍ରୀମାନଙ୍କର ଉଚ୍ଚାରିତ ବଚନ । )

**ମାସକ(କା)ବାଡ଼(ର)**—ଦେ. ବିଣ (ସ. ମାସ ଓ ପା. କାବାର୍=
Māsaka(kā)bārd(r) ମାସର ଶେଷ; ମାସକାବାରି=ମାସ
মাসকাবারি(র) ଶେଷରେ କର୍ତ୍ତବ୍ୟ )—ପ୍ରତ୍ୟେକ ମାସ
**मासकाबार(री)** ଶେଷରେ ପ୍ରସ୍ତୁତ କରାଯିବା—Prepared at
মাসকাবারি the end of every month. ବି—୧ ।
**मासिककागज** ପ୍ରତ୍ୟେକ ମାସ ଶେଷରେ ପ୍ରସ୍ତୁତ କରାଯିବା ଉକ୍ତ ମାସର ହିସାବ—1. Monthly return; monthly account prepared at the end of every
**मासिकधरम** month. ୨ । ସ୍ତ୍ରୀମାନଙ୍କର ଋତୁସ୍ରାବ—2. Monthly course; menstruation. ୩ । ପ୍ରତି-ମାସର ଶେଷ—3. The end of every month.

**ମାସକାବାର**—ଦେ ବି—ମାସାନ୍ତ; ମାସର ଶେଷ ଦିନ—The last
Māsakābāra মাসকাবার day of the month.
**मासका आखीर**

**ମାସକାବାରି**—ଦେ. ବିଣ—ପ୍ରତ୍ୟେକ ମାସ ଶେଷରେ କରଣୀୟ—
Māsakābāri Performable at the end of
মাসকাবারি **मासिक** every month.

**ମାସକା(କୁ)ମାସ**—ଦେ. କ୍ରି. ବିଣ—ପ୍ରତି ମାସରେ; ପ୍ରତି ମାସରେ—
Māsakā(ku)māsa Every month; monthly.
মাসেমাসে **मासबमास**

**ମାସ(ସି)କିଆ**—ଦେ. ବିଣ (ସଂ. ମାସିକ)—୧ । ଏକମାସବୟସ୍କ—
Māsa(si)kiā 1. Aged one month; a month
একমাসের **एकमासका** old. ୨ । ମାସିକ—
মাসিক **मासिक धरम** 2. Monthly. ଦେ. ବି.—
ସ୍ତ୍ରୀମାନଙ୍କ ମାସିକଧର୍ମ; ଋତୁ—Menses.

**ମାସକୃତ୍ୟ**—ସ. ବିଣ (ଷଷ୍ଠୀ ତତ୍; ମାସ+କୃତ୍ୟ)—ପ୍ରତ୍ୟେକ ମାସର
Māsakṛutya ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ—(religious acts of duties) Prescribed for a particular month.

**ମାସକେ**—ଦେ. କ୍ରି. ବିଣ—ଏକ ମାସ ମଧ୍ୟରେ—In a month
Māsake (ଉ—ମାସକେ ନାନା ଉପଦ୍ରବରେ, ପାଳ ପଡ଼ିଲ
এক মাসে **एक मासमे** ଏକ ଘରେ । ଜଗନ୍ନାଥ. ଭାଗବତ ।)

**ମାସକେଲ୍**—ପ୍ର ଦେ. (ସମ୍ବଲପୁର) ବି—ଶାମୁକା—
Māsakel Oyster-shell.

**ମାସ ଗଡ଼ିବା**—ଦେ. ବି—(ସ୍ତ୍ରୀ ଲୋକର) ଗର୍ଭ ସଞ୍ଚାର ହେବା—
Māsa gaṛibā Pregnancy; conception [ଦ୍ର—
মাস গড়া, মাস টপে যাওয়া ସ୍ତ୍ରୀଲୋକମାନଙ୍କର ଗର୍ଭ ହେଲେ
**दिन चढना, दिन आना** ସେମାନଙ୍କର ମାସିକ ଧର୍ମ ବା ଋତୁସ୍ରାବ ଗଡ଼ି ଯାଏ, ଅର୍ଥାତ୍ ବନ୍ଦ ହୋଇଯାଏ ।]

**ମାସ ଗଣତି**—ଦେ. ବି (ସ. ମାସ ଗଣନା)—ବର୍ଷର ମାସମାନଙ୍କର ସଂଖ୍ୟା-
Māsa gaṇati ଗଣନା—Calculation of the months
মাস গুনা **मास गिनती** of the year.

**ମାସ ଗଣିବା**—ଦେ. କ୍ରି—ବର୍ଷର କେତେ ମାସ ଅତୀତ ହେଲା, ତାହା
Māsa gaṇibā ଗଣନା କରିବା—To calculate the
মাস গুনা period of time by the months of the
**मास गीनना** year in respect of a certain act or event.

ମାସ ଚାରକ—ସ.ବଣ.ପୁଂ (ମାସ+ଚର ଧାତୁ+କର୍ମ.ଇକ)—ଏକ ମାସ
Māsa chārika ପର୍ଯ୍ୟନ୍ତ କର୍ତ୍ତବ୍ୟ (ହି. ଶ)—Perform-
(ମାସ ଚାରିକା—ସ୍ତ୍ରୀ) able for the period of one month.

ମାସ ଜାତ—ସ. ବଣ. ପୁଂ—ଏକ ମାସ ବୟସ୍କ—
Māsa jāta One month old.
(ମାସ ଜାତା—ସ୍ତ୍ରୀ)

ମାସଜ୍ଞ—ସ. ବି. ପୁଂ (ମାସ+ଜ୍ଞା ଧାତୁ+କର୍ତ୍ତୃ. ଅ)—୧ । ଡାହୁକ ବା
Māsajña ଡାହୁକ ପକ୍ଷୀ—1. A gallinule (bird). ୨ ।
ଏକ ପ୍ରକାର ମୃଗ (ହି. ଶ)—2. A kind of deer.

ମାସ ତାଳ—ସ. ବି (ମାସ+ତାଳ+ଅ)—ଏକପ୍ରକାର ବାଜା (ହି.
Māsa tāla ଶ)—A kind of musical instrument.

ମାସ ଦିନ—ସ. ବି ( ସମାହାର )—୧ । ମାସ ଓ ଦିନ—1. Month
Māsa dina and date. ୨ । ମାସ ମଧ୍ୟର ୩୦ ଦିନ ଯୁକ୍ତ
(ମାସ ଦିବସ—ଅନ୍ୟରୂପ) ସମୟ—2. A period of 30 days.
मास दिन (ଉ—ସେ ମାସ ଦିନେ ମୋ ପାଖରୁ ଥରେ ମାତ୍ର ଆସନ୍ତି ।)

ମାସ ପକ୍ଷ—ସ. ବି. (ସମାହାର)—ମାସ ଓ ପକ୍ଷ—
Māsha paksha Month and fortnight.

ମାସପଞ୍ଜି(ଞ୍ଜୀ)—ସ.ବି. (୬ଷ୍ଠୀ ତତ୍)—କୌଣସି ମାସରେ ଘଟିବା ତିଥି,
Māsa panji(nji) ବାର, ଉତ୍ସବ ଓ ଘଟଣାବଳୀର ବିବରଣ—
(ମାସ ପଞ୍ଜିକା—ଅନ୍ୟରୂପ) Monthly almanac; a record
(ମାସ ପାଞ୍ଜି—ଦେଶଜରୂପ) of the events etc during a particular month.

ମାସ ପତ୍ର—ସ. ବି. (୬ଷ୍ଠୀ ତତ୍)—ମାସ ଫଳ ୨ ( ଦେଖ )
Māsa patra Māsa phala 2 ( See )

ମାସ ପଶିବା—ଦେ. କ୍ରି. (ସ. ମାସ+ପ୍ରବେଶ)—ଗଣନାକ୍ରମେ ଗୋଟିଏ ମାସ
Māsa pasibā ଶେଷ ହୋଇ ଅନ୍ୟ ଗୋଟିଏ ମାସର ପ୍ରବେଶ—
ମାস হওয়া The entry of a month in respect of a
मास आना certain act in calculation.

ମାସ ପୂରିବା—ଦେ. କ୍ରି. ( ସ. ମାସ; ପୂରଣ )—୧ । ଏକମାସ ପୂର୍ଣ୍ଣ
Māsa pūribā ହେବା—1. The completion of a
মাস পুরা month. ୨ । ଗର୍ଭଧାରଣର ନବମ ଦଶମ ମାସ, ଅର୍ଥାତ
पूरे दिन होना, मास बरषमास बितना ଅସବ ପ୍ରସବକାଳ ଉପସ୍ଥିତ
ହେବା; ପୂର୍ଣ୍ଣଗର୍ଭ ହେବାର ସମୟ—2. Being in the
9th or the 10th month of pregnancy;
being near one's time of delivery.

ମାସ ପ୍ରମିତ—ସ. ବି (ମାସ+ପ୍ରମିତ; ଯାହାହାଏ ମାସ ପରମିତ ହୁଏ)—
Māsa pramita ନବଚନ୍ଦ୍ର; ପ୍ରତିପଦର ଚନ୍ଦ୍ର—The new moon.

ମାସ ଫଳ—ସଂ. ବି. (୬ଷ୍ଠୀ ତତ୍) (ଫଳିତ ଜ୍ୟୋତିଷ)—୧ । ପ୍ରତ୍ୟେକ
Māsa phala ମାସରେ ଘଟିବା ଫଳ ବା ଘଟଣା—1. The
events happening during a month calculated astrologically. ୨ । ଯେଉଁ ଲେଖାରେ
ଜ୍ୟୋତିଷ ଗଣନା କ୍ରମେ କୌଣସି ମାସର ଶୁଭାଶୁଭ ଫଳ
ଲିଖିତ ହୋଇଥାଏ—2. A statement of the
good or evil which will befall during a
particular month according to astrological calculat

ମାସ ବରଷ—ଦେ. ବି. ସମାହାର (ସଂ. ମାସ; ବର୍ଷ)—ମାସ ଓ ବର୍ଷ—
Māsha barasha Month and year.
মাস বৎসর मास बरष

ମାସ ବର୍ତ୍ତିକା—ସଂ. ବି—ଶ୍ୟାମା ଜାତୀୟ ପକ୍ଷୀ ବିଶେଷ; ବୁର୍ତ୍ତୀ ପକ୍ଷୀ—
Māsa barttikā A kind of quail or patridge.

ମାସ ବିତିବା—ଦେ. କ୍ରି. (ସଂ. ମାସ+ବ୍ୟତୀତ)—ଏକ ମାସ ସମୟ ଶେଷ
Māsa bitibā ହେବା—The passing of a month.
মাস গত হওয়া मास पूरा होना
[ମାସ ବିତା(ତେ)ଇବା—ନିଜନ୍ତରୂପ]

ମାସ ବୃଦ୍ଧି—ସ. ବି ( ୬ଷ୍ଠୀ ତତ୍ )—ମଳମାସ; ଅଧିମାସ—
Māsa bruddhi An intercalary month.

ମାସ ଭର(ରି)—ଦେ. କ୍ରି. ବଣ—ଏକମାସ ସମୟରେ; ମାସକସାରା—
Māsa bhar(ri) Throughout a month; in the
মাসভমাম मासभर course of a month.
[ମାସତମାମ, ମାସଯାକ, ମାସେ ଯାକେ(ଏ)—ଅନ୍ୟରୂପ]

ମାସମାନ—ସ. ବି (୬ଷ୍ଠୀ ତତ୍; ମାସ+ମାନ)—୧ । ମାସର ପରିମାଣ—
Māsamāna 1. The measure of a month.
୨ । ( ଲକ୍ଷଣାରେ ) ବର୍ଷ—2. A year.

ମାସର—ସ. ବି ( ମସ ଧାତୁ=ପରିମାଣ କରିବା+କର୍ମ. ଅର )—୧ ।
Māsara ମଣ୍ଡ; ଭାତର ପେଜ—1. The water or scum
distilled from boiled rice. ୨ । ପେଜ ଓ
ଅଙ୍ଗୁର ରସରେ ପ୍ରସ୍ତୁତ ସଙ୍କରେ ବ୍ୟବହୃତ ଏକପ୍ରକାର
ମାଦକ ପେୟ ( ହି. ଶ )—2. A kind of intoxicating drink made of rice and grape juice.

ମାସିଲ—ଦେ. ବି—ଏକପ୍ରକାର ପକ୍ଷୀ—
Māsala A kind of bird.

ମାସହରା—ପ୍ରାଦେ. (ବାଲେଶ୍ୱର) ବଣ. (ଉଲ.ବି.ମାସହାରା)—ମାସ୍ୱଥର;
Māsaharā ମାସିକ—Monthly; payable month by
মাসহারা month. ବି—ମାସିକ ବେତନ—Monthly
मासहरा pay. କ୍ରି. ବଣ—ପ୍ରତି ମାସରେ—Monthly.

ମାସହାରା—ଦେ. ବି ( ଆ. ମୁଶାହାର୍ )—ମାସିକ ବେତନ—Monthly
Māsahārā মাসহারা मसहरा pay; salary.

ମାସ ହେବା—ଦେ. କ୍ରି—୧ । ମାସ ଗଡ଼ିବା ( ଦେଖ )—1. Māsa
Māsa hebā gaḍibā (See). ୨ । ମାସ ପୂରିବା (ଦେଖ)
2. Māsa pūribā ( See )

ମାସାଦ୍ୟ—ସ. ବି (୬ଷ୍ଠୀ ତତ୍; ମାସ+ଆଦ୍ୟ)—ମାସର ପ୍ରଥମ ଦିନ—
Māsādya The first day of the month.

ମାସାଧିପ—ସ. ବି—ଫଳିତ ଜ୍ୟୋତିଷ ଅନୁସାରେ ଯେଉଁ ଗ୍ରହ ଯେଉଁ Māsādhipa ମାସରେ ପୃଥିବୀର ଅଧିପତି ବଳି ରୂପେ ହୁଏ—
ମାସାଧିପତି, ମାସେଶ, ମାସାଧୀଶ } ଅନ୍ୟରୂପ — The planet presiding over the earth during a particular month.

ମା ସାଅନ୍ତାଣୀ—ଦେ. ବି—ମାଆ ସାନ୍ତାଣୀ ( ଦେଖ )
Mā sā-āntāṇī मा मालिकानी Mā-ā sāntāṇī ( See )

ମାସାନୁମାସିକ—ସ. ବିଣ ( ମାସ+ଅନୁମାସ+ଇକ )—ପ୍ରତି ମାସ-
Māsānumāsika ସମ୍ବନ୍ଧୀୟ-Relating to every month.

ମାସାନ୍ତ—ସ. ବି ( ୬ଷ୍ଠୀ ତତ୍; ମାସ+ଅନ୍ତ )—୧ । ମାସର ଶେଷ
Māsānta ଦିନ—1. The last day of the month. ୨ । ସୌରମାନ ମାସର ସଂକ୍ରାନ୍ତିର ପୂର୍ବ ଦିନ—2. The day previous to a Saṁkrānti day. ୩ । ଅମାବାସ୍ୟା—3. The new moon; the change of the moon.

ମାସାନ୍ତ ସଂକ୍ରାନ୍ତି—ସ. ବି ( ଦ୍ୱନ୍ଦ୍ୱ )—ଏକମାସର ଶେଷ ଦିନ ଓ
Māsānta saṁkrānti ଅନ୍ୟ ମାସର ପ୍ରଥମ ଦିନ—The last day of a month and the first day of the next month. [ ଦ୍ର—ମାସାନ୍ତ ଓ ସଂକ୍ରାନ୍ତିରେ ସାଧାରଣ ଶୁଭ କାର୍ଯ୍ୟ ନିଷିଦ୍ଧ । ]

ମାସାବଧି—ଦେ. ବି—୧ । ଏକମାସ ସମୟ—1. Period of one
Māsābadhi month. ସ. କ୍ରି. ବିଣ—ଏକମାସ ହେଲା—For the period of one month.

ମାସି—ଦେ. ବିଣ ( ସ. ମାସିକ )—ମାସସମ୍ବନ୍ଧୀୟ—Relating to a
Māsi month. ( ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ
মাসিক मासी ହୁଏ; ଯଥା—ବାରମାସି; ଦୋମାସି ଇତ୍ୟାଦି । ) ଦେ. କ୍ରି. ବିଣ—ମାସିକ; ପ୍ରତି ମାସରେ—Every month. ( ଉ—ମାସି ମଙ୍ଗଳବାର ପୂର, ଏବେବେଁ କରେ ନନ୍ଦନାଶ—ଭୂପତି. ପ୍ରେମପଞ୍ଚାମୃତ । )

ମାସିଆ—ଦେ. ବିଣ ( ସଂ. ମାସିକ; ପ୍ରା. ମାସିଅ ) ( ଅନ୍ୟ ଶବ୍ଦ ସଙ୍ଗେ
Māsiā ଯୁକ୍ତ ହୁଏ; ସଂ. ମାସୀୟ )—୧ । ମାସସମ୍ବନ୍ଧୀୟ—
মাসের मासिया 1. Relating to a month. ( ଉ—ଅଗ୍ର ସ୍ନାନପୂର୍ଣ୍ଣିମା, ଜ୍ୟେଷ୍ଠମାସିଆ ଦିନ—ପଙ୍କୋଦ୍ଧାରଦୋଳନ, ଚମାଣ ଅଠଗୁଣ । ) ୨ । ଏତେ ମାସ ଗର୍ଭରେ ରହି ଜନ୍ମ ହୋଇଥିବା (ଶିଶୁ)-2.Held in the mother's womb for so many months. ( ଯଥା—ଅଠମାସିଆ ପିଲା, ନଅ ମାସିଆ ପିଲା, ଦଶ ମାସିଆ ପିଲା । ) ୩ । ଏତେ ମାସ ବୟସ୍କ—3. Aged so many months. ୪ । ଏତେ ମାସ ସ୍ଥାୟୀ ବା ବ୍ୟାପୀ—4. Lasting or occupying so many months.

ମାସିକ—ସଂ. ବିଣ ( ମାସ+ସମ୍ବନ୍ଧାର୍ଥେ, କର୍ତ୍ତବ୍ୟାର୍ଥେ ଓ ଦେୟାର୍ଥେ.
Māsika ଇକ )—୧ । ମାସସମ୍ବନ୍ଧୀୟ—1. Monthly. ୨ । ପ୍ରତି ମାସରେ କର୍ତ୍ତବ୍ୟ—2. Performable every month. ୩ । ଏକମାସକାଳ ସ୍ଥାୟୀ—3. Lasting for a month. ୪ । ପ୍ରତି ମାସରେ ଥରେ ଘଟିବା—4. Happening once every month. ୫ । ପ୍ରତି ମାସରେ ଦେୟ—5. Payable every month. ସଂ. ବି—୧ । ମୃତ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ମୃତ୍ୟୁର ଏକବର୍ଷ ମଧ୍ୟରେ ପ୍ରତି ମାସରେ କର୍ତ୍ତବ୍ୟ ଶ୍ରାଦ୍ଧ—1. Oblation of food offered to a deceased ancestor every month for a year after his death ୨ । ପ୍ରତି ମାସର ଅମାବାସ୍ୟାରେ କର୍ତ୍ତବ୍ୟ ଶ୍ରାଦ୍ଧ—2. Oblation offered to a deceased ancestor on every change of the moon.

ମାସିକ ଧର୍ମ—ସଂ. ବି ( କର୍ମଧା. ମାସିକ+ଧର୍ମ )—ସ୍ତ୍ରୀମାନଙ୍କର ରଜ-
Māsika dharma ସ୍ରାବ—The menstrual discharge of women.

ମାସିମା—ପ୍ରାଦେ (ପୁରୀ ସହର) ବି (ବଙ୍ଗାନୁକରଣ;ଭୁଲ.ବ. ମାସୀମା)—
Māsimā ମାଉସୀ ମା ( ଦେଖ )—Māusī mā (See)

ମାସୀନ—ସଂ. ବିଣ. ପୁଂ(ମାସ+ସମ୍ବନ୍ଧାର୍ଥେ. ଈନ)—୧ । ମାସସମ୍ବନ୍ଧୀୟ—
Māsīna 1. Relating to month; monthly. ୨ । ( ମାସୀନା—ସ୍ତ୍ରୀ ) ଏକମାସ ବୟସ୍କ—2. Aged one month. ୩ । ଏତେ ମାସ ବୟସ୍କ—3. Aged so many months. ( ଯଥା—ଦ୍ୱିମାସୀନ; ଷଣ୍ମାସୀନ । )

ମାସୁଆର(ରୀ)—ଦେ. ବିଣ—ମାସିକ ନିର୍ଦ୍ଦିଷ୍ଟ—Monthly. ( ଯଥା—
Māsuāri(rī) মাসকাবারি मसहरा ମାସୁଆର ପଇ; ମାସୁଆର
মাসহারা मसहरा ଖୋରାକ । ) ଦେ. ବି—୧ । ମାସିକ ଦରମା—
মাসিক मासिकधर्म 1. Monthly pay. ୨ । ମାସିକ ରଜସ୍ରାବ—2. Monthly course; menstruation.

ମାସୁଦ୍—ଦେ. ବି—ମାଶୁଦ୍ ( ଦେଖ )
Māsud Māśud ( See )

ମାସୁମ୍—ମାଶୁମ୍ (ଦେଖ)
Māsum Māśum (See)

ମାସୁରୀ—ସ. ବି—୧ । ଶ୍ମଶ୍ରୁ; ଦାଢ଼ୀ—Beard. ୨ । ପୂର୍ବ ଭାରତୀୟ
Māsurī ଏକପ୍ରକାର ଡାକ୍ତରୀ ଅସ୍ତ୍ର (ସୁ. ଶ.)—2. A kind of surgeon's knife used in ancient India.

ମାସୁଲ—ଦେ. ବି—ମାଶୁଲ୍ (ଦେଖ)
Māsul Māśul (See)

ମାସେ—ଦେ. ବି—ଏକ ମାସ ସମୟ—One month. ଦେ. କ୍ରି. ବିଣ.
Māse ଏକ ମାସ ପାଇଁ—For one month.
এক মাস एक मास

ମାସେକେ—ଦେ. କ୍ରି. ବିଣ—୧ । ଏକ ମାସରେ—1. In one
Maseke month. ୨ । ପ୍ରତି ମାସରେ—2. In every
মাসে मासमे month.

ମାସେ ଖଣ୍ଡେ—ଦେ. ବି—ମାସକରୁ କିଛି ବେଶୀ ବା କମ୍ ସମୟ—
Māse khande A period of time slightly more
মাসখানেক महीना एकमहीना or less than a month;

ମାସେକାଲ୍ତର
ମାସେଅଧେ } ଅନ୍ୟରୂପ
ମାସେପଷେ(ଣ)

about a month or so. (ଦ୍ର—ଅଭ୍ର ମାସେଶଭ୍ରେ ଗଲେ ସେଇଥ ହବ ଯେ—ମାଳବଣ ଦାଶ. ପିଲ୍ଙ୍କ ସ୍ତମାଯ୍ଣ )।

ମା ସ୍କ(ସ୍କା)ବାଡ଼(ର)—ଦେ. ବ. ୬ ବଣ—ମାସକବାଡ଼ (ଦେଖ)—
Māska(skā)bārda(ra) Māsakabārda (See)

ମାସ୍କା(ସ୍କୁ, ସ୍କେ)ମାସ—ଦେ. କ୍ରି. ବଣ—ମାସକାମାସ (ଦେଖ)
Māskā(sku, ske)māsa Māsakāmāsa (See)
ମାସେ ମାସେ मासका मास

ମାସ୍ତାନ—ଦେ. ବ—ଓଡ଼ିଶାର ଅଧସ୍ତନଶ୍ରେଣୀର ଏକଜାତୀୟ ବ୍ରାହ୍ମଣ—
Māstāna A class of Brāhmaṇas of lower order of Brāhmaṇas of Orissa. [ଦ୍ର—ଏମାନେ ବୈଦିକ ବ୍ରାହ୍ମଣ ନୁହନ୍ତି, ଲୌକିକ ବ୍ରାହ୍ମଣ। ଐତିହାସିକ ପ୍ୟାରୀମୋହନଙ୍କ ମତରେ ଏମାନେ ପ୍ରକୃତରେ ବ୍ରାହ୍ମଣ ନୁହନ୍ତି। ଏମାନଙ୍କର ବ୍ରାହ୍ମଣତ୍ୱଲାଭ ସମ୍ବନ୍ଧରେ ନାନାପ୍ରକାର କମ୍ବଦନ୍ତୀ ଏ ଦେଶରେ ପ୍ରଚଳିତ ଅଛି। ଓଡ଼ିଶାରେ ବୌଦ୍ଧଧର୍ମ ପ୍ରବଳ ଥିବା ସମୟରେ କାନ୍ୟକୁବ୍ଜରୁ ବୈଦିକ ବ୍ରାହ୍ମଣମାନେ ଯଯାତିକେଶରୀଙ୍କ ଦ୍ୱାରା ଓଡ଼ିଶାକୁ ନିମନ୍ତ୍ରିତ ହୋଇ ଆସିଥିଲେ। ସେମାନେ ଯଜ୍ଞ କରିବା ପୂର୍ବରୁ ପତିତ ଭୂମିକୁ ଯଜ୍ଞଭୂମି କରିବା ପାଇଁ (ସମ୍ଭବତଃ) ଶୁଦ୍ରଏ ଅବ୍ରାହ୍ମଣଙ୍କଦ୍ୱାରା ଉକ୍ତ ପତିତ ଭୂମିମାନଙ୍କରେ ହଳ କରାଇଲେ ଏବଂ ସେହି କୃଷକଙ୍କ କାନରେ ପଇତା ପକାଇ ଦେଇ ସେମାନଙ୍କୁ ବ୍ରାହ୍ମଣରୂପରେ ପରିଚିତ କରାଇଲେ। ଅଦ୍ୟାବଧି ମଧ୍ୟ ସେମାନଙ୍କୁ ହଳୁଆ ବ୍ରାହ୍ମଣ ବା ବଳଭଦ୍ର ଗୋଷ୍ଠୀ (ବଳଭଦ୍ରଙ୍କର ହଳ ଅସ୍ତ୍ର ଥିବାରୁ) ବା ବଳଦେବଗୋଷ୍ଠୀ ବ୍ରାହ୍ମଣ ବୋଲାଯାଏ। ସେମାନେ ଶୂଦ୍ରଙ୍କ ବଂଶୋପାଧି ଧାରଣ କରିବାର ଦେଖାଯାଏ; ଯଥା—ସାହୁ, ସବତ, ବଣ୍ଡାଳ, ସ୍ୱାଇଁ, ସେନା, ଷେଣ। ଏବେ ମଧ୍ୟ ସେମାନେ ବ୍ରାହ୍ମଣଙ୍କ ଅନ୍ଧବିଶ୍ୱାସ ହଳବୃତ୍ତି ଓ ପିତାଶ୍ରିଆ ଛାଡ଼ି ନାହାନ୍ତି। ହିନ୍ଦୁ ସମାଜର ପୌରୋହିତ୍ୟାଦି କାର୍ଯ୍ୟରେ ଏମାନଙ୍କର ଅଧିକାର ନାହିଁ। ଜଣେ ଇତିହାସଲେଖକ ଅନୁମାନ କରଅଛନ୍ତି ଯେ ଯଯାତିଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଆସିଥିବା ବ୍ରାହ୍ମଣମାନେ ଦେଖିଲେ ଯେ, ଓଡ଼ିଶାରେ ବୌଦ୍ଧଧର୍ମାବଲମ୍ବୀଙ୍କର ଓ ଶୂଦ୍ରଙ୍କର ଓ ବୌଦ୍ଧ ପ୍ରଭାବରୁ ବେଦାନୁଷ୍ଠାନ ଭୁଲିଯାଇ ଥିବା ନାମମାତ୍ର ବ୍ରାହ୍ମଣଙ୍କର ପ୍ରାଦୁର୍ଭାବ ବେଶୀ; ଏମାନଙ୍କୁ ହତାଦର କରି ନବାଗତ ବ୍ରାହ୍ମଣମାନେ ଆପଣାର ପ୍ରଭୁତ୍ୱ ସ୍ଥାପନ କରିବା ଅସମ୍ଭବ ଜାଣି ଅଗତ୍ୟାକ୍ରମେ ଏମାନଙ୍କୁ ବ୍ରାହ୍ମଣ ଶ୍ରେଣୀଭୁକ୍ତ କରି ନେଲେ ଓ ଏହାହିଁ ଓଡ଼ିଶାର ପଣ୍ଡା, ଘଡ଼ିଆଳ, ମଢ଼ିଆ, ସାରୁଆ, ପଟଅର ଓ ମାସ୍ତାନ ବ୍ରାହ୍ମଣମାନଙ୍କର ସୃଷ୍ଟି କଲା। ଏହି ଶ୍ରେଣୀର ସୃଷ୍ଟି ବ୍ରାହ୍ମଣଙ୍କୁ ପୁରୀ ଓ ଭୁବନେଶ୍ୱର ମନ୍ଦିରର ସୁପକାର ଓ ସେବକ ରୂପେ ଗ୍ରହଣ କରିବାଦ୍ୱାରା (ସମାଜରେ ସେମାନଙ୍କର ପାକାନ୍ନ ନ ଖାଇ ମଧ୍ୟ) ଶୂଦ୍ର ଓ ବୈଶ୍ୟମାନଙ୍କଠାରୁ ସେମାନେ ଶ୍ରେଷ୍ଠ ଥିବାର ଦେଖାଇଲେ ଓ ଏହି କୌଶଳ ଯୋଗୁଁ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବ କମିଗଲା।

୰ ପଣ୍ଡିତ କୃପାସିନ୍ଧୁ ଏମାନଙ୍କ ବିଷୟରେ ତାଙ୍କ ଉତ୍କଳ ଇତିହାସରେ ଲେଖିଅଛନ୍ତି—

"ବୁଦ୍ଧଦେବଙ୍କ ପୂର୍ବରୁ ଯେଉଁ ଅର୍ଯ୍ୟ ବ୍ରାହ୍ମଣମାନେ ଉତ୍କଳରେ ବାସ କରୁଥିଲେ ସେମାନେ ବର୍ତ୍ତମାନ ମାସ୍ତାନ ବା ବଳଗ୍ରାମ ଗୋଷ୍ଠୀ ବ୍ରାହ୍ମଣ। ଅନେକହିଁ ବ୍ରାହ୍ମଣମାନେ ମଧ୍ୟ ଏମାନଙ୍କ ସହିତ ବୈବାହିକ ସମ୍ବନ୍ଧ କରନ୍ତି ନାହିଁ। ସମ୍ବଲପୁର ଅଞ୍ଚଳରେ ଏହି ଶ୍ରେଣୀର ବ୍ରାହ୍ମଣମାନଙ୍କୁ ଆରଣ୍ୟକ ବ୍ରାହ୍ମଣ କହନ୍ତି।" ]

ମାସ୍ତାନିଆ(ଆଁ)—ଦେ. ବଣ—ମାସ୍ତାନ ସମ୍ବନ୍ଧୀୟ—
Māstāniā(āñ) Relating to Māstāna.

ମାସ୍ତୁଲ—ବୈଦେ. ବ (ପର୍ତ୍ତୁ—Mastro=ମାସ୍ତ୍ରୋ; ସ. ନାମ. ପୋଲଣ୍ଡ; ଗୁଣବୃକ୍ଷ)—ଗୁଣବୃକ୍ଷ; କୂପଦଣ୍ଡ; ଜାହାଜରେ ବା ନୌକାରେ ପାଲ ଟାଙ୍ଗିବାର ଖୁଣ୍ଟି—The mast of a ship or boat.
Māstula
মাস্তুল
मस्तूल

ମାସ୍ତୋ(ଷ୍ଟୋ)ଦ(ଡ଼ୋ)ନ୍—ଦେ. ବ (ଇଂ. ମାଷ୍ଟୋଡନ୍)—ପୃଥିବୀର ପୂର୍ବକାଳର ବୃହତ୍ ହସ୍ତୀଜାତୀୟ ଜୀବବିଶେଷ (ବର୍ତ୍ତମାନ ନାହାନ୍ତି)—Mastodon.
Māsto(shto)da(da)n
মাস্তোদন
मासतोदन
[ଦ୍ର—ଏ ଜୀବ ବର୍ତ୍ତମାନ ପୃଥିବୀରୁ ଲୁପ୍ତ ହୋଇଅଛନ୍ତି ଓ ଏମାନଙ୍କ କଙ୍କାଳ ଭୂଗର୍ଭରୁ ମିଳୁଅଛି।]

ମାହୟାରି—ବୈଦେ. ବ ଓ ବଣ (ଫା. ମାହ୍‌ୱାରୀ=ମାସିକ)—ମାସୁଅର; ମାସିକ—Monthly. କ୍ରି. ବଣ—ପ୍ରତିମାସରେ—Every month.
Māhayāri
মাসহারা माहवारी

ମାହନ—ସ. ବ (ସ. ମା ହନ=ହତ୍ୟା କରନାହିଁ; ଶାସ୍ତ୍ରଅନୁସାରେ ବ୍ରାହ୍ମଣ ଅବଧ୍ୟ ଥିବାରୁ)—ବ୍ରାହ୍ମଣ (ହି. ଷ)
Māhana (ମାହନାମ୍—ଅନ୍ୟରୂପ) —A Brāhmaṇ

ମାହା—ଗ୍ରା. ବଣ (ସ. ମହା)—ମହା—Great. [ଦ୍ର—ପ୍ରାୟ 'ମହା'—ଶବ୍ଦ ଯୁକ୍ତ ସମସ୍ତ ଶବ୍ଦ ଗ୍ରାମ୍ୟରେ ଓ ବ୍ୟବହାରରେ 'ମାହା' ରୂପେ ଉଚ୍ଚାରିତ ହୁଏ। ଯଥା—'ମାହାନଦୀ'; ମାହାନ୍ତି; ମାହାପ୍ରସାଦ; ମାହାରାଜା, ମାହାରାଣୀ; ମାହାଦେଈ; ମାହାଜନ(ନ୍); ମାହାକାଳ; ମାହାଭାରତ; ମାହାଲ। ଏ ସବୁ ପାଇଁ 'ମହା' ତଳେ ନୋଟ୍ ଦେଖ।]
Māhā
মাহা
माहा

ମାହାକୁ(ଖୁ)ଡ଼—ଗ୍ରା. ବ—ମହାକୁଡ଼ (ଦେଖ)
Māhāku(khu)rḍa Mahākurḍa (See)

ମାହାକୁଳ(ଲୀନ)—ସ. ବ (ମହାକୁଳ+ଅ, ଈନ)—ଉଚ୍ଚବଂଶ ସମ୍ଭୂତ
Māhākula(līna) —Born of a high family.

ମାହାତମ—ଗ୍ରା. ବ (ସ. ମାହାତ୍ମ୍ୟ)—ମାହାତ୍ମ୍ୟ (ଦେଖ)—
Māhātama মাহাত্ম্য महातम Māhātmya. (See)

ମାହାତମା—ଗ୍ରା. ବ. ପୁ° (ସ. ମହାତ୍ମା)—ମହାତ୍ମା (ଦେଖ)—
Māhātamā (ମାହାତ୍ମା—ଅନ୍ୟରୂପ) Mahātmā (See)
মহাত্মা महातमा, महतमा

ମାହାତମାଣୀ – ଗ୍ରା. ବ. ସ୍ତ୍ରୀ—ମହାତ୍ମାଣୀ ( ଦେଖ )—
Māhātamāṇi Mahātmāṇi ( See )
(ମାହାତ୍ମାଣୀ—ଅନ୍ୟରୂପ) মহাত্মানী **महतमानी**

ମାହାତମ୍ୟ—ଗ୍ରା. ( ପଦ୍ୟ ) ବ ( ସ. ମାହାତ୍ମ୍ୟ )—ମାହାତ୍ମ୍ୟ ( ଦେଖ )
Māhātamya মহাত্ম **महातम** Māhatmya ( See )
[ ଉ—ଏହୁରୂପେ ଷଷ୍ଠିପୁ ମାହାତମ୍ୟ ଯେତେ, କହିଲେ ଶେଷ ହେବା ନୁହେ ମହାମତେ । କୃଷ୍ଣସିଂହ. ମହାଭାରତ ବନ । ]

ମାହାତ୍ମ୍ୟ—ସ. ବ ( ମହାତ୍ମନ୍ + ଭାବ. ଯ )—୧ । ଗୌରବ; ମହତ୍ତ୍ୱ; ମହିମା—1. Greatness; majesty.
Māhātmya
୨ । ତୀର୍ଥଦର୍ଶନର ଓ ଦେବଦେବୀଙ୍କ ପୂଜାଆଦର ଶୁଭ ଫଳ—2. Efficacy of visiting certain shrines and performing worship of certain Deities. ୩ । ଆଦର; ମାନ ( ହି. ଶ )—3. Respect; honour. ୪ । ତୀର୍ଥ ଓ ଦେବଦେବୀଙ୍କ ପୂଜାର ଫଳବର୍ଣ୍ଣନାତ୍ମକ ଗ୍ରନ୍ଥ—4. A book describing the fruits of visiting shrines and worshipping Deities.

ମାହାନ୍ତି—ଗ୍ରା. ବ—ମହାନ୍ତି ( ଦେଖ )
Māhānti Mahānti ( See )

ମାହାପୁରୁ—ଗ୍ରା. ବ ( ସ. ମହାପ୍ରଭୁ )—ମହାପ୍ରଭୁ ( ଦେଖ )
Māhāpuru Mahāprabhu (See)
[ମାହାପ୍ରୁ, ମାହାପ୍ରଭୁ(ପ୍ର), ମହାପ୍ରେଭୁ—ଅନ୍ୟରୂପ]

ମାହାପୁରୁ ଗୁଡ଼ି—ପ୍ରାଦେ ( ସମ୍ବଲପୁର ) ବ—ଠାକୁର ମନ୍ଦିର; ଦେଉଳ
Māhāpuru gurḍi —God's temple; pagoda.

ମାହାବା(ବ)ର—ଦେ. ବ—ମହାବା(ବି)ର ( ଦେଖ )
Māhābā(bi)rā Mahābā(bi)rā ( See )

ମାହାର—ଦେ. ବ. ପୁଂ—୧ । ମେହେନ୍ତର—1. Sweeper.
Māhāra ୨ । ପଶୁ ରକ୍ଷକ—2. A keeper of cattle.
মেহর **मेहतर** (ଯଥା—ଗୋରୁ ମାହାର ।)
(ମାହାରଣୀ—ସ୍ତ୍ରୀ)

ମାହାରଜା—ଗ୍ରା. ବ—ମହାରାଜ ( ଦେଖ )
Māhārajā Mahārāja ( See )

ମାହା(ଥା)ର—ଦେ. ବ—ପାଣି ଯିବା ପାଇଁ ଖୋଳାଯିବା ପହଣୀ ବା ନାଳୀ—A channel dug in the ground for passage of water.
Māhā(ā)rā
নালা **पैन, मुहाना**

ମାହାରାଜ(ଜା)—ଗ୍ରା. ବ. ପୁଂ—ମହାରାଜ ( ଦେଖ )
Māhārāja(jā) Mahārāja ( See )

ମାହାରାଣୀ—ଦେ. ବ. ସ୍ତ୍ରୀ—ମେହେନ୍ତରାଣୀ; ମେହେନ୍ତରର ଜାତୀୟା ସ୍ତ୍ରୀ—A female of the Mehetar or sweeper caste.
Māhārāṇi
মেতরানী **मेहतरानी** ଗ୍ରା. ବ. ସ୍ତ୍ରୀ—ମହାରାଣୀ ( ଦେଖ ) Mahārāṇi ( See )

ମାହାରିଆ—ପ୍ରାଦେ. (ସିଂହଭୂମି) ବ—ମାହାରି ( ଦେଖ )
Māhāriā Māhārā ( See )

ମାହାରି—ଦେ. ବ—୧ । ଦେବ ନର୍ତ୍ତକୀ—1. Dancing girls dancing before idols. ୨ । ନର୍ତ୍ତକୀ—2. Dancing girls.
Māhāri
নাচবালী **नाचवाली** (ଉ—ଗାଇଲେ ମଧୁରେ ଗଙ୍ଗେଶର ଜନ୍ମ ମାହାରି ଦେବକନ୍ୟା । ରାଧାନାଥ. ପାର୍ବତୀ।)

ମାହାରି ନାଟ—ଦେ. ବ—ଦାସୀ ନାଟ; ବେଶ୍ୟାନୃତ୍ୟ—Dance of dancing girls.
Māhāri nāṭa
বেশ্যা নাচ **रण्डीका नाच**

ମାହାରି ଶାଢ଼ୀ—ପ୍ରାଦେ. (ଯାଜପୁର) ବ—ଏକ ପ୍ରକାର ଶାଢ଼ୀ—A kind of śārḍhi.
Māhāri śārḍhi

ମାହାରୁ(ର)ଦ—ଗ୍ରା. ବ—ମହାର୍ଦ୍ଦ ( ଦେଖ )
Māhāru(ra)da Mahārdda (See)
(ମାହାର୍ଦ୍ଦ[ର୍ଦି]—ଅନ୍ୟରୂପ) প্রসাদ **प्रसाद**

ମାହାର୍ଜା—ଗ୍ରା. ବ. ପୁଂ—ମହାରାଜା ( ଦେଖ )
Māhārjā Mahārāja ( See )
ଅ—ମହାରାଜାଙ୍କୁ ସମ୍ବୋଧନ—A term of address to a Mahārāja.

ମାହାଲ୍ ଉଆର୍(ରି)—ବୈଦେ ବଣ. (ଫା)—ଜମିଦାରୀ ସମ୍ବନ୍ଧୀ—Relating to an estate.
Māhāl uār(ri)
মাহাল ওয়ারী **महाल वार** (ମାହାଲ୍ ୱାର୍—ଅନ୍ୟରୂପ)

ମାହାଲ୍ ଉଆର୍(ରି) ଖେଉଅଟ୍—ବୈଦେ. ବ—ସେଟଲମେଣ୍ଟରେ ଜମିଦାରଙ୍କୁ ମିଳିବା ଜମି ସମ୍ବନ୍ଧୀ ଲେଖ—Māhālwār khewāṭ.
Māhāl uār(ri) kheuāṭ
মাহালা ওয়ারী খেওট **महालवार खेवट** [ମାହାଲ୍ୱାର୍(ରି)ଖେଉ(ଓ)ଟ—ଅନ୍ୟରୂପ]

ମାହାଲ୍ ଧାନ୍—ପ୍ରାଦେ (ସମ୍ବଲପୁର) ବ—ମାଲ୍ ଧାନ୍ ( ଦେଖ )
Māhāl dhān Māl dhān ( See )

ମାହାଲ (ଇତ୍ୟାଦ)—ବୈଦେ. ବ—ମହାଲ ଇତ୍ୟାଦ ( ଦେଖ )
Māhāla (etc) Mahāla etc. ( See )

ମାହା(ଥା)ଲ—ଦେ. ବ. (ସ. ମହାନିମ୍ବ, ଅର୍ଲୁ, ଅରଡୁଷା)—ମହାନିମ୍ବ ( ଦେଖ )—Ailanthus Excelsa (tree),
Māhā(ā)la
মাহানিম ପ୍ରାଦେ. (ଓଡ଼ିଶାର ସମୁଦ୍ର ଉପକୂଳ ଓ ଗଞ୍ଜାମ) ବ—ଜାହାଜର ବା ଡଙ୍ଗାର ପଟାତଳ ଅର୍ଥାତ୍ ଯେଉଁଠାରେ ଲୋକେ ବସନ୍ତି—The deck of a ship or boat.
**लिम्बाडो, महारुखा, महरुखा**
ମ. ଅରୁଲ୍ମା, ଅରୁଷା, ମହାନିମ୍ବ
ଗୁ. ମୋଟ ଅରୁଷା
କା. ପେରୁ, ଘୀ, ପେରୁ ମାରୁଥା
ତେ. ପେଦ୍ଦୁ, ଘୀ. ପେଦ୍ଦା,
(ଉ—ଉପରେ ଜଳନ୍ତା ମାହାଲେ ଶିଶୁ ଏକଲ ଛେଡ୍ଡା ମାନୁ ପୁତ୍ର (Kirtikar) ହୋଇ, ପଳାଇ ଗଲେଣି ସବୁବେ କାହିଁ ତଳୁ କରେଇ । ଅଜ୍ଞସୂ. ବାଲୁଙ୍ଗାର ।)

ମାହାଲକ୍ଷ୍ମୀ(ଛ୍ମୀ, ଖ୍ମୀ)—କେ. ବ—ମହାଲକ୍ଷ୍ମୀ ( ଦେଖ )
Māhālakshmi(kshmi, khmi) Mahālakshmi (See)
মহালখী **महालछमी**

ମାହାଲ ଛାଡ଼—ପ୍ରାଦେ, (ଗଞ୍ଜାମ) ବ—ରଜାଙ୍କ ବସ୍ତ୍ର ମତେ ବନା ପାରଣମିକରେ ମାଛ ଧରିବାକୁ ଅସିବା କେଉଟଙ୍କୁ ଜଙ୍ଗଲରୁ କାଠ ଓ ଫୁଲ୍ଲ ଛାଡ଼—Free pass granted to fishermen to cut wood
Māhāla chhārḍa

from the estate forests as remuneration or gratification for coming to catch fish under the Raja's order for the consumption of the royal family.

ମାହାଲ ତଳ—ପ୍ରାଦେ. (କଟକ) ବି—ଡଙ୍ଗାର ଦୁଇମୁଣ୍ଡର ମାହାଲର
Māhāla tala ତଳରେ ଜିନିଷ ରଖିବା ସ୍ଥାନ—The recess under the planks spread at the ends of a boat.

ମାହାଲଦା(ଡ୍ଡା)—ପ୍ରାଦେ. (କଟକ ସହରବାସୀ ଇତର ଲୋକଙ୍କ ଭାଷା) ବି—
Māhāladā(ddā) ମହାନଦୀ (ଦେଖ)—Mahānadī (See)

ମାହାଲ ପଠା—ଦେ. ବି—ନଦୀ ଗର୍ଭସ୍ଥ ଯେଉଁ ଚିର ଜମିରେ ଗୁଡ଼ାଏ ମାହାଲ
Māhāla patha ଗଛ ଉଠିଥାଏ—A silted high land on the bed of a river on which Māhāla trees have grown up.

ମାହାଲ ମଜକୁର—ବୈଦେ. ବି. (ଜଡରୂଥ) (ଫା)—ପୂର୍ବୋକ୍ତ ବା
Māhāla majakura ସେହି ଜମିଦାରୀ—The same or the said estate.

ମାହାଲ ମୁଲକ—ବୈଦେ. ବି. (ସହଚର) (ଫା)—୧ । ଜମିଦାର ଅବ
Māhāla mulaka ଭୂସମ୍ପତ୍ତି—1. Estate and other
মাহাল মুলুক landed properties. ୨ । ଜମିଦାରୀ ଓ
**महाल मुलक** ରାଜ୍ୟ—2. Estates and states.

ମାହାଲା—ବୈଦେ. ବି—ମହଲା ଦେଖ
Māhālā Mahalā See

ମାହାଲା(ନା)ଏ(ୟ)କ—ଦେ. ବି—ମହାନାଏକ (ଦେଖ)
Māhālā(nā)ek(ya)a Mahānāeka (See)

ମାହାଲାତ୍—ଦେ. ବି [ଜଡରୂଥ]—ମାହାଲ ବା ଜମିଦାରୀସମ୍ବନ୍ଧୀୟ—
Māhālāt Relating to a Zemindary [ଯଥା—ମାହାଲାତ୍ ଅନାବାଦ, ମାହାଲାତ୍ ନଜରାନା, ମାହାଲାତ୍ ଯାଗିର] ।

ମାହା(ଆ)ଳି—ଦେ. ବି—କେଉଟମାନଙ୍କର ବଂଶୋପାଧି ବିଶେଷ—
Māhā(ā)li A family title of fishermen.
[ ଦ୍ର—ସମ୍ଭବତଃ ଜାହାଜର ମାହାଲ ବା Deck ରୁ ଏ ଉପାଧି ଆସିଅଛି, ଯେଉଁମାନେ ଜାହାଜର ମାହାଲରେ କାମ କରନ୍ତି । ]

ମାହାଳିଆ—ପ୍ରାଦେ. ( ସମ୍ବଲପୁର ) ବିଣ—ମହାଳିଆ ( ଦେଖ )
Māhāliā Mahāliā ( See ) ପ୍ରାଦେ. ( ସମ୍ବଲପୁର ) କ୍ରି. ବିଣ—ଅକାରଣ; ବୃଥା—In vain.

ମାହାଳିଆ(ୟା)—ଦେ. କ୍ରି ଓ ବିଣ—୧ । ମହାଳୟା ( ଦେଖ )
Māhāliā(yā) 1. Mahālayā (See) ୨ । ମହାଳିଆ ( ଦେଖ )—2. Mahāliā ( See )

ମାହାଳିଆ ମ(ମୁ)କୁନ୍ଦ ଦେବ—ଦେ. ବି ( ନାମ )—୧ । ରାଜ-
Māhāliā ma(mu)kunda deba କାର୍ଯ୍ୟ ସମର୍ପଣକାରୀ ମୁକୁନ୍ଦଦେବ ନାମଧାରୀ ପୁରୀର ଭୂତପୂର୍ବ ରାଜା—
1. Name of a nominal Rājā of Puri after he lost his independence. ୨ । ( ଲକ୍ଷଣାର୍ଥ ) ଫମ୍ପା ଅଧିକାରସୂଚକ ଉପାଧିବିଶିଷ୍ଟ ବ୍ୟକ୍ତି—2. (figurative ) A person bearing an empty title denoting greatness.

ମାହାଶୟ—ଗ୍ରା. ବିଣ ଓ ଅ—ମହାଶୟ ( ଦେଖ )
Māhāśaya মশায় **महाशय** Mahāśaya ( See )

ମାହାସୁଆର—ଗ୍ରା. ବି—ମହାସୁଆର ( ଦେଖ )
Māhāsuāra Mahāsuāra ( See )

ମାହାସ୍ନା(ସ୍ରା)ଆ(ହା)ନ—ଗ୍ରା. ବି—ମହାସ୍ନାନ ( ଦେଖ )—Mahā-
Māhāsnā(srā)ā(hā)na snāna ( See )
( ମାହାସ୍ନାନ—ଅନ୍ୟରୂପ )

ମାହି—ବୈଦେ. ବି ( ଅ. ମାହ୍ )—ମାସ—
Māhi মাস **माह** Month.

ମାହି—ଦେ. ବି ( ନାମ )—ଦକ୍ଷିଣ ଭାରତର ମାଲବାର ଉପକୂଳରେ
Māhi মাহী **मही** ଥିବା ଫ୍ରାନ୍ସ ଅଧିକୃତ ବନ୍ଦର—A seaport in the Malabar coast of India belonging to France.

ମାହିଆ(ହା)—ପ୍ରାଦେ. ( ଶୂଦ୍ର ଭାଷା ) ବିଣ—ମାଇଆ; ମାଇଚିଆ (ଦେଖ)
Māhiā(hā) Māiā; māichiā ( See )

ମାହିନ—ସଂ. ବି (ମହିନ=ରାଜ୍ୟ+ଅ)—୧। ରାଜଧାନୀ—1. Capital.
Māhina ୨ । ସାମ୍ରାଜ୍ୟ—2. Empire. ୩ । ରାଜ୍ୟ—3. Kingdom.

ମାହିନା—ଦେ. ବି ( ଅ. ମାହିୟନା )—ମାସିକ ଦରମା—Monthly
Māhinā মাইনা, মাহিনা **महीना, माहियाना** salary.

ମାହିର—ସଂ. ବି—ଇନ୍ଦ୍ର; ମହେନ୍ଦ୍ର; ଦେବରାଜ ( ହ୍ର. ଶ )—
Māhira Indra; the king of gods.

ମାହିଷ—ସଂ. ବିଣ ( ମହିଷ+ସମ୍ବନ୍ଧାର୍ଥେ. ଅ )—୧ । ମହିଷସମ୍ବନ୍ଧୀୟ—
Māhisha 1. Relating to buffalo. ୨ । ମହିଷଠାରୁ ପ୍ରାପ୍ତ—2. Got from a buffalo. (ଯଥା—ମାହିଷ ଘୃତ, ମାହିଷ ଦଧି, ମାହିଷ ଦୁଗ୍ଧ । )

ମାହିଷିକ—ସଂ. ବି. ପୁଂ ( ମହିଷୀ+ଇକ )—୧ । ଭ୍ରଷ୍ଟା ସ୍ତ୍ରୀ ପ୍ରତି
Māhishika ଅନୁରକ୍ତ ସ୍ୱାମୀ—1. A husband attached to a corrupted wife; cuckold. ୨ । ଉପ-ପତି ଦ୍ୱାରେ ଉପାର୍ଜିତ ସ୍ତ୍ରୀଧନୋପଜୀବୀ—2. Living on the earnings of a wife's adultery.

ମାହିଷ୍ମତୀ—ସଂ.ବି. ସ୍ତ୍ରୀ—ରାଜା ଶିଶୁପାଳଙ୍କ ରାଜଧାନୀ; ନର୍ମଦାତୀରସ୍ଥ ନଗରୀ
Māhishmatī ବିଶେଷ (ଏହାର ବର୍ତ୍ତମାନ ନାମ ଚୁଲିମହେଶ୍ୱର)—
Ancient capital of king Śiśupāla on the bank of the Nerbudda river.

ମାହିଷ୍ୟ—ସଂ. ବିଣ ( ମହିଷ+ସମ୍ବନ୍ଧାର୍ଥେ. ଯ )—୧ । ମହିଷସମ୍ବନ୍ଧୀୟ; ମାହିଷ—1. Relating to buffalo.
Māhishya ୨ । ( ମହିଷୀ+ଭବାର୍ଥେ. ଯ ) ବର୍ଣ୍ଣସଙ୍କର ଜାତିବିଶେଷ; ବୈଶ୍ୟା ଗର୍ଭରେ କ୍ଷତ୍ରିୟ ଔରସଜାତ ଜାତିବିଶେଷ—
2. A mixed caste (from a Kshatriya father and Baiśya mother ). ପ୍ରାଦେ. (ମେଦିନୀପୁର)

ବି—ହାଳିକ କୈବର୍ତ୍ତଜାତୀୟ ଲୋକ—A class of agriculturist Kaibarttas of Midnapur. [ ଦ୍ର—ମନୁସଂହିତାରେ ମାହିଷ୍ୟ ଜାତିର ଉଲ୍ଲେଖ ନାହିଁ । ଯାଜ୍ଞବଲ୍କ୍ୟ ଓ ସହ୍ୟାଦ୍ରିଖଣ୍ଡରେ କ୍ଷତ୍ରିୟ ପିତା ଓ ବୈଶ୍ୟା ମାତାଠାରୁ ଉତ୍ପନ୍ନ ଜାତିକୁ ମାହିଷ୍ୟ ବୋଲାଯାଇଅଛି । ଅହଲ୍ୟାପୂନରେ ସୁବର୍ଣ୍ଣ ପିତା ଓ କରଣଜାତୀୟ ମାତାଠାରୁ ମାହିଷ୍ୟ ଜାତିର ଉତ୍ପତ୍ତି ହୋଇଥିବା ଲେଖାଅଛି । ପୁଣି ତହିଁରେ ଲେଖାଅଛି ଯେ ବେଶ୍ୟାବୃତ୍ତିଦ୍ୱାରା ସ୍ୱାମୀର ଭରଣ-କାରିଣୀ ସ୍ତ୍ରୀକୁ ମହିଷୀ ବୋଲାଯାଏ ଓ ଉକ୍ତ ମହିଷୀ-ଗର୍ଭଜାତ ପୁତ୍ର ମାହିଷ୍ୟ ଅଟେ । ବର୍ତ୍ତମାନ ବଙ୍ଗର ହାଳିକ କୈବର୍ତ୍ତମାନେ ଆପଣାକୁ ମାହିଷ୍ୟ ବୋଲି ପରିଚୟ ଦେଉଅଛନ୍ତି । ବ୍ରହ୍ମବୈବର୍ତ୍ତପୁରାଣରେ ଲେଖାଅଛି ଯେ କ୍ଷତ୍ରିୟ ପିତା ଓ ବୈଶ୍ୟା ମାତାଠାରୁ ଉତ୍ପନ୍ନ ଜାତି କୈବର୍ତ୍ତ ନାମରେ ଖ୍ୟାତ ଓ ଏମାନେ ପତିତ ଅଟନ୍ତି । ଆଜି କାଲି ହାଳିକ କୈବର୍ତ୍ତମାନେ ଜାଲିକ କୈବର୍ତ୍ତଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ସେମାନେ କହନ୍ତି ଯେ ସେମାନେ ବିଶୁଦ୍ଧ କୈବର୍ତ୍ତ ବା ମାହିଷ୍ୟ ଅଟନ୍ତି ଏବଂ ସେମାନେ ପତିତ ବା ଧୀବର କୈବର୍ତ୍ତ ନୁହନ୍ତି । ମାହିଷ୍ୟ ଓ କୈବର୍ତ୍ତଙ୍କ ଛଡ଼ା କ୍ଷତ୍ରିୟ ପିତା ଓ ବୈଶ୍ୟା ମାତାଠାରୁ ଉତ୍ପନ୍ନ ବାଗତୀତ ବା ବାଗଦୀ, ସୂତ ଓ ମାର୍ଗବ ବା ଦାସ ଜାତି ଉତ୍ପନ୍ନ । ଅତଏବ ଶାସ୍ତ୍ର ଅନୁସାରେ ମାହିଷ୍ୟମାନଙ୍କୁ ୩ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ; ଯଥା—୧ କ୍ଷତ୍ରିୟ—ବୈଶ୍ୟାଜାତ ଉଚ୍ଚ ଶ୍ରେଣୀର ମାହିଷ୍ୟ; ୨. କ୍ଷତ୍ରିୟ କରଣୀଜାତ ମଧ୍ୟ ଶ୍ରେଣୀର ମାହିଷ୍ୟ ଓ ୩. ବେଶ୍ୟାବୃତ୍ତିଧାରିଣୀ ମାତାଠାରୁ ଜାତ ଅଧମ ମାହିଷ୍ୟ । ବଙ୍ଗର ମାହିଷ୍ୟମାନେ ପ୍ରଥମ ଶ୍ରେଣୀର ହାଳିକ ମାହିଷ୍ୟ ବୋଲି ଆପଣାକୁ ପରିଚିତ କରାନ୍ତି । କୃଷିକର୍ମ ସେମାନଙ୍କ ଜୀବିକା; ୨ୟ ଶ୍ରେଣୀର ଜାଲିକ ମାହିଷ୍ୟଙ୍କର ମାଛ ଧରିବା ଜୀବିକା । ମେଦିନାପୁର ଜିଲ୍ଲାରେ ହାଳିକ ମାହିଷ୍ୟମାନେ ବହୁ ପୂର୍ବକାଳରୁ ରାଜତ୍ୱ କରି ଆସିଅଛନ୍ତି ଏବଂ ଏଥିଯୋଗୁଁ ରାଜକାର୍ଯ୍ୟ ପ୍ରଭାବରେ ସେମାନେ ରାଜପୁତ ( କ୍ଷତ୍ରିୟ )ମାନଙ୍କ ସଙ୍ଗେ ସମ୍ବନ୍ଧ ବୈବାହିକ ସ୍ଥାପନ କରିବାକୁ ସମର୍ଥ ହୋଇ-ଅଛନ୍ତି । ବାଲୀଦ୍ୱୀପରେ ମାହିଷ୍ୟ ଜାତି ବର୍ତ୍ତମାନ ମଧ୍ୟ ବାସ କରୁଅଛନ୍ତି ଓ ଏମାନଙ୍କ ଅସ୍ତ୍ରର ବ୍ୟବହାର କ୍ଷତ୍ରିୟଙ୍କ ପରି ଓ ବହୁ ସ୍ଥାନରେ ଏମାନେ ରାଜତ୍ୱ କରୁଅଛନ୍ତି— ନଗେନ୍ଦ୍ରନାଥ. ବଙ୍ଗଳା ବିଶ୍ୱକୋଷ. ୧ମ ସଂସ୍କରଣ ।]

ମାହୁ(ହୁଁ)ତ(ନ୍ତ)—ଦେ. ବି ( ସଂ. ମହାମାତ୍ର )—୧ । ହସ୍ତିଚାଳକ— Māhu(huñ)ta(nta) 1. The driver of an elephant. (ମାହୁନ୍ତିଆ—ଅନ୍ୟରୂପ) (ଉ—ଦଶ ଭାର ସ୍ୱର୍ଣ୍ଣର ସହସ୍ରେ ମତ୍ତହସ୍ତୀ ମାହୁତ মহাওত ମାହୁତମାନେ ତହିଁ ବସି ଯେ ଅଛନ୍ତି— କୃଷ୍ଣସିଂହ. ମହାଭାରତ ଅଦି । ) ୨ । ଗଜା-ରୋହୀ ସୈନ୍ୟ—2. A warrior carried on the back of an elephant. ୩ । କ୍ଷତ୍ରିୟଙ୍କ ବଂଶୋ-ପାଧିବିଶେଷ—( ଜଗବନ୍ଧୁ. ପ୍ରାଚୀନ ଉତ୍କଳ )— 3. A family title of the Kshatriyas.

ମାହେ—ଦେ. ଅ (କଚରଆ)—(ଆ-ମାହ୍=ମାସ)—ଅମୁକ ମାସରେ— Māhe In the month of. [ଦ୍ର—ପତ୍ର ଓ ଦଲୀଲ ମাহে ମাহ ଆଦିରେ ମାସର ନାମ ପୂର୍ବରେ 'ମାହେ' ଶବ୍ଦ ବ୍ୟବହୃତ ହୁଏ । ଯଥା—ମାହେ ମୀନ ୧୦ ଦିନ; ମାହେ ଚୈତ୍ର ୧° ଦିନ; ମାହେ ମାର୍ଚ୍ଚ ୨୮ ତାରିଖ—ଅର୍ଥ ମୀନ ମାସର ୧° ମ ଦିନ ଇତ୍ୟାଦି ।) ଦେ. ବି—ମାହି (ଦେଖ) Māhi (See)

ମାହେନ୍ଦ୍ର—ସଂ. ବିଣ (ମହେନ୍ଦ୍ର+ସମ୍ବନ୍ଧାର୍ଥେ. ଅ)—ଇନ୍ଦ୍ରଙ୍କସମ୍ବନ୍ଧୀୟ- Māhendra Relating to Indra. ସଂ. ବି.— ( ମାହେନ୍ଦ୍ରୀ—ସ୍ତ୍ରୀ ) ଜ୍ୟୋତିଷୋକ୍ତ ଶୁଭଯୋଗ ବିଶେଷ— An auspicious conjunction of astrological elements. [ଦ୍ର—ଏହାର ଅନ୍ୟନାମ "ଇନ୍ଦ୍ର" ଯୋଗ । ଅହୋରାତ୍ରରେ ଅର୍ଥାତ୍ ଦିବାରେ ଓ ରାତ୍ରରେ ମାହେନ୍ଦ୍ର (ଶୁଭ), ଅମୃତ (ଶୁଭ), ବଜ୍ର (ଅଶୁଭ) ଓ ଶୂନ୍ୟ (ଅଶୁଭ) ଏହି ଚାରିଗୋଟି ଯୋଗ ଭୋଗ ହୁଏ । ମାସ ଓ ବାର ଭେଦରେ ଦିବସର ଓ ରାତ୍ରିର ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଯୋଗ ପଡ଼େ । ମାଘ, ଫାଲ୍ଗୁନ, ଚୈତ୍ର, ବୈଶାଖ ଓ ଶ୍ରାବଣମାସମାନଙ୍କରେ ଯୋଗମାନଙ୍କର ସ୍ଥିତି ଏକ-ପ୍ରକାର; ଭାଦ୍ରବ, ଆଶ୍ୱିନ, କାର୍ତ୍ତିକ, ମାର୍ଗଶିର ଓ ପୌଷରେ ଏକପ୍ରକାର ଓ ଜ୍ୟେଷ୍ଠ, ଆଷାଢ଼ରେ ଏକପ୍ରକାର, ଏହିପରି ତିନିପ୍ରକାର ଘଟେ । ରାତ୍ରିରେ ଯୋଗସ୍ଥିତି ଏକପ୍ରକାର ଓ ଦିବାରେ ଏକପ୍ରକାର ହୁଏ ।

ଉଦାହରଣସ୍ୱରୂପ ମାଘ ମାସର ରବିବାର ଦିନରେ ଓ ରାତ୍ରରେ ଘଟିବା ଯୋଗସ୍ଥିତି ଏଠାରେ ଦିଆଗଲା ।

ମାଘ

| | ଦିବା ଦଣ୍ଡ | | ରାତ୍ରି ଦଣ୍ଡ | |
|---|---|---|---|---|
| ରବିବାର | ମାହେନ୍ଦ୍ର | ୨ ଦଣ୍ଡ | ଶୂନ୍ୟ | ୨ ଦଣ୍ଡ |
| | ଅମୃତ | ୮ ଦଣ୍ଡ | ମାହେନ୍ଦ୍ର | ୨ ଦଣ୍ଡ |
| | ଶୂନ୍ୟ | ୮ ଦଣ୍ଡ | ଅମୃତ | ୪ ଦଣ୍ଡ |
| | ମାହେନ୍ଦ୍ର | ୨ ଦଣ୍ଡ | ବଜ୍ର | ୮ ଦଣ୍ଡ |
| | ବଜ୍ର | ୧° ଦଣ୍ଡ | ମାହେନ୍ଦ୍ର | ୮ ଦଣ୍ଡ |
| | | | ଶୂନ୍ୟ | ୬ ଦଣ୍ଡ |
| ମୋଟ | | ୩° ଦଣ୍ଡ | ମୋଟ | ୩° ଦଣ୍ଡ |

ମାହେନ୍ଦ୍ରଯୋଗରେ ଯାତ୍ରା କଲେ ସବୁଠାରେ ଜୟ, ବଜ୍ରଯୋଗରେ କାର୍ଯ୍ୟନାଶ, ଅମୃତଯୋଗରେ କାର୍ଯ୍ୟସିଦ୍ଧି, ଶୂନ୍ୟଯୋଗରେ ମୃତ୍ୟୁ ବା ଅପମାନ ଘଟେ ।

ଜ୍ୟୋତିଷ ମତରେ କୌଣସି କାର୍ଯ୍ୟ ପାଇଁ ସଙ୍କଳ୍ପ କରି ଯାତ୍ରା କରିବାକୁ ଶୁଭ ଦିନ ନ ମିଳିଲେ "ଶିବା ଗୌରୀ" ମତରେ ଏହି ଯୋଗସ୍ଥିତିକୁ ଗଣନା କରି ଯାତ୍ରା କରିବାକୁ ହୁଏ ।]

୨ । ବାର ଅନୁସାରେ ଭିନ୍ନ ଭିନ୍ନ ଦଣ୍ଡରେ ପଡ଼ିବା ଯୋଗବିଶେଷ, ଯହିଁରେ ଯାତ୍ରା କରିବା ଶୁଭ—

2. Another auspicious conjunction of astronomical elements. [ଦ୍ର—ଏହି ମତରେ ଯୋଗ ସଂଖ୍ୟା ୪, ଯଥା—ମାହେନ୍ଦ୍ର, ବରୁଣ, ବାୟୁ ଓ ଯମ । ମାହେନ୍ଦ୍ରଯୋଗ ବିଜୟକାରକ, ବରୁଣ ଧନପ୍ରଦ, ବାୟୁ ନତ୍ୟପ୍ରତ୍ୟାବର୍ତ୍ତନକାରୀ ଓ ଯମ ମୃତ୍ୟୁକାରକ । ଏ ୪ ଯୋଗ ସପ୍ତାହର ପ୍ରତିଦିନ ଏହି କ୍ରମରେ ପଡ଼େ ।

| ବାର | ୧ମ ଦଣ୍ଡ | ୨ୟ ଦଣ୍ଡ | ୩ୟ ଦଣ୍ଡ | ୪ର୍ଥ ଦଣ୍ଡ |
|---|---|---|---|---|
| ରବି | ବାୟୁ | ବରୁଣ | ଯମ | ମାହେନ୍ଦ୍ର |
| ସୋମ | ମାହେନ୍ଦ୍ର | ବାୟୁ | ବରୁଣ | ଯମ |
| ମଙ୍ଗଳ | ବରୁଣ | ଯମ | ମାହେନ୍ଦ୍ର | ବାୟୁ |
| ବୁଧ | ମାହେନ୍ଦ୍ର | ବାୟୁ | ବରୁଣ | ଯମ |
| ଗୁରୁ | ବାୟୁ | ବରୁଣ | ଯମ | ମାହେନ୍ଦ୍ର |
| ଶୁକ୍ର | ମାହେନ୍ଦ୍ର | ବାୟୁ | ଯମ | ବରୁଣ |
| ଶନି | ଯମ | ମାହେନ୍ଦ୍ର | ବାୟୁ | ବରୁଣ |

( ହି. ଶ )

**ମାହେନ୍ଦ୍ରଦଣ୍ଡ**—ସଂ. ବି (କର୍ମଧା; ମାହେନ୍ଦ୍ର+ଦଣ୍ଡ)—ମାହେନ୍ଦ୍ର-
Māhendra daṇḍa ଯୋଗଘଟିତ ସମୟ—A moment or time of Māhendra Joga.
ମାହେନ୍ଦ୍ର କ୍ଷଣ
ମାହେନ୍ଦ୍ର ମୁହୂର୍ତ୍ତ } —ଅନ୍ୟରୂପ
ମାହେନ୍ଦ୍ର ବେଳା

**ମାହେନ୍ଦ୍ର ବେଳ**—ଦେ. ବି—ମାହେନ୍ଦ୍ରଦଣ୍ଡ (ଦେଖ)
Māhendra beḻa Māhendra daṇḍa (See)
মাহেন্দ্র বেলা माहेन्द्र वेला

**ମାହେନ୍ଦ୍ରୀ**—ସଂ. ବି. ସ୍ତ୍ରୀ (ମହେନ୍ଦ୍ର+ସ୍ତ୍ରୀ. ଈ; ମହେନ୍ଦ୍ର+ସମ୍ବନ୍ଧାର୍ଥେ.
Māhendrī ଅ+ସ୍ତ୍ରୀ. ଈ)—୧ । ଇନ୍ଦ୍ରାଣୀ; ଶଚୀ—The queen of Indra; ୨ । ଗାଈ; ଗାଭି—2. Cow; ୩ । ପୂର୍ବଦିଗ—3. The east.

**ମାହେୟ**—ସଂ. ବିଣ (ମହୀ+ସମ୍ବନ୍ଧାର୍ଥେ. ଏୟ)—୧ । ମହୀ ବା ପୃଥିବୀ-
Māheya ସମ୍ବନ୍ଧୀୟ—1, Earthly. ୨ । ମୃଣ୍ମୟ—
(ମାହେୟୀ—ସ୍ତ୍ରୀ) 2. Earthen. ସଂ. ବି (ମହୀ+ଅପତ୍ୟାର୍ଥେ ଏୟ)—୧ । ମଙ୍ଗଳଗ୍ରହ—1. The planet Mars; ୨ । ପ୍ରବାଳ—2. Coral; ୩ । ନରକାସୁର—3. Name of a demon.

**ମାହେୟୀ**—ସଂ. ବି. ସ୍ତ୍ରୀ (ମାହେୟ+ସ୍ତ୍ରୀ. ଈ)—୧ । ଗାଭି—
Māheyī Cow. ୨ । ସୀତା—2. Rāmachandra's wife. ୩ । ନଦୀବିଶେଷ (ହି. ଶ)—3. Name of a river

**ମାହେଶ**—ପ୍ରାଦେ (ବାଲେଶ୍ୱର) ବି—ମାହିଷ୍ୟ ଜାତି—A caste
Māheśa of agriculturist fishermen in the Balasore district of Orissa.

**ମାହେଶ୍ୱର**—ସଂ. ବିଣ (ମହେଶ୍ୱର+ସମ୍ବନ୍ଧାର୍ଥେ. ଅ)—ମହେଶ୍ୱର ବା
Māheśwara ଶିବସମ୍ବନ୍ଧୀୟ—Relating to Śiba. ସଂ. ବି.
(ମାହେଶ୍ୱରୀ—ସ୍ତ୍ରୀ) ୧ । ଶିବୋପାସକ; ଶୈବ—1. A devotee of Śiba. ୨ । ସ୍ୱର ଓ ବ୍ୟଞ୍ଜନମାଳାସୂଚକ ପାଣିନୀଙ୍କ ୧୪ଟି ସୂତ୍ର—2. The 14 aphorisms of Paṇini indicating the vowels and the consonants. [ଦ୍ର—ପାଣିନୀ ବ୍ୟାକରଣର ଏ ୧୪ଟି ସୂତ୍ର ଯଥା-ଅଇଉଣ୍, ଋଌକ୍, ଏଓଙ୍, ଐଔଚ୍, ହଯବରଟ୍, ଲଣ୍, ଞମଙଣନମ୍, ଝଭଞ୍, ଘଢଧଷ୍, ଜବଗଡଦଶ୍, ଖଫଛଠଥଚଟତବ୍, କପୟ୍, ଶଷସର୍, ହଲ୍ । ଏ ସୂତ୍ରମାନ ଶିବଙ୍କ ତାଣ୍ଡବନୃତ୍ୟ ସମୟରେ ତାଙ୍କ ଡମ୍ବରୁରୁ ବାହାରିଥିବା କଥିତ (ହି. ଶ.) ୩ । ଅସ୍ତ୍ରବିଶେଷ ମାହେଶ୍ୱରାସ୍ତ୍ର—3. A weapon peculiar to Śiba.

**ମାହେଶ୍ୱରୀ**—ସଂ. ବି. ସ୍ତ୍ରୀ (ମହେଶ୍ୱର+ଅ+ଈ)—୧ । ଦୁର୍ଗା
Māheśwarī 1. Durgā. ୨ । ମାତୃକାଦେବୀବିଶେଷ—2. One of the Mother-Goddesses of the Hindus. ୩ । ଯବତିକ୍ତା ନାମକ ଗୁଳ୍ମ; ଭୂନିମ୍ବ; ଭୂଇଁନିମ୍ବ 3. Name of a plant; Andrograpis Paniculata. ସଂ. ବିଣ. ସ୍ତ୍ରୀ—ମାହେଶ୍ୱରର ସ୍ତ୍ରୀଲିଙ୍ଗ—Feminine of Māheśwara.

**ମାହ୍ନା**—ପ୍ରାଦେ (ସମ୍ବଲପୁର, ଉତ୍ତରଜନବ୍ୟବହୃତ) ବି—ପୋଢ଼ (ଦେଖ)
Māhnā Porḍha (See)

**ମାହ୍ୟା**—ଗ୍ରା. ବିଣ. ପୁଂ—ମାଇଚିଆ—Effeminate.
Māhyā মেয়েলি मोगिया (ମାହ୍ୟଆ—ଅନ୍ୟରୂପ)

**ମାହ୍ଲା**—ପ୍ରାଦେ (ମେଦିନୀପୁର) ବି. (ଭୁଲ ବ. ମାଳା)—ନଡ଼ିଆ ସଢ଼େଇ
Māhlā —The hard circular rind of a cocoanut; cocoanut-shell.

**ମାହ୍ଲୁଆ**—ପ୍ରାଦେ (ବାଲେଶ୍ୱର) ବି—ଖାଳଅପତନୀ; ବିରାଡ଼ିଠାରୁ
Māhluā ଟିକିଏ ବଡ଼ ଏକପ୍ରକାର ନିଶାଚର ଜନ୍ତୁ—
ভাম A kind of night-roaming animal,
मुशक बिलाव a little bigger than the cat; the civet cat.

**ମାହ୍ଲୁଅ ମାରିବା**—ପ୍ରାଦେ (ବାଲେଶ୍ୱର) କ୍ରି—୧ । ଅନ୍ୟଙ୍କୁ ବଞ୍ଚିତ
Māhluā māribā କରି ଅପ୍ରତ୍ୟାଶିତ ଭାବରେ କୌଣସି ବସ୍ତୁ ନିଜେ ଉପଭୋଗ କରିବା—1. To baulk some one of something for one's own enjoyment ୨ । ଛାଉଣି ବେଳେ ଚାଳର କୌଣସି ନୁଆଁଣିଆଁ ଅଂଶକୁ ବାଉଁଶ ବା ବତା ବାନ୍ଧି ଅନ୍ୟ ଅଂଶ ସଙ୍ଗେ ସମତଳ କରିଦେବା—2. To level up the low part of the thatch by means of raising the same up by means of whole or cleft bambooms.

**ମି** (ଧାତୁ)—୧ । ତ୍ୟାଗ କରିବା—1. To cast. ୨ । ନିକ୍ଷେପ
Mi (root) କରିବା—2. To throw. ୩ । ବିଞ୍ଚିଦେବା—3. To scatter.

**ମି**—ପ୍ରାଦେ (ସମ୍ବଲପୁର, ବାଲେଶ୍ୱର; ଯାଜପୁର, ଗଡ଼ଜାତ) କ୍ରିୟାର
Mi ବିଭକ୍ତି—ଭବିଷ୍ୟତ୍ କାଳ ପ୍ରଥମ ପୁରୁଷ ଏକ ବଚନ କ୍ରିୟାରେ ବ୍ୟବହୃତ ବିଭକ୍ତି (ଯଥା—ସଂ.ଅହଂ ଯାମି=ମୁଁ ଯିମି=ମୁଁ ଯିବି)—A verb-particle denoting future tense in the first person singular number. ] ଦ୍ର—ଓଡ଼ିଆରେ ଅନ୍ୟତ୍ର ପାଣ, କଣ୍ଡିର,

ବାଉଣ୍ଡି ଅତି ଶ୍ରେଷ୍ଠ ଲୋକମାନେ ମଧ୍ୟ ଯିମି, ଖାଇମି ଅତି ବ୍ୟବହାର କରନ୍ତି । ] ଦେ. ବିଣ (ସାଙ୍କେତିକ. ଇଂ. )

**ମିଃ** —ମିଷ୍ଟର୍ (ବା ଶ୍ରୀଯୁକ୍ତ) ଶବ୍ଦର ସଂକ୍ଷିପ୍ତ ଆକାର— Abbreviation for Mister; Mr.
ମିঃ
मिं

**ମିଆଁ(ୟାଁ, ଙ୍ଗା)**—ବୈଦେ. ବି, ପୁଂ (ଫା)—୧ । ମୁସଲମାନମାନଙ୍କର ସମ୍ମାନାର୍ଥକ ଉପାଧି ବିଶେଷ—1. A title of respect applied to Mahomedans. ୨ । ମୁସଲମାନ୍ ବାଦସାହାଙ୍କ ଦରବାରରେ ମର୍ଯ୍ୟାଦାନ୍ୱିତ ବ୍ୟକ୍ତିଙ୍କ ଉପାଧି—2. A title of honoured persons in the courts of Mahomedan emperors. ୩ । ମୁସଲମାନ୍—3. Mahomedan.
Miāñ(yāñ,ñā)
মিঞাঁ
**मियाँ**
[ମିଆଁ(ୟାଁ)ଣୀ—ସ୍ତ୍ରୀ]

**ମିଆଉଁ**—ଦେ· ବି ଓ ଅ (ଧ୍ୱନ୍ୟନୁକରଣ)—ବିରାଡ଼ିଙ୍କ ଧ୍ୱନି—The mewing sound of a cat.
Miāñuñ
(ମିଆଁଉଁ ମିଆଉଁ, ମ୍ୟାଉଁ, ମ୍ୟାଉଁ ମ୍ୟାଉଁ—ଅନ୍ୟରୂପ)
ম্যাউ **मियाउँ; मयाँव**

**ମିଆଁ(ୟାଁ, ଙ୍ଗା) ଜୀ**—ବୈଦେ· ବି ଓ ଅ (ଫା)—୧ । ମୁସଲମାନଙ୍କ ପ୍ରତି ସମ୍ମାନ ବା ସ୍ନେହ ସମ୍ବୋଧନ (= ମହାଶୟ)—Affectionate address to a Mahomedans. ୨ । ମୁସଲମାନୀ ପ୍ରାଥମିକ ପାଠଶାଳାର ଶିକ୍ଷକ—2. The teacher of a primary Mahomedan school.
Miāñ(yāñ; ñā) ji
[ମିଆଁ(ୟାଁ, ଙ୍ଗା)ସାହୁ(ହେ)ବ—ଅନ୍ୟରୂପ]
মিঞাজী
**मियाँजी**

**ମିଆଁ(ୟାଁ, ଙ୍ଗା)ଜୀ ଟ୍ରେନିଙ୍ଗ୍ ସ୍କୁଲ୍**—ବୈଦେ. ବି—ମକ୍ତବ୍ ବା ମୁସଲମାନୀ ପ୍ରାଥମିକ ବିଦ୍ୟାଳୟ ପାଇଁ ଶିକ୍ଷକମାନେ ଯେଉଁ ବିଦ୍ୟାଳୟରେ ତାଲିମ୍ ନିଅନ୍ତି—A training school for primary teachers for Mahomedan schools. [ ଦ୍ର—ଓଡ଼ିଆ ପ୍ରାଥମିକ ବିଦ୍ୟାଳୟର ଓଡ଼ିଆ ଶିକ୍ଷକଙ୍କୁ ଗୁରୁ ବୋଲଯାଏ ଓ ଉଚ୍ଚ ଶ୍ରେଣୀୟ ବିଦ୍ୟାଳୟର ଓଡ଼ିଆ ଶିକ୍ଷକଙ୍କୁ ପଣ୍ଡିତ ବୋଲଯାଏ । ମୁସଲମାନୀ ପ୍ରାଥମିକ ବିଦ୍ୟାଳୟ (ମକ୍ତବ୍)ର ଶିକ୍ଷକଙ୍କୁ ମିଆଁଜୀ ଓ ଉଚ୍ଚଶ୍ରେଣୀୟ (ମଦ୍ରାସା)ର ଶିକ୍ଷକଙ୍କୁ ମୌଲବୀ ବୋଲଯାଏ । ଏହି ଦୁଇ ଶ୍ରେଣୀର ମୁସଲମାନ୍ ଶିକ୍ଷକମାନଙ୍କୁ ଯେଉଁ ବିଦ୍ୟାଳୟରେ ତାଲିମ କରାଯାଏ ତାହା ଯଥାକ୍ରମେ ମିଆଁଜୀ ଟ୍ରେନିଙ୍ଗ୍ ସ୍କୁଲ ଓ ମୌଲବୀ ଟ୍ରେନିଙ୍ଗ୍ ସ୍କୁଲ୍ ନାମରେ ବିଦିତ । ]
Miāñ(yāñ; ñā)ji trening skul

**ମିଆଦ(ଦି; ଦୀ)**—ବୈଦେ. ବି (କଚେରୀ) (ଅ. ମିଆଦ୍)—୧ । କୌଣସି କାର୍ଯ୍ୟ ସମ୍ପାଦନ ବା ଋଣପରିଶୋଧ ପାଇଁ ନିର୍ଦ୍ଧାରିତ ସମୟ—1. Time stipulated for the performance of some act or repayment of a loan. [ ଉ—ମିଆଦ ଟାଳିଲା ପିଆଦା ପରି ଏ ମାର ନିଲୈ ଅସୁମାରୁ । କବିସୂର୍ଯ୍ୟ.ସଙ୍ଗୀତ ।] ୨ । କୌଣସି କାର୍ଯ୍ୟ ସମାଧାନ ପାଇଁ ନିର୍ଦ୍ଧାରିତ ସମୟର ଶେଷ ସୀମା-3. Time limit; limitation of the time stipulated for an act. [ ଦ୍ର—ଭିନ୍ନ ଭିନ୍ନ ଶ୍ରେଣୀର ତମସୁକ, ଚୁକ୍ତିଭଙ୍ଗ, ଅନିଷ୍ଟ ନିମନ୍ତେ କ୍ଷତିପୂରଣ ଇତ୍ୟାଦି ଭିନ୍ନ ଭିନ୍ନ ପ୍ରକାରର ଦାବୀ ନିମନ୍ତେ 'ତମାଦି'ର ସମୟ ଆଇନ୍ ଅନୁସାରେ ଭିନ୍ନ ଭିନ୍ନ ଅଟେ । ଏହି ଭିନ୍ନ ଭିନ୍ନ 'ତମାଦି' କାଳମାନ ତମାଦି ଆଇନ୍ ବା Limitation Act ରେ ଲିପିବଦ୍ଧ ହୋଇଅଛି । ] ୩ । କାରାବନ୍ଦନ—3. Imprisonment. [ ଉ—ପଶ୍ଚାତ୍ ଶୁଣାଗଲା ମାଝୀ ଖଲାସିମାନେ ଦୁଇ ଦୁଇ ବର୍ଷ ମିଆଦ ଗଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ । ] ୪ । କାରା ବନ୍ଦନର ସମୟ—4. Period of imprisonment. ୫ । କାରାଦଣ୍ଡାଦେଶ—5. Sentence of imprisonment.
Miāda(di; dī)
মি(মে)যাদ
**मिआद**

**ମିଆଦ(ଦି) କରିବା**—ଦେ. କ୍ରି (କଚେରୀ)—କୌଣସି କାର୍ଯ୍ୟ ସମାଧା ହେବାର ସମୟ ନିର୍ଦ୍ଧାରଣ କରିବା-To fix a period for the performance of an act or obligation.
Miāda(di) karibā
মে(মি)য়াদ করা
**मिआद करना**

**ମିଆଦ(ଦି) ଖ(କା)ଟିବା**—ଦେ. କ୍ରି (କଚେରୀ)—କାରାଦଣ୍ଡ ଭୋଗ କରିବା—To undergo a term of imprisonment (said of a convict).
Miāda(di) kha(kā)ṭibā
মেয়াদ খাটা
**मियाद काटना**

**ମିଆଦ(ଦି) ଗଡ଼ିବା**—ଦେ. ବି (କଚେରୀ)—କୌଣସି କାର୍ଯ୍ୟ କରିବାର ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହେବା—The putting off of the performance of an act beyond the time stipulated.
Miāda(di) gaṛibā
মেয়াদ গত হওয়া
**मिआद गुजरना**
[ମିଆଦ(ଦି)ଗତ ହେବା, ମିଆଦ(ଦି) ପୂରିଯିବା, ମିଆଦ(ଦି) ବିତିଯିବା, ମିଆଦ(ଦି) ଅତୀତ ହେବା—ଅନ୍ୟରୂପ] [ମିଆଦ(ଦି) ଗଡ଼ାଇବା(ଗତ କରିବା, ବିତା (ତେ)ଇବା)—କ୍ରିୟା]

**ମିଆଦ(ଦି) ଗତେ**—ଦେ. କ୍ରି. ବିଣ (କଚେରୀ)—ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା ପରେ--On the expiry of the periodof limitation prescribed for an act.
Miāda(di) gate
মেয়াদ গতে
**मिआद बीतने पर**

**ମିଆଦ(ଦି) ଦେବା**—ଦେ. କ୍ରି (କଚେରୀ)—୧ । କୌଣସି କାର୍ଯ୍ୟ ସମାଧାନ ପାଇଁ ସମୟର ସୀମା ନିର୍ଦ୍ଧାରଣ କରିବା—1. To fix a time-limit for the performance of an act. ୨। କୌଣସି ଆସାମୀକୁ କାରାଦଣ୍ଡ ଆଦେଶ କରିବା—2. To sentence an accused to imprisonment.
Miāda(di) debā
মি(মে)য়াদ দেওয়া
**मिआद देना, मिआद बोलना**

**ମିଆଦ(ଦି) ପାଇବା**—ଦେ. କ୍ରି (କଚେରୀ)—କାରାଦଣ୍ଡ ଭୋଗ କରିବା ପାଇଁ ଆଦିଷ୍ଟ ହେବା—To be sentenced to a term of imprisonment.
Miāda(di) pāibā
মেয়াদ পাওয়া **मयाद पाना**

**ମିଆଦ(ଦି) ପୂରିବା**—ଦେ. ବି (କଚେରୀ)—ମିଆଦ କାଳର ଶେଷ ସୀମା ଉପସ୍ଥିତ ହେବା ବା ପୂର୍ଣ୍ଣ ହେବା—The expiry of the period of limitation.
Miāda(di) pūribā
মেয়াদ পূরা
**मिआद पूरा होना**

ମିଆଦ(ଦି) ମାଗିବା(ଚାହିବା)—ଦେ. କ୍ରି (କଚେରୀ)—କୌଣସି କାର୍ଯ୍ୟ Miāda(di) māgibā(Chahibā) କରିବା ପାଇଁ ସମୟ ପ୍ରାର୍ଥନା ମେୟାଦ ଚাওয়া କରିବା; ମହଲତ ଚାହିଁବା—To pray for **बादा चाहना** time for performing an act.

ମିଆଦ(ଦି) ଯିବା—ଦେ. କ୍ରି (କଚେରୀ)—ମିଆଦ ପାଇବା; କାରାଦଣ୍ଡ Miāda(di) jibā ଅଦେଶ ପାଇବା—To be sentenced to ମେୟାଦ ଯাওয়া a term of imprisonment. ଦେ.କ୍ରି— **मयाद जाना, मयाद बीतना** ମିଆଦ ଗଡ଼ିବା (ଦେଖ)—2. Miāda gardibā ( See )

ମିଆଦି—ବୈଦେ. ବଣ. (କଚେରୀ) (ଅ)—୧ । ମିଆଦସମ୍ବନ୍ଧୀ— Miādi 1. Relating to limitation. ୨ । ଯହିଁରେ କାଳ ମେୟାদী ନିର୍ଦ୍ଦିଷ୍ଟ ଥାଏ—2. Prescribed; having a time- **मियादी** limit. ୩ । କାରାଦଣ୍ଡରେ ଦଣ୍ଡିତ—3. Sentenced to imprisonment. ବୈଦେ.ବି (କଚେରୀ)— ମେୟାদী ପକ୍ଷମାନଙ୍କୁ ତଲବ କରିବା ପାଇଁ ବା ଜଣାଇବା ପାଇଁ **कोर्टफिस** ଅଦାଲତଙ୍କ ପ୍ରେରିତ ନୋଟିସ ଜାରି କରିବାକୁ ନିଯୁକ୍ତ ପିଆଦା ଆଦିଙ୍କ ପାଇଁ ପକ୍ଷଙ୍କ ଦେବା ଖରଚ—Process fees. [ଦ୍ର—ଏହା ନଗଦ ଦିଆ ନ ଯାଇ କୋର୍ଟଫିସ୍ ରୂପେ ଦାଖଲ ହୁଏ ।]

ମିଆଦି ଜମା—ବୈଦେ.ବି (କଚେରୀ)(ଫା)—ଯେଉଁ ଜମାର ବା ଖଜଣାର Miādi jamā ପରିମାଣ ନିର୍ଦ୍ଦିଷ୍ଟ କାଳପାଇଁ ଧାର୍ଯ୍ୟ ହୋଇଥାଏ— ମେୟାদী জমা A rent which is fixed for a stipul- **मियादी जमा** ated period.

ମିଆଦି ମକଦ(ଦ୍ଦ)ମୀ—ବୈଦେ.ବି (କଚେରୀ)(ଅ.ଓ ଫା.)—୧ । ଯେଉଁ Miādi makad(dda)mī ମକଦମୀ ପାଇଁ ଜମିଦାରଙ୍କୁ ଅଦାୟ ମେୟାদি মকদ্দমী ଦିଆଯିବା ଖଜଣା ନିର୍ଦ୍ଦିଷ୍ଟ କାଳ ସକାଶେ ଧାର୍ଯ୍ୟ ହୋଇ **मियादी मुकदमी** ଥାଏ—1. An under-tenure for which the rent is fixed for a certain period. ୨ । ଯେଉଁ ମକଦମୀର ପ୍ରଜାଙ୍କଠାରୁ ଖଜଣା ଅଦାୟ କରିବା ପାଇଁ ଜମିଦାର ନିର୍ଦ୍ଦିଷ୍ଟ କାଳ ସକାଶେ ମକଦମା ନିଯୁକ୍ତ କରନ୍ତି—2. An under-tenure which is terminable on the expiry of a stipulated period. [ଦ୍ର—ଏହିପରି ମିଆଦି ସରବରାକାରୀ, ମିଆଦି ସିକ୍ମି ଜମିଦାରୀ ଆଦି ଶବ୍ଦ ହୁଏ ।]

ମିଆଦି ହୁଣ୍ଡି—ଦେ.ବି (ମହାଜନୀ ସିରସ୍ତା)—ଯେଉଁହୁଣ୍ଡିରେ ଟଙ୍କା ଦେବା Miādi hundi ପାଇଁ ଅଦୃଷ୍ଟ ବ୍ୟକ୍ତିର ଦେଖିବାର ନିର୍ଦ୍ଦିଷ୍ଟ ମିଆଦ ମେୟାদী হুণ্ডী (ଯଥା—୩୧ ଦିନ, ୬୧ ଦିନ, ୯୧ ଦିନ) ପରେ **मियादी हुंडी** ଦିଆଯିବାର ଟଙ୍କା ଦେବାପାଇଁ ନିର୍ଦ୍ଦିଷ୍ଟ ହୋଇ ଥାଏ—A bill of exchange payable some fixed days after sight. (ହୁଣ୍ଡି ତଳେ ନୋଟ୍ ଦେଖ ) ।

ମିଆନ—ବୈଦେ.ବି. (ଫା. ମିୟାନ୍)—୧ । ତରବାରୀ ଆଦିର ଖୋଳ— Miān 1. Sheath of a sword. ୨ । ଛୁରୀ— **मयान** 2. Knife. ୩ । ଖେଣ୍ଡା—3. Dagger.

ମିଆନା—ଦେ. ବି. (ଫା. ମିୟାନା)—ମେହେଣା; ତାମଜାନ; ଅଗରେ Miānā ଓ ପଛରେ ଲୋକେ କାନ୍ଧେଇବା ପାଇଁ ବାଉଁଶ ଲାଗି- তামজান ଥିବା ଏକ ପ୍ରକାର ଚଉକି—A sedan chair. **तामझाम, मियाना**

ମିଉଜିଅମ୍—ଦେ. ବି. (ଇଂ. ମିଉଜିଅମ୍)—ଯାଦୁ ଘର; ଯେଉଁ ଗୃହରେ Miujiam ପ୍ରାଚୀନ ଓ ଦୁଷ୍ପ୍ରାପ୍ୟ ପଦାର୍ଥମାନ ସଂରକ୍ଷିତ ହୋଇ মিউজিঅম্ **मुयजियम** ଥାଏ—Museum. (ମ୍ୟୁଜିଅମ—ଅନ୍ୟରୂପ)

ମିଉଜିକ୍—ଦେ. ବି. ( ଇଂ. ମ୍ୟୁଜିକ୍ )—ଗୀତବାଦ୍ୟାଦି— Miujik Music. মিউজিক্ **मुयजिक** (ମ୍ୟୁଜିକ୍—ଅନ୍ୟରୂପ)

ମିଉଜିକ୍ କ୍ଲାସ୍—ବୈଦେ. ବି. (ଇଂ.)—ଯେଉଁ ଶ୍ରେଣୀରେ ଶିକ୍ଷାର୍ଥୀମାନଙ୍କୁ Miujik klās ଗୀତବାଦ୍ୟାଦି ଶିକ୍ଷା ଦିଆଯାଏ— মিউজিক্ ক্লাস **मुयजिक किलास** Music class.

ମିଉଜିକ୍ ବାକସ—ବୈଦେ ବି. ( ଇଂ. ମ୍ୟୁଜିକ୍ ବକ୍ସ୍ )—ଯେଉଁ Miujik bākasa ବାକ୍ସରେ ଥିବା ଯନ୍ତ୍ରରେ ଚାବି ଦେଲେ ବାଦ୍ୟ (ମିଉଜିକାଲ୍ ବାକସ—ଅନ୍ୟରୂପ) ଓ ସ୍ୱର ଆଦି ବାଜି ଉଠେ— মিউজিক বাক্স **मुयजिक बकस** Music box. (ମ୍ୟୁଜିକ୍ ବାକସ୍—ଅନ୍ୟରୂପ)

ମିଉଜିକ୍ ମାଷ୍ଟର—ଦେ. ବି. (ଇଂ. ମ୍ୟୁଜିକ୍ ମାଷ୍ଟର୍ )—ସଙ୍ଗୀତାଚାର୍ଯ୍ୟ; Miujik māshtar ଗୀତବାଦ୍ୟ ଶିକ୍ଷକ—Music master. মিউজিক মাষ্টার **मुयजिक मैष्टर** (ମ୍ୟୁଜିକ୍ ଟିଚର୍—ଅନ୍ୟରୂପ)

ମିଉଟିନି—ବୈଦେ.ବି (ଇଂ.ମ୍ୟୁଟିନୀ)—ଦ୍ୟୁପ୍ରତିଷ୍ଠିତ ସରକାରଙ୍କ ବିପକ୍ଷରେ Miutini ବିଦ୍ରୋହ, ବିଶେଷତଃ ସୈନ୍ୟମାନଙ୍କର ବିଦ୍ରୋହ— মিউটিনী **मुयटिनी** Mutiny.

ମିଉନିସିପ(ପା)ଲ୍—ବୈଦେ. ବଣ (ଇଂ)—ମିଉନିସିପାଲିଟି ସମ୍ବନ୍ଧୀୟ- Miunisipa(pā)l মিউনিসপাল Municipal. **मुनिसिपाल** ବି. ମିଉନିସିପାଲିଟି—Municipality.

ମିଉନିସିପ(ପା)ଲ୍ କମିସନର୍—ବୈଦେ. ବି—(ଇଂ. ମ୍ୟୁନିସିପାଲ୍ Miunisipa(pā)l kamisanar କମିସନର୍)—ମିଉନିସି- মিউনিসপাল কমিস্নর ପାଲିଟି ସଭାର ସଦସ୍ୟ—Municipal **म्युनिसिपैल कमिसनर** commissioner. (ମିଉନିସିପାଲ୍ କମିସ୍ନର—ଅନ୍ୟରୂପ)

ମିଉନିସିପ(ପା)ଲ୍ ଚେଆରମାନ୍—ବୈଦେ.ବି (ଇଂ)—ମିଉନିସିପାଲିଟିର Miunisipa(pāl) cheārmān ସଦସ୍ୟମାନଙ୍କ ନିର୍ବାଚିତ କାର୍ଯ୍ୟ- মিউনিসপাল চেয়ারম্যান্ ନିର୍ବାହକ ସଭାପତି—Municipal **म्युनिसिपैल चेरमैन** Chairman; the Chairman of a (ମ୍ୟୁନିସିପାଲ୍ ଚେର୍‌ମେନ୍—ଗ୍ରାମ୍ୟରୂପ) Municipality.

ମିଉନିସିପାଲ୍ ପ୍ରେସିଡେଣ୍ଟ—ବୈଦେ. ବି—(ଇଂ) ମିଉନିସିପାଲିଟିର Miunisipāl president କର୍ମର ଆଲୋଚନା ପାଇଁ ସମୟ মিউনিসিপাল প্রেসিডেন্ট ସମୟରେ ହେଉଥିବା କମିସନରମାନଙ୍କ **म्युनिसिपैल प्रेसिडेण्ट** ବଇଠକରେ ସଭାପତିକର୍ମ ନିର୍ବାହ କରିବାକୁ ନିର୍ବାଚିତ ବ୍ୟକ୍ତି—The President of a Municipality. [ ଦ୍ର—ମିଉନିସିପାଲିଟିର କମିସ୍ନର୍

ମାନେ ମିଉନିସିପାଲିଟିର ବୈତନିକ କର୍ମ ଚଳାଇବା ପାଇଁ ଅପଣା ମଧ୍ୟରୁ ଜଣକୁ ଚେଆରମାନ୍ ନିର୍ବାଚନ କରନ୍ତି, ତାଙ୍କୁ ମିଉନିସିପାଲ୍ ଚେଆରମାନ୍ ବୋଲଯାଏ । ମିଉନିସିପାଲିଟିର ବିଷୟ ଅଲୋଚନା ପାଇଁ ମଝିରେ ମଝିରେ ଯେଉଁ ବୈଠକମାନ ହୁଏ ଉକ୍ତ କର୍ମ ପରିଚାଳନ କରିବା ପାଇଁ ମିଉନିସିପାଲ୍ କମିସନରମାନେ ଯେଉଁ ବ୍ୟକ୍ତିଙ୍କୁ ନିର୍ବାଚନ କରନ୍ତି ତାଙ୍କୁ ମିଉନିସିପାଲ୍ ପ୍ରେସିଡେଣ୍ଟ ବୋଲଯାଏ ।]

ମିଉନିସିପାଲ୍ ବୋଡ଼(ର୍ଡ)—ବୈଦେ. ବି—(ଇଂ) ମିଉନିସିପାଲିଟିର Miunisipāl bord(rd) କମିସନରମାନଙ୍କ ସଂଘ—Municipal board. मिउनिसिपाल बोड़ म्युनिसिपैल बोरड

ମିଉନିସିପାଲ୍ ଭାଇସ୍‌ଚେଆରମାନ୍—ବୈଦେ. ବି—(ଇଂ) ମିଉନିସି- Miunisipāl bhāis-cheār-mān ପାଲ୍ ଚେଆରମାନଙ୍କ କାର୍ଯ୍ୟ ପରିଚାଳନାରେ ସାହାଯ୍ୟ କରିବା- ନିମିତ୍ତ ନିର୍ବାଚିତ ସହକାରୀ କାର୍ଯ୍ୟ ନିର୍ବାହକ—Municipal Vice-chairman; the Vice-chairman of a Municipality. मिउनिसिपाल भाइस्‌चेआरम्यान् म्युनिसिपैल वाइसचेरमैन

ମିଉନିସିପାଲିଟି—ବୈଦେ. ବି (ଇଂ. ମ୍ୟୁନିସିପାଲିଟି)—ନଗରର ସ୍ୱାସ୍ଥ୍ୟ, Miunisipāliti ଶିକ୍ଷାଦି ପରିଚାଳନାର୍ଥ ନାଗରିକମାନଙ୍କ ସ୍ୱାୟତ୍ତ- ଶାସକ ସଭା—Municipality. मिउनिसिपालिटि म्युनिसिपैलिटि [ମିନିସ୍(ସି) ପାଲ(ଲି)ଟି—ଅନ୍ୟରୂପ]

ମିଃ—ଦେ. ବି.—(ଇଂ. ମିଷ୍ଟର ଶବ୍ଦର ସାଙ୍କେତିକ)—ମିଷ୍ଟର୍ (ଦେଖ) Mih मिः मि Mishtar (see)

ମିଁ—ଦେ. ଅ (ଧ୍ୱନ୍ୟନୁକରଣ)—ଛେଳିଛୁଆଙ୍କର ଓ ଅତି ଦୁର୍ବଳ ଜୀବଙ୍କର Min କ୍ଷୀଣ ଚିତ୍କାର—(onomatopoeic) Feeble bleating of kids or feeble sound of weaklings. (ମିଁ ମିଁ, ମିଇଁ ମିଇଁ—ଅନ୍ୟରୂପ) म्याँ म्याँ में में

ମିଁଆଁ—ଦେ. ବି.—ମିଆଁ (ଦେଖ) Minān Mian (see)

ମିଁଆଁଉଁ—ଦେ. ବି—ମିଆଁଉଁ (ଦେଖ,— Minānun Miānun (see).

ମିଁମିଁଆଁ—ଦେ. ବିଣ—୧ । ମିଁ ମିଁ କ୍ଷୀଣଶବ୍ଦ କରୁଥିବା-1. Makinga Minminān feeble bleating sound. ୨ । ଅତି କ୍ଷୀଣ ଓ ଦୁର୍ବଳ—2. Very weak and emaciated. (ମିଇଁମିଇଁଆଁ, ମିଇଁମିଁଆଁ—ଅନ୍ୟରୂପ) मिमिंआ ଦେ. ବି.—ଛେଳିଙ୍କୁ ଆକ୍ରମଣ କରିବା ରୋଗ ବିଶେଷ—A peculiar disease attacking goats.

ମିଁମିଁକା—ଗ୍ରା. କ୍ରି. ବିଣ—ଅବ୍ୟକ୍ତ ଓ କ୍ଷୀଣ ମିଁ ମିଁ ଧ୍ୱନି ଉଚ୍ଚାରଣ Minminkā ପୂର୍ବକ—Uttering a feeble bleating sound. (ମିଇଁମିଇଁକା—ଅନ୍ୟରୂପ) ବିଣ.—ମିଁ ମିଁ ଶବ୍ଦକାରୀ- Bleating. [ଉ—'ମିଁମିଁକା ମାଈଛ ଛେଳି, ଶିଙ୍ଗ ଦଉଡି ଗୋଳା ଗୋଳା, ଏକ ଚିଙ୍କେ ମଇଁଷ ମାରେ, ବ ଚିଙ୍କରେ ପର୍ବତ ଛାଡ଼େ'—ପରର ମୁଣ୍ଡୀ କାହାଣୀର ଗୀତ ।]

ମିଁମିଁ ହେବା—ଦେ. କ୍ରି—୧ । ଅତି ଦୁର୍ବଳ ଓ କ୍ଷୀଣ ହୋଇ କ୍ଷୀଣ ଧ୍ୱନି Minmin hebā କରିବା—1. To make a feeble bleating sound (said of emaciated and weak animals). ୨ । ଅତି ଦୁର୍ବଳ ଓ କ୍ଷୀଣ ହେବା—2. To be lean and emaciated. ୩ । (ଛେଳିଛୁଆ) ବୋବାଇବା—3. To bleat (said of kids) मिँमिँ करना मिमियाना

ମିକା(କେ)ଡ଼ୋ—ବୈଦେ. ବି. (ଜାପାନ)—ଜାପାନ ରାଜ୍ୟର ସମ୍ରାଟଙ୍କ Mikā(ke)do ଉପାଧି—Mikado; the title of the Emperor of Japan. मिकाड़ो मिकेडो

ମିଖି(କ୍ଖି)ଛୋଡ଼(ସ)—ପ୍ରାଦେ. (ପୁରୀ ସହର) ବିଣ—ମକ୍ଷିଚୋଷ; କୃପଣ- Mikhi(kkhi)chhord(s) Miserly; niggardly

ମିଚିର୍ଡ଼(ଢ଼ି)—ପ୍ରାଦେ. (ଗଞ୍ଜାମ) ବି—୧ । ପୋଇଶାଗର ଫଳଯୁକ୍ତ Michird(rdi) ଡାଙ୍ଗ—The slender stem of the Basella plant with plum ୨ । ପୋଇ ଲତାର ଫଳ—2. The berries of the Poi creeper. पुई मोचड़ि पोरोफल

ମିଚୋ—ପ୍ରାଦେ. (ସମ୍ବଲପୁର) ବିଣ—ଅତି ସୂକ୍ଷ୍ମ—Very fine. Micho (ଉ—ଅଛିର ବାଲ୍ ବାଗିର ମିଚୋ ।) मिही झीन

ମିଛ—ଦେ. ବି.—(ସଂ. ମିଥ୍ୟା; ପ୍ରା. ମିଚ୍ଛା)—୧ । ଅନୃତ; ଅସତ୍ୟ; Michha ମିଥ୍ୟା କଥା—Lie; falsehood. ୨ । ଅବାସ୍ତବ ବିଷୟ—2. Unreal thing or matter. [ଉ—ସେ ବୃକ୍ଷମୂଳେ ଥିବା ମିଛ । ପଥ ଶୁଣିବାଟ ପ୍ରତ୍ୟକ୍ଷ ।—ଉପେନ୍ଦ୍ର. ପ୍ରେମସୁଧାନିଧି ।] मिछा झूठ, मिछा [ସତ—ବିପରୀତ] ଦେ. ବିଣ—୧ । ଅସତ୍ୟ—1. False. ୨ । ଲୋକଙ୍କୁ ଦେଖାଇବା ପାଇଁ କରାଯିବା; ବାହ୍ୟ—2. Outward; affected. ୩ । ଅବାସ୍ତବ—3. Unreal. ୪ । ଅମୂଳକ; ବୃଥା—4. Vain; groundless; baseless. ୫ । ନିଷ୍ଫଳ—5. Fruitless.

ମିଛ କଥା—ଦେ. ବି. (ସଂ. ମିଥ୍ୟା+କଥା)—୧ । ଅସତ୍ୟ ବାକ୍ୟ— Michha kathā 1. Untrue words; falsehood ୨ । ଅବାସ୍ତବ ବିଷୟ- 2. Unreal thing. मिछा (छे)कथा झूठी बात; मिछा कथा

ମିଛ କହିବା—ଦେ. କ୍ରି. (ସଂ. ମିଥ୍ୟା+କଥ୍ ଧାତୁ)—ଅସତ୍ୟ କଥା Michha kahibā କହିବା—To utter a lie; to speak a falsehood. मिछा(छे)बला झूठ कहना

ମିଛ(ଚ୍ଛି)କା—ଦେ. ବିଣ—ମିଥ୍ୟା (ଦେଖ)— Michha(chi)kā Mithyā (See) (ସତ(ଚ୍ଚ)କା—ବିପରୀତ) मिथ्या झूठ, मिछा

ମିଛ କାଗଜ—ଦେ. ବି—୧ । ମିଥ୍ୟା କଥା ଲେଖା ହୋଇଥିବା କାଗଜ Michha kāgaja ବା ଦସ୍ତାବିଜ—1. A document containing a false statement ୨ । ଜାଲ୍ ଦଲିଲ—2. A forged document. मिथ्या दलील झूठा दस्तावेज

**ମିଛ କାନ୍ଦ**—ଦେ.ବି.—(ସଂ. ମିଥ୍ୟା କ୍ରନ୍ଦନ)—କୃତ୍ରିମ କ୍ରନ୍ଦନ; ଅନ୍ତରରେ ଦୁଃଖ ନ ଥିବା ଅବସ୍ଥାରେ ବାହାରେ ଶୋକ ଦେଖାଇବା ପାଇଁ କ୍ରନ୍ଦନ—Affected weeping.
Michha kānda
মিছ(ছে)কান্না
(ମିଛ କାନ୍ଦଣା, ମିଛ କନାକନ୍ଦ, ମିଛ ଶକାଣ—ଅନ୍ୟରୂପ)

**ମିଛକୁ ମିଛ (ଛେ)**—ଦେ. ଅ—୧ । ମିଥ୍ୟାରେ—Falsely. ୨ । ବୃଥାରେ—2. In vain. ୩ । ଅବାସ୍ତବରେ—3. Not actually.
Michhaku michha(chhe)
মিছে মিছে **झूठ मूठ**

**ମିଛ ଗାଲୁ**—ଦେ. ବି—ମିଥ୍ୟା କଥନ ପୂର୍ବକ ଦାମ୍ଭିକତା; ଭୁରୁଡ଼ୁ—Effrontery by means of falsehood.
Michha gālu
মিথ্যা **झूठी ढिठाइ**
[ମିଛ ଭୁରୁଡ଼(ଡୁ)—ଅନ୍ୟରୂପ]
[ପ୍ରୟୋଗ—ମିଛ ଗାଲୁ କରିବା (କାଢ଼ିବା; ମାରିବା)]

**ମିଛ ନାଲିଶ[ଶି]**—ଦେ. ବି—ମିଥ୍ୟା ଅଭିଯୋଗ ବା ମକଦ୍ଦମା ଦାଏର୍—False suit; false charge or complaint.
Michha nāliś(śi)
মিথ্যা নালিস **झूठा नालिश**

**ମିଛ ନିଦ**—ଦେ. ବି. [ସଂ. ମିଥ୍ୟା ନିଦ୍ରା]—ପ୍ରକୃତରେ ନିଦ୍ରିତ ନ ହୋଇ ଲୋକଙ୍କୁ ଦେଖାଇବା ପାଇଁ ଶୋଇବା—Affected sleep.
Michha nida
মিথ্যানিদ্রা, মিছেঘুম **झूठा निद**

**ମିଛ ବାନି[ଲି]ଙ୍ଗି**—ଦେ. ବି—ମିଥ୍ୟା କହିବା ପୂର୍ବକ ଆସ୍ଫାଳନ; ବୃଥା ଆସ୍ଫାଳନ—Vain bragging; vain glory
Michha bāni(li ṅgi
**झूठी बहादुरी** মিছে বাহাদুরী
[ମିଛବାନି(ଲି)ଙ୍ଗିଆ—ବିଶେଷଣ ରୂପ]

**ମିଛ ଭକ[ଗ]ତି**—ଗ୍ରା.ବି.[ସଂ ମିଥ୍ୟା ଓ ଭକ୍ତି]—ଲୋକଙ୍କୁ ଦେଖାଇବା ପାଇଁ ବାହ୍ୟ ଅନୁରାଗ—Outward or affected devotion; a show of devotion.
Michha bhaka(ga)ti
মিথ্যাভকতি
**झुठी भगती**

**ମିଛ ମାୟା**—ଦେ. ବି—(ସଂ. ମିଥ୍ୟା ଓ ମାୟା)—୧ । କପଟ ସ୍ନେହ—1. Affected or assumed friendship. ୨ । କୁହୁକ—2. Magic. ୩ । ଅସାର ମୋହ—Unsubstantial delusion. [ଉ—ଶୁଖା ଖଡ଼ ଖଡ଼ ଖଡ଼ ଖଡ଼; ମିଛ ମାୟାରେ ପଡ଼ି ତୁ କଡ଼ ବଡ଼ କଡ଼ ବଡ଼, ଭଜନ ।] ଦେ. ବିଣ—୧ । ମାୟାପୂର୍ଣ୍ଣ—1. Full of delusion. ୨ । ଅବାସ୍ତବ—2. Unreal. ୩ । ଅସାର—3. Unsubstantial.
Michha māyā
মিথ্যা মায়া
**झूठी माया**

**ମିଛରେ**—ଦେ. କ୍ରି. ବିଣ—୧ । ଅନର୍ଥକ; ବୃଥା—1. In vain. ୨ । ମିଥ୍ୟା ଘଟଣାରୂପେ—2. Falsely. ୩ । ଅବାସ୍ତବରୂପେ—3. Unreally. ୪ । ମାୟାପୂର୍ଣ୍ଣ ଭାବରେ—4. Illusively. ୫ । ନିଷ୍ଫଳଭାବରେ—5. Fruitlessly.
Michhare
মিথ্যায় **झूठे**
( ମିଛେ, ମିଛେରେ—ଅନ୍ୟରୂପ )

**ମିଛରେ ମିଛରେ**—ଦେ. କ୍ରି. ବିଣ—୧ । ଅନର୍ଥକ—1 In vain. [ ଉ—ଏଡ଼େ ପଦାର୍ଥ ଏଡ଼େ ମିଛେ, କଷ୍ଟା ପକାଇଲ ପ୍ରତ୍ୟେ—ଭୂପତି. ପ୍ରେମପଞ୍ଚାମୃତ । ] ୨ । ବୃଥା; ନିଷ୍ଫଳରେ—2. Fruitlessly. ୩ । ମିଥ୍ୟା କଥା କହି—3. Falsely. ୪ । ହୃଦୟରେ ଅନୁଭବ ନ କରି ଦେଖାଇବା ପ୍ରକାରେ—4. Affectedly; seemingly. ୫ । ବିନା କାରଣରେ—5. Without any cause.
Michhare michhare
মিছামিছি **झूठमूठ**
( ମିଛେ, ମିଛେ ମିଛେ—ଅନ୍ୟରୂପ )

**ମିଛ ସତ**—ଦେ. ବି ( ସହଚର ) ( ସଂ. ମିଥ୍ୟା ସତ୍ୟ)—୧ । ମିଥ୍ୟା କଥା ଓ ସତ୍ୟ କଥା—1. Falsehood and truth. [ ଉ—ଶେଷରେ ଶ୍ରମରେ ମିଛ ସତ ଗାଇ—ରାଧାନାଥ. ଦରବାର । ] ୨ । ଚୁଗୁଲି; ପରୋକ୍ଷରେ ପର ନିନ୍ଦା—2. Backbiting; slandering ବିଣ—୧। ମିଥ୍ୟା ଓ ସତ୍ୟ (କଥା ବା ବିଷୟ)—1. False and true ( word or thing ). ୨ । ଅବାସ୍ତବ ଓ ବାସ୍ତବ—2. Unreal and real; true and untrue.
Michha sata
মিথ্যা সত্যি **झूठ सच**

**ମିଛ ସତ ଲଗାଇ କହିବା**—ଦେ. କ୍ରି—୧ । ପର ନାମରେ ସତ୍ୟ ଓ ମିଥ୍ୟା କଥା ଲଗାଇ ଦୁର୍ନାମ କରିବା—1. To speak evil of a person (by telling something which is true and something which is not true ). ୨ । ଚୁଗୁଲି କରିବା—2. To backbite or slander.
Michha sata lagāi kahibā
মিথ্যাসত্যি লগিয়ে বলা
**झूठ साँच लगाना**
(ମିଛ ସତ ଗାଇବା—ଅନ୍ୟରୂପ)

**ମିଛ ସାକ୍ଷୀ**—ଦେ. ବି—୧ । ( ସଂ. ମିଥ୍ୟା ସାକ୍ଷ୍ୟ ) ମିଥ୍ୟା ସାକ୍ଷ୍ୟ—1. False deposition; false evidence. ୨ । ( ସଂ. ମିଥ୍ୟା ସାକ୍ଷୀ ) ମିଥ୍ୟା ସାକ୍ଷ୍ୟଦାତା—2. A person who deposes falsely; a dishonest witness; a perjurer.
Michha sākshī
মিথ্যা সাক্ষী
**झूठी गवाही, झूठ गवाह**

**ମିଛି**—ଦେ. ବି ( ସ୍ତ୍ରୀ )—ଅପତ୍ତିଆଣୀ ବାଳିକାଙ୍କ ନାମ—A name given to girls whose elders have predeceased them.
Michhi

**ମିଛିରି**—ଦେ. ବି—ମିଶ୍ରି ( ଦେଖ )—Miśri ( See )
Michhiri মিছরী **मिसरी**

**ମିଛୁ**—ଦେ. ବି (ପୁଂ)—୧ । ଅପତ୍ତିଆଣୀ ବାଳକଙ୍କ ନାମ—1. A name given to boys whose elders had died before their birth. ୨ । ମିଥ୍ୟାବାଦୀ ବ୍ୟକ୍ତି—2. A liar. ଦେ.ବିଣ. ପୁଂ ଓ ସ୍ତ୍ରୀ—ମିଥ୍ୟାବାଦୀ(ବ୍ୟକ୍ତି)—Lying ( person ).
Michhu

**ମିଛୁଆ(ରା)**—ଦେ.ବିଣ—ମିଥ୍ୟାବାଦୀ—Lying; given to lying; speaking falsehood. [ଉ—ଖଚୁଆ ମିଛୁଆ ଲୋକେ ନିରଯ ପାଇବେ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା । ]
Michhuā(rā)
মিথ্যাবাদী **झुठा**
[ ମିଛେ(ଛୋ)ଇ, ମିଛୁଣୀ—ସ୍ତ୍ରୀ ]

**ମିଛୁଆ କରିବା**—ଦେ.କ୍ରି—୧। (କୌଣସି ବ୍ୟକ୍ତିଙ୍କୁ) ମିଥ୍ୟାବାଦୀ ସାବ୍ୟସ୍ତ କରିବା—1. To falsify; to belie a person. ୨ । ପ୍ରତିଶ୍ରୁତି ରକ୍ଷା କରିବାକୁ କୌଣସି ବ୍ୟକ୍ତିଙ୍କୁ ଅସମର୍ଥ କରିବା—2. To cause a person to diviate from his promise
Michhuā karibā
মিথ্যাবাদী করা
**झूठा बनवाना(बनाना)**
(ମିଛୁଆ ବନା[ନେ]ଇବା—ଅନ୍ୟରୂପ)

ମିଛୁଆ ନିଅଁଗିଲା—ଦେ. ଋଣ ଓ ବି ( ସ୍ୱତନ୍ତ୍ର ଶବ୍ଦଦ୍ୱୟ )—ଘୋର
Michhuā niāñgilā ମିଥ୍ୟାବାଦୀ; ଯେ ନିଅଁକୁ ଗିଳିବା ପରି
ঘোর মিথ্যাবাদী ଅସମ୍ଭବ କଥା କହେ—A bold liar;
पक्का झूट inveterate liar.

ମିଛୁଆ ବନିବା—ଦେ. କ୍ରି—୧ । ନିଜର କଥାର ଅସତ୍ୟତା ପ୍ରମାଣିତ
Michhuā banibā ହେବାଦ୍ୱାରା ମିଥ୍ୟାବାଦୀ ପ୍ରତିପନ୍ନ ହେବା;
মিথ্যাবাদী হওয়া ନିଜର କଥା ଫଳରେ ନ ଘଟିବା ଯୋଗୁଁ ଅପ୍ରସ୍ତୁତ
झूठा बनना ହେବା—1. To have one's report
(ମିଛୁଆ ହେବା—ଅନ୍ୟରୂପ) turn out not to be true.
୨ । ନିଜର ପ୍ରତିଜ୍ଞା ରକ୍ଷା କରିବାକୁ ଅସମର୍ଥ ହେବା—
2. Not to be true to one's promise.

ମିଜ୍‌ରାବ୍—ଦେ. ବି ( ଅ )—ସୀତାର ବଜାଇବା ପାଇଁ ଅଙ୍ଗୁଠିରେ
Mij-rāb ପିନ୍ଧାଯିବା ତାରର କୋଣବିଶିଷ୍ଟ ମୁଦିଆ—A striker
মিজরাব made of iron wire wherewith to
मिज़राब play upon the guitar; a pointed wire
-ring put on the index finger like a
cap to strike the strings of a guitar.

ମିଜା(ଞ୍ଜା)ଜ୍(ସ୍)—ଦେ. ବି (ଫା. ମିଜାଜ୍)—୧ । ମନ; ଅନ୍ତଃକରଣ—
Mijā(ñjā)j(s) 1. Mind. [ ଉ—ମୁଁ ଆଉ କିଛି କହିଲି
মেজাজ मिज़ाज ନାହିଁ; ସବୁବେଳେ ମିଜାଜ୍‌ଟା ଚଢ଼ି ରହିଛି—
ଫକୀରମୋହନ. ଗଳ୍ପସ୍ୱଳ୍ପ । ] ୨ । ମନର ଗତି; ମନୋ-
ଭାବ; ମନୋବୃତ୍ତି—1. Temperament of mind;
disposition; temper; mood. ୩ । କୌଣସି
ବିଷୟ ପ୍ରତି କୌଣସି ବ୍ୟକ୍ତିର ମନୋଭାବ—3. Attitude
of a person towards a particular matter.
୪ । ପ୍ରକୃତି; ସ୍ୱଭାବ— Nature. [ଦ୍ର—ମନୁଷ୍ୟର
ପ୍ରକୃତି ବଦଳେ ନାହିଁ; କିନ୍ତୁ ମିଜାଜ୍ ଦେଶକାଳପାତ୍ରର
ପ୍ରଭାବରେ ବଦଳି ପାରେ । ]

ମିଜା(ଞ୍ଜା)ଜ୍(ସ୍) ଖରାପ କରିବା—ଦେ. କ୍ରି (ଅ. ମିଜାଜ୍+ଫା. ଖରାବ୍)
Mijā(ñjā)j(s) kharāpa karibā —୧ । ଆପଣାର ମନକୁ
মেজাজ খারাপ করা ବ୍ୟସ୍ତ କରିବା; ଦୁଃଖିତ ହେବା—1. To be
मिजाज खराब करना bothered about any thing. ୨ ।
ଅନ୍ୟର ବିରକ୍ତି ଜନ୍ମାଇବା; ଅନ୍ୟକୁ ବିରକ୍ତ କରିବା—
2. To displease or tease a person.

ମିଜାଜ୍(ସ୍) ଖରାପ ହେବା—ଦେ. କ୍ରି ( ଅ. ମିଜାଜ୍+ଖରାବ୍ )—
Mijāj(s) kharāpa hebā ୧ । ବିରକ୍ତି ଜନ୍ମିବା—1.
মেজাজ খারাপ হওয়া Having a feeling of displeasure.
मिजाज खराब होना ୨ । ମସ୍ତିଷ୍କର ବିକୃତି ଘଟିବା—2. De-
(ମିଜାଜ୍[ସ୍] ବିଗିଡ଼ିବା—ଅନ୍ୟରୂପ) rangement of mind.

ମିଜାଜ୍(ସ୍) ଗରମ ହେବା—ଦେ. କ୍ରି—ମନରେ କ୍ରୋଧ ଜନ୍ମିବା—
Mijāj(s) garama hebā Angry mood.
মেজাজ গরম হওয়া मिजाज गरम होना, मिजाज बिगड़ना

ମିଜାଜ୍(ସ୍) ଠଉରା(ରେ)ଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତିର ମନୋଭାବକୁ
Mijāj(s) ṭhaurā(re)ibā ଅନୁମାନ କରିବା—To divine
মেজাজ ঠাউরান a person's mind; to probe another's
मिजाज तै करना mood

ମିଜାଜ୍(ସ୍) ଥଣ୍ଡା ହେବା—ଦେ. କ୍ରି—୧ । ମନ ଶାନ୍ତ ହେବା—
Mijāj(s) thaṇḍā hebā 1. Pacification of the
মেজাজ ঠাণ্ডা হওয়া मिजाज ठंढा होना mind. ୨ । କ୍ରୋଧର
ଶାନ୍ତି—2. Appeasement of one's anger.

ମିଜାଜ୍(ସ୍) ପାଇବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର ମନୋଭାବ ବା
Mijāj(s) pāibā ଅନ୍ତରର ଉଦ୍ଦେଶ୍ୟ ଅବଗତ ହେବା—
মেজাজ পাওয়া मिजाज पाना 1. To fathom another's
mind or heart's wish. ୨ । ଅନ୍ୟ ବ୍ୟକ୍ତିର
ପ୍ରକୃତିକୁ ଠଉରାଇବା—2. To know a pesron's
mentality, nature or attitude.

ମିଜାଜ୍(ସ୍)ପୁରସୀ—ବୈଦେ. ବି ( ଅ. ମିଜାଜ୍+ଫା. ପୁରସୀ; ତୁଳ.
Mijāj(s)pur-sī ପୁଚ୍ଛା; ଉର୍ଦ୍ଦୁରୁ ଅନୁକୃତ )—କୌଣସି ବ୍ୟକ୍ତିଙ୍କୁ
মেজাজপুর্সী मिजाज पुरसी ତାଙ୍କ ଶାରୀରିକ ଓ ମାନସିକ କୁଶଳ
ସମ୍ବନ୍ଧେ ପ୍ରଶ୍ନ; ସ୍ୱାଗତ ପ୍ରଶ୍ନ; କୁଶଳ ପ୍ରଶ୍ନ—Questioning
a person ( whom one meets ) as to his
welfare in mind and body. (ଦ୍ର—କୌଣସି
ବନ୍ଧୁଙ୍କୁ ଭେଟିବା ବ୍ୟକ୍ତି ତାଙ୍କୁ ପଚାରନ୍ତି—ଆପଣଙ୍କର
ସବୁ ମଙ୍ଗଳ ତ ? ଏଥିରେ ଶାରୀରିକ ମଙ୍ଗଳ ଓ ମାନସିକ
ଶାନ୍ତି ଉଭୟ ସମ୍ବନ୍ଧେ ପ୍ରଶ୍ନ ସୂଚିତ ହୁଏ । ଉର୍ଦ୍ଦୁଭାଷାରେ
"ମିଜାଜ୍ ଶରୀଫ୍ ?" ପ୍ରଶ୍ନସୂଚକ ବାକ୍ୟର ବ୍ୟବହାର ଅଛି ।
ଏଥିର ଅର୍ଥ—ଆପଣଙ୍କ ମିଜାଜ୍ ବା ମନ ଭଲ ଅଛି ?
ଅର୍ଥାତ୍ ଆପଣଙ୍କର ଶାରୀରିକ ଓ ମାନସିକ କୁଶଳ ତ ? ]

ମିଜା(ଞ୍ଜା)ଜି(ସି)—ବୈଦେ. ବିଣ ( ଫା )—୧ । ଏକଗୁଆଁ; ଗୁଆଁର—
Mijā(ñjā)ji(si) 1. Headstrong. ୨ । ଖିଆଲୀ—
ମିଜା(ଞ୍ଜା)ଜି(ସି)ଆ } ଅନ୍ୟରୂପ
ମିଜାଜ୍‌ଦାର 2. Whimsical. ୩ ।
( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ,
মেজাজী ଯଥା—ବଦ୍‌ମିଜାଜୀ, ଖୁସ୍‌ମିଜାଜୀ )—ଅମୁକ ପ୍ରକୃତି
खुशमिजाजी, मिजाजी ବିଶିଷ୍ଟ—3. Natured; having
such and such a nature.

ମିଞ୍ଚଡ଼(ଡ଼ା)—ଦେ. ବିଣ. ପୁଂ—୧ । ଖେଚେଡ଼ା; ଦୁଷ୍ଟ ( ବାଳକ )—
Miñcharḍa(rḍā) 1. Wicked; wanton ( boy ). ୨ ।
[ମିଞ୍ଚ(ଞ୍ଚ)ଡ଼ୀ—ସ୍ତ୍ରୀ] ଅତି ଛୋଟ ( ବାଳକ )—2. Pigmy;
এঁচড় बदमाश tiny. [ ଦ୍ର—ଏ ଶବ୍ଦ ବାଳକଙ୍କ ପ୍ରତି
ବ୍ୟବହୃତ ହୁଏ । ]

ମିଞ୍ଜ(ଞ୍ଜି) ମିଞ୍ଜ(ଞ୍ଜି)—ଦେ. କ୍ରି. ବିଣ—୧ । ଆଖିକୁ ମିଟ୍ ମିଟ୍ କରିବ;
Miñj(ñji) miñj(ñji) ପ୍ରକାରେ—1 In a twinkling
মিজ মিজ manner. [ ଉ—ଆଖି ମିଞ୍ଜି ମିଞ୍ଜି କରିବା । ]
मटमट(आँखि,) टिमटिम(दिया) ୨ । ଢୁକ୍ ଢୁକ୍; ପ୍ରଦୀପ କ୍ଷୀଣ-
ଭାବରେ ଜଳିବା ପ୍ରକାରେ—2. In a languishing
or flickering manner(said of a flickering
light). [ ଉ—ବଇଠାରେ ମିଞ୍ଜି ମିଞ୍ଜି ହୋଇ ଜଳୁଅଛି,
(ମିଞ୍ଜିମିଞ୍ଜିଆ—ବିଣ) ଫକୀରମୋହନ. ଛମାଣ ଅଠଗୁଣ୍ଠ । ]

ମିଞ୍ଜକ—ଦେ. ବି—ବାଳକ—A boy. [ ଉ—ଜହିଁରୁ ଟିଞ୍ଜିକା
Miñjaka ମିଞ୍ଜକ ହଉଛି, କନ୍ୟାଜନ୍ମ ହେବାକୁ ଉମ୍ବର ଗଣୁଛି ।
କୃଷ୍ଣସିଂହ. ମହାଭାରତ ବନ ।]

ମିଞ୍ଜା—ଦେ. ବି ( ସଂ. ସାମଞ୍ଜସ୍ୟ )—ଦୁଇ ବସ୍ତୁ ମଧ୍ୟରେ ମେଳ—
Miñjā Coincidence between two things;
মেল, গোঁজামিল tallying. ପ୍ରାଦେ (ସମ୍ବଲପୁର, ଗଡ଼ଜାତ)
ठिक ବିଣ—ମିଟମିଟିଆ (ଅଲୁଅ)—Flickering light.

ମିଞ୍ଜାଜ୍(ସ୍) (ଇତ୍ୟାଦି)—ବୈଦେ. ବି (ଅ)—ମିଜାଜ୍ ଇତ୍ୟାଦି (ଦେଖ)
Miñjāj(s) etc Mijāj etc. (See)

ମିଞ୍ଜାଜି (ସି)—ବୈଦେ. ବିଣ—ମିଜାଜି [ ଦେଖ ]—Mijāji (See)
Miñjāji (si) [ ମିଞ୍ଜାଜି(ସି)ଆ—ଅନ୍ୟରୂପ]

ମିଞ୍ଜା ଦେବା—ଦେ. କ୍ରି—ଚାଳର କୌଣସି କୌଣସି ସ୍ଥାନରୁ ନଡ଼ା
Miñjā debā ଉଲୁଗି ଯାଇଥିଲେ ତହିଁରେ ନଡ଼ା ଗୁଞ୍ଜିବା;
[ମିଞ୍ଜା ମାରିବା—ଅନ୍ୟରୂପ] ଖୁଞ୍ଚା ଦେବା—To put straw
গোঁজা মারা at places wherefrom straw has
मरम्मत करना come out.

ମିଞ୍ଜା ମିଳା(ଳେ)ଇବା—ଦେ. କ୍ରି—ଦୁଇଟି ପଦାର୍ଥ ମଧ୍ୟରେ ଥିବା
Miñjā miḻā(ḻe)ibā ଫାଙ୍କକୁ ବା ପ୍ରଭେଦକୁ କୌଶଳପୂର୍ବକ
গোঁজামিল করা ସମାନ କରିବା—To smooth the
सटाना interstices or difference between two
things with dexterity or skill.

ମିଞ୍ଜିକା(କୀ)—ତ. ବି. ସ୍ତ୍ରୀ—୧ । କନ୍ୟା—1. Daughter ୨ ।
Miñjikā(kī) ଶିଶୁ କନ୍ୟା—2. An infant daughter.
[ ଉ—ତହିଁରୁ ଟିଞ୍ଜିକା ଟିଞ୍ଜକ ହୁଇଟି, କନ୍ୟାଜନ୍ମ ହେବାକୁ
ଉମ୍ବର ଗଣୁଛି । କୃଷ୍ଣସିଂହ. ମହାଭାରତ. ବନ । ]

ମିଞ୍ଜି ମିଞ୍ଜି(କା)ଆ—ଦେ. ବିଣ—୧। ଅସ୍ପଷ୍ଟଭାବରେ ଦେଖା ଯାଉଥିବା—
Miñji miñji(ka)ā 1. Seen indistinctly. ୨ । ଅସ୍ପଷ୍ଟ-
মিজ মিজে धुंधला ଭାବରେ ଜଳୁଥିବା—2. Flickering.

ମିଟ୍ ମାଟ୍—ଦେ. ବି—(ସଂ. ମିଳନ)—ବିବାଦର ମୀମାଂସା; ମେଳ ମାଳ;
Miṭ-māṭ ମିଳମାଳ; ବିବାଦର ଆପୋଷରେ କଷ୍ଟି—Amica-
মিট মাট मेटा मेटी ble settlement of a dispute.

ମିଟ୍(ଟି) ମିଟ୍(ଟି)—ଦେ. ଅ.—(ସଂ. ନିମିଷ; ସଂ. ମୀଲ ଧାତୁ)—୧ ।
Miṭ(ṭi)miṭ(ṭi) ଆଖିକୁ ଉପର୍ଯ୍ୟୁପରି ମେଲା କରିବା—1.
মিট মিট मट मट Twinkling of the eye. ୨ । ଜୁଳୁ ଜୁଳୁ
(ମିଟ ମିଟ—ଅନ୍ୟରୂପ) କରି; ଧୀରେ ଧୀରେ ଆଖି ପିଛୁଡ଼ିବା—
2. With twinkling eyes. [ଉ—ମିଟ ମିଟ ଚାହିଁ
କହିବେ ଏହା ତାଙ୍କୁ । କୃଷ୍ଣସିଂହ. ମହାଭାରତ. ବନ ।]

ମିଟ୍(ଟି) ମିଟିଆ(କା)—ଦେ. ବିଣ.—(ସଂ. ମୀଲ ଧାତୁ)—ଅନୁଜ୍ଜ୍ୱଳ ବା
Miṭ-(ṭi) miṭiā(kā) କ୍ଷୀଣଭାବରେ ଜଳୁଥିବା (ଆଲୋକ)—
মিটিমিটা; মিটিমিটিয়া; মিটিমিটে Flickering (light.)
टिमटिमा, धुंधला

ମିଟା(ଟେ)ଇବା—ଦେ. କ୍ରି (ବଙ୍ଗଳାରୁ ଅନୁକୃତ; ସଂ. ମିଲ ଧାତୁ)—
Miṭā(ṭe)ibā ୧ । ବିବାଦ ଆଦି ମିଳାଇବା; ମେଣ୍ଟାଇବା; ଦୁଇ
মেটান मिटाना ପକ୍ଷଙ୍କୁ ମିଳାଇବା; ବିବାଦ କଷ୍ଟି କରିବା; ମୀମାଂସା
କରିବା—1. To cause a dispute to be settl-
ed between two disputants; to decide
amicably. ୨। ମନର ଉଦ୍ଦେଶ୍ୟ ବା ଲାଳସା ବା ଆକାଂ-
କ୍ଷାକୁ ସଫଳୀକୃତ କରିବା—2. To have one's
hankering or craving
realised or satisfied.

ମିଟାମିଟି—ଦେ. ବି (ବଙ୍ଗଳାରୁ ଅନୁକୃତ)—ମିଟ୍ମାଟ୍ (ଦେଖ)
Miṭāmiṭi Miṭmāṭ (See)
মটামিট मेटामेटी

ମିଟିଆ—ଦେ. ବି—ମିଟିକାଣିଆ (ଦେଖ)
Miṭiā Miṭikāṇiā (See)

ମିଟିଆଣି—ଦେ. ବି—୧। ଗ୍ରାମର ଗୁହ ପକାଆ—1. The village
Miṭiāṇi common for people to pass stools
মাঠ खता there; the village easing ground.
୨ । (ନାମ)—ପୁରୀ ଅଠରନଳା ତଳେ ପ୍ରବାହିତ ନଦୀ-
ବିଶେଷ—2. A river of this name flowing
near the Puri town, and over which the
Aṭharanaḻā bridge has been construct-
ed.—୩ । ମିଟିକାଣିଆ (ଦେଖ)—3 Miṭikā-
ṇiā (See)

ମିଟିକା—ଦେ. ବି—୧। ଆଖିପିଛୁଡ଼ା; ପଲକ—1. Twinkling of
Miṭikā the eye. ୨। ଆଖିଠାର—2. Ogling.
পলক मटका(की)

ମିଟିକା(କି)ଣିଆ(ଆଁ)—ଦେ.ବି—କଙ୍ଗଡ଼ାଜାତୀୟ କାଠ; ଏକପ୍ରକାର ବନ୍ୟ
Miṭikā(kī)ṇiā(āñ) ଗଛ (ଏଥିରେ ଶଗଡ଼ର ଅଖ, ଡଙ୍କ ଆଦି
ହୁଏ)—A wild tree used in making cart.

ମିଟିକା ମାରିବା—ଦେ. କ୍ରି—ଆଖି ପିଛୁଡ଼ିବା—To ogle; to
Miṭikā māribā make the eye twinkles
( ମିଟିକା(କେ)ଇବା—ଅନ୍ୟରୂପ )
মিটকান मटकीमारना

ମିଟିକାଳ(ଳି;ଳିଆ)—ଦେ. ବି (ସଂ. ମୃଗଲ)—ମିରିକାଳ ମାଛ; ରୋହି
Miṭikaḻa(ḻi;ḻiā) ଜାତୀୟ ମାଛ; (ଦ୍ର—ଏହା ରୋହିଠାରୁ
নিরগেল नली ଛୋଟ, ପ୍ରାୟ ୧୨ ହାତ ଲମ୍ବ)—Cirrhina
Mrigala fish.

ମିଟିକୋରୁଆଁ—ଦେ. ବି—କୋରୁଆଁ (ଦେଖ)
Miṭikoruāñ Koruāñ (See)

ମିଟିଙ୍ଗ୍—ବୈଦେ. ବି (ଇଂ. ମୀଟିଙ୍ଗ୍)—ସଭା; ସଭାର ଅଧିବେଶନ—
Miṭiṅg Meeting; a sitting of some
persons for a particular object.
[ ମିଟିଂ, ମିଟିଙ୍ଗି(ଣ୍,ଣି,ନ୍,ନି—ବିକୃତ ଗ୍ରାମ୍ୟ ରୂପ ]
মিটিঙ্গ मिटिङ्ग

ମିଟିଙ୍ଗ୍ ଆହ୍ୱାନ କରିବା—ଦେ. କ୍ରି—ସଭାର ଅଧିବେଶନରେ ଉପସ୍ଥିତ
Miṭiṅg āhwāna karibā ହେବା ପାଇଁ ସଭ୍ୟମାନଙ୍କୁ
মিটীঙ্গ ডাকা ଡାକିବା—To convene a meeting.
मिटिङ्ग बुलाना (ମିଟିଙ୍ଗ୍ ଡାକିବା—ଅନ୍ୟରୂପ)

ମିଟିଙ୍ଗ୍ ନୁ(ନୋ)ଟିସ୍—ବୈଦେ. ବି. (ଇଂ. ମିଟିଙ୍ଗ୍ ନୋଟିସ୍)—
Miṭiṅg nu(no)ṭis ସଭାର ଅଧିବେଶନର ତାରିଖ ଜଣାଇ ଦିଆ
মিটিঙ্ নোটিস ଯିବା ବିଜ୍ଞାପନ—Notice of a meeting.
**मिटिङ्ग नोटिस** [ମିଟିଂଲୁ(ଲୋ)ଟିସ—ଗ୍ରାମ୍ୟରୂପ]

ମିଟିଙ୍ଗ୍ ହଲ୍—ବୈଦେ. ବି. (ଇଂ)—ସଭା ମଣ୍ଡପ—
Miṭiṅg hal মিটিঙ্ হল **मिटिङ्ग हल** Meeting hall.

ମିଟିବା—ଦେ. କ୍ରି.—(ବଙ୍ଗଳାରୁ ଅନୁକୃତ; ସଂ. ମିଲ ଧାତୁ)—୧ ।
Miṭibā ମେଣ୍ଟିବା (ଦେଖ)—1. Menṭibā (See)
মিটা ୨ । (ବିବାଦ ଆଦି) ମୀମାଂସା ହେବା; ମେଣ୍ଟିବା—2. To
**मिटना** be decided or settled. ୩ । ନିର୍ବାହିତ ହେବା;
(ମିଟା[ଟେ]ଇବା—ପ୍ରଯୋଜକରୂପ) ମେଣ୍ଟିବା—3. To be accomplished. ୪ । (ମନର ସାଧ, ଓଲମାଳ, ଲାଳସା, ଆକାଙ୍କ୍ଷା) ସଫଳୀକୃତ ହେବା—4. (one's wish or hankering) To be realised or fulfilled.

ମିଟି ଯିବା—ଦେ.କ୍ରି—୧ । (ବଙ୍ଗଳାରୁ ଅନୁକୃତ)(ବିବାଦ ବା ଅଡ଼୍ଡୁଆ)
Miṭi jibā ଶେଷ ନିଷ୍ପତ୍ତି ହେବା—1. To be finally
মিটে যাওয়া **मिट जाना** decided (said of a dispute or matter). ୨ । (ମନର ଇଚ୍ଛା) କାର୍ଯ୍ୟରେ ପରିଣତ ହେବା—2. (one's wish) To be fulfilled; to be realised.

ମିଠ—ଦେ. ବିଶେ. (ସଂ. ମିଷ୍ଟ. ପ୍ରା. ମିଟ୍ଠ)—ମିଠା (ଦେଖ)
Miṭha মিঠে **मीठ** Miṭhā (See) [ଉ—କର୍ପୂର ମରିଚ ମେଳ ମିଠ ଲୁଚେ ମୋହିଁ । ପ୍ରାଚୀ. ରହସ୍ୟମଞ୍ଜରୀ ।]

ମିଠା—ଦେ. ବିଶେ (ସଂ. ମିଷ୍ଟ, ପ୍ରା. ମିଟ୍ଠ)—୧ । ମିଷ୍ଟ; ମଧୁର—
Miṭhā মিঠা(ঠে) মিষ্টি **मीठा** 1. Sweet. ୨ । କୋମଳ; ମୃଦୁ—2. Soft; delicate. ୩ । ଶ୍ରୁତିମଧୁର—3. Sweet to the ear. ୪ । ସୁସ୍ୱାଦୁ—4. Sweet to the taste. ୫ । ମନୋମୋହକର—5. Captivating. ୬ । ଅନୁଗ୍ର; ଯାହା କଡ଼ା ନୁହେଁ—6. Mild. ବି.—୧ । ମିଷ୍ଟତା—1. Sweetness. [ଉ—ଚଖାଇଲ ସୁରତ ମିଠା, ଲଗାଇଲ କଳଙ୍କ ଅଠା । ପ୍ରାଚୀନ. ସଙ୍ଗୀତ ।] ୨ । ମଧୁର ସ୍ୱାଦ—2. Sweet taste. ୩ । କର୍ଣ୍ଣମଧୁରତା—3. Sweetness. ୪ । କୋମଳତା—4 Softness; tenderness; mildness.

ମିଠା(ଠେ)ଇ—ଦେ. ବି.—(ସଂ. ମିଷ୍ଟାନ୍ନ; ବା ମିଷ୍ଟକ)—ମିଷ୍ଟାନ୍ନ
Miṭhā(ṭhe)i ମିଷ୍ଟ ଖାଦ୍ୟ—Sweetmeat. ବିଶେ.—
মি(মে)ঠাই **मिठाई** ସୁମିଷ୍ଟ; ମଧୁର—Sweet.
[ଦ୍ର—ଆମ ଦେଶରେ ନାନା ପ୍ରକାର ମିଷ୍ଟାନ୍ନକୁ ପୂର୍ବେ ପିଠା ଓ ଖୋଇ କୁହା ଯାଉଥିଲା । ଆଧୁନିକ ଯୁଗରେ ନିମ୍ନଲିଖିତ ନାନା ପ୍ରକାର ନବ୍ୟ ମିଷ୍ଟାନ୍ନ ପ୍ରଚଳିତ ହେଲାଣି । ଯଥା—ଲଡ଼ୁ, ଜି(ଜ)ଲି(ଲେ)ବି, ଗୁପ୍ ଚୁପ୍; ସନ୍ଦେଶ, ଖୀରମୋହନ, ଗୋଲାପଜାମୁ, ଗୁପ୍ ଚୁପ୍, ପାନତୁଆ, ବୁନ୍ଦିଆ, କୋରା, ଝିଲି ବା କାନ୍ତି, ଛାନାମୁ । ଦେବତାଙ୍କୁ ଭୋଗ ଦିଆ ଯାଉଥିବା ନାନା ପ୍ରକାର ମିଷ୍ଟାନ୍ନର ନାନା ନାମ ଅଛି । ଆମ ଦେଶର ପିଠାମାନଙ୍କର ମଧ୍ୟ ନାନା ନାମ ଅଛି ।]

ମିଠା(ଠେ)ଇଖିଆ—ଦେ. ବି—୧ । ମିଷ୍ଟାନ୍ନ ଭୋଜନ—1. Eating
Miṭhā(ṭhe)i khiā মেঠাইখিআ of sweets.
**मिठाई खानेकेलिए पईसा** ୨ । ଚାକର ଓ ବାଳକମାନଙ୍କୁ ମିଠାଇ କିଣିବା ନିମନ୍ତେ ଦିଆ ଯିବା ପାରିତୋଷିକ ଧନ—Tips paid to servants or children for buying sweets with.

ମିଠାଇ ବଣ୍ଟା—ଦେ. ବି.—ଉତ୍ସବାଦି ଉପଲକ୍ଷରେ ମିଷ୍ଟାନ୍ନ ବିତରଣ—
Miṭhāi banṭā Distribution of sweets on cere-
মেঠাই বাণ্টা **मिठाई बाँट** monial occasions.
(ମିଠାଇ ବ[ବା]ଣ୍ଟିବା, ମିଠାଇ ବାଣ୍ଟ—ଅନ୍ୟରୂପ).

ମିଠା କଡ଼ା—ଦେ. ବିଶେ—(ବିପରୀତାର୍ଥକ ସହଚର)—୧ । ମିଷ୍ଟ ଓ
Miṭhā karḍā ଉଗ୍ର; ମିଠା ଓ ରାଗୁଆ—1. Sweet and
মিঠা কড়া **मीठा कडुआ** pungent. ୨ । ମଧୁର ଓ କର୍କଶ
(ମିଠା କଡ଼ୁଆ—ଅନ୍ୟରୂପ) (ବାକ୍ୟ)—2. Sweet and bitter (words).

ମିଠାକଡ଼ା ଦୁଇପଦ ଶୁଣାଇ ଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ
Miṭhākarḍā duipada śuṇāi debā ପଦକେତେ ଅପ୍ରିୟ
মিঠাকড়া দুইকথা শোনান **मिठी कड़ी सुनाना** ସତ୍ୟ ଶୁଣାଇ ଦେବା
—To give a person a bit of one's mind.

ମିଠା କଥା—ଦେ. ବି (ସଂ. ମିଷ୍ଟ କଥା)—ମିଷ୍ଟ ବାକ୍ୟ—
Miṭhā kathā Sweet words)
মিঠা কথা **मिठि बात**

ମିଠା କମଳା—ଦେ. ବି (ସଂ. ନାମ ମଧୁକର୍କଟିକା)—ଲେମ୍ବୁ ବର୍ଗର
Miṭhā kamaḷā ବୃକ୍ଷ ଓ ତହିଁର ସୁମିଷ୍ଟ ଫଳ—Citrus
ବ. ମିଠାନେବୁ Limetta; the sweet
ହି. ମିଠା କମଲା lime. (Kirtikar.
ଗୁଜ. ମିଠା ଲିମ୍ବୁ
ତା. ଏଲେମିଚ୍ଚ ଅ
ତେ. ନେମ୍ମାପାଣ୍ଡୁ ; ଗଜନିମ୍ମା
ମ. ସାକର ନିମ୍ବୁ

ମିଠା ଖଟା—ଦେ. ବିଶେ (ବିପରୀତ ସହଚର)—ମିଷ୍ଟ ଓ ଅମ୍ଳ—Of
Miṭhā khaṭā sweet and acid taste. [ଦ୍ର—
মিষ্টঅম্ল **मिठाखट्टा** ଏହିପରି ମିଠା କଷା, ମିଠା ଲୁଣି, ମିଠା ଲୁଣୀ, ମିଠା ପିତା, ମିଠା ରାଗ ଆଦି ଶବ୍ଦ ହୁଏ ।].

ମିଠା ଗନ୍ଧ—ଦେ. ବି. (ସଂ. ମିଷ୍ଟ+ଗନ୍ଧ)—ମଧୁର ମନୋମୋହକର
Miṭhā gandha ଗନ୍ଧ—Sweet smell; aroma.
মিঠে(ঠা) গন্ধ **मिठा गन्ध** (କଡ଼ା ଗନ୍ଧ—ବିପରୀତ)

ମିଠା ଗୁଡ଼ାଖୁ—ଦେ. ବି—ଯେଉଁ ଗୁଡ଼ାଖୁର ଧୂଆଁ ମୃଦୁ ବା କଡ଼ା
Miṭhā gurḍākhu ନହେ—Smoking tobacco mix-
মিঠা তামাক **मिठी पीनी** ture of mild flavour.
(କଡ଼ା ଗୁଡ଼ାଖୁ—ବିପରୀତ)

ମିଠା ଗୁଣ୍ଡି—ଦେ. ବ—ଧନିଆ ସଙ୍ଗେ ଅଳ୍ପ ସାମାନ୍ୟ ପରିମାଣରେ ଧୂଆଁ
Miṭhā guṇḍi ପତ୍ର ମିଶାଯାଇଥିବା ଗୁଣ୍ଡି—Tobacco
মিঠে দোকতা **मिठा जरदा** powder with mild flavour.

ମିଠା ଚଖା(ଖେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ କୌଣସି
Miṭhā chakhā(khe)ibā ପଦାର୍ଥର ମିଷ୍ଟତା ଅନୁଭବ ଦ୍ୱାରା
মিষ্টি চাখান ବୋଧଗମ୍ୟ କରାଇବା—To cause a person
**मिठा चखाना** to taste the sweetness of a thing.

ମିଠା ଚାଖିବା—ଦେ. କ୍ରି—ମିଷ୍ଟ ପଦାର୍ଥର ସ୍ୱାଦ ଅନୁଭବ କରିବା—
Miṭhā chākhibā To taste a sweet thing.
মিষ্টি চাখা **मिठा चखना**

ମିଠା ତେଲ—ପ୍ରାଦେ. (ଉତ୍ତର ବାଲେଶ୍ୱର) ବ—ରନ୍ଧାରେ ଲଗାଇବା ଓ
Miṭhā tela ଲଗା ଆଦି ପାଇଁ ବା କେଶ ପାଇଁ ବ୍ୟବହୃତ ଭଲ
ভাল তেল, রাঁধবার তেল ତେଲ—Oil used for culiniary
**मिठा तेल** purposes or the hair

ମିଠାଣି—ଦେ. ବ (ସଂ. ମିଷ୍ଟତ୍ୱ)—ମାଧୁର୍ଯ୍ୟ—
Miṭhāṇi Sweetness.
মাধুর্য্য **मिठास**

ମିଠା ପଣ—ଦେ. ବ—ମିଷ୍ଟତା—
Miṭhā paṇa Sweetness.
মিষ্টি **मिठापन**

ମିଠା ପଲ(ଲା)ଉ—ଦେ. ବ. (ସଂ. ମିଷ୍ଟ+ପା. ପୋଲାଓ; ସଂ. ପଲାନ୍ନ)—
Miṭhā pala(lā)u ମାଛ ବା ମାଂସ ବ୍ୟତୀତ ପ୍ରସ୍ତୁତ ଶର୍କରାଯୁକ୍ତ
মিঠা পলাউ ଘୃତାନ୍ନ—Boiled rice sweetened with
**मिठा पोलाव** sugar and ghee and without the admixture of fish or meat.

ମିଠା ପାଣି—ଦେ.ବ. (ସଂ.ମିଷ୍ଟ ପାନୀୟ)—୧ । ଚିନି ଆଦି ଦ୍ୱାରା ମିଷ୍ଟୀକୃତ
Miṭhā pāṇi ଜଳ; ପଣା—1. Water sweetened with
মিঠা পানী sugar. ୨ । ମଧୁର ପାଣି; ବର୍ଷା ପାଣି (ସାଦ,
**मिठा पानी** ଲୁଣି ବା ସମୁଦ୍ର ଜଳ ନୁହେ) (ବିପରୀତ—ଲୁଣି ପାଣି; ଖାର ପାଣି)—2. Sweet or fresh water (as opposed to sea-water or saline water.)
୩ (ବ୍ୟଙ୍ଗାର୍ଥକ) ତାଡ଼ି; ମଦ—3. (ironical) Wine; toddy.

ମିଠା ପାନ—ଦେ. ବ—୧ । ଯେଉଁ ପାନରେ ଗୁଣ୍ଡି ଦିଆଯାଇ ନ
Miṭhā pāna ଥାଏ—1. Betel prepared without
মিঠা পান tobacco powder. ୨ । ଯେଉଁ ପାନ ପତ୍ରର
**मिठा पान** ସ୍ୱାଦ ଅନ୍ୟ ପାନର ସ୍ୱାଦ ଅପେକ୍ଷା କମ୍ ରଗୁଆ—
(କଡ଼ା ପାନ—ବିପରୀତ) 2. Betel-leaf which is less pungent than other betel leaves.
[ ଦ୍ର—ବିଭିନ୍ନ ଅଞ୍ଚଳରେ ସ୍ୱାଦଦୃଷ୍ଟିରେ ଭିନ୍ନ ଭିନ୍ନ ପାନ ଦେଖାଯାଏ । ପାନଲତାରୁ ନୂଆ ହୋଇ କଢ଼ାଯାଇଥିବା ପାନ ଓ ପୁରୁଣା ପାନର ସ୍ୱାଦରେ ପ୍ରଭେଦ ଥାଏ । କେତେ ପ୍ରକାରର ପାନ ଅନ୍ୟ ପାନ ଅପେକ୍ଷା ବେଶି ରଗୁଆ ଲାଗେ । ଯେଉଁ ପାନ କମ୍ ରଗୁଆ, ତାକୁ ମିଠା ପାନ ବୋଲାଯାଏ ।]

ମିଠା ବିଷ—ଦେ. ବ—ମହୁରା ନାମକ ବିଷ—
Miṭhā bisha Aconite.
মিঠা বিষ(খ) **मिठा विष**

ମିଠା ମାଛ—ଦେ. ବ—ମଧୁର ମାଛ; ମଧୁର ଜଳପୂର୍ଣ୍ଣ ଜଳାଶୟରେ ଥିବା
Miṭhā māchha ମାଛ (ଯାହା ଲୁଣି ମାଛ ନୁହେ)—Fresh-
মধুর মাছ water-fish. [ଦ୍ର—ମିଠା ମାଛ ଯଥା—ରୋହି,
**मिठा मछली** ଭାକୁର, ଚିତଳ ଆଦି । ଲୁଣି ମାଛ ଯଥା—
(ଲୁଣି ମାଛ—ବିପରୀତ) ଭାହାର୍ଗିନି, ଖାହାଳ, ଭେକଟା, ଇଲିଶି, ଫିଲ୍ଲିଙ୍ଗ, ବାହାଲ, ଲୁଣି ଚିଙ୍ଗୁଡ଼ି । କେତେକ ଲୁଣି ମାଛ ( ଯଥା—ଇଲିଶି, ଭେକଟା ) ନଦୀ ମୁହାଣ ବାଟେ ସମୁଦ୍ରରୁ ନଦୀକୁ ଉଠି ଆସି ନଦୀଜଳରେ ବିଚରଣ କରନ୍ତି ।]

ମିଠା ଲଗା(ଗେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ କୌଣସି
Miṭhā lagā(ge)ibā ଦ୍ରବ୍ୟର ମିଷ୍ଟତା ଅନୁଭବ କରାଇବ
মিঠা(ষ্টি) লাগান ଦ୍ୱାରା ତତ୍ପ୍ରତି ତାହାର ଲାଳସା ଜନ୍ମାଇବା—
**मिठा लगाना** To generate a hankering after a sweet thing in the mind of a person by causing him to taste it.

ମିଠା ଲାଗିବା—ଦେ. କ୍ରି—୧ । (କୌଣସି ବସ୍ତୁ) କୌଣସି ବ୍ୟକ୍ତିକୁ
Miṭhā lāgibā ସୁଆଦିଆ ବୋଧ ହେବା—1. To taste
মিঠা লাগা sweet (said of a sweet thing)
**मिठा लगना** ୨ । ମଧୁରତା ଦ୍ୱାରା ମନୁଷ୍ୟକୁ ମୋହିବା—2. To charm a person by sweetness.
ଦେ. ବ—ଉପଭୁକ୍ତ କୌଣସି ପଦାର୍ଥର ମିଷ୍ଟତା ପ୍ରତି ମନରେ ଲାଳସା ଜନ୍ମିବା—Craving after a thing arising out of the experience of its taste once enjoyed. (ଯଥା—ଥରେ ଦୁଇଥର କଲିକତା ବଡ଼ବଜାରର ସନ୍ଦେଶ ଖାଇ କରି ମୋ ମୁହଁରେ ସେ ସନ୍ଦେଶର ମିଠା ଲାଗି ଯାଇଛି ।)

ମିଠାଳିଆ—ଦେ. ବିଣ—ଈଷତ୍ ମିଷ୍ଟ ବା ମଧୁର—
Miṭhāliā Slightly sweet; sweetish.
অল্প মিষ্টি **मिठास**

ମିଠା ଲେମ୍ବୁ—ଦେ. ବ—ମିଷ୍ଟ ରସଯୁକ୍ତ କମଳା, (ଯଥା—ସିଲହାଟ
Miṭhā lembu କମଳା, ନାଗପୁର କମଳା, ଉତ୍ତର ଉଦ୍ୟାନ
মিঠানেবু ଅଞ୍ଚଳର କମଳା)—Lemon with sweet
**मिठा नींबु** juice; sweet orange.

(ମୁହଁ) ମିଠା ହେବା—ଦେ. ବ—ଅସ୍ୱାଦିତ ଦ୍ରବ୍ୟର ମିଷ୍ଟ ସ୍ୱାଦ ଦ୍ୱାରା
(muhan) Miṭhā hebā କମ୍ପା ରୋଗ ଯୋଗୁଁ ମୁଖରେ ମିଷ୍ଟ
মিঠা(ষ্টি)হওয়া ସ୍ୱାଦର ଅନୁଭୂତ ହେବା—Having a sweet-
**मिठा होना** ish taste in the mouth.

ମିଠୁ(ଠୁ)—ଦେ. ବ ପୁଂ—ଲୋକଙ୍କୁ ଦିଆଯିବା ନାମ—
Miṭhu(ṭhu) **मिठु** A name given to males.

ମିଠୁ(ଠୁ) ମିଆଁ(ଁଁ)—ଦେ.ବ(ବ୍ୟଙ୍ଗ୍ୟ)—୧। ଆତ୍ମପ୍ରଶଂସାକାରୀ ବ୍ୟକ୍ତି—
Miṭhu(ṭhu)miāñ(ñā) 1. Self-praising person. ୨ ।
মিঠুমিঞা ମଧୁରଭାଷୀ ବ୍ୟକ୍ତି—2. A person with sweet

मिआँ मिठ्ठ or honeyed speech. ୩। ପରସ୍ପର ବିରୋଧୀ (ମିଠ୍ ଆଁ—ଅନ୍ୟରୂପ) ଉଭୟ ପକ୍ଷ ସଙ୍ଗେ ମୌଖିକ ବନ୍ଧୁତା ରଖିବା ବ୍ୟକ୍ତି—3. A person who affects friendship with both the contending parties.

ମିଡ୍(ଡ, ଡି,ଲ୍(ଲ)—ବୈଦେ. ବିଣ ( ଇଂ. ମିଡ଼ଲ୍ )—ମଧ୍ୟସ୍ଥ—Mid-(da, di)l(la) Situated in the middle; intermediate. ବି—ମଧ୍ୟସ୍ଥଳ—Middle portion. [ ଦ୍ର—ଏ ଶବ୍ଦ ଅନ୍ୟ ଅନ୍ୟ ଇଂରାଜି ଶବ୍ଦମାନଙ୍କ ସଙ୍ଗେ ବ୍ୟବହୃତ ହୁଏ; ଯଥା—ମିଡ଼ଲ୍ ଇଲମ୍, ମିଡ଼ଲ୍ ଭର୍ଣ୍ଣାକ୍ୟୁଲର୍ ଇତ୍ୟାଦି । ] ମିଡଲ मिडल

ମିଡ୍(ଡ, ଡି)ଲ୍ ଇଙ୍ଗ୍ରାଜି—ବୈଦେ. ବିଣ (ଇଂ. ମିଡ଼ଲ୍ ଇଂଗ୍ଲିଶ୍)—Mid(da, di)l ingrāji ମାଇନର୍; ଉଚ୍ଚ ପ୍ରାଇମେରି ମଧ୍ୟମ ଶ୍ରେଣୀ ପର୍ଯ୍ୟନ୍ତ ଇଂରାଜି ପଢ଼ାଯିବା ବିଦ୍ୟାଳୟ ବା କ୍ଲାସ୍ ବା ମାନ—Middle English ( school or class or standard ). ମିଡଲ ইংলিস मिडल इंगलिस (ମିଡ଼ଲ୍ ଇଂଗ୍ଲିଶ୍—ଅନ୍ୟରୂପ)

ମିଡ୍ ଡ, ଡି)ଲ୍ ଇସ୍କୁଲ (ସ୍କୁଲ୍)—ବୈଦେ. ବି ( ଇଂ. ମିଡ଼ଲ୍‌ସ୍କୁଲ୍ )—Mid(da, di)l iskula (skul) ମଧ୍ୟମ ଶ୍ରେଣୀୟ ବିଦ୍ୟାଳୟ—Middle ( English or Vernacular ) school. মিডল স্কুল मिडल स्कूल

ମିଡ୍(ଡ, ଡି)ଲ୍ କ୍ଲାସ୍—ବୈଦେ. ବି ( ଇଂ. ମିଡ଼ଲ୍ କ୍ଲାସ୍ )—ମଧ୍ୟ-Mid(da, di)l klās ଇଂରାଜୀ ବା ମଧ୍ୟଭର୍ଣ୍ଣାକ୍ୟୁଲର୍ ପାଠ ପଢ଼ିବା ଶ୍ରେଣୀ—Middle class ( in English or Vernacular education ). মিডল ক্লাস मिडल क्लास

ମିଡ୍(ଡ, ଡି)ଲ୍ ଭର୍ଣ୍ଣାକୁ(କ୍ୟୁ)ଲ(ଲା)ର୍—ବୈଦେ. ବିଣ ( ଇଂ. ମିଡ଼ଲ୍ Mid(da, di)l bharṇṇāku(kyu)la(lā)r ଭର୍ଣ୍ଣାକ୍ୟୁଲର୍)—ଦେଶୀୟ ଭାଷାରେ ମଧ୍ୟମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ାଯିବା ( ବିଦ୍ୟାଳୟ ବା ଶ୍ରେଣୀ ବା ମାନ)—Middle Vernacular shcool, standard or class). [ ଦ୍ର—ଏହି ମିଡ଼ଲ୍ ଇଂଗ୍ଲିସ୍ ଓ ମିଡ଼ଲ୍ ଭର୍ଣ୍ଣାକ୍ୟୁଲର୍ ଙ୍କ ସଙ୍ଗେ ସ୍କଲର୍‌ଶିପ୍, ପରୀକ୍ଷା ଓ ସାର୍ଟିଫିକେଟ୍ ଓ ପାସ୍ ଆଦି ଇଂରାଜି ଶବ୍ଦ ଯୋଗ କରାଯାଏ । ] মিডল ভর্নাকুলার मिडल वार्नाक्युलर

ମିଡିଅମ୍—ବୈଦେ. ବିଣ ( ଇଂ. ମିଡ଼ିଅମ୍ )—ମଧ୍ୟମ ପ୍ରକାରର; ଯାହା Midiam ଉତ୍ତମ ନୁହେ କି ଅଧମ ନୁହେ—Medium. ମିଡିଅମ मडियम ବୈଦେ. ବି—୧ । ଯେଉଁ ବ୍ୟକ୍ତିକୁ ମଧ୍ୟସ୍ଥରୂପେ ବ୍ୟବହାର କରାଯାଇ ଅତୀନ୍ଦ୍ରିୟ ପ୍ରେତବିଜ୍ଞାନର ପନ୍ଥାଦ୍ୱାରା ମୃତ ବ୍ୟକ୍ତିଙ୍କ ପ୍ରେତାତ୍ମାମାନଙ୍କୁ ସଭାସ୍ଥଳକୁ ଆହ୍ୱାନ କରାଯାଏ—1. A spiritualistic medium (utilised by psychic methods to invoke the spirits of dead persons ). ୨। (ଛାପାଖାନା)ଡେମି କାଗଜ; ମଧ୍ୟଉଳଆ ଆକାରର କାଗଜ—(printing) Medium or demy paper.

ମିର୍ଢ଼ା—ପ୍ରାଦେ. ( ବାଲେଶ୍ୱର ) ବି—ସ୍ୱେଚ୍ଛାଜାତୀୟ ନାତିବୃହତ ମତ୍ସ୍ୟ-Mirdha ବିଶେଷ; ମିରିକାଳି ମାଛ—Mrigala fish. [ ଦ୍ର—ମିରଗେଲ ଏହା ଖାଇବାକୁ ସୁମିଷ୍ଟ, ଦେଖିବାକୁ ଅନେକାଂଶରେ ଶେଉଳ ପରି, କିନ୍ତୁ ପୁରୁଣା ହେଲେ ସେହି ମାଛର କାତି ଯେପରି ଲାଲ୍ ହୋଇଯାଏ ମିରୁର ସେପରି ହୁଏ ନାହିଁ; ମିରୁର କାତି ଧଳା ଧଳା ହୁଏ । ]

ମିଣିପ(ପି)—ଗ୍ରା. ବି. ପୁଂ ( ସଂ. ମନୁ+ପୁତ୍ର )—୧ । ମନୁଷ୍ୟ; ପୁରୁଷ; Minipa(pi) ଅଭିଜ୍ଞ ବ୍ୟକ୍ତି; ମର୍ଦ୍ଦ—1. Male; man. ୨ ପୁରুষ मर्द ସ୍ୱାମୀ—2. Husband. ବିଣ—ପୁରୁଷସମ୍ବନ୍ଧୀୟ; (ମାଇପ—ବିପରୀତ) Relating to male. [ ଦ୍ର—ଏ ଶବ୍ଦ ସାଧାରଣତଃ ବହୁବଚନରେ 'ମିଣିପେ' ଆକୃତିରେ ବ୍ୟବହୃତ ହୁଏ ।

ମିଣିପ(ପି) କଥା—ଗ୍ରା. ବି—୧ । ପୁରୁଷମାନଙ୍କ ମଧ୍ୟରେ ବାକ୍ୟାଳାପ—Minipa(pi)katha 1. Talk amongst males. ୨। ପୁରୁଷ ପୁরুষদের বিষয় ସମାଜରେ ଆଲୋଚିତ ବିଷୟ—2. Matter मर्दकी बात discussed amongst males. ୩ । ମନୁଷ୍ୟୋଚିତ ବା ପୁରୁଷୋଚିତ ବିଷୟ—3. A matter befitting a male.

ମିଣିପ(ପି) ଲୋକ—ଗ୍ରା. ବି ପୁଂ—ପୁରୁଷ ବ୍ୟକ୍ତି—Male person. Minipa(pi) loka পুরুষ মানুষ मर्द लोक ( ମିଣିପ[ପି] ଲୋକେ—ବହୁବଚନ )

ମିଣିପି ଚୁଟେ(ଟୋ)ଇ—ଗ୍ରା. ବିଣ, ସ୍ତ୍ରୀ—ଯେଉଁ ସ୍ତ୍ରୀ ପୁରୁଷଙ୍କୁ ବା ଆପଣା Minipi chuṭe(ṭo)ī ସ୍ୱାମୀକୁ ସର୍ବଦା ଖୋସାମଦ ବା ସରସ ପুরুষঘেঁষা ବ୍ୟବହାର କରିବାକୁ ସୁଖ ପାଏ—(a woman) मरद् खुसामदी Given to flattering or pleasing males or her husband.

ମିଣିପି ଚୁହାଁ(ହିଁ)—ଗ୍ରା. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀଲୋକ ସର୍ବଦା ପୁରୁଷଙ୍କ Minipi chuhañ(hiñ) ମୁଖ ଅବଲୋକନ କରିବାକୁ, ଅର୍ଥାତ୍ পুরুষঘেঁষা मरदमिलु ପୁରୁଷ ସମାଜରେ ମିଶିବାକୁ ସୁଖ ପାଏ—[ a woman ] Given to looking at the face of males or freely mixing in male society.

ମିଣିପି(ପ) ସଭା—ଗ୍ରା. ବି—ପୁରୁଷମାନଙ୍କ ସଭା—A meeting of Minipi(pa) sabhā male persons; men's meeting. পুরুষ মানুষের সভা मर्द सभा

ମିଣିପି ସୁଆ(ହା)ଗୀ—ଗ୍ରା. ବିଣ. ସ୍ତ୍ରୀ—ସ୍ୱାମୀ ପ୍ରତି ଅତିରିକ୍ତ ଭାବରେ Minipi sua(hā)gī ଅନୁରକ୍ତା ( ସ୍ତ୍ରୀ )—( a woman) পুরুষ সোহাগী; ভাতার সোহাগী Addicted to excessively पतिसेवी fondling her husband [ମିଣିପି ସୁଅ(ହା)ଗେଇ(ଘୁ)—ଅନ୍ୟରୂପ]

ମିଣିପେ—ଗ୍ରା. ବି.—(ମିଣିପ ଶବ୍ଦର ବହୁବଚନ)—ପୁରୁଷମାନେ—Minipe পুরুষ মানুষেরা मर्दों Men; males. [ଉ—ଦାଣ୍ଡରୁ ମିଣିପେ, ସିନ କହି ଦେବେ, କଲେ ସେ ଚୁଲ୍ହିରେ ଥରେ । ଉକାସ୍. ସାଥିତ୍ରୁଆ ବାହା।]

ମିଣ୍ଟ—ବୈଦେ. ବି.(ଇଂ)—୧। ମୁଦ୍ରାଶାଳା; ଟଙ୍କାଶାଳା—1. Mint. Mint ୨ । (ଇଂ. ମିନିଟ)—ମିନିଟ୍— ମিন্ট मिएटः टकसाल 2. Minue.

ମିଣ୍ଡେଇ—ପ୍ରାଦେ (ଗଡ଼ଜାତ)—(ଭୂଲ. ବ. ଧାନମାଡ଼ୀ) ବେଙ୍ଗଲା—Mindei Threshing of corn by causing bullocks to tread upon spread corn-sheaves.

ମିତ—ଦେ. ବ. ପୁଂ. ଓ ସ୍ତ୍ରୀ—(ସ. ମିତ୍ର; ପ୍ରା. ମିତ୍ତ)—୧ । ମିତ୍ର; Mita মিতা मित ସୁହୃଦ୍; ବନ୍ଧୁ—1. Friend; a crony. (ମିତଣୀ—ସ୍ତ୍ରୀ) [ଉ—ବନେ ବ ଶୋଭୁ ଦେଖିଲଇଁ । ଗୋ ମିତ । ଅଭିମନ୍ୟୁ. ବଦଗଧ ଚିନ୍ତାମଣି ।] ୨ । ନାମର ସାଦୃଶ୍ୟ ଯୋଗୁଁ ଧର୍ମଦୃଷ୍ଟିରେ ବନ୍ଧୁ ହୋଇଥିବା ଦୁଇ ବ୍ୟକ୍ତି—2. Namesakes between whom god-relationship is set up. ସ. ବଣ. (ମା ଧାତୁ + କର୍ମ. ତ)—୧ । ପରିମିତ—1. Measured; moderate. ୨ । କ୍ଷିପ୍ତ—2. Thrown; cast.

ମିତଙ୍ଗମ—ସ. ବଣ. ପୁ (ମିତଂ+ଗମ୍ ଧାତୁ + କର୍ତ୍ତୃ. ଅ)—ମୃଦୁଗାମୀ Mitangama —Walking slowly. ବ—ହସ୍ତୀ—[ମିତଙ୍ଗମା(ମୀ) ସ୍ତ୍ରୀ] (ମିତଙ୍ଗ—ଅନ୍ୟରୂପ) Elephant.

ମିତଣୀ—ଦେ. ବ. ସ୍ତ୍ରୀ—୧ । (ସ. ମିତ୍ରା)—ନାମ ସାଦୃଶ୍ୟ ଥିବା ସ୍ତ୍ରୀ—Mitani A namesake (of a female). ୨ । (ସ. মিতিন; মিতিনী ମିତ୍ରପତ୍ନୀ) (ପୁରୁଷ ପକ୍ଷରେ)—ଆପଣାର मितनी ମିତଙ୍କର ସ୍ତ୍ରୀ—2. The wife of one's namesake. ୩ । (ସ୍ତ୍ରୀପକ୍ଷରେ) ସଖୀ—3. A female companion of a lady. [ଉ—ଅଷ୍ଟାଙ୍ଗୁର୍ଣ ନାଥ କହେ ହୋଇ ଅଭିଳାଷୀ, ମିତଣୀ କଥିତ ବଚନରେ ଶୁଣ୍ଢ଼ାଶୀ, ଲକ୍ଷ୍ୟ ହେବାରୁ ହୋଇ ଦରଶ୍ଚ୍ଛାନ୍ତ ହାସୀ । କଳ୍ପସୂର୍ଯ୍ୟ. ସଙ୍ଗୀତ । ]

ମିତଦ୍ରୁ—ସ. ବ—ସମୁଦ୍ର (ହ. ଶ)—The sea; ocean. Mitadru

ମିତବଚନ—ସ. ବ (କର୍ମଧା, ମିତ+ବଚନ)—୧ । ପରିମିତ ଭାଷଣ; Mitabachana ଅଳ୍ପ କଥା କହିବା—Moderate speech. ୨ । ହିତ କଥା—2. Good advice. ସ. ବଣ. ପୁଂ (ବହୁବ୍ରୀହି)—ମିତବାକ୍ (ଦେଖ) Mitabak (See)
ମିତବାକ୍ୟ, ମିତବାଦ, ମିତଭାଷଣ } ଅନ୍ୟରୂପ
(ମିତବଚନା—ସ୍ତ୍ରୀ)

ମିତବାକ୍—ସ. ବଣ. ପୁଂ (ବହୁବ୍ରୀହି; ମିତ୍=ପରିମିତ+ବାକ୍)—Mitabak ୧ । ଯେ ଅଳ୍ପ କଥା କହେ—1. Speaking little. ୨ । ପରିମିତ ଭାଷୀ—2. Reserved; moderate in speech.
ମିତବାଗ, ମିତଭାଷୀ, ମିତବାଚ } ଅନ୍ୟରୂପ
(ମିତବାଗ୍, ମିତବାଦିନୀ, ମିତଭାଷିଣୀ—ସ୍ତ୍ରୀ)

ମିତବାଦିତା—ସ. ବ (ମିତବାଦିନ୍+ଭାବ. ତା)—ପରିମିତ ଭାଷଣର Mitabadita ଅବସ୍ଥା—The state of speaking little; reserve. (ମିତଭାଷିତା—ଅନ୍ୟରୂପ)

ମିତ ବୁଆ—ପ୍ରାଦେ (ଅଠମଲ୍ଲିକ) ବ—ଆପଣା ମିତର ପିତା; ମଇତ୍ରସା—Mita bua Father of one's namesake. (ମିତମା, ମିତମାଅ—ସ୍ତ୍ରୀ)

ମିତବ୍ୟୟ—ସ. ବ (କର୍ମଧା. ମିତ+ବ୍ୟୟ)—ପରିମିତ ବ୍ୟୟ—Mitabyaya Moderate expenditure; economy. ସ. ବଣ. ପୁଂ (ବହୁବ୍ରୀହି)—ମିତବ୍ୟୟୀ (ଦେଖ) (ମିତବ୍ୟୟା—ସ୍ତ୍ରୀ) Mitabyayi (See)

ମିତବ୍ୟୟିତା—ସ. ବ (ମିତବ୍ୟୟିନ୍+ଭାବେ ତା)—ପରିମିତ ବ୍ୟୟ-Mitabyayita ଶୀଳତା—Moderation in expenses; frugality; economy.

ମିତବ୍ୟୟୀ—ସ. ବଣ. ପୁଂ (ମିତ+ବ୍ୟୟ+ଇନ୍)—ଯେ ଅଳ୍ପ Mitabyayi ଖରଚ କରେ—Frugal; moderate in spending; economical. (ମିତବ୍ୟୟିନୀ—ସ୍ତ୍ରୀ)

ମିତଭୁକ୍—ସ. ବଣ. ପୁଂ ଓ ସ୍ତ୍ରୀ (ମିତ+ଭୁଜ୍ ଧାତୁ+କର୍ତ୍ତୃ. କ୍ୱିପ୍)—Mita bhuk ଯେ ପରିମିତ ଆହାର କରେ—Moderate in food. (ମିତଭୋଜୀ—ଅନ୍ୟରୂପ) (ମିତଭୋଜିନୀ—ସ୍ତ୍ରୀ)

ମିତଭୋଜନ—ସ. ବ (କର୍ମଧାରୟ; ମିତ+ଭୋଜନ)—ମିତାହାର Mitabhojana (ଦେଖ)—Mitahara (See) ସ. (ମିତଭୋଜନା—ସ୍ତ୍ରୀ) ବଣ (ବହୁବ୍ରୀହି)—ମିତଭୁକ୍ (ଦେଖ) Mitabhuk (See)

ମିତମ୍ପଚ—ସ. ବଣ. ପୁଂ (ମିତଂ+ପଚ ଧାତୁ+କର୍ତ୍ତୃ. ଅ)—୧ । Mitampacha 1. Miserly; frugal; niggardly. (ମିତମ୍ପଚା—ସ୍ତ୍ରୀ) ୨ । ପରିମିତ ଦ୍ରବ୍ୟର ପାକକର୍ତ୍ତା—Cooking moderately; very sparing in cooking food.

ମିତ ରହିବ ମାଣିକ ରହିବ—ଦେ. ବାକ୍ୟ (ଭଙ୍ଗ, ବ୍ୟଙ୍ଗ)—୧ । ଦୁଇ Mita rahiba manika rahiba ଦିଗକୁ ରକ୍ଷା କରିବାକୁ ଇଚ୍ଛା କର କୌଣସି ଅଡ଼ରେ କୃତକାର୍ଯ୍ୟ ନ ହେବା ବ୍ୟକ୍ତିର ମନୋଭାବ—1 An adage implying the mentality of a person who wants to save both the sides but is not successful in saving either. [ଦ୍ର—ଏଥିର ସମାର୍ଥ ଭଙ୍ଗ—ତେଲ ଘଣ୍ଟି ବ ଅଣ, ପୁଅ ମୁଣ୍ଡକୁ ଅଣ; ସାପ ମରିବ ନାହିଁ, ବାଡ଼ି ଭାଙ୍ଗିବ ନାହିଁ । ]
କୁଳଓ ଥାକବେ ମାନଓ ଥାକବେ, କେଷ୍ଟଓ ଥାକବେ, କୁଳଓ ଥାକବେ
दुलीन मा दुला मा; गायो हाँ बैलो हाँ

ମିତା—ଗ୍ରା. ବ—ମିତ (ଦେଖ)—Mita (See) Mita মিতা मिता

ମିତାକ୍ଷର—ସ. ବ (କର୍ମଧା ; ମିତ+ଅକ୍ଷର)—ମିତ ବାକ୍ୟ—Mitakshara Measured speech; moderate words. ସଂ. ବଣ. ପୁଂ (ବହୁବ୍ରୀହି)—ମିତବାକ୍—Moderate in speech. (ମିତାକ୍ଷରା ସ୍ତ୍ରୀ)

ମିତାକ୍ଷରା—ସ. ବ—ହିନ୍ଦୁ ସ୍ମୃତି ଗ୍ରନ୍ଥ ବିଶେଷ; ଯାଜ୍ଞବଲ୍କ୍ୟମୁନି ପ୍ରଣୀତ Mitakshara ସଂହିତା ଗ୍ରନ୍ଥର ବିଜ୍ଞାନେଶ୍ୱର କୃତ ଟୀକାଗ୍ରନ୍ଥ—Name of a commentary on Hindu Law by Bijnaneswara on the Institutes of Jajnyabalkya. [ଦ୍ର—କେବଳ ବଙ୍ଗଦେଶ ଛଡ଼ା ଭାରତର ଅନ୍ୟ ସବୁଠି ମିତାକ୍ଷରା ଲିଖିତ ବିଧି

ଅନୁସାରେ ସମ୍ପତ୍ତିର ଦାୟଭାଗ ଚଳେ । ବଙ୍ଗଦେଶରେ 'ଦାୟଭାଗ' ଅନୁସାରେ ପୈତୃକ ସମ୍ପତ୍ତି ବିଭକ୍ତ ହୁଏ । ମିତାକ୍ଷରୀର ବିଧାନ ଅନୁସାରେ ପୁତ୍ର ଜନ୍ମହେଲା ପରି ଜୀବିତ ପିତାଙ୍କ ସଙ୍ଗେ ପିତାମହଙ୍କ ତ୍ୟକ୍ତ ସମ୍ପତ୍ତିରେ ମଧ୍ୟ ଜଣେ ସ୍ୱତ୍ୱାଧିକାରୀ ବା ଅଂଶୀଦାର ହୁଏ । କିନ୍ତୁ ଦାୟଭାଗ ଅନୁସାରେ ପିତାଙ୍କ ମୃତ୍ୟୁପରେହିଁ ପୈତୃକ ସମ୍ପତ୍ତିରେ ଏକାଏକି ପୁତ୍ରର ସ୍ୱତ୍ୱ ପ୍ରବର୍ତ୍ତେ । ଏହିପରି ସ୍ତ୍ରୀଧନ, ସମ୍ପତ୍ତି ବଣ୍ଟନ ପୋଷ୍ୟପୁତ୍ର ଗ୍ରହଣ ଆଦି ସମ୍ବନ୍ଧେ ମିତାକ୍ଷରୀର ବିଧାନ ଦାୟଭାଗର ବିଧାନଠାରୁ ସ୍ୱତନ୍ତ୍ର । ଉତ୍କଳୀୟମାନେ ମିତାକ୍ଷରୀ ଶାସ୍ତ୍ରାଧୀନ ଓ ବଙ୍ଗାଳୀମାନେ ଦାୟଭାଗର ଅଧୀନ । ]

ମିତାକ୍ଷରୀ—ସଂ. ବି—ଅକ୍ଷରବିଶେଷର ଉଚ୍ଚାରଣ ପରିବର୍ତ୍ତନ ପୂର୍ବକ
Mitākshari ବ୍ୟବହୃତ ସାଙ୍କେତିକ ବାକ୍ୟ (ଯଥା—ଷଣ୍ଠାର)
—Cypher language consisting of changing the sounds of letters; code words.

ମିତାଚାର—ସଂ. ବି. (କର୍ମଧା, ମିତ+ଆଚାର)—ସଂଯତ ବ୍ୟବହାର—
Mitāchāra Moderate behaviour or conduct.
(ମିତାଚାରା—ସ୍ତ୍ରୀ) ସଂ ବିଣ (ବହୁବ୍ରୀହି)—ମିତାଚାରୀ ( ଦେଖ )
Mitāchāri ( See )

ମିତାଚାରୀ—ସଂ. ବିଣ. ପୁଂ—(ମିତାଚାର+ଇନ୍)—ଯାହାର ବ୍ୟବହାର
Mitāchāri ସୁସଂଯତ—Of moderate conduct;
[ମିତାଚାରିଣୀ—ସ୍ତ୍ରୀଲିଙ୍ଗ] temperate.

ମିତାନ(ର)—ପ୍ରାଦେ. (ସମ୍ବଲପୁର)—ଅବ୍ୟୟ (ତୁଳ. ବ. ମତନ; ହି.
Mitān(r) ମୋତାବିକ୍ ) ପରି; ମତ—Like. [ ଉ—
ସେ କାହାର ମିତାନ୍ ଦେଖା ଯାଉଛେ ?=ସେ କାହାପରି ଦେଖା ଯାଉଛି ? ]

ମିତାର୍ଥ—ସଂ. ବି.—(କର୍ମଧାରୟ, ମିତ+ଅର୍ଥ)—୧ । କୌଣସି ବାକ୍ୟର
Mitārtha ବିଶିଷ୍ଟ ବା ସୀମାବଦ୍ଧ ଅର୍ଥ—Restricted or special meaning of a word. ୨ । (ବହୁବ୍ରୀହି) ପରିମିତଭାଷୀ ଦୂତବିଶେଷ—A messenger who speaks with moderation. ବିଣ ପୁଂ—(ବହୁବ୍ରୀହି) ଯେଉଁ ବାକ୍ୟର ଅର୍ଥ ସୀମାବଦ୍ଧ—(a word) Of
(ମିତାର୍ଥା—ସ୍ତ୍ରୀ) restricted meaning.

ମିତାଶନ—ସଂ. ବି.—(କର୍ମଧା; ମିତ+ଅଶନ)—ପରିମିତ ଆହାର
Mitāśana Moderate eating. ସଂ. ବିଣ. ପୁଂ—
(ମିତାହାର—ଅନ୍ୟରୂପ) ( ବହୁବ୍ରୀହି; ମିତ+ଅଶନ)—ପରିମିତ
ମିତାଶନା } ଭୋଜୀ—Moderate in eating,
ମିତାହାରା } —ସ୍ତ୍ରୀ abstemious.

ମିତାଶିତା(ତ୍ୱ)—ସଂ. ବି.—(ମିତାଶିନ୍+ତା,ତ୍ୱ)—ପରିମିତଭୋଜିତା—
Mitāśitā(twa) Moderation in meal.

ମିତାଶୀ—ସଂ.ବିଣ. ପୁଂ—(ମିତ+ଅଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)
Mitāśi —୧ । ମିତଭୁକ୍—Abstemious or moderate
(ମିତାହାରୀ—ଅନ୍ୟରୂପ) in the matter of food.
(ମିତାଶିନୀ, ମିତାହାରିଣୀ—ସ୍ତ୍ରୀ)

ମିତି—ସଂ. ବି—(ମା ଧାତୁ=ମାପିବା+ଭାବ. ତି)—୧ । ମାପ; ପରିମାଣ
Miti 1. Measure. ୨ । (+କରଣ ତି)ଜ୍ଞାନ—2. Knowledge. ୩ । ( +କର୍ମ. ତି ) ପ୍ରମାଣ—3. Proof; evidence. ୪ । ଅବଚ୍ଛେଦ—4. Section; part; portion. ୫ । ସୀମା—5. Limit; boundary. ୬ । ନିର୍ଦ୍ଦିଷ୍ଟ ଧନ ବା ମୁଦ୍ରା —6. A specified sum, or amount ୭ । ନିର୍ଦ୍ଦିଷ୍ଟ ତିଥି ବା ତାରିଖ—7. A specified day of a lunar fortnight. ୮ । ( +ଭାବ. ତି ) କ୍ଷେପଣ —8. Throwing; casting ଦେ. ଅ.—ମିତିକା (ଦେଖ)—Mitikā (See)

ମିତିଅପା—ପ୍ରାଦେ. (ଗଡ଼ଜାତ) ବି—ସଙ୍ଗାତଙ୍କ ପିତା—The name
Miti apā of one's saṅgāta friend.

ମିତିକା—ଗ୍ରା. ଅ—( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇଥାଏ)—ପରି;
Mitikā ପ୍ରକାରେ—Wise; as in this wise; like
(ମିତିକିଆ—ଅନ୍ୟରୂପ) ପ୍ରକାରର—of (any) kind. (ଉ—ତୁ କିମିତିକା ମଣିଷଟାଏ ମ ! )

ମିତିନ୍—ପ୍ରାଦେ. (ସିଂହଭୂମ) ଅବ୍ୟୟ—(ତୁଳ. ବ. ମତନ୍; ସମ୍ବଲପୁରୀ
Mitin ମିତାନ୍; ଓଡ଼ିଆ ମତି; ମିତି; ମିତିକା) ପରି—Like.

ମିତୁଣୀ—ଗ୍ରା. ବି—ମିତଣୀ (ଦେଖ)
Mituṇi Mitaṇi (See)
[ଉ—ଶଶିସେଣା ସେହୁ ମୋର ପ୍ରାଣର ମିତୁଣୀ । ପ୍ରତାପ. ଶଶିସେଣ ।)

ମିତ୍ର(ତ୍ତ୍ର)—ସଂ. ବି. ପୁଂ—(ମିଦ୍ ଧାତୁ=ସ୍ନେହ କରିବା+କର୍ତ୍ତୃ.ତ୍ର)
Mitra (ttra) ୧ । ସୁହୃଦ୍; ବନ୍ଧୁ; ବୟସ୍ୟ—1. Friend.
(ମିତ୍ରା—ସ୍ତ୍ରୀ) ୨ ।ତପନ; ସୂର୍ଯ୍ୟ—2. The sun. ୩ । (ଜ୍ୟୋତିଷ) ଜ୍ୟୋତିଷୋକ୍ତ ତାରା ବା ନକ୍ଷତ୍ରର ଯୋଗ ବିଶେଷ—3. Name of a conjunction of stars in calculating the horoscope of a person. ଦେ. ବି (ବ.)—୧ । ବଙ୍ଗ ଦେଶବାସୀ କାୟସ୍ଥଙ୍କ ବଂଶୋପାଧି ବିଶେଷ—1. A family-title of Bengali Kāyasthas. ୨ । ମିତ୍ରତା—2. Friendship. [ ଉ—ସୁଗ୍ରୀବ ତୁଲେ ମିତ୍ର କରି ବିରୂପ କଲେ ସେ ଅସୁରୀ । ଜଗନ୍ନାଥ,ଭାଗବତ ।] ଦେ ବିଣ—୧ । ସ୍ନିଗ୍ଧ—1. Charming; sweet; smooth. ୨ । ପ୍ରିୟ—2. Dear; agreeable. [ଉ—ବିଶ୍ୱରେ ତ ବେନି ମହୋତ୍ସବ ଅବଲୋକ,ବୃନ୍ଦାବନେ ଏହା ମିତ୍ର କରଣେ ବିବେକ । ଉଞ୍ଜ. ବୈଦେହୀଶବିଳାସ] [ଦ୍ର—ଯେଉଁ ବ୍ୟକ୍ତି ସ୍ନେହ କରେ ଓ ଯେ ଏକକ୍ରିୟ ସେ ମିତ୍ର; ସୁଖ ଦୁଃଖ ସବୁ ଅବସ୍ଥାରେ ଯାହାର ପ୍ରେମ-ବନ୍ଧନ ଶିଥିଳ ହୁଏ ନାହିଁ, ସେ ବନ୍ଧୁ; ଯେ ସର୍ବଦା ସହୃଦୟ, ଅର୍ଥାତ୍ ହିତ କାମନାରେ ରତ ସେ ସୁହୃତ୍; ଯେ ସମବୟସ୍କ, ସମରୁଚି, ନିତ୍ୟ ସଙ୍ଗୀ ସେ ସଖା; ଯେ ସମବୟସ୍କ ଆମୋଦ ସଙ୍ଗୀ ସେ ବୟସ୍ୟ ।)

ମିତ୍ର ଅକ୍ଷର—ଦେ. ବି.—ନିଜ ନାମର ସମାନ କୌଣସି ବ୍ୟକ୍ତିର ବା
Mitra akshara ଗ୍ରାମର ନାମକରଣ—Naming of a person or village after one's own name.

ମିତ୍ର ଗ୍ରହ—ସ. ବି. (ଜ୍ୟୋତିଷ)=ପରସ୍ପର ମିତ୍ରଭାବାପନ୍ନ କେତେକ
Mitra graha ଉଦ୍ଦିଷ୍ଟ ଗ୍ରହ—Friendly planets of certain planets. (ଯଥା—ଚନ୍ଦ୍ରଙ୍କର ରବି,ମଙ୍ଗଳ ଓ ବୃହସ୍ପତି, ରବିଙ୍କର ଚନ୍ଦ୍ର, ମଙ୍ଗଳ, ବୃହସ୍ପତି ଓ ବୁଧ; ମଙ୍ଗଳଙ୍କର ରବି, ଚନ୍ଦ୍ର ଓ ବୃହସ୍ପତି; ବୁଧଙ୍କର ଶୁକ୍ର ଓ ଶନି; ବୃହସ୍ପତିଙ୍କର ରବି. ଚନ୍ଦ୍ର ଓ ମଙ୍ଗଳ; ଶୁକ୍ରଙ୍କର ବୁଧ ଓ ଶନି; ଶନିଙ୍କର ବୁଧ ଓ ଶୁକ୍ର ମିତ୍ର ଅଟନ୍ତି ।)

ମିତ୍ରଘାତକ—ସ. ବିଣ. ପୁଂ ( ମିତ୍ର+ହନ୍ ଧାତୁ+କର୍ତ୍ତୃ. ଅକ )—
Mitraghātaka ମିତ୍ରହତ୍ୟାକାରୀ—Killing a friend; (ମିତ୍ରଘାତିକା, ମିତ୍ରଘାତିନୀ—ସ୍ତ୍ରୀ) murderer of one's friend. ( ମିତ୍ରଘ୍ନ, ମିତ୍ରଘାତୀ, ମିତ୍ରହା—ଅନ୍ୟରୂପ )

ମିତ୍ରଘ୍ନ—ସ. ବି ( ନାମ ) ( ମିତ୍ର+ହନ୍ ଧାତୁ+କର୍ତ୍ତୃ ଅ )—ରାକ୍ଷସ-
Mitraghna ବିଶେଷ—A demon. [ ଉ—ବଢେ ମିତ୍ରଘ୍ନ ନାମ ଯେ ସାର, ହିଂସ୍ର କରେ ମିତ୍ର ଭାବତର—ଉପେ. ବୈଦେହୀଶବିଳାସ । ] ସ. ବିଣ. ପୁଂ—ମିତ୍ରଘାତକ ( ଦେଖ )—Mitraghātaka ( See )

ମିତ୍ରତା(ତ୍ୱ)—ସ. ବି ( ମିତ୍ର+ଭାବ. ତା, ତ୍ୱ )—ବନ୍ଧୁତା—
Mitratā(twa) Friendship.

ମିତ୍ର ତାର—ସ. ବି ( ଜ୍ୟୋତିଷ )—ମିତ୍ର ୩ ( ଦେଖ )
Mitra tāra Mitra 3 (See)

ମିତ୍ର ଦ୍ରୋହ—ସ. ବି ( ମିତ୍ର+ଦ୍ରୁହ୍ ଧାତୁ+ଭାବ. ଅ )—ମିତ୍ରର
Mitra droha ବିଶ୍ୱାସଘାତକତା ବା ଅନିଷ୍ଟ ସାଧନ—Injuring one's friend.

ମିତ୍ରଦ୍ରୋହୀ—ସ. ବିଣ. ପୁଂ ( ମିତ୍ର+ଦ୍ରୁହ୍ ଧାତୁ+କର୍ତ୍ତୃ. ଇନ୍ )—
Mitradrohī ମିତ୍ର ପ୍ରତି ବିଶ୍ୱାସଘାତକ—Injuring a friend. ( ମିତ୍ରଦ୍ରୋହା—ଦେଶଜରୂପ ) ( ମିତ୍ରଦ୍ରୋହିଣୀ—ସ୍ତ୍ରୀ ) ( ମିତ୍ରଦ୍ରୋହିତା—ବି )

ମିତ୍ରଧ୍ରୁଗ—ଦେ. ବିଣ—(ସ. ମିତ୍ର ଦ୍ରୋହୀ)—ମିତ୍ରଦ୍ରୋହୀ—
Mitradhruga Violating the bonds of friendship. [ଉ—ସ୍ତ୍ରୀସୂ ସୁରାପ ମିତ୍ରଧ୍ରୁଗ । ବ୍ରହ୍ମହା ଯେ ଗୁରୁ-ତଳ୍ପଗ । ସ୍ତ୍ରୀରାଜ ପିତୃ ଗୋରୁ ହତ୍ୟା । ଏ ଆଦି ପାପକର୍ମ କର୍ତ୍ତା । ପ୍ରାଚୀ ତୃତୀୟମ. ଚନ୍ଦ୍ରୋଦୟ ।]

ମିତ୍ରବତ୍ସଳ—ସ. ବିଣ. ପୁଂ.—(୭ମୀ ତତ୍)—ମିତ୍ର ପ୍ରତି ସ୍ନେହଯୁକ୍ତ—
Mitrabatsal̥a Attached or devoted to a friend. (ମିତ୍ରବତ୍ସଳା—ସ୍ତ୍ରୀ)

ମିତ୍ରବତ୍ସଳତା—ସ. ବି—ମିତ୍ର ପ୍ରତି ଅନୁରକ୍ତି—
Mitrabatsal̥atā Devotion to a friend. (ମିତ୍ର ବାତ୍ସଲ୍ୟ—ଅନ୍ୟରୂପ)

ମିତ୍ର ବଧ—ସ. ବି—(୬ଷ୍ଠୀ ତତ୍; ମିତ୍ର+ବଧ)—ମିତ୍ରକୁ ମାରି
Mitra badha ପକାଇବା—Murdering of a friend.

ମିତ୍ରବର—ସ. ବି—(୬ଷ୍ଠୀ ତତ୍)—ପ୍ରଧାନ ବନ୍ଧୁ—
Mitra bara A chief friend; a fast friend

ମିତ୍ର ବିଚ୍ଛେଦ—ସ. ବି—(୬ଷ୍ଠୀ ତତ୍)—ମିତ୍ରଙ୍କର ପରସ୍ପର ସଙ୍ଗ
Mitra bichheda ବିଚ୍ଛେଦ—Separation between friends.

ମିତ୍ର ବିନ୍ଦା—ସ. ବି. ନାମ—ଶ୍ରୀକୃଷ୍ଣଙ୍କର ଅଷ୍ଟ ପଟ୍ଟମହିଷୀ ମଧ୍ୟରୁ ଜଣେ-
Mitra bindā One of the 8 chief queens of Śrīkṛushṇa. (ଉ—ମିତ୍ରବିନ୍ଦା, ସୁନନ୍ଦା, ଶଙ୍ଖବତୀ- ପ୍ରାଚୀ—ଭାଗବତ୧୦ମସ୍କନ୍ଧ ।)

ମିତ୍ର ବିରୋଧ—ସ ବି. (୬ଷ୍ଠୀ ତତ୍)—ମିତ୍ରମାନଙ୍କ ମଧ୍ୟରେ ମନୋ-
Mitra birodha ମାଳିନ୍ୟ—Quarrel among friends rupture between friends

ମିତ୍ର ଭେଦ—ସ. ବି.—(୬ଷ୍ଠୀ ତତ୍)—ମିତ୍ରମାନଙ୍କ ମଧ୍ୟରେ କଳହ
Mitra bheda ଲଗାଇ ଦେବା—Creating dissension between friends.

ମିତ୍ରୟୁ—ସ. ବିଣ.—(ମିତ୍ର+ଯା ଧାତୁ+କର୍ତ୍ତୃ. ଉ)—ମିତ୍ରବତ୍ସଳ
Mitrayu (ଦେଖ)—Mitra batsal̥a (See)

ମିତ୍ର ରାଜା—ସ. ବି.—( କର୍ମଧା, ମିତ୍ର+ରାଜନ୍ )—ଯେଉଁ ରାଜାଙ୍କ
Mitra rājā ସଙ୍ଗେ କୌଣସି ରାଜାଙ୍କର ମିତ୍ରତା ସ୍ଥାପିତ ହୋଇଥାଏ—An ally of a king.

ମିତ୍ରରାଜ୍ୟ—ସ. ବି ( ୬ଷ୍ଠୀ ତତ୍; ମିତ୍ର—ରାଜ୍ୟ )—ମିତ୍ରରାଜାଙ୍କ ରାଜ୍ୟ
Mitrarājya —The state of an ally.

ମିତ୍ରଲାଭ—ସ. ବି ( ୬ଷ୍ଠୀ ତତ୍ )—୧ । ଜଣକୁ ମିତ୍ରରୂପେ ପାଇବା—
Mitralābha Acquisition of a person as one's friend. ୨ । ହିତୋପଦେଶ ନାମକ ସଂସ୍କୃତ ନୀତି ଗ୍ରନ୍ଥର ପ୍ରଥମ କଥା ଭାଗ—2. The title of the 1st section of the Sanscrit work Hitopadeśa.

ମିତ୍ରଶକ୍ତି—ସ. ବି ( ଆଧୁନିକ ପ୍ରୟୋଗ )—ମିତ୍ର ରାଜା—
Mitraśakti An ally; an allied power.

ମିତ୍ର ଷଡ଼ଷ୍ଟକ—ସ. ବି—ବିବାହ ବିଷୟକ ଜ୍ୟୋତିଷଶାସ୍ତ୍ରୋକ୍ତ ଶୁଭଯୋଗ-
Mitra shaṛdashṭaka ବିଶେଷ (ଦ୍ର—ଯଥାକ୍ରମେ କନ୍ୟାର ଓ ବରର ରାଶି, ମକର—ମିଥୁନ, କନ୍ୟା—କୁମ୍ଭ; ସିଂହ—ମୀନ; ବୃଷ—ତୁଳା, ବୃଶ୍ଚିକ—ମେଷ; କର୍କଟ—ଧନୁ ହେଲେ ମିତ୍ର ଷଡ଼ଷ୍ଟକ ହୁଏ )—An auspicious correlation of the zodiac signs of the bride and the bridegroom leading to a happy wedlock.

ମିତ୍ର ସପ୍ତମୀ—ସ. ବି—ମାର୍ଗଶିର ଶୁକ୍ଳ ୭ମୀ—The 7th day of
Mitra saptamī the bright fortnight of the month of Mārgaśira.

ମିତ୍ର ସୈନ୍ୟ—ସ. ବି—ମିତ୍ରରାଜାଙ୍କ ସେନା—
Mitra sainya The army of an ally.

ମିତ୍ର ହତ୍ୟା—ସ. ବି (୬ଷ୍ଠୀତତ୍)—ମିତ୍ରବଧ ( ଦେଖ )
Mitra hatyā Mitra badha ( See )

ମିତ୍ରହନ୍ତା—ସଂ ବିଣ. ପୁଂ ( ମିତ୍ର+ହନ୍ ଧାତୁ+କର୍ତ୍ତୃ. ତୃ )—
Mitrahantā ମିତ୍ରଘ୍ନ; ଯେ ମିତ୍ରକୁ ବଧ କରେ—
(ମିତ୍ରହନ୍ତ୍ରୀ—ସ୍ତ୍ରୀ) Murdering one's friend.

ମିତ୍ରା—ସଂ. ବି. ସ୍ତ୍ରୀ ( ମିତ୍ର+ଆ )—୧ । ( ନାମ ) ଶତ୍ରୁଘ୍ନଙ୍କ ମାତା
Mitrā ସୁମିତ୍ରା—The mother of Śatrughna and a wife of Daśaratha. ୨ । ମିତ୍ରର ସ୍ତ୍ରୀଲିଙ୍ଗ—2. Feminine of Mitra.

ମିତ୍ରାକ୍ଷର—ସଂ. ବି—ଛନ୍ଦୋବିଶେଷ; ଯେଉଁ ଛନ୍ଦରେ ପ୍ରତ୍ୟେକ ଚରଣର
Mitrākshara ଅନ୍ତ୍ୟ ବର୍ଣ୍ଣର ମେଳ ଥାଏ—Rhyme
(ଅମିତ୍ରାକ୍ଷର—ବିପରୀତ) (in poetry). [ ଦ୍ର—ସଂସ୍କୃତରେ ସାଧାରଣତଃ ଅମିତ୍ରାକ୍ଷର ଛନ୍ଦ ପ୍ରଚଳିତ; ଓଡ଼ିଆ ପ୍ରାଚୀନ କାବ୍ୟାଦିରେ ବହୁସ୍ଥଳରେ ଅପୂର୍ଣ୍ଣ ମିତ୍ରାକ୍ଷର ଓ ନବ୍ୟ ଓଡ଼ିଆ ସାହିତ୍ୟରେ ପୂର୍ଣ୍ଣ ମିତ୍ରାକ୍ଷରର ପ୍ରଚଳନ ଦେଖାଯାଏ । ଇଂରାଜୀ କବିଙ୍କ ଅନୁକରଣରେ ବଙ୍ଗଳାରେ ମାଇକେଲ୍ ମଧୁସୂଦନ ପ୍ରଥମେ ଅମିତ୍ରାକ୍ଷର ପ୍ରବର୍ତ୍ତାଇଲେ । ରାମଶଙ୍କର ଓ ରାଧାନାଥ ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦ ଚଳାଇଲେ । ଓଡ଼ିଆ ଅମିତ୍ରାକ୍ଷର ରଚନାର ଛଟାକୁ ବ୍ୟଙ୍ଗ କରି ଲୋକେ ଉପରେ ସୁଦ୍ଧା କହି ଥାଆନ୍ତି 'ସଜନୀ ଗଛମୂଳେ ବୁଢ଼ାଇଲି ଚାହିଁଣ, ତତେ ଦେଖି ମୋର ଭାଙ୍ଗି ଗଲା ।'

ଓଡ଼ିଆ ସାହିତ୍ୟରେ ତିନି ପ୍ରକାର ମିତ୍ରାକ୍ଷର ଛନ୍ଦ ଦେଖାଯାଏ :—( ୧ ) ପୂର୍ଣ୍ଣ ମିତ୍ରାକ୍ଷର ଅର୍ଥାତ୍ ଯେଉଁ ପଦ୍ୟର ଦୁଇ ଚରଣର ଶେଷ ଅକ୍ଷର ଓ ତତ୍ପୂର୍ବବର୍ତ୍ତୀ ଅକ୍ଷରର ସ୍ୱରମାନଙ୍କର ମେଳ ଥାଏ । ଉ—ଦକ୍ଷିଣ ଦେଶେ ରମଗିରି ଶୋଭନ, ନିର୍ମଳ ଶୁଭ୍ର ଯହିଁ ନଦୀ ଜୀବନ । ରାଧାନାଥ. ମେଘଦୂତ । ତା ନାମ ଗାଇ ତୁଣ୍ଡରେ; ପ୍ରୀତି ଡମରୁ ବଜାଇ ଦାଣ୍ଡରେ ଗୋ, ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ । ସଜନି ଗୋ ! ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ( ୨ ) ଅପୂର୍ଣ୍ଣ ମିତ୍ରାକ୍ଷର ଅର୍ଥାତ୍ ଯେଉଁ ପଦ୍ୟର ଦୁଇ ଚରଣର କେବଳ ଶେଷ ଅକ୍ଷର ବା ସ୍ୱର ଦ୍ୱୟର ମେଳ ଥାଏ । ଉ—ଦ୍ୱିତୀୟ ଯାମିନୀରେ ମୋ ପ୍ରାଣସଖି, ଦିନେ ପଲଙ୍କେ ଥିଲି ମୋ କୋଳେ ଶୋଇ । ଉପେନ୍ଦ୍ରଭଞ୍ଜ । ( ୩ ) ଏକାନ୍ତର ମିତ୍ରାକ୍ଷର ଅର୍ଥାତ୍ ଯେଉଁ ପଦ୍ୟର ଚାରି ଚରଣ ମଧ୍ୟରୁ ଗୋଟିଏ ଛାଡ଼ି ଗୋଟିଏ (୧ମ ଓ ୩ୟ; ୨ୟ ଓ ୪ର୍ଥ) ଚରଣର ଶେଷ ଅକ୍ଷରର ମେଳ ଥାଏ । ଉ—ଗମ୍ଭୀର ନିଶୀଥ କାଳେ ନିଦ୍ରିତା ଧରଣୀ, ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ, ହସଇ ଆନନ୍ଦେ ତେଣୁ ମହାନନ୍ଦେ ଧନୀ, ସୁପ୍ତ ଶିଶୁ ଦେଖି ଯେହ୍ନେ ସ୍ୱର୍ଗୀୟ ସ୍ୱପନ । ମଧୁସୂଦନ. ଅକାଶପ୍ରତି । ]

ମିତ୍ରାବରୁଣ—ସଂ. ବି ( ଦ୍ୱିବଚନ; ଦ୍ୱନ୍ଦ୍ୱ; ମିତ୍ର+ବରୁଣ=ମିତ୍ରାବରୁଣ;
Mitrābaruṇa ନିପାତନ )—ସୂର୍ଯ୍ୟ ଓ ବରୁଣ—The Sun-god and the God of ocean.

ମିଥ୍ ( ଧାତୁ )—ସଂ.—ବଧ କରିବା—To kill.
Mith (root)

ମିଥଃ—ସଂ. ଅ—୧ । ଅନ୍ୟୋନ୍ୟ; ପରସ୍ପର—1. Mutually. ୨ ।
Mithaḥ ଗୋପନରେ—2. In secret.

ମିଥି—ସଂ. ବି. ନାମ—ନିମି ରାଜାଙ୍କ ପୁତ୍ର; ଜନକ ରାଜା—Name of
Mithi the son of king Nimi; king Janaka.

ମିଥିଳ—ଦେ. ବି—ରାଜା ଜନକ—King Janaka. [ ଉ—
Mithiḷa ଜନ୍ମନ୍ତେ ଜନକ ହୋଇଲେ, ବୈଦେହ ନାମ ଯେ ବହିଲେ । ମନ୍ଥନେ ମିଥିଳ ତା ନାମ, କହେ ଅଶେଷ ଗୁଣ ଧାମ । ଜଗନ୍ନାଥ. ଭାଗବତ । ]

ମିଥିଳା—ସଂ. ବି ( ମିଥି=ନିମି ରାଜାଙ୍କ ପୁତ୍ର+ଅସ୍ତି ଅର୍ଥରେ ଲ+ଆ,
Mithiḷā ମିଥି ରାଜାଙ୍କ ରାଜ୍ୟ )—ଆଧୁନିକ ତିର୍ହୁତ ବିଭାଗ (ଏଥିରେ ରାଜା ଜନକ ରାଜତ୍ୱ କରୁଥିଲେ) ପ୍ରାଚୀନ ବିଦେହ—The ancient country now represented by modern Tirhoot. [ ଦ୍ର—ପୂର୍ବକାଳରେ ନିମି ରାଜାଙ୍କ ପୁତ୍ର ମିଥି ସ୍ୱନାମାନୁସାରେ ଏ ନଗର ବସାଇ ଥିଲେ । ମିଥି ଏ ନଗରର ଜନକକାରୀ ଥିବାରୁ ଏହାଙ୍କ ନାମ ଜନକ ହୋଇଥିଲା ଓ ତାଙ୍କ ବଂଶଧର ମିଥିଳାର ରାଜାମାନେ ଜନକ ଉପାଧିରେ ଭୂଷିତ ହେଉଥିଲେ । ଉତ୍ତରକାଳରେ ମିଥିଳା ଦେଶ ସଂସ୍କୃତ ବିଦ୍ୟାର ଆଲୋଚନା ପାଇଁ ପ୍ରସିଦ୍ଧି ଲାଭ କରିଥିଲା—ସୁବଳଚନ୍ଦ୍ର. ବାଙ୍ଗଲା ଅଭିଧାନ । ]

ମିଥୁନ—ସଂ. ବି (ମିଥ ଧାତୁ=ବଧ କରିବା+କର୍ତ୍ତୃ. ଉନ )—୧ । ସ୍ତ୍ରୀ-
Mithuna ପୁରୁଷ; ଦ୍ୱନ୍ଦ୍ୱ; ପ୍ରାଣୀମାନଙ୍କର ସ୍ତ୍ରୀ ଓ ପୁରୁଷ—1. Couple; a pair; a male and a female. ୨ । ଜ୍ୟୋତିଷୋକ୍ତ ତୃତୀୟ ରାଶି—2. The 3rd sign of the zodiac. ୩ । ସୌର ଆଷାଢ଼ ମାସ—3. The solar month of Āshāṛḍha. ୪ । ମିଳନ; ସଂଯୋଗ—4. Conjunction. ୫ । ସ୍ତ୍ରୀପୁରୁଷ ସଙ୍ଗମ—5. Copulation; pairing; coition.

ମିଥୋଭାଷଣ—ସଂ. ବି (ମିଥଃ+ଭାଷଣ)—ଗୁପ୍‌ଚୁପ୍ କଥାବାର୍ତ୍ତା—
Mithobhāshaṇa A tete-a-tete.

ମିଥ୍ୟା—ସଂ.ଅ (ମିଥ୍ ଧାତୁ=ବଧ କରିବା+କର୍ମ.ଯ+ଆ)—୧ । ମିଛ;
Mithyā ଅନୃତ; ଅସତ୍ୟ କଥା—1. A fib; falsehood;
(ସତ୍ୟ—ବିପରୀତ) untruth. ୨ । ମାୟା—2. Illusion.
ସଂ. ବିଣ.—୧ । ଅସତ୍ୟ—1 Untrue; false. ୨ । କାଳ୍ପନିକ—2. Imaginary. ୩ । ମାୟାଦୃଷ୍ଟି—3. Delusive. ୪ । ବୃଥା—4. Fruitless; vain. ୫ । ଅବାସ୍ତବ—5. Unreal.

ମିଥ୍ୟା ଅଭିଯୋଗ—ଦେ. ବି—ମିଥ୍ୟାରେ ଦୋଷାରୋପ ବା ନାଲିସ—
Mithyā abhijoga False charge.
মিথ্যাঅভিযোগ मिथ्याअभियोग (ମିଥ୍ୟାଭିଯୋଗ—ସ.ରୂପ)

ମିଥ୍ୟାକଥନ—ସଂ. ବି (ଷଷ୍ଠୀତତ୍) —ମିଛକହିବା—
Mithyākathana Falsehood; telling a lie; lying.

ମିଥ୍ୟାକଥା—ଦେ. ବି—୧ । ମିଛବାକ୍ୟ—1. False words.
Mithyākathā ୨ । ମିଛ ବିଷୟ—2. False thing.
মিথ্যাকথা मिथ्यावात ୩ । ବୃଥାକଥା—3. Fruitless thing or matter.

ମିଥ୍ୟାଚରଣ—ସଂ ବି (ମ.ପ. ଲୋ; ମିଥ୍ୟାଦୃଷ୍ଟି ଆଚରଣ)—୧ । କପଟାଚାର; ଅସତ୍ୟ ବ୍ୟବହାର—
Mithyācharaṇa
( ମିଥ୍ୟାଚାର—ଅନ୍ୟରୂପ ) 1 Crooked or insincere conduct. ୨ । ମିଥ୍ୟାକଥନ ( ସ୍ଵଳ୍ପଚଳ )—2. Falsehood; lying.

ମିଥ୍ୟାଚାର—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । କପଟାଚାରୀ—1. Of crooked conduct; hypocrite.
Mithyāchāra
(ମିଥ୍ୟାଚାରୀ—ଅନ୍ୟରୂପ) ୨ । ଦାମ୍ଭିକ—2. Overbearing; impudent.
ମିଥ୍ୟାଚାରିଣୀ, ମିଥ୍ୟାଚାରା }—ସ୍ତ୍ରୀ

ମିଥ୍ୟାଚାରିତା—ସଂ. ବି (ମିଥ୍ୟାଚାରିନ+ଭାବ. ତା)—କପଟବ୍ୟବହାର—
Mithyācharita Hypocricy.

ମିଥ୍ୟାଜ୍ଞାନ—ସଂ. ବି—ଭ୍ରାନ୍ତ ବା ଅସତ୍ୟ ଧାରଣା—
Mithyājnāna False notion; wrong impression.

ମିଥ୍ୟା ଦଲିଲ—ଦେ.ବି (କତରଥ)—ମିଛରେ ଜାଲ୍ କରି ପ୍ରସ୍ତୁତ କରା ଯାଇଥିବା ଦଲିଲ୍—False document; forged document.
Mithyā dalil
নিথ্যা দলীল मिथ्या दलील

ମିଥ୍ୟାଦୃଷ୍ଟି—ସଂ ବି—୧ । ନାସ୍ତିକତା—1. Atheism; ୨ । ଅସତ୍ୟ ଭାବ ବା ଧାରଣା—2. Heresy; false view; ୩ । ଯଜ୍ଞାଦି କର୍ମ କରିବା ହେତୁରୁ ସ୍ୱର୍ଗାଦି ସୁଖ ପ୍ରାପ୍ତି ହୁଏ, ଏଥିର ଅସ୍ୱୀକାର—3 Disagreement with the view that one attains heaven by the performance of vedic sacrifices.
Mithyādrushti

ମିଥ୍ୟା ଧାରଣା—ସ. ବି—ଭ୍ରାନ୍ତବିଶ୍ୱାସ—
Mithyā dhāraṇā False belief or impression.

ମିଥ୍ୟା ନିରସନ—ସଂ. ବି (୭ମୀ ତତ୍)—ଶପଥ—
Mithyā nirasana Oath; swearing.

ମିଥ୍ୟାପବାଦ—ସଂ. ବି—ମିଥ୍ୟାରେ ଦୋଷାରୋପ—
Mithyāpabāda A false imputation; calumny.

ମିଥ୍ୟାପ୍ରତିଜ୍ଞ—ସଂ. ବିଣ. ପୁଂ ( ବହୁବ୍ରୀହି)—୧ । ବିଶ୍ୱାସଘାତକ—
Mithyāpratijna 1 Treacherous. ୨ । ଅଙ୍ଗୀକାର-ଭଙ୍ଗକାରୀ—2. Breaking one's promise.
(ମିଥ୍ୟାପ୍ରତିଜ୍ଞା—ସ୍ତ୍ରୀ)

ମିଥ୍ୟା ପ୍ରମାଣ ସର୍ଜନା(ନ)—ସ.ବି (କତରଥ)—ମିଛରେ କୌଣସିବିଷୟକୁ ପ୍ରମାଣିତ କରିବାପାଇଁ ଉଦ୍ଯୋଗ—Fabrication of false evidence.
Mithyā pramāṇa sarjjanā(na)

ମିଥ୍ୟା ପ୍ରସୁପ୍ତ—ସ. ବିଣ ପୁଂ—ଯେ ଛେଳି ଶୋଇ ଥାଏ—
Mithyā prasupta Pretending or feigning sleep.
(ମିଥ୍ୟା ପ୍ରସୁପ୍ତା—ସ୍ତ୍ରୀ)

ମିଥ୍ୟା ପ୍ରସୁପ୍ତି—ସ. ବି—ଛେଳି ଶୋଇବା—
Mithyā prasupti Feigned sleep.

ମିଥ୍ୟା ପ୍ରିୟ—ସ. ବିଣ. ପୁଂ (ବହୁବ୍ରୀହି; ମିଥ୍ୟା ଅଟେ ପ୍ରିୟ ଯାହାର)—ଯେ ମିଥ୍ୟା କହିବାକୁ ଭଲ ପାଏ—
Mithyā priya Fond of lying.
(ମିଥ୍ୟା ପ୍ରିୟା—ସ୍ତ୍ରୀ)
(ମିଥ୍ୟା ପ୍ରିୟବ୍ରତ—ଅନ୍ୟରୂପ)

ମିଥ୍ୟା ବାକ୍ୟ—ସ. ବି—ମିଛ କଥା—
Mithyā bākya Falsehood.

ମିଥ୍ୟା ବାଦ—ସ. ବି—୧ । ମିଛ କଥା—1. Falsehood. ୨ । ମିଛ କହିବା—2. Telling a lie. ୩ । ମିଥ୍ୟା ଅପବାଦ—3. False imputation.
Mithyā bāda

ମିଥ୍ୟା ବାଦିତା—ସ. ବି (ମିଥ୍ୟାବାଦନ୍+ଭାବ. ତା)—ମିଛ କହିବାର ଅଭ୍ୟାସ—The habit of speaking falsehood.
Mithyā bāditā

ମିଥ୍ୟା ବାଦୀ—ସ. ବିଣ. ପୁଂ (ମିଥ୍ୟାବାଦ+ଇନ; ୧ମା. ୧ବ)—
Mithyā bādi ମିଛୁଆ—Lying. ସ. ବି—ମିଛୁଆ ବ୍ୟକ୍ତି—A liar.
(ମିଥ୍ୟାବାଦିନୀ—ସ୍ତ୍ରୀ)

ମିଥ୍ୟା ଭାଷଣ—ସ. ବି. (୬ଷ୍ଠୀ ତତ୍)—ମିଥ୍ୟା କଥନ ( ଦେଖ )
Mithyā bhāshaṇa Mithyā kathana ( See )

ମିଥ୍ୟା ଭାଷୀ—ସ. ବଣ. ପୁଂ—ମିଥ୍ୟା ବାଦୀ ( ଦେଖ )
Mithyā bhāshi Mithyā bādi ( See )
(ମିଥ୍ୟା ଭାଷିଣୀ—ସ୍ତ୍ରୀ) (ମିଥ୍ୟା ଭାଷିତା—ବି)

ମିଥ୍ୟାଭିଯୋଗ—ସ. ବି (କର୍ମଧା)—ମିଛରେ କାହାର ନାମରେ ନାଲିସ୍—
Mithyābhijoga False accusation or charge.

ମିଥ୍ୟାଭିଶଂସନ—ସ. ବି. (୬ଷ୍ଠୀ ତତ୍; ମିଥ୍ୟା+ଅଭି.ଶଂସନ=ଅପବାଦ)—୧ । ମିଥ୍ୟାପବାଦ—
Mithyābhisaṁsana
1. False imputation. ୨ । ମିଥ୍ୟା ନାଲିସ୍—2. False accusation; false charge.

ମିଥ୍ୟା ଶପଥ—ସ. ବି (କର୍ମଧା)—ମିଛରେ ହଲପ କରିବା—
Mithyā śapatha Perjury.

ମିଥ୍ୟା ସାକ୍ଷ—ସ. ବି. ( ମ. ପ. ଲୋ )—କୌଣସି ମିଥ୍ୟା ବିଷୟରେ ବିଶ୍ୱାସଜନକଭାବରେ ଜବାନବନ୍ଦି ଦେବା—
Mithyā sāksha
Perjury; giving false evidence.

ମିଥ୍ୟା ସାକ୍ଷୀ—ସ. ବି. ପୁଂ. ( ମ. ପ. ଲୋ) ମିଥ୍ୟାବାଦୀ ସାକ୍ଷୀ )—
Mithyā sākshi ଯେଉଁ ଲୋକ ବିଶ୍ୱାସଜନକଭାବରେ ମିଛ କଥା କହେ—A perjurer; a perjured witness.

ମିଥ୍ୟା ସାକ୍ଷି(କ୍ଷି)—ଗ୍ରା. ବି ( ସ. ମିଥ୍ୟା ସାକ୍ଷୀ )—୧ । ଯେଉଁ ସାକ୍ଷୀ ମିଛ କଥା କହେ—1. A lying witness; a perjured witness.
Mithyā sākhi(kshi)
মিথ্যা সাক্ষী
झूठी गवाही, मिथ्या साक्षी ୨ । ମିଥ୍ୟା ସାକ୍ଷ୍ୟ—2. False evidence; perjury.
(ମିଥ୍ୟା ହଲପୀ—ଅନ୍ୟରୂପ)

ମିଥ୍ୟା ସୁକୃତ—ଦେ. ବି—କୌଣସି ମିଛ ବିଷୟରେ କରିବା ଶପଥ—
Mithyā sukṛuta Perjury; false statement on oath.

মিথ্যা শপথ मिथया हलफ (ମିଥ୍ୟା ହଲପ—ଅନ୍ୟରୂପ)

**ମିଥ୍ୟା ସମ୍ବାଦ**—ସ. ବି. (କର୍ମଧା)—ମିଛରେ ଦେବା, ରଟାଇବା
Mithyā sambāda ବା ଶୁଣାଯିବା ଖବର—1. False information.

**ମିଥ୍ୟୁକ**—ସ. ବଣ. ପୁଂ (ମିଥ୍ୟା+ଉକ)—ମିଛୁଆ—
Mithyuka Lying; given to lying.
(ମିଥ୍ୟୁକା—ସ୍ତ୍ରୀ ଲିଙ୍ଗ)

**ମିଥ୍ୟୋତ୍ତର**—ସ. ବି. (କର୍ମଧା) (ମକଦ୍ଦମା ବା ଅଭିଯୋଗ ସମ୍ବନ୍ଧେ)—
Mithyottara ଚଉକିଦାର ଉତ୍ତର ବା ଜବାବ ମଧ୍ୟରୁ ଗୋଟିଏ; ଯାହାଁ ଜବାବ (ଯଥା—ବାଦୀଙ୍କ ଉକ୍ତି ମିଥ୍ୟା, ମୁଁ ଏହା ଜାଣେ ନାହିଁ; ମୁଁ ଏହା କରିନାହିଁ; ମୁଁ ସେଠାରେ ନ ଥିଲି; ଏହିପରି ଉତ୍ତର)—A reply embodying a denial of the plaintiff's claim.

**ମିଥ୍ୟୋପଚାର**—ସ. ବି. (କର୍ମଧା)—ଉପକାର କରିବାର ଛଳନା—
Mithyopachāra Pretended friendly service.

**ମିଦ୍ (ଧାତୁ)**—ସ—୧। ଗର୍ବିତ ହେବା—1. To be proud. ୨। Mid(root) ବିନୀତ ହେବା—2. To be humble. ୩। ସ୍ନିଗ୍ଧ ବା ତୈଳଯୁକ୍ତ ହେବା—3. To be oily or smooth. ୪। ଦ୍ରବ ହେବା; ଗଳିତ ହେବା—4. To be melted; to be liquefied. ୫। ତେଲ ବୋଳିବା—5. To anoint with oil. ୬। ସ୍ନେହ କରିବା—6. To love. ୭। କୋମଳ ହେବା—7. To be softened.

**ମିନ**—ପ୍ରାଦେ· ( ସମ୍ବଲପୁର ) ବଣ. ( ତୁଳ. ହି. ମହୀନ )—ଅତି
Mina ସୂକ୍ଷ୍ମ; ବାରିକ୍—Very fine.

**ମିନତି**—ଦେ. ବି ( ସ. ବିନତି )—ବିନୟପୂର୍ବକ ପ୍ରାର୍ଥନା—
Minati মিনতি मिनति Entreaty.

**ମିନା**—ବୈଦେ. ବି ( ଫା. ମୀନା=ଆକାଶରଙ୍ଗ; ତୁଳ. ଇଂ. ଏନାମେଲ୍;
Minā ଧାତୁର ଦେହରେ ନେଳ ପଥର ବା ନାନା ବର୍ଣ୍ଣର ଅସ୍ବଚ୍ଛ
মিনা କାଚ ଜଡ଼ାଇବା )—୧। ଧାତୁପଦାର୍ଥ ଉପରେ ଦିଆଯାଉ
मिना ନାନା ବର୍ଣ୍ଣର କାଚ ପରି ମସୃଣ ପୁଟବିଶେଷ; ଧାତୁ ଉପରେ ନାନା ବର୍ଣ୍ଣର ପୁଟ ଦେବା କାରିଗରି—1. Enamel; enamelling. [ ଉ—ସୁନା ପତ୍ରା ସୋଲା ବାଙ୍କତ ମର୍କତ ମିନା ଫୁଲ୍ଲ ଲିପି ଝଳଇ—ଉଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] [ ଉ—କାଶ୍ମୀର ଓ ରାଜପୁତାନାର ଜୟପୁର ଅଞ୍ଚଳ ମିନା କାରିଗରୀ ନିମନ୍ତେ ବିଖ୍ୟାତ । ] ୨। ଏକ ଧାତୁ ଉପରେ ଅନ୍ୟ ଧାତୁର ପୁଟ ଦେବା; ଧାତୁ ଉପରେ ନାନା ବର୍ଣ୍ଣର ଅନ୍ୟ ଧାତୁର ଲେପ ଦେବା—2. The act of gilding. ୩। ସୁନା କାମ ଉପରେ ଅସ୍ବଚ୍ଛ କାଚର ବା ନାନା ବର୍ଣ୍ଣର ମଣି ବସାଇବା, ଜଡ଼ାଉ ବା କୁନ୍ଦନ କାମ—3. Overlaying or plating or setting of gold ornaments with gems etc. [ ଉ—ସୁନା ଅଳଙ୍କାରରେ ମୀନା ପରି କଳା ଝିନାଖାଣ୍ଟି ଯହିଁ ଶିଳ୍ପ—କବିସୂର୍ଯ୍ୟ. ସଙ୍ଗୀତ । ] [ ଉ—ଗଞ୍ଜାମ, ବ୍ରହ୍ମପୁର ଓ ମାନ୍ଦ୍ରାଜ କୁନ୍ଦନ କାମର କାରିଗରୀ ପାଇଁ ପ୍ରସିଦ୍ଧ । ] ୪। ନୀଳରତ୍ନବିଶେଷ—4. A kind of blue gem. ୫। ପାନପାତ୍ରବିଶେଷ; ମଦ୍ୟପାତ୍ରବିଶେଷ—5. A kind of goblet; a decanter. ୬। ମିହ୍ନା ( ଦେଖ )—6. Mihnā ( See ) ୭। କମିଣ୍ଢି (ହି. ଣ)—7. Witchcraft; sorcery.

**ମିନା କରିବା**—ଦେ. କ୍ରି—୧। ସୁନା ଅଳଙ୍କାର ଉପରେ ଜଡ଼ାଉ କାମ
Minā karibā କରିବା—1. To set or overlay
মিনা করা (বসান) ornaments with gems or layers
मिना करना of enamel. ୨। ଅନ୍ୟ ଧାତୁ ଉପରେ
(ମିନା ଫୁଙ୍କିବା, ମିନା ବସା(ସେ)ଇବା—ଅନ୍ୟରୂପ) ସୁନାର ବା ରୂପାର ଗିଲ୍ଟ କରିବା—2. To gild ornaments.

**ମିନା କାମ(ରି)**—ବୈଦେ. ବି ( ଫା. ମୀନାକାରୀ )—୧। ମିନା ୧, ୨,
Minā kāma(ri) ୩ (ଦେଖ)—1. Minā 1, 2, 3 (See)
মিনার কায, মিনা বসান ୨। ମିନା କାମ କରା ଯାଇଥିବା
मिनाकारी ଦ୍ରବ୍ୟ—2. Any enamelled or gilt or gem-set article.

**ମିନାକାର**—ବୈଦେ. ବି ( ଫା. ମୀନାକାର୍ )—ରୂପା ଓ ସୁନା ଉପରେ
Minākāra ଚିକଚିକିଆ ପୁଟ ଦେବା କାରିଗର—An artisan
মিনাকার मीनाकार who can enamel or gild metals.
( ମିନା କାରିଗର—ଅନ୍ୟରୂପ )

**ମିନାର**—ବୈଦେ. ବି ( ଫା. ମ[ମୀ]ନାର୍; ତୁଳ. ସ. ମନ୍ଦିର )—ମନ୍ଦିରଶିଖର
Minār ର ଶୀର୍ଷଦେଶ; ଗମ୍ବୁଜ—Spire; minaret.
মিনার मिनार

**ମିନିଟ୍**—ବୈଦେ. ବି ( ଇଂ. ମିନିଟ୍ )—୧। ଏକ ଘଣ୍ଟାର ୬୦ ଭାଗରୁ
Minit ଏକ ଭାଗ; ପ୍ରାୟ ୨୧ ପଳ ସମୟ—1. A minute
মিনিট of time. ୨। କୋଣରେ ଏକ ଡିଗ୍ରିର ୬୦ଭାଗରୁ
मिनट ୧ ଭାଗ—2. A minute of a degree of an
(ମିନିଟି, ମଣ୍ଟ, ମିଣ୍ଟି—ଗ୍ରାମ୍ୟରୂପ) angle. ୩। ( ଇଂ. ମିନିଟ୍ସ୍ ) ସଭାର ଅଧିବେଶନରେ କାର୍ଯ୍ୟ ବିବରଣ—3. The minutes of a meeting.

**ମିନିଟ୍ କଣ୍ଟା**—ଦେ. ବି ( ଇଂ. ମିନିଟ୍+ସ. କଣ୍ଟକ )—ଘଣ୍ଟାରେ
Minit kantā ମିନିଟ ଜ୍ଞାପକ ଲୌହ ଶଳାକା—Minute-
মিনিট কাঁটা मिनट काँटा hand of a clock.
( ମିନିଟ୍ ହାଣ୍ଡ—ବୈଦେଶିକରୂପ; ମିନିଟ କଣ୍ଟା—ଗ୍ରାମ୍ୟରୂପ )

**ମିନିଟ୍(ସ୍) ବୁକ୍**—ବୈଦେ. ବି ( ଇଂ. ମିନିଟ୍ସ ବୁକ୍ )—ଅଧିବେଶନ-
Minit(ts) buk ମାନଙ୍କ କାର୍ଯ୍ୟ ବିବରଣ ଯେଉଁ ବହିରେ ଲେଖା
মিনিট বুক ଯାଏ; ପ୍ରୋସିଡିଙ୍ଗ୍ ବହି—The minutes-book
मिनिट बुक of an association.

**ମିନି ଟୋଲି**—ଦେ. ବି ( ବଣିଆ ଶବ୍ଦ )—ସୁନାର ଗୋଲକାଦି ଉପରେ
Mini ṭola ଗାର ଗାର ଚିହ୍ନ ଲୁଟିବା ପାଇଁ ବ୍ୟବହୃତ ଠପା—A mould to produce carved lines on golden balls of ornaments.

ମିନଶ (ଶି)ନି—ଗ୍ରା. ବି ( ଫ. ମୀନଶନ )—ମହର୍ଗକାଳ; ଦୁର୍ଭିକ୍ଷ—
Minita(si)ni Famine; time of scarcity or rise
मीनशनि मीनशानि in prices.

ମିନସ୍(ସି)ପାଲ୍(ଲି)ଟି ଇତ୍ୟାଦି—ଗ୍ରା. ବି—ମିଉନିସିପାଲିଟି ଇତ୍ୟାଦି
Minis(si)pāl(li)ti (etc.) ( ଦେଖ ) Miunisipāliti (etc) ( See )

ମିବାର(ଡ଼)—ଦେ. ବି ( ନାମ )—ରାଜପୁତାନାର ପ୍ରସିଦ୍ଧ ପ୍ରାଚୀନ ଦେଶୀୟ
Mibāra(rda) ରାଜ୍ୟବିଶେଷ—Name of ancient Indian
मिवार मेवाड State in Rājputana. [ ଦ୍ର—ପୂର୍ବେ ଏହାର ରାଜଧାନୀ ଚିତୋର ଥିଲା; ବର୍ତ୍ତମାନ ଏଥିର ରାଜଧାନୀ ଉଦୟପୁର; ଏ ରାଜ୍ୟର ଅଧୁନାକ ନାମ ଉଦୟପୁର; ଏଥିର ରାଜାଙ୍କ ଉପାଧି ମହାରାଣା; ଏ ରାଜ୍ୟର କ୍ଷେତ୍ରଫଳ ୧୨୬୯୧ ବର୍ଗ ମାଇଲ ।

ମିବାରର ଶିଶୋଦୀୟ ରାଜପୁତବଂଶୀୟ ମହାରାଣା ଭାରତ ଇତିହାସରେ ଖୁବ୍ ବୀରତା ଦେଖାଇଥିବା ପାଇଁ ପ୍ରସିଦ୍ଧ । ଏ ରାଜବଂଶ ୭୨୦ ଖ୍ରୀଷ୍ଟାବ୍ଦରେ ବାପ୍ପାରାଓଳଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା, ଏଥିର ରାଜଧାନୀ ଚିତୋର ଥିଲା । ପୂର୍ବେ ଖ୍ରୀଷ୍ଟାବ୍ଦ ଚତୁର୍ଦ୍ଦଶ ଶତାବ୍ଦୀରେ ଏ ରାଜାମାନେ ଅଲାଉଦ୍ଦିନ୍ ଖିଲିଜୀ ଓ ବାହାଦୁର ସାହାଙ୍କ ବଶ୍ୟତା ସ୍ୱୀକାର କରୁଥିଲେ । ମହାରାଣା କୁମ୍ଭ ମାଳବ ଓ ଗୁଜରାଟର ସୁଲତାନମାନଙ୍କୁ ପରାସ୍ତ କରି ଚିତୋରରେ କୀର୍ତ୍ତିସ୍ତମ୍ଭ ନିର୍ମାଣ କରିଥିଲେ । ମହାରାଣା ସଂଗ୍ରାମ ସିଂହ ଓ ଉଦୟସିଂହ ଅକବରଙ୍କ ବଶ୍ୟତା ସ୍ୱୀକାର ନ କରିବାରୁ ଅକବର ପାଞ୍ଚମାସବ୍ୟାପୀ ଅବରୋଧ ପରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଚିତୋର ଦୁର୍ଗକୁ ଅଧିକାର କଲେ । ମହାରାଣା ଉଦୟସିଂହ ଆରାବଲୀ ପର୍ବତକୁ ଯାଇ ସେଠାରେ ରହିଲେ । ତାଙ୍କ ପୁଅ ପ୍ରତାପ ସିଂହ ମଧ୍ୟ ମୋଗଲଙ୍କ ବଶ୍ୟତା ସ୍ୱୀକାର କଲେ ନାହିଁ । ସେ ପ୍ରଥମେ ମୋଗଲ ସେନାପତି ରାଜା ମାନସିଂହଙ୍କଦ୍ୱାରା ପରାସ୍ତ ହୋଇ ଶେଷରେ ଜୟଲାଭ କରି ତାଙ୍କ ପିତାଙ୍କ ନାମରେ ଉଦୟପୁର ନାମକ ନୂଆ ରାଜଧାନୀ ବସାଇଲେ । ୧୬୧୪ ଖ୍ରୀଷ୍ଟାବ୍ଦରେ ତାଙ୍କ ପୁତ୍ର ଅମର ସିଂହ ମୋଗଲ ସମ୍ରାଟଙ୍କ ବଶ୍ୟତା ସ୍ୱୀକାର କଲେ—ଟ୍ରୋଥେରେ ସାହେବଙ୍କ ଇତିହାସ । ]

ମିମଙ୍କ୍ଷା—ସଂ. ବି ( ମସ୍ଜ୍ ଧାତୁ=ବୁଡ଼ିବା+ସନ୍ ବା ଇଚ୍ଛାର୍ଥେ ଦ୍ୱିତ୍ୱ+
Mimaṅkshā ଭାବ. ଅ )—ବୁଡ଼ିବାର ଇଚ୍ଛା—A wish to plunge or dive.

ମିମଙ୍କ୍ଷୁ—ସଂ. ବିଣ ( ମସ୍ଜ୍ ଧାତୁ+ସନ୍+କର୍ତ୍ତୃ. ଉ )—ବୁଡ଼ିବାକୁ
Mimaṅkshu ଇଚ୍ଛୁକ—Wishing to plunge.

ମିମନ୍ଥିଷା—ସଂ. ବି ( ମନ୍ଥ୍ ଧାତୁ+ସନ୍ ବା ଇଚ୍ଛାର୍ଥେ. ଦ୍ୱିତ୍ୱ+ଭାବ.
Mimanthishā ଅ )—୧ । ମନ୍ଥନ କରିବା ଇଚ୍ଛା—1. A wish to churn. ୨ । ବଧ ବା ବିନାଶ କରିବା ଇଚ୍ଛା—2. A wish to destroy or kill.

ମିମନ୍ଥିଷୁ—ସଂ. ବିଣ ( ମନ୍ଥ+ସନ୍+ଇଚ୍ଛାର୍ଥେ+କର୍ତ୍ତୃ. ଉ )—୧ ।
Mimanthishu ମନ୍ଥନେଚ୍ଛୁ—1. Wishing to churn. ୨ । ବଧେଚ୍ଛୁ—2. Wishing to destroy.

ମିମା(ମାଂ)ସା—ଗ୍ରା. ବି ( ସଂ. ମୀମାଂସା )—ମୀମାଂସା—
Mimā(mām)sā मिमांसा मीमांसा Disposal of a matter.

ମିମିକ୍ଷା—ସଂ. ବି ( ମିହ୍ ଧାତୁ=ସେଚନ କରିବା+ସନ୍. ଅ+ଆ )—
Mimikshā ପ୍ରସ୍ରାବ କରିବାର ଇଚ୍ଛା; ମୂତ୍ରତ୍ୟାଗେଚ୍ଛା—Desire to pass urine.
( ମିମିକ୍ଷୁ—ବିଣ )

ମିର—ବୈଦେ. ବି ( ଫା=ସର୍ଦ୍ଦାର; ପ୍ରଧାନ; ନେତା )—୧ । ମୁସଲ-
Mir मिर मीर ମାନଙ୍କ ନାମ ପୂର୍ବରେ ଲଗିବା ଉପାଧିବିଶେଷ—1. A title prefixed to the name of Mahomedans. ୨ । ମୁସଲମାନ୍ ସୈୟଦ ଜାତିର ଉପାଧି—2. The title of Syeds amongst the Mahomedans. ୩ । ମୁସଲମାନଙ୍କ ଧର୍ମଗୁରୁଙ୍କ ଉପାଧି—3. Title of Mahomedan priests or preceptors. ୪ । ସର୍ଦ୍ଦାର; ନେତା—4. Head-man; leader. ୫ । ଗଞ୍ଜପାର ବା ତାସ୍‌ଖେଳର ସାହେବ ତାସ୍—5. The King card in the game of cards. ୬ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟରେ ପ୍ରତି-ଯୋଗିତାରେ ଯେ ବାହାଦୁରୀ ଦେଖାଏ—6. ( figurative ) A person who is the winner or first man amongt competitors.

ମିର୍ କାସିମ୍—ବୈଦେ. ବି ( ନାମ )—ଇଂରେଜମାନଙ୍କ ମନୋନୀତ
Mir kāsim ବଙ୍ଗଦେଶର ଦ୍ୱିତୀୟ ନବାବ—Name of a
मिर कासिम Nawab of Bengal. [ ଦ୍ର—ମିର୍ କାସିମ୍
मीर कासीम ମିରଜାଫରଙ୍କର ଜୋଇଁ ଥିଲେ । ଇଂରାଜମାନେ ଖ୍ରୀ.୧୭୬୦ ସାଲରେ ମିରଜାଫରଙ୍କୁ ବଙ୍ଗର ନବାବ ପଦରୁ ଛଡ଼ାଇ ଏହାଙ୍କୁ ନବାବ କଲେ । ଏ ଇଂରାଜମାନଙ୍କୁ ବର୍ଦ୍ଧମାନ, ମେଦିନୀପୁର ଓ ଚଟ୍ଟଗ୍ରାମ ଜିଲ୍ଲାମାନ ଦେଲେ ଓ ମୁଙ୍ଗେରଠାରୁ ମୁର୍ଶିଦାବାଦକୁ ରାଜଧାନୀ ଉଠାଇ ନେଲେ । ପରେ ଏହାଙ୍କ ସଙ୍ଗେ ଇଂରାଜଙ୍କର ବିବାଦ ହେବାରୁ ଏ ମୋଗଲ ସମ୍ରାଟ ସାହା ଅଲମ ଓ ଅଯୋଧ୍ୟାର ନବାବ ସାଥଦତ୍ ଖାଁଙ୍କ ସଙ୍ଗେ ମିଳି ଇଂରାଜଙ୍କ ସଙ୍ଗେ ଯୁଦ୍ଧ କରି ଖ୍ରୀ. ୧୭୬୪ ରେ ବକ୍ସାରଠାରେ ପରାସ୍ତ ହେଲେ ଓ ଇଂରାଜମାନେ ଏହାଙ୍କୁ ପଦଚ୍ୟୁତ କରି ପୁଣି ମିରଜାଫରଙ୍କୁ ବଙ୍ଗର ନବାବ କଲେ । ଟ୍ରୋଥେରେ, ଭାରତ ଇତିହାସ । ]

ମିର୍(ରି)କିଟିଆ—ଦେ. ବିଣ (ସ. ମର୍କଟ )—କୃଶ; କ୍ଷୀଣ—Emaciat-
Mir(ri)kitiā ed. ପ୍ରାଦେ (ଗଡ଼ଜାତ) ବି—ମୃତାଶୌଚ—
मरकुटे Impurity due to the death of a relative.
मिरकिटिया (ଛିଟକିଆ—ବିପରୀତ)

ମିର୍(ରି)ଗଚରା—ଦେ. ବି—୧ । ବନ୍ୟବୃକ୍ଷବିଶେଷ—1. Grewia
Mir(ri)g-charā Rotundifolia(tree). ୨ । କ୍ଷେତ ବଣା
कलतामन ଗଛବିଶେଷ—2. Grewia Elastica; Grewia Rothie ( shrub ).

ମିର୍(ରି)ଗା—ପ୍ରାଦେ. ( ବାଲେଶ୍ୱର ) ବି—ମିର୍ଧା ( ଦେଖ )
Mir-(ri)gā Mirdha ( See )

ମିର(ଚ, ରି)ଚ—ପ୍ରାଦେ ( ସମ୍ବଲପୁର ) ( ଭୁଲ. ହି. ମିର୍ଚ୍ଚ )—
Mir(ra, ri)chā ଲଙ୍କାମରିଚ—Chilly; red pepper.

ମିର ଜାଫର —ବୈଦେ. ବି. ନାମ—ଇଂରେଜଙ୍କ ଦ୍ୱାରା ମନୋନୀତ ବଙ୍ଗ
Mir jāphar ଦେଶର ପ୍ରଥମ ନବାବ—Name of a Nawab
মির জাফর of Bengal. [ଦ୍ର—ଏହାଙ୍କୁ ଇଷ୍ଟ ଇଣ୍ଡିଆ
मिर जाफर କମ୍ପାନୀଙ୍କ ସେନାପତି କ୍ଲାଇବ୍ ସିରାଜ୍ଉଦ୍ଦୌଲାଙ୍କ
ପରେ ବଙ୍ଗଳାର ନବାବ କରିଥିଲେ । ଏ ଇଂରାଜମାନଙ୍କୁ
ସିରାଜୁଦ୍ଦୌଲାଙ୍କ କଲିକତା ଅବରୋଧ ପାଇଁ କ୍ଷତିପୂରଣ
ସ୍ୱରୂପ ୧ କୋଟି ୭୦ ଲକ୍ଷ ଟଙ୍କା ଦେଲେ । ପରେ ଏ
ଡଚ୍‌ମାନଙ୍କ ସଙ୍ଗେ ଇଂରେଜଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର
କଲେ ଓ ଇଂରାଜମାନେ ଏହାଙ୍କୁ ସିଂହାସନ ଚ୍ୟୁତ କଲେ ଏବଂ
ଏହାଙ୍କ ଜୋଇଁ ମିର୍ କାସିମ୍‌ଙ୍କୁ ନବାବ କଲେ । ପରେ
ଇଂରାଜଙ୍କ ସଙ୍ଗରେ ମିର୍ କାଶିମଙ୍କର ଯୁଦ୍ଧ ହେବାରୁ
ଇଂରାଜମାନେ ପୁଣି ମିର ଜାଫରଙ୍କୁ ନବାବ କଲେ ଓ
ଖ୍ରୀ ୧୭୬୫ ରେ ଏହାଙ୍କ ମୃତ୍ୟୁ ହେବାରୁ ଏହାଙ୍କର ଅନ୍ୟତର
ପୁଅ ନାଜମ୍‌ଉଦ୍ଦୌଲା ବଙ୍ଗର ନବାବ ହେଲେ ।
ପ୍ରୋଥେରୋଇତିହାସ । ]

ମିର୍ ଜୁମ୍‌ଲା—ବୈଦେ. ବି. ନାମ—ସମ୍ରାଟ ଅଓରଙ୍ଗଜେବଙ୍କ ଅଧୀନ ସେନା-
Mir jumlā ପତି ଓ ସୁବେଦାର୍—Name of a general and
মির জুমলা governor under Emperor Aurangjib.
मीर जुमला [ଦ୍ର—ଏ ପ୍ରଥମେ ଗୋଲକୁଣ୍ଡାର ରାଜା ଅବ୍‌ଦୁଲ୍ଲା କୁତବ୍-
ସାହାଙ୍କ ମନ୍ତ୍ରୀ ଥିଲେ । ରାଜାଙ୍କ ସଙ୍ଗେ ମନୋମାଳିନ୍ୟ
ଘଟିବାରୁ ଏ ପଳାଇ ଯାଇ ଅଓରଙ୍ଗଜେବ୍‌ଙ୍କଠାରେ ଶରଣା-
ପନ୍ନ ହୋଇ ସମ୍ମାନିତ ହେଲେ । ଆରଙ୍ଗଜେବ୍ ଏହାଙ୍କୁ
ବଙ୍ଗର ସୁବାଦାର୍ କରିଥିଲେ । ଏ କୁଚବିହାର ଓ
ଆସାମକୁ ଆକ୍ରମଣ କରି ଅଧିକାର କରିଥିଲେ; ଏହାଙ୍କ ମୃତ୍ୟୁ
ଖ୍ରୀ ୧୬୬୩ ରେ ଘଟିଥିଲା । ପ୍ରୋଥେରୋ-ଇତିହାସ ]

ମିର୍ ବହରୀ—ବୈଦେ. ବି (ଫା.) (ମୁସଲମାନ ରାଜତ୍ୱ ଅମଳ)—ନୌସେନାଧ୍ୟକ୍ଷ
Mir bahari The commander of the navy during Mahomedan rule.

ମିର୍‌ବାର୍—ବୈଦେ ବି (ଫା.) (ମୁସଲମାନ ରାଜତ୍ୱ ଅମଳ)—ବାଦସାହାଙ୍କୁ
Mir-bār ଭେଟିବାକୁ ଯିବା ବ୍ୟକ୍ତିଙ୍କୁ ପରୀକ୍ଷା କରିବା କର୍ମଚାରୀ—
An officer who used to examine persons
going to appear before the Emperor.

ମିର୍ ମଂଜିଲ୍—ବୈଦେ. ବି (ଫା.) (ମୁସଲମାନ ରାଜତ୍ୱ ଅମଳ)—ସେନାମାନେ
Mir mamjil ପହଞ୍ଚିବା ପୂର୍ବରୁ ଶିବିରର ସମସ୍ତ ବ୍ୟବସ୍ଥାକାରୀ
କର୍ମଚାରୀ—Commissary General.

ମିର୍ ମଜ୍‌ଲିସ୍—ବୈଦେ. ବି (ଫା)—ସଭାପତି—President of an
Mir majlis assembly or gathering.

ମିର୍ ମହଲ୍ଲା—ବୈଦେ. ବି (ଫା) (ମୁସଲମାନ ରାଜତ୍ୱ ଅମଳ)—ବଜାରର
Mir mahallā ସରଦାର; ଚୌଧୁରୀ—The headman of
a bazar or particular quarter of a
town.

ମିର୍ ମୁନ୍‌ସୀ—ବୈଦେ. ବି. (ଫା)—ହେଡ୍-ମୋହୋରର୍—
Mir munsi मीर मुंसी Head clerk.

ମିର୍ ଶିକାର୍—ବୈଦେ. (ଫା) (ମୁସଲମାନ ରାଜତ୍ୱ ଅମଳ)—ବାଦସାହାଙ୍କ
Mir śikār ଶିକାରର ବ୍ୟବସ୍ଥାକାରୀ ପ୍ରଧାନ କର୍ମଚାରୀ—
मीर शिकार The principal officer in charge of
the arrangements for the royal hunt.

ମିର ସାମାନ୍—ବୈଦେ. ବି (ଫା) ( ମୁସଲମାନ ରାଜତ୍ୱ )—ବାଦସାହାଙ୍କ
Mir sāmān ପାକଶାଳାର ବ୍ୟବସ୍ଥାକାରୀ ପ୍ରଧାନ କର୍ମଚାରୀ—
मीर सामान The superintendent of the royal
cook-room.

ମିର୍‌ଧା—ଦେ. ବି (ଜାହାଜିଆ ଭାଷା)—ଜାହାଜର ଖଲାସିମାନଙ୍କ ସର୍ଦ୍ଦାର
Mirdhā ଓ ଗୋଦାମରକ୍ଷକ—Head of the menials
in or purser of a ship. (ଭ—ଶଙ୍କର
ବେହେରା ମିର୍ଦ୍ଧା ପେଟରେ ଗୋଟାଏ ରାକ୍ଷସ ଯୋଗାମିଶା
(ମିର୍ଧା (ର୍ଦ୍ଧା)—ଅନ୍ୟରୂପ) ଯୋଡ଼ାଏ ଗୋଇଠା ମାରିଥିଲା ।
ଫକୀରମୋହନ. ଗଳ୍ପସ୍ୱଳ୍ପ)

ମିର(ରି)ଧା—ବୈଦେ. ବି (ଫା. ମିର୍‌ଦାହ୍)—କ୍ଷମାଧିକାରୀ; ଗ୍ରାମର ମଣ୍ଡଳ-
Mir(ri)dhā Headman of a village.
মির্ধা मोडड

ମିର୍(ରି)ଶିଙ୍ଗା—ପ୍ରାଦେ. (ଗଞ୍ଜାମ) ବି ( ସଂ. ଭୂରି ସୁଗନ୍ଧ )—ଭୁରୁଶୁଙ୍ଗା
Mir-(ri)śingā (ଦେଖ)—Bhuruśungā ( See )
[ମେରି ଶିଙ୍ଗା, ମୁର୍(ରୁ)ଶୁଙ୍ଗା(ଙ୍ଗିଆ)—ଅନ୍ୟରୂପ]
ତେ. ଅବାବାରୁ

ମିରା—ସଂ. ବି—୧ । ମୂର୍ବା (ହ୍ରି. ଶ) (ଦେଖ)—1. Mūrbā (See)
Mirā ୨ । ମଦିରା (ହ୍ରି. ଶ)—2. Wine.

ମିରାସ୍‌ଦାର୍—ପ୍ରାଦେ(ଗଞ୍ଜାମ) ବୈଦେ. ବି (ଫା. ମିରାସ୍=ଉତ୍ତ-
Mirās-dār ରାଧିକାର ରୂପେ ପ୍ରାପ୍ତ ପୈତୃକ ସମ୍ପତ୍ତି+ଦାର୍)—
মিরাসদার ଗ୍ରାମର କାନୁନଗୋ କର୍ମ କରିବା ପାଇଁ ସରକାରଙ୍କଠାରୁ
मिरासदार ବା ରାଜାଙ୍କଠାରୁ ପୁରୁଷାନୁକ୍ରମେ ଜାଗିର ପାଇଥିବା
କର୍ମଚାରୀ; ଗ୍ରୁପ୍ କରଣ; [ଦ୍ର—ଏମାନେ ପ୍ରଜାଙ୍କଠାରୁ ରାଜସ୍ୱ
ଅଦାୟ କରନ୍ତି, ଜନ୍ମ ମୃତ୍ୟୁ ତାଲିକା ରଖନ୍ତି ଓ ଗ୍ରାମର ରାଜ-
କୀୟ କର୍ମ ଓ ହିସାବ ଲେଖାଲେଖି କରନ୍ତି)—A hereditary village Kanungo in the district of
Ganjam in Orissa

ମିରି—ପ୍ରାଦେ. (ବସ୍ତର) ବି—ଲଙ୍କା ମରିଚ—
Miri Chilly, red pepper.

ମିରିକାଳି—ଦେ. ବି. (ସଂ. ମୃଗଲ)—ରୋହିଜାତୀୟ ଅପେକ୍ଷାକୃତ ଶ୍ରେଷ୍ଠ
Mirikāli ମାଛ—A kind of fresh water fish; Chirrhina Mrigala. [ଦ୍ର—ଏହା ରୋହି ମାଛଠାରୁ
মির্গেল, মৃগেল
मृगेल ଲମ୍ବରେ ଶ୍ରେଷ୍ଠ ଓ ଏହାର କାତିର ଦାଢ଼ ଈଷତ୍ କୃଷ୍ଣ
(ମିର୍କାଳି—ଅନ୍ୟରୂପ) ବର୍ଣ୍ଣ ।]

ମିରିଗ—ଗ୍ରା. ବି. (ସଂ. ମୃଗ)—ମୃଗ—Dear.
Miriga (ଉ—ଶୁଆ, ସାରୀ, ମିରିଗମାନଙ୍କ ସରାଗ । କୃଷ୍ଣସିଂହ.
(ମିର୍ଗ—ଅନ୍ୟରୂପ) [ମିର୍ଗୀ, ମିରିଗି(ର୍ଗୁ)ଣୀ—ସ୍ତ୍ରୀ] ମହାଭାରତ. ବନ ।)
মৃগ, হরিন, মিগ मिरग, हरन

ମିରଗ(ଗି) ଛାଲ—ଗ୍ରା. ବି (ସଂ. ମୃଗ ଚର୍ମ)—ମୃଗ ଚର୍ମ—
Miriga(gi) chhāla Deer hide.
মৃগ ছাল **मिरग छाल(ला)**

ମିରଗ (ଗି) ଲେ (ଲ) ଣ୍ଡି—ଗ୍ରା. ବି—ମୃଗର ବିଷ୍ଠାଗୋଲକ—The
Miriga(gi)le(la)ṇḍi globules of the dung of the deer.
মৃগের লেদি ପ୍ରାଦେ. (ଖୋରଧା ଓ ଗଡ଼ଜାତ) ବି—ହାଣୁଆ ବା
**मिरग लेंडी** ହାଡୁଆ କାଠ ବିଶିଷ୍ଟ ଏକ ପ୍ରକାର ଝାମ୍ପୁଡ଼ିଆ ଗଛ—
Gnelum Sanden (Haines). [ଦ୍ର—ଏହାର ପତ୍ର ଛଅ ଇଞ୍ଚଠାରୁ ଆଠ ଇଞ୍ଚ ଲମ୍ବ ଓ ୨ ଇଞ୍ଚଠାରୁ ୪ ଇଞ୍ଚ ଓସାର ହୋଇଥାଏ । ]

ମିରଗା କୋଳି—ଦେ. ବି—ଏକ ପ୍ରକାର ବନ୍ୟ ଅମିଳା କୋଳି;
Mirigā koḻi [ଦ୍ର—ଏହା ପାଚିଲେ ଏହାକୁ ଅମ୍ଳ କରି ଖିଆଯାଏ —A kind of wild edible plum of acid taste ]

ମିରଗାଣି ଡମ୍ବ—ପ୍ରାଦେ ( ଜୟପୁର ) ବି—ନୀଚ ଅସ୍ପୃଶ୍ୟ ଜାତି ବିଶେଷ
Mirigāṇi damba —A low untouchable class in Jeypore (Dist, Vizag).

ମିରଗି ରୋଗ—ଗ୍ରା. ବି ( ସଂ. ମୃଗୀ ରୋଗ )—ଅପସ୍ମାର—
Mirigi roga মৃগী; মির্গি **मिरगी** Epilepsy.

ମିରିଗିଡ଼ା—ଦେ. ବିଶ—ମୁରୁକୁଟିଆ ( ଦେଖ )
Mirigirḍā (ମିରଗଡ଼ିଆ—ଅନ୍ୟରୂପ) Murkuṭiā ( See)

ମିରଜା—ବୈଦେ. ବି ( ପା. ମୀର୍ଜା=ମୀର୍ ବା ଅମୀରଙ୍କ ପୁତ୍ର )—
Mirjā ୧ । ମୁସଲମାନ୍ ସମ୍ଭ୍ରାନ୍ତବଂଶୀୟ ବ୍ୟକ୍ତିଙ୍କର ଉପାଧିବିଶେଷ—
(ମିର୍ଜା—ଅନ୍ୟରୂପ) 1. A title of noble Mahomedans.
মির্জা ୨ । ରାଜକୁମାର—2. Prince. ୩ । ମୋଗଲ୍‌ମାନଙ୍କ
**मीरजा** ବଂଶୋପାଧି ବିଶେଷ—3. A family-title amongst the Moghuls. ୪ । ତୈମୁର ବଂଶର ରାଜକୁମାରଙ୍କ ଉପାଧି—4. A title of the princes of Taimur's dynasty.

ମିରଜା(ଜେ)ଇ—ଦେ. ବି ( ପା. ମିର୍ଜାଇ )—୧ । କୁର୍ତ୍ତା—
Mirijā(je)i 1. Coat. ୨ । ତୁଳାଭରା କୁର୍ତ୍ତା—
ମିରଜେଇ } ଅନ୍ୟରୂପ 2. A cotton-stuffed coat
ମିର୍ଜାଇ } [ ଦ୍ର—ଏ କୁର୍ତ୍ତାର ପୁରା ହାତ ଥାଏ,
মির্জাই ଏହା ବେକଠାରୁ ଅଣ୍ଟା ପର୍ଯ୍ୟନ୍ତ ଲମ୍ବିଥାଏ ଓ ଏଥିର
**मिरज(जा)ई** ଦୁଇ ପାଖରୁ ଡୋର ବନ୍ଧା ହୋଇ ଏହା ବନ୍ଦ କରାଯାଏ । ]
[ ଉ—ସାଟିନ୍‌ର ମିରଜେଇ ତେମନ୍ତ ଭଲ ଲାଗିବ ନାହିଁ । ରାଧାନାଥ. ବିବେକୀ । ]

ମିରଧା—ପ୍ରାଦେ ( ଉତ୍ତର ବାଲେଶ୍ୱର ) ବି ( ପା. ମିର୍‌ଦାହ୍—ପ୍ରଧାନ
Miridhā ବ୍ୟକ୍ତି )—ଗୋଧ—Male monkey; the male head of a group of monkeys.
ଦେ. ଓ ବୈଦେ. ବି—ମିର୍ଧା (ଦେଖ)—Mirdhā (See)

ମିଲ୍—ବୈଦେ. ବି ( ଇଂ. ମିଲ୍ )—ଲୁଗାଆଦିର କଳ—Cotton
Mil মিল **मिल** mill; flour-mill etc.
[ଦ୍ର—ଯେଉଁ କଳରେ ଯେଉଁ କାମ ବା ବସ୍ତୁର ବ୍ୟବହାର ହୁଏ ସେହି ବସ୍ତୁର ଇଂରାଜୀ ନାମ ପରେ ଏ ଶବ୍ଦ ଲାଗେ । ଯଥା—ଜୁଟ୍‌ମିଲ୍=ଝୋଟକଳ, ରାଇସ୍‌ମିଲ୍=ଚାଉଳକଳ; ହିଣ୍ଡମିଲ୍=ବାୟୁଚାଳିତ କଳ; ଫ୍ଲୋରମିଲ୍=ଅଟାପେଶାକଳ ହାଣ୍ଡ ମିଲ୍=ହାତଚଲା କଳ; କ୍ଲଥ୍‌ମିଲ୍=ଲୁଗାବୁଣା କଳ, କଟନ୍‌ମିଲ=ତୁଳାରୁ ସୂତା ଆଦି କାଟିବା କଳ । ]

ମିଲ୍କ(କ୍ୟ)ତ୍—ବୈଦେ. ବି—ମିଲିକତ୍ ( ଦେଖ )—Milikat,
Mil-ka(kya)t (ମିଲ୍‌କିଅତ୍—ଅନ୍ୟରୂପ) ( See )

ମିଲ ଲୁଗା—ଦେ. ବି—କଳବୁଣା ଲୁଗା—Mill-made cloth.
Mil-lugā মিলকাপড় **मिलकपडा**

ମିଳ୍ (ଧାତୁ)—ସ—୧ । ମିଳିତ ହେବା—1. To mix. ୨ । ସଂଯୁକ୍ତ
Miḻ (root) ହେବା—2. To be joined or attached to. ୩ । ସାକ୍ଷାତ କରିବା; ଭେଟିବା—3. To meet. ୪ । ଏକମତ ହେବା—4. To agree. ୫ । ତୁଲ୍ୟ ହେବା; ଖାପ୍‌ଖାଇବା—To tally with.

ମିଳ୍—ଦେ. ବି ( ସଂ. ମିଲ୍ ଧାତୁ )—୧ । ମେଳ; ସୌହାର୍ଦ୍ଦ୍ୟ—
Miḻ 1. Friendship. ୨ । ସଂଯୋଗ—2. Conjunction.
মিল ୩ । ଭେଟ—3. Meeting. ୪ । ଐକ୍ୟ; ଏକତା—
**मेल** 4 Unity; sameness. ୫ । ସମତା—5. Similarity.

ମିଳ୍ ଖାଇବା—ଦେ. କ୍ରି—ଐକ୍ୟ ହେବା; ମେଳ ହେବା—
Miḻ khāibā মিলখাওয়া **मेल खाना** To tally.

ମିଳ୍‌ମାଳ୍—ଦେ. ବି—ବିବାଦର ଆପୋଷରେ ମୀମାଂସା—
Miḻ-māḻ Amicable settlement of a dispute;
মিটমাট **मेलजोल** reconciliation.

ମିଳ୍(ଳ, ଳି)ମିଳା—ଦେ. ବି—କ୍ଷୁଦ୍ର ବସନ୍ତ ରୋଗ; ବିସ୍ଫୋଟକ ରୋଗ
Miḻ(ḻa, ḻi)miḻā ବିଶେଷ—Measles; ham; Mor-
মিলি(ল)মিলা(লে)হাম billi, mamern; roseola. [ ଦ୍ର—
**खसरा** ପ୍ରଥମେ ଜ୍ୱର ହେବା ପରେ ଦେହରେ ଛୋଟ ଛୋଟ ବିମ୍ବିର ସ୍ଫୋଟକମାନ ଏ ରୋଗରେ ବାହାରି ଯାଏ ଓ ଅଚିରେ ହିନ ପରେ ଏ ବ୍ରଣମାନ ଦେହରେ ମିଳେଇ ଯାଏ ।]

ମିଲ୍‌ବା—ପ୍ରାଦେ ( ସମ୍ବଲପୁର ) କ୍ରି—ମିଳିବା ( ଦେଖ )
Milbā Miḻibā (See)

ମିଳ—ସଂ. ବି ( ମିଲ୍ ଧାତୁ+ଭାବ. ଅ )—୧ । ମିଳନ; ସଂଯୋଗ—
Miḻa 1. Union. ୨ । ସମ୍ମତି—2. Consent. ୩ । ଐକ୍ୟ—3. Oneness; unity. ୪ । ସମତା—4. Similarity. ୫ । ମତୈକ୍ୟ—5. Agreement.

ମିଳଣ—ଗ୍ରା. ବି ( ସଂ. ମିଳନ )—ମିଳନ ( ଦେଖ )
Miḻaṇa মিলন **मिलन** Miḻana ( See )

ମିଳଣ ଠାଁଥା ଅାଁ)—ଦେ.ବି (ସଂ. ମିଳନସ୍ଥାନ)—ଦେବତାଙ୍କ ମିଳନ ସ୍ଥାନ
Miḻaṇa ṭhāñā(āñ) —A place where idols from
মিলন স্থান various localities are brought
**मीलनेका जगह** for common worship.

ମିଳନ—ସଂ. ବି ( ମିଲ୍ ଧାତୁ+ଭାବ. ଅନ )—୧ । ମିଶ୍ରଣ—1.
Miḻana Mixing. ୨ । ଐକ୍ୟ—2. Unanimity;

agreement; unity. ୩ । ସ୍ପର୍ଶ—3. Touch. ୪ । ସଂଯୋଗ—4. Conjunction; contact; union. ୫ । ମିଶାଣ—5. Rhyme. ୬ । ଭେଟ—6. Meeting; encounter. ୭ । ସମତା; ସାଦୃଶ୍ୟ—7. Resemblance; similarity; accordance; consistency; likeness. ୮ । ତୁଳନା; ଉପମା—8. Comparison. ୯ । ବନ୍ଧୁତାସ୍ଥାପନ—9. Establishment of friendly relationship. ୧୦ । ପ୍ରାପ୍ତି—10. Obtaining; receipt. ୧୧ । ଘଟନ—11. Happening.

**ମିଳା**—ଦେ. ବି (ସଂ. ମିଲ୍ ଧାତୁ)—୧ । ମିଶିବା—1. Mixing. Milā ୨ । ଭେଟ; ଏକତ୍ର ହେବା—2. Coming together; meeting. ମିଳା ବିଣ—୧ । ମିଳିତ—1. Joined. ମିଲନା ୨ । ଲ୍ଳାନ; ପଚ—2 Rotten. ୩ । (ସଂ. ବିଲୀନ) ମିଳାଇ ଯାଇଥିବା—3. Dissolved.

**ମିଳା(ଳେ)ଇ ଦେବା**—ଦେ. କ୍ରି—(ସକର୍ମକ)—୧ । ଦୁଇଜଣଙ୍କୁ ମେଳ Milā(le)i debā କରାଇବା—1. To cause reconcilia- ମିଲିୟେ ଦେଓୟା **मिलादेना** tion between two persons. ୨ । ଦୁଇଜଣଙ୍କ ଭେଟ ଘଟାଇବା—2. To bring out an interview between persons.

**ମିଳା(ଳେ)ଇବା**—ଦେ.କ୍ରି.—ମିଲ୍ ଧାତୁର ପ୍ରଯୋଜକ ରୂପ, ସକର୍ମକ)—Milā(le)ibā ୧ । ମିଶାଇବା—1. To cause to mix. ମିଲାନ **मिलाना** [ଉ—ଦଧି ମନ୍ଥନର ଶବଦ ସଙ୍ଗେ ମିଳାଇ ଗୀତ ନାଦ । ଜଗନ୍ନାଥ. ଭାଗବତ ।] ୨ । ଦୁଇଜଣଙ୍କୁ ମିଳିତ କରାଇବା; ଦୁଇଜଣଙ୍କୁ ସାକ୍ଷାତ୍ କରାଇବା—2. To bring about a meeting between two persons. ୩ । ଦୁଇଜଣଙ୍କର ମେଳ କରାଇବା-3. To cause reconciliation between two persons. ୪ । ସଂଯୋଜିତ କରାଇବା—4. To cause to join. [ଉ—ଚନ୍ଦ୍ରମା ମଣ୍ଡଳ ମଣ୍ଡ ମିଳାଇବ । ଉଞ୍ଜ. ପ୍ରେମସୁଧାନିଧି ।] ୫ । ସାମଞ୍ଜସ୍ୟ ଘଟାଇବା—5. To bring about congruity or consistency. ୬ । ପ୍ରାପ୍ତ କରାଇବା—6. To cause to get. ୭ । (ବି+ଲୀ ଧାତୁ=ଲୀନ ହେବା ମିଲାନ **मीटना** ଲୁପ୍ତ ପାଇବା; ଅକର୍ମକ)—ଉଭେଇ ଯିବା; **मिटना** ବିଲୀନ ହେବା; ଅଦୃଶ୍ୟ ହେବା—7. To disappear. ଗଲାନ **गलाना** ୮ । ପାଣିରେ ଲୁଣ ଆଦି ମିଶି ଯାଇ ଅଦୃଶ୍ୟ ହେବା—8. To be dissolved. [ଉ—ଦେଖରେ ଭାଇ ! ପାଣିରେ ପଥର ମିଳେଇ ଯାଇ—ଭଗ ।] ୯ । (ସକର୍ମକ) ତରଳାଇବା—9. To cause to melt. [ଉ—ସେ ଧ୍ୟାନେ ଶରୀର ମିଳାଇ, ନଦୀ ସ୍ୱରୂପେ ଗଲେ ବହି । ଜଗନ୍ନାଥ. ଭାଗବତ ।] ୧୦ । (ମ୍ଳୈ ଧାତୁ=ମ୍ଳାନ **गलना** ହେବା, (ଅକର୍ମକ)—ମ୍ଳାନ ହେବା; ପଚି ଯିବା—To be rotten.

**ମିଳା(ଳେ)ଇ ଯିବା**—ଦେ. କ୍ରି. (ଅକର୍ମକ)—୧ । ପଚିଯିବା—Milā(le)i jibā 1. To be rotton ୨ । ବିଲୀନ ହେବା ମିଲିୟେ ଯାଓୟା ଗୁଲେ ଯାଓୟା (ଯଥା—ପାଣିରେ ଚିନି ବା ଲୁଣ **मिलजाना** ମିଳାଇ ଯିବା)—3. To be dissolved in. ୩ । (ଲକ୍ଷଣାର୍ଥ)—ବିସ୍ମୃତ ହେବା, ଲୋପ ହେବା—3. To be totally forgotten. [ଉ—ସଭ୍ୟ ସମିତିମାନଙ୍କରେ ପ୍ରସ୍ତାବିତ କୌଣସି ବିଷୟ ପାସ୍ ହୋଇଯିବା ପରେ କାର୍ଯ୍ୟତଃ ତାହା ଏକାବେଳକେ ମିଳାଇ ଯାଏ ।]

**ମିଳାଣ(ନ୍) ଖସଡ଼ା** ଦେ.ବି.—(ସେଟଲମେଣ୍ଟ ବିଭାଗରେ ବ୍ୟବହୃତ ଶବ୍ଦ) Milān(n) khasardā ରାଜସ୍ୱ ବନ୍ଦୋବସ୍ତରେ କର୍ମଚାରୀମାନଙ୍କ ମିଲାନ ଖସଡ଼ା ଦ୍ୱାରା ପ୍ରସ୍ତୁତ ହୋଇଥିବା ମୌଜାର ଭୂମିମାନଙ୍କର **मिलान खेसरा** କ୍ରମିକ ବିବରଣ ଲିପିବଦ୍ଧ ହୋଇଥିବା ରେଜିଷ୍ଟର—Milan khasra; a register showing the details of the consecutive plots of a village, prepared in the course of a revenue settlement.

**ମିଲପ୍**—ଗ୍ରାଦେ. (ସମ୍ବଲପୁର)—ବି.—(ମୂଳ. ହି. ମିଲାପ)—୧ । Milāp ଏକତା—1. Unity. ୨ । ସୌହାର୍ଦ୍ଦ୍ୟ—2. Friendship; mutual good feeling.

**ମିଳାପ**—ଦେ. ବି—(ସଂ. ମିଲ୍ ଧାତୁ)—୧ । ମିଳନ; ମିଳାମିଶା; ମେଳ-Milāpa ଆଲାପ 1. Mixing together; accord; **मिलाप, मिलित** concord. ୨ । ମେଳାପ; ସୌହାର୍ଦ୍ଦ୍ୟ; ବନ୍ଧୁତା—2. Friendship; attachment. [ଉ—ବିମଳା ଦେଈ ଆଉ କମଳା ଦେଈଙ୍କ ମଧ୍ୟରେ ସମ୍ପ୍ରିତି ମିଳାପ । ଫକୀରମୋହନ· ଗଳ୍ପସ୍ୱଳ୍ପ ।] ୩ । ସାକ୍ଷାତ୍ ପରିଚୟ—3. Acquaintance.

**ମିଳାପି**—ଦେ. ବିଣ—୧ । ମେଳାପୀ; ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିମାନଙ୍କ Milāpi ସଙ୍ଗେ ମିଳି ମିଶି କଥା ବାର୍ତ୍ତା କରେ—Affable; ଆଲାପି **मिलापी** mixing with others. (ମିଳାପିଆ, ମିଳାପି ଆଳାପି—ଅନ୍ୟରୂପ)· ୨ । ଘନିଷ୍ଠରୂପେ ପରିଚିତ-2. Intimate; well acquainted (friend.) ବି—ଘନିଷ୍ଠ ବନ୍ଧୁ—An intimate friend.

**ମିଳାମିଶା**—ଦେ. ବି. (ସହଚର); ମିଲ୍ ଧାତୁ ଓ ମିଶ୍ ଧାତୁ)—୧ । Milā misā ମିଲ୍ ମାଲ୍; ମିଳନ—1. Mixing together. ମିଲାମିଶା, ମେଲାମିଶା ୨ । ଆପୋଷରେ ବିବାଦର ମେଣ୍ଟନ—**मेलजोल** 2. Reconciliation; amicable settlement of a dispute; restoration of friendly feelings.

**ମିଲ୍‌କ(କ୍ୟ)ତ୍(ତି)**—ଦେ. ବି—(କଚେରୀଆ)—(ଫା. ମିଲ୍‌କୟତ)—Milikat ୧ । ଭୂସମ୍ପତ୍ତି; ଭୂସ୍ୱତ୍ୱ—1. Landed property ମିଲକିଅତ ୨ । ସମ୍ପତ୍ତିରେ ସ୍ୱତ୍ୱ—2. Ownership; proprie- **मिलकीयत** tory right. ୩ । ଜମିଦାରୀ—3. Zamindary.

ମିଲି(ଲ୍)କିଅତ୍ ସରକାର୍—ଦେ.ବି (କିତାବ) (ଫା.)—ଗଭର୍ଣ୍ଣମେଣ୍ଟଙ୍କ
Mili(l)kiat sarkār ସମ୍ପତ୍ତି—The property of
সরকারী মিলিকিয়ত Government. (ଯଥା—ସଦର କଟକ
**मिलकीयत सरकार** ମିଲକିୟତ୍ ସରକାର୍, ମାହାଲ୍ ଖାସ୍=କଟକର
ସରକାରୀ ବା ଖାସ୍‌ମାହାଲ୍ ଜମିଦାରୀ।)

ମିଲିଚୁଲି କାମ କରିବା—ଦେ. କ୍ରି—ଏକତା ସହ କାର୍ଯ୍ୟ କରିବା—
Milichuli kāma karibā To act in union.
মিলে জুলে কাজ করা **मलजुलकर कामकरना**
(ମିଳିମାଳି କାମ କରିବା, ମିଳି ମିଶି କାମ କରିବା—ଅନ୍ୟରୂପ)

ମିଲିଟା(ଟେ)ରି—ବୈଦେ. ବିଣ (ଇଂ. ମିଲିଟାରୀ)—ସୈନ୍ୟସମ୍ବନ୍ଧୀୟ-
Militā(te)ri মিলিটারী **मिलिटारी** ସାମରିକ—Military.

ମିଲିଟା(ଟେ)ରି ପୁଲିସ୍—ବୈଦେ. ବି—ସରକାରଙ୍କର ପୁଲିସ୍ ବିଭାଗର
Milita(te)ri pulis ସାମରିକ ଉପବିଭାଗ—Military
মিলিটেরি পুলিস **मिलिटारी पुलिस** Police.

ମିଳିତ—ସଂ. ବିଣ—(ମିଲ୍ ଧାତୁ+କର୍ତ୍ତୃ. ତ)—୧। କୃତସାକ୍ଷାତ୍କାର;
Milita ଭେଟା ଭେଟି ହୋଇଥିବା; ପରସ୍ପର ସଙ୍ଗେ ସଂଯୁକ୍ତ—
(ମିଳିତା—ସ୍ତ୍ରୀ) 1. Joined together; met; come into contact. ୨। ଅର୍ଜିତ—2. Earned; acquired. ୩। ପ୍ରାପ୍ତ—3. Got; obtained; ୪। ଯୁକ୍ତ—4. United. ୫। ମିଶ୍ରିତ—5. Mixed. ୬। ଏକତ୍ରୀକୃତ—6. Gathered together; congregated. ୭। ପରସ୍ପର ସମ୍ବଦ୍ଧ—7. Correlated. ୮। ସ୍ପର୍ଶ କରିଥିବା—8. Touched; touching

ମିଳିତ ମୂଳଧନ—ସଂ. ବି—(ଆଧୁନିକ ବ୍ୟବହାର)—ବ୍ୟବସାୟ ନିମନ୍ତେ
Milita mūladhana ପୁଞ୍ଜୀକୃତ ଅନେକ ଲୋକଙ୍କର ଧନ—
Joint stock; united capital.

ମିଳିତ ରାଜ୍ୟ—ସଂ. ବି—(ଆଧୁନିକ)—ବହୁରାଜ୍ୟ ସଂଯୁକ୍ତ ହୋଇଥିବା
Milita rājya ରାଜ୍ୟ—United states.

ମିଳିତ ସେନା—ସଂ. ବି—ଏକୀଭୂତ ସୈନ୍ୟ—Army gathered
Milita senā or concentrated at one place.

ମିଳିନ୍ଦ—ସଂ. ବି—(ମିଲ୍ ଧାତୁ=ସଂଲଗ୍ନ ହେବା+କର୍ତ୍ତୃ. ଇନ୍ଦ=ଯେ
Milinda ପୁଷ୍ପରେ ମିଳିତ ହୁଏ)—ଭ୍ରମର—Black bee.
[ଉ—ମିଳିନ୍ଦ ଲତା ଦମ୍ଭ କନତା ବଦନେ ମିଶି ମାରେ। କବିସୂର୍ଯ୍ୟ. କଶୋରୀ ଚମ୍ପୂ ମ. ଗୀତ।]

ମିଳିବା—ପ୍ରାଦେ. (କୋରାପୁଟ) କ୍ରି—ମିଳିବା (ଦେଖ)
Milibā Milibā (See)

ମିଳିବା—ଦେ. କ୍ରି—(ସଂ.ମିଲ୍ ଧାତୁ)—୧। ମିଶାହେବା—1. To be
Milibā মিলা **मिलना** mixed with. ୨। ମିଳିତ ହେବା—2. To join; to be united to. [ଉ—ମିଳି ଏ ସମରେ ଆସି କରେ ଶସ୍ତ୍ର ଧରି। ରାଧାନାଥ. ବେଣୀ ସଂହାର।] ୩। ସଂଯୁକ୍ତ ହେବା—3. To be joined with. ୪। ଜୁଟିବା; ହାବୁଡ଼ିବା; ଭେଟିବା—4. To meet. [ଉ—ରାଧା ସମପ୍ରେ ମିଳି ଗଲେ ପଥେ। ପ୍ରାଚୀ. ରସକାରିଧି।] ୫। ଲବ୍ଧ ହେବା; ଲାଭ ହେବା—5. To be earned. ୬। ହସ୍ତଗତ ହେବା; ପ୍ରାପ୍ତ ହେବା—6. To be received or got. [ଉ—ଜାଣ ସବୁ ସମ୍ପତ୍ତି ମୋତେ ମିଳିଲାରେ କବିସୂର୍ଯ୍ୟ. ସ.।] ୭। ପହଞ୍ଚିବା; ଆସି ଉପସ୍ଥିତ ହେବା—7. To arrive at a place; to reach a place. [ଉ—କାର୍ତ୍ତିକ ଗଣପତି ଦୁଇ, ମିଳିଲେ ଏକା ବେଳେ ଯାଇ। ଭୂପତି. ପ୍ରେମ ପଞ୍ଚାମୃତ।] ୮। ସ୍ପର୍ଶ କରିବା—8. To touch. ୯। (ମତ) ଏକ ହେବା—9. To agree with.

ମିଳି ମିଳା—ମିଲ୍‌ମିଲା (ଦେଖ)
Milimilā Mil-milā (See)

ମିଳି(ଲି)ମିଳି(ଲି)—ଦେ. ଅ—ମିଟିମିଟି (ଦେଖ); ମିଞ୍ଜିମିଞ୍ଜି (ଦେଖ)
Mili(li)mili(li) Mitimiti (See); minjiminji (See)
মিনমিন **टिमटिम** ଦେ. ବି—ପ୍ରଦୀପର ଭୁଲୁଭୁଲୁ ହୋଇ ଜଳିବା—
Flickering of a light.

ମିଳିମିଶି—ଦେ.ଅ.—ଏକତ୍ର; ଏକାଠେଇଁ—Together. [ଉ-ଦୁହେଁ
Milimisi ମିଳିମିଶି ଘର କାମ କରନ୍ତି—ଫକୀରମୋହନ.
মিলেমিসে **मिलजुलकर** ଛମାଣ ଆଠଗୁଣ୍ଠ।]

ମିଳି ମିଶି ଯିବା—ଦେ. କ୍ରି—ମିଳି ଯିବା (୩) (ଦେଖ)—
Mili misi jibā Mili jibā 3 (See) (ଉ—
মিলেমিশে যাওয়া **मिल जाना** ତାହାର ପୁଅ ଅଙ୍ଗଦଙ୍କୁ ଅଣି ଯୁବରାଜ କଲ, ସମସ୍ତେ ମିଳିମିଶି ଗଲେ—ମାଳକଣ୍ଠ ମିଶ୍ରଙ୍କ ରାମାୟଣ।)

ମିଳିଯିବା—ଦେ. କ୍ରି—୧। କଷ୍ଟରୂପେ ପ୍ରାପ୍ତ ହେବା—1. To be
Milijibā got at last. ୨। ମିଳିତ ହେବା—
মিলে যাওয়া **मिलजाना** 2. To be united with. ୩। ଦୁଇଜଣଙ୍କର ବିବାଦ ମୀମାଂସା ହୋଇ ସୌହାର୍ଦ୍ଦ୍ୟ ସ୍ଥାପିତ ହେବା—3. To be reconciled with each other. ୪। ମିଳାଇଯିବା—4. To dissolve. (ଉ—ପୂର୍ବରୁ ତ ମଣ୍ଡାଟି ପୋଡ଼ିଯାଇଥିବ, ଜଳଧାର ପଡ଼ିବା ଯଣି ମିଳିଯିବ—କୃଷ୍ଣସିଂହ. ମହାଭାରତ ବନ।)

ମିଶ୍—ବୈଦେ. ବି. ସ୍ତ୍ରୀ (ଇଂ. ମିସ୍)—କୁମାରୀଙ୍କ ନାମ ପୂର୍ବେ ଲାଗିବା
Miś ଉପାଧି—Miss; a title prefixed to the names
মিস **मिस** of maidens [ଦ୍ର—ଶ୍ୱେତାଙ୍ଗକୁମାରୀ ଓ ପାଶ୍ଚାତ୍ୟ ରୀତିରେ ଶିକ୍ଷିତା ଭାରତୀୟା କୁମାରୀମାନଙ୍କ ନାମ ପୂର୍ବେ ଏ ଶବ୍ଦ ଲାଗେ।]

ମିଶର୍—ବୈଦେ. ବି. ନାମ [ଆ. ମିଶର୍=ସୁରକ୍ଷିତ (ନଗର)]—
Miśar ଆଫ୍ରିକା ମହାଦେଶର ଉତ୍ତର ପୂର୍ବ କୋଣରେ ନୀଲ
মিসর ନଦୀର ଉଭୟ ତୀରରେ ଅବସ୍ଥିତ ମୁସଲମାନ୍ ରାଜ୍ୟ—
**मिस्र** Egypt. [ଦ୍ର—ମିଶର୍ ଶବ୍ଦ ବହୁକାଳରୁ ଭାରତରେ 'ମିଶ୍ର' ରୂପେ ପ୍ରଚଳିତ। ଏ ଦେଶର ଇଂରାଜୀ ନାମ Egypt (ଇଜିପ୍ଟ) ସଂ. ଅଗୁପ୍ତ (ସୁରକ୍ଷିତ) ରୁ ଗୃହୀତ ବୋଲି ପଣ୍ଡିତମାନେ କହନ୍ତି। ମିଶର୍ ଦେଶ ଆଫ୍ରିକା ମହାଦେଶର

ଉତ୍ତରପୂର୍ବକୋଣରେ ଅବସ୍ଥିତ । ଏଥିର ଉତ୍ତରରେ ଭୂମଧ୍ୟସାଗର, ପୂର୍ବରେ ସୁଏଜ୍ କେନାଲ୍ ଓ ଲୋହିତସାଗର, ପଶ୍ଚିମରେ ତ୍ରିପଲୀ ରାଜ୍ୟ ଓ ସାହାରା ମରୁଭୂମି । ଦକ୍ଷିଣରେ ଏହା ନୀଳ ନଦୀର ଉତ୍ପତ୍ତି ସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ । ଏହାର ମଧ୍ୟ ଦେଇ ନୀଳନଦୀ ଦକ୍ଷିଣରୁ ଉତ୍ତରକୁ ବୋହିଯାଇ ଅଛି ଓ ଏ ନଦୀର ବାର୍ଷିକ ବଢ଼ି ଯୋଗୁଁ ଏ ଦେଶରେ ଖୁବ୍ ପଟୁ ପଡ଼େ ଓ ଏତଦ୍ଦ୍ୱାରା ଜମି ଖୁବ୍ ଉର୍ବର ହୁଏ । ଏହା ନଦୀମାତୃକଦେଶ, କାରଣ ଏ ଦେଶରେ ପ୍ରାୟ ବୃଷ୍ଟି ହୁଏ ନାହିଁ । ପୂର୍ବେ ଏହା ତୁରସ୍କର ସୁଲତାନଙ୍କ ଅଧୀନ 'ଖେଦିଭ୍' ନାମକ ଜଣେ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ବର୍ତ୍ତମାନ ଏହା ତୁରସ୍କରୁ ସ୍ୱାଧୀନ ହୋଇ ବ୍ରିଟିଶ୍‌ସରକାରଙ୍କ ଅଭିଭାବକତ୍ୱରେ ଜନପ୍ରତିନିଧିଙ୍କ ପରାମର୍ଶରେ ଖେଦିଭ୍‌ଙ୍କ ଦ୍ୱାରା ଶାସିତ । ବର୍ତ୍ତମାନ ଏହା ୨ ଭାଗରେ ବିଭକ୍ତ ହୋଇଅଛି । ଉତ୍ତର ଭାଗ ମିଶର୍ ଓ ଅନ୍ୟ ଭାଗ ସୁଦାନ୍ । ମିଶର୍‌ର ରାଜଧାନୀ କାଇରୋ । ନୀଳ ନଦୀ ମୁହାଣରେ ଥିବା ଅଲେକ୍‌ଜାଣ୍ଡ୍ରିଆ ଗୋଟିଏ ପ୍ରସିଦ୍ଧ ବନ୍ଦର ଅଟେ । ଏ ଦେଶବାସୀମାନେ ପ୍ରାଚୀନକାଳରେ ଅନ୍ତତଃ ସାତ ସହସ୍ର ବର୍ଷ ପୂର୍ବେ ସଭ୍ୟତାର ଚରମ ସୀମାରେ ଉପନୀତ ହୋଇଥିଲେ । ସେହି କାଳରେ ଏମାନଙ୍କର ରକ୍ଷିତ ଶବମାନ ଭୂଗର୍ଭରୁ ବାହାରୁ ଅଛି । ଏ ରାଜ୍ୟର ପ୍ରାଚୀନ ରାଜାମାନଙ୍କର ବିଶାଳ ସମାଧି ମନ୍ଦିରମାନ (ପିରାମିଡ୍) ଅଦ୍ୟପର୍ଯ୍ୟନ୍ତ ବିଦ୍ୟମାନ ଅଛି । ମିସର୍‌ର ପ୍ରାଚୀନ ରାଜାମାନଙ୍କ ଉପାଧି ଫାରୋ (Pharao) ଥିଲା । ପ୍ରାଚୀନ କାଳର ମିଶରୀୟ ସଭ୍ୟତା, ଶିକ୍ଷା, ଯୁଦ୍ଧ, ରାଜନୀତି, ଧର୍ମ ନୀତି ବିଷୟରେ ପ୍ରାଚୀନ ବୈଦିକଯୁଗର ଭାରତର ଓ ଭାରତୀୟ ତତ୍ ବିଷୟମାନଙ୍କର ଅନେକ ସାମଞ୍ଜସ୍ୟ ଥିବାର ଜଣାଯାଏ, ଅଜିକାଲି ମିଶର୍‌ବାସୀମାନେ ମୁସଲମାନ୍ ଧର୍ମାବଲମ୍ବୀ । ଐତିହାସିକ ଯୁଗରେ ମିଶର୍ ବହୁ ବିଦେଶୀ ଆକ୍ରମଣକାରୀଙ୍କ କରଗତ ହୋଇଥିଲା ଓ ବର୍ତ୍ତମାନ ଇଂରାଜଙ୍କ ଅଭିଭାବକତ୍ୱରେ ସ୍ୱାୟତ୍ତଶାସନ ଲାଭ କରିଅଛି ।]

ମିଶର—ଗ୍ରା. ବି ( ସଂ. ମିଶ୍ର )—୧ । ବ୍ରାହ୍ମଣଙ୍କର ମିଶ୍ର ଉପାଧି—
Miśara 1. The title of Miśra among the
मिशिर Brāhmaṇas. ୨ । ମିଶର୍ ( ଦେଖ )—2.
मिशर Miśar ( See )

ମିଶଲ—ବୈଦେ. ବି ( ଅ. ମିସ୍ଲ, ମିସଲ୍=ନଥି )—୧ ।
Miśal ମକଦ୍ଦମାର ନଥି; କୌଣସି ମକଦ୍ଦମା ସମ୍ପର୍କୀୟ ସମସ୍ତ
মিসল କାଗଜ ପତ୍ର—1. File or record of a case.
मिसिल ୨ । ଅଦାଲତରେ ବିଚାରପତିଙ୍କ ବସିବାର ସ୍ଥାନ ବା ମଞ୍ଚ;
मिस्ल ବିଚାରାସନ—2. The raised platform on which a judge takes his seat; the Bench. ୩। ଅଦାଲତ ଗୃହ—3. The court-house; court. ୪ । ମିଶଲରେ ବସି ବିଚାରପତିଙ୍କ ବିଚାର କରିବାର ଏକ-ଥର (ଗଞ୍ଜାମରେ, ହେରିଙ୍ଗ୍—Hearing )—4. One sitting of a court; one hearing of a case. [ ଉ—ଉକିଲ ବାବୁ ମିଶଲ୍‌କେ ଏକ ମୋହର୍ ଫିସ୍ ନିଅନ୍ତି ।] ୫ । ସ୍ୱତନ୍ତ୍ର ନାୟକଙ୍କ ଅଧୀନ ସ୍ୱତନ୍ତ୍ର ଶିଖମାନଙ୍କ ଦଳ—5. A number of Sikhs following a particular leader.

ମିଶଲ୍ କରିବା—ଦେ. କ୍ରି—ପକ୍ଷ, ଉକିଲ୍, ମୁକ୍ତାର ଏବଂ କର୍ମଚାରୀଙ୍କ ସଙ୍ଗେ
Miśal karibā ମିଳିତ ହୋଇ ଅଦାଲତରେ ( ବିଚାର ପତି )
[ମିଶଲ ଜମା(ମେ)ଇବା—ଅନ୍ୟରୂପ] ବିଚାରାସନରେ ବସିବା—
মিসল জমান ( the judge ) To hold the court
मिस्ल जमाना with all the requisites (suitors, pleaders, officers etc).

ମିଶଲ୍ ଖରଚ୍ଚ (ଖର୍ଚ୍ଚା)—ବୈଦେ. ବି—ଉକିଲ ମୁକ୍ତାରଆଦି ଅଦାଲତରେ
Miśal kharachā (kharchchā) ପକ୍ଷମାନଙ୍କ ତରଫରୁ
মিসল খরচা ଉପସ୍ଥିତ ହୋଇ କାର୍ଯ୍ୟ କରିବାପାଇଁ ପକ୍ଷଠାରୁ
मिस्ल खर्चा ନେବା ଫିସ୍—Fees taken by a pleader for attending a court.

ମିଶଲ୍ ଜମିବା—ଦେ. କ୍ରି—ବିଚାରପତିଙ୍କ ବିଚାର କରିବା ସମୟରେ
Miśal jamibā ଅଦାଲତରେ ପକ୍ଷ ଓ କର୍ମଚାରୀ ଆଦି ସମବେତ
(ମିସଲ୍ ବସିବା—ଅନ୍ୟରୂପ) ହେବା—The holding of
মিসলজমা मिस्ल जमना a full court.

ମିଶା—ଦେ. ବିଣ ( ସଂ. ମିଶ୍ର )—୧ । ମିଶ୍ରିତ—1. Mixed. [ ଉ
Miśā —କରୁଣା ମିଶା ଅନୁରାଗ, କଟାକ୍ଷ ବଚନ ସୁଭଗ ।
মিশা ଜଗନ୍ନାଥ. ଭାଗବତ ।] ୨ । ଅନ୍ୟ ପଦାର୍ଥ ସଙ୍ଗେ
मिलाहुआ ମିଶ୍ରିତ ହୋଇଥିବା—2. Adulterated. ୩ । ବର୍ଣ୍ଣସଙ୍କର—3. Hybrid or mixed caste. ବି—
মিশন ୧ । ମିଶ୍ରଣ—1. Mixing. ୨ । ( ଗଣିତ ) ଯୋଗ
जोड करଣ; ମିଶାଣ; ସଂକଳନ—2. ( arithmetic ) Addition. [ ଉ—ହର୍, ଗୁଣ୍, ଫେଡ଼୍, ମିଶା; ଆଉ ସବୁ ପାଠ ଫସରଫସା—ପ୍ରବଚନ ।] ପ୍ରାଦେ. (ସମ୍ବଲପୁର ଓ ଜୟପୁର) ଅ—ମଧ୍ୟ—Also. [ ଉ—ମାଧବ ମିଶା ଗେ଼ର ବାଗିରୁ ଲୁଟ୍‌ଲାନ=ମାଧବ ମଧ୍ୟ ଗେ଼ର ଘର ଲୁଟିଲାଣି ।]

ମିଶା(ଶେ)ଇବା—ଦେ. କ୍ରି ( ସଂ. ମିଶ୍ର ଧାତୁର ପ୍ରୟୋଜକ ରୂପ )—
Miśā(śe)ibā ୧ । ( ଏକାଧିକ ପଦାର୍ଥ ) ମିଶ୍ରିତ କରିବା—
মি(মে)শান 1. To mix up. ୨ । ଗୋଳାଇ ଦେବା—
मिलाना 2. To adulterate; to dissolve. ୩ । (ଗଣିତ) ରାଶିମାନଙ୍କୁ ଯୋଗ କରିବା—3. To add up some numbers. ୪ । ଏକ ବସ୍ତୁକୁ ଅନ୍ୟ ବସ୍ତୁ ସଙ୍ଗେ ସଂଯୋଗ କରିବା—4. To join a thing with another. ୫ । ମେଳାଇବା; ଦୁଇଟି ବନ୍ଧୁଙ୍କୁ ମିଳିତ କରାଇବା; ମେଳ କରାଇବା—5. To cause to meet or associate; to reconcile; to effect reconciliation between. ୬ । କୌଣସି ବ୍ୟକ୍ତିକୁ ଆପଣାର ଦଳରେ ବା ସଙ୍ଗରେ କାର୍ଯ୍ୟ କରିବାକୁ ଦେବା;

ଅପଣାର ଦଳଭୁକ୍ତ କରିବା—6. To cause or allow a person to work or mix in one's company; to admit a person as one's colleague.

ମିଶାଣ—ଦେ. ବି. (ସ. ମିଶ୍ରଣ)—୧ । (ଗଣିତ) ସଂଖ୍ୟାମାନଙ୍କୁ ଯୋଗ କରିବା—1. (arithmetic) Addition. ୨ । ମିଶ୍ରଣ—2. Mixing up. ୩ । ମିଳନ—3. Meeting together. ୪ । ଏକଜ କରିବା—4. Gathering up. ୫ । ଏକାଧିକ ବସ୍ତୁର ମିଶ୍ରଣରେ ଉତ୍ପନ୍ନ ବସ୍ତୁ—5. Mixture; a compound. ଦେ. ବିଣ—୧ । ଯେଉଁ ବ୍ୟକ୍ତି ଅନ୍ୟ ଲୋକଙ୍କ ସଙ୍ଗେ ମିଳି ମିଶି ଚଳେ; ମିଳାପୀ—1. Affable; sociable; disposed to mix with other people. ୨ । (ପରିବା) ଯାହା ଅନ୍ୟ ପରିବା ସଙ୍ଗେ ପାକ ହେଲେ ମିଶି-ଯାଏ—2. (vegetable) Which gets mixed up with other vegetables when cooked.

Mis̈āṇa; মেশান; जोड; (ଫେଡ଼ାଣ—ବିପରୀତ); মিশ(শু)ক; मिलापी; মেশাল; मिलापी

ମିଶାଣିଆ, ମିଶୁଆଣ(ଲ) } ଅନ୍ୟରୂପ [ ଦ୍ର—ସାରୁ, ଆଳୁ, କଖାରୁ ପ୍ରଭୃତିକୁ ଅଳ୍ପମାନ ସିଝାଇଲେ ଯୋଳ ହୋଇ ଯାଇ ଅନ୍ୟ ପରିବାମାନଙ୍କ ସଙ୍ଗେ ମିଶିଯାଏ

ମିଶାଣୀ, ମିଶାଣେଇ, ମିଶୁଆଣୀ(ଲୀ) } ସ୍ତ୍ରୀଲିଙ୍ଗ ବୋଲି ଏମାନଙ୍କୁ ମିଶାଣ ପରିବା କହନ୍ତି ।]

मिलाने वाला

ମିଶା ମିଶି—ଦେ. ବି. (ସ. ମିଶ୍ରଣ)—୧ । ମିଶ୍ରଣ—1. Mixing up. ୨ । ମିଳାମିଶା; ମିଳାମିଳି; ଐକ୍ୟ; ସୌହାର୍ଦ୍ଦ୍ୟ—2. Intimate friendship; unision. ୩ । ବିବାଦ ପରେ ସଖ୍ୟ ସ୍ଥାପନ—3. Reconciliation ୪ । ବହୁ ଦ୍ରବ୍ୟକୁ ମିଶାଇବା—4. Mixing together of many things. ୫ । ଭେଟାଭେଟି—5. Interview; union. ବିଣ—୧ । ବହୁ ଦ୍ରବ୍ୟର ମିଶ୍ରଣରେ ଉତ୍ପନ୍ନ; ମିଶ୍ରିତ—1. Mixed up; resulting from a mixture, [ଦ୍ର—ହାସ୍ୟ ରୋଦନ ମିଶାମିଶି, ଯେ ଭଳି ତାର ଦେଖେ କଣି । ଉପେନ୍ଦ୍ର ପ୍ରେମପଞ୍ଚାମୃତ ।) ୨ । ଭେଟା ଭେଟି—2. Meeting each other. (ଦ୍ର—ସେ କାଳେ ଗୁରୁ ଶିଷ୍ୟ ହୋଇ ମିଶାମିଶି, ହେଲେ ଶରମୁନ ଦେହରେ କଷାକଷି । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।)

Mis̈ā misi; মিশামিশি; मिलामिली; मिली हुइ; मिलित

ମିଶରୁ—ପ୍ରାଦେ. (ଗଞ୍ଜାମ) ଅ.—ଆଦୌ—At all.

Mis̈āru

ମିଶାରେ—ପ୍ରାଦେ. (ଜୟପୁର) ଅ—ମଧ୍ୟ—Also.

Mis̈āre

(ମିଃ—ଅନ୍ୟରୂପ)

ମିଶା ରୁ(ରୋ)ଟୀ—ଦେ. ବି. ( ସ. ମିଶ୍ରିତ+ରୋଟିକା )—୧ । ନାନା ଶସ୍ୟର ଚୂନାରେ ପ୍ରସ୍ତୁତ ରୁଟି—1. Flat bread-roll made from mixed flours. ୨ । ଗରମ ପାଉଁଶରେ ପୋତା ଯାଇ ସିଦ୍ଧ କରା ଯାଇଥିବା ଅଟାର ଗୋଲା; ବାଟୀ—3. Cake-balls or bread-balls dressed by putting them inside a heap of hot ashes.

Mis̈ā ru(ro)ṭi; মেশা[illegible]রুটি; मिस रोटी

ମିଶି(ଷି,ସି)—ସ.ବି (ମିଶ୍ ଧାତୁ=ମାପ କରିବା+କର୍ମ ଇ,ଈ)—୧ । ଶତପୁଷ୍ପା;ଶତୁପ—1. Dill seed; Pellcedanum Graveolaens. ୨ । ଜଟାମାଂସୀ—2. Indian spikenard. ୩ । ଶାଳମତ୍ସ୍ୟ—3. Fennel. ୪ । ମେଥି—4. Fengreek. ୫ । ରାତ୍ରି ( ହି ଷ )—5. Night. ଦେଶଜ. ବି ( ଫା. ମିସ୍=ତମ୍ବା; ମିସ୍ସୀ=ତାମ୍ରପଦନ; ଭୁଲ. ସ. ମସୀ )—୧ । ତୁତିଆ ଓ ହୀରାକସ ଯୋଗେ ପ୍ରସ୍ତୁତ ଦନ୍ତମଞ୍ଜନ ଗୁଣ୍ଡ—1. Powder of copper-sulphate and green vitriol mixed up and used as tooth-powder; a black powder used as denrifice, [ ଦ୍ର—ଏହାକୁ ଦାନ୍ତରେ ଘଷିଲେ ଦାନ୍ତପାଖ କୃଷ୍ଣବର୍ଣ୍ଣ ହୁଏ । ଏହା ମୁସଲମାନଙ୍କ ଅମଳରୁ ଭାରତୀୟ ନାରୀମାନେ ବ୍ୟବହାର କରିବାକୁ ଶିଖିଅଛନ୍ତି ।] (ଦ୍ର—ମିଶି ଘଷିଥିବା କସିମା ଯେସନ, କରୁଥାଏ ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ—ଗ୍ରାମ୍ୟଲାଥ. ଦରବାର । ] ୨ । (ଇଂ. ମିସ୍) ଅବିବାହିତା ବାଳିକା; ମିସ୍ (ଦେଖ )—2. Mis (See). ଦେ. ଅ—ଏବଂ—And. [ ଦ୍ର—ଭୁଜ କର୍ଣ୍ଣାବ ଚୁଙ୍ଗ-ଅନା, ମିଶି ନାଗେଶ୍ୱର ଦମ୍ଭଣା—ଉପେନ୍ଦ୍ର. ପ୍ରେମପଞ୍ଚାମୃତ । ]

Mis̈i(shi,si); মিসী; मिस्सी

ମିଶି ଆସିବା—ଦେ. କ୍ରି—ମାରିବାକୁ ବା ଆକ୍ରମଣ କରିବାକୁ କୌଣସି ବ୍ୟକ୍ତି ଉପରେ ପଡ଼ନ୍ତି ପରି ଅଗ୍ରସର ହେବା; ମାରିବାକୁ ଉଦ୍ୟତ ହେବା—To set upon or charge a person ( to attack him ).

Mis̈i āsibā; উদ্যত হওয়া; चढ़आना

ମିଶିବା—ଦେ. କ୍ରି ( ସ. ମିଶ୍ର ଧାତୁ )—୧ । ଏକଜ ମିଶ୍ରିତ ହେବା; ମିଳିତ ହେବା; ଏକଜ ହେବା; ଦଳବଦ୍ଧ ହେବା—1. To be mixed up. ୨ । (ଏକାଧିକ ପଦାର୍ଥ) ଏକଜ ହେବା; ସଂଯୁକ୍ତ ହେବା—2. To be joined together. ୩ । ସମ୍ମିଳିତ ହେବା; ଭେଟିବା—3. To meet with; to join. [ ଦ୍ର—ମିଶେ ନ ସେ ଅଲୋକରେ, ଉତ୍ତମ ସୀମା ଅଙ୍କରେ, ଯେଣ ବସେ ପଲଙ୍କରେ, ନ ହୁମକରେ—ଉପେ. ପ୍ରେମସୁଧାନିଧି । ] ୪ । ଆକ୍ରମଣ କରିବାକୁ ବା ମାରିବାକୁ ଉଦ୍ୟତ ହୋଇ କୌଣସି ବ୍ୟକ୍ତି ନିକଟକୁ ଲାଗି ଆସିବା ବା ଦଉଡ଼ି ଆସିବା—4. To rush to a person to attack him. ( ଯଥା—ମାରି ମିଶିବା ଅର୍ଥାତ୍ ମାରିବାକୁ କୌଣସି ବ୍ୟକ୍ତି ନିକଟକୁ ଉପୁଜି ଆସିବା । ) [ ଦ୍ର—କହେ ସାମୁକ ଶରତ୍ ପ୍ରସର ବହନର, ନରସିଂହ ଉପରେ ମିଶି—ଉପେ. ବୈଦେହୀଶବିଳାସ । ] ୫ ।

Mis̈ibā; মি(মে)শা; मिलना; चढ़आना

ଘନିଷ୍ଠଭାବରେ ବନ୍ଧୁତା ସୂତ୍ରରେ ଅବଦ୍ଧ ହେବା—5. To be on very intimate terms with a person. ୬ । (ଏକାଧିକ ବସ୍ତୁ) ଘନଭାବରେ ଏକତ୍ର ସଶ୍ଳିଷ୍ଟ ହେବା—6. To be mixed up together. ୭ । ଲୀନ ହେବା—7. To be absorbed; to be lost in; to be swallowed up in. ୮ । ( ଗଣିତ ) ( ଏକାଧିକ ସଂଖ୍ୟା ) ଏକତ୍ର ଯୋଗ କରାଯିବା ବା ଯୁକ୍ତ ହେବା—8. ( mathematics ) To be added up (said of two numbers). ୯ । କୌଣସି ଘନ ପଦାର୍ଥ କୌଣସି ତରଳ ପଦାର୍ଥରେ ମିଳାଇ ଯିବା—9. To be dissolved in a liquid ( said of a solid thing ). ୧୦ । କୌଣସି ବ୍ୟକ୍ତି ସଙ୍ଗେ ମିଳାମିଶା କରିବା—10, To mix freely with a person, ୧୧ । ( କଳି କରିଥିବା ଦୁଇ ବ୍ୟକ୍ତି ) ମିଳିଯିବା—11. To be reconciled. ୧୨ । ଅଦୃଶ୍ୟ ହେବା—12. To disappear. ୧୩ । କୌଣସି ବ୍ୟକ୍ତିଙ୍କ ନିକଟରେ ଯାଇ ପହଞ୍ଚିବା—13. To reach or overtake a person. ( ଉ—ଏକା କରିଯେ ଖାଉମଣି, ଗୋଡ଼ାଇ ମିଶନ୍ତି ସଇନ ଭୂପତି. ପ୍ରେମପଞ୍ଚାମୃତ । ) ୧୪ । ସାଙ୍ଗ ହେବା; କୌଣସି ବ୍ୟକ୍ତିର ସହଚର ହେବା—14, To accompany. ( ଉ—ବୋଲନ୍ତିକାନ୍ତୁ ଧନେ ଅସ, ଯିବା ମିଶି ଥରେ—କବିସୂର୍ଯ୍ୟ. ସଙ୍ଗୀତ । ) ୧୫ । ସମାନ ହେବା—15. To become equal to. ( ଉ—ବିଶ୍ୱାମିତ୍ର ରାଜାଙ୍କ ପୂର୍ବରେ ସେଠାରେ, ତପ କରି ମିଶିଲେ ଦ୍ୱିଜଙ୍କ ସଙ୍ଗରେ—କୃଷ୍ଣସିଂହ. ମହାଭାରତ. ବନ । ) ୧୬ । ପହଞ୍ଚିବା; ଯାଇ ମିଳିବା—16. To reach. ( ଉ—କୈବଲ୍ୟ ଜ୍ଞାନ ଯେ ସନ୍ତୋଷେ, ଅନ୍ତେ ପରମପଦେ ମିଶେ—ଜଗନ୍ନାଥ ଭାଗବତ । )

ମିଶିବାବା—ବୈଦେ.ବି.ସ୍ତ୍ରୀ(ଇଂ.ମିସ୍)—(ସାହେବମାନଙ୍କ) ଅବିବାହିତା
Misibābā ବାଳିକା; କୁମାରୀ—Miss; a maiden.
মিসীবাবা मिसीबाबा

ମିଶିର—ଗ୍ରା. ବି ( ସଂ. ମିଶ୍ର )—ବ୍ରାହ୍ମଣଙ୍କର ଉପାଧି ବିଶେଷ ( ମିଶ୍ର
Miśira মিশির मिशिर ଦେଖ )—Miśra ( See )
(ମିଶିରୁଣୀ, ମିଶିରଆଣୀ—ସ୍ତ୍ରୀ)

ମିଶିରି—ଦେ. ବି—ମିଶ୍ରି ( ଦେଖ )—Miśri ( See )
Miśiri মিছরি मिश्री

ମିଶୁଆ—ଦେ. ବିଣ. ପୁଂ ( ସଂ. ମିଶ୍ର ଧାତୁ )—ଯେଉଁ ବ୍ୟକ୍ତି ଅନ୍ୟ
Miśuā ବ୍ୟକ୍ତିଙ୍କ ସଙ୍ଗେ ମିଳାମିଶା କରିବାକୁ ସ୍ୱଚ୍ଛ ପାଏ—
মেশাল, মিশুক Sociable; affable; disposed to mix
मिलापी with other people.
(ମିଶୁଆଣ, ମିଶୁଆଣିଆ, ମିଶୁଘଲ, ମିଶୁଆଳିଆ—ଅନ୍ୟରୂପ)
(ମିଶୋଇ, ମିଶୁଆଣୀ, ମିଶୁଆଳ, ମିଶୁଆଳୀ—ସ୍ତ୍ରୀ)

ମିଶେ—ପ୍ରାଦେ ( ଗଡ଼ଜାତ ) ଅ—ମଧ୍ୟ—Also. [ ଉ—ସେ
Mise ମିଶେ ମୋ ସାଥିରେ ଯିବ । ]

ମିଶେସ୍—ବୈଦେ. ବି. ସ୍ତ୍ରୀ ( ଇ. ମିଷ୍ଟ୍ରେସର ସଂକ୍ଷିପ୍ତ ଉଚ୍ଚାରଣ
Miśes ମିସେସ୍ )—୧ । ପାଶ୍ଚାତ୍ୟ ବିବାହିତା ସ୍ତ୍ରୀମାନଙ୍କ
মিসেস मिसेस ନାମ ପୂର୍ବେ ଲାଗିବା ଉପାଧି—1. Mrs (an abbreviation of Mistress, prefixed to the names of European married ladies. ୨ । ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତା ବିବାହିତା ସ୍ତ୍ରୀ ଓ ପାଶ୍ଚାତ୍ୟସଭ୍ୟତା ଲୋକପ୍ରାପ୍ତ ପୁରୁଷଙ୍କ ସ୍ତ୍ରୀଙ୍କ ନାମ ପୂର୍ବେ ଲାଗିବା ଉପାଧି—2 Mrs (an abbreviation prefixed to the names of married Indian ladies who have got western education or are the wives of English-educated gentlemen.

ମିଶେଶ୍—ବୈଦେ. ବି ( ଇଂ. ମିସେସ୍; ମିଷ୍ଟ୍ରେସ୍ )—ପାଶ୍ଚାତ୍ୟ ଶିକ୍ଷରେ
Miśeś ଶିକ୍ଷିତା ସ୍ତ୍ରୀମାନଙ୍କ ନାମ ପୂର୍ବେ ଲାଗିବା ଉପାଧି—
মিসেস मिसेस(ज) Mrs.

ମିଶ୍ର (ଧାତୁ)—ସଂ—ଏକାଧିକ ବସ୍ତୁକୁ ମିଶାଇବା—
Miśra(root) To mix up two or more things.

ମିଶ୍ର—ସଂ. ବିଣ ( ମିଶ୍ର ଧାତୁ + କର୍ମ. ଅ )—୧ । ଏକତ୍ରୀଭୂତ; ମିଶ୍ରିତ
Miśra —1. Mixed up; jumbled up; blended
[ମିଶ୍ରତା(ତ୍ୱ)—ବି] together; mingled; combined; compounded. ୨ । ସଂଯୁକ୍ତ—2, Joined together; united; conjoined; connected; associated. ୩ । ଏକାଧିକ ବସ୍ତୁର ମିଶ୍ରଣରେ ଉତ୍ପନ୍ନ—3. Adulterated; produced by mixing up more than one thing. ୪ । ଦୋକୋଆସଲା ବର୍ଣ୍ଣସଙ୍କର; ଦୋମିଶା—4. Hybrid; cross-bred ୫ । ( ସମାସରେ ଅନ୍ୟ ପଦ ପରେ ଯୁକ୍ତ) ଶ୍ରେଷ୍ଠ; ପୂଜ୍ୟ; ମାନ୍ୟ—5. Honourable; chief; honoured; adorable ( when affixed to other words such as ଆର୍ଯ୍ୟ ମିଶ୍ର; ମହା ମିଶ୍ର etc ). ୬ । (ଗଣିତ) ଭିନ୍ନ ଶ୍ରେଣୀର ବସ୍ତୁର ମିଶ୍ରଣ ଜନିତ ( ଯୋଗ, ବିୟୋଗ, ହରଣ, ଗୁଣନ )—6. ( Mathematics ) Compound ( addition, subtraction, multiplication and division ). ୭ । ଅଡୁଆ ଛଡୁଆ ହୋଇଥିବା; ଛନ୍ଦାଛନ୍ଦି—7. Tangled; intertwined ( Apte ). ୮ । ( ସମାସରେ ପଦ ଶେଷରେ ) ଅମୁକ ବସ୍ତୁରେ ମିଶ୍ରିତ; ଯହିଁରେ ଅମୁକ ବସ୍ତୁ ବେଶି ପରିମାଣରେ ମିଶାଯାଇ ଥାଏ—8. ( in compound words ) Having a mixture of; consisting for the most part of (Apte ). ୯ । ( + କର୍ତ୍ତୃ. ଅ ) ମିଶ୍ରଣକାରୀ—9. Mixing; adulterating(Apte.
ବି—୧ । ଏକାଧିକ ଉପାଦାନର ମିଶ୍ରଣରେ ଉତ୍ପନ୍ନ ପଦାର୍ଥ;

(ମିଶ୍ରାଣୀ—ସ୍ତ୍ରୀ) ମିଶ୍ରିତ ଦ୍ରବ୍ୟ—1. A mixture; a compound. ୨ । ବୈଦିକ ବ୍ରାହ୍ମଣଙ୍କ ଉପାଧିବିଶେଷ—2. A family-title of Brāhmaṇas. ୩ । ଗଜଜାତି ବିଶେଷ—3. Name of a species of elephants. [ ଦ୍ର—ହସ୍ତୀଙ୍କ ଗଜଶାସ୍ତ୍ରାନୁସାରେ ଗଜ ଚାରି ଜାତିର । ଯଥା—ଭଦ୍ର; ମନ୍ଦ; ମୃଗ; ମିଶ୍ର । ] ୪ । ମିଶର ଦେଶ; ଭଣ୍ଟେକ୍ଳ ଆଫ୍ରିକାର ଉତ୍ତର ପୂର୍ବାଂଶସ୍ଥ ଦେଶ—4. Egypt. ୫ । ସନ୍ନିପାତ ( ହ୍ନ. ଶ )—5. Collapse; a morbid state of the 3 humours of the system. ୬ । ରକ୍ତ; ଲହୁ ( ହ୍ନ ଶ )—6. Blood. ୭ । ମୂଳା ( ହ୍ନ. ଶ )—7. Radish. ୮ । ( ବଡ଼ିଶ୍ଟ ବ୍ୟକ୍ତିଙ୍କ ନାମ ପରେ ଯୁକ୍ତ ) ଶ୍ରେଷ୍ଠ ବ୍ୟକ୍ତି—8. ( usually affixed to the names of great men ) A respectable or worthy person (Apte).

ମିଶ୍ରକ—ସ. ବି ( ମିଶ୍ର ଧାତୁ+ଅଧିକରଣ କ )—୧ । ( ଯେଉଁଠାରେ Miśraka ଦେବଗଣ ମିଳିତ ହୁଅନ୍ତି ) ସ୍ୱର୍ଗର ଉଦ୍ୟାନ; ଦେବୋଦ୍ୟାନ; ଦେବତାଙ୍କର ଉପବନ—1. A garden of paradise; a garden of the gods. ୨ । ସଙ୍ଗୀତ ବିଶେଷ—2. Name of a kind of song. ୩ । ( +କର୍ମ ଅକ ) ଊଷର ଲବଣ—3. Salt prepared from saline earth. ୪ । ଏକ ପ୍ରକାର ରଙ୍ଗ (ହ୍ନ.ଶ)—4. A kind of tin. ୫ ।(ମିଶ୍ର ଧାତୁ+କର୍ତ୍ତୃ. ଅକ)—ମିଶ୍ରଣକାରୀ ବ୍ୟକ୍ତି—5 Compounder; one who mixes up things. ୬ । ମଧ୍ୟମରୂପେ ପାରଦର୍ଶୀ ଗାୟକ—6. A medium singer. ୭ । ପଣ୍ୟ ଦ୍ରବ୍ୟରେ ଯେ ଅନ୍ୟ ବସ୍ତୁ ମିଶାଏ—7. An adulterator of mercantile goods (Apte). ସ. ବିଣ. ପୁଂ—୧ । (ମିଶ୍ର ଧାତୁ (ମିଶ୍ରିକା—ସ୍ତ୍ରୀ) +କର୍ତ୍ତୃ. ଅକ )—ମିଶ୍ରଣକାରୀ—1. Mixing; adulterating. ୨ । (+କର୍ମ. ଅକ)—ମିଶ୍ରିତ—2. Mixed (Apte). ୩ । ବହୁ ବସ୍ତୁର ମିଶ୍ରଣରେ ଉତ୍ପନ୍ନ; ବାଛେ; ମିଶା ମିଶି—3. Miscellaneous (Apte); mixed.

ମିଶ୍ରକା ବନ—ସ. ବି—ସ୍ୱର୍ଗର ଉଦ୍ୟାନ; ଇନ୍ଦ୍ରଙ୍କ ଉପବନ;ନନ୍ଦନକାନନ-Miśrakā bana The mythological pleasure-garden of Indra.

ମିଶ୍ର କେଶୀ—ସ. ବି. ସ୍ତ୍ରୀ ନାମ—ଜଣେ ଅପ୍ସରାର ନାମ—Name of Miśra kesī one of the heavenly nymphs in Hindu mythology. [ଦ—ଏ ମେନକାର ସଖୀ ଥିଲେ—ହ୍ନ. ଶ]

ମିଶ୍ର ଗୁଣନ—ସ. ବି—(ଗଣିତ) ମିଶ୍ରରାଶିର ଗୁଣନ—(Mathema-Miśra guṇana tics) A compound multiplication. [ ଦ୍ର—ଏହିପରି ମିଶ୍ର ଯୋଗ; ମିଶ୍ର ବିୟୋଗ; ମିଶ୍ର ହରଣ; ମିଶ୍ର ଭାଗହାର; ମିଶ୍ର ଭଗ୍ନାଂଶ; ମିଶ୍ର ଗୁଣନ; ମିଶ୍ର ସଙ୍କଳନ; ମିଶ୍ରବ୍ୟବକଳନ ଆଦି ଶବ୍ଦ ହୁଏ ।]

ମିଶ୍ରଜ—ସ. ବିଣ. ପୁଂ—(ମିଶ୍ର+ଜନ ଧାତୁ+କର୍ତ୍ତୃ. ଅ)—ଦୁଇ ଭିନ୍ନ Miśraja ଜାତିର ମିଶ୍ରଣରୁ ଉତ୍ପନ୍ନ—Produced from the (ମିଶ୍ରଜା, ମିଶ୍ରଜାତା—ସ୍ତ୍ରୀ) mixture of two castes or (ମିଶ୍ରଜାତ—ଅନ୍ୟରୂପ) species. ସ. ବି. ପୁଂ—୧ । ମିଶ୍ରଜାତି (ଦେଖ)—1. Miśra jāti (See) ୨ । ଖଚର (ହ୍ନ. ଶ.), ଅଶ୍ୱତର—2 Mule.

ମିଶ୍ର ଜାତି—ସ ବି. (କର୍ମଧା, ମିଶ୍ର+ଜାତି) —ବର୍ଣ୍ଣସଙ୍କର; ଦୋମିଶା Miśra jāti ଜାତି—Hybrid; half caste; cross-(ମିଶ୍ର ବର୍ଣ୍ଣ—ଅନ୍ୟରୂପ) breed

ମିଶ୍ରଣ—ସ. ବି. (ମିଶ୍ର ଧାତୁ+ଭାବ. ଅନ)—୧ । ଏକାଧିକ ବସ୍ତୁକୁ Miśraṇa ମିଶାଇବା; ଏକୀକରଣ—1. Act of mixing up; uniting many things; compounding; adulteration. ୨ । (ଗଣିତ) ମିଶାଣ; ଯୋଗ; ଏକାଧିକ ସଂଖ୍ୟାର ଯୋଗକରଣ—2. ( Arithmetic ). Addition. ୩ ।ମିଳନ;ସଂଯୋଗ—3.Conjunction; meeting together; conglomeration. ୪ । ଏକାଧିକ ବସ୍ତୁକୁ ମିଶାଇବା ଦ୍ୱାରା ପ୍ରସ୍ତୁତ ପଦାର୍ଥ—4. Mixture; compound; admixture. ୫ । ବହୁ ପଦାର୍ଥର ଏକତା ସମ୍ପାଦନ; ଏକୀକରଣ—5. Unification.

ମିଶ୍ରଣୀୟ—ସ. ବିଣ. (ମିଶ୍ର ଧାତୁ+କର୍ମ. ଅନୀୟ)—ମିଶାଯିବାର Miśraṇīya ଯୋଗ୍ୟ—Fit to be mixed together or added up.

ମିଶ୍ର ଧାତୁ—ସ. ବି (କର୍ମଧା)—ଏକାଧିକ ମୌଳିକ ଧାତୁର ମିଶ୍ରଣରେ Miśra dhātu ଉତ୍ପନ୍ନ ଧାତୁ—A compound metal.

ମିଶ୍ର ଧାନ୍ୟ—ସ. ବି. (କର୍ମଧା)—ବାଉମିଶା ଧାନ; ବହୁ ଜାତିର Miśra dhānya ମିଶ୍ରିତ ଧାନ—Paddy consisting of many species mixed together.

ମିଶ୍ର ପଦାର୍ଥ—ସ. ବି—ବହୁତ ମୌଳିକ ପଦାର୍ଥଦ୍ୱାରା ଗଠିତ ପଦାର୍ଥ—Miśra padārtha A compound made up of many elements.

ମିଶ୍ର ପୁଷ୍ପା—ସ. ବି—ମେଥିକା; ମେଥି—Miśra pushpā Trigonella Fenugræcum; fenugreek.

ମିଶ୍ର ବର୍ଣ୍ଣ—ସ.ବି—୧ । ( ବହୁବ୍ରୀହି ) କୃଷ୍ଣାଗୁରୁ—1. A sort of Miśra barṇna aloes-wood. ୨ । (କର୍ମଧା) ମିଶ୍ରଜାତି (ଦେଖ) 2.Miśra jāti (See). ୩ । (କର୍ମଧା) ଏକାଧିକ ମିଶ୍ରିତ ବର୍ଣ୍ଣ—3. Mixed colour. ୪ । ଆଖୁ ( ହ୍ନ. ଶ. )—4. Sugarcane. ବିଣ—ନାନା ବର୍ଣ୍ଣଯୁକ୍ତ—Of many colours.

**ମିଶ୍ରବର୍ଣ୍ଣ ଫଳ**—ସ. ବ—(ବହୁବ୍ରୀହି) (ମିଶ୍ର ବର୍ଣ୍ଣ+ଫଳ+ଆ)—
Miśrabarṇṇa phala ବାର୍ତ୍ତାକୁ; ବାଇଗଣ (ଗଛ ଓ ଫଳ)—
(ମିଶ୍ରବନ—ଅନ୍ୟରୂପ) —Brinjal (plant and fruit); egg-plant; Solanum Melongena.

**ମିଶ୍ର ବ୍ୟବହାର**—ସ. ବ—(ମ. ପ. ଲୋ)—(ଗଣିତ) ମିଶ୍ର ସଂଖ୍ୟା ସମ୍ବନ୍ଧୀୟ
Miśra byabahāra ଗାଣିତିକ ବ୍ୟବହାର—(Mathematics) The processes dealing with compound figures.

**ମିଶ୍ର ଶବ୍ଦ**—ସଂ. ବ—(ବହୁବ୍ରୀହି) ଖଚର; ଅଶ୍ୱତର (ହି. ଶ)—
Miśra śabda Mule.

**ମିଶ୍ରି**—ଦେଶଜ.ବ (ଆ. ମିସ୍ରୀ; ସ. ମିଶ୍ର=ମିଶର ଦେଶ; ପ୍ରଥମେ ମିଶର
Miśri ବାସୀଙ୍କଠାରୁ ଦେଖି ଭାରତରେ ଏହା ପ୍ରସ୍ତୁତ
ମିଛରୀ ହୋଇଥିବାରୁ; ସ. ନାମ ସିତୋପଲା )—ବଡ଼ ବଡ଼ ଦାନା
**मिश्री, मिसरी** ବା ଗୁଥରେ ଘନୀଭୂତ ହୋଇ ବା ସୂତାବନ୍ଧା ଗୁଡ଼—
Sugar candy; crystallised sugar. [ବି—
କନ୍ଦକୁ ବା ଚିନିକୁ ଦୁଇଥର ସଫା କରି ତହିଁର ସିରା (ରସ)କୁ
ମାଟିଆରେ ବା ଥାଳିଆରେ ଢାଳି କେତେକାଳ ରଖିଲେ
ତଳରେ ଥିବା ଅଧିକା କନ ଦାନା ବା ବଡ଼ଗୁଆ ବାନ୍ଧି ପାତ୍ରର
ଗାତ୍ରରେ ବା ଦୃଢ଼ ପାତ୍ରର ଗର୍ଭରେ ଲଟକା ହୋଇଥିବା
ସୂତାର ଦେହରେ ବସିଯାଏ । ଏହାକୁ ମିଶ୍ରି ବୋଲାଯାଏ ।
ବୈଦ୍ୟଶାସ୍ତ୍ର ମତରେ ଏହା ସ୍ନିଗ୍ଧ, ଧାତୁବର୍ଦ୍ଧକ,
ମୁଖପ୍ରିୟ, ବଳକାରକ, କୋଷ୍ଠ ଶୁଦ୍ଧିକାରକ; ଏହା ବାୟୁ
ଓ ରକ୍ତପିତ୍ତନାଶକ । ପ୍ରସ୍ରାବଜ୍ୱାଳାରେ ଓ ଊର୍ଦ୍ଧ୍ୱଶ୍ଳେଷ୍ମାରେ
ମିଶ୍ରିର ପଣା ଉପକାରୀ ।]

**ମିଶ୍ରିତ**—ସ. ବଣ ( ମିଶ୍ର ଧାତୁ+କର୍ମ. ତ )—୧ । ମିଳିତ; ମିଶା
Miśrita ଯାଇଥିବା—1. Mixed up; compounded.
୨ । ଏକତ୍ରୀଭୂତ—2. Jumbled up; gathered up. ୩ । ଯୁକ୍ତ—3. Joined with. ୪ । (ବହୁବ୍ରୀହି)
ଯୋଗ କରାଯାଇଥିବା—4. Added up.

**ମିଶ୍ରିତ ଭାଷା**—ସ. ବ ( କର୍ମଧା )—ବହୁଳ ଭାଷାର ମିଶ୍ରଣରୁ ଉତ୍ପନ୍ନ
Miśrita bhāshā ଭାଷା—Mixed language; jargon.
( ବର୍ଣ୍ଣଚ୍ ଭାଷା—ବିପରୀତ )

**ମିଶ୍ରିତା**—ସ. ବ—କୃତ୍ତିକା ଓ ବିଶାଖା ନକ୍ଷତ୍ରଯୁକ୍ତ ସଂକ୍ରାନ୍ତିବିଶେଷ—
Miśritā Name of a day on which the sun passes from one zodiac sign to another, when the asterisms of Kruttikā and Biśākhā are in the latter sign. ସଂ. ବଣ. ସ୍ତ୍ରୀ—ମିଶ୍ରିତର ସ୍ତ୍ରୀଲିଙ୍ଗ—Feminine of Miśrita.

**ମିଶ୍ରି ସାର**—ଦେ.ବ—ମିଶ୍ରିରୁ ପ୍ରସ୍ତୁତ ସିରା—Syrup made from
Miśri sāra sugar candy. [ଦ୍ର—ଗୁଡ଼ କରାତ ମିଶ୍ରିସାର,ସେ
ରସ **मिश्रीपाग** ଚନ୍ଦ୍ର କରଇ ବାହାର—ଭୂପତି. ପ୍ରେମପଞ୍ଚାମୃତ । ]

**ମିଶ୍ରୀ**—ସଂ. ବଣ. ପୁଂ ( ମିଶ୍ର ଧାତୁ+କର୍ତ୍ତୃ. ଇନ୍ )—ମିଶ୍ରଣକାରୀ—
Miśrī Mixing up. ସଂ. ବ. ପୁଂ—ନାଗବିଶେଷ—Name
(ମିଶ୍ରିଣୀ—ସ୍ତ୍ରୀ) of a mythological serpent.

**ମିଶ୍ରୀକରଣ**—ସଂ. ବ ( ମିଶ୍ର+ଅଭୂତ ତଦ୍ଭାବେ ଚ୍ୱି+କରଣ )—
Miśrīkaraṇa ଏକାଧିକ ବସ୍ତୁକୁ ମିଳାଇବା—Mixing up of many things.
( ମିଶ୍ରୀକୃତ—ବଣ )

**ମିଶ୍ରୀତୁତ୍ଥ**—ସଂ. ବ—ଅଞ୍ଜନ ( ହି. ଶ )—
Miśrītuttha Antimony.

**ମିଶ୍ରେୟା**—ସଂ. ବ ( ମିଶ୍ର+ଇ ଧାତୁ=ଗମନ କରିବା+ଅ )—
Miśreyā ୧। ମଧୁରିକା; ପାନମଧୁରୀ—1. Aniseed; Pimpinella Anisum. ୨ । ଶତପୁଷ୍ପା; ଶଲୁପ—2. Dill seed; Anethum Harmorium Rox. ୩ । ଏକପ୍ରକାର ଶାକ ( ହି. ଶ )—3. A kind of pot herb.

**ମିଶ୍ରୋଦନ**—ସଂ. ବ ( ମିଶ୍ର+ଓଦନ )—ଖେଚୁଡ଼ି ( ହି. ଶ )—
Miśrodana Rice and pulses boiled together.

**ମିଷ୍**—ସଂ. ( ଧାତୁ )—୧ । ସେଚନ କରିବା; ଛିଞ୍ଚିବା—1. To
Mish ( root ) sprinkle. ୨ । ତୁଷ୍ଟ ହେବା—2. To be contented. ୩ । ବିବାଦ କରିବା—3. To contend
୪ । ପ୍ରତିଯୋଗିତା କରିବା—4. To emulate. ୫ । ଆଖି ମେଲା କରିବା—5. To open the eyes; to wink ( Apte ). ୬ । ବଲ ବଲ କରି ଚାହିଁ ରହିବା—6. To look at; to look helplessly ( Apte ). ୭ । ଓଦା କରିବା; ଭିଜାଇବା—7. To wet; to moisten ( Apte ).

**ମିଷ**—ସଂ. ବ (ମିଷ୍ ଧାତୁ+ଭାବ. ଅ)—୧ । ପ୍ରତିଯୋଗିତା; ସ୍ପର୍ଦ୍ଧା—
Misha 1. Emulation; rivalry. ୨ । ଛଳ; କପଟତା—
2. Pretext; trick; fraud ( Apte ). [ ଉ—
ଯଶୋଦାଙ୍କର ମନ,-ମୀନକୁ ଏ ବଚନ,-ମିଷ ବଡ଼ିଶ ଲାଗି
ଛିଡ଼ିଲାହେଁ—କବିସୂର୍ଯ୍ୟ. ସଙ୍ଗୀତ । ] ୩। ବାହ୍ୟ ଚେହେରା;
କପଟ ବେଶ—3. False or outward appearance; disguise ( Apte ). ୪ । ଦେଖିବା; ବଲ ବଲ କରି ଚାହିଁବା—4. Staring; looking helplessly. ୫ । ସେଚନ—5. Sprinkling.
୬ । ଈର୍ଷା ( ପ୍ରକୃତିବାଦ )—6. Envy; spite; malice.

**ମିଷି**—ସ. ବ ( ମିଷ୍ ଧାତୁ+କରଣେ. ଇ )—୧ । ଜଟାମାଂସୀ )—
Mishi 1. Spikenard; Varbiana Jatamansi.
(ମିଷିକା—ଅନ୍ୟରୂପ) ୨ । ଶତପୁଷ୍ପା; ସଲୁପ ( ହି. ଶ )—2. Dill seed. ୩ । ଉଶୀର; ବେଣାମୂଳ (ହି. ଶ) —3. The root of Beṇā grass.

**ମିଷ୍ଟ**—ସ. ବଣ ( ମିଷ୍ ଧାତୁ=ସେଚନ କରିବା+କର୍ମ. ତ )—୧ ।
Mishṭa ମଧୁର; ମିଠା; ସୁସ୍ୱାଦ—1. Sweet; sugary.
୨ । ମନୋମୋହକର—2. Charming; agreeable; pleasant. ୩ । ସିକ୍ତ—3. Sprinkled; moistened. ୪ । ସମୟୋଚିତ—4. Timely. ୫ । ଘଷା ଯାଇଥିବା; ସେକା ଯାଇଥିବା, ଭଜା ଯାଇଥିବା ବା ସିଝା

ଯାଇଥିବା ( ଭୂ. କ )—5. Cooked; dressed; toasted, fried or boiled. ବି—୧ । ମିଷ୍ଟାନ୍ନ; ମିଷ୍ଟଖାଦ୍ୟ; ମିଠାଇ—1. Sweetmeat. ୨ । ମଧୁର ରସ—2. Sweet taste. ୩ । ମଧୁରତା—3. Sweetness.

ମିଷ୍ଟ କଥା—ସଂ. ବି—୧ । ମଧୁର ବାକ୍ୟ—1. Sweet words. Mishta kathā ୨ । ସଦୟ ଭାଷ—2. Kind words. (ମିଷ୍ଟବଚନ, ମିଷ୍ଟବାକ୍ୟ, ମିଷ୍ଟବାଣୀ, ମିଷ୍ଟଭାଷା—ଅନ୍ୟରୂପ)

ମିଷ୍ଟତା(ତ୍ୱ)—ସଂ. ବି ( ମିଷ୍ଟ + ଭାବ.ତା, ତ୍ୱ )—ମଧୁରତା—Sweetness; agreeableness. Mishtatā(twa)

ମିଷ୍ଟ ଦ୍ରବ୍ୟ—ସଂ. ବି ( କର୍ମ ଧା; ମିଷ୍ଟ + ଦ୍ରବ୍ୟ )—ସ୍ୱାଦୁ ପଦାର୍ଥ—Sweet thing. Mishta drabya

ମିଷ୍ଟ ନିମ୍ବ—ସଂ. ବି—ମିଠା ନିମ୍ବ ( ଭୂ. କ ) ଯେଉଁ ନିମ୍ବ ପତ୍ରର Mishta nimba ତିକ୍ତତାରେ କିଛି ମିଷ୍ଟତା ମିଶିଥାଏ—A species of sweetish Nimba

ମିଷ୍ଟ ନିମ୍ବୁ—ସଂ. ବି—ମିଠା ଲେମ୍ବୁ; ମିଠା କମଳା—Sweet orange. Mishta nimbu

ମିଷ୍ଟ ପାକ—ସଂ. ବି ( କର୍ମଧା; ମିଷ୍ଟ + ପାକ )—ଶର୍କରାରସପକ୍ୱ ଫଳାଦି; ମୋରବ୍ବା—Preserved fruit. Mishta pāka

ମିଷ୍ଟ ପାଚକ—ସଂ. ବି. ପୁଂ—ଯେଉଁ ବ୍ୟକ୍ତି ସୁସ୍ୱାଦ ଖାଦ୍ୟ ରାନ୍ଧି ପାରେ Mishta pāchaka ( ଭୂ. କ )—A cook who cooks savoury dishes. (ମିଷ୍ଟ ପାଚିକା—ସ୍ତ୍ରୀ)

ମିଷ୍ଟ ପାଟ—ସଂ. ବି—ଶାକ ବିଶେଷ [ ଇଜିପ୍ଟ ଓ ସିରିଆବାସୀମାନେ Mishta pāta ଏହା ଅତି ଆଗ୍ରହରେ ଭକ୍ଷଣ କରନ୍ତି—A variety of Chorchorus Olitorius or Jew's mallow; an esculent pot herb.

ମିଷ୍ଟ ବକ୍ତା—ସଂ. ବିଣ. ପୁଂ ( ମିଷ୍ଟ ବକ୍ତୃ; ୧ମା. ୧ବ )—ମଧୁର ଭାଷୀ Mishta baktā ବ୍ୟବହାର କାରୀ—Speaking sweetly, (ମିଷ୍ଟ ଭାଷୀ—ଅନ୍ୟରୂପ) fairspoken; honey-tongued; (ମିଷ୍ଟବକ୍ତ୍ରୀ, ମିଷ୍ଟ ଭାଷିଣୀ—ସ୍ତ୍ରୀ) speaking kindy.

ମିଷ୍ଟ(ଷ୍ଟା)ର—ବୈଦେ. ବି ( ଇଂ ମିଷ୍ଟର )—ସାହେବ ଓ ପାଶ୍ଚାତ୍ୟ Mishta(shtā)r ସଭ୍ୟତା ପ୍ରାପ୍ତ ଭାରତୀୟ ଭଦ୍ରଲୋକଙ୍କ ବଂଶୋପାଧି ମିষ্টার पूर्ବରେ ବା ନାମ ପୂର୍ବରେ ଲାଗିବା ସମ୍ମାନସୂଚକ ଉପାଧି—मिष्टर [ଦ୍ର—ଆମଭାଷାରେ ଏ ଅର୍ଥରେ ବାବୁ ବା ଶ୍ରୀ ଲାଗେ । ] Mister; Mr ( prefixed to the name or family title of a gentleman ). [ ଦ୍ର—ଏହି ଶବ୍ଦକୁ ପାଶ୍ଚାତ୍ୟ ସଭ୍ୟତା ପ୍ରାପ୍ତ ଭାରତୀୟ ବ୍ୟକ୍ତିମାନେ ମଧ୍ୟ ବ୍ୟବହାର କରି ଥାଆନ୍ତି । ଏହାର ସାଙ୍କେତିକ "ମିଃ" ମଧ୍ୟ ବ୍ୟବହୃତ ହୁଏ । ]

ମିଷ୍ଟ ସ୍ୱର—ସଂ. ବି—କର୍ଣ୍ଣମଧୁର ସ୍ୱର—Sweet tone. Mishta swara

ମିଷ୍ଟାନ୍ନ—ସଂ.ବି (ମିଷ୍ଟ + ଅନ୍ନ=ଭକ୍ଷଣୀୟ ଦ୍ରବ୍ୟ)—୧ । ମିଷ୍ଟ ଖାଦ୍ୟ—Mishtānna 1. Sweet food. ୨ । ମିଠାଇ—2. Sweetmeat; sweets; confectionary.

ମିଷ୍ଟାନ୍ନ ପ୍ରିୟ—ସଂ. ବିଣ. ପୁଂ (ବହୁବ୍ରୀହି)—ଯେ ମିଷ୍ଟାନ୍ନ ଖାଇବାକୁ Mishtānna priya ଭଲ ପାଏ—Fond of sweets. (ମିଷ୍ଟାନ୍ନ ପ୍ରିୟା—ସ୍ତ୍ରୀ) (ମିଷ୍ଟାନ୍ନ ପ୍ରିୟତା—ବି)

ମିଷ୍ଟାନ୍ନ ଭୋଜୀ—ସଂ. ବିଣ. ପୁଂ ( ମିଷ୍ଟାନ୍ନ + ଭୁଜ୍ ଧାତୁ + କର୍ତ୍ତୃ• Mishtānna bhojī ଇନ୍ )—ମିଷ୍ଟ ଦ୍ରବ୍ୟ ଭକ୍ଷଣକାରୀ—Eating sweets. (ମିଷ୍ଟାନ୍ନ ଭୋଜିନୀ—ସ୍ତ୍ରୀ)

ମିସ୍(ସି)—ବୈଦେ. ବି(ଇଂ·ମିସ୍)—ଅବିବାହିତା ବାଳିକା ବା କୁମାରୀଙ୍କ Mis(si) ନାମ ପୂର୍ବରେ ଲାଗିବା ପଦ—Miss (the word मिसी मिस prefixed to the name of a maid).

ମିସ୍(ସି)ବାବା—ଦେ. ବି ( ଇଂ. ମିସ୍ )—ସାହେବମାନଙ୍କ ପରିବାରର Mis-(si)bābā କୁମାରୀମାନଙ୍କ ପ୍ରତି ଚାକରମାନଙ୍କର ସ୍ନେହ-मिसी बाबा ସମ୍ବୋଧନ—A term of endearment ad-मिस बाबा dressed by the servants to maids of a European family.

ମିସନ୍—ବୈଦେ. ବି (ଇଂ. ମିସନ୍)—୧ । ଧର୍ମପ୍ରଚାରକ ମଣ୍ଡଳୀ—1. A Misan company of persons engaged in a মিসন religious propaganda. ୨ । ଧର୍ମପ୍ରଚାରାର୍ଥ मिसन ନିୟୋଗ—2. Religious mission. ୩ । ପ୍ରଚାରିତ ବିଶେଷ କାର୍ଯ୍ୟ ସମ୍ପାଦନର ଭାର—3. A mission ୪ । ରାଜନୈତିକ ଉଦ୍ଦେଶ୍ୟରେ ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ପ୍ରେରିତ ଦୂତ ମଣ୍ଡଳ—4. Political mission.

ମିସନ୍ ଇସ୍କୁଲ(ସ୍କୁଲ)—ଦେ. ବି (ଇଂ)—ଧର୍ମ ପ୍ରଚାରକ ସମ୍ପ୍ରଦାୟଙ୍କ Misan iskula(skula) ପରିଚାଳିତ ବିଦ୍ୟାଳୟ—Mission মিসন ইস্কুল School· [ଦ୍ର—ଏହିପରି ମିସନ୍ ପ୍ରେସ, ମିସନ-मिसन स्कुल କଲେଜ୍ ହୁଏ ।]

ମିସନ୍ ସମାଜ (ସମ୍ପ୍ରଦାୟ)—ଦେ. ବି—ଧର୍ମ ପ୍ରଚାରକ ସଂଘ—Misan samāja (sampradāya) A missionary মিসন সমাজ मिसन समाज society.

ମିସନ(ନା, ନେ)ରୀ—ବୈଦେ ବି. ( ଇଂ ମିସନାରୀ )—୧ । ଧର୍ମ Misan(nā, ne)rī ପ୍ରଚାରକ—1. Religious preacher; মিসনরী missionary. ୨ । ଖ୍ରୀଷ୍ଟିୟାନ୍ ପାଦ୍ରୀ—2. A मिसनरी Christian missionary. ବିଣ—ଧର୍ମପ୍ରଚାରକ-ମଣ୍ଡଳସମ୍ବନ୍ଧୀୟ—Relating to a mission.

ମିସାଲ୍—ପ୍ରାଦେ. ( ସମ୍ବଲପୁର ) ଅ. ( ସଂ. ମିଶ୍ରିତ )—୧ । ମଧ୍ୟ; ବି—Misāl 1. Also; too. ୨ । ସଙ୍ଗେ—2. Together (ମିସେ—ଅନ୍ୟରୂପ) with. (ଯଥା—ମୁଁ ଡାଲି ମିସାଲ୍ ପଖାଳ୍ ଖାଇଲି ।)

ମିସି—ସଂ• ବି—ମିଶି ( ଦେଖ )
Misi Mishi ( See )
ବୈଦେ. ବି—ମିସ୍ (ଦେଖ)—Mis ( See )

ମିସ୍ତର—ବୈଦେ. ପ୍ରାଦେ. (ସମ୍ବଲପୁର) ବିଣ—ମିଷ୍ଟର୍ ( ଦେଖ ) Mistar Mishtar ( See )
ବୈଦେ. ବି (ଅ)—ଅଲ୍ପ ଛଡ଼ାଛଡ଼ା ଖୁବ୍ ମୋଟ ସମାନ୍ତର ରେଖାମାନ ଟଣା ଯାଇଥିବା ମୋଟ କାଗଜ ବା

କାଗଜର ତକ୍ତା—A pasteboard or thick sheet of paper on which thick parallel lines are drawn at short intervals and over which, when a writing paper is put, the writer's lines follow the lines below. [ଦ୍ର—ଏହି ମିସ୍ତର୍ ତକ୍ତା ଉପରେ ପତଳା କାଗଜକୁ ପକାଇ ଲେଖିଲେ କାଗଜ ତଳେ ଥିବା ଉକ୍ତ ତକ୍ତାରେ ଅଙ୍କିତ ରେଖାମାନ ବାର ହୋଇ ପଡ଼େ ଓ ସେହି ଗାରମାନଙ୍କୁ ଠଉରାଇ କରି କାଗଜରେ ଅକ୍ଷର ଲେଖିଲେ ଧାଡ଼ିମାନ ବଙ୍କା ନ ହୋଇ ସମାନ୍ତର ହୁଏ ।]
मिस्तर

**ମିସ୍ତ୍ରୀ**—ବୈଦେ.ବି. (ପ୍ରାଚୀନ ଇଂରାଜୀ ମିଷ୍ଟେର୍/ଇଂ. ମାଷ୍ଟର୍; ପର୍ତ୍ତୁଗୀଜ୍ ମେଷ୍ଟ୍ରାର୍=ଗୁରୁ; ଶିଳ୍ପରେ )—୧ । କାରିଗର; ଶିଳ୍ପୀ—1. Mechanic; artisan; craftsman. ୨ । ରାଜ ମିସ୍ତ୍ରୀ—2. Mason. [ଦ୍ର—ଏ ଶବ୍ଦ ବଢ଼େଇ, କମାର, କଳ ଆଦିରେ କାମ କରିବା ବ୍ୟକ୍ତି ଓ କୋଠା ଓ ଅନ୍ୟ କାମ କରିବା କାରିଗରଙ୍କ ପ୍ରତି ବ୍ୟବହୃତ ହୁଏ । ]
Mistri
मिस्त्री
**मिस्त्री, मिस्तरी**

**ମିସ୍ତ୍ରୀଖାନା**—ବୈଦେ. ବି—ମିସ୍ତ୍ରୀ ବା କାରିଗରମାନଙ୍କ କାର୍ଯ୍ୟାଳୟ; କାରଖାନା—A workshop.
Mistrikhānā
मिस्त्रीखाना **मिस्त्रीखाना**

**ମିହ୍ ଧାତୁ**—ସ —୧ । ସେକ ଦେବା—1. To foment. ୨ । ସେଚନ କରିବା— 2. To sprinkle.
Mih (root)

**ମିହ**—ସ. ବି—(ମିହ୍ ଧାତୁ+କର୍ତ୍ତୃ. ଅ)—ମେଘ; ବରଷ ଥିବା ମେଘ Rain-cloud.
Miha

**ମିହନତ୍**—ବୈଦେ. ବି. (ଫା. ମେହନତ୍)—କାୟିକ ପରିଶ୍ରମ—Physical labour; industry.
Mihanat
मि(मे)हनत **मि(मे)हनत** (ମିହନ୍ତି—ଅନ୍ୟରୂପ)

**ମିହନତି**—ବୈଦେ.ବିଣ.—(ଫା. ମେହନତୀ)—ପରିଶ୍ରମୀ—Industrious; laborious.
Mihanati
मि(मे)हनती **मिहनती** (ମିହନ୍ତ—ଅନ୍ୟରୂପ)

**ମିହନ୍ତ(ନ୍ତା)ନା**—ଦେ. ବି.(ଫା. ମେହନତାନା)—ପାରିଶ୍ରମିକ; ପରିଶ୍ରମର ମୂଲ୍ୟ; ମଜୁରି—Wages or remuneration for labour.
Mihanta(ntā)nā
मि(मे)हनताना **मि(मे)हनताना**

**ମିହି**—ବୈଦେ.ବିଣ.—(ଫା.ମହୀନ)-ସୂକ୍ଷ୍ମ;ଖୁବ୍ ସରୁ ବା ପତଳା;କୋମଳ-Very fine; thin, delicate. [ଯଥା—ମିହି ଲୁଗା, ମିହି ଚାଉଳ, ମିହିସ୍ୱର ।]
Mihi मिहि **महीन, मेही**

**ମିହିକା**—ସ.ବି—(ମିହ୍ ଧାତୁ=ସିକ୍ତ କରିବା+କର୍ତ୍ତୃ. ଇକ+ଆ)—୧ । ଶିଶିର—1. Dew. ୨ । କାକର; ତୁଷାର; ହିମ—2. Frost.
Mihikā

**ମିହି ଦାନା**—ଦେ. ବି—ମୁଗ ଲଡ଼ୁ; ସରୁ ସରୁ ଦାନାଯୁକ୍ତ ଏକ ପ୍ରକାର ଲଡ଼ୁ ବା ମିଠାଇ; ମତିଚୁର—A kind of sweetmeat ball consisting of flour of moong fried in ghee.
Mihi dānā
मिहिदाना, मतिचूर
**मेहीदाना, मोतिचूर**

**ମିହିର**—ସ. ବି ( ମିହ୍ ଧାତୁ=ସେକ କରିବା+କର୍ତ୍ତୃ. ଇର )—୧ । କିରଣମାଳୀ; ସୂର୍ଯ୍ୟ—1. The sun. ୨ । ପଣ୍ଡିତ—2. Learned man. ୩ । ଅର୍କ ଗଛ—3. Calotropus Gigantea (plant). ୪ । ମେଘ—4. Cloud. ୫ । ବାୟୁ—5. Wind. ୬ । ଚନ୍ଦ୍ର—6. Moon. ୭ । ମୁନି ବିଶେଷ; ବସିଷ୍ଠଙ୍କ ପୁତ୍ର—7. Name of a sage. ୮ । ବରାହ ମିହିର; ବିକ୍ରମାଦିତ୍ୟଙ୍କ ନବରତ୍ନ ମଧ୍ୟରୁ ଜଣେ—8. Name of a famous astrologer of the court of Bikramāditya. ୯ । ତମ୍ବା (ହେ. ଶ)—9. Copper. ୧୦ । ରାଜା (ହେ. ଶ)—10. King. ୧୧ । ବୃଦ୍ଧ ବ୍ୟକ୍ତି (ହେ. ଶ)—11. An old man (Apte). ସ. ବିଣ. ପୁଂ—ବୃଦ୍ଧ (ହେ.ଶ)—Old. ଦେ. ବି—କବିସୂର୍ଯ୍ୟ ବଳଦେବ ରଥ—A name of Kabisūrjya Baḻadeba Ratha. [ଦ୍ର—କବିସୂର୍ଯ୍ୟ ତାଙ୍କ ଭଣିତାରେ କେତେକ ସ୍ଥଳରେ ଆପଣାକୁ କବି ମିହିର କହି ଅଛନ୍ତି ।]
Mihira

**ମିହିର ମଣ୍ଡଳ**—ସ. ବି. ( ୬ଷ୍ଠୀ ତତ୍; ମିହିର+ମଣ୍ଡଳ )—୧ । ସୂର୍ଯ୍ୟ ମଣ୍ଡଳ—1. The sun's sphere. ୨ । ଚନ୍ଦ୍ର ମଣ୍ଡଳ—2. The lunar sphere or orb.
Mihira maṇḍaḻa

**ମିହିରାଣ**—ସ. ବି (ମିହିର+ଅନ୍ ଧାତୁ=ବଞ୍ଚିବା+କର୍ତ୍ତୃ. ଅ)—ଶିବ; ମହାଦେବ—God Siba.
Mihirāṇa

**ମିହ୍ନା**—ବୈଦେ.ବି—୧ । ମିନା (ଦେଖ)—1. Minā (See) (ଉ—ସୁବର୍ଣ୍ଣ ଭୂମିରେ ଅଙ୍କୁର ଅଛି କି ମରକତ ମିହ୍ନା ଲତା । ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।) (ଉ—ସେ ଭୂଜେ ବାନ୍ଧିଛୁ ରୂପା ସୁନା ବଦମାଳୀ, ପାଣିରେ ତା ପାଣି କାଚ ମିହ୍ନା କରି ଥିଲୀ ଯେ । ଭଞ୍ଜ. ଲାବଣ୍ୟବତୀ ।) ୨ । (ଫ. ମିନ୍‌ହା) ନିଷ୍କର ଭୂମି—2. Rent free land. ବିଣ—ନିଷ୍କର—Rent free.
Mihnā
मिना
**मिना**
मिह्ना
**मिन्हा**

**ମିହ୍ନାଇ**—ପ୍ରାଦେ. (ସମ୍ବଲପୁର) ବି—ମିହ୍ନା ( ଦେଖ ) Mihnā ( See )
Mihnāi

**ମିହ୍ନା ଖାଇବା**—ପ୍ରାଦେ. ( ଯାଜପୁର ) କ୍ରି—କୌଣସି କାର୍ଯ୍ୟ କରିବା ପାଇଁ ଜାଗିର ଇତ୍ୟାଦି ପାଇବା—To be in the enjoyment of Jagir (rent-free land) in return for certain services.
Mihnā khāibā

**ମିହ୍ନାଦାର୍**—ବୈଦେ. ବି(ଫା)—ଯେଉଁ ବ୍ୟକ୍ତି ନିଷ୍କର ଜମି ପାଇଅଛି—Rent free holder.
Mihnādār
निष्कर भोगी **मिन्हादार**

**ମୀ ( ଧାତୁ )**—ସ.—୧ । ବଧ କରିବା—1. To kill. ୨ । ବଦଳାଇବା—2. To change. ୩ । ଗତି କରିବା—3. To move. ୪ । ମରିବା—4. To die.
Mī (root)

**ମୀଡ୍**—ଦେ. ବି (ସଙ୍ଗୀତ) ( ସ. ମିଲ ଧାତୁ )—ଦୁଇ ପାର୍ଶ୍ୱବର୍ତ୍ତୀ ସ୍ୱରକୁ ଏକ ଲହରରେ ଉଚ୍ଚାରଣ ହେବାର ଅବସ୍ଥା—The state of two consecutive tunes being uttered in one strain.
Mīḍ
मिड़
**मिड**

ମୀଢ଼ —ସଂ. ବଣ. ପୁଂ—୧ । ମୂତ୍ର ମାର୍ଗରେ ବାହାରିଥିବା (ତ୍ରି. ଲି)—
Mirdha 1. Discharged through the urethra.
୨ । ମୂତ୍ର ପରି (ତ୍ରି. ଲି)—2. Similar to urine.

ମୀନ —ସଂ. ବି. ( ମୀ ଧାତୁ=ବଧ କରିବା + କର୍ମ. ନ )—୧ । ମତ୍ସ୍ୟ; ମାଛ—1. Fish ୨ । (ଜ୍ୟୋତିଷ) ଦ୍ୱାଦଶ ରାଶି ମଧ୍ୟରୁ ଏକତମ—2. The pisces; one of the twelve signs of the zodiac (ନକ୍ଷତ୍ର ତଳେ ଟୀକା ଦେଖ ) ୩ । ବିଷ୍ଣୁଙ୍କର ପ୍ରଥମ ଅବତାର—3. The 1st incarnation of Bishnu. [ଦ୍ର—ମହାପ୍ରଳୟରେ ସମୁଦ୍ରରେ ବିଷ୍ଣୁ ମୀନ ରୂପ ଧାରଣ କରି ଶଙ୍ଖାସୁର କବଳରୁ ବେଦକୁ ରକ୍ଷା କରିଥିଲେ ।] ୪ । ସୌର ଚୈତ୍ର ମାସ—4. The solar month of Chaitra.
Mina
ଦେ. ବି—୧ । ଅତି ଛୋଟ ମାଛ—1. Fry of fish; very small fish. ୨ । ଜଳଚର ପ୍ରାଣୀ—2. Aquatic animal. (ଉ—ବୋଲନ୍ତି ମୀନ ଉଦ୍ଧାରେ ମୁକୁତା, ବଡ଼ ଗୁଣ। ସେହି,ବାରିରେ ଲୁଚ ଧରି ଭଯେ ମୁହିଁ । ଭଞ୍ଜ. ବୈଦେହୀଶବିଳାସ ।)

ମୀନ କେତନ—ସଂ. ବି (ବହୁବ୍ରୀହି)—୧ । ସମୁଦ୍ର—1 Sea.
Mina ketana ୨ । ଜଳାଶୟ—2. Tank. ୩ । (ମୀନ ଚିହ୍ନିତ କେତନ ଯାହାର; ବହୁବ୍ରୀହି)—କନ୍ଦର୍ପ; ମଦନ; କାମଦେବ—3. Cupid (personified).
[ଦ୍ର—ଅନ୍ୟ ସଂ. ନାମ ମଦନ, ମନ୍ମଥ, ମାର, ପ୍ରଦ୍ୟୁମ୍ନ, କନ୍ଦର୍ପ, ଦର୍ପକ, ଅନଙ୍ଗ, କାମ, ପଞ୍ଚଶର, ସ୍ମର ।]

ମୀନ ଗନ୍ଧା—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ମୀନ+ଗନ୍ଧ+ଆ)—ମତ୍ସ୍ୟ ଗନ୍ଧା
Mina gandhā (ଦେଖ)—Matsya gandhā ( See)

ମୀନ ଗୋଧିକା—ସଂ. ବି—ଜଳାଶୟ; ପୁଷ୍କରିଣୀ; ପଲ୍ୱଳ—
Mina godhikā A tank; a pond.

ମୀନ ଘାତୀ—ସଂ. ବଣ. ପୁଂ. (ମୀନ+ହନ୍ ଧାତୁ+କର୍ତ୍ତୃ ଇନ୍; ୧ମା.
Mina ghāti ୧ବ)—ଯେ ମାଛ ମାରେ—Killing fishes
(ମୀନ ଘାତିନୀ—ସ୍ତ୍ରୀ) ସଂ. ବି—ବକ ପକ୍ଷୀ—The egret bird.

ମୀନ ଦୋଳ—ଦେ.ବି—ସୌର ମୀନ ମାସରେ ପଡ଼ୁଥିବା ଦୋଳ ପୂର୍ଣ୍ଣିମା—
Mina dola Dola fullmoon day falling during the solar month of Mina.
[ଦ୍ର—ଏହା ଶୁଭ ଯୋଗ, ମାତ୍ର ଦେଶ ପକ୍ଷରେ ହାନିକର ବୋଲି କଥିତ ଅଛି ।]

ମୀନ ନେତ୍ରା—ସଂ. ବି. ସ୍ତ୍ରୀ ( ବହୁବ୍ରୀହି; ମୀନ+ନେତ୍ର+ସ୍ତ୍ରୀ. ଆ )—
Mina netrā ୧ । ଗଣ୍ଡ ଦୂର୍ବା—1 A species of grass ୨ । ମତ୍ସ୍ୟାକ୍ଷୀ ସ୍ତ୍ରୀ—2. A woman with round eyes. ୩ । କୁବେରଙ୍କ କନ୍ୟା—3. Name of the daughter of Kubera.

ମୀନର—ସଂ. ବି. (ମୀନ+ର ଧାତୁ+କର୍ତ୍ତୃ ଅ)—ମକର; ମଗର—
Minara Shark.

ମୀନ ରଙ୍କ(ଙ୍ଗ, ଞ୍ଜ)—ସଂ. ବି. (ମୀନ+ରନ୍କ୍; ରନ୍କ୍ ଧାତୁ—ବଧ
Mina ranka(nga, ñja) କରିବା+ଅ)—୧ । ମତ୍ସ୍ୟରଙ୍କ; ମାଛରଙ୍କା ପକ୍ଷୀ—1. The kingfisher bird. ୨ । ପାଣିକୁଆ—2. The small cormorant.

ମୀନରାଶି—ସଂ. ବି (ଜ୍ୟୋତିଷ)—ଦ୍ୱାଦଶ ରାଶି ମଧ୍ୟରୁ ଶେଷ ରାଶି (ଚୈତ୍ର
Minarāśi ମାସରେ ସୂର୍ଯ୍ୟ ଏହି ରାଶିକୁ ସଂକ୍ରମଣ କରନ୍ତି )—
The sign pisces of the zodiac. ( ଯଥା—ରାଶି ତଳେ ଟୀକା ଦେଖ । )

ମୀନ ଲାଞ୍ଛନ—ସଂ. ବି ( ବହୁବ୍ରୀହି; ମୀନ+ଲାଞ୍ଛନ—ଚିହ୍ନ )—ମଦନ;
Mina lāñchhana କାମ—Cupid. [ ଉ—ସେ ଅବଚ୍ଛନ୍ନ, ( ମୀନସ୍ୟନ୍ଦନ—ଅନ୍ୟରୂପ ) ମୋତେ ଉଚ୍ଛନ୍ନ, ମୀନ ଲାଞ୍ଛନ, ବାଣେ —ଭଞ୍ଜ. ପ୍ରେମସୁଧାନିଧି । ]

ମୀନ ଶନି—ସଂ. ବି—ଜ୍ୟୋତିଷୋକ୍ତ ଯୋଗବିଶେଷ; ଶନିଗ୍ରହ ମୀନ-
Mina śani ରାଶିକୁ ସଂକ୍ରମଣ କରିବା ସମୟ; (ଏହାଦ୍ୱାରା ପୃଥିବୀରେ ଦୁର୍ଭିକ୍ଷ, ମହର୍ଗ ଆଦି ଅମଙ୍ଗଳ ଘଟେ)—The conjunction of the planet Saturn with the sign Pisces.

ମୀନ ସଂକ୍ରମଣ—ସଂ. ବି—ସୌର ଚୈତ୍ରମାସର ସଂକ୍ରାନ୍ତି ବା ପ୍ରଥମ ଦିନ—
Mina samkramana The first day of the solar
( ମୀନ ସଂକ୍ରାନ୍ତି—ଅନ୍ୟରୂପ ) month of Chaitra.

ମୀନା—ସଂ. ଭ. ସ୍ତ୍ରୀ—ଉଷା କନ୍ୟା; କଶ୍ୟପଙ୍କ ସ୍ତ୍ରୀ—A wife of
Minā sage Kaśyapa. ବୈଦେ. ବି—ମିନା ( ଦେଖ ) Minā ( See )

ମୀନାକ୍ଷୀ—ସଂ. ବି. ସ୍ତ୍ରୀ (ମୀନ+ଅକ୍ଷି+ଈ; ବହୁବ୍ରୀହି)—୧ । କୁବେରଙ୍କ
Mināksh୍i କନ୍ୟା—1. Name of Kubera's daughter. ୨ । ଗଣ୍ଡଦୂର୍ବା—2. A sort of grass. ୩ । ମତ୍ସ୍ୟାକ୍ଷୀ ସ୍ତ୍ରୀ ( ପ୍ରକୃତିବାଦ )—3. A woman with round eyes ଦେ. ବି—ଗ୍ରାମ ଠାକୁରାଣୀଙ୍କ ନାମ—Name of a popular Goddess.

ମୀନାଘାତୀ—ସଂ. ବଣ ପୁଂ ( ମୀନ+ଆ+ହନ ଧାତୁ+କର୍ତ୍ତୃ. ଇନ୍ )—
Minaghāti ମୀନ ବଧକାରୀ—Killing fish. ବି—୧ । ଜାଲୁଅ; କେଉଟ—1. Fisherman. ୨ । ବକପକ୍ଷୀ—2. The egret bird.

ମୀନାଣ୍ଡ—ସଂ. ବି ( ୬ଷ୍ଠୀ ତତ୍ )—ମାଛ ମଞ୍ଜି; ମାଛ ଡିମ୍ବ—
Minānda Spawn of fish.

ମୀନାଣ୍ଡୀ—ସଂ. ବି ( ମୀନ+ଅଣ୍ଡ+ଈ )—୧ । ଚିନି—1. White
Minān̤di sugar. ୨ । ମିଶ୍ରି—2. Sugar candy.

ମୀନାଳୟ—ସଂ. ବି ( ୬ଷ୍ଠୀ ତତ୍; ମୀନ + ଆଳୟ )—ସମୁଦ୍ର—
Minālaya The sea.

ମୀବ୍ ( ଧାତୁ ) ସ—୧ । ଗତି କରିବା—1. To move. ୨ । ସ୍ଥୂଳ
Mib ( root ) ହେବା—2. To grow fat.

ମୀବର—ସଂ. ବଣ. ପୁଂ—୧ । ହିଂସାଜନକ—1. Hurtful; injur-
Mibara ious ( Apte ). ୨ । ମାନ୍ୟ; ପୂଜ୍ୟ—
(ମୀବରା—ସ୍ତ୍ରୀ) 2. Respectable; venerable.
ସ. ବି—ସେନାପତି—A general.

ମୀବା—ସଂ. ବି ( ମୀବ ଧାତୁ+କର୍ତ୍ତୃ. ଅ+ଆ )—୧ । କାଚୁଟି; Mībā ପେଟ ଭିତରର ବଡ଼ କୃମି—1. Tapeworm (Apte). ୨ । ପବନ—2. Wind ( Apte ).

ମୀମ୍ (ଧାତୁ)—ସ—୧ । ଗମନ କରିବା; ଯିବା—1. To go; to Mīm ( root ) walk. ୨ । ଶବ୍ଦ କରିବା—2. To sound. ୩ । ବିଚଳନ କରିବା—3 To move.

ମୀମାଂସକ—ସଂ. ବିଣ. ପୁଂ ( ମୀମାଂସା+ଜ୍ଞାନାର୍ଥେ· କ, କିମ୍ବା ମାନ୍ ଧାତୁ Mīmāṁsaka =ବିଚାର କରିବା+ଇଚ୍ଛାର୍ଥେ. ସନ୍ ବା ଦ୍ୱିତ୍ୱ+ (ମୀମାଂସିକା—ସ୍ତ୍ରୀ) କର୍ତ୍ତୃ. ଅକ)—୧ । ନିଷ୍ପତ୍ତିକାରକ—1. Deciding. ୨ । ମୀମାଂସା ଶାସ୍ତ୍ରଜ୍ଞ—2. Versed in the Mīmāṁsā philosophy. ବି—କୌଣସି ବିବାଦର ବା ପ୍ରଶ୍ନର ସମାଧାନକାରୀ ବ୍ୟକ୍ତି—A person deciding a matter or solving a problem.

ମୀମାଂସନ—ସଂ. ବି ( ମାନ୍ ଧାତୁ+ସନ୍+ଭାବ ଅନ )—୧ । କୌଣସି Mīmāṁsana ବିଷୟର ମୀମାଂସା କରଣ—1. Decision or solution of a matter. ୨ । ତତ୍ତ୍ୱାନୁସନ୍ଧାନ—2. Investigation.

ମୀମାଂସା—ସଂ. ବି ( ମାନ୍ ଧାତୁ=ବିଚାର କରିବା+ଇଚ୍ଛାର୍ଥେ. ସନ୍+ Mīmāṁsā ଭାବ. ଅ+ଆ )—୧ । ସିଦ୍ଧାନ୍ତ; ନିଷ୍ପତ୍ତି; ବିଚାର; ଶେଷ ଫଳ – 1. Decision; disposal. ୨ । ସମସ୍ୟାର ବା ପ୍ରଶ୍ନର ସମାଧାନ—Solution of a problem or question; determination of a question. ୩ । କୌଣସି ତତ୍ତ୍ୱର ବିଚାର ବା ବିବେଚନ—3. Deep reflection. ୪ । ତତ୍ତ୍ୱାନୁସନ୍ଧାନ—4. Enquiry; investigation. ୫ । ଷଡ୍‌ଦର୍ଶନର ଅନ୍ତର୍ଗତ ଜୈମିନି-ରଚିତ ଦର୍ଶନ ଶାସ୍ତ୍ର; ପୂର୍ବ ମୀମାଂସା—5. The system of Hindu philosophy of Jaimini. ୬ । ବେଦବ୍ୟାସ ରଚିତ ବେଦାନ୍ତ; ଉତ୍ତର ମୀମାଂସା—6. The system of Bedānta philosophy of Byāsa. [ ଦ୍ର—ମୀମାଂସା ଦୁଇଟି, ଯଥା—୧ । ପୂର୍ବ ମୀମାଂସା—ରଚକ ଜୈମିନି, ବୃତ୍ତିକର୍ତ୍ତା କୁମାର ଭଟ୍ଟ, ଭାଷ୍ୟକର୍ତ୍ତା—ଶ୍ରୀଧର ସ୍ୱାମୀ, ଶବର ସ୍ୱାମୀ, ମାଧବାଚାର୍ଯ୍ୟ; ୨ । ଉତ୍ତରମୀମାଂସା—ସୂତ୍ରକର୍ତ୍ତା ବେଦବ୍ୟାସ, ଭାଷ୍ୟକର୍ତ୍ତା ଶଙ୍କରାଚାର୍ଯ୍ୟ ।

ପୂର୍ବ ମୀମାଂସାରେ ବେଦର କର୍ମକାଣ୍ଡ ବା କ୍ରିୟା-କଳାପ ବର୍ଣ୍ଣିତ ଅଛି; ଉତ୍ତର ମୀମାଂସାରେ ବେଦର ଜ୍ଞାନ-କାଣ୍ଡ ବା ବେଦାନ୍ତ ବିଷୟ ବର୍ଣ୍ଣିତ ଅଛି । ସାଧାରଣତଃ ପୂର୍ବ ମୀମାଂସାକୁ 'ମୀମାଂସା' ଓ ଉତ୍ତର ମୀମାଂସାକୁ ବେଦାନ୍ତ ବୋଲାଯାଏ । ବେଦାନ୍ତରେ ବା ଉତ୍ତର ମୀମାଂସାରେ ଅଦ୍ୱୈତବାଦ ପ୍ରତିପାଦିତ ହୋଇଅଛି । କିନ୍ତୁ ପୂର୍ବ ମୀମାଂସାରେ •ବେଦବିହିତ କର୍ମକାଣ୍ଡହିଁ ଲିପିବଦ୍ଧ ହୋଇଅଛି ।]

[ଦ୍ର—ଏହି •ଶବ୍ଦର ଗ୍ରାମ୍ୟ ଅପଭ୍ରଂଶ ମିମାସା, ନିମାସା, ନିମେଇସା ହୁଏ । ]

ମୀମାଂସିତ—ସଂ. ବିଣ ( ମାନ୍ ଧାତୁ+ସନ୍ ଧାତୁ+କର୍ମ. ତ )—ନିଷ୍ପତ୍ତି Mīmāṁsita କରାଯାଇଥିବା—Decided; settled.

ମୀମାଂସ୍ୟ—ସଂ. ବିଣ (ମାନ୍ ଧାତୁ+ସନ୍+କର୍ମ. ଯ)—ନିଷ୍ପତ୍ତିଯୋଗ୍ୟ— Mīmāṁsya Fit to be decided; requiring to be disposed of or settled.

ମୀର—ସଂ. ବି ( ମି ଧାତୁ+ସଂଜ୍ଞାର୍ଥେ ର )—୧ । ପର୍ବତ ପ୍ରାନ୍ତ— Mīra 1. The end of a mountain. ୨ । ସମୁଦ୍ର—2. The sea. ୩ । ସୀମା—3. Boundary; limit. ୪ । ପାନୀୟ—4. Drink; liquid. ୫ । ଜଳ—5. Water.

ମୀରଜା—ବୈଦେ ବି—ମିର୍‌ଜା ( ଦେଖ ) Mīrajā Mir-jā ( See )

ମୀରାବାଈ—ଦେ. ବି. ( ନାମ )—ବିଷ୍ଣୁଭକ୍ତିପରାୟଣା ରାଜପୁତ ମହିଷୀ, Mīrābāī ରାଠୋର ବଂଶୀୟା କନ୍ୟା ଓ ମେବାରର ରାଜା କୁମ୍ଭଙ୍କର ମୀରାବାଈ **मिराबाई** ରାଣୀ—Name of a Rajput queen.

ମୀଲ୍ ( ଧାତୁ )—ସଂ—୧ । ଆଖି ମିଟିକିବା—1. To wink. ୨ । Mīl ( root ) ମୁଦିବା—2. To shut up; to close.

ମୀଳ—ସଂ. ବି—୧ । ( ମୀଳ ଧାତୁ+କର୍ତ୍ତୃ. ଅ )—ବନ; ଜଙ୍ଗଲ (ହି. ଶ )–1. Forest. ୨ । ( +ଭାବ. ଅ ) ମିଳନ ( ଦେଖ ) – 2. Milana ( See ) Mīla

ମୀଲକ—ସଂ. ବି—ରୋହିମାଛ ( ହି. ଶ )— Mīlaka Rohī fish.

ମୀଲନ—ସଂ. ବି ( ମୀଲ୍ ଧାତୁ+ଭାବ. ଅନ )—୧ । ସଙ୍କୋଚନ; Mīlana ମୁଦ୍ରଣ—Winking; shutting; contracting; twinkling. ୨ । ଆଖି ବୁଜିବା—2. Closing of the eyes. ୩ । ଗୁପ୍ତୋପମାଲଙ୍କାର—3. A concealed simile ( Apte ).

ମୀଲିତ—ସଂ. ବି ( ମୀଲ୍ ଧାତୁ+କର୍ମ. ତ )—୧ । ସଙ୍କୁଚିତ; ମୁଦ୍ରିତ— Mīlita 1. Contracted; shut; closed. ୨ । ଅନ୍ତର୍ହିତ—2. Disappeared; vanished. ( Apte ). ସଂ. ବି—କାବ୍ୟର ଅଲଙ୍କାର ବିଶେଷ—A rhetorical figure.

ମୁ—ଦେ ( କଚେରୀ, ସାଙ୍କେତିକ)—An abbreviation used Mu to denote—୧ । ମୁକାମ—1. At. ୨ । ମୁକାବିଲା (ମୁଃ—ଅନ୍ୟରୂପ) —2. Confronting. ୩ । ମୁତୋଫା— ମୁ 3. Deceased; the late. ୪ । ମୁତାବକ— ମुः 4. According to. ୫ । ମୁତାଲୁକେ—5. In the Taluq of. ୬ । ମୁନ୍‌ସଫ୍—6. Munsif. ୭ । ମୁବଲକ୍—7. In all; altogether. ୮ । ମୁତଫର୍କା—8. Miscellaneous. ୯ । ମୂଲ୍ୟ—9. Price. ପ୍ରାଦେ ( ଉତ୍ତରଖଣ୍ଡୀ )ବି —ମୁହଁ—Face.

ମୁଅଜା—ବୈଦେ. ବି ( ଫା. ମୁଅଜ୍ଜା=ଯଥାପୂରଣ, ପ୍ରତିଶୋଧ; Muājā ମୁଅଯିନା=ନିରୀକ୍ଷଣ; ମୁଆହିଦା—ଦୃଢ଼ ନିଷ୍ପତ୍ତି; କରାର ) ମୋଆଜା —୧ । ଅଭିଯୁକ୍ତ ବ୍ୟକ୍ତିର ସାକ୍ଷାତରେ କୌଣସି ବିଷୟ **मुअवाजा, मुकाबला** ପ୍ରମାଣ କରାଇବା—1. Proving of a

matter in the presence of an accused person. [ ଉ—ଆଖିରେ ଦେଖି ମୁଆଜା ଖୁନ୍‌ହେଁ, ତାହାଠାରୁ ବଳି ଉତ୍ତମା କେ ? ଭଗ ।] ୨ । ମୁକାବିଲା—2. Confronting. ୩ । ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ; ସାକ୍ଷ୍ୟ ପ୍ରମାଣ—3. Direct evidence.

**ମୁଆଜା କରିବା**—ଦେ. କ୍ରି—୧ । କୌଣସି ବିଷୟକୁ ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ରୂପେ ପ୍ରମାଣିତ କରିବା; କୌଣସି ବିଷୟ ପ୍ରମାଣିତ କରାଇବା—1. To have a matter proved by direct evidence. ୨ । ମୁଆଜା ନେବା; କୌଣସି ବିଷୟର ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ ଗ୍ରହଣ କରିବା—2. To take direct evidence on a matter. ୩ । ବାଦୀ ବିବାଦୀ ଉଭୟଙ୍କୁ ମୁକାବିଲା କରାଇ କୌଣସି ବିଷୟ ପ୍ରମାଣିତ କରାଇବା—3. To have a matter proved by confronting both the parties.
Muājā kāribā
মোআজা করা
मुकाबला करना

**ମୁଆଜା ଦେବା**—ଦେ. କ୍ରି—(ଅଭିଯୋଗକାରୀ ବ୍ୟକ୍ତିର ଅଭିଯୁକ୍ତ ବ୍ୟକ୍ତି) ସମ୍ମୁଖରେ କୌଣସି ବିଷୟର ପ୍ରମାଣ ଉପସ୍ଥାପିତ କରିବା—To have a matter proved by direct evidence in the presence of the accused.
Muājā debā
মোআজা দেওয়া
मुकाबला देना

**ମୁଆଜା ନେବା**—ଦେ. କ୍ରି—ଉଭୟ ପକ୍ଷଙ୍କ ମୁକାବିଲାରେ ବିବାଦୀୟ ବିଷୟର ପ୍ରମାଣ ଗ୍ରହଣ କରିବା—To take evidence on a disputed matter in the presence of both the parties.
Muājā nebā
মোআজা লওয়া
मुकाबला लेना

**ମୁଆଜ ମୁକାବିଲା**—ବୈଦେ. ବି (ଫା. ସହରେ ଶବ୍ଦ)—ଉଭୟପକ୍ଷଙ୍କର ଉପସ୍ଥିତିରେ ଗୃହୀତ କୌଣସି ବିଷୟର ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ—Proof of a matter taken in the presence of both the parties.
Muājā mukābilā
মোআজা মোকাবেলা
मोआजा मुकाबला

**ମୁଆଜିବ୍**—ବୈଦେ. ବି (ଫା.)—ନିଷ୍କର ଜମି—Rent-free land.
Muājib

**ମୁଆ(ଅ)ଜ୍ଜ(ଜ)ନ୍**—ବୈଦେ. ବି (ଆ. ମୁଅଜ୍ଜନ)—ଯେ ଅଜାନ୍ ଦିଏ; ଯେ ମସ୍‌ଜିଦ୍‌ର ଚୂଡ଼ାରେ ଠିଆ ହୋଇ ମୁସଲମାନ୍‌ମାନଙ୍କୁ ନମାଜ କରିବାକୁ ଉଚ୍ଚୈଃସ୍ୱରରେ ଡାକେ (ଅଜାନ୍ ଦେଖ)—The person who calls aloud to the Mahommedans from the top of the mosque to prayer at 5 fixed periods of the day and night.
Muā(a)jja(ja)n
মুআজন
मुअाज़न

**ମୁଆଫି**—ବୈଦେ. ବି (ଫା. ମୁଆଫୀ)—ମାଫି (ଦେଖ)—Māfi (See)
Muāfi মাফি माफी

**ମୁଆଫିଦାର୍**—ବୈଦେ. ବି (ଫା)—ମାଫିଦାର୍ (ଦେଖ)—Māfidār (See)
Muāfidār মাফীদার माफीदार

**ମୁଆଳି**—ଦେ. ବି—ଅପୁତ୍ରିକା ଲୋକର ଧନ; ଘୋଲ୍ଲ ଧନ—Property left by a man without any heir.
Muāli

**ମୁଆଁ**—ଦେ. ବି (ସଂ. ମୋଦକ; ପ୍ରା. ମୋଅଅ)—ଖଇ, ମୁଢ଼ି ଆଦି ଗୁଡ଼ର ବା ଚିନିର ପାଗରେ ପକାଯାଇ ବନ୍ଧାଯାଇ ଥିବା ମିଷ୍ଟାନ୍ନ ଗୋଲକ; ଗୁଡ଼ପକ୍ୱ ଖଇର ବା ମୁଢ଼ିର ଲଡ୍ଡୁ—Parched or fried paddy coated with treacle or sugar and rolled into a ball.
Muān̐
(ମୁଁଆ—ଅନ୍ୟରୂପ)
মোয়া, মুড়কীরগোলা
लाई

**ମୁଆଁ ପାଡ଼ିବା**—ଦେ. କ୍ରି—ଉଖୁଡ଼ାକୁ ପିଣ୍ଡାକାରରେ ବାନ୍ଧି ମୁଆଁ କରିବା—To prepare cake-like or flattened balls with parched or fried paddy coated with treacle. [ଉ—ମୁଆଁ ପାଡ଼ୁ, ଖଜା ପାଡ଼ୁ ! କାକଅ ବଳଦ ଗଳରେ ! ହାଣ୍ଡି ଖ(ଧ)ଡ଼ୁ ଖ(ଧ)ଡ଼ୁ କଲାରେ । ଶିଶୁଗୀତ ।]
Muān̐ pārḍibā
মোয়াঁকরা
लाई बाँधना

**ମୁଆଁ ପିଠା**—ଦେ. ବି—ଧନୁ ମୁଆଁ ଆକୃତି ବିଶିଷ୍ଟ ବା ପଲମ ଆକୃତିର ଉଣ୍ଡ ଗୁ ପିଠା—Steam-boiled cake made in the shape of a frying pan. [ ଦ୍ର—ହାଣ୍ଡିରେ ପାଣି ଦେଇ ହାଣ୍ଡିକୁ ଚୁଲି ଉପରେ ବସାଇ ହାଣ୍ଡି ମୁହଁରେ ଖଣ୍ଡେ 'ଅଥାଳି' କନା ବାନ୍ଧି ସେହି କନା ଉପରେ ପଲମ ଆକାରରେ ପିଠଉ ଜମା କରାଯାଏ । ତାହା ହାଣ୍ଡି ଭିତରୁ ଉଠୁଥିବା ବାଷ୍ପଦ୍ୱାରା ସିଦ୍ଧ ହେଲେ ଏହି ପିଠା ତିଆରି ହୁଏ । ଗୁଡ଼ଲ ଓ ନଡ଼ିଆକୋରାଦ୍ୱାରା ଏହି ପିଠଉ ତିଆରି ହୁଏ । ]
Muān̐ pithā
আসকে পিঠা

**ମୁଆଁଶ**—ଦେ. ବି—ମୁହାଁଶ (ଦେଖ)—Muhāṅśa (See)
Muāṅśa

**ମୁଆଁଶ ଖାଇ**—ଦେ. ବି. ସ୍ତ୍ରୀ—ମୁହାଁଶ ଖାଇ (ଦେଖ) Muhāṅśa khāi (See)
Muāṅśa khāi

**ମୁଆଁଶ ଲାଗିବା**—ଦେ. କ୍ରି—ମୁହାଁଶ ଲାଗିବା (ଦେଖ)—Muhāṅśa lāgibā (See)
Muāṅśa lāgibā
মায়া লাগা माया लगना

**ମୁଆଁ ସଂକ୍ରାନ୍ତି**—ଦେ. ବି—ଧନୁ ସଂକ୍ରାନ୍ତି; ପୌଷ ସଂକ୍ରାନ୍ତି—The first day of the solar month of Pousha. [ ଦ୍ର—ଏ ଦିନ ଦେବତାମାନଙ୍କୁ ଧନୁ ମୁଆଁ ଭୋଗ ଲାଗେ । ]
Muān̐ saṁkrānti
পৌষ সংক্রান্তি
पौष संक्रान्ति

**ମୁଆଁ ସିଝୁ**—ଦେ. ବି—ଦେଉଳିଆ ସିଝୁ (ଦେଖ)—Deuliā sijhu (See).
Muān̐ sijhu

**ମୁଇ**—ପ୍ରାଦେ (ମେଦିନୀପୁର ଓ ବାଲେଶ୍ୱର, ଉତ୍ତରଭାଷା)—ସର୍ବନାମ ମୁଁ; ଅମ୍ଭେ—I.
Mui

**ମୁଇ ଆଛେ**—ପ୍ରାଦେ (ଉତ୍ତରଭାଷା) ବାକ୍ୟ—ମୁଁ ଅଛି—I am.
Mui āse

**ମୁଇଁ**—ଗ୍ରା (ଇତର) ସର୍ବନାମ—୧ । ମୁଁ—1. I. ୨ । ମୁହିଁ; ଅମ୍ଭେହିଁ—2. I certainly. [ ଉ—ମୁଇଁ ଗୋପୀଜନଙ୍କ ଦାସ । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା । ] ପ୍ରାଦେ (ସମ୍ବଲପୁର; ସିଂହଭୂମ) ସର୍ବନାମ—ମୁଁ—I.
Muin̐
মুই
मैं

**ମୁଇଁବା**—ଗ୍ରା କ୍ରି (ଉଇଁବାର ଗ୍ରାମ୍ୟରୂପ)—ଉଠିବା; ଉଇଁବା—To rise.
Muin̐bā উঠা भगना

**ମୁଁ**—ଦେ. ସର୍ବନାମ, (ସଂ. ଅସ୍ମଦ୍, ପ୍ରା. ମି.)—ମୁହିଁ—[ଦ୍ର—ଏହା
Muñ ଆମି ਮੈਂ ଅମ୍ଭେ'ର ଅନାଦରାର୍ଥକ ରୂପ)
(ପ୍ରାଚୀନ ବଙ୍ଗଳା—ମୁଁଇଁ, ମୁଁ, ମୁଇ, ମୁଞି ମରହଟ୍ଟ— ମୀ)
(ମୁ, ମୁଇଁ—ଅନ୍ୟରୂପ)

**ମୁଁଆଲି**—ଦେ. (ପ୍ରାଚୀନ ସନନ୍ଦ) ବି—ବିଧବା ସ୍ତ୍ରୀ, ଝିଅ, ଭାଇ, ଭଉଣୀ
Muñāli ଥିବା ସତ୍ତ୍ୱେ ଲୋକ ପୁତ୍ରହୀନ ହୋଇ ମଲେ ତାହାର ଧନକୁ ସମ୍ପତ୍ତି ରାଜାଙ୍କ ଖାସ୍ ଦଖଲକୁ ଆସିବା ରୀତି—The custom of escheat to the crown for failure of male heirs, although such relations; as widow, daughter, brother, sister, survive the deceased.

**ମୁଁଆଁମୁଁଆଁ**—ଦେ. ବି - ବନ୍ୟ ଗୁଳ୍ମ ବିଶେଷ—
Muāñ muāñ Sagittaria Sagitifolia.

**ମୁଁଗ**—ପ୍ରାଦେ (ବସ୍ତର) ବି—(ଭୁଲ. ହି. ମୁଁଗ)—ମୁଗ (ଦେଖ)
Muñga Muga (See)

**ମୁଁଡ଼୍(ଡ୍)**—ପ୍ରାଦେ. (ବସ୍ତର, ସମ୍ବଲପୁର) ବି—ମୁଣ୍ଡ (ଦେଖ)
Muñrd(d) Muṇḍa (See)

**ମୁଁଡ଼ା**—ପ୍ରାଦେ. (ସମ୍ବଲପୁର) ବି—ମୁଣ୍ଡା (ଦେଖ)
Muñrdā Muṇḍā (See)

**ମୁକ୍‌ତବ୍**—ବୈଦେ. ବି (ଆ. ମକ୍ତବ୍)—ମକ୍ତବ୍; ମୁସଲମାନ୍‌ମାନଙ୍କ
Muk-tab ପ୍ରାଥମିକ ପାଠଶାଳା—Primary school for
মুক্তব मकतब Mahomedans.

**ମୁକତ**—ଗ୍ରା (ପଦ୍ୟ) ବିଣ.—(ସଂ. ମୁକ୍ତ)—ମୁକ୍ତ (ଦେଖ)
Mukata মুকত मुकत Mukta (See)

**ମୁକତ(ତି) ମଣ୍ଡପ**—ଗ୍ରା. ବି—ମୁକ୍ତିମଣ୍ଡପ (ଦେଖ)
Mukata (ti)maṇḍapa Mukti maṇḍapa (See)
[ଉ—ମୁକତ ମଣ୍ଡପ ସେ ଦେଖ ବୈକୁଣ୍ଠ ବିଷ୍ଟୁର।
ପ୍ରାଚୀ ପ୍ରେମଭକ୍ତି. ବ୍ରହ୍ମଗୀତା।]

**ମୁକତି**—ଗ୍ରା. ବି. (ପଦ୍ୟ)—(ସଂ. ମୁକ୍ତି)—ମୁକ୍ତି (ଦେଖ)
Mukati মুকতি मुकति Mukti (See)
୨। ମୁକ୍ତାମଣି ନାମ୍ନୀ ସ୍ତ୍ରୀର ଡାକ ନାମ—2. A name for calling Muktāmaṇi. ବିଣ.—ମୁକ୍ତ—Delivered; freed. [ଉ—ଶୋକ ସମୁଦ୍ରରୁ ମୁକତି ହୋଇ ଯାଏ। କୃଷ୍ଣସିଂହ ମହାଭାରତ. ବନ।]

**ମୁକତି ଦାତା**—ଗ୍ରା. ବିଣ.—ମୁକ୍ତିଦାତା (ଦେଖ)
Mukati dātā Mukti dātā (See)

**ମୁକତି ପସରା**—ଗ୍ରା. ବି.—ମୁକ୍ତିର ପ୍ରଧାନ ଅବଲମ୍ବନ—The
Mukati pasarā principal means or refuge for
মুকতি পসরা मुकतिका डाला attaining salvation.
[ଉ—ଯା ନାମ ମୁକତି ପସରା; ସେ କହିଁ କଲେ ପରଦାରା?
ଜଗନ୍ନାଥ. ଭାଗବତ।]

**ମୁକଦ(ଦ୍ଦ)ମ**—ବୈଦେ. ବି—ମକଦମ (ଦେଖ)—
Mukada(dda)ma মকদ্দম मुकद्दम Makadama (See)

**ମୁକ(କୁ)ନ୍ଦକ**—ସଂ. ବି—ପିଆଜ
Muka(ku)ndaka Onion.

**ମୁକର୍**—ବୈଦେ. ଅ. (ଆ. ମୁକର୍=ସ୍ୱୀକାର; ମୁକରର୍=ନିର୍ଦ୍ଦିଷ୍ଟ)
Mukar অবশ্য अवश्य ନିଶ୍ଚେ; ଅଲବତ୍; ଅବଶ୍ୟ—
Surely; certainly; positively. [ଉ—୧। ମୁଁ ମୁକର ସେଠାକୁ ଯିବି। ୨। ତୁ ମୁକର ଏ କାର୍ଯ୍ୟ କରିବୁ। ୩। ସାରବାଦ୍ୟ ମାନତ ଶୁଭୁଛି ହେ ଅଇଲେଟି ମୁକର ବିଶ୍ୱନାଥ. ବିଚିତ୍ର ରାମାୟଣ।]

**ମୁକର(ରି)ର୍**—ବୈଦେ. ବି—(କଚରିଆ)—(ଆ. ମୁକର୍ରର୍)—୧।
Mukara(ri)r କୌଣସି କାର୍ଯ୍ୟ ବା ପଦରେ ସ୍ଥାୟୀରୂପେ ନିଯୁକ୍ତି;
মুকরর मुकर्री ନମୁଦ—Permanent appointment in a post. ୨। ସ୍ଥାୟୀ ଭାବରେ ନିର୍ଦ୍ଦେଶ—2. Fixity. ବିଣ.—୧। ସ୍ଥାୟୀ—1. Permanent. ୨। ନିର୍ଦ୍ଦିଷ୍ଟ—2. Ascertained; fixed.

**ମୁକରର୍(ରି) କରିବା**—ଦେ. କ୍ରି (କଚରିଆ)—କୌଣସି କାର୍ଯ୍ୟରେ
Mukarar(ri) karibā ନିଯୁକ୍ତ କରିବା—To appoint a
মুকরর করা मुकर्रर करना person to a post.

**ମୁକରରା(ରି) ଜମା**—ବୈଦେ. ବି—(ଫା. ମୁକର୍ରର୍=ନିର୍ଦ୍ଦିଷ୍ଟ; +
Mukararā(ri) jamā ଜମା)—ଚିରକାଳ ପାଇଁ ନିର୍ଦ୍ଦିଷ୍ଟ ଭୂମିର
মুকররি জমা ଖଜଣା—Fixed rent, a rent for a land
मुकर्रर जमा fixed in perpetuity.

**ମୁକରରା(ରି) ସଞ୍ଜା**—ଦେ ବି—ରୟତର ଜମିଦାରଙ୍କୁ ଦେୟ ଫସଲର ବା
Mukarara(ri) sanjā ଶସ୍ୟର ଭାଗ, ଯାହାକି ଚିରସ୍ଥାୟୀ ଭାବରେ
সংজা मनखप ନିର୍ଦ୍ଦିଷ୍ଟ ହୋଇଥାଏ—Fixed produce rent payble by a raiyat to the landlord.
[ଦ୍ର—ଚେଷ ଚାଷ କରୁଥିବା ଜମିର ଉତ୍ପନ୍ନ ଫସଲରୁ ଅଧେ, ଯାହା ରୟତ ଜମିଦାରଙ୍କୁ ଖଜଣା ଦିଏ, ତାକୁ ଧୂଳିଭାଗ ବୋଲାଯାଏ; କିନ୍ତୁ ଜମିରେ ଫସଲ ଫଳିବା ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ରୟତର ଜମିଦାରଙ୍କୁ ଦେୟ ଶସ୍ୟର ପରିମାଣକୁ ସଞ୍ଜା ବୋଲାଯାଏ। ଯେଉଁ ସଞ୍ଜାର ପରିମାଣ ଚିରକାଳ ପାଇଁ ନିର୍ଦ୍ଦିଷ୍ଟ ହୋଇଥାଏ ତାକୁ ମୁକରରି ସଞ୍ଜା ବୋଲାଯାଏ; ଜମିରେ ଫସଲ ହେଉ ବା ନ ହେଉ, ରୟତ ଜମିଦାରଙ୍କୁ ଚିରକାଳ ସକାଶେ ଏହି ମୁକରରି ସଞ୍ଜା ଦେବାକୁ ଦାୟୀ ଅଟେ। କିନ୍ତୁ ରାଜସ୍ୱ ଅଦାଲତରେ ନଜୀର୍ ହୋଇଅଛି ଯେ, ଜମିରେ ପ୍ରକୃତରେ ଯେତେ ଶସ୍ୟ ଉତ୍ପନ୍ନ ହୋଇଥିବ ରୟତର ଦେୟ ମୁକରରି ସଞ୍ଜାର ପରିମାଣ ସେଥିର ଅର୍ଦ୍ଧେକରୁ ବେଶି ଜମିଦାର ପ୍ରଜା ଠାରୁ ଆଦାୟ କରି ପାରିବେ ନାହିଁ।]

**ମୁକରରି**—ବୈଦେ (କଚରିଆ) ବି.—୧। (ଫା. ମୁକର୍ରରୀ) ଜମିର
Mukarari ଖଜଣାର ପରିମାଣର ଚିରସ୍ଥାୟୀ ବନ୍ଦୋବସ୍ତ—
মুকররি 1. Permanent settlement of the rent
मुकर्री payble for a raiyati holding. ୨। ମୁକରର୍ (ଦେଖ)—2. Mukarar (See) ବୈଦେ. ବିଣ.—ମୁକରର୍ (ଦେଖ)—Mukarar (See)

ମୁକରର୍ ଜମି—ବୈଦେ. ବି. (କଟକଥ)—ଚିରସ୍ଥାୟୀ ରୂପେ ଯେଉଁ Mukarari jami ଜମିର ଖଜଣା ଧାର୍ଯ୍ୟ ହୋଇଥାଏ—A
ମୁকররী জমী **मुकररी जमिन** holding, the rent of which is fixed in perpetuity.

ମୁକରର୍ ଦାର୍—ବୈଦେ. ବି (କଟକଥ) (ଫା.)—ମୁକରର ଜମିର Mukarari dār ସ୍ୱତ୍ୱାଧିକାରୀ—The holder of a
ਮੁকররীদার **मुकररीदार** permanent tenure.

ମୁକରର୍ ପରୁଆନା—ବୈଦେ. ବି. (କଟକଥ)—(ଫା. ମୁକରର Mukarari paruānā ପରୱାନା)—କୌଣସି କାର୍ଯ୍ୟରେ ନିଯୁକ୍ତି-
ମুকররী পরয়ানা **वाहालि परवाना** ସୂଚକ ଆଦେଶପତ୍ର—
[ମୁକରର ପର୍ୱାନା—ଅନ୍ୟରୂପ] Appointment letter.

ମୁକଳ—ସଂ. ବି—୧ । ଆରଗ୍ୱଧ (ବୃ. ଶ)—1. Cassia Fistula
Mukaḷa (tree) ୨ । ଗୁଗ୍ଗୁଳ (ବୃ. ଶ.)—2. Bdellium.

ମୁକ(କୁ)ଶାଳି—ଦେ. ବି (ସଂ. ମୁଖଶାଳା)—ମୁଖଶାଳି (ଦେଖ)
Muka(ku)śāḷi Mukhaśāḷi (See)
[ମୁକ(କୁ)ଶିଆଳି—ଅନ୍ୟରୂପ]

ମୁ(ମୋ)କା—ଦେ. ବି.—୧ । ଥର; ଦଫା—
Mu(mo)kā बार **दफा** 1. Time.
ଦଳ **झुंड** [ଉ—ଥରେ ଚେଡ଼ୀପୋ ମିସ୍ତିରୀ । ତିନ ଟଙ୍କା ମୁକାକୁ ଗୃହଚୁଡ଼ା ଦସ୍ତୁରୀ । ଭଗ ।] ୨ । ପଙ୍କ୍ତି; ଦଳ—
2. Group; herd; flock; party. ୩ । ବୁଦା—
ঝোঁপ **झाडी** 3. Bush. [ଉ—ତନୁକେ ରହିଅଛି ଏକ ବେଣା ମୋକା, ତାହାକୁ ଆଶ୍ରେ କରି ଅଛନ୍ତି ସେ ଏକା । କୃଷ୍ଣସିଂହ. ମହାଭାରତ. ଅଦି ।] ୪ । ମୁଣ୍ଡି; ବନ୍ଧ ମୁଷ୍ଟି
ମୁଖଟି **मुक्का** ଦ୍ୱାରା କୌଣସି ବ୍ୟକ୍ତିର ମୁଖରେ ଆଘାତ—
4. A blow on the face with clenched fist.
ବୈଦେ. ବି.—(ଆ. ମୌକା)—୧ । ସୁବିଧା, ସୁଯୋଗ—
মৌকা **मौका** 1. Opportunity. ୨ । ଅବସର—2
Leisure. ପ୍ରାଦେ. (ଗଡ଼ଜାତ) ଗୁଚ୍ଛ; ବିଡ଼ା—
Cluster; bundle. ପ୍ରାଦେ.—(ଅଳ)—ବି—
ପ୍ରଗନା; ଗ୍ରାମପୁଞ୍ଜ—Fiscal division.

ମୁକାଏମ—ବୈଦେ. ବି. (କଟକଥ) (ଫା. ମୋକାଏମ୍)—୧ । ପ୍ରତିନିଧି
Mukāem —1. Representative. ୨ । ସ୍ଥଳାଭିଷିକ୍ତ
মোকাএম ବ୍ୟକ୍ତି; କୌଣସି ବ୍ୟକ୍ତି ପରିବର୍ତ୍ତରେ ଉପସ୍ଥିତ
**मोकायम** ବ୍ୟକ୍ତି—2. A person who steps into the place of another; a substitute.

ମୁକା ଖୁରୁଡ଼(ଡ଼ୁ)—ପ୍ରାଦେ. (ପୁରୀ ଜିଲ୍ଲା) ବି—ଯେଉଁ ଖୁରୁଡ଼ା ନଡ଼ିଆର
Mukākhururḍa(rḍu) ଭିତର ପାଣି ଶୁଖି ନ ଥିବାରୁ ଶସ ସହିତରୁ ଛାଡ଼ି ନ ଥାଏ ଓ ଯାହାକୁ ହଲାଇଲେ ଖଡ଼ଖଡ଼ ବାଜେ ନାହିଁ—The cocoanut of which the kernel is not fully dried and which does not produce any sound when shaken by the hand.

ମୁକାବିଲା—ବୈଦେ. ବି (ଫା. ମୁକାବିଲା)—୧ । ସମ୍ମୁଖବର୍ତ୍ତିତା;
Mukābilā ଉପସ୍ଥିତି—1. Presence. ୨ । ପ୍ରତ୍ୟକ୍ଷ କରିବା;
মু(মো)কাবি(ব)লা ମୁହାଁମୁହିଁ—2. Confronting. ୩ । ତୁଳନା—
**मुकाबला** 3. Comparison; comparing.
୪ । ମିଳନ; ସାକ୍ଷାତ୍; ଦେଖାଦେବା—4. Interview, meeting, encounter. ୫ । ପରୀକ୍ଷା—
5. Examination; testing. ୬ । ଦୁଇ ପକ୍ଷଙ୍କ ଉପସ୍ଥିତିରେ କୌଣସି ବିଷୟ ପ୍ରମାଣିତ ହେବା ବା ତର୍କ ବିତର୍କଦ୍ୱାରା ସ୍ଥିରୀକରଣ-6. Settling or proving a matter in the presence of both the contending parties. [ଦ୍ର—ଏହାର ସାଙ୍କେତିକ । ମୁ ।]
୭ । ସମ୍ମୁଖ ଯୁଦ୍ଧ—7. Fight; hand to hand fight.

ମୁକାବିଲା ବନ୍ଦୋବସ୍ତ—ଦେ. ବି. (କଟକଥ)—ଥରେ ହୋଇ ଯାଇ-
Mukābilā bandobasta ଥିବା ରାଜସ୍ୱ ବନ୍ଦୋବସ୍ତ ସମ୍ବନ୍ଧୀୟ
মুকাবিলা বন্দোবস্ত କାଗଜପତ୍ରକୁ ମୁକାବିଲା କରି ସଂଶୋଧନ
**मुकाबला बन्दोबस्त** କରିବା ପାଇଁ କିଛିଦିନ ପରେ କରାଯିବା ସାମା ବନ୍ଦୋବସ୍ତ—Revision Settlement.

ମୁକାବିଲେ—ଦେ. ଅ. (କଟକଥ)—ସାମନାରେ; ସାକ୍ଷାତରେ;
Mukābile ଉପସ୍ଥିତିରେ—In the presence of.
মোকাবিলে [ଦ୍ର—ଏହା ଅନ୍ୟ ବ୍ୟକ୍ତିବାଚକ ଶବ୍ଦ ପୂର୍ବେ । ମୁ ।
**मुकाबिले** ସାଙ୍କେତିକ ରୂପେ ବ୍ୟବହୃତ ହୁଏ, ଯଥା—
। ମୁ । ମେନେଜର=ମେନେଜରଙ୍କ ମୁକାବିଲାରେ ବା ସାକ୍ଷାତରେ ।]

ମୁକାମ୍—ବୈଦେ. ବି. (ଫା. ମକାନ୍)—୧ । ବାସସ୍ଥାନ—
Mukām 1. Residence. ୨ । ବସା ଘର, ଅସ୍ଥାୟୀ ବାସ
মুকাম ସ୍ଥାନ—2. Temporary residence or lod-
**मुकाम** ging. ୩ । ଗୃହ; କୋଠା ଘର ଆଦି—3. Building; palatial house. ୪ । (ଆ. ମୁକାମ୍) କୌଣସି ବ୍ୟକ୍ତିର ରହିବାର ଠିକଣା—4. Address or the whereabouts of a person. ୫ । ପଥିକର ଯାତ୍ରାକାଳୀନ ରାତ୍ରି ଯାପନ ସ୍ଥାନ—5. A place where a traveller halts for the night in the course of travelling. ୬ । ପଥିକର ଏକଦିନ ଚାଲିବା ପରେ ଏକ ସ୍ଥାନରେ ରାତ୍ରି ଯାପନ—6. A traveller's halt for the night after one day's travelling. (ଯଥା—କଟକରୁ ପୁରୀକୁ ଗଲାବେଳେ ବାଟରେ ଦୁଇ ମୁକାମ କରିବାକୁ ହେବ ।) ୭ । ସତ୍ୟନାରାୟଣ ପୂଜା ସମୟରେ ଆସ୍ଥାନ ବା ପୀଢ଼ା ଉପରେ ପଞ୍ଚ ଦେବତାଙ୍କୁ ଉତ୍ସର୍ଗ କରାଯାଇ ପାନ ଉପରେ ରଖାଯିବା ପଚିଲା କଦଳୀ—7. Ripe plantains placed on betel leaves and dedicated to the five Deities who are invoked during the Satyanārāyaṇa pūjā ceremony.

ମୁକାମ କଦଳୀ—ଦେ. ବି—ମୁକାମ ୭ ( ଦେଖ )
Mukāma kadaḷī Mukāma 7 ( See )

ମୁକାମୁ—ପ୍ରାଦେ. (ଗଞ୍ଜାମ); ବି—ମୁକାମ ୭ ( ଦେଖ )
Mukāmu Mukāma ( See )

ମୁକା ମୁକା—ଦେ. ଅ—୧ । ଥର ଥର କରି; ବହୁଥର; ଅନେକଥର—
Mukā mukā 1. Several times. ୨ । ଦଫା ଦଫା;
বার বার ଫଣ୍ଟା ଫେଣ୍ଟା; ଦଳ ଦଳ—2. By groups; group
दफा दफा, मोका मोका by group; in herds.

ମୁ(ମୁଁ)କାର—ଦେ. ବି—୧ । ଅହଂଗୁଣ; ଅହମିକା—1. Egoism.
Mu(muṅ)kāra ( ଉ—ବର୍ତ୍ତମାନ ଜାଣିକରି ମୁକାର
অহংকার अहंकार ବହଇ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା । )
୨ । ଗର୍ବ; ଅହଂକାର—2. Pride

ମୁକୁ—ସଂ. ବି (ମୁଚ୍ ଧାତୁ+ଭାବ. କୁ)—୧ । ମୁକ୍ତି—1. Emanci-
Muku pation. ୨ । ମୋକ୍ଷ—2. Final beati-
tude. ଗ୍ରା ( ପ୍ରାଚୀନ ପ୍ରୟୋଗ; 'ମୁଁ' ଶବ୍ଦର ୨ୟା ବିଭକ୍ତି ୧ ବଚନର ରୂପ )—ମୋତେ—
To me.

ମୁକୁଟ—ସଂ. ବି (ମକ୍ ଧାତୁ=ଭୂଷିତ କରିବା+କର୍ତ୍ତୃ. ଉଟ; ନିପାତନ)-
Mukuṭa ମକୁଟ ( ଦେଖ )—Makuṭa ( See ) ବିଣ—
( ଅନ୍ୟ ଶବ୍ଦ ପରେ ଲାଗେ )—ଶ୍ରେଷ୍ଠ; ପ୍ରଧାନ—Chief.
[ ଉ—ସାହିତ୍ୟମୁକୁଟେ ପଦ କରି ଦଉ, କନ୍ୟାସ୍ତ ଯେ ପ୍ରସାଦେ କଲେ ହସ୍ତ—ଭଞ୍ଜ. ବୈଦେହୀଶବିଳାସ । ]

ମୁକୁଟିଆ—ଦେ. ବିଣ. ପୁଂ—ମୁକୁଟଧାରୀ—Wearing a crown
Mukuṭiā or coronet. [ଉ—ଚଳ ମୁକୁଟିଆ ସଖାମାନେ—
মুকুটধারী मुकुटवाला କବିସୂର୍ଯ୍ୟ. କଳୋତ୍ସବଚମ୍ପୂ. ଚ-ଗୀତ । ]

ମୁକୁତା—ଗ୍ରା. ବି ( ସଂ. ମୁକ୍ତା )—୧ । ମୁକ୍ତା; ମୋତି—1. Pearl.
Mukutā [ ଉ—ସେ ଜଳରେ ମୁକୁତା ପଡ଼ି ଭାସୁଛନ୍ତି, ମନ୍ଦ
মুকুতা ପବନରେ ଯେ ଥଳପ କମ୍ପନ୍ତି—କୃଷ୍ଣସିଂହ. ମହାଭାରତ.
मुक्ता ସଭା । ] ୨ । ମୁକ୍ତାନାମ୍ନୀ ସ୍ତ୍ରୀର ଡାକ ନାମ—
2. Name for calling a woman named
Muktā.

ମୁକୁତା କେରି—ଦେ. ବି—୧ । ଏକପ୍ରକାର ସାରୁ—1. A species
Mukutā keri of taro or arum. ୨ । ମୁକୁତାର ଝରି—
মুক্তার থোলো 2. A bunch of strings of pearls.
मुक्ताका गुच्छा ପ୍ରାଦେ ( ସିଂହଭୂମି )—ଏକପ୍ରକାର ଧାନ—
A species of paddy.

ମୁକୁତା ଜାଲି—ଗ୍ରା. ବି ( ସଂ. ମୁକ୍ତା+ଜାଲ )—ମୁକ୍ତା ଗୁନ୍ଥା ହୋଇଥିବା
Mukutā jāli ଜାଲି ପରି ଅଳଙ୍କାରବିଶେଷ—An ornament
মুক্তার জাল of pearls strung into a net. [ଉ—
मुक्ताकी जाली ବିଶୋର । ମୁକୁତାଜାଲି ତାଙ୍କ, ଦୋହଲିବା ଦେଖି, ଦୂର ହୁଏ ଅଖି, ପୃଥ୍ୱୀର ଦୁରିତ ପଙ୍କରେ
—କବିସୂର୍ଯ୍ୟ ସଙ୍ଗୀତ । ]

ମୁକୁତା ଝରା—ଗ୍ରା. ବି—ମୁକ୍ତା ସମ୍ବଳିତ ଝରା—Tassels made of
Mukutā jharā many strings of pearls strung
মুক্তার ঝারা together. [ ଉ—ଯତନେ ଲମ୍ବାଇ ଗିରେ
मुक्ताका झालर ମୁକୁତା ଝରା—ପ୍ରାଚୀନ. ସଙ୍ଗୀତ । ] [ ଦ୍ର—
( ମୁକୁତା ଫେନ୍ଦା[ନ୍ଦୀ]—ଅନ୍ୟରୂପ ) ଏହିପରି ମୁକୁତାମାଳ, ମୁକୁତା ହାର ଆଦି ହୁଏ । ]

ମୁକୁତା ଦାନ୍ତୀ—ଗ୍ରା. ବିଣ. ସ୍ତ୍ରୀ ( ସଂ. ମୁକ୍ତାଦନ୍ତୀ )—ମୁକ୍ତାପନ୍ତି ପରି
Mukutā dānti ଦନ୍ତ ବିଶିଷ୍ଟା (ସ୍ତ୍ରୀ)—(a woman) Having
মুক্তোর মত দাঁত যার teeth resembling a row of
मोतीके समान दांतवाली pearls.
(ମୁକୁତା ଦାନ୍ତିଆ, ମୁକୁତା ଦନ୍ତା—ପୁଂ)

ମୁକୁତାପନ୍ତି—ଦେ. ବି ( ସଂ. ମୁକ୍ତାପଙ୍କ୍ତି )—ଧାଡ଼ି ହୋଇ ସଜ୍ଜିତ
Mukutāpanti ମୁକ୍ତାଗଣ—Row of pearls. [ ଉ—
মুক্তাপঙ্ক্তি मुक्तापन्ती ଅଶ୍ରୁବିନ୍ଦୁ ମୁକୁତାପନ୍ତି ସୁନ୍ଦର । ରାଧାନାଥ. ମେଘଦୂତ । ]

ମୁକୁତାବନ୍ଧ—ଦେ. ବି—କର୍ଣ୍ଣାଳଙ୍କାର ବିଶେଷ—A kind of
Mukutābanda ornament for the ear. [ ଉ
—ଶ୍ରବଣେ ଭଲ ମୋ ଝଲକ ତନ୍ତୁ ଫେରତା ମୁକୁତାବନ୍ଧ ।
ପ୍ରାଚୀ. ରହସ୍ୟମଞ୍ଜରୀ । ]

ମୁକୁତା ଶାମୁକା—ଦେ. ବି ( ସଂ. ମୁକ୍ତାଶମ୍ବୁକ )—ଯେଉଁ ଶମ୍ବୁକର
Mukutā śāmukā ଖୋଳଭିତରୁ ମୁକ୍ତା ମିଳେ—Pearl-
শুক্তি oyster. [ ଦ୍ର—କେତେକ ଅଞ୍ଚଳରେ ସମୁଦ୍ର-
मुक्ताका शितुआ; मुक्तासीप ଗର୍ଭରୁ ମିଳୁଥିବା ଶାମୁକାକୁ ଦୁଇ ଫାଳ କରି ଦେଲେ କେତେକ ଶାମୁକାର ଦୁଇ ଫାଳର ଗର୍ଭ ପାଖରେ ମୁକ୍ତା ଲାଗିଥାଏ ଓ ଶାମୁକାଦେହରୁ ତାହା ପୃଥକ୍ କରି ନିଆଯାଏ । ]

ମୁକୁତି (ଇତ୍ୟାଦି)—ଗ୍ରା. ବି ( ସଂ. ମୁକ୍ତି )—ମୁକ୍ତି ଇତ୍ୟାଦି ( ଦେଖ )
Mukuti (etc) मुक्ति Mukti etc ( See )

ମୁକୁ(କ)ତିଆର (ଇତ୍ୟାଦି)—ବୈଦେ. ବି—ମୁକ୍ତାର ଇତ୍ୟାଦି (ଦେଖ)
Muku(ka)tiāra (etc) Muktāra etc ( See )
মোক্তার मुख्तार

ମୁକୁତି—ଗ୍ରା. ବି. ସ୍ତ୍ରୀ (ନାମ)—ମୁକୁତା ୨ ( ଦେଖ )
Mukuti Mukutā 2 ( See )

ମୁକୁନ୍ଦ—ସଂ. ବି ( ସଂ. ମୁକୁମ୍=ମୋକ୍ଷ+ଦା ଧାତୁ ଦେବା+କର୍ତ୍ତୃ. ଅ; ଯେ ମୋକ୍ଷ ଦିଅନ୍ତି )—୧ । (ମୁକ୍ତିଦାତା)
Mukunda ବିଷ୍ଣୁ—1. Bishṇu. ୨ । ପାରଦ—2. Mercury;
quicksilver. ୩ । କୁବେରଙ୍କ ନିଧି ବିଶେଷ—
3. Name of a particular gem possessed
by Kubera. ୪ । କୁନ୍ଦୁରୁଗୁଣ୍ଡି—4. Gum
Olibanum. ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା
মুকুন্দ ନାମ—1. A name given to persons. ୨ ।
मुकुंद ଅଚ୍ୟୁତାନନ୍ଦଙ୍କ ଦ୍ୱାଦଶ ଶିଷ୍ୟ ମଧ୍ୟରୁ ଅନ୍ୟତମ—2. One
of the twelve disciples of Achyutānanda
Dāsa of Nemāḷa.

ମୁକୁନ୍ଦକ—ସଂ. ବି ( ମୁକୁନ୍ଦ+କ )—୧ । ପଲାଣ୍ଡୁ; ପିଆଜ—
Mukundaka 1. Onion. ୨ । ଷଷ୍ଟିକ ବ୍ରୀହି—2.
A kind of grain.

ମୁକୁନ୍ଦ ଦେବ - ଦେ. ବି (ନାମ)—ଉତ୍କଳର ଶେଷ ସ୍ୱାଧୀନ ହିନ୍ଦୁ
Mukunda deba ନରପତି—The first independent
মুকুন্দ দেব Hindu king of Orissa (1551—1568
मुकुन्द देव A. D.) [ଦ୍ର—ସେ ଖ୍ରୀଷ୍ଟ ୧୫୫୧ ରୁ ୧୫୬୮ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଦାକ୍ଷିଣାତ୍ୟର ତେଲିଙ୍ଗ ସୀମାନ୍ତବାସୀ ଥିବାରୁ ଇତିହାସରେ ତେଲଙ୍ଗା ମୁକୁନ୍ଦଦେବ ନାମରେ ପରିଚିତ । ସେ ତଦାନୀନ୍ତନ ଉତ୍କଳର ଶେଷସୀମା ହୁଗୁଳୀ ନଦୀର ତ୍ରିବେଣୀ ତୀର୍ଥରେ ସୁପ୍ରସିଦ୍ଧ ତ୍ରିବେଣୀ ଘାଟ ଓ ମନ୍ଦିର ନିର୍ମାଣ କରିଥିଲେ । ପୁରୀ ଜିଲ୍ଲାର ପିପିଲି ନିକଟବର୍ତ୍ତୀ ମୁକୁନ୍ଦପୁର ଶାସନ ଓ ପୁଷ୍କରିଣୀ ତାଙ୍କର କୀର୍ତ୍ତି । ବାରବାଟୀ ଦୁର୍ଗ ମଧ୍ୟରେ ମୁକୁନ୍ଦଦେବ ଏକ ସୁରମ୍ୟ ଓ ସୁବିଶାଳ ନବତଳ ବିଶିଷ୍ଟ ପ୍ରାସାଦ ନିର୍ମାଣ କରି ତାହାକୁ ନିଜର ରାଜଭବନ କରିଥିଲେ । ମୁକୁନ୍ଦଦେବଙ୍କର ଯୁଦ୍ଧ କୌଶଳ ଓ ବିଚକ୍ଷଣତା ଦେଖି ପ୍ରବଳପ୍ରତାପ ସମ୍ରାଟ ଆକବର ବଙ୍ଗ ଅଧିକାର କରିବା ପାଇଁ ଏହାଙ୍କର ସହାୟତା ଲୋଡ଼ିଥିଲେ । ମୁକୁନ୍ଦଦେବ ବହୁକାଳ ବ୍ୟାପୀ ବଙ୍ଗ ଅଭିଯାନରେ ହୀନବଳ ଓ କ୍ଲାନ୍ତ ହୋଇ ପଡ଼ିଥିବା ସମୟରେ ସାରଙ୍ଗଗଡ଼ର ସାମନ୍ତ ଅଧିପତି ରାମଚନ୍ଦ୍ର ଭଞ୍ଜ ଉତ୍କଳ ସିଂହାସନ ଅଧିକାର କରିବା ସକାଶେ ବିଦ୍ରୋହାଚରଣ କଲେ । ରାମଚନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରୁ କରୁ ମୁକୁନ୍ଦଦେବ ତାଙ୍କ ଅସ୍ତ୍ରାଘାତରେ ପ୍ରାଣ ହରାଇଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ପରେ କଳାପାହାଡ଼ ଓଡ଼ିଶା ଆକ୍ରମଣ କଲେ ଓ ଉତ୍କଳର ସ୍ୱାଧୀନତା ଚିରକାଳ ପାଇଁ ଲୁପ୍ତ ହେଲା । କଥିତ ଅଛି ଯେ କଳାପାହାଡ଼ କଟକ ବାରବାଟୀ ଦୁର୍ଗ ଅବରୋଧ କରିବାରୁ ମୁକୁନ୍ଦଦେବଙ୍କ ରାଣୀ ସୁନା ଥାଳରେ ମୂଲ୍ୟବାନ ବହୁମୂଲ୍ୟ ଧନରତ୍ନ ରଖି ଅବରୋଧ ତ୍ୟାଗ କରିବା ପାଇଁ କଳାପାହାଡ଼ଙ୍କୁ ଉପଢୌକନ ପଠାଇଲେ । କିନ୍ତୁ ଧର୍ମଦ୍ୱେଷୀ ପ୍ରତିହିଂସାପରାୟଣ କଳାପାହାଡ଼ ତହିଁରେ ସନ୍ତୁଷ୍ଟ ନ ହେବାରୁ ସ୍ୱୟଂ ରାଣୀ ଦୁର୍ଗର ସମସ୍ତ ସ୍ତ୍ରୀଲୋକଙ୍କୁ ଘେନି ଦୁର୍ଗରେ ଥିବା ଗୋଟିଏ ପୋଖରୀକୁ ଡେଇଁ ପଡ଼ି ଆତ୍ମହତ୍ୟା କଲେ । ଆଜିକାଲି ବାରବାଟୀ ଜିଲ୍ଲାର ସୀମା ମଧ୍ୟରେ ରାଣୀ-ପୋଖରୀ ନାମରେ ଗୋଟିଏ ତଡ଼ାଗ ଅଛି । ପ୍ରବାଦ ଅଛି—

ଆଇଲା କଳା ପାହାଡ଼, ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି,
ସୁବର୍ଣ୍ଣ ଥାଳରେ ମୁହଁ ପରଶିଲେ

(ମୁକୁନ୍ଦ ଦେବ—ଗ୍ରାମ୍ୟରୂପ) ମୁକୁନ୍ଦଦେବଙ୍କ ରାଣୀ । ]

ମୁକୁନ୍ଦରାମ ଚକ୍ରବର୍ତ୍ତୀ—ଦେ. ବି. (ନାମ)—ବଙ୍ଗ ଭାଷାରେ କବି-
Mukundarama chakrabartti କଙ୍କଣ ଚଣ୍ଡୀର ରଚୟିତା କବି—Name of a Bengalee poet of the 16th and 17th centuries A. D. [ଦ୍ର—ଏହାଙ୍କ ଜନ୍ମ ବର୍ଦ୍ଧମାନ ଜିଲ୍ଲାରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ହୋଇଥିଲା । ବର୍ଦ୍ଧମାନର ତଦାନୀନ୍ତନ ନବାବଙ୍କ ଅତ୍ୟାଚାରିତ ହୋଇ ଏ ଜନ୍ମଭୂମି ଛାଡ଼ି ମେଦିନୀପୁର ଜିଲ୍ଲାର ଆଡ୍ରା ଗ୍ରାମରେ ବାସ କଲେ ଓ ସେଠାର ରାଜା ଏହାଙ୍କୁ ରାଜପୁତ୍ରଙ୍କ ଶିକ୍ଷକ ନିଯୁକ୍ତ କଲେ । ଏ ସେହିଠାରେ ବଙ୍ଗ ଭାଷାରେ 'ଚଣ୍ଡୀ' ରଚନା କଲେ । ଉକ୍ତ ରାଜା ତାଙ୍କୁ କବି-କଙ୍କଣ ଉପାଧି ଦେଇଥିଲେ ଓ ତାଙ୍କ ଗ୍ରନ୍ଥ 'କବିକଙ୍କଣ ଚଣ୍ଡୀ' ନାମରେ ପ୍ରସିଦ୍ଧ । ରାମାୟଣ ରଚୟିତା କୃତ୍ତିବାସଙ୍କ ପରବର୍ତ୍ତୀ କାଳର ଏ କବି । ତାଙ୍କ ଭାଷା ଅପେକ୍ଷାକୃତ ମାର୍ଜିତ ଓ ତାଙ୍କ ରଚନା ବିବିଧ ଛନ୍ଦୋବଦ୍ଧ—ସୁବଳ-ଚନ୍ଦ୍ର ।]

ମୁକୁନ୍ଦି—ପ୍ରାଦେ. (ବାଲେଶ୍ୱର) ବି—ସାମୁଦ୍ରିକ ମତ୍ସ୍ୟବିଶେଷ—
Mukundi A kind of sea-fish. (ଦ୍ର—ଏହା ପ୍ରାୟ (ମକୁନ୍ଦି—ଅନ୍ୟରୂପ) ଚାରି ପାଞ୍ଚ ଇଞ୍ଚ ଲମ୍ବ, କାଣ୍ଟଯୁକ୍ତ ଓ ଖାଇବାକୁ ରୁଚିକର ।)

ମୁକୁମ୍—ସଂ. ଅ (ମୁର୍ ଧାତୁ+ଘବ. ଭୁମ୍)—୧ । ନିର୍ବାଣମୁକ୍ତି
Mukum (ସୁବଳଚନ୍ଦ୍ର)—1. Final beatitude. ୨ । ପ୍ରେମ (ସୁବଳଚନ୍ଦ୍ର)—2. Love.

ମୁକୁର—ସଂ. ବି (ମକ୍ ଧାତୁ=ଭୂଷିତ କରିବା+କରଣ. ଉର)—
Mukura ୧ । ଦର୍ପଣ—1. Mirror. ୨ । ବକୁଳ ବୃକ୍ଷ—2. The Bakula tree. ୩ । କୁମ୍ଭକାରଦଣ୍ଡ—3. The potter's staff. ୪ । ମୁକୁଳ (ଦେଖ)—4. Mukula (See) ୫ । ମଲ୍ଲିକା ପୁଷ୍ପ ଗୁଚ୍ଛ—5. A bunch of jasmine flowers.

ମୁକୁଳ—ସଂ. ବି. (ମକ୍ ଧାତୁ=ଭୂଷିତ କରିବା+କର୍ତ୍ତୃ. ଉଳ,
Mukula କିମ୍ବା ମୁଚ୍ ଧାତୁ=ମୋଚନ କରିବା+କର୍ତ୍ତୃ. ଉଳ)—୧ । ଫୁଲର କଢ଼ି—1. Bud; blossom. ୨ । ଈଷତ୍‌ଖୋଲୁଥିବା ପୁଷ୍ପ; ଈଷଦ୍‌ବିକଶିତ କଳିକା—2 An opening bud. ୩ । ଶରୀର; ଦେହ—3. The body. ୪ । ଆତ୍ମା—4. Soul.
ଦେ. ବି (ସଂ. ମୁଚ୍ ଧାତୁ)—୧ । ଖେତରୁ କଟା ହୋଇ ଖଳାକୁ ଆଣିବା ସମୟରେ ବନ୍ଧା ହୋଇଥିବା ଧାନ ବିଡ଼ା ବା ଶସ୍ୟଗୋଛାମାନଙ୍କୁ ଖଳାରେ ଏକତ୍ର ରଖିବାପାଇଁ ବା ଗଦା ମାରିବାପାଇଁ ଅଥବା ବେଙ୍ଗଳା ପକାଇବା ପାଇଁ ମୁକୁଳା କରିବା—1. Act of untying the sheaves of corn gathered by the reapers at the threshing floor before stacking काटानी डावी, बरहिया or threshing them. ୨ । ଶସ୍ୟକଟାଳିମାନେ ବିଲରୁ ଧାନ ଆଦି କାଟି ତାହା ଗୋଛା ଗୋଛା କରି ଖଳାକୁ ବୋହି ଆଣିବା ପରେ ଉକ୍ତ ଗୋଛାମାନ ଫିଟାଇ ସେଥିରୁ କେତେକ ଅଂଶ କଟାଳି-ମାନଙ୍କୁ ପାରିଶ୍ରମିକ ଦିଆଯିବା—2. Giving of one-tenth or one-twelvth of the harvest to the reapers;the operation of untying the bundles or sherves of corn brought into the threshing floor by the reapers, after

harvesting and giving a portion of each bundle to each reaper for his or her remuneration ୩ । କିଲରୁ କଟାଳି ଯେଉଁ ଶସ୍ୟ ଗୋଛ ବାନ୍ଧି ଖଳାକୁ ଆଣେ ତହିଁରୁ ଯେଉଁ ଅଂଶ କଟାଳିକୁ ପାରିଶ୍ରମିକରୂପେ ଦିଆଯାଏ—3. The portion out of a bundle of corn-sheaves brought into the threshing floor by a reaper after harvesting, which is given to him or her as remuneration. ଦେ. ବିଣ. ( ସଂ. ମୁକୁଳିତ ବା ମୁକ୍ତ )—୧ । ଫିଟା; ମେଲା; ବନ୍ଧନ-ରହିତ (ଯଥା—କେଶ)—1. Dishevelled; untied; unbound. (ଉ—କେଶ କରି ମୁକୁଳ, ଠେକି ବାହୁ-ଯୁଗଳ, ବିଶରି ମହାବିକଳ—ଜଗନ୍ନାଥ ଚରିତ ସ୍ୱାମୀପୁଣି ।) ୨ । ଉନ୍ମୁକ୍ତ; ବନ୍ଧନରୁ ମୁକ୍ତ—2. Released from a bond. ( ଉ—ହିଂଗୁଣ୍ଡୁ କୁହନ୍ତି ମୁକୁଳ, ଜନ୍ମ ମରଣ ବେଳୁବେଳ—ପ୍ରାଚୀ. କାର୍ତ୍ତିକମାହାତ୍ମ୍ୟ ।)

**ମୁକୁଳବତୀ**—ସଂ. ବି ( ସ୍ତ୍ରୀ )—୧ । କଳିକାବତୀ—1. Having
Mukulabati buds. ୨ । ଅଦୃଷ୍ଟରଜା (ଦେଖ)—Adrushtarajā (See).

**ମୁକୁଳା**—ଦେ. ବିଣ (ସଂ. ମୁକ୍ତ)—୧ । ଖାଲି; ଜନଶୂନ୍ୟ (ଘର)—
Mukulā 1. Empty; untenanted.
খোলা খুলা ୨ । ଖୋଲା; ଯେଉଁ ସ୍ଥାନକୁ କୌଣସି ଦ୍ରବ୍ୟ ଆଦି ଅଧିକାର କରି ନ ଥାଏ—2. Unoccupied (space or place); open; bare. ୩ । କବାଟ ବନ୍ଦ ହୋଇ ନ ଥିବା ( ଘର )—3. ( House ) With the door open. ୪ । ମୁକ୍ତ ; ଉନ୍ମୁକ୍ତ—4. Released; freed. ୫ । ସାହା ଖରଚୀ; ମୁକ୍ତ ହସ୍ତ—5. Spendthrift. ୬ । ସରଳ; ଯେ ଗୁପ୍ତ କଥାକୁ ଲୁଚାଇ ରଖି ନ ପାରେ—6. Frank; plain-spoken. ୭ । ଅସାବଧାନ; ଅସତର୍କ—7 Unwary; careless. ୮ । ମୁକୁଳ (ଦେଖ)—8. Mukula (See).

**ମୁକୁଳା(ଳେ)ଇବା**—ଦେ. କ୍ରି. (ସଂ. ମୁଚ୍ ଧାତୁ; ମୁକୁଳିବା କ୍ରିୟାର
Mukulā(le)ibā ଣିଜନ୍ତ ରୂପ)—୧ । ବନ୍ଧନରୁ ମୁକ୍ତ କରିବା-
খোলা 1. To liberate; to release from a bond.
खोलना (ଉ—ସୁଯୋଧନ ରଜାକୁ ଅଣ ମୁକୁଳାଇ । କୃଷ୍ଣସିଂହ. ମହାଭାରତ. ବନ ।)
୨ । ଫିଟାଇବା—2. To untie; to unbind. (ଉ—ଫେଣ୍ଟାବାଳ ମୁକୁଳାଇ ବସିଅଛି କେହି । ରାଧାନାଥ. ମହାଯାତ୍ରା ।) ୩ । ଋଣ ପରିଶୋଧ କରି ବନ୍ଧା ଦିଆ ଯାଇ ଥିବା ବସ୍ତୁକୁ ମହାଜନ ଠାରୁ ମୁକ୍ତ କରି ଆଣିବା—3. To redeem a thing from mortgage or pledge by paying off the debt. ୪ । କାରାମୁକ୍ତ କରିବା—4. To release from confinement. ( ଉ—ଦେବ ମୁକୁଳାଇ ସ୍ୱହସ୍ତ ହୋଇ ୯ ଶ୍ରେଣୀର ନେଲା ହୃଦୟ । ରାଧାନାଥ. ଉର୍ବଶୀ ।) ୫ । କଟାଳିମାନେ କ୍ଷେତରୁ ଆଣିଥିବା ଧାନହଳାର ଗୋଛ-ମାନଙ୍କୁ ଫିଟାଇ ତହିଁରୁ କଟାଳିମାନଙ୍କୁ ପାରିଶ୍ରମିକ କାଢ଼ି ଦେବା—5. To untie the bundles or sheaves of corn harvested by the reapers in order to parcel out the share for their remuneration.

**ମୁକୁଳି**—ଦେ. ବିଣ—ମୁକୁଳ (୧, ୨) ( ଦେଖ )
Mukuli Mukula (1, 2) ( See )

**ମୁକୁଳିତ**—ସଂ. ବିଣ. (ମୁକୁଳ+ଜାତାର୍ଥେ.ଇତ)—୧ । ଅର୍ଦ୍ଧ ମୁଦ୍ରିତ—
Mukulita 1. Half-closed. ୨ । ଅର୍ଦ୍ଧ ବିକଶିତ—2. Half-opened. ୩ । ମୁକୁଳ ଯୁକ୍ତ—3. Budded; blossomed.

**ମୁକୁଳିବା**—ଦେ. କ୍ରି. (ସଂ ମୁଚ୍ ଧାତୁରୁ ମୁକ୍ତ)—୧ । ମୁକ୍ତି ପାଇବା;
Mukulibā ମୁକ୍ତିଲାଭ କରିବା—1. To be set free; to
মুক্তি পাওয়া be liberated; to be freed.
छूट जाना, छुटकारा पाना ୨ । ଆସନ୍ନ ବିପଦରୁ ଉଦ୍ଧାର ପାଇବା—2. To be delivered from an impending danger. ୩ । କାରାମୁକ୍ତ ହେବା—3. To be released from confinement.

**ମୁକୁଳୋତ୍ପତ୍ତି**—ସଂ. ବି. (୬ଷ୍ଠୀ ତତ୍; ମୁକୁଳ+ଉତ୍ପତ୍ତି)—ଗଛରୁ କଢ଼ି
Mukulotpatti ବାହାରିବା—The coming out of
(ମୁକୁଳୋଦ୍ଗମ, ମୁକୁଳୋଦ୍ଭବ—ଅନ୍ୟରୂପ) buds from a tree.

**ମୁକୁଶା ବାଜ(ଦ୍)**—ଦେ. ବି—ବଙ୍ଗ ଦେଶର ଗୋଟିଏ ନଗର—
Mukuśā bāj(d) Mursidabad; a town in Bengal
মুর্শিদাবাদ [ଦ୍ର—ମୁର୍ଶିଦ୍ କୁଲୀ ଖାଁ ଙ୍କ ନାମରୁ ଏହା ମୁର୍ଶିଦାବାଦର
मुरसिदाबाद ପ୍ରାଚୀନ ନାମ । ଏଠାରେ ତସରଲୁଗା ବୁଣା ହୁଏ ।]

**ମୁକୁଶା ବାଜି(ଦୀ)**—ଦେ. ବିଣ—ମୁର୍ଶିଦାବାଦରେ ପ୍ରସ୍ତୁତ (ପାଟ ଲୁଗା)—
Mukuśā bāji(dī) (silk cloth) Made in Mursi-
মুর্শিদাবাদী मुरसिदाबादी dābād.

**ମୁକୁଶିଆଳି**—ଦେ ବି. ( ସଂ. ମୁଖଶାଳା )—ଦେଉଳର ସମ୍ମୁଖାର୍ଦ୍ଧ
Mukuśiāli ମଣ୍ଡପ—The front half of a temple.
(ମୁକୁଶାଳି—ଅନ୍ୟରୂପ) [ଦ୍ର—'ଦେଉଳକୁ ମୁକୁଶିଆଳି ବଳଯିବା
মুখশালা ନ୍ୟାୟ'—ଢଗ । ସାଧାରଣତଃ ଦେଉଳଠାରୁ ମୁକୁଶିଆଳି
जगमोहन ଛୋଟ ହୁଏ କିନ୍ତୁ ଦେଉଳ ଅପେକ୍ଷା ମୁକୁଶିଆଳି ବଡ଼ ହେଲେ ତାହା ଅସୁନ୍ଦର ଦେଖାଯାଏ । ଅଧିକରୁ ବ୍ୟୟ ବେଶୀ ହେବା ସ୍ଥଳରେ ଏ ଢଗ ବୋଲାଯାଏ ।]

**ମୁକୁଷ୍ଠ**—ସଂ. ବି—ବଣ ମୁଗ (ହି. ଶ)—A kind of wild
Mukushtha Muga (grain).
(ମୁକୁଷ୍ଠକ—ଅନ୍ୟରୂପ)

ମୁକ୍କର—ସ. ବ—ମୁକର ( ଦେଖ ).
Mukkara. Mukara ( See )

ମୁକ୍କା—ଦେ. ବ—ମୁକା ( ଦେଖ )
Mukkā Mukā ( See )

ମୁକ୍ତ—ସ. ବି. ( ମୁଚ୍ ଧାତୁ=ମୋଚନ କରିବା+କର୍ମ. ତ )—
Mukta ୧ । ମୁକ୍ତି ପ୍ରାପ୍ତ; ଲବ୍ଧ ମୋକ୍ଷ—1. Liberated; delivered; released. ୨ । ସ୍ୱାଧୀନତା ପ୍ରାପ୍ତ—2. Freed; emancipated. ୩ । (+କର୍ମ. ତ) ପରିତ୍ୟକ୍ତ—3. Discharged. ୪ । ପୃଥକ୍ କୃତ—4. Detached from; extricated. ୫ । ମୁକୁଳା; ଉନ୍ମୁକ୍ତ—5. Loosened; untied; loose. ୬ । ଉଦ୍‌ଘାଟିତ; ମେଲା; ଖୋଲା—6. Open; opened. ୭ । ଅବାଧ; ବାଧାରହିତ—7. Unobstructed; free. ୮ । ନଗ୍ନ; ଲଙ୍ଗଳା—8. Naked; shorn of clothes. [ଦ୍ର—ଏହାର ଅପଭ୍ରଂଶ ମୁକୁଳା । ]

ମୁକ୍ତକ—ସ.ବି. (ମୁକ୍ତ=ପରିତ୍ୟକ୍ତ+କ)—୧ । ସମାସରହିତ ରଚନା-
Muktaka ବିଶେଷ—1. A kind of composition without compounds. ୨ । ବର୍ଚ୍ଛା, ବଲ୍ଲମ ପ୍ରଭୃତି କ୍ଷେପଣୀୟ ଅସ୍ତ୍ର—2. Missiles.

ମୁକ୍ତ କଚ୍ଛ—ସ. ବିଣ. ପୁଂ (ବହୁବ୍ରୀହି; ମୁକ୍ତ ହୋଇଅଛି କଚ୍ଛା ଯାହାର)--
Mukta kachchha ଯେଉଁ ଲୋକ ଲୁଗା ପିନ୍ଧି କଚ୍ଛ ମାରି ନ
(ମୁକ୍ତ କଚ୍ଛା—ସ୍ତ୍ରୀ) ଥାଏ, ଅର୍ଥାତ୍, ଫାଳଟା କରି ଲୁଗା ପିନ୍ଧିଥାଏ—Wearing a cloth round the waist without having one end tucked down the privities. ବି. ପୁଂ—ବୌଦ୍ଧଧର୍ମାବଲମ୍ବୀ ସମ୍ପ୍ରଦାୟ ବିଶେଷ ( ଏମାନେ କଚ୍ଛ ମାରୁ ନ ଥିବାରୁ )—Name applied to a sect of Buddhists.

ମୁକ୍ତ କଞ୍ଚୁକ—ସ. ବିଣ. ପୁଂ. (ବହୁବ୍ରୀହି; ମୁକ୍ତ ହୋଇଅଛି କଞ୍ଚୁକ
Mukta kañchuka ଯାହାର)—୧ । କମୈକ ବା କାଛ ଛାଡ଼ି
ମୁକ୍ତ କଞ୍ଚୁକା } ସ୍ତ୍ରୀ
ମୁକ୍ତ କମୈକା }
ଥିବା (ସାପ)—1. Having cast its skin or slough (said of snake).
(ମୁକ୍ତ କମ୍ବୋକ—ଅନ୍ୟରୂପ) ୨ । ଯେ ଦେହରୁ ସାଞ୍ଜୁ କାଢ଼ିଅଛି 2. Having put off one's armour or coat of mail. ୩ । ଯେ ଦେହରୁ ଜାକେଟ୍ ବା କାଞ୍ଚୁଲା କାଢ଼ିଅଛି—3. Having taken off the jacket or bodice from the body.

ମୁକ୍ତ କଣ୍ଠ—ସ. ବି. ( କର୍ମଧା; ମୁକ୍ତ+କଣ୍ଠ )—୧ । ଉଚ୍ଚୈଃସ୍ୱର;
Mukta kantha ଅନବରୁଦ୍ଧ କଣ୍ଠ ସ୍ୱର । ସ.ବିଣ.ପୁଂ (ବହୁବ୍ରୀହି)--
(ମୁକ୍ତ କଣ୍ଠା—ସ୍ତ୍ରୀ) or loud voice. ୨ । ଅନବରୁଦ୍ଧ କଣ୍ଠସ୍ୱର ବିଶିଷ୍ଟ— 2. Having a loud or unchoked voice.

ମୁକ୍ତ କଣ୍ଠରେ—ଦେ. କ୍ରି. ବିଣ—୧ । ଅନବରୁଦ୍ଧ କଣ୍ଠ ସ୍ୱରରେ; ସ୍ପଷ୍ଟ
Mukta kanthare ସ୍ୱରରେ—1. In clear or unchoked voice; in an outspoken manner.
(ମୁକ୍ତ କଣ୍ଠେ—ଅନ୍ୟରୂପ)
मुक्त कण्ठे
मुक्त कण्ठसे
୨ । ଉଚ୍ଚୈଃସ୍ୱରରେ; ବଡ଼ ପାଟି କରି— 2. Loudly; aloud. (ଉ—ସତ୍ୟମନ୍ତ୍ରୀ ଲୋକେ ମୁକ୍ତ କଣ୍ଠେ କଲେ ସ୍ୱରାଜ୍ୟ ପ୍ରଶଂସାବାଦ । ଗ୍ରାଧାନାଥ. ଯାଜ୍ଞସୀ ।)

ମୁକ୍ତ କେଶ—ସ. ବ. (କର୍ମଧା; ମୁକ୍ତ+କେଶ)—ଅଲୁଳାୟିତ କୁନ୍ତଳ;
Mukta kesa ମୁକୁଳା ବାଳ; ଉନ୍ମୁକ୍ତ କେଶ—Dishevel-
(ମୁକ୍ତକେଶା, ମୁକ୍ତକେଶୀ—ସ୍ତ୍ରୀ) led hair; hair let loose; flowing hair. ବିଣ. ପୁଂ. (ବହୁବ୍ରୀହି)—ଉନ୍ମୁକ୍ତ କେଶ ବିଶିଷ୍ଟ; ଯାହାର ବାଳ ମୁକୁଳା ହୋଇଅଛି—Having one's hair dishevelled.

ମୁକ୍ତ କେଶୀ—ସ.ବି.ସ୍ତ୍ରୀ—(ଅଲୁଳାୟିତ କେଶବିଶିଷ୍ଟା) କାଳୀ ଦେବୀ —
Mukta kesī Goddess Kālī (represented with flowing hair). ପ୍ରାଦେ. (ବାଲେଶ୍ୱର) ବି. (ଭୂଲ. ବ. ଏହି ଅର୍ଥରେ ଏହି ଶବ୍ଦ; ସ. ମୁକ୍ତକେଶୀ)—ବଡ଼ ବାଇଗଣି ରଙ୍ଗର ବାଇଗଣ—A species of big brinjal of violet colour.

ମୁକ୍ତ ଚନ୍ଦନ—ସ. ବ—ରକ୍ତ ଚନ୍ଦନ (ହ୍ର. ଶ)—
Mukta chandana Red sandal wood.

ମୁକ୍ତ ଦ୍ୱାର—ସ. ବ (କର୍ମଧା; ମୁକ୍ତ + ଦ୍ୱାର)—୧ । ମେଲା ହୋଇଥିବା
Mukta dwāra କବାଟ—1. Open door. ୨ । ଅବାଧ ଗମନ—2. Free access and egress. ବିଣ (ବହୁବ୍ରୀହି)—ଯେଉଁ ଘରର କବାଟ ମେଲା ଥାଏ—(a house) With the door open.

ମୁକ୍ତପଥ—ସ. ବ ( କର୍ମଧା; ମୁକ୍ତ+ପଥ )—ଅବାରିତ ପଥ—
Muktapatha Unobstructed or free road.

ମୁକ୍ତ ପବନ—ସ. ବ ( କର୍ମଧା; ମୁକ୍ତ+ପବନ )—ଖୋଲା ବାଉଁଶ;
Mukta pabana ଯେଉଁ ବାୟୁ ବହିବା ବେଳେ କିଛି ବାଧା
(ମୁକ୍ତବାୟୁ—ଅନ୍ୟରୂପ) ପାଇ ନ ଥାଏ—Free air; air which has met with no obstruction.

ମୁକ୍ତ ପୁରୁଷ—ସ. ବ ( କର୍ମଧା; ମୁକ୍ତ+ପୁରୁଷ )—ଜୀବନ୍ମୁକ୍ତ ବ୍ୟକ୍ତି;
Mukta purusha ଯେଉଁ ବ୍ୟକ୍ତି ବିଷୟବାସନାରୁ ମୁକ୍ତ ଅଟେ —A person free from worldly attachment.

ମୁକ୍ତ ବନ୍ଧନ—ସ. ବିଣ. ପୁଂ ( ବହୁବ୍ରୀହି )—ଯାହାର ବନ୍ଧନ
Mukta bandhana ଖୋଲା ହୋଇଅଛି—Having one's bonds loosened.

ମୁକ୍ତ(କ୍ତା)ବର୍ଚ୍ଚାଃ—ସ. ବ—ମୁକ୍ତାକାମା; ଯୁଦ୍ଧାଖିଆ ବର୍ଗର ବର୍ଷାୟୁ ବନ୍ୟ
Mukta(ktā)barchchāḥ ଶାକ ବିଶେଷ—Acalypha
(ଅନ୍ୟ ସ. ନାମ—ରୁଦ୍ରା) Indica ( plant ). [ ଦ୍ର—ଏହାର
मुक्तावर्षि; मुक्ताझूरी
रूपी; आदितमञ्जरी
ପତ୍ର ଏକୋଉର ଓ ପତ୍ରର ଧାର କଟା-କଟା; ଏହା ଔଷଧରେ ଲାଗେ । ଫୁଲର ତଳ ପାଖୁଡ଼ା ମୁଣ୍ଡାର କାନ ପରି ତଳକୁ ଝୁଲି ଥାଏ । ଏହା ବମନକାରକ, ବିରେଚକ ଓ ବାତ ଶ୍ଳେଷ୍ମ ନାଶକ; ଏହା

କାଶ, ଶ୍ୱାସ, ଜ୍ୱର ଓ ବିଷ ରୋଗରେ ପ୍ରଯୁକ୍ତ ହୁଏ । ଏହାର ରସ ପାନ କଲେ କଫ ନିର୍ଗତ ହୁଏ ଓ ବମନ ହୁଏ । ଏହା ବାହ୍ୟ ଗୁହ୍ୟଦେଶରେ ପ୍ରଲେପ ଦେଲେ ଶିଶୁମାନଙ୍କର ବିରେଚନ ହୁଏ—ଦ୍ରବ୍ୟଗୁଣ । ]

**ମୁକ୍ତବାସ**—ସଂ. ବି—ଶୁକ୍ତି; ଶାମୁକା ( ହି. ଶ )—Oyster.
Muktabāsa (ମୁକ୍ତମାଳା—ଅନ୍ୟରୂପ)

**ମୁକ୍ତ ବେଣୀ**—ସଂ. ବି ( କର୍ମଧା; ମୁକ୍ତ+ବେଣୀ )—୧ । ଉନ୍ମୁକ୍ତ ବେଣୀ; ଯେଉଁ ବେଣୀ ଗୁନ୍ଥା ନ ହୋଇ ଲମ୍ବି ଥାଏ—1. The plaited hair hanging down; pigtail. ୨ । ଉନ୍ମୁକ୍ତ ବା ଅବାଧ ସ୍ରୋତ—2. Unobstructed current. ୩ । ତ୍ରିବେଣୀ; ଗଙ୍ଗା ଯମୁନା ସରସ୍ୱତୀଙ୍କ ସଙ୍ଗମ—3. The place where the current of the three rivers ( the Ganges, the Jamuna and the Saraswatī) flow unobstructed. ସଂ. ବିଣ. ସ୍ତ୍ରୀ—ଯାହାର ବେଣୀ ବନ୍ଧା ନ ହୋଇ ତଳକୁ ଲମ୍ବିଅଛି—(a woman) With the plaited hair hanging down.
Mukta beṇi

**ମୁକ୍ତଭାଷ**—ସଂ. ବି ( କର୍ମଧା; ମୁକ୍ତ+ଭାଷ )—ସ୍ପଷ୍ଟ କଥା—Clear words.
Muktabhāsha

**ମୁକ୍ତ ମଣ୍ଡପ**—ଦେ. ବି ( ସଂ. ମୁକ୍ତିମଣ୍ଡପ )—ମୁକ୍ତିମଣ୍ଡପ (ଦେଖ)—Muktimaṇḍapa ( See )
Mukta maṇḍapa
মুক্তি মণ্ডপ मुक्त मण्डप

**ମୁକ୍ତଲଜ୍ଜ**—ସଂ. ବିଣ. ପୁଂ ( ବହୁବ୍ରୀହି; ମୁକ୍ତ+ଲଜ୍ଜା )—ତ୍ୟକ୍ତଲଜ୍ଜ; ନିର୍ଲଜ୍ଜ ( ହି. ଶ )—Shameless.
Muktalajja
(ମୁକ୍ତଲଜ୍ଜା—ସ୍ତ୍ରୀ)

**ମୁକ୍ତଶୃଙ୍ଗ**—ସଂ. ବି ( ବହୁବ୍ରୀହି )—ରୋହି ମାଛ ( ହି. ଶ )—Rohi fish.
Muktaśṛuṅga

**ମୁକ୍ତସଙ୍ଗ**—ସଂ. ବିଣ. ପୁଂ ( ବହୁବ୍ରୀହି, ମୁକ୍ତ ହୋଇଅଛି ସଙ୍ଗ ବା ବିଷୟାସକ୍ତି ଯାହାଙ୍କ ଦ୍ୱାରା )—୧ । ବିଷୟ-ସଙ୍ଗତ୍ୟାଗୀ; ବିଷୟାସକ୍ତିବର୍ଜିତ—1. Freed from worldly attachment. ୨ । ନିଷ୍ପୃହ; ବାସନାରହିତ—2. Disinterested. ବି—ପରିବ୍ରାଜକ—An itinerant recluse.
Muktasaṅga

**ମୁକ୍ତସାର**—ସଂ. ବି—କଦଳୀ ଗଛ ( ହି. ଶ )—Plantain tree.
Muktasāra

**ମୁକ୍ତ ହସ୍ତ**—ସଂ. ବି ( କର୍ମଧା; ମୁକ୍ତ+ହସ୍ତ )—୧ । ମୁଠା ହୋଇ ନ ଥିବା ହାତ—1. Open palm. ୨ । ଦାନ (ବଦ୍ଧମୁଷ୍ଟି—ବିପରୀତ) କରିବାକୁ ଅକୁଣ୍ଠିତ ହସ୍ତ—2. A free or munificent hand. ବିଣ. ପୁଂ (ବହୁବ୍ରୀହି)—(ମୁକ୍ତ ହସ୍ତା—ସ୍ତ୍ରୀ) ଯେ ବ୍ୟୟ କରିବାକୁ କୁଣ୍ଠିତ ନୁହେଁ; ଦାନଶୀଳ; ବଦାନ୍ୟ—Liberal; munificent; open-handed.
Mukta hasta

**ମୁକ୍ତ ହସ୍ତତା**—ସଂ. ବି ( ମୁକ୍ତହସ୍ତ+ଭାବ ତା )—ବଦାନ୍ୟତା—Munificence.
Mukta hastatā

**ମୁକ୍ତା**—ସଂ. ବି (ମୁକ୍ତ+ସ୍ତ୍ରୀ. ଆ)—୧ । ମୋତି; ଶୁକ୍ତିରୁ ବା ଶାମୁକାରୁ ଜାତ ମଣି—1. Pearl. [ଦ୍ର—ଏଥିର ଅପଭ୍ରଂଶ ମୁକୁତା । ହିନ୍ଦୁଶାସ୍ତ୍ର ଅନୁସାରେ ମୁକ୍ତା ଶୁକ୍ତି ବା ଶାମୁକା, ଶଙ୍ଖ, ଗଜମସ୍ତକ, ଭେକମସ୍ତକ (ମତାନ୍ତରରେ ମେଘ), ବରାହ ମସ୍ତକ, ସର୍ପମସ୍ତକ, ବେଣୁ ବା ବଂଶବୃକ୍ଷ ଓ ମତ୍ସ୍ୟମସ୍ତକରୁ ଉତ୍ପନ୍ନ ହୁଏ । ଏହା ନବରତ୍ନ ମଧ୍ୟରେ ଏକତମ । ଏହା ଅଳଙ୍କାରରେ ଲାଗେ ଏବଂ ଜାରିତ ଓ ଶୋଧିତ ହୋଇ ଔଷଧରେ ମଧ୍ୟ ବ୍ୟବହୃତ ହୁଏ । ] ୨ । ବେଶ୍ୟା—2. Harlot; prostitute. ୩ । ପୁଂଶ୍ଚଳୀ—3. An adulteress. ଦେ. ବି—ମୁକ୍ତାମଣି ନାମ୍ନୀ ସ୍ତ୍ରୀର ଡାକନାମ—Name for calling a woman, named Muktāmaṇi. ସଂ. ବିଣ. ସ୍ତ୍ରୀ ( ମୁକ୍ତର ସ୍ତ୍ରୀଲିଙ୍ଗ )—୧ । ନଗ୍ନା—1. Naked ( feminine). ୨ । ଅବଦ୍ଧା—2. Untied; loosened; unbound.
Muktā

**ମୁକ୍ତା କଳାପ**—ସଂ. ବି ( ଷଷ୍ଠୀ ତତ୍ )—୧ । ମୁକ୍ତା ସମୂହ—1. A collection of pearls. ୨ । ମୁକ୍ତାହାର—2. A bead or string of pearls.
Muktā kaḷāp

**ମୁକ୍ତାକେଶୀ**—ସଂ. ବି—ଏକପ୍ରକାର ଉତ୍କୃଷ୍ଟ ବାଇଗଣ ( ହି. ଶ )—A kind of excellent brinjal.
Muktākeśī

**ମୁକ୍ତା ଖଚିତ**—ସଂ. ବିଣ (ତୃତୀୟା ତତ୍)—ଯେଉଁ ଅଳଙ୍କାରରେ ମୋତି ବସିଅଛି—Set with pearls.
Muktā khachita
(ମୁକ୍ତା ଜଡ଼ିତ—ଅନ୍ୟରୂପ)

**ମୁକ୍ତାଗାର**—ସଂ. ବି ( ଷଷ୍ଠୀ ତତ୍, ମୁକ୍ତା+ଆଗାର )—ଯେଉଁ ଶୁକ୍ତି ବା ଶାମୁକା ମଧ୍ୟରେ ମୁକ୍ତା ଜନ୍ମେ—Pearl-oyster.
Muktāgāra
(ମୁକ୍ତାଗୃହ, ମୁକ୍ତାପ୍ରସୂ, ମୁକ୍ତାମାତା—ଅନ୍ୟରୂପ)

**ମୁକ୍ତାତ୍ମା**—ସଂ. ବି ( କର୍ମଧା, ମୁକ୍ତ+ଆତ୍ମନ୍, ୧ମା. ୧ବ )—ସଂସାର-ରୂପ ବନ୍ଧନରୁ ମୁକ୍ତିପ୍ରାପ୍ତ ଆତ୍ମା—Soul emancipated from the bondage of matter.
Muktātmā

**ମୁକ୍ତାପନ୍ତି**—ଦେ. ବି ( ସଂ. ମୁକ୍ତାପଂକ୍ତି )—ଧାଡ଼ି ଧାଡ଼ି ସଜ୍ଜିତ ମୋତି—Row of pearls.
Muktāpanti
মুক্তার সারী मुक्तापन्ति

**ମୁକ୍ତା ଫଳ**—ସଂ. ବି ( ରୂପକ )—୧ । ମୁକ୍ତା; ମୌକ୍ତିକ—1. Pearl. ୨ । ସୀତାଫଳ; ଆତ—2. The custard apple. ୩ । କର୍ପୂର—3. Camphor. ୪ । ବୋପଦେବ କୃତ ଗ୍ରନ୍ଥବିଶେଷ—4. Name of a treatise by Bopadeba. ୫ । ନଅର କୋଳି ( ହି. ଶ. ) ( ଦେଖ )—5. Na-ara koḷi ( See)
Muktā phaḷa

**ମୁକ୍ତାବଳି**—ସଂ. ବି ( ଷଷ୍ଠୀ ତତ୍; ମୁକ୍ତାର ଆବଳି )—୧ । ମୁକ୍ତାସମୂହ—1. A collection of pearls. ୨ । ମୁକ୍ତାର ମାଳା—2. A string of pearls.
Muktābaḷi

**ମୁକ୍ତାଭା**—ସଂ. ବି—ତ୍ରିପୁର ମଲ୍ଲିକା ( ହି. ଶ )—Treble-petalled jasmine.
Muktābhā

ମୁକ୍ତା ମଜା(ଞ୍ଜି)—ଦେ. ବି—ରିଠା ( ଦେଖ )—Ritha ( See )
Muktā majā(ñji) रिठा **रिठा(ठी)**

ମୁକ୍ତାମଣି—ସଂ. ବି ( ରୂପକ )—ମୁକ୍ତା—Pearl. ଦେ. ବି. ସ୍ତ୍ରୀ—
Muktāmaṇi ସ୍ତ୍ରୀଙ୍କୁ ଦିଆଯିବା ନାମ—A name given to females.

ମୁକ୍ତାମାଳା—ସଂ. ବି(୬ଷ୍ଠୀ ତତ୍, ମୁକ୍ତାର ମାଳା)—ମୁକ୍ତାଗ୍ରଥିତ ହାର—
Muktāmāḷā A necklace or string of pearls.
( ମୁକ୍ତାମାଳ—ଦେଶଜ ରୂପ )

ମୁକ୍ତା ମୋଦକ—ସଂ. ବି—ମୋତିଚୁର ଲଡ୍ଡୁ ( ହି. ଶ )—
Muktā modaka A kind of sweet meat ball.

ମୁକ୍ତାର୍—ବୈଦେ. ବି (ଅ. ମୁଖ୍ତାର୍ )—୧ । ଅଦାଲତରେ ମକଦ୍ଦମାର
Muktār ଯାବତୀୟ କାର୍ଯ୍ୟ କରିବା ପାଇଁ ପକ୍ଷମାନଙ୍କ ପ୍ରତିନିଧି—
मोक्तार 1. A representative of a party in a
**मुख्तार** court. ୨ । ନିମ୍ନଶ୍ରେଣୀର ଆଇନ୍ ବ୍ୟବସାୟୀ—
ମୁକ୍ତିଆର } ଅନ୍ୟରୂପ 2. A lawyer of the lowest grade.
ମୁକ୍ତ୍ୟାର } ୩ । କ୍ଷମତାପ୍ରାପ୍ତ କାରପରଦାଜ; ଏଜେଣ୍ଟ୍—
3. Authorised agent. [ ଦ୍ର—ସାଧାରଣତଃ ସମସ୍ତ କାର୍ଯ୍ୟ କରିବା ପାଇଁ କ୍ଷମତାପ୍ରାପ୍ତ ବ୍ୟକ୍ତିକୁ ଆମ୍-ମୁକ୍ତାର ଓ କାର୍ଯ୍ୟବିଶେଷ କରିବା ପାଇଁ କ୍ଷମତାପ୍ରାପ୍ତ ବ୍ୟକ୍ତିକୁ ଖାସ୍ ମୁକ୍ତାର ବୋଲାଯାଏ । ]

ମୁକ୍ତା ଲତା—ସଂ. ବି ( ୬ଷ୍ଠୀ ତତ୍; ମୁକ୍ତାର ଲତା )—ମୁକ୍ତାଗ୍ରଥିତ
Muktā latā ହାର—A string of pearls.

ମୁକ୍ତା ଶାମୁକା—ଦେ. ବି ( ସଂ. ମୁକ୍ତା+ଶମ୍ବୁକ )—ମୁକ୍ତା ଶୁକ୍ତି
Muktā śāmukā ( ଦେଖ )—Muktā śukti ( See )
मुक्ता झिनुक **सीतुआ**

ମୁକ୍ତା ଶୁକ୍ତି—ସଂ. ବି (ମ. ପ. ଲୋ; କର୍ମଧା+ମୁକ୍ତା ଉତ୍ପାଦିକା ଶୁକ୍ତି)—
Muktā śukti ଯେଉଁ ଶାମୁକାରେ ମୁକ୍ତା ଜନ୍ମେ—Pearl-
( ମୁକ୍ତା ଶମ୍ବୁକ—ଅନ୍ୟରୂପ ) oyster. [ ଦ୍ର—ଅନ୍ୟ ସଂ ନାମ—ମୁକ୍ତାଯୋନି, ମୁକ୍ତା ଗୃହ । ]

ମୁକ୍ତାସାର—ସଂ. ବି ( ୬ଷ୍ଠୀ ତତ୍; ମୁକ୍ତାର ସାର )—ଶ୍ରେଷ୍ଠ ମୁକ୍ତା—
Muktāsāra An excellent pearl.

ମୁକ୍ତାସ୍ଫୋଟ—ସଂ. ବି ( ମୁକ୍ତା+ସ୍ଫୁଟ୍ ଧାତୁ=ବିକଶିତ ହେବା+
Muktāsphoṭa ଅଧିକରଣ. ଅ; ଯାହା ମଧ୍ୟରେ ମୁକ୍ତା ବିକଶିତ ହୁଏ )—ମୁକ୍ତା ଶୁକ୍ତି; ଶାମୁକା—Oyster.

ମୁକ୍ତା ହାର—ସଂ. ବି ( ୬ଷ୍ଠୀ ତତ୍; ମୁକ୍ତାର ହାର )—ମୁକ୍ତାଗ୍ରଥିତ
Muktā hāra ହାର; ମୋତି ମାଳ—A necklace or string of pearls. ବିଣ. ପୁଂ ( ବହୁବ୍ରୀହି; ମୁକ୍ତ ହୋଇଅଛି ଆହାର ଯହିଁରେ )—ଉପବାସ—Fasting.

ମୁକ୍ତି—ସଂ. ବି—( ମୁଚ୍ ଧାତୁ=ବନ୍ଧନ ଫିଟାଇବା+ଭାବ ତି )—
Mukti ୧ । କାରାମୋଚନ—1. Deliverance from cofinement. ୨ । ବନ୍ଧନ ମୋଚନ—2. Liberation from bondage. ୩ । ନିଷ୍କୃତି; ଦୁଃଖନିବୃତ୍ତି; ଦୁଃଖର ବା ବିପଦରୁ ଉଦ୍ଧାର—3. Cessation of pain or trouble; deliverance from pain or danger. ୪ । ପରିତ୍ରାଣ; ମୋକ୍ଷ; କୈବଲ୍ୟ; ଅପବର୍ଗ—4. Final beatitude attained by the soul; salvation. ୫ । ଜନ୍ମମରଣରୂପ ସଂସାର ବନ୍ଧନରୁ ବିମୁକ୍ତି; ପରଜନ୍ମରୂପ ବନ୍ଧନରୁ ଉଦ୍ଧାରପ୍ରାପ୍ତି—5. The liberation of the soul from the necessity of rebirth in future. ୬ । ସ୍ୱାଧୀନତା ଲାଭ—6. Emancipation; attainment of freedom.

ମୁକ୍ତିଆର—ବୈଦେ. ବି—ମୁକ୍ତାର୍ ( ଦେଖ )
Muktiāra Muktār ( See )

ମୁକ୍ତିଆରଖାନା—ବୈଦେ. ବି ( ଅ. ମୁଖ୍ତାର୍‌ଖାନାହ୍ )—କଚେରି
Muktiārakhānā ସମୟରେ ମିସିଲରେ କାର୍ଯ୍ୟ କରୁ ନ ଥିବା
मोक्तारखाना ମୁକ୍ତିଆରମାନେ ଯେଉଁ ଗୃହରେ ବିଶ୍ରାମ କରନ୍ତି—
**मुख्तारखाना** The bar library for the muktars.
( ମୁକ୍ତା[କ୍ତ୍ୟା]ରଖାନା—ଅନ୍ୟରୂପ )

ମୁକ୍ତିଆର ନାମା—ବୈଦେ. ବି ( ଅ. ମୁଖ୍ତାର୍ ନାମା )—୧ । ଯେଉଁ
Muktiāra nāmā ଦଲିଲଦ୍ୱାରା ପକ୍ଷ କୋର୍ଟରେ ଆପଣାର ପକ୍ଷ
मोक्तार नामा ସମର୍ଥନ କରିବା ପାଇଁ ମୁକ୍ତିଆର ନିଯୁକ୍ତ କରେ—
**मुख्तार नामा** 1. A power of attorney given by a party to his muktar. ୨ । କ୍ଷମତାପତ୍ର—2. Power of attorney. [ ଦ୍ର—ସାଧାରଣ କାର୍ଯ୍ୟ ପାଇଁ ପ୍ରଦତ୍ତ କ୍ଷମତାପତ୍ରକୁ ଆମ୍ ମୁକ୍ତିଆରନାମା ଓ କାର୍ଯ୍ୟ ବିଶେଷ ପାଇଁ ପ୍ରଦତ୍ତ କ୍ଷମତାପତ୍ରକୁ ଖାସ୍ ମୁକ୍ତିଆର ନାମା ବୋଲାଯାଏ । ]

ମୁକ୍ତିଆରି—ବୈଦେ. ବି—୧ । ମୁକ୍ତିଆରଙ୍କ କାର୍ଯ୍ୟ—1. Muk-
Muktiārī tarship. ୨ । ଅଦାଲତରେ କୌଣସି ବ୍ୟକ୍ତିର
मोक्तारी **मुख्तारी** ମୁକ୍ତାରସ୍ୱରୂପ ପକ୍ଷ ସମର୍ଥନ—2. Pleading
( ମୁକ୍ତା[କ୍ତ୍ୟା]ରି—ଅନ୍ୟରୂପ ) the cause of a person in the court as his muktar. ବିଣ—୧ । ମୁକ୍ତାରସମ୍ବନ୍ଧୀୟ—1. Relating to a muktar. ( ଯଥା—ମୁକ୍ତିଆରି ପରୀକ୍ଷା । ) ୨ । ମୁକ୍ତାରଙ୍କ ଉପଯୋଗୀ—2. Becoming or befitting a muktear. ( ଯଥା—ମୁକ୍ତିଆରି ପୋଷାକ । )

ମୁକ୍ତିଆରିଆ—ଦେ. ବିଣ—ମୁକ୍ତିଆରି ( ଦେଖ )—Muktiārī
Muktiāriā मोक्तारी **मुख्तारी** ( See )
( ମୁକ୍ତା[କ୍ତ୍ୟା]ରିଆ—ଅନ୍ୟରୂପ )

ମୁକ୍ତି କଇବଲ(ଲ୍ୟ)—ଗ୍ରା. ବି ( ସଂ. ମୁକ୍ତିକୈବଲ୍ୟ )—କୈବଲ୍ୟ
Mukti kaibala( lya ) ମୁକ୍ତି—Final beatitude
कैवल्य मुक्ति attained by the human soul. ( ଉ—
**कैवल्य मुक्ति** ଚୋହର ଅଙ୍ଗ ଲାଗି ଭୁଲ, ଭୋଗ ସେ ମୁକ୍ତି କଇବଲ—ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା । )

ମୁକ୍ତିକ୍ଷେତ୍ର—ସଂ. ବି—(ମ. ପ. ଲୋ; ମୁକ୍ତିପ୍ରଦ କ୍ଷେତ୍ର)—୧ମ ବାରାଣସୀ
Mukti kshetra (ହି. ଶ.)—1. Benares. ୨ । କାବେରୀ ନଦୀକୂଳସ୍ଥ ପ୍ରାଚୀନ ତୀର୍ଥ, ଯହିଁର ଅନ୍ୟ ନାମ ବକୁଳା-

ରଣ୍ୟ ଥିଲ (ହି. ଶ,—2. Name of a place of Hindu pilgrimage on the Kāberi river.

ମୁକ୍ତି ତୀର୍ଥ—ସ. ବ—୧ । ମୁକ୍ତିଦାତା (ହି. ଶ)—1. Saviour.
Mukti tirtha ୨ । ବିଷ୍ଣୁ (ହି. ଶ)—2. A name of Bishnu.

ମୁକ୍ତିଦ—ସ. ବଣ. ଓ ବ. ପୁଂ—(ମୁକ୍ତି+ଦା ଧାତୁ+କର୍ତ୍ତୃ. ଅ)—
Muktida ପରିତ୍ରାତା; ମୋକ୍ଷକର୍ତ୍ତା—Deliverer; saviour.
(ମୁକ୍ତିଦାତା; ମୁକ୍ତିଦାୟକ—ଅନ୍ୟରୂପ)
(ମୁକ୍ତିଦା, ମୁକ୍ତିଦାତ୍ରୀ, ମୁକ୍ତିଦାୟିକା—ସ୍ତ୍ରୀ)

ମୁକ୍ତି ଦାନ—ସ. ବ—(୬ଷ୍ଠୀ ତତ୍)—୧ । ଅବ୍ୟାହତି ଦେବା;
Mukti dāna ମୁକୁଳାଇବା—1. Delivering. ୨ ।
(ମୁକ୍ତିପ୍ରଦାନ—ଅନ୍ୟରୂପ) ସାଂସାରିକ ଦୁଃଖର ନିବାରଣକରଣ—
2. Deliverance from worldly troubles.

ମୁକ୍ତି ଧନ—ସ. ବ—(ରୂପକ)—ମୁକ୍ତିରୂପ ସମ୍ପଦ—Salvation or
Mukti dhana beatitude (compared to wealth).

ମୁକ୍ତି ପଞ୍ଜର—ଦେ. ବ.—ବ୍ରତ ବିଶେଷ—Name of religious
Mukti pañjara observance. [ବି—ସମ୍ବତ୍ସରର ଅବଧି ଦିନ ଫାଲ୍‌ଗୁନ ପୂର୍ଣ୍ଣିମାଠାରୁ ଆରମ୍ଭ କରି ପ୍ରତିମାସର ପ୍ରଥମ ଦିନ ଶ୍ରୀ ଭଗବାନଙ୍କର ଦ୍ୱାଦଶନାମାନୁସାରେ ଦ୍ୱାଦଶ ମୂର୍ତ୍ତି ନିର୍ମାଣ କରି ଭକ୍ତମାନେ ଏ ସାମ୍ବତ୍ସରିକ ବ୍ରତ ଅନୁଷ୍ଠାନ କରନ୍ତି । ମଦନମୋହନ. ତୀର୍ଥଦର୍ଶନ ୫ମ ।]

ମୁକ୍ତି ପତ୍ର—ଦେ. ବ—(କତଅର୍ଥ)—୧ । କୌଣସି ବ୍ୟକ୍ତିର ବନ୍ଧନ
Mukti patra ଅବରୁ ମୁକ୍ତି ପାଇବାର ନିଦର୍ଶନ ବା ଆଦେଶ-
ମୁକ୍ତିପତ୍ର **मुक्तिपत्र, बाजदावी** ଲିପି—1. An order for release. ୨ । କୌଣସି ସମ୍ପତ୍ତିରେ ବା ଧନରେ ଥିବା ଆପଣାର ଦାବିକୁ ବା ସ୍ୱତ୍ୱକୁ ଅନ୍ୟ ବ୍ୟକ୍ତିର ପକ୍ଷରେ ପରିତ୍ୟାଗ କରିବାର ନିଦର୍ଶନ ଦଲିଲ—2. A deed of release regarding any title or claim to a property; a deed of waiver of one's title or claim to a property.

ମୁକ୍ତି ପଥ - ସ. ବ (୬ଷ୍ଠୀ ତତ୍; ମୁକ୍ତିର ପଥ)—୧ । ପରିତ୍ରାଣର
Mukti patha ଉପାୟ—1. Means of salvation.
ମୁକ୍ତିବର୍ତ୍ମ, ମୁକ୍ତି ମାର୍ଗ }—ଅନ୍ୟରୂପ ୨ । ଯେଉଁ ପଥ ଧରିଲେ ମନୁଷ୍ୟ ମୁକ୍ତି ବା ମୋକ୍ଷ ଲଭେ—
2. The way to salvation.

ମୁକ୍ତି ପଦ—ସ. ବ (୬ଷ୍ଠୀ ତତ୍)—ଅପବର୍ଗ ରୂପ ଐଶ୍ୱର୍ଯ୍ୟ —
Mukti pada The state of attaining salvation.

ମୁକ୍ତି ପଶରା—ଦେ. ବ—ମୁକ୍ତିର ବା ମୋକ୍ଷର ସ୍ଥାନ; ମୁକ୍ତିଲାଭ କରିବା
Mukti paśarā ନିମନ୍ତେ ଆଶ୍ରୟ ବା ସମ୍ବଳ (ବ୍ୟକ୍ତି ବା ଦେବତା)
ମୁକ୍ତି ପସରା **मुक्तिका आधार** —A Deity or a person to whom one clings for salvation.

ମୁକ୍ତି ପ୍ରଦ—ସ. ବଣ. ଓ ବ. ପୁଂ—ମୁକ୍ତିଦ ( ଦେଖ )
Mukti prada Muktida (See)
(ମୁକ୍ତି ପ୍ରଦାୟକ—ଅନ୍ୟରୂପ) ଦ. ବ—ସାଗୁଆ ମୁଗ (ହି. ଶ)—
The green variety of Muga (grain).
(ମୁକ୍ତି ପ୍ରଦା; ମୁକ୍ତି ପ୍ରଦାୟିକା—ସ୍ତ୍ରୀ)

ମୁକ୍ତି ପ୍ରାର୍ଥନା—ସ. ବ. (୬ଷ୍ଠୀ ତତ୍)—୧ । ମୋକ୍ଷ ପାଇବାପାଇଁ ଯାଚନା ।
Mukti prārthanā 1. Prayer for salvation or release.

ମୁକ୍ତି ପ୍ରାର୍ଥୀ—ସ. ବଣ. ପୁଂ (ମୁକ୍ତି+ପ୍ର+ଅର୍ଥ ଧାତୁ+କର୍ତ୍ତୃ. ଇନ୍
Mukti prārthi ୧ମା. ୧ବ)—ମୋକ୍ଷଲାଭେଚ୍ଛୁ—Wishing
(ମୁକ୍ତି ପ୍ରାର୍ଥିନୀ—ସ୍ତ୍ରୀ) for deliverance or salvation.

ମୁକ୍ତି ଫଉ(ଫୌ)ଜ—ଦେ. ବ—ଗରିବ ଲୋକଙ୍କୁ ଓ ଦୁଶ୍ଚରିତ୍ରଙ୍କୁ
Mukti phau (phau)ja ବ୍ୟକ୍ତିମାନଙ୍କୁ ସଦ୍ଶିକ୍ଷା ଦେବା ଓ
ମୁକ୍ତି ଫୌଜ **मुक्ति फौज** ସଦୁପାୟ ଅବଲମ୍ବନ କରାଇବା ପାଇଁ ପ୍ରଥମେ ଇଂଲଣ୍ଡରେ ଜେନେରଲ୍ ବୁଥ୍ ନାମକ ସାହେବଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରେ ସଭ୍ୟ ଜଗତର ସର୍ବାଞ୍ଚଳରେ ପ୍ରତିଷ୍ଠିତ ଧର୍ମ ସମ୍ପ୍ରଦାୟ—The Oriya rendering of the "Salvation Army" started by the late General Booth.

ମୁକ୍ତି ମଣି—ଦେ. ବ.—ଶ୍ରେଷ୍ଠ ମୁକ୍ତିଦାତା—Supreme in grant-
Mukti mani ing salvation. [ଯଥା—ବ୍ରହ୍ମା ବୋଇଲେ ତାହା ଶୁଣି, ଶୁଣିମା ଦେଉ ମୁକ୍ତି ମଣି । ପ୍ରାଚୀ. କାର୍ତ୍ତିକମାହାତ୍ମ୍ୟ ।]

ମୁକ୍ତିମଣ୍ଡପ—ସ. ବ.—(ମ. ପ. ଲୋ. କର୍ମଧା; ମୁକ୍ତିପ୍ରଦ ମଣ୍ଡପ)—
Mukti mandapa ୧ । କାଶୀ ବିଶ୍ୱେଶ୍ୱର ମନ୍ଦିରର ଦକ୍ଷିଣ ପାର୍ଶ୍ୱସ୍ଥ ମଣ୍ଡପ—1. Name of a roofed open platform to the south of the Bisweswara temple at Beneres. ୨ । ପୁରୀ ଜଗନ୍ନାଥ ମନ୍ଦିରର ଜଗମୋହନର ଦକ୍ଷିଣ ପାର୍ଶ୍ୱସ୍ଥ ମଣ୍ଡପ—2. Name of a roofed open platform to the south of the temple of Jagarnnath at Puri.
[ବି—ପୁରୀ ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟସ୍ଥ ମୁକ୍ତିମଣ୍ଡପରେ ପୁରୀ ଜିଲ୍ଲାର ରାଜ ପ୍ରତିଷ୍ଠିତ ବ୍ରାହ୍ମଣ ଶାସନମାନଙ୍କର ବୈଦିକ ବ୍ରାହ୍ମଣ ଓ ପଣ୍ଡିତମାନେ ବସନ୍ତି; ଅନ୍ୟ ବ୍ରାହ୍ମଣମାନେ ଏଠାରେ ବସିବାର ଅଧିକାରୀ ନୁହନ୍ତି । ଏହି ପଣ୍ଡିତମାନେ ସଭା କରି ହିନ୍ଦୁ ଧର୍ମର କର୍ମକାଣ୍ଡ ଓ ପ୍ରାୟଶ୍ଚିତ୍ତ ସମ୍ବନ୍ଧେ ବ୍ୟବସ୍ଥା ଦିଅନ୍ତି । ଏହି ମଣ୍ଡପରେ ଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କର ଝୁଲଣ ଯାତ୍ରା ସମାହିତ ହୁଏ । ସମଗ୍ର ଉତ୍କଳରେ ଓ ଭାରତବର୍ଷରେ ପୁରୀର ମୁକ୍ତିମଣ୍ଡପ ପଣ୍ଡିତମାନଙ୍କ ବ୍ୟବସ୍ଥା ପ୍ରତି ହିନ୍ଦୁମାନଙ୍କର ବିଶେଷ ଆସ୍ଥା ଥାଏ । ଜଗନ୍ନାଥଙ୍କ ସେବା ପୂଜା ଓ ରୀତି ଆଦି ସମ୍ବନ୍ଧେ କୌଣସି ଜଟିଳ ପ୍ରଶ୍ନ ଉଠିଲେ ପୁରୀର ରାଜା ଓ ମନ୍ଦିରର ତତ୍ତ୍ୱାବଧାରକ ଏହି ମୁକ୍ତିମଣ୍ଡପ ପଣ୍ଡିତ ସଭାର ମତ ଲୋଡ଼ି ଥାଆନ୍ତି । ବର୍ତ୍ତମାନ ଏହି ମୁକ୍ତି ମଣ୍ଡପର ପଣ୍ଡିତ ସଭା, ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟରେ ଗୋଟିଏ ପୁସ୍ତକାଗାର ପ୍ରତିଷ୍ଠା କରି ଏ ସଭାର ବ୍ୟବସ୍ଥାମାନ ଶାସ୍ତ୍ରାନୁସାରେ ଦିଆ ଯିବାର ଚେଷ୍ଟା କରୁଅଛନ୍ତି । ଏ ସଭା ବିଚାରର

ସାହ ବାହାଦୁରଙ୍କୁ ଓ ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଯୋଗ୍ୟତା ଅନୁସାରେ ଉପାଧିମାନ ଦେବାର ପ୍ରଥା ଚଳାଇ ଅଛନ୍ତି । ଭୋଇ ବଂଶୀୟ ପ୍ରଥମ ରାଜା ରାମଚନ୍ଦ୍ର ଦେବଙ୍କର ରାଜତ୍ୱର ୧୪ ଅଙ୍କରେ ବା ୧୫୮୦ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ହିନ୍ଦୁ ସେନାପତି ରାଜା ମାନସିଂହଙ୍କ ସ୍ତ୍ରୀ ଗୌରାଙ୍ଗୀ ଏହି ମୁକ୍ତି ମଣ୍ଡପ ନିର୍ମାଣ କରାଇ ଥିଲେ ।]

ମୁକ୍ତି ମୁକ୍ତ—ସଂ. ବି—ଶିଳା ରସ (ହି. ଶ)—
Mukti mukta    Styrax or benzoin.

ମୁକ୍ତି ଲାଭ—ସଂ. ବି—ପରିତ୍ରାଣପ୍ରାପ୍ତି; ମୋକ୍ଷଲାଭ—The attain-
Mukti lābha    ment of salvation.

ମୁକ୍ତେଶ୍ୱର—ସଂ. ବି—ଶିବଲିଙ୍ଗ ବିଶେଷ (ହି. ଶ)—
Mukteśwara    Name of an image of Śiba.
[ଦ୍ର—ଭୁବନେଶ୍ୱରରେ ମୁକ୍ତେଶ୍ୱର ନାମକ ଗୋଟିଏ ଶିବ ଲିଙ୍ଗ ଅଛନ୍ତି ।]

ମୁଖ୍‌ଲିସ୍—ଦେଦେ. ବି—୧ । (ଫା. ମୁଫ୍‌ଲିସ୍)—୧ । ଦରିଦ୍ର ବ୍ୟକ୍ତି
Mukh-lis    1, A poor man. ୨ । (ଲକ୍ଷଣାର୍ଥ) ଅବିବାହିତ
मुफलीस मुफलिस    ପୁରୁଷ—2. (figurative) A bachelor. ୩ । (ଫା. ମୁଖନ୍ନସ୍)—ନପୁଂସକ—3. An eunoch.

ମୁଖ—ସଂ. ବି. (ଖନ୍ ଧାତୁ=ଖୋଳିବା+କର୍ମି. ଅ; ନିପାତନ)—
Mukha    ୧ । ବଦନ; ମୁହଁ; ଆନନ—1. Face. ୨ । ପାଟି; ତୁଣ୍ଡ; ବକ୍ତ୍ର; ବାକ୍ୟ ନିଃସରଣର ଓ ଭୋଜ୍ୟ ଗ୍ରହଣର ଦ୍ୱାର—2. Mouth. ୩ । ପ୍ରବେଶ ମାର୍ଗ; ଗୃହାଦିର ଦ୍ୱାର—3. The door or entrance of a house. ୪ । ନିଃସରଣ ପଥ—4. Exit; the way out. ୫ । ଛିଦ୍ର—5. Aperture; hole. ୬ । ସୂତ୍ରପାତ; ଆରମ୍ଭ—6. Beginning; commencement. ୭ । ନଳର ମୁହଁ ବା ପ୍ରବେଶ ପଥ—7. The mouth of a tube. ୮ । ଅଗ୍ରଭାଗ—8. Top. ୯ । ସୈନ୍ୟାଦିର ସମ୍ମୁଖ ଭାଗ—9. The van or advance guard of an army. ୧୦ । ଉପାୟ 10, Means. ୧୧ । ପାତ୍ରାଦିର ଧାର—11. The brim of a pot. ୧୨ । ବାକ୍ୟ; ବାକ୍; ଶବ୍ଦ—12. Word; sound; speech. ୧୩ । ନାଟକର ପୂର୍ବଭାଗ; ନାଟକାଦିର ସନ୍ଧି ବିଶେଷ—13. Prologue; name of a preparatory or turning incident in a dramatic composition. ୧୪ । ସମ୍ମୁଖସ୍ଥ ବା ଆଗପାଖ—14. Front part; forepart of a thing. [ଉ—ବନ୍ଧି କଳଲ ପଇବେ, ବୋଲେ ତଣ୍ଡାପଣେ ମାରେ, ଶୁଣି ଲକ୍ଷ୍ମଣ ନ ରହ ମୁଖେରେ—ଭଞ୍ଜ. ବୈଦେହୀଶବିଳାସ ।] ୧୫ । ପକ୍ଷୀର ଚଞ୍ଚୁ; ଥଣ୍ଟ—15. The beak of a bird. ୧୬ । ମୁଖ୍ୟ ବା ପ୍ରଧାନ ବ୍ୟକ୍ତି ବା ପଦାର୍ଥ—16. The chief (man or thing). [ଉ—ବେଦମାନଙ୍କରଟି ଅଗ୍ନି ହୋତ୍ର ମୁଖ, ସେ ରୂପରେ ଗାୟତ୍ରୀ ଛନ୍ଦଙ୍କର ମୁଖ । କୃଷ୍ଣସିଂହ. ମହାଭାରତ. ସଭା ।] ୧୭ । ବୃକ୍ଷବିଶେଷ; ଲକୁଚ ବୃକ୍ଷ; ଡେଉଁଠ ଗଛ—17. The monkey jack tree. ୧୮ । ନଦୀର ମୁହାଣ—18. The mouth of a river. ୧୯ । (ଗଣିତ) କୌଣସି ଶ୍ରେଣୀର ପ୍ରଥମ ବା ଆଦ୍ୟ ସଂଖ୍ୟା—19. (Arithmetic) The first term in a progression. ୨୦ । (ଜ୍ୟାମିତି) ଚତୁର୍ବାହୁବିଶିଷ୍ଟ କ୍ଷେତ୍ରର ଭୂମିର ବିପରୀତ ବାହୁ—20. (Geometry) The side opposite to the base of a quadrilateral figure. ୨୧ । ବେଦ (ହି. ଶ)—21. The Bedas. ୨୨ । ଜୀରା (ହି. ଶ)—22. Cumin seed. ୨୩ । ପାଣିକୁଅ (ହି. ଶ)—23. The small cormorant. ଦେ. ବି—୧ । ବଥର ବା ଘାଆ ଆଦିର ଅଗ୍ରଭାଗ—1. The forepart or head of a boil or sore. ୨ । କ୍ଷେତ୍ରକୁ ଯେଉଁ ବାଟେ ପାଣି ପଶେ ବା କ୍ଷେତ୍ରରୁ ଯେଉଁ ବାଟେ ପାଣି ବାହାରି ଯାଏ—2. The mouth of a field; the part by which water enters into and comes out of a field. ସଂ. ବିଣ—୧ । ପ୍ରଧାନ—1. Chief. ୨ । ଆଦ୍ୟ—2. First.

ମୁଖ କଟୁ—ସଂ. ବିଣ ( ବହୁବ୍ରୀହି; ମୁଖ ଅଟେ କଟୁ ଯାହାର )—କଟୁଭାଷୀ
Mukha kaṭu    —Scurrilous.

ମୁଖ କଣ୍ଡୁ—ସଂ. ବି—କଥା କହିବା ପାଇଁ ଅତ୍ୟନ୍ତ ଇଚ୍ଛା ବା ଆଗ୍ରହ—
Mukha kaṇḍu    Eager desire to speak.

ମୁଖ କବାଟି—ଦେ. ବି ( ସଂ. ମୁଖ+କପାଟ )—୧ । ଖଡୁ ଆଦିକୁ
Mukha kabāṭi    ହାତରେ ବା ଗୋଡ଼ରେ ପିନ୍ଧିବା ପରେ
कवजा    ଯେଉଁ କବାଟ ବା କବଜା ଦ୍ୱାରା ତାହା ମୁଡ଼ା ଯାଏ—
कवजा    1. The hinge that closes the bangle tightly around the wrist or leg. [ଉ—ବଳୟ ଏକ ପୃଥ୍ୱୀଦେବଙ୍କ ପାଇଁ କେଉଁ କୁଣ୍ଡଳ ନିର୍ମାଣି × × × ବିନାଣି ବସାଇ ମୁଖ କବାଟ ଯେ ।
दान्तकपाटी    ଭଞ୍ଜ. ବୈଦେହୀଶବିଳାସ ।] ୨ । ମୂର୍ଚ୍ଛା ବା ରୋଗ
दान्ती    ଆଦି ଯୋଗୁଁ ଦାନ୍ତପାଟି ବନ୍ଦ ହୋଇ ଯିବା—Lock-jaw

ମୁଖ କମଳ—ସଂ. ବି (ଉପମିତ )—ପଦ୍ମପରି ସୁନ୍ଦର ମୁଖ; ସୁନ୍ଦର ବଦନ
Mukha kamaḷa    —A face as beautiful as the lotus.

ମୁଖ କାନ୍ତି—ସଂ. ବି ( ୬ଷ୍ଠୀ ତତ୍; ମୁଖ+କାନ୍ତି )—ମୁଖଶ୍ରୀ; ମୁଖର-
Mukha kānti    ଶୋଭା—The beauty or grace of one's face.

ମୁଖ କୁଷ୍ଠ—ସଂ. ବି—ମୁଖ ଗଳିକା; ମୁଖରୋଗ ବିଶେଷ—A
Mukha kushṭha    leprosy of the face; Leontiasis.

ମୁଖ କୋଷ—ସଂ. ବି ( ୬ଷ୍ଠୀ ତତ୍; ମୁଖ+କୋଷ )—୧ ।
Mukha kosha    ମୁଖାଚ୍ଛାଦନ—1. A covering for the

face. ୨ । ମୁଖା—2. A mask worn on the face.

ମୁଖ କ୍ଷତ—ସଂ. ବି ( ୭ମୀ ତତ୍; ମୁଖରେ କ୍ଷତ )—ଭୁଣ୍ଡ ଘା; ମୁହଁରେ
Mukha kshata ଘାଅ—Mouth-sore.

ମୁଖ କ୍ଷୁର—ସଂ. ବି ( ୬ଷ୍ଠୀ ତତ୍ )—ଦାନ୍ତ ( ହି. ଷ )
Mukha kshura Tooth

ମୁଖ ଖୋଲିବା—ଦେ. କ୍ରି—ପାଟି ଫିଟାଇବା; କଥା କହିବା—
Mukha kholibā To begin to speak; to open
মুখ খোলা मुँह खोलना one's mouth.

ମୁଖ ଗନ୍ଧ—ସଂ. ବି ( ୬ଷ୍ଠୀ ତତ୍ )—ଅପରିଷ୍କୃତ ପାଟିରୁ ବାହାରିବା
Mukha gandha ପୂତି ଗନ୍ଧ—Ozostomia; foul smell
(ମୁଖଦୁର୍ଗନ୍ଧ—ଅନ୍ୟରୂପ) issuing from the mouth.

ମୁଖ ଗନ୍ଧକ—ସଂ. ବି ( ମୁଖ+ଗନ୍ଧ+କ )—ପଲାଣ୍ଡୁ; ପିଆଜ—
Mukha gandhaka Onion.

ମୁଖ ଗହ୍ବର—ସଂ. ବି—ପାଟି—The mouth; the cavity of
Mukha gahwara the face.

ମୁଖ ଗୋଳ—ଦେ. ବି—ପାଟି; ଧୋଘା ( ଶବ୍ଦ )—Noise. [ ଉ
Mukhagoḷa —ଇନ୍ଦ୍ରର ଭୁଲେ ଦେବବଳ, ତାନ୍ତେ ଶୁଭେ
গোলমাল हल्ला ମୁଖଗୋଳ । ଜଗନ୍ନାଥ. ଭାଗବତ । ]

ମୁଖ ଘଣ୍ଟା—ସଂ. ବି- ହୁଳହୁଳି ଧ୍ୱନି--A ticking sqeaking sound
Mukha ghantā uttered by moving the tongue repeatedly between the lips while shouting (made by Indian women on auspicious occasions )

ମୁଖ ଚନ୍ଦ୍ର—ସଂ. ବି (ଉପମିତ)—ଚନ୍ଦ୍ର ସଦୃଶ ମନୋହର ମୁଖ—
Mukha chandra A face as lovely as the moon.

ମୁଖ ଚାଳି—ପ୍ରାଦେ (ସାଜପୁର ) ବି—ମୁଖଶାଳା ( ଦେଖ )
Mukha chāḷi Mukhaśāḷā ( See )

ମୁଖ ଚାହିଁବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ମୁହଁକୁ ଦେଖିବା
Mukha chāhiñbā —1. To see a person's face.
ମୁଖ ଦରଶନ କରିବା } ଅନ୍ୟରୂପ
ମୁଖ ଦେଖିବା }
୨ । କୌଣସି ବ୍ୟକ୍ତିକୁ ଦେଖିବା—2. To see a
মুখচাওয়া, মুখদেখা person. ୩ । କୌଣସି ବ୍ୟକ୍ତିକୁ ଆପଣାର
मुँह देखना ସମ୍ମୁଖରେ ଦେଖିବା—3. To see a person face to face. [ ଦ୍ର—କୌଣସି ବ୍ୟକ୍ତି ପ୍ରିୟ ବନ୍ଧୁ ହେଲେ ଓ ତାକୁ ଆଉ ଦେଖିବାକୁ ଇଚ୍ଛା ନ କଲେ ବିରକ୍ତିରେ ଲୋକେ କହି ଥାଆନ୍ତି "ମୁଁ ଆଉ ତୋ ମୁଖ ଚାହିଁବି ନାହିଁ ।" ଗୋଟିଏ ଲୌକିକ ବିଶ୍ୱାସ ଅଛି ଯେ ବ୍ୟକ୍ତିବିଶେଷଙ୍କ ମୁଖକୁ ସକାଳୁ ଉଠି ଦର୍ଶନ କଲେ ସେ ଦିନଟି ସୁଖମୟ ହୁଏ ଓ ବ୍ୟକ୍ତିବିଶେଷଙ୍କ ମୁଖ ଦେଖିଲେ ସେଦିନ ଅମଙ୍ଗଳ ଘଟିଥାଏ । ଅତି ପ୍ରିୟତମ ବ୍ୟକ୍ତିକୁ ଦେଖିଲେ ମନୁଷ୍ୟ ସୁଖୀ ହୁଏ । ଏଥିପାଇଁ ଦର୍ଶକ କହେ "ତୋ ମୁଖ ଚାହିଁଲେ ମୋ ଦୁଃଖ ଯାଏ" । ]

ମୁଖଚାରୀ—ସଂ. ବି (ମୁଖ+ଚର ଧାତୁ+କର୍ତ୍ତୃ. ଇନ; ୧ମା. ୧ବ)—
Mukhachāri ଜିହ୍ୱା—Tongue.

ମୁଖ ଚପଳ—ସଂ. ବିଣ. ପୁଂ. ( ବହୁବ୍ରୀହି )—୧ । ବହୁ ଭାଷୀ—
Mukha chapaḷa 1. Talkative. ୨ । କୁତ୍ସିତଭାଷୀ—
(ମୁଖ ଚପଳା—ସ୍ତ୍ରୀ) 2. Foul-mouthed.
(ମୁଖ ଚପଳତା, ମୁଖ ଚାପଲ୍ୟ—ବି)

ମୁଖ(ହଁ, ହୁଁ)ଚୋର (ରା)—ଦେ. ବିଣ. ପୁଂ—୧ । ଲଜ୍ଜାଶୀଳ—
Mukha(hañ, huñ)chora(rā) 1. Bashful. ୨ ।
মুখ চোর ଭୀରୁ—2. Chicken-hearted. (ଉ--ନାଚୁଥିଲେ
मुहँ चोर ଜନେ ନାହିଁ ସେ ଶୋଣିତ ହେଲେ ସବୁ ମୁଖ ଚୋର । ଚକ୍ର ସୀ. ଗୀତ ଲହରୀ ।) ୩ । ଯେଉଁ ବ୍ୟକ୍ତି ସଭାରେ ବା ଅନ୍ୟ ଅପରିଚିତ ବ୍ୟକ୍ତିମାନଙ୍କ ସମ୍ମୁଖରେ କିଛି କଥା କହି ପାରେ ନାହିଁ—3. (a person) Who has not the courage to speak out in a meeting or before a body of strangers.

ମୁଖ ଛ(ଚ୍ଛ)ବି—ସଂ. ବି. (୬ଷ୍ଠୀ ତତ୍; ମୁଖ+ଛବି)—ମୁଖ କାନ୍ତି—
Mukha chha(chchha)bi The beauty or grace of the face.

ମୁଖଜ—ସଂ. ବିଣ. (ମୁଖ+ଜନ୍ ଧାତୁ+କର୍ତ୍ତୃ. ଅ)—ମୁହଁରୁ ଜାତ—
Mukhaja Born of the mouth. ବି-୧। (ବ୍ରହ୍ମାଙ୍କ ମୁଖଜାତ) ବ୍ରାହ୍ମଣ—1. A Brāhmaṇa (born of the face of Brahmā). ୨ । ଦାନ୍ତ—2. Tooth.

ମୁଖ ଟେକିବା—ଦେ. କ୍ରି—ଲଜ୍ଜାବି ଯୋଗୁଁ ଅବନତ ହୋଇଥିବା ମସ୍ତକକୁ
Mukha ṭekibā ଉପରକୁ ଉଠାଇବା—To lift up one's
মুখ তো(তু)লা face which has been bowed down
मुहँ उठाना through shame.

ମୁଖ ଡିଣ୍ଡିମ—ସଂ. ବି—ମୁଖଘଣ୍ଟା ( ଦେଖ )—Mukhaghaṇṭā
Mukha ḍiṇḍima (See) (ଉ—ଏ କାଳେ ମୁଖ ଡିଣ୍ଡିମ ଶୁଭେ ଅନ୍ତଃପୁରେ । ଭଞ୍ଜ. ଲାବଣ୍ୟବତୀ ।)

ମୁଖଣ୍ଡ—ଦେ. ବିଣ. (ସଂ. ମୁଖର)—ମୁଖର; ଯେ ଖୁବ୍ କହି ପାରେ—
Mukhaṇḍa Talkative; given to tall talking.
মুখড় मुखर

ମୁଖତଃ—ସଂ.ଅ(ମୁଖ+ତସ୍)—ମୁଖରୁ; ମୁହଁରୁ—From the mouth.
Mukhataḥ (ଯଥା—ରାଜା ମନ୍ତ୍ରୀଙ୍କ ମୁଖତଃ ଏ ସମ୍ବାଦ ପାଇଲେ । )

ମୁଖ(ଖୁ)ଦାନ୍ତ(ନ୍ତୁ)ରା—ଦେ. ବିଣ. ( ସଂ. ମୁଖ+ଦନ୍ତୁର )—ଈଷତ୍
Mukha(khu)dānta(ntu)rā ଦନ୍ତୁର ( ବ୍ୟକ୍ତି ); ଯେଉଁ
[ ମୁଖ(ଖୁ)ଦନ୍ତ(ନ୍ତୁ,ନ୍ତେ)ରୀ—ସ୍ତ୍ରୀ] ବ୍ୟକ୍ତିର ଉପର ପାଟିର ସମ୍ମୁଖ ଦାନ୍ତ
সামান্য দেঁতো ସାମାନ୍ୟରେ ଓଠ ଉପରକୁ ବାହାରି ପଡ଼ିଥାଏ—
थोडा दाँतुल A person who has his front teeth of the upper jaw protruding a little beyond the lips.

ମୁଖ ଦୂଷଣ—ସଂ. ବି—ପଲାଣ୍ଡୁ; ପିଆଜ—
Mukha dūshaṇa Onion.

ମୁଖ ଦୂଷିକା— ସ.ବ—ଯୁବକ ଯୁବତୀଙ୍କ ମୁହଁରେ ବାହାରୁଥିବା ଛୋଟ ବ୍ରଣ; Mukha dūshikā ବାଠ ବରୁଣ—Pimples coming out on the face of young persons; varus.

ମୁଖ ଦୂଷୀ—ସ. ବ—ରସୁଣ (ହ. ଶ)— Mukha dūshī Garlic.

ମୁଖ ଧାବନ—ସ.ବ. (୬ଷ୍ଠୀ ତତ୍; ମୁଖ+ଧାବନ)—ମୁହଁ ଧୋଇବା; ମୁଖ Mukha dhābana ପ୍ରକ୍ଷାଳନ—Washing of the face.

ମୁଖ ଧୌତ କରିବା—ଦେ. କ୍ରି—ପାଣି ଦ୍ୱାରା ପାଟିକୁ ଓ ମୁହଁକୁ ଧୋଇ Mukha dhauta karibā ପରିଷ୍କାର କରିବା—To wash the face and rinse the mouth
ମୁଖ ধৌত করা
मुहँ धोना

ମୁଖ ଧୌତା—ସଂ. ବଣ—ବ୍ରାହ୍ମଣ ଯଷ୍ଟିକା; ବାହ୍ମଣ ଝାଡ଼ଥିବା ଗୁଳ୍ମ— Mukha dhautā A plant, Saponanthus Indica.

ମୁଖ ନିବାସିନୀ—ସଂ. ବ ସ୍ତ୍ରୀ—ସରସ୍ୱତୀ—The Hindu Goddess Mukha nibāsinī of learning.

ମୁଖ ନିରୀକ୍ଷକ—ସଂ. ବଣ. ପୁଂ—୧ । ମୁଖ ଦର୍ଶନକାରୀ—1. Seeing Mukha nirīkshaka a face. ୨ । ପକ୍ଷପାତୀ—2. Partial. ୩ । ଅଳସ—3. Idle; indolent. ୪ । ଯଥାର୍ଥ ଦର୍ଶୀ—4. Looking at the wrong (ମୁଖନିରୀକ୍ଷିକା—ସ୍ତ୍ରୀ) side of things

ମୁଖ ନିରୀକ୍ଷଣ—ସଂ. ବ. (୬ଷ୍ଠୀ ତତ୍)—ମୁହଁ ଦେଖିବା— Mukha nirīkshaṇa Seeing of a face.

ମୁଖ ନିର୍ଗତ—ସଂ. ବ. ( ୫ମୀ ତତ୍; ମୁଖ+ନିର୍ଗତ )—୧ । ମୁଖରୁ Mukha nirgata ବାହାରିଥିବା—1. Come out of the (ମୁଖ ନିଃସୃତ—ଅନ୍ୟରୂପ) face or mouth. ୨ । ଉଚ୍ଚାରିତ— 2. Uttered.

ମୁଖ ପଖାଳିବା—ଦେ. କ୍ରି. (ସ. ମୁଖ ପ୍ରକ୍ଷାଳନ)—ମୁହଁ ଧୋଇବା— Mukha pakhāḷibā To wash the face.
মুখ ধোওয়া मुँहधोना (ମୁଖ ପଖାଳ—ବିଶେଷ୍ୟ)

ମୁଖପଟ—ସ. ବ ( ମ. ଘ. ଶେ )—ମୁହଁ ଘୋଡ଼ାଇବା ବସ୍ତ୍ର, ଓଢ଼ଣୀ Mukhapaṭa ( ହ. ଶ )—Veil.

ମୁଖପଦ୍ମ—ସ. ବ ( ଉପମିତ )—ମୁଖକମଳ ( ଦେଖ ) Mukhapadma Mukhakamaḷa ( See )

ମୁଖପାତ—ଦେ. ବ ( ସ. ମୁଖ+ପତ୍ର )—ବାକ୍ସ, ସିନ୍ଦୁକ, ଆଲମାରି Mukhapāta ଆଦିର ଚାବି ଗଳିବା ଛିଦ୍ର ଉପରେ ବଥିବା ମୁଖপাত ପାନ ଆକାରର ବା ତ୍ରିକୋଣ ଆକାର ଧାତୁର ବା ଟିଣର मूखपात ପାତିଆ—A thin triangular or heart-shaped plate put over the keyhole of a box or almirah.

ମୁଖପାତ୍ର - ସ. ବ ( କର୍ମଧା; ମୁଖ=ପ୍ରଧାନ+ପାତ୍ର=ବ୍ୟକ୍ତି )— Mukhapātra ୧ । ପ୍ରତିନିଧି—1. A representative. ୨ । ଯେଉଁ ବ୍ୟକ୍ତି ଅନ୍ୟମାନଙ୍କ ପକ୍ଷରୁ କଥା କହେ— 2. A person who is the mouthpiece of others. ୩ । ଅଗ୍ରଣୀ; ନେତା—3 A leader. ୪ । ପ୍ରଧାନ ବ୍ୟକ୍ତି; ମୁଖିଆ—4. A chief person; headman.

ମୁଖପିଡ଼କା—ସ. ବ—ବାଠବରୁଣ ( ହ. ଶ ) Mukhapirḍikā Varus.

ମୁଖପିଣ୍ଡ—ସ. ବ—ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଅନ୍ତ୍ୟେଷ୍ଟିକ୍ରିୟାରେ Mukhapiṇḍa ପ୍ରଥମେ ପ୍ରଦତ୍ତ ପିଣ୍ଡ ( ହ. ଶ )—Offering of a cake of boiled rice to the ghost of a a deceased before the obsequal rites begin.

ମୁଖ ପୂରଣ—ସଂ ବ—୧ । କୁଳୁକୁଞ୍ଚା ( ହ. ଶ )—1. Gargle. Mukha pūraṇa ୨ । କୁଳୁକୁଞ୍ଚା କରିବା ପାଇଁ ମୁହଁରେ ପୂରାଯିବା ଜଳ ( ହ. ଶ )—2. Water filled up in the mouth for gargling.

ମୁଖ ପୋଛିବା—ଦେ. କ୍ରି ( ସଂ. ମୁଖ+ପ୍ରୋଞ୍ଛନ )—ମୁହଁରେ Mukha pochhibā ଲାଗିଥିବା ଜଳକୁ ବା ଅଇଁଠାକୁ ବସ୍ତ୍ରଦ୍ୱାରା মুখ মুছা ମାର୍ଜନା କରିବା; ମୁହଁ ପରିଷ୍କାର କରିବା—To cleanse मुँह पोछना the face by rubbing it with cloth.

ମୁଖ ପୋଡ଼ା—ଗ୍ରା. ( ଗାଳି ) ବଣ. ପୁଂ—ପୋଡ଼ାମୁହାଁ; ଦଗ୍ଧମୁଖ— Mukha porḍā ( a term of abuse ) Having a মুখ পোড়া मुँह जला scorched face.

ମୁଖ ପ୍ରକ୍ଷାଳନ—ସଂ. ବ ( ୬ଷ୍ଠୀ ତତ୍ )—ମୁହଁ ଧୋଇବା— Mukha prakshāḷana Washing of the face.

ମୁଖପ୍ରିୟ—ସଂ. ବଣ ( ୬ଷ୍ଠୀ ତତ୍ )—ମୁଖରୋଚକ; ଖାଇବାକୁ ରୁଚି- Mukhapriya କର—Toothsome; tasteful. ସଂ. ବ— ୧ । କାକୁଡ଼ି (ହ. ଶ)—1. Cucumber. ୨ । ନାରଙ୍ଗ ( ହ. ଶ )—2. A kind of sweetish orange.

ମୁଖ ଫିଟା(ଟେ)ଇବା—ଦେ. କ୍ରି—କଥା କହିବା—To open the Mukha phiṭā(ṭe)ibā mouth; to speak. মুখ খোলা मुँह खोलना ( ମୁହଁ ଫିଟିବା—ବିଶେଷ୍ୟରୂପ )

ମୁଖବନ୍ଧ—ଦେ. ବ (ସଂ. ମୁଖବନ୍ଧନ)—୧ । କଥା କହିବାର ସ୍ଥଗିତ୍ୟ; Mukhabandā ତୁଷ୍ଣୀଭାବ—1. Silence. ୨ । ମୁହଁରେ মুখ বন্দ मुँह बन्द କପଡ଼ା ମାରିବାଦ୍ୱାରା ବାକ୍ୟରୋଧ— 2 Gagging. ୩ । ମୁଖ ବନ୍ଧ ( ଦେଖ )— Mukha bandha ( See )

ମୁଖ ବନ୍ଦ କରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ କଥା କହିବାକୁ Mukha banda karibā ଅଧିକାର ନ ଦେବା—1. To gag মুখ বন্দ করা a person's mouth; not to allow a मुँह बन्द करना person to speak. ୨ । କଥା କହିବାକୁ ବିରତ ହେବା—2. To cease speaking.

ମୁଖବନ୍ଧ—ସଂ. ବ—୧ । ପ୍ରସ୍ତାବନା; ଅବତରଣିକା; ଗ୍ରନ୍ଥାଦିର ଭୂମିକା Mukhabandha ବା ଉପକ୍ରମଣିକା—1. Introduction to a book; preface. ୨ । ବାଳି, ବୃଦ୍ଧସ୍ୱାରୀର ଅଙ୍ଗୀକାର, ଭୟପ୍ରଦର୍ଶନ, ଲାଞ୍ଚ ଆଦିଦ୍ୱାରା କୌଣସି ବ୍ୟକ୍ତିକୁ କଥା ଲୁହାଇ ନ ଦେବା—2. Stopping the

mouth of a person by threat, promise or reward; preventing a person from speaking.

ମୁଖ ବନ୍ଧନ—ସଂ. ବି—୧। ସ୍ତମ୍ଭନ, ମୋହନ, ବଶୀକରଣାଦି ତାନ୍ତ୍ରିକ
Mukha bandhana ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତିର ବାକ୍‌ସ୍ଫୂର୍ତ୍ତିକୁ ବନ୍ଦ କରିବା—The stoppage of a person's power of speech by employing charms. ୨। ମୁହଁରେ କଣ୍ଡା ମାରିବାଦ୍ୱାରା କୌଣସି ବ୍ୟକ୍ତିର ବାକ୍‌ଶକ୍ତିର ନିରୋଧନ—2. Gagging. ୩। ମୁଖବନ୍ଧ (ଦେଖ)—3. Mukhabandha (See)

ମୁଖ ବଲ୍ଲଭ—ସଂ. ବି—ଡାଳିମ୍ବ ଗଛ—Pomegranate tree.
Mukha ballava ବିଣ- ମୁଖପ୍ରିୟ; ମୁଖରୋଚକ—Delicious; tasteful.

ମୁଖ ବାଦ୍ୟ—ସଂ. ବି (ମ. ପ. ଲୋ.)—୧। ମୁହଁଦ୍ୱାରା ବଜାଯିବା ବାଦ୍ୟ
Mukha bādya (ଯଥା—ଶଙ୍ଖ, ମହୁରି)—1. A musical instrument played with the mouth. ୨। ଶିବାର୍ଚ୍ଚନ ସମୟରେ ଉଚ୍ଚାରିତ 'ବମ୍' 'ବମ୍' ଶବ୍ଦ—2. Sound of Bom repeated while worshipping the God Śiba. ୩। ଲୁଲୁଳି—3. Squeaking sound repeated by wagging the tongue.

ମୁଖ ବାସ—ସଂ. ବି—୧। ପାଟି ବାସିବା ନିମନ୍ତେ ବ୍ୟବହୃତ ସୁଗନ୍ଧ ଦ୍ରବ୍ୟ
Mukha bāsa (ଯଥା—ପାନ, କର୍ପୂର, ମସଲା ଆଦି)—1. Scents used to make the mouth fragrant. ୨। ମୁଖର ଦୁର୍ଗନ୍ଧନାଶକ ଦ୍ରବ୍ୟ—Fragrant spices used in chewing. ୩। ତରଭୁଜ ଲତା (ହି. ଶ.)—3. The water. melon creeper. ୪। ଗନ୍ଧତୃଣ (ହି. ଶ.)—4. Andropogen Citratus plant.

ମୁଖ ବାସନ—ସଂ. ବି—ପାନ ଓ ମସଲା ଆଦି ଖାଇବାଦ୍ୱାରା ମୁଖର
Mukha bāsana ସୁଗନ୍ଧୀକରଣ—Act of making the mouth fragrant by chewing spices, scented gums, etc.

ମୁଖବାସିନୀ—ସଂ. ବି. ସ୍ତ୍ରୀ (ମୁଖ+ବସ୍ ଧାତୁ+ଇନ୍+ଈ)—
Mukhabāsinī ସରସ୍ୱତୀ (ହି. ଶ.)—The Goddess of learning.

ମୁଖବିଲୁଣ୍ଠିକା—ସଂ. ବି. ସ୍ତ୍ରୀ—ଛେଳି; ମାଈ ଛେଳି—
Mukhabiluṇṭhikā A she-goat.

ମୁଖ ବିଷ୍ଠା—ସଂ. ବି (ଯାହାର ମୁଖ ସ୍ପର୍ଶରେ ଦ୍ରବ୍ୟାଦି ବିଷ୍ଠା ପରି ଦୁର୍ଗନ୍ଧ
Mukha bishṭhā ହୁଏ)—ତେଲଚଟିକା; ଅସୁରା—Cockroath.

ମୁଖ ବୁଜିବା—ଦେ. କ୍ରି—ମୁଖ ବନ୍ଦ କରିବା; କଥା ନ କହିବା—
Mukha bujibā To shut up one's mouth.
मुखबोजा(मुजा) मुँह बंद करना

ମୁଖ ବ୍ୟଙ୍ଗ—ସଂ. ବି—ଭଙ୍ଗରେଖ; ମୁହଁରେ ଦେଖାଯିବା ସାନ ସାନ
Mukhabyaṅga ଅସୁନ୍ଦର ଦାଗମାନ—Small blackish patches appearing on the face.
[ ଦ୍ର—ବୈଦ୍ୟକମତରେ ଅଧିକ ପରିଶ୍ରମ ବା କ୍ରୋଧ ଯୋଗୁ ବାୟୁ ଓ ପିତ୍ତ ପ୍ରକୁପିତ ହୋଇ ଏ ଦାଗମାନ ପଡ଼ିଯାଏ; ଏଥିରେ କୌଣସି କଷ୍ଟ ହୁଏ ନାହିଁ; କିନ୍ତୁ ମୁହଁର ଶୋଭା କମିଯାଏ—ହି. ଶ। ]

ମୁଖ ବ୍ୟାଦାନ—ସଂ. ବି (୬ଷ୍ଠୀ ତତ୍)—ପାଟି ଆଁ କରିବା; ପାଟିକୁ
Mukha byādāna ବିସ୍ତାର କରିବା—Yawning; gaping.

ମୁଖଭଙ୍ଗୀ—ସଂ. ବି (୬ଷ୍ଠୀ ତତ୍)—୧। ମୁହଁର ଛଟକ—
Mukha bhaṅgī 1 Facial expression making; faces. ୨। ମୁହଁକୁ ବିକୃତ କରିବା—2. Distortion of the face.

ମୁଖ ଭଙ୍ଗୀ କରିବା—ଦେ. କ୍ରି—୧। ମୁହଁକୁ ବିକଟ କରିବା—1. To
Mukha bhaṅgī karibā distort one's face.
मुखभङ्गी करा ୨। ଖତେଇ ହେବା—2. To make faces
मुख भङ्गी करना or mouths at.

ମୁଖ ଭାର(ରୀ)—ଦେ. ବି—ଆନ୍ତରିକ କ୍ରୋଧ ବା ଅପମାନ ଯୋଗୁ
Mukha bhāra(rī) ମୁଖକୁ ଗମ୍ଭୀର ବା ବିରସ କରିବା—
मुख भार मुहँ फुलाना Scowling; frowning.

ମୁଖ ଭୂଷଣ—ସଂ. ବି—ପାନ ଖିଲ—Betel prepared for
Mukha bhūshaṇa chewing.

ମୁଖ ମଣ୍ଡନ—ସଂ. ବି—୧। ମୁହଁକୁ ଚନ୍ଦନ, ତେଲ ଓ ବେଶାଦି ଦ୍ୱାରା
Mukha maṇḍana ସଜାଇବା—Painting one's face with sandal paste, oil etc; the toilette of the face. ୨। ମୁହଁକୁ ବେଶ କରିବା ନିମନ୍ତେ ବ୍ୟବହୃତ ଚନ୍ଦନ, ଗୋରୋଚନା, ସିନ୍ଦୂର ଆଦି—2. Articles (e.g. face powder, sandal paste) used for painting the face. ୩। ମୁହଁର ଅଳଙ୍କାର—3. Ornament for the face. ୪। ଯେଉଁ କବିତା ବା ଶ୍ଳୋକାଦି ମୁଖସ୍ଥ କରିବା ଉଚିତ (ପ୍ରକୃତିବାଦ)—4. Any couplet or sloka which should be committed to memory.

ମୁଖ ମଣ୍ଡଳ—ସଂ. ବି. (ରୂପକ)—୧। ମୁଖ ପ୍ରଦେଶ; ସମଗ୍ର ମୁଖ—
Mukha maṇḍaḷa 1. The whole face. ୨। ପରିଧି ବିଶିଷ୍ଟ ମୁଖ—2. The orb of the face.

ମୁଖ ମଣ୍ଡଳୀୟ—ସଂ. ବିଣ—ମୁଖ ମଣ୍ଡଳ ସମ୍ବନ୍ଧୀୟ—Relating to
Mukha maṇḍaḷīya the whole face.

ମୁଖ ମଣ୍ଡଳୀୟ ପକ୍ଷାଘାତ—ଦେ. ବି. (ଆଧୁନିକ ପ୍ରୟୋଗ)—ଯେଉଁ
Mukha maṇḍaḷīya pakshāghāta ପକ୍ଷାଘାତ ରୋଗ
मुख मण्डलीय पक्षाघात ମୁଖ ମଣ୍ଡଳକୁ ଆକ୍ରମଣ କରେ—
मुख मण्डलीय पक्षाघात Facial paralysis.

ମୁଖ ମଣ୍ଡଳୀୟ ସ୍ନାୟୁଶୂଳ—ଦେ. ବି. (ଆଧୁନିକ ପ୍ରୟୋଗ)—ମୁହଁକୁ
Mukha maṇḍaḷīya snāyuśūḷa ଆକ୍ରମଣ କରିବା

ମୁଖ ମଣ୍ଡଳୀୟ ସ୍ନାୟୁଶୂଳ ସ୍ନାୟୁଶୂଳ ରୋଗ ବିଶେଷ—Facial neuralgia; Prosopolgia.
मुख मण्डलीय स्नायु शूल

ମୁଖ ମଣ୍ଡିକା—ସଂ. ବି—୧ । ବାଳ ରୋଗ ବିଶେଷ (ହି. ଶ)—1. A kind of infant disease.
Mukha maṇḍikā
(ମୁଖ ମଣ୍ଡିତିକା—ସ୍ତ୍ରୀ) ୨ । ଉକ୍ତ ରୋଗର ଅଧିଷ୍ଠାତ୍ରୀ ଦେବୀ (ହି. ଶ)—2. The Goddess presiding over the above disease.
(ଉ—ବୈଦ୍ୟମାନେ ଦଗ୍ଧ ବାଳକ ମାଂସ ଖାଇ, ମୁଖମଣ୍ଡିକା ସେ ବୋଲାଇଲେ ଏ ମହୀ । କୃଷ୍ଣସିଂହ· ମହାଭାରତ.ବନ ।)

ମୁଖ ମଳ—ସଂ. ବି—ପାଟି ଭିତରେ ଛିଡ଼ଥା—The dirt accumulating inside the mouth.
Mukha maḻa

ମୁଖ ମାଧୁର୍ଯ୍ୟ—ସଂ. ବି. (୬ଷ୍ଠୀ ତତ୍) —ଶ୍ଳେଷ୍ମାର ବିକାର ଜନିତ ପାଟିରେ ମଧୁର ସ୍ୱାଦ ଅନୁଭୂତ ହେବା ରୋଗ ବିଶେଷ (ଭାବ ପ୍ରକାଶ)—A kind of disease in which there is a sweet taste felt in the mouth.
Mukha mādhurjya

ମୁଖ ମାରୁତ—ସଂ. ବି. (ମ. ପ. ଲୋ; ମୁଖ ନିଃସୃତ ମାରୁତ)—ଫୁତ୍କାର—Air blown through the mouth.
Mukha māruta

ମୁଖ ମୋଦ—ସଂ. ବି—୧ । ଶୋଭାଞ୍ଜନ; ସଜନା ଗଛ—1. A tree; Hyperananthera Morunga. ୨ । ଶଲ୍ଲକୀ ବୃକ୍ଷ (ହି. ଶ)—2. Boswellia Serrata (tree).
Mukha moda

ମୁଖମ୍ପଚ—ସଂ. ବି. (ମୁଖମ୍+ପଚ୍ ଧାତୁ+କର୍ତ୍ତ୍ରି. ଅ, ଯେ ମୁଖ ଦ୍ୱାରା ପାକ କରେ)—୧। ଭିକ୍ଷୁକ—1. A beggar. ୨ । ଯାଚୟିତା—2. A petitioner.
Mukhampacha

ମୁଖ ଯନ୍ତ୍ରଣ—ସଂ. ବି—ଲଗାମର କଣ୍ଟେଇ—1. The bit of a bridle. ୨ । ଘୋଡ଼ା ଆଦିଙ୍କର ଲଗାମ (ମୁଖନିଯନ୍ତ୍ରଣ—ଅନ୍ୟରୂପ) (ହି.ଶ)—2. Bridle; reins
Mukha jantraṇa

ମୁଖର—ସଂ. ବିଣ. ପୁଂ. (ମୁଖ=ମୁଖ ନିର୍ଗତ ବାକ୍ୟ+ର ଅର୍ଥରେ ର)—୧ । ଅତି ଭାଷୀ; ବାଗ୍ମୀ—1. Garrulous; talkative. ୨ । ଅଗ୍ରଭାଷୀ—2. Speaking first. ୩। ଲୁଚ୍ଚା; ଅପ୍ରିୟଭାଷୀ; ଦୁର୍ମୁଖ; କଟୁଭାଷୀ—3. Scurrilous; foul mouthed. ୪ । ବଡ଼ ପାଟିଆ—4. Boisterous; turbulent. ୫ । ଅନ୍ୟମାନଙ୍କ ପ୍ରତିନିଧି ସ୍ୱରୂପ ଯେ କଥା କହେ—5. Speaking as the mouthpiece of others. ୬ । ଶବ୍ଦାୟମାନ—6. Vocal. (ଉ—ବାହାରୁ ଯେ ମୁଖର ଉପନାସ୍ୱନ କଲେ । ଭଞ୍ଜ, ବୈଦେହୀଶବିଳାସ ।) ୭ । ଅଗ୍ରଗଣ୍ୟ; ପ୍ରଧାନ (ବ୍ୟକ୍ତି)—7. Leading; chief (person). ବି—୧। ଅଗ୍ରବର୍ତ୍ତୀ ବ୍ୟକ୍ତି; ନେତା—1. A leader. ୨ । ଶଙ୍ଖ—2. Conchshell. ୩ । କାକ—3. A crow.
Mukhara
(ମୁଖରା—ସ୍ତ୍ରୀ)
(ମୁଖରତା—ବି)

ମୁଖ ରକ୍ଷା—ଦେ. ବି—୧ । ମାନ ରକ୍ଷା—1. Saving of one's face; saving of one's prestige. ୨ । ଅନୁରୋଧ ରକ୍ଷା—2. Compliance with one's request.
Mukha rakshā
মুখ রক্ষা
मुहँकि लाज रक्षा

ମୁଖ ରତି—ସଂ.ବି (୭ମୀ ତତ୍) ଅସ୍ୱାଭାବିକ ଉପାୟରେ ଅନ୍ୟର ମୁଖ ସାହାଯ୍ୟରେ ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ କରିବା କିମ୍ବା (ଅଶ୍ଳୀଳ—ଭାଷା ଚୁକାଇବା)—Act of unnatural sexual intercourse through the mouth.
Mukha rati

ମୁଖରିବା—ଦେ. କ୍ରି (ପଦ୍ୟ)—ଧ୍ୱନିତ କରିବା; ଶବ୍ଦାୟିତ କରିବା—To resound. (ଉ—ତେସନ ମୁଖରି ମୋହନ ଦୁଃଖ କଲରବେ । ରାଧାନାଥ. ବେଣୀସଂହାର ।)
Mukharibā
মুখরা
मुखरना

ମୁଖରୀକରଣ—ସଂ. ବି. (ମୁଖର+ଅଭୂତ ତଦ୍ଭାବେ ଚ୍ୱି+କରଣ)—ଥଟ୍ଟା ତାମସା—Mockery; raillery.
Mukharīkaraṇa

ମୁଖ ରୁଚି—ସଂ. ବି. (୬ଷ୍ଠୀ ତତ୍)—କୌଣସି ବ୍ୟକ୍ତିର ମୁହଁର ଶ୍ରୀ ମୁଖ ଶୋଭା—The beauty or grace of one's face.
Mukha ruchi
মুখ রুচি
मुख रुचि
ଦେ.ବି (ସଂ. ମୁଖରୋଚକ)—ମୁଖର ରୁଚି ଜନକ, ମୁଖ ରୋଚକ—Tasteful; delicious.

ମୁଖରେ ପାଣି ନ ଥିବା—ଦେ. ବି—୧ । ମୁହଁରେ ସରସତା ନ ଥିବା—1. Disappearance of cheerfulness from the face. ୨ । ନିର୍ଲଜ୍ଜ ହେବା—2 To be lost to all sense of shame. [ ଉ—ଯେତେ ଅଛନ୍ତି ତୁମ୍ଭ ସେନାରେ ରଥୀ ଶ୍ରେଣୀ । ତୁମ୍ଭ ପରି ମୁଖରେ ନାହିଁ ଅଛି ପାଣି । କୃଷ୍ଣସିଂହ ମହାଭାରତ, ଉ. ।]
Mukhare pāṇi nathibā
মুখ শুখিয়ে যাওয়া
मुखमे पानी नहीं रहना

ମୁଖ ରୋଗ—ସଂ. ବି—୧ । ମୁହଁର ବେମାରି—1. A disease affecting the face. ୨ । ପାଟିର ବେମାରି—2. Mouth-disease. [ ଦ୍ର—ଓଠ, ଦାନ୍ତମୂଳ, ଦାନ୍ତ, ଜିଭ, ତାଳୁ ଓ ଗଳାରେ ହେବା ରୋଗକୁ ମୁଖ ରୋଗ ବୋଲାଯାଏ । ବୈଦ୍ୟଶାସ୍ତ୍ର ମତରେ ଏହାର ସଂଖ୍ୟା ୬୭ । ଓଠରେ ହେବା ରୋଗ ୮, ଦାନ୍ତ ମୂଳରେ ୧୬, ଦାନ୍ତରେ ୮, ଜିଭରେ ୫, ତାଳୁରେ ୯ ଓ କଣ୍ଠରେ ୧୮ ଓ ସମସ୍ତ ମୁଖରେ ୩ ପ୍ରକାର—ହି. ଶ.।]
Mukha roga

ମୁଖ ରୋଚକ—ସଂ. ବିଣ—ଖାଇବାକୁ ରୁଚିକର—Tasteful; delicious; toothsome.
Mukha rochaka

ମୁଖରୋଧ—ସଂ. ବି (୬ଷ୍ଠୀ ତତ୍)—ମୁଖ ବନ୍ଧନ (ଦେଖ) Mukha bandhana (See).
Mukharodha

ମୁଖ(ଖା, ଖୁ)ର୍ଜି(ର୍ଜ୍ୟା)—ଦେ. ବି—ବଙ୍ଗୀୟ ମୁଖୋପାଧ୍ୟାୟ ବ୍ରାହ୍ମଣଙ୍କ ୮ଆଟକିକ ଉପାଧି—A family title of Bengalee Brāhmaṇas.
Mukha(khā, khu)rji(rjyā)
মখুজ্যা, মঞর্যী
मुखरजी

**ମୁଖ ଲଜ୍ଜା**—ଦେ. ବି—ଚକ୍ଷୁଲଜ୍ଜା; ଲୋକବଳ; ଅନ୍ୟର ମନ ନେବା ପାଇଁ ଇଚ୍ଛା—Regard for the feelings of a person; delicacy
Mukha lajja
ମୁଖଲଜ୍ଜା मुखलज्जा
[ ଦ୍ର—କୌଣସି କାର୍ଯ୍ୟ କଲେ ବା କୌଣସି କଥା କହିଲେ କାଳେ ଅପଣା ସମ୍ମୁଖରେ ଉପସ୍ଥିତ ବ୍ୟକ୍ତି ବିରକ୍ତ ହେବେ, ଏହାକୁ ନେଇ କାର୍ଯ୍ୟ କରିବାକୁ ବା କହିବାକୁ ଚକ୍ଷୁର୍ଲଜ୍ଜା ବା ମୁଖଲଜ୍ଜା ବୋଲାଯାଏ । ]

**ମୁଖ ଲାଙ୍ଗଳ**—ସଂ. ବି ( ବହୁବ୍ରୀହି; ମୁଖ ଅଟେ ଲାଙ୍ଗଳ ଯାହାର; ଯେ ମୁହଁରେ ଭୂମି ଚାଷେ )—
Mukha lāṅgaḷa
୧ । ବରାହ; ଶୂକର; ଘୁଷୁରି—1. Hog; boar. ୨ । କୁକୁର—2 Dog.

**ମୁଖ ଶଫ**—ସଂ. ବିଣ. ପୁଂ—ଦୁର୍ମୁଖ; କଟୁଭାଷୀ ( ହି ଶ. )—
Mukha śapha Evil-tongued; foul-mouthed.

**ମୁଖ ଶଶୀ**—ସଂ. ବି ( ଉପମିତ )—ମୁଖଚନ୍ଦ୍ର (ଦେଖ)
Mukha śaśī Mukhachandra (See)

**ମୁଖଶାଳା(ଳି)**—ସଂ. ବି—ଦେବତାଙ୍କ ରହିବା ମନ୍ଦିରର ସମ୍ମୁଖକୁ ଲାଗି ଥିବା କ୍ଷୁଦ୍ରତର ମନ୍ଦିର—Vestibule; the entrance hall of a temple.
Mukhaśāḷā(lā)

**ମୁଖ(ଖୁ)ଶାଳି**—ଦେ. ବି ( ସଂ. ମୁଖଶାଳା ବା ମୁଖ୍ୟଶାଳା )—
Mukha(khu)śāḷi ୧ । ଦେଉଳର ବିମାନ—1. The pyramidal top part of a temple.
ବିମାନ, জগমোহন जगमोहन
( ହି—ଉପର ମୁଖଶାଳଯାଏ, ଅନନ୍ତକଣ୍ଠ ସେ ବୋଲାଏ-ଯଶୋବନ୍ତ ପ୍ରେମଭକ୍ତିବ୍ରହ୍ମଗୀତା । )
୨ । ମୁଖଶାଳା; ଜଗମୋହନ—
2. The entrance room to a temple.

**ମୁଖ ଶୁଖା(ଖେ)ଇବା**—ଦେ. କ୍ରି—ମୁହଁଦ୍ୱାରା ଦୁଃଖପ୍ରକାଶ କରିବା; ମୁହଁ ବିରସ କରିବା—
Mukha śukhā(khe)ibā
মুখশুকান मुहसुखाना To have a sorrowful face.
(ମୁଖଶୁଖିବା—ବି)

**ମୁଖଶୁଦ୍ଧି**—ସଂ. ବି ( ୬ଷ୍ଠୀ ତତ୍ )—୧ । ମୁଖ ପ୍ରକ୍ଷାଳନ—
Mukha śuddhi 1, Washing of the face and the mouth. ୨ । ଦାନ୍ତଘଷିବା—2. Cleansing of the teeth. ୩ । ଖାଇ ସାରିବା ପରେ ମୁଖକୁ ସୁଗନ୍ଧୀକରଣାର୍ଥ ବ୍ୟବହୃତ ଗୁଆଡଙ୍ଗା ଆଦି ଦ୍ରବ୍ୟ-
3. Spices chewed after dinner to impart fragrance to the mouth.

**ମୁଖ ଶୋଧନ**—ସଂ. ବି (୬ଷ୍ଠୀ ତତ୍)—୧ । ମୁଖକୁ ପରିଷ୍କୃତ କରିବା-
Mukha śodhana 1 Cleansing of the mouth.
୨ । ମସଲାଆଦି ଖାଇବାଦ୍ୱାରା ମୁଖର ଦୁର୍ଗନ୍ଧ ନିବାରଣ—
2. The act of imparting fragrance to the mouth by chewing spices etc. ୩ । ( ବହୁବ୍ରୀହି ) ପାନ ମସଲା ଆଦି ଯେଉଁ ପଦାର୍ଥମାନ ଚୋବାଇଲେ ପାଟି ସୁଗନ୍ଧିତ ହୁଏ ( ହି. ଶ )—
3 Spices etc which cause the mouth to smell sweet. ୪ । ଜାଇଫଳ ( ହି ଶ. )—
4. Mace (spice).

**ମୁଖଶୋଧୀ**—ସଂ ବିଣ. ପୁଂ ( ମୁଖ + ଶୁଧ ଧାତୁ + କର୍ତ୍ତୃ. ଇନ୍, ୧ମ ଏକ)—ଯାହା ମୁହଁର ଦୁର୍ଗନ୍ଧ ନିବାରଣ କରେ—Removing bad smell from the mouth
Mukhaśodhī
(ମୁଖଶୋଧକ—ଅନ୍ୟରୂପ)
ସଂ ବି. ପୁଂ—୧ । ମୁଖଶୋଧନ ୩ (ଦେଖ)—1. Mukhaśodhana 3 (See) ୨ । ଟଂଗର ଲେମ୍ବୁ—2 Citron (fruit).

**ମୁଖ ଶୋଭା**—ସଂ. ବି ( ୬ଷ୍ଠୀ ତତ୍; ମୁଖ + ଶୋଭା )—ମୁହଁର ସୌନ୍ଦର୍ଯ୍ୟ; ଚେହେରାର ଶୋଭା—Beauty of the feature; lustre of the countenance; the grace of one's face.
Mukha śobhā
(ମୁଖଶ୍ରୀ—ଅନ୍ୟରୂପ)

**ମୁଖଶୋଷ**—ସଂ. ବି—୧ । ପୀଡ଼ା ଯୋଗୁଁ ମୁହଁ ଶୁଖିଯିବା—
Mukha śosha 1. Dryness of the mouth occasioned by disease. ୨ । ଶୋଷ (ହି. ଶ) —2. Thirst.

**ମୁଖଷ୍ଠୀଳ**—ସଂ. ବିଣ ପୁଂ (ମୁଖ + ଷ୍ଠା ଧାତୁ + କର୍ତ୍ତୃ ଇଲ)—ଦୁର୍ମୁଖ—
Mukhashthiḷa Foul-mouthed.

**ମୁଖ ସମ୍ଭବ**—ସଂ. ବିଣ. ପୁଂ ( ବହୁବ୍ରୀହି )—ମୁଖରୁ ଜାତ—
Mukha sambhaba Produced from the mouth.
(ମୁଖସମ୍ଭବା—ସ୍ତ୍ରୀ) ସଂ. ବି ( ବ୍ରହ୍ମାଙ୍କ ମୁଖରୁ ଜାତ )—୧ । ବ୍ରାହ୍ମଣ—1. Brāhmaṇa.
(ମୁଖସମ୍ଭୂତ—ଅନ୍ୟ ବିଣରୂପ)
୨ । ପୁଷ୍କର ମୂଳ ( ହି ଶ )—2. The root of Alpotaxis Auriculata

**ମୁଖସୁଧା**—ସଂ. ବି ( ମ. ପ. ଲୋ; କର୍ମଧା; ମୁଖ ନିର୍ଗତ ସୁଧା )—୧ । ଛେପ—1. Spittle. ୨ । ପାଟିର ନାଳ — 2. Saliva.
Mukha sudhā

**ମୁଖ ସୁରା(ର)**—ସଂ. ବି ( ମ. ପ. ଲୋ କର୍ମଧା; ମୁଖରୁ ନିର୍ଗତ ସୁରା )—
Mukha surā(ra) ୧ । ଲାଳ—1. Saliva. ୨ । ଛେପ—2. Spittle. ୩ । ତାଳସୁରା; ତାଡ଼ୀ—3. Palm-toddy; datepalm toddy.

**ମୁଖ ସୂଚୀ**—ସଂ. ବି ( ବହୁବ୍ରୀହି )—ଅମ୍ବଡ଼ା ଗଛ ( ହି. ଶ )—
Mukha sūchī Hogplum tree.

**ମୁଖସ୍ତ**—ଗ୍ରା. ବିଣ ( ସଂ. ମୁଖସ୍ଥ )—ପଢ଼ିଥାଇଥିବା; ଯାହା ଘୋଷିକରି ମନେ ରଖି ପ୍ରୟୋଜନ ବେଳେ ଆବୃତ୍ତି କରାଯାଇ ପାରେ, କଣ୍ଠସ୍ଥ—Learnt by rote; got by heart; committed to memory
Mukhasta
মুখস্ত (স্থ)
कण्ठस्थ

**ମୁଖସ୍ତ କରିବା**—ଗ୍ରା. କ୍ରି—୧ । ପଢ଼ିଥାଇବା—1. To get by heart; to commit to memory.
Mukhasta karibā
মুখস্ত(স্থ) করা
कण्ठस्थ करना
୨ । ଘୋଷିବା—2. To learn anything by rote.

**ମୁଖସ୍ଥ**—ସଂ. ବିଣ ( ମୁଖ + ସ୍ଥା ଧାତୁ + କର୍ତ୍ତୃ. ଅ)—୧ । ପଢ଼ିହୋଇଥିବା; କଣ୍ଠସ୍ଥ—1. Committed to
Mukhastha

memory; learnt by rote. ୨ । ମୁଖସ୍ଥିତ—2. Situated or placed on the face or in the mouth ୩ । ମୌଖିକ; ବାହ୍ୟ; ଯାହା ଅନ୍ତରଙ୍ଗ ନୁହେଁ—3. External.

ମୁଖସ୍ଥ କରିବା—ଦେ. କ୍ରି—ଘୋଷିବା—To get by heart; Mukhastha karibā to commit to memory. মুখস্থ করা कण्ठस्थ करना

ମୁଖସ୍ରାବ—ସଂ. ବି ( ମୁଖ + ସ୍ରୁ ଧାତୁ + କର୍ତ୍ତୃ. ଅ )—୧ । ଲାଳ—Mukhasrāba 1. Saliva. ୨ । କେତେକ ଶିଶୁଙ୍କ (ମୁହାଁ[ସ]ବ—ଅନ୍ୟରୂପ) ମୁହଁରୁ ଅତ୍ୟଧିକ ଲାଳ ବହିବା—2. Excessive salivation of some children. [ ଦ୍ର—ଏହା ଦୂଷିତ ସ୍ତନ୍ୟପାନ ଯୋଗୁଁ ହୁଏ । ସାଧାରଣ ବିଶ୍ୱାସ ଯେ, ଯେଉଁ ପିଲା ଗର୍ଭରେ ଥିବା ସମୟରେ ମାତାର ଦୋହଦଲାଳସା ଅପୂର୍ଣ୍ଣ ରହିଥାଏ, ସେ ପିଲାର ପାଟିରୁ ଝୁର୍ ଲାଳ ଗଡ଼େ । ]

ମୁଖା—ଦେ. ବି ( ସଂ. ମୁଖକୋଷ )—୧ । ମୁଖକୋଷ; ମୁଖାଚ୍ଛାଦନ; Mukhā ଯାହା ପୂଅଙ୍ଗ ଆଦିରେ ନିଜ ମୁହଁକୁ ଘୋଡ଼ାଇ ଅନ୍ୟ ଯେଉଁ মুখোষ କୃତ୍ରିମ ମୁଖ ପିନ୍ଧନ୍ତି—1. A mask worn on the मुखडा; चेहरा face in masquerades. [ ଉ—गोल्कालुराडी ମୁଖାର ଯୋଗାଡ଼ ନାହିଁ ଅଛି ତାଙ୍କ ମୁଖ। ପ୍ରାଚୀ. ବ୍ରହ୍ମକରୂପଙ୍କ ଗୀତା । ] ୨ । ବନ୍ୟବୃକ୍ଷବିଶେଷ [ ଦ୍ର—ଏହା ପାହାଡ଼ ଉପରେ ଥିବା ଭୂଷ ଯାଗା-ମାନଙ୍କରେ ଜନ୍ମେ । ] 2. Schebera Swietenioides ( Haines ). ଦେ. ବିଣ. ପୁଂ মুখা ( ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ, ଯଥା ବାନର ମୁଖା )—मुँहा ମୁଖଯୁକ୍ତ—Faced; having a face. କ୍ରି. ବିଣ মুখ ( ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ ଯଥା—ଉତ୍ତର ମୁଖା; मुँह ପୂର୍ବମୁଖା )—କୌଣସି ଦିଗକୁ ମୁହଁ କରି—Facing towards, with face turned towards.

ମୁଖାକୃତି—ସଂ. ବି—(ଷଷ୍ଠୀ ତତ୍; ମୁଖ + ଆକୃତି)—୧ । ମୁଖର ଗଠନ—Mukhākruti 1. The build of the face. ୨ । ଚେହେରା—2. Countenance; mien.

ମୁଖାଗ୍ନି—ସଂ. ବି.—(ମ, ପ. ଲୋ କର୍ମଧା; ମୁଖରେ ପ୍ରଦତ୍ତ ଅଗ୍ନି)—Mukhāgni ୧ । ଶବଦାହ କାଳରେ ଶବର ମୁହଁରେ ମୃତ ବ୍ୟକ୍ତିର ଆତ୍ମୀୟ (ଯଥା, ପୁଅ) ମନ୍ତ୍ର ପାଠ ପୂର୍ବକ ପ୍ରଥମେ ଯେଉଁ ଅଗ୍ନି ଦିଏ—1. Fire set to the face of a dead body by a relative of the deceased (such as the eldest son) at the time of setting fire to the funeral pyre. ୨ । ଶବ ଦାହ କାଳରେ ଶବର ମୁଖରେ ପ୍ରଥମେ ଅଗ୍ନି ଲଗାଇବା ରୂପ ସଂସ୍କାର ବିଶେଷ—2. The ritua of the first setting of the fire to the face of the dead body in cremation. ୩। (ଷଷ୍ଠୀ ତତ୍ ମୁଖ + ଅଗ୍ନି )—ଦାବାନଳ—3. Forest fire; forest conflagration. ୪ । ( ବହୁବ୍ରୀହି ) ବ୍ରାହ୍ମଣ—4. A Brāhmaṇa. ୫ । ଭିଲଗୁଣି—5. Will-o-the-wisp. ୬ । ଯଜ୍ଞାଗ୍ନି—6. Sacrificial fire. ୭ । ଉଲ୍କାମୁଖୀ; ଏକପ୍ରକାର ବିଲୁଆ, ଯେଉଁ ଜନ୍ତୁ ପାଟି ମେଲା କଲେ ପାଟିରୁ ନିଆଁ ଝର ଅଲୁଅ ବାହାରେ—7. A kind of jackal from whose mouth is said to issue a jet resembling fire.

ମୁଖାଗ୍ର—ସଂ. ବି—( ଷଷ୍ଠୀ ତତ୍ )—୧ । ଓଠ—1. Lip. ୨ । Mukhāgra ଥୋମଣି—2. Snout. ୩ । କୌଣସି ବସ୍ତୁର ଅଗ ପାଖ (ବି. ପ୍ର)—3. The front portion or side of a thing. ସଂ. ବିଣ—୧ । ମୁଖସ୍ଥ; କଣ୍ଠସ୍ଥ (ବି. ପ୍ର)—1. Committed to memory; got by heart. ୨ । ଯେଉଁ ବିଷୟ ବା କଥା କୌଣସି ବ୍ୟକ୍ତିଙ୍କ ମୁହଁରୁ ଉଚ୍ଚାରିତ ହେବାକୁ ପ୍ରସ୍ତୁତ ଥାଏ—2. (any matter) Which is on the point of being uttered by a person; which is on the tip of one's tongue.

ମୁଖାଚ୍ଛାଦନ—ସ. ବି.—(ଷଷ୍ଠୀ ତତ୍; ମୁଖ+ଆଚ୍ଛାଦନ)—୧ । ଅବ-Mukhāchchhādana ଗୁଣ୍ଠନ; ଓଢ଼ଣା—1. A veil. ୨ । (ମୁଖାବରଣ—ଅନ୍ୟରୂପ) ପାତ୍ରାଦିର ମୁହଁରେ ଘୋଡ଼ା ଯିବା ଢାଙ୍କୁଣି—2. A lid or covering for the month of a pot.

ମୁଖାପସେକ—ସଂ. ବି—(ଷଷ୍ଠୀ ତତ୍; ମୁଖ+ଅପସେକ)—୧ । ମୁହଁରେ Mukhāpaseka ଲାଳ ଉଠିବା—1. Salivation. ୨ । ରୋଗ ବିଶେଷ, ମୁହଁ ନାଲେଇବା—2. Water brash; involuntary flow of saliva.

ମୁଖା ପିନ୍ଧିବା—ଦେ. କ୍ରି—ମୁହଁରେ ଅନ୍ୟ ଗୋଟିଏ ମୁହଁର ପ୍ରତିକୃତି Mukhā pindhibā ପିନ୍ଧିବା—To wear a mask on মুখোষ পরা मुखडालगाना, चेहरालगाना the face, [ମୁଖା ବାନ୍ଧିବା, ମୁଖା ଲଗା (ଗେ)ଇବା—ଅନ୍ୟରୂପ]

ମୁଖାପେକ୍ଷା—ସଂ. ବି. (ଷଷ୍ଠୀ ତତ୍; ମୁଖ+ଅପେକ୍ଷା)—୧ । କୌଣସି Mukhā peksha ବ୍ୟକ୍ତିର ଆଦେଶର ବା ଅନୁଗ୍ରହର ଅଥବା ସାହାଯ୍ୟର ପ୍ରତ୍ୟାଶା—1. Waiting for another's help or order or favour. ୨ । ପକ୍ଷପାତ—2. Partiality. ୩ । ଅନୁରୋଧ—3. Request. ୪ । କୌଣସି ବିଷୟର ସୂଚନା ପାଇବା ପାଇଁ ଅନ୍ୟ ବ୍ୟକ୍ତିର ମୁହଁକୁ ଚାହିଁ ରହିବା—4. Watching another person's face or countenance (in order to get an indication of his or her wish from the countenance). ୫ । ଅନ୍ୟ ବ୍ୟକ୍ତିର ଆଶ୍ରିତ ( ବ୍ୟକ୍ତି ) (ବି. ପ୍ର.)—5. Dependance on another.

**ମୁଖାପେକ୍ଷିତା**—ସଂ. ବି ( ମୁଖାପେକ୍ଷିନ୍+ଭାବ. ତା )—୧ । ପକ୍ଷପାତିତା
Mukhāpekshitā —1. Partiality. ୨ । ଅନ୍ୟର ମୁଖାପେକ୍ଷା କରିବାର ଭାବ—2. Dependence on another's favour. ୩। ଅନୁରୋଧ—3. Request.

**ମୁଖାପେକ୍ଷୀ**—ସଂ. ବିଣ. ପୁଂ ( ମୁଖାପେକ୍ଷା+ଇନ୍ ୧ମା. ୧ବ. ଏହି
Mukhāpekshī ସାଧାରଣତଃ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ (ମୁଖାପେକ୍ଷକ—ଅନ୍ୟରୂପ) ଯଥା ପରମୁଖାପେକ୍ଷୀ, ସ୍ତ୍ରୀ ମୁଖାପେକ୍ଷୀ )
ମୁଖାପେକ୍ଷିଣୀ } ସ୍ତ୍ରୀ
ମୁଖାପେକ୍ଷିକା }
—୧ । ଅନୁଗ୍ରହ ପ୍ରତ୍ୟାଶୀ—1. Depending upon another's favour. ୨ । ଯେ ଅନ୍ୟର ମୁଖାପେକ୍ଷା କରେ—2. Waiting for another's favour or pleasure. ୩ । ପକ୍ଷପାତୀ—3. Partial. ୪ । ଯେ ଅନ୍ୟର ମୁହଁକୁ ଚାହିଁ ରହେ—4. Watching another's countenance. ୫ । ଆଶ୍ରିତ ( ହି. ଶ )—5. Dependant.

**ମୁଖାବଲୋକନ**—ସଂ. ବି (୬ଷ୍ଠୀ ତତ୍; ମୁଖ+ଅବଲୋକନ )—
Mukhābalokana ମୁଖ ନିରୀକ୍ଷଣ; ମୁହଁ ଦେଖିବା—The seeing of a person's face.

**ମୁଖାମୟ**—ସଂ. ବି ( ୬ଷ୍ଠୀ ତତ୍, ମୁଖ+ଆମୟ )—୧ । ମୁଖରୋଗ—
Mukhāmaya 1. Disease of the face or the mouth.

**ମୁଖାମୁଖି**—ଦେ. କ୍ରି. ବିଣ—ଦୁଇଜଣଙ୍କର ସାମନାସାମନି—
Mukhāmukhi Face to face; tete-a-tete.
ମୁଖୋମୁଖୀ **मुँहामुँही** ବି—ଦେଖା ସାକ୍ଷାତ୍—Interview.

**ମୁଖାମୃତ**—ସଂ. ବି ( ମ. ପ. ଲୋ; କର୍ମଧା; ମୁଖ ନିଃସୃତ ଅମୃତ )—
Mukhāmṛuta ୧ । ଛେପ—1. Spittle. ୨ । ପାଟିର ଲାଳ—2. Saliva. ୩ । ମୁହଁରୁ ବାହାରିବା ବାକ୍ୟରୂପ ଅମୃତ—3. The ambrosia of words uttered from the mouth.

**ମୁଖାରି**—ଦେ. ବି—୧ । ସଙ୍ଗୀତର ରାଗିଣୀ ବିଶେଷ—1. Name of
Mukhārī a tune of songs. ୨ । ମୁହଁ—2. Face. ୩ । ଦାନ୍ତକାଠି—3. Fragmant of a twig to cleanse the teeth with. [ ଉ—ମହାବ୍ରହ୍ମ ମହିମା ସେ ଧୂଅନ୍ତି ମୁଖାରି । ଭୀମଭୋଇ. ବ୍ରହ୍ମନିରୂପଣ ଗୀତା । ]

**ମଖାର୍ଜକ**—ସଂ. ବି—ବନତୁଳସୀ ( ହି. ଶ )—
Mnkhārjaka The wild Basil plant.

**ମୁଖାଲ(ଲି)ପ(ଫ)**—ବୈଦେ. ବିଣ ( କଡରଥା ) ( ଆ )—୧ ।
Mukhāla(li)pa(pha) ବିରୋଧୀ (ବ୍ୟକ୍ତି )—1. Adverse;
**मुखालिफ** antagonistic. ୨ । ଶତ୍ରୁତାପନ୍ନ—2. Inimical; hostile. ୩ । ପ୍ରତିଦ୍ୱନ୍ଦୀ—3. Rival.
ବି—୧ । ଶତ୍ରୁ—1. Enemy, adversary. ୨ । ପ୍ରତିଦ୍ୱନ୍ଦୀ—2. Rival. ୩ । ବିରୋଧୀ ବ୍ୟକ୍ତି—3. Antagonist.

**ମୁଖାସବ**—ସଂ. ବି ( ମ. ପ. ଲୋ; ମୁଖ+ଆସବ )—୧ । ଥୁକ; ଛେପ
Mukhāsaba —1. Spittle. ୨ । ଲାଳ—2. Salivā.

**ମୁଖାସ୍ତ୍ର**—ସଂ. ବି ( ମୁଖ+ଅସ୍ତ୍ର; ବହୁବ୍ରୀହି )—(ଯାହାର ମୁଖରେ ଅସ୍ତ୍ର
Mukhāstra ଅଛି) କଙ୍କଡ଼ା, କର୍କଟ—A crab.

**ମୁଖି**—ଦେ. ବି—୧ । ବଦ୍ଧମୁଷ୍ଟି ଅଙ୍ଗୁଷ୍ଠର ଅଗ୍ରଭାଗଦ୍ୱାରା ମୁଖରେ
Mukhi ଆଘାତ—1. A blow or prodding given
ମୁଖଟି on the face by the thumb protruding
**ठुनका, मुक्का(क्को)** from the fist. ୨ । ଶୂଦ୍ରମାନଙ୍କର ଉପାଧି ବିଶେଷ—2. A family title amongst the Śūdras. ପ୍ରାଦେ ( ଗଡ଼ଜାତ ) ବି—୩ । ଆଦିମ ଜାତି ବିଶେଷ—3. A class of aborigines.

**ମୁଖିଆ(ଅ)**—ଦେ. ବିଣ ( ସଂ. ମୁଖ୍ୟ )—୧ । ଦଳ ମଧ୍ୟର ପ୍ରଧାନ
Mukhiā(a) ( ବ୍ୟକ୍ତି ); ଶ୍ରେଷ୍ଠ—1. Chief ( amongst
ମୁଖୀ a crowd); eminent. ୨ । ପ୍ରତିନିଧିସ୍ଥାନୀୟ—
**मुखिया** 2. Representative. ବି—୧ । ଦଳର ପ୍ରଧାନ ବ୍ୟକ୍ତି—1. A chief. ୨। ପ୍ରତିନିଧି—2. A representative. ୩ । ନେତା; ସରଦାର—3. Leader. ୪ । ବଲ୍ଲଭାଚାର୍ଯ୍ୟ ସମ୍ପ୍ରଦାୟର ମନ୍ଦିରର ପୂଜକ ଓ ପାଚକ ବାବାଜୀଙ୍କ ଉପାଧି—4. The title of the worshipper and cook of a temple belonging to the Ballabhāchārjya sect.

**ମୁଖୀ**—ସଂ. ବିଣ ( ମୁଖ+ଇନ୍ ୧ମା. ୧ବ ) (ଅନ୍ୟ ଶବ୍ଦ ପରେ ଯୁକ୍ତ)
Mukhī ମୁଖ ବିଶିଷ୍ଟ—Having a face. ବିଣ. ସ୍ତ୍ରୀ ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ଯଥା—ସୁମୁଖୀ; ଚନ୍ଦ୍ରମୁଖୀ )— ମୁଖଯୁକ୍ତା — Faced ( in a compound ). ବି ( ମୁଖ+କ୍ଷୁଦ୍ରାର୍ଥେ ଈ )—ସାରୁ, ଅଦା, ଅଳୁ, ଓଲୁଅ ଆଦିରୁ ବାହାରିଥିବା ଛୋଟ
**बिच्ची** ଗଜା ବା ଅଙ୍କୁର—Small shoots coming out from arum, ginger, yam etc. ଦେ. ବି—
সোৱষে କୁଣ୍ଡା—The staple of a door-frame for
**कुण्डा** attaching the door chain to it. [ ଉ—ଦ୍ୱାରବନ୍ଧେ ବନ୍ଧିଥିବା ହୋଇଅଛି ମୁଖୀ । ଭୀମଭୋଇ. ବ୍ରହ୍ମନିରୂପଣଗୀତା । ]

**ମୁଖେ**—ଦେ. କ୍ରି. ବିଣ—ସାମନାରେ; ହାବୁଡ଼େ; ଆଗରେ—
Mukhe In the front of; face to face. [ ଉ—
ମুখে ଏବେ ଅର୍ଦ୍ଧରାତ୍ର ସମୟେ ମୋର ମୁଖେ, ପଡ଼ିଛୁ ଆଗ ତାକୁ
**मुँहमेः मुँहपर** ମାରିବ ଯେ ଦୁଃଖେ । କୃଷ୍ଣସିଂହ. ମହାଭାରତ, ବନ । ]

**ମୁଖୋତ୍ସଙ୍ଗ**—ସଂ. ବି—ମୁଖରୋଗ ବିଶେଷ; ମୁଖୋଷ୍ଠ ମଣ୍ଡଳ ଓ ପାଟି
Mukhotsanga ମଧ୍ୟରେ ଚକା ଚକା ଫୋଟକା ପରି ବ୍ରଣ—A kind of eruption in the face and mouth; thrush; sprul apthal.

**ମୁଖୋପାଧ୍ୟାୟ**—ଦେ. ବି ( ସଂ. ମୁଖୋପାଧ୍ୟାୟ )—ବଙ୍ଗୀୟ ବ୍ରାହ୍ମଣଙ୍କ
Mukhopādhyāya ଉପାଧି ବିଶେଷ—A family-title
মুখোপাধ্যায় **मुखोपाध्याय** of Bengalee Brāhmaṇas.

**ମୁଖୋଲ୍କା**—ସଂ. ବି—ଦାବାନଳ—Forest fire.
Mukholkā

**ମୁଖ୍ୟ**—ସଂ. ବିଣ ( ମୁଖ=ପ୍ରଧାନ+ଯ )—୧ । ପ୍ରଧାନ—1. Chief;
Mukhya principal. [ ଉ—ମୋ ସଙ୍ଗେ ମଧ୍ୟ ବନ୍ଧୁ
(ଗୌଣ—ବିପରୀତ) ଅପରସ୍ତ ମୁଖ୍ୟ—କୃଷ୍ଣସିଂହ ମହାଭାରତ. ବନ]
(ମୁଖ୍ୟା—ସ୍ତ୍ରୀ) ୨ । ଶ୍ରେଷ୍ଠ—2. Eminent; pre-eminent.
୩ । ପ୍ରଥମ; ଅଦ୍ୟମ--3. Primary; first. ୪ । ଅଗ୍ରଣୀ--
4. Foremost; leading. ୫ । ପ୍ରତ୍ୟକ୍ଷ—5.
Direct. ସଂ. ବି—୧ । ମୁଖ୍ୟ ଚାନ୍ଦ୍ରମାନ ( ଦେଖ )
1. Mukhya chāndramāna ( See ) ୨ ।
ବେଦାଧ୍ୟୟନ—2. Learning of the Bedas.
ଦେ. ବିଣ—ଉଚିତ—Proper; meet. [ ଉ—
କରେ ଲଗାଇ ବିପରୀତ, କାହିଁବା କଥା ନୋହେ ମୁଖ୍ୟ ।
ଘନକୃଷ୍ଣ. ରସକଲ୍ଲୋଳ । ]

**ମୁଖ୍ୟ(ଯ)କର୍ତ୍ତା**—ଦେ. ବି—ପରିବାରର ପ୍ରଧାନ ବ୍ୟକ୍ତି—
Mukhya (ksha) karttā The head of a family.
মোক্ষকর্ত্তা **मुखिआ**

**ମୁଖ୍ୟ କର୍ମ**—ସଂ. ବି—୧ । ( ବ୍ୟାକରଣ ) ଗୋଟିଏ ଦ୍ୱିକର୍ମକ କ୍ରିୟାର
Mukhya karma ଦୁଇଟି କର୍ମ ସଙ୍ଗେ ସମ୍ବନ୍ଧ ଥିଲେ ସେଥିମଧ୍ୟରୁ
ପ୍ରଧାନ କର୍ମ [ଦ୍ର—ଅପ୍ରଧାନ କର୍ମକୁ ଗୌଣ କର୍ମ
ବୋଲାଯାଏ]--1.(grammar) The direct object
governed by a transitive verb. [ ଦ୍ର—
ଶିକ୍ଷକ ଛାତ୍ରକୁ ପ୍ରଶ୍ନ ପଚାରିଲେ ଏଠାରେ 'ପଚାରିଲେ'
ଏହି ସମାପିକା କ୍ରିୟାର ପ୍ରଧାନ କର୍ମ ବା ମୁଖ୍ୟ କର୍ମ 'ପ୍ରଶ୍ନ'
ଓ ଗୌଣ କର୍ମ ବା ଅପ୍ରଧାନ କର୍ମ 'ଛାତ୍ର' ।] ୨ । ପ୍ରଧାନ
କାର୍ଯ୍ୟ—2. Chief work or duty. (ଯଥା—
ବେଦାଧ୍ୟୟନ ବ୍ରାହ୍ମଣର ମୁଖ୍ୟ କର୍ମ । ]

**ମୁଖ୍ୟ କୁଳୀନ**—ସଂ. ବିଣ—କୁଳୀନମାନଙ୍କ ମଧ୍ୟରେ ପ୍ରଧାନ—
Mukhya kulīna Chief amongst high caste people.

**ମୁଖ୍ୟ ଚାନ୍ଦ୍ରମାନ(ସ)**—ସଂ. ବି—ଶୁକ୍ଳ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ
Mukhya chāndramāna(sa) ଗଣାଯିବା ମାସ—The
(ମୁଖ୍ୟଚାନ୍ଦ୍ର—ଅନ୍ୟରୂପ) lunar month counted as
beginning from the new moon and
ending before the next new moon. [ଦ୍ର--
ମୁସଲମାନଙ୍କର ମାସ ଗଣନା ମୁଖ୍ୟ ଚାନ୍ଦ୍ରମାନ କ୍ରମେ ଓ
ହିନ୍ଦୁଙ୍କର ଚାନ୍ଦ୍ର ମାସ ଗଣନା ଗୌଣ ଚାନ୍ଦ୍ରମାନ କ୍ରମେ, ଅର୍ଥାତ୍
ପୂର୍ଣ୍ଣିମା ବାସୀଠାରୁ ଆଗାମୀ ପୂର୍ଣ୍ଣିମା ପର୍ଯ୍ୟନ୍ତ ହୁଏ । ]

**ମୁଖ୍ୟତର(ତମ)**—ସଂ. ବିଣ (ମୁଖ୍ୟ+ଉତ୍କର୍ଷାର୍ଥେ. ତର, ତମ)--୧ । ସର୍ବ-
Mukhyatara (tama) ପ୍ରଧାନ—1. Chief; pre-eminent
(ମୁଖ୍ୟତରା, ମୁଖ୍ୟତମା—ସ୍ତ୍ରୀ) ୨ । ସାରତ୍ସାର 2. Supreme;
very essential.

**ମୁଖ୍ୟତା(ତ୍ୱ)**—ସଂ. ବି ( ମୁଖ୍ୟ+ଭାବେ. ତା, ତ୍ୱ)—ପ୍ରଧାନତା;
Mukhyatā(twa) ଶ୍ରେଷ୍ଠତା—Eminence.

**ମୁଖ୍ୟସର୍ଗ**—ସଂ. ବି ( କର୍ମଧା )—ସ୍ଥାବର ସୃଷ୍ଟି ( ହି. ଶ )—The
Mukhyasarga creation consisting of the immoveable things.

**ମୁଖ୍ଲିସ୍**—ଦେ. ବି ଓ ବିଣ—ମୁଫ୍ଲିସ ( ଦେଖ )—
Mukhlis Muphlis ( See )

**ମୁଗ୍‌ରା**—ଦେ ବି—୧ । ମୁଗୁରା ( ଦେଖ )—1. Mugurā ( See )
Mug-rā ଛାଦେ ( ସମ୍ବଲପୁର) ବି—୨ । ଖପରଲ ଘରର
ମଥାନରେ ଢାଙ୍କୁଡ଼ାଯିବା ଅର୍ଦ୍ଧବୃତ୍ତାକାର ଲମ୍ବ ଖୋଲଣି—
2. Long semi-circular covers for the
top ridge of the roof of a tiled house.

**ମୁଗ**—ଦେ. ବି ( ସଂ. ମୁଦ୍ଗ )—ବ୍ରୀହି ପର ଶିମ୍ବାଦି ବର୍ଗର କୃଷିଜାତ
Muga କ୍ଷୁଦ୍ର ଲତା ଓ ତାହାର ଛୁଇଁରେ ଥିବା ବୀଜ—A
ସଂ. ମୁଦ୍ଗ, ସୂପଶ୍ରେଷ୍ଠ, leguminuous plant; Phaselous
ବାଜୀ ଭୋଜନ Mungo; Phaseolus Radiatus;
মুগ **मुँग; हारिमुङ्ग** green grain. [ ଦ୍ର—ଏହା ଶିମ୍ବାଦି
ମ. ହିରବେମୁଗ ବର୍ଗର କୃଷିଜାତ ଲତାଫଳ; ମୁଗ ଓ ବିରି
ତେ. ପେସଲୁ ଏକଜାତୀୟ । ବୈଦ୍ୟଶାସ୍ତ୍ରରେ ନାନାପ୍ରକାର
ଗୁ. ମଗଲୀଙ୍ଗ ମୁଗର ଉଲ୍ଲେଖ ଅଛି ଯଥା—କୃଷ୍ଣ, ଶ୍ୱେତ,
ଫା. ବ୍ରୁନ୍ଦମାସ ରକ୍ତ, ପୀତ, ହରିତ ଓ ବନ୍ୟ ମୁଦ୍ଗ । ଆମ
ଆ. ମଜ ଦେଶରେ ମଧ୍ୟ ନାନାପ୍ରକାରର ମୁଗ
ଦେଖାଯାଏ ଯଥା—କଳା ମୁଗ, ଝାଇଁ(ଞ୍ଜି) ମୁଗ, ମେଥି
ମୁଗ ବା ସୁନା ମୁଗ, କାଉଡ଼ି ମୁଗ, ବଣ ମୁଗ, ଘୋଡ଼ା ମୁଗ
ଇତ୍ୟାଦି । ବୈଦ୍ୟଶାସ୍ତ୍ର ମତରେ ଏହା ରୁକ୍ଷ, ଲଘୁ, ମଳ-
ସଂଗ୍ରାହକ, କଫ ପିତ୍ତହର, ଶୀତବୀର୍ଯ୍ୟ, ମଧୁରରସ, ଅଳ୍ପ
ବାୟୁବର୍ଦ୍ଧକ, ଚକ୍ଷୁର ହିତକର ଓ ଜ୍ୱର ନିବାରକ । ବୈଦ୍ୟ
ଶାସ୍ତ୍ରମତରେ ହରିଦ୍ବର୍ଣ୍ଣ ( ଶାଗୁଆ ) ମୁଦ୍ଗ ଶ୍ରେଷ୍ଠ । ମୁଗକୁ
କଞ୍ଚା ଓ ଭାଜି କରି ରଗଡ଼ି ଡାଲି କରାଯାଏ; ମୁଗ-
ବଟାରେ ବଡ଼ି ଓ ପିଠା ହୁଏ । ମୁଗ ବେସନରେ ମୁଗ
ଲଡ଼ୁ ତିଆରି ହୁଏ । ଡାଲି ମଧ୍ୟରେ ମୁଗ ଡାଲି ସାଧାରଣତଃ
ପ୍ରଧାନ ଅଟେ । ]

**ମୁଗ କଣି**—ଦେ. ବି ( ସଂ.ମୁଦ୍ଗ ଓ କଣ )—ରଗଡ଼ା ହୋଇଥିବା ମୁଗକୁ
Muga kaṇi କୁଲାରେ ପାଛୁଡ଼ି ତାହାରୁ ଚୋପାଯାକ ବାହାରିଗଲା
মুগের কানি ପରେ ଯେଉଁ ମୁଗ ରହେ ତାହାମଧ୍ୟରୁ ମୁଗର
**मुँगका गुडा** ଗୋଟା ଗୋଟା ଓ ଫାଳମାନ ବାହାରିଯିବା ପରେ
ଭାଙ୍ଗିଯାଇ ଥିବା ମୁଗର ଯେଉଁ କ୍ଷୁଦ୍ର 'କଣ' ମାନ ରହେ
—Small particles of split muga
separated from the husks and the
bigger particles.

**ମୁଗ ଚକୁଳି**—ଦେ. ବି (ସଂ.ମୁଦ୍ଗ+ଶଷ୍କୁଲୀ )—ବଟା ମୁଗର ପିଠଉରେ
Muga chakuli ପ୍ରସ୍ତୁତ ଚକୁଳି ପିଠ —Pancake made
মুগসাউলী **मुँगकी चपाटी** from muga paste

ମୁଗଚୋପା(ପି)—ଦେ. ବି—ମୁଗ ଶସ୍ୟ ଉପରେ ଥିବା ଆବରଣ—
Mugachopā(pi) The chaff of moong,
মুগের খোষা **मुँगका छिलका**

ମୁଗ ଛତୁ—ଦେ. ବି ( ସଂ. ମୁଦ୍ଗ+ଶକ୍ତୁ )—ଭଜା ମୁଗର ଚୁନା—
Muga chhatu Flour of fried muga.
(ମୁଗଛତୁଆ—ଅନ୍ୟରୂପ) মুগের ছাতু **मुगका सत्तु**

ମୁଗ ଛୁଇଁ—ଦେ. ବି ( ସଂ. ମୁଦ୍ଗ ଓ ଶିମ୍ବୀ )—ମୁଗଲତାରେ ଫଳିଥିବା
Muga chhuin̄ ଛୁଇଁ—The beans or pods of the
মুগশুঁটি **मुगछिमी** muga plant.

ମୁଗ ଜାଇ—ଦେ.ବି—କଞ୍ଚା ମୁଗକୁ ରଗଡ଼ି କରି ତା ଉପରେ ସାମାନ୍ୟ ଜଳ
Muga jāi ଛିଞ୍ଚି ସେଥିରୁ ଚୋପା ବାହାର କରଯାଇ ଡାଲି
মুগের কাঁচা ডাল ରାନ୍ଧିବା ପାଇଁ ପ୍ରସ୍ତୁତ କରଯିବା ଫାଳମାନ—
**मुगकी कच्ची दाल** Split unfried muga.
[ଦ୍ର—ସାଧାରଣତଃ ମୁଗକୁ ଭାଜି ତା ପରେ ରଗଡ଼ି ଚଇଁରୁ ଚୋପାକୁ ପୃଥକ୍ କରି ଡାଲି କରଯାଏ । କିନ୍ତୁ ମୁଗକୁ ଭାଜିବା ସମୟସାପେକ୍ଷ । ଏଥିପାଇଁ ବିବାହ ବ୍ରତ ଆଦି ଉପଲକ୍ଷରେ କଞ୍ଚା ମୁଗକୁ ରଗଡ଼ି ତହିଁରେ ସାମାନ୍ୟ ହଳଦି ପାଣି ଛିଞ୍ଚିବା ପରେ ତାକୁ କାଣ୍ଡି କରି ପାଛୁଡ଼ିବା ଦ୍ୱାରା ତହିଁରୁ ଚୋପା କାଢ଼ି ତାକୁ ଜାଇ କରଯାଏ ଓ ଉକ୍ତ ଜାଇ ଦ୍ୱାରା ବହୁଲୋକଙ୍କ ଖାଦ୍ୟାର୍ଥ ଡାଲି ରନ୍ଧାଯାଏ ।]

ମୁଗ ଡାଲି—ଦେ. ବି. ( ସଂ ମୁଦ୍ଗ ଓ ଦ୍ୱିଦଳ )—୧ । ମୁଗକୁ ଭାଜିବା
Muga ḍāli ପରେ ରଗଡ଼ି ତହିଁରୁ କୁଲା ଦ୍ୱାରା ପାଛୁଡ଼ି ଚୋପା
মুগের ডাল ବାହାର କରି ଯାଇଥିବା ମୁଗର ଫାଳ—1. Split
**मुँगकी दाल** muga. ୨ । ମୁଗରେ ପ୍ରସ୍ତୁତ ଜଳୀୟ ବ୍ୟଞ୍ଜନ—
2. Soup made by boiling split muga with water.

ମୁଗ ଦାନ୍ତି(ନ୍ତୁ)ଆ—ଦେ.ବିଣ. ପୁଂ—ମୁଗ ପରି ଛୋଟ ଦାନ୍ତବିଶିଷ୍ଟ (ବ୍ୟକ୍ତି)—
Muga dānti(ntu)ā (person) Having teeth as
মুগের মত দাঁত যার small as grains of muga.
**मुँग दाँत वाला, अनार दाँत वाला** [ଦ୍ର—ଯାହାଙ୍କର ଦାନ୍ତ ମୁଗ ପରି ଛୋଟ ହୋଇଥାଏ ସେମାନଙ୍କ ଦାନ୍ତ ବଡ଼ଦାନ୍ତିଆ ଲୋକଙ୍କ ଦାନ୍ତ ପରି ବୁଢ଼ା ହେଲେ ଶୀଘ୍ର ଉପୁଡ଼େ ନାହିଁ, ଏମନ୍ତ କି, ମୁଗଦାନ୍ତିଆ ଅଶୀ ବରଷର ବୁଢ଼ାଙ୍କର ଦାନ୍ତ ପଡ଼ି ନଯାଇ ଚର୍ବଣକ୍ଷମ ଥିବା ଦେଖାଯାଏ ।]
ମୁଗ ଦାନ୍ତୀ }
ମୁଗ ଦାନ୍ତେଇ } —ସ୍ତ୍ରୀ
(ମୁଗ ଦନ୍ତା—ଅନ୍ୟରୂପ)

ମୁଗନା—ଦେ. ବି—ମୁଗୁନା ( ଦେଖ )
Muganā Mugunā ( See )

ମୁଗ ପଇ(ପୈ)ତି—ଦେ.ବି—ଉତ୍ତମ ରୂପେ ଘଣ୍ଟାଯାଇ ଜାଉ ପରି ହୋଇ
Muga pai(pai)ti ଥିବା ମୁଗ ଡାଲି—Gruelly soup
মুগের সুপ **मुँगकी घोंटी हुई दाल** of muga.

ମୁଗ ଫଳି(ଲି)—ଦେ. ବି. ( ସଂ. ଅଧୁନିକ ନାମ—ଭୂଚଣକ )—ଚିନା
Muga phali(li) ଭଣା; ଚିନା ବାଦାମ (ଦେଖ)—Earth-
চিনাবাদাম, বিলাতি মুগ, nut; ground nut; Araclus
**चीनाबादाम,** Hypogæa.
(ମୁଳ ଫଳ—ଅନ୍ୟରୂପ)

ମୁଗ ବଟା—ଦେ. ବି—ବଟା ହୋଇଥିବା ବତୁରା ମୁଗ—
Muga baṭā Muga paste.
মুগের বাটা **पीसा हुआ मुँग**

ମୁଗ ବଡ଼ା(ରା)—ଦେ. ବି. ସଂ. ମୁଦ୍ଗ ବଟକ)—ବଟା ମୁଗରେ ପ୍ରସ୍ତୁତ
Muga barḍā(rā) ଘୃତପକ୍ୱ ବା ତୈଳ ପକ୍ୱ ପିଠା—Cakes
মুগের বড়া, মুগ সাউলি, মুগ টিকলি fried in oil or
**मुँगका बडा** ghee and made of muga paste.

ମୁଗ ବଡ଼ି—ଦେ. ବି. (ସଂ. ମୁଦ୍ଗ ବଟୀ)—ବଟା ମୁଗର ଶୁଖା ଯାଇଥିବା
Muga barḍi ଗୋଲକ; (ଦ୍ର—ଏହାକୁ ତରକାରୀରେ ମିଶାନ୍ତି)—
মুগের বড়ী Globules of dried muga paste.
**मुँगकी बडी, मुँगौरी**

ମୁଗ ବେଶନ—ଦେ. ବି—କଞ୍ଚା ମୁଗର ଚୁନା—
Muga beśana Flour of raw muga.
মুগের বেসম **मुँगका वेसन**

ମୁଗ ବୋଡି—ଦେ. ବି—ମୁଗ ଛୁଇଁକୁ ମଳ କରି ତହିଁରୁ ମୁଗ ବାହାର
Muga boti କରି ନେବା ପରେ ବାକି ରହିଯିବା ଚୋପାଆଦି ଅଂଶ—
মুগ শুঁটীর খোসা Chaff or rinds left after thresh-
**मुंगकी भुँसी** ing out muga grains from the pods.

ମୁଗ(ଘ)ମ୍(ମ)—ବୈଦେ. ବି. (ଫା. ମୁଗମ୍; ମୁଅମ୍ମା)—୧ । କୌଣସି
Muga(gha)m(ma) ବିଷୟର ଗୁପ୍ତ ରହସ୍ୟ—1. The key
মর্ম or secret of a matter. ୨ । ସାର ମର୍ମ—
**मुग्घम, मरम, भेद, मुअम्मा** 2. The essence or purport of a matter. ୩ । ଦେହର ମର୍ମ ସ୍ଥାନ—
3. The vital part of the body.
୪ । ମନ—4. Mind. ବିଣ—ଗୁପ୍ତ—Secret.

ମୁଗ(ଘ)ମ ଖୋଲିବା—ଦେ. କ୍ରି—ଗୁପ୍ତ ରହସ୍ୟ ପ୍ରକାଶ କରିବା—
Muga(gha)ma kholibā To give out a secret;
মরম খোলা **भेद खोलना** to divulge a secret.
[ମୁଗ(ଘ)ମ ଫିଟା(ଟେ)ଇବା, ମୁଗ(ଘ)ମ ପଦାରେ ପକା(କେ)ଇବା—ଅନ୍ୟରୂପ]
[ମୁଗ(ଘ)ମ ଖୋଲିଯିବା, ମୁଗ(ଘ)ମ ଫିଟିବା, ମୁଗ(ଘ)ମ ପଦାରେ ପଡ଼ିବା—କର୍ମବାଚ୍ୟ ରୂପ]

ମୁଗ(ଘ)ମେ ମୁଗ(ଘ)ମେ ମାରିବା—୧ । କୌଣସି ଗୁପ୍ତ ବିଷୟକୁ
Muga(gha)me muga(gha)me māribā ବାହାରେ
মরমে মারা ପ୍ରକାଶ ନ କରିବା—1. To keep a secret
**देहमे मारना** to one's self. ୨ । କୌଣସି ରୋଗ ଆକ୍ରମଣ କଲେ ବାହାରେ ତହିଁର ଚିହ୍ନ ପ୍ରକାଶ ନ କରିବା—
2. Not to exhibit the signs of an attack of a sickness.

ମୁଗ ମଣ୍ଡା—ଦେ.ବି. (ସଂ.ମୁଦ୍ଗ ମଣ୍ଡକ)—ମୁଗ ସିଝା ପୁରରୂପେ ଦିଆଯାଇ
Muga maṇḍā ଥିବା ମଣ୍ଡା ପିଠା—A "maṇḍā" cake
মুগের মণ্ডা with boiled muga filled in it.
**दालबाटी**

ମୁଗର—ଦେ. ବି—ମୁଗୁର ( ଦେଖ )
Mugara Mugura ( See )

ମୁଗଲ (ଇତ୍ୟାଦି)—ବୈଦେ. ବି. ( ଫା. ମୁଗଲ୍ )—ମୋଗଲ ଇତ୍ୟାଦି
Mugala (etc) (ଦେଖ)—Mogala etc. ( See )

ମୁଗ ଲଡ୍ଡୁ(ଡ୍ଡୁ)—ଦେ.ବି. (ସଂ. ମୁଦ୍ଗ ଲଡ୍ଡୁକ)—ମୁଗ ବଟାରେ ବା ମୁଗ
Muga lardu(ddu) ବେଶନରେ ତିଆରି ମିଷ୍ଟାନ୍ନ—Sweet
ମুগের লাড়ু **मुँगका लड्डु** meat made of muga flour.

ମୁଗଲ ବନ୍ଦି—ଦେ. ବି—ମୋଗଲ ବନ୍ଦି ( ଦେଖ )
Mugala bandi Mogala bandi ( See )

ମୁଗଲ ବନ୍ଦିଆ—ଦେ. ବିଣ—ମୋଗଲ ବନ୍ଦିଆ ( ଦେଖ )
Mugala bandiā Mogala bandiā ( See )

ମୁଗଲାଇ—ଦେ. ବିଣ—ମୋଗଲାଇ ( ଦେଖ )
Mugalāi Mogalāi ( See )
(ମୁଗଲିଆ—ଅନ୍ୟରୂପ)

ମୁଗଲ୍ୟାଣ—ଦେ. ବିଣ—ମୋଗଲ୍ୟାଣ ( ଦେଖ )
Mugalyāṇa Mogalyāṇa ( See )

ମୁଗ ଶିଂସା—ଦେ. ବି. (ସଂ. ମୁଦ୍ଗ ଓ ସିଦ୍ଧ)—ଜଳସିଦ୍ଧ ଗୋଟା ମୁଗ
Muga śiṁsā —Whole muga grains boiled in
[ମୁଗ ସିଝା(ଝା)—ଅନ୍ୟରୂପ] মুগ সিদ্ধ **उसिना मुँग** water.

ମୁଗା(ଙ୍ଗା)—ବୈଦେ. ବି. (ଆସାମୀ; ମୁଗା=ରେଶମଉତ୍ପାଦନକାରୀ କୀଟ-
Mugā(ṅgā) ବିଶେଷ, ଏହାର ସୂତା ମୁଗ ପରି ବର୍ଣ୍ଣ ଥିବାରୁ)—
মুগা **मुँगा** ୧ । ଆସାମଦେଶଜାତ ଏକପ୍ରକାର ଗୋଟିପୋକ-
ଜାତ ଈଷତ୍ ହଳଦିଆ ରେଶମ ଲୁଗା; ଆସାମୀ ମଠା—
1. Yellowish silk produced in Assam; the Muga silk. ୨ । ରେଶମ ଗୋଟି ଉତ୍ପାଦନ-
କାରୀ ଆସାମଦେଶୀୟ ଏକପ୍ରକାର କୀଟ—2. The Muga cocoon of Assam; Antheraea.
[ଧ—ଏ କୀଟମାନେ "ସୋମ" ଗଛର ପତ୍ର ଖାଇ ବଞ୍ଚନ୍ତି । ଆସାମରେ ଲୋକେ ମୁଗା କୀଟଙ୍କୁ ପାଳ ଜନ୍ମିଲ ଗୋଟିରୁ ରେଶମ ବାହାର କରନ୍ତି । ଉକ୍ତ ଗୋଟିରୁ ବା କୋଷାରୁ ଯେଉଁ ପାଟ ସୂତା ବାହାରେ, ସେ ସୂତାକୁ ବଳିବାକୁ ହୁଏ ନାହିଁ; ସେହି ଅବଳା ସୂତାରେ ବୁଣା ମଠାକୁ ମୁଗା ବୋଲଯାଏ । କିନ୍ତୁ ଯେବେ ପୋକ ଗୋଟିକୁ କାଟି ଧଳାଇ ଯାଆନ୍ତି ତେବେ ସେ ସୂତା ଖଣ୍ଡଖଣ୍ଡିଆ ହୁଏ ଓ ସେ ସୂତାକୁ ନ ବଳଲେ ଲୁଗାବୁଣିବାର ସୂତା ହୁଏ ନାହିଁ ।]

ମୁଗା(ଗେ)ଇ—ଦେ. ବିଣ—୧ । ମୁଗର ଆକୃତି-ବିଶିଷ୍ଟ—
Mugā(ge)i 1. Shaped like grains of muga.
মুগা **मुगिया** (ଯଥା—ମୁଗେଇ ଭଙ୍ଗାଗୁଆ; ମୁଗେଇ ବସନ୍ତ; ମୁଗେଇ ଦାନ୍ତ ଓ ମୁଗେଇ ମାକଡ଼ା । ) ୨ । ମୁଗର ରଙ୍ଗବିଶିଷ୍ଟ—2. Having the colour of muga. ( ଯଥା—ମୁଗେଇ ଲୁଗା; ମୁଗେଇ ମଠା । )

ମୁଗା(ଗେ)ଇ ଗୁଆ—ଦେ. ବି—ଛୋଟ ଛୋଟ ହୋଇ ଭଙ୍ଗା ହୋଇଥିବା
Mugā(ge)i guā ଗୁଆ—Betelnuts cut into
মুগেরমত ছোট ছোট করে কাটা সুপারি small bits
**मुगिया सुपारी** resembling muga grains.
(ମୁଗେଇ ଭଙ୍ଗାଗୁଆ—ଅନ୍ୟରୂପ)

ମୁଗ (ଗେ)ଇ ଠାକୁରାଣୀ—ଦେ. ବି—ଯେଉଁ ବସନ୍ତ ବସ୍ଫୋଟକମାନ
Mugā(ge)i ṭhākurāṇī ମୁଗଆକାରବିଶିଷ୍ଟ—Small-
[ମୁଗା(ଗେ)ଇ ବସନ୍ତ—ଅନ୍ୟରୂପ] pox eruptions of the
মগাবসন্ত **मुगियाचेचक** size of muga grains.

ମୁଗା(ଗେ)ଇ ଦାନ୍ତ—ଦେ. ବି—ମୁଗ ପରି କ୍ଷୁଦ୍ର ଆକୃତିବିଶିଷ୍ଟ ଦନ୍ତ—
Mugā(ge)i dānta Teeth, small like muga.
মগাদান্ত **मुगियादाँत**

ମୁଗା(ଗେ)ଇ ମଠା—ଦେ. ବି—ମୁଗ ପରି ହରିତବର୍ଣ୍ଣବିଶିଷ୍ଟ ମଠା—
Mugā(ge)i maṭhā Silk cloth of greenish
মুগাকাপড় **मुगियाकटा** colour. [ଦ୍ର—ଏହିପରି ମୁଗେଇ ଶାଢ଼ୀ, ମୁଗେଇ ମଲ୍ଲୁ, ମୁଗେଇ ଲୁଗା, ମୁଗେଇ ପାଟ ଅର୍ଥ ହୁଏ ।]

ମୁଗା(ଗେ)ଇ ମାକ(ଙ୍କ)ଡ଼ା—ଦେ. ବି—ଏକ ପ୍ରକାର ମାକଡ଼ା ପଥର,
Mugā(ge)i maka(ṅka)rdā (ଏହାର ଦାନା ଓ ଉପାଦାନ
মগাইপাথর **मुगियापत्थर** ମୁଗ ପରି ଛୋଟ ଓ ଏହା ଟାଣୁଆ)—A kind of strong laterite.

ମୁଗାନି(ଣୀ)—ଦେ. ବି ( ସଂ. ମୁଦ୍ଗପର୍ଣ୍ଣୀ)—ଏକପ୍ରକାର ବନ୍ୟ ମୁଗ,
Mugāni(ṇi) ମୁଦ୍ଗପର୍ଣ୍ଣୀ(ଦେଖ)—A kind of wild muga;
মুগানী **मुगवन** Phaseolus Trilobus; Phaseolus Aconitifolius.

ମୁଗାରି—ପ୍ରାଦେ ( ବାମଣ୍ଡା ) ବି—ମଇଁଷଙ୍କ ପ୍ରିୟ ଅରଣ୍ୟ ଘାସବିଶେଷ—
Mugāri A kind of wild grass favourite with the buffaloes.

ମୁଗିରି—ଦେ. ବି—ମୁଗୁରି (ଦେଖ )
Mugiri Muguri (See).

ମୁଗୁଡ଼ି(ରି)—ଦେ. ବି.—( ସଂ. ମୁଦ୍ଗାର୍ଦ୍ଧବଟକ )—ବଟା ଘିଅରେ ପ୍ରସ୍ତୁତ
Mugurdi(ri) ଘିଅପକ୍ୱ ବା ତୈଳପକ୍ୱ ମିଷ୍ଟାନ୍ନ ବିଶେଷ—
মুগেরটিকলী A kind of cake made of muga paste
**मुँगकाबड़ा** fried in ghee or oil

ମୁଗୁଧ—ଗ୍ରା. ବି (ପଦ୍ୟ)—ମୁଗ୍ଧ ହେବା ଅବସ୍ଥା—State of
Mugudha being fascinated. [ ଉ—ଉନ୍ମିଳ ମଧୁର ଗନ୍ଧ ଲୁବ୍‌ଧେ ଚୁତ ମଧୁପ ଭ୍ରମଇ ମୁଗୁଧେ—ପ୍ରାଚୀ—ଉପବାରଣ । ]

ମୁଗୁଧା—ଗ୍ରା. ବି (ପଦ୍ୟ)—ମୁଗ୍ଧା (ଦେଖ)—Mugudha (see)
Mugudhā [ଉ—ମୁଗୁଧେ ବିଫଳ ନୋହୁ ବିଳମ୍ବ ନ କର ଅଭୁ ରମ୍ୟ ଅଦ୍ୟାର ଷଣ ଗୋବନ୍ଦ ପାଶ । ପ୍ରାଚୀ, ଉପବାରଣ ।]
(ମୁଗୁଧେ—ବହୁବଚନରେ ଓ ସମ୍ବୋଧନର ରୂପ)

ମୁଗୁନା—ଦେ. ବି—(ସଂ. ମଧୁଶିଗ୍ରୁକ ବୃ. ଶ)—୧ । ମଞ୍ଜିରୁ ଉଠିଥିବା
Mugunā ସଜନା ଗଛ—1. Horse radish or Moringa
নাজনা **मुँनगा, मुनगा** tree which sprouts from

the seed. [ଦ୍ର—ସଜନା ଗଛର ଡାଳ ପୋତିବାରୁ ଯେଉଁ ଗଛ ହୁଏ ତାକୁ ସଜନା ଓ ଯଜନା ଛୁଇଁର ମଞ୍ଜି ପଡ଼ି ଯେଉଁ ଗଛ ଉଠିଥାଏ ତାକୁ ମୁଗୁନା ବୋଲାଯାଏ । ମୁଗୁନା ଛୁଇଁ ଅପେକ୍ଷା ସଜନା ଛୁଇଁ ଖାଇବାକୁ ରୁଚିକର । ମୁଗୁନା ଗଛରେ ବାରମାସୀ ଫୁଲ ଓ ଛୁଇଁ ଧରେ ।]

ମୁଗାନି
**मुदवन**
୬ । (ସଂ. ମୁଦ୍ଗପର୍ଣ୍ଣୀ)—ବନ୍ୟ ମୁଦ୍ଗ; ବଣ ମୁଗ; ଘୋଡ଼ା ମୁଗ (ଦେଖ)—3. Ghorḍā muga (see)

ମୁଗୁନି—ଦେ. ବି—ଏକ ପ୍ରକାର ମସୃଣ ଓ ଟାଣ କଳା ପଥର; କଳା-Muguni ମର୍ମର ପଥର—A kind of black marble; ମୁଗନୀ chlorite; basalt. [ଦ୍ର—ଏଥିରେ ବାସନ ଓ ଦେବ-**मुँगियापत्थर** ମୂର୍ତ୍ତିମାନ ପ୍ରସ୍ତୁତ ହୁଏ; ଏହା ଦୁଇପ୍ରକାରର, କଳା ଓ ଧଳା ବା ମାଟିଆ ।]

ମୁଗୁର—ଦେ. ବି (ସଂ.ମୁଦ୍ଗର)—୧ । ମଲ୍ଲମାନଙ୍କର ହାତରେ ବୁଲାଇବା Mugura ଗଦା—1. Club; mace. ୨ । ବଢ଼େଇ ବଟାଳି ମୁଗୁର ପ୍ରଭୃତି ଉପରେ ଯେଉଁ ହାତୁଡ଼ିଦ୍ୱାରା ଆଘାତ କରେ—**मुदगर, मुगदर** 2. A carpenter's wooden mallet. **मोंगरा** (ଉ—ପୁଳସ୍ତ୍ୟ ବାରସୀ ମୁଗୁର ଧର କରେ;ହାଣିବ କାଠମାନ ଚୋଟେ ହାଣଲୁରେ । କୃଷ୍ଣସିଂହ. ମହାଭାରତ. ଶାନ୍ତି ପର୍ବ ।] ୬ । ମୁଦ୍ଗର (ଦେଖ)—2. Mud-gara (see)

ମୁଗୁର ବୁଲା(ଲେ)ଇବା—ଦେ. କ୍ରି—ମଲ୍ଲକ୍ରୀଡ଼ା ଓ ଅଙ୍ଗଚାଳନାର୍ଥ Mugura bulā(le)ibā ହାତରେ ମୁଦ୍ଗର ଧରି ଇତସ୍ତତଃ
ମୁଗୁର ଭାଙ୍ଗିବା }
ମୁଗୁର ସାଧିବା } —ଅନ୍ୟରୂପ ସଞ୍ଚାଳନ କରିବା—To exercise with the mace.
ମୁଗୁରଭାଙ୍ଗା, মুগুরভাঁজা **मुगदरफेराना**

ମୁଗୁରା—ଦେ. ବି—(ସଂ. ମୁଦ୍ଗର; ଏହା ମୁଗୁର ପରି କ୍ରମଶଃ ସରୁ Mugurā ହୋଇ ଥିବାରୁ)—୧ । ମାଛ ଧରିବାର ଏକପ୍ରକାର ମୁଗରୀ ଯନ୍ତ୍ର ବା ପଞ୍ଜୁରି—1. A kind of wicker work cage **गाजि; सरईला** for catching fishes going up along a current. [ଦ୍ର—ଏହା ବାଉଁଶ କାଠିରେ ଶଙ୍ଖ ଆକାରରେ ବୁଣା ହୋଇଥାଏ; ଏହାର ମୁହଁ ଚୋକାଇ ମୁହଁ ପରି । ଏହା କ୍ରମଶଃ ସରୁ ହୋଇ ଏହାର ଗାଣ୍ଠି ବା ଶେଷଭାଗ ଖଣ୍ଡିଏ ଦଉଡ଼ିଦ୍ୱାରା ଗୋଲ ହୋଇ ବନ୍ଧା ହୋଇଥାଏ । ଏଥିର ଭିତରେ ମହିରେ ଆଉ ପ୍ରସ୍ତେ କାଠି ବୁଣା ହୋଇଥାଏ । ଏଥିରେ ସୁଅରେ ଉଠୁଥିବା ଛୋଟ ମାଛ ପଶିଗଲେ ଭିତରେ ଓଲଟ ବାଗରେ ବୁଣା ହୋଇଥିବା କାଠି ଯୋଗୁଁ ଭିତରେ ଅଟକିଯାଇ ଆଉ ବାହାରି ପାରନ୍ତି ନାହିଁ । ଏଥିରେ ପଡ଼ିଥିବା ମାଛକୁ ମୁଗୁରାର ଗାଣ୍ଠିରେ ବନ୍ଧା ହୋଇଥିବା ଦଉଡ଼ିକୁ ଫିଟାଇ ବାହାର କରାଯାଏ । ମୁଗୁରାର ଗାଣ୍ଠି ମେଲା ରହିଲେ ଅର୍ଥାତ୍ ଦଉଡ଼ି ଦ୍ୱାରା ବନ୍ଧା ନ ହେଲେ ମାଛଯାକ ସେହି ବାଟେ ପଳାଇ ଯାଆନ୍ତି । (ଉ—ବାପ ପୁଅ ହଦେଁ ସ୍ୱଭ ଅନ୍ତରା, ମୁଗୁରା ଗାଣ୍ଠି ମେଲା—ଡଗ ।) ୨ । ମୁଗୁରା ମଲ୍ଲୀ (ଦେଖ)—2. Mugurā malli (See)

ଛୋଟ ଓ ମୋଟା ଦେ. ବିଣ—୧ । ମୁଗୁରର ଆକୃତି ବିଶିଷ୍ଟ—**मुंचगडा;गावदुमा** 1. Shaped like a mace; i. e. tapering up. ୨ । କ୍ଷୁଦ୍ର ଅଥଚ ମୋଟା—2. Stout and small.

ମୁଗୁରା ମଲ୍ଲୀ—ଦେ. ବି—ଡବଲ ମଲ୍ଲୀ; ଏକ ପ୍ରକାର ମଲ୍ଲୀ ଫୁଲ (ଏଥିରେ Mugurā malli ଅନେକ ଗୁଚ୍ଛ ପାଖୁଡ଼ା ଥାଏ)—A kind ରାଇବେଲ **मोगरा** of Jasmine flower; jasminum Pubiscens (Haine's Botany of Bihar and Orissa)

ମୁଗୁରି—ଦେ. ବି—(ସଂ. ମୁଦ୍ଗରର ଆକୃତି ବିଶିଷ୍ଟ ଥିବାରୁ)—୧ । ଏକ Muguri ପ୍ରକାରର ଗାଲମୁଞ୍ଛ; (ଏହା ଗାଲ ମଧ୍ୟକୁ ମୁଗୁର ପରି ବାହାରି ଥାଏ ଓ ଲଳାଟବର୍ତ୍ତୀ କେଶମାନ କ୍ଷୌର କରାଯାଇ ଥାଏ)—1. A kind of whiskers left on the cheek. ୨ । ଧନୁ ଆଦି ଅସ୍ତ୍ର ଦେହରେ ରତ୍ନ ପ୍ରବାଳ ଓ ଖଡ୍ଗାଦିରେ ଖଚିତ କାରୁକାର୍ଯ୍ୟ—2. Inlaying of gems and corals in the body of bows and handle of swords etc. ୩ । ଛୋଟ ମୁଗୁର—3. Small club or mallet.

ମୁଗୁରିଆ—ଦେ. ବିଣ—ମୁଗୁରା (ଦେଖ)
Muguriā    Mugurā (See)

ମୁଗୁରୁ—ଦେ. ବି. (ସଂ. ମୁଦ୍ଗର)—ପୁରାଣାଦିରେ ବର୍ଣ୍ଣିତ ଏକ ପ୍ରକାର Muguru କ୍ଷେପଣୀୟ ଅସ୍ତ୍ର—A kind of missile used in war (mentioned in the Purāṇas). [ଉ—ଦେଖି କରି ସୂର୍ଯ୍ୟବଂଶୀ କୋପେ ଘୂରୁଛନ୍ତି, ହୋଇଲ ମୁଗୁରୁ ବାଣ ବର୍ଷ ଲକ୍ଷେ ଶର । ପୀତାମ୍ବର. ନୃସିଂହ ପୁରାଣ ।]

ମୁଗୁଲ(ଇତ୍ୟାଦି)—ଦେ. ବି. ପୁଂ—ମୋଗଲ ଇତ୍ୟାଦି (ଦେଖ)
Mugula(etc.) মোগল **मो(मु)गल** Mogala etc. (See) [ମୁଗୁଲ(ଲ୍ୟା)ଣୀ—ସ୍ତ୍ରୀ] [ଉ—ଏ ଅନ୍ତେ ମହଲା ମୁଗୁଲ, ପୃଥ୍ୱୀର ହୋଇବେ ସେ ଶଲ । ଜଗନ୍ନାଥ. ଭାଗବତ ।]

ମୁଗୁଲା(ଲେ)ଇ—ଦେ. ବିଣ.—ମୋଗଲାଇ (ଦେଖ)
Mugulā(le)i    Mogalāi (See)

ମୁଗୂହ—ସଂ. ବି—୧ । ଦାତ୍ୟୂହ ବା ଡାହୁକ ପକ୍ଷୀ—1. A gallinule (bird). ୨ । ଏକ ପ୍ରକାର ହରିଣ (ହ୍ରି. ଶ)
Mugūha
2. A kind of deer. ୩ । ପପିହ୍ନା (ହ୍ରି. ଶ.); ଶୃଚକ—3. Cocoyster (bird).

ମୁଗ୍ଧ—ସଂ. ବିଣ. ପୁଂ—(ମୁହ ଧାତୁ=ଅଚେତନ ହେବା+କର୍ତ୍ତ. ତ)
Mugdha ୧ । ମୂର୍ଚ୍ଛିତ; ମୋହପ୍ରାପ୍ତ; ହତସଂଜ୍ଞ—1. Stupe-(ସ୍ତ୍ରୀ—ବିପସ୍ମାର୍ଥକ) fied; stunned; bewildered. ୨ । ମୋହ ପରବଶ; ମୋହିତ—2. Fascinated; enamoured; charmed; infatuated. ୩ । ମୂଢ଼; ମୂର୍ଖ; ଅବୋଧ—3. Foolish; stupid. ୪ । ସୁନ୍ଦର; ମନୋହର—4. Fascinating; charming; lovely [ଉ-ବେଗେ ଆସିଣ ମୁଗ୍ଧ ମୁକୁ କୁମାରୀ ମଧୁସୂଦନ. ଗୀତାବଳବାସ ।] ୫ । ନୂତନ—5. New.

ମୁଗ୍ଧ ଚିତ୍ତ—ସଂ. ବି—(କର୍ମଧା; ମୁଗ୍ଧ+ଚିତ୍ତ)—୧ । ମୋହିତ ମନ—Mugdha chitta 1. Fascinated mind. (ମୁଗ୍ଧ ହୃଦୟ—ଅନ୍ୟରୂପ) ବିଣ. ପୁଂ—(ବହୁବ୍ରୀହି)—୧ । ଯାହାର (ମୁଗ୍ଧଚିତ୍ତା—ସ୍ତ୍ରୀ) ମନ ମୋହିତ ହୋଇଅଛି—1. Fascinated. ୨ । କିଂକର୍ତ୍ତବ୍ୟବିମୂଢ଼—2. Bewildered

ମୁଗ୍ଧ ଦୃଷ୍ଟି—ସଂ. ବି. (କର୍ମଧା; ମୁଗ୍ଧ+ଦୃଷ୍ଟି)—୧ । ବିମୋହିତ ଚକ୍ଷୁ—Mugdha drushti 1. Fascinated eyes. ୨ । (ମୋହ ନେତ୍ର, ମୁଗ୍ଧନୟନ; ମୁଗ୍ଧଲୋଚନ—ଅନ୍ୟରୂପ) ମନୋହର ଦୃଷ୍ଟି—2. Charming look. ବିଣ. ପୁଂ—(ବହୁବ୍ରୀହି)—ଯାହାର ଚକ୍ଷୁ ମୋହିତ ବା ଚକିତ ହୋଇଅଛି—One who has been fascinated with something seen; having a bewildered look.

ମୁଗ୍ଧବୋଧ—ସଂ. ବିଣ. ( ମୁଗ୍ଧ=ନିର୍ବୋଧ; ମୂର୍ଖ+ବୁଧ ଧାତୁ ଣିଚ୍ Mugdha bodha ବୋଧି ଧାତୁ+କରଣ. ଅ)—ଯାହାଦ୍ୱାରା ନିର୍ବୋଧ ବା ମୂର୍ଖ ବ୍ୟକ୍ତିଙ୍କୁ ସହଜରେ ବୁଝାଇ ଦିଆ ଯାଇ ପାରେ—Which can make a fool understand. ବି.—ବୋପଦେବ କୃତ ସଂସ୍କୃତ ବ୍ୟାକରଣର ଉପାଧି—Title of a Sanskrit grammar by Bopadeba.

ମୁଗ୍ଧା—ସଂ. ବି. ସ୍ତ୍ରୀ—( ମୁଗ୍ଧ+ସ୍ତ୍ରୀ. ଆ )—୧ । ନାୟିକା ବିଶେଷ; Mugdhā ସରଳସ୍ୱଭାବା ସୁନ୍ଦରୀ ଯୁବତୀ—1. A class of heroines in Sanskrit books;a name given to a class of young ladies. [ଉ—ବିକାଶି ମୁଗ୍ଧା ପ୍ରକାଶି ଚନ୍ଦନ ବିଶେଷ, ବିଲେପିତେ ଧୂପିତେ କ ବଲିଷ୍ଠ ମାନସ । ଭଞ୍ଜ. ବୈଦେହୀଶବିଳାସ । ] [ ଦ୍ର—ମୁଗ୍ଧା ନାୟିକାଙ୍କୁ ସଂସ୍କୃତ ଗ୍ରନ୍ଥମାନଙ୍କରେ ଦୁଇ ଶ୍ରେଣୀରେ ବିଭକ୍ତ କରା ଯାଇଅଛି ଯଥା—ଅଜ୍ଞାତଯୌବନା ଓ ଜ୍ଞାତଯୌବନା; ଯେଉଁ ବାଳିକା ଶୀଘ୍ର ଯୌବନରେ ପ୍ରବେଶ କରିବ ବା ଅଳ୍ପଦିନ ହେଲା ଯୁବତୀ ହୋଇଅଛି ତାକୁ ମୁଗ୍ଧା ବୋଲାଯାଏ । ] ୨ । ନବୋଢ଼ା ଯୁବତୀ—2. A newly married young woman.

ମୁଙ୍ଗା—ଦେ. ବି—ମୁଗା (ଦେଖ)
Mungā Mugā (See)

ମୁଚ୍(ଛ)—ଗ୍ରାଦେ. (ସମ୍ବଲପୁର) ବି—(ସଂ. ଶ୍ମଶ୍ରୁ)—ମୁଛ (ଦେଖ)—Much(chh) ম্যেছ मोछ Muchha (See)

ମୁଚ୍ (ଧାତୁ)—ସଂ.—୧ । ମୁକ୍ତ କରିବା—1. To let loose; to Much (root) release. ୨ । ଖୋଲି ଦେବା—2. To loosen. ୩ । ଛାଡ଼ିଦେବା—3. To let go. ୪ । ପରିତ୍ୟାଗ କରିବା; ଛାଡ଼ିବା—4. To abandon. ୫ । ଦାନ କରିବା—5. To give; to bestow. ୬ । ଶର ଅସ୍ତ୍ର ଫୋପାଡ଼ିବା—6. To discharge ( an arrow or other missile.) । ଆନନ୍ଦିତ କରାଇବା—7. To give delight. ୮ । ଠକାଇବା—8. To deceive. ୯ । କହିବା—9. To speak. ୧୦ । ଗର୍ବ କରିବା—10. To be proud. ୧୧ । ଚୂର୍ଣ୍ଣ କରିବା—11. To pound. ୧୨ । ଚର୍ବଣ କରିବା—12. To chew. ୧୩ । ପୋଛିବା—13. To wipe out. ୧୪ । ମୁକ୍ତି ପାଇବା—14. To be released.

ମୁଚୁ(ଚୁ)କି ମୁଚୁ(ଚୁ)କି ହସିବା—ଦେ. କ୍ରି—ଈଷଦ୍ହାସ୍ୟ କରିବା—Much-(chu)ki much-(chu)ki hasibā To smile. মুচকিমুচকি হাসা मुसकसमुककर हसना ( ଉ-ଆଉ ଜଣେ [ମୁଚୁ(ଚୁ)କେଇ ହସିବା—ଅନ୍ୟରୂପ] ସେଠାରେ ବସି ମୁଚକି ମୁଚକି ହସୁଛନ୍ତି—ସ୍ୱାଧୀନାଥ ବିବେକ)

ମୁଚୁକି ଯିବା—ଦେ. କ୍ରି ( ସଂ. ମୁଚୁଣ୍ଟୀ=ଅଙ୍ଗୁଳି ମୋଟନ )—ମଚକି Much-ki jibā ଯିବା; ଗୋଡ଼ିଲାବେଳେ ଗୋଡ଼ ମୋଡ଼ି ହୋଇଯିବା [ମୁଚୁ(ଚୁ)କିବା—ଅନ୍ୟରୂପ] To be sprained (said of the legs.) মচকে যাওয়া, মুচড়া मचक जाना

ମୁଚୁ(ଚ,ଚୁ)କି ହସ(ସା)—ଦେ. ବି ( ସଂ. ମନ୍ଦ ସ୍ମିତ )—ମୁଚୁକିହ—Much-(cha,chu)ki hasa(sā) ହସା; ମୁଚୁକିହସ; ଈଷଦ୍ହାସ୍ୟ; মুচকিহাসি मृदुहास्य—Smile; simpering [ ଦ୍ର—मुँसकीहंसी ଓଡ଼ିଆରେ 'ମୁରୁ(ଡ଼ୁ)କି ହସ' ବୋଲାଯାଏ କିନ୍ତୁ ବର୍ତ୍ତମାନ ବଙ୍ଗଭାଷାର ଅନୁକରଣରେ' ମୁଚକି ହସ'ର ବ୍ୟବହାର ଦେଖାଯାଏ । ] ଦେ. ବିଣ. ଯେ ମୁରୁକି ହସେ—Simpering (person).

ମୁଚୁ(ଚୁ) ମୁଚିଆ—ଦେ. ବିଣ—(ସଂ. କୁଞ୍ଚିତ)—କୁଞ୍ଚିତ; କୁଞ୍ଚୁକୁଞ୍ଚିଆ—Much-(chu) muchiā কোঁচকান Curled; crisp. घुंघराला

ମୁଚ୍ଲା—ଗ୍ରାଦେ. (ସମ୍ବଲପୁର)—ବି—ମୁଣ୍ଡିଲା; ତକିଆ—Much lā Pillow; bolster.

ମୁଚକ—ସଂ. ବି.—(ମୁଚ୍ ଧାତୁ=ଆନନ୍ଦିତ କରାଇବା + କର୍ତ୍ତୃ. ଅକ)—Muchaka ଲାଖ—Lac.

ମୁଚ(ଚୁ)କୁନ୍ଦ—ସଂ. ବି—୧ । କର୍କ୍କୋଟାଦି ବର୍ଗରେ ଏକ ପ୍ରକାର Mucha(chu)kunda ବଡ଼ ଗଛ—1. Pterospermum Acerefolium, Suberifolim or Salicifolium. [ ଦ୍ର—ଏହା କର୍କୋଟାଦି ବର୍ଗର ଏକ ପ୍ରକାର ବଡ଼ ଗଛ; ଏହାର ଫୁଲ ଦେଖିବାକୁ ବେଣ୍ଡିପର ଲମ୍ବା । ଫୁଲର ପାଞ୍ଚ ପାଖୁଡ଼ା ଓ ପାଖୁଡ଼ା ଗୁଡ଼ିକ ଖୁବ ମୋଟ । ପାଖୁଡ଼ାର ବାହାର ପାଖ ମଖମଲ ପରି ସୂକ୍ଷ୍ମ ଲୋମ ବିଶିଷ୍ଟ ଓ ଭିତର ପାଖ ଛକୁ ପରି ଧଳା । ଫୁଲର ବାସନା ଖୁବ୍ ସୁଗନ୍ଧଯୁକ୍ତ ଓ ଉଗ୍ର । ଏହି ଫୁଲର ଶୁଖିଲା ପାଖୁଡ଼ାକୁ

ଅନ୍ୟ ସଂ. ନାମ— ମୁଚୁକୁନ୍ଦକ, ବହୁ ପତ୍ର, ଛତ୍ର, ସୁପୁଷ୍ପ, ଛତ୍ରକ, ଷଟ୍ପଦ ପ୍ରିୟ, ଛତ୍ରବୃକ୍ଷ, ରକ୍ତ ପ୍ରସବ, ପ୍ରତିବିଷ୍ଣୁକ, ହରିବଲ୍ଲଭ, ଧାର୍ଯ୍ୟ ବୃକ୍ଷ; ସୁଦଳ

মুচ্(চু)কুন্দ
मुचकुन्द
ଗୁ. ମୁଚକୁନ୍ଦ
ମ. ମୁଚକୁନ୍ଦ

ହେ. ଲାଲଲୁ; ଲୋଳଶ୍ଚ ହିନ୍ଦ୍ରାଇଲେ ସେ ପାଣି ପେଟମରା ରୋଗରେ ତା. ତାଲ୍ଲୁ; ଝଲ୍ଲୀ ଔଷଧ ରୂପେ ବ୍ୟବହୃତ ହୁଏ । ଏ ଗଛର ପତ୍ର ବଡ଼ ବଡ଼ ଓ କୋମଳ ଏବଂ ଏଥିର ଫଳ ପଣସ କଠା ପରି ଲମ୍ବା ଓ ଝାଣୁଆ । ଡଉଡ଼ା ପତ୍ରର ମଝିରେ ଚେଇଁ ଥାଏ । ଏ କାଠର ମଞ୍ଜି ନାଲି । ଏହାକୁ କେହି କେହି ଭ୍ରମରେ କନକ ଚମ୍ପା ବୋଲି କହି ଥାଆନ୍ତି; ଏଥିର ଫୁଲ ଓ ଛାଲ ଔଷଧରେ ଲାଗେ । ବୈଦ୍ୟକ ମତରେ ଏହା ଗରମ, କଟୁ, ସ୍ୱର ମଧୁରକାରୀ ଏବଂ କଫ, କାସ, ଚର୍ମରୋଗ, କଣ୍ଡୁ, ଶିରୋବ୍ୟଥା, ଓ ବିଦୋଷ ଓ ରକ୍ତ ପିତ୍ତ ବିକାର ନାଶକ ।] ୨ । ମୁନିବିଶେଷ—2. Name of a sage. ୩ । ଦୈତ୍ୟ ବିଶେଷ—3. Name of demon. ୪ । ମହାରାଜ ମାନ୍ଧାତାଙ୍କ ପୁତ୍ର—4. Name of the son of king Māndhātā. [ଦ୍ର—ଏ ଜଣେ ଅସାମାନ୍ୟ ବୀର ଥିଲେ । ଦେବାସୁର ଯୁଦ୍ଧ ସମୟରେ ଦେବତାମାନେ ପ୍ରୀତ ହୋଇ ଏହାଙ୍କୁ ବର ଯାଚିବାରେ ଏ କହିଲେ "ମୁଁ ଯୁଦ୍ଧରେ ଅତିଶୟ କ୍ଳାନ୍ତ ହୋଇଥିବାରୁ କ୍ଳାନ୍ତି ନିବାରଣାର୍ଥ ଶୋଇବି । 'ଯେ ମୋ ନିଦ୍ରାଭଙ୍ଗ କରିବ ସେ ଭସ୍ମୀଭୂତ ହେବ' ମୋତେ ଏହି ବର ମିଳୁ" । ଦେବତାମାନେ ତାଙ୍କୁ ସେହି ବର ଦେଲେ । ଏହି ବର ପାଇ ଏ ଗୋଟିଏ ପର୍ବତ ଗୁହାରେ ଶୋଇଲେ; ବହୁ ଯୁଗ ଅତୀତ ହୋଇଗଲା ପରେ ଶ୍ରୀକୃଷ୍ଣ କାଳଯବନକୁ ବିନାଶ କରିବ ଅଭିପ୍ରାୟରେ ସୁକୌଶଳ କରି ତାକୁ ମୁଚୁକୁନ୍ଦ ଶୋଇଥିବା ଗୁହାକୁ ନେଇ କାଳଯବନ ଦ୍ୱାରା ତାହାଙ୍କର ନିଦ୍ରା ଭଙ୍ଗାଇଲେ ଓ ମୁଚକୁନ୍ଦ ନିଦ୍ରାରୁ ଉଠି କାଳଯବନକୁ ଦେଖିବାରୁ କାଳଯବନ ଭସ୍ମୀଭୂତ ହୋଇଗଲା । ମୁଚକୁନ୍ଦ ନିଦ୍ରାରୁ ଉଠି ଦେଖିଲେ ଯେ ଯୁଗପରିବର୍ତ୍ତନ ସଙ୍ଗେ ସଙ୍ଗେ ତାଙ୍କ ରାଜ୍ୟ ଓ ପରିବାରବର୍ଗଙ୍କର ଚିହ୍ନମାତ୍ର ନାହିଁ । ଏହା ଦେଖି ଦୁଃଖରେ ସେ ତପସ୍ୟାର୍ଥ ହିମାଳୟକୁ ଗମନ କରି ସେଠାରେ ଯୋଗାବଲମ୍ବନପୂର୍ବକ ତନୁତ୍ୟାଗ କଲେ ।]

ମୁଚ(ଚୁ)କୁନ୍ଦୀ—ଦେ.ବି—(ସଂ. ମୁଚକୁନ୍ଦ)—ମୁଚକୁନ୍ଦ ୧ । (ଦେଖ)—
Mucha(chu)kundi Muchakunda 1. (see).

ମୁଚଙ୍ଗ—ବୈଦେ. ବି (ଫା.)—ବାଣାବିଶେଷ; ଏହାର ତାରକୁ ଦାନ୍ତରେ Muchanga ଚାପିଧରି ବଜାଇବାକୁ ହୁଏ—A kind of harp
मुचंग set to music by the teeth.

ମୁଚଲିକା—ବୈଦେ. ପ୍ରାଦେ (ଗଞ୍ଜାମ) ବି. (ଭୁକ୍ତୀ. ମୁଚଲିକା=ଚୁକ୍ତି-
Muchalikā ପତ୍ର)—ଉତ୍ପନ୍ନ ଫସଲର ଭାଗ ଦେବାପାଇଁ ରୟତମାନେ ଜମିଦାରଙ୍କୁ ସମ୍ପାଦନ କରିଦେବା କବୁଲିୟତ—A deed of agreement executed by a tenant to the landlord for cultivating the land of the latter on the condition of giving the latter a share of the produce.

ମୁଚ୍ଛ(ଚି, ଚୁ)ଲିକା—ବୈଦେ. ବି (ଭୁର୍କୀ—ମୁଚଲ୍କା)—୧ । କୌଣସି
Muchā(chi; chu)likā କାର୍ଯ୍ୟ କରିବା ପାଇଁ ଅଙ୍ଗୀକାର ପତ୍ର,
ମୁଚଲକା ଉକ୍ତ କାର୍ଯ୍ୟ ନ କଲେ ଅଙ୍ଗୀକାର ଭଙ୍ଗକାରୀ କି ଦଣ୍ଡ
मुचलका ପାଇବ ବା କେତେ ଅର୍ଥଦଣ୍ଡ ଦେବ, ତାହା ଯହିଁରେ ଲେଖାଥାଏ—1. A deed of agreement stipulating a penalty for the breach thereof; a security bond; a recognisance bond. ୨ । ଶାନ୍ତିରକ୍ଷାପାଇଁ ଦୁଷ୍ଟ ବ୍ୟକ୍ତିର ମାଜିଷ୍ଟ୍ରେଟଙ୍କୁ ଲେଖି-ଦେବା ପ୍ରତିଜ୍ଞା ପତ୍ର—2. A bond to keep the peace, executed by a wicked person to the magistrate [ଦ୍ର—ମଫସଲରେ ଜମିଦାର ବା ପଞ୍ଚାୟତମାନଙ୍କ ନିକଟରେ ଉପସ୍ଥିତ ବାଦୀ ପ୍ରତିବାଦୀ ଉଭୟେ ନିର୍ଦ୍ଧାରିତ ପରିମାଣ ଟଙ୍କା ଉଲ୍ଲେଖ କରି ମୁଚ୍ଲିକା ଲେଖି ଦିଅନ୍ତି । ବିବାଦ ବିଚାର ପରେ ଯେଉଁ ପକ୍ଷ ଦୋଷୀ ହେବ, ସେ ପକ୍ଷ ଉକ୍ତ ମୁଚ୍ଲିକା ଲିଖିତ ଅର୍ଥଦଣ୍ଡ ଦେବାକୁ ବାଧ୍ୟ ହେବ ବୋଲି ଉଭୟପକ୍ଷ ଅଙ୍ଗୀକାର କରନ୍ତି । ଆସାମୀ ବା ସାକ୍ଷୀ ଅଦାଲତରେ ନିର୍ଦ୍ଦିଷ୍ଟ ତାରିଖରେ ଉପସ୍ଥିତ ହେବା ନିମନ୍ତେ ମୁଚ୍ଲିକା ଲେଖି ଦିଅନ୍ତି । ଦୁଷ୍ଟଲୋକମାନେ ଭବିଷ୍ୟତରେ ଶାନ୍ତିଭଙ୍ଗ ନ କରିବେ କିମ୍ବା ଅସଦାଚରଣ ନ କରିବେ ବୋଲି ମଧ୍ୟ ମାଜିଷ୍ଟ୍ରେଟଙ୍କ ନିକଟରେ ମୁଚ୍ଲିକା ଲେଖିଦିଅନ୍ତି । ଜଣକ ପାଇଁ ଆଉ ଜଣେ ମୁଚ୍ଲିକା ଲେଖିଦେଲେ ଉକ୍ତ ଲେଖାକୁ ଯାମିନ୍‌ନାମା ବୋଲାଯାଏ ।

ମୁଚି—ଦେ. ବି. ପୁଂ—(ସଂ. ମୌଚିକ ବା ଚର୍ମକାର)—ମୋଚି; ଯୋତା
Muchi ତିଆରି କରିବା ବ୍ୟବସାୟୀ ବ୍ୟକ୍ତି—Shoe-maker;
মোচী मोची cobbler; currier; tanner.
ମୁଚିଆଣୀ—ସ୍ତ୍ରୀ

ମୁଚିଆଣୀ—ଦେ. ବି. ସ୍ତ୍ରୀ—ମୋଚିର ସ୍ତ୍ରୀ—A cobbler woman.
Muchiāṇi মোচিয়ানী मोचियानी

ମୁଚିପାଣି—ଦେ. ବି—ମୋଚିପାଣି (ଦେଖ)
Muchipāṇi Mochipāṇi (see).

ମୁଚିର—ସଂ. ବିଣ. ପୁଂ (ମୁଚ୍ ଧାତୁ=ଦାନ କରିବା+କର୍ତ୍ତୃ. ଇର)—
Muchira ୧ । ଦାନ ଶୀଳ; ବଦାନ୍ୟ—1. Munificent,
(ମୁଚିରା—ସ୍ତ୍ରୀ) liberal; generous. ବି.—୧ । ଧର୍ମ-ଦେବତା—1. The God of the righteous. ୨ । ବାୟୁ—2. Wind. ୩ । ଦେବତା—3. Deity.

ମୁଚୁକାଲି—ଦେ.ବି—୧। ଅଢୁଆଳରେ ଥାଇ ଅଳ୍ପ ମୁହଁ ଦେଖାଇବା—
Muchukāḷi 1. Peeping out from behind a hidding
লুকোচুরী place; ୨ । ଲୁଚୁକାଳି ଖେଳ—2. The game of
लुकाचूरी hide-and-seek.

ମୁଚୁକିହସ(ସା)—ମୁଚୁକି ହସ (ଦେଖ)—
Muchuki hasa(sā) Much-ki hasa (see).

ମୁଚୁକି(କେଇ) ହସିବା—ଦେ.କ୍ରି—ଈଷତ୍‌ହାସ୍ୟ କରିବା—To smile;
Muchuki(kei)hasibā to simper.
মুচ্‌কী(কে)হাসা मुसककर हँसना

ମୁଚୁକୁନ୍ଦ—ସଂ. ବି.—ମୁଚକୁନ୍ଦ (ଦେଖ)—Muchakunda (see).
Muchukunda (ଦ୍ର—ମୁଚୁକୁନ୍ଦ, ଚମ୍ପା, କେଶର, ତମାଲ-ସ୍ୱାଧାନାଥ ତଳିକା ।

ମୁଚୁଟୀ—ସ. ବି (ମୁଚ୍ ଧାତୁ+ଭାବ. ଉଟୀ)—୧ । ଅଙ୍ଗୁଠିଗ୍ରନ୍ଥିର ଫୁଟକା; ଅଙ୍ଗୁଳି ମୋଟନ; ଅଙ୍ଗୁଠି ଫୁଟାଇବା—
Muchuṭī 1. Cracking of the finger-joints. ୨ । (+କର୍ମ ଉଟୀ) ମୁଠା; ମୁଷ୍ଟି—2. Fist.

ମୁଚୁଲା(ଲି)—ଦେ. ବି—୧ । ମାଣ୍ଡି; ତକିଆ; ତୁଳାଆଦି ନରମ ପଦାର୍ଥ-
Muchulā(li) ପୂର୍ଣ୍ଣ ଥଳ—1. Pillow. [ଉ—ତଳେ
মাথার বালিস ଶୋଇ ହାତ ମୁଚୁଲି ଯେ କରଇ, ଦେବେ
तकिया; बालिस्ता ତାହାଙ୍କୁ ପ୍ରଶଂସନ୍ତି ଦୋଷ କହି । କୃଷ୍ଣସିଂହ. ମହାଭାରତ. ବନ । ] ୨ । ବୋହିଆମାନେ ମୁଣ୍ଡରେ ବା
চিমনা କାନ୍ଧରେ ବୋଝ ରଖିବା ପାଇଁ ବ୍ୟବହାର କରୁଥିବା
बीडा କନାର ମଲା; ଭୁଟୁଲା—2. A cushion or ball of rags used by porters on the head or shoulders to carry loads on. ୩ । ହାଣ୍ଡିକୁ ଭୂଇଁରେ ରଖିବା ପାଇଁ ବ୍ୟବହୃତ ପାଲଅଦର ମୋଢ଼ା; ମଲା—3. Circular cushion of straw used to set round-based pots securely on the ground.

ମୁଚ୍ଛିବା—ଦେ. କ୍ରି (ସ. ମୁଚ୍ଛ ଧାତୁ)—୧ । ମୁକୁଳିବା; ମାୟା ତ୍ୟାଗ
Muchchhibā କରିବା—1. To give up attachment for a person or thing. ୨ । ତ୍ୟାଗ କରିବା—2. To give up. [ଉ—ଇନ୍ଦ୍ରଠାରୁ ସ୍ନେହ ନ ପାରନ୍ତି ମୁଚ୍ଛି । କୃଷ୍ଣସିଂହ. ମହାଭାରତ. ବନ । ] ୩ । ଧନ ସ୍ନେହ ତ୍ୟାଗ କରି ବ୍ୟୟ କରିବା—3. To spend lavishly

ମୁଛ—ଦେ. ବି (ସ. ଶ୍ମଶ୍ରୁ; ପ୍ରା. ମଂସୁ; କନ୍ନା ସ କୁର୍ଚ୍ଚ=କଠିନ
Muchha ଶ୍ମଶ୍ରୁ)—ନିଶ—Mustaches. [ଦ୍ର—ବହଳ
গোঁপ, মোছ(চ) ଶ୍ମଶ୍ରୁକୁ ନିଶ ଓ ଘନ ଶ୍ମଶ୍ରୁକୁ ମୁଛ ବୋଲାଯାଏ;
मोछ ମଦ୍ଦର ଗୋଟିଏ ପାଖର ମୁଛକୁ ପଟାଏ ମୁଛ ବୋଲାଯାଏ । ]

ମୁଛଡ଼ିବା—ସ. ବି—ମୁଛୁଡ଼ିବା (ଦେଖ)
Muchhaṛdibā Muchhuṛdibā (See)

ମୁଛ ଦାଢ଼ି—ଦେ. ବି (ସହଚର) (ସ. ଶ୍ମଶ୍ରୁ+ଦାଢିକା)—ମୁଛ ଓ
Muchha daṛhi ଦାଢ଼ୀ; ପାଟିର ଉପର ଓଠ ଉପରେ ଥିବା
গোঁপদাড়ী मोछदाढी ନିଶ ଓ ତଳ ଓଠର ତଳେ ଥିବା ଦାଢ଼ୀ—Mustaches and beard.

ମୁଛଡ଼ି(ଡ଼ି)—ବୈଦେ. ବି—ମୁଛୁଡ଼ି (ଦେଖ)
Muchhaḍi(ḍḍi) Muchhuḍi (See)

ମୁଛ ମୋଡ଼ିବା—ଦେ. କ୍ରି—ହାତ ଦ୍ଵାରା ମୁଛକୁ ସାଉଁଳିବା—To
Muchha morḍibā set one's mustaches in order
মোচে (গোঁপে)তা দেওয়া by the hand,
मोछ फेडना, मोछपर ताव देना [ଦ୍ର—ମୁଛ ରଖିବା ସାରଣ୍ୟ-[ମୁଛରେ ହାତ ପକା(କେ)ଇବା—ଅନ୍ୟରୂପ] ବ୍ୟଞ୍ଜକ । ସାରଣ୍ୟ ବା ଦର୍ପ ବା ଅହଙ୍କାରର ପ୍ରକାଶ କରିବା ଉପଲକ୍ଷରେ ଲୋକେ ମୁଛ ମୋଡ଼ି ଥାଆନ୍ତି ।]

ମୁଛା—ଦେ. ବିଣ—ନିଶୁଆ; ମୁଛଯୁକ୍ତ—
Muchhā Having mustaches.
গুঁফো मोछवाला, मुच्छड़, मुछियल
(ମୁଛୁଆ—ଅନ୍ୟରୂପ)

ମୁଛି—ପ୍ରାଦେ. (ମେଦିନୀପୁର) ବି—ମାଳି (ଦେଖ)
Muchhi Māli (See)

ମୁଛିଆ ହଳଦୀ ବସନ୍ତ—ଦେ. ବି—ଏକ ଜାତୀୟ ହଳଦୀ ବସନ୍ତ ପକ୍ଷୀ—
Muchhiā haladī basanta Barbet (bird).
[ଦ୍ର—ଏମାନଙ୍କ ଥଣ୍ଟର ମୂଳରେ ମୁଛ ପରି ଗୋଟିଏ ଦୋଟେ ଲମ୍ବ ଠାଣୁଆ ଲୋମ (ନିଶ) ବାହାରି ଥାଏ ।]

ମୁଛୁଡ଼ିବା—ପ୍ରାଦେ. (ସମ୍ବଲପୁର) କ୍ରି. (ସ. ମୁଚୁଟୀ—ଅଙ୍ଗୁଳି
Muchhurḍibā ମୋଟନ)—ଠକିବା—To cheat.

ମୁଛୁ(ଛି, ଚ୍ଛ, ଚ୍ଛୁ)(ଡ଼ି)—ବୈଦେ. ବି. (ଅ. ମୁତ୍ସଦୀ=ଲେଖକ)—
Muchhu(chha, chchha, chchhu)ḍi(ḍḍi)
मुच्छुद्दि, मुतसद्दि ୧ । ସାଂସାରିକ ବିଷୟ କର୍ମର ଭାରପ୍ରାପ୍ତ
मुत्सुद्दि, मुतसद्दी କର୍ମଚାରୀ; ଗୁମାସ୍ତା—1. An agent. ୨ । ମେନେଜର୍—2. Manager. ୩ । କାର୍ଯ୍ୟାଧ୍ୟକ୍ଷ—3. Superintendent. ୪ । ମୋହରର୍; ଲେଖକ—4 A writer; clerk

ମୁଜ(ଜୁ)ମଦାର—ବୈଦେ. ବି—ମଜୁମ୍‌ଦାର (ଦେଖ)
Muja(ju)madāra Majumdāra (See)

ମୁଜମ୍ମା—ବୈଦେ. ବି. (ଅ)—ଘୋଡ଼ାକୁ ଠେକିବା ସକାଶେ ଘୋଡ଼ାର
Mujammā ମୁହଁ ପାଖ କଡ଼ିରେ ସଙ୍ଗେ ସଂଯୁକ୍ତ ଲଗାମ୍;
মুজমা ଲଗାମ; କାଗତୋଡ଼—A bridle attached to
मुजम्मा the bit of a horse to curb its progress at the will of the rider.

ମୁଜରିମ୍—ବୈଦେ ବି ଓ ବିଣ. (କଚେରୀ) (ଅ)—ମୁଦ୍ଦାଲା; କୌଣସି
Mujarim ଅପରାଧରେ ଅଭିଯୁକ୍ତ ବ୍ୟକ୍ତି—A person
মুজরিম accused of an offence; an accused.
मुजरिम

ମୁଜା(ଝା)ଇ(ଏ, ହି, ହେ)ମ(ମି)—ବୈଦେ. ବି. (କଚେରୀ) (ଅ.
Mujā (jhā)i(e, hi, he)m(mi) ମୁଜାହିମ୍)—୧ । ଆପତ୍ତି—
মু(মো)জাহে(হি)ম 1. Objection. ୨ । ଦାବି—2. Claim.
मुजाहीम ୩ । ଅନ୍ୟେ ଦାବି କରୁଥିବା ସମ୍ପତ୍ତି ଉପରେ ଆପତ୍ତିର ଦାବି—3. Counter claim. ବି ଓ ବିଣ—୧। ଆପତ୍ତି-କାରୀ 1. Objector. ୨। ଦାବିଦାର—2. Claimant. [ଦ୍ର—ଅଦାଲତରେ ଦଖଲସ୍ଵତ୍ଵକାରୀ ବା ପ୍ରଥମ ଦାବିଦାରକୁ ସାବଲ ଓ ବିପକ୍ଷ ଦାବିଦାର ବା ଆପତ୍ତିକାରୀକୁ ମୁଜାହିମ୍ ବୋଲାଯାଏ ।]

ମୁଜାଇମ୍(ମି) ଦରଖାସ୍ତ—ବୈଦେ. ବି. (କଚେରୀ) (ଅ. ଓ ଫା)—
Mujāim(mi)darakhāst ଅଦାଲତରେ ଦାଖଲ କରାଯିବା
মোজাহেম দরখাস্ত ଆପତ୍ତି ଦରଖାସ୍ତ—Petition for claim;
मुजाहिम दरखास्त objection petition.

ମୁଜାଇମ୍ ମକଦ(ଦ୍ଦ)ମା—ଦେ. ବି. (ଫାରସୀ)—ଆପତ୍ତି ବା ଦାବୀ
Mujāim makada(dda)mā ସଂକ୍ରାନ୍ତ ମକଦ୍ଦମା—
মোজাহেম মোকদ্দমা A claim case; as case or off-
**मुजाहिम मुकद्दमा** shoot of an original suit, in which an objection or claim is set up; gone into and adjudicated upon.

ମୁଜାଇମ୍ ହେବା—ଦେ କ୍ରି. ( ଫାରସୀ )—ଅଦାଲତରେ ଆପତ୍ତିକାରୀ
Mujāim hebā ରୂପେ ଠିଆ ହେବା—To stand as a
মোজাহেম হওয়া claimant or objector in court.

ମୁଜାଏମ୍ ଦାର୍—ବିଦେ. ବି ଓ ବିଣ. (ଫାରସୀ) (ଫା)—୧। ଆପତ୍ତିକାରୀ—
Mujāemadār 1. Objector. ୨। ଦାବୀଦାର—
মু(মো)জাহেম 2. Claimant. ୩। ପ୍ରତିଦ୍ୱନ୍ଦ୍ୱୀ ଦାବୀଦାର—
**मजाहिम** 3. Counter-claimant.

ମୁଜାଏମ୍ ଛେ(ଦେ)ବା—ଦେ.କ୍ରି (ଫାରସୀ)—କୌଣସି ବିଷୟପ୍ରତି ସମ୍ପତ୍ତି
Mujāembe(de)bā ପକ୍ଷେ ଅଦାଲତରେ ଆପତ୍ତି ଦରଖାସ୍ତ ଦାଖଲ
(ମୁଜାଏମ ପକାଇବା—ଅନ୍ୟରୂପ) କରିବା—To file an objection petition or a counter claim
মোজাহিম হওয়া **मुजाहिम होना** in a court.

ମୁଜାଭର୍—ବୈଦେ. ବି (ଆ)—କୌଣସି ପୀରଙ୍କ ଦରଗାରେ ବା
Mujābar ଅସ୍ଥାନରେ ରହି ସେଠା ଓଳାଇବା, ସେଠାରେ
মুজাবর **मुजाबर** ସଞ୍ଜବତୀ ଲଗାଇବା ଆଦି କାର୍ଯ୍ୟ କରିବା
ମୁସଲମାନ୍—A Mahomedan who is a whole-time servant in a saint's tomb.

ମୁଜୁମ୍—ପ୍ରାଦେ (ଗଡ଼ଜାତ) ବି—ଜିଦ; ଜିଗର—
Mujum Importunity, insistence.

ମୁଞ୍ଚ୍(ଧାତୁ)—ସ—୧। ଛାଡ଼ିଦେବା—1 To let go. ୨। ତ୍ୟାଗକରିବା
Muñch (root) 2. To abandon. ୩। ମୋଚନ କରିବା—
3. To give up; to discharge.

ମୁଞ୍ଚକ—ସ.ବି(ମୁଞ୍ଚ୍ ଧାତୁ+କର୍ତ୍ତୃ ଅକ)—୧। ମୁଷ୍କକ ବୃକ୍ଷ—1. Name
Muñchaka of a tree. ୨। ଅଣ୍ଡକୋଷ—2. Testicle.

ମୁଞ୍ଚନ—ସ. ବି (ମୁଞ୍ଚ୍ ଧାତୁ+ଭାବ.ଅନ)—ତ୍ୟାଗ—Giving up.
Muñchana ( ଉ—କରରେ କର ବନ୍ଧନ, ଛାଡନ୍ତି ପରି ମୋଚନ, ହୋଏ କି ମନ ମୁଞ୍ଚନ, ନାହିଁ ବନ୍ଧନ—ଭଞ୍ଜ. ପ୍ରେମସୁଧାନିଧି।.]

ମୁଞ୍ଚା—ଦେ. ବି (ସ ମୁଞ୍ଚ୍ ଧାତୁ )—ତ୍ୟାଗ—Abandonment.
Muñchā ବିଣ—ତ୍ୟକ୍ତ—Abandoned.
ত্যাগ **मुँचना** ( ଉ—ତାଙ୍କ ସଙ୍ଗେ ବିଳାସ କଲଟି ହେ ସିଷ୍ଟ, ବଥ କାମଥନଲ ସନ୍ତାପକୁ ମୁଞ୍ଚି—କୃଷ୍ଣସିଂହ. ମହାଭାରତ ବିରାଟ।)

ମୁଞ୍ଚିବା—ଦେ (ପଦ୍ୟ) କ୍ରି (ସ. ମୁଞ୍ଚ୍ ଧାତୁ)—୧। ତ୍ୟାଗ କରିବା—
Muñchibā 1. To abandon. ୨। ମୋଚନ କରିବା
মুঞ্চা **मुँचना** 2. To discharge. (ଉ—
ବିଭୀଷଣ ଶୁଣି ହାସକୁ ମୁଞ୍ଚିଲେ— କୃଷ୍ଣସିଂହ ମହାଭାରତ. ସଭା । )

ମୁଞ୍ଜ୍ (ଧାତୁ)—ସଂ—ଶବ୍ଦ କରିବା—
Muñj (root) To make a sound.

ମୁଞ୍ଜ—ସଂ,ବି (ମୁଞ୍ଜ୍ ଧାତୁ+କର୍ତ୍ତୃ.ଅ)—୧। ଏକପ୍ରକାର ତୃଣ; କାଇଁଶ ତୃଣ—1. A kind of grass from which a newly initiated Brahman boy's girdle is spun. Sacharum Moonja; Sacharum Varciliaris.
Muñja
ସ. ମୁଞ୍ଜାତକ, ବାଣ, ସ୍ଥୂଳଦର୍ଭ; ମୌଞ୍ଜୀତୃଣ, ବ୍ରାହ୍ମଣ୍ୟ, ତେଜନାହ୍ୱୟ, ବାଣାରକ, ମୁଞ୍ଜନକ ଶାସ, ଦର୍ଭାହ୍ୱୟ, ଦୁର୍ମିଳ, ଦୃଢ଼ମୂଳ, ବହୁପ୍ରଜ, ରଞ୍ଜନ, ଶତ୍ରୁଭଙ୍ଗ
মুজ(ঞ্জ), শর
**मुँज, रामशर**
ତେ ମୁଞ୍ଜଗଡ୍ଡି, ଅନାଖୁଲ୍ଲଙ୍ଗ
ସ. ବ୍ରହ୍ମଣ ମେଖଳା
ମ. ମୋଲ
[ଦ୍ର—ମୁଞ୍ଜ ତୃଣ ଦୁଇ ପ୍ରକାର—ମୁଞ୍ଜ ଓ ଭଦ୍ରମୁଞ୍ଜ । ବୈଦ୍ୟକ ଶାସ୍ତ୍ର ମତରେ ଏହା ମଧୁର କଷାୟ, ଶୀତବୀର୍ଯ୍ୟ ଓ ଦାହ, ତୃଷ୍ଣା, ବିସର୍ପ,ଆମ, ମୂତ୍ରକୃଚ୍ଛ୍ର, ନେତ୍ର ରୋଗ ଓ ତ୍ରିଦୋଷ ନାଶକ ଏବଂ ଶୁକ୍ରବର୍ଦ୍ଧକ । ଏଥିରେ ଦ୍ୱିଜ ବାଳକଙ୍କ ଉପନୟନ ବେଳେ ପରିଧେୟ ମେଖଳା ତିଆରି ହୁଏ । ଏହା ବୁଦା ବୁଦା ହୋଇ ଉଠେ; ଏଥିରୁ ଡାଳ ବାହାରେ ନାହିଁ । ମୂଳରୁ ଏହାର ସରୁ ଲମ୍ବ ପତ୍ରମାନ ଘନ ଭାବରେ ବାହାରେ । ପତ୍ର ମଝିରେ ଗୋଟିଏ ଠାଣୁଆ ତନ୍ତୁ ଥାଏ । ବୁଦାର ମଝିରୁ ଗୋଟିଏ ଲମ୍ବ କାଣ୍ଡ ବାହାରେ ଓ କାଣ୍ଡର ଅଗରେ ଈଷତ୍ ଧଳା ଫୁଲ ଫୁଟେ । ଏ କାଣ୍ଡର ଖୋଳ ଖୁବ ଚିକ୍କଣ ଓ କୋମଳ ହୁଏ । କାଣ୍ଡର ଖୋଳରୁ ସୁନ୍ଦର ଡାଲି ଓ ପେଟେଇ ଆଦି ବୁଣାଯାଏ ।] ୨। ଶରତୃଣ—2 A kind of reed grass. ୩। ଯଜ୍ଞୋପବୀତ; ପଇତା—3. A Brāhmaṇa's sacred thread. ୪। ଶର; ବାଣ—4. Arrow. ୫। (ନାମ) ମାଳବ ଦେଶର ନୃପତି ରାଜା ହର୍ଷଦେବଙ୍କ ପୁତ୍ର—5. Name of an ancient prince of the Māḻaba country.

ମୁଞ୍ଜ କେଶ(ଶୀ)—ସ. ବିଣ. ପୁଂ. ( ମୁଞ୍ଜ ପରି ଟାଣୁଆ କେଶ ଯାହାର ବହୁବ୍ରୀହି)—ମୁଞ୍ଜ ପରି ଟାଣୁଆ ବା କଡ଼ା କେଶଯୁକ୍ତ—Tough-haired.
Muñja keśa(śī)

ମୁଞ୍ଜକେଶା } ସ୍ତ୍ରୀ
ମୁଞ୍ଜକେଶୀ }
ବି—୧। ବିଷ୍ଣୁ—1. Bishṇu.
୨। ଶିବ (ହ୍ର. ଷ)—2. Śiba.

ମୁଞ୍ଜ ପୃଷ୍ଠ—ସ. ବି. ( ଏଠାରେ ମୁଞ୍ଜ ତୃଣ ଜନ୍ମୁଥିବାରୁ )—ହିମାଳୟର
Muñja pṛushṭha ଶୃଙ୍ଗ ବିଶେଷ—Name of a peak of the Himālayas.

ମୁଞ୍ଜ ବନ୍ଧନ(ନୀ)—ସ. ବି. (ମ• ପ. ଲୋ କର୍ମଧା; ମୁଞ୍ଜ ନିର୍ମିତ ବନ୍ଧନ)—
Muñja bandhana(nī) ନବବ୍ରହ୍ମଚାରୀଙ୍କ ପରିଧେୟ ମୁଞ୍ଜତୃଣ ନିର୍ମିତ
(ମୁଞ୍ଜ ମେଖଳା—ସ୍ତ୍ରୀ) ମେଖଳା—A girdle made of muñja grass worn by the newly initiated Brāhmaṇa. (ଉ—ମୁଞ୍ଜ ମେଖଳାରେ ବନ୍ଧ ଶୋଭେ କଟି ଦେଶ । ରାଧାନାଥ. ମହାଯାତ୍ରା ।)

**ମୁଞ୍ଜ ମଣି**—ସ. ବି—ପୁଷ୍ପରାଗ ମଣି (ହ୍ର. ଶ)—
Muñja maṇi Ruby.

**ମୁଞ୍ଜର**—ସ. ବି. (ମୁଞ୍ଜ=ଭୃଙ୍ଗ+ର ଧାତୁ=ଗମନ କରିବା+କର୍ତ୍ତୃ.
Muñjara ଅ)—୧ । ନବ ପଲ୍ଲବିତ ଫୁଲ—1. Budding flower. ୨ । ଶାଲୁକ; ପଦ୍ମର ଓ କଇଁର ମୂଳ (ପ୍ରକୃତିବାଦ) 2. The bulbuous root of lotus and waterlily.

**ମୁଞ୍ଜରିତ**—ସ. ବିଣ. ( ମୁଞ୍ଜର+ଇତ )—ନବ ପଲ୍ଲବିତ (ଫୁଲ)—
Muñjarita Budding (flower); blossomed

**ମୁଞ୍ଜରୀ**—ସ. ବି. (ମୁଞ୍ଜର+ଈ)—୧ । ତୁଳସୀ ପୁଷ୍ପ; ତୁଳସୀର ଜଟା ବା
Muñjarī ମଞ୍ଜରୀ—1. The flower of the Holy Basil plant. ୨ । ଶସ୍ୟର ଶୀର୍ଷ; ଶସ୍ୟର ଶୀଷା – 2. The ear of corn. ୨ । ପଦ୍ମ କେଶର – 3 The spike or filaments of the lotus flower.

**ମୁଞ୍ଜା**—ଦେ. ବି. ( ସ. ମୁଞ୍ଜ )—ମୁଞ୍ଜ (ଦେଖ)—Muñja ( See )
Muñjā (ଯ୍ରି—କଟିରେ ମୁଞ୍ଜାର ମେଖଳା, ଯଜ୍ଞୋପବୀତ ଅକ୍ଷ ମାଳା । ଜଗନ୍ନାଥ. ଭାଗବତ ¹)

**ମୁଞ୍ଜାତକ**—ସ. ବି—୧ । ମୁଞ୍ଜ ( ଦେଖ )—1. Muñja ( See )
Muñjātaka ୨ । ଔଷଧରେ ବ୍ୟବହୃତ ଏକ ପ୍ରକାର ତୃଣ ମୂଳ —2. A sort of medicinal grass root. [ଦ୍ରି—ଏହା ଉତ୍ତର ଭାରତରେ ମିଳେ । ଏହାର ଅଭାବରେ ତାଳ ମଞ୍ଜା ବ୍ୟବହାର କରିବାର ବ୍ୟବସ୍ଥା ଅଛି (ହ୍ର.ଶ) ।]

**ମୁଞ୍ଜାଳ**—ସ. ବି. (ନାମ)—ଲଘୁମାନସ ନାମକ ଜ୍ୟୋତିଷ ଗ୍ରନ୍ଥର
Muñjāla ରଚୟିତା—Name of the author of the astrological work named Laghu Mānasa.

**ମୁଟ୍** (ଧାତୁ)—ସ—୧ । ଘଷିବା—1. To rub; to press. ୨ ।
Muṭ (root) ଚୂର୍ଣ୍ଣ କରିବା; ଚୂରିବା—2. To pound; to grind; to reduce to powder. ୩ । ଭାଙ୍ଗିବା—3. To break down. ୪ । ଦଳିବା—4. To trample down. ୫ । ଭର୍ତ୍ସନା କରିବା – 5. To reprove. ୬ । ନିନ୍ଦା କରିବା—6. To blame.

**ମୁଟ୍(ଟୁ)ମୁଟ୍(ଟୁ)**—ଦେ. ଅ. ( ଧ୍ୱନ୍ୟନୁକରଣ )—ମଟମଟଠାରୁ ଅନୁଚ୍ଚ
Mut-(ṭu)mut-(ṭu) ଶବ୍ଦ; ଛୋଟ ଡାଳ ଆଦି ଭାଙ୍ଗିବାର ଶବ୍ଦ–
ମୁଟ୍‌ମୁଟ୍ Low snapping sound (as of twigs
**मुटमुट** when broken).

**ମୁଟ୍(ଟୁ)ରା**—ଦେ. ବି—ଗଣ୍ଠିରି; ବୋଜଣ୍ଡ—Luggage. ଗ୍ରାଦେ.
Mut-(ṭu)rā (ବାଲେଶ୍ୱର) ବି—ଏକ ଜାତୀୟ ମୋଟ ଧାନ;
ମୋଟା ମୋଟରା—A species of coarse paddy.
**मोटरा**

**ମୁଟ**—ଗ୍ରାଦେ. (ବାଲେଶ୍ୱର) ବିଣ ଓ ବି—ମୋଟ ( ଦେଖ )
Muṭa Moṭa ( See )

**ମୁଟ(ଟୁ)ରି**—ଦେ. ବି—ଧାନ ଗଛର ଏକ ପ୍ରକାର ରୋଗ (ଏଥିରେ
Muṭa(ṭu)ri ଧାନର କେଣ୍ଡାମାନ ଶୁଖିଯାଏ)—A disease
ଢେଁପୋ affecting paddy plants by which the
**सुखनी** ears of corn wither.

**ମୁଟିଆ**—ଗ୍ରାଦେ. (ବାଲେଶ୍ୱର) ବି. (ଭୁଲ. ବି. ମୁଟିଆ)—ବୋଝିଆ;
Muṭiā ମୋଟିଆ—A porter; a load-carrier.

**ମୁଠ(ଠା, ଠି)**—ଦେ. ବି—ମୁଠ(ଠା, ଠି) ( ଦେଖ )
Muṭṭha(ṭṭhā, ṭṭhi) Muṭha(ṭhā, ṭhi) ( See )

**ମୁଠ**—ଦେ. ବି. (ସ. ମୁଷ୍ଟି)—ତରବାରି ଆଦିର ବେଣ୍ଟ—Hilt or
Muṭha handle of a sword. ଗ୍ରାଦେ (ବାଲେଶ୍ୱର) ବି
ମୁଟ ଠ) —କାନ୍ଥ ଫାଟି ଯାଉଥିଲେ ତାକୁ ରକ୍ଷିବା ଲାଗି ଦିଆ
**मुठ** ଯାଇଥିବା କାଠ ବା ବାଉଁଶ ଖଣ୍ଡ; ଠେସ—A prop of wood or bamboo to support a falling wall

**ମୁଠା**—ଦେ ବି ( ସ. ମୁଷ୍ଟି, ପ୍ରା. ମୁଟ୍ଠି )—୧ । ସ. ଭିଡ଼ିତ କରତ-
Muṭhā Clenched palm of the hand; clutch.
ମୁଠା [ ଦ୍ରି—ମୁଠା କର ବେନି ହସ୍ତେ କେ ଧରିବ କହ ।
**मुट्ठा** ସ୍ୱାମଭକ୍ତ. ବ୍ରହ୍ମନିରୂପଣଗୀତା । ] ୨ । ଫଳିତ କରତଳ ମଧ୍ୟରେ ରହି ପାରିବା ବସ୍ତୁର ପରିମାଣ— 2. A handful. ୩ । ତରବାରି ଆଦିର ବେଣ୍ଟ— 3. The hilt or handle of a sword. ୪ । ଲଙ୍ଗଳର ଥଣ୍ଡ; ଯେଉଁଠାରେ ଲଙ୍ଗଳକୁ ଧରି ବୁଲାଇବାକୁ ହୁଏ—4. The handle of a plough. ୫ । ( ସ. ସମଷ୍ଟି ) ପ୍ରଗନା; ରାଜ୍ୟର ଅଂଶ ବିଶେଷ; ଗ୍ରାମସମଷ୍ଟି—5. Pergunna; name of a fiscal division of a state; a collection of villages taken as a unit. ୬ । ଅଧୁଆର; ଆୟତ୍ତ—6 Control; clutches. ୭ । ଏକ-ପ୍ରକାର ଚାମର—7. A kind of chowrie fan. ୮ । ଏକହାତରେ ପିନ୍ଧାଯିବା କାଚ ବା ଶଙ୍ଖା—8. One set of choories or glass bangles put on one hand. ୯ । ଖଡ଼ିକା ବା ଡାଳଆଦି ଏକତ୍ର ବନ୍ଧା ହୋଇଥିବା ଝାଡ଼ୁଣି ଓ ପଚିଁସ୍ତ—9. A cluster of twigs or wickers bound into a broom-stick. ୧୦ । ତାସର ପୂରା ୫୨ ଖଣ୍ଡ—12. A full set of playing cards. ୧୧ । ବଣ୍ଟା ହେବା ପରେ ପ୍ରତ୍ୟେକ ଖେଳାଳିଙ୍କ ହାତରେ ଥିବା ତାସମାନ— 11. The equal number of playing cards in the hand of each individual player before the game begins. ୧୨ । ପ୍ରତ୍ୟେକ ଖେଳାଳି ଖଣ୍ଡିଏ ଖଣ୍ଡିଏ ତାସ ଖେଳିବା ପରେ ଯେଉଁ ତାସଗୁଡ଼ିକ ଜଣକ ଜିତାଇ ନିଅନ୍ତି—12. The group of playing cards which is thrown at a time and which is won by one of the players. ଗ୍ରାଦେ ( ଗଡ଼ଜାତ )—ଜନମାନଙ୍କ ଏ

ଗ୍ରାମ ମଣ୍ଡଳୀ—A group of Khond villages. ଦେ. ବିଣ—ମୁଷ୍ଟିମେୟ—Handful of. ପ୍ରାଦେ. ବି (ପାନବରଜୀଙ୍କ ଭାଷା)—୧ । ବରଜୀଙ୍କର ସଙ୍କେତ—1. The mark of illiterate betel-leaf-growers. ୨ । ଦୁଇ ପୋତର କୁଞ୍ଚ ମୁଣ୍ଡାଇଥିବା ଶେଷ ଗଣ୍ଠି—2. The last knot of string which ties the roof-bamboo put above a row of betel creepers.

**ମୁଠା ଅଜ୍ଞା**—ଦେ. ବି—ରାଜାଙ୍କ ସ୍ୱାକ୍ଷରାଙ୍କିତ ଆଦେଶ; ହାତ ଚିଠାଉ—An order issued under a king's signature; Latters Patent.
Muṭhā ājnā
(ମୁଠାଜ୍ଞା—ଅନ୍ୟରୂପ)
হাতচিঠা
राज आज्ञा
[ ଉ—ବୈଦେହୀ ସମର୍ପ ଜୀବେ ଥିଲେ ଅଛ ମୁଠା ଅଜ୍ଞା ଅଛି ଅଣି ମୁଁ । ଉଞ୍ଜ. ବୈଦେହୀଶବିଳାସ । ]

**ମୁଠା(ଠେ)ଇବା**—ଦେ. କ୍ରି (ସ. ମୁଷ୍ଟି)—୧ । ହାତର ମୁଠାଦ୍ୱାରା ଧରିବା—1. To clutch a thing, to hold a thing with the clenched palm. ୨ । ଜାବୁଡ଼ି କରି ଧରିବା—2. To hold a thing tightly.
Muṭhā(ṭhe)bā
(ମୁଠିଆଇବା—ଅନ୍ୟରୂପ)
মুঠান
मुट्ठीमेलेना; मुठिआना

**ମୁଠାଏ**—ଦେ. ବିଣ ଓ ବି—୧ । ମୁଠାରେ ସମ୍ଭାଇବା ପରିମିତ—1. A handful of. ୨ । ପ୍ରଚୁର; ଅନେକ (ଟଙ୍କା)—2. Much. (ଯଥା—ମୁଁ ଅମୁକ କାମରେ ମୁଠାଏ ଟଙ୍କା ଖରଚ କରି ଦେଲି ।)
Muṭhāe
একমুঠা(ঠো)
मुट्ठीभर
[ ଦ୍ର—"ମୁଠାଏ" ରୁ ମୁଠିଏ" କମ୍ ପରିମାଣଜ୍ଞାପକ ଓ କୋମଳତରପ୍ରୟୋଗ । ]

**ମୁଠା କରିବା**—ଦେ. କ୍ରି—କରତଳକୁ ସଙ୍କୁଚିତ କରିବା—To contract the palm of the hand.
Muṭhā kariba
মুঠাকরা मुट्ठी बान्धना

**ମୁଠାତଳ**—ଦେ. ବିଣ—ଆପଣାର କବ୍ଜାମୁଠିରେ ଥିବା; ନିଜର ଆୟତ୍ତାଧୀନ—Under one's control or clutches. [ ଉ—ସେ ମୋ ମୁଠାତଳ ଲୋକ । ] ଦେ. ବି—ନିଜର ଆୟତ୍ତାଧୀନତା; ବଶ୍ୟତା; ଅଧିକାର—Control.
Muṭhātaḷa
(ମୁଠ ତଳର—ଅନ୍ୟରୂପ)
হাতের ভিতর
मुट्ठीकातल

**ମୁଠା ଫଳିଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ—ନିଜର ଆୟତ୍ତାଧୀନ—(a person) Under one's control or clutches
Muṭhā faḷiā
(ମୁଠାତଳର, ମଠାଭିତରର—ଅନ୍ୟରୂପ)
হাতের ভিতরের मुट्ठीतलेका

**ମୁଠା ମୁଠା**—ଦେ.ବିଣ—୧ । ବହୁ ମୁଷ୍ଟି ପରିମିତ—1. Handfuls of. ୨ । ବହୁ ପରିମିତ—2. Large quantities of; much. [ ଉ—ସାଆନ୍ତାଣୀ ତାଙ୍କ ମେନେଜରଙ୍କ ହିଷ୍ଟ ମୁଠା ମୁଠା ଟଙ୍କା ଖରଚ କରୁଅଛନ୍ତି । ]
Muṭhā muṭhā
মুঠা মুঠা
मुट्ठी मुट्ठी

**ମୁଠା ମୁଠା କରିବା**—ଦେ. କ୍ରି—୧ । କରତଳକୁ ମୁଷ୍ଟିବଦ୍ଧ କରିବ,—1. To clench the fist. ୨ । ଅନିଚ୍ଛା ବା ଭୟପ୍ରକାଶ କରିବା—2. To show signs of unwillingness or fear by clenching the fist.
Muṭhā muṭhā kariba
মুঠাকরা
मुट्ठी मुट्ठी करना; मुठियाना

**ମୁଠା ଭିତରେ ରଖିବା**—ଦେ. କ୍ରି—୧ । ଆପଣାର ଅଧୀନ ରଖିବା—1. To keep within some one under one's control; to retain a thing under one's clutches.
Muṭhā bhitare rakhibā
মুঠার ভেতরে রাখা
मुट्ठीभीतर रखना

**ମୁଠରୁ ଖସିବା**—ଦେ. କ୍ରି.—ଆପଣାର ଅଧୀନତାରୁ ବାହାରି ଯିବା—To get out of one's control or clutches.
Muṭharu khasibā
মুঠাথেকে খসে যাওয়া मुट्ठीसे खसकना

**ମୁଠା ସାରି**—ପ୍ରାଦେ.ବି. (ପାନ ବରଜୀଙ୍କ ଭାଷା)—କୁଞ୍ଚମାନଙ୍କ ଉପରେ ମୁଠା ବୁଣାଯିବା ପରେ ଆଡ଼ ବାଗରେ ପଡ଼ିଥିବା ବାଉଁଶ—The bamboo placed cross-wise on the roof of a row of betel creepers.
Muṭhā sāri

**ମୁଠାସାରି ଗଣ୍ଠି**—ପ୍ରାଦେ.ବି.—(ପାନବରଜୀଭାଷା)—କୁଞ୍ଚମାନଙ୍କ ଯୋଡ଼ ମୁହଁରେ ଯେଉଁ ଗଣ୍ଠି ଦିଆଯାଏ—The knot tying the bamboos placed lengthwise on the roof of a row of betel-creepers
Muṭhā sāri ganṭhi

**ମୁଠି**—ଦେ. ବି—(ସ. ମୁଷ୍ଟି, ପ୍ରା. ମୁଟ୍ଠି, ମୁଟି)—୧ । ମୁଠା; ମୁଷ୍ଟି ସଙ୍କୁଚିତ କରତଳ—1. Clenched or clutched palm. [ଉ—ଅଶ୍ମ କରଣ ତଡ଼ି, ଚେତିର ମୁଠିକ । କୃଷ୍ଣସିଂହ. ମହାଭାରତ ବନ ।] ୨ । ଏକ ମୁଷ୍ଟି ପରିମାଣ; ପ୍ରାୟ ୩ ଇଞ୍ଚ—2. A measure of length by the fist [ଉ—ତିନି ମୁଠି ଅଡ଼ ଦୁଇ ମୁଠି ଓସାର ମଝିରେ ପୋତିବ କାଠି ।] ୩ । ଖଡ୍ଗ ଆଦିର ବେଣ୍ଟ—3. The hilt or handle of a sword. ୪ । ଭଣ୍ଡାରିମାନଙ୍କର ଖୁର ଆଦି ରଖିବାର କନାର ବା ଚମଡ଼ାର ମୁଣ୍ଡି—4. Barber's bag for keeping razor etc; barber's pouch. ୫। ଅଖି ମୁଠି (ଦେଖ) 5. Akhi muṭhi (See)
Muṭhi
মুঠা(টা)
मुट्ठी
मुँठ
নাপিতেবথলী; বগলী
लोहखड

**ମୁଠିଆ**—ଦେ. ବିଣ—ଭଣ୍ଡାରିର ମୁଠି ସମ୍ବନ୍ଧୀୟ—Relating to the barber's wallet. [ଦ୍ର—ଅନ୍ୟ ଶବ୍ଦ ପୂର୍ବେ ବ୍ୟବହୃତ ଯଥା—କନା ମୁଠିଆ, ଚମ ମୁଠିଆ ।] ବି.—୧। କଟୁରି, ଝାଡ଼ୁଣି ଆଦିର ମୁଠାରେ ବନ୍ଧା ଯିବା ବେତର ବା ଦଉଡ଼ିର ଗଣ୍ଠି—1. A knot of cane or string wrought round the handle (of a bill-hook or broom-strck). ୨ । ମୁଠାଇବା କ୍ରିୟା—2. The act of clutching the palm, of. ପ୍ରାଦେ (ସମ୍ବଲପୁର) ବି.—ଧାନ କାଟି ଖଳାକୁ ବୋହି ଅଣିବା ପାଇଁ କରାଯିବା ଗୋଛା—Bundle of paddy sheaves or paddy plants carried to the threshing floor during harvest.
Muṭhiā
मुठिआ
মুঠা
मुट्ठी
মুঠান
मुठिआना

**ମୁଠିଆଇବା**—ଦେ. କ୍ରି.—ମୁଠାଇବା (ଦେଖ)—Muṭhāibā (see) [ଉ—ସେ ବାଳକ ନିଜ ଅଙ୍ଗୁଳି ମୁଠିଆଇ । କୃଷ୍ଣସିଂହ. ମହାଭାରତ ସଭା ।]
Muṭhiāibā
মুঠান ठिआना

ମୁଠିଆମୁଠି—ଦେ. ବି—ବନ୍ଧୁବସ୍ତୁକୁ ବା ଏକାଧିକ ଥର ମୁଠାଇବା
Muṭhiāmuṭhi କ୍ରିୟା—Graspinga thing repeatedly in the palm.
मुठिआमुठी

ମୁଠିଏ—ଦେ.ବିଣ ଓ ବି.—ଏକ ମୁଷ୍ଟିପରମିତ—A small handful.
Muṭhie (ଦ୍ରୁ—ଏହା ମୁଠାଏ ଠାରୁ ଅଳ୍ପ ଓ କୋମଳତର ବା
एकमुठो मुट्ठीभर ତିରସ୍କୃତ ପ୍ରୟୋଗ ।)

ମୁଠି କଚ୍ଛ—ଦେ.ବି—କାଣିଆ କଚ୍ଛ; ବେଢେଇ କଚ୍ଛ; ମାଇପଙ୍କର ପାଲଟା
Muṭhi kachhā କର ପିନ୍ଧିଥିବା ଲୁଗାର ସାମନା କାନକୁ
काछा କଚ୍ଛ କରି ତାକୁ ନେଇ ଅଣ୍ଟାର ପଛଆଡ଼େ ଖୋସିବାର
कच्छा ପ୍ରକାର—A mode of females wearing the cloth by tucking one corner of the cloth down to the back of the waist

ମୁଠିକା—ଦେ. ବି—ମୁଠିଶାଗ (ଦେଖ)
Muṭhika Muṭhiśāga (see).

ମୁଠିଚାଉଳ—ଦେ. ବି (ସଂ ମୁଷ୍ଟିତଣ୍ଡୁଳ)—ମୁଷ୍ଟି ଭିକ୍ଷା ଦେବା ନିମନ୍ତେ
Muṭhi chāula ରଖାଯିବା ଚାଉଳ; ଭିକ ଚାଉଳ—Rice
মুষ্টিভিক্ষার চাল kept apart for being distributed to
मीखचावल beggars by handfuls.

ମୁଠିବାର କିଆରି—ଦେ. ବି—ଅକ୍ଷିମୁଠି କିଆରି (ଦେଖ)—Akshi-
Muṭhibāra kiāri मुठीक्यारी muṭhi kiāri (see).

ମୁଠି ବୁହାଇବା—ଦେ. କ୍ରି—ଅକ୍ଷି ତୃତୀୟା ଦିନ କିଆରିରେ ଅକ୍ଷିମୁଠି
Muṭhi buhāibā (ପ୍ରଥମେ ଧାନବୀଜ) ବୁଣିବା—To sow the
मुट्ठीलगाना first paddy seeds on the field on the "Akshi trutiyā" day.

ମୁଠି ଭିକ(ଖ)—ଦେ. ବି (ସଂ ମୁଷ୍ଟିଭିକ୍ଷା)—୧ । ଯୋଗୀଭିକାରୀଙ୍କୁ
Muṭhi bhika(kha) ହାତମୁଠାରେ ଦିଆଯିବା ଚାଉଳ—
মুষ্টিভিক্ষা Handfuls of rice given to beggars.
मुट्ठीमीख ୨ । ପ୍ରତି ଗୃହରୁ ମୁଠାଏ ଲେଖାଏଁ ଚାଉଳ ଭିକ୍ଷା କରିବା—2. Begging of alms from door to door for getting handfuls of rice from each.

ମୁଠି ମାଡ଼—ଦେ. ବି—ବିଧା ପ୍ରହାର—Fisticuffs, [ଦ୍ରୁ—ଏ
Muṭhi mārḍa କାହାରେ ପୁଣି କଲେ ମୁଠିମାଡ଼ । କୃଷ୍ଣସିଂହ.
मुष्ट्याघात मुट्ठीमार ମହାଭାରତ. ବନ ।]

ମୁଠିମୁଠି କରି—ଦେ. କ୍ରି. ବିଣ—ଏକ ଏକ ମୁଷ୍ଟି ପରିମାଣରେ—
Muṭhimuṭhi kari Handfull after handful; in
মুঠোমুঠোকরে handfuls. [ଦ୍ରୁ—ପୁଣି କରେ ମାଂସ କରଣ
मुट्ठीमुट्ठीकर ମୁଠି ମୁଠି, ଭୁଞ୍ଜନ୍ତି ଭୂତମାନଙ୍କୁ କରି ପିଠି । କୃଷ୍ଣ ସିଂହ. ମହାଭାରତ. ଉଦ୍‌ଯୋଗ ।]

ମୁଠି ଶାଗ—ଦେ. ବି.—ଏକପ୍ରକାର ବନ୍ୟ କ୍ଷୁଦ୍ର ଶାକ, [ଦ୍ରୁ—ଏହା
Muṭhi śāga ପଡ଼ିଆରେ ମାଡ଼େ ଓ ଏହାକୁ ଗରିବ ଲୋକମାନେ ତୋଳି ଆଣି ଶାଗ କରି ଖାଆନ୍ତି, ଏହା ଈଷତ୍ ତିକ୍ତ]—
A kind of wild pot-herb (of slightly bitter taste.)

ମୁଠୁଣି—ଦେ. ବି.—(ସଂ ମୁଷ୍ଟ୍ୟୂନ)—କହୁଣିଠାରୁ ମୁଷ୍ଟିବଦ୍ଧ କ
Muṭhuṇi ଠେଲର ଭୁଷ୍ଟିତ କନିଷ୍ଠ ଅଙ୍ଗୁଳିର ମଧ୍ୟ ପର୍ଯ୍ୟନ୍ତ ଲ
মুঠানি, মুটম, মুটহাত (ପ୍ରାୟ ୧୫ ଇଞ୍ଚ)—A short cubit
निमुटहाथ length ¾ of a cubit; a length of nearly 15 inches

ମୁଠୁଣିଏ(ଏଁ)—ଦେ. ବିଣ ଓ ବି—ଏକ ମୁଠୁଣି ପରିମିତ—
Muṭhuṇie(eṅ) A short cubit of.
একমুঠানি ऐकनिमुटहातका

ମୁଠୁଣିକିଆ—ଦେ. ବିଣ—ଏକ ମୁଠୁଣି ପରିମିତ—Measuring a
Muṭhuṇikiā একমুঠানি निमुट हात short cubit.

ମୁଡ୍—ପ୍ରାଦେ. (ଗଡ଼ଜାତ) ଶଗଡ଼ ଚକର ମଧ୍ୟ ପିଣ୍ଡ—The nave
Mud or hub of the wheel of a cart.

ମୁଡ଼କି—ପ୍ରାଦେ. (ବଙ୍ଗଭୂମି) ବି—(ଭିନ୍ନ ବ. ମୁଡ଼କି) ଝୁଣ୍ଡୁଡ଼ା—
Muḍki Fried rice with a coating of boiled molasses.

ମୁଡ଼(ଢ଼) ମୁଡ଼(ଢ଼)—ଦେ. ଅ. (ଧ୍ୱନ୍ୟନୁକରଣ)—ମୁଢ଼ି ଆଦି
Murḍ-(rḍu) murḍ-(rḍu) ଚୋବାଇବା ଶବ୍ଦ—The sound
মুড় মুড় मड मड of chewing brittle things (e. g. biscuits.) [ଦ୍ରୁ—ଏ ଶବ୍ଦ ମଡ଼ ମଡ଼ ଠାରୁ ଅଳ୍ପ ।]

ମୁଡ଼ମୁଡ଼ି—ଦେ. ବି.—୧ । ଗୁଳ୍ମବିଶେଷ—1. Helicteres Isora
Murḍ-murḍi ( Haine's Botany of Bihar and
মুর মুরিয়া मुंडि (ମୁଡ଼ମୁଡ଼ିଆ—ଅନ୍ୟରୂପ) Orissa).
୨ । ମୁଣ୍ଡିକା (ଦେଖ)—2. Muṇḍikā (See)

ମୁଡ଼(ଢ଼) ମୁଡ଼ିଆ—ଦେ. ବିଣ—(ଧ୍ୱନ୍ୟନୁକରଣ)—ଯାହା ସାମାନ୍ୟ
Murḍ-(rḍu) murḍiā ଆଘାତରେ ଚୂର୍ଣ୍ଣ ହୋଇଯାଏ—
মচ মচে मड मडिया Brittle; crisp; fragile.

ମୁଡ଼(ଢ଼)ରା—ପ୍ରାଦେ. (ବାଲେଶ୍ୱର) ବି.—ବଡ଼ ଅଳ୍ପତର ବାଣ
Murḍ-(rḍu)rā ବିଶେଷ—A kind of fire work resem-
(ମୁଡ଼ୁଡ଼ା—ଅନ୍ୟରୂପ) bling a cigar. [ଦ୍ରୁ—ଏଥିରେ ନିଆଁ ଲଗାଇ ଛାଡ଼ି ଦେଲେ ଏହା ଡେଇଁ ଡେଇଁ ବହୁଦୂରକୁ ଚାଲି ଯାଏ ।]

ମୁଡ଼ବନ୍ଧା—ପ୍ରାଦେ. (ସମ୍ବଲପୁର)—ବି.—ଛିଣ୍ଡା କନା—
Murḍ bandhā Rag.

ମୁଡ଼ି(ଢ଼ି)—ଦେ. ବି. (ସଂ ଭୃଷ୍ଟ)—ଭୃଷ୍ଟ ତଣ୍ଡୁଳ—
Murḍi(rḍhi) Fried rice; parched rice.
মুড়ী [ଦ୍ରୁ—ଧାନକୁ ପାଣିରେ ଏକ ରାତ୍ରି
मूढी ବତୁରାଇ ରଖି ତହିଁ ଆର ଦିନ ତାକୁ
ମ. ମୁରମୁରା ଧାନକୁ ଅର୍ଦ୍ଧ ସିଦ୍ଧ ହେବା ପର୍ଯ୍ୟନ୍ତ
ତେ.ମୁଡ଼ୀ(ରା) ଡିଆଇଁବାକୁ ହୁଏ; ତା ପରେ ତାକୁ ଶୁଖିଆଁ ଧାନକୁ ଶୁଖାଇ କୁଟି କରି ଚାଉଳ କରି ଯାଏ । ମୁଢ଼ି ଭାଜିବା ପୂର୍ବରୁ ତାକୁ ଚାଉଳକୁ ହାଣ୍ଡିରେ ନିଆଁ ଉପରେ ବସାଇ ସେଥିରେ ସାମାନ୍ୟ ଲୁଣ ପାଣି ଛିଞ୍ଚି ଦିଅଯାଏ । ମୁଢ଼ି ଚଟୁ ଦ୍ୱାରା ତାକୁ ଚାଉଳକୁ ନିଆଁ ଉପରେ ବୁଲାଇବାକୁ ହୁଏ ଓ ସେହି

ଉଦ୍ବୁଣ୍ଡା ଚାଉଳ ଜର୍ଜର ହେଲାରୁ ତାକୁ ବାଲି ଥିବା ହାଣ୍ଡିରେ ଭାଜିଲେ ମୁଢ଼ି ଉଠିବ ନାହିଁ।

ସାଧାରଣ ଚାଉଳକୁ ଭାଜିଲେ ତାକୁ 'ଚାଉଳ ଭଜା' ମୁଢ଼ି ଠାରୁ ଆକାରରେ ଶ୍ରେଷ୍ଠ ଓ ଠାଣୁଆ ହୁଏ । କିନ୍ତୁ ମୁଢ଼ି ଚାଉଳକୁ ଭାଜିଲେ ଯେଉଁ ମୁଢ଼ି ହୁଏ ତାହା ଚାଉଳ ଭଜା ଠାରୁ ଫୁଲୁକା ଓ ହାଲୁକା ହୁଏ; ମୁଢ଼ି ଲଘୁପାଚ୍ୟ ଅଟେ । ମୁଢ଼ି ବଭୁସ ପାଣିକୁ ବୈଦ୍ୟମାନେ ଜ୍ୱରୀ ରୋଗୀକୁ ପାନ କରିବା ବ୍ୟବସ୍ଥା କରନ୍ତି ।]

**ମୁଡ଼ିଆ**—ପ୍ରାଦେ. (ପୁରୀ ଜିଲ୍ଲା)—ବି.—ଶ୍ରେଷ୍ଠ ବୃକ୍ଷ ବିଶେଷ—
Murdia Vitex Pubescens (Haines)

**ମୁଡ଼ିବା**—ପ୍ରାଦେ. (ବାଲେଶ୍ୱର) କ୍ରି—ମୋଡ଼ିବା (ଦେଖ)
Murdiba Mordiba (See)

**ମୁଡ଼ିଶା**—ପ୍ରାଦେ. (ଗଡ଼ଜାତ)—ବି—ଭୂଇଁ କଦମ୍ବ (ଦେଖ)
Murdisa Bhuiñ kadamba (See)

**ମୁଡ଼ି(ଢ଼ି)ଉଖୁଡ଼ା**—ଦେ. ବି—(ସଙ୍କରର)—ମୁଢ଼ିସଙ୍ଗେ ମିଶ୍ରିତ ଉଖୁଡ଼ା-
Murdi(rdhi) ukhurda Parched rice mixed with
ମୁଢ଼ି ମୁଡ଼କୀ **मुढिलाइ** sweetened fried paddy.

**ମୁଢ଼ି ଚାଉଳ**—ଦେ. ବି.—ମୁଢ଼ି ପାଇଁ ଲୁଣ ପାଣି ନିଆ ହୋଇ
Murdhi chaula ପ୍ରସ୍ତୁତ ହୋଇଥିବା ଚାଉଳ (ମୁଢ଼ି ତଳେ
ମୁଡ଼ିଚାଉଳ ନୋଟ୍ ଦେଖ)—Rice specially prepared for being fried into Murdhi.

**ମୁଡ଼(ଢ଼ି) ଭଜା**—ଦେ. ବି—ଚାଉଳକୁ ମୁଢ଼ି ରୂପରେ ପରିଣତ କରିବା
Murdi(rdhi) bhaja ପାଇଁ ଚାଉଳକୁ ଭାଜିବା କ୍ରିୟା—
ମୁଡ଼ି ଭାଜା **मुढी भुनना** The operation of frying or parching rice.

**ମୁଡ଼ି(ଢ଼ି)ଭାଜିବା**—ଦେ. କ୍ରି—ମୁଢ଼ି କରିବା ପାଇଁ ଚାଉଳକୁ ଭାଜିବା—
Murdirdh bhajiba To fry rice into Murdhi.
ମୁଡ଼ିଭାଜା **मुढी भुनना** [ ଦ୍ର—ଏହା ଭାଷାରେ ବ୍ୟବହାରର ଗୋଟିଏ ବିଶେଷତ୍ୱ; କାରଣ, ଲୋକେ ମୁଢ଼ିକୁ ଭାଜନ୍ତି ନାହିଁ; ଚାଉଳକୁ ଭାଜି ମୁଢ଼ି କରନ୍ତି । ]

**ମୁଡ଼ୁକ(ଖ)**—ଦେ. ବି—ପୂର୍ଣ୍ଣତା ପ୍ରାପ୍ତ ହୋଇ ନ ଥିବା ପଇଡ଼;
Murduka(kha) ଯେଉଁ ପଇଡ଼ ଭିତରେ ନାଲ ହୋଇ ନ ଥାଏ—A green cocoanut in which the soft kernel has not yet grown and there is only water in it. [ଦ୍ର—ପ୍ରଥମେ 'କଷି ନଡ଼ିଆ ବା ଗୋଟମା', ତାପରେ 'ମୁଡ଼ୁକ', ତା ପରେ 'ପଇଡ଼', ତା ପରେ 'ପାଣିଚ' ବା 'ନଡ଼ିଆ', ତା ପରେ 'ଶୁଖୁଡ଼' ବା 'ଝୁରୁଡ଼ି' ହୁଏ । ନଡ଼ିଆ ଗୋଟମା ବଢ଼ି ଯାଇ ତା ମଧ୍ୟରେ ନାଲ ଲାଗି ନ ଥିବା ଓ ଭିତରର ପାଣି ସୁସ୍ୱାଦୁ ହୋଇ ନ ଥିବା ଅବସ୍ଥାରେ ଅର୍ଥାତ୍ ପଇଡ଼ ହେବା ପୂର୍ବରୁ ତାହାକୁ ମୁଡ଼ୁକ ବୋଲି ଯାଏ ।]

**ମୁଡ଼ୁକି ହସ**—ଦେ. ବି—ଈଷଦ୍ହାସ୍ୟ; ମୁରୁକ ହସ—
Murduki hasa ମୁଚକିହାସି Smile; simper.
**मुसकना**

**ମୁଡ଼ୁକି ହସା**—ଦେ. ବି—ମୁଡ଼ୁକି ହସ ( ଦେଖ )
Murduki hasa Murduki hasa ( See )
(ମୁଡ଼ୁକି ହସୁର—ଅନ୍ୟ ବିଶେ ରୂପ) ଦେ. ବିଶେ. ପୁଂ—ଯେଉଁ ବ୍ୟକ୍ତି
ମୁଡ଼ୁକି ହସୀ } ସ୍ତ୍ରୀ ମୁଡ଼ୁକି ହସୁରୀ } ସେ ହସ ହସେ—Habituated to smiling; simpering.

**ମୁଡ଼ୁକି(କେଇ) ହସିବା**—ଦେ. କ୍ରି—ଈଷଦ୍ହାସ୍ୟ କରିବ—To smile; to simper.
Murduki(kei) hasiba
[ମୁଡ଼ୁକି(କେଇ) ମୁଡ଼ୁକି(କେଇ) ହସିବା—ଅନ୍ୟରୂପ]

**ମୁଡ଼ୁଗା**—ପ୍ରାଦେ ( ସମ୍ବଲପୁର ) ବି ( ସଂ. ମଧୁଗୁଞ୍ଜନ; ଭୁଲ. ହି.
Murduga ମୁନଗା )—ମୁଗୁନା ଗଛ—The horse radish or Moringa tree; ( Moringa Pterygosperma.

**ମୁଢ଼ା କରିବା**—ଦେ ( ମାନଲାପାଙ୍କି ) କ୍ରି ( ସଂ. ମୂଢ଼ )—କୌଣସି
Murdha kariba ଲୋକ ପ୍ରତି ତାନ୍ତ୍ରିକ ଅଭିଚାର ପ୍ରୟୋଗ ପୂର୍ବକ ତାହାକୁ ଚେତନାଶୂନ୍ୟ କରିବା—To bring about the permanent stupefication of one's senses by meams of charms.

**ମୁଣ(ଣୁ, ଣେ, ଣୋ)ଇ(ଇଁ, ହି, ହିଁ)**—ପ୍ରାଦେ ( ଗଡ଼ଜାତ ) ବି—
Muna(nu, ne, no)i(iñ, hi, hiñ) ମଣୋହି; ରାଜାମାନଙ୍କର
ମନୁଈ ଭୋଜନ କ୍ରିୟା—The taking of meal of a
**भोजन** Raja. [ ଉ—କାଠିଲିଟି, ଗାଛ, ମୁଣୋଇ, ପଦଡ଼, ଯେନ କି ହେ ଭୁମେ ନବ ମଦେଧ ବଡ଼ । ରାଧାନାଥ ଦରବାର । ]

**ମୁଣଇ ବଢ଼ିବା**—ପ୍ରାଦେ ( ଗଡ଼ଜାତ ) କ୍ରି—ରାଜାଙ୍କ ଭୋଜନ କ୍ରିୟାର
Munai bardhiba ସମାପ୍ତି—The end of the act of a Raja's taking his meal.

**ମୁଣା**—ଦେ. ବି ( ସଂ. ମୋଣ=ସାପ ରଖିବା ପେଡ଼ା )—୧ । ବଡ଼
Muna ଥଳି—1. Big bag. ୨ । ମୁଣି—2. Bag;
ଥଳିଆ; ମୁଣି pouch ପ୍ରାଦେ ( ବାଲେଶ୍ୱର )—ଗାଈ
**थैली(जा)** ରଖୁଆଳ—Cowhend.

**ମୁଣାଳ**—ଗ୍ରା. ବି ( ସଂ. ମୃଣାଳ )—ପଦ୍ମନାଡ଼—
Munala The stem of the lotus.

**ମୁଣି**—ଦେ. ବି ( ସଂ. ମୋଣ=ସାପ ରଖିବା ପେଡ଼ି )—୧ । ଛୋଟ ଥଳି
Muni —1. Small bag. ୨ । ଝୁଲି—2. Pouch.
ମୁଣି ୩ । ଲଫାପା—3. Envelope. ପ୍ରାଦେ (ବାଲେଶ୍ୱର)
**थैली** ବି—ପାନବଟୁଆ—Betel-pouch.

**ମୁଣିବା**—ପ୍ରାଦେ (ବାଲେଶ୍ୱର) କ୍ରି—ଗାଈଆଦି ଜଗିବା—
Muniba To tend ( cattle ).

**ମୁଣୁଙ୍ଗା**—ପ୍ରାଦେ (ଗଡ଼ଜାତ ଓ ସମ୍ବଲପୁର)—ମୁଡ଼ୁଗା ( ଦେଖ )
Munungа Murduga ( See )

**ମୁଣୁ(ଣୁଁ, ଣୋ)ହୁଁ**—ଦେ. କ୍ରି, ବିଣ ( ସଂ. ମୂଳତଃ )—ମୂଳରୁ; ଆଦୌ;
Munu(nuñ, no)huñ ଜମାରୁ—At all; from the
[ମୁଣ୍ଡୁ(ଣ୍ଡୁଁ)—ଅନ୍ୟରୂପ] beginning. [ ଉ—ସେ ପ୍ରଣୟ
आदौ ଧନ ହେଲଣି ସ୍ୱପନ, ମୁଣୁହୁଁ ଜଗତେ ନାହିଁ । ରାଧାନାଥ]
**एकदम** [ ଦ୍ର—ଏହା ନଞ୍ଚର୍ଥକ ପ୍ରୟୋଗ ସଙ୍ଗେ ପ୍ରାୟଶଃ ବ୍ୟବହୃତ ହୁଏ; ଯଥା—ମୁଁ ମୁଣୁହୁଁ ସେ କଥା ଜାଣେ ନାହିଁ । ]

ମୁଣ୍ଡ୍ (ଧାତୁ)—ସ—୧ । ଛେଦନ କରିବା—1. To cut.
Muṇḍ (root) ୨ । ଲଣ୍ଡା କରିବା—2. To shape.

ମୁଣ୍ଡ—ପ୍ରାଦେ ( ସମ୍ବଲପୁର ) ବି—ମୁଣ୍ଡ—
Muṇḍ Head.

ମୁଣ୍ଡକଟୀ—ପ୍ରାଦେ ( ସମ୍ବଲପୁର; ଭୂଲ. ହି. ମୁଁଡ଼କଟ୍ଟା )—ଯେଉଁ
Muṇḍ-kaṭi ବ୍ୟକ୍ତି ମନୁଷ୍ୟର ମୁଣ୍ଡକୁ କାଟି ମାରି ପକାଏ
—A person who murders a man by beheading him; a murderer.

ମୁଣ୍ଡ—ସ. ବି ( ମୁଣ୍ଡ୍ ଧାତୁ=ଛେଦନ କରିବା+କର୍ମ. ଅ )—୧ ।
Muṇḍa ମସ୍ତକ; ମଥା—1. Head. ୨ । ସ୍ଥାଣୁବୃକ୍ଷ—
2. A pollard; the trunk of a lopped off tree. ୩ । ( +କର୍ତ୍ତୃ. ଅ ) ନାପିତ; ଭଣ୍ଡାରୀ—
3. A barber. ୪ । ଦୈତ୍ୟ ବିଶେଷ—4. Name of a demon. ୫ । ରାହୁ—5. The Dragon's head; the ascending node. ୬ । ମୁଣ୍ଡାୟସ; ଲୌହ; ଲୁହା—6. Iron. ଦେ. ବି—୧ । ଜୋଟିଏ
ମୁଣ୍ଡ, ମାଥା ଜୀବ—1. One head of cattle or animal.
मुँड ୨ । ବ୍ୟକ୍ତି—2. An individual; a person. [ ଯଥା—'ସେ ଗ୍ରାମକୁ ବସନ୍ତ ଠାକୁରାଣୀ ୧୦ ମୁଣ୍ଡ ନେଲେଣି ।' କୌଣସି ମନୁଷ୍ୟ ମାରଣ୍ଡ୍ରକ ରୋଗଗ୍ରସ୍ତ ହେଲେ ଠାକୁରାଣୀଙ୍କୁ କୋଦା ମାନସିକ କରି ବୋଲାଯାଇ ଥାଏ—ମା । ଏ ମୁଣ୍ଡ (ଅର୍ଥାତ୍ ଏ ବ୍ୟକ୍ତିକୁ ) ରଖିଲେ ମୁଁ ତତେ ଛକିମୁଣ୍ଡ(ଅର୍ଥାତ୍ ୩ ଗୋଟି ଜୀବ) ବଳି ଦେବି । ୩ । ପଦାର୍ଥର ଅଗ୍ରଭାଗ—3. The top of a thing.
ମାଥା ୪ । ଲମ୍ବ ବସ୍ତୁର ଶେଷ ଭାଗ; ଶେଷ ସୀମା; ପ୍ରାନ୍ତ—
छोर 4. Extremity or end of a long thing. ( ଯଥା—ଗାଆଁମୁଣ୍ଡ, ଡଙ୍ଗାମୁଣ୍ଡ, ସାଇମୁଣ୍ଡ, ଗଳିମୁଣ୍ଡ । ) ୫ । ସମୟର ସୀମା—5. Limit of time. ( ଯଥା —ବରଷ ମୁଣ୍ଡ । ) ୬ । ବହୁ ବ୍ୟକ୍ତିଙ୍କ ମଧ୍ୟରେ କର୍ତ୍ତା; ମୁରବି; ଅଭିଭାବକ—6. The head or master of a group of men; protector; patron; headman. (ଯଥା—ସେମାନଙ୍କର କେହି ମୁଣ୍ଡ ନ ଥିବାରୁ ସେମାନେ ଉଚ୍ଛନ୍ନ ହୋଇଗଲେ । ) ୭। ମସ୍ତିଷ୍କ; ମଗଜ; ବୁଦ୍ଧି—7. Brain; intelligence. ( ଯଥା—ଏ କଥା ମୋ ମୁଣ୍ଡରେ ପଶୁ ନାହିଁ । ) ୮ । କଳ୍ପନା ଶକ୍ତି—8. Imagination. ୯ । ମୁଣ୍ଡର ବାଳ —9. The hair of the head. ( ଯଥା—ମୁଣ୍ଡ ବାନ୍ଧିବା । )

ପ୍ରାଦେ. (ଯାଜପୁର)—(ଏଥିରେ ସମ୍ରାଟଙ୍କ ମୁଣ୍ଡର ଛବି ଥିବାରୁ)—ଡାକ ଟିକଟ—Postage stamp.

ମୁଣ୍ଡ ଉକୁଣି—ଦେ. ବି—ମୁଣ୍ଡରେ ଉପୁଜିବା ଉକୁଣି—Head-lice;
Muṇḍa ukuṇi Pediculus Capitus.
ମାথার উকুন शिरकाढील

ମୁଣ୍ଡ ଉଠା(ଟେ)ଇବା—ଦେ. କ୍ରି.—ଆପଣାର ମସ୍ତକ ଉତ୍ତୋଳନ
Muṇḍa uṭha(ṭhe)iba କରିବା—To raise up one's
(ମୁଣ୍ଡଟେକିବା—ଅନ୍ୟରୂପ) head. ୧ । (ଲକ୍ଷଣାର୍ଥ) ଆପଣାର
মাথা উঁচু করা, মাথাতোলা ସାଂସାରିକ ବା ସାମାଜିକ ଅବସ୍ଥାର
शिर उठाना ଉନ୍ନତି କରିବା—1. To improve one's worldly or financial position. ୨ । ଆପଣାର ଅବସ୍ଥା ବା କାର୍ଯ୍ୟ ପାଇଁ ଲଜ୍ଜିତ ନ ହେବା, ଅର୍ଥାତ୍ ସମାଜରେ ମୁହଁ ଦେଖାଇ ପାରିବା—2. Not to droop down one's head; to have no reason to be ashamed for anything concerning one's self.

ମୁଣ୍ଡ ଉପର—ଦେ. ବି.—୧ । ଆପଣାଠାରୁ ଉଚ୍ଚତର ସ୍ଥାନ—1 A
Muṇḍa upara higher place or position. ୨ ।
মাথার উপর ଆପଣାର ମସ୍ତକର ଠିକ୍ ସିଧାରେ ଆକାଶର ଅଂଶ—
शिरउपर 2. Zenith.

ମୁଣ୍ଡ ଉପରେ ଗୋଡ଼ ଦେଇ ଜନ୍ମ ହେବା—ଦେ. କ୍ରି—ଏକ ମାତାଙ୍କ
Muṇḍa upare goṛa dei janma heba ଗର୍ଭରୁ ଅନ୍ୟର
মাথার উপর পা দিএ জন্ম হওয়া ଅଗ୍ରଜରୂପେ ଭୂମିଷ୍ଠ ହେବା—
शिरपर पैर देकर पैदा होना To be born, as an elder to one who is born later, from the same mother.

ମୁଣ୍ଡକ—ସ. ବି (ମୁଣ୍ଡ୍ ଧାତୁ=ଲଣ୍ଡା କରିବା+କର୍ତ୍ତୃ ଅକ)—୧ ।
Muṇḍaka ଭଣ୍ଡାରି; କ୍ଷୌରକାର—1. Barber. ୨ ।
(ମୁଣ୍ଡ+ସ୍ୱାର୍ଥେ କ) ମୁଣ୍ଡ; ମସ୍ତକ—2. Head.
୩ । ଉପନିଷଦ ବିଶେଷ—3. A branch of the Upanishads.

ମୁଣ୍ଡ କଣ୍ଟା—ଦେ. ବି (ବଣିଆ ଶବ୍ଦ)—ଜୁଡ଼ାରେ ଖୋସାଯିବା ସୁନାର
Muṇḍa kaṇṭa ବା ରୁପା ଆଦିର କଣ୍ଟା—Hair pin.
মাথার কাঁটা शिरका काँटा

ମୁଣ୍ଡ କର—ଦେ. ବି—(ସ. ମୁଣ୍ଡ+କର) —ପ୍ରତ୍ୟେକ ବ୍ୟକ୍ତି ଉପରେ
Muṇḍa kara ବସାଯିବା ଶୁଳ୍କକର—A tax of assessed
মাথাপ্রতি কর मुँडकर per head.

(ଅମୁକ ଦିଗକୁ) ମୁଣ୍ଡ କରିବା—ଦେ. କ୍ରି—ଶୋଇବାବେଳେ କୌଣସି
Muṇḍa kariba ଦିଗକୁ ମୁଣ୍ଡ ବୁଲାଇବା—To turn
মাথাকরা one's head to a point of the compass
शि.करना while lying down to sleep.

ମୁଣ୍ଡକାଟ—ଦେ. ବି—(ସ. ମୁଣ୍ଡକର୍ତ୍ତନ)—୧ । ମସ୍ତକ ଛେଦନ—
Muṇḍa kaṭa 1. Cutting one's head. ୨ । ମସ୍ତକ
মাথাকাটা ଛେଦନ ରୂପ ପ୍ରାଣଦଣ୍ଡ—2. Capital punish-
शिरकाट ment; beheading. [ଭି—ରାଜାର ବୈରୀକୁ ବି ମୁଣ୍ଡକାଟ ଶାସ୍ତି ହିଁଉ] ପ୍ରାଦେ.(ଗଡ଼ଜାତ) ବି—୧। ଫସଲ ଅମଦାନି ହେଲେ ନିର୍ଦ୍ଦିଷ୍ଟ ହାରରେ ଧାନ, ମୁଗ, ଗୁଡ଼, କୋଳଥ, ବିରି ଆଦି ନେବା ପାଇଁ କୃଷକଙ୍କୁ ମହାଜନର ଫସଲ ଆମଦାନି ପୂର୍ବରୁ ଋଣ ଦେବା ପ୍ରଥା—The

system of advancing money to a cultivator before harvest on condition that he will repay the debt in kind at a stipulated rate after harvesting. ୨ । ଜମିର ଦାଖଲ ଖାରଜ—2. Mutation of the name of a new tenant in the place of the old one.

**ମୁଣ୍ଡକାଟ ଫିସ୍**—ପ୍ରାଦେ (ଗଡ଼ଜାତ) ବି.—ଜମିର ଦାଖଲ ଖାରଜ
Muṇḍakāṭa phis ନେଇଁମ—Mutation fees paid by a new tenant for registration of his name in the place of the old tenant.

**ମୁଣ୍ଡ କାଟି**—ପ୍ରାଦେ (ସାଜପୁର) ବି—ସଜନା ଗଛ ବିଶେଷ—A kind
Muṇḍa kāṭi of Moringa tree.

**ମୁଣ୍ଡ କାଟିଆ**—ପ୍ରାଦେ. (ଗଡ଼ଜାତ) ବି.—ଜମି ବନ୍ଧକ ଦେବାର
Muṇḍa kāṭiā ସୁଦ୍ଧ ବିଶେଷ—A kind of usufructuary mortgage, by which it is agreed that the debtor would get back the land fully redeemed after a fixed time. [ଦ୍ର—କେତେକ ନିର୍ଦ୍ଦିଷ୍ଟ ବର୍ଷ ନିମନ୍ତେ ଖାତକର ଜମି ମହାଜନଙ୍କୁ କଟକନ ଦଖଲବନ୍ଧକ ଦିଆଯାଏ । ମୂଳ ଓ ସୁଧ ଅସୁଲ ହୋଇ ଯାଉଲେ, ଋଣଦାତା ଜମିକୁ ଛାଡ଼ି ଦିଅନ୍ତି ।]

**ମୁଣ୍ଡକାଟି ଜାଗିର୍**—ପ୍ରାଦେ. (ଗଡ଼ଜାତ) ବି—ପୂର୍ବେ ରାଜାଙ୍କ ଆଦେଶ
Muṇḍakāṭi jāgiri ଅନୁସାରେ ଅପରାଧୀର ଯେଉଁମାନେ ମୁଣ୍ଡ କାଟୁଥିଲେ ସେମାନଙ୍କୁ ରାଜାଙ୍କ ଦତ୍ତ ଜାଗିର—The jaigir granted by a king to an executioner in ancient times.

**ମୁଣ୍ଡ କାଟିବା**—ଦେ. କ୍ରି—୧ । ଦେହରୁ ମସ୍ତକକୁ ଛେଦନ କରିବା—
Muṇḍa kāṭibā 1. To sever one's head from the body; to decapitate a person
ମাথাকাটা in execution of a capital sentence
**शिरकाटना, मुंडकाटना** ୨ । ଅତ୍ୟନ୍ତ ଲଜ୍ଜିତ କରିବା—2. To grossly insult a person.

**ମୁଣ୍ଡ କାନ ଆଉଁସିବା**—ଦେ. କ୍ରି—୧ । ଅନନ୍ୟୋପାୟ ହେବା; ନାଚାର
Muṇḍa kana āũsibā ହେବା—To be helpless; to have no other alternative. ୨ ।
মাথাচুলকান ଅପଣା ଭାଗ୍ୟକୁ ଆଦରିବା—2. To be re-
**शिर खुजलाना** conciled to one's lot. [ଦ୍ର—ମୁଣ୍ଡକାନ ଆଉଁସି ଯେ ଯାହା ସହନ୍ତି, ବାହାରଗଲେ କଥା ନ କହନ୍ତି କାହାକୁ । କୃଷ୍ଣସିଂହ. ମହାଭାରତ. ବନ ।]

**ମୁଣ୍ଡ କିଣିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ କ୍ରୀତଦାସରୂପେ
Muṇḍa kiṇibā ପାଇବା—1. To get a person as
মাথা কেনা one's slave.
**शिर मोलना** ୨ । କୌଣସି ବ୍ୟକ୍ତିର ଶିରଚ୍ଛେଦନ କରିବା ପାଇଁ କ୍ଷମତାପନ୍ନ ହେବା—2. To have the power of life and death over a person.

**ମୁଣ୍ଡ କ(କେ)ନ୍ଦ୍ରା**—ପ୍ରାଦେ. ( ବସ୍ତର ) ବି—ମୁଣ୍ଡଘୂର୍ଣ୍ଣ—Whirl-
Muṇḍa ki(ke)nd-rā ing of one's head; giddiness of the head.

**ମୁଣ୍ଡ କୁଣ୍ଡା(ଣ୍ଡେ)ଇବା**—ଦେ. କ୍ରି—ମୁଣ୍ଡର କେଶକୁ ପାନିଆ ଦ୍ୱାରା
Muṇḍa kuṇḍā(ṇḍe)ibā କୁଣ୍ଡାଇ ସୁବିନ୍ୟସ୍ତ କରିବା—
মাথা আঁচড়ান **कंघी करना** To comb one's hair.

**ମୁଣ୍ଡକୁ ପାଣି ଛଡ଼ା(ଡ଼େ)ଇବା**—ଦେ. କ୍ରି—କୌଣସି କାର୍ଯ୍ୟ ସାଧନ
Muṇḍaku pāṇi chhaṛā(ṛe)ibā ପାଇଁ ଅପଣାର
মাথা উৎসর্গ করা, মাথায় জল ছড়িয়ে দেওয়া ଜୀବନକୁ ଉତ୍ସର୍ଗ
**आत्मोत्सर्ग करना** କରିବା—To sacrifice one's life for a certain aim in view.

**ମୁଣ୍ଡକୁ ହାତ ପାଇବା**—ଦେ. ବି—ବାଲ୍ୟାବସ୍ଥା ଅତିକ୍ରମ କରି ଅପଣାର
Muṇḍaku hāta pāibā ବିଷୟ ଅପେ ବୁଝିବା ପାଇଁ ସମର୍ଥ
বড় হওয়া ହେବା; ସାବାଳଗ ହେବା—Growing up, so as
**बालिग होना** to be able to take care of one's self; becoming major.
(ଯଥା—ତାଙ୍କ ପୁଅମାନେ ଏବେଠାରୁ ଖଣ୍ଡିଏ ଲେଖାଏଁ ପାଇବାରୁ ସେମାନଙ୍କର ମୁଣ୍ଡକୁ ହାତ ପାଇଲାଣି ।)

**ମୁଣ୍ଡକେ**—ଦେ. ଅ—ଜଣକେ; ଜଣ ପିଛା—
Muṇḍake Per one man; per head.
মাথা পিছু **मुँड पीछे**

**ମୁଣ୍ଡ କୋଡ଼ିବା**—ଦେ. କ୍ରି—୧ । ଦୁଃଖ, ଅନୁତାପ, ଶୋକ ଆଦି
Muṇḍa koṛibā ଯୋଗୁଁ ଭୂମିରେ ମୁଣ୍ଡକୁ ଆଘାତ କରିବା;
মাথা কু(কো)টা(ড়া), মাথা খোঁ(খুঁ)ড়া ମୁଣ୍ଡ ବାଡ଼େଇବା—
**शिर पीटना** 1. To strike one's own head on the ground in agony or grief. (ଉ—ଦୁଃଖେ ମୁଣ୍ଡ କୋଡ଼ି ଉଠନ୍ତେ ଅଶ୍ରୁଜଳେ ସିକ୍ତ କଲି ମୁହିଁ ମହୀ । ରାଧାନାଥ. ପାର୍ବତୀ ।) ୨ । ମୁଣ୍ଡକୁ ଭୂମିରେ ଲଗାଇ ନମସ୍କାର କରିବା; ମୁଣ୍ଡିଆ ମାରିବା—2. To touch the ground with one's head in making obeisance.

**ମୁଣ୍ଡ ଖରଚ କରିବା**—ଦେ. କ୍ରି—ବୁଦ୍ଧି ଖେଳାଇବା; ମସ୍ତିଷ୍କ ଚାଳନ
Muṇḍa kharacha karibā କରିବା—To apply
মাথা খরচ করা ( one's ) brain or intellect
**शिर पचाना**

**ମୁଣ୍ଡ ଖରାପ ହେବା**—ଦେ. ବି—ଉନ୍ମାଦଗ୍ରସ୍ତ ଅବସ୍ଥା; ମସ୍ତିଷ୍କ ବିକୃତ
Muṇḍa kharāpa hebā ହେବା ଅବସ୍ଥା—Derange-
(ମୁଣ୍ଡ ବିଗିଡ଼ିବା—ଅନ୍ୟରୂପ) ment of the brain.
মাথা খারাপ হওয়া, মাথা বিগড়া **मगज खराब होना**

**ମୁଣ୍ଡ ଖାଇବା**—ଦେ. କ୍ରି. (ଲକ୍ଷଣାର୍ଥ)—୧ । କୌଣସି ବ୍ୟକ୍ତିର ସର୍ବ-
Muṇḍa khāibā ନାଶର କାରଣ ହେବା—1. To be the
মাথা খাওয়া cause of a person's ruin.
**मुंडखाना** (ଉ—ନାହା ବୁଦ୍ଧି ଗଲେ ନାହୁରର ମୁଣ୍ଡ ଖାଏ—ଚଳ ।) ୨ । (ସ୍ନେହ ପକାଇବାରେ ବ୍ୟବହୃତ ଯଥା—'ତତେ ମୋ ରାଣ ଲୁ ! ମୋ ମୁଣ୍ଡ ଖାଉଟି ! ଏକଥାଟି କର୍'

ଅର୍ଥାତ୍, ଯେବେ ଏ କାମ ନ କରିବୁ ବା ମୋ କଥା ନ ରଖିବୁ ତେବେ ମୋର ମୃତ୍ୟୁ ଘଟୁ ଓ ମୋ ମୁଣ୍ଡକୁ ଖାଦ୍ୟ ରୂପେ ତୁ ଭୋଜନ କରୁ )—ଜଣକର ମୃତ୍ୟୁ ପରେ ତା ମୁଣ୍ଡକୁ ଭୋଜନ କରିବା—2. (a term used in swearing while making a request to a person) May you eat my head if you do not accede to my request). ୩ । (କୌଣସି ବ୍ୟକ୍ତିର) ମୁଣ୍ଡ ପର୍ଯ୍ୟନ୍ତ ଉଚ୍ଚ ହେବା—3, To be of the height of a person's head. (ଯଥା—ଏ ଗଛ ଅମ୍ଭ ଗଛଟି ଜଣେ ୧୦ ବରଷିଆ ପିଲାର ମୁଣ୍ଡ ଖାଇବ ।)

**ମୁଣ୍ଡ ଖୁଜାଇବା**—ପ୍ରାଦେ. (ସମ୍ବଲପୁର) କ୍ରି—ଅସମ୍ମତି ପ୍ରକାଶ କରିବା; Munda khujāibā ନାହିଁ କରିବା—To nod disapproval.

**ମୁଣ୍ଡ ଖେଳା(ଳେ)ଇବା**—ଦେ. କ୍ରି—୧ । କୌଣସି ସମସ୍ୟା ସାଧନ କରିବା Munda kheḻā(ḻe)ibā ପାଇଁ ମସ୍ତିଷ୍କ ବା ବୁଦ୍ଧି ଚାଳନ କରିବା [ମୁଣ୍ଡ ଖଟା(ଟେ)ଇବା—ଅନ୍ୟରୂପ) —1. To exercise মাথা খেলান one's brain to solve a matter. **मुंड घुमाना** ୨ । ଉପାୟ ଉଦ୍ଭାବନ ପାଇଁ ଚିନ୍ତା କରିବା—2. To think out a way out of a difficulty.

**ମୁଣ୍ଡଗଡ଼ା(ଡ଼େ)ଇବା**—ଦେ. କ୍ରି—୧ । ଆପଣାର ମସ୍ତକକୁ ଭୂମିରେ Munda gaṛā(ṛe)ibā ଲୁଣ୍ଠିତ କରିବା—1. To roll মথাগড়ান **मुँड घुमाना** one's head on the ground. [ଦ୍ର—କେଳାମାନେ ଭିକ୍ଷା କରିବାବେଳେ ଦାତାମାନଙ୍କ ମନରେ ଦୟାର ଉଦ୍ରେକ କରାଇବା ପାଇଁ ଭୂଇଁରେ ମୁଣ୍ଡକୁ ବିଲୁଣ୍ଠିତ କରନ୍ତି । ଏଥିପାଇଁ ଏ ବାକ୍ୟ ଲକ୍ଷଣାର୍ଥରେ ବ୍ୟବହୃତ ହୁଏ ।] ୨ । (ଲକ୍ଷଣାର୍ଥ) ଆପଣାର ନିର୍ଦ୍ଧନତା ପ୍ରକାଶ କରିବା ଓ ଅର୍ଥ ବ୍ୟୟ କରିବାକୁ ଅକ୍ଷମ ଥିବା ପ୍ରକାଶ କରିବା—2, (figurative) To express before others that one is very poor and so is unable to pay any money. (ଯଥା—'ଅମେ ଜୁବଲି ଚାନ୍ଦା ମାଗିବାକୁ ଆସିଛୁଁ, ଆପଣ ମୁଣ୍ଡ ଗଡ଼ାଇଲେ ଅମେ ଛାଡ଼ିବୁଁ ନାହିଁ' ।) ୩ । ମୁଣ୍ଡରେ ଥିବା ଲମ୍ବ ବାଳରେ ତେଲ ନ ଲଗାଇ ତାକୁ ଲୁଖୁରା ରଖିବା—3. To keep one's hair of the head unoiled for some time.

**ମୁଣ୍ଡ ଗଣ୍ଡି**—ଦେ. ବି (ସହଚର)—୧ । ମସ୍ତକ ଓ ଶରୀରର ଅନ୍ୟ ଅଂଶ— Munda gandi 1, Head and trunk of the body. মাথামুণ্ডু ୨ । (ବିରକ୍ତିସୂଚକ) ସାମାନ୍ୟ ମାତ୍ର ବିଷୟ ବା ବସ୍ତୁ— **माथामुण्ड** 2, (a term of displeasure) A little matter or thing. ( ଯଥା—ତୁ ଏ କଥାର ମୁଣ୍ଡ ଗଣ୍ଡି ବୁଝିଛୁ ) ।

**ମୁଣ୍ଡ ଗରମ ହେବା**—ଦେ. ବି—୧ । ମସ୍ତିଷ୍କର ବିକୃତି ଘଟିବା—1. Munda garama hebā Derangement of the মাথা গরমহওয়া brain. ୨ । କ୍ରୋଧରେ ଉନ୍ମତ୍ତ ହେବା—2. **मुँड गरम होना** Being maddened with rage.

**ମୁଣ୍ଡ ଗଳା(ଳେ)ଇବା**—ଦେ. କ୍ରି—୧ । ଛିଦ୍ରରେ ଆପଣାର ମୁଣ୍ଡକୁ Munda gaḻa(ḻe)ibā ପୂରାଇବା—1. To thrust one's মথা চালান head into a hole. ୨ । (ଲକ୍ଷଣାର୍ଥ)— **मुँड गड़ाना** କୌଣସି ବିଷୟ ବୁଝିବା ପାଇଁ ମସ୍ତିଷ୍କ ଚାଳନା କରିବା- (ମୁଣ୍ଡ ଗଳିବା—ବିଶେଷ୍ୟରୂପ) 2. (figurative) To exercise one's brain to understand a matter.

**ମୁଣ୍ଡ ଗାଣ୍ଡି**—ଦେ, ବି. (ବିପରୀତାର୍ଥ ସହଚର)—୧ । କୌଣସି ପଦାର୍ଥର Munda gāndi ଅଗ ମୁଣ୍ଡ ଓ ଶେଷ ମୁଣ୍ଡ; ଆଦ ଓ ଅନ୍ତ— মাথামুণ্ডু 1. The front and hind end of a thing, **मुँड़गाँड़** ୨। କୌଣସି ବିଷୟର ଧାରାବାହିକ ବା ବିସ୍ତୃତ ବର୍ଣ୍ଣନା ବା ଅର୍ଥ- 2. A comprehensive description or meaning or idea of a matter. (ଯଥା- ମୁଁ ତା କଥାର ମୁଣ୍ଡଗାଣ୍ଡି କିଛି ପାଇଲି ନାହିଁ ।)

**ମୁଣ୍ଡ ଗୁଞ୍ଜିବା**—ଦେ. କ୍ରି—(ଲକ୍ଷଣାର୍ଥ) ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ଓ ନିରାଶ୍ରୟ Munda gunjibā ହୋଇ କୌଣସି ସ୍ଥାନରେ ବା କୌଣସି মাথাগোঁ(গুঁ)জা ବ୍ୟକ୍ତିଙ୍କ ନିକଟରେ ଅତି କଷ୍ଟରେ ଆଶ୍ରୟ ଗ୍ରହଣ **पगारखना** କରିବା—(figurative) To shelter one's head in a place or in any house or under a person.

**ମୁଣ୍ଡ ଘି(ଘେ)ନି ପଶିବା**—ଦେ. କ୍ରି—୧ । ଆଗେ ଆପଣାର ମୁଣ୍ଡକୁ Munda ghi(ghe)ni paśibā ପ୍ରବିଷ୍ଟ କରାଇ କୌଣସି মাথাঢুকান ସ୍ଥାନକୁ ପ୍ରବେଶ କରିବା—1. To enter a place **मुँडसे पैठना** by pushing on one's head first. ୨ । କୌଣସି ବ୍ୟକ୍ତିଙ୍କ ଶରଣାପନ୍ନ ହେବା—2. To take refuge or shelter under a person. (ଯଥା—ଆପଣ ମୋତେ ଗୋଡ଼ ଦିଅ ପେଲିଦେଲେ ମୁଁ ମୁଣ୍ଡଦିଅ ପଶିବି ।)

**ମୁଣ୍ଡଘୂରା**—ଦେ. ବି(ସଂ ମୁଣ୍ଡ+ଘୂର୍ଣ୍ଣନ)-୧। ଶିରୋଘୂର୍ଣ୍ଣନ; ମୁଣ୍ଡ ବୁଲାଇବା- Mundaghurā 1.Reeling of the head. ୨। ମହାଚିନ୍ତା মাথাঘোরা ଯୋଗୁଁ ମସ୍ତିଷ୍କ ଘୂର୍ଣ୍ଣିତ ହେବା—2. Puzzling of **मुँडघूमना** one's brain due to great anxiety. (ମୁଣ୍ଡ ଘୂରିବା—ଅନ୍ୟରୂପ)

**ମୁଣ୍ଡ ଘୂରା(ରେ)ଇବା**—ଦେ.କ୍ରି--କୌଣସି ବିଷୟରେ ଚିନ୍ତା କରିବା— Munda ghurā(re)ibā To think over a matter. মাথাঘোরান ଦେ. ବି.--ମୁଣ୍ଡ ଘୂରା(ଦେଖ)--Munda ghurā (see) **मुँडघुमाना**

**ମୁଣ୍ଡଚ୍ଛେଦ**—ସଂ. ବି—(ଷଷ୍ଠୀତତ୍) ମୁଣ୍ଡକାଟ; ମସ୍ତକକର୍ତ୍ତନ— Mundachchheda Beheading; decapitation,

**ମୁଣ୍ଡ ଛିଣ୍ଡା(ଣ୍ଡେ)ଇ ଦେବା**—ଦେ. କ୍ରି (ଗାଳି)—୧। ସର୍ବନାଶ କରିବା; Munda chhinda(nde)i debā ଢଳଢଳାନ୍ତ କରିବା— মাথাকাটা 1. To compass the ruin of a person. **मुँडकाटना** ୨ । (ଲକ୍ଷଣାର୍ଥ) ଖୁବ୍ ଜୋରରେ ସ୍ରୋତ ବହିବା— 2, (figurative) To flow with a forceful current.

**ମୁଣ୍ଡ ଛିଣ୍ଡି (ଡ଼ି) ଯିବା**—ଦେ. କ୍ରି—୧ । ଅପମାନିତ ହେବା—1. Being deeply humiliated.
Munda chhindi (rdi) jibā
ମାଥା କাটা যাওয়া
मुँडकटना
୨ । ଅପମାନିତ ବୋଧ କରିବା—2. Feeling humiliated. ୩ । (ଲକ୍ଷଣାର୍ଥ) ସ୍ରୋତର ବେଗ ଅତି ବଳବାନ୍ ହେବା—3 (figurative) Flowing with a very forceful or strong curent.

**ମୁଣ୍ଡ ଛେଦା**—ଦେ. ବିଣ—ମୁଣ୍ଡ କଟା ହୋଇଥିବା—Beheaded; decapitated.
Munda chhedā
मस्तकहीन मुँड काटा
[ଉ—ଅର୍ଜୁନ କାଣ୍ଡେ ମୁଣ୍ଡ ଛେଦା ଗଣ୍ଡି ପଡ଼ି; ନାନା କଲେ ହାଣି ଥୋଇବା ମୁଣ୍ଡା ଗଡ଼ି । କୃଷ୍ଣସିଂହ ମହାଭାରତ. କର୍ଣ୍ଣ ।]

**ମୁଣ୍ଡ ଝାଳ**—ଦେ. ବି—ମୁଣ୍ଡରେ ଉତ୍ପନ୍ନ ସ୍ୱେଦ—Sweat of one's brow.
Munda jhāla মাথার ঘাম
मुण्डका पसीना
[ଉ—ଓଡ଼ିଆ ଭାଇଙ୍କ ମୁଣ୍ଡ ଝାଳରେ କୋଠା ଘର ତୋଳା ହୋଇଛି । ଦୈନିକ ଆଶା—୨୫।୮।୬୮]

**ମୁଣ୍ଡ ଝାଳ ଗୋଡ଼ରେ ମରିବା**—ଦେ. କ୍ରି—(ଲକ୍ଷଣାର୍ଥ)—ବିଶେଷ କାୟିକ ପରିଶ୍ରମ—(figurative) Undergoing of severe physical labour.
Munda jhāla gordare maribā
মাথার ঘাম পায়ে মারা
चोटीका पसीना पैडीतक वहना
(ମୁଣ୍ଡ ଝାଳ ତୁଣ୍ଡରେ ମରିବା—ଅନ୍ୟରୂପ)

**ମୁଣ୍ଡ ଝାଳ ଗୋଡ଼ରେ ମାରିବା**—ଦେ.କ୍ରି.—ବିଶେଷ ପରିଶ୍ରମ କରିବା—To undergo severe physical labour
Munda jhāla gordare māribā
মাথার ঘাম পায়ে ফেলা
चोटीका पसिना पैडितक वहाना

**ମୁଣ୍ଡ ଟା(ଟୁ)ଙ୍ଗରା**—ଦେ. ବି—ମୁଣ୍ଡକୁ ଉପରୁ ତଳକୁ ବାରଂବାର ନୁଆଁଇବା ଓ ଉଠାଇବା; ମୁଣ୍ଡ ଟୁଙ୍ଗାରିବା—Repeated nodding of the head up and down.
Munda tā(tu)ngarā
মাথা নাড়া
मुण्ड हलाना

**ମୁଣ୍ଡ ଟୁଙ୍ଗାରିବା**—ଦେ. କ୍ରି—୧ । ମୁଣ୍ଡକୁ ବାରଂବାର ତଳକୁ ଓ ଉପରକୁ ହଲାଇବା—1, To alternately lower and lift one's head; to nod one's head up and down.
Munda tungāribā
মাথা নাড়া
मुण्ड हलाना
୨ । ସମ୍ମତିର ନିଦର୍ଶନ ସ୍ୱରୂପ ମୁଣ୍ଡକୁ ଈଷତ୍ ନୁଆଁଇବା—2, To slightly lower one's head as a token of consent.

**ମୁଣ୍ଡ ଟେକିବା**—ଦେ. କ୍ରି—୧ । ନତମସ୍ତକକୁ ଉତ୍ତୋଳନ କରିବା—1. To raise or lift up one's head
Munda tekibā
মাথা তোলা
मुण्ड उठाना
୨ । (ଲକ୍ଷଣାର୍ଥ) ଲଜ୍ଜାଜନକ କାର୍ଯ୍ୟ କରି ନ ଥିବାରୁ ନତମସ୍ତକ ନ ହୋଇ ସମାଜରେ ମୁଣ୍ଡ ଟେକି ଚଲ ପ୍ରଚଲ ହେବା—2. (figurative) To move in society with one's head lifted up, there being no cause to hang down one's head in shame
୩ । (ଲକ୍ଷଣାର୍ଥ) ଦାରିଦ୍ର୍ୟ ବିପନ୍ନ ବା ଦରିଦ୍ରାବସ୍ଥାରୁ ଉନ୍ନତ ଅବସ୍ଥାକୁ ଆସିବା—3 (figurative) To rise from poverty or troubled state.

**ମୁଣ୍ଡ ଡେଉଁରିଆ**—ଦେ.ବି (ବହିଁଆ ଶବ୍ଦ)—ଅନେକଗୁଡ଼ିଏ ଡେଉଁରିଆକୁ ମାଳ ଗୁନ୍ଥି, ମୁଣ୍ଡର ଜୁଡ଼ାରେ ଗୁଡ଼ାଇ କରି ପିନ୍ଧିବାର ଉପଯୋଗୀ ସୁନାର ବା ରୁପାର ଗୋଲ ଗୋଲ ଅଳଙ୍କାର—Globular ornaments either of silver or gold strung together to deck the chignon with.
Munda deunriā
মাথায় পরবার ঢাবুলী
लुँडडोरिया

**ମୁଣ୍ଡ ତକିଆ**—ଦେ. ବି—ଶୋଇଲାବେଳେ ମୁଣ୍ଡତଳେ ଦେବା ଉପାଧାନ—A pillow for the head.
Munda takiā
মাথার বালিশ
मुण्डका तकिया
[ଦ୍ର—ଶୋଇଲା ବେଳେ ପାର୍ଶ୍ୱରେ ଦିଆଯିବା ତକିଆକୁ କଡ଼ ତକିଆ ଓ ଗୋଡ଼ ତଳେ ଦିଆଯିବା ତକିଆକୁ ଗୋଡ଼ ତକିଆ ବୋଲାଯାଏ ।]

**ମୁଣ୍ଡ ତଳକୁ ହେବା**—ଦେ. କ୍ରି—ମସ୍ତକ ଅବନତ ହେବା; ଅତ୍ୟନ୍ତ ସଙ୍କୋଚ ଭାବ ଆସିବା—Hanging down of the head in shame.
Munda talaku hebā
মাথা নীচু(চ) হওয়া
मुण्ड नीचा होना

**ମୁଣ୍ଡ ତଳିଆ**—ଦେ. ବିଣ—୧ । ଅନ୍ୟ ବ୍ୟକ୍ତିର ଆଶ୍ରୟରେ ରହୁଥିବା—1. (a person) Who is under the shelter of another.
Munda taliā
আশ্রিত
अधीन; मातहद
୨ । ଅନ୍ୟ ବ୍ୟକ୍ତିର କର୍ତ୍ତୃତ୍ୱ ବା ନାୟକତ୍ୱର ଅଧୀନ ରହି କାର୍ଯ୍ୟ କରୁଥିବା—2. Working or having to move under the leadership or authority of another person ୩ । ପରର ଅଧୀନ—3. Occupying a dependent position

**ମୁଣ୍ଡ ଦେଖା(ଖେ)ଇବା**—ଦେ. କ୍ରି—୧ । ସମାଜରେ ନିର୍ଭୟରେ ବିଚରଣ କରିବା—1. To walk in society with one's head erect.
Munda dekhā(khe)ibā
মাথা দেখান
मुँडदिखाना
୨ । କୌଣସି କାର୍ଯ୍ୟରେ ବାହାରି ପଡ଼ିବା—2. To expose oneself. ୩ । ମୁଣ୍ଡ ପଶାଇବା (ଦେଖ)—3. Munda patāibā (See) ୪ । ଦଳ ମଧ୍ୟରୁ ଆପଣାର ମୁଣ୍ଡକୁ ଟେକି ଅନ୍ୟମାନଙ୍କଠାରୁ ପୃଥକ୍‌ରୂପେ ଦେଖାଇବା—4. To raise up one's head from amongst those of a crowd. ୫। ଗୁପ୍ତସ୍ଥାନରୁ ନିଜର ମୁଣ୍ଡକୁ ପଦାକୁ ବାହାର କରିବା—5. To show up one's head from a place of concealment. ୬ । ସାହସ କରିବା—6. To have courage.

**ମୁଣ୍ଡ ଦେବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ମୃତ୍ୟୁକୁ ବରଣ କରିବା; ଜୀବନ ଉତ୍ସର୍ଗ କରିବା—1. To sacrifice one's self.
Munda debā
মাথা দেওয়া
मुँडदेना
୨ । ତକିଆ ଉପରେ ମସ୍ତକ ସ୍ଥାପନ କରିବା—2. To lay one's head on a pillow. ୩ । ବୁଦ୍ଧି ପ୍ରୟୋଗ କରିବା—3. To exercise one's brain or intellect.

ମୁଣ୍ଡଧରା—ଦେ. ବି—୧ । ମୁଣ୍ଡ ଦରଜ—1. Headache ୨ ।
Muṇḍadharā ପାଳକ କର୍ତ୍ତା; ଅଭିଭାବକ; ରକ୍ଷକ—
माथाधरा 2. Protector; guardian or patron.
शिरदर्द ୩ । କୌଣସି ବ୍ୟକ୍ତିର ପ୍ରଧାନ ସହାୟ—3. Chief refuge of a person.

ମୁଣ୍ଡ ଧରିବା—ଦେ. କ୍ରି—୧ । ମୁଣ୍ଡ ବଥିବା; ମଥାବ୍ୟଥା—1.
Muṇḍa dharibā Headache. ୨ । ମସ୍ତିଷ୍କ ଉପରେ
माथा धरना କୌଣସି ମାଦକ ଦ୍ରବ୍ୟର ପ୍ରତିକ୍ରିୟା—2. The
शिरदर्द करना action of some intoxicant on the brain. ଦେ. କ୍ରି—୧ । କୌଣସି ବଡ଼ ଲୋକ କମ୍ବା ମୂଲ୍ୟବାନ ସ୍ଥାନୀୟ ଲୋକଙ୍କର ଆଶ୍ରୟ ନେବା ବା ଶରଣାପନ୍ନ ହେବା—1. To take refuge under a great personage. ୨ । ( କୌଣସି ସ୍ତ୍ରୀ ) ପୁରୁଷ-ବିଶେଷଙ୍କୁ ସ୍ୱାମୀରୂପେ ଆଶ୍ରୟ କରିବା—2. (a woman) To take a male (not one's husband ) as her protector or paramour. ୩ । ( କୌଣସି କର୍ମ ) ଶେଷ ହୋଇ ଆସିବା—3. ( a work) To proceed towards completion.

ମୁଣ୍ଡନ—ସଂ. ବି ( ମୁଣ୍ଡ୍ ଧାତୁ+ଭାବ. ଅନ )—ସମୁଦାୟ ମୁଣ୍ଡ କ୍ଷୌର
Muṇḍana ହେବା; କ୍ଷୌରକର୍ମ—Act of shaving of of the entire head.

ମୁଣ୍ଡ ନ(ଲ)ଇଁବା—ଦେ. କ୍ରି ( ସଂ. ମୁଣ୍ଡ ଓ ନମ୍ ଧାତୁ )—୧ । ମସ୍ତକ
Muṇḍa na(la)iñbā ନତ ହେବା—1. The bending
माथा झुँक जाना or drooping down of one's head.
मुँड झुकजाना ୨ । ( ଲକ୍ଷଣାର୍ଥ ) ଲଜ୍ଜାରେ ଅବନତମସ୍ତକ ହେବା—2. ( figurative ) Hanging down of one's head with shame. ୩ । (ଲକ୍ଷଣାର୍ଥ ) ବଶ୍ୟତା ସ୍ୱୀକାର—3. ( Figurative ) Acknowledgement of another's authority or mastery. ଦେ. କ୍ରି—ମୁଣ୍ଡ ନୁଆଁଇବା ( ଦେଖ ) Muṇḍa nuāiñbā ( See )

ମୁଣ୍ଡ ନୁ(ଲୁ)ଆଁଇବା—ଦେ. କ୍ରି ( ସଂ. ମୁଣ୍ଡ+ନମନ )—୧ । ମସ୍ତକକୁ
Muṇḍa nu(lu)āñibā ଅବନତ କରିବା—1. To bend
[ମୁଣ୍ଡ ନୋ(ଲୋ)ଇଁବା—ଅନ୍ୟରୂପ] one's head down-
मथा नीचु करा, माथा झुकाना wards; to bow. ୨ । ଲଜ୍ଜାରେ
मुँडनवाना; मुँडझुकाना ମୁଣ୍ଡ ପୋତିବା—2. To hang down one's head in shame. ୩ । ନମସ୍କାର କରିବା—3. To make obeisance. ୪ । ( ଲକ୍ଷଣାର୍ଥ ) ବଶ୍ୟତା ସ୍ୱୀକାର କରିବା—4. (figurative) To acknowledge another's authority.

ମୁଣ୍ଡପ—ଗ୍ରା. ବି ( ସଂ. ମଣ୍ଡପ )—ମଣ୍ଡପ ( ଦେଖ )
Muṇḍapa Maṇḍapa ( See )

ମୁଣ୍ଡ ପକା(କେ)ଇବା—ଦେ. କ୍ରି—୧ । କୌଣସି କାର୍ଯ୍ୟକ୍ଷେତ୍ରରେ
Muṇḍa pakā(ke)ibā ପ୍ରତିଯୋଗିତା କରିବା—1. To
माथाठुँका vie or emulate in a matter. ୨ । ଚେଷ୍ଟା
शिरदेना କରିବା—2. To try. କ୍ରି—୩ । ପ୍ରକାଶ୍ୟରେ ଛାମୁଗଡ଼ କୌଣସି କାର୍ଯ୍ୟ କରିବା—3. To do a work openly.

ମୁଣ୍ଡ ପଶିବା—ଦେ. କ୍ରି—୧ । କୌଣସି ଦ୍ରବ୍ୟରେ ବା ଛିଦ୍ରରେ ମୁଣ୍ଡ
Muṇḍa pasibā ଗଳିଯିବା—1. The entry of
माथाटुका one's head into a thing or opening.
मुँडप्रवेश करना ୨ । (ଲକ୍ଷଣାର୍ଥ ) ବୁଦ୍ଧିର ପ୍ରବେଶ; ବୁଝିପାରିବା —2. ( figurative) Comprehension of any matter

ମୁଣ୍ଡ ପତା(ତେ)ଇବା—ଦେ. କ୍ରି. (ଲକ୍ଷଣାର୍ଥ)—୧ । କୌଣସି ବ୍ୟକ୍ତିର
Muṇḍa patā(te)ibā ଆଦେଶକୁ ଶିରୋଧାର୍ଯ୍ୟ କରିବା ବା
माथा पाता ସ୍ୱୀକାର କରିବା—1. ( figurative ) To
मुँड झुकाना yield to a person's orders.
[ମୁଣ୍ଡ ପାଇ(ତୁ, ରି)ବା—ଅନ୍ୟରୂପ] ୨ । ଅନ୍ୟ ବ୍ୟକ୍ତି ଦ୍ୱାରା ଆପଣାର ମସ୍ତକ ଛେଦନ ହେବା ପାଇଁ ତାଙ୍କୁ ଆପଣା ମୁଣ୍ଡକୁ ଦେଖାଇ ଦେବା; ମସ୍ତକକୁ ଅର୍ପଣ କରିବା—2. To offer one's head to another (as a sign of complete submission). ୩ । କୌଣସି କାର୍ଯ୍ୟର ଦାୟିତ୍ୱ ବହନ କରିବା—3. To take upon one's self some responsibility.

ମୁଣ୍ଡ ପାଣି (ଇତ୍ୟାଦି)—ଦେ. ବି—ମୁଣ୍ଡ ଝାଳ ଇତ୍ୟାଦି ( ଦେଖ )
Muṇḍa pāni (etc) Muṇḍa jhāḷa etc. ( See )
माथार घाम मुँडका पानी

ମୁଣ୍ଡ ପାତ—ସଂ. ବି. ( ମୁଣ୍ଡର ପାତ; ୬ଷ୍ଠୀ ତତ୍ )—ମସ୍ତକଚ୍ଛେଦନ—
Muṇḍa pāta Beheading.

ମୁଣ୍ଡ ପୀଡ଼ା—ସଂ. ବି. (ମୁଣ୍ଡର ପୀଡ଼ା; ୬ଷ୍ଠୀ ତତ୍)—ମୁଣ୍ଡ ବ୍ୟଥା—
Muṇḍa pirḍā Headache.

ମୁଣ୍ଡ ପୋଡ଼ା—ଗ୍ରା. ଵଣ. ପୁଂ. (ଗାଳି; ଯାହାର ମୁଣ୍ଡ ପୋଡ଼ା ହୋଇଅଛି
Muṇḍa porḍā ବା ହେବାର ଉପଯୁକ୍ତ )—ପୋଡ଼ା ମୁହାଁ;
मुख पोड़ा मुहँपोड़ा—(a term of abuse) With
मुँड जला a burnt face.

ମୁଣ୍ଡ ପୋଡ଼ୀ—ଗ୍ରା. ଵଣ. ସ୍ତ୍ରୀ—(ସ୍ତ୍ରୀମାନଙ୍କ ପ୍ରତି ପ୍ରଯୋଜ୍ୟ ଗାଳିବିଶେଷ)
Muṇḍa porḍī ମୁଣ୍ଡପୋଡ଼ାର ସ୍ତ୍ରୀଲିଙ୍ଗ—(a term of
मुख पोड़ी abuse to females) Feminine of
मुँड जली Muṇḍaporḍā. (ଉ—ଅଲୋ ରାଣ୍ଡି ! ଅଲୋ ତୁ ମୁଣ୍ଡ ପୋଡ଼ି ! ବୋଲି, ସେ ଦେଖ ଗ୍ରିଣ୍ଟବ ହୁଅନ୍ତି ବୋଲି ବୋଲି । କୃଷ୍ଣସିଂ. ମହାଭାରତ. କର୍ଣ୍ଣ ।)

ମୁଣ୍ଡ ପୋତା—ଦେ. ବି. ( ମୁଣ୍ଡକୁ ପୋତେ ଯେ )—ଏକ
Muṇḍa potā ଜାତୀୟ କେଳା—A class of Keḷās who bury their heads in a hole dug in the ground and beg for alms in that posture by extending the arms. [ଉ—ଏମାନେ ଚିତ ହୋଇ ଶୋଇ ମୁଣ୍ଡ ତଳେ ଗୋଟିଏ ଗାତ ଖୋଳି ଦେ

ଗୋଲ ସେଥି ଉପରେ ମୁଣ୍ଡକୁ ପୂରାଇ ମୁଣ୍ଡ ଉପରେ ମାଟି ଘୋଡ଼ାଇ ଦେଇ ହାତ ପଛାଇ ଦେବାଟେ ସଂଭୁଥିବା ଦର୍ଶକଙ୍କୁ ଭଙ୍ଗା ମାଗନ୍ତି ।] ଦେ. ବିଣ—୧ । ମାଟି ଉପରେ ଯେ ମୁଣ୍ଡ ପୋତେ—1. Hiding one's head under the ground. ୨ । ପୋଟା ମୁହାଁ (ଦେଖ)—2. Potā muhāñ ( See )

ମୁଣ୍ଡ ପୋଟା କେଲା—ଦେ. ବ—ମୁଣ୍ଡ ପୋଟା ( ଦେଖ )
Muṇḍa potā keḷā Muṇḍa potā ( See )

ମୁଣ୍ଡ ପୋତିବା—ଦେ. କ୍ରି. ( ଲକ୍ଷଣାର୍ଥ )—୧ । ଲଜ୍ଜାରେ ମୁଣ୍ଡ ତଳକୁ
Muṇḍa potibā କରିବା—1. (figurative) To droop
মাথা হেঁট করা down or hang down one's head
मुंड झुकाना through shame. (ଉ—ଅସିଲେ ଯେବେ ଥିବେ ମୁଣ୍ଡ ପୋତି ରହି, କହିବାକୁ କଥା ତଙ୍କର ଅଛି ନାହିଁ । କୃଷ୍ଣସିଂ. ମହାଭାରତ. ବନ ।) ୨ । ମସ୍ତକକୁ ତଳକୁ ନତ କରିବା—2. To bow or droop down one's head.

ମୁଣ୍ଡ ଫଟା(ଟେ)ଇବା—ଦେ. କ୍ରି—ଲଗୁଡ଼ ପ୍ରଭୃତିର ଆଘାତରେ ମସ୍ତକକୁ
Muṇḍa phaṭā(ṭe)ibā ବିଦାର୍ଣ୍ଣ କରିବା—To break
মাথা ফাটান मुंड फोडना another's head by a stroke.
(ମୁଣ୍ଡ ଫାଟିବା—ଦେଶ୍ୟ ରୂପ)

ମୁଣ୍ଡ ଫଳ—ସଂ. ବ (ମୁଣ୍ଡ=ମନୁଷ୍ୟ ମୁଣ୍ଡ ପରି+ଫଳ ଯାହାର; ବହୁବ୍ରୀହି)
Muṇḍa phaḷa —ନାରିକେଳ ବୃକ୍ଷ—The cocoanut tree.

ମୁଣ୍ଡ ଫୁଲ -ଦେ. ବ. (ବର୍ଣ୍ଣିତ ଶବ୍ଦ)—ମୁଣ୍ଡ ବାଳରେ ଖୋସିବା ପାଇଁ
Muṇḍa phula ଫୁଲାଅକାରରେ ତିଆରି ଏକ ପ୍ରକାର ଅଳଂକାର—
মাথার ফুল . A kind of ornament shaped like
मुंडका फुल flower and meant for the chignon.

ମୁଣ୍ଡ(ଣ୍ଡି) ବଉଳ(ଳୀ)—ଦେ. ବ—ଏକ ପ୍ରକାର ସରୁ ଧାନ—
Muṇḍa(ṇḍi) bauḷa(ḷī) A kind of fine paddy.
[ଦ୍ର—ଏ ଧାନର ମୁଣ୍ଡି ବଉଳ ଫୁଲ ପରି ବର୍ଣ୍ଣ ବିଶିଷ୍ଟ ଏବଂ ଅଳ୍ପ ଲମ୍ବ ।]

ମୁଣ୍ଡ ବଥା—ଦେ. ବ.(ସଂ. ମୁଣ୍ଡ ଓ ବ୍ୟଥା)—୧ । ମସ୍ତକରେ ବେଦନା;
Muṇḍa bathā ମୁଣ୍ଡ ବିନ୍ଧା; ଶିରଃ ପୀଡ଼ା—1. Head-
মাথা ব্যথা ache (ଉ—ମୁଣ୍ଡ ନାହିଁ, ତାର ମୁଣ୍ଡ ବଥା—ଢଗ)
शिर दर्द ୨ । (ଲକ୍ଷଣାର୍ଥ) ବେଦନାରେ ଅସ୍ଥିର ହେବା ପରି
[ମୁଣ୍ଡ ବଥା(ଥେ)ଇବା—ଅନ୍ୟରୂପ] ମହାଚିନ୍ତାରେ ଅସ୍ଥିର ହେବା; ଗମ୍ଭୀର ଚିନ୍ତା—2. Great mental anxiety.

ମୁଣ୍ଡ ବନ୍ଧା—ଦେ. ବ. ( ଯାହା ମୁଣ୍ଡରେ ବନ୍ଧା ହୁଏ )—୧ । ଶିରପା,
Muṇḍa bandhā ମୁଣ୍ଡ ଗୁରୁଆରେ ଠେକା ବାନ୍ଧିବା ପାଇଁ
মাথা বান্ধা, শিরোপা ବ୍ୟବହୃତ ଲୁଗା—1. Cloth tied
शिर बँधा, मरेठा round the head as a turban.
মাথা বান্ধা ୨ । ଚିକଣିଆ ଅବ ଦ୍ୱାରା କେଶକୁ କୁଣ୍ଡାଇ ଗଣ୍ଠି
केश बाँधना ପକାଇବା ବା ଜୁଡ଼ା ବାନ୍ଧିବା—2. Tying of the hair into a knot or chignon after combing.

ମୁଣ୍ଡ ବନ୍ଧା ଦେବା—ଦେ. କ୍ରି—ଅନ୍ୟ ନିକଟରେ ସ୍ୱାଧୀନତା ପରାଧୀନତା
Muṇḍa bandhā debā ବା ଦାସତ୍ୱ ସ୍ୱୀକାର କରିବା—
মাথা বান্ধা দেওয়া To make one's self a slave to
शिर बंधक देना another; to sell one's self, body and soul, to another.

ମୁଣ୍ଡ ବାଡ଼ା(ଡ଼େ)ଇବା—ଦେ. କ୍ରି—୧ । ଦୁଃଖ ବା ଶୋକ ଯୋଗୁଁ
Muṇḍa bāṛā(ṛe)ibā ଭୂଇଁରେ ନିଜର ମୁଣ୍ଡକୁ ଆଘାତ
মাথা কুটা କରିବା—1.To strike one's head on the
मुड पटकना ground (in anger or agony of grief).
ମୁଣ୍ଡ ପିଟିବା } ଅନ୍ୟରୂପ ୨ । ଅନ୍ୟର ମସ୍ତକରେ
ମୁଣ୍ଡ ପିଟା(ଟେ)ଇବା } ଯଷ୍ଟି ଦ୍ୱାରା ଆଘାତ କରିବା—
2. To deal a blow on another's head.

ମୁଣ୍ଡ ବାନ୍ଧି ଦେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିର କେଶକୁ କୁଣ୍ଡାଇ ଜୁଡ଼ା
Muṇḍa bāndhi debā ବାନ୍ଧି ଦେବା—To tie up or
মাথা বেন্ধে দেওয়া dress up another person'
केश बाँध देना hair.

ମୁଣ୍ଡ ବାନ୍ଧିବା—ଦେ. କ୍ରି ( ସଂ. ମୁଣ୍ଡ ଓ ବନ୍ଧ୍ ଧାତୁ )—ଆପଣାର ବା
Muṇḍa bāndhiba ଅନ୍ୟର କେଶକୁ କୁଣ୍ଡାଇ ଗଣ୍ଠି ବା ଜୁଡ଼ା
মাথা বাঁধা केश बाँधना ପକାଇବା—To dress up one's hair into a knot or chignon.

ମୁଣ୍ଡ ବାଳ—ସଂ. ବ ( ମୁଣ୍ଡର ବାଳ ବା ମୁଣ୍ଡଜାତ ବାଳ; ୬ଷ୍ଠୀ ତତ୍ ବା
Muṇḍa bāḷa ମ.ପ.ଲୋ. କର୍ମ )—ଶିରସ୍ଥ କେଶ—The hair of the head. [ ଉ—ମୁଣ୍ଡ ବାଳ ସଙ୍ଗେ କ ଗାଣ୍ଠି ବାଳ ସରି ?—ଢଗ । ]

ମୁଣ୍ଡ ବିକା—ଗ୍ରାଦେ. ( କୁଜଙ୍ଗ ) ବ—୧ । କଟକ ଜିଲ୍ଲାର କୁଜଙ୍ଗ
Muṇḍa bikā ରାଜ୍ୟରେ ଏକପ୍ରକାର ଚାକର—1. A system of service in the Kujaṅga estate of Cuttack district, in which the servant renders free service in lieu of some land or free wood from the estate jungles.
[ ଦ୍ର—ଏହି ଚାକରି କରିବା ଲୋକ ରାଜସରକାରରୁ କେତେକ ଜମି ଜାଗିରରୂପେ ପାଏ, କମ୍ବା ଜଙ୍ଗଲରୁ କାଠ ଛଡ଼ ପାଏ ଓ ଏଥି ବଦଳରେ ମୂଲ ବା ମଜୁରି ନ ନେଇ ରାଜାଙ୍କର କେତେକ ନିର୍ଦ୍ଦିଷ୍ଟ ସେବା କରେ । ମୁଣ୍ଡ ବିକା କେଉଟ ରାଜାଙ୍କୁ ବିନା ଭଡ଼ାରେ ଡଙ୍ଗା ଦିଏ; ମୁଣ୍ଡବିକା ଚଷା ବିନା ମଜୁରିରେ ହଳ କାମ କରେ, ମୁଣ୍ଡବିକା ବାରିକ ବିନା ଦରମାରେ କ୍ଷୌର ଓ ଶଙ୍ଖୁଲା ବୋହି ନେବା ଇତ୍ୟାଦି କାମ କରେ; ମୁଣ୍ଡବିକା ଧୋବା ବିନା ବର୍ତ୍ତନରେ କାଠ ଚିରେ ଓ ଲୁଗା ସଫା କରେ ଏବଂ ମୁଣ୍ଡବିକା କୁମ୍ଭାର ବିନା ମୂଲ୍ୟରେ ହାଣ୍ଡି ଯୋଗାଏ । ] ବିଣ—୧ । ଉକ୍ତ ପ୍ରଥାନୁସାରେ ବିନା ପାରିଶ୍ରମିକରେ ଚାକର ଖଟିବା (ଲୋକ)—1. Serving without remuneration according to the aforesaid custom of Muṇḍābikā. ୨ । ( ଲକ୍ଷଣାର୍ଥ ) ସଂପୂର୍ଣ୍ଣରୂପେ

ପଦତଳରେ ନିଜକୁ ଅର୍ପଣ କରିଥିବା ( ଶ୍ଳେଷ )—
2, ( figurative) Surrendering one's self completely to another.

**ମୁଣ୍ଡ ବିକିବା**—ଦେ. କ୍ରି—ଦାସତ୍ୱ ସ୍ୱୀକାର କରିବା—To accept
Munda bikibā servitude.
মাথা বিক্রি করা **शिर बीकना**

**ମୁଣ୍ଡ ବିଗିଡ଼ିବା**—ଦେ. ବି—ମସ୍ତିଷ୍କ ବିକୃତି—Derangement
Munda bigirdibā of the brain.
মাথা খারাপ হওয়া **मुँड बिगडना**

**ମୁଣ୍ଡ ବିନ୍ଧା**—ଦେ. ବି—ମୁଣ୍ଡ ବଥା ( ଦେଖ )
Munda bindhā Munda bathā ( See )
( ମୁଣ୍ଡ ବିନ୍ଧିବା—ଅନ୍ୟରୂପ )

**ମୁଣ୍ଡ ବୁଡ଼ା(ଡ଼େ)ଇବା**—ଦେ. ବି—ବୁଡ଼ିକରି ସ୍ନାନ କରିବା—To take
Munda burdā(rde)ibā a bath by immersion.
মাথা ডুবান **मुँड डुबाना** [ଉ - ବ୍ରହ୍ମ ଉଦୁମ୍ବରେଷ୍ଟ ସପ୍ତଋଷି କୁଣ୍ଡ, ଅଛି ତହିଁ ନର ବୁଡ଼ାଇଲେ ମୁଣ୍ଡ—କୃଷ୍ଣସିଂହ. ମହାଭାରତ. ବନ । ]

**ମୁଣ୍ଡ ବୁଲା**—ଦେ. ବି—ମସ୍ତକ ଘୂର୍ଣ୍ଣନ; ଶିରୋଘୂର୍ଣ୍ଣନ—Giddiness of
Munda bulā the head; reeling of the head.
মাথা ঘোরা, মাথা ঘুরনী **शिर घूमना** ଦେ. ବିଣ—କଥାକଥାକେ

ମୁଣ୍ଡ ଚକ୍କର ଦେବା,
ମୁଣ୍ଡ ବୁଲ[ଲେ]ଇବା,
ମୁଣ୍ଡ ବୁଲ[ଲେ]ଇ ଦେବା } —ଅନ୍ୟରୂପ
ବା ଅଳ୍ପ ଆୟାସରେ ଯାହାର ମସ୍ତିଷ୍କ ବିକୃତ ଘଟେ— Liable to derangement of the brain on small provocations.

**ମୁଣ୍ଡ ବୋଝ**—ଦେ. ବି—ମୁଣ୍ଡଦ୍ୱାରା ବହନ କରାଯିବା ବୋଝ—A load
Munda bojha carried on the head. [ ଉ—ପାଟ
মাথার বোঝা ବସନ ବାନ୍ଧି ଚୂଳ, ଶ୍ରବଣେ କରିଛନ୍ତି କୁଣ୍ଡଳ ।
**मुँडका बोझा** ସେ ଯେତେକ ହରିଙ୍କି ନ ନମେ, ସେ ମୁଣ୍ଡ ବୋଝ ବହୁ ଶ୍ରମେ—ଜଗନ୍ନାଥ, ଭାଗବତ । ]

**ମୁଣ୍ଡ ବୋଝିଆ(ୟା)**—ଦେ. ବିଣ—ମୁଣ୍ଡ ଉପରେ ବୋଝ ବହୁଥିବା (ବ୍ୟକ୍ତି)—
Munda bojhiā(yā) ( a person ) Carrying loads
মুটে **मोटिया** on the head. ଦେ. ବି—ମୁଣ୍ଡରେ ବୋଝ ବହିବା ଯାହାର ଜୀବିକା; ମୋଟିଆ—A carrier of load on the head; a professional carrier or bearer; a porter. ( ଉ—ଶଗଡ଼ିଆ ପଣିଲେ ମୁଣ୍ଡ ବୋଝିଆ ଛାଡ଼ ପଳାନ୍ତି—ଛଗ । )

**ମୁଣ୍ଡ ଭ(ଘା)ଉଁରି ଜାଲ**—ଦେ. ବି ( ସ ମୁଣ୍ଡ+ଭ୍ରମ+ଜାଲ )—
Munda bha(ghā)unri jāla ମଥା ଭଉଁରି ଜାଲ—
মাথা ঘুরনী জাল Casting net.

**ମୁଣ୍ଡ ଭିଡ଼ା**—ଦେ. ବି—୧ । ଜୁଡ଼ାରେ ବନ୍ଧାଯିବା ପାଟଫୁଲି—1. Tapes
Munda bhirdā মাথার ফিতা **पेंठा** for tying the
**मुरेठा** chignon. ୨ । ମୁଣ୍ଡରେ ଗୁଡ଼ାଇବା ପାଇଁ ବ୍ୟବହୃତ ଲୁଗା ବା ଗାମୁଛା—2. A cloth or sheet for tying round the head.

**ମୁଣ୍ଡ ମାଡ଼ିବା**—ଦେ. କ୍ରି—ମୁଣ୍ଡ ପୋତିବା ( ଦେଖ )
Munda mārdibā Munda potibā ( See )

**ମୁଣ୍ଡ ମାରିବା**—ଦେ. କ୍ରି—୧ । ମୁଣ୍ଡ ନୁଆଁଇବା; ମସ୍ତକ ଅବନତ
Munda māribā କରିବା—1. To bow down. ୨ ।
মাথা খোঁড়া(কোড়া) ଦେବତା ପ୍ରଭୃତିଙ୍କ ନିକଟରେ ମୁଣ୍ଡକୁ ଭୂମିରେ
**मुँड पटकना** ଛୁଆଇଁ ନମସ୍କାର କରିବା—2. To make obeisance by touching one's head to the ground. ୩ । ଗଭୀର ଶୋକରେ ଭୂଇଁରେ ନିଜର ମୁଣ୍ଡକୁ ଆଘାତ କରିବା—3. To strike one's head on the ground through grief.

**ମୁଣ୍ଡମାଳ(ଳା)**—ସ.ବି—(ମୁଣ୍ଡର ମାଳ; ୬ଷ୍ଠୀ ତତ୍)—୧ । ବହୁ ନର-
Mundamāla(lā) ମୁଣ୍ଡରେ ଗ୍ରଥିତ ମାଳା—1. A wreath or string of human skulls. ୨ । ମାଳାରେ ଗ୍ରଥିତ ହେବା ପରି ଏକତ୍ର ସ୍ଥିତ ଅନେକ ମୁଣ୍ଡ—2. Row of skulls found or placed together. [ଯଥା—ଉକ୍ତ ଗ୍ରାମରେ ହଇଜା ଏପରି ଘୋଟିଲା ଯେ, ମଶାଣିରେ ମୁଣ୍ଡମାଳ ପଡ଼ିଲା ।]

**ମୁଣ୍ଡମାଳିନୀ**—ସ. ବିଣ. ସ୍ତ୍ରୀ—(ମୁଣ୍ଡମାଳ+ଇନ୍; ଅସ୍ତ୍ୟର୍ଥେ+ଈ; ସ୍ତ୍ରୀ.
Munda mālini [ମୁଣ୍ଡମାଳ ଧାରିଣୀ]—Wearing a string of skulls. ବି. ସ୍ତ୍ରୀ—କାଳୀ—Goddess Kāli.

**ମୁଣ୍ଡମାଳୀ**—ସ.ବିଣ. ପୁଂ—(ମୁଣ୍ଡମାଳ+ଇନ୍; ଅସ୍ତ୍ୟର୍ଥେ; ୧ମା. ୧ବ)
Munda māli ମୁଣ୍ଡମାଳା ବେକରେ ପକାଇଥିବା—Wearing a string of skulls. ବି. ପୁଂ—ମହାଦେବ—God Siba.

**ମୁଣ୍ଡମୁକୁଳା**—ଦେ. ବି—୧ । ଅଳୁଳାୟିତ କେଶ—
Mundamukulā 1. Dishevelled hair of the head
খুলা বাল **खुला बाल (मुँह)** ୨ । ଓଢ଼ଣା ନ ଥିବା ମୁଣ୍ଡ—2. Unveiled head.

**ମୁଣ୍ଡ ମୋଡ଼ିବା**—ଦେ. କ୍ରି—୧ । ବେକକଣ୍ଠାରୁ ମୁଣ୍ଡକୁ ମୋଡ଼ି
Munda mordibā ଗଣ୍ଡିରୁ ମୁଣ୍ଡକୁ ଛିଣ୍ଡାଇ ଦେବା—To
মাথা মোড়া **मुँड मरोडना** twist asunder the head.
[ଉ—କ୍ରୋଧ ନଶେଧ ଯୋଗୀଙ୍କର; ସେ ମୁଣ୍ଡ ମୋଡ଼ିଲେ
(ମୁଣ୍ଡମୋଡ଼ା—ବି. ରୂପ) ବ୍ରହ୍ମାର । ଭୂପତି ପ୍ରେମ ପଞ୍ଚାମୃତ ।]

**ମୁଣ୍ଡ ରଖିବା**—ଦେ. କ୍ରି—(ସ. ମୁଣ୍ଡ ଓ ରକ୍ଷ୍ ଧାତୁ)—
Munda rakhibā ୧ । କୌଣସି ବ୍ୟକ୍ତିର ଜୀବନ ରକ୍ଷା
মাথা রখা କରିବା—1. To save another's life.
**मुँड रखना** [ଉ—ମା କାଳି । (ମୋ ପିଲାର) ଏ ମୁଣ୍ଡ ରଖିଲେ, ତୋତେ ଦୁଇ ମୁଣ୍ଡ (ବୋଦା) ଦେବି ।] ୨ । କୌଣସି ବ୍ୟକ୍ତିକୁ ପ୍ରାଣ ଦଣ୍ଡରୁ ବା ମୃତ୍ୟୁମୁଖରୁ ରକ୍ଷା କରିବା—2. To save a person from losing his head. ୩ । ମୁଣ୍ଡ ଗୁଞ୍ଜିବା (ଦେଖ)
3. Munda gunjibā (See)

**ମୁଣ୍ଡ ରହିବା**—ଦେ. ବି—ପ୍ରାଣଦଣ୍ଡରୁ ବା ମୃତ୍ୟୁ ମୁଖରୁ ରକ୍ଷା ପାଇବା-
Munda rahibā Being saved from death or
মাথা রক্ষা হওয়া from death sentence. [ ଯଥା—ମୁଣ୍ଡ
**मुण्ड रहना** ରହିଲେ ଭୁଣ୍ଡ କରିବ । (ଢଗ)]

**ମୁଣ୍ଡି(ଣ୍ଡି)ରି**—ଦେ. ବି.—ମୁଣ୍ଡିକା (ଦେଖ)—
Munda(ndi)ri **मुण्डिरी मुँ`ड़ी** Munditikā (See).

**ମୁଣ୍ଡରେ ଅଠା ବୋଲିବା**—ଦେ. କ୍ରି. —(ଲକ୍ଷଣାର୍ଥ) କୌଣସି
Mundare athā bolibā ବ୍ୟକ୍ତି ଉପରେ କୌଣସି କାର୍ଯ୍ୟପାଇଁ
মাথায় দোষ দেওয়া ଦୋଷ ବା କଳଙ୍କ ଅର୍ପଣ କରିବା—To
**कलंक लगाना** lay the blame or stigma of a thing
on the head of a person. [ ଉ—ଗାଁଅଁ ବାଲା
ଘଣ୍ଟ ଖାଇଲେ, ଭଣ୍ଡାସ୍ଥ ମୁଣ୍ଡରେ ଅଠା ବୋଲିଲେ । ଢଗ ]

**ମୁଣ୍ଡରେ ଆକାଶ ଛିଣ୍ଡି (ଡ଼ି)ପଡ଼ିବା**—ଦେ. ବି—୧ । ହଠାତ୍ ବିପଦ୍‌ଗ୍ରସ୍ତ
Mundare ākāsa chhindi (rdi) pardibā ହେଇ
মাথায় আকাশ ভেঙ্গে পড়া ବିହ୍ୱଳ ଓ ବ୍ୟତିବ୍ୟସ୍ତ ହୋଇ ପଡ଼ିବା-
**मुण्डपर आकाश गिरना** 1. Being overwhelmed
with danger. ୨ । ଅତ୍ୟନ୍ତ ଚିନ୍ତାନ୍ୱିତ ଓ କିଂ-
କର୍ତ୍ତବ୍ୟ ବିମୂଢ଼ ହେବା—2. Being bewildered
with anxiety.

**ମୁଣ୍ଡରେ ଉକୁଣୀ କାମୁଡ଼ିବା**—ଦେ. ବି—୧ । ମସ୍ତକରେ ଉକୁଣୀ
Mundare ukuni kāmurdibā ଦଂଶନ କରିବା—1.
মাথায় উকুন কামড়ান Being bitten by lice.
**शिरमे जू काटना** ୨ । ଅତ୍ୟନ୍ତ ଚିନ୍ତିତ ହେବା—2. Being
(ମୁଣ୍ଡକୁ ଉକୁଣୀ କାମୁଡ଼ିବା—ଅନ୍ୟରୂପ) very much an-
xious. [ଉ—ଏଣେ ମା ବାପଙ୍କ ମୁଣ୍ଡରେ ଉକୁଣୀ
କାମୁଡ଼ିଲାଣି, କେମିତି ବାହା ଦେବେ । ଫକୀରମୋହନ
ଗଳ୍ପସ୍ୱଳ୍ପ ।]

**ମୁଣ୍ଡରେ ଗୋଡ଼ ଦେବା**—ଦେ. କ୍ରି—୧ । ଅପମାନ ଦେବା—
Mundare gorda debā 1. To insult.
মাথায় পা দেওয়া **माथ पर लात देना** [ଉ—ତାହା ଛର ଅମୃତ
ଅଟେ କେତେ ବଡ଼ । ନେଲି କନ୍ୟା ଦଳେ ଦେବଙ୍କ
ମୁଣ୍ଡେ ଗୋଡ଼—କୃଷ୍ଣସିଂହ. ମହାଭାରତ. ଆଦି । ] ୨ ।
(ମନ୍ଦାର୍ଥ) ପ୍ରଶ୍ରୟ ପାଇ କ୍ଷମତାଗତ କାମ କରିବା ବା
କ୍ଷମତାର ଅପବ୍ୟବହାର କରିବା—2. (bad sense) To
take undue advantage of one's privilege;
to abuse one's authority.

**ମୁଣ୍ଡରେ ଚଢ଼ା(ଢ଼େ)ଇବା**—ଦେ କ୍ରି—୧ । କୌଣସି ବ୍ୟକ୍ତିକୁ ଅଯଥା
Mundare chardhā(rdhe)ibā ପ୍ରଶ୍ରୟ ଦେବା—1. To
মাথায় করা **मुँडपर चढाना** give undue indulgence to a
person. ୨ । କୌଣସି ବ୍ୟକ୍ତିକୁ ପୂଜା ବା ସମ୍ମାନ
କରିବା—2. To worship or honour a
person.

**ମୁଣ୍ଡରେ ଚଢ଼ିବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କଠାରୁ ପ୍ରଶ୍ରୟ ପାଇବା
Mundre chardhibā ଯୋଗୁ ତାଙ୍କ ନିକଟରେ
মাথায় চড়া ଅବାଧ୍ୟତା ପ୍ରକାଶ କରିବା—To take undue
**मुँडपर चढना** liberty with a person by abusing
the indulgence shown by him.

**ମୁଣ୍ଡରେ ଟାହିଆ ବାନ୍ଧି(ମାରି) ବୁଲିବା**—ଦେ. କ୍ରି—ଆନନ୍ଦ ପ୍ରକାଶ
Mundare tāhiā bāndhi(māri) bulibā ପୂର୍ବକ ଲୋକ-
মাথায় পাগ বেঁধে বেড়ান ସମାଜରେ ବିଚରଣ କରିବା—To
**मुँडमे फूल लेकर घूमना** strut in the public with
[ମୁଣ୍ଡରେ ଫୁଲମାଳ(ପାଗ)ବାନ୍ଧି ବୁଲିବା—ଅନ୍ୟରୂପ] delight.

**ମୁଣ୍ଡରେ ଦେବା**—ଦେ. କ୍ରି—ମୁଣ୍ଡରେ ଅଠା ଲଗାଇବା ( ଦେଖ )
Mundare debā Mundare athā lagāibā (See)

**ମୁଣ୍ଡରେ(କୁ) ନେବା**—ଦେ. କ୍ରି—୧ । କୌଣସି ବିଷୟର ଦାୟିତ୍ୱ ସ୍ୱୟଂ
Mundare(ku) nebā ବହନ କରିବା—1. To shoulder
মাথায় লওয়া the responsibility for any matter.
**मुंडपर लेना** ୨ । ଅନ୍ୟ କେହି କରିଥିବା ଅପରାଧକୁ ନିଜେ
ଅବୋର ନେଇ ଅନ୍ୟକୁ ରକ୍ଷା କରିବା—2. To save
a person by taking upon one's self the
blame for acts committed by the former.

**ମୁଣ୍ଡରେ ପଶିବା**—ଦେ. କ୍ରି.—ମସ୍ତିଷ୍କରେ ପ୍ରବେଶ କରିବା;
Mundare pasibā ବୋଧଗମ୍ୟ ହେବା—To enter into
মাথায় ঢুকা one's brain; to be understood.
**मुंडमे घूसना (ढूकना)** [ ଉ—ଏ ସାମାନ୍ୟ କଥାଟା ମୋ ମୁଣ୍ଡରେ
ପଶୁ ନାହିଁ । ]

**ମୁଣ୍ଡରେ ବଜ୍ର ପଡ଼ିବା**—ଦେ. ବି—ବିପନ୍ନ ଅବସ୍ଥାରେ କିଂକର୍ତ୍ତବ୍ୟ-
Mundare bajra pardibā ବିମୂଢ଼ ଓ ବିହ୍ୱଳ ହେବା—
মাথায় বাজ পড়া Being bewildered on the sudden
**मुंडमे बजर गिरना** approach of a danger.

**ମୁଣ୍ଡରେ ଶିକା ଛିଡ଼(ଣ୍ଡି)ବା**—ଦେ. ବି—ଅଯାଚିତଭାବରେ କୌଣସି
Mundare sikā chhirdi(ndi)bā ଲୋକର ଅନେକ ଅର୍ଥ-
ভাগ্যে শিকা ছিঁড়া ପ୍ରାପ୍ତି ବା ସୌଭାଗ୍ୟପ୍ରାପ୍ତି ହେବା—
**मुंडमे शिका छिनना** ( a person's ) Being blessed
with profit or good fortune
without asking for it.

**ମୁଣ୍ଡରେ ହାତ ଦେଇ ବସିବା**—ଦେ. କ୍ରି.—୧ । ଦୁର୍ଭାବନାରେ
Mundare hāta dei basibā କିଂକର୍ତ୍ତବ୍ୟବିମୂଢ଼ ହେବା—
মাথায় হাত দিএ বসা 1. To rest one's head on the
**शिरपर हात देकर बैठना** raised palm in utter an-
(ମୁଣ୍ଡରେ ହାତ ଦେବା—ଅନ୍ୟରୂପ) xiety. [ ଉ—ଦୁର୍ଭାବନା-
ଗ୍ରସ୍ତ ବ୍ୟକ୍ତି ମୁଣ୍ଡକୁ କରତଳରେ ଟେକ ରଖେ । ]
୨ । ଆଶୀର୍ବାଦ କରିବା—2. To bless. ( ଉ—
ଅଛନ୍ତି କୃଷ୍ଣସିଂହ ମୁଣ୍ଡେ ଦେଇ ହାତ, ପୂର୍ଣ୍ଣିକର ଗୁରୁତ
ଅଟେ ଗୋପୀନାଥ—କୃଷ୍ଣସିଂହ. ମହାଭାରତ. ବନ । )

**ମୁଣ୍ଡରେ ହାତ ବୁଲା(ଲେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ
Mundare hāta bulā(le)ibā ଠକାଇ କରି ତାଠାରୁ କିଛି
মাথায় হাত বুলান ପଦାର୍ଥ ନେବା—1. To cheat a person

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଉଯ୍ | ଉଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରଯୁକ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସି | ଗ୍ୟ | ଇଅ | ଔ | ଋ |

शिरपर हात फिराना of something. ୨ । କୌଣସି (ମୁଣ୍ଡରେ ହାତ ବୋଳିବା—ଅନ୍ୟରୂପ) ବ୍ୟକ୍ତିଙ୍କୁ ଆଶୀର୍ବାଦ କରି ତାହାଙ୍କ ଦକ୍ଷିଣାସ୍ୱରୂପ ତାହାଠାରୁ କିଛି ପଦାର୍ଥ ନେବା—2. To take something from a person as a gift by invoking blessings on him. [ଦ୍ର—କୌଣସି ବ୍ୟକ୍ତିଙ୍କୁ ଆଶୀର୍ବାଦ କରିବା ସମୟରେ ତା ମୁଣ୍ଡରେ କରତଳକୁ ଚାଳନ କରାଯାଇ ଥାଏ ।]

ମୁଣ୍ଡ(ଣ୍ଡୁ)ଳା(ଳି)—ଦେ. ବି (ସଂ. ମଣ୍ଡଳ)—ବୃତ୍ତାକାର ଚିତ୍ର—Munda(ndu)lā(li) मण्डल A circular drawing. गोल (ମୁଣ୍ଡଳ[ଳି]—ଅନ୍ୟରୂପ)

ମୁଣ୍ଡ(ଣ୍ଡୁ)ଶାଳୀ—ଦେ. ବି—ଏକପ୍ରକାର ଡାଲୁଅ ଧାନ—A species Munda(ndu)sāli of summer paddy.

ମୁଣ୍ଡ ହଲା(ଲେ)ଇବା—ଦେ. କ୍ରି—୧ । ମୁଣ୍ଡକୁ ବାରମ୍ବାର ଏପାଖରୁ Munda halā(le)ibā ସେପାଖକୁ ଚାଳନ କରିବା—1. To माथा हलाना wave or wag the head to and fro. ୨ । शिर हिलाना ଅସମ୍ମତିର ଚିହ୍ନ ସ୍ୱରୂପ ମୁଣ୍ଡକୁ ବାରମ୍ବାର ଏପାଖ ସେପାଖ ଚାଳନ କରିବା; ନାହିଁ କରିବା—2. To wave one's head to indicate denial; to express 'no' by waving one's head. ୩ । ସମ୍ମତିର ନିଦର୍ଶନସ୍ୱରୂପ ମୁଣ୍ଡକୁ ଏକଥର ଉପରୁ ତଳକୁ ଚାଳନ କରିବା—3. To lower one's head once to express 'yes'. [ଦ୍ର—ଦୁଇ ପାଖକୁ ଏକାଧିକ ବାର ମୁଣ୍ଡକୁ ଚାଳନ କଲେ ତାହିଁରୁ ଅସମ୍ମତି ବା ନାସ୍ତି ବାଣୀ ଜଣାପଡ଼େ; କିନ୍ତୁ ମୁଣ୍ଡକୁ ଥରେ ମାତ୍ର ଗୋଟିଏ ପାଖକୁ ଅଥବା ଉପରୁ ତଳକୁ ଚାଳନ କଲେ ତାହିଁରୁ ସମ୍ମତି ଜଣାପଡ଼େ ।]

ମୁଣ୍ଡା—ସଂ. ବି. ସ୍ତ୍ରୀ—୧ । ମୁଣ୍ଡିତିକା (ଦେଖ)—1. Munditikā Mundā (see). ୨ । ମୁଣ୍ଡିତା ସ୍ତ୍ରୀ; ଲଣ୍ଡୀ ସ୍ତ୍ରୀ—2. A woman with shaven head. ଦେ. ବି—(ସଂ. ମୁଣ୍ଡ—ସ୍ଥୁଳ କନ୍ଦ)—୧ । ହଳଦୀ, ସାରୁ ଓ କଦଳୀ ऍटे ଗଛର ମୂଳପିଣ୍ଡ—1. The ball-shaped root of अथरी turmeric, yam, arum and plantain tree. ୨ । ଶାଖା ଆଦି ବର୍ଜିତ ବୃକ୍ଷର ଗଣ୍ଡି; ଲଣ୍ଡା ଗଛ; ସ୍ଥାଣୁ—थूँटे 2. The branchless trunk of a tree; a ठूँठ a lopped tree. [ଉ—ମୁଣ୍ଡା ବୃକ୍ଷ ପରି ଦିଶୁଥିଲେ ସେ ସ୍ଥଳକ । ପତ୍ରସ୍ତୁ ମାର ସୁଣି ଶିର କଲେ ଛିନ୍ନ—କୃଷ୍ଣସିଂହ. ମହାଭାରତ. ବନ ।] ୩ । କାଠର ବା ପଥରର ବଡ଼ गड खण्ड—3. A big block of wood or stone. ढेंग, घड ୪ । ମାଛର ବା ମାଂସର ବଡ଼ଖଣ୍ଡ—4. A big lump बड़चेका of flesh or meat or fish. [ଉ—କେବେ ଲେ ଘିଅ फुट्टी (मछली), बुट्टी (मांस) ଅଡ଼ା ସଙ୍ଗେ ଗ୍ରାସମୁଣ୍ଡା । ଦରବାର.

ठूँटो ଗ୍ରନ୍ଥାନାଥ ।] ୫ । (ଗାଳି) ଅପଣା ପରିବାରର ଅନ୍ୟ वंशसोधन, हरमुड हा ସମସ୍ତ ବ୍ୟକ୍ତି (ଯଥା—ପିତା, ମାତା, ପୁତ୍ର, କନ୍ୟା ଆଦି) ମୃତ ହେବା ପରେ ଯେଉଁ ବ୍ୟକ୍ତି ବଞ୍ଚିଥାଏ—5. A person who is the sole surviver in a family. ୬ । ହଳଦୀ ଗଛର ମୂଳର ମାଟିକୁ छोटि कोदाल ଖୋଳିବା ପାଇଁ ବ୍ୟବହୃତ ଏକପ୍ରକାର ସରୁଆ तामनी କୋଡ଼ି—6. A narrow spade used in loosening the soil near the root of turmeric plants

गोड़ा जड़ ୭ । (କର୍ଣ୍ଣର) ମୂଳଭାଗ; କାନମୂଣ୍ଡା—धौंना 7. The root (of the ear). ୮ । ବେକମୁଣ୍ଡା; ବେକର ମୂଳଭାଗ—8. The nape (of the neck). मूडा अधकटी ୯ । ଚେକ୍ ରସିଦ ଆଦିର ଛେଦ ଅଂଶ ଛିନ୍ନ ହୋଇଗଲା ପରେ ମୂଳର ଯେଉଁ ଅଂଶଗୁଡ଼ି ରହିଥାଏ—9. Counterfoil (of duplicate receipts etc.) भिदा ୧୦ । (ହିଡ଼ର) ଉପରଭାଗ—10. The top (of a ridge). (ଉ—ପୁଅକୁ ଖାଇଲା ହିଡ଼ମୁଣ୍ଡାରେ, ଜଳା ଜାମ୍ବୁଳକା କାଳ ମୁଣ୍ଡାରେ—ଶିଶୁ ବଚନ ।)

बीचपांतर ୧୧ । ପଡ଼ିଆର ଜମି; ଯେଉଁ ଜମି ପଡ଼ିଆର (ସୁବିସ୍ତୀର୍ଣ୍ଣ କ୍ଷେତ୍ରମାନଙ୍କ) ମଝିରେ ଥାଏ—11. Land situated in the middle of a vast plain. ୧୨ । (ପାନବରଜ)—ପାନ ବରଜର ଲତାମାନ ଯେଉଁ ବାଗରେ ଲଗାଯାଇ ଥାଏ, ସେହି ବାଗର କଡ଼ ଦୁଇ ପାଶ [ଦ୍ର—ଏହାର ଦୁଇ ପାଖକୁ 'ବାହାଲ, କହନ୍ତି ।] 12. The two sides or wings of a row of betel leaf plants in a Baraja. ୧୩ । ଲଙ୍ଗଳର ଯେଉଁ ଚଉଡ଼ା କାଠର ଅଂଶର ମଝିରେ ଲଙ୍ଗଳ ଲୁହା ଗଳା ଯାଇଥାଏ—13. The wooden blade of a plough into which the ploughshare is thrust. ୧୪ । ଲଙ୍ଗଳ ଗଢ଼ା ହେବା ପାଇଁ କାଠର ଗଣ୍ଡିକୁ କଟା ହେବା କାଠ ଖଣ୍ଡ—14. An unworked or rough block of wood from which a plough is made. ୧୫ । ବାଉଁଶ, କଦଳୀ ଆଦି ଦୁଦାଳିଆ ଗଛର ବା ଗୁଳ୍ମର ଏକ ଗୁଦା—15. One group of a bushy tree or plant (as plantain, bamboo) (ଯଥା—ମୁଁ ଏ ବରଷ କଟିଗୁଡ଼ିରେ ୩ ମୁଣ୍ଡା କଦଳୀ ପକେଇଛି ।) [ଦ୍ର—ଯେଉଁ ଗଛ ଓ ଗୁଳ୍ମ, ଆଦିର ମୂଳରେ ବଡ଼ ପିଣ୍ଡ ଥାଏ, ସାଧାରଣତଃ ସେହି ଗଛର ସଂଖ୍ୟା ନିର୍ଦ୍ଦେଶାର୍ଥ 'ମୁଣ୍ଡା' ଶବ୍ଦ 'ଗୋଟା' ଅର୍ଥରେ ବ୍ୟବହୃତ ହୁଏ; ଯଥା—୩ ମୁଣ୍ଡା କଦଳୀ ଗଛ; ୪ ମୁଣ୍ଡା ବାଉଁଶ; ୫ ମୁଣ୍ଡା ସାରୁ ଗଛ; ୧୨ ମୁଣ୍ଡା

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଟାଇ' ନ ମିଳିଲେ ଗାଈ' ଖୋଜିବେ; 'ମୂଢ଼' ନ ମିଳିଲେ 'ମୃଢ଼' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଆଗ୍ୟାଁ' ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ହଳଦ ଗଛ । ) ପ୍ରାଦେ. ବି—୧ । ( ସମ୍ବଲପୁର )— ପାହାଡ଼ରୁ ଗଡ଼ିଆସିବା ବର୍ଷା ପାଣିକୁ ତଳ ପାଖରେ ଅଡ଼ି ବା ବନ୍ଧ ଦେଇ ଜମାଇ ରଖାଯିବା ଜଳାଶୟ, ଯହିଁରୁ ଖେତକୁ ପାଣି ମଡ଼ାଯାଏ—1. A tank formed by restraining rain water coming down a hill, by constructing a dam, which is utilised for irrigating fields. [ ଦ୍ର—ବୃହଦାକାର 'ମୁଣ୍ଡା'କୁ 'କଟା' ବୋଲଯାଏ । ଗୃହଅଡ଼େ ବନ୍ଧ ଦିଆ ଯାଇଥିବା ଜଳାଶୟକୁ 'ବନ୍ଧ' ବୋଲଯାଏ । ] ୨ । ( ପୁରୀ ଜିଲ୍ଲା)— ଖୁରୁଡ଼ି ଓ ଘାଟିଚ ନଡ଼ିଆ ପ୍ରଭୃତି ଛଡ଼ାଇବା ପାଇଁ ବ୍ୟବହୃତ ଏକପ୍ରକାର ଲମ୍ବ ମୁନିଆ ଅସ୍ତ୍ର (ଦ୍ର—ଏହା ଗୋଟିଏ ମୋଟ ଖୁଣ୍ଟିରେ ଭେଦଣ୍ଟ ହୋଇ ମଜ୍ଜ ହୋଇଥାଏ । ନଡ଼ିଆରୁ କତା ଛଡ଼ାଇଲାବେଳେ ଏ ଖୁଣ୍ଟିକୁ ଭୂମିରେ ପୋତି ସେହି ଭେଦଣ୍ଟ ମୁନଦ୍ୱାରା ନଡ଼ିଆର କତାକୁ ଭେଦକରି ଚାଡ଼ିଦେଲେ ନଡ଼ିଆରୁ କତା ଛାଡ଼ିଯାଏ । ) 2. A kind of pointed implement used to peel off the rind of a cocoanut. ୩

ମুণ্ডা **मुंडा** ( ଗଡ଼ଜାତ )—ଅନାର୍ଯ୍ୟ ଜାତିବିଶେଷ— 3. An aboriginal tribe. ( ଦ୍ର— ଏମାନେ ଓଡ଼ିଶାର ସମ୍ବଲପୁର ଓ ଗଡଜାତ ଅଞ୍ଚଳରେ ଏବଂ ବିହାରରେ ଓ ଭାରତର ଅନ୍ୟ କେତେକ ପାର୍ବତ୍ୟ ଅଞ୍ଚଳରେ ବାସ କରନ୍ତି । )

মুণ্ডারী ভাষা **मुंडारी** ୪ । (ଗଡ଼ଜାତ) ମୁଣ୍ଡାମାନଙ୍କ କଥିତ ଅନାର୍ଯ୍ୟ ଭାଷା ବିଶେଷ—4. A language of the aborigines called Muṇḍā inhabiting the Oriya states. ୫ । (ସିଂହଭୂମି) ଗ୍ରାମର ପ୍ରଧାନ ପୁରୁଷ; ପଧାନ; କୋଲମାନଙ୍କ ସର୍ଦ୍ଦାର—5. The headman of a village; a village headmen amongst the Kols. ୬। (ଗଡ଼ଜାତ)—ଧାନ ଗଛର ରୋଗ ବିଶେଷ—6. A disease affecting paddy plants. [ଦ୍ର - ଏଥିରେ ଧାନ ଗଛର ତେର ଭୂମି ଉପରକୁ ମାଡ଼େ ନାହିଁ; କମ୍ପା ଧାନ ଗଛର ଉପର ଅଂଶ କୁଆଁ ହଏ ନାହିଁ, କି ବଢ଼େ ନାହିଁ ।]

୭ । (ବାଲେଶ୍ୱର)— ଗୁଡ଼ି କାଗଜ ଦେହରେ ଉପରୁ ତଳକୁ ଲଗା ହୋଇଥିବା କାଠି ବା ବାଉଁଶ ପାତିଆ— 7. The rib of a paper kite. ୮ । ( ବାମଣ୍ଡା )— ଶାରଦ ଜମି—8. Land fit for Śārada cultivation. ଦେ.ବିଶେ—୧। ଦନ୍ତୁରୁ; ଧାର ନ ଥିବା (ଅସ୍ତ୍ର)—1. Blunt; dull ( weapon ).

ভোঁতা **मुंडा** ୨ । (ପୁଂ) ଯାହାର ସ୍ତ୍ରୀ ଓ ସନ୍ତାନାଦି ମରି ଅଛନ୍ତି— নির্বংশ **हरमुडहा** 2. A person who has lost his wife and children. ୩ । (ସଂ. ମୂଢ଼; ପୁଂ)— ଜଡ଼, ବିଅ; ସ୍ଥୂଳବୁଦ୍ଧି—3 Dunce; dull. ୪ ।

বোকা **मूड** (ପୁଂ) ମୁଣ୍ଡଯୁକ୍ତ (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା, ମଳ ମୁଣ୍ଡା; ଉକୁଣିମୁଣ୍ଡା)—4. (Used with other মাথা বালা **मुण्ड वाला** words in a compound)— (ମୁଣ୍ଡେଇ,ମୁଣ୍ଡୀ—ସ୍ତ୍ରୀ) Headed (as in dirty-headed

ମୁଣ୍ଡା(ଣ୍ଡେ)ଇବା—ଦେ. କ୍ରି —(ସଂ. ମୁଣ୍ଡରୁ ଓଡ଼ିଆରେ ନାମ ଧାତୁ)— Muṇḍā(ṇḍe)ibā ୧ । ମୁଣ୍ଡଦ୍ୱାରା ବୋଝ ନେବା— মাথায় করা **शिरपर लेना** 1. To carry a load on the head. (ଉ—ସୁରବ ନରଚେ, ପ୍ରଜା ପୁଞ୍ଜ ରୁଣ ଭୃତ, (ମୁଣ୍ଡିଆଇବା—ଅନ୍ୟରୂପ) ମୁଣ୍ଡାଇଛ ମୁଣ୍ଡେ ରାଜମୁକୁଟର ବ୍ୟାଜେ । মাথা ঠোকান ରାଧାନାଥ. ମହାଯାତ୍ରା ।) ୨ । ମୁଣ୍ଡଦ୍ୱାରା ଆଘାତ **शिरसे मारना** କରିବା; ମୁଣ୍ଡିଆ ମାରିବା—2. To strike by butting the head. ୩ । ପ୍ରସବ ହେବାର ଅବ୍ୟବହିତ ପୂର୍ବରୁ ଗର୍ଭସ୍ଥ ଶିଶୁର ମସ୍ତକ ପ୍ରସବ ଦ୍ୱାରକୁ ଆସିବା মাথা ঠোকা 3. To approach the vaginal aperture **मुण्डा निकलना** with the head first (said of a child just before being born. ) ୪ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ପୂଜା କରିବା ବା ସମ୍ମାନ ଦେଖାଇବା—4. (figurative) To worship a person. ୫ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିବା—5. (figurative) To take the responsibility for doing a thing upon one's head; to undertake. [ଦ୍ର—ଦାୟିତ୍ୱ ମୁଣ୍ଡାଇବା, ଦୋଷ ମୁଣ୍ଡାଇବା ।] ୬ । ( ଲକ୍ଷଣାର୍ଥ ) ସଂକ୍ରାନ୍ତି, ଅମାବାସ୍ୟା ପୂର୍ଣ୍ଣିମା ଆଦି ତିଥିର ଠିକ୍ ପୂର୍ବେ କୌଣସି ସ୍ଥାନକୁ ଯିବା ବା ଆସିବା—6. (figurative) To start while certain inauspicious tithi or day or time is near at hand. ( ଦ୍ର—ଶାସ୍ତ୍ର-

মুড়ান ଘରକୁ ସଂକ୍ରାନ୍ତି ମୁଣ୍ଡାଇ କରି ଗଲେ ଅମଙ୍ଗଳ ଘଟେ ।) **मुँडान** ୭ । ( ସଂ. ମୁଣ୍ଡନ)—ଭଣ୍ଡାରୀଦ୍ୱାରା କ୍ଷୌର ହେବା— 7. To have one's head shaven by a barber. (ଉ—'ମନ ନ ମୁଣ୍ଡାଏ ମୁଣ୍ଡାଏ କେଶ । ଇତ୍ୟାଦି । 'କୋପେ କୁମର ବଚନ ପ୍ରକାଶ, ଆଜ ତୋହର ମୁଣ୍ଡାଇବି କେଶ । ପ୍ରାଚୀ. ପ୍ରତାପ ଶଶୀରେଖା ।)

ମୁଣ୍ଡା କଲମ— ଦେ. ବି — ଦନ୍ତୁରୁ କଲମ; ଯେଉଁ କଲମର ମୁନ ଘୋରି Muṇḍā kalama ହୋଇ ଯାଇଥାଏ—Blunt pen.
মুঁড়ো (ভোঁতা) কলম **मुंडा कलम**

ମୁଣ୍ଡା କାଠି— ପ୍ରାଦେ, ( ବାଲେଶ୍ୱର ) ବି—ଗୁଡ଼ି କାଗଜର ଦେହରେ Muṇḍā kāṭhi ଉପରୁ ତଳକୁ ଲଗା ହୋଇଥିବା କାଠି ବା

(ମୁଣ୍ଡା—ଅନ୍ୟରୂପ) ବାଉଁଶ ପାତିଆ—Thin rib of bamboo or wood attached to a kite.

ମୁଣ୍ଡା କୋଡ଼—ଦେ. ବି—ଦନ୍ତୁରା କୋଡ଼—A blunt spade. Muṇḍā koṛd [ଦ୍ର—ଏହିପରି ମୁଣ୍ଡା ପନିକି, ମୁଣ୍ଡା କାଙ୍କ, ভোঁতা কোদাল ମୁଣ୍ଡା କଟୁରି, ମୁଣ୍ଡା ଲୁହରି; ମୁଣ୍ଡା ପାନିଆ ଆଦି मुंडा कुदाली ଶବ୍ଦ ହୁଏ ।]

ମୁଣ୍ଡା ଗଡ଼ି—ଦେ. ବି—ଶାଖା ଆଦି ଛେଦା ହୋଇଥିବା ବୃକ୍ଷର ଗଣ୍ଡି— Muṇḍā gaṛdi The trunk of a tree whose গড় branches have been lopped off; a big कुन्दा log of wood. (ଉ—ଅର୍ଜୁନ କାଣ୍ଡେ ମୁଣ୍ଡ ଛେଦା ଗଣ୍ଡି ପଡ଼ି, ଜନା କଲେ ଧାଣି ଥୋଇବା ମୁଣ୍ଡା ଗଡ଼ି । କୃଷ୍ଣସିଂହ. ମହାଭାରତ. ବନ୍ଧ ।)

ମୁଣ୍ଡା ଗାଗର—ଦେ. ବି. (ସ. ମୁଣ୍ଡ+ଗର୍ଗର)—ମୁଣ୍ଡରେ ଖଣ୍ଡା ପରି Muṇḍā gāgara ଧାରୁଆ କଣ୍ଟା ନ ଥିବା ଗାଗର ମାଛ— গাগর गागर A kind of fish without a long and sharp snout. (ଉ—ନଈ ଘାଟରେ ଯାଉଥିଲ ମୁହିଁ, ମାଉଲି ମୁଣ୍ଡା ଗାଗର, ବୋଉକୁ କହିବ କାନ୍ଦିବେ ନାହିଁ, କୋଳିଚ ଗୁଣ ସାଗର—ଗୀତ ।)

ମୁଣ୍ଡା ଚେକ୍—ଦେ. ବି—ଦୁଇ ଭାଗ ପ୍ରସ୍ତୁତ ଏକ କଥା ଛପା ହୋଇଥିବା Muṇḍā chek ଚେକ୍ ପାଉତି ଆଦି କାଗଜର ଖେଷ ଅଂଶମାନ মুঁড়ো চেক ବାହାରିବା ପରେ ମୂଳର ଯେଉଁ ଅଂଶ ରହିଯାଏ— अध कट्टी The counterfoil of duplicate cheques (ମୁଣ୍ଡା ରସିଦ—ଅନ୍ୟରୂପ) or receipts.

ମୁଣ୍ଡା ଛତୁ—ପ୍ରାଦେ. (ବାଲେଶ୍ୱର) ବି—ମଣ୍ଡା ଛତୁ (ଦେଖ) Muṇḍā chhatu Maṇḍā chhatu (See)

ମୁଣ୍ଡା ଛାଞ୍ଚୁଣି—ଦେ. ବି—ଯେଉଁ ଛାଞ୍ଚୁଣୀ ବହୁକାଳ ବ୍ୟବହୃତ ହେବା Muṇḍā chhāñchuṇi ଦ୍ୱାରା ତହିଁର ଅଗମାନ କ୍ଷୟପ୍ରାପ୍ତ ହୋଇ (ମୁଣ୍ଡା ଝାଡ଼ୁ—ଅନ୍ୟରୂପ) ଅଛି—A worn out mop. মুড়া ঝাঁটা मुंडा झाड़ू

ମୁଣ୍ଡା ଠା—ଦେ. ବି—ଖାଇବା ପାଇଁ ପତର ବା ପାତ୍ର ରଖାଯିବା ସ୍ଥାନରେ Muṇḍā thā ମୁରୁଜ ଦ୍ୱାରା 'ଠାଅ' ହୋଇ ନ ଥିବା ଅବସ୍ଥା— बिना अहिपनका टा The absence of a drawing on (ମୁଣ୍ଡା ଠାଅ—ଅନ୍ୟରୂପ) the ground (with white powder) on which the plate is kept for taking meal. [ଦ୍ର—ମୁରୁଜରେ 'ଠାଅ' ଚିତ୍ର ନ କରି କୌଣସି ବ୍ୟକ୍ତିକୁ ଖାଇବାକୁ ଦେଲେ ମାଇପେ କହନ୍ତି ତାକୁ ମୁଣ୍ଡା ଠାଅରେ ଖାଇବାକୁ ଦେଲୁ !]

ମୁଣ୍ଡା ନ(ଲ)ଇ—ଦେ. ବି—ଏକ ଜାତୀୟ ବନ୍ୟ ଲତା—Elephant Muṇḍā na(la)i creeper; Argyrica Speciosa. समन्दर सोक् [ଦ୍ର—ଏହା ମୋଟା କାଠିଯୁକ୍ତ ଏବଂ ଏହାର ଫୁଲ ଅତି ସୁନ୍ଦର ଦିଶେ ।]

ମୁଣ୍ଡା ପଥର—ଦେ. ବି—ବଡ଼ ଗୋଟା ପଥର; ବଡ଼ ପଥର ଖଣ୍ଡ— Muṇḍā pathara A big block of stone. বড় পাথর मुंडा पत्थर

ମୁଣ୍ଡା ପହଁରା—ଦେ. ବି—ଯେଉଁ ବଢ଼ଣୀ ମୂଠା ବହୁକାଳ ବ୍ୟବହୃତ Muṇḍā pahaṅrā ହେବା ଦ୍ୱାରା ତହିଁର ଅଗ କ୍ଷୟପ୍ରାପ୍ତ ମୁଣ୍ଡା ବଢ଼ଣୀ } —ଅନ୍ୟରୂପ ହୋଇଅଛି—A worn out ମୁଣ୍ଡ ପହଁରା ମୂଠା broomstick. মুড়া ঝাঁটা मुंडा झाड़ू

ମୁଣ୍ଡା ବସା(ସେ)ଇବା—ପ୍ରାଦେ. ( ବାଲେଶ୍ୱର ) କ୍ରି—ମୁଣ୍ଡା କାଠିକି Muṇḍā basā(se)ibā ଗୁଡ଼ିର ଯଥାସ୍ଥାନରେ ଅଠା ଲଗାଇ ବସାଇବା—To set the Muṇḍā Kāṭhi with gum in on a paper kite.

ମୁଣ୍ଡା ବେଶର—ଦେ. ବି—ଯେଉଁ ବେଶର ତିଆରିରେ ମାଛର Muṇ ā besara ଖଣ୍ଡମାନ ମୁଣ୍ଡା ମୁଣ୍ଡା ହୋଇ ରହି মুড়ি ঘণ্ট ଥାଏ—Fish curry with lumps of fish intact [ଦ୍ର—ଏହିପରି ମୁଣ୍ଡା ମହୁର ଶବ୍ଦ ମଧ୍ୟ ହୁଏ ।]

ମୁଣ୍ଡାଭାରୀ—ପ୍ରାଦେ. (ବାଲେଶ୍ୱର) ବିଣ—ଉପର ମୁଣ୍ଡ ତଳ ମୁଣ୍ଡ ଠାରୁ Muṇḍābhārī ଅତିରିକ୍ତ ରୂପେ ଭାରୀ ହୋଇଥିବା (ଗୁଡ଼ି)— (a kite) Having the upper end excessively heavier than the lower end. [ଦ୍ର—ସାଧାରଣତଃ ଗୁଡ଼ିର ଉପର ମୁଣ୍ଡ ତଳ ମୁଣ୍ଡ ଠାରୁ କିଛି ସ୍ଥୂଳ ଏବଂ ଭାରୀ ଥାଏ । କିନ୍ତୁ ସମୟ ସମୟରେ ଏହି ସ୍ଥୂଳତାର ଏବଂ ଭାରର ପରିମାଣ ଖୁବ୍ ବେଶୀ ହୋଇଯାଏ ଓ ଗୁଡ଼ିର ଉପର ଅଡ଼ ତଳଅଡ଼ ଅପେକ୍ଷା ଓଜନରେ ବେଶୀ ହୋଇପଡ଼େ । ଫଳରେ ଉକ୍ତ ଗୁଡ଼ିକୁ ଉଡ଼ାଇଲାବେଳେ ତାର ମୁଣ୍ଡ ସବୁବେଳେ ତଳ ଅଡ଼କୁ ହୋଇ ରହେ ଗୁଡ଼ି ଜମିରେ ଏହା ଗୋଟିଏ ତ୍ରୁଟି ।]

ମୁଣ୍ଡାଭାଷା ପୁଞ୍ଜ—ଦେ. ବି—ଖେର୍ୱାରି (ଦେଖ)— Muṇḍābhāshā puñja Kher-wari (see)

ମୁଣ୍ଡା ମଗର—ଦେ. ବି—(ସ. ମୁଣ୍ଡ+ମକର)—ଯେଉଁ ମଗର ମାଛର Muṇḍa magara ମୁଣ୍ଡରେ ଖଣ୍ଡା ନ ଥାଏ; ହାଙ୍ଗର— (ବିପରୀତ—ଖଣ୍ଡାମଗର) Shark.

ମୁଣ୍ଡା ମଅ(ହ)ଣ—ଦେ. ବି—ଅମଣିଆ ବାମୁହଁଙ୍କ ବେକରେ ଗୋଟିଏ ଭାରି Muṇḍā ma-a(ha)ṇa କାଠ ମୁଣ୍ଡିଆ ଝୁଲାଇ ମଣ କରିବା ପ୍ରଥା— (ମୁଣ୍ଡାମଣ—ଅନ୍ୟରୂପ) Breaking or training of an untrained young bullock by suspending a heavy log of wood from its neck. [ଦ୍ର—ଏପରି ମଣ କଲେ ବାମୁହଁ ଉପରକୁ ମୁଣ୍ଡ ଟେକି ଶୁଲିବାରେ ଅଭ୍ୟସ୍ତ ହୁଏ ।)

ମୁଣ୍ଡା ମାଉଁସ—ଦେ. ବି—ମାଂସର ବଡ଼ ଖଣ୍ଡ—A big lump of Muṇḍā mauṅsa meat. [ଦ୍ର—ଏହିପରି ମୁଣ୍ଡା ମାଛ ବା মাংসের খণ্ড मांसकी बुट्टी (ମାଉଁସ ମୁଣ୍ଡା-ଅନ୍ୟରୂପ) ମାଛମୁଣ୍ଡା ହୁଏ ।]

ମୁଣ୍ଡା ମୁଣ୍ଡା—ଦେ. ବି—ଖାଇବାକୁ ମିଳିବା ମାଛ ବା ମାଂସର ବଡ଼ ବଡ଼ା Muṇḍā muṇḍā ଖଣ୍ଡ ବା ମୁଣ୍ଡା—Big lumps of fish খণ্ড খণ্ড and flesh which one gets at his meal. ढेरकाढेर

**ମୁଣ୍ଡାମୁଣ୍ଡି**—ଦେ. ବି—୧ । ପ୍ରାନ୍ତ; ଶେଷ—1. Extremity; Muṇḍāmuṇḍi end. ୨ । କ୍ଲାନ୍ତିଜନିତ ଅବସ୍ଥା—2. State of শেষ exhaustion. ୩ । ନିର୍ଦ୍ଦିଷ୍ଟ ସମୟର ଶେଷ—3. The शेष, सीमा end or limit of a time fixed

**ମୁଣ୍ଡାମୁଣ୍ଡି କରିବା**—ଦେ. କ୍ରି.—କୌଣସି ପଦାର୍ଥକୁ ମୁଣ୍ଡରେ ବୋହି-Muṇḍāmuṇḍi karibā ନେବା—To carry a thing মাথায় করা शिरपर लेना on the head (ମୁଣ୍ଡିଆମୁଣ୍ଡି କରିବା—ଅନ୍ୟରୂପ)

**ମୁଣ୍ଡାୟସ**—ସଂ. ବି (ମୁଣ୍ଡ+ଅୟସ୍+ଅ)—ଲୌହ (ବ ଶବ୍ଦକୋଷ)—Muṇḍāyasa Iron.

**ମୁଣ୍ଡା ରକତ**—ଦେ. ବି.—ବସି ଯାଇଥିବା ରକ୍ତର ଖଣ୍ଡମାନ—Clots Muṇḍā rakata of blood (ମୁଣ୍ଡାରକ୍ତ—ଅନ୍ୟରୂପ) রক্তের চাপ थेमहा, थक्का

**ମୁଣ୍ଡାରି**—ଦେ. ବି—୧ । ଗଡ଼ଜାତର ଅନାର୍ଯ୍ୟ ଜାତିବିଶେଷ—Muṇḍāri 1. Name of an aboriginal tribe. মুণ্ডারী ୨ । ଅନାର୍ଯ୍ୟ ମୁଣ୍ଡାମାନଙ୍କ ଭାଷା—2. The spoken मुण्डारी language of the Muṇḍas. [ଦ୍ର—ଭାଷାକୋଷ ପ୍ରଥମ ଭାଗ ଇଂରାଜି ଅବତରଣିକା ଦ୍ରଷ୍ଟବ୍ୟ; ଏହା ଅଷ୍ଟ୍ରିକ ଭାଷା ଅଟେ ।]

**ମୁଣ୍ଡା(ଣ୍ଡୁ)ଳି**—ଦେ. ବି—(ସଂ. ମୁଣ୍ଡ)—୧ । ଅଗ୍ରଭାଗ—1. The Muṇḍā(ṇḍu)ḷi end (of anything). (ଭୁ—ଶେଣୀ শেষভাগ, মাথা ମୁଣ୍ଡାଳମାନ ଶମ୍ଭୁଙ୍କ ନିକଟ ଅଙ୍ଗୁଳ ଲେଖାଁଏ मुंडालि, मुंडेरा ଥିବ । ଭଗବନ୍ତ୍ ପ୍ରାଚୀନ ଉତ୍କଳ.) ୨ । ଇଟା ପାଚେରିର ଅଗରେ ଦିଆଯାଇଥିବା (କାନ୍ଥଠାରୁ ଓସାରିଆ) ବେଢ଼—2. The top of a parapet (which is thicker than the main wall). ପ୍ରାଦେ. (ବାଲେଶ୍ୱର) ବି—୧ । କାନ୍ଥର ସର୍ବୋଚ୍ଚ ଅଂଶ—1. The highest part or summit of a wall. ୨ । କୌଣସି ପଦାର୍ଥର ସବୁଠାରୁ ଉପର ଅଂଶ ବା ଶେଷ ଭାଗ—2. The uppermost part or top of anything. ୩ । ପ୍ରାଦେ. (ପୁରୀ ଜିଲ୍ଲା) ବି—ଶୁଖିଲା ନଡ଼ିଆ ଛଡ଼ାଇବାରେ ବ୍ୟବହୃତ ଏକ ପ୍ରକାର ଅସ୍ତ୍ର; ମୁଣ୍ଡା—3. A pike to peel off the rinds of dried cocoanuts.

**ମୁଣ୍ଡାଳି ଛୁଇଁବା**—ପ୍ରାଦେ (ବାଲେଶ୍ୱର) କ୍ରି.—(କୌଣସି କାର୍ଯ୍ୟର) Muṇḍāḷi chhuiñbā ଶେଷରେ ପହଞ୍ଚିବା—To approach to or arrive at the end of a work. (ମୁଣ୍ଡାଳି ଧରିବା—ଅନ୍ୟରୂପ)

ମୁଣ୍ଡାଳି ଛୁଆଁଇବା (ଛୁଆଁଇବା) }
ମୁଣ୍ଡାଳି ଧରା(ରେ)ଇବା } —ଣିଜନ୍ତ ରୂପ

**ମୁଣ୍ଡା ଲେଖନ**—ଦେ.ବି.—(ସଂ. ମୁଣ୍ଡ ଓ ଲେଖନୀ)-ଯେଉଁ ଲୁହାକଲମର Muṇḍā lekhana ମୁନ ବନ୍ଦନ୍ଥିବ ହୋଇ ଯାଇଥାଏ—An মুড়ো(ভোতা)লেখন iron pen with its point blunted. मुंडाकलम

**ମୁଣ୍ଡା ସାରୁ**—ଦେ. ବି.—୧ । ସାରୁ ଗଛର ମୂଳରେ ଥିବା ଗୋଳଡ଼—Muṇḍā sāru 1. The bulb at the root of an বড়কচু মুখী arum plant. ୨ । ଗିଣ୍ଡାଳିଆ ସାରୁ ବିଶେଷ—अरुई 2. Bulbous arum.

**ମୁଣ୍ଡା ସିଜୁ**—ଦେ. ବି—ତିନକୋଣିଆ ସିଜୁ—Muṇḍā sijhu Three cornered euphorbia; Euphorbia Antiquorum. তিশিরা মনসা तिकांटा सेहुंड

**ମୁଣ୍ଡି**—ଦେ. ବି—(ସଂ. ମୁଣ୍ଡ)—୧ । ଯଷ୍ଟି ଆଦିର ଅଗ୍ରଭାଗ—Muṇḍi মাথা; ডগা सिरा 1. The top of a stick. ୨ । ସ୍ତନର ଅଗ୍ରଭାଗ; ଭୁଣ୍ଡି; ଚୁଚୁକ—2. Nipple of the female breast. ୩ । ମୁଣ୍ଡିତିକା (ଦେଖ)—3. A medicinal plant; Muṇḍitikā (See) ঢেংগ ठूठ ୪ । ମୂଳରୁ କଟା ହୋଇଥିବା ଶାଖାବିହୀନ (ଶାଳ ପିଆଶାଳ ଆଦି କାଠର ଗଣ୍ଡି—4. The branchless trunk of a tree cut at the ground-level. ୫ । କାଠର ବଡ଼ ମुंड ଗଡ଼—5 A log of timber. ୬ । ବାଇଗଣ ଓ କାକୁଡ଼ି ଆଦି ଫଳର ବୃନ୍ତ ସଲଗ୍ନ ଅଂଶ—6. The part of a brinjāl or cucumber which adjoins the stalk. ୭ । ଦେଉଳର ଅଗ୍ରଭାଗ—7. The top of a temple. ପ୍ରାଦେ. (ସମ୍ବଲପୁର) ବି—କେଳି କଦମ୍ବ ଗଛ—A kind of tree; Stephygyne Parvifolia; Nauclia Parvifolia.

**ମୁଣ୍ଡିଆ**—ଦେ. ବି—(ସଂ. ମୁଣ୍ଡ)—୧ । ମୁଣ୍ଡଦ୍ୱାରା ଆଘାତ—1. A Muṇḍiā butting given by the head; a stroke তাল ঠোকা टेकरा, टक्कर given by the head মাথাঠুকে প্রণাম ୨ । ଭୂମିରେ ମୁଣ୍ଡ ଲଗାଇ ନମସ୍କାର—2. सिर टेकना Obeisance made by touching the ছোট পাহাড় head on the ground. ୩ । ବୃକ୍ଷଶୂନ୍ୟ टीला, पहाडी କ୍ଷୁଦ୍ର ପାହାଡ଼—3. Treeless hill; hillock. কাঠের গুঁড়ি ୪ । କାଠର ବଡ଼ ମୁଣ୍ଡା—গোল 4. A big log of wood. ୫ । ପଥରର ମୁଣ୍ଡା—বড় খণ্ড 5. A big piece of stone. ଦେ. ବିଣ. ପୁଂ—মিল, ढेंग ମୁଣ୍ଡଯୁକ୍ତ—Headed. (ଯଥା—ଦଳ ମୁଣ୍ଡିଆ, ଓ ମୁଣ୍ଡିଆ ।)

**ମୁଣ୍ଡିଆ କୋରୁଆଁ**—ଦେ. ବି—ଏକପ୍ରକାର କୋରୁଆ ଗୁଳ୍ମ—Muṇḍiā koruāñ Holarrhena Antidysenterica (plant) (କୋରୁଆ ତଳେ କୋନ୍ ଦେଖ)

**ମୁଣ୍ଡିଆ ପକା(କେ)ଇବା**—ଦେ. କ୍ରି—୧ । ଭୂମିରେ ମୁଣ୍ଡ ଲଗାଇ ପ୍ରଣାମ Muṇḍiā pakā(ke)ibā କରିବା—1. To bow to মাথাঠুকেপ্রণমকরা माथाटेकना a person or Deity (ମୁଣ୍ଡିଆ ମାରିବା—ଅନ୍ୟରୂପ) by touching the ground with the head. ୨ । ମୁଣ୍ଡଦ୍ୱାରା ଆଘାତ କରିବା—2 To butt with the head.

**ମୁଣ୍ଡିଅଲ**—ଗ୍ରାଦେ. ( କଟକ ଜିଲ୍ଲା ) ବି—୧ । ଗାଆଁ ସର୍ଦ୍ଦାର—
Mundiāla 1. Headman of the village.
ମୋଡ଼ଲ ୨ । ଶ୍ରେଷ୍ଠ ବ୍ୟକ୍ତି—2. A man of position or
**मुखिया, मरर** of high respectabitily.
୩ । ନେତା—3. Leader.

**ମୁଣ୍ଡି କରଣ୍ଡି**—ଗ୍ରାଦେ. (ବାଲେଶ୍ୱର) ବି—ପିତା କରଣ୍ଡି ( ଦେଖ )
Mundi karāndi Pitā karāndi ( See )

**ମୁଣ୍ଡିକା** —ଦେ. ବି. (ସଂ ମୁଣ୍ଡିତିକା )—ବହୁଆଗୁଡ଼ ଶାଗ; ମୋଡ଼ା ଛୁଇଁ
Mundikā ( ଦେଖ )—Sphaeranthus Indicus;
(ମୁଣ୍ଡି ମୁଣ୍ଡିକା—ଅନ୍ୟରୂପ) Mordā chhuiñ ( See )
ସଂ. ନାମ—ଅରୁଣା, ଅଳମ୍ବୁଷା, କଦମ୍ବପୁଷ୍ପା, କୁଣ୍ଡଲା, ପଲଙ୍କଷା, ଭୂତଘ୍ନୀ, ମୁଣ୍ଡୀ, ଭନ୍ଧୁ, ଶ୍ରାବଣୀ, ତପୋଧନା, ଶ୍ରବଣାହ୍ୱା, ଶ୍ରବଣଶୀର୍ଷିକା, ମୁଣ୍ଡିତିକା, ମୁଣ୍ଡିରିକା,
**मुण्डिरी, मुरमुरिया, हाईल मूल**
**मुराडी**
ତା. କୋଟ୍ଟୁକ
ତେ. ବୋଡ଼ ସରପୁଟେକ୍କୁ
ମ. ବରସବୋଲି
ଗୁ. ମୁଣ୍ଡୀ, ଗୋରଖମୁଣ୍ଡୀ
[ବି—ଏହା ସୋମରାଜ୍ୟାଦି ବର୍ଗର ଉଦ୍ଭିଦ୍ । ବର୍ଷାରୁ ଶୀତଯାଏ ପ୍ରାୟ ସର୍ବତ୍ର ଓଦା ସ୍ଥାନରେ, ବିଶେଷ କରି ଧାନ କ୍ଷେତରେ ଜନ୍ମେ । ଏହା ଏକୋଉଦ୍ଭିଦ ଓ ଦଳୁଆ, ଫୁଲ ଗାଢ଼, ନାଲିଆ ଏବଂ ବର୍ତ୍ତୁଳ ଭୁଣ୍ଡି ଆକାର ବିଶିଷ୍ଟ । ଶୀତକାଳରେ ଏହା ଫୁଟେ । ଶୁଷ୍କ ମଞ୍ଜରୀ ଦେଖିବାକୁ ଛୋଟ ପଣସ-ଫଳ ପରି ଲମ୍ବ । ଗନ୍ଧ ଗନ୍ଧଯୁକ୍ତ । ଏଥିର ତେଲ ଔଷଧରେ ଲାଗେ । ଏହା କଟୁ କଷାୟ, ଉଷ୍ଣବୀର୍ଯ୍ୟ, ମଧୁର ରସ, ଲଘୁ ଓ ମେଧାଜନକ । ଏହା ଗଳଗଣ୍ଡ, ଅପଚୀ, ପ୍ଲୀହା, ଅରୁଚି, ମୂତ୍ରକୃଚ୍ଛ୍ର, କ୍ରିମି, ଯୋନି-ରୋଗ, ପାଣ୍ଡୁ, ଅପସ୍ମାର, ଶ୍ଳୀପଦ, ମେଦ ଓ ଗୃଧ୍ରସୀ ରୋଗ ନାଶକ ।]

**ମୁଣ୍ଡି କାକୁଡ଼ି**—ଦେ. ବି—ଏକ ଜାତୀୟ ଛୋଟ କାକୁଡ଼ି—A species of small cucumber.
Mundi kākurdi
ଛোট শশা **खीरा ककडी**

**ମୁଣ୍ଡି କାଠ**—ଦେ. ବି—ମୂଳରୁ ଛେଦିତ ହୋଇଥିବା ବଡ଼ ଗଛର ଶାଖାଶୂନ୍ୟ ଗଣ୍ଡି—A log [of wood (consisting of the branchless trunk of a big tree cut down from the ground-level.
Mundi kātha
কাঠের গড়(গুঁড়ি)
**काठका गोल**

**ମୁଣ୍ଡି ଖଡ଼ିକା**—ଦେ. ବି—ଯେଉଁ ସମ୍ମାର୍ଜନୀ ବହୁଦିନ ବ୍ୟବହୃତ ହେବାରୁ ତାହାର ଅଗ୍ରଭାଗ ଛିଣ୍ଡିଯାଇଥାଏ—A worn out broomstick.
Mundi khardikā
মুড়ো ঝাঁটা **मुंडा झाडु**
(ମୁଣ୍ଡି ଝାଡ଼ୁ, ମୁଣ୍ଡି ପହଁରା, ମୁଣ୍ଡି ପହଁରା ମୁଠା—ଅନ୍ୟରୂପ)

**ମୁଣ୍ଡି ଚଣା**—ଦେ. ବି. (ସଂ. ମୁଣ୍ଡ ଚଣକ)—ଏକପ୍ରକାର ଚଣା—
Mundi chanā A kind of pulse.
চনা **चना**

**ମୁଣ୍ଡି ଚ(ତ)ଷା**—ଦେ. ବି. ପୁଂ. (ବ୍ୟଙ୍ଗାର୍ଥ)—ଓଡ଼ଚଷା; କର୍ତ୍ତବ୍ୟ ଓ ଅସଭ୍ୟ ଚଷା—A foolish or stupid person of the cultivator class.
Mundi cha(ta)sā
(ମୁଣ୍ଡି ଚ[ତ]ଷୁଣୀ—ସ୍ତ୍ରୀ)
অজ চাষা **चाषा**

**ମୁଣ୍ଡି ଛଞ୍ଚୁଣୀ** - ଦେ. ବି—ବହୁକାଳ ବ୍ୟବହୃତ ହେବା ଯୋଗୁଁ ଯେଉଁ ଛଞ୍ଚୁଣୀର ଅଗ୍ରଭାଗ ଖସିଯାଇ ବା ଖାଇଁ ହୋଇ ଯାଇଥାଏ—A worn-out sweeping brush or mop.
Mundi chhānchuni
মুঁড়ো ঝাঁটা
**मुंडी बढनी**

**ମୁଣ୍ଡି ଠେଙ୍ଗା**—ଦେ. ବି—ବଡ଼ ମୁଣ୍ଡିଥିବା ଛୋଟ ଠେଙ୍ଗା; ଠେଙ୍ଗଣୀ—
Mundi thengā A cudgel with a big knob.
বড় মুখো লাঠি **मुंडी लठ्ठी**

**ମୁଣ୍ଡିତ**—ସଂ. ବିଣ. (ମୁଣ୍ଡ ଧାତୁ+କର୍ମ. କ୍ତ)—କ୍ଷୌର ହୋଇଥିବା—
Mundita Shaven. ସଂ. ବି—ଲୁହା—Iron.

**ମୁଣ୍ଡିତ କେଶ**—ସଂ. ବିଣ. ପୁଂ. ( ବହୁବ୍ରୀହି )—୧ । ଲଣ୍ଡା ମୁଣ୍ଡା—
Mundita kesa 1. Shaven-headed. ୨ । ଟାଙ୍ଗରା—2. Bald headed.
(ମୁଣ୍ଡିତ କେଶା, ମୁଣ୍ଡିତ ମୁଣ୍ଡା; ମୁଣ୍ଡିତ ଶିରସ୍କା[ମସ୍ତକା]—ସ୍ତ୍ରୀ)
(ମୁଣ୍ଡିତ ମୁଣ୍ଡ, ମୁଣ୍ଡିତ ଶିରଃ, ମୁଣ୍ଡିତ ଶିରସ୍କ—ଅନ୍ୟରୂପ)

**ମୁଣ୍ଡିତି(ରି)କା**—ସଂ. ବି—ମୁଣ୍ଡିକା ( ଦେଖ )
Munditi(ri)kā Mundikā ( See )

**ମୁଣ୍ଡିନୀ**—ସଂ. ବି—କସ୍ତୁରୀ ମୃଗ (ବ୍ରଜ କର୍ବଣ)—
Mundini Musk deer.

**ମୁଣ୍ଡିବା**—ଦେ. କ୍ରି ( ସଦ୍ୟ ) ( ସଂ. ମୁଣ୍ଡ ଧାତୁ )—୧ । ଗଛର ଉପରଭାଗରୁ ଶାଖା ପ୍ରଶାଖା କାଟିବା—1. To lop off the branches of a tree.
Mundibā
(গাছ)মুঁড়ান
**मुँडना** ୨ । ଅଗରୁ କର୍ତ୍ତନ କରିବା—1. To cut down from the top; to pair (the nails).
(ଭି—ଦାନ୍ତ ଘଷିଣ ନଖ ମୁଣ୍ଡି ସ୍ନାନ କର । କୃଷ୍ଣସିଂହ. ମହାଭାରତ. ବନ ।) ୩ । କ୍ଷୌର କରିବା—3. To shave.

**ମୁଣ୍ଡି ଭଉଁରି**—ଗ୍ରାଦେ. (ଯାଜପୁର) ବି—ଖେପା ଜାଲ—
Mundi bhauñri Casting net.

**ମୁଣ୍ଡି ମାରିବା**—ଦେ. କ୍ରି—୧ । (ଦେଉଳର) ଅଗ୍ରଭାଗରେ ଦାଢ ଥିବା କାର୍ଯ୍ୟକୁ ଶେଷ କରି ଦେଉଳ ଗଢ଼ା କାମର ସମାପ୍ତି କରିବା; ଦେଉଳକୁ ମୁଣ୍ଡିବା—1. To complete the construction of a temple by finishing the top; to set the coping stone to a temple. ୨ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ ଶେଷ କରିବା—2. (figurative) To complete a work; to give the finishing touch to a thing.
Mundi māribā
মাথা মারা
**ढकना**

**ମୁଣ୍ଡି ଶାଗ** —ଗ୍ରାଦେ. (ସମ୍ବଲପୁର) ବି—ଶୀତ ଋତୁରେ ଧାନ କଅଣ୍ଡା ମାନଙ୍କରେ ମନକୁ ଉଠିଥିବା ଏକ ପ୍ରକାର ଶାଗ; ମୁଣ୍ଡିକା (ଦେଖ)
Mundi Sāga —A kitchen herb growing in paddy fields in winter; Mundikā (See).

**ମୁଣ୍ଡି ଶାଳୁଅ**—ଦେ. ବି—ଶାଳୁଅ କାଠର ମୁଣ୍ଡି—
Mundi sālua A big log of Sāla timber
শালের গড়(গুঁড়ি) **साल लकडीका गोल**

ମୁଣ୍ଡି ଶିଳ(ଲ,ଳୁ)ପା—ଦେ. ବି. ( ସ. ମୁଣ୍ଡ+ଶିଳାପୁତ୍ର)—ବହୁକାଳ
Mundi sila(li,lu)pa ବ୍ୟବହାର ଯୋଗୁଁ କ୍ଷୟ ପାଇ ଯାଇଥିବା ଶିଳପୁଅ—
ଖୟା ନୁଡୀ A small pestling stone worn out by long use.

ମୁଣ୍ଡୀ—ସ. ବି. ପୁଂ. ( ମୁଣ୍ଡ+ଇନ୍; ଏମା. ୧ବ )—୧ । ଭଣ୍ଡାରୀ—
Mundi 1. Barber. ୨ । ମହାଦେବ—2. Siba. ୩ ।
(ମୁଣ୍ଡୀ—ପୁଂ) ମୁଣ୍ଡିକା (ଦେଖ)—3. Mundika (See)
ସ. ବିଣ. ପୁଂ—ମୁଣ୍ଡିତ କେଶ (ମହାଭାରତ)—With shaven head. ଦେ. ବିଣ. ସ୍ତ୍ରୀ—(ଅନ୍ୟ ଶବ୍ଦ ସଙ୍ଗେ
ଯୁକ୍ତ ହୋଇ ବ୍ୟବହୃତ ହୁଏ; ଯଥା—ହାକୁଣୀ ମୁଣ୍ଡୀ)—
ମୁଣ୍ଡ-ଯୁକ୍ତା—Head-ed (useded in compound).

ମୁଣ୍ଡୁଲା(ଳି)—ଦେ. ବି ( ସ. ମଣ୍ଡଳ )—୧ । ମଣ୍ଡଳାକାର ରେଖା;
Mundula(li) ବୃତ୍ତ—1. Circle. ୨ । ମଣ୍ଡଳାକାର ଚିତ୍ର—
ମণ্ডল मडल 2. Circular drawing. [ ଦ୍ର—
ପିଲାମାନେ ପ୍ରଥମେ ବିଦ୍ୟାରମ୍ଭ କରି ଖଡ଼ି ଛୁଇଁଲାବେଳେ
ବ୍ରହ୍ମା, ବିଷ୍ଣୁ, ମହେଶଙ୍କ ନାମ ଉଚ୍ଚାରଣ କରି ଭୂଇଁରେ
ତିନିଗୋଟି ମୁଣ୍ଡୁଲା କାଟନ୍ତି । ]

ମୁଣ୍ଡୁଲା(ଳି) ଜାଲ—ପ୍ରାଦେ. ( ବାଲେଶ୍ୱର ) ବି—ବେଢ଼ି ବା ଡୁଇ
Mundula(li) jala ହାତ ବ୍ୟାସ ବିଶିଷ୍ଟ ଗୋଟିଏ କାଠର ବା
ବାଉଁଶର ପରିଧି ସହିତ ସଂଯୁକ୍ତ ଟୁଡ଼ି ଚାଲିକଣେଷ—
A round net with a circular bamboo or wooden rim in the shape of a basket.
[ ଦ୍ର—ଛୋଟ ଛୋଟ ନାଳାମାନଙ୍କରେ ବହି ଯାଉଥିବା
ପାଣି ସୁଅରୁ ମାଛ ଛାଣିଲାପରି ଧରିବା ନିମନ୍ତେ ଏହି ଜାଲ
ବ୍ୟବହୃତ ହୁଏ । ]

ମୁଣ୍ଡେ(ଣ୍ଡୋ)ଇ—ଗ୍ରା. ବି ( ସ. ମଣ୍ଡପ )—ମଣ୍ଡପ—A raised
Munde(ndo)i roofed or unroofed platform.
মণ্ডপ मडवा [ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ସଂଯୁକ୍ତ ହୋଇ
ସାଧାରଣତଃ ଏହି ଶବ୍ଦଟିର ପ୍ରୟୋଗହୁଏ; ଯଥା—ଦୋଳ-
ମୁଣ୍ଡେଇ, ଧୂଳାମୁଣ୍ଡେଇ ଇତ୍ୟାଦି । ]

ମୁଣ୍ଡେଇବା—ଦେ· ବି ( 'ମୁଣ୍ଡ' ଶବ୍ଦରୁ ଉତ୍ପନ୍ନ ନାମ ଧାତୁ )—
Mundeiba ମୁଣ୍ଡାଇବା ( ଦେଖ )—Mundaiba ( See )

ମୁଣ୍ଢ—ଦେ. ବିଣ ( ସ. ମୁଢ଼ )—ମୁଣ୍ଡା; ବଙ୍କୁର; ଦ.ଭଜହତ—
Mundha Blunted. ପ୍ରାଦେ. ( ବାଲେଶ୍ୱର ) ବି—ମୁଣ୍ଡା ୪
ভোঁতা भोंतला,भुथरा ( ଦେଖ )—Munda 4 ( See )

ମୁଣ୍ଢିଆ—ପ୍ରାଦେ. (ବାଲେଶ୍ୱର) ବି—ଗଣ୍ଠିଯୁକ୍ତ କାଠର ଗଡ଼ ବା ଖଣ୍ଡ—
Mundhia Knotted log of wood or timber.
গেঁঠোগড় काठका गोल (सीला)

ମୁଣ୍ହୁଁ—ଦେ. କ୍ରି. ବିଣ—ମୁଣ୍ହୁଁହୁଁ ( ଦେଖ )
Munhun Munuhun ( See )

ମୁଣେ(ଣ୍ହୋ)ଇ—ଦେ. ବି—ମୁଣଇ ( ଦେଖ )
Munhe(nho)i Munai ( See )

ମୁତଫର୍କା—ବୈଦେ. ବିଣ ( ଜତରଥ ) ( ଅ. ମୁତଫରିକ୍—ଭିନ୍ନ, ପୃଥକ୍
Mut-pharka ପୃଥକ୍ )—୧ । ବିବିଧ; ନାନାଜାତୀୟ ବସ୍ତୁ-
মুৎফরকা मुतफरीका ମିଶ୍ରିତ—1. Miscellaneous; sundry;
( ମ ଉଫରକା—ଅନ୍ୟରୂପ ) motley; mixed. ୨ । ଅନା-
ବଶ୍ୟକ; ବାଜେ—2. Unimportant. ( ଦ୍ର—
ଅଦାଲତରେ ଚଳୁଥିବା ଅସଲ ମକଦ୍ଦମାରୁ ଉତ୍ପନ୍ନ ଫର୍କାକୁ
କୌଣସି ଅବାନ୍ତର ବିଷୟ ଯେବେ ବିବାଦ ବା ଦାବୀ
ଉପସ୍ଥାପିତ ହେଲେ ତାହାକୁ ସେହି ମୂଳ ମକଦ୍ଦମାରୁ
ମୁତଫର୍କା ମକଦ୍ଦମା କହନ୍ତି । )

ମୁତଫର୍କା ଖର୍ଚ୍ଚ(ର୍ଚ୍ଚା)—ବୈଦେ. ବି ( ଜତରଥ )—ଅନାବଶ୍ୟକ ବା
Mut-pharka kharchcha(rchcha) ବାଜେ ଖର୍ଚ୍ଚ; ପ୍ରୟୋ-
মুৎফরকা খরচা मुतफरीका खर्च ଜନାନ୍ତରକୁ ଖର୍ଚ୍ଚ—Extra or miscellaneous expenses.

ମୂତ—ଦେ. ବି ( ସ. ମୂତ୍ର )—୧ । ପ୍ରସ୍ରାବ—1. Urine. ( ଦ୍ର—
Muta କେବଳ ପଦ୍ମ ନାହିଁ କଣ୍ଠରେ ମଳ ମୂତ—କୃଷ୍ଣସିଂହ.
পেচ্ছাব, মূত ମହାଭାରତ. ଦ୍ରୋଣ । ) ୨ । ମୂତତ୍ୟାଗ—
मूत 2. Urination; pissing.

ମୁତଇ(ଏ, ୟ୍ନ)ନ୍(ନ)—ବୈଦେ. ବିଣ (ଜତରଥ) ( ଅ. ମୁତାୟନ୍ )—
Mutai(e, ya)n(ni) ୧ । କୌଣସି ବିଶେଷ କାର୍ଯ୍ୟ କରିବା
মুতায়েন, মোতাএন ପାଇଁ ନିଯୁକ୍ତ—1. Appointed or depu-
मुतायुन ted for a particular work. [ଦ୍ର—
ହରିସିଂ ଅପଣା ପଦରେ ମୁତୟନ ଥିବା ହାଲତ—ଫକୀର
ମୋହନ. ଛମାଣ ଆଠଗୁଣ୍ଠ । ] ୨ । କୌଣସି କର୍ମରେ
ସ୍ଥାୟୀଭାବରେ ନିଯୁକ୍ତ—2. Permanently appointed; belonging to the permanent staff or service.

ମୂତ ଗୁହ—ଦେ. ବି (ସମାହାର)—ମୂତ୍ର ଓ ବିଷ୍ଠା—Urine and
Muta guha গু মূত गुह मूत and night soil.

ମୂତ ନଳା—ଦେ. ବି—ଯେଉଁ ନାଳାରେ ଲୋକେ ପ୍ରସ୍ରାବ କରନ୍ତି—
Muta nala A gutter used as urinal; urinal.
পেচ্ছাবের নালা मूतनाली

ମୂତ ନାଳ—ଦେ. ବି ( ସ. ମୂତ୍ରନାଳୀ )—ପୁରୁଷର ଲିଙ୍ଗ—
Mutanali The urinary passage; the urethral
মূত্রনালী मूतनाली passage in the penis.

ମୂତ(ତୁ)ପୁଡ଼ା—ଦେ.ବି(ସ. ମୂତ୍ରପୁଟ)-୧ ମୂତ୍ରାଶୟ—1. Bladder.
Muta(tu)purda ପାନି ଭୁସକୀ मूतकी थैली ୨ । ଜରାୟୁରେ
पुरइन ଭ୍ରୂଣକୁ ଘେରି ରହିଥିବା ଜଳୀୟ ପଦାର୍ଥର ମୁଣା ବା ପତଳା
ପରଦା; ଝିଲ୍ଲୀ—2. Amnion; thin membrane or sack of watery substance surrounding the embreyo in the womb and which acts as a lubricant just before delivery. [ ଦ୍ର—ମନୁଷ୍ୟ ଶିଶୁର ପ୍ରସବ ପୂର୍ବେ ଏହି
ମୁଣା ଫାଟିଗଲେ ଜନ୍ମ ସୁଗମ ହୋଇଯାଏ । ସାଧାରଣତଃ

ମୁନ୍ଦୁରା ଗୁଡ଼ି—ଦେ୦ବି—ତଳେ କଷ୍ଟ ଯାଇଥିବା ମୁନ୍ଦୁରର ଗୁଡ଼ହୋଇ
Mundurā gurḍi ଥିବା ଅଂଶ—The part of a mat
মাদুরের গুটান অংশ खिनहरका लपेट remaining rolled up i.e. not spread out on the ground.

ମୁନ୍ଦୁରା ମସିଣା—ଦେ. ବି (ଯୌଗିକ ଶବ୍ଦ)—ତ୍ରୁଣନିର୍ମିତ ଶଯ୍ୟା—
Mundurā masinā Mat. [ଦ୍ର—ମନ୍ଦୁରା କୁଶରେ ବା
মাদুর खिनहरकीचटाई କେଉଁଦାରେ ବୁଣା ଓ ମୋଟା
ମସିଣା ତୃଣରେ ବୁଣା, ମସୃଣ ଓ ସରୁ ।

ମୁନ୍ଦ୍ରା—ପ୍ରାଦେ (ଗଞ୍ଜାମ) ବି—ମୁନ୍ଦୁରା (ଦେଖ)
Mundrā Mundurā (See)

ମୁନ୍ସ(ନ୍ସି,ନ୍ସେ)ଫ୍—ବୈଦେ. ବି—ମୁନସଫ (ଦେଖ)
Munsa(nsi, ns()ph Munasapha (See.)

ମୁନ୍ସ(ନ୍ସି)ଫି—ବୈଦେ. ବି—ମୁନସଫି (ଦେଖ)
Munsa(nsi)phi Munsaphi (See)

ମୁନ୍ସ(ନ୍ସେ)ରିମ—ବୈଦେ. ବି ( ସେଟଲ୍‌ମେଣ୍ଟରେ ବ୍ୟବହୃତ; ଅ)—
Munsa(nse)rim କଚେରୀରେ କାଗଜ ପତ୍ର ସଜାଡି ରଖିବାର
মুনসেরিম मुंसरीम ଭାରପ୍ରାପ୍ତ କର୍ମଚାରୀ—An officer in charge of the maintenance and arrangement of record.

ମୁନ୍ସି—ବୈଦେ. ବି—ମୁନସି ଦେଖ—
Munsi Munasi (See).

ମୁନ୍ସିପାଲ୍—ବୈଦେ. ବି—ମୁନସି ପାଲ (ଦେଖ)
Munsipāl Munasipāla (See)

ମୁନ୍ସିପାଲ(ଲି)ଟି—ବୈଦେ. ବି—ମ୍ୟୁନସିପାଲିଟି (ଦେଖ)
Munsipala(li)ṭi Myunasipāliṭi (See)

ମୁଫ୍‌ଲିସ—ବୈଦେ. ବି—ମୁଫ୍ଲିସ୍ (ଦେଖ)
Muph-lis Muphlis (See)

ମୁଫତ୍—ବୈଦେ. ବିଣ—( ଫା. ମୁଫ୍ତ )—ମୋଫତ୍; ମାଗଣା; ବିନା
Muphat ମୂଲ୍ୟରେ ପ୍ରାପ୍ତ—Got gratis; gratuitious
মোফত मुफ्त କ୍ରି. ବିଣ—ବିନା ମୂଲ୍ୟରେ—
Gratis; gratuitously.

ମୁଫତଖଉରା—ପ୍ରାଦେ. (ବାଲେଶ୍ୱର)-ବିଣ.—ଅପଦାର୍ଥ ଲୋକ—
Muphat khaurā Good for nothing (person).
(ମୁଫତ ଖଉରା ସ୍ତ୍ରୀ)

ମୁଫତଖୋର୍—ବୈଦେ.ବିଣ.ଓ ବି. (ଫା. ମୁଫ୍ତଖୋର୍)—ମାଗଣାଖିଆ;
Muphat khor ପରାନ୍ନଭୋଜୀ—Subsisting on food
মোফত খোর मुफतखोर got gratis; a hanger on
(ମୁଫତ୍‌ଖୋରିଆ—ଅନ୍ୟରୂପ)

ମୁଫତଖୋରି—ବୈଦେ. ବି—(ଫା.) ପରାନ୍ନ ଭୋଜନ; ପରାନ୍ନ ଭୋଜିତା
Muphat khorī Subsistence on the bounty of
মোফতখোরি मफ्तखोरी another. ବୈଦେ ବିଣ—ମୁଫତ-ଖୋର (ଦେଖ) Muphat khor (See)

ମୁଫ୍ତି—ବୈଦେ. ବି—(ଫା.)—୧ । ମୁସଲମାନ ସ୍ମୃତିଶାସ୍ତ୍ରଜ୍ଞ ବ୍ୟକ୍ତି;
Muphti ମୁସଲମାନ ଆଇନରେ ପଣ୍ଡିତ ବ୍ୟକ୍ତି; ଧର୍ମଶାସ୍ତ୍ରୀ-
1 A lawyer used in Mahomedan law ୨ । ମୁସଲମାନ ବ୍ୟବସ୍ଥାପକ—2. A Mahomedan law giver

ମୁଫ୍ଲିସ—ବୈଦେ. ବି—(ଅ). ମୁଫଲୀସ=ଦରିଦ୍ର)—୧ । ଦେବାଳିଆ
Muphlis 1. Insolvent ୨ । ଦରିଦ୍ର; ଦୀନ—2 Poor; indigent. ବି.—ଅବିବାହିତ ପୁରୁଷ—
A bachelor.

ମୁବଲକ୍(ଗ୍)—ବୈଦେ. ବି (କତ ହଅ)—(ଅ. ମୁବଲଗ୍)—ଟଙ୍କାର
Mubalak (g) ସମଷ୍ଟି—Total of sum of
মবলক money. ବିଣ.—ମୋଟରେ—In all, amouting
मुबलग to. କ୍ରି. ବିଣ.—ସର୍ବସୁଦ୍ଧା—Altogether; in all.
(ଉ—ଏ ଉନଚୋଟି ସମ୍ପତ୍ତିକୁ ମୁଁ ଆପଣଙ୍କ ହସ୍ତରେ ମୁବଲଗ ଟ ୧୦୦ରେ ବିକି କଲି) ।

ମୁବାର(ରି)କ୍—ବୈଦେ. ବିଣ.—(ଅ. ମୁବାରକ୍)—୧ । ଆଶିଷ ପ୍ରାପ୍ତ
Mubāra(ri)k 1. Blessed. ୨ । ସ୍ୱାଗତ—2. Wel-
মুবারক comed. ୩ । ସୁଖୀ—3. Happy. ୪ । ଶୁଭ—
दुबारक 4. Auspicious. ୫ । ମଙ୍ଗଳମୟ—Blissful.

ମୁମ୍‌କିନ୍—ବୈଦେ. ବିଣ. (ଅ) ସଂଭବ; ଯାହା ହୋଇପାରେ—Pos-
Mum-kin sible; practicable.

ମୁମ୍‌ତାଜମହଲ୍—ବୈଦେ.ବି (ନାମ)—ମୋଗଲ ସମ୍ରାଟ ସାହାଜାହାନଙ୍କ
Mum-tāj-mahal ପ୍ରିୟତମା ପତ୍ନୀ—The most beloved
মুমতাজমহল wife of the Moghul Emperor
दमताजमहल Sāhājāhān [ଦ୍ର—ସାହାଜାହାନ ଏହାଙ୍କ ସ୍ମୃତିରକ୍ଷାର୍ଥ ଆଗ୍ରାର ବିଶ୍ୱପ୍ରସିଦ୍ଧ ତାଜମହଲ ନାମକ ସମାଧି ମନ୍ଦିର ନିର୍ମାଣ କରାଇଥିଲେ, ଏ ନୁରଜାହାନଙ୍କର ଭାଇର କନ୍ୟା । ଜନ୍ମ ଖ୍ରୀ ୧୫୯୨—ମୃତ୍ୟୁ ୧୬୩୧ । ]

ମୁମାଦିଲା—ବୈଦେ. ବି—(ଜମିଦାରୀ ସୈରସ୍ତା । ଓଡ଼ିଶାର ୧୮୪୨ ସାଲ
Mumādilā ବନ୍ଦୋବସ୍ତରେ ବ୍ୟବହୃତ ଶବ୍ଦ ଅ. ମୁବାଦଲା)—
दवादिला ବଦଳ—Exchange. ବିଣ. ବଦଳ କରାଯାଇ-ଥିବା—Exchanged. (ଯଥା—ମୌଜେ ସିକେଷ୍ଟର, ପୁର ଖାରିଜ ମମାଦିଲା ମୌଜେ କମାପୁର, ୫ମାଣ, ଅର୍ଥାତ୍ କମାପୁର ମୌଜାରୁ ୫ ମାଣ ଜମି ସିକେଷ୍ଟର ପୁର ମଉଜାରୁ ବଦଳରେ ନିଆଯାଇ ତହିଁ ବଦଳରେ ସିକେଷ୍ଟରପୁର ମୌଜାରୁ କମାପୁର ମୌଜାକୁ ସେହିକି ଜମି ଦିଆଗଲା ।]

ମୁମୁକ୍ଷା—ସ. ବି.—(ମୁଚ୍ ଧାତୁ ତ୍ୟାଗ କରିବା+ଇଚ୍ଛାର୍ଥେ ସନ୍+ଅ+
Mumukshā ଆ)—୧ । ମୋକ୍ଷ କାମନା—1. Desire for salvation or liberation.—୨ । ମୁକ୍ତି ପାଇବାର ଇଚ୍ଛା—2. A wish for being released from a bond.

ମୁମୁକ୍ଷୁ—ସ. ବିଣ.—( ମୁଚ୍ ଧାତୁ+ସନ୍+କର୍ତ୍ତୃ. ଉ )—୧ । ମୋକ୍ଷ-
Mumukshu ଲାଭେଚ୍ଛୁ—1. Desirous of obtaining salvation. ୨ । ମୁକ୍ତି ପ୍ରାର୍ଥୀ—2. Desiring liberation. ୩ । ସଂସାର ବନ୍ଧନରୁ ବା ମାୟାବନ୍ଧନରୁ ମୁକ୍ତି ପାଇବା ନିମନ୍ତେ ଇଚ୍ଛୁକ—3. Desirous of emancipation from worldly ties.

୪ । ସଂସାର ବିରାଗୀ—4. Indifferent or apathetic to worldly concerns. ବି—୧ । ଯତି—1. Sage. ୨ । ସଂସାରତ୍ୟାଗୀ ସନ୍ନ୍ୟାସୀ—2. A devotee who has renounced the world.

ମୁମୁଚାନ—ସଂ. ବି.—( ମୁଚ ଧାତୁ+କର୍ତ୍ତୃ. ଅନ )—ମେଘ—Cloud.
Mumuchāna ସଂ. ବିଣ—୧ । ଯେ ମୁକ୍ତ ହୋଇଅଛି—1. Released. ୨ । ଯେ ମୋକ୍ଷ ଲାଭ କରିଅଛି—2. (One) Who has attained salvation.

ମୁମୂର୍ଷା—ସଂ. ବି.—(ମୃ ଧାତୁ=ମରିବା+ସନ୍+ଅ)—ମରଣ କାମନା; ମରିବାର ଇଚ୍ଛା—A desire to die.
Mumūrshā

ମୁମୂର୍ଷୁ—ସଂ. ବିଣ—(ମୃ ଧାତୁ+ସନ୍+କର୍ତ୍ତୃ.ଉ)—୧ । ମରଣକାମୀ—
Mumūrshu 1. Longing for death. ୨ । ଯାହାର ମୃତ୍ୟୁ ଆସନ୍ନ; ଆସନ୍ନମୃତ୍ୟୁ; ମରଣାପନ୍ନ—2. Dying; about to die.

ମୁୟେଁ—ପ୍ରାଦେ. (ଭଜି ଭାଷା) ସର୍ବନାମ—ମୁଁ; ଅମ୍ଭେ—I.
Muyeñ

ମୁର୍—ବୈଦେ. ବି—(ଇଂ. ମୁର୍, Moor)—୧ । ଆଫ୍ରିକାରୁ ଆସିଥିବା ଓ ସ୍ପେନ୍ ଆଦିକୁ ପ୍ରଥମେ ଆସିଥିବା ମୁସଲମାନ୍ ଧର୍ମାବଲମ୍ବୀ କୃଷ୍ଣକାୟ ଜାତି ବିଶେଷ—1. The Moors (a mixed dark-skinned race originally coming from Africa to Asia and Europe and who adopted the Mahomedan faith.
Mur
मूर मूर्
୨ । (ନାମ) ଜଣେ ବୈଦେଶିକ ସଂସ୍କୃତଜ୍ଞ ମହାପଣ୍ଡିତଙ୍କର ନାମ—2. The late Sanscrit scholar Mr. Muir; editor of original Sanskrit tracts in five volumes. [ଦ୍ର—ଏ କେତେ ଖଣ୍ଡ ମୂଳ ସଂସ୍କୃତ ଗ୍ରନ୍ଥ ୫ ଖଣ୍ଡ ବିରାଟ ଭାଗରେ ମୁଦ୍ରିତ ଓ ପ୍ରକାଶିତ କରିଥିଲେ । ]

ମୁର୍କି (ଇତ୍ୟାଦି)—ଦେ. କ୍ରି. ବିଣ ଓ ବିଣ—ମୁରୁକି ଇତ୍ୟାଦି (ଦେଖ)
Mur-ki (etc) Muruki etc (See). [ଉ—ଏ କଥା ଶୁଣି ଜଣ କେତେ ମୁହଁ ଚୁହାଁ ଚୁହିଁ ହୋଇ ମୁର୍କି ମୁର୍କି ହସିଥିଲେ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

ମୁରକୁଟିଆ(ୟା)—ଦେ. ବିଣ—ମୁରୁକୁଟିଆ(ୟା) (ଦେଖ)
Mur-kuṭiā(yā) Murukuṭiā(yā) (See).

ମୁର୍ଚ୍ଛା—ପ୍ରାଦେ. (ସମ୍ବଲପୁର) ବି—ମୂର୍ଚ୍ଛା; ମୋହ ଯିବା—Swoon.
Mur-chā ବୈଦେ. ବି—( ଫା. ମୋରଚ୍ )—ଧାତୁ ଅଙ୍ଗରେ ଲାଗିବା କଳଙ୍କି ବା ମଳ—Rust (on metals).
ମୋରଚା(ଚେ)
मोरचा

ମୁରଦାର (ଇତ୍ୟାଦି)—ଦେ. ବି—ମୁର୍ଦାର ଇତ୍ୟାଦି (ଦେଖ)
Mur-dāra (etc) Murdāra etc (See).

ମୁର୍ମୁରି—ପ୍ରାଦେ. (ଗଡ଼ଜାତ) ବି—ଏକ ପ୍ରକାର ଅଂଶୁପ୍ରଦ ଘାସ (ଏଥିରେ ଦଉଡ଼ା ତିଆରି ହୁଏ)—A kind of fibrous grass.
Mur-muri

ମୁର୍ମୁରିଆ(ୟା)—ପ୍ରାଦେ. (ଗଞ୍ଜାମ) ବି—(ସଂ. ମୁର୍ମୁର=ତୁଷାଗ୍ନି; ତପ୍ତ ପାଉଁଶ)—ପାଉଁଶ—Ashes.
Mur-muriā(yā)

ମୁର୍ମୁରି ପଟ—ପ୍ରାଦେ. ( ଗଡ଼ଜାତ ) ବି—ମୁର୍ମୁରିରୁ ବାହାର କରାଯିବା ଅଂଶୁ ବା ଛୋଟ—Fibre from Murmuri grass.
Mur-muri paṭa

ମୁର୍ (ଧାତୁ)—ସଂ. ଧାତୁ—୧ । ବେଷ୍ଟନ କରିବା—1. To encircle; to surround; to entwine. ୨ । ଏକତ୍ର ବାନ୍ଧିବା—2. To bind together. ୩ । ଭୁଜରେ ଧରିବା—3. To hold in an embrace; to hold tightly.
Mur (root)

ମୁର—ସଂ. ବି—୧ । ( ମୁର ଧାତୁ+ଭାବ. ଅ )—ବେଷ୍ଟନ—1. Surrounding. ୨ । କ୍ଲେଶ; ସନ୍ତାପ (ବ୍ରହ୍ମବୈବର୍ତ୍ତ ପୁରାଣ)—2. Trouble. ୩ । (+କର୍ତ୍ତୃ. ଅ) ଦୈତ୍ୟ ବିଶେଷ; [ଦ୍ର—ଏହାକୁ ବିଷ୍ଣୁ ନୃସିଂହ ଅବତାରରେ ବଧ କରିଥିଲେ ।] 3. Name of a demon killed by Bishṇu in one of his incarnations. [ଦ୍ର—ସାଧାରଣତଃ ଅମ୍ଭେମାନେ ବିଷ୍ଣୁଙ୍କର ଯେଉଁ ଦଶ ଅବତାର କଥା କହୁଥାଉଁ ସେଥିରେ ପଞ୍ଚମ ବା ନୃସିଂହ ଅବତାରରେ ବିଷ୍ଣୁ ହିରଣ୍ୟକଶିପୁକୁ ବଧ କରିଥିଲେ । କିନ୍ତୁ ଓଡ଼ିଆ ନୃସିଂହ ପୁରାଣ ନାମକ ଗ୍ରନ୍ଥରେ ବିଷ୍ଣୁ ନୃସିଂହ ଅବତାର ଗ୍ରହଣ କରି କୃଷ୍ଣବଲ୍ଲଭ ନାମକ ବ୍ରାହ୍ମଣ ରାଜାଙ୍କ ପୁତ୍ରରୂପେ ଜନ୍ମି ବ୍ରହ୍ମାଙ୍କ ଔରସରୁ ଅପ୍ସରା ଗର୍ଭଜାତ ମୁର ନାମକ ଅସୁରକୁ ବଧ କରିଥିବା ଲେଖା ଅଛି । ବାମନ ପୁରାଣ ୫୩ ୫୮ ଅଧ୍ୟାୟରେ ବିଷ୍ଣୁ ମୁର ନାମକ ଦୈତ୍ୟକୁ ବଧ କରିଥିବା ବିଷୟ ଲେଖା ଅଛି । ବ୍ରହ୍ମବୈବର୍ତ୍ତ ପୁରାଣ କୃଷ୍ଣଜନ୍ମଖଣ୍ଡ ୧୧୧ ଅଧ୍ୟାୟରେ ଲେଖା ଅଛି ଯେ ମୁର ଶବ୍ଦର ଅର୍ଥ କ୍ଲେଶ, ସନ୍ତାପ, କର୍ମୀଗଣଙ୍କ କର୍ମଭୋଗ ଓ ଦୈତ୍ୟବିଶେଷ । ଭଗବାନ ବିଷ୍ଣୁ ଏହି ସକଳର ବିନାଶକର୍ତ୍ତା ଥିବାରୁ ତାଙ୍କ ନାମ ମୁରାରି ( ବିଶ୍ୱକୋଷ ) । ଏହି ଅବତାରରେ ଅନନ୍ତରୂପରେ ଜନ୍ମିଥିବା ବିଷ୍ଣୁଙ୍କ ଭାଇ ମୁରାରି ଭାଇ ଦାରୁଣକୁ ବଧ କରିଥିଲେ ।]
Mura

ମୁରଗ୍ (ଗି)—ବୈଦେ. ବି (ଫା. ମୁରଗ୍=ପକ୍ଷୀ)—କୁକୁଡ଼ା—Cock; fowl.
Murag(gi) ମୋର୍ଗ मुरगा
( ମୁରଗୀ—ସ୍ତ୍ରୀ )

ମୁରଗଣ୍ଡ—ସଂ. ବି—ବର୍ଣ୍ଣିକ; କାଉବରୁଣ; ବରଣ୍ଡ—Pimple on the face.
Muragaṇḍa

ମୁରଙ୍ଗିକା—ସଂ. ବି—ମୂର୍ବା (ଦେଖ)
Muraṅgikā Mūrbā (See).

ମୁରଚ୍ଛା—ଦେ. ବି—ମୁରୁଛା ୨ (ଦେଖ)
Murachā Muruchchā (See).

ମୁରଜ—ସଂ. ବି (ମୁର=ବେଷ୍ଟନ+ଜନ ଧାତୁ=ଜାତ ହେବା+କର୍ତ୍ତୃ. ଯାହାର କାଠର ବେଷ୍ଟନରୁ ନିର୍ଗତ )—ବାଦ୍ୟ ଅ ବିଶେଷ; ମୃଦଙ୍ଗ; ପଖୋଜ—A kind of drum.
Muraja
( ଉ—ମୁରଜ ଡିଣ୍ଡିମ ଦୁନ୍ଦୁଭିରେ ମହାକମ୍ପାଯେ—ଇଓ.

ଲବଙ୍ଗବଙ୍ଗ ।) ୬ । ମୁରଜ ବନ୍ଧ ( ଦେଖ )— 2. Muraja bandha (See)

ମୁରଜ ବନ୍ଧ—ସଂ. ବି (ସ.-ଶ. ଟୀ.)—ମୁରଜ ବା ମୃଦଙ୍ଗ ଆକାରରେ Muraja bandha ସନ୍ନିବେଶିତ ଅକ୍ଷରସମ୍ବଳିତ ଚିତ୍ରରଚନାବିଶେଷ —A stanza artificially arranged in the shape of a drum (Apte).

ମୁରଜା—ସଂ. ବି. ସ୍ତ୍ରୀ—୧ । କୁବେରଙ୍କ ପତ୍ନୀ—1. Wife of Murajā Kubera. ୨ । ବଡ଼ ପଖୋଜ; ଢୋଲ— 2. A large drum (Apte).

ମୁରଜ ଫଳ—ସଂ.ବି (ମୁରଜ=ମୃଦଙ୍ଗ ପରି ଫଳ ଯାହାର; ବହୁବ୍ରୀହି)- Muraja phala ପଣସ ଗଛ—The jack fruit ( tree).

ମୁରତି—ଗ୍ରା. ବି (ପଦ୍ୟ)—( ସ. ମୂର୍ତ୍ତି )—ମୂର୍ତ୍ତି ( ଦେଖ )— Murati Murtti (See)
ମୁରତି मूरती

ମୁର ଦାରୁଣ—ସଂ. ବି (ଦ୍ୱନ୍ଦ୍ୱ;ମୁର+ଦାରୁଣ; ଦ୍ୱନ୍ଦ୍ୱ)—ମୁର ଦୈତ୍ୟ Mura dāruna ଓ ତାର ସାନ ଭାଇ ଦାରୁଣ—The demon Mura and his younger brother Dāruna.

ମୁରଧନା—ଗ୍ରା. ବି (ପଦ୍ୟ)—ମୂର୍ଚ୍ଛନା (ଦେଖ) Muradhanā Mūrddhanā (See)
মুরধনা मूरधना

ମୁରବ—ବୈଦେ. ବି—ମୁରବି (ଦେଖ) Muraba Murabi (See)

ମୁରବା(ବ୍ବା)—ବୈଦେ. ବି—ମୁରୁବା (ଦେଖ) Murabā(bbā) Murubbā (See)

ମୁରବି(ବ୍ବି)—ବୈଦେ. ବି—( ଅ. ମୁରବ୍ବୀ )—୧ । ଅଭିଭାବକ— Murabi(bbi) 1. Guardian ୨ । ଶରଣ; ଆଶ୍ରୟ— মুরু(ব্বি)বি मुरब्बी 2. Refuge. ୩ । ପୃଷ୍ଠପୋଷକ— 3 Patron. ୪ । ରକ୍ଷକ—4. Protector.

ମୁରବି(ବ୍ବି)ଆ—ବୈଦେ.ବିଣ—ମୁରବିସମ୍ବନ୍ଧୀୟ—Relating to a Murabi(bbi)yā guardian; patronising.
মুরবীর मुरबीया

ମୁରବି(ବ୍ବି)ଆନା—ବୈଦେ. ବିଣ (ଫା)—୧ । ଅଭିଭାବକତ୍ୱ— Murabi(bbi)ānā I Guardianship. ୨ । ଅଭିଭାବକ
ମୁରବି(ବ୍ବି)ଗିରି
ମୁରବି(ବ୍ବି)ପଣ } ଅନ୍ୟରୂପ—
ମୁରବି(ବ୍ବି)ପଣିଅ(ଆଁ)
ପରି ଆଚରଣ—2. Action befitting guardian or a patron.
মুরবিআনা, মুরবিগিরি, মুরবিপনা मुरब्बियाना

ମୁରବି(ବ୍ବି)ଜୋର—ବୈଦେ. ବି (ଫା)—କୌଣସି ବ୍ୟକ୍ତିର ସଂସାର- Murabi(bbi)jor କ୍ଷେତ୍ରରେ ସାହାଯ୍ୟ କରିବା ନିମନ୍ତେ ଶକ୍ତିଶାଳୀ মুরবীজোর मुरब्बीजोर ଅଭିଭାବକର ବିଦ୍ୟମାନ ଥିବା ଅବସ୍ଥା— The state of having powerful patrons to back one up in the world of action.

ମୁରମଣ୍ଡ—ସଂ.ବି—ମୁରଗଣ୍ଡ (ଦେଖ) Muramanda Muraganda (See)

ମୁରମଥନ—ସଂ. ବି (ମୁର=ଅସୁରବିଶେଷ+ମଥନ=ବିନାଶକ)— Muramathana ମୁରାରି; ବିଷ୍ଣୁ—A name of Bishnu.
ମୁରମର୍ଦ୍ଦନ
ମୁରହର, ମୁରଘ୍ନ
ମୁରଜିତ୍, ମୁରଦ୍ୱିଷ୍(ଟ୍) } —ଅନ୍ୟରୂପ
ମୁରଭିଦ୍, ମୁରବୈରୀ, ମୁରରିପୁ

ମୁରଲ(ଲ୍ଲ)—ସଂ. ବି—ମହୁରାଳି ମାଛ—A small species of Murala(la) fish. Aspidoparia Marar.
মউরলা [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ବୃଂହଣ, ବୃଷ୍ୟ,
मीधनो ସ୍ତନ୍ୟ ଓ ଶ୍ଳେଷ୍ମ ବର୍ଦ୍ଧକ—ସୁଶ୍ରୁତ । ]

ମୁରଲା—ସଂ. ବି ( ମୁର+ଲା ଧାତୁ+କର୍ତ୍ତୃ. ଅ+ଆ )—ନର୍ମଦା ନଦୀ Muralā —The river Nerbudda ( in Central India ). [ ଦ୍ର—ମଲ୍ଲିନାଥ ଟୀକାକାର ଲେଖି- ଅଛନ୍ତି ଯେ ଏ ନଦୀ କେରଳଦେଶରେ ପ୍ରବାହିତ । ]

ମୁରଲୀ—ସଂ. ବି ( ମୁର+ଲା ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଈ; ଏହା ଅଙ୍ଗୁଳି Murali ବେଷ୍ଟନ ପ୍ରାପ୍ତ ହୁଏ )—୧। ବଂଶୀ—1. A flute; a pipe. [ ଦ୍ର—ଅନ୍ୟ ସଂ. ନାମ—ବଂଶିକା, ବଂଶୀ, ବଂଶନାଳିକା, ସାନେୟିକା, ସାନେୟୀ, ସାନିକା, ମୁରଲିକା ବଂଶକୋଷ । ] ଦେ. ବି—ମୁରଲୀ ଧରର ଡାକ ନାମ— Name for calling Muralīdhara.

ମୁରଲୀଧର—ସଂ. ବି ( ମୁରଲୀ+ଧୃ ଧାତୁ+କର୍ତ୍ତୃ. ଅ; ଉପପଦ Muralīdhara ତତ୍ )—ବଂଶୀଧର; ଶ୍ରୀକୃଷ୍ଣ—Srī- (ମୁରଲୀଧାରୀ—ଅନ୍ୟରୂପ) krushna. ସଂ. ବିଣ. ପୁଂ— মুরলীধর ହାତରେ ମୁରଲୀ ଧରିଥିବା ( ବ୍ୟକ୍ତି )—Holding मुरलीधर a flute. ଦେ. ବି. ପୁଂ—ପୁରୁଷଙ୍କୁ ପ୍ରଦତ୍ତ ନାମ- ବିଶେଷ—A name given to males.

ମୁରଲୀ ଧରା—ଦେ. ବିଣ (ସଂ. ମୁରଲୀଧାରୀ)—ଯେ ମୁରଲୀ ଧରି ଥାଏ— Murali dharā Holding a flute. ବି—ଶ୍ରୀକୃଷ୍ଣଙ୍କର ନାମ—Name of Krushna. [ ଦ୍ର—ହୋଇ ଥାରେ ସଙ୍ଗ କୁଞ୍ଜକୁ ଯିବୁ ପରା, ଦେଖିଛନ୍ତି ସଙ୍କେତ ସେ ମୁରଲୀ ଧରା—ସଙ୍ଗୀତ । ]

ମୁରଲୀ ଧ୍ୱନି—ସଂ. ବି ( ୬ଷ୍ଠୀ ତତ୍ )—ବଂଶୀ ନିର୍ଗତ ଶବ୍ଦ— Murali dhwani The sound of a flute.
(ମୁରଲୀ ନାଦ, ମୁରଲୀ ସ୍ୱନ—ଅନ୍ୟରୂପ)

ମୁରଲୀ ବଦନ—ସଂ. ବିଣ. ପୁ ( ବହୁବ୍ରୀହି )—ଯାହାଙ୍କ ମୁଖରେ Murali badana ମୁରଲୀ ସଂଯୁକ୍ତ—Having a flute (ମୁରଲୀବଦନା—ସ୍ତ୍ରୀ) attached to the mouth.

ମୁରଲୀ ବଦନୀଆଁ—ଦେ. ବିଣ ( ସଂ. ମୁରଲୀବଦନ )—୧ । ଯେ Murali badaniān ମୁହଁରେ ମୁରଲୀ ଧରି ଥାଏ (ଶ୍ରୀକୃଷ୍ଣ)— মুরলী বদন 1. Holding the flute to his mouth.
मुरली बदनीआ [ ଦ୍ର—ବନଚରୁବିବାସ ସ୍ତ୍ରୀଧରା ବଳାସ,

ମୁରଲୀ-ବଦନଅଁ ଗୋକୁଳ ଗାଗ ଝସ ।,, କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ । ]

**ମୁରା**—ସ. ବି—୧ । ମୁରାମାଂସୀ ( ଦେଖ )—1. Murāmāmsi
Murā ( See ) ୨ । ମଗଧରାଜ ମହାନନ୍ଦଙ୍କ ଦାସୀ ଓ ଚନ୍ଦ୍ରଗୁପ୍ତଙ୍କ ମାତା—2. Name of a maid servant of king Mahānanda and mother of the king Chandragupta, [ ଦ୍ର—ଏହି ମୁରାଙ୍କ ନାମାନୁସାରେ ଚନ୍ଦ୍ରଗୁପ୍ତଙ୍କ ପ୍ରତିଷ୍ଠିତ ରାଜବଂଶ ମୌର୍ଯ୍ୟ ବଂଶ ନାମରେ ଖ୍ୟାତ । ] ଗ୍ରା (ଉତ୍ତର) ବି—( ନ ସ୍ଥାନରେ ଉଚ୍ଚାରଣ ) ମୂଳା—Radish. ପ୍ରାଦେ ( ସମ୍ବଲପୁର ) ବି—ବାଉଁଶ ଓ ବେତ ଆଦିରେ ନିର୍ମିତ ଗୁଙ୍ଗୁଡ଼ି—A wicker-work tray. ( କଟକ ) ମୂଳା—Radish. ଦେ. ବି—ମୁର ଅସୁରର ଅନାଦରାର୍ଥ ଡାକ ନାମ—Name for calling Murāsura in contempt.

**ମୁରାଟ**—ଦେ.ବି(ସ.ମୂର୍ତ୍ତି)—୧ । ଭ୍ରୂଭଙ୍ଗୀ ପୂର୍ବକ ଚାହାଣି;ଅଣ୍ଡି ଚାହିବା
Murāta —1. A look accompanied by the
তেজ contraction of the eyelbows; knitting
आंख, तेज of the eyebrows. ୨ । ଭ୍ରୂକୁଟି—2.Frown; angry look. [ ଦ୍ର—ମହାନ୍ତି ବିଶ୍ୱନାଥରେ ମୁରାଟ ବନ୍ଧୁତ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା । ] ୩ । କ୍ରୋଧପୂର୍ଣ୍ଣ ଏକଦୃଷ୍ଟି—3. An angry steady look. ୪ । ତେଜୋପୂର୍ଣ୍ଣ ଚେହେରା—4. A bright appearance. ୫ । ଶ୍ରୀ; ସୌନ୍ଦର୍ଯ୍ୟ—5. Grace; beauty. ୬ । ବୀରର ଚାହାଣି ପରି ଚାହାଣି—6. Casting the look of a hero. ଦେ. ବିଣ—୧ । ଭ୍ରୂକୁଟିଯୁକ୍ତ—
आंख देखानेवाला 1. Frowning. ୨ । ଭ୍ରୂଭଙ୍ଗୀ କୁଟିଳ ( ବ୍ୟକ୍ତି ବା ମୁଖ )—2. Kintted; with the brows contracted. ୩ । ସୁନ୍ଦର; ଶୋଭମାନ; 3. Imposing; graceful. ୪ । ଉଜ୍ଜ୍ୱଳ—4. Bright. ୫ । ପ୍ରଧାନ; ଉତ୍ତମ—5. Greatest; highest. ( ଦ୍ର—ତା ମଧ୍ୟେ ମେରୁ ଯେ ମୁରାଟ, ତାର ଶୃଙ୍ଗରେ ସ୍ୱର୍ଗ ବାଟ । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।)

**ମୁରାଟ ଚାହାଣି**—ଦେ. ବି—ଭ୍ରୂକୁଟିଯୁକ୍ତ ଦୃଷ୍ଟି—
Murāta chāhani Frowning look; angry stare;
রাগের চাউনী क्रोध दृष्टि scowl.

**ମୁରାଟ ଦେଖା(ଖେ)ଇବା**—ଦେ. କ୍ରି—୧ । ମୁଖଭଙ୍ଗୀ ଦ୍ୱାରା ଦମ୍ଭ
Murāta dekhā(khe)ibā ଦେଖାଇବା—1. To display
তেজ দেখান a courageous look. ୨ । ଭ୍ରୂକୁଟି କରିବା-
आँख देखाना 2. To growl; to scowl.
(ମୁରାଟ ବାହାର କରିବା, ମୁରାଟ ଛାଡ଼ିବା—ଅନ୍ୟରୂପ)

**ମୁରାଟିବା**—ଦେ. କ୍ରି—୧ । ଚରାଟ କରି ଚାହିଁବା—1. To look
Murātibā with a frowning stare. ୨ । ଭ୍ରୂକୁଟି
ଭ୍ରୂଭଙ୍ଗୀ କରା କରିବା—2. To frown; to scowl; to
आँख दिखाना knit the brow.

**ମୁରାଟି ରହିବା**—ଦେ. (ପ୍ରାଚୀନ) କ୍ରି—ଯୁଦ୍ଧ ପାଇଁ ସଜ୍ଜିତ ରହି ଚୁହିଁକୁ
Murāti rahibā ଚଡାଇ ଶତ୍ରୁକୁ ଅପେକ୍ଷା କରିବା—To be readily waiting for the enemy to fight with.

**ମୁରାଡ଼**—ପ୍ରାଦେ. (ଗଡ଼ଜାତ) ବି—ମୁରାଳ ( ଦେଖ )
Murārda Murāla ( See )

**ମୁରାତପ(ବ)**—ବୈଦେ. ବି (ଅ. ମୁରାତବ)—୧ । ସମ୍ମାନ—1, Res-
Murātap(b) pect. ୨ । ମର୍ଯ୍ୟାଦା—2. Prestige.
মুরাতব ৩ । ମନୁଷ୍ୟତା—3. Humanity. ୪ । ଯୋଗ୍ୟତା-
मुरातब 4. Fitness. ବିଣ—ଯୋଗ୍ୟ; ଉପଯୁକ୍ତ—Fit; suitable. (ଦ୍ର—ସେ ଯାହା ମୁରାତବ ସମ୍ଭାର, ବୋଲିତ ଯେବେ ଦେଲେ ହାତର, ମଜୁସ କରି, କୁଙ୍କୁମ ପାଇ, ଯାନ୍ତି ସତ୍ୱର । ବ୍ରଜନାଥ. ସମର ତରଙ୍ଗ ।)

**ମୁରାତମ୍**—ପ୍ରାଦେ. (ଅଳ) ବି—ମୁରାତପ ( ଦେଖ )
Murātam Murātap ( See )

**ମୁରାଦ୍**—ବୈଦେ. ବି. (ଅ)—୧ । ଅଭିଳାଷ; ଅଭିପ୍ରାୟ—1. Wish;
Murād intention. ୨ । (ନାମ) ମୋଗଲ ସମ୍ରାଟ ସାହାଜାହାନଙ୍କ ଚତୁର୍ଥ ଓ କନିଷ୍ଠ ପୁତ୍ର—2. Name of
মুরাদ the youngest son of the Moghal
मुराद Emperor Sāhajāhān. [ଦ୍ର—ମୁରାଦଙ୍କୁ ତାଙ୍କ ପିତା ଗୁଜରାଟ ଆଦିର ଶାସନକର୍ତ୍ତା କରିଥିଲେ । ତାଙ୍କ ବଡ଼ ଭାଇ ଅଓରଙ୍ଗଜାବ୍ କୌଶଳକ୍ରମେ ତାଙ୍କୁ ସେଠାରୁ ଡକାଇ ଆଣି ଗୋଆଲିଅର ଦୁର୍ଗରେ ବନ୍ଦ କରି ଖ୍ରୀ ୧୬୬୨ ରେ ଗୋପନ ହତ୍ୟା କରାଇଥିଲେ । ଏହାଙ୍କର ପୁତ୍ର ନାମ ମୁରାଦ୍ ବକ୍ସ ।] ୩ । (ନାମ) ସମ୍ରାଟ ଆକବରଙ୍କ ଦ୍ୱିତୀୟ ପୁତ୍ର—3. Name of the second son of Akbar the Great. [ଦ୍ର—ଏ ପିତାଙ୍କ ଆଦେଶରେ ଦାକ୍ଷିଣାତ୍ୟ ବିଜୟାର୍ଥ ଗମନ କରିଥିଲେ ଓ ସେଠାରେ ତାଙ୍କର ମୃତ୍ୟୁ ହେଲା । ଏହାଙ୍କର ପୂର୍ବ ନାମ ମୁରାଦ୍ ମିର୍ଜା। ଜନ୍ମ ଖ୍ରୀ୧୫୭୦ ମୃତ୍ୟୁ ୧୫୯୯ । (ବିଶ୍ୱକୋଷ)]

**ମୁରାଦାବାଦ**—ଦେ. ବି. ନାମ—ଯୁକ୍ତ ପ୍ରଦେଶର ରୋହିଲଖଣ୍ଡ ବିଭାଗର
Murādābād ଗୋଟିଏ ଜିଲ୍ଲା ଓ ନଗର—Muradabad;
মুরাদাবাদ name of a district and town in the
मुरादाबाद United Provinces. [ଦ୍ର—ଖ୍ରୀ ୧୬୨୫ରେ ସମ୍ରାଟ ସାହାଜାହାନଙ୍କ ନିଯୋଜିତ ଶାସନକର୍ତ୍ତା ରୁସ୍ତମ୍ ଖାଁଙ୍କଦ୍ୱାରା ସମ୍ରାଟ୍-ପୁତ୍ର ମୁରାଦ ବକ୍ସଙ୍କ ନାମରେ ଏହି ନଗର ପ୍ରତିଷ୍ଠିତ ହୋଇଥିଲା । (ବିଶ୍ୱକୋଷ) ]

**ମୁରା ମାଂସୀ**—ସ. ବି—ଔଷଧରେ ବ୍ୟବହୃତ ଏକ ପ୍ରକାର ଗନ୍ଧ ଦ୍ରବ୍ୟ-
Murā māmsi Name of a scented herb; Mur-
ଅନ୍ୟ ସ. ନାମ—ତାଳପର୍ଣ୍ଣୀ, raya Grofica. [ଦ୍ର—ଏହା ଦୈତ୍ୟା, ଗନ୍ଧକୁଟୀ, ଗୁର୍ଜ୍ଜର ଦେଶର ଗନ୍ଧ ଦ୍ରବ୍ୟ । ଏହାର ଗନ୍ଧକଟୀ, ଗନ୍ଧମା, ଭୂତଗନ୍ଧା, ବର୍ଣ୍ଣି ପ୍ରଭୃତି ନାମ; ବୈଦ୍ୟକ ମତରେ

ସୁରଉ, ଶାଳପାଣିକା — ଏହା ତକ୍ତ, ଶୀତଳ, ସ୍ୱାଦୁ, ଲଘୁ,
ମୁରାମାଂସୀ — ପିତ୍ତ ଓ ବାୟୁନାଶକ । ଏହା ଜ୍ୱର,
एकांगी — ଅଦ୍ରକ୍ ଓ ଭୂତାଦି ଦୋଷ, କୁଷ୍ଠ ଓ
ମ. ମୁରା — କାସ ନାଶକ । ବଣକୋଷ]
ତେ. ମୁରଯୁକୁ ଚନ୍ଦ୍ୟମୁ

ମୁରାରି—ସଂ. ବି. ( ମୁର—ଅସୁର ବିଶେଷ+ଅରି, ୬ଷ୍ଠୀ ତତ୍ )—
Murāri — ମୁର ଦୈତ୍ୟର ଶତ୍ରୁ, ବିଷ୍ଣୁ—Enemy of the demon Mura; Bishṇu. [ଦ୍ର—ମୁର ତଳେ ନୋଟ୍ ଦେଖ ।] ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

ମୁରାଲ—ପ୍ରାଦେ. (ଗଡ଼ଜାତ) ବି—ଏକ ପ୍ରକାର ଜଙ୍ଗଲି ପକ୍ଷୀ—
Murāḷa — A kind of wild bird.
[ଦ୍ର—ଏହି ଶ୍ରେଣୀର ପକ୍ଷୀମାନେ ସୁନ୍ଦର । ଗଡ଼ଜାତର ଜଙ୍ଗଲ ଅଞ୍ଚଳରେ ଏମାନେ ଦେଖାଯାଆନ୍ତି । ଏମାନଙ୍କ ଶରୀରର ଆକାର ପ୍ରକାର ଦେଖିଲେ ସେମାନଙ୍କୁ ମୟୂର ଜାତୀୟ ପକ୍ଷୀ ବୋଲି ଭ୍ରମ ହୁଏ । ରାତ୍ରରେ ମୟୂର ପରି ମଧ ଏମାନେ ବୋବାନ୍ତି; ଏମାନଙ୍କ ଶରୀରର ବର୍ଣ୍ଣ ନାଲିଆ । ଏମାନେ ମୟୂର ଶ୍ରେଣୀର ହେଲେହେଁ ପକ୍ଷହୀନ ଅଟନ୍ତି । କୁକୁଡ଼ା, ଠେକୁଆ ପ୍ରଭୃତିଙ୍କୁ ମାରି ଏମାନେ ଖାଆନ୍ତି ।]

ମୁରିଆ—ପ୍ରାଦେ. (ବସ୍ତର) ବି—୧ । ବସ୍ତର ଅଞ୍ଚଳର ଏକ କୃଷକ
Muriā — ଜାତି—1. An agricultural caste found in the Baster state. ୨ । ବସ୍ତର ଅଞ୍ଚଳର ଏକ ଜାତୀୟ କୃଷକଙ୍କର ଭାଷା—2. The language spoken by the Muriās.

ମୁରୁକ(ଖ)—ଦେ. ବି—ମୁଡୁକ ( ଦେଖ )
Muruka(kha) — Murḍuka ( See )

ମୁର୍କି—ଦେ. ବିଣ—ଈଷତ୍—Slight. କ୍ରି. ବିଣ-ଈଷତ୍ ଭାବରେ—
Mur-ki — Slightly. [ଦ୍ର—ଏହା କେବଳ ହସ ଓ ହସିବା
मुचकि मुसक मुसक — ଶବ୍ଦ ପୂର୍ବେ ଲାଗେ । ]

ମୁରୁକି ହସ(ସା)—ଦେ. ବି—ମୁଡ଼ୁକି ହସ; ମନ୍ଦ ହାସ୍ୟ; ଈଷତ୍ହାସ୍ୟ—
Muruki hasa(sā) — Smile; simper.
मुचकि हासि मुसकान ( ମୁର୍କିହସା—ଅନ୍ୟରୂପ )

ମୁରୁକି ହସିବା—ଦେ. କ୍ରି—ମୁଡ଼ୁକି ହସିବା; ଈଷତ୍ହାସ୍ୟ କରିବା—
Muruki hasibā — To semper; to smile.
मुचकि हासा मुसकना
ମୁରୁକେଇ ହସିବା, ମୁରୁକି ମୁରୁକି ହସିବା, ମୁରୁକେଇ ମୁରୁକେଇ ହସିବା } ଅନ୍ୟରୂପ

ମୁରୁକୁଟିଆ(ୟା)—ଦେ. ବିଣ. ପୁଂ ( ସଂ. ମୃ. ଧାତୁରୁ ଜନ୍ମା ମର୍କଟ )—
Murukuṭiā(yā) — ୧ । ଅତି କ୍ଷୀଣକାୟ—1. Emaciated.
मुरकुटे दुबला — ୨ । ଶୀର୍ଣ୍ଣ—2. Withered; reduced.
ମୁରୁକୁଟିଆ(ୟା), ମୁରୁକୁଟା, ମୁରୁକୁଟୀ } —ଅନ୍ୟରୂପ
[ ଉ—ମଲ ! ଏ କଚେରିରେ ସେ ଯୋଉ ଧଡ଼ିଆ ମୁରୁକୁଟିଆ ବୁଢ଼ାଟା ଅଛି, ତା ଜାଲମ୍ ଫେରେବ କ ଦେଖିବ ? —ଉକାଳି କଟକ ବକ୍ତୃତା । ] ୩ । ଶୁଖି ଯାଇଥିବା—3. Dried up. ୪ । ମୁର୍ଦ୍ଦାରିଆ—4. Withered like a mummy. ପ୍ରାଦେ. ( ବାଲେଶ୍ୱର ) ବିଣ. ( ସଂ. ମୃତ )—ଚମଡ଼ା ବା ପର ଇତ୍ୟାଦି ଜଳିଲେ ତହିଁରୁ ଯେଉଁ ଗନ୍ଧ ଉଠେ, ସେହିପରି ଗନ୍ଧଯୁକ୍ତ; ମୁର୍ଦ୍ଦାର ପୋଡ଼ା ( ଗନ୍ଧ )—The foul smell emitted by the burning of skin or feather.

ମୁରୁକୁଣ୍ଡି—ଦେ. ବି—ଏକପ୍ରକାର ବଣୁଆ ଗଛ—
Murukuṇḍi — A kind of wild tree.
( ମୁରୁକୁଣ୍ଡି—ଅନ୍ୟରୂପ )

ମୁରୁକେଇ ହସିବା—ଦେ. କ୍ରି—ମୁରୁକି ହସିବା ( ଦେଖ )
Murukei hasibā — Muruki hasibā ( See )

ମୁରୁଖ୍—ପ୍ରାଦେ. ( ସମ୍ବଲପୁର ) ବିଣ—ମୂର୍ଖ—
Murukh — Illiterate; ignorant.

ମୁରୁଖ—ଗ୍ରା. ବି. ଓ ବିଣ ( ସଂ. ମୂର୍ଖ )—ମୂଢ଼; ଅଜ୍ଞାନ—Ignorant; a dunce.
Murukha — मूर्ख मुरुख, मूरख
( ମୁର୍ଖ—ଅନ୍ୟରୂପ ) [ ଉ—ଯେ ବୋଲିବ ଜାଣ ସେ କାଶ୍ୟପ ମୁରୁଖ—କୃଷ୍ଣସିଂହ, ମହାଭାରତ, ସଭା । ]

ମୁରୁଖାଣ୍ଡି—ଗ୍ରା. ବିଣ ( ସଂ. ମୂର୍ଖ )—ମୂର୍ଖର ଉପଯୁକ୍ତ—Befitting
Murukhāṇḍi — a dunce. ( ଯଥା—ତାର ଭାରି ମୁରୁଖାଣ୍ଡିଆ କଥା । )
[ମୁରୁଖାଣ୍ଡିଆ(ୟା), ମୂର୍ଖାଣ୍ଡି; ମୂର୍ଖାଣ୍ଡିଆ—ଅନ୍ୟରୂପ]
ଗ୍ରା. ବି—ମୂର୍ଖତା—Stupidity; dunceness.

ମୁରୁଗ—ଗ୍ରା. ବି ( ସଂ. ମୃଗ )—ମୃଗ ( ଦେଖ )—Mṛuga (See).
Muruga — मृग हिरन ( ମୁର୍ଗ—ଅନ୍ୟରୂପ )

ମୁରୁଗା—ଦେ. ବି (ସଂ. ମୂର୍ବା, ମୁରଙ୍ଗିକା)—୧ । ବନ୍ୟ ଗୁଳ୍ମବିଶେଷ—
Murugā — 1. Bowstring hemp; Sansevieria Zeylancai, Sansevieria Roxburghiana.
( ମୁର୍ଗା—ଅନ୍ୟରୂପ )
ଅନ୍ୟ ସଂ. ନାମ—ମଧୁରସା, ଦେବୀ, ମଟୁଲିକା, ମଧୁଶ୍ରେଣୀ, ଗୋକର୍ଣ୍ଣୀ, ପୀଲୁପର୍ଣ୍ଣୀ, ଧନୁର୍ଗୁଣୋପଯୋଗ୍ୟା
सूचीमुखी, बोड़चक्रे, मुर्गा
चूर्णिहार; मुर्हरी; मुरगाली
ମ. ଗୋଲ୍ପଣ, ମୋରବେଲ
ତେ. ଚଗ, ଶୃଗଚେଟ୍ଟୁ, ସଗ, ଯାଗଚେଟ୍ଟୁ, ଯାଗ
ତା. ମରୁଲ୍
[ଦ୍ର—ପ୍ରାୟ ଛାୟାବୃତ ସ୍ଥାନରେ ଏହା ଜନ୍ମିଥାଏ ଓ ବହୁସ୍ଥାନ ମାଡ଼େ; ପତ୍ର ସରୁ ଓ ଖଣ୍ଡା ପରି । ଫୁଲ ବଡ଼ ବଡ଼ ଓ ଡେମ୍ଫର ଅଗରେ ଧରେ । ଏହାର ପତ୍ରର ଅଂଶୁ ବା ଶାରୁ ଛୋଟ ଧଳ । ପୂର୍ବେ ଏହାଦ୍ୱାରା ଋଷିଯୁଙ୍କର କଟିସୂତ୍ର ତିଆରି ହେଉଥିଲା ଏବଂ ଏବେ ଧନୁର ଗୁଣ ଆଦି ତିଆରି ହେଉଅଛି । ଏହାର ମୂଳ ଔଷଧରେ ଲାଗେ । ବୈଦ୍ୟକ ଅନୁସାରେ ଏହା ସାରକ, ଗୁରୁ ଓ ମଧୁରତିକ୍ତରସ; ପିତ୍ତ, ରକ୍ତ, ପ୍ରମେହ, ତ୍ରିଦୋଷ, ତୃଷ୍ଣା, ହୃଦ୍ରୋଗ, କଣ୍ଡୁ, କୁଷ୍ଠ ଓ ଜ୍ୱରନାଶକ । ] ୨ । ( ସଂ. मोरग फूल मयूरशिखा; ପା. ମୁର୍ଗା ) କୁକୁଡ଼ାଜଟ ଫୁଲ; ପୁଷ୍ପଶାକବିଶେଷ; ଈଷ ବିଜଟା ଫୁଲ ଓ ଗଛ—ଈଶରଜଟା (ଦେଖ).
2. Cockscomb, Celosia Cristata. [ଦ୍ର—ଏହା ଦେଖିବାକୁ ନାଲି ଖଡ଼ାଗଛ ପରି । ଏହାର ପୁଷ୍ପମଞ୍ଜରୀ

ଚେପ୍ଟା ଓ କୁକୁଡ଼ାମୁଣ୍ଡ ଉପରେ ଥିବା ଚୂଳ ପରି ଦେଖାଯାଏ । ଏହା କାଳି ଓ ଧଳା ଭେଦରେ ଦୁଇ ପ୍ରକାର । ଶୀତକାଳରେ ସାଧାରଣତଃ ଏ ଫୁଲ ଫୁଟେ । ] ପ୍ରାଦେ. ( ସମ୍ବଲପୁର ) ବ—ବାରବରଷିଆ ଗଛ—Agave. [ ଦ୍ର—ପଣ୍ଡିତ କୁଳମଣି ଦାଶ ଉ. ସା. ୩୨।୧୧ରେ ବାରବରଷିଆ ଗଛର ସଂସ୍କୃତ ନାମ 'ମୂର୍ବା' ବୋଲି ଲେଖି ଅଛନ୍ତି; କିନ୍ତୁ ଏହା ଠିକ୍ ନୁହେଁ । ]

ମୁରୁଗି—ବୈଦେ. ବ ( ଫା. ମୁରଗ୍=ପକ୍ଷୀ )—୧ । କୁକୁଡ଼ା—
Murugi 1. Cock; fowl. [ ଦ୍ର—ବଙ୍ଗଳାରେ ଅଣ୍ଡିସ୍ନ ମୋରଗ ମুর্গী କୁକୁଡ଼ାକୁ ମୋରଗ ଓ ମାଈ କୁକୁଡ଼ାକୁ ମୁରଗୀ ( ମୁର୍ଗି—ଅନ୍ୟରୂପ ) କହନ୍ତି । କିନ୍ତୁ ଓଡ଼ିଆରେ ପୁଂ ଓ ସ୍ତ୍ରୀ ଉଭୟଙ୍କୁ ମୁରଗୀ କହନ୍ତି । ] ୨ । ( ସ. ମୃଗୀ ) ମୃଗୀ ରୋଗ—2. Apoplexy.

ମୁରୁଗି ଅଣ୍ଡା—ଦେ. ବ ( ଫା. ମୁର୍ଗୀ+ସଂ. ଅଣ୍ଡ )—କୁକୁଡ଼ାଣ୍ଡ—
Murugi aṇḍā Hen's eggs.
মুরগীর ডিম্ব मुर्गीका अंडा

ମୁରୁଗି ଲଢ଼ା(ଢେ଼)ଇ—ଦେ. ବ ( ଫା. ମୁରଗ୍‌ବାଜୀ )—ବାଜି ଲଗାଇ ବାଛି ରଖି ଦୁଇଟି କୁକୁଡ଼ାଙ୍କ ମଧ୍ୟରେ
Murugi laṛhā(ṛhe)i
মুরগী লড়াই मुर्गाकी लड़ाइ; मुर्गबाजी ଯୁଦ୍ଧ କରାଇବାରୂପ କୌତୁକ—Cockfight.

ମୁରୁଗୁଡ଼ିଆ(ୟା)— ଦେ. ବଣ—ମୁରୁକୁଟିଆ ( ଦେଖ )
Muruguṛḍiā(yā) Mur-kuṭiā ( See )

ମୁରୁଗୁଣୀ—ଗ୍ରା. ବ ( ସ. ମୃଗୀ )—ହରିଣୀ; ସ୍ତ୍ରୀ ମୃଗ, ଏଣୀ—
Muruguṇi A she-deer.
মৃগী हरिनी ( ମୁଗୁର୍ଣୀ—ଅନ୍ୟରୂପ )

ମୁରୁଗୁଣୀ ତୁଷ୍ଟି (ସ୍ତୁତି)—ଗ୍ରା. ବ ( ସଂ. ମୃଗୀ ଓ ସ୍ତୁତି )—କବି
Muruguṇi tusti (stuti) ବଳରାମ ଦାସଙ୍କ ରଚିତ ଉପନ୍ୟ
মৃগীর স্তুতি हरिनीकि स्तुति ମୃଗୀର ଉପାଖ୍ୟାନ ସମ୍ବଳିତ (ମୁର୍ଗୁଣୀ ତୁଷ୍ଟି[ସ୍ତୁତି]—ଅନ୍ୟରୂପ) କବିତା—A poem in Oriya by Baḷarāma Dāsa describing the rescue of a she-deer, when beset with danger on all sides, by the Grace of God whom she prayed fervently. [ ଦ୍ର—ଏହା କୃଷ୍ଣପୁରାଣୋକ୍ତ ଗୋଟିଏ ଆଖ୍ୟାୟିକା ଅବଲମ୍ବନରେ ରଚିତ । ଗୋଟିଏ ଅସନ୍ନପ୍ରସବା ମୃଗୀ ତାହାର ଦୁଇଟି ଶିଶୁକୁ ନେଇ ବଣରେ ଯାଉଥିବା ସମୟରେ ତାକୁ ବ୍ୟାଧ ମାରିବାକୁ ବସିଲା । ଏକ ଦିଗରେ ଜାଲ ଘେରାଇଲା, ଏକ ଦିଗରେ କୁକୁର ଜଗାଇଲା, ଅନ୍ୟ ଏକ ଦିଗରେ ନିଆଁ ଲଗାଇଲା ଏବଂ ନିଜେ ଆଉ ଏକ ଦିଗରେ ଧନୁ ଧରି ଜଗିଲା । ଏହା ଦେଖି ମୃଗୀ କିଂକର୍ତ୍ତବ୍ୟବିମୂଢ଼ା ହୋଇ ଆର୍ତ୍ତତ୍ରାଣ ଭଗବାନଙ୍କୁ ଡାକି ଲାଗିଲା । ଭଗବାନ୍ ସେ ସମୟରେ ଲକ୍ଷ୍ମୀଙ୍କ ସହିତ ବୈକୁଣ୍ଠପୁରରେ ପଶାଖେଳରେ ମାତିଥିଲେ, କିନ୍ତୁ ବହୁଦୂରସ୍ଥ ମର୍ତ୍ତ୍ୟରେ ହରିଣୀର କରୁଣ ଡାକ ତାଙ୍କ କାନରେ ବାଜିବାରୁ ସେ ସୁଦର୍ଶନ ଚକ୍ରକୁ ତାର ସାହାଯ୍ୟାର୍ଥ ପଠାଇ ଦେଲେ । ଭଗବାନଙ୍କ ଦୟାରୁ ହଠାତ୍ ବର୍ଷା ହୋଇ ବଣରୁ ନିଆଁ ନିଭିଗଲା, ତୋଫାନରେ ଜାଲ ଛିଣ୍ଡିଗଲା, ସାପଟିଏ ବାହାରି କୁକୁରକୁ ଦଂଶନ କଲା ଓ ବଜ୍ରାଘାତରେ ସ୍ୱୟଂ ବ୍ୟାଧ ପ୍ରାଣ ହରାଇଲା । ଏହି ପ୍ରକାରେ ଭଗବାନଙ୍କ ଅପାର କରୁଣାରୁ ହରିଣୀ ବିପଦରୁ ଉଦ୍ଧାର ପାଇ ତା ବାଟେ ବାଟେ ଗଲା । ]

ମୁରୁଚ୍ଚ—ବୈଦେ· ବ—୧ । ( ଫା. ମୋରଚ୍; ତୁଳ ସ. ମଣ୍ଡୁର )—
Muruchā ଲୁହା ଆଦି ଧାତୁରେ ଲାଗିବା କଳଙ୍କି; ମରଚ୍—
মর্চে, মর্চ্যা, মড়িচা 1. Rust. ୨ । ( ଫା. ମୁର୍ଚ୍ଚ )—ଗଡ଼
मोर्चा (ମୁର୍ଚ୍ଚ—ଅନ୍ୟରୂପ) ଚାରିପାଖ ପାଚେରି—2. Wall round
মুরচা मुरचा a fort. [ ଉ—ରାଜକମଣି ପୂର୍ବରୁ ଜାଣି, ଅଗାଧ ପାଣି ନଳୀ ଖମାଣି, ପାଷାଣ କାନ୍ଥି ସଜାଡ଼ି ପୁଣି ମୁରୁଚ୍ଚ କରି ଯେ—ବ୍ରଜନାଥ. ସମରତରଙ୍ଗ । ] ୩ । ଗଡ଼ଖାଇ—3. Moat round a fort. ୪ । ଦୁର୍ଗର ପାଚେରିରେ ନିର୍ମିତ ଗୃହ, ଯହିଁରେ ବାରୁଦଗୋଳା ଆଦି ରଖାଯାଏ—4. A bastion.

ମୁରୁଚ୍ଚ ଧ(ମା)ରିବା—ଦେ. କି—କଳଙ୍କି ଲାଗିଯିବା—To become
Muruchā dha(mā)ribā মর্চেধরা rusted.
मोरचा लगना ( ମୁରୁଚ୍ଚ ପଡ଼ିବା, ମୁରୁଚ୍ଚ ଲାଗିବା—ଅନ୍ୟରୂପ )

ମୁରୁଚୁଡ଼ା—ଦେ. ବ—ଗ୍ରାମ ନିକଟସ୍ଥ ଭୂମି—
Muruchuṛḍā Lands adjoining a village.

ମୁରୁଚୁଣ୍ଡା—୧ । ପ୍ରାଦେ. ( ଗଡ଼ଜାତ ବ—(ଅନାଦରବୋଧକ) କିଛି
Muruchuṇḍā ନାହିଁ—1. Nothing. [ ଯଥା—ସବୁ ତ ସରିଲାଣି, ତୁ ଆସିଛୁ ମୁରୁଚୁଣ୍ଡାଟା ପାଇବୁ ।] ୨ । ପ୍ରାଦେ. ( ଚିଲିକା ଅଞ୍ଚଳ ) ବ—ଚିଲିକାର ଚିଙ୍ଗୁଡ଼ି ମାଛର ଖୋଳ ଛଡ଼ା ହୋଇଥିବା ଶସ—2. The dried flesh of big shrimps after the scales are beaten out by means of cudgels. [ ଦ୍ର—ଚିଲିକାରୁ ଚିଙ୍ଗୁଡ଼ିମାଛ ମାରି ତାକୁ ପାଣିରେ ସିଝାଇ ଖରାରେ ଶୁଖାଇ ଗଦା କରି କରି କୋଳଥ ବାଡ଼ିଆ ଭଳି ବାଡ଼ିରେ ପିଟି ତା ଦେହରୁ ଖୋଳପା ପୃଥକ୍ କରି ଶସ ସଂଗ୍ରହ କରାଯାଏ । ଏହି ଶସ ବ୍ରହ୍ମଦେଶବାସୀଙ୍କର ପ୍ରିୟ ଖାଦ୍ୟ । ]

ମୁରୁଛନା—ଗ୍ରା. ବ ( ସ. ମୂର୍ଚ୍ଛନା )—ମୂର୍ଚ୍ଛନା ( ଦେଖ )—
Muruchhanā মুরছনা मुरछना Mūrchchhanā (See)
( ମୁର୍ଚ୍ଛନା—ଅନ୍ୟରୂପ )

ମୁରୁଛା—ଗ୍ରା. ବ (ସ. ମୂର୍ଚ୍ଛା)—୧ । ମୂର୍ଚ୍ଛା (ଦେଖ)—1. Mūrchchhā
Muruchhā মূর্ছা मूर्च्छा ( See ) ୨ । ମୁରୁଛିବା (ଦେଖ )
[ ମୁର୍ଚ୍ଛା, ମୂର୍ଛ—ଅନ୍ୟରୂପ ] 2. Muruchhibā ( See )

ମୁରୁଛା ଯି(ହେ)ବା—ଗ୍ରା. କି—ମୂର୍ଚ୍ଛିତ ହେବା—To swoon.
Muruchhā ji(he)bā মূর্ছা যাওয়া मूर्च्छित होना

ମୁରୁଛିତ—ଗ୍ରା. ବି. ( ପଦ୍ୟ ) ଦେ. ବ ( ସ. ମୂର୍ଚ୍ଛିତ )—ମୂର୍ଚ୍ଛିତ—
Muruchhita মূর্ছিত मूर्च्छित Fainted. [ ଉ—ମୁରୁଛିତ ହୋଇ ପଡ଼ିଲେ ମହୀପତି, ପୁଣି ଜ୍ଞାନ ଆସି ଅଙ୍ଗରେ କଲା ସ୍ଥିତି—କୃଷ୍ଣସିଂହ. ମହାଭାରତ. ଆଦି ।]

ମୁରୁଛିବା—ଦେ. କ୍ରି—୧ । ତ୍ୟାଗ କରିବା; ଛାଡ଼ିବା—1 To give up
Muruchhibā ছেড়ে দেওয়া **माया छोड़ना**

ମୁର୍ଛିବା } —ଅନ୍ୟରୂପ
ମୁଛିବା }

[ଉ—ଗୁରୁ ସେବା କରି ବେଦ ଯେ ଜାଣିଅଛି, ତାକୁ ଶିଷ୍ୟାଗୁର ନ ପାରଇ ମୁରୁଛି । କୃଷ୍ଣସିଂହ. ମହାଭାରତ. ବନ ।] ୨ । ପାଖରୁ ଅନ୍ତର ହୋଇ ଯିବା; ଅନ୍ତର ହେବା—2. To stay away from; to part with. ୩ । ପାଶୋରିବା—3. To forget. [ଉ-ସଖୀଙ୍କୁ ଯିବାବେଳେ ଯାହା ଚିହ୍ନିଥିଲେ, ସେହି ଲୁଗାବେଶ ସେ ବନବାସ ଗଲେ । କୁନ୍ତୀ ତାହା ଦେଖିଣ ମୁରୁଛି ନ ପାରି । କୃଷ୍ଣସିଂହ. ମହାଭାରତ. ସଭା ।] ୪ । କୌଣସି ବିଷୟର ଲୋଭ ତ୍ୟାଗ କରିବା—4. To give up hankering after or liking for a thing.

ମୁରୁଜ—ଦେ. ବି—(ସଂ. ମୁଜ୍ ଧାତୁ=ପରିଷ୍କାର କରିବା, ଅଳଂକୃତ କରିବା; ତୁଳ. ହି. ମୁରୁଜ=ଭାଙ୍ଗିବା; ଗୁଣ୍ଡା କରିବା)—
Muruja
চালের চূনা ୧ । ଚାଉଳ ଓ ଖଡ଼ି ଆଦିର ଚୂନା, ଯାହାଦ୍ୱାରା ପୂଜା
**चूरन; खड़ीका चूरन** ସ୍ଥାନାଦିରେ ଚିତ୍ରବିଚିତ୍ର ବା ଠାଆ କରାଯାଏ—Powdered rice or chalk etc used in drawing figures on the ground before a dish of meal or offering is placed there. [ଉ—ହୋଇଛି ଯା ସେ ଘରେ ମୁରୁଜ ମଣ୍ଡଳ । କୃଷ୍ଣସିଂହ. ମହାଭାରତ. ଆଦି ।] [ଦ୍ର-ଭିନ୍ନ ଭିନ୍ନ ଦେବତାଙ୍କ ଓ ଗ୍ରହଙ୍କ ପୂଜାରେ ଭିନ୍ନ ଭିନ୍ନ ବର୍ଣ୍ଣର ମୁରୁଜ ଦ୍ୱାରା ଠାଆ କରିବାର ବିଧି ଅଛି । ପାଞ୍ଚ ବର୍ଣ୍ଣର ମୁରୁଜ ପୂଜାଆଦିରେ ବ୍ୟବହୃତ ହୁଏ । ଯଥା—ଧଳା, କଳା, ନାଲି, ହଳଦିଆ ଓ ସାବଜା । ସ୍ତ୍ରୀଲୋକମାନେ ଅଙ୍ଗୁଷ୍ଠ ଓ ତର୍ଜନୀ ମଧ୍ୟରେ ମୁରୁଜ ଚୂନା ଧରି ହାତକୁ ଭୂମି ଉପରେ ଚଳାଇ ଅତି ପରିପାଟୀରୂପେ ନାନା ଚିତ୍ର କାଟି ପାରନ୍ତି ।]

ମୁରୁଜ ଚୂରିବା—ଦେ. କ୍ରି—ଚାଉଳ, ଖଡ଼ି ଆଦିକୁ ଚୂର୍ଣ୍ଣ କରି ମୁରୁଜରେ
Muruja chūribā ପରିଣତ କରିବା—To reduce rice
চাল গুঁড়া করা or chalk to powder to draw figures
**चावल पीसना** therewith.

ମୁରୁଜ ଦେବା—ଦେ. କ୍ରି—ମୁରୁଜଦ୍ୱାରା ଭୂଇଁରେ ଚିତ୍ର ବା ଠାଆ ଅଙ୍କିତ
Muruja debā କରିବା—To draw figures on the
আলপনা দেওয়া **अहिपन देना** ground with Muruja.

ମୁରୁଜ ପଥର—ଦେ. ବି—ଶୁକ୍ଳ ପ୍ରସ୍ତର ବିଶେଷ; (ଏହାର ଚୂନା ଧଳା
Muruja pathara ହୁଏ ଓ ମୁରୁଜ ହୁଏ); ଧଳା ଖଡ଼ିପଥର—
A white variety of stone which can be easily pulverised into powder; a kind of
খড়ি পাথর **खलिया पथर** hard chalk stone.

ମୁରୁଜ ମାଟି—ଦେ. ବି—ଏକ ପ୍ରକାର ଧଳା ପାର୍ବତ୍ୟ ମାଟି, ଯାହାର
Muruja māṭi ଚୂନାରୁ ମୁରୁଜ ହୁଏ—A kind of
খড়ি মাটি white earth used as Muruja and
**खलिया मट्टी** found on hilly tracts.

ମୁରୁଜ ମାନ୍—ଗ୍ରା. ବିଣ.—(ସଂ. ମ୍ରିୟମାଣ)—ଯେ ଖେଦ ପ୍ରକାଶ
Muruja mān କରେ; ଦୁଃଖିତ—Sorrowing.
(ମୁର୍ଜମାନ୍—ଅନ୍ୟରୂପ)

ମୁରୁଡ଼ି—ଦେ. ବି.—(ତୁଳ. ଓ. ମୁରୁଛିବା;)—୧ । ହୁଡ଼ି; ପଣ—
Murur̤di 1. Wager. ୨ । ତ୍ୟାଗ—2. Giving up.
୩ । ବସ୍ତ୍ରତ୍ୟାଗ—3. Putting off of one's cloth. ବିଣ—ଉଲଗି କରାଯିବା (ବସ୍ତ୍ର) — Put off; discarded (cloth). ( ଉ—କେଉଁକାଳରେ କହ ବାସ ମୁରୁଡ଼ି—ଭଞ୍ଜ. ସୁବର୍ଣ୍ଣରେଖା ।)

ମୁରୁଡ଼ି ପଡ଼ିବା—ଦେ. କ୍ରି—୧ । ଫିଟି ଅଲଗା ହୋଇ ପଡ଼ି ଯିବା—
Murur̤di par̤dibā 1. To be unstrung and lie scattered. (ଉ—ହାର ଛିଣ୍ଡି ମୁରୁଡ଼ି ପଡୁଛି ବାସ ବେନି । ଭଞ୍ଜ. ଲାବଣ୍ୟବତୀ ।) ୨ । ହୁଡ଼ି ବା ପଣ-ରୂପେ ରଖା ଯିବା—2. To be laid as a wager

ମୁରୁଣା(ଳା)ଳ—ଗ୍ରା. ବି (ପଦ୍ୟ; ସଂ. ମୃଣାଳ)—ମୃଣାଳ; ପଦ୍ମନାଡ଼—
Muruṇā(ṇā)la The stalk of lotus.

ମୁରୁତି—ଗ୍ରା. ବି (ପଦ୍ୟ)—(ସଂ. ମୂର୍ତ୍ତି)—ମୂର୍ତ୍ତି (ଦେଖ)
Muruti Mūrtti (See).
মুরতি, মুরুৎ **मूरत**

ମୁରୁତିକା—ଦେ. ବି (ସଂ. ମୃତକାଶୌଚ)—୧ । ମରଣାଶୌଚ; ମୃତ
Murutikā ବ୍ୟକ୍ତିର କୁଟୁମ୍ବମାନଙ୍କୁ ଲାଗିବା ଅଶୌଚ—

ମୁରୁତିକଅ(ୟା) } ଅନ୍ୟରୂପ
ମୁର୍ତ୍ତିକା,ମୁର୍ତ୍ତିକଅ(ୟା) }

1. Impurity or pollution affecting
କପରୀତ—ଲୁଢ଼ିକଅ the kinsmen by the recent
মৃতাশৌচ, মৃতক **मरणाशौच** death of a person.

ମୁରୁତିକା—ଗ୍ରା. ବି (ସଂ ମୃତ୍ତିକା)—୧ । ମାଟି—1. Earth.
Murutikā ୨ । ମୃତାଶୌଚ—2. Mourning period in
(ମୁର୍ତ୍ତିକା—ଅନ୍ୟରୂପ) a Hindu household.

ମୁରୁତିକଅ(ୟା)—ଦେ.ବିଣ-ଏକ ମୂର୍ତ୍ତି ବା ଏକଖଣ୍ଡ ବିଶିଷ୍ଟ (ଲୁଗା)—
Murutikia(yā) Consisting of one piece only.
(ମୁର୍ତ୍ତିକଅ[ୟା]—ଅନ୍ୟରୂପ) (ଯଥା-ମୁରୁତିକଅ ଲୁଗା) ଦେ. ବି—
ମରଣାଶୌଚ—Impurity due to the recent death of a kinsman.

ମୁରୁଦଙ୍ଗ—ଗ୍ରା. ବି (ସଂ. ମୃଦଙ୍ଗ)—ମୃଦଙ୍ଗ (ଦେଖ)—
Murudaṅga Mrudaṅga (See).
(ମୁର୍ଦଙ୍ଗ—ଅନ୍ୟରୂପ) মৃদঙ্গ **मिरदंग**

ମୁରୁଦାର—ବୈଦେ, ବି (ଫା. ମୁର୍ଦା)—ଶବ; ମଡ଼; ମଡ଼ା—Dead
Murudāra body, corpse. [ ଦ୍ର—ମନୁଷ୍ୟର ଶବକୁ (ମୁର୍ଦାର—ଅନ୍ୟରୂପ) ମୁରୁଦାର ଓ ପଶୁଆଦିଙ୍କ ଶବକୁ ମଡ଼
मुर्दार **मुर्दा** ବୋଲାଯାଏ ।]

ମୁରୁଦାର ଉଠା (ଠେ)ଇବା—ଦେ. କ୍ରି—ମନୁଷ୍ୟ ଶବକୁ ଗୃହରୁ
Murudāra uṭhā(ṭhei)bā ଶ୍ମଶାନକୁ ନେବା—To carry
(ମୁର୍ଦାର କାଢ଼ିବା —ଅନ୍ୟରୂପ) the corpse of a dead
মড়া তোলা person to the cremation ground
**मुर्दा उठाना**

ମୁରୁଦାର କଟା—ଦେ. ବି—ଶବବ୍ୟବଚ୍ଛେଦ—Dessection. ଦେ. Murudāra kaṭā ବିଣ—ଶବବ୍ୟବଚ୍ଛେଦକାରୀ—Dissecting. (ମୁର୍ଦ୍ଦାରକଟା—ଅନ୍ୟରୂପ) মড়াকাটা मुर्दा चीरना

ମୁରୁଦାର କିଢ଼ା—ଦେ. ବିଣ—ମଡ଼ାକୁ ଯେଉଁମାନେ ଘରୁ କାଢ଼ି Murudāra kāṛhā ଶ୍ମଶାନକୁ ନିଅନ୍ତି—Carrying the (ମୁର୍ଦ୍ଦାର କଢ଼ା—ଅନ୍ୟରୂପ) dead body of a person to মড়াতোলা the cremation ground. ଦେ. ବି—୧ । मुर्दा उठानेवाला ମଡ଼ା କାଢ଼ିବା—The act of bringing out the dead body of a person from the house to the cremation ground. ୨ । ଯେ ମୁର୍ଦ୍ଦାର ବୋହନ୍ତି—Undertaker.

ମୁରୁଦାର ଖଟିଆ(ୟା)—ଦେ. ବି—ଶବବାହୀ ଖଟ—A litter for Murudāra khaṭiā(yā) carrying the dead body. [ମୁର୍ଦ୍ଦାର ଖଟଆ(ୟା), ମୁର୍ଦ୍ଦାର ଡୋଲି(ଲୀ)—ଅନ୍ୟରୂପ] মড়া খাটিয়া मुर्दाको खटिया

ମୁରୁଦାର ଖାନା—ବୈଦେ. ବି ( ଫା. ମୁର୍ଦ୍ଦା ଖାନା )—୧ । ମଡ଼ା- Murudāra khānā ମଶାଣୀ, ଶ୍ମଶାନ—1. Cremation (ମୁର୍ଦ୍ଦାରଖାନା—ଅନ୍ୟରୂପ) ground. ୨ । କବର ଖାନା— মুদারখানা मुर्दा खाना 2. Burial ground. ୩ । ଯେଉଁ ଘରେ ଡାକ୍ତରମାନେ ଶବ ବ୍ୟବଚ୍ଛେଦ କରନ୍ତି—3. Morgue.

ମୁରୁଦାର ଶଙ୍ଖ—ଦେ. ବି ( ସଂ. ମୁଦ୍ରାଶଙ୍ଖ )—ମୁଦ୍ରା ଶଙ୍ଖ ( ଦେଖ ) Murudāra śaṅkha Mudrā śaṅkha ( See ) (ମୁର୍ଦ୍ଦାର ଶଙ୍ଖ—ଅନ୍ୟରୂପ) মুদ্দা শঙ্খ मुर्दा शंख

ମୁରୁଦାରିଆ(ୟା)—ଗ୍ରା. ବିଣ—୧ । ମଡ଼ା ପରି ଶୁଷ୍କ ବା କ୍ଷୀଣ— Murudāriā(yā) 1. Withered like a dead body. (ମୁର୍ଦ୍ଦାରିଆ—ଅନ୍ୟରୂପ) ୨ । ମଡ଼ା ପରି ଗନ୍ଧାଉଥିବା—2. মড়ার মত Smelling like a dead body. मुर्दारिया; मुर्दाफी ୩ । ଅତି କ୍ଷୀଣ—3. Emaciated.

ମୁରୁଧନା(ନି)—ଗ୍ରା. ବି ( ସଂ. ମୂର୍ଦ୍ଧନ୍ )—୧ । ମସ୍ତକ; ମୁଣ୍ଡ— Murudhanā(ni) 1. The head. [ ଭୃ—ଦଶବଦନଙ୍କୁ (ମୁର୍ଦ୍ଧନା, ମୂର୍ଦ୍ଧନି—ଅନ୍ୟରୂପ) ଦଶ ମୁର୍ଦ୍ଧନି କରଇ ଛାର କଲ, মাথা ଭୂମିରେ ପଡ଼ିଥିବ ତା ପିଣ୍ଡ ହୋଇ ରୁଧିର ଧୂଳି । मुरधना ବିଶ୍ୱନାଥ, ବିଚିତ୍ରରାମାୟଣ । ତୋ ବଂଶେ ରାଜା ଯେ ହୋଇବ, ମୂର୍ଦ୍ଧନା ଫାଟି ସେ ମରବ । ଜଗନ୍ନାଥ, ଭାଗବତ । ) ୨ । ଶିର; ବା ଅଗ୍ରଭାଗ—2. The top. ୩ । ବହୁଲୋକଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ; ପ୍ରଧାନ ସ୍ଥାନ—3. Chief or prominent position amongst many. ୪ । ବହୁଲୋକଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି—4. The chief or headman.

ମୁରୁଧନା ପାତ—ଦେ. ବି (ସଂ. ମୂର୍ଦ୍ଧାନ୍ ଓ ପାତ )—୧ । ମୁଣ୍ଡହୀନ ହୋଇ Murudhanā pāta ଭୂମିରେ ପତନ; ମୁଣ୍ଡକାଟ; ମୁଣ୍ଡପାତ (ମୂର୍ଦ୍ଧନାପାତ—ଅନ୍ୟରୂପ) —Beheading; loss of one's head. ୨ । ଅପମୃତ୍ୟୁ ; ହଠାତ୍ ମୃତ୍ୟୁ—2. Sudden death. মুণ্ডপাত [ ଭୃ—ଲୋକେ ଅଭିଶାପ ଦିଅନ୍ତି—'ତୋର मुरधना पात ମୂର୍ଦ୍ଧନା ପାତ ହେଉ' । ]

ମୁରୁଧନାଭିଷେକ—ଗ୍ରା. ବି ( ସଂ. ମୂର୍ଦ୍ଧାଭିଷେକ )—ରାଜାଙ୍କର Murudhanābhisheka ସିଂହାସନରେ ଅଭିଷେକରୂପ କର୍ମ (ମୂର୍ଦ୍ଧନାଭିଷେକ—ଅନ୍ୟରୂପ) ( ଏଥିରେ ରାଜାଙ୍କ ମୁଣ୍ଡରେ মূর্দ্ধাভিষেক ମନ୍ତ୍ରପୂତ ଜଳ ସିଞ୍ଚନ କରାଯାଏ )—Installation of a king on his throne मुरधानमिषेक (accompanied with the ceremony of sprinkling water on the head )

ମୁରୁଧନାଭିଷେକୀ—ଗ୍ରା. ବି ( ସଂ. ମୂର୍ଦ୍ଧାଭିଷିକ୍ତ )—ରାଜା; Murudhanābhishekī ସମ୍ରାଟ୍—A king; an [ମୂର୍ଦ୍ଧନା ଭିଷେକୀ—ଅନ୍ୟରୂପ] emperor মূর্দ্ধাভিষেকী मुरधनामिषेक

ମୁରୁଧନି—ଦେ. ବି ( ସଂ. ମୂର୍ଦ୍ଧନ୍ )—ଜାତିର ପ୍ରଧାନ ବ୍ୟକ୍ତି; ଜାତିର Murudhani ସର୍ଦ୍ଦାର—The headman of a caste. [ମୁରୁଧନଅ, ମୁର୍ଦ୍ଧନି, ମୁର୍ଦ୍ଧନିଆ—ଅନ୍ୟରୂପ] মূর্দ্ধানিয়া मूड आदमी

ମୁରୁଧନ୍ୟ—ଗ୍ରା. ବିଣ—ମୂର୍ଦ୍ଧନ୍ୟ ( ଦେଖ ) Murudhanya Mūrddhanya ( See ) ( ଯଥା—ମୁରୁଧନ୍ୟ ଷ, ମୁରୁଧନ୍ୟ ଣ । )

ମୁରୁଧା—ଗ୍ରା. ବି—ମୂର୍ଦ୍ଧା ( ଦେଖ ) Murudhā Murddhā (See)

ମୁରୁବା—ଦେ. ବି ( ସଂ. ମୁର୍ବା )—ମୁରୁଗା ( ଦେଖ ) Murubā Murugā ( See )

ମୁରୁବା(ବ୍ବା)—ବୈଦେ. ବି ( ଆ. ମୁରବା )—ମୁରବା; ମୋରବ୍ବା Murubā(bbā) ମିଷ୍ଟରସରେ ପାକ କରାଯାଇ ବହୁଦିନ ରଖାଯାଏ মুরবা, মোরবা ରଖାଯାଇ ଥିବା ଫଳ—Preserved fruit; मरबा a preserve; a confection.

ମୁରୁମ—ଗ୍ରାଦେ ( ବସ୍ତର ) ବି—କାଠ ବରୁଣ— Muruma Pimple on the face

ମୁରୁ ମୁରିଆ—ଗ୍ରାଦେ ( ଗଞ୍ଜାମ ) ( ସଂ. ମୁର୍ମୁର=ତୁଷାନଳ ) Muru muriā ବିଣ—ଧୂସର ବା ସାମାନ୍ୟ . ଜଳୁଥିବା ( ଅଗ୍ନି )—Low ( fire ). ( ଯଥା—'ମୁରୁମୁରିଆ ନିଆଁରେ ପୋଡ଼ି ଦଧ ବାହାର କରବ'—ହରେକୃଷ୍ଣ. ଦ୍ରବ୍ୟଗୁଣକଳ୍ପଦ୍ରୁମ । )

ମୁରୁମୁରିଆ ପାଉଁଶ—ଗ୍ରାଦେ ( ଗଞ୍ଜାମ ) ବି—ତଳେ ନିଆଁ ଥାଇ Murumuriā pāũsa ଉପରେ ଥିବା ପାଉଁଶ— Smouldering ashes.

ମୁର୍କି (ଇତ୍ୟାଦି)—ଦେ. ବିଣ—ମୁରୁକି ଇତ୍ୟାଦି (ଦେଖ) Murki (etc) Muruki etc (See)

ମୁର୍କୁଟିଆ—ଦେ. ବିଣ—ମୁରୁକୁଟିଆ (ଦେଖ)— Murkuṭiā Murukuṭiā (See)

ମୁ—ଙ୍ଗ. ୨ । ଓ ବି—ଖର୍ବ ଲୋକ— Murkunda A dwarf.

ମୁର୍ଗ—ଗ୍ରା. ବି—ମୁରୁଗ (ଦେଖ) Murga Muruga (See)

ମୁର୍ଗା—ଦେ. ବି—ମୁରୁଗା (ଦେଖ)—Murugā ( See ) ଗ୍ରାଦେ.
Murgā ( ସିଂହଭୂମି ) ବି—ବାରବରଷିଆ ଗଛ—Agave.

ମୁର୍ଗି—ଦେ. ବି—ମୁରୁଗି ( ଦେଖ )
Murgi Murugi ( See )

ମୁର୍ଜ୍(ର୍ଜ)ମାନ୍—ଦେ. ବିଣ. ( ସଂ. ମ୍ରିୟମାଣ )—ଅତି ଦୁଃଖିତ—
Murj(rja)mān Sorrowing. (ଯଥା—ସେ ଘର
ମୁର୍ଜମାନ୍ ହୋଇ ବସିଛି ।)

ମୁର୍ଦ(ର୍ଦ୍ଦ)ଙ୍ଗ—ଗ୍ରା. ବି—ମୁରୁଦଙ୍ଗ ( ଦେଖ )
Murda(rdda)ṅga Murudaṅga ( See )

ମୁର୍ଦା(ର୍ଦ୍ଦା)ର (ଇତ୍ୟାଦି)—ବୈଦେ. ବି—ମୁରୁଦାର ଇତ୍ୟାଦି (ଦେଖ)
Murdā(rddā)ra (etc) Murudāra etc. (See)

ମୁର୍ଦ(ର୍ଦ୍ଦା) ଫରାଶ୍—ବୈଦେ. ବି. (ପା. ମୁର୍ଦା ଫରୋଶ୍)—ଶବବାହକ
Murdda(rddā) pharāś ସମ୍ପ୍ରଦାୟ ବିଶେଷ; ଯେଉଁ ମୃତ
मुर्द फरा(रो)श ବ୍ୟକ୍ତିର ଶବର ସତ୍କାର ପାଇଁ ନିକଟରେ ଆତ୍ମୀୟ
**मुर्दा फरोश** ଆଦି କେହି ନ ଥାନ୍ତି ସେହି ଶବକୁ ଉଠାଇ ନେଇ
ସତ୍କାର କରିବା ଯେଉଁ ବ୍ୟକ୍ତିମାନଙ୍କ ଜୀବିକା; ଚଣ୍ଡାଳମାନଙ୍କ
—Professional carriers and disposers of
dead bodies of persons who have got
no relations near at hand to dispose of
the corpses.

ମୁର୍ଦ୍ଦା(ର୍ଦା)—ବୈଦେ. ବି. ( ପା. ମୁର୍ଦା )—ମୁରୁଦାର ( ଦେଖ )
Murddā(rdā) Murudāra ( See )

ମୁର୍ଦ୍ଦା(ର୍ଦା)ର (ଇତ୍ୟାଦି)—ବୈଦେ. ବି. ( ପା. ମୁର୍ଦା )—ମୁରୁଦାର
Murddā(rdā)ra (etc) ଇତ୍ୟାଦି (ଦେଖ)—Murudāra
etc. ( See )

ମୁର୍ଦ୍ଦା(ର୍ଦା)ର ଶଙ୍ଖ—ଦେ. ବି. (ସଂ. ମୁଦ୍ରା ଶଙ୍ଖ)—ମୁଦ୍ରା ଶଙ୍ଖ(ଦେଖ)
Murddā(rdā)ra śaṅkha Mudrā śaṅkha ( See )

ମୁର୍ଦ୍ଦା(ର୍ଦା)ରିଆ—ଦେ. ବିଣ. (ପା. ମୁର୍ଦା)—ମୁରୁଦାରିଆ (ଦେଖ)
Murddā(rdā)riā Murudāriā ( See )

ମୁର୍ଦ୍ଧ୍(ର୍ଧ) (ଧାତୁ)—ସଂ—ବନ୍ଧନ କରିବା; ବାନ୍ଧିବା—
Murddh(rdh) (root) To bind.

ମୁର୍ଦ୍ଧ(ର୍ଧ)ନା (ଇତ୍ୟାଦି)—ଦେ. ବି. (ସଂ. ମୂର୍ଦ୍ଧନ୍)—ମୁରୁଧନା ଇତ୍ୟାଦି
Murddha(rdha)nā (etc) ( ଦେଖ )—Murudhanā
etc. ( See )

ମୁର୍ଦ୍ଧ(ର୍ଧ)ନି—ଦେ. ବି. ( ସଂ. ମୂର୍ଦ୍ଧା )—୧ । ମୁରୁଧନି ( ଦେଖ )
Murddha(rdha)ni 1. Murudhani ( See ) ୨ ।
ଉତ୍କୃଷ୍ଟ ବ୍ୟକ୍ତି—2. Excellent person. (ଉ—ଅନଙ୍ଗ
କାମର ମୂର୍ଦ୍ଧନି, ଅମ୍ଭେ ଜାଣିଲୁଁ ଗୁଣି । ଭୂପତି. ପ୍ରେମପଞ୍ଚା-
ମୃତ ।) ୩ । (ସଂ.ମୂର୍ଦ୍ଧନ୍)—ମସ୍ତକ; ଶିରଃ—3. Head.
ଦେ.ବିଣ—ଶ୍ରେଷ୍ଠ—Chief; principal. ଗ୍ରାଦେ
(ସିଂହଭୂମ) ବି. (ସଂ. ମୂର୍ଦ୍ଧନ୍)—ଖୁଲ ଘରର ମଥାନ;
ଭୂଜ—The topmost ridge of a thatched
house.

ମୁର୍ଦ୍ଧ(ର୍ଧ)ନିଆ(ଆଁ)—ଦେ. ବିଣ. ( ସଂ. ମୂର୍ଦ୍ଧନ୍ୟ )—ଶ୍ରେଷ୍ଠ—
Murddha(rdha)niā(āṅ) Chief; principal.
माथामाथा ଦେ. ବି—ମୁରୁଧନି (ଦେଖ)—Murudhani
**मुड आदमी** ( See )

ମୁର୍ଦ୍ଧ(ର୍ଧ)ନ୍ୟ (ଇତ୍ୟାଦି)—ଦେ. ବିଣ. ( ସଂ. ମୂର୍ଦ୍ଧନ୍ୟ )—ମୂର୍ଦ୍ଧନ୍ୟ
Murddha(rdha)nya (etc) ଇତ୍ୟାଦି ( ଦେଖ )
Mūrdhanya etc. (See). ଗ୍ରାଦେ. (ସିଂହଭୂମି, ସମ୍ବଲପୁର)
୧ । ଚାଳଅଗ—1. The gable of a thatched
house, ୨ । ମଉଳା ଭଞ୍ଜା ( ଦେଖ )—2. Maulā-
bhañjā ( See )

ମୁର୍ଦ୍ଧା(ର୍ଧା)—ଦେ. ବି—ଏକ ପ୍ରକାର ପଳାଶ ଜାତୀୟ ବନ୍ୟ ଗଛ—
Murddhā(rdhā) Bute Parviflora (tree).
[ଦ୍ର—ଏହା ଖୁବ୍ ଉଚ୍ଚ ଜଙ୍ଗଲୀ ଗଛ, ସନ୍ତସନ୍ତିଆ ମାଟିରେ
ହୁଏ । ଏହାର ମଞ୍ଜିରୁ ତେଲ ବାହାରେ ।]

ମୁର୍ବ୍(ର୍ବ) (ଧାତୁ)—ସଂ—ବନ୍ଧନ କରିବା—
Murbb(rb) (root) To bind.

ମୁର୍ବା—ବୈଦେ. ବି—ମୁରବା (ଦେଖ)
Murbbā Murabā ( See )

ମୁର୍ବି (ର୍ବୀ)—ସଂ. ବି. (ମୁର୍ବ୍ ଧାତୁ=ବନ୍ଧନ କରିବା+କରଣ. ଅ+
Murbbi(rbī) ଈ)—ମୁର୍ବା (ଦେଖ)—Mūrbbā (See )

ମୁର୍ଭଣୀ—ସଂ. ବି—ଅଙ୍ଗାରଧାନିକା; ନିଆଁ ଚୁଲ୍ଲୀ ( ଶବ୍ଦଚନ୍ଦ୍ରିକା,
Murbhaṇī ଅଣ୍ଣ କୋଷ)—Brazier.

ମୁର୍ମୁର—ସଂ. ବି—(ମୁର ଧାତୁ=ବେଷ୍ଟନ କରିବା+କର୍ତ୍ତୃ. କ୍ୱିପ୍—
Murmura ମୁର୍+ଅତିଶୟାର୍ଥେ ମୁର୍+ଅ)—୧ । ତୁଷାନଳ—
1. The fire of chaff. (ଉ—ତୋ ମୁର୍ମୁର ବି
ଦାହ ପ୍ରକାଶଇ—ମଧୁସୂଦନ. ବସନ୍ତଗାଥା । ୨ । ସୂର୍ଯ୍ୟ-
ଦେବଙ୍କର ରଥର ଅଶ୍ୱ ବିଶେଷ—2. Name of one
of the 7 horses of the Sun's chariot.
୩ । ମଦନ, କାମଦେବ—3. Cupid.

ମୁର୍ସିଦ୍ କୁଲି ଖାଁ—ବୈଦେ. ବି ( ନାମ )—ମୋଗଲ ସମ୍ରାଟ
Mursid kulī khāṅ ଅଓରଙ୍ଗଜେବ ଓ ତତ୍ପରବର୍ତ୍ତୀ ସମ୍ରାଟଙ୍କ
ଅଧୀନ ବଙ୍ଗଳାର ସୁବାଦାର ଦେବାନ୍ ଓ ନବାବ—
Name of a famous Subadar and
Nabab of Bengal under the Moghals.
[ଦ୍ର—ଏ ଦାକ୍ଷିଣାତ୍ୟବାସୀ ଦରିଦ୍ର ବ୍ରାହ୍ମଣ ସନ୍ତାନ । ଶିଶୁ
ଅବସ୍ଥାରେ ଏହାଙ୍କୁ ଜଣେ ପାରସ୍ୟଦେଶୀୟ ବଣିକ କ୍ରୀତ-
ଦାସରୂପେ କ୍ରୟ କରି ପାରସ୍ୟର ଇସ୍ପାହାନ ନଗରକୁ
ନେଇ ସେଠାରେ ପାଳି ତାଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ
କରି ଶିକ୍ଷା ଦେଇଥିଲେ । ତାଙ୍କର ନାମ ଥିଲା ମହମ୍ମଦ ହାଦୀ ।
ବଣିକଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ରମାନେ ଏହାଙ୍କୁ ସ୍ୱଦେଶକୁ
ବିଦାୟ ଦେଲେ । ଏ ବେରାର ପ୍ରଦେଶର ଦେବାନଙ୍କ
ପାଖେ ପହଞ୍ଚି ସେଠାରେ ଏପରି କର୍ମକୁଶଳତା ଦେଖାଇଲେ
ଯେ ଅଳ୍ପ ଦିନେ ତାଙ୍କ ପ୍ରତି ମୋଗଲ ସମ୍ରାଟଙ୍କ ଦୃଷ୍ଟି

ଅକର୍ଷିତ ହେଲା । ସମ୍ରାଟ ତାଙ୍କୁ ବଙ୍ଗଦେଶର ଦେବାନ୍ କଲେ ଓ ମୁର୍ସିଦ୍ କୁଲୀଖାଁ ଉପାଧି ଦେଲେ । ସେ ପ୍ରାଚୀନ ମୁକ୍ସୁଦା(ସା)ବାଦ୍‌କୁ ଅପଣା ନାମ ଅନୁସାରେ ମୁର୍ସିଦାବାଦ ନାମ ଦେଇ ସେଠାରେ ନିଜର ରାଜଧାନୀ କଲେ । ତତ୍ପରେ ବଙ୍ଗବିହାର ଓଡ଼ିଶାର ଦେବାନ୍ ପଦରେ ନିଯୁକ୍ତ ହେଲେ । ପୂର୍ବେ ମେଦିନୀପୁର ଓଡ଼ିଶାର ଅନ୍ତର୍ଗତ ଥିଲା । ଏ ତାକୁ ବଙ୍ଗଳାର ଅନ୍ତର୍ଭୁକ୍ତ କଲେ । ଏ ରାଜସ୍ୱ ଆଦାୟ ବିଷୟରେ ଜମିଦାରମାନଙ୍କ ପ୍ରତି ଖୁବ୍ କଡ଼ା ଥିଲେ, କିନ୍ତୁ ଧର୍ମପରାୟଣ, ନ୍ୟାୟବିଚାରକ ଓ ଦାନଶୀଳ ଥିଲେ । ତାଙ୍କର ଏକମାତ୍ର ପୁତ୍ର ଗୋଟିଏ ବିବାହିତା ରମଣୀର ଧର୍ମ ନାଶ କରିବାରୁ ନବାବ ପୁତ୍ରର ଶିରଚ୍ଛେଦନ କଲେ । ରାଜ୍ୟର ସୁଶାସନ ଓ ପ୍ରଜାପାଳନରେ ସେ ସର୍ବଦା ତତ୍ପର ଥିଲେ । ସେ ଏକ-ପତ୍ନୀରତ ଥିଲେ ଓ ଗଣିତ ଶାସ୍ତ୍ରରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ୧୭୨୫ ଖ୍ରୀଷ୍ଟାବ୍ଦରେ ସେ ମୃତ ହେଲେ—ବଙ୍ଗଳା. ବିଶ୍ୱକୋଷ । ]

ମୁର୍ସିଦାବାଦ—ବୈଦେ. ବି ( ନାମ )—( ମୁର୍ସିଦ୍ କୁଲୀଖାଁ ନବାବଙ୍କ
Mursidābāda ପ୍ରତିଷ୍ଠିତ ଓ ନବାବଙ୍କ ନାମରେ ଆଖ୍ୟାତ
मूर्सिदावाद ନଗର ) ବଙ୍ଗର ଗୋଟିଏ ଜିଲ୍ଲା ଓ ନଗର—
**मुर्सीदाबाद** Name of a district and town in Bengal. [ ଦ୍ର—ଏହାର ପ୍ରାଚୀନ ନାମ ମୁକ୍ସୁଦା(ସା)-ବାଦ୍ । ଏ ଜିଲ୍ଲାର ଉତ୍ତର ସୀମାରେ ଗଙ୍ଗା ଓ ଦକ୍ଷିଣପୂର୍ବ ସୀମାରେ ପଦ୍ମା ଓ ମଧ୍ୟରେ ଭାଗୀରଥୀ ନଦୀ ପ୍ରବାହିତ । ମୁର୍ସିଦାବାଦର ରେସମ ଓ ଗରଦ ଲୁଗା ଭାରତପ୍ରସିଦ୍ଧ । ]

ମୁଲ୍ (ଧାତୁ)—ସ—ରୋପଣ କରିବା—
Mul (root) To plant.

ମୁଲ୍—ପ୍ରାଦେ. ( ସମ୍ବଲପୁର ) ବି ( ଳ ସ୍ଥାନରେ ଲ ଉଚ୍ଚାରଣ; ଶବ୍ଦର
Mul ଶେଷ ଅକ୍ଷର ହଲନ୍ତ ଉଚ୍ଚାରଣ )—ମୂଳ ( ଦେଖ )—
Mūla ( See )

ମୁଲ୍‌କି ହସ(ସା)—ପ୍ରାଦେ. ( ସମ୍ବଲପୁର ) ବି—ମୁରୁକିହସା—
Mul-ki hasa(sā) Smile.

ମୁଲ୍‌ତ(ତୁ)ବି—ବୈଦେ. ବି (କଚେରୀ; ଅ. मुल्तवी)—୧ । କୌଣସି
Mul-ta(tu)bi କାର୍ଯ୍ୟକୁ ପରେ କରିବା ପାଇଁ ପକାଇ ରଖିବା—
मूलतवी **मुलतवी** 1. Deferring; keeping in abeyance. ୨ । ମକଦ୍ଦମା ଆଦିର ପରେ ବିଚାର ହେବା ପାଇଁ ସ୍ଥଗିତ-ରଖାଯିବା; ମହଲତ—2. Adjournment; postponement of a case. ବିଣ ( ଅ )—୧ । ପରେ କରାଯିବା ପାଇଁ ବର୍ତ୍ତମାନ ସ୍ଥଗିତ ରଖାଯିବା ( କର୍ମ )—1. Deferred; kept in abeyance. ୨ । ଅନ୍ୟ ତାରିଖକୁ ଶୁଣାଣିର ତାରିଖ ନିର୍ଦ୍ଧାରିତ ହୋଇଥିବା ( ମକଦ୍ଦମା )—2. Adjourned; postponed ( hearing of a case ).

ମୁଲ୍‌ତବି କରିବା—ଦେ. କ୍ରି ( କଚେରୀ )—କୌଣସି ମକଦ୍ଦମାକୁ ଅନ୍ୟ
Mul-tabi karibā ତାରିଖରେ ଶୁଣାଣି ହେବା ପାଇଁ ସ୍ଥଗିତ
मूलतवि करा ରଖିବା—To adjourn a case to an-
**मुलतवी रखना** other date for hearing.
( ମୁଲ୍‌ତବି ରଖିବା—ଅନ୍ୟରୂପ )

ମୁଲ୍‌ତବି ଖରଚା—ବୈଦେ.ବି ( କଚେରୀ ) (ଅ. ମୁଲତବୀ + ଖର୍ଚ୍ଚା)—
Mul-tabi kharachā କୌଣସି ମକଦ୍ଦମାର ନିର୍ଦ୍ଧାରିତ ତାରିଖରେ
मूलतवि खरचा ଏକ ପକ୍ଷ ପ୍ରମାଣ ସହିତ ଉପସ୍ଥିତ ହୋଇଥିଲେ
**मुलतवी खरचा** ଓ ଅପର ପକ୍ଷ ପ୍ରସ୍ତୁତ ନ ଥିବା ଯୋଗୁଁ ସମୟ ପ୍ରାର୍ଥନା କଲେ ସମୟପ୍ରାର୍ଥନାକାରୀ ପକ୍ଷ ପ୍ରସ୍ତୁତ ହୋଇ-ଥିବା ପକ୍ଷକୁ ତାହାର ଖରଚ କରିଥିବା ଧନର କ୍ଷତିପୂରଣ ରୂପେ ଯେଉଁ ଧନ ଦେବାକୁ ହାକିମ ହୁକୁମ କରନ୍ତି—Adjournment costs ordered by a court to be paid by the party who is not ready to conduct the case on the fixed date and prays for a postponement to the party who has come to cour. ready with his evidence.

ମୁଲ୍‌ତାନ—ଦେ. ବି—ମୁଲତାନ ( ଦେଖ )—Mulatāna (See)
Mul-tāna मूलतान **मुलतान**

ମୁଲ୍‌ତାନି(ଣୀ)—ଦେ. ବି—ମୁଲତାନି ( ଦେଖ )
Mul-tāni(nī) Mulatāni (See)

ମୁଲ୍‌ନା—ବୈଦେ. ବି ( ଫା. ମୌଲନା )—ମୁସଲମାନ ପଣ୍ଡିତ—
Mul-nā A Mahomedan learned mant.
মৌলনা **मौलना**

ମୁଲ୍‌ହୁଁ—ପ୍ରାଦେ, ( ସମ୍ବଲପୁର ) ଅ—୧ । ମୂଳରୁ; ମୂଳଠାରୁ—
Mul-huñ 1.From the root. ୨ । ଆରମ୍ଭରୁ—2. From the beginning. ୩ । ଆଦୌ—3. At all.

ମୁଲ୍‌ହୁଁ ଶେଷ—ପ୍ରାଦେ. ( ସମ୍ବଲପୁର ) ଅ—ଆଦ୍ୟରୁ ଶେଷ ପର୍ଯ୍ୟନ୍ତ;
Mul-huñ śesh ଆଦ୍ୟନ୍ତ—From the beginning to the end.

ମୁଳ ( ଇତ୍ୟାଦି )—ଦେ. ବି—ମୂଳ ଇତ୍ୟାଦି ( ଦେଖ )
Mula ( etc ) Mūla etc ( See )

ମୁଲ—ଦେ. ବି—ମୂଲ ( ଦେଖ )
Mula Mūla ( See )

ମୁଲକ—ବୈଦେ. ବି (ଫା. ମୁଲ୍‌କ୍)—୧ । ରାଜ୍ୟ—1. Kingdom.
Mulaka मूलुक **मुल्क** [ ଉ—ଖଣ୍ଡାବଳେ କେତେ ଖଣ୍ଡା-ଇତଙ୍କର ଛଡ଼ାଇ ନେଲେ ମୁଲକ—ବ୍ରଜନାଥ. ସମର-ତରଙ୍ଗ । ] ୨ । ଦେଶ—2. Country. ୩ । ସଂସାର; ଦୁନିଆ—3. The world. ଦେ. ବିଣ—
বিস্তর, দেদার **दुनिआका** ୧ । ବହୁ; ଅନେକ—1. Large; great many. [ ଯଥା—ଏ
( ମୁଲକର—ଅନ୍ୟରୂପ )
ମକଦ୍ଦମାରେ ମୋର ମୁଲକ ଟଙ୍କା ଖରଚ ହେଲା । ] ୨ । ରାଜ୍ୟବାସୀ ( ବହୁବଚନ )—2. ( person ) Inhabiting a country. [ ଉ—ମୁଲକ ଲୋକେ ପଣସ ଖାଇଲେ, ଭଣ୍ଡାରୀ ମୁଣ୍ଡରେ ଅଠା—ଢଗ । ]

**ମୂଲ କରିବା**—ଦେ. କ୍ରି—୧ । କିଣିବା ପାଇଁ କୌଣସି ପଦାର୍ଥର ଦରଦାମ କରିବା—1. To negotiate the price of a thing to be purchased. ୨ । କିଣିବା ପାଇଁ ବସ୍ତୁର ଦର ସ୍ଥିର କରିବା—2. To settle the price of a thing.
Mula kariba̅ | দরদস্তুর করা | **मोल करना**

**ମୁଲକି(କୀ)**—ଦେ. ବିଣ—ଲୋକ୍ୟପ୍ରଚଳିତ; ଦେଶୀୟ—Current in a country. (ଯଥା—ମୁଲକୀମାଣ=ଯେଉଁ ରାଜ୍ୟରେ ଯେଉଁ ବସ୍ତୁ ପରିମାଣ ମାଣ ଚଳେ ।)
Mulaki(ki̅) | দেশী | **मुल्की**

**ମୂଲ(ଳା) ଗଣ୍ଡି**—ଦେ. ବି—ଘର ଛାଳର ପହିଲି ବା ତଳ ଗଣ୍ଡି ବା ପଟ୍ଟି—The first or lowest layer or strip of straw beginning from the eaves of a thatched house.
Mula(la̅) gardi | **नीचेकोपटी; पनीयागर**

**ମୂଲ ଚାଲ**—ଦେ. ବି—(ନିରର୍ଥକ ଦ୍ୱିତୀୟ ଶବ୍ଦ)—୧ । କୌଣସି ଦ୍ରବ୍ୟକୁ ମୂଲ୍ୟାଇବା; ଦରଦାମ—2. Making the valuation of a thing. ୨ । ମୂଲ୍ୟ—2. Price.
Mula cha̅la | দরদস্তুর | **मोलजोल**

**ମୂଲଚାଲ କରିବା**—ଦେ. କ୍ରି—୧ । କୌଣସି ଦ୍ରବ୍ୟକୁ ମୂଲ୍ୟାଇବା; ଦରଦାମ କରିବା—1. To make the valuation of a thing. ୨ । କୌଣସି ଦ୍ରବ୍ୟ କିଣିବା ପାଇଁ ଗାହି କରିବା—2 To negotiate for the purchase of a thing.
Mulacha̅la kariba̅ | দরদস্তুর করা | **मोलजोल करना**

**ମୁଲତା**—ପ୍ରାଦେ (ସମ୍ବଲପୁର) ବି—ବଳିତା—Wick.
Mulata̅

**ମୂଲତାନ**—ଦେ. ବି—ପଞ୍ଜାବ ପ୍ରଦେଶର ଗୋଟିଏ ବିଭାଗ, ଜିଲ୍ଲା ଓ ନଗର—Name of a division, district and town in the province of the Punjab. [ଦ୍ର—ଏ ନଗରର ପ୍ରାଚୀନ ନାମ କଶ୍ୟପପୁର ବା ମୂଲ ସାମ୍ବପୁର ଓ ମିତ୍ରବନ—ଶବ୍ଦକୋଷ ।]
Mulata̅na | মুলতান | **मूलतान**

**ମୂଲତାନି**—ଦେ. ବି—ରାଗିଣୀ ବିଶେଷ—(ରାଗ ରାଗିଣୀ ଦେଖ)—A kind of subsidiary tune. (ମୂଲତାନୀ, ମୂଲତାନୀ—ଅନ୍ୟରୂପ) ଦେ. ବିଣ—ମୂଲତାନ ଦେଶୀୟ—Appertaining to the country of Multan. (ଯଥା—ମୂଲତାନୀ ଗାଈ, ମୂଲତାନୀ ହେଙ୍ଗୁ)
Mulata̅ni | মুলতানী | **मूलतानी**

**ମୂଲତାନି(ନୀ) ମାଟି**—ଦେ. ବି—ମୂଲତାନ ଦେଶର ହଳଦିଆ ମାଟି—The yellow soil of Multan.
Mulata̅ni(ni̅) ma̅ti | মুলতানী মাটি | **मूलतानी मिट्टी**

**ମୂଲତାନି ହେଙ୍ଗୁ**—ଦେ. ବି—ମୂଲତାନଦେଶୀୟ ଉତ୍କୃଷ୍ଟ ହେଙ୍ଗୁ—Assa̅faetida of Multan.
Mulata̅ni hengu | মুলতানী হিঙ্ | **मूलतानीहिंग**

**ମୂଲଦା**—ପ୍ରାଦେ· (ଗଡ଼ଜାତ) ବି—୧ । ମୁରବିଛା—1. Personal regard for the feelings of a person. ୨ । ଧାର ପଇଅବ—2. Credit.
Mulada̅

**ମୁଲା(ଲ୍ଲା)**—ବୈଦେ. ବି (ଫା ମୁଲ୍ଲା)—ମୁସଲମାନମାନଙ୍କ ଗ୍ରାମ୍ୟ ଧର୍ମୋପଦେଶକ ବା ପୁରୋହିତ—A Mahomedan preacher; a Muslim priest.
Mula̅(lla̅) | মোল্লা | **मुल्ला**

**ମୁଲାଇ(ହି,ଏ,ହେ)ଜା**—ବୈଦେ. ବି—(ଫା. ମୁଲାହଜା)—ଚକ୍ଷୁଲଜ୍ଜା; ମୋହବତ—Personal regard for the feelings of a person. [ମୁଲାହା(ଜ୍ୟା)—ଅନ୍ୟରୂପ] [ଦ୍ର—"× × × ଦେଖ ଶ୍ୟାମ ! ଏଣିକି ବୁଝିଥିବ ଭଦ୍ର, ମୁଁ ଥିଲି ବୋଲି ମୋ ମୁଲାଇଜାରେ ପାଞ୍ଚ ଜଣ ତୋତେ ଚେକ ନେଲେ ସିନା, ନୋହିଲେ ଭୁ ଏକାବେଳକେ ଚଉଦ୍ୟାନ ହୋଇ ଯାଇଥାନ୍ତୁ । ଫକୀର-ମୋହନ. ଛମାଣ ଆଠଗୁଣ୍ଠ । ]
Mula̅i(hi, e, he)ja̅ | মোলাহিজা | **मुलाहिजा**

**ମୁଲାଇ(ଏ,ୟ)ମ୍**—ବୈଦେ. ବିଣ—(ଫା. ମୁଲାୟମ୍)—୧ । କୋମଳ; ନରମ—1, Soft, tender. ୨ । ମଖମଲି—2. Velvety. ୩ । ସୁକୁମାର—3, Delicate
Mula̅i(e,ya)m | মোলাএম্ | **मुलायम**

**ମୁଲାଇ(ଏ,ୟ)ମି**—ବୈଦେ. ବି (ଅ. ମୁଲାୟମତ)—୧ । କୋମଳତା—1, Softness; tenderness. ୨। ମଖମଲି ପଣ—2, Velvetiness. ୩ । ସୁକୁମାର ପଣ—3, Delicateness
Mula̅i(e,ya)mi | মোলাএমী | **मुलायमत, मुलायमी**

**ମୁଲାକାତ(ତି)**—ବୈଦେ. ବି. (ଅ. ମୁଲାକାତ୍)—କୌଣସି ବ୍ୟକ୍ତି ସଙ୍ଗେ ସାକ୍ଷାତ୍କାର; ଭେଟ; ଦେଖା; ଦର୍ଶନ; ଦେଖା ସାକ୍ଷାତ୍—Meeting or interview with a person; seeing a person; a visit to a person. ବୈଦେ. ବିଣ (ଅ. ମୁଲାକାତୀ) ୧ । ଦୃଷ୍ଟ; ଭେଟ ହୋଇଥିବା—1. Seen; interviewed. ୨ । ସାକ୍ଷାତ୍କାରସମ୍ବନ୍ଧୀୟ—2. Relating to a visit. ୩ । ପରିଚିତ—3, Known; acquainted.
Mula̅ka̅t(ti) | মুলাকাত | **मुलाकात** | মুলাকাতী | **मुलाकाती**

**ମୁଲାକାତ କରିବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ନିକଟକୁ ଯାଇ ଦେଖା କରିବା—To pay a visit to a person.
Mula̅ka̅t kariba̅ | মুলাকাত করা | **मुलाकात करना**

**ମୁଲାକାତ ଦେବା**—ଦେ. କ୍ରି—ଭେଟିବା ପାଇଁ ସମାଗତ ବ୍ୟକ୍ତିଙ୍କୁ ଦର୍ଶନ ଦେବା—To grant an interview to a person.
Mula̅ka̅t deba̅ | মুলাকাত দেওয়া | **मुलाकात देना**

**ମୁଲାକାତ ପାଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ଭେଟିବା ପାଇଁ ଯାଇ ତାଙ୍କର ଭେଟ ପାଇବା—To have an interview with a person; to be able to see a person.
Mula̅ka̅t paiba̅ | মুলাকাত পানা

**ମୁଲାକାତ ମିଳିବା(ହେବା)**—ଦେ. ବି—କୌଣସି ବ୍ୟକ୍ତିଙ୍କର ଦର୍ଶନ ପ୍ରାପ୍ତି ହେବା—Having an interview with a person.
mula̅ka̅t miliba̅(heba̅) | মুলাকাত হওয়া | **मुलाकात होना**

ମୁଲାକାତ କାର୍ଡ୍—ବୈଦେ ବି. (ଅ ମୁଲାକାତ + ଇଂ. କାର୍ଡ; ଅଧୁନାତନ ବ୍ୟବହାର)—କୌଣସି ବ୍ୟକ୍ତିଙ୍କୁ ଦେଖା କରିବାକୁ ଯାଉଥିବା ବ୍ୟକ୍ତି ଆଗରୁ ତାଙ୍କ ପାଖକୁ ପଠାଇବା କାର୍ଡ; ନାମାଙ୍କିତ ଟିକେଟ
Mulākāti kārd
মুলাকাতী কাড়
मुलाकाती कारड
—Visiting card.

ମୁଲାକାତ ଦଳ—ଦେ. ବି (ମୁଲାକାତ + ଦଳ; ଅଧୁନାତନ ପ୍ରୟୋଗ)—କୌଣସି ରାଜକର୍ମଚାରୀଙ୍କ ନିକଟରେ ଅଭିଯୋଗାଦି ପ୍ରଦର୍ଶନ କରି ପ୍ରତିକାର କରିବା ପାଇଁ ଯେଉଁ ବ୍ୟକ୍ତିମାନେ ଦଳବଦ୍ଧ ହୋଇ ଯାଆନ୍ତି; ଡେପୁଟେସନ—Deputation which waits on a high official.
Mulākāti daḷa
ডেপুটেসন
मुलाकाती दल

ମୁଲାଜ (ଜ୍ୟା)—ବୈଦେ. ବି—ମୁଲାଇଜା ( ଦେଖ )
Mulājā (jyā) — Mulāijā ( See )

ମୁଲାଜା ମୋହବତ୍—ବୈଦେ. ବି. (ଏକାର୍ଥକ ସମାସ; ଫା)—ଅନ୍ୟ ଲଜ୍ଜା—Personal regard for another's feelings.
Mulājā mohabat
ম্‌লাহিজা মোহব্বত
मुलाहजा मुहब्बत

ମୁଲିଆ (ଇତ୍ୟାଦି)—ଦେ. ବି. ପୁଂ—ମୂଲିଆ ଇତ୍ୟାଦି ( ଦେଖ )
Muliā (etc) — Mūliā etc. (See)
মজুর मुजदुर (ମୁଲିଆଣୀ—ସ୍ତ୍ରୀ)

ମୁଳୁମୁଳିଆ—ଦେ. ବିଣ. ପୁଂ—ଅଳସୁଆ; ଯେ ଅଳ୍ପ ସମୟରେ କରିହେବା କାମକୁ ବହୁତ ସମୟରେ କରେ—Idle; slow; lazy.
Muḷumuḷiā
আলসে सुस्ती
(ମୁଳୁମୁଳେଇ—ସ୍ତ୍ରୀ)

ମୁଳୁମୁଳୁ—ଦେ.ଅ—୧ । କାର୍ଯ୍ୟ କରିବାରେ ବିଳମ୍ବ—1. Delay in finishing a work. ୨ । କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛୁକ—2. Unwilling to do any work.
Muḷumuḷu
ঢীলা
ढिली

ମୁଲୁରୁ ମୁଲୁରୁ ହେବା—ପ୍ରାଦେ. ( ସମ୍ବଲପୁର ) କ୍ରି—ମୁରୁକି ମୁରୁକି ହସିବା—To smile.
Muluru muluru hebā

ମୁଶ୍(ଷ୍, ସ୍) ( ଧାତୁ )—ସ—୧ । ଅପହରଣ କରିବା—1. To steal. ୨ । ଲୁଣ୍ଠନ କରିବା—2. To plunder. ୩ । କାଟିବା—3. To cut. ୪ । ଭାଙ୍ଗିବା—4. To break. ୫ । ବିଭାଗ କରିବା—5. To divide.
Muś(sh, s) (root)

ମୁଶ୍(ଶୁ)ମୁଶ୍(ଶୁ)—ଦେ. ଅ. ( ଧ୍ୱନ୍ୟନୁକରଣ )—ଶୁଖିଲା ପତ୍ର ଅବା ମକଚିବାର ଶବ୍ଦ—Sound of crushing of dry leaves.
Muś(śu)muś(śu)
মস্‌মস্‌ मुसमुस
[ଦ୍ର—ମସ୍ ମସ୍ ଶବ୍ଦଠାରୁ ମୁସ୍ ମୁସ୍ ମୁହୁଁକର
ମର୍ ମର ଶବ୍ଦଠାରୁ ମସ୍ ମସ୍ ମୁହୁଁକର
ମର୍ ମର୍ ଶବ୍ଦଠାରୁ ମୁର୍ ମୁର୍ ମୁହୁଁକର ।]

ମୁଶ୍କିଆ—ପ୍ରାଦେ. (ସମ୍ବଲପୁର) ବିଣ—ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିର ପ୍ରାପ୍ୟ ଧନାଦିକୁ ବା ଋଣକୁ ଭୁରୁଡ଼ାଇ ଦିଏ ବା ନ ଦିଏ—(a person) Who defrauds a person of his dues.
Muśkiā
(ମୁଷ୍କିଆ—ଅନ୍ୟରୂପ)

ମୁଶ୍କିବା—ପ୍ରାଦେ. (ସମ୍ବଲପୁର) କ୍ରି—ଅନ୍ୟ ବ୍ୟକ୍ତିକୁ ଦେୟ ଋଣ ବା ପ୍ରାପ୍ୟ ଧନକୁ ଭୁରୁଡ଼ାଇବା ବା ନ ଦେବା—To defraud a person of his dues.
Muśkibā

ମୁଶତୀ—ସ. ବି—ଧଳା ରାଗ; ସିତ ଲଙ୍କ—White variety of pulse (grain).
Muśatī

ମୁଶାଫି(ଫେ)ର(ରୀ)—ବୈଦେ. ବି. ( ଅ. ମୁସାଫିର୍ )—୧ । ପାନ୍ଥ; ପଥିକ; ବାଟୋଇ—1. Traveller; way-farer. ୨ । ପ୍ରବାସୀ—2. A sojourner; a stranger. ୩ । (ଅ. ମୁସାଫିରୀ) ଭ୍ରମଣ—3. Travel. [ଦ୍ର—ସେ କେବଳ ମୁଶାଫେରୀ, ସକାଳେ ଫେରି ଆସି ଅଛନ୍ତି । ଫକୀରମୋହନ. ଛମାଣ ଅଠଗୁଣ ।] ୪ । ପ୍ରବାସ; ବିଦେଶ ବାସ—4. Sojourn ୫ । ମୁସଲମାନ୍ ସାଧୁ ବା ଫକୀର—5. A Mahomedan mendicant.
Muśāphi(phe)r(ri)
ম্‌সাফি(ফে)র
मुसाफिर
ম্‌সাফিরী
मुसाफिरी

ମୁଶାଫି(ଫେ)ର(ରି) ଖାନା—ବୈଦେ. ବି. ( ଅ. ମୁସାଫିରଖାନା )—ପାନ୍ଥନିବାସ, ପଥିକଙ୍କ ବିଶ୍ରାମ ସ୍ଥାନ—A rest house for travellers; a traveller's rest-shed.
Muśāphi(phe)ra(ri) khānā
ম্‌সাফিরখানা
मुसाफिरखाना

ମୁଶାବିଦା(ଧା)—ବୈଦେ. ବି. (କଚେରୀଅ) ( ଫା. ମୁସୱିଦା )—ଦଲିଲ ଅବର ଚଠା, ପାଣ୍ଡୁଲିପି, ଖସଡ଼ା, ମସୁଦା—Rough draft of a document.
Muśābidā(dhā)
ম্‌সাবিদা
मुसविदा
[ଦ୍ର—କୌଣସି ଦଲିଲ ଦସ୍ତାବିଜ ଲେଖା ହେବା ପୂର୍ବରୁ ଚଳିତ ଗୋଟିଏ ମୁଶାବିଦା ଲେଖା ହୁଏ ଓ ତାହା ଆବଶ୍ୟକ ସ୍ଥଳରେ ସଂଶୋଧିତ ହେଲା ପରେ ଲେଖା ହେବା କାଗଜରେ ଉଠାଯାଏ ।]

ମୁଶାହା(ହି, ହେ)ବ୍—ବୈଦେ. ବି. (ଫା. ମୁସାହିବ୍)—ବଡ଼ ଲୋକଙ୍କ ପାର୍ଶ୍ୱଚର ସ୍ତାବକ ବା ଖୋସାମୋଦକାରୀ ବା ବିଦୂଷକ ବ୍ୟକ୍ତି—Flatterer of a rich man; a hanger-on; toady; a jester.
Muśāhā(hi, he)b
মোসাহেব
मुसाहिब
[ଦ୍ର—ଆସରେ ସାତ ଜଣ ମୁଶାହେବ ଗୁଡ଼କାରେ ବସି ତୋଳାଉ ଅଛନ୍ତି । ଫକୀରମୋହନ. ଛମାଣଆଠଗୁଣ । ]

ମୁଶାହା(ହି, ହେ)ବି—ବୈଦେ. ବି ( ଫା. ମୁସାହାବି )—ସ୍ତାବକର କାର୍ଯ୍ୟ; ଖୋସାମଦ—Flattery.
Muśāhā(hi, he)bi
ম্‌সাহেবি मुसाहिबी

ମୁଶିଆରି—ପ୍ରାଦେ ( ମେଦିନୀପୁର ) ବି—ଧଳା ସିଙ୍ଘି ମାଛ—A white variety of Saccobranchus Foseillis.
Muśiāri

ମୁଷ୍ (ଧାତୁ)—ସ—୧ । ଚୋରି କରିବା—1. To steal. ୨ । ଲୁଣ୍ଠନ କରିବା—2. To loot; to rob. ୩ । ଭାଙ୍ଗିବା—3. To break, ୪ । ବିଭାଗ କରିବା—4. To divide.
Mush (root)

ମୁଷ୍(ଷୁ)କ(କୁ)ଲ୍(ଲି)—ବୈଦେ. ବିଣ ଓ କ୍ରି. ବିଣ ( ଅ. ମୁଶ୍କିଲ )—୧ । ମହା—1. Great. ୨ । ଶକ୍ତ; କଷ୍ଟକର—2. Difficult, hard; beset with difficulties. ୩ ।
Mush(shu)ki(ku)l(li)
ମୁଷ୍କିଲ } ଅନ୍ୟରୂପ
ମୁଷ୍କୁଲ }

ମୁଶ୍କିଲ — ଅତ୍ୟନ୍ତ; ବଡ଼; ଭାରି—3. Very; very much. ୪ । ଅତ୍ୟଧିକ—5. Too much. ୫ । ଜଟିଳ; ଗୋଳମାଳିଆ—5. Confused. [ ଉ—ଏହା ବିପଦ ର ଉପଦ, ମହାମୁଷ୍କିଲ । ପଣ୍ଡିତମୋହନ. ଛମାଣ ଆଠ-ଗୁଣ୍ଠ ॥ ] ୬ । ବିପଜ୍ଜନକ; ବିପଦ୍‌ସଙ୍କୁଳ—6 Dangerous; beset with danger. ୭ । ଅତି ସନ୍ଦେହଜନକ—7. Very doubtful. ବୈଦେ. ବି —୧ । ବିପଦ—1. Danger. ୨ । ଗୋଳମାଳ; ଅଡୁଆ—2. Confusion. ୩ । ମହାବିପ୍ଦ ବା ଦୁଃଖ —3. Great sorrow. ୪ । ଅପକ୍କଳକ ଅବସ୍ଥା; ଅଶଙ୍କିଆ ଅବସ୍ଥା—4. Awkward situation; danger. ୫ । କଷ୍ଟ—5. Hardship. ୬ । ଘୋର ସନ୍ଦେହ—6. Great doubt. ୭ । ବିଷମ-ସମସ୍ୟା—7. Grave dilemma.

ମୁଶ୍କିଲ
मुशकील

**ମୂଷକ**—ସଂ. ବି—ମୂଷିକ ( ଦେଖନ୍ତୁ ) —
Mushaka — Mouse.

**ମୂଷବ(ବ୍ବ, ମ୍ବ)ର**—ବୈଦେ. ବି ( ଆ. ମୁସବର )—ଔଷଧରେ ବ୍ୟବହୃତ ଘୃତକୁମାରୀ ଗୁଳ୍ମର ଶୁଷ୍କୀକୃତ ରସ —The dried juice of Indian aloe used in medicine.
Mushaba(bba, mba)ra
ସଂ. ନାମ—କାଳସାର ସହାସାର, କୁମାରୀରସ-ସମ୍ଭବ
ମୁସବ୍বর
बोलउआ मुसबर
ଆ. ମସବର, ସବର, ସବୁଭର
ପା. ସବର

[ଦ୍ର—ଏହା ଅଗ୍ନିବର୍ଦ୍ଧକ; ପିତ୍ତନାଶକାରକ, କଫକର, ବିରେଚକ, ରଜଃପ୍ରବର୍ତ୍ତକ, ଗର୍ଭପାତକ, ମଳରୋଧକ; କୃମି, ଅଜୀର୍ଣ୍ଣ, ଅପସ୍ମାର, ରକ୍ତୋଳ୍ଲେପ, ଶୀତପିତ୍ତ, ଶିରୋରୋଗ, ଶ୍ଳେଷ୍ମଜ୍ୱର, ପ୍ଲୀହା ଓ ଅଗ୍ନିମାନ୍ଦ୍ୟ ରୋଗରେ ଉପକାରକ । ଅର୍ଶରୋଗୀ, ଗର୍ଭବତୀ, ଋତୁମତୀ ଓ ରକ୍ତପ୍ରଦରାକ୍ରାନ୍ତ ସ୍ତ୍ରୀ-ମାନଙ୍କ ପକ୍ଷରେ ଏହାର ସେବନ ନିଷିଦ୍ଧ; ଏହାକୁ ଘୋରି କୁଙ୍କୁମ କରି ଫୁଲ୍ଲରେ ଲଗାଇଲେ ଫୁଲ୍ଲ କମେ । ]

**ମୁଷ(ଷୁ)ଦ(ଦ୍ଦି)**—ବୈଦେ. ବି ( ଆ. ମୁତ୍‌ସଦ୍ଦୀ ) - ବୈଷୟିକ କାର୍ଯ୍ୟର ଭାରପ୍ରାପ୍ତ କର୍ମଚାରୀ; ଗୁମାସ୍ତା—An agent for house-hold management.
Musha(shu)di(ddi)
ମুছদ্দি, মুতসদ্দী
मुसद्दि

**ମୁଷମା(ମ୍ମା)ତ୍**—ବୈଦେ. ବିଣ. ସ୍ତ୍ରୀ ( ଆ. ମୁସମ୍ମତ୍ ) ( କଚରିଆ )—ସଧବା ସ୍ତ୍ରୀମାନଙ୍କ ନାମ ପୂର୍ବରେ ଯୁକ୍ତ ହେବା ବିଶେଷଣ; "ସଧବା (ସ୍ତ୍ରୀ)=ଶ୍ରୀମତୀ—A term prefixed to the name of a woman whose husband is alive.
Mushamā(mmā)t
মুসমাৎ
मुसमात

**ମୁଷ(ଶ, ସ)ଳ**—ସଂ. ବି ( ମୁଶ୍, ମୁଷ୍, ମୁସ୍ ଧାତୁ=ବଧ କରିବା; ଛେଦନ କରିବା+କରଣ. ଅଳ )—୧ । ଗଦା; ମୁଦ୍ଗର—1. Mace; a club. ୨ । ହାମାନଦିସ୍ତା ବା ଢିଙ୍କିରେ କନର୍ଷଅବ କୁଟିବାର ଦଣ୍ଡ—2. A pestle. ୩ । ଢିଙ୍କିର ପାହୁରଣି—3. The pestle of a dhinki ( ଢିଙ୍କି ). [ ଉ—ମୁଷଳ ଗଦା ଶଙ୍ଖ ଘେନିଣ ପଟ୍ଟିଶ, ଲଟିଥିଲେ ଶିବଦେବଙ୍କ ପାଶ ପାଶ କୃଷ୍ଣସିଂହ. ମହାଭାରତ. ବନ । ] [ ଦ୍ର—ଏହା ବଳରାମଙ୍କର ବ୍ୟବହୃତ ଆୟୁଧ; ଏହା ଗଦାପରି, କିନ୍ତୁ ଏହାର ସର୍ବାଙ୍ଗ ସମାନ । ] ୪ । ଉଦ୍ଭିଦ୍ଧ ବିଶେଷ—4. A kind of plant. ୫ । ( ଲକ୍ଷଣାର୍ଥ ) ମୁଷଳ ପରି ଲମ୍ବ ଓ ମୋଟ ବସ୍ତୁ—5. ( figurative ) A long and thick article like a mace. ୬ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତି ପ୍ରତି ଶତ୍ରୁଦ୍ୱାରା ପ୍ରୟୋଗ କରାଯିବା ବିଘ୍ନ—6. A hindrance put by a person before his enemy.
Musha(śa, sa)ḻa

**ମୂଷଳ ଧାର(ରା)**—ଦେ. ବି—ମୂଷଳ ପରି ଘନବୃଷ୍ଟିର ଧାରା; ଦୁମ୍‌ଦାମି—Big drops of rain; a heavy downpour; raining cats and dogs. [ ଉ—ଶୁଣି ସେ ସମୟରେ ଭୂମେ ଘନରୂପେ, ମୂଷଳ ଧାରା ପରି ବର୍ଷିଲ ଆପେ । କୃଷ୍ଣସିଂହ. ମହାଭାରତ. ବନ । ]
Mushaḻa dhāra(rā)
মুষলধারা
मुसलधार

**ମୂଷଳ ପାଣି**—ସଂ. ବି. ପୁଂ ( ବହୁବ୍ରୀହି )—ବଳରାମ—An epithet of Baḻarāma.
Mushaḻa pāṇi

**ମୂଷଳି**—ଦେ. ବିଣ—ମୂଷଳ ପରି ମୋଟା ଓ ଲମ୍ବା—Long and stout like a club.
Mushaḻi
(ମୂଷଳିଆ—ଅନ୍ୟରୂପ) মুসলের মতন मुसलिया

**ମୁଷ(ଶ, ସ)ଳୀ**—ସଂ. ବିଣ. ପୁଂ (ମୂଷଳ+ଅସ୍ତ୍ୟର୍ଥେ ଇନ୍ )—ମୂଷଳ-ଧାରୀ—Armed with a mace.
Musha(śa, sa)ḻī
[ମୂଷ(ଶ,ସ)ଳିକା—ଅନ୍ୟରୂପ] ସଂ. ବି - ୧ । ବଳଦେବ—1. Baḻadeba. [ମୁଷ୍+କର୍ତ୍ତୃ. ଅଳ+ସ୍ତ୍ରୀ. ଈ]—୨ । ଗୃହଗୋଧିକା, ଝିଟିପିଟି—2 House-lizard. ୩ । ତାଳମୂଳୀ [ଦେଖ]—3. Tāḻamūḻi (See)

**ମୂଷଳୀ କନ୍ଦ**—ସଂ. ବି—[ମୂଷଳୀ+କନ୍ଦ)—ତାଳମୂଳୀ (ଦେଖ)
Mushaḻī kanda — Tāḻamūḻī (See).
ସଂ. ନାମ—ଖଲମୀ, ସୁବହା, ଗୋଦାପଦୀ ।

**ମୂଷଲ୍ୟ**—ସଂ. ବିଣ. ପୁଂ—( ମୂଷଳ+ଦଣ୍ଡ୍ୟାର୍ଥେ. ଯ ]—ମୂଷଳଦ୍ୱାରା ବଧ୍ୟ (ଶବ୍ଦକୋଷ)—Deserving to be killed by a mace or club.
Mushaḻya
[ମୂଷଲ୍ୟ - ସ୍ତ୍ରୀ]

**ମୂଷା (ଇତ୍ୟାଦି)**—ଦେ. ବି—(ସଂ. ମୂଷିକ)—ମୂଷା ଇତ୍ୟାଦି (ଦେଖ)
Mushā (etc) — Mūshā etc (See)
ସଂ. ବି—(ମୂଷ୍ ଧାତୁ=ଚୋରି କରିବା+କରଣ. ଅ+ଆ; ଯାହା ସାହାଯ୍ୟରେ ବଣିଆମାନେ ଚୋରି କରନ୍ତି)—ଧାତୁ ଗଳିତ କରିବା ପାତ୍ର; କୋଇ—A crucible for melting metal. ବୈଦେ. ବି (ନାମ) (ଇଂ. ମୋସେସ୍; ଆ. ମୂସା )—ଇହୁଦୀମାନଙ୍କର ପ୍ରସିଦ୍ଧ ଧର୍ମବିଧି ପ୍ରଣେତା—Moses.
[ଦ୍ର—ଏ ଖ୍ରୀ. ପୂ. ୧୫୭୧ ଅବ୍ଦରେ ମିଶର ଦେଶରେ ଜନ୍ମ-ଗ୍ରହଣ କରିଥିଲେ । ବାଇବଲ୍‌ର ଓଲ୍ଡ ଟେଷ୍ଟାମେଣ୍ଟର ଏ

ଜଣେ ଧର୍ମପ୍ରବର୍ତ୍ତକ । ଏ ହେବ୍ରୁ ଜାତୀୟ ଥିଲେ । ଏ ଜଣେ ଈଶ୍ୱରପ୍ରେରିତ ଆଦର୍ଶ ପୁରୁଷ ବୋଲି ହେବ୍ରୁ, ଖ୍ରୀଷ୍ଟାନ୍ ଓ ମୁସଲମାନ୍‌ମାନେ ବିଶ୍ୱାସ କରନ୍ତି । ମୁସଲମାନ୍‌ମାନେ ବିଶ୍ୱାସ କରନ୍ତି ଯେ ଏ ଈଶ୍ୱରଙ୍କ ସଙ୍ଗେ ବାକ୍ୟାଳାପ କରୁଥିଲେ । ଏ ପାଞ୍ଚ ଖଣ୍ଡ ଗ୍ରନ୍ଥ ରଚନା କରିଥିଲେ । ଏ 'ଇସ୍ରାଏଲ୍' ମାନଙ୍କୁ ମିଶରୁ ଦେଶର ବହୁଷ୍ଟ କଷ୍ଟପଦ ସ୍ଥାନକୁ ନେଇ ରଖାଇଥିଲେ । ଆରବରେ ମୁଷା କୁଣ୍ଡ ଓ ଅମ୍ବୁନ୍ ମୁଷ ନାମକ ଦୁଇଟି ପ୍ରସ୍ରବଣ ବର୍ତ୍ତମାନ ପର୍ଯ୍ୟନ୍ତ ମୁସଲମାନଙ୍କ ତୀର୍ଥରୂପେ ଅଛନ୍ତି । ବିଶ୍ୱକୋଷ । ]

**ମୁଷା(ଷୁ)ଣ୍ଡା(ଣ୍ଡି)**—ପ୍ରାଦେ. (ବାଲେଶ୍ୱର) ବି—(ସଂ. ମୁଷଳ + ଦଣ୍ଡ) Mushā(shu)ṇḍā(ṇḍi) ଢିଙ୍କି ପାହାର, ଢିଙ୍କିର ମୁଷଳ—The pestling rod of the Dhiṅki.

**ମୁଷି**—ସଂ. ବି—(ମୁଷ୍ ଧାତୁ+ଭାବ. ଇ ) ଚୋରି (ବିଶ୍ୱକୋଷ)—Mush Stealing.

**ମୁଷିତ**—ସଂ. ବିଣ—(ମୁଷ୍ ଧାତୁ+କର୍ମ. ତ)—୧ । ଚୋରିତ; ଅପହୃତ—Mushita 1. Stolen. ୨ । ବଞ୍ଚିତ—2. Defrauded. ସଂ. ବି—ଚୋରି ମାଲ (ବିଶ୍ୱକୋଷ)—Stolen property.

**ମୁଷିତକ**—ସଂ. ବି—(ମୁଷିତ + କ)—ଚୋରାଇ ମାଲ—Mushitaka Stolen property.

**ମୁଷିବତ**—ବୈଦେ. ବି—(ଆ)—୧ । କଷ୍ଟ;ଦୁଃଖ—1. Trouble. Mushibat ମୁସିବତ **मुसीबत** ୨ । ବିପଦ—2. Danger.

**ମୁଷୁଣ୍ଡା**—ପ୍ରାଦେ.—(ସିଂହଭୂମି)—ବି—(ସଂ. ମୁଷଳ ଦଣ୍ଡ); ଢିଙ୍କିର Mushuṇḍā ମୁଷଳ—The pestling rod of the Dhiṅki.

**ମୁଷ୍କ**—ସଂ. ବି [ମୁଷ୍ ଧାତୁ=(ସ୍ତେୟ) ଚୋରି କରିବା+କର୍ତ୍ତୃ. ଅ]—Mushka ୧ । ଅଣ୍ଡକୋଷ—1. Testicle; scrotum. ୨ । ତସ୍କର; ଚୋର—2. Thief; robber. ୩ । ଘଣ୍ଟାପାଟଳୀ ଗଛ [ବିଶ୍ୱକୋଷ]—3. Schrebera Swietenioides (tree). ସଂ. ବିଣ.—ମାଂସଳ [ହେମ ଚନ୍ଦ୍ର]—Fleshy.

**ମୁଷ୍କକ**—ସଂ. ବି.—[ମୁଷ୍କ+କ]—ପଳାଶ ବୃକ୍ଷ ପରି ଏକ ପ୍ରକାର ବୃହତ୍ Mushkaka ବୃକ୍ଷ, ଏକ ପ୍ରକାର ପାଟଳୀ ଗଛ—Name of a tree; Schrebra Swietenioides. [ ଦ୍ର—ଏହା ପଳାଶବତ୍ ପାଣ୍ଡୁବର୍ଣ୍ଣ ବୃକ୍ଷ । ଏଥିର ପତ୍ର ୩।୪ ଯୋଡ଼ା ପର୍ଣ୍ଣିତ ସମଷ୍ଟି । ଫୁଲ ଅର୍ପିତ, ଶାଦର ବର୍ଣ୍ଣ ଓ ସୁଗନ୍ଧ । ଫଳ ୩।୪ଅଙ୍ଗୁଳ ଲମ୍ବ ଘଣ୍ଟା ପରି । ଏହା କଟୁ, ଉଷ୍ଣ, ରେଚକ, ପାଚକ, କଫ ବାତ ଓ ବିଷନାଶକ । ଏହା ମେଦୋରୋଗ, ଗଲ୍ମ, କୃମି, ଓ ଶୁକ୍ରନାଶକ, ପ୍ଲୀହା ଓ ହୃଦ୍‌ରୋଗ ନାଶକ ।]

ଅନ୍ୟ ସଂସ୍କୃତ ନାମ—ଘଣ୍ଟାପାଟଳୀ, ମୋକ୍ଷକ, ଗୋଲୀଢ଼, ଘାଟଲ, ମୁଷ୍କକ, ଗୌଳକ, ମେହନ, ମୋଚକ, କ୍ଷାରବୃକ୍ଷ, ପାଟଳୀ, ବିଷାପହ, ଗୋଳହ, ଜଟାଳ, ବନବାସୀ, ସୁପୁଷ୍ପକ, କ୍ଷାରଶ୍ରେଷ୍ଠ, ଘଣ୍ଟା, ଘଣ୍ଟାକ, ମୁଷ, ଘାଟା,

**ଘଣ୍ଟାପାରୁଲ** ମୋଖା

ସ. ମୋକ୍ଷ
ତେ. ମୋଲ୍ଲ ପୁଡ଼େଚ୍ଚୁ,
ମୁଷ୍କ ଭୁଣ୍ଡେଚ୍ଚୁ

**ମୁଷ୍କଗ୍ରନ୍ଥି**—ସଂ. ବି—(ବୈଦ୍ୟକ)—୧ । ଅଣ୍ଡକୋଷର ନାଡ଼ୀ—Mushka granthi 1. The cord of the testis. ୨ । ଅଣ୍ଡକୋଷ—2. The testis.

**ମୁଷ୍କ ଛିନ୍ନ**—ସଂ. ବିଣ. ପୁଂ—(ମୁଷ୍କ+ଛିନ୍ନ ଯାହାର, ବହୁବ୍ରୀହି)—Mushka chchhinna ଅଣ୍ଡିରା; ଖାସି ହୋଇଥିବା—(ଛିନ୍ନମୁଷ୍କ—ଅନ୍ୟରୂପ) Castrated; gelded.

**ମୁଷ୍କ ଚ୍ଛେଦ**—ସଂ. ବି—(୬ଷ୍ଠୀ ତତ୍)—ପୁଂସ୍ତ୍ୱ ନଷ୍ଟ କରିବା ପାଇଁ ପୁରୁଷ Mushka chchheda ଜୀବର ଅଣ୍ଡକୋଷକୁ କାଟିବା ପ୍ରକ୍ରିୟା—

ମୁଷ୍କ ଛେଦନ, } —ଅନ୍ୟରୂପ ଖାସି କରିବା, ଅଣ୍ଡିରା କରିବା—
ମୁଷ୍କ ମୋଚନ } Castration; gelding.

**ମୁଷ୍କଭାର**—ସଂ. ବି—ପ୍ରବୃଦ୍ଧ ମୁଷ୍କ; ଅଣ୍ଡକୋଷ ବୃଦ୍ଧି—Mushka bhāra Hydrocele; enlarged testicles.

**ମୁଷ୍କର**—ସଂ. ବିଣ. ପୁଂ—ମୁଷ୍କ+ପ୍ରଳମ୍ବାର୍ଥେ. ର)—ପ୍ରଳମ୍ବାଣ୍ଡ, Mushkara ଭୁରୁଣ୍ଡା—Having big testicles. ସଂ. ବି ଲମ୍ବମାନ ଅଣ୍ଡକୋଷ; (ପ୍ରକୃତିବାଦ); ଭୁରୁଣ୍ଡା—Hydrocele; enlarged testicles.

**ମୁଷ୍କ ଶୂନ୍ୟ**—ସଂ. ବିଣ. ପୁଂ—୧ । ଖାସି ହୋଇଥିବା—Mushka śūnya 1. Castrated; gelded. ୨ । ନପୁଂସକ—2. Eunoch.

**ମୁଷ୍କବର୍ହ**—ସଂ. ବି. ପୁଂ (ମୁଷ୍କ+ଅ+ବୃହ୍ ଧାତୁ=ଉନ୍ମୂଳନ କରିବା+ Mushkabarha କର୍ତ୍ତୃ. ଅ )—ଯେଉଁ ବ୍ୟକ୍ତି ଗବାଦି ଜୀବଙ୍କ ଅଣ୍ଡିରା ବା ଉନ୍ମୂଳିତକୋଷ କରେ ( ବିଶ୍ୱକୋଷ. ଅଥର୍ବବେଦ )—A person who castrates or gelds animals.

**ମୁଷ୍ଟ**—ସଂ.ବିଣ (ମୁଷ୍ ଧାତୁ+କର୍ମ. ତ)—୧ । ମର୍ଦ୍ଦିତ—1. Rubbed. Mushṭa ୨ । ଅପହୃତ—2. Stolen. ବି. ( +ଭାବ. ତ )—ଚୋରି—Stealth; robbery.

**ମୁଷ୍ଟା ମୁଷ୍ଟି**—ସଂ. ବି.—ପରସ୍ପର ବିଧା ବା ମୁଥ ମରାମରି—Mushṭā mushṭi Mutual dealing of fist blows. [ଉ—ମୁଷ୍ଟା ମୁଷ୍ଟି, ମୁଥା ମୁଥି, କଚ କଚ ରଚି, ଗଡ଼ିଲେ ଅବନୀତଳେ ବେନି ରଣଗୋଳେ—ରାଧାନାଥ ମହାଯାତ୍ରା ।] ସଂ. ବି.—ପରସ୍ପର ବିଧା ବା ମୁଥ ମରାମରି ହେଉଥିବା—Dealing fist blows on each other.

**ମୁଷ୍ଟି**—ସଂ. ବି.—(ମୁଷ୍ ଧାତୁ=ଚୋରି କରିବା+କରଣ. ତି)—୧ । Mushṭi ଭୁଷ୍ଟିତ କରତଳ, ହାତର ମୁଠା—1. Fist-closed palm. ୨ । ମୁଠାଏ ପରିମାଣ—2. A handful. ୩ । ମୁଠାଦ୍ୱାରା ଆଘାତ; ବିଧା; ମୁଥ—3. Fisticuff; a blow with the fist. ୪ । ( +ଭାବ. ତି ) ଚୋରି—4. Theft. ୫ । ଧାତୁ ତରଳାଇବା—5. Melting of metals. ୬ । ଖଡ୍ଗାଦିର ବେଣ୍ଟ [illegible]

—6. The handle of a weapon; hilt. ୭ । ଚାରିତୋଳା ପରିମାଣ—7. A weight of 4 tolas. [ ଦ୍ର—ବୈଦ୍ୟକ ମାପ ଅନୁସାରେ ଏହା ୮ ତୋଳା । ] ୮ । ( ମୁଷ୍ ଧାତୁ+ଅଧିକରଣ. ତି; ଯେଉଁ ସମୟରେ କ୍ଷୁଧାତୁର ପଥିକ ଦ୍ରବ୍ୟସ୍ୱାମୀଙ୍କ ଅନୁପସ୍ଥିତିରେ ଓ ତାଙ୍କ ବିନାଅନୁମତିରେ ନିଜର ଖାଦ୍ୟ ପାଇଁ ଯଥେଷ୍ଟ ଦ୍ରବ୍ୟ ଗ୍ରହଣ କରେ ବା ଯେଉଁ ସମୟରେ ଶସ୍ୟାଦିକୁ ଗୁପ୍ତ ରଖିବାକୁ ହୁଏ ) ଦୁର୍ଭିକ୍ଷକାଳ ( ଶବ୍ଦକୋଷ )—8. A time of scarcity; famine. ୯ । ଘଣ୍ଟା ପାଟଳୀ ବୃକ୍ଷ ( ଶବ୍ଦକୋଷ )—9, Schrebera Swietenioides ( tree ). ୧୦ । ଋଦ୍ଧି ନାମକ ଔଷଧଦ୍ରବ୍ୟ—10. A rare medicinal article. ୧୧ । ( + ଭାବ. ତି ) ଗୋପନ—11. Concealment. [ ଦ୍ର—ଏଥିର ଅପଭ୍ରଂଶ ମୁଠା, ମୁଠି । ]

**ମୁଷ୍ଟିକ**—ସଂ. ବି ( ମୁଷ୍ ଧାତୁ+କର୍ତ୍ତୃ. ତି+ସଂଜ୍ଞାର୍ଥେ କ )—୧ । Mushtika ରାଜା କଂସର ମଲ୍ଲ ବିଶେଷ—1. A warrior under the demon Kamsa. [ ଦ୍ର—ବଳରାମ ଏହାଙ୍କୁ ବଧ କରିଥିଲେ—ଶବ୍ଦକୋଷ । ] ୨ । ( + ଅଧିକରଣ. ତି+କ ) ଧାତୁ ତରଳାଇବା ପାତ୍ର; କୋଇ—2. Crucible. ୩ । ( ମୁଷ୍ଟି+ପ୍ରୟୋଜନ ଏହାର, ଏହି ଅର୍ଥରେ କ ) ସ୍ୱର୍ଣ୍ଣକାର; ବଣିଆ—3. Goldsmith.

**ମୁଷ୍ଟିକାନ୍ତକ**—ସଂ. ବି ( ଉପପଦ; ମୁଷ୍ଟିକ+ଅନ୍ତକ=ନାଶକାରୀ )—Mushtikāntaka ମୁଷ୍ଟିକ ନାମକ ମଲ୍ଲକୁ ବିନାଶ କରିଥିବା ବଳଦେବ—A name of Baladeba the slayer of Mushtika.

**ମୁଷ୍ଟି ଦେଶ**—ସଂ. ବି—ଧନୁମୁଠା ବା ମଧ୍ୟଦେଶ ( ଯେଉଁଠାରେ ଧନୁକୁ Mushti deśa ଧରାଯାଏ )—The middle or handle of a bow.

**ମୁଷ୍ଟି ଦ୍ୟୂତ**—ସଂ.ବି—ଦ୍ୟୂତକ୍ରୀଡ଼ା ବିଶେଷ—A kind of game at Mushti dyūta hazards.

**ମୁଷ୍ଟିନ୍ଧୟ**—ସଂ. ବି—୧ । ( ମୁଷ୍ଟି+ଧେ ଧାତୁ+ପାନ କରିବା+କର୍ତ୍ତୃ. Mushtindhaya ଅ; ଯେ ମାତାର ବକ୍ଷରେ ମୁଷ୍ଟିପ୍ରହାର କରି ସ୍ତନ୍ୟପାନ କରେ )—ସ୍ତନନ୍ଧୟ; ଶିଶୁ—1. A suckling child. ୨ । ମୁଷ୍ଟିବନ୍ଧନ କ୍ରିୟା; ସଂଗ୍ରାହ; ହାତକୁ ମୁଠା କରିବା (ଶବ୍ଦକୋଷ)—2. Clenching of the fist.

**ମୁଷ୍ଟିପାତ**—ସଂ. ବି ( ୬ଷ୍ଠୀ ତତ୍ )—ବିଧା ବା ମୁଥ ମାରିବା—Mushtipāta Blow with fists.

**ମୁଷ୍ଟି ପିଢ଼େ**—ଦେ. କ୍ରି. ବିଣ—ଦୃଢ଼ମୁଷ୍ଟିରେ—Tightly in Mushti pirde hand. [ ଉ—କାଳିନ୍ଦୀ ପ୍ରାୟେ କୁନ୍ତ ମୁଷ୍ଟିପିଢ଼େ ଧରି । ରଘୁନାଥ. ନହାଯାତ୍ରା । ] दृढ़मुष्टिते दृढमुष्टिमें

**ମୁଷ୍ଟିବଦ୍ଧ**—ସଂ. ବିଣ—ମୁଷ୍ଟିକୃତ; ମୁଠା କରାଯାଇ ଥିବା ( ହାତ )—Mushtibaddha Clenched.

**ମୁଷ୍ଟିବନ୍ଧ**—ସଂ. ବି ( ୬ଷ୍ଠୀ ତତ୍ )—ହାତକୁ ମୁଠା କରିବା—Mushtibandha The act of clenching the fist. (ମୁଷ୍ଟିବନ୍ଧନ—ଅନ୍ୟରୂପ)

**ମୁଷ୍ଟିଭିକ୍ଷା**—ସଂ. ବି—ମୁଠିଏକ; ଦୁଆର ଦୁଆର ବୁଲି ମୁଠାଏ ଲେଖାଁଏ Mushtibhikshā ଚାଉଳ ଭିକ୍ଷା କରିବା—Begging of a handful of rice at every door.

**ମୁଷ୍ଟିମାଡ଼**—ଦେ. ବି—ବିଧାମାଡ଼—Fist-blow. [ ଉ—ବଳର Mushti mārda ପରି ମୁଷ୍ଟିମାଡ଼ରେ ତାହାର । କୃଷ୍ଣସିଂହ. घुषि मुक्कीमार ମହାଭାରତ. ବନ । ]

**ମୁଷ୍ଟିମିତ**—ସଂ. ବିଣ ( ୩ୟା ତତ୍ )—୧ । ମୁଠାଏ ପରିମିତ—Mushtimita 1. Measured by a handful. ୨ । ସାମାନ୍ୟ; ଅଳ୍ପସଂଖ୍ୟକ—2. A few; a little.

**ମୁଷ୍ଟିମେୟ**—ସଂ. ବିଣ ( ମୁଷ୍ଟି+ମା ଧାତୁ+କର୍ମ. ଯ )—୧ । ମୁଷ୍ଟି-Mushtimeya ଦ୍ୱାରା ପରିମେୟ; ମୁଠାଏ—1. A handful of. ୨ । ଅଳ୍ପ ପରିମାଣ—2. Little ( in quantity ). ୩ । ଅଳ୍ପସଂଖ୍ୟକ—3. Few ( in number ).

**ମୁଷ୍ଟି ମୁଷ୍ଟି**—ସଂ. ବି—ପରସ୍ପର ମୁଥ ମରାମରି ହୋଇ ଯେଉଁ ଯୁଦ୍ଧ ହୁଏ Mushti mushti —Boxing; fist to fist fighting.

**ମୁଷ୍ଟି ଯୁଦ୍ଧ**—ସଂ; ବି—ମୁଥ ମରାମରି ହୋଇ ଯୁଦ୍ଧ; ବିଧା ମରାମରି—Mushti juddha Boxing; pugilistic fighting.

**ମୁଷ୍ଟି ଯୋଗ**—ସଂ.ବି (ମୁଷ୍ଟି+ଯୋଗ)—୧ । ଗୁଟୁକା ଔଷଧ, ଚେରମୂଳ Mushti joga ଆଦି—1. Simple herbs. ୨ । ସୂକ୍ଷ୍ମ ଉପାୟ ଅବଲମ୍ବନପୂର୍ବକ ଶରୀରରକ୍ଷା, ବଳ ସମାଧାନ ଓ ରୋଗ ନିରସନ ଆଦି ପାଇଁ ହଂଯୋଗୋକ୍ତ ଯୋଗପ୍ରକ୍ରିୟା ବିଶେଷ—2. Simple exercises enjoined in the Hathajoga as remedies for keeping the body strong, healthy. [ ଦ୍ର—ଅନେକ ସ୍ଥଳରେ ଦେଖାଯାଏ ଯେ ଅନେକ ରୋଗ ଆୟୁର୍ବେଦୋକ୍ତ ପ୍ରଶସ୍ତ ଓ ଜଟିଳ ଔଷଧ ପ୍ରୟୋଗରେ ଆରୋଗ୍ୟ ହୁଏ ନାହିଁ, କିନ୍ତୁ ସାମାନ୍ୟ ମୁଷ୍ଟି ଯୋଗରେ ତାହା ଆରୋଗ୍ୟ ହୁଏ; ଯଥା—ଡାହାଣ ନାକପୁଡ଼ାରେ ନିଶ୍ୱାସ ଗଲାବେଳେ ଭୋଜନ କରିବା, ବାମ ନାଶାରେ ନିଶ୍ୱାସ ଗଲାବେଳେ ଶୋଇବା, ସକାଳୁ ଉଠି ବାସିପାଣି ପିଇବା, ଲୁଣ ଅଦା ଚୋବାଇବା । ]

**ମୁଷ୍ଟିଲ**—ଦେ. ବିଣ—ମୁଷ୍ଟିଯୁକ୍ତ-Attached with fists.[ଉ—Mushtila ମୁଷ୍ଟିଲ ଜଙ୍ଘେ ଫେରଣ, ମୂର୍ଦ୍ଧାଘ୍ରାଣ ଚୁମ୍ବ ପୁଣ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।]

**ମୁଷ୍ଟି ସଂଗ୍ର(ଗ୍ରା)ହ**—ସଂ. ବି—ମୁଷ୍ଟିବନ୍ଧ (ଦେଖ) Mushti samgra(grā)ha Mushtibandha (See).

**ମୁଷ୍ଟ୍ୟାଘାତ**—ସଂ. ବି ( ୩ୟା ତତ୍; ମୁଷ୍ଟି+ଆଘାତ )—ମୁଷ୍ଟିପ୍ରହାର Mushtyāghāta ପ୍ରହାର, ବିଧା ବା ମୁଥ—Fisticuff, blow with the fist.

ମୁସ୍ (ଧାତୁ)—ସ. —୧ । ବିଭାଗ କରିବା—1. To divide.
Mus (root) ୨ । କାଟିବା—2. To cut. ୩ । ଭାଙ୍ଗିବା—3 To break to pieces.

ମୁସ୍କିଆ—ପ୍ରାଦେ (ସମ୍ବଲପୁର) ବିଣ. ପୁଂ—ଅନ୍ୟ ବ୍ୟକ୍ତିର ପ୍ରାପ୍ୟ ଧନ
Muskiā ବା ଋଣକୁ ଯେ ଭୁରୁଡାଏ ବା ମାଡ଼ି ବସେ—(a person) Defrauding another of his dues.

ମୁସ୍କିବା—ପ୍ରାଦେ. (ସମ୍ବଲପୁର) କ୍ରି—ଅନ୍ୟ ବ୍ୟକ୍ତିର ପ୍ରାପ୍ୟକୁ
Muskibā ଭୁରୁଡ଼ାଇବା ବା ମାଡ଼ି ବସିବା—Defrauding or diswoning another's dues.

ମୁସ୍(ସୁ)କୁଲ—ବୈଦେ. ଅ ଓ ବିଣର ବିଣ, କ୍ରି. ବିଣ (ଅ ମୁଷ୍କିଲ୍)—
Mus(su)kuli ୧ । ମହା; ଅତ୍ୟନ୍ତ—1 Great; very;
मुश्किल मूसकील very much. ୨ । ଶକ୍ତ; ଅସହଜ—Difficult. [ ଦ୍ର—ଏହା ବିପଦ ବା ସଙ୍କଟ, ମହା ମୁସ୍କିଲ—ଫକୀରମୋହନ. ଛମାଣ ଅଠଗୁଣ୍ଠ । ]
ମୁସ୍[ସ୍ୱ]କିଲ୍ [ଲି], ମୁସ୍କିଲ୍[ଲି], ମୁସ୍କୁଲ } ଅନ୍ୟରୂପ

ମୁସ୍‌ମୁସି ଖରା—ପ୍ରାଦେ· ( ସମ୍ବଲପୁର ) ବି—ବର୍ଷାଦିନରେ ହେବା
Mus-musi kharā ତେଜୋହୀନ ମେଦୁଆ ଖରା—Mild sun's rays during cloudy weather.

ମୁସ୍‌ଲୀ(ଲେ)ମ୍—ବୈଦେ. ବି ଓ ବିଣ ( ଅ. ମୁସ୍‌ଲୀମ୍ )—ମୁସଲମାନ୍
Mus-lī(le)m ( ଦେଖ )—Musalamān ( See )
মুসলীম मूसलीम

ମୁସ୍‌ଲୀ(ଲେ)ମ୍ ଲୀଗ୍—ବୈଦେ. ବି ( ଅଟୁକିକ ବ୍ୟବହାର ) ( ଅ. ମୁସ୍‌ଲୀମ୍+ଇ. ଲେଗ୍ )—ଭାରତରେ ପ୍ରତିଷ୍ଠିତ
Mus-lī(le)m līg ମୁସଲମାନଙ୍କ କେନ୍ଦ୍ର ସଭା—The Muslim
মুসলীম লীগ
मूसलीम लीग League; an association of Mahomedans in India.

ମୁସ୍‌ଲୀ(ଲେ)ମ୍ ସେମିନା(ନେ)ରୀ—ବୈଦେ. ବି ( ଅଧୁନିକ ) ( ଅ. ମୁସ୍‌ଲୀମ୍+ଇଂ. ସେମିନାରୀ )—
Mus-lī(le)m seminā(ne)rī କଟକରେ ପ୍ରତିଷ୍ଠିତ ହାଇସ୍କୁଲ—The
মুসলীম সেমিনারী
मूसलीम सेमिनेरि Moslem Seminary High School in the town of Cuttack.

ମୁସ(ସୁ)ଦି(ଦ୍ଧି)—ବୈଦେ. ବି ( ଅ. ମୁତ୍‌ସଦ୍ଦୀ )—୧ । ମୋହରିର୍;
Musa(su)di(ddhi) ଲେଖକ—1. Writer, clerk. ୨ ।
মুছুদী मूतसद्दि ପେସ୍କାର—2. A ministerial officer who puts up record before a superior official ୩ । ବ୍ୟବସ୍ଥା କରିବା କର୍ମଚାରୀ—3 An officer in charge of arrangement. [ଦ୍ର—ସାରି ଫଉଜ ହେଲେ ତୟାର, ମୁସଦ୍ଦି ମୁସା ହେଲେ ବାହାର—ବ୍ରଜନାଥ.ସମରତରଙ୍ଗ । ] ୪ । ହିସାବରକ୍ଷକ—4. Accountant. ୫ । ଗୁମାସ୍ତା—5. Agent.

ମୁସମା(ମ୍ମା)—ବୈଦେ. ବି ଓ ବିଣ (ଫା. ମୁସମା ) (କଚେରୀ ଭାଷା)—
Musamā(mmā) ମଜରା—Set off; adjustment.

ମୁସ(ସୁ)ମା(ମ୍ମା)ତ୍—ବୈଦେ. ବି ( କଚେରୀ ) (ଫା. ମୁସମ୍ମତ୍ )—
Musa(su)mā(mmā)t ମୁଷମା(ମ୍ମା)ତ୍ ( ଦେଖ )—
মুষমত मूसम्मत Musamā(mmā)t ( See )

ମୁସଲ ( ଇତ୍ୟାଦି )—ସ. ବି (ମୁସ୍ ଧାତୁ=ଭାଙ୍ଗିବା+କରଣ. ଅଲ)—
Musala ( etc ) ମୁଷଳ ଇତ୍ୟାଦି ( ଦେଖ )—Mushala etc ( See )

ମୁସ(ସୁ)ଲ(ଲୁ)ମ୍—ବୈଦେ. ଅ ( ଅ. ମୁତ୍‌ଲକ )—ଆଦୌ; ମୂଳରୁ·
Musa(su)la(lu)m ବିଲ୍‌କୁଲ୍—At all·
আদতে, মুছলম मूसल्लिम

ମୁସଲ(ଲ)ମାନ୍—ବୈଦେ. ବି· ପୁଂ ( ଅ. ଏକବଚନ; ମୁସ୍‌ଲିମ୍=ମୁକ୍ତ
Musala(la) mān ପୁରୁଷ; ବହୁବଚନ—ମୁସ୍‌ଲିମୀନ୍; ମୁସଲ-
মুস(ছ)লমান मूसलमान ମୀନ୍ ଶବ୍ଦ କ୍ରମଶଃ ଅପଭ୍ରଷ୍ଟ ହୋଇ ଫାରସୀରେ ମୁସଲମାନ ରୂପ ଧାରଣ କରିଅଛି—ବି. ଶବ୍ଦକୋଷ )—
ମୁସଲ[ଲ]ମାନୀ, ମୁସଲ[ଲ]ମାନିଆଣୀ } ସ୍ତ୍ରୀ
୧ । ହଜରତ୍ ମହମ୍ମଦଙ୍କ ପ୍ରବର୍ତ୍ତିତ ଏକେଶ୍ୱର ଧର୍ମାବଲମ୍ବୀ ବ୍ୟକ୍ତି; ଇସ୍‌ଲାମ୍ ଧର୍ମାବଲମ୍ବୀ; ପଠାଣ—I. Mahomedan; Muslim; Islam. [ ଦ୍ର—ମୁସ୍‌ଲିମ ଓ ଇସ୍‌ଲାମ ଶବ୍ଦ ଆରବୀ 'ସଲମ' ଧାତୁରୁ ଉତ୍ପନ୍ନ । ଅ. ସଲମ ଧାତୁର ଅର୍ଥ ଆପଦଶୂନ୍ୟ, ମୁକ୍ତ ବା ମୁକ୍ତିକାଙ୍କ୍ଷୀ । ଯେଉଁ ଧର୍ମ ଗ୍ରହଣ କଲେ ସଂସାରରେ ମନୁଷ୍ୟ ନିରାପଦ ହୁଏ ଓ ପରଲୋକରେ ମୁକ୍ତିଲାଭ କରେ ତାକୁ ହଜରତ ମହମ୍ମଦ ଇସ୍‌ଲାମ ବା ମୁସ୍‌ଲିମ ବା ମୁସଲମାନ ଧର୍ମ ନାମ ଦେଇଅଛନ୍ତି । ସଲ୍ଲମତ ଓ ସଲାମ ଶବ୍ଦ ଏହି ଅ· ସଲମ ଧାତୁରୁ ଉତ୍ପନ୍ନ । ଦେଶଭେଦରେ ଏ ଧର୍ମାବଲମ୍ବୀମାନଙ୍କର ଭିନ୍ନ ନାମ ହୋଇଅଛି । ୟୁରୋପରେ ମୁର୍; ଆରବରେ ମୁସଲମାନ, ମୋସଲେମ; ଆବସିନିଆ ଓ ନିଉବିଆରେ ହାବସୀ; ପାରସ୍ୟରେ ପାରସୀ; ପୂର୍ବ ୟୁରୋପରେ ମଧ୍ୟଯୁଗରେ ସାରାସିନ । ଏହି ଧର୍ମର ପ୍ରବର୍ତ୍ତକ ହଜରତ ମହମ୍ମଦ ଆରବର ମକ୍କା ନଗରରେ ଖ୍ରୀ. ୫୭୧ ରେ ଜନ୍ମ ଗ୍ରହଣ କରିଥିଲେ । ଖ୍ରୀ. ୬୨୨ରେ ସେ ମକ୍କା ତ୍ୟାଗ କରି ମଦିନାକୁ ଗଲେ ଓ ସେହି ଦିନଠାରୁ ମୁସଲମାନଙ୍କ ପ୍ରଚଳିତ ହିଜିରୀ ସନ ଆରମ୍ଭ ହେଲା । ଖ୍ରୀ. ୬୩୨ ରେ ହଜରତ ମହମ୍ମଦ ଦେହତ୍ୟାଗ କଲେ । ଏକେଶ୍ୱରବାଦ ଏ ଧର୍ମର ପ୍ରଥମ ଧର୍ମନୀତି । 'ଅଲ୍ଲା'ହିଁ ଜଗତରେ ଏକମାତ୍ର ପ୍ରଭୁ ଓ ମହମ୍ମଦ ତାଙ୍କର ଜଣେ ପଏଗମ୍ବର ବା ପୃଥିବୀକୁ ପ୍ରେରିତ ଦୂତ ଅଟନ୍ତି ଓ ଏ ଧର୍ମାବଲମ୍ବୀମାନଙ୍କ ଧର୍ମଶାସ୍ତ୍ର କୋରାନରେ ମହମ୍ମଦ ଈଶ୍ୱରାଦେଶମାନ ଲିପିବଦ୍ଧ କରିଅଛନ୍ତି । ଯେ ଏ କଥା ବିଶ୍ୱାସ କରନ୍ତି ସେ ମୁସଲମାନ । ପ୍ରତ୍ୟେକ ମୁସଲମାନର ୫ଟି କର୍ତ୍ତବ୍ୟ ବୋଲି ଈଶ୍ୱରାଦେଶ କୋରାନରେ ଅଛି:—୧ । ଏକେଶ୍ୱରବାଦ କଲମା ପଢ଼ିବା, ୨ । ଦିନ ରାତିରେ ୫ ଥର ନମାଜ ପଢ଼ିବା, ୩ । ରମଜାନ ମାସରେ ଉପବାସ କରିବା, ୪ । ଧର୍ମାର୍ଥ ଦାନ କରିବା ଓ ୫ । ମକ୍କାକୁ ତୀର୍ଥଯାତ୍ରା କରିବା । ] ୨ । ଇସଲାମ ଧର୍ମ—2. Mahomedanism.

ମୁସଲ(ଲ)ମାନି—ବୈଦେ. ବି. ( ଫା. ମୁସଲ୍‌ମାନୀ )—ମୁସଲମାନର
Musala(la)māni ଆଚରଣ—Conduct befitting a
ମୁସ(ଛ)ଲମାନୀ मुसलमानी Mahomedan.
[ମୁସଲମାନାଥ(ଥି)—ଅନ୍ୟ ବିଣ.ରୂପ] ବିଣ—ମୁସଲମାନ ସମ୍ବନ୍ଧୀୟ-
Relating to Islam.

ମୁସଲ୍ଲା—ବୈଦେ. ବି. (ଆ)—ମୁସଲମାନମାନେ ନମାଜ ପଢିବା ସମୟରେ
Musallā ଯେଉଁ ଚଟେଇ ବା ଆସନ ବ୍ୟବହାର କରନ୍ତି—
मुसल्ला A prayer mat of a Mahomedan.
मुसल्ला

ମୁସଲ୍ୟ—ସ. ବିଣ. ପୁଂ (ମୁସଲ+ବଧ୍ୟାର୍ଥେ.ଯ)—ମୁଷଳ ଦ୍ୱାରା ବଧ୍ୟ-
Musalya Deserving to be killed by the blow
(ମୁସଲ୍ୟା—ସ୍ତ୍ରୀ) of a mace.

ମୁସ୍କି(ସ୍କୁ)ଲ୍(ଲି)—ବୈଦେ. ଅ. କ୍ରି. ବିଣ. ବିଶେଷ ଭାବେ. ବିଣ (ଆ)—
Muski(sku)l(li) ମୁଷ୍କୁଲ (ଦେଖ)—Mus-kuli (See)

ମୁସ୍ତ୍ (ଧାତୁ)—ସ—୧ । ଏକତ୍ର ହେବା; ଗଦା ହେବା—1. To be
Must (root) gathered together; to be heaped up. ୨ । ଗଦା କରିବା—2. To heap up; to accumulate. ୩। ଏକତ୍ର କରିବା—3. To gather up.

ମୁସ୍ତ—ବୈଦେ. ବି. ( ଫା. ମୁସ୍ତର୍ )—୧ । ଥର, ବାର, ମୁଥ—
Musta 1. Time. ୨ । କିସ୍ତି—2. Instalment. ସ.
बार, किस्ति ବି. (ମୁସ୍ତ୍ ଧାତୁ+କର୍ତ୍ତୃ. ଅ)—୧ । ଭୂତ ଘାସ—
बार, मुस्त 1. Cyperus Rotundus; the creeping
(ମୁସ୍ତର୍—ଅନ୍ୟରୂପ) grass. ୨ । ଏକ ପ୍ରକାର ଘାସର ସୁଗନ୍ଧ
ଅନ୍ୟ ସ. ନାମ—ମୁସ୍ତକ, ମୂଳ, ଯଥା—2. The bulbous
ମୁସ୍ତା, ଭଦ୍ର, ଭଦ୍ରକ, ଭଦ୍ରୁ root of a kind of grass;
ମୁସ୍ତକ, ଭଦ୍ରା, ଗାଙ୍ଗେୟ, Cyperus Rotundus.
ଅମ୍ବୁନାମକ, କୋରକ [ଦ୍ର—ଏହା ତିକ୍ତ, କଟୁ, ବାୟୁ-
ସେବ୍ୟକ, ନାଗରମୁସ୍ତକ, ନାଶକ, ଗ୍ରାହକ ଓ ପାଚନ, ଏହା
କ୍ଷୀରଭଦ୍ରା, ଭୂରୁହକ, ସ୍ୱଳକ ପିତ୍ତ, ଅସୃକ୍, ତୃଷ୍ଣା, ଜ୍ୱର ଓ କୃମି
ସେତୁ, ଗୁନ୍ଦ୍ରା, ମେଘ, ମେଘାଖ୍ୟ ନାଶକ । ଅନୂପଦେଶ ଜାତ ମୁଥା
ଓ ମେଘର ସମସ୍ତ ପ୍ରକ୍ତ ଶବ୍ଦମାନ ପ୍ରଶସ୍ତ ।]
मुता(आ) मोथा ଦେ. ଭୂତ ମୁସ୍ତ, ସକଳଭୂଙ୍ଗୁବରୁ
ଜା. କୋରକ୍ସ

ମୁସ୍ତକ—ସ. ବି—୧ । ସ୍ଥାବର ବିଷବିଶେଷ—1. A poisonous
Mustaka drug. ୨ । ମୁସ୍ତ (ଦେଖ )—2. Musta (See)

ମୁସ୍ତଜ—ବୈଦେ. ବି. (ଫା· ମୁସ୍ତାଜର)—ମୁସ୍ତାଜର ( ଦେଖ )
Mustaja Mustājara ( See )

ମୁସ୍ତ(ସ୍ତୁ)ଣ୍ଡା—ଦେ. ବିଣ. (ସ. ପୁଷ୍ଟ)—୧ । ହୃଷ୍ଟପୁଷ୍ଟ ଓ ବଳିଷ୍ଠ—
Musta(stu)ṇḍā 1. Stout and strong. ୨ । ଦୁଷ୍ଟ—
मुस्तण्डा 2. Wicked.

ମୁସ୍ତ(ସ୍ତା)ଫା—ବୈଦେ. ବି. (ଅ. ମୁସ୍ତାଫା)—୧ । ମୁସଲମାନ ଉଚ୍ଚ-
Musta(stā)phā ବଂଶୀୟ ବ୍ୟକ୍ତିଙ୍କ ନାମ ପୂର୍ବରେ ଲଗିବା ଉପାଧି
मुस्तफा ବିଶେଷ—1. A title prefixed to the name
मुस्तफा of Mahomedan nobles. ୨ । ହଜରତ
ମହମ୍ମଦଙ୍କ ନାମାନ୍ତର (ବିଶ୍ୱକୋଷ)—2. A name of
the prophet Mahammad
[ ଦ୍ର—ତୁର୍କିଜାତୀୟ ଅନେକ ଶାସନକର୍ତ୍ତା ଓ ତୁରସ୍କର
ସୁଲତାନଙ୍କ ଏହି ନାମ ଥିଲା । ଖ୍ରୀ ୧୭ଶଠାରୁ ୧୯ଶ ଶତାବ୍ଦି
ମଧ୍ୟରେ ଏହି ନାମଧାରୀ ୪ ଜଣ ତୁରସ୍କର ସୁଲତାନ
ହୋଇଥିଲେ ।]

ମୁସ୍ତ(ସ୍ତା)ଫା କ(କେ)ମା(ମେ)ଲ ପାଶା—ବୈଦେ. ବି. ( ନାମ )—
Musta(stā)phā ka(ke)ma(me)l pāśā ତୁରସ୍କ ସାଧାରଣ
मुस्तफा कमाल पाशा ଅଧୁନିକ ପ୍ରଜାତନ୍ତ୍ରର ପ୍ରତିଷ୍ଠାତା—
मुस्तफा कमाल पाशा Mustāfā Kamāl Pāśā, the
founder of the modern Turkish republic.

ମୁସ୍ତର—ବୈଦେ. ବି. (ଫା)—ମୁସ୍ତ ( ଦେଖ )
Mustār Musta ( See)

ମୁସ୍ତରୀ—ବୈଦେ. ବି. ପୁଂ (ଅ. ମୁଶ୍‌ତାରୀ; କଚରିଆ)—ସମ୍ପତ୍ତିକ୍ରୟକାରୀ;
Mustarī କ୍ରେତା—Purchaser of a property.
( ମୁସ୍ତରିଆ—ସ୍ତ୍ରୀ ) ( ବାଚ୍ୟ—ବିପରୀତ )
मुस्तारी मुस्तारी

ମୁସ୍ତା—ସ. ବି—ମୁସ୍ତ (ଦେଖ)
Mustā Musta (See)

ମୁସ୍ତାଜ(ଦା)ର—ବୈଦେ. ବି (ଫା. ମୁସ୍ତାଜର କଚରିଆ ଭାଷା)—ଯେଉଁ
Mustāja(dā)ra ଲୋକ ଜମିଦାର ଅଧିରୁ ଖଜଣା ଆଦାୟ
( ମୁସ୍ତାଦାର—ଅନ୍ୟରୂପ ) କରିବାକୁ ଜମିଦାରଙ୍କଠାରୁ ଇଜରା
मुस्तजर ନିଏ; ଠିକାଦାର—A farmer or lessee who
मुस्ताजर takes the farming of a Zamindari.

ମୁସ୍ତାଜରି—ବୈଦେ. ବି (ଫା)—ମୁସ୍ତାଜରର କାର୍ଯ୍ୟ ବା ପଦ—
Mustājari The act or post of a lessee.
मुस्ताजरी मुस्ताजरी

ମୁସ୍ତାଫ—ବୈଦେ. ବି (ଫା. ମୁସ୍ତଫା)—ବେଶଭୂଷାରେ ସଜ୍ଜିତକରଣ—
Mustāpha Being fitted up with dress,toilette.

ମୁସ୍ତେଜ—ବୈଦେ. ବିଣ (ଅ. ମୁସ୍ତଅଦ୍)—ଉଦ୍ୟତ—Ready.[ଦ୍ର—
Musteja ସେ ମୋ ସଙ୍ଗେ କଳି କରିବାକୁ ମୁସ୍ତେଜ ହେଉଛି । ].
उद्यत मुस्तेज

ମୁସ୍ଲିମ୍—ବୈଦେ. ବି ଓ ବିଣ (ଫା)—ମୁସ୍ଲିମ ଇତ୍ୟାଦି (ଦେଖ)
Muslim मुस्लिम मुस्लिम Muslim etc. (See)

ମୁହ୍ (ଧାତୁ)—ସ.—୧ । ମୁଗ୍ଧ ହେବା—1. To be charmed.
Muh (root) ୨ । ମୂଢ଼ ହେବା—2.To become foolish, to be fooled.

ମୁହଁ ବନ୍ଧ—ପ୍ରାଦେ (ଉତ୍ତରାଞ୍ଚଳ) ବି—ଶଗଡ଼ ଚକର ମଝି ପିଣ୍ଡର
Muhañ bandha ବାହାରେ ଦୁଇ ପାଖେ ଲୁଲିଯିବା ଅଟଳା ଲୌହ-
ବଳୟ—The iron ring round the navel of the wheel of a cart.

ମୁହଁ—ଦେ. ବି (ସଂ. ମୁଖ; ପ୍ରା. ମୁହଁ)—୧ । ମୁଖ; ବଦନ—Muhañ 1. Face. ୨ । ପାଟି—2. Mouth. ୩ । ମୁଣ୍ଡ—(ଗାଳି—ବ୍ୟବହୃତ) 3. Head. ୪ । ଅଗ୍ର; ସମ୍ମୁଖଭାଗ—ମୁখ 4, Front part. ୫ । ଚେହେରା—5. Countenମୁहं ance. ୬ । (ଲକ୍ଷଣାର୍ଥ) ବ୍ୟକ୍ତି—6. (figurative) A person. (ଉ—ଲାଜ ନ ଥାଏ ଯେଉଁ ମୁହଁକୁ, ଭଣ୍ଡାର ନ ଥାଏ ଖାଉଥିବାକୁ । ଲୋ ।) ୭ । ମୁଖନିଃସୃତ ବାକ୍ୟ—7. Speech. ୮ । ମୁଖଲଜ୍ଜା; ମୋହବତ-8. Regard for the feelings of others. (ଉ—ତୋ ମୁହଁକୁ, ନାଁ ତୋ ଗୋସେଇଁଙ୍କ ମୁହଁକୁ । ଲୋ ।) [ଦ୍ର—ମୁହଁ ଶବ୍ଦର ଅନ୍ୟାନ୍ୟ ଅର୍ଥ ପାଇଁ ମୁଖ ଶବ୍ଦ ଦେଖ ।]

ମୁହଁଅଇଁଠା କରିବା—ଦେ. କ୍ରି—ଖାଇବାକୁ ବସି ନାମମାତ୍ର Muhañ aiñṭhā karibā ଖାଇବା, ଅର୍ଥାତ୍ ଖାଦ୍ୟ ବସ୍ତୁକୁ ମୁখএঁঠো করা ଉଚିତ ପରିମାଣରେ ନ ଖାଇବା—To touch मुहं जुठारना the food.

ମୁହଁଅନ୍ଧାର—ଦେ· ବି (ସଂ. ମୁଖ+ଅନ୍ଧକାର)—୧ । ବେଳ Muhañ andhāra ବୁଡ଼ିବା ସମୟର ସାମାନ୍ୟ ଅନ୍ଧାର (ଯେଉଁ (ଝଟଝଟିଆ ଅନ୍ଧାର—ବ୍ୟବହୃତ) ଅନ୍ଧାରରେ ସାମନାରେ ଥିବା ମুখআঁধারী ଲୋକର ଉପସ୍ଥିତି ଓ ଅବୟବ ଜଣାପଡ଼େ, କିନ୍ତୁ मुहं अंधार (अँधेरे) ମୁହଁକୁ ଚିହ୍ନାଯାଇ ପାରେ ନାହିଁ)—1. The darkness of dusk (by which a person's face cannot be distinguished). ୨ । ପ୍ରାତଃକାଳର ଠିକ୍ ପୂର୍ବ ସମୟ—2. Day-break. (ଉ—ବାବାଜୀ ମୁହଁ ଅନ୍ଧାରରୁ ଉଠି ପ୍ରାତଃସ୍ନାନ ସାରି ହରିନାମ ଶୁଣାଇବା ସକାଶେ ଗ୍ରାମକୁ ବାହାରନ୍ତି । ପଞ୍ଚାରମୋହନ. ଛମାଣ ଆଠଗୁଣ ।)

ମୁହଁଅର(ରୁ)ଚ(ଚେ)ଇବା—ଦେ. ବି. (ସଂ. ମୁଖ+ଅରୁଚି)—Muhañ ara(ru)chā(che)ibā (ଅଶ୍ବାଦୁ ପଦାର୍ଥ ଖାଇବା, অরুচি হওয়া ଯୋଗୁଁ ବା ରୋଗ ଯୋଗୁଁ) ମୁଖରେ ଅରୁଚି ଭାବ अरूचि होना ହେବା—A feeling of disrelish or apathy for food.

ମୁହଁଅଣ୍ଟ—ଦେ. ବି—ବାକ୍ୟରେ ଦାମ୍ଭିକତା; ମୁହଁ ଭୁରୁଭୁ—Muhañ āṇṭa Effrontry; impudence. [ମୁହଁଅଣ୍ଟୁଆ—(ପୁଂ); ମୁହଁ ଅଣ୍ଟେ(ଣ୍ଟୋ)ଇ—(ସ୍ତ୍ରୀ)—ବ୍ୟକ୍ତି-দাম্ভিকতা मुहँ तोडी ବାଚକ ବିଶେଷଣ]

ମୁହଁଉଠା(ଠେ)ଇବା—ଦେ. କ୍ରି. (ସଂ. ମୁଖ+ଉତ୍+ସ୍ଥା ଧାତୁ)—Muhañ uṭhā(the)ibā ୧ । ତଳକୁ ନତ କରିଥିବା ମୁଖକୁ [ମୁହଁ ଟେକିବା—ଅନ୍ୟରୂପ] ଉପରକୁ ଟେକିବା—1. To raise মুখ তোলা up one's face. ୨ । ବହୁ ଲୋକଙ୍କ ମଧ୍ୟରେ मुहँ उठाना ପ୍ରଧାନ ବା ଉନ୍ନତ ଅବସ୍ଥାପନ୍ନ ହେବା—2. To become prominent amongst many.

ମୁହଁ ଉପରେ କଥା କହିବା—ଦେ.କ୍ରି—କୌଣସି ବ୍ୟକ୍ତିର ସମ୍ମୁଖରେ Muhañ upare kathā kahibā ଧୃଷ୍ଟଭାବପୂର୍ବକ କଥା মুখের উপর কথা বলা କହିବା—To speak out to a मुहँके उपर बोलना person's face impudently.

ମୁହଁକଡ଼ା—ଦେ.ବଣ.ପୁଂ ଓ ସ୍ତ୍ରୀ.(ସଂ. ମୁଖ+କଟୁ)—୧। ଅପ୍ରିୟଭାଷୀ; Muhañ karḍā କଟୁଭାଷୀ—1. Foul-mouthed. মুখ কড়া ୨ । କ୍ରୋଧନସ୍ବଭାବ—2 Of an angry मुहँ कड़ा temperament. [ମୁହଁ କଡ଼ା ପଣ, ମୁହଁ କଡ଼ା ପଣିଆ(ଅଁ)—ବିଶେଷ୍ୟ]

ମୁହଁକଢ଼ା—ଦେ. ବଣ—ମୁଖନିଃସୃତ; ଉଚ୍ଛିଷ୍ଟ; ପାଟିକଢ଼ା—Muhañ karḍhā Gorged out of the mouth. মুখ হতে বাহির করা जुठा (ଯଥା—ମୁହଁକଢ଼ା ପାନ ।)

ମୁହଁକଥା—ଦେ. ବି. (ସଂ. ମୁଖ+କଥା)—୧ । ବାକ୍ୟ ମାତ୍ରରେ Muhañ kathā ପର୍ଯ୍ୟବସିତ ବଚନ—1. Windy (ମୁହଁର କଥା—ଅନ୍ୟରୂପ) words; speech consisting মুখের কথা of words only (i. e. not ending in मुहँकी बात deeds. ୨ । ବାଗାଡ଼ମ୍ବର—2. A display of words; verbiage. ୩ । ମୌଖିକ କଥା—3. Verbal news; word of mouth. ୪ । ବାହ୍ୟ କଥା (ଯାହା ଆନ୍ତରିକ ନୁହେଁ)—4 Outward expressions (which does not represent the speaker's actual feelings).

ମୁହଁ କରିବା—ଦେ. କ୍ରି—୧ । ବିରକ୍ତିବାଚକ ମୁଖଭଙ୍ଗୀ କରିବା—Muhañ karibā 1. To assume a frowning মুখ করা face; to frown; to scowl. बडा मुहँ करना ୨ । ହର୍ଷସୂଚକ ବା ଦୁଃଖସୂଚକ ମୁଖଭଙ୍ଗୀ କରିବା—2. To assume a bright or sorrowful countenance. (ଯଥା—ସେ ଆଜି ଏଡ଼େ ମୁହଁ କରିଛି) [ଦ୍ର—ମୁହଁର ଚେହେରା ଦେଖିଲେ ମନୁଷ୍ୟ ସୁଖୀ ବା ଦୁଃଖୀ ଥିବା ଜଣା ପଡ଼େ । ଏଥିପାଇଁ କ୍ରୁଦ୍ଧ ବ୍ୟକ୍ତିକୁ ଲକ୍ଷ୍ୟ କରି କହନ୍ତି "ସେ ଟିକେ ଖାଇଲା ଭଳି ମୁହଁ କରିଛି ।" "ସେ ମୋକଦମା ଜିତି ପାଇଲା ପରି ମୁହଁ କରିଛି ।" ଅସମର୍ଥ ବ୍ୟକ୍ତିକୁ କହନ୍ତି "ସେ ଅଧିଆ ହକେଇଲା ପରି ମୁହଁ କରିଛି ।" "ସେ କଳୁଲି ଖାଇଲା ପରି ମୁହଁ କରିଛି ।"]
୩ । କୌଣସି ଆଡ଼କୁ ମୁଖ ବୁଲାଇବା; ଅଭିମୁଖୀ ହେବା—3. To turn one's face towards. (ଯଥା—ଉ ସିଧା ସିଧା ଉତ୍ତରକୁ ମୁହଁ କରି ଚାଲିଗଲେ ବାଲେଶ୍ବରରେ ପହଞ୍ଚିବୁ । ] ୪ । ଔଷଧ ପ୍ରୟୋଗ ଦ୍ବାରା ବ୍ରଣକୁ ପଚାଇ ତାହାର ଗୋଟିଏ ମୁହଁ ପ୍ରକାଶିତ କରାଇବା—2. To cause a boil to come to a head. (ଯଥା—ବଥ ଉପରେ ଗହମ ପୁଳଟିସ୍ ଦେଲେ ଏହା ଶୀଘ୍ର ବଥର ଗୋଟିଏ ମୁହଁ କରିଦେବ ।)

ମୁହଁ କଳା ପଡ଼ିବା(ହେବା)—ଦେ. ବି—ଭୟାଦି ହେତୁ ମୁଖ ବିବର୍ଣ୍ଣ ହେବା—One's face becoming pale through fear etc.
Muhañ kaḷā parḍibā(hebā)
মুখ কালো হওয়া
मुहँ काला पडना
[ମୁହଁ କେଶରା ପଡ଼ିଯିବା (ହେବା)—ଅନ୍ୟରୂପ]

ମୁହଁ କାଢ଼ିବା—ଦେ. କ୍ରି—କଇଁଛ ଆପଣା ଖୋଳରୁ କିମ୍ବା ସର୍ପ ଆଦି ଆପଣା ଗାତରୁ କିମ୍ବା ନୂଆ ବୋହୂ ଓଢ଼ଣା ମଧ୍ୟରୁ ବା ଯାତ୍ରୀ ରେଳ ଗାଡ଼ିର ଝରକାରୁ ମୁଖକୁ ପଦାକୁ ବାହାର କରିବା ବା ଦେଖାଇବା—To show out one's face from a hole or veil or window, said of a tortoise, a snake or a veled woman etc.
Muhañ kārḍhibā
(ମୁହଁ ବାହାର କରିବା—ଅନ୍ୟରୂପ)
মুখ বাহির করা
मुहँ निकालना

ମୁହଁ କାଢ଼ୁ(ଣ୍ଟୁ, ଣ୍ଡୁ)—ଦେ. ବି. (ସଂ. ମୁଖ+କଣ୍ଡୂ)—ମୁହଁବଳ; କଥା କହିବାର ସାମର୍ଥ୍ୟ; ମୁଖରତା—1. Ability to talk; glibness ୨। କଥା କହିବା ପାଇଁ ଅତ୍ୟଧିକ ବ୍ୟଗ୍ରତା—2. An inordinate desire to speak.
Muhañ kārḍhu(ṇṭu, ṇḍu)
মুখরতা
मुखरपन
মুখর
मुखर ·ଦେ. ବି. ପୁଂ ଓ ସ୍ତ୍ରୀ—Talkative.

ମୁହଁ କାଢ଼ୁଆ—ଦେ. ବିଣ. ପୁଂ (ସଂ. ମୁଖର)—ମୁଖର—Talkative; forward (person).
Muhañ kārḍhuā
[ମୁହଁ କାଢ଼େ(ଢ଼ୋ)ଇ—ସ୍ତ୍ରୀ] মুখর मुखड

ମୁହଁକୁ ଆଣିବା—ଦେ. କ୍ରି—ଉଚ୍ଚାରଣ କରିବା; କହିବା—To speak; to utter.
Muhañku āṇibā
মুখে আনা मुहँ मेलाना

ମୁହଁକୁ ଆସିବା—ଦେ. କ୍ରି—(କୌଣସି କଥା ବା ବାକ୍ୟ) ସ୍ଫୁରିବା, ବାକ୍‌ସ୍ଫୂର୍ତ୍ତି ହେବା—(any word or speech) Come to one's mouth; to occur to one's mouth.
Muhañku āsibā
মুখে আসা
मुहँमे आना

ମୁହଁକୁ ଏଡ଼େ କରିବା—ଦେ. କ୍ରି—କ୍ରୋଧ ବା ଅଭିମାନରେ ମୁହଁ ଫୁଲାଇବା—To pull a long face
Muhañku eṛḍe karibā
মুখ ভার করা मुहँ बडा करना

ମୁହଁକୁ ଚାହିଁବା—ଦେ. କ୍ରି—ପରର ମୁଖାପେକ୍ଷୀ ହେବା—1. To slavishly depend upon another's pleasure
Muhañku chāhiñbā
মুখ তাকান, মুখ চাওয়া
मुहँ तकाना(चाहना)
୨। ପ୍ରିୟ ବ୍ୟକ୍ତିର ମୁଖାବଲୋକନ କରି ଶାନ୍ତି ବା ସୁଖ ପାଇବା—2. To have peace of mind or happiness by having a look at the face of one's near and dear ones.
୩। (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିକୁ ଉପରୋଧ କରିବା; ଅନ୍ୟର ମୋହବତ୍ ରକ୍ଷା କରିବା—3. (figurative) To show regard for the feeling of another

ମୁହଁକୁ ଟିକିଏ ଚାହିଁବା—ଦେ. କ୍ରି—ଉପରୋଧ ବା ଅନୁରୋଧ ରକ୍ଷା କରିବା—To have regard for the feeling or opinion of another
Muhañku ṭikie chāhiñbā
মুখের দিকে চাওয়া
थोडाभी मुहँ चाहना

ମୁହଁକୁ ମୁହଁ—ଦେ. ଅ—ସାମନା ସାମନି; ମୁହାଁ ମୁହିଁ—Face to face.
Muhañku muhañ
মুখোমুখি मुहाँमुहि

ମୁହଁକୁ ମୁହଁ ନ ଦିଶିବା—ଦେ.ବି (ଅନ୍ଧକାର ଯୋଗୁଁ) ସମ୍ମୁଖରେ ଠିଆ ହୋଇଥିବା ବ୍ୟକ୍ତିଦ୍ୱୟ, ପରସ୍ପର ମୁଖ ଦେଖି ନ ପାରିବା; ଘୋରଘୋଟ ଅନ୍ଧାର—Pitch darkness.
Muhañku muhañ na diśibā
মুখ দেখতে না পাওয়া मुहँभी नही दिखा जाना

ମୁହଁକୁ ଶୁଣ୍ଢେଇ କରି ବସିବା—ଦେ. କ୍ରି—ମୁହଁକୁ ଭାରି କରି ବସିବା; ଭ୍ରୂକୁଟୀ କରିବା—To sit with a long or scowling face.
Muhañku śuṇḍeikari basibā
মুখ ভারকরে বসা मुहफुलाकरबैठना

ମୁହଁ କେଶରା ପଡ଼ିବା—ଦେ. ବି—ଲଜ୍ଜାରେ ମୁହଁ ବିବର୍ଣ୍ଣ ହେବା—One's face turning pale with shame.
Muhañ keśarā parḍibā
মুখচুন হওয়া मुहँ फिका पडना

ମୁହଁ ଖଉରା(ରେ)ଇବା—ଦେ.କ୍ରି (ସଂ. ମୁଖ+କ୍ଷୌର)—ଭଣ୍ଡାରିଦ୍ୱାରା ନିଜର ବା ଅନ୍ୟ ବ୍ୟକ୍ତିର ମୁଖର କ୍ଷୌରକର୍ମ ସମ୍ପାଦନ କରାଇବା—To have one's own or another person's face shaven by the barber.
Muhañ khaurā(re)ibā
কামান हजामत करना

ମୁହଁ ଖଉରିବା—ଦେ. କ୍ରି—ମୁଖର ଶ୍ମଶ୍ରୁ ଆଦିକୁ କ୍ଷୌର କରିବା—To shave the beard etc of the face. (ଉ—ଲାଜ ନ ଥାଏ ଯେଉଁ ମୁହଁକୁ ଭଣ୍ଡାରି ନ ଥାଏ ଖଉରିବାକୁ—ଢଗ।)
Muhañ khauribā
কামান हजामत करना

ମୁହଁ(ହୁଁ)ଖଣ୍ଡ(ଣ୍ଡା)—ଦେ. ବିଣ (ସଂ. ମୁଖର)—୧। ମୁଖର; ମୁଖଣ୍ଡ; ବହୁଭାଷୀ—1. Talkative; garrulous. ୨। କଥା କହିବାରେ ନିର୍ଭୀକ—2. Fearless in speech.
Muhañ(huñ)khaṇḍa(ṇḍā)
মুখর मुखर

ମୁହଁ(ହୁଁ)ଖର—ଦେ. ବିଣ. ପୁଂ (ସଂ. ମୁଖର)—୧। କଟୁଭାଷୀ—1. Scurrilous; foul-tongued. ୨। ମୁଖର—2. Talkative.
Muhañ(huñ)khara
মুখড় मुखर

ମୁହଁଖରୀ
ମୁହଁଖରେଇ } ସ୍ତ୍ରୀ
ମୁହଁ ଖରଖରୀ

ମୁହଁଖରାପ—ଦେ. ବି (ସଂ. ମୁଖ+ପା. ଖରାବ୍) କଟୁଭାଷଣ—Scurrility.
Muhañ kharāpa
মুখখারাপ मुहँखराब
মুহখারাপ मुँहखराबी ଦେ.ବିଣ—କଟୁଭାଷୀ—Scurrilous.

ମୁହଁଖରାପ କରିବା—ଦେ. କ୍ରି—ମୁହଁ ବିଗାଡ଼ିବା (ଦେଖ)
Muhañ kharāpa karibā Muhañ bigārḍibā (See)
মুখ খারাপ করা मूहँ खराब करना

ମୁହଁ ଖାଇ—ଦେ. ବିଣ. ସ୍ତ୍ରୀ (ଗାଳି) (ସଂ. ମୁଖରା)—କଳହପ୍ରିୟା; ଯେଉଁ ସ୍ତ୍ରୀ ମୁହଁକୁ ଚାହିଁ ଚାହିଁ ତୁଚ୍ଛକରି ଗାଳିଦିଏ—Very quarrelsome (woman), shrewish.
Muhañ khāi
মুখরা मुखडी

ମୁହଁଖୁରା—ପ୍ରାଦେ (ବାଲେଶ୍ୱର) ବି—ଗୋରୁମାନଙ୍କର ରୋଗବିଶେଷ; ପାଟୁଆ—A cattle disease appearing in the mouth; the foot and mouth disease of cattle. [ ଦ୍ର—ଏହି ରୋଗ ହେଲେ ଗୋରୁମାନେ ମୁହଁ ଖୋଲି କିଛି ଖାଇ ପାରନ୍ତି ନାହିଁ ଓ ସେମାନଙ୍କ ଖୁରାର ସନ୍ଧିରେ ଘାଆ ହୁଏ । ]
Muhañ khurā
ଖୁରୋ
खरा

ମୁହଁଖୋର—ଦେ. ବିଣ ( ସ. ମୁଖର )—ଯେ କଡ଼ା କଥା କହେ; କଟୁଭାଷୀ—Harsh in words; scurrilous.
Muhañ khora
ମୁଖରମ
मुखर

ମୁହଁଖୋଲିବା—ଦେ. କ୍ରି—କଥା କହିବା—To open one's mouth; to speak out.
Muhañ kholibā
(ମୁହଁ ଫିଟା(ଟେ)ଇବା—ଅନ୍ୟରୂପ)
ମୁଖଖୋଲା
मुहँखोलना
(ମୁହଁ ଖୋଲିଯିବା, ମୁହଁ ଫିଟିବା—ବିଶେଷ୍ୟରୂପ)

ମୁହଁଗଲୁ—ଦେ. ବି—୧ । ମୁଖ କଣ୍ଡୁ; କଥା କହିବାକୁ ପ୍ରବଳ ସ୍ପୃହା—An inordinate hankering to talk; itching for talk. ୨ । ବାଚାଳତା—2. Talkativeness.
Muhañ galu
[ମୁହଁକ(କା)ଣ୍ଡୁ—ଅନ୍ୟରୂପ]
ମୁଖ ଚୁଲକନୀ
मुहँका गलु

ମୁହଁଗାଣ୍ଡି—ଗ୍ରା. ବି (ବିପରୀତାର୍ଥକ ସହଚର ଶବ୍ଦ)—୧ । ଖାଦ୍ୟ-ପ୍ରବେଶ ପଥ ଓ ବିଷ୍ଠାନିର୍ଗମ ପଥ—1. Mouth and anus (the entrance and exit for food in the body). ୨ । ପାତ୍ରର ମୁଖ ଓ ଅଧୋଭାଗ—2. The mouth and bottom of a pot.
Muhañ gāṇḍi
ମୁଖ ও পোঁদ
मुहँ और गाँड

ମୁହଁଗାଣ୍ଡି ପାଲଟିବା—ଗ୍ରା. ବି ( ଅଶିଷ୍ଟ )—ମୁଖୋଚ୍ଚାରିତ ବାକ୍ୟ ପ୍ରତିପାଳିତ ନ ହେବା—Breach of one's promise. [ ଦ୍ର—ମୁହଁ ଶବ୍ଦ ଉଚ୍ଚଭାବବ୍ୟଞ୍ଜକ ଓ ଗାଣ୍ଡି ନୀଚତା ବା ହେୟତାବ୍ୟଞ୍ଜକ । ଯେଉଁ ଲୋକ ଆପଣାର ବାକ୍ୟ ବା ସତ୍ୟ ପାଳନ ନ କରେ, ଇତର ଲୋକେ କହନ୍ତି, "ତାର ମୁହଁ ନୁହେଁ ସେ ଗାଣ୍ଡି", 'ତାର ମୁହଁଟା ଗାଣ୍ଡି ହେଲା' ଇତ୍ୟାଦି । ଇତର ଲୋକେ ଅତି ବେହିଆ ଲୋକକୁ ଲକ୍ଷ୍ୟ କରି କହନ୍ତି ଯେ 'ତାକୁ ମୁହଁରେ ମାଇଲେ ଲାଜ ନାହିଁ, କି ଗାଣ୍ଡିରେ ମାଇଲେ ଲାଜ ନାହିଁ । ]
Muhañ gāṇḍi pālaṭibā
ମୁହଁ ଗାଣ୍ଡି ବଦଳିବା
ମୁହଁ ଗାଣ୍ଡି ହେବା } ଅନ୍ୟରୂପ
ମୁହଁ ଗାଣ୍ଡି ହୋଇଯିବା
ବଚନ ভ্রষ্ট হওয়া
मुहँ गाँड होना

ମୁହଁଗାଲୁ—ଦେ. ବି—୧ । ମୁହଁ ଭରୁଭରୁ; ଦାମ୍ଭିକତା—1. Effrontery; bravado. ୨ । କୌଣସି ସତ୍ୟ କଥାକୁ ନ ମାନିବା—2. Denial of a true fact.
Muhañ gālu
ଦାম্ভিকতা
मुहँगाल

ମୁହଁଗାଲୁ ଭାଙ୍ଗି ଦେବା—ଦେ. କ୍ରି—ପ୍ରହାରାଦିଦ୍ୱାରା ଦାମ୍ଭିକତାକୁ ଚୂର୍ଣ୍ଣ କରିଦେବା—To root out a person's effrontery (i.e. to cause him to speak out the truth) by condign punishment.
Muhañ gālu bhāṅgi debā
ଦାম্ভিকতা ভাংগা
मुहँगाल तोडना (भांगना)
(ମୁହଁଗାଲୁ ଭାଙ୍ଗିଯିବା—ବିଶେଷ୍ୟରୂପ)

ମୁହଁ ଗୋଜ(ଜା) କରିବା—ଦେ. କ୍ରି—ଅପମାନ ହେତୁ ଓଷ୍ଠଦ୍ୱୟକୁ ଲମ୍ବାଇବା—To knit the lips with displeasure or sulkiness.
Muhañ goja(jā) karibā
[ମୁହଁ ଗୋଜା(ଜେ)ଇବା—ଅନ୍ୟରୂପ]
ମୁଖ গোঁজকরা
मुहँ चुकरो करना

ମୁହଁ ଘୋଡ଼ା(ଡ଼େ)ଇବା—ଦେ. କ୍ରି—ଅପଣା ମୁଖକୁ ବସ୍ତ୍ରାଦିଦ୍ୱାରା ବା ଅବଗୁଣ୍ଠନଦ୍ୱାରା ଆବୃତ କରିବା—To cover one's face with a vei
Muhañ ghoṛā(ṛe)ibā
ମୁଖ ঢাকা
मुहँ ढाकना

ମୁହଁ ଚଳା(ଲେ)ଇବା—ଦେ. କ୍ରି—୧ । କଥା କହିବା—1. To talk. ୨ । ଗାଳି ଦେବା—2. To rebuke.
Muhañ chalā(le)ibā
(ମୁହଁ ଚଳିବା—ବିଶେଷ୍ୟ ରୂପ)
ମୁଖ চলান
मुहँ चलाना

ମୁହଁ ଚାଳିବା—ଦେ. କ୍ରି—୧ । ଖାଇବା—1. To eat. ୨ । ପାକୁଳାଇବା; ଘୋଟାଇ କରି ଖାଇବା—2. To chew; to ruminate.
Muhañ chālibā
[ମୁହଁ ଚଳା(ଲେ)ଇବା—ଣିଜନ୍ତରୂପ]
(ମୁହଁ ଚଳିବା—ବିଶେଷ୍ୟ ରୂପ)
ମୁଖ চালান
मुहँ चलाना

ମୁହଁ(ହୁଁ) ଚାହାଣି—ଦେ. ବି—ଶ୍ୱଶୁର ଘରେ ନବାଗତା ବଧୂର ମୁଖକୁ ପ୍ରଥମେ ଦେଖିଲାବେଳେ ବନ୍ଧୁମାନଙ୍କର ଦେବା ଉପଢୌକନ—Present given to a newly come bride.
Muhañ(huñ) chāhāṇi
[ମୁହଁ(ହୁଁ) ଚାହାଣିଅ—ଅନ୍ୟରୂପ]
ମଖদেখা
मुहँ देखावन

ମୁହଁ ଚାହିଁବା—ଦେ. କ୍ରି—୧ । ମୁଖ ଦେଖିବା; ଅନ୍ୟ ବ୍ୟକ୍ତିର ମୁଖାବଲୋକନ କରିବା—1. To see another's face. [ ଦ୍ର—୧ । ଲୋକଙ୍କର ବିଶ୍ୱାସ ଯେ, ସକାଳୁ ଉଠି ସର୍ବ-ପ୍ରଥମେ ଲକ୍ଷ୍ମୀବନ୍ତ ଲୋକର ମୁହଁ ଚାହିଁଲେ ମଙ୍ଗଳ ଘଟେ ଏବଂ ଅଣ୍ଟୁକୁଡ଼ା, କୃପଣ ଆଦି ବ୍ୟକ୍ତିଙ୍କ ମୁହଁ ଚାହିଁଲେ ସେ ଦିନ ଭଲ ଖାଇବାକୁ ମିଳେ ନାହିଁ ଓ ଦୁଃଖ ଭୋଗ କରିବାକୁ ହୁଏ । ଢଗରେ ଅଛି—'ସକାଳୁ ଉଠି ତୋ ମୁହଁ ଚାହିଁଲି, ଅଛି ପଖ ଦିନେ ମାଡ଼ ଖାଇଲି ।'
Muhañ chāhiñbā
(ମୁହଁ ଦେଖିବା—ଅନ୍ୟରୂପ)
ମୁଖ চাওয়া
मुहँ देखना

୨ । ଅତି ମଧ୍ୟ ଲୋକଙ୍କର ବିଶ୍ୱାସ ଯେ, ଯେବେ ଉତ୍ତମ ମୁହୂର୍ତ୍ତରେ ବା କ୍ଷଣରେ ଦୁଇ ଜଣଙ୍କର ପ୍ରଥମ ଭେଟ ହୋଇଥାଏ, ତେବେ ସେ ଦୁଇ ଜଣଙ୍କ ମଧ୍ୟରେ ବନ୍ଧୁତା ଓ ସୌହାର୍ଦ୍ଦ୍ୟ ଚିରକାଳ ରହେ । ଏଥିପାଇଁ ଲୋକେ ବରକନ୍ୟାଙ୍କର ପରସ୍ପର ମୁଖାବଲୋକନ ଓ ଶୁଭଦର୍ଶନ ପାଇଁ ଶୁଭ ମୁହୂର୍ତ୍ତ ଠିକଣା କରନ୍ତି ।

୩ । ଅତି ମଧ୍ୟ ଲୋକଙ୍କର ବିଶ୍ୱାସ ଯେ ଦେବତା, ରାଜା ଆଦିଙ୍କୁ ପ୍ରଥମେ ଦର୍ଶନ କଲାବେଳେ ଉତ୍ତମ ଦର୍ଶନୀ ବା ଭେଟି ବା ସଲାମୀ ଦେଲେ ମଙ୍ଗଳ ହୁଏ । କିଛି ନ ମିଳିଲେ ଫଳଟିଏ ମଧ୍ୟ ଦେଲେ ଚଳେ । ଯାହାକୁ ପ୍ରଥମେ ଦେଖା

କରିବାକୁ ଯିବାକୁ ହୁଏ, ତାଙ୍କୁ ପ୍ରସନ୍ନ କରାଇବା ପାଇଁ ଏହା ବ୍ୟବସ୍ଥା କରାଯାଇ ଅଛି । ଶାଶୁ ଘରେ ଗୋଡ଼ ଦେବା ମାତ୍ରେ ବୋହୂ 'ନଣନ୍ଦ'ଙ୍କୁ ନଣନ୍ଦ ପୋଟଳୀ ଭେଟି ଦେବା ମଧ୍ୟ ଏହି ବିଶ୍ୱାସର ଫଳ । ] ୨ । ପରର ମୁଖାପେକ୍ଷୀ ହେବା—2. To depend on another's opinion or pleasure; to become a sycophant.

**ମୁହଁ ଚିକ(କି)ଣା(ଣେ)ଇବା**—ଦେ. କ୍ରି (ସଂ. ମୁଖ+ଚିକ୍କଣ)—
Muhañ chika(ki)ṇā(ṇe)ibā ୧ । କ୍ଷୌର ହୋଇ ବା
মুখ চিকনাই করা ତେଲ ମାରି ମୁହଁକୁ ଚିକ୍କଣ କରିବା—
मुँहको चिक्कन करना 1. To make one's face fair or smooth by shaving or with unguents ୨ । (ଲକ୍ଷଣାର୍ଥ) ତୋଷାମଦ କରିବା—2. (figurative) To flatter. ୩ । (ଲକ୍ଷଣାର୍ଥ) ହୃଦୟରେ କପଟ ରଖି ମୁହଁରେ ମଧୁର କଥା କହିବା—3. (figurative) To utter sweet words with conceit inside.

**ମୁହଁ(ହୁଁ)ଚୁହାଁ**—ଦେ. ବି—୧ । କୌଣସି ବ୍ୟକ୍ତିର ମୁହଁ ଦେଖିବା;
Muhañ(huñ) chuhāñ ମୁଖଦର୍ଶନ; ମୁଖାବଲୋକନ—
মুখ চাওয়া; মুখদেখা; মুখদেখানী 1. Seeing the face of
मुहँ देखा a person. ୨ । ବିବାହ ପୂର୍ବରୁ ବରପକ୍ଷୀୟ ଲୋକଙ୍କର କନ୍ୟାର ମୁଖକୁ ଦେଖିବା—2. Inspection of the face of the bride-elect by the bridegroom's guardians before betrothal or marriage. ୩ । ଅତ୍ମୀୟ ସ୍ୱଜନମାନେ ନବବଧୂମାନଙ୍କର ମୁହଁ ପ୍ରଥମେ ଦେଖିବା ଉପଲକ୍ଷରେ ଯେଉଁ ଦର୍ଶନୀ ବା ଉପହାର ଦିଅନ୍ତି—3. Present given to a new bride by the bridegroom's relatives on the occasion of their first seeing her face. ୪ । ବିବାହର ଅଠମଙ୍ଗଳା ଦିନ କନ୍ୟା ଶ୍ୱଶୁରଘରକୁ ଫେରି ଯିବା ବେଳେ ଶ୍ୱଶୁର ଘରୁ ନବବଧୂକୁ ଦିଆ ଯିବା ଉପଢୌକନ—4. Present given to the newly married girls by the bride's family, when she goes back to her father's house on the 8th day of the marriage ceremony. ବିଣ. ପୁଂ—(ଅନ୍ୟ ଶବ୍ଦ ସଙ୍ଗେ ଲାଗେ,ଯଥା—ମାଇପ ମୁହଁ ଚୁହାଁ; ସଇତା ମୁହଁ (ମୁହଁ ଚୁହାଁ—ସ୍ତ୍ରୀ) ଚୁହାଁ)—୧ । ମୁଖଦର୍ଶନକାରୀ—1. Seeing the face of. ୨ । ସର୍ବଦା ମୁଖ ଦେଖିବାକୁ ବା ପାଖରେ ରହିବାକୁ ଇଚ୍ଛୁକ—2. Eagerly longing to look at the face of; loving the company of; very fond of (another.) ୩ । ମୁଖାପେକ୍ଷୀ—3. Depending upon the wish or pleasure of (another.)

**ମୁହଁ(ହୁଁ)ଚୁ(ଚା)ହାଁ ଚୁ(ଚା)ହିଁ**—ଦେ. ବି—ଅନ୍ୟୋନ୍ୟ ମୁଖ ଅବଲୋକନ
Muhañ (huñ) chu(cha)hañ chu(cha)hiñ Mutual
মুখ দেখা দেখি looking at the face of each other.
मुँह देखा देखी

**ମୁହଁ(ହୁଁ) ଚୋର(ରା)**—ଦେ. ବିଣ. ପୁଂ—୧ । ଅତ୍ୟନ୍ତ ଲାଜକୁଳା;
Muhañ (huñ) chora(rā) ଚୋରମୁହାଁ—1. Modest;
মুখ চোরা मुहँ चोर coy; shy; shame-faced; bashful;
[ମୁହଁ (ହୁଁ)ଚୋରୁଣୀ—ସ୍ତ୍ରୀ] sheepish. ୨ । ଅଳାପଲାଜୁ; କଥା କହିବାକୁ ସଙ୍କୁଚିତ—2. Feeling bashful to talk

**ମୁହଁ ଛତୁ କରି ପକାଇବା**—ପ୍ରାଦେ. (ଯାଜପୁର) କ୍ରି.—କୌଣସି
Muhañ chhatu kari pakāibā ବ୍ୟକ୍ତିକୁ ବିଶେଷ ଅପ-
[ମୁହଁ ଛତୁ ହେବା—ବିଶେଷ୍ୟରୂପ] ମାନିତ, ଅପ୍ରସ୍ତୁତ ବା ଲଜ୍ଜିତ କରିବା—To make a person crest-fallen; to insult a person; to abash a person.

**ମୁହଁଛପା(ପେ)ଇବା**—ଦେ. କ୍ରି—ମୁହଁ ନୁଚାଇବା (ଦେଖ)—
Muhañ chhapā(pe)ibā Muhañ nuchāiba (See).
মুখ লুকান मुहँ छिपाना

**ମୁହଁ ଛିଞ୍ଚ (ଞ୍ଚି)ଡ଼ା**—ଦେ. ବି.—ବିରକ୍ତିପ୍ରକାଶକ ମୁଖଭଙ୍ଗୀ—
Muhañ chhiñcha(ñchi)rdā Frowning grimace;
মুখ সিটকান मुहँ सुटकना a wry face.

**ମୁହଁ ଛିଞ୍ଚାଡ଼ିବା**—ଦେ. କ୍ରି—୧ । ବିରକ୍ତି ବା ଘୃଣାରେ ମୁଖ କୁଞ୍ଚିତ
Muhañ chhiñchārdibā କରିବା—1. To make the
মুখ সিটকান मुहँ सुटकाना face wry expressing disgust or hatred.—୨ । (ପଶୁଆଦି) ଖାଇଲା ବେଳେ ମୁହଁକୁ ଇତସ୍ତତଃ ହଲାଇବା—2. (beasts) To shake the face while eating.

**ମୁହଁ ଛୁଟିବା**—ଦେ. ବି—୧ । ଅଜସ୍ର ବାକ୍ୟ ପ୍ରୟୋଗ—
Muhañ chhutibā 1.The continuous flow of words.
[ମୁହଁ ଫିଟିବା—ଅନ୍ୟରୂପ] ୨ । ଅସଂଯତ ଭାଷା ବ୍ୟବହାର—
মুখছুটা मुहँ छूटना 2. Unbridled flow of words.
୩ । ମୌନିତା ତ୍ୟାଗ ପୂର୍ବକ ବାକ୍ୟୋଚ୍ଚାରଣ— Giving up silence and beginning to talk

**ମୁହଁ ଛୋଡ଼ିବା**—ଦେ. କ୍ରି.—(ଅଶିଷ୍ଟ ପ୍ରୟୋଗ)—ଦାନ୍ତ ଛେଡ଼ିବା;
Muhañ chhordibā କର୍କଶ ଭାବରେ ହସିବା—To show
নিল্লজভাবে হাসা one's teeth while talking; to laugh
मुहँ किदोडकरना grinningly; to grin indecently.
मुहवाना

**ମୁହଁ ଜଗା(ଗେ)ଇବା**—ଦେ. କ୍ରି.—ଅନ୍ୟ ବ୍ୟକ୍ତିଙ୍କ ମନକୁ ସନ୍ତୁଷ୍ଟ
Muhañ jagā(ge)ibā କରାଇବା—To please
মনযুগান मुहँजगाना another person.

**ମୁହଁ ଜଗିବା**—ଦେ. କ୍ରି.—୧ । ଅନିଷ୍ଟ ନ ଘଟିବା ପାଇଁ ସତର୍କ
Muhañ jagibā ରହିବା—1. To be on's one guard.
मुहँजगना ୨ । ଅନ୍ୟ ବ୍ୟକ୍ତିର ମନକୁ ସନ୍ତୁଷ୍ଟ କରାଇବା—
2. To please another person. ୩ । କାର୍ଯ୍ୟର ସମାପ୍ତି ଘଟିବା ପୂର୍ବରୁ ସାବଧାନ ରହିବା—3. To be careful before the completion of any work.

ମୁହଁ(ହୁଁ) ଜବାନି—ଦେ. ବି—(ଫା. ମୁହଁ, ଜବାନୀ)—୧ । କଥାବାର୍ତ୍ତା ।
Muhañ (huñ) jabāni 1. Conversation. ୨ । ମୌଖିକ ସମ୍ବାଦ—2. Verbal news.
ମୁଖ ଜବାନୀ मुहँ ज़बानी
ବିଣ.—ମୌଖିକ—Verbal.

ମୁହଁ ଜଳିଯିବା—ଦେ. ବି—ଲଜ୍ଜାରେ ମୁଖ ବିବର୍ଣ୍ଣ ହେବା—
Muhañ jali jibā The face becoming pale through shame.
ମୁଖ ଜଲେ ଜାଓୟା, मुहँ जल जाना

ମୁହଁ(ହୁଁ) ଜୋର୍(ରି)—ଦେ. ବି—୧ । ଦାମ୍ଭିକତା; ଭୁକୁଡ଼ି—
Muhañ (huñ) jor(ri) 1. Effrontery.
ମୁଖଜୋର मुहँजोरी ୨ । ବାକ୍‌ଶକ୍ତିର ପ୍ରଗଲ୍ଭତା—2. Glibness of the tongue. ୩। କୌଣସି କୌଣସି ଘୋଡ଼ାର ଲଗାମକୁ ବା ବାଗକୁ ନ ମାନିବାର ଶକ୍ତି—3. Obstinacy of some horses not to be curbed or restrained.
ମୁଖଜୋରୀ मुह जोर
ଦେ. ବିଣ—୧ । ବଚନ-

ମୁହଁ(ହୁଁ)ଜୋର୍‌ଦାର }
ମୁହଁ(ହୁଁ) ଜୋରିଆ } —ଅନ୍ୟ ବିଣ ରୂପ
କୁଶଳ—1. Glib. ୨ । ଭୁକୁଡ଼ା—2. Full of effrontery. ୩ । ଯେଉଁ ଘୋଡ଼ା ବାଗକୁ ମାନେ ନାହିଁ—3. Strong-mouthed; uncurbable (horse.)

ମୁହଁ ଠାଣ—ଦେ. ବିଣ. ପୁଂ ଓ ସ୍ତ୍ରୀ—୧ । ଦାମ୍ଭିକ—1. Haughty;
Muhañ ṭāṇa arrogant. ୨। ଭୁକୁଡ଼ି—2. Impudent
ଦାମ୍ଭିକତା ଦେ. ବି—ଦାମ୍ଭିକତା, ମୁହଁ ଗାଲୁ; ଭୁକୁଡ଼ି—
गाल करना Effrontery; insolence; arrogance.

ମୁହଁ ଠାଣୁଆ—ଦେ. ବିଣ ପୁଂ ଓ ସ୍ତ୍ରୀ—ମୁହଁ ଠାଣ (ଦେଖ)
Muhañ ṭāṇuā ଦାମ୍ଭିକ Muhañ ṭāṇa (See)
गाल करनेवाला [ମୁହଁ ଠାଣେ(ଣୋ)ଇ—ସ୍ତ୍ରୀ]

ମୁହଁ ଟିକିଏ କରିଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଲଜ୍ଜିତ ବା
Muhañ ṭikie karidebā ଅପ୍ରତିଭ କରାଇବା—To cause another to be crest-fallen.
ମୁଖ ଛୋଟ କରାନ

ମୁହଁ ଟିକିଏ ହେବା—ଦେ. କ୍ରି—ଅପ୍ରତିଭ ହେବା—
Muhañ ṭikie hebā ମୁଖ ଛୋଟ ହওয়া Being crest-fallen.
मुहँ छोटा होना (ମୁହଁ ଟିକିଏ ହୋଇ ଯିବା—ଅନ୍ୟରୂପ)

ମୁହଁ ଢଙ୍କା(ଙ୍କେ)ଇବା—ଦେ. କ୍ରି—ଆପଣା ମୁଖକୁ ବସ୍ତ୍ର ବା ଅବଗୁଣ୍ଠନ
Muhañ ḍhankā(ṅke)ibā କରିବା—To cover one's face with a veil.
ମୁଖ ঢাকা मुह ढकाना [ମୁହଁ ଘୋଡ଼ାଇବା—ଅନ୍ୟରୂପ]

ମୁହଁ ତୁଟିବା—ଦେ. କ୍ରି—ମୋହବତ ଭୁଟାଇ ଗାଳି ଦେବା—
Muhañ tuṭibā To call names to a person's face.

ମୁହଁ ଥିବା—ଦେ. କ୍ରି—କୌଣସି ବ୍ୟକ୍ତିର ନିକଟରେ ପ୍ରାର୍ଥନା ବା
Muhañ thibā ଅନୁରୋଧ କରିପାରିବାର ସାମର୍ଥ୍ୟ—The capacity of requesting some one or praying before some one. (ଯଥା—ସେ ରାଜାଙ୍କ ପାଖରେ କସ ଛୁଟ କରନ୍ତି, ତାଙ୍କର ରାଜାଙ୍କ ପକ୍ଷେ ମୁହଁ ଅଛି, ସେ ମୋ ପାଇଁ ରାଜାଙ୍କ ପାଖରେ ଅବଶ୍ୟ ଗୁର ପଦ କହି ପାରିବେ ।)
ମୁଖ থাকা मुहँ होना
(ମୁହଁ ରହିବା—ଅନ୍ୟରୂପ)

ମୁହଁ ଦେଖା(ଖେ)ଇବା—ଦେ. କ୍ରି—୧ । ମୁହଁ କାଢ଼ିବା (ଦେଖ)
Muhañ dekhā(khe)ibā 1. Muhañ kaṛhibā (See)
ମୁଖ দেখান मुहँ दिखाना ୨ । ଆପଣାର ମୁଖକୁ ଅନ୍ୟ ବ୍ୟକ୍ତିର ଦେଖିବାକୁ ସୁବିଧା ଦେବା—2. To allow another to see one's face; to show one's face. ୩ । ଲଜ୍ଜାରେ ନତମସ୍ତକ ନ ହୋଇ ସମାଜରେ ସ୍ୱଚ୍ଛନ୍ଦରେ ବିଚରଣ କରିବା—3. To walk in the society with a raised head.

ମୁହଁ ଦେଖାଯିବା—ଦେ. କ୍ରି—୧ । ସମ୍ମୁଖରେ ଧୃତ ଦର୍ପଣରେ
Muhañ dekhājibā ଆପଣାର ମୁଖ ପ୍ରତିଫଳିତ ହେବା—
ମୁଖ দেখাযাওয়া 1. The reflection of one's face in a mirror held before one. ୨। କୌଣସି
मुहँ दीखपडना
(ମୁହଁ ଦି[ଦୁ]ଶିବା—ଅନ୍ୟରୂପ)ସ୍ଥାନରେ କୌଣସି ବ୍ୟକ୍ତିର ଦର୍ଶନ ମିଳିବା-2. The appearance of a person at a place. ୩ । ଈଷତ୍ ଅନ୍ଧାରରେ ବା କ୍ଷୀଣ ଆଲୋକରେ କୌଣସି ବ୍ୟକ୍ତିର ମୁଖ ବାରି ହେବା—3. The face of a person being distinguished in a faint light or slight darkness. ୪ । କଳ୍ପନାରେ କୌଣସି ଅନୁପସ୍ଥିତ ବ୍ୟକ୍ତିର ମୁଖ ଦୃଷ୍ଟ ହେବା—4. The face of an absent person being recalled to the mind's eye.

ମୁହଁ ଦେଖିବା—ଦେ. କ୍ରି—୧ । ମୁହଁ ଚାହିଁବା (ଦେଖ)-1. Muhañ
Muhañ dekhibā chāhiñbā (See). ୨ । ଆପଣାର
ମୁଖଦেখা ମୁଖର ପ୍ରତିବିମ୍ବକୁ ଦର୍ପଣ ସାହାଯ୍ୟରେ ଦେଖିବା—2. To
मुहँ देखना see one's image in a mirror.

ମୁହଁ ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଅଯଥା ପ୍ରଶ୍ରୟ
Muhañ debā ଦେବା—1. To give undue indulgence to a person.
ମୁଖদেওয়া, নাইদেওয়া, আস্কারা দেওয়া
लाडकरना, मुहँचढाना (ଯଥା—ପୁଅର ଝିଅଙ୍କୁ ମୁହଁ ଦେଲେ ସେମାନେ ଉପରେ ଚଢ଼ନ୍ତି ।) ୨ । ଆସ୍ୱାଦନ କରିବାକୁ ଗ୍ରହିବା—2. To taste. (ଯଥା—ଏ ପାଣିରେ କମା ମୁହଁ ଦେଇ ହେଉ ନାହିଁ ।) ୩ । ମୁହଁ ମାରିବା (୧) (ଦେଖ)—3. Muhañ māriba (1) (See) ୪ । ମୁହଁ ପକାଇବା (ଦେଖ)—4. Muhañ pakāibā (See)

ମୁହଁ ଧରା(ରେ)ଇବା—ଦେ. କ୍ରି—ଉପଦଂଶ ରୋଗାକ୍ରାନ୍ତର ଶରୀର-
Muhañ dharā(re)ibā ବ୍ୟାପ୍ତ ବିଷକୁ ମୁହଁବାଟେ ଲାଳ
ମୁଖ আনান ସହିତ ବାହାର କରାଇବା ପାଇଁ ପାରଦଘଟିତ ଔଷଧ ପ୍ରୟୋଗପୂର୍ବକ . ରୋଗୀର ମୁହଁକୁ ଫୁଲାଇବା—To cause one's face to be swollen and make one's mouth salivate by the application of mercurial medicine for extracting venereal poison from the body.

ମୁହଁ ଧରିବା—ଦେ. ବି—ଉପଦଂଶାଦିଜନିତ ଶରୀରାଭ୍ୟନ୍ତରସ୍ଥ ବିଷକୁ ଲାଳ
Muhañ dharibā ଦ୍ୱାରା ମୁହଁବାଟେ ବାହାର କରିବାପାଇଁ ପାରି-
ମୁখ আসা ଘଟିତ ଔଷଧ ସେବନ କରିବାହେତୁ ମୁହଁର ଫୁଲିଥିବା
ଓ ଲାଳ ବାହାରୁଥିବା ଅବସ୍ଥା—The state of swelling of the face and unusual salivating of the mouth due to taking mercurial medicine to drive out venereal and other poison from the body.

ମୁହାଁ(ହୁଁ)ଧୁଆ—ଦେ. ବି.—( ସଂ. ମୁଖଧାବନ ) ମୁଖ ପ୍ରକ୍ଷାଳନ—
Muhañ(huñ)dhuā Washing of the face
মুখঁ ধোআ, **मुँहधोना** ଦେ. ବିଣ,—ମୁଖ ପ୍ରକ୍ଷାଳନ କ୍ରିୟାରେ
ଆବଶ୍ୟକ—Necessary for washing the face in, (ଯଥା—ମୁହଁଧୁଆ ଲୁଣ୍ଡି)—

ମୁହଁ ଧୋଇବା—ଦେ.କ୍ରି—୧। ମୁଖ ପ୍ରକ୍ଷାଳନ କରିବା—1. To wash
Muhañ dhoibā the face. ୨ । ଖାଇସାରି ଆଚମନ କରିବା
মুখ ধোয়া —2. To rinse the face and mouth
**मुहँ धोना** after meal

ମୁହଁ ନ ଚାହିଁବା—ଦେ. କ୍ରି—ଦୋଷ ବା ଅପରାଧ କରିଥିବା ବ୍ୟକ୍ତିକୁ
Muhañ na chāhiñbā ନ ଦେଖିବା—Not to look at
মুখ না চাওয়া the face of an offending person
**मुहँ नहीं ताकना** [ ଦ୍ର—ଦୋଷୀର ବା ଅପରାଧୀର ଉପସ୍ଥିତିଦ୍ୱାରା
କ୍ରୋଧର ବା ଦୁଃଖର ଉଦ୍ରେକ ହେବ ବୋଲି ତାହାର
ମୁଖାବଲୋକନ କରିବ । ଏଥିପାଇଁ ରାଜସଭାରେ ଅପରାଧୀ
ବ୍ୟକ୍ତିକୁ 'ଦୁଆର ମନା' ବା 'ଗ୍ରାମ ମନା' ଦଣ୍ଡ ଦିଆଯାଏ ।]

ମୁହଁ(ହୁଁ)ନା(ଲା)ଳ(ଳି)ଚୁ(ସା)—ଦେ, ବି ( ସଂ. ମୁଖ+ଲାଳସା )—
Muhañ(huñ)nālā la,li)chā(sā) ଖାଦ୍ୟ ଦ୍ରବ୍ୟ ପ୍ରତି
মুখলালচে পন অଯଥା ଲାଳସା ବା ଲୋଭ—Undue hanker-
**जी ललचापन** ing for taking food. ଦେ ବିଣ. ପୁଂ
মুখলালচে —ସୁସ୍ୱାଦୁ ଦ୍ରବ୍ୟ ପ୍ରତି ଅଯଥା ଲାଳାୟିତ; ଖାଦ୍ୟ
**जी ललची** ପ୍ରତି ଅଯଥା ଆସକ୍ତିଯୁକ୍ତ; ପେଟୁ—Having an
[ମୁହଁ(ହୁଁ)ନା(ଲା)ଳ(ଳି)ଚ(ସି)ଆ—ଅନ୍ୟରୂପ] inordinate han-
[ମୁହଁ ନା(ଲା)ଳ(ଳି)ଚୀ(ଚେଇ)ସୀ(ସେଇ)—ସ୍ତ୍ରୀ] kering after
delicious food; greedy. [ ଦ୍ର—'ମୁହଁନାଲଚୁ'
ଓ ପେଟୁଙ୍କ ମଧ୍ୟରେ ପ୍ରଭେଦ ଏହି ଯେ—ପ୍ରଥମୋକ୍ତ
ବ୍ୟକ୍ତି ମିଷ୍ଟାନ୍ନାଦି ଲୋଭନୀୟ ଖାଦ୍ୟର ଲୋଭ ସମ୍ଭାଳି ପାରେ
ନାହିଁ, କିନ୍ତୁ ପେଟୁ ବ୍ୟକ୍ତି ଯେ କୌଣସି ଖାଦ୍ୟଦ୍ୱାରା ପେଟ
ତୃପ୍ତି କରିବା ପାଇଁ ସର୍ବଦା ବ୍ୟଗ୍ର ଥାଏ । ]

ମୁହଁ ନାଳ(ଳି)ଚୁ(ଚେ)ଇବା—ଦେ. ବି (ସଂ. ମୁଖ+ଲାଳସା; ଲାଳାୟିତ)
Muhañ nāla(li)chā(che)ibā —ମୁହଁରୁ ନାଳ ବୋହିବା
ମୁହଁ ନା(ଳେ)ଳେଇବା } ଅନ୍ୟରୂପ ( ଦେଖ )—Muhañru
ମୁହଁ ପାଣେଇବା } nāla bohibā ( See )
মুখে জল আসা **जी ललचाना; मुहँसे लार गीरना (टपकना)**

ମୁହଁ ନିକ(କୁ)ଟିବା—ଦେ. କ୍ରି—୧ । ଦାନ୍ତ ନିକୁଟିବା; ଟିକିଏ ଈଷତ୍
Muhañ niki(ku)ṭibā କୁଞ୍ଚିତ କରିବା—1. To slightly
[ମୁହଁ ନିକ(କୁ)ଟା(ଟେ)ଇବା—ଅନ୍ୟରୂପ] show the teeth
দান্ত বাহির করা while speaking. ୨ । ( ଲକ୍ଷଣାର୍ଥ )
**मुहँ दिखाना; मुहँमे तिनका लेना** ଅନୁନୟ ବିନୟ କରିବା—
2. To request humbly.

ମୁହଁ ନିରଖା—ଦେ. ବି ( ସଂ. ମୁଖ ନିରୀକ୍ଷଣ )—ମୁହଁ ଚାହାଁ । ୧
Muhañ nirikhā ( ଦେଖ )—Muhañ chahāñ 1
( See )

ମୁହଁ ନିରି(ରେ)ଖିବା—ଦେ. କ୍ରି ( ସଂ. ମୁଖ ନିରୀକ୍ଷଣ )—୧ । ଅନ୍ୟର
Muhañ niri(re)khibā ମୁଖକୁ ଯତ୍ନପୂର୍ବକ, ସ୍ନେହପୂର୍ବକ ବା
মুখ নিরীক্ষণ করা ମନୋନିବେଶପୂର୍ବକ ଦେଖିବା—1. To
**मुहँ देखना** look attentively at a person's
face. ୨ । ପ୍ରିୟ ବ୍ୟକ୍ତିର ମୁଖ ଦର୍ଶନ କରିବା—
2. To look at the face of one's beloved.

ମୁହଁ ନୁ(ଲୁ)ଚୁ(ଚେ)ଇବା—ଦେ, କ୍ରି—୧ । ଆପଣାର ମୁଖକୁ ଅନ୍ୟ
Muhañ nu(lu)chā(che)ibā ବ୍ୟକ୍ତିର ଦୃଷ୍ଟିରୁ ଲୁକ୍କାୟିତ
মুখলুকান କରିବା—1. To hide one's face. ୨ ।
**मुहँछिपाना** ଅଦୃଶ୍ୟ ହେବା—2 To disappear.

ମୁହଁ ପକା(କେ)ଇବା—ଦେ.କ୍ରି—(ଲକ୍ଷଣାର୍ଥ) କୌଣସି କାର୍ଯ୍ୟ ପାଇଁ ବା
Muhañ pakā(ke)ibā ଅନୁଗ୍ରହ ପାଇଁ ପ୍ରାର୍ଥନା ବା ଅନୁରୋଧ
হাত দেওয়া କରିବା ବା ଚେଷ୍ଟା କରିବା—To try for or
**मुहँदेना** ask for a favour or object.

ମୁହଁ ପଖାଳିବା—ଦେ. କ୍ରି ( ସଂ. ମୁଖ ପ୍ରକ୍ଷାଳନ )—ମୁହଁ ଧୋଇବା
Muhañ pakhālibā ( ଦେଖ )—Muhañ dhoibā
(See)

ମୁହଁ ପାଇବା—ଦେ. କ୍ରି—୧ । ଅଯଥା ଉତ୍ସାହ ବା ପ୍ରଶ୍ରୟ ପାଇବା—
Muhañ pāibā 1. To get undue indulgence.
নাই পাওয়া ( ଉ—ଛୋଟ ଲୋକେ ମୁହଁ ପାଇଲେ ଉପରେ
**लार पाना** ଚଢ଼ିବେ । ) ୨ । ମୁହଁ ବଢ଼ିବା ( ଦେଖ )—
মুখ পাওয়া 2. Muhañ barḍhibā ( See )—୩ ।
**मुहँ पाना** ଉଚ୍ଚରେ ଥିବା କୌଣସି ଖାଦ୍ୟ ପଦାର୍ଥ ( ଯଥା—
ଗଛର ଫଳ, ଡେଙ୍ଗାଗଛର ଡାଳ )କୁ ଗୋରୁ ଓଟ ଆଦି
ମୁହଁ ବଢ଼ାଇଲେ ସେ ପର୍ଯ୍ୟନ୍ତ ମୁହଁ ପହଞ୍ଚିବା—3. To
reach a food with one's mouth ( said of beasts )

ମୁହଁ ପାଣି—ଦେ. ବି—( ଲକ୍ଷଣାର୍ଥ ) ମୁହଁ ବାଲିଙ୍ଗି; ବାଗାଡ଼ମ୍ବର—
Muhañ pāṇi Bragging; boasting. ( ଯଥା—
মুখের জল **मुहँका पानी** ତା ମୁହଁ ପାଣି ମୁହଁରେ ମଲା । )

ମୁହଁ ପାଣି ମୁହଁରେ ମରିବା—ଦେ. ବି—୧ । ନିସ୍ତେଜ ବା ଅପ୍ରତିଭ
Muhañ pāṇi muhañre maribā ହେବା; ବାହାଦୁରି ବ
মুখের জল মুখেমরা ଦାମ୍ଭିକତା ପୂର୍ଣ୍ଣ ଉକ୍ତିର ଯଥାର୍ଥ ଉତ୍ତର ପାଇବା
**मुँहका पानी मुहँमे रहना** ଦ୍ୱାରା ଲଜ୍ଜିତ ହେବା—1. Becoming
crest-fallen after getting proper reply to an imprudent speech; the state of being discomfited; [ଯଥା—ମୁଁ ଅମୁକ ବିଷୟରେ

(ମୁହଁ ପାଣି ମୁହଁରେ ମାରିବା—କ୍ରିୟାରୂପ) ତର୍କ କରିବାକୁ ଅମୁକର ପାଖକୁ ଯାଇଥିଲି; କିନ୍ତୁ ସେଠାରେ ତାଙ୍କ ଅଗାଧ ପାଣ୍ଡିତ୍ୟ ଦେଖି ମୋର ମୁହଁ ପାଣି ମୁହଁରେ ମଲା, ମୁଁ ତର୍କ ନ କରି ଫେରି ଆସିଲି ।] ୨ । ଚଇତନ୍ୟ ହେବା; ଶିକ୍ଷା ପାଇବା—2. Learning a lasting lesson. ୩ । ଲଜ୍ଜିତ ହେବା-3 Being ashamed. ୪ । ଅକୃତ-କାର୍ଯ୍ୟ ହେବା—4. To be unsuccessful.

ମୁହଁ ପାଢଥ—ଦେ. ବି—(ସ. ମୁଖପଟ୍ଟ)—ଉପକରଣ ବା ସନ୍ଦୁକର Muhañ pāṭiā ମୁହଁରେ ଦିଆ ଯାଇଥିବା ଧାତୁମୟ ସରୁଆ ପଟ—ମୁଖপাত; **मुखपात**. A strip of metal with a pole put (ମୁହଁପାଢ—ଅନ୍ୟରୂପ) over the key-hole of a box.

ମୁହଁ ପେଡ଼ି କରିବା—ପ୍ରାଦେ (ସାଁବଲପୁର) କି--କ୍ରୋଧରେ ବା ଅଭିମାନରେ Muhañ perdi karibā ମୁହଁକୁ ଫୁଲାଇବା—To bloat মুখবিকৃত করা one's face with anger or sensitive-(ମୁହଁ ପେଢ଼ ପର କରିବା—ଅନ୍ୟରୂପ) ness.

ମୁହଁ (ହୁଁ)ପୋଡ଼(ଡ଼ା)—ଦେ. ବଣ. ପୁଂ—(ଗାଳି) ପୋଡ଼ାମୁହାଁ; Muhañ (huñ)porḍa(rḍā) ଦଗ୍ଧ ମୁଖଯୁକ୍ତ—A term of abuse Having a burnt face.

মুখপোড়া পোড়ামুখ **मुँहपोडा** [ଉ--କେଉଁଠେ ଅକାର୍ଯ୍ୟ ସେଇ ମୁହଁ-ମୁହଁ (ହୁଁ) ପୋଡ଼ୀ—ସ୍ତ୍ରୀ ପୋଡ଼ କଲା । କୃଷ୍ଣସିଂହ. ମହାଭାରତ. ଅଦି ।]

ମୁହଁ ପୋଡ଼ା—ଦେ. ବ—ଯେଉଁ ମନ୍ତ୍ର ବା ଔଷଧର ପ୍ରୟୋଗ ବଳରେ Muhañ porḍā କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତି (ଯଥା—**मुहं पोडा** ଆପଣା ପୁଅ, ସ୍ତ୍ରୀ, ସ୍ୱାମୀ, ବନ୍ଧୁ ପ୍ରଭୃତି) ପ୍ରତି ଏପରି ବିରକ୍ତ ହୁଏ ଯେ, ସେ ତାହା ମୁହଁ ସୁଦ୍ଧା ଦେଖେ ନାହିଁ—The charm, by applying which one becomes so disgusted with one's near relatives, such as son, wife, husband or other dear one,—that he does not look at their face. (ଯଥା—ସେ ଅମୁକ ବ୍ୟକ୍ତିକୁ ମୁହଁ-ପୋଡ଼ା କରିଛି ।)

ମୁହଁ ପୋତିବା—ଦେ. କି—୧ । ମୁହଁକୁ ତଳକୁ କରିବା—1. To Muhañ potibā droop down one's face. ୨। ଲଜ୍ଜାରେ মুখপুঁতা, মুখ হেঁট করা, মুখ নীচু করা ମୁହଁକୁ ତଳକୁ କରିବା-**मुहँ नीचा करना** 2. To droop down one's face **मुहँ फुलाना** in shame or modesty.

ମୁହଁ ଫିକା କରିବା—ଦେ. କ୍ରି—ମୁହଁ ବେଶୁଗ୍ଣ କରିବା; ମୁହଁ Muhañ phikā karibā ଶୁଖାଇବା—To make one's মুখ ফিকা করা **मुहँ फीका करना** face turn pale. (ମୁହଁ ଫିକା ପଡ଼ିବା—କର୍ମବାଚ୍ୟରୂପ)

ମୁହଁ ଫିଟା(ଟେ)ଇବା—ଦେ. କ୍ରି—ମୁହଁ ଖୋଲିବା (ଦେଖ) Muhañ phiṭā(ṭe)ibā Muhan kholibā (See) মুখ খোলা **मुहँ खोलना, मुहँ फा(फो)डकर कहना**

ମୁହଁ ଫିଟିବା—ଦେ. କି—୧ । ଶିଶୁ ବା ମୂକ ବ୍ୟକ୍ତି କଥା କହିବା—Muhañ phiṭibā 1. Utterance of a child or mute. মুখ ফোটা ୨ । ମୁହଁରୁ ଗାଳି ମନ୍ଦ ବାହାରିବା—2. **मुहँ खुलना, मुहँसे फूटना** Utterance of obscene words. ୩ । ବାକ୍ୟ ଉଚ୍ଚାରଣ କରିବା—3. Utterance of speech. ୪ । ମନ କଥା ପ୍ରକାଶ କରିବା—4 Expression of one's mind.

ମୁହଁ ଫୁଲା—ଦେ. ବ.(ସ.ମୁଖ+ଷ୍ଫୀତ)—ଅଭିମାନରେ, କ୍ରୋଧରେ ବା Muhañ phulā ଦୁଃଖରେ ମୁଖର ଷ୍ଫୀତି; ଭ୍ରୂକୁଟି—Frown. মুখ ফুলা **मुहँ फुला**

(ମୁହଁଫୁଲୀ, ମୁହଁଫୁଲେଇ—ସ୍ତ୍ରୀ) ଦେ. ବଣ. ପୁଂ.—ଭ୍ରୂକୁଟିଯୁକ୍ତ-Scowling; frowning.

ମୁହଁ ଫୁଲା(ଲେ)ଇବା—ଦେ. କ୍ରି—୧ । କ୍ରୋଧ, ଶୋକ ବା କ୍ରନ୍ଦନ Muhañ phulā(le)ibā ଯୋଗୁଁ ମୁହଁକୁ ଷ୍ଫୀତ କରିବା—মুখ ফুলান 1. To scowl; to have a frowning face **मुहँ फुलाना** (due to anger or weeping). ୨ । ମୁହଁ ବିରସ କରିବା—2. To have a pale or sad face.

[ମୁହଁ ଫୁଲୁକା କରିବା, ମୁହଁ ଭୁରୁଙ୍ଗା(ଙ୍ଗେ) ଇବା, ମୁହଁ ଭୁ(ଭ୍ରୁ)ଭୁଙ୍ଗା କରିବା—ଅନ୍ୟରୂପ]

ମୁହଁ ଫୁଲା ଫୁଲି—ଦେ. ବ ଓ ବଣ—ପରସ୍ପର ପରସ୍ପର ପ୍ରତି ଅଭିମାନ Muhañ phulā phuli କରିବା; କ୍ରୋଧଯୁକ୍ତ ବା ରୁଷ୍ଟ ହେବା-পরস্পর পরস্পরের উপর মুখ ভার করা Scowling or **अनबन** frowning at each other.

ମୁହଁ ଫେରା(ରେ)ଇବା—ଦେ. କି—୧ । ରହିଥିବା ଦିଗରୁ ମୁଖକୁ Muhañ pherā(re)ibā ବୁଲାଇ ଅନ୍ୟ ଦିଗକୁ ମୁଖ କରିବା-মুখ ফিরান 1. To turn one's face from one side **मुहँ फिराना** to a different side. ୨ । ବିପରୀତ ଦିଗରେ ଗତି କରିବା—2. To move in an opposite direction. ୩ । କୌଣସି ଆଡ଼କୁ ଅଭିମୁଖୀ ହେବା—3. To turn one's face towards any direction.

ମୁହଁ(ହୁଁ) ଫୋଡ଼(ଡ଼ା)—ଦେ. ବଣ. ପୁଂ. ( ସ. ମୁଖ ଓ ସ୍ଫୁଟ )—Muhañ(huñ) phorḍa(rḍā) ୧ । ସ୍ପଷ୍ଟବାଦୀ—1. Plain-মুখ ফোড় spoken. ୨ । ମୁଖର—2. Talka-**मुहँ फोड** tive. ୩ । ଅଗ ବୋଲା—3. Forward; (ମୁହଁ ଫୋଡ଼ୀ—ସ୍ତ୍ରୀ) pert

ମୁହଁ ବଙ୍କା(ଙ୍କେ)ଇବା—ଦେ. କି ( ସ. ମୁଖବକ୍ର )—୧ । ମୁଖକୁ Muhañ bankā(ṅke)ibā ଗୋଟିଏ ପାଖକୁ ବକ୍ର କରିବା—মুখবাঁকান 1. To turn one's face to a side. ୨ । **मुहँ बाङ्का करना** କୌଣସି ବିଷୟରୁ ବିମୁଖ ହେବା—2. To be averse to a thing or object, ୩ । ମୁଖ ବିକୃତ କରିବା; ମୁଖଭଙ୍ଗି କରିବା—3. To knit one's face. ୪ । ମୁଖଭଙ୍ଗି ଦ୍ୱାରା ଅନାଦର ବା ଉପେକ୍ଷା ପ୍ରକାଶ କରିବା—4. To give vent to one's slight or disregard by facial expression.

ମୁହଁ ବଙ୍କା ହେବା—ଦେ. କ୍ରି—ଲଜ୍ଜିତ ବା ଅପ୍ରସ୍ତୁତ ହେବା—
Muhañ bankā hebā Being crest-fallen or
মুখ বেঁকে যাওয়া मुहँ बाँका होना abashed.

ମୁହଁ ବଢ଼ା(ଢ଼େ)ଇବା—ଦେ. କ୍ରି ( ସ. ମୁଖ ଓ ବୃଦ୍ଧି )—୧ । ମୁହଁ
Muhañ barḍhā(ṛdhe)ibā କାଢ଼ିବା(ଦେଖ)—1. Muhañ
মুখ বাড়ান मुहँ बढाना kārḍhibā ( See ) ୨ । ( ଗୋରୁ
ଓଟ ଅଦ ) ଖାଦ୍ୟ ଦ୍ରବ୍ୟକୁ ମୁହଁ ଭିତରକୁ ନେବା ପାଇଁ
ସେଆଡ଼କୁ ମୁହଁ ଲମ୍ବାଇବା—2. To extend one's
নাই দেওয়া, আস্কারা দেওয়া face to reach a food (said
लाड देना of cattle, camel etc), ୩ । ଅନ୍ୟ ବ୍ୟକ୍ତିକୁ
ଅଯଥା ପ୍ରଶ୍ରୟ ଦେବା—3. To give undue
indulgence to a person. ୪ । ଭୃତ୍ୟ, ସାନ
ଲୋକ ଓ ଶିଶୁମାନଙ୍କୁ ଅଯଥା ପ୍ରଶ୍ରୟ ବା ଆଦର ଦେବାଦ୍ୱାରା
ସେମାନଙ୍କ ଅବାଧ୍ୟତା ବା ଅସ୍ପର୍ଦ୍ଧା ବୃଦ୍ଧି କରାଇବା—
4. To encourage a child's, servant's or
inferior's disobedience or insolence by
undue indulgence or fondling.

ମୁହଁ ବଢ଼ିବା—ଦେ. କ୍ରି—୧ । ଅଯଥା ପ୍ରଶ୍ରୟ ପାଇବା ଯୋଗୁଁ ଅସ୍ପର୍ଦ୍ଧା
Muhañ barḍhibā ବୃଦ୍ଧି ହେବା—1. Impudence due
মুখ বাড়া मुहँ बढना to being given indulgence.
( ମୁହଁ ବଢ଼ିଯିବା—ଅନ୍ୟରୂପ ) ୨ । ମୁଖରତା ବୃଦ୍ଧି ପାଇବା—
2. Increase of one's pertness or garrulity.

ମୁହଁ ବନ୍ଦ—ଦେ. ବି ( ସ. ମୁଖ ଓ ବନ୍ଧନ )—କଥା କହିବା କ୍ଷମତାର
Muhañ banda ରୁଦ୍ଧତା—Stoppage of one's mouth;
মুখ বন্দ मुहँ बन्द gagging of one's mouth.

ମୁହଁ ବନ୍ଦ କରିବା—ଦେ. କ୍ରି—୧ । ମୌନାବଲମ୍ବନ କରିବା; ତୁନି
Muhañ banda karibā ରହିବା—1. To keep silent;
মুখ বন্দ করা मुहँ बन्द करना to shut up one's lips;to
close one's mouth. ୨ । ଅନ୍ୟ ବ୍ୟକ୍ତିକୁ କଥା
କହିବାକୁ ନ ଦେବା—2. Not to allow a
person to speak. ୩ । ଅନ୍ୟ ବ୍ୟକ୍ତିର ପାଟିରେ
କନ୍ତା ବା ଠିପି ମାରିବା—3. To gag a person's
mouth. ୪ । ଉପଯୁକ୍ତ ଯୁକ୍ତି ଆଦ ଦ୍ୱାରା କୌଣସି
ବ୍ୟକ୍ତିକୁ ଲଜ୍ଜିତ ଓ ନିରୁତ୍ତର କରାଇବା—4.To silentce
or a shame a person by reasonable
arguments.

ମୁହଁ ବନ୍ଦ(ନ୍ଧ)ନ—ଦେ. ବି ( ସ. ମୁଖବନ୍ଧନ )—ତନ୍ତ୍ରମନ୍ତ୍ରାଦର ପ୍ରୟୋଗ
Muhañ banda(ndha)na ଦ୍ୱାରା ବାକ୍‌ଶକ୍ତିର ରୋଧ—
মুখ বাঁধা मुहँ बन्धन Stoppage of a person's power
of speech by employment of magical
charm.

ମୁହଁ ବନ୍ଧା(ନ୍ଧେ)ଇବା—ଦେ କ୍ରି—ପାଣି ଅଟକାଇବା ପାଇଁ ପୋଖରୀ
Muhañ bandhā(ndhe)ibā ଓ ନଈ ଅଦର ମୁହଁରେ ବନ୍ଧ
মুখ বাঁধান मुहँ बँधा देना ପକାଇବା—To dam up the
mouth of a pond or a river.

ମୁହଁ ବାନ(ନି)ଗି(ଙ୍ଗି)—ଦେ. ବି ( ମୁହଁ+ଫା. ବାନ୍‌ଗୀ; ତୁଳ. ଅ.
Muhañ bāni(li)gi(ṅgi) ମୁକାଲିଗା )—ବୃଥା ଅହଙ୍କାର—
মুখসাপট डींग, डिंग Bragging; vain boasting.
[ ମୁହଁ ବଡ଼ା(ଢ଼େ)ଇ, ମୁହଁଭଡ଼ଙ୍ଗ, ମୁହଁଭଡ଼ଂ—ଅନ୍ୟରୂପ ]
[ ମୁହଁ ବାନ(ଲି)ଙ୍ଗିଆ, ମୁହଁ ଭଡ଼ଙ୍ଗିଆ—ବିଣ ]

ମୁହଁ ବାନ୍ଧିବା—ଦେ. କ୍ରି (ସ. ମୁଖବନ୍ଧନ)—୧ । ମୁଖ ସ୍ତମ୍ଭନ କରିବା;
Muhañ bāndhibā ତନ୍ତ୍ର ମନ୍ତ୍ର ପ୍ରୟୋଗଦ୍ୱାରା ବାକ୍‌ଶକ୍ତି ଲୋପ
মুখ বাঁধা मुहँ बाँधना କରିବା ବା ମୂକ କରିବା—1. To
(ମୁହଁ ବାନ୍ଧଦେବା—ଅନ୍ୟରୂପ) bring about a person's
dumbness by employment of charms.
୨ । ( କୌଣସି ମିଷ୍ଟ ବସ୍ତୁ ) ଅତ୍ୟଧିକ ମିଷ୍ଟତା ହେତୁ
ଖାଦକର ଚଣ୍ଟିରେ ଅରୁଚ ଜନ୍ମାଇବା—2. To cause
aversion to a sweet thing by its excessive
sweetness. ୩ । କୌଶଳ ପ୍ରୟୋଗ ବା ଉପହାର
ପ୍ରଦାନପୂର୍ବକ କୌଣସି ବ୍ୟକ୍ତିକୁ ମୋହିତ ବା ମୌନ
କରିବା ( ଯେପରି କ, ସେ ଅପ୍ରିୟ ସମାଲୋଚନା କରି ନ
ପାରିବ)—3, To charm or bribe a person
into silence.
୪ । ଗୋମେଷାଦଙ୍କ ପାଟିକୁ ଟେକୁଦ୍ୱାରା ବନ୍ଧନ କରଦେବା--
(ଯେପରି କ, ସେମାନେ ଖାଇ ନ ପାରିବେ ବା କାମୁଡ଼ି
ନ ପାରିବେ)—4. To tie up the mouth (of
beasts etc) to prevent them from biting
or eating. ୫ । ମୃଦଙ୍ଗ ଅଦ ବାଦ୍ୟ ଯନ୍ତ୍ରର ମୁହଁରେ
ଚମଡ଼ା ପକାଇ ବାନ୍ଧିବା—5. To bind the mouth
of a drum with leather.

ମୁହଁ ବିଗାଡ଼ିଆ—ଦେ. ବିଣ.—( ସ. ମୁଖ+ବିକୃତ )—କଟୁଭାଷୀ—
Muhañ bigārḍiā Scurrilous; foul-tongued.
ମୁହଁ ବଗାଡ଼ୁ, ମୁହଁ ବିଗିଡ଼ା—ଅନ୍ୟରୂପ)

ମୁହଁ ବିଗାଡ଼ିବା—ଦେ. କ୍ରି.—(ସ. ମୁଖ ଓ ବିକାର)—ମୁହଁ ଖରାପ
Muhañ bigārḍibā କରିବା; ଗାଳି ଦେବା; ଗାଳି ବା ଅଶ୍ଳୀଳ
মুখবিগড়ান ଭାଷା ପ୍ରୟୋଗ ଦ୍ୱାରା ଅପଣାର ମୁଖକୁ କଳୁଷିତ
मुहँबिगाडाना କରିବା—To befoul one's mouth by
uttering indecent words or abuse.

ମୁହଁ ବିଗିଡ଼ିବା—ଦେ. କ୍ରି—୧ । ବିସ୍ୱାଦ ଦ୍ରବ୍ୟ ଭୋଜନ କିମ୍ବା ରୋଗ
Muhañ bigirḍibā ଯୋଗୁଁ ଖାଦ୍ୟରେ ଅରୁଚ ଉପସ୍ଥିତ
মুখবিগড়া ହେବା—1, Disrelish or apathy for food
मुहँबिगडना ( owing to the tasting of a bad
thing or owing to illness) ୨ । ସର୍ବଦା
ଅଶ୍ଳୀଳଭାଷା ପ୍ରୟୋଗ କରିବା ଅଭ୍ୟାସ-2. The habit
of using indecent expressions.

ମୁହଁ ବୁଜିବା—ଦେ. କ୍ରି-୧ । (ନିଜେ) ତୁନି ହେବା; କଥା ନ କହିବା—
Muhañ bujibā 1. To be silent; to shut up one's
মুখবুজা lips. ୨ । ଅନ୍ୟର ପାଟିରେ ହାତ ବା କନ୍ତା ଦେବାଦ୍ୱାରା
मुहँ बन्द करना ତାକୁ କଥା କୁହାଇ ନ ଦେବା—2. To gag
a person's mouth. ୩ । ନିଜର ହୃଦ୍‌ଗତଭାବ ପ୍ରକାଶ ନ
କରିବା—3. Not to give vent to one's mind.

ମୁହଁ ବୁଲା(ଲେ)ଇବା—ଦେ. କ୍ରି—୧ । ଚାରିଆଡ଼କୁ ଚାହିଁବା—
Muhañ bulā(le)ibā 1. To look round. ୨ । (ଗୋରୁ
ମୁଖ ବুলান ଅର୍ଥ) ଖାଦ୍ୟ ବସ୍ତୁ ଉପରେ ମୁହଁ ଚାଳନ କରିବା –
मुँह घुमाना 2. To move the mouth on the food said of cattle.)

ମୁହଁ ଭକ(ଗ)ତି—ସ୍ତ୍ରୀ. ବି (ସଂ. ମୁଖ+ଭକ୍ତି)—ହୃଦୟରେ ଭକ୍ତି ନ
Muhañ bhaka(ga)ti ଥାଇ କେବଳ ମୁହଁରେ ଦେଖାଇବା
মুখের ভক্তি मुँह भकति ଭକ୍ତି—Lip-devotion

ମୁହଁ ଭକ(ଗ)ତିଆ—ସ୍ତ୍ରୀ. ବିଣ-ଯାହାର ବା ଯେଉଁ କଥାରେ ପ୍ରକୃତରେ
Muhañ bhaka(ga)tiā ଭକ୍ତି ନ ଥାଇ ଭକ୍ତି ଥିବାର କେବଳ
যে মুখে ভক্তি দেখায় ମୁହଁରେ ପ୍ରକାଶ ପାଉଥାଏ—Having
मुहँभगतीया lip-deep devotion.

ମୁହଁ (ହୁଁ)ଭ(ଭୋ)ର—ସ୍ତ୍ରୀ. ବି (ନଉକ୍ଷା ଖେଳ ସମୟରେ ଗଉଡ଼ଙ୍କ
Muhañ (huñ)bha(bho)r ବ୍ୟବହୃତ ଶବ୍ଦ)—ସାମ୍ନାରୁ
ବଥାଯିବା ଅଘାତ—1. A stroke dealt from
one's front; a frontal below. ୨।ବାଗାଡ଼ମ୍ବର-
2. Bragging. ବିଣ – ୧ । ମୁହଁଫୋଡ଼; ମୁଖର—
1. Pert. ୨ । ବାଗାଡ଼ମ୍ବର ପ୍ରିୟ—2. Braggart;
boastful; fond of bombastics.

ମୁହଁ ଭ(ବ)ରଣ୍ଡ—ଦେ. ବି—ମୁହଁବରୁଣ; ଜାଠବରୁଣ-A pimple
Muhañ bha(ba)randa on the face; varus.
মেচেতা बर्रे

ମୁହଁ ଭାଙ୍ଗିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଅଯଥା ଅହଙ୍କାର ବା
Muhañ bhañgibā ମୁଖରତାକୁ ବନ୍ଦ କରିବା—1. To
মুখভাঙ্গা check a person's undue impudence.
मुँहतोडना ୨ । କୌଣସି ବ୍ୟକ୍ତିର ଅଯଥା ଆଶାକୁ ଭାଙ୍ଗି ଦେବା—
2. To nip a person's undue hopes in the bud.

ମୁହଁ ଭା(ଭୁ)ରୁଡୁଙ୍ଗା କରିବା—ଦେ. କ୍ରି (ସଂ. ମୁଖ ଓ ଭ୍ରୂ)—ଅଭିମାନ
Muhañ bhā(bhu)rdungā karibā କ୍ରୋଧ ଓ ଅଭିମାନ
(ମୁହଁ ଭାର କରିବା—ଅନ୍ୟରୂପ) ଯୋଗୁଁ ଭ୍ରୂକୁଟି କରିବା—To
মুখ ভারিকরা frown from anger or sensitiveness;
मुँह बाहारकरना to sulk.

ମୁହଁ ଭା(ଭୁ)କୁଣ୍ଡା କରିବା—ଦେ କ୍ରି (ସଂ.ମୁଖ ଭ୍ରୂକୁଟି)—ମୁହଁ ଫୁଲାଇବା
Muhañ bhā(bhu)rkundā karibā (ଦେଖ)—Muhañ
ମୁହଁ ଭୁକୁଣ୍ଡା[ଣ୍ଡେ]ଇବା-ଅନ୍ୟରୂପ) phulāibā
মুখ ভারকরা मुँह बाहार करना (See)

ମୁହଁ ଭିଡ଼ା—ଦେ. ବି-ମୁହଁ ଭିଡ଼ିବା (ଦେଖ)—Muhañ bhirdibā
Muhañ bhirdā (See). ଦେ. ବିଣ—ଯାହାଦ୍ୱାରା ପାଣିଆଗୁଡ଼-
মুখবান্ধা ପୂର୍ଣ୍ଣ ମାଠିଆର ମୁହଁକୁ ଟାଣ କରାଯାଏ—[ଦ୍ର—ଅନେକ
मुँहबाँधना ଗୁଡ଼ର ମାଟିଆରେ ପାଣିଆଗୁଡ଼ ଭରିକରି ସାରି, ଗୁଡ଼ର
ଗୋଟିଏ ମୁହଁଉଡ଼ା ପାଗ ଖଣ୍ଡ ସବୁ ମାଠିଆର ମୁହଁ
ଉଡ଼ାବାକୁ ଦୁଏ । ]

ମୁହଁ ଭିଡ଼ିବା—ଦେ. କ୍ରି—୧ । ତରଳପଦାର୍ଥ (ଯଥା-ପାଣିଆଗୁଡ଼) ପୂର୍ଣ୍ଣ
Muhañ bhirdibā ଥିବା ମାଠିଆ ଆଦିର ମୁହଁରେ ପାଗେ ଟାଣୁଆ
মুখবান্ধা ଗୁଡ଼ ଢାଳିବାଦ୍ୱାରା ମାଠିଆର ମୁହଁ ଘାଣ ସ୍ତରକୁ କଠିନ
मुहँबाँधना କରିବା ( ଯେପରି କି, ମାଠିଆକୁ ଓଲଟାଇଦେଲେ
ମାଠିଆ ଭିତରର ତରଳ, ଗୁଡ଼ ବୋହି ପଡ଼ିବ ନାହିଁ)—
1. To spread a layer of thick molasses on the mouth of a jar full of thin or liquid molasses. ୨ । ଜଳାଶୟାଦିର ଜଳ-
ନିର୍ଗମନ ପଥକୁ ବନ୍ଧଦ୍ୱାରା ବନ୍ଦ କରିବା—2. To stop the mouth of a tank by raising a bundh, so that water will not escape out of it.

ମୁହଁଭୁରୁଡ଼(ଡ଼ା, ଡ଼ୁ)—ଦେ. ବି—ଦାମ୍ଭିକତା; ଅଭଦ୍ର ବାକ୍ୟ—
Muhañ bhururda(rdā, rdu) Impudence; asser-
দাম্ভিকতা, মুখসাপট tiveness; effrontery. ଦେ.ବିଣ—
ढीठाई(बि) ढीठ(विण) ଦାମ୍ଭିକ—Impudent.

ମୁହଁ ମରିବା—ଦେ.ବି—୧। ଉତ୍ସାହ ବା ଉଦ୍ୟମ କମିଯିବା—1. Loss
Muhañ maribā of energy or eagerness. ୨ । ସରସ
(ମୁହଁ ମରିଯିବା—ଅନ୍ୟରୂପ) ମୁହଁ ବିରସ ହେବା; ମୁହଁ ଶୁଖିଯିବା—
মনমরা 2. ( the face ) Becoming pale or dejec-
मुहँ मरना ted; dejected countenance.

ମୁହଁମାଡ଼ି ପଡ଼ି ରହିବା—ଦେ. କ୍ରି—କୌଣସି ସ୍ଥାନରେ ସକଳପ୍ରକାର
Muhañ mārdi pardi rahibā ଦୁଃଖ କଷ୍ଟ ସହି ରହିବା
মাটি কামড়ে পড়ে থাকা —To stick to a place in
मुहँ मारके पड रहना spite of all suffering and trouble.

ମୁହଁ ମାଡ଼ିବା—ଦେ. କ୍ରି—୧ । ମୁଖକୁ ଅବନତ କରିବା; ମୁଖକୁ ତଳକୁ
Muhañ mārdibā ପୋତିବା—1. To droop down
মুখহেঁট করা one's head. ୨ । ତଳକୁ ମୁହଁ କରିବା—
मुहँ गीराना, महँ भिडाना 2. To lower one's face; to look to the ground. ୩ । ମୁଖକୁ ତକିଆରେ
ବା ବିଛଣାରେ ବା ଖାଇବା କଂସାରେ ସଲଗ୍ନ କର୍ମକୁ ଆଦର
କରିବା—3. To put one's head on a pillow, a bed or a food-pot.

ମୁହଁ ମାରିବା—ଦେ. କ୍ରି—୧ । ଖାଦ୍ୟ ଦ୍ରବ୍ୟକୁ ନ ଖାଇ କେବଳ
Muhañ māribā ତାହା ମୁଖଦ୍ୱାରା ସ୍ପର୍ଶ କରିବା—1. To touch
মুখ ছুঁআন the food with one's mouth without
मुँह डालना (मारना) actually eating it. ୨ । ଚୁମ୍ବନ
କରିବା—2. To kiss. ୩ । କୌଣସି ସ୍ଥାନରେ କିଛି
ସମୟ ନ ରହି କେବଳ ସେହି ସ୍ଥାନ ବାଟେ ଚାଲି ଆସିବା
—3. To touch a place (without stopping there) in the course of a journey. (ଯଥା
—ଆପଣ କଟକ ଆସିବା ବେଳେ ଆମ ଗାଁରେ ଟିକିଏ
ମୁହଁ ମାରିଦେଇ ଆସିବେ । )

ମୁହଁ ମେଲା(ଲେ)ଇବା—ଦେ. କ୍ରି—୧ । ମୁଖ ବ୍ୟାଦାନ କରିବା—
Muhañ melā(le)ibā 1. To open one's mouth;
মুখ খোলা to yawn. ୨ । ମୁଖ ଖୋଲିବା; କଥା କହିବା
मुहँ फैलाना —2. To speak out.

**ମୁହଁ ମୋଡ଼ା**—ଦେ. ବଣ—୧ । ବକ୍ରମୁଖ—1. Of contracted face. ୨ । ଯାହାର ମୁହଁ ଏକ ପାଖକୁ ବଙ୍କା ହୋଇଥାଏ—2. Having the face turned to one side. [ ଉ—ସେ ସାବରେ ବାଳ ଯୁଦ୍ଧରେ ମୁହଁମୋଡ଼ା, ହୋଇ ମଗ୍ନଦେଶରେ ବଲେ ମୁଣ୍ଡଗଡ଼ା । କୃଷ୍ଣସିଂହ. ମହାଭାରତ. ବନ । ] ୩ । ଯେଉଁ ବ୍ୟକ୍ତି ବିରକ୍ତି ପ୍ରକାଶ କରି ନିଜର ମୁହଁକୁ ମୋଡ଼ି ଦିଏ—3. (a person) Habituated to draw away his face (as a sign of dislike). ଦେ. ବି—ମୁହଁକୁ ବିରକ୍ତିରେ ଏକ ପାଖକୁ ବଙ୍କା କରିବା—Drawing away of one's face in displeasure.
Muhañ mordā
ମୁଖବାଁକା
मुहँ फेरा
(ମୁହଁ ମୋଡ଼ୀ—ସ୍ତ୍ରୀ)

**ମୁହଁ ମୋଡ଼ିବା**—ଦେ. କ୍ରି—୧ । ଓଠକୁ ଏକ ପାଖକୁ ମୋଡ଼ି ଘୃଣା ବା ବେଖାତିର ପ୍ରକାଶ କରିବା; ମୁଖ କୁଞ୍ଚିତ କରିବା—1. To squeeze or knit the lips to one side as an expression of disgust or sneering; to contract the face in disgust, actual or feigned; to sneer at. ୨ । ଲଜ୍ଜାରେ ମୁହଁକୁ ଏକପାଖକୁ ବୁଲାଇବା—2. To turn one's face to one side in shame.
Muhañ mordibā
(ମୁହଁ ମୋଡ଼ିଦେବା—ଅନ୍ୟରୂପ)
মুখমোড়া; মুখবাঁকান; মুখসিটকান
मुहँ मोडना (ढूसना, फेरलेना)

**ମୁହଁ ମୋଡ଼ି ରହିବା**—ଦେ. କ୍ରି—ପରାଜୟ ସ୍ୱୀକାର କରି, ଅପମାନିତ ବା ଲଜ୍ଜିତ ହୋଇ ରହିବା—To acknowledge defeat with the face contracted in shame; to be crest fallen. [ ଉ—ସେହିରୂପେ ଅଙ୍ଗ ମୋ ମାଉଗଣ ଘାଟେ, ମୁହଁ ମୋଡ଼ି ରହିବେ ନୃପତି ସମସ୍ତେ । କୃଷ୍ଣସିଂହ. ମହାଭାରତ. ଅଦି । ]
Muhañ mordi rahibā
পরাজয় স্বীকার করা
सीरझुँकालेना, मुहँमोडकर रहना
ମୁହଁମୋଡ଼ି ହୋଇ ରହିବା }
ମୁହଁମୋଡ଼ି ମାଡ଼ି ହୋଇ ରହିବା } ଅନ୍ୟରୂପ

**ମୁହଁ ରକ୍ଷା**—ଦେ. ବି ( ସ. ମୁଖରକ୍ଷା )—୧ । ମୁଖରକ୍ଷା; ମାନରକ୍ଷା—1. The saving of one's prestige. ୨ । ଅନୁରୋଧ ରକ୍ଷା—2. Showing regard for another person's request or feelings.
Muhañ rakshā
মুখরক্ষা
मानरखना, बातरखना

**ମୁହଁ ରଖିବା**—ଦେ. କ୍ରି ( ସ. ମୁଖରକ୍ଷା )—୧ । କୌଣସି ବ୍ୟକ୍ତିର ମାନ ରକ୍ଷା କରିବା—1. To save the prestige of a person. ୨ । ସେପରି ଲଜ୍ଜାରେ ମୁହଁ ତଳକୁ ନ ହୁଏ ସେପରି କରିବା—2. To save the face of a person. ୩ । ଅନୁରୋଧ ରକ୍ଷା କରିବା—3. To show regard to the feelings or request of a person.
Muhañ rakhibā
(ମୁହଁ ରକ୍ଷା କରିବା—ଅନ୍ୟରୂପ)
মুখরাখা; মুখ রক্ষাকরা
मानरखना, मुहँ रखना

**ମୁହଁ ରଙ୍ଗା(ଙ୍ଗେ)ଇବା**—ଦେ. କ୍ରି—୧ । ରାଗ ହେବା; ରାଗି ଯିବା; କ୍ରୋଧରେ ରକ୍ତମୁଖ ହେବା [ମୁହଁ ନା(ଲା)ଲ୍‌ଲ୍ କରିବା—ଅନ୍ୟରୂପ]—1. (one's face) To become red with anger or rage. [ ଉ—ପ୍ରବଳ କ୍ରୋଧ ଜାତ ହେଲେ ମୁହଁ ଅରକ୍ତ ହୋଇ ଉଠେ । ] ୨ । ରଙ୍ଗଅବିଦ୍ୱାରା ମୁଖକୁ ରଞ୍ଜିତ କରିବା—2. To paint one's face.
Muhañ ranga(nge)ibā
মুখ রাঙ্গান
मुखलाल करना

**ମୁହଁରୁ(ରୋ)ଚକ**—ଦେ. ବଣ ( ସ. ମୁଖରୋଚକ )—ସୁସ୍ୱାଦୁ; ରୁଚିକର—Tasteful; delicious.
Muhañ ru(ro)chaka
মুখরোচক
मुखरोचक

**ମୁହଁରୁ ଛୁଟିବା**—ଦେ. କ୍ରି—( ବାକ୍ୟ ) ଉଚ୍ଚାରିତ ହେବା—To be uttered; to be spoken out.
Muhañru chhutibā
মুখথেকে বেরান
मुहँसे छुटना

**ମୁହଁରୁ ନା(ଲା)ଳ ବ(ବୋ)ହିବା**—ଦେ. ବି ( ସ. ମୁଖ+ଲାଳ+ବହ ଧାତୁ )—୧ । ମୁଖରୁ ଲାଳ ନିର୍ଗତ ହେବା—1. Salivation; watering of the mouth. ୨ । ସମ୍ମୁଖରେ ଖାଦ୍ୟାଦି ପଦାର୍ଥ ଦେଖି ଲାଳାୟିତ ହେବା—2. Hankering after or longing for a dainty dish brought to one's presence. ୩ । କୌଣସି ବସ୍ତୁ ଭୋଗ କରିବାକୁ ମନ ବଳେଇ ଖାଳେଇ ବା ଅସମ୍ଭାଳ ହେବା। ଅନ୍ୟର ଭୋଗ ଦେଖି ଅନ୍ୟର ଭୁକ୍ତ ବସ୍ତୁ ପ୍ରତି ପ୍ରବଳ ସ୍ପୃହା ଜନ୍ମିବା—3. An uncontrollable longing for a thing enjoyed by another.
Muhañru nā(lā)la ba(bo)hibā
মুখে জল আসা নাল পড়া
मुहँ ललचाना, मुहँसे लार टपकना
ମୁହଁ ନାଳ(ଳ)ଡେଇବା }
ମୁହଁ ନାଲେଇବା } ଅନ୍ୟରୂପ
ମୁହଁ ପାଣେଇବା }

**ମୁହଁରୁ ପାଣି ଶୁଖିଯିବା**—ଦେ. କ୍ରି—୧ । ( କୌଣସି ବ୍ୟକ୍ତିର ) ଉପଶ୍ପ ପଡ଼ିଆ ଭାଙ୍ଗି ଯିବା—1. Becoming downcast or crest-fallen. ୨ । ଲଜ୍ଜାଶୂନ୍ୟ ହେବା—2. To become shameless.
Muhañru pāni sukhijibā
মুখের জল মরা
मुहँका पानी सूख (मर) जाना
( ମୁହଁରୁ ପାଣି ମରିଯିବା—ଅନ୍ୟରୂପ )

**ମୁହଁରୁ ପାର ଖସି ପଡ଼ିବା**—ଦେ. କ୍ରି (ଲକ୍ଷଣାର୍ଥ)—ଲଜ୍ଜାହୀନ ହେବା—To be lost to all sense of shame.
Muhañru pārā khasi pardibā
লজ্জাহীন হওয়া
लज्जाको घोलकर पीजाना, वेपानी होना

**ମୁହଁରୁ ବରତିବା**—ଦେ. କ୍ରି—ବିପଦର କବଳରୁ ଉଦ୍ଧାର ଲାଭ କରିବା—To come out of a grave danger unscathed. (ଯଥା—ମୁଁ ବାଘମୁହଁରୁ ବରତିଗଲି ।)
Muhañru baratibā
মুখথেকে বাঁচা
मुहँसे निकलना
(ମୁହଁରୁ ବୁରିବା—ଗ୍ରାମ୍ୟରୂପ)
( ମୁହଁରୁ ବର୍ତ୍ତିବା, ମୁହଁରୁ ବଞ୍ଚିବା—ଅନ୍ୟରୂପ )

**ମୁହଁରୁ ବାହାରି ପଡ଼ିବା**—ଦେ. କ୍ରି—ନିଜର ଅସାବଧାନତା ଯୋଗୁଁ ( କୌଣସି ବାକ୍ୟ ) ହଠାତ୍ ଉଚ୍ଚାରିତ ବା ପ୍ରକାଶିତ ହେବା—
Muhañru bāhāri pardibā
মুখথেকে বেরিএ পড়া

**मुहँसे निकलना** ( words ) To slip out of one's
(ମୁହଁରୁ ବାହାର ଯିବା—ଅନ୍ୟରୂପ ) mouth; to be spoken out in a moment of carelessness.

ମୁହଁରେ କାଳି ଦେବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ଅପମାନିତ ଓ
Muhanre kāli debā ଅପଦସ୍ଥ କରିବା—To put a
মুখে কালি দেওয়া person to disgrace. [ଦ୍ର—ପୂର୍ବେ
**मुहँमे कालो पोतना** ଦଣ୍ଡରୂପେ ଅପରାଧୀ ବ୍ୟକ୍ତିର ମୁହଁର ଏକ
ମୁହଁରେ ଚୂନ କଳା ଦେବା } ଅନ୍ୟରୂପ ପାଖରେ ଚୂନ ଓ ଏକ
ମୁହଁରେ ଚୂନ କାଳି ଦେବା } ପାଖରେ କଳା ବୋଳ
କମା ମୁହଁସାର କଳା ବୋଳ ତାଙ୍କୁ ଦାଣ୍ଡରେ ବୁଲାଉଥିଲେ । ]

ମୁହଁରେ କାଳି ବୋଳିବା—ଦେ. କ୍ରି—କଳଙ୍କ ଅରୋପଣ କରିବା—
Muhanre kāli bolibā To slander ( a person ).
মুখে কালী লাগান **मुहँमे कालो पोतना**
( ମୁହଁରେ କାଳି ଲେ[ଲି]ପିବା—ଅନ୍ୟରୂପ )

ମୁହଁରେ ଖଇ ଫୁଟିବା—ଦେ. ବ—( ଧାନକୁ ଭାଜିବା ସମୟରେ ଭଜା
Muhanre khai phutibā ଭଜା ହାଣ୍ଡିରେ ଖଇ ଫୁଟିବା ପରି)
মুখে খৈ ফোটা **मुहँमे लावा फुटना** ମୁହଁରୁ ଅଜସ୍ର ଧାରାରେ
ବାକ୍‌ସ୍ରୋତଃ ବାହାରିବା—Talking without a halt or stop; talking glibly.

ମୁହଁରେ ଚଡ଼କ (ରାଧାଚଡ଼କ) ପଡୁ—ଦେ. ଅ ( ଗାଳି ବା ଅଭିଶାପ )
Muhanre chardaka (rādhā chardaka) pardu—ତୁ
মুখে বজ্র পড়ুক **मुहँमे बज्र पडे** ଯେଉଁ କଥା କହିଲୁ ସେଥିପାଇଁ
( ମୁହଁରେ ବଜ୍ର ପଡୁ—ଅନ୍ୟରୂପ ) ଈଶ୍ୱର ତୋର ଅମଙ୍ଗଳ
( ମୁହଁରେ ବଳୁଅ ପାଡୁ—ଅଶ୍ଳୀଳ ) ଘଟାନ୍ତୁ—(Interjection)
A curse upon you for what you have said.

ମୁହଁରେ ଜବାବ ଦେବା—ଦେ. କ୍ରି—(ଭୃତ୍ୟ, ଶିଷ୍ୟାଦି) ଦୁର୍ବିନୀତ
Muhanre jabāba debā ଭାବରେ ସ୍ୱାମୀଙ୍କୁ ବା ଗୁରୁଙ୍କୁ ଅବାଧ୍ୟ
মুখের উপর জবাব দেওয়া ଭାବରେ ଉତ୍ତର ଦେବା—To
**मुहँपर जवाब देना** return insubordinate replies to one's superiors.
ମୁହଁ ଉପରେ ଜବାବ ଦେବା, } —ଅନ୍ୟରୂପ
ମୁହେଁ ମୁହେଁ ଜବାବ ଦେବା }

ମୁହଁରେ ଧରିବା—ଦେ. କ୍ରି—୧ । କହିବା—1. To speak.
Muhanre dharibā ୨ । ଉଚ୍ଚାରଣ କରିବା—2. To utter.
মুখে ধরা ( ଯଥା—ପାପ କଥା କରିବା ଦୂରେ ଥାଉ ମୁହଁରେ
**मुहँमे (पर) धरना** ଧରିଲେ ମଧ୍ୟ ପାପ ହୁଏ । )

ମୁହଁରେ ନିଆଁ—ଦେ. ଅ ( ଗାଳି )—୧ । (ମୃତ୍ୟୁକାମନାସୂଚକ ଗାଳି,
Muhanre niān ଏହାର ଅର୍ଥ ତୋ ମୁହଁ ପୋଡ଼ିଯାଉ) ତୁ
মুখে আগুন, মুয়েঁ আগুন ମର—1. (A curse meaning
**मुहँमे आग** fire on your mouth) You die ! [ଦ୍ର—ମୃତ
ବ୍ୟକ୍ତିର ମୁଖରେ ମୁଖାଗ୍ନି ଦେବା ରୀତିକୁ ଲକ୍ଷ୍ୟ କରି ବ୍ୟବହୃତ ।]
୨ । ମୁଖାଗ୍ନି—2. The fire set to the face of a dead body going to be cremated.

ମୁହଁରେ ନିଆଁ ଦେବା—ଦେ. କ୍ରି—୧ । ମୃତ ବ୍ୟକ୍ତିର ମୁଖରେ
Muhanre niān debā ମୁଖାଗ୍ନି ଦେବା—1. To set fire
মুখে আগুন দেওয়া to the face of a dead body. ୨ ।
**मुहँमे आग देना** 'ମୁହଁରେ ନିଆଁ' ବୋଲି ଗାଳି ଦେବା—
2. To abuse a person.

ମୁହଁରେ ପାଣି ଦେବା—ଦେ କ୍ରି—୧ । ମୁହଁ ଧୋଇବା—1. To
Muhanre pāni debā wash the face. ୨ । ଉପବାସ
মুখে জল দেওয়া ପରେ ପ୍ରଥମେ ଜଳ ଗ୍ରହଣ କରିବା—2. To
**मुहँ धोना** drink water after a fast

ମୁହଁରେ ପାଣି ମାରିବା—ଦେ. କ୍ରି—ମୁଖ ପ୍ରକ୍ଷାଳନ କରିବା; ମୁହଁ
Muhanre pāni māribā ଧୋଇବା—To wash the face.
মুখ ধোয়া **मुहँपर छिंटा देना**

ମୁହଁରେ ପାଳବିଣ୍ଡା (ଚୁଣ୍ଟା) ମାରିବା—ଦେ. କ୍ରି ( ବ୍ୟଙ୍ଗ )—ଚୁପ
Muhanre pālabindā ( chuntā ) māribā ହୋଇ
মুখে বুঁজা দেওয়া ରହିବା—To keep silent. [ ଦ୍ର—
**मुहँमे बीडि देना** କାହାଣୀରେ ବର୍ଣ୍ଣିତ ଅନୁଷ୍ଠାମଣା ସ୍ୱଭାବର
( ମୁହଁରେ ଠିପି ମାରିବା—ଅନ୍ୟରୂପ ) ଅଯୋଗ୍ୟ ବା ନିର୍ବୋଧ
"ପାଳବିଣ୍ଡା ମନ୍ତ୍ରୀ"ଙ୍କ ମୁହଁରୁ କାଳେ ଭୁଲ୍ ବାହାରି ପଡ଼ିବ,
ଏଥିପାଇଁ ସେ ସବୁବେଳେ ପାଟିରେ "ପାଳବିଣ୍ଡା" ମାରି
ଥାଆନ୍ତି ଓ କଥା କହିବାର ଆବଶ୍ୟକ ହେଲେ ସେ ବିଣ୍ଡାଟି
ପାଟିରୁ କାଢ଼ି ଦେଇ କଥା କହି ସାରି ପୁଣି ତତକ୍ଷଣାତ
ମୁହଁରେ ପାଳବିଣ୍ଡାଟି ମାଡ଼ି ଦଅନ୍ତି । ଏହି କାହାଣୀକୁ
ଲକ୍ଷ୍ୟ କରି ବ୍ୟବହୃତ । ]

ମୁହଁରେ ଫୁଲ ଚନ୍ଦନ ପଡୁ (ବରଷୁ)—ଦେ. ଅ ( ଆଶୀର୍ବଚନ )—
Muhanre phula chandana pardu (barashu) ୧ ।
মুখে ফুল চন্দন পড়ুক ତୋ କଥା ସତ୍ୟ ହେଉ—1. ( Inter)
**मुहँमे फुल चन्दन पडे** May thy words come true.
୨ । ତୁ ଯେଉଁ କଥା କହିଲୁ ଏଥିପାଇଁ ଈଶ୍ୱର ତୋର
ମଙ୍ଗଳ କରନ୍ତୁ—2. Be thou blessed for what you have said.

ମୁହଁରେ ବାଡ଼ ବଟା ନ ଥିବା—ଦେ. ବ—୧ । କଥା କହିବା ବିଷୟରେ
Muhanre bārda batā na thibā ନିର୍ଭୀକ ହେବା—
মুখে আটক না থাকা 1. Being fearless in speech.
**मुहँमें रोक न होना** ୨ । ଅସଙ୍ଗତରୂପେ କଥା କହିବା—
2. Speaking without restraint; talking incoherently or irresponsibly. ୩ । ଆଗ
ପଛକୁ ଦୃଷ୍ଟି ନ ରଖି ଯାହା ଜିଭକୁ ଆସିଲା ତାହା କହିବା
—3. Blabbing or speaking out anything which comes uppermost to one's lips. ୪ । ଅଶ୍ଳୀଳ କଥା କହିବା—4. Speaking out indecently.

ମୁହଁରେ ବାଡ଼ିଏ ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ସାମନା
Muhaṅre bāṛie debā ସାମନା ଅପ୍ରିୟ ଉତ୍ତର ଦେଇ ତୁନି
ମୁହଁରେ ବାଡ଼େଇବା } ଅନ୍ୟରୂପ
ମୁହେଁ ମୁହେଁ ବାଡ଼େଇବା }
କରି ଦେବା—1. To silence a person by speaking unpleasantly to his face.
মুখে মুখে চোপা করা
मुहँ पर चपाटा देना
୨ । କୌଣସି ବ୍ୟକ୍ତି କଥା କହିବାକୁ ଆରମ୍ଭ କଲା ବେଳେ ତାଙ୍କୁ ଧମକାଇ ତୁନି କରିବା—2. To silence a person by threatening him when he begins to speak. [ଦ୍ର—ଯେଉଁ ପରି ପଶୁ ଆଦି କୌଣସି ବସ୍ତୁ ଖାଇବାକୁ କାହିଁରେ ମୁହଁ ଲଗାଇବା ବେଳେ ତା ମୁହଁରେ ପ୍ରହାର କଲେ ସେ ଉକ୍ତ କାର୍ଯ୍ୟରୁ ବିରତ ହୁଏ; ଏହି ଲକ୍ଷଣାରୁ ।]

ମୁହଁରେ ବାଣି(ଲି)ଙ୍ଗି କରିବା—ଦେ. କ୍ରି—ଆତ୍ମଶ୍ଲାଘା କରିବା—
Muhaṅre bāṇi(li)ṅgi karibā To boast; to brag
আত্ম শ্লাঘা করা मुहँ मे सेखी बघारना,
अपने मियाँ मिट्ठु होना

ମୁହଁରେ ଲଗି ଯିବା—ଦେ. କ୍ରି. (ସଂ. ମୁଖ+ଲଗ୍ନ)—ଥରେ ଖାଇ-
Muhaṅre lāgijibā ଥିବା କୌଣସି ସୁସ୍ୱାଦୁ ଖାଦ୍ୟର ବା ଥରେ
মুখে লেগে যাওয়া ଭୋଗ କରିଥିବା କୌଣସି ସୁଖକର ପଦାର୍ଥର
मुहँ मे लगना ଭୋଗଜନିତ ସୁଖ ପୁଣି ଆସ୍ୱାଦନ କରିବା ପାଇଁ ଲାଳାୟିତ ହେବା—To hanker after a thing once tasted

ମୁହଁ ଲଗା(ଗେ)ଇବା—ଦେ. କ୍ରି—୧ । ଆକ୍ରମଣ କରି କାମୁଡ଼ିବା—
Muhaṅ lagā(ge)ibā 1. To bite. ୨ । ଚୁମ୍ବନ କରିବା-
মুখ লাগান 2. To kiss. ୩ । କଥା କହିବା—3. To
मुहँ लगाना speak to. (ଉ-ମୁହଁ ନ ଲଗାଅ ଏହି ଥିଟଙ୍କୁ, ଭଲ ବୁଝିଛକି ଏହି ଖଣ୍ଡଙ୍କୁ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।)
୪ । ଧୀରେ କାମୁଡ଼ିବା—4. To bite softly. ୫ । କୌଣସି ବ୍ୟକ୍ତିକୁ ଥରେ ସୁଫଳ ଦେବା ଦ୍ୱାରା ତାଙ୍କୁ ଭବିଷ୍ୟତ ପାଇଁ ଆଶାନ୍ୱିତ କରାଇବା; ଉତ୍ସାହିତ କରିବା—5. To engender hope in a person's mind by making him succeed once; to encourage a person.

ମୁହଁ ଲାଗିବା—ଦେ. କ୍ରି—କୌଣସି କାର୍ଯ୍ୟରେ ଥରେ କୃତକାର୍ଯ୍ୟ
Muhaṅ lāgibā ହୋଇ ଥିବାରୁ ସେହି ଆଶା ବା ଉତ୍ସାହ ଦ୍ୱାରା
মন লাগা ଭବିଷ୍ୟତ ପାଇଁ ଆଶାନ୍ୱିତ ହୋଇ ପୁଣି ସେହି କାର୍ଯ୍ୟ
मुहँ लगना କରିବାକୁ ଅଗ୍ରସର ହେବା—Eagerness or further hope engendered in the mind of a person by first success and encouragement. (ଯଥା—ଥରେ ମୋଠାରୁ ପୁଲାଏ ପାଇ ଯିବାରୁ ତା ମୁହଁ ଲାଗି ଯାଇଛି; ମୋଠାକୁ ସେ ଫେରି ଦଉଡି ଆସିଛି ।)

ମୁହଁ ଲୁଚା—ଦେ. ବି—ବିବାହର ଅଠମଙ୍ଗଳା ଦିନ କନ୍ୟା ଓ ବରଙ୍କର
Muhaṅ luchā ପରସ୍ପର ଦେଖା ନ ହେବା ଉଦ୍ଦେଶ୍ୟରେ
মুখ লুকানী କନ୍ୟାକୁ ଅନ୍ୟ ଘରେ ଲୁଚାଇ କରି ରଖିବାର ପ୍ରଥା
मुहँ छिपान(लुकान) —The custom of keeping the bride concealed in a separate house on the 8th day of the marriage to prevent the groom from seeing her face, which is considered inauspicious.
[ଦ୍ର—ବିବାହର ଅଠମଙ୍ଗଳାର ପରଦିନ ବର ଓ କନ୍ୟାଙ୍କର ସାକ୍ଷାତ୍ ହେବା ଅଶୁଭକର । ଏଥିପାଇଁ ଯେଉଁଠାରେ କନ୍ୟାକୁ ଅଠମଙ୍ଗଳାର ବାସିଦିନ ପିତ୍ରାଳୟକୁ ପଠା ନ ଯାଏ ସେଠାରେ କନ୍ୟାକୁ ସେହିଦିନକ ପାଇଁ ବର ଘରଠାରୁ ନେଇ କୌଣସି ପ୍ରତିବେଶୀଙ୍କ ଘରେ ଲୁଚାଇ କରି ରଖାଯାଏ ।]

ମୁହଁ ଲୁଚା(ଚେ)ଇବା—ଦେ. କ୍ରି—(ସ୍ତ୍ରୀମାନଙ୍କ ପକ୍ଷରେ) ସାମାଜିକ ପ୍ରଥା
Muhaṅ luchā(che)ibā ଅନୁସାରେ ବା ଲଜ୍ଜାବଶତଃ କୌଣସି
মুখ লুকান ବ୍ୟକ୍ତିଙ୍କୁ ମୁହଁ ନ ଦେଖାଇବା ବା ତାଙ୍କୁ ଦେଖି ମୁହଁ
मुहँ छिपाना ଉପରେ ଓଢ଼ଣା ପକାଇବା—(said of women) Not to show one's face to a particular person or to draw the veil over one's face before a particular person. [ଦ୍ର—ହିନ୍ଦୁ ଓ ମୁସଲମାନ୍ ସମାଜରେ ଶ୍ୱଶୁରାଳୟକୁ ନବାଗତା ବଧୂମାନେ ଗୁରୁଜନମାନଙ୍କୁ ଓ ସାଧାରଣଙ୍କୁ ନିଜର ମୁହଁ ଦେଖାନ୍ତି ନାହିଁ । ହିନ୍ଦୁ ସମାଜରେ ଭାଇବୋହୂ, ଦେଢ଼-ଶାଶୁ, ଭଣଜାବୋହୂମାନେ ଯଥାକ୍ରମେ ଦେଢ଼ଶୁର, ଭଉଣୀର ଜୋଇଁ ଓ ମଉଳାଶୁରଙ୍କୁ ମୁହଁ ଲୁଚାନ୍ତି ।]

ମୁହଁ ଲୁଚା ଦେବା—ଦେ. କ୍ରି—ନିଜର ସ୍ନେହୀ ବ୍ୟକ୍ତିଙ୍କଠାରୁ ଦୂରରେ
Muhaṅ luchā debā ରହିବା—To remain away
(ମୁହଁ ଛପା ଦେବା—ଅନ୍ୟରୂପ) from one's beloved
মুখ না দেখান मुहँ छिपा देना persons

ମୁହଁ ଲୁଚି ଯିବା—ଦେ. ବି—୧ । ମୁହଁ ସନ୍ଧ୍ୟା ହେବ—1. Time
Muhaṅ luchi jibā of dusk. ୨ । ବହୁକାଳ ଦୂର
মুখ আন্ধার হওয়া ପ୍ରବାସରେ ରହିବା—2 Long sojourn.
मुखान्ध होना মুখ লুকিয়ে থাকা मुहँ लुक जाना

ମୁହଁ ସଞ୍ଜ(ନ୍ଧ୍ୟା)—ଦେ. ବି (ସଂ. ମୁଖ+ସନ୍ଧ୍ୟା)—ପ୍ରଦୋଷ; ଗୋଧୂଳି
Muhaṅ sañja(ndhyā) ବେଳା—Dusk.
(ମୁହଁ ସଞ୍ଜିଆ;—ଅନ୍ୟରୂପ) মুখ আঁধার
मुखान्ध

ମୁହଁ ସମ୍ଭାଳିବା—ଦେ. କ୍ରି—୧ । ସାବଧାନ ହୋଇ କଥା କହିବା—
Muhaṅ sambhāḷibā 1. To talk with caution.
মুখ সামলান ୨ । କଥାକୁ ସଂଯତ କରିବା—2. To check
मुहँ सँभालना one's passionate speech.

ମୁହଁ ସାଉଁଳା—ଦେ. ବି—ମୁଖ ସଜ୍ଜା; ମୁଖକୁ ପରିଷ୍କାର କରିବା ବା
Muhaṅ sāuṅḷā ମୁହଁକୁ ବେଶ ଦ୍ୱାରା ସୁସଜ୍ଜିତ କରିବା—
মুখ মাওঁলা Toilette of the face. ବିଣ. ପୁଂ—୧ ।

ମୁହ ସଜାନା ମୁଖ ସଜ୍ଜାରେ ସଜ୍ଜିତ (ଲୋକ) – 1. Having
(ମୁହଁ ସାଜୁଲି—ସ୍ତ୍ରୀ) performed the toilette of the
ମୁହ ସଜାନେ ବାଲା face. ୨ । ସୌମ୍ୟଦର୍ଶନ (ବ୍ୟଙ୍ଗ)—
2. Of lovely appearance.

ମୁହଁସୁଆ(ହା)ଗ—ଦେ. ବି. ( ସ. ମୁଖ + ସୌଭାଗ୍ୟ )—ଲୁଚିଲା
Muhañ suā(hā)ga ସୁହାଗ; ବାହ୍ୟ ଆଦର —Outward
মুখের সোহাগ मुहँ पिआर fondling.

ମୁହଁସୁଆ(ହା)ଗୀ—ଦେ. ବିଣ. ପୁଂ ଓ ସ୍ତ୍ରୀ—ଯେଉଁ ବ୍ୟକ୍ତି ବାହ୍ୟ
Muhañ suā(hā)gi ଆଦର ବା ସ୍ନେହ ଦେଖାଏ—Prac-
মুখ সোহাগী मुहँ पिआरा tising outward fondling.
(ମୁହଁ ସୁଆଡିଆ—ପୁଂ, ମୁହଁ ସୁଆଗେଇ—ସ୍ତ୍ରୀ—ଅନ୍ୟରୂପ)

ମୁହଁସୁଆଦ(ଦି) —ଦେ. ବି —(ସ ମୁଖସ୍ୱାଦ)—୧ । ଭୋଜନ ଶେଷରେ
Muhañ suāda (di) ମିଷ୍ଟାନ୍ନ ଗ୍ରହଣ ପୂର୍ବକ ମୁଖଦ୍ୱାରା ମଧୁର ସ୍ୱାଦ
মিষ্টিমুখ করা मुहँस्वाद ଗ୍ରହଣ; ଭୁଣ୍ଡ ସୁଆଦ—1. Taking
(ମୁହଁ ମଧୁରା—ଅନ୍ୟରୂପ) of something sweet at the
end of a meal to keep the mouth taste-
ful. ବିଣ.—୧ । ଯେଉଁ ବସ୍ତୁଦ୍ୱାରା ମୁଖ ସ୍ୱାଦୁଯୁକ୍ତ
মিষ্টি मुहँ सुआदि ହୁଏ—1. Delicious; tasteful. ୨ ।
মিষ্টিমুখ मुहँस्वादी ମଧୁର ଭାଷୀ—2. Of sweet dis-
course or speech.

ମୁହଁସୁଆଦିଆ—ଦେ. ବିଣ. ପୁଂ—୧ । ମଧୁରଭାଷୀ; ବଚନମଧୁର—
Muhañ suādiā 1. Sweet-speaking. ୨ । (ବ୍ୟଙ୍ଗ)
[ ମୁହଁ ମଧୁଆ(ଳା)—ଅନ୍ୟରୂପ ] ଯାହାର ମଧୁରତା କେବଳ
( ମୁହଁ ସୁଆଦୀ—ସ୍ତ୍ରୀ ) ବଚନରେ ପର୍ଯ୍ୟବସିତ; କଥାଁଲଭୁଆ—
মিষ্টিমুখ, মিঠেমুখ मुह पिआरा 2. (ironical) One whose
sweetness is confined to his speech only;
honey-tongued. ୩ । ମଧୁର; ମିଠା—
3. Sweet in taste.

ମୁହଁସେମ(ମୋ)ଟ—ଦେ. ବି.—ମୁହଁ ଶୁଖାଇବା; ଅନାହାର, କ୍ଳେଶ,
Muhañ sema(me)ṭā ଭୟ ବା ଦୁଃଖ ଯୋଗୁଁ ବଦନକୁ ବିରସ
মুখশুকান मुह समेट କରିବା—Assuming of a sorrow-
(ମୁହଁ ଶୁଖା—ଅନ୍ୟରୂପ) ful countenance. ଦେ. ବିଣ.
ବିରସମୁହଁ (ବ୍ୟଙ୍ଗ)—Having a downcast
look.

ମୁହଁ ସେମ(ମେ)ଟା) (ଟେ)ଇବା—ଦେ.କ୍ରି—ଅପମାନରେ ବା ଦୁଃଖରେ
Muhañ sema(me)ṭā(ṭe)ibā ମୁହଁକୁ ବିରସ ବା ମ୍ଳାନ କରିବା—
মুখ শুকান मुहँ समेटना To have a pale face through
(ମୁହଁ ଶୁଖା[ଖେ]ଇବା—ଅନ୍ୟରୂପ) sorrow or grief.
[ମୁହଁ ସେମ(ମେ)ଟିବା, ମୁହଁ ସେମ(ମେ)ଟିଯିବା—ବିଶେଷ୍ୟରୂପ]

ମୁହଁ ହଲା(ଲେ)ଇବା—ଦେ. କ୍ରି —୧ । ଅସମ୍ମତିର ଚିହ୍ନ ସ୍ୱରୂପ ମସ୍ତକକୁ
Muhañ halā(le)ibā ଚାଳନ କରିବା—1. To wag the
মুখনাড়া मुहँ हिलाना face to indicate denial.
୨ । (ବ୍ୟଙ୍ଗ) ଗର୍ବ ପୂର୍ବକ କଥା କହିବା —2. To nod
the head while boasting. ୩ । ଗେହ୍ଲାର
ହୋଇ କଥା କହିବା—3. To nod the head
while speaking in a coquettish manner.
୪ । ଆପଣାର ମୁଖର ସୌନ୍ଦର୍ଯ୍ୟ ପ୍ରତି ବା କର୍ଣ୍ଣାଦିରେ ପିନ୍ଧି
ଥିବା ଅଳଙ୍କାର ପ୍ରତି ଅନ୍ୟ ଲୋକଙ୍କର ଦୃଷ୍ଟି ପଡ଼ିବ ଏହି
ଉଦ୍ଦେଶ୍ୟ ମନରେ ରଖି (ରସିକ ଓ ରସିକା) କଥା କହିଲା
ବେଳେ ଇତସ୍ତତଃ ମୁଖ ଚାଳନ କରିବା—4. To wag
one's head to show off the charm of the
face or of the ornament worn on the
ear etc.

ମୁହଁ ହାତ—ଦେ. ବି.—(ସହଚର)—ମୁଖ ଓ ହସ୍ତ—The face
Muhañ hāta মুখ হাত हात मुहँ and the hands.

ମୁହଁ ହାତ ଧୋଇବା—ଦେ.କ୍ରି—୧ । ଭୋଜନ ପରେ ବା ମଳ ମୂତ୍ରାଦିର
Muhañ hāta dhoibā ଉତ୍ସର୍ଗ ପରେ ମୁଖ ଓ ହସ୍ତାଦିକୁ
মুখ হাত ধোয়া ଜଳଦ୍ୱାରା ମାର୍ଜନ କରିବା—1 To wash the
हात मुह धोना face and hands after meal or after
answering a call of nature. ୨ । ଦାନ୍ତ
ଘଷିବା—2. To brush one's teeth. ୩ ।
(ମଳୋତ୍ସର୍ଗ କରିବା ପରେ ମୁହଁ ଓ ହାତ ଧୋଇବାକୁ
ହେବ ଥିବାରୁ)—ଝାଡ଼ା ଫେରିବାକୁ ଯିବା—3. To
go out to answer a call of nature.

ମୁହଁ ହେବା—ଦେ. କ୍ରି.—ବିସ୍ଫୋଟକ ବା ବ୍ରଣ ଆଦି ପାଚି ଯାହା ଯେଉଁ
Muhañ hebā ସ୍ଥାନରେ ଫାଟି ଯିବ ସେଠାରେ ଗୋଟିଏ ଚିହ୍ନ
মুখ হওয়া मुँहहोना ହେବାକୁ ଦେଖାଯିବା—To come to a
head (said of boils, pimples, blisters and
pox etc.) (ଯଥା—ବଥ ଉପରେ ଫୁଲ୍‌ଟିଏ ଦେବାରୁ
ବଥଟି ମୁହଁ ହେଲା ।) ଦେ. ବିଣ—ବ୍ରଣାଦିର ମୁଖ
ପ୍ରକାଶିତ ହେବା—The coming to a head of
a boil.

ମୁହାଁ—ଦେ. ବି.—୧ । ମୁଆଁ (ଦେଖ)
Muhāñ মোআঁ জাই 1. Muāñ (See) ୨ । (ସ. ମନ୍ଥନ)
মুআন मथना ଦଧି ମନ୍ଥନ—2. Churning of curds.
উনুনে জাল দেওয়া ୩ । (ସ. ମୁଖ) ଚୁଲ୍ଲୀମୁହଁରେ ଜାଳ ଦେବା;
अँचलगना ନିଆଁ ଜାଳିବା ପାଇଁ ଜାଳକୁ ଚୁଲ୍ଲୀରେ ପୂରାଇବା—
3. Putting fuel into the oven; trimming
মুখো a fire. ୪ । (ସ. ମୁଖ) ଅଭିମୁଖୀ ହେବା; ମୁଖ ବୁଲାଇବା—
मुहाँ 4. Turning of the face towards. ୫ । ( ସ.
মুখো মুখ) କୌଣସି ଦଗକୁ ଅଗ୍ରସର ହେବା—5. Advancing
मुँहफीराना towards a particular direction. ୬ । (ସ.
গোরুকে জাব দেওয়া ମୁଖ) କୌଣସି ବିଷୟରେ ପ୍ରବେଶ କରିବା—
सानी खिलाना 6. To enter into a thing. ୭ । (ସ. ମୁଖ)
ବଳଦଙ୍କ ମୁହଁ ପାଣିଦାନାପାଣି ରଖିବା; ଗୋରୁଙ୍କୁ କୁଣ୍ଡରେ
ଦାନାପାଣି କୁଣ୍ଡା କୁଣ୍ଡ ଆଦି ଖୁଆଇବା—7. Feeding
of cattle with chaff and grains mixed

মুখোস with water in a trough. ୮ । ମୁଖା—8. Mask
মুখড়া for the face. ଦେ.ବଣ—୯। (ଅନ୍ୟ ଶବ୍ଦ ସଙ୍ଗେ ଲଗେ
মুখা, মুখো ଯଥା ଘୋଡ଼ାମୁହାଁ, କାଠମୁହାଁ ଇତ୍ୟାଦି)—ମୁଖ
मुहाँ ଯୁକ୍ତ—1. (In compound with other words)—
মুখো Faced. ୨। (ଅନ୍ୟ ଦିଗବାଚକ ଶବ୍ଦ ସଙ୍ଗେ ଯୁକ୍ତ ଯଥା—
मुहाँ ଉତ୍ତରମୁହାଁ, ପୂର୍ବମୁହାଁ।)—କୌଣସି ଦିଗକୁ ମୁଖ କରି;
ଅଭିମୁଖୀ—2. (In compound) Facing; having
the face turned towards. [ ଉ—× × ×
ଘୋଡ଼ାରେ ଚଢ଼ି ଭୂଷା ପ୍ରିତିରେ କଟେଶ୍ୱରମୁହାଁ ଚାଲୁଛନ୍ତି ।
ଫକୀରମୋହନ. ଗଳ୍ପସ୍ୱଳ୍ପ । ]

ମୁହାଁଇବା—ଗ୍ରାଦେ. ( ସମ୍ବଲପୁର, ଗ୍ରାମ୍ୟ ) କ୍ରି—ଖାଇବା—
Muhāñibā To eat. [ଦ୍ର—ଏହି ଶବ୍ଦ କେବଳ ଭାତ ଛଡ଼ା
ସବୁ ସ୍ଥଳରେ ବ୍ୟବହୃତ ହୁଏ । ]

ମୁହାଁ।(ହେଁ)ଇବା—ଦେ. କ୍ରି—୧ । ( ସଂ. ମଥନ, ମନ୍ଥନ )—(ଦଧି
Muhāñ(heñ)ibā ଆଦିର ) ମନ୍ଥନ କରିବା—1. To
( ମୋହିବା—ଅନ୍ୟରୂପ ) churn. ୨ । ଗୋଳାଇବା;
মুআন ମିଶାଇବା—2. To mix with. ୩ । (ସଂ. ମୁଖ)
मथना କୌଣସି ଦିଗକୁ ମୁଖ ବୁଲାଇବା; ଅଭିମୁଖୀ ହେବା—
মুখান, মুখকরা मुँहफिराना 3. To turn the face
towards.
উনুনে জাল দেওয়া ୪ । (କୌଣସି ଆଡ଼କୁ) ଗତି କରିବା;
आँच देना ଅଗ୍ରସର ହେବା—4. To proceed towards;
জাব দেওয়া to advance towards. ୫ । ଚୁଲି ଜଳାଇବା
सानीखिलाना ପାଇଁ ଚୁଲି ମୁହାଁକାଠେ ଚୁଲି ଭିତରକୁ ଜାଳ ପୁରାଇବା।
5. To thrust fuel into an oven to produce a brisk fire. ୬ । ଗୋରୁ ବଳଦ ଆଦିଙ୍କୁ
କୁଣ୍ଡା ପାଣି ଚୁଆଇବା; ତୋରାଣି ବା ପାଣି ସଙ୍ଗେ କୁଣ୍ଡା
ବା ବଗଡ଼ା ଦାନା ଗୋଳାଇ କୁଣ୍ଡରେ ବଳଦଙ୍କ ମୁହଁ
ଲଗାଇବା ସମୟରେ ତାକୁ ଘାଣ୍ଟି ଦେବାଦ୍ୱାରା ବଳଦଙ୍କୁ
କୁଣ୍ଡା ଆଦି ଖୁଆଇବା—6. To feed cattle with
chaff etc mixed with water from a
trough.

ମୁହାଁଟି(ଟ)—ଦେ.ବି—ଛଣଘରର ଛପରର ଓଳିକୁ ଲାଗିଥିବା ଗର ତଳେ
Muhāñṭi(ṭ) ବତା ଉପରେ ପ୍ରଥମେ ଛାଇ ଯିବା ଛଣର ଗର ବା
[ମୁହାଣ୍ଟି(ଣ୍ଟ)—ଅନ୍ୟରୂପ] ସ୍ତର—The layer of straw
spread over the lowermost rib of the
bamboo-frame of a thatched house
over which the ordinary layer of straw
is spread. [ଦ୍ର—ମୁହାଁଟି ଉପରେ ବତା ଥୁଆ ଯାଇ ଗୁଜର
ଦଳମରେ ଉଡ଼ା ଯାଏ ଓ ତାହା ଉପରେ ଗୁଜର କମ୍ଭମ
ଗହିର ଛଣ ଛାଇ ଯାଏ ।] ଗ୍ରାଦେ. (ଗଞ୍ଜାମ) ବିଣ—
ସମ୍ମୁଖରେ ଅବସ୍ଥିତ—Situated or placed in
front.

ମୁହାଁଟି କାମ(ମୁ,ମୋ)ଡ଼ା—ଦେ. ବି—ଗୃହ ଘରର ରୁଅମାନଙ୍କ ଶେଷ
Muhāñṭi kāma(mu,mo)rḍā ବା ଓଳର ସନ୍ନିକଟସ୍ଥ ଶେଷ
ଭାଗରେ ବନ୍ଧା ଯିବା ପ୍ରଥମ କାମଡ଼ା—The split
bamboo tied to the lower ends of the
bamboo-rafters of a thatched house.

ମୁହାଁ ପିଠା—ଗ୍ରାଦେ. (ବୀରଭୂମି ଓ ଗଡ଼ଜାତ) ବି-ଏଣ୍ଡୁରିପିଠା (ଦେଖ)
Muhāñ piṭhā Enduripiṭhā (See)

ମୁହାଁ ମୁହିଁ—ଦେ.ବଣ.—(ସଂ. ମୁଖ ମୁଖି)—ପରସ୍ପରର ସମ୍ମୁଖବର୍ତ୍ତୀ;
Muhāñ muhiñ ସାମନା ସାମନି ପରସ୍ପରକୁ ଭେଟିବା (ବ୍ୟକ୍ତି)—
মুখো মুখি सामने सामनी Confronting each other;
meeting each other face to face. କ୍ରି.
ବଣ.—ସାମନା ସାମନି ହୋଇବା ପ୍ରକାରେ—Face to
face. [ ଉ—ଇନ୍ଦ୍ରଜିତ ଦେଖିଲା ମୁହାଁମୁହିଁ ଅଗାଧ
ଥଗେ ଛାଡ଼ି ହବା ସହଜ କଥା ନୁହେଁ ।—ନୀଳକଣ୍ଠ ଦାସ
ପିଲାଙ୍କ ରାମାୟଣ ।] ବି—୧ । ମୁହାଁଇବା କାର୍ଯ୍ୟ ଆଦି;
ମୁହାଁଇବା (ଦେଖ)—Muhāñibā (See) ୨ ।
ଦୁଇଜଣଙ୍କର ସାମନା ସାମନି ଭେଟ—2. A meeting
of two persons face to face; encounter
of two persons.

ମୁହାଁ(ହା)ସ—ଦେ. ବି.—(ସଂ. ମୋହପାଶ; ଜମ୍ମା ମାୟା+ଆଶା )—
Muhāñ(hā)sa ୧ । ଦାର୍ ପୁତ୍ରାଦିଙ୍କ ପ୍ରତି ମାୟା ମମତା—
মায়া মমতা माया 1. Attachment towards one's
family. [ଉ—ତୁମ୍ଭେ ତାହାକୁ ଅନୁରୂପରେ ସ୍ୱରୂପ,
ହୋଇଛ ତୁମ୍ଭ ଠାରେ କରିବ ମୁହାଁଶ । କୃଷ୍ଣସିଂହ
ମହାଭାରତ. ବନ ।] ୨ । ବିଷୟାଭିଳାଷ; ବିଷୟାସକ୍ତି;
ସଂସାର ମୋହ—2. Attachment towards
one's worldly concerns. ୩ । ଅଭିଳାଷ; ଇଚ୍ଛା—
3. Wish; desire. [ଉ—ପ୍ରତି ଗୃହ ନାରୀମଣିର
ରମଣେ ତରେ ବଳାଏ ମୁହାଁଶ—କବିସୂର୍ଯ୍ୟ. ସଙ୍ଗୀତ ।]

ମୁହାଣ—ଦେ. ବି.—(ସଂ. ମୁଖ)—୧ । ନଦୀ ଯେଉଁଠାରେ ସମୁଦ୍ରରେ
Muhāṇa ବା ଜଳାଶୟରେ ଯାଇଁ ପଡ଼େ; ନଦୀମୁଖ—
মোহানা मोहाना The mouth of a river. ୨ ।
বার आँच କୌଣସି ଦିଗକୁ ଅଗ୍ରସର ହେବା—2. Advancing towards a direction. ୩ । ଚୁଲିରେ
ଜାଳ କାଠ ପୁରାଇବାର ଅଗ୍ର—3. The act of putting or thrusting fuel into the oven.
(ଯଥା—ଚୁଲିରେ ଜାଳ ମୁହାଣେ ଦେଲେ ଭାତ ଫୁଟିବ ।)

ମୁହାଣ କମ୍ବିର—ଦେ. ବି—ସ୍ୱାଧୀନ ଓଡ଼ିଶାର ରାଜାମାନଙ୍କ ଅମଳରେ
Muhāṇa-kimbhira ନଦୀ ମୁହାଣରେ ସମୁଦ୍ର ଉପକୂଳରେ
ଥିବା ସାମନ୍ତ ରାଜାମାନଙ୍କୁ ଦିଆ ଯାଉଥିବା ଉପାଧି—
A title of the vassal-chiefs under the
independent sovereigns of ancient Orissa
holding dominion over coastal regions
where the rivers fall into the sea. [ଦ୍ର—

ଏ ସାମନ୍ତ ରାଜାମାନେ ସମୁଦ୍ର ଉପକୂଳରେ ଯିବା ଆସିବା ସୈନ୍ୟମାନଙ୍କୁ ନଈ ମୁହାଁଣ ପାର ହେବା ପାଇଁ ନୌକା ଆଦିର ସୁବିଧା ଓ ସାହାଯ୍ୟ କରୁଥିଲେ । ବହିଃ ଶତ୍ରୁ ଆକ୍ରମଣରୁ ଦେଶକୁ ରକ୍ଷା କରିବାର ଭାର ଏମାନଙ୍କ ଉପରେ ମଧ୍ୟ ନ୍ୟସ୍ତ ଥିଲା । ସେହି ରାଜାମାନଙ୍କ ଅଧୀନରେ ଏହି ଦୁଇ କାର୍ଯ୍ୟ କରିବା ପାଇଁ ଯେଉଁ ପାଇକମାନେ ନିଯୁକ୍ତ ଥିଲେ ସେମାନେ ଜାଗିର-ସ୍ୱରୂପ ବହୁତ ଭୂସମ୍ପତ୍ତି ଓ ବଣ ଜଙ୍ଗଲ ବୃତ୍ତିରୂପେ ଲାଭ କରୁଥିଲେ । ଦେଶ ମଧ୍ୟରେ ଯୁଦ୍ଧ ହେଲେ ଏହି ମୁହାଁଣକିମ୍ଭିରମାନେ ନିଜର ନିଜର ଅଧୀନ ପାଇକମାନଙ୍କୁ ସାମନ୍ତ ରାଜାଙ୍କ ନିକଟକୁ ସାହାଯ୍ୟ କରିବା ପାଇଁ ପଠାଉଥିଲେ । ଓଡ଼ିଶାରେ ମୋଗଲ ଓ ମରହଟ୍ଟା ରାଜତ୍ୱ ପରେ ଓଡ଼ିଶା ଉପକୂଳରେ ଏହିପରି ୫୦ ଜଣ ସଇଳ ମୁହାଁଣକିମ୍ଭିର ସାମନ୍ତ ରଜା ଥିଲେ । ଏହି ପଚାଶ ଜଣ ମଧ୍ୟରୁ ଆଳି, କୁଜଙ୍ଗ, କନିକା, ହରିଶପୁର, ମରିଚପୁର, ଗୋଲରା ପ୍ରଭୃତି ରାଜ୍ୟର ରାଜାମାନେ ପ୍ରଧାନ ଥିଲେ । କିମ୍ବଦନ୍ତୀ ]

ମୁହାଣ ଚୌକିଆ—ଦେ. ବି.—ମୁହାଣକିମ୍ଭିର (ଦେଖ)
Muhāṇa chaukiā — Muhāṇa kimbhira (See)

ମୁହାଣ ଫିଟା(ଟେ)ଇବା—ଦେ.କ୍ରି—ଜଳାଶୟରୁ ପାଣି ବାହାରି ଯିବାପାଇଁ ବାଟ ଖୋଲିବା ବା ଫିଟାଇ ଦେବା—
Muhāṇa phiṭā(ṭe)ibā
ଜଲଯাবার মুখকরা — To open a water-outlet from a tank.
मुहँ खोलना

ମୁହାଣ ମୁହଁ—ଦେ. ବି—ମୁହାଣ; ନଦୀ ଯେଉଁଠାରେ ସମୁଦ୍ରରେ ପଡ଼ି ଥାଏ ସେହି ସଂଯୋଗ ସ୍ଥାନ—The place where a river falls in to the sea; river-mouth.
Muhāṇa muhañ
মোহানা
मोहाना

ମୁହାଣି—ଦେ. ବି (ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା ତିମୁହାଣି; ଚଉମୁହାଣି)—ନଦୀମୁଖର ଧାରଯୁକ୍ତ ସ୍ଥାନ—Deltaic place.
Muhāṇi
মোহানা मोहाना

ମୁହିର—ସଂ. ବି. ପୁଂ (ମୁହ୍ ଧାତୁ=ମୁଗ୍ଧ ହେବା+କରଣ ଇର)—
Muhira
୧ । କନ୍ଦର୍ପ; ମଦନ—1. Cupid. ୨ । ପ୍ରେମ—2. Love. ୩ । ସ୍ନେହ—3. Attachment. ୪ । ଆକାଙ୍କ୍ଷା—4. Desire. ୫ । (+କର୍ତ୍ତୃ. ଇର) ମୂର୍ଖ; ନିର୍ବୋଧ ବ୍ୟକ୍ତି—5. A fool; a dupe; a simpleton. ୬ । ମେଧାଶୂନ୍ୟ ବ୍ୟକ୍ତି—6. Blockhead. ବିଣ. ପୁଂ—ନିର୍ବୋଧ; ଜଡ଼ବୃତ୍ତି—Foolish; stupid.
(ମୁହିରା—ସ୍ତ୍ରୀ)

ମୁହିଁ—ଦେ. ସର୍ବ (ସଂ. ଅସ୍ମତ୍; ପ୍ରା. ମି; ଅହ୍ମି) (ଗ୍ଲାନାର୍ଥକ)—ମୁଁ—I (used in a sense of one's humility or inferiority).
Muhiñ
আমি मैं
ପ୍ରାଚୀନ ବଙ୍ଗଳା—ମୁଇଁ

ମୁହିଁବା—ଦେ. କ୍ରି—ମୁହାଁଇବା (ଦେଖ)—
Muhiñbā — Muhāiñbā (See)
ପ୍ରାଦେ (ବାଲେଶ୍ୱର) କ୍ରି—ଗତି କରିବା (କୌଣସି ଦିଗକୁ)—To proceed in a certain direction.

ମୁହିଁ—ଦେ.ବିଣ. ସ୍ତ୍ରୀ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ଯଥା—ସୁନ୍ଦରମୁହିଁ, ବସନ୍ତମୁହିଁ) (ସଂ. ମୁଖୀ)—ମୁଖଯୁକ୍ତ—(used in compounds) Faced.
Muhiñ
মুখো (ମୁହାଁ—ପୁଂଲିଙ୍ଗ)
मुँहवाली
(ଉ—ବସନ୍ତମୁହିଁର ଉପମା ଶଚୀ । କାମିନୀଙ୍କର ଛଳା ଛାଳିଚନ୍ତି । ଯଦୁମଣି. ରାଘବଯାଦବ ।)

ମୁହୁ—ଗ୍ରା. ଅ (ସଂ. ମୁହୁଃ)—ମୁହୁଃ (ଦେଖ)—
Muhu — Muhuḥ (See)

ମୁହୁଃ—ସଂ. ଅ—୧ । ବାରମ୍ବାର; ପୁନଃ ପୁନଃ—1. Repeatedly; over and over again. ୨ । ଅତ୍ୟନ୍ତ—2. Very much. ୩ । ତତ୍କ୍ଷଣାତ୍—3. Instantly ୪ । ସଦ୍ୟଃ—4. Recently; afresh.
Muhuḥ

ମୁହୁଣ୍ଡା—ଦେ. ବି (ସଂ. ମୁଖ)—ମୁହଁ; ସାମନା ପାଖ—Front side.
Muhuṇḍā মুহঁ; মুখ मु(मो)हरा

ମୁହୁର୍ଭାଷା—ସଂ. ବି—୧ । ପୁନଃ ପୁନଃ କଥନ—1. Repetition. ୨ । କାବ୍ୟର ଅଳଙ୍କାର ବିଶେଷ—2. A figure in rhetoric; tautology;
Muhurbhāshā

ମୁହୁର୍ମୁହୁ—ଦେ. ଅ (ସଂ. ମୁହୁର୍ମୁହୁଃ)—ମୁହୁର୍ମୁହୁଃ (ଦେଖ)
Muhurmuhu — Muhurmuhuḥ (See)
मुहमुर्हु दम बेदम

ମୁହୁର୍ମୁହୁଃ—ସଂ. ଅ—ଘନ ଘନ; ପୁନଃ ପୁନଃ—Repeatedly; over and over again.
Muhurmuhuḥ

ମୁହୁର—ସଂ. ବିଣ. ପୁଂ (ମୁହ୍ ଧାତୁ+ଉର)—ନିର୍ବୋଧ—Foolish; stupid.
Muhura (ମୁହୁରା—ସ୍ତ୍ରୀ)

ମୁହୁରଙ୍ଗ—ଦେ. ବି (ସଂ. ମଧୁରିକା)—ମହୁରୀ—Pipe.
Muhuraṅga

ମୁହୁରି—ଦେ. ବି (ସଂ. ମୁଖ)—୧ । ନର୍ଦ୍ଦମା; ପାଣିନଳା—1. A drain. ୨ । ଜଳ ନିଃସରଣ ପଥ—2. An exit or outlet for water.
Muhuri
জলের নালা, মহুরী पैन, नाली; मोरी

ମୁହୁରୁତ—ଗ୍ରା. ବି (ସଂ. ମୁହୂର୍ତ୍ତ)—ମୁହୂର୍ତ୍ତ (ଦେଖ)—
Muhuruta — Muhūrttā (See)
(ମୁହୁର୍ତ୍ତ—ଅନ୍ୟରୂପ) মুহূর্ত্ত मुहूरत

ମୁହୂର୍ତ୍ତ—ସଂ. ବି (ମୁର୍ଛ୍ ଧାତୁ=ବକ୍ର ହେବା+କର୍ତ୍ତୃ. ତ)—୧ । ସମସ୍ତ ଦିବାରାତ୍ରିର ୩୦ ଭାଗରୁ ୧ ଭାଗ; ଦ୍ୱାଦଶ କ୍ଷଣ ପରିମିତ କାଳ; ୨ ଦଣ୍ଡ; ୪୮ ମିନିଟ୍ କାଳ—1. A space of 48 minutes. ୨ । ଅତି ଅଳ୍ପ କାଳ—2. A short time; moment. ୩ । ଜ୍ୟୋତିଃଶାସ୍ତ୍ରଜ୍ଞ ବ୍ୟକ୍ତି (ପ୍ରକୃତିବାଦ)—3. An astrologer.
Muhūrtta

ମୁହୂର୍ତ୍ତିକ—ସଂ. ବି (ମୁହୂର୍ତ୍ତ+ସ୍ୱାର୍ଥେ. କ)—ମୁହୂର୍ତ୍ତ (ଦେଖ)—Muhūrtta (See) ଦେ. ବି—ଏକ ମୁହୂର୍ତ୍ତ ମାତ୍ର କାଳ—One moment only. [ଯଥା—ମୋତେ ଏବେ ମୁହୂର୍ତ୍ତିକ ବର୍ଷେ ଭଳି ଲାଗୁଛି ।)
Muhūrttaka

ମୁହୂର୍ତ୍ତ ମାତ୍ର—ସଂ. ଅ ( ସଂ. ମୁହୂର୍ତ୍ତ+ମାତ୍ର°)—କ୍ଷଣକାଳ ପାଇଁ—
Muhūrtta mātra For a moment.
ମୁହୂର୍ତ୍ତ ମାତ୍ର मुहूर्त्त मात्र; दमभर

ମୁହେଁ—ଦେ. ବି. (୭ମୀ ବିଭକ୍ତି)—ମୁହଁରେ ( ଦେଖ )
Muheñ Muhañre ( See )
ମୁଖେ मुहँ मे

ମୁହେଁ ମୁହେଁ—ଦେ ଅ—୧ । ସାମନା ସାମନି—1. Face to
Muheñ muheñ face. ୨। କୌଣସି ବ୍ୟକ୍ତିର ସମ୍ମୁଖରେ—
ମୁଖେ ମୁଖେ 2. In front of a person; to one's
मुँहँ पर face.

ମୁହ୍ୟମାନ—ସଂ.ବି.ପୁଂ.(ମୁହ୍ ଧାତୁ+କର୍ତ୍ତୃ.ଆନ)-୧। ଯାହାର ଚିତ୍ତଧାତୁର
Muhyamāna ବିକୃତି ଘଟିଅଛି; ମୋହ ପ୍ରାପ୍ତ—1. Infatua-
(ମୁହ୍ୟମାନା—ସ୍ତ୍ରୀ) ted; in a confounded state of
mind. ୨ । ଅଚେତ ହୋଇଥିବା; ମୋହ ଯାଇଥିବା—
2. Fainted; swooning.

ମୁହ୍ଲାଜା—ବୈଦେ. ବି. (ଫା. ମୁଲାହିଜା)—ଉପରୋଧ—
Muhlājā Personal consideration; delicacy.
ମୁଲାହିଜା (ଉ—ଯେତେ ମାଡ଼ ଖାଇ ବସୁଥାନ୍ତି ମୁହ୍ଲାଜାରେ ।
मलाहिजा (ମୁହ୍ଲା[ଲ୍ଲେ)ଇଜା—ଅନ୍ୟରୂପ) ଉକାସି.ଭେଟି ଉକାସି ।)

ମୁ (ଧାତୁ)—ସ—ବନ୍ଧନ କରିବା—
Mū (root) To bind.

ମୂ—ସଂ. ବି (ମୁ ଧାତୁ=ବନ୍ଧନ କରିବା+ଭାବେ. କ୍ୱିପ୍)—ବନ୍ଧନ—
Mū Binding; bond.
[ଦ୍ର—ଏହା ଭାଷାରେ ବ୍ୟବହୃତ ହୁଏ ନାହିଁ ।]

ମୂକ—ସଂ. ବିଣ. ପୁଂ. (ମୁ ଧାତୁ=ବନ୍ଧନ କରିବା+କର୍ତ୍ତୃ. କ; ଯେ
Mūka ନିଜର ବାକ୍ ଶକ୍ତିକୁ ବାନ୍ଧି ଅଛି)—୧ । ବାକ୍ ଶକ୍ତି-
(ମୂକା—ସ୍ତ୍ରୀ) ରହିତ; ବୋବା; ଘୁଙ୍ଗା—1. Dumb. ୨ । ଦରିଦ୍ର-
2. Poor. ୩ । ବିବଶ; କାତର; ବେସ୍ଥିର; ନିରୁପାୟ—
3. Helpless. ବି—୧। (+ କର୍ମ)କ. ମତ୍ସ୍ୟ;ମାଛ—1
Fish. ୨। ଗରିବଲୋକ--2. A poor man; a pauper.
୩ । ଦୈତ୍ୟ ବିଶେଷ—3. Name of a demon.
୪ । କାତର ବ୍ୟକ୍ତି; ବିସ୍ଥିର—4. A helpless
person

ମୂକତା(ତ୍ୱ)—ସଂ.ବି. (ମୂକ+ଭାବ ତା; ତ୍ୱ)—୧ । ବାକ୍ଶକ୍ତି ହୀନତା;
Mūkatā(twa) ଘୁଙ୍ଗାପଣ—1. Dumbness. ୨ । ଗରିବତା-
(ମୂକିମା—ଅନ୍ୟରୂପ) 2. Pauperism.

ମୂକ ବଧିର—ସଂ. ବିଣ. ( ଦ୍ୱନ୍ଦ୍ୱ )—ମୂକ ଓ ବଧିର; ଘୁଙ୍ଗା ଓ
Mūka badhira କାଲ—Deaf and dumb.

ମୂକ ବଧିର ବିଦ୍ୟାଳୟ—ସଂ. ବି. (ଆଧୁନିକ ବ୍ୟବହାର)—ମୂକ ଓ
Mūka badhira bidyālaya ବଧିରମାନଙ୍କୁ ଶିକ୍ଷା ଦେବା
ପାଇଁ ପ୍ରତିଷ୍ଠିତ ଆଧୁନିକ ବିଦ୍ୟାଳୟ—(modern)
Deaf and dumb school.

ମୂକ ସାକ୍ଷୀ—ସଂ. ବି. ( କର୍ମଧା; ମୂକ+ସାକ୍ଷୀ )—ବାକ୍ଶକ୍ତି ରହିତ
Mūka sākshī ସାକ୍ଷୀ—Mute witness. (ଯଥା—
ଭୁବନେଶ୍ୱର ଓ କୋଣାର୍କ ମନ୍ଦିରମାନ ଉତ୍କଳୀୟ ଶିଳ୍ପୀମାନଙ୍କ
କଳାନିପୁଣତାର ମୂକ ସାକ୍ଷୀରୂପେ ଦଣ୍ଡାୟମାନ ରହି
ଅଛନ୍ତି ।)

ମୂଢ଼—ସଂ. ବିଣ. ( ମୁହ ଧାତୁ+କର୍ତ୍ତୃ. ତ )—୧ । ମୁଗ୍ଧ; ମୋହାଚ୍ଛନ୍ନ—
Mūrdha 1. Stupefied; infatuated; bewildered.
(ମୂଢ଼ା—ସ୍ତ୍ରୀ) ୨ । ଭ୍ରାନ୍ତ—2. Fallen into error. ୩ । କାମ
କ୍ରୋଧାଦି ଦ୍ୱାରା ବିବେକ ରହିତ; ମୋହାନ୍ଧ—3. Blind-
ed by passion. ୪ । ଅନଭିଜ୍ଞ; ମୂର୍ଖ; ଅଜ୍ଞାନ—
4. Ignorant. ୫ । ଅଧମ; ନିର୍ବୋଧ—5. Foolish;
idiotic; stupid. ୬ । ଶୀତଳ—6. Cold. ୭ ।
ବାଲକବତ୍ ଜ୍ଞାନହୀନ—7. Childish; childlike.
୮ । ଜଡ଼ା; ଅଳସ ବା ଜଡ଼ ପ୍ରକୃତିକ—8. Stupid.
୯ । ତନ୍ଦ୍ରାଚ୍ଛନ୍ନ; ତନ୍ଦ୍ରିତ—9. Drowsy; sleepy;
overtaken by drowsiness. ୧୦ । ଅବ୍ୟାପୃତ—
10. Unengaged; uninitiated. ୧୧ । ନିଶ୍ଚେଷ୍ଟ-
ଜଡ଼—11 Inert. ବି—୧ । ମୂର୍ଖ ଲୋକ—1. A
dunce. ୨ । ନିର୍ବୋଧ ବ୍ୟକ୍ତି—2. A fool; a dolt;
an idiot. (ଉ—ଗୋଡ଼ାନ୍ତି ଏ ଦଳ ସଙ୍ଗେ ଧନ ଲୋଭି
ମୂଢ଼େ । ରଘୁନାଥ. ମହାଯାତ୍ରା ।)

ମୂଢ଼ ଗର୍ଭ—ସଂ. ବି. (ବୈଦ୍ୟକ)—୧ । ପ୍ରସବକାଳରେ ଅତି କଷ୍ଟରେ
Mūrdha garbha ସନ୍ତାନର ପ୍ରସବ ହେବା—1. A bad
presentation of the child at birth, caus-
ing very difficult and painful delivery.
[ଦ୍ର—ସୁଶ୍ରୁତ ମତରେ ଯାନାରୋହଣ, ଅଘାତ ପ୍ରାପ୍ତି,
ଉତ୍ତାନଶୟନ, ମଳ ମୂତ୍ରର ବେଗ ଧାରଣ, ବମନ,
ବିରେଚନ, ରୁକ୍ଷ ଓ କଟୁ ଦ୍ରବ୍ୟ ଭୋଜନାଦି ଯୋଗୁଁ
ଗର୍ଭିଣୀର ଗର୍ଭସ୍ଥ, ଭ୍ରୂଣର ସ୍ଥିତି ବିଚ୍ୟୁତି ଯାଏ ଓ ପେଟ୍,
ବସ୍ତି, ପାର୍ଶ୍ୱାଦିରେ, ପୀଡ଼ା ହୁଏ । ମୂଢ଼ ଗର୍ଭ ୪ ପ୍ରକାର—
୧ । କୀଲ (ଏଥିରେ ଭ୍ରୂଣ ଗୋଟିଏ କୀଲକ ପରି
ଯୋନିମୁଖ ବନ୍ଦ କରି ଦିଏ ।)
୨ । ପ୍ରତି ଖୁର (ଏଥିରେ ଭ୍ରୂଣର ବା ଶିଶୁର ଗୋଟିଏ
ଗୋଡ଼ ଓ ଗୋଟିଏ ହାତ ଓ ମୁଣ୍ଡ ବାହାରି ଆସେ ଓ ଅନ୍ୟ
ଅଂଶ ବାହାରେ ନାହିଁ ।) ୩ । ବୀଜକ (ଗୋଟିଏ ହାତ ଓ
ମୁଣ୍ଡ ବାହାରି ଆସେ ଓ ଅନ୍ୟ ଅଂଶ ବାହାରେ ନାହିଁ ।)
୪ । ପରିଘ (ଭ୍ରୂଣ ଗୋଟିଏ ଦଣ୍ଡ ପରି ପ୍ରସବ ଦ୍ୱାରରେ
ଅଡ଼ି ବାଗରେ ଅଟକି ରହେ ।) ମୂଢ଼ଗର୍ଭ ପାଇଁ ଶଲ୍ୟ
ଚିକିତ୍ସା କରାଯାଏ—ହି. ଶ] ୨ । ଗର୍ଭସ୍ଥ ମୃତ ଶିଶୁ; ମୃତ
ଭ୍ରୂଣ—2. A dead foetus.

ମୂଢ଼ ଚେତାଃ—ସଂ. ବିଣ. ପୁଂ. ( ବହୁବ୍ରୀହି; ମୂଢ଼+ଚେତସ୍ )—
Murdha chetāh ୧ । ମନ୍ଦମତି; ମୂର୍ଖ—1. Foolish;
ମୂଢ଼ ବୁଦ୍ଧି } ଅନ୍ୟରୂପ stupid. ୨ । ଯାହାର ବୁଦ୍ଧି ଲୋପ
ମୂଢ଼ାତ୍ମା } ଘଟିଅଛି—2. Bewildered; con-
founded.

ମୂର୍ଦ୍ଧ ବାତ—ସ. ବି—କୌଣସି କୋଷ ମଧ୍ୟରେ ଅବଦ୍ଧ ବାୟୁ (ହି.ଶ)-
Mūrdhā bāta Wind imprisoned inside a closed receptacle.

ମୂର୍ଦ୍ଧତା(ତ୍ୱ)—ସ. ବି. ( ମୂଢ଼+ଭାବ. ତା; ତ୍ୱ )—ମୂଢ଼ ଭାବ; ଜଡ଼ତା;
Mūrdhatā(twa) ମୂର୍ଖତା—Stupidity; ignorance; stupefaction; bewilderment; folly; idiocy.

ମୂତ—ସ. ବିଣ. (ମୂ ଧାତୁ+କର୍ମ. ତ)—ବଦ୍ଧ—Bound.
Mūta ସ. ବି—ବନ୍ଧନ—Bond. ଦେ. ବି. (ସ. ମୂତ୍ର)—
ମୂତ ମୂତ ପ୍ରସ୍ରାବ; ମୂତ ଇତ୍ୟାଦି (ଦେଖ) Muta etc. (See)

ମୂତା(ତେ)ଇବା (ଇତ୍ୟାଦି)—ଦେ. କି. (ସ. ମୂତ୍ର)—
Mūtā(te)ibā (etc) ମୂତାଇବା ଇତ୍ୟାଦି ( ଦେଖ ) Mūtāibā etc. ( See )

ମୂତିବା (ଇତ୍ୟାଦି)—ଦେ. କି. (ସ. ମୂତ୍ର ଧାତୁ)—
Mūtibā (etc) ମୂତିବା ଇତ୍ୟାଦି ( ଦେଖ ) Mutibā etc. ( See )

ମୂତୁରା(ରୀ) (ଇତ୍ୟାଦି)—ଦେ. ବିଣ—ମୂତୁରା ଇତ୍ୟାଦି ( ଦେଖ )
Mūturā(rī) (etc) Muturā etc. ( See )

ମୂତ୍ର (ଧାତୁ)—ସ—ପ୍ରସ୍ରାବ କରିବା—To pass urine; to
Mūtra (root) make water; to piss.

ମୂତ୍ର—ସ. ବି. ( ମୂତ୍ର ଧାତୁ + କର୍ମ ଅ )—ପ୍ରସ୍ରାବ; ମୂତ; ପରସ୍ରା—
Mūtra Urine. [ଦ୍ର—ଏହା ମଳର ଜଳୀୟ ଅଂଶ; ଭୁକ୍ତ ଦ୍ରବ୍ୟ ପରିପାକ ହେବା ପରେ ତହିଁର ସାରାଂଶ ରକ୍ତ ରୂପେ ଇତର ଓ ସାରହୀନ ଅଂଶ ମଳ ରୂପେ ପ୍ରବାହିତ ହୋଇ ତହିଁରୁ ମୂତ୍ରାଂଶ ମୂତ୍ରନାଳୀ ଦ୍ୱାରା ମୂତ୍ରାଶୟକୁ ଯାଇ ସେଠାରୁ ପ୍ରସ୍ରାବଦ୍ୱାର ବାଟେ ବାହାରେ ।]

ମୂତ୍ର କାରକ—ସ. ବିଣ—ଯେଉଁ ଔଷଧ ଦ୍ୱାରା ମୂତ୍ରର ପରିମାଣ ବୃଦ୍ଧି
Mūtra kāraka ହୁଏ—Diuretic; increasing the
(ମୂତ୍ରକାରୀ—ଅନ୍ୟରୂପ) secretion of urine.

ମୂତ୍ର କୁଣ୍ଡ—ସ. ବି—ଯେଉଁ କୁଣ୍ଡ ମଧ୍ୟରେ ଲୋକେ ପ୍ରସ୍ରାବ କରନ୍ତି—
Mūtra kunda Urinal; piss pot.

ମୂତ୍ର କୃ(କୁ)ଚ୍ଛ—ଗ୍ରା. ବି. (ସ. ମୂତ୍ର କୃଚ୍ଛ୍ର)—ମୂତ୍ର କୃଚ୍ଛ୍ର (ଦେଖ )
Mūtra kṛu(ku)chchha Mūtra kṛuchchhra
ମୂତ୍ରକିଚ୍ଛ ମୂତ୍ରକିଚ୍ଛ (See)

ମୂତ୍ର କୃଚ୍ଛ୍ର—ସ. ବି. (ବୈଦ୍ୟକ; ମୂତ୍ର+କୃଚ୍ଛ୍ର=ଯନ୍ତ୍ରଣା; ବହୁବ୍ରୀହି)—
Mūtra kṛuchchhra ୧ । ରୋଗ ବିଶେଷ;କଷ୍ଟ ସହିତ ମୂତ୍ରତ୍ୟାଗ—1. Urinary affectation; dysuria. [ଦ୍ର—ମୂତ୍ରକୃଚ୍ଛ୍ର ରୋଗରେ ପରିସ୍ରା ବହୁ କଷ୍ଟରେ ଓ ଅଟକି ଅଟକି କରି ବାହାରେ । ବୈଦ୍ୟକ ଶାସ୍ତ୍ର ମତରେ ମୂତ୍ର କୃଚ୍ଛ୍ର ୮ ପ୍ରକାର । ବାତଜ, ପିତ୍ତଜ, କଫଜ, ସାନ୍ନିପାତିକ, ଶଲ୍ୟଜ, ପୁରୀଷଜ, ଶୁକ୍ରଜ ଓ ଅଶ୍ମରୀଜ । ବାତଜରେ ଲିଙ୍ଗରେ ଓ ବସ୍ତିରେ ଗୁରୁ ପୀଡ଼ା ହୁଏ ଓ ଅଳ୍ପ ଅଳ୍ପ ମୂତ୍ର ବାହାରେ । ପିତ୍ତଜରେ ପ୍ରସ୍ରାବ ଜ୍ୱାଳା ହୁଏ ଓ ପ୍ରସ୍ରାବ ହଳଦିଆ ବା ନାଲି ହୁଏ । କଫଜରେ ବସ୍ତି ଓ ଲିଙ୍ଗ ଫୁଲେ ଓ ପ୍ରସ୍ରାବ ଫେନମୟ ହୁଏ । ସାନ୍ନିପାତିକରେ ଏ ସବୁ ଲକ୍ଷଣ ଥାଏ ଓ ଏହା କଷ୍ଟସାଧ୍ୟ । ମୂତ୍ର ନାଳୀରେ କଣ୍ଟା ଆଦି ଗଳ ଯାଇ ଘାଆ ହେଲେ ତାହା ଶଲ୍ୟଜ ଅଟେ ଓ ସେଥିରେ ବାତଜ ମୂତ୍ରକୃଚ୍ଛ୍ରର ଲକ୍ଷଣମାନ ଦେଖାଯାଏ । ପୁରୀଷଜରେ ମଳରୋଧ ହୁଏ ଓ ପ୍ରସ୍ରାବ ଅଟକି ଅଟକି କରି ବାହାରେ । ଶୁକ୍ରଜ ଶୁକ୍ରଦୋଷରୁ ହୁଏ ଓ ପ୍ରସ୍ରାବ ସଙ୍ଗେ ଶୁକ୍ର ମିଶିଥାଏ ଓ ପ୍ରସ୍ରାବ କରିବା ସମୟରେ ପୀଡ଼ା ହୁଏ । ମୂତ୍ରାଶୟରେ ପଥର ଜନ୍ମିଲେ ଅଶ୍ମରୀଜ ହୁଏ ଓ ପ୍ରସ୍ରାବ କରିବାକୁ କଷ୍ଟ ହୁଏ । ଶର୍କରାଜ ମୂତ୍ରକୃଚ୍ଛ୍ର ଅଶ୍ମରୀଜର ପ୍ରକାରଭେଦ ଅଟେ—ହି. ଶ]

ମୂତ୍ର କୋଷ—ସ. ବି. (୬ଷ୍ଠୀ ତତ୍)—ମୂତ୍ରାଶୟ—
Mūtra kosha Bladder; kidney.

ମୂତ୍ର କ୍ଷୟ—ସ. ବି. ( ବୈଦ୍ୟକ; ୬ଷ୍ଠୀ ତତ୍ )—ମୂତ୍ରରୋଧ ରୋଗ
Mūtra kshaya ବିଶେଷ; ମୂତ୍ରାଘାତର ପ୍ରକାର ବିଶେଷ—A disease in which there is excess of urea in the blood.

ମୂତ୍ର ଗ୍ରନ୍ଥି—ସ. ବି. ( ବୈଦ୍ୟକ )—୧ । ମୂତ୍ରାଶୟର ଉପରେ ଥିବ
Mūtra granthi ଗଣ୍ଠି—1. A knot or obstruction at the neck of the bladder; kidney nephros. ୨ । ମୂତ୍ରାଘାତ ରୋଗର ପ୍ରକାର ଭେଦ (ହି. ଶ)—2. A kind of obstruction of urine.

ମୂତ୍ର ଗ୍ରନ୍ଥି କୃମି ପୀଡ଼ା—ସ. ବି. ( ଆଧୁନିକ )—ମୂତ୍ର ଗ୍ରନ୍ଥିରେ କୃମି
Mūtra granthi krumi pirdā ହେବାରୁ ଉତ୍ପନ୍ନ ପୀଡ଼ା—Nephrelenintic due to the presence of worms in the kidney.

ମୂତ୍ର ଗ୍ରନ୍ଥି ବେଦନା—ସ. ବି. (ଆଧୁନିକ)—ମୂତ୍ରାଶୟର ରୋଗ ବିଶେଷ
Mūtra granthi bedanā —Nephralgia.

ମୂତ୍ର ଗ୍ରହ—ସ. ବି—ଘୋଡ଼ାର ମୂତ୍ରରୋଗ ବିଶେଷ—
Mūtra graha A urinary disease of horses.
[ଦ୍ର—ଏ ରୋଗରେ ଘୋଡ଼ାମାନଙ୍କର ଅଳ୍ପ ଅଳ୍ପ ଫେନିଳ ମୂତ୍ର ନିର୍ଗତ ହୁଏ—ବିଶ୍ୱକୋଷ ।]

ମୂତ୍ର ଜଠର—ସ. ବି—ମୂତ୍ରାଘାତ ରୋଗ ବିଶେଷ—A kind of
Mūtra jathara suppression of urine.

ମୂତ୍ର ତ୍ୟାଗ—ସ. ବି—ପ୍ରସ୍ରାବ କରିବା; ମୂତିବା—Uresis; emic-
Mūtra tyāga tion; micturition; discharge of urine.

ମୂତ୍ର ଦଶକ—ସ. ବି. (ବୈଦ୍ୟକ)—ହାତୀ, ମେଣ୍ଢା, ଓଟ, ଗାଈ, ଛେଳି,
Mūtra daśaka ଘୋଡ଼ା, ମଇଁଷି, ଗଧ, ମନୁଷ୍ୟ ଓ ସ୍ତ୍ରୀ, ଏହି ଦଶ ପ୍ରକାର ଜୀବଙ୍କ ମୂତ୍ରର ସମୂହ—A collection the urines of 10 animals (elephant, ram, camel, cow, goat, horse, buffalo, ass man and woman).

ମୂତ୍ର ଦାହ—ସ. ବି—ପ୍ରସ୍ରାବ ପୋଡ଼ା—A burning sensation
Mūtra dāha in the urethra accompanied with
(ମୂତ୍ରଦାହ—ଅନ୍ୟରୂପ) painful micturition.
[ଦ୍ର—ଏହା ଏକ ପ୍ରକାର ମୂତ୍ରକୃଚ୍ଛ୍ର ରୋଗ ।]

ମୂତ୍ର ଦୋଷ—ସଂ. ବି ( ବହୁବ୍ରୀହି )—୧ । ମେହରୋଗ; ଧାତୁ ପଡ଼ିବା—
Mūtra dosha 1. Gonorrhoea. ୨ । ମୂତ୍ରରୋଗ—
2. Urinary disease. ୩ । ମୂତ୍ରକୃଚ୍ଛ୍ର ରୋଗ—
3 Suppression of urine.

ମୂତ୍ରଦ୍ୱାର—ସଂ. ବି—୧ । ମୂତ୍ରନାଳୀ ( ଦେଖ )—1. Mūtranāḷi
Mūtradwāra ( See ) ୨ । ମୂତ୍ରରନ୍ଧ୍ର ( ଦେଖ )—
2. Mūtrarandhra ( See )

ମୂତ୍ରନାଳୀ—ସଂ. ବି—ମୂତ୍ରାଶୟରୁ ପଦାକୁ ପ୍ରସ୍ରାବ ଆସିବାର ବାଟ; ଶରୀ-
Mūtranāḷi ରର ମୂତ୍ରନିର୍ଗମନ ନଳ—The urinary
( ମୂତ୍ର ଧାରଣ ପ୍ରଣାଳୀ—ଅନ୍ୟରୂପ ) passage; urethra.

ମୂତ୍ର ନିକ୍ଷେପାସ୍ତ୍ର—ସଂ. ବି—ପ୍ରସ୍ରାବ ରୋଧ ହେଲେ ମୂତ୍ର ନିଃସାରଣାର୍ଥ
Mūtra nikshepāstr ମୂତ୍ରାଶୟ ପର୍ଯ୍ୟନ୍ତ ପ୍ରବେଶ କରାଇବା
ଶଲ୍ୟାସ୍ତ୍ର—The catheter; an instrument to
draw off urine from the kidney.

ମୂତ୍ର ନିବାରକ—ସଂ. ବିଣ—ଯେଉଁ ଦ୍ରବ୍ୟ ସେବନ ବା ପ୍ରୟୋଗଦ୍ୱାରା
Mūtra nibāraka ମୂତ୍ରର ପରିମାଣ ବା ପ୍ରବାହ କମିଯାଏ—
Anti-diuretic ( article ).

ମୂତ୍ର ନିରୋଧ—ସଂ. ବି—ମୂତ୍ରାଘାତ; ପ୍ରସ୍ରାବ ବନ୍ଦ ହେବା ରୋଗବିଶେଷ—
Mūtra nirodha Obstruction of urine.
( ମୂତ୍ରରୋଧ—ଅନ୍ୟରୂପ )

ମୂତ୍ର ନିରୋଧନ—ସଂ. ବି ( ୬ଷ୍ଠୀ ତତ୍ )—ପ୍ରସ୍ରାବ ତଳିବ ହେଲାବେଳେ
Mūtra nirodhana ପ୍ରସ୍ରାବ ନ କରିବା—Not making
(ମୂତ୍ରରୋଧନ—ଅନ୍ୟରୂପ) water when one feels a
tendency to do so.

ମୂତ୍ର ପଞ୍ଚକ—ସଂ. ବି (୬ଷ୍ଠୀ ତତ୍)—ବୈଦ୍ୟଶାସ୍ତ୍ରୋକ୍ତ ୫ଟି ଜୀବଙ୍କ ମୂତ୍ର,
Mūtra panchaka ଗାଈ, ମାଈ ଛେଳି, ମେଣ୍ଢା, ମାଈ ମଇଁଷି
ଓ ମାଈ ଗଧର ମୂତ୍ର ( ରାଜନିର୍ଘଣ୍ଟ )—The urine of
5 female beasts used for medicinal
purposes.

ମୂତ୍ର ପତନ—ସଂ. ବି—୧ । ( ପୁରୀଷ ନିରୋଧ କାରଣରୁ ଏହାର ସତତ
Mūtra patana ମୂତ୍ର ପତନ ହୁଏ—ଶବ୍ଦକୋଷ ) ଗନ୍ଧମାର୍ଜାର;
ଖାଳଅପତମା ( ରାଜନିର୍ଘଣ୍ଟ )—1. The musk cat.
୨ । ଛୁଚୁନ୍ଦ୍ରା—2. The mole. ୩ । ମୂତ୍ରଦ୍ୱାରରୁ
ପ୍ରସ୍ରାବ ବାହାରିବା—3. Micturition.

ମୂତ୍ର ପଥ—ସଂ. ବି—ମୂତ୍ରନାଳୀ ( ଦେଖ )
Mūtra patha Mūtranāḷi ( See )

ମୂତ୍ର ପରୀକ୍ଷା—ସଂ. ବି—ରୋଗ ନିର୍ଣ୍ଣୟାର୍ଥ ରୋଗୀର ମୂତ୍ରର ଓ ରୋଗର
Mūtra parikshā ଲକ୍ଷଣମାନ ବିଜ୍ଞାନ ସାହାଯ୍ୟରେ ନିର୍ଣ୍ଣୟ
କରିବା ପାଇଁ ମୂତ୍ରକୁ ଦେଖିବା—Scientific medical
examination of the urine.

ମୂତ୍ର ପାତ୍ର—ସଂ. ବି—ଯେଉଁ ପାତ୍ରରେ ପ୍ରସ୍ରାବ କରାଯାଏ—
Mūtra pātra (ମୂତ୍ରଭାଣ୍ଡ—ଅନ୍ୟରୂପ) A urinal.

ମୂତ୍ର ପିଣ୍ଡ—ସଂ. ବି—ମୂତ୍ରାଶୟ—
Mūtra pinda Kidney.

ମୂତ୍ର ପୁଟ—ସଂ. ବି—୧ । ନାଭିର ଅଧୋଭାଗ; ତଳପେଟ—1. The
Mūtra puṭa part below the navel; abdomen.
୨ । ମୂତ୍ରାଶୟ—2. The bladder.

ମୂତ୍ର ପୁରୀଷ—ସଂ. ବି ( ଦ୍ୱନ୍ଦ୍ୱ )—ମୂତ୍ର ଓ ଗୁହ—Night-soil
Mūtra purisha and urine; faecus and urine

ମୂତ୍ର ପ୍ରଣାଳୀ—ସଂ. ବି—ମୂତ୍ରନାଳୀ—Urethra; urethral canal
Mūtra praṇāḷi ( ମୂତ୍ରବାହକପ୍ରଣାଳୀ—ଅନ୍ୟରୂପ)

ମୂତ୍ର ପ୍ରଦାହ—ସଂ. ବି—ମୂତ୍ରଦାହ ( ଦେଖ )
Mūtra pradāha Mūtradāha ( See )

ମୂତ୍ର ପ୍ରସେକ—ସଂ. ବି—ମୂତ୍ରନାଳୀ—
Mūtra praseka Urethra.

ମୂତ୍ର ଫଳା—ସଂ. ବି ( ଏହା ମୂତ୍ରବର୍ଦ୍ଧକ ଥିବାରୁ )—ଖଣା; କର୍କଟୀ
Mūtra phaḷā କାକୁଡ଼ି—Cucumber.

ମୂତ୍ର ବର୍ଦ୍ଧକ—ସଂ. ବିଣ—ପ୍ରସ୍ରାବ ବୃଦ୍ଧିକାରୀ (ଔଷଧ)—
Mūtra barddhaka Diuretic; uretic.

ମୂତ୍ରବାହ—ସଂ. ବିଣ ( ମୂତ୍ର+ବହ୍ ଧାତୁ+କର୍ତ୍ତୃ. ଅ )—ଯାହା ମୂତ୍ରକୁ
Mūtrabāha ମୂତ୍ରାଶୟରୁ ବୋହିଅଣେ—Carrying urine
from the kidney

ମୂତ୍ର ବିଜ୍ଞାନ—ସଂ. ବି—୧ । ମୂତ୍ର ପରୀକ୍ଷା ସମ୍ବନ୍ଧୀୟ ଆୟୁର୍ବେଦୀୟ ଗ୍ରନ୍ଥ-
Mūtra bijnāna ବିଶେଷ—1. Name of a Sanscrit
treatise on the examination of urine.
[ ଦ୍ର—ଏହା କାତୁକଣ୍ଠି ଋଷିଙ୍କ ପ୍ରଣୀତ; ଏଥିରେ ମୂତ୍ର
ପରୀକ୍ଷା କରିବାର ନାନା ପ୍ରଣାଳୀ ବର୍ଣ୍ଣିତ ହୋଇଅଛି ।
ଚରକ, ସୁଶ୍ରୁତ ଆଦିରେ ଏ ବିଷୟର ବିଶେଷ ଆଲୋଚନା
ହୋଇ ନାହିଁ—ହି. ଶ । ] ୨ । ଯେଉଁ ଜ୍ଞାନ ବା
ବିଦ୍ୟାବଳରେ ମୂତ୍ରର ନାନାଭେଦ, ମୂତ୍ରର ଦୋଷାଦୋଷ
ଓ ମୂତ୍ର ପରୀକ୍ଷା ଆଦି ମୂତ୍ର ବିଷୟକ ଜ୍ଞାତବ୍ୟ ବିଷୟ ଜଣା
ଯାଏ—2. The science of examining the
urine.

ମୂତ୍ରବୃଦ୍ଧି—ସଂ. ବି (୬ଷ୍ଠୀ ତତ୍)—ପ୍ରସାବର ଆଧିକ୍ୟ—
Mūtrabruddhi Copious flow of urine; diuresis.

ମୂତ୍ର ବେଗ—ସଂ. ବି ( ୬ଷ୍ଠୀ ତତ୍ )—ମୂତ୍ର ମାଡ଼ିବା—
Mūtra bega A tendency to pass urine.

ମୂତ୍ର ମାର୍ଗ—ସଂ. ବି—ମୂତ୍ରନାଳୀ ( ଦେଖ )
Mūtra mārga Mūtranāḷi ( See )

ମୂତ୍ର ରନ୍ଧ୍ର—ସଂ. ବି—୧ । ଯେଉଁ ଛିଦ୍ର ବାଟେ ପ୍ରସ୍ରାବ ପଦାକୁ ବାହାରେ—
Mūtra randhra 1. The urethral orifice. ୨। ରୋଗ-
ବିଶେଷ ଯୋଗୁଁ ପ୍ରସ୍ରାବ ନଳର ବହିଃସ୍ଥ ଅଗ୍ର ରନ୍ଧ୍ର ବନ୍ଦ
ହୋଇ ଅନ୍ୟ ସ୍ଥାନରେ ହେବା ରନ୍ଧ୍ର—2. Epispadiac.

ମୂତ୍ର ରୋଧ—ସଂ. ବି ( ୬ଷ୍ଠୀ ତତ୍ )—ରୋଗବିଶେଷ; (ଏହାଦ୍ୱାରା ମୂତ୍ର
Mūtra rodha ବନ୍ଦ ହୋଇଥାଏ)—Obstruction of
urine; strangury.

ମୂତ୍ର ରୋଧକ—ସଂ. ବି ( ୬ଷ୍ଠୀ ତତ୍ )—ମୂତ୍ରନିରୋଧକ ( ଦେଖ )
Mūtra roddhaka Mūtranirodhaka (See )

ମୂତ୍ରଳ—ସଂ. ବଣ. ( ମୂତ୍ର+ଲ )—ମୂତ୍ରବର୍ଦ୍ଧକ ( ଦେଖ )—Mūtrala barddhaka (See) ସଂ. ବି—୧ । ରଙ୍ଗ; ସୀସା—1. Tin ୨ । ତ୍ରପୁଷ (ଶବ୍ଦକୋଷ)—2. Cucumber.

ମୂତ୍ରଳା—ସଂ. ବି ( ମୂତ୍ର+ବହୁଳାର୍ଥେ ଲ+ଆ )—କାକୁଡ—Mūtralā Cucumber. [ ଦ୍ର—ଏହାକୁ ଖାଇଲେ ପ୍ରସ୍ରାବ ବୃଦ୍ଧି ହୁଏ । ] ସଂ. ବଣ. ସ୍ତ୍ରୀ—ମୂତ୍ରଳର ସ୍ତ୍ରୀଲିଙ୍ଗ—Feminine of Mūtrala.

ମୂତ୍ରଶୁକ୍ର—ସଂ. ବି—ରୋଗବିଶେଷ; ମୂତ୍ର ସଙ୍ଗେ ଶୁକ୍ରପତନ ( ଯହିଁରେ Mūtra śukra ଗଉଡ଼ଗୋଳା ପାଣି ପରି ପରିସ୍ରା ହୁଏ ଓ ପ୍ରସ୍ରାବକୁ କିଛିକ୍ଷଣ ପାତ୍ରରେ ରଖି ଦେଲେ ଧଳା ଚୂର୍ଣ୍ଣମୟସ୍ତର ପାତ୍ର ତଳେ ବସିଯାଏ ( ମୂତ୍ରାଘାତ ରୋଗର ପ୍ରକାରବିଶେଷ—Milky urine (a disease)

ମୂତ୍ରସଙ୍ଗ—ସଂ. ବି—ମୂତ୍ରରୋଧ—Mūtrasanga Urinary obstruction.

ମୂତ୍ରସ୍ଥଳୀ—ସଂ. ବି—ମୂତ୍ରାଶୟ—The urinary bladder; Mūtrasthalī Vesica Urinaria.

ମୂତ୍ରାଘାତ—ସଂ. ବି ( ମୂତ୍ର+ଆଘାତ=ନିରୋଧ; ବହୁବ୍ରୀହି )—ରୋଗବିଶେଷ; ମୂତ୍ରରୋଧକ ରୋଗ ବିଶେଷ—Mūtrāghāta The obstruction of urine. [ ଦ୍ର—ବୈଦ୍ୟକରେ ୧୨ ପ୍ରକାର ମୂତ୍ରାଘାତର ଉଲ୍ଲେଖ ଅଛି—

୧ । ବାତକୁଣ୍ଡଳୀ—ବାୟୁ କୁପିତ ହୋଇ ବସ୍ତିଦେଶରେ କୁଣ୍ଡଳୀ ଆକାରରେ ଅଟକ ପ୍ରସ୍ରାବକୁ ଅଟକାଏ ।

୨ । ବାତଷ୍ଠୀଲା—ବାୟୁ ଗୋଲାକାର ଗଣ୍ଠି ପରି ବସ୍ତିଦେଶରେ ରହି ପ୍ରସ୍ରାବକୁ ଅଟକାଇ ଦିଏ ।

୩ । ବାତବସ୍ତି—ମୂତ୍ରବେଗ ସହ ବସ୍ତିର ବାୟୁ ବସ୍ତି ମୁଖକୁ ରୁଦ୍ଧ କରେ ।

୪ । ମୂତ୍ରାତୀତ—ବାରମ୍ବାର ଅଳ୍ପ ଅଳ୍ପ ପ୍ରସ୍ରାବ ହୁଏ ।

୫ । ମୂତ୍ରଜଠର—ମୂତ୍ରର ପ୍ରବାହ ଅଟକ ଯିବାରୁ କୁପିତ ଅଧୋବାୟୁ ନାଭିର ନିମ୍ନରେ ପୀଡ଼ା ଉତ୍ପାଦନ କରେ ।

୬ । ମୂତ୍ରୋତ୍ସଙ୍ଗ—ବାୟୁର ଆଧିକ୍ୟରୁ କେତେବେଳେ ପ୍ରସ୍ରାବ ବନ୍ଦ ଅଟକ ଯାଏ, ପୁଣି କେତେବେଳେ ଖୁବ୍ ଜୋରରେ ରକ୍ତ ମିଶ୍ରିତ ହୋଇ ବାହାରେ ।

୭ । ମୂତ୍ରକ୍ଷୟ—ମୂତ୍ର ଶୁଖିଯାଇ ମୂତ୍ରମାର୍ଗ ଜଳା ପୋଡ଼ା କରେ ।

୮ । ମୂତ୍ରଗ୍ରନ୍ଥି—ବସ୍ତିର ମୁହଁଉପରେ ପଥର ପରି ଗ୍ରନ୍ଥି ଉତ୍ପନ୍ନ ହୋଇ ପ୍ରସ୍ରାବ କରିବାରୁ କଷ୍ଟ ହୁଏ ।

୯ । ମୂତ୍ରଶୁକ୍ର—ମୂତ୍ର ସଙ୍ଗେ ବା ପୂର୍ବରୁ ବା ପରେ ଶୁକ୍ର କ୍ଷରିତ ହୁଏ ।

୧୦ । ଉଷ୍ଣବାତ—ଅଧିକ ବ୍ୟାୟାମ ବା ପଥଶ୍ରମ କରିବା ଯୋଗୁଁ ପ୍ରସ୍ରାବନାଳୀରେ ଦାହ ହୁଏ ଓ ହଳଦିଆ ବା ରକ୍ତମିଶା ପ୍ରସ୍ରାବ ହୁଏ ।

୧୧ । ପିତ୍ତଜ ମୂତ୍ରୌକସାଦ—ପ୍ରସ୍ରାବ ପୋଡ଼ା ଓ ଗାଢ଼ ମୂତ୍ର ହୁଏ ଓ ପ୍ରସ୍ରାବ ଶୁଖି ଗଲେ ଗୋରୋଚନାର ଚୂନା ପରି ଦେଖାଯାଏ ।

୧୨ । କଫଜ ମୂତ୍ରୌକସାଦ—ବହୁ କଷ୍ଟରେ ସଫେଦ ମୂତ୍ର ବାହାରେ]—

ମୂତ୍ରାତୀତ—ସଂ. ବି—ମୂତ୍ରାଘାତ ରୋଗ ବିଶେଷ—Mūtrātīta A kind of obstruction of urine.

ମୂତ୍ରାଧାର—ସଂ. ବି ( ୬ଷ୍ଠୀ ତତ୍; ମୂତ୍ର+ଆଧାର )—ମୂତ୍ରାଶୟ—Mūtrādhāra The urinary bladder.

ମୂତ୍ରାଧିକ୍ୟ ରୋଗ—ସଂ. ବି—ବହୁମୂତ୍ର ରୋଗ—Mūtrādhikya roga Diabetes.

ମୂତ୍ରାନୁବନ୍ଧ—ସଂ. ବି—୧ । ମୂତ୍ରକୃଚ୍ଛ୍ର ( ଦେଖ )—1. Mutrakruchchhra ( See ) ୨ । ପ୍ରସ୍ରାବପୋଡ଼ା—2. Difficulty accompanied with pain and burning sensation in passing urine drop by drop; painful and scanty micturition.

Mūtrānubandha

ମୂତ୍ରାମ୍ଳ—ସଂ. ବି (ଆଧୁନିକ ପ୍ରୟୋଗ)—ମୂତ୍ରର ଅମ୍ଳରସ ବିଶେଷ—Mūtrāmla Uric acid; lithic acid.

ମୂତ୍ରାଶୟ—ସଂ. ବି ( ମୂତ୍ର+ଆଶୟ=ଆଧାର )—ମୂତ୍ରସ୍ଥଳୀ—The Mūtrāśaya urinary bladder; Vesica Urinaria. [ ଦ୍ର—ଏହା ପେଟ ଭିତରେ ନାଭିର ନିମ୍ନଦେଶରେ ଅବସ୍ଥିତ । ଏଥିରେ ମୂତ୍ର ସଞ୍ଚିତ ହୁଏ ଓ ଏଥିରୁ ମୂତ୍ରନାଳୀ ବାଟେ ପ୍ରସ୍ରାବ ବାହାରେ ।]

ମୂତ୍ରାଶୟାଶ୍ମ—ସଂ. ବି (ଆଧୁନିକ ପ୍ରୟୋଗ)—ଅସୁରୀ ବା ପଥୁରିଆ ରୋଗ Mūtrāśayāśma Stone in the bladder; Cystolithos.

ମୂତ୍ରାଷ୍ଟକ—ସଂ. ବି ( ୬ଷ୍ଠୀ ତତ୍ )—ଔଷଧରେ ବ୍ୟବହୃତ ଆଠ ଗୋଟି Mūtrāshṭaka ଲକ୍ଷିଷ୍ଟ ପ୍ରାଣୀଙ୍କ ମୂତ୍ର [ ଯଥା—ଗୋରୁ, ଛାଗ, ମେଷ, ମହିଷ, ଗଧ, ଓଟ, ଘୋଡ଼ା ଓ ହାତୀର ମୂତ୍ର ( ବୈଦ୍ୟକ ପରିଭାଷା ପ୍ରକରଣ ) ]—The urine of 8 particular animals used for medicine.

ମୂତ୍ରାସାଦ—ସଂ. ବି—ମୂତ୍ରାଘାତ ରୋଗ ବିଶେଷ—Mūtrāsāda A kind of obstruction of urine. (ମୂତ୍ରୌକସାଦ—ଅନ୍ୟରୂପ) (ମୂତ୍ରାଘାତ ଉକ୍ତି ଟୀକା ଦେଖ)

ମୂତ୍ରିକା—ସଂ. ବି—ସଲ୍ଲକୀ ବୃକ୍ଷ (ହି. ଶ)—Mūtrika Boswellia Serrata (tree)

ମୂତ୍ରିତ—ସଂ. ବଣ. ପୁଂ—(ମୂତ୍ର+ସଞ୍ଜାତାର୍ଥେ ଇତ)—କୃତ ମୂତ୍ରୋତ୍ସର୍ଗ; Mūtrita ମୀଢ଼ (ଶବ୍ଦକୋଷ)—(One) Who has passed urine. (ମୂତ୍ରିତା—ସ୍ତ୍ରୀ)

ମୂତ୍ରୋତ୍ପାଦକ—ସଂ. ବି—ମୂତ୍ରବର୍ଦ୍ଧକ (ଦେଖ) Mūtrotpādaka Mūtrabarddhaka (See)

ମୂତ୍ରୋତ୍ସଙ୍ଗ—ସଂ. ବି—ମୂତ୍ରାଘାତ ରୋଗ ବିଶେଷ—Mūtrotsanga A kind of obstruction of urine.

ମୂତ୍ରୋତ୍ସର୍ଗ—ସଂ. ବି—(୬ଷ୍ଠୀ ତତ୍)—ପ୍ରସ୍ରାବ କରିବା; ମୁତିବା—Mūtrotsarga Emiction; micturition; passing water. (ମୂତ୍ରୋତ୍ସାରଣ—ଅନ୍ୟରୂପ)

ମୂତ୍ରୋଷ୍ଣତା—ସଂ. ବି—ପିତ୍ତଜନିତ ମୂତ୍ରରୋଗଭେଦ (ଶବ୍ଦକୋଷ)—
Mūtroshṇatā A kind of bilious urinary desease.

ମୂତ୍ର୍ୟ—ସଂ. ବିଣ—(ମୂତ୍ର+ଯ)—ମୂତ୍ର ସମ୍ବନ୍ଧୀୟ (ଶବ୍ଦକୋଷ)—
Mūtrya Relating to urine; urinary.

ମୂର (ଇତ୍ୟାଦି)—ଗ୍ରା (ଇତର) ବି—(ସଂ. ମୂଳର ଳ ସ୍ଥାନରେ ର
Mūra (etc) ଉଚ୍ଚାରଣ; ତୁଳ· ହି. ମୂର)—ମୂଳ ଇତ୍ୟାଦି (ଦେଖ)—Mūḻa etc (See)

ମୂର(ରୁ)ତି—ଗ୍ରା. ବି (ପଦ୍ୟ)—ମୂର୍ତ୍ତି (ଦେଖ)–Mūrtti (See)
Mūra(ru)ti [ଉ—ବହୁ ଏ ମୂରତି ନିର୍ମାଣିଲ । ଅଭିମନ୍ୟୁ· ମୂରতি मूरत(ति) ବିଦଗ୍ଧଚିନ୍ତାମଣି । ]

ମୂର(ରୁ)ତି ବ(ମ)ନ୍ତ—ଗ୍ରା.ବିଣ (ସଂ. ମୂର୍ତ୍ତିମାନ୍)—ମୂର୍ତ୍ତିମାନ୍—
Mūra(ru)ti ba(ma)nta मूरतिवंत Corporeal.

ମୂର(ରୁ)ଧନା (ଇତ୍ୟାଦି)—ଗ୍ରା. ବି (ସଂ· ମୂର୍ଦ୍ଧନ)—ମୂର୍ଦ୍ଧନା ଇତ୍ୟାଦି
Mūra(ru)dhanā(etc) (ଦେଖ)—Mūrddhanā etc.(See)
মূরধনা मूरधा

ମୂର(ରୁ)ଧନି—ଗ୍ରା. ବି (ସଂ. ମୂର୍ଦ୍ଧନ୍)—ମୁଣ୍ଡ; ମସ୍ତକ—The
Mūra(ru)dhanī head. [ ଉ—ମୁକୁଟ କୁଣ୍ଡଳ ସହିତେ ମୁଣ୍ଡମାଁ କାଟିଲେ ବିରୂପାକ୍ଷର ମୂରଧନି । ବିଶ୍ୱନାଥ. ବିଚିତ୍ର मुँड, सिर ରାମାୟଣ । ] ଦେ. ବିଣ—୧ । ବଡ଼—1. Big, great. ୨ । ଶ୍ରେଷ୍ଠ; ପ୍ରଧାନ – 2. Chief principal.

ମୂରା (ଇତ୍ୟାଦି)—ଗ୍ରା. (ଇତର) ବି (ଇତର ଲୋକଙ୍କର ଳ ସ୍ଥାନରେ
Mūrā (etc) ର ଉଚ୍ଚାରଣ )—ମୂଳା ଇତ୍ୟାଦି (ଦେଖ)—Mūḻā etc (See)

ମୂରୁଖ—ଗ୍ରା. ବିଣ ଓ ବି (ପଦ୍ୟ)—ମୂର୍ଖ (ଦେଖ)-Mūrkha (See)
Mūrukha [ଉ—ପଶ୍ଚାତେ ଲଭେ ବହୁ ଦୁଃଖ, ଏ ଭାବ ନ ଜାଣେ [ମୂର୍ଖପଣ—ବିଶେଷ] ମୂରୁଖ । ଜଗନ୍ନାଥ. ଭାଗବତ । ]
মূরখ मुरख

ମୂରୁଚ୍ଛା—ଗ୍ରା. ବି (ସଂ. ମୂର୍ଚ୍ଛା)—୧ । ମୂର୍ଚ୍ଛା (ଦେଖ) ୨ । ମୂରୁଚ୍ଛିବା
Mūruchchhā মূর্ছা मूरछा କର୍ମ—2. Giving up.

ମୂରୁଚ୍ଛିତ—ଦେ. ବିଣ (ପଦ୍ୟ)—ମୂର୍ଚ୍ଛିତ (ଦେଖ)—Mūrchchhita
Mūruchhita (See) [ଉ—ବାଣ ତେଜସାତେ ରକ୍ଷପୁର ମୂରୁଚ୍ଛିତ
মূরুছিত मुर्छित ଭଞ୍ଜ. ବୈଦେହୀଶବିଳାସ । ]

ମୂରୁଚ୍ଛିବା—ଦେ. କ୍ରି. (ପଦ୍ୟ)—ମୂରୁଚ୍ଛିବା (ଦେଖ)—Muruchibā
Mūruchhibā (See). [ଉ—ଜୀବନ ମୂରୁଚ୍ଛି ଯିବେ ଜାଣିବା ଅଶ୍ୱତ୍ଥ । ମଧୁସୂଦନ. ଛନ୍ଦମାଳା । ]

ମୂର୍ଖ—ସଂ. ବିଣ (ମୁହ୍ ଧାତୁ=ମୁଗ୍ଧ ହେବା+କର୍ତ୍ତୃ. ଅ; ନିପାତନ)—
Mūrkha ୧ । ମୂଢ଼; ଅଜ୍ଞାନ; ଅବୋଧ—1. Silly; foolish; stupid. ୨ । ବିଦ୍ୟାଶୂନ୍ୟ—2.Illiterate.୩। ଅଜ୍ଞ—3. Ignorant. ୪ । ଗାୟତ୍ରୀରହିତ ( ବ୍ରାହ୍ମଣ )—4. (a Brāhmaṇa) Who has forsaken Gāyatrī. ବି—୧ । ନିର୍ବୋଧ ବ୍ୟକ୍ତି—1. Foolish person;an idiot; a fool. ୨। ବିଦ୍ୟାହୀନ ବ୍ୟକ୍ତି—2. Illiterate person. ୩ । ଅଜ୍ଞ ବ୍ୟକ୍ତି—3. Ignorant person. ୪ । ଗାୟତ୍ରୀରହିତ ବ୍ରାହ୍ମଣ—4. A Brāhmaṇa who does not practise Gāyatrī. ୫ । ମାଷ (ଶବ୍ଦକୋଷ)—5, Phaseolus Radiatus. ୬ । ବନ୍ୟମୁଗ ( ତ୍ରିକାଣ୍ଡକୋଷ )—6. Wild Muga.

ମୂର୍ଖତା(ତ୍ୱ)—ସଂ. ବି (ମୂର୍ଖ+ଭାବ. ତା, ତ୍ୱ)—ଅଜ୍ଞତା—
Mūrkhatā(twa) 1, Ignorance. ୨ । ନିର୍ବୋଧତା—2. Foolishnes; folly; stupidity.

ମୂର୍ଖତା ପ୍ରକାଶ କରିବା—ଦେ. କ୍ରି—ନିଜର ଅଜ୍ଞତା ଦେଖାଇବା—
Mūrkhatā prakāsa karibā To betray one's মূর্খতা প্রকাশ করা मूर्खता प्रकाश करना ignorance or folly.

ମୂର୍ଖପଣ—ଦେ. ବି—ମୂର୍ଖତା; ମୂର୍ଖାମି—Folly; ignorance.
Mūrkhapaṇa মূর্খপনা
मुर्खपना (ମୂର୍ଖପଣିଅ[ଆଁ]—ଅନ୍ୟରୂପ)

ମୂର୍ଖପୁତ୍ର—ସଂ. ବି (କର୍ମଧା)—ବିଦ୍ୟାହୀନ ସନ୍ତାନ—
Mūrkhputra An illiterate son.

ମୂର୍ଖ ମଣ୍ଡଳ(ଳୀ)—ସଂ. ବି (୬ଷ୍ଠୀ ତତ୍)—ମୂର୍ଖମାନଙ୍କର ସଭା—
Mūrkha maṇḍaḻa(ḻī) An assembly of fools,

ମୂର୍ଖାଣ୍ଡି(ନ୍ତି)—ଦେ. ବି—୧ । ମୂର୍ଖତା—1.Ignorance. ୨ । ମୂର୍ଖ
Mūrkhāṇḍi(nti) ବ୍ୟକ୍ତି କରିବା କାମ—2. Act befit-
(ମୂର୍ଖାମି—ବଙ୍ଗାନୁକାରୀ ଆକାର) ting a dunce. ଦେ. ବିଣ—
মূর্খামি मूर्खता ମୂର୍ଖାଣ୍ଡିଆ ( ଦେଖ )—Mūrkhāṇḍiā (See),

ମୂର୍ଖାଣ୍ଡି(ନ୍ତି)ଆ—ଦେ. ବିଣ—୧ । ମୂର୍ଖର ଉପଯୁକ୍ତ (କାର୍ଯ୍ୟ ବା କଥା)
Mūrkhāṇḍi(nti)ā 1, Befitting a fool or idiot.
মূকখু मुर्खतापूर्ण ୨ । ନିର୍ବୁଦ୍ଧିଆ (କାମ)—2. Foolish(act),

ମୂର୍ଖିମା—ସଂ. ବି—(ମୂର୍ଖ+ଭାବାର୍ଥେ ଇମନ୍; ୧ମା. ୧ବ)—ମୂର୍ଖତା
Mūrkhimā (ହି. ଶ. ଶବ୍ଦକୋଷ)—Ignorance; folly; stupidity.

ମୂର୍ଚ୍ଛ୍ (ଧାତୁ)—ସଂ.—ମୋହପ୍ରାପ୍ତ ହେବା—
Mūrchchh (root) To faint.

ମୂର୍ଚ୍ଛନ—ସଂ. ବି.—(ମୂର୍ଚ୍ଛ୍ ଧାତୁ+ଭାବ. ଅନ)—୧ । ଚୈତନ୍ୟଲୋପ;
Mūrchchhana ଚେତନାର ନାଶ—1. Swooning;fainting; syncope. ୨ । (ବୈଦ୍ୟକ) ଔଷଧର ସଂସ୍କାରବିଶେଷ; ନିଆଁ ଉପରେ ବସିଥିବା ସମୟରେ ତୈଳାଦିରେ ରସାଦି ଯୋଗକରଣ; ପ୍ରକ୍ଷେପଣ; ଔଷଧାଦିର ଶୋଧନ—2. Purification of a medicinal preparation by pouring juice into it while it is on the fire. ୩ । (ବୈଦ୍ୟକ) ଗନ୍ଧକର ସହିତ ପାରଦର ଭସ୍ମୀକରଣ—3. Calcining mercury with sulphur. ୪ । ବଘାରିବା; ଛୁଙ୍କ ଦେବା—4. Flavouring curry with boiling oil

and spices. ୫ । ମିଶ୍ରଣ—5. Mixing. ୬ । ସାକ୍ଷାତ୍କରଣ—6. Interviewing. ୭ । ପ୍ରତିଫଳନ—7. Reflection. ୮ । କୌଣସି ବ୍ୟକ୍ତିର ମୂର୍ଚ୍ଛା ଅଣାଯିବା (ହି. ଶ)—8. Causing swoon. ୯ । ମୂର୍ଚ୍ଛିତ କରିବା ମନ୍ତ୍ର ଯନ୍ତ୍ର—9. Charm for causing swoon. ୧୦ । କାମଦେବଙ୍କ ବାଣବିଶେଷ (ହି. ଶ)—10. Name of one of the arrows of god Cupid.

ମୂର୍ଚ୍ଛନା—ସ. ବି—(ମୂର୍ଚ୍ଛ୍ ଧାତୁ+ଅନ+ଆ)—୧ । ସଙ୍ଗୀତରେ Mūrchchhanā ସପ୍ତସ୍ୱରର ଆରୋହ ଅବରୋହ ବିଶେଷ—ସ୍ୱରଗ୍ରାମ (ସା, ରେ, ଗା, ମା, ପା, ଧା, ନି) ର ପ୍ରତ୍ୟେକ ସ୍ୱରରୁ ତାର ଉଚ୍ଚ ବା ଖାଦ ଅଷ୍ଟମ ପର୍ଯ୍ୟନ୍ତ ସମସ୍ତ ସ୍ୱରର ଆରୋହଣ ଓ ଅବରୋହଣ [ଦ୍ର—"ସଙ୍ଗୀତ ଦାମୋଦର" ରେ ୩ ସ୍ୱରଗ୍ରାମର ମୂର୍ଚ୍ଛନା ୨୧ ଟି, ଅର୍ଥାତ୍ ପ୍ରତ୍ୟେକ ଗ୍ରାମର ୭ଟି ମୂର୍ଚ୍ଛନା । ମତାନ୍ତରରେ ସମସ୍ତ ମୂର୍ଚ୍ଛନାର ସଂଖ୍ୟା ୧୮୦ ।] 1. Modulations of voice while ascending or descending the scales of the gamut; duly regulated rise and fall of tone in singing. [ଉ—ପୋଛି ପଣତରେ ବୀଣା, ଗାଅନ୍ତେ ପୂର୍ଣ୍ଣ ମୂର୍ଚ୍ଛନା ପାସୋରିବ ବେଗେ ତରୁଣୀ । ରାଧାନାଥ—ମେଘଦୂତ ।] ୨ । (ଭରତମୁନିଙ୍କ ମତରେ) ଗାନ ବା ବାଦନକାଳରେ କଣ୍ଠର ବା ହସ୍ତର କମ୍ପନ—2. Trembling of the voice and the hands during singing and music. ୩ । (ହନୁମାନଙ୍କ ମତରେ) 'ସା' ଠାରୁ ରି, ଗା, ମା ଆଦି ସ୍ୱର ବୃଦ୍ଧି ସମୟରେ ଯେଉଁଠାରେ ବିଶ୍ରାମ ଘଟେ—3 A semi-tone between two tones of the gamut. ୪ । ମୂର୍ଚ୍ଛନ (ଦେଖ)—4. Mūrchchhana (See)

ମୂର୍ଚ୍ଛା—ସ. ବି—(ମୂର୍ଚ୍ଛ୍ ଧାତୁ+ଭାବ. ଅ+ଆ)—୧ । ଅଚୈତନ୍ୟ; Mūrchchhā ମୋହ; ଚୈତନ୍ୟଲୋପ ରୋଗ—1. Fainting fit; syncope; swoon; hysteria. [ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ବାୟୁରୋଗ । ଏଥିରେ ରୋଗୀ ସୁଖଦୁଃଖାଦିର ଅନୁଭବଶକ୍ତିରହିତ ହୋଇ କାଷ୍ଠାଦି ପରି ଅଚେତନ ଅବସ୍ଥାରେ ଭୂମିରେ ପଡ଼ି ଯାଏ ।] ୨ । ବିସ୍ତାର; ବ୍ୟାପ୍ତି—2. Extension.—୩ । ବୃଦ୍ଧି—3. Increase. ୪ । ଔଷଧାଦିର ମୂର୍ଚ୍ଛନା—4. Purification of medicinal oil by adding certain juices over fire. ୫ । ପ୍ରତିଫଳନ—5. Reflection. ୬ । (ସ୍ୱରଗ୍ରାମର) ମୂର୍ଚ୍ଛନା ୧।୨।୩ (ଦେଖ)—6. Mūrchchhanā 1, 2, 3 (See)

ମୂର୍ଚ୍ଛାଗତ—ସ. ବିଣ. ପୁଂ—(୨ୟା ତତ୍)—ମୂର୍ଚ୍ଛିତ; ମୋହପ୍ରାପ୍ତ—Mūrchchhāgata Fainted; fallen into a swoon. (ମୂର୍ଚ୍ଛାଗତା—ସ୍ତ୍ରୀ)

ମୂର୍ଚ୍ଛାପନ୍ନ—ସ. ବିଣ. ପୁଂ—(୨ୟା ତତ୍)—ମୂର୍ଚ୍ଛିତ—Fainted. Mūrchchhāpanna (ମୂର୍ଚ୍ଛାପନ୍ନା—ସ୍ତ୍ରୀ)

ମୂର୍ଚ୍ଛା ପାକ—ସ. ବି (ବୈଦ୍ୟକ)—ଉଦ୍ଧରଣୀ ତେଲ ପାକ ହେବା Mūrchchhā pāka ସମୟରେ ସେଥିରେ ରସପ୍ରୟୋଗ—Infusion of some juice into oil when it is over fire. [ଦ୍ର—ଏହା ଦୁଇ ପ୍ରକାରର, ସୋରିଷ ତେଲର ମୂର୍ଚ୍ଛାପାକ, ଘିଅ ତେଲର ମୂର୍ଚ୍ଛାପାକ ]

ମୂର୍ଚ୍ଛା ବାୟୁ—ସଂ. ବି—ମୃଗୀ ରୋଗ; ବାୟୁଜନିତ ମୂର୍ଚ୍ଛା; ବାତ ମାରିବା; Mūrchchhā bāyu ଅଧାର ଛାଟ ମାରିବା—Hysteria; epilepsy.

ମୂର୍ଚ୍ଛା ଭଙ୍ଗ—ସଂ. ବି—(୬ଷ୍ଠୀ ତତ୍)—୧ । ମୂର୍ଚ୍ଛାର ଅବସାନ; ମୂର୍ଚ୍ଛା Mūrchchhā bhanga ପରେ ସଂଜ୍ଞାଲାଭ—Recovery of the senses after the swoon, regaining of senses after fainting.

ମୂର୍ଚ୍ଛା ଯିବା—ଦେ. କ୍ରି—ମୂର୍ଚ୍ଛିତ ହେବା—To faint; to swoon Mūrchchhā jibā away; to fall into a swoon. (ମୂର୍ଚ୍ଛା ହେବା—ଅନ୍ୟରୂପ)
ମୂର୍ଛା ଯାଓୟା; ମୂର୍ଛାହଓୟା **मूच्छा जाना**

ମୂର୍ଚ୍ଛାଳ(ଳୁ)—ସଂ. ବିଣ—(ମୂର୍ଚ୍ଛା+ଲ+ଆଳୁ)—ମୂର୍ଚ୍ଛିତ (୧) (ଦେଖ) Mūrchchhāla(lu) ମୂର୍ଚ୍ଛିତ 1. Mūrchchhita 1 (See) **मूच्छित मूच्छालु** ୨ । ମୂର୍ଚ୍ଛାରୋଗଗ୍ରସ୍ତ—2. Epileptic.

ମୂର୍ଚ୍ଛିତ—ସଂ. ବିଣ. ପୁଂ—(ମୂର୍ଚ୍ଛା+ସଂଜ୍ଞାତାର୍ଥେ ଇତ; କିମ୍ବା ମୂର୍ଚ୍ଛ୍ ଧାତୁ Mūrchchhita +କର୍ମ. ତ)—୧ । ମୂର୍ଚ୍ଛାପ୍ରାପ୍ତ; ବେହୋସ (ମୂର୍ଚ୍ଛିତା—ସ୍ତ୍ରୀ) ହୋଇଥିବା—1. Fainted. ୨ । ବର୍ଦ୍ଧିତ, ପ୍ରବୃଦ୍ଧ—2. Increased. ୩ । ବିସ୍ତୃତ; ବ୍ୟାପ୍ତ—3. Extended; spread. [ଉ—ମଦବୃନ୍ଦିର ମଧୁର ହୃଦ, ମୂର୍ଚ୍ଛିତ ମନୋହରକର ଅମୋଦ—ଉପେନ୍ଦ୍ରଭଞ୍ଜ, କଶୋଗ୍ର ଛାନ୍ଦ, 'ମ' ଗୀତ ।] ୪ । (ସଙ୍ଗୀତ) ମୂର୍ଚ୍ଛନାପ୍ରାପ୍ତ—4. Modulated. ୫ । (ବୈଦ୍ୟକ) ମୂର୍ଚ୍ଛନାପ୍ରାପ୍ତ—5. Mixed with juice etc (said of medicinal oils)

ମୂର୍ଚ୍ଛିବା—ଦେ. କ୍ରି—(ସଂ. ମୂର୍ଚ୍ଛ୍ ଧାତୁ—ମୁରୁଛିବା (ଦେଖ) Mūrchchhibā ତ୍ୟାଗ କରା Muruchhibā (See) **त्यागना तेजना**

ମୂର୍ତ୍ତ—ସଂ. ବିଣ—(ମୂର୍ଚ୍ଛ୍ ଧାତୁ+କର୍ତ୍ତୃ. ତ; ନିପାତନ)—୧ । ମୂର୍ତ୍ତିମାନ୍; Mūrtta ସାକାର—1. Having shape. ୨ । ଯେ ରୂପ [ମୂର୍ତ୍ତିତା(ତ୍ୱ)—ବିଶେଷ୍ୟ] ଧରି ଥାଏ; ରୂପଧାରୀ—2. Incarnate; embodied. ୩ । ମୂର୍ଚ୍ଛିତ—3. Fainted. ୪ । କଠିନ—4. Solid. ୫ । ବାସ୍ତବ—5 Material; real. ବି—୧ । (ନ୍ୟାୟ ଶାସ୍ତ୍ର—କ୍ଷିତି, ଅପ୍, ତେଜ, ବାୟୁ ଓ ମନ—1 (Nyāya Philosophy) The earth, the water, the fire, the wind, and the human mind. [ଦ୍ର—ଏମାନଙ୍କ ଗୁଣ, ରୂପ, ରସ, ଗନ୍ଧ, ସ୍ପର୍ଶ, ପରତ୍ୱ, ଅପରତ୍ୱ, ଗୁରୁତ୍ୱ, ସ୍ନେହ ଓ ବେଗ—ହି. ଶ ।] ୨ । କାନନ; ବନ—2. Forest.

ମୂର୍ତ୍ତି—ସଂ. ବି—(ମୂର୍ଚ୍ଛ୍ ଧାତୁ+କର୍ତ୍ତ୍ତି. ତି; ନିପାତନ)—୧ । ଆକାର; Mūrtti ଅବୟବ—1. Form, shape. ୨ । ରୂପ—2. Figure. ୩ । ପିତୁଳା; ଛବି; ସ୍ୱରୂପ; ପ୍ରତିମା—3. Image, statue. ୪ । କାୟା—4. Body. ୫ । ପ୍ରକାଶିତ କାୟା ବା ଶରୀର—5. Embodiment. ୬ । ଦେବତାଙ୍କ ଅବତାର—6. Incarnation of a deity. ୭ । ଦେବପ୍ରତିମା—7. Idol. ୮ । ଅବୟବ; ଅଙ୍ଗ—8. Limbs. ୯ । (+ଗ୍ରାବ. ତି) କାଠିନ୍ୟ—9. Solidity; hardness. ୧୦ । ଦ୍ରବ୍ୟ; ପଦାର୍ଥ—10. Material thing. ଦେ. ବି—୧ । ମୂର୍ତ୍ତି (ମାନ୍ୟାର୍ଥକ) ବୈଷ୍ଣବ ଓ ବ୍ରାହ୍ମଣମାନଙ୍କ ସଂଖ୍ୟା ବା ଜଣ—1. मूरत; मूर्त्ति Number of Brāhmaṇas or Baishṇabas (ଯଥା—ଅଙ୍କ ମୋ କୁଣ୍ଡାଇରେ ୪ ମୂର୍ତ୍ତି ବ୍ରାହ୍ମଣ ଭୋଜନ କଲେ ।) ୨ । ବସ୍ତ୍ରର ବା ଶାଢ଼ୀର ଖଣ୍ଡ—2. Piece of cloth. (ଯଥା—ମୁଁ ବାବୁଙ୍କ ଘରକୁ ଛଅ ମୂର୍ତ୍ତି ଶାଢ଼ୀ ବେଭାର ପଠାଇଲି ।) [ଦ୍ର—ଏହାର ଅପଭ୍ରଂଶ ମୁରତି, ମୁରୁତି, ମୂର୍ତ୍ତି ।]

ମୂର୍ତ୍ତିକାର—ସଂ. ବି. ପୁଂ (ମୂର୍ତ୍ତି+କୃ ଧାତୁ+କର୍ତ୍ତ୍ତି. ଅ)—ମୂର୍ତ୍ତି Mūrttikāra ନିର୍ମାଣ କରିବା ବ୍ୟକ୍ତି—Sculptor.

ମୂର୍ତ୍ତି(ର୍ତ୍ତି)କିଆ(ୟା)—ଦେ. ବି—ମୁରୁତିକିଆ (ଦେଖ)—Mūrtti(rti)kiā(yā) Murutikiā (See) अशौच ବିଶ—ଏକମୂର୍ତ୍ତିବିଶିଷ୍ଟ—Having one piece. मरणाशौच; सूतक

ମୂର୍ତ୍ତି ଚିତ୍ର—ସଂ. ବି (୬ଷ୍ଠୀ ତତ୍)—କୌଣସି ବସ୍ତୁର ବା ବ୍ୟକ୍ତିର Mūrtti chitra ଅବୟବ ଅନୁରୂପ ଚିତ୍ର—An image or likeness of a person or thing.

ମୂର୍ତ୍ତି ଚିତ୍ରଣ—ସଂ. ବି (୬ଷ୍ଠୀ ତତ୍)—ରୂପ ବା ଚିତ୍ର ଅଙ୍କିବା—Mūrtti chitraṇa Drawing of a figure.

ମୂର୍ତ୍ତି ଧରିବା—ଦେ. କ୍ରି (ସଂ. ମୂର୍ତ୍ତି+ଧୃ ଧାତୁ)—କୌଣସି ଗୋଟିଏ Mūrtti dharibā ରୂପ ଧରିବା; ଗୋଟିଏ ରୂପରେ ଦେଖାଯିବା (ମୂର୍ତ୍ତି ଧାରଣ କରିବା—ଅନ୍ୟରୂପ) —To take or assume मूर्त्ति धरना; मूर्त्ति धारण करना a shape or form. मूरती लेना

ମୂର୍ତ୍ତି ଧାରଣ—ସଂ. ବି (୬ଷ୍ଠୀ ତତ୍)—ଗୋଟିଏ ରୂପ ଗ୍ରହଣ କରିବା; Mūrtti dhāraṇa ରୂପ ଧରିବା—Assumption of a shape; embodiment; incarnation.

ମୂର୍ତ୍ତିଧାରୀ—ସଂ. ବିଣ. ପୁଂ (ମୂର୍ତ୍ତି+ଧୃ ଧାତୁ+କର୍ତ୍ତ୍ତି. ଇନ୍; ୧ମା. Mūrttidhārī ୧ବ)—ଯେ ରୂପ ଧରିଥାଏ—Assuming (ମୂର୍ତ୍ତିଧର—ଅନ୍ୟରୂପ) a concrete shape or form; (ମୂର୍ତ୍ତି ଧାରିଣୀ—ସ୍ତ୍ରୀ) incarnate. [ତୁ—ଧାର୍ମିକ ବ୍ୟକ୍ତି ମୂର୍ତ୍ତିଧାରୀ ଧର୍ମରୂପେ ପୃଥ୍ୱୀରେ ଶୋଭା ପାଏ ।]

ମୂର୍ତ୍ତିପ—ସଂ. ବି. ପୁଂ (ମୂର୍ତ୍ତି+ପା ଧାତୁ+କର୍ତ୍ତ୍ତି. ଅ)—ପୂଜାହାରୀ; Mūrttipa ଦେବମୂର୍ତ୍ତିପୂଜକ—Worshipper of an (ମୂର୍ତ୍ତିପା—ସ୍ତ୍ରୀ) idol.

ମୂର୍ତ୍ତି ପରିଗ୍ରହ—ସଂ. ବି (୬ଷ୍ଠୀ ତତ୍)—ରୂପ ଧରିବା; ଦେହଧାରଣ Mūrtti parigraha —Assumption of a shape.

ମୂର୍ତ୍ତି ପୂଜକ—ସଂ. ବି ଓ ବିଣ. ପୁଂ (ଉପପଦ)—୧ । ଯେ ମୂର୍ତ୍ତି Mūrtti pūjaka ପୂଜା କରେ—1. Worshipping an image. ୨ । ପୌତ୍ତଳିକ; ପ୍ରତିମାପୂଜକ—2. Image-worshipper; idol-worshipper.

ମୂର୍ତ୍ତି ପୂଜା—ସଂ. ବି (୬ଷ୍ଠୀ ତତ୍)—ପ୍ରତିମା ପୂଜା; ନିରାକାର ଈଶ୍ୱରଙ୍କ Mūrtti pūjā ସାକାର ପ୍ରତିମାରୂପେ ପୂଜା କରିବା; ସାକାର ଉପାସନା—Idol-worship

ମୂର୍ତ୍ତି ପ୍ରକାଶ—ସଂ. ବି (୬ଷ୍ଠୀ ତତ୍)—ରୂପ ଦେଖାଇବା—Mūrtti prakāśa Appearing in some form or shape

ମୂର୍ତ୍ତି ବିଦ୍ୟା—ସଂ. ବି—୧ । ପ୍ରତିମା ଆଦି ଗଢ଼ିବାର କଳା—Mūrtti bidyā Sculpture. ୨ । ଚିତ୍ରାଙ୍କନ ବିଦ୍ୟା—(ମୂର୍ତ୍ତି ବିଜ୍ଞାନ, ମୂର୍ତ୍ତି ଶାସ୍ତ୍ର—ଅନ୍ୟରୂପ) 2. The art of drawing.

ମୂର୍ତ୍ତି ମନ୍ତ—ଦେ. ବିଣ (ସଂ. ମୂର୍ତ୍ତିମତ୍)—ମୂର୍ତ୍ତିମାନ୍ (ଦେଖ)—Mūrtti manta Mūrttimān (See) (ମୂର୍ତ୍ତିବନ୍ତ—ଗ୍ରାମ୍ୟରୂପ) मूर्त्तिमन्त मूर्त्तिमंत

ମୂର୍ତ୍ତିମାନ୍—ସଂ. ବିଣ. ପୁଂ (ମୂର୍ତ୍ତି+ମତ୍; ଅସ୍ତ୍ୟର୍ଥେ=ମୂର୍ତ୍ତିମତ୍ Murttimān ୧ମା. ୧ବ)—୧ । ସାକାର; ରୂପବିଶିଷ୍ଟ—(ମୂର୍ତ୍ତିମତୀ—ସ୍ତ୍ରୀ) 1. Having a visible shape or form. ୨ । ବାସ୍ତବ—2. Material, concrete. ୩ । ଶରୀରଧାରୀ — 3. Corporeal; embodied. ୪ । ସ୍ୱଶରୀରରେ ଆବିର୍ଭୂତ—4. Appearing in one's own or real form. ୫ । କଠିନ; ଘନ—5. Hard; solid. ସଂ. ବି—ଶରୀର—Body.

ମୂର୍ତ୍ତିଯୁକ୍ତ—ସଂ. ବିଣ. ପୁଂ (୩ୟା ତତ୍)—ଯାହାର ରୂପ ଅଛି—Mūrttijukta Having a shape or form; possessed (ମୂର୍ତ୍ତିବିଶିଷ୍ଟ—ଅନ୍ୟରୂପ) of a shape.

ମୂର୍ତ୍ତିହୀନ—ସଂ. ବିଣ (୩ୟା ତତ୍)—୧ । ନିରାକାର—1. Murttihīna Formless. ୨ । ଅଶରୀରୀ—2. Incorporeal, shapeless. ୩ । (ଆଧୁନିକ ଜଡ଼ ବିଜ୍ଞାନ) କୌଣସି ବିଶିଷ୍ଟ ଅବୟବ ଶୂନ୍ୟ—3. Amorphous; having no fixed form (in crystallography);

ମୂର୍ତ୍ତ୍ୟନ୍ତର—ସଂ. ବି (ଅନ୍ୟ+ମୂର୍ତ୍ତି; ଉତ୍ପୁରୁଷ)—୧ । ଅନ୍ୟ ମୂର୍ତ୍ତି; Mūrttyantara ଆଉ ଗୋଟିଏ ରୂପ 1. Another form or shape. ୨ । ପୃଥକ୍ ରୂପ—2. A different shape or form.

ମୂର୍ତ୍ତ୍ୟନ୍ତର ଗ୍ରହଣ—ସଂ. ବି (ଷଷ୍ଠୀ.ତତ୍)—ଅନ୍ୟରୂପ ଧାରଣ—
Mūrttyantara grahaṇa The assuming of another
(ମୂର୍ତ୍ତ୍ୟନ୍ତର ଧାରଣ, ମୂର୍ତ୍ତ୍ୟନ୍ତର ପରଗ୍ରହ—ଅନ୍ୟରୂପ) shape.
ମୂର୍ତ୍ତ୍ୟନ୍ତରଗ୍ରାହୀ } ବିଣ. ପୁଂ { ମୂର୍ତ୍ତ୍ୟନ୍ତରଗ୍ରାହିଣୀ } ବିଣ.ସ୍ତ୍ରୀ
ମୂର୍ତ୍ତ୍ୟନ୍ତରଧାରୀ | ମୂର୍ତ୍ତ୍ୟନ୍ତରଧାରିଣୀ
ମୂର୍ତ୍ତ୍ୟନ୍ତର ପରଗ୍ରାହୀ | ମୂର୍ତ୍ତ୍ୟନ୍ତରପରଗ୍ରାହିଣୀ

ମୂର୍ଦ୍ଧକ—ସଂ. ବି (ମୂର୍ଦ୍ଧନ୍+ଅଭିଷିକ୍ତ ଅର୍ଥରେ କ; ସଂଜ୍ଞା; ଏହି ବର୍ଣ୍ଣର
Mūrddhaka ବ୍ୟକ୍ତିମାନେ ରାଜାରୂପେ ମୂର୍ଦ୍ଧାଭିଷିକ୍ତ ହୁଅନ୍ତି)—
ହିନ୍ଦୁମାନଙ୍କ ମଧ୍ୟରେ ଦ୍ୱିତୀୟ ବା କ୍ଷତ୍ରିୟ ବର୍ଣ୍ଣ—
The hereditary caste of warriors amongst the Hindus; the Kshatriya caste.

ମୂର୍ଦ୍ଧକର୍ଣ୍ଣୀ—ସଂ. ବି (ମୂର୍ଦ୍ଧନ୍=ମସ୍ତକ+କର୍ଣ୍ଣ+ଇନ୍, ୧ମା. ୧ବ)—
Mūrddhakarṇṇī ୧ । ଆତପତ୍ର; ଛତା—1. Umbrella; parasol. ୨ । ଖରା ବର୍ଷାରୁ ରକ୍ଷା ପାଇବା ପାଇଁ ଲୋକଙ୍କ ମୁଣ୍ଡରେ ଘୋଡ଼ାଇବା ଟୋପର, ଝାମ୍ପି—
2 An inverted basket or wicker-work hat used to protect the head from rain and sun.

ମୂର୍ଦ୍ଧକର୍ପରୀ—ସଂ. ବି (ମୂର୍ଦ୍ଧନ୍=ମସ୍ତକ+କର୍ପର=ବ୍ୟଞ୍ଜନ ବିଶେଷ+
Mūrddha karparī ସ୍ତ୍ରୀ. ଈ)—ମୂର୍ଦ୍ଧକର୍ଣ୍ଣୀ (ଦେଖ)—
Mūrddhakarṇṇī (See)

ମୂର୍ଦ୍ଧଖୋଳ—ସଂ. ବି ( ମୂର୍ଦ୍ଧନ୍=ମସ୍ତକ+ଖୋଳ=ଟୋପର )—
Mūrddha khoḷa ମୂର୍ଦ୍ଧକର୍ଣ୍ଣୀ (ଦେଖ)—Mūrddha karṇṇī (See)

ମୂର୍ଦ୍ଧଗତ—ସଂ. ବିଣ (୨ୟା ତତ୍; ମୂର୍ଦ୍ଧନ୍+ଗତ)—ମସ୍ତିଷ୍କ ମଧ୍ୟକୁ
Mūrddha gata ଯାଇଥିବା; ମସ୍ତିଷ୍କସ୍ଥ—Gone inside the brain or head.

ମୂର୍ଦ୍ଧଜ—ସଂ. ବିଣ (ମୂର୍ଦ୍ଧନ୍+ଜନ୍ ଧାତୁ+କର୍ତ୍ତୃ. ଅ)—ମସ୍ତକରେ
Mūrddhaja ଜାତ—Growing on the head.
ସଂ. ବି—କେଶ; ମୁଣ୍ଡବାଳ—The hair of the head.

ମୂର୍ଦ୍ଧଜ୍ୟୋତିଃ—ସଂ. ବି—ବ୍ରହ୍ମରନ୍ଧ୍ର ( ବିଶ୍ୱକୋଷ )—The aper-
Mūrddha jyotiḥ ture supposed to be at the crown of the head, through which the soul takes its flight at death.

ମୂର୍ଦ୍ଧତଃ—ସଂ. ଅ (ମୂର୍ଦ୍ଧନ୍+୭ମୀ ବା ୫ମୀରେ ତସ୍)—୧ । ମୁଣ୍ଡରେ—
Mūrddhataḥ 1. In the head. ୨ । ମୁଣ୍ଡରୁ—2 From the head.

ମୂର୍ଦ୍ଧ(ର୍ଦ୍ଧୁ)ନା(ନି)—ଦେ. ବି ( ସ. ମୂର୍ଦ୍ଧନ୍ )—୧ । ମୁଣ୍ଡ; ମସ୍ତକ—
Mūrddha(rddhu)nā(ni) 1. The head. [ଉ—କଳିଙ୍ଗ
ମାଥା ମୁଣ୍ଡ ଅସ୍ତୁ ମୋ ଏଢ଼ା ସେ ଦେଶକୁ କିପାଁ ନ ଯାଇ ମୂର୍ଦ୍ଧନା
ଫାଟ—ପ୍ରତାପ. ଶଶିସେଣା । ] ୨ । ପଦାର୍ଥର ମସ୍ତକ ବା
ଅଗ୍ର—2. The head or top of a tall thing ( i. e. mountain,temple ). [ଉ—ସ୍ତମ୍ଭ କର
ଧର କାମିନୀ, ଗୁଲନ୍ତି ବେନି ଗୋ, ଚନ୍ଦ୍ରକୂଟ ଗିରି ମୂର୍ଦ୍ଧନା—
ବିଶ୍ୱନାଥ. ବିଚିତ୍ର ରାମାୟଣ । ]

ମୂର୍ଦ୍ଧ(ର୍ଦ୍ଧୁ)ନା(ନି)ପାତ—ଦେ. ବି ( ସ. ମୂର୍ଦ୍ଧା[ର୍ଦ୍ଧ୍ନ]ପାତ )—୧ । ମୁଣ୍ଡ-
Mūrddha(rddhu)nā(ni)pāta ପାତ; ମୁଣ୍ଡଚ୍ଛେଦନ—
মুণ্ডপাত 1. Beheading; decapitation. ୨ । ମୃତ୍ୟୁ—
मुण्डपात ( ମୂର୍ଦ୍ଧନାପାତନ—ଅନ୍ୟରୂପ ) 2. Death.

ମୂର୍ଦ୍ଧ(ର୍ଦ୍ଧୁ)ନା ଫାଟିବା—ଦେ, ବି—ମୂର୍ଦ୍ଧନାପାତ ( ଦେଖ )—
Mūrddha(rddhu)nā phāṭibā Mūrddhanāpāta
মাথা ফাটা मुण्ड फटना (See)
( ମୂର୍ଦ୍ଧନା ଫାଟିଯିବା—ଅନ୍ୟରୂପ )

ମୂର୍ଦ୍ଧ(ର୍ଦ୍ଧୁ)ନାଭିଷେକ—ଦେ. ବି ( ସ. ମୂର୍ଦ୍ଧାଭିଷେକ )—ମୂର୍ଦ୍ଧାଭିଷେକ
Mūrddha(rddhu)nābhisheka (ଦେଖ)—Mūrddhā-
অভিষেক मूर्धाभिषेक bhisheka ( See )

ମୂର୍ଦ୍ଧ(ର୍ଦ୍ଧୁ)ନାଭିଷେକୀ—ଦେ. ବିଣ ( ସ. ମୂର୍ଦ୍ଧାଭିଷିକ୍ତ )—ମୂର୍ଦ୍ଧାଭି-
Mūrddha(rddhu)nābhishekī ଷିକ୍ତ (ଦେଖ)-Mūrddhā-
অভিষিক্ত मूर्धाभिषेकी bhishikta ( See )

ମୂର୍ଦ୍ଧ(ର୍ଦ୍ଧୁ)ନି—ଦେ. ଅ ( ସ. ମୂର୍ଦ୍ଧନ୍ ଶବ୍ଦର ୭ମୀ ଏକବଚନ )—
Mūrddha(rddhu)ni ମସ୍ତକରେ—On the head. [ଉ—
মাথায় मुंडमे ସ୍ୱର୍ଲୋକକଳ୍ପିତ ମୂର୍ଦ୍ଧନି, ବିଶ୍ୱଦେହେ ବା
ବିଶ୍ୱମାନ—ଜଗନ୍ନାଥ. ଭାଗବତ । ] ଦେ. ବିଣ ( ସଂ.
ମୂର୍ଦ୍ଧନ=ମସ୍ତକ, ଯେ ମସ୍ତକର ଯୋଗ୍ୟ)—୧ । ଶ୍ରେଷ୍ଠ—
1. Superior to all ୨ । ସର୍ବୋତ୍ତମ—2. Best.
[ ଉ—କୃଷ୍ଣ ମହିମା ଯହିଁ ଶୁଣି, ସେ ସବୁ ବାକ୍ୟରେ
ମୂର୍ଦ୍ଧନି—ଭୂପତି. ପ୍ରେମପଞ୍ଚାମୃତ । ] ଦେ. ବି ( ସଂ.
মোড়ল, কর্তা ମୂର୍ଦ୍ଧନ୍ୟ )—୧ । ଜାତିର ବା ସମାଜର ପ୍ରଧାନ
मुखिआ ବ୍ୟକ୍ତି; ଜାତିର ସର୍ଦ୍ଦାର ବା ମୁଖିଆ ବ୍ୟକ୍ତି; ପରି-
[ମୂର୍ଦ୍ଧ(ର୍ଦ୍ଧୁ)ନିଅ(ଆଁ)—ଅନ୍ୟରୂପ] ମାଣିକ—1. The head man of a caste. ୨ । ଘରର କର୍ତ୍ତା—2. The head of a household; the kartā of a family. ୩ । ମସ୍ତକ—3. Head. ପ୍ରାଦେ. ( ସିଂହଭୂମ )ବି—ଗୃହଘରର ମଥାନ; ଚୂଳିଆ—The top of a thatched house.

ମୂର୍ଦ୍ଧ(ର୍ଦ୍ଧୁ)ନିଆ(ୟା)—ଦେ. ବି ଓ ବିଣ—ମୂର୍ଦ୍ଧ(ର୍ଦ୍ଧୁ)ନି ( ଦେଖ )
Mūrddha(rddhu)niā(yā) Mūrddha(rddhu)ni(See)

ମୂର୍ଦ୍ଧନ୍ୟ—ସଂ. ବିଣ ( ମୂର୍ଦ୍ଧନ୍+ଜାତାର୍ଥେ. ଯ )—୧ । ମୂର୍ଦ୍ଧାରୁ ବା
Mūrddhanya ମୁଣ୍ଡ ଭିତରୁ ଉଚ୍ଚାରିତ (ବର୍ଣ୍ଣ)-1. Pronounced from within the head. ୨ । ମୂର୍ଦ୍ଧଜ;
ମସ୍ତକୋତ୍ପନ୍ନ—2. Produced from the head.
ସଂ. ବି—୧ । ଜାତି ବା ସମାଜର ପ୍ରଧାନ ବ୍ୟକ୍ତି—
1. The head man of a caste or guild.
୨ । ମୂର୍ଦ୍ଧନ୍ୟ ବର୍ଣ୍ଣ ( ଦେଖ )—2. Mūrddhanya barṇṇa ( See ) ଦେ. କ୍ରି. ବିଣ—ପ୍ରଥମରେ—
In the first place. [ ଉ—ବ୍ରଜ ବଧୂଙ୍କର ସମୁଦାୟ ମହାଧନ୍ୟ ମୂର୍ଦ୍ଧନ୍ୟରେ ଗଣାଯିବ—କବିସୂର୍ଯ୍ୟ. ସଙ୍ଗୀତ । ]

ମୂର୍ଦ୍ଧନ୍ୟ 'ଣ'—ସଂ. ବି—'ଟ' ବର୍ଗର ପଞ୍ଚମ ଅନୁନାସିକ ବର୍ଣ୍ଣ—The Mūrddhanya 'ṇa' cerebral sound representing 'ṇa'. [ଦ୍ର—ବଙ୍ଗଳା ଓ ହିନ୍ଦୀରେ ମୂର୍ଦ୍ଧନ୍ୟ 'ଣ' ଦନ୍ତ୍ୟ 'ନ' ପରି ଉଚ୍ଚାରିତ ହୁଏ; କିନ୍ତୁ ଓଡ଼ିଆରେ ଏ ଦୁଇ ବର୍ଣ୍ଣର ଉଚ୍ଚାରଣ ପୃଥକ୍ ଅଟେ ।]

ମୂର୍ଦ୍ଧନ୍ୟ ବର୍ଣ୍ଣ—ସଂ. ବି. ( ବ୍ୟାକରଣ )—ମୂର୍ଦ୍ଧାରୁ ଉଚ୍ଚାରିତ ବର୍ଣ୍ଣ, Mūrdhanya barṇṇa ଯଥା—ଋ, ୠ, ଟ, ଠ, ଡ, ଢ, ଣ, ର, ଷ—(Sanscrit grammar) Cerebral letters; R, T,D, cerebral N, cerebral S.

ମୂର୍ଦ୍ଧନ୍ୟ 'ଷ'—ସଂ. ବି—ମୂର୍ଦ୍ଧାରୁ ଉଚ୍ଚାରିତ 'ଷ'—The cerebral Mūrddhanya 'sha' sound representing 'sha'.

ମୂର୍ଦ୍ଧପୁଷ୍ପ—ସଂ. ବି. (ବହୁବ୍ରୀହି; ମୂର୍ଦ୍ଧନ୍=ମସ୍ତକ+ପୁଷ୍ପ; ଏ ଗଛର Mūrddha pushpa ଡାଳ ଅଗରେ ଫୁଲ ଫୁଟେ)—ଶିରୀଷ ବୃକ୍ଷ—A tree bearing very tender and graceful flower; Mimosa Sirish.

ମୂର୍ଦ୍ଧବେଷ୍ଟନ(ନୀ)—ସଂ. ବି. (ମୂର୍ଦ୍ଧନ୍+ବେଷ୍ଟନ, ନୀ)—୧। ଉଷ୍ଣୀଷ; Mūrddha beshṭana(nī) ପାଗ; ଠେକା—1. Turban, ୨। ଫିତା—2. Fillate; tape. ୩। ଟୋପି—3. Cap. ୪। ମୁକୁଟ—4. Diadem; crown; coronet.

ମୂର୍ଦ୍ଧରସ—ସଂ. ବି. ( ମୂର୍ଦ୍ଧନ୍=ଉପର ଭାଗ+ରସ )—୧। ଭକ୍ତ Mūrddha rasa ଫେନ; ପେଜ—1. The scum of boiled rice. ୨। କେଶ—2. The hair of the head.

ମୂର୍ଦ୍ଧା—ସଂ. ବି. (ମୁର୍ଛ୍ ଧାତୁ=ବନ୍ଧନ କରିବା+ଅଧି. ଅନ, ନିପାତନ; Mūrddhā ଯହିଁରେ ବନ୍ଧନ କରାଯାଏ, ମୂର୍ଦ୍ଧନ୍ ଶବ୍ଦର ୧ମା. ୧ବ)—୧। ଉତ୍ତମାଙ୍ଗ; ମସ୍ତକ—1. The head. ୨। ଉଚ୍ଚ ପଦାର୍ଥ (ପର୍ବତ, କୋଠା, ଦେଉଳ ପ୍ରଭୃତି)ର ଶିରୋଭାଗ ବା ଅଗ୍ର—2. The top of a tall or high thing. ୩। (ଜ୍ୟାମିତି) କୌଣସି ଜ୍ୟାମିତିକ କ୍ଷେତ୍ରର ଭୂମି—3. The base of a geometrical figure.

ମୂର୍ଦ୍ଧାବସିକ୍ତ—ସଂ. ବି—ବର୍ଣ୍ଣସଙ୍କର ଜାତି ବିଶେଷ, ବ୍ରାହ୍ମଣ ଔରସରେ Mūrddhābasikta କ୍ଷତ୍ରିୟା ଗର୍ଭଜାତ ସନ୍ତାନ—A high class hybrid; half-caste. [ଦ୍ର—ମହାଭାରତରେ ଲେଖା ଅଛି ଯେ ପରଶୁରାମ ପୃଥିବୀକୁ ନିଃକ୍ଷତ୍ରିୟ କଲାରୁ କ୍ଷତ୍ରିୟ ରମଣୀଗଣ ନିୟୋଗକ୍ରମେ ବ୍ରାହ୍ମଣ ଋଷିମାନଙ୍କ ଔରସରେ ପୁତ୍ର ଉତ୍ପାଦନ କଲେ; ସେହି ସନ୍ତାନଗଣ ମୂର୍ଦ୍ଧାବସିକ୍ତ ବୋଲି ଖ୍ୟାତ ହେଲେ—ବିଶ୍ୱକୋଷ ।]

ମୂର୍ଦ୍ଧାଭିଷିକ୍ତ—ସଂ. ବିଣ. (୭ମୀ ତତ୍; ମୂର୍ଦ୍ଧନ୍=ମସ୍ତକ+ଅଭିଷିକ୍ତ; Mūrddhābhishikta ଯାହାର ମସ୍ତକରେ ମନ୍ତ୍ରପୂତ ଜଳ ଦ୍ୱାରା ଅଭିଷେକ କରା ଯାଇଅଛି)—ଯାହାର ମୁଣ୍ଡରେ ଅଭିଷେକ କରା ଯାଇଅଛି; ରାଜ୍ୟାଭିଷିକ୍ତ; କୃତାଭିଷେକ—Formally installed on the throne after his head being sprinkled with hallowed water. ସଂ. ବି—୧। ସିଂହାସନାଭିଷିକ୍ତ ରାଜା—1. A reigning king. [ଦ୍ର—ପୂର୍ବକାଳରେ କ୍ଷତ୍ରିୟ ରାଜବଂଶମାନଙ୍କରେ ପ୍ରଥା ଥିଲା ଯେ ରାଜସିଂହାସନରେ ଉପବେଶନ କରିବା ପୂର୍ବରୁ ସେମାନଙ୍କୁ ମନ୍ତ୍ରପୂତ ସପ୍ତ ନଦୀର ଜଳ, ମଧୁ, ନବନୀତ ଓ ମଦ୍ୟ ଦ୍ୱାରା ସ୍ନାନ କରିବାକୁ ହେବ ।] ୨। ବହୁ ରାଜାଙ୍କ ମଧ୍ୟରେ ଚକ୍ରବର୍ତ୍ତୀ, ସମ୍ରାଟ—2. A sovereign; an emperor. ୩। ପ୍ରଧାନ ସଚିବ; ମନ୍ତ୍ରୀ—3. Prime minister ୪। ଯୁବରାଜ; ପାଟଦେଇ—4. The heir-apparent to the throne; the prince-elect. ୫। ହିନ୍ଦୁ ଜାତିର ଦ୍ୱିତୀୟ ବର୍ଣ୍ଣ; କ୍ଷତ୍ରିୟ—5. A Kshatriya; the military caste amongst the Hindu. ୬। ବ୍ରାହ୍ମଣଔରସରେ କ୍ଷତ୍ରିୟାଗର୍ଭଜାତ ସନ୍ତାନ—6. A half-caste born of a Brāhmaṇa father and Kshatriya mother. [ଦ୍ର—ଏମାନେ ଅସ୍ତ୍ର ବ୍ୟବସାୟୀ; ହସ୍ତୀ, ଅଶ୍ୱ ଓ ରଥ ଶିକ୍ଷା ଓ ଅସ୍ତ୍ରଧାରଣ କରୁଥିଲେ ଓ ବର୍ଣ୍ଣସଙ୍କର ଜାତିମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ।] ୭। ଜାତିର ସର୍ଦ୍ଦାର—7. The head man of a caste guild ୮। ସବୁ ଜାତିର ମସ୍ତକ ସ୍ୱରୂପ; ବ୍ରାହ୍ମଣ—8. A Brāhmaṇa. ୯। ବ୍ରାହ୍ମଣ ଜାତି—9. The Brāhmaṇa caste; the highest caste amongst the Hindns. ୧୦। କ୍ଷତ୍ରିୟ ( ବିଶ୍ୱକୋଷ )—10. A Kshatriya.

ମୂର୍ଦ୍ଧାଭିଷେକ—ସଂ. ବି (୭ମୀ ତତ୍; ମୂର୍ଦ୍ଧନ୍=ମସ୍ତକ+ଅଭିଷେକ)—Mūrddhābhisheka ରାଜାମାନଙ୍କର ସିଂହାସନାରୋହଣ କାଳରେ ମନ୍ତ୍ରପୂତ ତୀର୍ଥବାରିଦ୍ୱାରା ସେମାନଙ୍କ ମସ୍ତକ ଉପରେ ଅଭିଷେକ—Formal installation of a Rājā on the throne after the formal ceremony of sprinkling hallowed water on his head. [ଦ୍ର—ଯୁବରାଜ ଓ ପ୍ରଧାନ ମନ୍ତ୍ରୀମାନଙ୍କ ମୁଣ୍ଡରେ ମଧ୍ୟ ଏହିପରି ଅଭିଷେକ କରାଯିବାର ପ୍ରଥା ପୂର୍ବେ ଥିଲା ।]

ମୂର୍ଦ୍ଧ୍ନାଭିଷେକ } ଅନ୍ୟରୂପ
ମୂର୍ଦ୍ଧ୍ନିଅଭିଷେକ }

ମୂର୍ଦ୍ଧାଭିଷେକି(କୀ)—ଦେ. ବିଣ ( ସଂ. ମୂର୍ଦ୍ଧାଭିଷିକ୍ତ )—ମୂର୍ଦ୍ଧାଭିଷିକ୍ତ Mūrddhābhisheki(kī) ( ଦେଖ )—Mūrddhābhishikta ( See ) ଦେ. ବି—୧। ଶାସନସିଦ୍ଧ ରାଜା—1. A reigning king. ୨। ଚକ୍ରବର୍ତ୍ତୀ ରାଜା; ରାଜାମାନଙ୍କ ମଧ୍ୟରେ ମହତ୍ତ୍ୱମଣି—2. Sovereign; an emperor or head of several kings.

मूर्धाभिषिक्तो

ମୂର୍ଦ୍ଧ୍ନା—ଦେ. ବି ( ସଂ. ମୂର୍ଦ୍ଧନ୍ )—ମୂର୍ଦ୍ଧା (ଦେଖ) Mūrddhnā Mūrddhā ( See )

ମୂର୍ଦ୍ଧ୍ନା(ର୍ଦ୍ଧ୍ନି)ପାତ—ସଂ ବି (ସଂ. ମୂର୍ଦ୍ଧ୍ନା=ମୁଣ୍ଡଦ୍ୱାରା; ମୂର୍ଦ୍ଧ୍ନି=ମୁଣ୍ଡରେ Mūrddhnā(rddhni)pāta +ପାତ, ଅଲୁକ୍ ସମାସ)—

ମୁଣ୍ଡପାତ **मुण्डपात** ୧ । ମୁଣ୍ଡପାତ; ମସ୍ତକଚ୍ଛେଦନ—1. Beheading; loss of the head. ୨ । ମୃତ୍ୟୁ—2. Death.

ମୂର୍ଦ୍ଧ୍ନା(ର୍ଦ୍ଧ୍ନି)ପାତକ — ସଂ. ବିଣ (ମୂର୍ଦ୍ଧ୍ନ = ମୁଣ୍ଡରେ + ପାତ ଧାତୁ + କର୍ତ୍ତୃ ଅକ) — ଯେ ମୁଣ୍ଡପାତ କରେ ବା ମନୁଷ୍ୟର ମୁଣ୍ଡକୁ କାଟେ—One who beheads a person; an executioner.
Mūrddhnā(rddhni)pātaka

ମୂର୍ବା(ର୍ବ୍ବା, ର୍ବ୍ବୀ) — ସଂ. ବି (ମୂର୍ବ୍ ଧାତୁ = ବନ୍ଧନ କରିବା + କରଣ ଅ + ସ୍ତ୍ରୀ. ଆ, ଈ; ଯାହାଦ୍ୱାରା ବନ୍ଧନ କରାଯାଏ ଅର୍ଥାତ୍ ଦଉଡ଼ି ତିଆର ହୁଏ) — ମୁରୁଗା ଗଛ—Sanseveira Roxburghiana; the bow-string hemp; Sanseveira Zeylanica. [ ଦ୍ର—ଏହା ବନ୍ୟଗୁଳ୍ମବିଶେଷ; ଛାୟାବୃତ ସ୍ଥାନରେ ଜନ୍ମେ । ଏହାର ପତ୍ର ସରୁ ଓ ଲମ୍ବା ପତ୍ର, ଫୁଲ ଲମ୍ବ ଓ ନାଡ଼ରେ ଫୁଟେ । ପତ୍ରର ଉପର ନାଳୁଅ । ଏହାର ପତ୍ରକୁ ସଢ଼ାଇଲେ ତହିଁମଧ୍ୟରୁ ଯେଉଁ ପର ଝାଉଁଅ ତନ୍ତୁ ବାହାରେ । ଏହି ତନ୍ତୁଦ୍ୱାରା ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ମେଖଳା ବା କଟିସୂତ୍ର ବନା ଯାଉଥିଲା । ଏବେ ମଧ୍ୟ ଏଥିରେ ଧନୁର ଗୁଣ ତିଆର ହୁଏ । ଏହାର ମୂଳ ଔଷଧରେ ବ୍ୟବହୃତ ହୁଏ । ବୈଦ୍ୟକ ମତରେ ଏହା ସାରକ, ଗୁରୁ ଓ ମଧୁର ତିକ୍ତ । ଏହା ପିତ୍ତ, ରକ୍ତ, ପ୍ରମେହ, ତ୍ରିଦୋଷ, ତୃଷ୍ଣା, ହୃଦ୍‌ରୋଗ, କଣ୍ଡୁ, କୁଷ୍ଠ ଓ ଜ୍ୱରନାଶକ । ]
Mūrbā(rbbā, rbbī)
ଅନ୍ୟ ସଂ. ନାମ—ଅଭିରସା, ଦେବଶ୍ରେଣୀ, ମଧୁରସା, ମୋରଟା, ତେଜନୀ, ସ୍ରବା, ମଧୁଲିକା, ଧନୁଃଶ୍ରେଣୀ, ଗୋକର୍ଣ୍ଣୀ, ପୀଲୁପର୍ଣ୍ଣୀ, କର୍ମକସା, ଦୃଢ଼ସୂତ୍ରିକା, ଧନୁଃଶାଖା, ସ୍ରୁବା, ମଧୁଶ୍ରେଣୀ, ସୁରଙ୍ଗିକା, ଦେବଶ୍ରେଣୀ, ପୃଥକ୍‌ତ୍ୱଚା, ମଧୁସ୍ରବା, ଧନୁ, ଶ୍ରେଣୀ, ଦୀର୍ଘକର୍ଣ୍ଣୀ, ମୂର୍ବିକା; ଦ୍ରାବ୍ୟଲତା, ଜ୍ୱାଳିନୀ, ଗୋପବଲ୍ଲୀ,
ମୁର୍ଗା, मुरहर, मूर्वा, शोचमुखी, घोड़ाचक्र
**चूर्णहार, मुरहरी**
ତା. ମାରୁଲ, ମାରୁଲକଲଙ୍ଗ
ତେ. ଶୁଗା, ସାଗା
ମ. ଯୋନସପନ, ନାଗଫଲ, ମୋରବେଲ

ମୂଲ (ଧାତୁ)—ସଂ—୧ । ଠିଆ ହେବା—1. To stand. ୨ । ରୋପିତ ହେବା—2. To be planted. ୩ । ରୋପଣ କରିବା—3. To plant. ୪ । ସ୍ଥାପନ କରିବା—4. To establish.
Mūl (root)

ମୂଲ୍—ପ୍ରାଦେ. (ସମ୍ବଲପୁର) ବି ଓ ବିଣ ଓ କ୍ରି. ବିଣ—ମୂଳ (ଦେଖ) Mūla (See)
Mūl

ମୂଲ୍‌ହୁଁ—ପ୍ରାଦେ (ସମ୍ବଲପୁର)—କ୍ରି. ବିଣ—ମୂଳରୁ (ଦେଖ) Mūlaru (See)
Mūl-huṅ

ମୂଲ୍‌ହୁଁ ଶେଷ—ପ୍ରାଦେ (ସମ୍ବଲପୁର)—ମୂଳହୁଁ ଶେଷ (ଦେଖ) Mūlahuṅ śesha (See)
Mūl-huṅ-śesh

ମୂଳ—ସଂ. ବି (ମୂଳ ଧାତୁ ଠିଆ ହେବା + କରଣ ଅ; କିମ୍ବା ମୂ ଧାତୁ = ବନ୍ଧନ କରିବା + କର୍ତ୍ତୃ. ଳ)—୧ । ଶିଅ; ବୃକ୍ଷାଦିର ଚେର—1. Root. ୨ । ଅଳୁ, ସାରୁ, ଅଦା, ପିଆଜ, ବଇଗଣ, ଅଳୁ, ମୂଳା, ଓଲ ଆଦି ଖାଦ୍ୟରୂପେ ବ୍ୟବହୃତ କନ୍ଦ—2. Edible bulbous roots, esculent roots (i. e. radish, yam, arum, ginger, onion etc). ୩ । ମୂଳା—3. Radish. ୪ । ପିପ୍ପଳୀ ମୂଳ—4. The root of long pepper. ୫ । ପୁଷ୍କର ମୂଳ—5. The root bulb; Costus Speciosus. ୬ । ପାହାଡ଼ ଓ ବୃକ୍ଷ ଅଦିର ଭୂମି ସଂଲଗ୍ନ ଅଂଶ—6. The foot of a tree or mountain. ୭ । ଆରମ୍ଭ ସ୍ଥାନ; ଉତ୍ପତ୍ତିସ୍ଥାନ—7. Place of origin; source. [ ଉ—ଶୋକ କଲ ଲୋକର ବୃକ୍ଷ ହୁଏ ମୂଳ—କୃଷ୍ଣସିଂହ. ମହାଭାରତ. ବନ । ] ୮ । ଅଦିକାରଣ; ହେତୁ; ଆଦ୍ୟ ହେତୁ—8. Root cause; origin; chief cause. [ଉ—ତୁମ୍ଭେ ଅଛିତ ଧରୁଅଛ ମୋ ପଯ୍ୟର, ଏଣୁ ମୂଳ ହେଲ ମୋହର ମରଣର—କୃଷ୍ଣସିଂହ. ମହାଭାରତ. ସଭା । ] ୯ । ଅଦ୍ୟ; ଅରମ୍ଭ—9. Beginning; commencement. [ ଉ—କହ ଶୁଣୁଥିଲା ! ମୂଳରୁ ଯେତେକ ଯୁଦ୍ଧଭୂମି ସମାଚାର—ରାଧାନାଥ. ପାର୍ବତୀ । ] ୧୦ । ଋଣ ବା ବ୍ୟବସାୟର ପୁଞ୍ଜି; ପାଣ୍ଠି; ମୂଳଧନ—10. The capital or principal. [ ଉ—କେ ସନ୍ତ ଏହାର ■ଲ । ଲାଭ ଦେଇ ରଖିବ ମୂଳ—ଜଗନ୍ନାଥ. ଭାଗବତ ।] ୧୧ । ଅଦିଗ୍ରନ୍ଥ, ଯେଉଁ ଗ୍ରନ୍ଥ ଉପରେ ଟୀକାଦି କରାଯାଏ—11. Original text; the context. ୧୨ । ଗୋଡ଼; ଚରଣ; ପାଦ—12. Foot. ୧୩ । (ଗଣିତ) ଗୁଣିତ ରାଶିର ପିଣ୍ଡ କରଣୀ; ବର୍ଗମୂଳ; ଘନମୂଳ—13. (Mathematics) The root of a number arrived at by self-multiplication (i. e. square root; cube root). [ ଦ୍ର—(ଗଣିତ) ଯେଉଁ ରାଶିକୁ ସେହି ରାଶି ସଙ୍ଗେ ବାରମ୍ବାର ଗୁଣିବାଦ୍ୱାରା କୌଣସି ରାଶି ଉତ୍ପନ୍ନ ହୁଏ, ପ୍ରଥମୋକ୍ତ ରାଶିଟି ସେହି ଉତ୍ପାଦିତ ରାଶିର ମୂଳ ଅଟେ । ] ୧୪ । ସ୍ୱନଗର—14. One's native town. ୧୫ । ନିକଟ; ନୈକଟ୍ୟ—15. Nearness; contigity; proximity. [ ଉ—ବଶିଷ୍ଠଙ୍କ ମୂଳରେ ଯେତେକ ତପିଜନ, ତାହାଙ୍କୁ ସେ ନମସ୍କାର କଲେ ରଘୁନନ୍ଦନ. ବଳରାମ. ରାମାୟଣ. ଅଯୋଧ୍ୟା । ] ୧୬ । କୁଞ୍ଜ—16. Grove; bower ୧୭ । ଆବାସ ଗୃହ—17. Residence; habitation. ୧୮ । (ଜ୍ୟୋତିଷ) ମୂଳା ନକ୍ଷତ୍ର; ସତାଇଶ ନକ୍ଷତ୍ର ମଧ୍ୟରୁ ଊନବିଂଶ ନକ୍ଷତ୍ର—18. The 19th constellation in Hindu astronomy. ୧୯ । ବଂଶପ୍ରବର୍ତ୍ତକ ଅଦି ପୁରୁଷ—19. The original ancestor of a family. ୨୦ । ପ୍ରଧାନ ବା ଅସଲ ବ୍ୟକ୍ତି ବା ବସ୍ତୁ—20. The chief or essential or primary thing or person. [ ଉ—
Mūla

ବିଦ୍ୟାରୂପ ପ୍ରଭାବ ହୁଏ ନାହିଁ ଭଲ, ସବୁଠାରୁ ମୂଳ ଏହା ଅଟେ ନୃପାଳ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।]
୨୧ । ଅସଲ କଥା—21. Essential matter.
୨୨ । ନିଶ୍ଚୟତା—22. Certainty. [ ଉ—ବିଯୋଗଲେ ତତ୍ତ୍ୱ ମୂଳରୁ ମୋ ମୃତ୍ୟୁ କାହାକୁ ଦୂଷଣ । ଉପେ. ବୈଦେହୀଶବିଳାସ । ]
୨୩ । ଚରଣ (ବିଶ୍ୱକୋଷ) —23. Leg.
୨୪ । ଶୂରଣ; ଓଲଅ ( ବିଶ୍ୱକୋଷ ) —24. Wild arum.
ଦେ. ବି — ୧ । ଅବଶ୍ୟକରଣୀୟ କାର୍ଯ୍ୟ—1. An act which must be done without fail. [ ଉ—ରାଜ ହଗାଇବ କରବ ମୂଳ, ବାଟରୁ ଖଣ୍ଡବ ଛନ ଅଙ୍ଗୁଳ । ଛଗ । ]
୨ । ବେଣ୍ଟ ଥିବା ଶସ୍ତ୍ରର ବେଣ୍ଟ ଓ ଫଳର ମଧ୍ୟସ୍ଥ ଅଂଶ—2. The part of a weapon between the blade and the handle.
নিজের / আপনা — ଦେ. ବିଣ—୧ । ସ୍ୱକୀୟ; ନିଜର—1. Own.
বিশেষ / खास — ୨ । ବୈଶେଷିକ; ବିଶିଷ୍ଟ—2 Peculiar.
স্থির / ঠিক — ୩ । ନିଶ୍ଚିତ; ସ୍ଥିର—3. Certain; sure. [ ଉ—ମୂଳ ହେଲା ଲଉବାର, ହୋଇଲା ସ୍ଥାନ ଗୋଚର । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]
मूल / मुख्य — ୪ । ଆଦ୍ୟ; ମୌଳିକ; ଅସଲ—4. Original; radical.
୫ । ପ୍ରଧାନ—5. Chief; prominent.
ঠিক / ठिक — ୬ । ଠିକ୍; ଯଥାର୍ଥ—6. proper; real; actual. [ ଉ—ଦୁଃଶାସନ ବୋଇଲେ କହ ଯା ମାତୁଳ, ସବୁ କଥାମାନଙ୍କେ ଅଟଇ ଏ ମୂଳ । କୃଷ୍ଣସିଂହ. ମହାଭାରତ. ବନ । ]
প্রথম / पहला — ୭ । ପ୍ରଥମ—7. First.
୮ । ପ୍ରାଥମିକ—8. Primary.
ঠিক — ୯ । ଠିକ୍ ସମାନ—9. Exactly similar. [ ଉ—ହୋଇ ନ ପାରିଲ ମୂଳ ଯେ, ଯେ ପ୍ରତିବିମ୍ବରେ ଏତେ ପ୍ରଶଂସିତ, ତହିଁ କି ଅଛି ଭୁଲ ଯେ । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ]
নিশ্চয় / निश्चय — ଦେ. କ୍ରି. ବିଣ— ନିଶ୍ଚୟ; ମୁକର—Certainly; without fail. ( ଯଥା—ମୁଁ ମୂଳ ସେଠାକୁ ଯିବି । )

ମୂଲ—ଦେ. ବି ( ସଂ. ମୂଲ୍ୟ )—୧ । ମୂଲ୍ୟ—1. Price; value.
Mūla — ୨ । ମଜୁରି, କାର୍ଯ୍ୟର ଦୈନିକ ପାରିଶ୍ରମିକ—2. Daily wages.
মূল্য, দাম / मोल मजूरि मजुरी

ମୂଳକ—ସଂ. ବି (ମୂଳ+ସ୍ୱାର୍ଥେ. କ)—୧ । ମୂଳା ନାମକ ଖାଦ୍ୟ ମୂଳ —1. Radish. ୨ । ସ୍ଥାବର ବିଷବିଶେଷ—2. A kind of poisonous root.
Mūlaka
ସଂ. ବିଣ. (ବହୁବ୍ରୀହି ସମାସରେ ପର ପଦରେ 'ମୂଳ' ଥିଲେ 'କ'ର ଆଗମ ହୋଇ ମୂଳକ ହୁଏ, ଯଥା—ଭ୍ରାନ୍ତିମୂଳକ = ଭ୍ରାନ୍ତି ଯହିଁର ମୂଳ ବା କାରଣ)—ଉପରେ ପ୍ରତିଷ୍ଠିତ; ମୂଳ ବା କାରଣରୁ ଜାତ—Having its root in; caused by; founded on.

ମୂଳକ ତୈଳ—ସଂ. ବି—ମୂଳା ମଞ୍ଜିରୁ ପ୍ରସ୍ତୁତ ତୈଳ (ଏହା ଔଷଧରେ ଲାଗେ)—Oil from radish seeds.
Mūlaka taila

ମୂଳ କଥା—ସଂ. ବି—୧ । ଅସଲ କଥା—1. The original matter. (ଉ—ମୂଳ କଥା ଏହି, ସେ ଦୁଃଖରେ ପଡ଼ିଗଲା । ରାଧାନାଥ, ଉଦ୍ଦେଶ୍ୟ ।)
Mūla kathā
মূল কথা / मूल बात
୨ । ଆଦ୍ୟ କଥା; ପ୍ରଥମ ବିଷୟ—2. The first thing; the primary thing. ୩ । ପ୍ରଧାନ କଥା—3. Chief matter. ୪ । ସଂକଳ୍ପିତ କଥା—4. A matter resolved upon or settled. ୫ । ମୂଳ କାରଣରୂପକ ବିଷୟ—5. The radical thing; the root cause. ୬ । ମୂଳ ଗ୍ରନ୍ଥରେ ଥିବା ବିଷୟ—6 The matter as it appears in the original text.

ମୂଳକ ପଣ—ସଂ. ବି—ଏକାଧିକ ମୂଳା ବନ୍ଧା ହୋଇଥିବା ଗୋଟିଏ ବିଡ଼ା—A handful of radishes tied into a bunch.
Mūlaka paṇa

ମୂଳକ ପର୍ଣ୍ଣୀ—ସଂ. ବି—ଶୋଭାଞ୍ଜନ ବା ଶଜନା ଗଛ; ଶଜନା (ଦେଖ)
Mūlaka parṇṇī — A kind of horse radish; Hyperanthera Moringa; Moringa Pterygosperma (tree); Śajanā (See)

ମୂଳକ ମୂଳା—ସଂ. ବି—କ୍ଷୀର କକ୍କୋଳ ବା କ୍ଷୀର କଙ୍କୋଳ ଗଛ; କ୍ଷୀର କଞ୍ଚୁକୀ ଗଛ—An esculent onion-like root used in medicine.
Mūlaka mūlā

ମୂଳ କରିବା—ଦେ. କ୍ରି. ( ସଂ. ମୂଳ )—୧ । ସ୍ଥିର କରିବା; ଥୟ କରିବା—1, To settle; to ascertain. (ଉ—ସନ୍ନ୍ୟାସ କରିଯିବା କଥାଟି ମୂଳ କଲେ । କୃଷ୍ଣସିଂହ. ମହାଭାରତ. ଆଦି ) ୨ । କୌଣସି କାର୍ଯ୍ୟ କରିବା ନିମନ୍ତେ କୃତସଂକଳ୍ପ ହେବା—2. To determine or resolve upon doing a thing.
Mūla karibā
নিয়ম করা / नोट करना
মূল করা / मूलकर धरना — ୩ । ପ୍ରଧାନ ଆଶ୍ରୟରୂପେ ଅବଲମ୍ବନ କରିବା—3. To depend primarily upon. ୪ । (ଗଣିତ) ସମସ୍ୟା ସାଧନ କରିବା ପାଇଁ କୌଣସି ମୂଳ ରାଶିକୁ ସ୍ଥିର ରୂପେ ଥାପିବା—4. (Mathematics) To put a certain number as a root to start from in order to solve mathematical problem.

ମୂଲ କରିବା—ଦେ. କ୍ରି. (ସଂ. ମୂଲ୍ୟ)—କୌଣସି ଦ୍ରବ୍ୟ କିଣିବା ପାଇଁ ଦରଦାମ କରିବା—To settle the price of a thing to be purchased.
Mūla karibā
দর দাম করা / मोल करना

ମୂଳ କର୍ମ—ସଂ. ବି. ( ମୂଳକର୍ମନ୍; ମୂଳ—ଚେରମୂଳ ଦ୍ୱାରା କରାଯିବା କର୍ମ; ମଧ୍ୟପଦଲୋପୀ କର୍ମଃ )—
Mūla karma
୧ । ଔଷଧି ଆଦି ମୂଳ ପ୍ରୟୋଗ ଦ୍ୱାରା କରାଯିବା ଭୌତିକ କ୍ରିୟା ବା ଅଭିଚାର (ଯଥା—ସ୍ତମ୍ଭନ, ମୋହନ, ବଶୀକରଣ,

ଉଚ୍ଚାଟନ) (ମନୁ. ୧୧।୬୪)—1. Magical effect produced on people by the application of various roots. ୨ । ମନ୍ତ୍ରାଦି ଦ୍ୱାରା ବଶୀକରଣ—2. Charming a person by incantations or mystic formulae ୩ । ଉପପାତକ ବିଶେଷ—3. Name of a minor sin.

ମୂଳ କଳନ୍ତର—ଦେ. ବି. (ସହଚର)—ସୁଧ ମୂଳ; ଋଣର ମୂଳ ଧନ
Mūla kalantara ଓ ସୁଧ—Principal and interest
আসল সুদ सुद मूल of a loan.

ମୂଳ କାଟ—ଦେ. ବି. ( ସଂ. ମୂଳ କର୍ତ୍ତନ )—୧ । ଗଛର ମୂଳର
Mūla kāta ଛେଦନ—1. Cutting of the root of
গোড়া কাটা a plant or tree. ୨ । ଭୂଇଁ ସମାନରୁ ଗଛର
जड काट ମୂଳ କାଟି ଦେବା; ମୂଳ ଚୋଛ—2. Cutting a tree in such a manner as not to leave any stump outstanding; cutting a tree from the ground level. ୩ । (ଲକ୍ଷଣାର୍ଥ) ସମୂଳ ଉଚ୍ଛେଦ—3. (figurative) Eradication; extinction.

ମୂଳକାର—ସଂ. ବି (ମୂଳ+କୃ ଧାତୁ+କର୍ତ୍ତୃ. ଅ)—୧ । ମୂଳଗ୍ରନ୍ଥର
Mūlakāra ରଚୟିତା—1. The author of the
(ମୂଳକୃତ୍—ଅନ୍ୟରୂପ) original treatise or work.
୨ । ମୌଳିକ ଗ୍ରନ୍ଥର ରଚୟିତା—2. The author of a new or original work.

ମୂଳ କାରଣ—ସଂ. ବି—ଆଦି କାରଣ; ଅସଲ କାରଣ;ପ୍ରଧାନ କାରଣ—
Mūla kārana Root cause; the original cause; the chief cause.

ମୂଳ କାରିକା—ସଂ.ବି—୧। ଚୁଲ୍ଲୀ—1. Oven; fire place. ୨। ମୂଳ
Mūla kārikā ଧନର ବୃଦ୍ଧି—2. The increase of the capital. ୩ । ମୂଳ ଗ୍ରନ୍ଥର ଅର୍ଥପ୍ରକାଶକ ପଦ୍ୟ—3. A poem explaining the meaning of an original work. ୪ । ଚଣ୍ଡୀ (ଶବ୍ଦକୋଷ)—4. Chandi.

ମୂଳ କୃଚ୍ଛ୍ର—ସଂ. ବି—ଏକାଦଶବିଧ ପର୍ଣ୍ଣକୃଚ୍ଛ୍ର ବ୍ରତାନ୍ତର୍ଗତ ବ୍ରତବିଶେଷ
Mūla kruchchhra A sort of penance performed by subsisting on esculent roots for a certain period. [ବ୍ର—ଏ ବ୍ରତରେ କେବଳ ମୂଳ ଭକ୍ଷଣ କରି ବା ମୂଳଜ ଦ୍ରବ୍ୟର ରସ ପାନ କରି କିଛିଦିନ ବ୍ରତ ପାଳନ କରାଯାଏ—ମିତାକ୍ଷରା । ]

ମୂଳ ଖ(ଖା)ନକ—ସଂ. ବିଣ. ପୁଂ—୧ । ବୃକ୍ଷ ଲତାଦିର ମୂଳ ଖୋଳେ—
Mūla kha(khā)naka 1. Digger of roots. ୨। ବର୍ଣ୍ଣ-
(ମୂଳଖନକା—ସ୍ତ୍ରୀ) ସଙ୍କର ଜାତିବିଶେଷ ( ଶବ୍ଦକୋଷ )—2. Name of a mixed caste. [ ବ୍ର—ଏମାନେ ବୃକ୍ଷମୂଳ ଖୋଳି ଜୀବିକା ନିର୍ବାହ କରନ୍ତି ।]

ମୂଳଗଣ—ସଂ. ବି-(ଗଣିତ) କୌଣସି ବର୍ଗ ବା ଘନମୂଳର ଗୁଣିତକ—
Mūlagana (arithmetic) The multiplier of the root of a power; the co-efficient of a root.

ମୂଳି(ଳା) ଗରି(ଡ଼ି)—ଦେ. ବି—ଘର ଛାଳର ଓଳ ସନ୍ନିକଟସ୍ଥ ଅଥବା
Mūla(lā) gari(rdi) ନିମ୍ନତମ ଗରି ବା ପଟି—The
मूलबडेरी lowest belt of a thatch; the strip of thatching immediately above the eaves.

ମୂଳଚାଲ—ଦେ. ବି (ଜିଜ୍ଞାସାର୍ଥକ ଦ୍ୱିରୁକ୍ତ ସହଚର)—କୌଣସି ଦ୍ରବ୍ୟକୁ
Mūlachāla ମୂଲ୍ୟକରିବା; ଦରଦାମ—Making the
দরদাম valuation of a thing; appraisement.
मोलजोल

ମୂଳଚାଲ କରିବା—ଦେ. କ୍ରି—କୌଣସି ଦ୍ରବ୍ୟକୁ ମୂଲ୍ୟକରିବା; ଦରଦାମ
Mūlachāla kariba କରିବା—To make the
দরদাম করা मोलजोल करना valuation of a thing.

ମୂଳଚ୍ଛେଦ—ସଂ. ବି (ମୂଳ+ଛେଦ; ୬ଷ୍ଠୀ ତତ; ସନ୍ଧି ଯୋଗୁଁ 'ଛ'ର
Mūlachchheda ଦ୍ୱିତ୍ୱ )—୧ । ଗଛର ମୂଳ କାଟିବା—
ମୂଳଚ୍ଛେଦନ, ମୂଳୋଚ୍ଛେଦ, ମୂଳୋଚ୍ଛେଦ, ମୂଳନିକୃନ୍ତନ, ମୂଳବର୍ଜ୍ଜନ (ଅନ୍ୟରୂପ) 1. Cutting the root of a tree. ୨ । (ଲକ୍ଷଣାର୍ଥ) ଉଚ୍ଛେଦ—2 (figurative) Eradication.
ମୂଳଚ୍ଛେଦକ, ମୂଳଚ୍ଛେଦୀ—ବିଣ. ପୁଂ

ମୂଳଜ—ସଂ. ବିଣ (ମୂଳ+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ)—
Mūlaja ମୂଳରୁ ଜାତ—Born of the root; produced from the root. ସଂ. ବି—୧ । ବୀଜରୁ ଉତ୍ପନ୍ନ ନ ହୋଇ ମୂଳରୁ ଉତ୍ପନ୍ନ ହେବା ଉଦ୍ଭିଦ [ ଯଥା—ଅଦା, ପିଆଜ, ଅଳୁ, କନ୍ଦମୂଳାଲୁ, ପୋଟଳ, ପଦ୍ମ, କର୍ଣ୍ଣ ପ୍ରଭୃତି)-1. Plants growing from bulbs ( instead of from seeds) ୨ । ଅଦା—2. Ginger.

ମୂଳତଃ—ସଂ. ଅ (ମୂଳ+ତସ୍ ମୀ ବା ୭ମୀ ବିଭକ୍ତିରେ ତସ୍)—
Mūlatah ୧। ମୂଳରୁ-1. From the root. ୨।ମୂଳରେ—2. At the root.

ମୂଳ ତ୍ରିକୋଣ—ସଂ. ବି—୧ । (ଜ୍ୟୋତିଷ) ରବି ପ୍ରଭୃତି ପ୍ରତ୍ୟେକ
Mūla trikona ଗ୍ରହର ରାଶିରୂପ ଗୃହ (ଯଥା—ରବିର ସିଂହ, ଚନ୍ଦ୍ରର ବୃଷ, ମଙ୍ଗଳର ମେଷ, ବୁଧର କନ୍ୟା, ଗୁରୁର ଧନୁ, ଶୁକ୍ରର ତୁଳ, ଶନିର କୁମ୍ଭ ଇତ୍ୟାଦି)—1. (Astrology) The particular mansion of each planet in the particular sign of the Zodiac. ୨ । (ତନ୍ତ୍ର) ମୂଳାଧାର ( ଦେଖ )—Mūlādhāra (See)

ମୂଳ ଦଣ୍ଡା—ଦେ. ବି ( ସଂ. ମୂଳ ଦଣ୍ଡ )—ଉଙ୍ଗାର ସଙ୍ଗ ଲମ୍ବା ଲମ୍ବ
Mūla dandā ମୋଟ ପଟା, ଯାହା ଉଙ୍ଗାର ତଳଦେଶରେ
মূলডাংড়া ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବିଥାଏ ଏବଂ
मूलकाठ ଯହିଁର ଦୁଇ ମୁଣ୍ଡ ବନ୍ଧା—The lowermost

plank of a boat extending at the bottom of a boat from one end to the other.

ମୂଳଦାମ—ଦେ. ବି—୧ । ଗାଈ ବାଛୁରୀ ପ୍ରଭୃତି ଅଧିଆରୀ ସର୍ତ୍ତରେ Mūladāma ପାଳିବାକୁ ଦେବା ବେଳେ ସେହି ଗାଈ ବା ବାଛୁରୀର ଆଦত দাম ତତ୍କାଳୀନ ମୂଲ୍ୟ—The original price मूल दाम of a cow or calf given to another for being brought up by the latter on the system of Adhuāri. ୨ । କିଣା ମୂଲ୍ୟ—2. Purchase price.

ମୂଳ(ଳୁ)ଦୁଆ—ଦେ. ବି—୧ । ଗୃହାଦିର ମୂଳଭିତ୍ତି—1. Foundation of a house. Mūla(ḷu)duā ୨ । କାନ୍ଥର ଯେଉଁ গোড়াপত্তন ଅଂଶ ମାଟି ତଳେ ଥାଏ—2. The foundation नीव of a wall under the ground level.

ମୂଳଦୁଆ ଥାପିବା—ଦେ. କ୍ରି—ଗୃହାଦିର ଭିତ୍ତି ସ୍ଥାପନ କରିବା — Mūladuā thāpibā To lay the foundation of a ঘরের পত্তন দেওয়া नीव डालना house. (ମୂଳଦୁଆ ମାଡ଼ିବା, ମୂଳଦୁଆ ଦେବା—ଅନ୍ୟରୂପ)

ମୂଳ ଦେବ—ସଂ. ବି—ଶ୍ରୀକୃଷ୍ଣଙ୍କ ମାମୁଁ କଂସାସୁର—Demon Mūla deba Kamsa; maternal uncle of (ମୂଳଦେବ୍—ଅନ୍ୟରୂପ) Srikrushna.

ମୂଳ ଦ୍ୱାର—ସଂ. ବି—ପ୍ରଧାନ ଦ୍ୱାର; ସିଂହଦ୍ୱାର; ସଦର ଦରଜା Mūla dwāra (ଶବ୍ଦକୋଷ)—Chief door; lions gate.

ମୂଳ ଦ୍ରବ୍ୟ—ସଂ. ବି—୧ । ପ୍ରଧାନ ବସ୍ତୁ—1. Chief thing. ୨ । Mūla drabya ୨ । ପ୍ରଧାନ ଉପକରଣ—2. The chief material. ୩ । ଆଦ୍ୟ ବା ଅସଲ ପଦାର୍ଥ— 3. The genuine or original article. ୪ । ମୂଳ ଧନ (ଶବ୍ଦକୋଷ)—4. Capital.

ମୂଳ ଧନ—ସଂ. ବି—୧ । ଋଣର ଅସଲ; ଯେଉଁ ଟଙ୍କା ଖାତକକୁ ନଗଦ Mūla dhana କରଜ ଦିଆ ଯାଇଥାଏ—1. The princi- (ମୂଳ ବିତ୍ତ—ଅନ୍ୟରୂପ) pal of a debt. (ଉ—ଏ ପ୍ରେମ ତୋର ମୂଳ ଧନ । ଭୂପତି. ପ୍ରେମପଞ୍ଚାମୃତ ।) ୨ । ବ୍ୟବସାୟରେ ଲଗା ଯିବା ପାଇଁ ପୁଞ୍ଜି—2. The capital of a business; stock in trade.

ମୂଳ ଧାତୁ—ସଂ. ବି—୧ । ମୌଳିକ ବା ଅକୃତ୍ରିମ ଧାତୁ—1. Ele- Mūla dhātu mentary metal. ୨ । ଲସିକା; ମଜ୍ଜା (ଶବ୍ଦକୋଷ)—2. Lymph.

ମୂଳ ନୀତି—ସଂ. ବି—୧ । ଆଦ୍ୟ ମତ—1. The original or Mūla nīti primary principle or opinion. ୨ । ମୌଳିକ ଭାବ; ଯେଉଁ ପ୍ରଧାନ ଭାବ ଅବଲମ୍ବନ କରି କୌଣସି କାର୍ଯ୍ୟ କରାଯାଏ—2. The primary policy or principle governing an act.

ମୂଳ ପଦ୍ମ—ସଂ. ବି—ତନ୍ତ୍ର ବା ଯୋଗ ସାଧନୋକ୍ତ ଶରୀରମଧ୍ୟସ୍ଥ ଅଙ୍ଗ Mūla padma ବିଶେଷ—Name of certain part under the body referred to in Tantric exercises.

ମୂଳ ପର୍ଣ୍ଣୀ—ସଂ. ବି—ଔଷଧରେ ବ୍ୟବହୃତ ମଣ୍ଡୁକପର୍ଣ୍ଣୀ ନାମକ ଗୁଳ୍ମ; Mūla parṇṇī ଥାଲକୁଡ଼ି ଗଛ—A plant; Hydrocotile Asiatica; the Asiatic pennywort.

ମୂଳ ପାତି—ଦେ. ବି—(ଦରଦ୍ରବ୍ୟ ପ୍ରତି ଶ୍ରମ ସହିତର)—ଦୈନିକ କାର୍ଯ୍ୟରେ Mūla pāti ମିଳିବା ମଜୁରି—Daily wages. মূলপাতি मजुर

ମୂଳ ପିଣ୍ଡ—ସଂ. ବି.—୧ । ଆଳୁ ଆଦିର ମୂଳ, ଯହିଁରୁ ଗଛ ମାଡ଼େ Mūla pinda ଓ ପିଣ୍ଡ ବଢ଼େ—1. The bulbous root portion of yam which is used as seed to grow yam. ୨ । ମୂଳଧନ (ଦେଖ) 2. Mūla dhana (See)

ମୂଳ ପୁରୁଷ—ସଂ. ବି—ବଂଶର ଆଦ୍ୟ ପୁରୁଷ— Mūla purusha The progenetor of a family or race.

ମୂଳ ପୁଷ୍କର—ସଂ. ବି—(ବୈଦ୍ୟକ) ପୁଷ୍କର ମୂଳ (ଦେଖ) Mūla pushkara Pushkāra mūla (See)

ମୂଳ ପୋଛ—ଦେ. ବି.—ମୂଳ କାଟ (ଦେଖ) Mūla pochha Mūla kāta (See)

ବିଣ.—୧ । ମୂଳରୁ ପୋଛି ହୋଇ କଟା ଯାଇଥିବା (ଗଛ)- গোড়াকাটা 1. Cut in such a manner as not to leave जड़से काटना any stump standing. ୨ । ମୂଳୋତ୍ପାଟିତ, ସମୂଳେ ବିନଷ୍ଟ—2. Uprooted; distroyed root and branch; eradicated.

ମୂଳ ପୋଇ—ସଂ. ବି—ବଣ ପୋଇ—A kind of wild pot Mūla poti herb; Basella Rubra. [ ଦ୍ର—ଏହାର বন পুঁই ଖାଡ଼ି ନାଲି । ବୈଦ୍ୟକ ମତରେ ଏହା ତ୍ରିଦୋଷଘ୍ନ, बनपोई ବୃଷ୍ୟ, ବଳକର, ଲଘୁ, ରୁଚିକର ଓ ଜଠରାନଳ ଦୀପକ । ମ. ମାଲ୍ ବସଲୀ ସ୍ୱାଦ କର୍ଦ୍ଦେୟ ।] (କ୍ଷୁଦ୍ରବଲ୍ଲୀ, ଶାକଚୋପୋଇକା, କ୍ଷୁଦ୍ର ପୋଇକା—ଅନ୍ୟରୂପ)

ମୂଳ ପ୍ରକୃତି—ସଂ. ବି—୧ । ଆଦ୍ୟାଶକ୍ତି, ଜଗତ୍କାରଣୀ ଶକ୍ତି, ଯେଉଁ ଶକ୍ତି Mūla prakruti ବଳରେ ଈଶ୍ୱର ପୃଥିବୀକୁ ସୃଷ୍ଟି କରିଅଛନ୍ତି— 1. The creative energy of God. ୨ । ଦୁର୍ଗା— 2. Goddess Durgā. [ ଦ୍ର—ସାଂଖ୍ୟ ମତରେ ସକଳର କାରଣୀଭୂତ ସତ୍ତ୍ୱରଜସ୍ତମୋରୂପ ତ୍ରିଗୁଣାତ୍ମିକା ଶକ୍ତି ମୂଳ ପ୍ରକୃତି ନାମରେ ଅଭିହିତ ।]

ମୂଳ ଫଳଦ—ସଂ. ବି—(ମୂଳ+ଫଳ+ଦା ଧାତୁ+କର୍ତ୍ତୃ. ଅ; ଯେଉଁ Mūla phalada ବୃକ୍ଷର ମୂଳରେ ଫଳ ଧରେ) ପଣସ ଗଛ— The jack fruit tree.

ମୂଳ ବଣିଗ୍ ଧନ—ସଂ. ବି—ବାଣିଜ୍ୟର ମୂଳ ଧନ (ଶବ୍ଦକୋଷ)— Mūla banig dhana The capital in a trade or business.

ମୂଳ ବିଷ—ସଂ. ବି—(ବୈଦ୍ୟକ)—ବିଷାକ୍ତମୂଳଯୁକ୍ତ ବୃକ୍ଷ [ଯଥା—
Mūḻa bisha କରବୀର, ଗୁଞ୍ଜା, ବିଜୟା ପ୍ରଭୃତି)— Trees having poisonous roots.

ମୂଳ ବିଭୁଜ—ସଂ ବି—(ମୂଳ+ବି+ଭୁଜ୍ ଧାତୁ ଅ)—୧। ଗାଡ଼ି—
Mūḻa bibhuja 1. Cart; carriage. ୨। ରଥ—
2. Car. ୩। ଚେରମୂଳବିକ୍ରୟକାରୀ ବ୍ୟକ୍ତି—
3. Seller of bulbs and roots. ୪। ଯେଉଁ-
ମାନେ ଗଛର ମୂଳକୁ ବଙ୍କାଇ କରି ବାଡ଼ି ତିଆରି କରନ୍ତି
( ଶବ୍ଦକୋଷ )—4. Persons who make sticks by bending roots.

ମୂଳ ବୀଜ—ସଂ. ବି—୧। (ଗଣିତ)—ମୌଳିକ ସଂଖ୍ୟା—
Mūḻa bīja 1. (Mathematics) Primary number.
୨। ମୂଳ ମନ୍ତ୍ର (ଦେଖ) 2. Mūḻa mantra (See)
୩। (ଲକ୍ଷଣାର୍ଥ)–ମୂଳ କାରଣ–3. (figurative) The primary cause; the root cause.

ମୂଳ ବ୍ୟସନ—ସଂ. ବି—(ବ୍ୟସନମାନଙ୍କ ମୂଳ=ପ୍ରଧାନ; ପର କପାଳ)
Mūḻa byasana ମାରଣ (ଶବ୍ଦକୋଷ)—
Killing; slaughter.

ମୂଳ ବ୍ରତୀ—ସଂ. ବିଣ. ପୁଂ—(ମୂଳ+ବ୍ରତ+ଇନ୍; ୧ମା. ୧ବ)—ମୂଳ
Mūḻa bratī ଭକ୍ଷଣଦ୍ୱାରା ଜୀବିକାନିର୍ବାହକାରୀ (ଶବ୍ଦକୋଷ)—
(ମୂଳବ୍ରତିନୀ—ସ୍ତ୍ରୀ) Subsisting on roots.

ମୂଳ ଭଦ୍ର—ସଂ.ବି—ଶ୍ରୀକୃଷ୍ଣଙ୍କ ମାମୁଁ କଂସ—The demon king
Mūḻa bhadra Kaṁsa; the maternal uncle of Srīkṛushṇa.

ମୂଳ ଭବ—ସଂ. ବି ( ମୂଳ+ଭୂ ଧାତୁ+କର୍ତ୍ତୃ. ଅ )—ମୂଳରୁ ଜାତ—
Mūḻa bhaba Produced from the root.

ମୂଳ ଭୃତ୍ୟ—ସଂ. ବି ( କର୍ମଧା )—୧। ପୁରାତନ ଭୃତ୍ୟ—1. An
Mūḻa bhṛutya old servant. ୨। ପିତୃ ପିତାମହ-
କ୍ରମେ ଏକ ପରିବାର ଅଧୀନରେ ଭୃତ୍ୟ କରୁଥିବା ଭୃତ୍ୟ
( ଶବ୍ଦକୋଷ )—2. A servant whose ancestors had been serving in the same family for generations.

ମୂଳ ମନ୍ତ୍ର—ସଂ. ବି—୧। ଦେବତାଙ୍କ ପୂଜାରେ ବ୍ୟବହୃତ ମନ୍ତ୍ରର ବୀଜମନ୍ତ୍ର
Mūḻa mantra ( ଯଥା—'ଓଁ କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ...
ଇତ୍ୟାଦି' ମନ୍ତ୍ରରେ 'କ୍ଳୀଂ' ମୂଳମନ୍ତ୍ର ଅଟେ । )—1. The mystic syllable used at the beginning of a mantra for worshipping a deity.
୨। ଇଷ୍ଟମନ୍ତ୍ର; ଇଷ୍ଟ ଦେବତାସାଧନର ମନ୍ତ୍ର—2. The mystic formula used in worshipping one's particular deity. ୩। ( ଲକ୍ଷଣାର୍ଥ ) ପ୍ରଧାନ ସଂକଳ୍ପ ବା ଉଦ୍ଦେଶ୍ୟ—3. ( figurative ) The primary or main aim.

ମୂଳ(ଳି,ଳୁ) ମୂଳିକା—ଦେ. ବି (ସଂ. ମୂଳ+ମୂଳିକା)—ଔଷଧରେ
Mūḻa(ḻi,ḻu) Mūḻikā ବ୍ୟବହୃତ ଚେର ମୂଳ ଆଦି; ଚେର
ଜଡ଼ିବୁଟି ମୂଳ—Herbarious roots, herbs. [ଉ—ତାକୁ
ଜଡ଼ିବୁଟୀ ମୂଳମୂଳିକା ଦେଇ କଣା । ଫକୀରମୋହନ. ଛମାଣ ଆଠଗୁଣ୍ଠ । ]

ମୂଳ ମେଢ଼ି—ଦେ. ବି (ସଂ. ମୂଳ+ମେଧି)—୧। ବେଙ୍ଗଳାର ମେଢ଼ି
Mūḻa merḏhi ପାଖେ ଯୋଡ଼ି ହୋଇଥିବା ବଳଦ; ମେଇଆ—
মেইয়া 1. The first bullock tethered to the centre
मेहियाँ post during threshing. ୨। (ଲକ୍ଷଣାର୍ଥ) ବଂଶର ମୁଖ୍ୟ ବ୍ୟକ୍ତି ବା କର୍ତ୍ତା—2. (figurative) The head of a family.

ମୂଳ(ଳୁ)ରୁ(ସୁଁ,ହୁଁ)—ଦେ. କ୍ରି. ବିଣ (ସଂ. ମୂଳତଃ)—୧। ଆଦୌ;
Mūḻa(ḻu)ru(suñ,huñ) ମୁଣ୍ଡରୁ—1. At all. [ ଉ—
গোড়াথেকে ଗଛ ଦେଖି ଚଢ଼େ ଆସଇ, ସାଗର ଲହରୀ ପରେ;
अव्वल से; शुरू से ଦଉଡ଼ିଲେ ବେନି, ନ ଲାଗିବ ପାଣି ମୂଳୁଁ
(ମୂଳୁଁ—ଅନ୍ୟରୂପ) ପଦ୍ମରେ । ରାଧାନାଥ. ଉଷା ।] ୨। ପ୍ରଥମରୁ
2. From the beginning. [ଉ—ମୂଳୁଁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କପାଁ କଳି । ] ୩। ମୂଳଠାରୁ
—3. From the root

ମୂଳ ଲାଗିବା—ଦେ. କ୍ରି—ଦିନ ମଜୁରିରେ କାମ କରିବା —To work
Mūḻa lāgibā on daily wages. [ ଉ—ମୂଳ ଲାଗିବା
মজুর খাটা ଯିବା ବନ, କାହିଁକି ନ ଲାଗଇ ମନ । ଭୂପତି. ପ୍ରେମ-
मुजर लगना (ମୂଳପାଇଁ ଲାଗିବା—ଅନ୍ୟରୂପ) ପଞ୍ଚାମୃତ । ]

ମୂଳ ଶାକଟ—ସଂ. ବି ( ମୂଳ+ତଦୁତ୍ପାଦକ କ୍ଷେତ୍ରାର୍ଥେ ଶାକଟ )—
Mūḻa śākaṭa ଯେଉଁ କ୍ଷେତ୍ର ମୂଳା ଆଦି ମୂଳଯୁକ୍ତ ଫସଲ
(ମୂଳଶାକିନ—ଅନ୍ୟରୂପ) କରିବାପାଇଁ ଉପଯୋଗୀ—A field fit for growing esculent roots in (i. e. radish, arum, potato, yam etc).

ମୂଳ(ଳା,ଳୁ) ଶିଙ୍ଗା(ଙ୍ଘା)—ଦେ. ବିଣ ( ସଂ. ମୂଳ+ଶୃଙ୍ଗ )—ଯେଉଁ
Mūḻa(ḻā,ḻu) śiṅgā(ṅghā) ଗୋରୁର ଶିଙ୍ଗର ମୂଳ ମୋଟା
যে গোরুর শিংগের গোড়া মোটা ବା ମୂଳାର ଅଳ୍ପ ପରି—
जड़मे मोटा सिंहवाला Having horns thick at the base; thick-horned.
[ଦ୍ର—ଏ ବଳଦମାନେ ଅକର୍ମଣ୍ୟ । ଡାକ ବଚନ ଅଛି—
ଅଣ୍ଟୋଥିରୁ ମୂଳଶିଙ୍ଗାକୁ ଭଗି; କାନୁଥିରୁ ହୁଡ଼ ମୂଳରେ ବସି । କୃଷିବଚନ ।]

ମୂଳ ଶୋଧନ—ସଂ. ବି—୧। ପୁଣ୍ଡରୀକ ବୃକ୍ଷ (ବୈଦ୍ୟକ ନିଘଣ୍ଟୁ)—
Mūḻa śodhana ପୁଣ୍ଡରୀ (ଦେଖ)—1. Puṇḍarī (See)
୨। ଯୋଗଶାସ୍ତ୍ରୋକ୍ତ ଅପାନ ବାୟୁର ସ୍ଥାନଶୋଧନରୂପ କ୍ରିୟା—2. The process of cleansing the inside of the anus after passing stools.
[ ଦ୍ର—ବାମହାତର ତର୍ଜନୀ ଅଙ୍ଗୁଳକୁ ତେଲାକ୍ତ କରି ପୁରୀଷୋତ୍ସର୍ଗ ପରେ ଶୌଚ କଲାବେଳେ ସେ ଅଙ୍ଗୁଳ ପ୍ରବେଶପୂର୍ବକ ଗୁହ୍ୟାଭ୍ୟନ୍ତରସ୍ଥ ସ୍ଥାନକୁ ପରିଷ୍କାର କରିବା ପ୍ରକ୍ରିୟାର ନାମ ମୂଳଶୋଧନ । ଏହା ଅଭ୍ୟାସ କଲେ ଅର୍ଶ, ଭଗନ୍ଦର, ଉଦରାମୟ, ଶୂଳ ଆଦି ରୋଗ ଉପଶାନ୍ତ ହୁଏ; ଏହା ପରୀକ୍ଷିତ ଅଟେ । ]

ମୂଳ ସାଧନ—ସଂ. ବି ( କର୍ମଧା )—ପ୍ରଧାନ ଯନ୍ତ୍ର ବା ଉପାୟ ବା
Mūḷa sādhana ଅବଲମ୍ବନ—Principal means.

ମୂଳ(ଳୁ)ସୁଁ—ଦେ. କ୍ରି. ବିଣ—ମୂଳରୁ (ଦେଖ)
Mūḷa(ḷu)suṅ Mūḷaru (See)

ମୂଳ ସୂତ୍ର—ସଂ. ବି—ପ୍ରଧାନ ବା ଅବି ନିୟମ—Fundamental
Mūḷa sūtra rule; elementary principle.

ମୂଳ ସ୍ଥାନ—ସଂ. ବି—୧ । ଆକାଶ—1. The sky. ୨ । ସ୍ୱର୍ଗ—
Mūḷa sthāna 2. Heaven. ୩ । ପୃଥିବୀକୁ ବେଢ଼ିଥିବା ବାୟୁମଣ୍ଡଳ—3. The sphere of the atmosphere encircling the globe. ୪ । ଭଗବାନ୍; ଈଶ୍ୱର—4. God. ୫ । ମୂଲତାନ ନଗରର ପ୍ରାଚୀନ ନାମ ( ଶବ୍ଦକୋଷ )—5. Old name of Multan.

ମୂଳ ସ୍ରୋତଃ—ସଂ. ବି—୧ । ନଦୀର ଉତ୍ପତ୍ତିସ୍ଥାନ ବା ଝରଣା
Mūḷa srotaḥ ( ଶବ୍ଦକୋଷ )—1. The source or spring of a river. ୨ । ମୂଳନଦୀ; ଯେଉଁ ନଦୀରୁ ଶାଖାନଦୀମାନ ବାହାରି ଥାଏ ( ଶବ୍ଦକୋଷ )—2. The main river from which branches flow.

ମୂଳ ହୀନ—ସଂ. ବିଣ (ବହୁବ୍ରୀ ତତ୍)—ଭିତ୍ତିଶୂନ୍ୟ; ଅମୂଳକ—
Mūḷa hīna Groundless; unfounded.

ମୂଳ(ଳୁ)ହୁଁ—ଦେ. କ୍ରି. ବିଣ—ମୂଳରୁ ( ଦେଖ )
Mūḷa(ḷu)huṅ Mūḷaru ( See )

ମୂଳ(ଳୁ ହୁଁ ଶେଷ—ଦେ. କ୍ରି. ବିଣ—ମୂଳଠାରୁ ଶେଷ ପର୍ଯ୍ୟନ୍ତ—
Mūḷa(ḷu)huṅ śesha From the beginning to
গোড়াথিকে শেষ the end.

ମୂଳ(ଳୁ) ହୁଁ ଶେଷ ତକ —ଦେ. କ୍ରି. ବିଣ—ଆଦ୍ୟରୁ ଶେଷ
Mūḷa (ḷu) huṅ śesha taka ପର୍ଯ୍ୟନ୍ତ—From the
(ମୂଳ ହୁଁ) ହୁଁ ଶେଷ—ଅନ୍ୟରୂପ) beginning to the end.

ମୂଳା—ସଂ. ବି ( ମୂଳ+ଅ )—୧ । ( ଜ୍ୟୋତିଷ ) ଉନବିଂଶ ନକ୍ଷତ୍ର
Mūḷā ବା ତାରାପୁଞ୍ଜ—1. ( Astronomy ) The 19th constellation. [ ଦ୍ର—ଏ ନକ୍ଷତ୍ର ୧୧ ତାରାର ସମଷ୍ଟି ଓ ଏହା ଶଙ୍ଖାକୃତି । ନକ୍ଷତ୍ର ଶବ୍ଦ ତଳେ ଟୀକା ଦେଖ । ] ୨ । ଏକପ୍ରକାର ଆଳୁ; ପିଣ୍ଡାଳୁ; ହାଣ୍ଡିଆ ଆଳୁ; ହାତଗୋଡ଼ିଆ ଆଳୁ—2. A species of yam ( Dioscorea A lata variety; Glolbasa). ୩ । ଏକପ୍ରକାର ସ୍ଥାବର ବିଷ—3. A kind of poison. ୪ । ଶତାବରୀ—4. Asparagus Racemosus.

मूला ଦେ. ବି—୧ । ( ସଂ. ମୂଳକ ) କୃଷିଜାତ ଖାଦ୍ୟମୂଳ
मूली ବିଶେଷ—1. Radish; Raphanus Sativus.

ସଂ. ନାମ—ମୂଳ, ମୂଳକ, ହସ୍ତିକଣ୍ଠ, କନ୍ଦମୂଳ, ଦୀର୍ଘକନ୍ଦକ, ଦୀର୍ଘମୂଳ, ହରିପର୍ଣ୍ଣୀ, ମୂଳାହ୍ୱ, ଶାଲକଣ୍ଠ, ମହାକନ୍ଦ, ମୂଳାହ୍ୱବ, ମୃତ୍କ୍ଷାର, ମୂଳାହ୍ୱ, ରାଜାଳୁକ, ରୁଚିର, ହସ୍ତିଦନ୍ତ, ହସ୍ତିଦନ୍ତକ, ହରିତପର୍ଣ୍ଣୀ, ଟଙ୍କମୂଳ, ପୀତ, ଦୀର୍ଘପତ୍ରକ, ରୁଚ୍ୟ, କୁରୁକନ୍ଦକ, ଦୀର୍ଘପତ୍ର, ଦୀର୍ଘକନ୍ଦ
বা. মূলা, মূলি
हि. मूली, मूरई, मूला, ढोरा, चूरनी, फाजि, सारिशा, सेन्ततसारिशा
ତେ. ମୂଲ୍ଲଙ୍ଗି, ମୂଲଙ୍ଗୀଦୁମ୍ପା, ମୂଲଙ୍ଗୀ ଭେଟ୍ଟୁ
ତା. ମୂଲ୍ଲାଙ୍ଗୀ, ମୂଲଙ୍ଗୀ
ମ. ମୂଲଙ୍ଗୀ, ମୂଲ୍ଲ, ମୂଲ୍ଲପଲୀ
ଆ. ଫଜଲ, ବଜରୁଲ୍ ଫଜଲ୍
ଫା. ତୁଖ୍, ତୁଖ୍ ମତୁଖ୍

[ ଦ୍ର—ମୂଳା ଭାରତର ସର୍ବତ୍ର କୃଷିଦ୍ୱାରା ଉତ୍ପାଦନ କରାଯାଏ । ଏଥିର ପତ୍ର ଶାଗ ହୁଏ ଏବଂ ମୂଳ ତିଅଣ କରାଯାଏ । କେହି କଞ୍ଚାମୂଳା ମଧ୍ୟ ଖାଆନ୍ତି । କୌଣସି କୌଣସି ମୂଳା ଗୋଲ ଓ ଅଧିକାଂଶ ମୂଳା ଲମ୍ବ । ଏଥିର ଚେର ଓ ମଞ୍ଜି ଔଷଧରେ ଲାଗେ । ଅର୍ଶରୋଗର ଏହା ଭଲ ଔଷଧ । ଏହା କଟୁରସପ୍ରଧାନ । ମୂଳା ନାନା ଆକୃତି ଓ ନାନା ବର୍ଣ୍ଣବିଶିଷ୍ଟ । ଯଥା—ଧଳା, କଳା, ନାଲି । ସାଲଗମ, ଗାଜର, ବୀଟ୍ ଆଦି ମଧ୍ୟ ଏହି ଜାତୀୟ । ମୂଳା ଶୀତକାଳରେ ଫଳେ । ମାଘ ମାସରେ ଏହା ଖାଇବା ନିଷିଦ୍ଧ । ଢଗ ଅଛି—ମାଘେ ବଇକୋଳ ମକରେ ମୂଳା, ଗୋରୁ ମାଂସ ସ୍ଥୁଳା ପୁଲା ।

ବୈଦ୍ୟଶାସ୍ତ୍ର ମତରେ ମୂଳା କଟୁରସ, ରୁକ୍ଷ, ଉଷ୍ଣବୀର୍ଯ୍ୟ, ରୁଚିକର, ଲଘୁ, ପାଚକ, ତ୍ରିଦୋଷନାଶକ ଓ ସ୍ୱରପ୍ରସାଦକ । ଏହା ଜ୍ୱର, ଶ୍ୱାସ, ନାସିକାରୋଗ, କଣ୍ଠରୋଗ ଓ ନେତ୍ରରୋଗର ନାଶକ । ଏହା ଘିଅ ତେଲାଦିରେ ସିଦ୍ଧ କରି ସେବନ କଲେ ତ୍ରିଦୋଷ ନାଶ ହୁଏ—ଦ୍ରବ୍ୟଗୁଣ । ]
୨ । ( ଲକ୍ଷଣାର୍ଥ ) କୌଣସି ଅନିଷ୍ଟକାରକ ପଦାର୍ଥ ବା ବସ୍ତୁ—2. (figurative) Any injurious thing. (ଉ-କିଣିଲି ମୂଳା, ମୋ ପାଇଁକି ହେଲା ଶୂଳା—ଢଗ ।) [ଦ୍ର-କୌଣସି ବ୍ୟକ୍ତିର ଅନିଷ୍ଟ କରିବାକୁ ଧମକାଇଲେ ଇତର ଲୋକେ କହିଥାନ୍ତି—'ତୋ ପାଇଁ ଗୋଟିଏ ମୂଳା ସଜାଡ଼ୁଛି ।' ଅଶ୍ଳୀଳ ଅର୍ଥରେ ମଧ୍ୟ ଏହା ବ୍ୟବହୃତ ହୁଏ । ]

ମୂଳାଂଶ—ସଂ. ବି ( ମୂଳ + ଅଂଶ )—( ଉଦ୍ଭିଦ ବିଜ୍ଞାନ ) ବୃନ୍ତମୂଳ—
Mūḷāṁśa ( Botany ) The lower attenuated part of the petal of flower; the top of the stem which joins the flower to the stem.

ମୂଲ(ଲେ)ଇବା—ଦେ. କ୍ରି ( ସଂ. ମୂଲ୍ୟ ଶବ୍ଦରୁ ଓଡ଼ିଆ କ୍ରିୟା )—
Mūlā(le)ibā ୧ । କୌଣସି ଦ୍ରବ୍ୟ କିଣିବା ଉଦ୍ଦେଶ୍ୟରେ ଦରଦାମ କରିବା—1. To bargain for; to make valuation of a thing to purchase it; to appraise. [ ଉ—ପଇସା ନ ଥାଇ ମୂଲ୍ୟଉଥାଏ । ଦେଖୁଥିଲେ ପେଟ ଫୁଲଉଥାଏ—ଢଗ । ] ୨ । କୌଣସି ଅପଦକୁ ବା ଦଣ୍ଡକୁ ଆପଣା ଉପରକୁ ଡାକି ଆଣିବା; ଦଣ୍ଡାର୍ହ କାର୍ଯ୍ୟ କରିବା—2. To deserve or court a punishment. ( ଉ—ସେ ଗୁଡ଼ାଏ ମାଡ଼ ମୂଲ୍ୟଇଲାଣି—ଢଗ । )
দর্ দাম করা
मोल दोल करना
मोलना
কেনা
मोलाना

ମୂଳା(ଳେ)ଇବା—ଦେ. କ୍ରି ( ସଂ. ମୂଳ ଶବ୍ଦରୁ ଓଡ଼ିଆ କ୍ରିୟା )—
Mūḷā(ḷe)ibā ବୃକ୍ଷ ଆଦିକୁ ମୂଳରୁ ଛେଦିବା—To cut a tree at the ground level.

ମୂଲା(ଲେ)ଇ ମାରିବା—ଦେ. କ୍ରି ( ସ ମୂଳ )—୧ । ଅସ୍ତ୍ରାଦିର ମୂଳକୁ
Mūḷā(ḷe)i māribā ଧରି ଆଘାତ କରିବା—1. To strike
जड पकडके मारना by holding a weapon tightly at the root of the hilt. ୨ । ଗଛକୁ କାଟିବାବେଳେ ଗଛ ତେରକୁ ମିଶାଇ ମୂଳରୁ ହାଣିବା—2. To cut a tree at the ground level. ୩ । ( ସବାରି ବେହେରାଙ୍କ ଭାଷା ) ସବାରି ବାଉଁଶର ମୂଳଦେଶକୁ ( କାନ୍ଧେଇଥିବା ଗଉଡ଼ ) ଦୃଢ଼ତା ସହକାରେ ପେଲି ସବାରିର ଗତିକୁ ଦ୍ରୁତତର କରାଇବା—3. ( Palki-bearers' language ) To push a palki by applying force with the shoulders at the root of the pole.

ମୂଳା କାଞ୍ଜି—ଦେ. ବି ( ସ ମୂଳକ+କାଞ୍ଜିକା )—ଯେଉଁ କାଞ୍ଜିରେ
Mūḷā kānji ମୂଳା ସିଝା ହୋଇଥାଏ—Stale rice-water
মূলোর কাঁজি boiled with radish.

ମୂଳାଣୁ—ସ. ବି ( ମୂଳ+ଅଣୁ )—( ଉଦ୍ଭିଦ ବିଜ୍ଞାନ ) ବୀଜର ଯେଉଁ
Mūḷāṇu ଅଂଶ ଜନ୍ମ ହେବାକୁ ବୃଦ୍ଧି ପାଇ ତେରରୂପେ ଭୂମିରେ ପ୍ରବେଶ କରେ—( Botany ) The radicle; that part of the seed which on vegetating becomes the root and shoots downwards.

ମୂଳାଧାର—ସ. ବି—୧ । ( ତନ୍ତ୍ର ) ଶରୀରାଭ୍ୟନ୍ତରସ୍ଥ ଷଟ୍‌ଚକ୍ରରୁ
Mūḷādhāra ଏକତମ; ଗୁହ୍ୟ ଓ ଲିଙ୍ଗର ମଧ୍ୟବର୍ତ୍ତୀ ଅଙ୍ଗୁଳି ଚତୁଷ୍ଟୟ ପରିମିତ ସ୍ଥାନ—1. The perineum; the space between the rectum and the genital organ. [ଦ୍ର—ଏହାର ଅନ୍ୟନାମ ତ୍ରିକୋଣ । ଏହା ଇଚ୍ଛା, ଜ୍ଞାନ ଓ କ୍ରିୟାତ୍ମକ । ଏଥି ମଧ୍ୟରେ କୋଟି-ସୂର୍ଯ୍ୟପ୍ରଭ ସ୍ୱୟମ୍ଭୂଲିଙ୍ଗ ଅବସ୍ଥିତ । ଏଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ (ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା) ପ୍ରବାହିତ । ଏହିଠାରେ କୁଳକୁଣ୍ଡଳିନୀଙ୍କର ଅବସ୍ଥାନ । ] ୨ । ମୂଳ କାରଣ; ଆଦ୍ୟ କାରଣ—2 The primordial cause.

ମୂଳାୟତନ—ସ. ବି (କର୍ମଧା)—୧ । ଆଦ୍ୟ ନିବାସ—1. Original
Mūḷāyatana residence. ୨ । ପୈତୃକ ଉଦ୍ୱାସନ (ଶବ୍ଦକୋଷ)—2 One's ancestral residence.

ମୂଳାଶୀ—ସ. ବିଣ. ପୁଂ (ମୂଳ+ଅଶ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)
Mūḷāśī —ମୂଳ ଖାଇ ପ୍ରାଣଧାରଣ କରୁଥିବା ( ବ୍ୟକ୍ତି )—
(ମୂଳାଶିନୀ—ସ୍ତ୍ରୀ) Subsisting on roots.

ମୂଳାଷ୍ଟମୀ—ସ. ବି—ଆଶ୍ୱିନ କୃଷ୍ଣଅଷ୍ଟମୀ; ଦୁର୍ଗାବାମନ ପୂଜା; ଜାମୁତ-
Mūḷāshṭamī ବାହନପୂଜା—The 8th day in the dark fortnight of the lunar month of Āświna. [ ଦ୍ର—ଏ ଦିନ ଦୁର୍ଗାଙ୍କର ଶରତ୍‌କାଳୀନ ଉତ୍ସବ ବା ଷୋଳପୂଜାର ମୂଳ ଅର୍ଥାତ୍ ଆରମ୍ଭ ହେବାରୁ ଏହାର ଏପରି ନାମକରଣ ହୋଇଅଛି । ]

ମୂଳା ସାଇଁ—ଦେ. ବି—୧ । ମୂଳା ବୁଢ଼ା ହୋଇଗଲେ ତହିଁରୁ ବାହାରିବା
Mūḷā sāiṅ ଚୋମଡ଼ା ଅଂଶ ବା ତନ୍ତୁ—1. The hard fibres of old radish. ୨ । ବୁଢ଼ା ହୋଇ ଯାଇଥିବା
বুড়ো মূলা ଚୋମଡ଼ା ମୂଳା—2. Radish left in the field
शीरवाली मूली for an unduly long period.

ମୂଳାହ୍ୱ—ସ. ବି (ମୂଳ+ଆହ୍ୱା)—୧ । ମୂଳକ; ମୂଳା-1. Radish.
Mūḷāhwa ୨ । ମୂଳ—2. Root.

ମୂଳି—ଦେ. ବି (ସ. ମୂଳ)—୧ । ଔଷଧ ନିମନ୍ତେ ବ୍ୟବହୃତ ମୂଳ—
Mūḷi 1. Herbarious roots. ୨ । ବାଉଁଶର ତେର ବା
শিকড় ମୂଳ ନିକଟସ୍ଥ ଅଂଶ—2. The part of a bamboo
जडी which adjoins the root. ୩ । (ପୁଂ) ଲୋକଙ୍କ ନାମ—3. A name given to males. [ ଦ୍ର—ଇତର ଜାତିର ବ୍ୟକ୍ତିମାନଙ୍କ ମଧ୍ୟରେ ଏ ନାମ ପ୍ରଚଳିତ ।] ପ୍ରାଦେ. ( ଗଞ୍ଜାମ )—ଯାଚକବିଶେଷ—A sect of Śūdras in the district of Ganjam.

ମୂଳିଆ—ଦେ. ବିଣ ( ସ. ମୂଳୀୟ )—ମୂଳ ସମ୍ବନ୍ଧୀୟ—Relating
Mūḷiā to a root. [ଦ୍ର—ହେ କୃଷ୍ଣ କଦମ୍ବମୂଳିଆ ! ଭୂପତି. ପ୍ରେମପଞ୍ଚାମୃତ । ] ଦେ. ବି—୧ । ସବାରି ବାଉଁଶର ମୂଳ ଦେଶରେ କାନ୍ଧେଇଥିବା ବେହେରା—1. A bearer who puts his shoulder at the root of the palki-pole. ୨ । (ପୁଂ) ଯେ ପେଟରେ ଥିବାବେଳେ ବାପ ମରିଯାଏ ବା ଯେ ଜନ୍ମ ହେବା ପରେ ମା ମରିଯାଏ,
(ମୂଳନାଥ, ମୂଳି—ଅନ୍ୟରୂପ) ଏପରି ଶିଶୁ—A name given to a boy whose father died before his birth, or whose mother died immediately after giving birth to him.

ମୂଲିଆ—ଦେ. ବି. ପୁଂ (ସଂ. ମୂଲ୍ୟ)—ମଜୁରିଦାର; ଯେଉଁ ବ୍ୟକ୍ତି
Mūliā ଦୈନିକ ମଜୁରି ପାଇଁ କାମ କରେ—A day-
মজুর मुजर labourer; a cooly.
( ମୂଲିଆଣୀ—ସ୍ତ୍ରୀ )

ମୂଳିଆ ଠେଙ୍ଗା—ଦେ. ବି—ବାଉଁଶ ଗଛର ମୂଳ ପାଖ ଗଣ୍ଡିରୁ କଟା
Mūḷiā ṭhengā ହୋଇ କରାଯାଇଥିବା ଠେଙ୍ଗା—A stick
[ମୂଳ(ଳି) ଠେଙ୍ଗା—ଅନ୍ୟରୂପ] made of a piece of
বাংশের গোড়াই লাঠি bamboo taken from the root.
जडका ठँगा

ମୂଲିଆ ପୁଅ—ଦେ. ବି—୧ । (ମୂଲିଆ ପ୍ରତି କରୁଣାବ୍ୟଞ୍ଜକ
Mūliā pua ପ୍ରୟୋଗ) ଦୟାର୍ହ ମୂଲିଆ—1. (A term of
মজুর বেচারা pity) A poor day-labourer. ୨ । ନିର୍ଦ୍ଧନ
मजुर पुत ବ୍ୟକ୍ତି (ଯାହାର ମୂଲ ଲାଗିବା ଛଡ଼ା ପୋଷଣର ଅନ୍ୟ ଉପାୟ ନାହିଁ)—2. A poor man.

ମୂଲିଆ ବାପ(ପୁ)ଡ଼ା
ମୂଲିଆ ଚଉ(ଗୁ)ରି } —ଅନ୍ୟରୂପ
ମୂଲିଆ ଲୋକ

୩ । ପୁରୁଷାନୁକ୍ରମେ ମୂଲ ଲାଗି ପୋଷି ହେବା ବ୍ୟକ୍ତି—3. A person who and whose ancestors have been day-labourers.

**ମୂଲିଅ ମୁଣ୍ଡ**—ଦେ. ବି—ଗରିବ ମୂଲିଆ ବ୍ୟକ୍ତି—A poor day-
Mūliā muṇḍa labourer. [ଉ—ଥରେ ତ ମୂଲିଆ
ଜନମଜুর ମୁଣ୍ଡ, ଘାଣ୍ଟିଲୁଗା ଚିହ୍ନିବାକୁ ଦେଖା କାହୁଁ ପାଇବା ?]
**मजुरविचारा**

**ମୂଲିକ**—ସ. ବିଣ—(ମୂଲ+ଇକ)—୧ । ମୂଳ ସମ୍ବନ୍ଧୀୟ—1.
Mūlika Radical; relating to the root. ୨ ।
କପୋଳର ଭୂମି ବା ମୂଳ ଅଞ୍ଚଳ ଅବସ୍ଥିତ—2. Situate
towards the base of the skull. ୩ ।
(ସଂ) ମୂଳଭୋଜୀ (ପ୍ରକୃତିବାଦ)—3. Subsisting on
roots. ୪ । ଆଦ୍ୟ; ପ୍ରଥମ (ଶବ୍ଦକୋଷ)—4. First;
prime. ୫ । ପ୍ରଧାନ (ଶବ୍ଦକୋଷ)—5. Chief. ସ.
ବି. ପୁଂ—(ଯେ ବନ୍ୟମୂଳ ଖାଇ ବଞ୍ଚନ୍ତି)—ସନ୍ନ୍ୟାସୀ;
(ମୂଳିକା—ସ୍ତ୍ରୀ) ଯୋଗୀ (ଶବ୍ଦକୋଷ)—An anchorite;
a recluse.

**ମୂଳିକା**—ସ. ବି (ମୂଳ+କ+ଆ)—ମୂଳସମୂହ (ଶବ୍ଦକୋଷ—
Mūlikā Roots). ସଂ. ବିଣ. (ମୂଳକ+ଆ)—ମୂଳକର
শিকড়, জড়িবুটী ସ୍ତ୍ରୀଲିଙ୍ଗ—Feminine of Mulaka (see)
**जडिबुटी** ବି. ଦେ. ବି—(ସ. ମୂଳିକା) ମୂଳମୂଳିକା; ଠୁଡୁଠୁଆ
ଔଷଧ ପାଇଁ ବ୍ୟବହୃତ ଚେର ମୂଳମାନ—Her-
barious roots; root and herbs. [ଯଥା—ଯନ୍ତ୍ର
ମନ୍ତ୍ର ଗୁଣି ମୂଳିକା କ ମଣି ଯୁବା ଭୂଜଙ୍ଗୀର ବଶ; ଯତନେ
କବରେ ହିଂସ୍ର ଖାନ୍ତି କଲ୍ପ ଦୃଗବଚନ ପୀୟୂଷ । ପ୍ରାଚୀ—
ରୂପନ୍ତ. ଚୌତିଶା ] । ପ୍ରାଦେ. (ସିଂହଭୂମି) ବି—ଯାଢ଼
(ଦେଖ)—Jāṛdha (see)

**ମୂଲିବାଉଁଶ**—ଦେ. ବି. ୧ । ବାଉଁଶର ମୂଳ ପାଖର ଗଡ଼—
Mūli bāuṅsa 1. The part of a bamboo near
বাঁশের গোড়া its root. ୨ । ଏକଜାତୀୟ କଣ୍ଟାବାଉଁଶ—
**जडबाँस** 2. A kind of thorny bamboo.

**ମୂଲି ମୂଲିକା**—ଦେ. ବି—ଔଷଧାର୍ଥ ବ୍ୟବହୃତ ଚେରମୂଳ—
Mūli mūlikā Herbarious roots.
জড়ি বুটী **जडि बुटी**

**ମୂଳି ଲଗା(ଗେ)ଇ ଦେବା**—ଦେ. କ୍ରି.—ଗଛକୁ ଏପରି ଭାବରେ
Mūli lagā(ge)i debā କାଟିଦେବା ବା ଗୋଡ଼େଇଦ
গোড়ায় কাটা ଦେଇଯିବା ଯେପରି ବାହାର ମୂଳର
**जडसेखाना** କୌଣସି ଅଂଶ ଭୂମି ଉପରକୁ ଦେଖାଯିବ ନାହିଁ—
To destroy or cut a plant or tree in
such a manner so as not to leave any
stump outstanding.

**ମୂଲୀ**—ସ. ବି (ମୂଳ+ଅସ୍ତ୍ୟର୍ଥେ. ଇନ୍; ୧ମା. ୧ବ)—୧ । ବୃକ୍ଷ—
Mūli 1. Tree ୨ । ଗୃହଗୋଧିକା; ଘରି; ଝିଟିପିଟି—
2. House; lizard. ୩ । ଔଷଧ ( ଶବ୍ଦକୋଷ )—
3. Herb. ସ. ବିଣ—୧ । ମୂଳ ବିଶିଷ୍ଟ—1.
Having root. ୨ । ମୌଳିକ—2. Funda-
ntal.

**ମୂଲୀଭୂତ**—ସ. ବିଣ (ମୂଳ+ଅଭୂତ. ତଦ୍ଭାବେ ଚ୍ୱି+ଭୂ+ତ)—
Mūlibhūta ୧ । ମୂଳକାରଣସ୍ୱରୂପ—1. Being the
source or origin of a thing. ୨ । କାରଣୀ-
ଭୂତ; ଆଦ୍ୟ—2. Primary; primordial.

**ମୂଲୀୟ**—ସ. ବିଣ (ମୂଳ+ଈୟ)—ମୂଳସମ୍ବନ୍ଧୀୟ—Relating to
Mūliya 'Mūla'. [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ;
ଯଥା—ଜିହ୍ୱାମୂଳୀୟ । ]

**ମୂଲୁଁ(ଲୁ)**—ଦେ. କ୍ରି. ବିଣ—ମୂଳରୁ (ଦେଖ)
Mūluṅ(lu) Mūlaru (See)
( ମୂଳୁଁ, ମୂଳୁଁ—ଅନ୍ୟରୂପ )

**ମୂଲୁମୂଲିଆ**—ଦେ. ବିଣ. ପୁଂ—୧ । ଅଳସୁଆ; ଯେ ଅଳ୍ପ ସମୟରେ
Mūlumūliā କରାଯିବା କାମକୁ ବହୁ ସମୟରେ କରେ—
আলসে 1. Idle; slow; a person who does a little
**चिच पिचिया** work in a long time; dilatory.
(ମୂଳୁମୂଳେଇ—ସ୍ତ୍ରୀ) ୨ । କାର୍ଯ୍ୟ କରିବାକୁ ଅନିଚ୍ଛୁକ—
2. Unwilling to work.

**ମୂଲୁ ମୂଲୁ**—ଦେ. ବି—କାର୍ଯ୍ୟ କରିବାରେ ବିଳମ୍ବ—
Mūlu mūlu Delay in finishing a work.
বিলম্ব ଦେ. ବିଣ—ମୂଳୁମୂଳିଆ (ଦେଖ)
**चिचपिच** Mūlumūliā (See)

**ମୂଲେ**—ଦେ. (ପ୍ରାଚୀନ ପ୍ରୟୋଗ) ଅ. (ସ. ମୂଳଂ) ପ୍ରାଦେ. (ଗଞ୍ଜାମ,
Mūle ଗଡ଼ଜାତ) ଅ—୧ । ଦ୍ୱାରା; ଜରିଆରେ—1. Per; by;
তে through. [ଉ—ଅର୍ଜୁନମୂଳେ ଶତ୍ରୁଙ୍କୁ ଗୁହାର କଲ । ]
**से** ୨ । ଠାରେ; ପାଖରେ; ନିକଟରେ—2. At; near. [ଉ—
ପରମ ହଂସ ମୁକୁମୂଳେ, ଯେ ଥାନ୍ତି ପୁଣ୍ୟ ତୀର୍ଥକୂଳେ ।
ଜଗନ୍ନାଥ. ଭାଗବତ । ] ୩ । ନିକଟକୁ; ପାଖକୁ—
3. To. [ଭୁଳନାକର—ଚଣ୍ଡୀପୁରାଣ ୬ଷ୍ଠ ଅଧ୍ୟାୟ, ଅଷ୍ଟମ
ଶ୍ଳୋକ—

"ସ ଦୃଷ୍ଟ୍ୱା ତାଂ ତତୋ ଦେବୀଂ
ତୁହିନାଚଳ ସଂସ୍ଥିତାମ୍,
ଜଗାଦୁଚ୍ଚୈଃ ପ୍ରକାଶାଢ଼
ମୂଲଂ ଶୁମ୍ଭନିଶୁମ୍ଭୟୋଃ ।"

ଏଠାରେ 'ଶୁମ୍ଭ ନିଶୁମ୍ଭୟୋ ମୂଲଂ' ର ଅର୍ଥ 'ଶୁମ୍ଭ ନିଶୁମ୍ଭଙ୍କ
ନିକଟକୁ' । ] ୪ । ସମ୍ମୁଖରେ—4. In front of.
୫ । ସହିତ—5. With. [ଉ—ସନକମୂଳେ ଋଷିଗଣେ,
ଖଟନ୍ତି ଅଭୟ ଚରଣେ । ଜଗନ୍ନାଥ. ଭାଗବତ ।]୬ । ମୂଳୀ-
ଭୂତ କାରଣ—6. On the basis of. [ ଉ—
କବାଳମୂଳେ ହକ୍ ପାଇବା । ]

**ମୂଲେଇବା**—ଦେ. କ୍ରି—୧ । ମୂଳପୋଛ କରିବା; ମୂଳରୁ ପୋଛି କରି
Mūleibā କାଟି ଦେବା—1. To cut a tree at the
গোড়াকাটা root or at the level of the ground.
**जडसे काटना** ୨ । ମୂଳୋଚ୍ଛେଦ କରିବା; ମୂଳ ଉପାଡ଼ିବା—
2. To eradicate; to uproot.

ମୂଳୋଚ୍ଛେଦ—ସଂ. ବି ( ମୂଳ + ଉଚ୍ଛେଦ; ୬ଷ୍ଠୀ ତତ୍ )—୧ । ମୂଳ
Mūlochchheda କାଟିବା, ମୂଳଚ୍ଛେଦ—1. Cutting of
(ମୂଳୋଚ୍ଛେଦକ—ଅନ୍ୟରୂପ) the root. ୨ । ( ଲକ୍ଷଣାର୍ଥ )
[ମୂଳୋଚ୍ଛେଦକ, ମୂଳୋଚ୍ଛିନ୍ନ—ବିଣ] ସମୂଳ ବିନାଶ—
2. (figurative) Eradication.

ମୂଳୋତ୍ଖାତ—ସଂ. ବିଣ (ମୂଳ + ଉତ୍ଖାତ; ୭ମୀ ତତ୍)—୧ । ମୂଳୋ-
Mūlot-khāta ତ୍ପାଟିତ—1. Eradicated. ୨ । ଉନ୍ମୂଳି-
ତ—2. Uprooted. ୩ । ( ଲକ୍ଷଣାର୍ଥ ) ସମୂଳ
ବିନଷ୍ଟ—3. ( figurative ) Extirpated. ସଂ.
ବି—ମୂଳୋତ୍ପାଟନ ( ଦେଖ )—Mūlotpātana
( See )

ମୂଳୋତ୍ପାଟନ—ସଂ. ବି ( ମୂଳ + ଉତ୍ପାଟନ )—୧ । ଗଛର ମୂଳ
Mūlot-pātana ଉପାଡ଼ିବା—1. Eradication. ୨ ।
ମୂଳୋତ୍ପାଟକ } ବିଣ ଉନ୍ମୂଳିକରଣ—2. Uprooting.
ମୂଳୋତ୍ପାଟିତ } ୩ । ( ଲକ୍ଷଣାର୍ଥ ) ସମୂଳ ବିନାଶ—
3. ( figurative ) Extirpation.

ମୂଳୌଷଧି—ସଂ. ବି ( ସ. ଧ. ଲେ )—ଔଷଧରୂପେ ବ୍ୟବହୃତ ମୂଳ—
Mūlaushadhi Herbarious root.

ମୂଲ୍ୟ—ସଂ. ବି ( ମୂଳ=ବସ୍ତୁର ଉତ୍ପତ୍ତି କାରଣ ଅର୍ଥାତ୍ ପରିଶ୍ରମ +
Mūlya ଯ )—୧ । ଦ୍ରବ୍ୟାଦିର ଦାମ ବା ପଣ—1 Value
or price of a thing. ୨ । ମୂଲ; ପରିଶ୍ରମର ଦାମ—
2, Wages; remuneration for labour.
୩ । ବ୍ୟବହାର ପାଇଁ ଦିଆଯିବା ଭଡ଼ା—3. Hire.
୪ । ବେତନ—4. Salary. ସଂ. ବିଣ ( ମୂଲ ଧାତୁ
+ ଯ )—୧ । ରୋପଣଯୋଗ୍ୟ—1. Fit to be
planted. ୨ । ପ୍ରତିଷ୍ଠାଯୋଗ୍ୟ—2. Fit to be
established. ୩ । କିଣିବା ଯୋଗ୍ୟ—
3. Purchasable. ୪ । ଦାମୀ—4. Valuable.
୫ । ( ମୂଳ + ଯ; ଯେଉଁ ଶସ୍ୟାଦିର ଗୁଳ୍ମ ମୂଳରୁ
ଉତ୍ପାଟିତ କରାଯାଏ ) ମୁଦ୍ଗାଦି ଶସ୍ୟ ( ଶବ୍ଦକୋଷ )—
5. Cereals; grains-pulse.

ମୂଲ୍ୟ କରିବା—ଦେ. କ୍ରି—ମୂଲ କରିବା ( ଦେଖ )—
Mūlya kariba Mūla kariba ( See )
दाम करना मूल्य करना

ମୂଲ୍ୟ ଧରିବା—ଦେ. କ୍ରି—ପୂର୍ବରୁ କୌଣସି ବସ୍ତୁର ଅନୁମାନିକ ମୂଲ୍ୟ
Mūlya dharibā ସ୍ଥିର କରିବା—To estimate roughly
মোটামোটি হিসাব করা the price ( of anything ) in
मूल्य लगाना advance.

ମୂଲ୍ୟ ଧାର୍ଯ୍ୟ କରିବା—ଦେ. କ୍ରି—କୌଣସି ବସ୍ତୁର ମୂଲ୍ୟ ନିର୍ଦ୍ଧାରଣ
Mūlya dhārjya karibā କରିବା—To fix a price;
মূল্য ধার্য্য করা मूल्य धरना to settle a price.

ମୂଲ୍ୟ ନାଶକ—ସଂ. ବିଣ—ଯାହା କୌଣସି ବସ୍ତୁର ଦର କମାଇ ଦିଏ—
Mūlya nāsaka Depreciating the value of a
thing.

ମୂଲ୍ୟ ନିରୂପଣ—ସଂ. ବି ( ୬ଷ୍ଠୀ ତତ୍ )—ପଦାର୍ଥର ଦାମ ଠିକ୍ କରିବା;
Mūlya nirūpana ଦରଦାମ କରିବା—Ascertainment
of the price of a thing; appraisement.
( ମୂଲ୍ୟକରଣ, ମୂଲ୍ୟନିର୍ଣ୍ଣୟ, ମୂଲ୍ୟ ନିର୍ଦ୍ଧାରଣ—ଅନ୍ୟରୂପ )

ମୂଲ୍ୟବାନ୍—ସଂ. ବିଣ (ମୂଲ୍ୟ + ଅସ୍ତ୍ୟର୍ଥେ ବତ୍; ୧ମା. ୧ବ)—ବହୁମୂଲ୍ୟ
Mūlyabān —Valuable.

ମୂଲ୍ୟବାନ୍ ଦଲିଲ୍—ଦେ. ବି ( ଦଲିଲ )—ଯେଉଁ ଦଲିଲ ବଳରେ
Mūlyabān dalil କୌଣସି ଅର୍ଥ ବା ସମ୍ପତ୍ତି ମିଳିଥାଏ ବା
মূল্যবান্ দলীল মিলে; ଯାହା ହଜିଗଲେ ବା ନଷ୍ଟ ହୋଇଗଲେ ଉକ୍ତ
मूल्यवान दलील ଦଲିଲ ସମ୍ପୃକ୍ତ ବ୍ୟକ୍ତିର କ୍ଷତି ହୁଏ—
Valuable security; valuable document.

ମୂଲ୍ୟହୀନ—ସଂ. ବିଣ ( ୩ୟା ତତ୍ )—୧ । ଯାହାର କିଛିମାତ୍ର ମୂଲ୍ୟ
Mūlyahīna ନାହିଁ—1. Valueless. ୨ । ଅମୂଲ୍ୟ
( ମୂଲ୍ୟ ବର୍ଜିତ—ଅନ୍ୟରୂପ ) ( ଶବ୍ଦକୋଷ )—2. Price-
( ମୂଲ୍ୟବାନ—ବିପରୀତ ) less; of very great value.

ମୂଲ୍ୟାବଧାରଣ—ସଂ. ବି—ମୂଲ୍ୟ ନିରୂପଣ ( ଦେଖ )
Mūlyābadhārana Mūlya nirūpana ( See )

ମୂଷ୍ ( ଧାତୁ )—ସଂ—ଚୋରି କରିବା; ଲୁଟି କରିବା—
Mūsh ( root ) To rob, to steal.

ମୂଷ—ସଂ. ବି ( ମୂଷ୍ ଧାତୁ + କର୍ତ୍ତୃ. କ୍ୱିପ୍ )—୧ । ମୂଷା (ଶବ୍ଦକୋଷ)
Mūsh 1. Mouse; rat. ୨ । ( + କରଣ. କ୍ୱିପ୍ )
ତୈଜସାବର୍ତ୍ତିନୀ (ଶବ୍ଦକୋଷ); କୋଇ—2. Crucible.

ମୂଷ—ସଂ. ବି. ପୁଂ—୧ । (ମୂଷ୍ ଧାତୁ=ଚୋରି କରିବା + କର୍ତ୍ତୃ. ଅ)—
Musha ମୂଷା; ଉନ୍ଦୁର—1. Mouse ୨ । ( + କରଣ.
(ମୂଷା—ସ୍ତ୍ରୀ) ଅ) ଧାତୁ ତରଳାଇବାର ପାତ୍ର; କୋଇ; ତୈଜସାବର୍ତ୍ତିନୀ
—2. Crucible.

ମୂଷକ—ସଂ. ବି. ପୁଂ ( ମୂଷ୍ ଧାତୁ=ଚୋରି କରିବା + କର୍ତ୍ତୃ. ଅକ )—
Mūshaka ୧ । ମୂଷା; ଉନ୍ଦୁର—1. Mouse; rat. ୨ ।
(ମୂଷିକା—ସ୍ତ୍ରୀ) ତସ୍କର; ଚୋର—2. Thief. ୩ । ଦସ୍ୟୁ, ଲୁଣ୍ଠନ-
କାରୀ—3. Dacoit; robber. ୪ । ( କରଣ. ଅକ )
ତୈଜସାବର୍ତ୍ତିନୀ; କୋଇ (ଶବ୍ଦକୋଷ)—4. Crucible.

ମୂଷକାଦ—ସଂ. ବି ( ମୂଷକ + ଅଦ୍ ଧାତୁ + କର୍ତ୍ତୃ. ଅ )—ବିରାଡ଼ି—
Mūshakāda Cat.
( ମୂଷକଭକ୍ଷ, ମୂଷକାରାତି, ମୂଷକାରି—ଅନ୍ୟରୂପ)

ମୂଷଣ—ସଂ. ବି ( ମୂଷ୍ ଧାତୁ=ଚୋରି କରିବା + ଭାବ. ଅନ )—
Mūshana ଅପହରଣ; ଚୋରି—Theft.

ମୂଷଳ ( ଇତ୍ୟାଦି )—ସଂ. ବି—ମୁଷଳ ଇତ୍ୟାଦି ( ଦେଖ )
Mūshala ( etc ) Mushala etc ( See )

ମୂଷଲୀ—ସଂ. ବି—ତାଳମୂଳୀ ( ଦେଖ )—Tālamūlī ( See )
Mūshalī ସଂ. ବିଣ. ପୁଂ—ମୁଷଲୀ ( ଦେଖ )—Mūshalī
( See )

ମୂଷା—ସଂ. ବି. ସ୍ତ୍ରୀ ( ମୂଷ୍ ଧାତୁ=ଚୋରି କରିବା + କର୍ତ୍ତୃ. ଅ + ସ୍ତ୍ରୀ.
Mushā ଆ )—୧ । ମାଈ ମୂଷା—1. A female rat.
୨ । ଏକପ୍ରକାର ତୃଣ—2. A sort of grass.

୩ । (+କରଣ ଅ+ଅ) ଗବାକ୍ଷ—3. Window. ୪ । କୋଇ—4. A crucible. ୫ । ଦେବତାଡ଼ଲତା—5. Andropegen Serratus (creeper).

ଇନ୍ଦୁର — ଦେ. ବି ( ପୁଂ ଓ ସ୍ତ୍ରୀ ) ( ସଂ. ମୂଷିକ )—
ইঁদুর, চুহা, মূষা — ମୂଷିକ; ପୁଚ୍ଛ ଓ ତୀକ୍ଷ୍ଣ ଦନ୍ତବିଶିଷ୍ଟ କ୍ଷୁଦ୍ର
ତେ. ପାଳିକକ୍କୁ — ଚତୁଷ୍ପଦ କଲେବରୁ ଜୀବ—Mouse; rat.
ମ. ଉନ୍ଦୀର — ( ଭୂଲ ଇଂ. ମାଉସ୍, ପ୍ରାଚୀନ ଇଂ. ମୁସ୍, ଲାଟିନ୍. ମୁସ୍, ଗ୍ରୀକ୍ ମୁସ୍ । ) [ ଉ—କ୍ଷୁଧା ଅନଳେ ଓଷ୍ଠ ଅଗ୍ନି । କୃଷ୍ଣଣ ମୂଷା ଯେସନେ ଖାଇ— ଜଗନ୍ନାଥ. ଭାଗବତ । ] [ ଦ୍ର—ଏ ଦେଶରେ ମୂଷା ଅନେକ ପ୍ରକାରେ ଦେଖାଯାଆନ୍ତି । ଯଥା—୧ । ଗଛୁଆ ମୂଷା ( ବ. ଗାଛୁଯା ଇନ୍ଦୁର )—ଏମାନେ ଚାଳ, ଗଛୁଆ ପ୍ରଭୃତି ଗଛରେ ବସା କରନ୍ତି ।

୨ । ଘରୁଆ ମୂଷା—ଏମାନେ ଘରର ଚାଳ ମଧ୍ୟରେ ବାସ କରନ୍ତି । ଏମାନଙ୍କର ଲାଞ୍ଜ ଦେହଠାରୁ ଲମ୍ବ ।

୩ । ଗାତୁ(ଡ଼ୁ)ଆ ମୂଷା ( ବ. ଧୁମ୍ସା ଇନ୍ଦୁର )— ଏମାନେ ଭୂଇଁ ଓ ଘରର କାନ୍ଥ ମଧ୍ୟରେ ଗାତ କରି ରହନ୍ତି । ଏମାନଙ୍କର ଦେହ ଧୂମ୍ରବର୍ଣ୍ଣ ଓ ଲାଞ୍ଜ ଛୋଟ ।

୪ । ପାହାଡ଼ିଆ ମୂଷା—ଏମାନେ ଗୁଣ୍ଡୁଚି ମୂଷା ଜାତୀୟ; ଓଡ଼ିଶାର ଜଙ୍ଗଲ ଓ ପାହାଡ଼ରେ ଦେଖାଯାଆନ୍ତି । ଏମାନେ ଲମ୍ବରେ ପ୍ରାୟ ଏକ ହାତ ହୁଅନ୍ତି । ଏମାନଙ୍କର ପୁଚ୍ଛ ପ୍ରାନ୍ତ ହଳଦିଆ ଏବଂ ଲାଞ୍ଜ ଦୀର୍ଘ ଓ ଲୋମଶ ।

୫ । ଚୂଟିଆ ମୂଷା ବା ଝୁ(ଛୁ)ଞ୍ଚେଇ ମୂଷା ( ବ. ନେଂଟି ଇନ୍ଦୁର )—ଏହି ଜାତିର ମୂଷାଙ୍କର ଦେହ ଛୋଟ ପ୍ରାୟ ୩।୪ ଅଙ୍ଗୁଳ । ଲାଞ୍ଜ ଦେହ ଅପେକ୍ଷା ବଡ଼ ଓ ଲୋମଶୂନ୍ୟ । ଏମାନେ ଘରେ ଥିବା କାଗଜପତ୍ର, ଝୋଟ, ବାକ୍ସ ଆଦି ମଧ୍ୟରେ ବସା କରି ରହନ୍ତି ।

୬ । ନେପାଳୀ ମୂଷା—ଏମାନେ ମୂଷାଜାତୀୟ; କିନ୍ତୁ ଏମାନଙ୍କର ରଙ୍ଗ ସଫା ଧଳା ଓ ଲାଙ୍ଗୁଡ଼ ନାହିଁ ।

୭ । ବିଲମୂଷା ବା ବିଲୁଆ ମୂଷା ( ବ. ମେଠୋ ଇନ୍ଦୁର ବା ମାଠିଆ ଇନ୍ଦୁର )—ଏମାନେ ପଡ଼ିଆରେ ଗାତ କରି ରହନ୍ତି ଓ ବିଲରୁ ପାଚିଲା ଧାନ ନେଇ ହୁଡ଼ାମୂଳେ ଗାତ କରି ସଞ୍ଚୟ କରନ୍ତି । ]

ମୂଷାକ—ସଂ. ବି—ମୂଷା ( ଦେଖ )
Mūshāka — Mūshā ( See )

ମୂଷାକାନି—ଦେ. ବି—୧ । ( ସଂ. ମୂଷିକକର୍ଣ୍ଣୀ ) ମୂଷିକକର୍ଣ୍ଣୀ ( ଦେଖ )
Mūshākāni — 1. Mūshika karnni ( See ) ୨ । (ସଂ.
मूषाकानी — ମୂଷିକାର )—କଙ୍କଣଦେଶଜ ଏକପ୍ରକାର ଗୁଳ୍ମ—
मुँषाकानी — 2 Name of a medicinal plant of
[ ମୂଷାକାନିଆ (ଆଁ)—ଅନ୍ୟରୂପ ] west India. [ଦ୍ର—
উন্দিরমারী; ইন্দুরমারী — ଏହା କଟୁରସବିଶିଷ୍ଟ; ମୂଷା କାମୁଡ଼ାର ବିଷନାଶକ ଏବଂ ବ୍ରଣ ଓ ନେତ୍ରରୋଗରେ ଅତ୍ୟନ୍ତ ଉପକାରୀ । ] ୩ । ଏକଜାତୀୟ କ୍ଷୁଦ୍ର ବନ୍ୟ ଲତା— 3. A kind of small wild creeper. [ ଦ୍ର— ଏହା ବାଡ଼ରେ ଓ ପଡ଼ିଆରେ ଜନ୍ମେ । ଗୋରୁ ଜଗୁଥିବା ପିଲାମାନେ ଓ ଛୋଟ ବାଳକ ବାଳିକାମାନେ ଖେଳର ସଙ୍ଗେ ଏହାକୁ ଗୋବରର ଧାନ ଖାଇଲା ବୋଲି ଗାଳି କରନ୍ତି । ]

ମୂଷା ଗାତ—ଦେ. ବି (ସଂ. ମୂଷିକଗର୍ତ୍ତ)—ମୂଷା ଖୋଳିଥିବା ଗର୍ତ୍ତ ବା
Mūshā gāta — ବିଲ—Hole burrowed by the mouse.
ইন্দুরগর্ত — मूषाका बिल

ମୂଷା ଜନ୍ତା—ଦେ. ବି (ସଂ. ମୂଷିକଯନ୍ତ୍ର )—ମୂଷାମାନଙ୍କୁ ଧରିବା ବା
Mūshā jantā — ମାରିବା ପାଇଁ ପ୍ରସ୍ତୁତ କରାଯାଇଥିବା ଜନ୍ତା—A
ইঁদুর ধরবার কল — चूहेदानी — mouse trap.

ମୂଷା ଦାନ୍ତିଆ—ଦେ. ବିଣ. ପୁଂ—ଯାହାର ଦାନ୍ତ ମୂଷାର ଦାନ୍ତ ପରି
Mūshā dāntiā — ଛୋଟ ଓ ତୀକ୍ଷ୍ଣ—Having teeth
(ମୂଷାଦନ୍ତା—ଅନ୍ୟରୂପ) — sharp like those of the
ইংদুরের মত দাঁত, ইঁদুর দেঁতো — मूषादंता — mouse.
(ମୂଷାଦାନ୍ତୀ, ମୂଷାଦାନ୍ତେଇ—ସ୍ତ୍ରୀ)

ମୂଷାତୁତ୍ଥ—ସଂ. ବି.—(ମ ପ. ଲେ)—ନୀଳ ତୁତିଆ—
Mūshā tuttha — The blue vitriol

ମୂଷା ମାଟି—ଦେ. ବି.—ମୂଷାଗାତର ମୁହଁଅଡ଼କୁ ମୂଷା ଗାଳି ପକାଇଥିବା
Mūshā māṭi — ମାଟି—Loose earth thrown out by
ইন্দুর মাটি — the mouse from its hole and heaped
मूषा मिट्टी — up neer the mouth thereof.

ମୂଷି—ଦେ. ବି.—୧ । (ସଂ. ମୂଷିକ) ଛୋଟ ମୂଷା—1. A small
Mūshi — mouse. [ଉ—ଚୁଲୁ ମୂଷି ରେ ! ଟୁକେଇ ମୂଷି ! ଧାନ
নেংটিইংদূর — ଭରଣକ ଖାଉଥା ବସି । ଭୁ ଥା ମୁଁ ଯାଉଛି ଚୂଟି । ଶିଶୁ-
मुसरी — ଗୀତ ।] ୨ । ଛୋଟ ଛୋଟ ଅଙ୍ଗାର—2. Small bits of charcoal.

ମୂଷି(ଷୀ)କ—ସଂ. ବି. ପୁଂ. (ମୁଷ୍ ଧାତୁ=ଚୋରି କରିବା+କର୍ତ୍ତୃ. ଇକ.
Mūshi(shī)ka — ଇକ)—୧ । ମୂଷା (ଦେଖ)—1. Mūshā
ইন্দুর — (See). [ଦ୍ର—ମୂଷାର ଅନ୍ୟ ସଂସ୍କୃତ ନାମମାନ ଯଥା—
ইন্দুর, মূষা — ଆଖନିକ, ଆଖୁ, ଉନ୍ଦୁରୁ, ଉନ୍ଦୁରୁକ, ଉନ୍ଦୁରୁ,
[ମୂଷି(ଷୀ)କା—ସ୍ତ୍ରୀ] — ଖନକ, ଧାନ୍ୟାରି, ନଖୀ, ପିଙ୍ଗ, ବଭ୍ରୁ, ବନ୍ଧୁପୁତ୍ର, ବିଲକାରୀ, ବୃଷ(ଷ), ମୂଷ, ମୂଷକ, ମୂଷାକ— ଇତ୍ୟାଦି ।] ୨ । ଶିରୀଷ ଫୁଲର ଗଛ—2. Name of a flowering tree; Mimosa Sirisha. ୩ । ଚୋର; ତସ୍କର—3. Thief. ୪ । ଦସ୍ୟୁ, ଲୁଣ୍ଠନକାରୀ— 4. Dacoit; robber. ୫ । ଦକ୍ଷିଣ ଭାରତର କୁମାରିକା ଓ କୁଇଲନ ଅନ୍ତର୍ଗତ ମଧ୍ୟସ୍ଥ ଦେଶ—5. A tract of country of South India between Cape Camorin and Quilon.

ମୂଷି(ଷୀ, ଷ)କ କ(ପ)ର୍ଣ୍ଣୀ—ସଂ. ବି.—ମୂଷାକାନି ନାମକ ବର୍ଷାୟୁଃ
Mūshi(shī, sha)ka(pa)rṇṇī — ଜଳଜ ଶାକ-
An aquatic weed; Salvinia Ccucullata; Ipomoea Renniformis.

ଅନ୍ୟ ସ. ନାମ, ଯଥା— [ଦ୍ର—ଏହାର ପତ୍ରମାନ ମୂଷାକାନ ପରି କ୍ଷୁଦ୍ର ପାଣ୍ଡୁରଙ୍ଗ ଓ ପତ୍ରପୃଷ୍ଠ ରୋମଯୁକ୍ତ ବାଳ ପରି ଝୁଲୁଥିବା କୋମଳ ଲୋମ ସହିତ ଲଗି ଥାଏ । ବୈଦ୍ୟକ ମତରେ ଏହା କଟୁତିକ୍ତ, କଷାୟ, ଶୀତବୀର୍ଯ୍ୟ, ଲଘୁ ଓ କଟୁ ବିପାକ । ଏହା ମୂତ୍ର, କଫ ଓ କୃମିରୋଗନାଶକ ।]

ଆଖୁକର୍ଣ୍ଣିକା, ଆଖୁପର୍ଣ୍ଣୀ, ଦ୍ରବନ୍ତୀ, ନ୍ୟଗ୍ରୋଧୀ, ପୁତ୍ରଶ୍ରେଣୀ, ପ୍ରତ୍ୟକ୍‌ଶ୍ରେଣୀ, ଚିତ୍ରପର୍ଣ୍ଣିକା, ବୃଷପର୍ଣ୍ଣୀ, ଶମ୍ବରୀ, ଦ୍ରବନ୍ତିକା ।

ହିନ୍ଦୀ: ମୁଷାକାନୀ; ଉନ୍ଦୁରକଣୀ

ତେ. ଏଲକଚେବି ମ. ଉନ୍ଦିରକାନୀ ଗୁ. ଉନ୍ଦରକନୀ

ଫା. ଗୋସେମୁଷ, ସଚର ଅ. ଅବକୁଲ ଫାର

ମୂଷା(ଷ,ଶୀ)କର୍ଣ୍ଣୀ, ମୂଷିକ(ପ)ର୍ଣ୍ଣିକା, ମୂଷିକାହ୍ୱା, ମୂଷିକା —ଅନ୍ୟରୂପ

**ମୂଷିକ ବାହନ**—ସ. ବି.—(ମୂଷିକ+ବାହନ; ବହୁବ୍ରୀହି)—ଗଣପତି; Mūshika bāhana ଗଣେଶ—God Ganesa.
(ମୂଷିକାଙ୍କ, ମୂଷିକାଶନ—ଅନ୍ୟରୂପ)

**ମୂଷିକା**—ସ. ବି—୧ । ମୂଷିକକର୍ଣ୍ଣୀ (ଦେଖ)—1. Mūshika karnni (See) Mūshikā ୨ । ମାଈ ମୂଷା—2. Female mouse. ୩ । ସୁନା ଆଦି ତରଳାଇବାର ପାତ୍ର—3. Crucible

**ମୂଷିକାଦ**—ସ. ବି—(ମୂଷିକ+ଅଦ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ. ଅ) Mūshikāda ନାଗବିଶେଷ—A species of snake.

**ମୂଷିକାର୍ଭଧ**—ସ. ବି—ଦାରୁମୂଷି (ଦେଖ) Mūshikārbhadha Dāru mushi (See)

**ମୂଷି(ଷ)କାରାତି**—ସ. ବି—(ମୂଷିକ,ମୂଷକ+ଅରାତି=ଶତ୍ରୁ;୬ଷ୍ଠୀ ତତ୍) Mūshi(sha)kārāti ବିରାଡ଼ି—Cat

**ମୂଷିକାରି**—ସ. ବି—(ମୂଷିକ+ଅରି=ଶତ୍ରୁ)—୧ । ମୂଷାକାନି ୨ Mūshikāri (ଦେଖ)—1 Mūshākāni 2 (See) ୨ । ବିରାଡ଼ି—2. Cat

**ମୂଷିତ**—ସ. ବଣ.—(ମୂଷ୍ ଧାତୁ=ଚୋରି କରିବା+କର୍ମ. ତ)— Mūshita ଅପହୃତ—Stolen.

**ମୂଷ୍ୟାୟଣ**—ସ. ବଣ. ପୁ°—(ସ.ଅମୂଷ୍ୟାୟଣର 'ଅ' ଲୋପ)—୧ । Mūshyāyana ଅଜ୍ଞାତପିତୃକ; ଅନିର୍ଦ୍ଦିଷ୍ଟପିତୃକ—1. Born of unknown parents. ୨ । ଗୁଢ଼ୋତ୍ପନ୍ନ—2. Of concealed birth. ୩ । ଜାରଜ; ବେଶ୍ୟା ପିଲା—3. Bastard

**ମୃ** (ଧାତୁ)—ସ.—ମରିବା—To die. Mru (root)

**ମୃକଣ୍ଡୁ**—ସ. ବି—ମାର୍କଣ୍ଡେୟ ଋଷିଙ୍କ ପିତା— Mrukandu (ମୃକଣ୍ଡୁ—ଅନ୍ୟରୂପ) Name of a sage.

**ମୃକୁଣ୍ଡ(ଣ୍ଡୁ)**—ଦେ. ବି—(ସ. ମୃକଣ୍ଡୁ)—ମୃକଣ୍ଡୁ ଋଷି— Mrukunda (ndu) Name of a sage.

**ମୃକୁଣ୍ଡି(ଣ୍ଡୀ)**—ଦେ.ବି—ମୃକୁଣ୍ଡି ଗଛ; ଏକ ପ୍ରକାର ବନ୍ୟ ଗଛ— Mrukundi(ndī) Name of a wild tree.

**ମୃଗ୍** (ଧାତୁ)—ସ—୧ । ଅନ୍ୱେଷଣ କରିବା—1. To seek for. Mrug (root) ୨ । ଯାଚ୍ଞା କରିବା—2. To beg for; to ask for. ୩ । ପଶ୍ଚାଦନୁସରଣ କରିବା—3. To pursue. ୪ । ଶିକାର କରିବା—4. To hunt; to chase.

**ମୃଗ**—ସ. ବି (ମୃଗ୍ ଧାତୁ+କର୍ମ. ଅ)—୧ । ମିରିଗ; କୁରଙ୍ଗ; ହରିଣ Mruga 1. Deer. [ଦ୍ର—ମୃଗର ଅନ୍ୟ ସଂସ୍କୃତ ନାମ, (ମୃଗୀ—ସ୍ତ୍ରୀ) ଯଥା—ଅଜିନଯୋନି, ଋଷ୍ୟ (ଷ୍ୟ), ଋଶ୍ୟ (ଶ୍ୟ), ଏଣ, ଏଣକ, କୁରଗ, କୁରଙ୍ଗ, କୁରଙ୍ଗମ, ଗୃଞ୍ଜୁଲୋଚନ, ଚଞ୍ଚଳଯୋନି, ବାତାୟୁ, ଶାରଙ୍ଗ ।] ୨ । ପଶୁ— 2. Beast. [ଦ୍ର—ଏ ମୃଗ କାନନ ଗୋଚର, ପକ୍ଷେ ମୃଗିତ ଏ ଶୁକର । ଜଗନ୍ନାଥ. ଭାଗବତ । ] ୩ । ଜନ୍ତୁ ମାତ୍ର—3. An animal in general. ୪ । (+ଭାବ. ଅ) ଅନ୍ୱେଷଣ—4. Searching. ୫ । ତତ୍ତ୍ୱାନୁସନ୍ଧାନ—5. Investigation. ୬ । ପ୍ରାର୍ଥନା; ଯାଚ୍ଞା; ଭିକ୍ଷା—6. Begging; soliciting. ୭ । କପାଳରେ ଶୁଭ୍ର ଚିହ୍ନଯୁକ୍ତ ହସ୍ତୀ—7. An elephant with white spots on the brow. ୮ । ବୈଷ୍ଣବମାନଙ୍କ କପାଳରେ ଧୃତ. ତିଳକଚିହ୍ନର ପ୍ରକାର ଭେଦ (ଏହା ହରିଣ ଶିଙ୍ଗ ପରି ଦେଖାଯାଏ)—8. A kind of sectarian mark with sandal and other pastes on the head. ୯ । ମକର ରାଶି—9. The sign of capricorn of the zodiac. ୧୦ । ମୃଗଶିରା ନକ୍ଷତ୍ର—10. The 4th lunar constellation in Hindu astronomy. ୧୧ । ମାର୍ଗଶୀର୍ଷ ମାସ—11. The lunar month of Mārgasirsha. ୧୨ । ଯଜ୍ଞବିଶେଷ —12. Name of a Vedic sacrifice. ୧୩ । ମୃଗନାଭି; କସ୍ତୁରୀ—13. Musk. ୧୪ । ଶିକାର; ମୃଗୟା—14. Hunting. ୧୫ । ହିନ୍ଦୁ ଶାସ୍ତ୍ର ବର୍ଣ୍ଣିତ ଚାରି ଜାତିର ପୁରୁଷ ମଧ୍ୟରୁ ଏକ ଜାତି—15. One of the four classes of men classified in Hindu Sāstras. [ଦ୍ର—ଏମାନେ ସ୍ନିଗ୍ଧଶରୀ, ଦୀର୍ଘନେତ୍ର, ଅଳ୍ପଭୀରୁ, ଚପଳମତି, ସୁଦେହ ଓ ଶୀଘ୍ର ବେଗ; ଏମାନଙ୍କୁ ଜାଗାୟା ସ୍ତ୍ରୀ ଏ ଜାତୀୟ ପୁରୁଷର ଉପଯୁକ୍ତା ସ୍ତ୍ରୀ ଅଟନ୍ତି ।]

**ମୃଗ ଚର୍ମ**—ସ. ବି (୬ଷ୍ଠୀ ତତ୍)—ମିରିଗ ଚମ; ହରିଣ ଛାଲ— Mruga charma Deer-skin; deer-hide.

**ମୃଗ ଚେଟକ**—ସ. ବି—ଖଟ୍ଟାଶ; ବଣଭୁଆ; କଟାଶ— Mruga chetaka Wild cat; pole cat.

**ମୃଗ ଛାଲ**—ଦେ ବି—ମିରିଗ ଚମଡ଼ା—Dear-skin. Mruga chhāla ମୃଗছাল ମୃଗଛାଲ

ମୃଗ ଜୀବନ—ସଂ. ବ (ବହୁବ୍ରୀହି)—ବ୍ୟାଧ; ଶିକାରୀ—
Mṛuga jībana A hunter.
( ମୃଗଜୀବୀ, ମୃଗାଜୀବ—ଅନ୍ୟରୂପ )

ମୃଗଣ(ଣା)—ସଂ. ବ ( ମୃଗ୍ ଧାତୁ+ଭାବ. ଅନ; + ସ୍ତ୍ରୀ. ଆ )—
Mṛugaṇa(ṇā) ୧ । ଅନ୍ୱେଷଣ—1 Search. ୨ । ଅନୁସନ୍ଧାନ—2, Research; enquiry; investigation. ୩ । ଅପହୃତ ଦ୍ରବ୍ୟର ଅନୁସନ୍ଧାନ—3. Search of a stolen article.

ମୃଗ ତୃଟ୍(ଷ,ଷା)—ସଂ. ବ ( ବହୁବ୍ରୀହି; ମୃଗ+ତୃଟ୍, ତୃଷ, ତୃଷା)—
Mṛuga tṛuṭ(sha,shā) ମୃଗତୃଷ୍ଣା (ଦେଖ)—Mṛuga-tṛushṇā (See)

ମୃଗ ତୃଷ୍ଣା—ସଂ.ବ (ବହୁବ୍ରୀହି; ମୃଗ+ତୃଷ୍ଣା;ଯାହା ମୃଗର ତୃଷ୍ଣା ଜନ୍ମାଏ)-
Mṛuga tṛushṇā ୧ । ମରୀଚିକା; ଖପନାଚ; ସୂର୍ଯ୍ୟକିରଣରେ (ମୃଗତୃଷ୍ଣିକା—ଅନ୍ୟରୂପ) ଜଳଭ୍ରମ—1. Mirage [ଦ୍ର—ଗ୍ରୀଷ୍ମକାଳରେ ଜଳଶୂନ୍ୟ ବାଲୁକାମୟ ମରୁଭୂମିରେ ପ୍ରଖର ସୂର୍ଯ୍ୟରଶ୍ମି ପତିତ ଓ ପ୍ରତିଫଳିତ ହୋଇ ତାହା ଦୂରରୁ ସ୍ୱଚ୍ଛ ଜଳାଶୟ ପରି ପ୍ରତୀୟମାନ ହୁଏ । ତୃଷାର୍ତ୍ତ ମୃଗମାନେ ଓ ପିପାସାରେ ଶୁଷ୍କକଣ୍ଠ ପଥିକମାନେ ଜଳପାନ ଆଶାରେ ତଦଭିମୁଖରେ ଯେତିକି ଯେତିକି ଧାବମାନ ହେଉଥାନ୍ତି, ତାହା ସେତିକି ସେତିକି ଦୂରକୁ ଘୁଞ୍ଚିଗଲା ପରି ଦେଖା ଯାଉଥାଏ । ଫଳତଃ ଅବଶେଷରେ ଉକ୍ତ ହତଭାଗ୍ୟ ଜୀବଗଣ କ୍ଲାନ୍ତ ଓ ପିପାସାର୍ତ୍ତ ହୋଇ ମରିଯାଆନ୍ତି । ଏଥିପାଇଁ ପ୍ରଲୋଭନ ବା ବୃଥା ଆଶାକୁ ଲୋକେ ମରୀଚିକା ସଙ୍ଗେ ତୁଳନା କରନ୍ତି । ] ୨ । ( ଲକ୍ଷଣାର୍ଥ ) ବୃଥା ଆଶ ଦେଖାଇବାର ଛଳନା—2. (figurative) False hopes; raising of hopes which end in tantalisation.

ମୃଗ ଦଂଶକ—ସଂ. ବ (ମୃଗ=ହରିଣ+ଦଂଶକ=ଯେ ଦଂଶନ କରେ; ଉପପଦ ତତ୍ )—କୁକ୍କୁର—The dog.
Mṛuga daṁśaka

ମୃଗଦ୍ୟୁ(ଦ୍ୟୁତ୍)—ସ. ବ ( ମୃଗ=ହରିଣ+ଦିବ୍ ଧାତୁ=ଖେଳା କରିବା+କର୍ତ୍ତୃ. କ୍ୱିପ୍ )—ମୃଗୟାକାରୀ, ଶିକାରୀ—Hunter.
Mṛuga dyu(dyut)

ମୃଗ ଧୂର୍ତ୍ତ—ସ.ବ(ମୃଗମାନଙ୍କ ମଧ୍ୟରେ ଅର୍ଥାତ୍ ପଶୁମାନଙ୍କ ମଧ୍ୟରେ ଧୂର୍ତ୍ତ; ୭ମୀ ତତ୍)—ଶୃଗାଳ; ବିଲୁଆ—Jackal.
Mṛuga dhūrtta
(ମୃଗଧୂର୍ତ୍ତକ—ଅନ୍ୟରୂପ)

ମୃଗ ନୟନା—ସ. ବଣ. ସ୍ତ୍ରୀ ( ବହୁବ୍ରୀହି; ମୃଗ+ନୟନ+ଆ )—
Mṛuga nayanā ଏଣୀନୟନା; ମୃଗପରି ମନୋହର ନୟନବିଶିଷ୍ଟ (ସ୍ତ୍ରୀ)—A woman with eyes as graceful as those of a deer.
ମୃଗନେତ୍ରା, ମୃଗଲୋଚନା } ଅନ୍ୟରୂପ
ମୃଗନୟନୀ, ମୃଗନେତ୍ରୀ, ମୃଗଲୋଚନୀ } ଦେଶଜରୂପ [ ଦ୍ର—ପୁରୁଷମାନଙ୍କ ପ୍ରତି ଏ ଶବ୍ଦର ପୁଂଲିଙ୍ଗ ଆକାର ବିଶେଷଣରୂପେ ବ୍ୟବହୃତ ହୁଏ ନାହିଁ । ]

ମୃଗ ନାଭି—ସ. ବ (୬ଷ୍ଠୀ ତତ୍)—ହିମାଳୟବାସୀ ଏକ ଜାତୀୟ ମୃଗର ନାଭିରୁ ଜାତ ଏକପ୍ରକାର ସୁବାସିତ ଦ୍ରବ୍ୟ
Mṛuga nābhi
(ମୃଗନାଭିଜ—ଅନ୍ୟରୂପ) ମୃଗମଦ; କସ୍ତୂରୀ—Musk. [ଦ୍ର—କସ୍ତୂରୀ ଔଷଧରେ ଲାଗେ ଓ ଦେହରେ ବୋଳାଯାଏ; ଏହାର ତୀବ୍ର ସୁଗନ୍ଧ । କାମରୂପ ବା ଆସାମ ଦେଶଜାତ କସ୍ତୂରୀ କୃଷ୍ଣବର୍ଣ୍ଣ ଓ ଉତ୍କୃଷ୍ଟ; ନେପାଳଦେଶୀୟ କସ୍ତୂରୀ ନୀଳବର୍ଣ୍ଣ ଓ ମଧ୍ୟମ; କାଶ୍ମୀର ଦେଶୀୟ କସ୍ତୂରୀ କପିଳବର୍ଣ୍ଣ ଓ ନିକୃଷ୍ଟ । ଏହା ଏକଜାତୀୟ ମୃଗର ନାଭିର ଜନ୍ମସ୍ଥ ଗୋଟିଏ କୋଷରୁ ବାହାରେ । ମୃଗନାଭିର ଅନ୍ୟ ସଂସ୍କୃତ ନାମ, ଯଥା—ମୃଗମଦ, କସ୍ତୁ(ସ୍ତୂ)ରୀ, କସ୍ତୁ(ସ୍ତୂ)ରିକା, ବୋଧମୁଖ୍ୟା, ମୃଗାଣ୍ଡଜା । ]

ମୃଗ ନେତ୍ର—ସ. ବଣ—(ଜ୍ୟୋତିଷ) ମୃଗଶିରା ନକ୍ଷତ୍ର ଯୁକ୍ତ—
Mṛuga netra ( astrology) Joined with the Mṛugaśirā constellation.

ମୃଗ ନେତ୍ରା—ସଂ. ବ. ସ୍ତ୍ରୀ (ମୃଗ=ମୃଗଶିରା ନକ୍ଷତ୍ର ଓ ହରିଣ+ନେତ୍ର; ବହୁବ୍ରୀହି)—୧ । ମୃଗଶିରା ନକ୍ଷତ୍ରଯୁକ୍ତା ରାତ୍ରି—
Mṛuga netrā
(ମୃଗନେତ୍ରୀ—ଦେଶଜରୂପ) 1. A night in which the constellation of 'Mṛugaśirā' is seen in the sky. ୨ । ମାର୍ଗଶିର ମାସର ରାତ୍ରି—2. The nights of the month of 'Mārgaśirā'. ସ. ବଣ—ମୃଗନୟନା (ଦେଖ)—Mṛuga nayanā (See).

ମୃଗ ପତି—ସଂ. ବ (୬ଷ୍ଠୀ ତତ୍)—୧ । ପଶୁରାଜ; ସିଂହ—1. Lion, the king of beasts. ୨ । ସିଂହରାଶି—2. The sign Lion of the zodiac.
Mṛuga pati

ମୃଗ ପାଳିକା—ସ. ବ. ସ୍ତ୍ରୀ—କସ୍ତୂରୀ ମୃଗ—Musk deer. Moschu; Moschuferus.
Mṛugapālikā
(ମୃଗମାତୃକ[ପୁଂ]—ଅନ୍ୟରୂପ)

ମୃଗ ପିପ୍ଲୁ—ସ.ବ (ମୃଗ=ହରିଣ+ପିପ୍ଲୁ=ଚିହ୍ନ ଯାହାର; ବହୁବ୍ରୀହି)—ଚନ୍ଦ୍ର; ଶଶାଙ୍କ—The moon.
Mṛuga piplu

ମୃଗବଧାଜୀବ—ସଂ. ବ ( ମୃଗବଧ+ଆଜୀବ=ଜୀବିକା ଯାହାର; ବହୁବ୍ରୀହି)—ବ୍ୟାଧ—A hunter
Mṛuga badhājība

ମୃଗବନ୍ଧନୀ—ସ. ବ (ମୃଗ+ ବନ୍ଧନୀ=ଫାଶ. ମ: ପ. ଲୋ)—ମିରିଗ ଧରିବାର ଜାଲ; ବାଗୁରା—A snare for catching deer
Mṛuga bandhanī

ମୃଗ ବର—ସ. ବ (ମୃଗ+ବର=ଶ୍ରେଷ୍ଠ; ୭ମୀ ତତ୍)—ସିଂହ—Lion.
Mṛuga bara
[ଉ—ଯାଉଛି ରସି କ ନାଭିରେ ପୋଡ଼ୁ ମୋ
ହୃଦେକ ତ ମୃଗବର,
ବେକ ତ ମୃଗ— ବର ନେତ୍ରୀ ଭୋଠାରେ
ହୋଇଲା ପ୍ରୀତି ମୋହର ।
ଭଞ୍ଜ. ପ୍ରେମସୁଧାନିଧି । ]

ମୃଗ ବାହନ—ସଂ. ବ (ବହୁବ୍ରୀହି; ମୃଗ+ବାହନ)—ବାୟୁ; ପବନ—The wind.
Mṛuga bāhana

ମୃଗବ୍ୟ—ସ ବି. (ମୃଗ+ବ୍ୟଧ୍ ଧାତୁ=ବ୍ୟଥିତ ହେବା+ଅଧିକରଣ.
Mṛugabya କ୍ୱିପ୍)—୧ । ମୃଗୟା, ଶିକାର—1. Hunting; chase. ୨ । ଧନୁର ଲକ୍ଷ୍ୟ—2. A target in archery.

ମୃଗ ଭକ୍ଷଣ—ସ. ବି—ଜଟାମାଂସୀ—The Indian spikenard.
Mṛuga bhakshaṇa

ମୃଗଭୋଜନୀ—ସ. ବି—ମହାକାଳ ଫଳ; ପାଣ୍ଡୋଭ୍ରମେର ଲତା—
Mṛuga bhojanī The bitter apple or colocynth.

ମୃଗମଦ—ସ ବି—(ମୃଗ+ମଦ=ଗର୍ବ; ବହୁବ୍ରୀହି)—ମୃଗନାଭି;
Mṛuga mada କସ୍ତୁରୀ—Musk

ମୃଗମାଣ—ସ. ବିଣ. ପୁଂ (ମୃଗଧାତୁ+କର୍ତ୍ତୃ. ଅନ)—୧ । ଅନ୍ୱେଷଣ
Mṛugamāna କରୁଥିବା—1. Searching. ୨ । ଶିକାର
(ମୃଗମାଣା—ସ୍ତ୍ରୀ) ପଛରେ ଗୋଡ଼ାଉଥିବା—2. Chasing or pursuing a prey.

ମୃଗୟା—ସ. ବି.—(ମୃଗଧାତୁ=ଅନ୍ୱେଷଣ କରିବା+ଅଧିକରଣ. ଯ
Mṛugayā ଚ୍ଚପାତନ; ଯାହାଦ୍ୱାରା ମୃଗ ପ୍ରଭୃତିଙ୍କି ଅନ୍ୱେଷଣ କରାଯାଏ; ଅଥବା ଚରୁ; କିମ୍ବା ମୃଗ+ଯା ଧାତୁ=ଗମନ କରିବା+ଭାବ. କ୍ୱିପ୍ । ୧ । ବନଭୂମିରେ ମୃଗାନ୍ୱେଷଣ—1. Hunting of deer in the forest. ୨ । ଶିକାର—2. Hunting; chase.
[ଦ୍ର—ଏହା କାମଜ ବ୍ୟସନବିଶେଷ ।]

ମୃଗୟୁ—ସଂ. ବି. (ମୃଗ=ହରିଣ+ଯା ଧାତୁ=ଗମନ କରିବା+
Mṛugayu କର୍ତ୍ତୃ. ଉ]—୧ । ବ୍ୟାଧ—1. A hunter. ୨ । ଶୃଗାଳ—2. A jackal. ୩ । ବ୍ରହ୍ମା—3. The God Brahmā.

ମୃଗ ରାଜ(ଟ୍)—ସ. ବି—(ମୃଗ+ରାଜନ୍ ୬ଷ୍ଠୀ ତତ୍; ବା ମୃଗ+ରାଜ୍
Mṛuga rāja(ṭ) ଧାତୁ+କର୍ତ୍ତୃ. କ୍ୱିପ୍)—୧ । ପଶୁରାଜ; ସିଂହ—1. Lion; the king of the beasts. ୨ । ସିଂହରାଶି—2. The sign of Leo of the zodiac. ୩ । ଚନ୍ଦ୍ର—3. The moon. ୪ । ମୃଗଶିର ନକ୍ଷତ୍ର—4. The Mṛugaśirā constellation.

ମୃଗ ରିପୁ—ସ. ବି. [ମୃଗ+ରିପୁ; ୬ଷ୍ଠୀ ତତ୍] ସିଂହ—
Mṛuga ripu The lion.

ମୃଗଲ—ସ. ବି.—ମୃଗାଳ (ଦେଖ)—
Mṛugala Mṛugāla (See)

ମୃଗ ଲାଞ୍ଛନ—ସ. ବି.—(ମୃଗ+ଲାଞ୍ଛନ=ଚିହ୍ନ ଯାହାର; ବହୁବ୍ରୀହି)—
Mṛuga lānchhana ୧ । ଚନ୍ଦ୍ର—1 The moon.
[ଦ୍ର—ଚନ୍ଦ୍ର ଦେହରେ ଦେଖାଯିବା କଳଙ୍କ ମୃଗର ଆକାର ପରି ଦେଖାଯାଏ ।] ୨ । ମୃଗଶିର ନକ୍ଷତ୍ର—The constellation Mṛugśirā

ମୃଗ ଲେଖା—ସ. ବି. (ମୃଗ+ଲେଖା=ଚିହ୍ନ; ୬ଷ୍ଠୀ ତତ୍) ମୃଗାକୃତି
Mṛuga lekhā ଚିହ୍ନ—The sign or mark resembling a deer.

ମୃଗଶିର (ରାଃ,ରା)—ସ. ବି.—(ମୃଗ+ଶିରସ୍)—୧ । (ବହୁବ୍ରୀହି)
Mṛuga śirā(rāḥ; raḥ) ଜ୍ୟୋତିଷୋକ୍ତ ସପ୍ତବିଂଶତି ନକ୍ଷତ୍ର
[ମୃଗଶୀର୍ଷ(ର୍ଷା)—ଅନ୍ୟରୂପ] ମଧ୍ୟରୁ ୫ମ ନକ୍ଷତ୍ର—The 5th of the lunar mansions resembling the figure of a deer's head, including the constellation onion. [ଦ୍ର—ଏହାର ଆକାର ମୃଗର ମସ୍ତକ ବା ବିଡ଼ାଲପାଦ ପରି । ଏହି ନକ୍ଷତ୍ରରେ ଜାତ ବ୍ୟକ୍ତି ଶସ୍ତ୍ରଚାଳନାଭ୍ୟାସରତ, ବିମାତ, ଗୁଣିକ, ଗୁଣରେ ଅନୁରକ୍ତ, ଭକ୍ତ, ତେଜସ୍ୱୀ ଓ ସନ୍ମାର୍ଗଗାମୀ ହୁଅନ୍ତି । ନକ୍ଷତ୍ର ତଳେ ଟୀକା ଦେଖ]—
୨ । (୬ଷ୍ଠୀ ତତ୍) ମୃଗର ମୁଣ୍ଡ—2. The head of a deer.

ମୃଗଶୃଙ୍ଗ—ସ. ବି (୬ଷ୍ଠୀ ତତ୍)—୧ । ମିରଗ ଶିଙ୍ଗ—1. Deer's
Mṛuga śrunga horn; hartshorn. ୨ । ବାରଶିଙ୍ଗା ହରିଣର ଶୃଙ୍ଗ—2. The horn of Cervus Invanceli (deer). [ଦ୍ର—ମୃଗଶିଙ୍ଗର ପ୍ରାୟ ⅔ ଅଂଶ ଭସ୍ମ ଓ ଏହି ଭସ୍ମର ଅଧିକାଂଶ କାଲସିଅମଫସ୍ଫେଟ୍ (Calcium phosphate) ଅଛି ।]

ମୃଗା—ସ. ବି—୧ । ସହଦେଈ ଲତା—Echites Frutesceus
Mṛugā (creeper). ପ୍ରାଦେ. (ସିଂହଭୂମି) ବି—
ମୃଗାଦନୀ } ଅନ୍ୟରୂପ ମୃଗୀରୋଗ; ଅପସ୍ମାର ବାତ—Epilepsy.
ମୃଗାକ୍ଷୀ }

ମୃଗାକ୍ଷୀ—ସ. ବିଣ. ସ୍ତ୍ରୀ (ମୃଗ=ହରିଣର ଅକ୍ଷି ପରି ଅକ୍ଷି=ଆଖି ଯାହାର
Mṛugākshī =ମୃଗାକ୍ଷ+ସ୍ତ୍ରୀ. ଈ; ବହୁବ୍ରୀହି)—ମୃଗନୟନା (ଦେଖ)—Mṛuga nayanā (See); ୨ ସ. ବି ମୃଗାଦନୀ (ଦେଖ)—Mṛugādanī (See)

ମୃଗାଙ୍କ—ସ. ବି (ମୃଗ ଅଟେ ଅଙ୍କ=ଚିହ୍ନ ଯାହାର; ବହୁବ୍ରୀହି)—
Mṛugānka ୧ । ଚନ୍ଦ୍ର—1. The moon. ୨ । ବାୟୁ—2. The air; wind. ୩ । କର୍ପୂର—3. Camphor. ୪ । (୬ଷ୍ଠୀ ତତ୍) ଚନ୍ଦ୍ରଦେହରେ ମୃଗ ଆକାରର କଳଙ୍କ—4. The dark spots in the moon imagined to have the shape of a deer. ୫ । (ବୈଦ୍ୟକ) ଶ୍ୱାସରୋଗର ଔଷଧ ବିଶେଷର ନାମ—5. Name of a medicinal preparation for asthma.

ମୃଗାଙ୍କ ଶେଖର—ସ. ବି (ମୃଗାଙ୍କ=ଚନ୍ଦ୍ର+ଶେଖର=ମସ୍ତକରେ
Mṛugānka śekhara ଯାହାର; ବହୁବ୍ରୀହି)—ଚନ୍ଦ୍ରଚୂଡ଼; ଶିବ—The God Śiba.

ମୃଗାଛୀ—ଦେ. (ପ୍ରାଚୀନ ପଦ୍ୟ) ବିଣ (ସ. ମୃଗାକ୍ଷୀ)—ମୃଗାକ୍ଷୀ—
Mṛugāchhī Having eyes like those of a
ମୃଗାକ୍ଷୀ deer. [ଉ—ମୁହିଁ ଯେ ଚରଣଜନ ଭଣ ମୃଗାଛି ! ପ୍ରାଚୀ. ଶିଶୁଶଙ୍କର, ଉଷାଅଭିଳାଷ ।]

ମୃଗାଜିନ—ସଂ. ବି (ମୃଗ+ଅଜିନ; ୬ଷ୍ଠୀ ତତ୍)—ମୃଗଚର୍ମ; ମିରିଗଛାଲ
Mṛugājina —Deer-skin.

ମୃଗାଜିନ ଧର—ସଂ. ବିଣ. ପୁଂ ( ମୃଗାଜିନ+ଧୃ ଧାତୁ=ଧାରଣ କରିବା +କର୍ତ୍ତୃ. ଅ )—ମୃଗାଜିନ ପରିଧାନକାରୀ (ମୃଗାଜିନଧାରୀ—ଅନ୍ୟରୂପ)
Mrugājina dhara —Wearing a deer-skin.

ମୃଗାଜୀବ—ସଂ. ବି ( ମୃଗ ଅଟେ ଆଜୀବ=ଜୀବିକା ଯାହାର; ବହୁବ୍ରୀହି )
Mrugājiba —୧ । ହେଟା; ଗଧିଆ—1. A hyena. ୨ । ବ୍ୟାଧ—2. A hunter

ମୃଗାଣ୍ଡଜା—ସଂ. ବି ( ମୃଗ+ଅଣ୍ଡ=ମୁଷ୍କ+ଜନ୍ ଧାତୁ=ଜାତ ହେବା +କର୍ତ୍ତୃ. ଅ+ସ୍ତ୍ରୀ. ଆ )—କସ୍ତୁରୀ—Musk.
Mrugāṇḍajā

ମୃଗାତ୍(ଦ)—ସଂ. ବି. ପୁଂ ( ମୃଗ+ଅଦ୍ ଧାତୁ=ଭକ୍ଷଣ କରିବା+ କର୍ତ୍ତୃ. କ୍ୱିପ୍; ଅ )—ବାଘ; ବ୍ୟାଘ୍ର—Tiger.
Mrugāt(da)

ମୃଗାଦନ—ସଂ. ବି. ପୁଂ ( ମୃଗ+ଅଦ୍ ଧାତୁ=ଖାଇବା+କର୍ତ୍ତୃ. ଅନ )
Mrugādana —୧ । କ୍ଷୁଦ୍ର ବ୍ୟାଘ୍ର; ଚିତାବାଘ—1. Leopard; panther. ୨ । ହେଟା; ଗଧିଆ—2. Hyena; wolf. [ ଦ୍ର—ଏହାର ଦେହ ପାଣ୍ଡୁର ଓ କୃଷ୍ଣ ରେଖାଙ୍କିତ । ଏହା ଦେଖିବାକୁ ବଡ଼ କୁକୁର ପରି । ]
(ମୃଗାଦନୀ—ସ୍ତ୍ରୀ)

ମୃଗାଦନୀ—ସଂ. ବି. ସ୍ତ୍ରୀ ( ମୃଗାଦନ+ସ୍ତ୍ରୀ. ଈ )—୧ । ଇନ୍ଦ୍ରବାରୁଣୀ; ମହାକାଳ ଲତା; ପାଞ୍ଚକୋଡ଼ମେଇ ଲତା—1. Colocinth; Cucumis Coloquintida ( creeper ). ୨ । ସହଦେବୀ ଲତା—2. A creeper; Echites Frutesceus.
Mrugādanī

ମୃଗାନ୍ତକ—ସଂ. ବି ( ମୃଗମାନଙ୍କର ଅନ୍ତକ=ନାଶକ; ୬ଷ୍ଠୀ ତତ୍ )—
Mrugāntaka ୧ । ଚିତାବାଘ—1. Leopard; panther. ୨ । ବ୍ୟାଧ—2. A hunter.

ମୃଗାରି—ସଂ. ବି ( ମୃଗ+ଅରି=ଶତ୍ରୁ; ୬ଷ୍ଠୀ ତତ୍ )—୧ । ସିଂହ—
Mrugāri 1. The lion. ୨ । ବାଘ—2. The tiger. ୩ । ଡାହାଳ କୁକୁର—3 Dog; hound ୪ । ରକ୍ତଶିଗ୍ରୁ; ନାଲି ସଜନା ଗଛ—4. The red species of Moringa or horse radish tree. ୫ । ରକ୍ତପିତ୍ତ ( ଦ. ପ୍ରକୃତିବାଦ )—5. A disease consisting of blood discharges through mouth and nostrils.
(ମୃଗାରିଛି—ଅନ୍ୟରୂପ)

ମୃଗବିତ୍—ସ. ବି—(ମୃଗ+ବ୍ୟଧ ଧାତୁ=ବିନ୍ଧିବା+କର୍ତ୍ତୃ. କ୍ୱିପ୍;
Mrugābit ଲୁପ୍ତାଚନ; ମୃଗାବ୍ୟଧ ଶବ୍ଦର ୧ମା. ୧ବ)—ବ୍ୟାଧ; ଶିକାରୀ—A hunter.

ମୃଗାଳ—ସ. ବି-(ମୃଗ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ; ଯେ
Mrugāla ମୃଗର ଚକ୍ଷୁକୁ ଗ୍ରହଣ କରିଅଛି)—ମିରିକାଳ ମାଛ—A kind of scaly fresh water fish; Cyprinus Mrigala; Cirrhina Mrigala.

ମୃଗି—ଦେ. ବି—(ସ. ମୃଗୀ)—ମୃଗୀ ରୋଗ; ଅପସ୍ମାର ବାତ—
Mrugi Epilepsy.

ମୃଗିତ—ସଂ. ବିଣ .(ମୃଗ ଧାତୁ=ଖୋଜିବା+କର୍ମ. ତ)—୧ । ଅନ୍ୱିଷ୍ଟ—
Mrugita 1. Searched after. ୨ । ଯାଚିତ—2. Solicited for.

ମୃଗିତବ୍ୟ—ସ. ବିଣ—(ମୃଗ୍ ଧାତୁ=ଅନ୍ୱେଷଣ କରିବା+କର୍ମ. ତବ୍ୟ)
Mrugitabya ମୃଗ୍ୟ; ଅନୁସନ୍ଧେୟ—To be sought after.

ମୃଗୀ—ସ. ବି. ସ୍ତ୍ରୀ—(ମୃଗ୍+ସ୍ତ୍ରୀ. ଈ)—୧ । ସ୍ତ୍ରୀ ମୃଗ; ମାଈ ମିରିଗ—
Mrugī 1. A doe; a female deer. [ଦ୍ର—ମୃଗମାନେ ସେହିରୂପରେ ମୃଗୀ ସଙ୍ଗେ । କୃଷ୍ଣଙ୍କି ହ ମହାଭାରତ. ବନ ।] ୨ । ସପ୍ତ ବର୍ଣ୍ଣ ବିଶିଷ୍ଟ ଛନ୍ଦୋବିଶେଷ—2. Name of Sanscrit metre of three syllables. ୩ । ଅପାଲ୍ଲଙ୍କ; ଅପସ୍ମାର ରୋଗ—3 Epilepsy. ୪ । କାମଶାସ୍ତ୍ରୋକ୍ତ ଚାରି ଜାତିର ସ୍ତ୍ରୀ ମଧ୍ୟରୁ ଏକଜାତି; ଚିତ୍ରିଣୀ ବା ଚିତ୍ରିଣୀ ସ୍ତ୍ରୀ—4. One of the four classes of women classified in the Hindu Śāstras. ୫ । (ନାମ) ପୁଲହ ଋଷିଙ୍କ ସ୍ତ୍ରୀ—5. Name of the wife of sage Pulaha.

ମୃଗୁଣୀ—ଦେ. ବି ( ସ. ମୃଗୀ )—ସ୍ତ୍ରୀ ମୃଗ; ହରିଣୀ—A doe.
Mruguni [ ଦ୍ର—ଏହି ସମୟେ ପ୍ରବେଶ ହୋଇଲା ମୃଗୁଣୀ । ବିଶ୍ୱନାଥ. ବିଚିତ୍ର ରାମାୟଣ । ]
ମୃଗୀ मृगी

ମୃଗୁଣୀ ତୁଷ୍ଟି—ଗ୍ରା. ବି ( ଅଶୁଦ୍ଧ ) ( ସଂ. ମୃଗୀ+ସ୍ତୁତି )—ବ୍ୟାଧଦ୍ୱାରା ପରିବେଷ୍ଟିତା ସବତ୍ସା ଗର୍ଭିଣୀ ମୃଗୀ ବିପନ୍ନା ହୋଇ ଭଗବାନଙ୍କୁ ସ୍ତୁତି କରି ବିପଦରୁ ଉଦ୍ଧାର ପାଇବା ସଂବନ୍ଧରେ ରଚିତ ସ୍ତବ । ( ପଦ୍ମ ପୁରାଣ )—A hymn said to have been uttered by a pregnant doe accompanied with her young ones while at bay.
Mruguni tusti
(ମୃଗୁଣୀ ସ୍ତୁତି—ଦେଶଜରୂପ)
ମୃଗୀସ୍ତୁତି
मृगिनीस्तुति

ମୃଗେକ୍ଷଣା—ସଂ. ବି ଓ ବିଣ. ସ୍ତ୍ରୀ ( ବହୁବ୍ରୀହି; ମୃଗ+ଈକ୍ଷଣ=ଆଖି +ସ୍ତ୍ରୀ. ଆ )—ମୃଗାକ୍ଷୀ ( ଦେଖ )—Mrugākshī ( See )
Mrugekshaṇā

ମୃଗେନ୍ଦ୍ର—ସଂ. ବି ( ୭ମୀ ତତ୍; ମୃଗ+ଇନ୍ଦ୍ର )—ସିଂହ; ମୃଗରାଜ—
Mrugendra The lion; the king of the beasts.

ମୃଗେନ୍ଦ୍ର ଚଟକ—ସଂ. ବି ( ଚଟକ=ପକ୍ଷୀମାନଙ୍କ ମଧ୍ୟରେ ମୃଗେନ୍ଦ୍ର ବା ସିଂହ ପରି )—ଶ୍ୟେନ; ଛଞ୍ଚାଣ ପକ୍ଷୀ—Hawk.
Mrugendra chaṭaka

ମୃଗେନ୍ଦ୍ର ମୁଖ—ସଂ. ବି—୧ । ସିଂହର ମୁଖ—1. The mouth or face of a lion. ୨ । ଅଷ୍ଟାକ୍ଷର ଛନ୍ଦୋବିଶେଷ—2. Name of a Sanscrit metre.
Mrugendra mukha

ମୃଗେନ୍ଦ୍ରାଣୀ—ସଂ. ବି—ବାସଙ୍ଗ ଗଛ—
Mrugendrāṇī A shrub; Justicia Gandressa.

ମୃଗେର୍ବାରୁ—ସଂ ବି ( ମୃଗ+ଇର୍ବାରୁ )—୧ । ଶ୍ୱେତ ହରିଣ—
Mrugerbbāru 1. A white deer. ୨ । ଶ୍ୱେତ ଇନ୍ଦ୍ରବାରୁଣୀ; ପାଞ୍ଚକୋଡ଼ମେଇ ଲତା—2. The bitter apple; Colocynth creeper. [ ଦ୍ର—ଏହାର ଅନ୍ୟ ସଂସ୍କୃତ ନାମ—କଟୁଫଳା, କପିଳାକ୍ଷୀ,

କୁମ୍ଭିମା, ଚନ୍ଦ୍ରଫଳା, ଗନ୍ଧବଲ୍ଲୀ, ଚନ୍ଦା, ଦେବୀ, ପଥ୍ୟା, ମଭୁକା, ମୃଗଚର୍ଭିଟା, ମୃଗାକ୍ଷୀ, ମୃଗାଦନୀ, ମୃଗେକ୍ଷଣା, ଲଘୁଚର୍ଭିଟା, ବନ୍ଧୁଫଳୀ, ବଚଳା, ଶ୍ୱେତପୁଷ୍ପା । ]

ମୃଗେଷ୍ଟ—ସଂ. ବି—୧ । ମୁଦ୍ଗର ଗୁଳ୍ମ—1. Name of a plant. Mrugeshta ୨ । ମୁଗୁଗ ମଲ୍ଲି—2. Double petalled variety of gasminum zambac.

ମୃଗ୍ୟ—ସଂ. ବିଣ ( ମୃଗ୍ ଧାତୁ=ଅନ୍ୱେଷଣ କରିବା+କର୍ମ. ଯ )—Mrugya ଅନ୍ୱେଷଣୀୟ; ଅନୁସନ୍ଧେୟ—To be sought after.

ମୃଚ୍ଛକଟିକ—ସଂ. ବି (ମୃତ୍=ମାଟି+ଶକଟିକା=କ୍ଷୁଦ୍ର ଶଗଡ଼+ଅ)—Mruchchhakatika ରାଜା ଶୂଦ୍ରକଙ୍କ ରଚିତ ପ୍ରସିଦ୍ଧ ସଂସ୍କୃତ ନାଟକ—Name of a Sanscrit drama by king Sūdraka.

ମୃଚ୍ଛକଟିକା—ସଂ. ବି ( ମୃତ୍+ଶକଟିକା )—ଶିଶୁମାନଙ୍କ ଖେଳିବା ମାଟି Mruchchhakatikā ଶଗଡ଼—A toy-cart of clay. ( ମୃଚ୍ଛକଟ—ଅନ୍ୟରୂପ )

ମୃଜ୍ ( ଧାତୁ )—ସଂ—୧ । ପରିଷ୍କାର କରିବା—1. To cleanse. Mruj ( root ) ୨ । ମାଜିବା—2. To rinse; to brush; to rub; to polish. ୩ । ଅଳଙ୍କୃତ କରିବା; ସଜାଇବା—3. To decorate; to fit up. ୪ । ଶବ୍ଦ କରିବା—4. To sound. [ ଦ୍ର—ମୃଜ୍ ଧାତୁ ପୂର୍ବରେ ପ୍ର, ଅପ ଓ ସମ୍ ଉପସର୍ଗ ଯୁକ୍ତ ହେଲେ 'ଓଳାଇବା' ଅର୍ଥ ହୁଏ । ମୃଜ୍ ଧାତୁରୁ ଓଡ଼ିଆ 'ମାଜିବା' ଧାତୁ ହୋଇଅଛି । ]

ମୃଜ—ସଂ. ବି ( ମୃଜ୍ ଧାତୁ=ଶବ୍ଦ କରିବା+କରଣ. ଅ )—ମୃଦଙ୍ଗ—Mruja A kind of drum. ଗ୍ରା. ଦେ. ( ଦେଶିଦ ) ବି—ଚୂରୁଜ—A powder with which figures are drawn on the ground.

ମୃଜା—ସଂ. ବି ( ମୃଜ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ )—୧ । ଦେହକୁ Mrujā ଧୋଇ ଓ ଘଷି ପରିଷ୍କାର କରିବା—1. The act of cleansing the body by washing and rubbing. ୨ । ସଂଶୋଧନ—2. Purification. [ ଦ୍ର—ମାଟିଚୂନାକୁ ଓ ଶସ୍ୟଚୂନାକୁ ଦେହରେ ଘଷି ଦେହ ପରିଷ୍କାର କରାଯାଏ । ଏହି ଅର୍ଥରୁ ଓଡ଼ିଆ 'ମୃରୁଜ' ହୋଇଅଛି । ]

ମୃଜାନ୍ୱୟ—ସଂ. ବିଣ ( ମୃଜା+ଅନ୍ୱୟ )—ପରିଷ୍କୃତ—Mrujānwaya Cleansed; purified.

ମୃଜ୍ୟ—ସଂ. ବିଣ ( ମୃଜ୍ ଧାତୁ=ମାଜିବା+କର୍ମ. ଯ )—ମାର୍ଜନୀୟ—Mrujya To be cleansed.

ମୃଡ଼୍ ( ଧାତୁ )—ସଂ—୧ । ଆନନ୍ଦିତ କରିବା—1. To delight. Mrurd (root) ୨ । ସୁଖୀ କରିବା—2. To make happy. ୩ । ସୁଖୀ ହେବା—3. To feel happy. ୪ । ଚୂର୍ଣ୍ଣ କରିବା; ଗୁଣ୍ଡା କରିବା—4. To pound. ୫ । ପେଷିବା- 5. To grind.

ମୃଡ଼—ସଂ. ବି. ପୁଂ. (ମୃଡ଼୍ ଧାତୁ+କର୍ତ୍ତୃ. ଅ)—୧ । ଶିବ; ମହାଦେବ—Mrurda 1. The God Śiba. ୨ । ହୋମାଗ୍ନି—( ମୃଡ଼ାନୀ—ସ୍ତ୍ରୀ ) 2. Sacrificial fire.

ମୃଡ଼ାଙ୍କଣ—ସଂ.ବି ( ମୃଡ଼+ଅଙ୍କଣ )—୧ । ବାଳକ—1. A boy; Mrurdānkana a child. ୨ । ଶିଷ୍ୟ—2. A pupil, disciple.

ମୃଡ଼ାନୀ—ସଂ. ବି. ସ୍ତ୍ରୀ ( ମୃଡ଼+ସ୍ତ୍ରୀ. ଆନୀ )—ଶିବାନୀ; ଦୁର୍ଗା; ଚଣ୍ଡୀ; Mrurdāni ଅମ୍ବିକା—Goddess Durgā ( the wife of Śiba.

ମୃଡ଼ୀକ—ସଂ. ବି ( ମୃଡ଼୍ ଧାତୁ+ଈକ, ସଂଜ୍ଞାର୍ଥେ )—ମୃଗ; ହରିଣ—Mrurdika A deer.

ମୃଣ୍ ( ଧାତୁ )—ସଂ—୧ । ଆଘାତ କରିବା—1. To hurt. ୨ । Mrun ( root ) ହିଂସା କରିବା—2. To injure. ୩ । କଷ୍ଟ ଦେବା—3. To give pain.

ମୃଣାଳ—ସଂ. ବି ( ମୃଣ୍ ଧାତୁ=ଆଘାତ କରିବା+କରଣ. ଆଳ; Mrunāla ଏଥିରେ କଣ୍ଟା ଥିବାରୁ ଦେହରେ ଫୋଡ଼ି ହୋଇ ଯାଏ )—୧ । ପଦ୍ମନାଡ଼—1. The stem of lotus. [ ଦ୍ର—ପଦ୍ମନାଡ଼ କଣ୍ଟକମୟ । ] ୨ । ପଦ୍ମମୂଳ—2. The root of lotus plant. ୩ । ଖାଉଣ ମୂଳ; ବେଣାମୂଳ; ଖସଖସ—3. The fragrant root of the Benā grass or Andropegen Muricatum.

ମୃଣାଳିନୀ—ସଂ. ବି. ସ୍ତ୍ରୀ ( ମୃଣାଳ+ଅସ୍ତ୍ୟର୍ଥେ. ଇନ୍+ସ୍ତ୍ରୀ ଈ )—Mrunālini ୧ । ପଦ୍ମିନୀ; ପଦ୍ମସମୂହ—1. A cluster or collection of lotus. ୨ । ପଦ୍ମବହୁଳ ଦେଶ—2. A country abounding in lotuses. ୩ । ପଦ୍ମଲତା—3. The lotus plant (consisting of many lotus-stalks with flowers).

ମୃଣାଳୀ—ସଂ. ବି (ମୃଣାଳ+ଅସ୍ତ୍ୟର୍ଥେ.ଇନ୍. ୧ମା. ୧ବ)—୧ । ପଦ୍ମ—Mrunāli 1. Lotus. ୨ । ( ମୃଣାଳ+ଈ ) ପଦ୍ମନାଡ଼; ପଦ୍ମନାଳ—2. The stalk of lotus.

ମୃଣ୍ମୟ—ସଂ. ବିଣ ପୁଂ ( ମୃଦ୍=ମାଟି+ବିକାରାର୍ଥେ. ମୟ )—Mrunmaya ମୃତ୍ତିକାନିର୍ମିତ—Earth made of clay ( ମୃଣ୍ମୟୀ—ସ୍ତ୍ରୀ )

ମୃଣ୍ମୟୀ ପ୍ରତିମା—ସଂ. ବି—ମାଟିର ପିତୁଳା, ମାଟିରେ ତିଆରି ମୂର୍ତ୍ତି—Mrunmayi pratimā An earthen image; an image of clay.

ମୃତ୍(ଦ୍)—ସଂ. ବି ( ମୃଦ୍ ଧାତୁ=ଚୂର୍ଣ୍ଣ ହେବା+କର୍ତ୍ତୃ. କ୍ୱିପ୍ )—Mrut(d) ମୃତ୍ତିକା, ମାଟି—Soil, earth.

ମୃତ୍କକ(କା)ର—ସଂ. ବି ( ମୃଦ୍=ମାଟି+କୃ. ଧାତୁ+କର୍ତ୍ତୃ. ଅ )—Mrut-ka(kā)ra କୁମ୍ଭକାର; କୁମ୍ଭାର—A potter.

ମୃତ୍କାଂସ୍ୟ—ସଂ. ବି ( ମ. ଘ. ଲୋ, ମୃଦ୍+କାଂସ୍ୟ )—୧ । ମାଟିର Mrut-kāmsya ସରା—1. Earthen pan. ୨ । ମାଟିର ପାତ୍ର—2. Earthen pot. ୩ । ମାଟିର ଘଡ଼ା—3. Earthen jar and vessel.

ମୃତ୍‌କିରା—ସଂ. ବି - ବାଲିଭିତରେ ଥିବା ପୋକ; ବାଲିମେଣ୍ଢା ପୋକ; ଘୁର୍ଘୁର
Mrut-kirā କୀଟ—The snout beetle.
ଘୁର୍‌ଘୁରିଆ ପୋକ

ମୃତ୍‌ପାଣ୍ଡୁ—ସଂ. ବି (ମୃଦ୍‌+ପାଣ୍ଡୁ; ବହୁବ୍ରୀହି)—କାମଳ ରୋଗ—
Mrut-pāṇḍu Chlorosis; Greesickness jaundice.

ମୃତ୍‌ପାତ୍ର—ସଂ. ବି (ମ. ପ ଲୋ; ମୃଦ୍‌+ପାତ୍ର)—ମାଟିର ପାତ୍ର—
Mrut-pātra Earthen pot; pottery.

ମୃତ୍‌ପିଣ୍ଡ—ସଂ. ବି (୬ଷ୍ଠୀ ତତ୍)—ମାଟିର ପିଣ୍ଡୁଳା—
Mrut-pṇḍa A clod of earth; a lump of clay.

ମୃତ—ସଂ. ବଣ. ପୁଂ ( ମୃ ଧାତୁ=ମରିବା+କର୍ତ୍ତୃ. ତ )—୧ । ଗତ-
Mruta ଜୀବନ; ମରି ଯାଇଥିବା—1. Dead; deceased.
[ମୃତା—ସ୍ତ୍ରୀ] ୨ । ଅତୀତ—2. Expired; past. ୩ । ନାଶ-
ପ୍ରାପ୍ତ; ଲୁପ୍ତ—3. Extinct. ୪ । ଭସ୍ମୀକୃତ (ଧାତୁ)—
4. Calcined; oxidised (metal). ୫ । ଅବସ୍ଥାନ୍ତର-
ପ୍ରାପ୍ତ (ଧାତୁ)—5. Reduced (metals); trans-
formed. ବି—୧ । ( +ଭାବ. ତ ) ମୃତ୍ୟୁ; ମରଣ—
1. Death. ୨ । ବିନାଶ—2. Extinction; ruin.

ମୃତକ—ସଂ. ବି (ମୃତ+କ)—୧ । ଶବ; ମୃତଦେହ; ମୁର୍ଦ୍ଦାର—
Mrutaka 1. Dead body; carcase; corpse.
୨ । ମୃତ୍ତିକଅଶୌଚ; ମରଣାଶୌଚ—2. Impurity
which is considered to overtake the
relatives and kinsmen of a deceased for
a certain period after his death
(according to the Hindu scriptures)

ମୃତ କଳ୍ପ—ସଂ. ବଣ ( ମୃତ+ଈଷଦୂନାର୍ଥେ. କଳ୍ପ )—୧ । ମୃତପ୍ରାୟ;
Mruta kalpa ମରଣାପନ୍ନ—1. Almost dead; nearly
[ ମୃତବତ୍, ମୃତପ୍ରାୟ—ଅନ୍ୟରୂପ ] dead ( though not
actually dead). ୨ । ସଂଜ୍ଞାହୀନ ବା ଚୈତନ୍ୟହୀନ;
ମୂର୍ଚ୍ଛିତ—2. Insensible; fainted.

ମୃତକାନ୍ତକ—ସଂ. ବି (ମୃତକ=ଶବ+ଅନ୍ତକ=ନାଶକାରୀ, ଭକ୍ଷକ;
Mrutakāntaka ଉପପଦ ତତ୍; କିଂବା ମୃତ+କାନ୍ତକ=
ପ୍ରିୟ; ବହୁବ୍ରୀହି)—ଶୃଗାଳ—Jackal.

ମୃତକାଶୌଚ—ସଂ. ବି ( ମ. ପ. ଲୋ; ମୃତକ+ଅଶୌଚ )—
Mrutakāśaucha ମରଣାଶୌଚ, ମୃତ୍ତିକଅଶ—Impurity
besetting the kinsmen of a deceased.

ମୃତ ଗର୍ଭ—ସଂ. ବଣ. ପୁଂ ( ବହୁବ୍ରୀହି; ମୃତ+ଗର୍ଭ )—ଜନ୍ମ ହେବା
Mruta garbha ପୂର୍ବରୁ ମରିଥିବା (ଶିଶୁ)—Still born
(ମୃତଜାତ—ଅନ୍ୟରୂପ) [ମୃତଗର୍ଭା—ସ୍ତ୍ରୀ] (child)

ମୃତଣ୍ଡ—ସଂ. ବି—ସୂର୍ଯ୍ୟଦେବଙ୍କ ପିତା—The name of the
Mrutaṇḍa father of the Sun God.

ମୃତ ଦାର—ସଂ. ବି. ପୁଂ (ମୃତ+ଦାର=ସ୍ତ୍ରୀ; ବହୁବ୍ରୀହି )—ଯାହାର
Mruta dāra ସ୍ତ୍ରୀ ମରିଅଛି; ବିପତ୍ନୀକ -Widower. ବଣ.ପୁଂ—
[ବିଧବା—ବିପରୀତ] ମୃତପତ୍ନୀକ—Surviving one's wife.

ମୃତ ଦେହ—ସଂ. ବି ( କର୍ମଧା )—ମୁର୍ଦ୍ଦାର, ଶବ—Dead body;
Mruta deha corpse.

ମୃତ ଦେହ ପରୀକ୍ଷା—ସଂ. ବି—ଶବ ଦେହର ବ୍ୟବଚ୍ଛେଦ ପୂର୍ବକ
Mruta deha parikshā ତଦ୍ବ୍ୟକ୍ତିର ମୃତ୍ୟୁର କାରଣ ଓ
ଲକ୍ଷଣାଦିର ନିର୍ଣ୍ଣୟ—Post-mortem examination;
Autopsia Cadavaris; Examination of a
dead body after death.

ମୃତପ(ପା)—ସଂ. ବି (ମୃତ+ପା=ପାଳନ କରିବା+କର୍ତ୍ତୃ. ଅ; +ଆ)—
Mrutapa(pā) ୧ । ମୁର୍ଦ୍ଦାଫରାସ; ଡୋମଜାତି; ଶବବାହକ ଜାତି-
ବିଶେଷ—1. A caste of men who are
professional carriers of unclaimed dead
bodies. ୨ । ଶବଭକ୍ଷକ—2. Eater of dead
bodies.

ମୃତ ପତ୍ନୀକ—ସଂ. ବି ଓ ବଣ. ପୁଂ (ମୃତ+ପତ୍ନୀ+କ; ବହୁବ୍ରୀହି)—
Mruta patnika ମୃତଦାର (ଦେଖ)—Mruta dāra
(See)

ମୃତ ପିତୃକ—ସଂ. ବଣ. ପୁଂ (ମୃତ+ପିତୃ+କ; ବହୁବ୍ରୀହି)—ଯାହାର
Mruta pitruka ପିତା ମୃତ ହୋଇଅଛି—One who has
[ମୃତପିତୃକା—ସ୍ତ୍ରୀ] lost his father.

ମୃତ ପୁତ୍ରକ—ସଂ. ବଣ ପୁଂ. (ମୃତ+ପୁତ୍ର+କ; ବହୁବ୍ରୀହି)—ଯାହାର
Mruta putraka ପୁତ୍ର ମରି ଯାଇଅଛି—One who has
(ମୃତପୁତ୍ରକା—ସ୍ତ୍ରୀ) lost his son.

ମୃତ ପୁତ୍ରିକା—ସଂ. ବଣ. ସ୍ତ୍ରୀ. ( ମୃତ+ପୁତ୍ରିକା; ବହୁବ୍ରୀହି )—ଯେଉଁ
Mruta putrikā ସ୍ତ୍ରୀର କନ୍ୟା ମରି ଯାଇଅଛି—A woman
who has lost her daughter.

ମୃତ ବତ୍ସା—ସଂ ବି. ସ୍ତ୍ରୀ. ( ମୃତ+ବତ୍ସ+ସ୍ତ୍ରୀ. ଆ; ବହୁବ୍ରୀହି )—
Mruta batsā ୧ । ମଡ଼ଛୀ; ଯେଉଁ ସ୍ତ୍ରୀର ସନ୍ତାନମାନେ ଜନ୍ମ
ହେବା ପରେ ବେଶୀ ଦିନ ବଞ୍ଚନ୍ତି ନାହିଁ—1. A woman
whose offsprings never survive their
infancy. ୨ । ଯେଉଁ ସ୍ତ୍ରୀ ମଲା ପିଲା ଜନ୍ମ କରେ—
2. A woman who brings forth still born
children.

ମୃତ ମତ୍ତ—ସଂ. ବି. ପୁଂ. (ମୃତ+ମତ୍ତ=ଉନ୍ମତ୍ତ, ପ୍ରିୟ; ୭ମୀ ତତ୍)—
Mruta matta ଶୃଗାଳ; ବିଲୁଆ—Jackal.
(ମୃତ୍ତ ମତ୍ତକ—ଅନ୍ୟରୂପ)

ମୃତ ମାତୃକ—ସଂ. ବି. ପୁଂ (ମୃତ+ମାତୃ+କ; ବହୁବ୍ରୀହି)—ଯାହାର
Mruta mātruka ମାତା ମରି ଅଛନ୍ତି—One who has
(ମୃତମାତୃକା—ସ୍ତ୍ରୀ) lost his mother.

ମୃତ ଶଙ୍କା—ସଂ. ବି. (୬ଷ୍ଠୀ ତତ୍; ମୃତ+ଶଙ୍କା)—୧ । ମୃତ୍ୟୁଭୟ—
Mruta śankā 1. Fear of death. ୨ । ମୃତ୍ୟୁର ଆଶଙ୍କା—
2. Risk of death.

ମୃତ ଶଯ୍ୟା—ସଂ. ବି—ମୃତ୍ୟୁ ଶଯ୍ୟା ( ଦେଖ )
Mruta śajyā Mrutyu śajyā ( See )

**ମୃତ ଶଯ୍ୟା ଦାନ**—ସଂ. ବି—ମୃତ ବ୍ୟକ୍ତିର ଶୁଦ୍ଧିକ୍ରିୟା ଉପଲକ୍ଷରେ
Mṛuta śajyā dāna ଶଯ୍ୟା ଓ ଖଟ ପ୍ରଭୃତି ବ୍ରାହ୍ମଣଙ୍କୁ ଦାନ କରିବା—A gift of bed to Brāhmaṇas on the occasion of a person's funeral ceremony.

**ମୃତ ସଞ୍ଜିବ(ମ)ନ**—ଗ୍ରା. ବି—ମୃତ ସଞ୍ଜୀବନ ( ଦେଖ )
Mṛuta sañjaba(ma)na Mṛuta sañjībana (See)

**ମୃତ ସଞ୍ଜିବ(ମ)ନି**—ଗ୍ରା. ବି—ମୃତ ସଞ୍ଜୀବନୀ ( ଦେଖ )
Mṛuta sañjaba(ma)ni Mṛuta sañjībanī ( See )

**ମୃତ ସଞ୍ଜୀବନ**—ସଂ. ବି. (ମୃତ+ସମ୍+ଜୀବ୍ ଧାତୁ+ଭାବ. ଅନ )—
Mṛuta sañjībana ୧ । ମୃତ ବ୍ୟକ୍ତିର ପୁନର୍ବାର ଜୀଇଁବା—1. Revival of a dead person. ୨ । ମନ୍ତ୍ର ମଣିଷଙ୍କୁ ଜୀଆଁଇବା—2. The art or process of restoring a dead man to life; restoration of a dead body to life; revivification. ବିଣ—ଯଦ୍ଦ୍ୱାରା ମୃତ ବ୍ୟକ୍ତି ଜୀଇଁ ଉଠେ—Able to restore a dead man to life or to revive a dead person.

**ମୃତ ସଞ୍ଜୀବନୀ**—ସଂ. ବିଣ. ସ୍ତ୍ରୀ. (ମୃତ+ସଞ୍ଜୀବନୀ=ଜୀବନଦାନକାରୀ)—
Mṛuta sañjībanī ଯେଉଁ ବିଦ୍ୟା, ମନ୍ତ୍ର ବା ଔଷଧ ପ୍ରୟୋଗ କଲେ ମୃତ ବ୍ୟକ୍ତିଙ୍କୁ ପୁନର୍ଜୀବିତ କରାଯାଇ ପାରେ—Having the power or potency to restore life to the dead. ବି—୧ । ମୃତ ଲୋକଙ୍କୁ ପୁନର୍ଜୀବିତ କରିବାର ବିଦ୍ୟା ବିଶେଷ—1. A charm used in restoring a dead man to life. ୨ । ଗୋରକ୍ଷ ଦୁଗ୍ଧ; ଏକ ପ୍ରକାର କ୍ଷୁଦ୍ର ଗୁଳ୍ମ; ନାଗବଲା—2. Name of a shrub; Sida Spinosa.

**ମୃତ ସ୍ନାତ**—ସଂ. ବିଣ. ପୁଂ. (ମ.ପ.ଲୋ)—୧। ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ
Mṛuta snāta ସ୍ନାନ କରିବା; କୁଟୁମ୍ବାଦିର ମୃତ୍ୟୁ ଉପଲକ୍ଷରେ (ମୃତ ସ୍ନାତା—ସ୍ତ୍ରୀ) ସ୍ନାତ; ଅପସ୍ନାତ—1. Having had a bath on the death of a relative or kinsman. ୨ । ମୃତ ବ୍ୟକ୍ତିର ଶୁଦ୍ଧି କ୍ରିୟା (ଦଶାହ) ଉପଲକ୍ଷରେ ସ୍ନାତ; ମୃତକାଶୌଚ ପରେ ସ୍ନାତ—2. Bathed on the occasion of the purification ceremony (on the 10th day); having had funeral ablution. ୩ । ସ୍ନାନ କରିବାର ଅଲ୍ପକ୍ଷଣ ପରେ ମୃତ; ସ୍ନାତ ହେବା ପରେ ମୃତ ହୋଇଥିବା (ବ୍ୟକ୍ତି)—3. Dead immediately after a bath. ବି—ସଂସ୍କାରାର୍ଥ ସ୍ନାପିତ ମୃତ ଦେହ—Dead body bathed before cremation.

**ମୃତ ସ୍ନାନ**—ସଂ. ବି. (ମ. ପ. ଲୋ)—୧ । ଅନ୍ତ୍ୟେଷ୍ଟି ସ୍ନାନ; ମୃତକା-
Mṛuta snāna ଶୌଚ ପରେ ସ୍ନାନ; ଅପସ୍ନାନ—1. Purificatory bath taken by the kinsmen of a deceased after the period of mourning. ୨ । କୌଣସି ବ୍ୟକ୍ତିର ମୃତ୍ୟୁ ପରେ ବା ମୃତ୍ୟୁ ସଂବାଦ ଶୁଣିବା କ୍ଷଣି ଶୋକାଶ୍ରୁତ୍ୟାଗ ପରେ ସ୍ନାନ—2. Ablution taken immediately on getting the news of the death of a near relative or kinsman.

**ମୃତାଣ୍ଡ**—ସଂ. ବି. (ମୃତ+ଅଣ୍ଡ=ଡିମ୍ବ)—ସୂର୍ଯ୍ୟ—
Mṛutāṇda Sun-god.

**ମୃତା ମଦ**—ସଂ. ବି—ତୁତ୍ତ୍ୱ; ତୁତିଆ—
Mṛutā mada Blue vitriol.

**ମୃତାଳକ**—ସଂ. ବି—ମୃତ୍ତାଳ ( ଦେଖ )
Mṛutālaka Mṛuttāla ( See)

**ମୃତାଶୌଚ**—ସଂ. ବି. ( ମ. ପ. ଲୋ, ମୃତ+ଅଶୌଚ )—ମୃତକ;
Mṛutāśaucha ମୃତ୍ତିକଥ—Pollution caused by the death of a kinsman.

**ମୃତାହ**—ସଂ. ବି—(ମୃତ+ଅହନ୍)—୧ । ମୃତ୍ୟୁ ଦିବସ—1. Day
Mṛutāha of death. ୨ । ଅନ୍ତ୍ୟେଷ୍ଟି; ମୃତ ବ୍ୟକ୍ତିର ଶୁଦ୍ଧିକ୍ରିୟା—2. Funeral rites. ୩ । ମୃତ୍ୟୁର ଏକାଦଶ ଦିନ—3. The eleventh day after death.

**ମୃତାହ କର୍ମ**—ସଂ. ବି—ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ କରାଯିବା କର୍ମ;
Mṛutāha karma ଶୁଦ୍ଧି କ୍ରିୟା; ଅନ୍ତ୍ୟେଷ୍ଟି—Funeral (ମୃତାହ କ୍ରିୟା—ଅନ୍ୟରୂପ) ceremonies; posthumous rites.

**ମୃତାହ ଦଶକ ଦାନ**—ସଂ. ବି—ଏକାଦଶାହ ଦିନ ମୃତ ବ୍ୟକ୍ତିର ପ୍ରେତର
Mṛutāha daśaka dāna ମୁକ୍ତି ଉଦ୍ଦେଶ୍ୟରେ ଦିଆଯିବା ଦଶ ଗୋଟି ଦାନ—Ten kinds of gifts made to Brahmans in the course of funeral rites of a deceased. [ଦ୍ର—ଏହି ଦାନ ଗୋରୁ, ଭୂମି, ସୁନା, ବସ୍ତ୍ର, ଶାଳଗ୍ରାମ, ଅନ୍ନ, ଜଳ ପାତ୍ର, ଯବ, ଦକ୍ଷିଣା ଓ ସ୍ୱସ୍ତି ଏହି ଭେଦରେ ଦଶବିଧ । ]

**ମୃତାହ ପଞ୍ଚକ ଦାନ**—ସଂ. ବି—ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଅନ୍ତ୍ୟେଷ୍ଟି
Mṛutāha pañchaka dāna କ୍ରିୟା ଉପଲକ୍ଷରେ ବ୍ରାହ୍ମଣଙ୍କୁ ଦିଆ ଯିବା ପାଞ୍ଚଟି ବସ୍ତୁର ଦାନ (ଯଥା—ଗୋ, ଭୂମି, ସୁନା, ବସ୍ତ୍ର ଓ ଶାଳଗ୍ରାମ)—A gift of 5 articles to Brahmans in the course of the funeral rites.

**ମୃତି**—ସଂ. ବି—( ମୃ ଧାତୁ=ମରିବା+ଭାବ. ତି )—ମୃତ୍ୟୁ; ମରଣ—
Mṛuti Death. ଗ୍ରା. ବି—(ଅଶୁଦ୍ଧ)—( ସଂ. ମୂର୍ତ୍ତି )—ମୂର୍ତ୍ତି (ଦେଖ)—Mūrtti (See) [ଦ୍ର—ଏହି ଶବ୍ଦର ସାଙ୍କେତିକ । ମୃ । ଅଟେ । ଯଥା—ଅଙ୍କ * ମୃତ ବା ୫ । ମୃ । ବୈଷ୍ଣବଙ୍କର ସେବା କରାଯିବ ।]

**ମୃତିକା**—ଗ୍ରା. ବି.—(ଅଶୁଦ୍ଧ)—(ସଂ. ମୃତ୍ତିକା)—ମୃତ୍ତିକା (ଦେଖ)
Mṛutikā Mṛuttikā (See)

**ମୃତିକିଆ**—ଦେ. ବି—( ସଂ. ମୃତକ, ମୃତକାଶୌଚ )—ମୃତକାଶୌଚ
Mṛutikiā(yā) (ଦେଖ)—Mṛutakāśaucha (See) ବିଣ. ମୂର୍ତ୍ତିକିଆ (ଦେଖ)—Mūrttikiā (See)

ମୃତୁ—ଗ୍ରା. ବି—(ସଂ. ମୃତ୍ୟୁ)—ମୃତ୍ୟୁ (ଦେଖ)
Mṛutu Mṛutyu (See)
ବିଣ ( ଗ୍ରା. ଦେଶ୍ୟ ଓ କଟକୀଅ )—ମଲା; ମୃତ—Dead.
[ ଉ—ମୃତୁ ଜନକର ମୁଖେ ନ ଅର୍ପିଲୁ ବଧୀତା ଅଗ୍ନି ବରଦିହ୍ଲି—ପ୍ରାଚୀ, ପ୍ରତାପ ଶଶିରେଖା ]

ମୃତୁକ—ଗ୍ରା. ବି ( ସଂ. ମୃତକ )—ମୃତାଶୌଚ—Impurity or
Mṛutuka pollution due to the recent death of a kinsman.

ମୃତୁଞ୍ଜୟ—ଗ୍ରା. ବି ଓ ବିଣ ( ଅଶୁଦ୍ଧ ) —ମୃତ୍ୟୁଞ୍ଜୟ ( ଦେଖ )
Mṛutuñjaya Mṛutyuñjaya (See)

ମୃତୁଶଯ୍ୟା—ଗ୍ରା. ବି ( ସଂ. ମୃତ [ ତ୍ୟୁ ] + ଶଯ୍ୟା )—ମୃତ୍ୟୁଶଯ୍ୟା
Mṛutuśajyā ( ଦେଖ )—Mṛutyuśajyā ( See )
ମୃତଶଯ୍ୟା

ମୃତୋଦ୍ଭବ—ସଂ. ବି—ମହୋଦଧି; ମହାସାଗର—
Mṛutodbhaba The ocean.

ମୃତ୍କ(ତ୍କା)ର—ସଂ. ବି. ( ମୃତ୍ + କୃ ଧାତୁ = କରିବା, ତେଡ଼ିକା + କର୍ତ୍ତୃ.
Mṛutka(tkā)ra ଅ; ଉପପଦ ତତ୍)—ମୃତ୍କ(କା)ର (ଦେଖ)
Mṛut-ka(kā)ra ( See )

ମୃତ୍କାଂସ୍ୟ—ସଂ. କ୍ଳୀ. (ମ. ପ. ଲୋ, ମୃତ୍ + କାଂସ୍ୟ)— ମୃତ୍‌କାଂସ୍ୟ (ଦେଖ)
Mṛutkāṁsya Mṛut-kāṁsya ( See )

ମୃତ୍କିରା—ସଂ. ବି—ମୃତ୍‌କିରା ( ଦେଖ )
Mṛutkirā Mṛut-kirā ( See )

ମୃତ୍ତାଳ—ସଂ. ବି. (ମୃତ୍ + ଅଲ୍ ଧାତୁ=ଭୂଷିତ କରିବା + କର୍ତ୍ତୃ. ଅ)—
Mṛuttāḷa ୧ । ସୌରାଷ୍ଟ୍ର ମୃତ୍ତିକା; ସୁଗନ୍ଧୀ ମୃତ୍ତିକା ବିଶେଷ;
(ମୃତ୍ତାଳକ—ଅନ୍ୟରୂପ) ଅଡ଼ୁକା—1. A kind of fragrant earth (called also Surāṭ earth.)
୨ । ତୁବରିକା; ହରଡ଼—2. A kind of bean or cereals; Caerjajanus Indicus.

ମୃତ୍ତି—ଦେ. ବି—ମୃତ୍ତିକା (ଦେଖ)
Mṛutti Mṛuttikā (See)
[ଉ—ପୋଷଣ ଉଥଇ ମୃତ୍ତି କୁଡ଼ା ଦେଇ ଦେଇ ।
ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।]

ମୃତ୍ତିକା—ସଂ. ବି—(ମୃଦ୍ + ସ୍ୱାର୍ଥେ ତକ + ସ୍ତ୍ରୀ. ଆ)—୧ । ମାଟି—
Mṛuttikā 1, Soil. ୨ । କାଦୁଅ—2. Clay; mud.
୩ । ଗନ୍ଧ ମାଟି—3. Scented soil. ୪ । ଭୂମି—
4. Earth.

ମୃତ୍ତିକାଧାର—ସଂ. ବି— (ମୃତ୍ତିକା + ଆଧାର)—ମୃତ୍ ପାତ୍ର—
Mṛuttikādhāra Earthen pot.

ମୃତ୍ତିକା ଭକ୍ଷଣେଚ୍ଛା—ସଂ. ବି—(ଗର୍ଭିଣୀର ବା ଶିଶୁର) ମାଟି ଖାଇବା
Mṛuttikā bhakshaṇechchhā ନିମନ୍ତେ ଅଭିଳାଷ—
Geophagism; a depraved habit of eating earth (observed in some pregnant women and children).

ମୃତ୍ତିକା ଲେପନ—ସଂ. ବି.—(୭ମୀ ତତ୍; ମୃତ୍ତିକା + ଲେପନ)—
Mṛuttikā lepana ୧ । ଦେହରେ ମାଟି ବୋଳିବା ବା ଚିତା କରିବା—1. Besmearing the body with paste of ochre. ୨ । ଘରେ ମାଟି ଲେପିବା—
2. Besmearing the walls with clay.

ମୃତ୍ପାଣ୍ଡୁ—ସଂ. ବି—(ମୃତ୍ + ପାଣ୍ଡୁ)—ମୃତ୍‌ପାଣ୍ଡୁ (ଦେଖ)
Mṛutpāṇḍu Mṛut-pāṇḍu (See)

ମୃତ୍ପାତ୍ର—ସଂ. ବି—( ମଧ୍ୟପଦଲୋପୀ ବା ୭ମୀ ତତ୍; ମୃତ୍ + ପାତ୍ର )—
Mṛutpātra ମୃତ୍ ପାତ୍ର (ଦେଖ)—Mṛut-pātra (See)

ମୃତ୍ପିଣ୍ଡ—ସଂ. ବି.—(ମୃତ୍ + ପିଣ୍ଡ)—ମୃତ୍‌ପିଣ୍ଡ (ଦେଖ)
Mṛutpiṇḍa Mṛut-piṇḍa (See)

ମୃତ୍ୟୁ—ସଂ. ବି.—(ମୃ ଧାତୁ = ମରିବା + ଭାବ. ତ୍ୟୁ)—୧ । ପ୍ରାଣବିୟୋଗ;
Mṛutyu ମରଣ—1. Death. ୨ । (+ ଅପାଦାନ. ତ୍ୟୁ)—ଯମ—
2. The God of death. [ଉ—ମୃତ୍ୟୁଙ୍କ ନାଇ ଅମୃତାଭ, ଧର୍ମ ବଶରେ ବିମୋହିତ । ଜଗନ୍ନାଥ ଭାଗବତ ।]
୩ । କଂସାସୁର—3. The demon Kaṁsa.
ଦେ. ବିଣ—(କଟକୀଅ ଅଶୁଦ୍ଧ ଭାଷା) ମୃତ; ମୃତୋପା—
3. Deceased; dead; the late (so and so.)
[ଦ୍ର—'ମୃତ୍ୟୁ' ଶବ୍ଦ ପୂର୍ବରେ ଅନ୍ୟ ଶବ୍ଦ ବା ଉପସର୍ଗ, ଉପପଦ ଲାଗି ଅନ୍ୟ ଶବ୍ଦ ମଧ୍ୟ ସୃଷ୍ଟି ହୋଇଥାଏ । କେତେକ ଉଦାହରଣ, ଯଥା—ଅପମୃତ୍ୟୁ, ସ୍ୱେଚ୍ଛମୃତ୍ୟୁ, ଅକାଲ ମୃତ୍ୟୁ-ସଦ୍ୟମୃତ୍ୟୁ, ଖାଟମୃତ୍ୟୁ, ଜଳମୃତ୍ୟୁ, ରୋଗମୃତ୍ୟୁ ।]

ମୃତ୍ୟୁକ—ଦେ. ବିଣ—ମୃତ୍ୟୁ ସମ୍ବନ୍ଧୀୟ—Relating to death.
Mṛutyuka ଦେ. ବି—୧ । ମୃତ୍ୟୁ—1. Death. ୨ । ମୃତକାଶୌଚ—2. Impurity due to the death of a kinsman. [ଉ—ନାହିଁ ତାଙ୍କର ଜୁତୁକ ମୃତ୍ୟୁକ, ଶୁଭାଶୁଭ ନାହିଁ ନ ଥାଇ ଶୋକ । ପ୍ରାଚୀ. ପରତେ ଗୀତା]

ମୃତ୍ୟୁକର—ସଂ. ବିଣ.—(ମୃତ୍ୟୁ + କୃ ଧାତୁ + କର୍ତ୍ତୃ. ଅ)—ମୃତ୍ୟୁଜନକ;
Mṛutyukara ଯାହା ମୃତ୍ୟୁ ଘଟାଏ; ମାରାତ୍ମକ—Causing
(ମୃତ୍ୟୁକାରକ, ମୃତ୍ୟୁକାରୀ—ଅନ୍ୟରୂପ) death; fatal; mortal; deadly.

ମୃତ୍ୟୁ କାଳ—ସଂ. ବି—ମରଣ ଘଟିବାର ସମୟ—
Mṛutyu kāḷa The time of death.

ମୃତ୍ୟୁ କାଳଜ୍ଞ—ସଂ. ବିଣ. ପୁଂ—(ଉପପଦ ତତ୍)—ଯେଉଁ ବ୍ୟକ୍ତି
Mṛutyu kāḷajña କେତେକ ପୂର୍ବ ଲକ୍ଷଣ ବା ଶକୁନ ବା
(ମୃତ୍ୟୁକାଳଜ୍ଞା—ସ୍ତ୍ରୀ) ସୂଚନା ଦେଖି ମନୁଷ୍ୟର ମରିବା ସମୟ ପୂର୍ବରୁ
(ମୃତ୍ୟୁକାଳଜ୍ଞତା[ତ୍ୱ]—ବି) ଜାଣି ପାରନ୍ତି—Able to foresee the time of one's death by noting some premonitory symptoms, signs or omens.

ମୃତ୍ୟୁକାଳ ଜ୍ଞାନ—ସଂ. ବି—ବିଜ୍ଞାନୋକ୍ତ ବା ଶାସ୍ତ୍ରୋକ୍ତ ଲକ୍ଷଣମାନ ବା
Mṛutyu kāḷa jñāna ଶକୁନ ମାନ ଦେଖି ମନୁଷ୍ୟର ମୃତ୍ୟୁ ଘଟିବା ସମୟ ପୂର୍ବରୁ ଜାଣି ପାରିବା—Foresight of the time of death by certain auguries (mentioned in science or religious books).

[ଦ୍ର—ହିନ୍ଦୁ ଶାସ୍ତ୍ରମାନଙ୍କରେ ମୃତ୍ୟୁ କାଳଜ୍ଞାନ ବିଷୟରେ ନାନା ଲକ୍ଷଣ ଲେଖା ଯାଇଅଛି । ଯଥା—ସପ୍ତର୍ଷି ମଣ୍ଡଳର ବଶିଷ୍ଠ ଋଷି ନାମକ ନକ୍ଷତ୍ର ନିକଟରେ ଥିବା କ୍ଷୁଦ୍ର ଅରୁନ୍ଧତୀ ନକ୍ଷତ୍ର ଦେଖି ନ ପାରିବା ଲୋକର ୬ ମାସ ମଧ୍ୟରେ ମୃତ୍ୟୁ ଘଟେ, ଆପଣା ନାକର ଅଗ୍ରଭାଗ ଦେଖି ନ ପାରିବା ବ୍ୟକ୍ତିର ମୃତ୍ୟୁ ନିକଟରେ ଘଟେ; ମୁଣ୍ଡରେ ପେଚା ବସି ଗଲେ ମନୁଷ୍ୟର ମୃତ୍ୟୁ ନିକଟବର୍ତ୍ତୀ; ସମ୍ମୁଖସ୍ଥ ପଦାର୍ଥମାନ ଆଖିକୁ ଦୁଇ ଦୁଇଟା ହୋଇ ଦେଖା ଗଲେ ମୃତ୍ୟୁ ଖୁବ୍ ନିକଟ, ସ୍ୱପ୍ନରେ ଶିଅର ହେବା, ତେଲ ମର୍ଦ୍ଦନ ହେବା ବା କୃଷ୍ଣବର୍ଣ୍ଣ ଜୀବ ସ୍ୱପ୍ନ ଦେଖିବା ବ୍ୟକ୍ତିର ମୃତ୍ୟୁ ଆସନ୍ନ ।]

**ମୃତ୍ୟୁ ଛାୟା**—ସଂ. ବି—(ମୃତ୍ୟୁ+ଛାୟା; ଷଷ୍ଠୀ ତତ୍ପୁରୁଷ)—(ଲକ୍ଷଣାର୍ଥ)—
**Mṛutyu chchhāyā** ଆସନ୍ନ ମୃତ୍ୟୁର ଛାୟା ବା କାଳିମା—(figurative) The shadow of death.

**ମୃତ୍ୟୁ ଜନକ**—ସଂ. ବିଣ.—(୬ଷ୍ଠୀ ତତ୍; ମୃତ୍ୟୁ+ଜନକ)—ମୃତ୍ୟୁକର
**Mṛutyu janaka** Mṛutyukara (See)
(ମୃତ୍ୟୁଜନକା—ସ୍ତ୍ରୀ)

**ମୃତ୍ୟୁଞ୍ଜୟ**—ସଂ. ବି—(ମୃତ୍ୟୁଂ=ମୃତ୍ୟୁକୁ+ଜି ଧାତୁ=ଜୟ କରିବା+କର୍ତ୍ତ୍ରି. ଅ; ଉପପଦ ତତ୍;)—ଶିବ; ମହାଦେବ—
**Mṛutyuñjaya** God Śiba. ବିଣ.—୧ । ମୃତ୍ୟୁକୁ ଜୟକାରୀ—1. Conquering death. [ଦ୍ର—ଧନ୍ୟ ରଥେ ! ତୁମ୍ଭ ଜନ୍ମ ଶୁଭ କ୍ଷଣେ, ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ । ରାଧାନାଥ. ଚିଲିକା ] ୨ । ଯେ ଚିରକାଳ ପାଇଁ ପାସୋର ଯାଇ ପାରେ ନାହିଁ; ଅମରଯଶାଃ—2 Not to be forgotten for ever; ever memorable. ଦେ. ବି. ପୁଂ—ଲୋକଙ୍କ ରଖା ଯିବା ନାମ—A name given to males.

**ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର**—ଦେ. ବି (ନାମ)—ଯାଜପୁରବାସୀ ଜନୈକ
**Mṛutyuñjaya bidyālankāra** ଓଡ଼ିଆ ବ୍ରାହ୍ମଣ ପଣ୍ଡିତ—A late Oriyā Brāhmana Pandit of Jajpur author of an Oriya Dictionary and Grammar when the Fort William College was first established in 1801 A. D. [ଦ୍ର—ଏ ଯାଜପୁରବାସୀ ଓଡ଼ିଆ ବ୍ରାହ୍ମଣ । ଏ ରାଜାବଳୀ ଓ ପ୍ରବୋଧଚନ୍ଦ୍ରିକା ନାମକ ଦୁଇଖଣ୍ଡି ବଙ୍ଗଳା ପୁସ୍ତକ ରଚନା କରି ଯଥାକ୍ରମେ ୧୮୦୮ ଓ ୧୮୧୩ ଖ୍ରୀଷ୍ଟାବ୍ଦରେ ପ୍ରକାଶ କରିଥିଲେ । ସେ କଲିକତାର ଫୋର୍ଟ୍ ଉଇଲିୟମ୍ କଲେଜରେ ନବାଗତ ଇଂରେଜ କର୍ମଚାରୀମାନଙ୍କୁ ବଙ୍ଗଳା ଭାଷା ଶିକ୍ଷା ଦେଉଥିଲେ । ବିଦ୍ୟାପତି-ରଚିତ ପୁରୁଷ ପରୀକ୍ଷାର ଓ ବତିଶ ସିଂହାସନର ଅନୁବାଦ ମଧ୍ୟ ତାହାଙ୍କଦ୍ୱାରା ପ୍ରକାଶିତ ହୋଇଥିଲା । ଏହି ସକଳ ଗ୍ରନ୍ଥ ଉକ୍ତ କଲେଜରେ ପାଠ୍ୟପୁସ୍ତକସ୍ୱରୂପ ନିର୍ବାଚିତ ହୋଇଥିଲା । ଏତଦ୍ବ୍ୟତୀତ ସେ ଓ ଅନ୍ୟ ଜଣେ ସାହେବ ମିଳି ଓଡ଼ିଆ ଅଭିଧାନ ସଂକଳନ କରିଥିଲେ । ତାହାହିଁ ଓଡ଼ିଆ ଭାଷାର ସର୍ବପ୍ରଥମ ଅଭିଧାନ । ୧୮୦୧ ଖ୍ରୀଷ୍ଟାବ୍ଦରେ କଲିକତାରେ ଫୋର୍ଟ ଉଇଲିୟମ କଲେଜ ସ୍ଥାପିତ ହେବା ସମୟରେ ତହିଁରେ ପଠିତ ହେବା ପାଇଁ ଏ ବ୍ୟାକରଣ, ଅଭିଧାନ ଆଦି କେତେକ ପାଠ୍ୟପୁସ୍ତକ ବଙ୍ଗଳା ଭାଷାରେ ରଚନା କରିଥିଲେ । ]

**ମୃତ୍ୟୁଞ୍ଜୟ ମନ୍ତ୍ର**—ସ. ବି—ମହାଦେବଙ୍କ ଜପମନ୍ତ୍ରବିଶେଷ—A for-
**Mṛutyuñjaya mantra** mula for repeating the name of Mahādeba.

**ମୃତ୍ୟୁଞ୍ଜୟ ରଥ**—ଦେ. ବି (ନାମ)—ସ୍ୱର୍ଗୀୟ ଉତ୍କଳଭାଷାଭିଜ୍ଞ ପଣ୍ଡିତ—
**Mṛutyuñjaya ratha** Late literaray Oriya knowing Pandit. [ଦ୍ର—ଏ 'ପ୍ରବନ୍ଧପାଠ', 'ମୁଦ୍ରାରାକ୍ଷସ ନାଟକ' ଓ 'ସାରଳା ଚରିତ' ପ୍ରଭୃତି ଗ୍ରନ୍ଥମାନ ଲେଖିଅଛନ୍ତି—ତାରିଣୀ. ଉ. ସା. ଇତିହାସ ।]
ଏ ଏକାଧିକ ସଂସ୍କୃତ ଗ୍ରନ୍ଥ ଅନୁବାଦ କରିଥିଲେ ଓ ଅନେକ ପ୍ରାଚ୍ୟତତ୍ତ୍ୱ ଓ ଭାଷାତତ୍ତ୍ୱ ଆଲୋଚନା କରିଥିଲେ । ଏ ଓଡ଼ିଆ ସାହିତ୍ୟର ଜଣେ ନିଷ୍ଠାପର ସେବକ ଥିଲେ ଓ ଯୁବକ ଅବସ୍ଥାରେ ୧୯୨୩ ଖ୍ରୀ: ରେ ଏହାଙ୍କର ମୃତ୍ୟୁ ଘଟିବାରୁ ଓଡ଼ିଆ ସାହିତ୍ୟର ଦାରୁଣ କ୍ଷତି ହେଲା । ]

**ମୃତ୍ୟୁ ନାଶକ**—ସ. ବି—ପାରଦ; ପାରା ଧାତୁ—
**Mṛutyu nāśaka** Mercury; quicksilver.

**ମୃତ୍ୟୁପୁର**—ସ. ବି—(ଯେଉଁ ପୁରରେ ଜୀବଗଣ ମରନ୍ତି) ମର୍ତ୍ତ୍ୟପୁର—
**Mṛutyupura** The earth. [ଦ୍ର—ଆଉ ଅଳ୍ପ ଦିନର କଥା, ମୃତ୍ୟୁପୁରେ କି ଥିବା ସର୍ବଥା ? ପ୍ରାଚୀ. ରହସ୍ୟମଞ୍ଜରୀ । ]

**ମୃତ୍ୟୁପୁଷ୍ପ**—ସଂ. ବି—ଇକ୍ଷୁ; ଆଖୁ—Sugarcane. [ଦ୍ର—
**Mṛutyupushpa** ପୁଷ୍ପୋଦ୍ଗମ ହେଲେ ଏ ଗଛ ମରିଯାଏ ବୋଲି ଏହାର ଏପରି ନାମ ହୋଇଅଛି । ]

**ମୃତ୍ୟୁଫଳ(ଳା)**—ସଂ. ବି—୧ । ମହାକାଳ ଫଳ—The colocinth.
**Mṛutyu phala(lā)** ୨ । କଦଳୀ ଫଳ—2. Banana; plantain (fruit). [ଦ୍ର—ଏ ଗଛରେ ଥରେ ଫଳ ଧରିଲେ ଏ ଗଛ ମରିଯାଏ । ]

**ମୃତ୍ୟୁ ବଞ୍ଚନ**—ସଂ. ବି (ବହୁବ୍ରୀହି)—୧ । ମୃତ୍ୟୁଞ୍ଜୟ; ଶିବ—1.
**Mṛutyu bañchana** Śiba. ୨ । ବିଲ୍ୱବୃକ୍ଷ—2. The marmale tree. ୩ । ଡାମରକୁଆ; ଦଣ୍ଡକାକ—3. Raven

**ମୃତ୍ୟୁବୀଜ**—ସଂ. ବି—ବାଉଁଶ—The bamboo. [ଦ୍ର—ଫଳ
**Mṛutyubīja** ଧରିଲେ ଏ ଗଛ ମରିଯାଏ ବୋଲି ଏହାର ନାମ 'ମୃତ୍ୟୁବୀଜ' । ]

**ମୃତ୍ୟୁ ଭଙ୍ଗୁରକ**—ସଂ. ବି—ମରଣକାଳରେ ବାଦନୀୟ ପଟହ—
**Mṛutyu bhanguraka** Funeral drum.

**ମୃତ୍ୟୁଭୟ**—ସଂ. ବି (୬ଷ୍ଠୀ ତତ୍)—ମରିବାର ଆଶଙ୍କା—
**Mṛutyubhaya** The fear of death.

**ମୃତ୍ୟୁ ଭୃତ୍ୟ**—ସଂ. ବି (୬ଷ୍ଠୀ ତତ୍)—ରୋଗ—
**Mṛutyu bhṛutya** Disease; illness.

**ମୃତ୍ୟୁମୁଖ**—ସଂ. ବି (୬ଷ୍ଠୀ ତତ୍, ମୃତ୍ୟୁ=ଯମ+ମୁଖ)—୧ । କାଳ-
Mṛutyumukha କବଳ; ମୃତ୍ୟୁର ବା କାଳଦେବତାଙ୍କ ପାଟି
—1. The jaws of death; death's mouth.
୨ । ଆସନ୍ନ ମୃତ୍ୟୁ—2. Impending death.

**ମୃତ୍ୟୁ ମୁଖରେ ପତିତ ହେବା**—ଦେ. କ୍ରି—ମରିବା—To die; to
Mṛutyu mukhare patita hebā meet death.
মৃত্যু মুখে পড়া मृत्यु मुखमे पड़ना

**ମୃତ୍ୟୁ ଯୋଗ**—ସଂ. ବି. (ଫଳିତ ଜ୍ୟୋତିଷ)—୧ । ଜ୍ୟୋତିଷୋକ୍ତ ଅଶୁଭ
Mṛutyu joga ଯୋଗ ବିଶେଷ—1. (astrology) A
particular inauspicious conjunction of
stars on particular days. [ଦ୍ର—ପ୍ରତିପଦ
ତିଥିରେ ଉତ୍ତରାଷାଢ଼ା, ନବମୀରେ କୃତ୍ତିକା, ଅଷ୍ଟମୀରେ ପୂର୍ବ
ଭାଦ୍ରପଦ, ଏକାଦଶୀରେ ରୋହିଣୀ, ଦ୍ୱାଦଶୀରେ ଅଶ୍ଳେଷା
ଓ ତ୍ରୟୋଦଶୀରେ ମଘା ନକ୍ଷତ୍ର ପଡ଼ିଲେ ଏହି ଯୋଗ
ଘଟେ । ଏ ଯୋଗରେ ଯାତ୍ରା ନିଷିଦ୍ଧ ।] ୨ । ମନୁଷ୍ୟର ମୃତ୍ୟୁ
ଘଟିବାର (ନିର୍ଦ୍ଦିଷ୍ଟ ଲକ୍ଷଣ ଯୁକ୍ତ) ଯୋଗ—2. A time
preordained by Fate for one's death.
୩ । (ଫଳିତ ଜ୍ୟୋତିଷ) ମାରକଦଶା; ଜାତକୋକ୍ତ ଗ୍ରହ
ନକ୍ଷତ୍ରାଦିର ମାରକ ଯୋଗ, ଯହିଁରେ ଜାତ ବ୍ୟକ୍ତିର ମୃତ୍ୟୁ
ନିଶ୍ଚୟ ଘଟିବ ବୋଲି ଶାସ୍ତ୍ର କହେ—3. (astrology)
A conjunction of planets etc. resulting
in or leading to a person's death.

**ମୃତ୍ୟୁ ଶଯ୍ୟା**—ସଂ. ବି. (ମ. ପ. ଲୋ; କର୍ମଧାରୟ)—୧ । ମୃତ ବ୍ୟକ୍ତିଙ୍କ
Mṛutyu śajyā ଶୁଦ୍ଧି କ୍ରିୟା ଉପଲକ୍ଷରେ ବ୍ରାହ୍ମଣଙ୍କୁ ଦାନ
ଦିଆଯିବା ସୁସଜ୍ଜିତ ଶଯ୍ୟା—1. A bed presented
to Brahmans on the occasion of the
performance of the funeral rites.
୨ । (ଆଧୁନିକ) ଆସନ୍ନମୃତ୍ୟୁ ବା ମୃତ ବ୍ୟକ୍ତିର ଶଯ୍ୟା—
2. Deathbed; the bed of a dead or dying
person.

**ମୃତ୍ୟୁ ସଂଖ୍ୟା**—ସଂ. ବି. (୬ଷ୍ଠୀ ତତ୍)—ଯୁଦ୍ଧ ଓ ରୋଗ ଆଦିରେ ମୃତ
Mṛutyu saṁkhyā ବ୍ୟକ୍ତିମାନଙ୍କର ଗଣନା—The
number of mortality.

**ମୃତ୍ୟୁ ସଞ୍ଜୀବନୀ**—ସଂ. ବି—ମୃତ ସଞ୍ଜୀବନୀ (ଦେଖ)
Mṛutyu sañjībanī Mṛuta sañjībanī (See)
(ଉ—ସନ୍ଧାନ କରଣ ଯେ ବିଶଲ୍ୟକରଣୀ, ମୃତ୍ୟୁ ସଞ୍ଜୀବନୀ
ଯେ ଦ୍ରାବଣି କରଣୀ । କୃଷ୍ଣସିଂହ. ମହାଭାରତ. ବନ ।)

**ମୃତ୍ୟୁସୂତି**—ସଂ. ବି.—କର୍କଟ; କଙ୍କଡ଼ା—Crab. [ଦ୍ର—ପ୍ରସବ-
Mṛutyu syūti କାଳରେ ମାଆ ମରଯାଏ ବୋଲି କଙ୍କଡ଼ାର
ଏପରି ନାମ କରଣ ହୋଇଅଛି ।]

**ମୃତ୍ସା(ସ୍ନା)**—ସଂ. ସ୍ତ୍ରୀ. (ମୃତ୍=ମୃତ୍ତିକା+ପ୍ରଶସ୍ତାର୍ଥେ ସ, ସ୍ନ+ସ୍ତ୍ରୀ. ଆ)
Mṛutsā(snā) ପ୍ରଶସ୍ତ ମୃତ୍ତିକା; ଉତ୍ତମ ମାଟି—Good soil.

**ମୃଦ୍(ଧାତୁ)**—ସଂ—୧। ଚୂର୍ଣ୍ଣ କରିବା; ଚୂରିବା—1. To reduce; to
Mṛud (root) powder; to pulverise. ୨ । ମର୍ଦ୍ଦନ
କରିବା; ଦଳିବା—2. To trample; to tread;
to bruise; to crush ୩ । ପେଷିବା—
3. To grind; to pound.

**ମୃଦ୍**—ସଂ. ସ୍ତ୍ରୀ. (ମୃଦ୍ ଧାତୁ+କର୍ମ କ୍ୱିପ୍)—ମୃତ୍ତିକା; ମାଟି—
Mṛud Earth; soil.

**ମୃଦ୍‌ଫରା(ରୋ)ସ୍**—ଦେ. ବି.—ମୁର୍ଦ୍ଦାଫରାସ (ଦେଖ)—
Mrudpharā(ro)s Murdda pharās (see)

**ମୃଦଙ୍ଗ**—ସଂ ବି.—(ବହୁବ୍ରୀହି; ମୃଦ୍=ମୃତ୍ତିକା+ଅଙ୍ଗ)—୧ । ମୃତ୍ତିକା
Mṛudaṅga ନିର୍ମିତ ଦ୍ୱିମୁଖବିଶିଷ୍ଟ ଚର୍ମାନଦ୍ଧ ବାଦ୍ୟଯନ୍ତ୍ର ବିଶେଷ;
ଖୋଳ—1. A tabour made of clay. [ଦ୍ର—
ଆର୍ଯ୍ୟମାନେ ମୃଦଙ୍ଗର ପ୍ରଥମ ସୃଷ୍ଟିକର୍ତ୍ତା । ପରେ
ମୁସଲମାନ୍‌ମାନେ ମାଟି ପରିବର୍ତ୍ତେ ଏହାକୁ କାଠରେ
ତିଆରି କରିଥିଲେ । କାଷ୍ଠମୟ ବାଦ୍ୟର ନାମ ମର୍ଦ୍ଦଳ ବା
ପଖୋଜ ବା ଢୋଲକ ଏବଂ ମୃଣ୍ମୟ ବାଦ୍ୟର ନାମ
ମୃଦଙ୍ଗ ।] ୨ । ପଟହ; ନାଗରା—2. Drum. ୩ ।
ଘୋଷ; ଶବ୍ଦ; ଗୋଳମାଳ—3. Sound; noise.
୪ । ବଂଶ; ବାଉଁଶ—4. Bamboo.

**ମୃଦଙ୍ଗ ପିଠିଆ**—ଦେ. ବିଣ, (ସଂ. ମୃଦଙ୍ଗ+ପୃଷ୍ଠ)—ଯେଉଁ ପଶୁ
Mṛudaṅga piṭhia (ଜବାବ)ର ପିଠି ମୃଦଙ୍ଗ ପରି ଗୋଲ—
যার মৃদঙ্গের মত পিঠ (An animal) Having the back
मृदंगका माफिक पीठवाला shaped like a tabour.

**ମୃଦଙ୍ଗ ପେଟା**—ଦେ. ବିଣ. ପୁଂ—ଯାହାର ପେଟ ମୃଦଙ୍ଗ ପରି ଫୁଲିଯାଏ—
Mrudaṅga peṭā Having a swollen belly
যারমৃদঙ্গের মত পেট मृदंगसा पेटवाला (like a tabour).

ମୃଦଙ୍ଗ ପେଟୀ, ମୃଦଙ୍ଗ ପେଟେ(ଟୋ)ଇ }—ସ୍ତ୍ରୀ (ମୃଦଙ୍ଗପେଟିଆ—ଅନ୍ୟରୂପ)

**ମୃଦଙ୍ଗ ଫଳ**—ସଂ. ବି—ପଣସ ଫଳ—Jack fruit; Artocarpus
Mṛudaṅga phaḷa Integrifolia.

**ମୃଦଙ୍ଗଫଳିନୀ**—ସଂ. ବି—କୋଶାତକୀ; ଜହ୍ନୀ—
Mṛudaṅgaphaḷinī Luffa Acutangula.

**ମୃଦଙ୍ଗର ଦୁଇ ପିଠିରେ ହାତ ମାରିବା**—ଦେ. କ୍ରି—ଯେଉଁ ବ୍ୟକ୍ତି
Mṛudaṅgara dui piṭhire hāta māribā ଉଭୟ ପକ୍ଷ
ବା ଦଳଙ୍କ ସଙ୍ଗେ ମିଶେ ବା କଥା କରେ—(said
of a person) siding with both
parties in a contest or quarrel.

**ମୃଦଙ୍ଗାର**—ସଂ. ବି (ମୃତ୍+ଅଙ୍ଗାର; କାଠ ବହୁକାଳ ମାଟି ମଧ୍ୟରେ
Mṛudaṅgāra ପୋତି ହୋଇ ରହିଲେ ଅଙ୍ଗାର ପାଲଟିଯାଏ)—
ପଥର କୋଇଲା—Coal.

**ମୃଦଙ୍ଗିଆ**—ଦେ. ବି (ସଂ. ମୃଦଙ୍ଗୀ)—ଯେ ମୃଦଙ୍ଗ ବଜାଏ—One
Mṛudaṅgiā who plays on the tabour.
যারা মৃদঙ্গ বাজায় मृदङ्गबजानेवाला

**ମୃଦଙ୍ଗୀ**—ସଂ. ବି. ପୁଂ (ମୃଦଙ୍ଗ+ଇନ୍; ୧ମା. ୧ବ)—ମୃଦଙ୍ଗବାଦକ—
Mṛudaṅgī One who plays on the tabour.
(ମୃଦଙ୍ଗିନୀ—ସ୍ତ୍ରୀ) ବି. ସ୍ତ୍ରୀ—(ମୃଦଙ୍ଗ+ସ୍ତ୍ରୀ. ଈ; ମୃଦଙ୍ଗ ଆକୃତି-
ବିଶିଷ୍ଟ)—କୋଶାତକୀ; ଜହ୍ନୀ—Luffa Acutangla.

ମୃଦବ—ସଂ. ବି—ନାଟକୀୟ ଭାଷାରେ ଗୁଣ ସହିତ ଦୋଷର ପ୍ରଦର୍ଶନ
Mṛudaba (ଦୃ. ଶ)—(dramatic parlance) The exhibition of the faults of a dramatic character along with its excellence.

ମୃଦର—ସଂ. ବିଣ. ପୁଂ—୧ । ଚଞ୍ଚଳ; ଚତୁର—1. Active; pert.
Mṛudara ୨ । ଦ୍ରୁତଗାମୀ—2. Swift. ୩ । କ୍ଷଣସ୍ଥାୟୀ—
(ମୃଦରା-ସ୍ତ୍ରୀ) 3. Transient; momentary; short-lived.

ମୃଦା—ସଂ. ବି. ସ୍ତ୍ରୀ (ମୃଦ୍ ଧାତୁ + କର୍ମ. ଅ + ଆ)—ମାଟି—
Mṛudā Earth; clay

ମୃଦାକ(କା)ର—ସଂ. ବି (ମୃଦ୍ + ଆକର; ବହୁବ୍ରୀହି କିମ୍ବା ମୃଦା=
Mṛudāka(kā)ra ମାଟି + କୃ ଧାତୁ + କର୍ତ୍ତୃ. ଅ, ଉପପଦ ତତ୍)—ବଜ୍ର; ଅଶନି—Thunderbolt.

ମୃଦାର—ଗ୍ରା. ବୈଦେ. ବି—ମୁର୍ଦାର (ଦେଖ)
Mṛudāra Murdāra (See)

ମୃଦାର ଶଙ୍ଖ—ଦେ. ବି (ସ. ମୁଦ୍ରାଶଙ୍ଖ)—ମୁଦ୍ରାଶଙ୍ଖ (ଦେଖ)
Mṛudāra śankha Mudrā śankha (See)

ମୃଦାର ଶିଙ୍ଗ(ଙ୍ଘ,ଙ୍ଗି,ଙ୍ଘୀ)—ଦେ. ବି (ସଂ. ମୃଦାର ଶୃଙ୍ଗ)—ମୃଦାର ଶୃଙ୍ଗ
Mṛudāra śinga(ngha,ngi,nghī) (ଦେଖ)—
Mṛuddāra śrunga (See)

ମୃଦିତ—ସଂ. ବିଣ (ମୃଦ୍ ଧାତୁ=ଚୂର୍ଣ୍ଣ କରିବା + କର୍ମ. ତ)—
Mṛudita ୧ । ମର୍ଦ୍ଦିତ—1. Pounded. ୨ । ଚୂର୍ଣ୍ଣୀକୃତ—2. Powdered; pulverised. ୩ । ଦଳିତ—3. Trodden; bruised; crushed. ୪ । ପଦଦଳିତ—4. Trampled on.

ମୃଦିନୀ—ସଂ. ବି. ସ୍ତ୍ରୀ (ମୃଦା=ମୃତ୍ତିକା + ପ୍ରଶସ୍ତାର୍ଥେ. ଇନ୍ + ସ୍ତ୍ରୀ. ଈ)—
Mṛudinī ୧ । ଉତ୍ତମ ମାଟି—1. Good soil. ୨ । ଗୋପୀଚନ୍ଦନ (ଦୃ. ଶ)—2. A kind of soil used for painting the body.

ମୃଦୁ—ସଂ. ବିଣ (ମୃଦ୍ ଧାତୁ=ଚୂର୍ଣ୍ଣ ହେବା + କର୍ତ୍ତୃ. ଉ)—
Mṛudu ୧ । ଅତୀକ୍ଷ୍ଣ; ଧାରହୀନ; ଯାହା ଧାରୁଆ ନୁହେଁ—1. Blunt; not sharp. ୨ । ନରମ; କୋମଳ—2. Soft; tender; supple. ୩ । ନମ୍ର; ଭଦ୍ର; ଶାନ୍ତ—3. Gentle; mild; placable. ୪ । ଶାନ୍ତ—4. Peaceable; quiet. ୫ । ଦୟାଳୁ—5. Kind. ୬ । ଧୀର—6. Slow. ବି—୧ । ମୃଦୁଗଣ (ଦେଖ)—1. Mṛudugaṇa (See). ୨ । ଶନିଗ୍ରହ (କାରଣ ଏହାର ଗତି ମୃଦୁ)—2. The planet Saturn. ୩ । ଗୃହକନ୍ୟା; ପରିବାରସ୍ଥ କନ୍ୟା; ଘରର ଝିଅ—3. A daughter of the household; a female child.

ମୃଦୁ ଅଙ୍ଗୀ—ଦେ.ବି. ଓ ବିଣ (ପଦ୍ୟ) ସ୍ତ୍ରୀ. (ସ. ମୃଦ୍ୱଙ୍ଗୀ)—କୋମଳାଙ୍ଗୀ
Mṛudu angī —A woman having a soft body.

ମୃଦୁଅଙ୍ଗୀ ମୃଦୁଅଙ୍ଗୀ

(ମୃଦୁ ଅଙ୍ଗିମା—ଅନ୍ୟରୂପ) (ଯଥା—କମଳ ଦଳ ଫୁଲ ନାସା ଶୋଭମା, କର୍ଣ୍ଣେ ଦୋ ଶିରୀଷ ମୃଦୁ ଅଙ୍ଗିମା । ଉପେ. ବୈଦେ-ହୀଶ ବିଳାସ ।)

ମୃଦୁ କୃଷ୍ଣାୟସ—ସଂ. ବି—ସୀସକ—
Mṛudu kṛushṇāyasa Lead.

ମୃଦୁ କୋଷ୍ଠ—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ଯେଉଁ ବ୍ୟକ୍ତିର ଝାଡ଼ା
Mṛudu koshṭha ତରଳଥା ହୁଏ—1. (a person) Of
(ମୃଦୁକୋଷ୍ଠା—ସ୍ତ୍ରୀ) lax bowels. ୨ । ଯେଉଁ ବ୍ୟକ୍ତିଠାରେ ଔଷଧାଦି ସହଜରେ କାର୍ଯ୍ୟକାରୀ ହୁଏ—2. (a person) On whom medicines easily take effect or act.

ମୃଦୁ ଗଣ—ସଂ. ବି—ଚିତ୍ରା, ଅନୁରାଧା, ମୃଗଶିରା ଓ ରେବତୀ ନକ୍ଷତ୍ର—
Mṛudu gaṇa The collective name of 4 asterisms in Hindu astronomy; the 14th 17th, 5th and 27th lunar mansions.

ମୃଦୁ ଗତି—ସଂ. ବି. (କର୍ମଧା)—ଧୀର ଗତି—Slow motion.
Mṛudu gati ବିଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି)—ଧୀରଗତି ବିଶିଷ୍ଟ—Having slow motion.

ମୃଦୁ ଗନ୍ଧ—ସଂ. ବି. (କର୍ମଧା)—ଈଷତ୍ ଗନ୍ଧ—Mild flavour or
Mṛudu gandha smell; aroma.
ବିଣ. (ବହୁବ୍ରୀହି)—ଈଷତ୍ ଗନ୍ଧଯୁକ୍ତ—Mild-flavoured; aromatic.

ମୃଦୁ ଗମନ—ସଂ. ବି. (କର୍ମଧା)—ମୃଦୁ ଗତି (ଦେଖ)
Mṛudu gamana Mṛudu gati (See)
(ମୃଦୁଗମନା—ସ୍ତ୍ରୀ) ବିଣ. ପୁଂ. (ବହୁବ୍ରୀହି)—ଧୀରଗତି ବିଶିଷ୍ଟ—Moving slowly; slow-paced.

ମୃଦୁ ଗମନା—ସଂ. ବି. ସ୍ତ୍ରୀ—୧ । ହଂସୀ—1. A goose. ୨ । ମନ୍ଦ-
Mṛudu gamanā ଗାମିନୀ ସ୍ତ୍ରୀ—2. A slow-paced woman. ସଂ. ବିଣ. ସ୍ତ୍ରୀ—ମୃଦୁଗମନର ସ୍ତ୍ରୀ ଲିଙ୍ଗ—Feminine of Mṛudu gamana.

ମୃଦୁ ଗମ୍ଭୀର—ସଂ. ବିଣ. (ମୃଦୁ ଅଥଚ ଗମ୍ଭୀର)—୧ । ଧୀର ଅଥଚ
Mṛudu gambhīra ଗାମ୍ଭୀର୍ଯ୍ୟ ବିଶିଷ୍ଟ (ବ୍ୟକ୍ତି)—1. Gentle yet grave (person). ୨ । ଧୀର ଅଥଚ ଗମ୍ଭୀର (ସ୍ୱର)—2. Slow yet deep (sound).

ମୃଦୁଗାମୀ—ସଂ. ବିଣ. ପୁଂ. (ଉପପଦ ତତ୍)—ମୃଦୁଗମନ (ଦେଖ)
Mṛudugāmī Mṛudugamana (See)
(ମୃଦୁଗାମିନୀ—ସ୍ତ୍ରୀ)

ମୃଦୁ ଗୁଞ୍ଜନ—ସଂ ବି. (କର୍ମଧା)—କୋମଳ ଗୁଣ୍ ଗୁଣ୍ ଶବ୍ଦ—
Mṛudu gunjana Soft or mild buzzing.
(ମୃଦୁ ଗୁଞ୍ଜିତ—ଅନ୍ୟରୂପ)

ମୃଦୁ ଚର୍ମୀ(ର୍ମା)-ସଂ.ବିଣ. (ମୃଦୁ + ଚର୍ମ + ଇନ୍; ୧ମା. ୧ବ)—କୋମଳ
Mṛudu charmī(rmā) ଚର୍ମ ବା ତ୍ୱକ୍ ବିଶିଷ୍ଟ—Soft-skinned. ବି—ଭୂର୍ଜ ବୃକ୍ଷ; ଭୂର୍ଜ ପତ୍ର ଗଛ—The birch tree.

ମୃଦୁଚ୍ଛଦ—ସଂ. ବିଣ. (ବହୁବ୍ରୀହି; ମୃଦୁ+ଛଦ୍=ଆଚ୍ଛାଦନ, ବଲ୍କଳ
Mṛuduchchhada ଯାହାର)—କୋମଳ ଆଚ୍ଛାଦନ ଯୁକ୍ତ;
ଯାହାର ଚମଡ଼ା ବା ଛାଲି କୋମଳ—Having a soft covering or bark or skin; soft-skinned
ବି—୧ । ଭୂର୍ଜ ପତ୍ର ବୃକ୍ଷ—1. The birch tree.
୨। ଗିରିଜ ପୀଲୁ ବୃକ୍ଷ—2. A kind of wild tree; Salvadora Persica. ୩ । କୁକ୍କୁରଦ୍ରୁ; ଘୋକଶୁଙ୍ଘା ଗୁଳ୍ମ—3. A wild plant; Blumea Lacera.
୪ । ଗ୍ରାଲ—4. A variety of palm tree.

ମୃଦୁ ଜ୍ୱଳ—ସଂ. ବି. (ମୃଦୁ+ଜ୍ୱଳ)—ଅଳ୍ପ ଘାପ୍ତ ଶିଖା—
Mṛudu jwaḷa A dim flame.

ମୃଦୁତା(ତ୍ୱ)—ସଂ. ବି. (ମୃଦୁ+ଭାବ; ତା, ତ୍ୱ)—କୋମଳତା—
Mṛudutā(twa) Softness; mildness; tenderness; gentleness.

ମୃଦୁ ତ୍ୱକ୍ (ଚ୍, ଚ)—ସଂ. ବି. (ବହୁବ୍ରୀହି; ମୃଦୁ=କୋମଳ+ତ୍ୱଚ୍=
Mṛudu twak(ch, cha) ଛାଲ ଯାହାର)—ଭୂର୍ଜ ପତ୍ର ଗଛ—
The birch tree.

ମୃଦୁଦ୍ଭବ—ସଂ. ବି. (ବହୁବ୍ରୀହି; ମୃତ୍=ମାଟି+ଉଦ୍ଭବ=ଜନ୍ମ ଯାହାର)
Mṛududbhaba —୧ । ମାଟିରୁ ଉତ୍ପନ୍ନ ବସ୍ତୁ—1. A pro-
(ମୃଦୁଦ୍ଭବା—ସ୍ତ୍ରୀ) duction of the earth. ୨। ଉଦ୍ଭିଦ୍ଜ—
2. Vegetable. ସଂ. ବିଣ—ମାଟିରୁ ଜାତ—Produced from the earth.

ମୃଦୁ ନାଦ—ସଂ. ବି. (କର୍ମଧା)—କୋମଳ ସ୍ୱର—Soft sound. ସଂ.
Mṛudu nāda ବିଣ.ପୁଂ (ବହୁବ୍ରୀହି)—କୋମଳ ସ୍ୱର ବିଶିଷ୍ଟ—
Having soft sound.

ମୃଦୁ ନାଦୀ—ସଂ. ବିଣ. ପୁଂ (ଉପପଦ ତତ୍; ମୃଦୁ+ନାଦ+ଅସ୍ତି
Mṛudu nādī ଅର୍ଥରେ. ଇନ୍)—ମଧୁର ସ୍ୱରକାରୀ—Soft-
(ମୃଦୁନାଦିନୀ—ସ୍ତ୍ରୀ) sounding.

ମୃଦୁନ୍ନକ—ସଂ. ବି—ସୁନା; ସୁବର୍ଣ୍ଣ—
Mṛudunnaka Gold.

ମୃଦୁ ପତ୍ର—ସଂ. ବିଣ. (ବହୁବ୍ରୀହି)—କୋମଳପତ୍ରବିଶିଷ୍ଟ—
Mṛudu patra Having soft or tender leaves.
(ମୃଦୁପତ୍ରା—ସ୍ତ୍ରୀ)

ମୃଦୁ ପବନ—ସଂ. ବି. (କର୍ମଧା)—ଧୀର ବାୟୁ—Breeze; slow
Mṛudu pabana wind; gentle breeze.
(ମୃଦୁ ସମୀରଣ—ଅନ୍ୟରୂପ)

ମୃଦୁ ପର୍ବକ—ସଂ. ବି (ମୃଦୁ+ପର୍ବନ୍+କ)—ବେତ; ବେତ୍ର—
Mṛudu parbbaka Cane; ratan,

ମୃଦୁ ପୁଷ୍ପ—ସଂ. ବି. (କର୍ମଧା)—୧ । କୋମଳ ପୁଷ୍ପ—1. Soft
Mṛudu pushpa flower. ୨ । (ବହୁବ୍ରୀହି) ଶିରୀଷ ବୃକ୍ଷ—
(ମୃଦୁପୁଷ୍ପା—ସ୍ତ୍ରୀ) 2. The Śirīsha tree. ବିଣ. ପୁଂ.
(ବହୁବ୍ରୀହି)—କୋମଳ ପୁଷ୍ପଯୁକ୍ତ (ବୃକ୍ଷ ବା ଲତା)—
(tree or creeper) Having soft or tender flowers.

ମୃଦୁ ଫଳ—ସଂ. ବି. (ବହୁବ୍ରୀହି)—୧ । ବିକଙ୍କତ; ଭଇଞ୍ଚ; କଣ୍ଟା ଭଇଞ୍ଚ
Mṛudu phaḷa ଗୁଳ୍ମ—1. A plant; Flacourita Ramontchi. ୨ । ମଧୁର ନାରିକେଳ—2. A sweet kind of cocoanut. ବିଣ. (ବହୁବ୍ରୀହି)—କୋମଳ ଫଳ ବିଶିଷ୍ଟ (ବୃକ୍ଷ ବା ଲତା)—(a tree or creeper)
Having soft fruits.

ମୃଦୁବଚନ—ସଂ. ବି (କର୍ମଧା)—କୋମଳ ବାକ୍ୟ—Soft words
Mṛudubachana or speech. ବିଣ. ପୁଂ (ବହୁବ୍ରୀହି)
(ମୃଦୁବଚନା—ସ୍ତ୍ରୀ) —ଯେ କୋମଳ କଥା କହେ—(a person) Of soft speech.
(ମୃଦୁବାକ୍—ଅନ୍ୟ ବିଣ ରୂପ)

ମୃଦୁବାତ(ଯୁ)—ସଂ. ବି (କର୍ମଧା)—ଧୀର ସମୀରଣ—
Mṛdubāta(yu) Gentle breeze.

ମୃଦୁ ବିରେଚକ—ସଂ. ବିଣ (କର୍ମଧା)—ଯାହା ସାମାନ୍ୟ ପରିମାଣରେ
Mṛudu birechaka ଝାଡ଼ା କରାଏ—Gentle laxative.

ମୃଦୁବେଗ—ସଂ. ବି (କର୍ମଧା)—ଧୀର ଗତି—Slow motion.
Mṛudubega ବିଣ. ପୁଂ (ବହୁବ୍ରୀହି)—ଧୀର ଗତି ବିଶିଷ୍ଟ
(ମୃଦୁବେଗା—ସ୍ତ୍ରୀ) —Having slow motion; moving slowly.

ମୃଦୁଭାବ—ସଂ. ବି (କର୍ମଧା)—କୋମଳ ଭାବ—Softness.
Mṛudubhāba ବିଣ. ପୁଂ (ବହୁବ୍ରୀହି)—କୋମଳ
(ମୃଦୁଭାବା—ସ୍ତ୍ରୀ) ଭାବାନ୍ୱିତ—(A person) Of tender ideas.

ମୃଦୁ ମଧୁର—ସଂ. ବିଣ (ସହଚର) (ଦ୍ୱନ୍ଦ୍ୱ)—ମୃଦୁ ଓ ମଧୁର—
Mṛudu madhura Soft and sweet.

ମୃଦୁମନ୍ଦ—ସଂ. ବିଣ—ଅତି ମନ୍ଦ; ଅତି ଧୀର—
Mṛudumanda Very slow.

ମୃଦୁମଳୟ—ସଂ. ବି (କର୍ମଧା)—ଧୀରପ୍ରବାହିତ ଦକ୍ଷିଣାପବନ—
Mṛudumaḷaya The mild south breeze.

ମୃଦୁଳ—ସଂ. ବିଣ. ପୁଂ (ମୃଦୁ+ସ୍ୱାର୍ଥେ. ଲ)—୧ । କୋମଳ—
Mṛuduḷa 1. Soft. ୨ । ଧୀର—2. Slow; gentle.
(ମୃଦୁଳା—ସ୍ତ୍ରୀ) ସଂ. ବି (ମୃଦୁ+ଲା ଧାତୁ+କର୍ତ୍ତୃ. ଅ)—ଜଳ
(ପ୍ରକୃତିବାଦ)—Water.

ମୃଦୁଳା—ସଂ. ବିଣ. ସ୍ତ୍ରୀ—୧ । କୋମଳାଙ୍ଗୀ—1. (a woman)
Mṛuduḷā Having soft limbs or lovely appearance ୨ । ମୃଦୁଳର ସ୍ତ୍ରୀଲିଙ୍ଗ—
2. Feminine of Mṛuduḷa. ବି—ପୁଷ୍ପ ବିଶେଷ
— A kind of flower. [ ଉ—ଶତବର୍ଷ ତୁଲ୍ୟ ଅନା ରଙ୍ଗମଲ୍ଲୀ ମୃଦୁଳା ଏ ଚନ୍ଦ୍ରବର୍ମା । ପ୍ରାଚୀ. ରହସ୍ୟମଞ୍ଜରୀ ।]

ମୃଦୁଲୋମକ—ସଂ. ବିଣ (ବହୁବ୍ରୀହି)—କୋମଳ ଲୋମ ବିଶିଷ୍ଟ—
Mṛudulomaka Having soft fur. ବି (ବହୁବ୍ରୀହି)
(ମୃଦୁଲୋମା—ଅନ୍ୟରୂପ) —ଠେକୁଆ—The hare.

ମୃଦୁ ସ୍ପର୍ଶ—ସଂ. ବିଣ—୧ । (ବହୁବ୍ରୀହି) ଯାହା କୌଣସି ବସ୍ତୁକୁ
Mrrudu sparśa କୋମଳ ଭାବରେ ସ୍ପର୍ଶ କରେ—1. Touching anything softly or slightly. ୨ । ଯା ।

ଛୁଇଁଲେ କୋମଳ ଲାଗେ—2. Soft to the touch.
ବି ( କର୍ମଧା )—୧ । କୋମଳଭାବରେ ଛୁଇଁବା—1. Soft touch. ୨ । ସାମାନ୍ୟଭାବରେ ଛୁଇଁବା—2. Slight touch.

ମୃଦୁ ସ୍ୱଭାବ—ସଂ. ବି ( କର୍ମଧା)—ନମ୍ର ପ୍ରକୃତି—Gentle or mild
Mrudu swabhāba nature. ବିଣ. ପୁଂ (ବହୁବ୍ରୀହି )
(ମୃଦୁସ୍ୱଭାବା—ସ୍ତ୍ରୀ) —୧ । ନମ୍ର ପ୍ରକୃତି ବିଶିଷ୍ଟ—1. Mild; gentle. ୨ । ଶାନ୍ତ ପ୍ରକୃତିକ—2. Peaceful by nature.

ମୃଦୁ ସ୍ୱର—ସଂ. ବି ( କର୍ମଧା )—୧ । କୋମଳ କଣ୍ଠସ୍ୱର—1. Mild
Mrudu swara tone. ୨ । କ୍ଷୀଣ ଶବ୍ଦ—2. Feeble sound. ୩ । କୋମଳ ବାକ୍ୟ—3 Gentle words.
ବିଣ. ପୁଂ ( ବହୁବ୍ରୀହି )—ମୃଦୁସ୍ୱର ବିଶିଷ୍ଟ—( a
(ମୃଦୁସ୍ୱରା—ସ୍ତ୍ରୀ) person or tune or sound ) Having mild or gentle tone.

ମୃଦୁ ସ୍ୱାଦ—ସଂ. ବିଣ ( ବହୁବ୍ରୀହି )—ଈଷତ୍ ସ୍ୱାଦବିଶିଷ୍ଟ ( ଯାହା
Mrudu swāda ଅତ୍ୟନ୍ତ ଖଟା ବା ରାଗ ବା ମିଠା ନୁହେଁ )—Having a delicate taste; of mild taste.

ମୃଦୁ ସ୍ରୋତଃ—ସଂ. ବି ( କର୍ମଧା )—ଧୀର ପ୍ରବାହ—Gentle
Mrudu srotah stream or slow current. ବିଣ.
(ମୃଦୁସ୍ରୋତାଃ—ଅନ୍ୟ ବିଣରୂପ) ପୁଂ ( ବହୁବ୍ରୀହି )—ଧୀର ପ୍ରବାହଯୁକ୍ତ—Having a slow or gentle current; flowing gently.

ମୃଦୁ ହାସ(ସ୍ୟ)—ସଂ. ବି ( କର୍ମଧା )—ସ୍ମିତ ହାସ୍ୟ; ମୁରୁକି ହସ—
Mrudu hāsa(sya) A smile; a gentle laugh.
ସଂ. ବିଣ. ପୁଂ—ସ୍ମିତହାସ୍ୟ ଯୁକ୍ତ—Smiling.
[ମୃଦୁହାସା(ସ୍ୟା) —ସ୍ତ୍ରୀ ବିଣ ରୂପ]

ମୃଦୂତ୍ପଳ—ସଂ. ବି ( କର୍ମଧା; ମୃଦୁ+ଉତ୍ପଳ )—ନୀଳ କଇଁ—
Mrudūtpala The blue lotus.
(ମୃଦୂତ୍ପଳ; ମୃଦୁକୁମୁଦ—ଅନ୍ୟରୂପ)

ମୃଦ୍ଗୁ—ସଂ. ବି - ମତ୍ସ୍ୟ ବିଶେଷ—A sort of fish.
Mrudga (ମୃଦ୍ଗ—ଅନ୍ୟରୂପ)

ମୃଦ୍ଘଟ—ସଂ. ବି ( ମୃଦ୍+ଘଟ; ମ. ପ. ଲୋ; )—ମୃତ୍ତିକାନିର୍ମିତ ଘଟ;
Mrudghata ମାଠିଆ—Earthen pitcher.
(ମୃଦ୍ଘଟ—ଅନ୍ୟରୂପ)

ମୃଦ୍ବଙ୍ଗ—ସଂ. ବି. ପୁଂ ( ମୃଦ୍+ବଙ୍ଗ )—ରଙ୍ଗ ବା ଟିଣ ଧାତୁ—
Mrudbanga Tin (metal ).

ମୃଦ୍ୱଙ୍ଗ—ସଂ. ବି. ପୁଂ ( ମୃଦୁ+ଅଙ୍ଗ; ବହୁବ୍ରୀହି )—କୋମଳାଙ୍ଗ;
Mrudwanga କୋମଳାବୟବ ବିଶିଷ୍ଟ—Having tender
(ମୃଦ୍ୱଙ୍ଗୀ—ସ୍ତ୍ରୀ) or delicate limbs; tender-bodied.

ମୃଦ୍ୱୀ—ସଂ. ବି. ସ୍ତ୍ରୀ ( ମୃଦୁ+ସ୍ତ୍ରୀ. ଈ )—୧ । କୋମଳାଙ୍ଗୀ ସ୍ତ୍ରୀ;
Mrudwī ସୁକୁମାରୀ ସ୍ତ୍ରୀ—1. A tender-bodied woman.
୨ । କପିଳ ଦ୍ରାକ୍ଷା—2. The brown grape. ସଂ. ବିଣ. ସ୍ତ୍ରୀ—ମୃଦୁର ସ୍ତ୍ରୀଲିଙ୍ଗ—Feminine of Mrudu.

ମୃଦ୍ୱୀକା—ସଂ. ବି. ସ୍ତ୍ରୀ ( ମୃଦ୍ ଧାତୁ+କର୍ମ ଈକ+ଅ )—୧ । ଦ୍ରାକ୍ଷା;
Mrudwikā ଅଙ୍ଗୁର—1. Grape. ୨ । ଦ୍ରାକ୍ଷାସବ ( ହି. ଶ )—2. Wine from grapes.

ମୃଦ୍ଭାଜନ—ସଂ. ବି ( ମୃତ୍=ମାଟି+ଭାଜନ=ପାତ୍ର; ମ. ପ. ଲୋ; )
Mrudbhājana —ମାଟିର ପାତ୍ର ବା ହାଣ୍ଡି—A vessel
(ମୃଦ୍ଭାଣ୍ଡ—ଅନ୍ୟରୂପ) of clay; an earthen pot.

ମୃଧ୍ (ଧାତୁ)—ସଂ—୧ । ଅର୍ଦ୍ର ହେବା—1. To be wet or
Mrudh (root) moistened. ୨ । ବଧ କରିବା—2. To kill.

ମୃଧ—ସଂ. ବି ( ମୃଧ୍ ଧାତୁ+ଅଧିକରଣ. ଅ )—ଯୁଦ୍ଧ; ରଣ—
Mrudha War; fight; battle.

ମୃଧନା (ଇତ୍ୟାଦି) —ଗ୍ରା. ବି—ମୂର୍ଦ୍ଧନା ଇତ୍ୟାଦି ( ଦେଖ )
Mrudhanā(etc) Mūrddhanā etc. ( See )

ମୃଧନ୍ୟ—ଗ୍ରା. ବିଣ—ମୂର୍ଦ୍ଧନ୍ୟ (ଦେଖ)
Mrudhanya Mūrddanya ( See)

ମୃଧା—ସଂ. ଅ—୧ । ବୃଥା—1. In vain. ୨ । ଅନର୍ଥକ—
Mrudhā 2. Uselessly ( M. W )

ମୃନ୍ମୟ—ସଂ. ବିଣ ( ମୃତ୍+ବିକାରାର୍ଥେ ମୟ )—ମୃଣ୍ମୟ; ମୃତ୍ତିକାନିର୍ମିତ
Mrunmaya (ହି. ଶ.)—Earthen.

ମୃନ୍ମରୁ—ସଂ. ବି—(ମୃତ୍+ମରୁ)—୧ । ପାଷାଣ; ପଥର—1. Stone.
Mrunmaru ୨ । ପାହାଡ଼—2. Rock; hill. ୩ । ପର୍ବତ—3. Mountain.

ମୃନ୍ମାନ—ସଂ. ବି—(ମୃତ୍+ମାନ)—କୂପ; କୂଅ (ହି. ଶ)—
Mrunmāna Well.

ମୃଲ୍ଲୋଷ୍ଟ୍ର—ସଂ. ବି—(ମୃତ୍+ଲୋଷ୍ଟ୍ର)—ମାଟିର ଢେଲା—
Mrulloshtra A clod of earth.

ମୃଶ୍ (ଧାତୁ)—ସଂ.—୧ । ସ୍ପର୍ଶ କରିବା; ଛୁଇଁବା—1. To touch.
Mruś (root) ୨ । ଦେଖିବା—2. To see; to percieve.
୩ । ବିବେଚନା କରିବା—3. To consider.

ମୃଷ୍ (ଧାତୁ)—ସଂ.—୧ । ସହ୍ୟ କରିବା—1. To bear; to
Mrush (root) suffer; to endure. ୨ । ସେଚନ କରିବା—2. To sprinkle.

ମୃଷା—ସଂ. ଅ—୧ । ମିଥ୍ୟାରେ; ମିଛରେ—1. Falsely. ୨ ।
Mrushā ଅନର୍ଥକ; ବୃଥା—2. In vain. ସଂ.ବିଣ—ଅସତ୍ୟ; ମିଥ୍ୟା (ହି: ଶ)—Untrue; false.

ମୃଷାଧ୍ୟାୟୀ—ସଂ. ବି- (ମୃଷା+ଧ୍ୟୈ ଧାତୁ=ଚିନ୍ତା କରିବା+କର୍ତ୍ତୃ. ଇନ
Mrushādhyāyī ୧ମା. ଏକ )—ବକ; ବଗ—The egret bird.

ମୃଷାବାଦ—ସଂ. ବି—(ମୃଷା=ମିଥ୍ୟା+ବଦ୍ ଧାତୁ=କହିବା+ଭାବ.
Mrushā bāda ଅ)—୧ । ମିଥ୍ୟା ବାକ୍ୟ—1. False
(ମୃଷାଭାଷଣ—ଅନ୍ୟରୂପ) speech; falsehood. ୨ । ଥଟ୍ଟା ଉପହାସ—2. Joke. ୩ । ଉପହାସାତ୍ମକ ପ୍ରଶଂସା—3. Ironical praise.

**ମୃଷାବାଦୀ**—ସଂ. ବିଣ. ପୁଂ—(ମୃଷା=ମିଥ୍ୟା+ବଦ୍ ଧାତୁ=କହିବା+କର୍ତ୍ତୃ. ଇନ୍; ୧ମା. ୧ବ)—ମିଥ୍ୟାବାଦୀ—(ମୃଷାଭାଷୀ—ଅନ୍ୟରୂପ) Lying; speaking falsehood.
Mṛushābādī
(ମୃଷାବାଦିନୀ, ମୃଷାଭାଷିଣୀ—ସ୍ତ୍ରୀ) ବି.—୧ । ମିଥ୍ୟା ଅଭିଯୋକ୍ତା—1. One who brings a false charge. ୨ । ମିଥ୍ୟାବାଦୀ ବ୍ୟକ୍ତି—2. A liar.

**ମୃଷାର୍ଥକ**—ସ. ବିଣ.—(ମୃଷା=ମିଥ୍ୟା+ଅର୍ଥ ଧାତୁ+କର୍ତ୍ତୃ. ଅକ)—ଅନୃତ ବା ଅସମ୍ଭବାର୍ଥକ—Conveying an imposible or absurd meaning. ବି—ଅସମ୍ଭବ ବାକ୍ୟ—Absurd speech. [ଯଥା—ଘୋଡ଼ା-ଡିମ୍ବ; ଆକାଶ କଇଁଆ, ଆକାଶ କୁସୁମ ଇତ୍ୟାଦି ।]
Mṛushārthaka

**ମୃଷାଳକ**—ସ. ବି—(ଏଥିରେ ଅଳ୍ପ ଦଳ ମଞ୍ଜରୀ ରୂପ ଅଳଙ୍କାର ଉଦ୍ଦେ-ଶ୍ୟ. ଯ)—ଆମ୍ର ବୃକ୍ଷ—The mango tree.
Mṛushālaka

**ମୃଷୋଦ୍ୟ**—ସଂ. ବି.—(ମୃଷା=ମିଛ+ବଦ୍ ଧାତୁ=କହିବା+ଭାବ.ଯ) ୧ । ମିଛ କହିବା; ଅନୃତ ଭାଷଣ—1. Lying. ୨ । (+କର୍ମ. ଯ)—ମିଥ୍ୟା ଉକ୍ତି—2. Falsehood. ସଂ. ବିଣ. ପୁଂ—୧ । (+କର୍ତ୍ତୃ. ଯ)—ଅନୃତଭାଷୀ—1. Speaking falsely. ୨ । (କର୍ମ. ଯ)—ମିଥ୍ୟା ଉକ୍ତ—2. Spoken falsely.
Mṛushodya

**ମୃଷ୍ଟ**—ସଂ. ବିଣ.—(ମୃଜ୍ ଧାତୁ=ମାଜିବା+କର୍ମ. ତ)—୧ । ମାର୍ଜିତ—1. Brushed; rubbed. ୨ । ସ୍ପୃଷ୍ଟ—2. Touched. ସଂସ୍କୃତ; ଶୋଧିତ—3. Purified; refined; reformed. ୪ । ପରିଷ୍କୃତ—4. Cleansed. ୫ । ସିକ୍ତ—5. Sprinkled. ୬ । (ମୃଷ୍ ଧାତୁ+କର୍ମ. ତ)—ଦଳିତ—6. Crushed. ବି. ମରିଚ—Black pepper.
Mṛushṭa

**ମୃଷ୍ଟି**—ସଂ. ବି—(ମୃଜ୍ ଧାତୁ=ପରିଷ୍କାର କରିବା+ଭାବ. ତି)—୧ । ସ୍ପର୍ଶନ—1. Touching. ୨ । ସଂଲଗ୍ନ ହେବା—2. Contact. ୩ । ପରିଷ୍କାର କରିବା; ଶୋଧନ—3. Cleansing; purification. ୪ । ସେଚନ—4. Sprinkling. ୫ । ଖାଦ୍ୟାର୍ଥ ଆହାର୍ଯ୍ୟ ପ୍ରସ୍ତୁତ କରିବା—5. Preparation of food for a meal; dressing of food.
Mṛushṭi

**ମୃଷ୍ଟେରୁକ**—ସ. ବି. ପୁଂ.—( ପ୍ରକୃତିବାଦ ) ୧ । ଦାତା—1. A donor. ୨ । ବଦାନ୍ୟ ବ୍ୟକ୍ତି—2. A liberal person; a magnanimous person. ୩ । ଉପକାରକ—3. A benefactor. ୪ । ମିଷ୍ଟ-ଭୋଜୀ ବ୍ୟକ୍ତି-4. An eater of sweetmeats. ୫ । ଅତିଥି ଦ୍ୱେଷ୍ଟା—5. An inhospitable person. (ମୃଷ୍ଟେରୁକା—ସ୍ତ୍ରୀ) ୬ । କୃପଣ ବ୍ୟକ୍ତି—6. A miser.
Mṛushṭeruka

**ମୃ** (ଧାତୁ—ସ.—୧ । ଆଘାତ କରିବା—1. To hurt. ୨ । କ୍ଷତ କରିବା; ଅନିଷ୍ଟ କରିବା—2. To injure. ୩ । ବଧ କରିବା—3. To kill.
Mṛū (root)

**ମେଅର**—ବୈଦେ. ବି—(ଇଂ. 'ମେଅର୍)—ବଡ଼ ସହରର ମିଉନିସି ପାଲିଟିର ସଭାପତି—The mayor of the municipalities of big towns. [ ଦ୍ର—କଲିକତା ଲଣ୍ଡନ୍ ଆଦି ବଡ଼ ସହରରେ ଆଗେ ମେୟରୁ ଥିଲେ । ଏବେ ଅଇନ୍ ପ୍ରଣୟନଦ୍ୱାରା କଲିକତା ଓ କମେ ଆଦି ସହରରେ 'ମେୟର୍' ପଦର ସୃଷ୍ଟି ହୋଇଅଛି ।]
Mear
मेयर **मेयर**

**ମେଆଦ** (ଇତ୍ୟାଦି)—ବୈଦେ. ବି. (ଅ.)—ମିଆଦ ଇତ୍ୟାଦି (ଦେଖ)
Meāda (etc) Miāda etc (See)

**ମେଆଦି** (ଇତ୍ୟାଦି)—ବୈଦେ. ବି. ଓ ବିଣ—(ଅ.)—ମିଆଦି ଇତ୍ୟାଦି
Meādi (etc.) Miādi etc. (See)

**ମେଇଁ**—ପ୍ରାଦେ. ( ଉତ୍ତର ବାଲେଶ୍ୱର)—ବି—( ଧ୍ୱନ୍ୟନୁକରଣ )—ବିରାଡ଼ି—The cat.
Meiñ

**ମେଇ(ଏ)ଦି**—ଦେ. ବି—ମେହେନ୍ଦି (ଦେଖ)
Mei(e)di Mehendi (See)

**ମେଇଲ୍** (ଇତ୍ୟାଦି)—ବୈଦେ (ଇଂ. ମେଲ୍)—ମେଲ୍ ଇତ୍ୟାଦି (ଦେଖ)
Meil(etc) मेल **मेल** Mel etc (See)

**ମେଉ(ଓ)ଆ**—ବୈଦେ. ବି (ଫା. ମେଭା)—୧ । ଫଳ—1. Fruit. ୨ । ଖାଦ୍ୟ ଫଳ—2. Edible fruit. ୩ । କାବୁଲ ଅଞ୍ଚଳରୁ ଆଗତ ଶୁଷ୍କଖାଦ୍ୟ ଫଳ (ଯଥା—ବେଦାନା, ଅଙ୍ଗୁର, କିସ୍ମିସ୍ ଓ ବାଦାମ ଆଦି ।)—3. Dried sweet fruits brought from Kabul. [ ଦ୍ର—ସବୁର ଗଛରେ ମେଉଆ ଫଳେ ।—ପ୍ରବଚନ । ] ୪ । ପାକ କରି ନ ଯାଇ ଖିଆ ଯିବା ଫଳ—4. Fruit which can be eaten without being cooked. ପ୍ରାଦେ· (ସମ୍ବଲପୁର, ବାମଣ୍ଡା)—ବି·—ପିଜୁଳି; ପିଜୁଳ—Guava.
Meu(o)ā
मेओयाँ
**मेवा**

**ମେଉଆ ଚିଜ**—ବୈଦେ· ବି—(ଫା.)—କାବୁଲ ଦେଶରୁ ଆଗତ ଅଙ୍ଗୁର, ବେଦାନା, କିସ୍ମିସ୍, ମନକ୍କା ଓ ଖଜୁର ପ୍ରଭୃତି ଫଳ—Sweet fruits (grapes, pomegranate, resin etc.) brought from Kabul. (ମେଉଆ ଫଳ, ମେଉଆ ଜିନିଷ—ଅନ୍ୟରୂପ)
Meuā chija
मेओयाँ जिनिस, मेओयाँ फल
**मेवा चिज**

**ମେଉ(ଓ)ଆର**—ଦେ. ବି—ମିବାର (ଦେଖ)
Meu(o)ār मेवार **मेवाड** Mibār (See)

**ମେଉଁ**—ଦେ. ଅ (ଧ୍ୱନ୍ୟନୁକରଣ) · ମିଆଉଁ, ମ୍ୟାଉଁ; ବିରାଡିର ଧ୍ୱନି—The mewing of cat. (ମେ[ମି]ଉଁ ମେ[ମି]ଉଁ—ଅନ୍ୟରୂପ)
Meuñ मेऊँ, म्योउँ **म्याउँ**

**ମେଏନା**—ଦେ. ବି—ମେହେନା (ଦେଖ)
Me-enā Mehenā (See)

**ମେଏଞ୍ଜ(ଜ)ର**—ବୈଦେ. ବି (ଗ୍ରାମ୍ୟପ୍ରୟୋଗ, ଇଂ. ମାନେଜର )—ମେନେଜର (ଦେଖ)—Menejara (See)
Me-eñja(ja)ra
मःनेजर **मैनेजर**

**ମେଁ**—ବୈଦେ. ବି (ଇଂ. ମେ)—ଇଂରାଜି ଗଣନାରେ ୫ମ ମାସ;ମଇ ମାସ (ବୈଶାଖ—ଜ୍ୟେଷ୍ଠ )—The month of May.
Meñ

ମେ ଦେ. ଅ ( ଧ୍ୱନ୍ୟନୁକରଣ )—ମେଣ୍ଢାର ବା ଛେଳିର ଧ୍ୱନି—The bleating of a lamb or goat. [ ଦ୍ର—(ମେଁଏଁ—ଅନ୍ୟରୂପ) ମେଣ୍ଢା ବା ଛେଳିଙ୍କୁ ନିକଟକୁ ଡାକିବାବେଳେ ଭେଁ, ଭେ ମେଁ ଅଡ଼ର୍ ମେଁ ବା ଅର୍ଉର ମେଁ ଧ୍ୱନି କରାଯାଏ । ]
मइ

ମେଁଏଁ ମେଁଏଁ—ଦେ. ଅ (ଧ୍ୱନ୍ୟନୁକରଣ)—ମେଁ (ଦେଖ)
Meñeñ meñeñ Meñ (See)

ମେଁଡ଼ା—ପ୍ରାଦେ (ସମ୍ବଲପୁର) ବି. ପୁଂ—ମେଣ୍ଢା—Sheep.
Meñrdā (ମେଁଡ଼ୀ—ସ୍ତ୍ରୀ)

ମେଁଢ଼ା—ପ୍ରାଦେ (ଗଞ୍ଜାମ) ବି. ପୁଂ—ମେଣ୍ଢା—Sheep.
Meñrdhā (ମେଁଢ଼ୀ—ସ୍ତ୍ରୀ)

ମେଁ ମେଁ ହେବା—ଦେ. କ୍ର—୧ । ଛେଳିପରି ମେଁ ମେଁ ଶବ୍ଦ କରିବା—
Meñ meñ hebā 1. To bleat like a goat. ୨ (ଲକ୍ଷଣାର୍ଥ) ଆର୍ତ୍ତନାଦ କରିବା; କରୁଣଧ୍ୱନି କରିବା—2. (figurative) To give forth a wailing sound.
मेँ मेँ करना
(ମେଁଏଁ ମେଁଏଁ ହେବା—ଅନ୍ୟରୂପ)
[ଉ—ଛେଳି ସିନା ମେଁ ମେଁ ହୁଅନ୍ତି, କଟୁର ମେଁ ମେଁ ହଉଛି—ଉଗ ।]

ମେକ—ସ. ବି (ମେ=ଧ୍ୱନ୍ୟନୁକରଣ+କ)—ଛାଗ—
Meka Goat.

ମେକଲ—ସଂ. ବି ( ମି ଧାତୁ=କ୍ଷେପଣ କରିବା+କର୍ତ୍ତି. କଲ )—
Mekala ୧ । ମେଖଲ; ବିନ୍ଧ୍ୟାଚଳସ୍ଥ ଗିରି ବିଶେଷ—1. Name of a mountain in Central India. [ ଦ୍ର—ଏହି ଗିରିରୁ ନର୍ମଦା ବାହାରିଅଛି । ଏହା ରୀମା ରାଜ୍ୟର ଅନ୍ତର୍ଗତ । ଏହା ମେଖଲାର ଅପର ଉଚ୍ଚାରଣ—ହ. ଷ । ] ୨ । ଋଷି ବିଶେଷ; ନର୍ମଦାର ଜନ୍ମଦାତା—2. Name of a sage from whose body the river Nerbudda is said to have issued.

ମେକ(ଖ)ଲ କନ୍ୟକା—ସ. ବି—ନର୍ମଦା ନଦୀ—The river
Meka(kha)la kanyakā Nerbudda in Central India.
(ମେକଲସୁତା, ମେକଲାଦ୍ରିଜା—ଅନ୍ୟରୂପ)

ମେକାପ—ଦେ. ବି—୧ । ମେକାପ; ଜଗନ୍ନାଥ ଓ ବିଷ୍ଣୁମନ୍ଦିରର ଶୁଦ୍ର ବା କରଣସେବକ ବିଶେଷ—1. A class of Sebakas in charge of the dress and ornaments of an idol. [ ଦ୍ର—ଏମାନଙ୍କ ଜିମା ଦେବତାଙ୍କ ବସ୍ତ୍ରାଲଙ୍କାରାଦି ଥାଏ । ଜଗନ୍ନାଥଙ୍କ ନିକଟରେ ଯେଉଁ ସେବକ ବଇଠା ବସାଏ ତାକୁ ଅଖଣ୍ଡ ମେକାପ କହନ୍ତି । ] ୨ । ରାଜସେବକ ବିଶେଷ—2. A class of servants of a Raja.
भंडारी

ମେକା[କେ]ସର୍ ଅଏଲ୍—ବୈଦେ. ବି (ଇଂ. ମାକାସର୍ ଅଏଲ୍)—
Mekā(ke)sar ael ଏକ ପ୍ରକାର ଅଧିକ ବାସନାତେଲ; ସୁଗନ୍ଧ କେଶତୈଳ ବିଶେଷ—Macasser oil.
मेकेसार अईल्
मैकासर अयल
(ମେକା[କେ]ସର୍ ତେଲ—ଅନ୍ୟରୂପ) [ଦ୍ର—ଭାରତ ମହାସାଗରର ବୋର୍ଣ୍ଣିଓଦ୍ୱୀପ ନିକଟସ୍ଥ ଗୋଟିଏ ଦ୍ୱୀପର ରାଜଧାନୀ ମାକାସର୍ (Macasser) ନାମ ସହିତ ଏହାର ସମ୍ପର୍କ ଅଛି । ଉକ୍ତ ଦ୍ୱୀପରେ ସୁଗନ୍ଧ ମସଲା ଜନ୍ମେ ।]

ମେକି—ବୈଦେ. ବିଣ (ଫା. ମେଖୀ; ଏଥିରେ ଛିଦ୍ର କରାଯାଇ ଛିଦ୍ରରେ Meki ଥିବା ଭଲ ଧାତୁ କଢ଼ାଯାଇ ତହିଁରେ ନିକୃଷ୍ଟ ଧାତୁର ମେଖ ମରା ଯାଇଥାଏ; ତୁଳ. ଫ. ମିଶ=ବ୍ୟାଜ )—୧ । ଯେଉଁ ମୁଦ୍ରା ମଧ୍ୟରେ ଛିଦ୍ର କରାଯାଇ ତନ୍ମଧ୍ୟରେ ଥିବା ଅସଲ ଧାତୁ କାଢ଼ି ନିଆଯାଇ ଉକ୍ତ ସ୍ଥାନରେ ନିକୃଷ୍ଟ ଧାତୁର ଖିଲକ ଭରତି କରାଯାଇଥାଏ—1. (a coin) From which genuine metal has been extracted by boring a hole and base meta plugged or inserted in its place. ୨ । କୃତ୍ରିମ (ମୁଦ୍ରା)—2. Counterfeit (coin). ବି—୧। ଯେଉଁ ମୁଦ୍ରା ମଧ୍ୟରେ ନିକୃଷ୍ଟ ଧାତୁ ପୂରା ଯାଇଥାଏ—1. A plugged coin. ୨ । କୃତ୍ରିମ ମୁଦ୍ରା—2. Counterfeit coin. ୩ । ନିକୃଷ୍ଟ ଧାତୁ—3. A base metal. ୪ । କୃତ୍ରିମ ଦ୍ରବ୍ୟ—4. Fabricated thing. ୫ । ଜାଲ୍, ତିଆରିଥିବା ଦ୍ରବ୍ୟ—5. Any forged or counterfeit article.
मेकी
मेखी; जाली

ମେକ୍ଷଣ—ସ. ବି—ଯଜ୍ଞୀୟପାତ୍ର ବିଶେଷ—A kind of vessel used
Mekshaṇa in vedic sacrifice. [ ଦ୍ର—ଏ ଦୃଢ଼ଥିବା ବା କର୍ତ୍ତନୀପରି ଓ ଶୁଭ୍ର ଅଙ୍ଗୁଳି ଚଉଡ଼ା—ହ. ଷ । ]

ମେକ୍ସିକୋ—ବୈଦେ. ବି ( ଇଂ. ମେକ୍ସିକୋ )—ଦକ୍ଷିଣ ଆମେରିକାର
Meksiko ରାଜ୍ୟ ବିଶେଷ—Mexico in South America.
मेक्सिको
मेक्सिको
[ଦ୍ର—ଏ ଦେଶର କେତେ ସହସ୍ର ବର୍ଷ ପୂର୍ବର ପ୍ରାଚୀନ ସଭ୍ୟତା (ମୟ ସଭ୍ୟତା)ର ନିଦର୍ଶନ ଅଧୁନାଲ ଭୂଗର୍ଭରୁ ମିଳୁଅଛି । ]

ମେ[ମା,ମ୍ୟା]କ୍ସିମ୍ ଗନ୍—ବୈଦେ. ବି (ଇଂ. ମାକ୍ସିମ୍ ଗନ୍)—କଳଦ୍ୱାରା
Me(mā,myā)ksim gan ଗୁଳିଚ ଅଧିକ ବନ୍ଧୁକ —Maxim gun.
मेक्सिम गन्
मैक्सिम गन

ମେଖ—ବୈଦେ. ବି (ଫା. ମେଖ୍)—୧ । ଖିଲ—1. A plug. [ଉ—
Mekha ଅଇଲେ ଅଗିନ ମାଇଲେ ମେଖ, ବାବହାଣ୍ଡିଅଙ୍କ ଗୁଡ଼ିର ଦେଖ । ବିଜୋବସ୍ତୁ ଗୀତ ।] ୨ । ଖୁଣ୍ଟା; ସୂକ୍ଷ୍ମାଗ୍ର କ୍ଷୁଦ୍ର ଦଣ୍ଡ—2. A picket; a peg. ୩ । କଣ୍ଟା; ଗିରକ—3. Prick; nail. ୪ । ପିନ୍—4. Pin. ୫ । ଖିଲା—5. A small stake. [ ଦ୍ର—ଭୂମିରେ ବାନ୍ଧିଥିବା ୧୨ ଫୁଟ ପର୍ଯ୍ୟନ୍ତ ଲମ୍ବ ଓ ସରୁ ଖିଲାକୁ ମେଖ ବୋଲାଯାଏ ] ୬ । ( ଲକ୍ଷଣାର୍ଥ ) ବିପଦ—6. ( figurative ) Danger. ( ଉ—ଗୋଟେଇଁ ଗଲେ ଫାଣ୍ଡିବ, ମେଖ ଅଣିଲେ ଗାଣ୍ଡିବ । ଉଗ ।) ୭ ବାଧା; ବିଘ୍ନ-7. Obstacle. ୮ । ଘୋଡ଼ାର ଖୁରାରେ ନାଲ ମାରିବାବେଳେ ତା ଖୁରର କୋମଳାଂଶର ଉପରେ ନାଲର କଣ୍ଟା ଲୁଚିଯିବା ଯୋଗୁ ଘୋଡ଼ାର ଲେଙ୍ଗଡ଼ା ପଣ—8. Lameness of a horse due to a prick of the shoe piercing the flesh inside the hoof.
मेक, म्येक
मेख

ମେଖଡ଼(ଡ଼ି)—ଦେ. ବି—୧ । କୌଣସି କାର୍ଯ୍ୟରେ ଉପସ୍ଥିତ ବାଧା ବା Mekharda(rdi) ବିଘ୍ନ—1. Complications; any ଗୋଲ ଅଡଚନ impediment. ୨ । ବିବାଦ;କଳି;କଳହ—2. Quarrel; dissension. ବିଣ. ପୁଂ—ଯେଉଁ (ମେଖଡ଼ୀ—ସ୍ତ୍ରୀ) ଲୋକ କାର୍ଯ୍ୟରେ ବିଘ୍ନ ପକାଏ; ବିଘ୍ନକାରୀ—Causing obstruction or impediment in a work.

ମେଖଡ଼ ପଶିବା—ଦେ.କ୍ରି—କୌଣସି କାର୍ଯ୍ୟରେ ବିଘ୍ନ ଉପସ୍ଥିତ ହେବା—Mekharda pasiba The happening of some ଗୋଲମାଲ ଘୁକା ଅଡଚନ होना impediment in any matter.

ମେଖଡ଼(ଡ଼ି) ପୂରା(ରେ)ଇବା—ଦେ. କ୍ରି. - ୧ । କୌଣସି କାର୍ଯ୍ୟରେ Mekharda(rdi) pūrā(re)iba ବାଧା ଜାତ କରାଇବା—ଗୋଲମାଲ ଢୁକানা 1 To create complications or ଅଡଚନ ডুকানা impediments in a matter. (ମେଢ଼େ[ଢ଼ି] ଲାଗିବା—ଅନ୍ୟରୂପ) ୨ । କୌଣସି ବିବାଦ ଉପସ୍ଥିତ କରାଇବା—2 To create dissension.

ମେଖଡ଼ିଆ(ୟା)—ଦେ. ବିଣ. ପୁଂ—୧ । କଳହପ୍ରିୟ; ବିଘ୍ନକାରୀ—Mekhardia(yā) গোলমেলে 1. Quarrelsome. ଅଡଚନିୟା ୨ । ମେଖଡ଼ (ଦେଖ)—2. Mekharda (See) (ଢେଖଡ଼ା—ଅନ୍ୟରୂପ) (ମେଢ଼ୀ; ମେଖଡ଼େଇ—ସ୍ତ୍ରୀ)

ମେଖ ମାରିବା—ଦେ. କ୍ରି—୧ । ଭୂମିରେ ଖିଲା ମାରିବା—1. To Mekha māribā drive a peg into the ground. মেখ মারা मेखमारना (ठोकना) ୨ । କୌଣସି କାର୍ଯ୍ୟରେ ବାଧା ମେଖ ଠୁକିବା—ଅନ୍ୟରୂପ) ଜାତ କରି ତାହା ବନ୍ଦ କରି ଦେବା—2. To bring about the stoppage of a work by raising an obstruction.

ମେଖଳ—ସଂ. ବି—(ମି ଧାତୁ=କ୍ଷେପଣ କରିବା+କର୍ମ. ଖଲ)—Mekhala ମେକଳ (ଦେଖ)—Mekala (See) मेखल ଦେ. ବି—( ସଂ. ମେଖଳା )—ମେଖଳା (ଦେଖ)—Mekhalā (See) [ଦ୍ର— ସେ ଶ୍ୟାମ ସୁବର୍ଣ୍ଣ ଦୁକୂଳ-ବିରାଜେ ସ୍ୱର୍ଣ୍ଣ ମେଖଳ । ଜଗନ୍ନାଥ. ଗୁଣ୍ଡିଚ ।]

ମେଖଳା—ସଂ. ବି—(ମି ଧାତୁ=କ୍ଷେପଣ କରିବା+କର୍ମ. ଖଲ+ସ୍ତ୍ରୀ. Mekhalā ଆ)—୧ । ନିତମ୍ବ; ପର୍ବତର ମଧ୍ୟଭାଗ—1. The middle part of a mountain. ୨ । ସାନୁଦେଶ--2. The flank of a mountain. ୩ । ପର୍ବତର ପାର୍ଶ୍ୱଦେଶ-3. The side of a mountain ୪ । ପର୍ବତର ଧାର ବା କନାସ୍—4. The edge or swell of a mountain. ୫ । କଟି ସୂତ୍ର; ଅଣ୍ଟାସୂତା (ଝିଅ, ଅଣ୍ଟାଶିକୁଳି, ଚନ୍ଦ୍ରହାର ଅର୍ଥ )—5. Waist-chain (worn by women). [ ଦ୍ର—ଅଠସରିଆ ଗୋଠକୁ ମେଖଳା, ଏକସରିଆ ଗୋଠକୁ କାଞ୍ଚୀ, ଷୋଳ ସରିଆକୁ ରସନା ଓ ପଚିଶ ସରିଆକୁ କଲାପକ ବୋଲାଯାଏ । 'ମେଖଳା'ର ଅନନ୍ୟାର୍ଥ ସହିତ ପରିଚୟ—କକ୍ଷା, କକ୍ଷ୍ୟା, କାଞ୍ଚ(ଞ୍ଚୀ), କଲାପ, ରଶନା, ରସନ,ରସ(ଶ)ନା, ସପ୍ତକୀ(କ୍କୀ), ସାରଶ(ସ)ନ । ] ୬ । କମରବନ୍ଧ; ଓଡ଼ିଆଣୀ—6. Belt; girdle; zone (of women.) ୭ । ଉପନୟନ ଗ୍ରହଣ ସମୟରେ ବ୍ରାହ୍ମଣାଦିଙ୍କ କଟିରେ ଧାରଣୀୟ ସୂତ୍ରତ୍ରୟ—7. Three stringed girdle worn round the waist by a twice-born boy at the time of initiation. [ଦ୍ର—ଉପନୟନ ସମୟରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ କଟିରେ ମେଖଳା ବାନ୍ଧନ୍ତି । ବ୍ରାହ୍ମଣର ମେଖଳା ମୁଞ୍ଜ (ଏକ ପ୍ରକାର କୁଶ ଜାତୀୟ ତୃଣ)ରେ କ୍ଷତ୍ରିୟର ମୂର୍ବାରେ ଓ ବୈଶ୍ୟର ଶଣପଟରେ ବା ଶଣରେ ନିର୍ମିତ ହୁଏ । ] ୮ । ବ୍ରାହ୍ମଣର ବ୍ରତ ସମୟରେ ଧାରଣୀୟ କୃଷ୍ଣାଜିନ ମୃଗ ଚର୍ମ ନିର୍ମିତ ଉପବୀତ—8. A strip of deer skin worn as sacred thread by a Brahmana at the initiation ceremony. ୯ । ଶିକୁଳିକା; ହସ୍ତ ଦ୍ୱାରା ଦୃଢ଼ ରୂପେ ଧରିବା ପାଇଁ ବ୍ୟବହୃତ ଖଡ୍ଗାଦିର ମୁଷ୍ଟିସ୍ଥିତ ଚର୍ମ ବନ୍ଧନୀ; ଖଡ୍ଗ ବନ୍ଧନୀ— 9. A string or chain fastened to the hilt of a sword used to fasten the hand firmly to it. ୧୦ । ଖଡ୍ଗାଦି ଧାରଣାର୍ଥ ଚର୍ମ ପଟ୍ଟିରେ ନିର୍ମିତ କଟିବନ୍ଧ; କମରବନ୍ଧ—10. A sword-belt. ୧୧ । ନର୍ମଦା ନଦୀ—11. The river Nerbudda in Central India. ୧୨ । ପୃଶ୍ନିପର୍ଣ୍ଣୀ ଲତା; କୃଷ୍ଣ ପର୍ଣ୍ଣୀ ଲତା--12. A plant; Hedysarum Lagopodiodes. ୧୩ । ହୋମକୁଣ୍ଡୋପରି ଗୁରି ପାଖେ ଉଞ୍ଚର କରାଯିବା ମାଟିର ହୁଡ଼ା—13. An earthen ridge raised round the top of a sacrificial pit. ୧୪ । ସମୁଦ୍ର—14. The ocean.

ମେଖଳା ଗୁଣ—ସଂ. ବି—ଅଣ୍ଟା ସୁତାର ଦଉଡ଼ି ବା ସରୁ—Mekhalā guna A string of a waist-chain.

ମେଖଳାଦ୍ରି—ସଂ. ବି—ବିନ୍ଧ୍ୟ ପର୍ବତ—The Bindhya mountain Mekhalādri in Central India.

ମେଖଳାଦ୍ରିଜା—ସଂ.ବି. ସ୍ତ୍ରୀ—ନର୍ମଦା ନଦୀ—The river Nerbudda Mekhalādrijā in Central India.

ମେଖଳି—ଦେ. ବି. ( ସଂ. ମେଖଳା )—୧ । କଟି ମେଖଳା—Mekhali 1. Belt of the waist. (ଦ୍ର - କୋଇଲି मेखली ଲୋ ଉଡୁଥାଇ କଟିରୁ ମେଖଳୀ—କେଶବ କୋଇଲି ।) ୨ । ରାମ ଲୀଳା, କୃଷ୍ଣ ଲୀଳା ଆଦିରେ ଯାତ୍ରାକାରୀ ଓ ଯାତ୍ରୀମାନେ ମୁଣ୍ଡ ବାଟେ ଗଳାଇ କରି ପିନ୍ଧିବା ଏକ ପ୍ରକାର ପୋଷାକ, ଯହିଁରେ ହାତ ନ ଥାଏ ଓ ଯାହା ପେଟ ଓ ପିଠି ଅଢ଼େ ଅଣ୍ଟା ପର୍ଯ୍ୟନ୍ତ ଲମ୍ବି ଥାଏ—2. A kind of sleeveless coat for the body from the neck to the waist worn by male actors.

ମେଖା— ପ୍ରାଦେ. (ସମ୍ବଲପୁର) ବ—ମେ଼ଖ ( ଦେଖ )
Mekhā . Mekha ( See )

ମେଖି ମୁଗୁର—ଦେ. ବ—ବଡ଼ ମୁଗୁର ବିଶେଷ—
Mekhi mugura A kind of big wooden hammer.
বড় মুগুর बड़ा मुगुर

ମେଗ୍(ଗା, ଗେ)ଜିନ୍—ବୈଦେ. ବ ( ସ. ଇଂ. ମାଗାଜିନ୍ )—
Meg-(gā, ge)jin ୧। ସାମୟିକ ପତ୍ରିକା—1. A magazine;
ম্যাগাজিন (paper). ୨। ବାରୁଦାଗାର—2 A magazine;
मैगाज़ीन store for gunpowder etc.

ମେଗାଜିନ୍ ରାଇଫଲ୍—ବୈଦେ. ବ ( ଇଂ. ମାଗାଜିନ୍ ରାଇଫ୍ଲ )—
Megājin-rāiphal ଏକ ପ୍ରକାର ବନ୍ଧୁକ, ଯାହି ମଧ୍ୟରେ
ম্যাগাজিন রাইফল ଗୁଡ଼ାଏ କାର୍ତ୍ତୁସ୍ ଭର୍ତ୍ତି ହୋଇ ରଖା ଯାଇଥାଏ—
मैगाज़ीन राइफल Magazine rifle.
[ମେଗାଜିନ୍ ବନ୍ଧୁ(ନ୍ଧୁ)କ—ଅନ୍ୟରୂପ]

ମେଗାସ୍ଥି(ସ୍ଥେ)ନିସ୍—ଦେ. ବ. ( ନା.ମ )—ଜନୈକ ପ୍ରାଚୀନ ଗ୍ରୀକ୍
Megāsthi(sthe)nis ପର୍ଯ୍ୟଟକ—Megasthenes; the
মেগাস্থিনিস Greek traveller who travelled in
मेगास्थिनिस India three centuries before the Christian era.
[ଦ୍ର—ଗ୍ରୀକ୍ ପଣ୍ଡିତ ମେଗାସ୍ଥିନିସ୍ ଖ୍ରୀଷ୍ଟପୂର୍ବ ୩୦୦ ବର୍ଷରେ ଭାରତକୁ ଆସିଥିଲେ । ସେ ଭାରତର ପ୍ରାୟ ସମସ୍ତ ଅଂଶ ପର୍ଯ୍ୟଟନ କରି ଭାରତବର୍ଷର ତଦାନୀନ୍ତନ ଅବସ୍ଥା ବିସ୍ତାରିତ ଭାବରେ ଲେଖି ଯାଇଅଛନ୍ତି । ]

ମେଗୁ(ଘୁ)ଆ—ପ୍ରାଦେ. ( ସମ୍ବଲପୁର ଓ ଆଠମଲ୍ଲିକ )—ଶୁକ୍ଳଶସ୍ୟ; ଧଳା
Megu(ghu)ā ଶସ୍ୟଯୁକ୍ତ ପିଜୁଳି—White-fleshed guava

ମେଘ୍—ପ୍ରାଦେ. (ସମ୍ବଲପୁର) ବ—ମେଘ—
Megh Cloud.

ମେଘ୍ ବାଦଲ—ପ୍ରାଦେ. (ସମ୍ବଲପୁର) ବ—ମେଘୁଆ ପାଗ—
Megh bādal Cloudy weather.

ମେଘ—ସ. ବ ( ମିହ୍ ଧାତୁ=ଜଳ ସିକ୍ତ କରିବା+କର୍ତ୍ତୃ. ଅ )—
Megha ୧। ଜଳଦ; ଜଳଧର; ବାରିବାହ—1. Cloud.
মেঘ [ଦ୍ର—ସୂର୍ଯ୍ୟ କିରଣ ଦ୍ୱାରା ପୃଥିବୀ ପୃଷ୍ଠର ଓ ସମୁଦ୍ରର
बादल, मेह(घ) ଜଳ ବାଷ୍ପରେ ପରିଣତ ହୋଇ ଆକାଶକୁ ଉଠେ ଓ ସେଠାରେ ଥଣ୍ଡା ପାଇ ତାହା ଘନୀଭୂତ ହୁଏ ଓ ତାହା ବେଶୀ ଘନୀଭୂତ ହେଲେ ପୁଣି ଜଳରେ ପରିଣତ ହୋଇ ବୃଷ୍ଟି ରୂପେ ପୃଥିବୀରେ ପଡ଼େ । ଏହି ଘନୀଭୂତ ବାଷ୍ପକୁ ମେଘ ବୋଲାଯାଏ । ମେଘର ଅନ୍ୟାନ୍ୟ ସଂସ୍କୃତ ନାମ ଯଥା—ଅଙ୍ଗ, ଅଭ୍ର, ଅବ୍ଭ୍ର, ଅମ୍ବୁଦ, ଅମ୍ବୁଭୃତ୍, ଅମ୍ବୁବାହ, ଅମ୍ଭୋଧର, କଦ, କନ, କନ୍ଦ, କନ୍ଦର, ଖତମାଳ, ଗଗନଧ୍ୱଜ, ଗଦାମର, ଗଦାମ୍ବର, ଗବେଡ଼ୁ, ଗାଡ଼ୁର, ଘନ, ଘନାଘନ, ଜଳ କରଙ୍କ, ଜଳଦ, ଜଳଧର, ଜଳମୁକ୍, ଜୀମୂତ, ତଡ଼ିତ୍ୱାନ୍, ତୋୟଦ, ଦର୍ଦ୍ଦୁର, ଧାରାଧର, ଧୂମଯୋନି, ନଭଶ୍ଚର, ନଭୋଗଜ, ନାଗ, ନୀରଦ, ପୟୋଦ, ପୟୋଧର, ପର୍ଜ୍ଜନ୍ୟ, ପାଥୋଦ, ପେଚକ, ଭେକ, ମଦୟିତ୍ନୁ, ମୁଦିର, ବନମୁକ୍, ବଳାହକ, ବାତ ରଥ, ବାମ୍ବୁ ଦାରୁ, ବାରିଦ, ବାରମସି, ବାରମୁକ୍, ବାର୍ମୁକ୍, ବ୍ୟୋମଧୂମ, ଶ୍ୱେତମୀଲ, ସ୍ତନୟିତ୍ନୁ ।

ସଂସ୍କୃତ ଶାସ୍ତ୍ରରେ ମେଘ ୪ ପ୍ରକାର ବର୍ଣ୍ଣିତ ଅଛି । ଯଥା —୧। ଆବର୍ତ୍ତ=ନିର୍ଜଳ ମେଘ, ୨। ସମ୍ବର୍ତ୍ତ=ବହୁଦକ ମେଘ, ୩। ପୁଷ୍କର=ଦୁଷ୍କରଜଳ ମେଘ, ୪। ଦ୍ରୋଣ=ଶସ୍ୟପ୍ରସୂଯୂକ ମେଘ । ଭାଷାରେ ମେଘର ଆକାର ଓ ବର୍ଣ୍ଣ ଓ ଗତି ଅନୁସାରେ ଭିନ୍ନ ଭିନ୍ନ ନାମ ଅଛି ଓ ମେଘର ଲକ୍ଷଣରୁ ବର୍ଷାଗମ ଓ ଶସ୍ୟର ଆଗାମୀ ଅବସ୍ଥା ସମ୍ବନ୍ଧରେ ନାନାପ୍ରକାର ବାକ୍ୟ ଓ ଡାକରୁଷି ବଚନ ଅଛି । ଆକାର ଅନୁସାରରେ ମେଘର—କେତେକ ଦେଶୀୟ ନାମ ଓ ଡାକରୁଷି ବଚନ ନିମ୍ନରେ ଦିଆଗଲା ।

କୋଡ଼କୋଡ଼ିଆ ବା ବାଇଗଣ କୋଡ଼ିଆ ମେଘ— କୋଡ଼ରେ ବାଇଗଣ ବଥାର ହଣାହୋଇ ଖଣ୍ଡ ଖଣ୍ଡ ମାଟି ଢିଅରେ ବନ୍ଧ ହୋଇଥିବା ପରି ଦେଖାଯିବା ଧଳା ମେଘ । ଏ ମେଘ ଉଠାଇଲେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ବୃଷ୍ଟି ହେବ । ଏ ସମ୍ବନ୍ଧେ ଡାକବଚନ :—

ବାଇଗଣ କୋଡ଼ା ମେଘର ଗାଥ, ମନ୍ଦ ମନ୍ଦ ବୋହିଲା ବାଥ,
ହୁଡ଼ ବାନ୍ଧିବାକୁ ପୁତାକୁ ବୋଲ, ଅଜ ନ ବର୍ଷିଲେ ବର୍ଷିବ କାଲ ।

ହାଣ୍ଡିଆ ବା କଳାହାଣ୍ଡିଆ ମେଘ—ଘୋର କୃଷ୍ଣବର୍ଣ୍ଣ ମେଘ; ଅଶୁବୃଷ୍ଟି ହେବାର ସୂଚନା କରେ ।

କପିଳାସିଆ ମେଘ—ଉତ୍ତର ପଶ୍ଚିମ କୋଣରୁ ଉଠିବା ମେଘ (ଅଶୁବୃଷ୍ଟିର ସୂଚନା) । ଏ ସମ୍ବନ୍ଧେ ସଂସ୍କୃତ ଶ୍ଲୋକ ।

ଅମୋଘା ପଶ୍ଚିମେ ମେଘା, ଅମୋଘା ପୂର୍ବ ବାୟୁବଃ
ଅମୋଘାଃ ଦକ୍ଷିଣେ ବିଦ୍ୟୁତ୍ ଅମୋଘ ଉତ୍ତରେ ଧ୍ୱନିଃ ।

ଉତ୍ତରା(ରି) ମେଘ—ଉତ୍ତରଦିଗରୁ ଦକ୍ଷିଣକୁ ଗତି କରୁଥିବା ମେଘ; ଏ ସମ୍ବନ୍ଧେ ଡାକରୁଷି ବଚନ—

ଉତ୍ତର ମେଘ ଦକ୍ଷିଣେ ଆସେ
ନାଥ ବୋଲେ ପୁତା ! ନିଶ୍ଚେ ବରଷେ ।

ଏହିପରି ଦକ୍ଷିଣା, ପୁବେଇ ଓ ପଶ୍ଚିମା ମେଘ ହୁଏ ।

ଦକ୍ଷିଣାମେଘ-ବର୍ଷାଛାଡ଼ି ଯିବାର ପୂର୍ବ ଲକ୍ଷଣ; ପଶ୍ଚିମାମେଘ ଝଡ଼ ବତାସର ପୂର୍ବ ଲକ୍ଷଣ; ପୁବେଇ ମେଘ—ଅତିବୃଷ୍ଟିର ଓ ବତାସର ପୂର୍ବ ଲକ୍ଷଣ ।

ମଳା ମଳା ବା ମେଲା ମେଲା ମେଘ—ଆକାଶ ସମାଚ୍ଛନ୍ନ କରିବା ମେଘ । ଏ ସମ୍ବନ୍ଧେ ଡାକ ରୁଷି ବଚନ :—

ଦିନକୁ ମଳା ମଳା, ରାତିକି ନିର୍ମଳା,
ନାଥ ବୋଲେ ପୁତାରେ ! ଦୁର୍ଭିକ୍ଷ ପଡ଼ିଲା ।

ସୁନଶି, ସୁନାରିଆ, ସିନ୍ଦୁରି ବା ସିନ୍ଦୁରିଆ ମେଘ—ସିନ୍ଦୁର ପରି ରକ୍ତାଭ ମେଘ । ମେଘ ବର୍ଷିବା ସମ୍ବନ୍ଧେ, ବର୍ଷିବା କାଳ ଓ ଇନ୍ଦ୍ରଧନୁ ପଡ଼ିବା ସମ୍ବନ୍ଧେ ଗୁଡ଼ିଏ କୃଷି ବଚନ :—

୧ । ଯଦି ବର୍ଷଇ ମାଘର ଶେଷ, ଧନ୍ୟ ସେ ରଜା, ଧନ୍ୟ ସେ ଦେଶ ( ଫସଲ ଭଲ ହୁଏ ) ।

୬ । ଯହିଁ ବରଷଇ ପୁଷର ଶେଷ, ପୁଷର ସାର ନ ପଡ଼ଇ ଦେଶ ( ଦୁର୍ଭିକ୍ଷ ହେବାର ଅଶଙ୍କା ) ।

୩ । ପୂର୍ବେ ଅରଦ୍ରାବଳ ( =ଇନ୍ଦ୍ରଧନୁ ) ପଶ୍ଚିମେ ରବି (ଶ୍ରୋଇ) ନାଥ ବୋଲେ ଦଣ୍ଡ ହୋଇବ ଏକନବ (ଇ) ( =୧୨୯୧ ସାଲ ପର ଦୁର୍ଭିକ୍ଷ ହେବ ) ।

୪ । ପଶ୍ଚିମେ ଆରଦ୍ରାବଳ ମୂରବେ ଶ୍ରୋଇ ( ମୟୂର ପୁଚ୍ଛାକୃତି ଇନ୍ଦ୍ରଧନୁ ) ନାଥ ବୋଲେ ପୁଣ୍ଡା ନଷ୍ଟେ ଯିବ ଧୋଇ ( ଅତି ବୃଷ୍ଟି ହେବ ) ।

୫ । ହସି ପକ୍ଷେ ( ନିର୍ମଳାକାଶରେ ସୂର୍ଯ୍ୟାସ୍ତ ), ଉଇଁ ନ ହସେ ( ମେଘାଚ୍ଛନ୍ନ ସୂର୍ଯ୍ୟୋଦୟ ), ଉତ୍ତର ମେଘ ଦକ୍ଷିଣେ ଅସେ, ସଜ ଗୋବରରେ ଅଂଶୋଇ ବସେ, ନାଥ ବୋଲେ ପୁଣ୍ଡା ! ନଷ୍ଟେ ବରଷେ ( ଆଶୁବୃଷ୍ଟିର ସୂଚନା ) ।

୬ । ଅଶ୍ୱିଣ ଧୋଇ କାର୍ତ୍ତିକଙ୍କି ଯାଇ ( ଆଶ୍ୱିନରେ ବହୁ-ଜଳ ବୃଷ୍ଟି ହେଲେ ଫସଲ ସମ୍ପୂର୍ଣ୍ଣ ନଷ୍ଟ ହୁଏ ) ।

୭ । କାର୍ତ୍ତିକମାସରେ ହାଣ୍ଡରେ ପାଣି, ହାନ୍ଥିଆ କାଢ଼ିଲେ ବଢ଼ ଗଉଣୀ ( କାର୍ତ୍ତିକରେ ବର୍ଷା ହେଲେ ପୃଥିବୀ ସୁଫଳା ହୁଏ ) ।

୮ । ଅଠ ଦୁନ୍ଦୁକାଣି ଷୋଳ ଅସଟ, ବତିଶି ଲିପି ଲିପି ଚଉଷଠି କୁଣ୍ଡାଝର, ତେବେ ଯାଇ ଚଷାର ପେଟ ହୁଏ ଦୂର । ଅର୍ଥାତ୍ ୮ ଥର ମୂଷଳଧାରରେ ବୃଷ୍ଟି, ୧୬ ଥର ସାଧାରଣ ବୃଷ୍ଟି, ୩୨ ଥର ଝୁପୁରୁ ଝୁପୁରୁ ବର୍ଷା ଓ ୬୪ ଥର କୁଣ୍ଡା ଝଡ଼ିବା ପରି ବର୍ଷା ହେଲେ ଯାଇଁ ଧାନ ଫସଲ ହୁଏ । ]

୨ । ମୁସ୍ତକ; ମୁଥା—2. A fragrant grass-root, Cyperus Rotundus. ୩ । ରାକ୍ଷସ ବା ଦୈତ୍ୟ-ବିଶେଷ—3. Name of demon. ୪ । ସଙ୍ଗୀତରେ ଷଡ଼୍‌ରାଗାନ୍ତର୍ଗତ ରାଗ ବିଶେଷ ( ରାଗ ଶବ୍ଦରେ ଟୀକା ଦେଖ ) —4. Name of a tune in Hindu music; the male personification of one of the six tunes. (See 'Rāga'). [ଦ୍ର— ଛଅରାଗର ନାମ; ଯଥା—ଭୈରବ, କୌଶିକ, ହିନ୍ଦୋଳ, ଦୀପକ, ଶ୍ରୀ ଓ ମେଘ । ଏହି ମେଘରାଗର ୬ ଗୋଟି ରାଗିଣୀ; ଯଥା—ମଲ୍ଲିକା, ମାଳସୀ, ଗୌଡ଼ୀ, କାହ୍ନୀ, ଦେବକସା । ସଙ୍ଗୀତ-ଶାସ୍ତ୍ରର ମତରେ ଏହି ରାଗ ବ୍ରହ୍ମାଙ୍କ ମସ୍ତକରୁ (ମତାନ୍ତରରେ ଆକାଶରୁ ) ଜନ୍ମିଥିଲା । ଏହାର ଜାତି ଔଡ଼ବ, ଅର୍ଥାତ୍ ଧା, ନି, ସା, ରି, ଗ, ଏହି ପଞ୍ଚସ୍ୱର ସମନ୍ୱିତ । ଧୈବତ ସ୍ୱର ଏହାର ଗ୍ରହ, ବର୍ଷା ଋତୁରେ ରାତ୍ରିର ଶେଷଯାମରେ ଏହା ଗେୟ । ଏ ରାଗ ସୁପୁରୁଷ, ଶ୍ୟାମ ବର୍ଣ୍ଣ, ହସ୍ତୀପବାନ୍, ବଦ୍ଧକେଶ ଓ ଶାଣିତଖଡ୍ଗହସ୍ତ ରୂପେ କଳ୍ପିତ ହୋଇଅଛି । 'ଶଙ୍କରାଭରଣ', 'ମଲ୍ଲାର' ଗୌଡ଼, କର୍ଣ୍ଣାଟ, ଜଳଧର, ମାଳାବକ, ତୈଲଙ୍ଗ, ବଙ୍ଗାଳ, ଏହାର ଅଠ ଗୋଟି ପୁତ୍ର । ]

ଦେ. ବି—୧ । ଆକାଶ—1. The sky. ୨ । ବର୍ଷା 2. Rain.

ମେଘ ଅନ୍ଧାର—ଦେ ବି—( ସଂ. ମେଘାନ୍ଧକାର)—ଆକାଶ ମେଘାଚ୍ଛନ୍ନ ହେବାରୁ ପୃଥିବୀରେ ଘୋଟିବା ଅନ୍ଧକାର—
Megha andhara — মেঘ আধার — मेघ अंधार — Darkness spreading on the earth owing to the sky being overclouded.
[ମେଘ ଅନ୍ଧାର(ରୁ)ଆ—ବିଣ]

ମେଘ ଅସରା—ଦେ. ବି—ବର୍ଷିବାର ଥର—
Megha asarā — A shower of rain.
পসলা — अछार

ମେଘ ଉଇଁବା—ଦେ. କ୍ରି. (ସ. ମେଘ ଓ ଉଦୟ)—ଆକାଶରେ ମେଘ ଉଦୟ ହେବା; ମେଘୋଦୟ—The rising of a cloud; cloud appearing on the horizon.
Megha uiñbā — মেঘ উঠা — मेघ उठना
[ମେଘ ଉଠା(ଠେ)ଇବା—ଅନ୍ୟରୂପ]

ମେଘ(ଘେ) ଉଞ୍ଚ(ଚ)—ଦେ. ବିଣ—ଆକାଶ ପର୍ଯ୍ୟନ୍ତ ଉଚ୍ଚ; ଅତ୍ୟୁଚ୍ଚ—
Megha(ghe) uñcha(chcha) As high as the clouds.
মেঘের মত উঁচু — मेघ बराबर ऊँचा

ମେଘ କାଳ—ସ. ବି—ବର୍ଷା ଋତୁ—The cloudy season; the rainy season.
Megha kāla

ମେଘ ଗରଜନ—ଦେ. ବି—ମେଘ ଗର୍ଜନ ( ଦେଖ )
Megha garajana — Megha garjana (See)
মেঘ গরজন — मेघका बोलना(गरजन)
(ମେଘ ଗରଜିବା, ମେଘ ଡାକ, ମେଘ ଡାକିବା—ଅନ୍ୟରୂପ)

ମେଘ ଗର୍ଜନ—ସ. ବି. (୬ଷ୍ଠୀ ତତ୍)—ଘଡ଼ଘଡ଼ି ଶବ୍ଦ; ମେଘ ଧ୍ୱନି—
Megha garjana — The roaring of thunder-clouds; clap of thunder.
(ମେଘ ଦୁନ୍ଦୁଭି—ଅନ୍ୟରୂପ)
[ଦ୍ର—ମେଘ ଗର୍ଜନ ସମୟରେ ବେଦାଧ୍ୟୟନ ନିଷିଦ୍ଧ ।]

ମେଘ ଘଡ଼ ଘଡ଼ି—ଦେ. ବି. (ସଦ୍ୱତର)—ବୃଷ୍ଟି ଓ ବଜ୍ର ଧ୍ୱନି—
Megha gharḍa gharḍi — Rain and thunder.
বৃষ্টি ও বজ্রাঘাত — बृष्टि और मेघ गड़कना

ମେଘ ଘୋଟିବା—ଦେ. ବି—ଚତୁର୍ଦ୍ଦିଗ ମେଘାଚ୍ଛନ୍ନ ହେବା—
Megha ghoṭibā — The sky being overclouded.
মেঘ ঘোটা — मेघ भरना

ମେଘ ଘୋଡ଼ା(ଡ଼େ)ଇବା—ଦେ. ବି—୧ । ଆକାଶ ମେଘାଚ୍ଛନ୍ନ ହେବା—
Megha ghorḍā(rḍe)ibā — 1. The sky being overclouded.
(অকাশ)মেঘ মেঘ করা, মেঘে ঢাকা — मेघ ढक देना
୨ । ସୂର୍ଯ୍ୟ, ଚନ୍ଦ୍ର ବା ତାରାଙ୍କୁ ମେଘ ଘୋଡ଼ାଇବା—2. The cloud enveloping the sun, moon or the stars.
ମେଘ ଘୋଡ଼ା ଘୋଡ଼ା କରିବା } ଅନ୍ୟରୂପ
ମେଘ ଢାଙ୍କିବା }

ମେଘଙ୍କର—ସ. ବିଣ. ( ମେଘଂ+କୃ ଧାତୁ+କର୍ତ୍ତୃ. ଅ )—ଯାହା ବର୍ଷା କରାଏ (ଋତୁ)—Cloud-producing or rainy (season).
Meghaṅkara

ମେଘ ଚମକ—ଦେ. ବି—ବିଦ୍ୟୁତ୍—
Megha chamaka — Flash of lightning.
মেঘের চমক — मेघकी चमक

**ମେଘ ଚିନ୍ତକ**—ସଂ. ବି—ଚାତକ ପକ୍ଷୀ—The coccyster bird;
Megha chintaka pied-crested cuckoo;
(ମେଘ ଜୀବକ—ଅନ୍ୟରୂପ) Cuculus Malanoleucus.
[ଦ୍ର—କବି ପ୍ରସିଦ୍ଧ ଅଛି ଯେ ଚାତକ ପକ୍ଷୀ ମେଘରୁ ବର୍ଷୁଥିବା ଜଳ ଛଡ଼ା ଅନ୍ୟ ଜଳ ପାନ କରେ ନାହିଁ ଓ ଏଥିପାଇଁ 'ଦେ ଜଳ' ବୋଲି ଧ୍ୱନି କରି ଉଡ଼ୁଥାଏ ।]

**ମେଘଜ**—ସଂ. ବିଣ. (ମେଘ+ଜନ୍ ଧାତୁ+କର୍ତ୍ତୃ. ଅ)—ମେଘରୁ ଜାତ—
Meghaja Born from the clouds.
ସଂ. ବି—ଏକ ପ୍ରକାର ବୃହତ୍ ମୁକ୍ତା—A kind of large pearl (said to fall from the clouds).
[ଦ୍ର—ଏହା ଆକାଶରୁ ବର୍ଷା ସଙ୍ଗେ ପଡ଼ିବା କଳ୍ପିତ ।]

**ମେଘ ଜାଲ**—ସଂ. ବି—୧ । ଅଭ୍ର; ମେଘ ନାଲ—1. Talc, mica.
Megha jāla ୨ । ମେଘ ସମୂହ—2. A mass of
(ମେଘ ଜାଳକ—ଅନ୍ୟରୂପ) clouds.

**ମେଘ ଜ୍ୟୋତିଃ**—ସଂ ବି. (ମେଘରୁ ଉତ୍ପନ୍ନ ଜ୍ୟୋତିଃ; ମ. ପ. ଲୋ)—
Megha jyotiḥ ୧ । ଇରମ୍ମଦ; ବଜ୍ର ପଡ଼ିବା ବେଳେ ଦେଖା
(ମେଘ ଜ୍ୟୋତି—ଦେଶଜ ରୂପ) ଯିବା ଜ୍ୟୋତି—1. A flash of lightning attending the fall of a thunder bolt. ୨ । ବଜ୍ରାଗ୍ନି; ବିଦ୍ୟୁତ୍—2. The fire or electricity from the thunder.

**ମେଘ ଡମ୍ବର**—ସଂ. ବି—୧ । ମେଘାଡ଼ମ୍ବର; ଆକାଶରେ ମେଘ ଘୋଟି
Megha ḍambara ଯିବା—1. Overclouded state of the sky; the lowering of the clouds.
୨ । ମେଘ ଗର୍ଜନ—2. The roaring of thunder.
୩ । ବଡ଼ ଚାନ୍ଦୁଆ (ହି. ଶ)—3. A big canopy.
୪ । ଏକ ପ୍ରକାର ବଡ଼ ଛତା (ହି. ଶ)—4. A kind of big umbrella.

**ମେଘ ଡମ୍ବ(ମ)ର(ରୁ)**—ଦେ. ବି—୧ । କଳା ମେଘୀ ଶାଢ଼ୀ—1. A
Megha ḍamba(ma)ra(ru) cloth of the colour
মেঘ ডম্বর সাডী of clouds. ୨ । ନୀଳାମ୍ବରୀ ବା ନୀଳ ଶାଢ଼ୀ-
**आसमानी रङ्गकी साढी** 2. Azure coloured cloth.
୩ । ଏକ ପ୍ରକାର ଶୁକ୍ଳ ଓ ଲମ୍ବା ଧାନ—3. A kind of white and long paddy.
[ଦ୍ର—ଏହାର ଫଳ ଛଡ଼ା ମୂଳଠାରୁ ଗଛର ସମସ୍ତ ଅଂଶର ରଙ୍ଗ ବାଇଗଣୀ ।]

**ମେଘ ତିମିର**—ସଂ. ବି. ( ମ. ପ. ଲୋ; ମେଘ ଜନିତ ତିମିର )—
Megha timira ମେଘାଚ୍ଛନ୍ନତା; ମେଘ ଅନ୍ଧାର—Cloudiness.

**ମେଘ ଦୀପ**—ସଂ. ବି—ବିଦ୍ୟୁତ୍—
Megha dīpa Lightning.

**ମେଘ ଦୂତ**—ସଂ.ବି. (ରୂପକ; ଦୂତ ରୂପେ କଳ୍ପିତ ମେଘ)—କାଳିଦାସଙ୍କ
Megha dūta ରଚିତ ସଂସ୍କୃତ ଖଣ୍ଡକାବ୍ୟ ବିଶେଷ—Name of a Sanskrit poem by Kāli Dāsa (in which an exiled Jaksha employs the cloud as his messenger to his beloved at home). [ଦ୍ର—କୁବେରଙ୍କ ଉଦ୍ୟାନରକ୍ଷକ ଜଣେ ଯକ୍ଷ ଆପଣା ପ୍ରିୟତମଠାରୁ ୧ ବର୍ଷ କାଳ ବିଚ୍ଛେଦ ଭୋଗ କରିବା ପାଇଁ ଦଣ୍ଡାଜ୍ଞା ପ୍ରାପ୍ତ ହୋଇ ରାମଗିରି ପର୍ବତରେ ଥାଇ ତାହାର ବାସସ୍ଥାନ କୈଳାସରେ ବାସ କରୁଥିବା ବିରହିଣୀ ପ୍ରେୟସୀ ନିକଟକୁ ସ୍ୱୀୟ ମନୋବେଦନାଜ୍ଞାପକ ସମ୍ବାଦ ଦୂତ ରୂପେ ପରିକଳ୍ପିତ ମେଘ ଦ୍ୱାରା ପଠାଉଥିବା ବିଷୟକ ସଂସ୍କୃତ କାବ୍ୟର ନାମ ।]

**ମେଘ ଦେଖି ଛତା ଧରିବା**—ଦେ. କ୍ରି—୧ । ଯେଉଁ ଦିଗରୁ ପବନ
Megha dekhi chhatā dharibā ବୋହି ବର୍ଷା ଜଳ ଆଣେ
মেঘ দেখে ছাতা ধরা ଥାଏ ସେହି ଦିଗକୁ ଛତା ରୁଜୁଇବା—
**मेघ देखके छाता धरना** 1. To direct the umbrella in accordance with the direction of the rain drops. ୨ । (ଲକ୍ଷଣାର୍ଥ) ସମୟର ପ୍ରଭାବ ଦେଖି ନିଜର ଆଚରଣକୁ ବଦଳାଇବା—2. To accomodate oneself to the change of times or opportunities.

**ମେଘ ଦ୍ୱାର**—ସଂ. ବି. (୬ଷ୍ଠୀ ତତ୍)—ସ୍ୱର୍ଗ; ଆକାଶ—
Megha dwāra The sky.

**ମେଘ ଧନୁଃ**—ସଂ. ବି. (ମ. ପ. ଲୋ)—ଇନ୍ଦ୍ର ଧନୁ—
Megha dhanuḥ Rainbow.

**ମେଘ ଧ୍ୱନି**—ସଂ. ବି. (୬ଷ୍ଠୀ ତତ୍)—ଘଡ଼ଘଡ଼ି ଶବ୍ଦ; ମେଘର ଡାକ—
Megha dhwani The rumbling of clouds.

**ମେଘନା**—ଦେ. ବି—ପୂର୍ବବଙ୍ଗର ନଦୀ ବିଶେଷ—Name of
Meghanā the river which is formed by the
মেঘনা Ganges and the Brahmaputra being
**मेघना** joined together before falling to the Bay of Bengal.
[ଦ୍ର—ଗଙ୍ଗା ଓ ବ୍ରହ୍ମପୁତ୍ର ମିଳିତ ହୋଇ ପଦ୍ମା ନାମ ଧାରଣ କରିଅଛି, ମେଘନା ନାମକ ଗୋଟିଏ ଉପନଦୀ ଯେଉଁଠାରେ ପଦ୍ମା ସଙ୍ଗେ ମିଳିତ ହୋଇଅଛି ସେଠାରୁ ସେହି ସମ୍ମିଳିତ ସ୍ରୋତ ମେଘନା ନାମରେ ସମୁଦ୍ରରେ ଯାଇ ପଡ଼ିଅଛି । ସମୁଦ୍ର ସଙ୍ଗମରେ ମଧ୍ୟ ଏହା ମେଘନା ନାମରେ ପରିଚିତ ।]

**ମେଘ ନାଥ**—ସଂ. ବି. ( ୬ଷ୍ଠୀ ତତ୍ )—ଇନ୍ଦ୍ର—
Megha nātha Indra.
(ମେଘପତି—ଅନ୍ୟରୂପ)

**ମେଘ ନାଦ**—ସଂ. ବି. ( ୬ଷ୍ଠୀ ତତ୍ )—୧ । ମେଘ ଧ୍ୱନି—1. The
Megha nāda rumbling of clouds. ୨ । ଘଡ଼ଘଡ଼ି ଶବ୍ଦ—2. Clap of thunder. ୩ । ପଳାଶ ଗଛ—3. A tree; Butea Frondosa. ୪ । ତଣ୍ଡୁଲୀୟ ଶାକ; ଲେଉଟିଆ ଶାଗ—4. A pot herb; Amaranthus Polygamus. ୫ । (ବହୁବ୍ରୀହି) ରାବଣର ପୁତ୍ର; ଇନ୍ଦ୍ରଜିତ୍—5. Name of a son of Rāban

[ଦ୍ର—ଏ ଜନ୍ମ ହେବା ସମୟରେ ମେଘ ପରି ନାଦ କରି ଥିବାରୁ ଏହାଙ୍କର ଏହି ନାମକରଣ ହୋଇଥିଲା । ଏହାଙ୍କୁ ଲକ୍ଷ୍ମଣ ବଧ କରିଥିଲେ । ଏହାଙ୍କ ସ୍ତ୍ରୀ ପ୍ରମୀଳା । ଏ ପ୍ରଥମରେ ନାଗ ପାଶରେ ଲକ୍ଷ୍ମଣଙ୍କୁ ବନ୍ଧନ କରିଥିଲେ । ଏ ଇନ୍ଦ୍ରଙ୍କୁ ଜୟ କରି ଥିବାରୁ ଏହାଙ୍କ ନାମ ଇନ୍ଦ୍ରଜିତ୍ ମଧ୍ୟ ହୋଇ ଥିଲା ।]  ୬ । ଜଳାଧିପତି; ବରୁଣ ଦେବତା—6. The God of water; the Neptune of the Hindus. ୭ । (ମେଘ ଉଠାଇବା ବେଳେ ଧ୍ୱନି କରେ) ମୟୂର (ହି. ଶ)—7. The peacock. (ଉ—କର୍ଣ୍ଣିକା ଛପ କେମନ୍ତ କୁମାର, ଜାତ ରତ୍ନଙ୍କ ଧୁଣି କୁମାର, ଗ୍ରତ ସେ ମେଘନାଦ ଉପର, ପଢ଼ି ଅଚେତ ସେ । ଭଞ୍ଜ ବୈଦେହୀଶ ବିଳାସ ।)  ୮ । ବିରାଡ଼ି (ହି. ଶ)—8. The cat. ଦେ. ବି - ଅତି ଉଚ୍ଚ ପ୍ରାଚୀର—A very high wall. (ଉ—କ୍ରୌଞ୍ଚ ଗବାକ୍ଷ ମେଘନାଦ ଶୋଭନ୍ତି । ପ୍ରାଚୀ ଉଦୟ ମଣ୍ଡଳି ।)

ମେଘନାଦ ପାଚି(ଚେ)ରି(ରୀ)—ଦେ. ବି—ରାଜପୁରର ବା ଦେବାଳୟର
Meghanāda pāchi(che)ri(rī)  ବାହାର ବେଢ଼ାରେ
উচুঁ প্রাচীর  **खूब ऊँचा चहरदिवाली**  ବୁଲିଥିବା ଉଚ୍ଚ ପ୍ରାଚୀର—A very high outer wall of a palace or temple-compound. [ ଦ୍ର—ଜଗନ୍ନାଥ ଦେଉଳର ବାହାର ବେଢ଼ାରେ ବୁଲିଥିବା ଉଚ୍ଚ ପ୍ରାଚୀରକୁ 'ମେଘନାଦ ପାଚେରି' କହନ୍ତି । ଏ ପାଚେରିର ସୀମା ମଧ୍ୟରୁ ସମୁଦ୍ରର ଗର୍ଜନ ଶୁଣାଯାଏ ନାହିଁ । ]

ମେଘନାଦ ବଧ—ସଂ. ବି—ଲକ୍ଷ୍ମଣଙ୍କଦ୍ୱାରା ଇନ୍ଦ୍ରଜିତର ଯୁଦ୍ଧରେ ପ୍ରାଣ
Meghanāda badha  ନାଶ—The slaying of
মেঘনাদ বধ  Meghanāda by Lakshmaṇa. ଦେ. ବି—
**मेघनाद् वध**  ବଙ୍ଗୀୟ କବି ମାଇକେଲ୍ ମଧୁସୂଦନ ଦତ୍ତଙ୍କ ପ୍ରଣୀତ ଅମିତ୍ରାକ୍ଷର ଛନ୍ଦୋଯୁକ୍ତ ପ୍ରସିଦ୍ଧ ମହାକାବ୍ୟ—Name of a famous Bengali poem in blank verse by poet Michael Madhusūdana Datta.

ମେଘନାମା—ସ. ବି (ବହୁବ୍ରୀହି; ମେଘନାମନ୍; ୧ମା ୧ବ)—ମୁସ୍ତକ; ମୁଥା—
Meghanāmā  Fragrant root of grass.

ମେଘନା(ଳ)ଳ—ଦେ. ବି (ସଂ. ମେଘ+ନାଲ)—୧ । ଅଭ୍ର—1. Mica;
Meghanā(lā)la  talc. [ ଦ୍ର—ଲୋକେ କହନ୍ତି ଯେ, ମେଘ
অভ্র **चिलचिल**  ପାହାଡ଼ ଉପରକୁ ତଳ ଆସି ଏହି ନାଲଯାକ
**अबरख**  ..  ଗାଳ ପକାଇ ଥାଏ । ]  ୨ । କାଣ୍ଟି ଲେଉଟିଆ (କବିରାଜ ଶ୍ରୀ ହରେକୃଷ୍ଣ. ଦ୍ରବ୍ୟଗୁଣ)—2. Amaranthus Spinosus; a prickly potherb.

ମେଘ ନିର୍ଘୋଷ—ସଂ ବି (୬ଷ୍ଠୀ ତତ୍)—ମେଘଧ୍ୱନି; ମେଘନାଦ—
Megha nirghosha  The rembling of clouds.

ମେଘ ପଟଳ—ସଂ. ବି (୬ଷ୍ଠୀ ତତ୍)—ମେଘସମୂହ; ଘୋରଅନ୍ଧାର
Megha paṭala  ହୋଇଥିବା ମେଘ—A mass of clouds.

ମେଘ ପୁଷ୍ପ—ସଂ. ବି—୧ । ବୃଷ୍ଟି ଜଳ—1. Rain water.
Megha pushpa  ୨ । ଜଳ—2. Water.
(ମେଘ ପ୍ରସବ—ଅନ୍ୟରୂପ)  ୩ । ବିଷ୍ଣୁଙ୍କ ନନ୍ଦିଘୋଷ ରଥର ଏକ ଅଶ୍ୱ—3. One of the 4 horses of the Nandighosha car of Bishṇu. [ ଦ୍ର—ଅନ୍ୟ ୩ ଘୋଡ଼ାଙ୍କ ନାମ—ଶୈବ୍ୟ, ବଳାହକ, ସୁଗ୍ରୀବ ବା ବାଜିରଥ—ହି. ଶ । ]  ( ଉ—[୨।୩] ବରଷାକାଳ ତା କଲେ ବଳାହକ, ମେଘ ପୁଷ୍ପେ ଶୋଭି ଯୋଷଡ଼ଙ୍କ ବ୍ୟାପେ ପ୍ଲବଗ ହୋଇଲେ—ଭଞ୍ଜ. ବୈଦେହୀଶବିଳାସ ।)  ୪ । ଇନ୍ଦ୍ରଙ୍କ ଅଶ୍ୱ ( ହି. ଶ )—4. The horse of Indra.

ମେଘ ପୁଷ୍ପା—ସଂ. ବି—୧ । କୁଆପଥର ( ହି. ଶ )—1 Hail.
Megha pushpā  ୨ । ଜଳ ( ହି. ଶ )—2. Water.
୩ । ବେତ (ହି. ଶ)—3. Ratan; cane.

ମେଘଫଳ—ସଂ. ବି—୧ । ବିଜ୍ଜବିତ ଗୁଳ୍ମ—1. Flacourtia
Meghaphaḻa  Ramontchi ( plant ). ୨ । (ଜ୍ୟୋତିଷ) ମେଘର ବର୍ଣ୍ଣଦ୍ୱାରା ବର୍ଷର ଶୁଭାଶୁଭ ଫଳ କର୍ଣ୍ଣିଧ—2. ( astrology ) The foretelling of the influence of the clouds on the earth.

ମେଘ ବର୍ଣ୍ଣ—ସଂ. ବି—୧ । ମେଘର ରଙ୍ଗ—1. Colour of the
Meghabarṇṇa  clouds. ୨ । ନୀଳବର୍ଣ୍ଣ—2. Azure colour. ୩ । ଘଟୋତ୍କଚ ରାକ୍ଷସର ପୁତ୍ର—3. The son of demon Ghaṭotkacha.  ବିଣ—ମେଘଶ୍ୟାମ ( ଦେଖ )—Meghaśyāma ( See )

ମେଘ ବର୍ତ୍ମ—ସଂ. ବି—ଗଗନ; ଅନ୍ତରୀକ୍ଷ—
Megha bartma  The sky; the heavens.

ମେଘ ବଲ୍ଲୀ—ସଂ. ବି—ଲତାବିଶେଷ—A kind of creeper;
Megha ballī  Thumbergia Grandiflora.

ମେଘ ବହ୍ନି—ସଂ. ବି(୬.ଷ ତତ୍)—ବଜ୍ରାଗ୍ନି; ବିଦ୍ୟୁତ୍—
Megha bahni  Lightning; electric sparks.

ମେଘ ବାଆ—ଦେ. ବି ( ସଦ୍ବଚର ) (ସଂ. ମେଘ+ବାତ)—୧ । ମେଘ
Megha bā-ā  ଓ ପବନ—1. Cloud and wind.  ୨ ।
ঝড় বৃষ্টি  **मेघबाई, झक्कर**  ବର୍ଷା ଓ ଝଡ଼—2. Rain and storm.

ମେଘ ବାଆ ଦିନ—ଦେ. ବି—ବରଷାର ଓ ଝଡ଼ର କାଳ ବା ଋତୁ—
Megha bā-ā dina  Rainy and stormy day
ঝড় বৃষ্টির দিন  **झक्करका दिन**  or weather.

ମେଘ ବାଦଲ—ଦେ. ବି ( ଏକାର୍ଥ ସଦ୍ବଚର )—୧ । ଆକାଶରେ
Megha bādala  ଉଠାଇଥିବା ମେଘମାଳା—1. Clouds
মেঘ বাদল  **मेघ बादल**  spreading on the sky.  ୨ । ବର୍ଷା ଓ ମେଘ—2. Rain and clouds.

ମେଘ ବାହନ—ସଂ. ବି ( ବହୁବ୍ରୀହି )—ଇନ୍ଦ୍ର—
Megha bāhana  Indra; the God of rain.

ମେଘ ବିଚ୍ଛୁରିତ—ସଂ. ବିଣ ( ୩ୟା ତତ୍ )—ମେଘଦ୍ୱାରା ଛିଞ୍ଚା ହୋଇଥିବା ( ଜଳ )—(water)
Megha bichchhurita  Sprinkled by the clouds.

ମେଘ ବିସ୍ଫୂର୍ଜିତ—ସଂ. ବି—୧ । ବଜ୍ର—1. Thunder. ୨ । ଅଷ୍ଟ-
Megha bisphurjjita ଦଶ ଛନ୍ଦୋବିଶେଷ—2. Name of a Sanscrit metre.

ମେଘ ବେଶ୍ମ—ସଂ. ବି (ଷଷ୍ଠୀ ତତ୍)—ଆକାଶ—
Megha beśma The sky.

ମେଘ ଭାଙ୍ଗିଯିବା—ଦେ. କ୍ରି—ମେଘାଚ୍ଛନ୍ନ ଆକାଶ ମେଘଶୂନ୍ୟ ହୋଇ
Megha bhāngijibā ପରିଷ୍କାର ହେବା—The clearing
মেঘ কেটে যাওয়া of the sky by the dispersal of
मेघ छूटना the clouds.

ମେଘଭୂତି—ସଂ. ବି ( ମେଘ+ଭୂ. ଧାତୁ+କର୍ତ୍ତ. ତି )—୧ । ବଜ୍ର—
Megharbhūti 1. Thunder. ୨ । ବିଜୁଳି ( ହ୍ରି. ଶ )—
2. Lightning.

ମେଘ ମଣ୍ଡିତ—ସଂ. ବିଣ ( ତୃତୀୟା ତତ୍ ) —ମେଘଦ୍ୱାରା ଆବୃତ ହୋଇ
Megha maṇḍita ଶୋଭମାନ—Adorned with clouds

ମେଘମନ୍ଦ୍ର—ସଂ. ବିଣ —ମେଘ ପରି ଗମ୍ଭୀର (ଧ୍ୱନି)—Thundering.
Meghamandra (sound). ବି. ( ଷଷ୍ଠୀ ତତ୍ )—ମେଘର
ଧ୍ୱନି—Sound of thunder.

ମେଘ ମଲ୍ଲାର—ସଂ. ବି—ମିଶ୍ରରାଗବିଶେଷ—Name of a mixed
Megha mallāra tune in Hindu music.

ମେଘମାଳି—ସଂ. ବି—୧ । ରମାଦେବୀଙ୍କ ଗର୍ଭଜାତ କଳ୍କି ଦେବଙ୍କ ପୁତ୍ର—
Meghamāḷa 1. Name of the son of Bishṇu in his 10th incarnation. ୨ । ମେଘମାଳା
( ଦେଖ )—2. Meghamāḷā ( See )

ମେଘ ମାଳା—ସଂ. ବି ( ଷଷ୍ଠୀ ତତ୍ )—୧ । ମେଘ ସମୂହ—
Megha māḷā 1. Cluster or mass of clouds.
୨ । ମଳା ମଳା ମେଘ—2. Lowering clouds
୩ । ସ୍କନ୍ଦାନୁଚରୀ ମାତୃକା ବିଶେଷ ( ହ୍ରି ଶ )—
3. Name of a Goddess.

ମେଘ ଯୁଦ୍ଧ-ସଂ. ବି—ଏକ ମେଘଖଣ୍ଡ ସଙ୍ଗେ ଅନ୍ୟ ମେଘଖଣ୍ଡ ଘଷି ହେବା
Megha juddha ବା ବାଜିବା ପରି ଦେଖାଯିବା—The
meeting or clashing of clouds.

ମେଘ ଯୋନି—ସଂ. ବି ( ବହୁବ୍ରୀହି; ମେଘ+ଯୋନି=ଉତ୍ପତ୍ତିସ୍ଥାନ )
Megha joni —୧ । ଧୂମ; ଧୂଆଁ—1. Smoke. ୨ ।
କୁହୁଡ଼ି ( ହ୍ରି. ଶ ) —2. Fog; mist.

ମେଘ ରସ—ସଂ. ବି ( ଷଷ୍ଠୀ ତତ୍ )—ବୃଷ୍ଟି ଜଳ—
Megha rasa Rain water.

ମେଘରାଜ —ସଂ. ବି ( ଷଷ୍ଠୀ ତତ୍ )—ଇନ୍ଦ୍ର—
Megharāja Indra.

ମେଘଲି—ଦେ. ବିଣ—ମେଘୁଆ; ମେଘଯୁକ୍ତ; ମେଘଚ୍ଛନ୍ନ—Cloudy;
Meghalā মেঘলা overcast with clouds.
बादल छाया हुआ

ମେଘ ଶ୍ୟାମ—ସଂ. ବିଣ. ପୁଂ ( ଉପମାନ କର୍ମଧାରୟ )—ମେଘ ପରି
Megha śyāma ଶ୍ୟାମଳ—Azure-coloured.
( ମେଘ ଶ୍ୟାମା —ସ୍ତ୍ରୀ )

ମେଘ ସାର—ସଂ. ବି—ଚୀନ କର୍ପୂର; ଶ୍ରୀ କର୍ପୂର—
Megha sāra A species of camphor.

ମେଘ ସୁହୃଦ୍—ସଂ. ବି ( ବହୁବ୍ରୀହି; ମେଘ+ସୁହୃଦ୍=ବନ୍ଧୁ )—ମୟୂର
Megha suhṛud —Peacock.

ମେଘ ସ୍ତନିତ—ସଂ. ବି ( ଷଷ୍ଠୀ ତତ୍ )—ମେଘ ନାଦ ( ଦେଖ )
Megha stanita Megha nāda ( See )

ମେଘ ସ୍ୱନ—ସଂ. ବି—ମେଘ ଗର୍ଜନ; ଘଡ଼ଘଡ଼ି—
Megha swana The roar of thunder.

ମେଘ ସ୍ୱନାଙ୍କୁର—ସଂ. ବି—ବୈଦୁର୍ଯ୍ୟ ମଣି—Lapis lazuli.
Megha swanaṅkura [ ପ୍ର—ପ୍ରବାଦ ଅଛି ଯେ ମେଘ
ଗର୍ଜନ କରିବାଦ୍ୱାରା ବୈଦୁର୍ଯ୍ୟମଣିର ଉତ୍ପତ୍ତି ହୁଏ । ]

ମେଘା—ଦେ. ବି—୧ । ମେଘୁଆ; ମସୃଣ ଆବରଣ ବିଶିଷ୍ଟ ଆତ—
Meghā 1. Bullock's heart apple. ୨ । ଅନେକ
নোনা ବାଦ୍ୟଯନ୍ତ୍ର ବିଶେଷ—2. A kind of drum. ୩ ।
आता ଲତା ଫୁଲବିଶେଷ—3. Convolvulus (flower).

ମେଘାଗମ—ସଂ. ବି—୧ । ( ଷଷ୍ଠୀ ତତ୍ ) ମେଘ ଉଠାଇବା—
Meghāgama 1. The rise of clouds; the
approach of the rains. ୨ । ( ବହୁବ୍ରୀହି )
ବର୍ଷା ଋତୁ—2. The rainy season. ୩ । ଧାରା
କଦମ୍ବ—3. A species of Kadamba tree.

ମେଘାଚ୍ଛନ୍ନ—ସଂ. ବିଣ ( ତୃତୀୟା ତତ୍ )—ମେଘ ଘୋଟିଥିବା; ମେଘଦ୍ୱାରା
Meghāchchhanna ଘୋଡ଼ା ହୋଇଥିବା—Cloudy;
ମେଘାବୃତ } ଅନ୍ୟରୂପ covered over with clouds.
ମେଘାଚ୍ଛାଦିତ } overclouded.

ମେଘାଡ଼ମ୍ବର—ସଂ. ବି ( ମେଘ+ଆଡ଼ମ୍ବର; ଷଷ୍ଠୀ ତତ୍ )—୧ ।
Meghārdambara ବଜ୍ରନାଦ—1. Thunder clap.
୨ । ମେଘ ଡମ୍ବର (ଦେଖ)—2. Megha ḍambara ( See )

ମେଘାତ୍ୟୟ —ସଂ. ବି ( ବହୁବ୍ରୀହି; ମେଘ+ଅତ୍ୟୟ=ନାଶ )—
Meghātyaya ଶରତ୍କାଳ—The autumn.

ମେଘାନନ୍ଦ —ସଂ. ବି (ବହୁବ୍ରୀହି; ମେଘ+ଆନନ୍ଦ)—୧ । ବଳାକା; ବକ
Meghānanda —1. The egret ( bird ) ୨
ମୟୂର—2. Peacock.

ମେଘନନ୍ଦୀ—ସଂ. ବି ( ମେଘ+ଆନନ୍ଦ+ଇନ୍; ୧ମା. ୧ବ )— ମୟୂର
Meghānandī The peacock.

ମେଘାନ୍ତ—ସଂ. ବି ( ମେଘ+ଅନ୍ତ=ଶେଷ; ବହୁବ୍ରୀହି )—ମେଘାତ୍ୟୟ;
Meghānta ଶରତ୍କାଳ—The autumn.

ମେଘାରମ୍ଭ—ସଂ. ବି ( ଷଷ୍ଠୀ ତତ୍ )—ମେଘାଗମ ( ଦେଖ )
Meghārambha Meghāgama ( See )

ମେଘାସନ—ଦେ. ବି—ମୟୂରଭଞ୍ଜର ଶିମୁଳିପାଳ ପର୍ବତର ପ୍ରଧାନ ଶିଖର
Meghāsana —The principal peak of the
মেঘাসন Simulipāḷa mountain in Mourbhanj
मेघासन State. [ ଉ—ଅଦ୍ୟ•ଅବର୍ଗିକ, ଅନ୍ୟ ଦେବଙ୍କର,
ହୋଇଥିବ ମେଘାସନେ । ରାଧାନାଥ. ପାର୍ବତୀ ।]

ମେଘାସନୀ—ଦେ. ବି—ମୟୂରଭଞ୍ଜର ପର୍ବତ ବିଶେଷ—The mountain Meghasani in Mourbhanj state. [ଦ୍ର—ଏହି ପର୍ବତର ଉଚ୍ଚତା ୩୮୨୪ଫିଟ୍ ।]
Meghāsanī

ମେଘାସ୍ଥି—ସ. ବି (ମେଘ+ଅସ୍ଥି=ହାଡ଼)—କରକା; କୁଆପଥର—Hail stones.
Meghāsthi

ମେଘାସ୍ପଦ—ସ. ବି (୬ଷ୍ଠୀ ତତ୍; ମେଘ+ଆସ୍ପଦ=ସ୍ଥାନ)—ଆକାଶ—The sky.
Meghāspada

ମେଘି—ଦେ. ବିଣ—ମେଘର ବର୍ଣ୍ଣ ବିଶିଷ୍ଟ—Having the colour of clouds. (ଯଥା-କଳାମେଘୀ ଶାଢ଼ୀ ।)
Meghi
মেঘের রঙ্গ मेघका रंगका

ମେଘୁଆ—ଦେ. ବିଣ—୧ । ମେଘଯୁକ୍ତ; ମେଘାଚ୍ଛନ୍ନ—1. Cloudy; overcast. ୨ । ଆକାଶର ବର୍ଣ୍ଣ ବିଶିଷ୍ଟ—2. Azure coloured. ଦେ. ବି—୧ । ମେଘାଚ୍ଛନ୍ନ ଦିବସ ବା ଋତୁ—1. Cloudy weather or day. ୨ । ଏକପ୍ରକାର ମସୃଣ ଆବରଣବିଶିଷ୍ଟ ଆତଫଳ—2. A kind of apple; Anona Reticulata; the bullock's heart. [ଦ୍ର—ଅନ୍ୟ ପ୍ରକାରର ଅମସୃଣ ଆବରଣ ବିଶିଷ୍ଟ ଆତକୁ ବଢ଼ିଆତ ବା ଲେଉଆ ବୋଲାଯାଏ—Custard apple; Anona Squamosa ] ଗ୍ରାଦେ (ସମ୍ବଲପୁର) ବି—ମେଘୁଆ (ଦେଖ) Meguā ( See )
Meghuā
মেঘলা

ମେଘୋଦୟ—ସଂ. ବି. (୬ଷ୍ଠୀ ତତ୍)—ମେଘ ଉଠିବା—The rising of a cloud.
Meghodaya

ମେଘୋଦର—ସଂ. ବି (ନାମ)—ଅର୍ହତ୍ ପିତା; ପଞ୍ଚମ ଜୈନ ବା ବୁଦ୍ଧ ବିଶେଷଙ୍କ ପିତା—The name of the father of the 5th Wise Being according to the Jainas
Meghodara

ମେଙ୍ଖ (ଇତ୍ୟାଦି)—ଦେ. ବି—ମେଖ ଇତ୍ୟାଦି (ଦେଖ)
Meṅkha (etc) Mekha etc (See)

ମେଙ୍ଖଡ଼ (ଇତ୍ୟାଦି)—ଦେ. ବି—ମେଖଡ଼ ଇତ୍ୟାଦି (ଦେଖ)
Meṅkharda (etc) Mekharda etc (See)

ମେଙ୍ଖଡ଼ା[ଡ଼ୀ]—ଦେ. ବିଣ ଓ ବି—ମେଖଡ଼ା(ଡ଼ୀ) (ଦେଖ)
Meṅkhardā (rdi) Mekhardā(rdi) (See)

ମେ(ମା,ମ୍ୟା)ଙ୍ଗାନିଜ୍—ବୈଦେ.ବି--(ଇଂ.ମାଙ୍ଗାନିଜ୍)—ଲୌହ ପରି ଏକ ପ୍ରକାର ଧାତୁ—Manganese (metal).
Me(ma, myā)ṅgānij ম্যাঙ্গানীজ मैंगानीज

ମେଚକ—ସ. ବି—(ମଚ୍ ଧାତୁ=ମିଶ୍ରିତ କରିବା+କର୍ତ୍ତୃ. ଅକ)—୧ । ମୟୂର ପୁଚ୍ଛସ୍ଥ ଚନ୍ଦ୍ରକା—1. The eye on the peacock's tail. ୨ । ମେଘ—2. Cloud. ୩ । ଧୂମ; ଧୂଆଁ—3. Smoke. ୪ । ଶୋଭାଞ୍ଜନ; ସଜନା ଗଛ—4. The horse radish tree. Hyperanthera Moringa. ୫ । ଅନ୍ଧକାର—5. Darkness. ୬ । କଜ୍ଜଳ—6. Collyrium. ୭ । ସୌବୀରାଞ୍ଜନ—7. Sulphuret of antimony. ୮ । ଶ୍ୟାମ ବର୍ଣ୍ଣ—8. Dark blue colour (ମେଚକତା—ବି) ସ. ବିଣ—ଶ୍ୟାମଳ—Dark blue. [ଉ—ବଲ୍ମୀକନ ନୋହେ ମେଚକ କାନ୍ତି । ଉଷ. ବୈଦେହୀଶ ବିଳାସ ।]
Mechaka

ମେଚକାପଗା—ସ. ବି—କଳିନ୍ଦୀ; ମେଚକ=କୃଷ୍ଣବର୍ଣ୍ଣ+ଆପଗା=ନଦୀ )—ଯମୁନା ନଦୀ—The river Jamunā.
Mechakā pagā

ମେଚକାଭିଧା—ସ. ବି—ପାତାଳ ଗରୁଡ଼ୀ ଲତା—A medicinal creepr.
Mechakā bhidhā

ମେଛ—ଗ୍ରାଦେ. (ଖଡ଼ିଆଳ) ବି.—ମୁଞ୍ଛ; ନିଶ—Mustaches.
Mechha

ମେଛ(ଚ୍ଛା)—ଗ୍ରାଦେ. (ସମ୍ବଲପୁର) ବି.—(ସ. ଶ୍ମଶ୍ରୁ)—ମୁଞ୍ଛ; ନିଶ—Mustaches.
Mechha (chchhā)

ମେଜ—ବୈଦେ. ବି—(ଫା.)—ଟେବଲ୍—Table.
Meja মেজ मेज

ମେଜ ଚଉକି—ଦେ. ବି. (ସହଚର)—ଟେବଲ୍ ଓ ଚଉକି—Table and chair.
Meja chauki মেজ চৌকি
मेज कुरसी [ମେଜ କୁରୁସୀ (ଚେୟର୍)—ଅନ୍ୟରୂପ]

ମେଜେଣ୍ଡର—ବୈଦେ. ବି—(ଇଂ)—ମାଜେଣ୍ଟା (ଦେଖ)
Mejendara (ମେଜେଣ୍ଟା—ଅନ୍ୟରୂପ) Mājentā (See)

ମେଜପୋଷ୍—ବୈଦେ. ବି. [ଫା.]—ମେଜ ଉପରେ ବିଛା ଯିବା ଲୁଗା—Table cloth.
Meja posh মেজ পোশ मेजपोस

ମେଜର୍—ବୈଦେ. ବି.—(ଇଂ. ମାଜର)—୧ । ଇଂରାଜୀ ସୈନ୍ୟ ବାହିନୀର ଉପାଧି ବିଶେଷ—1. Major. ୨ । ବି. ଓ ବିଣ—ସାବାଳକ—2. Major.
Mejar মেজর मेजर

ମେଜର୍ ଗ୍ଲାସ—ବୈଦେ. ବି.—(ଇଂ. ମେଜର୍ ଗ୍ଲାସ୍)—ମାର୍କା ଥିବା ଯାହାରେ ମାପି ହେବ ଗିଲାସ—A measure-glass.
Mejar glāsa
মেজর গ্লাস मेजर गिलास

ମେଜର୍ମେଣ୍ଟ—ବୈଦେ. ବି.—(ଇଂ. ମେଜରମେଣ୍ଟ)—ମାପ କରିବା; ମାପ—Measurement.
Mejarment
মেজরমেন্ট मेजरमेण्ट

ମେଜ(ଜି,ଜେ)ଷ୍ଟର (ଇତ୍ୟାଦି)—ବୈଦେ. ବି. (ଇଂ ମାଜିଷ୍ଟ୍ରେଟ୍)—ମାଜିଷ୍ଟ୍ରେଟ୍ ଇତ୍ୟାଦି (ଦେଖ) Majishtret etc (See)
Meja(ji,je)shṭara(etc)
মাজিষ্ট্রেট मॅजिष्टर
(ମେଜି[ଜେ]ଷ୍ଟ୍ରେଟ୍—ଅନ୍ୟରୂପ)

ମେଜାଜ(ସ) ଇତ୍ୟାଦି—ବୈଦେ. ବି—(ଅ. ମିଜାଜ) ଇତ୍ୟାଦି (ଦେଖ)
Mejāj(sa)etc মেজাজ मिजाज Mijāj etc (See)

ମେଜାଜୀ—ଦେ. ବି—ମିଜାଜି (ଦେଖ)
Mejāji Mijāji (See)

ମେଜିଆ—ଦେ. ବି (ସ. ମଧ୍ୟ)—ଗୃହର ଭୂମିର ମଧ୍ୟସ୍ଥଳ; ଗୃହର ତଳଦେଶ; ଗୃହର ଭୂମିତଳ—The floor of a house.
Mejiā
মেজো, মেজিয়া गच
( ମେଜ୍ୟା—ଅନ୍ୟରୂପ )

ମେଜିକ୍—ବୈଦେ. ଵି (ଇଂ. ମାଜିକ୍)—ଭେଲ୍‌କିବାଜି—
Mejik ম্যাজিক্ मैजिक Magic.

ମେଜିକ୍ ଲଣ୍ଟ(ଣ୍ଠ)ନ(ଣ)—ବୈଦେ. ବି (ଇଂ. ମାଜିକ୍ + ଲଣ୍ଠନ୍)—ଯେଉଁ
Mejik lanta(ntha)na(na) ଲଣ୍ଠନଦ୍ୱାରା ଆଲୋକପ୍ରକ୍ଷେପଣଦ୍ୱାରା
ম্যাজিক লণ্টন্ ଚିତ୍ରମାନ ପର୍ଦା ଉପରେ ପକାଯାଇ ଲୋକଙ୍କୁ ମୁଗ୍ଧ
मैजिक लंटन କରାଯାଏ—Magic lantern.

ମେଜି(ଜେ,ଜୀ)ଷ୍ଟର—ବୈଦେ. ବି (ଇଂ. ମାଜିଷ୍ଟ୍ରେଟ୍)—ମାଜିଷ୍ଟ୍ରେଟ୍—
Meji(je,ji)shtara Magistrate.
ম্যাজিষ্টার मजिस्टर

ମେଜି (ଜେ, ଜା)ଷ୍ଟରୀ—ବୈଦେ. ବି (ଇଂ. ମାଜିଷ୍ଟ୍ରେସି)—
Meji(je, ja)shtari ୧ । ମାଜିଷ୍ଟ୍ରେଟଙ୍କ ପଦ—1. Magi-
(କଲିକତା—ହାକିମି) stracy. ୨ । କଚେରୀର ଫଉଜଦାରୀ
ম্যাজিষ্টারী ବିଭାଗ ବିଭାଗ—2. The criminal depart-
मजिस्टरी ment of a Magistrate's court.

ମେଜି(ଜା,ଜେ)ଷ୍ଟରୀ ସୁ(ସୋ)ପର୍ଦ୍ଦ—ବୈଦେ. ବି (ଇଂ. ମାଜିଷ୍ଟ୍ରେଟ୍ ଓ
Meji(ja, je)shtari su(so)pardda ଫା. ସୁପୁର୍ଦ୍)—
ম্যাজিষ্টারী সোপৰ্দ্দ ଅସାମୀଙ୍କୁ ବିଚାର ନିମନ୍ତେ ମାଜିଷ୍ଟ୍ରେଟଙ୍କ
मजिस्टरी सुपुर्द ନିକଟକୁ ପ୍ରେରଣ—The sending of an accused to a magistrate for trial, commitment to a criminal court for trial.

ମେଜେଣ୍ଡ(ଣ୍ଟ)ର—ବୈଦେ. ବି (ଇଂ. ମାଜେଣ୍ଟା)—ଅଲକାତରାରୁ
Mejenda(nt)ra ରସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ଏକପ୍ରକାର
[ ମେଜେଣ୍ଟା(ଣ୍ଡା)—ଅନ୍ୟରୂପ ] କୃତ୍ରିମ ରଙ୍ଗ—Majenta;
ম্যাজেণ্ডার मेजेन्डर fuschin; anelyne dye.

ମେଞ୍ଚ—ପ୍ରାଦେ. (ସିଂହଭୂମ) ବି. (ଭୂଲ. ବି. ମେଚ୍=ମାଛମଞ୍ଜି)—
Mencha ମାଛର ମଞ୍ଜି—Fish roe.

ମେଞ୍ଚଡ଼—ଦେ. ବି. ପୁଂ—ଶିଶୁ—Child; mannikin. ଦେ.
Menchara ବିଣ—୧ । ଅତି କ୍ଷୁଦ୍ର—1. Very small.
কাচ্ছাবাচ্ছা ୨ । ବାମନକାୟ—2. Dwarfish. ୩ । ଶିଶୁପରି—
मेचड 3. Childish.
[ମେଞ୍ଚ(ଞ୍ଚେ)ଡ଼ୀ—ସ୍ତ୍ରୀ] ছোট मेचड

ମେଞ୍ଚା—ଦେ. ବି (ସଂ. ପିଚ୍ ଧାତୁ=ପିଣ୍ଡିତ କରିବା)—୧ । କାଦୁଅ
Menchā ଅଥବା ପିଣ୍ଡ ବା ଗୁଳା—1. A ball of clay
মেচা (etc); lump. ( ଯଥା—ସେଣ୍ଟ୍ । ହାତ ଗୋଡ଼ ନାହିଁ
गोला ମାଛିଁଏ ମେଞ୍ଚା ) ୨ । ପୁଞ୍ଜୀକୃତ ବା ପିଣ୍ଡୀକୃତ ପଦାର୍ଥ—
2. Anything rolled into a ball or lump.
[ଦ୍ର—ଖାଦ୍ୟ ଦ୍ରବ୍ୟ ଯାହା ନ ଗୋଲା କରା ଯାଇପାରେ
ତାହା ଦ୍ୱାରା ମେଞ୍ଚା ହୁଏ ।] ୩ । ପିଣ୍ଡୀକୃତ ବହୁ ବସ୍ତୁ—
3. Many things rolled into the shape of a ball. [ଦ୍ର—ସାତ ପ୍ରହରାକ ମେଞ୍ଚାଟା ହୋଇଥିଲ,
ତହିଲେ ଅକାଶରେ ମହାତେଜ ଧର । କୃଷ୍ଣସିଂହ.
ମହାଭାରତ. ସ୍ୱର୍ଗ ।] ପ୍ରାଦେ. (ବାମଣ୍ଡା) ବି—ମିଷ୍ଟାନ୍ନ
ବିଶେଷ—A kind of sweetmeat.

ମେଞ୍ଚାଏ—ଦେ. ବିଣ (ଅଳ୍ପାର୍ଥବାଚୀ)—ପୁଳାଏ; ଗୁଳାଏ—A ball
Menchāe of; a lump of. ଦେ. ବି—ପୁଳାଏ ବା ବେଶି
একমেচা ପରିମାଣରେ ପ୍ରାପ୍ତ ଖାଦ୍ୟାଦି—A large ball of
पेकगोला food etc. [ଦ୍ର—ପାଇଲେ ପାଇବୁ ମେଞ୍ଚାଏ, ନଇଲେ
ପାଇବୁ ଢେଞ୍ଚାଏ । ଢଗ ।
ପୁରୁଷ ସାଙ୍ଗରେ କଳ କଳି, ମଞ୍ଜୁର ଛାଅଣରୁ ମେଞ୍ଚାଏ
ପାଆନ୍ତି, ଭୁଣ୍ଡ ପରସାଦୁଁ ନାଗ ଗଳି—ଢଗ । ]

ମେଞ୍ଚା ମେଞ୍ଚା—ଦେ. କ୍ରି. ବିଣ—୧ । ପୁଳାପୁଳା; ବହୁସଂଖ୍ୟ ପିଣ୍ଡୀକୃତ—
Menchā menchā 1. Rolled or clustered into
মেচা মেচা many balls or clots or lumps. ୨ । ବହୁ
गोला गोला ପରିମାଣରେ ବ୍ୟାପ୍ତ ହେବା ପ୍ରକାରରେ—2. Formed
into spreading masses. ୩ । ଝାଲ୍ ଝାଲ୍; ଢେଲା
ଢେଲା—3. In swarms. ( ଯଥା—ତୋ ମୁଣ୍ଡରେ
ଉକୁଣି ମେଞ୍ଚାମେଞ୍ଚା ହେଉଛନ୍ତି ।)

ମେଞ୍ଚା ହେବା—ଦେ. କ୍ରି—ଦଳ ହୋଇ ପିଣ୍ଡୀକୃତ ହେବା—To be
Menchā hebā rolled or pressed into a ball.
জমাট হওয়া (ଦ୍ର—ଦନ ସ୍ଥାନ ବସି ବଡ଼ ମୁଁ ମେଞ୍ଚା ହେଲିଣି ।
गोला होना

ମେଞ୍ଚି—ଦେ. ବି. (ସ. ମେଞ୍ଚାଠାରୁ ଶ୍ରେଷ୍ଠ; ଅଳ୍ପାର୍ଥକ)—କ୍ଷୁଦ୍ର ପିଣ୍ଡ—
Menchi A small lump or ball.
মেচি गोला

ମେଞ୍ଚିଏ—ଦେ. ବିଣ ଓ ବି· (ଅଳ୍ପାର୍ଥକ)—ମେଞ୍ଚାଏ ( ଦେଖ )
Menchie Menchāe ( See )
এক মেচা (ଦ୍ର—ଉପରେ ପଡ଼ିଅଛୁ ଘର, ଖାଗ ମେଞ୍ଚିଏ ତା ଉପର ।
एक गोला ରାମଦାସ. ଦାଢ୍ୟତାଭକ୍ତି ।)

ମେଞ୍ଚେଡ଼ୀ—ଦେ. ବିଣ. ସ୍ତ୍ରୀ—ବାମନକାୟା—Dwarfish (fimale)
Mencherdi ବି—ସ୍ତ୍ରୀ ଶିଶୁ—A female child.
ছোট मेचडी

ମେଞ୍ଜାର—ବୈଦେ. ଗ୍ରା. ବି. (ଇଂ. ମାନେଜର)—ମେନେଜର (ଦେଖ)
Menjara Menejara ( See )
[ମେଏ(ହେ)ଞ୍ଜର, ମେନାଜର—ଅନ୍ୟରୂପ ]

ମେଞ୍ଜାରି—ଗ୍ରା. ବି—ମେନେଜରି ( ଦେଖ )
Menjari Menejari ( See )
[ମେଏ(ହେ)ଞ୍ଜରି, ମେନାଜରି—ଅନ୍ୟରୂପ]

ମେଟ(ଟ, ଣ୍ଟ)—ବୈଦେ. ବି (ଇଂ. ମେଟ୍)—୧ । କୁଲି ବା ମୂଲିଆଙ୍କ ଦଳର
Met(ta, nta) ସରଦାର—1. A sirdar or headman
মেট্ मेट amongst a gang of labourers or coolies.
୨ । (ଭୂଲ. ସ. ମେଠ, ମେଣ୍ଠ) ହାତୀର ମାହୁନ୍ତଙ୍କୁ ସାହାଯ୍ୟ
କରିବା ପାଇଁ ନିଯୁକ୍ତ ଭୃତ୍ୟ—2. A mate; a menial
servant whose duty is to help the elephant driver.

ମେଟ୍ (ଧାତୁ)—ସ—୧ । ପ୍ରମତ୍ତ ହେବା—1. To be maddened
Met (root) ୨ । ପାଗଳ ହେବା—2. To be mad.

ମେଟ୍ ମାଟ୍—ଦେ. ବ—ମିଟ୍‌ମାଟ୍ ( ଦେଖ )
Meṭ māṭ Miṭ māṭ ( See )
মিট মাট্ मिटमाट

ମେଟା(ଟେ)ଇବା—ଦେ. କ୍ରି—ମିଟାଇବା ( ଦେଖ )
Meṭā(ṭe)ibā Miṭāibā ( See )
মেটান मिटाना, मेटना

ମେଟିବା—ଦେ. କ୍ରି—ମିଟିବା ( ଦେଖ )
Meṭibā Miṭibā ( See)
মিটা मिटना

ମେଟ୍ଟା—ପ୍ରାଦେ. (ଗଞ୍ଜାମ) ବ—ଛୋଟ ପାହାଡ଼; ମୁଣ୍ଡିଆ—
Meṭṭā Hillock.

ମେଠ(ଣ୍ଠ, ଣ୍ଠ, ଣ୍ଡ)—ସ. ବ—୧ । ହସ୍ତିପକ; ମାହୁନ୍ତ—1. The
Meṭha(ṇṭa, ṇṭha, ṇḍa) driver of an elephant.
୨ । ମେଷ; ମେଣ୍ଢା—2. Ram; sheep.

ମେଡ୍ (ଧାତୁ)—ସ—୧ । ଉନ୍ମତ୍ତ ହେବା—1.To be maddened.
Merd (root) ୨ । ବାତୁଳ ହେବା—2. To be mad.

ମେଡଲ୍—ବୈଦେ. ବଣ. (ଇଂ. ମିଡଲ୍ )—ମିଡ଼ଲ୍ ( ଦେଖ )
Meḍal Miḍal ( See )
মিডল (ଦ୍ର—ମେଡଲ୍ ପରୀକ୍ଷା ସମ୍ପୂର୍ଣ୍ଣରେ ଯେଉଁ ପ୍ରବନ୍ଧ ଲେଖି-
मिडल ଥିଲ୍ଲ । ଗୁଧାନାଥ. ବବେଙ୍କା ।) ବୈଦେ. ବ—ମିଡାଲ୍
(ଦେଖ)—Miḍāl ( See )

ମେଡ଼ା—ପ୍ରାଦେ. (ଗଞ୍ଜାମ) ବଣ—ମେଡୁଆର ( ଦେଖ )
Merḍā Meḍuāra (See) ବ° ପୁ° (ସମ୍ବଲପୁର)-ମେଣ୍ଢା
(ମେଡ଼ୀ—ସ୍ତ୍ରୀ) Sheep; ram.

ମେଡା(ଡେ)ଲ୍—ବୈଦେ. ବ. (ଇଂ. ମେଡାଲ୍)—ପାରିତୋଷିକ ରୂପେ
Meḍā(ḍe)l ପ୍ରଦତ୍ତ ମୁଦ୍ରାଙ୍କିତ ଧାତୁଖଣ୍ଡ; ପଦକ; ତକମା—
মেডাল मेडाल, तकमा Medal.

ମେଡା(ଡେ)ଲିଷ୍ଟ—ବୈଦେ. ବ. ( ଇଂ. ମେଡାଲିଷ୍ଟ )—ପାରଦର୍ଶିତା
Meḍā(ḍe)lishṭ ଯୋଗୁଁ ଯେ ପଦକ ପୁରସ୍କାର ପାଇଥାଏ—
মেডালিষ্ট্ मडालिष्ट Medalist.

ମେଡ଼ିଆ—ପ୍ରାଦେ. (ମେଦିନୀପୁର) ବ—ଚାଡ଼ିଆ; ଗୋରୁ ମୋହିଁବାରେ
Merḍiā ବ୍ୟବହୃତ ଛୋଟ ମାଟି କୁଣ୍ଡ—Earthen jar
or tub used in feeding bullocks.

ମେଡିକ(କା, କେ)ଲ୍—ବୈଦେ. ବଣ. ( ଇଂ. ମେଡିକାଲ୍ )—ଚିକିତ୍ସା
Meḍika(kā, ke)l ସମ୍ବନ୍ଧୀୟ—Medical.
মেডিকাল मेडिकल

ମେଡିକ(କା, କେ)ଲ୍ ଇସ୍କୁଲ—ବୈଦେ. ବ. (ଇଂ. ମେଡିକାଲ୍ ସ୍କୁଲ୍)-
Meḍika(kā, ke)l iskula ଆଧୁନିକ ଚିକିତ୍ସା ବିଜ୍ଞାନ ଶିକ୍ଷାର
মেডিকাল স্কুল ନିମ୍ନ ବିଦ୍ୟାଳୟ—Medical school.
मेडिकाल स्कुल [ମେଡିକ(କା, କେ)ଲ୍ ସ୍କୁଲ—ଅନ୍ୟରୂପ]

ମେଡିକ(କା, କେ)ଲ୍ କ(କା)ଲେଜ୍—ବୈଦେ. ବ. (ଇଂ. ମେଡିକାଲ୍
Meḍika(kā, ke)l ka(kā)lej କଲେଜ୍ )—ଆଧୁନିକ
মেডিকাল কালেজ ଚିକିତ୍ସା ବିଜ୍ଞାନ ଶିକ୍ଷାର ଉଚ୍ଚ ବିଦ୍ୟାଳୟ ବା
मेडिकाल कलेज अନୁଷ୍ଠାନ—Medical College.

ମେଡ଼ିବା—ପ୍ରାଦେ. (ଗଞ୍ଜାମ) କ୍ର. ( ପ୍ରା.ମେଡ୍ ଧାତୁ )—୧ । ବାକ୍ୟ ବା
Merḍibā ଅଙ୍ଗୀକାର ଲଙ୍ଘିବା—1.To break one's word.
लाँघना ୨ । ଆଦେଶ ବା ଅନୁରୋଧ ଲଙ୍ଘିବା—2. To disobey one's order or request. ୩ । ଲୋପ
କରିବା—3. To annihilate. ୪। ସମ୍ମାନ ନ କରିବା;
ନ ମାନିବା—4. To slight; to disregard.

ମେଡ଼(ଡ଼ୁ)ଆର—ଦେ. ବଣ. (ପ୍ରା. ମେଡ୍ ଧାତୁ )—୧ । ଅମାନିଆ—
Meḍu(rḍu)āra 1. Disobedient. ୨ । ଅବାଧ୍ୟ—
ढेठा 2. Insubordinate.

ମେଡ୍ରାସ—ପ୍ରାଦେ. (ଗଞ୍ଜାମ) ବ—ମାଡ୍ରାସ; ମାନ୍ଦ୍ରାଜ—
Medrās Madras.

ମେଢ଼—ଦେ. ବ. ( ସ. ମଣ୍ଡପ )—୧ । ବାଉଁଶ, କାଠ ବା କୁଟା
Merḍha ଆଦିରେ ରଚିତ ଠାକୁରପ୍ରତିମାଙ୍କର ଥାଟ—
মেড্ 1. The framework behind an image
मेड made of bamboo, wood or straw etc.
(ମେଢେଡ଼—ଅନ୍ୟରୂପ) ୨ । ଦେବତାମାନଙ୍କର ସିଂହାସନ ରୂପେ
ବ୍ୟବହୃତ କାଠର ବା ମାଟିର ଅର୍ଦ୍ଧଚନ୍ଦ୍ରାକାର ଆସନ—
2. Semi-circular platform of wood or earth
used as a seat for an idol. ୩। ସୀମା ନିର୍ଦ୍ଦେଶକ
ରେଖା—3. Boundary line. ୪ । ନଅର; ରାଜ-
ପ୍ରାସାଦ—4. Raja's palace. ୫ । ଅଟ୍ଟାଳିକା—
5. Palatial building.
୬ । ଅଟ୍ଟାଳିକାନ୍ତର୍ଗତ ଆସନ—6. A seat in a
palace or tower. [ ଦ୍ର—ଯେବେ ସ୍ୱପ୍ନ, ଦେଖିଲି
ମେଢ଼େ ଅଛି ଶୋଇ ପିତୁଳା ସେ ଅବଳା କୋଳ୍ହ—ଭଞ୍ଜ.
କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୭ । ଅନ୍ତଃପୁର ମଧ୍ୟସ୍ଥିତ
ସୁସଜ୍ଜିତ ପ୍ରକୋଷ୍ଠ—7. A decorated chamber
in the harem; lady's boudoir. [ଦ୍ର—ଅନ୍ତଃପୁରେ
ଉଷାର ମେଢ଼ରେ କଲ୍ଲ ନେଇ—ଶିଶୁଶଙ୍କର. ଉଷାଭିଳାଷ ।]
୮ । କ୍ଷେତ୍ରର ଚାରିପାଖେ ବନ୍ଧାଯିବା ଉଚ୍ଚ ହିଡ଼—
8. A high ridge raised round a field or
plot. ପ୍ରାଦେ. ( ଯାଜପୁର )—ବାଳ କଟାଇବାର
ପ୍ରଣାଳୀ—A fashion of cutting or cropping
the hair.

ମେଢ଼ବନ୍ଧ—ଦେ. ବ—୧ । କ୍ଷେତ୍ରମାନଙ୍କ ମଧ୍ୟରେ ସୀମାରେଖାମାନ
Merḍhabandi ଟାଣିବା—1. Drawing of boundary
মেড়বন্দী मेडबन्दी lines between fields. ୨ । କ୍ଷେତ୍ରର
ଚାରିପାଖେ ଉଚ୍ଚ ହିଡ଼ ଦେବା—2. Raising of high
ridges round a field.

ମେଢ଼ା—ପ୍ରାଦେ. ( ଗଡ଼ଜାତ ) ବ—୧ । ଖୋବା—1. Long
Merḍhā pegs along which split bamboos are
woven to form a fence; upright stakes
between which bamboo strips are woven
to form a fence. [ ଦ୍ର—ମେଢ଼ମାନଙ୍କୁ ଖଣ୍ଡିବୁର

ଛଡ଼ାରେ ଭୂଇଁରେ ପୋଛ ଏଥିରେ ବାଡ଼ର ବତାମାନଙ୍କୁ ଛନ୍ଦି ବାଡ଼ ଛାଆର କରନ୍ତି ।] ୨। କାଠର ଲମ୍ବ ସରୁ ଖୁଣ୍ଟି, ଯାହାକ ଖମ୍ବଗୁଡ଼ିଆ ଉପରେ ଅଡ଼ଧାରଣା ପଡ଼େ—2. Long slender poles put across the roof of a Chhāmuṇḍiā

ମେଢ଼ିଆ—ପ୍ରାଦେ. (ଗଡ଼ଜାତ) ବିଣ—୧ । ମଢ଼ିଆ; ଶୀର୍ଣ୍ଣକାୟ—
Merḍhiā 1. Of reduced physique; lean. ୨। ମେଢ଼ିଖୁଣ୍ଟ ନିକଟରେ ଲଗି ବୁଲୁଥିବା (ବଳଦ)—2. (a bullock) Yoked just near the central post of the paddy-threshing yard at the beginning of the tether.

ମେଢ଼ୀ—ଦେ ବି—୧ । ମେଢ଼ୀଖମ୍ବ ( ଦେଖ )
Merḍhī 1. Merḍhīkhamba ( See ) ୨ । ଦୁଷ୍ଟା ( ସ୍ତ୍ରୀ )—2. Wicked (woman).

ମେଢ଼ୀ ଖ(ଖୁ)ମ୍ବ—ଦେ ବି(ସ. ମେଧି+ସ୍ତମ୍ଭ)—୧। ମେଢ଼; ଖଳା ମଝିରେ
Merḍhī kha(khu)mba ପୋତାଥିବା କାଠର ଖମ୍ବ; ଯେଉଁ
ମେଇ, ମେଇକାଠ, ମେଇଖୁଣ୍ଟି ଖୁଣ୍ଟର ଚାରିପାଖରେ ବାଉଁଶରେ ଯୋଖି
मेढ़खंभ ହୋଇଥିବା ବଳଦମାନେ ଘାଉଁରି ଖାଇ
(ମେଢ଼ୀଖୁଣ୍ଟ[ଖୁଣ୍ଟି]—ଅନ୍ୟରୂପ) ବୁଲନ୍ତି—1. A post or stake driven in the centre of a threshing floor round which the bullocks spin while treading the sheaves of corn. ୨ । ବଡ଼ କାଠକୁ ବା ପଥରକୁ ଭୂମିରେ ସହଜରେ ଗଡ଼ାଇନେବା ପାଇଁ ତା ତଳେ ଦିଆଯିବା ପଥରର ବା କାଠର ଠେକ—2. Logs of wood or stone used as fulcrum while rolling heavy timbers or stones. ୩। ଦଳର ପ୍ରଧାନ ବ୍ୟକ୍ତି; ଦଳପତି—3. The head or central person amongst a group; headman ୪ । ନେତା—4. Leader. ଦେ. ବିଣ—୧। ପ୍ରଧାନ ( ବ୍ୟକ୍ତି )—1. Chief.

ମେଢ଼େଇବା—ଦେ. କ୍ରି—ଜଣକର ଦୋଷକୁ ବା ଦେୟକୁ ଅନ୍ୟ
Merḍheibā ଉପରେ ଲଦିବା—To shift some one's fault
অন্যের ঘাড়ে চাপান मढ़ना or liability to another's shoulder.

ମେଢ୍ର—ସ. ବି ( ମିହ୍ ଧାତୁ=ସେଚନ କରିବା+କର୍ତ୍ତୃ. ତ୍ର )—
Meḍhra ୧ । ପୁରୁଷାଙ୍ଗ; ପୁରୁଷୋପସ୍ଥ; ଲିଙ୍ଗ—1. Penis; the male organ of generation. ୨ । ମେଣ୍ଢା—2. Sheep; ram.

ମେଢ୍ରତ୍ୱକ୍—ସ. ବି—ପୁରୁଷାଙ୍ଗର ବା ଲିଙ୍ଗର ଅଗ୍ରତ୍ୱକ୍—The
Meḍhratwak foreskin of the penis; the prepuse.

ମେଢ୍ର ରୋଗ—ସ. ବି—ଉପଦଂଶ ବା ଗରମୀ ରୋଗ—
Meḍhra roga Venereal disease; syphilis.

ମେଢ୍ରଶୃଙ୍ଗୀ—ସ. ବି—ମେଷ ଶୃଙ୍ଗୀ ( ଦେଖ )
Merḍhra śrungī Mesha śrungī ( See )

ମେଣ୍ଟ—ସ.ବି(ମିନ୍ଦ୍ ଧାତୁ=ପ୍ରମାଦ ତ୍ୟାଗ କରିବା+କର୍ତ୍ତୃ ଅ); ନିପାତନ
Menṭa —୧ । ମେଷ, ମେଣ୍ଢା—1. Ram; sheep. ୨ ।
দল, মেল ହସ୍ତିପକ; ମାହୁନ୍ତ—2 Elephant driver.
मेट, दल ଦେ. ବି ( ସ. ମିଲ୍ ଧାତୁ; ତୁଳ. ଇଂ. ମୀଟ୍ [meet]) —୧ । ଘଣ୍ଟ; ଦଳ—1. Flock. ୨ । ମେଳ—2. Collection; mutiny; conspiracy. ୩ । ମେଟ୍ ( ଦେଖ )—3. Met (See). ୪ । ଜାହାଜର ଚଣ୍ଡେଲର ନିମ୍ନସ୍ଥ ଖଲାସୀ—4. Mate of a ship. [ଦ୍ର—ତାଙ୍କ ପଛରେ ମାଝି ଖଲାସୀ ଚଣ୍ଡେଲ ମେଣ୍ଟ ଜାହାଜର ଚାକର ଷୋଳ ଜଣ ହେଲେ। ହେଲ ବାହାକୁ ବାହା ଛନ୍ଦା—ଫକୀରମୋହନ. ଗଳ୍ପସ୍ୱଳ୍ପ । ] ପ୍ରାଦେ. (ଗଡ଼ଜାତ) ବି—ରଜାଙ୍କ ଆଦେଶକୁ ମେଣ୍ଟିବା ବା ଅମାନ୍ୟ କରିବା ମେଳଥ କନ୍ଧମାନଙ୍କ ପରାମର୍ଶ ବା ମିଳନ ସ୍ଥାନ—A rendezvous of revolting Kandhas. [ ଦ୍ର—ଏଠାରେ ବିଦ୍ରୋହୀମାନେ ମିଳିତ ହୋଇ ମଦ ଖାଆନ୍ତି ଓ ହଲ୍ଲା କରନ୍ତି ଏବଂ ରାଜପୁରୁଷମାନେ ଏମାନଙ୍କ ହାତୁଡ଼ରେ ପଡ଼ିଲେ ତାଙ୍କୁ ବାନ୍ଧି ରଖନ୍ତି ଓ ନାନାପ୍ରକାର ଅତ୍ୟାଚାର କରନ୍ତି । ]

ମେଣ୍ଟକ—ସ. ବି ( ମେଣ୍ଟ+ସ୍ୱାର୍ଥେ. କ )—ମେଷ; ମେଣ୍ଢା—
Menṭaka Ram; sheep.

ମେଣ୍ଟଣ(ନ)—ଦେ. ବି ( ସ. ମିଲ୍ ଧାତୁ; ପ୍ରାକୃତ ମିଣ୍ଟ ଧାତୁ )—
Menṭaṇa(na) ୧ । ମେଣ୍ଟାଇବ; ମିଣ୍ଟାଇବା—1. Over-
মেটা; মিটা coming. ୨ । ଏଡ଼ିବା; ଲଂଘନ—2.
मेटन Infringement; disobeying ୩ । କ୍ଷମିବା—3. Pardoning. ୪ । ଖଣ୍ଡନ; ନିରାକରଣ—4. Refutation; rebutting. ୫ । ଦୁଃଖର ମୋଚନ—5. Liberation from trouble. ୬ । ବିବାଦର ନିଷ୍ପତ୍ତି—6. The settlement of a dispute. ୭ । ନିବୃତ୍ତି—7. Cessation.

ମେଣ୍ଟ ବାନ୍ଧିବା—ଦେ. କ୍ରି—୧ । ଦଳ ବାନ୍ଧିବା; ଦଳବଦ୍ଧ ହେବା—
Menṭa bāndhibā 1. To form into a group.
মেলবাঁধা ୨ । ଅନେକ ଲୋକ ମିଶି ଷଡ଼ଯନ୍ତ୍ର କରିବା—
मेट बाँधना 2. To conspire together.
(ମେଣ୍ଟ କରିବା—ଅନ୍ୟରୂପ)

ମେଣ୍ଟ ଭାଙ୍ଗିବା—ଦେ. କ୍ରି—ମେଳ ଭାଙ୍ଗିବା—
Menṭa bhāngibā To break up a conspiracy.
মেল ভাংগা मट तोड़ना

ମେଣ୍ଟରୁ ଖସିବା—ଦେ. କ୍ରି—ଦଳରୁ ଅନ୍ତର ହେବା—To slip or
Menṭaru khasibā get away from a company.
(ମେଣ୍ଟ ଛାଡ଼ିବା—ଅନ୍ୟରୂପ) দলথেকে খসে যাওয়া
मेटसे खिसकना

ମେଣ୍ଟା—ପ୍ରାଦେ. ବି—୧ । ( କେନ୍ଦୁଝରା ). ଖୁଣ୍ଟ—1. Post.
Menṭā ୨ । ( ଅଳ ) କନ୍ଦୁର ଅଢ଼ଶିଳାକୁ ମୁଣ୍ଡାଇବା ଖୁଣ୍ଟଦ୍ୱୟ—2. The two posts which support the

horizontal cross-beam of a water-lifting contrivance.

ମେଣ୍ଟା(ଣ୍ଟି)—ଦେ. ବି ( ସଂ. ମିଲ୍ ଧାତୁ; ପ୍ରା. ମିଣ୍ଟ୍ ଧାତୁ; ତୁଳ. ଇଂ. Menṭā(nṭi) ମାଟ୍, mat)—୧ । ଶିଷା ଥିବା ଏକତ୍ରୀକୃତ ଧାନ ଝାରା କେଣ୍ଡାମାନଙ୍କର ବେଣିବନ୍ଧା ଗୁଚ୍ଛ—1. Ears of झाड; झोंटी paddy woven or braided into a bunch ( for ornamental purposes ) [ ଉ—ଫୁଲ୍ଲ ରଙ୍ଗ ଶତଦଳ ଶୋଭେ ଦଶ ଦରେ ଦଶେଡରେ ଧାନ ମେଣ୍ଟି । ରାଧାନାଥ. ମହାଯାତ୍ରା ।] ୨ । ଧୂଆଁପତ୍ରର ଡାଣ୍ଡମାନଙ୍କ ମଧ୍ୟରେ ଗୋଟିଏ ସୂତା ବା କଅଁଳ ଗଳାଇ ତିଆରିକା ପତଳା ଗୋଛ—2 A number of tobacco stems strung through and made into a mat; matted tobacco leaves.

ମେଣ୍ଟା(ଣ୍ଟେ)ଇବା—ଦେ. କ୍ରି ( ସଂ. ମିଲ୍ ଧାତୁ; ପ୍ରା. ମଣ୍ଟ୍ ଧାତୁ; Menṭā(nṭe)ibā ମେଣ୍ଟିବା କ୍ରିୟାର ପ୍ରଯୋଜକ ରୂପ; ତୁଳ. মেটান ସଂ. ମୃଷ୍ଟ=ମାର୍ଜିତ )—୧ । ( ବାସନା ) ନିବୃତ୍ତ मेटना; मिटाना କରାଇବା—1. To satiate. [ ଉ—ମେଣ୍ଟାଇବାକୁ ଉପଭୋଗ ଲାଳସା । ରାଧାନାଥ. ତୁଳସୀ· ସ୍ତବକ ।] ୨ । ( ବିବାଦ ) ନିଷ୍ପତ୍ତି ବା ମୀମାଂସା କରାଇବା--2.To bring about the settlement (of a dispute). ୩ । ( ଆଦେଶ ) ଲଙ୍ଘନ କରିବା—3. To infringe. ୪ । ( ଦୋଷ ) ଖଣ୍ଡନ କରିବା; ନିରାକରଣ କରିବା—4. To refute. [ ଉ—ମାମୁଁ ମାଇଦୋଷ ମେଣ୍ଟାଇ ପାରନ୍ତି, ମାଇଙ୍କ ଗଳା ଧରି କାନ୍ଦ । ପ୍ରାଚୀ. ଲିଙ୍ଗସ୍ୟମଞ୍ଜରୀ ।] ୫ । ( ଅପରାଧ ) କ୍ଷମା କରିବା —5. To pardon. ୬ । (ଶ୍ରାନ୍ତି) ଅପନୋଦନ କରିବା —6.To alleviate. [ ଉ—ବିଶ୍ରାମେ ମେଣ୍ଟାଇ ଶ୍ରମ ଚଳୁଥଲେ । ରାଧାନାଥ. ନନ୍ଦିକେଶ୍ୱରୀ ।] ୭ । ( ଗୁଜୁରାଣ ) ନିର୍ବାହ କରିବା; ଚଳାଇ ନେବା—7. To get through; to accomplish; to eke out. ୮ । ( ଦୁଃଖ ) ଦୂର କରିବା—8. To drive away (misery) [ଉ—ଅକ୍ଷମ ସମ୍ପଦ ଦୁଃଖ ମେଣ୍ଟାଇବା ପାଇଁ । ରାଧାନାଥ. ମହାଯାତ୍ରା ।] ୯ । ( ସନ୍ଦେହ ) ଖଣ୍ଡାଇବା—9. To remove ( doubt ) ୧୦ । (ଖରା ବର୍ଷା) ଅତିକ୍ରମ କରିବା; କଟାଇବା—10.To pass (a time of rain or sunshine). ୧୧ । (ବାଣ ବା ଶର ) ଏଡ଼ିବା—11. To evade (a weapon or arrow).

ମେଣ୍ଟା ମେଣ୍ଟି—ଦେ. ବି—୧ । ମିଟ୍ ମାଟ୍ ( ଦେଖ )—1. Mit Menṭā menṭi māṭ ( See ) ୨ । ଉଲ୍ଲଙ୍ଘନ—मिटा मिटि 2. Evading; getting over. ୩। କାର୍ଯ୍ୟନିର୍ବାହ—मेटा मिटी 3. Accomplishment.

ମେଣ୍ଟି ପାରିବା—ଦେ. କ୍ରି—ଲଙ୍ଘନ କରିବା—To disobey. [ ଉ—ତୁମ୍ଭ ଆଜ୍ଞା କରୁଁତେ ପାରିବ ମୁଁ ମେଣ୍ଟି । Menṭi pāribā ନଂଘନ କରা मेट सकना କୃଷ୍ଣସିଂହ. ମହାଭାରତ. ଅଦି ।]

ମେଣ୍ଟିବା—ଦେ. କ୍ରି—୧ । ମିଟିବା( ଦେଖ )—1. Mitiba (See) Menṭibā [ ଉ—ମେଣ୍ଟିବାର ନୁହଇ ମୋ ପ୍ରାଣ ଆଶା । মিটা ନନ୍ଦକିଶୋର. କନ୍ଦର୍ପଶ୍ରୀ ।] ୨ । ମୀମାଂସିତ ହେବା—मेटना 2. To be settled. ୩ । ଦୂର ହେବା—3. To be off; to be removed. ୪। ଦୂର କରିବା-4. To remove; to drive away. [ଉ—ଶାଶ୍ରୁ ଶଶୁରଙ୍କର ଭୟକୁ ମେଣ୍ଟିଲ୍ଲା । କୃଷ୍ଣସିଂହ. ମହାଭାରତ. ସଭା] ୫ । ଲଙ୍ଘିବା—5.To disobey; to disregard. [ ଉ—ପକ୍ଷୀ ପକ୍ଷିଣୀ ଏକ ସଙ୍ଗେ ନୋହିବ, ନ କରିବୁ ଭୁ ଭ୍ରମଣରେ; ଏହା ମେଣ୍ଟି ଯେବେ ଭ୍ରମଣ କରିବୁ, ଅବଶ୍ୟ ତୋର ମରଣ ରେ । ଲକ୍ଷ୍ମଣନାଥ. ଛାନ୍ଦ-ସମାଯୁଣ । ]

ମେଣ୍ଠ - ସଂ. ବି ( ମିଢ୍ ଧାତୁ=ପ୍ରସ୍ରାବ ତ୍ୟାଗ କରିବା+କର୍ତ୍ତୃ. ଅ; Menṭha ନିପାତନ )—ମେଣ୍ଢା—Sheep.

ମେଣ୍ଡ(ଣ୍ଡ)ରା—ପ୍ରାଦେ. ( ସମ୍ବଲପୁର ) ବି—ଲୁହାଅ; ଶଗଡ଼ଚକର Mend (ndh)rā ନାଭିକେନ୍ଦ୍ର ବା ଛିଦ୍ରରେ ଲଗିଥିବା ଲୁହାର (ମେଣ୍ଢ୍ରା[ଣ୍ଡ୍ରା]—ଅନ୍ୟରୂପ) ବଳୟ--Iron ring put round the hole in the nave of a wheel. [ ବ୍ୟ—ଏହି ମେଣ୍ଡ୍ରା ଯୋଗୁଁ ଶଗଡ଼ ଚକର ମଧ୍ୟସ୍ଥଳରେ ଥିବା ଛିଦ୍ରକୁ ଅଖ ଘଷି କରିପାରେ ନାହିଁ । ]

ମେଣ୍ଡ(ଣ୍ଢ)—ଦେ. ବିଣ ( ସଂ. ମୂଢ଼ )—ନିର୍ବୋଧ; ଉଜ୍ଜୁ—Menda(ndha) উজ্বু Foolish. उल्लु; मूढ बି—୧ । ତନ୍ତୀଙ୍କର ବଂଶୋପାଧି—1. A family-title of weavers. [ ଉ—ଅଲେଇ ମେଣ୍ଡ, ନଈ କୂଳଥାଏ ତୋହର ଖଣ୍ଡ—ଢଗ ।] ୨ । ( ସଂ. মাথানী ମୁଣ୍ଡ) ପାଚେରିର ମୁଣ୍ଡ ଉପରେ ଦିଆଯିବା ଚଉଡ଼ା ସ୍ତର—मेंढ 2. The top layers put or a parapet or মেল wall. ୩ । ( ସଂ. ମେଳ ) ସଂଘର୍ଷଣ; ଭେଟ; मूठभेड सम्मुख ମିଳନ—3. Collision; meeting; encounter. [ ଉ—ଦୁଇ ଦଳଙ୍କର ମେଣ୍ଡ ପଡ଼ିଲା, ଅତି ପ୍ରବଳ ଲଢ଼ାଇ ହୋଇଲା—ବ୍ରଜନାଥ. ସମର-ତରଙ୍ଗ । ]

ମେଣ୍ଡକା—ପ୍ରାଦେ. ( ବସ୍ତର ) ବି. ( ସଂ. ମଣ୍ଡୂକ; ତୁଳ. ହି. ମେଢ଼କ ) Mendakā —ବେଙ୍ଗ—Frog.

ମେଣ୍ଡକା ଫୁଲା—ପ୍ରାଦେ. (ବସ୍ତର) ବି—୧ । ବେଙ୍ଗି ବଥ—1. Boils Mendakā phulā coming out of the neck or heads of children. ୨ । ବେଙ୍ଗଫୁଲ—2. Tadpole.

ମେଣ୍ଡା—ପ୍ରାଦେ. (ବସ୍ତର) ବିଣ—ମେଣ୍ଟା; ଜମାଟ ବନ୍ଧା ଗୁଳା—Mendā Clot, ball; lump. (ଉ—କୁଣ୍ଡା ଗୁଡ଼ାକ ମେଣ୍ଡା ବାନ୍ଧି ଗଲାଣି ।)

ମେଣ୍ଡା ମେଣ୍ଡା—ପ୍ରାଦେ. (ବାଲେଶ୍ୱର) ବିଣ—ମେଞ୍ଚା ମେଞ୍ଚା ( ଦେଖ ) Mendā mendā Menchā menchā ( See )

ମେଣ୍ଡି—ପ୍ରାଦେ ( ସିଂହଭୂମି ) ବି—ମେଁଣ୍ଢି ( ଦେଖ )
Meṇḍi Meṇḍhi ( See )

ମେଣ୍ଡିଆ—ପ୍ରାଦେ ( ବାଲେଶ୍ୱର ଓ ଯାଜପୁର ) ବି—ଆଖିର ଲେଞ୍ଜରା—
Moṇḍiā The rheum of the eyes

ମେଣ୍ଢା—ଦେ. ବି (ସଂ. ମେଢ୍ର, ମେଣ୍ଠ, ମେଠ, ମେଣ୍ଡ, ଭେଡ୍ର)—
Meṇḍhā ୧ । ଗାଡ଼ର; ମେଷ, ଭେଡ଼ା—1. A sheep;
ଭେଡା, মেড়া ovis. [ ଦ୍ର—ଊର୍ଣ୍ଣା ଓ ମାଂସ ନିମନ୍ତେ ଏମାନେ
मेंढा, मेड ପାଳିତ ହୁଅନ୍ତି । ଏମାନେ ଦେଶଭେଦରେ ନାନାପ୍ରକାରର
(ମେଣ୍ଢୀ—ସ୍ତ୍ରୀ) ଓ ନାନାବର୍ଣ୍ଣର ଦେଖାଯାନ୍ତି । ] ୨ । ( ଲକ୍ଷଣାର୍ଥ )
ମେଷପରି ନିର୍ବୋଧ ବ୍ୟକ୍ତି—2. ( figurative ) A simpleton; stupid person. (ଉ—ମେଣ୍ଢା ହୋଇଯାଅ ଭେଣ୍ଡାବ ଦେଖି ବ୍ୟାଖ୍ୟାଗୁଡ଼ିକ । ମଧୁସୂଦନ, ଛନ୍ଦମାଳା । )

ମେଣ୍ଢା(ଣ୍ଢେ)ଇବା - ଦେ. କ୍ରି—୧ । ମେଣ୍ଢାଙ୍କୁ ନେଇ ବାଘମୁହଁରେ ଛାଡ଼ିଲା ପରି ବିପଦଜନକ ସ୍ଥାନରେ କୌଣସି ବ୍ୟକ୍ତିଙ୍କୁ ନେଇ
Meṇḍhā(ṇḍhe)ibā କରି ଦେଲାପରି କୌଣସି ବ୍ୟକ୍ତିଙ୍କୁ ନେଇ
(ମେଣ୍ଢିଅଇବା—ଅନ୍ୟରୂପ) କୌଣସି କାର୍ଯ୍ୟକ୍ଷେତ୍ରରେ ବା
ঠেলা ବିପଜ୍ଜନକ ସ୍ଥାନରେ ହଠାତ୍ ଠିଆ କରାଇ ଦେବା—1. To
मढना present a person or to push a person to a post of danger. ୨। ଦୁଇଟି ମେଣ୍ଢାଙ୍କୁ ଲଢ଼ାଇ କରିବା ପାଇଁ ପରସ୍ପରର ସମ୍ମୁଖରେ ଲୁହାଇ ଦେବା—2. To confront two rams with a view to make them fight. ୩ । ଦୁଇଜଣଙ୍କୁ ଭେଟାଇବା—3. To cause two persons to meet. ପ୍ରାଦେ—୧ । (ବାମଣ୍ଡା) ପାଖରେ ପହଞ୍ଚାଇ ଦେବା—1. To reach a thing at a place. ୨ । (ବାମଣ୍ଡା) ଅନ୍ୟର ଅନିଚ୍ଛାସତ୍ତ୍ୱେ ଜୋର୍ ଜବରଦସ୍ତି କରି ତାହାର ମୁଣ୍ଡରେ କୌଣସି କାର୍ଯ୍ୟ ଲଦାଇ ଦେବା—2. To force a work upon another against one's wish.

ମେଣ୍ଢା କୁଡ଼ି(ରି)ଆ—ଦେ. ବି ( ସଂ. ମେଢ୍ର+କୁଟୀର )—ମେଷଶାଳା;
Meṇḍhā kurḍi(ri)ā ମେଷ ରହିବାର କ୍ଷୁଦ୍ର ଗୃହ—Hut
ভেড়াগোয়াল for herding sheep [ ଦ୍ର—ହାତୀଶାଳ ଭାଙ୍ଗି
मेंडाकीम्पडी ଗଲେ କି ମେଣ୍ଢାକୁଡ଼ିଆକୁ ଯୋଗ୍ୟ ନୁହେଁ ?—ପ୍ରବଚନ । ହାତୀ ନିମନ୍ତେ ଖୁବ୍ ବଡ଼ ଘର ଦରକାର, କିନ୍ତୁ ମେଣ୍ଢା ରହିବାପାଇଁ ଅତି କ୍ଷୁଦ୍ର ଗୃହ ଯଥେଷ୍ଟ ହୁଏ । ହାତୀଶାଳ ଭାଙ୍ଗିଗଲେ ତାହା ମଧ୍ୟରେ ହାତୀ ଆଉ ରହି ପାରିବ ନାହିଁ କିନ୍ତୁ ଉକ୍ତ ଭଙ୍ଗା ହାତୀଶାଳରେ ମେଣ୍ଢାମାନେ ଅନାୟାସରେ ରହି ପାରିବେ । ବଡ଼ଲୋକ ଦରିଦ୍ର ହୋଇଗଲେ ମଧ୍ୟ ସେ ଦରିଦ୍ର ବ୍ୟକ୍ତିର ଅଭାବ ପୂରଣ କରିବାକୁ ଅସମର୍ଥ ହୁଏ ନାହିଁ । ଏହି ଅର୍ଥରେ ଏ ପ୍ରବଚନ ବ୍ୟବହୃତ ହୁଏ । ]

ମେଣ୍ଢାକୁଡ଼ିଆ ପୋଡ଼ି—ଦେ. ବି—ଦୋଳପୂର୍ଣ୍ଣିମା ପୂର୍ବରାତ୍ରିରେ ଗ୍ରାମ
Meṇḍhākurḍiā porḍi ପ୍ରାନ୍ତରେ ନଡ଼ାପୁଞ୍ଜ ଗଦା କରି
বুড়ীঘরপোড়া ତହିଁରେ ନିଆଁ ଲଗାଇବା ଉତ୍ସବ—A bon-fire
सम्वतडाह, होलीकाडाह made by setting fire to straw heaped up at the end of villages, on the night before Doḷa purṇṇimā.
[ ଦ୍ର—ବସନ୍ତୋତ୍ସବର ଉପଲକ୍ଷରେ ମେଣ୍ଢାମାଂସକୁ ପୋଡ଼ିଖାଇବା ବ୍ୟବସ୍ଥା ପ୍ରାଚୀନକାଳରେ ଭାରତବର୍ଷ ରହିଥିବା ଲୋକପ୍ରବାଦରୁ ଜଣାଯାଏ । ]

ମେଣ୍ଢାବାଳ—ଦେ. ବି—ମେଷଲୋମ—The wool or down of
Meṇḍhābāḷa sheep. [ ଦ୍ର—ମେଣ୍ଢାବାଳ କଡ଼ାଚେଲ—
(ମେଣ୍ଢାରୁମ—ଅନ୍ୟରୂପ) ବୃଦ୍ଧଲୋକଙ୍କ ମଧ୍ୟରେ ଅସ୍ୱାଭାବିକ ପ୍ରୀତି
ফেড়ারলোম ଦେଖାଗଲେ ଲୋକେ ଏହି ଉପମା ଦେଇ ଥାଆନ୍ତି—
मेडाकावाल ସେଥିପାଇଁ 'କଡ଼ାଚେଲ ମେଣ୍ଢାବାଳ' ହୋଇଥାନ୍ତି । ଫଳତଃ ମେଣ୍ଢାବାଳ ସଙ୍ଗେ କଡ଼ାଚେଲ ମିଶାଇଦେଲେ ତାହା ଖୁବ୍ ଅଠାଳିଆ ହୋଇ ଜଡ଼ିଯିବାର ଦେଖାଯାଏ । ]

ମେଣ୍ଢାମାରି—ପ୍ରାଦେ. (ବାଲେଶ୍ୱର) ବି—ଏକଜାତୀୟ ଛୋଟ କଣ୍ଟାଯୁକ୍ତ
Meṇḍhāmāri ଗୁଳ୍ମ—A small prickly shrub.

ମେଣ୍ଢାମୁଣ୍ଡିଆ—ଦେ. ବିଣ—ମେଣ୍ଢାର ମୁଣ୍ଡପରି ଆକୃତିବିଶିଷ୍ଟ—
Meṇḍhāmuṇḍiā Shaped like the head of a
मेडमुहाँ sheep. ଦେ. ବି—୧ । ଶଗଡ଼ର ଯୁଆଳି ତଳେ ମଝିରେ ଥିବା ଦୁଇଗୋଟି କିଲ, ଯାହା କି ହୁଙ୍କମୁଣ୍ଡିକୁ ଯୁଆଳି ସଙ୍ଗେ ଅଟକାଇ ରଖେ—1. Two pegs driven to the yoke below its middle by which the tapering heads of the arms of a cart are kept attached to the yoke.
୨ । ଚଉକାଠର ଉପର ପାଖେ କଣରେ ମରଥିବା ଛୋଟ କାଠ ଯହିଁର ଛିଦ୍ରରେ କବାଟର ଦଣ୍ଡି ଗଳାଯାଇଥାଏ—2.
चूड A piece of wood attached to the upper corner of a door-frame, through the hole of which the protruding corner of a door is inserted in order to make the door move to and fro. ୩ । ବେଠିଆ ୨ (ଦେଖ)
3. Beṭhiā 2 ( See )

ମେଣ୍ଢା ମୁଣ୍ଡିଆ ବାତ—ଦେ. ବି—ଏକ ପ୍ରକାର ଆମବାତ (ଏହା
Meṇḍhā muṇḍiā bāta ହାତର କହୁଣୀକୁ ଏବଂ ଗୋଡ଼ର
শিবামুখী বাত ଆଣ୍ଠୁକୁ ଆକ୍ରମଣ କରି ଉକ୍ତ ଗଣ୍ଠିମାନଙ୍କୁ ମେଣ୍ଢା-
गाठिया बात ମୁଣ୍ଡ ପରି ଫୁଲାଇ ଓ ଅଚଳ କରି ପକାଏ—
Arthrites; a kind of acute rheumatism affecting the knee joints and the elbow joints.

ମେଣ୍ଢା ଶିଙ୍ଗା—ପ୍ରାଦେ. ( ବାମଣ୍ଡା ) ବି—୧ । ଭେଣ୍ଡି—1. Lady's
Meṇḍhā śiṅgā finger (fruit). ୨ । ମହୁରୀ—2. Aconitum Spicatum.

ମେଣ୍ଢା ଶିଙ୍ଗା(ଙ୍ଘା) ମହୁରୀ—ଦେ. ବି. (ସଂ. ଶୃଙ୍ଗୀ ବିଷ)—ବତ୍ସନାଭ;ଏକ
Meṇḍhā śiṅgā(ṅghā) mahurā ପ୍ରକାର ବିଷାକ୍ତ ମୂଳ—
আতীষ अतीस Aconitum Spicatum.
[ ଦ୍ର—ଏହା ଔଷଧରେ ଲାଗେ । ନେପାଳ ଆଦିର ପାହାଡ଼ରେ ଏହା ଅଧିକ ଜନ୍ମେ । ]

ମେଣ୍ଢା ଶିଙ୍ଗା(ଙ୍ଘା) ବନ୍ତଲ—ଦେ. ବି—ଏକ ପ୍ରକାର କ୍ଷୁଦ୍ର ବନ୍ତଲ Mendhā singā(nghā) bantala କଦଳୀ—A species ছোট কাঁচকলা of small Bantala plantain. (ମେଣ୍ଢି ବନ୍ତଲ—ଅନ୍ୟରୂପ)

ମେଣ୍ଢା ଶିଙ୍ଗି(ଙ୍ଘି)ଆ—ଦେ. ବି. (ସଂ. ମେଢ୍ର+ଶୃଙ୍ଗ)—୧ । ଏକପ୍ରକାର Mendhā singi(nghi)ā ଲତାଜାତୀୟ ବୃକ୍ଷ—1, A tree মেড়া শিঙ্গে with fragrant leaves; Asclepias मेढा सिंगी Geminate; Gymnema Sylvestre. ମେଣ୍ଢା ଶିଂଙ୍ଗା(ଙ୍ଘା) / ମେଣ୍ଢା ଶିଙ୍ଘା (ଙ୍ଘା) } ଅନ୍ୟରୂପ [ବି—ଏହି ଗଛର ପତ୍ର ସୁଗନ୍ଧ ଯୁକ୍ତ । ଏହାର ମୂଳ ଔଷଧରେ ଲାଗେ । ଏହାର ଅନ୍ୟ ସଂସ୍କୃତ ନାମ ମେଷକ ଓ ମେଷ ଶୃଙ୍ଗୀ । ଏହାର ଚେର ଦ୍ୱାରା ସର୍ପ ବିଷ ଦୂର ହୁଏ । ଏହାର ପତ୍ର ଖାଇଲେ ଜିଭ ଝିମିଝିମି ହୁଏ । ଏହା ବାତବର୍ଦ୍ଧକ, ଶ୍ୱାସ ଓ କାଶ ବର୍ଦ୍ଧକ । ଏ ପତ୍ର ବ୍ରଣ ଓ ଅକ୍ଷିର ଦରଜ ଦୂର କରେ । ଏଥିର ଫଳ କାଶ, କୃମି, ବ୍ରଣ, ବିଷ ଓ କୁଷ୍ଠ ଦୂର କରେ । ଏ ଗଛ ମଧ୍ୟପ୍ରଦେଶ ଓ ଦାକ୍ଷିଣାତ୍ୟର ଜଙ୍ଗଲରେ ଜନ୍ମେ—ହି. ଶ] ୨ । ଶଗଡ଼ର ଜୁଆଳର ମଝିରେ ପୋତା ଯାଇଥିବା ଖିଲ (ଯେଉଁ ଖିଲରେ ବଳଦଙ୍କ ବେକର ପଘା ବାନ୍ଧିଲାବେଳେ ଗୁଡାଇ ଦେବା ପରେ ଅଟକାଇ ରଖାଯାଏ— 2. A wooden pin inserted over the middle of the yoke of a cart, round which the halter-strings of both the bullocks are twined after the bullocks are yoked. ୩ । ମେଣ୍ଢାଶିଙ୍ଗ ପରି ଆକୃତିର ବଣିଆଙ୍କର ବ୍ୟବହୃତ ଉପକରଣ—3. An instrument of the goldsmiths resembling sheep's horn in shape. ୪ । ମେଣ୍ଢା ଶିଙ୍ଗା ମହୁରୀ (ଦେଖ) 4. Mendā singhā mahurā (See)

ମେଣ୍ଢି—ପ୍ରାଦେ. (ସିଂହଭୂମ) ବି—ଭେଣ୍ଡି— Mendhi Lady's finger.

ମେଣ୍ଢି ପୋକ—ପ୍ରାଦେ. (ଅଳ) ବି—ନାଲି ଜଉଁଆ (ଦେଖ) Mendhi poka Nāli jauā (See)

ମେଣ୍ଢୀ—ଦେ. ବି. ସ୍ତ୍ରୀ—୧ । ମାଈ ମେଣ୍ଢା—1. A she-sheep; Mendhi an ewe. ୨ । ଶାଗ ରୂପେ ବ୍ୟବହୃତ ଏକପ୍ରକାର ভেড়ী मेढी ଲତା—2. A creeper which is used as a pot herb. ୩ । ମେଣ୍ଢା ଶିଙ୍ଗା (ଦେଖ) 3. Mendhā singā (See)

ମେଣ୍ଢେଇ ପଶିବା—ଦେ.କ୍ରି—୧। ବଳପୂର୍ବକ ପଶିବା—1. To force Mendhei pasibā one'self into a place. ୨ । জোর করে ঢুকা। ବିନା ନିମନ୍ତ୍ରଣରେ ବା ବିନା ଅଦରରେ କୌଣସି जोरसे घुसना ସ୍ଥାନରେ ପହଞ୍ଚିବା—2. To go to or intrude on a place uninvited.

ମେଣ୍ଢେଇବା—ଦେ. କ୍ରି—୧ । ମେଣ୍ଢେଇବା (ଦେଖ) Mendheibā 1. Merdheibā (See) मढना ୨ । ବହୁଲୋକଙ୍କୁ ନେଇ ଏକ ସ୍ଥାନରେ ଜୁଟାଇ ଦେବା—2. To drive a crowd into a place. ୩ । ବୁଣିଥିଲା ଧାନ ବୁଣିବା ପରେ ଜମିକୁ ଦୋଅଡ଼ ଧରିବା 3 To till a field for the second time after sowing paddy. ୪ । ମେଣ୍ଢାଇବା (ଦେଖ)— 4. Mendhāibā (See)

ମେଥି (ଧାତୁ)—ସ - ୧ । ସଂସର୍ଗ କରିବା; ସଙ୍ଗୀ ହେବା—1. To as. Meth (root) sociate. ୨ । ବୁଝିବା—2. To comprehend; to understand. ୩ । ବଧ କରିବା— 3. To kill.

ମେଥ(ତ)ର—ବୈଦେ. ବି. (ଫା. ମେହେତ୍ତର ବା ମେହତର; ଭୂଳ. Metha(ta)ra ସଂ. ମହତ୍ତର)—ମେହେନ୍ତର (ଦେଖ) মেতর मेहतर Mehentara (See)

ମେଥି(ଥୀ)—ସଂ.ବି.(ମେଥ୍ ଧାତୁ=ସଂସର୍ଗ କରିବା+କରଣ. ଇ, ଈ)— Methi(thī) ୧ । ମେଢ଼ି; ମେଇ ଖୁଣ୍ଟି; ଖଳାର କେନ୍ଦ୍ରରେ ଥିବା ୨ର ଅନ୍ୟ ସଂ. ନାମ—ଶୂଙ୍ଖୁ, ଯାହାର ଚାରି ପାଖେ ବଳଦ-ପାପଗା, ମେଥିକା, ବହୁମୂର୍ତ୍ତିକା, ମାନେ ବେଙ୍ଗଳା ପଡ଼ନ୍ତି—1. A ଗନ୍ଧବୀଜା, ଜ୍ୟୋତିଃ ଫଳଫଳା, post or stake at the cen- ଵହୁଗା, ଚନ୍ଦ୍ରିକା, ମନ୍ଥା, ମେଥିକା, tre of the threshing ମିଶ୍ରପୁଷ୍ପା, କୈରବୀ, ବହୁପର୍ଣ୍ଣୀ, floor round which the ପୀତବୀଜା, ବହୁପତ୍ରିକା, bullocks are tethered and ବେଧନୀ, କୁଞ୍ଚିକା, ମୁନୀନ୍ଦ୍ରିକା revolve. ୨ । ଶିମ୍ବାଦି ବର୍ଗର मेथि କୃଷିଜାତ ଶାକ—2. Fenu- মেথি greek; Trigonella Fœnu- ମ. ମେଥି graecum. [ବି—ଏହାର ଗଛ ଫା. ଖୁଲ୍ବେ ସମ୍ପୀବି ଶିଙ୍ଗଙ୍କ ପରି । ଏଥିର କୁଇଁରୁ ଆ. ବଜ୍ରଲୁଲ୍ ହୁଲ୍‌ବା ସୁଗନ୍ଧଯୁକ୍ତ ବୀଜ ବାହାରେ । ଏହା ଲା. ଫେଣୁଗ୍ରୀକ୍ ତରକାରୀରେ ମସଲା ରୂପେ ବ୍ୟବହୃତ ତେ, ମେଣ୍ଟୁଲ୍, ମେନ୍ତୁଲୁ, ହୁଏ ଏବଂ ଔଷଧରେ ଲାଗେ । ଏଥିର ଚୂନାକୁ ସ୍ତ୍ରୀ ଲୋକମାନେ କେଶକୁ ସୁବାସିତ କରିବା ପାଇଁ ବ୍ୟବହାର କରନ୍ତି । ବୈଦ୍ୟକ ମତରେ ମେଥି ଅଗ୍ନିଦୀପକ, ଅରୁଚିନାଶକ, ପାପ୍ତିକାରକ, ବାତଘ୍ନ ଓ ରକ୍ତ ପିତ୍ତ ପ୍ରକୋପକ; ଏହା ତିକ୍ତରସ । ]

ମେଥିକା(ନୀ)—ସଂ. ବି (ମେଥ୍ ଧାତୁ=ବୁଝିବା+କରଣ ଇକ+ସ୍ତ୍ରୀ.ଆ; Methikā(nī) +ଇନ୍+ଈ )—ମେଥି ୨ (ଦେଖ)— Methi 2 (See)

ମେଥି ମୁଗ—ଦେ. ବି (ସଂ ପୀତ ମୁଦ୍ଗ)—ବନ୍ୟ ମୁଦ୍ଗ; ଏକପ୍ରକାର Methi muga ପୀତ ବା ହଳଦିଆ ମୁଗ—A kind of সোনা মুগ पीला मुंग Phaseolus; a leguiminous plant. [ବି—ଏହି ମୁଗର ଦାନା ସାଧାରଣ ମୁଗଠାରୁ ଶ୍ରେଷ୍ଠ । ]

ମେଥି ଚୂନା—ଦେ. ବି (ସଂ.ମେଥୀଚୂର୍ଣ୍ଣ)—ମେଥିର ଗୁଣ୍ଡା—Powder Methi chūnā of fenugreek. [ବି—ଉକ୍ତ ମେଥି ଚୂନାକୁ মেথিচুর্ণ ସ୍ତ୍ରୀଲୋକମାନେ କେଶ ଉପରେ ବାନ୍ଧନ୍ତି । ] मेथिका चूरन

ମେଥି(ଥୀ)ମୋଦକ— ସଂ ବି (ମ. ଝି. ଲେ) — ମେଥିରେ ପ୍ରସ୍ତୁତ
Methi(thi)modaka ବଳକର ମୋଦକବିଶେଷ—A medicinal sweet ball of which the chief ingredient is fenugreek.
ମେଥି মোদক
मेथि मोदक
( ମେଥି ମୁଦ[ଦୁ]କ—ଗ୍ରାମ୍ୟରୂପ )

ମେଥି ଶାଗ—ଦେ. ବି—ଶାକରୂପେ ବ୍ୟବହୃତ ମେଥିଗଛର ପତ୍ର—
Methi sāga The leaves of fenugreek plant used as curry or salad
মেথি শাক
मेथि साक

ମେଦ(ଦଃ)—ସଂ. ବି (ମିଦ୍ ଧାତୁ=ସ୍ନିଗ୍ଧ ହେବା+କରଣ. ଅ; ଅସ୍)—
Meda(dah) ୧। ମଜ୍ଜା; ଚର୍ବି; ବସା—1. Fat; lymph; adeps. [ ଦ୍ର—ବୈଦ୍ୟଶାସ୍ତ୍ର ମତରେ ମେଦ ମାଂସରୁ ଉତ୍ପନ୍ନ ହୁଏ ଓ ମେଦରୁ ଅସ୍ଥି ହୁଏ—ହି. ଶ ।] ୨। ହାଡ଼ରସା; ଅସ୍ଥିର ମଜ୍ଜା—2. Bone-marrow. ୩। ମେଦୋବୃଦ୍ଧି;ରୋଗବିଶେଷ—3. Obesity. ୪। ମ୍ଳେଚ୍ଛଜାତିବିଶେଷ—4. Name of a low barbarian caste. [ ଦ୍ର—ମନୁସ୍ମୃତି ମତରେ ବୈଦେହକ ପୁରୁଷ ଓ ନିଷାଦ ସ୍ତ୍ରୀଠାରୁ ଏ ଜାତି ଉତ୍ପନ୍ନ—ହି. ଶ. ।] ୫। ଅଲମ୍ବୁଷା; ମଞ୍ଜିଷ୍ଠା—5. Indian madder, Rubia Manjith. ୬। ( ବୈଦ୍ୟକ ) ମେଦା ( ଦେଖ )—6. Medā ( See ) ୭। କସ୍ତୁରୀ ( ହି. ଶ. )—7. Musk. ୮। ନୀଳାଦିରତ୍ନର ଛାୟାବିଶେଷ ( ରତ୍ନ ପରୀକ୍ଷା )—8. A defect or shade in sapphire. ଦେ. ବି—୧। କୁମ୍ଭୀର, ବିଲୁଆ ପ୍ରଭୃତି ପ୍ରାଣୀଙ୍କର ମାଂସରୁ ପ୍ରସ୍ତୁତ ଆମବାତନାଶକ ଔଷଧବିଶେଷ—1. A liquid mixture prepared from the flesh of alligators, jackals and other lower animals and used in curing rheumatism. [ ଦ୍ର—ବିଲୁଆ, ନେଉଳ, କୁମ୍ଭୀର ଆଦି ପ୍ରାଣୀଙ୍କ ମାଂସକୁ ଖଣ୍ଡ ଖଣ୍ଡ କରି କାଠ ଗୋଟିଏ ମାଟିଆରେ ପୂରାଇ ତହିଁରେ ଦହି ଓ ଲୁଣ ଦେଇ ଘୋଡ଼ି ରଖିଲେ ତାହା ସଢ଼ିଯାଇ ଏକ ବା ଦୁଇ ବର୍ଷ ପରେ ଜଳୀୟ ପଦାର୍ଥରେ ପରିଣତ ହୁଏ । ତାହାକୁ ଖାଇଲେ ଆମବାତ ରୋଗ ଭଲ ହୋଇଯାଏ ଏବଂ କ୍ଷୀଣକାୟ ବଳଦମାନେ ସବଳ ହୁଅନ୍ତି ।] ୨। ବିଷ୍ଠାଦିର ମେଣ୍ଟା—2. A lump or mass of dung or nightsoil. ୩। ଧାନ ସଞ୍ଚୟ କରିବାକୁ ପାଳ ମଡ଼େଇ—3. A receptacle or rick made of crushed straw for storing paddy. ୪। ପୁଷ୍ଟିକର ଗୋଖାଦ୍ୟବିଶେଷ—4. A food prepared for improvement of the health of cattle.
মেদ
মেচা
थाह, चोत
मराई
मोडी

ମେଦଃସାର—ସଂ. ବି—ମେଦା ( ଦେଖ )
Medahsāra Medā ( See)

ମେଦକୃତ୍—ସଂ. ବି ( ମେଦ+କୃ ଧାତୁ=କରିବା+କର୍ତ୍ତୃ. କ୍ୱିପ୍)—
Medakrut ମାଂସ—Flesh.

ମେଦ(ଦୋ)ଗ୍ରସ୍ତ—ସଂ. ବିଣ ( ୭ମୀ ତତ୍ )—ସ୍ଥୂଳକାୟ—
Meda(do)grasta Corpulent.

ମେଦ(ଦୋ)ଜ—ସଂ.ବିଣ (ମେଦ, ମେଦଃ+ଜନ୍ ଧାତୁ+କର୍ତ୍ତୃ.ଅ)—
Meda(do)ja ମେଦରୁ ବା ମଜ୍ଜାରୁ ଜାତ—Produced from fat or marrow. ବି—୧। ଅସ୍ଥି—1. Bone ୨। ଭୂମିଜ ଗୁଗ୍ଗୁଳ—2. A sort of bdellium.

ମେଦନୀ—ଗ୍ରା. ବି ( ଅଶୁଦ୍ଧ ) ( ସଂ. ମେଦିନୀ )—ମେଦିନୀ ( ଦେଖ )
Medani Medini ( See)

ମେଦପୁଚ୍ଛ—ସଂ. ବି ( ବହୁବ୍ରୀହି; ଯାହା ପୁଚ୍ଛରେ ମେଦ ଅଛି )—ଦୁମ୍ବା
Medapuchchha ମେଣ୍ଢା (ହି. ଶ)—A species of sheep with a big fatty tail.

ମେଦ(ଦୋ)ବର୍ଦ୍ଧକ—ସଂ.ବିଣ (୬ଷ୍ଠୀ ତତ୍)-ଯାହା ଶରୀରର ମେଦ ଧାତୁକୁ
Meda(do)barddhaka ବୃଦ୍ଧି କରେ—Causing corpulency; increasing fat.

ମେଦ ବସା(ସେ)ଇବା—ଦେ. କ୍ରି—ପାଳ ମଡ଼େଇ ପ୍ରସ୍ତୁତ କରିବା—
Meda basā(se)ibā 1. To establish or raise a rick for storing paddy. ୨। ପୁଷ୍ଟିକର ଗୋ-ଖାଦ୍ୟ ବା ଔଷଧ ପ୍ରସ୍ତୁତ କରିବା—2. To prepare a special cattle-food or medicine according to a prescribed process. ୩। ଥରେ ଗଦାଏ ବିଷ୍ଠା ତ୍ୟାଗ କରିବା—3. To pass stools in a heap.

ମେଦ(ଦୋ)ବୃଦ୍ଧି—ସଂ. ବି (୬ଷ୍ଠୀ ତତ୍)—ସ୍ଥୂଳକାୟତ୍ୱରୋଗବିଶେଷ—
Meda(do)bruddhi Obesity; corpulency.
( ମେଦାଧିକ୍ୟ, ମେଦ[ଦୋ] ରୋଗ—ଅନ୍ୟରୂପ )

ମେଦସ୍ୱୀ—ସଂ. ବିଣ. ପୁଂ (ମେଦସ୍+ଅସ୍ତି ଅର୍ଥରେ ବିନ୍; ୧ମା. ୧ବ)—
Medaswi ୧। ଦୃଢ଼; ବଳିଷ୍ଠ—1. Robust; strong. ୨। ମୋଟା; ସ୍ଥୂଳକାୟ; ପୃଥୁଳ—2. Fat; corpulent.
(ମେଦସ୍ୱିନୀ—ସ୍ତ୍ରୀ)

ମେଦା(ଧା)—ସଂ. ବି ( ମିଦ୍ ଧାତୁ=ସ୍ନିଗ୍ଧ ହେବା+ଅ+ଆ )—
Medā(dhā) ଅଷ୍ଟବର୍ଗର ପ୍ରସିଦ୍ଧ ଔଷଧବିଶେଷ--Name of a juicy root used in medicine.
ମେଦନୀ
ମେଦୋବରା
ମେଦୋଭବା } ଅନ୍ୟରୂପ [ଦ୍ର—ଏହା ଏକପ୍ରକାର ଲତାର କନ୍ଦ ଓ ଦେଖିବାକୁ ଅଦା ପରି । ଏହାର ବର୍ଣ୍ଣ ଶ୍ୱେତ । ଏହା ନଖଦ୍ୱାରା ଛେଦନୋପଯୁକ୍ତ ଓ କୋମଳ । ନଖରେ ଛେଦନ କଲେ ଏହା ମଧ୍ୟରୁ ମେଦ ପରି ଏକପ୍ରକାର ଅଠାଳିଆ ଦୁଗ୍ଧମୟ ରସ ବାହାରେ । ଏହା ଔଷଧରେ ବ୍ୟବହୃତ ହୁଏ । ଏହା ଜ୍ୱର ଓ ରାଜଯକ୍ଷ୍ମାରେ ବିଶେଷ ଉପକାରୀ ଥିବା କଥିତ । ଏହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଏହାର ଅନ୍ୟାନ୍ୟ ସଂସ୍କୃତ ନାମ, ଯଥା—ଜୀବନୀ, ଦ୍ରବ୍ୟା, ଧ୍ରୁବା, ପୁରୁଷ ଦନ୍ତିକା, ମଣିଚ୍ଛିଦ୍ରା, ମଧୁସ୍ରା, ମେଦଃସାରା, ବସା, ବହୁରନ୍ଧ୍ରିକା, ବସୁଚ୍ଛିଦ୍ରା, ଶାଲ୍ୟଦା, ଶ୍ରେଷ୍ଠା, ସାଧ୍ୱୀ, ସ୍ନିଗ୍ଧା, ସ୍ନେହବର୍ଦ୍ଧା, ସ୍ୱଳ୍ପପର୍ଣ୍ଣିକା, ଶଲ୍ୟପର୍ଣ୍ଣିକା, ପୁରୁଷଦନ୍ତିକା]

(ମେଢ଼ିଦା—ଅନ୍ୟରୂପ) ପ୍ରାଦେ—୧ । (ବାଲେଶ୍ୱର) ବଡ଼ ସାମୁଦ୍ରିକ କଣ୍ଟିଆ ମତ୍ସ୍ୟବିଶେଷ—1. A sea-water fish of big size and having pricks. ୨ । (ଉତ୍ତର ବାଲେଶ୍ୱର) ଧାନବିଲର ବା ଅନ୍ୟ ସ୍ଥାନର ମଧ୍ୟସ୍ଥ ଉଚ୍ଚ ସ୍ତୂପ—2. A mound inside a paddy field or other plain place. ଦେ. ବି—୧ । ମେଣ୍ଢା; ପିଣ୍ଡୁଳା—1. Lump.
মেদা [ଉ—ନୋହିଲେ ମୋତେ କହ କର୍ଣ୍ଣ ମୁଣ୍ଡେ ଗଦା
थाह; चौत ପ୍ରହାର କରି ଗୁଣ୍ଡେ କରିଦେବି ମେଦା । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।] ୨ । ବିଷ୍ଠାର ମେଦ—2. A mass of nightsoil. ଦେ. ବିଣ—୧ । (ସ. ମୂଢ଼ ବା ମନ୍ଦ)—ମାନ୍ଦା ବୁଦ୍ଧିଆ; ମୋଟାବୁଦ୍ଧିଆ—1. Stupid; dull; sluggish.

**ମେଦାଡ଼ି**—ଦେ. ବିଣ—ଗଦା; ସ୍ତୂପ; ମେଣ୍ଢା; ପିଣ୍ଡୁଳା—
Medārdi মেচা थाह Heap; mass.
[ଉ—ଝୋଟା ମେଦାଡ଼ିଏ ହୋଇଛି ।]

**ମେଦିତ**—ସ. ବିଣ (ମିଦ୍ ଧାତୁ=ସ୍ନିଗ୍ଧ ହେବା+କର୍ତ୍ତୃ. ତ)—
Medita ସ୍ନିଗ୍ଧ; ତେଲିଆ—Oily; unctuous.

**ମେଦିନି(ନୀ)ପୁର**—ଦେ. ବି—ଓଡ଼ିଶାର ଉତ୍ତର ଓ ବଙ୍ଗପ୍ରଦେଶର
Medini(ni)pura ଦକ୍ଷିଣରେ ଥିବା ଜିଲ୍ଲା ଓ ନଗର ବିଶେଷ—
মেদিনীপুর Midnapur; name of a district and
मेदिनीपुर town to the north of Orissa.

**ମେଦିନୀ**—ସ. ବି. ସ୍ତ୍ରୀ (ମେଦ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ ଈ)—ପୃଥିବୀ
Medini —The earth. [ଦ୍ର—ବିଷ୍ଣୁଙ୍କ ହସ୍ତରେ ନିହତ ମଧୁ ଓ କୈଟଭ ନାମକ ଦୈତ୍ୟଦ୍ୱୟଙ୍କ 'ମେଦ'ରେ ପରିପୂର୍ଣ୍ଣା ହୋଇଥିବାରୁ ପୃଥିବୀର 'ମେଦିନୀ' ନାମ ହୋଇଅଛି ।]

**ମେଦିନୀଦ୍ରବ**—ସ. ବି (୬ଷ୍ଠୀତତ୍; ମେଦିନୀ+ଦ୍ରବ)—ଧୂଳି—
Medinidraba Dust.

**ମେଦିବା**—ଦେ. କ୍ରି (ସ. ମୃଦ୍ ଧାତୁ)—୧ । ମର୍ଦ୍ଦିବା; ଚକଟିବା—
Medibā To knead. ୨ । ଏକତ୍ର କରିବା—2 To
मर्दनकरा collect together. [ଉ—କୋଟିଏ କଲେ
मलना କାଢ଼ି ସବୁ ମେଦି, କାମଭୁଜରେ ଲୁଚିଥିବ ବଧି । ପ୍ରାଚୀ. ରହସ୍ୟମଞ୍ଜରୀ ।]

**ମେଦିରି**—ପ୍ରାଦେ (ଗଞ୍ଜାମ) ବି—ନୀଚ ଅସ୍ପୃଶ୍ୟ ଶୂଦ୍ରଜାତୀୟ ଶିଳ୍ପି
Mediri ବିଶେଷ—A low caste of artisans. [ଦ୍ର —ଏମାନେ କୁଲାଅଦି ବୁଣନ୍ତି ।]

**ମେଦୁର**—ସ. ବିଣ. ପୁଂ (ମିଦ୍ ଧାତୁ=ଚିକ୍କଣ ହେବା ପୂର୍ଣ୍ଣ ହେବା+
Medura କର୍ତ୍ତୃ. ଉର)—୧ । ସ୍ନିଗ୍ଧ; ତେଲିଆ—1. Oily;
(ମେଦୁରା—ସ୍ତ୍ରୀ) unctuous. ୨ । ମସୃଣ; ଚିକ୍କଣ—2. Smooth. ୩ । କୋମଳ; ମୃଦୁ—3. Soft; mild; gentle. ୪ । ଉତ୍କୃଷ୍ଟ; ଉତ୍ତମ—4. Excellent. ୫ । ପୂର୍ଣ୍ଣ—5. Full.

**ମେଦୁରା**—ସ. ବି. ସ୍ତ୍ରୀ (ମିଦ୍ ଧାତୁ+କର୍ତ୍ତୃ. ଉର+ଆ)—କଙ୍କୋଳ
Medurā ନାମକ ଔଷଧି କନ୍ଦ; ଶୀର କାଙ୍କୁଲି—Name of a medicinal root. [ଦ୍ର—ଏହା ନେପାଳ ଆଦି ଦେଶରେ ଜାତ ହୁଏ ।] ସ. ବିଣ. ସ୍ତ୍ରୀ—ମେଦୁରର ସ୍ତ୍ରୀଲିଙ୍ଗ—Feminine of Medura.

**ମେଦୋଜ**—ସ. ବି (ମେଦସ୍+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ. ଅ)—
Medoja ଅସ୍ଥି; ହାଡ଼ (ହି. ଶ)—Bone.

**ମେଧ୍ (ଧାତୁ)**—ସ—୧ । ସଙ୍ଗ କରିବା—1. To associate with
Medh (root) ୨ । ବୁଝିବା—2. To understand. ୩ । ବଧ କରିବା—3. To kill. ୪ । ହିଂସା କରିବା; ଆଘାତ କରିବା—4. To hurt.

**ମେଧ**—ସ. ବି (ମେଧ୍ ଧାତୁ+ଅଧିକରଣ ଅ)—୧ । ଯାଗ; ଯଜ୍ଞ—
Medha 1. Vedic sacrifice. ୨ । (+କରଣ. ଅ) —ହବିଃ; ଘିଅ—2. Ghee. ୩ । (+କର୍ମ. ଅ)— ଯଜ୍ଞରେ ବଳିଦିଆଯିବା ପଶୁ (ହି. ଶ)— 3. A victim offered in a vedic sacrifice.

**ମେଧଜ**—ସ. ବି (ମେଧ+ଜନ ଧାତୁ+କର୍ତ୍ତୃ. ଅ)—ବିଷ୍ଣୁ (ହି. ଶ)
Medhaja —Bishṇu.

**ମେଧା**—ସ. ବି (ମେଧ୍ ଧାତୁ=ବୁଝିବା+କରଣ. ଅ+ସ୍ତ୍ରୀ ଆ)
Medhā —୧ । ଧୀଶକ୍ତି—1. Intelligence. ୨ । ସ୍ମୃତି ଶକ୍ତି—2. Memory. ୩ । ଧାରଣା ଶକ୍ତି— 3. Comprehension. ୪ । ବୁଦ୍ଧି; ବୋଧଶକ୍ତି— 4. Understanding. ୫ । ମେଧା ବୃଦ୍ଧିକର ଔଷଧ— 5. A medicine used for developing intellectual faculty. ୬ । (ନାମ) ଦକ୍ଷ-ପ୍ରଜାପତିଙ୍କର ଏକ କନ୍ୟା—6. Name of a daughter of Daksha Prajāpati. ଦେ. ବିଣ— ମେଦା (ଦେଖ)—Medā (See)

**ମେଧାଃ**—ସ. ବି (ମେଧସ୍ ଶବ୍ଦର ୧ମା. ୧ବ)—ସ୍ୱାୟମ୍ଭୁବ ମନୁଙ୍କ ପୁତ୍ର
Medhāḥ —The son of Swāyambhuba Manu.

**ମେଧାକର**—ସ. ବିଣ (ମେଧା+କୃ ଧାତୁ+କର୍ତ୍ତୃ. ଅ)—ଯାହା ସ୍ମୃତି ଶକ୍ତି
Medhā kara ଜନ୍ମାଏ ବା ବୁଦ୍ଧିକୁ ପ୍ରଖର କରାଏ—Developing the intellect.

**ମେଧାଜିତ୍**—ସ. ବି—କାତ୍ୟାୟନ ମୁନି—
Medhājit Name of sage Kātyāyana.

**ମେଧାତିଥି**—ସ. ବି—୧ । ମେଧାବୀ ବ୍ୟକ୍ତି—1. Intelligent
Medhātithi person. ୨ । ମନୁସଂହିତାର ଟୀକାକାର ମୁନି ବିଶେଷ—2. Name of a sage, the annotator of the Manu Saṁhitā. [ଦ୍ର—ଏହି ନାମର ଅନେକ ଲୋକ ଥିଲେ । କାଣ୍ୱ ବଂଶୀୟ ଏକ ଋଷି ଋଗ୍‌ବେଦର ପ୍ରଥମ ମଣ୍ଡଳର ୧୮ଟି ସୂକ୍ତର ଦ୍ରଷ୍ଟା ଥିଲେ । ମହାଭାରତୋକ୍ତ କଣ୍ୱ ମୁନିଙ୍କ ପିତାଙ୍କର ଏହି ନାମ ଥିଲା । ମନୁସଂହିତାର ଟୀକାକାର ଓ ଭଟ୍ଟବୀରସ୍ୱାମୀଙ୍କ ପୁତ୍ରଙ୍କ ନାମ ମେଧାତିଥି ଥିଲା । ଭାଗବତୋକ୍ତ ପ୍ରିୟବ୍ରତ

ସଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନିର୍ଦ୍ଦିଷ୍ଟ ଭେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ ଗାଢ଼' ଖୋଜିବେ; 'ମୁଁହ' ନ ମିଳିଲେ 'ମୁଁହ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ,'ଅଲବଧ' ନ ପାଇଲେ 'ଅଳ୍ପବଧ'ଦେଖିବେ

ରାଜାଙ୍କ ପୁତ୍ର ଓ ଶାକଦ୍ୱୀପର ଅଧିପତିଙ୍କର ଏବଂ କର୍ଦ୍ଦମ ପ୍ରଜାପତିଙ୍କର ଏକପୁତ୍ରଙ୍କ ନାମ ମେଧାତିଥି ଥିଲା—ହି.ଶ ।)

**ମେଧା ବତୀ**—ସ. ବଣ. ସ୍ତ୍ରୀ (ମେଧାବତ୍+ସ୍ତ୍ରୀ ଈ —'ମେଧାବାନ୍'ର Medhā bati ସ୍ତ୍ରୀଲିଙ୍ଗ - Feminine of Medhābān· ବି. ସ୍ତ୍ରୀ—ମହାଜ୍ୟୋତିଷ୍ମତୀ ଲତା—A phosphorescent creeper; Halicacabum Cardiospermum

**ମେଧାବାନ୍**—ସଂ ବଣ'( ମେଧା+ଅସ୍ତି ଅର୍ଥରେ. ବତ୍; ୧ମା. ୧ବ )— Medhābān ମେଧାବୀ (ଦେଖ)—Medhābī ( See )

**ମେଧାବୀ**—ସ.ବଣ.ପୁଂ (ମେଧା + ଅସ୍ତି ଅର୍ଥରେ.ବିନ୍)—୧ । ବୁଦ୍ଧିମାନ୍— Medhābī 1. Intelligent; apt. ୨ । ପଣ୍ଡିତ— (ମେଧାବିନୀ—ସ୍ତ୍ରୀ) 2. Learned. ୩ । ପ୍ରଖର ସ୍ମରଣ ଶକ୍ତିବିଶିଷ୍ଟ—3. Having a sharp memory. ବି—୧ । ଶୁକ ପକ୍ଷୀ—1. A parrot. ୨ । ମଦ୍ୟ— 2. Wine. ୩ । କଶ୍ୟପଙ୍କର ଏକି ପୁତ୍ର (ହି. ଶ)— 3. Name of a son of a Kaśyapa. ୪ । ଚ୍ୟବନଙ୍କର ଏକ ପୁତ୍ର (ହି. ଶ)—4. Name of a son of Chyabana.

**ମେଧାବିନୀ**—ସ. ବ. ସ୍ତ୍ରୀ. (ମେଧାବିନ୍+ଈ)—୧ । ବ୍ରହ୍ମାଙ୍କ ପତ୍ନୀ— Medhābini 1. The wife of Brahmā. ୨ । ସାରିକା —2. The myna bird. ସ. ବଣ. ସ୍ତ୍ରୀ—ମେଧାବୀର ସ୍ତ୍ରୀ ଲିଙ୍ଗ—Feminine of Medhābī.

**ମେଧାଭାବ**—ସ. ବ. (୬ଷ୍ଠୀ ତତ୍; ମେଧା+ଅଭାବ)—ବୁଦ୍ଧି ଶକ୍ତିର Medhābhāba ଅଭାବ—Imbecility.

**ମେଧି**—ସ. ବ. (ମେଧ ଧାତୁ+ଅଧିକରଣ. ଇ)—ମେଥି ୧ (ଦେଖ) Medhi Methi 1 ( See )

**ମେଧିର**—ସ. ବଣ. ପୁଂ ( ମେଧା+ଅସ୍ତି ଅର୍ଥରେ. ଇର )—ମେଧାବୀ Medhira ( ଦେଖ )—Medhābī ( See ) (ମେଧିରା—ସ୍ତ୍ରୀ)

**ମେଧିଷ୍ଠ**—ସଂ. ବଣ. ପୁଂ. ( ମେଧା+ଅତ୍ୟର୍ଥେ. ଇଷ୍ଠ; ତୁଳନାତର Medhishṭha ବଳଷ୍ଠ)—ଅତିଶୟ ମେଧାବୀ—Very intelligent. (ମେଧିଷ୍ଠା—ସ୍ତ୍ରୀ)

**ମେଧୀ**—ସଂ. ବଣ. ପୁଂ. ( ମେଧ୍ ଧାତୁ+ଇନ୍; ୧ମା. ୧ବ; ଅନ୍ୟ ଶବ୍ଦ Medhī ସଙ୍ଗେ ପ୍ରଯୁକ୍ତ ହୁଏ; ଯଥା—ଗୃହମେଧୀ) (ମେଧିନୀ—ସ୍ତ୍ରୀ) ଅର୍ବାଚୀନ ବା ସଙ୍ଗକାରୀ—Associating with.

**ମେଧୀୟାନ୍**—ସଂ. ବଣ. ପୁଂ. (ମେଧା+ଅତ୍ୟର୍ଥେ. ଈୟସ୍; ୧ମା. ୧ବ)- Medhīyān ଅତିଶୟ ମେଧାଯୁକ୍ତ—Very intelligent; (ମେଧୀୟସୀ—ସ୍ତ୍ରୀ) sharp-witted.

**ମେଧ୍ୟ**—ସ. ବଣ (ମେଧ୍ ଧାତୁ+କର୍ମ. ଯ)—୧ । ପବିତ୍ର; ପୂତ— Medhya 1. Pure; holy. ୨ । ଶୋଧିତ—2. purified. (ମେଧ୍ୟା—ସ୍ତ୍ରୀ) ୩ । ଯଜ୍ଞୀୟ—3. Sacrificial. ୪ । ଯଜ୍ଞର [ଅମେଧ୍ୟ—ବିପରୀତ] ଉପଯୁକ୍ତ—4. Fit for a sacrifice. ୫ । (ମେଧା+ଯ) ବୁଦ୍ଧି ବଢ଼ାଇବାବାଲା—5. Increasing intelligence; invigorating the brain. ବି। ସ.ବି —ଯବ —1. Barley. ୨ । ଖଦିର— 2 Catechu. ୩ । ଛାଗ —3. Goat.

**ମେଧ୍ୟା**—ସ. ବଣ (ମେଧ୍ୟ+ସ୍ତ୍ରୀ. ଆ)—ମେଧ୍ୟର ସ୍ତ୍ରୀଲିଙ୍ଗ—Feminine of Medhya. ସ.ବି. ୧ । ରକ୍ତବଚ୍ଛ—1.The Medhyā red orris root. ୨ । ଶ୍ୱେତବଚ୍ଛ—2 The orris root. ୩ । ରୋଚନା—3. A yellow pigment. ୪ । କେତକୀ; କିଆ—4. Pandanus Odoratissimus. ୫ । ଜ୍ୟୋତିଷ୍ମତୀ ଲତା— 5. The heartpea creeper. ୬ । ଶଙ୍ଖପୁଷ୍ପୀ; ତୃଣବିଶେଷ—6. A sort of grass; Andropogen Acculatum. । ଶମୀ; ଶାଇଁ ଗଛ—7. A tree; Acacia Suma. ୮ । ବ୍ରାହ୍ମଣ ଯଷ୍ଟିକା; ବ୍ରାହ୍ମଣଯଷ୍ଟିକା ଗୁଳ୍ମ—8. A plant; Saphonanthus Indica. ୯ । ମଞ୍ଜିଷ୍ଠା—9. The Indian madder plant.

**ମେନକା**—ସ. ବ ସ୍ତ୍ରୀ. (ସ. ମେ=ମୋର+ନ=ନୁହେଁ+କା=କେହି Menakā ସ୍ତ୍ରୀ; କୌଣସି ସ୍ତ୍ରୀ ମୋପରି ସୁନ୍ଦରୀ ନୁହେଁ )— ୧ । ନଗରାଜ ହିମାଳୟଙ୍କ ପତ୍ନୀ; ଉମାଙ୍କ ମାତା—1. The name of the wife of Himālaya, the king of mountains. ୨ । ଅପ୍ସରାବିଶେଷ; ଶକୁନ୍ତଳାଙ୍କ ମାତା—2. One of the heavenly nymphs, the mother of Śakuntalā. [ ଦ୍ର—ଏ ଇନ୍ଦ୍ରଙ୍କ ଆଦେଶରେ ବିଶ୍ୱାମିତ୍ରଙ୍କ ତପୋଭଙ୍ଗ କରିବାକୁ ଯାଇଥିଲେ ଓ ବିଶ୍ୱାମିତ୍ରଙ୍କ ଔରସରେ ଏହାଙ୍କ ଗର୍ଭରୁ ଶକୁନ୍ତଳା ଜନ୍ମିଥିଲେ । ]

**ମେନା**—ସ. ବ. ସ୍ତ୍ରୀ—୧ । ହିମାଳୟପତ୍ନୀ ମେନକା—1. The wife Menā of Himālaya, the king of mountains. [ଦ୍ର – ମର୍ତ୍ତ୍ୟ-ନାରୀ-ଭାଗ୍ୟ ଜଗତେ ପ୍ରଶଂସିବେ ରମ୍ଭା-ଭିରୁ ଭଣୀ ମେନା । ରାଧାନାଥ. ଯଯାତି ]' ୨ । ସ୍ତ୍ରୀ (ହି.ଶ)— 2. Woman; wife. ୩ । ବାକ୍ (ହି. ଶ)— 3. Speech; word.

**ମେନା(ନେ)ଜ(ଞ୍ଜ)ର**—ବୈଦେ. ବ (ଇଂ. ମ୍ୟାନେଜର) – ଜମୀଦାର ବା Menā(ne)ja(ñja)ra କାରଖାନାର ପ୍ରଧାନ କର୍ମଚାରୀ — ମ୍ୟାନେଜର मैनेजर Manager.

**ମେନା(ନେ)ଜରି**—ଦେ. ବ—ମେନେଜରର କାର୍ଯ୍ୟ— Menā(ne)jari ମ୍ୟାନେଜାରୀ मैनेजरी Managership.

**ମେନାଜା**—ସ ବ ସ୍ତ୍ରୀ (ମେନା+ଜନ୍ ଧାତୁ+କର୍ତ୍ତୃ.ଅ+ସ୍ତ୍ରୀ. ଆ)— Menājā ଦୁର୍ଗା; ପାର୍ବତୀ—Durgā.

| ୯ | ଇ | ଉ | ଋ,ଋ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଗ୍ୟ | ସ | ଗଁ୍ୟ | ଇଅ | ଓ | ନ୍ମ |

ମେନାଦ—ସଂ. ବି (ବହୁବ୍ରୀହି; ମେ=ଅନୁକାର ଶବ୍ଦ; ମେଉଁ ମେଉଁ+
Menāda ନାଦ)—ମାର୍ଜାର; ବିରାଡ଼ି—Cat.

ମେନାଧବ ସଂ. ବି(ଷଷ୍ଠୀ ତତ୍)—ହିମାଳୟ; ଗିରିରାଜ—
Menādhaba The Himālayas (personified)

ମେନେଜ୍ କରିବା—ଦେ କ୍ରି—କାର୍ଯ୍ୟ ପରିଚାଳନ କରିବା—To
Menej kariba ম্যানেজ করা मैनेज करना manage.

ମେନେଜ୍‌ମେଣ୍ଟ୍—ବୈଦେ. ବି ( ଇଂ. ମାନେଜ୍‌ମେଣ୍ଟ୍ )—ପ୍ରଧାନ
Menej-ment କର୍ମଚାରୀରୂପେ କାର୍ଯ୍ୟ ପରିଚାଳନ—
ম্যানেজমেণ্ট मैनेजमेंट Management.

ମେନ୍ଥଡ଼—ଦେ. ବିଣ (ସଂ. ମନ୍ଥର)—୧ । ଯେ କଳିଲଗାଏ—
Menthard 1. Fomenting quarrel. ୨ । କଳହୁଡ଼ା—
নাটেরগুরু माहिल 2. Quarrelsome. ୩। ମନ୍ଦ ପରାମର୍ଶ
(ମେନ୍ଥ[ନ୍ଥେ]ଡ଼ୀ—ସ୍ତ୍ରୀ) ଦାତା—3. Giving bad advice.

ମେନ୍ଥଲ୍—ବୈଦେ.ବି (ଇଂ.ମେନ୍ଥଲ୍)-ପିପରମେଣ୍ଟର କଠିନ ଲମ୍ବ ଦାନା—
Menthal মেন্থল্ मेंथल Peppermint crystals,
(ମେନ୍ଥା—ଅନ୍ୟରୂପ)

ମେନ୍ଦା—ଦେ. ବି—ମେଦା (ଦେଖ)
Mendā Medā (See)

ମେନ୍ଧି(ନ୍ଧି)—ଦେ. ବି—(ସଂ. ମେନ୍ଧିକା)—ମେନ୍ଧିକା (ଦେଖ)
Mendi(ndhi) Mendikā (See)
( ମେନ୍ଧିକା—ଅନ୍ୟରୂପ )

ମେନ୍ଧିକା—ସଂ. ବି ( ମା=ଲକ୍ଷ୍ମୀ; ଶୋଭା+ଇନ୍ଧ ଧାତୁ=ଦୀପ୍ତି ପାଇବା
Mendhikā +କରଣ ଅକ+ଆ )—ମେଞ୍ଚୁଆତି; ମଞ୍ଜିଷ୍ଠା—
(ମେନ୍ଧୀ—ଅନ୍ୟରୂପ) A plant or shrub from the leaves of which a red dye is prepared for staining the palm, nails and beard; the privet; the Indian madder; Rubia Cordifolia.

ମେପ୍ (ଧାତୁ)—ସ—୧ । ଗମନ କରିବା—1. To go. ୨ । ଗତି
Mep (root) କରିବା—2. To move. ୩ । ସେବା
କରିବା—2. To serve.

ମେପ୍—ବୈଦେ. ବି ( ଇଂ. ମାପ୍ )—କାଗଜରେ ଅଙ୍କା ହୋଇଥିବା
Mep ম্যাপ मैप ଭୂପୃଷ୍ଠର ନକ୍ସା—Map.

ମେବଚ୍ଛ—ଦେ ( ପ୍ରାଚୀନ ) ବି—ବୃହତ୍ ସଂଖ୍ୟା ବିଶେଷ; ଅର୍ବୁଦ ସଂଖ୍ୟା
Mebachha —A big number. [ ଦ୍ର— ସଂସ୍କୃତରେ 'ମେବଚ୍ଛ' ଶବ୍ଦ କୌଣସି ଉଚ୍ଚ ସଂଖ୍ୟା ପ୍ରତି ବ୍ୟବହାର୍ଯ୍ୟ ହେବା ଦେଖାଯାଏ ନାହିଁ । କିନ୍ତୁ ଗୋଟିଏ ସଂସ୍କୃତ ଶ୍ଳୋକରେ ସଂଖ୍ୟାମାନଙ୍କ ନାମ କରାଯାଇ ଅଛି—'ଏକଂ ଦଶଂ ଶତଞ୍ଚୈବ ସହସ୍ର ମଯୁତଂ ତଥା, ଲକ୍ଷଂ ଚ ନିଯୁତଂ ଚୈବ କୋଟି ରର୍ବୁଦ ମେବଚ ।' ଏହି ଶ୍ଳୋକର 'ମେବଚ' ଶବ୍ଦକୁ କୌଣସି ସଂସ୍କୃତଜ୍ଞ ଲେଖକ 'ମେବଚ୍ଛ' କରି ଉର୍ଦ୍ଧ୍ୱ ସଂଖ୍ୟା ବିଶେଷକୁ ଲକ୍ଷ୍ୟ କରିଥିବା ଅନୁମିତ ହୁଏ ।]

ମେବା(ୱା)—ବୈଦେ. ବି ( ଫା. ମେୱା)—ମେଉଆ ( ଦେଖ )
Mebā(wā) Meuā ( See )
[ ଉ—ହେଉଅଛି ଭାଗ୍ୟ ଭଲ ମେବା ନାନା । ରାଧାନାଥ. ଦରବାର । ]

ମେବା(ୱା)ର—ଦେ. ବି—ମିବାର ( ଦେଖ )
Mebā(wā)r Mibāra ( See )

ମେମ୍—ବୈଦେ. ବି ( ଇଂ. ମାଡାମ୍—Madam—ର ଇଂରାଜୀ
Mem ସାଙ୍କେତିକ ମାଅମ୍—maam)—୧ । ସାହେବାଣୀ;
মেম ଇଉରୋପୀୟା ସମ୍ଭ୍ରାନ୍ତ ମହିଳା; ବିବି—1. A European
मेम lady. ୨ । ଅତ୍ୟନ୍ତ ସଭ୍ୟତାମଣ୍ଡିତା ଭାରତୀୟା ସ୍ତ୍ରୀ—
2. An Indian lady who has imbibed western dress. ୩ । ତାସ୍ ଖେଳର ୧୨ ସଂଖ୍ୟକ ମେମ୍ ଚିତ୍ର ଯୁକ୍ତ ତାସ—3. The queen card in card play.

ମେମ୍ ସାହେ(ହି)ବ—ବୈଦେ.ବି (ଦ୍ୱନ୍ଦ୍ୱ, ଇଂ.ମେମ୍+ଫା. ସାହେବ୍)
Mem sāhe(hi)ba —୧ । ମେମ୍ ଓ ସାହେବ—1. An
মেম সাহেব European lady and gentleman.
मेम साहेब ୨ । ଇଉରୋପୀୟା ଭଦ୍ର ମହିଳା—
2. An European lady.

ମେମନ୍—ବୈଦେ. ବି ( ଆ. ମୋମିନ୍=ଧର୍ମନିଷ୍ଠ ମୁସଲମାନ୍ )—
Meman ମଇମନ୍; ଭାରତର ବମ୍ବେ ଉପକୂଳବାସୀ ମୁସଲମାନ୍
মেমন ଜାତି ବିଶେଷ—The Kutchhee Memmons;
मेमन; मोमीन a sect of Mahomedans of Western India.

ମେମୋ—ବୈଦେ. ବି ( ଇଂ. ମେମୋରାଣ୍ଡମ୍‌ର ସଂକ୍ଷିପ୍ତ ଆକାର )—
Memo মেমো मेमो ସ୍ମାରକ ଲିପି—Memo.

ମେମୋରା(ରେ)ଣ୍ଡମ୍—ବୈଦେ. ବି ( ଇଂ )—ଯାଦଦାସ୍ତ; ସ୍ମାରକ ଲିପି
Memora(re)ndam —Memorandum.
মেমোরাণ্ডম मेमोरेंडम

ମେମୋରିଅ(ଆ)ଲ୍—ବୈଦେ. ବି ( ଇଂ )—୧ । ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କ
Memoria(ā)l ପଠାଯିବା ଆପତ୍ତି ପତ୍ର—1. Memorial.
মেমোরিআল ବୈଦେ. ବିଣ ( ଇଂ )—ସ୍ମରଣାର୍ଥ ନିର୍ମିତ—
मेमोरियल Memorial. ( ଯଥା—ସମ୍ବଲପୁରର ଭିକ୍ଟୋରିଆ ମେମୋରିଅଲ୍ ହଲ । )

ମେୟ—ସଂ. ବିଣ ( ମା ଧାତୁ=ମାପିବା+କର୍ମ ଯ )—୧ । ପରିମାଣ
Meya କରାଯିବାର ଯୋଗ୍ୟ—1. Measurable. ୨ ।
ଯାହା ମାପ କରାଯିବ—2. About to be measured.

ମେୟୋ—ଦେ. ବି—ଭାରତବର୍ଷର ଜଣେ ବଡ଼ଲାଟ—Lord Mayo,
Meyo the Governer General and Viceroy
মেয়ো मेयो of India ( 1869—72).
[ଲର୍ଡ୍ ମେୟୋ—ଅନ୍ୟରୂପ] [ଦ୍ର—ଲର୍ଡ୍ ମେୟୋ ୧୮୬୯ରୁ୧୮୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତବର୍ଷର ଗଭର୍ଣ୍ଣର୍ ଜେନେରଲ୍ ଥିଲେ। ଏ ବନ୍ଦୀନିବାସ ଅଣ୍ଡାମାନ୍ ଦ୍ୱୀପ ବା 'କଳାପାଣି'କୁ ପରି-ଦର୍ଶନାର୍ଥ ଯାଇଥିବା ସମୟରେ ସେଠାର ଗୋଟିଏ ବନ୍ଦୀ ସେର୍‌ଅଲ୍ଲୀ ଏହାଙ୍କୁ ଛୋରା ଭୁଷି ମାରି ପକାଇଥିଲା। ଏହାଙ୍କ ଅମଳରେ ଭାରତରେ ପ୍ରାଥମିକ ଶିକ୍ଷାର ବିସ୍ତାର ହୋଇଥିଲା ଏବଂ ଶ୍ରୀମତୀ ଭିକ୍ଟୋରିଆ ମହାରାଣୀଙ୍କ ଦ୍ୱିତୀୟ କୁମାର ଡିଉକ୍ ଅଫ୍ ଏଡିନ୍‌ବରା ଭାରତକୁ ଆସିଥିଲେ। ଦେଶୀୟ ରାଜକୁମାରମାନଙ୍କୁ ଉଚ୍ଚ ଶିକ୍ଷା ଦେବାପାଇଁ ଏ ଆଜମିର୍ ଠାରେ ଗୋଟିଏ ରାଜକୁମାର କଲେଜର ପ୍ରତିଷ୍ଠା କରିଥିଲେ।]

ମେର୍‌ଶିଙ୍ଗା—ପ୍ରାଦେ (ଗଞ୍ଜାମ) ବି—ଭୃରୁସଙ୍ଗ (ଦେଖ)
Mer-śiṅgā Bhūrusaṅga (See)

ମେରଦା—ଦେ. ବି—୧। ମେର୍ଦ୍ଦା (ଦେଖ)—1. Merddā (See)
Meradā ୨। ଗଞ୍ଜାମ ଅଠଗଡ଼ ଜମିଦାରୀର ପଥୁର ନାମକ ସ୍ଥାନରେ ତିନି ଗୋଟି ବଡ଼ ଖମ୍ବ ଉପରେ ପ୍ରତିଷ୍ଠିତ ମନ୍ଦିର (ପ୍ରାଚୀନ ଉତ୍କଳ)—2. A temple which stands on three tall pillars at Pathur in the estate of Athgarh in Ganjam.

ମେରି—ବୈଦେ. ବି. (ଇଂ. ମେରୀ)—୧। ଯୀଶୁଖ୍ରୀଷ୍ଟଙ୍କ କୁମାରୀ ମାତା—
Meri মেরী मेरी 1. Virgin Mary. ବୈଦେ. ବି.—(ଫା.)—୨। ମୋର—2. Mine. [ଦ୍ର—ଏହା ଫାରସୀ ବା ଉର୍ଦ୍ଦୁ ଭାଷା; ମେଁ (ମୁଁ) ଶବ୍ଦର ତୁଚ୍ଛାର୍ଥକ, ଷଷ୍ଠୀ ବିଭକ୍ତି, ୧ମ ପୁରୁଷ ଏକବଚନ ସ୍ତ୍ରୀଲିଙ୍ଗ ଆକାର; ପୁଂଲିଙ୍ଗ—ମେରା।] ଦେ. ବି—(ସଂ. ମେଧି)—୩। ମେଢ଼ି ଖମ୍ବ (ଦେଖ)—3. Merdhi khamba (See)
[ଉ—ଯେମନ୍ତ ବଳୀବର୍ଦ୍ଦଗଣ, ମେରିରେ ଭ୍ରମନ୍ତି ବନ୍ଧନ।
মেই मेह ଜଗନ୍ନାଥ, ଭାଗବତ।]

ମେରିଆ ଦେ. ବିଣ—ମେରି ଖମ୍ବ ମୂଳେ ଯୋଚା ହୋଇଥିବା (ବଳଦ)
Meriā मेहिया (a bullock) Yoked just near the
মেরিয়া मेरिया central post of a threshing floor at the beginning of the tether.
ଦେ. ବି—୧। (ସଂ. ମେଧି; ମେରି ଖୁଣ୍ଟରେ ବାନ୍ଧି ମନୁଷ୍ୟଙ୍କୁ ହାଣୁ ଥିବାରୁ)—ନରବଳି—1. Human sacrifice. [ଉ—ମେରିଆ ଶୋଣିତେ ନାରତେ ପୂରିତ ଯାଉ ଓଟର। ରାଧାନାଥ, ଉଷା।] ୨। ଭୂମି ଦେବତାଙ୍କୁ ସନ୍ତୁଷ୍ଟ କରି ଫସଲ ପାଇବା ପାଇଁ କନ୍ଧମାନେ ପୂର୍ବେ ଦେଉ-ଥିବା ନରବଳି—2. Human victim formerly offered as sacrifice to the Earth Goddess by the Khonds. [ଦ୍ର—ଗଡ଼ଜାତରେ କନ୍ଧମାନେ ଦେଉଥିବା ନରବଳିକୁ ଇଂରାଜମାନେ ବନ୍ଦ କଲେ। କନ୍ଧମାନେ ବ୍ରାହ୍ମଣ ଓ କନ୍ଧ ଛଡ଼ା ଅନ୍ୟ ଜାତିର ଲୋକଙ୍କୁ ଧରି ନେଇ ଅତି ନୃଶଂସଭାବରେ ତାକୁ ଖଣ୍ଡ ଖଣ୍ଡ କରି କାଟି ବଳିରୂପେ ବଧ କରୁଥିଲେ।] ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି—(ସ୍ତ୍ରୀମାନଙ୍କର ପୁରୁଷମାନଙ୍କୁ ଦେବା ଗାଳି ବିଶେଷ)—ମେରିଆ ବା ନରବଳିରୂପେ ହାଣ ଖାଇବା ଉପଯୁକ୍ତ—(a term of abuse used by females to males)—Fit to be killed.

ମେରିଆ ଏଜେନ୍‌ସି—ଦେ. ବି—କନ୍ଧମାଳରେ ପ୍ରଚଳିତ ମେରିଆ ପ୍ରଥାକୁ
Meria ejen-si ବନ୍ଦ କରିବା ପାଇଁ ଇଂରାଜ ସରକାରଙ୍କ ନିଯୁକ୍ତ କର୍ମଚାରୀବର୍ଗ—The Meria Agency started by the English to stop the human sacrifice in the Khondmahals.

ମେରିଆ ଦେବା—ଦେ. କ୍ରି—ନରବଳି ଦେବା—To offer hu-
Meriā debā नरबलि দেওয়া man sacrifice to a
बली देना Goddess. [ଦ୍ର—କନ୍ଧ ସମାଜରୁ ଏହି ମେରିଆ ଦେବା ପ୍ରଥା ୧୮୪୧ ସାଲର ୨୧ ଆଇନ ଅନୁସାରେ ରହିତ କରି ଯାଇଅଛି।]

ମେରିଖୁଣ୍ଟ(ଣ୍ଟି)—ଦେ. ବି—ମେଢ଼ି ଖମ୍ବ (ଦେଖ)
Merikhuṇṭa (ṇṭi) Merdhi khamba (See)
মেইখুন্টি मेहखुगट [ମେରି ଖ(ଖୁ)ମ୍ବ—ଅନ୍ୟରୂପ]

ମେରି ଜାନ୍—ବୈଦେ. ଅ. (ଫା.)—(ପ୍ରେମିକ ପ୍ରେମିକାଙ୍କର ପ୍ରେମ-
Merijān ସମ୍ବୋଧନ) ହେ ମୋ ଜୀବଧନ!—A term of
মেরিজান मेरि जान endearment addressed to a lover (lit. as dear as) my life.

ମେରିନୋ(ନା)—ବୈଦେ.ବି—(ପର୍ତ୍ତୁଗୀଜ୍-ମେରିନୋ)—ସ୍ପେନ୍ ଦେଶୀୟ
Merino(nā) ମେରିନୋ ନାମକ ମେଷ ଜାତୀୟ ପଶୁର ଲୋମଦ୍ୱାରା
মেরিনো मेरिनो ପ୍ରସ୍ତୁତ ବସ୍ତ୍ର—Cloth made from the wool of the merinosheep of Spain.

ମେରି ବଳଦ—ଦେ. ବି.—ମେଢ଼ି ଖୁଣ୍ଟ ପାଖରେ ଲାଗି ଥିବା ବଳଦ—
Meri baḷada The ox tethered just beside the central threshing post.

ମେରି ବାପ୍—ବୈଦେ.—(ଫା ମେରା ବାବାରେ)—(ଭୟ, ବିସ୍ମୟାଦିସୂଚକ
Meri bāp ଡାକ)—ଅରେ ମେରି ବାପ୍ ରେ! ବାପ୍ ରେ ବାପ୍!
মেরি বাপরে मेरा बाबारे ଅଲୋ ବୋପା ଲୋ!
(ମେରି ବାପ୍‌ରେ—ଅନ୍ୟରୂପ) (an exclamation of surprise or fear) Oh my Father!

ମେରି ମୂଳ—ଦେ. ବି—ମେଢ଼ି ଖୁଣ୍ଟର ମୂଳଭାଗ—
Meri mūḷa The foot of a threshing post.
মেইখুণ্টিরগোড়া मेहकाजड़

ମେରି ଶିଙ୍ଗା—ପ୍ରାଦେ. (ଗଡ଼ଜାତ)—ବି—ଭ୍ରୁସୁଙ୍ଗ (ଦେଖ)।
Meri śiṅgā Bhrusuṅga (See)

ମେରୁ—ସଂ. ବି—(ମି ଧାତୁ=କ୍ଷେପଣ କରିବା+କର୍ତ୍ତୃ. ରୁ; ଉଚ୍ଚତା
Merū ହେତୁ ଏହା ସୂର୍ଯ୍ୟକିରଣକୁ ନିକ୍ଷେପ କରେ)—୧।
ଧ୍ରୁବଲୋକ ସୁମେରୁ ପର୍ବତ—

1. A mythological mountain to the north of India. [ଦ୍ର—ହିନ୍ଦୁ ପୁରାଣ ମତରେ ସପ୍ତ-ଦ୍ୱୀପା ପୃଥିବୀର ୭ ଗୋଟି ଦ୍ୱୀପର କେନ୍ଦ୍ର ସ୍ଥଳରେ ଏ ପର୍ବତ ଅବସ୍ଥିତ । ସାତ ଗୋଟି ଯାକ ଦ୍ୱୀପ ଏହାର ପାଖୁଡ଼ା ପରି । ଏହାର ଉଚ୍ଚତା ୮୪୦୦୦ ଯୋଜନ ଓ ତହିଁ ମଧ୍ୟରୁ ୧୬୦୦୦ ଯୋଜନ ଭୂମି ମଧ୍ୟରେ ପୋତା ଅଛି । ଏହାର ଆକାର ବିଷୟ ନାନା ନାନା ପୁରାଣ ଗ୍ରନ୍ଥ ବର୍ଣ୍ଣନା କରି ଅଛନ୍ତି । ଗଙ୍ଗା ସ୍ୱର୍ଗରୁ ପ୍ରଥମେ ଏହାର ଶୃଙ୍ଗରେ ପଡ଼ି ପରେ ୪ ଗୋଟି ଧାରରେ ପୃଥିବୀକୁ ବହି ଆସି ଅଛନ୍ତି । ଏହାର ଶୃଙ୍ଗରେ ଋଷି ଓ ଦେବଗଣଙ୍କ ଦ୍ୱାରା ପରିବେଷ୍ଟିତ ବ୍ରହ୍ମା ବାସ କରନ୍ତି । ଆଧୁନିକ ଅନୁମାନ ଅନୁସାରେ ଏହା ହିମାଳୟର ଉତ୍ତରସ୍ଥ 'ପାମୀର' ନାମକ ମାଳଭୂମି ଅଟେ । ପୁରାଣମତରେ ଏହାର ଚାରି ପାଖରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବାସ କରନ୍ତି; ଏହାର ଶୃଙ୍ଗ ସ୍ୱର୍ଣ୍ଣମୟ; ଏହି ପର୍ବତ ଉପରିଭାଗର ପୂର୍ବାଂଶରେ ଇନ୍ଦ୍ରଙ୍କର ଅମରାବତୀ ପୁରୀ, ଅଗ୍ନିକୋଣରେ ଅଗ୍ନିଙ୍କର ତେଜସ୍ୱିନୀ ପୁରୀ, ଦକ୍ଷିଣରେ ଯମଙ୍କର ବୈବସ୍ୱତୀ ପୁରୀ, ଏହିପରି ଭିନ୍ନ ଭିନ୍ନ କୋଣରେ ଭିନ୍ନ ଭିନ୍ନ ପୁରୀ ଅଛି । ] ୨ । ହିମାଳୟ —2. The Himalayas. ୩ । ଭୂମଣ୍ଡଳର ଉତ୍ତର ଓ ଦକ୍ଷିଣ ପ୍ରାନ୍ତ—3 The north and south poles of the earth; the poles of the globe. ୪ । ମେରୁ ହାଡ଼; ବେଁଗିରି ହାଡ଼—4. The spine; vertebral column. ୫ । ମେରୁମାଳି; ଜପମାଳାର ଶିଖରେ ଥିବା ପ୍ରଧାନ ଗଣ୍ଠି ବା ମାଳି—5. The principal bead of the rosary. ୬ । ଖଡ୍ଗାଦିର ମୁଷ୍ଟି ପ୍ରଦେଶ—6. Hilt of a sword. ୭ । କରମାଳାର ଅଙ୍ଗୁଳି ପର୍ବ ବିଶେଷ—7. One of the finger joints used as a rosary. ୮ । ହାରର ମଧ୍ୟମଣି—8. The middle gem of a necklace. ଦେ. ବି ( ସଂ. ମେରୁ )—୧ । ମେରି ( ଦେଖ )—1. Meri ( See ) [ଉ—ଦେଖ ଆସିଲାଣି ଏବେ ଧ୍ରୁବ ମେରୁ ବୁଲି, ମେରୁନରେ ସପ୍ତର୍ଷିର ସୁବର୍ଣ୍ଣ ବେଙ୍ଗଲା । ରାଧାନାଥ. ମହାଯାତ୍ରା । ] ୨ । ( ସଂ. ମେରୁ ) ମାଳାରେ ଥିବା ପ୍ରଧାନ ମାଳି—2. The principal ball of a garland. [ଉ—ଶତେ ଅଷ୍ଟ ଗୋଟି ଯେ ତୁଳସୀମାଳ କରି, ମେରୁ ବୋଲି ଏକଗୋଟି ସର୍ବ ପରେ ଭରି । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା । ] ୩ । ମଦର ବା ଗଞ୍ଜେଇ ଧୂଆଁ ଖାଇବାର ଚିଲମ୍—3. The fire-pot placed on the head of the hookah for smoking opium ୪ । ( ଶରୀର ଭେଦ ) ଅଶାନ୍ତ ପବନ—4. The last mortal gasps of a person. ଦେ. ବିଣ—ଅତି ବଡ଼; ପ୍ରକାଣ୍ଡ—Very big; tremendous; big-sized. [ଉ—ମହିମା ଅଗୋଚର ମେରୁ । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା । ]

मेरी
मेहीं
मेरू
मेरू; सुमेरनी
कलके
चिलम

ମେରୁ ଉପାସ—ସଂ. ବି—ପଣାସଂକ୍ରାନ୍ତି ଦିନ ପାଳନ କରାଯିବା ଉପାସ—
Meru upāsa Fasting observed of the 1st day of the month of 'Mesha'.

ମେରୁକ—ସଂ. ବି ( ମେରୁ + ଭବାର୍ଥେ କ )—ଯକ୍ଷଧୂପ; ଝୁଣା—
Meruka Resin.

ମେରୁ ଖୁଣ୍ଟ(ଣ୍ଟି,ମ୍ବ)—ଦେ. ବି—ବେଙ୍ଗଲା ପକାଇବା ପାଇଁ ଖଳାମଝିରେ ପୋତା ହେବା ଖୁଣ୍ଟ; ମେଢ଼—
Meru khunṭa(nṭi,mba) The central post of a threshing floor.
मेइँधी
मेहखुंट
(ମେରୁସ୍ତମ୍ଭ—ଅନ୍ୟରୂପ)

ମେରୁ ଗ୍ରନ୍ଥି—ସଂ. ବି ( ବୈଦ୍ୟକ )—ବୃକ୍କକ; ମୂତ୍ରଗ୍ରନ୍ଥି; ମୂତ୍ରାଶୟ—
Meru granthi The kidneys.

ମେରୁ ତେଜଃ—ସଂ. ବି—ଗନ୍ଧର୍ବପୁର ( ଦେଖ )
Meru tejah Gandharbapura ( See )

ମେରୁଦଣ୍ଡ—ସଂ. ବି—୧ । ପିଠିର ବେଁଗିରି ହାଡ଼; ପୃଷ୍ଠବଂଶ—1. The
Merudaṇḍa spine; spinal cord; the vertebral column. ୨ । ( ଭୂଗୋଳ ) ପୃଥିବୀର ଉଭୟ କେନ୍ଦ୍ରକୁ ଭେଦ କରିଥିବା କାଳ୍ପନିକ ସରଳ ରେଖା । ( ଏହାର ଚାରିପାଖରେ ପୃଥିବୀ ପଶ୍ଚିମରୁ ପୂର୍ବଆଡ଼କୁ ପ୍ରତିଦିନ ବୁଲୁଛି । )—2. The axis of the earth ୩ । ( ଲକ୍ଷଣାର୍ଥ ) କୌଣସି ବସ୍ତୁର ସାରାଂଶ ବା ପ୍ରଧାନ ସାର—3. ( figurative ) The marrow of any thing.

ମେରୁ ଦଣ୍ଡ ବେଦନା—ସଂ.ବି—ବେଁଗିରି ହାଡ଼ର ବଥା—Rachial-
Meru daṇḍa bedanā gia; pain in the spine.

ମେରୁ ଦଣ୍ଡାଧଃ—ସଂ. ବି—ପୃଷ୍ଠବଂଶର ନିମ୍ନ ଭାଗ—The lower
Meru daṇḍādhaḥ extremity of the spine; Canda Equima.

ମେରୁ ଦଣ୍ଡୀ—ସଂ. ବିଣ. ( ବିଜ୍ଞାନ ପରିଭାଷା )—ଯେଉଁ ପ୍ରାଣୀଙ୍କର
Meru daṇḍī ମେରୁଦଣ୍ଡ ଅଛି—Vertibrate (animal)

ମେରୁ ପର୍ବତ—ସଂ. ବି—ମେରୁ ୧ ( ଦେଖ )
Meru parbata Meru 1. (See)

ମେରୁ ମାଳି—ଦେ. ବି. ( ସଂ ମେରୁ + ମାଳା )—ଜପମାଳାର ମଧ୍ୟ
Meru māḷi ମାଳି—The principal bead or head-ball of a rosary.
मेरू, सुमेरनी

ମେରୁ ମୂଳ—ସଂ. ବି—ମେରି ମୂଳ ( ଦେଖ )
Meru mūḷa Meri mūḷa ( See )

ମେରୁ ଯନ୍ତ୍ର—ସଂ. ବି—ଚରଖା; ଅରଟ—
Meru jantra The spinning wheel.

ମେରୁ ଶିଖର—ସଂ. ବି—୧ । ମେରୁ ପର୍ବତର ଶୃଙ୍ଗ—1. The sum-
Meru śikhara mit of the mountain 'Meru.' ୨ । ସ୍ୱର୍ଗ—2. Heaven. (ଉ—ସୁମନାବର ଛାଣିବାରେ ସମାନ ନ ଥିବ ମେରୁ ଶିଖର । ଭକ୍ତ. ପ୍ରେମସୁଧାନିଧି ।)

ମେରୁ ସାବର୍ଣ୍ଣି—ସଂ. ବ—ଚତୁର୍ଦ୍ଦଶ (ମତାନ୍ତରରେ ଏକାଦଶ) ମନୁ
Meru sābarnna (ପ୍ରକୃତବାଦ)—The fourteenth (or eleventh) progenitor of mankind.

ମେରୁ ହାଡ଼—ଦେ. ବ—ପୃଷ୍ଠ ବଂଶ; ବେଁଶିରୁ ହାଡ଼—The spine.
Meru hārda (ଉ—ସ୍ୱର୍ଗ ପକାଇବ ପିଠିର ମେରୁ ହାଡ଼ ।
শিরদাঁড়া रीढ कୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।)

ମେର୍ଦ୍ଦା—ବୈଦେ.ବ. (ପ୍ରା ? ଭୂଲ.ସ. ମୃଦ୍ରାଶି)—୧ । ମାଟି ଅଧର ଉଚ୍ଚ
Merddā ସ୍ତୂପ (ଏହା ଉପରେ ଠିଆ ହୋଇ ଦୂରସ୍ଥ ବସ୍ତୁ ଦେଖାଯାଏ)
(ମେରେଦା—ଅନ୍ୟରୂପ) 1. A high platform or
মাচা mound of earth (erected for observa-
मिंडा, मेड tion). ୨ । ନଈବଢ଼ି ମାଡ଼ୁଥିବା ଅଞ୍ଚଳରେ ଲୋକଙ୍କର ଠିଆ ହୋଇ ବସିବାପାଇଁ ଜମିଠୁ କାଠ ବାଉଁଶର ଉଚ୍ଚ—
2. A machan made of wood or bamboo in flooded areas for easing therefrom during high floods. ୩ । ପ୍ରବଳ ନଈବଢ଼ିରେ ଗ୍ରାମ ଉଦ୍ୟାନଙ୍କରେ ବଢ଼ିପାଣି ପଶିଗଲେ ଗ୍ରାମବାସୀଙ୍କ ଆଶ୍ରୟ ନେବା ପାଇଁ କରାଯାଇଥିବା ମାଟିର ଉଚ୍ଚ ସ୍ତୂପ—3. A high mound of earth raised in flood stricken villages. [ଦ୍ର—ନଈବଢ଼ି ହାର ଗ୍ରାମରେ ପାଣି ମାଡ଼ ଯାଉଥିବା ଅଞ୍ଚଳରେ ସ୍ଥାନେ ସ୍ଥାନେ ଗଭର୍ଣ୍ଣମେଣ୍ଟ ମେର୍ଦ୍ଦା ବାନ୍ଧ ଦେଇଅଛନ୍ତି । ବଳେଷ ବଢ଼ି ହୋଇ ଘର ଦ୍ୱାର ବୁଡ଼ି ଗଲେ ଲୋକେ ଆସି ଏ ମେର୍ଦ୍ଦା ଉପରେ ଆଶ୍ରୟ ନିଅନ୍ତି ।] ଗ୍ରାଦେ. (ଗଞ୍ଜାମ) ବ—ଅନ୍ତୁ—Earthen roof.

ମେର୍ଦ୍ଦା ଘର—ଗ୍ରାଦେ. (ଗଞ୍ଜାମ) ବ—ଅନ୍ତୁ ଘର—Thatched
Merddā ghara house having an inner earthen roof.

ମେର୍ଦ୍ଦା ବାନ୍ଧିବା—ଦେ. କ୍ରି—ମାଟି ଅଧର ସ୍ତୂପ ପ୍ରସ୍ତୁତ କରିବା—
Merddā bāndhibā To raise a high platform
মাচা বাঁধা मेड बाँधना or mound.

ମେର୍ଢା—ଗ୍ରାଦେ. ବ. (ସ. ମେଧି)—୧ । (ବାମଣ୍ଡା) ଅଖୁ ଗଛକୁ ସିଧା
Merhā ରଖିବା ପାଇଁ ବ୍ୟବହୃତ ସରୁ ବାଉଁଶ ଖୁଣ୍ଟି—
1. A long, straight and slender bamboo used as a trellis to make a sugar cane plant grow up straight. ୨ । (ଗଡ଼ଜାତ, ସମ୍ବଲପୁର) କାଠର ବା ବାଉଁଶର ଠେଙ୍ଗା—2. A rod or cudgel of wood or bamboo. ୩ । ମେଢ଼ା (ଦେଖ)—3. Merdhā (See)

ମେଲ୍—ବୈଦେ. ବ. (ଇଂ. ମେଲ୍)—ଚିଠି ପତ୍ରାଦି ବୋହିବାର ଡାକ—
Mel Post for carrying letters etc; mail.
মেল मेल

ମେଲ୍ ଗାଡ଼ି—ଦେ. ବ—୧ । ଯେଉଁ ଗାଡ଼ି ଦ୍ୱାରା ଡାକ ବୁହାଯାଏ—
Mel gārdi 1. Mail cart. ୨ । ଡାକ ବୁହାଯିବା ରେଳ
মেল গাড়ি गाड़ी - 2. Railway carriage for carry-
मेल गाडि ing mail; ମେଲ୍ ଟ୍ରେନ୍ [ଦ୍ର—ଏହିପରି ମେଲ୍ ଜାହାଜ ଓ ମେଲ୍ ବୋଟ ଅଛି ହୁଏ ।]

ମେଲ୍ଛା—ଗ୍ରାଦେ. ବ—୧ । (ସମ୍ବଲପୁର) ଛେଳିଛୁଆ—1. Kid.
Mel-chhā ୨ । (ଗଡ଼ଜାତ) ଖାସି ଛାଗ—2. Castrated animal (goat or sheep). ଗ୍ରାଦେ. (ବାମଣ୍ଡା) ବିଣ.
—ଖାସୀ ହୋଇଥିବା (ଜୀବ)—Castrated (animal).

ମେଲ୍ ରନ(ନା)ର—ବୈଦେ. ବ. (ଇଂ.ମେଲ୍ ରନର)—ଯେଉଁ ମନୁଷ୍ୟ
Mel rana(nā)r ବା ପିଅଦାମାନେ ଡାକ ଚଠି ଅଧ ଜାଗାରେ
মেল রনার ବୋହି ଦୌଡ଼ନ୍ତି—Mail runner.
मेल रनर

ମେଲ୍ଷ୍ଟ୍ରାମ—ବୈଦେ. ବ. (ନାମ) (ଡଚ; ମେଲ୍ ଷ୍ଟ୍ରମ୍=ଜଳାବର୍ତ୍ତ)—
Mel shtrām ନରୱେ ଦେଶର ଉତ୍ତରପଶ୍ଚିମରେ ସମୁଦ୍ର
মেল ষ্ট্রাম ମଧ୍ୟରେ ଥିବା ଗୋଟିଏ ଅତି ଭୟଙ୍କର ଓ ବହୁଦୂର-
मल स्ट्राम ବ୍ୟାପୀ ଜଳାବର୍ତ୍ତ—Maelstrom; a celebrated strong whirlpool off the coast of Norway. [ଦ୍ର—ଏହି ଜଳାବର୍ତ୍ତର ଶୋଷ ଏପରି ପ୍ରବଳ ଯେ, ଏଥିର ସୀମାର କୋଶାଧିକ ସ୍ଥାନକୁ ଜାହାଜ ସ୍ପର୍ଶ କଲେ ତାହା ଘୂରିବାକୁ ଲାଗି ଶକ୍ତି ତୋଡ଼ରେ ଟାଣି ହୋଇ ଯାଇ ଭିତରେ ପଡ଼ି ବୁଡ଼ିଯାଏ ଏବଂ ବହୁ ଦୂରରେ ଯାଇ ପୁଣି ପାଣି ଉପରକୁ ଉଠେ । ସମଗ୍ର ପୃଥିବୀରେ ଏପରି ଭୟଙ୍କର ଦୃଶ୍ୟ ଅନ୍ୟ ନାହିଁ ।]

ମେଳ—ସ. ବ. (ସ. ମିଲ୍ ଧାତୁ+ଭାବ. ଅ)—୧ । ମିଳନ; ସାକ୍ଷାତ—
Mela 1. Meeting; interview. ୨ । ଐକ୍ୟ—2. Unity
মেল ଦେ. ବ—୧ । ଲୋକ ସମାଗମ—1. A gathering
मेल of people; crowd. (ଉ—ଭବ୍ୟ ପବନ ସୃଷ୍ଟି ସେ ମେଳରେ ପ୍ରକଟି, ଗୋଲେ ସେମାନଙ୍କ ମୂର୍ଚ୍ଛା ତୁଟି । ଉପେ. ବୈଦେହୀଶବିଳାସ ।) ୨ । ପକ୍ଷ; ଦଳ—2 Crowd;
দল assembly; party. (ଉ—ଏଥି ଅନନ୍ତରେ ଉଠିଣ ଋଷି
झुंड ମେଳ । କୃଷ୍ଣସିଂହ. ମହାଭାରତ. ବନ ।) ୩ । ସୌହାର୍ଦ୍ଦ୍ୟ—
মেল 3. Friendship; good feeling. ୪ । ସଙ୍କୀର୍ତ୍ତନ,
मेल ଥିଏଟର, ଯାତ୍ରା ଅଦ ପାଇଁ ଗଠିତ ଦଳ—4. A
দল party formed for performing plays
मल, मिलाप etc. ୫ । ମନର ମିଳନ—5. Agreement;
মেল concord. ୬ । ବିବାଦ ପରେ ମିଳନ—6. Recon-
मल ciliation. ୭ । ମେଳ; ବିଦ୍ରୋହ—7. Conspiracy;
मट, गुट mutiny. ୮ । ଦଳ; ଗୋଷ୍ଠୀ—8. Congregation; assemblage. (ଉ—ବଣିଜାରୁ ମେଳରେ ବ୍ରାହ୍ମଣେ ତ ଥିଲେ । କୃଷ୍ଣସିଂହ. ମହାଭାରତ. ବନ ।) ୯ । ସୁସଜ୍ଜିତ
মেলা ଦ୍ରବ୍ୟ ସମୂହ—9. A well-arranged lot of
मेल things. ୧୦ । ନମୁନା ବା ଆଦର୍ଶ ପରି ଅନ୍ୟ ବସ୍ତୁ—
10. A thing similar to the specimen or model. ୧୧ । ସହବାସ—11. Union; cohabitation. (ଉ—କଷ୍ଟେ ରକ୍ଷିବ ଦେବକୁଳ, ଭୁ ସ୍ୱାମୀସଙ୍ଗେ

ନର ମେଳ । ଜଗନ୍ନାଥ. ଭାଗବତ ।) ୧୨ । ଯାଗୁଡ଼ି ଆଦି ଅଳଙ୍କାରର ବନ୍ଧ ସ୍ୱର୍ଣ୍ଣର ଏକ ସାଜ—12. A set of some loose ornaments. (ଉ—ମାଳେ ଯାଗୁଡ଼ି ବଡ଼,ନା ମେଳେ ଯାଗୁଡ଼ି ବଡ଼ ?—ଢଗ ।) ପ୍ରାଦେ. (ହିନ୍ଦୁଭୂମି) ବି-କୌଣସି ଦେବତାଙ୍କ ଉତ୍ସବ ବିଶେଷ; ଯାତ୍ରା —The festival of a Deity. ଦେ. ବିଣ—୧ । ଯୁକ୍ତ; ମିଳିତ—1. United; associated. (ଉ—ଫୁଟିଛନ୍ତି କମଳିନୀଙ୍କ ଉତପଳ,କୁମୁଦ କୁଳରେ ତ ହୋଇଛନ୍ତି ମେଳ । କୃଷ୍ଣସିଂହ. ମହାଭାରତ. ବନ ।) ୨ । ବନ୍ଧୁତା ସୂତ୍ରରେ ମିଳିତ—2 United by a tie of friendship or blood-relationship.

জোড়া, মেল
जोडी

(ଉ—ଲଙ୍କା ଅଧିକାରୀ, ସୀତା ନେଲା ହରି, ବାଳକ ଶ୍ରୀରାମ ମାତ୍ର । ହୋଇ ସୁଗ୍ରୀ ମେଳ, ବାନ୍ଧି ସିନ୍ଧୁ ଜଳ, ପ୍ରବେଶ ସୁବଳ ଗିରି । ବିଶ୍ୱନାଥ. ବିଚିତ୍ର ରାମାୟଣ ।)

**ମେଳକ**—ସଂ. ବି. ( ମେଳ + ସ୍ୱାର୍ଥେ. କ )—୧ । ସଙ୍ଗମ; ମିଳନ—1. Union; meeting. ୨ । ସମୂହ;ଜନସମାଗମ; ମେଳା—2 Collection; congregation; fair. ସଂ. ବିଣ. ( ମିଲ୍ ଧାତୁ + ଣିଚ୍ ଅକ )—୧ । ଯେ ଦୁଇ ଜଣଙ୍କୁ ମିଳିତ କରାଏ—1. Causing or bringing about a union. ୨। ସାମାଜିକ—2. Social. ଦେ.ବି. (ସଂ.ମେଳ)—ଭାବୀ ବର କନ୍ୟାଙ୍କ ଜାତକ ମଧ୍ୟରେ ଗ୍ରହାଦିର ପରସ୍ପର ଅନୁକୂଳତା—Concord or agreement between the horoscopes of the proposed bride and bridegroom.

Melaka
কোষ্ঠীর মেল
मेलक(न), तिलक

[ ଦ୍ର—ବିବାହ ପୂର୍ବରୁ ବରକନ୍ୟାଙ୍କର କୋଷ୍ଠୀର ଗ୍ରହ ନକ୍ଷତ୍ରାଦି ଗଣନା କରି 'ମେଳକ' ଦେଖାଯାଏ । ବରର ଓ କନ୍ୟାର ଗଣ ମିଳନ ( ନର, ରାକ୍ଷସ, ଦେବ ), ବରକନ୍ୟାଙ୍କର ନାଗନାଡ଼ି, ଅଷ୍ଟଷଡ଼ଷ୍ଟକ, ରାଜଯୋଟକ ଆଦି ଦେଖିବାକୁ ହୁଏ । ଏହିପରି ଅନେକଗୁଡ଼ିଏ ବିଷୟ ଦେଖାଯାଇ ଦୁଇ ଜଣଙ୍କର ଜାତକ 'ଯୁଟିଲେ' ବା 'ମେଳକ ହେଲେ' ବିବାହ ସ୍ଥିର ହୁଏ । ବର କନ୍ୟାଙ୍କର ନକ୍ଷତ୍ର ଗଣନାରେ ଓ ଗଣ ଗଣନାରେ ନାଗନାଡ଼ୀ, ନର-ରାକ୍ଷସ ଏବଂ ରାଶିଗଣନାରେ ଅଷ୍ଟଷଡ଼ଷ୍ଟକ ହେବାର ଦେଖାଗଲେ ବିବାହ ନିଷିଦ୍ଧ । 'ରାଜଯୋଟକ' ଯୋଗ ଦେଖାଗଲେ ଅନ୍ୟ କିଛି ମେଳକ ନ ଦେଖି ବିବାହ ସ୍ଥିର କରାଯାଏ । ] ଦେ. ବିଣ—୧ । ମିଳିତ; ଏକତ୍ର—1. United. [ ଉ—ବିଦ୍ୟୁ ସହକାର ଯେ ଭ୍ରମରେ ମେଳକ । ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ] ୨ । ଭେଟିବା; ହାବୁଡ଼ିବା—2. Encountered. [ ଉ—ବଢ଼ି ନୀ. ନଦୀ ଦେଉଳକରେ ମେଳକ, ହୋଇଣ କଣ୍ଟକିତ ଯଥା । ଭଞ୍ଜ. ବୈଦେହୀଶବିଳାସ । ]

মেল, মিলিত
मेल

**ମେଳକ ଦେଖିବା**—ଦେ.କ୍ରି—ବର କନ୍ୟାଙ୍କର ଜାତକ ଦେଖି ମେଳକ ପରୀକ୍ଷା କରିବା—To examine the horoscopes of a boy and a girl to see if the astrological datas tally favourably

Melaka dekhibā
(ମେଳକ ବୁଝିବା—ଅନ୍ୟରୂପ)
ঠিকুজি মিলান
मेलक देखना

**ମେଳକ ପଡ଼ିବା**—ଦେ. ବି—ବର କନ୍ୟାଙ୍କ ଜାତକ ଗଣନାରେ ଦୁଇ ଜଣଙ୍କର ଗ୍ରହ ନକ୍ଷତ୍ରାଦି ବିବାହ ପକ୍ଷରେ ଅନୁକୂଳ ଥିବାର ଦେଖାଯିବା—The tallying or agreemant between the astrological data of the proposed bride and bridegroom which are found to be favourable for a union between the two.

Melaka pardibā
ମେଳକ ଯୁଟିବା } ଅନ୍ୟରୂପ
ମେଳକ ହେବା }
ঠিকুজি মিলা
मेलक पडना, तिलक पडना

**ମେଳ କରିବା**—ଦେ. କ୍ରି—୧ । ମିଳାଇବା; ମେଳାଇବା; ଦୁଇ ଜଣଙ୍କ ମିଳିତ କରାଇବା—1. To bring about a meeting,union or interview between two persons.

Mela karibā
(ମେଳ କରାଇବା—ଅନ୍ୟରୂପ)
মে মী)ল কর
मेल करना

୨ । ଦୁଇ ଜଣଙ୍କର ବିବାଦ ଭାଙ୍ଗି ସୌହାର୍ଦ୍ଦ୍ୟ ସ୍ଥାପନ କରିବା—2. To bring about reconciliation between two opposing parties. ୩ । ମିଶାଇବା; ମିଶ୍ରିତ କରିବା—3. To mix up; to mix together. ୪ । ମିଳିତହେବା; ମିଶିବା—4. To be associated with [ ଉ—ଶୁଣି ହେବ ଭବ ଜଳ, ସାଧୁ ସଙ୍ଗରେ କର ମେଳ । ପ୍ରାଚୀ. କର୍ଣ୍ଣମାହାତ୍ମ୍ୟ ।]

**ମେଳ ଖାଇବା**—ଦେ. କ୍ରି—୧ । ଏକ ହେବା—1. To coincide; to tally ୨ । ସମଞ୍ଜସ ହେବା—2. To agree; to accord with.

মেল খাওয়া मेल खाना

**ମେଳ ଖୋଇବା**—ଦେ. କ୍ରି—ମିଳାଇବା—To cause to tally or agree or coincide.

Mela khoibā
মেল খাওয়া मेल खिलाना (ମେଳ ଖୁଆଇବା—ଅନ୍ୟରୂପ)

**ମେଳଛ(ଛା)**—ଗ୍ରା. ବି ଓ ବିଣ ( ପଦ୍ୟ )—ମ୍ଳେଚ୍ଛ (ଦେଖ)—Mlechchha ( See ) [ ଉ—ମେଳଛ ପ୍ରାଏକ ବିଶେ ନୃହଇ ମଳଥ । ପ୍ରାଚୀ. ପଦ୍ମବେଗୀତା । ]

Melachha(chhā)
मलेच

**ମେଳ(ଳ)ଣ**—ଦେ. ବି ( ସଂ. ମେଳନ )—ମେଳନ ( ଦେଖ )—Melana ( See ) ପ୍ରାଦେ ( ବାଲେଶ୍ୱର ) ବି—୧ । ପର୍ବ ବିଶେଷ—1. A festival. ୨ । ତାସ ଖେଳ ବିଶେଷ—2. A kind of game at cards.

Mela(la)ṇa
ঠাকুরদের মিলন
मि(मे)लन

**ମେଳ(ଳ)ଣ ପଡ଼ିଆ**—ଦେ. ବି—ମେଳନ ପଡ଼ିଆ ( ଦେଖ ) Melana pardiā ( See )

Mela(la)ṇa pardiā
মিলনের ময়দান मिलन मैदान

**ମେଳନ**—ସ. ବି ( ମିଲ୍ ଧାତୁ+ଭାବ.° ଅନ )—୧ । ବହୁ ଲୋକଙ୍କର
Melana ଏକତ୍ର ଠୁଳ ହେବା; ମିଳନ; ସଭା—1. Meeting; assemblage; coming together of many persons. ୨ । ସମ୍ମୁଖୀନ ହେବା; ସାକ୍ଷାତ୍କାର—2. Interview; encounter. ୩ । ସହବାସ—3. Associating, association. ୪ । ଭୁଲ ବା ବିରୋଧୀ ବ୍ୟକ୍ତିଙ୍କ ମନର ମିଳନ; ମନର ମେଳ—4. Reconciliation; agreement. ଦେ ବି—
ଦେବତାର ମେଳନ ଯାତ୍ରା ବା ପର୍ବ ଉପଲକ୍ଷରେ ଅନେକଗୁଡ଼ିଏ ଦେବ-
ମିଲ(ମେ)ଲନ ପ୍ରତିମାଙ୍କୁ ଏକ ସ୍ଥାନରେ ସମବେତ କରାଯିବା ଉତ୍ସବ—The ceremony or festival of many images being brought together on the occasion of festivals. [ ଉ—ଦୋଳ ମେଳନ, ଦେବୀ ମେଳଣ, ଗଣେଶ ମେଳଣ, ଚାନ୍ଦନ ମେଳନ, ଭାଗବତ ମେଳନ । ]

**ମେଳନ ପଡ଼ିଆ**—ଦେ. ବି—ଯେଉଁ ପଡ଼ିଆରେ ଦେବପ୍ରତିମାମାନେ
Melana pardiā ମେଳନ ସମୟରେ ସମବେତ ହୁଅନ୍ତି—
ମিলনের মাঠ A field where many images are
मिलन मैदान gathered together.

**ମେଳ ବାନ୍ଧିବା**—ଦେ. କ୍ରି—୧ । ଦଳ ଗଠନ କରିବା—1. To
Mela bāndhibā form into a party. ୨ ।
মেল বান্ধা ଦଳବଦ୍ଧ ହୋଇ ବା ଷଡ଼ଯନ୍ତ୍ର କରି—2. To form
मेल बाँधना a party of conspirators; to plot

**ମେଳ ଭାଙ୍ଗିବା**—ଦେ. କ୍ରି—ଗଠିତ ଦଳ ବା ମେଳକୁ ଇତସ୍ତତଃ କରି-
Mela bhāṅgibā ଦେବା—To disperse a crowd;
মেল ভাঙ্গা, মেল ভাঙ্গান to break a conspiracy
मेलतोड़ना [ମେଳ ଭାଙ୍ଗ(ଗେ)ଇବା—ଅନ୍ୟରୂପ]

**ମେଳ(ଳ)ମାଳ(ଳ)**—ଦେ· ବି—୧ । ବିବାଦ ପରେ ସୌହାର୍ଦ୍ଦ୍ୟ ସ୍ଥାପନ
Meḷ-(ḷa) māḷ(ḷa) —1. Reconciliation after a
মিটমাট quarrel. ୨। ବିବାଦର ଆପୋଷ ମୀମାଂସା—2. Ami-
मेलमाल cable settlement of a dispute. ୩ । ପରସ୍ପର ମନର ମେଳ—3. Mutual agreement; concord.

**ମେଳରେ**—ଦେ. କ୍ରି. ବିଣ—ସଙ୍ଗେ ମଧ୍ୟରେ—In the galaxy of;
Melare among; along with. [ ଉ—ଯେଉଁ
মধ্যে ରୂପେ ଶ୍ରେଣୀ ନକ୍ଷତ୍ର ମେଳରେ; ସେହିରୂପେ ଦିଶିଲେ
मेलमे ଦାସୀଙ୍କ ମଧ୍ୟରେ । କୃଷ୍ଣସିଂହ. ମହାଭାରତ. ବନ । ]

**ମେଳା**—ସ. ବି ( ମିଲ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—୧ । ମସି; କାଳି
Melā —1. Ink. ୨ । ଅଞ୍ଜନ; କଜ୍ଜଳ—2. Collyrium; antimony ୩ । ମହାନୀଳୀ ଗଛ; ନୀଳ ଗୁଳ୍ମ—3. Indigo plant; Verbasina Scandens. ଦେ.ବି—୧ । ସଂସବ; ମିଳନ; ସଙ୍ଗମ—1. Company;
মেলা cantact. [ ଉ—ବିଶ୍ୱାସ ଚିତ୍ତ ନୋହିବ ରଜନୀ
मेला ମେଳାରେ । ଭଞ୍ଜ ବୈଦେହୀଶବିଳାସ ।] ୨ । ମେଳନ—2. Assemblage. [ ଉ—ଲୁଲିଲ, ହୋଇଛି ଅବା ଏଥି ବନଦେବୀଙ୍କ ମେଳା । ରାଧାନାଥ. ଉଷା ।] ୩ । ଜନତା; ବହୁଜନସମାଗମ; ଲୋକଗହଳ—3. A gathering; crowding together of many people; a large concourse of people [ଉ—ଗୃହି ଗୃହି ଗୋପୀ ଶ୍ୟାମଳା ଅବଳା ମେଳା ଲଗାଇଥିଲା ଉଉବ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୪ । ଯାତ, ଯାତ୍ରା; ମହୋତ୍ସବ ( ଯହିଁରେ ଅନେକ ଲୋକ ଏକତ୍ର ହୁଅନ୍ତି )—4. A big festival. ୫ । ମହୋତ୍ସବ; ଭୋଜି—5. Feast; banquet. ୬ । ତୀର୍ଥାଦିରେ ବିଶେଷ ଯୋଗ ଉପଲକ୍ଷରେ ବହୁଲୋକଙ୍କ ସମାଗମ—6. A religious fair. ୭ । ବହୁଜନ ସମାଗମ-କ୍ଷେତ୍ର; ହାଟ—7. A place where many people congregate; a market place. [ ଉ—ଏ ଜଗତ ହୁଡ଼େ ମିଛ ମେଳା । ମଧୁସୂଦନ ସଙ୍ଗୀତମାଳା ।] ୮ । ବହୁ ବସ୍ତୁର ମିଳନ, ସମାହାର ବା ଏକତ୍ର ହେବା—8. Gathering; collection; aggregate. [ଉ—ମଧୁ ମଧୁର ବଧୂ ଅଧର କପୋଳ ବର ବଦନାମ୍ବର, ବିମ୍ବ ଚମ୍ପକ ରୁଚି ତୃଣ ସମ ମେଳା । କବିସୂର୍ଯ୍ୟ. କପୋଳ ଚମ୍ପୁ. ମ. ଗୀତ ।] ୯ । ସଙ୍ଘ; ସଭା—9. Assembly; meeting, association. [ଉ—ମହାଶୂନ୍ୟେ ରହି ତାରକାର ମେଳା, ଭୂଭାଗେ ଦେଖନ୍ତି ଏ ଭବର ଖେଳା । ରାଧାନାଥ. ନନ୍ଦିକେଶ୍ୱରୀ ।] ଦେ. ବିଣ. ୧ । ବହୁ ଜନପୂର୍ଣ୍ଣ—1. Crowded; thronged; congested. ୨ । ଅସଂଖ୍ୟ; ଅନେକ; ବହୁସଂଖ୍ୟକ—2. Multitudinous. ୩ । ବହୁ ପଶୁପକ୍ଷୀ ଆଦିରେ ପୂର୍ଣ୍ଣ—3. Crowded with many animals. [ଉ—ବ୍ୟୋମ ନାସିକା ନର୍ତ୍ତନେ ହୋଇଅଛି ମେଳା । ଭଞ୍ଜ. ବୈଦେହୀଶବିଳାସ ।]

**ମେଲ୍ଲା**—ଦେ. ବିଣ—( ସ. ଉନ୍ମୀଳନ=ଖୋଲିବା )—୧ । ଖୋଲା;
Mellā খোলা फैला, खुला ଅନାବୃତ; ଫାଙ୍କ ଲା—1. Open; uncovered. [ ଉ—ଗୁପତଭାବେ ମୋର ଲୀଳା ; ମୋ ରୂପ ନ ଦିଶଇ ମେଲ୍ଲା । ପ୍ରାଚୀ. ଜଗୁଣମାହାତ୍ମ୍ୟ ।] ୨ । ଉନ୍ମୀଳିତ—2. Opened. ୩ । ଅରୁଦ୍ଧ; ଅନାବଦ୍ଧ—3. Unclosed; unobstructed. [ଉ—ବାପ ପୁଅ ଦୁହେଁ ବନ୍ଧ ଅଛନ୍ତି, ମୁଗୁର ଗାଣ୍ଡି ମେଲ୍ଲା ଉଗ ।] ୪ । ପ୍ରଶସ୍ତ—4. Spacious; wide; extensive. ବି.—୧ । ଏକ ଦିଗରେ କାନ୍ଥ ଥାଇ
দালান दालान ଅନ୍ୟ ତିନ ପାଖେ କାନ୍ଥ ନ ଥିବା ଘର; ଦାଲାଣ—1. A hall; a house with one wall and open on 3 sides. [ ଉ—ଦୁଇ ସାନ୍ତ୍ର ସାଇ

ଠାକୁର ମେଲାରେ ବସିଲେ । ଫକିରମୋହନ, ଗଳ୍ପସ୍ୱଳ୍ପ ।]
[ଦ୍ର—ଇସ୍କୁଲ ମେଲା, କଚେରି ମେଲା, ପୁରୁଣା ମେଲା, ଗୁହାଳ ମେଲା, ଆଖଡ଼ା ମେଲା, ଦେଖା ମେଲା ପ୍ରଭୃତି ଶବ୍ଦରେ ମଧ୍ୟ ମେଲା ଏହି ଅର୍ଥରେ ବ୍ୟବହୃତ ହୁଏ ।] ୨ । ଖୋଲା ଅବସ୍ଥା; କୌଣସି ସ୍ଥାନର ଉନ୍ମୁକ୍ତ ଅବସ୍ଥା—2. Open condition of a place. ୩ । ଅରୁଦ୍ଧ ସ୍ଥାନ; ଅନାବୃତ ସ୍ଥାନ—3. Unobstructed place; open space. ୪ । ଫାଙ୍କ—4. An opening, aperture. ପ୍ରାଦେ. ( ସମ୍ବଲପୁର ) ବି.—ହାଟ; ମେଳା—Market: fair.

**ମେଲା(ଲେ)ଇବା**—ଦେ. କ୍ରି.—(ସଂ. ମିଲ୍ ଧାତୁ ଣିଜନ୍ତ ମେଳ ଧାତୁ) Melā(le)ibā ୧ । ମେଳ କରାଇବା; ମିଳାଇବା—1 To bring about reconciliation. ମেলান मिलाना ୨ । ମିଳନ କରାଇବା—2 To cause to meet. ୩ । ବନ୍ଧୁଲୋକଙ୍କୁ ଷଡ଼ଯନ୍ତ୍ରପୂର୍ବକ ମେଳ କରାଇବା—3. To bring about a conspiracy or mutiny. ୪ । ଭେଳାଇବା; ବହୁଲୋକଙ୍କୁ ଏକତ୍ର କରାଇବା—4. To bring together many people; to assemble a crowd. ୫ । ଦୁଇ ପଦାର୍ଥକୁ ତୁଳନା କରିବା—5. To compare two things with each other.

**ମେଲ(ଲେ)ଇବା**—ଦେ. କ୍ରି—(ସଂ. ଉତ୍ ଉପସର୍ଗ+ମିଲ୍ ଧାତୁ; Melā(le)ibā ମେଲିବାର ଣିଜନ୍ତ ରୂପ)—Causative of Melibā. মেলান, फैलाना, खोलना [ଦ୍ର—ବେଗେ ସେ ମଞ୍ଜୁଷା ମେଲଇ, ଗୁହାନ୍ତି ଏକ ମୁଖ ହୋଇ । ବିଶ୍ୱନାଥ. ବିଚିତ୍ର ରାମାୟଣ ।]

**ମେଳା କରିବା**—ଦେ. କ୍ରି.—ମହୋତ୍ସବ କରିବା Melā karibā To set up or hold a fair; to give মেলা করা मेलकरना a feast.

**ମେଲା କରିବା**—ଦେ. କ୍ରି—ମେଲାଇବା (ଦେଖ) Melā karibā খোলা खोलना Melāibā (See)

**ମେଲା ଘର**—ଦେ ବି.—୧ । କାନ୍ଥ ନ ଥିବା ଘର—1. A house Melā ghara খোলা ঘর without walls. ୨ । ଦ୍ୱାର ବନ୍ଦ ହୋଇ ନ ଥିବା ଘର—2. Unlocked house. ୩ । ବଡ଼ ଲମ୍ବା ଘର, ଯାହାର ମଝିରେ କାନ୍ଥ ନ ଥାଏ; ହଲ୍; ହାଲ୍ କାମରା—3 A hall. ୪ । ଯେଉଁ ଘରର ଗୋଟିଏ ପାଖେ କାନ୍ଥ ଥାଏ ଓ ଅନ୍ୟ ୩ ପାଖେ କାନ୍ଥ ନ ଥାଏ—4 A house with 3 sides open.

**ମେଲାଙ୍କ**—ଦେ. ବି.—(ଗଣିତ)—ଏକ ସଙ୍ଖ୍ୟାଠାରୁ ଆରମ୍ଭ କରି Melāṅka ତତ୍ ପରବର୍ତ୍ତୀ ରାଶିମାନ କ୍ରମଶଃ ଯୋଗ କରିବା ପ୍ରଣାଳୀ (ଓଡ଼ାଙ୍କ) ରେ ଯେଉଁ ରାଶି ସବୁ ଶେଷରେ ଯୋଗ କରାଯାଇ ଥାଏ—(arithmetic) The number last added to the last but one total figure to arrive at the last total or Orḍāṅka; the last number which is added in order to arrive at the last figure; a subtratend. [ଦ୍ର—ଗୃହ ଓଡ଼ାଙ୍କ ଧରିବାର ବେଳେ, ଓଳାଏ ଛଟେ ପିଛ ଦେଲେ ତଳେ । ଜରସ୍ତ ହୋଇଣ ଭ୍ରମର ମର୍ତ୍ତି, ଦେଲା ଓଡ଼ାଙ୍କ ମେଲାଙ୍କରେ ଗୁଣି; ଗୁଣନ୍ତେ ଫଳ ହୋଇଲା ପଚିଶ, ଏଥି ଓଡ଼ାଙ୍କକୁ ମେଲାଙ୍କ କସ ? ଲୀଳାବତୀ. ସୁତ୍ର ।] ( ଦ୍ର—ଏହାର ଉତ୍ତର ଓଡ଼ାଙ୍କ ୧୦ ଓ ୫ ମିଶାଇଲେ ଫଳ ହୋଇ ଥାଆନ୍ତା ୧୫; କିନ୍ତୁ ୧୦ କୁ ୫ ରେ ଗୁଣି ଦେବାରୁ ଫଳ ହେଲା ୫୦ ।) [ଦ୍ର—ମେଲାଙ୍କର ଉଦାହରଣ ଯଥା— ୧+୨=୩; ୩+୩=୬; ୬+୪=୧୦; ୧୦+୫ =୧୫, ୧୫+୬=୨୧; ୨୧+୭=୨୮; ୨୮+୮ =୩୬; ୩୬+୯=୪୫; ୪୫+୧୦=୫୫ । ଏଠାରେ ୫୫ ଓଡ଼ାଙ୍କକୁ ୧୦ ମେଲାଙ୍କ ଓ ଏହାପରି ୩୬ ଓଡ଼ାଙ୍କକୁ ୮ ମେଲାଙ୍କ···ଇତ୍ୟାଦି ।]

**ମେଲଣି**—ଦେ. ବି ( ସଂ. 'ମିଳନ'; 'ଶେଷ ମିଳନ' ଅର୍ଥରେ ) — ୧ । Melāṇi ବନ୍ଧୁଭାବରେ ଦୁଇଜଣଙ୍କର ଶେଷ ମିଳନ ପରେ বিদায় बिदाई ବିଦାୟ—1. A friendly parting; a friendly taking leave. [ଦ୍ର—ସମସ୍ତଙ୍କୁ କର ଯୋଡ଼ି ମାଗୁଛି ମେଲଣି । ରାଧାନାଥ. ମହାଯାତ୍ରା ।] ୨ । ବିଦାୟ ଗ୍ରହଣ—2. Bidding goodbye. [ଦ୍ର—କସ୍ତୁରୀ ମେଲଣି ଲେଖିଛି ଅହୋ ଏ ବନ୍ଧୁବେଶେ । ନନ୍ଦକିଶୋର. କଳ୍ପବଲ୍ଲୀ ।] ୩ । ବିଦାୟକାଳୀନ ଉପହାର—3. A peresent given to a departing person; a parting gift.

**ମେଲଣିଆ**—ଦେ. ବିଣ. ପୁଂ—୧ । ପ୍ରସାରିତ—1. Extended; Melāṇia expanded. ୨ । ଫାଙ୍ଗୁଲା ( ବ୍ୟକ୍ତି ); ଯେ মেলানিয়া खुला ଅପନାର ଜିନିଷପତ୍ର ବା ପରିଧେୟ ବସ୍ତ୍ରାଦି ସମ୍ବନ୍ଧରେ ଅସାବଧାନ—2. Careless about one's (ମେଲଣୀ—ସ୍ତ୍ରୀ) things and dress.

**ମେଲଣି କରିବା**—ଦେ. କ୍ରି — ୧ । ବିଦାୟ ଦେବା; ଯିବାପାଇଁ ଅନୁମତି Melāṇi karibā ଦେବା—1. To permit a person বিদায় করা to depart. ୨ । ପ୍ରସ୍ଥାନକାରୀ ବ୍ୟକ୍ତିକୁ ବିଦାୟ बिद्(दा,ई करना(देना) କାଳୀନ ଉପହାର ଦେବା—2. To give (ମେଲଣି ଦେବା—ଅନ୍ୟରୂପ) a parting gift or present or remuneration to a departing person for work done beforehand.

**ମେଲଣି ଘେ(ଘି)ନିବା**—ଦେ କ୍ରି—୧ । (ପ୍ରସ୍ଥାନକାରୀ ବ୍ୟକ୍ତି) ବିଦାୟ Melāṇi ghe(ghi)nibā ଗ୍ରହଣ କରିବା —1 To bid adieu বিদায় লওয়া to a person before departing (said बिदाई लाना of the departing person).

ମେଲଣି ନେବା } ଅନ୍ୟରୂପ
ମେଲଣି ପାଇବା }
(ଦ୍ର— ଯେତେଦିନ ମେଲଣି, ଦେଇ ଜନ୍ମଭୂମି, ଜନନୀ ମଧୁର ଭାଷେ । ରାଧାନାଥ—ଚିଲିକା ।)

୬ । ବିଦାୟ କାଳୀନ ଉପହାର ପ୍ରାପ୍ତ ହେବା—2. To receive a parting present.

ମେଲଣି ବେଭାର—ଦେ. ବି—ବିଦାୟ ଗ୍ରହଣ କରୁଥିବା ବନ୍ଧୁଙ୍କୁ Melāṇi bebhāra ଦିଆଯିବା ଉପହାର—A friendly or ମিলানি ভার gracious present given to a departing person. विदाई बेभार (ମେଲଣୀ ଭାର—ଅନ୍ୟରୂପ)

ମେଲଣି ମାଗିବା—ଦେ. କ୍ରି—କୌଣସି ବ୍ୟକ୍ତିଠାରୁ ବିଦାୟ ହେବା Melāṇi māgibā ପାଇଁ ଅନୁମତି ମାଗିବା—To pray to বিদায় চাওয়া be permitted to depart. विदाई माँगना (ଉ—ଅମୃତ ! ଗିରିଠାରୁ ମାଗ ମେଲଣି, କାଳର ଅଟଇ ମୁଁ, ବଶ ମୋ ବାଣୀ । ରାଧାନାଥ. ମେଘଦୂତ ।)

ମେଲଣି ହେବା—ଦେ. କ୍ରି—(ପ୍ରସ୍ଥାନକାରୀ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ) Melāṇi hebā ବିଦାୟ ହୋଇଯିବା—To depart after বিদায় হওয়া विदाई होना bidding adieu.

ମେଲ(ଳା)ନନ୍ଦ(ନ୍ଦା)—ସ. ଚ. (ମେଲା=ମସି+ଅନନ୍ଦ;+ସ୍ତ୍ରୀ. ଆ)—Melā(lā)nanda(ndā) ମସୀଧାର; ଦୁଆତ—Inkstand; (ମେଳାନ୍ଧୁ, ମେଲାମ୍ବୁ—ଅନ୍ୟରୂପ) inkpot.

ମେଳାପ—ଦେ. ବି (ସ. ମିଲ୍ ଧାତୁ)—୧ । ମିଳାପ; ସୌହାର୍ଦ୍ଦ୍ୟ; Meḷāpa ମେଳ—1. Intimacy; friendship. ୨ । ମିଳି-আলাপ ମିଶ୍ରଣ—2. Mixing together. ୩ । ମନର मिलाप ମିଳନ—3 Agreement; concord. ୪ । ସଦା-ଳାପ—4. Friendly talk; exchange of felicitations. ସ. ବି—ଗୋଷ୍ଠୀ; ସମୂହ; ଜନତା; ( ମେଳାପକ—ଅନ୍ୟରୂପ ) ବହୁଲୋକଙ୍କ ଏକତ୍ର ସମାଗମ—Crowd; assembly.

ମେଳାପ କରିବା—ଦେ. କ୍ରି—ସଦାଳାପ କରିବା—Meḷāpa karibā To have a friendly talk. আলাপ করা मिलाप करना

ମେଲା ପହପଟ୍—ଦେ. ବି—ଶୁଭଅଡ଼େ ଖୋଲା ଓ ପବନଯୁକ୍ତ ସ୍ଥାନ—Melā pahapaṭ An airy place open on all sides. চারদিগে খোলা एकदम खुला

ମେଳାପୀ—ଦେ. ବଣ—ମିଶାମିଶି (ଲୋକ); ଯେ ଅନ୍ୟମାନଙ୍କ ସଙ୍ଗେ Meḷāpī ସଦାଳାପ କରିବା ନିମନ୍ତେ ସଦା ପ୍ରସ୍ତୁତ—Sociable; আলাপী, মিলনিয়া, মিশুক ready to mix and talk मिलापी with others in society; affable. (ମେଳାପିଆ—ଅନ୍ୟରୂପ)

ମେଳା ମଉଛବ—ଦେ. ବି (ଏକାର୍ଥକ ସହଚର; ସ. ମେଳ+ Meḷā mauchhaba ମହୋତ୍ସବ )—୧ । ପ୍ରୀତିଭୋଜନ—1. Picnic. ୨ । ବନ୍ଧୁ ବନ୍ଧୁଙ୍କ ସହିତ ମିଳନ ଓ ମଉଜ—2. Feast and amusements in the company of friends.
ମେଳା ମଉଚ୍ଛ, ମେଳା ମଉଜ, ମେଳା ମଙ୍ଗଲ(ଲ)ସ(ବି), ମେଳା ମଙ୍ଗଲ(ଲ)ସ(ବି) }—ଅନ୍ୟରୂପ
মেলা মহোচ্ছব मेलोत्सव

ମେଲା ମୁକୁଳା—ଦେ. ବଣ (ଏକାର୍ଥକ ସହଚର)—ଉନ୍ମୁକ୍ତ; ଅବାଧ—Melā mukuḷā Open and unobstructed খোলা खुला

ମେଲାମୁହାଁ—ଦେ. ବଣ—୧ । ଯାହାର ମୁହଁ ମେଲା ହୋଇଥାଏ; ଉନ୍ମୁକ୍ତ-Melāmuhāṅ ମୁଖ (ବୋତଲ, କଳ ପ୍ରଭୃତି)—1. Open-খোলামুখ(খো) mouthed. ୨ । (ପୁ°) ଯେ ଚୁପ୍ ହୋଇ ରହି खुलामुहाँ ପାରେ ନାହିଁ; ଗପୁଡ଼ି—2. One who cannot (ମେଲାମୁହିଁ—ସ୍ତ୍ରୀ) sit quiet; talkative; garrulous.

ମେଲା ମେଲା—ଦେ.ଅ—୧ । ଭେଳାଭେଳା; ମଲାମଲା; ବହୁ ସଂଖ୍ୟାରେ; Melā melā ଦଳ ଦଳ ହୋଇ—1. In crowds; in মেলামেলা, মেলাই, মেলা myriads; in shoals. (ଉ—ଭୁଜଙ୍ଗ ସୁଁଡକାଙ୍କୁଡ, दलकादल ନଇରେ କମ୍ପୀର ମେଲା ମେଲା ଦେଖୁଛନ୍ତି)—୨ । ଅନେକ—2. Many; multitudinous.

ମେଲାମେଲି କରିବା—ଦେ. କ୍ରି (କ୍ରଡାର୍ଥକ ଧ୍ୱନ୍ୟନୁ ସହଚର)—Melāmeli karibā ମେଲାଇବା (ଦେଖ)—Melāibā খেলখুলি করা खुलाखुलि करना (See)

ମେଳି—ଦେ. ବି (ସ. ମିଲ୍ ଧାତୁ)—୧ । କୁମନ୍ତ୍ରଣା; ଚକ୍ରାନ୍ତ—1. A Meḷi plot; conspiracy. ୨ । ଷଡ଼ଯନ୍ତ୍ରପୂର୍ବକ ରାଜା ବା মেলী ପ୍ରଭୁଙ୍କ ବିରୁଦ୍ଧରେ ଦଳଗଠନ; ବିଦ୍ରୋହ—2 Mutiny, मेल conspiracy against the king or master. ୩ । ହଟ୍ଟଗୋଳ; ଗୋଳମାଳ; ଅଡ଼ୁବ; କୋଳାହଳ—3 Confusion; noise; broil; uproar. ୪ । ଲୋକ-ଗହଳି; ଜନତା—4. An immense crowd. [ଉ—ଉତ୍କର୍ଣ୍ଣ ବିଦାୟସେ ତାରକାର ବେଗେ ପୁରେ କ କରନ୍ତୁ ମେଳ । ନନ୍ଦକିଶୋର. ଶର୍ମିଷ୍ଠା ।]

ମେଳିଆ—ଦେ. ବଣ. ପୁ°—୧ । ଷଡ଼ଯନ୍ତ୍ରକାରୀ; ବିଦ୍ରୋହୀ—Meḷiā 1. Plotting; revolutionary; mutinous; মেলিয়া conspiring. ୨ । ଯେ ବହୁଲୋକଙ୍କୁ ମତାଇ ବିଦ୍ରୋହୀ मिलानेवाला; मेलिया କରାଏ—2. Fomenting a (ମେଳେଇ—ସ୍ତ୍ରୀ) mutiny. ଦେ. ବି—ଷଡ଼ଯନ୍ତ୍ରକାରୀ ବ୍ୟକ୍ତି—Conspirator. ପ୍ରାଦେ (କୋଦ) ବି—ଖେଳବିଶେଷ—An outdoor game.

ମେଳିଆ ସର୍ଦ୍ଦାର—ଦେ. ବି—ବିଦ୍ରୋହୀମାନଙ୍କ ନେତା - A ring-Meḷiā sarddāra leader of a revolt or mutiny. (ମେଳିଆ ସରଦାର—ଅନ୍ୟରୂପ) পালের গোদা मेलकासर्दार

ମେଳି କରିବା—ଦେ. କ୍ରି—ବିଦ୍ରୋହପାଇଁ ଷଡ଼ଯନ୍ତ୍ର କରିବା—Meḷi karibā To revolt; to mutiny; to rebel. দলবাঁধা मेलबाँधना

ମେଳିକା—ଦେ. ବି—ସମୂହ—Collection. (ଉ—ବିଳସେ ଏଥି Meḷikā ପାଳକା, ବାଣ ମେଳିକା ବ । ଉପେ. ବୈଦେହୀଶବିଳାସ) মেল मेल

ମେଳି ଭାଙ୍ଗିବା—ଦେ. କ୍ରି—୧ । ବିଦ୍ରୋହ ଦମନ କରିବା—1. To Meḷi bhāṅgibā suppress a revolt or rebellion.

ଦଳ ভাঁগা ୨ । ଜନତାକୁ ଛିନ୍ନଭିନ୍ନ କରାଇବା—
मेल तोड़ना 2. To disperse a crowd.

ମେଲିବା—ଦେ. କ୍ରି (ସ. ଉତ୍+ମିଲ୍ ଧାତୁ)—୧ । ମେଲା କରିବା;
Melibā ମେଲାଇବା; ଖୋଲିବା—1. To open. (ଉ—ବାଘ
মেলা, খোলা ଅସ୍ତ୍ରଅସ୍ତ୍ର ମୋଠାକୁ ମେଲି ଯାନ୍ତି । କୃଷ୍ଣସିଂହ. ମହା-
फैलाना ଭାରତ. ବନ ।) ୨ । ଉନ୍ମୁକ୍ତ କରିବା; ଫିଟାଇବା; ବନ୍ଧନ-
(ବୃଜିବା—ଅନ୍ୟରୂପ) ମୁକ୍ତ କରିବା—2. To untie. (ଉ—ଜୀବନ୍ତ
खोलना ବୁଡ଼ନ୍ତି ଅମ୍ବର । ବାନ୍ଧୁରି ମେଲେ ତୋ ଭ୍ରମର ।
ଜଗନ୍ନାଥ. ଭାଗବତ ।) ୩ । ବିସ୍ତାରିତ କରିବା—3. To spread; to hoist. (ଯଥା—ବଉଣି ମେଲିବା ।)
୪ । ମିଶ୍ରିତ କରିବା; ମିଶାଇବା—4. To mix up.
(ଉ—ସିଂହଡ଼ା କେଶର ସଙ୍ଗି ଗୁଆ ଘୃତେ ପୋଇ । କର୍ପୂର ମରିଚ ମେଲି ମିଠା ଦୁଧେ ମୋହି । ପ୍ରାଚୀ. ରହସ୍ୟ
ফেলা ମଞ୍ଜରୀ ।) ୫ । ପକାଇ ଦେବା; ଫିଙ୍ଗି ଦେବା—5. To
फेंकना throw away. (ଉ—ବନ୍ଧନ କରି ହସ୍ତ ପାଦ ମେଲିଲା ସମୁଦ୍ର ଅଗାଧ । ଜଗନ୍ନାଥ. ଭାଗବତ ।) ୬ ।
ପ୍ରସାରିତ କରିବା—6. To extend. (ଯଥା—ଗୋଡ଼ ମେଲିବା ।) ୭ । ସାଧାରଣ ଲୋକଙ୍କ ସାମନାରେ ଉପସ୍ଥାପିତ
ছড়ান କରିବା—7. To exibit for public gaze.
पसारना (ଯଥା—ଦୋକାନ, ପସରା ମେଲିବା ।) ୮ । ଜଳରେ ଗତି
ভাসান କରିବା ପାଇଁ ଭସାଇବା ବା ଛାଡ଼ିବା; (ବନ୍ଧା ହୋଇଥିବା
खोलना ଡଙ୍ଗାକୁ) ବନ୍ଧନରୁ ଉନ୍ମୁକ୍ତ କରିବା—8. To float; to drift; to set afloat; to launch (a boat).
(ଯଥା—ଡଙ୍ଗା ବା ବୋଇତ ମେଲିବା ।) ୯ । ସର୍ବସାଧାରଣରେ ପ୍ରକାଶ କରିବା ବା ବୋଲିବା—9. To
বলা utter publicly. (ଯଥା—ଗୀତ ମେଲିବା,
बोलना ଡାହକା ମେଲିବା ।) ୧୦ । ମୁଦ୍ରିତ ପଦାର୍ଥକୁ ଖୋଲିବା—
খোলা 10. To open a thing which had been
खोलना shut up. (ଯଥା—ଆଖି ମେଲିବା ।) ୧୧ । ମୁକୁଳାଇବା
11. To dishevel. (ଯଥା—ବାଳ ମେଲାଇବା ।)
୧୨ । ବର୍ଦ୍ଧିତ କରିବା—12. To increase. (ଉ—ପାଣ୍ଡବେ ଡାକ ଉଚ୍ଚ ସ୍ୱରେ ଗଳା ମେଲି । କୃଷ୍ଣସିଂହ. ମହାଭାରତ. ବନ ।) ୧୩ । ଗର୍ଭିଣୀ ପ୍ରସବ କରି ପାରୁ ନ ଥିଲେ (ଧାଈ) ହାତ ପୂରାଇ ଗର୍ଭରୁ ଶିଶୁକୁ ବାହାର କରିବା (ଯଥା—ହାତ ମେଲିବା)—13. To cause delivery by thrusting the hand into the organ.
[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ, ଯଥା—ମେଲି ଦେବା ।]

ମେଲେ—ଦେ. କ୍ରି. ବିଣ—ସଙ୍ଗରେ; ସହିତ; ସାଥିରେ—
Mele In the company of; with.
সঙ্গে (ଉ—ସେ ହଂସୁଣୀ ଯେସର୍ଣ୍ଣି ହଂସଙ୍କର ମେଳେ, ବାହାରିଲେ
मेलमें ଦର୍ଭ ପୁରେ ପଶି ବଳେ । କୃଷ୍ଣସିଂହ. ମହାଭାରତ, ବନ ।)

ମେଲେଛ(ଚ୍ଛ, ଛ, ଛା)—ଦେ. ବିଣ. ପୁଂ (ସ. ମ୍ଲେଚ୍ଛ)—୧ । ମ୍ଲେଚ୍ଛ
Melechha(chhā, chchha, chchhā) (ଦେଖ ।
মেলেছ 1. Mlechchha (See) ୨ । ଅସ୍ପୃଶ୍ୟ—
मलेछ 2. Untouchable. ୩ । ମ୍ଲେଚ୍ଛ ପରି ଅପରିଷ୍କୃତ—
[ମେଲେଚ୍ଛ(ଛି)ଆ—ଅନ୍ୟରୂପ] 3. Unclean like an un-
[ମେଲେଚ୍ଛୀ(ଛୀ)—ସ୍ତ୍ରୀ] touchable. ୪ । ମଳିଆ—4. Dirty.
୫ । କୁରୂପ; କଦାକାର—5. Ugly. ୬ । ଅତି କୃପଣ—
6. Very miserly.

ମେଲେରିଆ—ଦେ. ବି. (ଇଂ ମାଲେରିଆ)—ଦୂଷିତ ଜଳବାୟୁ ଜନିତ
Meleriā ଦୁଷ୍ଟକାର୍ଯ୍ୟ ପ୍ଲୀହାବର୍ଦ୍ଧକ କମ୍ପଜ୍ୱର ବିଶେଷ—Malarias
ম্যালেরিয়া मलेरिया malarial fever.

ମେସ୍—ବୈଦେ. ବି. (ଇଂ. ମେସ୍)—୧ । ରକ୍ତାଦି ସମ୍ପର୍କ ଶୂନ୍ୟ ଅଥଚ
Mes ଏକ ବୃତ୍ତି ଅବଲମ୍ବନକାରୀ କେତେକ ଲୋକ ଯେଉଁ
মেস ସ୍ଥାନରେ ଏକାଠି ହୋଇ ଏକତ୍ର ରହନ୍ତି—1. Mess. ୨ ।
मेस् ରକ୍ତାଦି ସମ୍ପର୍କବିହୀନ ଓ କର୍ମକ୍ଷେତ୍ରରେ ସଙ୍ଗୀ ଲୋକମାନେ ଏକ ଘରେ ରହିବା ଓ ଏକ ପାକରେ ଖାଇବାର ବ୍ୟବସ୍ଥା
—2. Messing together of many persons having no mutual relationship but following the same profession or occupation.

ମେଶିନ୍(ନ)—ବୈଦେ. ବି. (ଇଂ. ମେଶିନ୍)—ଯନ୍ତ୍ର; କଳ—
Mesin(ni) Machine. (ଯଥା—ଷ୍ଟିମ୍ ମେଶିନ୍, ଅଏଲ୍
মেসিন ମେଶିନ୍, ଇଲେକ୍ଟ୍ରିକ୍ ମେଶିନ୍; ସିଲାଇ (ସିଲେଇ)
मशीन् ମେଶିନ; ପ୍ରିଣ୍ଟିଙ୍ଗ୍ (ଛାପା) ମେଶିନ୍ ଇତ୍ୟାଦି ।]

ମେଶିନ୍ ଗନ୍—ବୈଦେ. ବି. (ଇଂ. ମେଶିନ୍ ଗନ୍)—କଳ ଦ୍ୱାରା ଦ୍ରୁତ-
Mesin gan ଗୁଳିଚାଳି ବନ୍ଧୁକ—Machine gun.
মেসিনগন্ मशीनगन

ମେଶିନ୍ ଚଳା(ଲେ, ଲା, ଲେ)ଇବା—ଦେ. କ୍ରି—କଳକୁ ପରିଚାଳିତ
Mesin chalā(le, lā, le)ibā କରିବା—To work a
মেশিন চালান मशीन चलाना machine.
(ମେଶିନ୍ ଚଳା[ଲେ]ଇବା—ଅନ୍ୟରୂପ)

ମେଶିନ୍ ପ୍ରେସ୍—ବୈଦେ. ବି. (ଇଂ. ମେଶିନ୍ ପ୍ରେସ୍)—କଳ ଦ୍ୱାରା
Mesin pres ପୁସ୍ତକାଦି ଛାପିବାର ଯନ୍ତ୍ର—Machine press.
মেসিন প্রেস मशीन प्रेस (ବିପରୀତ—ହାଣ୍ଡ୍ ପ୍ରେସ୍)

ମେଶେଷ୍ଟ୍ର—ପ୍ରାଦେ. (ଗଞ୍ଜାମ) ବି (ଅଶୁଦ୍ଧ ଉଚ୍ଚାରଣ) (ଇଂ. ମାଜିଷ୍ଟ୍ରେଟ୍)
Meseshtra —ମାଜିଷ୍ଟ୍ରେଟ୍—Magistrate.

ମେସୋପ(ପୋ)ଟ(ଟା)ମିଆଁ—ଦେ. ବି—ଆସିଆଟିକ୍ ତୁରସ୍କର ପ୍ରଦେଶ
Mesopa(po)ta(tā)miyān ବିଶେଷ—Mesopotamia; a
মেসোপোটামিয়া province of Asiatic Turkey.
मेसोपोटामिया [ଦ୍ର—ମେସୋପୋଟାମିଆଁ ୟୁଫ୍ରେଟିସ୍ ଓ ଟାଇଗ୍ରୀସ୍ ନଦୀ ମଧ୍ୟରେ ଅବସ୍ଥିତ । ପ୍ରାଚୀନକାଳରେ ଏଠାରେ ପ୍ରସିଦ୍ଧ ବାବିଲନ୍ ରାଜଧାନୀ ଥିଲା । ଗତ ୟୁରୋପୀୟ ମହାଯୁଦ୍ଧ (୧୯୧୪-୨୦)ରେ ଏଠାରେ ଇଂରେଜମାନେ ତୁରସ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଏହା ବର୍ତ୍ତମାନ ଇଂରେଜ

ଅଧିକୃତ ବସ୍‌ରା (Basāra) ନଗର ଇଂରେଜ ଅଧିକୃତ ମେସୋପୋଟାମିଆର ଦ୍ୱାର ଅଟେ। ପାରସ୍ୟ ଉପସାଗର ଦେଇ ବସ୍‌ରା ବାଟେ ମେସୋପୋଟାମିଆକୁ ଯିବାକୁ ହୁଏ।]

ମେଷ—ସଂ. ବି (ମିଷ୍ ଧାତୁ=ସ୍ପର୍ଦ୍ଧା କରିବା+କର୍ତ୍ତୃ. ଅ)—୧। ମେଣ୍ଢା; ଭେଡ଼ା—1. Ram; sheep. [ଦ୍ର—(ମେଷା, ମେଷୀ, ମେଷିକା—ସ୍ତ୍ରୀ) ଏହାର ଅନ୍ୟ ସଂସ୍କୃତ ନାମମାନ; ଯଥା—ଅଜ, ଉରଣ, ଉରଭ୍ର, ଊର୍ଣ୍ଣାୟୁ, ଏଡ଼କ, ଭେଡ଼, ଭେଡ଼କ, ଭେଡ୍ର, ମେଣ୍ଢ, ମେଣ୍ଢକ, ରୋ(ଲୋ)ମଶ, ଶୃଙ୍ଗିଣ, ବଲୀ, ବୃଷ୍ଣି, ସଫଳ, ହୁଡ଼, ହୁଡୁ, ହୁଡୁ, ମେଢ୍ର, ମେଢ୍ର, ପୃଥୁଦର, ବହୁରୋମା, ଏଳକ, ମେଢ।] ୨। ଜ୍ୟୋତିଷୋକ୍ତ ପ୍ରଥମ ରାଶି—2. The first of the twelve signs of the zodiac; the Aries. [ଦ୍ର—ଏହି ରାଶି ୨୨ଟି ତାରାଯୁକ୍ତ ମେଷାକାର ନକ୍ଷତ୍ରପୁଞ୍ଜ। ବୈଶାଖରେ ସୂର୍ଯ୍ୟ ଏହି ରାଶିରେ ରହନ୍ତି। ଅଶ୍ୱିନୀ, ଭରଣୀ ଓ କୃତ୍ତିକାର ଏକ ପାଦ ନେଇ ଏ ରାଶି ଗଣାଯାଏ। ଏହି ରାଶିଜାତ ବ୍ୟକ୍ତି ଶେଷ ଦଶାରେ ନେତ୍ରରୋଗୀ, ଦୟାଳୁ, ଧନୀ, ଗାନପ୍ରିୟ, ଧାର୍ମିକ, ଧୀର, ମତ୍ସ୍ୟମାଂସାଶୀ, ଅରକ୍ତ ପୀତବର୍ଣ୍ଣ, କ୍ରୂରପ୍ରକୃତିକ, କ୍ଷୀଣୋଷ୍ଠସ୍ୱଭାବ, କାନ୍ତିରହିତ, ସମାନାଙ୍ଗ, ପଙ୍କଚକ୍ଷୁ, ପୁତ୍ରାଦିଲକ୍ଷିତ, ଅଳ୍ପସ୍ତ୍ରୀସଙ୍ଗକାମୀ, ଅଳ୍ପସନ୍ତାନବାନ, ଯୁଦ୍ଧପ୍ରିୟ, ଅତିରବକାରୀ, ସୁଜନଦନ୍ତା, ବନ୍ଧନୀ ଓ ପରବସ୍ତ୍ରଳ ହୁଏ।] ୩। ମେଷଲଗ୍ନ; ଜ୍ୟୋତିଷୋକ୍ତ ଲଗ୍ନ ବିଶେଷ—3. The moment of the sun's entrance into the sign of the Aries. ୪। ଚକ୍ରମର୍ଦ୍ଦ ବା ଯାଦୁଆଇ ଗଛ—4. A plant; Cassia Tora. ୫। ସୌର ବୈଶାଖ ମାସ—5. The solar month of Baisākha.
Mesha

ମେଷକ—ସଂ. ବି—ଶାକ ଶାକ—A kind of pot herb. ମେଣ୍ଢା-ଶିଙ୍ଗା ୧ (ଦେଖ)—Mendhāsingha 1 (See) ୨। ମେଷ; ମେଣ୍ଢା—2. Ram; sheep.
Meshaka

ମେଷ ଘୋଷ—ସଂ. ବି—୧। ଜନତା; ଭିଡ଼—1. Crowd. ୨। ଜନତାରୁ ଉଠିବା ଶବ୍ଦ—2. Bustling noise issuing out of a crowd.
Mesha ghosa

ମେଷ ପାଳ—ସଂ. ବି. ପୁଂ—୧। ମେଣ୍ଢା ରକ୍ଷକ—1. A shepherd. ୨। ମେଣ୍ଢାପଲ—2. A herd of sheep.
Mesha pāla
(ମେଷପାଳୀ—ସ୍ତ୍ରୀ)

ମେଷ ପାଳକ—ସଂ. ବି. ପୁଂ—ମେଣ୍ଢା ଜଗୁଆଳ—A shepherd.
Mesha pālaka
(ମେଷ ପାଳିକା—ସ୍ତ୍ରୀ)

ମେଷ ବଲ୍ଲୀ—ସଂ. ବି—ଏକପ୍ରକାର କଣ୍ଟକ ଲତା ଓ ଏହାର ଫଳ; ମେଣ୍ଢା ଶିଙ୍ଗା—A creeper; convolvulus Argenteous; Gymnema Sylvestre; Ascelepias Geminata.
Mesha balli
(ସଂ—ନନ୍ଦୀବୃକ୍ଷ, ଚକ୍ଷୁ, ଚକ୍ଷୁବର୍ଦ୍ଧକ, ବର୍ଦ୍ଧଳଚକ୍ଷୁ, ମେଢ୍ରଶୃଙ୍ଗୀ, ଗୁଡ୍‌ଚୂର୍ଣ୍ଣା, ଅଜଶୃଙ୍ଗୀ
ମେଡ଼ା ସିଂଘା ମେଁଷ ଶୃଙ୍ଗ
(ମେଷ ବିଷାଣିକା, ମେଷ ଶୃଙ୍ଗୀ—ଅନ୍ୟରୂପ)

ମେଷ ଯୁଦ୍ଧ—ବି—ଶବ୍ଦାଳଙ୍କାର ବିଶେଷ—A kind of picturesque composition. [ଦ୍ର—ଏଥିରେ ଯେଉଁ ପାଦ ରଚିତ ହୁଏ ସେହି ପାଦକୁ ଓଲଟାଇ ପଢ଼ିଲେ ଠିକ୍ ସେହିପରି ପଢ଼ା ଯାଏ; ଯଥା—ଭସାସ୍ୱଧନା ଧନା ଧୀସ୍ୱ ସାଭ। ଗୋଲୋକ, ଇନ୍ଦୁରେଖା।]
Mesha juddha

ମେଷ ଲୋଚନ—ସଂ. ବି—ଚକ୍ରମର୍ଦ୍ଦ ବା ଯାଦୁଆଇ ଗଛ—A tree; Cassia Tora.
Mesha lochana

ମେଷ ଶୃଙ୍ଗ—ସଂ. ବି—୧। ମେଣ୍ଢାର ଶିଂଘ—1. The horn of a ram. ୨। ମେଣ୍ଢାଶିଂଘା ମହୁରା—2. Name of a poisonous root.
Mesha śrunga

ମେଷ ସଂକ୍ରମଣ—ସଂ. ବି—ବୈଶାଖ ସଂକ୍ରାନ୍ତି; ପଣାସଂକ୍ରାନ୍ତି; ମହାବିଷୁବ ସଂକ୍ରାନ୍ତି ଓଡ଼ିଆ କୃଷିବର୍ଷ ଓ ପାଞ୍ଜି ବର୍ଷ ଗଣନାର ଆଦ୍ୟ ଦିବସ—The 1st day of the solar month of Baisākha.
Mesha samkramana
(ମେଷ ସଂକ୍ରାନ୍ତି—ଅନ୍ୟରୂପ)
[ଦ୍ର—ଏ ଦିନ ଓଡ଼ିଆ ପାଞ୍ଜିରେ ନବବର୍ଷ ଆରମ୍ଭ ହୁଏ; ତୁଳସୀ ଗଛ ଉପରେ ଶଯ୍ୟା ଓ ସଚ୍ଛିଦ୍ର ଜଳ ଘଟୀ ବନ୍ଧାଯାଇ ମାସକ ଯାକ ଗଛରେ ପାଣି ଦିଆଯାଏ; ଅନେକ ସ୍ଥାନରେ ଝାମୁ ଯାତ୍ରା, ଛଉନାଚ ଓ ଚଡ଼କ ପୂଜା କରାଯାଏ; ହିନ୍ଦୁ ଭୂମି ଅଞ୍ଚଳରେ ଓଡ଼ିଆମାନେ ଘର ଲିପା ପୋଛା କରି ପୂଜା, ଧର୍ମପୁସ୍ତକ ପାଠ, କୀର୍ତ୍ତନ ଓ ଭୋଜି କରନ୍ତି। ଗଞ୍ଜାମ ଅଞ୍ଚଳରେ ଶିଶୁମାନଙ୍କ ପେଟରେ ଛତୁ ଦିଆ ଯାଏ। ବ୍ରାହ୍ମଣମାନଙ୍କୁ ଛତା, ବିଞ୍ଚଣା, ପଣା ଓ ଜଳଘଟୀ ଦାନ କରାଯାଏ। ବାଙ୍କି ଆଦି ଅଞ୍ଚଳରେ ଦହକ ନିଆଁ ଉପରେ ବ୍ରତଧାରୀମାନେ ଖାଲି ଗୋଡ଼ରେ ଚାଲନ୍ତି। ଏ ଦିନ ବଙ୍ଗ ଓ ଉତ୍କଳର ଅନେକ ସ୍ଥଳରେ ଶ୍ରୀ ଶ୍ରୀ ସୁଧାରମଣ ଦେବ ବାବାଜିଙ୍କର ଜନ୍ମୋତ୍ସବ ଅନୁଷ୍ଠିତ ହୁଏ।]

ମେଷାଣ୍ଡ—ସଂ. ବି—୧। (ଷଷ୍ଠୀ ତତ୍) ମେଣ୍ଢାର ଅଣ୍ଡକୋଷ—1. The testicle of a ram. ୨। (ବହୁବ୍ରୀହି) ଦେବରାଜ; ଇନ୍ଦ୍ର—2. Indra.
Meshānda

ମେଷିକା—ସଂ. ବି (ମେଷୀ+କ+ଅ)—୧। ମାଈମେଣ୍ଢା; ମେଣ୍ଢୀ—1. Ewe. ୨। ମୂତ୍ରରୋଗ ବିଶେଷ—2. An urinary disease. ୩। ମୂତ୍ର, ପ୍ରସ୍ରାବ—3. Urine
Meshikā

ମେଷୀ—ସଂ. ବି. ସ୍ତ୍ରୀ (ମେଷ+ସ୍ତ୍ରୀ ଈ)—୧। ମାଈ ମେଣ୍ଢା—1. Ewe. ୨। ବାଜନ ଗଛ; ଜଳଶ ବୃକ୍ଷ—2. A tree; Dalbergia Ouigensis. ୩। ଜଟାମାଂସୀ—3. Indian Spikenard; Valerine Jatāmāmsi.
Meshi
(ସଂ—ଜଳଶ, ସ୍ୟନ୍ଦନ)

ମେଷ୍ଟ୍ରେଟ୍—ପ୍ରାଦେ. (ଗଞ୍ଜାମ) ବୈଦେ. ବି (ଇଂ. ମାଜିଷ୍ଟ୍ରେଟ୍‌ର ଅଶୁଦ୍ଧ ଉଚ୍ଚାରଣ)—ମାଜିଷ୍ଟ୍ରେଟ୍—Magistrate.
Meshtret

ମେସ୍‌ମେରାଇଜ୍ କରିବା—ଦେ. କ୍ରି ( ଇଂ. ମେସ୍‌ମେରାଇଜ୍ )—
Mes-merāij karibā ଅଧୁନିକ ପାଶ୍ଚାତ୍ୟ ପ୍ରକ୍ରିୟାଦ୍ୱାରା
মেসমেরাইজ করা ମନୁଷ୍ୟକୁ ହତଚେତନ କରିବା—To
**मेसमेराइज करना** mesmerise a person.

ମେସ୍ ମେରିଜ୍‌ମ୍—ବୈଦେ. ବି ( ଇଂ )—ଅଧୁନିକ ପାଶ୍ଚାତ୍ୟ ପ୍ରକ୍ରିୟା-
Mes-merij-m ଦ୍ୱାରା ମନୁଷ୍ୟକୁ ହତଚେତନ କରିବା—
মেসমেরিজম **मेसमेरिजम** Mesmerism.

ମେସ୍ ମେରିଷ୍ଟ—ବୈଦେ. ବି.—( ଇଂ. )—ମେସ୍‌ମେରିଜମ୍ ବଦ୍ୟାରେ
Mes merisht ପ୍ରବୀଣ ବ୍ୟକ୍ତି—Mesmerist.
মেস্‌মেরিষ্ট **मेसमेरिष्ट**

ମେସ୍ତ୍ରି—ପ୍ରାଦେ (ଗଞ୍ଜାମ) ବି.—ମିସ୍ତ୍ରି—
Mestri Mason.

ମେହ—ସଂ. ବି.—(ମିହ୍ ଧାତୁ=ସେଚନ କରିବା+କର୍ମ. ଅ)—
Meha ୧ । ମୂତ୍ର; ପ୍ରସ୍ରାବ—1. Urine. ୨ । (+କରଣ) ମୂତ୍ରରୋଗ ବିଶେଷ; ଧାତୁସ୍ରାବ ରୋଗ—2. Gonorrhoea. [ ଦ୍ର—ଏଥିରେ ପ୍ରସ୍ରାବନଳ ମଧ୍ୟରେ ଘାଆ ଓ ଫୁଲା ହୋଇ ରକ୍ତ ଓ ପୂଜ ଆଦି ପଡ଼େ ଓ ପ୍ରସ୍ରାବଦ୍ୱାର ଭିଡ଼ି ହୁଏ । ଆୟୁର୍ବେଦରେ ବିଂଶତି ପ୍ରକାର ମେହର ଉଲ୍ଲେଖ ଅଛି । ] ୩ । ମେଷ; ମେଣ୍ଢା—3. Ram.

ମେହଗ(ଗା,ଗେ)ନି—ଦେ. ବି—(ଇଂ. ମେହଗନି)—୧ । ସାଗୁଆନ ପରି
Mehaga(gā,ge)ni ଏକ ପ୍ରକାର କାଠ—1. Swietenia
মেহগিনী **तुन** Mahagoni; mahogony.
[ ଦ୍ର—ଏହା କମଳା ବର୍ଗର ବୃହତ୍ ତରୁ । ଏହି ଗଛ ଆମେରିକାରେ ଜନ୍ମେ; ଅଳ୍ପ କାଳୁ ଏ ଦେଶରେ ସ୍ଥାନେ ସ୍ଥାନେ ଲଗା ଯାଉଅଛି । ମେହଗନି କାଠ ରକ୍ତ ପୀତ ବର୍ଣ୍ଣ, କୋମଳ ଓ ସୁନ୍ଦର । ] ୨ । ଆଉ ଏକ ଜାତିର ସାଗୁଆନ କାଠ—2. Swietenia Macrophylla.
[ ଦ୍ର—ଏହି ଗଛ ଛୋଟ; ମାତ୍ର ଏହାର ପତ୍ର ବଡ଼ । ଏ ଦେଶରେ ଏଥିରେ ଫୁଲ ଫଳ ଧରେ । ]

ମେହଘ୍ନୀ—ସଂ. ବି. ସ୍ତ୍ରୀ—(ମେହ+ହନ୍ ଧାତୁ+କ୍ ତୃ+ସ୍ତ୍ରୀ)—ହଳଦୀ-
Mehaghni Turmeric.

ମେହନ—ସଂ. ବି—(ମିହ୍ ଧାତୁ=ସେଚନ କରିବା+କର୍ମ. ଅନ)—
Mehana ୧ । ମୂତ୍ର—1. Urine. ୨ । (+କର୍ତ୍ତୃ. ଅନ ଣ୍ଟ); ପୁରୁଷର ଜନନେନ୍ଦ୍ରିୟ—2 Penis; male organ of generation; Membrum virile. ୩ । (+ଭାବ. ଅନ) ମୂତ୍ରୋତ୍ସର୍ଗ—3. Urination; pissing. ୪ । ମୁଷକ ବୃକ୍ଷ; ଘଣ୍ଟାପାଟଲୀ ବୃକ୍ଷ—4. A wild tree; Schrebra Swieteniodes.

ମେହ(ହେ)ନ(ନ୍ନ)ତ(ତ)—ବୈଦେ. ବି—(ଅ. ମେହନତ)—ମିହନ୍ତ;
Meha(he)na(nna)t(ta) ପରିଶ୍ରମ—Labour; toil.
মেহনত **मिहनत** [ ଉ—ସେ ମିଳିଲେକ, ଏତେ ମେହେନତ (ମେହନ୍ତ—ଅନ୍ୟରୂପ) ଉଠାଇ ପାରିବ ନାହିଁ । ଫକୀରମୋହନ ଛମାଣ. ଆଠଗୁଣ୍ଠ । ]

ମେହନତ୍ କରିବା (ଉଠାଇବା)—ଦେ. କ୍ରି—ପରିଶ୍ରମ କରିବା—
Mehanat karibā (uthāibā) To labour.
মেহনত করা **मिहनत करा**

ମେହ(ହେ)ନ(ନ୍ନ)ତ(ତା)ନା—ବୈଦେ. ବି—( ପା. ମେହନତ୍-ଆନା)-
Meha(he)na(nna)ta(tā)nā ମିହନ୍ତନା; ପାରିଶ୍ରମିକ—
মেহনতানা **महनताना** Remuneration for labour.
[ମେହନ୍ତ(ନ୍ତା)ନା—ଅନ୍ୟରୂପ]

ମେହ(ହେ)ନ(ନ୍ନ)ତୀ—ଦେ. ବିଣ—ପରିଶ୍ରମୀ—
Meha(he)na(nna)ti মেহনতী **मिहनती** Laborious
ମେହ(ହେ)ନ(ନ୍ନ)ତିଆ; ମେହ(ହେ)ନ୍ତୀ; ମେହ(ହେ)ନ୍ତିଆ } —ଅନ୍ୟରୂପ

ମେହିକାପ—ଦେ. ବି.—ମେକାପ (ଦେଖ)
Mehikāpa Mekāpa (See)

ମେହି ଖୁଣ୍ଟ—ପ୍ରାଦେ.—(ସାକ୍ଷୀଗୋପାଳ)—ବି.—ମେରି (ଦେଖ)
Mehi khunta Meri (See)

ମେହି(ହେ)ଲି ରାଣ୍ଡିଆ—ପ୍ରାଦେ.—( ଗଡ଼ଜାତ )—ବିଣ. ପୁଂ—
Mehi(he)li rāndiā (ପୁରୁଷଙ୍କ ପ୍ରତି ବ୍ୟବହୃତ ଗାଳି)—
ଯେଉଁ ବାଳକର ବିବାହର ଅବ୍ୟବହିତ ପରେ ତା ସ୍ତ୍ରୀ ବିଧବା ହେବ, ଅର୍ଥାତ ବିବାହିତ ବ୍ୟକ୍ତି ସ୍ୱୟଂ ମରିଯିବ—
(A curse to males) One who will die soon after marriage.

ମେହି(ହେ)ଲି ରାଣ୍ଡି—ପ୍ରାଦେ. (ଗଡ଼ଜାତ)—ବିଣ. ସ୍ତ୍ରୀ—(ସ୍ତ୍ରୀଙ୍କ ପ୍ରତି
Mehi(he)li rāndi ପ୍ରଯୁଜ୍ୟ ଗାଳି)—ଯେଉଁ ସ୍ତ୍ରୀ ବିବାହର ଅବ୍ୟବହିତ ପରେ ବିଧବା ହେବ—(a term of cursing applied to females) (a woman) Who will become a widow immediately after her marriage.

ମେହୀ—ସଂ. ବିଣ. ପୁଂ—( ମେହ+ଇନ୍; ୧ମା; ୧ବ )—ମେହ-
Mehi (ମେହ୍ନୀ—ସ୍ତ୍ରୀ) ରୋଗାକ୍ରାନ୍ତ (ବ୍ୟକ୍ତି)—
Suffering from gonorrhoea.

ମେହି ଖୁଣ୍ଟି—ପ୍ରାଦେ. (ବାଲ୍ଙ୍କି) ବି.—ପାପଡ଼ି—A post driven
Mehi khunti in the centre of a pond.

ମେହୁ—ଗ୍ରା. ବି—(ପ୍ରାଚୀନ ପଦ୍ୟ)—ମେଘ—
Mehu মেঘ **मेह** Cloud.
[ଉ—ଗର୍ଜିଲେ ଗଗନେ ମେହୁ ଥାଇଲେ ବରଷା । ପ୍ରାଚୀ. ଉପସ୍ୱ ମଞ୍ଜରୀ ।]

ମେହୁଆ—ଦେ. ବି—ମେଉଆ (ଦେଖ)
Mehuā Meuā (See)

ମେହେଙ୍କାଳ—ଦେ. ବି—(ସଂ. ମହାକାଳ)—ମହାକାଳ ଫଳ—
Mehenkāla Colocynth; bitter apple; citrullus.
মাকাল **महङ्काड**

ମେହାଙ୍ଗା—ଦେ. ବି— ଏକପ୍ରକାର ବନ୍ୟ କୋଳ ଗଛ—Erioglossum
Mehengā Rubiginosum (Haines)

ମେହେଞ୍ଜର—ବୈଦେ. (ଗ୍ରାମ୍ୟ) ବି.—(ଇଂ. ମାନେଜର)—ମେନେଜର
Mehenjara ম্যানেজর (ଦେଖ)—Menejara (See)

ମେହେଦି (ନ୍ଦି)—ଦେ. ବି—(ସଂ. ମେନ୍ଧିକା, ମେନ୍ଧୀ)—ମଞ୍ଜୁଆତି; ହେନା—
Mehedi(ndi) Alcanet; Henna; Lawsonia Alba.
(ସଂ. ନାମ—ମେନ୍ଧୀ, ମେନ୍ଧିକା, ନଖରଞ୍ଜ, କୋକଦନ୍ତା।)
মেহেন্দি, মেদি हेना, मेहेन्दि Tylophora Asthamatica.
ହି. ମେହେଦୀ [ ଦ୍ର—ଧାତକ୍ୟାଦି ବର୍ଗର କ୍ଷୁପ; ଶାଖା କଣ୍ଟକମୟ
ପା. ହେନା ବୋଲି ଲୋକେ ଏହି ଗଛକୁ ଲଗାଇ ବାଡ଼ ବୁଜନ୍ତି । ଏହାର ଫୁଲ ଉଭୁଦଳ । ଏହା ଗଛ ବେଲୁଚିସ୍ଥାନ ଜଙ୍ଗଲରେ ଓ ଭାରତରେ ପାଳିତ ହୋଇ ଲଗାଯାଏ । ଏଥିର ମଞ୍ଜସାରେ ଧଳା ଫୁଲ ଧରେ । ଫୁଲର ଗନ୍ଧ ମଧୁର । ଫଳ ଗୋଲମରିଚ ପରି କେଣ୍ଡା କେଣ୍ଡା ଫଳେ । ଏହାର ପତ୍ରକୁ ବାଟି କରତଳରେ ଓ ନଖରେ ଲଗାଇ କିଛି ସମୟ ପରେ ଧୋଇ ଦେଲେ ସେ ସ୍ଥାନ ନାଲି ହୁଏ । ଏହି ଗଛର ପତ୍ରକୁ ବାଟି ମୁସଲମାନ୍ ସ୍ତ୍ରୀ ପୁରୁଷମାନେ ହାତ, ନଖ, ପାଦ ଓ ଦାଢ଼ିକୁ ରକ୍ତବର୍ଣ୍ଣରେ ରଙ୍ଗାନ୍ତି । ]

ମେହେନା—ବୈଦେ. ବି.—(ଅ. ମେୟାନା)—ତାମଜାନ; କାଠରେ
Mehenā ତିଆରି ହେବା ଡୁଲି ପରି ବାଉଁଶ ଲଗା ଚଉକି ବା
তঞ্জাম, মেনা मियाना ଦୋଳି—A sedan chair.

ମେହେ(ହ)ନ୍ତ(ତ)ର—ବୈଦେ. ବି. ପୁଂ—(ଫା. ମେହତର୍ =ପରମାଣିକ;
Mehe(ha)nta(ta)ra ଜାତିର ସର୍ଦାର, ମୂଳ. ସଂ. ମହତ୍ତର)—
মেথার मेहन्तर ହାଡ଼ି; ମଳ ପରିଷ୍କାରକ ଅସ୍ପୃଶ୍ୟ ଜାତିବିଶେଷ;
[ମେହ୍ତ (ଢ଼)ତର—ଅନ୍ୟରୂପ] ଚଣ୍ଡାଳ—The caste of sweepers and removers of nightsoil.

ମେହ୍ନ(ହେଁ)ତ୍ରାଣୀ
ମେହ୍ଦ(ହେଁ)ତରାଣୀ —ସ୍ତ୍ରୀ
ମେହ(ହେ)ତ୍ରାଣୀ
[ ଦ୍ର—ବର୍ତ୍ତମାନ ଭାରତର ପଶ୍ଚିମ ସୀମାନ୍ତବର୍ତ୍ତୀ ଚିତ୍ରାଲ ଅଞ୍ଚଳର ଦେଶୀୟ ରାଜାଙ୍କ ଉପାଧି ମେହ୍ତର । ଅତଏବ ମେହ୍ତର୍ ଶବ୍ଦର ଅର୍ଥ ମାନ୍ୟ ବ୍ୟକ୍ତି । ତେଣୁ ଏ ନୀଚ କର୍ମକାରୀ ହାଡ଼ିଙ୍କୁ ସ୍ତୁତି ବା ଶ୍ରୁତିବାଚନ (euphemism) ରେ 'ମେହେନ୍ତର' ବୋଲି ପ୍ରଥମେ ଡକା ହେଲା । ତୁଳନା କର —ଓଡ଼ିଆ. ମାହାର=ହାଡ଼ି; ମାହାରାଣୀ= ହାଡ଼ୁଆଣୀ ।]

ମେହେନ୍ତରି—ବୈଦେ. ବି.—ମେହେଁନ୍ତରର କର୍ମ
Mehentari The act of a sweeper.
মেথরী मेहन्तरी

ମେହେ(ହ)ମାନ୍—ବୈଦେ. ବି.—(ଫା.)—ଅତିଥି—
Mehe(ha)mān মেহেমান मेहेमान Guest.

ମେହେ(ହ)ମାନଦାର୍—ବୈଦେ. ବି—(ଫା.)—ଅତିଥିସତ୍କାର କରିବା
Mehe(ha)mān-dār মেহেমানদার ବ୍ୟକ୍ତି-A hospitable
मेहेमानदार person.

ମେହେ(ହ)ମାନଦାରି—ବୈଦେ. ବି. (ଫା.)—ଅତିଥିସତ୍କାର—
Mehe(ha)mān-dāri মেহেমামদারী Entertainment
मेहेमानदारी of guests.

ମେହେମାନି—ବୈଦେ. ବି. (ଫା.)—ଆତିଥ୍ୟ—Hospitality.
মেহেমানী मेहेमानी

ମେହେର୍—ବୈଦେ. ବି—(ଫା. ମେହର)—୧ । ବନ୍ଧୁତ୍ୱ—
Meher মেহর मेहर 1. Friendship. ୨ । ଅନୁଗ୍ରହ—
(ମେହରବାନ୍‌ଗୀ—ଅନ୍ୟରୂପ) 2. Favour. ୩ । ସୌହାର୍ଦ୍ଦ୍ୟ
3. Intimacy. ୪ । ମନର ମେଳ—4. Concord; mental agreement. ପ୍ରାଦେ.
(ସମ୍ବଲପୁର)—ବି.—ଭୁଲିଆ ମାନଙ୍କର ବଂଶୋପାଧିବିଶେଷ-
A family-title of weavers.

ମେହେରଉନ୍ନିସା—ବୈଦେ. ବି (ନାମ) (ଫା)—ମୋଗଲ ସମ୍ରାଟ
Meher-unnisā ଜାହାଙ୍ଗୀରଙ୍କ ପ୍ରିୟତମା ପତ୍ନୀ ନୁରଜାହାନଙ୍କ
মেহেরউন্নিসা ପୂର୍ବନାମ—The name of the Empress
मेहरउन्निसा of the Moghal Emperor Jehangir before her marriage with the Emperor.

ମେହେରବାନ୍—ବୈଦେ. ବ (ଫା; କଚରିଅ)—ସୁହୃଦ୍; ବନ୍ଧୁ—
Meher-bān Friend. ବୈଦେ ବଣ—୧ । ଦୟାଳୁ—
মেহেরবান 1. Kind; compassionate. ୨ ।
मेहरबान ଅନୁକୂଳ—2. Favourable; gracious.
୩ । ବନ୍ଧୁଭାବାପନ୍ନ—3. Friendly

ମେହେରବାନ୍ ଦୋସ୍ତାନ୍—ବୈଦେ. ଅ (ଫା; କଚରିଅ) (ମିତ୍ର
Meher-bān dostān ରାଜାମାନଙ୍କ ନିକଟକୁ ପ୍ରେରିତ ପତ୍ରର
মেহরবান দোস্তান ଶିରୋନାମରେ ଲେଖାଯିବା ସମ୍ବୋଧନ)—
मेहरबान दोस्तान ପ୍ରିୟତମ ଓ ସ୍ନେହୀ ବନ୍ଧୋ !—My esteemed friend! (used as a term of address in letters written to the Chiefs of friendly or feudatory states)

ମେହେ(ହ)ରବାନ୍ କଦଳୀ—ପ୍ରାଦେ (ଗଞ୍ଜାମ) ବି—ବାଉଁଳୀ କଦଳୀ
Mehe(ha)r-bān kadali —A kind of dwarf banana plant and its fruit.

ମେହେ(ହ)ରବାନି—ବୈଦେ. ବି (ଫା. ମେହରବାନ୍‌ଗୀ)—୧ ।
Mehe(ha)r-bāni ଦୟାଳୁତା; ଦୟା—1. Kindness.
মেহেরবানী ୨ । ଅନୁଗ୍ରହ—2. Grace; favour. [ ଦ୍ର
मेहरबानी —ଗ୍ରେଜଗାର ବିଷୟରେ ମେହରବାନି କର
(ମେହେରବାନ୍‌ଗୀ—ଅନ୍ୟରୂପ) ପଢ଼ୁଥିଲେ । ଫକୀରମୋହନ. ଛଅମାଣଅଠଗୁଣ୍ଠ । ] ୩ । ବନ୍ଧୁତା; ସୌହାର୍ଦ୍ଦ୍ୟ—
3. Friendship.

ମେହେର କବି—ଦେ. ବି—ସମ୍ବଲପୁରର ପ୍ରସିଦ୍ଧ ଓଡ଼ିଆ କବି ଗଙ୍ଗାଧର
Mehera kabi ମେହେର—The late Gangadhar Meher, late Oriya poet. [ ଦ୍ର—ମେହେର କବି ପ୍ରଣୟବଲ୍ଲରୀ, ଇନ୍ଦୁମତୀ, କବିତାକଲ୍ଲୋଳ, ତପସ୍ୱିନୀ, କୀଚକବଧ, ଅର୍ଘ୍ୟସ୍ଥାଳ, ଭାରତୀଭାବନା, ମହିମା, ଅହଲ୍ୟାସ୍ତବ, ଉତ୍କଳଲକ୍ଷ୍ମୀ ଆଦି କାବ୍ୟ ଓ କବିତାମାନ ରଚନା କରି ଓଡ଼ିଆ ସାହିତ୍ୟରେ ଅମର କୀର୍ତ୍ତି ରଖି ଯାଇଅଛନ୍ତି । ଓ ତାଙ୍କ ନାମରେ ସମ୍ବଲପୁରର ଉଦ୍ୟମୀ ସାହିତ୍ୟିକମାନେ ସମ୍ବଲପୁରରେ ୧୯୩୦ ସାଲରୁ ଗଙ୍ଗାଧର ସାହିତ୍ୟ ପରିଷଦ ପ୍ରତିଷ୍ଠା କରିଅଛନ୍ତି ।]

ମେହେରାବ୍(ବି)—ବୈଦେ. ବି ( ଆ; ମେହ୍‌ରାବ୍ )—୧ । ତୋରଣ—
Meherāb(bi) 1. Gate. [ ଉ—ଉଭୟକୁ ସ୍ୱର୍ଣ୍ଣସ୍ତମ୍ଭ
মেরাপ ହୋଇ ଧାଡ଼ି ଠାଣ୍ଡ, ଧର ରତ୍ନ ମେହେରାବମାନଙ୍କୁ ।
मेहराब ଚନ୍ଦ୍ରାମଣି. ବକମାଦତ୍ୟ । ] ୨ । ତୋରଣ ଉପରେ
ବୃଲିବା ଖିଲାଣ—2. An arch over a gateway. ୩ । ଖିଲାଣ—3. Arch. ୪ । ଗୋଲାକାର
ଶିଖର—4. Arched top. [ ଉ—ମେହେରାବ-ଏସ୍ତ
ଅକାଶେ ତୋଳନ୍ତି ପହୃପଠା । ରାଧାନାଥ. ଉଷା । ]

ମେହେରାବ୍‌ଦାର୍—ବୈଦେ. ବିଣ (ଫା. ମେହ୍‌ରାବ୍‌ଦାର୍) —ଖିଲାଣ ଯୁକ୍ତ
Meherāb-dār —Arched.
মেরাপদার मेहराबदार

ମୈ—ଦେ ଓ ବୈଦେ. ବି — ମଇ ( ଦେଖ )
Mai Mai ( See )

ମୈଅର—ଗ୍ରା. ବି ( ସଂ. ମୟୂର )— ମୟୂର ( ଦେଖ )
Maiara Mayūra ( See )
ময়ূর मयूर (ମୈଅରୀ— ସ୍ତ୍ରୀ)

ମୈଁ—ପ୍ରାଦେ ( ଉତ୍ତିଭାଷା ) ସର୍ବ ( ତୁଳ ହି. ମୈଁ )—ମୁଁ; ଆମ୍ଭେ—
Maiñ I.

ମୈଁତର—ପ୍ରାଦେ ( ଉତ୍ତିଭାଷା ) ବି ( ସଂ. ମିତ୍ର )—ମିତ୍ର; ବନ୍ଧୁ—
Maiñtara Friend.

ମୈଁଷ (ଷି)—ଦେ. ବି ( ସଂ. ମହିଷ )—ମଇଁଷ ( ଦେଖ )
Maiñsha(shi) Maiñsha ( See )

ମୈତା—ଦେ. ବି— ମଇତା ( ଦେଖ )
Maitā Maitā ( See )

ମୈତ୍ର—ସଂ. ବିଣ. (ମିତ୍ର+ଅ)—ମିତ୍ର ସମ୍ବନ୍ଧୀୟ—Friendly.
Maitra ସଂ. ବି – ୧ । ସୌହାର୍ଦ୍ଦ୍ୟ; ମିତ୍ରତା—1. Friendship. ୨ । ସଂସର୍ଗ—2. Association; intercourse. ୩ । ଅନୁରାଧା ନକ୍ଷତ୍ର—3. The seventeenth lunar mansion. ୪ । ମଳ ତ୍ୟାଗ—4. Voiding excrement. ୫ । ବ୍ରାହ୍ମଣ—5. A Brahman. ୬ । ମିତ୍ର—6. A friend. ୭ । ପାୟୁ; ମଳଦ୍ୱାର; ଗୁହ୍ୟ ଦେଶ—7. The anus. ଦେ. ବି—ବଙ୍ଗୀୟ ବାରେନ୍ଦ୍ର ଶ୍ରେଣୀର ବ୍ରାହ୍ମଣଙ୍କ ବଂଶୋପାଧି ବିଶେଷ—A family title amongst the Bengalee Brahmans of Bārendra class.
মৈত্র
मैत्र

ମୈତ୍ରକ—ସଂ. ବି. (ମୈତ୍ର+କ) —ମିତ୍ରତା—
Maitraka Friendship.

ମୈତ୍ର କଣ୍ଟା—ପ୍ରାଦେ. (ଗଡ଼ଜାତ) ବି – ଜୁଆଳ ମଝିରେ ଉପରକୁ ଉଠି-
Maitra kaṇṭā ଥିବା ଖିଲ—The wooden pin fixed on the middle of the yoke.

ମୈତ୍ରାବରୁଣ(ଣି)—ସଂ. ବି. ( ମିତ୍ରାବରୁଣ+ଅପତ୍ୟାର୍ଥେ ଅ; ଇ )—
Maitrābaruṇa(ṇi) ୧। ଅଗସ୍ତ୍ୟ ଋଷି—1. Sage Agastya. ୨ । ବଶିଷ୍ଠ ଋଷି—2. Sage Basishṭha.
[ଦ୍ର—କଥିତ ଅଛି, ଯେ ଉର୍ବଶୀଙ୍କ ରୂପରେ ମୋହିତ ମିତ୍ର ଓ ବରୁଣ ଦେବଦ୍ୱୟଙ୍କ ବୀର୍ଯ୍ୟ ସ୍ଖଳିତ ହୋଇ ଏକ ସ୍ଥାନରେ ପଡ଼ିଲା ଓ ତହିଁରୁ ଅଗସ୍ତ୍ୟ ଓ ବଶିଷ୍ଠ ଋଷିଦ୍ୱୟ ଜାତ ହେଲେ—ହି. ଶ]

ମୈତ୍ରୀ—ସଂ. ବି. (ମିତ୍ର+ଭାବ, ଅ+ସ୍ତ୍ରୀ. ଈ)—୧ । ମିତ୍ରତା; ବନ୍ଧୁତା—
Maitrī 1. Friendship. ୨ । ସହଯୋଗ; ସଂସର୍ଗ—2. Association; co-operation. ୩। ସହବାସ—3. Familiarity; cohabitation.

ମୈତ୍ରୀ କରଣ—ସଂ. ବି. ( ମୈତ୍ରୀ+କରଣ )—ମିତ୍ରତା ସ୍ଥାପନ—
Maitrī karaṇa Establishment of friendship or amicable relation.

ମୈତ୍ରୀ ବଳ—ସଂ. ବି— ବୁଦ୍ଧ ଦେବଙ୍କର ଏକ ନାମ (ହି. ଶ)—
Maitrī baḷa A name of the Buddha.

ମୈତ୍ରୀ ବ୍ରତ—ସଂ ବି—ମିତ୍ରତା ରୂପ ବ୍ରତ—
Maitrī brata A vow of friendship.

ମୈତ୍ରୀ ଭାବ—ସଂ. ବି—ସୌହାର୍ଦ୍ଦ୍ୟ; ବନ୍ଧୁତା—Friendship; amicable relation.
Maitrī bhāba

ମୈତ୍ରେୟ—ସଂ. ବ (ମିତ୍ର+ସମ୍ବନ୍ଧାର୍ଥେ ଏୟ) -ମିତ୍ର ସଂବନ୍ଧୀୟ--Relating to a friend. ବି. (ମିତ୍ର+ଅପତ୍ୟାର୍ଥେ ଏୟ)
Maitreya —୧ । ଋଷି ବିଶେଷ; ବିଷ୍ଣୁ ପୁରାଣର ଶ୍ରୋତା—1. Name of a sage who was the hearer of Bishṇu Pūrāṇa. [ଦ୍ର—ଭାଗବତ ଅନୁସାରେ ଏ ପରାଶରଙ୍କ ଶିଷ୍ୟ ଥିଲେ—ହି. ଶ] ୨ । ବୁଦ୍ଧଦେବ—2. The Buddha. [ଦ୍ର—ଏ ବୁଦ୍ଧଦେବ ଭବିଷ୍ୟତରେ ଅବତୀର୍ଣ୍ଣ ହେବେ—ହି ଶ] ୩ । ସଙ୍କର ଜାତି ବିଶେଷ—3. Name of a mixed caste. [ଦ୍ର—ଏହି ସଙ୍କର ଜାତି ବୈଦେହ ପୁରୁଷ ଔରସରେ ଅଯୋଗବ ଜାତୀୟା ସ୍ତ୍ରୀ ଗର୍ଭରେ ଜାତ । ଏମାନେ ଲୋକଙ୍କୁ ଘନ ଘଣ୍ଟିର ସମୟ ବିଜ୍ଞାପନ କରୁଥିଲେ ।] ୪ । କୋଣାର୍କସ୍ଥ ପବିତ୍ର ବନ—4. A sacred forest at Koṇārka. ୫ । ସୂର୍ଯ୍ୟ (ହି. ଶ)—5. The sun.

ମୈତ୍ରେୟକ—ସଂ. ବି. ( ମୈତ୍ରେୟ+ସ୍ୱାର୍ଥେ. କ )—ଯେ ମୁହୂର୍ତ୍ତ କାଳ
Maitreyaka ସମୟ ବିଜ୍ଞାପନ କରେ—A crier who announces the time.

ମୈତ୍ରେୟିକା—ସଂ. ବି. ( ମୈତ୍ରେୟ+ଇକ+ଆ )—ମିତ୍ରଯୁଦ୍ଧ;
Maitreyikā ବନ୍ଧୁମାନଙ୍କ ମଧ୍ୟରେ ପରସ୍ପର ସଂଗ୍ରାମ—A contest amongst friends or allies.

ମୈତ୍ରେୟୀ—ସଂ. ବି. ସ୍ତ୍ରୀ. (ନାମ)—୧ । ଯାଜ୍ଞବଲ୍କ୍ୟ ଋଷିଙ୍କର ବ୍ରହ୍ମ-
Maitreyī ବାଦିନୀ ସ୍ତ୍ରୀ—1. Name of the learned wife of sage Jājñyabaḷkya. ୨ । ଅହଲ୍ୟାଙ୍କ ନାମ (ହି. ଶ)—2. A name of Ahalyā.

ମୈତ୍ର୍ୟ—ସଂ. ବି (ମିତ୍ର+ଭାବେ. ଯ)—ବନ୍ଧୁତ୍ୱ; ମୈତ୍ରୀ—
Maitrya Friendship.

ମୈଥିଳ—ସଂ. ବିଣ. ପୁଂ (ମିଥିଳା+ସମ୍ବନ୍ଧାର୍ଥେ. ଅ)—୧ । ମିଥିଳା
Maithiḷa ଦେଶ ସମ୍ବନ୍ଧୀୟ—1. Relating to the

( ମୈଥିଲୀ—ସ୍ତ୍ରୀ ) country Mithilā. ୨ । ମିଥିଳା ଦେଶବାସୀ—2. Inhabiting Mithilā ବି— ୧ । ମିଥିଳାର ରାଜା—1. The king of Mithilā, ୨ । ରାଜା ଜନକ—2. King Janaka. ୩ । ମିଥିଳା ଦେଶବାସୀ ବ୍ୟକ୍ତି—3. An inhabitant of Mithilā.

ମୈଥିଲୀ—ସ. ବି. ସ୍ତ୍ରୀ (ମିଥିଳା+ଅପତ୍ୟାର୍ଥେ. ଅ+ସ୍ତ୍ରୀ. ଈ)—
Maithilī ୧ । ଜନକଦୁହିତା ସୀତା—1. Sītā, the daughter of Janaka, king of Mithilā. ୨ । ବିହାରୀ ଭାଷାର ପ୍ରାଦେଶିକ ଭାଷା—2. A dialect of the Behari language. ସ. ବିଣ. ସ୍ତ୍ରୀ—ମୈଥିଳର ସ୍ତ୍ରୀ ଲିଙ୍ଗ—Feminine of Maithila.

ମୈଥୁନ—ସ. ବି ( ମିଥୁନ=ସ୍ତ୍ରୀ ପୁରୁଷ+କର୍ମାର୍ଥେ. ଅ )— ୧ । ଅଗ୍ନ୍ୟାଧାନାଦି ବିବାହ କର୍ମ—1. The ceremony or rites of marriage. ୨ । ରତିକ୍ରିୟା; ସୁରତ; ସ୍ତ୍ରୀ-ପୁରୁଷର ଶାରୀରିକ ସଙ୍ଗମ; ସମ୍ଭୋଗ; ଇନ୍ଦ୍ରିୟଲାଲସାର ଚରିତାର୍ଥୀକରଣ—2. Copulation; cohabitation; sexual intercourse. [ ଦ୍ର—ଏହାର ଅନ୍ୟାନ୍ୟ ସଂସ୍କୃତ ନାମ—ଅନାଚାର, ଅଭିମାନିତ, ଅବ୍ରହ୍ମଚର୍ଯ୍ୟକ, ଉପସୃଷ୍ଟ, ଗ୍ରାମ୍ୟଧର୍ମ, କ୍ରୀଡ଼ାରତ୍ନ, ଜୈଭଙ୍ଗ ଧର୍ଷି., ନିଧୁବନ, ମହାସୁଖ, ରତ, ବ୍ୟବାୟ, ପୁଂପ୍ରୟୋଗ, ସୁରତ, ସମ୍ଭୋଗ, ଶୃଙ୍ଗାର, ପ୍ରସକ୍ତି, ରତି, ରତିକ୍ରିୟା । ] ୩ । ସ୍ତ୍ରୀ ଓ ପୁରୁଷ ମଧ୍ୟରେ ସ୍ମରଣ, କୀର୍ତ୍ତନ, କେଳି, ପ୍ରେକ୍ଷଣ, ଗୁହ୍ୟଭାଷଣ, ସଂକଳ୍ପ, ଅଧ୍ୟବସାୟ, କ୍ରିୟାନିଷ୍ପତ୍ତି—ଏହି ଅଷ୍ଟାଙ୍ଗଯୁକ୍ତ ବ୍ୟାପାର—3. The amatory association between a male and a female (consisting of eight acts or steps) ୪ । ସଂସର୍ଗ—4. Association,

ମୈଥୁନ୍ୟ—ସଂ. ବି (ମୈଥୁନ+ଯ)—ଗାନ୍ଧର୍ବ ବିବାହ (ହି.ଶ)—
Maithunya Love-marriage.

ମୈଦା—ଦେ. ବି (ପା)—ମଇଦା (ଦେଖ)—Maidā (See)
Maidā [ଦ୍ର—ମୈଦା ଅଟା ଅପେକ୍ଷା ଖୁବ୍ ସୂକ୍ଷ୍ମତର ଚୂର୍ଣ୍ଣ ଅଟେ ।]
ময়দা मैदा

ମୈଦାନ (ଇତ୍ୟାଦି)—ବୈଦେ. ବି (ପା)—ମଇଦାନ ଇତ୍ୟାଦି (ଦେଖ)
Maidāna (etc) Maidāna etc (See)
ময়দান मैदान

ମୈଧେ(ଧ୍ୟେ)—ଗ୍ରା. କ୍ରି. ବିଣ (କଟକ ଓ ଜମିଦାରୀ ଓ ମହାଜନୀ ଭାଷାର)—ମଇଧେ ( ଦେଖ )—Maidhe (See)
Maidhe(dhye)

ମୈନର—ବୈଦେ. ପ୍ରାଦେ (ଗଞ୍ଜାମ) ବି ଓ ବିଣ—ମଇନର (ଦେଖ)
Mainara Mainara (See)

ମୈନା—ପ୍ରାଦେ. (ସମ୍ବଲପୁର) ବି—ମଇନା (ଦେଖ)
Mainā Mainā (See)

ମୈନାକ—ସଂ. ବି ( ମେନକା=ହିମାଳୟପତ୍ନୀ+ଅପତ୍ୟାର୍ଥେ. ଅ )—
Maināka ପର୍ବତରାଜ ହିମାଳୟଙ୍କ ପୁତ୍ରରୂପେ କଳ୍ପିତ ପର୍ବତ-ବିଶେଷ—Name of a fabulous mountain in the sea betwen India and Ceylon.
(ଅନ୍ୟ ସଂନାମ—ହିମବତ୍ସୁତ, ହିରଣ୍ୟନାଭ, ସୁନାଭ ।)
[ ଦ୍ର—ମୈନାକ ପର୍ବତ କୁମାରିକା ଅନ୍ତରୀପ ଓ ଲଙ୍କାଦ୍ୱୀପ ମଧ୍ୟରେ ସମୁଦ୍ର ଗର୍ଭରେ ଅବସ୍ଥିତ । କଥିତ ଅଛି ଯେ, ଦେବରାଜ ଇନ୍ଦ୍ର ପର୍ବତମାନଙ୍କର ପକ୍ଷଚ୍ଛେଦ କରିବାରୁ ଏ ସମୁଦ୍ରରେ ଲୁଚି ରହିଥିଲେ । ଫଳରେ ଏହାଙ୍କର ପକ୍ଷଚ୍ଛେଦ ହୋଇ ପାରିନ ନାହିଁ । ସମୁଦ୍ର ପାର ହେବାବେଳେ ହନୁମାନଙ୍କୁ ଆଶ୍ରୟ ଦେବାପାଇଁ ସମୁଦ୍ର ମୈନାକଙ୍କୁ ଆଦେଶ ଦେଇଥିଲେ ।] ଦେ. ବି—୧ । ରଣପୁର ରାଜଧାନୀ ନିକଟବର୍ତ୍ତୀ ବିଶାଳ ପର୍ବତ—1, A large mountain near Raṇapur, the capital of the Raṇapur Oriya State, [ କ୍ର—ଫଣାଧରାକୃତି ମୈନାକ ଶିଖରୀ ଯା ଶିରେ ବସନ୍ତି ରଣପୁରେଶ୍ୱରୀ । ରାଧାନାଥ. ଚିଲିକା ।] ୨ । ହିମାଳୟର ଉଚ୍ଚଶୃଙ୍ଗ ବିଶେଷ (ହି.ଶ)—2. Name of a high peak of the Himālayas.

ମୈନିକ—ସଂ. ବି. ପୁଂ (ମୀନ+ଜୀବିକାର୍ଥେ. ଇକ) ମତ୍ସ୍ୟବ୍ୟବସାୟୀ—
Mainika Fisherman.

ମୈନ୍ଦ—ସଂ. ବି—୧ । ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ଅସୁରବିଶେଷ—
Mainda 1. Name of a demon killed by Śrikṛushṇa. ୨ । ବାନରରାଜ ବିଶେଷ—2. Name of a mythological monkey-king.

ମୈଫ(ଫି)ଲ୍—ବୈଦେ. ବି (ପା)—ମଇଫଲ୍ (ଦେଖ)
Maipha(phi)l Maiphal (See)

ମୈମନ୍—ବୈଦେ. ବି—ମଇମନ୍ (ଦେଖ)
Maiman Maiman (See)

ମୈର—ଗ୍ରା. ବି. ପୁଂ (ସଂ. ମୟୂର)—ମୟୂର (ଦେଖ)
Maira ময়ূর मोर Mayūra (See)
( ମୈରୀ—ସ୍ତ୍ରୀ )

ମୈରା—ଦେ. ବି—୧ । ମଇରା (ଦେଖ)—1. Mairā (See) ୨ । (ନାମ) ଲର୍ଡ ମଇରା; ଭାରତର ଜନୈକ ବଡ଼ଲାଟ—2. Lord Moira, the Governor General and Viceroy of India from 1813-1823. [ଦ୍ର—ଲର୍ଡ ମୈରା ୧୮୧୩-୨୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର ଜେନେରଲ୍ ଥିଲେ । ଏହାଙ୍କ ଅମଳରେ ଘଟିଥିବା ନେପାଳ ଯୁଦ୍ଧ, ପିଣ୍ଡାରି ଯୁଦ୍ଧ ଓ ଶେଷ ମରହଟ୍ଟା ସମରରେ ଇଂରେଜମାନେ ଜୟଲାଭ କରିଥିଲେ ।]
Mairā
ময়রা
मयरा

ମୈରାବଣ—ଗ୍ରା. ବି. (ନାମ)—ମହୀରାବଣ (ଦେଖ)
Mairābaṇa Mahirābaṇa ( See )
মহীরাবণ महीरावण

ମୈହିରିଅ—ଦେ. ବ—ମହୁରି ଗିରିଅ ( ଦେଖ )
Mairigiriā Mahiri giriā( See )

ମୈରି ଭଲି ଗଣ୍ଡିବା (ଲୋଟିବା)—ଦେ. କ୍ରି.—ଅତ୍ୟନ୍ତ ବିକଳ ହୋଇ
Mairī bhali gaṇḍibā (loṭibā) ଭୂମିରେ ଲୁଣ୍ଠିତ ହେବା—
To wallow or roll on the ground with agony.

ମୈରେୟ—ସ. ବି.—(ମିରୁ ॥ ମିରର ଦେଶର ପ୍ରାଚୀନ ନଗରବିଶେଷ
Maireya +ଜାତାର୍ଥେ ଏୟ୍;ଅଥବା ମାର=କାମ+ଜନକାର୍ଥେ. ଏୟ୍
ନିପାତନ)—୧ । ମିରର ଦେଶଜ ମଦ୍ୟ ବିଶେଷ—
1. A kind of wine distilled from the blossom of Lythrum Fruticosum.
[ ଦ୍ର—ଏହା ଧାଇ ଫୁଲ, ଗୁଡ଼, ଗୁଡ଼ୁଚି ଛାଞ୍ଚି, ଦାରୁଚିନି, ତେଜପତ୍ର, ଅଳାଇଚ, ନାଗେଶ୍ୱର, ଜିରା, ମରିଚ, ଶୁଣ୍ଠି ଓ ବଂଶମୁଗକ୍ଷାର ପ୍ରସ୍ତୁତ ହୁଏ ।] ୨ । ମଦ; ଶରାପ—
(ହେ. ଶ)—2. Wine. ୩ । ମଧୁ ମିଶ୍ରିତ ମଦ୍ୟ ଓ ଆସବ
(ହେ. ଶ)—3. Wine mixed with honey.

ମୈରେୟକ—ସ. ବ—ବୈରନ୍ଧ୍ରୀ ଗର୍ଭରେ ବୈଦେହ ଔରସରେ ଉତ୍ପନ୍ନ
Maireyaka ସଙ୍କର ଜାତି ବିଶେଷ—Name of a half caste born of the womb of a Saurindhri woman by a Baideha male.

ମୈଲ୍‌ଖୁ(ଖୋ)ରା—ଦେ. ବି.—ମଇଲ ଖୁରା (ଦେଖ)
Mail-khu(kho)rā Maila khurā (See)

ମୈଲ—ପ୍ରାଦେ. (ଗଞ୍ଜାମ)—ବୈଦେ. ବ—ମଇଲ (ଦେଖ)
Maila Maila (See)

ମୈଲନ୍ଦ—ସ. ବ.—ଭ୍ରମର—
Mailanda The black bee.

ମୈଲମ—ଦେ. ବ—ମଇଲମ (ଦେଖ)
Mailama Mailama (See)

ମୈଲା(ଲା) (ଇତ୍ୟାଦି)—ଦେ. ବ ଓ ବଣ—ମଇଲା ଇତ୍ୟାଦି (ଦେଖ)
Mailā(lā) (etc) Mailā etc ( See )
ময়লা मैला

ମୈଶୁମ୍ (ମି)—ବୈଦେ. ବ—ମହଶୁମ୍(ମି) ( ଦେଖ )
Maiśum(mi) Mahaśum(mi) ( See )

ମୈଶୁର—ଦେ. ବ—ମହୀଶୁର ( ଦେଖ )
Maiśura Mahīśur ( See )

ମୈଁ(ମେଁ)ଷାସୁର—ଗ୍ରା. ବ—ମହିଷାସୁର—A demon. (ଦ୍ର—
Mai(maiñ)shāsura ସତ୍ୟ ଯୁଗେ ମୈଁଷାସୁର ଦରପ ଚଢ଼ୁ, ତ୍ରିଗୁଣ ଜନନୀ ଏଷ୍ଟ ଅନାଦ୍ୟ ନାଏ । ପ୍ରାଚୀ. ବିଶ୍ୱମଣ୍ଡଳ ।)

ମୈସ୍ମର—ବୈଦେ. ବ (ଅଧୁନିକ ପ୍ରୟୋଗ; ଇଂ. ମେସ୍‌ମେରିଜମ୍)—
Maismara ମେସ୍‌ମେରିଜମ୍; ଯେଉଁ ମନ୍ତ୍ରଶକ୍ତି, ଇଚ୍ଛାଶକ୍ତି ବା ମେସ୍ମର୍ କୌଶଳଦ୍ୱାରା ଅନ୍ୟ ବ୍ୟକ୍ତିର ଶରୀରକୁ ଓ ମନକୁ ଅଧୀନ
मेस्मेरिज़्म କରିଯାଏ—Mesmerism.
( ମେସ୍ମର ତତ୍ତ୍ୱ—ଅନ୍ୟରୂପ )

ମୈସ୍ମର ଶକ୍ତି—ଦେ. ବ (ଅଧୁନିକ ପ୍ରୟୋଗ)—ଚୌମ୍ବକ ଶକ୍ତି—
Maismara śakti Mesmeric power.

ମୈହା(ହ୍ୟା)—ଦେ. ବଣ—ମହିଆ (ଦେଖ)
Maihā(hyā) Mahiā (See)

ମୋ—ଦେ. ସର୍ବନାମ (ସ. ଅସ୍ମଦ୍ ଶବ୍ଦଜାତ ଉତ୍ତମାର୍ଥକ ମୁଁ ଶବ୍ଦର ୬ଷ୍ଠୀ
Mo ୧ ବଚନ; ସ. ମେ. ପ୍ରା. ମୋ)—(ଜିଜ୍ଞାସାର୍ଥକ) ଅମୁର—
আমার My; mine. [ଦ୍ର—ବିଦ୍ୟାପତିଙ୍କ ଗ୍ରନ୍ଥ ଅଳ ପ୍ରାଚୀନ [ପ୍ରାଚୀନ. ବ. ମୋ] [ପ୍ରାଚୀନ ବଙ୍ଗଭାଷାରେ ମୁଁ, ମତେ ଓ ମୋର
मरा ଅର୍ଥରେ 'ମୋ' ଶବ୍ଦର ପ୍ରୟୋଗ ଦେଖାଯାଏ । ]
ମୋଅ(ଓ)ର, ମୋହୋ }
ମୋହ(ହୋ)ର, ମୋର } ଅନ୍ୟରୂପ

ମୋଅ(ଓ)ରି—ଦେ. ସର୍ବ—୧ । ମୋରହିଁ—1. Certainly
Moa(o)ri mine. ୨ । କେବଳ ମୋର—2. Mine and
আমার मराही mine only.
( ମୋରି, ମୋହ(ହୋ)ରି—ଅନ୍ୟରୂପ )

ମୋଆଜା (ଇତ୍ୟାଦି)—ଦେ. ବ—ମୁଆଜା ଇତ୍ୟାଦି (ଦେଖ)
Moājā (etc) Muājā etc (See)

ମୋଉଜ—ପ୍ରାଦେ. (ଯାଜପୁର) ବ—ମଉଜ (ଦେଖ)
Mouja Mauja (See)

ମୋକଦ(ଦ୍ଦ)ମ—ବୈଦେ ବ—ମକଦମ (ଦେଖ)
Mokada(dda)ma Makadama (See)

ମୋକଦ(ଦ୍ଦ)ମା (ଇତ୍ୟାଦି)—ବୈଦେ. ବ—ମକଦମା ଇତ୍ୟାଦି (ଦେଖ)
Mokada(dda)mā (etc) Makadamā etc (See)

ମୋକଦ(ଦ୍ଦ)ମି—ବୈଦେ. ବ—ମକଦମି (ଦେଖ)
Mokada(dda)mi Makadami (See)

ମୋକର(ରି)ର୍(ର)—ବୈଦେ. ବ—ମୁକରର୍ (ଦେଖ)
Mokara(ri)r(ra) Mukarar (See)

ମୋକର(ରା)ରି (ଇତ୍ୟାଦି)—ବୈଦେ. ବ—ମୁକରରା ଇତ୍ୟାଦି (ଦେଖ)
Mokara(rā)ri (etc) Kukararā etc (See)

ମୋକା—ଦେ. ବ—ମୁକା (ଦେଖ)
Mokā Mukā (See)

ମୋକା ଧରିବା—ପ୍ରାଦେ (ଗଡ଼ଜାତ) କ୍ରି—ପିଲେଇବା (ଦେଖ)
Mokā dharibā Pileibā (See)

ମୋକାବିଲା(ଇତ୍ୟାଦି)—ବୈଦେ. ବ—ମୁକାବିଲା ଇତ୍ୟାଦି (ଦେଖ)
Mokābilā (etc) Mukābilā etc (See)

ମୋକାମ୍(ମ)(ଇତ୍ୟାଦି)—ବୈଦେ.ବ—ମୁକାମ ଇତ୍ୟାଦି (ଦେଖ)
Mokam(ma)(etc) Mukāma etc (See)

ମୋକେ—ପ୍ରାଦେ (କଳାହାଣ୍ଡି) ସର୍ବନାମ—ମୋତେ—
Moke Me; to me.

ମୋକ୍ତବ୍ୟ—ସ. ବଣ (ମୁଚ୍ ଧାତୁ+କର୍ମ. ତବ୍ୟ)—ମୋଚନୀୟ; ମୁକ୍ତ
Moktabya ହେବା ଯୋଗ୍ୟ—Deserving to be liberated or unloosened.

ମୋକ୍ତାର (ଇତ୍ୟାଦି)—ବୈଦେ. ବ—ମୁକ୍ତାର ଇତ୍ୟାଦି (ଦେଖ)
Moktāra (etc) Muktār etc (See)

ମୋକ୍ତା—ସ. ବଣ. ପୁଂ (ମୁଚ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Moktā ମୋଚନକାରୀ ( ବ୍ୟକ୍ତି )—Delivering. ବି—
(ମୋକ୍ତ୍ରୀ—ସ୍ତ୍ରୀ) ତ୍ରାଣକର୍ତ୍ତା—Liberator; deliverer.

ମୋକ୍ଷ୍ (ଧାତୁ)—ସ—୧ । ମୁକ୍ତ ହେବା—1. To be released.
Moksh (root) ୨ । ମୁକ୍ତ କରିବା—2. To release.
୩ । ପ୍ରେରଣ କରିବା—3. To send. ୪ । ନିକ୍ଷେପ
କରିବା—4. To discharge; to throw; to
cast.

ମୋକ୍ଷ—ସ. ବି (ମୋକ୍ଷ୍ ଧାତୁ+ଭାବ. ଅ)—୧ । ମୁକ୍ତି; ପରିତ୍ରାଣ;
Moksha ଉଦ୍ଧାର—1. Deliverance; liberation.
୨ । ସ୍ୱାଧୀନତା ପ୍ରାପ୍ତି—2. Emancipation; freedom.
୩ । ନିର୍ବାଣ; ନିତ୍ୟସୁଖପ୍ରାପ୍ତି; ଅପବର୍ଗ; ଜୀବର ଏ ପୃଥିବୀରେ
ବାରମ୍ବାର ଜନ୍ମ ଓ ମରଣରୂପ ବନ୍ଧନରୁ ମୁକ୍ତି—
3. Final beatitude; salvation. [ ଦ୍ର—
ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରୋଟି ପୁରୁଷାର୍ଥ ବା
ମନୁଷ୍ୟ ଜୀବନର ଚତୁର୍ବର୍ଗ=ଧର୍ମଶାସ୍ତ୍ରାନୁଯାୟୀ ଆଚାର;
ଅର୍ଥ=ଧନ, ସମ୍ପତ୍ତି; କାମ=ଅଭୀଷ୍ଟସିଦ୍ଧି; ମୋକ୍ଷ=ମୁକ୍ତି
ବା ନିର୍ବାଣ, ଏହି ଚତୁର୍ବର୍ଗ ମନୁଷ୍ୟ ଜୀବନର ଲକ୍ଷ୍ୟ ଓ
ତହିଁ ମଧ୍ୟରେ ମୋକ୍ଷ ପ୍ରଧାନ ଅଟେ ବୋଲି ହିନ୍ଦୁଶାସ୍ତ୍ରରେ
ଉପଦେଶ । ଜୀବର ପୃଥିବୀରେ ବାରଂବାର ଜନ୍ମିବା ଓ
ମରିବାରୂପ ବନ୍ଧନରୁ ମୁକ୍ତିଲାଭକୁ ମୋକ୍ଷ ବୋଲାଯାଏ ।
ମୋକ୍ଷ ଲାଭ କରିବା ବ୍ୟକ୍ତି ପୃଥିବୀରେ ଆଉ ଜନ୍ମଗ୍ରହଣ
କରେ ନାହିଁ । ମୋକ୍ଷଲାଭର ଉପାୟ ଆତ୍ମତତ୍ତ୍ୱର ବା ବ୍ରହ୍ମ
ତତ୍ତ୍ୱର ସାକ୍ଷାତ୍କାର ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ନ୍ୟାୟ
ଦର୍ଶନ ମତରେ ଦୁଃଖର ଆତ୍ୟନ୍ତିକ ନାଶହିଁ ମୁକ୍ତି ବା
ମୋକ୍ଷ । ସାଂଖ୍ୟମତରେ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧି-
ଭୌତିକ ତ୍ରିବିଧ ତାପର ସମୂଳନାଶହିଁ ମୋକ୍ଷ । ବେଦାନ୍ତ
ଦର୍ଶନ ମତରେ ପୂର୍ଣ୍ଣଆତ୍ମଜ୍ଞାନଦ୍ୱାରା ମାୟାସଂବନ୍ଧରୁ ରହିତ
ହୋଇ ଶୁଦ୍ଧ ବ୍ରହ୍ମସ୍ୱରୂପଙ୍କ ବୋଧ ପ୍ରାପ୍ତ କରିବାହିଁ ମୋକ୍ଷ ।
ଫଳତଃ ସବୁପ୍ରକାରର ସୁଖଦୁଃଖ, ମୋହମାୟା, ଅଜ୍ଞାନ
ଆଦିରୁ ମୁକ୍ତିହିଁ ମୋକ୍ଷ ଅଟେ । ମୋକ୍ଷପ୍ରାପ୍ତ ଜୀବ ଚିରକାଳ
ପାଇଁ ସବୁପ୍ରକାର କଷ୍ଟରୁ ଓ ବନ୍ଧନରୁ ମୁକ୍ତିଲାଭ କରେ । ]
୪ । ମୃତ୍ୟୁ; ମରଣ—4. Death. ୫ । ଦାୟିତ୍ୱରୁ
ନିଷ୍କୃତି—5. Acquittance from an obliga-
tion. ୬ । ସୂର୍ଯ୍ୟର ବା ଚନ୍ଦ୍ରର ଗ୍ରହଣକାଳୀନ ଗ୍ରାସରୁ ମୁକ୍ତି—
6. Liberation of the sun or the moon
from the eclipse. ୭ । ସଂସାର ବନ୍ଧନରୁ ଓ
ମାୟାରୁ ମୁକ୍ତି—7. Emancipation from the
bonds and delusions of the world. ୮ ।
ମୋଚନ; ଫିଟାଇବା—8. Loosening. [ତାର ମୋର
ନାହିଁ ମୋକ୍ଷ ୮ ମୋକ୍ଷ୭—ଭଞ୍ଜ. ପ୍ରେମସୁଧାନିଧି ।] ୯। ଘଣ୍ଟା-
ପାଟଳୀ ଗଛ; ମୁଷ୍କକ ବୃକ୍ଷ—9. A kind of tree;
Schrebra Swientenioides; Chelonioides.

ଗ୍ରା. ବଣ ( ସ. ମୁଖ୍ୟ )—ମୁଖ୍ୟ; ପ୍ରଧାନ—Chief.
ଦେ ବଣ—ଲୁପ୍ତ—Vanished; extinct. [ଉ—
ବେଳ ବେଳ ଭାବ ପ୍ରଭାବ ସ୍ୱଭାବ ମୋକ୍ଷ କେହିଁ ଅଶେ
ନ ପାଇଲୁ ଗୋ—ଭଞ୍ଜ. ବୈଦେହୀଶବିଳାସ । ]

ମୋକ୍ଷକ—ସ. ବଣ. ପୁଂ ( ମୋକ୍ଷ୍ ଧାତୁ+କର୍ତ୍ତୃ. ଅକ )—ଯେ ପରିତ୍ରାଣ
Mokshaka କରେ; ପରିତ୍ରାତା—Delivering; libera-
ting. ବି—ମୁଷ୍କକ ବୃକ୍ଷ; ଘଣ୍ଟାପାଟଳୀ ଗଛ—A
tree; Schrebra Swientenioides; Chelo-
(ମୋକ୍ଷିକା—ସ୍ତ୍ରୀ) nioides.

ମୋକ୍ଷ କର୍ତ୍ତା—ଗ୍ରା. ବି (ସ. ମୁଖ୍ୟ କର୍ତ୍ତା )—ପରିବାର କର୍ତ୍ତା—
Moksha karttā The master or head of a family.

ମୋକ୍ଷ କାମନା—ସ. ବି—ନିର୍ବାଣ ନିମନ୍ତେ ବାସନା—
Moksha kāmanā A desire for liberation
or salvation

ମୋକ୍ଷ କାମୀ—ସ. ବଣ. ପୁଂ—ନିର୍ବାଣ ଲାଭର ଅଭିଳାଷୀ—
Moksha kāmī Desiring emancipation.
( ମୋକ୍ଷ କାମିନୀ—ସ୍ତ୍ରୀ )

ମୋକ୍ଷଣ—ସ. ବି ( ମୋକ୍ଷ୍ ଧାତୁ+ଭାବ. ଅନ )—୧ । ମୋଚନ;
Mokshaṇa ମୁକ୍ତିଦାନ; ଉଦ୍ଧାର କରିବା—1. Liberating.
ମୋକ୍ଷଣୀୟ } ବଣ ୨ । ବନ୍ଧନରୁ ମୁକ୍ତ କରିବା; ଉନ୍ମୋଚନ—
ମୋକ୍ଷିତ } 2. Setting free. ୩ । ବୃଥା ବ୍ୟୟ
କରିବା; ଧନ ଉଡ଼ାଇବା—3. Squandering ୪ ।
ମରଣ—4. Death. ୫ । ନିଃସାରଣ—5. Dischar-
ging. ୬ । କ୍ଷେପଣ—6 Throwing out.

ମୋକ୍ଷ ଗତି—ସ. ବି ( ରୂପକ )—ପରମ ମୁକ୍ତି; ନିର୍ବାଣ—Final
Moksha gati emancipation or beatitude.

ମୋକ୍ଷଦ—ସ. ବଣ. ଓ ବି. ପୁଂ (ମୋକ୍ଷ+ଦା ଧାତୁ=ଦେବା+କର୍ତ୍ତୃ. ଅ)—
Mokshada ତ୍ରାଣକର୍ତ୍ତା—Saviour.
( ମୋକ୍ଷଦାତା, ମୋକ୍ଷପ୍ରଦ—ଅନ୍ୟରୂପ )
( ମୋକ୍ଷଦା, ମୋକ୍ଷଦାତ୍ରୀ, ମୋକ୍ଷପ୍ରଦା—ସ୍ତ୍ରୀ )

ମୋକ୍ଷ ଧାମ—ସ. ବି—କୈବଲ୍ୟ ଧାମ; ବୈକୁଣ୍ଠପୁରୀ; ସ୍ୱର୍ଗ—
Moksha dhāma The heaven; paradise.

ମୋକ୍ଷ ପଥ—ସ. ବି ( ୬ଷ୍ଠୀ ତତ୍ )—ପରିତ୍ରାଣର ଉପାୟ—
Moksha patha The way of salvation
( ମୋକ୍ଷମାର୍ଗ—ଅନ୍ୟରୂପ )

ମୋକ୍ଷ ପଦ—ସ. ବି—ମୋକ୍ଷଲାଭରୂପ ଐଶ୍ୱର୍ଯ୍ୟ—
Moksha pada The final beatitude.

ମୋକ୍ଷପାନ—ଗ୍ରା. ( ପ୍ରାଚୀନ ପଦ୍ୟ ) ବଣ ( ସ. ମୁଖ୍ୟ )—ଶ୍ରେଷ୍ଠ—
Mokshapāna Best. [ ଉ—ସକଳ ଦାନ ମୋକ୍ଷପାନ ।
ମୁଖ୍ୟ ବସ୍ତୁକୁ ଦେଲେ କର୍ମଦାନ—ପ୍ରାଚୀ. କର୍ଣ୍ଣମାହାତ୍ମ୍ୟ । ]

ମୋକ୍ଷପ୍ରାପ୍ତ—ସ. ବଣ. ପୁଂ ( ୨ୟା ତତ୍ )—୧ । ନିର୍ବାଣପ୍ରାପ୍ତ—
Mokshaprāpta 1. One who has attained final
beatitude. ୨ । ସ୍ୱାଧୀନତା ପ୍ରାପ୍ତ—
2. Eamancipated.

ମୋକ୍ଷ ପ୍ରାପ୍ତି—ସ. ବ (୬ଷ୍ଠୀ ତତ୍) – ନିର୍ବାଣ ଲାଭ—Final emancipation from the world.
Moksha prāpti
( ମୋକ୍ଷଲାଭ—ଅନ୍ୟରୂପ )

ମୋକ୍ଷବିଦ୍ୟା—ସ. ବ (ମ. ପ. ଲୋ) · ବେଦାନ୍ତ ଶାସ୍ତ୍ର ( ହି. ଶ )—
Mokshabidyā · The Bedāntas.

ମୋକ୍ଷା—ଦେ. ( ପ୍ରାଚୀନ ପଦ୍ୟ ) ବ—ମୋକ୍ଷ ( ଦେଖ )—Moksha
Mokshā ( See ) ବଣ. ମୋକ୍ଷପ୍ରାପ୍ତ—Liberated.
( ଉ—ଅମୋକ୍ଷା ପିଣ୍ଡକୁ ସ୍ୱାମୀ ମୋକ୍ଷା କରିଅଛ—ପ୍ରାଚୀ. ବୃନ୍ଦାବନରୂପଜଣୀଡା । )

ମୋକ୍ଷିତ—ସ. ବଣ ( ମୋକ୍ଷ+ଯୁକ୍ତାର୍ଥେ. ଇତ )—୧ । ମୁକ୍ତ—
Mokshita 1. Freed; released; liberated; set free.
୨ । ସ୍ୱାଧୀନତାପ୍ରାପ୍ତ—2. Emancipated.

ମୋକ୍ଷୋପାୟ—ସ. ବ—୧ । ( ୬ଷ୍ଠୀ ତତ୍ ) ମୋକ୍ଷଲାଭ କରିବାର
Mokshopāya ଉପାୟ ( ଯଥା—ତପଃ, ଶମ, ଦମ, ଯୋଗ, ଜ୍ଞାନାଦି )—1. Means of attaining salvation.
୨ । ( ବହୁବ୍ରୀହି ) ମୁନି; ଋଷି; ତପସ୍ୱୀ—2. A sage; a saint.

ମୋକ୍ଷ୍ୟ—ସ. ବଣ. ପୁଂ ( ମୋକ୍ଷ ଧାତୁ+କର୍ମ. ଯ )—ମୋକ୍ଷପ୍ରାପ୍ତ
Mokshya ହେବା ଯୋଗ୍ୟ—Deserving to be liberated.
( ମୋକ୍ଷ୍ୟା—ସ୍ତ୍ରୀ )

ମୋଖାଲପ୍(ଫ୍)—ବୈଦେ. ବ (ବଣରୂପ) (ଅ. ମୁଖାଲିଫ୍)—୧ । ମୁଖା-
Mokhālap(ph) ଲିପ୍, ପ୍ରତିକୂଳ—1. Inimical. ୨ । ବିପ-
मुखालिफ **मुखालिफ** କ୍ଷୀୟ; ଶତ୍ରୁତାପନ୍ନ—2. Antagonistic.
୩ । ବିପରୀତ—3. Opposite.

ମୋଗ(ଘ)ମ୍—ବୈଦେ. ବ ( ଫା. ମଘମ୍ )—୧ । ମୁଘମ୍; ଗୁପ୍ତ
Moga(gha)m ରହସ୍ୟ; ଗୁପ୍ତସ୍ଥାନ—1. The key or secret
गुप्तकथा **मुघम** to a thing. ୨ । ମର୍ମସ୍ଥାନ—2. Vital part; vulnerable part of the body.

ମୋଗଲ୍—ବୈଦେ. ବ ( ଫା. ମୁଗଲ୍=ମଙ୍ଗୋଲିୟା ଅଧିବାସୀ )—
Mogal ମୁସଲମାନ ଜାତିର ଗୋଟିଏ ଶାଖା—The Moghals;
মোগল **मोगल** a Mahomedan race who invaded India and established empire in India.
( ଉ—ଏ ତ ରାଜପୁତ ଶୋହିଲ ମୋଗଲ ବଙ୍ଗେଲ ଦୁର୍ଦ୍ଦାଣ୍ଡ ପଠାଣ । ଗଡ଼ଜୁ ବୋଲି ପଶି ଲାଗିଯିବେ ଯେ, ଜଳ ଲଙ୍ଘିବେ କେହି ପୁଣ—ବ୍ରଜନାଥ. ସମରତରଙ୍ଗ । )
[ଦ୍ର—ହୁନ୍ମାନେ ଅର୍ଯ୍ୟଜାତୀୟ, ମୋଗଲମାନେ ମଙ୍ଗୋଲୀୟ ଜାତୀୟ । ଏମାନେ ଉତ୍ତରପଶ୍ଚିମ ଦାଟେ ଭାରତରେ ପ୍ରବେଶ କରିଥିଲେ । ପ୍ରଥମେ ବାବର ନାମକ ଜଣେ ମୋଗଲ ସର୍ଦ୍ଦାର ଖ୍ରୀ. ଷୋଡ଼ଶ ଶତାବ୍ଦୀରେ ଭାରତକୁ ଆକ୍ରମଣ କରିଥିଲେ ଓ କ୍ରମଶଃ ସମ୍ରାଟ ଅରଙ୍ଗଜେବଙ୍କ ପର୍ଯ୍ୟନ୍ତ ୬ ଜଣ ସମ୍ରାଟ ସପ୍ତଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ରାଜତ୍ୱ କରି ଭାରତରେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ତାଙ୍କ ପରେ ମୋଗଲ ସାମ୍ରାଜ୍ୟ କ୍ରମଶଃ ଧ୍ୱଂସ ପ୍ରାପ୍ତ ହେଲା ଓ ତତ୍ପରେ ୨୧ ଗୋଟି ମୋଗଲ ବଂଶଧର ନାମମାତ୍ର ଗାଦିରେ ବସିଥିଲେ । ମୋଗଲ ସମ୍ରାଟମାନଙ୍କ ମଧ୍ୟରେ ଅକବର ପ୍ରଧାନ ଥିଲେ (୧୫୫୬-୧୬୦୫) ଓ ଏମାନଙ୍କର ରାଜଧାନୀ ଦିଲ୍ଲୀରେ ଥିଲା । ଏହିମାନଙ୍କ ଅନ୍ତେ ଇଂରାଜମାନେ ପ୍ରଥମେ ସନନ୍ଦ ଦ୍ୱାରା ଓ ପରେ ବାହୁବଳ ଏବଂ ଭାରତୀୟ ସୈନ୍ୟଙ୍କ ସାହାଯ୍ୟରେ ଭାରତରେ ସାମ୍ରାଜ୍ୟ ସ୍ଥାପନ କଲେ ।]

ମୋଗଲ ଅମଲ—ବୈଦେ. ବ. (ଫା)—ମୋଗଲ ସମ୍ରାଟଙ୍କ ରାଜତ୍ୱକାଳ
Mogala amala The reign of the Moghal
মোগল আমল emperors in India.
**मोगलकी अमलदारी** (ମୋଗଲ ଅମଲଦାରୀ—ଅନ୍ୟରୂପ)

ମୋଗଲ ବନ୍ଦ—ଦେ. ବ—ମୋଗଲ ବନ୍ଦି ( ଦେଖ )
Mogala banda Mogala bandi ( See )
(ଉ—ଥମ ଗଡ଼ଜାତ ମୋଗଲବନ୍ଦ ମଧ୍ୟରେ ବଣି କେଣ ଦେଶ ଚଳୁଥିଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ମୋଗଲ ବନ୍ଦି—ବୈଦେ. ବ—ଅକବରଙ୍କ ପ୍ରଧାନ ସେନାପତି ଟୋଡର
Mogala bandi ମଲ୍ଲଙ୍କ ଦ୍ୱାରା ମୋଗଲମାନଙ୍କର ଖାସ୍ ଶାସନକୁ
মোগলবন্দী ଆସିଥିବା ଓଡ଼ିଶାର ସମୁଦ୍ର ଉପକୂଳସ୍ଥ (କଟକ,
**मोगलान** ପୁରୀ ଓ ବାଲେଶ୍ୱର) ଜିଲ୍ଲାମାନ—The three British districts of Orissa (Cuttack, Puri and Balasore) along the sea coast which was formerly under the direct administration of the Moghal emperors.
[ଦ୍ର—କଥିତ ଅଛି ଯେ ଅକବରଙ୍କ ସେନାପତି ଟୋଡର ମଲ୍ଲ ୧୫୮୦ ସାଲରେ ଓଡ଼ିଶା ଅଧିକାର କରି ସାମନ୍ତ ଓ ସେବକ ରାଜାମାନଙ୍କ ଶାସିତ ରାଜ୍ୟକୁ ଗଡ଼ଜାତ, ଓ ମୋଗଲ ଶାସିତ ଖାସମହାଲମାନଙ୍କୁ ମୋଗଲବନ୍ଦି ନାମ ଦେଲେ । ମୋଗଲବନ୍ଦିର ପଶ୍ଚିମରେ ଥିବା ଯାବତୀୟ ଗଡ଼ଜାତ ରାଜ୍ୟମାନ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଦେଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ହେଉଅଛି ଓ ଉକ୍ତ ରାଜାମାନେ ଏ ପର୍ଯ୍ୟନ୍ତ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କୁ ପେଶ୍କଶ ଦେଉଅଛନ୍ତି । ]

ମୋଗଲ ବନ୍ଦିଆ—ଦେ. ବଣ—ମୋଗଲବନ୍ଦିବାସୀ—Inhabiting
Mogala bandiā the Moghalbandi.
মোগলবন্দী **मोगलानिया**

ମୋଗଲ ବାଦଶା—ବୈଦେ. ବ—ମୋଗଲ ସମ୍ରାଟ—
Mogala bādasā The Moghal emperor.

ମୋଗଲ ବାଦସାହା—ବୈଦେ. ବ—ମୋଗଲ ସମ୍ରାଟ—
Mogala bādasāhā The Moghal emperor.
মোগল বাদসা **मोगल पा(बा)दसाह**

ମୋଗଲମାରି—ଦେ. ବ. (ନାମ)—ବାଲେଶ୍ୱର ଜିଲ୍ଲାର ଜଲେଶ୍ୱର
Mogalamāri ନିକଟସ୍ଥ ପ୍ରାଚୀନ ଯୁଦ୍ଧକ୍ଷେତ୍ର ବିଶେଷ—
মোগলমারী The name of an old battle field near
**मोगलमारी** Jaleswar in the district of Balasore.
[ଦ୍ର—ଏଠାରେ ମୋଗଲ୍ବିଦ୍ରୋହୀ ଓଡ଼ିଶାର ଶାସନକର୍ତ୍ତା ଦାଉଦ୍ ଅକବରଙ୍କ ସେନାପତି ଟୋଡରମଲ୍ଲଙ୍କ ଦ୍ୱାରା

ପରାଜିତ ହୋଇ ମୋଗଲଙ୍କ ବଶ୍ୟତା ସ୍ୱୀକାର କଲେ ଓ ପରେ ଓଡ଼ିଶାର ଶାସନକର୍ତ୍ତା ରୂପେ ନିଯୁକ୍ତ ହେଲେ ।]

ମୋଗଲା(ଲେ)ଇ—ଦେ. ବିଣ—ମୋଗଲ ଜାତି ସମ୍ବନ୍ଧୀୟ—
Mogalā(le)i Relating to the Moghals.
মোগলাই मोगलानी (ମୋଗଲାଇଆ—ଅନ୍ୟରୂପ)

ମୋଗଲା(ଲେ)ଇ ଟୋପି—ଦେ.ବି—ମୋଗଲମାନଙ୍କ ପିନ୍ଧିବା ପଗଡ଼ି ପରି
Mogalā(le)i topi ପଗଡ଼ି—Turban like that worn
মোগলাই পাগড়ী मोगलकी पाग by the Moghals.
(ମୋଗଲାଇ ପଗଡ଼ି—ଅନ୍ୟରୂପ)

ମୋଗଲ୍ୟାଣ—ଦେ. ବିଣ—ମୋଗଲ ସମ୍ରାଟଙ୍କ ଅଧିକୃତ—Occupied
Mogalyāṇa or invaded by the Moghals.
মোগল অধিকৃত (ଉ—ଅମୁକ ସମୟରେ ଓଡ଼ିଶା ମୋଗଲ୍ୟାଣ
मोगलान ହୋଇଲା । ପୁରୀ ମାଦଳାପାଞ୍ଜି ।)

ମୋଘ—ସଂ. ବିଣ. (ମୁହ୍ ଧାତୁ=ମୁଗ୍ଧ ହେବା, ନିର୍ବୋଧ ହେବା+
Mogha କର୍ତ୍ତୃ. ଅ)—୧ । ବ୍ୟର୍ଥ; ବିଫଳ; ନିରର୍ଥକ—1. Vain;
(ଅମୋଘ—ବିପରୀତ) fruitless; ineffectual. ୨ । ହୀନ; ରହିତ—2. Void; destitute of. ୩ । ପରିତ୍ୟକ୍ତ—3. Abandoned. ବି—୧ । ପ୍ରାଚୀର—1. A compound wall. ୨ । ବାଡ଼—2. A fence;
[ମୋଘା(ଘୁ)—ବି] hedge.

ମୋଘ କର୍ମା—ସଂ. ବିଣ. (ବହୁବ୍ରୀହି; ମୋଘ+କର୍ମନ୍, ୧ମା. ୧ବ)—
Mogha karmā ଯେ ନିଷ୍ଫଳ କାର୍ଯ୍ୟ କରେ—Doing fruitless acts.

ମୋଘ ଜ୍ଞାନ—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ଧର୍ମଜ୍ଞାନରହିତ
Mogha jnāna —1. Bereft of religious know-
(ମୋଘଜ୍ଞାନା—ସ୍ତ୍ରୀ) ledge. ୨ । ବୃଥା ଜ୍ଞାନ ଅନୁଶୀଳନକାରୀ (ବ୍ୟକ୍ତି)—2. Cultivating vain knowledge.

ମୋଘ ପୁଷ୍ପା—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି)—ବନ୍ଧ୍ୟା (ସ୍ତ୍ରୀ)—
Mogha pushpā Barren (woman).

ମୋଘା—ସଂ. ବି. (ମୋଘ+ସ୍ତ୍ରୀ ଆ)—୧ । ପାଟଳି (ଦେଖ)
Moghā 1. Pāṭali (See) ୨ । ବିଡ଼ଙ୍ଗ (ଦେଖ)—
2. Birḍanga (See)

ମୋଘାଶ—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ବୃଥା ଆଶା ପୋଷଣକାରୀ
Moghāsa —1. Indulging in vain hopes.
(ମୋଘାଶା—ସ୍ତ୍ରୀ) ୨ । ଯାହାର ଆଶା ବିଫଳ ହୋଇଅଛି—
2. Frustrated in one's hopes.

ମୋଘ୍ୟ—ସଂ. ବିଣ. (ମୋଘ+ଭାବ. ଯ)—ବିଫଳତା—
Moghya Fruitlessness

ମୋଚ—ସଂ. ବି (ମୁଚ୍ ଧାତୁ=ତ୍ୟାଗ କରିବା+କର୍ମ. ଅ)—୧ ।
Mocha କଦଳୀ ଫଳ—1. Plantain (fruit). ୨ । ଶୋଭାଞ୍ଜନ ବୃକ୍ଷ; ଶଜନା ଗଛ—2. The moringa tree; Moringa Pterygosperma. ୩ । ଶିମିଳି ଗଛ (ହି. ଶ)—3. The silk-cotton tree. ୪ । ପାଟଳି ଗଛ (ହି. ଶ)—4. Schrebra Swientenioides (tree). ଦେ. ବି—ମୋଛ (ଦେଖ)—Mochha (See) [ଉ—ବାଣାସନେ ଉପୁରି, ପୂର୍ବେ ଥୋଇ ଶର, ମୋଚ ଅଙ୍ଗୁଳିରେ ଯେ । ଉପ. ବୈଦେହୀଶବିଳାସ । ]

ମୋଚକ—ସଂ. ବିଣ (ମୁଚ୍ ଧାତୁ+କର୍ତ୍ତୃ. ଅକ)—୧ । ମୁକ୍ତିଦାତା;
Mochaka ତ୍ରାଣକର୍ତ୍ତା—1. Liberating; delivering. ୨ । (+କର୍ମ. ଚ) ବିଷୟ କାମନାରୁ ମୁକ୍ତ; ବୈରାଗ୍ୟଯୁକ୍ତ—2. Freed from worldly bonds. ବି—୧ । ମୋକ୍ଷ—1. Final liberation. ୨ । କଦଳୀ ଗଛ—2. The plantain tree; Musa. Sapientum. ୩ । ଶଜନା ଗଛ—3. The moringa tree. ୪ । ଘଣ୍ଟା ପାଟଳୀ ଗଛ—4. Schrebra Swientenioides; Chelonioides. ୫। ଶିମିଳି ଗଛ—5. The silk-cotton tree.

ମୋଚ କର୍ଣ୍ଣ—ସଂ. ବି—୧ । ରାମାୟଣୋକ୍ତ ରାକ୍ଷସ ବିଶେଷ—1. A
Mocha karṇṇa demon described in the Rāmāyaṇa. ୨ । ଛେଳି—2. The goat. [ଉ—(୧+୨) ବଧି ଜୁବ ବାଳସୁଜ୍ଞ ଜ୍ୟୋତିଷ୍ମାନ ଭଲ୍ଲ ନେତ୍ର, ମୋଚକର୍ଣ୍ଣେ ପାବନ ଶାର୍ଦ୍ଦୂଳ । ଉପ. ବୈଦେହୀଶବିଳାସ । ]

ମୋଚଙ୍ଗ—ଦେ. ବି—ବାଦ୍ୟ ବିଶେଷ—A kind of musical
Mochanga instrument. [ଉ—କଳତରଙ୍ଗ
मोचग ମୋଚଙ୍ଗ ଧର । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ମୋଚନ—ସଂ. ବି (ମୁଚ୍ ଧାତୁ=ତ୍ୟାଗ କରିବା; ମୁକ୍ତ ହେବା+ଭାବ.
Mochana ଅନ)—୧ । ମୁକ୍ତ କରିବା; ମୁକୁଳାଇବା—1. Delivering; liberating; emancipating setting free. ୨ । ମୁକ୍ତି; ମୋକ୍ଷ—2. Deliverance. ୩ । (+କର୍ମ. ଅନ) କଲ୍କ; କାଞ୍ଜି—3. The sediment left at the bottom of a pot of ghee or oil. ୪। ମଇଳା—4. Dirt; filth ୫। ଅହଂକାର—5. Pride. ୬। ଦମ୍ଭ; ଧାମ୍ଭିକତା—6. Arrogance; effrontery. ୭ । ଶାଠ୍ୟ—7. Craftiness. ୮ । ବନ୍ଦୀକୁ ବନ୍ଧନରୁ ଖଲାସ ଦେବା—8. Discharging or setting free a prisoner. ୯ । ଋଣରୁ ମୁକ୍ତି—9. Discharge of a debt; liquidation of a debt. ୧୦ । ଋଣରୁ ମୁକ୍ତ ଦେବା—10. Absolving a person from a debt. ୧୧ । ବିପଦରୁ ଉଦ୍ଧାର କରିବା—11. Delivering from a calamity. ୧୨ । ପୋଛିଦେବା—12. Wiping off. ୧୩ । ମାର୍ଜନ କରିବା; ସଫା କରିବା—13. Cleansing. ୧୪ । ତ୍ୟାଗ କରିବା; ଛାଡ଼ିବା—14. Abandoning. ୧୫ । ଦୋଷ କ୍ଷମା ଦେବା; ଦୋଷ ମାର୍ଜନା କରିବା—

15. Forgiving of a fault. ୧୬ । ମୁକ୍ତ କରିବା; ଫିଟାଇବା—16. Letting loose; loosening. ୧୭ । ଦୂରୀକରଣ ( ଯଥା—ପାପମୋଚନ )—17. Removal.

ମୋଚନ କରିବା—ଦେ. କ୍ରି—ମୁକ୍ତ କରିବା—To set free; Mochana kariba to liberate.
মোচন করা **मोचन करना**

ମୋଚ(ଚି)ଣୀ—ସଂ. ବି ( ମୁଚ୍ ଧାତୁ+ଅନ+ଈ ) - କଣ୍ଟକାରୀ Mocha(chi)ni ( ଦେଖ )—The prickly night-shade; Solanum Jacquini. (ସଂ. କ୍ଷୁଦ୍ରଫଳା, କ୍ଷୁଦ୍ରକଣ୍ଟାରିକା, କ୍ଷୁଦ୍ରଦୁଃସ୍ପର୍ଶା, ଶୁଦ୍ଧଫଳା, ଦମନୀ, ମଧ୍ୟେତ୍ପଳୀମାଳୀ, ବହ୍ନିଦମନୀ, ବହୁକଣ୍ଟକା, ବହିକଣ୍ଟାରିକା]

ମୋଚ ନର୍ଯ୍ୟାସ—ସଂ. ବି (ମୋଚ=ଶିମିଳି+ନିର୍ଯ୍ୟାସ; ୬ଷ୍ଠୀ ତତ୍)—Mocha nirjyasa ଶିମିଳି ଗଛର ଅଠା—The gum of the silk-cotton tree. [ଅନ୍ୟ ସଂ ନାମ—ପିଚ୍ଛିଳସାର, ଶାଲ୍ମଳୀବେଷ୍ଟ, ସୁରସ ମୋଚରସ ମୋଚସାର ମୋଚ(ଚା)ସ୍ରାବ ମୋଚସ୍ରୁ ମୋଚ୍ଛକ ମୋଚହ୍ବ — ଅନ୍ୟରୂପ] [ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ଏହା ଶୀତବୀର୍ଯ୍ୟ, ଧାରକ, ଶୁକ୍ରବର୍ଦ୍ଧକ ଓ କଷାୟ ରସ । ଏହା ପ୍ରବାହିକା, ଅତିସାର, ଆମଦୋଷ, କଫ, ପିତ୍ତ, ରକ୍ତଦୁଷ୍ଟି ଓ ଦାହନାଶକ । ]
মোচরস **मोचरस; मोचरका; गोंद**
ମ ସାମ୍ବାଲୁଭାକ ଗୁ. ସେମଲ୍ଲୋଗୁଁଦ

ମୋଚନୀୟ—ସଂ. ବିଣ (ମୁଚ୍ ଧାତୁ+କର୍ମ. ଅନୀୟ)—୧ । ମୁକ୍ତ ହେବାର Mochaniya ଯୋଗ୍ୟ—1. Fit to be liberated or let loose. ୨ । ତ୍ୟାଗଯୋଗ୍ୟ—2. Fit to be abandoned.

ମୋଚମର୍ଦ୍ଦ—ଦେ. ବି—ଜଣ ମୋଡ଼ିବା—Trimming of one's Mochamardda moustaches. [ ଉ—ବାତେ (ମୋଚମର୍ଦ୍ଦନ—ଅନ୍ୟରୂପ) କଦଳୀ ପତ୍ର ପ୍ରାୟ କଦଳ କେଶ, মোচমর্দ্দ ଗୋଁଫେ তা দেওয়া ଘାଣୋର ସେ । ଭଞ୍ଜ. **मोछपर ताव देना** ବୈଦେହୀଶବିଳାସ । ]

ମୋଚା—ସଂ. ବି ( ମୁଚ୍ ଧାତୁ+କର୍ତ୍ତୃ. ଅ+ଆ )—୧ । ଶାଲ୍ମଳୀ ବା Mocha ଶିମିଳି ଗଛ—1. The silk cotton tree; Bombax Heptaphyllum. ୨ । ନୀଳୀବୃକ୍ଷ; ନୀଳଗୁଳ୍ମ—2. The indigo plant. ୩ । ରମ୍ଭା ବା କଦଳୀ ଗଛ—3 Plantain plant. ଦେ. ବିଣ —ଲୋଚା; ସଙ୍କୁଚିତ—Contracted.

ମୋଚାଏ—ପ୍ରାଦେ. ( ଗଡ଼ଜାତ ) ବି - ମୋଚିଏ ( ଦେଖ ) Mochae Mochie ( See )

ମୋଚାଟ—ସଂ. ବି (ମୋଚ=କଦଳୀ ଗଛ+ଅଟ୍ ଧାତୁ=ଗମନ କରିବା; Mochata ସଦୃଶ ହେବା+କର୍ତ୍ତୃ. ଅ )—୧ । କୃଷ୍ଣଜୀରକ; କଳାଜୀରା—1. A black pungent seed, Nigella Indica. ୨ । ଚନ୍ଦନ—2. Sandal. ୩ । ରମ୍ଭାଗ୍ରି; କଦଳୀର ମଞ୍ଜ; କଳମଞ୍ଜ—3 The edible inner stem of the plantain tree ୪ । କଦଳୀ ଫଳ—4. Plantain.

ମୋଚା ଫଳ—ସଂ. ବି—କଦଳୀ—Mocha phala Plantain; banana.

ମୋଚା ମୋଚା(ଚି)—ଦେ. ବିଣ—ଲୋଚା କୋଚା ( ଦେଖ ) Mocha mocha(chi) Locha kocha ( See )
**मोडामोडि**
[ମୋଚ ମା(କା, ଲୁ)ଚ—ଅନ୍ୟରୂପ]

ମୋଚି—ଦେ. ବି. ପୁଂ (ସଂ. ଚର୍ମକାର; ଜମ୍ମା ସଂ. ମୁଚ୍ ଧାତୁ= Mochi ଚମଡ଼ା ଛଡ଼ାଇବା )—୧ । ଚର୍ମକାର; ମୁଚୀ ଜାତି ବିଶେଷ, ଯେ ଯୋତା ତିଆର କରନ୍ତି—1. Cobbler (a **मोची** low caste) ୨ । (ଗାଳିରେ ବ୍ୟବହୃତ) ଛୋଟ ଲୋକ—(ମୋଚିଅଣୀ—ସ୍ତ୍ରୀ) 2. (a term of abuse) Mean person.

ମୋଚିଏ—ପ୍ରାଦେ ( ଗଡ଼ଜାତ ) ବିଣ—ବେକାଏ; ଗୋଟିଏ ହାତର Mochie ମୁଠା ମଧ୍ୟରେ ଏକାଥରକେ ଯେତେ ପରିମାଣରେ ଶାଗ ବା ଘାସ ଆଦି ଧରି ଯାଇ ପାରେ ସେହି ପରିମିତ—Handful; as much of potherb or grass as can be held in one's hand between the thumb and the other fingers.

ମୋଚିକା—ସଂ. ବି—ଏକପ୍ରକାର ମାଛ; ଚାଲଗରଡ଼ା ମାଛ—Mochika **मो(मा)चिका** A kind of fish.

ମୋଚିତ—ସଂ. ବିଣ (ମୁଚ୍ ଧାତୁ+ଣିଚ୍, ମୋଚି ଧାତୁ+କର୍ମ. ତ)—Mochita ଅନ୍ୟଦ୍ଵାରା ମୁକ୍ତ—Caused to be set free or released. [ଉ—ଚଉଦ ଭୁବନ ତାପ ତ୍ରାସ ମୁକ୍ତେ ମନ-ମଥ ପାଶ, ବନ୍ଧନ କରନ୍ତି ଯିନା ମୋଚିତରେ । ଦୀନକୃଷ୍ଣ. ରସୋତ୍କଳ୍ପ ୦ ଗୀତ । ]

ମୋଚି ପାଣି - ଦେ. ବି—ଯୋତା, ଚମଡ଼ା, ବିଷ୍ଠା ଆଦି ଗୋଳାଇ Mochi pani ପ୍ରସ୍ତୁତ କରାଯିବା ଦୁର୍ଗନ୍ଧ ପାଣି—Shoes, **मैलापानी** leather bits and night soil mixed in water. [ଦ୍ର—ଏହା ଦୁଷ୍ଟ ବ୍ୟକ୍ତିଙ୍କର ମୁଣ୍ଡରେ ଦଣ୍ଡ ସ୍ବରୂପ ଢଳାଯାଏ ଓ ଯେଉଁ ବ୍ୟକ୍ତି ଗୁଣୀ ଗାରଡ଼ୀ ଆଦି କରି ଲୋକଙ୍କର ଅନିଷ୍ଟ କରୁଥାଏ, ତାଙ୍କୁ ଧରି ତା ମୁଣ୍ଡରେ ଏହି ମୋଚି ପାଣି ଢାଳିଲେ ତାହାର କିଣିମନ୍ତ୍ର ଲୁପ୍ତ ହୋଇ ଯାଏ ବୋଲି ଲୋକବିଶ୍ବାସ ଅଛି । ]

ମୋଚିବା—ଦେ. କ୍ରି (ସଂ. ସଙ୍କୋଚନ)—ଲୋଚା କରିବା; ସଙ୍କୁଚିତ Mochiba କରିବା—To contract. (ଯଥା—ସେ ଗୋଡ଼କୁ গুটান **सिकोडना, मोडना** ମୋଚ କରି ବସିଛି ।)

ମୋଚିମାଚି କରି ରଖିବା—ପ୍ରାଦେ ( ଗଡ଼ଜାତ ) କ୍ରି—ଖେଳାଇ Mochimachi kari rakhiba ହୋଇଯାଇଥିବା ବା ଲମ୍ବା ପଦାର୍ଥକୁ ଭଙ୍ଗିଭଙ୍ଗି ଗୋଟାଇ କରି ଏକତ୍ର ରଖିବା—To collect and pack up scattered articles.

ମୋଚୀ—ସଂ. ବି (ମୁଚ୍ ଧାତୁ+କର୍ତ୍ତୃ. ଅ+ଈ )—ହିଲମୋଚିକା; Mochi ହିଡ଼ମିଚ୍ ଶାଗ—A pot-herb growing on wet

ground; Hingsh a Repens. ଦେ. ବ—ମୋଚ (ଦେଖ)—Mochi (See)

ମୋଚ୍ୟ—ସଂ. ବଣ (ମୁଚ୍ ଧାତୁ+କର୍ମ. ଯ)—୧ । ମୋଚନଯୋଗ୍ୟ—Mochya 1. Deserving liberation; about to be let loose. ୨ । ତ୍ୟାଜ୍ୟ—2. Fit to be abandoned.

ମୋଛ—ଦେ. ବ (ସଂ. ଶ୍ମଶ୍ରୁ, ପଞ୍ଜି. ମୁଞ୍ଛାଚ୍ଛ)—ମୁଛ, ନିଶ—Mochha Moustaches.
ଗোঁপ, মোচ मोछ, मुछ

ମୋ(ମୁ,ମୁଁ)ଛାର—ଦେ. ବଣ (ଭୁଲ. ଭା ଛାର, ତୋ ଛାର)—ଛାର ମୁଁ—Mo(mu,muṅ)chhāra My insignificant self.
আমি ছাৰ; ছাৰ আমি [ଉ—ତୁମ୍ଭଙ୍କୁ ମୋ ଛାର କ ପାରବ ସ୍ତୁତି
एखाकसार କର । କୃଷ୍ଣସିଂହ. ମହାଭାରତ. ଅନ ।]

ମୋଜା—ବୈଦେ. ବ (ପା ମୋଜା)—ଗୋଡ଼ଭଣ୍ଡାର ଅଧ ପର୍ଯ୍ୟନ୍ତ Mojā ବା ଅଣ୍ଟାପାକେ ପିନ୍ଧାଯିବା କନା ଖୋଳ; ଗୋଡ଼ମୁଣା—
মোজা Stockings; socks. [ ଦ୍ର—ପୂର୍ଣ ଓ ଅଧା ଭେଦରେ
मोजा ମୋଜାକୁ ପୁଲ୍‌ମୋଜା ଓ ହାଫ୍(ଫ) ମୋଜା କହନ୍ତି । ହାତରେ ପିନ୍ଧିବା ମୋଜାକୁ ହାତମୋଜା ବା ଦସ୍ତାନା କୁହାଯାଏ । ]

ମୋଜା କଳ—ଦେ. ବ—ମୋଜା ବୁଣିବା ଯନ୍ତ୍ର—Mojā kaḷa Knitting machine.
মোজার কল मोजाका कल

ମୋଜା ବୁଣିବା—ଦେ. କ୍ରି—ସୂତାକୁ କଳ ବା ଛୁଞ୍ଚି ସାହାଯ୍ୟରେ ବୟନ Mojā buṇibā କର ମୋଜା ତିଆର କରିବା—To knit
মোজা বোনা मोजा बुनना stockings.

ମୋଜା(ଝା)ହି(ହେ,ଇ,ଏ)ମ—ବୈଦେ ବ (କତରଥ; ଅ, Mojā(jhā)hi(he,i,e)m ମୁଜାହମ)—ମୁଜାଇମ (ଦେଖ)
(ମୋଜା[ଝା]ମ—ଅନ୍ୟରୂପ) Mujāim (See)

ମୋଜେସ୍—ବୈଦେ. ବ (ନାମ) (ଇଂ. ମୋସେସ୍)—ମୁଷା (ଦେଖ)
Mojes মোজেস্ मोजेस् Mushā (See)

ମୋଜୋଡ଼ି—ପ୍ରାଦେ (ଗଞ୍ଜାମ) ବ—ଜଙ୍ଘ ପର୍ଯ୍ୟନ୍ତ ପିନ୍ଧାଯିବା ମୋଜା, Mojoṛi ପୁଲ୍‌ମୋଜା—Full stockings. ଦେ. ଅ (ବ୍ୟଙ୍ଗ) (ଦୁଇ ଜଣ ସଙ୍ଗୀଙ୍କ ପ୍ରତି ବାହାଦୁରୀସୂଚକ ଅବ୍ୟୟ)—ବାଃରେ ଯୋଡ଼ା—Interjection used in irony to a couple of companions.

ମୋଟ—ଦେ. ବ ( ସଂ. ସମଷ୍ଟି )—୧ । ସମଷ୍ଟି; ଟୋଟାଲ୍—1. Total; Moṭa মোট कुल, मोट sum total. ୨ । ବେଧ—
মোটাই मोटाई 2. Thickness. ୩ । (ବ.ମୋଟ;
মোট मोट ଦା. ମୁଟ୍ଟେ=ଲୁଗା ଗଣ୍ଠିର ବନ୍ଧା ସ. ମୂଟ=ବନ୍ଧ; ତେଲୁଗୁ. ମୂଟା=ଗଣ୍ଠିର ) ଗଣ୍ଠିର—3. Bale. [ ଉ —ଲୁଗା ମୋଟକୁ ମୋଟ କରେଣ ଘରେ ଜମା—ଫକୀରମୋହନ. ଗଲ୍ପସ୍ୱଳ୍ପ । ] ୪ । ମୁଣ୍ଡରେ ବୁହାଯିବା ବୋଝ—4. A load ( carried on the head ). ଦେ. ବଣ.

ମୋଟା ( ସ. ମୁଷ୍ଟ=ଚୂର୍ଣ୍ଣୀକୃତ ବ୍ୟକ୍ତି )—୧ । ସ୍ଥୂଳକାୟ; ପୃଥୁଳ;
मोटा ମୋଟା—1. Corpulent; fat. ୨ । ବଗଡ଼ା; (ସରୁ—ବିପରୀତ) ମୋଟ; ଖଦଡ଼—2. Coarse. ( ଯଥା—ମୋଟ ଲୁଗା; ମୋଟ ଗୁଡ଼ । ) ୩ । ସ୍ଥୂଳ; ଘନ—3. Thick. [ ଉ—ସୂତା ମାଜିଲେ ସରୁ, କଥା ମାଜିଲେ ମୋଟ—ଢଗ । ] ୪ । ଗୋଳମାଳିଆ—4. Confused. ୫ । ସମଷ୍ଟିକୃତ—5. Added up.
মোট ୬ । ସର୍ବସମେତ—6. Altogether. ୭ ।
कुल, मोट ଫୁଲିବା—7. Swollen: bloated. ୮ । ଗୁରୁତର—8. Graver. ୯ । ଗର୍ବସ୍ଫୀତ ( ଯଥା— ମନମୋଟ ହେବା )—9. Puffed up with pride. ୧୦ । ବେଖାତିରିଆ; ଅସାବଧାନ—10 Careless.

ମୋଟ ଉପରେ—ଦେ କ୍ରି. ବଣ—୧ । ସ୍ଥୂଳରେ; ସ୍ଥୂଳ ଦୃଷ୍ଟିରେ ଦେଖି-Moṭa upare ବାକୁ ଗଲେ—1. Roughly; on the
মোটের উপর whole. ୨ । ହାରାହାରି ଧରିବାକୁ ଗଲେ—
मोटे हिसाबसे 2. On the average.

ମୋଟକ—ସଂ. ବ (ମୁଟ୍ ଧାତୁ=ଚୂର୍ଣ୍ଣ କରିବା, ଭାଙ୍ଗିବା+କର୍ମ. ଅକ)—Moṭaka ୧ । ମୋଡ଼ା; ଶ୍ରାଦ୍ଧ ଓ ତର୍ପଣରେ ବ୍ୟବହୃତ ମଝିରୁ ଭଙ୍ଗା ହୋଇ ମୋଡ଼ା ହୋଇଥିବା କୁଶଦ୍ୱୟ—1. A pair of Kuśa grass folded in the middle and twisted to a V shape used to represent the ancestors in Śrāddha and oblations to the manes. ୨ । କୁଶଚକ୍ର; ପବିତ୍ରକୁଶର ଅଙ୍ଗୁରୀୟ—2. A finger ring made by doubling and twisting the Kuśa grass.

ମୋଟ କଥା—ଦେ, ବ—୧ । ସ୍ଥୂଳ ବସ୍ତୁତତ୍ତ୍ୱର ପ୍ରତିପାଦକ ବିଷୟ—Moṭa kathā 1. The long and short of a matter.
মোট কথা ୨ । ଗୁରୁତର ବିଷୟ—2 Grave matter.
मोटी बात, मोटामोटी बात ୩ । ସଂକ୍ଷିପ୍ତସାର-3. Summary and substance. ୪ । ସାଧାରଣ ବା ସାମାନ୍ୟ ବିଷୟ—4. An ordinary matter or subject.

ମୋଟ କରିବା—ଦେ.କ୍ରି -ବହୁ ସଂଖ୍ୟା ଯୋଗ କରିବା—1 To add Moṭa karibā up; to total; to sum up many
মোট করা numbers. ୨ । ସରୁଆ ପଦାର୍ଥକୁ ସ୍ଥୂଳ
जोडना କରିବା—2. To thicken. ୩ । ବଢ଼ାଇବା;
মোট করা, বাড়ান ଫୁଲାଇବା; ଆକାର ବୃଦ୍ଧି କରାଇବା—3. To
बढाना cause to swell on; to become large.
মোটা করা ୪ । ( କଥାକୁ ) ଅଯଥାର୍ଥ ଆଲୋଚନାଦ୍ୱାରା
बढाना ଗୁରୁତର ବା ଗୋଳମାଳିଆ କରିବା—4. To make matters confused or confounded or assume unduly grave proportions ( ଯଥା—ଗୋଟିଏ କଥାକୁ ବହୁବାର ଆଲୋଚନାଦ୍ୱାରା କଥାକୁ 'ମୋଟ' କରାଯାଏ । ) ୫ । ଛୋଟ ବା ତୁଚ୍ଛ କଥାକୁ ଅଯଥା ଗୁରୁ ବା ଗୋଳମାଳିଆ କରିବା, ବଢ଼ାଇବା—

5. To make a matter swell into inordinate or very grave proportions by constantly hammering on it. [ ଦ୍ର—ଉଦାହରଣସ୍ୱରୂପ—ଜଣଙ୍କର ସାମାନ୍ୟ ତ୍ରୁଟି ହୋଇଅଛି ଯାହାର ଧର୍ତ୍ତବ୍ୟ ନୁହେଁ କିନ୍ତୁ ସେ ବିଷୟକୁ ଘନ ଘନ ଚର୍ଚ୍ଚା ବା ଆଲୋଚନା କଲେ ସେ କଥାଟା ମୋଟ ହୋଇଯାଏ ଅର୍ଥାତ୍ ସେ ତ୍ରୁଟିଟା ଅଯଥା ଗୁରୁତର ଆକାର ଧାରଣ କରେ ।

ଗୋଟିଏ ଅପରାଧକୁ ପ୍ରଥମରୁ ଘୋଡ଼ାଇ ପକାଇଲେ ତତ୍ପ୍ରତି ସାଧାରଣଙ୍କ ଦୃଷ୍ଟି ପଡ଼େ ନାହିଁ, କିନ୍ତୁ ସେ କଥାକୁ ଘନଘନ ଚର୍ଚ୍ଚା କରିବାଦ୍ୱାରା ସେ ବିଷୟ ଏତେ ମୋଟ ହୋଇଯାଏ ଯେ ତାହା ଆଉ ଘୋଡ଼ାଇ ରଖି ହୁଏ ନାହିଁ । ଆଜିକାଲିର ଖବର କାଗଜମାନଙ୍କରେ ସାମାନ୍ୟ କଥାମାନ ମୋଟା ହେବାର ଉଦାହରଣ ପ୍ରାୟ ସବୁବେଳେ ଦେଖାଯାଉଥାଏ । ]

ମୋଟକୀ—ସଂ. ବି. ସ୍ତ୍ରୀ ( ମୋଟକ+ଈ )—ସଙ୍ଗୀତର ରାଗିଣୀ ବିଶେଷ
Moṭakī —One of the secondary tunes of Hindu music.

ମୋଟ(ଟା) ଖରଚ(ଚ୍ଚ)—ଦେ. ବି—୧ । କୌଣସି ଉପଲକ୍ଷରେ ଜଣେ
Moṭa(ṭā) kharacha(chā) ବ୍ୟକ୍ତିର କୃତ ସମସ୍ତ ଖରଚ—
মোটা খরচ 1. The total expenses incurred
**मोट(टा) खर्च** by a person on a certain occasion.
୨ । କୌଣସି କର୍ମ ଉପଲକ୍ଷରେ ବହୁବ୍ୟୟସାଧ୍ୟ କେତେକ ବିଷୟରେ ହୋଇଥିବା ଖରଚ—2. Individual items of heavy expenses incurred on a certain occasion. ୩ । ମାମୁଲି ବା ଧରାବନ୍ଧା ଖରଚ—3. Routine or fixed items of expenditure.

ମୋଟ(ଟା) ଖାଇବା—ଦେ କ୍ରି—ମୋଟ ଭାତ ଖାଇବା—To take
Moṭa(ṭā) khāibā coarse food; to subsist on
মোটা খাওয়া coarse food. [ ଯଥା—ମୋଟ ଖାଇ
**मोटा खाना** ମୋଟ ପିନ୍ଧି ଅଛି କାଳ ମୋର ସୁଖରେ ନେଉଛି । ]

ମୋଟ(ଟା) ଗାନ୍ଥ(ନ୍ଥି, ନ୍ଥେ)ଣି—ଦେ. ବି—ସମାନଭାବରେ ଓ ସମାନ
Moṭa(ṭā) gāntha(nthi, nthe)ṇi ଭିତରେ କଟା
মোটা গাঁথনী ହୋଇ ନ ଥିବା ପଥରମାନଙ୍କ ଦ୍ୱାରା କାନ୍ଥଆଦି
**मोटा चुनाई** ବନାଇବା—Rough masonry.

ମୋଟ(ଟା) ଚାଉଳ—ଦେ. ବି ( ଖାଇବାକୁ ବା ବ୍ୟବହାର କରିବାକୁ )
Moṭa(ṭā) chāula —କର୍କଶ ତଣ୍ଡୁଳ; ବଗଡ଼ା ଚାଉଳ;
মোটা চাল ବଡ଼ ଚାଉଳ—Coarse rice. [ ଦ୍ର—ଏହି-
**मोटा चावल** ଠାରୁ ମୋଟ ଭାତ, ମୋଟା ଧାନ ଆଦି ହୁଏ । ]
(ସରୁ ଚାଉଳ—ବିପରୀତ)

(ଟା) ଚ(ଚ୍ଚ)ଦର—ଦେ. ବି—ଖଦଡ଼ଭଳି ମୋଟ ହେବା ଲୁଗା—
Moṭa(ṭā) cha(chā)dara A coarse sheet of cloth.
চাদর **मोटा चद्दर**

ମୋଟ(ଟା) ତେଲ—ଦେ. ବି—ଯେଉଁ ତେଲ ଧଳା ହୋଇ ନ ଥାଏ ଓ ଯାହା
Moṭa(ṭā) tela ସୁଭୂମାରଥାଏଁ ଲୋକମାନେ ବ୍ୟବହାର କରନ୍ତି
(ମୋଟ ମାଲିସା—ଅନ୍ୟରୂପ) ନାହିଁ—Coarse or crude
(ସରୁତେଲ—ବିପରୀତ) oil; thick oil. [ ଦ୍ର—ଜଡ଼ା
মোটা তেল ତେଲ, ସୋରିଷ ତେଲ ଆଦି ଏହି ଶ୍ରେଣୀର
**गाढ़ा तेल** ଅନ୍ତର୍ଗତ । ]

ମୋଟ ଦଉଡ଼ି—ଦେ. ବି—ସ୍ଥୂଳ ରଜ୍ଜୁ—
Moṭa daurḍi A thick rope.
মোটা দড়ি **मोटी रस्सी, मोटी जौडो**

ମୋଟ ଦର—ଦେ. ବି—ପଣ୍ୟ ଦ୍ରବ୍ୟ ଏକକାଳୀନ ବହୁ ପରିମାଣରେ
Moṭa dara ବିକି କରାଯିବାର ମୂଲ୍ୟ—Wholesale
পাইকারি দর **थोकभाव, मोटा दर** price or rate.

ମୋଟ ଦ(ଦା)ରିଆ—ଦେ. ବିଣ—୧ । ଏକାଥରକେ ବହୁ ପରିମାଣରେ
Moṭa da(dā)riā ବ୍ୟବହୃତ—1. Used in large
পাইকারি মোটদরে quantities or on a large scale
**थोकदर** at a time. ୨ । ପାଇକାରି; ଏକାଥରକେ
(ଖୁଚୁରା—ବିପରୀତ) ବହୁ ପରିମାଣରେ ବିକି ହେଉଥିବା—
2. Wholesale. ୩ । ଏକାଥରକେ ବହୁ ପରିମାଣରେ ପଣ୍ୟବିକ୍ରୟକାରୀ—3. Selling wholesale.

ମୋଟ ଧାନ—ଦେ. ବି—ବଗଡ଼ା ଧାନ—
Moṭa dhāna Coarse paddy.
মোটা ধান **मोटा धान**

ମୋଟନ—ସଂ. ବି ( ମୁଟ୍ ଧାତୁ=ଚୂର୍ଣ୍ଣ କରିବା+କର୍ତ୍ତୃ. ଅନ )—୧ ।
Moṭana ବାୟୁ; ପବନ; ବତାସ—1. Air; wind. ୨ । ( +ଭାବ. ଅନ ) ଗୁଣ୍ଡିବା; ଗୁଣ୍ଡ କରିବା—2. Powdering. ୩ । ଚାପିବା; ମଳିବା—3. Crushing; pressing. ୪ । ପେଷଣ; ପେଷିବା —4. Grinding. ୫ । ଘଷିବା—5. Rubbing. ୬ । ( ହାତଗୋଡ଼ ଆଦି ) ମୋଡ଼ିବା—6. Twisting; spraining; wrenching. ୭ । (ହାତ, ଗୋଡ଼ର ଆଙ୍ଗୁଠି ଆଦି) ମୋଡି କରି ଫୁଟାଇବା—7. Snapping or cracking of the finger joints.

ମୋଟନକ—ସଂ. ବି ( ମୋଟନ+କ )—୧ । ବିନାଶ; ଲୋପ; ଧ୍ୱଂସ—
Moṭanaka 1. Extinction; destruction; ruin.
୨ । ଏକାଦଶାକ୍ଷର ବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ—2. A metre in Sanscrit with eleven syllables ( sounding like snapping of fingers ). [ ଦ୍ର—ଏହି ଛନ୍ଦର ୧ମ, ୨ୟ, ୫ମ, ୮ମ ଓ ୧୧ଶ ବର୍ଣ୍ଣ ଗୁରୁ ଏବଂ ୩ୟ, ୪ର୍ଥ, ୬ଷ୍ଠ, ୭ମ, ୯ମ ଓ ୧୦ମ ବର୍ଣ୍ଣ ଲଘୁ । ]

ମୋଟ(ଟା) ପିନ୍ଧିବା—ଦେ. କ୍ରି—ମୋଟା ଲୁଗା ପିନ୍ଧିବା; ସ୍ଥୂଳ ବସ୍ତ୍ର
Moṭa(ṭā) pindhibā ପରିଧାନ କରିବା—To wear
মোটা পরা coarse cloth; to put on coarse dress.
**मोटा पहरना**

ମୋଟ(ଟା) ବନିବା—ଦେ.କ୍ରି—(କ୍ଷୀଣକାୟ ବ୍ୟକ୍ତି) ସ୍ଥୂଳକାୟ ହେବା—(a lean person) To become fat or corpulent.
Moṭa(ṭā) banibā
মোটা হওয়া मोटा होना, मोटाना
(ମୋଟ ହେବା—ଅନ୍ୟରୂପ)

ମୋଟ ବ(ବୋ)ହିବା—ଦେ. କ୍ରି—ବୋଝ ବୋହିବା—To carry a load.
Moṭa ba(bo)hibā
মোট বহা मोट ढोना (ମୋଟ ବୁହାଇବା—ଅନ୍ୟରୂପ)

ମୋଟ(ଟା) ବୁଦ୍ଧି—ଦେ. ବି—୧ । ସ୍ଥୂଳ ବୁଦ୍ଧି—1. Stupidity; a dull intellect. ୨ । ବୁଦ୍ଧିହୀନତା—2. Dullness of intellect.
Moṭa(ṭā) buddhi
মোটা বুদ্ধি
मोटी अक्ल, मोटी बुद्धि

ମୋଟ(ଟା) ବୁଧି(ଦ୍ଧି)ଆ—ଦେ. ବିଣ—୧ । ଜଡ଼ବୁଦ୍ଧି; ସ୍ଥୂଳବୁଦ୍ଧିବିଶିଷ୍ଟ—1. Stupid; dull. ୨ । ନିର୍ବୁଦ୍ଧିଆ; ନିର୍ବୋଧ—1. Foolish; thick-headed; hare-brained.
Moṭa(ṭā) budhi(ddhi)ā
মোটা বুদ্ধি
मोटी अक्ल वाला, मोट बुद्धि

ମୋଟ ବୁହା—ଦେ. ବି—୧ । ବୋଝ ବହନ କରିବା—1. Carrying of a load. ୨ । ବୋହିଆ; ମୋଟିଆ; କୁଲି—2. Porter; carrier of a load.
Moṭa buhā
মোট বহা मोट ढोना
মুটে मोटिया
ବିଣ—ଯେ ବୋଝ ବୁହେ; ବୋଝବୁହା—Carrying loads.

ମୋଟ(ଟା) ଭାତ—ଦେ. ବି—ମୋଟା ଚାଉଳର ଅନ୍ନ—Coarse boiled rice.
Moṭa(ṭā) bhāta
মোটা ভাত मोटा भात

ମୋଟ ମା,(ରୋ, ସୋ)ଟ—ଦେ. ବିଣ. (ଅନର୍ଥକ ସହଚର)—୧ । ଅତି ମୋଟା—1. Very thick. ୨ । ପୃଥୁଳ; ଅତି ସ୍ଥୂଳକାୟ—2. Very fat; very corpulent.
Moṭa mā(ro, so)ṭa
মোটা সোটা
मोटा मोटा

ମୋଟ(ଟା)ର୍—ବୈଦେ. ବି. ( ଇଂ. ମୋଟର୍ )—ଜ୍ୱଳନ୍ତ କରିଥିବା ତେଲର ବାଷ୍ପରୁ ଉତ୍ପନ୍ନ ବଦ୍ୟୁତ୍ ଶକ୍ତି ଦ୍ୱାରା ପରିଚାଳିତ ଯାନ—A motor conveyance.
Moṭa(ṭā)r
মোটর, মটর
मोटर
ଦେ. ବି. (ସ. ମୁଣ୍ଡ ଚଣକ)—ମଟର, ଶିମ୍ବାଦି ବର୍ଗର କୃଷିଜାତ ଶସ୍ୟ—Pea. ବୈଦେ. ବି—ମୋଟର ଶକ୍ତି ପରିଚାଳିତ (ଗାଡ଼ି ଆଦି)—Motor.
মটর म
মোটর मोटर

ମୋଟର୍—ପ୍ରାଦେ. (ବସ୍ତ୍ରର) ବି—ଗଣ୍ଠିଲି—Bundle.
Moṭar

ମୋଟ(ଟା)ର(ର) କାର୍—ବୈଦେ. ବି. ( ଇଂ. ମୋଟର କାର୍ )—ମୋଟରପରିଚାଳିତ ଶକଟ—Motor car. [ଦ୍ର—ଏହିପରି ମୋଟର ବୋଟ, ମୋଟର ଜାହାଜ ଆଦି ହୁଏ ।]
Moṭa(ṭā)r(ra) kār
মটরকার(গাড়ি)
मोटरकार
(ମୋଟର ଗାଡ଼ି—ଦେ. ଅନ୍ୟରୂପ]

ମୋଟର୍ ଛୁ(ଛୋ)ଇଁ—ଦେ. ବି—ମଟର ଶସ୍ୟର ଛୁଇଁ—The pods of pea.
Moṭar chhu(chho)iñ
মটর শুঁটী मटर छिमी

ମୋଟର୍ ଡ୍ରାଇଭର୍—ବୈଦେ. ବି. ( ଇଂ. ମୋଟର ଡ୍ରାଇଭର )—ମୋଟର ଗାଡ଼ି ଆଦିର ଯନ୍ତ୍ରକୁ ଯେ ଚାଳନ କରେ—Motor driver; a chaeuffeur.
Motar drāibhar
মটর ড্রাইভর
मोटर ड्राइवर (ମୋଟର ଚାଳକ—ଦେ. ଅନ୍ୟରୂପ)

ମୋଟର୍ ତେଲ—ଦେ. ବି. ( ଇଂ. ମୋଟର୍ ଓ ସ. ତୈଳ )—୧ । ମୋଟର ଗାଡ଼ିକୁ ଚଳାଇବା ପାଇଁ ବ୍ୟବହୃତ ଘୋଷିତ ବିଶେଷ ତେଲ; ପେଟ୍ରୋଲ—1. Motor oil; petrol. ୨ । ମୋଟର ଗାଡ଼ିର ଯନ୍ତ୍ରକୁ ମାର୍ଜିତ କରିବାରେ ବ୍ୟବହୃତ ତୈଳ—2. Mobil oil; oil used for greasing the motor engine.
Moṭar tela
মটর গাড়ির তেল
मोटर तेल

ମୋଟର୍ ଲରି—ବୈଦେ. ବି. (ଇଂ. ମୋଟର୍ ଲରି)—ମୋଟର ଶକ୍ତି ଦ୍ୱାରା ପରିଚାଳିତ ବଡ଼ ଗାଡ଼ି (ଯହିଁରେ ଅନେକ ଲୋକ ବା ଜିନିଷ ପାଇଁ ସ୍ଥାନ ଥାଏ)—Motor lorry.
Moṭar lari
মটর লরী
मोटर लरी

ମୋଟର୍ ସର୍ଭିସ୍—ବୈଦେ. ବି. (ଇଂ)—ମୋଟର ଗାଡ଼ି ଦ୍ୱାରା ଏକ ସ୍ଥାନରୁ ଅନ୍ୟ ସ୍ଥାନ ପର୍ଯ୍ୟନ୍ତ ଲୋକ ଓ ବୋଝ ନିଆ ଅଣା—Motor service between 2 places.
Moṭar sarbhis
মটর সার্ভিস
मोटर सर्विस

ମୋଟରା—ଦେ. ବି—୧ । ଏକପ୍ରକାର ମୋଟା ଶାରଦ ଧାନ—1. A species of coarse paddy. ୨ । ବୋହିଆ—2. Porter; cooly.
Moṭarā
মোটা শারদধান
मोटिया ପ୍ରାଦେ. (ବସ୍ତ୍ରର) ବି—ଗଣ୍ଠିଲି, ଗଣ୍ଠିରି—Bundle; luggage.

ମୋଟରି—ଦେ.ବି—ଧାନ ଗଛ ନଷ୍ଟ କରୁଥିବା ଏକ ପ୍ରକାର ପୋକ—A kind of pest (worm) infesting paddy plants; Hispa.
Moṭari
মড়িচাপোকা, শাঁখী मारा

ମୋଟରି ଧରିବା—ଦେ. ବି.—ଧାନ ଗଛରେ ମୋଟରି ପୋକ ଲାଗିବା—The paddy plants being infested with Hispa.
Moṭari dharibā
মডিচা লাগা मारा धरना (लगना)
(ମୋଟରି ମାରିବା; ମୋଟରି ଲାଗିବା—ଅନ୍ୟରୂପ)

ମୋଟରେ—ଦେ. କ୍ରି. ବିଣ—ମୋଟ ଉପରେ (ଦେଖ)
Moṭare মোটের উপর Moṭa upare (See)
मोटे तौरपर [ ଦ୍ର—ମୋଟରେ ରାଜା ଓ ଦେଶବାସୀ ଚରଣାନ୍ତରେ ଥିଲେ । କ୍ୟାସିକ୍ସ୍ ଉତ୍କଳ ଇତିହାସ । ]

ମୋଟ(ଟା) ଲୁଗା—ଦେ. ବି—କର୍କଶ ବସ୍ତ୍ର; ରଗଡ଼ା ଲୁଗା; ଖଦଡ଼; ବଗଡ଼ା ଲୁଗା; ମୋଟା ସୂତାରେ ବୁଣା ଲୁଗା—Coarse-fibred cloth; coarse cloth; 'khaddar' cloth woven with coarse yarn.
Moṭa(ṭā) lugā
মোটিয়া, মোটা কাপড়
मोटिया, मोटा कपडा
(ଘରୁ ବା ଚାରକ୍ ଲୁଗା—ରୂପାନ୍ତର)

ମୋଟ(ଟା) ସରୁ—ଦେ. ବିଣ.—(ବିପରୀତାର୍ଥ ସହଚର)—ସ୍ଥୂଳ ଓ ସୂକ୍ଷ୍ମ—Thick and thin; coarse and fine.
Moṭa(ṭā) saru
মোটা সরু मोटा मिहिन
[ମୋଟ (ଟା) ସରୁଆ—ଅନ୍ୟରୂପ]

ମୋଟା—ଦେ. ବିଣ. ପୁଂ—(ସ. ମୃଷ୍ଟ=ହୃଷ୍ଟପୁଷ୍ଟ ବ୍ୟକ୍ତି)—୧ । ସ୍ଥୂଳ—
Moṭā মোটা मोटा 1. Thick.
(ସରୁଆ, ପାତଳା, ବାରିକ୍—ବିପରୀତ) ୨ । ସ୍ଥୂଳାଙ୍ଗ; ସ୍ଥୂଳକାୟ—
(ମୋଟୀ—ସ୍ତ୍ରୀ) 2. Fat; stout; corpulent. [ଉ—
ଏହା ଶୁଣି ସବୁ ସେନାଏ ଘୋଷ ହେଲେ ମୋଟା ଶ୍ରମ ଭୁଲେ ଯୁଝିବା ଇଚ୍ଛା କଲେ । କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।] ୩ । କର୍କଶ—3. Coarse; rough; harsh. [ ଦ୍ର—ଖାଇବାକୁ କର୍କଶ, ପିନ୍ଧିବାକୁ କର୍କଶ, ସ୍ପର୍ଶରୁ କର୍କଶ, ଶୁଣିବାକୁ କର୍କଶ, ଏହି ସମସ୍ତ ସ୍ଥଳରେ 'ମୋଟା' ବିଶେଷଣ ପ୍ରଯୁକ୍ତ ହୁଏ । ] ୪ । (ଭା. ମୋଟ୍ଟେ)—ଅତୀକ୍ଷ୍ଣ; ଧାର ନ ଥିବା; ଦନ୍ତୁରି—4. Blunt. ପ୍ରାଦେ. ବି.—୧ । (ଯାଜପୁର)—ପୋଇ, କଖାରୁ ଆଦି ଲତାର ମୂଳ ସ୍ଥାନ—1. The thick lowermost portion of the stem of creepers like Basella Alba. ୨ । (ଯାଜପୁର) ବାଉଁଶ ଗଛର ବୁଦା—2. Clump of bamboos. ୩ । (ଗଡ଼ଜାତ)—ଧାନ ଗଛର ବୁଦା—3. A clump of paddy plant.

ମୋଟା(ଟେ)ଇବା—ଦେ. କ୍ରି.—ସ୍ଥୂଳ କରିବା—
Moṭā(ṭe)ibā মোটা করা To thicken; to fatten.
मोटाना

ମୋଟା କଥା—ଦେ. ବି.—୧ । ସ୍ଥୂଳ କଥା; ଯେଉଁ କଥାରେ ସୂକ୍ଷ୍ମ ବୁଦ୍ଧିର ଆବଶ୍ୟକତା ହୁଏ ନାହିଁ—1. Words
Moṭā kathā
মোটা কথা मोटी बात not requiring sharpness of intellect to understand ୨ । ଯେଉଁ ଯେଉଁ କଥା ମୋଟା ସ୍ୱରରେ କୁହା ଯାଏ—2. Words which are uttered with loud or hoarse tone.

ମୋଟା କାମ—ଦେ. ବି.—ଯେଉଁ କାମରେ ସୂକ୍ଷ୍ମ କାରୁକାର୍ଯ୍ୟ ନ ଥାଏ—
Moṭā kāma Coarse work (not of fine workmanship.)
মোটা কায मोटा काम

ମୋଟା ଗଳା—ଦେ. ବି.—୧ । କର୍କଶ ସ୍ୱର—
Moṭā gaḷā মোটা গলা मोटा सुर (गला) 1. A jarring voice. ୨ । ମୁକ୍ତ କଣ୍ଠ; ଉଚ୍ଚୈଃ ସ୍ୱର—2. Loud voice. ୩ । ଖାଦ ସ୍ୱର—3. High pitch or tune. ୪ । ବସି ଯାଇଥିବା ଗଳାର ସ୍ୱର—4. Hoarse voice.

ମୋଟା ଚମ—ଦେ. ବି—ସ୍ଥୂଳ ବା ଘନ ଚର୍ମ—Thick or tough
Moṭā chama skin. ଦେ. ବିଣ.—୧ । ମାଡ଼ୁଆ—
মোটা চামড়া 1. Toughe-skinned able to bear a
मोटा चमड़ा good deal of beating without shying.
(ମୋଟା ଚମଡ଼ା—ଅନ୍ୟରୂପ) ୨ । ( ଲକ୍ଷଣାର୍ଥ ) ନିର୍ଲଜ୍ଜ—
2. (figurative) Shameless.

ମୋଟା ଚାକିରି—ଦେ. ବି—ମୋଟା ଦରମାର ଚାକିରି; ଯେଉଁ ଚାକିରିରେ ବହୁତ ଟଙ୍କା ଦରମା ମିଳେ—A service
Moṭā chākiri
মোটা মাইনার চাকিরী with a high salary.]
मोटे तलबकी नौकरी

ମୋଟା ତାଜା—ଦେ. ବିଣ. (ସ. ମୃଷ୍ଟ)—ହୃଷ୍ଟପୁଷ୍ଟ; ସ୍ଥୂଳକାୟ ଓ ସତେଜ
Moṭā tājā Hale and hearty; fat and fresh.
মোটা তাজা मोटा ताजा

ମୋଟା ଦରମା—ଦେ. ବି—ଉଚ୍ଚ ବେତନ, ବେଶୀ ଟଙ୍କା ଦରମା—
Moṭā daramā Handsome pay; high salary
মোটা বেতন, মোটা মাইনা fat salary.
मोटा तनखाह (तलब, दरमाहा)
(ମୋଟା ବେତନ—ଅନ୍ୟରୂପ)

ମୋଟା ଦାଢ଼—ଦେ. ବି—ଅସ୍ତ୍ରାଦିର ସ୍ଥୂଳ ଧାର—Blunt or thick-
Moṭā dārḏha edge of a weapon.
মোটা ধার मोटी धार

ମୋଟା ଦାଢ଼ୁଆ—ଦେ. ବିଣ—୧ । ସ୍ଥୂଳ ଧାରଯୁକ୍ତ—1. Thick
Moṭā dārḏhuā edged. ୨ । ଦନ୍ତୁରି—2. Blunt-edged.
মোটা ধারাল मोटी धार वाली

ମୋଟା ଦେହ କୁଟା ପରି(ପରାଏ)କରିବା—ଦେ. କ୍ରି—୧ । ଦେହକୁ ଚିନ୍ତାରେ
Moṭa deha kuṭā pari(parāe) karibā
मोटे देहको सुखाना କ୍ଷୀଣ ବା କ୍ଷିନ୍ନ କରି ଦେବା—To become emaciated on account of anxiety. (ଉ—ବଡ଼ କରି ନିଶ୍ୱାସଟିଏ ପକାଇଲେ, ମୋଟା ଦେହ କୁଟା ପରାଏ କରି ଦେଲେ । କୃଷ୍ଣସିଂହ. ମହାଭାରତ. ବନ ।)

ମୋଟା ଧରିବା—ପ୍ରାଦେ. (ଗଡ଼ଜାତ) କ୍ରି—ପିଲେଇବା ( ଦେଖ )
Moṭa dharibā Pileibā ( See )

ମୋଟା(ଟ)ପଣ—ଦେ. ବି—ସ୍ଥୂଳତା—Thickness; corpulence;
Moṭā(ṭa)paṇa Coarseness.
মোটা পন मोटा पन, मोटापा

ମୋଟା ଭୋଟା—ଦେ. ବିଣ. (ସହଚର)—ମୋଟା ଓ ଭାରି—
Moṭā bhoṭā Coarse and heavy.
মোটা সোটা मोटा और भारी

ମୋଟା ମାଉଁସ—ଦେ. ବି—ଗୋ ମାଂସ—Beef.
Moṭā māuṅsa
মোটা মাঁস गौका मांस, गोमांस

ମୋଟା ମୋଟି—ଦେ. କ୍ରି. ବିଣ—ସ୍ଥୂଳରେ—Roughly speaking; on the whole.
moṭā moṭi
মোটা মুটি मोटा मोटि

ମୋଟାର—ଦେ. ବିଣ—ଠୁଳ; ଏକତ୍ର—
Moṭāra कूल कुल Gathered together.

ମୋଟା ରୋ(ସୋ)ଟା—ଦେ. ବିଂ. (ନିରର୍ଥକ ସହଚର)—
Moṭā ro(so)ṭā ମୋଟ ମାଟ (ଦେଖ)—Moṭa māṭa (See)
মোটা সোটা मोटा मोटा

ମୋଟା ହେବା—ଦେ. କ୍ରି—ସ୍ଥୂଳକାୟ ହେବା—
Mota heba To become fat or stout.
মোটা হওয়া मोटा होना· मोटाना

ମୋଟିଆ—ଦେ. ବଣ—ପ୍ରାୟ ମୋଟ—Nearly fat.

Motia ଦେ.ବ (ବଙ୍ଗଳାର ଅନୁକରଣ)—ଭୁଲ; ବୋହିଆ—
মোটাল मोटासा Porter; cooly.
মুটিয়া, মোটিয়া, মুটে मोटिया

ମୋଟୀ—ଦେ. ବଣ. ସ୍ତ୍ରୀ. (ଓ.ମୋଟଶବ୍ଦର ସ୍ତ୍ରୀଲିଙ୍ଗ)--ପୃଥୁଳା; ସ୍ଥୂଳକାୟା
Moti (ସ୍ତ୍ରୀ)—Fat; corpulent (woman).
মোটা মোটী (ମୋଟେଇ—ଅନ୍ୟରୂପ)

ମୋଟୁଆ—ଦେ. ବଣ.—ସ୍ଥୂଳ; ମୋଟା; ପୃଥୁଳ—
Motua Thick; stout; fat
মোটা (ଉ—ମନକୁ ମୋଟୁଆ କଲେ କାହିଁରେ ପଶିବ । ପ୍ରାଚୀ.
मोटा ବୃଦ୍ଧକରୂପଣ ଗୀତା ।)

ମୋଟେ—ଦେ କ୍ରି. ବଣ—୧ । ମୁଣ୍ଡୁ; ମୂଳରୁ; ଏକାବେଳକେ; ଅଦୌ
Mote 1. At all. ୨ । ସବୁସମେତ—2. Altogether.
মোটে, মোটেই बिलकुल, एकदम (ମୋଟେଇ—ଅନ୍ୟରୂପ)

ମୋଟେଇବା—ପ୍ରାଦେ. (ଗଡ଼ଜାତ) କ୍ରି—ପିଲେଇବା (ଦେଖ)
Moteiba Pileiba ( See )

ମୋଟ୍ଟାୟିତ—ସ. ବ. (ମୁଟ୍ ଧାତୁ+ଅୟ+ଇତ)—ନାୟିକାର ଭାବ—
Mottayita ବିଶେଷ; ନାୟକକୁ ଦେଖି ବା ନାୟକକୁ ସ୍ମରଣ କରି ନାୟିକାର କାମୋଦ୍ଦୀପନସୂଚକ ଦେହ ମୋଡ ଭଙ୍ଗ ହେବା ବା ଅଳସ ଭାଙ୍ଗିବାର ଭଙ୍ଗୀ; ଦେହ ମୋଡ଼ ଭଙ୍ଗ ହେବା ଭଙ୍ଗୀ—Silent in voluntary expression of affection towards an absent lover when he is remembered or talked of (Apte); an amatory expression of a woman on seeing or recollecting her lover (by the twisting of the limbs, scratching of the ears and making other signs) (ଉ—ଲୀଳାବିଳାସ ମୋଟ୍ଟାୟିତ ଅବସରେ, ମାଳ କାଞ୍ଚନକେଶୀ ସଜିଲା ଏରେ । ଗୋଲୋକ. ଇନ୍ଦୁରେଖା ।)

ମୋଠ(ଠୋ)ଉଁ—ଦେ. ଅ—୧ । ମୋ ନିକଟରୁ—1. From my
Motha(tho)un side. ୨ । ମୋଠାରୁ—2. From me.
আমারঠেঁ हमसे ୩ । ମୋ ଅପେକ୍ଷା—3. Than myself.
(ମୋଠୁଁ—ଅନ୍ୟରୂପ) (ଉ—ପାଇ ପଢ଼ୁଥାଲୁ ପଚାରୁଥ ଲୁ ମୋଠଁ ସରଣୀ କବ । ହାସ୍ୟତରଙ୍ଗ ।)

ମୋଠା(ଠେ)ଇଁ - ଦେ. ଅ—୧ । ମୋଠାରେ—1. In me; with
Motha(the)in me. ୨ । ମୋ ନିକଟରେ—2 At me.
অমারঠেঁ, আমার ঠেয়েঁ हमे (ମୋଠିଁ—ଅନ୍ୟରୂପ)

ମୋଠାକୁ—ଦେ. ଅ—ମୋ ନିକଟକୁ—To me.
Mothaku আমার কাছে मेरे पास
(ମୋଠିଁକି, ମୋଠେଇଁକି—ଅନ୍ୟରୂପ)

ମୋଠାରେ—ଦେ. ଅ—ମୋ ନିକଟରେ—In me; with me.
Mothare (ଉ—ବଧୂର ଅଜ୍ଞାତ ଦୋଷ କଳଙ୍କ ଯଥା ପ୍ରକାଶ
আমার কাছে ଥିଲା ମାତ୍ରା ରହିଲା ମୋଠାରେ । ଭକ୍ତ. ବୈଦେହୀଶ-
मुझसे ବିଳାସ ।)

ମୋଡ଼—ଦେ. ବ ( ସ. ମୁଡ଼୍ ଧାତୁ ; ସ. ମୁରଣ—ଘୁରାଇବା ହି. ଶ )
Morda —୧ । ବାଙ୍କ; କୌଣସି ବସ୍ତୁ ବଙ୍କା ହୋଇ
মোড যାଇଥିବା ସ୍ଥାନ—1. A turn; a turning;
मोड the bend or twist of a thing bent or twisted. ୨ । କୌଣସି ବସ୍ତୁ ବଙ୍କା ହୋଇ ଯାଇଥିବା କୋଣ—2. A corner of a bent thing. ୩ । ଯେଉଁଠାରେ ପଥ ବା ନଦୀ ବା ନଳା ବକ୍ର ହୋଇ ଅନ୍ୟ ଦିଗକୁ ଯାଇଥାଏ—3. The turning of a road or river or embankment, bend. ୪ । ବକ୍ରକରଣ; ବଙ୍କାଇବା—4. Bending. ୫ । ପଥଶୀର୍ଷ; ଦୁଇଟି ରାସ୍ତା ବା ଗଳିର ଛକ—5. The crossing place of two roads or lanes. ୬ । କପଟତା; ଶଠତା; କପଟାଚରଣ—6. Crooked behaviour. [ ଦ୍ର—ମୋଡ଼ ଶବ୍ଦ ଯୁକ୍ତ ହୋଇ ବାଟମୋଡ଼, ପାଣିମୋଡ଼, କଥାର ମୋଡ଼ ଓ ତାହାର ମୋଡ଼ ଆଦି ହୁଏ । ]

ମୋଡ଼ କରିବା—ଦେ. କ୍ରି—ମୋଡ଼ିବା—To twist.
Morda kariba মোড় मोड़ना

ମୋଡ଼ ଛୋଡ଼—ଦେ. ବଣ ଓ ବ—୧ । ମୋଡ ଛୋଡ; ମୋଡ ଭଙ୍ଗ;
Morda chhorda ଅଙ୍ଗାଦିର ସଙ୍କୋଚନ ଓ ପ୍ରସାରଣ—1. Twist-
গা ভাঁগা ing of limbs especially the trunk
अंगैठी मोड to remove lethargy ୨ । କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛୁକ—2. Unwilling to do any work.

ମୋଡ଼ନ—ଦେ. ବ ( ମୁଡ଼୍ ଧାତୁ )—୧ । ମୋଡ଼ିବା ( ଦେଖ )—
Mordana 1. Mordiba ( See ) ୨ । ବକ୍ରକରଣ—
মোড়ন मोडना 2. Bending.

ମୋଡ଼ ମାଡ଼—ଦେ. ବ (ନିରର୍ଥକ ସହଚର )—୧ । ମୋଡ଼; ବାଙ୍କ—
Morda marda 1. A turn of a road. ୨ । କଥାର
মারপ্যাচ पेंचपाँच ପେଞ୍ଚ—2. Crafty speech. ୩ । ଫେରଫାର; କପଟ; ଛଳ—3 Fraud; practising of deception. ୪ । କପଟତାପୂର୍ଣ୍ଣ ବ୍ୟବହାର—4. Crooked conduct ୫ । ଦାମ ସ୍ଥିର ନ କରି ମୂଲେଇବା—5. Higgling and haggling.

ମୋଡ଼ା—ଦେ. ବ ( ସ. ମୁଡ଼୍ ଧାତୁ )—୧ । ବଳିବା; ମୋଡ଼ିବା—
Morda 1. Twisting; bending. ୨ । ଅନ୍ୟ ଦିଗକୁ
মোড়া ବୁଲାଇବା—2. Turning to another direc-
मोडना tion. [ ଉ—ବଳକ୍ଷ-ବଦନ ମୋଡ଼ା ବଳ୍ଗାଦଳ୍ଗା ଶୋଭା କାହିଁ ବୃନ୍ଦାବନରେ—ଅଭିମନ୍ୟୁ. ·ବିଦଗ୍ଧଚନ୍ଦ୍ରାମଣି]

୩ । ( ସ. ମୁଣ୍ଡ ) ବାଉଁଶ ବା ବେତରେ ନିର୍ମିତ ଉଚ୍ଚ ଆସନବିଶେଷ; ମୋଢ଼ା—3. A stool made of bamboo or cane or wicker work. ୪ । ( ସ. ମୋଟନ ) ଅଙ୍ଗ ପ୍ରତ୍ୟଙ୍ଗାଦି ଘଷିବା—4. Massage; rubbing of the body. ୫। ବକ୍ରୀକରଣ—5 Turning. ୬ । ପରାଜୟ—6. Defeat. [ ଉ—ଘଟୋତ୍କଚ ବଳା କର୍ଣ୍ଣଙ୍କୁ ଯୁଦ୍ଧେ ମୋଡ଼ା, ଦେବାକୁ ନାହିଁ ସେତେ ଛନ୍ଦ ରଥୀ ଉଡ଼ା—କୃଷ୍ଣସିଂହ. ମହାଭାରତ. ଦ୍ରୋଣ । ] ୭ । ହାଣ୍ଡି ଆଦି ରଖିବା ପାଇଁ ବଳା ଯାଇଥିବା କୁଟାର ମଲା—7. A cushion made with a twisted ring of straw. ୮ । ଏକପ୍ରକାର ଛୁଇଁ; ମୋଡ଼ା ଛୁଇଁ—8. A kind of pod. ୯ । ମୋଟକ ( ଦେଖ )—9. Moṭaka (See) ୧୦ । ଓଳଅ ଆଦିରେ ବ୍ୟବହୃତ ମଲା ପର ବଳୁଡ଼ି—10. Twisted straw or rope for making olias. ୧୧। ସୂତା ଆଦି ବହୁ ଥର ଗୁଡ଼ା ହୋଇଥିବା କୁଣ୍ଡଳୀ—11. A coil of yarn or thread.

ମୋଡ଼ା **मोडा**

ମୋଡ଼ା **मोडा**

ମୋଡ଼ା **मोडा हुआ** ଦେ. ବିଣ—ବଳା ହୋଇଥିବା—Twisted.

ମୋଡ଼ା(ଡ଼େ)ଇବା—ଦେ. କ୍ରି—ମୋଡ଼ିବା କ୍ରିୟାର ଣିଜନ୍ତ ରୂପ—Morḍā(rḍe)ibā Causative of Morḍibā. [ ଉ—ମୋଡ଼ାନ **मोडाना, मोडना** ମୋଡ଼ାଇଲେ କଟିଣ ତାହାକୁ ସମସ୍ତେ—କୃଷ୍ଣସିଂହ. ମହାଭାରତ. ସଭା । ]

ମୋଡ଼ା(ଡ଼େ)ଇ ହେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିଦ୍ୱାରା ଅପଣାର ଦେହ Morḍā(rḍe)i hebā ଘଷାଇ ହେବା—To have one's ଗାଟେପାନ **मसलवाना** limbs rubbed by another.

ମୋଡ଼ାଏ—ଦେ. ବି—୧ । ଏକଥର ମୋଡ଼ିବା—1. One twisting. Morḍāe [ ଉ—ତାହାର ନାମ ବନ୍ଧୁ ନାମ ବୋଲାଏ, ସଭାମେ ଏକ ମୋଡ଼ା ଅର୍ଜୁନଙ୍କୁ ଦେଲ ସେ ମୋଡ଼ାଏ—କୃଷ୍ଣସିଂହ. ମହାଭାରତ. ଅଦି । ] ୨ । ଏକ ମୋଡ଼ା ସୂତା— **एक मोडा** (ମୋଡ଼ାଏ—ଅନ୍ୟରୂପ) 2. A coil of string.

ମୋଡ଼ା ଖଡ଼ୁ—ଦେ. ବି—ସୁନା ଆଦି ଧାତୁ ଦଣ୍ଡକୁ ମୋଡ଼ି ତିଆରି Morḍā kharḍu କରିଥିବା ଖଡ଼ୁ—Bracelet prepared ମୋଡ଼ା ଖାଡୁ **मुडा कंगन** by twisting a metal rod.

ମୋଡ଼ା ଘଷା—ଦେ. ବି ( ସହଚର )—ଦେହକୁ ଘଷିବା—The Morḍā ghashā rubbing of the limbs; massage. ଗা টেপা **मसला मसली**

ମୋଡ଼ା ଛୁଇଁ—ଦେ. ବି ( ସ. ମୁଣ୍ଡିତିକା )—ଏକପ୍ରକାର ଛୁଇଁ—Morḍā chhuiñ The pod of a plant; Sphaeranthus ମୁବମୁରିয়া, মুণ্ডিরী Indicus. [ ଦ୍ର—ଏହାକୁ ତେଲ ମଧ୍ୟରେ **मुंडरी** ବୁଡ଼ାଇ ରଖି ସେହି ତେଲକୁ ଶିଶୁମାନଙ୍କ ଦେହରେ ଲଗାଇଲେ ଶିଶୁମାନଙ୍କଠାରୁ ପ୍ରଥମବେଗ ଛାଡ଼ିଯାଏ । ]

ମୋଡ଼ା ପକା(କେ)ଇବା—ଦେ. କ୍ରି—ପିଲାମାନେ ଖେଳିଲା ବେଳେ Morḍā pakā(ke)ibā କୌଣସି ଦ୍ରବ୍ୟ ବା ସ୍ଥାନକୁ କଣେଷ ଗণ্ডি দেওয়া କରିବା—( children while playing ) To **गंडी देना** prohibit a thing or place. [ ଦ୍ର—ଦ୍ରବ୍ୟ ବା ସ୍ଥାନର ଚତୁର୍ଦ୍ଦିଗରେ ମୁଣ୍ଡୁଲା କ୍ରାସ ଅଙ୍କନ କରନ୍ତି । ]

ମୋଡ଼ା ପଡ଼ିବା—ଦେ. କ୍ରି—୧ । ବଙ୍କେଇ ହୋଇଯିବା; ବକ୍ର ହେବା—Morḍā parḍibā 1. To bend, to be twisted. (ଉ—বাঁকা **मुडकी लगना** ମୋଡ଼ା ନ ପଡ଼ିବାକୁ ଗୁଣ ମୁଷାଥିଲୁ, ଶଙ୍କିଲେ ନକୁଳ ଏ ଡାଳକୁ ସେ ଡାଳକୁ—କୃଷ୍ଣସିଂହ. ମହାଭାରତ ] ୨ । ବହୁତ ବଳା ଯାଇଥିବା ସୂତା ଆଦି ଯୋଡ଼ି ହୋଇ ଯାଇ ଏକତ୍ର ହୋଇଯିବା—2. ( thread or rope ) To become entwined or too much twisted.

ମୋଡ଼ା ମୋଡ଼ି—ଦେ. ବି—ମୋଡ଼ିବା କ୍ରିୟା—The act of twisting or warping. Morḍā morḍi ମোড়ামুড়ি **मोडामोडी**

ମୋଡ଼ି—ଦେ. ବି ( ନାମ )—ମରହଟ୍ଟାମାନଙ୍କର ସାଧାରଣ ବ୍ୟବହୃତ Morḍi ଲିଖିତ ଲିପି; ଛଟା ଲେଖା—The drawn script **मोडी** used by the Marhattis in ordinary business. [ ଦ୍ର—ମରହଟ୍ଟୀ ଭାଷାର ସାହିତ୍ୟ ଲେଖାମାନ ଦେବନାଗରୀ ଅକ୍ଷରରେ ଲିଖିତ ହୋଇଥାଏ; ମାତ୍ର ସାଧାରଣ ଲୌକ୍ୟ ବ୍ୟବହାର୍ଯ୍ୟ ଲେଖାମାନ ମୋଡ଼ି ଲିପିରେ ଲେଖାଯାଏ । ]

ମୋଡ଼ିଆ—ଦେ. ବି—୧ । ମୋଡ଼ା; ବାଉଁଶ ବା ବେତକାଠିଦ୍ୱାରା ନିର୍ମିତ Morḍiā ଉଚ୍ଚାସନ—1. A stool made of bamboo or ମୋড়া **मोढा** cane twigs. ୨ । ମୋଡ଼ା ଖଡ଼ୁ, ବଳୟ—2. Twisted bracelet. ୩ । ଜଣ୍ଡାଖାଇ ( ଦେଖ ) 3. Jandākhāi (See)

ମୋଡ଼ି ଚ୍ଛୋ(ଭି)ଡ଼ି ହେବା—ଦେ. କ୍ରି—୧ । ଦେହ ହାତ ଗଡ଼ି ମୋଡ଼ି Morḍi chho(bhi)rḍi hebā ହୋଇ ଅଳସ ମେଣ୍ଟାଇବା—ଗା ভাংগা **अंगेठी मोडना** 1. To turn over or twist one's limbs to overcome laziness. ୨ । ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ କରିବା ପାଇଁ ମୁହଁରେ ମନା ନ କରି ଅଙ୍ଗଭଙ୍ଗୀଦ୍ୱାରା ଅନିଚ୍ଛା କରିବା—2. (figurative ) To express unwillingness to do a work by signs ( and not by words ).

ମୋଡ଼ିବା—ଦେ. କ୍ରି (ସଂ. ମୁଡ୍ ଧାତୁ)—୧ । ବକ୍ର କରିବା; Morḍibā ବଙ୍କେଇବା—1. To bend; to twist. [ଉ—ମোড়া, মুড়া, মুড়ে দেওয়া ବସିଲ ଶ୍ରୀମୁଖ ମୋଡ଼ି । କବିସୂର୍ଯ୍ୟ. **मोडना; मरोडना** ଚନ୍ଦ୍ରାକର ଚମ୍ପୂ 'ବ' ଗୀତ । ] ୨ । ଅନ୍ୟ (ମୋଡ଼ି ଦେବା—ଅନ୍ୟରୂପ) ଦିଗକୁ ବୁଲାଇବା; ଫେରାଇବା, ଅନ୍ୟ [ମୋଡ଼ା ଯି(ହେ)ବା—କର୍ମବାଚ୍ୟରୂପ] ଦିଗକୁ ଲେଉଟାଇବା—2. To turn round. [ଉ—ଧନୁ ସେ ଘାତ ଯାଇ କଦ୍ରାକୁ ଗଢ଼ିଲା, ଋଷି ଭୃଷି ଅଳପ ଗଣ୍ଡିକ ମୋଡ଼ିଲା । କୃଷ୍ଣସିଂହ. ମହାଭାରତ. ବନ ।] ୩ । (ସ. ମୃଡ୍ ଧାତୁ)

ମଳା — ହାତ ଗୋଡ଼ ଆଦିକୁ ମୋଡ଼ି କରି ଘଷିବା; ଅଙ୍ଗ ମର୍ଦ୍ଦନ
चापी करना, दबाना, चापना — କରିବା—3. To massage the limbs; to snap the limbs; to shanpoo. ୪ । (ସବାରି ବେହେରାଙ୍କ ଭାଷା) ସବାରି କାନ୍ଧିଶର ମଣ୍ଡାକୁ କାନ୍ଧର ବଳଦ୍ୱାରା ନିୟନ୍ତ୍ରିତ କରିବା—4. To direct the direction of a palki by applying force on the pole of the palki with the shoulders. ୫ । (ଲକ୍ଷଣାର୍ଥେ) ଗଛ ଆଦିକୁ ହାତଦ୍ୱାରା ମଳ ମାରି ପକାଇବା—5 To kill plants by twisting its stem.

ମୋଡ଼ି ଭିଡ଼ି ହେବା—ଦେ. କ୍ରି—୧ । ଅଙ୍ଗ ବକ୍ରେପଦ୍ୱାରା ଶରୀରର
Mordi bhirdi hebā ଜଡ଼ତା ଦୂର କରିବା; ଅଳସ୍ୟ
আড়(ড়া)মোড়াকরা, আড়ভাঙ্গা ମେଣ୍ଟାଇବା ପାଇଁ ଅଙ୍ଗ ବକ୍ଷେପ
अलसाना अंगेठी देना କରିବା—1. To twist one's limbs to cast off stupor or langour. ୨ । ଅଙ୍ଗଭଙ୍ଗୀଦ୍ୱାରା ଅନିଚ୍ଛା ପ୍ରକାଶ କରିବା—2. To express signs of unwillingness to do a work.

ମୋଡ଼ିମାଡ଼ି ହେବା—ଦେ. କ୍ରି—୧ । ଆପଣାର ଅଙ୍ଗ ପ୍ରତ୍ୟଙ୍ଗକୁ ନିଜ
Mordimārdi hebā ହାତରେ ମୋଡ଼ି ହେବା—1. To
নিজের গা নিজেটেপা massage or shampoo one's own
चापना limbs [ଉ—ମୁଁ କଲପା ତକିଏ ଲଗାଇ ଦେହରେ ମୋଡ଼ି ମାଡ଼ି ହେଉଛି ।] ୨ । ମୋଡ଼ଭିଡ଼ି ହେବା (ଦେଖ)—2. Mordi bhirdi hebā. (See)

ମୋଡ଼ିମାଡ଼ି ହୋଇ ରହିବା—ଦେ. କ୍ରି—୧ । କିଂକର୍ତ୍ତବ୍ୟବିମୂଢ଼
Mordi mārdi hoi rahibā ହୋଇ ଚୁପ ହେବା; ନିରସ୍ତ
চুপচাপ থাকা ହେବା—1. To keep silent being help-
चुपचाप रहना less. ୨ । ଆପଣାର ପରାକ୍ରମ ଦେଖାଇ ସାରି ଶେଷକୁ ନିରସ୍ତ ହୋଇ ରହିବା ବା ତୁଣ୍ଡୀଁଭାବ ଧାରଣ କରିବା—2. To be quiet after being baffled; to be baffled.

ମୋଡ଼ି ମୋଡ଼ି—ଦେ. ଅସମାପିକା କ୍ରି. ଓ ବିଣ (ସ. ମର୍ଦ୍ଦନ)—ମୋଡ଼ିବା
Mordi mordi କାର୍ଯ୍ୟ କରି; ମର୍ଦ୍ଦନ କରି—By twisting.
মুড়েমুড়ে [ଉ—ଘାଣ୍ଡରେ ଏହା ଶୁଣି ବାହୁ ମୋଡ଼ି ମୋଡ଼ି,
मुडमुडकर टेढा କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।] ଦେ.ବିଣ—ବଙ୍କ; ବଙ୍କା—Curved. [ଉ—ସାପଟା ମୋଡ଼ି ମୋଡ଼ି ହୋଇ ପଳାଉଛି ।]

ମୋଡ଼ି ମୋଡ଼ିଆ—ଦେ. ବିଣ—ମୋଡ଼ି ମୋଡ଼ି ହୋଇଥିବା—
Mordi mordiā Twisted. [ଉ—ମୋଡ଼ି ମୋଡ଼ିଆ ବର୍ତ୍ତି
বাংকাবাংকা ସୁନାବଳା, ଓଷ୍ଠା ଶ୍ରେଣ୍ଟଙ୍କର ଉତ୍ସବ ମେଳା । ଗ୍ରାମ୍ୟ
मुडमुडकर टेड़ा ଗୀତ ।] ଦେ. ବି (ବୈଦ୍ୟକ)—ଏକପ୍ରକାର ବୃ.—ମନୋଜ୍ଞା, ବାମାବର୍ତ୍ତୀ, ଗଛ—The name of a ଭଲ୍ଲୁପୁଷ୍ପୀ, ଆବର୍ତ୍ତିନୀ । plant. [ଉ—ଏହାର ମୂଳର ଛାଲି

আংতমোড়া — ବନ୍ଧୁମୂତ୍ର ନିବାରଣାର୍ଥେ ବ୍ୟବହୃତ
कुपायसी — କରାଯାଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]
ଚେ. ତୁହିବଡ଼ି

ମୋଡ଼ି ମୋଡ଼ିକିଆ—ଦେ. ବିଣ—ମୋଡ଼ିମୋଡ଼ିଆ (ଦେଖ)
Mordi mordikiā Mordi mordiā (See)

ମୋଡ଼ି ହେବା—ଦେ. କ୍ରି—୧ । ମୋଡ଼ିଛୋଡ଼ି ହେବା (ଦେଖ)
Mordi hebā 1. Mordi chhordi hebā (See)
ডাকামড়ান ୨ । ବ୍ୟଥିତ ହେବା; ଶୂଳଗ୍ରସ୍ତ ହେବା—
मरोडना 2. To smart with pain of colic.
୩ । ପେଟ କାମୁଡ଼ି ହେବା—
3. To feel colic pain in the abdomen.

ମୋଢା—ଦେ. ବିଣ (ଗାଳି) (ସ. ମୂଢ଼)—୧ । ମୂଢ଼; ନିର୍ବୋଧ—
Mordhā 1 Fool; stupid. [ଉ—ଲୋକେ ବୋଲିବେ
(মোঢ়ী—স্ত্রী) ଅଣ୍ଡୁଳୁଢ଼ୀ, କେମନ୍ତେ ଶୁଣିବ ମୁଁ ମୋଢ଼ୀ ।
মূঢ় ପ୍ରାଚୀ· ନରୁଣେମୋହାସ୍ୟ ।] ୨ । ଦୁଷ୍ଟ—2. Wicked.
मूढ ୩ । ଘାତକ—3. Murderer.

ମୋଣ—ସ. ବି (ମୁଣ ଧାତୁ=ପ୍ରତିଜ୍ଞା କରିବା+ଅ)—୧ । ଶୁଷ୍କଫଳ
Mona —1. Dried fruit. ୨ । ନକ୍ର; କୁମ୍ଭୀର—2. Crocodile. ୩ । ଜଳଚର ମକ୍ଷିକା ବିଶେଷ—3. A sort of aquatic flea. [ଉ—ଏମାନେ ନୌକାର ଘଟେ ଘଟେ ସଞ୍ଚରଣ କରନ୍ତି ।] ୪ । ସର୍ପ ରଖିବା; ସାପର ପେଡ଼ା—4. A circular flat basket for carrying snakes.

ମୋଣାଇ ବିଜେ—ଦେ. ବି (ଓଡ଼ିଶା ରାଜାଙ୍କ ସଦନରେ ବ୍ୟବହୃତ)—
Monai bije (ଦେବତା ବା ରାଜାଙ୍କ) ଖାଇବାକୁ ଯିବା—To take food (said of kings or gods)

ମୋଣ(ଣୁ)ହିଁ—ଦେ. ବି—ମୁଣହିଁ (ଦେଖ)
Mona(nu)hiñ Munahiñ (See)

ମୋଣୋ(ଣେ, ଣୁ)ହି(ହିଁ, ଇ, ଇଁ)—ଦେ. ବି—ମଣୋହି (ଦେଖ)
Mono'na, nu)hi(hiñ, i, iñ) Manohi (See)
[ଉ—ଯେବେ ନିଜ ଘରେ ଚଳ, ମୋଣୋହି ଉଚ୍ଚର ବେଳ, ଏ କଥା ପ୍ରକଟ ନୋହୁ, ଗୁପତେ ଖାଇ ଯେ । ପ୍ରାଚୀ. ପ୍ରତାପ ଶଶିରେଖା ।]

ମୋତସୋ—ଗ୍ରାଦେ. (ଉତ୍ତର ଗଞ୍ଜାମ) ସର୍ବ—୧ । ମୋତେ—1. Me.
Motso ୨ । ମୋର—2. My, mine.

ମୋତ(ତା)ଇ(ଏ, ୟ)ନ୍—ବୈଦେ. ବି ଓ ବିଣ—ମୁତାଇନ୍ (ଦେଖ)
Mota(tā)i(e, ya)n Mutāin (See)

ମୋତହିଁ—ଦେ. (ପ୍ରାଚୀନ) ଅ—ମୋଠାରେ—
Motahiñ हमसे In me; with me

ମୋତହୁଁ—ଦେ. (ପ୍ରାଚୀନ) ଅ—୧ । ମୋଠାରୁ—1. From
Motahuñ me. ୨ । ମୋ ଅପେକ୍ଷା—2. Than
हमसे myself.

ମୋତା—ବୈଦେ. ବି (ଅ. ମୁତଅ)—ମୁସଲମାନଙ୍କର ଅସ୍ଥାୟୀ ବିବାହ
Motā —A temporary marriage amongst
মোতা, মুতা मुताह Mahommedāns.

**ମୋତାବ(ବି)କ୍**—ବୈଦେ. ଅ—ମୁତାବକ୍ ( ଦେଖ )
Motāba(bi)k Mutābak ( See )

**ମୋତାଲୁକେ**—ବୈଦେ. ଖଣ—ମୁତାଲୁକେ ( ଦେଖ )
Motāluke Mutāluke ( See )

**ମୋତି**—ଦେ. ବି ( ସଂ. ମୌକ୍ତିକ; ପ୍ରା. ମୋତ୍ତିଅ )—୧ । ମୁକ୍ତା—
Moti 1. Pearl. ୨ । ସ୍ତ୍ରୀଙ୍କୁ ଦିଆଯିବା ନାମ—
ସଂ. ମୌକ୍ତିକ, ମୁକ୍ତାଫଳ 2. Name given to females.
ମୁକ୍ତା, ମୌକ୍ତିକ ୩ । କଂସାରିମାନଙ୍କର ମୋତି ଆକାରର
মোতি, মতি ଚିହ୍ନ ଖୋଳିବାର ଯନ୍ତ୍ର—3. Brazier's
मोती instrument for working figures like
pearls. [ ଦ୍ର—ସମୁଦ୍ରରେ ଏକପ୍ରକାର ଜୀବ ଆପଣା ଉପରେ ଗୋଟିଏ ଦୁଫାଳିଆ ଖୋଳ ତିଆରି କରି ତହିଁ ମଧ୍ୟରେ ରହନ୍ତି ଓ ତାଙ୍କ ଇଚ୍ଛା ଅନୁସାରେ ସେ ଆବରଣକୁ ମେଲା କରନ୍ତି ଓ ବୁଜନ୍ତି । ସେହି ଆବରଣକୁ ସିପ ବା ସାମୁକା ବୋଲାଯାଏ । ବେଳେ ବେଳେ ଏହି ସାମୁକାମାନେ ଦୁଇ ଫାଳକୁ ମେଲା କରିଥିବା ବେଳେ ତହିଁମଧ୍ୟରେ ବାଲିର କଣା ବା ଅତି କ୍ଷୁଦ୍ର ଜୀବ ପଶିଯାଆନ୍ତି ଓ ସେମାନେ ସାମୁକାର ପେଟ ପାଖରେ ଲାଗିବାରୁ ସାମୁକାର ପ୍ରଦାହ ଜାତ ହୁଏ । ସେହି ପ୍ରଦାହକୁ ଶାନ୍ତ କରିବା ପାଇଁ ଉକ୍ତ ଜୀବ ନିଜ ଦେହରୁ ଗୋଟିଏ ଚିକଣ ପଦାର୍ଥ କାଢ଼ି ସେହି ବାଲିକଣା ବା କ୍ଷୁଦ୍ର ଜୀବକୁ ଚାରି ପାଖରେ ଗୋଟିଏ ଆବରଣଦ୍ୱାରା ଘୋଡ଼ାଇ ଦିଏ । ସେହି ଚିକଣ ପଦାର୍ଥ ଦୃଢ଼ ହୋଇ ସାମୁକାର ପେଟରେ ଲାଗି ରହିଥାଏ । ଲୋକେ ପାଣିରେ ବୁଡ଼ି ସାମୁକାମାନ ସଂଗ୍ରହ କରି ତାକୁ ଦୁଇ ଫାଳ କରନ୍ତି ଓ କେତେକ ସାମୁକାର ପେଟ ପାଖରେ ମୋତି ଲାଗିଥାଏ, ଉକ୍ତ ମୋତିକୁ ସଂଗ୍ରହ କରନ୍ତି । ସବୁ ସାମୁକାରେ ମୋତି ନ ଥାଏ । ପ୍ରାଚୀନ ହିନ୍ଦୁ ଗ୍ରନ୍ଥମାନଙ୍କରେ ଲେଖା-ଅଛି ଯେ ସ୍ୱାତୀ ନକ୍ଷତ୍ର ଦିନ ବର୍ଷା ହେବା ସମୟରେ ସାମୁକା ପାଣିରେ ପାଟି ମେଲା କରି ପଡ଼ିଥାଏ ଓ ସେହି ଦିନ ତାହା ଗର୍ଭରେ ବର୍ଷା ବିନ୍ଦୁ ପଡ଼ିଲେ ତାହା ମୋତି ପାଲଟି ଯାଏ । କେତେକ ମୋତି ଗୋଲ, କେତେକ ଲମ୍ବୁଡ଼ା ଓ କେତେକ ବଙ୍କା ଓ ବେଢ଼ୌଲିଆ ହୋଇଥାଏ । ସାମୁକାରୁ ମୋତି କଢ଼ା ହେଲା ବେଳେ ତାହା ମାଟିଆ, ଧୂଆଁ ରଙ୍ଗିଆ, କଳା ବା ନେଳ ଦେଖାଯାଏ; କିନ୍ତୁ ତାକୁ ଘଷି ମାଜି ପାଲିସ୍ କଲେ ତାହା ଖୁବ୍ ସଫେଦ୍ ଓ ଚକଚକିଆ ହୁଏ । ମୋତି ଥିବା ସିପ ସବୁ ସମୁଦ୍ରରେ ମିଳେ ନାହିଁ । ଲଙ୍କା, ପାରସ୍ୟ ଉପସାଗର, ଅଷ୍ଟ୍ରେଲିଆର ପଶ୍ଚିମ ତଟର ନିକଟସ୍ଥ ସମୁଦ୍ରରୁ ମିଳିବା ମୋତି ଉତ୍କୃଷ୍ଟ ଅଟେ । ପାନେମା ନିକଟରେ ହଳଦିଆ ମୋତି ଓ କାଲିଫର୍ଣ୍ଣିଆ ଉପସାଗରରେ ମିଳୁଥିବା କଳା ମୋତି ଉତ୍କୃଷ୍ଟ ଅଟେ । ମୋତିର ଓଜନ ଅନୁସାରେ ଓ ଆକାର ଅନୁସାରେ ମୂଲ୍ୟ କରାଯାଏ । ବହୁ ପ୍ରାଚୀନକାଳରୁ ଭାରତୀୟମାନେ ମୋତିକୁ ରତ୍ନରୂପେ ଆଦର କରି ଆସିଅଛନ୍ତି । ଧନୀମାନେ ମୋତିକୁ କଣା କରି ହାର ଓ ମୁଦି ଆଦି ଅଲଙ୍କାରରେ ଲଗାନ୍ତି ଓ ବୈଦ୍ୟମାନେ ମୋତି ଭସ୍ମରେ ଔଷଧ କରନ୍ତି । ବୈଦ୍ୟକ-ମତରେ ମୋତି ଶୀତବୀର୍ଯ୍ୟ, ଶୁକ୍ରବର୍ଦ୍ଧକ, ନେତ୍ରର ଉପକାରୀ ଓ ପୁଷ୍ଟିକର ଅଟେ । ପ୍ରାଚୀନ ହିନ୍ଦୁ ଗ୍ରନ୍ଥମାନଙ୍କରେ ଲେଖା ଅଛି ଯେ, ଶାମୁକା ଛଡ଼ା ହାତୀର କପାଳରୁ, ସାପର ମୁଣ୍ଡରୁ, ମାଛ, ବେଙ୍ଗ, ବରାହଙ୍କଠାରୁ ମୋତି ମିଳେ; ବାଉଁଶ ଦେହରୁ ଓ ମେଘରୁ ବର୍ଷାରେ ମୋତି ବାହାରେ । ନାଗସାପର ଫଣାରୁ ସୋରିଷ ବା ମାଣ୍ଡିଆ ପରି ମୋତି ବାହାରିବାର ଦେଖା ଅଛି; କିନ୍ତୁ ସାମୁକା ଛଡ଼ା ଅନ୍ୟତ୍ର ପ୍ରାଚୀନ ଗ୍ରନ୍ଥ ବର୍ଣ୍ଣିତ ମୋତି ମିଳିବାର ଦେଖାଯାଏ ନାହିଁ । ହି. ଶ ]

**ମୋତିଆ**—ଦେ. ବି—ମଲ୍ଲି ଫୁଲ—
Motiā Bigger jasmine.
(ମତିଆ—ଅନ୍ୟରୂପ) মতিয়া मोतिया

**ମୋତିଆ ବିନ୍ଦୁ**—ଦେ. ବି—ଚକ୍ଷୁରୋଗବିଶେଷ; ଆଖିରେ ମାଡ଼ିବା ଏକ-
Motiā bindu ପ୍ରକାର ପରଳ ରୋଗ—Pearl in
মতিআ বিন্দু मोतिया बिंद the eye.
(ମତିଆବିନ୍ଦୁ—ଅନ୍ୟରୂପ)

**ମୋତିଆ ମଲ୍ଲି**—ଦେ. ବି—୧ । ମୁଗୁରା ମଲ୍ଲି ( ଦେଖ )
Motiā malli 1. Mugurā malli ( See )
୨ । ମୋତିଆ ( ଦେଖ )—2. Motiā ( See )

**ମୋତିଚୂର**—ଦେ. ବି ( ସଂ. ମୁଦ୍ଗଚୂର୍ଣ୍ଣ )—୧ । ମୁଗ ବେସନରେ ପ୍ରସ୍ତୁତ
Motichūra ସୂକ୍ଷ୍ମଦାନାବିଶିଷ୍ଟ ଲଡ଼ୁ; ମିହିଦାନା—
মতিচুর 1. A sweetmeat ball made from
मोतिचूर moong paste. ୨ । ଏକପ୍ରକାର ଧୂଆଁପତ୍ର;
ମୋତିହାରି—2. A species of tobacco leaf.

**ମୋତି ଜାଲି**—ଦେ. ବି ( ସଂ. ମୌକ୍ତିକ ଜାଲ)—ମୋତି ଗୁନ୍ଥା ହୋଇ
Moti jāli ଜାଲ ପରି ବୁଣାଯାଇ ଥିବା ସ୍ତ୍ରୀମାନଙ୍କ କେଶଭୂଷଣ—
মতিজালী A net of pearls for the hair. [ ଉ—
मोतीकीजाली ଝରୁଛି କି ଅଟବୀ ମୋତି ଜାଲି । ଭଞ୍ଜ. ବୈଦେହୀଶବିଳାସ । ]

**ମୋତିଝଡ଼ା(ଡ଼େ)ଇବା**—ଦେ. କ୍ରି ( ଲକ୍ଷଣାର୍ଥ )—୧ । ମନକୁ ମୋହିବା
Motijharḍā(rḍe)ibā ପ୍ରକାରେ ହସିବା—1. To
मोती ढलकाना laugh sweetly. ୨ । ଲୁହ ଗଡ଼ାଇବା; କାନ୍ଦିବା—2. To shed tears. ୩ । ଅତି ସୁନ୍ଦର ଗୋଲ, ଛୋଟ ଓ ସ୍ପଷ୍ଟ ଅକ୍ଷର ଲେଖିବା—3. To write small round and clear letters. ୪ । ମନକୁ ମୋହିବା ପ୍ରକାରେ କଥା କହିବା—4. To speak sweetly.

**ମୋତି ଝଡ଼ିବା**—ଦେ. ବି ( ଲକ୍ଷଣାର୍ଥ )—୧ । ମନକୁ ମୋହିବା
Moti jharḍibā ପ୍ରକାରେ ହସିବା—1. Laughing
মতি ঝরা sweetly. ୨ । ଲୁହ ଗଡ଼ାଇ କାନ୍ଦିବା—
मोती ढलकना 2. Shedding of tears. ୩ । ମନକୁ

ମୋହିବା ପ୍ରକାରେ କଥା କହିବା—3. Speaking sweetly.

ମୋତି ମସ୍‌ଜିଦ୍‌—ଦେ. ବି ( ନାମ )—ମୋଗଲ ସମ୍ରାଟ ସାହାଜାହାନଙ୍କ
Moti mas-jid ନିର୍ମିତ ଆଗ୍ରାର ମସ୍‌ଜିଦ୍‌—The pearl
ମତି ମସଜୀଦ mosque built by the Moghal
**मोती मसजीद** Emperor Sahjahan in 1654 A. D.

ମୋତି ମାଳି(ଳ)—ଦେ. ବି ( ସଂ. ମୌକ୍ତିକମାଳା )—କଣ୍ଠାଭରଣ-
Moti māli(la) ବିଶେଷ—A neck-lace. [ ଉ—
ମତିମାଳା କାଠମାଳୀ ମୋତିମାଳୀ କଣ୍ଠମାଳୀ ମଞ୍ଜୁ, କମ୍ବୁକଣ୍ଠେ
**मोतियों कीमाला** ଲଗାଇ ଅଛି ବି କୁନା ରଙ୍କୁ । ଉଞ୍ଜ. ଲାବଣ୍ୟବତୀ । ]

ମୋତିଲାଲ ନେହେରୁ—ଦେ. ବି. (ନାମ)—ଅଲ୍ଲାହାବାଦର ସ୍ୱନାମ-
Motilāla neheru ପ୍ରସିଦ୍ଧ ସ୍ୱର୍ଗୀୟ ଦେଶସେବକ—The late famous Motilal Neheru of Allahabad. [ ଦ୍ର—ଏ କାଶ୍ମୀର ବ୍ରାହ୍ମଣ,
(ମୋତିଲାଲ୍‌ ନେରୁ—ଅନ୍ୟରୂପ) ଜନ୍ମ ୧୮୬୧ ଖ୍ରୀଷ୍ଟାବ୍ଦ । ଏହାଙ୍କର ପୁତ୍ର ପଣ୍ଡିତ ଜହରଲାଲ ।
ହୋମରୁଲ୍‌ ନନ୍‌କୋ-ଅପରେସନ୍‌, ସ୍ୱରାଜ୍ୟ ଅନ୍ଦୋଳନର ନେତା । ଏ ଓକିଲାତି ଛାଡ଼ି ତାଙ୍କର ଅଲ୍ଲାହାବାଦରେ ଥିବା ପ୍ରକାଣ୍ଡ ଆନନ୍ଦଭବନ ପ୍ରାସାଦକୁ କଂଗ୍ରେସକୁ ଦାନ କରି ଦେଇଅଛନ୍ତି । ଅମୃତସର କଂଗ୍ରେସରେ (୧୯୧୯) ପ୍ରେସିଡେଣ୍ଟ ହୋଇଥିଲେ । ୧୯୨୧ରେ ୬ ମାସ ଜେଲ ଦଣ୍ଡ ଭୋଗିଥିଲେ । ୧୯୨୮ରେ କଲିକତା କଂଗ୍ରେସର ନେତା ହେଲେ । ୧୯୨୮ରେ ସ୍ୱାୟତ୍ତ ଶାସନ କମନ୍ତେ ଦେଇଥିବା ରିପୋର୍ଟ ଭୂମୁଳ ଆନ୍ଦୋଳନ ସୃଷ୍ଟି କଲା ।]

ମୋତି ହାର—ଦେ. ବି—୧ । ମୁକ୍ତାମାଳା—1. A string of
Moti hāra ମୋତିବ ହାର **मोतसिरी** pearls
[ମୋତିମାଳ(ଳା)—ଅନ୍ୟରୂପ] ୨ । ମୋତିହାରୀ (ଦେଖ)
2. Motihārī (See)

ମୋତିହାରୀ—ଦେ. ବି—ଏକ ପ୍ରକାର ନିକୃଷ୍ଟ ଧୂଆଁପତ୍ର—A sort
Motihārī ମୋତିହାରୀ of inferior tobacco.
**मोतिहारी** (ମୋତିଚରୁ; ମତିହାରୀ—ଅନ୍ୟରୂପ) [ଦ୍ର—ବଙ୍ଗଦେଶର ମୋତିହାରୀ ନାମକ ସ୍ଥାନରେ ହେଉଥିବାରୁ ଏହି ନାମ ।]

ମୋତେ—ଦେ. ସଂ—(ସଂ. ଅସ୍ମଦ୍‌ ଶବ୍ଦର ଅନାଦରାର୍ଥକ ଓଡ଼ିଆ
Mote ଆକାର 'ମୁଁ'ର ୨ୟା ବିଭକ୍ତି ୧ବ)—୧ । ମୋତେ—
ଆମାକେ **मिजे** 1. To me. ୨ । (ପଦ୍ୟ) ମୋର—2. My
[ଉ—ଏବେ ବି କୃତ୍ୟ ଅଛି ମୋତେ, କହ ସକଳେ ଶୁକ ଚନ୍ଦ୍ରେ । ଜଗନ୍ନାଥ. ଭାଗବତ ।]

ମୋଦ—ସଂ. ବି.—(ମୁଦ୍‌ ଧାତୁ=ହୃଷ୍ଟ ହେବା+ଭାବ. ଅ)—୧ । ହର୍ଷ;
Moda ଆନନ୍ଦ—1. Delight; joy. ୨ । ଆମୋଦ—
2. Amusement. ୩ । ସୁଗନ୍ଧ; ସୁବାସ—
3. Fragrance; sweet scent.

ମୋଦକ—ସଂ. ବଣ—(ମୁଦ ଧାତୁ ଣିଚ୍‌ ମୋଦ ଧାତୁ=ଆନନ୍ଦିତ କରିବା
Modaka +କର୍ତ୍ତୃ. ଅକ)—ଆହ୍ଲାଦଜନକ—Delightful;
(ମୋଦକା—ସ୍ତ୍ରୀ) pleasant. ସଂ. ବି—୧ । ଲଡ୍ଡୁ, ମୁଆଁ—
1. Cakes of sweetmeat. ୨ । ଶର୍କରା; ଗୁଡ଼—
2. Molasses. ୩ । ସଙ୍କର ଜାତିବିଶେଷ; କ୍ଷତ୍ରିୟ ପିତା ଓ ଶୂଦ୍ରା ମାତା ଠାରୁ ଜାତ ସନ୍ତାନ; ଗୁଡ଼ିଆ—
3. A mixed class of confectioners. ୪ । ଶର୍କରାପକ୍ୱ ମିଶ୍ର ଔଷଧ—4. Medicine rolled into balls with sugar. ପ୍ରାଦେ. (ସାଙ୍କେତିକ) ବି.—ଗଣେଶ ଚତୁର୍ଥୀ ଦିନରେ ପୂଜା ପାଇଁ ଅଟା, ଘିଅ, ଗୁଡ଼ ଓ ନାନା ମସଲା ମିଶି ପ୍ରସ୍ତୁତ ହୋଇଥିବା ଲଡ୍ଡୁ—A sweetmeat prepared with flower, ghee, molasses and many spices for offeringas Bhoga to god Ganes. [ଦ୍ର—୨୧ ଟି ମୋଦକ ମଧ୍ୟରୁ ୧୦ଟି ବ୍ରାହ୍ମଣଙ୍କ ଓ ୧୦ଟି ପୁରୋହିତର ପ୍ରାପ୍ୟ । ଅବଶିଷ୍ଟ ଗୋଟିକ ଗଣେଶଙ୍କ ହସ୍ତରେ ସ୍ଥାପିତ ହୁଏ । ]

ମୋଦକ କାର—ସଂ. ବି.—ଗୁଡ଼ିଆ— Confectioner.
Modaka kāra

ମୋଦକୀ—ସଂ. ବି.—୧ । ଏକ ପ୍ରକାର ଗଦା (ହ୍ରି. ଣ.)—1. A
Modakī kind of mace or club. ୨ । ଦୂର୍ବା (ହ୍ରି. ଷ)—
2. A kind of fibrous grass.

ମୋଦନ—ସଂ. ବି ( ମୁଦ୍‌ ଧାତୁ ଣିଚ୍‌+ଭାବ. ଅନ )—୧ । ହର୍ଷ;
Modana ଆହ୍ଲାଦ—1. Joy; delight; happiness.
୨ । ସିକ୍ଥକ; ମହମ—2. Bee's wax. ୩ । ଆନନ୍ଦକରଣ; ହର୍ଷୋତ୍ପାଦନ—3. Delighting; giving pleasure.

ମୋଦା—ସଂ. ବି ( ମୁଦ୍‌ ଧାତୁ+କର୍ତ୍ତୃ. ଅ+ଆ )—୧ । ଅଜମୋଦା;
Modā ବଣ ଜୁଆଣି—1. Wild carra-
( ମୋଦାଢ୍ୟା—ଅନ୍ୟରୂପ ) way; Ligusticum Ajwan.
୨ । ଜୁଆଣି—2. The carraway; Carum Cariu; Carum Ajowan. ଦେ. ବି (ସଂ.ମୋଦ)—ଆମୋଦ; ଆନନ୍ଦ—Pleasure; delight. [ ଉ—ହଦା ସଦା ମୋଦା ଗଦା ଗରଧର ବର ତାର ତାହି ବହି—ଉଞ୍ଜ ବୈଦେହୀଶବିଳାସ ।]

ମୋ ଦାଉ—ଦେ. ଅ—ଆଶ୍ଚର୍ଯ୍ୟ ବା ବିସ୍ମୟସୂଚକ ଉଚ୍ଚାରିତ ଶବ୍ଦ;
Mo dāu ଅହା !—(An exclamation of wonder)
ଆହା **आहा** Aha !
( ମୋ ଦାଉରେ—ଅନ୍ୟରୂପ )

ମୋଦାଖ୍ୟ—ସଂ. ବି—ଆମ୍ର ବୃକ୍ଷ—
Modākhya The mango tree.

ମୋଦିତ—ସଂ. ବଣ (ମୁଦ୍‌ ଧାତୁ ଣିଚ୍‌=ମୋଦ ଧାତୁ+କର୍ମ. ତ)—
Modita ଆନନ୍ଦିତ—Delighted. ସଂ. ବି (+ଭାବେ. ତ)—ହର୍ଷ, ଆନନ୍ଦ—Delight.

ମୋଢ ଦେବା—ପ୍ରାଦେ (ବାଲେଶ୍ୱର) କ୍ରି—ମୁଦିଦେବା—
Modi debā To shut.

ମୋଦିନୀ—ସଂ.ବି. ସ୍ତ୍ରୀ (ମୋଦ=ଆନନ୍ଦ+ଅସ୍ତ୍ୟର୍ଥରେ ଇନ୍+ସ୍ତ୍ରୀ.ଈ)—
Modinī ୧ । ଯୁଆଣି—1. Ajwan; carraway
୨ । ମଲ୍ଲିକା—2. Jasmine; Jasminum Zambac ? ୩ । ଯୂଥିକା; ଯୁଇ—3. Jasminum Auriculatum. ୪ । କସ୍ତୂରୀ—4. Musk.
୫ । ମଦିରା—5. Wine. ସଂ. ବିଣ. ସ୍ତ୍ରୀ—ମୋଦୀର ସ୍ତ୍ରୀଲିଙ୍ଗ—Feminine of Modi.

ମୋଦୀ—ସଂ ବିଣ. ପୁଂ (ମୋଦ+ଇନ୍, ୧ମା. ୧ବ)—ଆନନ୍ଦ-
Modī ଦାୟକ—1. Delightful, pleasing. ୨। ଆନନ୍ଦ—
(ମୋଦିନୀ—ସ୍ତ୍ରୀ) ଯୁକ୍ତ—2. Joyous. [ଉ—ଏଥି ତୁଟ୍ଟ ହେଉଛନ୍ତି ହର୍ଷ ଅମ୍ଭେ ହୋଇ, ଏବେ ଯେ ଋଷିଶିଷ୍ୟଗଣ ହୋଇ ମୋଦୀ ।
କୃଷ୍ଣସିଂହ. ମହାଭାରତ. ବନ ।]

ମୋ ଧନ—ଦେ. ଅ—(ପ୍ରେମ ବା ସ୍ନେହସୂଚକ ସମ୍ବୋଧନ) ହେ ମୋ
Mo dhana ଜୀବଧନ—(A term of affection or
আমার ধন मेरी जान् love) Oh 'my treasure'!

ମୋ ଧୋତି ଲୋ—ପ୍ରାଦେ. (ଗଡ଼ଜାତ) ଅ—(ନୀଚ ଜାତୀୟ ଲୋକଙ୍କ
Mo dhoti lo ବ୍ୟବହୃତ) ଆଶ୍ଚର୍ଯ୍ୟ ବା ବିସ୍ମୟସୂଚକ ବାକ୍ୟ—
A term expressive of wonder or amazement (used by low class people).

ମୋନୁଁ—ପ୍ରାଦେ. (ବୌଦ୍ଧ) ଅ—ମୋଠାରୁ—
Monuṅ From me.

ମୋନେ—ପ୍ରାଦେ. (ବୌଦ୍ଧ) ଅ—ମୋଠାରେ—
Mone In me; with me.

ମୋନେଟର—ବୈଦେ. ପ୍ରାଦେ. (ବିଶାଖାପଟ୍ଟଣ ଓ ଗଞ୍ଜାମ) ବି. (ଇଂ.
Moneṭara ମନୀଟର)—ବଡ଼ ଛାତ୍ର—Monitor.

ମୋପଲା—ଦେ. ବି—ଦକ୍ଷିଣ ଭାରତର ପଶ୍ଚିମ ଉପକୂଳ କାଲିକଟ
Mopalā ଅଞ୍ଚଳସ୍ଥ ମୁସଲମାନ ଜାତିବିଶେଷ—The Moplas;
মোপ্লা a Mahomedan tribe inhabiting the
मोपला western coast of southern India.
(ମୋପ୍ଲା—ଅନ୍ୟରୂପ)

ମୋଫତ୍ (ଇତ୍ୟାଦି)—ବୈଦେ. ବିଣ. (ଫା. ମୁଫ୍ତ)—ମୁଫତ୍ ଇତ୍ୟାଦି
Mophat (etc) (ଦେଖ)—Muphat etc. (See)
মোফত मुफ्त, मोफत

ମୋଫତ୍ ମାଲ—ବୈଦେ. ବି. (ଫା. ମୋଫତ୍ ମାଲ୍)—ମାଗଣା
Mophat māla ଜିନିଷ—Goods obtained for
মোফৎ মাল मोफतका माल nothing.

ମୋଫତରେ—ଦେ. ଅ—ମାଗଣାରେ—Gratis. (ଉ—ଏବେ ବସିଛନ୍ତି
Mophatare ମୋଫତରେ ଗୋଟାଏ ଜୋଇଁ କରି ନେବେ ।
মোফতে मोफतमे ଉକାଷ୍ଡ. ଯୌତୁକ ।)

ମୋଫତି—ବୈଦେ. ବିଣ. (ଅ. ମୋଫତ)—ମାଗଣାରେ ପ୍ରାପ୍ତ—
Mophati Got gratis.
মোফতী मोफती

ମୋବଲକ୍(ଗ)—ବୈଦେ. ଅ. (କେତେରଥ)—ମୁବଲକ (ଦେଖ)
Mobalak(ga) Mubalaka (See)

ମୋ ମୁଣ୍ଡ ଖାଅ(ଅ, ଉ)ନ୍ତି—ଦେ. ବାକ୍ୟ—(ଶପଥ କରାଇବାରେ)
Mo muṇḍa khāā(a,u)ṇṭi ମୋ ରାଣ—Swear by me.
আমার মাথা খা मेरा सिर खाव

ମୋର—ଦେ. ସଂ. (ସଂ. ଅସ୍ମଦ୍ ଶବ୍ଦର ଅନାଦରାର୍ଥକ ଆକାର 'ମୁଁ'ର
Mora ଷଷ୍ଠୀ ବିଭକ୍ତି ୧ ବଚନ)—
আমার मेरा (ସ୍ୱାର୍ଥିକ) ଆମୂର—Mine.
(ମୋହର, ମୋହୋ, ମୋହୋର—ଅନ୍ୟରୂପ)

ମୋର କରିବା—ଦେ. କ୍ରି—କୌଣସି ବ୍ୟକ୍ତି ବା ଦ୍ରବ୍ୟକୁ ଆପଣାର
Mora karibā ବୋଲି ଜ୍ଞାନ କରିବା—To regard as
আমার করা one's own (ଉ—ସେହି ଦିନରୁ ଜାଣ ଶୁକ
मेरा करना ଋଷିବର, ଦେବଙ୍କୁ ଛାଡ଼ି ଅସୁରଙ୍କ କଲେ ମୋର ।
କୃଷ୍ଣସିଂହ. ମହାଭାରତ. ଶାନ୍ତି ।)

ମୋର(ରି, ରୁ)ଚ୍ଛା (ଇତ୍ୟାଦି)—ବୈଦେ. ବି. (ଫା)—ମୁରୁଚ୍ଛା ଇତ୍ୟାଦି
Mora(ri, ru)chā (etc) (ଦେଖ)—Muruchā etc.
(See)

ମୋରଟ—ସଂ.ବି. (ମୁର ଧାତୁ=ବେଷ୍ଟନ କରିବା+ଅଟ)—୧ । ଇକ୍ଷୁ-
Moraṭa ମୂଳ—1. Root of sugarcane. ୨। ଅଙ୍କୋଟ;
আঙ্কড়া, বাঘ আঁচড়া ଧଳା ଅଙ୍କୁ ଗଛ—2. A tree; Alan-
ढेरी gium Lamarckii. [ଦ୍ର—ଏହାର ଅନ୍ୟ ସଂସ୍କୃତ ନାମ—ଶିତଦ୍ରୁ, ସୁଦଳ, କ୍ଷୀରକ, କ୍ଷୀର ମୋରଟ, କର୍ଣ୍ଣପୁଷ୍ପ, ପୀଲୁ ପତ୍ର, ମଧୁ ଦ୍ରବ, ଘନମୂଳ, ଦୀର୍ଘମୂଳ, ପୁରୁଷ, କ୍ଷୀରପୁଷ୍ପ ।]
୩ । କରଡ଼ି ବୃକ୍ଷ (କବିରାଜ ହରେକୃଷ୍ଣ.ଦ୍ରବ୍ୟଗୁଣ)—
3. A kind of wild tree. ୪ । ପ୍ରସବର ୭ ଦିନ ପରେ ସ୍ତନରୁ ଜାତ ଦୁଗ୍ଧ (ହି. ଶ)—4 Mother's milk after the 7th day of delivery.

ମୋରଟା—ସଂ. ବି—୧ । ମୂର୍ବା (ଦେଖ)—1. Mūrbbā (See)
Moraṭā ୨ । ଦୂବା (ହି. ଶ)—2. Creeping grass.

ମୋର ତହୁଁ—ଦେ. (ପ୍ରାଚୀନ) ସର୍ବ—ମୋ ତହୁଁ (ଦେଖ)
Mora tahuṅ Mo tahuṅ (See)

ମୋରବ(ବି, ବ୍ବି)—ବୈଦେ. ବି—ମୁରବ୍ (ଦେଖ)
Moraba(bi, bbi) Murab (See)

ମୋରବା(ବ୍ବା)—ଦେ. ବି—ମୁରବ୍ବା (ଦେଖ)
Morabā(bbā) Murabā (See)

ମୋରମ—ବୈଦେ. ବି (ଇଂ)—ପକ୍କା ରାସ୍ତାରେ ବିଛାଯିବା ଗୋଟ
Morama ଗୋଡ଼—Morum; metal spread over
মোরম कङ्कर(ड) pucca roads.

ମୋର ମା—ପ୍ରାଦେ. (କଳାହାଣ୍ଡି) ବି—ମୋ ମାଆଙ୍କ ରାଣ—
Mora mā (An oath) In the name of my mother.

ମୋରି—ଦେ. ସ.—ମୋଅରି (ଦେଖ)—
Mori আমারই मेरी Moari (See)
[ମୋହ(ହୋ)ରି—ଅନ୍ୟରୂପ]

ମୋରିହା(ହାଁ)—ପ୍ରାଦେ. ( ଗଡ଼ଜାତ ) ବି—ତିନି କୋଣ ଥିବା ପତ୍ର
Morihā(hān̐) ବିଶିଷ୍ଟ ବିଡ଼ ବନ୍ୟ ଗଛ—A wild tree having three-angled leaves. [ ଦ୍ର—ଏହି ଗଛର କାଠରେ ଲଙ୍ଗଳ ତିଆରି ହୁଏ । ଏଥିର ମୂଳକୁ ସିଝାଇ କୃମିରୋଗାକ୍ରାନ୍ତ ଶିଶୁଙ୍କୁ ଦିଆଯାଏ । ]

ମୋରେ—ଦେ. ସର୍ବ. (ପଦ୍ୟ)—୧ । ମୋଠାରେ; ମୋ ପ୍ରତି—1. At
More me; to me. [ଉ—ତଟା ହେଲ ମୋରେ କାହିଁ କି
ଆମাতে ଶୁଣି—କବିସୂର୍ଯ୍ୟ. କବିତା । ] ୨ । ମୋଦ୍ୱାରା—
हमसे 2. By me. [ ଉ—ବହୁଳ ଗର୍ବ ସର୍ବ ମୋରେ ହୋଇଛି ଶୁଣି ମୁନି ପ୍ରଶଂସିବା ଯେ, ବାଳେ—ଉପେ. ବୈଦେହୀଶବିଳାସ । ] ୩ । ମୋତେ; ଅମ୍ଭଙ୍କୁ—3. To me. ( ଉ—ମୋରେ କରୁଣା କର ଦୟାନିଧି । ]

ମୋଲ୍—ପ୍ରାଦେ. ( ବସ୍ତର, ଉତ୍ତରଭାଗ ) ବି—ମୂଲ୍ୟ; ଦାମ୍—
Mol Price.

ମୋଲ୍‌ନା—ବୈଦେ. ବି ( ଫା. ମୌଲ୍‌ନା )—ମୁସଲମାନ ପଣ୍ଡିତମାନଙ୍କର
Mol-nā ଉପାଧି—A title prefixed to the names
মোলনা मौलना of Mahomedan learned men.
( ମୋଲ୍ଲା—ଅନ୍ୟରୂପ )

ମୋଲମ୍ବା(ମ୍ମା)—ବୈଦେ. ବି ( ଫା. )—ତମ୍ବା ବା ରୂପାର ଅଳଙ୍କାର
Molambā(mmā) ଉପରେ ପାରା ଘଷି ତହିଁ ଉପରେ ସୁନାର
মলম্বা, গিল্টির কাজ ଅତି ପତଳା ପତ୍ର ଦେଇ ତାକୁ ଉଜ୍ଜ୍ୱଳ
मलमा କରିବାଦ୍ୱାରା ପ୍ରସ୍ତୁତ ହେବା ଗିଲ୍‌ଟି କାମ, ମଲମ୍ବା ଅଳଙ୍କାର —Ornaments prepared by putting a thin layer of gold or silver over copper or silver designs after the latter are rubbed with quick-silver.

ମୋଲା(ଲ୍ଲା)—ବୈଦେ. ବି—ମୁଲ୍ଲା ( ଦେଖ )
Molā(llā) Mullā (See)

ମୋଲାଇ(ଏ)ଜା—ବୈଦେ. ବି—ମୁଲାଇଜା (ଦେଖ)
Molāi(e)jā Mulāijā (See)
(ମୋଲାଜା, ମୋଲାକ୍ୟା, ମୋଲାହିଜା—ଅନ୍ୟରୂପ )

ମୋଲାଏମ୍—ବୈଦେ. ବିଣ—ମୁଲାଏମ୍ ( ଦେଖ )
Molāem Mulāem ( See )

ମୋ ଲାଖ୍(ଖି)—ଦେ. ବିଣ—୧ । ମୋ ତୁଲ୍ୟ; ମୋ ପରି—1. Like
Mo lākh(khi) me. ୨ । ମୋର ଉପଯୁକ୍ତ—2. Suitable
আমার লাএক मेरे लायक to me; befitting me.
( ମୋ ଲାଏକ୍—ଅନ୍ୟରୂପ )

ମୋଲାମ—ସଂ. ବି—ମୃଣାଳ—Stalk of lotus. ବୈଦେ. ବିଣ—
Molāma ମୁଲାଏମ ( ଦେଖ )—Mulāema ( See )

ମୋଶନ୍—ବୈଦେ. ବି ( କଚେରୀ ) ( ଇଂ. ମୋସନ୍ )—ଲ-ପଏଣ୍ଟରେ
Mośan ନିମ୍ନ ଅଦାଲତର ଆଦେଶ ବିରୁଦ୍ଧରେ ଉଚ୍ଚ ଅଦାଲତରେ
মোসন मौशन ଅପୀଲ—Motion; petition for revision of an order of a lower court; an appeal on a point of law. [ ଦ୍ର—ନିମ୍ନ ଅଦାଲତରେ ମକଦ୍ଦମାରେ ନିଷ୍ପତ୍ତି ହୋଇଥିବା ପ୍ରମାଣ ଓ ଘଟଣାଗତ ବିଷୟ ନେଇ ଉପର ଅଦାଲତକୁ ଯେଉଁ ଆବେଦନ କରାଯାଏ, ତାହାର ନାମ 'ଅପୀଲ' ଏବଂ ଲ ପଏଣ୍ଟ ସମ୍ବନ୍ଧରେ ପ୍ରତିବାଦ କରି ଯେଉଁ ଆବେଦନ କରାଯାଏ, ତାର ନାମ 'ମୋଶନ୍' । ]

ମୋଶାହା(ହି, ହେ)ବ୍—ବୈଦେ. ବିଣ—ମୁଶାହାବ୍ ( ଦେଖ )
Mośāhā(hi, he)b Muśāhāb ( See )

ମୋଶାହା(ହି, ହେ)ବି—ବୈଦେ. ବି—ମୁଶାହାବି ( ଦେଖ )
Mośāhā(hi he)bi Muśāhābi ( See )

ମୋଷ—ସଂ. ବି ( ମୁଷ୍ ଧାତୁ=ଚୋରି କରିବା+ଭାବ. ଅ )—୧ ।
Mosha ଚୌର୍ଯ୍ୟ; ଚୋରି; ଅପହରଣ—1. Theft; stealing. ୨ । ଲୁଣ୍ଠନ—2. Plundering. ୩ । ପ୍ରତ୍ୟାହରଣ; ପ୍ରତ୍ୟାହାର—3. Taking back; withdrawing. ୪ । ଛେଦନ; କର୍ତ୍ତନ—4. Cutting. ୫ । ବଧ; ହତ୍ୟା—5. Killing; slaughter. ୬ । ଲୋପ; ବିନାଶ—6. Destruction; extinction. ୭ । ପ୍ରତାରଣା, ଧପ୍ପା ମାରିବା; ଠକାବାଜି—7. Cheating; fraud, swindling; deceiving.

ମୋଷକ—ସଂ. ବିଂ ପୁଂ ( ମୁଷ୍ ଧାତୁ=ଚୋରି କରିବା+କର୍ତ୍ତୃ. ଅକ )
Moshaka —୧ । ଚୋର—1. Thief. ୨ । ଲୁଣ୍ଠକ—
(ମୋଷିତା, ମୋଷ୍ଟା—ଅନ୍ୟରୂପ) 2. Plunderer. ୩ ।
(ମୋଷିକା—ସ୍ତ୍ରୀ) ଧପ୍ପାବାଜ; ପ୍ରତାରକ—3. Cheat, swindler.

ମୋଷଣ—ସଂ. ବି—୧ । ମୋଷ (ଦେଖ)—Mosha (See)
Moshaṇa ୨ । ଚୋର (ହି. ଶ)—2. Thief. ୩ । ଡକାଏତ (ହି. ଶ)—3. Dacoit.

ମୋସଲ(ଲୁ)ମ୍—ବୈଦେ. ଅ (ଫା. ମୁସ୍‌ଲମ୍)—ମୁସଲୁମ୍ (ଦେଖ)—
Mosal(lu)m मुसल्लम Musalum (See)

ମୋସ୍ତର—ବୈଦେ. ବି (ଫା)—ପ୍ରକାର—
Mostara প্রকার तरह Kind.

ମୋସ୍ତାଇ(ଏ,ୟେ)ଦ୍—ବୈଦେ. ବିଣ ( ଅ. ମୁସ୍ତଅଦ୍ )—ମୁସ୍ତୈଦ;
Mostāi(e,ye)d ଉଦ୍ୟତ—Ready.
উদ্যত मुस्तैद

ମୋସ୍ଲି(ସ୍ଲେ)ମ୍—ବୈଦେ ବି (ଫା. ମୁସ୍‌ଲିମ୍)—ମୁସଲମାନ୍—
Mosli(sle)m Musalman.
মোস্‌লেম मुसलिम

ମୋହ—ସଂ. ବି (ମୁହ୍ ଧାତୁ+ଭାବ. ଅ)—୧ । ମୂର୍ଚ୍ଛା, ଅଚୈତନ୍ୟ—
Moha 1. Fainting; unconsciousness; loss of consciousness. ୨ । ଅଜ୍ଞତା; ଅଜ୍ଞାନତା—2. Ignorance. ୩ । ମମତା; ଅବିଦ୍ୟା; ମୁଗ୍ଧାବସ୍ଥା—3. Infatuation; fascination. ୪ । ଦୁଃଖ; କଷ୍ଟ; କ୍ଳେଶ—4. Pain; affliction; sorrow; grief.

[ଉ—ଶୁଣି ସୁମ ମନରୁ ଡେଜଲେ ମୋହ—ଜଗନ୍ନାଥ. ବଡଦଣ୍ଡମାହାତ୍ମ୍ୟ ।] ୫ । ମାୟା—5. Delusion; illusion. ( ଉ—ମୋହଠାରୁ ଝାଡ଼ଣ ଦେଇ କର ମୋହ—କୃଷ୍ଣସିଂହ. ମହାଭାରତ. ବନ ।) ୬ । କିଂକର୍ତ୍ତବ୍ୟବିମୂଢ଼ତା—6. Bewilderment; stupefaction. ୭ । ମୂର୍ଖତା; ଅବୋଧତା—7. Folly; stupidity; foolishness. ୮ । ଭ୍ରମ; ଭ୍ରାନ୍ତି—8. Error. ୯ । ପ୍ରେମ, ସ୍ନେହ (ହି. ଶ)—9. Love; attachment. ୧୦ । ସାହିତ୍ୟରେ ୩୩ ସଞ୍ଚାରୀଭାବ ମଧ୍ୟରୁ ଏକତମ—10. One of the concomitants of sentiments in literature. [ଦ୍ର—ଭୟ, ଦୁଃଖ, କିଂକର୍ତ୍ତବ୍ୟବିମୂଢ଼ତା, ଅତ୍ୟନ୍ତ ଚିନ୍ତା ଆଦିରୁ ଉତ୍ପନ୍ନ ଚିତ୍ତର ବିକଳତାକୁ ମୋହ ବୋଲାଯାଏ—ହି ଶ ।] ବି. ବିଣ—୧ । ଚେତନାଶୂନ୍ୟ—1. Senseless. (ଉ—ବାଳ ଅନୁଜ ମୋହ ମୋହର ହେ । ଭଞ୍ଜ. ବୈଦେହୀଶବିଳାସ ୨ । ମୁଗ୍ଧ 2. Fascinated! (ଉ—ମାତା ସେ ଅଙ୍ଗ ସ୍ନେହରେ, ମୋହ ହୋଇଲେ ପୁତ୍ରଠାରେ । ଜଗନ୍ନାଥ. ଭାଗବତ ।) ଦେ. ସର୍ବ—ମୋ (ଦେଖ)—Mo (See)

আমার

मेरा (ଉ—ମୋହ ନିମିତ୍ତେ ଉଷା ଅନ, ବନ୍ଧୁତ କଲେ ତାର ମନ—

[ମୋହୋ,ମୋହ(ହୋ)ଇ—ଅନ୍ୟରୂପ) ଜଗନ୍ନାଥ. ଭାଗବତ ।]

**ମୋହକ**—ସ. ବିଣ. ପୁଂ ( ମୁହ୍ ଧାତୁ+କର୍ତ୍ତୃ. ଅକ )—ଯାହା ମୋହ
Mohaka ଜନ୍ମାଏ—Fascinating.
(ମୋହକ, ମୋହକାରୀ, ମୋହକାରକ—ଅନ୍ୟରୂପ)
[ମୋହିକା—ସ୍ତ୍ରୀ]

**ମୋହ କୂପ**—ସ. ବି (ରୂପକ କର୍ମଧା)—ମୋହରୂପ କୂପ—
Moha kūpa Delusion compared to a well.

**ମୋହଜ**—ସ. ବିଣ (ମୋହ+ଜନ୍ ଧାତୁ+କର୍ତ୍ତୃ. ଅ)—ମୋହରୁ
Mohaja ଜାତ—Born of or produced from delusion.

**ମୋହଜନକ**—ସ. ବିଣ (ମୋହ+ଜନ୍ ଧାତୁ+କର୍ତ୍ତୃ. ଅକ—ମୋହ
Mohajanaka ଉତ୍ପାଦକ—Producing stupefaction. ବି—ଯାଦୁକର—A sorcerer; a charmer.

**ମୋହ ଜାଲ**—ସ. ବି (ରୂପକ କର୍ମଧାରୟ)—ମୋହପାଶ (ଦେଖ)
Moha jāla Mohapāśa (See)

**ମୋହଧ୍ୱଂସ**—ସ. ବି (୬ଷ୍ଠୀ ତତ୍)—ମୋହର ବିନାଶ—
Mohadhwaṃsa The dissolving of fascination.
(ମୋହନାଶ—ଅନ୍ୟରୂପ)

**ମୋହନ**—ସ. ବି ( ମୁହ୍ ଧାତୁ+ଣିଚ୍+ଭାବ. ଅନ )—୧ । ମୁଗ୍ଧ
Mohana କରିବା—1. Act of fascination. [ଉ—ମୋହିନୀ ମୋହନେ ପ୍ରକାଶି ସୁବସ, ବସନା ଅଗ୍ରେ ବୁଲାଇବି । ଭଞ୍ଜ. ପ୍ରେମସୁଧାନିଧି ।] ୨ । ମୁଗ୍ଧ ହେବା—2. Becoming fascinated. ୩ । ( +କରଣ ଅନ )—ମୈଥୁନ—3. Copulation. ୪ । ପ୍ରଲୋଭନ—4. Seduction; the overpowering of reflection by sensual allurements. ୫ । ( +କର୍ତ୍ତୃ. ଅନ )—କନ୍ଦର୍ପର ବାଣବିଶେଷ—5. Name of one of the five arrows of god Cupid. ୬ । ଧୂସ୍ତୁର ବା ଧାତୁରା ଗଛ—6. The Dhatura plant. ୭ । ମନ୍ତ୍ରତନ୍ତ୍ରାଦିଦ୍ୱାରା ମନୁଷ୍ୟକୁ ମୁଗ୍ଧ କରିବା; ତନ୍ତ୍ରୋକ୍ତ ଅଭିଚାରବିଶେଷ—7. Enchanting a person by employing Tantric charms. ୮ । ଶ୍ରୀକୃଷ୍ଣ ( ହି. ଶ )—8 Śrīkṛushṇa. ସ. ବିଣ. ପୁଂ—୧ । ( କର୍ତ୍ତୃ+ (ମୋହନୀ—ସ୍ତ୍ରୀ) ଅନ )—ମୋହଜନକ—1. Fascinating. ୨ । ମନୋମୋହକର—2. Charming, enchanting. [ଉ—କି ମୋହନ ଲୀଳା ଧରି, କୋଟି କଳାକର ଗିରି, ପୁରୁଛି ସେ ଶ୍ୟାମ ମୁରଲୀରେ । କବିସୂର୍ଯ୍ୟ. ଋଷୋଯାଗନ୍ଥ କ. ଗୀତ ।] ଦେ. ବି. ପୁଂ —ଲୋକଙ୍କ ଦିଆଯିବା ନାମ—Name given to

মোহন males. [ଦ୍ର—ମୋହନ ଶବ୍ଦ ଋଷି, ହରି, ହର,

मोहन କୃଷ୍ଣ, ସୁଧା, ମନଃ, ବ୍ରଜ, ଫକୀର, ଲାଲ, ଯଶୋଦ୍ର, ସୁରେନ୍ଦ୍ର, ସୌମ୍ୟେନ୍ଦ୍ର, ଗୌର, ଗୋପୀ, ଜଗ, ଜଗତ୍, ଦୁର୍ଗା, ପାର୍ବତୀ, ଚନ୍ଦ୍ର, ମୋହିନୀ, ଶିବ, ମଧୁର, ଶିଖରା ପ୍ରଭୃତି ଶବ୍ଦ ପରେ ମଧ୍ୟ ନାମକରଣରେ ପ୍ରଯୁକ୍ତ ହୁଏ । ]

**ମୋହନ ଦାସ କରମଚାନ୍ଦ ଗାନ୍ଧି**—ଦେ. ବି ( ଦାସ )—ଆଧୁନିକ
Mohana dāsa karamachānda gāndhi ଭାରତରେ
মোহন দাস করমচান্দ গান্ধি ଓ ସଭ୍ୟ ଜଗତରେ ନବଯୁଗର
मोहन दास करमचंद गांधी ପ୍ରବର୍ତ୍ତୟିତା ମହାପୁରୁଷ 'ମହାତ୍ମା ଗାନ୍ଧି'—Mahātmā Gāndhi. ଗାନ୍ଧି ମହାତ୍ମା ( ଦେଖ )—Gāndhi Mahātmā ( See ) [ ଦ୍ର—ଏହି ଭାଷାକୋଷର ଦ୍ୱିତୀୟ ଖଣ୍ଡର ୨୧୯୮ ପୃଷ୍ଠାର ଦ୍ୱିତୀୟ ସ୍ତମ୍ଭରେ 'ଗାନ୍ଧି ମହାତ୍ମା' ଶବ୍ଦରେ 'ମୋହନଲାଲ କରମଚାନ୍ଦ ଗାନ୍ଧି' ବୋଲି ଭ୍ରମବଶତଃ ପ୍ରକାଶିତ ହୋଇଅଛି । ତାହା 'ମୋହନ ଦାସ କରମଚାନ୍ଦ ଗାନ୍ଧି' ହେବ । ]

**ମୋହନ ଭୋଗ**—ଦେ. ବି—ହାଲୁଆ, ସୁଜି, ଚିନି ଓ ଘିଅରେ ପ୍ରସ୍ତୁତ
Mohana bhoga ମିଷ୍ଟାନ୍ନବିଶେଷ—A sort of jelly.
মোহনভোগ [ଦ୍ର—ପ୍ରଥମେ ସୁଜିକୁ ଘିଅରେ ଭାଜି, ତା ପରେ
मोहनभोग ଚିନିକୁ ଦୁଧରେ ମିଶାଇ ଚିନିମିଶା ଦୁଧକୁ ଭଜା ହୋଇଥିବା ସୁଜି ଉପରେ ଢାଳି ପାକ କରି ଏହା ପ୍ରସ୍ତୁତ କରାଯାଏ ।
ଉତ୍କଳରେ ମୋହନଭୋଗର ସଂସ୍କୃତ ନାମ 'ଉତ୍କାରିକା' ଓ ଭାବପ୍ରକାଶରେ 'ଲପ୍ସିକା' ବୋଲି ଉଲ୍ଲେଖ ଅଛି । ]

**ମୋହନ ମାଳା**—ସ. ବି—ମଉନମାଳା (ଦେଖ)
Mohana mālā Mauna mālā (See)

**ମୋହନ ମୁହାଁ**—ପ୍ରାଦେ (ବାଲେଶ୍ୱର), ବିଣ. ପୁଂ (ସଂ. ମୌନ + ମୁଖ)—
Mohana muhā̃ ଯେଉଁ ଲୋକ ବାହାରକୁ ଖୁବ୍ ନିରୀହ ଓ (ମୋହନମୁହାଁ—ସ୍ତ୍ରୀ) ସରଳ ବୋଲି ନିଜକୁ ଦେଖାଉ ଥାଏ; ଅଥଚ ଭିତରେ ଭିତରେ ନାନାପ୍ରକାର ଷଡ଼ଯନ୍ତ୍ର ବା ଦୁଷ୍କାର୍ଯ୍ୟରେ ଲିପ୍ତ ଥାଏ; ମଉନମୁହାଁ—A man who shows himself as innocent and simple, though engaged in vicious activities such as plotting, intrigues and evil deeds.

**ମୋହନା**—ଦେ. ବି—୧। ଗୁଳ୍ମବିଶେଷ—1. Randia Dumetorum
Mohanā (Haines). [ ଦ୍ର—ଏହାର ଫୁଲ ଧଳା ଓ ଫଳ ହଳଦିଆ। ଏହା ଲମ୍ବା କଣ୍ଟକଯୁକ୍ତ ଅଟେ। ମୋହନାଗୁଳ୍ମ ଔଷଧରେ ବ୍ୟବହୃତ ହୁଏ। ]—୨। ମୋହନର ଅନାଦରାର୍ଥକ ଡାକ ନାମ—2. A name for calling Mohana in familiarity.

**ମୋହନା ମୁ(ମୋ)ଗଲ**—ଦେ. ବି—ଓଡ଼ିଶାର 'ମାଳିକା'ମାନଙ୍କରେ
Mohanā mu(mo)gala ଲିଖିତ କଳିର ଶେଷଭାଗରେ ଭାରତ-ଆକ୍ରମଣକାରୀ ବୀର—Name of a hero who is promised to invade India towards the end of Kali Juga. [ଉ—ଏ ଅନ୍ତେ ମୋହନା ମୁଗଲ—ପୃଥ୍ୱୀକି ହୋଇବ ଯେ ଶଲ—ଜଗନ୍ନାଥ. ଭାଗବତ।]

**ମୋହନାସ୍ତ୍ର**—ସଂ. ବି—ଶତ୍ରୁକୁ ମୂର୍ଚ୍ଛିତ କରିବାରେ ପ୍ରଯୁକ୍ତ ପ୍ରାଚୀନ
Mohanāstra କାଳର ଅସ୍ତ୍ରବିଶେଷ—A weapon used in ancient times by which the enemy fainted.

**ମୋହନି**—ଦେ. ବି (ସଂ. ମୋହନୀ)—୧। ଗୁଣି; ଯାଦୁ—1. Charm.
Mohani ୨। ଯାଦୁପ୍ରୟୋଗଦ୍ୱାରା ମୁଗ୍ଧ କରିବା—
মোহিনী 2. Enchantment. ୩। (ପୁଂ. ଆଦରାର୍ଥକ) ମୋହନ ନାମକ ପୁରୁଷର ଡାକନାମ—3. Name for calling Mohana in fondness.

**ମୋହନି କରିବା**—ଦେ. କ୍ରି—୧। ତନ୍ତ୍ରମନ୍ତ୍ରାଦି ଦ୍ୱାରା ମୋହାନ୍ଧ
Mohani karibā କରିବା—1. To enchant a person
জাদু করা by means of charms. ୨। ବଶ କରିବା—
**मोहनी डालना** 2. To bring under control.
(ମୋହନି ଲଗା[ଗେ]ଇବା—ଅନ୍ୟରୂପ)

**ମୋହ ନିଦ୍ରା**—ସଂ. ବି ( ରୂପକ )—ମୋହାନ୍ଧକାର; ନିଦ୍ରାପରି ମନୁଷ୍ୟକୁ
Moha nidrā ଅଜ୍ଞାନ କରିବା ମୋହ—Delusion overtaking a person like sleep.

**ମୋହନୀ**—ସଂ. ବି (ମୋହନ+ସ୍ତ୍ରୀ. ଈ)—୧। ଯାଦୁ; ଗୁଣି; ବଶୀକରଣ
Mohanī ମନ୍ତ୍ର—1. Charm; enchantment. ୨। ପୋଦଶାଗ; ପୋଇ ଶାଗ—2. A port herb; the Basella creeper. ୩। ବଟପତ୍ରୀ ନାମକ ଗୁଳ୍ମ—3. The name of a plant; Alotric Hyacinthoides. ଦେ. ବି (ସ୍ତ୍ରୀ)—ମନମୋହନୀ ନାମ୍ନୀ ସ୍ତ୍ରୀର ଡାକ ନାମ—Name for calling a female named Manamohinī.

**ମୋହ(ହେ)ନୀ କନ୍ୟା**—ଗ୍ରା. ବି (ସଂ. ମୋହିନୀ କନ୍ୟା)—ମୋହିନୀ
Moha(he)nī kanyā କନ୍ୟା (ଦେଖ—Mohinī kanyā
মোহিনী কন্যা **मोहिनी कन्या** (See)

**ମୋହନୀୟ**—ସଂ. ବିଣ ( ମୁହ୍ ଧାତୁ+କର୍ମ. ଅନୀୟ )—୧। ଯାହାକୁ
Mohanīya ମୁଗ୍ଧ କରାଯାଇ ପାରେ ( ହି. ଶ )—1. Capable of being facinated or enchanted. ୨। ଯାହା ଅନ୍ୟକୁ ମୋହିତ କରିପାରେ—2. Causing delusion or swoon (Apte). ୩। ଗୋଳମାଳିଆ—3. Perplexing; puzzling ( Apte ).

**ମୋହ ପାଶ**—ସଂ. ବି (ରୂପକ କର୍ମଧା )—୧। ମୋହରୂପ ଜାଲ—
Moha pāśa 1. Fascination compared to a snare
(ମୋହବନ୍ଧ, ମୋହବନ୍ଧନ—ଅନ୍ୟରୂପ) or net. ୨। ସଂସାରର ମାୟା ବନ୍ଧନ—2. The worldly bond.

**ମୋହବ(ମ)ତ୍(ତି)**—ବୈଦେ. ବି ( ଫା. ମୁହବତ୍ )—ଉପରୋଧ;
Mohaba(ma)t(ti) ଚକ୍ଷୁଲଜ୍ଜା—1. Personal regard;
মোহবত **मुहब्बत** regard or solicitute for the feelings of another. ୨। ବନ୍ଧୁତ୍ୱ—2. Friendship.

**ମୋହବତ୍ କରିବା**—ଦେ. କ୍ରି—ବନ୍ଧୁତ୍ୱ ବା ଚକ୍ଷୁଲଜ୍ଜାକୁ ଦୃଷ୍ଟି ରଖି
Mohabat karibā କାର୍ଯ୍ୟ କରିବା—To show regard
মোহবত করা **मुहब्बत करना** for the feelings of another.
(ମୋହବତ୍ ଛାଡ଼ିବା, ମୋହବତ୍ ରଖିବା—ଅନ୍ୟରୂପ )

**ମୋହବ(ମ)ତି**—ବୈଦେ. ବିଣ ( ଫା. )- ଯେ ଚକ୍ଷୁଲଜ୍ଜା ବା ଉପରୋଧ
Mohaba(ma)ti ରଖି କାର୍ଯ୍ୟ କରେ—One who is soli-
মোহবতিয়া citous for the feelings of other.
**मु(मो)हब्बती** (ମୋହବ[ମ]ତିଆ—ଦେଶଜରୂପ)

**ମୋହବଦି**—ପ୍ରାଦେ. (ସମ୍ବଲପୁର) ବି—ମୋହବତ୍ ( ଦେଖ )
Mohabadi Mohabat (See)

**ମୋହମନା**—ଦେ. ବିଣ (ସଂ. ମୋହିତ+ମନସ୍)—ବିଷୟାସକ୍ତଚିତ୍ତ—
Mohamanā Immersed in worldly attachment.
[ ଉ—ସାଧୁ ଲୋକମାନଙ୍କୁ ଦେଖି ସମ୍ଭାବନା। କରୁଅଛନ୍ତି କୋହ୍ନେ ମୋହମନା—କୃଷ୍ଣସିଂହ. ମହାଭାରତ. ବନ ]

**ମୋହ ମନ୍ତ୍ର**—ସଂ. ବି ( ମ. ପ. ଲୋ. )—୧। ମୋହକର ମନ୍ତ୍ର—
Moha mantra 1. Charms; enchanting formula.
୨। ମୁଗ୍ଧକାରକ ବାକ୍ୟ—2. Charming words

**ମୋହମାନ**—ଦେ. ବି—୧। ଗୀତର ପ୍ରଥମ ଅକ୍ଷରରେ ମୃଦଙ୍ଗାଦି
Mohamāna ବାଦ୍ୟର ତାଳ ଛିଣ୍ଡିବା ବା ବିରାମ ହେବା—
1. The ceasing or stop of musical cadence on the first letter of a song. ୨। ( ବହୁବଚନ ) ମୋହସକଳ—2. Delusions. [ ଉ—ଶୋକ ଲୋଭ ଯେ ମୋହମାନ। ମାତ୍ସର୍ଯ୍ୟ-ଈର୍ଷା ଅଭିମାନ—ଜଗନ୍ନାଥ. ଭାଗବତ। ] ଦେ. ବିଣ ( ସଂ. ମୁହ୍ୟମାନ )—

୧ । ମୋହିତ—1. Deluded. [ ଉ—ଯାରେ ଧାଇ ମୋହମାନ, ହରଇସେ ଅଭିମାନ, ସଖୀର କାମ ବ ଯାନ; ସେ ବ ସମାନ—ଭକ୍ତ. ପ୍ରେମସୁଧାନିଧି । ] ୨ । ମୁହ୍ୟମାନ ( ଦେଖ )—2. Muhyamāna ( See ) [ ଉ—ଯଶୋଦା ଦେଖି ମୋହମାନ; ଧରଣୀ ପଡ଼ି ହଟକ୍ଷାକ—ଜଗନ୍ନାଥ ଭାଗବତ । ]

ମୋହ ମୁଦ୍ଗର—ସଂ. ବି—ମହାତ୍ମା ଶଙ୍କରାଚାର୍ଯ୍ୟଙ୍କ ରଚିତ ସଂସାରର ମୋହନାଶକ ଶ୍ଳୋକରାଶି—Name of some ślokas by Śaṅkarāchārjya dealing with the emptiness of the worldly concerns.
Moha mudgara

ମୋହ ଯିବା—ଦେ. କ୍ରି—ମୂର୍ଚ୍ଛିତ ହେବା—To faint.
Moha jibā মূর্ছা হওয়া मूर्छित होना
( ମୋହ ହେବା—ଅନ୍ୟରୂପ )

ମୋହ(ହୋ)ର—ଦେ. ସର୍ବ—ମୋ ( ଦେଖ )—Mo ( See )
Moha(ho)ra আমার मेरा ବୈଦେ. ବି (ଫା. ମୋହ୍ର)—
মোহর मु(मो)हर ୧ । ମଉଡ଼; ସ୍ୱର୍ଣ୍ଣମୁଦ୍ରା—1. Gold coin [ ଉ—ସାଧାରଣତଃ ୧ ମୋହର=୫୧୬୧ । ] ୨ । ସିଲ୍;
ঘণ্ট ନାମାଙ୍କିତ ମୁଦ୍ରା—2. Seal. ୩ । ( ସଂ, ମଧୁର ) ମହୁର
घंट, सतञ्जा ( ଦେଖ ) - 3. Mahura ( See )

ମୋହର କରିବା—ଦେ. କ୍ରି—କାଗଜପତ୍ର ବା ଛିଟି ଉପରେ ପ୍ରାମାଣ୍ୟ ସକାଶେ ଜାଲ ବା ଲାଉ ସାହାଯ୍ୟରେ ମୁଦ୍ରା ଅଙ୍କିତ କରିବା—To affix a seal to a paper etc.
Mohara karibā মোহর করা (মারা) मुहर मारना
( ମୋହର ମାରିବା; ମୋହର କରିବା—ଅନ୍ୟରୂପ )

ମୋହରମ୍(ମ)—ବୈଦେ. ବି—ମହରମ ( ଦେଖ )
Moharam(ma) Maharama ( See )

ମୋହ(ହୋ)ରର—ବୈଦେ. ବି (ଆ. ମୁହରିର )—୧ । ଲେଖକ—
Moha(ho)rara 1. A writer. ୨ । ନକଲିଆ—2. A
মুহরী; মোহরর scribe. ୩ । ଲେଖକ କର୍ମଚାରୀ—3. A
मुहर्रीर clerk.

ମୋହ(ହୋ)ର(ରି)ରି—ବୈଦେ. ବି (ଆ. ମୁହରିରୀ)—ମୋହରରର
Moha(ho)ra(ri)ri କାର୍ଯ୍ୟ—Clerkship; the post of
মহুরীর কায मुहर्रिरी a Moharir.

ମୋହ ରାତ୍ରି—ସଂ. ବି—ବ୍ରହ୍ମାଙ୍କର ପରମାୟୁର ୧୫ ବର୍ଷ ପରେ ଘଟିବା
Moha rātri ମହାପ୍ରଳୟ ରାତ୍ରି—Name of a night of
( ମୋହ ନିଶା—ଅନ୍ୟରୂପ ) dissolution which takes place after 15 years of Brahmā's age.

ମୋହ(ହୋ)ରି—ଦେ. ସର୍ବ—ମୋଓରି ( ଦେଖ )—Mo-ori (See)
Moha(ho)ri আমারি मेराही ବୈଦେ. ବି ( ଇତରଥ )—
ମୋହରିର ( ଦେଖ )—Moharira (See)

ମୋହା—ସ୍ତ୍ରୀ. ବଣ ଓ ବଣର ବଣ ( ଅଶୁଦ୍ଧ ) ( ସଂ. ମହତ୍ )—ମହା
Mohā ( ଦେଖ )—Mahā ( See ) [ ଦ୍ର—'ମହା' ପଦଯୁକ୍ତ ଶବ୍ଦମାନଙ୍କ ସ୍ଥାନରେ ଅଶିକ୍ଷିତମାନେ ମୋହା ପ୍ରୟୋଗ କରିବାର ଦେଖାଯାଏ । ଯଥା—ମୋହାପ୍ରଭୁ; ମୋହାରାଜା; ମୋହାଶୟ ଇତ୍ୟାଦି । ]

ମୋହା(ହେ)ଇବା—ଦେ. କ୍ରି (ସଂ. ମୁହ୍ ଧାତୁ. ଣିଜନ୍ତ. ମୋହ ଧାତୁ)—
Mohā(he)ibā ମୋହିବା କ୍ରିୟାର ପ୍ରୟୋଜକ ରୂପ—The
মোহিত করা मोहित करना causative form of Mohibā.

ମୋହାଁ—ଦେ. ବଣ. (ସଂ. ମଥିତ)—ମଥିତ—Churned.
Mohāṅ ବି (ସଂ. ମନ୍ଥନ)—ମନ୍ଥନ—The act of
মোআ मथना churning.

ମୋହାଁଇବା—ଦେ. କ୍ରି—ମୁହାଁଇବା ( ଦେଖ )
Mohāṅibā Muhāṅibā ( See )
মথান मथवाना (ମୋହିଁବା—ଅନ୍ୟରୂପ)

ମୋହାଁ ଦୁଧ—ଦେ. ବି—ଯେଉଁ ଦୁଗ୍ଧକୁ ମନ୍ଥନ କରାଯାଇ ଥାଏ—
Mohāṅ dudha Skimmed milk.

ମୋହାଣ(ଣା)—ଦେ. ବି—ମୁହାଣ ( ଦେଖ )
Mohāṇa(ṇā) Muhāṇa ( See )
(ଉ—ଧାମରା ମୋହାଣେ ଯାଣ୍ଡ ଜଳାଉଣେ ବାଙ୍କୁ କୌତର ପୁଙ୍ଖ ମୁଖେ ତଟ ଦେଖଇ ସମ୍ମୁଖେ ମହାସାଗର । ରାଧାନାଥ. ଉଷା ।)

ମୋହାବେଶ—ସଂ. ବି. (୬ଷ୍ଠୀ ତତ୍)—ମୋହ ଘୋଟିବା—Being
Mohābeśa overtaken with stupefection.

ମୋହିଁବା—ଦେ. କ୍ରି. (ସକର୍ମକ) (ସଂ. ମଥ୍ ଧାତୁ)—୧ । (ଦଧି, ଦୁଗ୍ଧ
Mohiṅbā ଆଦି ତରଳୀୟ ପଦାର୍ଥକୁ) ମୁହିଁଆଇବା; ମନ୍ଥନ କରିବା—
মথান্ मथना 1. To agitate (a liquid); to churn. ୨ । (ସକର୍ମକ) (ସଂ. ମୁଖ) (କୌଣସି ବସ୍ତୁ, ସ୍ଥାନ ବା ବ୍ୟକ୍ତିର) ଅଭିମୁଖରେ ଗତି କରିବା—2. To move to-
মোহান wards (something). ୩ । ଆଡ଼କୁ ମୁହଁ କରିବା—
मुहँ फिराना 3. To turn one's face towards; to face.

ମୋହିଁ ହେବା—ଦେ. କ୍ରି (ଅକର୍ମକ)—ମଥିତ ହେବା—
Mohiṅ hebā To be churned.
মথিত হওয়া मथित होना

ମୋହିତ—ସଂ. ବଣ. ( ମୁହ୍ ଧାତୁ+ଣିଚ୍+କର୍ମ. ତ; କମ୍ବା ମୋହ+
Mohita ସଂଜାତାର୍ଥେ ଇତ )—୧। ମୋହପ୍ରାପ୍ତ—1. Bewildered. ୨ । ପ୍ରତାରିତ—2. Beguiled; deceived ୩ । ମୁଗ୍ଧ—3. Charmed; enchanted; enamoured; fascinated.

ମୋହିନ—ଦେ. ବି—ଓଡ଼ିଶା ଜଙ୍ଗଲରେ ଜାତ ଏକ ପ୍ରକାର କାଠ
Mohina ଗଛ; ମଇ ଗଛ ( ଦେଖ )—A tree, Odina Wodier; Mai tree ( See )

ମୋହିନୀ—ସଂ. ବଣ. ସ୍ତ୍ରୀ. ( ମୋହ+ଅସ୍ତ୍ୟର୍ଥେ. ଇନ୍+ସ୍ତ୍ରୀ. ଈ )—
Mohini ୧। ମୋହକାରିଣୀ—1. Enchanting; fascinat-
(ମୋହୀ—ପୁଂ) ing (female). ୨ । ବଞ୍ଚକାରିଣୀ—2. Beguiling (female). ସଂ. ବି—୧ । ବିଷ୍ଣୁର-

ମାଳ ବା ତିପୁର ମଲ୍ଲୀ ଫୁଲ—1. A variety of jasmine with three folds of petals. ୨ । ସମୁଦ୍ର ମନ୍ଥନକାଳରେ ଅସୁରମାନଙ୍କୁ ମୋହିତ କରିବା ପାଇଁ ନାରାୟଣଙ୍କର ସ୍ତ୍ରୀରୂପ ଅବତାର ବିଶେଷ—2. An incarnation of Visnu in the shape of an enchanting damsel to beguile the demons at the churning of the ocean. ୩ । ସ୍ୱର୍ବେଶ୍ୟା ବା ଅପ୍ସରାବିଶେଷ—3. Name of a heavenly courtesan. [ଦ୍ର—ଏହାଙ୍କ ଶାପରେ ବ୍ରହ୍ମା ଜଗତରେ ଅପୂଜ୍ୟ ହେଲେ ।] ୪ । ତନ୍ତ୍ରଶାସ୍ତ୍ରୋକ୍ତ ଅଭିଚାର ବା ପ୍ରୟୋଗବିଶେଷ (ଯାହା ପ୍ରଭାବରେ ସମସ୍ତେ ମୋହିତ ଓ ନିଶ୍ଚେଷ୍ଟ ହୋଇ ପଡ଼ନ୍ତି)—4. Name of a tantric charm which when applied enchants its subject. ୫ । ମୋହକାରିଣୀ ସ୍ତ୍ରୀ—5. An enchanting lady. ୬ । ବଞ୍ଚନାକାରିଣୀ ସ୍ତ୍ରୀ-6. A beguiling lady. ୭ । ବୈଶାଖ ଶୁକ୍ଳ ଏକାଦଶୀ (ହି. ଶ)—7. The eleventh day of the bright lunar fortnight of Baiśākha. ୮ । ଯାଦୁ; ଗୁଣି (ହି. ଶ)—8. Charm.

ମୋହିନୀ କନ୍ୟା – ସ. ବି—ମୋହିନୀ ୨ ( ଦେଖ )
Mohinī kanyā — Mohinī 2 ( See )

ମୋହିବା—ଦେ. କ୍ରି. (ସକର୍ମକ) (ସ. ମୁହ୍ ଧାତୁ, ଣିଚ୍=ମୋହି ଧାତୁ)—୧ । ମୁଗ୍ଧ କରିବା; ବଶୀଭୂତ କରିବା—1. To charm; to enchant.
Mohibā
(ମୋହି ହେବା—ଅନ୍ୟରୂପ)
মুগ্ধ করা, মোহা
मुग्ध करना, मोहना
(ଉ—ଅବଶ୍ୟ ମୋହନକୁ ମୋହିବ ରେ । କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନ ଚମ୍ପୂ 'ଘ' ଗୀତ ।) ୨ । ମୁଗ୍ଧ ହେବା—2. To be charmed. ୩ । ବ୍ୟାକୁଳ କରିବା—3. To perturb. (ଉ—ପ୍ରିୟ ସହି, ପରମାଦ କଡ଼ ଭୁହି ଗୋ, ଯାଉ କେତେ ଛନ୍ଦେ ମୋହି ଗୋ । କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନଚମ୍ପୂ ଘ. ଗୀତ ।) ୪ । ବ୍ୟାକୁଳ ହେବା—4. To be perturbed. (ଉ—ତେସନେ ରାଣୀ ଛନ ହୋଇ, କାନ୍ଦଇ ଅତି ଦୁଃଖେ ମୋହି । ଜଗନ୍ନାଥ. ଭାଗବତ ।) ୫ । ଏକତ୍ର ମିଶାଇ ପାକ କରିବା—5. To cook by mixing an ingredient. ୬ । ଭ୍ରମରେ ପକାଇବା—6. To cause one to commit error.

ମୋହି ହେବା—ଦେ. କ୍ରି. (ଅକର୍ମକ)—୧ । ମୁଗ୍ଧ ହେବା; ମୋହିତ ହେବା—1. To be charmed at.
Mohi hebā
মোহিত হওয়া
मोहित होना
(ଉ—ଏହା ତ ମୁହି ନ ଜାଣଇ, ବିଷ୍ଣୁ ମାୟାରେ ହୋଇ ମୋହି । ଜଗନ୍ନାଥ. ଭାଗବତ ।) ୨ । ମନ୍ଥିତ ହେବା; ମନ୍ଥା ହେବା—2. To be churned.

ମୋହୀ—ସ. ବିଣ. ପୁଂ. (ମୁହ୍ ଧାତୁ=ମୁଗ୍ଧ କରିବା+କର୍ତ୍ତୃ. ଇନ୍; ୧ମା. ୧ବ)—୧ । ଯେ ମୁଗ୍ଧ କରେ—1. Enchanting.
Mohī
(ମୋହିନୀ—ସ୍ତ୍ରୀ)
୨ । ପ୍ରବଞ୍ଚନାକାରୀ—2. Deceiving. ୩ । ଯେ ମୋହ ଜନ୍ମାଏ—3. Illusive. ୪ । ମୋହପ୍ରାପ୍ତ—4. Fainted.

ମୋହୁତି—ପ୍ରାଦେ ( ମେଦିନୀପୁର ) ବି—ଗୋରୁଙ୍କ ମୁହଁରେ ବନ୍ଧାଯିବା ତୁଣ୍ଡି—A muzzle for the mouth of cattle.
Mohuti

ମୋହେନୀ—ଗ୍ରା. ବି ଓ ବିଣ ( ଅଶୁଦ୍ଧ )—ମୋହିନୀ ( ଦେଖ )
Mohenī — Mohinī ( See )

ମୋହୋ—ଦେ. ସର୍ବ—୧ । ମୋହର ( ଦେଖ )
Moho — 1. Mohara ( See )
আমার
मेरा
୨ । ମୁଁ—2. I. [ ଉ—ମୋହୋ କହିଲେ ସେ କଥା ନିତ ହୋଇବ ଅନ ହେ । ଯାନକୃଷ୍ଣ. ରସକଲ୍ଲୋଳ । ]

ମୋହୋବତ—ବୈଦେ. ବି—ମୋହବତ ( ଦେଖ )
Mohobata — Mohabata ( See )

ମୋହୋର—ଦେ. ସର୍ବ—ମୋହର ( ଦେଖ )
Mohora — Mohara ( See )
ବୈଦେ. ବି—ମୋହର ( ଦେଖ )
Mohara ( See )

ମୋହୋର(ରି)ର(ରି)—ବୈଦେ. ବି—ମୋହରରି ( ଦେଖ )
Mohora(ri)ra(ri) — Moharari ( See )

ମୌ—ଦେ. ବି ( ସ. ମଧୁ )—୧ । ମଉ ( ଦେଖ )
Mau — 1. Mau ( See )
মউ
मधु
୨ । ମୌଃ ( ଦେଖ )
2. Mauḥ ( See )

ମୌଆ—ଦେ. ବିଣ—ମଉଆ ( ଦେଖ )
Mauā — Mauā ( See )

ମୌଃ—ବୈଦେ. ଅ ( ଉଚ୍ଚାରଣ—ସାଙ୍କେତିକ )—ମୌଜା; ମୌଜେ; ସାକିନ୍—The diminutive form of the word mouzā i. e. village.
Mauḥ
(ମୌ—ଅନ୍ୟରୂପ)
মৌ, মাঁ
मौं

ମୌକା—ବୈଦେ. ବି ( ଆ )—ମଉକା ( ଦେଖ )
Maukā — Maukā ( See )

ମୌକିଲ—ବୈଦେ. ବି ( ଫା )—ମଉକିଲ ( ଦେଖ )
Maukila — Maukila ( See)

ମୌକୁଫ୍ ( ବ, ଫି, ବି )—ବୈଦେ. ବିଣ ଓ ବି. ( ଉଚ୍ଚାରଣ )—ମକୁଫ୍(ଫି) ( ଦେଖ )
Maukuph( b, phi, bi) — Makuph(phi) ( See )

ମୌକୁଲି(ଲ) – ସ. ବି ( ମୁକୁଲ+ଇ; ଅ )—ବାୟସ; କାକ; କୁଆ—Crow.
Mauku̱li(la)

ମୌକ୍ତିକ—ସ. ବି ( ମୁକ୍ତା+ସ୍ୱାର୍ଥେ. ଇକ )—ମୁକ୍ତା; ମୋତି—Pearl.
Mauktika

ମୌକ୍ତିକ ତଣ୍ଡୁଳ—ସ. ବି—ଧବଳ ଯାବନାଳ; ବାଜରା ନାମକ ଶସ୍ୟ; ଜୁଆର—A sort of maize; millet.
Mauktika tandula

**ମୌକ୍ତିକ ପ୍ରସବା**—ସ. ବି. ସ୍ତ୍ରୀ ( ବହୁବ୍ରୀହି )—ମୁକ୍ତାଶାମୁକା; ଶୁକ୍ତି—
Mauktika prasabā Pearl oyster.
(ମୌକ୍ତିକଶୁକ୍ତି—ଅନ୍ୟରୂପ)

**ମୌକ୍ତିକାବଳି**—ସ. ବି ( ୬ଷ୍ଠୀ ତତ୍ ) —ମୁକ୍ତାମାଳା—
Mauktikābali A string of pearls.
(ମୌକ୍ତିକମାଳା—ଅନ୍ୟରୂପ)

**ମୌକ୍ୟ**—ସ. ବି ( ମୂକ+ଭାବେ. ଯ )—ମୂକତା—
Maukya Dumbness.

**ମୌଖ**—ସ. ବିଣ ( ମୁଖ+ସମ୍ବନ୍ଧେ. ଅ )—ମୁଖ ସମ୍ବନ୍ଧୀୟ—
Maukha Relating to the face or mouth.
ସଂ. ବି—ମୁଖକୃତ ପାପ—A sin committed with the mouth. ( ଯଥା—ଅଭକ୍ଷ୍ୟଭୋଜନ; ଅପଶବ୍ଦ ଉଚ୍ଚାରଣ—ହି. ଶ. )

**ମୌଖରି**—ସ. ବି ( ନାମ )—ଭାରତର ପ୍ରାଚୀନ ରାଜବଂଶ ବିଶେଷ—
Maukhari Name of an ancient royal dynasty of India. [ ଦ୍ର—ଏ ବଂଶ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ଶେଷରୁ ୮ମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ଏହାଙ୍କ ରାଜ୍ୟ ପୂର୍ବରେ ମଗଧ, ଦକ୍ଷିଣରେ ମଧ୍ୟପ୍ରଦେଶ ଓ ଅନ୍ଧ୍ରଦେଶ, ଉତ୍ତରରେ ନେପାଳ ଓ ପଶ୍ଚିମରେ ଥାନେଶ୍ୱର ଓ ମାଳବ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାଙ୍କ ରାଜଧାନୀ କନୌଜରେ ଥିଲା । ଏ ବଂଶର ରାଜାମାନେ ମଦ୍ରରାଜ ଅଶ୍ୱପତିଙ୍କ ବଂଶଧର ଥିବା କଥିତ । ହରିବର୍ମା, ଈଶ୍ୱରବର୍ମା, ଶର୍ବବର୍ମା, ଗ୍ରହବର୍ମା, ଯଶୋବର୍ମା ଆଦି ଏ ବଂଶର ପ୍ରସିଦ୍ଧ ରାଜା ଥିଲେ—ହି. ଶ. ]

**ମୌଖର୍ଯ୍ୟ(ର)**—ସ. ବି ( ମୁଖର+ଭାବେ. ଯ; ଅ )—ପ୍ରଗଲ୍ଭତା; ମୁଖରତା—Talkativeness.
Maukharjya(ra)

**ମୌଖିକ**—ସ. ବିଣ ( ମୁଖ+ଭବାର୍ଥେ. ଇକ )—୧ । ମୁଖସମ୍ବନ୍ଧୀୟ—
Maukhika 1. Facial. ୨ । ବାଚିକ; ବାକ୍ୟରେ ପ୍ରକାଶିତ—2. Oral; expressed by word of mouth. ୩ । ଛଳନାପୂର୍ଣ୍ଣ—3 Feigned; pretended. ୪ । କାଳ୍ପନିକ—4. Imaginary. ୫ । ବାହ୍ୟ ( ଯାହା ଅନ୍ତରର ନୁହେ )—5. External.

**ମୌଖିକ ଗଣିତ**—ସ. ବି ( ଆଧୁନିକ )—ମାନସାଙ୍କ; ଯେଉଁ ଗଣିତ ସମସ୍ୟାମାନ ମୁହଁରେ ଉତ୍ତର କରାଯାଏ ଓ ଯାହା ଲେଖାଦ୍ୱାରା ଗଣନା କରାଯାଏ ନାହିଁ—Oral arithmetic; arithmetical problems solved by the mouth and without the aid of writing.
Maukhika ganita

**ମୌଗ୍ଧ**—ଦେ. ବି ( ସ. ମୌଗ୍ଧ୍ୟ )—୧ । ନବ ଯୌବନ—
Maugdha 1. Young age, youth. [ ଉ—ବୋଲେ ବେ ତହିଁ—ହୋଇ ଏ ମୌଗ୍ଧ ପ୍ରକାଶିଛି । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ] ୨ । ମୌଗ୍ଧ୍ୟ (ଦେଖ) 2. Maugdhya ( See )

**ମୌଗ୍ଧ୍ୟ**—ସ. ବି. ( ମୁଗ୍ଧ+ଭାବେ. ଯ )—୧ । କିଂକର୍ତ୍ତବ୍ୟବିମୂଢ଼ତା—
Maugdhya 1. Silliness. ୨ । ମୁଗ୍ଧତା—2. The state of being charmed. ୩ । ସ୍ତ୍ରୀଲୋକର ଭାବ ବିଶେଷ; ଥରେ ଶୁଣିଥିବା କଥାକୁ ଫେର ଆଉ ଥରେ ପଚାରିବା—3. A feminine weakness, namely—asking a question repeatedly after hearing its answer.

**ମୌଛ(ଚ୍ଛ)ବ**—ଦେ. ବି—ମଉଛବ (ଦେଖ)
Mauchha(chhu)ba Mauchhaba (See)
(ମୌଚ୍ଛ—ଅନ୍ୟରୂପ)

**ମୌଜ (ଇତ୍ୟାଦି)**—ବୈଦେ. ବି.—(ଆ.)—ମଉଜ ଇତ୍ୟାଦି (ଦେଖ)
Mauja (etc) Mauja etc (See)

**ମୌଜା ( ଇତ୍ୟାଦି )**—ବୈଦେ. ବି.—୧ । ( ଆ. ମୌଜା )—
Maujā (etc) 1. Maujā etc (See) [ଉ—ଏଥିରେ ପାଞ୍ଚ ଗୋଟି ମୌଜା—ମୌଜେ ରାମନଗର......ଫକୀରମୋହନ. ଛମାଣ ଆଠଗୁଣ୍ଠ ।] [ ଦ୍ର—ପ୍ରାଚୀନ ଉତ୍କଳର ହିନ୍ଦୁ ରାଜତ୍ୱରେ ରାଜସ୍ୱ ବନ୍ଦୋବସ୍ତ ପ୍ରଥା 'ବିଶି'ରେ କେତେଗୁଡ଼ିଏ ଗ୍ରାମ ଥିଲା । ମୁସଲମାନମାନଙ୍କ ଅମଳରେ ଏହି 'ଗ୍ରାମ'ର ନାମ 'ମୌଜା' ହେଲା । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।]. ୨ । (ଫା. ମୋଜା )—ମୌଜା—2. Mouza. ୩ । (ଆ. ମୌଜ୍) ଲହଡ଼ି—3. Wave.

**ମୌଜି**—ବୈଦେ. ବିଣ—ମଉଜି (ଦେଖ)
Mauji Mauji (See)

**ମୌଜିଆ**—ଦେ. ବିଣ—ମଉଜିଆ (ଦେଖ)
Maujiā Maujiā (See)

**ମୌଜୁଦ(ଦ୍)**—ବୈଦେ. ବିଣ. (ଆ)—ମଉଜୁଦ (ଦେଖ)—Maujut
Maujut(d) मजूद मौ(मह)जुद (See)

**ମୌଞ୍ଜ**—ସ. ବିଣ.—(ମୁଞ୍ଜ+ଅ)—ମୁଞ୍ଜ ତୃଣ ନିର୍ମିତ—Made of
Maunja (ମୌଞ୍ଜୀୟ—ଅନ୍ୟରୂପ) Munja grass.

**ମୌଞ୍ଜୀ**—ସ. ବି—(ମୁଞ୍ଜ=ଏକ ପ୍ରକାର ତୃଣ+ବିକାରାର୍ଥେ. ଅ+ ସ୍ତ୍ରୀ. ଈ)—(ଉପନୟନ ସମୟରେ ପିନ୍ଧା ଯିବା) ମୁଞ୍ଜ ନାମକ ଏକ ଜାତୀୟ ତୃଣଦ୍ୱାରା ନିର୍ମିତ ମେଖଳା—A girdle made of the Munja grass worn by a Brahman boy at his initiation. ସ. ବିଣ. ପୁଂ—(ମୁଞ୍ଜ+ଅ +ଇନ୍; ୧ମା. ୧ବ)—ମୁଞ୍ଜ ମେଖଳା ପରିହିତ—Wearing a girdle of Munja grass.
Maunjī
(ମୌଞ୍ଜୀ ମେଖଳା, ମୌଞ୍ଜୀବନ୍ଧ, ମୌଞ୍ଜୀ ବନ୍ଧନ—ଅନ୍ୟରୂପ)

**ମୌଡ଼ (ଇତ୍ୟାଦି)**—ଦେ. ବି—ମଉଡ଼ ଇତ୍ୟାଦି (ଦେଖ)
Maurda (etc) Maurda etc (See)

**ମୌଢ୍ୟ**—ସ. ବି.—(ମୂଢ଼+ଭାବେ. ଯ)—୧ ମୂଢ଼ତା; ମୂର୍ଖତା—
Maurdhya 1. Ignorance. ୨ । ବାଲ୍ୟାବସ୍ଥା—2. Childhood; infancy.

ମୌଣ୍ଡ୍ୟ—ସ. ବି—(ମୁଣ୍ଡ+ଯ)—ସ୍ୱାଭାବିକ ବା କୃତ୍ରିମ କେଶ-
Maundya ଶୂନ୍ୟତା—Baldness (natural or brought about by shaving.)

ମୌତ୍—ଦେ. ବି—(ସ. ମତ୍ତତା)—ନିଶାଖୋରର ମାଦକତା ଉପଭୋଗ
Maut
মৌতাত; মৌজ नशाका मौज, मतवाई ବା ମଉଜ—The enjoyment of intoxicating drugs by a person addicted to it.
[ମୌତାତ୍—ଅନ୍ୟରୂପ]

ମୌତ—ବିଦେ. ବି—( ଆ. ମୌତ; ମୂଳ. ସ. ମୃତ୍ୟୁ )—ମରଣ—
Mauta ମୃତ୍ୟୁ मौत Death

ମୌତ୍ରିକ—ସ. ବିଣ—( ମୂତ୍ର+ଇକ )—ମୂତ୍ର ସମ୍ବନ୍ଧୀୟ—
Mautrika Urinary; uric.

ମୌଦ୍ଗଲ—ସ. ବି. ପୁଂ—(ମୁଦ୍ଗଲ+ଅ)—ମୁଦ୍ଗଲ ଋଷିଙ୍କ ଗୋତ୍ର ଉତ୍ପନ୍ନ-
Maudgala Born of the clan or race of sage Mudgala.

ମୌଦ୍ଗଲି—ସ. ବି—(ମୁଦ୍ଗଲ+ଇ)—ବାୟସ; କାକ—
Maudgali Crow.

ମୌଦ୍ଗଲ୍ୟ—ସଂ. ବି. ପୁଂ (ନାମ)—(ମୁଦ୍ଗଲ+ଅପତ୍ୟାର୍ଥେ. ଯ)—୧ ।
Maudgalya ମୁଦ୍ଗଲ ଋଷିଙ୍କ ପୁତ୍ର; ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ—1. Name of the son of sage Mudgala and the founder of a clan. ୨ । ମୁଦ୍ଗଲ ଋଷିଙ୍କ ଗୋତ୍ରଜ ପୁରୁଷ—2. A man born in the clan of Mudgala.

ମୌଦ୍ଗଲ୍ୟାୟନ—ସ. ବି.—ବୁଦ୍ଧଦେବଙ୍କ ପ୍ରଧାନ ଶିଷ୍ୟ ନାମ (ହି. ଶ)
Maudgalyāyana Name of the principal disciple of Buddha.

ମୌଦ୍ଗୀନ—ସ. ବି.—(ମୁଦ୍ଗ+ଈନ)—ମୁଗ କ୍ଷେତ୍ର—
Maudgina A field in which Muga is raised.

ମୌନ—ସ. ବି—(ମୁନି+ଭାବ ଓ କର୍ମରେ ଅ)—୧ । ତୁଷ୍ଣୀଂଭାବ;
Mauna କଥା ନ କହିବା; ଅଭାଷଣ—1. Silence; taciturnity. ୨। ବିଷଣ୍ଣତା—2. Sadness; gloominess; melancholy. ୩ । ମୁନିବ୍ରତ—3. The austerities practised by a sage. ୪ । ଫାଲ୍ଗୁନ ମାସର ପ୍ରଥମ ପକ୍ଷ (ହି. ଶ)—4. The first lunar fortnight of the month of phālguna.

মৌন ଦେ. ବିଣ (ସ. ମୌନୀ)—ମଉନ (ଦେଖ)
मौन Mauna (See)

ମୌନ ତୁଣ୍ଡ—ସ. ବିଣ ( ବହୁବ୍ରୀହି )—ନତମୁଖ—Looking
Mauna tunda downwards; with a downcast look.

ମୌନ ତ୍ୟାଗ କରିବା—ଦେ. କ୍ରି—କଥା କହିବା—To open one's
Mauna tyaga karibā lips.
মৌন ত্যাগ করা मौन तजना

ମୌନବତୀ—ସଂ. ବି. ସ୍ତ୍ରୀ—ମୌନଭାବ ଧରିଥିବା ସ୍ତ୍ରୀଲୋକ—A woman
Maunabati taking to a vow of silence. [ଉ— ସାଇଁ ସାଇଁ ଡାକୁଥିଲି ବସୁକର । ମୌନବତୀ ଯେହ୍ନେ ସମାଧି-ତତ୍ପର—ସଧାନାଥ. ନନ୍ଦିକେଶ୍ୱରୀ ।]

ମୌନ ବ୍ରତ—ସଂ. ବି—ମୌନ ରହିବାର ନିୟମ; ବାକ୍‌ସଂଯମ—
Mauna brata A religious vow of silence.

ମୌନବ୍ରତ ଗ୍ରହଣ—ସଂ. ବି—କିଛିକାଳ ପାଇଁ ପାଟି ନ ଫିଟାଇବା ରୂପ
Maunabrata grahana ବ୍ରତ ନେବା—Taking to a religious vow of silence.
(ମୌନ ବ୍ରତ ଧାରଣ—ଅନ୍ୟରୂପ)
( ମୌନ ବ୍ରତଧାରୀ—ବିଣ )

ମୌନ ଭଙ୍ଗ—ସଂ. ବି—କିଛିକ୍ଷଣ ସମୟ ମୌନ ରହିବା ପରେ କଥା
Mauna bhanga କହିବା—Breaking of one's silence; opening one's mouth.

ମୌନଭାବ—ସଂ. ବି—ତୁଷ୍ଣୀଂଭାବ—Silence.
Mauna bhāba ( ମୌନତା—ଅନ୍ୟରୂପ )

ମୌନ ମାଳା—ଦେ. ବି—ମଉନମାଳା ( ଦେଖ )
Mauna mālā Mauna mālā (See)

ମୌନ ମୁହାଁ—ଦେ. ବିଣ. ପୁଂ—ମଉନମୁହାଁ ( ଦେଖ )
Mauna muhān̐ Mauna muhān̐ (See)
( ମୌନ ମୁହାଁ—ସ୍ତ୍ରୀ )

ମୌନ ରହିବା—ଦେ. କ୍ରି—ତୁନି ହୋଇ ରହିବା—To keep
Mauna rahibā silent; to remain silent.
মৌন থাকা मौन रहना

ମୌନ ସମ୍ମତି—ସଂ. ବି ( ମ. ଯ. ଲୋ )—ମୌନାବଲମ୍ବନଦ୍ୱାରା ସୂଚିତ
Mauna sammati ସମ୍ମତି—Silent consent; consent implied by one's remaining silent. [ ଦ୍ର—ଏ ବିଷୟରେ ଗୋଟିଏ ସଂସ୍କୃତ ପ୍ରବଚନ ଅଛି । ଯଥା—ମୌନଂ ସମ୍ମତିଲକ୍ଷଣଂ । ଅର୍ଥାତ୍ ମୌନ ରହିବାହିଁ ସମ୍ମତି-ସୂଚକ । ]

ମୌନ ସ୍ୱଭାବ—ସଂ. ବି ( ମ. ଯ. ଲୋ )—ନୀରବ ସ୍ୱଭାବ—Silent
Mauna swabhāba nature. ସଂ. ବିଣ (ବହୁବ୍ରୀହି )—ମୌନପ୍ରକୃତିବିଶିଷ୍ଟ—Having a silent nature; silent by nature.

ମୌନାବତୀ—ଦେ. ବି—ମଉନାବତୀ ( ଦେଖ )
Maunābati Maunābati ( See)

ମୌନାବଲମ୍ବନ—ସଂ. ବି—ମୌନଭାବ ଧାରଣ—Keeping silent;
Maunābalambana holding of one's tongue.

ମୌନାବଲମ୍ବୀ—ସ. ବିଣ. ପୁଂ—ଯେ ମୌନଭାବ ଧାରଣ କରିଥାଏ—
Maunābalambi Keeping silent.
[ ମୌନାବଲମ୍ବିନୀ—ସ୍ତ୍ରୀ ]

ମୌନୀ—ସଂ. ବିଣ. ପୁଂ (ମୌନ+ଇନ୍; ୧ମା. ୧ବ)—୧ । ନୀରବ—
Mauni 1. Taciturn; silent. ୨ । ମୌନବ୍ରତଧାରୀ—2. Observing the vow of silence.
[ମୌନିନୀ—ସ୍ତ୍ରୀ]
ବି—ମୁନି; ତପସ୍ୱୀ; ଋଷି—A hermit; a sage.

ମୌ ମାଛି—ଗ୍ରା. ବି—ମହୁମାଛି; ମଧୁମକ୍ଷିକା—Bee.
Mau māchhi মৌমাছি मधुमाछि

ମୌର—ଗ୍ରା. ବି (ସଂ. ମୟୂର)—ମୟୂର (ଦେଖ)
Maura ময়ূর मोर Mayūra (See)
[ ମୌରୀ ସ୍ତ୍ରୀ ]

ମୌରଜିକ—ସଂ. ବି. ପୁଂ (ମୁରଜ+ଶିଳ୍ପାର୍ଥେ. ଇକ)—ମୃଦଙ୍ଗବାଦକ—
Maurajika A drummer.
[ ମୌରଜିକା -ସ୍ତ୍ରୀ ]

ମୌର(ରୁ)ସ୍—ବୈଦେ. ବି (କଚରଥ; ଅ. ମୌରୁସ୍)—ପିତୃପିତାମହାଦି
Maura(ru)s ପୂର୍ବପୁରୁଷ—Ancestors.
মৌরুশ मौरुस

ମୌର(ରୁ)ସି—ବୈଦେ. ବିଣ (କଚରଥ; ଅ. ମୌରସୀ)—
Maura(ru)si ୧ । ପୈତୃକ—1. Paternal. ୨ । ପିତୃ-
মৌরুশি ପୈତାମହିକ—2. Hereditary, ancestral.
मौरुसी ୩ । ପିତୃପିତାମହକ୍ରମେ ଭୋଗ ହୋଇ ଆସୁଥିବା—
3 Inherited from ancestors.

ମୌରସି ମକଦ୍ଦମି—ବୈଦେ. ବି (କଚରଥ)—ପିତୃପିତାମହ କ୍ରମେ ବା
Maurasi makaddami ପୁରୁଷାନୁକ୍ରମେ ଭୋଗ ହେବା
মৌরুসী মোকদ্দমী ମକଦ୍ଦମି—A hereditary tenure.
मौरुसी मुकद्दमी

ମୌରସି ପଟ୍ଟା—ବୈଦେ. ବି (କଚରଥ)—ଚିରସ୍ଥାୟୀ ପଟ୍ଟା—
Maurasi paṭṭā A hereditary lease.
মৌরুসীপাট্টা मौरुसी पट्टा

ମୌରସି ହାସଲ୍(ଲ,ଲି)—ବୈଦେ. ବିଣ (କଚରଥ) (ଅ)—ପିତୃ-
Maurasi hāsal(la,li) ପିତାମହଙ୍କ ଅର୍ଜିତ—Earned or
মৌরুসি হাসলী acquired by one's ancestors.
मौरुस हासिल

ମୌରା—ଦେ. ବି—ମହୁରା (ଦେଖ)
Maurā Mahurā (See)

ମୌରାଡ଼ି(ଳି)—ଦେ. ବି—ମଉରାଡ଼ି (ଦେଖ)
Maurāṛdi(li) মুরুল(লা) मारा Maurāṛdi (See)

ମୌରି—ଦେ. ବି—ମଉରି (ଦେଖ)
Mauri Mauri (See)

ମୌର୍ଖ୍ୟ—ସଂ. ବି (ମୂର୍ଖ+ଭାବେ. ଯ)—ମୂର୍ଖତା—
Maurkhya Ignorance; stupidity.

ମୌର୍ତ୍ତିକ—ସଂ. ବି (ମୂର୍ତ୍ତି+ସମ୍ବନ୍ଧାର୍ଥେ. ଇକ)—୧ । ମୂର୍ତ୍ତି ବା ଚିତ୍ର-
Maurttika ସଂବନ୍ଧୀୟ—1. Relating to an image or
idol. ୨ । ମୂର୍ତ୍ତି ବା ଚିତ୍ରଦ୍ୱାରା ସୂଚିତ—
2. Hieroglyphic.

ମୌର୍ତ୍ତିକ ଅକ୍ଷର—ସଂ. ବି (ଆଧୁନିକ ପ୍ରୟୋଗ)—ବସ୍ତୁଚିତ୍ର ଦ୍ୱାରା ସୂଚିତ
Maurttika akshara ଅକ୍ଷର—Hieroglyphics.
[ମୌର୍ତ୍ତିକ ଲିପି—ଅନ୍ୟରୂପ] [ ଦ୍ର—ଏହି ଲିପି ପ୍ରଥମେ ମିଶର
ଦେଶରେ ସୃଷ୍ଟ ହୋଇଥିଲା । ଜଗବନ୍ଧୁ. ପ୍ରାଚୀନଜ୍ୟୋତି ।]

ମୌର୍ବୀ—ସଂ. ବି ( ମୂର୍ବା=ମୁରଗା ଘାସ+ସମ୍ବନ୍ଧାର୍ଥେ ଈ )—
Maurddhi ୧ । ଧନୁର୍ଗୁଣ (ଏହା ମୁରୁଗାର ସୂତାରେ ତିଆରି
ହୁଏ)—1. The string of a bow. ୨ । ବୃତ୍ତର
ଜ୍ୟା—2. The chord of an arc. ୩ । କୁଆମଇତା
(କବିରାଜ ହରେକୃଷ୍ଣ ମିଶ୍ରଙ୍କ ପ୍ରଣୀତ 'ଦ୍ରବ୍ୟଗୁଣ')—3. A
kind of kitchen fruit; Cephalandra India.
୪ । ଅଜଶୃଙ୍ଗୀ (ଦେଖ)—4. Ajaśṛungī (See)
ବିଣ—ମୂର୍ବାତୃଣ ସମ୍ବନ୍ଧୀୟ—Relating to
Mūrdhā grass.

ମୌର୍ଯ୍ୟ—ସଂ. ବି (ମୁରା+ଅପତ୍ୟାର୍ଥେ. ଅ)—ଚନ୍ଦ୍ରଗୁପ୍ତ ରାଜା—
Maurjya Raja Chandragupta.
[ଦ୍ର—ଚନ୍ଦ୍ରଗୁପ୍ତ ମୁରା ନାମ୍ନୀ ଦାସୀର ପୁତ୍ର ଥିଲେ ।]

ମୌର୍ଯ୍ୟବଂଶ—ସଂ. ବି—ଚନ୍ଦ୍ରଗୁପ୍ତ ରାଜାଙ୍କ ପ୍ରତିଷ୍ଠିତ ରାଜବଂଶ—The
Maurjya bamśa dynasty of Chandragupta.
[ଦ୍ର—ଅଶୋକ ମଧ୍ୟ ଏହି ବଂଶୀୟ ଥିଲେ । ]

ମୌଲ—ସଂ. ବିଣ.—(ମୂଲ+ସବନ୍ଧାର୍ଥେ. ଅ)—୧ । ମୌଳିକ; ମୂଳ
Maula ସମ୍ବନ୍ଧୀୟ—1. Radical. ୨ । ବିଶୁଦ୍ଧ ବଂଶଜ—
2. Descended from pure blood. ୩ । ଆପ୍ତ;
ବିଶ୍ୱସ୍ତ—3. Trustworthy. ୪ । ଭୂମ୍ୟାଦିର ମୂଳ-
ଜ୍ଞାତା—4. Knowing the origin of fields.
୫ । ମୌରସୀ; ପୈତୃକ (ହି. ଶ)—5. Ancestral.
ସ. ବି—୧ । ଗ୍ରାମର ମଣ୍ଡଳ ବା ଗ୍ରାମର ଜମିଦାର—
1. The head-man of a village. ୨ । ସଚିବ;
ଅମାତ୍ୟ—2. Minister. ୩ । ଛାଞ୍ଚ; ଆଦର୍ଶ—
3. Model.

ମୌଲ—ଦେ. ବି.—ମହୁଲ (ଦେଖ)
Maula Mahula (See)

ମୌଲ୍ନା—ବୈଦେ. ବି.—(ପା. ମୋଲନା)—ମୁସଲମାନ ପଣ୍ଡିତ-
Maulnā ମାନଙ୍କର ଉପାଧି—A title of Mahomedan
মৌলনা मौलन learned men.

ମୌଲବି—ବୈଦେ. ବି.—୧ । ଆରବୀ ଭାଷାରେ ପଣ୍ଡିତ—
Maulabi 1. A person learned in the Arabic
মৌলবী मौलवी language.
୨ । ମୁସଲମାନ୍ ପଣ୍ଡିତ—2. A Mahomedan learned
man. ୩ । ମୁସଲମାନ୍ ଧର୍ମଶାସ୍ତ୍ରଅଧ୍ୟାପକ—3. A Maho-
medan religious preceptor. ୪ । ମୁସଲମାନ
ବିଦ୍ୟାଳୟର ଆରବୀ ଓ ପାରସୀର ଉଚ୍ଚ ଶିକ୍ଷକ—
4. A higher class Mahomedan teacher.
[ ଦ୍ର—ଉଚ୍ଚ ଶିକ୍ଷିତ ମୁସଲମାନ ଭଦ୍ର ବ୍ୟକ୍ତିଙ୍କ ନାମର
ପୂର୍ବେ ବ୍ୟବହୃତ ହୁଏ । ]

ମୌଲମିନ୍—ଦେ. ବି.—ଏକ ପ୍ରକାର କଦଳୀ—
Maulamin মৌলমীন A kind of plantain.
[ ଦ୍ର—ଏହା କଷେଇ ବଶୀ ପରି ବଙ୍କା, ଲମ୍ବ ଓ ସୁଗନ୍ଧଯୁକ୍ତ ।
ପାଚିଲେ ଏହାକୁ ଲୋକେ ଖାଆନ୍ତି । ଏହା ବ୍ରହ୍ମଦେଶର
ମୌଲମିନ୍ ଅଞ୍ଚଳରୁ ପ୍ରଥମେ ଏ ଦେଶକୁ ଆସିଥିଲା । ]

ମୌଲମିନ୍ ଚାଉଳ—ଦେ. ବି—ବ୍ରହ୍ମ ଦେଶରୁ ଏ ଦେଶକୁ ଆସୁଥିବା
Maulamin chāula ଚାଉଳ—Rice imported from
মৌলমীন চাল मौलमीन चावल Burma.

ମୌଳା—ସ. ବି—ମଉଳା (ଦେଖ)
Maulā Maulā (See)

ମୌଳି—ସ. ବି—(ମୂଳ+ଇ; ମୂ ଧାତୁ=ବନ୍ଧନ କରିବା+କର୍ମ. ଲ)
Mauli ୧ । ଶିଖର; ଚୂଡ଼ା; ଅଗ୍ରଭାଗ—1. Top; summit. ୨ । ଶିଖା—2. Lock of hair on the crown of the head. ୩ । କିରୀଟ; ମୁକୁଟ—3. Diadem. ୪ । ଜୁଡ଼ା—4. Chignon; hair dressed into a braided coil. ୫ । ଶୀର୍ଷ; ମସ୍ତକ—5. Head. ୬ । ଅଶୋକ ବୃକ୍ଷ—6. A tree; Janessia Asoka. ୭ । ଜଟାଜୁଟ—7. A mass of matted hair. ୮ । ଦଳର ମୁଖ୍ୟ ବା ପ୍ରଧାନ ବ୍ୟକ୍ତି ( ହି. ଶ )—8. Headman. ୯ । ପୃଥିବୀ; ଭୂମି ( ହି. ଶ )—8. The earth.

ମୌଳିଆ—ଗ୍ରା. ବିଣ—ମଳିଆ ( ଦେଖ )—Maliā ( See )
Mauliā ময়লা मैला

ମୌଳିକ—ସ. ବିଣ ( ମୂଳ+ସମ୍ବନ୍ଧାର୍ଥେ. ଇକ )—୧ । ମୂଳୀଭୂତ; ମୂଳସମ୍ବନ୍ଧୀୟ—1. Radical; fundamental. ୨ । ଆଦ୍ୟ; ପ୍ରାଥମିକ—2. Primary; original; primordial. ୩ । ପ୍ରଧାନ—3. Principal. ୪ । ସଦ୍‌ବଂଶ ଜାତ—4. Born of a noble family; of gentle birth.
Maulika

ମୌଳିକ ପଦାର୍ଥ—ସ. ବି ( ବିଜ୍ଞାନ ପରିଭାଷା )—ଯେ କୌଣସି ବସ୍ତୁର ମୂଳପିଣ୍ଡ; ଯାହାର କ୍ଷୟ, ବୃଦ୍ଧି ବା ବିନାଶ ନାହିଁ—( science ) Elements
Maulika padārtha

ମୌଳିବା—ଦେ. କ୍ରି—ମଉଳିବା ( ଦେଖ )
Maulibā मौलना Maulibā ( See )

ମୌଳୀ—ସ. ବି ( ମୂଳ+ଅ+ଈ )—୧ । ଭୂମି—1. The earth. ୨ । କେଶ—2. The hair. ୩ । ସଯତ୍ନକେଶ—3. Hair tied into a knot. ୪ । କିରୀଟ; ମୁକୁଟ—4. Diadem. ୫ । ମସ୍ତକ—5. The head. ୬ । ଚୂଡ଼ା; ଅଗ୍ରଭାଗ—6. The top; the summit. ସ. ବିଣ ପୁଂ ( ମୌଳି+ଇନ୍; ୧ମା. ୧ବ )—ମୁକୁଟଧାରୀ ( ହି. ଶ )—Wearing a crown.
Maulī
(ମୌଳିନୀ—ସ୍ତ୍ରୀ)

ମୌଶନ୍—ବୈଦେ. ବି ( କଚରିଆ )—ମୋଶନ୍ ( ଦେଖ )
Mauśan Mośan ( See )

ମୌଶୁଫ—ବୈଦେ. ବିଣ. ପୁଂ ( କଚରିଆ ) ( ଫା )—ପୂର୍ବୋକ୍ତ ( ବ୍ୟକ୍ତି )—Aforesaid ( person )
Mauśupha
(ମୌଶୁଫିଆ—ସ୍ତ୍ରୀ) মৌসুফ मौसुफ

ମୌଶୁ(ଶି)ମ୍—ବୈଦେ. ବି ( ଅ. ମୌଶିମ୍ )—୧ । ଋତୁ—1. Season. ୨ । ମୌଶୁମ୍ ବାୟୁ ( ଦେଖ ) 2. Mauśum bāyu ( See ) ୩ । ମୌଶୁମ୍ ବୃଷ୍ଟି ଦେଖ ) 3 Mauśum bṛushṭi ( See ) ୪ । ଉପଯୁକ୍ତ ଋତୁ ବା ସମୟ—4. Proper season or time.
Mauśu(śi)m
মরসুম
मौसिम

ମୌଶୁମ୍(ମୀ) ବାୟୁ—ଦେ. ବି. ( ଫା. ମୌଶିମୀ=ଋତୁକାଳୀନ )—ଋତୁକାଳୀନ ପବନ—The monsoon; winds blowing according to season.
Mauśum(mī) bāyu
মরসুমী বায়ু
मौसिमी हवा

ମୌଶୁମ୍(ମୀ) ବୃଷ୍ଟି—ଦେ. ବି—ବର୍ଷାକାଳୀନ ବୃଷ୍ଟି—The monsoon rain.
Mauśum(mī) bṛushṭi
মরসুমী বৃষ্টি मौसिमी वृष्टि

ମୌଶୁ(ଶି)ମୀ—ବୈଦେ. ବିଣ ( ଫା. ମୌଶିମୀ )—୧ । ଋତୁକାଳୀନ—1. Seasonable. ୨ । ଉପଯୁକ୍ତ ଋତୁରେ ଘଟିବା—2. Happening in proper season; seasonal.
Mauśu(śi)mī
মরসুমী
मौसिम

ମୌଷଦ (ଧ, ଦି, ଧି)—ଗ୍ରା. ବି—ମଉଷଦ ( ଦେଖ )
Maushada(dha, di, dhi) Maushada ( See )
মহৌষধ (ଉ—ମନ୍ତ୍ର ଯନ୍ତ୍ର ନାହିଁ ତହିଁ ଔଷଧ ମୋଷଧି । ପ୍ରାଚୀ. କୃଷ୍ଣଜନ୍ମପଣଗୀତା ।)
महौषध

ମୌଷଲ—ସଂ. ବି. (ମୂଷଲ+ସଂବନ୍ଧାର୍ଥେ. ଅ)—୧ । ମୂଷଲ ସମ୍ବନ୍ଧୀୟ—1. Relating to a mace. ୨ । ମୂଷଲ ସଦୃଶ; ମୂଷଳିଆ—2. Thick like a cudgel or mace.
Maushala

ମୌଷଲ ପର୍ବ—ସ. ବି—ମହାଭାରତର ଅଠର ପର୍ବ ମଧ୍ୟରୁ ଷୋଡ଼ଶ ପର୍ବ—The 16th canto of the eighteen canto of Mahābhārata.
Maushala parba
[ ଦ୍ର—ଏହି ପର୍ବରେ 'ମୂଷଲଂ କୁଳନାଶନଂ' ଏହି ଉକ୍ତିର ପ୍ରତିପାଦକ ଚରିତ ଲେଖା ଯାଇଅଛି ।]

ମୌଷ୍ଟା—ସ. ବି. (ମୁଷ୍ଟି+ଅ+ସ୍ତ୍ରୀ. ଆ)—୧ । ମୁଷ୍ଟି ପ୍ରହରଣ କ୍ରୀଡ଼ା; ଯେଉଁ ଖେଳରେ ବିଧା ମରାମରି ହୁଏ—1. Boxing. ୨ । ମୁଥ ମାଡ଼—2. Fisticuff.
Maushṭā

ମୌଷ୍ଟିକ—ସ. ବି—ଚୋର (ହି. ଶ)—Theft.
Maushṭika

ମୌସା—ଦେ. ବିଣ—ମଉସା ( ଦେଖ )
Mausā Māusā ( See )

ମୌସୀ—ପ୍ରାଦେ. (ବସ୍ତର) ବି. (ତୁଳ. ହି. ମୌସୀ)—ମାଉସୀ (ଦେଖ)
Mausī Māusī ( See )

ମୌହା—ସ. ବି—ମହୁଆ ( ଦେଖ )
Mauhā Mahuā ( See )

ମୌହୂର୍ତ୍ତ—ସ. ବି. (ମୁହୂର୍ତ୍ତ+ଜ୍ଞାତାର୍ଥେ. ଅ)—ଜ୍ୟୋତିର୍ବେତ୍ତା—Astrologer.
Mauhūrtta
(ମୌହୂର୍ତ୍ତିକ—ଅନ୍ୟରୂପ)

ମ୍ନା (ଧାତୁ)—ସଂ—ପୁନଃ ପୁନଃ ଅଭ୍ୟାସ କରିବା; ଘୋଷିବା—To get by heart; to commit to memory.
Mnā (root)

ମ୍ୱାହିଁବା — ଦେ. କ୍ରି — ମୁହାଁଇବା ( ଦେଖ )
Mwāhiñba Muhāñiba ( See )

ମ୍ୟାଉଁ ମ୍ୟାଉଁ — ଦେ. ଅ. (ଅନୁକରଣ ଧ୍ୱନି) — ମିଅଉଁ ମିଅଉଁ; ବିରାଡ଼ି
Myāuñ myāuñ ବୋବେଇବା ଶବ୍ଦ — The mewing of
ম্যাওঁ ম্যাওঁ मयाँवँ cats.

ମ୍ୟାକ୍ସ ମୁଲ୍ଲର୍ — ବୈଦେ. ବି. (ନାମ) (ଇଂ. ମାକ୍ସ ମୁଲ୍ଲର୍) — ସୁପ୍ରସିଦ୍ଧ
Myāks mullar ଭାଷାବିଜ୍ଞାନବେତ୍ତା ସ୍ୱର୍ଗୀୟ ଜର୍ମାନ୍ ପଣ୍ଡିତ —
ম্যাক্স মুল্লার The late Dr. Friedrich Max Muller.
मैक्स मुलर [ଦ୍ର — ଏହାଙ୍କର ଭାରତବର୍ଷ ପ୍ରତି ପ୍ରଗାଢ଼ ଅନୁରାଗ ଥିଲା । ଏ ସଂସ୍କୃତ ଭାଷାରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିଲେ ଏବଂ ଅନେକ ଗ୍ରନ୍ଥ ପ୍ରଣୟନ କରିଥିଲେ । ୧୮୨୩ରେ ଜନ୍ମଗ୍ରହଣ କରି ୧୯୦୦ରେ ମାନବଲୀଳା ସମ୍ୱରଣ କରିଥିଲେ । ]

ମ୍ୟାଗାଜିନ (ଇତ୍ୟାଦି) — ବୈଦେ. ବି. — ( ଇଂ. ମ୍ୟାଗାଜିନ୍ ) —
Myāgājin ମେଗାଜିନ୍ ଇତ୍ୟାଦି (ଦେଖ) — Megājin etc.
ম্যাগাজিন मैगेज़िन (See)

ମ୍ୟାଜିକ୍ (ଇତ୍ୟାଦି) — ବୈଦେ. ବି ( ଇଂ ) — ମେଜିକ୍ ଇତ୍ୟାଦି
Myājik (etc) ( ଦେଖ ) — Mejik etc ( See )
ম্যাজিক मैजीका

ମ୍ୟାଜିଷ୍ଟ୍ରେଟ୍ — ବୈଦେ. ବି ( ଇଂ ) — ମେଜିଷ୍ଟର ( ଦେଖ )
Myājishṭreṭ Mejishṭara ( See )
ম্যাজিষ্ট্রেট मैजिष्टर

ମ୍ୟାଟ୍ରିକ୍ — ବୈଦେ. ବି ( ଇଂ ) — ମେଟ୍ରିକ୍ ( ଦେଖ )
Myaṭrik Metrik ( See )
ম্যাট্রিক मैट्रीक

ମ୍ୟାଟ୍ରିକୁଲେଟ୍ — ବୈଦେ. ବି ( ଇଂ ) — ମେଟ୍ରିକୁଲେଟ୍ ( ଦେଖ )
Myāṭrikulet Meṭrikuleṭ ( See )
ম্যাট্রিকুলেট मैट्रीकुलेट

ମ୍ୟାଟ୍ରିକୁଲେସନ୍ — ବୈଦେ. ବି ( ଇଂ ) — ମେଟ୍ରିକୁଲେସନ୍ ( ଦେଖ )
Myāṭrikulesan Meṭrikulesan ( See )
ম্যাট্রিকুলেসন मैट्रीकुलेसन

ମ୍ୟାନେଜର — ବୈଦେ. ବି ( ଇଂ ) — ମେନେଜର ( ଦେଖ )
Myānejar Menejara ( See )
ম্যানেজর [ ଦ୍ର — ଇଂରାଜୀର 'Man' ଶବ୍ଦରେ ଥିବା 'a' ର
म(मै)नेजर ଉଚ୍ଚାରଣ 'ଅ' ନୁହେଁ କି 'ଏ' ନୁହେଁ । ଏହା 'ଏ' ଓ 'ଅ' ଉଚ୍ଚାରଣର ମିଶ୍ରଣ । ଏଥିପାଇଁ କେହି କେହି ଏହାକୁ ମାନ, କେହି କେହି ମେନ୍, କେହି କେହି ବା ମ୍ୟାନ୍ ବୋଲି ଉଚ୍ଚାରଣ କରିଥାନ୍ତି । ଫଳତଃ ଏହି ଉଚ୍ଚାରଣମାନଙ୍କ ମଧ୍ୟରୁ କୌଣସିଟି ଇଂରେଜୀ ଉଚ୍ଚାରଣକୁ ଠିକ୍ ଅନୁକରଣ କରିପାରେ ନାହିଁ ।
୨। 'ମ୍ୟା' ଅକ୍ଷରଯୁକ୍ତ ଇଂରେଜୀ ଶବ୍ଦମୂଳକ ଶବ୍ଦମାନ ଏହି ଭାଷାକୋଷରେ 'ମା' କିଂବା 'ମେ' କିମ୍ବା 'ମ୍ୟା' ତଳେ ଦେଖିବାକୁ ହେବ । ]

ମ୍ୟାମ୍ — ପ୍ରାଦେ. ( ମେଦିନୀପୁର ) ବି — ମେମ୍; ସାହେବାଣୀ —
Myām Lady.

ମ୍ୟାଲେରିଆ — ବୈଦେ. ବି ( ଇଂ ) — ମେଲେରିଆ ( ଦେଖ )
Myāleriā Meleriā ( See )
ম্যালেরিয়া मैलेरिआ

ମ୍ୟୁଁ — ଦେ. ଅ ( ଧ୍ୱନ୍ୟନୁକରଣ ) — ମ୍ୟାଉଁ; ବିରାଡ଼ିର ବୋବାଳି —
Myuñ The mewing of cat.
ম্যাওঁ मयावँ (ମ୍ୟୁଁ ମ୍ୟୁଁ — ଅନ୍ୟରୂପ)

ମ୍ୟୁଜିଅ(ୟ)ମ୍ — ବୈଦେ. ବି ( ଇଂ ) — ମିଉଜିଅମ୍ ( ଦେଖ )
Myujia(ya)m Miujiam ( See)

ମ୍ୟୁଜିକ୍ — ବୈଦେ. ବି ( ଇଂ ) — ମିଉଜିକ୍ ( ଦେଖ )
Myujik Miujik ( See )

ମ୍ୟୁଟିନି — ବୈଦେ. ବି ( ଇଂ ) — ମିଉଟିନି ( ଦେଖ )
Myuṭini Miuṭini ( See )
[ ଦ୍ର — ସିପାହି ମ୍ୟୁଟିନି = ୧୮୫୭ ସାଲରେ ଭାରତରେ ଇଂରେଜ ଶାସନ ବିରୁଦ୍ଧରେ ସିପାହିବିଦ୍ରୋହ । ]

ମ୍ରକ୍ଷ (ଧାତୁ) — ସ — ୧ । ବୋଳିବା; ମାଖିବା — 1. To smear; to
Mraksh (root) annoint. ୨ । ଏକତ୍ର ମିଶାଇବା —
2. To mix together. ୩ । ସଂଗ୍ରହ କରିବା —
3. To collect. ୪ । ଅଶୁଦ୍ଧ କହିବା — 4. To speak incorrectly.

ମ୍ରକ୍ଷଣ — ସ. ବି. ( ମ୍ରକ୍ଷ୍ ଧାତୁ + ଭାବ. ଅନ ) — ୧ । ବୋଳିବା;
Mrakhaṇa ମାଖିବା; ଲେପିବା — 1. Smearing;
annointing. ୨ । ଏକାଧିକ ବସ୍ତୁର ମିଶ୍ରଣ —
2. Mixing up of many things.

ମ୍ରଢ଼ ( ଧାତୁ ) — ସ — ୧ । ଗମନ କରିବା — 1. To go; to walk.
Mrardh(root) ୨ । ଗତି କରିବା — 2. To move.

ମ୍ରଦ୍ ( ଧାତୁ ) — ସ — ୧ । ମର୍ଦ୍ଦନ କରିବା; ଦଳିବା — 1 To tread;
Mrad (root) to trample; to crush. ୨ । ଚୂର୍ଣ୍ଣ କରିବା — 2. To pulverise; to reduce to powder. ୩ । ପେଷିବା — 3. To grind; to pound.

ମ୍ରଦିମା — ସ. ବି ( ମୃଦୁ + ଭାବେ. ଇମନ; ୧ମା. ୧ବ ) — କୋମଳତା;
Mradimā ମୃଦୁତା — Mildness.

ମ୍ରଦିଷ୍ଠ — ସ. ବିଣ ( ମୃଦୁ + ଅତ୍ୟର୍ଥେ ଇଷ୍ଠ ) — ଅତିଶୟ ମୃଦୁ —
Mradhistha Very mild.
( ମ୍ରଦିଷ୍ଠା — ସ୍ତ୍ରୀ )

ମ୍ରଦୀୟାନ୍ — ସ. ବିଣ. ପୁଂ ( ମୃଦୁ + ଈୟସ; ୧ମା. ୧ବ ) —
Mradiyān ମୃଦୁତର; ଅତି ମୃଦୁ — Very mild.
( ମ୍ରଦୀୟସୀ — ସ୍ତ୍ରୀ )

ମ୍ରିୟମାଣ — ସ. ବିଣ. ପୁଂ ( ମୃ ଧାତୁ = ମରିବା + କର୍ତ୍ତୃ. ଅନ ) —
Mriyamāṇa ୧ । ମୃତପ୍ରାୟ; ମଲା ପରି — 1 Moribond
( ମ୍ରିୟମାଣା — ସ୍ତ୍ରୀ ) ୨ । ଆସନ୍ନ ମୃତ୍ୟୁ — 2 Dying. ୩ । ଅବସନ୍ନ — 3. Worne out; exhausted. ୪ ।

୪ । ଅତି ଦୁଃଖିତ—4 Very sad; dejected. ୫ । ଅତି ଲଜ୍ଜିତ—5. Much ashamed; abashed.

**ମ୍ଳାନ**—ସଂ. ବିଣ ( ମ୍ଳୈ ଧାତୁ = କାନ୍ତି କ୍ଷୟ ହେବା, ଝାଉଁଳିଯିବା + Mlāna କର୍ତ୍ତୃ. ତ )—୧ । ମଳିନ—1 Dirty; foul; filthy. ୨ । ନିଷ୍ପ୍ରଭ; କାନ୍ତିହୀନ—2. Shorn of splendour. ୩ । ବିବର୍ଣ୍ଣ—3. Pale; languid. ୪ । ଅପ୍ରସନ୍ନ—4. Dejected; disconcerted. ୫ । ବିଶୀର୍ଣ୍ଣ—5. Emaciated. ୬ । ଝାଉଁଳି ଯାଇଥିବା—6. Withered. ୭ । ଶ୍ରାନ୍ତ; କ୍ଳାନ୍ତ—7. Tired; jaded; weary; fatigued. ୮ । ଦୁର୍ବଳ—8. Weak. ୯ । ନିର୍ଲଜ୍ଜ—9. Shameless. ୧୦ । ଫିକା ପଡ଼ିଯାଇଥିବା; ମଉଳି ଯାଇଥିବା—10. Faded.

**ମ୍ଳାନ ବଦନ**—ସଂ. ବି.—(କର୍ମଧା)—ବିବର୍ଣ୍ଣ ମୁଖ—Pale face; Mlāna badana dejected countenance. ବିଣ. (ମ୍ଳାନ ମୁଖ—ଅନ୍ୟରୂପ) ପୁଂ.—(ବହୁବ୍ରୀହି)—ବିବର୍ଣ୍ଣ ମୁଖଯୁକ୍ତ—(ମ୍ଳାନ ବଦନା, ମ୍ଳାନ ମୁଖୀ—ସ୍ତ୍ରୀ) Pale-faced; dejected.

**ମ୍ଳାନି**—ସଂ. ବି.—(ମ୍ଳୈ ଧାତୁ + ଭାବ. ତି)—୧ । ମାଳିନ୍ୟ—Mlāni 1. Paleness; pallor. ୨ । କ୍ଳାନ୍ତି—2. (ମ୍ଳାନିମା; ମ୍ଳାନତା—ଅନ୍ୟରୂପ) Weariness; langour. ୩ । କୃଶତା—3. Emaciation.

**ମ୍ଳାନିବା**—ଦେ. (ଅଦ୍ୟ) କ୍ରି—(ସଂ. ମ୍ଳାନ)—ମ୍ଳାନ କରିବା; ମ୍ଳାନ-Mlānibā ମ୍ଳାନ କରା . म्लान करना ପ୍ରଭ କରିବା—To turn anything pale; to tarnish. [ଉ—ଯା ଝଟକ କେବେ ଲବେ ନ ପାରଇ ମ୍ଳାନି କରି କାଳ । ରାଧାନାଥ. ମହାଯାତ୍ରା । ]

**ମ୍ଳାୟୀ**—ସଂ. ବିଣ. ପୁଂ—( ମ୍ଳୈ ଧାତୁ + କର୍ତ୍ତୃ. ଇନ୍)—୧ । ମ୍ଳାନ; Mlāyī ମ୍ଳାନତାଯୁକ୍ତ (ହ୍ର. ଶ) —1. Faded. ୨ । ଅତି (ମ୍ଳାୟିନୀ—ସ୍ତ୍ରୀ) ଦୁଃଖିତ—2 Dejected.

**ମ୍ଳିଷ୍ଟ**—ସଂ. ବିଣ.—( ମ୍ଳେଚ୍ଛ୍ ଧାତୁ = ଅଶୁଦ୍ଧ ବା ଅସ୍ପଷ୍ଟ କଥା କହିବା + Mlishta କର୍ମ. ତ)—୧ । ଅସ୍ପଷ୍ଟ—1 Indistinct. ୨ । ଅବ୍ୟକ୍ତ; ଅର୍ଦ୍ଧୋକ୍ତ—2. Inarticulate. ୩ । ମ୍ଳାନ—3. Pale; languid. ୪ । ଅପଗତ—4. Removed. ବି—(+ଭାବ. ତ)—ଅସ୍ପଷ୍ଟ କଥା—Indistinct words; jargon.

**ମ୍ଳୁଚ୍(ଞ୍ଚ)** (ଧାତୁ)—ସଂ.—୧ । ଗମନ କରିବା—1. To go. ୨ । Mluch(ñch) (root) ଗତି କରିବା—2. To move.

**ମ୍ଳେଚ୍ଛ** (ଧାତୁ)—୧ । ଅସ୍ପଷ୍ଟ କଥା କହିବା—1. To speak indis-Mlechchh(root) tinctly. ୨ । ଅଶୁଦ୍ଧ କଥା କହିବା 2. To speak incorrectly. ୩ । ଅସଂସ୍କୃତ ବା ଅସଭ୍ୟଜନୋଚିତ ବାକ୍ୟ କହିବା—3. To speak a jargon.

**ମ୍ଳେଚ୍ଛ**—ସଂ. ବି—(ମ୍ଳେଚ୍ଛ ଧାତୁ + କର୍ତ୍ତୃ. ଅ)—୧ । ବର୍ବର ବା ଅସଭ୍ୟ Mlechchha ଜାତି (କିରାତ, ଶବର, କାମ୍ବୋଜ, ଶକ, ହୂଣ, ଯବନ ପ୍ରଭୃତି) ଅନାର୍ଯ୍ୟ; ବିଦେଶୀୟ ବ୍ୟକ୍ତି—1. Barbarians (using a jargon other than Sanscrit); a non-Aryan; a foreigner. (Apte). [ଉ—ତାହାଙ୍କୁ ମ୍ଳେଚ୍ଛଙ୍କ ଦେଶରେ ସେ ରଖିଲେ । କୃଷ୍ଣସିଂହ. ମହାଭାରତ. ଆଦି ।] [ ଦ୍ର—ଏ ଶବ୍ଦର ଧାତୁଗତ ଅର୍ଥ—ଅସ୍ପଷ୍ଟଭାଷୀ ବା ଅବ୍ୟକ୍ତବର୍ଣ୍ଣ ଉଚ୍ଚାରଣକାରୀ ବ୍ୟକ୍ତି । ଯେଉଁ ଭାଷାମାନଙ୍କ ଉଚ୍ଚାରଣ-ଶୈଳୀ ଆର୍ଯ୍ୟ ଭାଷାରୁ ପୃଥକ୍ ଏପରିଭାଷାଭାଷୀଙ୍କୁ ପ୍ରାଚୀନ ଗ୍ରନ୍ଥରେ ମ୍ଳେଚ୍ଛ ବୋଲି ଯାଇଅଛି । ମ୍ଳେଚ୍ଛମାନଙ୍କ ବର୍ଣ୍ଣାଶ୍ରମ ଧର୍ମ ରହିତ ବୋଲି ଯାଇଅଛି । ବଶିଷ୍ଠଙ୍କ ଧେନୁ ନନ୍ଦିନୀଙ୍କୁ ବିଶ୍ୱାମିତ୍ର ଛଡ଼ାଇ ନେବା ବେଳେ ନନ୍ଦିନୀର ଅଙ୍ଗରୁ ମ୍ଳେଚ୍ଛମାନଙ୍କ ଜନ୍ମ ହୋଇଥିବା ମହାଭାରତ ଆଦି-ପର୍ବରେ ଲେଖା ଅଛି । ପହ୍ଳବ, ଦ୍ରାବିଡ଼, ଶକ, ଯବନ, ଶବର, ପୌଣ୍ଡ୍ର, କିରାତ, ଯବନ, ସିଂହଳ, ବର୍ବର, ଖସ-ଆଦିଙ୍କୁ 'ମ୍ଳେଚ୍ଛ' ମଧ୍ୟରେ ଗଣନା କରାଯାଇଅଛି । ବିଷ୍ଣୁ-ପୁରାଣରେ ଲେଖା ଅଛି ଯେ ସଗର ରାଜା ବୈଦିକମାନଙ୍କ ପରାଜିତ କରି ସେମାନଙ୍କୁ ଧର୍ମଚ୍ୟୁତ କରାଇଥିଲେ; ସେମାନେ ଶକ, ଯବନ, କାମ୍ବୋଜ, ପାରଦ, ପହ୍ଳବ ଆଦି ମ୍ଳେଚ୍ଛ ଜାତି ହେଲେ । ମତ୍ସ୍ୟ ପୁରାଣରେ ରାଜା ବେଣଙ୍କ ମୃତ ଶରୀରର ମନ୍ଥନରୁ ମ୍ଳେଚ୍ଛ ଜାତିର ଉତ୍ପତ୍ତି ହୋଇଥିବା ଲେଖା ଅଛି । ବୃହତ୍ ସଂହିତାରେ ହିମାଳୟ ଓ ବିନ୍ଧ୍ୟ ଏବଂ କୁରୁକ୍ଷେତ୍ର ଓ ପ୍ରୟାଗର ମଧ୍ୟସ୍ଥ ଦେଶକୁ ମଧ୍ୟଦେଶ ଓ ଏହା ଛଡ଼ା ଅନ୍ୟ ଦେଶମାନଙ୍କୁ ମ୍ଳେଚ୍ଛ ଦେଶ ବୋଲି ଯାଇଅଛି । ବୃହତ୍ ପରାଶରରେ ଗୁରୁବର୍ଣ୍ଣୀ ଓ ଅନ୍ତ୍ୟଜ ବର୍ଣ୍ଣମାନଙ୍କ ଅନ୍ତରରୁ ବର୍ଣ୍ଣାଶ୍ରମହୀନ ବ୍ୟକ୍ତିମାନଙ୍କୁ ମ୍ଳେଚ୍ଛ ବୋଲି ଯାଇଅଛି । ବୋଧାୟନଙ୍କ ପ୍ରାୟଶ୍ଚିତ୍ତ ତତ୍ତ୍ୱରେ ଗୋମାଂସ-ଭକ୍ଷୀ, ବିରୁଦ୍ଧଭାଷୀ ଓ ସଦାଚାରହୀନ ବ୍ୟକ୍ତିମାନଙ୍କୁ ମ୍ଳେଚ୍ଛ ବୋଲି ଯାଇଅଛି । ହି. ଶ ] ୨ । ପାମର; ପାପୀ ବ୍ୟକ୍ତି—2. A sinner. ୩ । ଅପରାଧୀ ଜାତି—3. Criminal tribe. ୪ । (+କର୍ମ. ଅ) ଅପଭ୍ରଂଶ—4. Jargon. ୫ । ବିଦେଶୀ ଭାଷା—5. A foreign or barbarous speech (Apte) ୬ । ହିଙ୍ଗୁଳ—6 Yellow orpiment. ୭ । ହେଙ୍ଗୁ (ହି. ଶ)—7. Assafoetida. ୮ । ତମ୍ବା—8. Copper. ବିଣ. ୧ । ପାପିଷ୍ଠ—1. Sinful. ୨ । ଖଳ—2. Wicked. ୩ । କଦାଚାରୀ—3. Practising evil customs. ୪ । ନୀଚ—4. Low; mean. ଦେ. ବିଣ.—ଅତି ମଳିନ ( ବେଶ, ଶରୀର )—Very dirty or filthy (body or dress).

**ମ୍ଳେଚ୍ଛ କନ୍ଦ**—ସଂ. ବି (ମ. ପ. ତତ୍ପୁ ମ୍ଳେଚ୍ଛମାନଙ୍କ ବାଞ୍ଛନୀୟ କନ୍ଦ)—Mlechchha kanda ଲଶୁନ; ରସୁଣ—Garlic.

**ମ୍ଳେଚ୍ଛ ଜାତି**—ସଂ. ବି—ଗୋମାଂସଖାଦକ, ବର୍ଣ୍ଣବର୍ଜ୍ଜିତଭାଷକ, ସଦା-
Mlechchha jāti ଗୁରବର୍ଜ୍ଜିତ, ପ୍ରାଚୀନ ଜାତିଗଣ—A generic name for barbarians and wild tribes who were beef eaters and were speaking jargon and addicted to vice and sinful practices.
[ ଦ୍ର—ପ୍ରାଚୀନ ହିନ୍ଦୁମାନେ ବିଦେଶୀୟ ଓ ଅନ୍ୟ ଧର୍ମାବଲମ୍ବୀ ଜାତିମାନଙ୍କୁ ମ୍ଳେଚ୍ଛ ଜାତିରୂପେ ପରିଗଣିତ କରୁଥିଲେ । ମହାଭାରତରେ କାମ୍ବୋଜ, ଯବନ, ଶବର, ବର୍ବରଆଦିଙ୍କୁ ମ୍ଳେଚ୍ଛ ଜାତି ବୋଲି ଉଲ୍ଲେଖ କରାଯାଇ ଅଛି । ମହାଭାରତ. ଦ୍ରୋଣ । ]

**ମ୍ଳେଚ୍ଛନ**—ସଂ.ବି(ମ୍ଳେଚ୍ଛ ଧାତୁ+ଭାବ ଅନ)—୧ । ଅସ୍ପଷ୍ଟଭାବରେ କଥନ—
Mlechchhana 1. Speaking indistinctly
୨ । ମ୍ଳେଚ୍ଛଭାଷାରେ କଥନ—2. Speaking in a barbarous tongu·.

**ମ୍ଳେଚ୍ଛ ଦେଶ**—ସଂ.ବି (୬ଷ୍ଠୀ ତତ୍)—ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ରହିତ ଦେଶ
Mlechchha deṡa —A country not observing
(ମ୍ଳେଚ୍ଛ ମଣ୍ଡଳ—ଅନ୍ୟରୂପ ) the rules of the four castes; a country of the non-Hindus.

**ମ୍ଳେଚ୍ଛ ଫଳ**—ସଂ. ବି ( ମ. ଘ. ଲେ )—କାଫି—
Mlechchha phala Coffee.

**ମ୍ଳେଚ୍ଛ ବାକ୍**—ସଂ. ବିଣ. ପୁଂ. ଓ ସ୍ତ୍ରୀ—(ମ୍ଳେଚ୍ଛ+ବଚ୍ ଧାତୁ+କର୍ତ୍ତୃ.
Mlechchha bāk କ୍ୱିପ୍ )—ମ୍ଳେଚ୍ଛଭାଷାବ୍ୟବହାରକାରୀ—
Speaking a barbarous or foreign language.

**ମ୍ଳେଚ୍ଛ ଭାଷା**—ସଂ. ବି—୧ । ବିଦେଶୀୟ ଭାଷା—1. Foreign
Mlechchha bhāshā language. ୨ । ମ୍ଳେଚ୍ଛ ଜାତିମାନଙ୍କ କଥ୍ୟ ଭାଷା—2. The language used b
(ମ୍ଳେଚ୍ଛଭାଷୀ—ପୁଂ, ମ୍ଳେଚ୍ଛଭାଷିଣୀ—ସ୍ତ୍ରୀ—ବିଣ) barbarians.

**ମ୍ଳେଚ୍ଛ ଭୋଜନ**—ସଂ. ବି (୬ଷ୍ଠୀ ତତ୍ )—ଗୋଧୂମ; ଗହମ—
Mlechchha bhojana Wheat.

**ମ୍ଳେଚ୍ଛ ମୁଖ**—ସଂ. ବି—ତମ୍ବା; ତାମ୍ର—
Mlechchha mukha [ମ୍ଳେଚ୍ଛାସ୍ୟ—ଅନ୍ୟରୂପ] Copper.

**ମ୍ଳେଚ୍ଛି(ଚ୍ଛି)ଆ**—ଦେ. ବିଣ.—ଅତ୍ୟନ୍ତ ମଇଳା ବା ମଳଯୁକ୍ତ—
Mlechchhi(chhi)ā ମ୍ଳେଚ୍ଛିଆ Very filthy or
[ମ୍ଳେଚ୍ଛୀ, ମ୍ଳେଚ୍ଛେଇ—ସ୍ତ୍ରୀ] dirty.

**ମ୍ଳେଚ୍ଛିତ**—ସଂ. ବି—(ମ୍ଳେଚ୍ଛ ଧାତୁ+ଭାବ.ତ)—୧ । ମ୍ଳେଚ୍ଛ ଭାଷା—
Mlechchhita 1. Language of foreigners and barbarians. ୨ । ଅବ୍ୟାକରଣିକ ଭାଷା—2. An ungrammatical speech. ବିଣ.—
ଅଶୁଦ୍ଧଭାବରେ ଉଚ୍ଚାରିତ—Spoken incorrectly.

**ମ୍ଳେଟ୍(ଡ୍) (ଧାତୁ)**—ସଂ.—ବାଯୁଲା ହେବା—
Mleṭ(ḍ) (root) To be mad (Apte).

**ମ୍ଳେବ୍ (ଧାତୁ)**—ସଂ—୧ । ପୂଜା କରିବା—1. To worship.
Mleb (root) ୨ । ସେବା କରିବା—2. To serve.

**ମ୍ଳୈ (ଧାତୁ)**—ସଂ—୧ । ମ୍ଳାନ ହେବା—1. To fade; to
Mlai (root) wither. ୨ । କ୍ଷୟିତ ହେବା—2. To decay; to wane

Printed by M. Kar, Utkal Sahitya Press, Cuttack